

# ଶ୍ରୀମଦ୍‌ଭାଗବତ

## ପ୍ରଥମ ଖଣ୍ଡ

ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ସ୍କନ୍ଧ

ନବାକ୍ଷରୀ ପଦ୍ୟାନୁବାଦ

**ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା**



ଶ୍ରୀପୁରୀଦାସ୍ମ ଗୋସ୍ୱାମୀ ଟ୍ରଷ୍ଟ

# ଶ୍ରୀମଦ୍‌ଭାଗବତ

## ପ୍ରଥମ ଖଣ୍ଡ

(ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ସ୍କନ୍ଧ)

ଶ୍ରୀଧରସ୍ୱାମୀଙ୍କ ଟୀକାନୁସରଣରେ ନବାକ୍ଷରୀ ଓଡ଼ିଆ ପଦ୍ୟାନୁବାଦ

**ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା**

ସଂପାଦନା

**ଅଧ୍ୟାପକ ରଙ୍ଗାଧର ଷଡ଼ଙ୍ଗୀ**

ପ୍ରକାଶନ

**ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ**
ଭୁବନେଶ୍ୱର

# Shrimadbhagavata

Prathama Khanda
(Prathama, Dwitiya, Trutiya O Chaturtha Skandha)
Sri Dinabandhu Mishra Khadanga

Published by
**Sri Puridas Goswami Trust**
Brahmeswarpatna, Bhubaneswar



ପ୍ରଥମ ପ୍ରକାଶ ସେପ୍ଟେମ୍ବର ୧୯୮୮
ଦ୍ୱିତୀୟ ପ୍ରକାଶ ସେପ୍ଟେମ୍ବର ୨୦୦୫

ପ୍ରକାଶକ
ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ
ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର

ପରିବେଷକ
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
ଫୋନ୍ : ୦୬୭୧-୨୩୦୮୨୩୭

ମୁଦ୍ରଣ
ରୟାଲ୍ ହାଫ୍‌ଟୋନ୍ କୋ, କଟକ

ଆନୁକୂଲ୍ୟ ଟ ୮୦.୦୦

# ପ୍ରାକ୍‌କଥନ

ଭାରତୀୟ ସାହିତ୍ୟରେ ଶ୍ରୀମଦ୍‌ଭାଗବତ ଅଷ୍ଟାଦଶ ପୁରାଣର ଅନ୍ତର୍ଗତ । ଏହା ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠ । ସେଥିପାଇଁ କୁହାଯାଏ – ''ରାଜନ୍ତେ ତାବଦନ୍ୟାନି ପୁରାଣାନି ସତାଂ ଗଣେ । ଯାବଦ୍ ଭାଗବତଂ ନୈବ ଶ୍ରୂୟତେଽମୃତସାଗରମ୍ ।'' (ଭା୧୨।୧୩।୧୪) ଶ୍ରୀମଦ୍‌ଭାଗବତ ଅମୃତସାଗର । ଏହା ଆଗରେ ଅନ୍ୟ ପୁରାଣମାନଙ୍କର ମହତ୍ତ୍ୱ କମ୍ । ଏହା ପୁଣି ନିଗମକଳ୍ପତରୁର ଗଳିତ ଫଳ । ନିଗମ ଶବ୍ଦର ଅର୍ଥ ବେଦ । ଯାହାଠାରୁ ପରମ ତତ୍ତ୍ୱର ନିଗମନ (ପ୍ରକଟନ) ହୁଏ ତାହାକୁ ନିଗମ ବୋଲାଯାଏ । ସେହି ନିଗମରୂପକ ରସାଳ ବୃକ୍ଷର ରସମୟ ଫଳ ହେଉଛି ଶ୍ରୀମଦ୍‌ଭାଗବତ । ବୃକ୍ଷ ପରିଣତ ଅବସ୍ଥାରେ ଫଳ ଉତ୍ପନ୍ନ କରିଥାଏ । ଫଳଦାନରେ ହିଁ ବୃକ୍ଷବୀଜର ସାର୍ଥକତା ନିହିତ । ବେଦାର୍ଥର ଚରମ ପରିଣତି ହେଉଛି ଶ୍ରୀମଭାଗବତର ଆବିର୍ଭାବ ଏବଂ ବେଦାର୍ଥର ଚରମ ସାର୍ଥକତା ହେଉଛି ଭାଗବତ ରସ ପରିବେଷଣ ।

ପୂର୍ବୋକ୍ତ ବୃକ୍ଷ ଓ ଫଳର ଦୃଷ୍ଟାନ୍ତରେ ଏକ ଗଭୀର ତତ୍ତ୍ୱ ଅନ୍ତର୍ନିହିତ । ସମସ୍ତ ବେଦର ସାର ହେଉଛି ପ୍ରଣବ । (ପ୍ରଣବଃ ସର୍ବବେଦେଷୁ-ଗୀତା) ପ୍ରଣବ ହିଁ ବ୍ରହ୍ମର ବାଚକ (''ତସ୍ୟ ବାଚକଃ ପ୍ରଣବଃ''- ପତଞ୍ଜଳି) ଏବଂ ସର୍ବାପେକ୍ଷା ନିକଟତମ ନାମ (''ଓମିତ୍ୟେତଦ୍ ବ୍ରହ୍ମଣୋ ନେଦିଷ୍ଠଂ ନାମ'' - ଶ୍ରୁତି) । ପ୍ରଣବ ହିଁ ବେଦର ମହାବାକ୍ୟ (ସର୍ବବେଦବାକ୍ୟାର୍ଥସମନ୍ୱୟବିଧାୟକତ୍ୱେନ ମହତ୍ତ୍ୱମ୍, ଅକାରାଦ୍ୟକ୍ଷରାତ୍ମକପରସ୍ପର-ସଂବଦ୍ଧପଦସମୁଦାୟତ୍ୱାଦ୍ ବାକ୍ୟତ୍ୱମ୍) । ''ମହାବାକ୍ୟ'' ପଦର ବ୍ୟୁତ୍ପତ୍ତି ଅନୁସାରେ ତହିଁରେ ମହତ୍ତ୍ୱ ଓ ବାକ୍ୟତ୍ୱ ରହିବାର କଥା । ସର୍ବବେଦାର୍ଥର ସମନ୍ୱୟ କରୁଥିବା ହେତୁ ପ୍ରଣବର ମହତ୍ତ୍ୱ ଏବଂ ଅକାରାଦି ଅକ୍ଷରାତ୍ମକ ପରସ୍ପର ସମ୍ବନ୍ଧବିଶିଷ୍ଟ ପଦମାନଙ୍କର ସମନ୍ୱୟ କରୁଥିବା ହେତୁ ଏହାର ବାକ୍ୟତ୍ୱ ସିଦ୍ଧ ହୁଏ । ପ୍ରଣବର ମୂର୍ତ୍ତି ହେଉଛି ବ୍ରହ୍ମଗାୟତ୍ରୀ । ପ୍ରଣବ ଏକ କୁସୁମକଳିକା ହେଲେ ବ୍ରହ୍ମଗାୟତ୍ରୀ ଏହାର ସ୍ଫୁଟନୋନ୍ମୁଖ ଶୋଭା ଏବଂ ଶ୍ରୀମଦ୍‌ଭାଗବତ ଏହି କୁସୁମର ଚରମ ଓ ପରମ ପରିଣତି - ସୁପରିପକ୍ୱ ମଧୁମୟ ଫଳ । ଗାୟତ୍ରୀମନ୍ତ୍ର ହେଉଛି ''ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍'', ଅର୍ଥାତ୍ ବିଶ୍ୱପ୍ରସବିତାଙ୍କର ସେହି ବରଣୀୟ ଜ୍ୟୋତିକୁ ଆମ୍ଭେମାନେ ଧ୍ୟାନ କରୁଅଛୁ – ସେ ଆମ୍ଭମାନଙ୍କର ବୁଦ୍ଧିବୃତ୍ତିସମୂହକୁ ପ୍ରକୃଷ୍ଟରୂପେ ଚାଳନା କରନ୍ତୁ । ଗାୟତ୍ରୀର ଏହି ଅର୍ଥ ଶ୍ରୀମଦ୍‌ଭାଗବତରେ ତିନି ପ୍ରକାରେ ସ୍ଥାପନ କରା ହୋଇଅଛି–

୧ । ଜନ୍ମାଦ୍ୟସ୍ୟ ଯତଃ- ଏହି ଶ୍ଳୋକାଂଶଟି ସମଗ୍ର ଭାଗବତର ବୀଜସ୍ୱରୂପ । ଗାୟତ୍ରୀର ସହିତ ଏହାର ଏକବାକ୍ୟତା ବିଦ୍ୟମାନ । ଗାୟତ୍ରୀର ''ଧୀମହି'', ଏବଂ

ଭାଗବତର ପ୍ରଥମ ଶ୍ଳୋକର "ଧୀମହି" ଏକାର୍ଥକ । ଗାୟତ୍ରୀର "ପ୍ରଚୋଦୟାତ୍" ପଦର ଯେଉଁ ତାତ୍ପର୍ଯ୍ୟ ଭାଗବତର "ତେନେ" ପଦର ମଧ୍ୟ ସେହି ତାତ୍ପର୍ଯ୍ୟ । ଗାୟତ୍ରୀର "ବରେଣ୍ୟଂ ଭର୍ଗଃ" ଓ ଭାଗବତର "ସତ୍ୟଂ ପରଂ" ଏକାର୍ଥକ । ଗାୟତ୍ରୀର "ସବିତୁର୍ଦ୍ଦେବସ୍ୟ" ପଦର ତାତ୍ପର୍ଯ୍ୟ ଭାଗବତର "ଜନ୍ମାଦ୍ୟସ୍ୟ ଯତଃ" ପଦରେ ବିଦ୍ୟମାନ । ସୁତରାଂ ଭାଗବତର ବୀଜସ୍ୱରୂପ ପ୍ରଥମ ଶ୍ଳୋକ ସହିତ ଗାୟତ୍ରୀମନ୍ତ୍ରର ସର୍ବଥା ସାଦୃଶ୍ୟ ଥିବା ହେତୁ ଭାଗବତ ହେଉଛି ଗାୟତ୍ରୀର ଭାଷ୍ୟସ୍ୱରୂପ । ସେଥିପାଇଁ ଶ୍ରୀଧରସ୍ୱାମିପାଦ ତାଙ୍କ ଭାବାର୍ଥଦୀପିକା ଟୀକାରେ କହିଅଛନ୍ତି - "ଗାୟତ୍ର୍ୟା ପ୍ରାରମ୍ଭେଣ ଗାୟତ୍ର୍ୟାଖ୍ୟ-ବ୍ରହ୍ମବିଦ୍ୟାସ୍ୱରୂପମେତଦ୍ ପୁରାଣମିତି ଦର୍ଶିତମ୍ ।" ମତ୍ସ୍ୟପୁରାଣ ଓ ଅଗ୍ନିପୁରାଣ ପ୍ରଭୃତିରେ ମଧ୍ୟ ଏହାର ପ୍ରମାଣ ଅଛି । ଯଥା - ଯତ୍ରାଧିକୃତ୍ୟ ଗାୟତ୍ରୀଂ ବର୍ଣ୍ଣ୍ୟତେ ଧର୍ମବିସ୍ତରଃ । ବୃତ୍ରାସୁରବଧୋପେତଂ ତଦ୍‌ଭାଗବତମିଷ୍ୟତେ ।" (ମାତ୍ସ୍ୟ ୫୩।୨୦) । ପୁନଶ୍ଚ

"ଗ୍ରନ୍ଥୋଽଷ୍ଟାଦଶସାହସ୍ରୋ ଦ୍ୱାଦଶସ୍କନ୍ଧସଂମିତଃ ।

ଗାୟତ୍ର୍ୟା ଚ ସମାରମ୍ଭସ୍ତଦ୍ ବୈ ଭାଗବତଂ ବିଦୁଃ ।।"(ଅଗ୍ନି ୨୭୨।୬୭)

ଶ୍ରୀକୃଷ୍ଣଦାସ କବିରାଜ ଗୋସ୍ୱାମୀ ତଦୀୟ ଚୈତନ୍ୟଚରିତାମୃତ ଗ୍ରନ୍ଥରେ ଏହାର ଅନୁରୂପ ଉଲ୍ଲେଖ କରିଅଛନ୍ତି ଯଥା -

"ଗାୟତ୍ରୀର ଅର୍ଥେ ଏହି ଗ୍ରନ୍ଥ ଆରମ୍ଭଣ ।

'ସତ୍ୟଂ ପରଂ ଧୀମହି'-ସାଧନ ପ୍ରୟୋଜନ ।"

୨ । "ଚତୁଃଶ୍ଳୋକୀ" ଭାଗବତରେ ଜ୍ଞାନ, ବିଜ୍ଞାନ, ରହସ୍ୟ ଓ ତଦଙ୍ଗ - ଏହି ଚାରିଗୋଟି ବିଷୟ ଆଲୋଚିତ ହୋଇଅଛି । 'ଜ୍ଞାନ' - ଶାସ୍ତ୍ରାର୍ଥାବବୋଧ, 'ବିଜ୍ଞାନ'- ତତ୍ତ୍ୱାନୁଭୂତି, 'ରହସ୍ୟ'- ପ୍ରେମଭକ୍ତି ଓ 'ତଦଙ୍ଗ'- ସାଧନଭକ୍ତିକୁ ବୁଝାଏ । ଏହି ଚାରିଗୋଟି ବିଷୟ ସମଗ୍ର ଶାସ୍ତ୍ରରେ ବର୍ଣ୍ଣନୀୟ । ଭଗବାନ୍ ବ୍ରହ୍ମାଙ୍କୁ ଏହି ଚାରିଗୋଟି ବିଷୟରେ (ଚତୁଃଶ୍ଳୋକୀ) ଉପଦେଶ ପ୍ରଦାନ କରିଥିଲେ । ପ୍ରଣବର ଅର୍ଥ ଗାୟତ୍ରୀରେ ଏବଂ ତାହାର ଅଭିବ୍ୟକ୍ତି "ଚତୁଃଶ୍ଳୋକୀ"ରେ ଦୃଷ୍ଟ ହୁଏ । ସେଥିପାଇଁ ଶ୍ରୀକୃଷ୍ଣଦାସ କବିରାଜ ଗୋସ୍ୱାମୀ କହିଛନ୍ତି - "ପ୍ରଣବେର ଯେଇ ଅର୍ଥ ଗାୟତ୍ରୀତେ ହୟ । ସେଇ ଅର୍ଥ ଚତୁଃଶ୍ଳୋକୀତେ ବିବରିୟା କୟ ।" (ଚୈ. ଚ. ମଧ୍ୟ ୨୫/୯୨) ଭଗବାନ୍‌ଙ୍କଠାରୁ ଏହି ଚତୁଃଶ୍ଳୋକୀ ପ୍ରାପ୍ତ ହୋଇ ବ୍ରହ୍ମା ନାରଦଙ୍କୁ ଏବଂ ନାରଦ ବ୍ୟାସଦେବଙ୍କୁ ପ୍ରଦାନ କରିଥିଲେ । ବ୍ୟାସଦେବ ଏହି ଚତୁଃଶ୍ଳୋକୀ ଦ୍ୱାରା ଭାଗବତର ଭିତ୍ତି ସ୍ଥାପନ କରିଛନ୍ତି । ଅତଏବ ଗାୟତ୍ରୀ ଓ ଚତୁଃଶ୍ଳୋକୀର ପ୍ରତିପାଦ୍ୟ ବସ୍ତୁ ଅଭିନ୍ନ । ଚତୁଃଶ୍ଳୋକୀର ପରିଣତି ହେଉଛି ଭାଗବତ । ଏଣୁ ଏହା ବେଦ-କଳ୍ପତରୁର ପରିପକ୍ୱ ଫଳ ।

୩ । "ସତ୍ୟସ୍ୟ ଦ୍ୱିବିଧଂ ରୂପଂ ମୂର୍ତ୍ତଂ ଚାମୂର୍ତ୍ତମେବ ଚ" ଅର୍ଥାତ୍ ସତ୍ୟର ରୂପ ଦ୍ୱିବିଧ-ମୂର୍ତ୍ତ ଓ ଅମୂର୍ତ୍ତ । ଦୁଇରେ ଦୁଇ ମିଶିଲେ ଚାରି ହୁଏ । ଏହା ଗଣିତଶାସ୍ତ୍ରର ଅମୂର୍ତ୍ତ

ସତ୍ୟ । କିନ୍ତୁ ଦୁଇ ଦୁଇଟି ଘଟ ବା ପଟ ଏକତ୍ର କଲେ ଯେଉଁ ଚାରିଗୋଟି ବସ୍ତୁ ଦୃଶ୍ୟ ହୁଏ ତାହା ହେଉଛି ସତ୍ୟର ମୂର୍ତ୍ତ ରୂପ । ସେହିପରି ଗାୟତ୍ରୀ ପ୍ରତିପାଦିତ ସତ୍ୟ ଅମୂର୍ତ୍ତ । କିନ୍ତୁ ତାହା ଭାଗବତରେ ପୂର୍ଣ୍ଣରୂପେ ମୂର୍ତ୍ତିମନ୍ତ ହୋଇଅଛି । ଗାୟତ୍ରୀ ମନ୍ତ୍ରରେ ଅଛି - "ସେ ଆମର ବୁଦ୍ଧିବୃତ୍ତିକୁ ପ୍ରେରଣ କରନ୍ତୁ ।" କିନ୍ତୁ କି ଉପାୟରେ ଏବଂ କେଉଁ ଦିଗରେ- ମନ୍ତ୍ରରେ ଏ କଥାର ଉଲ୍ଲେଖ ନାହିଁ । ବର୍ତ୍ତମାନ ବିଚାର୍ଯ୍ୟ ହେଉଛି ଯେ କି ଉପାୟରେ ଏବଂ କେଉଁ ଦିଗରେ ବୁଦ୍ଧିବୃତ୍ତିର ପ୍ରେରଣା ହୁଏ ।

ଶ୍ରୀମଦ୍‌ଭଗବଦ୍‌ଗୀତାର ଉକ୍ତି ଅନୁସାରେ "ହୃଷୀକେଶ ଜୀବମାନଙ୍କୁ ବଳପୂର୍ବକ କର୍ମରେ ନିଯୁକ୍ତ କରାନ୍ତି" ("ବଳାଦିବ ନିୟୋଜିତଃ"- ଗୀତା ୩/୩୬) । କିନ୍ତୁ ସଜ୍ଜନମାନଙ୍କୁ ଶାସ୍ତ୍ରୀୟ ବିଧିନିଷେଧ ଦ୍ୱାରା ("ତସ୍ମାଦ୍ ଶାସ୍ତ୍ରଂ ପ୍ରମାଣଂ ତେ କାର୍ଯ୍ୟାକାର୍ଯ୍ୟବ୍ୟବସ୍ଥିତୌ" - ଗୀତା ୩-୩୬) ଏବଂ ଅର୍ଜୁନଙ୍କ ପରି ଭକ୍ତମାନଙ୍କୁ ଉପଦେଶ ଦ୍ୱାରା ପ୍ରେରଣ କରନ୍ତି । ସେ ପୁଣି ବିଧିପ୍ରଣୋଦିତ ପ୍ରୀତିରେ ରୁକ୍ମିଣୀ ପ୍ରମୁଖ ମହିଷୀମାନଙ୍କୁ ଏବଂ ବିଧିନିରପେକ୍ଷ ପ୍ରୀତିରେ ବ୍ରଜବଧୂମାନଙ୍କୁ ପ୍ରେରଣା ପ୍ରଦାନ କରନ୍ତି । ଏହି ପ୍ରେରଣାମାନଙ୍କ ମଧ୍ୟରେ ଶେଷୋକ୍ତ ପ୍ରେରଣା ସର୍ବାତିଶାୟୀ । ବିଧିନିରପେକ୍ଷ ନିର୍ମଳ ପ୍ରୀତି ହିଁ ସର୍ବଶ୍ରେଷ୍ଠ ଧର୍ମ । ଏହାଦ୍ୱାରା ଶ୍ରୀକୃଷ୍ଣଙ୍କ ଦିଗକୁ ଆତ୍ମାର ସର୍ବାଧିକ ଆକର୍ଷଣ ହୁଏ ।

ସ୍ୱର୍ଗାଦିଭୋଗ, କର୍ତ୍ତବ୍ୟ କର୍ମ, ସ୍ୱଧର୍ମ, ମୁକ୍ତି ଓ ଭକ୍ତି ପ୍ରତି ବୁଦ୍ଧି ପ୍ରେରିତ ହୁଏ । ଏଥିମଧ୍ୟରୁ ଭକ୍ତି ସର୍ବଶ୍ରେଷ୍ଠ । କାରଣ ତଦ୍ଦ୍ୱାରା ଭଗବାନ୍ ଅପ୍ରାକୃତ ରସମାଧୁର୍ଯ୍ୟରେ ବିରାଜମାନ ହୁଅନ୍ତି । ଲୀଳାପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣ ଯେତେବେଳେ ସ୍ୱୀୟ "ଭର୍ଗ" ଜ୍ୟୋତି ପ୍ରକାଶପୂର୍ବକ 'ବଂଶୀଛିଦ୍ର' ରୁ ପ୍ରୀତିମଧୁ ବର୍ଷଣ କରି ବ୍ରଜବଧୂମାନଙ୍କର ଜୀବନ ଯୌବନାଦି ଆକର୍ଷଣ କରନ୍ତି, ସେତେବେଳେ ବ୍ରହ୍ମଗାୟତ୍ରୀମନ୍ତ୍ର ମୂର୍ତ୍ତିମାନ୍ ହୋଇ ପୂର୍ଣ୍ଣାଙ୍ଗତା ଲାଭ କରେ ।

## ବ୍ରହ୍ମସୂତ୍ରର ଅକୃତ୍ରିମ ଭାଷ୍ୟ

ବେଦର ଜ୍ଞାନକାଣ୍ଡାତ୍ମକ ଉପନିଷଦରେ ପ୍ରଧାନତଃ ବ୍ରହ୍ମତତ୍ତ୍ୱ ପ୍ରତିପାଦିତ ହୋଇଅଛି । ଉପନିଷଦର ସିଦ୍ଧାନ୍ତମାନ ବ୍ରହ୍ମସୂତ୍ରରେ ସଂକ୍ଷିପ୍ତରେ ପ୍ରଦତ୍ତ ହୋଇଅଛି । ଏହି ବ୍ରହ୍ମସୂତ୍ରର କଦର୍ଥନା ଦେଖି ସୂତ୍ରକାର ବ୍ୟାସଦେବ ନିଜେ ତାହାର ଯେଉଁ ଭାଷ୍ୟ ରଚନା କଲେ ତାହା ହେଉଛି ଶ୍ରୀମଦ୍‌ଭାଗବତ ।

ଭାଗବତରେ ପ୍ରଧାନତଃ ୩ଟି ବିଷୟ ପରିବେଷିତ ହୋଇଅଛି- ସମ୍ବନ୍ଧ, ଅଭିଧେୟ ଓ ପ୍ରୟୋଜନ । ବ୍ରହ୍ମସୂତ୍ରରେ ମଧ୍ୟ ମୁଖ୍ୟତଃ ତାହାହିଁ ପ୍ରତିପାଦିତ । ସେହି କଥା ଶ୍ରୀଲ କୃଷ୍ଣଦାସ କବିରାଜ ଗୋସ୍ୱାମୀ କହିଅଛନ୍ତି-

"ଅତଏବ ଭାଗବତେ ଏଇ ତିନି କୟ ।
ସମ୍ବନ୍ଧ-ଅଭିଧେୟ-ପ୍ରୟୋଜନ ମୟ ।"(ଚୈ.ଚ. ମଧ୍ୟ ୨୫/୧୦୫)

ଏବଂ - ''ସମ୍ବନ୍ଧ ଅଭିଧେୟ ପ୍ରୟୋଜନ ନାମ ।

ଏଇ ତିନି ଅର୍ଥ ସର୍ବସୂତ୍ରେ ପର୍ଯ୍ୟବସାନ ।'' (ଚୈ.ଚ. ଆଦି ୭।୧୩୯)

ସମ୍ବନ୍ଧ ମୂଳବାଚ୍ୟ ତତ୍ତ୍ୱକୁ ବୁଝାଏ । ମୂଳ ପ୍ରାପ୍ୟ ତତ୍ତ୍ୱ ହିଁ ପ୍ରୟୋଜନ ଏବଂ ପ୍ରୟୋଜନପ୍ରାପ୍ତି ପାଇଁ କର୍ତ୍ତବ୍ୟ ତତ୍ତ୍ୱ ହେଉଛି ଅଭିଧେୟ ।

ବ୍ରହ୍ମସୂତ୍ରର ମୁଖ୍ୟ ବସ୍ତୁ ''ଅଥାତୋ ବ୍ରହ୍ମଜିଜ୍ଞାସା'' ସୂତ୍ରର ଭୂମିକାରେ ଶ୍ରୀବଳଦେବ ବିଦ୍ୟାଭୂଷଣ କହିଅଛନ୍ତି- ସର୍ବଦୋଷବର୍ଜିତ, ପ୍ରାକୃତାଦିସ୍ପର୍ଶଶୂନ୍ୟ, ଅନନ୍ତଗୁଣଗଣାଳଂକୃତ ସଚ୍ଚିଦାନନ୍ଦବିଗ୍ରହ ଶ୍ରୀକୃଷ୍ଣ ହିଁ ବ୍ରହ୍ମସୂତ୍ରର ପ୍ରତିପାଦ୍ୟ ବସ୍ତୁ । ଶ୍ରୀମଦ୍‌ଭାଗବତରେ ମଧ୍ୟ ''ବେଦ୍ୟଂ ବାସ୍ତବମତ୍ର ବସ୍ତୁ'' ଅର୍ଥାତ୍ ପାରମାର୍ଥିକ ବସ୍ତୁ ହିଁ ପ୍ରତିପାଦ୍ୟ ବୋଲି ଉକ୍ତ ହୋଇଅଛି । ପରମ ତତ୍ତ୍ୱ ହେଉଛି ଅଦ୍ୱୟ ଅଖଣ୍ଡ ଜ୍ଞାନ । ତାହାର ବ୍ରହ୍ମ, ପରମାତ୍ମା ଓ ଭଗବାନ୍ ରୂପେ ତ୍ରିବିଧ ପ୍ରକାଶ ହୁଏ । ଯେଉଁ ଅଖଣ୍ଡ ତତ୍ତ୍ୱର ଏହି ତ୍ରିବିଧ ପ୍ରକାଶ ବିଦ୍ୟମାନ, ସେହି ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ ହିଁ ଭାଗବତର ମୁଖ୍ୟ ପ୍ରତିପାଦ୍ୟ ବସ୍ତୁ ।

ବ୍ରହ୍ମସୂତ୍ରର 'ସାଂପରାୟେ'* ସୂତ୍ରର ବ୍ୟାଖ୍ୟା କରିବାକୁ ଯାଇ ଶ୍ରୀବଳଦେବ ବିଦ୍ୟାଭୂଷଣ କହିଛନ୍ତି ଯେ, ସାଂପରାୟ ବା ପ୍ରେମ ହିଁ ପ୍ରୟୋଜନ । ଭାଗବତରେ ମଧ୍ୟ 'ମୟି ନିର୍ବନ୍ଧହୃଦୟାଃ'** ଶ୍ଳୋକରେ ପ୍ରେମଭକ୍ତି ହିଁ ଭଗବଦ୍‌ବଶୀକରଣର ଉପାୟ ରୂପେ ନିର୍ଦ୍ଦିଷ୍ଟ ହୋଇଅଛି । ବ୍ରହ୍ମସୂତ୍ର (୩।୨) ରେ ଅଭିଧେୟ ତତ୍ତ୍ୱର ଆଲୋଚନା ଦେଖାଯାଏ । ତାହା ହେଉଛି ଶ୍ରୀକୃଷ୍ଣସମ୍ବନ୍ଧି ଅନୁରାଗର ହେତୁରୂପ ସାଧନଭକ୍ତି । ଭାଗବତରେ ମଧ୍ୟ 'ସ୍ମରନ୍ତଃ ସ୍ମାରୟନ୍ତଶ୍ଚ' (୧୧।୩।୩୨) ଶ୍ଳୋକରେ ତଦ୍ରୂପ ସାଧନଭକ୍ତି ଦ୍ୱାରା ପ୍ରେମଭକ୍ତିର ଉଦୟ ହୁଏ ବୋଲି ଇଙ୍ଗିତ ବିଦ୍ୟମାନ ।

ଏଥିପାଇଁ ଗରୁଡ଼ ପୁରାଣ କହେ -

''ଅର୍ଥୋଽୟଂ ବ୍ରହ୍ମସୂତ୍ରାଣାଂ ଭାରତାର୍ଥବିନିର୍ଣ୍ଣୟଃ ।

ଗାୟତ୍ରୀଭାଷ୍ୟରୂପୋଽସୌ ବେଦାର୍ଥପରିବୃଂହିତଃ ।''

ଭାଗବତ (୧୨।୧୩।୧୨) ରେ ମଧ୍ୟ ଅନୁରୂପ ଉକ୍ତି ଦେଖାଯାଏ - 'ସର୍ବବେଦାନ୍ତସାରଂ ହି ଶ୍ରୀଭାଗବତମିଷ୍ୟତେ' । ଅତଏବ ଭାଗବତ ବେଦାନ୍ତର ସାରାଂଶ ଓ ବ୍ରହ୍ମସୂତ୍ରର ଅକୃତ୍ରିମ ଭାଷ୍ୟ ।

## ଶ୍ରୀମଦ୍‌ଭାଗବତ ଓ ଶ୍ରୀଗୀତା

ଶ୍ରୀମଦ୍‌ଭଗବଦ୍‌ଗୀତାର ଯାହା ଚରମ ସତ୍ୟ ତାହାର ଜୀବନ୍ତ ମୂର୍ତ୍ତି ଭାଗବତରେ ପ୍ରକଟିତ । ଗୀତା (୧୮।୬୩)ରେ ଭଗବାନ୍ 'ଇତି ତେ ସର୍ବମାଖ୍ୟାତଂ' କହି ବକ୍ତବ୍ୟ ଶେଷ କଲେ ମଧ୍ୟ 'ସର୍ବଗୁହ୍ୟତମଂ ଭୂୟଃ' ଏବଂ 'ମନ୍ମନା ଭବ' (ଗୀତା-୧୮।୬୪,୬୬)

* ବ୍ରହ୍ମସୂତ୍ର ୩ । ୩ । ୨୮, ** ଭା ୯ । ୪ । ୬୬

ଏହି ଦୁଇଟି ଶ୍ଳୋକ ପୁନର୍ବାର କହିଅଛନ୍ତି । ଗୀତାର ଏହି ଶ୍ଳୋକ ଦୁଇଟିରେ ଅନ୍ତର୍ନିହିତ ଚରମ ସତ୍ୟ ଭାଗବତବର୍ଣ୍ଣିତ ରାସଲୀଳାରେ ରୂପାୟିତ ହୋଇଛି । ରାସରଜନୀରେ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ପରେ ଗୋପୀମାନଙ୍କର ଶ୍ରୀକୃଷ୍ଣତାଦାତ୍ମ୍ୟ ପରିଲକ୍ଷିତ ହୁଏ -

''ତନ୍ମନସ୍କାସ୍ତଦାଳାପାସ୍ତଦ୍‌ବିଚେଷ୍ଟାସ୍ତଦାତ୍ମିକାଃ ।
ତଦ୍‌ଗୁଣାନେବ ଗାୟନ୍ତ୍ୟୋ ନାତ୍ମାଗାରାଣି ସସ୍ମରୁଃ ।।'' (ଭା. ୧୦।୩୦।୪୪)

ଗୀତାର ସର୍ବଧର୍ମ ପରିତ୍ୟାଗ-ପୂର୍ବକ ଏକମାତ୍ର ଭଗବଦ୍‌ଶରଣାପତ୍ତିର ଦୃଷ୍ଟାନ୍ତ ରାସରଜନୀରେ ଧାବମାନା କୃଷ୍ଣଗତପ୍ରାଣା ଗୋପୀମାନଙ୍କ ଠାରେ ହିଁ ପରିଦୃଷ୍ଟ ହୁଏ । ଅତଏବ ଗୀତା ଉପନିଷଦ୍‌ଗାଭୀର ଦୁଗ୍ଧ ହେଲେ ଭାଗବତ ସେହି ଦୁଗ୍ଧମନ୍ଥନୋଦ୍‌ଭୂତ ନବନୀତ* । ସୁତରାଂ ବେଦ, ବେଦାନ୍ତ, ବ୍ରହ୍ମସୂତ୍ର ଓ ଗୀତାର ସର୍ବପ୍ରକାର ପରିପୂର୍ତ୍ତି ଭାଗବତରେ ହିଁ ସଂଘଟିତ ହୋଇଅଛି ।

ଭଗବାନ୍‌ଙ୍କ ଅପାର କରୁଣା ହେତୁ ଶ୍ରୀମଦ୍‌ଭାଗବତ ତତ୍ତ୍ୱ ବ୍ୟାସଦେବଙ୍କ ହୃଦୟରେ ସ୍ଫୁରିତ ହୋଇଅଛି । ସୁତରାଂ ଏହା ଭ୍ରମପ୍ରମାଦାଦି ଦୋଷଶୂନ୍ୟ ସର୍ବପ୍ରମାଣଚୂଡ଼ାମଣି । ସେଥିପାଇଁ ସୂତ ଏହାକୁ ''ପୁରାଣାର୍କ'' (ଭା. ୧।୩।୪୪) କହି ଅଜ୍ଞାନାନ୍ଧକାରନାଶ ପାଇଁ ଏହାର ଉପଯୋଗିତା ଦର୍ଶାଇ ଅଛନ୍ତି । ଶ୍ରୀସନାତନ ଗୋସ୍ୱାମୀ ମଧ୍ୟ ସ୍ୱକୀୟ 'ଲୀଳାସ୍ତବ' (୪୧୩)ରେ ଏହାକୁ 'ଶ୍ରୀକୃଷ୍ଣପରିବର୍ତ୍ତିତ' ବୋଲି ସ୍ତୁତି କରିଅଛନ୍ତି । ଏତଦ୍‌ବ୍ୟତୀତ ପ୍ରାଚୀନ ମହାଜନମାନେ ଶ୍ରୀକୃଷ୍ଣତୁଲ୍ୟ ଭାଗବତର ଧ୍ୟାନ ମଧ୍ୟ ନିମ୍ନଲିଖିତ ରୂପେ ରଚନା କରିଅଛନ୍ତି -

''ପାଦୌ ଯଦୀୟୌ ପ୍ରଥମଦ୍ୱିତୀୟୌ ତୃତୀୟତୁର୍ଯ୍ୟୌ କଥିତୌ ଯଦୂରୂ ।
ନାଭିସ୍ତଥା ପଞ୍ଚମ ଏବ ଷଷ୍ଠୋ ଭୁଜାନ୍ତରଂ ଦୋର୍ଯୁଗଳଂ ତଥାନ୍ୟୌ ।।
କଣ୍ଠସ୍ତୁ ରାଜନ୍ ନବମୋ ଯଦୀୟୋ ମୁଖାରବିନ୍ଦଂ ଦଶମଂ ପ୍ରଫୁଲ୍ଲମ୍ ।
ଏକାଦଶୋ ଯସ୍ୟ ଲଲାଟପଟ୍ଟଂ ଶିରୋଽପି ଯଦ୍ ଦ୍ୱାଦଶ ଏବ ଭାତି ।।
ତମାଦିଦେବଂ କରୁଣାନିଧାନଂ ତମାଲବର୍ଣ୍ଣଂ ସୁହିତାବତାରମ୍ ।
ଅପାରସଂସାରସମୁଦ୍ରସେତୁଂ ଭଜାମହେ ଭାଗବତସ୍ୱରୂପମ୍ ।।'' (ପଦ୍ମପୁରାଣ)

## ଶ୍ରୀମଭାଗବତରେ ତତ୍ତ୍ୱଜିଜ୍ଞାସା

ଅଧୋକ୍ଷଜ ଭଗବାନ୍ ଶ୍ରୀକୃଷ୍ଣଙ୍କଠାରେ ଅହୈତୁକୀ ଭକ୍ତି ହିଁ ଅପବର୍ଗ ବା ପରମ ଧର୍ମ । ଏହା ହେଉଛି ସାଧ୍ୟ ବସ୍ତୁ । ଏହାକୁ ଲାଭ କରିବାର ଉପାୟ ତତ୍ତ୍ୱଜିଜ୍ଞାସା । ତତ୍ତ୍ୱବସ୍ତୁର ଉପାସନା ନିମିତ୍ତ ମାନବଜୀବନ ଉଦ୍ଦିଷ୍ଟ । 'ବଦନ୍ତି ତତ୍ ତତ୍ତ୍ୱବିଦଃ'' (ଭା. ୧।୨।୧୧) ଶ୍ଳୋକରେ ତତ୍ତ୍ୱବସ୍ତୁର ସ୍ୱରୂପ ନିର୍ଣ୍ଣୟ ହୋଇଅଛି । ତଦନୁସାରେ ଅଦ୍ୱୟ ଜ୍ଞାନ ହିଁ ତତ୍ତ୍ୱବସ୍ତୁ । ଏଠାରେ 'ଜ୍ଞାନ'ର ଅର୍ଥ ଇନ୍ଦ୍ରିୟାର୍ଥସନ୍ନିକୃଷ୍ଟ ସାମୟିକ ଅବବୋଧ

---

* ଚାରିବେଦ ଦଧି ଭାଗବତ ନବନୀତ ।
ମଥିଲେନ ଶୁକ ଖାଇଲେନ ପରୀକ୍ଷିତ ।। (ଚୈ. ଶ୍ରୀଭା. ମଧ୍ୟ ୧୯/୧୬)

ନୁହେଁ । ଜ୍ଞାନର ଅର୍ଥ ଅଖଣ୍ଡ ଚୈତନ୍ୟସତ୍ତା । ଯାହା ସ୍ୱରାଟ୍, ଯାହାର ସତ୍ତା ଅନ୍ୟ କାହା ଉପରେ ନିର୍ଭର କରେ ନାହିଁ, ତାହା ସ୍ୱୟଂସିଦ୍ଧ ବା ସ୍ୱତନ୍ତ୍ର । ଜ୍ଞାନ ବା ଚୈତନ୍ୟ ବସ୍ତୁ ହେଉଚି ସେହି ସ୍ୱୟଂସିଦ୍ଧ ସତ୍ତା । ଜୀବ ଚୈତନ୍ୟସ୍ୱରୂପ ହେଲେ ମଧ୍ୟ ସ୍ୱୟଂସିଦ୍ଧ ନୁହେଁ । ଅଖଣ୍ଡ ଚୈତନ୍ୟଘନ ପରମ ପୁରୁଷ ହିଁ ଏହି ତତ୍ତ୍ୱବସ୍ତୁ । ଜୀବ ତତ୍‌ସଜାତୀୟ ଚିତ୍‌କଣ ହେଲେ ମଧ୍ୟ ତାହାର ସତ୍ତା ସ୍ୱତନ୍ତ୍ର ନୁହେଁ । ତଦ୍‌ବିଜାତୀୟ ଜଡ଼ବସ୍ତୁ ମଧ୍ୟ ଅନ୍ୟ ନିର୍ଭରଶୀଳ । ଅଦ୍ୱୟ ଅଖଣ୍ଡ ତତ୍ତ୍ୱ ହିଁ କେବଳ ନିଜ ସତ୍ତାରେ ପ୍ରତିଷ୍ଠିତ । ତାକୁ ତ୍ୟାଗ କରି ତାର ଶକ୍ତିସମୂହ କ୍ଷଣେ ମାତ୍ର ରହିପାରେ ନାହିଁ । ତତ୍ତ୍ୱବସ୍ତୁର ସଜାତୀୟ ବିଜାତୀୟ ଭେଦ ନାହିଁ । ତାହା ନିଜ ଶକ୍ତିରେ ନିଜେ ସ୍ଥିତ । ଅସମୋର୍ଦ୍ଧ୍ୱ ହୋଇଥିବାରୁ ତାହା ଅଦ୍ୱୟ । ଏହାହିଁ ଶ୍ରୁତିଶାସ୍ତ୍ରର ମାର୍ମିକ କଥା ।

ଆଚାର୍ଯ୍ୟ ଶଙ୍କର ତତ୍ତ୍ୱବସ୍ତୁରେ ସଜାତୀୟ, ବିଜାତୀୟ ଓ ସ୍ୱଗତ ଭେଦ ନିରାସ କରି କହିଛନ୍ତି - "ବିଜାତୀୟ-ସଜାତୀୟ-ସ୍ୱଗତ ଭେଦ ରହିତତ୍ୱାତ୍ ଏକରସଃ ଅଖଣ୍ଡସ୍ଥଂ ସୈନ୍ଧବଘନବତ୍ ।" ଏତତ୍‌ପ୍ରସଙ୍ଗେ ଶ୍ରୀଜୀବଗୋସ୍ୱାମୀଙ୍କ ବକ୍ତବ୍ୟ ଏହି ଯେ ଦୁଇଟି ସ୍ୱତନ୍ତ୍ର ବସ୍ତୁର ମଧ୍ୟରେ ହିଁ ଭେଦର ପ୍ରଶ୍ନ ଉଠେ । ଶକ୍ତି ସର୍ବତୋଭାବେ ଶକ୍ତିମାନ୍‌ର ଆଶ୍ରିତ ହୋଇଥିବାରୁ ଉଭୟ ମଧ୍ୟରେ ଭେଦ ସ୍ୱୀକାର୍ଯ୍ୟ ନୁହେଁ । ମାତ୍ର ପୂରାପୂରି ଭେଦ ନ ରହିଲେ ଶକ୍ତି ଦ୍ୱାରା ଶକ୍ତିମାନ୍‌ର ବୈଚିତ୍ର୍ୟମୟ ଲୀଳାଦି ହେବ କିପରି ? ଏଣୁ କିଛି ପରିମାଣରେ ଭେଦ ସ୍ୱୀକାର କରିବାକୁ ପଡ଼ିବ । ଶକ୍ତି ଓ ଶକ୍ତିମାନ୍ ପୂରାପୂରି ଭିନ୍ନ ବୋଲି କହିହେବ ନାହିଁ, ପୂରାପୂରି ଅଭିନ୍ନ ବୋଲି ମଧ୍ୟ କହିହେବ ନାହିଁ । ଅତଏବ ଦୁହିଁଙ୍କର ସମ୍ବନ୍ଧ ଭିନ୍ନାଭିନ୍ନ । ଏହି ଭେଦାଭେଦ ବିଚାରଭୂମିର ଊର୍ଦ୍ଧ୍ୱରେ ଅପ୍ରାକୃତ ଚିନ୍ମୟ ଭୂମିକାରେ ଅବସ୍ଥିତ । ଯାହା ପ୍ରକୃତିର ଅତୀତ ତାହା ଅଚିନ୍ତ୍ୟ । ଅତଏବ ସ୍ୱଗତ ଭେଦ ସଂପର୍କରେ ଅଚିନ୍ତ୍ୟ ଭେଦାଭେଦ ହିଁ ସ୍ୱୀକାର୍ଯ୍ୟ । ଶ୍ରୀଜୀବଗୋସ୍ୱାମୀଙ୍କ ମତରେ ଶ୍ରୀମଦ୍‌ଭାଗବତର ରଚୟିତା ଏହି ଅଚିନ୍ତ୍ୟ ଭେଦାଭେଦ ଭୂମିକାରେ ଦଣ୍ଡାୟମାନ ହୋଇ "ଅଦ୍ୱୟ" ଶବ୍ଦ ପ୍ରୟୋଗ କରିଅଛନ୍ତି । ଶ୍ରୀମଦ୍‌ଭାଗବତରେ ଆପାତ ବିରୋଧୀ ଶ୍ରୁତିମାନଙ୍କର ଯେଉଁ ସମାଧାନ ହୋଇଅଛି ତାହାର ମୂଳରେ ଅଚିନ୍ତ୍ୟ ଭେଦାଭେଦ ବାଦ ବିଦ୍ୟମାନ ।

ଶ୍ରୁତିରେ ସଗୁଣ ଓ ନିର୍ଗୁଣ-ଉଭୟନିଷ୍ଠ ବଚନ ଥିବା ହେତୁ ପ୍ରଶ୍ନ ଉଠେ ଯେ ବ୍ରହ୍ମ ସଗୁଣ ନା ନିର୍ଗୁଣ । ଯେଉଁମାନେ ନିର୍ଗୁଣବାଦୀ ସେମାନେ ସଗୁଣପର ଶ୍ରୁତିର ମୁଖ୍ୟ ଅର୍ଥ ଅସ୍ୱୀକାର କରି ବ୍ୟାବହାରିକ ବା ଗୌଣ ଅର୍ଥର କଳ୍ପନା କରନ୍ତି । ପୁନଶ୍ଚ ସଗୁଣବାଦୀମାନେ ନିର୍ଗୁଣପର ଶ୍ରୁତିକୁ ନେଇ ବିପଦଗ୍ରସ୍ତ ହୁଅନ୍ତି- ଯଥା 'ତତ୍ତ୍ୱମସି' ବାକ୍ୟରେ ତତ୍‌ପୁରୁଷ ସମାସର କଳ୍ପନା କରନ୍ତି । 'ଅପାଣିପାଦ' ପଦରେ ଅକାରକୁ ଅଭାବବୋଧକ ଅର୍ଥରେ ନ ନେଇ ତହିଁରେ ଅପ୍ରାକୃତତ୍ୱ ଆରୋପ କରନ୍ତି । କିନ୍ତୁ ବିଷ୍ଣୁପୁରାଣରେ ଉଭୟନିଷ୍ଠ ଶ୍ରୁତିର ବିରୋଧ ସମାଧାନ ପରିଦୃଷ୍ଟ ହୁଏ । ତହିଁରେ କୁହା ହୋଇଅଛି ଯେ, "ନିର୍ଗୁଣ ବ୍ରହ୍ମରେ ମଧ୍ୟ ସର୍ଜନାଦି ଶକ୍ତିର ବିକାଶ ଅଗ୍ନିର ଉଷ୍ଣତା ତୁଲ୍ୟ ସମ୍ଭବପର, କାରଣ ତାହାର ଏହି ଶକ୍ତି ଅଚିନ୍ତ୍ୟ" ।

''ଶକ୍ତୟଃ ସର୍ବଭାବାନାମଚିନ୍ତ୍ୟଜ୍ଞାନଗୋଚରାଃ
ଯତୋଽତୋ ବ୍ରହ୍ମଣସ୍ତାସ୍ତୁ ସର୍ଗାଦ୍ୟା ଭାବଶକ୍ତୟଃ''
ଭବନ୍ତି ତପତାଂ ଶ୍ରେଷ୍ଠ ! ପାବକସ୍ୟ ଯଥୋଷ୍ଣତା ।। (ବି.ପୁ. ୧।୩।୧-୨)

ଏହି ଶ୍ଳୋକର ଟୀକାରେ ଶ୍ରୀଧରସ୍ୱାମିପାଦ କହିଅଛନ୍ତି ''ଜଗତରେ ମଣିମନ୍ତ୍ରାଦି ଭାବମାନଙ୍କର ଶକ୍ତି ଅଚିନ୍ତ୍ୟଜ୍ଞାନଗୋଚର । ଅଚିନ୍ତ୍ୟ ତାହାକୁ ହିଁ କହନ୍ତି ଯାହା ଯୁକ୍ତିତର୍କର ଊର୍ଦ୍ଧ୍ୱରେ । କାର୍ଯ୍ୟ ବିନା ଯାହାର ପ୍ରମାଣ ଉପପନ୍ନ ହୁଏ ନା, ତାହା ଜ୍ଞାନ । ଭିନ୍ନାଭିନ୍ନତ୍ୱ ଆଦି ବିକଳ୍ପ ଦ୍ୱାରା ଯାହାକୁ ଚିନ୍ତାକରି ହୁଏ ନା, ତାହା ଅଚିନ୍ତ୍ୟ । ତାହା କେବଳ ଅର୍ଥାପତ୍ତି ଦ୍ୱାରା ଜ୍ଞାନଗୋଚର ହୁଏ । ଅତଏବ ପାବକର ଦାହିକାଶକ୍ତିତୁଲ୍ୟ, ବ୍ରହ୍ମର ମଧ୍ୟ ତଥାବିଧ ଶକ୍ତି ଅଛି । ଅତଏବ ଗୁଣାଦିହୀନ ହେଲେ ମଧ୍ୟ ଅଚିନ୍ତ୍ୟ ଶକ୍ତିମାନ୍ ହୋଇଥିବାରୁ ବ୍ରହ୍ମର ଏହି ଶକ୍ତି ସ୍ୱଭାବଭୂତ ଏବଂ ସ୍ୱରୂପାଭିନ୍ନ ।''

ଏହା ପୁରାଣାଦିସଂମତ ଆର୍ଷ ବ୍ୟାଖ୍ୟା । ଏଣୁ ଅଚିନ୍ତ୍ୟ ଭେଦାଭେଦ ହିଁ ସମସ୍ତ ଶ୍ରୁତିକୁ ସମାନ ମର୍ଯ୍ୟାଦା ପ୍ରଦାନ କରେ ଏବଂ ଏହାଦ୍ୱାରା ବିରୋଧୀ ଶ୍ରୁତିବାକ୍ୟମାନଙ୍କର ପ୍ରକୃତ ସମନ୍ୱୟ ହୋଇପାରେ ।

ଅଦ୍ୱୟଜ୍ଞାନତତ୍ତ୍ୱ କେବଳମାତ୍ର ଜ୍ଞାନ ନୁହେଁ, କାରଣ ଏହା ଉପାସନାର ବିଷୟ । ପୁରୁଷାର୍ଥ ବ୍ୟତୀତ ଚିନ୍ମାତ୍ର ବସ୍ତୁରେ କାହାର ଆକାଂକ୍ଷା ଜନ୍ମେ ନାହିଁ । ସେଥିପାଇଁ ତତ୍ତ୍ୱବସ୍ତୁ ଆନନ୍ଦସ୍ୱରୂପ । ଶ୍ରୀଳ ଜୀବଗୋସ୍ୱାମୀଙ୍କ ଭାଷାରେ ''ତତ୍ତ୍ୱମିତି ପରମପୁରୁଷାର୍ଥ-ଦ୍ୟୋତନାୟ ପରମସୁଖସ୍ୱରୂପତ୍ୱମ୍'' । ପରମତତ୍ତ୍ୱ ବସ୍ତୁରେ ଜ୍ଞାନ, ସତ୍ତା ଓ ଆନନ୍ଦ ଅଖଣ୍ଡଭାବେ ବିରାଜମାନ । ଜ୍ଞାନ, ସତ୍ତା ଓ ଆନନ୍ଦ ଏକ ହେଲେ ମଧ୍ୟ ତତ୍ତ୍ୱବସ୍ତୁରେ ଚେତନା ଓ ଆନନ୍ଦ ଅଛି ବୋଲି ଯାହା କୁହାଯାଏ ତାହା ସଂପୂର୍ଣ୍ଣ ନିରର୍ଥକ ନୁହେଁ । ସତ୍ତା, ଚୈତନ୍ୟ ଓ ଆନନ୍ଦରେ ଯତ୍କିଂଚିତ୍ ଭେଦ ମଧ୍ୟ ସ୍ୱୀକାର କରିବାକୁ ହେବ । ଶ୍ରୀ ବଳଦେବ ବିଦ୍ୟାଭୂଷଣ ଏ ସ୍ଥଳରେ ''ବିଶେଷ'' ସ୍ୱୀକାର କରି ସମାଧାନ କରିଅଛନ୍ତି- ''ବିଶେଷ'' ଭେଦର ପ୍ରତିନିଧି ହେଲେ ମଧ୍ୟ ଭେଦ ନୁହେଁ । ତେଣୁ ଭେଦାଭେଦ କହିଲେ ଦୋଷାବହ ହୋଇ ନ ପାରେ । ଭେଦର ଅଭାବରେ ମଧ୍ୟ ଭେଦ-କାର୍ଯ୍ୟ ଧର୍ମ-ଧର୍ମିଭାବାଦି ବ୍ୟବହାରର ନିବର୍ତ୍ତକ (ଗୋବିନ୍ଦଭାଷ୍ୟ ୩ । ୨ । ୩୧) । ତେଣୁ ଧର୍ମଧର୍ମିଗତ ଭେଦ ପରମ ତତ୍ତ୍ୱବସ୍ତୁର ସ୍ୱରୂପରୁ ଅଭିନ୍ନ ହୋଇ ମଧ୍ୟ ଅଚିନ୍ତ୍ୟ ଭେଦ ବିଶିଷ୍ଟ ରୂପେ ପ୍ରତୀତ ହୁଏ ।

ବିଷ୍ଣୁ ପୁରାଣରେ ହ୍ଲାଦିନୀ, ସମ୍ବିତ୍ ଓ ସଂଧିନୀ ଶକ୍ତିର ଉଲ୍ଲେଖ ଅଛି । ଯେଉଁ ଶକ୍ତି ବଳରେ ବ୍ରହ୍ମ ନିଜେ ସତ୍ତାବିଶିଷ୍ଟ ହୁଅନ୍ତି ଏବଂ ଅନ୍ୟକୁ ସତ୍ତାବିଶିଷ୍ଟ କରନ୍ତି ତାହାର ନାମ 'ସନ୍ଧିନୀ' ଶକ୍ତି । ଯେଉଁ ଶକ୍ତିବଳରେ ସେ ସ୍ୱୟଂ ଚିନ୍ମୟ ହୁଅନ୍ତି ଏବଂ ଅନ୍ୟକୁ ଚିନ୍ମୟ କରନ୍ତି ତାହାର ନାମ ସଂବିତ୍ ଶକ୍ତି ଏବଂ ଯେଉଁ ଶକ୍ତିବଳରେ ସେ ନିଜେ ଆନନ୍ଦମୟ ହୁଅନ୍ତି ଓ ଅନ୍ୟକୁ ଆନନ୍ଦିତ କରନ୍ତି ତାହାର ନାମ ହ୍ଲାଦିନୀ ଶକ୍ତି । ଏହି ତିନି ଶକ୍ତି ମଧ୍ୟରେ ହ୍ଲାଦିନୀ ହିଁ ଶ୍ରେଷ୍ଠ । କାରଣ ସୁଖାନୁଭୂତିରେ ହିଁ ସମସ୍ତ ଶକ୍ତିର ଉତ୍କର୍ଷ ବୁଝାଯାଏ ।

ଚିତ୍‌ଶକ୍ତି ମଧ୍ୟ ସୁଖାନୁଭୂତିରେ ପରିଣତ ହେଲେ ତାହାର ଅଭିବ୍ୟକ୍ତି ପରାକାଷ୍ଠା ପ୍ରାପ୍ତ ହୁଏ । ଅତଏବ ସନ୍ଧିନୀ ଓ ସଂବିତ୍‌ର ଚରମ ଉତ୍କର୍ଷ ଯାହାଦ୍ୱାରା ସିଦ୍ଧ ହୁଏ, ତାହା ହିଁ ହ୍ଲାଦିନୀ । ଚେତନାହୀନ ସତ୍ତା ଥିଲେ ମଧ୍ୟ ସତ୍ତାହୀନ ଚୈତନ୍ୟ ଯେପରି ଅସମ୍ଭବ, ସେହିପରି ଚୈତନ୍ୟହୀନ ଆନନ୍ଦ ମଧ୍ୟ ଅସମ୍ଭବ । ତେଣୁ ବୁଝିବାକୁ ହେବ ଯେ ସମ୍ବିତ୍‌ଶକ୍ତିରେ ସନ୍ଧିନୀ ଅନ୍ତର୍ଲୀନ ହୁଏ ଏବଂ ହ୍ଲାଦିନୀ ଶକ୍ତିରେ ମଧ୍ୟ ସଂବିତ୍ ଅନ୍ତର୍ଲୀନ ହୁଏ । ଉକ୍ତ ତିନି ଶକ୍ତି ମଧ୍ୟରେ ହ୍ଲାଦିନୀ ଅଧିକ ଗମ୍ଭୀର ଓ ବ୍ୟାପକ । ଏହି ତିନି ଶକ୍ତି ଓ ଶକ୍ତିମାନ୍ ମଧ୍ୟରେ 'ବିଶେଷ' ବଳରେ ଅଚିନ୍ତ୍ୟ ଭେଦାଭେଦ ହିଁ ସମ୍ବନ୍ଧ ।

## ଶ୍ରୀମଦ୍‌ଭାଗବତରେ ଷଟ୍ ପ୍ରଶ୍ନ

ନୈମିଷାରଣ୍ୟରେ ଶୌନକ ପ୍ରମୁଖ ଋଷିମାନେ ସୂତଙ୍କୁ ଛ'ଟି ପ୍ରଶ୍ନ ପଚାରିଛନ୍ତି, ଯଥା - (୧) ପୁରୁଷର ଐକାନ୍ତିକ ଶ୍ରେୟ କଣ ? (୨) ଆତ୍ମା କିପରି ସୁପ୍ରସନ୍ନ ହୁଏ ? (୩) ଭଗବାନ୍ କି ହେତୁ ଦେବକୀ ଗୃହରେ ଆବିର୍ଭୂତ ହେଲେ ? (୪) ଭଗବାନ୍ (ଶ୍ରୀକୃଷ୍ଣ) କି କି ଲୀଳା କରିଥିଲେ ? (୫) ଭଗବାନ୍ କି କି ଅବତାର ଗ୍ରହଣ କରିଥିଲେ ? (୬) ଭଗବାନ୍ ଶ୍ରୀକୃଷ୍ଣଙ୍କ ଅନ୍ତର୍ଦ୍ଧାନ ପରେ ଧର୍ମ କାହାର ଶରଣ ନେଲା ? ସମଗ୍ର ଭାଗବତ ଏହି ଛ'ଗୋଟି ପ୍ରଶ୍ନର ହିଁ ଉତ୍ତରସ୍ୱରୂପ ।

ଶ୍ରୀମଦ୍‌ଭାଗବତର ବକ୍ତା ଓ ଶ୍ରୋତାର ପରଂପରା ଦ୍ୱିବିଧ । ପ୍ରଥମ ପରଂପରାରେ ଭଗବାନ୍ ଓ ବ୍ରହ୍ମା, ବ୍ରହ୍ମା ଓ ନାରଦ, ନାରଦ ଓ ବ୍ୟାସ, ବ୍ୟାସ ଓ ଶୁକ, ଶୁକ ଓ ପରୀକ୍ଷିତ ଏବଂ ସୂତ ଓ ଶୌନକ । ଦ୍ୱିତୀୟ ପରଂପରାରେ ଶେଷ ଓ ସନତ୍‌କୁମାର ଏବଂ ସନତ୍‌କୁମାର ଓ ସାଂଖ୍ୟାୟନ ଆଦି । ମୈତ୍ରେୟ ଓ ବିଦୁର ଦ୍ୱିତୀୟ ପରଂପରାଭୁକ୍ତ ।

ଉପରିକଥିତ ଷଟ୍‌ପ୍ରଶ୍ନ ମଧ୍ୟରୁ ଚାରିଗୋଟିର ଉତ୍ତର ପ୍ରଥମ ସ୍କନ୍ଧର ଦ୍ୱିତୀୟ ଅଧ୍ୟାୟରେ ଏବଂ ପଞ୍ଚମ ପ୍ରଶ୍ନର ଉତ୍ତର ପ୍ରଥମ ସ୍କନ୍ଧର ତୃତୀୟ ଅଧ୍ୟାୟରେ ଦିଆଯାଇଛି । ଷଷ୍ଠ ପ୍ରଶ୍ନର ଉତ୍ତରରେ କୁହା ହୋଇଛି ଯେ ଶ୍ରୀମଦ୍‌ଭାଗବତ ହିଁ ଶ୍ରୀକୃଷ୍ଣଙ୍କ ପ୍ରତିନିଧିରୂପେ କଳିରେ ବିରାଜମାନ । କିନ୍ତୁ ଉକ୍ତ ଛ'ଟି ପ୍ରଶ୍ନର ଉତ୍ତର ବିସ୍ତୃତଭାବେ ସମଗ୍ର ଭାଗବତରେ ଇତସ୍ତତଃ ବିନ୍ୟସ୍ତ ହୋଇଅଛି ।

ଭାଗବତରେ ପ୍ରଧାନତଃ ୧୦ଟି ବିଷୟ ବର୍ଣ୍ଣିତ ହୋଇଅଛି - (୧) ସର୍ଗ (ମୂଳସୃଷ୍ଟି) (୨) ବିସର୍ଗ (ବିବିଧ ଜୀବସୃଷ୍ଟି) (୩) ସ୍ଥାନ (ସୃଷ୍ଟ ପଦାର୍ଥର ଉତ୍‌କର୍ଷବିଧାନ) (୪) ପୋଷଣ (ଭକ୍ତମାନଙ୍କ ପ୍ରତି ଅନୁଗ୍ରହ) (୫) ଊତି (କର୍ମବାସନା) (୬) ମନ୍ୱନ୍ତର (୭) ଈଶାନୁକଥା (ହରି ଓ ତାଙ୍କ ଭକ୍ତମାନଙ୍କ ଚରିତ) (୮) ନିରୋଧ (ସଶକ୍ତି ଶୟନ) (୯) ମୁକ୍ତି (ସ୍ୱରୂପରେ ଅବସ୍ଥିତି) ଏବଂ (୧୦) ଆଶ୍ରୟ (ହରି) ।

ଦଶମ ବସ୍ତୁ (ହରି)ଙ୍କ ତତ୍ତ୍ୱନିର୍ଦ୍ଧାରଣରେ ଭାଗବତର ତାତ୍ପର୍ଯ୍ୟ ନିହିତ ହେଲେହେଁ ଅନ୍ୟ ନଅଟି ବସ୍ତୁର ବର୍ଣ୍ଣନା ଆବଶ୍ୟକ । କାରଣ ତଦ୍ୱାରା ମୂଳବସ୍ତୁର ସମ୍ୟକ୍ ଜ୍ଞାନଲାଭ ହୁଏ । ଶ୍ରୀମଦ୍‌ଭାଗବତରେ ସ୍ଥାନେ ସ୍ଥାନେ ବ୍ରହ୍ମବାଦ ଓ ପରମାତ୍ମବାଦ ଆଲୋଚିତ

ହେଲେ ମଧ୍ୟ ଏଥିରେ ଭଗବଦ୍‌ବାଦହିଁ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ଏଥିପାଇଁ ଶ୍ରୀଧରସ୍ୱାମିପାଦ ତାଙ୍କ ଭାବାର୍ଥଦୀପିକା ଟୀକାର ଆରମ୍ଭରେ ଭାଗବତକୁ ''ଭଗବଦ୍‌ଗୁଣବର୍ଣ୍ଣନପ୍ରଧାନଂ ଶାସ୍ତ୍ରଂ'' ଏବଂ ଭାଗବତ ଧର୍ମକୁ ''କେବଳମୀଶ୍ୱରାରାଧନ-ଲକ୍ଷଣୋ ଧର୍ମଃ'' ବୋଲି କହିଅଛନ୍ତି । ମୁଖ୍ୟତଃ ଭକ୍ତ ଓ ଭଗବାନ୍‌ଙ୍କର ବିବିଧ ଲୀଳାବିଳାସର ବର୍ଣ୍ଣନା ଏଥି ମଧ୍ୟରେ ଦେଖାଯାଏ । ଭଗବାନ୍‌ଙ୍କ ଅବତାର ଅସଂଖ୍ୟ-ପୁରୁଷାବତାର, ଗୁଣାବତାର, ଲୀଳାବତାର, ଯୁଗାବତାର, ମନ୍ୱନ୍ତରାବତାର, କଳ୍ପାବତାର ଓ ଶକ୍ତ୍ୟାବେଶାବତାର ଇତ୍ୟାଦି । ଶ୍ରୀସନାତନ ଗୋସ୍ୱାମୀ ତଦୀୟ ''ଲୀଳାସ୍ତବ''ରେ ୩୭ଟି ଅବତାର କଥା କୀର୍ତ୍ତନ କରିଅଛନ୍ତି । ସମସ୍ତ ଅବତାର ନିତ୍ୟ, ଚିନ୍ମୟ, ଅପ୍ରାକୃତ, ପରମାନନ୍ଦ ସ୍ୱରୂପ, ହେୟତା ଓ ଉପାଦେୟତାରହିତ, ଜ୍ଞାନମାତ୍ର ଓ ସର୍ବଗୁଣପୂର୍ଣ୍ଣ । ଏତଦ୍‌ବିଷୟେ ବରାହପୁରାଣରେ ଉକ୍ତ ହୋଇଅଛି -

''ସର୍ବେ ନିତ୍ୟାଃ ଶାଶ୍ୱତାଶ୍ଚ ଦେହାସ୍ତସ୍ୟ ପରାତ୍ମନଃ ।
ହାନୋପାଦାନରହିତା ନୈବ ପ୍ରକୃତିଜାଃ କ୍ୱଚିଦ୍ ।।
ପରମାନନ୍ଦସଂଦୋହା ଜ୍ଞାନମାତ୍ରାଶ୍ଚ ସର୍ବତଃ ।
ସର୍ବେ ସର୍ବଗୁଣୈଃ ପୂର୍ଣ୍ଣାଃ ସର୍ବଦୋଷବିବର୍ଜ୍ଜିତାଃ ।।''

ଅବତାରମଧ୍ୟରେ କୀର୍ତ୍ତିତ ହେଲେ ମଧ୍ୟ ଶ୍ରୀକୃଷ୍ଣ ଅବତାରୀ, ସର୍ବବିଧ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟପରିପୂରିତ ତତ୍ତ୍ୱ । ଶ୍ରୀକୃଷ୍ଣଙ୍କ ଠାରୁ ଅନ୍ୟାନ୍ୟ ଅବତାରମାନଙ୍କର ଭଗବତ୍ତା ସିଦ୍ଧ ହୁଏ । ଶ୍ରୀକୃଷ୍ଣ କିନ୍ତୁ ସ୍ୱୟଂ ଭଗବାନ୍ । ଲୀଳା, ପ୍ରେମ, ବେଣୁ ଓ ରୂପମାଧୁର୍ଯ୍ୟରେ ଶ୍ରୀକୃଷ୍ଣ ଅନନ୍ୟସାଧାରଣ । ସେଥିପାଇଁ ଶ୍ରୀରୂପ ଗୋସ୍ୱାମୀ କହିଛନ୍ତି -

ସର୍ବାଦ୍‌ଭୁତଚମତ୍କାରଲୀଳାକଲ୍ଲୋଳବାରିଧିଃ ।
ଅତୁଲ୍ୟମଧୁରପ୍ରେମମଣ୍ଡିତପ୍ରିୟମଣ୍ଡଳଃ ।।
ତ୍ରିଜଗନ୍ମାନସାକର୍ଷୀ ମୁରଲୀକଳକୂଜିତଃ
ଅସମାନୋର୍ଦ୍ଧ୍ୱରୂପଶ୍ରୀବିସ୍ମାପିତଚରାଚରଃ । (ଶ୍ରୀ ଭ.ର.ସି : ୨।୧।୪୧-୪୨)

ଶ୍ରୀମଦ୍‌ଭାଗବତ ରସିକ ଓ ଭାବୁକସଂବେଦ୍ୟ । ଏହା ଏକ ଅତୁଳନୀୟ ରସଗ୍ରନ୍ଥ । ତତ୍ତ୍ୱବିଚାର ଦୃଷ୍ଟିରୁ ମଧ୍ୟ ଏହା ଅତୁଳନୀୟ । ଚିତ୍ତର ଅନୁଭବଦ୍ୱାରା ରସର ଆବେଦନ ହୁଏ । ମାତ୍ର ମସ୍ତିଷ୍କର ଯୁକ୍ତିଦ୍ୱାରା ତତ୍ତ୍ୱର ଆବେଦନ ହୁଏ । ଚିତ୍ତ ଚାହେ ସୁନ୍ଦର ବସ୍ତୁ ଏବଂ ବିଚାର ଚାହେ ସତ୍ୟ ବସ୍ତୁ । ଏ ଦୁଇଟି ପରସ୍ପର ବିରୋଧୀ । କିନ୍ତୁ କାବ୍ୟ ଓ ଦର୍ଶନ ଶାସ୍ତ୍ରର ଏହି ଚିରନ୍ତନ ବିରୋଧର ସମନ୍ୱୟ ସାଧିତ ହୋଇଛି ଶ୍ରୀମଦ୍‌ଭାଗବତ ଗ୍ରନ୍ଥରେ । କେବଳ ଗୋଟିଏ ମାତ୍ର ଗ୍ରନ୍ଥରେ ଭାବୁକ ଦାର୍ଶନିକ ଓ ରସିକ ସାହିତ୍ୟିକର ସର୍ବଥା ପରିତୃପ୍ତି ବିଶ୍ୱସାହିତ୍ୟରେ ଅନ୍ୟତ୍ର ଦୁର୍ଲଭ । ଶ୍ରୀମଦ୍‌ଭାଗବତର ଅନନ୍ୟ ସୁଲଭ ଗୌରବ ଏହି ଯେ ଏହା ଏକାଧାରରେ ପ୍ରତ୍ୟେକ ରସିକ ଓ ଭାବୁକ ବ୍ୟକ୍ତିକୁ ରସପାନ ନିମିତ୍ତ ଆହ୍ୱାନ କରୁଅଛି । ଯେଉଁମାନଙ୍କର ଉଭୟବିଧ ଯୋଗ୍ୟତା ଅଛି ସେହିମାନେ ଭାଗବତର ସର୍ବଶ୍ରେଷ୍ଠ ଆସ୍ୱାଦକ ।

ଏହି ଗ୍ରନ୍ଥରେ ମୁଖ୍ୟ ନାୟକ ହେଉଛନ୍ତି ଔପନିଷଦ ପୁରୁଷ ରସିକଶେଖର ଶ୍ରୀକୃଷ୍ଣ ଏବଂ ତାଙ୍କର ସର୍ବଶ୍ରେଷ୍ଠ ଆରାଧିକା ହେଉଛନ୍ତି ମହାଭାବସ୍ୱରୂପା ଶ୍ରୀମତୀ ରାଧାଠାକୁରାଣୀ । ଶ୍ରୀମଦ୍‌ଭାଗବତରେ "ଅନୟା ରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ । ଯନ୍ନୋ ବିହାୟ ଗୋବିନ୍ଦଃ ପ୍ରୀତୋ ଯାମନୟଦ୍ ରହଃ ।" ଏହି ଶ୍ଳୋକରେ ଶ୍ରୀରାଧାଠାକୁରାଣୀଙ୍କ ନାମରେ ପରୋକ୍ଷ ନିର୍ଦ୍ଦେଶ ଅଛି । ଭାଗବତକାର କୌଣସି ଗୋପୀର ନାମ ଉଲ୍ଲେଖ କରି ନ ଥିଲେ ମଧ୍ୟ ରାଧାଙ୍କ ନାମର ପରୋକ୍ଷ ନିର୍ଦ୍ଦେଶ ଦେଇଅଛନ୍ତି । ଭାଗବତ ଶ୍ରୀମତୀ ରାଧାଙ୍କ କୃପାନୁଗତ୍ୟ ବିନା ଅସ୍ୱାଦ୍ୟ ନୁହେଁ, ଯେହେତୁ ସେ ଭାବମୟୀ ଓ ରସମୟୀ । ଏହା ଉଦ୍ଧବ ପ୍ରଭୃତି ଭକ୍ତମାନଙ୍କର ମତ ।

ଶ୍ରୀରୂପପାଦ ତଦୀୟ "ଭକ୍ତିରସାମୃତସିନ୍ଧୁ" ରେ କହିଛନ୍ତି -

"ପ୍ରେମୈବ ଗୋପରାମାଣଂ କାମ ଇତ୍ୟଗମତ୍ ପ୍ରଥାମ୍ ।
ଇତ୍ୟୁଦ୍ଧବାଦୟୋ ନିତ୍ୟଂ ବାଞ୍ଛନ୍ତି ଭଗବତ୍‌ପ୍ରିୟାଃ ।"

ଅର୍ଥାତ୍ ଗୋପୀମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଯେଉଁ ପ୍ରେମ ତାହା ଲୌକିକ ପ୍ରଥାନୁସାରେ "କାମ" ନାମରେ ଅଭିହିତ ହେଲେ ମଧ୍ୟ ଉଦ୍ଧବଙ୍କ ଭଳି ଜ୍ଞାନୀ ଭଗବଦ୍ ଭକ୍ତମାନେ ତାହାକୁ ସର୍ବଦା ବାଞ୍ଛା କରନ୍ତି । ଶ୍ରୀକୃଷ୍ଣସୁଖତାତ୍ପର୍ଯ୍ୟମୟ ଏହି 'ପ୍ରେମ' କାମ ଭଳି ଦେଖାଗଲେ ମଧ୍ୟ କାମରେ ଥିବା ସ୍ୱସୁଖବାସନାରୂପ ହେୟତ୍ୱର ଲେଶମାତ୍ର ଏଥିରେ ନ ଥିବାରୁ ଏହା କାମର ସଂପୂର୍ଣ୍ଣ ବିପରୀତ । ଏହା ଶୁଦ୍ଧଭକ୍ତର କାମ୍ୟ ପରମୋପାଦେୟ ଫଳ ।

## ଶ୍ରୀମଭାଗବତର ବୈଶିଷ୍ଟ୍ୟ

ଶ୍ରୀବ୍ୟାସଦେବ ସମସ୍ତ ପୁରାଣ ରଚନା କରି ମଧ୍ୟ ତାଙ୍କ ଚିତ୍ତ ପ୍ରସନ୍ନ ନ ହେବାର କାରଣ ସେ ଶ୍ରୀନାରଦଙ୍କୁ ପଚାରିଥିଲେ । ତାହାର ଉତ୍ତରରେ ଶ୍ରୀନାରଦ କହିଥିଲେ -

"ଭବତାନୁଦିତପ୍ରାୟଂ ଯଶୋ ଭଗବତୋଽମଳମ୍ ।
ଯେନୈବାସୌ ନ ତୁଷ୍ୟେତ ମନ୍ୟେ ତଦ୍ଦର୍ଶନଂ ଖିଳମ୍ ।।" (ଶ୍ରୀଭା. ୧।୫।୮)

ହେ ମହର୍ଷେ ! ଆପଣ ଶ୍ରୀହରିଙ୍କ ପବିତ୍ର ଲୀଳାମହିମା ପ୍ରଭୂତ ଭାବରେ କୀର୍ତ୍ତନ କରି ନାହାନ୍ତି । ସେହି ଲୀଳାକଥା-କୀର୍ତ୍ତନ ବ୍ୟତୀତ ଧର୍ମାଦି ଜ୍ଞାନଦ୍ୱାରା ଭଗବାନ୍ ଶ୍ରୀହରିଙ୍କର ସନ୍ତୋଷ ହୁଏ ନାହିଁ । ତେଣୁ ମୁଁ ସେ ଜ୍ଞାନକୁ ଅପୂର୍ଣ୍ଣ ଓ ହେୟ ମନେ କରୁଛି ।

ଯଥା ଧର୍ମାଦୟଶ୍ଚାର୍ଥା ମୁନିବର୍ଯ୍ୟାନୁକୀର୍ତ୍ତିତାଃ ।
ନ ତଥା ବାସୁଦେବସ୍ୟ ମହିମା ହ୍ୟନୁବର୍ଣ୍ଣିତଃ ।। (ଶ୍ରୀଭା. ୧।୫।୯)

ହେ ମୁନିଶ୍ରେଷ୍ଠ ! ଆପଣ (ମହାଭାରତରେ) ଧର୍ମ, ଅର୍ଥ, କାମ ଓ ମୋକ୍ଷରୂପକ ଚତୁର୍ବର୍ଗକୁ ଯେପରି ଗୁରୁତ୍ୱ ଦେଇ ବର୍ଣ୍ଣନା କରିଛନ୍ତି, ଭଗବାନ୍ ଶ୍ରୀବାସୁଦେବଙ୍କ ମହିମାକୁ ନିଶ୍ଚିତରୂପେ ସେହିପରି ଗୁରୁତ୍ୱ ଦେଇ ବର୍ଣ୍ଣନା କରି ନାହାନ୍ତି ।

ଅଥୋ ମହାଭାଗ ଭବାନମୋଘଦୃକ୍ ଶୁଚିଶ୍ରବାଃ ସତ୍ୟରତୋ ଧୃତବ୍ରତଃ ।
ଉରୁକ୍ରମସ୍ୟାଖିଳବନ୍ଧମୁକ୍ତୟେ ସମାଧିନାନୁସ୍ମର ତଦ୍‌ବିଚେଷ୍ଟିତମ୍ ।।

(ଶ୍ରୀଭା. ୧।୫।୧୩)

ହେ ମହାଭାଗ ବେଦବ୍ୟାସ ! ଆପଣ ସମ୍ୟକ୍ ଧୀସମ୍ପନ୍ନ, ପବିତ୍ର ଯଶଃଶାଳୀ, ସତ୍ୟନିଷ୍ଠ ଓ ନିୟମପରାୟଣ । ଅତଏବ ସମସ୍ତଙ୍କ ମାୟାବନ୍ଧନ ବିମୋଚନ ପାଇଁ ଆପଣ ସମାଧି ଅବଲମ୍ବନପୂର୍ବକ ଅର୍ଥାତ୍ ଗାଢ଼ ସୁଖାନୁସନ୍ଧାନାବେଶଯୁକ୍ତ ହୋଇ ଶ୍ରୀଭଗବାନ୍‌ଙ୍କର ବିବିଧ ଲୀଳା ସ୍ମରଣ କରନ୍ତୁ ।

ଜୁଗୁପ୍‌ସିତଂ ଧର୍ମକୃତେଽନୁଶାସତଃ ସ୍ୱଭାବରକ୍ତସ୍ୟ ମହାନ୍ ବ୍ୟତିକ୍ରମଃ ।
ଯଦ୍‌ବାକ୍ୟତୋ ଧର୍ମ ଇତୀତରଃ ସ୍ଥିତୋ ନ ମନ୍ୟତେ ତସ୍ୟ ନିବାରଣଂ ଜନଃ ।।

(ଶ୍ରୀଭା. ୧।୫।୧୫)

ସ୍ୱଭାବତଃ ଗ୍ରାମ୍ୟସୁଖ ପ୍ରତି ଅନୁରକ୍ତ ବ୍ୟକ୍ତିର ଧର୍ମ ପାଇଁ ଆପଣ ଯେଉଁ ନିନ୍ଦ୍ୟ କାମ୍ୟ କର୍ମାଦିର ଉପଦେଶ ଦେଇଛନ୍ତି, ତାହାଦ୍ୱାରା ଘୋର ବିଭ୍ରାଟ ସୃଷ୍ଟି ହୋଇଛି । କାରଣ ଆପଣଙ୍କ ବାକ୍ୟରୁ ଏହା (ଏହି କାମ୍ୟକର୍ମ) ହିଁ ମୁଖ୍ୟ ଧର୍ମ ବୋଲି ତହିଁରେ ଦୃଢ଼ ରହି (ତତ୍ତ୍ୱଜ୍ଞ ବ୍ୟକ୍ତି) ତହିଁରୁ ନିବୃତ୍ତ ହେବା ପାଇଁ ଉପଦେଶ ଦେଲେ ମଧ୍ୟ ଅଜ୍ଞ ଜନ ତାହା ସ୍ୱୀକାର କରିବ ନାହିଁ ।

ଶ୍ରୀବ୍ୟାସଦେବଙ୍କ ପ୍ରତି ଶ୍ରୀନାରଦଙ୍କ ଉପଦେଶରେ କେବଳ ଶ୍ରୀଭଗବାନ୍‌ଙ୍କ ଲୀଳାବର୍ଣ୍ଣନା ଅପେକ୍ଷା ଉକ୍ତ ଲୀଳାବର୍ଣ୍ଣନାର ଉଦ୍ଦେଶ୍ୟ ଉପରେ ହିଁ ସର୍ବାଧିକ ଗୁରୁତ୍ୱ ଦିଆହୋଇଛି । କାରଣ ଉଦ୍ଦେଶ୍ୟ ଅନୁସାରେ ହିଁ ଫଳପ୍ରାପ୍ତି ହୋଇଥାଏ । ମହାଭାରତ ଓ ପଦ୍ମପୁରାଣାଦିରେ ଶ୍ରୀକୃଷ୍ଣଙ୍କ ଲୀଳା ବର୍ଣ୍ଣନା କରି ମଧ୍ୟ ଶ୍ରୀବ୍ୟାସଦେବଙ୍କ ଚିତ୍ତ ପ୍ରସନ୍ନ ହେଲା ନାହିଁ, ଯେହେତୁ ସେ ସବୁଥିରେ ଭଗବାନ୍‌ଙ୍କ ଲୀଳାରେ ବର୍ଣ୍ଣନା ଥିବା ସତ୍ତ୍ୱେ ଧର୍ମାର୍ଥ କାମମୋକ୍ଷକୁ ହିଁ ମୁଖ୍ୟ ପୁରୁଷାର୍ଥରୂପେ ସ୍ଥାପନ କରାଯାଇଛି । ଯେଉଁ କାମ୍ୟକର୍ମ ପ୍ରତି ଲୋକଙ୍କର ସ୍ୱାଭାବିକ ରୁଚି, ସେହି କାମ୍ୟକର୍ମକୁ ମୁଖ୍ୟ ଧର୍ମରୂପେ ପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ଶ୍ରୀଭଗବାନ୍‌ଙ୍କର ଲୀଳାବର୍ଣ୍ଣନାକୁ ଶ୍ରୀନାରଦ ଘୋର ଅନ୍ୟାୟ ବୋଲି କହି କେବଳ ଶ୍ରୀଭଗବାନ୍‌ଙ୍କ ସୁଖାନୁସନ୍ଧାନସମାଧିରେ ଆବିଷ୍ଟ ହୋଇ ତାଙ୍କ ଲୀଳା ବର୍ଣ୍ଣନା କରିବାକୁ ଉପଦେଶ ଦେଲେ । ତାଙ୍କର ଏହିପ୍ରକାର ଉପଦେଶର ଉଦ୍ଦେଶ୍ୟ ହେଲା ଏହି ଯେ, ଶ୍ରୀଭଗବାନ୍‌ଙ୍କ ସୁଖରେ ହିଁ ଜୀବର ସମସ୍ତ ସୁଖର ପର୍ଯ୍ୟବସାନ ।

ତାଙ୍କର ଏହି ଉପଦେଶର ଅନୁସରଣରେ ଶ୍ରୀବ୍ୟାସଦେବ ଧର୍ମାର୍ଥକାମମୋକ୍ଷକୁ ଉପେକ୍ଷାପୂର୍ବକ ଶ୍ରୀଭଗବାନ୍‌ଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ଭାଗବତଧର୍ମକୁ ମୁଖ୍ୟ ସାଧନ ରୂପେ ବର୍ଣ୍ଣନା କରି ଶ୍ରୀମଦ୍ଭାଗବତ ରଚନା ଆରମ୍ଭ କଲେ । ତହିଁରେ ଶ୍ରୀକୃଷ୍ଣଭକ୍ତିକୁ ସାଧନଶ୍ରେଷ୍ଠ ଓ ଶ୍ରୀକୃଷ୍ଣପ୍ରେମକୁ ସାଧ୍ୟଶ୍ରେଷ୍ଠ ରୂପେ ପ୍ରତିଷ୍ଠା କରାଯାଇଛି । ଏହାହିଁ ଶ୍ରୀମଦ୍ଭାଗବତର

ବୈଶିଷ୍ଟ୍ୟ । ଏହିପ୍ରକାର ସିଦ୍ଧାନ୍ତ ଶ୍ରୀବ୍ୟାସଦେବଙ୍କ ରଚିତ ଅନ୍ୟ କୌଣସି ପୁରାଣରେ ନାହିଁ । ସେହି ହେତୁରୁ ଶ୍ରୀମଦ୍ଭାଗବତକୁ ପୁରାଣଶ୍ରେଷ୍ଠ ବୋଲି କୁହାଯାଏ ।

## ଶ୍ରୀମଦ୍ଭାଗବତର ଟୀକାକାର

"ଭକ୍ତ୍ୟା ଭାଗବତଂ ଗ୍ରାହ୍ୟଂ ନ ବୁଦ୍ଧ୍ୟା ନ ଚ ଟୀକୟା" - ଏହି ମହାଜନୋକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ଭାଗବତରସିକ ସାଧୁମାନଙ୍କ କୃପାକଣା ବ୍ୟତୀତ ଭାଗବତ ଗ୍ରନ୍ଥ ଅବଶ୍ୟ ଦୁର୍ବୋଧ୍ୟ । ଏଥିପାଇଁ ଶ୍ରୀଚୈତନ୍ୟ ଦେବ ତାଙ୍କର ଜନୈକ ପାର୍ଷଦଙ୍କୁ କହିଥିଲେ - "ଯାହା ଭାଗବତ ପଢ଼ ବୈଷ୍ଣବେର ସନେ ।" ତଥାପି ଭାଗବତରେ ପ୍ରବେଶ ସୁଗମ କରିବା ପାଇଁ ଭକ୍ତମାନେ ଭକ୍ତିବିଭାଜିତ ଚିତ୍ତରେ ଟୀକା ରଚନା କରି ଭାଗବତରସ ପରିବେଷଣ କରିଅଛନ୍ତି । ଶ୍ରୀଜୀବଗୋସ୍ୱାମୀ ତଦୀୟ ତତ୍ତ୍ୱସଂଦର୍ଭ ଗ୍ରନ୍ଥରେ ତାଙ୍କ ପୂର୍ବବର୍ତ୍ତୀ ଆଠଗୋଟି ଟୀକାର ନାମୋଲ୍ଲେଖ କରିଅଛନ୍ତି । ଯଥା -

୧- ହନୁମଦ୍ଭାଷ୍ୟ, ୨- ବାସନାଭାଷ୍ୟ, ୩- ସମ୍ବନ୍ଧୋକ୍ତି, ୪- ବିଦ୍ୱତ୍‌କାମଧେନୁ, ୫- ତତ୍ତ୍ୱଦୀପିକା, ୬- ଭାବାର୍ଥଦୀପିକା, ୭- ପରମହଂସପ୍ରିୟା ଏବଂ ୮- ଶୁକହୃଦୟ । ଏଥିମଧ୍ୟରୁ ଶ୍ରୀଧରସ୍ୱାମିଙ୍କ ଭାବାର୍ଥଦୀପିକା ବର୍ତ୍ତମାନ ଉପଲବ୍ଧ ହୁଏ । ଏତଦ୍‌ବ୍ୟତୀତ ଶ୍ରୀମଧ୍ୱାଚାର୍ଯ୍ୟକୃତ ଭାଗବତ-ତାତ୍ପର୍ଯ୍ୟ, ବିଜୟଧ୍ୱଜକୃତ ପଦରତ୍ନାବଳୀ, ବୀରରାଘବକୃତ ଭାଗବତଚନ୍ଦ୍ରିକା, ଶୁକଦେବକୃତ ସିଦ୍ଧାନ୍ତପ୍ରଦୀପ, ବଲ୍ଲଭାଚାର୍ଯ୍ୟକୃତ ସୁବୋଧିନୀ, ଅଦ୍ୱୈତସିଦ୍ଧିକାର ଶ୍ରୀମଧୁସୂଦନ ସରସ୍ୱତୀକୃତ ଭାବାର୍ଥପ୍ରବେଶିକା ପ୍ରଭୃତି ପ୍ରଧାନ । ପୂର୍ବବର୍ତ୍ତୀ ଟୀକାମାନଙ୍କ ମଧ୍ୟରେ ଶ୍ରୀଧରସ୍ୱାମିଙ୍କ ଭାବାର୍ଥଦୀପିକା ସର୍ବଶ୍ରେଷ୍ଠ । ଶ୍ରୀଚୈତନ୍ୟଦେବ ଶ୍ରୀଧରସ୍ୱାମିଙ୍କ ବ୍ୟାଖ୍ୟାକୁ ଯଥେଷ୍ଟ ଗୌରବ ପ୍ରଦାନ କରିଛନ୍ତି ।

ଗୌଡ଼ୀୟ ଗୋସ୍ୱାମୀ ତଥା ଭକ୍ତମାନେ ମଧ୍ୟ ଭାଗବତର ଅନେକ ଟୀକା ରଚନା କରିଛନ୍ତି । ଯଥା - ବୃହଦ୍ ବୈଷ୍ଣବତୋଷଣୀ (ଶ୍ରୀସନାତନ ଗୋସ୍ୱାମୀ), ଲଘୁତୋଷଣୀ, ବୃହଦ୍ କ୍ରମସନ୍ଦର୍ଭ, ଲଘୁ କ୍ରମସନ୍ଦର୍ଭ (ଜୀବଗୋସ୍ୱାମୀ); ସାରାର୍ଥଦର୍ଶିନୀ (ବିଶ୍ୱନାଥ ଚକ୍ରବର୍ତ୍ତୀ), ବୈଷ୍ଣବାନନ୍ଦିନୀ (ବଳଦେବ ବିଦ୍ୟାଭୂଷଣ), ଭାବଭାବବିଭାବିକା (ରାମନାରାୟଣ ମିଶ୍ର), ଦଶମଟୀକା (କବିକର୍ଣ୍ଣପୁର) ଓ ସଂଶୟଶାତନୀ (ରଘୁନନ୍ଦନ ଗୋସ୍ୱାମୀ) ।

ଶ୍ରୀଚୈତନ୍ୟଦେବଙ୍କ ପୂର୍ବବର୍ତ୍ତୀ ଟୀକାକାରମାନେ ମୁଖ୍ୟତଃ ତାତ୍ତ୍ୱିକ ବିଚାର ପ୍ରତି ମନୋନିବେଶ କଲାବେଳେ ତତ୍‌ପରବର୍ତ୍ତୀ ଟୀକାକାରମାନେ ବିଶେଷତଃ ରସବିଚାର ପ୍ରତି ଆକୃଷ୍ଟ ହେବାର ଦେଖାଯାଏ । ତତ୍ତ୍ୱ ଓ ରସ ସିଦ୍ଧାନ୍ତରେ ଅପ୍ରତିଦ୍ୱନ୍ଦ୍ୱୀ ହେଉଛନ୍ତି ଶ୍ରୀଚୈତନ୍ୟାନୁଗ ଷଡ୍‌ଗୋସ୍ୱାମିବୃନ୍ଦ । ଟୀକାଗ୍ରନ୍ଥ ବ୍ୟତୀତ ଭାଗବତ ସମ୍ବନ୍ଧେ ବହୁତ ନିବନ୍ଧ ଓ ପ୍ରକରଣ ମଧ୍ୟ ରଚିତ ହୋଇଅଛି । ସେଥିମଧ୍ୟରୁ ମୁକ୍ତାଫଳ, ହରିଲୀଳା, ବିଷ୍ଣୁଭକ୍ତିରତ୍ନାବଳୀ, ଲୀଳାସ୍ତବ ଓ ହରିଭକ୍ତିତତ୍ତ୍ୱସାରସଂଗ୍ରହ ବିଶେଷଭାବରେ ଉଲ୍ଲେଖଯୋଗ୍ୟ । ଏହିସବୁ ଗ୍ରନ୍ଥ ଭାଗବତର ଅବଲମ୍ବନରେ ରଚିତ ଏବଂ ଭାଗବତର ଅନ୍ତର୍ନିହିତ ତାତ୍ପର୍ଯ୍ୟ ବ୍ୟକ୍ତ କରିବାରେ ବ୍ୟାପୃତ ।

ଶଙ୍କରାଚାର୍ଯ୍ୟ ସର୍ବସିଦ୍ଧାନ୍ତ ସଂଗ୍ରହ (ବେଦାନ୍ତ ପକ୍ଷ ପ୍ରକରଣ ୯୮-୯୯ ଶ୍ଳୋକ)ରେ ବାସୁଦେବ ସହସ୍ର ନାମ କ୍ରମେ ଭାଗବତର ନାମୋଲ୍ଲେଖ କରିଅଛନ୍ତି । 'ପ୍ରବୋଧସୁଧାକର' ଗ୍ରନ୍ଥରେ ସେ ପ୍ରଥମେ ଯାଦବାଧୀଶଙ୍କୁ ପ୍ରଣାମ କରି ବୈରାଗ୍ୟ ପ୍ରଶଂସା, ଦେହନିନ୍ଦା, ମନୋନିଗ୍ରହ, ଆତ୍ମସିଦ୍ଧି ଆଦିରୁ ପ୍ରବୋଧପ୍ରକରଣ ପର୍ଯ୍ୟନ୍ତ ଭାଗବତୀୟ ପ୍ରସଙ୍ଗ ବର୍ଣ୍ଣନା ନ କଲେ ମଧ୍ୟ ଭକ୍ତିପ୍ରକରଣରୁ ଭାଗବତୀୟ କଥା ଆରମ୍ଭ କରିଅଛନ୍ତି ଏବଂ ଧ୍ୟାନବିଧି ପ୍ରକରଣ (୧୮୪-୧୮୮)ରେ ଗୋ-ଗୋପ-ଗୋପୀ-ପରିବେଷ୍ଟିତ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି 'ସଗୁଣନିର୍ଗୁଣୟୋରୈକ୍ୟମ୍' ପ୍ରକରଣରେ ସଗୁଣନିର୍ଗୁଣଶ୍ରୁତିର ସମନ୍ୱୟଭୂମିରେ ଶ୍ରୀକୃଷ୍ଣଙ୍କୁ ସୁସ୍ଥାପିତ କରିଅଛନ୍ତି ।



## ରଚୟିତାଙ୍କ ଆତ୍ମପରିଚୟ

ଏହି ଗ୍ରନ୍ଥର ରଚୟିତା ପୂଜ୍ୟ ଖାଡ଼ଙ୍ଗା ମହାଶୟ ଦ୍ୱାଦଶସ୍କନ୍ଧର ଶେଷରେ ନିମ୍ନଲିଖିତମତେ ନିଜର ପରିଚୟ ପ୍ରଦାନ କରିଛନ୍ତି -

"ଶ୍ରୀ ପୁରୁଷୋତ୍ତମ ନିକଟ । ବ୍ରାହ୍ମଣ ଶାସନ ପ୍ରକଟ ॥
ତା'ନାମ ବାମଦେବପୁର । କୌତ୍ସସ ମାନଙ୍କ ମନ୍ଦିର ॥
ଯେ ବାମଦେବ ବାଜପେୟୀ । ସେ ଗ୍ରାମ ଥିଲେ ଦାନ ପାଇ ॥
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ॥
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗାଦାସ ନାମ ହୋଇ ॥
ବାଲୁଙ୍କି ଦୀକ୍ଷିତ ନାମରେ । ସମ୍ଭବ ତାଙ୍କର କୁମରେ ॥
ତାଙ୍କ ତନୁଜ ଜୀବଦାସ । ମିଶ୍ର ନାମରେ ସେ ପ୍ରକାଶ ॥
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ॥
ମୋହର ଦୀନବନ୍ଧୁ ନାମ । ଯେ ବୈତରଣୀ ତଟେ ଗ୍ରାମ ॥
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମେ ଅଟନ୍ତି ଯେ ସ୍ଥିତ ॥
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣଭକ୍ତିରେ ଲାଲସ ॥
ଶ୍ରୀନିତ୍ୟାନନ୍ଦ ପରିବାର । ଅଟନ୍ତି ଅତି ଶୁଦ୍ଧାଚାର ॥
ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତକୁ ଗୀତ କଲି ॥
ଗୌଡ଼ ବାରାଣସୀ ଉତ୍କଳ । ଏ ତିନି ଦେଶ ପୋଥି ଠୁଳ ॥
କରିଣ ଶୁଦ୍ଧାଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥
ସୁଜନେ ନ ଧର ମୋ ଦୋଷ । ମୁଁ ତୁମ୍ଭମାନଙ୍କର ଦାସ ॥"

ଉକ୍ତ ବିବରଣୀରୁ ଜଣାଯାଏ ଯେ ବାମଦେବପୁର ନାମରେ ଏକ ବ୍ରାହ୍ମଣଶାସନ ଥିଲା । ସେଠାରେ କୌତ୍ସସଗୋତ୍ରୀ ବ୍ରାହ୍ମଣମାନେ ବାସ କରୁଥିଲେ । ତାହାକୁ ବାମଦେବ ବାଜପେୟୀ ନାମକ ଜଣେ ବୈଦିକ ବ୍ରାହ୍ମଣ ପୁରୀର ଗଜପତି ମହାରାଜାଙ୍କଠାରୁ ଦାନସୂତ୍ରେ ପାଇଥିଲେ । ବାମଦେବ ବାଜପେୟୀଙ୍କ ବଂଶପରମ୍ପରା ନିମ୍ନରେ ପୁତ୍ରକ୍ରମେ ପ୍ରଦତ୍ତ ହେଲା -

ଶ୍ରୀବାମଦେବ ବାଜପେୟୀଙ୍କ ପୁତ୍ର ଶ୍ରୀସର୍ବେଶ୍ୱର ବାଜପେୟୀ, ତାଙ୍କ ପୁତ୍ର ଶ୍ରୀଦୁର୍ଗାଦାସ ବାଜପେୟୀ, ତାଙ୍କ ପୁତ୍ର ଶ୍ରୀବାଲୁଙ୍କି ଦୀକ୍ଷିତ, ତାଙ୍କ ପୁତ୍ର ଶ୍ରୀଜୀବଦାସ ମିଶ୍ର, ତାଙ୍କ ପୁତ୍ର ଶ୍ରୀମଧୁସୂଦନ ମିଶ୍ର ଓ ତାଙ୍କ ପୁତ୍ର ଶ୍ରୀଦୀନବନ୍ଧୁ ମିଶ୍ର (ଖାଡ଼ଙ୍ଗା) ।

ଶ୍ରୀଦୀନବନ୍ଧୁ ମିଶ୍ର ପ୍ରୋକ୍ତ ବାମଦେବପୁର ଶାସନରୁ ଖଣ୍ଡପଡ଼ାକୁ ଉଠିଆସି ସେଠାରେ ବସବାସ କରୁଥିଲେ ।

ବୈତରଣୀ ନଦୀକୂଳରେ ମୁକୁନ୍ଦପୁର ନାମରେ ଏକ ଗ୍ରାମ ଥିଲା । ସେଠାରେ ଶ୍ରୀବୃନ୍ଦାବନ ଦାସ ନାମରେ ଜଣେ ଅତି ଶୁଦ୍ଧାଚାରସମ୍ପନ୍ନ ବୈଷ୍ଣବ ଥିଲେ । ଶ୍ରୀକୃଷ୍ଣଭକ୍ତିରେ ତାଙ୍କର ପ୍ରଗାଢ଼ ଲାଳସା ଥିଲା । ସେ ନିତ୍ୟାନନ୍ଦ ପରିବାରର ଅନ୍ତର୍ଭୁକ୍ତ ଥିଲେ । ଶ୍ରୀଜୟରାମ ଦାସ ନାମରେ ଜଣେ ବୈଷ୍ଣବ ତାଙ୍କର ଶିଷ୍ୟ ଥିଲେ । ସେହି ଶ୍ରୀଜୟରାମ ଦାସଙ୍କ ପ୍ରୀତିରେ ବଶୀଭୂତ ହୋଇ ଖାଡ଼ଙ୍ଗା ମହାଶୟ ସଂସ୍କୃତ ଭାଗବତର ନବାକ୍ଷରୀ ଗୀତାନୁବାଦ କରିଥିଲେ । ଏଥିପାଇଁ ତାଙ୍କୁ ଯଥେଷ୍ଟ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ବଙ୍ଗ, ଉତ୍ତରପ୍ରଦେଶ ଓ ଉତ୍କଳ - ଏ ତିନି ପ୍ରଦେଶର ବିଭିନ୍ନ ସ୍ଥାନରୁ ସଂଗୃହୀତ ପୋଥିମାନ ଏକାଠି ଠୁଳ କରି ଶୁଦ୍ଧାଶୁଦ୍ଧ ବିଚାରପୂର୍ବକ ସେ ଭାଗବତର ଗୀତାନୁବାଦ ରଚନା କରିଥିଲେ । ଏହା ସେ ନିଜେ ଉଲ୍ଲେଖ କରିଅଛନ୍ତି ।

ଖାଡ଼ଙ୍ଗାଙ୍କ ଭାଗବତ ରଚନା ପ୍ରସଙ୍ଗେ ଷଷ୍ଠ ସ୍କନ୍ଧ ଶେଷରେ ନିମ୍ନଲିଖିତ ପାଠାନ୍ତର ଦୃଷ୍ଟ ହୁଏ, ଯଥା -

× × × × ×

"ମୋହର ଦୀନବନ୍ଧୁ ନାମ । ଖଣ୍ଡପଡ଼ା ଦୁର୍ଗେ ବିଶ୍ରାମ ॥
କରିଛି ତହିଁରେ ଭୂପତି । ସେ ଗୁରୁ ବୈଷ୍ଣବେ ଭଗତି ॥
ସେ ଦାତା ଧୀର ସତ୍ୟଭାଷୀ । ଶ୍ରୀଭାଗବତ ଗ୍ରନ୍ଥାଭ୍ୟାସୀ ॥
ନାମ ଅଟଇ ତାହାଙ୍କର । ମଙ୍ଗରାଜ ବାଲୁଙ୍କେଶ୍ୱର ॥
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତକୁ ଗୀତ କଲି ॥

ଉପରିଲିଖିତ ଉକ୍ତିରୁ ସ୍ପଷ୍ଟ ଜଣାଯାଉଅଛି ଯେ ବାଲୁଙ୍କେଶ୍ୱର ମଙ୍ଗରାଜ ନାମକ ଜନୈକ ବ୍ୟକ୍ତି ଖଣ୍ଡପଡ଼ାର ରାଜା ଥିଲେ । ତାଙ୍କର ଗୁରୁବୈଷ୍ଣବଙ୍କ ଠାରେ ପ୍ରଗାଢ଼ ଭକ୍ତି ଥିଲା । ସେ ଦାତା, ଧୀର ଓ ସତ୍ୟବାଦୀ ଥିଲେ । ଶ୍ରୀମଦ୍‌ଭାଗବତ ଗ୍ରନ୍ଥକୁ ସେ ଅଭ୍ୟାସ କରି ଅଧ୍ୟୟନ କରୁଥିଲେ । ଶ୍ରୀଦୀନବନ୍ଧୁ ମିଶ୍ର ତାଙ୍କ ପ୍ରୀତିରେ ବଶୀଭୂତ ହୋଇ ଭାଗବତର ଗୀତାନୁବାଦ ରଚନା କରିଥିଲେ ।

## ଶ୍ରୀଖାଡ଼ଙ୍ଗାଙ୍କ ଜନ୍ମକାଳ

ପୂର୍ବରୁ କୁହାଯାଇଛି ଯେ ଖାଡ଼ଙ୍ଗା ମହାଶୟ ଖଣ୍ଡପଡ଼ାର ରାଜା ଶ୍ରୀବାଲୁଙ୍କେଶ୍ୱର ମଙ୍ଗରାଜଙ୍କ ପ୍ରୀତିରେ ବଶ ହୋଇ ଭାଗବତକୁ ଗୀତ କରିଥିଲେ । ଅତଏବ ସେ ବାଲୁଙ୍କେଶ୍ୱର ମଙ୍ଗରାଜଙ୍କ ସାମସମୟିକ ଥିଲେ । କିନ୍ତୁ ପଣ୍ଡିତ ଶ୍ରୀଚନ୍ଦ୍ରଶେଖର ମିଶ୍ର କାବ୍ୟତୀର୍ଥଙ୍କ ରଚିତ ''ସାମନ୍ତ ଚନ୍ଦ୍ରଶେଖର'' ପୁସ୍ତକରୁ ଜଣାଯାଏ ଯେ ସେ ଖଣ୍ଡପଡ଼ାର ଦ୍ୱିତୀୟ ରାଜା ନାରାୟଣ ମଙ୍ଗରାଜଙ୍କ ଗୁରୁ ଥିଲେ । ନାରାୟଣ ମଙ୍ଗରାଜ ଥିଲେ ପରମ ବୈଷ୍ଣବ । ଖାଡ଼ଙ୍ଗା ଏହାଙ୍କର ମଧ୍ୟ ସାମସମୟିକ ଥିଲେ । ବର୍ତ୍ତମାନ ଖଣ୍ଡପଡ଼ାର ରାଜବଂଶାବଳୀର ହିସାବରୁ ଖାଡ଼ଙ୍ଗାଙ୍କର ଜନ୍ମକାଳର ସଠିକ ବିବରଣୀ ମିଳିପାରିବ । ଏଥିପାଇଁ ତାହା ନିମ୍ନରେ ପ୍ରଦତ୍ତ ହେଲା ।

### ଖଣ୍ଡପଡ଼ାର ରାଜବଂଶ

ମଧ୍ୟଭାରତ ଏଜେନ୍‌ସି-ଅନ୍ତର୍ଗତ ରେବାଁଠାରେ ସୂର୍ଯ୍ୟବଂଶର ରାଜାମାନେ ରାଜତ୍ୱ କରନ୍ତି । ସେହି ବଂଶର ରଘୁନାଥ ନରେନ୍ଦ୍ରଙ୍କ ମଧ୍ୟମ ପୁତ୍ର ଯଦୁନାଥ ମଙ୍ଗରାଜ ଖଣ୍ଡପଡ଼ାର ପ୍ରଥମ ରାଜା ହେଲେ । ଦିଲ୍ଲୀଶ୍ୱରଙ୍କ ୧୦୦୬ ସାଲରେ ସେ ରାଜସିଂହାସନରେ ଅଧିରୂଢ଼ ହୋଇଥିଲେ । ସେହି ସମୟରୁ ବର୍ତ୍ତମାନ ପର୍ଯ୍ୟନ୍ତ ଖଣ୍ଡପଡ଼ାର ରାଜବଂଶାବଳୀର ବିବରଣ ତଳେ ପ୍ରଦତ୍ତ ହେଲା ।

| କ୍ର. ନଂ. | ରାଜାଙ୍କ ନାମ | | | | ରାଜତ୍ୱକାଳ ବର୍ଷ/ମାସ |
|---|---|---|---|---|---|
| ୧ମ | ଯଦୁନାଥ ମଙ୍ଗରାଜ | | | | ୬୬ |
| ୨ୟ | ନାରାୟଣ ,, | | | | ୩୪ |
| ୩ୟ | ବାଲୁଙ୍କେଶ୍ୱର ,, | | | | ୧୪ |
| ୪ର୍ଥ | ବନମାଳୀ ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ | | | | ୧୧ |
| ୫ମ | ବୈରାଗୀ ସିଂହ | ,, | ,, | ,, | ୩୬ |
| ୬ଷ୍ଠ | ନୀଳାଦ୍ରି ସିଂହ | ,, | ,, | ,, | ୨୪ |
| ୭ମ | ନୃସିଂହ | ,, | ,, | ,, | ୨୧ । ୨ |
| ୮ମ | ପୁରୁଷୋତ୍ତମ | ,, | ,, | ,, | ୬ । ୪ |
| ୯ମ | କୃଷ୍ଣଚନ୍ଦ୍ର | ,, | ,, | ,, | ୨୧ । ୧ |
| ୧୦ମ | କୁଞ୍ଜବିହାରୀ | ,, | ,, | ,, | ୨୪ । ୧୦ |
| ୧୧ଶ | ନଟବର ସିଂହ | ,, | ,, | ,, | ୪୦ |
| ୧୨ଶ | ରାମଚନ୍ଦ୍ର ସିଂହ | ,, | ,, | ,, | ୧୯ |
| ୧୩ଶ | ହରିହର ସିଂହ | ,, | ,, | ,, | ୪୩ |

ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା ଖଣ୍ଡପଡ଼ାର ୨ୟ ରାଜା ନାରାୟଣ ମଙ୍ଗରାଜ ଏବଂ ୩ୟ ରାଜା ବାଲୁଙ୍କେଶ୍ୱର ମଙ୍ଗରାଜଙ୍କ ସାମସମୟିକ ଥିଲେ । ପ୍ରଦତ୍ତ ଖଣ୍ଡପଡ଼ା ରାଜବଂଶର ବିବରଣୀରୁ ସ୍ପଷ୍ଟ ଜଣାଯାଏ ଯେ ଖାଡ଼ଙ୍ଗା ମହାଶୟ ଆଜକୁ ପ୍ରାୟ ୩୦୦ ବର୍ଷ ପୂର୍ବେ ଜନ୍ମଗ୍ରହଣ କରିଥିଲେ ।

## ଖାଡ଼ଙ୍ଗାଙ୍କ ପାଣ୍ଡିତ୍ୟ

ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ବିରଚିତ ଶ୍ରୀମଦ୍‌ଭାଗବତର ପ୍ରସିଦ୍ଧ ଟୀକାକାର ଶ୍ରୀଧରସ୍ୱାମୀଙ୍କ ଟୀକାକୁ ଅକ୍ଷରେ ଅକ୍ଷରେ ଅନୁସରଣ କରି ଖାଡ଼ଙ୍ଗା ତାହାର ଓଡ଼ିଆ ପଦ୍ୟାନୁବାଦ କରି ଯାଇଅଛନ୍ତି । ଶ୍ରୀଧରସ୍ୱାମୀଙ୍କ ''ଭାବାର୍ଥଦୀପିକା'' ଟୀକା ସର୍ବମାନ୍ୟ ଏବଂ ସର୍ବବାଦିସମ୍ମତ । ଏଥିପାଇଁ ସେ ସେହି ଟୀକା ଅବଲମ୍ୱନରେ ତାଙ୍କର ଲେଖନୀ ଚାଳନା କରିଥିଲେ । ସେ ଶ୍ରୀମଦ୍‌ଭାଗବତର ପ୍ରତ୍ୟେକ ଶ୍ଳୋକର ଆକ୍ଷରିକ ଅନୁବାଦ କରିଛନ୍ତି । ଯେଉଁଠି ମୂଳଶ୍ଳୋକ ଅପେକ୍ଷା ଅନୁବାଦରେ ଅଧିକ ତଥ୍ୟ ଦୃଷ୍ଟିଗୋଚର ହୁଏ ତାହା ଖାଡ଼ଙ୍ଗାଙ୍କ ନିଜସ୍ୱ ନୁହେଁ । ସେତକ ସେ ଶ୍ରୀଧରସ୍ୱାମୀଙ୍କ ଟୀକାରୁ ଗ୍ରହଣ କରିଅଛନ୍ତି ଏବଂ ତାହା ମଧ୍ୟ ଆକ୍ଷରିକ ଅନୁବାଦ । 'ଭାବାର୍ଥଦୀପିକା' ଟୀକା ସହିତ ଖାଡ଼ଙ୍ଗାଙ୍କ ଅନୁବାଦକୁ ତୁଳନା କଲେ ତାଙ୍କ ବିଲକ୍ଷଣ ବିଦ୍‌ବତ୍ତାର ଯଥେଷ୍ଟ ପରିଚୟ ମିଳେ । ଶ୍ରୀମଦ୍‌ଭାଗବତର ସମସ୍ତ ଶ୍ଳୋକ (୧୮୦୦୦) ତାଙ୍କର ମୁଖସ୍ଥ ଥିବାର କିମ୍ବଦନ୍ତୀରୁ ଜଣାଯାଏ । ସଂସ୍କୃତରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜନ କରିଥିବାରୁ ସେ କେତେକ ସ୍ତୁତି ସ୍ତୋତ୍ର ମଧ୍ୟ ସଂସ୍କୃତରେ ରଚନା କରି ଯାଇଅଛନ୍ତି । ସେଥିମଧ୍ୟରୁ କେତେଗୁଡ଼ିଏ ସ୍ତୋତ୍ର ତାଙ୍କ ନାତି ଶ୍ରୀରାଜବଲ୍ଲଭ ମିଶ୍ର ''ଭକ୍ତିରତ୍ନମାଳା'' ନାମକ ପୁସ୍ତକରେ ସଂକଳନ କରିଛନ୍ତି । ଯେ ସେହି ପୁସ୍ତକ ପାଠ କରିବେ ସେ ଖାଡ଼ଙ୍ଗାଙ୍କ ପାଣ୍ଡିତ୍ୟ, ଅସାଧାରଣ କବିତ୍ୱଶକ୍ତି ଓ ଭକ୍ତି ବିଷୟରେ ସମ୍ୟକ୍ ଉପଲବ୍ଧି କରିପାରିବେ । ଉଦାହରଣସ୍ୱରୂପ ତଦ୍‌ବିରଚିତ ଶ୍ରୀକୃଷ୍ଣସ୍ତବ ନିମ୍ନରେ ଉଦ୍ଧୃତ ହେଲା–

### ଶ୍ରୀକୃଷ୍ଣସ୍ତବରତ୍ନମ୍

ଜୟ ଜୟ କୃଷ୍ଣ କୃପାମୟ ସିନ୍ଧୋ
ବ୍ରଜବନିତାଜନଜୀବନବନ୍ଧୋ ।
ଅଧିମୁନିମାନସମୁଲ୍ଲସଦମଳଂ
ବନ୍ଦେ ନିତ୍ୟଂ ତବ ପଦକମଳମ୍ ॥ ୧ ॥

ଧର୍ମଂ ଚାର୍ଥଂ କାମଂ ମୋକ୍ଷଂ
ଯାଚେ ନାହଂ କିମପି ପରୋକ୍ଷମ୍ ।
ତବ ଚରଣାମ୍ବୁଜସେବାମେବ
ପ୍ରବିତର ମହ୍ୟଂ ମୁରହରଦେବ ॥ ୨ ॥

ଯସ୍ୟାସ୍ତି ତ୍ୱତ୍‌ପଦଯୁଗଭକ୍ତି-
ସ୍ତସ୍ୟାଧୀନା ଭବତି ବିମୁକ୍ତିଃ ।
କିମସୌ ଧୀରଶ୍ଚପଳନିସର୍ଗଂ
ବାଞ୍ଛତି ଧର୍ମାଦୀନାଂ ବର୍ଗମ୍ ॥ ୩ ॥

ତ୍ୱୟି ପତିତବ୍ରଜପାବନଦକ୍ଷେ
ବସତି ହୃଦି ସ୍ୱାଶ୍ରିତଜନରକ୍ଷେ ।
ଭଜତି ଯଦନ୍ୟଂ ଦେବଂ ଲୋକଃ
ସ ତୁ ତବ ମାୟାବୀର୍ଯ୍ୟୋଦ୍ରେକଃ ॥ ୪ ॥

ତବ ଚରିତାଖ୍ୟା ଲୋକପ୍ରଣତିଃ
ସ୍ମୃତି-ପୂଜା-ଲୟଗତିଷୁ ପ୍ରୀତିଃ ।
ଶ୍ରୁତି-ରସନା-ଦୃଙ୍-ମସ୍ତକ-ଚେତଃ-
କରଚରଣସ୍ୟ ସ୍ତାନ୍ ମମ ଜେତଃ ॥ ୫ ॥

ଭୁଞ୍ଜାନଃ ସ୍ୱଂ କର୍ମବିପାକଂ
ନେଚ୍ଛାମ୍ୟର୍ଥାନ୍ ନ ପୁନର୍ନାକମ୍ ।
ପ୍ରାର୍ଥ୍ୟଂ କେବଳମେତନ୍ ମରଣେ
ସ୍ମରତି ଯଥା ମେ ହୃଦ୍ ତବ ଚରଣେ ॥ ୬ ॥

ନାଥ ! ଗଣେୟା ବୃଷ୍ଟେର୍ଧାରାଃ
ସିକତା ଭୂମେର୍ନଭସସ୍ତାରାଃ ।
ସଂସାରେଽସ୍ମିନ୍ ମମ ଜନିନିଧନେ
କଃ ସଂଖ୍ୟାତୁଂ ପ୍ରଭବତି ଗହନେ ॥ ୭ ॥

ପ୍ରଚୁରାୟାସପ୍ରଭବଂ ନିଧନଂ
ଶ୍ରୁତିଶଲ୍ୟାୟିତମନ୍ତକକଦନମ୍ ।
ତଦ୍‌ଭୀଶଷ୍ୟନ୍ମୁଖଗଳତାଳୋ-
ସ୍ତ୍ରାତା ଭବ ମେ କୃଷ୍ଣ କୃପାଳୋ ॥ ୮ ॥

ପ୍ରାୟଶ୍ଚିତ୍ତା ଦେଶେ ଯସ୍ୟ
ସ୍ମୃତିରପି ନାଳଂ ଜଗତି କୃତସ୍ୟ ।
ତସ୍ୟାପ୍ୟଂହୋରାଶେଃ ପାତ୍ରଂ
ପାବୟ ବିଷ୍ଣୋ ମାମତିମାତ୍ରମ୍ ॥ ୯ ॥

କୃଷ୍ଣ ତବାସ୍ମୀତ୍ୟୁକ୍ତ୍ୱା ଖିନ୍ନଃ
ସକୃଦପି ମାଂ ଯୋ ଭବତି ପ୍ରପନ୍ନଃ ।
ତସ୍ୟାଭୀତିଂ ବିଦଧାମୀତି
ବ୍ରତମାମ୍ନୀୟଂ ସ୍ମର ସା ନୀତିଃ ॥ ୧୦ ॥

ଅକଳିତପାରଭବାର୍ଣ୍ଣବନାବଂ
ବିଦଧତି ଯେ ତ୍ୱୟି ସୁଦଢ଼ଂ ଭାବମ୍ ।
ତୈର୍ମେ ସଙ୍ଗୋ ଭବତୁ କିମନ୍ୟୈଃ
ସଂସାରାପଣପତିତୈଃ ପଣ୍ୟୈଃ ॥ ୧୧ ॥

ତ୍ୱୟି ବିଶ୍ୱାତ୍ମନି ବିରଚିତ ଭକ୍ତି-
ର୍ଯସ୍ତେ ନାମାନ୍ୟନିଶଂ ବକ୍ତି ।
ସ୍ମରତି ଚ ନିତ୍ୟଂ ତ୍ୱାମତିରୁଚିରଂ
ଜୀବତି ଜୀବତି ଜୀବତି ସ ପରମ୍ ॥୧୨॥

ଝଷକମଠାଦ୍ୟା ଭବଦବତାରାଃ
ସତ୍ୟଂ ପୂଜ୍ୟାସ୍ତ୍ରିଭୁବନସାରାଃ ।
ତଦପି ମନୋ ମେ ଭବତି ସତୃଷ୍ଣଂ
ତ୍ୱାମେବାନୁସ୍ମର୍ତ୍ତୁଂ କୃଷ୍ଣମ୍ ॥ ୧୩ ॥

ତ୍ୱାଂ ଶ୍ରୀବୃନ୍ଦାବିପିନେଽଗମ୍ୟେ
ଶାରଦରାକାପତିରୁଚିରମ୍ୟେ ।
ଅତସୀପୁଷ୍ପପ୍ରତିମଚ୍ଛାୟଂ
ନ୍ୟକ୍‌କୃତକୋଟିମନୋଭବକାୟମ୍ ॥୧୪ ॥

ଦଧତଂ ପୀତଂ ବସନଂ ସାରଂ
ଶିଞ୍ଜନ୍ନୂପୁରଚରଣମୁଦାରମ୍ ।
କୌସ୍ତୁଭକଣ୍ଠଂ ଧୃତବନମାଳଂ
ସମୁଦିତନାନାଭୂଷଣଜାଳମ୍ ॥ ୧୫ ॥

ବର୍ତ୍ତୁଳପୀନାୟତଭୁଜଯୁଗଳଂ
ପ୍ରଣତଜନାଭୟକରକରକମଳମ୍ ।
ମୁଖକମଳାବିଷ୍କୃତଦରହାସଂ
ପ୍ରୋଜ୍ଜ୍ୱଳମୁକ୍ତାବିଳସନ୍ନାସମ୍ ॥ ୧୬ ॥

ଅନୁକୃତଦାଡ଼ିମବୀଜସୁଦନ୍ତଂ
ଭୁବନବଶୀକରଚତୁରଦୃଗନ୍ତମ୍ ।
ମଞ୍ଜୁଲତିଲକଂ ଚନ୍ଦ୍ରକଚୂଳଂ
ଜଗଦାନନ୍ଦସମୁଚ୍ଚୟମୂଳମ୍ ॥ ୧୭ ॥

ଗୋପୀସଂଖ୍ୟାମନୁଧୃତଦେହଂ
ବଳୟିତତଦ୍‌ପ୍ରତିଯୁଗମଧ୍ୟେଽହଂ ।
ତତ୍‌କଣ୍ଠାର୍ପିତବାହୁଂ ରାସେ
ସମୁଦିତଚିତ୍ତଂ ହୃଦି ସମୁପାସେ ॥ ୧୮ ॥

କାମକ୍ରୋଧାଦିଭିରଭିଭୂତେ
ଭବଦନୁକୂଳୈଃ ସଦ୍‌ଭିର୍ଧୂତେ ।
କରୁଣାପାଙ୍ଗ ପାତୟ ଦୀନେ
ମୟି ନନ୍ଦାତ୍ମଜ ! ପାପିନି ହାନେ ॥ ୧୯ ॥

ଉପନତସଂସୃତିଭୟହରଚରଣଂ
ଯାମି ତ୍ୱାଂ ଭବଭୀତଃ ଶରଣମ୍ ।
ସ୍ୱବଶ ଯଦିଚ୍ଛସି ତଦ୍ କୁରୁ କିନ୍ତ୍ୱାଂ
ପୁନରପି କରବୈ ସ୍ୱକୁଶଳଚିନ୍ତାମ୍ ॥ ୨୦ ॥

ହରିଗୁଣଗୀତେରନବଦ୍ୟାନାଂ
ବିଂଶତିମେତାଂ ସତ୍‌ପଦ୍ୟାନାମ୍ ।
ପଠତି ନରୋ ଯସ୍ତଦ୍‌ଗତଚେତା-
ସ୍ତମବତି ଭୃତ୍ୟଂ କଂସବିଜେତା ॥ ୨୧ ॥

ଇତି ଶ୍ରୀଦୀନବନ୍ଧୁମିଶ୍ରଖାଡ଼ଙ୍ଗା ବିରଚିତଂ ଶ୍ରୀକୃଷ୍ଣସ୍ତବରତ୍ନଂ ସଂପୂର୍ଣ୍ଣମ୍ ।

## 'ଖାଡ଼ଙ୍ଗା' ଶବ୍ଦର ବ୍ୟୁତ୍ପତ୍ତି

ଏ ଶବ୍ଦର ବ୍ୟୁତ୍ପତ୍ତି ଓଡ଼ିଆରେ ସଂକଳିତ କୋଷଗ୍ରନ୍ଥମାନଙ୍କରେ ପ୍ରଦତ୍ତ ହୋଇ ନାହିଁ । କେତେକଙ୍କ ମତରେ ମୂଳ ଶବ୍ଦ 'ଖଡ୍ଗରାୟ' ରୁ ଏହା ଅପଭ୍ରଷ୍ଟ ହୋଇ ଓଡ଼ିଆରେ ଚଳି ଆସୁଅଛି । ମାତ୍ର ଦୁଇ ଶବ୍ଦ ମଧ୍ୟରେ ଧ୍ୱନିଗତ ସାମ୍ୟ ନ ଥିବା ହେତୁ ଏହି ମତ ସ୍ୱୀକାର୍ଯ୍ୟ ନୁହେଁ । ଶ୍ରୀଦୀନବନ୍ଧୁ ମିଶ୍ର କୌତ୍ସସ ଗୋତ୍ରୀ ବ୍ରାହ୍ମଣକୁଳରେ ଜନ୍ମଲାଭ କରି ଆଚରଣରେ ପରମ ବୈଷ୍ଣବ ଥିଲେ । କେହି ବ୍ରାହ୍ମଣ କିମ୍ବା ବୈଷ୍ଣବ 'ଖଡ୍ଗରାୟ' ଉପାଧିରେ ଭୂଷିତ ହେବାର ଜଣାଯାଏ ନାହିଁ । ଏଣୁ 'ଖାଡଙ୍ଗା' ଶବ୍ଦ 'ଖଡ୍ଗରାୟ' ଶବ୍ଦରୁ ନିଷ୍ପନ୍ନ ହେବା ସମୀଚୀନ ବୋଧ ହେଉ ନାହିଁ । 'ଖାଡ଼ଙ୍ଗା' ଶବ୍ଦର ସଂସ୍କୃତ 'ଷଡ଼ଙ୍ଗ' ଶବ୍ଦ ସହିତ ବ୍ୟୁତ୍ପତ୍ତିଗତ ସଂପର୍କ ଥିଲାପରି ମନେ ହୁଏ । ଶିକ୍ଷା, କଳ୍ପ, ନିରୁକ୍ତ, ବ୍ୟାକରଣ, ଛନ୍ଦ ଓ ଜ୍ୟୋତିଷ - ଏହି ଛ'ଗୋଟି ବିଦ୍ୟା ବେଦର 'ଷଡ଼ଙ୍ଗ' ନାମରେ ପରିଚିତ । 'ଷଡ଼ଙ୍ଗ' ଅଧ୍ୟୟନ କରି ତହିଁରେ ଦକ୍ଷତା ଅର୍ଜନ କରିଥିବା ବ୍ୟକ୍ତିକୁ 'ଷଡ଼ଙ୍ଗୀ' ବା 'ଷାଡ଼ଙ୍ଗ' କୁହାଯାଏ । ''ତଦଧୀତେ ତଦ୍ ବେଦ'' ଏହି ସୂତ୍ରାନୁସାରେ ''ଷଡ଼ଙ୍ଗମ୍ ଅଧୀତେ ଜାନାତୀତି ବା ଷଡ଼ଙ୍ଗୀ, ଷାଡ଼ଙ୍ଗୋ ବା ।'' ସଂସ୍କୃତରେ ମାନ୍ୟାର୍ଥେ ବହୁବଚନର ପ୍ରୟୋଗ ପ୍ରଚଳିତ । ଏଣୁ ଷଡ଼ଙ୍ଗ ଅଧ୍ୟୟନ କରିଥିବା କୌଣସି ବ୍ୟକ୍ତିଙ୍କୁ ସମ୍ମାନାର୍ଥରେ ''ଇମେ ଷଡ଼ଙ୍ଗିନଃ, ଇମେ ଷାଡ଼ଙ୍ଗାଃ ବା'' ବୋଲି ପରିଚିତ କରାଯାଇପାରେ ।

ଏହାଛଡ଼ା ବୈଦିକଯୁଗରୁ ଆରମ୍ଭ କରି ପ୍ରାକୃତ, ଅପଭ୍ରଂଶ ତଥା ଆଧୁନିକ ଭାରତୀୟ ଭାଷାରେ ମଧ୍ୟ ମୂର୍ଦ୍ଧନ୍ୟ 'ଷ'ର 'ଖ' ଉଚ୍ଚାରଣ ବହୁଳ ଭାବେ ଦେଖାଯାଏ ।

ଯଥା- ଋଗ୍‌ବେଦାନ୍ତର୍ଗତ ପୁରୁଷସୂକ୍ତର 'ସହସ୍ରଶୀର୍ଷାଃ ପୁରୁଷ' ମନ୍ତ୍ର ପାଠ କଲାବେଳେ ଅନେକେ ''ପୁରୁଷ'' ଶବ୍ଦକୁ ''ପୁରୁଖ'' ଭାବେ ଉଚ୍ଚାରଣ କରିଥାଆନ୍ତି । ଏତଦ୍‌ବ୍ୟତୀତ ଭକ୍ତକବି ତୁଳସୀଦାସଙ୍କ ରଚିତ ''ଶ୍ରୀରାମଚରିତ ମାନସ'' ରେ ମଧ୍ୟ ମୁର୍ଧନ୍ୟ 'ଷ'ର 'ଖ' ଉଚ୍ଚାରଣ ବହୁଳ ଭାବରେ ଉପଲବ୍‌ଧ ହୁଏ । ଯଥା- ପୀୟୁଷା = ପୀୟୁଖା, ବରଷା = ବରଖା, ଷଟ୍‌ରସ = ଖଟ୍‌ରସ ଇତ୍ୟାଦି । ଭକ୍ତକବି ସୂରଦାସଙ୍କ ରଚନାରେ ମଧ୍ୟ 'ଷ'ର 'ଖ' ଉଚ୍ଚାରଣ ଦେଖାଯାଏ । ଯଥା- ବ୍ରଜଭାଷା = ବ୍ରଝଭାଖା, ସନ୍ତୋଷ = ସନ୍ତୋଖା ଇତ୍ୟାଦି । ମୂର୍ଧନ୍ୟ 'ଷ' ଅସଂଯୁକ୍ତ ଅବସ୍ଥାରେ 'ଖ' ରୂପେ ଉଚ୍ଚାରିତ ହେବାର ନିୟମ ବୈଦିକ ଶିକ୍ଷା ଗ୍ରନ୍ଥମାନଙ୍କରେ ଲିପିବଦ୍ଧ ହୋଇଅଛି । କିନ୍ତୁ ଅନ୍ୟ ବ୍ୟଞ୍ଜନ ସହିତ ସଂଯୁକ୍ତ ହେଲେ ତାହା 'ଖ' ଭାବେ ଉଚ୍ଚାରିତ ନ ହୋଇ ମୁର୍ଧନ୍ୟ 'ଷ' ଭାବେ ଉଚ୍ଚାରିତ ହୁଏ ।

ଏବେ 'ଷାଡ଼ଙ୍ଗା' ଶବ୍ଦର ଆଦ୍ୟ ମୂର୍ଧନ୍ୟ 'ଷ' ଅସଂଯୁକ୍ତ ଥିବା ହେତୁ 'ଖ' ଭାବେ ଉଚ୍ଚାରିତ ହୋଇ ପରେ ବିସର୍ଗଲୋପ ଦ୍ୱାରା 'ଖାଡ଼ଙ୍ଗା' ଶବ୍ଦ ପ୍ରଚଳିତ ହୋଇଥିବାର

ମନେହୁଏ । ଏହା ରାଜଦତ୍ତ ଉପାଧିବିଶେଷ । ପଣ୍ଡିତ ଶ୍ରୀବାନାମ୍ବର ଆଚାର୍ଯ୍ୟ ପ୍ରମୁଖ କତିପୟ ବିଦ୍ୱାନ୍ 'ଖାଡ଼ଙ୍ଗା' ଶବ୍ଦର ଉପର୍ଯ୍ୟୁକ୍ତ ବ୍ୟୁତ୍ପତ୍ତିର ସପକ୍ଷରେ ମତପୋଷଣ କରନ୍ତି ।

## ଖାଡ଼ଙ୍ଗାଙ୍କ ଦୀନବନ୍ଧୁତା

ଖଣ୍ଡପଡ଼ାର ଦ୍ୱିତୀୟ ରାଜା ନାରାୟଣ ମଙ୍ଗରାଜ ଖାଡ଼ଙ୍ଗାଙ୍କ ପଟ୍ଟଶିଷ୍ୟ ଥିଲେ । ଉଭୟେ ପ୍ରତିଦିନ ସନ୍ଧ୍ୟାସମୟରେ ଏକାଠି ବସି ଭକ୍ତିଗ୍ରନ୍ଥ ଆଲୋଚନା କରୁଥିଲେ । ଗୁରୁଦେବ ପ୍ରତ୍ୟହ ଶ୍ରୀମଦ୍ଭାଗବତ ବ୍ୟାଖ୍ୟା କରୁଥିଲେ ଏବଂ ଶିଷ୍ୟ ମହୋଦୟ ଉତ୍କଣ୍ଠାର ସହିତ ତାହା ଶ୍ରବଣ କରୁଥିଲେ । ଉଭୟଙ୍କ ନୟନରୁ ଆନନ୍ଦାଶ୍ରୁ ଝରି ପଡୁଥିଲା । ପଣ୍ଡିତ ଶ୍ରୀଚନ୍ଦ୍ରଶେଖର ମିଶ୍ରଙ୍କ ଭାଷାରେ ଗୁରୁଙ୍କର ଗେରୁଆ ଗାମୁଛା ଓ ଶିଷ୍ୟଙ୍କର ରୁମାଲ ଓଦା ହୋଇ ଯାଉଥିଲା । ଦୀନବନ୍ଧୁ ନିଜର ନାମକୁ ସାର୍ଥକ କରିଥିଲେ । ଅନ୍ୟର ଦୁଃଖ ଦେଖି ସେ ସ୍ଥିର ହୋଇ ରହିପାରୁ ନ ଥିଲେ । ଦୁଃଖୀ ଦରିଦ୍ରଙ୍କୁ ସାହାଯ୍ୟ କରିବା ତାଙ୍କ ଜୀବନର ବ୍ରତ ଥିଲା । ସେ ପ୍ରତ୍ୟହ ଦୁଃଖୀ ଦରିଦ୍ରଙ୍କୁ କିଛି ନା କିଛି ବିତରଣ କରୁଥିଲେ । ରାଜା ତାଙ୍କୁ ଯାହା ଦକ୍ଷିଣାରୂପେ ପ୍ରଦାନ କରୁଥିଲେ, ତହିଁରୁ ଅଧିକାଂଶ ସେ ଦାନରେ ବିନିଯୋଗ କରୁଥିଲେ । ଅତିଥିସେବାକୁ ସେ ଜୀବନର ଏକ ବଡ଼ ବ୍ରତ ରୂପେ ଗ୍ରହଣ କରିଥିଲେ । ଅତିଥିଙ୍କୁ ନିଜ ପାଇଁ ବଢ଼ା ହୋଇଥିବା ଅନ୍ନ ବ୍ୟଞ୍ଜନାଦି ପ୍ରଦାନ କରି ସେ ସନ୍ତୋଷ ଲାଭ କରୁଥିଲେ । କେବେ କେବେ ଅତିଥି ସତ୍କାର କରୁ କରୁ ତାଙ୍କୁ ଉପବାସରେ ମଧ୍ୟ ରହିବାକୁ ପଡୁଥିଲା । ଅନ୍ୟକୁ ସୁଖୀ କରାଇ ସେ ପରମ ସୁଖ ଲାଭ କରୁଥିଲେ । ସେ ଯେ କେତେ ବଡ଼ ତ୍ୟାଗୀ ଥିଲେ ତାହା ଗୋଟିଏ ଘଟଣାରୁ ବେଶ୍ ହୃଦୟଙ୍ଗମ କରି ହେବ ।

ଦିନେ ରାଜା ନାରାୟଣ ମଙ୍ଗରାଜ ମଫସଲରେ ଥିବା ତାଙ୍କ ଖମାରରୁ ଗୁରୁଦେବଙ୍କୁ ୧୮ ଖାଉଡ଼ ବା ୩୬ ବସ୍ତା ଧାନ ପ୍ରଦାନ କଲେ । ଗୁରୁଦେବ ସେହି ୩୬ ବସ୍ତା ଧାନ ଘରକୁ ଆଣୁ ଆଣୁ ବାଟରେ ଯାଚକମାନଙ୍କୁ ୩୫ ବସ୍ତା ବିତରଣ କରି ମାତ୍ର ଗୋଟିଏ ବସ୍ତା ଧାନ ଘରକୁ ନେଲେ । ଏ ବିଷୟ ରାଜା ପରେ ଜାଣିପାରି ସଂଧ୍ୟା ସମୟରେ ଗୁରୁଦେବଙ୍କୁ ପଚାରିଲେ - ''ସବୁ ଧାନଯାକ ବିତରଣ ହୋଇଗଲା ପରା ?'' ଗୁରୁଦେବ ଉତ୍ତର ଦେଲେ - ''ନା, ଏକବସ୍ତା ମାତ୍ର ବିତରଣ ହୋଇଛି ।'' ଏହାର ଗୂଢ଼ାର୍ଥ ଏହି ଯେ ଯାହା ପରିବାରର ଭରଣପୋଷଣରେ ଲାଗିଲା, ତାହାହିଁ ବିତରିତ ହେଲା ଏବଂ ଯାହା ଅନ୍ୟକୁ ଦିଆଗଲା ତାହା ଭବିଷ୍ୟତ୍ ପାଇଁ ସଞ୍ଚିତ ହୋଇ ରହିଲା । ଏହିପରି ଆହୁରି ଅନେକ ବିଚିତ୍ର ଘଟଣା ତାଙ୍କ ଜୀବନରେ ଘଟିଥିବାର ଶୁଣାଯାଏ ।

## ଖାଡ଼ଙ୍ଗାଙ୍କ ଦୈନ୍ୟୋକ୍ତି

''ନମନ୍ତି ଫଳିନୋ ବୃକ୍ଷାଃ, ନମନ୍ତି ଗୁଣିନୋ ଜନାଃ'' - ଏହି ସତ୍ୟ ଖାଡ଼ଙ୍ଗାଙ୍କ ପ୍ରତି ଅକ୍ଷରେ ଅକ୍ଷରେ ପ୍ରଯୁଜ୍ୟ । ଏତେବଡ଼ ପଣ୍ଡିତ ହୋଇ ମଧ୍ୟ ସେ ନିଜକୁ ଅତି ଦୀନହୀନ

ଭାବେ ପ୍ରକାଶ କରୁଥିଲେ । ମହାକବି କାଳିଦାସ ଅସାଧାରଣ କବିତ୍ୱଶକ୍ତି ଲାଭ କରି ମଧ୍ୟ ନିଜକୁ କାବ୍ୟରଚନାର ଅନଧିକାରୀ ଓ ମନ୍ଦମତି ବୋଲି ପ୍ରକାଶ କରିଅଛନ୍ତି । ସେହିପରି ବୈଷ୍ଣବ କବିମାନେ ଅତି ଉଚ୍ଚାଧିକାରସଂପନ୍ନ ହୋଇ ମଧ୍ୟ ନିଜକୁ ଅତ୍ୟନ୍ତ ନିମ୍ନାଧିକାରୀ ରୂପେ ନିଜ ମୁଖରେ ବର୍ଣ୍ଣନା କରି ଯାଇଛନ୍ତି । ଏ ପ୍ରକାର ଦୈନ୍ୟୋକ୍ତି ଯୁଗେ ଯୁଗେ ସେମାନଙ୍କର ଭୂଷଣ ହୋଇ ଆସିଛି । ଖାଡ଼ଙ୍ଗା ମଧ୍ୟ ସେହି ଦୀକ୍ଷାରେ ଦୀକ୍ଷିତ ଥିଲେ । ଏହା ତାଙ୍କ ରଚନାର ନିମ୍ନୋକ୍ତ ପଂକ୍ତିମାନଙ୍କରୁ ସ୍ପଷ୍ଟ ଜଣାଯାଏ–

ସୁଜନେ ନ ଧର ମୋ ଦୋଷ । ମୁଁ ତୁମ୍ଭମାନଙ୍କର ଦାସ ॥
ହେ କୃଷ୍ଣ କୃପାମୟ ସିନ୍ଧୁ । ମୁହିଁ ଅଧମ ଦୀନବନ୍ଧୁ ॥
× × × ×
ଶବର ତୁଳସୀ ବୃକ୍ଷକୁ । ଲଗାଇ ଥିଲେହେଁ ତାହାକୁ ॥
ଯେ ମହାସାଧୁ ବିପ୍ରବର । ସେ କି ନ କରେ ନମସ୍କାର ॥
ଏ ଏହା କରିଛି ନିର୍ମିତ । ଏମନ୍ତ ନ ଧରିବ ଚିତ୍ତ ॥
× × × ×
ମୋହର ବିଦ୍ୟା ବୁଦ୍ଧି ନାହିଁ । କେବଳ ସ୍ୱାମୀଟୀକା ଚାହିଁ ॥
ଭାଗବତକୁ କଲି ଗୀତ । ସୁଜନେ ଶୁଣି ହୁଅ ପ୍ରୀତ ॥
ଶ୍ରୀକୃଷ୍ଣଚରଣନଳିନ । ଚିନ୍ତା କରିଣ ନିଜ ମନ ॥
ସୁଜନମାନଙ୍କର ହିତେ । ଦଶମସ୍କନ୍ଧ ଭାଷାଗୀତେ ॥
ବର୍ଣ୍ଣିଛି ପୁରାଣକୁ ଚାହିଁ । ମୋହର ତେତେ ବୁଦ୍ଧି ନାହିଁ ॥
ବିଶ୍ୱନାଟକ ସୂତ୍ରଧାର । ଯେ ହରି କରୁଣାସାଗର ॥
ସେ ଯହିଁ କରେ ନିଯୋଜନ । ତହିଁ ପ୍ରବର୍ତ୍ତେ ପ୍ରାଣିମନ ॥
ଏଣୁ ନ ଧର ମୋର ଦୋଷ । ସୁଜନେ ଶୁଣି ହୁଅ ତୋଷ ॥
ଯେବଣ କୃଷ୍ଣନାମମାନ । ମନୁଷ୍ୟେ କରନ୍ତି କୀର୍ତ୍ତନ ॥
ସେ କିଛି ହୋଇ ଅବ୍ୟକତ । ଶୁକତୁଣ୍ଡରୁ ହେଲେ ଜାତ ॥
ସାଦରେ ହୋଇ ଟେକି କର୍ଣ୍ଣେ । ତା' କି ନ ଶୁଣେ ସାଧୁଜନ ॥
ଏ ପ୍ରସଙ୍ଗ ହିଁ ସେ ପ୍ରକାରେ । ସୁଜନେ ଘେନନ୍ତୁ ମନରେ ॥
× × × ×
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ତେଣେ ॥
ମୋର ନ ଧର କବିଦୋଷ । ମୁଁ ତୁମ୍ଭମାନଙ୍କର ଦାସ ॥
ତୁମ୍ଭମାନଙ୍କର ଚରଣେ । ମତି ମୋ ରହୁ ଅନୁକ୍ଷଣେ ॥
× × × ×

| | | | |
|---|---|---|---|
| ଶ୍ରୀକୃଷ୍ଣଚରଣନଳିନ | । | ହୃଦୟେ କରିଣ ଚିନ୍ତନ | ॥ |
| ସଜ୍ଜନମାନଙ୍କର ହିତେ | । | ସପ୍ତମ ସ୍କନ୍ଧ ଭାଷାଗୀତେ | ॥ |
| ବର୍ଣ୍ଣନ କରୁଛି ମୋହର | । | ଦୋଷ ସୁଜନେ କ୍ଷମା କର | ॥ |
| ଯହିଁରେ ବକ୍ତା ବ୍ୟାସସୁତ | । | ଶ୍ରୋତା ନୃପତି ପରୀକ୍ଷିତ | ॥ |
| ଗ୍ରନ୍ଥ ନିର୍ମାଣକର୍ତ୍ତା ବ୍ୟାସ | । | ତହିଁ ମୋର କି ଅବକାଶ | ॥ |
| ତଥାପି ଯାହା ଭଗବାନ | । | ହୃଦୟେ କଲେ ନିଯୋଜନ | ॥ |
| ଅନ୍ୟଥା କରିବାକୁ ତାହି | । | କେ ଅଛି ନରଦେହ ବହି | ॥ |
| ବ୍ରହ୍ମା ଶଙ୍କର ଯା' ଅନ୍ୟଥା | । | କରି ନ ପାରନ୍ତି ସର୍ବଥା | ॥ |
| ଚତୁର୍ଥ ସ୍କନ୍ଧ ଭାଗବତ | । | ଦେଶ ଭାଷାରେ କରି ଗୀତ | ॥ |
| ଶ୍ରୀଧର ଗୋସାଇଁଙ୍କ ମତ | । | ଅନୁମତରେ ଏ ଚରିତ | ॥ |
| ସାଧୁମାନଙ୍କ ସୁଖ ପାଇଁ | । | ଆନନ୍ଦ ହେଲି ଏହା ଗାଇ | ॥ |
| ସୁଜନେ ଦୋଷ ମୋ' ନ ଧର | । | ମୁଁ ତୁମ୍ଭମାନଙ୍କ କିଙ୍କର | ॥ |
| × × | | × × | |
| ପରମ ପୁରୁଷ ଗୋବିନ୍ଦ | । | ତାଙ୍କର ପାଦ ଅରବିନ୍ଦ | ॥ |
| ତହୁଁ ଗଳିତ ମକରନ୍ଦ | । | ଯେ ପ୍ରାଣୀ ପିବନ୍ତି ଆନନ୍ଦ | ॥ |
| ତାହାଙ୍କ ପାଦ ମୁଁ ବନ୍ଦଇ | । | ପଞ୍ଚମ ସ୍କନ୍ଧ ଗୀତ ଗାଇ | ॥ |
| × × | | × × | |
| ଶୁଣି ଅଷ୍ଟମ ସ୍କନ୍ଧ ଗୀତ | । | ସୁଜନେ ହୁଅ ତୋଷଚିତ୍ତ | ॥ |
| ପ୍ରାକୃତ ଭାଷା ବୋଲି ଚିତ୍ତେ | । | ଦୋଷ ନ ଧର କଦାଚିତେ | ॥ |
| ଥାଇ ଯେ ଶବର ପଲ୍ଲୀରେ | । | ସେ ଦିବ୍ୟ ରତ୍ନକୁ ଯୋଗରେ | ॥ |
| ଲଭି କେ କଣ୍ଠେ ନ ଲମ୍ବାଇ | । | ସେହି ରୂପରେ ଏ କଥା ହିଁ | ॥ |

ଏହିପରି ବହୁ ଦୈନ୍ୟସୂଚକ ବାଣୀ ଖାଡ଼ଙ୍ଗାଙ୍କ ରଚନାରୁ ଉପଲବ୍ଧ ହୁଏ । ତାହା ହିଁ ତାଙ୍କ ମହତ୍ତ୍ୱର ପରିଚାୟକ ।

## ଶ୍ରୀଜଗନ୍ନାଥ ଦାସ ଓ ଖାଡ଼ଙ୍ଗା

ଶ୍ରୀଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଶାରେ ଘରେ ଘରେ ପରିଚିତ । ତାଙ୍କ ରଚନାରେ ପଦଲାଳିତ୍ୟ, ମାଧୁର୍ଯ୍ୟ ଓ ସୁଗମତା ଆଦି ଗୁଣ ଥିଲେ ମଧ୍ୟ ସଂସ୍କୃତ ଭାଗବତର ତାହା ଆକ୍ଷରିକ ଅନୁବାଦ ନୁହେଁ । ସଂସ୍କୃତ ଭାଗବତର ସମଗ୍ର ମାଧୁରୀ ସେ ଦେଶବାସୀଙ୍କୁ ଦେଇପାରି ନାହାନ୍ତି । ଏପରିକି ତାଙ୍କ ରଚନାରେ ଠାବେ ଠାବେ ମୂଳ ଗ୍ରନ୍ଥର ଚରିତ ସହିତ ଅମେଳ ମଧ୍ୟ ଦେଖାଯାଏ । ସଂସ୍କୃତ ଜ୍ଞାନ ଅଭାବରୁ ଯେଉଁମାନେ ମୂଳ ଗ୍ରନ୍ଥ ପଢ଼ି ବୁଝିବାକୁ ଅକ୍ଷମ, ସେମାନେ ଶୁକମୁଖବିଗଳିତ ବ୍ୟାସଦେବଙ୍କ ପଦମାଧୁରୀ ଜଗନ୍ନାଥ

ଦାସଙ୍କ ଭାଗବତରୁ ପୂରାପୂରି ଆସ୍ୱାଦନ କରିପାରିବେ ନାହିଁ । କିନ୍ତୁ ଖାଡ଼ଙ୍ଗାଙ୍କ ରଚିତ ଭାଗବତ ଅବଶ୍ୟ ସେମାନଙ୍କର ସେହି ପିପାସା ମେଣ୍ଟାଇ ପାରିବ । କାରଣ ସେ ନିଜ ଅସାଧାରଣ ପାଣ୍ଡିତ୍ୟ ଓ କବିତ୍ୱ ଶକ୍ତି ବଳରେ ସ୍ୱାମିଟୀକା ଅନୁସରଣ କରି ଭାଗବତର ପ୍ରତ୍ୟେକ ଶ୍ଳୋକର ଆକ୍ଷରିକ ଅନୁବାଦ ନବାକ୍ଷରୀ ପଦରେ ରଚନା କରି ଯାଇଅଛନ୍ତି । ଜଗନ୍ନାଥ ଦାସଙ୍କ ତୁଳନାରେ ଖାଡ଼ଙ୍ଗାଙ୍କ ରଚନା ଟିକିଏ କ୍ଲିଷ୍ଟ ବୋଧ ହେଲେ ହେଁ ପ୍ରାମାଣିକତା ଦୃଷ୍ଟିରୁ ତାହା ଶତକଡ଼ା ଶହେ ଭାଗ ଖାଣ୍ଟି । ସେଥିପାଇଁ ''ଉପମା କାଳିଦାସସ୍ୟ'', ''ନୈଷଧେ ପଦଲାଳିତ୍ୟ'' ପରି ''ଖାଡ଼ଙ୍ଗାପଦ'' (ଖାଣ୍ଟିପଦ)ର ପ୍ରସିଦ୍ଧି ଅଦ୍ୟାବଧି ରହି ଆସିଛି । ସଂକ୍ଷେପରେ କହିବାକୁ ଗଲେ ଜଗନ୍ନାଥ ଦାସଙ୍କ ଭାଗବତରେ ଯେଉଁ ଅଭାବ ଅଛି ତାହା ଖାଡ଼ଙ୍ଗା ନିଜ ଭାଗବତରେ ପୂରଣ କରି ପାରିଛନ୍ତି ।

## ଖାଡ଼ଙ୍ଗାଙ୍କ ଜୀବନୀ ସଂବନ୍ଧେ ସ୍ୱର୍ଗତ ରାଜବଲ୍ଲଭ ମିଶ୍ର (ଖାଡ଼ଙ୍ଗାଙ୍କ ନାତି)ଙ୍କ ସ୍ୱହସ୍ତଲିଖିତ ପାଣ୍ଡୁଲିପି ୰ ଦୀନବନ୍ଧୁ ମିଶ୍ର (ଖଡ୍‌ଗରାୟ)

ଦୀନବନ୍ଧୁ ୧୫୭୮ ଶକାବ୍ଦରେ ଓଡ଼ିଶା ଷୋଳ ଶାସନ ଅନ୍ତର୍ଭୁକ୍ତ ବାମଦେବପୁର ନାମକ ଶାସନରେ ମଧୁସୂଦନ ମିଶ୍ର ନାମକ ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ଠାରୁ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ଗର୍ଭାଷ୍ଟମରେ ପୁତ୍ରର ଉପନୟନ କରାଇଥିଲେ । ମାତ୍ର ଅର୍ଥାଭାବରୁ ପରିଣୟ କରାଇ ନ ଥିଲେ । ପୁତ୍ରର ଚତୁର୍ଦ୍ଦଶ ବର୍ଷ ସମୟରେ ମାତୃବିୟୋଗ ହେବାରୁ ପିତା ପୁତ୍ର ବିନା ଅନ୍ୟ ଧନ ନ ଦେଖି ତାଙ୍କର ଲାଳନପାଳନ ଓ ତାଙ୍କର ପଠନ ବିଷୟରେ ଆପଣାର ସମସ୍ତ ସମୟ ଅତିବାହିତ କରିଥାନ୍ତି । ସେ ସମୟରେ ନଦୀ ପ୍ରଭାବରୁ ଏବଂ ଅନ୍ୟାନ୍ୟ କାରଣରୁ ତତ୍ର ସ୍ଥାନବାସୀ ବ୍ରାହ୍ମଣମାନେ କ୍ରମେ କ୍ରମେ ଯାଇ ଅନ୍ୟାନ୍ୟ ସ୍ଥାନରେ ଆଶ୍ରୟ ଗ୍ରହଣ କଲେ । ସୁତରାଂ ମଧୁସୂଦନ ମିଶ୍ର ପୁତ୍ରଙ୍କୁ ସଙ୍ଗରେ ଘେନି ଗୃହ ପରିତ୍ୟାଗ କରି ଗଡ଼ଜାତ ମଧ୍ୟରେ ଭ୍ରମଣ କରି ଦିନ ଯାପନ କରୁଥାନ୍ତି । ପିତାଙ୍କର ପ୍ରଗାଢ଼ ସଂସ୍କୃତ ଜ୍ଞାନ ନ ଥିଲେ ସୁଦ୍ଧା ବ୍ୟାକରଣଠାରୁ ଆରମ୍ଭି ପୁତ୍ରକୁ ଯାହା ପଢ଼ାନ୍ତି, ପୁତ୍ରର ପ୍ରଗାଢ଼ ବୁଦ୍ଧିଯୋଗରେ ପିତାଙ୍କର ଅଜ୍ଞାତ ସ୍ଥଳମାନ ଜ୍ଞାତ ହେଉଥାଏ । ଏ ପ୍ରକାରରେ ନାନା ସ୍ଥାନ ଭ୍ରମଣ କରି ସେ ଯେତେବେଳେ ଖଣ୍ଡପଡ଼ାରେ ପ୍ରବେଶ କଲେ ସେତେବେଳେ ନାରାୟଣ ମଙ୍ଗରାଜ ନାମକ ରାଜା ରାଜପଣ କରୁଥିଲେ । ସେ କାଳରେ ପୁତ୍ରଙ୍କୁ ଊଣିଶି ବର୍ଷ । ପିତାଙ୍କଠାରୁ ନୈଷଧ ପର୍ଯ୍ୟନ୍ତ ପଢ଼ି ବ୍ୟୁତ୍ପନ୍ନ ହୋଇଥିଲେ । ପିତା ପୁତ୍ରଙ୍କୁ ସଙ୍ଗରେ ନେଇ ରାଜାଙ୍କୁ ସାକ୍ଷାତ୍ କରିବା ସମୟରେ ଦୀନବନ୍ଧୁ ରାଜାଙ୍କ ଛାମୁରେ ନୈଷଧରୁ ପାଞ୍ଚ ସାତ ଶ୍ଳୋକ ଅର୍ଥ କରିବାରେ ରାଜା (ରାଜା ତ ସଂସ୍କୃତଜ୍ଞ ଥିଲେ) ତାଙ୍କ ବ୍ୟୁତ୍ପତ୍ତି ଜାଣିପାରି ଭାରି ସନ୍ତୁଷ୍ଟ ହୋଇ ତାଙ୍କୁ ରଖିବା ନିମନ୍ତେ ଗୃହ ଓ ତଦନୁରୂପ ବୃତ୍ତି ଦେଇ ବ୍ରାହ୍ମଣ ସାହିରେ ଗୃହ ଦେଲେ ଓ ଓଡ଼ିଶାରୁ କନ୍ୟା ଅଣାଇ ଦୀନବନ୍ଧୁଙ୍କୁ ବିବାହ ଦେଇଥିଲେ ।

ସେ ସମୟରେ ଗୋବିନ୍ଦ ମହାପାତ୍ର ନାମେ ଓଡ଼ିଶାର ପଣ୍ଡିତ ରାଜାଙ୍କ ପାଖରେ ରହି ଭାଗବତ ପୁରାଣ ଶ୍ରବଣ କରାଉଥାନ୍ତି । ଦୀନବନ୍ଧୁ ପ୍ରତ୍ୟହ ପୁରାଣ ଶ୍ରବଣ ସମୟରେ ରାଜାଙ୍କ ଦରବାରରେ ବସନ୍ତି । ପ୍ରତିଦିନ ପୁରାଣ ଯାହା ଶୁଣନ୍ତି, ତାହା ପାତ୍ରଙ୍କ ବସାକୁ ଯାଇ ତହିଁ ଆରଦିନ ପୋଥିରୁ ଅନୁଶୀଳନ କରନ୍ତି ଏବଂ ମହାପାତ୍ରଙ୍କ ଶୁଶ୍ରୂଷା କରୁଥାନ୍ତି । ତାହା ଦେଖି ମହାପାତ୍ରଙ୍କର ତାଙ୍କ ଠାରେ ଦୟା ହେଲା । ଛଅ ମାସ ମଧ୍ୟରେ ଆମୂଳ ସମୁଦାୟ ଭାଗବତ ପଢ଼ାଇ ଦେଲେ । ମାତ୍ର ପଢ଼ାଇବା ସମୟରେ ଆପଣାର ପୂର୍ବରୁ ଯେଉଁ ଯେଉଁ ସ୍ଥାନମାନଙ୍କରେ ସନ୍ଦେହ ଥିଲା ତାହା ଫିଟିଯିବାରୁ ମହାପାତ୍ରେ ବିଦାୟ ହେବା କାଳରେ ରାଜାଙ୍କୁ କହିଗଲେ କି ଆପଣ ଭାଗବତ ଶୁଣିବାକୁ ଇଚ୍ଛା କଲେ ଦୀନବନ୍ଧୁ ଠାରୁ ଶୁଣିବେ । ଭାଗବତରେ ଦୀନବନ୍ଧୁ ମୋ'ଠାରୁ ବେଶୀ ଜ୍ଞାନୀ ।

ତଦନୁସାରେ ରାଜା ଦୀନବନ୍ଧୁଙ୍କୁ ଆପଣାର ପୌରାଣିକ କରି ଆଚାର୍ଯ୍ୟ କରିବାକୁ ଅନୁରୋଧ କଲେ ଏବଂ ଖଡ୍‌ଗରାୟ ଉପାଧି ସେହି ସମୟରେ ହୋଇଥିବ । କିନ୍ତୁ ଆଚାର୍ଯ୍ୟ କର୍ମରେ ଘୃଣା ଥିବାରୁ ତହିଁରେ ସେ ପ୍ରାୟ ଅସମ୍ମତ ଥା'ନ୍ତି । ଏହି ସମୟରେ ରାଜାଙ୍କର ଯାଗ କରିବାର ମାନସ ହେବାରୁ ଦୀନବନ୍ଧୁଙ୍କୁ କହିଲେ, ତୁମ୍ଭେ ଯାଗରେ ଦୀକ୍ଷିତ ହେବ । ମାତ୍ର ତହିଁରେ ପଶୁହିଂସା ଥିବାରୁ ସେ ଅସମ୍ମତ ହୋଇ ଆପଣାର ପୂର୍ବ ଶାସନବାସର କୁଟୁମ୍ବ ଧରାଧର ମିଶ୍ରଙ୍କୁ ଅଣାଇବା ପାଇଁ କହିଲେ - ସେ ଯାଗକର୍ମ ଜାଣନ୍ତି, ଦୀକ୍ଷିତ ହୋଇପାରିବେ ଏବଂ ଆପଣଙ୍କ ଆଚାର୍ଯ୍ୟକର୍ମ କରିପାରିବେ । ତାହା ଶୁଣି ରାଜା ତଦନୁସାରେ ମନୁଷ୍ୟ ପଠାଇ ଧରାଧର ମିଶ୍ରଙ୍କୁ ଅଣାଇ ଯାଗ କଲେ ଓ ପୁରୋହିତ କଲେ । ବର୍ତ୍ତମାନ ତାଙ୍କର ଅନ୍ୱୟ ଅଛନ୍ତି । କଥିତ ଅଛି, ରାଜା ଯେଉଁ ସମୟରେ ପୁରାଣ ଶୁଣନ୍ତି, ସେ କାଳରେ ଶ୍ରୋତା ବକ୍ତାଙ୍କର ଏପରି ସାତ୍ତ୍ୱିକ ଭାବ ଜାତ ହୁଏ ଯେ ଚକ୍ଷୁଜଳରେ ରାଜାଙ୍କ ରୁମାଲ ଓ ଦୀନବନ୍ଧୁଙ୍କର ଚଦର ଅଗ୍ର ଆର୍ଦ୍ର ହୋଇଥାଏ ଏବଂ ପ୍ରତ୍ୟହ ପୁରାଣ ପଢ଼ି ଆସିବା ସମୟରେ ଖାଡ଼ଙ୍ଗା ଯାହା ରାଜଦ୍ୱାରରୁ ଆଣିଥାନ୍ତି ତାହା ବାଟରେ ଯେ ମାଗେ ତାକୁ ଦେଇ ଦିଅନ୍ତି । ଏହା ଜାଣି ରାଜା ତାଙ୍କ ହସ୍ତରେ କିଛି ଦିଅନ୍ତି ନାହିଁ । ଗାମୁଛା, ଚଦର ଓ ଶୀତବସ୍ତ୍ର ପର୍ଯ୍ୟନ୍ତ ମାଗି ନିଅନ୍ତି ।

ଦୀନବନ୍ଧୁ ଜଣେ ପ୍ରଧାନ ବୈଷ୍ଣବ ଅଟନ୍ତି । ଦିନେ ରାଜା ଶୀତଦିନରେ ଶୀତବସ୍ତ୍ର ନ ଥିବାର ଦେଖି ଖଣ୍ଡିଏ ବନାତ ଦେଲେ । ମାତ୍ର ରାଜାଙ୍କ ସଦରଠାରେ ଜଣେ ବୈଷ୍ଣବ ଶୀତରେ ଥର ଥର ହୋଇ ଶୋଇଥିବାର ଦେଖି ସେ ବନାତଖଣ୍ଡି ସାଧୁଙ୍କୁ ଘୋଡ଼ାଇ ଆପଣା ଘରକୁ ଆସିଲେ । ତାହା ଶୁଣି ରାଜା ମନରେ ବିରକ୍ତ ହୋଇ ଆଉ ଖଣ୍ଡିଏ ବନାତ ଦେଇ ଏହି ବନାତ ଏହିଠାରେ ଘୋଡ଼ାଇ ହବ ବୋଲି କହିଲେ ।

ଏକ ସମୟରେ ଦୁର୍ଭିକ୍ଷ ଉପସ୍ଥିତ ହୋଇଥିବାରୁ ଦୀନବନ୍ଧୁଙ୍କର ଆଗତ ମାସରୁ ଅନ୍ନ ଶେଷ ହେବାରୁ ରାଜା ଆପଣା ଖମାରରୁ ଅଠାଇଶ ବଳଦ ଧାନ ଚାରିମାସ ଚଳିବା

ନିମନ୍ତେ ଦେଇ ତାହା ଘରେ ପହଞ୍ଚିବା ପର୍ଯ୍ୟନ୍ତ ମନୁଷ୍ୟ ଜଗାଇଥିଲେ । ତଥାପି ଧାନ ଯେମନ୍ତେ ଦାଣ୍ଡକୁ ଆସିଲା, ସେହିପରି ମନୁଷ୍ୟ ଆସି ବେଢ଼ିଯାଇ ମାଗିବାରୁ ଖାଡ଼ଙ୍ଗା କାହାକୁ ବଳଦେ, କାହାକୁ ଅଧବଳଦେ, ଏହିପରି ଦେଉ ଦେଉ ଘରଠାରେ ପହଞ୍ଚିବାବେଳକୁ ଦେଢ଼ ବଳଦ ଧାନ ଅଛି । ତାହା ଦେଖି ଭାର୍ଯ୍ୟା ଭାରି ଦୁଃଖିତ ହେଲେ । ତହିଁ ଆରଦିନ ରାଜା କହିଲେ, ଆମ୍ଭେ ତୁମ୍ଭ ଚଳିବା ପାଇଁ ଧାନଗୁଡ଼ିଏ ଦେଇଥିଲୁଁ । ତୁମ୍ଭେ ବ୍ୟୟ କରିଦେଲ ! ମାତ୍ର ଖାଡ଼ଙ୍ଗା ଉତ୍ତର ଦେଲେ ଯେ ମୁଁ ଦେଢ଼ବଳଦ ମାତ୍ର ବ୍ୟୟ କରିଅଛି । ଆଉ ସବୁ ଅଛି । ଖାଡ଼ଙ୍ଗା ଦାତା ଥିବାରୁ ତାଙ୍କ ଘରେ କିଛି ନ ଥାଏ ।

ଏକ ସମୟରେ ଅର୍ଦ୍ଧରାତ୍ରିରେ ତାଙ୍କ ଘରେ ଚୋର ପଶିଲେ । ସେତେବେଳକୁ ଖାଡ଼ଙ୍ଗା ବସି ନାମସ୍ମରଣ କରୁଥିଲେ । ଚୋର ଘରେ ନ ପଶିବା ପର୍ଯ୍ୟନ୍ତ କିଛି କହିଲେ ନାହିଁ । ଘରେ ପଶିଲାକ୍ଷଣି ଖାଡ଼ଙ୍ଗା ଦୁଃଖିତ ହୋଇ କହିଲେ, ମୋହ ଘରେ କିଛି ଦ୍ରବ୍ୟ ନାହିଁ, ଅକାରଣ ପଶିଲୁ । ଏହି ପୁରୁଣା ଗଡୁଖଣ୍ଡ ହେଲେ ନେଇଥା, ବୋଲି ଗଡୁଖଣ୍ଡ ଫିଙ୍ଗିଦେଲେ । ମାତ୍ର ଚୋର ଗଡୁ ନ ନେଇ ପଳାଇଗଲା । ଭୋଜନ ସମୟରେ କେହି ଖାଇବାକୁ ମାଗିଲେ ଉଚ୍ଛିଷ୍ଟ ଖାଇବା ଜାତି ହୋଇଥିଲେ ଆପଣାର ଖାଦ୍ୟର ଅବଶିଷ୍ଟ ଏବଂ ଗୃହରୁ କିଛି ମିଶାଇ ଆଣି ଦିଅନ୍ତି । ଭାର୍ଯ୍ୟା ମନା କଲେ ଶୁଣନ୍ତି ନାହିଁ । ସର୍ବଦା ଭାଗବତ ଚର୍ଚ୍ଚା ଓ କୃଷ୍ଣବର୍ଣ୍ଣନା ଥିବା କବିତା କରୁଥାନ୍ତି ।

କଥିତ ଅଛି, ଏକ ସମୟରେ ଖାଡ଼ଙ୍ଗା ପୁରୁଷୋତ୍ତମ ଯାଇଥିଲେ । ସେଠାରେ ଜଗନ୍ନାଥ ଦର୍ଶନ କରି ବେଢ଼ାରେ ବୁଲୁ ବୁଲୁ ମୁକ୍ତିମଣ୍ଡପଠାରେ ଆସି ଦେଖିଲେ ଯେ କେତେଜଣ ପଣ୍ଡିତ ବ୍ରାହ୍ମଣ ବେଦସ୍ମୃତି ଅର୍ଥ କରୁଅଛନ୍ତି । ତାହା ଶୁଣିବା ନିମନ୍ତେ ଖାଡ଼ଙ୍ଗା ମଣ୍ଡପତଳେ ଥା'ନ୍ତି । ବ୍ରାହ୍ମଣମାନଙ୍କର ଅର୍ଥ ଖାଡ଼ଙ୍ଗାଙ୍କର ମନକୁ ନ ଆସିବାରୁ କହିଲେ, ''ଆପଣମାନେ ଯାହା ଅର୍ଥ କରୁଅଛନ୍ତି ତାହା ସତ, ମାତ୍ର ଆପଣମାନେ ନୀଚାହୃତ ଗଙ୍ଗାଜଳ ପ୍ରାୟ ଯଦି ମୋହ କଥା ଗ୍ରହଣ କରିବେ ତେବେ କହିବି ।'' ତାହା ଶୁଣି ବ୍ରାହ୍ମଣମାନେ ଅନୁମତି ଦେବାରୁ ଖାଡ଼ଙ୍ଗା ଯେଉଁ ଅର୍ଥ କଲେ ତାହା ସମସ୍ତଙ୍କ ମନକୁ ଆସିବାରୁ ତାଙ୍କୁ ଆଦରପୂର୍ବକ ଉପରକୁ ଡାକିନେଇ ଭାଗବତର ନାନା ସ୍ଥାନରୁ ପ୍ରଶ୍ନ ପଚାରିଲେ ଏବଂ ଖାଡ଼ଙ୍ଗା ଉପଯୁକ୍ତ ଉତ୍ତର ଦେବାରୁ ମହାରାଜାଙ୍କ ଛାମୁରେ ଏକଥା ପଡ଼ିଲା । ତତ୍କାଳୀନ ରାଜା ଭାଗବତସ୍ନେହୀ ଥିଲେ । ମହାରାଜା ଖାଡ଼ଙ୍ଗାଙ୍କୁ ଡକାଇ ତାଙ୍କ ଠାରୁ ଭାଗବତ ଶୁଣି ଆଦ୍ୟ ପ୍ରାନ୍ତ ପୁରାଣ ଶୁଣିବାକୁ ଅନୁରୋଧ କରନ୍ତେ ଖାଡ଼ଙ୍ଗା କହିଲେ କି ମୁଁ ନାରାୟଣ ମଙ୍ଗରାଜଙ୍କ ଦାନା ଖାଉଅଛି । ତାଙ୍କ ହୁକୁମ ବ୍ୟତୀତ ମୁଁ ଚିରଦିନ ରହି ନ ପାରେ, ଅନୁମତି ଅଣାଇଲେ ମୁଁ ରହିବି । ତହୁଁ ମହାରାଜା କହିଲେ କି ମୁଁ ନାରାୟଣ ମଙ୍ଗରାଜଙ୍କୁ ଡକାଇ ଆଣିପାରେ ।

ଏହା କହି ମହାରାଜା ଓକିଲ ପଠାଇ ରାଜାଙ୍କୁ ଜଣାଇବାରେ ରାଜା ପୁରୀ ଗଲେ । ମହାରାଜାଙ୍କ ସାଙ୍ଗେ ସାକ୍ଷାତ୍ ହେବା ପରେ ଯେଉଁଦିନ ପୁରାଣ ଆରମ୍ଭ ହେଲା ସେହିଦିନଠାରୁ ଯେତେଦିନ ନାରାୟଣ ଥାଇ ପୁରାଣ ହେଲା ତେତେଦିନ ନାରାୟଣଙ୍କ ମୁଖକୁ ଚାହିଁ ପୁରାଣ କହନ୍ତି । ମଧ୍ୟେ ମଧ୍ୟେ ନାରାୟଣ ପ୍ରଶ୍ନ କରିଥାନ୍ତି । ଏପରି ଅଧ୍ୟାୟ ଶେଷକୁ ରାଜାଙ୍କର ଅଶ୍ରୁଦ୍ୱାରା ରୁମାଲ ଓ ବକ୍ତାଙ୍କର ଚଦର ଅଗ୍ର ଓଦା । ଏହା ଦେଖି ମହାରାଜା ଶୁକ ପରୀକ୍ଷିତ ସମ୍ବାଦ ଏ ବୋଲି ପ୍ରକାଶ କରିଥିଲେ । ଆରମ୍ଭରୁ ପ୍ରାନ୍ତଯାଏ ଅଶ୍ରୁ ନିର୍ଗତ ହେଉଥାଏ ।

ଏପରି ଛଅ ମାସ ମଧ୍ୟରେ ଯେଉଁଦିନ ପୁରାଣ ଉଦ୍‌ଯାପନ ହେଲା ସେଦିନ ଦୋସାଲା ପଟ୍ଟବସ୍ତ୍ର ପ୍ରଭୃତି ବହୁମୂଲ୍ୟ ଦ୍ରବ୍ୟ ଓ ଅଠରଶ' ଟଙ୍କା ଦକ୍ଷିଣା ଦେଇ ମହାରାଜା ତାଙ୍କୁ ବିଶେଷ ମାନନା କଲେ । ଦୀନବନ୍ଧୁ ବସାକୁ ଆସିବା କାଳରେ ବାଟରେ ଯାଚକମାନେ ଦୟାର୍ଦ୍ର ଚିତ୍ତ ଜାଣି ପ୍ରାର୍ଥନା କଲାକ୍ଷଣି ମୁଠିଏ ମୁଠିଏ ଦେଉ ଦେଉ ବସାରେ ସୁମାରି କଲାବେଳକୁ ପଞ୍ଚସ୍ତରୀ ଟଙ୍କା ବାକି ଥିଲା । ତହିଁରୁ ମଧ୍ୟ ୫୦ଟଙ୍କା ଅମୃତମଣୋହି କରି ବ୍ରାହ୍ମଣଭୋଜନ କଲେ । ବାକି ୨୫ ଟଙ୍କା ବାଟ ଖର୍ଚ୍ଚ କରି ଘରକୁ ଆସିଲେ । କେବଳ ପଟ୍ଟବସ୍ତ୍ର ପ୍ରଭୃତି କେତେକଟି ଦ୍ରବ୍ୟ ମାତ୍ର ଅବଶିଷ୍ଟ ଥିଲା । ତାହା ମଧ୍ୟ ରହି ନ ଥାନ୍ତା, କେବଳ ଖାଡ଼ଙ୍ଗାଙ୍କ ଜଣେ ଆତ୍ମୀୟ ତାହା ଜପ୍ତ କରି ରଖିବାରୁ ଘରକୁ ଆସିବା ପର୍ଯ୍ୟନ୍ତ ଥିଲା । ଟଙ୍କା ସବୁ ଦେଇ ପକାଇଲେ । ଏ ଯଶଦ୍ୱାରା ଖାଡ଼ଙ୍ଗା ପୁରୀ ସହରରେ ଧନ୍ୟବାଦର ଭାଜନ ହୋଇଅଛନ୍ତି । ତାଙ୍କର ପ୍ରଗାଢ଼ ବ୍ୟୁତ୍ପତ୍ତି ଓ କବିତା ଶକ୍ତି ଯୋଗେ ସେ ସର୍ବଜନବିଖ୍ୟାତ ହେବାକୁ ଯୋଗ୍ୟ ।

ଖାଡ଼ଙ୍ଗା ଯେଉଁ ଯେଉଁ ପ୍ରବନ୍ଧ ରଚନା କରିଅଛନ୍ତି ତାହା ନିମ୍ନରେ ପ୍ରକାଶ କରୁଅଛୁଁ- ଯଥା (୧) **ହରିଭକ୍ତିସୁଧାକର** - ଏହା ଭାଗବତରୁ ଉଦ୍ଧୃତ ବିଷ୍ଣୁପୁରୀ ପ୍ରଚଳିତ 'ଭକ୍ତିରତ୍ନାବଳୀ'ର ସମାନ ଅଟେ । (୨) **ରାସୋଦୟ** - ଏହା ପଞ୍ଚାଧ୍ୟାୟୀ ଭାବ ନେଇ ବୋଲାଯାଇ ସପ୍ତସର୍ଗାନ୍ତ ଯମକ ଅନୁପ୍ରାସରେ ପୂର୍ଣ୍ଣ ଅଟେ । (୩) **ଭଗବଦ୍‌ଭକ୍ତି-ଶତକ** - ଏହା ଭାଗବତର ଯେତେଠାରେ ଭକ୍ତି କଥା ଅଛି ତାହା ସ୍ୱକବିତାବ୍ୟାଜରେ ବୋଲାଯାଇଅଛି । (୪) **ଉପଦେଶଶତକ** - ଏହା ଉପଦେଶଗର୍ଭିକ ଶଏଗୋଟି ଶ୍ଳୋକ । (୫) **ସ୍ତବମୁକ୍ତାବଳୀ** - ଭାଗବତରେ ଯେତେ ସ୍ତବ ଅଛି ତାହାସବୁ ଏକତ୍ର କରି ଦଶଗୋଟି ଗୁମ୍ଫରେ ବିଭକ୍ତ ହୋଇଅଛି । ତହିଁରେ କିଛି କିଛି ସ୍ୱକବିତା ଅଛି । (୬) **ଶରଦ୍‌ବର୍ଣ୍ଣନ** - ଏହା ଗୋଟିଏ ଖଣ୍ଡକାବ୍ୟ ଅଟେ । (୭) **ରାମଲୀଳାମୃତ** - ଏହା ରାମଚରିତରେ ରଚିତ, 'ମୁକୁନ୍ଦ-ମୁକ୍ତାବଳୀ' ପ୍ରାୟ ଧାରାରେ ବସିଅଛି । (୮) **ସ୍ତବରତ୍ନ** (୯) **ଜଗନ୍ନାଥାଷ୍ଟକ** (୧୦) **ସ୍ମରଣାମୃତସ୍ତବ** (୧୧) **ଅପରାଧ-ଭଞ୍ଜନସ୍ତବ** ଇତ୍ୟାଦି ନାନା ପ୍ରକାର କ୍ଷୁଦ୍ରସ୍ତବ, ଅଷ୍ଟକ, ଶତନାମାଷ୍ଟକ, ଶତନାମ ।

ଏପରି **ଶ୍ରୀମଦ୍ଭାଗବତ-** ପ୍ରଥମରୁ ଶେଷ ପର୍ଯ୍ୟନ୍ତ ନବାକ୍ଷରୀ ଉତ୍କଳ ପଦ୍ୟରେ ଯାହା ଅନୁବାଦ କରିଅଛନ୍ତି ତାହା ତାଙ୍କର ଚିରସ୍ଥାୟୀ କୀର୍ତ୍ତି ଅଟେ ।

ତାଙ୍କର ଏକମାତ୍ର ପୁତ୍ର ଲକ୍ଷ୍ମୀଧର ପୁରୋହିତ **କୃଷ୍ଣାଂଘ୍ରିମହିମାମୃତ** ନାମରେ ଖଣ୍ଡିଏ ଗ୍ରନ୍ଥ ପ୍ରଣୟନ କରିଅଛନ୍ତି । ଭାଗବତରେ ଯେତେ ସ୍ଥାନରେ ପାଦପଦ୍ମ ମହିମା ଅଛି ସେ ସବୁ ଏକତ୍ର କରି ଅଠରଟି ଆସ୍ୱାଦରେ ଏହା ସମାପ୍ତ ହୋଇଅଛି । ଖାଡ଼ଙ୍ଗା ୧୬୭୧୦ ଶକାବ୍ଦରେ **ହରିଭକ୍ତିସୁଧାକର** ରଚନା କରିଥିଲେ ।

ଲକ୍ଷ୍ମୀଧର ସ୍ୱକୃତ 'କୃଷ୍ଣାଂଘ୍ରିମହିମାମୃତ'ର ଶେଷରେ ଲେଖିଛନ୍ତି -

ଶ୍ରୀନୀଳମାଧବହତାଂହସିତସ୍ୟ ଦେଶେ ଲକ୍ଷ୍ମୀଧରେଣ କୃତିନା ବସତା ଶକାବ୍ଦେ ।
ଶେଷଂ ଗତେ ନୟନ-ଦନ୍ତି-ରସେନ୍ଦୁସଂଖ୍ୟେ ଶ୍ରୀକୃଷ୍ଣପାଦମହିମାମୃତମୁଦ୍ଧୃତଂ ତଦ୍ ॥

ଦୀନବନ୍ଧୁ ମଧ୍ୟ ସ୍ୱକୃତ **'ହରିଭକ୍ତିସୁଧାକର'**ରେ ଲେଖିଛନ୍ତି -

ମହାନଦୀଦକ୍ଷିଣଭୂପ୍ରଦେଶେ ଦେଶେ ତଦୀୟେ ବସତା ଶକାବ୍ଦେ ।
ଗତେ ନଭଶ୍ଚନ୍ଦ୍ରରସେନ୍ଦୁସଂଖ୍ୟେ (୧୬୧୦) ବିନିର୍ମିତୋ ଭକ୍ତିସୁଧାକରୋଽୟମ୍ ॥

**ସ୍ତବମୁକ୍ତାବଳୀ** ଶେଷରେ ସେ ପୁଣି ଲେଖିଛନ୍ତି -

ଇତ୍ୟୁଚ୍ଛକୌସ୍ଥକୁଳସଂଭବଦୀନବନ୍ଧୁମିଶ୍ରେଣ ଭାଗବତବାରିନିଧେର୍ବିଲୋଡ୍ୟ ।
ରାଜଦଗୁଣା ଭଗବତଃ ସ୍ତବମୌକ୍ତିକାଳୀ ସତ୍‌କଣ୍ଠଭୂଷଣକୃତେ ଲିଖିତାତିଯତ୍ନାତ୍ ॥

ଏଥିରୁ ଜଣାଯାଉଅଛି ଯେ **ଭକ୍ତିସୁଧାକର**କୁ ସେ ତାଙ୍କ ଯୌବନାବସ୍ଥାରେ ରଚନା କରିଅଛନ୍ତି, ଯେହେତୁ ସେ ୧୬୬୫ରେ ସ୍ୱଧାମ ଗମନ କରିଥିଲେ ।



## ଗ୍ରନ୍ଥ ସମ୍ପାଦନା

ମଦୀୟ ଗୁରୁଦେବ ନିତ୍ୟଲୀଳାପ୍ରବିଷ୍ଟ ପରମାରାଧ୍ୟତମ ଓଁ ବିଷ୍ଣୁପାଦ ଶ୍ରୀଶ୍ରୀଳ ପୁରୀଦାସ ଗୋସ୍ୱାମୀ ଠାକୁର ଗୌଡ଼ୀୟ ବୈଷ୍ଣବ ଧର୍ମସଂପର୍କୀୟ ଗ୍ରନ୍ଥମାନ ଶୁଦ୍ଧଭାବରେ ପ୍ରକାଶ କରିବାକୁ ତାଙ୍କ ଜୀବନର ବ୍ରତସ୍ୱରୂପ କରିଥିଲେ । ସେ ପ୍ରାୟ ସମସ୍ତ ଗୋସ୍ୱାମୀ ଗ୍ରନ୍ଥର (ମୂଳ ସଂସ୍କୃତ) ଶୁଦ୍ଧ ସଂସ୍କରଣ ପ୍ରକାଶ କରିବା ପାଇଁ ଅକଥନୀୟ ଶ୍ରମ ଓ କଷ୍ଟ ସ୍ୱୀକାର କରିଅଛନ୍ତି । ଅବଶ୍ୟ ଏ ସମସ୍ତ ବଙ୍ଗଳା ଅକ୍ଷରରେ ମୁଦ୍ରିତ ହୋଇଛି । ଏହି କାର୍ଯ୍ୟଦ୍ୱାରା ସେ ବୈଷ୍ଣବଜଗତକୁ ଯେଉଁ ମହତ୍ ଦାନ କରିଯାଇଛନ୍ତି ତାହାର ତୁଳନା ନାହିଁ ।

ଓଡ଼ିଶାବାସୀଙ୍କ ମଙ୍ଗଳଦୃଷ୍ଟିରୁ ଏହି ସମସ୍ତ ଗ୍ରନ୍ଥ ଓଡ଼ିଆ ଅକ୍ଷରରେ ଛପାଇବା ପାଇଁ ତାଙ୍କର ପ୍ରବଳ ଆଗ୍ରହ ଥିଲା । ସେଥିପାଇଁ ସେ କଟକସ୍ଥ ଶ୍ରୀସଚ୍ଚିଦାନନ୍ଦ ମଠ ଭିତରେ ଗୋଟିଏ ପ୍ରେସ୍ କରିବାକୁ ଆଦେଶ ଦେଇଥିଲେ । ସେ ପ୍ରେସ୍ ମଧ୍ୟ ହେଲା ଏବଂ

ସେଥିରେ ଦୁଇ ତିନି ଖଣ୍ଡ ମାତ୍ର ଗ୍ରନ୍ଥ ପ୍ରକାଶିତ ହେଲା । ତା'ପରେ ସେ ପ୍ରଥମେ ମୋର ଗୁରୁଭ୍ରାତା ସ୍ୱଧାମଗତ ଶ୍ରୀହରିଗୋପାଳ ଦାସଜୀଙ୍କୁ ଓ ପରେ ମୋତେ ଏହି ଗ୍ରନ୍ଥ ମୁଦ୍ରଣ ପାଇଁ ଆଦେଶ ଦେଲେ । ତାଙ୍କ କୃପାଦେଶ ଅନୁସାରେ ଆମେ ଦୁହେଁ ଏ କାର୍ଯ୍ୟରେ ବ୍ରତୀ ହେଲୁଁ । ଶ୍ରୀହରିଗୋପାଳଜୀଙ୍କ ଉଦ୍ୟମରେ ଶ୍ରୀଶ୍ରୀକୃଷ୍ଣପ୍ରେମତରଙ୍ଗିଣୀ, ଶ୍ରୀଶ୍ରୀଲୀଳାସ୍ତବ, ଶ୍ରୀସନାତନ ଗୋସ୍ୱାମୀ ଓ ଶ୍ରୀହରିକଥାମୃତ ପ୍ରଥମ ଓ ଦ୍ୱିତୀୟ ଭାଗ ପ୍ରକାଶିତ ହେବା ପରେ ପରେ ସେ ସ୍ୱଧାମ ଗମନ କଲେ । ତାଙ୍କ ପରେ ଏ ଗୁରୁଦାୟିତ୍ୱ ମାଦୃଶ ଅଯୋଗ୍ୟ ଜୀବ ଉପରେ ପଡ଼ିଲା । ଏଣେ ପ୍ରେସ୍‌ର ସଂପୂର୍ଣ୍ଣ ଦାୟିତ୍ୱ ବହନ କରି ଗ୍ରନ୍ଥମୁଦ୍ରଣ କାର୍ଯ୍ୟରେ ମନୋଯୋଗ ଦେବା ଦୁଃସାଧ୍ୟ ହୋଇପଡ଼ିଲା ।

ଯାହାହେଉ ଆମେ ପ୍ରଥମେ "ଖାଡ଼ଙ୍ଗା ଭାଗବତ" ର ସଂପାଦନା କାର୍ଯ୍ୟ ହାତକୁ ନେଲୁଁ । ଏହାର ପାଣ୍ଡୁଲିପି ସଂଗ୍ରହରେ ବାବାଜି ଶ୍ରୀଚୈତନ୍ୟ ଚରଣ ଦାସଙ୍କ ଅକ୍ଳାନ୍ତ ଉଦ୍ୟମ ଆମ୍ଭଙ୍କୁ ଆହୁରି ଉତ୍ସାହିତ କଲା । ପାଣ୍ଡୁଲିପି ମିଳିବା ପରେ କଟକ ଖ୍ରୀଷ୍ଟ କଲେଜର ଅଧ୍ୟାପକ ଓ ମୋର ଘନିଷ୍ଠ ବନ୍ଧୁ ଶ୍ରୀଯୁକ୍ତ ରଙ୍ଗାଧର ଷଡ଼ଙ୍ଗୀ ମହାଶୟଙ୍କୁ ଏହାର ସମ୍ପାଦନା ଦାୟିତ୍ୱ ଦିଆଗଲା ଏବଂ ସେ ଆନନ୍ଦର ସହିତ ଏହାକୁ ଗ୍ରହଣ କରି ଅକ୍ଳାନ୍ତ ଶ୍ରମସ୍ୱୀକାରପୂର୍ବକ ଶ୍ରୀମଭାଗବତର ମୂଳ ଶ୍ଳୋକ ଓ ଶ୍ରୀଧର ସ୍ୱାମୀଙ୍କ ଟୀକା ସହିତ ସଂଗୃହୀତ ବିଭିନ୍ନ ପାଣ୍ଡୁଲିପିର ପାଠ ମିଳାଇ ଯେଉଁଟିକୁ ଶୁଦ୍ଧ ବୋଲି ବିଚାରିଛନ୍ତି ତାହାକୁ ହିଁ ଏଥିରେ ସନ୍ନିବେଶିତ କରିଛନ୍ତି । ଏହିପ୍ରକାର ଦୁଷ୍କର କାର୍ଯ୍ୟର ଦାୟିତ୍ୱ ସ୍ୱେଚ୍ଛାରେ ବହନ କରି ସେ ତାଙ୍କ ଉପାର୍ଜିତ ଜ୍ଞାନର ଯେ ଯଥାର୍ଥ ବିନିଯୋଗ କରିଛନ୍ତି, ଏହା କହିବା ଅନାବଶ୍ୟକ । ତାଙ୍କ ସହାୟତା ବ୍ୟତୀତ ଏହି ଗ୍ରନ୍ଥ ନିର୍ଭୁଲଭାବେ ପ୍ରକାଶିତ ହେବା ସମ୍ଭବପର ହୋଇ ନ ଥାନ୍ତା । ତାଙ୍କ ବ୍ୟତୀତ ଏହି ଗ୍ରନ୍ଥ ସଂପାଦନାରେ ମୋର ଜଣେ ଗୁରୁଭ୍ରାତା ଶ୍ରୀ ମୁରଲୀଧର ଦାସଜୀଙ୍କ ନିରଳସ ଆନୁକୂଲ୍ୟ ମଧ୍ୟ ଉଲ୍ଲେଖନୀୟ ।

ଭକ୍ତିଗ୍ରନ୍ଥ ସଂପାଦନ ଗୋଟିଏ ଭକ୍ତିର ଅଙ୍ଗ । ମାଦୃଶ ଦେହ-ଗେହ-ସର୍ବସ୍ୱ, ଦୁରନ୍ତ ଅପରାଧୀ, ଅଶରଣାଗତ ଓ ଅଜ୍ଞ ବ୍ୟକ୍ତି ପକ୍ଷରେ ଏହି ପ୍ରକାର କାର୍ଯ୍ୟରେ ବ୍ରତୀ ହେବା ଅସମ୍ଭବ । ଯେ ଆଦେଶ କରିଛନ୍ତି କାକକୁ ଗରୁଡ଼ କଲାଭଳି ସେ ଯଦି କୃପାଶକ୍ତି ସଂଚାର ନ କରନ୍ତି ତାହାହେଲେ ଏହାର ସଂପାଦନା ଓ ମୁଦ୍ରଣ ସଂପୂର୍ଣ୍ଣ ହେବା ଦୁରୂହ ହୋଇପଡ଼ିବ ।

ଶ୍ରୀଯୁକ୍ତ ଖାଡ଼ଙ୍ଗାଙ୍କ ରଚିତ ଶ୍ରୀମଭାଗବତର ନବାକ୍ଷରୀ ପଦ୍ୟାନୁବାଦ ପ୍ରଥମଥର ପାଇଁ ସଂପୂର୍ଣ୍ଣରୂପେ ମୁଦ୍ରିତ ହୋଇ ଆତ୍ମପ୍ରକାଶ କରିବାକୁ ଯାଉଛି । ଏହାକୁ ଅନୁବାଦ କରିବାକୁ ଯାଇ ଖାଡ଼ଙ୍ଗା ମହାଶୟ ଶ୍ରୀଧର ସ୍ୱାମିପାଦଙ୍କର "ଭାବାର୍ଥ-ଦୀପିକା" ଟୀକାକୁ ମୁଖ୍ୟତଃ ଅନୁସରଣ କରିଛନ୍ତି । ମୂଳ ଅନୁବାଦ ସହିତ ସ୍ଥାନେ ସ୍ଥାନେ ସେ ସ୍ୱାମିଟୀକାକାର ମଧ୍ୟ ଅନୁବାଦ କରିଛନ୍ତି । ଏତେ ବଡ଼ ପ୍ରଚେଷ୍ଟା ତାଙ୍କ ବ୍ୟତୀତ ଅନ୍ୟ କେହି କରିଥିବାର

ମନେ ହୁଏ ନାହିଁ । କେବଳ ଓଡ଼ିଶା କାହିଁକି ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ମଧ୍ୟ ଏତାଦୃଶ ପ୍ରଚେଷ୍ଟାର ପ୍ରୟାସ ବିରଳ ମନେହୁଏ ।

ସ୍ୱଧାମଗତ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ମହାଶୟ ପ୍ରାଚୀ ସମିତିର ଆନୁକୂଲ୍ୟରେ ୧୯୩୨ ମସିହାରେ ''ଖାଡ଼ଙ୍ଗା ଭାଗବତ'' ନାମରେ କେବଳ ଏକାଦଶ ସ୍କନ୍ଧଟି ପ୍ରକାଶ କରିଛନ୍ତି । ଅବଶ୍ୟ ବିଚ୍ଛନ୍ଦବାବୁ ସେଥିରେ ଖାଡ଼ଙ୍ଗାଙ୍କ ନାମ ଶ୍ରୀଦୀନବନ୍ଧୁ ଦାସ ବୋଲି ପ୍ରମାଦବଶତଃ ଉଲ୍ଲେଖ କରିଛନ୍ତି । କିନ୍ତୁ ଦ୍ୱାଦଶ ସ୍କନ୍ଧ ଶେଷରେ ଖାଡ଼ଙ୍ଗା ମହାଶୟ ନିଜର ଯେଉଁ ପରିଚୟ ପ୍ରଦାନ କରିଛନ୍ତି ତହିଁରୁ ତାଙ୍କର ସଂଜ୍ଞା ମିଶ୍ର ଥିବାର ସୂଚିତ ହୁଏ । ଯାହାହେଉ ଏ କ୍ଷେତ୍ରରେ ପ୍ରଥମ ପଦକ୍ଷେପପୂର୍ବକ ପଥପ୍ରଦର୍ଶକ ହୋଇଥିବାରୁ ଆମେ ବିଚ୍ଛନ୍ଦବାବୁଙ୍କ ନିକଟରେ ଚିର କୃତଜ୍ଞ ।

ଏହି ସଂସ୍କରଣର ପ୍ରତ୍ୟେକ ପୃଷ୍ଠାର ବାମ ପାର୍ଶ୍ୱରେ ଶ୍ଳୋକସଂଖ୍ୟା ଓ ଦକ୍ଷିଣ ପାର୍ଶ୍ୱରେ ପଦ୍ୟ ସଂଖ୍ୟା ଦିଆହୋଇଛି । ସଂଖ୍ୟାବିହୀନ ପଦ୍ୟଗୁଡ଼ିକ ଶ୍ରୀଯୁକ୍ତ ଖାଡ଼ଙ୍ଗା ମହାଶୟଙ୍କ ରଚିତ ନୁହେଁ । ତାହା ସଂପାଦକଙ୍କ ରଚିତ । ପାଦ-ଟିପ୍ପଣୀମାନଙ୍କରେ ସଂଖ୍ୟା ପରେ ଯେଉଁଠି (—) ଡ୍ୟାସ ଚିହ୍ନ ଅଛି ତାହା 'ପାଠାନ୍ତର' ଏବଂ ଯେଉଁଠି (=) ସମାନ ଚିହ୍ନ ଅଛି ତାହା 'ଅର୍ଥ' ବୋଲି ବୁଝିବାକୁ ହେବ ।

ଏହି ସଂସ୍କରଣର ସଂପାଦନା କାର୍ଯ୍ୟରେ ବିଶେଷ ଧନ୍ୟବାଦାର୍ହ ହେଉଛନ୍ତି ବାବାଜି ଶ୍ରୀଚୈତନ୍ୟଚରଣ ଦାସ ମହାଶୟ, ଯାହାଙ୍କ ଅଦମ୍ୟ ଚେଷ୍ଟା ଓ ପରିଶ୍ରମ ଫଳରେ ସୁଦୂର ପଲ୍ଲୀ ଅଂଚଳରୁ ଖାଡ଼ଙ୍ଗାଙ୍କ ''ଭାଗବତ''ର ୨ ସେଟ୍ ତାଳପତ୍ର ପୋଥି ଆମର ହସ୍ତଗତ ହୋଇପାରିଛି । ଏକ ସେଟ୍ ନରସିଂହପୁର ଅନ୍ତର୍ଗତ ଚମ୍ପେଶ୍ୱର ନିବାସୀ ଶ୍ରୀଭାଗବତ ସାହୁଙ୍କ ଠାରୁ ଏବଂ ଅପରଟି ଖଣ୍ଡପଡ଼ା ଅନ୍ତର୍ଗତ ଅକ୍ରୂରାବନ୍ଧ ନିବାସୀ ଶ୍ରୀନାରାୟଣ ସାହୁଙ୍କ ଠାରୁ ମିଳିଛି । ଏଥିପାଇଁ ଆମେ ଉକ୍ତ ଦୁଇ ମହାନୁଭବ ବ୍ୟକ୍ତିଙ୍କ ପ୍ରତି ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛୁଁ । ଏହା ଛଡ଼ା ଖଣ୍ଡପଡ଼ାନିବାସୀ ଶ୍ରୀଯୁକ୍ତ ବିଦ୍ୟାଧର ମିଶ୍ର ମହୋଦୟ କୃପାପୂର୍ବକ ସ୍ୱତଃପ୍ରବୃତ୍ତ ହୋଇ ତାଙ୍କ ସ୍ୱହସ୍ତଲିଖିତ ଏକ ସେଟ୍ (କାଗଜ ଲେଖା) ପାଣ୍ଡୁଲିପି ପ୍ରଦାନ କରି ସଂପାଦନା କାର୍ଯ୍ୟରେ ଯଥେଷ୍ଟ ସହାୟତା କରିଥିବାରୁ ସେ ମଧ୍ୟ ଆମ୍ଭମାନଙ୍କର ଅନୁରୂପ ଧନ୍ୟବାଦାର୍ହ ।

ଖାଡ଼ଙ୍ଗା ମହାଶୟଙ୍କ ଜୀବନୀ ସଂପର୍କରେ ମୌଳିକ ଓ ପ୍ରାମାଣିକ ତଥ୍ୟ ଯୋଗାଇଥିବା ଦୃଷ୍ଟିରୁ ଅଧ୍ୟାପକ ଡକ୍ଟର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଏବଂ ଶ୍ରୀବିନାୟକ ଷଡ଼ଙ୍ଗୀଙ୍କ ନିକଟରେ ଆମେ ଚିର କୃତଜ୍ଞ ।

ଶ୍ରୀଶ୍ରୀଗୁରୁ ଗୌରାଙ୍ଗଙ୍କ ସୁଖବିଧାନ ତଥା ସଂସ୍କୃତାନଭିଜ୍ଞ ବ୍ୟକ୍ତିମାନଙ୍କୁ ଶ୍ରୀଶୁକଦେବଙ୍କ ଆସ୍ୱାଦିତ ନିଗମକଳ୍ପତରୁର ଗଳିତ ଫଳ ଶ୍ରୀମଦ୍ଭାଗବତରସାମୃତ ପରିବେଷଣ ଉଦ୍ଦେଶ୍ୟରେ ହିଁ ଏ ଗ୍ରନ୍ଥ ସଂପାଦନାର ପ୍ରଚେଷ୍ଟା ।

ମଦୀୟ ଗୁରୁଦେବ ଭକ୍ତିଗ୍ରନ୍ଥ ବିକ୍ରୟର ଘୋର ବିରୋଧୀ ଥିଲେ । ତେଣୁ ସେ ଅଜସ୍ର ଅର୍ଥ ବ୍ୟୟ କରି ଶୁଦ୍ଧଭକ୍ତି ଶ୍ରଦ୍ଧା ସମ୍ବଳିତ ଯେଉଁସବୁ ଗୋସ୍ୱାମୀ ଗ୍ରନ୍ଥ ମୁଦ୍ରଣ କରିଯାଇଛନ୍ତି, ସେସବୁକୁ ବିନା ମୂଲ୍ୟରେ ବିତରଣ ହିଁ କରିଛନ୍ତି । ତାଙ୍କର ପଦାଙ୍କାନୁସରଣ କରି ଏଥିପୂର୍ବରୁ ୧୯୬୭ ମସିହାରେ ଏହି ଶ୍ରୀମଦ୍ଭାଗବତ କ୍ରାଉନ ଆଠପେଜି ସାଇଜରେ ପ୍ରଥମରୁ ତୃତୀୟ ସ୍କନ୍ଧ ପର୍ଯ୍ୟନ୍ତ ଏକହଜାର ଛପାଇ ବିତରଣ ପାଇଁ ଗଚ୍ଛିତ ରଖିଥିଲି । କିନ୍ତୁ ଅଦ୍ୟାବଧି ସେଥିରୁ ମାତ୍ର ଏକ ଶହରୁ ସାମାନ୍ୟ ବେଶି ବିତରିତ ହୋଇପାରିଛି ଓ ବାକି ସବୁ ସେହିପରି ପଡ଼ି ରହି କ୍ରମଶଃ ବ୍ୟବହାରର ଅନୁପଯୋଗୀ ହୋଇଯାଉଛି । ଅବଶ୍ୟ ଏହା ମୋର ଅଯୋଗ୍ୟତାର ଯେ ଗୋଟିଏଁ ନିଦର୍ଶନ, ଏଥିରେ ଦ୍ୱିମତ ହେବାର କିଛି ନାହିଁ ।

ଏ ଗ୍ରନ୍ଥର ପ୍ରାମାଣିକତାକୁ ଆଖି ଆଗରେ ରଖି ଏହାର ପ୍ରସାର ଯେ ନିତାନ୍ତ ଆବଶ୍ୟକ ଏହା ଅନୁଭବ କରି ମୋର ବହୁ ଶୁଭାକାଂକ୍ଷୀ ବନ୍ଧୁ ଏହାର କିଛି ମୂଲ୍ୟ ରଖିବାକୁ ପରାମର୍ଶ ଦେଲେ । ସେମାନଙ୍କ ପରାମର୍ଶ ଅନୁଯାୟୀ ଏହାର ଯତ୍‌ସାମାନ୍ୟ ମୂଲ୍ୟ ରଖା ହୋଇଛି । ଏହା ସ୍କୁଲ, କଲେଜ ଓ ପାଠାଗାର ଇତ୍ୟାଦିରେ ପହଞ୍ଚି ପାରିଲେ ଆଗ୍ରହୀ ପାଠକମାନେ ଏହାକୁ ପାଠ କରିବାର ସୁଯୋଗ ପାଇପାରିବେ । ଏହାର ବିକ୍ରୟଲବ୍‌ଧ ଅର୍ଥ ଏହି ଗ୍ରନ୍ଥ ମୁଦ୍ରଣ ସେବାରେ ହିଁ ବ୍ୟୟିତ ହେବ । ଏପରି କରିବା ଦ୍ୱାରା ଯଦି ମୁଁ ଶ୍ରୀଗୁରୁଦେବଙ୍କର ଅସନ୍ତୋଷଭାଜନ ହୁଏ ସେଥିପାଇଁ ତାଙ୍କର ଶ୍ରୀଚରଣରେ କ୍ଷମାଭିକ୍ଷା କରୁଛି । ସେ ଏ ଅଯୋଗ୍ୟର ସମସ୍ତ ଦୋଷ ନିଜ ଗୁଣରେ କ୍ଷମା କରି ତାଙ୍କ କୋଟିଚନ୍ଦ୍ର ସୁଶୀତଳ ଶ୍ରୀପାଦପଦ୍ମରେ ସ୍ଥାନ ଦିଅନ୍ତୁ, ଏହି ବିନୀତ ନିବେଦନ ।

ହେ ସୁଧୀ ପାଠକବୃନ୍ଦ ! ଏହି ଗ୍ରନ୍ଥପାଠ ପ୍ରତି ଆଦରଯୁକ୍ତ ହୋଇଥିବାରୁ ଆପଣମାନେ ଧନ୍ୟ । କାରଣ ଶ୍ରୀଖାଡ଼ଙ୍ଗା ମହାଶୟଙ୍କ ଏହି ରଚନାରେ ତାଙ୍କ ହୃଦୟସ୍ଥ ଭକ୍ତିଭାବର ସମ୍ମିଶ୍ରଣ ହୋଇଛି । ତେଣୁ କେବଳ ପ୍ରିୟଶ୍ରବା ଶ୍ରୀକୃଷ୍ଣଙ୍କ ସୁଖବିଧାନ ଉଦ୍ଦେଶ୍ୟରେ ଏହା ପାଠ କଲେ ଏହି ଗ୍ରନ୍ଥସ୍ଥିତ ଶବ୍ଦ ମାଧ୍ୟମରେ ତାଙ୍କ ହୃଦୟସ୍ଥିତ ଭକ୍ତିଭାବ ଆପଣମାନଙ୍କ ହୃଦୟରେ ସଞ୍ଚାରିତ ହୋଇ ଆପଣମାନଙ୍କୁ ଭକ୍ତିଲାଭର ଯୋଗ୍ୟ କରାଇବ । ଅନ୍ୟ କୌଣସି ସାଧନ ନ କରି ମଧ୍ୟ ଶ୍ରଦ୍ଧା ସହକାରେ ଅନ୍ୟାଭିଳାଷଶୂନ୍ୟ ହୋଇ ଶ୍ରୀକୃଷ୍ଣଙ୍କ ପ୍ରୀତି ଉଦ୍ଦେଶ୍ୟରେ କେବଳ ଏହି ଶ୍ରୀମଦ୍ଭାଗବତ ଶ୍ରବଣ କଲେ ଭକ୍ତିଲାଭ ନିଶ୍ଚିତ । ହେ ଭାଗ୍ୟବାନ୍ ପାଠକବୃନ୍ଦ ! ଆପଣମାନେ ଏ ଅଧମର ମସ୍ତକରେ ଚରଣଧୂଳି ଅର୍ପଣ କରି ତାହାକୁ ଅନୁକ୍ଷଣ ଏହି ଭାଗବତରସାମ୍ବୁଧିରେ ଅବଗାହନ ଓ ସନ୍ତରଣର ଯୋଗ୍ୟତା ଦାନ କରନ୍ତୁ, ତାହାହେଲେ ଭକ୍ତିଲାଭର ପଥ ଔହା ପକ୍ଷରେ ସୁଗମ ହେବ । ଇତି ।

ବିନୀତ

ଶ୍ରୀ ଦିବାକର ମିଶ୍ର

# ସୂଚୀପତ୍ର

## ପ୍ରଥମ ସ୍କନ୍ଧ

## ଦ୍ୱିତୀୟ ସ୍କନ୍ଧ

## ତୃତୀୟ ସ୍କନ୍ଧ

## ଚତୁର୍ଥ ସ୍କନ୍ଧ

| ଅଧ୍ୟାୟ | ପ୍ରକରଣ | ପୃଷ୍ଠାଙ୍କ |
|---|---|---|
| ୬। | କୈଳାସବର୍ଣ୍ଣନ ଦକ୍ଷଆଦିଙ୍କର ପୁନର୍ଜୀବନ ପାଇଁ ଦେବସଂଘ ସହିତ ଶ୍ରୀବିଧିକର୍ତ୍ତୃକ ଶ୍ରୀଶିବସ୍ତବନ | ୩୯୦ |
| ୭। | ଶ୍ରୀଶିବଙ୍କର ଦକ୍ଷଯଜ୍ଞକୁ ଆଗମନ; ସେଠାରେ ଦକ୍ଷ, ଶିବ ଓ ଋତ୍ୱିକ୍ ଆଦିଙ୍କ ସ୍ତୁତିରେ ଆବିର୍ଭୂତ ଶ୍ରୀବିଷ୍ଣୁଙ୍କ ଦ୍ୱାରା ଯଜ୍ଞପୂର୍ତ୍ତି ସଂପାଦନ | ୩୯୮ |
| ୮। | ବିମାତାର ବାଗ୍‌ବିଷଦଗ୍ଧ ଏବଂ ମାତାଙ୍କ ବାଗମୃତ-ଆପ୍ଲୁତ ଶ୍ରୀଧ୍ରୁବଙ୍କର ମଧୁବନରେ ତପସ୍ୟାଦ୍ୱାରା ଶ୍ରୀହରିତୋଷଣ | ୪୦୯ |
| ୯। | ଶ୍ରୀଧ୍ରୁବଙ୍କର ଶ୍ରୀହରିସ୍ତୁତି, ବରପ୍ରାପ୍ତି, ଗୃହାଗମନ ଓ ପିତୃଦତ୍ତ ରାଜ୍ୟ ପାଳନ | ୪୧୯ |
| ୧୦। | ଯକ୍ଷମାନଙ୍କଦ୍ୱାରା ଭାଇ ଉତ୍ତମର ବଧକଥା ଶୁଣି ଏକାକୀ ଅଳକାପୁରୀ ଯାଇ ଶ୍ରୀଧ୍ରୁବଙ୍କର ଯକ୍ଷଧ୍ୱଂସ-ଉଦ୍ୟମ | ୪୨୯ |
| ୧୧। | ଯକ୍ଷମାନଙ୍କ ବିନାଶ ଦେଖି ଶ୍ରୀମନୁଙ୍କ ସ୍ୱତଃ ଆଗମନ ଏବଂ ତତ୍ତ୍ୱୋପଦେଶଦ୍ୱାରା ଶ୍ରୀଧ୍ରୁବଙ୍କୁ ଉକ୍ତ ଉଦ୍ୟମରୁ ବାରଣ | ୪୩୩ |
| ୧୨। | କୁବେରଙ୍କ ଦ୍ୱାରା ଅଭିନନ୍ଦିତ ଓ ତାଙ୍କଠାରୁ ବରପ୍ରାପ୍ତ ଶ୍ରୀଧ୍ରୁବଙ୍କର ସ୍ୱପୁରୀପ୍ରାପ୍ତ୍ୟନନ୍ତର ଯଜ୍ଞଦ୍ୱାରା ଶ୍ରୀହରିତୋଷଣ; ବୈରାଗ୍ୟପୂର୍ବକ ସଶରୀରେ ଶ୍ରୀବୈକୁଣ୍ଠପଦାରୋହଣ | ୪୩୮ |
| ୧୩। | ଅଙ୍ଗରାଜାଙ୍କ ପୁତ୍ରେଷ୍ଟି ଯଜ୍ଞଦ୍ୱାରା ବେଣଜନ୍ମ; ବେଣର ଦୌରାତ୍ମ୍ୟହେତୁ ଅଙ୍ଗରାଜାଙ୍କର ନିର୍ବେଦପୂର୍ବକ ଗୃହତ୍ୟାଗ | ୪୪୬ |
| ୧୪। | ବେଣର ଅଭିଷେକ; ପ୍ରତିବୋଧନସତ୍ତ୍ୱେ ଅଧର୍ମଗତ ହେବାରୁ ମୁନି-ମାନଙ୍କଦ୍ୱାରା ବେଣବଧ; ତାହାର ଊରୁମନ୍ଥନଦ୍ୱାରା ନିଷାଦ-ଉତ୍ପତ୍ତି | ୪୫୨ |
| ୧୫। | ପୁନର୍ବାର ମୁନିଗଣକର୍ତ୍ତୃକ ବେଣର ବାହୁମନ୍ଥନରୁ ଅର୍ଚ୍ଚିଙ୍କ ସହ ଶ୍ରୀପୃଥୁଙ୍କର ଉତ୍ପତ୍ତି; ତାଙ୍କ ଅଭିଷେକପାଇଁ ଉପାୟନାଦିର ଆହରଣ | ୪୫୮ |
| ୧୬। | ସମସ୍ତ ଲୋକପାଳଙ୍କ ଦ୍ୱାରା ସତ୍କାରିତ ସସ୍ତ୍ରୀକ ଶ୍ରୀପୃଥୁଙ୍କର ମୁନିପ୍ରଯୁକ୍ତ ସୂତ୍ର ଆଦିଙ୍କ ଦ୍ୱାରା ସ୍ତୁତି | ୪୬୧ |
| ୧୭। | ଦୁର୍ଭିକ୍ଷପୀଡ଼ିତ ପ୍ରଜାମାନଙ୍କ କାତର ପ୍ରାର୍ଥନା ଶୁଣି ଗ୍ରସ୍ତବୀଜା ଧରାକୁ ବଧିବା ପାଇଁ ଶ୍ରୀପୃଥୁଙ୍କର ସମୁଦ୍ୟମ; ଭୟଭୀତା ଧରଣୀଦ୍ୱାରା ଶ୍ରୀପୃଥୁସ୍ତୁତି | ୪୬୫ |
| ୧୮। | ଧରଣୀର ବାକ୍ୟାନୁସାରେ ବତ୍ସ-ପାତ୍ରାଦି ଭେଦରେ ଶ୍ରୀପୃଥୁଆଦିଙ୍କ ଦ୍ୱାରା କାମଧେନୁରୂପିଣୀ ଧରାଠାରୁ ସ୍ୱସ୍ୱଅଭୀଷ୍ଟଦୋହନ | ୪୭୦ |
| ୧୯। | ଅଶ୍ୱମେଧ ଅଶ୍ୱର ଅପହରଣ ହେତୁ ଇନ୍ଦ୍ରଙ୍କୁ ବଧିବାକୁ ପ୍ରବୃତ୍ତ ଶ୍ରୀପୃଥୁଙ୍କୁ ବ୍ରହ୍ମାଙ୍କ ବାରଣ | ୪୭୪ |

ଓଁ ନମୋ ଭଗବତେ ବାସୁଦେବାୟ

# ଶ୍ରୀମଦ୍ଭାଗବତ

## ପ୍ରଥମ ସ୍କନ୍ଧ

### ମଙ୍ଗଳାଚରଣ

ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାସ୍ତେ ହୃଦୟେ ସଂବିଦ୍ ତଂ ନୃସିଂହମହଂ ଭଜେ ॥ ୧ ॥
ବିଶ୍ୱସର୍ଗବିସର୍ଗାଦିନବଲକ୍ଷଣଲକ୍ଷିତଂ ।
ଶ୍ରୀକୃଷ୍ଣାଖ୍ୟଂ ପରଂ ଧାମ ଜଗଦ୍ଧାମ ନମାମି ତତ୍ ॥ ୨ ॥
ମାଧବୋମାଧବୌ ଦେବୌ[୧] ସର୍ବସିଦ୍ଧିବିଧାୟିନୌ ।
ବନ୍ଦେ ପରସ୍ପରାତ୍ମାନୌ ପରସ୍ପରନତିପ୍ରିୟୌ ॥ ୩ ॥
ସଂପ୍ରଦାୟାନୁରୋଧେନ ପୌର୍ବାପର୍ଯ୍ୟାନୁସାରତଃ ।
ଶ୍ରୀଭାଗବତଭାବାର୍ଥଦୀପିକେୟଂ ବିତନ୍ୟତେ[୨] ॥ ୪ ॥
କ୍ୱାହଂ ମନ୍ଦମତିଃ କ୍ୱେଦଂ ମଥନଂ କ୍ଷୀରବାରିଧେଃ ।
କିଂ ତତ୍ର ପରମାଣୁର୍ବୈ ଯତ୍ର ମଜ୍ଜତି ମନ୍ଦରଃ ॥ ୫ ॥
ମୂକଂ କରୋତି ବାଚାଳଂ ପଙ୍ଗୁଂ ଲଂଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବମ୍ ॥ ୬ ॥
ଶ୍ରୀମଦ୍ଭାଗବତାଭିଧଃ ସୁରତରୁସ୍ତାରାଙ୍କୁରଃ ସଜ୍ଜନିଃ
ସ୍କନ୍ଧୈର୍ଦ୍ୱାଦଶଭିସ୍ତତଃ ପ୍ରବିଲସଦ୍ଭକ୍ତ୍ୟାଳବାଳୋଦୟଃ ।
ଦ୍ୱାତ୍ରିଂଶତ୍ତ୍ରିଶତଂ ଚ ଯସ୍ୟ ବିଲସଚ୍ଛାଖାଃ ସହସ୍ରାଣ୍ୟଲଂ
ପର୍ଣ୍ଣାନ୍ୟଷ୍ଟଦଶେଷ୍ଟଦୋଽତିସୁଲଭୋ ବର୍ବର୍ତ୍ତି ସର୍ବୋପରି ॥ ୭ ॥

---

୧. ଈଶୌ (ଶ୍ରୀମଦ୍ ପୁରୀଦାସସଂପାଦିତ ଭାବାର୍ଥଦୀପିକା, ପୃ. ୨)
୨. ପ୍ରତନ୍ୟତେ (ଶ୍ରୀମଦ୍ ପୁରୀଦାସସଂପାଦିତ ଭାବାର୍ଥଦୀପିକା, ପୃ. ୨)

# ପ୍ରଥମୋଽଧ୍ୟାୟଃ

୧ *ଯା ଠାରୁ ଏହି ଜଗତର । ଜନମ ପାଳନ ସଂହାର ॥ ୧
ଯେଣୁ ସେ ସିଦ୍ଧ ଅର୍ଥେ ରହେ । ମିଥ୍ୟା ଅର୍ଥରେ ସଂଗ ନୋହେ ॥ ୨
ସକଳ ବିଷୟ ଜାଣଇ । ନିଜ ଇଚ୍ଛାରେ ଶୋଭା ପାଇ ॥ ୩
ପଣ୍ଡିତେ ଯେବଣ ବେଦରେ । ମୋହିତ ହୁଅନ୍ତି ସଂସାରେ ॥ ୪
**ସେ ବେଦ ବ୍ରହ୍ମାର ମନରେ । ବିସ୍ତାର କଲେ ଯେ ପୂର୍ବରେ ॥ ୫
ତ୍ରିଗୁଣ ସୃଷ୍ଟି ଯାହାଠାରେ[୧] । ପ୍ରକାଶେ ସତ୍ୟସ୍ୱରୂପରେ ॥ ୬
ଯେସନେ ତେଜେ ଜଳମତି । ଜଳେ ହୁଅଇ ତେଜଭ୍ରାନ୍ତି ॥ ୭
କ୍ଷିତିସ୍ୱରୂପୀ[୨] କାଚଠାରେ । ତେଜ-ସଲିଳ ଭ୍ରମ ସ୍ଫୁରେ ॥ ୮
ସେ ଭ୍ରମ ଅସତ୍ୟ ହେଲେହେଁ । ପଦାର୍ଥ ସତ୍ତୁଁ ସତ୍ୟପ୍ରାୟେ ॥ ୯
ସେ ରୂପେ ସତ୍ୟଭାବୁଁ ଯାର । ସତ୍ୟ ଏ ଅସତ୍ୟ ସଂସାର ॥ ୧୦
ଆପଣା ତେଜରେ ନିରସ୍ତ । କଲେ ଯେ କପଟ ସମସ୍ତ ॥ ୧୧
ସେ ସତ୍ୟ ପରମ ଈଶ୍ୱର । ତାହାଙ୍କୁ ସ୍ମରଣ ଆମ୍ଭର ॥ ୧୨

୨ ମତ୍ସରହୀନ ସାଧୁଙ୍କର । ଯେ ଅବା ଅଛି ଧର୍ମସାର ॥ ୧୩
ସେ ଅକପଟ ଧର୍ମ ପୁଣ । ଏଥି କରିବା ନିରୂପଣ ॥ ୧୪
ଯେ ଅଟେ ପରମାର୍ଥମୟ । ସମୂଳେ ହରେ ତାପତ୍ରୟ ॥ ୧୫
ମଙ୍ଗଳ ଦିଅଇ ପ୍ରମାଣି । ଏ ଗ୍ରନ୍ଥେ ସେ ବସ୍ତୁକୁ ଜାଣି ॥ ୧୬
ଏ ଅଟେ ମହାମୁନିକୃତ । ନାମ ଏହାର ଭାଗବତ ॥ ୧୭
ଯେଉଁ ନିପୁଣ ଲୋକେ ଏହା । ଶ୍ରବଣ କରନ୍ତି ଉତ୍ସାହା ॥ ୧୮
ତାହାଙ୍କ ହୃଦେ ନାରାୟଣ । ନିଶ୍ଚଳେ ରହେ ତତକ୍ଷଣ ॥ ୧୯
ଏ ଘେନି ଆନ ଗ୍ରନ୍ଥଙ୍କର । ଶ୍ରବଣେ କି କାର୍ଯ୍ୟ ଲୋକର ॥ ୨୦

୩ ନିଗମ କଳ୍ପଦ୍ରୁମେ ଜାତ । ଫଳ ଅଟଇ ଭାଗବତ ॥ ୨୧
ଶୁକମୁଖରୁ ବିଗଳିତ । ଅମୃତଦ୍ରବ୍ୟରେ ସଂଯୁତ ॥ ୨୨

---

* ''ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି ଯତ୍ ପ୍ରୟନ୍ତ୍ୟଭିସଂବିଶନ୍ତି ।'' (ଶ୍ରୁତିଃ)

** ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ ।
ତଂ ହ ଦେବମାତ୍ମବୁଦ୍ଧିପ୍ରକାଶଂ ମୁମୁକ୍ଷୁର୍ବୈ ଶରଣମହଂ ପ୍ରପଦ୍ୟେ ॥ (ଶ୍ରୁତିଃ)

୧. ତାହାଠାରେ । ୨. ସ୍ୱରୂପ ।

*ରସିକ ଭାବୁକ ଯେ ନରେ । ଲୟ ପର୍ଯ୍ୟନ୍ତ ନିରନ୍ତରେ ॥ ୨୩
ଏ ରସମୟ ଫଳ ପାନ । କରନ୍ତୁ ହୋଇ ସାବଧାନ ॥ ୨୪

୪ ସକଳ ଦେବତାଙ୍କ ସ୍ଥାନ । ଅଟଇ ନଇମିଷ ବନ ॥ ୨୫
ଶୌନକ ଆଦି ମୁନିମାନେ । ସେ ବନେ ମିଳି ତୋଷମନେ ॥ ୨୬
କଳିଯୁଗକୁ ଭୟକରି । ବିଷ୍ଣୁଙ୍କର[1] ପ୍ରାପ୍ତି ମନେ ଧରି ॥ ୨୭
ଉଦ୍ଦେଶି ସହସ୍ରେ ବରଷ । ଦୀକ୍ଷାଏ କଲେକ ପ୍ରକାଶ ॥ ୨୮

୫ ସେ ଏକ ଦିନେ ପ୍ରଭାତରେ । ହୋମକୁ ସଂପାଦି ଅଗ୍ନିରେ ॥ ୨୯
ସୂତଙ୍କୁ କରିଣ ପୂଜନ । ଆଦରେ ବୋଇଲେ ବଚନ ॥ ୩୦

ଶ୍ରୀଋଷୟ ଉଚୁଃ

୬ ଯେ ଧର୍ମଶାସ୍ତ୍ର ଇତିହାସ । ସହିତେ ପୁରାଣ ପ୍ରକାଶ ॥ ୩୧
ତୁମ୍ଭେ ସକଳ ଅଛ ଜାଣି । ବଚନେ କହିଛ ବଖାଣି ॥ ୩୨

୭ ବେଦବାଦୀଙ୍କ ମଧ୍ୟେ ସାର । ବ୍ୟାସଙ୍କୁ ଯେତେକ ଗୋଚର ॥ ୩୩
ଇତର ବ୍ରହ୍ମଜ୍ଞାନୀ ପୁଣି । ହେ ସୂତ ! ଯାହା[2] ଛନ୍ତି ଜାଣି ॥ ୩୪

୮ ତୁମ୍ଭେ ତାହାଙ୍କ ଅନୁଗ୍ରହେ । ସକଳ ଜାଣ ନିଃସନ୍ଦେହେ ॥ ୩୫
ଯେ ଶିଷ୍ୟ ଦୃଢ଼େ ଗୁରୁ ସେବି । ତାହାର ସେବା ମନେ ଭାବି ॥ ୩୬
ଗୁପ୍ତ କଥାହିଁ ତା' ଆଗରେ । ଗୁରୁଏ କହନ୍ତି ସଂସାରେ ॥ ୩୭

୯ ତୁମ୍ଭେ ସେ ଗ୍ରନ୍ଥମାନଙ୍କରେ । ନିଶ୍ଚୟ କରିଣ ମନରେ ॥ ୩୮
ପ୍ରାଣୀଙ୍କ ମଙ୍ଗଳ କାରଣ । ଏକାନ୍ତ କରି ଯାହା[3] ଜାଣ ॥ ୩୯
ଆମ୍ଭର ଆଗେ ସେ ବିଷୟ । କହିବା ଅର୍ଥେ ଯୋଗ୍ୟ ହୁଅ ॥ ୪୦

୧୦ ହେ ସଭ୍ୟ ! ଏ କଳିଯୁଗରେ । ଅଳ୍ପ-ଆୟୁଷ ସର୍ବ ନରେ ॥ ୪୧
ଆଳସ୍ୟବନ୍ତ ମନ୍ଦମତି । ମନ୍ଦଭାଗ୍ୟ ହିଁ ସେ ଅଟନ୍ତି ॥ ୪୨
ରୋଗାଦି ନାନା ଉପଦ୍ରବେ । ପୀଡ଼ିତ ଅଟନ୍ତି ସ୍ୱଭାବେ ॥ ୪୩

---

* 'ରସୋ ବୈ ସଃ, ରସଂ ହ୍ୟେବାୟଂ ଲବ୍ଧ୍ୱାନନ୍ଦୀ ଭବତି' (ଶ୍ରୁତିଃ) ।
୧. ସ୍ୱର୍ଗାୟ = ବିଷ୍ଣୁ । ସ୍ୱଃ ସ୍ୱର୍ଗେ ଗୀୟତେ ଇତି ସ୍ୱର୍ଗାୟଃ ବିଷ୍ଣୁଃ । (ସ୍ୱାମୀ)
୨. ତାହା, ୩. ତାହା ।

୧୧ ଶାସ୍ତ୍ରମୁଖରୁ ଯାହା ଶୁଣି । ମଙ୍ଗଳ ଲଭୁଛନ୍ତି ପ୍ରାଣୀ ।।
ସେ କର୍ମମାନଙ୍କ ବିଧାନ । ଅଶେଷ ଅତ୍ୟନ୍ତ ଗହନ ।।
ଏ ଘେନି କରି ଆମ୍ଭ ହିତେ । ଯେ ସାର ଉଦ୍ଧରି ତା ଚିତ୍ତେ ।।
କହ ପ୍ରାଣୀଙ୍କ ମନ ଯେଣେ । ଶାନ୍ତିକି ଲଭେ ଅନୁକ୍ଷଣେ ।।

୧୨ ହେ ସୂତ ! ଶୁଭ ହେଉ ତୋର । ତୋତେ ତ ସକଳ ଗୋଚର ।।
ଭକ୍ତମାନଙ୍କୁ ଯେ ପାଳନ । କରନ୍ତି ପ୍ରଭୁ ଭଗବାନ ।।
ସେ ବସୁଦେବଭାର୍ଯ୍ୟାଠାରେ । ଜନ୍ମିଲେ ଯେବଣ କାର୍ଯ୍ୟରେ ।।

୧୩ ଶୁଣିମା ଅର୍ଥେ ସେ ଚରିତ । ଆମ୍ଭର ବଳିଅଛି ଚିତ୍ତ ।।
ସେ କଥା କହ ଆମ୍ଭ ଆଗେ । ଯା' ଅବତାର ଭୂମିଭାଗେ ।।
ପ୍ରାଣୀମାନଙ୍କର ପାଳନ । ମଙ୍ଗଳ ଅର୍ଥେ ଉତପନ ।।

୧୪ ଘୋର ସଂସାରେ ପଡ଼ି ନର । ଅବଶେ ଗୁଣି ନାମ ଯାର ।।
ସେ ଭୟୁଁ ବେଗେ ମୁକ୍ତ ହୋଇ । ଭୟ ହିଁ ଯହୁଁ ଭୟ ପାଇ ।।

୧୫ ଆଶ୍ରୟ କରି ଯା' ଚରଣ । ପ୍ରଶାନ୍ତମାର୍ଗୀ[୧] ମୁନିଗଣ ।।
ନିକଟେ ରହି କ୍ଷଣମାତ୍ର । ପ୍ରାଣୀଙ୍କି କରନ୍ତି ପବିତ୍ର ।।
ସେହି ଚରଣୁ ସ୍ରବିକରି । ଭୁବନମଧ୍ୟେ ଗଙ୍ଗାବାରି ।।
ସ୍ନାନପାନରେ ପାପ ହରେ । ସନ୍ନିଧିମାତ୍ରକେ ନ ତାରେ ।।

୧୬ ଯା କର୍ମ ପୁଣ୍ୟଶ୍ଳୋକ ଜନେ । ସ୍ତୁତି କରନ୍ତି ଶୁଦ୍ଧ ମନେ ।।
କେ ନ ଶୁଣଇଁ ଯଶ ତାର । ଯେ ଯଶ କଳିମଳହର ।।

୧୭ ସଂସାରେ ଯେଉଁ ଭଗବାନ । ଲୀଳାରେ ଧରେ କଳାମାନ ।।
ତାର ଉଦାର କର୍ମମାନ । ପଣ୍ଡିତେ କରନ୍ତି ଗାୟନ ।।
ଆମ୍ଭ ଆଗରେ ତାହା କହ । ତହିଁ ଆମ୍ଭର ବଡ଼ ସ୍ନେହ ।।

୧୮ ସେ ହରି ଆପଣା ମାୟାରେ । ସଂସାରେ ନାନା ରୂପ ଧରେ ।।
ଯେତେ ତାହାଙ୍କ ଅବତାର । ସେ କଥା କହସି[୨] ବିସ୍ତାର ।।

୧୯ ଶ୍ରୀକୃଷ୍ଣଯଶ ଶୁଣି କର୍ଣ୍ଣେ । ତୃପ୍ତି ନ ଲଭୁଁ ଆମ୍ଭେମାନେ ।।
ରସଜ୍ଞ[୩] ଜନେ ଯାହା ଶୁଣେ । ପଦପଦକେ ସ୍ୱାଦୁ ମଣେ ।।

---

୧. ପ୍ରଶାନ୍ତମାର୍ଗ, ୨. କରସି, ୩. ରସିକ ।

୧୯(କ) ଯେହ୍ନେ ତୃଷ୍ଣାକୁ କାମୀ ଜନ । କାମରେ କରଇ ନୂତନ ।। ୬୯
କୃଷ୍ଣବିକ୍ରମେ ସେହି ମତେ । ତୋଷକୁ ଲଭିବୁ କେମନ୍ତେ ।। ୭୦
୨୦ ରାମସଙ୍ଗତେ ଥାଇ ହରି । କପଟ ନରରୂପ ଧରି ।। ୭୧
କଲେ ସେ ଯେତେକ ଚରିତ । ମନୁଷ୍ୟେ ନୋହେ ସଂଭାବିତ ।। ୭୨
୨୧ କଳିଯୁଗର ଆଗମନେ । ଏ ବିଷ୍ଣୁ କ୍ଷେତ୍ରେ ଆମ୍ଭେମାନେ ।। ୭୩
ଯେ ଯଜ୍ଞବିଧି ଦୀର୍ଘକାଳ । ସେହି କଥାକୁ କରି ମୂଳ ।। ୭୪
ହରିର ଗୁଣାନୁବାଦନ । କରିଣ ବଞ୍ଚୁଅଛୁଁ ଦିନ ।। ୭୫
୨୨ ଏ କଳି ଅଟଇ ଦୁସ୍ତର । ପ୍ରାଣୀମାନଙ୍କ ସତ୍ତ୍ୱହର ।। ୭୬
ଏହାକୁ ତରିବାକୁ ମନେ । ବାଞ୍ଛା କରନ୍ତେ ଆମ୍ଭେମାନେ ।। ୭୭
ବିଧାତା ତୁମ୍ଭଙ୍କୁ ଆଣିଲା । ଆମ୍ଭମାନଙ୍କୁ ଦେଖାଇଲା ।। ୭୮
ସମୁଦ୍ର ତରିବା ଲୋକର । ଆଗେ ଯେସନେ କର୍ଣ୍ଣଧାର ।। ୭୯
୨୩ ବିପ୍ରବତ୍ସଳ ଯୋଗେଶ୍ୱର । ଯେ ହରି କବଚ ଧର୍ମର ।। ୮୦
ସେ କଳିଯୁଗ-ଆଗମନେ । ଗମନ୍ତେ ଆପଣା ଭୁବନେ ।। ୮୧
ଯେ ଧର୍ମ ସଂସାରରେ ଥିଲା । ସେ କାହିଁ ଶରଣ ପଶିଲା ।। ୮୨
ପବିତ୍ର ଶ୍ରୀକୃଷ୍ଣ ଚରିତ । ପ୍ରଥମସ୍କନ୍ଧ ଭାଗବତ ।। ୮୩
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସଂସାରୁ ତର ଜନେ ଏଣେ ।। ୮୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ନୈମିଷୀୟୋପାଖ୍ୟାନେ
ଋଷିପ୍ରଶ୍ନୋ ନାମ ପ୍ରଥମୋଽଧ୍ୟାୟଃ ।।

---

୧୯(କ) ଯଥା କାମାତ୍ମନାଂ ତୃଷ୍ଣାଃ କାମେଷ୍ୱତ୍ୟନ୍ତନୂତନାଃ ।
ତଥା ତଦ୍ୱିକ୍ରମେଷ୍ୱସ୍ମୁ ସୂତ ତୃପ୍ୟାମହେ କଥମ୍ ।।

ଏହି ଶ୍ଳୋକ କେବଳମାତ୍ର ଶ୍ରୀଯୁକ୍ତ ଖାଡ଼ଙ୍ଗାଙ୍କ ପାଠରେ ମିଳୁଥିବାରୁ ତଥା ଶ୍ରୀମଦ୍ଭାଗବତର ଅନ୍ୟାନ୍ୟ ସଂସ୍କରଣରେ ମିଳୁ ନ ଥିବାରୁ ପ୍ରକ୍ଷିପ୍ତ ବୋଲି ଆଶଙ୍କା ହୁଏ ।

ଏହାପରେ ଯେତେ (କ) ଓ (ଖ) ଚିହ୍ନିତ ଶ୍ଳୋକ ମିଳିବ ସେହି ସମସ୍ତ ଏହିଧରଣର ବୋଲି ବୁଝିବାକୁ ହେବ ।

# ଦ୍ୱିତୀୟୋଽଧ୍ୟାୟଃ

ତଦେବଂ ପ୍ରଥମାଧ୍ୟାୟେ ଷଟ୍‌ପ୍ରଶ୍ନା ମୁନିଭିଃ କୃତାଃ ।
ଦ୍ୱିତୀୟେ ତୂତ୍ତରଂ ସୂତଶ୍ଚତୁର୍ଣ୍ଣାମାହ ତେଷ୍ୱଥ ॥

ଶ୍ରୀବ୍ୟାସ ଉବାଚ

୧ ଏମନ୍ତେ ବିପ୍ରଙ୍କର ବାଣୀ । ହରଷ ମନେ ସୂତ ଶୁଣି ॥ ୧
ସେ ବାକ୍ୟ କରି ସମ୍ମାନନ । କହି ଆରମ୍ଭିଲେ ବଚନ ॥ ୨

ଶ୍ରୀସୂତ ଉବାଚ

୨ ଛାଡ଼ି ସକଳ କୃତ୍ୟମାନ । ସଙ୍ଗେ ନ ଘେନି ଅନ୍ୟଜନ ॥ ୩
ଯା'ନ୍ତେ ସନ୍ନ୍ୟାସଦୀକ୍ଷାମତେ । ଯାହାଙ୍କୁ ସତ୍ୟବତୀସୁତେ ॥ ୪
ଡାକିଲେ ବିରହକାତରେ । ପୁତ୍ର ବୋଲିଣ ଉଚ୍ଚସ୍ୱରେ ॥ ୫
ତନ୍ମୟ ହୋଇ ବୃକ୍ଷମାନେ । ପ୍ରତିଧ୍ୱନିକି କଲେ ବନେ ॥ ୬
ଯେ ଆତ୍ମା ସର୍ବ ଭୂତଙ୍କର । ପ୍ରଣାମ ସେ ଶୁକଙ୍କୁ ମୋର ॥ ୭
୩ ଅସଂଖ୍ୟ ମହିମା ଯାହାର । ଯେ ଏକ ସର୍ବଶ୍ରୁତିସାର ॥ ୮
ଦୁସ୍ତର ଘୋର ଭବତମ । ତରଣେ ଯାହାଙ୍କର କାମ ॥ ୯
ସେ ପ୍ରାଣୀମାନଙ୍କର ହିତେ । ଯେ ଜ୍ଞାନଦୀପ ଏ ଜଗତେ ॥ ୧୦
ସଂସାରହିତରେ ବଖାଣ । କଲେ ଯେ ଏମନ୍ତ ପୁରାଣ ॥ ୧୧
ଯେ ଶୁକ ବ୍ୟାସଙ୍କ କୁମର । ଗୁରୁ ଯେ ମୁନିମାନଙ୍କର ॥ ୧୨
ତାହାଙ୍କ ପାଦରେ ଶରଣ । ପଶୁଅଛି ମୁଁ ଅନୁକ୍ଷଣ ॥ ୧୩
୪ ଯେ ନରନାରାୟଣ ମୂର୍ତ୍ତି । ଆବର ଦେବୀ ସରସ୍ୱତୀ ॥ ୧୪
ତାହାଙ୍କୁ ନମସ୍କାର କରି । ପ୍ରଥମେ ପୁରାଣ ଉଚ୍ଚାରି ॥ ୧୫
୫ ହେ ମୁନିମାନେ ! ତୋଷଚିତ୍ତେ । ଉତ୍ତମ ପଚାରିଲ ମୋତେ ॥ ୧୬
କୃଷ୍ଣର ପ୍ରଶ୍ନ କଲ ଯେଣୁ । ଲୋକମଙ୍ଗଳ ଅଟେ ତେଣୁ ॥ ୧୭
ଶୁଣିଲେ ଯେବଣ ବଚନ । ପ୍ରସନ୍ନ ହୋଏ ପ୍ରାଣୀମନ ॥ ୧୮
୬ ନିଷ୍କାମ ଭକ୍ତି କୃଷ୍ଣଠାରେ । ଯହୁଁ ହୁଅଇ ଅବିଘ୍ନରେ ॥ ୧୯
ପରମ ଧର୍ମ ସେ ଅଟଇ । ମନ ନିର୍ମଳ ଯେଣେ ହୋଇ ॥ ୨୦

| | | | | |
|---|---|---|---|---|
| ୭ | ଭକ୍ତିଯୋଗକୁ କୃଷ୍ଣଠାରେ | କରନ୍ତେ ସେହି ସମୟରେ | ॥ | ୨୧ |
| | ସେ ବିରକ୍ତିକି ଜାତ କରେ | ଯହୁଁ ଉତ୍ତମ ଜ୍ଞାନ ସ୍ଫୁରେ | ॥ | ୨୨ |
| ୮ | ଯେ ଧର୍ମ ପୁରୁଷ ଆଚରେ | ସେ ଯେବେ ଗୋବିନ୍ଦ କଥାରେ | ॥ | ୨୩ |
| | ପ୍ରୀତିକୁ ନ କରଇ ଜାତ | [2]କେବଳ ଶ୍ରମ ସେ ବିଦିତ | ॥ | ୨୪ |
| ୯ | ମୋକ୍ଷ ପର୍ଯ୍ୟନ୍ତ ହୋଏ ଯହିଁ | ସେ ଧର୍ମଫଳ ଅର୍ଥ ନୋହି | ॥ | ୨୫ |
| | ଯେବଣ ଅର୍ଥୁଁ ହୋଏ ଧର୍ମ | ତାହାର ଫଳ ନୋହେ କାମ | ॥ | ୨୬ |
| ୧୦ | ଇନ୍ଦ୍ରିୟପ୍ରୀତି ଯେ ଅଟଇ | କାମର ଲାଭ ସେ ନୁହଇ | ॥ | ୨୭ |
| | ଜୀବନ ଥାଇ ଯେତେ ଦିନ | କାମକୁ କରଇ ସେବନ | ॥ | ୨୮ |
| | କର୍ମରେ ଯେ ଅର୍ଥ ମିଳଇ | ଜୀବନଫଳ ସେ ନୁହଇ | ॥ | ୨୯ |
| | ଯେବେ ସେ ତତ୍ତ୍ୱ ପାରେ ଜାଣି | ଜୀବନଫଳ ତାକୁ ମଣି | ॥ | ୩୦ |
| ୧୧ | ତତ୍ତ୍ୱ ଜାଣନ୍ତି ଯେତେ ପ୍ରାଣୀ | ଜ୍ଞାନକୁ ତତ୍ତ୍ୱ ବୋଲି ଜାଣି | ॥ | ୩୧ |
| | ତତ୍ତ୍ୱକୁ କେହି ବ୍ରହ୍ମ ମଣେ | କେହି ପରମ ଆତ୍ମା ଭଣେ | ॥ | ୩୨ |
| | କେହି ବୋଲନ୍ତି ଭଗବାନ | *ଏ ରୂପେ ମତଭେଦମାନ | ॥ | ୩୩ |
| ୧୨ | ବେଦାନ୍ତ ଆଦି ବାକ୍ୟ ଶୁଣି | ଜ୍ଞାନ, ବୈରାଗ୍ୟକୁ ପ୍ରମାଣି | ॥ | ୩୪ |
| | ଭକ୍ତି ଆଚରି ମୁନିମାନେ | ଶ୍ରଦ୍ଧା କରିଣ ଅନୁଦିନେ | ॥ | ୩୫ |
| | ପରମ ଆତ୍ମା ସ୍ୱରୂପରେ | ସେ ତତ୍ତ୍ୱ ଦେଖନ୍ତି ଆତ୍ମାରେ | ॥ | ୩୬ |
| ୧୩ | ଏ ଘେନି ଶୁଣ ଦ୍ୱିଜବରେ | ବର୍ଣ୍ଣ-ଆଶ୍ରମ ବିଭାଗରେ | ॥ | ୩୭ |
| | ଯେବେ ସନ୍ତୋଷ ଚକ୍ରପାଣି | ସ୍ୱଧର୍ମଫଳ ବୋଲି ଜାଣି[3] | ॥ | ୩୮ |
| ୧୩(କ) | ସେ ହରି ହୋଇଲେ ସନ୍ତୋଷ | ମୋକ୍ଷକୁ ଲଭଇ ପୁରୁଷ | ॥ | ୩୯ |
| | ଘୋର ସଂସାର ନାଶ ଯାଇ | ଯେ ଜନ୍ମମୃତ୍ୟୁଭୟ ଦେଇ | ॥ | ୪୦ |

---

୧. ''ତମେତମାତ୍ମାନଂ ବେଦାନୁବଚନେନ ବ୍ରାହ୍ମଣା ବିବିଦିଷନ୍ତି ଯଜ୍ଞେନ ଦାନେନ ତପସାନାଶକେନ ।'' (ଶ୍ରୁତିଃ)

୨. ତଦ୍ ଯଥେହ କର୍ମଜିତୋ ଲୋକଃ କ୍ଷୀୟତେ ଏବମେବାମୁତ୍ର ପୁଣ୍ୟଜିତୋ ଲୋକଃ କ୍ଷୀୟତେ । (ଶ୍ରୁତିଃ)

* ଔପନିଷଦୈର୍ବ୍ରହ୍ମେତି, ହୈରଣ୍ୟଗର୍ଭୈଃ ପରମାତ୍ମେତି, ସାତ୍ୱତୈର୍ଭଗବାନିତି ।

୩. ଭଣି ।

୧୩(କ) ତୁଷ୍ଟେ ତସ୍ମିନ୍ ହରୌ ତେନ କୈବଲ୍ୟଂ ବିନ୍ଦତେ ପୁମାନ୍ ।
ନଶ୍ୟତେ ଘୋରସଂସାରୋ ଜନ୍ମମୃତ୍ୟୁଭୟାବହଃ ॥

୧୪ ସେ ଘେନି ନିଶ୍ଚଳ ମନରେ । କୃଷ୍ଣଙ୍କୁ ଶୁଣିମ କର୍ଣ୍ଣରେ ॥ ୪୧
କରିବ ତା' ନାମ କୀର୍ତ୍ତନ । ନିତ୍ୟେ କରିବ ତାଙ୍କୁ ଧ୍ୟାନ ॥ ୪୨
ନିଜ ବିଭବ ଅନୁସାରେ । ପୂଜା କରିବ ପ୍ରତିବାରେ ॥ ୪୩
୧୫ କର୍ମ ଗଣ୍ଠିର[1] ନିବନ୍ଧନ । ପଣ୍ଡିତେ କରନ୍ତି ଛେଦନ ॥ ୪୪
ଘେନି ଯାହାର ଧ୍ୟାନ-ଅସି । କେ ତାହା କଥାରେ ନ ରସି ॥ ୪୫
୧୬ ଯେବଣ ମନୁଜ ଶ୍ରଦ୍ଧାରେ । ଶୁଣିମି ବୋଲି ଇଚ୍ଛା କରେ ॥ ୪୬
ତାହାର ସାଧୁସେବାଫଳୁଁ । ପୁଣ୍ୟ ତୀର୍ଥଙ୍କ ସ୍ନାନବଳୁଁ ॥ ୪୭
କୃଷ୍ଣକଥାରେ ଅଭିଳାଷ । ଅନ୍ତରେ[2] ହୁଅଇ ପ୍ରକାଶ ॥ ୪୮
୧୭ ଯେ ପୁଣ୍ୟଶ୍ରବଣକୀର୍ତ୍ତନ । ସାଧୁଙ୍କ ମିତ୍ର ଭଗବାନ ॥ ୪୯
ତାଙ୍କର ପୁଣ୍ୟ କଥାମାନ । ଶ୍ରବଣ କରନ୍ତି ଯେ ଜନ ॥ ୫୦
ସେ ତାଙ୍କ ହୃଦୟରେ ପଶେ । ସର୍ବ ଅଶୁଭ ବେଗେ ନାଶେ ॥ ୫୧
୧୮ ଯେବେ ଅଶୁଭେ ଯାନ୍ତି ନାଶ । ସାଧୁସେବାରେ ବଳେ ଆଶ ॥ ୫୨
ତେବେ ସେ ଗୋବିନ୍ଦବିଷୟେ । ନୈଷ୍ଠିକୀ[3] ଭକ୍ତି ଜାତ ହୋଏ ॥ ୫୩
୧୯ ସେ କାଳେ ରଜ ତମ ଦୁଇ । କାମଲୋଭାଦି ଯେବା ଥାଇ ॥ ୫୪
ଚିତ୍ତୁଁ ବାହାର ହୋଇ ଯାଇ । ସେ ଚିତ୍ତେ ସତ୍ତ୍ୱ ପ୍ରକାଶଇ ॥ ୫୫
୨୦ ଏ ରୂପେ ଭକ୍ତିଯୋଗୁଁ ଯେବେ । ମନ ପ୍ରସନ୍ନ ହୋଏ, ତେବେ ॥ ୫୬
ବିମୁକ୍ତସଙ୍ଗ ଯେଉଁ ଜନ । ଲଭେ ଈଶ୍ୱରତତ୍ତ୍ୱଜ୍ଞାନ ॥ ୫୭
୨୧ ଅଶେଷ କର୍ମବନ୍ଧଗଣ୍ଠି । ତେଣେ[4] ଜୀବର ଯାଏ ତୁଟି ॥ ୫୮
ସର୍ବ ସଂଶୟ ନାଶ ଯାଏ । କର୍ମମାନ ହିଁ କ୍ଷୀଣ ହୋଏ ॥ ୫୯
ନିଜ ଆତ୍ମାରେ ଯେବେ ନର । ହରିଙ୍କି କରଇ ଗୋଚର ॥ ୬୦
୨୨ ଏ ଘେନି ଜ୍ଞାନବନ୍ତ ନରେ । ପରମ ଆନନ୍ଦେ ନିତ୍ୟରେ ॥ ୬୧
ଭକ୍ତି କରନ୍ତି କୃଷ୍ଣଠାଏଁ । ମନ ନିର୍ମଳ ତେଣେ ହୋଏ ॥ ୬୨
୨୩ ଯେ ସତ୍ତ୍ୱ, ରଜ, ତମ ତିନି । ପ୍ରକୃତିଗୁଣ ବୋଲି ମାନି ॥ ୬୩
ସେ ଗୁଣେ ହୋଇଣ ସଂଯୁତ । ପରମ ପୁରୁଷ ଅଚ୍ୟୁତ ॥ ୬୪
ଏକ ହୋଇଣ ଏ ସଂସାରେ । ସ୍ଥିତି ସର୍ଜନ ସଂହାରରେ ॥ ୬୫
ହରି ବିରଞ୍ଚି ହର ହୋଇ । ତିନି ସଂଜ୍ଞାକୁ ସେ ଲଭଇ ॥ ୬୬

---

୧. ଗଣ୍ଠି = ଅହଂକାର, ତାହାର କାରଣ କର୍ମ ।
୨. ଅଚିରେ, ୩. ନୈଷ୍ଠିକ, ୪. ତେବେ ।

ସେ ତିନି ଦେବଙ୍କ ମଧ୍ୟରେ । ଯେ ସତ୍ତ୍ୱଗୁଣ ତନୁ ଧରେ ॥ ୬୭
ତାହାଙ୍କ ଠାରୁ ପ୍ରାଣୀଙ୍କର । ମଙ୍ଗଳ ହୁଅଇ ଅପାର ॥ ୬୮
୨୪ ଦାରୁସଂଯୋଗୁଁ ଧୂମ ହୋଇ । ଧୂମୁଁ ଅନଳ ସଂଭବଇ ॥ ୬୯
ସେ ଅଗ୍ନି ବେଦମୟ ଅଟେ । ସେରୂପେ ତମୁଁ ରଜ ଘଟେ ॥ ୭୦
ରଜରୁ ସତ୍ତ୍ୱଗୁଣ ହୋଇ । ଯହିଁରେ ବ୍ରହ୍ମକୁ ଦେଖଇ ॥ ୭୧
୨୫ ଶୁଦ୍ଧ ସତ୍ତ୍ୱରୁ ହୋଏ କ୍ଷେମ । ଅଭଦ୍ର ଅଟେ ରଜ ତମ ॥ ୭୨
ଏ ଘେନି ପୂର୍ବେ ମୁନିଜନ । ବିଷ୍ଣୁଙ୍କୁ କଲେକ ଭଜନ ॥ ୭୩
୨୬ ଯେତେ ଅଛନ୍ତି ଭୂତପତି । ଅଟନ୍ତି ଘୋରରୂପ ଅତି ॥ ୭୪
ମୁକତିକାମୀ ଯେତେ ନରେ । ତାହାଙ୍କୁ ଛାଡ଼ିଣ ସଂସାରେ ॥ ୭୫
ହରିର ଯେତେ ଅଂଶମାନ । ତାହାଙ୍କୁ କରନ୍ତି ଭଜନ ॥ ୭୬
ଆନ ଦେବତା ଯେତେ ଥାନ୍ତି । ତାହାଙ୍କୁ ନିନ୍ଦା ନ କରନ୍ତି ॥ ୭୭
୨୭ ରାଜସ-ତାମସ ପ୍ରକୃତି । ଯେ ଭୂତ ପିତୃ ପ୍ରଜାପତି ॥ ୭୮
ସେହି ସ୍ୱଭାବ ଯେତେ ଜନେ । ସୁତ, ସଂପଦ ଚିନ୍ତି ମନେ ॥ ୭୯
ତାହାଙ୍କୁ କରନ୍ତି ଭଜନ[୧] । ନ ଦେଇ ଗୋବିନ୍ଦରେ ମନ ॥ ୮୦
୨୮ ସଂସାରେ ବେଦ ଯଜ୍ଞ ଯେତେ । ଅଷ୍ଟାଙ୍ଗଯୋଗ କ୍ରିୟାମତେ ॥ ୮୧
୨୯ ଜ୍ଞାନ ତପସ୍ୟା ଧର୍ମ ଗତି । ଯେ ଲୋକଦେବତା ଅଛନ୍ତି ॥ ୮୨
୨୯(କ) ସେ ସର୍ବ ବାସୁଦେବପର । ଆତ୍ମା ସେ ଆତ୍ମମାନଙ୍କର ॥ ୮୩
୩୦ ଯେ ନିଜ ମାୟା ଗୁଣମୟୀ । କାର୍ଯ୍ୟକାରଣରୂପ ହୋଇ ॥ ୮୪
ତେଣେ ଏ ଜଗତ ରଚନ । କଲେ ଅଗୁଣ ଭଗବାନ ॥ ୮୫
୩୧ ସେ ମାୟାବଶରୁ ପ୍ରକାଶ । ଯେ ଅନ୍ନମୟ ଆଦି କୋଷ ॥ ୮୬
ତହିଁରେ ପଶି ଶୋଭା ପାଏ । ନିର୍ଗୁଣ ହୋଇ ଗୁଣୀପ୍ରାୟେ ॥ ୮୭
ଉର୍ଜିତ ଅଟେ ବିଜ୍ଞାନରେ । ନ ଲାଗେ ସଙ୍ଗଦୋଷ ତାରେ ॥ ୮୮
୩୨ ଯେସନେ ନାନା ଦାରୁମାନ । ପାଇଣ ଏକ ହୁତାଶନ ॥ ୮୯
ନାନା ପ୍ରାୟେକ ଶୋଭା ପାଇ । ସେ ରୂପେ ପ୍ରାଣୀଙ୍କର ଠାଇଁ ॥ ୯୦
ସକଳ-ଆତ୍ମା ଭଗବାନ । ନାନା ପ୍ରାୟେକ ଶୋଭମାନ ॥ ୯୧

---

୧. ସେବନ ।
୨୯(କ) ବାସୁଦେବପରା ଲୋକା ବାସୁଦେବପରାଃ ସୁରାଃ ।
ବାସୁଦେବପରଂ ସର୍ବମାତ୍ମାତ୍ମାକଂ ସ ଏବ ହି ॥

୩୩ ଇନ୍ଦ୍ରିୟ, ଭୂତସୂକ୍ଷ୍ମ, ମନ । ଏ ଗୁଣମୟ ଭାବମାନ ।। ୯୨
ପ୍ରାଣୀମାନଙ୍କୁ ଏହି ଦ୍ୱାରେ । ନିର୍ମାଣି ପଶଇ ତହିଁରେ ।। ୯୩
ତାଙ୍କୁ ବିଷୟଭୋଗମାନ । ଇଚ୍ଛାଏଁ କରାଇ ଭୋଜନ ।। ୯୪
୩୪ ସ୍ୱଲୀଳା-ଅବତାର ଯେତେ । ମତ୍ସ୍ୟକୁର୍ମାଦି ନାନା ମତେ ।। ୯୫
ତହିଁକି ହୋଇ ଅନୁଗତ । ସତ୍ତ୍ୱରେ ପାଳଇ ଜଗତ ।। ୯୬
୩୪(କ) କାଳାଗ୍ନି-ରୁଦ୍ରରୂପଧର । ହୋଇଣ ଅତି ଭୟଙ୍କର ।। ୯୭
ପ୍ରଳୟକାଳରେ ଜଗତ । ସଂହାର କରନ୍ତି ଅଚ୍ୟୁତ ।। ୯୮
୩୪(ଖ) ଏ ରୂପେ ବିଶ୍ୱ ଆତ୍ମା ହରି । ସେ ସର୍ବ ରୂପମାନ ଧରି ।। ୯୯
ଇଚ୍ଛାଏ କରନ୍ତି ବିହାର । ସେ ସତ୍ୟସଂକଳ୍ପ ଈଶ୍ୱର ।।୧୦୦
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁମତି ।।୧୦୧

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଭଗବଦନୁଭାବାନୁବର୍ଣ୍ଣନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ।।

## ତୃତୀୟୋଽଧ୍ୟାୟଃ

ଅବତାରକଥାପ୍ରଶ୍ନେ ତୃତୀୟେ ତୂତ୍ତରାଭିଧା ।
ପୁରୁଷାଦ୍ୟବତାରୋକ୍ତ୍ୟା ତତ୍ତଚ୍ଚାରିତ୍ରବର୍ଣ୍ଣନୈଃ ।।

ଶ୍ରୀସୂତ ଉବାଚ

୧ ସୃଷ୍ଟିର ଆଦ୍ୟେ ଭଗବାନ । ଲୋକସର୍ଜନା ବାଞ୍ଛି ମନ ।। ୧
ମହତ ଆଦିରେ ନିର୍ଭର । ଧଇଲେ ପୁରୁଷ[୧] ଶରୀର ।। ୨
ଇନ୍ଦ୍ରିୟବର୍ଗ ଏକାଦଶ । ପଞ୍ଚ ମହାଭୂତ ପ୍ରକାଶ ।। ୩
ତେଣେ ଷୋଡ଼ଶ କଳା ହୋଇ । ସେ ରୂପ ବିଦିତ ଅଟଇ ।। ୪

---

୩୪(କ) ଅଥ କାଳାଗ୍ନିରୁଦ୍ରାତ୍ମା ଭୂତ୍ୱାତୀବ ବିଭୀଷଣଃ ।
ଉପସଂହରତେ ବିଶ୍ୱଂ ଭଗବାନ୍ ପୁରୁଷୋତ୍ତମଃ ।।
୩୪(ଖ) ଏବମେବ ହି ବିଶ୍ୱାତ୍ମା ସର୍ବରୂପଧରୋ ହରିଃ ।
କ୍ରିଡ଼ୟା ସ୍ୱେଚ୍ଛୟା ବିପ୍ରାଃ ସତ୍ୟସଂକଳ୍ପ ଈଶ୍ୱରଃ ।।
୧. ବିରାଟ

୨ ଯେ ଯୋଗନିଦ୍ରାକୁ ବିସ୍ତାର । କରିଣ ଶୁଅନ୍ତେ ଜଳର ॥ ୫
ଲୋକର ପିତାମହ ବିଧି । ଯ୍ନାନାଭିହ୍ରଦପଦ୍ମୁ ସିଦ୍ଧି ॥ ୬
୩ ଯାହାର ଦେହେ ଚତୁର୍ଦ୍ଦଶ । ଲୋକ ହୋଇଛି ପରକାଶ ॥ ୭
ଭଗବାନର ସେ ଶରୀର । ବିଶୁଦ୍ଧ ସତ୍ତ୍ୱଗୁଣେ ସାର ॥ ୮
୪ ଏ ରୂପେ ଜ୍ଞାନଚକ୍ଷୁଦ୍ୱାରେ । ଜ୍ଞାନୀଏ ଦେଖନ୍ତି ସଂସାରେ ॥ ୯
ସହସ୍ର ପାଦ, ଉରୁ, ଭୁଜେ । ସହସ୍ର ଆନନ ବିରାଜେ ॥ ୧୦
ସହସ୍ର ଶ୍ରବଣ, ମସ୍ତକ । ସହସ୍ର ନୟନ, ନାସିକ ॥ ୧୧
ସହସ୍ର ମୁକୁଟ, ବସନ । ସହସ୍ର କୁଣ୍ଡଳେ ଶୋଭନ ॥ ୧୨
୫ ଏ ସୃଷ୍ଟିମଧ୍ୟେ ଚକ୍ରଧର । ଧରଇଁ[୧] ଯେତେ ଅବତାର ॥ ୧୩
ତାହାଙ୍କ ମୂଳ ବୀଜ ସେହି । ସକଳ ଲୀନ ହୋଏ ତହିଁ ॥ ୧୪
ଯା' ଅଂଶ-ଅଂଶରୁ ସମ୍ଭବ । ସୁର ନର କୀଟାଦି ଜୀବ ॥ ୧୫
୬ ପ୍ରଥମେ କୁମାର ସୃଷ୍ଟିରେ । ସେ ଦେବ ବ୍ରାହ୍ମଣରୂପରେ ॥ ୧୬
କଲେ ଦୁଷ୍କର ଅଖଣ୍ଡିତ । କଠିନ ବ୍ରହ୍ମଚାରୀ ବ୍ରତ ॥ ୧୭
୭ ଧରଣୀ ଥିଲା ରସାତଳେ । ତାକୁ ଉଦ୍ଧରିବାକୁ ବଳେ ॥ ୧୮
ମଙ୍ଗଳଅର୍ଥେ ଜଗତର । ଦ୍ୱିତୀୟ ବରାହଶରୀର ॥ ୧୯
କଲେ ସେ ପୂର୍ବ ଉପାଦାନ । ଯଜ୍ଞ-ଈଶ୍ୱର ଭଗବାନ ॥ ୨୦
୮ ତୃତୀୟେ ଋଷିସର୍ଗେ ହରି । ନାରଦମୁନିରୂପ ଧରି ॥ ୨୧
କହିଲେ ପଞ୍ଚରାତ୍ରାଗମ । ନିଷ୍କାମ ହୋଏ ଯେଣେ କର୍ମ ॥ ୨୨
୯ ଚତୁର୍ଥ ରୂପେ ଧର୍ମଘରେ । ଜନ୍ମିଲେ ମୂର୍ତ୍ତିର ଉଦରେ ॥ ୨୩
ସେ ଖ୍ୟାତ ନରନାରାୟଣ । ଋଷିର ସ୍ୱରୂପ ଧରିଣ ॥ ୨୪
ଦୁଷ୍କର ତପ କଲେ ଯହିଁ । ଆତ୍ମାର ଶାନ୍ତି ଅଛି ରହି ॥ ୨୫
୧୦ କପିଳ ନାମେ ସିଦ୍ଧେଶ୍ୱର । ଅଟେ ପଞ୍ଚମ ଅବତାର ॥ ୨୬
ତତ୍ତ୍ୱମାନଙ୍କର ବିଷୟ । ଯହିଁରେ ହୋଇଛି ନିର୍ଣ୍ଣୟ ॥ ୨୭
ସେ ସାଂଖ୍ୟଯୋଗ କାଳବଳେ । ନାଶ ହୋଇଲା ମହୀତଳେ ॥ ୨୮
ସେ ସାଂଖ୍ୟଯୋଗ ଅନୁରାଗେ । କହିଲେ ଆସୁରିର ଆଗେ ॥ ୨୯

---

୧. ଧରଇଲେ ।

୧୧ ଅତ୍ରି ମାଗିଲେ ଯେବେ ବର । ତୋ ସମ ପୁତ୍ର ହେଉ ମୋର ॥ ୩୦
ସେ ବାକ୍ୟେ ଅସୂୟା ନ କଲେ । ଷଷ୍ଠେ ତାହାର ପୁତ୍ର ହେଲେ ॥ ୩୧
ଅଳର୍କ ନାମେ ନୃପବର । ଆବର ପ୍ରହଲାଦ ବୀର ॥ ୩୨
ଇତ୍ୟାଦି ଯେତେ ଜ୍ଞାନୀ ଜନ । ତାଙ୍କୁ କହିଲେ ଆତ୍ମଜ୍ଞାନ ॥ ୩୩
୧୨ ସପ୍ତମେ ରୁଚିଙ୍କର ଘରେ । ଜନ୍ମିଲେ ଆକୂତି-ଉଦରେ ॥ ୩୪
ଯାମ ଆଦି ଯେ ଦେବଗଣ । ତାହାଙ୍କୁ ସଙ୍ଗତେ ଘେନିଣ ॥ ୩୫
ପାଳିଲେ ଆଦି ମନ୍ୱନ୍ତର । ଯଜ୍ଞ ଅଟଇ ନାମ ତାର ॥ ୩୬
୧୩ ଅଷ୍ଟମେ ନାଭିର ମନ୍ଦିରେ । ଜନ୍ମିଲେ ମେରୁଦେବୀଠାରେ ॥ ୩୭
ଋଷଭ ନାମେ ସେ ବିଦିତ । ଯେ ସର୍ବ ଆଶ୍ରମେ ବନ୍ଦିତ ॥ ୩୮
ପ୍ରକାଶ କଲେ ସେ ମାର୍ଗକୁ । ପୂର୍ବେ ଯେ ପଣ୍ଡିତମାନଙ୍କୁ ॥ ୩୯
୧୪ ନବମେ ଋଷିଙ୍କ ଇଚ୍ଛାରେ । ସେ ପୁଣ ପୃଥୁ ରୂପ ଧରେ ॥ ୪୦
ପୃଥ୍ୱୀରୁ କଲେକ[1] ଦୋହନ । ସର୍ବ ଔଷଧି ରସମାନ ॥ ୪୧
ସେ କାରଣୁଁ ଏ ଅବତାର । ହେ ବିପ୍ରମାନେ ! ମନୋହର ॥ ୪୨
୧୫ ଚାକ୍ଷୁଷ-ମନୁ-ଶେଷକାଳେ । ଉଦଧିସଂପ୍ଳବସଲିଳେ ॥ ୪୩
ସେ ପୁଣି ମତ୍ସ୍ୟକଳେବର । ଧଇଲେ ଜଗତ-ଈଶ୍ୱର ॥ ୪୪
ଧରଣୀରୂପ[2] ନାବେ ଥୋଇ । ମନୁଙ୍କୁ ରଖିଲେ ଗୋସାଇଁ ॥ ୪୫
୧୬ ସେ ବିଭୁ[3] ଏକାଦଶେ ପୁଣ । କମଠରୂପକୁ ଧରିଣ ॥ ୪୬
ସିନ୍ଧୁ ମନ୍ଥନ୍ତେ ସୁରାସୁର । ପୃଷ୍ଠରେ ଧଇଲେ ମନ୍ଦର ॥ ୪୭
୧୭ ଦ୍ୱାଦଶ ରୂପ ଧନ୍ୱନ୍ତରି । ତ୍ରୟୋଦଶରେ ହୋଇ ନାରୀ ॥ ୪୮
ମୋହିନୀରୂପେ ଭଗବାନ । ମୋହି ଅସୁରଗଣମାନ ॥ ୪୯
ଦେବତାମାନଙ୍କୁ ଅମୃତ । ପାନ କରାଇଲେ ଅଚ୍ୟୁତ ॥ ୫୦
୧୮ ସେ ପୁଣ ଚତୁର୍ଦ୍ଦଶେ ହରି । ନୃସିଂହ ଅବତାର ଧରି ॥ ୫୧
ଘୋର ହିରଣ୍ୟକଶିପୁର । ନଖରେ ବିଦାରିଲେ ଉର ॥ ୫୨
ଯେସନେ ମନୁଜ ହେଳାରେ । ନଖେ ଘେନିଣ ତୃଣ ଚିରେ । ୫୩
୧୯ ମାଗି ଧରଣୀ ତିନିପାଦ । ହରିବାପାଇଁ ସ୍ୱର୍ଗପଦ ॥ ୫୪
ବାମନ ପଞ୍ଚଦଶେ ହେଲେ । ବଳିର ଯାଗକୁ ଗମିଲେ ॥ ୫୫

---

୧. ଯେ କଲେ ।
୨. ରୂପ = ରୂପକ । ୩. ପ୍ରଭୁ ।

| | | | | |
|---|---|---|---|---|
| ୨୦ | ରାଜାଙ୍କୁ ଦେଖି ବିପ୍ରଦ୍ରୋହୀ । | ଷୋଡ଼ଶ ଅବତାରେ ସେହି | ॥ | ୫୬ |
| | ଏକବିଂଶତି ବାର କରି । | ନିକ୍ଷତ୍ର କଲେ ବସୁନ୍ଧରୀ | ॥ | ୫୭ |
| ୨୧ | ସେ ସତ୍ୟବତୀପରାଶର- । | ତନୁଜ ବ୍ୟାସ ଅବତାର | ॥ | ୫୮ |
| | ହୋଇଲେ ସପ୍ତଦଶେ ପୁଣି । | ପ୍ରାଣୀଙ୍କି ଅଳ୍ପ-ବୁଦ୍ଧି ଜାଣି | ॥ | ୫୯ |
| | ଯେ ବେଦ ତରୁରୂପେ ଥିଲା । | ତାହାକୁ ଶାଖା ଶାଖା କଲା | ॥ | ୬୦ |
| ୨୨ | ଦେବଙ୍କ କାର୍ଯ୍ୟ କରିବାରେ । | ସେ ଅଷ୍ଟାଦଶ ଅବତାରେ | ॥ | ୬୧ |
| | ନୃପତିଶରୀରକୁ ଧରି । | ସିନ୍ଧୁବନ୍ଧନ ଆଦି କରି | ॥ | ୬୨ |
| | ନାନା ପ୍ରକାରେ ବୀର୍ଯ୍ୟମାନ । | ପ୍ରକାଶ କଲେ ଭଗବାନ | ॥ | ୬୩ |
| ୨୩ | ଊନବିଂଶତି, ବିଂଶତିରେ । | ଜନ୍ମିଣ ଯାଦବ ବଂଶରେ | ॥ | ୬୪ |
| | ସେ ରାମକୃଷ୍ଣ ବୋଲାଇଲେ । | ଭୂମିର ଭାରକୁ ହରିଲେ | ॥ | ୬୫ |
| ୨୪ | କଳିଯୁଗର କିଛି ଶେଷେ । | ଦୈତ୍ୟଙ୍କୁ ମୋହିବାର ଆଶେ | ॥ | ୬୬ |
| | କୀକଟ ଦେଶେ ହେବେ ଜାତ । | ବୁଦ୍ଧ ନାମରେ ଜିନସୁତ | ॥ | ୬୭ |
| ୨୫ | ଏ ପୁଣି ଯୁଗସଂଧିକାଳେ । | ଦୁଷ୍ଟ ହୁଅନ୍ତେ ରାଜକୁଳେ | ॥ | ୬୮ |
| | ବ୍ରାହ୍ମଣ ବିଷ୍ଣୁଯଶା ନାମ । | ତା'ଠାରୁ ହୋଇବେ ଜନମ | ॥ | ୬୯ |
| | କଳ୍କି ନାମରେ ସେ ବିଖ୍ୟାତ । | ହୋଇବେ ପୃଥ୍ୱୀରେ ଅଚ୍ୟୁତ | ॥ | ୭୦ |
| ୨୬ | ସେ ହରି ସତ୍ତ୍ୱଗୁଣାଧାର । | ଅସଂଖ୍ୟ ହୋଇ ଅବତାର | ॥ | ୭୧ |
| | ଜାତ ହୁଅନ୍ତି ତାହାଠାରୁ । | ଯେସନେ ପୂର୍ଣ୍ଣ ସରୋବରୁ | ॥ | ୭୨ |
| | ସହସ୍ର ସହସ୍ର ସଂଖ୍ୟାରେ । | ପ୍ରବାହ ଚତୁର୍ଦ୍ଦିଗେ ଝରେ | ॥ | ୭୩ |
| ୨୭ | ଋଷି ଦେବତା ମନୁମାନେ । | ତେଜସ୍ୱୀ ମନୁଙ୍କ ନନ୍ଦନେ | ॥ | ୭୪ |
| | ପ୍ରଜାପତିଙ୍କ ସହିତରେ । | ବିଷ୍ଣୁର କଳା ଏ ସଂସାରେ | ॥ | ୭୫ |
| ୨୮ | ଏ ଯେତେ ଅବତାରମାନ । | କେ ଅଂଶ କେ କଳା ବିଧାନ | ॥ | ୭୬ |
| | ଯେ କୃଷ୍ଣ ଦେବକୀନନ୍ଦନ । | ସେ ଅଟେ ସ୍ୱୟଂ ଭଗବାନ | ॥ | ୭୭ |
| | ଯୁଗେ ଯୁଗେକେ ଏ ସକଳେ । | ଜନମ ହୋଇ ଯଥାକାଳେ | ॥ | ୭୮ |
| | ଦୈତ୍ୟସକାଶୁଁ ଯେ ପୀଡ଼ିତ । | ରକ୍ଷା କରନ୍ତି ସେ ଜଗତ | ॥ | ୭୯ |
| ୨୯ | ଏ ବିଷ୍ଣୁ ଜନମରହସ୍ୟ । | ପ୍ରଯତ୍ନ ହୋଇ ଯେ ମନୁଷ୍ୟ | ॥ | ୮୦ |
| | ଭକ୍ତିରେ ଗୁଣେ ସଂଧ୍ୟାକାଳେ । | ରଜନୀ-ଅବସାନ ବେଳେ | ॥ | ୮୧ |
| | ସେ ଲୋକ ତରଇ ସଂସାର । | ଯେ ସର୍ବ ଦୁଃଖଙ୍କ ମନ୍ଦିର | ॥ | ୮୨ |

୩୦ ଶରୀରଯୋଗ ଯାର ନାହିଁ । ଜ୍ଞାନସ୍ୱରୂପ ଅଟେ ଯେହି ॥ ୮୩
ରୂପକଳ୍ପନା ସେ ଆତ୍ମାରେ । ମହତ ଆଦି ଗୁଣଦ୍ୱାରେ ॥ ୮୪
ବିଷ୍ଣୁର ମାୟାଗୁଣବଶେ । ରଚିତ ହୋଇଛି ଅଶେଷେ ॥ ୮୫
୩୧ ପବନସଙ୍ଗେ ମେଘ ଯେହ୍ନେ । ଆରୋପ କରିଣ ଗଗନେ ॥ ୮୬
ପାର୍ଥିବ ରେଣୁରୁ ସଂଭୂତ । ଧୂସରବର୍ଣ୍ଣ ବାୟୁଗତ ॥ ୮୭
ସେ ରୂପେ ଦେଖନ୍ତି ଯେ ଜୀବ । ତାହାଙ୍କ ଠାରେ ଦୃଶ୍ୟ ଭାବ ॥ ୮୮
ଅଜ୍ଞାନୀ ଲୋକେ ଆରୋପନ୍ତି । ଯେଣୁ ସେ ତତ୍ତ୍ୱ ନ ଜାଣନ୍ତି ॥ ୮୯
୩୨ ଏ ସ୍ଥୂଳ ଦେହୁଁ ଯେ ଇତର । ଅବ୍ୟକ୍ତ ଅଟେ ନିରାକାର ॥ ୯୦
ଆତ୍ମମାନଙ୍କ ପ୍ରାୟ ହୋଇ । ଯେ ହାଦେ ପ୍ରତ୍ୟକ୍ଷ ନୁହଇ ॥ ୯୧
ଇନ୍ଦ୍ରାଦିଶରୀର ପରାୟେ । ଶ୍ରୁତିଗୋଚରକୁ ନ ଯାଏ ॥ ୯୨
ଜୀବ ଅଟଇ ନାମ ତାର । ବିଖ୍ୟାତ ସେ ଲିଙ୍ଗଶରୀର ॥ ୯୩
ଯାହା ସକାଶୁଁ ପ୍ରାଣୀଙ୍କର । ଜନମ ସଂଭବେ ଅପାର ॥ ୯୪
୩୩ ଏ ସ୍ଥୂଳ ସୂକ୍ଷ୍ମ ରୂପ ଦୁଇ । ଆତ୍ମାରେ ଅବିଦ୍ୟାରୁ ହୋଇ ॥ ୯୫
ଯେବେ ଏ ପୁଣ ଜ୍ଞାନଦ୍ୱାରେ । ନିରସ୍ତ ହୁଅଇ ଆତ୍ମାରେ ॥ ୯୬
ସେ କାଳେ ଜୀବ ବ୍ରହ୍ମ ହୋଇ । ଜ୍ଞାନସ୍ୱରୂପ ସେ ଅଟଇ ॥ ୯୭
୩୪ ଯେ ବିଷ୍ଣୁମାୟା ଜଗତରେ । ଖେଳଇ ଅବିଦ୍ୟା ରୂପରେ ॥ ୯୮
ସେ ଯେବେ ପୁଣି ବିଦ୍ୟାରୂପେ । ଜାତ ହୁଅଇ କୋଟି କଳ୍ପେ ॥ ୯୯
ତେବେ ସଂପନ୍ନ ଆତ୍ମା ହୋଇ । ଆପଣା ବ୍ରହ୍ମଭାବ ପାଇ ॥ ୧୦୦
୩୫ ଯାହାର ଜନ୍ମକର୍ମ ନାହିଁ । ସକଳ ହୃଦେ ଅଛି ରହି ॥ ୧୦୧
ତାହାର ଜନ୍ମକର୍ମମାନ । ଏହି ପ୍ରକାରେ ଜ୍ଞାନୀଜନ ॥ ୧୦୨
ବର୍ଣ୍ଣନା କରନ୍ତି ସଂସାରେ । ଗୁପ୍ତ ଅଟନ୍ତି ଯେ ବେଦରେ ॥ ୧୦୩
୩୬ ଅମୋଘ ଅଟେ ଲୀଳା ଯାର । ଆପଣା ବଶ ସେ ଈଶ୍ୱର ॥ ୧୦୪
ଏ ବିଶ୍ୱସୃଷ୍ଟି ସ୍ଥିତି ନାଶ । କରଇ ନୋହି ତହିଁ ବଶ ॥ ୧୦୫
ପ୍ରାଣୀଙ୍କ ହୃଦେ ଲୁଚିଥାଇ । ଇନ୍ଦ୍ରିୟସୁଖ ଦୂରୁଁ ପାଇ ॥ ୧୦୬
ସେ ସୁଖେ ନୁହଇ ଲାଳସ । ଯେଣୁ ସେ ଇନ୍ଦ୍ରିୟଙ୍କ ଈଶ ॥ ୧୦୭
୩୭ ମନ, ବଚନେ ଭିନ୍ନ ଭିନ୍ନ । ପ୍ରକାଶେ ନାମ-ରୂପମାନ ॥ ୧୦୮
ଜଗତଧାତା ଯେ ଈଶ୍ୱର । ଲୀଳାମାନଙ୍କୁ ତାହାଙ୍କର ॥ ୧୦୯

| | | | |
|---|---|---|---|
| | ତର୍କବଳରେ ନ ଜାଣଇଁ । | କୁମତି ଲୋକ ଯେ ଅଟଇ | ॥୧୧୦ |
| | ନଟର ଚେଷ୍ଟା ଅଜ୍ଞ ପ୍ରାଣୀ । | ଯେସନେ ନ ପାରଇ ଜାଣି | ॥୧୧୧ |
| ୩୮ | ଅନନ୍ତ ଅଟେ ବୀର୍ଯ୍ୟ ଯାର । | ଯେ ବିଶ୍ୱଧାତା ଚକ୍ରଧର | ॥୧୧୨ |
| | ତାଙ୍କ ମାର୍ଗକୁ ସେ ଜାଣଇଁ । | ଯେ ପୁଣି ଅକପଟ ହୋଇ | ॥୧୧୩ |
| | ଅନୁବର୍ତ୍ତିଣ ନିରନ୍ତରେ । | ତା' ପାଦପଦ୍ମ ଆଶ୍ରେ କରେ | ॥୧୧୪ |
| ୩୯ | ଅଖିଳ ଜଗତ ଈଶ୍ୱର । | ଯେ ବାସୁଦେବ ତାଙ୍କଠାର | ॥୧୧୫ |
| | ଏକାନ୍ତ ଭକ୍ତି କଲ ଯେଣୁ । | ତୁମ୍ଭେ ହେ ଧନ୍ୟ ଅଟ ତେଣୁ | ॥୧୧୬ |
| | ତୁଟଇ ଜନମ ମରଣ । | ଯେଉଁ ଭଗତି ଜନ୍ମିଲେଣ | ॥୧୧୭ |
| ୪୦ | ଏ ଅଟେ ଭାଗବତ ନାମ । | ପୁରାଣ ବେଦବାକ୍ୟସମ | ॥୧୧୮ |
| | ବିଷ୍ଣୁ, ଚରିତେ ଅଛି ମିଶି । | ବର୍ଣ୍ଣିଲେ ଏହା ବ୍ୟାସ[୧] ଋଷି | ॥୧୧୯ |
| ୪୧ | ମୋକ୍ଷନିମିତ୍ତେ ପ୍ରାଣୀଙ୍କର । | ଏ ଧନ୍ୟ ସ୍ୱସ୍ତ୍ୟୟନ ସାର | ॥୧୨୦ |
| | ଜ୍ଞାନୀଙ୍କ ମଧ୍ୟରେ ପ୍ରଧାନ । | ଯେ ଶୁକ ଆପଣା ନନ୍ଦନ | ॥୧୨୧ |
| | ବ୍ୟାସ ତାହାଙ୍କୁ ପୂର୍ବକାଳେ । | ଏ ଭାଗବତ ଶିକ୍ଷା ଦେଲେ | ॥୧୨୨ |
| ୪୨ | ସମସ୍ତ ବେଦ ଇତିହାସ । | ସାର ଉଦ୍ଧାର ଏ ପ୍ରକାଶ | ॥୧୨୩ |
| | ସକଳ ନୃପରେ ଉତ୍ତମ । | ନୃପତି ପରୀକ୍ଷିତ ନାମ | ॥୧୨୪ |
| | ବ୍ରାହ୍ମଣଶାପୁଁ ଗଙ୍ଗାଜଳେ । | ପରମ ଋଷିଙ୍କର ମେଳେ | ॥୧୨୫ |
| | ଆଚରି ଅନଶନ ବ୍ରତ । | ରହିଣ ଥିଲେ ସେ ନିୟତ | ॥୧୨୬ |
| | ତାହାଙ୍କ ଆଗେ ଏ ପୁରାଣ । | ସେ ଶୁକ କଲେକ ବଖାଣ | ॥୧୨୭ |
| ୪୩ | ସେ ମହାତେଜା ମହାଋଷି । | ପୁରାଣ କହନ୍ତେଣ ବସି | ॥୧୨୮ |
| | ମୁଁ ସେହି ନିକଟରେ ଥିଲି । | ତାହାଙ୍କ କୃପାରୁ ଜାଣିଲି | ॥୧୨୯ |
| | ଏ ପୁଣ୍ୟ ଅଟେ ଭାଗବତ । | ଜ୍ଞାନ-ବିରକ୍ତି-ଭକ୍ତିଯୁତ[୨] | ॥୧୩୦ |
| | ଯଥାରୂପରେ ଅଛି ଜାଣି । | ନିଜ ବୁଦ୍ଧିକି ପରିମାଣି | ॥୧୩୧ |
| | ତୁମ୍ଭମାନଙ୍କୁ ଏ ପୁରାଣ । | କରାଇବଇଁ ମୁଁ ଶ୍ରବଣ | ॥୧୩୨ |

---

୧. ବ୍ରହ୍ମ ।

୨. ''ଇଦଂ ଭାଗବତଂ ପୁଣ୍ୟଂ ଭକ୍ତିଜ୍ଞାନବିରକ୍ତିମତ୍ ।''
ଏହି ଶ୍ଲୋକାର୍ଦ୍ଧ ଶ୍ରୀମଦ୍ଭାଗବତର ଅନ୍ୟ ପ୍ରାମାଣିକ ସଂସ୍କରଣମାନଙ୍କରେ ନ ଥିବା ହେତୁ ଏହାକୁ ପ୍ରକ୍ଷିପ୍ତ ଧରାଗଲା ।

| | | | | |
|---|---|---|---|---|
| ୪୪ | ଧର୍ମଜ୍ଞାନାଦି ସଙ୍ଗେ କରି | । | କୃଷ୍ଣ ଚଳନ୍ତେ ନିଜ ପୁରୀ | ।।୧୩୩ |
| | ଏ କଳିଯୁଗେ ଯେତେ ଛନ୍ତି | । | ଅଜ୍ଞାନେ ଅନ୍ଧ ସେ ଅଟନ୍ତି | ।।୧୩୪ |
| | ତାହାଙ୍କୁ ତପନସଦୃଶ | । | ହେଲା ଏ ପୁରାଣ ପ୍ରକାଶ | ।।୧୩୫ |
| | ଶ୍ରୀକୃଷ୍ଣଚରଣନଳିନ | । | ଚିନ୍ତା କରିଣ ଅନୁଦିନ | ।।୧୩୬ |
| | ହରଷ ଦୀନବନ୍ଧୁ ମତି | । | ଯେଣେ ତରିବ ଭବଭୀତି | ।।୧୩୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଭଗବଦବତାରବର୍ଣ୍ଣନଂ
ନାମ ତୃତୀୟୋଽଧ୍ୟାୟଃ ।।

## ଚତୁର୍ଥୋଽଧ୍ୟାୟଃ

ତୁର୍ଯ୍ୟେ ଭାଗବତାରମ୍ଭ କାରଣତ୍ୱେନ ବର୍ଣ୍ଣ୍ୟତେ ।
ବ୍ୟାସସ୍ୟାପରିତୋଷସ୍ତୁ ତପଃପ୍ରବଚନାଦିଭିଃ ।।

ଶ୍ରୀବ୍ୟାସ ଉବାଚ

| | | | | |
|---|---|---|---|---|
| ୧ | କହିବି ବୋଲି ଭାଗବତ | । | ପ୍ରତିଜ୍ଞା କରନ୍ତେ ସେ ସୂତ | ।। ୧ |
| | ଚିର୍‌କାଳକୁ ଦୀକ୍ଷା ଘେନି | । | ଯେତେକ ଥିଲେ ତହିଁ ମୁନି | ।। ୨ |
| | ତାହାଙ୍କ ମଧ୍ୟେ କୁଳପତି | । | ବୃଦ୍ଧ ଶୌନକ କରି ସ୍ତୁତି | ।। ୩ |
| | କହିଲେ ମଧୁର ବଚନ | । | ଜାଣନ୍ତି ନାନା ରକମାନ | ।। ୪ |

ଶ୍ରୀଶୌନକ ଉବାଚ

| | | | | |
|---|---|---|---|---|
| ୨ | ହେ ସୂତ ସୂତ ମହାଧୀର | । | ବକତାଙ୍କର ମଧ୍ୟେ ବର | ।। ୫ |
| | ଯେ ପୁଣ୍ୟ ଭାଗବତ ବାଣୀ | । | ଶୁକ ଅଛନ୍ତି ପୂର୍ବେ ଭଣି | ।। ୬ |
| | ସେ କଥା ଆମ୍ଭମାନଙ୍କର | । | ଆଗରେ କରସି ବିସ୍ତାର | ।। ୭ |
| ୩ | ହେଲା ଏ କେବଣ ଯୁଗରେ | । | କେଉଁ ସ୍ଥାନରେ କି ହେତୁରେ | ।। ୮ |
| | କାହାର ବୋଲେ ବେଦବ୍ୟାସ | । | କଲେ ଏ ସଂହିତା ପ୍ରକାଶ | ।। ୯ |
| ୪ | ଶୁକ ସେ ବ୍ୟାସଙ୍କ କୁମର | । | ସମଦରଶୀ ଯୋଗୀବର | ।। ୧୦ |
| | ଆତ୍ମାରେ ଭେଦ ନ ଦେଖନ୍ତି | । | ଏକାନ୍ତମତି ସେ ଅଟନ୍ତି | ।। ୧୧ |

ସେ ଗୁପ୍ତରୂପୀ ତାଙ୍କ ଚିତ୍ତ । ମାୟାରେ ନୁହଇ ମୋହିତ ॥ ୧୨
ମୂଢ଼ ଜନଙ୍କ ପ୍ରାୟେ ହୋଇ । ତଥାପି ଚେଷ୍ଟା ସେ କରଇ ॥ ୧୩
୫ ସନ୍ନ୍ୟାସ କରି ଦିଗମ୍ବର । ହୋଇଣ ଚଳନ୍ତେ କୁମର ॥ ୧୪
ତାହାଙ୍କ ପଛେ ବେଦବ୍ୟାସ । ଗୋଡ଼ାଇଛନ୍ତି ପିନ୍ଧି ବାସ ॥ ୧୫
ଦେବକନ୍ୟାଏ ଏହି କାଳେ । ବିହାର କରୁଥିଲେ ଜଳେ ॥ ୧୬
ବ୍ୟାସଙ୍କୁ ଦେଖି ଲଜ୍ଜା ପାଇ । ପିନ୍ଧିଲେ ବସ୍ତ୍ରମାନ ଯାଇ ॥ ୧୭
ଦେଖି ଏମନ୍ତ ଅଦ୍‌ଭୁତ । ପୁଚ୍ଛନ୍ତି ସତ୍ୟବତୀସୁତ ॥ ୧୮
ଏ ଶୁକ ତନୟ ମୋହର । ତରୁଣ ବୟସ ଏହାର ॥ ୧୯
ଏହାକୁ ଦେଖି ତୁମ୍ଭେମାନେ । ଲଜ୍ଜାକୁ ନ ଲଭିଲ ମନେ ॥ ୨୦
ମୁଁ ତ ଅଟଇ ବୃଦ୍ଧ ଦ୍ୱିଜ । ମୋତେ କିପାଇଁ କଲ ଲାଜ ॥ ୨୧
ଶୁଣିଣ ବୋଇଲେ ଯୁବତୀ । ସ୍ତିରୀପୁରୁଷ ଭେଦମତି ॥ ୨୨
ଅଛଇ[୧] ତୁମ୍ଭଠାରେ ଯେଣୁ । ବସ୍ତ୍ର ପିନ୍ଧିଲୁ ଆମ୍ଭେ ତେଣୁ ॥ ୨୩
ପବିତ୍ରଦୃଷ୍ଟି ତୁମ୍ଭ ସୁତ । ନାହିଁ ତାହାର ଭେଦଚିତ୍ତ ॥ ୨୪
୬ ଏମନ୍ତେ ଉଦାର ଚରିତ । ଅଟନ୍ତି ଯେଉଁ ବ୍ୟାସସୁତ ॥ ୨୫
ସେ କୁରୁଜାଙ୍ଗଳ ଦେଶରେ । ପ୍ରବେଶ ହୋଇ ପ୍ରଥମରେ ॥ ୨୬
ଉନ୍ମତ୍ତ ମୂକ ଜଡ଼ ପ୍ରାଏ । ଭ୍ରମନ୍ତେ ପୁଣ ହସ୍ତିନାଏ ॥ ୨୭
କେମନ୍ତେ ତାଙ୍କୁ ପୁରଲୋକ । ଜାଣିଲେ ଅଟେ ଏହୁ ଶୁକ ॥ ୨୮
୭ ସେ ପରୀକ୍ଷିତ ରାଜଋଷି । ଏ ମୁନିସଂଗତରେ ବସି ॥ ୨୯
କି ରୂପେ ପ୍ରଶ୍ନ କଲେ ଜାତ । ହେଲା ଯହିଁ ଏ ଭାଗବତ ॥ ୩୦
୮ ସେ ଗୃହୀମାନଙ୍କର ଦ୍ୱାରେ । ମିଳିଣ[୨] ଭିକ୍ଷା ସମୟରେ ॥ ୩୧
ଗୋଦୋହମାତ୍ର କାଳ ଥାନ୍ତି । ତା'ଗୃହ ପବିତ୍ର କରନ୍ତି ॥ ୩୨
୯ ହେ ସୂତ ! ଅଭିମନ୍ୟୁସୁତ । ଅଟଇ ମହାଭାଗବତ ॥ ୩୩
ଅତି ଅଦ୍ଭୁତ ଜନ୍ମ ତାର । ଯେବା ଅଛନ୍ତି କର୍ମ ଆର ॥ ୩୪
ଆମ୍ଭର ଆଗରେ ସେମାନ । ବିସ୍ତାରି କହସି ବହନ ॥ ୩୫
୧୦ ସେ ରାଜା ଅଟେ ଚକ୍ରବର୍ତ୍ତୀ । ପାଣ୍ଡବ ବଂଶେ ଖ୍ୟାତକୀର୍ତ୍ତି ॥ ୩୬
ରାଜଲକ୍ଷ୍ମୀକି ଅନାଦର । କରିଣ ଗଙ୍ଗାର ତଟର ॥ ୩୭
କେଉଁ ହେତୁରେ ଅନଶନ । ବ୍ରତକୁ କଲେ ସେ ବିଧାନ ॥ ୩୮

---

୧. ଏ ଅଛି । ୨. ମିଳନ୍ତେ ।

୧୧ ଆପଣା ମଙ୍ଗଳକାରଣେ । ଧନ ଆଣିଣ ଶତ୍ରୁଗଣେ ॥ ୩୯
ଚରଣପୀଠକୁ ଯାହାର । ନିତ୍ୟେ କରନ୍ତି ନମସ୍କାର ॥ ୪୦
ସେ ବୀର କେବଣ ହେତୁରେ । ଆପଣା ପ୍ରାଣସହିତରେ ॥ ୪୧
ଦୁସ୍ତ୍ୟଜ ସଂପତ୍ତି ଯେ ଥିଲା । ଛାଡ଼ିବି ବୋଲି ତା ବାଞ୍ଛିଲା ॥ ୪୨
୧୨ କୃଷ୍ଣଙ୍କୁ କରି ଉପାସନ । ସଂସାରେ ଛନ୍ତି ଯେତେ ଜନ ॥ ୪୩
ସେ ଲୋକସମୃଦ୍ଧି ସଂପତ୍ତି । ସୁଖ ନିମିତ୍ତେ କିଇଥାନ୍ତି ॥ ୪୪
ଆପଣା ନିମିତ୍ତେ ଶରୀର । ଧରନ୍ତି ନାହିଁ ସେହୁ ନର ॥ ୪୫
ପ୍ରାଣୀମାନଙ୍କର ଆଶ୍ରୟ । ଅଟଇ ଯେଉଁ ନିଜ କାୟ ॥ ୪୬
ଏ଼ ରାଜା ବଇରାଗ୍ୟ ପାଇ । ସେ ଦେହ ଛାଡ଼ିଲା କିପାଇଁ ॥ ୪୭
୧୩ ସେ ସର୍ବ ଆମ୍ଭର ଅଗ୍ରତେ । କହ ଯା' ପଚାରିଛୁଁ ତୋତେ ॥ ୪୮
ବେଦବିଷୟରୁ ଇତର । ଯେତେକ ବଚନ ଗୋଚର ॥ ୪୯
ତହିଁ ପାରକୁ ଅଛ ଯାଇଁ । ଏମନ୍ତ ରୂପେ ମୁଁ ମଣଇଁ ॥ ୫୦

ଶ୍ରୀସୂତ ଉବାଚ

୧୪ ଦ୍ୱାପର ନାମରେ ତୃତୀୟ । ଯୁଗ ହୁଅନ୍ତେ ବିପର୍ଯ୍ୟୟ ॥ ୫୧
ବିଷ୍ଣୁର ଅଂଶେ ବ୍ୟାସମୁନି । ଜନ୍ମିଲେ ଅଟନ୍ତି ସେ ଜ୍ଞାନୀ ॥ ୫୨
ପରାଶରର ବୀର୍ଯ୍ୟେ ଜାତ । ବସୁତନୁଜା ତାଙ୍କ ମାତ ॥ ୫୩
୧୫ ସେ ମହରଷି ଏକ କାଳେ । ପ୍ରଭାତେ ସରସ୍ୱତୀଜଳେ ॥ ୫୪
ସ୍ନାନ ସାରିଣ ଏକାନ୍ତରେ । ବସିଲେ ନିଜ ଆଶ୍ରମରେ ॥ ୫୫
୧୬ ଭୂତ ଭବିଷ୍ୟ କଥାମାନ । ଜାଣେ ସେ ସକଳ ବିଧାନ ॥ ୫୬
ଅଲକ୍ଷ୍ୟ ଅଟେ ଗତି ଯାର । ସେ କାଳ ଅଟେ ବଳୀଆର ॥ ୫୭
ତାହା ସକାଶୁଁ[୧] ଆନ ଆନ । ହୋଇଲା ଯୁଗଧର୍ମମାନ ॥ ୫୮
୧୭ ଯୁଗକୁ ଯୁଗ ପ୍ରାଣୀଙ୍କର । କାଳରୁ ବଳ ହେଲା ଦୂର ॥ ୫୯
ଶ୍ରଦ୍ଧାବିହୀନ ସତ୍ତ୍ୱହୀନ । ଦୁର୍ବୁଦ୍ଧି ଅଳପ ଜୀବନ ॥ ୬୦
୧୮ ଅଭାଗ୍ୟବନ୍ତ ହେବେ ପ୍ରାଣୀ । ଦିବ୍ୟଚକ୍ଷୁରେ ଏହା ଜାଣି ॥ ୬୧
ସମସ୍ତ ବର୍ଣ୍ଣାଶ୍ରମଙ୍କର । ହିତ ଚିନ୍ତିଲେ ମୁନିବର ॥ ୬୨
୧୯ ହୋତାରେ ଲକ୍ଷିତ ହୋଇଣ । ଯେ ଚାରି ଋତ୍ୱିଜ ବ୍ରାହ୍ମଣ ॥ ୬୩
ବୈଦିକ କର୍ମ ସେ କରିବେ । ପ୍ରାଣୀଏ ତେଣେ ଶୁଦ୍ଧ ହେବେ ॥ ୬୪

---

୧. ସ୍ୱକାଶୁଁ ।

ଏମନ୍ତ ବିଚାରିଣ ମୁନି । ଯଜ୍ଞବୃଦ୍ଧିକି ମନେ ଘେନି ॥ ୬୫
ଯେ ଏକ ହୋଇଥିଲା ଆଗ । ସେ ବେଦ କଲେ ଚାରିଭାଗ ॥ ୬୬
୨୦ ସେ ଋକ ଯଜୁ ସାମ ତିନି । ଅଥର୍ବ ସଙ୍ଗେ ମହାମୁନି ॥ ୬୭
ଉଦ୍ଧାର କଲେ ବେଦ ଚାରି । ପ୍ରାଣୀଙ୍କ ମଙ୍ଗଳ ବିଚାରି ॥ ୬୮
ପଞ୍ଚମ ବେଦ ଇତିହାସ । ପୁରାଣ ଯେହୁ ଅଷ୍ଟାଦଶ ॥ ୬୯
୨୧ ପଇଲ ନାମେ ମହାଋଷି । ପ୍ରଥମ ଋକବେଦ ଘୋଷି ॥ ୭୦
ଯେ କବି ଜଇମିନି ଥିଲେ । ସେ ସାମବେଦକୁ ପଢ଼ିଲେ ॥ ୭୧
ଯେ ମୁନି ବଇଶମ୍ପାୟନ । କଲେ ସେ ଯଜୁକୁ ଗାୟନ ॥ ୭୨
୨୨ ଅଥର୍ବାଙ୍ଗିରସ ବଖାଣ । କଲେକ ସୁମନ୍ତ ଦାରୁଣ ॥ ୭୩
ମୋ ପିତା ରୋମହରଷଣ । ପଢ଼ିଲେ ସକଳ ପୁରାଣ ॥ ୭୪
୨୩ ସେ ଋଷିମାନେ ପୁଣ କାଳେ । ଯେ ଯାହା ବେଦକୁ ନିଶ୍ଚଳେ ॥ ୭୫
ଶିଷ୍ୟମାନଙ୍କୁ ପଢ଼ାଇଲେ । ସେ ଶିଷ୍ୟ ପ୍ରଶିଷ୍ୟଙ୍କୁ ଦେଲେ ॥ ୭୬
ବେଦମାନଙ୍କୁ ଏ ରୂପରେ । ବାଣ୍ଟିଲେ ଅନେକ ପ୍ରକାରେ ॥ ୭୭
ସେହି କାଳରୁ ଚାରି ବେଦେ । ପ୍ରଚରିଲେ ସେ ଶାଖାଭେଦେ ॥ ୭୮
୨୪ ବେଦଙ୍କୁ ବୁଦ୍ଧିହୀନ ନରେ । ଜାଣିମେ ଯେମନ୍ତ ପ୍ରକାରେ ॥ ୭୯
ଏମନ୍ତ କଲେ ବେଦବ୍ୟାସ । ଯେଣୁ ସେ ଦୀନଜନବଶ ॥ ୮୦
୨୫ ସ୍ତ୍ରୀ, ଶୂଦ୍ର, ଦ୍ୱିଜାଧମଙ୍କର । ବେଦ ନୋହେ ଶ୍ରୁତିଗୋଚର ॥ ୮୧
ମଙ୍ଗଳପ୍ରାପ୍ତିକି ସାଧନ । ଅଟନ୍ତି ଯେଉଁ କର୍ମମାନ ॥ ୮୨
ତହିଁରେ ମୂଢ଼ମାନଙ୍କର । ଶ୍ରେୟ ହୋଇବ ଏ ପ୍ରକାର ॥ ୮୩
ଏଣୁ କୃପାରେ ବେଦବ୍ୟାସ । କଲେ ସେ ଭାରତ ପ୍ରକାଶ ॥ ୮୪
୨୬ ଏ ରୂପେ ପ୍ରାଣୀମାନଙ୍କର । ମଙ୍ଗଳ କରନ୍ତେ ବିଚାର ॥ ୮୫
ସବୁ ପ୍ରକାରେ ତାଙ୍କ ମନ । କେବେହେଁ ନୋହିଲା ପ୍ରସନ୍ନ ॥ ୮୬
୨୭ ପବିତ୍ର ସରସ୍ୱତୀକୂଳେ । ରହିଲେ ମନ-ଅନିର୍ମଳେ ॥ ୮୭
ବସିଲେ ହୋଇଣ ଏକାନ୍ତ । ତର୍କିଣ ବୋଇଲେ ଏମନ୍ତ ॥ ୮୮
୨୮ ମୁଁ ବ୍ରହ୍ମଚର୍ଯ୍ୟ ବ୍ରତ ଧରି । ବେଦ ପଢ଼ିଲି ଶେଷ କରି ॥ ୮୯
ଗୁରୁଙ୍କୁ ଅନଳଙ୍କୁ ଚିତ୍ତେ । ମାନିଲି ଅକପଟ ମତେ ॥ ୯୦
ଗୁରୁମାନଙ୍କ ଆଜ୍ଞା ଶିରେ । ଘେନିଲି ବିନୟ ଭାବରେ ॥ ୯୧
୨୯ ଭାରତ ରଚନାକପଟ । ବେଦାର୍ଥ କଲି ମୁଁ ପ୍ରକଟ ॥ ୯୨
ସ୍ତ୍ରୀ, ଶୂଦ୍ର ଆଦି ଯାହା ଶୁଣି । ପାରନ୍ତି ଧର୍ମ ଅର୍ଥ ଜାଣି ॥ ୯୩

୩୦ ଏମନ୍ତ ହେଲେହେଁ ମୋହର । ଯେ ଆତ୍ମା ବ୍ୟାପିଛି ଶରୀର ।। ୯୪
ବ୍ରହ୍ମତେଜସ୍ୱୀମାନଙ୍କର । ମଧ୍ୟରେ ହୋଇଲେହେଁ ସାର ।। ୯୫
ସ୍ୱରୂପେ ଅସମ୍ପନ୍ନ ପ୍ରାୟେ । ମୋର ମନକୁ ପ୍ରତ୍ୟେ ହୋଏ ।। ୯୬
୩୧ କିବା ବୈଷ୍ଣବ ଧର୍ମମାନ । ବିଶେଷି ନ କଲି ବ୍ୟାଖ୍ୟାନ ।। ୯୭
ସେ ଧର୍ମମାନ ଅତିଶୟ । ପରମହଂସଙ୍କର ପ୍ରିୟ ।। ୯୮
ସେ ନିଶ୍ଚେ ପ୍ରିୟ ଅଚ୍ୟୁତର । ବର୍ଣ୍ଣନା ଉଚିତ ତାଙ୍କର ।। ୯୯
୩୨ ଏମନ୍ତେ ଖେଦ ଲଭି ମନ । ଆତ୍ମାକୁ ମଣନ୍ତେ ସେ ହୀନ[୧] ।।୧୦୦
ନାରଦ ସରସ୍ୱତୀତୀରେ । ମିଳିଲେ ତାଙ୍କ ଆଶ୍ରମରେ ।।୧୦୧
୩୩ ନାରଦ-ଆଗମନ ଦେଖି । ତକ୍ଷଣେ ଆସନ ଉପେକ୍ଷି ।।୧୦୨
ପୂଜିଲେ ତାଙ୍କୁ ବିଧିମତେ । ସୁରପୂଜିତ ସେ ଜଗତେ ।।୧୦୩
ଶ୍ରୀକୃଷ୍ଣଚରଣ ପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ।।୧୦୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ନାରଦାନୁଗମନଂ
ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମୋଽଧ୍ୟାୟଃ

ପଞ୍ଚମେସର୍ବଧର୍ମେଭ୍ୟୋହରିକୀର୍ତ୍ତନଗୌରବଂ ।
ବ୍ୟାସଚିତ୍ତପ୍ରସାଦାୟ ନାରଦେନୋପଦିଶ୍ୟତେ ।।

ଶ୍ରୀସୂତ ଉବାଚ

୧ ସୁଖେ ନାରଦପାଶେ ବସି । ଅଛନ୍ତି ବ୍ୟାସ ମହରଷି ।। ୧
ହସିଣ ବୀଣା ହସ୍ତେ ଘେନି । କହିଲେ ତାଙ୍କୁ ଦେବମୁନି ।। ୨

ଶ୍ରୀନାରଦ ଉବାଚ

୨ ଶରୀର-ମନ-ସଂଯୋଗରେ । ଯେ ଆତ୍ମା ଅଛି ତୁମ୍ଭଠାରେ ।। ୩
ତେଣେ ସେ ହୋଏଟିକି ତୋଷ । ହେ ମହାଭାଗ ବେଦବ୍ୟାସ ।। ୪
୩ ଜାଣିମା ନିମିତ୍ତେ ମନରେ । ପ୍ରାଣୀ ଯେତେକ ଇଚ୍ଛା କରେ ।। ୫
ତୁମ୍ଭର ସେ ସକଳ କଥା । ସମ୍ପନ୍ନ ହୋଇଛି ସର୍ବଥା ।। ୬

---
୧. ଦୀନ ।

| | | | | | |
|---|---|---|---|---|---|
| | ସକଳ ଅର୍ଥରେ ପୂରିତ | । | ଯେ ଅଟେ ଅତି ଅଦଭୂତ | ॥ | ୭ |
| | ଏମନ୍ତ ଭାରତ ଆଖ୍ୟାନ | । | ଯେ ତୁମ୍ଭେ କରିଛ ରଚନ | ॥ | ୮ |
| ୪ | ଯେ ବ୍ରହ୍ମ ସନାତନ ପୁଣି | । | ତାହା ବିଚାରି ଅଛ ଜାଣି | ॥ | ୯ |
| | ତଥାପି ଅକୃତାର୍ଥ ପ୍ରାୟେ | । | ଆତ୍ମାକୁ ଶୋଚନା କିମ୍ପାଏ | ॥ | ୧୦ |

## ଶ୍ରୀବ୍ୟାସ ଉବାଚ

| | | | | | |
|---|---|---|---|---|---|
| ୫ | ତୁମ୍ଭେ ଯେତେକ ଅଛ କହି | । | ସେ ସବୁ ଅଛି ମୋର ଠହିଁ | ॥ | ୧୧ |
| | ତଥାପି ଶରୀର ମାନସ | । | ଆତ୍ମା ନୁହଁଇ ମୋର ତୋଷ | ॥ | ୧୨ |
| | ଏଥିରେ ହେତୁକୁ ନ ଜାଣି | । | ତୁମ୍ଭଙ୍କୁ ପଚାରୁଛୁଁ ପୁଣି | ॥ | ୧୩ |
| | ତୁମ୍ଭେ ଯେ ବ୍ରହ୍ମାଙ୍କ ନନ୍ଦନ | । | ଅଗାଧ[୧] ଅଟେ ତୁମ୍ଭ ଜ୍ଞାନ | ॥ | ୧୪ |
| ୬ | ସକଳ କାର୍ଯ୍ୟ କାରଣର | । | ଯେହୁ ଅଟଇ ଅଧୀଶ୍ୱର | ॥ | ୧୫ |
| | ଜଗତ ସର୍ଜନ ପାଳନ | । | ଯେ ଅବା ସଂହାର ବିଧାନ | ॥ | ୧୬ |
| | ସଂକଳ୍ପମାତ୍ରେ ଗୁଣଦ୍ୱାରେ | । | କରି ତା' ନ ମିଶେ କାହିଁରେ | ॥ | ୧୭ |
| | ଏମନ୍ତ ପୁରୁଷ ପୁରାଣ | । | ସେବିଛ ଯେଣୁ ଅନୁକ୍ଷଣ | ॥ | ୧୮ |
| | ସକଳ ଗୁପତ ବିଚାର | । | ଏ ଘେନି ତୁମ୍ଭଙ୍କୁ ଗୋଚର | ॥ | ୧୯ |
| ୭ | ରବିର ପ୍ରାୟ ପର୍ଯ୍ୟଟନ | । | କରନ୍ତେ ତୁମ୍ଭେ ତ୍ରିଭୁବନ | ॥ | ୨୦ |
| | ଜାଣ ପ୍ରାଣୀଙ୍କ ଅଭ୍ୟନ୍ତର | । | ଯେସନେ ଅନ୍ତର ସମୀର | ॥ | ୨୧ |
| | ମୁଁ ପୁଣି ପରଂବ୍ରହ୍ମଠାରେ | । | *ନିଷ୍ଣାତ ହୋଇଛି ଯୋଗରେ | ॥ | ୨୨ |
| | ଆଚରି ନାନା ବ୍ରତମାନ | । | ବେଦ କରିଛି ଅଧ୍ୟୟନ | ॥ | ୨୩ |
| | ଅତ୍ୟନ୍ତ ନ୍ୟୂନ ଭାବ ମୋର | । | [୨]କି ଅର୍ଥେ କହ ସେ ବିଚାର | ॥ | ୨୪ |

## ଶ୍ରୀନାରଦ ଉବାଚ

| | | | | | |
|---|---|---|---|---|---|
| ୮ | ନିର୍ମଳ ଭଗବାନଯଶ | । | ତୁମ୍ଭେ ନ କହିଲ ବିଶେଷ | ॥ | ୨୫ |
| | ଯେବଣ ଧର୍ମ ଆଦି ଜ୍ଞାନେ | । | ସେ ହରି ତୋଷ ନୋହେ ମନେ | ॥ | ୨୬ |
| | ସେ ଜ୍ଞାନ ନିଉନ ଅଟଇ | । | ମନେ ମୁଁ ଏମନ୍ତ ମଣଇଁ | ॥ | ୨୭ |

---

୧. ଅମୋଘ ।

* ଇଜ୍ୟାଚାର-ଦୟା-ହିଂସାଦାନ-ସ୍ୱାଧ୍ୟାୟକର୍ମଣାଂ ।
ଅୟଂତୁ ପରମୋ ଧର୍ମୋ ଯଦ୍‌ଯୋଗେନାତ୍ମଦର୍ଶନମ୍ ॥ (ଯାଜ୍ଞବଲ୍କ୍ୟ)

୨. କିମର୍ଥେ ।

୯ ଧର୍ମାଦି ଯେତେ ଅର୍ଥମାନ । ଯେ ଅବା ତାହାଙ୍କ ସାଧନ ॥ ୨୮
ସେମାନ ଯେମନ୍ତ ପ୍ରକାରେ । ବର୍ଣ୍ଣିଲ ପ୍ରଧାନ ରୂପରେ ॥ ୨୯
ସେ ରୂପେ ମହିମା କୃଷ୍ଣର । ବର୍ଣ୍ଣିଲ ନାହିଁ ମୁନିବର ॥ ୩୦
୧୦ ଅତିବିଚିତ୍ର ପଦମାନେ । ଥାଆନ୍ତି ଯେବଣ ବଚନେ ॥ ୩୧
ବିଶ୍ୱପାବନ ହରିଯଶ । ସେ ଯେବେ ନ କରେ ସ୍ୱରଶ ॥ ୩୨
ତାହାକୁ କାକତୀର୍ଥ କହି । କେ ଅବା ତହିଁ ଅବଗାହି ॥ ୩୩
କାକସମାନ କାମୀଜନେ । ରମନ୍ତି ଯେଣୁ ସେ ବଚନେ ॥ ୩୪
ସତ୍ତ୍ୱପ୍ରଧାନ ଯେ ମାନସ । ତହିଁରେ ଅଟନ୍ତି ଯେ ହଂସ ॥ ୩୫
ଯେ ବ୍ରହ୍ମ ଅତି କମନୀୟ । ସେ ଅଟେ ତାହାଙ୍କ ଆଶ୍ରୟ ॥ ୩୬
ଏମନ୍ତ ଯତିମାନେ ଯହିଁ । କ୍ଷଣେହେଁ ବିହରନ୍ତି ନାହିଁ ॥ ୩୭
୧୧ ସେ ବାକ୍ୟପ୍ରୟୋଗ ସଂସାରେ । ଜନସମୂହ ପାପ ହରେ ॥ ୩୮
ଅଶୁଦ୍ଧ ବାକ୍ୟ ଅତିରେକେ । ଥିଲେହେଁ ଯହିଁ ପ୍ରତିଶ୍ଳୋକେ ॥ ୩୯
ଅନନ୍ତ ଯଶରେ ଅଙ୍କିତ । ନାମେ ଥାଆନ୍ତି ଅବିରତ ॥ ୪୦
ସାଧୁଏ ଯେଉଁ ନାମମାନ । ଶୁଣନ୍ତି କରନ୍ତି ଗାୟନ ॥ ୪୧
ଶ୍ରୋତାବକତା-ଅଭାବରେ । ଗୁଣନ୍ତି ଆପଣା ମନରେ ॥ ୪୨
୧୨ ବ୍ରହ୍ମବିଷୟେ ଯେଉଁ ଜ୍ଞାନ । ଅଟେ ନିର୍ମଳ ନିରଞ୍ଜନ ॥ ୪୩
ଅଚ୍ୟୁତଭକ୍ତିରେ ବର୍ଜିତ । ହେଲେ ସେ ନୁହଇ ଶୋଭିତ ॥ ୪୪
ଯେ କାମ୍ୟ କର୍ମ ଅବିରତେ । ଅଭଦ୍ର ଅଟଇ ଜଗତେ ॥ ୪୫
ଈଶ୍ୱରଠାରେ ତାହା ନେଇ । ଯେବେ ଅର୍ପଣ ନ କରଇ ॥ ୪୬
ସେ କାହୁଁ ପାଇବ ଶୋଭନ । ଯେ ଅଟେ କାରଣବିହୀନ ॥ ୪୭
୧୩ ଏ ଘେନି ତୁମ୍ଭେ ତ ମହତ । ଅମୋଘମତି ସତ୍ୟରତ ॥ ୪୮
ପବିତ୍ର ଅଟେ ତୁମ୍ଭ ଯଶ । ବ୍ରତହିଁ କରିଛ ଅଶେଷ ॥ ୪୯
ଅଖିଳ ବନ୍ଧନାଶପାଇଁ । ବସି ନିଶ୍ଚଳ ଚିତ୍ତ ହୋଇ ॥ ୫୦
ଶ୍ରୀକୃଷ୍ଣଚରିତ ସୁମର । ତେଣେ ପ୍ରବନ୍ଧ ଏକ କର ॥ ୫୧
୧୪ ହରିଚରିତ ତେଜି ଦୂରେ । ଯେ ଆନ କହିତ[୧] ବିଚାରେ ॥ ୫୨
ତାର ବୁଦ୍ଧିରେ ଆନ ଆନ । ସ୍ଫୁରଇ ନାମରୂପମାନ ॥ ୫୩

୧. କହିତ = କହିବାକୁ ।

ତେଣେ ତା' ବୁଦ୍ଧି ନୋହେ ସ୍ଥିର । ଯେସନେ ସଲିଳମଧ୍ୟର ॥ ୫୪
ନାବ ନ ରହେ ସ୍ଥିର ହୋଇ । ପବନେ ଆଘାତକୁ ପାଇ ॥ ୫୫
୧୫ ଯେ କାମ୍ୟ କର୍ମ ଆଦିମାନ । ନିନ୍ଦିତ ଅଟେ ଅଶୋଭନ ॥ ୫୬
ସ୍ୱଭାବେ ଅନୁରାଗୀ ହୋଇ । ଲୋକ ପ୍ରବର୍ତ୍ତିଥାଏ ତହିଁ ॥ ୫୭
ଧର୍ମ ବୋଲିଣ ସେ କଥାକୁ । ଶିକ୍ଷା ଦିଅନ୍ତେ ମନୁଷ୍ୟଙ୍କୁ ॥ ୫୮
ଏ ଅତି ଅନ୍ୟାୟ ତୁମ୍ଭର । ଯେବଣ ବାକ୍ୟୁଁ ଆନ ନର ॥ ୫୯
ଏ ମୁଖ୍ୟ ଧର୍ମ ବୋଲି କରି । ସେ କାମ୍ୟ କର୍ମ ମନେ ଧରି ॥ ୬୦
*ଜାଣିଲା ଲୋକ ନିବାରିଲେ । **ନ ଘେନେ ଚିତ୍ତେ ତାହା ଭଲେ ୬୧
୧୬ ଅନନ୍ତପାର ଯେ ଈଶ୍ୱର । ନିବୃତ୍ତିମାର୍ଗରେ ତାହାର ॥ ୬୨
ସୁଖକୁ କରଇ ଗୋଚର । ପଣ୍ଡିତ ଅଟେ ଯେଉଁ ନର ॥ ୬୩
ଦେହ ଆଦିରେ ଅଭିମାନ । କରଣ ଥାଇ ଯେଉଁ ଜନ ॥ ୬୪
ସତ୍ତ୍ୱାଦି ଗୁଣେ ବର୍ତ୍ତିଥାଇଁ । ଯେ ଲୋକ ତାହା ଭଲପାଇଁ ॥ ୬୫
ପ୍ରଭୁଙ୍କ ଚେଷ୍ଟାକୁ ପ୍ରକାଶ । କର ତୁମ୍ଭେ ହେ ବେଦବ୍ୟାସ ॥ ୬୬
୧୭ ଯେ ନିଜ ଧର୍ମ ଆପଣାର । ସେ କଥା କରି ଅତି ଦୂର ॥ ୬୭
ହରିର ଚରଣ ମଳିନ । ସେବା କରନ୍ତେ ଯେଉଁ ଜନ ॥ ୬୮
ଭଜନେ ସିଦ୍ଧ ନୋହି ଥାଇ । ଦଇବଯୋଗରେ ମରଇ ॥ ୬୯
ଯହିଁ ତହିଁରେ ସେ ଜନ୍ମିଲା । ତାର କି ଅମଙ୍ଗଳ ହେଲା ॥ ୭୦
ହରିଙ୍କି ନ କରି ଭଜନ । ସ୍ୱଧର୍ମ ଆଚରେ ଯେ ଜନ ॥ ୭୧
ସ୍ୱଧର୍ମ ଆଚରୁଁ କେବଣ । ଅର୍ଥକୁ ଲଭିଲା ସେ ପୁଣ ॥ ୭୨
୧୮ ବ୍ରହ୍ମାର ଠାବରୁ ସ୍ଥାବର । ପର୍ଯ୍ୟନ୍ତେ ଯେତେକ ଶରୀର ॥ ୭୩
ସେ ଦେହ ବହି ଜୀବମାନେ । ଲଭନ୍ତି ନାହିଁ ଯା' ଭୁବନେ ॥ ୭୪
ତାହା ଲଭିବାକୁ ଯତନ । କରିବ ଯେ ପଣ୍ଡିତ ଜନ ॥ ୭୫

---

* ନ କର୍ମଣା ନ ପ୍ରଜୟା ଧନେନ ।
ତ୍ୟାଗନୈକେନ ଅମୃତତ୍ୱମାନଶୁଃ ॥ ଇତି ଶ୍ରୁତିଃ

** ତତ୍ରୈବଂ ଶକ୍ୟତେ ବକ୍ତୁଂ ଯେଽନ୍ଧପଙ୍ଗ୍ୱାଦୟୋ ନରାଃ ।
ଗୃହସ୍ଥତ୍ୱଂ ନ ଶକ୍ୟନ୍ତେ କର୍ତ୍ତୁଂ ତେଷାମୟଂ ବିଧିଃ ॥
ନୈଷ୍ଠିକଂ ବ୍ରହ୍ମଚର୍ଯ୍ୟଂ ବା ପରିବ୍ରାଜକତାପିବା ।
ତୈରବଶ୍ୟଂ ଗ୍ରହୀତବ୍ୟା ତେନାଦାବେତଦୁଚ୍ୟତେ ॥ (କୁମାରିଲ ଭଟ୍ଟ)

*ଦୁଃଖକୁ ନ ଲୋଡ଼ଇ ପ୍ରାଣୀ । ସେ ଯେହ୍ନେ ମିଳେ ପୁଣ ପୁଣି ।। ୭୬
କାଳବେଗରେ ସେ ପ୍ରକାରେ । ସୁଖ ହିଁ ମିଳେ ସବୁଠାରେ ।। ୭୭
୧୯ କୃଷ୍ଣଙ୍କୁ ସେବା ଯେହୁ କରେ । ସେ ଜନ୍ମିଲେହେଁ କୁଯୋନିରେ ।। ୭୮
ଆନ ଲୋକର ପ୍ରାୟେ ହୋଇ । ସଂସାରକୁ ସେ ନ ଭଜଇ ।। ୭୯
ମୁକୁନ୍ଦପାଦ ଆଲିଙ୍ଗନ । ଚିନ୍ତା କରନ୍ତେ ନିଜ ମନ ।। ୮୦
ଛାଡ଼ି ନ ପାରଇ ତା' ନର । ସେ ରସେ ଯେଣୁଁ ଗ୍ରହ ତାର ।। ୮୧
୨୦ ଜଗତ ସୃଷ୍ଟି ସ୍ଥିତି ନାଶ । ଯା'ଠାରୁ ହୁଅଇ ପ୍ରକାଶ ।। ୮୨
ଏ ବିଶ୍ୱ ସେହୁ ଭଗବାନ । ଜୀବହିଁ ତା ଠାରୁ ଅଭିନ୍ନ ।। ୮୩
ତୁମ୍ଭେ ସେ କଥା ସ୍ୱୟେଂ[୧] ଜାଣ । ତଥାପି ଦିଗ ଦେଖାଇଣ ।। ୮୪
କହିଲୁଁ ତୁମ୍ଭର ଆଗରେ । ମନ ନିରୂଢ଼ କରିବାରେ ।। ୮୫
୨୧ ତୁମ୍ଭେ ଅମୋଘ ଜ୍ଞାନଯୁତ । କରିବା ଅର୍ଥେ ବିଶ୍ୱହିତ ।। ୮୬
ଅଜ ଜନ୍ମିଲେ ଏ ପ୍ରକାରେ । ଜାଣ ଆପଣାକୁ ମନରେ ।। ୮୭
ଯେ ଅଟେ ପରମ ପୁରୁଷ । ସେ ପରମାତ୍ମାର ମୁଁ ଅଂଶ ।। ୮୮
ଏମନ୍ତ ମନରେ ବିଚାର । ମହାନୁଭବ ଯେ ଈଶ୍ୱର ।। ୮୯
ତାହାଙ୍କ ପରାକ୍ରମମାନ । ଅଧିକେ କରସି ବର୍ଣ୍ଣନ ।। ୯୦
୨୨ ତପସ୍ୟା, ଶାସ୍ତ୍ରବାଣୀ, ଦାନ । ବୁଦ୍ଧି, ଯଜନ, ସୁବଚନ ।। ୯୧
ଏ ରୂପେ ପୁରୁଷର ଯେତେ । ଗୁଣ ଅଛଇ ଏ ଜଗତେ ।। ୯୨
ସବୁରି ନିତ୍ୟ ଫଳ ଏହି । କୃଷ୍ଣ ଗୁଣକୁ ଯାହା ଗାଇ ।। ୯୩
ଏ କଥା ବିଚାର କରିଣ । ଜ୍ଞାନୀଏ କଲେ ନିରୂପଣ ।। ୯୪
୨୩ ଭୋ ମୁନି ପୂର୍ବକଳ୍ପେ ମୁହିଁ । ପୂର୍ବ ଜନ୍ମରେ ହୋଇଲଇଁ ।। ୯୫
ବେଦଜ୍ଞ ବିପ୍ରମାନଙ୍କର । କେହୁଣି[୨] ଦାସୀର କୁମର ।। ୯୬
ବରଷାକାଳେ ଯୋଗୀମାନେ । ରହି ଲୋଡ଼ନ୍ତେ ଏକସ୍ଥାନେ ।। ୯୭
ତାଙ୍କ ସେବାରେ ନିରୂପଣ । ହେଲି ମୁଁ ବାଳକ ହୋଇଣ ।। ୯୮

---

* ଅପ୍ରାର୍ଥିତାନି ଦୁଃଖାନି ଯଥୈବାୟାନ୍ତି ଦେହିନାଂ ।
ସୁଖାନ୍ୟପି ତଥା ମନ୍ୟେ ଦୈବମତ୍ରାତିରିଚ୍ୟତେ ।।

୧. ଭଲେ ।

୨. କେହୁଣି = କୌଣସି ।

୨୪ ସ୍ୱଭାବେ ଅଟଇ ମୁଁ ବାଳ । ଛାଡ଼ିଛି ଅଖିଳ ଚାପଳ ॥ ୯୯
ତପସ୍ୟାକ୍ଲେଶକୁ ସହିଲି । ବାଳକେଳିକି ଦୂର କଲି ॥୧୦୦
ସୁଚିତ୍ତେ କରଇ ସେବନ । କହଇ ଅଳପ ବଚନ ॥୧୦୧
ଯଦ୍ୟପି ସମଦରଶନ । ଅଟନ୍ତି ସେହୁ ଯୋଗୀଜନ ॥୧୦୨
ତଥାପି ମୋହର ଠାବରେ । କରୁଣା କଲେ ବିଶେଷରେ ॥୧୦୩
୨୫ ସେ ବିପ୍ରଙ୍କର ଅନୁଜ୍ଞାରେ । ଉଚ୍ଛିଷ୍ଟ ଲେପ ଏକ ବାରେ ॥୧୦୪
ଭୋଜନ କଲଇଁ ମୁଁ ଯେଣୁ । ପାପ ହୋଇଲା ନାଶ ତେଣୁ ॥୧୦୫
ଏ ରୂପେ ଶୁଦ୍ଧଚିତ୍ତ ହୋଇ । ପ୍ରବର୍ତ୍ତିଥାନ୍ତେ ତହିଁ ମୁହିଁ ॥୧୦୬
ତାହାଙ୍କ ଧର୍ମରେ ପ୍ରବେଶ । ହୋଇଲା ମନ ଅଭିଳାଷ ॥୧୦୭
୨୬ ମଞ୍ଜୁଳ କୃଷ୍ଣକଥାମାନ । କରନ୍ତେ ତହିଁ ନିତ୍ୟେ ଗାନ ॥୧୦୮
ଅନୁଗ୍ରହରେ ତାହାଙ୍କର । କଲି ତା' ଶ୍ରବଣ ଗୋଚର ॥୧୦୯
ମୁଁ ତାହା ପଦପଦକରେ । ଶ୍ରବଣ କରନ୍ତେ ଶ୍ରଦ୍ଧାରେ ॥୧୧୦
ଯେ ପ୍ରିୟକୀର୍ତ୍ତି ଦାମୋଦର । ତା'ଠାରେ ରତି ହେଲା ମୋର॥୧୧୧
୨୭ ମୁଁ ମହାମତି ! ସେ କାଳରେ । ରୁଚି ଲଭନ୍ତେ କୃଷ୍ଣଠାରେ ॥୧୧୨
କୃଷ୍ଣର ଠାରେ ଅସ୍ଖଳିତ । ମତି ହୋଇଲା ମୋର ଜାତ ॥୧୧୩
ପ୍ରପଞ୍ଚମଧ୍ୟରୁ ଅତୀତ । ବ୍ରହ୍ମ ମୁଁ ଅଟଇ ସାକ୍ଷାତ ॥୧୧୪
ଆମ୍‌ [1]ମାୟାରେ ମୋହଠାର । ଏ ସ୍ଥୂଳ ସୂକ୍ଷ୍ମ କଳେବର ॥୧୧୫
କଳ୍ପିତ ଅଟେ ଏ ପ୍ରକାରେ । ଦେଖିଲି ଯେବଣ ମତିରେ ॥୧୧୬
୨୮ ବରଷା ଶରତ ଏ ବେନି । ଋତୁରେ ସେ ମହାତ୍ମା ମୁନି ॥୧୧୭
ବିଷ୍ଣୁର ଯଶ ସୁନିର୍ମଳ । କୀର୍ତ୍ତନ କରନ୍ତି ତ୍ରିକାଳ ॥୧୧୮
ମୁଁ ତାହା ଶୁଣନ୍ତେ ମୋହର । ଭକ୍ତି ହୋଇଲା କୃଷ୍ଣଠାର ॥୧୧୯
ଆତ୍ମାର ରଜ ତମ ଦୁଇ । ଯେବଣ ଭକ୍ତି ବିନାଶଇ ॥୧୨୦
୨୯ ବିନୟବନ୍ତ ଅନୁରାଗୀ । ଶିଶୁ ଅପାପୀ ଶ୍ରଦ୍ଧାଭାଗୀ ॥୧୨୧
ସହିପାରଇ ତପକ୍ଲେଶ । ସେବା କରିଣ ଥାଇ ପାଶ ॥୧୨୨
୩୦ ଯିବାର ଥାଉଁ କିଛିଦିନେ । ଦୀନବତ୍ସଳ ବିପ୍ରଜନେ ॥୧୨୩
ଗୁପତ ଜ୍ଞାନକୁ ସେ ମୋତେ । ପ୍ରକାଶ କଲେ ଦୟାଚିତ୍ତେ ॥୧୨୪
ନିଜ ମୁଖରେ ଯେଉଁ ଜ୍ଞାନ । କହିଅଛନ୍ତି ଭଗବାନ ॥୧୨୫

---

୧. ଆତ୍ମା ।

୩୧ ଯେବଣ ଜ୍ଞାନରେ କୃଷ୍ଣର । ମାୟାକୁ କଲି ମୁଁ ଗୋଚର ।।୧୨୬
ସାଧ୍ୟ କରିଣ ଯେଉଁ ଜ୍ଞାନ । ପ୍ରାଣୀ ଲଭନ୍ତି ହରିସ୍ଥାନ ।।୧୨୭
୩୨ ତାପତ୍ରୟକୁ ନିବାରଣ । ହେ ବିପ୍ର ଏତେ ମାତ୍ର ଜାଣ ।।୧୨୮
ନିଜ କର୍ମକୁ ସମର୍ପଣ । କରେ ଯା ହରିଠାରେ ପୁଣ ।।୧୨୯
୩୩ ଯେଉଁ ଦ୍ରବ୍ୟରୁ ପ୍ରାଣୀଙ୍କର । ରୋଗ ଉପୁଜଇ ଶରୀର ।।୧୩୦
୩୪ ସେ ଦ୍ରବ୍ୟେ ରୋଗନାଶ ନୋହି । ତା' ଯେବେ ଦ୍ରବ୍ୟାନ୍ତରେ ଖାଇ ।।୧୩୧
ତେବେ ସେ ରୋଗ ନାଶକରେ । ହେ ବିପ୍ର ! ସେହି ପରକାରେ ।।୧୩୨
କର୍ମରୁ ଉପୁଜେ ସଂସାର । ସେ କର୍ମ ଯେବେ ବିଷ୍ଣୁଠାର ।।୧୩୩
ଅର୍ପଣ କରଇ ମାନବ । ସେ କର୍ମୁଁ ଆଉ ନୋହେ ଭବ ।।୧୩୪
୩୫ ହରିତୋଷଣ ଯେ ଅଟଇ । ତାହାକୁ କର୍ମ ବୋଲି କହି ।।୧୩୫
ଯହିଁରେ ଭକ୍ତିଯୋଗ ଥାଇ । କୃଷ୍ଣର ଅଧୀନ ଅଟଇ ।।୧୩୬
ତାହାକୁ ଜ୍ଞାନ ବୋଲି ଜାଣ । ଆଉ ସକଳ ଅକାରଣ ।।୧୩୭
୩୬ *କୃଷ୍ଣଶିକ୍ଷାରେ ପୁଣ ପୁଣ । କର୍ମ କରନ୍ତି ମୁନିଗଣ ।।୧୩୮
କୃଷ୍ଣର ଗୁଣ ନାମମାନ । ଶୁଣନ୍ତି କରନ୍ତି ଗାୟନ ।।୧୩୯
୩୭ ଶ୍ରୀବାସୁଦେବ ସଂକର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ।।୧୪୦
୩୮ ଏହୁ ଅଟନ୍ତି ଭଗବାନ । ଏହାଙ୍କୁ ନମସ୍କାର ଧ୍ୟାନ ।।୧୪୧
ଯେ ହରି ମନ୍ତ୍ରମୂର୍ତ୍ତି ଅଟେ । ଅନ୍ୟଥା ତା' ମୂର୍ତ୍ତି ନ ଘଟେ ।।୧୪୨
ତାଙ୍କୁ ଏମନ୍ତେ ଯେ ପୂଜଇ । ଉତ୍ତମ ଜ୍ଞାନୀ ସେ ଅଟଇ ।।୧୪୩
୩୯ ହେ ବିପ୍ର ! ନିଜ ଆଜ୍ଞା ମୁହିଁ । ପାଳନା କଲି ଯତ୍ନ ହୋଇ ।।୧୪୪
ଏମନ୍ତ ଜାଣି ଭଗବାନ । ପ୍ରଦାନ କଲେ ମୋତେ ଜ୍ଞାନ ।।୧୪୫
ଈଶ୍ୱରଭାବ ସହିତରେ । ଭକ୍ତି ହିଁ ଦେଲେ ନିଜଠାରେ ।।୧୪୬
ତୁମ୍ଭେ ବହୁତ ଶାସ୍ତ୍ର ଜାଣ । ପ୍ରଭୁର ଯଶକୁ ବଖାଣ ।।୧୪୭
ଯେଣେ ପଣ୍ଡିତମାନଙ୍କର । ଜାଣିମା ବାଞ୍ଛା[1] ହୋଏ ଦୂର ।।୧୪୮
ଦୁଃଖରେ ପୀଡ଼ିତ ମାନସ । ଅଟନ୍ତି ଯେବଣ ମାନୁଷ ।।୧୪୯

---

* ଯଦ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯଦ୍ ।
ଯଦ୍ ତପସ୍ୟସି କୌନ୍ତେୟ ତଦ୍ କୁରୁଷ୍ୱ ମଦର୍ପଣମ୍ ।। (ଗୀତା)

୧. ଇଚ୍ଛା

ସେମାନଙ୍କର କ୍ଳେଶଶାନ୍ତି । ଆନ ପ୍ରକାରେ ନ ମଣନ୍ତି ॥୧୫୦
ହେ କୃଷ୍ଣ ! କରୁଣାସାଗର । ଚରଣପଙ୍କଜେ ତୁମ୍ଭର ॥୧୫୧
ଶରଣ ଗଲା ଦୀନବନ୍ଧୁ । ଏହାକୁ ରଖ କୃପାସିନ୍ଧୁ ॥୧୫୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ବ୍ୟାସନାରଦସମ୍ବାଦେ
ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠୋଽଧ୍ୟାୟଃ

ବ୍ୟାସସ୍ୟ ପ୍ରତ୍ୟୟାର୍ଥଂ ଚ ଷଷ୍ଠେ ପ୍ରାଗ୍‌ଜନ୍ମସଂଭବମ୍ ।
ସ୍ୱଭାଗ୍ୟଂ ନାରଦଃ ପ୍ରାହ କୃଷ୍ଣସଂକୀର୍ତ୍ତନନୋଦ୍‌ଭବମ୍[୧] ॥

ଶ୍ରୀସୂତ ଉବାଚ

୧ ନାରଦଜନ୍ମକର୍ମ ବେନି । ଏ ରୂପେ ଶୁଣିଣ ହେ ମୁନି ॥ ୧
ତାହାଙ୍କୁ ସତ୍ୟବତୀସୁତ । ବ୍ୟାସ ପଚାରିଲେ ଏମନ୍ତ ॥ ୨

ଶ୍ରୀବ୍ୟାସ ଉବାଚ

୨ ତୁମ୍ଭଙ୍କୁ ଦେଇ ଦିବ୍ୟ ଜ୍ଞାନ । ଭିକ୍ଷୁଏ କରନ୍ତେ ଗମନ ॥ ୩
ଆଦ୍ୟ ବୟସେ ତୁମ୍ଭେ ଥିଲ । ତହିଁ ଉତ୍ତାରେ କିବା କଲ ॥ ୪
୩ ହେ ବ୍ରହ୍ମପୁତ୍ର ! ଅବଶେଷ । ଥିଲା ତୁମ୍ଭର ଯେ ବୟସ ॥ ୫
ତହିଁରେ ରହି କେଉଁ ଠାବେ । ତୁମ୍ଭେ ବଞ୍ଚିଲ କେଉଁ ଭାବେ ॥ ୬
ମରଣକାଳ ପ୍ରବେଶରେ । ଦେହ ଛାଡ଼ିଲ କି ପ୍ରକାରେ ॥ ୭
୪ ତୁମ୍ଭେ କହିଲ ଯେଉଁ କଥା । ସେ ପୂର୍ବକଳ୍ପର ବ୍ୟବସ୍ଥା ॥ ୮
ସେ ଜ୍ଞାନ ତୁମ୍ଭ ଦେହ ଅନ୍ତେ । କାଳ ନ ହରିଲା କେମନ୍ତେ ॥ ୯
ପ୍ରାଣୀମାନଙ୍କର ସକଳ । କଥା ହରଇ ଯେଉଁ କାଳ ॥ ୧୦

ଶ୍ରୀନାରଦ ଉବାଚ

୫ ମୋତେ ଦେଇଣ ଦିବ୍ୟ ଜ୍ଞାନ । ଭିକ୍ଷୁଏ କରନ୍ତେ ଗମନ ॥ ୧୧
ଆଦ୍ୟ ବୟସେ ଥାଇ ମୁହିଁ । ତଦନ୍ତେ ଏମନ୍ତ କଲଇଁ ॥ ୧୨

---

୧. ସଂକଥନୋଦ୍‌ଭବମ୍

୬ ମୋ ମାତା ମୂଢ଼ମତି ନାରୀ । ବିଶେଷେ ପରର କିଂକରୀ ॥ ୧୩
ମୁଁ ଏକା ତାହାର ନନ୍ଦନ । ନାହିଁ ମୋହର ଗତି ଆନ ॥ ୧୪
ମୋହରଠାରେ ଦେଇ ମନ । କଲା ସେ ସ୍ନେହାନୁବନ୍ଧନ ॥ ୧୫
୭ ମୋହର ଯୋଗକ୍ଷେମପାଇଁ । ବହୁତ ଇଛା ସେ କରଇ ॥ ୧୬
ତହିଁକି ନୋହେ ସେ ଶକତ । ଯେଣୁ ସେ ପରର ଆୟତ୍ତ ॥ ୧୭
ଈଶ୍ୱରବଶେ ଥାଇ ଜନ । କାଷ୍ଠର ପିତୁଳୀ ଯେସନ ॥ ୧୮
୮ ମୁଁ ଥିଲି ସେ ବ୍ରାହ୍ମଣକୁଳ । ନ ଜାଣି ଦିଗ ଦେଶ କାଳ ॥ ୧୯
ବାଳକ ପଞ୍ଚମବରଷ । କରିଣ ଜନନୀ ମୁହାଁସ[1] ॥ ୨୦
୯ ମୋର ଜନନୀ ଏକଦିନେ । ବ୍ରାହ୍ମଣଘରେ ଗୋଦୋହନେ ॥ ୨୧
ଘରୁଁ ବାହାର ହୋଇଗଲା । ସର୍ପ ଯେ ବାଟେ ପଡ଼ିଥିଲା ॥ ୨୨
କାଳରେ ନିଯୋଜିତ ହୋଇ । ଦଂଶିଲା ପାଦଘାତ ପାଇ ॥ ୨୩
୧୦ ଭଗତମାନଙ୍କ କଲ୍ୟାଣ । ଇଛନ୍ତି ଯେଉଁ ନାରାୟଣ ॥ ୨୪
ସେ ଅନୁଗ୍ରହ କଲେ ମୋତେ । ଏମନ୍ତ ମଣନ୍ତେ ମୁଁ ଚିତ୍ତେ ॥ ୨୫
ଉତ୍ତର ଦିଗ ଅଭିମୁଖେ । ପ୍ରସ୍ଥାନ କଲି ମନସୁଖେ ॥ ୨୬
୧୧ ସମୃଦ୍ଧ ଜନପଦମାନ । ପୁର, ଆକର, ବ୍ରଜସ୍ଥାନ ॥ ୨୭
କର୍ଷକଗ୍ରାମ ଯେତେ ବାଟେ । *ଯେ ଗ୍ରାମମାନ ଗିରିତଟେ ॥ ୨୮
କ୍ରମୁକ କୁସୁମ କାନନ । ବନ ଆବର ଉପବନ ॥ ୨୯
୧୨ ଯହିଁରେ ଗଜଭଗ୍ନ ହୋଇ । ଦ୍ରୁମେ ଭୂମିରେ ଛନ୍ତି ଶୋଇ ॥ ୩୦
ଚିତ୍ର ଧାତୁରେ ବିଚିତ୍ରିତ । ଏ ରୂପେ ଅନେକ ପର୍ବତ ॥ ୩୧
ପବିତ୍ର ଜଳରେ ଯେ ପୂର୍ଣ୍ଣ । ଦେବେ କରନ୍ତି ଯହିଁ ସ୍ନାନ ॥ ୩୨
୧୩ ପକ୍ଷୀଙ୍କ ବିଚିତ୍ର ନାଦରେ । ଭ୍ରମରଙ୍କର ଭ୍ରମିବାରେ ॥ ୩୩
୧୪ ଯେ ଜଳାଶୟ ପୁଷ୍କରିଣୀ । ଶୋଭନ୍ତି ସେମାନ ମୁଁ ଜିଣି ॥ ୩୪
ଏକା ହୋଇଣ ପଥେ ଗଲି । ବିପୁଳ କାନନ ଦେଖିଲି ॥ ୩୫

---

୧. ମୁହାଁସ=ସ୍ନେହର ଅପେକ୍ଷା ।

* ବିପ୍ରାଶ୍ଚ ବିପ୍ରଭୃତ୍ୟାଶ୍ଚ ଯତ୍ର ଚୈବ ବସନ୍ତି ତେ ।
ସ ତୁ ଗ୍ରାମ ଇତି ପ୍ରୋକ୍ତଃ ଶୂଦ୍ରାଣାଂ ବାସ ଏବ ଚ ॥
ଏକତୋ ଯତ୍ର ତୁ ଗ୍ରାମୋ ନଗରଂ ଚୈକତଃ ସ୍ଥିତଂ ।
ମିଶ୍ରଂ ତୁ ଖର୍ବଟଂ ନାମ ନଦୀଗିରିସମାଶ୍ରୟମ୍ ॥ (ଭୃଗୁ)

ଯେ ବନ ନଳ, ବେଣୁ, ଶର । କୁଶ[1] କୀଚକରେ ଗହ୍ୱର ॥ ୩୬
ସେ ଅଟେ ଘୋର ଭୟଙ୍କର । ସର୍ପ-ଉଲୂକ-ଶିବାଘର ॥ ୩୭
୧୫ ଇନ୍ଦ୍ରିୟ ସହିତେ ଶରୀର । ଶ୍ରମକୁ ଲଭିଲେ ମୋହର ॥ ୩୮
ମୁଁ ସ୍ନାନ, ଆଚମନ କରି । ଶ୍ରମ ମୁଞ୍ଚିଲି ପିଇ ବାରି ॥ ୩୯
୧୬ ମୁଁ ସେ ନିର୍ଜନ ଅରଣ୍ୟରେ । ବସିଣ ଅଶ୍ୱତ୍ଥମୂଳରେ ॥ ୪୦
ଋଷିଙ୍କଠାରୁ ଯେଉଁ ଭାବେ । ଶ୍ରବଣ କରିଥିଲି ପୂର୍ବେ ॥ ୪୧
ହୃଦିସ୍ଥ ଆତ୍ମାକୁ ବୁଦ୍ଧିରେ । ଚିନ୍ତା କଲଇଁ ସେ ପ୍ରକାରେ ॥ ୪୨
୧୭ ଭାବନିର୍ଜିତ ଚିତ୍ତେ ମୁହିଁ । ଚିନ୍ତନ୍ତେ ପାଦପଦ୍ମ ଦୁଇ ॥ ୪୩
ଉତ୍କଣ୍ଠାଭାବୁଁ ଅଶ୍ରୁକଳା । ମୋର ନୟନେ ଜାତ ହେଲା ॥ ୪୪
ମୋ ହୃଦେ ଅଳପ ହୋଇଣ । ପ୍ରକାଶ ହେଲେ ନାରାୟଣ ॥ ୪୫
୧୮ ଜାତ ହୋଇଲା ଅତି ପ୍ରେମ । ପୁଲକେ ତନୁ ଅଭିରାମ ॥ ୪୬
ପରମ ଆନନ୍ଦେ ବୁଡ଼ିଲି । ନିଜ ପରକେ ନ ଜାଣିଲି ॥ ୪୭
୧୯ ଭଗବାନର ରୂପସାର । ମନକୁ ରମ୍ୟ ଶୋକହର ॥ ୪୮
ସେ ରୂପ ନ ଦେଖନ୍ତେ ମୁହିଁ । ଅତି ବେଗରେ ଉଠିଲଇଁ ॥ ୪୯
ବୈକ୍ଲବ୍ୟ[2] ପଥରୁ ଦୁର୍ମନ । ହୋଇଲେ ଉଠେ ଯେହ୍ନେ ଜନ ॥ ୫୦
୨୦ ହୃଦୟେ ମନ ସ୍ଥିର କରି । ଦେଖିବି ବୋଲି ତା ବିଚାରି ॥ ୫୧
ନ ଦେଖି ଅସନ୍ତୋଷ ହୋଇ । ଆତୁର ପ୍ରାୟେ ହେଲି ମୁହିଁ ॥ ୫୨
୨୧ ଏମନ୍ତ ପ୍ରକାରେ ବିଜନ । ସ୍ଥାନେ ମୁଁ କରନ୍ତେ ଯତନ ॥ ୫୩
ବଚନଙ୍କର ଅଗୋଚର । ଅଟନ୍ତି ଯେବଣ ଈଶ୍ୱର ॥ ୫୪
ମୋହର ଶୋକ ଥିଲା ଯେହି । ତାହା ନାଶିଲା ପ୍ରାୟେ ହୋଇ ॥ ୫୫
କୋମଳ ଗମ୍ଭୀର ବଚନେ । କହିଲେ ମୋତେ ତୋଷମନେ ॥ ୫୬
୨୨ ଯେ କାମ ଆଦି ମଳମାନ । କରିଣ ନ ଥାନ୍ତି ଦହନ ॥ ୫୭
ମୁଁ ସେ କୁଯୋଗୀମାନଙ୍କର । ନୁହଇ ନୟନ ଗୋଚର ॥ ୫୮
ଏଣୁ ତୁ ମୋତେ ଏ ଜନ୍ମରେ । ଦେଖିବୁ ନାହିଁ ପ୍ରତ୍ୟକ୍ଷରେ ॥ ୫୯
୨୩ ମୁଁ ଯାହା ତୋତେ ଏକବାର । ଦେଖାଇଲଇଁ ରୂପ ମୋର ॥ ୬୦
ମୋଠାରେ ବଳିବାକୁ ଚିତ୍ତ । ଏକଥା ଅଟଇ ନିୟତ ॥ ୬୧
ମୋଠାରେ ଅନୁରାଗ ଯାର । ସକଳ କାମ କରେ ଦୂର ॥ ୬୨

---

୧. କାଶ । ୨. କୈବଲ୍ୟ ।

୨୪ ସାଧୁଙ୍କ ସେବା ଅଳପହିଁ[୧] । କରନ୍ତେ ଅନୁରାଗ ବହି ॥ ୬୩
ମୋହର ଠାରେ ତୋର ମନ । ଦୃଢ଼ ହୋଇଲା ଦିନୁଁ ଦିନ ॥ ୬୪
ଛାଡ଼ି ଏ ନିନ୍ଦିତ ଶରୀର । ହୋଇବୁ ମୋର ପରିଚାର ॥ ୬୫
୨୫ ମୋଠାରେ ଯେଉଁ ଦୃଢ଼ ମତି । କେବେହେଁ ନ ଲଭେ ବିପତ୍ତି ॥ ୬୬
ମୋ ଅନୁଗ୍ରହେ ତୋର ଜ୍ଞାନ । ସୃଷ୍ଟି ପ୍ରଳୟେ ନୋହୁ ଆନ ॥ ୬୭
୨୬ ଏତେକମାତ୍ର ବାକ୍ୟ କହି । ବିଷ୍ଣୁ ରହିଲେ ତୁନି ହୋଇ ॥ ୬୮
ଆକାଶେ ଅଛି ମୂର୍ତ୍ତି ଯାର । ଲୋକଙ୍କୁ ନୋହେ ଯେ ଗୋଚର ॥ ୬୯
ମହତ ଉପରେ ମହତ । ଅଟନ୍ତି ସେହୁ ମହାଭୂତ ॥ ୭୦
ତାହାଙ୍କଠାରୁ କୃପା ପାଇ[୨] । ଶିରେ ନମିଲି ତାଙ୍କୁ ମୁହିଁ ॥ ୭୧
୨୭ ଲଜ୍ଜା ଛାଡ଼ିଣ ଭଗବାନ । ନାମକୁ କରନ୍ତେ ପଠନ ॥ ୭୨
ମଙ୍ଗଳ ଗୁହ୍ୟ କର୍ମ ଯେତେ । ସ୍ମରଣ କରନ୍ତେ ତା' ଚିତ୍ତେ ॥ ୭୩
ଭୂମି କରନ୍ତେ ପର୍ଯ୍ୟଟନ । ହୋଇ ନିସ୍ପୃହ ତୃଷ୍ଟମନ ॥ ୭୪
ମରଣକାଳକୁ ଅନାଇଁ । ମଦମତ୍ସର ବର୍ଜିଲଇଁ ॥ ୭୫
୨୮ ହେ ବିପ୍ର ! ଏମନ୍ତ ପ୍ରକାରେ । ମତି ଦିଅନ୍ତେ କୃଷ୍ଣଠାରେ ॥ ୭୬
କାହିଁ ନୋହିଲି ଆସକତ । ନିର୍ମଳ ହେଲା ମୋର ଚିତ୍ତ ॥ ୭୭
ବିଜୁଳି ପ୍ରାୟ ଅକସ୍ମାତ[୩] । କାଳେ ମରଣ ଉପଗତ ॥ ୭୮
୨୯ ମୋ ଠାରେ ଶୁଦ୍ଧ ଭାଗବତ । ତନୁ କରନ୍ତେ ନିଯୋଜିତ ॥ ୭୯
ଅର୍ଜିଲା କର୍ମ ଯେତେ ଥିଲା । ତକ୍ଷଣେ ବିନାଶ ହୋଇଲା ॥ ୮୦
ପଞ୍ଚଭୂତରୁ ଯେହୁ ଜାତ । ସେ ଦେହ ହେଲା ଭୂମିଗତ ॥ ୮୧
୩୦ *କଳ୍ପାନ୍ତ କାଳେ ଭଗବାନ । କରନ୍ତେ ଯୋଗରେ ଶୟନ ॥ ୮୨
ତା' ନାଭିକମଳେ ବିଧାତା । କରନ୍ତେ ଶୋଇବାକୁ ଚିନ୍ତା ॥ ୮୩
ବିଧାତା ନିଃଶ୍ୱାସମାର୍ଗରେ । ପଶିଲି ବିଷ୍ଣୁର ଗର୍ଭରେ ॥ ୮୪
୩୧ ସହସ୍ର ଯୁଗ ପରିଯନ୍ତେ । ଶୟନ କରିଣ ତଦନ୍ତେ ॥ ୮୫
ଉଠି ଏ ଜଗତ ସର୍ଜନ । କରି ଇଚ୍ଛନ୍ତେ ନିଜ ମନ ॥ ୮୬

୧. ହି ।
୨. ଯେ ଆଗତ ।
୩. ଯେ ଆଗତ ।
* ତତୋଽବତୀର୍ଯ୍ୟ ବିଶ୍ୱାତ୍ମା ଦେହମାବିଶ୍ୟ ଚକ୍ରିଣଃ ।
ଅବାପ ବୈଷ୍ଣବୀଂ ନିଦ୍ରାମେକୀଭୂୟାଥ ବିଷ୍ଣୁନା ॥ (କୂର୍ମପୁରାଣ)

ବ୍ରହ୍ମାର ଇନ୍ଦ୍ରିୟରୁ ଜାତ । ମରୀଚି ଆଦି ମୁନି ସାତ ॥ ୮୭
ମୁହିଁ ସେମାନଙ୍କ ସଙ୍ଗରେ । ଜନମ ହୋଇଲି ପୂର୍ବରେ ॥ ୮୮
୩୨ ଦୃଢ଼ ଅଟଇ ବ୍ରତ ମୋର । ବାହ୍ୟ ଅନ୍ତରେ ତିନିପୁର ॥ ୮୯
ଭ୍ରମଇଁ ବିଷ୍ଣୁ ଅନୁଗ୍ରହେ । ଗତିବିଘାତ କାହିଁ ନୋହେ ॥ ୯୦
୩୩ ମୋତେ ସନ୍ତୋଷେ ଚକ୍ରପାଣି । ବୀଣା ଗୋଟିଏ ଦେଲେ ଆଣି ॥ ୯୧
ବ୍ରହ୍ମକୁ ବ୍ୟକତ ଯେ କରେ । ଭୂଷିତ ସେ ସପତ ସ୍ୱରେ ॥ ୯୨
ତାହା ମୁଁ ମୂର୍ଚ୍ଛନା କରଇ । ଭ୍ରମଇଁ ହରିକଥା ଗାଇ ॥ ୯୩
୩୪ ଯା' ପାଦ ତାରଇ ସଂସାର । ପ୍ରିୟ ଅଟଇ କୀର୍ତ୍ତି ଯାର ॥ ୯୪
ଗାୟନ କଲେ ନିଜ ଗୁଣ । ମୋର ଚିତ୍ତେ ସେ ନାରାୟଣ ॥ ୯୫
ଡାକିଆଣିଲା ପ୍ରାୟ ହୋଇ । ଶୀଘ୍ରରେ ଦରଶନ ଦେଇ ॥ ୯୬
୩୫ ବିଷୟରସରେ ଆତୁର । ମାନସ ଅଟନ୍ତି ଯେ ନର ॥ ୯୭
ସେମାନଙ୍କର ପୁଣପୁଣି । ଭବସିନ୍ଧୁକୁ ନାବ ଜାଣି ॥ ୯୮
ହରିର ଗୁଣାନୁବର୍ଣ୍ଣନ । ଭୋ ମୁନି ଶୁଣ ସାବଧାନ ॥ ୯୯
୩୬ ଯେ ଆତ୍ମା କାମଲୋଭେ ହତ । ସେ ଯମ ଆଦି ଯୋଗପଥ ॥୧୦୦
ପାଇଣ ନୋହେ ତେଡ଼େ ଶାନ୍ତ । ମୁକୁନ୍ଦସେବାରେ ଯେମନ୍ତ ॥୧୦୧
୩୭ ମୋହର ଜନ୍ମକର୍ମ ଯେତେ । ତୁମ୍ଭର ପ୍ରଶ୍ନ ଅନୁମତେ ॥୧୦୨
କହିଲି ତୁମ୍ଭର ଅଗ୍ରତେ । ଯେଣୁ ସନ୍ତୋଷ ତୁମ୍ଭ ଚିତ୍ତେ ॥୧୦୩

ଶ୍ରୀସୂତ ଉବାଚ

୩୮ ଏ ରୂପେ ବ୍ରହ୍ମାଙ୍କ ନନ୍ଦନ । ବ୍ୟାସଙ୍କୁ କହିଣ ବଚନ ॥୧୦୪
ବ୍ୟାସଙ୍କୁ ଅନୁଜ୍ଞା ମାଗିଣ । ବୀଣା ବଜାନ୍ତେ ହରଷେଣ ॥୧୦୫
ତହୁଁ ଗମନ କଲେ ଯତି । ଯେ କିଛି ବାଞ୍ଛା ନ କରନ୍ତି ॥୧୦୬
୩୯ ଧନ୍ୟ ଅଟେ ଏ ଦେବରଷି । ଯେ ଶାର୍ଙ୍ଗଧରକୀର୍ତ୍ତି ଘୋଷି ॥୧୦୭
ବୀଣାରେ ଗାଇ ମତ୍ତ ହୋଇ । ଜଗତ ଆନନ୍ଦ କରଇ ॥୧୦୮
ଭକ୍ତବତ୍ସଳ ଭଗବାନ । ଯେ ଦୁଃଖୀ ଲୋକଙ୍କର ଧନ ॥୧୦୯
ତାଙ୍କ ଚରଣପଦ୍ମ ଧ୍ୟାନ । ନ ତେଜୁ ଦୀନବନ୍ଧୁ ମନ ॥୧୧୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ନାରଦଜନ୍ମକଥନଂ
ନାମ ଷଷ୍ଠୋଽଧ୍ୟାୟଃ ॥

# ସପ୍ତମୋଽଧ୍ୟାୟଃ

ଅଥ ଭାଗବତଶ୍ରୋତୁର୍ଜନ୍ମ ବକ୍ତୁଂ ପରୀକ୍ଷିତଃ ।
ସୁପ୍ତବାଳବଧାଦ୍ ଦୌଣେର୍ଦଣ୍ଡଃ ସପ୍ତମ ଉଚ୍ୟତେ ॥

ଶ୍ରୀଶୌନକ ଉବାଚ

୧ ନାରଦ କରନ୍ତେ ଗମନ । ବାଦରାୟଣ ଭଗବାନ ॥ ୧
ତାହାଙ୍କ ଅଭିପ୍ରାୟ ଜାଣି । ତଦନ୍ତେ କିସ କଲେ ପୁଣି ॥ ୨

ଶ୍ରୀସୂତ ଉବାଚ

୨ ଯାହାକୁ ଆଶ୍ରୟ କରିଣ । ରହି ଅଛନ୍ତି ବିପ୍ରଗଣ ॥ ୩
ସେ ସରସ୍ୱତୀର ପଶ୍ଚିମେ । ଆଶ୍ରମ ଶମ୍ୟାପ୍ରାସ ନାମେ ॥ ୪
ଯହିଁ ଅଶେଷ ଋଷିଜନ । ଯଜ୍ଞକୁ କରନ୍ତି ବର୍ଦ୍ଧନ ॥ ୫
୩ ବଦରୀବୃକ୍ଷଷଣ୍ଡ[୧] ଯହିଁ । ମଣ୍ଡିତ ହୋଇଛନ୍ତି ରହି ॥ ୬
ସେ ଆଶ୍ରମରେ କରି ସ୍ନାନ । ଜଳରେ କରି ଆଚମନ ॥ ୭
ସମାଧିବଳରେ ମାନସ । ନିଶ୍ଚଳ କଲେ ବେଦବ୍ୟାସ ॥ ୮
୪ *ଭଗତିଯୋଗରେ ଅମଳ । ମାନସ ହୁଅନ୍ତେ ନିଶ୍ଚଳ ॥ ୯
ପ୍ରଥମେ ଦେଖିଲେ ବିଷ୍ଣୁଙ୍କୁ । ଅବଲମ୍ବନ କରି ତାଙ୍କୁ ॥ ୧୦
ମାୟା ହିଁ ଅଛି ଏ ପ୍ରକାରେ । ଦେଖିଲେ ପୁଣ ତଦନ୍ତରେ ॥ ୧୧
୫ ଯେଉଁ ମାୟାରେ ମୋହ ହୋଇ । ଆତ୍ମାକୁ ଜୀବ ନ ଜାଣଇଁ ॥ ୧୨
ନିର୍ଗୁଣ ବୋଲିଣ ନ ଜାଣେ । ତ୍ରିଗୁଣମୟ କରି ମଣେ ॥ ୧୩
ଯେତେ ଅନର୍ଥ ତହୁଁ ଜାତ । ତାହା ମଣଇ ଆତ୍ମଗତ ॥ ୧୪

---

୧. ଷଣ୍ଡ = ସମୂହ ।

* ହ୍ଲାଦିନ୍ୟା ସଂବିଦାଶ୍ଳିଷ୍ଟଃ ସଚ୍ଚିଦାନନ୍ଦ ଈଶ୍ୱରଃ
ସ୍ୱାବିଦ୍ୟାସଂବୃତୋ ଜୀବଃ ସଂକ୍ଲେଶନିକରାକରଃ ॥ (ଶ୍ରୀ ବିଷ୍ଣୁସ୍ୱାମୀ)

ତଥା ଚ-

ସ ଈଶୋ ଯଦବଶେ ମାୟା ସ ଜୀବୋ ଯସ୍ତୟାର୍ଦିତଃ ।
ସ୍ୱାବିର୍ଭୂତପରାନନ୍ଦଃ ସ୍ୱାବିର୍ଭୂତସୁଦୁଃଖଭୂଃ ॥ ୧ ॥
ସ୍ୱାଦୃଗୁତଥବିପର୍ଯ୍ୟାସଭବଭେଦଜଭୀଶୁଚଃ ।
ଯନ୍ମାୟୟା ଜୁଷନ୍ନାସ୍ତେ ତମିମଂ ନୃହରିଂ ନୁମଃ ॥ ୨ ॥

୬ ଯହୁଁ ଅନର୍ଥ ହୋଏ ଶାନ୍ତି । ନ ଜାଣି ସେ କୃଷ୍ଣଭଗତି ॥ ୧୫
ଲୋକ ପଡ଼ଇ ମୋହଗର୍ତ୍ତେ । ତାହାକୁ ଉଦ୍ଧରିବା ଅର୍ଥେ ॥ ୧୬
ରଚିଲେ ଭାଗବତ ନାମ । ସଂହିତା ଅତି ମନୋରମ ॥ ୧୭
୭ ଯାହା ଶୁଣିଲେ ଅପ୍ରମାଦେ । ଭଗତି ହୋଏ କୃଷ୍ଣପାଦେ ॥ ୧୮
ଯେ ଭକ୍ତି ଶୋକମୋହ ଦୁଇ । ଭୟ ହିଁ ବିନାଶ କରଇ ॥ ୧୯
୮ କରି ସଂହିତା ଭାଗବତ । ଶୋଧିଣ ସତ୍ୟବତୀସୁତ ॥ ୨୦
ନିବୃତ୍ତିମାର୍ଗରେ ନିରତ । ଅଟେ ଯେ ଶୁକନାମେ ସୁତ ॥ ୨୧
ତାହାଙ୍କୁ ହୋଇ ତୋଷମନ । କରାଇଲେ ତା' ଅଧ୍ୟୟନ ॥ ୨୨

### ଶ୍ରୀଶୌନକ ଉବାଚ

୯ ନିବୃତ୍ତିମାର୍ଗରେ ନିରତ । ଅଟନ୍ତି ସେହୁ ବ୍ୟାସସୁତ ॥ ୨୩
ଯାହାର ସକଳ କଥାରେ । ଅପେକ୍ଷା ନାହିଁ ଏ ସଂସାରେ ॥ ୨୪
ଆତ୍ମାରେ ବିହାର ତାଙ୍କର । ଆତ୍ମଜ୍ଞାନୀଙ୍କର ସେ ବର ॥ ୨୫
ଆତ୍ମାରେ ବିହାର ତାଙ୍କର । ଅଟେ ଏ ସଂହିତା ବିସ୍ତାର ॥ ୨୬
କେବଣ ହେତୁକୁ ଉଦ୍ଦେଶି । ଅଭ୍ୟାସ କଲେ ଏହା ଋଷି ॥ ୨୭

### ଶ୍ରୀସୂତ ଉବାଚ

୧୦ *ଯେ ଆତ୍ମାରାମ ମୁନିଜନେ । ଗ୍ରନ୍ଥରୁ ବାହାର ସେମାନେ ॥ ୨୮
ତଥାପି ବିଷ୍ଣୁଠାରେ ନିତି[୧] । କରନ୍ତି ନିଷ୍କାମ ଭଗତି ॥ ୨୯
ଯେ ହରି ଜଗତ ଈଶ୍ୱର । ଏମନ୍ତ ଗୁଣ ଅଛି ତାର ॥ ୩୦
୧୧ ହରିଗୁଣରେ ବଶ ଚିତ୍ତ । ହୋଇଣ ବେଦବ୍ୟାସସୁତ ॥ ୩୧
ପଢ଼ିଲେ ଏ ମହା ଆଖ୍ୟାନ । ପ୍ରିୟ ତାଙ୍କର ବିଷ୍ଣୁ ଜନ ॥ ୩୨
୧୨ ଯେ ପରୀକ୍ଷିତ ରାଜଋଷି । ତା' ଜନ୍ମ କର୍ମ ମୁକ୍ତି ମିଶି ॥ ୩୩
ପାଣ୍ଡୁସୁତଙ୍କର ପ୍ରସ୍ଥାନ । କହିବା ଶୁଣ ଦେଇ ମନ ॥ ୩୪
ବିଷ୍ଣୁର କଥାମାନ ଯହିଁ । ପଦେ ପଦେକେ ଉଦେ ହୋଇ ॥ ୩୫

---

* ଯଦା ତେ ମୋହକଲିଲଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।
ତଦାଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ । (ଗୀତା)

୧. ମତି ।

୧୩ କୁରୁ ସଞ୍ଜୟ[୧] ମାନଙ୍କର । ଯେବେ ହୋଇଲା ଯୁଦ୍ଧ ଘୋର ॥
ସେ ଯୁଦ୍ଧେ ଯେତେ ବୀର ଥିଲେ । ସେ ବୀରଗତିକି[୨] ଲଭିଲେ ॥
ବୃକୋଦରର କରଧୃତ । ଗଦାରେ ଲଭି ଅଭିଘାତ ॥
ଧୃତରାଷ୍ଟ୍ରର ସୂତ ତହିଁ । ପଡ଼ନ୍ତେ ଜାନୁଭଗ୍ନ ହୋଇ ॥
୧୪ କଲେ ମୁଁ ଏମନ୍ତ ପ୍ରକାର । ସନ୍ତୋଷ ହୋଇବ ସ୍ୱାମୀର ॥
ଏମନ୍ତ ବିଚାରି ମନରେ । ଦ୍ରୋଣକୁମର କୋପଭରେ ॥
ଶୋଇ ଯେ ଥିଲେ ଶଯ୍ୟାପରେ । ପାଞ୍ଚାଳସୁତାର କୁମରେ ॥
ପ୍ରବେଶ ହୋଇଣ ସେ ସ୍ଥାନ । କାଟିଲା ତାଙ୍କ ଶିରମାନ ॥
ନିନ୍ଦିତ କର୍ମ ସେ ତାହାର । ନିନ୍ଦା କରନ୍ତି ସାଧୁ ନର ॥
୧୫ ଶୁଣି ନିଧନ ଶିଶୁଙ୍କର । ଦ୍ରୌପଦୀ ତାପ କଲା ଘୋର ॥
ବିକଳେ କରଇ ରୋଦନ । ଲୋତକେ ପୂରିତ ନୟନ ॥
ଶାନ୍ତି କରାନ୍ତେ ତାଙ୍କୁ ପୁଣି । ଅର୍ଜୁନ ବୋଇଲେ ଏ ବାଣୀ ॥
୧୬ ତୋହର ଶୋକ ଅଶ୍ରୁମାନ । ତେବେ ମୁଁ କରିବି ମାର୍ଜନ ॥
ପୁତ୍ରଙ୍କୁ ମାରିଛି ଯେ ତୋର । *ସେହୁ ଅଧମ ବିପ୍ରଶିର ॥
ଗାଣ୍ଡୀବଧନୁଚ୍ୟୁତ ବାଣେ । କାଟି ଆଣିମି ଯେବେ ରଣେ ॥
ଯେବଣ ଶିରକୁ ଆସନ । କରିଣ କରିବୁ ତୁ ସ୍ନାନ ॥
ସମରେ ହୋଇଲେ ନିଧନ । ଯେଣୁ ତୋହର ସୁତମାନ ॥
୧୭ ମିତ୍ର ସାରଥି ହରି ଯାର । ପ୍ରିୟାକୁ ସେ ପାଣ୍ଡୁକୁମର ॥
ମନୋଜ୍ଞ ବିଚିତ୍ର ବାକ୍ୟରେ । ସାନ୍ତ୍ୱନା କରି ଏ ପ୍ରକାରେ ॥
ଗାଣ୍ଡୀବ ଧନୁ ଧରି ହାଥେ । ବସିଣ କପିଧ୍ୱଜ ରଥେ ॥
ଦେହରେ କବଚ ପୂରାଇ । ଧାଇଁଲା ଗୁରୁପୁତ୍ର ଯହିଁ ॥
୧୮ ଦୂରୁହୁଁ ତାକୁ ଦ୍ରୋଣସୂତ । ଦେଖିଣ ଉଦବେଗଚିତ୍ତ ॥
ବେଗେଣ ପଳାଇଲା ରଥେ । ପ୍ରାଣକୁ ରଖିବା ନିମିତ୍ତେ ॥

---

୧. ସୃଂଜୟ – ସୃଂଜୟବଂଶଜ ଧୃଷ୍ଟଦ୍ୟୁମ୍ନ ପାଣ୍ଡବମାନଙ୍କର ସେନାପତି ଥିଲେ ।
୨. ବୀରଗତି = ସ୍ୱର୍ଗ ।
* ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ ।
କ୍ଷେତ୍ରଦାରହରଶ୍ଚୈବ ଷଡ଼େତେ ଆତତାୟିନଃ ॥ (ସ୍ମୃତିଃ)

| | | | | | |
|---|---|---|---|---|---|
| | ପଳାଇବାକୁ ଗମ୍ୟ ଯେତେ | । | ଭୂମିରେ ପକାଇଲା ତେତେ | ॥ | ୫୯ |
| | * ରୁଦ୍ରସକାଶୁଁ କରି ଭୀତି | । | ଯେସନେ ଗଲା ପ୍ରଜାପତି | ॥ | ୬୦ |
| ୧୯ | ପଳାନ୍ତେ ଆପଣା ଶରଣ | । | ତେବେ ସେ ନ ଦେଖିଲା ପୁଣ | ॥ | ୬୧ |
| | ଫୁଟିଲେ ରଥ ଅଶ୍ୱମାନ | । | ଏମନ୍ତେ ସେ ଦ୍ୱିଜନନ୍ଦନ | ॥ | ୬୨ |
| | ରକ୍ଷାନିମିତ୍ତେ ଆପଣାର | । | ମଣିଲା ବ୍ରହ୍ମଶିରା ଶର | ॥ | ୬୩ |
| ୨୦ | ଏଥି ଉତ୍ତାରେ ଆଚମନ | । | କରିଣ କଲା ପୁଣ ଧ୍ୟାନ | ॥ | ୬୪ |
| | ସନ୍ଧାନ କଲା ସେ ଅସ୍ତ୍ରକୁ | । | ନ ଜାଣିଲେ ହେଁ ସଂହାରକୁ | ॥ | ୬୫ |
| | ପ୍ରାଣର ବାଧ ଉପସ୍ଥିତେ | । | କଲା ଏ କର୍ମ ଭୟଚିତ୍ତେ | ॥ | ୬୬ |
| ୨୧ | ତହିଁରୁ ତେଜ ଜାତ ହେଲା | । | ସେ ସର୍ବ ଦିଗରେ ପୂରିଲା | ॥ | ୬୭ |
| | ପ୍ରଚଣ୍ଡ ତେଜକୁ ଅନାଇଁ | । | ପ୍ରାଣସଂଶୟ ମନେ ଧ୍ୟାୟି | ॥ | ୬୮ |
| | ଏମନ୍ତ ପ୍ରକାରେ ବଚନ | । | କୃଷ୍ଣଙ୍କୁ ବୋଇଲେ ଅର୍ଜୁନ | ॥ | ୬୯ |

ଶ୍ରୀଅର୍ଜୁନ ଉବାଚ

| | | | | | |
|---|---|---|---|---|---|
| ୨୨ | ହେ କୃଷ୍ଣ କୃଷ୍ଣ ମହାବାହୁ | । | ଅଭୟ ଭଗତଙ୍କୁ ଦେଉ | ॥ | ୭୦ |
| | ଯେ ବା ସଂସାର ସକାଶରେ | । | ଦଗଧ ହେଉଥାନ୍ତି ନରେ | ॥ | ୭୧ |
| | ସେ ଲୋକମାନଙ୍କ ସଂସାର | । | ବିନାଶକର୍ତ୍ତା ତୁ ଈଶ୍ୱର | ॥ | ୭୨ |
| ୨୩ | ତୁ ଆଦ୍ୟ ପୁରୁଷ ଈଶ୍ୱର | । | ସାକ୍ଷାତ ପ୍ରକୃତିରୁ ପର | ॥ | ୭୩ |
| | ଜ୍ଞାନଶକତିରେ ତୁ ଦେବ | । | ମାୟାକୁ କରି ପରାଭବ | ॥ | ୭୪ |
| | କୈବଲ୍ୟରୂପ ଆତ୍ମା ଯେହି | । | ତୁ ଅବସ୍ଥିତ ଅଟୁ ତହିଁ | ॥ | ୭୫ |

---

* ''ରୁଦ୍ରଭୟାଦ୍ ଯଥା କଃ'' ପାଠ ଅନୁସାରେ ଅନୁବାଦ ହୋଇଅଛି । ''ରୁଦ୍ରଭୟାଦ୍ ଯଥାର୍କଃ'' ପାଠ ହେଲେ ନିମ୍ନଲିଖିତ ବାମନପୁରାଣର କଥା ସୂଚିତ ହୁଏ- ''ବିଦ୍ୟୁନ୍ମାଳୀ ନାମରେ ଏକ ରାକ୍ଷସ ରୁଦ୍ର ମହେଶ୍ୱରଙ୍କ ଭକ୍ତ ଥିଲା । ରୁଦ୍ର ତାକୁ ଗୋଟିଏ ସୁନାର ବିମାନ ଦେଇଥିଲେ । ସେ ସେହି ବିମାନଦୀପ୍ତିରେ ସୂର୍ଯ୍ୟଙ୍କ ପଛେ ପଛେ ଭ୍ରମଣ କରି ରାତ୍ରିକୁ ବିଲୋପ କଲା । ଏହା ପରେ ସୂର୍ଯ୍ୟ ନିଜ ତେଜ ଦ୍ୱାରା ସେହି ବିମାନକୁ ଦ୍ରବୀଭୂତ କରି ଭୂତଳରେ ନିକ୍ଷେପ କଲେ । ଏହା ଶୁଣି ରୁଦ୍ର କୁପିତ ହୁଅନ୍ତେ ସୂର୍ଯ୍ୟ ତାଙ୍କ ଭୟରେ ପଳାଇଗଲେ । କିନ୍ତୁ ରୁଦ୍ରଙ୍କ କ୍ରୂର ଦୃଷ୍ଟିରେ ଦଗ୍ଧୀଭୂତ ହୋଇ ବାରାଣସୀ ନଗରୀରେ ପତିତ ହେବାରୁ ସେ ଲୋଲାର୍କ ନାମରେ ବିଖ୍ୟାତ ହେଲେ ।''

(କଃ = ପ୍ରଜାପତି; ଅର୍କଃ = ସୂର୍ଯ୍ୟ)

ପ୍ରଜାପତି ମୃଗରୂପ ଧରି ମୈଥୁନ ପାଇଁ ନିଜ ସୁତାର ଅନୁଗମନ କରନ୍ତେ ରୁଦ୍ରଙ୍କୁ ଡରି ପଳାଇ ଯାଇଥିଲେ ।

୨୪ ମାୟାରେ ବିମୋହିତ ଚିତ୍ତ । ଯେ ଜୀବଲୋକ ଅବିରତ ॥ ୭୬
ସେବା କରଇ ତୋ' ପାଦରେ । ତୁ ପୁଣି ନିଜ ପ୍ରଭାବରେ ॥ ୭୭
ଧର୍ମାଦି ଫଳକୁ ବିଧାନ । କରୁ ତାହାକୁ ଭଗବାନ ॥ ୭୮
୨୫ ଏବେ ଏ ତୋର ଅବତାର । ହରିବା ଅର୍ଥେ ଭୂମିଭାର ॥ ୭୯
ଯେ ତୋତେ ଅନନ୍ୟ ଭାବରେ । ଶରଣ ପଶନ୍ତି ସଂସାରେ ॥ ୮୦
ତାହାଙ୍କ ଅନୁଧ୍ୟାନ ପାଇଁ । ପ୍ରକାଶ ହୋଇଛ ଗୋସାଇଁ ॥ ୮୧
୨୬ ହେ ଦେବଦେବ ଏ ଦହନ[1] । କିରୂପ କାହୁଁ ଆଗମନ ॥ ୮୨
ଏମନ୍ତ ନ ଜାଣଇଁ ମୁହିଁ । ସବୁ ଦିଗରେ ମୁଖ ଥାଇ ॥ ୮୩
କେବଳ ବ୍ୟାପିଣ ଆସୁଛି । ପରମ ଦାରୁଣ ହୋଇଛି ॥ ୮୪

ଶ୍ରୀଭଗବାନୁବାଚ

୨୭ ପ୍ରାଣର ବାଧ ଉପସ୍ଥିତ । ହୁଅନ୍ତେ ଦ୍ରୋଣଙ୍କର ସୁତ ॥ ୮୫
ପ୍ରୟୋଗ କଲା ବ୍ରହ୍ମଶର । ଏ ପୁଣି ନ ଜାଣେ ସଂହାର ॥ ୮୬
୨୮ ଏହାକୁ ସଂହାର ଯେ କରେ । ଅସ୍ତ୍ର ତ ନାହିଁ ଏ ପ୍ରକାରେ ॥ ୮୭
ପ୍ରୟୋଗ କରି ବ୍ରହ୍ମଶର । ଉନ୍ନଦ୍ଧ[2] ଅସ୍ତ୍ର ତେଜହର ॥ ୮୮
ଯେଣୁ ତୁ ଜାଣୁ ଅସ୍ତ୍ରଗତି । କ୍ରମେ ସେ ସିନା ହୋଏ ଶାନ୍ତି ॥ ୮୯

ଶ୍ରୀସୂତ ଉବାଚ

୨୯ ଶୁଣିଣ ଗୋବିନ୍ଦବଚନ । ରିପୁନାଶନ ଫାଲଗୁନ ॥ ୯୦
ଜଳେ ଆଚମନ କରିଣ । କୃଷ୍ଣଙ୍କୁ କରି ପ୍ରଦକ୍ଷିଣ ॥ ୯୧
ବ୍ରହ୍ମଶରକୁ ବ୍ରହ୍ମଶର । ସଂଧାନ କଲା ମହାବୀର ॥ ୯୨
୩୦ ବେନି ଶରଙ୍କ ତେଜ ଯହିଁ । ଶରରେ ସଂବେଷ୍ଟିତ ହୋଇ ॥ ୯୩
ଦ୍ୟାବାପୃଥିବୀ ଆକାଶକୁ । ଆବୋରି ଏକ ଆରେକକୁ ॥ ୯୪
ମିଳିଣ ବଢ଼ିଲେ ସେ ପୁଣି । ପ୍ରଳୟ ସୂର୍ଯ୍ୟ ଅଗ୍ନି ଜାଣି ॥ ୯୫
୩୧ ସେ ଦ୍ରୋଣସୁତ ଅର୍ଜୁନର । ଅସ୍ତ୍ରର ତେଜ ବଳିଆର ॥ ୯୬
ଦହନ କରେ ତ୍ରିଭୁବନ । ଦେଖି ଏମନ୍ତ ସର୍ବଜନ ॥ ୯୭
ତେଣେ ସଂତାପିତ ହୋଇଲେ । ପ୍ରଳୟ ଅନଳ ମଣିଲେ ॥ ୯୮

---

୧. ଦହନ = ତେଜ
୨. ଉନ୍ନଦ୍ଧ = ଉତ୍କଟ ।

| | | | | |
|---|---|---|---|---|
| ୩୨ | ପ୍ରଜାଙ୍କ ଉପଦ୍ରବ ମଣି | । | ଲୋକେ ମରିବେ ଏହା ଜାଣି | ॥ ୯୯ |
| | ସନ୍ନତ କଲେ ଭଗବାନ | । | ଏମନ୍ତ ଜାଣିଣ ଅର୍ଜୁନ | ॥୧୦୦ |
| | ସେ ବେନି ଅସ୍ତ୍ର ସଂହରିଲେ | । | ଜଗତ ସଂକଟୁ ରଖିଲେ | ॥୧୦୧ |
| ୩୩ | ତହୁଁ ଉତ୍ତାରୁ ବେଗେ ଯାଇଁ | । | କ୍ରୋଧେ ଅରୁଣନେତ୍ର ହୋଇ | ॥୧୦୨ |
| | ଦାରୁଣ ଯେ ଦ୍ରୋଣନନ୍ଦନ | । | ତାହାକୁ ବାନ୍ଧିଲେ ଅର୍ଜୁନ | ॥୧୦୩ |
| | ପଶୁକୁ କୁଶଦଉଡ଼ିରେ | । | ଯାଜ୍ଞିକ ବାନ୍ଧେ ଯେ ପ୍ରକାରେ | ॥୧୦୪ |
| ୩୪ | ରିପୁକୁ ଧରିଣ ବଳରେ | । | ବନ୍ଧନ କରିଣ ରଜ୍ଜୁରେ | ॥୧୦୫ |
| | ରାଜସ୍ଥାନକୁ ଅରଜୁନ | । | ନେବାକୁ ବିଚାରନ୍ତେ ମନ | ॥୧୦୬ |
| | କୋପରେ ତାଙ୍କୁ ଏ ବଚନ | । | କହିଲେ କମଳଲୋଚନ | ॥୧୦୭ |
| ୩୫ | ହେ ପାର୍ଥ ନ ରଖ ଏହାକୁ | । | ମାର ଏ ଦୁଷ୍ଟ ବ୍ରାହ୍ମଣକୁ | ॥୧୦୮ |
| | ନିରପରାଧେ ଯେଉଁ ବାଳେ | । | ଶୋଇଣ ଥିଲେ ରାତ୍ରକାଳେ | ॥୧୦୯ |
| | ତାହାଙ୍କୁ ଏ ଯେଉଁ ବ୍ରାହ୍ମଣ | । | ବିନାଶ କଲା ଅକାରଣ | ॥୧୧୦ |
| ୩୬ | ମଦିରା ଆଦିରେ ଯେ ମତ୍ତ | । | ଯେ ନୋହେ ସାବଧାନଚିତ୍ତ | ॥୧୧୧ |
| | ବାତ ଆଦିରେ ଯେ ବାତୁଳ | । | ଯେ ଶୋଇଥାଇ ଯେହୁ ବାଳ | ॥୧୧୨ |
| | ଯେ ସ୍ତିରୀ, ଯେ ଉଦ୍ୟମହୀନ | । | ଶରଣ ପଶଇ ଯେ ଜନ | ॥୧୧୩ |
| | ଯାହାର ରଥ ଭାଜିଥାଇ | । | ଯେବଣ ଲୋକ ଭୟ ପାଇ | ॥୧୧୪ |
| | ଏମନ୍ତ ରିପୁକୁ ସଂହାର | । | ନ କରେ ଧର୍ମଜ୍ଞ ଯେ ନର | ॥୧୧୫ |
| ୩୭ | *ଯେଉଁ ନିର୍ଦ୍ଦୟ ଖଳ ଜନ | । | ପରକୁ କରିଣ ନିଧନ | ॥୧୧୬ |
| | ଆପଣା ପ୍ରାଣକୁ ପୋଷଇ | । | ସେ ଯେବେ ମରେ ଦଣ୍ଡ ପାଇ | ॥୧୧୭ |
| | ସେ ଦଣ୍ଡ ପୁରୁଷାର୍ଥ ତାର | । | ଦଣ୍ଡ ନ ଲଭେ ଯେବେ ନର | ॥୧୧୮ |
| | ପ୍ରାୟଶ୍ଚିତ୍ତ ହିଁ ନ କରଇ | । | ସେ ଦୋଷୁଁ ନରକକୁ ଯାଇ | ॥୧୧୯ |
| ୩୮ | ମୋର ଶୁଣନ୍ତେ ଦ୍ରୌପଦୀକି | । | ପ୍ରତିଜ୍ଞା କରିଛୁ ତୁ ଟିକି | ॥୧୨୦ |
| | ବୋଇଲୁ ହେ ମାନିନି ! ତୋର | । | ପୁତ୍ରକୁ ଯେ କଲା ସଂହାର | ।୧୨୧ |
| | ତାହାର ଶିର ଯୁଦ୍ଧେ ହାଣି | । | ତୋର ଅଗ୍ରତେ ଦେବି ଆଣି | ॥୧୨୨ |
| ୩୯ | ସେ ଘେନି ଏହାକୁ ତୁ ମାର | । | ଏ ପାପୀ ଆତତାୟୀ ତୋର | ॥୧୨୩ |
| | ପୁତ୍ରକୁ କଲା ଯେଣୁ ହତ | । | କୁଳଦୂଷଣ ଏ ବିଦିତ | ॥୧୨୪ |
| | ଯେ ଅଟେ ପ୍ରଭୁ ଆପଣାର | । | ବିପ୍ରିୟ କଥା କଲା ତାର | ॥୧୨୫ |

* ରାଜଭିର୍ଧୃତଦଣ୍ଡାସ୍ତୁ କୃତପାପାଶ୍ଚ ମାନବାଃ ।
ବିଧୂତକଳ୍ମଷା ଯାନ୍ତି ସ୍ୱର୍ଗଂ ସୁକୃତିନୋ ଯଥା । (ସ୍ମୃତିଃ)

## ଶ୍ରୀସୂତ ଉବାଚ

୪୦ ଧର୍ମପରୀକ୍ଷା ନିମିତ୍ତରେ । କୃଷ୍ଣ କହନ୍ତେ ଏ ପ୍ରକାରେ ॥୧୨୬
ଗୁରୁର ସୁତକୁ ଅର୍ଜୁନ । ନ କଲା ମାରିବାକୁ ମନ ॥୧୨୭
ଯଦ୍ୟପି ମାରିଛି ସେ ସୁତ । ଏ ପୁଣି ଏଡ଼ିକି ମହତ ॥୧୨୮
୪୧ ପ୍ରିୟ ସାରଥି କୃଷ୍ଣ ଯାର । ମିଳି ସେ ଆପଣା ଶିବିର ॥୧୨୯
ମଲା ପୁତ୍ରଙ୍କୁ ମନେ ଭାଳି । ଶୋଚନା କରନ୍ତେ ପାଞ୍ଚାଳୀ ॥୧୩୦
ତାହାକୁ କଲା ନିବେଦନ । ସେ ଦ୍ରୋଣସୁତକୁ ଅର୍ଜୁନ ॥୧୩୧
୪୨ ପଶୁର ପ୍ରାୟେ ବାନ୍ଧି କରି । ସେ ରୂପେ ଆଣିଛନ୍ତି ଧରି ॥୧୩୨
ଚିନ୍ତି ନିନ୍ଦିତ କର୍ମମାନ । ତଳକୁ କରିଛି ବଦନ ॥୧୩୩
କରିଣ ଅଛି ଅପକାର । ଏ ରୂପେ ଯେ ଗୁରୁକୁମର ॥୧୩୪
ଦେଖି ଦ୍ରୌପଦୀ ଦୟା ବହି । ପ୍ରଣାମ କଲେ ବେଗ ହୋଇ ॥୧୩୫
ଯେଣୁ କରି ସେ ଦ୍ରୌପଦୀର । ସ୍ୱଭାବ ଅଟଇ ସୁନ୍ଦର ॥୧୩୬
୪୩ ତାହାକୁ ବାନ୍ଧି ଆଣିଛନ୍ତି । ସେ କଥା ନ ସହି ସେ ସତୀ ॥୧୩୭
ଏମନ୍ତ ବୋଇଲା ସରାଗେ । ଏହାଙ୍କୁ ଛାଡ଼ ଛାଡ଼ ବେଗେ ॥୧୩୮
ଯେ ଅଟେ ସହଜେ ବ୍ରାହ୍ମଣ । ସେ ଅତିଶୟେ ଗୁରୁ ପୁଣ ॥୧୩୯
୪୪ ଗୁପତ ମନ୍ତ୍ରରେ ସଂଯତ । ପ୍ରୟୋଗ ସଂହାର ସହିତ ॥୧୪୦
ଏମନ୍ତ ଧନୁର୍ବେଦ ସାର । ଯେ ଅସ୍ତ୍ରସମୂହ ଆବର ॥୧୪୧
ଏମାନ ଯାହା ଅନୁଗ୍ରହେ । ଶିକ୍ଷା କରିଛ ନିଃସନ୍ଦେହେ ॥୧୪୨
୪୫ ସେ ଭଗବାନ ଦ୍ରୋଣ ଏହି । ପୁତ୍ରରୂପରେ ଛନ୍ତି ରହି ॥୧୪୩
*ତାହାଙ୍କ ଅର୍ଦ୍ଧଦେହରୂପୀ । ଜୀଇ ଅଛନ୍ତି ପତ୍ନୀ କୃପୀ ॥୧୪୪
ବୀରପୁତ୍ରକୁ କଲେ ଜାତ । ନ ମଲେ ଭର୍ତ୍ତାର ସହିତ ॥୧୪୫
୪୬ ଆହେ ଧର୍ମଜ୍ଞ ମହାବାହୁ । ସେ ଘେନି ଗୁରୁକୁଳ ଯେହୁ ॥୧୪୬
ସେ କଷ୍ଟ ନ ପାଉ ତୁମ୍ଭରେ । ଯେ ପୂଜ୍ୟ ବନ୍ଦ୍ୟ ନିରନ୍ତରେ ॥୧୪୭
୪୭ ଏହାଙ୍କ ମାତା ପତିବ୍ରତା । ନ କାନ୍ଦୁ ଗଉତମସୁତା ॥୧୪୮
ପୁତ୍ରବିନାଶେ ଯେହ୍ନେ ମୁହିଁ । କାନ୍ଦଇ ଅଶ୍ରୁମୁଖୀ ହୋଇ ॥୧୪୯

---

* "ଅର୍ଦ୍ଧୋ ବା ଏଷ ଆତ୍ମନୋ ଯତ୍ ପତ୍ନୀ"
"ଜାୟାପତୀ ଅଗ୍ନିମାଦଧୀୟାତାମ୍" ଇତ୍ୟାଦିଶ୍ରୁତିଃ ।

୪୮ ଯେଉଁ କ୍ଷତ୍ରିୟେ ଅଜ୍ଞପଣେ । କୋପ କରନ୍ତି ବିପ୍ରଗଣେ ॥୧୫୦
ସେ ବିପ୍ରଗଣେ ଶୋକଭରେ । ପରିଜନଙ୍କ ସହିତରେ ॥୧୫୧
ସେ ରାଜାଙ୍କର ଯେତେ କୁଳ । ଦହନ କରନ୍ତି ସକଳ ॥୧୫୨

ଶ୍ରୀସୂତ ଉବାଚ

୪୯ ଯେ ଧର୍ମନ୍ୟାୟକୃପାଯୁତ । ଅବ୍ୟାଜ ସମାନ ମହତ ॥୧୫୩
ଏମନ୍ତ ଦ୍ରୌପଦୀର ବାଣୀ । ହରଷ ରାଜା ବିପ୍ରେ ! ଶୁଣି ॥୧୫୪
୫୦ ଶୁଣି ନକୁଳ ସହଦେବ । ସାତ୍ୟକି ଅର୍ଜୁନ ମାଧବ ॥୧୫୫
ଆବର ନରନାରୀ ଯେତେ । ହରଷ ଲଭିଲେ ସେ ଚିତ୍ତେ ॥୧୫୬
୫୧ ଭୀମ ବୋଇଲେ କ୍ରୋଧେ ବାଣୀ ଯେ ସ୍ୱାମୀ ହିତକୁ ନ ଜାଣି ॥୧୫୭
ନ ମଣି ଆପଣା କାର୍ଯ୍ୟକୁ । ମାଇଲା ଶୋଇଲା ଶିଶୁଙ୍କୁ ॥୧୫୮
ତାହାକୁ ବଧ କରିବାର । ନୁହଇ ଅନ୍ୟାୟ ବେଭାର ॥୧୫୯
୫୨ ଭୀମର ଦ୍ରୌପଦୀର ବାଣୀ । ଏ ରୂପେ ଚତୁର୍ଭୁଜ ଶୁଣି ॥୧୬୦
ଅର୍ଜୁନ-ମୁଖକୁ ଚାହିଁଣ । ବୋଇଲେ ହସିଲା ହୋଇଣ ॥୧୬୧

ଶ୍ରୀଭଗବାନୁବାଚ

୫୩ ଯେହୁ ବ୍ରାହ୍ମଣମାତ୍ର ହୋଇ । ବଧକୁ ଯୋଗ୍ୟ ସେ ନୁହଇ ॥୧୬୨
*ଯେ ଆତତାୟୀ ଅଟେ ଜନ । ବଧକୁ ଅଟେ ସେ ଭାଜନ ॥୧୬୩
ଏ ବେନି କହିଅଛି ମୁହିଁ । ପାଳନା କର ଏହା ତୁହି ॥୧୬୪
୫୪ ପ୍ରିୟାକୁ କରନ୍ତେ ସାନ୍ତ୍ୱନ । କଲୁ ଯା' ପ୍ରତିଜ୍ଞାବଚନ ॥୧୬୫
ସେ ପ୍ରତିଜ୍ଞାକୁ ସତ୍ୟ କର । ଭୀମର ପ୍ରିୟକୁ ଆଚର ॥୧୬୬
ଦ୍ରୌପଦୀପ୍ରୀତି, ମୋର ସୁଖ । ଏ ବେନି କଥା ଭଲେ ରଖ ॥୧୬୭

ଶ୍ରୀସୂତ ଉବାଚ

୫୫ ଅର୍ଜୁନ ହରିହୃଦ ଜାଣି । ବିପ୍ରମସ୍ତକଜାତ ମଣି ॥୧୬୮
ହରିଲା କେଶ ସହିତରେ । ଖଡ୍‌ଗ ଘେନି ନିଜ କରେ ॥୧୬୯
୫୬ ବାଳକହତ୍ୟାରେ ତାହାର । ମଳିନ ଦିଶିଲା ଶରୀର ॥୧୭୦
ତେଜରେ ମଣିରେ ସେ ହୀନ । ଫେଇଣ ତାହାର ବନ୍ଧନ ॥୧୭୧
ଶିବିର ସ୍ଥାନୁଁ ଆନଠାକୁ । ବାହାର କରି ଦେଲେ ତାକୁ ॥୧୭୨

---

* ଆତତାୟିନମାୟାନ୍ତମପି ବେଦାନ୍ତପାରଗମ୍ ।
ଜିଘାଂସନ୍ତଂ ଜିଘାଂସୀୟାନ୍ ନ ତେନ ବ୍ରହ୍ମହା ଭବେତ୍ ॥

୫୭ ଯାହାର କାଟି କେଶମାନ । ଘେନି ସକଳ ତାର ଧନ ॥୧୭୩
ରାଜ୍ୟୁଁ ବାହାର କରି ଦେଇ । ବ୍ରାହ୍ମଣବଧ ଏ ଅଟଇ ॥୧୭୪
କେବେହେଁ ଦେହଘାତ ହୋଇ । ବ୍ରାହ୍ମଣଠାରେ ବଧ ନାହିଁ ॥୧୭୫
୫୮ ପାଣ୍ଡବେ ଦ୍ରୌପଦୀ ସହିତେ । ପୁତ୍ରଶୋକରେ ଦୁଃଖଚିତ୍ତେ ॥୧୭୬
ଯେ କୃତ୍ୟ ମଲା ଲୋକଙ୍କର । କଲେ ଦାହାଦି ତାହାଙ୍କର ॥୧୭୭
ପ୍ରଥମସ୍କନ୍ଧ ଭାଗବତ । ଦେଶଭାଷାରେ ଭଣି ଗୀତ ॥୧୭୮
ହରଷ ଦୀନବନ୍ଧୁ ମନ । ସୁଜନେ ହୁଅ ସାବଧାନ ॥୧୭୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମ ସ୍କନ୍ଧେ ପାଞ୍ଚାଳୀକୁମରନିଧନଂ
ନାମ ସପ୍ତମୋଽଧ୍ୟାୟଃ ॥

## ଅଷ୍ଟମୋଽଧ୍ୟାୟଃ

ଅଷ୍ଟମେ କୁପିତଦ୍ରୌଣେରସ୍ତ୍ରାଦ୍ରକ୍ଷା ପରୀକ୍ଷିତଃ ।
କୃଷ୍ଣେନ ତଦ୍‌ସ୍ତୁତିଃ କୁନ୍ତ୍ୟା ରାଜ୍ଞଃ ଶୋକଶ୍ଚ କୀର୍ତ୍ତ୍ୟତେ ॥

ଶ୍ରୀସୂତ ଉବାଚ

୧ ଯେ ମରିଛନ୍ତି ନିଜ ଲୋକ । ସେମାନେ ବାଞ୍ଛନ୍ତେ ଉଦକ ॥ ୧
ତାହାଙ୍କୁ ଜଳ ଦେବା ପାଇଁ । କୃଷ୍ଣସଙ୍ଗତେ ପାଞ୍ଚ ଭାଇ ॥ ୨
ସ୍ତିରୀଙ୍କି କରିଣ ଆଗରେ । ଗଙ୍ଗାକୁ ଗଲେ ତଦନ୍ତରେ ॥ ୩
୨ ସମସ୍ତେ ଉଦକ ଦେଇଣ । ବହୁତ ବିଳାପ କରିଣ ॥ ୪
ହରିଚରଣକମଳର । ରଜେ ପବିତ୍ର ଜଳ ଯାର ॥ ୫
ସେ ନଦୀଜଳରେ ସେ ପୁଣ । ସ୍ନାନକୁ କଲେ ଆଚରଣ ॥ ୬
୩ ଅନୁଜମାନଙ୍କର ତୁଲେ । ସେଠାରେ ଯୁଧିଷ୍ଠିର ଥିଲେ ॥ ୭
୪ ଗାନ୍ଧାରୀ ଧୃତରାଷ୍ଟ୍ର ଦୁଇ । ପୁତ୍ରଶୋକରେ ଆର୍ତ୍ତ ହୋଇ ॥ ୮
କୁନ୍ତୀ ଦ୍ରୌପଦୀ ଦୁହେଁ ଥିଲେ । ତାହାଙ୍କୁ ମୁନିଙ୍କର ତୁଲେ ॥ ୯
ସାନ୍ତ୍ୱନା କଲେ ଭଗବାନ । ମଲେ ଯେ ତାଙ୍କ ବନ୍ଧୁଜନ ॥ ୧୦
ଏ ଘେନି ଶୋକରେ ସଂଯୁତ । ହୋଇ ଅଛନ୍ତି ସେ ସମସ୍ତ ॥ ୧୧

---

୧. ଦ୍ରୋଣିଦଣ୍ଡୋ

କାଳର ଗତି ପ୍ରାଣୀଠାର । କେବେହେଁ ନୁହଇ ନିବାର ॥ ୧୨
ଦେଖାଇ କରିଣ ଏମାନ । ପ୍ରବୋଧ କଲେ ଭଗବାନ ॥ ୧୩
୫ ଯୁଧିଷ୍ଠିରଙ୍କ ରାଜ୍ୟ ଯେତେ । ହରି ଯେ ଥିଲେ ତାହା ଧୂର୍ତ୍ତେ ॥ ୧୪
ତାହାଙ୍କ ଠାରୁ ଲେଉଟାଇ । ଯୁଧିଷ୍ଠିରଙ୍କୁ ତାହା ଦେଇ ॥ ୧୫
କେଶଗ୍ରହଣେଁ ଦ୍ରୌପଦୀର । ଗଲା ଆୟୁଷ ଯାହାଙ୍କର ॥ ୧୬
ସେ ଦୁଷ୍ଟ ନରପତିଗଣ । ଯୁଦ୍ଧେ ସଂହାର କରାଇଣ ॥ ୧୭
୬ ଉତ୍ତମ ବିଧିରେ ତାହାଙ୍କୁ । କରାଇ ତ୍ରି ଅଶ୍ୱମେଧକୁ ॥ ୧୮
ଇନ୍ଦ୍ରର ପ୍ରାୟେ ଯଶ ତାର । ସକଳ ଦିଗରେ ବିସ୍ତାର ॥ ୧୯
କଲେକ ପ୍ରଭୁ ଭଗବାନ । ଯେ ଯଶ ଅଟଇ ପାବନ ॥ ୨୦
୭ ଗମନ କରୁଛୁଁ ବୋଲିଣ । ପାଣ୍ଡୁ ପୁତ୍ରଙ୍କୁ ପଚାରିଣ ॥ ୨୧
୮ ସାତ୍ୟକି ଉଦ୍ଧବ ଯେ ବେନି । ତାହାଙ୍କୁ ସଙ୍ଗତରେ ଘେନି ॥ ୨୨
ଯେ ବ୍ୟାସ ଆଦି ମୁନିଜନ । ତାଙ୍କୁ ପୂଜିଲେ ଭଗବାନ ॥ ୨୩
ସେମାନେ ସନ୍ତୋଷ ହୋଇଲେ । କୃଷ୍ଣଙ୍କୁ ପ୍ରତିପୂଜା କଲେ ॥ ୨୪
ଦ୍ୱାରକାପୁରକୁ ଶ୍ରୀପତି । ଯିବା ନିମନ୍ତେ କଲେ ମତି ॥ ୨୫
ରଥରେ ଆରୋହଣ କଲେ । ଦୂରୁଁ ଉତ୍ତରାକୁ ଦେଖିଲେ ॥ ୨୬
ଭୟରେ ବିହ୍ୱଳିତ ହୋଇ । ଆଗକୁ ଆସୁଅଛି ଧାଇଁ ॥ ୨୭

ଶ୍ରୀଉତ୍ତରା ଉବାଚ

୯ ହେ ମହାଯୋଗି ! ବିଶ୍ୱେଶ୍ୱର । ହେ ଦେବଦେବ ! ରକ୍ଷା କର ॥ ୨୮
ତୋ ତହୁଁ ନ ଦେଖୁଛି ଆନ । ଯେ ନୋହିଥିବ ଭୟହୀନ ॥ ୨୯
ଯେବଣ ମନୁଷ୍ୟ-ଲୋକରେ । ମୃତ୍ୟୁ ସଂଭବେ ପରସ୍ପରେ ॥ ୩୦
୧୦ ତପତ ଲୋହମୟ ହୋଇ । ଶଲ୍ୟ ଯହିଁରେ ଅଛି ରହି ॥ ୩୧
ହେ ନାଥ ! ଅଭିମୁଖେ ମୋର । ଧାଇଁଣ ଆସୁଛି ସେ ଶର ॥ ୩୨
ସେ ମୋତେ କରିବ ଦହନ । ତହିଁକି ନାହିଁ ମୋ ବିମନ ॥ ୩୩
ଯେବଣ ଗର୍ଭ ମୋର ସ୍ଥିତ । ତାହାକୁ ନ କରୁ ନିପାତ ॥ ୩୪

ଶ୍ରୀସୂତ ଉବାଚ

୧୧ ଭକ୍ତବତ୍ସଳ ଭଗବାନ । ଶୁଣି ସେ ଉତ୍ତରାବଚନ ॥ ୩୫
ପାଣ୍ଡବହୀନ ଏ ଜଗତ । କରିବା ପାଇଁ ଦ୍ରୋଣସୁତ ॥ ୩୬
ପ୍ରୟୋଗ କଲା ବ୍ରହ୍ମଶର । ଏମନ୍ତ ମଣିଲେ ମନର ॥ ୩୭

୧୨ ହେ ଭୃଗୁବର ! ସେହିକ୍ଷଣେ । ପାଣ୍ଡବମାନେ ଜଣେ ଜଣେ ॥ ୩୮
ଆପଣା ଅଭିମୁଖ ହୋଇ । ପଞ୍ଚ ସାୟକେ ଛନ୍ତି ଧାଇଁ ॥ ୩୯
ସେ ଦୀପ୍ତ ବାଣକୁ ଦେଖିଣ । ଧଇଲେ ଅସ୍ତ୍ରମାନ ପୁଣ ॥ ୪୦
୧୩ କୃଷ୍ଣର ବିନୁ ଆନଠାର । ମନ ନ ଥାଇ ଯାହାଙ୍କର ॥ ୪୧
ସେ ନିଜ ଜନଙ୍କ ବିପତ୍ତି । ଦେଖିଣ ପ୍ରଭୁ ରମାପତି ॥ ୪୨
ଯେ ନିଜ ଅସ୍ତ୍ର ସୁଦର୍ଶନ । ତେଣେ ରଖିଲେ ଭଗବାନ ॥ ୪୩
୧୪ ଯେ ସର୍ବ ପ୍ରାଣୀମାନଙ୍କର । ଆତ୍ମାସ୍ୱରୂପୀ ଯୋଗେଶ୍ୱର ॥ ୪୪
ସେ ପ୍ରଭୁ ଆପଣା ମାୟାରେ । କୁରୁଙ୍କ ସନ୍ତାନ ହେତୁରେ ॥ ୪୫
ଗର୍ଭକୁ ବିରାଟସୁତାର । ଆବୃତ କଲେ ଚକ୍ରଧର ॥ ୪୬
୧୫ ଯେ ଅସ୍ତ୍ର ନାମ ବ୍ରହ୍ମଶର । ଯାହାକୁ ନାହିଁ ପ୍ରତିକାର ॥ ୪୭
ଯଦ୍ୟପି ଅମୋଘ ଅଟଇ । ହେ ଭୃଗୁଶ୍ରେଷ୍ଠ ! ତଥାପି ହିଁ ॥ ୪୮
ବିଷ୍ଣୁର ତେଜକୁ ପାଇଣ । ଶାନ୍ତି ହୋଇଲା ତତକ୍ଷଣ ॥ ୪୯
୧୬ ଏ ବ୍ରହ୍ମ ଅସ୍ତ୍ର ନିବାରଣ । ଆଶ୍ଚର୍ଯ୍ୟ କରି ତୁ ନ ମଣ ॥ ୫୦
ଏ ବିଶ୍ୱ ଯେ ନିଜ ମାୟାରେ । ସର୍ଜଇ ପାଳଇ ସଂହାରେ ॥ ୫୧
୧୭ ସେ ବ୍ରହ୍ମଶରରୁ ମୁକତ । ହେଲେ ଯେ ନିଜ ପଞ୍ଚସୁତ ॥ ୫୨
କୃଷ୍ଣାସହିତେ ତାଙ୍କୁ ଘେନି । ସଙ୍ଗତେ ପାଣ୍ଡବଜନନୀ ॥ ୫୩
କୃଷ୍ଣଙ୍କୁ ପ୍ରୟାଣକାଳରେ । କହିଲେ ଏମନ୍ତ ପ୍ରକାରେ ॥ ୫୪

ଶ୍ରୀକୁନ୍ତୀ ଉବାଚ

୧୮ ଭୋ ନାଥ ! ତୋତେ ନମସ୍କାର । ତୁ ଆଦ୍ୟ ପୁରୁଷ ଈଶ୍ୱର ॥ ୫୫
୧୯ ତୁ ଅଟୁ ପ୍ରକୃତିରୁ ପର । ଏଣୁ ପ୍ରାଣୀଙ୍କି ଅଗୋଚର ॥ ୫୬
ତୁ ପ୍ରାଣୀଙ୍କର ଅନ୍ତର୍ଗତ । ବାହ୍ୟରେ ଅଟୁ ଅବସ୍ଥିତ ॥ ୫୭
ଭୋ ଅଧୋକ୍ଷଜ ! ତୋତେ ଏକା । ଆଚ୍ଛାଦେ ମାୟାଜବନିକା ॥ ୫୮
ଅପରିଚ୍ଛିନ୍ନ ଅଟୁ ତୁହି । ମୁଁ ଅଜ୍ଞ ଜାଣିମଇଁ କାହିଁ ॥ ୫୯
ମୂଢ଼ ଅଟଇ ଯେଉଁ ନର । ସେ ତୋତେ ନ କରେ ଗୋଚର ॥ ୬୦
ନଟ ଯେସନେ ନାଟ୍ୟବେଶେ । ନାନା ସ୍ୱରୂପକୁ ପ୍ରକାଶେ ॥ ୬୧
ତା ମୂଳ ସ୍ୱରୂପକୁ ଆନ । ଜାଣି ନ ପାରଇ ଯେସନ ॥ ୬୨
୨୦ ପରମହଂସ ଦୀକ୍ଷା ଘେନି । ନିର୍ମଳ ଚେତା ଯେଉଁ ମୁନି ॥ ୬୩
ତାହାଙ୍କ ଭଗତିବିଧାନ । ଅର୍ଥେ ହୋଇଛ ତୁମ୍ଭେ ଜନ୍ମ ॥ ୬୪
ଆମ୍ଭେ ତୁମ୍ଭଙ୍କୁ ସ୍ତିରୀ ହୋଇ । କେମନ୍ତେ ଜାଣିମୁଁ ଗୋସାଇଁ ॥ ୬୫

୨୧ ତୁ କୃଷ୍ଣ ବସୁଦେବସୁତ । ଦେବକୀଗର୍ଭରୁ ସଂଭୂତ ॥ ୬୬
୨୨ ତୁ ନନ୍ଦଗୋପର କୁମାର । ତୋତେ ମୋହର ନମସ୍କାର ॥ ୬୭
ନାଭିରେ ପଙ୍କଜ ତୋହର । ପଙ୍କଜମାଳା ତୋର ଉର ॥ ୬୮
ପଙ୍କଜ ପ୍ରାୟେକ ପ୍ରସନ୍ନ । ଅଟଇ ତୋହର ନୟନ ॥ ୬୯
ପଦ୍ମ ଅଙ୍କିତ ପାଦ ତୋର । ତୋତେ ମୋହର ନମସ୍କାର ॥ ୭୦
୨୩ ହେ ହୃଷୀକେଶ ! କଂସ ଖଳ । ବନ୍ଦୀଘରରେ ଚିରକାଳ ॥ ୭୧
ଦେବକୀକି ଯେ ବନ୍ଦୀ କଲା । ଅନେକ ଶୋକ ସେ ପାଇଲା ॥ ୭୨
ତାକୁ ସେ ବନ୍ଦୀରୁ ମୋଚନ । କରିଛ ପୂର୍ବରେ ଯେସନ ॥ ୭୩
ମୋତେହେଁ ସେହି ପରକାରେ । ପୁତ୍ରମାନଙ୍କ ସହିତରେ ॥ ୭୪
ବିପତ୍ତିଗଣୁଁ ପୁଣ ପୁଣ । ତୁ ନାଥ କଲୁ ଉଦ୍ଧାରଣ ॥ ୭୫
୨୪ ଭୀମର ବିଷଲଡ୍ଡୁଦାନୁଁ । ଜଉସଦନର ଦହନୁଁ ॥ ୭୬
ହିଡ଼ିମ୍ବ ଆଦିଙ୍କ ଭେଟରୁ । ଦୁଷ୍ଟମାନଙ୍କର ସଭାରୁ ॥ ୭୭
ବନବାସରେ ଯେତେ କ୍ଲେଶ । ତହିଁ ହେ ଦେବ ହୃଷୀକେଶ ॥ ୭୮
ଯୁଦ୍ଧେ ଯୁଦ୍ଧେକେ ମହାଘୋର । ଯେ ଅସ୍ତ୍ର ମହାରଥୀଙ୍କର ॥ ୭୯
ତହିଁରୁ କରିଛ ରକ୍ଷଣ । ଆମ୍ଭମାନଙ୍କୁ ଏବେ ପୁଣ ॥ ୮୦
ବର୍ତ୍ତମାନ ହିଁ ଦ୍ରୋଣସୁତ । ଅସ୍ତ୍ରରୁ ରଖିଲ ଅଚ୍ୟୁତ ॥ ୮୧
୨୫ ହେ[୧] ନାଥ ! ସେ ବିପତ୍ତିଗଣ । ଆମ୍ଭର ହେଉ ପୁଣ ପୁଣ ॥ ୮୨
ଯହିଁରେ ଦରଶନ ତୋର । ହୁଅଇ ଅନାୟାସେ ମୋର ॥ ୮୩
ଯେଉଁ ଦରଶନରୁ ଜନ । ନ କରେ ଭବ ଦରଶନ ॥ ୮୪
୨୬ ଉତ୍ତମ କୁଳେ ଜାତ ହୋଇ । ଅଇଶ୍ୱର୍ଯ୍ୟକୁ ଲଭିଥାଇ ॥ ୮୫
ଶାସ୍ତ୍ର ହିଁ କରଇ ପଠନ । ସଂପତ୍ତି ଲଭିଥାଇ ଜନ ॥ ୮୬
ତେଣେ ସେ ଅତିଗର୍ବୀ ହୋଇ । ତୋତେ କୀର୍ତ୍ତନ ନ କରଇ ॥ ୮୭
ତୁ ଅକିଂଚନମାନଙ୍କର । ଗୋଚର ଅଟୁ ଦାମୋଦର ॥ ୮୮

---

୧. ଭୋ ।

୨୭ ଯେହୁ ଅଟନ୍ତି ଅକିଂଚନ । ସେ ଲୋକମାନେ ତୋର ଧନ ॥ ୮୯
ଯେହୁ ଧର୍ମାଦି ଗୁଣବୃତ୍ତି । ତୋ ଠାରୁ ଛନ୍ତି ସେ ନିବର୍ତ୍ତି ॥ ୯୦
ଆତ୍ମାରେ ଅଂଟେ ତୋ ବିହାର । ତୁ ଶାନ୍ତସ୍ୱରୂପୀ ଈଶ୍ୱର ॥ ୯୧
ତୁ ନାଥ କଇବଲ୍ୟପତି । ତୋତେ ମୁଁ କରୁଛି ପ୍ରଣତି ॥ ୯୨
୨୮ ମୁଁ ମଣେ କାଳରୂପୀ ତୁହି । ତୋହର ଆଦି ଅନ୍ତ ନାହିଁ ॥ ୯୩
ସମାନରୂପେ ସର୍ବଠାରେ । ତୁ ଚରୁ ତୋହର ହେତୁରେ ॥ ୯୪
ଏକ ଆରକେ ପ୍ରାଣୀଙ୍କର । କଳହ ଉପୁଜଇ ଘୋର ॥ ୯୫
କରିବି ବୋଲି ବାଞ୍ଛୁ ଯାହି । ସେ କଥା ନ ଜାଣଇଁ କେହି ॥ ୯୬
ତୁ ନରଲୋକର ସମାନ । ଚେଷ୍ଟା ବିସ୍ତାରୁ ଭଗବାନ ॥ ୯୭
ଯା' ଠାରେ ଶତ୍ରୁମିତ୍ର ହୋଇ । ଏ ବେନି ସଂଭବଇ ନାହିଁ ॥ ୯୮
ଯେବଣ ଶତ୍ରୁମିତ୍ରଙ୍କର । ବିଷୟେ ପ୍ରାଣୀମାନଙ୍କର ॥ ୯୯
ନିଗ୍ରହ ଅନୁଗ୍ରହ ହୋଇ । ବିଷମ ବୁଦ୍ଧି ଉପୁଜଇ ॥୧୦୦
୩୦ ତୁ ଆତ୍ମା ଅଟୁ ଜଗତର । ତୁ ଅଜ ଅକର୍ତ୍ତା ଈଶ୍ୱର ॥୧୦୧
ବରାହ ଆଦି ସ୍ୱରୂପରେ । ତୋ ଜନ୍ମ ତିର୍ଯ୍ୟକ ଜନ୍ତୁରେ ॥୧୦୨
ରାମାଦି ରୂପେ ମନୁଷ୍ୟର । ଘରେ ତୋହର ଅବତାର ॥୧୦୩
ବାମନ ଆଦି ସ୍ୱରୂପରେ । ତୋ ଜନ୍ମ ଋଷିଙ୍କ ମନ୍ଦିରେ ॥୧୦୪
ଜଳଜନ୍ତୁଙ୍କ ମଧ୍ୟେ ତୁହି । ଜନମୁଁ ମତ୍ସ୍ୟକୂର୍ମ ହୋଇ ॥୧୦୫
ଏ ତୋର ଜନ୍ମକର୍ମମାନ । ଅଟେ ଅତ୍ୟନ୍ତ ବିଡ଼ମ୍ବନ ॥୧୦୬
୩୧ ତୁ ଯେତେବେଳେ ଦଧିଭାଣ୍ଡ । ରୋଷରେ କଲୁ ଖଣ୍ଡ ଖଣ୍ଡ ॥୧୦୭
ବାନ୍ଧିବା ପାଇଁ ତୋତେ ଗୋପୀ । ରଜ୍ଜୁ ଧରନ୍ତେ ହୋଇ କୋପୀ ॥୧୦୮
ଲୋତକେ ମିଶ୍ରିତ ଅଞ୍ଜନ । ସଂଭ୍ରମେ ବ୍ୟାକୁଳ ଲୋଚନ ॥୧୦୯
ଯେଉଁ ମୁଖେ ଏ ଶୋଭା ପାଇ । ସେ ମୁଖ ଭୟରେ ଲୁଆଇଁ ॥୧୧୦
ଠିଆ ହୋଇଲୁ ଯେତେବେଳେ । ଯେ ଦଶା ତୋହର ସେ କାଳେ ॥୧୧୧
ସେ ଦଶା ଚିତୋଇଲେଁ[୧] ମନ । ମୋହଇ ମୋର ଭଗବାନ ॥୧୧୨
ଭୟହିଁ ଯାକୁ ଭୟ କରେ । ସେ କିପାଁ ଯଶୋଦାକୁ ଡରେ ॥୧୧୩
୩୨ ସ୍ୱଭାବେ ଜନ୍ମ ତୋର ନାହିଁ । ଯୁଧିଷ୍ଠିରର କୀର୍ତ୍ତିପାଇଁ ॥୧୧୪
ପ୍ରିୟ ଅଟଇ ଯଦୁ ତୋର । ତା' ବଂଶେ ହେଲୁ ଅବତାର ॥୧୧୫

---

୧. ଚିତୋଇଲେ = ଚିନ୍ତା କଲେ ।

| | | | |
|---|---|---|---|
| | ମଳୟବଂଶରେ ଯେମନ୍ତ । | ଚନ୍ଦନ ହୁଅଇ ସଂଭୂତ | ॥୧୧୬ |
| | ଏମନ୍ତ ପ୍ରକାରେ ବଚନ । | କହନ୍ତି କେଉଣସି ଜନ | ॥୧୧୭ |
| ୩୩ | ଆବର ଯେତେ ସାଧୁ ନରେ । | କହନ୍ତି ଏମନ୍ତ ପ୍ରକାରେ | ॥୧୧୮ |
| | ପୂର୍ବେ କଠୋର ତପ କରି । | ଥିଲେ ଯେ ପୁତ୍ରଭାବେ ବରି | ॥୧୧୯ |
| | ସେ ଘେନି ବସୁଦେବଙ୍କର । | ଦେବକୀଠାରେ ଜନ୍ମ ତୋର | ॥୧୨୦ |
| | ଜଗତମଙ୍ଗଳକାରଣେ । | ଅସୁରକୁଳ ସଂହାରଣେ | ॥୧୨୧ |
| ୩୪ | ସମୁଦ୍ରେ ନାବପ୍ରାୟେ ହୋଇ । | ଭାରାରେ ବୁଡୁଥିଲା ମହୀ | ॥୧୨୨ |
| | ତା' ଭାର ଅବତାରିବାରେ । | ବ୍ରହ୍ମା ପ୍ରାର୍ଥନା କଲା ତୋରେ | ॥୧୨୩ |
| | ସେ ଘେନି ହୋଇଲୁ ତୁ ଜାତ । | ଏ ଆନ ଲୋକଙ୍କର ମତ | ॥୧୨୪ |
| ୩୫ | ଅବିଦ୍ୟା କାମକର୍ମଦ୍ୱାରେ । | କ୍ଳେଶ ଲଭନ୍ତି ଯେ ସଂସାରେ | ॥୧୨୫ |
| | ତାହାଙ୍କ ଶ୍ରବଣ ସ୍ମରଣ । | ଯୋଗ୍ୟ କର୍ମକୁ ଆଚରଣ | ॥୧୨୬ |
| | କରିବା ପାଇଁ ହେଲୁ ଜାତ । | କେହି ମାନନ୍ତି ଏହୁ ମତ | ॥୧୨୭ |
| ୩୬ | ତୋର ଚରିତ ଯେଉଁ ଜନ । | ଶୁଣନ୍ତି କରନ୍ତି ଗାୟନ | ॥୧୨୮ |
| | ନିତ୍ୟେ ଗୁଣନ୍ତି ସୁମରନ୍ତି । | ଶୁଣିଣ ଆନନ୍ଦ ଲଭନ୍ତି | ॥୧୨୯ |
| | ତୋ ପାଦ ପଦ୍ମକୁ ବେଗରେ । | ନିଶ୍ଚୟେ ଦେଖନ୍ତି ସେ ନରେ | ॥୧୩୦ |
| | ଯେବଣ ପାଦପଦ୍ମରସେ । | ଭବପ୍ରବାହ ପ୍ରାଣୀ ନାଶେ | ॥୧୩୧ |
| ୩୭ | ନିଜ ଜନଙ୍କ କାର୍ଯ୍ୟ ଅର୍ଥେ । | ଚେଷ୍ଟା କରଇ ଯେ ଜଗତେ | ॥୧୩୨ |
| | ତୁମ୍ଭେ ଏମନ୍ତ ପ୍ରଭୁ ହୋଇ । | ଆମ୍ଭଙ୍କୁ ଛାଡୁଛ ଗୋସାଇଁ | ॥୧୩୩ |
| | ତୋର ସୁହୃଦ ପରିଜନ । | ଆମ୍ଭେ ଅଟୁ ହେ ଭଗବାନ | ॥୧୩୪ |
| | ତୋ' ପାଦପଦ୍ମୁଁ ଆନ ହୋଇ । | ଆମ୍ଭର ପରାୟଣ ନାହିଁ | ॥୧୩୫ |
| | ରାଜାଙ୍କ ଠାରେ ନିଯୋଜିତ । | ଦୋଷକୁ କରିଛୁଁ ବହୁତ | ॥୧୩୬ |
| ୩୮ | ଭୋ ନାଥ ନ ଚାହିଁଲେ ତୋର । | ଯଦୁଙ୍କ ସହିତେ ଆମ୍ଭର | ॥୧୩୭ |
| | କି ଅବା ନାମ ରୂପ ହୋଏ । | ପ୍ରାଣ ନ ଥିଲା ଜୀବପ୍ରାୟେ | ॥୧୩୮ |
| ୩୯ | ଧ୍ୱଜାଦି ଚିହ୍ନେ ମନୋହର । | ଅଟଇ ଚରଣ ତୋହର | ॥୧୩୯ |
| | ତେଣେ[୧] ଚିହ୍ନିତ ଆମ୍ଭ ଭୂଇଁ । | ଏବେ ଏ ଯେଡ଼େ ଶୋଭା ପାଇ | ॥୧୪୦ |
| | ତୁମ୍ଭ ଯାଆନ୍ତେ ଗଦାଧର । | ତେଡ଼େ ନ ଦିଶିବ ସୁନ୍ଦର | ॥୧୪୧ |

---

୧. ତେଣେ = ତାହାଦ୍ୱାରା ।

୪୦ ଏ ଯେ ସମୃଦ୍ଧ ଦେଶମାନ । ପକ୍ୱ ଔଷଧି ଲତାବନ ।।୧୪୨
ଅଚଳ, ନଦୀ, ସିନ୍ଧୁମାନେ । ବଢ଼ନ୍ତି ତୋର ଦରଶନେ ।।୧୪୩
୪୧ ହେ ବିଶ୍ୱଆତ୍ମା ବିଶ୍ୱେଶ୍ୱର । ଏ ବିଶ୍ୱମୂର୍ତ୍ତି ଅଟେ ତୋର ।।୧୪୪
ପାଣ୍ଡବକୁଳ ବୃଷ୍ଣି ବଂଶ । ଏ ବେନିଠାରେ ସ୍ନେହପାଶ ।।୧୪୫
ଯେ ଅଛି ଦୃଢ଼ ହୋଇ ମୋର । ତାହାକୁ ବେଗେ ଛେଦକର ।।୧୪୬
୪୨ ହେ ନାଥ ମଧୁବଂଶପତି । ତୋହଁରଠାରେ ମୋର ମତି ।।୧୪୭
ସର୍ବ ବିଷୟ କରି ଦୂର । ରତିକି ଲଭୁ ନିରନ୍ତର ।।୧୪୮
ଗଙ୍ଗା ଯେସନେ ଜଳଧିରେ । ପ୍ରବାହ ଅବିରତେ ଧରେ ।।୧୪୯
୪୩ ଶ୍ରୀକୃଷ୍ଣ ବୃଷ୍ଣିବଂଶସାର । ତୁ ମିତ୍ର ଅଟୁ ଅର୍ଜୁନର ।।୧୫୦
ଅବନିଦ୍ରୋହୀ ରାଜକୁଳ । ବଂଶବିନାଶନ ଅନଳ ।।୧୫୧
କେବେହେଁ ନ ହୁଅଇ ମନ୍ଦ । ତୋହର ବଳ ହେ ଗୋବିନ୍ଦ ।।୧୫୨
ଗୋରୁ ବ୍ରାହ୍ମଣ ଦେବଙ୍କର । ଆର୍ତ୍ତିନାଶନ ଅବତାର ।।୧୫୩
ଅଖିଳଗୁରୁ ଯୋଗେଶ୍ୱର । ତୋତେ ମୋହର ନମସ୍କାର ।।୧୫୪

ଶ୍ରୀସୂତ ଉବାଚ

୪୪ ଏ ରୂପେ ଗମ୍ଭୀର ବଚନେ । କୃଷ୍ଣର ଯେତେ ଗୁଣମାନେ ।।୧୫୫
ପୃଥା[୧] କରନ୍ତେ ତାହା ସ୍ତୁତି । ଅଳପ ହସିଲେ ଶ୍ରୀପତି ।।୧୫୬
ନିଜ ମାୟାରେ ତାହା ମନ । ମୋହିଲା ପ୍ରାୟେ ଭଗବାନ ।।୧୫୭
୪୫ ତାହାକୁ କରିଣ ସ୍ୱୀକାର । ମିଳିଣ ହସ୍ତିନା ନଗର ।।୧୫୮
ସୁଭଦ୍ରା ଆଦି ଯେତେ ନାରୀ । ତାହାଙ୍କୁ ଆମନ୍ତ୍ରଣ କରି ।।୧୫୯
କେତେହେଁ ଦିନେ ନିଜପୁର । ଯାଆନ୍ତେ ପୁଣ ଦାମୋଦର ।।୧୬୦
ସ୍ନେହରେ ନିବାରିଲେ ପୁଣି । ସେ କୁରୁକୁଳ ଶିରୋମଣି ।।୧୬୧
୪୬ ଈଶ୍ୱର ଚେଷ୍ଟାକୁ ଜାଣିଣ । ଯେ ବ୍ୟାସ ଆଦି ମୁନିଗଣ ।।୧୬୨
ତାହାଙ୍କୁ ଘେନି ସଙ୍ଗତର । ଅଦ୍ଭୁତକର୍ମା ଦାମୋଦର ।।୧୬୩
କହିଣ ପୁରାତନ କଥା । ପ୍ରବୋଧ କଲେହେଁ ସର୍ବଥା ।।୧୬୪
ଶୋକରେ ହୋଇଣ ସଂଯୁତ । ବୁଝିଲେ ନାହିଁ କୁନ୍ତୀସୁତ ।।୧୬୫
୪୭ ପ୍ରାକୃତ ବୁଦ୍ଧିକି ସେ ପାଇ । ସ୍ନେହ ମୋହରେ ବଶ ହୋଇ ।।୧୬୬
ମିତ୍ରଜନଙ୍କ ବଧ ଚିନ୍ତି । ବୋଇଲେ ରାଜା କୁରୁପତି ।।୧୬୭

---

୧. କୁନ୍ତୀ ।

| | | | |
|---|---|---|---|
| ୪୮ | ମୁଁ ଦୁଷ୍ଟ ଆତ୍ମା ମୋର ମନ । | ଦେଖ ଜନ୍ମିଲା ଏ ଅଜ୍ଞାନ | ।।୧୬୮ |
| | ଶୃଗାଳ ଆଦିଙ୍କ ଆହାର । | ଅଟଇ ଯେବଣ ଶରୀର | ।।୧୬୯ |
| | ତହିଁର ନିମିତ୍ତେ ବହୁତ । | *ଅକ୍ଷୌହିଣୀକି କଲି[୧] ହତ | ।।୧୭୦ |
| ୪୯ | ବାଳକ ଦ୍ୱିଜ ବନ୍ଧୁ ଭାଇ । | ମିତ୍ର ଖୁଡୁତା ଗୁରୁଦ୍ରୋହୀ | ।।୧୭୧ |
| | ଏମନ୍ତ ଅଟଇ ମୁଁ ଯେଣୁ । | ମୋର ନରକଭୋଗ ତେଣୁ | ।।୧୭୨ |
| | ଅୟୁତ ଅୟୁତ ବରଷ । | ଗଲେହେଁ ନୋହିବ ଏ ଶେଷ | ।।୧୭୩ |
| ୫୦ | ଯେବଣ ରାଜା ପ୍ରଜାମାନ । | ପାଳନ କରେ ଅନୁଦିନ | ।।୧୭୪ |
| | ସେ ଯଦି ଯୁଦ୍ଧେ ଶତ୍ରୁମାରେ । | ଦୁରିତ ନାହିଁ ସେ କଥାରେ | ।।୧୭୫ |
| | ଏ ରୂପେ ଅଛି ଯେ ବଚନ । | ସେହି ନ ଘଟେ ମୋର ମନ | ।।୧୭୬ |
| ୫୧ | ବାନ୍ଧବଗଣକୁ ନ ଗଣି । | ଯୁଦ୍ଧେ ମାଇଲି ଯେତେ ପ୍ରାଣୀ | ।।୧୭୭ |
| | ତାହାଙ୍କ ଯୁବତୀଙ୍କଠାର । | ଯେ ଦ୍ରୋହ ଜାତ ହେଲା ମୋର | ।।୧୭୮ |
| | ଗୃହସ୍ଥାଶ୍ରମକର୍ମେ ମୁହିଁ । | ସେ ଦ୍ରୋହ ନାଶି ନ ପାରଇ | ।।୧୭୯ |
| ୫୨ | ଦେହେ ଲାଗିବା ପଙ୍କ ଯେହ୍ନେ । | ନ ଛାଡ଼େ ପଙ୍କପ୍ରକ୍ଷାଳନେ | ।।୧୮୦ |
| | ମଦ୍ୟ ଯହିଁରେ ଲାଗିଥାଇ । | ସେ କି ମଦ୍ୟରେ ଶୁଦ୍ଧ ହୋଇ | ।।୧୮୧ |
| | ଯେ ପାପ ପ୍ରାଣୀବଧୁଁ ଜାତ । | କେ ତାହା ଯଜ୍ଞେ କରେ ହତ | ।।୧୮୨ |
| | ଯଜ୍ଞରେ ପଶୁଙ୍କ ମାରଣ । | ସଂଭବ ହୋଏ ଯେଣୁ ପୁଣ | ।।୧୮୩ |
| | ପ୍ରଥମସ୍କନ୍ଧ ଭାଗବତ । | ଭାଷାପ୍ରବନ୍ଧେ କରି ଗୀତ | ।।୧୮୪ |
| | ହରଷ ଦ୍ୱିଜ ଦୀନବନ୍ଧୁ । | ଯେଣେ ତରିବ ଭବବନ୍ଧୁଁ | ।।୧୮୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଯୁଧିଷ୍ଠିରାନୁତାପୋ
ନାମ ଅଷ୍ଟମୋଽଧ୍ୟାୟଃ ।।

---

* ଅକ୍ଷୌହିଣୀ ପ୍ରସଂଖ୍ୟାତା ରଥାନାଂ ଦ୍ୱିଜସତ୍ତମାଃ ।
ସଂଖ୍ୟାଗଣନତତ୍ତ୍ୱଜ୍ଞୈଃ ସହସ୍ରାଣ୍ୟେକବିଂଶତିଃ ।।
ଶତାନ୍ୟୁପରି ଚାଷ୍ଟୌ ଚ ତଥା ଭୂୟଶ୍ଚ ସପ୍ତତିଃ ।
ଗଜାନାଂ ଚ ପ୍ରସଂଖ୍ୟାନମେତଦେବ ପ୍ରକୀର୍ତ୍ତିତମ୍ ।।
ଜ୍ଞେୟଂ ଶତସହସ୍ରଂ ତୁ ସହସ୍ରାଣି ନବୈବ ତୁ ।
ନରାଣାମପି ପଞ୍ଚ ଶତ୍‌ଶତାନି ତ୍ରୀଣି ଚୈବ ହି ।।
ପଞ୍ଚଷଷ୍ଟି ସହସ୍ରାଣି ତଥାଶ୍ୱାନାଂ ଶତାନି ଚ ।
ଦଶୋତ୍ତରାଣି ଷଟ୍ ପ୍ରାହୁଃ ସଂଖ୍ୟାତତ୍ତ୍ୱବିଦୋ ଜନାଃ ।
ଏତାମକ୍ଷୌହିଣୀଂ ପ୍ରାହୁର୍ଯଥାବଦିହ ସଂଖ୍ୟୟା ।।
ରଥସଂଖ୍ୟା- ୨୧୮୭୦, ଗଜସଂଖ୍ୟା- ୨୧୮୭୦, ଅଶ୍ୱସଂଖ୍ୟା- ୬୫୬୧୦
ନରସଂଖ୍ୟା-୧୦୯, ୩୫୦, ଏକ ଅକ୍ଷୌହିଣୀ - ୧୦ ଅନୀକିନୀ ।
ଏକ ଅନୀକିନୀ = ୨୭ ବାହିନୀ । ୧. କଲେ ।

# ନବମୋଽଧ୍ୟାୟଃ

ଯୁଧିଷ୍ଠିରାୟ ଭୀଷ୍ମେଣ ସର୍ବଧର୍ମନିରୂପଣମ୍ ।
କୃଷ୍ଣସ୍ତୁତିଶ୍ଚ ମୁକ୍ତିଶ୍ଚ ନବମେ ତସ୍ୟ ବର୍ଣ୍ଣ୍ୟତେ ।।

ଶ୍ରୀସୂତ ଉବାଚ

୧ ଏ ରୂପେ ଯୁଧିଷ୍ଠିର ତହିଁ । ପ୍ରଜାଦ୍ରୋହରୁ ଭୟ ପାଇ ।। ୧
ସକଳ ଧର୍ମକଥାମାନ । ଜାଣିମା ଅର୍ଥେ କରି ମନ ।। ୨
କୁରୁକ୍ଷେତ୍ରକୁ ତଦନ୍ତରେ । ଗମନ କଲେ ଉତ୍ସୁକରେ ।। ୩
ଯେଉଁ ସ୍ଥାନରେ ଗଙ୍ଗାସୁତ । ରଥରୁ ହେଲେ ଭୂମିଗତ ।। ୪
୨ ଯେ ଦିବ୍ୟ ଅଶ୍ୱରେ ସଂଯୁତ । ଅଟନ୍ତି ସୁବର୍ଣ୍ଣେ ଭୂଷିତ ।। ୫
ଏମନ୍ତ ରଥକୁ ଆରୋହି । ଗମନ କଲେ ସବୁ ଭାଇ ।। ୬
ବ୍ୟାସ ଧୌମ୍ୟାଦି ବିପ୍ରମାନେ । ଗମନ କଲେକ ସେ ଦିନେ ।। ୭
୩ ହେ ଶଉନକ ! ଅରଜୁନ । ସଙ୍ଗତେ ରଥେ ଭଗବାନ ।। ୮
ଏମାନଙ୍କର ସଙ୍ଗତର । ଶୋଭା ପାଇଲେ ଯୁଧିଷ୍ଠିର ।। ୯
ଗୁହ୍ୟକମାନଙ୍କ ସହିତେ । କୁବେର ଶୋହଇ ଯେମନ୍ତେ ।। ୧୦
ସୁରଲୋକରୁ ହୋଇ ଚ୍ୟୁତ । କିବା ଅମର ଭୂମିଗତ ।। ୧୧
ଭୀଷ୍ମଙ୍କୁ ଏମନ୍ତ ପ୍ରକାରେ । ଦେଖି କରିଣ ତଦନ୍ତରେ ।। ୧୨
ପାଣ୍ଡବେ ଗୋବିନ୍ଦର ତୁଲେ । ଭୀଷ୍ମଙ୍କୁ ନମସ୍କାର କଲେ ।। ୧୩
୪ ତହିଁ ସକଳ ବ୍ରହ୍ମରଷି । ଦେବରଷିଙ୍କ ସଙ୍ଗେ ମିଶି ।। ୧୪
ରାଜରଷିଏ ହେଲେ ଯାଇଁ । ଭୀଷ୍ମଙ୍କୁ ଦେଖିବାର ପାଇଁ ।। ୧୫
୫ ପର୍ବତ ନାମେ ମହରଷି । ଧୌମ୍ୟ ନାରଦ ମୁନି ମିଶି ।। ୧୬
୬ ସଶିଷ୍ୟ ରାମ ବେଦବ୍ୟାସ । ତ୍ରିତ, ବଶିଷ୍ଠ, ବୃହଦଶ୍ୱ ।। ୧୭
୭ ଇନ୍ଦ୍ରପ୍ରମଦ, ଭରଦ୍ୱାଜ । ଅସିତ, ଗୃତ୍ସମଦ[1] ଦ୍ୱିଜ ।। ୧୮
ଅତ୍ରି, କୌଶିକ, ସୁଦର୍ଶନ । କଶ୍ୟପ ଅଙ୍ଗିରାନନ୍ଦନ ।। ୧୯
ଗୌତମ, କକ୍ଷୀବନ୍ତ[2] ଦୁଇ । ମିଳିଲେ ଶୁକ ଆଦି ହୋଇ ।। ୨୦
ସଙ୍ଗତେ ଘେନି ଶିଷ୍ୟମାନ । ପ୍ରବେଶ ହେଲେ ମୁନିଜନ ।। ୨୧

---

୧. ପୃଚ୍ଛମଦ ।  ୨. କକ୍ଷାବନ୍ତ ।

୯ ସେ ମହାଭାଗ ମୁନିମାନେ । ମିଳନ୍ତେ ଆସି ସନ୍ନିଧାନେ ॥ ୨୨
ତାହାଙ୍କୁ ଲଭିଣ ପୂଜନ । କଲେ ସେ ବସୁଙ୍କ ପ୍ରଧାନ ॥ ୨୩
ଦେଶକାଳର ବିଭାଗକୁ । ଜାଣନ୍ତି ଆବର ଧର୍ମକୁ ॥ ୨୪
୧୦ କୃଷ୍ଣପ୍ରଭାବ ସେ ଜାଣନ୍ତି । ଯେ କୃଷ୍ଣ ଜଗତର ପତି ॥ ୨୫
ମାୟାରେ ପ୍ରକାଶି ଶରୀର । ବସିଣ ଅଛନ୍ତି ଆଗର ॥ ୨୬
ଅଟନ୍ତି ନିଜ ହୃଦଗତ । ତାଙ୍କୁ ପୂଜିଲେ ଗଙ୍ଗାସୁତ ॥ ୨୭
୧୧ ବିନୟପ୍ରେମେ ହୋଇ ଯୁତ । ପାଶେ ଅଛନ୍ତି ପାଣ୍ଡୁସୁତ ॥ ୨୮
ତାହାଙ୍କୁ କହିଲେ ବଚନ । ଗଳନ୍ତେ ସ୍ନେହେ ଅଶ୍ରୁମାନ ॥ ୨୯
ସେ ଘେନି ଲୋଚନ ତାଙ୍କର । ହୋଇଛି ଅନ୍ଧର ପ୍ରକାର ॥ ୩୦

ଶ୍ରୀଭୀଷ୍ମ ଉବାଚ

୧୨ ଧର୍ମନନ୍ଦନ ତୁମ୍ଭେମାନେ । ଜିଇବା ପାଇଁ ନିଜମନେ- ॥ ୩୧
ବିଚାର ନ କରୁଛ ଯେଣୁଁ । କଷ୍ଟ ଅନ୍ୟାୟ ଏହୁ ତେଣୁ ॥ ୩୨
ବ୍ରାହ୍ମଣମାନେ, ଧର୍ମ ହରି । ଆଶ୍ରୟ ଅଟନ୍ତି ତୁମ୍ଭରି ॥ ୩୩
୧୩ ସେ ଅତିରଥୀ ପାଣ୍ଡୁ ବୀର । କର୍ମେ ଲଭନ୍ତେ ଯମପୁର ॥ ୩୪
ଶିଶୁ ଅଟନ୍ତି ଯା'ର ସୁତେ । ସେ କୁନ୍ତୀ ବଧୂ ଏ ଜଗତେ ॥ ୩୫
ତୁମ୍ଭ ନିମିତ୍ତେ ପୁନଃପୁନ । ଲଭିଲା ବହୁ କ୍ଳେଶମାନ ॥ ୩୬
୧୪ ତୁମ୍ଭର ଯେତେ ଅସଂଗତ । ଏହା ମଣଇଁ କାଳକୃତ ॥ ୩୭
ଲୋକପାଳଙ୍କ ସହିତରେ । ଯେତେକ ଲୋକ ଏ ସଂସାରେ ॥ ୩୮
କାଳର ବଶ ଏ ସକଳ । ଯେହ୍ନେ ବାତର ମେଘମାଳ ॥ ୩୯
୧୫ ଯହିଁରେ ରାଜା ଧର୍ମସୁତ । ଭୀମ ଯହିଁରେ ଗଦାହସ୍ତ ॥ ୪୦
ଅର୍ଜୁନ ଧନୁର୍ଦ୍ଧର ଯହିଁ । ଗାଣ୍ଡୀବ ଅଛି ଚାପ ହୋଇ ॥ ୪୧
ଯହିଁରେ ମିତ୍ର ଯଦୁପତି । ତହିଁରେ କିପାଇଁ ବିପତ୍ତି ॥ ୪୨
୧୬ ଏ କୃଷ୍ଣଚରିତକୁ ଜନ । କେବେହେଁ ନ ଜାଣେ ରାଜନ ॥ ୪୩
ଯେଉଁ ଚରିତ ବିଜ୍ଞଜନେ । ଜାଣିମା ବୋଲି ବାଞ୍ଛି ମନେ ॥ ୪୪
ନିତ୍ୟେ ସଂଯତ ହୋଇଥାନ୍ତି । ତଥାପି ମୋହିତ ହୁଅନ୍ତି ॥ ୪୫
୧୭ ସେ ଘେନି ଈଶ୍ୱର ଆୟତ୍ତ । ଅଟେ ଏ ସକଳ ଜଗତ ॥ ୪୬
ଏମନ୍ତ ବିଚାରି ମନର । ହେ ନାଥ ଭରତଈଶ୍ୱର ॥ ୪୭
ସେ ଈଶ୍ୱରଙ୍କୁ ଅନୁଗତ । ହୋଇଣ ତୁମ୍ଭେ ଅବିରତ ॥ ୪୮
ଅନାଥ ଯେଉଁ ପ୍ରଜାଜନ । କର ସେମାନଙ୍କୁ ପାଳନ ॥ ୪୯

୧୮ ଆଦି ପୁରୁଷ ନାରାୟଣ । ଏ କୃଷ୍ଣ ଭଗବାନ ଜାଣ ॥ ୫୦
ଲୋକଙ୍କୁ ମୋହନ୍ତେ ମାୟାରେ ଗୁପତେ ଯଦୁବଂଶେ ଚରେ ॥ ୫୧
୧୯ ଏହା ଗୁପତ ଅନୁଭାବ । ଜାଣନ୍ତି ଭଗବାନ ଶିବ ॥ ୫୨
ଯେ ଦେବରଷି ବ୍ରହ୍ମାସୁତ । ଜାଣେ ସେ ଯେ ବିଷ୍ଣୁ ସାକ୍ଷାତ ॥ ୫୩
କପିଳ ନାମେ ମହାମୁନି । ସେ ଜାଣେ ଅତିଶୟ ଜ୍ଞାନୀ ॥ ୫୪
୨୦ ଯାହାକୁ ତୁ ଅଜ୍ଞାନପଣେଁ । ମାତୁଳସୁତ ବୋଲି ମଣୁ ॥ ୫୫
ମଣୁ ଏ ପ୍ରିୟ ମିତ୍ର ମୋର । ପ୍ରସଙ୍ଗେ ପଚାରୁ ବିଚାର ॥ ୫୬
ହସ୍ତିନା ପେଷୁ ଦୂତ କରି । ସ୍ନେହେ ସାରଥିପଣେ ବରି ॥ ୫୭
୨୧ ଏ ଆତ୍ମା ସକଳ ଲୋକର । ଏହାର ନାହିଁ ପରାପର ॥ ୫୮
ଆତ୍ମାରୁ ଭିନ୍ନ ନ ଦେଖଇ । ଏହାର ଅହଂକାର ନାହିଁ ॥ ୫୯
ମତିବିଷମ ଭାବ ଯେତେ । ଏହାର କୃତ ସେ ଜଗତେ ॥ ୬୦
ଯେଣୁ ଏ ନିର୍ଦ୍ଦୋଷ ଶରୀର । ସେ କଥା ନାହିଁ ଏହାଠାର ॥ ୬୧
୨୨ ତେମନ୍ତ ହେଲେହେଁ ରାଜନ । ଏକାନ୍ତ ଭକ୍ତ ଯେତେ ଜନ ॥ ୬୨
ସେ ଲୋକଙ୍କର ଠାରେ ଯେହି । ଦୟା କରଇ ଦେଖ ତୁହି ॥ ୬୩
ଯେଣୁ ମୁଁ ମରନ୍ତେ ଏ ମୋର । ହୋଇଲା ନୟନ ଗୋଚର ॥ ୬୪
୨୩ ଯାହାର ଠାବରେ ମାନସ । ଭକ୍ତିରେ କରିଣ ନିବେଶ ॥ ୬୫
ଯାର ନାମକୁ ଯୋଗୀଜନ । ବଚନେ କରନ୍ତେ କୀର୍ତ୍ତନ ॥ ୬୬
ଶରୀର ଛାଡ଼ନ୍ତେ ପ୍ରତ୍ୟକ୍ଷ । କାମ୍ୟ କର୍ମରୁ ଲଭେ ମୋକ୍ଷ ॥ ୬୭
୨୪ ସେ ଦେବଦେବ ଭଗବାନ । ପ୍ରତୀକ୍ଷା କରୁ ତେତେ ଦିନ ॥ ୬୮
ଯେତେକ ଦିନ ଅନ୍ତେ ମୁହିଁ । ଏ ଶରୀରକୁ ଛାଡ଼ିବଇଁ ॥ ୬୯
ପ୍ରସନ୍ନହାସେ ମନୋହର । ଅରୁଣ ଲୋଚନ ସୁନ୍ଦର ॥ ୭୦
ଅଟଇ ଯାର ମୁଖାମ୍ବୁଜ । ପ୍ରକାଶେ ଯାର ଚାରିଭୁଜ ॥ ୭୧
ଧ୍ୟାନପଥରେ ଯୋଗୀଜନ । ଯାହାକୁ କରନ୍ତି ଚିନ୍ତନ ॥ ୭୨

ଶ୍ରୀସୂତ ଉବାଚ

୨୫ ସେ ଭୀଷ୍ମବାକ୍ୟ ଶୁଣି କର୍ଣ୍ଣେ । ଧର୍ମନନ୍ଦନ ତୋଷମନେ ॥ ୭୩
ପୁଛିଲେ ନାନା ଧର୍ମମାନ । ତାଙ୍କୁ ଶୁଣନ୍ତେ ଋଷିଜନ ॥ ୭୪
ଶରପଞ୍ଜର ମଧ୍ୟେ ଶୋଇ । ଥିଲେ ଯେବଣ ଭୀଷ୍ମ ତହିଁ ॥ ୭୫

୨୬ ପୁରୁଷସ୍ୱଭାବେ ବିହିତ । ଯେ ଧର୍ମ ବର୍ଣ୍ଣାଶ୍ରମେ ଯୁତ ॥ ୭୬
ରାଗବିରାଗେ ଯେ ପ୍ରମାଣ । ପ୍ରବୃତ୍ତିନିବୃତ୍ତି ଲକ୍ଷଣ ॥ ୭୭
୨୭ ଯେ ଦାନଙ୍କର ଧର୍ମମାନ । ରାଜାଙ୍କ ଧର୍ମ ଯେବା ଆନ ॥ ୭୮
ଶମ ଦମକୁ ଆଦି ହୋଇ । ବିଭାଗେ ମୋକ୍ଷଧର୍ମ ଯେହି ॥ ୭୯
ଯେ ସ୍ତିରୀଙ୍କର ଧର୍ମମାନେ । ବିଷ୍ଣୁର ଧର୍ମ ଯେବା ଆନେ ॥ ୮୦
ସଂକ୍ଷେପ ବିସ୍ତାର ହୋଇଣ । ଉପାୟମାନ ଯହିଁ ପୁଣ ॥ ୮୧
୨୮ ଧର୍ମାର୍ଥାକାମମୋକ୍ଷ ବିଧି । ଯେଉଁ ପ୍ରକାରେ ଏହା ସାଧି ॥ ୮୨
ହେ ମୁନି ବିବିଧ ଆଖ୍ୟାନେ । ଯେ ପୁରାତନ କଥାମାନେ ॥ ୮୩
ତହିଁରେ କଲେ ତା ବର୍ଣ୍ଣନ । ତତ୍ତ୍ୱଜ୍ଞ ଶାନ୍ତନୁନନ୍ଦନ ॥ ୮୪
୨୯ ଧର୍ମ କହନ୍ତେ ଗଙ୍ଗାସୁତ । ସେ କାଳ ହେଲା ଉପସ୍ଥିତ ॥ ୮୫
ଯେଉଁ କାଳକୁ ବାଞ୍ଛେ ମନ । ଇଚ୍ଛାମରଣ ଯୋଗୀଜନ ॥ ୮୬
ଉତ୍ତରାୟଣ ବୋଲି ଯାର । ନାମ ପ୍ରସିଦ୍ଧ ଜଗତର ॥ ୮୭
୩୦ ସହସ୍ରସଂଖ୍ୟ ରଥୀଙ୍କର । ନାୟକ ଶାନ୍ତନୁକୁମର ॥ ୮୮
ସେ କାଳେ ହୋଇଣ ମଉନ । ବିମୁକ୍ତସଙ୍ଗ ଯେଉଁ ମନ ॥ ୮୯
ତା' ନିବେଶିଲେ କୃଷ୍ଣଠାରେ । ଯେ କୃଷ୍ଣ ଅଛନ୍ତି ଆଗରେ ॥ ୯୦
ଯେ ଚତୁର୍ଭୁଜ ପୀତବାସ । ଅଟନ୍ତି ଯେ ଆଦିପୁରୁଷ ॥ ୯୧
ନ କରି ମୁଦ୍ରିତ ନୟନ । ଧାରଣ କଲେ ତହିଁ ମନ ॥ ୯୨
୩୧ ବିଶୁଦ୍ଧ ଧାରଣାରେ ନାଶ । ହୋଇଲା ଅଶୁଭ ଅଶେଷ ॥ ୯୩
ଯୁଦ୍ଧରୁ ଶ୍ରମ ଯେତେ ଥିଲା । କୃଷ୍ଣଦୃଷ୍ଟିରେ ବେଗେ ଗଲା ॥ ୯୪
ସର୍ବ ଇନ୍ଦ୍ରିୟବୃତ୍ତିଙ୍କର । ବିବିଧ ଭ୍ରମ ହେଲା ଦୂର ॥ ୯୫
ମରଣେ ବଳାଇଣ ମତି । କୃଷ୍ଣଙ୍କୁ ଭାବେ କଲା ସ୍ତୁତି ॥ ୯୬

ଶ୍ରୀଭୀଷ୍ମ ଉବାଚ

୩୨ ଏ ରୂପେ ଧର୍ମ ଆଦି କରି । ନାନା ଉପାୟ ଅନୁସରି ॥ ୯୭
ତୃଷ୍ଣାରହିତ ମତି ମୋର । ଅର୍ପିତ କଲି କୃଷ୍ଣଠାର ॥ ୯୮
ଯେ ହରି ସାତ୍ୱତପ୍ରଧାନ । ଯା'ଠାରୁ ବଡ଼ ନାହିଁ ଆନ ॥ ୯୯
ପରମାନନ୍ଦରୂପ ହୋଇ । ସ୍ୱରୂପସୁଖ ଯେ ଅଟଇ ॥୧୦୦
ତହିଁକି ହୋଏ ଉପଗତ । କ୍ରୀଡ଼ାକୁ ଯେବେ ବାଞ୍ଛେ ଚିତ୍ତ ॥୧୦୧

| | | | |
|---|---|---|---|
| | କେହୁଣି[୧] ସମୟରେ ସେହି | ପୁଣି ପ୍ରକୃତିକି ଭଜଇ | ॥୧୦୨ |
| | ଯେଉଁ ପ୍ରକୃତିରୁ ଜଗତ | ପ୍ରବାହ ହୋଏ ଆତଯାତ | ॥୧୦୩ |
| ୩୩ | ଯେ ତିନି ଭୁବନେ ସୁନ୍ଦର | ତମାଳ ପ୍ରାୟେ ବର୍ଣ୍ଣ ଯାର | ॥୧୦୪ |
| | ରବିକିରଣ ପ୍ରାୟେ ପୀତ | ବର ଅମ୍ବର ଯହିଁ ସ୍ଥିତ | ॥୧୦୫ |
| | ଅଳକାକୁଳେ ବୃତ ହୋଇ | ମୁଖପଙ୍କଜ ଶୋହେ ଯହିଁ | ॥୧୦୬ |
| | ଧରେ ଯେ ଏମନ୍ତ ଶରୀର | ସଖା ଅଟେ ଯେ ଅର୍ଜୁନର | ॥୧୦୭ |
| | ତା'ଠାରେ ନିଷ୍କାମ ପୀରତି | ହେଉ ମୋହର ଉତପତ୍ତି | ॥୧୦୮ |
| ୩୪ | ଯାହାର ଯୁଦ୍ଧେ ଅଶ୍ୱରଜ | ଲାଗି ଧୂସର କେଶପୁଞ୍ଜ | ॥୧୦୯ |
| | ତଥି ଲୁଳିତ ଶ୍ରମଜଳ | ଶୋଭିତ ବଦନକମଳ | ॥୧୧୦ |
| | ବାଜିଣ ମୋର ତୀକ୍ଷ୍ଣ ଶର | ବିଭିନ୍ନ ହେଲା ଚର୍ମ ଯାର | ॥୧୧୧ |
| | ଯା'ଠାରେ କବଚ ଶୋଭିତ | ସେ କୃଷ୍ଣେ ରହୁ ମୋର ଚିତ୍ତ | ॥୧୧୨ |
| ୩୫ | ଯେ ମିତ୍ରବଚନ ଶୁଣିଣ | ତକ୍ଷଣେ ରଥକୁ ନେଇଣ | ॥୧୧୩ |
| | *ସ୍ୱସୈନ୍ୟ ପର ସୈନ୍ୟଙ୍କର | ମଧ୍ୟେ ନିବେଶି ହେଲେ ସ୍ଥିର | ॥୧୧୪ |
| | ଯେ ପର ସୈନ୍ୟର ଆୟୁଷ | ଲୋଚନେ ଚାହିଁ କଲେ ଶେଷ | ॥୧୧୫ |
| | ଯେ ମିତ୍ର ଅଟେ ଅର୍ଜୁନର | ତା'ଠାରେ ରତି ହେଉ, ମୋର | ॥୧୧୬ |
| ୩୬ | **ଦୂରେ ଯେ ଥିଲା ସୈନ୍ୟ ରହି | ତାର ସମ୍ମୁଖ ପ୍ରାୟେ ହୋଇ | ॥୧୧୭ |
| | ଅଗ୍ରତେ ଥିଲେ ଯେ ରହିଣ | ସେ ଭୀଷ୍ମ ଆଦିଙ୍କି ଦେଖିଣ | ॥୧୧୮ |
| | ବଧ କରନ୍ତେ ବନ୍ଧୁଜନ | ସେ ଦୋଷ ବିଚାରି ଅର୍ଜୁନ | ॥୧୧୯ |
| | ବିମୁଖ ହୁଅନ୍ତେ ତାହାକୁ | ପ୍ରକାଶି ଯେ ଆତ୍ମବିଦ୍ୟାକୁ | ॥୧୨୦ |
| | ହରିଲେ ତାହାର କୁମତି | ତା'ପାଦେ ହେଉ ମୋର ରତି | ॥୧୨୧ |
| ୩୭ | ଯେ ପୂର୍ବେ ସତ୍ୟ କରିଥିଲେ | ଶସ୍ତ୍ର ନ ଧରିବି ବୋଇଲେ | ॥୧୨୨ |
| | ମୁଁ ଶସ୍ତ୍ର ଧରାଇବି ବୋଲି | ପ୍ରତିଜ୍ଞା ଅତି ଦୃଢ଼େ କଲି | ॥୧୨୩ |
| | ନିଜ ବଚନ ଅପହରି | ମୋର ପ୍ରତିଜ୍ଞା ଦୃଢ଼ କରି | ॥୧୨୪ |

---

୧. କୌଣସି

* ସେନୟୋରୁଭୟୋର୍ମଧ୍ୟେ ରଥଂ ସ୍ଥାପୟ ମେଽଚ୍ୟୁତ ।
ଯାବଦେତାନ୍ ନିରୀକ୍ଷ୍ୟେଽହଂ ଯୋଦ୍ଧୁକାମାନବସ୍ଥିତାନ୍ ॥ (ଗୀତା)

** ଏବମୁକ୍ତ୍ୱାର୍ଜୁନଃ ସଂଖ୍ୟେ ରଥୋପସ୍ଥ ଉପାବିଶତ୍ ।
ବିସୃଜ୍ୟ ସଶରଂ ଚାପଂ ଶୋକସଂବିଗ୍ନମାନସଃ ॥ (ଗୀତା)

ରଥରେ ଥାଇଁ¹ ଯେ ଡେଇଁଲେ । ଚକ୍ରକୁ ଧରିଣ ଧାଇଁଲେ ॥୧୨୫
ଆସନ୍ତେ ଧରଣୀ କଂପିଲା । କନ୍ଧୁଁ ଉତ୍ତରୀୟ ପଡ଼ିଲା ॥୧୨୬
ସିଂହ ଯେସନେ କୋପୀ ହୋଇ । ଗଜକୁ ମାରିବାକୁ ଧାଇଁ ॥୧୨୭
୩୮ ମୁଁ ଯେ ଅଟଇ ଆତତାୟୀ । ମୋ ତୀକ୍ଷ୍ଣଶରେ ହତ ହୋଇ ॥୧୨୮
ଛିଡ଼ିଲା କବଚ ଯାହାର । ରକତେ ପୂରିଲା ଶରୀର ॥୧୨୯
ଏ ରୂପେ ଯେ ମୋ ବଧପାଇଁ । ଧାଇଁଲା ଅତି ବେଗ ହୋଇ ॥୧୩୦
ସେ ଭଗବାନ ରମାପତି । ଏକାଳେ ହେଉ ମୋର ଗତି ॥୧୩୧
୩୯ ନିଜ କୁଟୁମ୍ବ ପ୍ରାୟେ କରି । ଅର୍ଜୁନରଥ ଯେ ଉଦ୍ଧରି ॥୧୩୨
ରଜ୍ଜୁ ପାଞ୍ଚଣ ଶୋହେ କର । ସାରଥିବେଶେ ମନୋହର ॥୧୩୩
ଯାହାକୁ ଚାହିଁ ଲୋକେ ମଲେ । ତାହା ସ୍ୱରୂପକୁ ଲଭିଲେ ॥୧୩୪
ମରିବା କାଳରେ ମୋହର । ରତି ଉପୁଜୁ ତାହା ଠାର ॥୧୩୫
୪୦ ଗୋପ ନଗରେ ବୃନ୍ଦାବନେ । ରାସଉତ୍ସବେ ଗୋପୀମାନେ ॥୧୩୬
ଲଳିତ ଗମନ-ବିଳାସ । ପ୍ରଣୟଦୃଷ୍ଟି ମଞ୍ଜୁହାସ ॥୧୩୭
ଏଣେ ଅତିଶୟ ସମ୍ମାନ² । ହେଲା ତାଙ୍କର ଅନୁଦିନ ॥୧୩୮
ମଦରେ ଅତି ଅନ୍ଧ ହେଲେ । ଯା' ଚେଷ୍ଟାମାନ ଆଚରିଲେ ॥୧୩୯
ଏ ରୂପେ କରି ନିତ୍ୟେ ମତି । ଲଭିଲେ ଯାହାର ପ୍ରକୃତି ॥୧୪୦
୪୧ ମୁନିସମୂହ, ନୃପବରେ । ପୂରିଲେ ଯେବଣ ସଭାରେ ॥୧୪୧
ସେ ସଭାମଧ୍ୟରେ ଥାଇଣ । ଯେ ଯୁଧିଷ୍ଠିରଯଜ୍ଞେ ପୁଣ ॥୧୪୨
ସେ ମୁନିଗଣ ଆଦିଙ୍କର । ଦର୍ଶନଯୋଗ୍ୟ ବପୁ ଯାର ॥୧୪୩
ଏ ରୂପେ ଲଭିଲେ ପୂଜନ । ଏ ସର୍ବଆତ୍ମା ଭଗବାନ ॥୧୪୪
ମୋ ନେତ୍ରଗୋଚର ଯେ ଥାଇ । ଆଗେ ପ୍ରକାଶ ଅଛି ହୋଇ ॥୧୪୫
୪୨ ନିଜ କଳ୍ପିତ ପ୍ରାଣୀଙ୍କର । ହୃଦୟେ ହୃଦୟେ ଈଶ୍ୱର ॥୧୪୬
ଯେ ଅଜ ଅଛି ଏକ ହୋଇ । ସ୍ଥାନଭେଦରୁ ଭେଦ ବହି ॥୧୪୭
ଯେସନେ ଏକଇ ତପନ । ପ୍ରତି ଚକ୍ଷୁରେ ଦିଶେ ଭିନ୍ନ ॥୧୪୮
ତାହାକୁ ଲଭିଲଇଁ ମୁହିଁ । ଛାଡ଼ିଲି ଭେଦ ମୋହ ଦୁଇ ॥୧୪୯

ଶ୍ରୀସୂତ ଉବାଚ

୪୩ ଏ ରୂପେ ଗୋବିନ୍ଦର ଠାଇଁ । ମନ ବଚନ ଦୃଷ୍ଟି ଦେଇ ॥୧୫୦
ପରମ ଆତ୍ମା ଭଗବାନ । ତା'ଠାରେ ନିବେଶିଣ ମନ ॥୧୫୧
ଅନ୍ତରେ ଶ୍ୱାସ ହେଲା ଲୀନ । ସେ ଭୀଷ୍ମ ହୋଇଲେ ମଉନ ॥୧୫୨

୧. ଧାଇଁ । ୨. ସମାନ ।

୪୪ ନିଷ୍କଳ ବ୍ରହ୍ମଠାରେ ଲୀନ । ହୋଇଲେ ଶାନ୍ତନୁନନ୍ଦନ ।।୧୫୩
ଏମନ୍ତ ଦେଖିଲେ ଯେ ନରେ । ଯେତେକ ଥିଲେ ସେ ସ୍ଥାନରେ ।।୧୫୪
ମଉନ ହୋଇଲେ ସମସ୍ତେ । ପକ୍ଷୀ ଯେସନେ ଦିନ ଅନ୍ତେ ।।୧୫୫
୪୫ ଦୁନ୍ଦୁଭିଶବଦ ସେଠାରେ । ହେଲା ବଜାନ୍ତେ ସୁରନରେ ।।୧୫୬
ରାଜାଙ୍କ ମଧ୍ୟେ ସାଧୁ ଯେହି । ପ୍ରଶଂସା କଲେ ସେହୁ ତହିଁ ।।୧୫୭
ଆକାଶୁଁ ପୁଷ୍ପବୃଷ୍ଟିମାନ । ଭୂମିରେ ହୋଇଲା ପତନ ।।୧୫୮
୪୬ ସେ ଭୀଷ୍ମ ହୋଇଲେ ନିଧନ । ତାଙ୍କର ଦାହ ଆଦିମାନ ।।୧୫୯
ନିର୍ବାହ କରି କୁନ୍ତୀସୁତ । ମୁହୂର୍ତ୍ତେ ହୋଇଲେ ଦୁଃଖିତ ।।୧୬୦
୪୭ କୃଷ୍ଣଙ୍କ ଗୃହ୍ୟ ନାମମାନ । ପଢ଼ି ହରଷେ ମୁନିଜନ ।।୧୬୧
ସ୍ତୁତି କଲେକ ତଦନ୍ତରେ । ମନ ନିବେଶି କୃଷ୍ଣଠାରେ ।।୧୬୨
ଯେ ଯାହା ଆଶ୍ରମକୁ ପୁଣ । ଗମନ କଲେ ତତକ୍ଷଣ ।।୧୬୩
୪୮ ତଦନନ୍ତରେ ଯୁଧିଷ୍ଠିର । କୃଷ୍ଣଙ୍କୁ ଘେନି ସଂଗତର ।।୧୬୪
ହସ୍ତିନା ପ୍ରବେଶ ହୋଇଲେ । ପିତାଙ୍କୁ ସାନ୍ତ୍ୱନା ସେ କଲେ ।।୧୬୫
ସନ୍ତାପ ଲଭନ୍ତେ ଗାନ୍ଧାରୀ । ତାଙ୍କୁ ବୋଧିଲେ ଯତ୍ନ କରି ।।୧୬୬
୪୯ ଧୃତରାଷ୍ଟ୍ରର ଅନୁମତେ । କୃଷ୍ଣର ସନ୍ତୋଷେ ନିଶ୍ଚିନ୍ତେ ।।୧୬୭
ଧର୍ମରେ ନିଜ ରାଜ୍ୟ କଲା । ଯେ ପିତୃପିତାମହେ ଥିଲା ।।୧୬୮
ହେ ପ୍ରଭୁ ପତିତପାବନ । ତୁମ୍ଭ ଚରଣେ ଦେଇ ମନ ।।୧୬୯
ଏ ଦୀନବନ୍ଧୁ ମୂଢ଼ମତି । ତରିବ ସକଳ ଦୁର୍ଗତି ।।୧୭୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀଭୀଷ୍ମନିଧନଂ
ନାମ ନବମୋଽଧ୍ୟାୟଃ ।।

## ଦଶମୋଽଧ୍ୟାୟଃ

ଦଶମେ କୃତକାର୍ଯ୍ୟସ୍ୟ ହସ୍ତିନାପୁରତୋ ହରେଃ ।
ସ୍ତ୍ରୀଭିଃ ସଂସ୍ତୂୟମାନସ୍ୟ ବର୍ଣ୍ଣ୍ୟତେ ଦ୍ୱାରକାଗମଃ ।।

ଶ୍ରୀଶୌନକ ଉବାଚ

୧ ନିଜ ଧନରେ ସ୍ପୃହା ବହି । ଯେ ଥିଲେ ଆତତାୟୀ ହୋଇ ।। ୧
ମାରି ତାହାଙ୍କୁ ଯୁଧିଷ୍ଠିର । ଧର୍ମଧାରୀଙ୍କ ମଧ୍ୟେ ବର ।। ୨

| | | | | | |
|---|---|---|---|---|---|
| | ଅନୁଜମାନଙ୍କ ସଙ୍ଗରେ | । | ଲାଳସ ନୋହିଣ ଭୋଗରେ | ।। | ୩ |
| | କି ରୂପେ ରାଜ୍ୟେ ପ୍ରବର୍ତ୍ତିଲେ | । | ତହିଁ ଉତ୍ତାରୁ କିବା କଲେ | ।। | ୪ |

### ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୨ | ସ୍ୱବଂଶଦାବାନଳେ ନାଶ | । | ହୋଇଥିଲା ଯେ କୁରୁବଂଶ | ।। | ୫ |
| | ପରୀକ୍ଷିତଙ୍କୁ ରକ୍ଷା କରି | । | ସେ ବଂଶ ଅଙ୍କୁରାଇ ହରି | ।। | ୬ |
| | ଯୁଧିଷ୍ଠିରଙ୍କୁ ନିଜ ରାଜ୍ୟେ | । | ବସାଇ ନିଜ ଭୁଜବୀର୍ଯ୍ୟେ | ।। | ୭ |
| | ପ୍ରୀତି ଲଭିଲେ ନିଜ ମନ | । | ଭୂତଭାବନ ଭଗବାନ | ।। | ୮ |
| ୩ | ଭୀଷ୍ମ କହିଲେ ଯେଉଁ ବାଣୀ | । | ଯାହା କହିଲେ ଚକ୍ରପାଣି | ।। | ୯ |
| | ସେ ବାକ୍ୟେ ହେଲା ଯେଉଁ ଜ୍ଞାନ | । | ତେଣୁ ଛାଡ଼ିଣ ମୋହମାନ | ।। | ୧୦ |
| | ସଙ୍ଗତେ ଘେନି ଚାରି ଭାଇ | । | ସମୁଦ୍ରପ୍ରାନ୍ତଯାଏ ମହୀ | ।। | ୧୧ |
| | ପାଳିଲେ ଇନ୍ଦ୍ର ପ୍ରାୟ କରି | । | ଆଶ୍ରୟ ଅଟେ ଯା'ର ହରି | ।। | ୧୨ |
| ୪ | ପୂର୍ଣ୍ଣ କରିଣ ମହୀତଳ | । | ମେଘ ବରଷା କଲା ଜଳ | ।। | ୧୩ |
| | ପ୍ରଜାଙ୍କ ସର୍ବ କାମମାନ | । | ଅବନି କଲାକ ଦୋହନ | ।। | ୧୪ |
| | ଧେନୁଏ ବ୍ରଜକୁ କ୍ଷୀରରେ | । | ସିଞ୍ଚିଲେ ଯୁତ ପହ୍ନାଭରେ | ।। | ୧୫ |
| ୫ | ନଦୀ ସମୁଦ୍ର ଗିରିମାନେ | । | କାମଦ ହେଲେ ସ୍ଥାନେସ୍ଥାନେ | ।। | ୧୬ |
| | ବୃକ୍ଷ ଔଷଧି ଲତା ମିଳି | । | ଫଳକୁ ଅରତୁରେ ଫଳି | ।। | ୧୭ |
| ୬ | ପ୍ରଜାଙ୍କୁ ଆଧି ବ୍ୟାଧି ଲେଶ | । | ନ ଲାଗେ, ତାପତ୍ରୟ କ୍ଳେଶ | ।। | ୧୮ |
| | ରାଜା ହୁଅନ୍ତେ ଯୁଧିଷ୍ଠିର | । | ନୋହିଲା ପ୍ରାଣୀମାନଙ୍କର | ।। | ୧୯ |
| ୭ | ବନ୍ଧୁଙ୍କ ଶୋକଶାନ୍ତି ଅର୍ଥେ | । | ଭଗିନୀସଂତୋଷ ନିମିତ୍ତେ | ।। | ୨୦ |
| | ହସ୍ତିନାପୁରେ ହୃଷୀକେଶ | । | ଭାବେ ରହିଲେ କେତେ ମାସ | ।। | ୨୧ |
| ୮ | ଧର୍ମନନ୍ଦନଙ୍କୁ ପଚାରି | । | ତାଙ୍କ ଅନୁଜ୍ଞା ଅନୁସରି | ।। | ୨୨ |
| | ଭାବେ ତାହାଙ୍କୁ କରି କୋଳ | । | ପ୍ରଣାମ କରି ପାଦତଳ | ।। | ୨୩ |
| | ରଥେ ବସିଲେ ଯାଇଁ ହରି | । | କେ ପୁଣ ତାଙ୍କୁ କୋଳ କରି | ।। | ୨୪ |
| | କେ ଅବା କଲେ ନମସ୍କାର | । | ଯେ ଯାହା ଉଚିତ ବେଭାର | ।। | ୨୫ |
| ୯ | ସୁଭଦ୍ରା ଦ୍ରୌପଦୀ ଗାନ୍ଧାରୀ | । | କୁନ୍ତୀ ଉତ୍ତରା ଆଦି ନାରୀ | ।। | ୨୬ |
| ୧୦ | ଯୁଯୁତ୍ସୁ ଧୃତରାଷ୍ଟ୍ର ବେନି | । | ଭୀମ ଗୌତମ ଧୌମ୍ୟ ମୁନି | ।। | ୨୭ |
| | ନକୁଳ ସହଦେବ ଦୁଇ | । | ମତ୍ସ୍ୟସୁତାକୁ ଆଦି ହୋଇ | ।। | ୨୮ |
| | ହରିବିରହ ନ ସହିଲେ | । | ମୋହକୁ ଲଭନ୍ତେ ସେ ଭଲେ | ।। | ୨୯ |

୧୧ ସାଧୁସଙ୍ଗରୁ ଅସାଧୁର । ସଙ୍ଗକୁ ଛାଡ଼ି ବୁଧ ନର ॥ ୩୦
ସାଧୁଏ କରନ୍ତେ କୀର୍ତ୍ତନ । ଯାହାର ଯଶ ସୁଶୋଭନ ॥ ୩୧
ଥରେ ମାତ୍ରକ କର୍ଣ୍ଣେ ଶୁଣି । ଛାଡ଼ି ନ ପାରେ ତାହା ପୁଣି ॥ ୩୨
୧୨ ଆଲୋକ,[1] ସ୍ପରଶ, ବଚନ । ଶୟନ ଆସନ, ଭୋଜନ ॥ ୩୩
ଏଣେ ସେ କୃଷ୍ଣଠାରେ ଚିତ୍ତ । ଦେଇଥିଲେ ଯେ ଅବିରତ ॥ ୩୪
କେମନ୍ତେ ବିରହ ତାହାର । ସହିବେ ପୃଥାର କୁମର ॥ ୩୫
୧୩ ଚକ୍ଷୁପିଛଡ଼ା ନ ପକାଇ । ଚାହାନ୍ତେ ସ୍ନେହବଦ୍ଧ ହୋଇ ॥ ୩୬
ସମସ୍ତେ କୃଷ୍ଣେ ଦେଇ ମନ । ଚଳିଲେ ସେହି ସେହି ସ୍ଥାନ ॥ ୩୭
୧୪ ଆପଣା ଗୃହରୁ ନିର୍ଗତ । ହୁଅନ୍ତେ ଦେବକୀର ସୁତ ॥ ୩୮
ସ୍ନେହେ ଗଳନ୍ତେ ନେତ୍ରେ ବାରି । ନିରୋଧ କଲେ ବଂଧୁନାରୀ ॥ ୩୯
ଯାତ୍ରାକାଳେ ଏ ଅଶକୁନ[2] । ଏମନ୍ତ ବିଚାରିଣ ମନ ॥ ୪୦
୧୫ ମୃଦଙ୍ଗ ଶଙ୍ଖ ବୀଣା ଭେରୀ । ପଣବ ଗୋମୁଖ ଧୁନ୍ଧୁରୀ ॥ ୪୧
ଆନକ ଘଣ୍ଟା ଆଦିମାନ । ଶୁଭିଲେ ଦୁନ୍ଦୁଭିନିଃସ୍ୱନ ॥ ୪୨
୧୬ କୃଷ୍ଣଙ୍କୁ କୁରୁନାରୀମାନେ । ଦେଖିବାପାଇଁ ବାଞ୍ଛି ମନେ ॥ ୪୩
ଜଗତୀଶିଖର ଆରୋହି । କୁସୁମ ବରଷିଲେ ତହିଁ ॥ ୪୪
କୃଷ୍ଣଙ୍କୁ ପ୍ରେମଲଜ୍ଜା ମିଶି । ଚାହାନ୍ତେ ମନ୍ଦ ମନ୍ଦ ହସି ॥ ୪୫
୧୭ ଯେ ମୁକ୍ତାମାଳେ ବିଭୂଷିତ । ଯା ଦଣ୍ଡ ରତ୍ନରେ ଜଡ଼ିତ ॥ ୪୬
ସେ ଶ୍ୱେତ ଛତ୍ରକୁ ପ୍ରିୟର । ପ୍ରିୟ ଅର୍ଜୁନ ଧରେ କର ॥ ୪୭
୧୮ ଉଦ୍ଧବ ସାତ୍ୟକି ଏ ବେନି । ଅଦ୍ଭୁତ ବ୍ୟଜନକୁ ଘେନି ॥ ୪୮
ଦେବେ କୁସୁମ ବରଷନ୍ତି । ପଥେ ଶୋହିଲେ ଯଦୁପତି ॥ ୪୯
୧୯ ବ୍ରାହ୍ମଣ-ଆଶୀର୍ବାଦମାନେ । ଶୁଭିଲେ ସେହି ସେହି ସ୍ଥାନେ ॥ ୫୦
ସେ ଯେବେ ନିର୍ଗୁଣ ପୁରୁଷ । ତାହାର ଆଶୀର୍ବାଦୁଁ କିସ ॥ ୫୧
ସଗୁଣ ରୂପେ ଚିନ୍ତି ଯେବେ । ସେ ବାକ୍ୟ ଅନୁରୂପ ତେବେ ॥ ୫୨
୨୦ କୃଷ୍ଣରଠାରେ ଦେଇ ମନ । ହସ୍ତିନାପୁର ନାରୀଜନ ॥ ୫୩
ସକଳଶ୍ରୁତିମନୋହର । ବାକ୍ୟ ଭଣିଲେ ପରସ୍ପର ॥ ୫୪

ଶ୍ରୀସ୍ତ୍ରୀୟ ଉଚୁଃ

୨୧ ଯେ ଜୀବ ଆତ୍ମା ଜଗତର । ବିଲୟ ହୁଅନ୍ତେ ତାହାର ॥ ୫୫
ଜୀବର ଯେତେ ଶକ୍ତିମାନ । ଈଶ୍ୱରେ ହୁଅନ୍ତେ ସେ ଲୀନ ॥ ୫୬

---

୧. ଦର୍ଶନ । ୨. ଅଶକୁନ = ଅମଙ୍ଗଳ । (ଅପଶକୁନ)

ପ୍ରଳୟେ ଗୁଣର ପୂର୍ବରେ । ପ୍ରପଞ୍ଚରହିତ ଆତ୍ମାରେ ॥ ୫୭
ଯେ ହୋଇଥିଲା ଏକ ଶେଷ । ଏଟି ସେ ପୁରାଣ ପୁରୁଷ ॥ ୫୮
୨୨ ଯେ କାଳ ଆପଣା ଶକତି । ତେଣେ ପ୍ରେରିତ ଯେ ପ୍ରକୃତି ॥ ୫୯
ଅନୁସରିଲେ ତାକୁ ପୁଣ । ସେ ପ୍ରଭୁ ପୁରୁଷ ପୁରାଣ ॥ ୬୦
ଆପଣା ଅଂଶ ଜୀବ ଅଟେ । ତାକୁ ଯେ ମାୟାରୂପେ ଘୋଟେ ॥ ୬୧
ନାନା ପ୍ରକାର ସୃଷ୍ଟିମାନ । କରିବା ଅର୍ଥେ ଯାର ମନ ॥ ୬୨
ଏମନ୍ତ ପ୍ରକୃତିକି ପାଇ । ଯାହାର ନାମ ରୂପ ନାହିଁ ॥ ୬୩
ସେ ଜୀବଠାରେ ରୂପନାମ । କରିବା ଅର୍ଥେ କଲେ କାମ ॥ ୬୪
କର୍ମ କରିବା ଅର୍ଥେ ପୁଣ । ବେଦକୁ କଲେ ସେ ଭିଆଣ ॥ ୬୫
୨୩ ଜିତଇନ୍ଦ୍ରିୟ ଜିତପ୍ରାଣ । ଏମନ୍ତ ହୋଇ ବୁଧଗଣ ॥ ୬୬
ଭକ୍ତିରେ ଅତି ଉତ୍କଣ୍ଠିତ । ଅମଳ ଅଟେ ଯେଉଁ ଚିତ୍ତ ॥ ୬୭
ସେ ଚିତ୍ତେ ଯାହାର ଚରଣ । * ଦେଖନ୍ତି ଏ ସଂସାରେ ପୁଣ ॥ ୬୮
ଏ ଅଟେ ସେହି ଭଗବାନ । ବୁଦ୍ଧିକି କରେ ଏ ଶୋଧନ ॥ ୬୯
୨୪ ରହସ୍ୟ ନିରୂପକ ନରେ । ବେଦେ, ରହସ୍ୟ ଆଗମରେ ॥ ୭୦
ଯାର ଉତ୍ତମ କଥାମାନ । ହେ ସଖି ! କରନ୍ତି ଗାୟନ ॥ ୭୧
ଯେ ଏକ ହୋଇ ଏ ଜଗତ । ନିଜ ଲୀଳାରେ କରେ ଜାତ ॥ ୭୨
ପାଳନା କରେ ଅନ୍ତେ ନାଶେ । ତଥାପି ସେ କର୍ମେ ନ ମିଶେ ॥ ୭୩
ସେହି ପୁରୁଷ ଏ ରୂପରେ । ପ୍ରକାଶ ହୋଇଛି ଭୂମିରେ ॥ ୭୪
୨୫ ଯେବେ ଅଧର୍ମେ ରାଜାମାନେ । ପ୍ରାଣ ପୋଷନ୍ତି ଏ ଭୁବନେ ॥ ୭୫
ତମୋଗୁଣରେ ତାଙ୍କ ଚିତ୍ତ । ପୂରିଣ ଥାଇ ଅବିରତ ॥ ୭୬
ସେ କାଳେ ଏହୁ ସତ୍ତ୍ୱଗୁଣେ । ଜଗତ ପାଳନ କାରଣେ ॥ ୭୭
ଧରନ୍ତେ ନାନା ରୂପମାନ । ଯୁଗେ ଯୁଗେକେ ଭଗବାନ ॥ ୭୮
ଐଶ୍ୱର୍ଯ୍ୟ ସତ୍ୟ ରତ ଯଶ । ଦୟାକୁ କରଇ ପ୍ରକାଶ ॥ ୭୯
୨୬ ଅତିଶୟରେ ଯଦୁକୁଳ । ପୂଜ୍ୟ ଅଟଇ ମହୀତଳ ॥ ୮୦
ମଧୁବନ ହିଁ ପୁଣ୍ୟସାର । ଯେଣୁ ଏ ପୁରୁଷଙ୍କ ବର ॥ ୮୧
ରମାରମଣ ଭଗବାନ । ଆପଣା ଜନମ ଗମନ ॥ ୮୨
ଏ ବେନି ପ୍ରକାରେ ସେ ଦୁଇ । ପବିତ୍ର କରୁଣ ଅଛଇ ॥ ୮୩

---

* 'ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା' ଇତି ଶ୍ରୁତିଃ ।

୨୭ ସ୍ୱର୍ଗଯଶକୁ ତିରସ୍କାର । କରଇ ଦ୍ୱାରକାନଗର ॥ ୮୪
ଭୂମିର ପୁଣ୍ୟ ଯଶଗୁଣ । ପ୍ରକାଶ କରୁଛି ଏ ପୁଣ ॥ ୮୫
ଯେଣୁ ଯହିଁର ପ୍ରଜା ନିତି । ଦେଖନ୍ତି ଆପଣାର ପତି ॥ ୮୬
ଯେ ନିଜ ଅନୁଗ୍ରହ ପାଇ । ଅଳପ ହସିଣ ଅନାଇଁ ॥ ୮୭
୨୮ ବ୍ରତ ବିଧାନ ତୀର୍ଥସ୍ନାନ । ଯେ ଅବା ହୋମ ଆଦିମାନ ॥ ୮୮
ତେଣେ ଏହାର ଭାର୍ଯ୍ୟମାନେ । ପୂର୍ବ ଜନ୍ମରେ ସାବଧାନେ ॥ ୮୯
ଏହାକୁ ପୂଜିଲେ ନିଶ୍ଚୟେ । ଯେଣୁ ଈଶ୍ୱର ଅଟଇ ଏ ॥ ୯୦
ଏହାର ଅଧରଅମୃତ । ହେ ସଖି ! ପିବନ୍ତି ଯେ ନିତ୍ୟ ॥ ୯୧
ଯେଉଁ ଅଧରାମୃତେ ମନ । ଦେଇ ମୋହିତ ଗୋପୀଜନ ॥ ୯୨
୨୯ ଶିଶୁପାଳକୁ ଆଦି ଯେତେ । ବଳିଷ୍ଠ ଥିଲେ ଭୂମିଗତେ ॥ ୯୩
ସ୍ୱୟଂବରରେ ମଥି ତାଙ୍କୁ । ହରିଲେ ବୀର୍ଯ୍ୟଶୁଳ୍କେ ଯାଙ୍କୁ ॥ ୯୪
ପ୍ରଦ୍ୟୁମ୍ନ, ଶାମ୍ବ, ଅମ୍ବ ଆର । ଏ ତିନି ଯାହାଙ୍କ କୁମାର ॥ ୯୫
ସେହୁ ରୁକ୍ମିଣୀ ଜାମ୍ବବତୀ । ଆବର ବଧୂ ନାଗ୍ନଜିତୀ ॥ ୯୬
ଏ ଆଦି ଯେତେ ନାରୀଜନ । ଏଥି ବାହାରେ ଯେବା ଆନ ॥ ୯୭
ଯାହାଙ୍କୁ ନରକବଧରେ । ଆଣିଲେ ସହସ୍ର ସଂଖ୍ୟାରେ ॥ ୯୮
୩୦ ନାହିଁ ସ୍ୱଭାବେ ସ୍ତିରୀଙ୍କର । ମଙ୍ଗଳ ଶଉଚ ଆଚାର ॥ ୯୯
ଏ ଯେତେ ଛନ୍ତି କୃଷ୍ଣବଧୂ । କରନ୍ତି ସ୍ତିରୀଜନ୍ମ ସାଧୁ ॥ ୧୦୦
ପଦ୍ମଲୋଚନ ଯାହାଙ୍କର । ମନ୍ଦିରୁ ନୁହନ୍ତି ବାହାର ॥ ୧୦୧
ଦେଇ ଉତ୍ତମ ଦ୍ରବ୍ୟମାନ । ସନ୍ତତେ ହରୁଥାନ୍ତେ ମନ ॥ ୧୦୨

ଶ୍ରୀସୂତ ଉବାଚ

୩୧ କହନ୍ତେ ପୁରର ତରୁଣୀ । ଏମନ୍ତ ରୂପେ ତାଙ୍କ ବାଣୀ ॥ ୧୦୩
ଘେନନ୍ତେ ମନ୍ଦହାସେ ଚାହିଁ । ପଥେ ଚଳିଲେ ଭାବଗ୍ରାହୀ ॥ ୧୦୪
୩୨ ଶତ୍ରୁଙ୍କୁ ଶଙ୍କା କରି ଚିତ୍ତେ । ବାଟେ କୃଷ୍ଣର ରକ୍ଷା ଅର୍ଥେ ॥ ୧୦୫
ସ୍ନେହରେ ଚତୁରଙ୍ଗବଳ[୧] । ପେଷିଲେ ହସ୍ତିନାଭୂପାଳ ॥ ୧୦୬
୩୩ ବିରହେ ହୋଇଣ ଆତୁର । କୃଷ୍ଣର ସଙ୍ଗତରେ ଦୂର ॥ ୧୦୭
ଆସି ଯେ ଥିଲେ କୁରୁଗଣ । ତାହାଙ୍କୁ ଲେଉଟାଇ ପୁଣ ॥ ୧୦୮
ସଙ୍ଗତେ ଘେନି ନିଜ ଜନ । ଦ୍ୱାରକା ଗଲେ ଭଗବାନ ॥ ୧୦୯

---

୧. ଚତୁରଙ୍ଗବଳ – 'ହସ୍ତ୍ୟଶ୍ୱରଥପାଦାତଂ ସେନାଙ୍ଗଂ ସ୍ୟାଚତୁର୍ବିଧମ୍ ।'

| | | | |
|---|---|---|---|
| ୩୪ | କୁରୁଜାଙ୍ଗଳ, ଶୂରସେନ । | ପାଞ୍ଚାଳ ଆବର ଯାମୁନ | ॥୧୧୦ |
| | ଯେ ବ୍ରହ୍ମାବର୍ତ୍ତ, କୁରୁକ୍ଷେତ୍ର । | ମତ୍ସ୍ୟବିଷୟ, ସାରସ୍ୱତ | ॥୧୧୧ |
| ୩୫ | ମରୁଧନ୍ୱକୁ ଅତିକ୍ରମି । | ସୌବୀର ଆଭୀରରୁ ସ୍ୱାମୀ | ॥୧୧୨ |
| | ବଳି ଆନର୍ତ୍ତେ ଉପଗତ । | ହେଲେ ପୁଣ ହେ ଭୃଗୁସୁତ ! | ॥୧୧୩ |
| | ରଥଯୋଚିତ ଅଶ୍ୱମାନେ । | ଅଳପ ଫୁଟିଲେ ସେ ସ୍ଥାନେ | ॥୧୧୪ |
| ୩୬ | ସେ ସେହି ଦେଶେ ଯେତେ ଜନ | ଘେନି ଅନେକ ଉପାୟନ | ॥୧୧୫ |
| | ବାଟକୁ ପାଛୋଟି ଅଇଲେ । | କୃଷ୍ଣକୁ ଦରଶନ କଲେ | ॥୧୧୬ |
| | ତଦନନ୍ତରେ ସଂଧ୍ୟାକାଳେ । | ରଥୁଁ ଓହ୍ଲାଇ ଭୂମିତଳେ | ॥୧୧୭ |
| | *ଜଳରେ ପଶି ଭଗବାନ । | କଲେ ସେ ସଂଧ୍ୟାର ବିଧାନ | ॥୧୧୮ |
| | ବ୍ରଜବନିତାମାନଙ୍କର । | ପ୍ରାଣବଲ୍ଲଭ ଯେ ଈଶ୍ୱର | ॥୧୧୯ |
| | ଯାହା ଚରଣପଦ୍ମଧ୍ୟାନେ । | ଭବୁଁ ତରନ୍ତି ସାଧୁଜନେ | ॥୧୨୦ |
| | ସେ କୃଷ୍ଣପାଦପଦ୍ମ ଚିନ୍ତି । | ହରଷ ଦୀନବନ୍ଧୁମତି | ॥୧୨୧ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀ ଭଗବଦ୍ ପ୍ରତିଯାନଂ[୧]
ନାମ ଦଶମୋଽଧ୍ୟାୟଃ ॥

## ଏକାଦଶୋଽଧ୍ୟାୟଃ

ଆନର୍ତ୍ତେ ସ୍ତୂୟମାନସ୍ୟ ପୁରୀଂ ନିର୍ବିଶ୍ୟ ବଂଧୁଭିଃ ।
ଏକାଦଶେ ରତିଃ ସମ୍ୟଗ୍ ଯାଦବେନ୍ଦ୍ରସ୍ୟ ବର୍ଣ୍ଣ୍ୟତେ ॥ ୧ ॥
ଉତ୍ସବୈରୁଚ୍ଛଳଦ୍‌ପୌରମୁଦଞ୍ଚଦ୍‌ଧ୍ୱଜତୋରଣମ୍ ।
ଉଲ୍ଲସଦ୍‌ରତ୍ନଦୀପାଳି ସ୍ୱପୁରଂ ପ୍ରଭୁରାବିଶତ୍ ॥ ୨ ॥

ଶ୍ରୀସୂତ ଉବାଚ

| | | | |
|---|---|---|---|
| ୧ | ଆପଣା ସୁସମୃଦ୍ଧ ଦେଶ । | ଆନର୍ତ୍ତେ ହୋଇଣ ପ୍ରବେଶ | ॥ ୧ |
| | ବିଷାଦକୁ ସେମାନଙ୍କର । | ହରିଲା ପ୍ରାୟେ ଚକ୍ରଧର | ॥ ୨ |
| | ଶଙ୍ଖବରକୁ ଧରି କରେ । | ଶବଦ କଲେ ଉଚ୍ଚସ୍ୱରେ | ॥ ୩ |

* 'ଅଦ୍‌ଭ୍ୟୋ ବା ଏଷ ପ୍ରାତରୁଦେତି, ଅପଃ ସାୟଂ ପ୍ରବିଶତି ' ଇତି ଶ୍ରୁତିଃ ।

୧. ପ୍ରତିଯାନଂ = ପ୍ରତିଗମନ ।

୨ ଶଙ୍ଖକୁ କରପଦ୍ମେ ଘେନି । କରନ୍ତେ ପୁଣ ପୁଣ ଧ୍ୱନି ॥
ସେ ଶଙ୍ଖ ଅତି ଶୋଭା ଦିଶେ । ପଦ୍ମଷଣ୍ଡେ[୧] କି କଳହଂସେ ॥
ଧ୍ୱନି କରଇ ଉଚ୍ଚତର । ଧବଳ ଦିଶେ ତା ଉଦର ॥
କୃଷ୍ଣ ଅଧରରଙ୍ଗ ମିଶି । ଅରୁଣଭାବକୁ ପ୍ରକାଶି ॥
୩ ମୃତ୍ୟୁଭୟକୁ ବିନାଶନ । କରଇ ଯେଉଁ ଶଙ୍ଖସ୍ୱନ ॥
ଶୁଣି ତା ସର୍ବପ୍ରଜାମାନେ । ନିଜ ଭର୍ତ୍ତାର ଦରଶନେ ॥
ଲାଳସଚିତ୍ତ ସେ ହୋଇଲେ । ତକ୍ଷଣେ ପାଛୋଟି ଅଇଲେ ॥
୪ ନିଜ ଲାଭରେ ପୂର୍ଣ୍ଣକାମ । ଯେ ନିତ୍ୟେ ଅଟେ ଆତ୍ମାରାମ ॥
୫ ତାହାଙ୍କୁ ଉପାୟନମାନ । ଘେନି ଭେଟିଲେ ପ୍ରଜାଜନ ॥
ଆଦରେ ରବି ଆଗେ ନେଇ । ଯେସନେ ଦୀପ ଲୋକ ଥୋଇ ॥
ସ୍ନେହରେ ବିକାଶେ ବଦନ । ହରଷେ ଗଦ୍‌ଗଦ ବଚନ ॥
ସେ ସର୍ବମିତ୍ର ଭଗବାନ । ତାହାଙ୍କୁ କହିଲେ ବଚନ ॥
ବାଳକେ ଯେହ୍ନେ ପିତାଆଗେ । ବଚନ କହନ୍ତି ସରାଗେ ॥

ଶ୍ରୀପ୍ରଜା ଉଚୁଃ

୬ ଚରଣପଦ୍ମକୁ ତୋହର । ଭୋ ନାଥ ପ୍ରଣାମ ଆମ୍ଭର ॥
ବିଧି ସନକ ଆଦି ସୁର । କରନ୍ତି ଯାକୁ ନମସ୍କାର ॥
ଯେ ବାଞ୍ଛେ ଆପଣା କଲ୍ୟାଣ । ତାଙ୍କର ଅଟେ ପରାୟଣ ॥
ଯେ କାଳ ବ୍ରହ୍ମାଦିଙ୍କି ମାରେ । ସେ ପ୍ରଭୁ ନୁହଇ ଯହିଁରେ ॥
୭ ହେ ବିଶ୍ୱଭାବନ ! ଆମ୍ଭର । ମଙ୍ଗଳ ଅର୍ଥେ ଯତ୍ନ କର ॥
ତୁ ଆମ୍ଭ ମାତା ପିତା ପତି । ମିତ୍ର ଦେବତା ଗୁରୁ ଗତି ॥
ଯାହାର ଅନୁବୃତ୍ତିଦ୍ୱାରେ । କୃତାର୍ଥ ହେଲୁଁ ଏ ସଂସାରେ ॥
୮ ତୁମ୍ଭଙ୍କୁ ନାଥ କରି ପାଇ । ଆମ୍ଭେ ରହିଛୁଁ ସୁଖୀ ହୋଇ ॥
ଦେବତାମାନଙ୍କର ଦୂର । ଅଟଇ ଦରଶନ ଯାର ॥
ଯହିଁରେ ପ୍ରେମ ମନ୍ଦହାସ । ସ୍ନିଗ୍ଧ କଟାକ୍ଷ ପରକାଶ ॥
ସେ ମୁଖ ଯହିଁରେ ଅଛଇ । ଯେ ସର୍ବ ଅଙ୍ଗରେ ଶୋହଇ ॥
ଏମନ୍ତ ରୂପକୁ ତୋହର । ଦେଖୁଛୁଁ ଯେଣୁ ହେ ଈଶ୍ୱର ॥

୧. ପଦ୍ମଷଣ୍ଡେ = ପଦ୍ମସମୂହେ ।

୯ ଭୋ ନାଥ ପଙ୍କଜଲୋଚନ । ଦେଖିବାପାଇଁ ବନ୍ଧୁଜନ ॥
କୁରୁପୁରକୁ ତୁମ୍ଭେ ଯାଅ । ମଥୁରାପୁରେ ଅବା ଥାଅ ॥
ତେବେ ଆମ୍ଭର କ୍ଷଣକହିଁ । କୋଟି ବତ୍ସର ପ୍ରାୟେ ହୋଇ ॥
ରବି ନ ଥିଲେ ନୟନର । ଯେସନେ ହୋଏ ଅନ୍ଧକାର ॥
୧୦ ପ୍ରସନ୍ନ ଦୃଷ୍ଟିରେ ସଂଯୁତ । ମଧୁର ହାସରେ ଶୋଭିତ ॥
ଅଖିଳତାପବିମୋଚନ । ଭୋ ନାଥ ତୋହର ବଦନ ॥
ଚିରପ୍ରବାସେ ଥାନ୍ତେ ତୁହି । ତୋହର ସେ ମୁଖ ନ ଚାହିଁ ॥
କେମନ୍ତ ହୋଇ ଆମ୍ଭେମାନେ । ପ୍ରାଣ ଧରିବୁଁ ଏ ଭୁବନେ ॥
୧୧ ଭକ୍ତବତ୍ସଳ ଭଗବାନ । ଏ ରୂପେ ପ୍ରଜାଙ୍କ ବଚନ ॥
ଶୁଣନ୍ତେ ସେମାନଙ୍କୁ ଚାହିଁ । ତାହାଙ୍କୁ ଅନୁଗ୍ରହ ଦେଇ ॥
ନିଜ ପୁରରେ ପରବେଶ । ହୋଇଲେ ଦେବ ହୃଷୀକେଶ ॥
୧୨ ଯେ ମଧୁ-ଦାଶାର୍ହ-ଭୋଜକ । ଯେ ବୃଷ୍ଣି-କୁକୁର-ଅନ୍ଧକ ॥
ଏ ନିଜ ପ୍ରାୟେ ବଳିଆର । ପାଳିଅଛନ୍ତି ଯେଉଁ ପୁର ॥
ଭୋଗବତୀପୁରକୁ ଯେହ୍ନେ । ପାଳିଅଛନ୍ତି ନାଗମାନେ ॥
୧୩ ସର୍ବଋତୁରେ ପୁଷ୍ପଫଳ । ଏ ଆଦି ଶୋଭା ଯହିଁ ଠୁଳ ॥
ଯେ ପୁଣ୍ୟ ବୃକ୍ଷଲତାଶ୍ରମ[1] । ବନ, ଉପବନ, ଆରାମ ॥
ତେଣେ ବେଷ୍ଟିତ ସରୋବରେ । ଶୋଭା ଯହିଁରେ ନିରନ୍ତରେ ॥
୧୪ ପୁରଦ୍ୱାରରେ ଗୃହଦ୍ୱାରେ । ରାଜାର ଗମନମାର୍ଗରେ ॥
କୁତୁକେ ତୋରଣ ବନ୍ଧନ । କରିଅଛନ୍ତି ଯହିଁ ଜନ ॥
ଗରୁଡ଼ ଆଦିରେ ଚିହ୍ନିତ । ଧ୍ୱଜ ପତାକା ଯେ ଶୋଭିତ ॥
ତାହାଙ୍କ ଅଗ୍ରେ ନିବର୍ତ୍ତଇ । ସୂର୍ଯ୍ୟକିରଣମାନ ଯହିଁ ॥
୧୫ ଯହିଁରେ ରାଜମାର୍ଗମାନ । ଇତର ମାର୍ଗ ହାଟସ୍ଥାନ ॥
ଅଙ୍ଗଣାମାନେ ସମାର୍ଜିତ । ସୁଗନ୍ଧ ସଲିଳେ ସେଚିତ ॥
କୁସୁମ ଅକ୍ଷତ ଅଙ୍କୁର । ଫଳ ବିଞ୍ଚିଛନ୍ତି ଯହିଁର ॥
୧୬ ପ୍ରତି ଦୁଆରେ ଶୋହେ ଯହିଁ । ଅକ୍ଷତ ଇକ୍ଷୁ ଫଳ ଦହି ॥
ପୂର୍ଣ୍ଣ କଳସ ଧୂପ ଦୀପ । ବଳିହିଁ ଶୋହେ ନାନାରୂପ ॥
୧୭ କୃଷ୍ଣର ଶୁଣି ଆଗମନ । ସେ ବସୁଦେବ ଉଗ୍ରସେନ ॥
ଅଦ୍ଭୁତ ବିକ୍ରମ ଯାହାର । ସେ ରାମ ଅକ୍ରୁର ଆବର ॥

୧. ଲତା + ଆଶ୍ରମ = ଲତାଶ୍ରମ (ଲତାମଣ୍ଡପ) ।

୧୮ ପ୍ରଦ୍ୟୁମ୍ନ ଚାରୁଦେଷ୍ଣ ବେନି । ଯେ ଚାରୁ, ଶାମ୍ବ ଗଦ[୧] ତିନି ॥ ୫୭
ଏ ଆଦି ଯେବା ଥିଲେ ଆନେ । ହରଷବେଗରେ ସେମାନେ ॥ ୫୮
ଶୟନ ଆସନ ଭୋଜନ । ଏ ସର୍ବ କରିଣ ଲଙ୍ଘନ ॥ ୫୯
୧୯ ଉତ୍ତମ ଅଟଇ ଯେ ଗଜ । ତାହାକୁ ଆଗେ କରି ସଜ ॥ ୬୦
୨୦ ମଙ୍ଗଳଦ୍ରବ୍ୟ ଘେନି ହସ୍ତେ । ବ୍ରାହ୍ମଣେ ଅଛନ୍ତି ସଙ୍ଗତେ ॥ ୬୧
ବାଜଇ ଶଙ୍ଖବାଦ୍ୟନାଦ । ବ୍ରାହ୍ମଣେ ପଢ଼ୁଛନ୍ତି ବେଦ ॥ ୬୨
ଆଦରେ ଚଢ଼ି ରଥମାନ । ହରଷେ କଲେକ ଗମନ ॥ ୬୩
କୃଷ୍ଣରଠାରେ ସ୍ନେହ ଯେଣୁ । ହୋଇଲେ ସସଂଭ୍ରମ ତେଣୁ ॥ ୬୪
ବେଶ୍ୟାଏ ଶତ ଶତ ହୋଇ । କୃଷ୍ଣଙ୍କୁ ଦେଖିବାର ପାଇଁ ॥ ୬୫
ଉତ୍ସୁକ ହୋଇ ଯାନମାନ । ଆରୋହୀ କଲେ ସେ ଗମନ ॥ ୬୬
ଉତ୍ତମ ଅଟେ ଯେ କୁଣ୍ଡଳ । ତେଣେ ଶୋଭିତ ଯେ କପୋଳ ॥ ୬୭
ସେ ସକାଶରୁ ଯାଙ୍କ ଠାରେ । ଶୋଭା ଦିଶଇ ବଦନରେ ॥ ୬୮
୨୧ *ନଟ-ନର୍ତ୍ତକ-ବନ୍ଦୀ-ସୂତ । ଗନ୍ଧର୍ବ ମାଗଧ ବହୁତ ॥ ୬୯
ଅଦ୍ଭୁତ ଚରିତ କୃଷ୍ଣର । ଗାୟନ କରନ୍ତି ସୁସ୍ୱର ॥ ୭୦
୨୨ କୃଷ୍ଣ ଦେଖିଣ ବନ୍ଧୁମାନ । ସେ ପରିବାର ପୁରଜନ ॥ ୭୧
ମିଳିଣ ତାହାଙ୍କ ସନ୍ନିଧି । ମାନନା କଲେ ଯଥାବିଧି ॥ ୭୨
୨୩ କାହାକୁ ଶିରେ ପ୍ରଣମିଲେ । ବଚନେ କାହାକୁ ବୋଇଲେ ॥ ୭୩
କାହାକୁ କଲେ ଆଲିଙ୍ଗନ । କାହାକୁ ହସ୍ତସ୍ପରଶନ ॥ ୭୪
କାହାକୁ ମନ୍ଦହାସେ ଚାହିଁ । କାହାକୁ ଇଷ୍ଟବର ଦେଇ ॥ ୭୫
ଚଣ୍ଡାଳଠାରୁ ବିପ୍ରଯାଏ । ସନ୍ତୋଷ କଲେ ଯଦୁରାଏ ॥ ୭୬
୨୪ ଗୁରୁବ୍ରାହ୍ମଣ ଭାଟମାନେ । ଦାରାସହିତେ ବୃଦ୍ଧଜନେ ॥ ୭୭
କୃଷ୍ଣଙ୍କୁ କଲେ ଆଶୀର୍ବାଦ । ପୁରରେ ମିଳିଲେ ଗୋବିନ୍ଦ ॥ ୭୮
୨୫ ମିଳନ୍ତେ ରାଜମାର୍ଗେ ହରି । ଦ୍ୱାରକାପୁରକୁଳନାରୀ ॥ ୭୯
ଅବଲୋକନରେ କୃଷ୍ଣର । ଅତି ଉତ୍ସବ ଯାହାଙ୍କର ॥ ୮୦
ଏ ରୂପେ କଲେ ଆରୋହଣ । ଅଟାଳିମାନ ତତକ୍ଷଣ ॥ ୮୧

---

୧. ଗଦ = ଶ୍ରୀକୃଷ୍ଣଙ୍କ ସାନଭାଇ ।

* ସୂତାଃ ପୌରାଣିକାଃ ପ୍ରୋକ୍ତା ମାଗଧା ବଂଶଶଂସକାଃ ।
ବନ୍ଦିନସ୍ତ୍ୱମଳପ୍ରଜ୍ଞାଃ ପ୍ରସ୍ତାବସଦୃଶୋକ୍ତୟଃ ॥

୨୬ ଯା ଅଙ୍ଗ ଶୋଭାଙ୍କର ସ୍ଥାନ । ସେ ଅଚ୍ୟୁତଙ୍କୁ ଅନୁଦିନ ॥ ୮୨
ଦ୍ୱାରକାବାସୀଙ୍କ ନୟନ । ଯଦ୍ୟପି କରନ୍ତି ଦର୍ଶନ ॥ ୮୩
ତଥାପି ନୁହନ୍ତି ସେ ତୋଷ । ଏମନ୍ତ ଅଟେ ଯାର ବେଶ ॥ ୮୪
୨୭ ଯାର ବିଶାଳ ଉରଦେଶ । ଅଟଇ ଲକ୍ଷ୍ମୀଙ୍କ ନିବାସ ॥ ୮୫
ପ୍ରାଣୀଲୋଚନପାନପାତ୍ର । ଅଟଇ ଯାର ଚାରୁ ନେତ୍ର ॥ ୮୬
ସକଳ ଲୋକପାଳଙ୍କର । ଯା ଭୁଜ ବିଶ୍ରାମମନ୍ଦିର ॥ ୮୭
ଯାହାର ଚରଣନଳିନ । ଭଗବତଙ୍କର ନିଜ ସ୍ଥାନ ॥ ୮୮
୨୮ ଧବଳ ଛତ୍ର ଧରେ କେହି । କେ ତହିଁ ଚାମର ପକାଇ ॥ ୮୯
କେ ତହିଁ ହରଷ ହୋଇଣ । କରେ କୁସୁମ ବରଷଣ ॥ ୯୦
ପଥେ ଶୋଭିତ ପୀତାମ୍ବର । ରୁଚିର ବନମାଳା ଉର ॥ ୯୧
ରବି ବିଜୁଳି ଇନ୍ଦ୍ରଚାପ । ଚନ୍ଦ୍ରେ ଯେସନେ ଘନରୂପ ॥ ୯୨
୨୯ ପିତାର ସଦନେ ପ୍ରବେଶ । ହୁଅନ୍ତେ ଦେବ ହୃଷୀକେଶ ॥ ୯୩
ମାତାଏ ହରଷ ହୋଇଲେ । ତକ୍ଷଣେ ଆଲିଙ୍ଗନ କଲେ ॥ ୯୪
ଦେବକୀ ଆଦି ହୋଇ ସାତ । ଥିଲେ ଯେ ତାହାଙ୍କର ମାତ ॥ ୯୫
ହରଷେ ତାହାଙ୍କୁ ବନ୍ଦନ । କଲେ ସେ ଦେବ ଭଗବାନ ॥ ୯୬
୩୦ ସକଳ ମାତାମାନେ ମିଳି । କୋଡ଼େ ବସାଇ ବନମାଳୀ ॥ ୯୭
ଅତ୍ୟନ୍ତ ପୁତ୍ରସ୍ନେହଭରେ । କ୍ଷୀର ସ୍ରବନ୍ତେ ପୟୋଧରେ ॥ ୯୮
ହରଷେ ବିହ୍ୱଳିତ ହେଲେ । ନୟନ ଜଳରେ ସିଞ୍ଚିଲେ ॥ ୯୯
୩୧ ମାତାଙ୍କୁ କରି ସମ୍ମାନନ । ମିଳିଲେ ଆପଣା ଭୁବନ ॥୧୦୦
ସକଳ କାମେ ମନୋହର । ଅତି ଉତ୍ତମ ଯେଉଁ ପୁର ॥୧୦୧
ଅଷ୍ଟ ଅଧିକ ଶତ ଗଣି । ଯେ ଷୋଳ ସହସ୍ର ତରୁଣୀ ॥୧୦୨
ଜଗତୀ ତେତିକି ପ୍ରମାଣ । ଯହିଁରେ ହୋଇଛି ନିର୍ମାଣ ॥୧୦୩
୩୨ ପ୍ରବାସୁଁ ଆସି ନିଜ ପତି । ଗୃହରେ ମିଳନ୍ତେ ଝଟତି ॥୧୦୪
ଦୂରରୁ ପତ୍ନୀମାନେ ଦେଖି । ଉଠିଲେ ଆସନ ଉପେକ୍ଷି ॥୧୦୫
*ଧରିଅଛନ୍ତି ବ୍ରତମାନ । ଲଜ୍ଜିତ ଲୋଚନ ଆନନ ॥୧୦୬

---

* ହାସ୍ୟଂ ପରଗୃହେ ଯାନଂ ସମାଜୋତ୍ସବଦର୍ଶନମ୍
କ୍ରୀଡାଂ ଶରୀରସଂସ୍କାରଂ ତ୍ୟଜେତ୍ ପ୍ରୋଷିତଭର୍ତ୍ତୃକା (ଯାଜ୍ଞବଲ୍କ୍ୟ)

| | | | |
|---|---|---|---|
| ୩୩ | ଶୁଣି ଗୋବିନ୍ଦ ଆଗମନ । | ମନରେ କଲେ ଆଲିଙ୍ଗନ | ॥୧୦୭ |
| | ତଦନ୍ତେ ନେତ୍ରଦ୍ୱାରେ ପୁଣି । | କଲେ ଆଲିଙ୍ଗନ ତରୁଣୀ | ॥୧୦୮ |
| | ନିକଟେ ମିଳନ୍ତେ ମୁରାରି । | ପୁତ୍ରଙ୍କୁ କୋଡ଼େ ଦେଲେ ନାରୀ | ॥୧୦୯ |
| | ପୁତ୍ରଙ୍କୁ ଆଲିଙ୍ଗନଛଳେ । | ଯେ ସୁଖ ଲଭିଲେ ସେକାଳେ | ॥୧୧୦ |
| | ତାହାଙ୍କ ଅଭିପ୍ରାୟ ଗୂଢ଼ । | କେଜାଣି ପାରେ ତାହା ମୂଢ଼ | ॥୧୧୧ |
| | କୃଷ୍ଣଙ୍କୁ ଦେଖି ସ୍ନେହଭରେ । | ଲୋତକ ଗଳନ୍ତେ ନେତ୍ରରେ | ॥୧୧୨ |
| | ଲଜ୍ଜାରେ ରୁନ୍ଧନ୍ତେ ସେ ନୀର । | ବିବଶ ଭାବରୁ ତାଙ୍କର | ॥୧୧୩ |
| | ଗଳିଲା ନୟନରୁ ନୀର । | ଶୁଣ ଶୌନକ ଦ୍ୱିଜବର | ॥୧୧୪ |
| ୩୪ | ଯଦ୍ୟପି ପାର୍ଶ୍ୱଗତ ହୋଇ । | ଏ କୃଷ୍ଣ ଏକାନ୍ତରେ ଥାଇ | ॥୧୧୫ |
| | ତଥାପି ତାଙ୍କ ପାଦଦୁଇ । | ପଦେ ପଦେକେ ନୂଆ ହୋଇ | ॥୧୧୬ |
| | ଶରୀର ବହି ଏ ସଂସାରେ । | କେ ତାହା ଛାଡ଼ି ଅବା ପାରେ | ॥୧୧୭ |
| | ଯେ ଲକ୍ଷ୍ମୀ ଚଞ୍ଚଳା ଅଟଇ । | ସେହି ତା ଛାଡ଼ି ନ ପାରଇ | ॥୧୧୮ |
| ୩୫ | ଏ ରୂପେ କ୍ଷିତିଭାରପାଇଁ । | ନୃପେ ଯେ ଥିଲେ ଜାତ ହୋଇ | ॥୧୧୯ |
| | ଅନେକ ଅକ୍ଷୌହିଣୀବଳେ । | *ପ୍ରସରିଥିଲା ତେଜ କାଳେ | ॥୧୨୦ |
| | ବଇର ଭାବ ଜାତ କରି । | ସ୍ୱହସ୍ତେ ଆୟୁଧ ନ ଧରି | ॥୧୨୧ |
| | ଏକ ଆରକେ କରି ନାଶ । | ନିବୃତ୍ତ ହେଲେ ହୃଷୀକେଶ | ॥୧୨୨ |
| | ଦାରୁମାନଙ୍କ ଘରଷଣେ । | ଅନଳ ଜାତ କରି ବଣେ | ॥୧୨୩ |
| | ସେ ବନ କରି ଭସ୍ମୀଭୂତ । | ଯେସନେ ନିବର୍ତ୍ତେ ମାରୁତ | ॥୧୨୪ |
| ୩୬ | ଆପଣା ମାୟାରେ ସେ ହରି । | ଏ ନରଲୋକ ଅବତରି | ॥୧୨୫ |
| | ଉତ୍ତମ ଯୁବତୀବୃନ୍ଦର । | ମଧ୍ୟରେ କଲେକ ବିହାର | ॥୧୨୬ |
| | ଯୁବତୀଜନବଶ ହୋଇ । | ଯେହ୍ନେ ପ୍ରାକୃତ ଲୋକ ଥାଇ | ॥୧୨୭ |
| ୩୭ | ଉଦ୍ଦାମ ଭାବକୁ ପ୍ରକାଶ । | କରେ ଯେ ମନୋହର ହାସ | ॥୧୨୮ |
| | ବ୍ରୀଡ଼ା ସହିତେ ବିଲୋକନ । | ଦେଖି ଯାହାଙ୍କର ଏମାନ | ॥୧୨୯ |
| | ଶଙ୍କର ମୋହିତ ହୋଇଲେ । | ଲଜ୍ଜାରେ ଧନୁକୁ ଛାଡ଼ିଲେ | ॥୧୩୦ |
| | ସେହୁ ଉତ୍ତମ ନାରୀଗଣ । | ବିବିଧ ଲୀଳା ଦେଖାଇଣ | ॥୧୩୧ |
| | ଯାର ଇନ୍ଦ୍ରିୟକୁ ମଥନ । | କରିତ ନୋହିଲେ ଭାଜନ | ॥୧୩୨ |

* ପ୍ରସରିଥିଲେ ଯେତେ କାଳେ ।

| | | | |
|---|---|---|---|
| ୩୮ | ଅସଙ୍ଗ ଅଟନ୍ତି ସେ ହରି । | ତାଙ୍କୁ ଆପଣା ପ୍ରାୟେ କରି | ॥୧୩୩ |
| | ମଣଇଁ ସଙ୍ଗବନ୍ତ ପ୍ରାୟେ । | ଅଜ୍ଞାନୀ ଜନ ଯେହ୍ନୁ ହୋଏ | ॥୧୩୪ |
| | ଯେଣୁ ସେ ବ୍ୟାପାର କରନ୍ତି । | ମନୁଷ୍ୟପ୍ରାୟେ ହୋଇଥାନ୍ତି | ॥୧୩୫ |
| ୩୯ | ଈଶ୍ୱରଭାବ ଈଶ୍ୱରର । | ଅଟଇ ଏତେକ ମାତର | ॥୧୩୬ |
| | ପ୍ରକୃତିସଙ୍ଗେ ମିଶିଥାଇ । | ତାର ଗୁଣରେ ସଙ୍ଗ ନୋହି | ॥୧୩୭ |
| | ଆତ୍ମାକୁ ଅବଲମ୍ବ ପାଇ । | ଯୋଗୀ ଲୋକର ବୁଦ୍ଧି ଥାଇ | ॥୧୩୮ |
| | ଆତ୍ମାର ଗୁଣେ ନୋହି ବଶ । | ସେ ଯେହ୍ନେ ନୁହଇ ପ୍ରକାଶ | ॥୧୩୯ |
| ୪୦ | ମୂଢ଼ ଭାବରୁ ସେ ରମଣୀ । | ଭର୍ତ୍ତାର ମହିମା ନ ଜାଣି | ॥୧୪୦ |
| | ଏ ନାରୀଲମ୍ପଟ ଅଟନ୍ତି । | ଏକାନ୍ତେ ଆମ୍ଭଙ୍କୁ ସେବନ୍ତି | ॥୧୪୧ |
| | ଏମନ୍ତ ବୁଦ୍ଧି କୃଷ୍ଣଠାରେ । | କରିଣ ଥାନ୍ତି ନିରନ୍ତରେ | ॥୧୪୨ |
| | ଆତ୍ମାକୁ ଅହଂକାରମତି । | ଯେଉଁ ପ୍ରକାରେ ଜାଣିଥାନ୍ତି | ॥୧୪୩ |
| | କୃଷ୍ଣଚରଣପଦ୍ମ ଦୁଇ । | ନିଜ ହୃଦୟପଦ୍ମେ ଧ୍ୟାୟି | ॥୧୪୪ |
| | ଅତି ଦୁସ୍ତର ଭବସିନ୍ଧୁ । | ତରିବ ଦ୍ୱିଜ ଦୀନବନ୍ଧୁ | ॥୧୪୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀକୃଷ୍ଣଦ୍ୱାରକାପ୍ରବେଶୋ
ନାମ ଏକାଦଶୋଽଧ୍ୟାୟଃ ॥

## ଦ୍ୱାଦଶୋଽଧ୍ୟାୟଃ

ପୂର୍ବୋକ୍ତଂ ଯତ୍ପ୍ରସଙ୍ଗାୟ ଦ୍ରୌଣିଦଣ୍ଡାଦି ବିସ୍ତରାତ୍ ।
ଦ୍ୱାଦଶେ ତୁ ତଦେବାଥ ପରୀକ୍ଷିଜ୍ଜନ୍ମ ବର୍ଣ୍ଣ୍ୟତେ ॥ ୧ ॥

ଶ୍ରୀଶୌନକ ଉବାଚ

| | | | |
|---|---|---|---|
| ୧ | କୋପେ ଯେ ଦ୍ରୋଣଙ୍କ କୁମର । | ମନ୍ତ୍ରେ ପେଷିଲେ ବ୍ରହ୍ମଶର | ॥ ୧ |
| | ଉତ୍ତରାଗର୍ଭ ତା' ତେଜରେ । | ବିନାଶ ହୁଅନ୍ତେ ଯୋଗରେ | ॥ ୨ |
| | ସେ ଗର୍ଭ ଦେବ ଚକ୍ରପାଣି । | ଆପଣେ ଜିଆଇଲେ ପୁଣି | ॥ ୩ |
| ୨ | ମହାତ୍ମା ଅଟେ ସେ ରାଜନ । | ତାହାର ଜନ୍ମକର୍ମମାନ | ॥ ୪ |
| | କହ ଆମ୍ଭଙ୍କୁ ମହାମତି । | ଯେମନ୍ତେ ମଲେ ସେ ନୃପତି | ॥ ୫ |
| | ମରଣ ଲଭିଲା ଉତ୍ତାରେ । | ଗଲେ ସେ ଯେମନ୍ତ ପ୍ରକାରେ | ॥ ୬ |

୩ ଶୁଣିମାକୁ ସେ କଥାମାନ । ଆମ୍ଭର ହେଉଅଛି ମନ ॥ ୭
ଆମ୍ଭର ଶ୍ରଦ୍ଧା ଅଛି ତହିଁ । ଯେବେ ଯୋଗାଇ କହ ତୁହି ॥ ୮
ଯେଉଁ ରାଜାଙ୍କୁ ଦେଲେ ଜ୍ଞାନ । ପୂର୍ବେ ସେ ବ୍ୟାସଙ୍କ ନନ୍ଦନ ॥ ୯

ଶ୍ରୀସୂତ ଉବାଚ

୪ ପ୍ରଜା ରଞ୍ଜନ୍ତେ ପିତାପ୍ରାୟେ । ପାଳନ କଲେ ଧର୍ମରାୟେ ॥ ୧୦
ସକଳ କାମ ସେବା କରି । ତହିଁରୁ ସ୍ପୃହାକୁ ନିବାରି ॥ ୧୧
୫ ଭୂମି ସଂପଦ ନାନା ମଖ[୧] । କର୍ମଅର୍ଜିତ ପରଲୋକ ॥ ୧୨
ଦିବ୍ୟ ମହିଷୀ ଭ୍ରାତୃଗଣ । ଜମ୍ବୁଦ୍ୱୀପରେ ରାଜାପଣ ॥ ୧୩
ଏ ସର୍ବ ହୋଇଲା ପ୍ରକାଶ । ସ୍ୱର୍ଗକୁ ବୋଲି ଗଲା ଯଶ ॥ ୧୪
୬ ଯାହାର ମନ ନିରନ୍ତରେ । ନିମଗ୍ନ ମୁକୁନ୍ଦର ଠାରେ ॥ ୧୫
ଦେବବାଞ୍ଛିତ ଭୋଗମାନ । ବଶ କରେ କି ତାର ମନ ॥ ୧୬
କ୍ଷୁଧାର୍ତ୍ତ ଲୋକକୁ ଯେସନ । ନ ତୋଷେ ଆନ[୨] ଦ୍ରବ୍ୟମାନ ॥ ୧୭
୭ ସେ ବୀର ମାତାଗର୍ଭେ ଥାଇ । ଅସ୍ତ୍ରତେଜରେ ଦଗ୍ଧ ହୋଇ ॥ ୧୮
ସେ କାଳେ ହେ ଭୃଗୁନନ୍ଦନ । ପୁରୁଷେ କଲା ବିଲୋକନ ॥ ୧୯
୮ ଅଙ୍ଗୁଷ୍ଠସମ ତା' ଶରୀର । ହେମମୁକୁଟେ ଶୋହେ ଶିର ॥ ୨୦
ଅମଳ ମନୋହର ଶ୍ୟାମ । ବସନ ବିଜୁଳିର ସମ ॥ ୨୧
୯ ଶ୍ରୀମନ୍ତ ଦୀର୍ଘଭୁଜ ଚାରି । ଶୁଦ୍ଧ ହେମକୁଣ୍ଡଳଧାରୀ ॥ ୨୨
୧୦ କୋପେ ଲୋହିତ ତାଙ୍କ ଦୃଷ୍ଟି । ଗଦାକୁ ଧରି ଦୃଢ଼ମୁଷ୍ଟି ॥ ୨୩
ଆପଣା ସବୁଦିଗେ ଥାଇ । ଭ୍ରମନ୍ତି ଗଦାକୁ ବୁଲାଇ ॥ ୨୪
ଉଲ୍‌କାର ପ୍ରାଏ ଗଦା ଦିଶେ । ଅସ୍ତ୍ରତେଜକୁ ତେଣେ ନାଶେ ॥ ୨୫
ଯେହ୍ନେ ନୀହାରକୁ ତପନ । କ୍ଷଣକେ କରଇ ଦହନ ॥ ୨୬
ଏ କେ ସମୀପରେ ମୋହର । ବୋଲି ବିଚାରିଲା କୁମର ॥ ୨୭
୧୧ ଧର୍ମରକ୍ଷଣ ଭଗବାନ । ସେ ଅସ୍ତ୍ର କରିଣ ଦହନ ॥ ୨୮
ଚାହାନ୍ତେ ଦଶମାସ ଶିଶୁ । ଅନ୍ତର ହେଲେ ଗର୍ଭଦେଶୁଁ ॥ ୨୯
୧୨ ଅଶେଷ ଗୁଣମାନ ଯହିଁ । ଜାତ ହୋଇବେ ଫଳ ହୋଇ ॥ ୩୦
ଯହିଁରେ ଶୁଭଗ୍ରହପନ୍ତି । ଉଦୟଗତ ହୋଇଛନ୍ତି ॥ ୩୧
ଏମନ୍ତ କାଳେ ବଂଶଧର । ଜନ୍ମିଲା ପାଣ୍ଡୁର କୁମାର ॥ ୩୨
ସେ ଅତି ସୁନ୍ଦର ଦିଶିଲା । ପୁଣି କି ପାଣ୍ଡୁ ଜନ୍ମ ହେଲା ॥ ୩୩

---

୧. ମଖ = ଯଜ୍ଞ ।
୨. ଆନ = ଖାଦ୍ୟବ୍ୟତିରିକ୍ତ ମାଳାଚନ୍ଦନ ଆଦି ଅନ୍ୟ ପଦାର୍ଥ ।

| | | | | | |
|---|---|---|---|---|---|
| ୧୩ | ସନ୍ତୋଷମନେ ଧର୍ମରାଜ | । | ଘେନିଣ ଧୌମ୍ୟ ଆଦି ଦ୍ୱିଜ | ।। | ୩୪ |
| | ସ୍ୱସ୍ତିବାଚନ କର୍ମ କରି | । | ଜାତ କର୍ମକୁ ସେ ଆଚରି | ।। | ୩୫ |
| ୧୪ | ସୁବର୍ଣ୍ଣ, ମହୀ, ଧେନୁତୁଲେ | । | ଅନେକ ଗ୍ରାମ ଦାନ ଦେଲେ | ।। | ୩୬ |
| | ଉତ୍ତମ ହସ୍ତୀ ଅଶ୍ୱମାନ | । | *ଦେଲେ ବିପ୍ରଙ୍କୁ ଦିବ୍ୟ ଅନ୍ନ | ।। | ୩୭ |
| | ଧର୍ମନନ୍ଦନ ତୋଷଚିତ୍ତେ | । | ଦେଲେ ଏମାନ ପ୍ରଜାତୀର୍ଥେ[୧] | ।। | ୩୮ |
| | ତୀର୍ଥରେ ଯେଉଁପରି ଦାନ | । | ଦିଅନ୍ତି ସର୍ବ ଲୋକମାନ | ।। | ୩୯ |
| ୧୫ | ବିନୟଭାବେ ହୋଇ ନତ | । | ଶୁଣନ୍ତେ ରାଜା ଧର୍ମସୁତ | ।। | ୪୦ |
| | ସନ୍ତୋଷ ହୋଇ ବିପ୍ରଜନ | । | ତାହାଙ୍କୁ କହିଲେ ବଚନ | ।। | ୪୧ |
| | ହେ ପୁରୁଶ୍ରେଷ୍ଠ ପୁରୁଙ୍କର | । | ପ୍ରଜାସନ୍ତାନେ ଏ କୁମାର | ।। | ୪୨ |
| ୧୬ | ଯାକୁ କେହୁଣି ପରକାରେ | । | ନିବାରି ନୋହେ ଜଗତରେ | ।। | ୪୩ |
| | ଏମନ୍ତ ଦଇବରେ ନାଶ | । | ଯାଆନ୍ତେ ଶୁଦ୍ଧ ପୁରୁବଂଶ | ।। | ୪୪ |
| | ତୁମ୍ଭର ଅନୁଗ୍ରହୁଁ ହରି | । | ଏହାକୁ ଗର୍ଭୁଂ ରକ୍ଷା କରି | ।। | ୪୫ |
| ୧୭ | ଏଣୁ ଏ ଅଭିମନ୍ୟୁସୁତ | । | ନାମ ଏହାର ବିଷ୍ଣୁରାତ | ।। | ୪୬ |
| | ସନ୍ଦେହ ନ କର ତୁ ଚିତ୍ତ | । | ଏ ହେବ ମହାଭାଗବତ | ।। | ୪୭ |

ଶ୍ରୀଯୁଧିଷ୍ଠିର ଉବାଚ

| | | | | | |
|---|---|---|---|---|---|
| ୧୮ | କରିଣ ପୁଣ୍ୟ ଯଶମାନ | । | ଯେ ଥିଲେ ରାଜରଷି ଜନ | ।। | ୪୮ |
| | ତାଙ୍କୁ ଯଶରେ ସାଧୁବାଦେ | । | ଏ ଅନୁବର୍ତ୍ତିବ କି ହାଦେ | ।। | ୪୯ |

ଶ୍ରୀବ୍ରାହ୍ମଣା ଉଚୁଃ

| | | | | | |
|---|---|---|---|---|---|
| ୧୯ | ଏ ପ୍ରଜା ପାଳିବ ହେ ପାର୍ଥ | । | ଯେହ୍ନେ ଇକ୍ଷ୍ୱାକୁ ମନୁସୁତ | ।। | ୫୦ |
| | ବ୍ରହ୍ମଣ୍ୟ ସତ୍ୟସନ୍ଧ ଅତି | । | ଯେସନେ ରାମ ଦାଶରଥି | ।। | ୫୧ |

---

* ''ଯାବନ୍ନ ଛିଦ୍ୟତେ ନାଳଂ ତାବନ୍ନାପ୍ନୋତି ସୂତକମ୍ ।
ଛିନ୍ନେ ନାଳେ ତତଃ ପଶ୍ଚାତ୍ ସୂତକଂ ତୁ ବିଧୀୟତେ ।''
ଏହି ସ୍ମୃତିବାକ୍ୟ ଅନୁସାରେ ନାଳଚ୍ଛେଦନପୂର୍ବରୁ ରାଜା ଅନ୍ନଦାନ କଲେ ।

୧. ପ୍ରଜାତୀର୍ଥେ = ପୁତ୍ରୋତ୍ପତ୍ତିପୁଣ୍ୟକାଳେ ।
'ପୁତ୍ରେ ଜାତେ ବ୍ୟତୀପାତେ ଦତ୍ତଂ ଭବତି ଚାକ୍ଷୟମ ।'
''ଦେବାଶ୍ଚ ପିତରଶ୍ଚୈବ ପୁତ୍ରେ ଜାତେ ଦ୍ୱିଜନ୍ମନାମ୍ ।
ଆୟାନ୍ତି ତଦ୍‌ଗୃହଂ ତସ୍ମାତ୍ ସୂର୍ଯ୍ୟଗ୍ରହଣତାଧିକମ୍ ।'' (ସ୍ମୃତିଃ)

୨୦ ଏ ଦାତା ଶରଣବତ୍ସଳ । ଯେମନ୍ତେ ଶିବି[୧] ମହୀପାଳ ।। ୫୨
ଜ୍ଞାତି ଯାଜ୍ଞିକମାନଙ୍କର । ଯଶ କରିବ ଏ ବିସ୍ତାର ।। ୫୩
ଦୁଷ୍ମନ୍ତ ରାଜାଙ୍କର ସୁତ । ଯେସନେ ନୃପତି ଭରତ ।। ୫୪
୨୧ ଯେତେକ ଧନୁର୍ଦ୍ଧର ପ୍ରାଣୀ । ତାହାଙ୍କ ମଧ୍ୟେ ଏ ଅଗ୍ରଣୀ ।। ୫୫
ଯେ ଥିଲେ ବେନି ଅରଜୁନ । ଏ ଅଟେ ତାହାଙ୍କ ସମାନ ।। ୫୬
ହୁତାଶ ପ୍ରାୟ ତେଜମୟେ । ଦୁସ୍ତର ସମୁଦ୍ର ପରାଏ ।। ୫୭
୨୨ ମୃଗେନ୍ଦ୍ରପ୍ରାଏ ବୀର୍ଯ୍ୟଧାରୀ । ଆଶ୍ରୟେ ଯେହ୍ନେ ହିମଗିରି ।। ୫୮
ଯାହାର ଆନ ଗତି ନାହିଁ । ତାହାକୁ ରଖେ ଯେହ୍ନେ ମହୀ ।। ୫୯
ପିତାମାତାଙ୍କ ପ୍ରାଏ ହୋଇ । ପର ଅପରାଧ ସହଇ ।। ୬୦
୨୩ ସମତାପାଳନରେ ଧାତା । ଈଶ୍ୱରପ୍ରାଏ ବରଦାତା ।। ୬୧
ଆଶ୍ରୟ ସର୍ବ ପ୍ରାଣୀଙ୍କର । ଯେହ୍ନେ ସଂସାରେ ରମାବର ।। ୬୨
୨୪ ଉତ୍ତମ ଗୁଣ ମହିମାରେ । କୃଷ୍ଣର ସମ ଜଗତରେ ।। ୬୩
ଉଦାର ରନ୍ତିଦେବପ୍ରାଏ । ଯଯାତିସମ ଧର୍ମମୟେ ।। ୬୪
୨୫ ଧୈର୍ଯ୍ୟରେ ବଳିସମ ଏହି । ପ୍ରହଲାଦର ପ୍ରାୟେ ହୋଇ ।। ୬୫
ଉତ୍ତମ ଆଗ୍ରହ ଏହାର । ଜାତ ହୋଇବ କୃଷ୍ଣଠାର ।। ୬୬
ଏ ଅଶ୍ୱମେଧମାନଙ୍କର । କର୍ତ୍ତା ହୋଇବ ନୃପବର ।। ୬୭
ଯେତେକ ଥିବେ ବୃଦ୍ଧଜନ । ତାହାଙ୍କୁ କରିବ ସେବନ ।। ୬୮
୨୬ ରାଜରଷିଙ୍କି ଜନ୍ମାଇବ । ଦୁଷ୍ଟମାନଙ୍କୁ ବିନାଶିବ ।। ୬୯
ଅବନିଧର୍ମରକ୍ଷା ଅର୍ଥେ । କଳିକି ବାନ୍ଧିବ ଆୟତ୍ତେ ।। ୭୦
୨୭ ବ୍ରାହ୍ମଣପୁତ୍ରଶାପୁ ତୋତେ । ତକ୍ଷକ ଦଂଶିବ ନିୟତେ ।। ୭୧
ଏମନ୍ତ ବିପ୍ରମୁଖୁଁ ଶୁଣି । ଆପଣା ହିତ ମନେ ଗୁଣି ।। ୭୨
ଛାଡ଼ି ସକଳ ସଙ୍ଗମାନ । ହରିଚରଣେ ଦେବ ମନ ।। ୭୩
୨୮ ବ୍ୟାସନନ୍ଦନମୁଖୁଁ ଶୁଣି । ଆତ୍ମାକୁ ଯଥାର୍ଥରେ ଜାଣି ।। ୭୪
ଗଙ୍ଗାରେ ଛାଡ଼ି କଳେବର । ଅନ୍ତେ ଲଭିବ ବିଷ୍ଣୁପୁର ।। ୭୫
୨୯ ରାଜାଙ୍କୁ କହି ଏ ବଚନ । ଯାତକବିଦ ବିପ୍ରଜନ ।। ୭୬
ତା'ଠାରୁ ପୂଜାକୁ ପାଇଲେ । ଯେ ଯାହା ମନ୍ଦିରକୁ ଗଲେ ।। ୭୭
୩୦ ଯେଉଁ ପୁରୁଷକୁ ଗର୍ଭରେ । ଦେଖିଣ ଥିଲେ ସେ ପୂର୍ବରେ ।। ୭୮
ତାହାଙ୍କୁ ଚିନ୍ତି ନିଜ ମନ । ବାହ୍ୟେ ଦେଖନ୍ତି ଯେତେ ଜନ ।। ୭୯

---

୧. ଶିବି ଶ୍ୟେନକୁ ନିଜ ମାଂସ ଦେଇ ଶରଣାଗତ କପୋତକୁ ରକ୍ଷା କରିଥିଲେ ।

ସେହି ପୁରୁଷ ଅବା ଏହି । ଏମନ୍ତ ପରୀକ୍ଷା କରଇ ॥ ୮୦
ଏ ଘେନି ନାମେ ପରୀକ୍ଷିତ । ଲୋକରେ ହେଲେ ସେ ବିଖ୍ୟାତ ॥ ୮୧
୩୧ ଶୁକ୍ଳ ପକ୍ଷରେ ଦିନୁଁ ଦିନ । କଳାମାନଙ୍କେ ହୋଇ ପୂର୍ଣ୍ଣ ॥ ୮୨
ଚନ୍ଦ୍ର ବଢ଼ଇ ଯେ ରୂପରେ । ପରୀକ୍ଷିତ ହିଁ ସେ ପ୍ରକାରେ ॥ ୮୩
ପାଳନ୍ତେ ପିତାମହମାନେ । ବୃଦ୍ଧି ଲଭିଲେ ଦିନେଦିନେ ॥ ୮୪
୩୨ ବାଳକଦିନୁଁ ପରୀକ୍ଷିତ । ଧର୍ମାତ୍ମା, କୃଷ୍ଣରେ ଭଗତ ॥ ୮୫
ସକଳଲୋକେ ପ୍ରୀତିଦାତା । ସେ ଭାଗବତ ଶୁଦ୍ଧଚେତା ॥ ୮୬
୩୩ ଏବେ ହୋ ଶୁଣ ବିପ୍ରଜନେ । ଧର୍ମନନ୍ଦନ ଭୟମନେ ॥ ୮୭
ଜ୍ଞାତିଦ୍ରୋହରୁ ଭୟ ଚିନ୍ତି । ଅଶ୍ୱମେଧରେ କଲେ ମତି ॥ ୮୮
କରଦଣ୍ଡରୁ ଯେତେ ଧନ । ତେଣେ ଏ ନୋହିବ ବିଧାନ ॥ ୮୯
ଏମନ୍ତ ବୋଲି ନିଜ ମନେ । ଚିନ୍ତା କରନ୍ତେ ଦିନେ ଦିନେ ॥ ୯୦
୩୪ ତାହାର ଅଭିପ୍ରାୟ ଜାଣି । ତକ୍ଷଣେ ଦେବ ଚକ୍ରପାଣି ॥ ୯୧
ଥିଲେ ଯେ ଭୀମ ଆଦି ଭାଇ । ତାହାଙ୍କୁ ଦେଲେ ପଠିଆଇ ॥ ୯୨
ନାନା ଦିଗରୁ ଧନମାନ । ଆଣି ସେ ମିଳିଲେ ବହନ ॥ ୯୩
ଉତ୍ତର ଦିଗରୁ ବିଶେଷ । ସୁବର୍ଣ୍ଣ କଲେ ସେ ପ୍ରବେଶ ॥ ୯୪
୩୫ ସେ ଧନେ କରିଣ ସଂଭାର । କାମନା ଲଭି ଯୁଧିଷ୍ଠିର ॥ ୯୫
ଜ୍ଞାତିବଧରୁ କରି ଭୀତି । ଯେ ବିଷ୍ଣୁ ଅଟେ ଯଜ୍ଞପତି ॥ ୯୬
ତାହାଙ୍କୁ ଅଶ୍ୱମେଧ ତିନି । କରି ପୂଜିଲେ ଭକ୍ତି ଘେନି ॥ ୯୭
୩୬ ଯାଗନିମିତ୍ତ ଯୁଧିଷ୍ଠିର । ଅଣାଇଥିଲେ ଚକ୍ରଧର ॥ ୯୮
ସଙ୍ଗତେ ଘେନି ବିପ୍ରଗଣ । ଯାଗ ବଢ଼ାଇ ନାରାୟଣ ॥ ୯୯
କେତେହେଁ ମାସ ଥିଲେ ତହିଁ । ମିତ୍ରଜନଙ୍କ ପ୍ରୀତିପାଇଁ ॥ ୧୦୦
୩୭ ରାଜା-ଦ୍ରୌପଦୀ ଅନୁମତେ । ବନ୍ଧୁଙ୍କ ଆଜ୍ଞାରେ ତୁରିତେ ॥ ୧୦୧
ରଥରେ ବସାଇ ଅର୍ଜୁନ । ସଙ୍ଗତେ ଛନ୍ତି ମୁନିଜନ[୧] ॥ ୧୦୨
ଦ୍ୱାରକାପୁରକୁ ଗମନ । କଲେକ ଦେବ ଭଗବାନ ॥ ୧୦୩
ହେ କୃଷ୍ଣ କମଳଲୋଚନ । ଏ ବିପ୍ର ଦୀନବନ୍ଧୁ ଦୀନ ॥ ୧୦୪
ଏହାକୁ ବାରେ କୃପା କର । ଭବସାଗରରୁ ଉଦ୍ଧର ॥ ୧୦୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀପରୀକ୍ଷିଜ୍ଜନ୍ମ
ନାମ ଦ୍ୱାଦଶୋଽଧ୍ୟାୟଃ ॥

---

୧. ଯଦୁଗଣ (?)

## ତ୍ରୟୋଦଶୋଽଧ୍ୟାୟଃ

ନିର୍ଗମୋ ଧୃତରାଷ୍ଟ୍ରସ୍ୟ ବିଦୁରୋକ୍ତ୍ୟା ତ୍ରୟୋଦଶେ ।
ଉକ୍ତଃ ପୌତ୍ରାଭିଷେକେଣ ବକ୍ତୁଂ ରାଜ୍ଞୋ ମହାପଥମ୍ ॥ ୧ ॥

ଶ୍ରୀସୂତ ଉବାଚ

୧ ବିଦୁର ତୀର୍ଥଯାତ୍ରାକ୍ରମେ । ମିଳିଣ ମୈତ୍ରେୟ ଆଶ୍ରମେ ॥ ୧
କେତେହେଁ ଦିନ ତହିଁ ଥାଇ । ତା ଠାରୁ ଆତ୍ମଜ୍ଞାନ ପାଇ ॥ ୨
ତେଣେ ସନ୍ଦେହ କରି ଦୂର । ମିଳିଲେ ହସ୍ତିନାନଗର ॥ ୩
୨ ମୈତ୍ରେୟ ଆଗେ ପ୍ରଶ୍ନ ଯେତେ । କଲେ ବିଦୁର ଦୃଢ଼ ଚିତ୍ତେ ॥ ୪
ତେଣେ ଶ୍ରୀକୃଷ୍ଣେ ଭକ୍ତିଜାତ । ପ୍ରଶ୍ନରୁ ହୋଇଲେ ନିବୃତ୍ତ ॥ ୫
୩ ତାହାଙ୍କୁ ଦେଖି ଧର୍ମସୁତ । ସଙ୍ଗତେ ଘେନି ଚାରି ଭ୍ରାତ ॥ ୬
୪ ଯୁଯୁତ୍ସୁ, ଧୃତରାଷ୍ଟ୍ର ବେନି । କୃପ ଗାନ୍ଧାରୀ କୁନ୍ତୀ ଘେନି ॥ ୭
ଦ୍ରୌପଦୀ, ଅଭିମନ୍ୟୁମାତା । ଯେ କୃପୀ ବିରାଟଦୁହିତା ॥ ୮
୫ ଯେ ଆନ ଜ୍ଞାତି ବନ୍ଧୁମାନେ । ପାଣ୍ଡୁର ଥିଲେ ସେହି ସ୍ଥାନେ ॥ ୯
ଯେ ଜ୍ଞାତିମାନେ ସ୍ତିରୀ ଯେତେ । ଥିଲେ ପୁତ୍ରଙ୍କର ସହିତେ ॥ ୧୦
ସକଳେ ହୋଇଲେ ହରଷ । ମିଳିଲେ ତାହାଙ୍କର ପାଶ ॥ ୧୧
ପ୍ରାଣକୁ ପାଇ ପିଣ୍ଡ ଯେହ୍ନେ । ପୁଣି ଉଠଇ ସଚେତନେ ॥ ୧୨
୬ ମିଳିଣ ଯେ ଯାହା ବେଭାର । କଲେ ଆଶ୍ଲେଷ ନମସ୍କାର ॥ ୧୩
ବିଦୁରମୁଖକୁ ଚାହିଁଲେ । ସ୍ନେହରେ ଅଶ୍ରୁକୁ ମୁଞ୍ଚିଲେ ॥ ୧୪
ବିରହେ ହୋଇ ଉତ୍କଣ୍ଠିତ । ଯେଣୁ କାତର ତାଙ୍କ ଚିତ୍ତ ॥ ୧୫
ଆସନ ଉପରେ ବସାଇ । ତାଙ୍କୁ ପୂଜିଲେ କୁରୁସାଇଁ ॥ ୧୬
୭ ବିଶ୍ରାମ ଲଭିଣ ଭୁଂଜିଣ । ଆସନେ ବସନ୍ତେ ସେ ପୁଣ ॥ ୧୭
ରାଜା ବିନୟେ ନମ୍ର ହୋଇ । ଶୁଣନ୍ତେ ବନ୍ଧୁମାନେ ତହିଁ ॥ ୧୮
ବଚନ ଏମନ୍ତ ପ୍ରକାରେ । କହିଲେ ସଭାର ମଧ୍ୟରେ ॥ ୧୯

ଶ୍ରୀଯୁଧିଷ୍ଠିର ଉବାଚ

୮ ଆମ୍ଭଙ୍କୁ ପର୍ବପ୍ରାୟେ ଚିତ୍ତେ । ସ୍ମରଣ କରନ୍ତି କି ନିତ୍ୟେ ॥ ୨୦
ତୁମ୍ଭର ପକ୍ଷପାତ ଛାଇ[1] । ପାଇଣ ଆମ୍ଭେ ପାଞ୍ଚ ଭାଇ ॥ ୨୧

---

୧. ପକ୍ଷୀମାନେ ପକ୍ଷଛାୟାରେ ଯେପରି ନିଜ ଅପତ୍ୟମାନଙ୍କୁ ରକ୍ଷା କରନ୍ତି ସେହିପରି ଆପଣଙ୍କ ପକ୍ଷପାତ ଛାଇ ଆମ୍ଭମାନଙ୍କୁ ବହୁ ବିପଦରୁ ରକ୍ଷା କରିଅଛି ।

| | | | | | |
|---|---|---|---|---|---|
| | ମାତାସହିତେ ଜଉଘରେ | । | ଅଗ୍ନିଦହନ ମହାଘୋରେ | ॥ | ୨୨ |
| | ବିଷଭକ୍ଷଣ ଆଦି ଯେତେ | । | ତହୁଁ ମୁକତ ହେଲୁଁ ଗତେ | ॥ | ୨୩ |
| ୯ | ଚରନ୍ତେ କ୍ଷିତିମଣ୍ଡଳରେ | । | ବର୍ତ୍ତିଲ କେବଣ ବୃତ୍ତିରେ | ॥ | ୨୪ |
| | କେବଣ କ୍ଷେତ୍ର ତୀର୍ଥଗଣ | । | କଲ ଅବନିରେ ଭ୍ରମଣ | ॥ | ୨୫ |
| ୧୦ | ତୁମ୍ଭର ପ୍ରାୟ ସୁଖଚିତ୍ତ | । | ଅଛନ୍ତି ଯେତେ ଭାଗବତ | ॥ | ୨୬ |
| | ତାଙ୍କର ତୀର୍ଥ ଇଚ୍ଛା ନାହିଁ | । | ତୀର୍ଥ ଅଟନ୍ତି ସ୍ୱୟଂ ସେହି | ॥ | ୨୭ |
| | ତାହାଙ୍କ ଚିତ୍ତେ ହରି ଥାନ୍ତି | । | ତୀର୍ଥକୁ ତୀର୍ଥ ସେ କରନ୍ତି | ॥ | ୨୮ |
| ୧୧ | ଯେ ଆମ୍ଭ ମିତ୍ର ବନ୍ଧୁ ବୃନ୍ଦ | । | ଯାହାଙ୍କ ଦେବତା ଗୋବିନ୍ଦ | ॥ | ୨୯ |
| | ସେ ଯଦୁମାନେ ଦ୍ୱାରକାରେ | । | ଅଛନ୍ତିଟିକି ଆନନ୍ଦରେ | ॥ | ୩୦ |
| | ତାହାଙ୍କୁ ପ୍ରତ୍ୟକ୍ଷେ ଦେଖିଛ | । | ହେ ତାତ ! କି ଅବା ଶୁଣିଛ | ॥ | ୩୧ |
| ୧୨ | ଏମନ୍ତ ରାଜାବାକ୍ୟ ଶୁଣି | । | ବିଦୁର ନିଜ ମନେ ଗୁଣି | ॥ | ୩୨ |
| | ଯାଦବକୁଳ କ୍ଷୟ କଥା | । | ଛାଡ଼ିଣ ଯେ ଆନ ବାରତା | ॥ | ୩୩ |
| | ଯେମନ୍ତ ଅନୁଭବ ଥିଲା | । | ସେହି କ୍ରମରେ ତା କହିଲା | ॥ | ୩୪ |
| ୧୩ | କୃଷ୍ଣ ଭୂମିରେ ନ ଥିବାର | । | ଅପ୍ରିୟ ଅଟେ ପ୍ରାଣୀଙ୍କର | ॥ | ୩୫ |
| | ଏ କଥା କହିବି ମୁଁ ଯେବେ | । | ଏମାନେ ସହି ନ ପାରିବେ | ॥ | ୩୬ |
| | ଦୁଃଖିତ କରି ବନ୍ଧୁଜନ | । | ଦେଖିବାକୁ ମୁଁ ଅଭାଜନ | ॥ | ୩୭ |
| | ଏତେ ବିଚାରି ଦୟାମନେ | । | ସେ ନ କହିଲା ବନ୍ଧୁଜନେ | ॥ | ୩୮ |
| ୧୪ | କେତେହେଁ ଦିନ ତହିଁ ଥାଇ | । | ଦେବତା ପ୍ରାୟେ ପୂଜା ପାଇ | ॥ | ୩୯ |
| | ଜ୍ୟେଷ୍ଠ ଭାଇଙ୍କି କହି ଜ୍ଞାନ | । | ହରଷ କଲେ ସର୍ବମନ | ॥ | ୪୦ |
| ୧୫ | *ମାଣ୍ଡବ୍ୟଠାରୁ ଶାପ ପାଇ | । | ଶଏ ବରଷ ଶୂଦ୍ର ହୋଇ | ॥ | ୪୧ |

* ଏକଦା କେତେକ ଚୋରଙ୍କୁ ଅନୁଧାବନ କରୁଥିବା ରାଜଦୂତମାନେ ତପସ୍ୟାରତ ମାଣ୍ଡବ୍ୟଋଷିଙ୍କ ନିକଟରେ ସେମାନଙ୍କୁ ପାଇ ଋଷିଙ୍କ ସହ ବାନ୍ଧି ଆଣି ରାଜାଙ୍କୁ ଜଣାଇଲେ । ରାଜାଙ୍କ ଆଜ୍ଞା ଅନୁସାରେ ସମସ୍ତଙ୍କୁ ଶୂଳିରେ ଚଢ଼ାଗଲା । କିନ୍ତୁ ପରେ ରାଜା ମାଣ୍ଡବ୍ୟଙ୍କୁ ଋଷି ବୋଲି ଜାଣିପାରି ଶୂଳିରୁ ଓହ୍ଲାଇ ଦେଇ କ୍ଷମା ମାଗିଥିଲେ । ଏହାପରେ ଋଷି ଯମରାଜଙ୍କ ପାଖକୁ ଯାଇ କ୍ରୁଦ୍ଧ ସ୍ୱରରେ ପଚାରିଲେ, ''ମୋତେ କାହିଁକି ଶୂଳିରେ ଚଢ଼ାଗଲା ?'' ଯମରାଜ କହିଲେ- ''ଆପଣ ପିଲାଦିନେ କୁଶାଗ୍ରରେ ଝିଣ୍ଟିକା ମାରି ଖେଳ ଖେଳୁଥିଲେ ।'' ତାହା ଶୁଣି ମାଣ୍ଡବ୍ୟ ତାଙ୍କୁ ଅଭିଶାପ ଦେଇ କହିଲେ- ''ଯେହେତୁ ପିଲାଦିନର ଅଜ୍ଞାନ ଆଚରିତ କର୍ମ ପାଇଁ ତୁମ୍ଭେ ମୋତେ ଏତେ ବଡ଼ ଦଣ୍ଡ ଦେଲ, ତେଣୁ ତୁମେ ଶୂଦ୍ର ହୋଇ ଜନ୍ମ ହୁଅ ।'' ସେହି ଶାପ ଅନୁସାରେ ଯମରାଜ 'ବିଦୁର' ହୋଇ ଜନ୍ମଲାଭ କଲେ ।

ବିଦୁରରୂପେ ଦଣ୍ଡଧର । ରହିଲେ ମର୍ତ୍ତ୍ୟମଣ୍ଡଳର ।। ୪୨
ପାପୀଙ୍କୁ ଅନୁରୂପେ ଦଣ୍ଡ । ଯେକାଳେ ବିହିଲେ ମାର୍ତ୍ତଣ୍ଡ ।। ୪୩
୧୬ ରାଜ୍ୟକୁ ଲଭି ଯୁଧିଷ୍ଠିର । ନୀତିକି ମଣି କୁଳଧର ।। ୪୪
ଲୋକପାଳଙ୍କ ସମ ଯେହି । ସଙ୍ଗେ ଘେନି ସେ ଚାରିଭାଇ ।। ୪୫
ପାଇଣ ପରମ ସମ୍ପତ୍ତି । ହରଷ କଲେ ନିଜ ମତି ।। ୪୬
୧୭ ଏ ରୂପେ ଗୃହେ ହୋଇ ସକ୍ତ । ତହିଁ ଚେଷ୍ଟାରେ ହୋଇ ମତ୍ତ ।। ୪୭
ବର୍ତ୍ତିଣ ଥାଆନ୍ତେ ସକଳ । ପରମ ଦୁସ୍ତର ଯେ କାଳ ।। ୪୮
ପ୍ରବେଶ ହୋଇଲା ତୁରିତ । ସେ ପୁରେ ହୋଇ ଆକସ୍ମିତ[1] ।। ୪୯
୧୮ ବିଦୁର ସେ କଥାକୁ ଜାଣି । ଧୃତରାଷ୍ଟ୍ରର ଆଗେ ଭଣି ।। ୫୦
ହେ ରାଜା ଏଥୁଁ ଶୀଘ୍ରେ ଯାଅ । ଦେଖ ପ୍ରବେଶ ହେଲା ଭୟ ।। ୫୧
୧୯ ଯାହାକୁ କେହୁଣିସି ଠାଇ । ପ୍ରାଣୀର ପ୍ରତିକାର ନାହିଁ ।। ୫୨
ସେ କାଳ ହୋଇଲା ପ୍ରବେଶ । ହେବାକୁ ଆମ୍ଭର ବିନାଶ ।। ୫୩
୨୦ ଯେଉଁ କାଳରେ ଗ୍ରସ୍ତ ଜନ । ଛାଡ଼ନ୍ତି ପ୍ରିୟ ପ୍ରାଣମାନ ।। ୫୪
ଧନ ଆଦିଙ୍କି ଛାଡ଼ିବାର । ଚିତ୍ର ବୋଲିଣ ନ ବିଚାର ।। ୫୫
୨୧ ତୋହର ପିତା ଭ୍ରାତା ମିତ୍ର । ମଲେ ଯେତକ ଥିଲେ ପୁତ୍ର ।। ୫୬
ବୟସ ତୋର ଦୂର ଗଲା । ଦେହ ଜରାରେ ଗ୍ରସ୍ତ ହେଲା ।। ୫୭
ଏତେ ଦଶାରେ ପରଘରେ । ରହିଣ ଅଛୁ କି ପ୍ରକାରେ ।। ୫୮
୨୨ ପୂର୍ବରେ ହୋଇଥିଲୁ ଅନ୍ଧ । ଏବେ ବଧିର ବୁଦ୍ଧି ମନ୍ଦ ।। ୫୯
ବିଶୀର୍ଣ୍ଣ ହେଲେ ଦନ୍ତମାନ । ଜଠରେ ମନ୍ଦ ହୁତାଶନ ।। ୬୦
କଣ୍ଠରେ କଫ ଅଛୁ ବହି । ସ୍ନେହ ନ ଛାଡୁ ତଥାପି ହି ।। ୬୧
୨୩ ଜୀବନ ଆଶା ପ୍ରାଣୀଙ୍କର । ଅଟଇ ଅତି ବଳୀଆର ।। ୬୨
ଯେଉଁ ଭୀମର ଗଦାଘାତେ । ମଲେ ତୋହର ସୁତ ଶତେ ।। ୬୩
ତାହାର ଦେଲା ପିଣ୍ଡ ଖାଇ । ଥାଉ ତୁ ଶ୍ୱାନପ୍ରାଏ ହୋଇ ।। ୬୪
୨୪ ଯାହାକୁ ଦହିଲ ଅନଳେ । ବିଷକୁ ଦେଲ ଭକ୍ଷ୍ୟମେଳେ ।। ୬୫
ସଭାରେ ବିବସନ କରି । ଦୂଷଣ କଲ ଯାଙ୍କ ନାରୀ ।। ୬୬
ହରିଲ ଭୂମି ଯାହାଙ୍କର । ଧନକୁ କଲ ଅପହାର ।। ୬୭
ତାହାଙ୍କ ଦେଲା ଅନ୍ନ ଖାଇ । କି କାର୍ଯ୍ୟେ ପ୍ରାଣ ଧରିଥାଇ ।। ୬୮

---

୧. ଆକସ୍ମିକ = ଅକସ୍ମାତ

| | | | |
|---|---|---|---|
| ୨୫ | ତୁ ପୁଣି ଅଟୁ ଅତି ଦୀନ । | ଜୀଇବା ପାଇଁ ତୋର ମନ | ॥ ୬୯ |
| | ଇଚ୍ଛା ନ କଲେହେଁ ତୋହର । | ବୃଦ୍ଧଭାବରୁ କଳେବର | ॥ ୭୦ |
| | ଦିନକୁ ଦିନ ହୋଏ ଜୀର୍ଣ୍ଣ । | ପୁରୁଣା ବସନ ଯେସନ | ॥ ୭୧ |
| ୨୬ | ଛାଡ଼ି ସକଳ ଅଭିମାନ । | ବିରକ୍ତିମାର୍ଗେ ଦେଇ ମନ | ॥ ୭୨ |
| | ଲୋକେ ଅଲକ୍ଷ୍ୟଗତି ହୋଇ । | ଏ ଦେହୁଁ କିଛି କାର୍ଯ୍ୟ ନାହିଁ | ॥ ୭୩ |
| | ଏମନ୍ତ ବୋଲି ଯେ ଛାଡ଼ଇ । | ତାହାକୁ ଧୀର ବୋଲି କହି | ॥ ୭୪ |
| ୨୭ | ଯେ ଏ ସଂସାରେ ବୁଦ୍ଧିବଳେ । | ଅଥବା ସାଧୁଜନମେଳେ | ॥ ୭୫ |
| | ବୈରାଗ୍ୟ ଲଭି ହୃଦୟରେ । | ହରିଙ୍କି ଧରିଣ ନିର୍ଭରେ | ॥ ୭୬ |
| | ସକଳ ଛାଡ଼ି ବନେ ଯାଇ । | ନର ଉତ୍ତମ ସେ ଅଟଇ | ॥ ୭୭ |
| ୨୮ | ସ୍ୱଜନେ ଅବିଜ୍ଞାତ ହୋଇ । | ଉତ୍ତର ଦିଗେ ଚଳ ତୁହି | ॥ ୭୮ |
| | ଲୋକର ଯେତେ ଗୁଣ ଥିବ । | ଏଣିକି କାଳ ତା ନାଶିବ | ॥ ୭୯ |
| ୨୯ | ଏମନ୍ତ ରୂପେ ସାନଭାଇ । | ରାଜାଙ୍କୁ କହନ୍ତେ ବୁଝାଇ | ॥ ୮୦ |
| | ବୁଦ୍ଧି ଅଟଇ ନେତ୍ର ଯାର । | ସେ ଅଜମୀଢ଼ବଂଶସାର | ॥ ୮୧ |
| | ସ୍ୱଜନେ ଦୃଢ଼ ସ୍ନେହପାଶ । | ଛିନାଇ ବନେ ଥୋଇ ଆଶ | ॥ ୮୨ |
| | ମାର୍ଗକୁ ଦେଖାନ୍ତେ ବିଦୁର । | ନଗରୁଁ ହୋଇଲେ ବାହାର | ॥ ୮୩ |
| ୩୦ | ଯହିଁ ବୈରାଗ୍ୟବନ୍ତ ଜନ । | ଆନନ୍ଦ ଲଭେ ଅନୁଦିନ | ॥ ୮୪ |
| | ସେ ହିମାଦ୍ରିକି ନିଜ ପତି । | ଯା'ନ୍ତେ ସୁବଳସୁତା ସତୀ | ॥ ୮୫ |
| | ତାଙ୍କୁ ହୋଇଲେ ଉପଗତ । | ଶୀତକୁ ନ ଡରେ ତା ଚିତ୍ତ | ॥ ୮୬ |
| | ମନସ୍ୱୀ ଜନଙ୍କର ମନ । | ଯୁଦ୍ଧକୁ ନ ଡରେ ଯେସନ | ॥ ୮୭ |
| ୩୧ | ଏମନ୍ତ ସମୟେ ମନ୍ଦିର । | ମଧ୍ୟରେ ଥାଇ ଯୁଧିଷ୍ଠିର | ॥ ୮୮ |
| | ସନ୍ଧ୍ୟାଦି କର୍ମମାନ ସାରି । | ବିପ୍ରଙ୍କୁ ନମସ୍କାର କରି | ॥ ୮୯ |
| | ତିଳ ଗୋ ବସ୍ତ୍ର ହେମ ଦେଇ । | ଗୁରୁଙ୍କୁ ବନ୍ଦିବାର ପାଇଁ | ॥ ୯୦ |
| | ଗୃହରେ ପ୍ରବେଶ ହୋଇଲେ । | ପିତାମାତାଙ୍କୁ ନ ଦେଖିଲେ | ॥ ୯୧ |
| ୩୨ | ସେଠାରେ ସଂଜୟକୁ ଚାହିଁ । | ପୁଚ୍ଛିଲେ ଉଦବେଗ ହୋଇ | ॥ ୯୨ |
| | ହେ ସୂତ ! ତାତ ମୋର କାହିଁ । | ଯେ ବୃଦ୍ଧ, ନେତ୍ର ଯାର ନାହିଁ | ॥ ୯୩ |
| | ପୁତ୍ରବଧରେ ହୋଇ ଆର୍ତ୍ତ । | କାହିଁ ଅଛନ୍ତି ମୋର ମାତ | ॥ ୯୪ |
| | ପିତାର ଭାଇ ମୋର କାହିଁ । | ତା' ତହୁଁ ମିତ୍ର ମୋର ନାହିଁ | ॥ ୯୫ |

୩୩ ମୁଁ ଯେ ଅଟଇ ବୁଦ୍ଧିହୀନ । ମୋ ଅପରାଧ ଘେନି ମନ ॥ ୯୬
ମରିଅଛନ୍ତି ଯେଣୁ ସୁତେ । ଏ ଘେନି ଭାର୍ଯ୍ୟାର ସହିତେ ॥ ୯୭
ପଡ଼ିଲେ ଅବା ଗଙ୍ଗାଜଳେ । ସେହି ଦୁଃଖରୁ ଏତେ କାଳେ ॥ ୯୮
୩୪ ମୋ ପିତା ପାଣ୍ଡୁର ନିଧନେ । ଯେତେ ବାଳକ ଆମ୍ଭେମାନେ ॥ ୯୯
ଯେ ପୁଣ ବିପତ୍ତିମାନଙ୍କୁଁ[୧] । ରଖିଣ ଅଛନ୍ତି ଆମ୍ଭଙ୍କୁ ॥୧୦୦
ସେହି ପିତୃବ୍ୟ ଦୁହେଁ ମୋର । ଏ ସ୍ଥାନୁଁ କେଣେ ହେଲେ ଦୂର ॥୧୦୧

ଶ୍ରୀସୂତ ଉବାଚ

୩୫ ନିଜ ଚିତ୍ତରେ ଦୟା ବହି । ସ୍ନେହେ ବିକଳଭାବ ହୋଇ ॥୧୦୨
ନ ଦେଖି ଆପଣା ଈଶ୍ୱର । ବିରହେ ହୋଇଣ କାତର ॥୧୦୩
ଶୋକରେ ଅତି ପୀଡ଼ା ପାଇ । ସଂଜୟ ରହେ ତୁନି ହୋଇ ॥୧୦୪
୩୬ ହସ୍ତରେ ପୋଛି ନେତ୍ରବାରି । ଆତ୍ମାକୁ ମନେ ଧୈର୍ଯ୍ୟ କରି ॥୧୦୫
ସୁମରି ଚରଣ ପ୍ରଭୁର । ରାଜାକୁ କହିଲା ଉତ୍ତର ॥୧୦୬

ଶ୍ରୀସଂଜୟ ଉବାଚ

୩୭ ହେ କୁରୁକୁଳର ନନ୍ଦନ । ତୁମ୍ଭର ପିତା ବେନି ଜନ ॥୧୦୭
ଦେବୀ ଗାନ୍ଧାରୀ ପତିବ୍ରତା । ମୁଁ ନ ଜାଣଇଁ ତାଙ୍କ କଥା ॥୧୦୮
ସେମାନେ ମହାତ୍ମା ବେଭାରେ । ବଞ୍ଚନା କଲେ ମୋହଠାରେ ॥୧୦୯

ଶ୍ରୀସୂତ ଉବାଚ

୩୮ ନାରଦ ଏହି ସମୟରେ । ପ୍ରବେଶ ହୋଇଲେ ସେଠାରେ ॥୧୧୦
ତୁମ୍ବୁରୁ ସଙ୍ଗରେ ଅଛନ୍ତି । ତାହାଙ୍କୁ ଦେଖିଣ ନୃପତି ॥୧୧୧
ଅନୁଜମାନଙ୍କ ସହିତେ । ପାଛୋଟି ଯାଇଣ ତୁରିତେ ॥୧୧୨
*ମୁନିଙ୍କି କରିଣ ବନ୍ଦନ । ପୂଜନ୍ତେ କହିଲେ ବଚନ ॥୧୧୩

ଶ୍ରୀଯୁଧିଷ୍ଠିର ଉବାଚ

୩୯ ହେ ବିପ୍ର ! ତାତ ବେନି ଥିଲେ । ଏଠାରୁ କେଣିକି ସେ ଗଲେ ॥୧୧୪
ମୁଁ ତାଙ୍କ ଗତି ନ ଜାଣଇଁ । ପୁତ୍ରେ ମରନ୍ତେ ଆର୍ତ୍ତ ହୋଇ ॥୧୧୫
ଆମ୍ଭର ଜନନୀ ଯେ ଥିଲେ । ସେ ଅବା କେଉଁ ଦିଗେ ଗଲେ ॥୧୧୬

---

୧. ଅର୍ଥାତ୍ ବିପତ୍ତିମାନଙ୍କରୁ ।

* ଶୋକାକ୍ରାନ୍ତଃ କୃପାବିଷ୍ଟଃ ଶ୍ରଦ୍ଧୟା ରହିତଃ ପୁମାନ୍ ।
ଗୁରୁଦେବଦ୍ୱିଜାତୀନାଂ ପୂଜନଂ ନ ସମାଚରେତ୍ ॥ (ସ୍ମୃତିଃ)

୪୦ ଅପାର ଜଳେ କର୍ଣ୍ଣଧାର । ଯେଣି ଦେଖାଇ ତେଣି[୧] ପାର ॥୧୧୭
ଶୋକଜଳରୁ ସେହିମତେ । ପାରକରତା ତୁମ୍ଭେ ମୋତେ ॥୧୧୮
ଏଥି ଉତ୍ତାରେ ମୁନିବର । ନାରଦ କହିଲେ ଉତ୍ତର ॥୧୧୯

ଶ୍ରୀନାରଦ ଉବାଚ

୪୧ ହେ ନୃପ କାହାକୁ ହିଁ ତୁହି । ଶୋକ ନ କର ଆର୍ତ୍ତ ହୋଇ ॥୧୨୦
ଯେଣୁ କରିଣ ଏ ଜଗତ । ଅଟଇ ଈଶ୍ୱର ଆୟତ୍ତ ॥୧୨୧
ଲୋକପାଳଙ୍କର ସହିତେ । ଲୋକେ ପୂଜନ୍ତି ଯାକୁ ନିତ୍ୟେ ॥୧୨୨
ସେହି ଈଶ୍ୱର ପ୍ରାଣୀଙ୍କର । କର୍ତ୍ତା ସଂଯୋଗ ବିୟୋଗର ॥୧୨୩
୪୨ ବଳଦ ଯେହ୍ନେ ନାସିକାରେ । ଗ୍ରଥିତ ହୋଇଣ ତନ୍ତ୍ରୀରେ ॥୧୨୪
ସେ ପୁଣ ଦାମବଦ୍ଧ ହୋଇ । ପ୍ରଭୁର ବଳିକି ବହଇ ॥୧୨୫
ତେସନେ[୨] ବଚନତନ୍ତ୍ରୀରେ । ଆବର ବିବିଧ[୩] ନାମରେ ॥୧୨୬
ସରବେ ବନ୍ଧନ ଲଭନ୍ତି । ପ୍ରଭୁର ବଳିକି ବହନ୍ତି ॥୧୨୭
୪୩ କ୍ରୀଡ଼ାସାଧନ ଦ୍ରବ୍ୟଙ୍କର । ସଂଯୋଗ ବିୟୋଗ ବେଭାର ॥୧୨୮
ଯେ ଜନ କ୍ରୀଡ଼ା କରୁଥାଇ । ତାର ଇଚ୍ଛାରେ ଯେହ୍ନେ ହୋଇ ॥୧୨୯
ସେ ରୂପେ ଈଶ୍ୱର ଇଚ୍ଛାରେ । ପ୍ରାଣୀମାନଙ୍କର ସଂସାରେ ॥୧୩୦
ସଂଯୋଗ ବିୟୋଗ ଏ ଦୁଇ । କାଳବଶରେ ସଂଭବଇ ॥୧୩୧
୪୪ ଲୋକକୁ ଧ୍ରୁବ ବୋଲି ମଣୁ । ଅଧ୍ରୁବ ବୋଲି ଅବା ଜାଣୁ ॥୧୩୨
ଅଥବା ବ୍ରହ୍ମରୂପ ଘେନୁ । ଏ ବେନି କଥାକୁ ନ ମାନୁ ॥୧୩୩
ଚିଦ୍‌ଜଡ଼ ଅଂଶୁ ସେହି ଦୁଇ । ଧ୍ରୁବ ଅଧ୍ରୁବ ଅବା ହୋଇ ॥୧୩୪
ମୋହରୁ ସ୍ନେହ ହୋଏ ଜାତ । ସେ ସ୍ନେହ ନ ଥାଇ ଯାବତ ॥୧୩୫
ତାବତ କାଳ ତାଙ୍କୁ ଜନେ । ଶୋଚନା ନ କରନ୍ତି ମନେ ॥୧୩୬
୪୫ ସେମାନେ ମୋର ଅଭାବରେ । କିରୂପେ ଜିଇବେ ସଂସାରେ ॥୧୩୭
ସଙ୍ଗେ ନ ଥିବେ ଆନ ଜନ । ସ୍ୱଭାବେ ହୋଇଥିବେ ଦୀନ ॥୧୩୮
ଏ ରୂପେ ଅଜ୍ଞାନଜନିତ । ବିକଳ ଭାବ ଛାଡ଼ ଚିତ୍ତ ॥୧୩୯
୪୬ ଏ କାଳ-ଗୁଣ-କର୍ମଙ୍କର । ଅଧୀନ ଅଟଇ ଶରୀର ॥୧୪୦
ଯେ ପଞ୍ଚ ମହାଭୂତ ଖ୍ୟାତ । ତାହାଙ୍କ ସଂଯୋଗୁଁ ଏ ଜାତ ॥୧୪୧

---

୧. ତେଣି = ସେହି ଆଡ଼କୁ । (ଯେଣି = ଯେଉଁ ଆଡ଼କୁ)
୨. ବଚନତନ୍ତ୍ରୀ = କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ବିଧାୟକ ବେଦ ବଚନରୂପକ ତନ୍ତ୍ରୀ
୩. ବିବିଧ ନାମ = ବ୍ରାହ୍ମଣ, ବ୍ରହ୍ମଚାରୀ ପ୍ରଭୃତି ବର୍ଣ୍ଣାଶ୍ରମସୂଚକ ନାମ ।

| | | | |
|---|---|---|---|
| | ଏହାକୁ ଜଡ଼ କରି ଲେଖି । | ଏ କାହିଁ ପରପ୍ରାଣ ରଖି | ।।୧୪୨ |
| | ଉରଗ ଗିଳିଛି ଯାହାକୁ । | ସେ କାହିଁ ରଖିବ ପରକୁ | ।।୧୪୩ |
| ୪୭ | ସ୍ୱଭାବେ ହସ୍ତ ନାହିଁ ଯାର । | ହସ୍ତ ଥିଲାର ସେ ଆହାର | ।।୧୪୪ |
| | ଯେ ତୃଣ ଆଦି ପାଦହୀନ । | ସେ ଚତୁଷ୍ପଦଙ୍କ ଭୋଜନ | ।।୧୪୫ |
| | ତହିଁରେ ବଡ଼ ଯେ ଅଟନ୍ତି । | ସେ ସାନମାନଙ୍କୁ ଖାଆନ୍ତି | ।।୧୪୬ |
| | ଏ ରୂପେ ଜୀବମାନଙ୍କର । | ଜୀବ ସେ ଅଟଇ ଆହାର | ।।୧୪୭ |
| ୪୮ | ହେ ନୃପ ନାନାରୂପେ ଖ୍ୟାତ । | ହୋଇଛି ଏ ଯେଉଁ ଜଗତ | ।।୧୪୮ |
| | ଏ ସର୍ବ ଅଟେ ଭଗବାନ । | ତହିଁରୁ ନୁହଇ ଏ ଆନ | ।।୧୪୯ |
| | ଅଟଇ ଏ ଏକ ଆକାର । | ଯେଣୁ ଏ ଆତ୍ମା ପ୍ରାଣୀଙ୍କର | ।।୧୫୦ |
| | ଏ ପୁଣି ବାହାର ଭିତରେ । | ଶୋହୁଛି[1] ଭୋଗ୍ୟ ସ୍ୱରୂପରେ | ।।୧୫୧ |
| | ମାୟାରେ ନାନା ରୂପେ ସେହି । | ଏମନ୍ତ କରି ଦେଖ ତୁହି | ।।୧୫୨ |
| ୪୯ | ସେ ଭୂତଭାବନ ମୁରାରି । | ଅଟଇ କାଳରୂପଧାରୀ | ।।୧୫୩ |
| | ଅସୁରଙ୍କର ବଧପାଇଁ । | ଭୂମିରେ ଛନ୍ତି ଜାତ ହୋଇ | ।।୧୫୪ |
| ୫୦ | ଦେବଙ୍କ କାର୍ଯ୍ୟ କଲେ ଶେଷ । | କିଛିହିଁ ଅଛି ଅବଶେଷ | ।।୧୫୫ |
| | ଯାବତ କାଳେ ଏ ପୁରର । | ହୋଇବ ଏକ ଅଧୀଶ୍ୱର | ।।୧୫୬ |
| | ତେତିକି କାଳ ମାତ୍ର ତୁହି । | ପ୍ରତୀକ୍ଷା କରିଥାଅ ରହି | ।।୧୫୭ |
| ୫୧ | ବିଦୁର ଧୃତରାଷ୍ଟ୍ର ବେନି । | ସଙ୍ଗତେ ଗାନ୍ଧାରୀକି ଘେନି | ।।୧୫୮ |
| | ହିମାଦ୍ରି ଦକ୍ଷିଣକୁ ଗଲେ । | ଋଷିଙ୍କ ଆଶ୍ରମେ ମିଳିଲେ | ।।୧୫୯ |
| ୫୨ | ଅମର-ନଦୀ ସେ ସ୍ଥାନରେ । | ବହିଛି ସପତ ସ୍ରୋତରେ | ।।୧୬୦ |
| | ସପ୍ତ ଋଷିଙ୍କ ପ୍ରୀତିପାଇଁ । | ସପତସ୍ରୋତା ସେ ବୋଲାଇ | ।।୧୬୧ |
| ୫୩ | ସେ ଜଳେ ନିତ୍ୟେ କରି ସ୍ନାନ । | ଅନଳେ ସାରି ହୋମମାନ | ।।୧୬୨ |
| | କେବଳ କରି ଜଳପାନ । | ଛାଡ଼ି ସକଳ ବାଞ୍ଛାମାନ | ।।୧୬୩ |
| ୫୪ | ଜିତ ଆସନ ଜିତଶ୍ୱାସ । | ଷଡ଼ ଇନ୍ଦ୍ରିୟ କରି ବଶ | ।।୧୬୪ |
| | ଚିତ୍ତରେ ଚିନ୍ତି ନାରାୟଣ । | ନିରସ୍ତ କଲେ ତିନିଗୁଣ | ।।୧୬୫ |
| ୫୫ | ଯେ ଆତ୍ମା ଅହଂକାରାସ୍ପଦୀ । | ତାହାକୁ ସ୍ଥୂଳଦେହୁଁ ଭେଦି | ।।୧୬୬ |
| | ବୁଦ୍ଧିରେ ନେଇ ଏକ କରି । | ବୁଦ୍ଧିକି ସ୍ଥୂଳ ଅଂଶୁଁ ହରି | ।।୧୬୭ |
| | କ୍ଷେତ୍ରଜ୍ଞେ ନେଇ କରି ଲୀନ । | ଦେଖନ୍ତା[2] ଅଂଶୁଁ ତାକୁ ଭିନ୍ନ | ।।୧୬୮ |

୧. ଅର୍ଥାତ୍ ଶୋଭା ପାଉଛି    ୨. ଅର୍ଥାତ୍ ଦୃଶ୍ୟ

| | | | |
|---|---|---|---|
| | କରି ଆଶ୍ରୟ ବ୍ରହ୍ମଠାରେ । | ଲୀନ କରିଣ ସମାଧିରେ | ॥୧୬୯ |
| | ପ୍ରସିଦ୍ଧ ଆକାଶେ ଯେସନ । | ଘଟ-ଆକାଶ କରି ଲୀନ | ॥୧୭୦ |
| ୫୬ | ତ୍ରିଗୁଣ ମାୟାଫଳ ନାଶି । | ଇନ୍ଦ୍ରିୟ ମନକୁ ନିରାସି | ॥୧୭୧ |
| | ନିଶ୍ଚଳେ ସ୍ଥାଣୁପ୍ରାୟ ହୋଇ । | ରହିଛି ଆହାରାଦି ନାହିଁ | ॥୧୭୨ |
| ୫୭ | ଛାଡ଼ିଛି ସବୁ କର୍ମମାନ । | ତୁ ତାକୁ ଯାଇ ନୋହ ବିଘ୍ନ | ॥୧୭୩ |
| | ସେ[୧] ଆଜୁଁ ପାଞ୍ଚ ଦିନଠାର । | ତେଜିବ ନିଜ କଳେବର | ॥୧୭୪ |
| | ବିପିନ-ଅନଳରେ ତାର । | ଭସ୍ମ ହେବ ସେ କଳେବର | ॥୧୭୫ |
| ୫୮ | ପର୍ଣ୍ଣଶାଳାରେ ପତିଦେହ । | ଅନଳେ ହୁଅନ୍ତେ ସେ ଦାହ | ॥୧୭୬ |
| | ଗାନ୍ଧାରୀ ଥିବ ଯେ ବାହାରେ । | ପ୍ରବେଶ ହେବ ସେ ଅଗ୍ନିରେ | ॥୧୭୭ |
| ୫୯ | ବିଦୁର ଦେଖି ସେ ଅଦ୍‌ଭୁତ । | ହରଷ ଶୋକେ ହୋଇ ଯୁତ | ॥୧୭୮ |
| | ସେଠାରୁ ଯିବ ଆନ ସ୍ଥାନ । | ତୀର୍ଥସେବାରେ ଦେଇ ମନ | ॥୧୭୯ |

ଶ୍ରୀସୂତ ଉବାଚ

| | | |
|---|---|---|
| ଏମନ୍ତ କହି ରାଜାଆଗେ । | ନାରଦ ତୁମ୍ବୁରୁର ସଙ୍ଗେ | ॥୧୮୦ |
| ସ୍ୱର୍ଗକୁ କଲେ ଆରୋହଣ । | ତାହାଙ୍କ ବଚନ ଶୁଣିଣ | ॥୧୮୧ |
| ଯେତେକ ଶୋକ ହୃଦେ ଥିଲା । | ଧର୍ମନନ୍ଦନ ତା' ଛାଡ଼ିଲା | ॥୧୮୨ |
| କୃଷ୍ଣଚରଣେ ଦେଇ ଚିତ୍ତ । | ପ୍ରଥମ ସ୍କନ୍ଧ ଭାଷାଗୀତ | ॥୧୮୩ |
| ବ୍ରାହ୍ମଣ ଦୀନବନ୍ଧୁ ଭଣେ । | ସୁଜନେ ତୋଷ ହୁଅ ଏଣେ | ॥୧୮୪ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀନାରଦବାକ୍ୟଂ ନାମ
ତ୍ରୟୋଦଶୋଽଧ୍ୟାୟଃ ॥

## ଚତୁର୍ଦ୍ଦଶୋଽଧ୍ୟାୟଃ

ଚତୁର୍ଦ୍ଦଶେ ତ୍ୱରିଷ୍ଟାନି ଦୃଷ୍ଟ୍ୱା ରାଜା ବିଶଙ୍କିତଃ ।
ଅଶୃଣୋଦର୍ଜୁନାଦ୍ କୃଷ୍ଣତିରୋଧାନମିତୀର୍ଯ୍ୟତେ ॥ ୧ ॥

ଶ୍ରୀସୂତ ଉବାଚ

| | | | |
|---|---|---|---|
| ୧ | ବନ୍ଧୁମାନଙ୍କ ଦରଶନ । | ବାଞ୍ଛା କରିଣ ନିଜ ମନ | ॥ ୧ |
| | ମାୟାମନୁଷ୍ୟ ଅଟେ ହରି । | ତା ଚେଷ୍ଟା ଜାଣିମା ବିଚାରି | ॥ ୨ |
| | ଅର୍ଜୁନ ରାଜାର ବଚନେ । | ଗମନ୍ତେ ଦ୍ୱାରକାଭୁବନେ | ॥ ୩ |

୧. ଅର୍ଥାତ୍ ଆଜିଠାରୁ

୨ ଏମନ୍ତେ କେତେ ମାସ ଗଲା । ଅର୍ଜୁନ ପ୍ରବେଶ ନୋହିଲା ॥ ୪
ଉତ୍‌ପାତମାନ ଅତିଘୋର । ଦେଖିଲେ ରାଜା ଯୁଧିଷ୍ଠିର ॥ ୫
୩ କାଳର ଅତି ରୌଦ୍ର ଗତି । ଋତୁଏ ବିପରୀତ ରୀତି ॥ ୬
କ୍ରୋଧ ଅନୃତ ଲୋଭେ ରତ । ପ୍ରାଣୀଙ୍କ ଆତ୍ମା ଅବିରତ ॥ ୭
ସେ ପ୍ରାଣୀମାନଙ୍କର ବାର୍ତ୍ତା । ପାପିଷ୍ଠ ଅଟଇ ସର୍ବଥା ॥ ୮
୪ ଯେତେ କରନ୍ତି ବ୍ୟବହାର । ତହିଁରେ କପଟ ଅପାର ॥ ୯
ଯେ ମିତ୍ର ବ୍ୟବହାର କରେ । ବହୁତ ବଞ୍ଚନା ତହିଁରେ ॥ ୧୦
ପିତା ଜନନୀ ସୁତ ଭାଇ । ପତି ପତ୍ନୀରେ କଳି ହୋଇ ॥ ୧୧
୫ ଅରିଷ୍ଟସୂଚକ ବହୁତ । ପ୍ରକାଶ ହୋଇଲା ନିମିତ୍ତ ॥ ୧୨
ପାପପ୍ରକୃତିକି ଲୋକର । ଦେଖିଣ ରାଜା ଯୁଧିଷ୍ଠିର ॥ ୧୩
ଭୀମସେନକୁ ଦେଖି ପାଶେ । ବଚନ କହିଲେ ବିଶ୍ୱାସେ ॥ ୧୪

ଶ୍ରୀଯୁଧିଷ୍ଠିର ଉବାଚ

୬ ଅର୍ଜୁନ ଦ୍ୱାରକାଭୁବନେ । ଗଲା ବାନ୍ଧବଦରଶନେ ॥ ୧୫
କୃଷ୍ଣର ସଙ୍ଗତରେ ଥାଇ । ତା ଚେଷ୍ଟା ଜାଣିମାର ପାଇଁ ॥ ୧୬
୭ ହେ ଭୀମସେନ ! ସାତମାସ । ହୋଇଲା ଏବେ ଆସି ଶେଷ ॥ ୧୭
ତୋର ଅନୁଜ କି ହେତୁରେ । ପ୍ରବେଶ ନୋହିଲା ଏଠାରେ ॥ ୧୮
ତତ୍ତ୍ୱ କରିଣ ମୁଁ ଏକଥା । ଜାଣି ନ ପାରଇ ସର୍ବଥା ॥ ୧୯
୮ ଯାହା କହିଲେ ଦେବଋଷି । ସେ କାଳ ହୋଇଲା କି ଆସି ॥ ୨୦
ଯହିଁରେ ଆପଣା ଶରୀର । ତ୍ୟାଗ କରିବେ ଚକ୍ରଧର ॥ ୨୧
୯ ରାଜ୍ୟ ସଂପତ୍ତି ଦାରାମାନ । ପ୍ରାଣ ସଂତତି ପ୍ରଜାଜନ ॥ ୨୨
ଯାହାର ସକାଶୁଁ ଏମାନ । ବଢ଼ିଲେ ମୋର ଦିନୁଁଦିନ ॥ ୨୩
ଯା' ଅନୁଗ୍ରହୁଁ ଶତ୍ରୁ ଜୟ । ପରଲୋକ ହିଁ ଅତିଶୟ ॥ ୨୪
୯(କ) ଆମ୍ଭେ ତା ଦାସ ମିତ୍ର ଜନ । ଆମ୍ଭଙ୍କୁ ଛାଡ଼ି ଭଗବାନ ॥ ୨୫
ଯେବେ ସେ ଯିବେ ତାର ବିନୁ । କି କାର୍ଯ୍ୟ ଧରିଣ ଏ ତନୁ ॥ ୨୬

---

୯(କ) – ଯଦ୍ୟସୌ ଭଗବାନ୍ ଜହ୍ୟାଦ୍ ସୁହୃଦୋ ହ୍ୟନୁଜୀବିନଃ ।
ଅସ୍ମାଁସ୍ତ୍ୟକ୍ଷାମହେ ପ୍ରାଣାଁସ୍ତମୃତେ ଜୀବିତଂ କିୟଦ୍ ॥

୧୦ ଦେଖ ଏ ତ୍ରିବିଧ ଉତ୍‌ପାତ । ଭୂମି ଆକାଶେ ଦେହେ ଜାତ ॥ ୨୭
କରୁଅଛନ୍ତି ଘୋର ଭୟ । ଯେଣେ ଆମ୍ଭର ବୁଦ୍ଧି ମୋହ ॥ ୨୮
୧୧ ଊରୁ, ଲୋଚନ, ବାହୁ ମୋର । ସ୍ଫୁରୁ ଅଛନ୍ତି ନିରନ୍ତର ॥ ୨୯
ଭୟେ କମ୍ପଇ ମୋ ହୃଦୟ । ନିକଟେ ଦେବେ ଏ ଅପ୍ରିୟ ॥ ୩୦
୧୨ ଉଦୟକାଳେ ରବି ଚାହିଁ । ଶୃଗାଳ ଶବଦ କରଇ ॥ ୩୧
ତାହାର ମୁଖରୁ ଦହନ । ଜାତ ହେଉଛି ପୁନଃପୁନଃ ॥ ୩୨
କୁକ୍‌କୁର ମୋ ମୁଖକୁ ଚାହିଁ । ନିର୍ଭୟେ ଶବଦ କରଇ ॥ ୩୩
୧୩ ମୋତେ ପ୍ରଶସ୍ତ ପଶୁଗଣ । କରୁ ନାହାନ୍ତି ପ୍ରଦକ୍ଷିଣ ॥ ୩୪
ଆନ ଅଶୁଭ ପଶୁ ଯେତେ । ମୋତେ ଯାନ୍ତି ସେ ବିପରୀତେ ॥ ୩୫
ଅଶ୍ୱମାନଙ୍କୁ ମୋର ମୁହିଁ । କାନ୍ଦିଲା ପ୍ରାୟେକ ମଣଇଁ ॥ ୩୬
୧୪ ମୃତ୍ୟୁସୂଚକ ଏ କପୋତ । ଉଲୂକ କଂପାଇ ମୋ ଚିତ୍ତ ॥ ୩୭
ଉଲୂକ-ପ୍ରତିପକ୍ଷ ହୋଇ । କାକ ଯେ କୁଧ୍ୱନି କରଇ ॥ ୩୮
ଶୂନ୍ୟ କରିବାକୁ ଜଗତ । ଏ ବେନି ବିଚାରନ୍ତି ଚିତ୍ତ ॥ ୩୯
୧୫ ଦିଗେ ଦିଶନ୍ତି ଧୂମ୍ରବର୍ଣ୍ଣ । ମଣ୍ଡଳ ଦିଶଇ ଯେସନ ॥ ୪୦
ପର୍ବତମାନଙ୍କ ସହିତେ । ଭୂମି କମ୍ପଇ ଅକସ୍ମାତେ ॥ ୪୧
ମେଘ ଗର୍ଜନର ସହିତେ । ନିର୍ଘାତ ଶୁଭଇ ଜଗତେ ॥ ୪୨
୧୬ ଧୂଳିରେ କରନ୍ତେ ଅନ୍ଧାର । ପବନ ବହେ ଖରତର ॥ ୪୩
ରୁଧିର ବରଷନ୍ତି ମେଘେ । ବୀଭତ୍ସ ପ୍ରାଏ ସର୍ବଦିଗେ ॥ ୪୪
୧୭ ଦେଖ ଏ ହତପ୍ରଭ ହୋଇ । ତପନ ଅଛି ଉଦେ ହୋଇ ॥ ୪୫
ଦେଖ ଆକାଶେ ଗ୍ରହଙ୍କର । ଏକ ଆରେକରେ ସମର ॥ ୪୬
ପ୍ରାଣୀଙ୍କ ସଙ୍ଗତରେ ଭୂତେ । ମିଶିଣ ଥାଆନ୍ତେ ଜଗତେ ॥ ୪୭
ଆକାଶ ପୃଥିବୀ ଏ ଦୁଇ । ଜଳିଲା ପ୍ରାୟେକ ଦିଶଇ ॥ ୪୮
୧୮ କ୍ଷୁଭିତ ନଦୀ ନଦ ସର । ଆବର ମନ ପ୍ରାଣୀଙ୍କର ॥ ୪୯
ଘୃତରେ ନ ଜଳେ ଅନଳ । କିବା ବିହିବ ଏହୁ କାଳ ॥ ୫୦
୧୯ ବଚ୍ଛା ନ କରେ କ୍ଷୀରପାନ । ଧେନୁର ନ ପ୍ରସବେ ସ୍ତନ ॥ ୫୧
ଅଶ୍ରୁପୂରିତମୁଖ ହୋଇ । ରୋଦନ କରୁଛନ୍ତି ଗାଈ ॥ ୫୨
ଗୋଷ୍ଠେ ବୃଷଭ ଯେତେ ଛନ୍ତି । କେହି ସେ ହରଷ ନୁହନ୍ତି ॥ ୫୩
୨୦ ଯେତେ ଦେବତା ପ୍ରତିମାଏ । ଦିଶନ୍ତି କାନ୍ଦିଲା ପରାଏ ॥ ୫୪
ତନୂରୁ[୧] ସ୍ୱେଦ ବିଗଳିତ । ସ୍ଥାନୁଁ ହୁଅନ୍ତି ସେ ଚଳିତ ॥ ୫୫

---

୧. ତନରୁ ।

ଏ ଜନପଦ, ଗ୍ରାମ, ପୁର । ଆଶ୍ରମ, ଉଦ୍ୟାନ, ଆକର ॥ ୫୬
ସମସ୍ତ ଦିଶେ ହତଶିରୀ । ଆନନ୍ଦ ନ ଦେଖି କାହାରି ॥ ୫୭
ଆମ୍ଭର କିଛି ଦୁଃଖ ଜାତ । ଏମାନେ କରିବେ ନିୟତ ॥ ୫୮
୨୧ ଏ ସର୍ବ ଉତପାତ ଚାହିଁ । ମୁଁ ମନେ ଏହା ବିଚାରଇ ॥ ୫୯
ଯା'ଶୋଭା ଆନ ଲୋକଠାରେ । ଦୁର୍ଲଭ ଅଟେ ଜଗତରେ ॥ ୬୦
ସେ କୃଷ୍ଣପାଦେ ହୀନ ହୋଇ । ମହୀ ସୁନ୍ଦର ନ ଦିଶଇ ॥ ୬୧
୨୨ ଅରିଷ୍ଟ ଦେଖି ନିଜ ମନ । ସେ ରାଜା ଚିନ୍ତନ୍ତେ ଏସନ ॥ ୬୨
ଦ୍ୱାରକାପୁରରୁ ଲେଉଟି । ପ୍ରବେଶ ହୋଇଲେ କିରୀଟି ॥ ୬୩
୨୩ ଆତୁରେ ପଡ଼ିଲା ପାଦରେ । ପୂର୍ବରୁ ସେ ଆନ ପ୍ରକାରେ ॥ ୬୪
ତଳକୁ ପୋତିଛି ବଦନ । ଅଶ୍ରୁରେ ପୂରିତ ନୟନ ॥ ୬୫
୨୪ ଦେହରେ କାନ୍ତି ତାର ନାହିଁ । ଏ ରୂପେ ଅର୍ଜୁନକୁ ଚାହିଁ ॥ ୬୬
ବନ୍ଧୁଜନଙ୍କ ମଧ୍ୟେ ଥାଇ । ନାରଦ ବଚନ ଚିତୋଇଁ[1] ॥ ୬୭
ଆଶଙ୍କା କରିଣ ମନର । ପୁଛିଲେ ରାଜା ଯୁଧିଷ୍ଠିର ॥ ୬୮

ଶ୍ରୀଯୁଧିଷ୍ଠିର ଉବାଚ

୨୫ ଦ୍ୱାରକାପୁରେ ବନ୍ଧୁଜନ । ସୁଖେ ଛନ୍ତିଟି କି ଅର୍ଜୁନ ॥ ୬୯
ଯେ ମଧୁ, ଦାଶାର୍ହ ସାତ୍ୱତେ । ଅନ୍ଧକ, ବୃଷ୍ଣି ଆଦି ଯେତେ ॥ ୭୦
୨୬ ଶୂର ଆମ୍ଭର ମାତାମହ । କୁଶଳେ ଛନ୍ତିଟି କି କହ ॥ ୭୧
ମାତୁଳ ବସୁଦେବ ମୋର । କନିଷ୍ଠ ଭାଇ ସଙ୍ଗତର ॥ ୭୨
କୁଶଳେ ଅଛିଟି କି ପୁରେ । ସେ କଥା କହ ମୋ ଆଗରେ ॥ ୭୩
୨୭ ଦେବକୀ ଆଦି ପରସ୍ପର । ସାତ ଭଗିନୀ ସହୋଦର ॥ ୭୪
ତାହାର ଭାର୍ଯ୍ୟା ଏ ବିଦିତ । ସେ ପୁତ୍ରବଧୂଙ୍କ ସହିତ ॥ ୭୫
ମଙ୍ଗଳ ହୋଇଛନ୍ତି ଘରେ । ସେ କଥା କହ ମୋ ଆଗରେ ॥ ୭୬
୨୮ ଦୁଷ୍ଟ ଅଟଇ ପୁତ୍ର ଯାର । ସେ ଉଗ୍ରସେନ ନରେଶ୍ୱର ॥ ୭୭
ତାର କନିଷ୍ଠ ଭ୍ରାତା ତୁଲେ । ଜୀବନେ ଅଛିଟିକି ଭଲେ ॥ ୭୮
ହୃଦୀକ କୃତବର୍ମା ତୁଲେ । ଜୀଇଣ ଛନ୍ତିଟିକି ଭଲେ ॥ ୭୯
ଯେ ଗଦ ଜୟନ୍ତ ସାରଣ । ଅକ୍ରୂର ଅଛିଟିକି ପୁଣ ॥ ୮୦

---

୧. ଅର୍ଥାତ୍ ମନେ ପକାଇ ।

| | | | |
|---|---|---|---|
| ୨୯ | ଶତ୍ରୁଜିତକୁ ଆଦି ଯେତେ । | କୁଶଳେ ଛନ୍ତି କି ସମସ୍ତେ | ॥ ୮୧ |
| | ଯେ ରାମ ସାତ୍ୱତ ଈଶ୍ୱର । | କୁଶଳ ଟିକି ତାହାଙ୍କର | ॥ ୮୨ |
| ୩୦ | ସମସ୍ତ ବୃଷ୍ଣିଙ୍କ ମଧ୍ୟର । | ଯେ ଅଟେ ମହାରଥ ବୀର | ॥ ୮୩ |
| | ପ୍ରଦ୍ୟୁମ୍ନ ନାମେ ଖ୍ୟାତ ଯେହି । | ସୁଖରେ ଅଛିଟି କି ସେହି | ॥ ୮୪ |
| | ଯେ ଅତି ବେଗବନ୍ତ ଯୋଦ୍ଧ୍ୱ¹ । | ଭଲଟି କି ସେ ଅନିରୁଦ୍ଧ | ॥ ୮୫ |
| ୩୧ | ସୁଷେଣ ଚାରୁଦେଷ୍ଣ ଖ୍ୟାତ । | ଯେ ଶାମ୍ବ ଜାମ୍ବବତୀ ସୁତ | ॥ ୮୬ |
| | କୃଷ୍ଣପୁତ୍ରଙ୍କ ମଧ୍ୟେ ସାର । | ଋଷଭ ଆଦି ଯେ ଆବର | ॥ ୮୭ |
| | ସେମାନେ କୁଶଳ ହୋଇଣ । | ଅଛନ୍ତିଟି କି ପୁରେ ପୁଣ | ॥ ୮୮ |
| ୩୨ | ଯେବା କୃଷ୍ଣର ଅନୁଚର । | ଉଦ୍ଧବ ଶ୍ରୁତଦେବ ଆର | ॥ ୮୯ |
| | ଯହିଁ ସୁନନ୍ଦ ନନ୍ଦ ଦୁଇ । | ଖ୍ୟାତ ଅଟନ୍ତି ମୁଖ୍ୟ ହୋଇ | ॥ ୯୦ |
| | ସେହି ସାତ୍ୱତଶ୍ରେଷ୍ଠମାନେ । | ସୁଖେ ଅଛନ୍ତିଟି କି ସ୍ଥାନେ | ॥ ୯୧ |
| ୩୩ | ରାମକୃଷ୍ଣଙ୍କ ଭୁଜମାନ । | ଆଶ୍ରୟ ଲଭି ଅନୁଦିନ | ॥ ୯୨ |
| | କୁଶଳ ହୋଇଣ ସେମାନେ । | ଅଛନ୍ତିଟି କି ନିଜ ସ୍ଥାନେ | ॥ ୯୩ |
| | ସୁହୃଦ ଭାବେ ଅତିଶୟ । | ନିବଦ୍ଧ ତାଙ୍କର ହୃଦୟ | ॥ ୯୪ |
| | ଆତ୍ମ କୁଶଳ ଅବିରତେ । | ଚିନ୍ତନ୍ତିଟି କି ନିଜ ଚିତ୍ତେ | ॥ ୯୫ |
| ୩୪ | ଭକ୍ତବତ୍ସଳ ଯେ ବୋଲାନ୍ତି । | ସେ ବିପ୍ରପ୍ରିୟ ଯଦୁପତି | ॥ ୯୬ |
| | ପୁରରେ ସୁଧର୍ମାସଭାରେ । | ମିତ୍ରଜନଙ୍କ ସଙ୍ଗତରେ | ॥ ୯୭ |
| | ଅଛନ୍ତିଟି କି କୁଶଳରେ । | ସେ କଥା କହ ମୋ ଆଗରେ | ॥ ୯୮ |
| ୩୫ | ପ୍ରାଣୀଙ୍କ ମଙ୍ଗଳ ପାଳନ । | ସମୃଦ୍ଧି ଅର୍ଥେ ଭଗବାନ | ॥ ୯୯ |
| | ଲବ୍ଧପାଳନକୁ କରନ୍ତି । | ଯେ ଆଦ୍ୟ ପୁରୁଷ ଅଟନ୍ତି | ॥୧୦୦ |
| | ଯାଦବକୁଳ ଅମ୍ବୁଧିରେ । | ଅଛନ୍ତି ରାମସଙ୍ଗତରେ | ॥୧୦୧ |
| ୩୬ | ଯା ବାହୁଦଣ୍ଡରେ ପାଳିତ । | ଦ୍ୱାରକାପୁରେ ଅବିରତ | ॥୧୦୨ |
| | ପରମାନନ୍ଦେ ଯଦୁମାନେ । | ବୈକୁଣ୍ଠେ ବିଷ୍ଣୁଗଣ ଯେହ୍ନେ | ॥୧୦୩ |
| | କ୍ରୀଡ଼ା କରନ୍ତି ସେ ପ୍ରକାରେ । | ପୂଜିତ ହୋଇ ସକଳରେ | ॥୧୦୪ |
| ୩୭ | ଚରଣ ସେବନ ଯାହାର । | ଅଟଇ ସର୍ବକର୍ମେ ସାର | ॥୧୦୫ |
| | ସତ୍ୟଭାମାକୁ ଆଦି କରି । | ଷୋଳସହସ୍ର ସଂଖ୍ୟ ନାରୀ | ॥୧୦୬ |

---

୧. ଅର୍ଥାତ୍ ଯୋଦ୍ଧା ।

ସେ ପାଦସେବାକର୍ମଫଳେ । ସମସ୍ତେ ଅବନିମଣ୍ଡଳେ ॥୧୦୭
ଯୁଦ୍ଧରେ ଦେବତାଙ୍କୁ ଜିଣି । ଯାହା ଆଣିଲେ ଚକ୍ରପାଣି ॥୧୦୮
ଇନ୍ଦ୍ରବଲ୍ଲଭା[୧]କୁ ଉଚିତ । ଯେ ପାରିଜାତ ଆଦି ଖ୍ୟାତ ॥୧୦୯
ସେ ଦେବଭୋଗ୍ୟ ସୁଖମାନ । ଭୋଗ କରନ୍ତି ଦିନୁଁଦିନ ॥୧୧୦
୩୮ ଯା ବାହୁଦଣ୍ଡପ୍ରତାପରେ । ନିର୍ଭୟ ହୋଇ ଯଦୁବୀରେ ॥୧୧୧
ସୁଧର୍ମାସଭାକୁ ପାଦରେ । ଆକ୍ରମିଛନ୍ତି ସନ୍ତତରେ ॥୧୧୨
ଯେ ସୁରଶ୍ରେଷ୍ଠଙ୍କୁ ଉଚିତ । ସୁଧର୍ମା ସଭା ଅଟେ ଖ୍ୟାତ ॥୧୧୩
ସେ କୃଷ୍ଣ କୁଶଳ ହୋଇଣ । ପୁରରେ ଛନ୍ତିଟିକି ପୁଣ ॥୧୧୪
୩୯ ତୋର କୁଶଳଟି କି ତାତ[୨] । ତୋ ତେଜ ଦିଶୁଅଛି ହତ ॥୧୧୫
ରହିଲୁ ଚିରକାଳ ଯେଣୁ । ଅବଜ୍ଞା ଲଭିଲୁ କି ତେଣୁ ॥୧୧୬
୪୦ ଅଶୁଭ ଲୋକମାନେ ତୋତେ । ଗାଳି ଦେଲେ କି ନାନାମତେ ॥୧୧୭
ଅର୍ଥୀଙ୍କି ଆଶା ଦେଖାଇଣ । ଯାହା ତୁ ପ୍ରତିଜ୍ଞା କରିଣ ॥୧୧୮
ଦେବି ବୋଲିଣ ତୁ ବୋଇଲୁ । ତାହା କି ଦେଇ ନ ପାରିଲୁ ॥୧୧୯
୪୧ ବିପ୍ର ବାଳକ ବୃଦ୍ଧ ଗାଈ । ଯେ ସ୍ତିରୀ ଯେବା ରୋଗୀ ହୋଇ ॥୧୨୦
ଯେ ଅବା ପ୍ରାଣୀମାତ୍ର ଆନ । ଶରଣ ପଶିଲା ଅର୍ଜୁନ ॥୧୨୧
ତାଙ୍କୁ ଶରଣପ୍ରଦ ହୋଇ । କି ଅବା ନ ରଖିଲୁ ତୁହି ॥୧୨୨
୪୨ ଅଗମ୍ୟ ଯେଉଁ ନାରୀଜନ । ଗମ୍ୟ ହୋଇଣ ଯେ ମଳିନ ॥୧୨୩
ଧର୍ମକୁ ବିଚାର ନ କରି । ତାହାଙ୍କୁ ଅବା ଅଛୁ ହରି ॥୧୨୪
ଉତ୍ତମେ[୩] ନୀଚମାନେ ତୋତେ । ଜିଣିଲେ ଅବା ମାର୍ଗଗତେ ॥୧୨୫
୪୩ ଯେ ଯୋଗ୍ୟ ଆଗ ଭୁଞ୍ଜିବାକୁ । ସେ ବୃଦ୍ଧ ବାଳକମାନଙ୍କୁ ॥୧୨୬
ନ ଦେଇ କରି ଆଗ ହୋଇ । କିବା ଭୋଜନ କଲୁ ତୁହି ॥୧୨୭
ଯେ ଯୋଗ୍ୟ ନୋହେ କରିବାକୁ । କଲୁ ବା ସେ ନିନ୍ଦ୍ୟ କର୍ମକୁ ॥୧୨୮
୪୪ କି ଅବା ପ୍ରିୟ ଆପଣାର । ଯେ ଅନ୍ତରଙ୍ଗ ଚକ୍ରଧର ॥୧୨୯
ତେଣେ[୪] ମୁଁ ଶୂନ୍ୟ ହୋଇଲଇଁ । ଏହି କଥାକୁ ଅଛୁ ଧ୍ୟାୟି ॥୧୩୦
ଆନ ପ୍ରକାରେ ଚିନ୍ତା ତୋର । ପ୍ରକାଶ ନୁହଇ ଶରୀର ॥୧୩୧

---

୧. ଅର୍ଥାତ୍ ଶଚୀ । ୨. ଭ୍ରାତା ।
୩. ଅର୍ଥାତ୍ ଉତ୍ତମ ଲୋକମାନେ । ୪. ତାଙ୍କଦ୍ୱାରା ।

| | | | |
|---|---|---|---|
| କୃଷ୍ଣଚରଣେ ଦେଇ ଚିତ୍ତ | । | ପ୍ରଥମସ୍କନ୍ଧ ଭାଗବତ | ॥୧୩୨ |
| ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସନ୍ତୋଷ ସାଧୁଜନେ ତେଣେ | ॥୧୩୩ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀ ଯୁଧିଷ୍ଠିରବିତର୍କୋ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶୋଽଧ୍ୟାୟଃ

କଳିପ୍ରବେଶମାଲକ୍ଷ୍ୟ ଧୁରଂ ନ୍ୟସ୍ୟ ପରୀକ୍ଷିତି ।
ଆରୁରୋହ ନୃପଃ ସ୍ୱର୍ଗମିତି ପଞ୍ଚଦଶେଽବ୍ରବୀତ୍ ॥ ୧ ॥

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୧ | କୃଷ୍ଣର ମିତ୍ର ଯେ ଅର୍ଜୁନ | । | ତାହାଙ୍କୁ ଏମନ୍ତ ବଚନ | ॥ | ୧ |
| | ନାନା ଆଶଙ୍କାରେ ମିଶାଇ | । | ପୁଛନ୍ତେ ତାଙ୍କ ଜ୍ୟେଷ୍ଠଭାଇ | ॥ | ୨ |
| | କୃଷ୍ଣର ବିରହ ଯେ ଜାତ | । | ତେଣେ ହୋଇଣ କରଶିତ[୧] | ॥ | ୩ |
| ୨ | ବଦନ, ହୃଦୟକମଳ | । | ଶୋକେ ଶୁଖିଛି ତତକାଳେ | ॥ | ୪ |
| | ଦେହରୁ କାନ୍ତି ହେଲା ହତ | । | ଚିନ୍ତନ୍ତେ ସେ ପ୍ରଭୁଙ୍କୁ ଚିତ୍ତ | ॥ | ୫ |
| | ପ୍ରତିବଚନ କହିବାକୁ | । | ସମର୍ଥ ନୋହିଲା ସେ ତାଙ୍କୁ | ॥ | ୬ |
| ୩ | ଶୋକରୁ ଯେଉଁ ଅଶ୍ରୁ ଜାତ | । | ନେତ୍ରରେ କରି ତା ସ୍ତମ୍ଭିତ | ॥ | ୭ |
| | ଗଳିତ ଯେଉଁ ଅଶ୍ରୁନୀର | । | ପୋଛିଣ ତାହା ନିଜ କର | ॥ | ୮ |
| | କୃଷ୍ଣବିଷୟେ ଯେ ସଂଭବ | । | ପ୍ରେମରେ ଉତକଣ୍ଠା ଭାବ | ॥ | ୯ |
| | ସେ ଅତିଶୟ, ଯେଣୁ ତାର | । | ହୃଦୟ ହୋଇଛି କାତର | ॥ | ୧୦ |
| ୪ | ସାରଥିପଣ ଆଦିଠାରେ | । | ଯେବଣ ହିତ କୃଷ୍ଣଠାରେ | ॥ | ୧୧ |
| | କଲେ, ଯେବଣ ଉପକାର | । | ସମ୍ବନ୍ଧୀ ଭାବ ଯେ ଆବର | ॥ | ୧୨ |
| | ଚିତ୍ତରେ ଚିତୋଇ ସେମାନ | । | ବାଷ୍ପରେ ଗଦ୍‌ଗଦ ବଚନ | ॥ | ୧୩ |
| | ଯେ ନୃପ ଜ୍ୟେଷ୍ଠ ଭ୍ରାତା ତାର | । | ତାଙ୍କୁ ବୋଇଲେ ଏ ଉତ୍ତର | ॥ | ୧୪ |

---

୧. କ୍ଷୀଣ ।

## ଶ୍ରୀଅର୍ଜୁନ ଉବାଚ

୫ ହେ ମହାରାଜ ! ଶୁଣ ତୁହି । ଆମ୍ଭର ବନ୍ଧୁ ରୂପ ହୋଇ ॥ ୧୫
ଥିଲେ ଯେବଣ ଭଗବାନ । କଲେ ସେ ମୋ ଠାରେ ବଞ୍ଚନ ॥ ୧୬
ଦେବତାମାନଙ୍କୁ ବିସ୍ମୟ । କରାଇ ଯେହୁ ଅତିଶୟ ॥ ୧୭
ଏମନ୍ତ ତେଜକୁ ମୋହର । ହରିଲେ ଯେବଣ ଈଶ୍ୱର ॥ ୧୮
୬ କ୍ଷଣ ବିଚ୍ଛେଦମାତ୍ରେ ଯାର । ଏ ଲୋକ ଦିଶେ ଅସୁନ୍ଦର ॥ ୧୯
ଯହିଁରେ ନ ଥାଇ ଜୀବନ । ସେ ଦେହ ଦିଶଇ ଯେସନ ॥ ୨୦
୭ ଦ୍ରୌପଦୀସ୍ୱୟଂବର ପାଇଁ । କାମରେ ଉନମତ୍ତ ହୋଇ ॥ ୨୧
ଦ୍ରୁପଦ ରାଜାର ସଦନେ । ମିଳି ଯେ ଥିଲେ ରାଜାମାନେ ॥ ୨୨
ଯାହା ଆଶ୍ରୟେ ଧନୁ ଧରି । ତାହାଙ୍କ ତେଜକୁ ନିବାରି ॥ ୨୩
ଧନୁକୁ ସଜ କରି ମୁହିଁ । ଲାଖକୁ ପୁଣ ବିନ୍ଧିଲଇଁ ॥ ୨୪
ଜିଣି ସେ ନୃପତିମାନଙ୍କୁ । ଲଭିଲି ଦ୍ରୁପଦସୁତାକୁ ॥ ୨୫
୮ ଅମରଗଣ ସହିତରେ । ଇନ୍ଦ୍ରଙ୍କୁ ଜିଣିଣ ବେଗରେ ॥ ୨୬
ଯାହା ସନ୍ନିଧେ ଖାଣ୍ଡବକୁ । ପ୍ରଦାନ କଲି ଅନଳକୁ ॥ ୨୭
ଅଦ୍ଭୁତ ଶିଳ୍ପରୂପ ହୋଇ । ମାୟା ଯହିଁରେ ଅଛି ରହି ॥ ୨୮
ଏମନ୍ତ ସଭା ମୟକୃତ । ଯହିଁରେ ହୋଇଲା ପ୍ରାପତ ॥ ୨୯
ତୁମ୍ଭର ରାଜସୂୟ କାଳେ । ନାନା ଦିଗରୁ ମହୀପାଳେ ॥ ୩୦
ନାନା ରୂପରେ କରମାନ । ତୁମ୍ଭଙ୍କୁ କଲେକ ପ୍ରଦାନ ॥ ୩୧
୯ ତୋର ଅନୁଜ ବୃକୋଦର । ଗଜ-ଅୟୁତ ବଳ ଯାର ॥ ୩୨
ସକଳ ରାଜାଶିରେ ପାଦ । ଦେଇଥିଲା ଯେ ଜରାସଂଧ ॥ ୩୩
ତାହାକୁ ଯଜ୍ଞର ନିମିତ୍ତେ । ମାଇଲା ଯାର ଦୃଷ୍ଟିପାତେ ॥ ୩୪
ମହାଭୈରବ ଯଜ୍ଞ ପାଇଁ । ରାଜାଙ୍କୁ ଧରିଥିଲା ସେହି ॥ ୩୫
ଯେଣୁ ସେ ଲଭିଲେ ମୋଚନ । ତୋ ଯାଗେ ଦେଲେ କରମାନ ॥ ୩୬
୧୦ ରାଜସୂୟର ଶେଷ କାଳେ । ଯେ ମହା ଅଭିଷେକ ଜଳେ ॥ ୩୭
ତେଣେ[୧] ପୂଜିତ ସୁରୁଚିର । ଯେ ତୋର ପତ୍ନୀର କବର[୨] ॥ ୩୮
କିତବମାନେ ତାହା ଧରି । ସଭାରେ ଥିଲେ ଯେ ଓଟାରି ॥ ୩୯
କାନ୍ଦନ୍ତେ ସେ ଭୂମିକି ଚାହିଁ । ପାଦରେ ଲୋତକ ପଡ଼ଇ ॥ ୪୦

---

୧. ତାହାଦ୍ୱାରା । ୨. କେଶ

ଜାଣି ଯେ ଏମନ୍ତ ବିପତ୍ତି । ସେ ଶତ୍ରୁମାନଙ୍କୁ ନିପାତି ।। ୪୧
ତାଙ୍କ ନାରୀଙ୍କିଂ[1] ମୁକ୍ତ କେଶ । କଲା ବିଧବାଯୋଗ୍ୟ ବେଶ ।। ୪୨
୧୧ ଅୟୁତସଂଖ୍ୟ ଶିଷ୍ୟଙ୍କର । ପଂକ୍ତିରେ ଭୋଜନ ଯାହାର ।। ୪୩
ସେ ଦୁର୍ବାସାଙ୍କୁ ଅରିମାନେ[2] । କୂଟରେ ପେଷନ୍ତେ କାନନେ ।। ୪୪
ଏମନ୍ତ ବିପତ୍ତି ଜାଣିଣ । ବନେ ଯେ ପ୍ରବେଶ ହୋଇଣ ।। ୪୫
ପାତ୍ରରେ ଅବଶେଷ ହୋଇ । ଶାକ ଅନ୍ନ ଯେ ଥିଲା ରହି ।। ୪୬
ତାହା ଯେ ଭୋଜନ କରିଣ । ସେ କଷ୍ଟୁଁ ଅଛଇ ରଖିଣ ।। ୪୭
ଭୁଂଜିବା ଅର୍ଥେ ମୁନିଜନ । ଜଳରେ କରନ୍ତେ ସ୍ନାହାନ ।। ୪୮
ଯାହା ଭୋଜନୁଁ ତ୍ରିଜଗତ । ତୃପ୍ତିକି ମଣିଲେ ସେ ଚିତ୍ତ ।। ୪୯
ତାଙ୍କ ଭୋଜନବାଞ୍ଛା କାହିଁ । ସେଠାରୁ ଗଲେ ଆଡ଼େ ହୋଇ ।। ୫୦
୧୨ ଯାହା ତେଜରୁ ଯୁଦ୍ଧେ ମୋର । ବିସ୍ମୟ ହୋଇଲେ ଶଙ୍କର ।। ୫୧
ଉମା ସହିତେ ତୋଷ ହେଲେ । ନିଜ ଅସ୍ତ୍ରକୁ ମୋତେ ଦେଲେ ।। ୫୨
ଯେ ଥିଲେ ଲୋକପାଳ ଆନ । ଦେଲେ ସେ ଯେଝା ଅସ୍ତ୍ରମାନ ।। ୫୩
ଏହି ଶରୀରେ ସ୍ୱର୍ଗପୁରେ । ବସିଲି ଇନ୍ଦ୍ର ଆସନରେ ।। ୫୪
୧୩ ମୁଁ ପୁଣି ସେହି ସ୍ୱର୍ଗଦେଶେ । ବିହାର କରନ୍ତେ ସନ୍ତୋଷେ ।। ୫୫
ଶତ୍ରୁଙ୍କ ବିନାଶ ଉପାୟେ । ବାସବ ଆଦି ଦେବତାଏ ।। ୫୬
ଗାଣ୍ଡୀବ ଧନୁରେ ଚିହ୍ନିତ । ଯାର ସକାଶୁଁ ତେଜୋବନ୍ତ ।। ୫୭
ଏମନ୍ତ ଭୁଜକୁ ମୋହର । ଆଶ୍ରୟ[3] କଲେକ ସତ୍ୱର ।। ୫୮
ସେ ହରି ନିଜ ମହିମାରେ । ବଞ୍ଚନା କଲେ ମୋହଠାରେ ।। ୫୯
୧୪ ଯାହାକୁ ବନ୍ଧୁ କରି ପାଇ । ଏକା ହୋଇଣ ରଥେ ମୁହିଁ ।। ୬୦
ତରିଲି ସେ କୁରୁସାଗର । ଯେ ଅତି ଗମ୍ଭୀର ଅପାର ।। ୬୧
ଅଲଘ୍ୟ ନକ୍ର ଆଦି ପ୍ରାୟ । ଯହିଁ ଭୀଷ୍ମାଦି ଅତିଶୟ ।। ୬୨
ଯେଉଁ ଗୋଧନ ଶତ୍ରୁ କୁଳେ । ହରିଣ ନେଇଥିଲେ ବଳେ ।। ୬୩
ତାହା ଆଣିଲି ଲେଉଟାଇ । ତାଙ୍କର ମଣିମୟ ହୋଇ ।। ୬୪
ମୁକୁଟ ଥିଲା ମସ୍ତକରେ । ମିଶିଣ ପାଗ[4] ସହିତରେ ।। ୬୫
ମୋହନ ଅସ୍ତ୍ରେ ତାଙ୍କୁ ମୋହି । ସେମାନ ଆଣିଲଇଁ ମୁହିଁ ।। ୬୬

---

୧. ନାରୀଙ୍କ । ୨. ଦୁର୍ଯ୍ୟୋଧନାଦି । ୩. ଆଶ୍ରୟେ । ୪. ପାଗ = ପଗଡ଼ି ।

| | | | |
|---|---|---|---|
| ୧୫ | ଅନେକ ରାଜାମାନଙ୍କର । | ରଥମଣ୍ଡଳେ ମନୋହର ॥ | ୬୭ |
| | ଯେ ଭୀଷ୍ମ ଦ୍ରୋଣ ଶଲ୍ୟ କର୍ଣ୍ଣ । | ଏମାନଙ୍କର ସୈନ୍ୟ ପୁଣ ॥ | ୬୮ |
| | ତହିଁ ମୋ ରଥ ଆଗେ ଥାଇ । | ସେ ଯୂଥପତିଙ୍କି ଅନାଇଁ ॥ | ୬୯ |
| | ତାହାଙ୍କ ଉତ୍ସାହ ଆୟୁଷ । | ବଳ ଓଜ ଯେ କଲେ ନାଶ ॥ | ୭୦ |
| ୧୬ | ଯେ ମୋତେ ନିଜ ଭୁଜେ ଧରି । | ଘ୍ଲାପନ୍ତେ ଅତି ଯତ୍ନ କରି ॥ | ୭୧ |
| | ଦ୍ରୋଣଭୀଷ୍ମାଦି ରଥୀଙ୍କର । | ଯେତେ ଅମୋଘ ଅସ୍ତ୍ର ସାର ॥ | ୭୨ |
| | ସେ ମୋତେ ଆକ୍ରମିଲେ ନାହିଁ । | ଯେସନେ ପ୍ରହଲାଦ ଠାଇଁ ॥ | ୭୩ |
| | ଅସୁରଙ୍କର ଅସ୍ତ୍ରମାନ । | ଆକ୍ରମିବାକୁ ଅଭାଜନ ॥ | ୭୪ |
| ୧୭ | ଯା ପାଦପଦ୍ମ ଭବ୍ୟମାନେ[୧] । | ଚିନ୍ତନ୍ତି ମୋକ୍ଷଅର୍ଥେ ମନେ ॥ | ୭୫ |
| | ତାଙ୍କୁ ମୁଁ କୁମତିପଣରେ । | ବରିଲି ସାରଥିଭାବରେ ॥ | ୭୬ |
| | ମୋ ଅଶ୍ୱମାନେ ଯେତେବେଳେ । | ଶ୍ରମକୁ ଲଭିଲେ ବିକଳେ ॥ | ୭୭ |
| | ସେ କାଳେ ରଥରୁ ଓହ୍ଲାଇ । | ମିଳିଲି ଭୂମିତଳେ ଯାଇ ॥ | ୭୮ |
| | ଯାହାର ଅନୁଭାବବଳେ । | ମୋହିତ ହୋଇ ମହୀତଳେ ॥ | ୭୯ |
| | ମୋତେ ବିପକ୍ଷ ରାଜାଗଣ । | ନ କଲେ ଶରବରଷଣ ॥ | ୮୦ |
| ୧୮ | ଉଦାର ମନୋହର ସ୍ମିତ । | ଏଣେ[୨] ଅଟନ୍ତି ଯେ ଶୋଭିତ ॥ | ୮୧ |
| | ସେ ପରିହାସବାକ୍ୟମାନ । | ହେ ପାର୍ଥ ! ହେ ମିତ୍ର ! ଅର୍ଜୁନ ! ॥ | ୮୨ |
| | ହେ କୁରୁନନ୍ଦନ ! ଏମନ୍ତେ । | ଡାକନ୍ତି ଯେତେ ରୂପେ ମୋତେ ॥ | ୮୩ |
| | କୃଷ୍ଣର ସେ ମଧୁର ବାଣୀ । | ସ୍ମରଣ କରନ୍ତେ ମୁଁ ପୁଣି ॥ | ୮୪ |
| | ହେ ନୃପ ସେମାନେ ମୋ ହୃଦେ । | କ୍ଷୋଭ କରାନ୍ତି ପଦେ ପଦେ ॥ | ୮୫ |
| ୧୯ | ଶୟନ ଆସନ ଗମନେ । | ସ୍ୱଗୁଣକଥନ ଭୋଜନେ ॥ | ୮୬ |
| | ଏ ଆଦି ଯେତେ କଥାମାନ । | ତହିଁରେ ଦେଖିଛି କି ଆନ ॥ | ୮୭ |
| | ହେ ମିତ୍ର ସତ୍ୟ ବାକ୍ୟ ତୋର । | ବୋଲି କଲେହେଁ ତିରସ୍କାର ॥ | ୮୮ |
| | ସେ ଅପରାଧ ମୋର ହରି । | ସହିଲେ ବଡ଼ପଣ[୩] କରି ॥ | ୮୯ |
| | ପୁତ୍ରର ଅପରାଧ ତାତ । | ସହେ ମିତ୍ରର ଯେହ୍ନେ ମିତ୍ର ॥ | ୯୦ |
| ୨୦ | ସେ ପ୍ରିୟ ସୁହୃଦ ମୁରାରି । | ତାହାର ଅଭାବରୁ କରି ॥ | ୯୧ |
| | ହୃଦରେ ଶୂନ୍ୟ ମୁଁ ହୋଇଣ । | ବାଟେ ଗୋବିନ୍ଦପତ୍ନୀଗଣ ॥ | ୯୨ |
| | ରଖନ୍ତେ ନିଜ ବୀର୍ଯ୍ୟବଳେ । | ମିଳିଣ ଅସାଧୁ ଗୋପାଳେ ॥ | ୯୩ |
| | ମୋତେ ଅବଳା ପ୍ରାୟ କରି । | ଜିଣିଲେ ଅଧମ ବିଚାରି ॥ | ୯୪ |

୧. ଭବ୍ୟ = ସାଧୁ । ୨. ଏଣେ = ଏହାଦ୍ୱାରା । ୩. ବଡ଼ପଣୁଁ ।

୨୧ ସେହି ଗାଣ୍ଡୀବ ଧନୁ ମୋର । ତୂଣୀରେ ଛନ୍ତି ସେହି ଶର ॥ ୯୫
ସେ ରଥ ସେହି ଅଶ୍ୱମାନ । ରଥୀ ମୁଁ ସେହି ଅରଜୁନ ॥ ୯୬
ଯହିଁରୁ ସର୍ବ ନୃପଗଣେ । ନମ୍ର ହୁଅନ୍ତି ମହାରଣେ ॥ ୯୭
ସକଳ ହରି ନ ଥିବାରେ । ବିଅର୍ଥ ହୋଇଲା ମୋଠାରେ ॥ ୯୮
ଭସ୍ମରେ ଯଥା ହୋମବିଧି । ଯେହ୍ନେ କୁହୁକ ଫଳସିଦ୍ଧି ॥ ୯୯
ଉଷର ଦେଶେ ବୁଣି ବୀଜ । ଯେସନେ ତହୁଁ ନୋହେ କାର୍ଯ୍ୟ ॥୧୦୦
୨୨ ହେ ନୃପ କୁଶସ୍ଥଳୀ ପୁର । ଥିଲେ ଯେ ବାନ୍ଧବେ ଆମ୍ଭର ॥୧୦୧
ଯାହାଙ୍କୁ ପଚାରିଲୁ ତୁହି । ସେ ବିପ୍ରଶାପେ ମୂଢ଼ ହୋଇ ॥୧୦୨
ଏକକୁ ଆରେକ ମୁଷ୍ଟିରେ । ପ୍ରହାର କରନ୍ତେ ସତ୍ୱରେ ॥୧୦୩
୨୩ ବାରୁଣୀ ମଦ୍ୟ କରି ପାନ । ମଦେ ହୋଇଣ ହତଜ୍ଞାନ ॥୧୦୪
ଏକକୁ ଆରକ ଯେସନ । ନ ଜାଣି ଯୁଦ୍ଧ କରେ ଜନ ॥୧୦୫
ସମସ୍ତେ ହୋଇଲେ ବିନାଶ । ରହିଲେ ଚାରି ପାଞ୍ଚ ଶେଷ ॥୧୦୬
୨୪ ଏକକୁ ଆରକ ଜନ୍ତୁଏ । ପାଳନ୍ତି ମାରନ୍ତି ଥୋକାଏ ॥୧୦୭
ଯେ ହରି ଜଗତ ଈଶ୍ୱର । ଏ ଲୀଳା ଅଟଇ ତାହାର ॥୧୦୮
୨୫ ଜଳଜନ୍ତୁଏ ଯେହ୍ନେ ଜଳେ । ଯେ ବଡ଼ ସାନକୁ ସେ ଗିଳେ ॥୧୦୯
ଯେ ବଡ଼ ବଳିଷ୍ଠ ଅଟନ୍ତି । ସେ ଯେହ୍ନେ ଦୁର୍ବଳକୁ ଖାନ୍ତି ॥୧୧୦
୨୬ ଏ ରୂପେ ବଳିଷ୍ଠରେ ହରି । ଦୁର୍ବଳ ଯଦୁଙ୍କୁ ସଂହାରି ॥୧୧୧
ବଡ଼ରେ ସାନକୁ ମାଇଲେ । ଭୂମିର ଭାରା ସଂହାରିଲେ ॥୧୧୨
୨୭ ଯେ ଦେଶ କାଳ ଅର୍ଥେ ଯୁତ । କରନ୍ତି ମନତାପ ହତ ॥୧୧୩
ଗୋବିନ୍ଦର ସେ ବାକ୍ୟମାନ । ସ୍ମରନ୍ତେ ହରନ୍ତି ମୋ ମନ ॥୧୧୪

ଶ୍ରୀସୂତ ଉବାଚ

୨୮ କୃଷ୍ଣର ଚରଣନଳିନ । ଏ ରୂପେ ଚିନ୍ତନ୍ତେ ଅର୍ଜୁନ ॥୧୧୫
ଗାଢ଼ ସୁହୃଦଭାବେ ମତି । ଶାନ୍ତ ନିର୍ମଳ ହେଲା ଅତି ॥୧୧୬
୨୯ କୃଷ୍ଣଚରଣଧ୍ୟାନ ବଳୁଁ । ବୁଦ୍ଧି ହୋଇଲା ବେଳୁଁ ବେଳୁଁ ॥୧୧୭
ଯେବଣ ଭକ୍ତି ତେଣେ ନାଶ । ହୋଇଲା ମନୁଁ ସର୍ବଦୋଷ ॥୧୧୮
୩୦ ସଂଗ୍ରାମକାଳେ ଭଗବାନ । କହିଣଥିଲେ ଯେଉଁ ଜ୍ଞାନ ॥୧୧୯
ସେ ଚିରକାଳ ସକାଶରୁ । ଅଶେଷ କର୍ମ କରିବାରୁ ॥୧୨୦
ଭୋଗରୁ ନାଶ ହୋଇଥିଲା । ଏ କାଳେ ପୁଣି ତା ଲଭିଲା ॥୧୨୧

| | | | | |
|---|---|---|---|---|
| ୩୧ | ଜାତ ହୁଅନ୍ତେ ବ୍ରହ୍ମଜ୍ଞାନ | । | ଅବିଦ୍ୟା ହୋଇଲା ବିଲୀନ | ।।୧୨୨ |
| | ଅବିଦ୍ୟାନାଶେ ଗୁଣନାଶ | । | ଲିଙ୍ଗଶରୀର ତେଣୁ ଧ୍ୱଂସ | ।।୧୨୩ |
| | ଲିଙ୍ଗଶରୀର ଯାନ୍ତେ ନାଶ | । | ସ୍ଥୂଳଶରୀର ଅପ୍ରକାଶ | ।।୧୨୪ |
| | ସ୍ଥୂଳଶରୀର ଯେଣୁ ଗଲା | । | ଅଦ୍ୱୈତ ବୁଦ୍ଧି ପ୍ରସରିଲା | ।।୧୨୫ |
| | ନାଶ ହୁଅନ୍ତେ ଦ୍ୱୈତ ଜ୍ଞାନ | । | ବିଶୋକ ହୋଇଲା ଅର୍ଜୁନ | ।।୧୨୬ |
| ୩୨ | କୃଷ୍ଣର ମାର୍ଗ ରାଜା ଶୁଣି | । | ଯଦୁକୁଳର ନାଶ ଜାଣି | ।।୧୨୭ |
| | ତକ୍ଷଣେ ଚିତ୍ତ ସ୍ଥିର କଲେ | । | ସ୍ୱର୍ଗଗମନେ ମନ ଦେଲେ | ।।୧୨୮ |
| ୩୩ | ଅର୍ଜୁନଠାରୁ ଶୁଣି କୁନ୍ତୀ | । | ଯଦୁଙ୍କ ନାଶ କୃଷ୍ଣଗତି | ।।୧୨୯ |
| | ଭକ୍ତିଯୋଗରେ କୃଷ୍ଣେ ମନ | । | ଦେଇଣ ଛାଡ଼ିଲା ଜୀବନ | ।।୧୩୦ |
| ୩୪ | ଯେଉଁ ଶରୀରେ ଭୂମିଭାର | । | ବିନାଶ କଲେ ଚକ୍ରଧର | ।।୧୩୧ |
| | କାର୍ଯ୍ୟ ହୁଅନ୍ତେ ଅବସାନ | । | ସେ ତନୁ କଲେ ଅନ୍ତର୍ଧାନ | ।।୧୩୨ |
| | କଣ୍ଟକ ଘେନି କଣ୍ଟା କାଢ଼ି | । | ଯେହ୍ନେ ସେ କଣ୍ଟକହିଁ ଛାଡ଼ି | ।।୧୩୩ |
| | ଯାଦବ ତନୁ ଭୂମିଭର | । | ଏ ବେନି ସମ ଈଶ୍ୱରର | ।।୧୩୪ |
| ୩୫ | ଯେସନେ ମତ୍ସ୍ୟାଦି ଶରୀର | । | ଧରିଣ କରଇ ଅନ୍ତର | ।।୧୩୫ |
| | ନାନା ରୂପକୁ ଧରି ନଟ | । | ଯେହ୍ନେ କରଇ ଅପ୍ରକଟ | ।।୧୩୬ |
| | ସେ ରୂପେ ଯେବଣ ଶରୀର | । | ଧରି ହରିଲେ ଭୂମିଭାର | ।।୧୩୭ |
| | ସେ ତନୁ ପୁଣ କାଳବଶ | । | ଲଭିଣ କଲେ ଅପ୍ରକାଶ | ।।୧୩୮ |
| ୩୬ | ଯାର ମନୋଜ୍ଞ କଥାମାନ | । | ଅଟଇ ଶ୍ରବଣଭାଜନ | ।।୧୩୯ |
| | ସେ କୃଷ୍ଣ ଯେବଣ ଦିନରେ | । | ଭୂମି ଛାଡ଼ିଲେ ସ୍ୱଦେହରେ | ।।୧୪୦ |
| | ସେହି ଦିନରୁ ଭୂମିଭାଗ | । | ଅନୁବର୍ତ୍ତିଲା କଳିଯୁଗ | ।।୧୪୧ |
| | ଅଜ୍ଞାନୀ ଜନଙ୍କ ପାପରେ | । | ହେତୁ ଯେ କଳି ଏ ସଂସାରେ | ।।୧୪୨ |
| ୩୭ | ଲୋଭ ଅନୃତ ଆଦି ହୋଇ | । | ଅଧର୍ମଚକ୍ର ଯହିଁ ଥାଇ | ।।୧୪୩ |
| | ସେ କଳି ପ୍ରବେଶ ରାଜ୍ୟରେ | । | ସ୍ୱପୁରେ ସ୍ୱଗୃହେ ମନରେ | ।।୧୪୪ |
| | ଦେଖିଣ ଧର୍ମର ନନ୍ଦନ | । | ଗମନ ଅର୍ଥେ କଲେ ମନ | ।।୧୪୫ |
| ୩୮ | ଗୁଣରେ ଆପଣା ସମାନ | । | ଥିଲା ଯେ ଉତ୍ତରାନନ୍ଦନ | ।।୧୪୬ |
| | ତାହାକୁ ଆସମୁଦ୍ର କ୍ଷିତି | । | ପାଳନା ଅର୍ଥେ କରି ମତି | ।।୧୪୭ |
| | ଆପଣେ ଅଭିଷେକ କଲେ | । | ହସ୍ତିନାପୁରେ ବସାଇଲେ | ।।୧୪୮ |
| ୩୯ | ଯାଦବ ବଂଶେ ଥିଲା ଶେଷ | । | ବଜ୍ର ଯେ ଅନିରୁଦ୍ଧଶିଷ୍ୟ | ।।୧୪୯ |
| | ମଥୁରା ଦେଶେ ଶୂରସେନ | । | ବିଷୟେ କରିଣ ରାଜନ | ।।୧୫୦ |

| | | | |
|---|---|---|---|
| | ଯେ ପ୍ରାଜାପତ୍ୟ ନାମେ ଖ୍ୟାତ । | ସେ ଇଷ୍ଟି[୧] କରି ନିରୂପିତ | ॥୧୫୧ |
| | ଯାଗଜନିତ ଅଗ୍ନିମାନ । | ଆତ୍ମାରେ କଲେ ଆରୋପଣ | ॥୧୫୨ |
| ୪୦ | ବଳୟ ଆଦି ଅଳଙ୍କାର । | ଚାରୁ ଦୁକୂଳ କରି ଦୂର | ॥୧୫୩ |
| | ମମତା ଅହଙ୍କାର ତୁଲେ । | ଅଶେଷ ବନ୍ଧନ କାଟିଲେ | ॥୧୫୪ |
| ୪୧ | ଇନ୍ଦ୍ରିୟମାନଙ୍କୁ ମନରେ । | ମନକୁ ନିବେଶି ପ୍ରାଣରେ | ॥୧୫୫ |
| | ପ୍ରାଣ ଅପାନେ କରି ଲୀନ । | ମୃତ୍ୟୁରେ ମିଶାଇ ଅପାନ | ॥୧୫୬ |
| | ଦେହରେ ସେ ମୃତ୍ୟୁକୁ ପୁଣି । | ବିନ୍ୟାସ କଲେ ନୃପମଣି | ॥୧୫୭ |
| ୪୨ | ଗୁଣତ୍ରୟରେ ସେ ଶରୀର । | ଆରୋପ କଲେ ନୃପବର | ॥୧୫୮ |
| | ତ୍ରିଗୁଣ ଅବିଦ୍ୟାରେ ଥୋଇ । | ଅବିଦ୍ୟା ଜୀବରେ ମିଶାଇ | ॥୧୫୯ |
| | ଅବ୍ୟୟ ବ୍ରହ୍ମ ଯେ ଅଟଇ । | ଆତ୍ମାକୁ ଲୀନ କଲେ ତହିଁ | ॥୧୬୦ |
| ୪୩ | ଚୀରବସନ[୨] ନିରାହାର । | ମୁଣ୍ଡନ ବିମୁକ୍ତଚିକୁର | ॥୧୬୧ |
| ୪୪ | ଜଡ଼ ଉନ୍ମତ୍ତ ପିଶାଚର । | ସମାନେ ଦେଖାନ୍ତେ ଶରୀର | ॥୧୬୨ |
| | ଅନ୍ଧଲୋକର ପ୍ରାୟ ହୋଇ । | କାହାରି ମୁଖକୁ ନ ଚାହିଁ | ॥୧୬୩ |
| | ନ ଶୁଣି କାହାରି ଉତ୍ତର । | ଯେସନେ ଅଟଇ ବଧିର | ॥୧୬୪ |
| | ପରମ ବ୍ରହ୍ମ ଚିନ୍ତି ଚିତ୍ତେ । | ଗଲେ ଉତ୍ତର ଦିଗ ପଥେ | ॥୧୬୫ |
| | ପୂର୍ବେ ଅଶେଷ ମୁନିବର୍ଗେ । | ଗମନ କଲେ ଯେଉଁ ମାର୍ଗେ | ॥୧୬୬ |
| | ଯେବଣ ମାର୍ଗେ ଲୋକ ଯାଇ । | ଲେଉଟି ଆଉ ନ ଆସଇ | ॥୧୬୭ |
| ୪୫ | ଯେଣୁ ଅଧର୍ମ ମିତ୍ର କଳି । | ପ୍ରଜାଙ୍କ ସଙ୍ଗେ ଆସି ମିଳି | ॥୧୬୮ |
| | ଏମନ୍ତ ଦେଖିଣ ମନରେ । | ନିଶ୍ଚୟ କରି ସେ କାଳରେ | ॥୧୬୯ |
| | ରାଜାଙ୍କୁ ଅନୁଗତ ହୋଇ । | ପଛେ ଚଳିଲେ ସବୁ ଭାଇ | ॥୧୭୦ |
| ୪୬ | ଯେ ଧର୍ମ ଆଦି ଚାରି ଅର୍ଥ । | ଆଚରି ଅଛନ୍ତି ସମସ୍ତ | ॥୧୭୧ |
| | ଜାଣିଣ ଆପଣା ମରଣ । | ଚିନ୍ତିଲେ ଗୋବିନ୍ଦଚରଣ | ॥୧୭୨ |
| ୪୭ | ସେ ଧ୍ୟାନୁଁ ଦୃଢ଼ଭକ୍ତି ଜାତ । | ତେଣେ ବିଶୁଦ୍ଧ ତାଙ୍କ ଚିତ୍ତ | ॥୧୭୩ |
| ୪୮ | ସେ କୃଷ୍ଣପାଦେ ଦୃଢ଼ ମତି । | ଦେଇଣ ଲଭିଲେ ସେ ଗତି | ॥୧୭୪ |
| | ଅସାଧୁ, ବିଷୟୀ ଯେ ଜନ । | ଯେଉଁ ଗତିକି ଅଭାଜନ | ॥୧୭୫ |
| | ଅପାପୀ ଜନଙ୍କ ନିବାସ । | ରୂପେ ଯେ ଅଟଇ ପ୍ରକାଶ | ॥୧୭୬ |
| | ନିର୍ମଳସ୍ୱରୂପ ହୋଇଣ । | ସେ ଗତି ଲଭିଲେ ତକ୍ଷଣ | ॥୧୭୭ |

---

୧. ଇଷ୍ଟି = ଯାଗବିଶେଷ ।  ୨. ଚୀରବସନ = ଛିନ୍ନବସ୍ତ୍ର ।

୪୯ ପ୍ରଭାସ ସ୍ଥାନରେ ବିଦୁର । ଛାଡ଼ିଣ ନିଜ କଳେବର ।।୧୭୮
କୃଷ୍ଣରେ ହୋଇଣ ଆବେଶ । ସେ କୃଷ୍ଣ ନିବେଶି ମାନସ ।।୧୭୯
ପିତୃଗଣଙ୍କ ସହିତରେ । ମିଳିଲେ ଆପଣା ସ୍ଥାନରେ ।।୧୮୦
୫୦ ପତିଙ୍କ ନିରପେକ୍ଷ ଭାବ । ଦ୍ରୁପଦସୁତା କରି ଠାବ ।।୧୮୧
ଏକାଗ୍ରେ କୃଷ୍ଣେ ମନ ଦେଲା । ସେ ଭାବେ ତାହାଙ୍କୁ ଲଭିଲା ।।୧୮୨
୫୧ ଗୋବିନ୍ଦପ୍ରିୟ ପାଣ୍ଡୁସୁତେ । ଏ ରୂପେ ଗଲେ ମହାପଥେ ।।୧୮୩
ପବିତ୍ର, ମଙ୍ଗଳ ଏ ବାଣୀ । ଶ୍ରଦ୍ଧାରେ ଶୁଣଇ ଯେ ପ୍ରାଣୀ ।।୧୮୪
ଭଗତି ଲଭି କୃଷ୍ଣପାଦେ । ସିଦ୍ଧିକି ଲଭେ ଅପ୍ରମାଦେ ।।୧୮୫
ସେ ପାଣ୍ଡୁସୁତେ ଭାବି ଯାଙ୍କୁ । ପାଇଲେ ପରମ ସ୍ଥାନକୁ ।।୧୮୬
ସେ କୃଷ୍ଣଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ।।୧୮୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀପାଣ୍ଡବନିର୍ଯ୍ୟାଣଂ
ନାମ ପଞ୍ଚଦଶୋଽଧ୍ୟାୟଃ ।।

## ଷୋଡ଼ଶୋଽଧ୍ୟାୟଃ

ତତଶ୍ଚ ଷୋଡ଼ଶେ ଭୂମିଧର୍ମୟୋଃ କଳିଖିନ୍ନୟୋଃ ।
ସଂବାଦେ ବର୍ଣ୍ଣ୍ୟତେ ପ୍ରାପ୍ତିଃ ପାଳକସ୍ୟ ପରୀକ୍ଷିତଃ ।।

ଶ୍ରୀସୂତ ଉବାଚ

୧ ତହିଁ ଉତ୍ତାରୁ ପରୀକ୍ଷିତ । ସ୍ୱଭାବେ ମହାଭାଗବତ ।। ୧
ଦ୍ୱିଜବରଙ୍କ ଶିକ୍ଷା ଘେନି । ପାଳନା କଲେ ସେ ଅବନି ।। ୨
ଜାତକବିଦ ବିପ୍ରମାନେ । ଯାହା କହିଲେ ଜନ୍ମଦିନେ ।। ୩
ହେ ବିପ୍ର ! ସେହି ପରକାରେ । ମହତ ଗୁଣ ତାହାଠାରେ ।। ୪
୨ ବିବାହ କଲା ସେ ନୃପତି । ଉତ୍ତରସୁତା ଇରାବତୀ ।। ୫
ଜନମେଜୟ ଆଦି ଚାରି । ପୁତ୍ର ତାଠାରେ ଜନ୍ମ କରି ।। ୬
୩ କୃପଙ୍କୁ କରି ପୁରୋହିତ । ଗଙ୍ଗାତଟରେ ପରୀକ୍ଷିତ ।। ୭
ସେ ତିନି ଅଶ୍ୱମେଧ କଲା । ଦକ୍ଷିଣା ଅତିଶୟ ଦେଲା ।। ୮
ଯେବଣ ଯଜ୍ଞରେ ଅମର । ହୋଇଲେ ନୟନଗୋଚର ।। ୯

୪ ସେ ପୁଣି କେହୁଣିସି କାଳେ । ଦିଗବିଜୟ କଲାବେଳେ ॥ ୧୦
କଳିଯୁଗକୁ ସେ ଦେଖିଲା । ଯେ ନୃପବେଶ ଧରିଥିଲା ॥ ୧୧
ପାଦେ ପ୍ରହାରେ ଗୋମିଥୁନ । ସ୍ୱଭାବେ ଅଟେ ଶୂଦ୍ରବର୍ଣ୍ଣ ॥ ୧୨
ତାହାକୁ ଆପଣାର ବଳେ । ନିଗ୍ରହ କଲା ମହୀତଳେ ॥ ୧୩

ଶ୍ରୀଶୌନକ ଉବାଚ

୫ କଳିଯୁଗକୁ କେଉଁ କାର୍ଯ୍ୟେ । ନିଗ୍ରହ କଲା ଦିଗବିଜେ[1] ॥ ୧୪
ଶୂଦ୍ର ନୃପତିବେଶ ହୋଇ । ପାଦେ କେ ମାରୁଥିଲା ମହୀ ॥ ୧୫
୬ ଏଥିରେ ବିଷ୍ଣୁକଥା ଯେବେ । ଅଛି ଆମ୍ଭଙ୍କୁ କହ ତେବେ ॥ ୧୬
୭ ଗୋବିନ୍ଦପାଦପଦ୍ମମଧୁ । ଆସ୍ୱାଦ କରନ୍ତି ଯେ ସାଧୁ ॥ ୧୭
ଅସତ ଆଳାପେ ତାଙ୍କର । କି କାର୍ଯ୍ୟ ଅବା ଏ ସଂସାର ॥ ୧୮
ଯେଉଁ କଥାରେ ବ୍ୟର୍ଥ ହୋଇ। ନିଜ ଆୟୁଷ କ୍ଷୟ ଯାଇ ॥ ୧୯
କ୍ଷୁଦ୍ର ଆୟୁଷ ମର୍ତ୍ତ୍ୟମାନେ । ମୋକ୍ଷ ବାଞ୍ଛନ୍ତି ନିଜମନେ ॥ ୨୦
୮ ତାହାଙ୍କ ମୃତ୍ୟୁକୁ ଏଠାରେ । ଡାକିଲୁଁ ପଶୁବଧ ଦ୍ୱାରେ ॥ ୨୧
ଏଥି ଅନ୍ତକ ଯେତେଦିନ । ଥିବ ମରିବେ ନାହିଁ ଜନ ॥ ୨୨
୯ ଏଥିନିମନ୍ତେ ମୁନିମାନେ । ମୃତ୍ୟୁକୁ ଡାକିଲେ ଏ ସ୍ଥାନେ ॥ ୨୩
ହରିର ଲୀଳାସୁଧାବାଣୀ । ସଂସାରେ ପିଅନ୍ତୁ ଏ ପ୍ରାଣୀ ॥ ୨୪
୧୦ ଯେ ମନ୍ଦ ଅଟେ ମନ୍ଦବୁଦ୍ଧି । ମନ୍ଦ ଆୟୁଷ ଯାର ସିଦ୍ଧି ॥ ୨୫
ତାର ଆୟୁଷରୁ ରାତ୍ରରେ । ଅର୍ଦ୍ଧମାତ୍ରକ ନିଦ୍ରା ହରେ ॥ ୨୬
ଦିବସେ ଯେତେକ ଆୟୁଷ । ବ୍ୟର୍ଥ କର୍ମରେ ହୋଏ ଶେଷ ॥ ୨୭

ଶ୍ରୀସୂତ ଉବାଚ

୧୧ କୁରୁଜାଙ୍ଗଳ ଦେଶେ ଥାଇ । ସେ ପରୀକ୍ଷିତ ନରସାଇଁ ॥ ୨୮
କଳିପ୍ରବେଶ ଯେତେବେଳେ । ଶୁଣିଲା ସ୍ୱରାଜ୍ୟମଣ୍ଡଳେ ॥ ୨୯
ମନକୁ ଅତିପ୍ରିୟ ହୋଇ । ସେ ବାର୍ତ୍ତା ତାର ନ ଯୋଗାଇ ॥ ୩୦
ହସ୍ତେ ଘେନିଲା ଶରାସନ । ଜାଣେ ସେ ଯୁଦ୍ଧର ବିଧାନ ॥ ୩୧
୧୨ ନାନା ଭୂଷଣେ ଅଂଳକୃତ । ଶ୍ୟାମ ତୁରଙ୍ଗରେ ଯୋଜିତ ॥ ୩୨
ମୃଗେନ୍ଦ୍ର ଧ୍ୱଜେ ମନୋହର । ଚଢ଼ି ଏମନ୍ତ ରଥବର ॥ ୩୩
ରଥ-ପଦାତି-ହୟ-କରୀ । ଯହିଁ ଏମାନେ ଛନ୍ତି ପରି ॥ ୩୪

---

୧. ଦିଗ୍‌ବିଜୟରେ ।

ସଙ୍ଗତେ ଘେନି ସେ ସଇନ । ଦିଗବିଜୟେ କରି ମନ ।। ୩୫
ପୁରରୁ ହୋଇଲେ ବାହାର । ସେ ପରୀକ୍ଷିତ ନୃପବର ।। ୩୬
୧୩ ଜିଣି ଭଦ୍ରାଶ୍ୱ, କେତୁମାଳ । ଆବର ଭରତ ମଣ୍ଡଳ ।। ୩୭
ଉତ୍ତର କୁରୁ, କିଂପୁରୁଷ । ଏ ଆଦି ଯେ ଆନ ବରଷ ।। ୩୮
ଏ ସର୍ବ ନୃପଗଣ ଜିଣି । କର ଘେନିଲା ନୃପମଣି ।। ୩୯
୧୪ କୃଷ୍ଣର ମହିମା ଯହିଁରେ । ସୂଚିତ ନାନା ପରକାରେ ।। ୪୦
ପୂର୍ବପୁରୁଷମାନଙ୍କର । ଯଶ ଅଟଇ ଏ ପ୍ରକାର ।। ୪୧
ସେ ଯଶ ସେହି ସେହି ଦେଶେ । ଶ୍ରବଣ କରନ୍ତି ବିଶେଷେ ।। ୪୨
୧୫ ଦ୍ରୋଣକୁମର କୋପ କଲା । ଯେବଣ ଅସ୍ତ୍ରକୁ ବିନ୍ଧିଲା ।। ୪୩
ତାହାର ତେଜରୁ ଯେମନ୍ତେ । ରଖିଲେ ଆପଣାକୁ ଗତେ ।। ୪୪
ବୃଷ୍ଣି ପାଣ୍ଡବଙ୍କର ପ୍ରୀତି । ତାଙ୍କର ଗୋବିନ୍ଦେ ଭଗତି ।। ୪୫
୧୬ ଶୁଣି ସନ୍ତୋଷ ସେ ରାଜନ । ପ୍ରୀତିରେ ପ୍ରକାଶେ ଲୋଚନ ।। ୪୬
ଦେଲେ ତାହାଙ୍କୁ ହାରମାନ । ଅନେକ ଅମୂଲ୍ୟ ବସନ ।। ୪୭
୧୭ ମିତ୍ର ଅଟନ୍ତି ପାଣ୍ଡୁ ସୁତେ । ତାହାଙ୍କ ଠାରେ ଏ ଜଗତେ ।। ୪୮
ଯେବଣ ଯେବଣ ଚରିତ । କରିଅଛନ୍ତି ନନ୍ଦସୁତ ।। ୪୯
ସାରଥିପଣେ ରଥେ ଥିଲେ । ସଭାରେ ସଭାସଦ ହେଲେ ।। ୫୦
ଭୃତ୍ୟ ହୋଇଲେ, ହେଲେ ମିତ । ହସ୍ତିନା ଗଲେ ହୋଇ ଦୂତ ।। ୫୧
ରାତ୍ରିରେ ଖଡ୍‌ଗ ଧରି କରେ । ଜଗିଲେ ତାହାଙ୍କୁ ଯତ୍ନରେ ।। ୫୨
ଦେଖିଲେ ପାଛୋଟି ଯାଆନ୍ତି । ସ୍ତୁତି ପ୍ରଣାମ ହିଁ କରନ୍ତି ।। ୫୩
ସର୍ବ ଜଗତ ହରିଠାରେ । ପ୍ରଣାମ କଲେ ଯେ ପ୍ରକାରେ ।। ୫୪
ଏମାନ ଶୁଣି ସେ ନୃପତି । ହରିଚରଣେ କଲେ ଭକ୍ତି ।। ୫୫
୧୮ ପୂର୍ବପୁରୁଷମାନଙ୍କର । ଚେଷ୍ଟାକୁ ସେହୁ ନୃପବର ।। ୫୬
ନିତ୍ୟେ କରନ୍ତେ ଏ ପ୍ରକାରେ । ଆଶ୍ଚର୍ଯ୍ୟ କଥା ତାହାଠାରେ ।। ୫୭
ନିକଟେ ହୋଇଲା ଯେ ଜାତ । କହିବା ଶୁଣ ଏକଚିତ୍ତ ।। ୫୮
୧୯ ଧର୍ମ ଯେ ଏକପାଦ ହୋଇ । ଚରନ୍ତେ ବୃଷରୂପ ବହି ।। ୫୯
ଦେଖିଲା ଧେନୁରୂପ ଧରି । ନିକଟେ ଅଛି ବସୁନ୍ଧରୀ ।। ୬୦
ଦେହରେ ନାହିଁ କାନ୍ତି ତାର । ନୟନୁଁ ଗଳୁଅଛି ନୀର ।। ୬୧
ମାତା ଯେସନେ ବତ୍ସାହୀନେ । ସେ ରୂପେ ରହିଛି ସେ ସ୍ଥାନେ ।। ୬୨
ଏମନ୍ତ ରୂପେ ତାକୁ ଚାହିଁ । ପଚାରିଲେ ସେ ପ୍ରୀତି ବହି ।। ୬୩

ଶ୍ରୀଧର୍ମ ଉବାଚ

୨୦ ଭୋ ବସୁନ୍ଧରୀ ! ସତ୍ୟ କହ । ଆରୋଗ୍ୟଟି କି ତୋର ଦେହ ॥ ୬୪
ଦେହ ତୋହର କାନ୍ତିହୀନ । ଅଳପ ମଳିନ ବଦନ ॥ ୬୫
ତେଣୁ ମଣୁଛି ତୋ ହୃଦର । ବେଦନା ଅଛି ଅତିଘୋର ॥ ୬୬
ଦୂରେ କେ ଅଛି ବନ୍ଧୁଜନ । ତାହାଙ୍କୁ କରୁଛୁ ଶୋଚନ ॥ ୬୭
୨୧ ଏକଚରଣ ଦେଖି ମୋତେ । ଶୋଚନା କରୁଛୁ କି ଚିତ୍ତେ ॥ ୬୮
ଶୂଦ୍ରେ କରିବେ ମୋତେ ଭୋଗ । ଏ ଘେନି ଭଜୁ କି ବିରାଗ ॥ ୬୯
ଦେବଙ୍କ ଯଜ୍ଞଭାଗମାନ । ନାଶ ଗଲାକୁ କି ବିମନ ॥ ୭୦
ନ ବରଷନ୍ତେ ବଜ୍ରଧର । ପ୍ରଜାଙ୍କୁ ଅବା ଶୋକ ତୋର ॥ ୭୧
୨୨ କିବା ପୁରୁଷେ ନିଜ ନାରୀ । ଛାଡ଼ିବେ ପାଳନା ନ କରି ॥ ୭୨
ରାକ୍ଷସ ପ୍ରାଏ ଦୟାହୀନେ । ଶିଶୁଙ୍କୁ କ୍ଳେଶ ଦେବେ ଜନେ ॥ ୭୩
କୁତ୍ସିତ କର୍ମ ଯାହାଙ୍କର । ସେ ବିପ୍ରମାନଙ୍କରଠାର ॥ ୭୪
ରହିବ ସରସ୍ୱତୀ ଯେଣୁ । ତାଙ୍କୁ ଶୋଚନା କରୁ ତେଣୁ ॥ ୭୫
ଯେ ଅବ୍ରହ୍ମଣ୍ୟ ରାଜାମାନେ । ତାଙ୍କୁ ଉତ୍ତମ ବିପ୍ରଜନେ ॥ ୭୬
ସେବା କରିବେ ଅନୁଦିନ । ତାଙ୍କୁ କି କରୁଛୁ ଶୋଚନ ॥ ୭୭
୨୩ କ୍ଷତ୍ରିୟମାନେ ଯେତେ ଥିବେ । କଳିରେ ଆକ୍ରାନ୍ତ ହୋଇବେ ॥ ୭୮
ଏହା ବିଚାରି ନିଜ ମନ । ତାଙ୍କୁ କି କରୁଛୁ ଶୋଚନ ॥ ୭୯
ସେମାନେ ଯେଉଁ ରାଜ୍ୟମାନ । ଭାଙ୍ଗି କରିବେ ଭିନ୍ନ ଭିନ୍ନ ॥ ୮୦
ସେମାନଙ୍କର ଦୁଃଖ ଚିନ୍ତି । ଶୋଚନା କରୁ ଅବା ମତି ॥ ୮୧
ନିଷେଧ ଦୋଷକୁ ନ ଚାହିଁ । ପ୍ରାଣୀଏ ଯହିଁ ଇଚ୍ଛା ତହିଁ ॥ ୮୨
କରିବେ ଶୟନ ଭୋଜନ । ସ୍ନାନ ସୁରତ ଆଦିମାନ ॥ ୮୩
ଏ ଘେନି ତାଙ୍କୁ ଅନୁଦିନେ । ଶୋଚନା କରୁଛୁ କି ମନେ ॥ ୮୪
୨୪ କି ଅବା ତୋର ଗୁରୁଭାର । ହରିବା ଅର୍ଥେ ଅବତାର ॥ ୮୫
ହୋଇଥିଲେ ସେ ଭଗବାନ । ସେ ଏବେ ହେଲେ ଅନ୍ତର୍ଦ୍ଧାନ ॥ ୮୬
ତାହାର କର୍ମମାନ ଯେତେ । ମୋକ୍ଷକୁ ହସନ୍ତି ଜଗତେ ॥ ୮୭
ସ୍ମରଣ କରନ୍ତେ ସେମାନ । ତାଙ୍କ ବିଚ୍ଛେଦେ ଦୁଃଖମନ ॥ ୮୮
୨୫ ହେ ବସୁନ୍ଧରା କହ ମୋତେ । ଚିନ୍ତାକୁ ହେତୁ ଯେ ତୋ ଚିତ୍ତେ ॥ ୮୯
ଯେଣୁ ତୁ ହେଉଛୁ ଦୁଃଖିତ । କି ଅବା ଦେବତାପୂଜିତ ॥ ୯୦
ଯେ ସଉଭାଗ୍ୟ ଥିଲା ତୋର । ହରିଲା କାଳ ବଳିଆର ॥ ୯୧

## ଶ୍ରୀଧରଣୀ ଉବାଚ

୨୬ ଭୋ ଧର୍ମ ଯେତେ ପ୍ରଶ୍ନ ତୋର । ଏ ତୋତେ ନୋହେ ଅଗୋଚର ॥ ୯୨
ପ୍ରାଣୀଙ୍କ ସୁଖ ଯେ କରଇ । ସେ ଚାରି ଚରଣରେ ତୁହି ॥ ୯୩
ଯାହା ସକାଶୁଁ ଅବିରତେ । ବର୍ତ୍ତିଣ ଥାଉ ଏ ଜଗତେ ॥ ୯୪
୨୭ ସତ୍ୟ, ଶଉଚ, ଦୟା, କ୍ଷାନ୍ତି । ଦାନ, ସନ୍ତୋଷ, ରଜୁବୃତ୍ତି ॥ ୯୫
ବାହ୍ୟ[1] ଇନ୍ଦ୍ରିୟ ମାନସର । ନିଶ୍ଚଳ ଭାବ ଯେ ଆବର ॥ ୯୬
ଆପଣା ଧର୍ମ ଆଚରଣ । ଶତ୍ରୁମିତ୍ରରେ ସାମ୍ୟ ପୁଣ ॥ ୯୭
ପରାପରାଧ ସହିବାର । ନିବୃତ୍ତି[2], ଶାସ୍ତ୍ରର ବିଚାର ॥ ୯୮
୨୮ ଜ୍ଞାନ, ବୈରାଗ୍ୟ, ଅଇଶ୍ୱର୍ଯ୍ୟ । ଦକ୍ଷତା, ସ୍ମୃତି, ତେଜ, ଶୌର୍ଯ୍ୟ ॥ ୯୯
ନିପୁଣ ଭାବ, ସ୍ୱତନ୍ତ୍ରତା । କାନ୍ତି, ଧଇର୍ଯ୍ୟ, କୋମଳତା ॥୧୦୦
୨୯ ବିନୟ, ପ୍ରଗଲ୍‌ଭତା, ଶୀଳ । ଯେ ଭୋଗ, ସହ, ଓଜ, ବଳ ॥୧୦୧
ଗାମ୍ଭୀର୍ଯ୍ୟ, ସ୍ଥୈର୍ଯ୍ୟ ଆସ୍ତିକତା । ଯଶ, ପୂଜ୍ୟତା, ଅଗର୍ବତା ॥୧୦୨
୩୦ ଏ ଅଣଚାଳିଶ ପ୍ରସିଦ୍ଧି । ବ୍ରହ୍ମଣ୍ୟ[3] ଶରଣ୍ୟତ୍ୱ ଆଦି ॥୧୦୩
ଯେ ଆନ ମହା ଗୁଣମାନ । ବାଞ୍ଛନ୍ତି ଯାହା ମହାଜନ ॥୧୦୪
ସେମାନେ ଯେଉଁ କୃଷ୍ଣଠାରେ । କ୍ଷୀଣ ନୁହନ୍ତି ସ୍ୱଭାବରେ ॥୧୦୫
୩୧ ସେ ଗୁଣପାତ୍ର ଭଗବାନ । ତାର ବିହୀନେ ଏ ଭୁବନ ॥୧୦୬
ଏହାଙ୍କୁ ପାପ କଳି ଚାହେଁ । ସେ ଘେନି ମୋର ଶୋକ ହୋଏ ॥୧୦୭
୩୨ ମୁଁ ହାଦେ ଆତ୍ମାକୁ ସୁମରି । ତୋର ଦୁଃଖକୁ ଅନୁସରି ॥୧୦୮
ଦେବତା, ଋଷି, ପିତୃଗଣ । ଯେ ବର୍ଣ୍ଣାଶ୍ରମ ଆଚରଣ ॥୧୦୯
ଯେ ଆନ ଛନ୍ତି ସାଧୁ ଲୋକ । ତାହାଙ୍କୁ କରୁଅଛି ଶୋକ ॥୧୧୦
୩୩ ବିଧାତା ଆଦି ଦେବମାନେ । ନିଶ୍ଚଳ ଚିତ୍ତେ ବହୁଦିନେ ॥୧୧୧
ଯାର ଅପାଙ୍ଗ ବିଲୋକନ । ଲଭିବା ପାଇଁ ବାଞ୍ଛି ମନ ॥୧୧୨
ତପ କରନ୍ତି ଆଚରଣ । ସେ ଲକ୍ଷ୍ମୀ ଆପଣା ଭବନ ॥୧୧୩
ପଦ୍ମକାନନ ତେଜି ଦୂରେ । ନିରତେ ସରାଗ ଚିତ୍ତରେ ॥୧୧୪
ଯା ପାଦପଙ୍କଜଲାବଣ୍ୟ । ସେବଇଁ ତେଣୁ ହୋଏ ଧନ୍ୟ ॥୧୧୫
୩୪ ତାର ଚରଣେ ଶୋଭମାନ । ପଦ୍ମ କୁଳିଶ ଆଦି ଚିହ୍ନ ॥୧୧୬
ସେ ଚିହ୍ନେ ଅଳଂକୃତ ହୋଇ । ତିନି ଲୋକକୁ ବଳି ମୁହିଁ ॥୧୧୭

---

୧. ବାହ । ୨. ନିବୃତ୍ତ । ୩. ବ୍ରହ୍ମଣ୍ୟତ୍ୱ ।

| | | | |
|---|---|---|---|
| | ସୁନ୍ଦର ଦିଶୁଥିଲି ପୂର୍ବେ । | ସେ ସମ୍ପତ୍ତିର ଅନ୍ତେ ଏବେ | ॥୧୧୮ |
| | ଗର୍ବକୁ ବହିଲି ମୁଁ ଯେଣୁ । | ସେ ମୋତେ ଛାଡ଼ିଗଲେ ତେଣୁ | ॥୧୧୯ |
| ୩୫ | ଯେ ହାଦେ ମୋର ଅତିଭାର । | ଅସୁରବଂଶ ରାଜାଙ୍କର | ॥୧୨୦ |
| | ଅନେକ ଶତ ଅକ୍ଷୌହିଣୀ । | ମାଇଲେ ସ୍ୱତନ୍ତ୍ର ଯେ ପୁଣି | ॥୧୨୧ |
| | ତୋହର ନ୍ୟୂନ ପଦମାନ । | ସ୍ୱମତେ କଲେ ଯେ ସ୍ଥାପନ | ॥୧୨୨ |
| | ଯଦୁବଂଶରେ ଆପଣାର । | ବପୁକୁ କଲେ ଯେ ପ୍ରଚାର | ॥୧୨୩ |
| ୩୬ | ସେ ପୁରୁଷୋତ୍ତମବିରହ । | କେ ସହିପାରେ ଅବା କହ | ॥୧୨୪ |
| | ଯେ ନିଜ ପ୍ରେମ ଅବଲୋକ । | ରୁଚିର ସ୍ମିତ, ବଲ୍ଗୁ ବାକ୍ୟ | ॥୧୨୫ |
| | ତେଣେ ମଧୁସ୍ତ୍ରୀମାନଙ୍କର[୧] । | ସଗର୍ବ ସ୍ଥିର ଭାବ ସାର | ॥୧୨୬ |
| | ହରିଲେ ପ୍ରଭୁ ଭଗବାନ । | ତାଙ୍କ ଚରଣପଦ୍ମ ଚିହ୍ନ | ॥୧୨୭ |
| | ତେଣେ ଭୂଷିତ ମୁଁ ହୁଅଇ । | ରୋମ-ଉତ୍ସବ ମୋର ହୋଇ | ॥୧୨୮ |
| ୩୭ | ଏମନ୍ତ କହୁ କହୁ ବାଣୀ । | ଧର୍ମର ସଙ୍ଗତେ ଧରଣୀ | ॥୧୨୯ |
| | ସେ ପରୀକ୍ଷିତ ଦଣ୍ଡଧାରୀ । | ଦିଗବିଜୟେ କର୍ମ ସାରି | ॥୧୩୦ |
| | ମିଳିଲେ ସେ ସ୍ଥାନରେ ଯହିଁ । | ପୂର୍ବକୁ ସରସ୍ୱତୀ ବହି | ॥୧୩୧ |
| | ହେ କୃଷ୍ଣ କମଳଲୋଚନ । | ତୁମ୍ଭେ ତ ପତିତପାବନ | ॥୧୩୨ |
| | ମୁଁ ଯେ ପତିତ ଦୀନବନ୍ଧୁ । | ମୋତେ ଉଦ୍ଧର ଭବସିନ୍ଧୁଁ | ॥୧୩୩ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀଧର୍ମଧରଣୀସଂବାଦୋ
ନାମ ଷୋଡ଼ଶୋଽଧ୍ୟାୟଃ ॥

## ସପ୍ତଦଶୋଽଧ୍ୟାୟଃ

ତତଃ ସପ୍ତଦଶେ ରାଜ୍ଞା କଲେର୍ନିଗ୍ରହ ଉଚ୍ୟତେ ।
ତସ୍ୟୈବଂ ବୀର୍ଯ୍ୟଭାଜୋଽପି ବୈରାଗ୍ୟଂ ବକ୍ତୁମଦ୍ଭୁତମ୍ ॥

ଶ୍ରୀସୂତ ଉବାଚ

| | | | |
|---|---|---|---|
| ୧ | ସେ ପରୀକ୍ଷିତ ନୃପବର । | ମିଳି ସେ ସରସ୍ୱତୀ ତୀର | ॥ ୧ |
| | ଦେଖିଲା ଦଣ୍ଡହସ୍ତ ହୋଇ । | ଶୂଦ୍ରେକ ତହିଁ ଅଛି ରହି | ॥ ୨ |
| | ଅନାଥ ପ୍ରାୟ ଗୋମିଥୁନ । | ମାରଇ ଧରି ରାଜଚିହ୍ନ | ॥ ୩ |

୧. ସତ୍ୟଭାମା ପ୍ରଭୃତିଙ୍କର ।

| | | | | | |
|---|---|---|---|---|---|
| ୨ | ମୃଣାଳପ୍ରାଏକ ଗଉର | । | ଦିଶଇ ବୃଷଭଶରୀର | ॥ | ୪ |
| | ଦିଶଇ ମୂତ୍ର କଲା ପ୍ରାୟ | । | ମନେ ପାଇଛି ମହାଭୟ | ॥ | ୫ |
| | ଏକ ପାଦରେ ଶୀର୍ଣ୍ଣ ହୋଇ | । | ରହିଛି କଷ୍ଟେ ତାର ଦେହୀ | ॥ | ୬ |
| | ସେ ଶୂଦ୍ର ତାକୁ କୋପଭରେ | । | ଅନବରତ ପୀଡ଼ା କରେ | ॥ | ୭ |
| ୩ | ସେ ଧର୍ମଦୁଘା[୧] ଅଟେ ଗାଇ | । | ଶୂଦ୍ରର ପାଦଘାତ ପାଇ | ॥ | ୮ |
| | ନେତ୍ରୁଁ ଗଳଇ ଅଶ୍ରୁଧାର | । | ବାଛୁରୀ ନାହିଁ ପାଖେ ତାର | ॥ | ୯ |
| | ଭକ୍ଷ୍ୟବିହୀନେ କ୍ଷୁଶ ହୋଇ | । | ଅବଶେ ତୃଣକୁ ବାଞ୍ଛଇ | ॥ | ୧୦ |
| ୪ | ସୁବର୍ଣ୍ଣମୟ ଯେ ଅଟଇ | । | ଏମନ୍ତ ରଥକୁ ଆରୋହି | ॥ | ୧୧ |
| | ସେ ପରୀକ୍ଷିତ ନୃପବର | । | ଧନୁରେ ବସାଇଣ ଶର | ॥ | ୧୨ |
| | ମେଘଗମ୍ଭୀର ପ୍ରାୟେ ବାଣୀ | । | ଶୂଦ୍ରର ମୁଖ ଚାହିଁ ଭଣି | ॥ | ୧୩ |

ଶ୍ରୀରାଜା ଉବାଚ

| | | | | | |
|---|---|---|---|---|---|
| ୫ | ତୁ କାହୁଁ ହୋଇଲୁ ପ୍ରବେଶ | । | କହ ତୁ କେ ତୋ ନାମ କିସ | ॥ | ୧୪ |
| | ମୋର ଶରଣେ ଯେଉଁମାନେ | । | ବର୍ତ୍ତିଅଛନ୍ତି ଏଥି ଜନେ | ॥ | ୧୫ |
| | ତହିଁ ବଳିଷ୍ଠ ରୂପ ଧରୁ | । | ନିର୍ବଳ ପ୍ରାଣୀ ବଳେ ମାରୁ | ॥ | ୧୬ |
| | ରାଜାର ପ୍ରାଏ ବେଶ ତୋର | । | ଶୂଦ୍ରର ପ୍ରାୟେ ତୋ ଆଚାର | ॥ | ୧୭ |
| ୬ | ଅର୍ଜୁନ ସଙ୍ଗେ ଭଗବାନ | । | ଦୂରକୁ କରନ୍ତେ ଗମନ | ॥ | ୧୮ |
| | ଯେଣୁ ତୁ ଅପରାଧୀ ହୋଇ | । | ଏକାନ୍ତ ସ୍ଥାନେ ରହିଥାଇ | ॥ | ୧୯ |
| | ମାରୁ ନିରପରାଧୀ ଜନ | । | ଏଣୁ ତୁ ବଧକୁ ଭାଜନ | ॥ | ୨୦ |
| ୭ | ହେ ବୃଷ ମୃଣାଳର ପ୍ରାୟ | । | ଧବଳ ଅଟଇ ତୋ କାୟ | ॥ | ୨୧ |
| | ତିନି ପାଦରେ ତୁ ନିଉନ | । | ପାଦକେ କରୁ ତୁ ଗମନ | ॥ | ୨୨ |
| | କେଉଁ ଦେବତା ଅବା ତୁହି | । | ବୃଷ ରୂପରେ ଅଛୁ ରହି | ॥ | ୨୩ |
| | ଆମ୍ଭମାନଙ୍କ ମାନସରେ | । | ଖେଦ କରାଉଛୁ ନିର୍ଭରେ | ॥ | ୨୪ |
| ୮ | କୁରୁରାଜାଙ୍କ ଭୁଜବଳେ | । | ପରିପାଳିତ ମହୀତଳେ | ॥ | ୨୫ |
| | ତୋ ବିନୁ ନ ପଡ଼ଇ ତଳ | । | ଆନ ଲୋଚନୁଁ ଅଶ୍ରୁଜଳ | ॥ | ୨୬ |
| ୯ | ହେ ବୃଷ[୨] ରୋଦନ ନ କର | । | ଶୂଦ୍ରସକାଶୁଁ ଯେ ତୋହର | ॥ | ୨୭ |
| | ଉପୁଜି ଅଛି ମନେ ଭୟ | । | ଆଜ ହୋଇବ ସେହୁ କ୍ଷୟ | ॥ | ୨୮ |

୧. ଧର୍ମଦୁଘା = ଯେ ଧର୍ମ ଦୋହନ କରେ । ୨. ବୃଷ ।

ଭୋ ମାତ ! ରୋଦନ ନ କର । ମୁଁ ଖଳଜନଦର୍ପହର ॥ ୨୯
ମୁଁ ଜିଇଁ ଥାଆନ୍ତେ କଲ୍ୟାଣ । ହୋଇବ ତୋର ବୋଲି ଜାଣ ॥ ୩୦
୧୦ ପ୍ରଜାଙ୍କୁ ରାଜ୍ୟରେ ଯାହାର । ତ୍ରାସ କରନ୍ତି ଦୁଷ୍ଟ ନର ॥ ୩୧
ସେ ରାଜା ଯେବେ ଦୁଷ୍ଟ ହୋଇ । ତାଙ୍କୁ ପାଳନା ନ କରଇ ॥ ୩୨
କୀର୍ତ୍ତି, ଆୟୁଷ, ଭାଗ୍ୟ, ଗତି । ତାହାର ବିନାଶ ହୁଅନ୍ତି ॥ ୩୩
୧୧ ରାଜାଙ୍କ ବଡ଼ ଧର୍ମ ଏହି । ଆର୍ତ୍ତଙ୍କ ଦୁଃଖ ଯା ନାଶଇ ॥ ୩୪
ଏ ଦୁଷ୍ଟ ଅଟେ ଭୂତଦ୍ରୋହୀ । ଏଣୁ ଏହାକୁ ମାରିବଇଁ ॥ ୩୫
୧୨ ତୁ ଚତୁଷ୍ପଦ ଅଟୁ ବୃଷ । କେ କଲା ତିନି ପାଦ ନାଶ ॥ ୩୬
କୃଷ୍ଣଙ୍କୁ ଅନୁବର୍ତ୍ତି କରି । ଯେତେ ଅଛନ୍ତି ଦଣ୍ଡଧାରୀ ॥ ୩୭
ତୋହର ପ୍ରାଏ ଦୁଃଖୀ ହୋଇ । ନ ଥାନ୍ତି ତାଙ୍କ ରାଜ୍ୟେ କେହି ॥ ୩୮
୧୩ ହେ ବୃଷ ତୁହି ସାଧୁ ଧନ୍ୟ । ବେଭାରେ ଅପରାଧଶୂନ୍ୟ ॥ ୩୯
ତୋତେ ବିରୂପ ଯେହୁ କଲା । ପାଣ୍ଡବ କୀର୍ତ୍ତି ସେ ନାଶିଲା ॥ ୪୦
ସେ କାହିଁ ଅଛି କହ ମୋତେ । ମଙ୍ଗଳ ହେଉ ତୋର ନିତ୍ୟେ ॥ ୪୧
୧୪ ନିର୍ଦ୍ଦୋଷ ପ୍ରାଣୀଙ୍କରଠାରେ । ଦୁଃଖ ଯେ ଦିଏ ଅବିଚାରେ ॥ ୪୨
ସେ ବଡ଼ ପାତକୀ ଅଟଇ । ତାହାର ଭୟ ସବୁଠାଇଁ[୧] ॥ ୪୩
ଅସାଧୁ ଦମନ ହୋଇଲେ । ସାଧୁଙ୍କ ହିତ ହୋଏ ଭଲେ ॥ ୪୪
୧୫ ଅନପରାଧି ଲୋକଠାରେ । ଯେ ନିରଙ୍କୁଶ ଦୋଷ କରେ ॥ ୪୫
ଦେବତା ହେଲେହେଁ ତାହାର । ଅଙ୍ଗଦ ସହିତେ ସୁନ୍ଦର ॥ ୪୬
ଯେବଣ ଭୁଜ ବିରାଜଇ । ମୂଳୁହୁଁ ଉପାଡ଼ିବି ତାହି ॥ ୪୭
୧୬ ରାଜା ପରମ ଧର୍ମ ଏହି । ଧର୍ମିଷ୍ଠ ପ୍ରାଣୀଙ୍କି ପାଳଇ ॥ ୪୮
ଯେ ଲୋକ ଅଧର୍ମୀ ଅଟଇ । ଉଚିତ ଦଣ୍ଡ ତାକୁ ଦେଇ ॥ ୪୯
ସେ ଲୋକେ ଯେବେ ଅବିପତ୍ତି । ସମୟେ ଅପଥେ ଚଳନ୍ତି ॥ ୫୦

ଶ୍ରୀଧର୍ମ ଉବାଚ

୧୭ ପାଣ୍ଡବ ବଂଶେ ତୁମ୍ଭେ ଜାତ । ତୁମ୍ଭର ଏକଥା ଉଚିତ ॥ ୫୧
ଆରତଜନଭୟନାଶ । ବାକ୍ୟକୁ ଯେ କରେ ପ୍ରକାଶ ॥ ୫୨
ଯେଉଁମାନଙ୍କ ଗୁଣଗଣେ । ବଶ ହୋଇଣ ତତକ୍ଷଣେ ॥ ୫୩
ଦୂତ ସାରଥି ଆଦିମାନ । ଚେଷ୍ଟାକୁ କଲେ ଭଗବାନ ॥ ୫୪

---

୧. ମୋତେ ଡରଇ ସବୁଠାଇଁ

୧୮ ଶୁଣ ହେ ପୁରୁଷ ଉତ୍ତମ । ଯାଠାରୁ ହୁଅଇ ଜନମ ।। ୫୫
ପ୍ରାଣୀଙ୍କ କ୍ଳେଶ ବୀଜମାନ । ସେ ପୁରୁଷକୁ ଆମ୍ଭ ମନ ।। ୫୬
ନିଶ୍ଚୟ କରି ନ ଜାଣଇଁ । ବାକ୍ୟଭେଦରେ ମୋହ ହୋଇ ।। ୫୭
୧୯ *ଭେଦ କରନ୍ତି ଆଚ୍ଛାଦନ । ସଂସାରେ କେହି ଯୋଗିଜନ ।। ୫୮
ଆପଣା ସୁଖ ଦୁଃଖକାରୀ । ଆତ୍ମାକୁ ବୋଲନ୍ତି ବିଚାରି ।। ୫୯
କେ ପୁଣି ଦଇବକୁ ମାନେ । କର୍ମକୁ ପୁଣ କେହୁ ଘେନେ ।। ୬୦
ମାନନ୍ତି ସ୍ୱଭାବକୁ କେହି । ଏ ରୂପେ ଭିନ୍ନ ଭିନ୍ନ ହୋଇ ।। ୬୧
୨୦ ମନ ଗୋଚର ନୋହେ ଯେଣୁ । ତକ ବିଷୟ ନୋହେ ତେଣୁ ।। ୬୨
ବଚନ ଅଗୋଚର ଯେହୁ । ନିର୍ଦ୍ଦେଶ କରି ପାରେ କେହୁ ।। ୬୩
ଏ ଘେନି ସେ ବିଷୟ କେହି । ନିଶ୍ଚୟ କରି ନ ଜାଣଇଁ ।। ୬୪
ହେ ନୃପ ! ଆପଣା ବୁଦ୍ଧିରେ । ବିଚାରି ଜାଣ ଏହା ଧୀରେ ।। ୬୫

ଶ୍ରୀସୂତ ଉବାଚ

୨୧ ଏମନ୍ତ ପ୍ରକାରେ ବଚନ । ଧର୍ମ୍ମ କହନ୍ତେ ସେ ରାଜନ ।। ୬୬
ହେ ଦ୍ୱିଜମାନେ ! ତତକାଳ । ମନକୁ କରିଣ ନିଶ୍ଚଳ ।। ୬୭
ନିଜ ଖେଦକୁ କଲେ ଦୂର । ତାହାକୁ ବୋଇଲେ ଉତ୍ତର ।। ୬୮

ଶ୍ରୀପରୀକ୍ଷିତ ଉବାଚ

୨୨ ଘାତକଂ[1] ଜାଣିଲେ ହେଁ କେହି । ପରକୁ ସୂଚି ନ ଦିଅଇ ।। ୬୯
ଏ ଧର୍ମ କହୁ ଜାଣୁ ଯେଣୁ । ତୁ ଧର୍ମ ବୃଷରୂପୀ ତେଣୁ ।। ୭୦
ଅଧର୍ମ କରିଥିଲା ଜନେ । ପଡ଼ନ୍ତି ଯାଇଁ ଯେଉଁ ସ୍ଥାନେ ।। ୭୧
ସୂଚିଲା ଲୋକ ସେହି ସ୍ଥାନେ । ପଡ଼ନ୍ତି ଶାସ୍ତ୍ରର ବିଧାନେ ।। ୭୨
ଯେଣୁ ସୂଚିଲା ଲୋକ ରହି । ସେ ପାପ ନିଶ୍ଚୟ ହୁଅଇ ।। ୭୩
୨୩ ଅଥବା ଦଇବ ମାୟାର । ଗତି ଦେବଙ୍କୁ ଅଗୋଚର ।। ୭୪
ମନବଚନେ ପ୍ରାଣୀଙ୍କର । କେବେହେଁ ନୁହଇ ଗୋଚର ।। ୭୫
୨୪ ତପ, ଶଉଚ, ଦୟା, ସତ୍ୟ । ଏ ଚାରି ପାଦ ତୋ ବିଦିତ ।। ୭୬
ଏ ପୂର୍ବ ସତ୍ୟଯୁଗେ ଥିଲା । ଯୁଗବଶରେ ଆନ ହେଲା ।। ୭୭

---

* ଯୋଗୀମାନେ ଆତ୍ମାକୁ, ଜ୍ୟୋତିର୍ବିଦ୍‌ମାନେ ଦୈବ ବା ଗ୍ରହକୁ, ମୀମାଂସକମାନେ କର୍ମକୁ ଏବଂ ଲୋକାୟତିକମାନେ ସ୍ୱଭାବକୁ ସୁଖଦୁଃଖର କାରଣ ଭାବନ୍ତି ।

୧. ପାତକ ।

ଗର୍ବ ତପକୁ ନାଶ କଲା । ସଙ୍ଗମ ଶୌଚକୁ ହରିଲା ॥ ୭୮
ମଦରେ ଦୟା ଗଲା ନାଶ । ଏ ତିନି ଅଧର୍ମର ଅଂଶ ॥ ୭୯
୨୫ ତୋହର ସତ୍ୟ ନାମ ବହି । ପାଦେକ ଅଛି ଶେଷ ହୋଇ ॥ ୮୦
ତାକୁ ଅନୃତଦ୍ୱାରେ ନେମ । ଏଥକୁ କଳିର ଉଦ୍ୟମ ॥ ୮୧
୨୬ ଏ ଭୂମିଭାରା ବିନାଶନ । କଲେକ ପ୍ରଭୁ ଭଗବାନ ॥ ୮୨
ତାର ଶ୍ରୀମନ୍ତ ପଦଚିହ୍ନ । ତେଣେ ଏ ଦିଶଇ ଶୋଭନ ॥ ୮୩
୨୭ ଦୁର୍ଭାଗା ପ୍ରାଏ ତାକୁ ହରି । ଛାଡ଼ିଯାଆନ୍ତେ ବିଜେ କରି ॥ ୮୪
ଦେଖି ଏ ଶୋଚନା କରୁଛି । ଲୋଚନଯୁଗୁଁ ଅଶ୍ରୁ ମୁଞ୍ଛି ॥ ୮୫
ଯେ ଅବ୍ରହ୍ମଣ୍ୟ ଶୂଦ୍ର ଜନେ । ଭୂଷିତ ହୋଇ ରାଜଚିହ୍ନେ ॥ ୮୬
ମୋତେ କରିବେ ଉପଭୋଗ । ଏ ଘେନି ଲଭୁଛି ବିରାଗ ॥ ୮୭

## ଶ୍ରୀସୂତ ଉବାଚ

୨୮ ଏ ରୂପେ ଧର୍ମ ବସୁନ୍ଧରୀ । ଦୁହିଁଙ୍କି ପ୍ରବୋଧନା କରି ॥ ୮୮
ଅଧର୍ମହେତୁ ଅଟେ କଳି । ତାକୁ ମାରିବି ବୋଲି ଭାଳି ॥ ୮୯
ତୀକ୍ଷ୍ଣ ଖଡ଼ଗ ଘେନିଣ । ମିଳିଲେ ତାହାର ଆଗେଣ ॥ ୯୦
୨୯ ମାରିବାକୁ ସେ ପରୀକ୍ଷିତ । ଆସୁଛି ଜାଣିଣ ଏମନ୍ତ ॥ ୯୧
ଛାଡ଼ିଣ ନୃପତିଲାଞ୍ଛନ । ଭୟରେ ହୋଇ କମ୍ପମାନ ॥ ୯୨
ସେ ପରୀକ୍ଷିତ ପାଦତଳେ । ପଡ଼ିଲା ପ୍ରାଣର ବିକଳେ ॥ ୯୩
୩୦ ଦୀନବତ୍ସଳ ସେହୁ ବୀର । ଶରଣଯୋଗ୍ୟ ଯଶକର ॥ ୯୪
ସେ କଳି ପଡ଼ନ୍ତେ ପାଦରେ । ତାକୁ ନ ମାଇଲେ ଦୟାରେ ॥ ୯୫
ହସିଲା ପ୍ରାୟେକ ହୋଇଲେ । ତାହାକୁ ଏମନ୍ତ ବୋଇଲେ ॥ ୯୬

## ଶ୍ରୀପରୀକ୍ଷିତ ଉବାଚ

୩୧ ଆମ୍ଭେ ଅର୍ଜୁନ ଯଶଧର । ଆମ୍ଭଙ୍କୁ ଯୋଡ଼ିଲୁ ତୁ କର ॥ ୯୭
ନାହିଁ ତୋହର କିଛି ଭୟ । ମୋହର ରାଜ୍ୟେ ତୁ ନ ଥାଅ ॥ ୯୮
ଅଧର୍ମ ହୋଇ ଯେ ବିଦିତ । ସ୍ୱଭାବେ ତୁ ତାହାର ମିତ ॥ ୯୯
୩୨ ତୁ ଥାଉ ଯେଉଁ ରାଜା ଦେହେ । ଅଧର୍ମଗଣ ତହିଁ ରହେ ॥ ୧୦୦
ଲୋଭ, ଅନୃତ ଚୌର୍ଯ୍ୟ ତିନି । ଦୁର୍ଜନ ଭାବ ସଙ୍ଗେ ଘେନି ॥ ୧୦୧
ଅଲକ୍ଷ୍ମୀ, ମାୟା ଦମ୍ଭ କଳି । ବୃଜିନ ଆଦି ତହିଁ ମିଳି ॥ ୧୦୨

୩୩ ଧର୍ମେ ସତ୍ୟରେ ବର୍ତ୍ତମାନ । ଅଟେ ଏ ବ୍ରହ୍ମାବର୍ତ୍ତ ସ୍ଥାନ ॥୧୦୩
ଯହିଁରେ ଯଜ୍ଞବିଦ ନର । ଯଜ୍ଞେ ପୂଜନ୍ତି ଯଜ୍ଞେଶ୍ୱର ॥୧୦୪
ଅଧର୍ମବନ୍ଧୁ ଅଟୁ ଯେଣୁ । ନ ଥିବୁ ଆମ୍ଭ ଦେଶେ ତେଣୁ ॥୧୦୫
୩୪ ଯହିଁରେ ଯଜ୍ଞମୂର୍ତ୍ତି ହରି । ଯେବା ତାହାଙ୍କୁ ପୂଜା କରି ॥୧୦୬
କରନ୍ତି ତାହାଙ୍କ ମଙ୍ଗଳ । ଦିଅନ୍ତି ମନୋରଥ ଫଳ ॥୧୦୭
ସ୍ଥିର ଜଙ୍ଗମଙ୍କରଠାରେ । ଅଛନ୍ତି ଭିତରେ ବାହାରେ ॥୧୦୮
ପବନ ପ୍ରାୟେ ସର୍ବବ୍ୟାପୀ । ଯେଣୁ ଅଟନ୍ତି ଆତ୍ମାରୂପୀ ॥୧୦୯

## ଶ୍ରୀସୂତ ଉବାଚ

୩୫ ଶୁଣିଣ ରାଜାର ଉତ୍ତର । କଳି କମ୍ପଇ ଥରହର ॥୧୧୦
ସେ ରାଜା ଟେକିଅଛି ଅସି । ଦଣ୍ଡପାଣି[୧]ର ପ୍ରାୟେ ଦିଶି ॥୧୧୧
ଚାହିଁଣ ତାହାର ବଦନ । ସେ କଳି ବୋଇଲା ବଚନ ॥୧୧୨

## ଶ୍ରୀକଳିରୁବାଚ

୩୬ ହେ ମହାରାଜ ! ତୋ ଆଜ୍ଞାରେ । ରହିବି ଯହିଁରେ ତହିଁରେ ॥୧୧୩
ତୋତେ ମୁଁ ଦେଖଇ ସେଠାର । ଧରିଣ ଅଛୁ ଧନୁଶର ॥୧୧୪
୩୭ ତୁ ଧର୍ମବନ୍ତଙ୍କର ସାର । ବିଚାରି ମୋତେ ସ୍ଥାନ କର ॥୧୧୫
ଯହିଁ ନିଶ୍ଚିନ୍ତେ ଥିବି ମୁହିଁ । ତୋହର ଆଜ୍ଞା ଶିରେ ବହି ॥୧୧୬

## ଶ୍ରୀସୂତ ଉବାଚ

୩୮ କଳି ମାଗନ୍ତେ ଏ ପ୍ରକାରେ । ତାକୁ ସେ ରାଜା ସେ କାଳରେ ॥୧୧୭
ଚାରି ପ୍ରକାରେ ସ୍ଥାନ ଦେଲା । ଯହିଁ ଅଧର୍ମ ନିତ୍ୟେ ମେଳା ॥୧୧୮
ଦ୍ୟୂତ, କାମିନୀ, ମଦ୍ୟପାନ । ପ୍ରାଣୀମାରଣେ ଯେଉଁ ମନ ॥୧୧୯
୩୯ ପୁଣି ମାଗନ୍ତେ ଆନ ସ୍ଥାନ । ସୁବର୍ଣ୍ଣ ଦେଲାକ ରାଜନ ॥୧୨୦
୪୦ ପଞ୍ଚ ସ୍ଥାନରେ ପଞ୍ଚ ଗୁଣ । କହିବା ସାବଧାନେ ଶୁଣ ॥୧୨୧
ଦ୍ୟୂତରେ ଅନୃତ ବସଇ । ମଦ୍ୟପାନରେ ମଦ ଥାଇ ॥୧୨୨
କାମିନୀ ସଙ୍ଗେ କାମ ପୁଣ । ପ୍ରାଣୀହିଂସାରେ ରଜୋଗୁଣ ॥୧୨୩
ବଇର ସୁବର୍ଣ୍ଣ ସଙ୍ଗରେ । ସେ କଳି ଏ ପାଞ୍ଚ ସ୍ଥାନରେ ॥୧୨୪
ପରୀକ୍ଷିତର ଆଜ୍ଞା ବଶେ । ରହିଲା ମାନସ ହରଷେ ॥୧୨୫

---

୧. ଦଣ୍ଡପାଣି = ଯମ ।

| | | | | |
|---|---|---|---|---|
| ୪୧ | ଯେ ଧର୍ମଶୀଳ ଲୋକ ହେବ | । | ଏ ପାଞ୍ଚ କଥାକୁ ନ ଯିବ | ॥୧୨୬ |
| | ଯେ ରାଜା ଲୋକପତି ଗୁରୁ | । | ସେ ଏହା ଛାଡ଼ିବ ଦୂରରୁ | ॥୧୨୭ |
| ୪୨ | ତପ, ଶଉଚ, ଦୟା ତିନି | । | ଧର୍ମବୃଷର ପାଦ ମାନି | ॥୧୨୮ |
| | ପ୍ରତିସଂଧାନ ତାହା କଲା | । | ସେ ତିନି ଯେଣୁ ବଢ଼ାଇଲା | ॥୧୨୯ |
| | ସନ୍ତତେ ଧର୍ମକୁ ଆଚରି | । | ପାଳନା କଲା ବସୁନ୍ଧରୀ | ॥୧୩୦ |
| ୪୩ | ଧର୍ମନନ୍ଦନ ପୂର୍ବକାଳେ | । | ବନଗମନ କଲାବେଳେ | ॥୧୩୧ |
| | ଦେଲେ ଯେ ନୃପତି ଆସନ | । | ତହିଁରେ ଥିଲେ ସେ ରାଜନ | ॥୧୩୨ |
| ୪୪ | କୌରବ ଇନ୍ଦ୍ର ସଂପତ୍ତିରେ | । | ଉଲ୍ଲସିଥିଲେ ନିକଟରେ | ॥୧୩୩ |
| ୪୫ | ହସ୍ତିନା ପୁରେ ଚକ୍ରବର୍ତ୍ତୀ | । | ସେ ମହାଭାଗ ମହାକୀର୍ତ୍ତି | ॥୧୩୪ |
| | ସେ ପରୀକ୍ଷିତ ନୃପବର | । | ଏମନ୍ତ ଅନୁଭାବ ତାର | ॥୧୩୫ |
| | ଯେ ମହୀ କରନ୍ତେ ପାଳନ | । | ତୁମ୍ଭେ ସମସ୍ତେ ବିପ୍ରଜନ | ॥୧୩୬ |
| | ଯାଗ କରିବା ନିମିତ୍ତରେ | । | ଆରମ୍ଭ କଲ ଏ ସ୍ଥାନରେ | ॥୧୩୭ |
| | କୃଷ୍ଣ ଚରଣେ ଦେଇ ଚିତ୍ତ | । | ପ୍ରଥମ ସ୍କନ୍ଧ ଭାଗବତ | ॥୧୩୮ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣି | । | ସୁଜନେ ତର ଏହା ଶୁଣି | ॥୧୩୯ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ କଳିନିଗ୍ରହୋ
ନାମ ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶୋଽଧ୍ୟାୟଃ

ରାଜ୍ଞସ୍ତ୍ୱଷ୍ଟାଦଶେ ତସ୍ୟ ବ୍ରହ୍ମଶାପୋ ନିରୂପ୍ୟତେ ।
ସ ଚାନୁଗ୍ରହ ଏବାସ୍ୟ ଜାତୋ ବୈରାଗ୍ୟଃମାବହନ୍ ॥ ୧ ॥

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୧ | ଦ୍ରୋଣକୁମର-ଅସ୍ତ୍ରଘାତେ | । | ନ ମଲା ମାତାଗର୍ଭଗତେ | ॥ ୧ |
| | କୃଷ୍ଣର ଅନୁଗ୍ରହୁଁ କରି | । | ଯେ ପରୀକ୍ଷିତ ଦଣ୍ଡଧାରୀ | ॥ ୨ |
| ୨ | ବ୍ରାହ୍ମଣ କୋପରୁ ପ୍ରକାଶ | । | ତକ୍ଷକ ହେତୁ ପ୍ରାଣନାଶ | ॥ ୩ |
| | ସେ କଥା ଅଟେ ଅତି ଭୟ | । | ତହୁଁ ଯେ ନ ଲଭିଲା ମୋହ | ॥ ୪ |
| | ବିଷ୍ଣୁରଠାରେ ଯେଣୁ ମନ | । | ଅର୍ପିତ କଲା ସେ ରାଜନ | ॥ ୫ |

୩ ଥିଲା ବିଷୟ ଯେତେ ସଙ୍ଗ । ସକଳ କରି ତାହା ଭଙ୍ଗ ॥ ୬
ଶୁକଙ୍କ ଶିଷ୍ୟ ଯେ ହୋଇଣ । ଈଶ୍ୱର ତତ୍ତ୍ୱକୁ ଜାଣିଣ ॥ ୭
ଗଙ୍ଗାରେ ନିଜ କଳେବର । ତ୍ୟାଗ କଲାକ ନୃପବର ॥ ୮
୪ କୃଷ୍ଣର ବାର୍ତ୍ତା ନିରନ୍ତରେ । ପ୍ରକାଶେ ଯାହାଙ୍କରଠାରେ ॥ ୯
ତା କଥା-ଅମୃତ ପିଅନ୍ତି । ତା ପାଦପଦ୍ମ ଯେ ଚିନ୍ତନ୍ତି ॥ ୧୦
ମରଣକାଳେ ତାହାଙ୍କର । ସଂଭ୍ରମ ନୁହଇ ମନର ॥ ୧୧
୫ ଏ ମହୀମଣ୍ଡଳରେ କଳି । ଥିଲେହେଁ ସବୁଦିଗେ ମିଳି ॥ ୧୨
ବାଧିଲା ନାହିଁ ତେତେଦିନ । ସେ ଅଭିମନ୍ୟୁର ନନ୍ଦନ ॥ ୧୩
ହୋଇଣ ଏକ ଚକ୍ରବର୍ତ୍ତୀ । ପାଳିଲେ ଯେତେଦିନ କ୍ଷିତି ॥ ୧୪
୬ ଯେବଣ ଦିନରେ ଧରଣୀ । ତେଜିଲେ ପ୍ରଭୁ ଚକ୍ରପାଣି ॥ ୧୫
ଅଧର୍ମପ୍ରଭବ ଏ କଳି । ସେଦିନୁଁ ଏ ଜଗତେ ମିଳି ॥ ୧୬
୭ ଭ୍ରମର ପ୍ରାୟେ ସେ ରାଜନ । ସାର ସଂଗ୍ରହେ ଦେଇ ମନ ॥ ୧୭
ସେ ଘେନି କଳିର ସଙ୍ଗତେ । ଦ୍ୱେଷ ନ କଲେ କଦାଚିତେ ॥ ୧୮
କୁଶଳ କର୍ମମାନେ ଯହିଁ । ସଂକଳ୍ପମାତ୍ରେ ଫଳ ଦେଇ ॥ ୧୯
ଯେ ଆନ କର୍ମ ଅକୁଶଳ । କଲେ ସେ ଲଭି ତହିଁ ଫଳ ॥ ୨୦
୮ ଯେ ଅଜ୍ଞଠାରେ ଶୂର ପ୍ରାୟ । ଧୀର ଲୋକକୁ କରେ ଭୟ ॥ ୨୧
ଆପଣେ ସାବଧାନ ହୋଇ । ଅନବଧାନି ଲୋକଠାଇଁ ॥ ୨୨
ବୃକର ପ୍ରାୟେ ଯେ ବିହରେ । ସେ କଳି କିବା କରିପାରେ ॥ ୨୩
୯ ଏ ପରୀକ୍ଷିତ ପୁଣ୍ୟଗାଥା । ଯହିଁ ନିରତେ କୃଷ୍ଣକଥା ॥ ୨୪
ଭାବେ କହିଲି ତୁମ୍ଭ ଆଗେ । ଯେଣୁ ପୁଚ୍ଛିଲ ଅନୁରାଗେ ॥ ୨୫
୧୦ ଯାହାର ସାର କର୍ମମାନ । ସାଧୁଏ କରନ୍ତି ଗାୟନ ॥ ୨୬
ସେ ଗୋବିନ୍ଦର କଥା ଯେତେ । ଅଛନ୍ତି ଗୁଣକର୍ମଯୁତେ ॥ ୨୭
ଯେ ନିଜ ଶୁଭ ବାଞ୍ଛେ ମନ । ସେ ତାହା କରିବ ଗାୟନ ॥ ୨୮

### ଶ୍ରୀଋଷୟ ଊଚୁଃ

୧୧ ହେ ସୂତ ! ବହୁତ ବରଷ । ବିସ୍ତାର ହେଉ ତୋ ଆୟୁଷ ॥ ୨୯
ଯେଣୁ କୃଷ୍ଣର ଶୁଦ୍ଧ ଯଶ । ଆମ୍ଭଙ୍କୁ କରୁଛ ପ୍ରକାଶ ॥ ୩୦
ମନୁଷ୍ୟମାନଙ୍କୁ ଅମୃତ । ପ୍ରାୟେକ ଅଟେ ଯେ ବିଦିତ ॥ ୩୧
୧୨ ଏ ଯଜ୍ଞକର୍ମ ଅବିଶ୍ୱାସ । ବିଗୁଣଭାବୁଁ ହୋଏ ନାଶ ॥ ୩୨
ଏଥିରେ ଆମ୍ଭେ ବର୍ତ୍ତିଥାଇଁ । ଧୂମମଳିନ ତନୁ ହୋଇ ॥ ୩୩
କୃଷ୍ଣର ଚରଣନଳିନ । ମଧୁ କରାଉଅଛ ପାନ ॥ ୩୪

୧୩　ହରି ଭଗତ ଜନ ସଙ୍ଗ　।　ଲେଶକୁ ସମ ନୋହେ ସ୍ୱର୍ଗ　॥ ୩୫
ମୋକ୍ଷହିଁ ତାକୁ ନୋହେ ସରି　।　ପ୍ରାଣୀଙ୍କ ଆଉ ଯେତେ ଶିରି　॥ ୩୬
ସେମାନେ ହୋଇବେ ସମାନ　।　କେ ଏହା କହିବ ବଚନ　॥ ୩୭
୧୪　କୃଷ୍ଣକଥାରେ ରସ ଯେତେ　।　ତାହା ଆସ୍ୱାଦି ନିଜ ଚିତ୍ତେ　॥ ୩୮
ତୋଷ ଲଭିବ କେଉଁ ଜନ　।　ଯେ ହରି ସାଧୁଙ୍କ ଅୟନ　॥ ୩୯
ସ୍ୱଭାବେ ନିର୍ଗୁଣ ବୋଲାଇ　।　ଭବ ବିରଞ୍ଚି ଆଦି ହୋଇ　॥ ୪୦
ଅଛନ୍ତି ଯେତେ ଯୋଗେଶ୍ୱର　।　ଅନ୍ତ ନ କଲେ ଗୁଣ ଯାର　॥ ୪୧
୧୫　ତେଣୁ ଭଗତ ଜନଙ୍କର　।　ମଧ୍ୟରେ ତୁମ୍ଭେ ଅଟ ସାର　॥ ୪୨
ମହତ ଜନଙ୍କ ଶରଣ　।　ଅଟନ୍ତି ଯେଉଁ ନାରାୟଣ　॥ ୪୩
ବିଶୁଦ୍ଧ ଚରିତ ତାଙ୍କର　।　ଭୁବନେ ଅଟଇ ଯେ ସାର　॥ ୪୪
ତାହା ଶ୍ରବଣେ ଆମ୍ଭ ମତି　।　ଉତ୍ସୁକ ହେଉଅଛି ଅତି　॥ ୪୫
ସେ କଥା ଆମ୍ଭର ଅଗ୍ରତେ　।　ବିସ୍ତାର କର ତୋଷ ଚିତ୍ତେ　॥ ୪୬
୧୬　ସେ ମହାଭକ୍ତ ପରୀକ୍ଷିତ　।　ଅଟଇ ଅତି ବୁଦ୍ଧିମନ୍ତ　॥ ୪୭
ତାହାଙ୍କୁ ଶୁକ ଯେଉଁ ଜ୍ଞାନ　।　ଭଣିଲେ ଯେଣେ ସେ ରାଜନ　॥ ୪୮
ଗରୁଡ଼ଧ୍ୱଜ ପାଦ ଦୁଇ　।　ଭଜିଲେ ଯେ ମୋକ୍ଷ ବୋଲାଇ　॥ ୪୯
୧୭　ଅର୍ଥକୁ ପ୍ରକାଶ କରିଣ　।　ଆମ୍ଭଙ୍କୁ କର ତା ବଖାଣ　॥ ୫୦
ପରମ ପୁଣ୍ୟ ସେ ଅଟଇ　।　ଅଦ୍ଭୁତ ଯୋଗନିଷ୍ଠା ଯହିଁ　॥ ୫୧
ଅନନ୍ତ ଚରିତେ ସଂଯୁତ　।　ଯହିଁରେ ଶ୍ରୋତା ପରୀକ୍ଷିତ　॥ ୫୨
ଅଖିଳ ଭାଗବତଙ୍କର　।　କର୍ଣ୍ଣକୁ ଅଟେ ମନୋହର　॥ ୫୩

ଶ୍ରୀସୂତ ଉବାଚ

୧୮　ଏ କଥା ଅଟେ ଅଦଭୁତ　।　ପ୍ରତିଲୋମରେ ଆମ୍ଭେ ଜାତ　॥ ୫୪
ଆମ୍ଭ ଜନମ ତଥାପି ହି　।　ଆଜ ସେ ସଫଳ ଅଟଇ　॥ ୫୫
ଯେଣୁ ଆମ୍ଭଙ୍କୁ ଅନୁବୃତ୍ତି[୧]　।　ବୃଦ୍ଧମାନେ ହିଁ କରିଛନ୍ତି　॥ ୫୬
ଦୁଷ୍କୁଳେ ହେଲି ବୋଲି ଜାତ　।　ଯେ ବ୍ୟଥା ଥାଇ ନିଜ ଚିତ୍ତ　॥ ୫୭
ତାହା ନିଃଶେଷେ ନାଶ କରେ　।　ମହତ ଜନଙ୍କ ସଙ୍ଗରେ　॥ ୫୮
ଯେବେ ଦଇବବଶ ହୋଇ　।　ଲୌକିକ କଥା ସମ୍ଭବଇ　॥ ୫୯

୧: ଅନୁବୃତ୍ତି = ଆଦର ।

୧୯ ସାଧୁ ଲୋକର ଏକାନ୍ତରେ । ଯେ ପରାୟଣ ଏ ସଂସାରେ ॥
ସେ କୃଷ୍ଣନାମ ଯେ ଗୁଣଇଁ । ତାହାର ସେ ଚିନ୍ତା କି ଥାଇ ॥
ଯେ କୃଷ୍ଣ ଅନନ୍ତଶକତି । ଯାର ମହତ ଗୁଣ ଛନ୍ତି ॥
ଏଣୁ ତାହାଙ୍କୁ ସର୍ବଜନେ । ଅନନ୍ତ ବୋଲନ୍ତି ଭୁବନେ ॥
୨୦ ତାହାଙ୍କୁ ଗୁଣରେ ସମାନ । ଅଧିକ ହୋଇ ନାହିଁ ଆନ ॥
ଏମନ୍ତ କଥା କହିବାର । ନୁହଇ ଉଚିତ ବେଭାର ॥
ଯାହାଙ୍କୁ ବ୍ରହ୍ମା ଆଦିମାନେ । ବାଞ୍ଛା କରନ୍ତି ନିଜ ମନେ ॥
ସେ ଲକ୍ଷ୍ମୀ ଛାଡ଼ି ସେମାନଙ୍କୁ । ଭଜଇ ଯା’ ପାଦରେଣୁକୁ ॥
ଲକ୍ଷ୍ମୀକି ଲଭିବା ନିମନ୍ତେ । ଆଦର ନ ଥାଇ ତା ଚିତ୍ତେ ॥
୨୧ ପୂର୍ବେ ବିରଞ୍ଚି ଅର୍ଘ୍ୟ ଜଳ । ଦିଅନ୍ତେ ନେଇ ପାଦତଳ ॥
ସେ ଯାହା ପାଦନଖୁଁ ଗଳେ । ଶିବ ସହିତେ ମହୀତଳେ ॥
ସକଳ ପବିତ୍ର କରଇ । ତାହାର ବିନୁ ଆନ ହୋଇ ॥
କେ ଅବା ହୋଇବ ଭାଜନ । ବୋଲାଇବାକୁ ଭଗବାନ ॥
୨୨ ଯାହାର ଠାରେ ଧୀରଜନେ । ଲଭିଣ ଅନୁରାଗ ମନେ ॥
ଦେହ ଆଦିରେ ଧୃତ[୧] ସଙ୍ଗ । ତତ୍କାଳ କରିଣ ବିଭଙ୍ଗ ॥
ପରମହଂସ ପଥଗତି । ପରମ କାଷ୍ଠାକୁ ଲଭନ୍ତି ॥
ଅହିଂସା ଉପଶମ ଦୁଇ । ଯହିଁରେ ସ୍ୱଧର୍ମ ଅଟଇ ॥
୨୩ ହେ ସୂର୍ଯ୍ୟସମ ଋଷିମାନେ । ଯାହା ପଚାରିଲେ ସୁମନେ ॥
ମୋହର ଜ୍ଞାନ ଅଛି ଯେତେ । ତହିଁକି କହିବି ଉଚିତେ ॥
ଆପଣା ଶକ୍ତି ଅନୁକ୍ରମେ । ଆକାଶେ ଯାନ୍ତି ବିହଙ୍ଗମେ ॥
ଏଣୁ ପଣ୍ଡିତ ଜନ ଯେତେ । ଆପଣା ବୁଦ୍ଧି ଅନୁମତେ ॥
ବଖାଣ କରନ୍ତି ବିଷ୍ଣୁର । ଲୀଳାକୁ ଶୁଣ ମୁନିବର ॥
୨୪ ସେ ପରୀକ୍ଷିତ ଏକଦିନେ । ଚଳନ୍ତେ ମୃଗୟାକୁ ବନେ ॥
ମୃଗ ଗୋଡ଼ାନ୍ତେ ଅତି ଶ୍ରାନ୍ତ । ହୋଇଲେ କ୍ଷୁଧିତ ତୃଷିତ ॥
୨୫ ଜଳ ଆଶୟକୁ ନ ଚାହିଁ । ମିଳିଲେ ସେ ଆଶ୍ରମେ ଯାଇଁ ॥
ମୁନିଙ୍କି ଦେଖିଲେ ସେ ସ୍ଥାନେ । ବସିଣ ଅଛନ୍ତି ଆସନେ ॥
ନୟନ କରିଣ ମୁଦ୍ରିତ । ହୋଇ ଅଛନ୍ତି ଶାନ୍ତଚିତ୍ତ ॥

---

୧. ଧୃତି ।

୨୬ ଇନ୍ଦ୍ରିୟ, ପ୍ରାଣ, ମନ, ବୁଦ୍ଧି । ଏମାନ ସବୁ ଛନ୍ତି ରୁନ୍ଧି ॥ ୮୭
ଜାଗ୍ରତ ଆଦି ସ୍ଥାନ ତ୍ରୟ । ଜିଣିଣ ଲଭିଲେ ତୁରୀୟ ॥ ୮୮
ସବୁ କଥାରୁ ଉପରତ । ବିକାରହୀନ ବ୍ରହ୍ମଭୂତ ॥ ୮୯
୨୭ ଫିଟିଅଛନ୍ତି ଜଟା ଶିରେ । ମୃଗର ଅଜିନ[୧] କଟିରେ ॥ ୯୦
ତେଣେ ଆଚ୍ଛନ୍ନ ହୋଇ ସ୍ଥିରେ । ବସି ଅଛନ୍ତି ସେ ପ୍ରକାରେ ॥ ୯୧
ନୃପ ମାଗିଲା ତାଙ୍କୁ ନୀର । ଶୁଖିଛି ତାଲୁ ଆପଣାର ॥ ୯୨
୨୮ ଯେ ତୃଣଭୂମି ଆଦିମାନ । ଅତିଥିପୂଜାର ବିଧାନ ॥ ୯୩
ଯେ ଅର୍ଘ୍ୟ ବିଧି ପ୍ରିୟ ବାଣୀ । ନ ଲଭି ତାହା ନୃପମଣି ॥ ୯୪
ଅବଜ୍ଞା ପ୍ରାୟେ ଆପଣାକୁ । ମଣିଣ କୋପିଲେ ତାହାକୁ ॥ ୯୫
୨୯ କ୍ଷୁଧାରେ ତୃଷାରେ ବିକଳ । ଆତ୍ମା ହୁଅନ୍ତେ ତତକାଳ ॥ ୯୬
ତାର ବିପ୍ରକୁ ଲକ୍ଷ୍ୟ ହୋଇ । କ୍ରୋଧ, ମତ୍ସର ହେଲେ ଦୁଇ ॥ ୯୭
ଯେ କ୍ରୋଧ, ମତ୍ସର ପୂର୍ବରେ । ଜନ୍ମି ନ ଥିଲେ ନୃପଠାରେ ॥ ୯୮
୩୦ ସେ ରାଜା ନିଜ କ୍ରୋଧ ବଳେ । ମୃତ ଉରଗ ଧନୁହୂଳେ ॥ ୯୯
ବ୍ରାହ୍ମଣଗଳେ ନିବେଶିଣ । ପୁରକୁ ଗଲା ତତକ୍ଷଣ ॥୧୦୦
୩୧ ନିରୋଧି ସର୍ବ ଇନ୍ଦ୍ରିୟକୁ । ଏ ଅବା ବୁଜିଛି ନେତ୍ରକୁ ॥୧୦୧
କ୍ଷତ୍ରବଂଧୁରେ କାର୍ଯ୍ୟ କିବା । ବିଚାରି ଏହି କଥା ଅବା ॥୧୦୨
କପଟ ସମାଧି ଆଚରି । ବସିଅଛି ଏ ତପଚାରୀ ॥୧୦୩
ମନରେ କରି ଏ ବିଚାର । ନୃପତି କଲା ସେ ପ୍ରକାର ॥୧୦୪
୩୨ ଅତି ତେଜସ୍ୱୀ ପୁତ୍ର ତାର । ଖେଳନ୍ତେ ଶିଶୁଙ୍କ ସଙ୍ଗର ॥୧୦୫
ରାଜାର ଆଗମନ କଥା । ପିତାର ଯେମନ୍ତ ବ୍ୟବସ୍ଥା ॥୧୦୬
ବାଳକମୁଖୁଁ ତା ଶୁଣିଲା । ସେଠାରେ ଏମନ୍ତ ବୋଇଲା ॥୧୦୭
୩୩ ଦେଖ ଏ ରାଜାମାନଙ୍କର । ଅଧର୍ମ ଅତି ବଳୀଆର ॥୧୦୮
ସ୍ୱାମିର ଠାରେ ଦାସମାନେ । ପାପ ଆଚରନ୍ତି ଯେସନେ ॥୧୦୯
ବଳିଷ୍ଠ ହୋଇ ଯେହ୍ନେ କାକେ । କରନ୍ତି ଦୁଷ୍ଟପଣ ଲୋକେ ॥୧୧୦
କୁକ୍କୁରେ ଦ୍ୱାର ଜଗିଥାନ୍ତି । ଯେହ୍ନେ ଅସାଧୁ ଆଚରନ୍ତି ॥୧୧୧
୩୪ ବ୍ରାହ୍ମଣେ ଗୃହରକ୍ଷାପାଇଁ । କ୍ଷତ୍ରିୟ ଅଛନ୍ତି ଭିଆଇ ॥୧୧୨
ଦ୍ୱାରେ ଥିବାକୁ ଯୋଗ୍ୟ ସେହି । ଗୃହରେ ଭାଣ୍ଡରେ ଯେ ଥାଇ ॥୧୧୩
ସେ ଦ୍ରବ୍ୟ ଖାଇବା ନିମିତ୍ତେ । ସେ କିଂପା ବିଚାରଇ ଚିତ୍ତେ ॥୧୧୪

---

୧. ଅଜିନ = ଚର୍ମ ।

୩୫ ଉତ୍ପଥଗାମୀ ଯେଉଁ ଜନ । ତାହାଙ୍କ ଶାସ୍ତା ଭଗବାନ ।।୧୧୫
କୃଷ୍ଣ ଗମନ୍ତେ ନିଜପୁର । ମର୍ଯ୍ୟାଦାହୀନ ଯେଉଁ ନର ।।୧୧୬
ତାଙ୍କୁ ଦଣ୍ଡିବି ଆଜ ମୁହିଁ । ଦେଖ ମୋ ବଳ ତୁମ୍ଭେ ଥାଇଁ ।।୧୧୭
୩୬ ମିତ୍ରଙ୍କୁ ଏ ପ୍ରକାରେ କହି । ରୋଷେ ଅରୁଣନେତ୍ର ହୋଇ ।।୧୧୮
କୌଶିକୀଜଳେ ଆଚମନ । କରିଣ ସେ ଋଷିନନ୍ଦନ ।।୧୧୯
ବଜ୍ରପ୍ରାୟେକ ଯେ ବଚନ । କଲା ତାହାକୁ ବିସର୍ଜନ ।।୧୨୦
୩୭ ଯେ କରି ଏମନ୍ତ ବିଚାର । ମର୍ଯ୍ୟାଦା ଲଂଘିଲା ପାମର ।।୧୨୧
ଆଜୁଁ ସପତ ଦିନଠାରେ । ତକ୍ଷକ ଆସିଣ କୋପରେ ।।୧୨୨
ଦଂଶିବ ତାହାର ଶରୀର । ଯେ ତାତଦ୍ରୋହୀ କୁଳାଙ୍ଗାର ।।୧୨୩
୩୮ ବାଳକ ତହୁଁ ଉତ୍ତାରେଣ । ନିଜ ଆଶ୍ରମକୁ ଆସିଣ ।।୧୨୪
ଦେଖିଲା କଣ୍ଠରେ ପିତାର । ଲମ୍ବିଛି ସର୍ପ କଳେବର ।।୧୨୫
ଦୁଃଖରେ ଆରତ ହୋଇଲା । ଉଚ୍ଚେ ରୋଦନ ଆଚରିଲା ।।୧୨୬
୩୯ ସେ ଆଙ୍ଗିରସ ବିପ୍ରବର । ଶୁଣିଣ ରୋଦନ ପୁତ୍ରର ।।୧୨୭
ଛିରେ ଲୋଚନ ଦୁଇ ଫେଇ । ମୃତ ସର୍ପକୁ କାନ୍ଧେ ଚାହିଁ ।।୧୨୮
୪୦ ସର୍ପକୁ କରି ବିସର୍ଜନ । ପୁତ୍ରକୁ ବୋଇଲା ବଚନ ।।୧୨୯
ହେ ବତ୍ସ ! କାହୁ କି ନିମିତ୍ତେ । କେ ଅପକାର କଲା ତୋତେ ।।୧୩୦
ଶୁଣିଣ ପିତାର ବଚନ । ସକଳ କଲା ନିବେଦନ ।।୧୩୧
୪୧ ସେ ନରନାଥ ପରୀକ୍ଷିତ । ନୁହଇ ଶାପକୁ ଉଚିତ ।।୧୩୨
ତାହାର ଶାପକୁ ଶୁଣିଣ । ନିଜ ପୁତ୍ରକୁ ସେ ବ୍ରାହ୍ମଣ ।।୧୩୩
ମନେ ସନ୍ତୋଷ ନ ଲଭିଲା । ଏମନ୍ତ ବଚନ ବୋଇଲା ।।୧୩୪
ଆଜ ଅଜ୍ଞାନ ଭାବ ବହି । ଅତି ଦୁଷ୍କୃତ କଲୁ ତୁହି ।।୧୩୫
ବିହିଲୁ ଅଳପ ଦ୍ରୋହରେ । ବିଶେଷ ଦଣ୍ଡ ନୃପଠାରେ ।।୧୩୬
୪୨ ରାଜା ଅଟଇ ସ୍ୱୟଂ ହରି । ମନୁଷ୍ୟ ସଙ୍ଗେ ସମ କରି ।।୧୩୭
ତାକୁ ଗଣିମା ନ ଯୋଗାଇ । ଏଣୁ ତୋ ବୁଦ୍ଧି ପକ୍ୱ ନୋହି ।।୧୩୮
ଯାହାର ଦୁଃସହ ତେଜରେ । ପାଳନା ଲଭି ଏ ସଂସାରେ ।।୧୩୯
ପ୍ରଜାଏ ସୁଖକୁ ଲଭନ୍ତି । ଅକୁତୋଭୟ ହୋଇଥାନ୍ତି ।।୧୪୦
୪୩ କେବଳ ନରଦେହ ହୋଇ । ନାମମାତ୍ରକ ବହିଥାଇ ।।୧୪୧
ଅଟଇ ସ୍ୱୟଂ ଚକ୍ରଧର । ସେ ଯେବେ ନ ଥାଇ ସଂସାର ।।୧୪୨

| | | | |
|---|---|---|---|
| | ତେବେ ଏ ଲୋକ ନାଶ ଯାଇ । | ମେଷସମୂହ ପ୍ରାୟେ ହୋଇ | ॥୧୪୩ |
| | କେହି ନ ଥାଇ ରକ୍ଷାକର । | ବହୁତ ସମ୍ଭବନ୍ତି ଚୋର | ॥୧୪୪ |
| ୪୪ | ନାଶ ହୁଅନ୍ତେ ନରନାଥ । | ଲୋକର ଚୋର ନେବେ ଅର୍ଥ | ॥୧୪୫ |
| | ସେ ଘେନି ଯେଉଁ ପାପ ହେବ । | ଆମ୍ଭ ବଂଶକୁ ସେ ଆସିବ | ॥୧୪୬ |
| | ବହୁତ ଚୋର ହେବେ ଜନ । | ପଶୁ ଯୁବତୀ ଅର୍ଥମାନ | ॥୧୪୭ |
| | ଏକ ଆରକରେ ହରିବେ । | ମାରିବେ ନିଷ୍ଠୁର ଭାଷିବେ | ॥୧୪୮ |
| ୪୫ | ସେ କାଳେ ବର୍ଣ୍ଣାଶ୍ରମାଚାର । | ସହିତେ ବେଦମୟ ଆର | ॥୧୪୯ |
| | ଯେ ସଦାଚାର ମାର୍ଗ ଥିବ । | ସେ ସବୁ ବିନାଶ ହୋଇବ | ॥୧୫୦ |
| | ଅର୍ଥ କାମରେ ଦେଇ ମନ । | ପ୍ରାଣୀ ହୁଅନ୍ତେ ହତଜ୍ଞାନ | ॥୧୫୧ |
| | କପି କୁକ୍କୁର ପ୍ରାୟ ହୋଇ । | ବର୍ଣ୍ଣସଂକର ହେବେ ତହିଁ | ॥୧୫୨ |
| ୪୬ | ସେ ଧର୍ମପାଳ ନରପତି । | ଅଟେ ସମ୍ରାଟ ମହାକୀର୍ତ୍ତି | ॥୧୫୩ |
| | ସାକ୍ଷାତ ମହାଭାଗବତ । | ରାଜର୍ଷି ହୟମେଧବନ୍ତ | ॥୧୫୪ |
| | କ୍ଷୁଧା ତୃଷାରେ ହୋଇ ଦୀନ । | ଆମ୍ଭ ଶାପକୁ ଅଭାଜନ | ॥୧୫୫ |
| ୪୭ | ଅପାପ ନିଜ ଭୃତ୍ୟଠାରେ । | ବାଳକ ଅପକ୍ୱ ବୁଦ୍ଧିରେ | ॥୧୫୬ |
| | କଲା ଯେ ପାପ ଆଚରଣ । | ସକଳ ଆତ୍ମା ନାରାୟଣ | ॥୧୫୭ |
| | ସେ ଅପରାଧକୁ ଏହାର । | କ୍ଷମା କରନ୍ତୁ ଚକ୍ରଧର | ॥୧୫୮ |
| ୪୮ | ଯେବେ ଲଭନ୍ତି ତିରସ୍କାର । | ବଞ୍ଚନା ଲଭନ୍ତି ଅପାର | ॥୧୫୯ |
| | ଦଣ୍ଡ, ତାଡ଼ନ, ଅବା ଶାପ । | ଅଥବା ଲଭନ୍ତି ଆକ୍ଷେପ | ॥୧୬୦ |
| | ଏତେ କଥାକୁ ପ୍ରତିକାର । | କରଣେ ହେଲେହେଁ ଈଶ୍ୱର | ॥୧୬୧ |
| | ତାର ଭଗତ ଜନମାନେ । | କୋପ କରନ୍ତି ନାହିଁ ମନେ | ॥୧୬୨ |

### ଶ୍ରୀସୂତ ଉବାଚ

| | | | |
|---|---|---|---|
| ୪୯ | ଏମନ୍ତ ରୂପେ ମହାମୁନି । | ପୁତ୍ରର ଦୋଷ ମନେ ଘେନି | ॥୧୬୩ |
| | ଅନୁତାପକୁ ସେ ଲଭିଲା । | ଯେବଣ ଦୋଷ ରାଜା କଲା | ॥୧୬୪ |
| | ସେ ଅପରାଧ ନିଜ ଚିତ୍ତେ । | ଘେନିଲା ନାହିଁ କଦାଚିତେ | ॥୧୬୫ |
| ୫୦ | ସଂସାରେ ଯେତେ ସାଧୁଲୋକ । | ପରରଠାରୁ ସୁଖଦୁଃଖ | ॥୧୬୬ |
| | ଲଭିଣ ବ୍ୟଥା ନ ପାଆନ୍ତି । | କେବେହେଁ ହରଷ ନୁହନ୍ତି | ॥୧୬୭ |
| | ଆତ୍ମାର ନାହିଁ ସୁଖଦୁଃଖ । | ଯେଣୁ ତାଙ୍କର ଏ ବିବେକ | ॥୧୬୮ |

ପ୍ରଥମସ୍କନ୍ଧ ଭାଗବତ । *ଆସ୍ୱାଦି ସାଧୁଜନହିତ ॥୧୬୯
ଶ୍ରୀକୃଷ୍ଣଚରଣ ପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥୧୭୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ବିପ୍ରଶାପୋପଲମ୍ଭନଂ
ନାମ ଅଷ୍ଟାଦଶୋଽଧ୍ୟାୟଃ ॥

## ଏକୋନବିଂଶୋଽଧ୍ୟାୟଃ

ପ୍ରାୟୋପବିଷ୍ଟେ ଗଙ୍ଗାୟାଂ ରାଜ୍ଞି ଯୋଗିଜନାବୃତେ ।
ଶୁକସ୍ୟାଗମନଂ ତତ୍ର ପ୍ରୋକ୍ତମେକୋନବିଂଶକେ ॥

ଶ୍ରୀସୂତ ଉବାଚ

୧ ଯେଉଁ ନିନ୍ଦିତ କର୍ମଗୁଣ । ଆପଣେ କଲା ଆଚରଣ ॥ ୧
ତାହା ଚିନ୍ତନ୍ତେ ମହୀପତି । ଏବେ ଦୁର୍ମନା ହେଲା ଅତି ॥ ୨
ମୁଁ ନୀଚ ଜନଙ୍କ ପ୍ରକାରେ । କୁକର୍ମ କଲି ବିପ୍ରଠାରେ ॥ ୩
ସେ ମୋରେ ନୋହେ ଅପରାଧୀ । ଅଟେ ଗୁପତ ତେଜନିଧି ॥ ୪
୨ କଲି ମୁଁ ଦେବତା ହେଳନ । ତେଣୁ ନିକଟରେ ବ୍ୟସନ ॥ ୫
ନିଶ୍ଚୟେ ହୋଇବ ମୋହର । ହେଉ ତହିଁକି କି ବିଚାର ॥ ୬
ତେଣେ ଦୁରିତ ହେବ ନାଶ । ଆଉ ନ କରିବି ଏ ଦୋଷ ॥ ୭
୩ କୋପିତ ବ୍ରହ୍ମକୁଳ ଯେହି । ଅନଳପ୍ରାୟ ସେ ଅଟଇ ॥ ୮
ମୁଁ ଯେ ଅଟଇ ଅମଙ୍ଗଳ । ମୋହର ରାଜ୍ୟ, କୋଷ, ବଳ ॥ ୯
ଆଜହିଁ କରୁ ସେ ଦହନ । ପୁଣି ମୋହର ଅନ୍ୟଦିନ ॥ ୧୦
ପାପିଷ୍ଠ ବୁଦ୍ଧି ଏ ପ୍ରକାରେ । ନୋହୁ ଗୋ ବିପ୍ରଦେବଠାରେ ॥ ୧୧
୪ ସେ ରାଜା ଚିନ୍ତନ୍ତେ ଏମନ୍ତ । ଶୁଣିଲା ଶାପର ବୃତ୍ତାନ୍ତ ॥ ୧୨
ଶମୀକଶିଷ୍ୟ ତାକୁ ଯାଇଁ । କହିଲା ସକଳ ବୁଝାଇ ॥ ୧୩
ମୁନିତନୁଜର ବଚନେ । ତୋତେ ଆଜହୁଁ ସାତଦିନେ ॥ ୧୪
ତକ୍ଷକ କରିବ ଦଂଶନ । ଶୁଣି ସେ ଏମନ୍ତ ବଚନ ॥ ୧୫

* ଆସ୍ୱାଦୁ ସାଧୁଜ୍ଜନ ଚିତ୍ତ ।

ଉତ୍ତମ କରି ତତକାଳ । ମଣିଲା ତକ୍ଷକ ଅନଳ ॥ ୧୬
ବିଷୟେ ଯେହ୍ନୁ ରସିଥାଇ । ତାର ବିରକ୍ତି ହେତୁ ସେହି ॥ ୧୭
୫ ଯେ ଇହ ପର ଲୋକ ବେନି । ତ୍ୟାଜ୍ୟ ରୂପରେ ତାହା ମାନି ॥ ୧୮
ତାହାଙ୍କୁ ପରିତ୍ୟାଗ କରି । ରାଜ୍ୟମଧ୍ୟେ ସେ ଦଣ୍ଡଧାରୀ ॥ ୧୯
ଶ୍ରୀକୃଷ୍ଣଚରଣ ସେବନ । ଅଧିକ ବିଚାରିଣ ମନ ॥ ୨୦
କରିଣ ଅନଶନ ବ୍ରତ । ହୋଇଲେ ଗଙ୍ଗାମଧ୍ୟଗତ ॥ ୨୧
୬ ଶୋଭିତ ତୁଳସୀ ମିଶିଣ । ଯେ କୃଷ୍ଣ ପାଦରେଣୁଗଣ ॥ ୨୨
ତେଣେ ଉତ୍ତମ ବହେ ବାରି । ଲୋକପାଳଙ୍କୁ ଆଦି କରି ॥ ୨୩
ଲୋକଙ୍କୁ ବାହ୍ୟରେ ଅନ୍ତରେ । ପବିତ୍ର କରେ ଯେ ସଂସାରେ ॥ ୨୪
ପ୍ରାଣର ତ୍ୟାଗ ସମୟରେ । ତାହାକୁ ସେବା କେ ନ କରେ ॥ ୨୫
୭ ଏ ରୂପେ ନିଶ୍ଚେ କରି ମତି । ସେ ପାଣ୍ଡୁବଂଶ ନରପତି ॥ ୨୬
ଗଙ୍ଗାରେ ଅନଶନ କରି । ମୁନିଙ୍କ ପ୍ରାଏ ବ୍ରତ ଧରି ॥ ୨୭
ଆନ ବିଷୟ ଯେତେ ଥିଲା । ସକଳ ତାହା ଦୂର କଲା ॥ ୨୮
ଛାଡ଼ି ସକଳ ସଙ୍ଗମାନ । କୃଷ୍ଣଚରଣେ କଲା ଧ୍ୟାନ ॥ ୨୯
୮ ଏହି ସମୟେ ମୁନିମାନେ । ପ୍ରବେଶ ହୋଇଲେ ସେ ସ୍ଥାନେ॥ ୩୦
ଯାହାଙ୍କ ଅନୁଭାବମାନ । ଲୋକେ ଅଟଇ ଅକଥନ ॥ ୩୧
ସଙ୍ଗେ ଅଛନ୍ତି ଶିଷ୍ୟମାନ । ଅଟନ୍ତି ଭୁବନପାବନ ॥ ୩୨
୯ ତୀର୍ଥ ଆଗମଛଳେ ସନ୍ତ । ତୀର୍ଥକୁ କରନ୍ତି ପବିତ୍ର ॥ ୩୩
୧୦ ଅତ୍ରି, ବଶିଷ୍ଠ, ପରାଶର । ଚ୍ୟବନ, ଉତଥ୍ୟ, ଅଙ୍ଗିର ॥ ୩୪
ଅରିଷ୍ଟନେମି, ଶରଦ୍ୱତ । ସେ ରାମ, ଭୃଗୁ, ଗାଧିସୁତ ॥ ୩୫
ଇନ୍ଦ୍ରପ୍ରମଦ, କୁମ୍ଭଯୋନି । ଦେବଳ, ଇଧ୍ମବାହୁ ବେନି ॥ ୩୬
ଆରଷ୍ଟିଷେଣ, ମେଧାତିଥି । ଗୌତମ, ଭରଦ୍ୱାଜ ଯତି ॥ ୩୭
ଔର୍ବ, ମୈତ୍ରେୟ, ପିପ୍ପଳାଦ । ଯେ ବ୍ୟାସ, କବଷ, ନାରଦ ॥ ୩୮
୧୧ ଯେ ଆନ ଦେବ ବ୍ରହ୍ମଋଷି । ଅରୁଣ ଆଦି ରାଜଋଷି ॥ ୩୯
ଯେ ନାନା ଋଷି ଗୋତ୍ରେ ସାର । ମିଳିଲେ ରାଜାର ଛାମୁର ॥ ୪୦
ତାହାଙ୍କୁ ପୂଜିଣ ବିଧିରେ । ବନ୍ଦନ କଲା ରାଜା ଶିରେ ॥ ୪୧
୧୨ ସେମାନେ ସୁଖେ ଯେ ଯାହାରେ । ବସନ୍ତେ ଆସନ ଉପରେ ॥ ୪୨
ସେ ଶୁଦ୍ଧଚେତା ପରୀକ୍ଷିତ । ଆଗରେ ହୋଇ ଉପସ୍ଥିତ ॥ ୪୩

| | | | | | |
|---|---|---|---|---|---|
| | ପୁଣି ପ୍ରଣାମ ତାଙ୍କୁ କଲା | । | କରଯୁଗଳକୁ ଯୋଡ଼ିଲା | ॥ | ୪୪ |
| | କରିବାକୁ ଯେ ଅଛି ମନ | । | ସେ କଥା କଲା ବିଜ୍ଞାପନ | ॥ | ୪୫ |

ଶ୍ରୀପରୀକ୍ଷିତ ଉବାଚ

| | | | | | |
|---|---|---|---|---|---|
| ୧୩ | ଆମ୍ଭେ ନୃପତିମାନଙ୍କର | । | ମଧ୍ୟରେ ଅତିଶୟ ସାର | ॥ | ୪୬ |
| | ଯେଣୁ ମହତଜନମାନେ | । | ଆମ୍ଭ ଚରିତକୁ ସୁମନେ | ॥ | ୪୭ |
| | କରିଣ ଅନୁଗ୍ରହ ଅତି | । | ପ୍ରବେଶ ହେଲେ ଆମ୍ଭ କତି | ॥ | ୪୮ |
| | ନିନ୍ଦିତ କର୍ମ ଯେହୁ କରେ | । | ସେ ରାଜକୁଳ ଏ ସଂସାରେ | ॥ | ୪୯ |
| | ବ୍ରାହ୍ମଣ ପାଦ ଶୌଚଜଳୁଁ | । | ଦୂରେ ଅଛନ୍ତି କର୍ମଫଳୁଁ | ॥ | ୫୦ |
| ୧୪ | ଗୃହେ ଆସକ୍ତଚିତ୍ତ ହୋଇ | । | ମୁଁ ପାପ ଆତ୍ମା ଅଛି ରହି | ॥ | ୫୧ |
| | ବୈରାଗ୍ୟ ହୃଦେ ହେଲେ ଜାତ | । | ଯାହାକୁ ଲଭନ୍ତି ନିୟତ | ॥ | ୫୨ |
| | ବ୍ରାହ୍ମଣଶାପ ରୂପ ମୋର | । | ହେଲେ ସେ ପରାବରେଶ୍ୱର | ॥ | ୫୩ |
| | ଗୃହ-ଆସକତ ଲୋକହିଁ | । | ଯେଉଁ ଶାପରେ ଭୟ ପାଇ | ॥ | ୫୪ |
| ୧୫ | ମୁଁ ଆଜି ପଶିଲି ଶରଣ | । | ଜାଣନ୍ତୁ ସକଳ ବ୍ରାହ୍ମଣ | ॥ | ୫୫ |
| | ମୋହର ଏହୁ ସତ୍ୟବାଣୀ | । | ଗଙ୍ଗା ଦେବୀ ହିଁ ଥାଉ ଜାଣି | ॥ | ୫୬ |
| | ଈଶ୍ୱରଠାରେ ଦେଲି ଚିତ୍ତ | । | ବ୍ରାହ୍ମଣେ ହୋଇ ନିୟୋଜିତ | ॥ | ୫୭ |
| | କୁହୁକ ତକ୍ଷକ ମୋ କାୟ | । | ଦଂଶୁ ତହିଁକି ନାହିଁ ଭୟ | ॥ | ୫୮ |
| | ତୁମ୍ଭେ ଅଧିକେ କୃଷ୍ଣକଥା | । | ଗାୟନ କର ବ୍ରହ୍ମବେତ୍ତା | ॥ | ୫୯ |
| ୧୬ | କୃଷ୍ଣର ଠାରେ ପୁଣ ମୋର | । | ରତି ସମ୍ଭବୁ ନିରନ୍ତର | ॥ | ୬୦ |
| | ଯାଙ୍କ ଆଶ୍ରୟ ଅଟେ ସେହୁ | । | ପ୍ରକୃଷ୍ଟ ସଙ୍ଗ ତହିଁ ହେଉ | ॥ | ୬୧ |
| | ମୁଁ ଜନ୍ମ ହେବି ଯହିଁ ଯହିଁ | । | ମହତ ଜନଙ୍କର ଠାଇଁ | ॥ | ୬୨ |
| | ସୁହୃଦ ଭାବ ହେଉ ମୋର | । | ବିପ୍ରଙ୍କୁ ମୋର ନମସ୍କାର | ॥ | ୬୩ |

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୧୭ | ଅଧ୍ୟବସାୟ ଏହା କରି | । | ସେ ପରୀକ୍ଷିତ ଦଣ୍ଡଧାରୀ | ॥ | ୬୪ |
| | ପୁତ୍ରେ ସମର୍ପି ରାଜ୍ୟଭାର | । | ଜାହ୍ନବୀ ଦକ୍ଷିଣ କୂଳର | ॥ | ୬୫ |
| | ପ୍ରାଚୀନ ଅଗ୍ର କୁଶାସନେ | । | ରହିଲା ଉତ୍ତର ବଦନେ | ॥ | ୬୬ |
| ୧୮ | ଏମନ୍ତେ ଅନଶନ ବ୍ରତ | । | କରନ୍ତେ ରାଜା ପରୀକ୍ଷିତ | ॥ | ୬୭ |
| | ଦେବତାଗଣ ଆକାଶରେ | । | ପ୍ରଶଂସା କରି ହରଷରେ | ॥ | ୬୮ |
| | ଭୂମିରେ ପୁଷ୍ପ ବରଷିଲେ | । | ଦୁନ୍ଦୁଭିମାନ ଶବ୍ଦ କଲେ | ॥ | ୬୯ |

୧୯ ସେ ପରୀକ୍ଷିତକୁ ଉଦ୍ଦେଶି । ଯେ ଆସିଥିଲେ ବ୍ରହ୍ମଋଷି ।। ୭୦
ପ୍ରଜାଙ୍କୁ ଅନୁଗ୍ରହ କର । ସୁଶୀଳ ବଳ ତାହାଙ୍କର ।। ୭୧
ରାଜାଙ୍କୁ ସାଧୁବାଦ କରି । କୃଷ୍ଣଗଣକୁ ଅନୁସରି ।। ୭୨
ପ୍ରଶଂସି କହିଲେ ବଚନ । ତା' ଗୁଣେ ହୋଇ ତୋଷମନ ।। ୭୩

ଶ୍ରୀମହର୍ଷୟ ଊଚୁଃ

୨୦ ଶୁଣ ହେ ରାଜଋଷିବର । ତୁମ୍ଭେ ଶରଣ କୃଷ୍ଣଠାର ।। ୭୪
ତୁମ୍ଭର ଠାରେ ଏହୁ କଥା । ବିଚିତ୍ର ନୁହଇ ସର୍ବଥା ।। ୭୫
ଏ ଅଟେ ତୁମ୍ଭ କୁଳରୀତି । ଲଭିବାପାଇଁ କୃଷ୍ଣପ୍ରୀତି ।। ୭୬
ଯେ ସର୍ବରାଜା ପ୍ରଣମିତ । ଆସନ କଲ ଦୂରଗତ ।। ୭୭
୨୧ ଏମନ୍ତ କହି ସର୍ବ ଯତି । ଏକ ଆରକେ ବିଚାରନ୍ତି ।। ୭୮
ଏ ନରପତି ଯେତେଦିନେ । ଦେହ ଛାଡ଼ିବ ବିଷ୍ଣୁଧ୍ୟାନେ ।। ୭୯
ସୁଖେ ଲଭିବ ବିଷ୍ଣୁଲୋକ । ଯେ ସ୍ଥାନ ବିରଜ ବିଶୋକ ।। ୮୦
ସେଦିନ ଯାଏଁ ଆମ୍ଭେମାନେ । ସମସ୍ତେ ଥିବା ଏହି ସ୍ଥାନେ ।। ୮୧

ଶ୍ରୀସୂତ ଉବାଚ

୨୨ ସମ, ଅବ୍ୟାଜ, ସୁମଧୁର । ଗରିଷ୍ଠ ବାକ୍ୟ ଋଷିଙ୍କର ।। ୮୨
ଶୁଣି ପରୀକ୍ଷିତ ରାଜନ । ସେ ଯେତେ ଥିଲେ ଋଷିଗଣ ।। ୮୩
ତାହାଙ୍କୁ ପ୍ରଶଂସା କରିଣ । ବିଷ୍ଣୁଚରିତମାନ ପୁଣ ।। ୮୪
ଶ୍ରବଣ କରିବା ନିମିତ୍ତ । ତାହାଙ୍କୁ ବୋଇଲେ ଏମନ୍ତ ।। ୮୫

ଶ୍ରୀପରୀକ୍ଷିତ ଉବାଚ

୨୩ ସକଳ ଦିଗୁଁ ତୁମ୍ଭେମାନେ । ସମସ୍ତେ ମିଳିଲ ଏ ସ୍ଥାନେ ।। ୮୬
ମୂର୍ତ୍ତି ଧରିଣ ବେଦମାନେ । ଥାଆନ୍ତି ସତ୍ୟଲୋକେ ଯେହ୍ନେ।। ୮୭
ତୁମ୍ଭେ ଦିଶୁଛ ସେ ସମାନ । ପରର ଅନୁଗ୍ରହୁଁ ଆନ ।। ୮୮
କାର୍ଯ୍ୟ ତୁମ୍ଭର କିଛି ନାହିଁ । ଏ ବେନି ଲୋକେ ସାର ହୋଇ।। ୮୯
ସେ ଅନୁଗ୍ରହକୁ ହିଁ ପୁଣି । ତୁମ୍ଭ ସ୍ୱଭାବ ବୋଲି ଜାଣି ।। ୯୦
୨୪ ହେ ବିପ୍ରମାନେ ! ତେଣୁ ମୁହିଁ । ତୁମ୍ଭଙ୍କୁ ବିଶ୍ୱସିତ ହୋଇ ।। ୯୧
କର୍ତ୍ତବ୍ୟ ଅଟଇ ଏ ରୀତି । ଏହି ବିଷୟେ ଦେଇ ମତି ।। ୯୨
ପୁଚ୍ଛିବା ଯୋଗ୍ୟ ଯେ ଅଟଇ । ସେହି କଥାକୁ ପଚାରଇ ।। ୯୩

ଯେ କୃତ୍ୟ ସମସ୍ତ କାଳରେ । ତହିଁରେ ମରିବା ଲୋକରେ ॥ ୯୪
କର୍ତ୍ତବ୍ୟ ଯେ ବିଶୁଦ୍ଧ କଥା । ବିଚାର କର ତା ସର୍ବଥା ॥ ୯୫

ଶ୍ରୀସୂତ ଉବାଚ

୨୫ ଏମନ୍ତ କହୁଁ ରାଜରଷି । ଶୁକ ମିଳିଲେ ତହିଁ ଆସି ॥ ୯୬
ଇଚ୍ଛାରେ ଭ୍ରମନ୍ତି ସେ ମହୀ । ଅପେକ୍ଷା ନ କରନ୍ତି କାହିଁ ॥ ୯୭
ଲକ୍ଷି ନୁହଇ ତାଙ୍କ ଚିହ୍ନ । ସେ ନିଜ ଲାଭେ ତୁଷ୍ଟମନ ॥ ୯୮
ବାଳକେ ଛନ୍ତି ଚାରିପାଶ । ଅବଧୂତର ପ୍ରାୟେ ବେଶ ॥ ୯୯
୨୬ ଅଷ୍ଟ ବରଷକୁ ଦିଗୁଣ । ତାଙ୍କ ବୟସ ପରିମାଣ ॥୧୦୦
ଚରଣ, ବାହୁ, ଉରୁ, କର । ଅଟେ ତାଙ୍କର ସୁକୁମାର ॥୧୦୧
କପୋଳ, ଗାତ୍ର ମନୋହର । ବିଶାଳ ନୟନ ସୁନ୍ଦର ॥୧୦୨
ଉନ୍ନତ ନାସା, ତୁଲ୍ୟ କର୍ଣ୍ଣ । ସୁନ୍ଦର ଭ୍ରୂଲତା, ଆନନ ॥୧୦୩
କମ୍ବୁର ପ୍ରାୟ ରେଖାଯୁତ । କଣ୍ଠ ହୋଇଛି ସୁଜନିତ ॥୧୦୪
୨୭ କଣ୍ଠର ଅଧୋଭାଗେ ସ୍ଥିତ । ଅସ୍ଥି ହୋଇଛି ଅଲକ୍ଷିତ ॥୧୦୫
ବିସ୍ତାର ଉଚ୍ଚ ବକ୍ଷ ଯାର । ନାଭି ଆବର୍ତ୍ତ ସୁଗମ୍ଭୀର ॥୧୦୬
ତ୍ରିବଳି ସୁନ୍ଦର ଉଦର । ନିତ୍ୟେ ଅଟନ୍ତି ଦିଗମ୍ବର ॥୧୦୭
ସ୍ୱଭାବେ ଅଟନ୍ତି କୁଟିଳ । ଫଟ ଅଛନ୍ତି କେଶ ଜାଳ ॥୧୦୮
ପ୍ରଳମ୍ବ ବାହୁଯୁଗ କି ସେ । ବିଷ୍ଣୁ ସାକ୍ଷାତ ଯେହ୍ନେ ଦିଶେ ॥୧୦୯
୨୮ ସେ ଶ୍ୟାମ ଚାରୁ ଯୌବନରେ । ଶରୀରଶୋଭାରେ, ସ୍ମିତରେ ॥୧୧୦
ବାଟେ ଯୁବତୀମାନଙ୍କର । ଚିତ୍ତ କରନ୍ତି ଅପହାର ॥୧୧୧
ଯଦ୍ୟପି ତେଜ ତାଙ୍କଠାରେ । ଲକ୍ଷ ନୁହଇ ଚକ୍ଷୁଦ୍ୱାରେ ॥୧୧୨
ତଥାପି ଲକ୍ଷଣ ଜାଣିଣ । ନିଜ ଆସନୁଁ ମୁନିଗଣ ॥୧୧୩
ତାହାଙ୍କୁ ଦେଖିଣ ଉଠିଲେ । ପାଛୋଟି କିଛି ଦୂର ଗଲେ ॥୧୧୪
୨୯ ଅତିଥି ରୂପେ ସେ ମିଳିତ । ତାହାଙ୍କୁ ରାଜା ବିଷ୍ଣୁରାତ ॥୧୧୫
ବିନୟେ ଶିର ନୁଆଁଇଲେ[୧] । ଆତ୍ମାକୁ ନିବେଦନ କଲେ ॥୧୧୬
ସ୍ତ୍ରୀ, ବାଳ, ଅଜ୍ଞ ଯେତେ ଥିଲେ । ସେଠାରୁ ଆଡ଼ ହୋଇଗଲେ ॥୧୧୭
ରାଜାର ଠାରୁ ପୂଜା ପାଇ । ବସିଲେ ଦିବ୍ୟାସନେ ଯାଇଁ ॥୧୧୮
୩୦ ମହତ ଜନମାନଙ୍କର । ମଧ୍ୟରେ ଅଟନ୍ତି ଯେ ବର ॥୧୧୯
ସେ ବ୍ରହ୍ମ, ଦେବ, ରାଜ-ରଷି । ସମୂହ ତାଙ୍କୁ ବେଢ଼ି ବସି ॥୧୨୦

୧. ଲୁଆଇଁଲେ ।

| | | | |
|---|---|---|---|
| | ଗ୍ରହ ନକ୍ଷତ୍ର ତାରାଗଣେ । | ବେଷ୍ଟିତ ଗଗନ ଅଙ୍ଗଣେ | ॥୧୨୧ |
| | ଯେସନେ ଦିଶେ ନିଶାକର । | ତେହ୍ନେ ଦିଶିଲେ ମୁନିବର | ॥୧୨୨ |
| ୩୧ | ଅକୁଣ୍ଠ ବୁଦ୍ଧି ଶାନ୍ତମନ । | ସେ ମୁନି କରନ୍ତେ ଆସନ | ॥୧୨୩ |
| | ତାଙ୍କୁ ସେ ରାଜାଭାଗବତ । | ନିକଟେ ହୋଇ ଉପଗତ | ॥୧୨୪ |
| | ପ୍ରଣାମ କରି ସାବଧାନେ । | ଅଞ୍ଜଳି ଯୋଡ଼ି ଶୁଦ୍ଧ ମନେ | ॥୧୨୫ |
| | ପୁଣ ପ୍ରଣାମ କରି ବାଣୀ । | କୋମଳ ବଚନରେ ଭଣି | ॥୧୨୬ |

ଶ୍ରୀପରୀକ୍ଷିତ ଉବାଚ

| | | | |
|---|---|---|---|
| ୩୨ | ହୀନ କ୍ଷତ୍ରିୟ ଆମ୍ଭେମାନେ । | ଭୋ ବିପ୍ର ! ଆଜ ଏ ଭୁବନେ | ॥୧୨୭ |
| | ସାଧୁମାନଙ୍କେ ନିଷେବିତ । | ଏ ରୂପେ ହୋଇଲୁଁ ବିଦିତ | ॥୧୨୮ |
| | ନିଜ ଚିତ୍ତରେ ଦୟା ବହି । | ତୁମ୍ଭେ ଅତିଥି ରୂପ ହୋଇ | ॥୧୨୯ |
| | ଆମ୍ଭଙ୍କୁ ହେଲ ଉପଗତ । | ଏ ଘେନି ହୋଇଲୁଁ କୃତାର୍ଥ | ॥୧୩୦ |
| ୩୩ | ଯେଉଁ ପୁରୁଷମାନଙ୍କର । | ସ୍ମରଣମାତ୍ରକେ ଲୋକର | ॥୧୩୧ |
| | ମନ୍ଦିର ତତକାଳ ହୋଇ । | ପବିତ୍ର ଭାବକୁ ଲଭଇ | ॥୧୩୨ |
| | ଅବଲୋକନ ସ୍ପରଶନ[୧] । | ଚରଣଶଉଚ ଆସନ | ॥୧୩୩ |
| | ଇତ୍ୟାଦି ସେବା କଲେ ପୁଣି । | କି ଅବା ହୋଇ ତା ନ ଜାଣି | ॥୧୩୪ |
| ୩୩(କ) | [୨]ଜନ୍ମ ସଫଳ ଆଜ ମୋର । | ବିଶେଷେ କର୍ମମାନଙ୍କର | ॥୧୩୫ |
| | ଜନ୍ମ ସଫଳ ଜୀବନର । | ଯେଣୁ ତୁ ନୟନଗୋଚର | ॥୧୩୬ |
| ୩୪ | ହେ ମହାଯୋଗି ! ବିଦ୍ୟମାନ । | ହୁଅନ୍ତେ ତୁମ୍ଭ ସନ୍ନିଧାନ | ॥୧୩୭ |
| | ମହାପାତକ ଯେତେ ଥାନ୍ତି । | ତତକାଳ ସେ ନାଶ ଯାନ୍ତି | ॥୧୩୮ |
| | ବିଷ୍ଣୁର ନିକଟେ ଯେସନ । | ଅସୁରେ ହୁଅନ୍ତି ନିଧନ | ॥୧୩୯ |
| ୩୫ | ଯେ ପାଣ୍ଡୁ ସୁତପ୍ରିୟ ହରି । | ସେ ଆଜ ମୋତେ ସ୍ନେହ କରି | ॥୧୪୦ |
| | ପିତୃଭଗିନୀ ସୁତଙ୍କର । | ପ୍ରୀତିଅର୍ଥେ ସେ ଚକ୍ରଧର | ॥୧୪୧ |
| | ସେ ଗୋତ୍ରେ ଯେଣୁ ମୁହିଁ ଜାତ । | ମୋଠାରେ କଲେ ବନ୍ଧୁକୃତ୍ୟ | ॥୧୪୨ |
| ୩୬ | ଭଗତଜନର କଲ୍ୟାଣ । | ଯେ କୃଷ୍ଣ ବାଞ୍ଛନ୍ତି ସେ ପୁଣ | ॥୧୪୩ |
| | କରୁଣାଯୁତଚିତ୍ତ ହୋଇ । | ତୁମ୍ଭଙ୍କୁ ଦେଲେ ପଠିଆଇ | ॥୧୪୪ |

---

୧. ଦରଶନ ।

୨. ଅଦ୍ୟ ମେ ସଫଳଂ ଜନ୍ମ ସଦ୍‌କ୍ରିୟାଣାଂ ବିଶେଷତଃ । ଜୀବିତସ୍ୟ ଚ ସର୍ବଜ୍ଞ ଯଦ୍ ଭବାନକ୍ଷିଗୋଚରଃ ॥

| | | | |
|---|---|---|---|
| | ମୁଁ ହାଦେ ଏମନ୍ତ ରୂପରେ । | ବିଚାର କରୁଛି ଚିତ୍ତରେ | ।।୧୪୫ |
| | ଏ କଥା ଯେବେ ଅଟେ ଆନ । | ତୁମ୍ଭର କାହିଁ ଦରଶନ | ।।୧୪୬ |
| | ସମ୍ଭବ ହୋଇବ ଆମ୍ଭର । | ଗତି ଅବ୍ୟକତ ତୁମ୍ଭର | ।।୧୪୭ |
| | ବିଶେଷେ ମରିବାର ଜନେ । | ପ୍ରାର୍ଥନା କରନ୍ତେ ସ୍ୱମନେ | ।।୧୪୮ |
| ୩୭ | ଯୋଗୀମାନଙ୍କ ଗୁରୁ ତୁମ୍ଭେ । | ଏ ଘେନି ପଚାରୁଛୁଁ ଆମ୍ଭେ | ।।୧୪୯ |
| | ମନୁଷ୍ୟ ପ୍ରାଣ ଯିବାକାଳେ । | କିବା କରିବ ମହୀତଳେ | ।।୧୫୦ |
| ୩୮ | ଯାହା ଶୁଣିମ କର୍ଣ୍ଣପଥେ । | ଯାହା ଜପିବ ବାକ୍ୟଗତେ | ।।୧୫୧ |
| | ଯାହା କରିବ, ଯା' ଭଜିବ । | ଯା ଅବା ସ୍ମରଣା କରିବ | ।।୧୫୨ |
| | ଏଥିରୁ ବିପରୀତ ଯେତେ । | ସେ କଥା କହ ଶୁଦ୍ଧଚିତ୍ତେ | ।।୧୫୩ |
| ୩୯ | ତୁମ୍ଭେ ଯେ ପ୍ରାଣୀଙ୍କର ଘରେ । | କେବେହେଁ ନିଶ୍ଚୟ ମନରେ | ।।୧୫୪ |
| | ଗୋଦୋହକାଳ ଯେତେ[୧] ଥାଇ । | ତେତେ ନ ରହ ସ୍ଥିର ହୋଇ | ।।୧୫୫ |

ଶ୍ରୀସୂତ ଉବାଚ

| | | | |
|---|---|---|---|
| ୪୦ | ଏରୂପେ କୋମଳ ବଚନ । | ସଂମୁଖେ ପୁଛନ୍ତେ ରାଜନ | ।।୧୫୬ |
| | ଧର୍ମଜ୍ଞ ବ୍ୟାସଙ୍କ କୁମର । | କହିଲେ ବଚନ ମଧୁର | ।।୧୫୭ |
| | କୃଷ୍ଣଚରଣେ ଦେଇ ଚିତ୍ତ । | ପ୍ରଥମ ସ୍କନ୍ଧ ଭାଗବତ | ।।୧୫୮ |
| | ସାଧୁ ଜନଙ୍କର ହିତରେ । | ବର୍ଣ୍ଣିଣ ପ୍ରାକୃତ ବନ୍ଧରେ | ।।୧୫୯ |
| | ହରଷ ଦ୍ୱିଜ ଦୀନବନ୍ଧୁ । | ଯେଣେ ତରିବ ଭବସିନ୍ଧୁ | ।।୧୬୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପ୍ରଥମସ୍କନ୍ଧେ ଶ୍ରୀଶୁକାଗମନଂ
ନାମ ଊନବିଂଶୋଽଧ୍ୟାୟ ।।

**ସମାପ୍ତୋଽୟଂ ପ୍ରଥମସ୍କନ୍ଧଃ**

---

୧. ଯେବେ ।

# ଦ୍ୱିତୀୟ ସ୍କନ୍ଧ

## ପ୍ରଥମୋଽଧ୍ୟାୟଃ

ଶ୍ରୀ ଗୋବିନ୍ଦାୟ ନମଃ

ଓଁ ନମୋ ଭଗବତେ ବାସୁଦେବାୟ ।

ଯନ୍ନାମକୀର୍ତ୍ତନଂ ଦାନତପୋଯୋଗାଦିସତ୍‌ଫଳମ୍ ।
ତଂ ନିତ୍ୟଂ ପରମାନନ୍ଦଂ ହରିଂ ନରମହଂ ଭଜେ ॥ ୧ ॥
ଦ୍ୱିତୀୟେ ତୁ ଦଶାଧ୍ୟାୟୈଃ ଶ୍ରୀଭାଗବତମାଦିତଃ ।
ଉଦ୍ଦେଶଲକ୍ଷଣୋକ୍ତିଭ୍ୟାଂ ସଂକ୍ଷେପେଣୋପବର୍ଣ୍ଣ୍ୟତେ ॥ ୨ ॥
ତତ୍ର ତୁ ପ୍ରଥମାଧ୍ୟାୟେ କୀର୍ତ୍ତନଶ୍ରବଣାଦିଭିଃ ।
ସ୍ଥବିଷ୍ଠେ ଭଗବଦ୍ରୂପେ ମନସୋ ଧାରଣୋଚ୍ୟତେ ॥ ୩ ॥
ଉକ୍ତଃ ପୂର୍ବମୁପୋଦ୍‌ଘାତଃ ସପ୍ରସଙ୍ଗଃ ଶୁକାଗମଃ ।
ରାଜ୍ଞା ପୃଷ୍ଟଂ ନୃଣାଂ କୃତ୍ୟମଥାହ ଶୁକସନ୍‌ମୁନିଃ ॥ ୪ ॥

ଶ୍ରୀଶୁକ ଉବାଚ

୧ ହେ ନୃପ ଯେଉଁ ପ୍ରଶ୍ନ ତୁହି । କଲୁ ଏ ବରିଷ୍ଠ ଅଟଇ ॥
ଶୁଣିମା ଆଦି ହୋଇ ଯେତେ । ପ୍ରାଣୀମାନଙ୍କର ଜଗତେ ॥
ତହିଁରେ ସାର ଜନହିତ । ଜ୍ଞାନୀମାନଙ୍କର ସଂମତ ॥
୨ ଗୃହେ ଯେ ଗୃହମେଧି ଥାନ୍ତି । ଆତ୍ମାର ତତ୍ତ୍ୱ ନ ଜାଣନ୍ତି ॥
ଶ୍ରବଣ ଆଦି କରିବାରେ । ସହସ୍ର ସହସ୍ର ପ୍ରକାରେ ॥
ବିଷୟେ[୧] ଅଛନ୍ତି ତାଙ୍କର । ହେ ପରୀକ୍ଷିତ ନୃପବର ! ॥
୩ ରାତ୍ରେ ଆୟୁଷ ଯେତେ ଥାଇ । ନିଦ୍ରାରେ ସୁରତରେ ଯାଇ ॥
ଦିବସେ ଯେତେକ ଆୟୁଷ । ଅର୍ଥ ଉଦ୍ୟମେ ହୋଏ ନାଶ ॥
ହେ ନୃପ ! କୁଟୁମ୍ବପୋଷଣ । ଆଦିରେ ଶେଷ ହୋଏ ପୁଣ ॥
୪ ଦେହ, ଅପତ୍ୟ କଳତ୍ରାଦି । ଯେ ଆତ୍ମପରିକର ସିଦ୍ଧି ॥
ସେମାନେ ଅଟନ୍ତି ଅନିତ୍ୟ । ତହିଁରେ ଯେବା ଆସକତ ॥
ଦେଖନ୍ତେ ତାହାଙ୍କ ନିଧନ । ନ କରେ ସେ ଅନୁସଂଧାନ ॥

---

୧. ବିଷୟେ = ବିଷୟମାନ ।

| | | | | | |
|---|---|---|---|---|---|
| ୫ | ଆତ୍ମା ସକଳ ପ୍ରାଣୀଙ୍କର | । | ଯେ ହରି ଅଟଇ ଈଶ୍ୱର | ॥ | ୧୩ |
| | ସେ ଘେନି ତାକୁ ଅନୁଦିନ | । | ଶୁଣିମ, କରିବ କୀର୍ତ୍ତନ | ॥ | ୧୪ |
| | ତାଙ୍କୁ ସ୍ମରିବ ହେ ଭାରତ ! | । | ଅଭୟ ବାଞ୍ଛଇ ଯେ ଚିତ୍ତ | ॥ | ୧୫ |
| ୬ | ପ୍ରାଣୀମାନଙ୍କର ସାଂଖ୍ୟରେ | । | ଯୋଗରେ ସ୍ୱଧର୍ମନିଷ୍ଠାରେ | ॥ | ୧୬ |
| | ଜନ୍ମର ଶ୍ରେଷ୍ଠ ଲାଭ ଏତେ | । | ଯେ ନାରାୟଣସ୍ମୃତି ଅନ୍ତେ | ॥ | ୧୭ |
| ୭ | ବିଧିନିଷେଧରୁ ନିବର୍ତ୍ତି | । | ହେ ନୃପ ! ବ୍ରହ୍ମ କରି ସ୍ଥିତି | ॥ | ୧୮ |
| | କୃଷ୍ଣର ଗୁଣାନୁକଥନେ | । | ରମନ୍ତି ନିତ୍ୟେ ମୁନିମାନେ | ॥ | ୧୯ |
| ୮ | ଏ ଯେ ପୁରାଣ ଭାଗବତ | । | ବେଦର ସମାନ ଏ ନିତ୍ୟ | ॥ | ୨୦ |
| | ଦ୍ୱାପର ନାମ ଯୁଗ ଯେହି | । | ତହିଁର ଅନ୍ତ୍ୟ[୧] ଭାଗେ ମୁହିଁ | ॥ | ୨୧ |
| | ପିତା ମୋହର ଦ୍ୱୈପାୟନ | । | ତା'ଠାରୁ କଲି ଅଧ୍ୟୟନ | ॥ | ୨୨ |
| ୯ | ବ୍ରହ୍ମରେ ହେଲେହେଁ ନିଷ୍ଠିତ | । | କୃଷ୍ଣଲୀଳାରେ ବଶଚିତ୍ତ | ॥ | ୨୩ |
| | ହୋଇ ମୁଁ ଯେବଣ ଆଖ୍ୟାନ | । | କରିଣ ଅଛି ଅଧ୍ୟୟନ | ॥ | ୨୪ |
| ୧୦ | ତୋତେ କରିବି ତା' ଉକତ | । | ତୁ ଅଟୁ ବିଷ୍ଣୁର ଭଗତ | ॥ | ୨୫ |
| | ଯେଉଁ ପୁରାଣେ ନିରନ୍ତର | । | ଶ୍ରଦ୍ଧା କରନ୍ତା ଲୋକଙ୍କର | ॥ | ୨୬ |
| | ମୁକୁନ୍ଦଠାବରେ ଝଟିତି | । | ଜନମେ ଅହୈତୁକୀ[୨] ମତି | ॥ | ୨୭ |
| ୧୧ | ନିର୍ବେଦ ଲଭନ୍ତି ଯେ ଜନ | । | ଏ ତାଙ୍କ ମୋକ୍ଷକୁ ସାଧନ | ॥ | ୨୮ |
| | କାମିଙ୍କ ଫଳକୁ କାରଣ | । | ଅକୁତୋଭୟ ଏ ପ୍ରମାଣ | ॥ | ୨୯ |
| | ଜ୍ଞାନୀଙ୍କ ଜ୍ଞାନକୁ ନିଦାନ | । | ହେ ନୃପ ! ହରିସଂକୀର୍ତ୍ତନ | ॥ | ୩୦ |
| ୧୨ | ନିଜ କୁଶଳେ ସାବଧାନ | । | ହୋଇ ନ ଥାଇ ଯେଉଁ ଜନ | ॥ | ୩୧ |
| | ତାହାର ଅଲକ୍ଷିତ ହୋଇ | । | ଯେତେକ ସଂବତ୍ସର ଯାଇ | ॥ | ୩୨ |
| | ତେଣେ କି କାର୍ଯ୍ୟ ଅଟେ ବର | । | ମୁହୂର୍ତ୍ତକ ହିଁ ସେ ଲୋକର | ॥ | ୩୩ |
| | କୁଶଳ ଲଭିବାର ପାଇଁ | । | ଯେବେ ସେ ଯତ୍ନକୁ କରଇ | ॥ | ୩୪ |
| ୧୩ | ଖଟ୍ୱାଙ୍ଗ ନାମେ ରାଜା ଥିଲା | । | ସ୍ୱର୍ଗେ ଦେବଙ୍କୁ ହିତ କଲା | ॥ | ୩୫ |
| | ପ୍ରସନ୍ନ ହୋଇ ତାକୁ ସୁର | । | ବୋଇଲେ ନୃପ ! ମାଗ ବର | ॥ | ୩୬ |
| | ରାଜା ବୋଇଲା ମୋ ଆୟୁଷ | । | କେତେକ ଅଛି ଅବଶେଷ | ॥ | ୩୭ |
| | ଶୁଣି ବୋଇଲେ ଦେବଗଣ | । | ମୁହୂର୍ତ୍ତେ ଅଛଇ ପ୍ରମାଣ | ॥ | ୩୮ |

---

୧. ଦ୍ୱାପରାନ୍ତେ 'ଦ୍ୱାପର ଆଦିର୍ଯସ୍ୟ କାଳସ୍ୟ ତସ୍ମିନ୍', ଦ୍ୱାପରାନ୍ତେ ଇତ୍ୟର୍ଥଃ ।

୨. ଅହେତୁକୀ ।

ଏମନ୍ତ ଶୁଣି ସେ ରାଜନ । ଦେବଙ୍କୁ ମାଗିଣ ବିମାନ ॥ ୩୯
ଶୀଘ୍ର ମନୁଷ୍ୟଲୋକେ ହେଲା । ସକଳ ସଙ୍ଗ ଦୂର କଲା ॥ ୪୦
ଅଭୟଦାତା ନାରାୟଣ । ତାହାକୁ ପଶିଲା ଶରଣ ॥ ୪୧
୧୪ ହେ କୁରୁବଂଶି ! ତୋ ଜୀବିତ । ଅବଧି ପୁଣ ଦିନ ସାତ ॥ ୪୨
ପରଲୋକକୁ ଯେ ସାଧନ । ତାହାକୁ କର ସଂପାଦନ ॥ ୪୩
୧୫ ମରଣ ହୁଅନ୍ତେ ପ୍ରବେଶ । ନିର୍ଭୟ ହୋଇଣ ପୁରୁଷ ॥ ୪୪
ଦେହେ ଯେ ସୁଖଇଚ୍ଛା ଥାଇ । ଅସଙ୍ଗଶସ୍ତ୍ରେ ତା' କାଟଇ ॥ ୪୫
ଦେହକୁ ହୋଇ ଅନୁଗତ । କଳତ୍ର ପୁତ୍ରାଦି ଯେ ସ୍ଥିତ ॥ ୪୬
ତହିଁରେ ଯେବା ସ୍ପୃହା ଥାଇ । ତାକୁ ହିଁ ଛେଦନ କରଇ ॥ ୪୭
୧୬ ଗୃହରୁ କରିଣ ଗମନ । ପୁଣ୍ୟ ତୀର୍ଥରେ କରି ସ୍ନାନ ॥ ୪୮
ଧୀରେ ଏକାନ୍ତେ ପୁଣ୍ୟସ୍ଥାନେ । ବିଧିରେ କଳ୍ପିତ ଆସନେ ॥ ୪୯
୧୭ ଅକାର-ଉକାର-ମକାର । ଘଟିତ ଶୁଦ୍ଧ ବ୍ରହ୍ମାକ୍ଷର ॥ ୫୦
ମନରେ କରଇ ଅଭ୍ୟାସ । କ୍ରମରେ ହୋଇ ଜିତଶ୍ୱାସ ॥ ୫୧
ଚିନ୍ତନ୍ତେ ବ୍ରହ୍ମବୀଜ ଚିତ୍ତେ । ମନକୁ ରଖଇ ଆୟତ୍ତେ ॥ ୫୨
୧୮ ବୁଦ୍ଧି ସାରଥି କରି ଧୀରେ । ବିଷୟଗଣୁଁ ମନଦ୍ୱାରେ ॥ ୫୩
ଇନ୍ଦ୍ରିୟମାନ ନିବର୍ତ୍ତାଇ । ମନ ଯେ କର୍ମେ ମିଶିଥାଇ ॥ ୫୪
ତାହାକୁ ଓଟାରି ବୁଦ୍ଧିରେ । ସମର୍ପେ ଈଶ୍ୱର ରୂପରେ ॥ ୫୫
୧୯ ଚିତ୍ତକୁ କରି ଅବିଚ୍ଛିନ୍ନ[1] । କରଇ ଏକ ଅଙ୍ଗ ଧାନ ॥ ୫୬
ବିଷୟ ଶୂନ୍ୟ ଯେଉଁ ମନ । ତାହାକୁ କରି ସମାଧାନ ॥ ୫୭
ତହିଁ ଉତ୍ତାରୁ କିଛି ପୁଣ । କରଇ ନାହିଁ ସଂସ୍ମରଣ ॥ ୫୮
ବିଷ୍ଣୁ ପରମପଦ ଯେହି । ମନ ଯହିଁରେ ଶାନ୍ତି ହୋଇ ॥ ୫୯
୨୦ ଯେ ରଜୋଗୁଣେ କ୍ଷିପ୍ତ ହୋଇ । ତମୋଗୁଣରେ ମୋହ ପାଇ ॥ ୬୦
ଯୋଗ ଧାରଣାରେ ସେ ମନ । ନିରୋଧ କରେ[2] ଧୀରଜନ ॥ ୬୧
ରଜତମରେ ଜାତ ଦୋଷ । ଯେଉଁ ଧାରଣା କରେ ନାଶ ॥ ୬୨
୨୧ ଯାକୁ ଆଶ୍ରୟ କରିଥାଇ । ସୁଖ ସ୍ୱରୂପେ ତା' ଦେଖଇ ॥ ୬୩
ଏମନ୍ତ ହୋଇ ଯୋଗିଜନ । କରନ୍ତେ ଧାରଣା ବିଧାନ ॥ ୬୪
ଭକ୍ତିଲକ୍ଷଣ ଯୋଗ ତାର । ସଂପନ୍ନ ହୁଅଇ ଅଚିର ॥ ୬୫

---

୧. ଅବିଚ୍ଛନ୍ନ । ୨. କଲେ ।

ଶ୍ରୀରାଜା ଉବାଚ

୨୨ ହେ ବିପ୍ର ! ଯେମନ୍ତ ପ୍ରକାର । ଧାରଣା କରେ ଜ୍ଞାନୀ ନର ॥ ୬୬
ଧାରଣା ଯାହାଠାରେ ଖ୍ୟାତ । ସେ ପୁଣି ହୋଇଣ ଯେମନ୍ତ ॥ ୬୭
ପୁରୁଷମନରେ ସଂଭୂତ । ମଳକୁ ବେଗେ କରେ ହତ ॥ ୬୮

ଶ୍ରୀଶୁକ ଉବାଚ

୨୩ ଜିତ ଆସନ ଜିତପ୍ରାଣ । ସଙ୍ଗ ଇନ୍ଦ୍ରିୟଙ୍କୁ ଜିଣିଣ ॥ ୬୯
ଈଶ୍ୱରସ୍ଥୂଳଦେହେ ମନ । କରିବ ବୁଦ୍ଧିଦ୍ୱାରେ ଲୀନ ॥ ୭୦
୨୪ ସ୍ଥୂଳରୁ ଅଟେ ସ୍ଥୂଳତର । ବିରାଟ ଶରୀର ତାହାର ॥ ୭୧
ଭୂତ, ଭବିଷ୍ୟ, ବର୍ତ୍ତମାନ । ଜଗତ ଦେଖେ ଯହିଁ ଜନ ॥ ୭୨
୨୫ ସପ୍ତାବରଣେ[୧] ହୋଇ ଯୁତ । ଏ ଅଣ୍ଡକୋଷ ଦେହ ଖ୍ୟାତ ॥ ୭୩
ବୈରାଜ ପୁରୁଷ ଏ ମଧ୍ୟ । ଧାରଣା ଆଶ୍ରୟ ପ୍ରସିଦ୍ଧ ॥ ୭୪
୨୬ ପାତାଳରୁ ଏ ପୁରୁଷର । ବୋଲନ୍ତି ପାଦ ମୂଳ ଧୀର ॥ ୭୫
ପାଦର ଆଗ ପଛ ହୋଇ । ଖ୍ୟାତ ଯେବଣ ଭାଗ ଦୁଇ ॥ ୭୬
ରସାତଳ ତାକୁ କହନ୍ତି । ଯେ ବିଶ୍ୱସୃଷ୍ଟି କରିଛନ୍ତି ॥ ୭୭
ମହାତଳ ସେ ପୁରୁଷର । ଗଲ୍ଫ କହନ୍ତି ବିଜ୍ଞାନର ॥ ୭୮
ଯେ ଅଟେ ତଳ ତଳ ଖ୍ୟାତ । ଜଙ୍ଘଂଯୁଗଳ ସେ ବିଦିତ ॥ ୭୯
୨୭ ସୁତଳ ନାମେ ଲୋକ ଯେହି । ସେ ବିଶ୍ୱମୂର୍ତ୍ତିଜାନୁଦୁଇ ॥ ୮୦
ବିତଳ ଅତଳ ଆବର । ଅଟନ୍ତି ଉରୁଯୁଗ ତାର ॥ ୮୧
ମହୀତଳକୁ ତା' ଜଘନ । ଲୋକେ ବୋଲନ୍ତି ହେ ରାଜନ ॥ ୮୨
ଆକାଶତଳ ଯେ ଅପାର । ତାକୁ ବୋଲନ୍ତି ନାଭିସର ॥ ୮୩
୨୮ ସ୍ୱର୍ଗକୁ ଉରଃସ୍ଥଳ ଭଣି । ମହର୍ଲୋକକୁ ଗ୍ରୀବା ଜାଣି ॥ ୮୪
ବିଖ୍ୟାତ ଅଟଇ ଯେ ଜନ । ସେ ପୁଣି ଏହାର ବଦନ ॥ ୮୫
ଯେ ଆଦିପୁରୁଷ ଈଶ୍ୱର । ଲଲାଟ ତପଲୋକ ତାର ॥ ୮୬
ଯେ ସତ୍ୟଲୋକ ବିଦ୍ୟମାନ । ସହସ୍ର ଶିର ଶିରାମାନ ॥ ୮୭
୨୯ ତେଜସ୍ୱୀ ଇନ୍ଦ୍ରଆଦି ସୁର । ବାହୁ କହନ୍ତି ପୁରୁଷର ॥ ୮୮
ଏହାର ଦିଗମାନେ କର୍ଣ୍ଣ । ଶବ୍ଦ ଶ୍ରବଣେନ୍ଦ୍ରିୟ ସ୍ଥାନ ॥ ୮୯

---

୧. କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ, ଅହଙ୍କାର ଓ ମହତ୍ ।

ନାସତ୍ୟଦସ୍ରେ[୧] ନାସା ଦୁଇ । ଘ୍ରାଣଇନ୍ଦ୍ରିୟ ଗନ୍ଧ ଯେହି ॥ ୯୦
ପ୍ରଦୀପ୍ତ ଯେଉଁ ହୁତାଶନ । ସେ ଅଟେ ପୁରୁଷବଦନ ॥ ୯୧
୩୦ ନେତ୍ର ଗୋଲକ ଅନ୍ତରୀକ୍ଷ । ଆଦିତ୍ୟ ତା'[୨] ଚକ୍ଷୁ ପ୍ରତ୍ୟକ୍ଷ ॥ ୯୨
ରାତ୍ର ଦିବସ ଯେଉଁ ବେନି । ତା ଚକ୍ଷୁଲୋମ ବୋଲି ମାନି ॥ ୯୩
ତାହାର ନିମେଷ ପତନ । ଅଟଇ ପରମେଷ୍ଠି ସ୍ଥାନ ॥ ୯୪
ଜଳ ଅଟଇ ତାଳୁ ତାର । ରସ ରସନା ପୁରୁଷର ॥ ୯୫
୩୧ ତା' ବ୍ରହ୍ମରନ୍ଧ୍ର ବେଦମାନ । ତା' ଦଂଷ୍ଟ୍ରା ଅଟଇ ଶମନ ॥ ୯୬
ଯେ ସ୍ନେହ ପୁତ୍ର ଆଦିଠାର । ସେ ଅଟେ ଦନ୍ତପନ୍ତି ତାର ॥ ୯୭
ଜନଉନ୍ମାଦ ଯେ କରଇ । ସେ ମାୟା ତା ହାସ ଅଟଇ ॥ ୯୮
ଯେ ସୃଷ୍ଟି ଅଟଇ ଅପାର । କଟାକ୍ଷମୋକ୍ଷ ସେ ତାହାର ॥ ୯୯
୩୨ ଉତ୍ତର ଓଷ୍ଠ ଲଜ୍ଜା ଅଟେ । ଅଧର ଲୋଭରୂପେ ଘଟେ ॥୧୦୦
ଧର୍ମ ଯାହାର ସ୍ତନଦେଶ । ଅଧର୍ମ ପୃଷ୍ଠ ପରକାଶ ॥୧୦୧
ପ୍ରଜାପତି ତା ମେଢ୍ର[୩] ଜାଣ । ମିତ୍ରାବରୁଣ[୪] ତା ବୃଷଣ[୫] ॥୧୦୨
ସମୁଦ୍ର ତାହାର ଉଦର । ଅସ୍ଥି ସମୂହ ମହୀଧର ॥୧୦୩
୩୩ ନଦୀ ଏହାର ନାଡ଼ୀଗଣ । ବୃକ୍ଷେ ଅଟନ୍ତି ରୋମ ପୁଣ ॥୧୦୪
ହେ ନୃପଶ୍ରେଷ୍ଠ ଏ ଜଗତ । ଯାହାର ତନୁ ହୋଇ ଖ୍ୟାତ ॥୧୦୫
ଅନନ୍ତବୀର୍ଯ୍ୟ ସମୀରଣ । ତାର ଶ୍ୱସିତ ଅଟେ ପୁଣ ॥୧୦୬
କାଳ ତାହାର ଅଟେ ଗତି । ସଂସାରବନ୍ଧ କ୍ରୀଡ଼ାରୀତି ॥୧୦୭
୩୪ ଈଶ୍ୱରକେଶ ମେଘମାନେ । କହନ୍ତି ଏହା ସାଧୁଜନେ ॥୧୦୮
ସନ୍ଧ୍ୟାକୁ ବୋଲନ୍ତି ବିଭୂର । ବାସ ବୋଲିଣ କୁରୁବର ! ॥୧୦୯
ପ୍ରକୃତି ହୃଦୟ ତାହାର । ମନ ଅଟଇ ନିଶାକର ॥୧୧୦
ସମସ୍ତ ବିକାରଙ୍କ କୋଷ । ପ୍ରାୟେକ ଯେ ଚନ୍ଦ୍ର ପ୍ରକାଶ ॥୧୧୧
୩୫ ଚିତ୍ତ ତାହାର ମହତ୍ ତତ୍ତ୍ୱ । ଅନ୍ତଃକରଣ ଉମାକାନ୍ତ ॥୧୧୨
ନଖ ତାହାର ଅଶ୍ୱତରୀ । ଆବର ଉଷ୍ଟ୍ର, ଅଶ୍ୱ, କରି ॥୧୧୩
ସମସ୍ତ ପଶୁ ମୃଗମାନେ । ଅଛନ୍ତି ତାର ଶ୍ରୋଣିସ୍ଥାନେ ॥୧୧୪

---

୧. ଅଶ୍ୱିନ କୁମାର ଦୁହେଁ । ୨. ଶିର ।
୩. ଲିଙ୍ଗ । ୪. ମିତ୍ର ଓ ବରୁଣ । ୫. କୋଷ ।

| | | | | |
|---|---|---|---|---|
| ୩୬ | *ଶିଳ୍ପରଚନା ପକ୍ଷିଗଣ | । | ମନୁ ତା ମନୀଷାପ୍ରମାଣ | ॥୧୧୫ |
| | ଯେ ବା ଗନ୍ଧର୍ବ ବିଦ୍ୟାଧର | । | ଚାରଣଗଣ ଅପସର | ॥୧୧୬ |
| | ଏମାନେ ତାର ସ୍ୱରସ୍ମୃତି[୧] | । | ଅସୁର ସୈନ୍ୟ ବୀର୍ଯ୍ୟ ଖ୍ୟାତି | ॥୧୧୭ |
| ୩୭ | ବ୍ରାହ୍ମଣ ଆନନ ତାହାର | । | ଭୁଜ ଅଟଇ କ୍ଷତ୍ର ବୀର | ॥୧୧୮ |
| | ବଇଶ୍ୟ ଊରୁ ଶୂଦ୍ର ପୁଣ | । | ଆଶ୍ରୟ କରିଛି ଚରଣ | ॥୧୧୯ |
| | ନାନା ପ୍ରକାର ନାମ ବହି | । | ଦେବତା ଯେତେକ ଅଛନ୍ତି | ॥୧୨୦ |
| | ତାଙ୍କ ଗଣରେ ଉପଯୋଗ | । | ସାଧ ଯହିଁରେ ହବିର୍ଭାଗ | ॥୧୨୧ |
| | ଏମନ୍ତ ଯେଉଁ ଯଜ୍ଞବିଧି | । | ସେ ଅଟେ ତାର କର୍ମସିଦ୍ଧି | ॥୧୨୨ |
| ୩୮ | ଈଶ୍ୱରଦେହସନ୍ନିବେଶ | । | ଏତେକ କଲାଇଁ ପ୍ରକାଶ | ॥୧୨୩ |
| | ଏ ସ୍ଥୂଳ ରୂପେ ନିଜ ମନ | । | ନିଜ ବୁଦ୍ଧିରେ ଯୋଗିଜନ | ॥୧୨୪ |
| | ଧାରଣା କରେ ଆନ ହୋଇ | । | ଯହିଁରୁ କିଛି ବସ୍ତୁ ନାହିଁ | ॥୧୨୫ |
| ୩୯ | ସକଳ ଜନ ବୁଦ୍ଧିଦ୍ୱାରେ | । | ଯେ ସର୍ବ ଅନୁଭବ କରେ | ॥୧୨୬ |
| | ଯେସନେ ସ୍ୱପ୍ନେ ଏକ ହୋଇ | । | ଅନେକ ଜନକୁ ଦେଖଇ | ॥୧୨୭ |
| | ତାଙ୍କ ବିଷୟ ଅନୁଭବ | । | ମଣଇଁ ଆପଣାର ଲାଭ | ॥୧୨୮ |
| | ସତ୍ୟ ପରମାନନ୍ଦ ନିଧି | । | ସେ ହରି ତାଙ୍କ ସେବା ସାଧି | ॥୧୨୯ |
| | ତହିଁରୁ ଆନେ ହେଲେ ରତ | । | ସଂସାର ବନ୍ଧନ ନିୟତ | ॥୧୩୦ |
| | କୃଷ୍ଣଚରଣସରସିଜ | । | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ॥୧୩୧ |
| | ଦ୍ୱିତୀୟ ସ୍କନ୍ଧ ଭାଗବତ | । | ସନ୍ତୋଷେ ସାଧୁଜନଚିତ୍ତ | ॥୧୩୨ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀମହାପୁରୁଷସଂସ୍ଥାନୁବର୍ଣ୍ଣନଂ
ନାମ ପ୍ରଥମୋଽଧ୍ୟାୟଃ ॥

---

* ଯେନ ଶୁକ୍ଲୀକୃତା ହଂସାଃ ଶୁକାଶ୍ଚ ହରିତୀକୃତାଃ ।
ମୟୂରାଶ୍ଚିତ୍ରିତା ଯେନ ସ ତେ ବୃତ୍ତିଂ ବିଧାସ୍ୟତି ।

୧. ସ୍ୱର ତାର ଶ୍ରୁତି ।

# ଦ୍ୱିତୀୟୋଽଧ୍ୟାୟଃ

ଦ୍ୱିତୀୟେ ତୁ ତତଃ ସ୍ଥୂଳଧାରଣାତୋ ଜିତଂ ମନଃ ।
ସର୍ବସାକ୍ଷିଣି ସର୍ବେଶେ ବିଷ୍ଣୌ ଧାର୍ଯ୍ୟମିତୀର୍ଯ୍ୟତେ ।। ୧ ।।
ଦୃଶ୍ୟାଲମ୍ବନରୂପୈବମୁକ୍ତା ବୈରାଜଧାରଣା
ଇହୋଚ୍ୟତେ ତୁ ତଦ୍‌ସାଧ୍ୟା ସର୍ବାନ୍ତର୍ଯାମିଧାରଣା ।। ୨ ।।

ଶ୍ରୀଶୁକ ଉବାଚ

୧ ଏ ରୂପେ ଧାରଣା ଆଚରି । ଭଗବାନକୁ ତୋଷ କରି ।। ୧
ପୂର୍ବ ପ୍ରଳୟେ ନଷ୍ଟ ସ୍ମୃତି । ଲଭି ତାଠାରୁ ପ୍ରଜାପତି ।। ୨
ପ୍ରଳୟୁଁ ପୂର୍ବପ୍ରାୟ ସୃଷ୍ଟି । କଲା ଅମୋଘ ତାର ଦୃଷ୍ଟି ।। ୩
ବ୍ୟବସାୟରେ ବୁଦ୍ଧି ତାର । ବିନଷ୍ଟ ଅଟେ ନିରନ୍ତର ।। ୪
୨ ବେଦର ମାର୍ଗ ଅଟେ ଏହି । କର୍ମଫଳକୁ ଯା ବୁଝାଇ ।। ୫
ସ୍ୱର୍ଗାଦି ଯେଉଁ ନାମମାନ । ଅଟନ୍ତି ସେହୁ ଅର୍ଥଶୂନ୍ୟ ।। ୬
ତେଣେ ଆସକ୍ତ ହୋଇ ମନ । କରଇ ତାହା ଯେଣୁ ଧ୍ୟାନ ।। ୭
ଯେହ୍ନେ ଶୟନ କଲା ନର । ଦେଖଇ ସ୍ୱପ୍ନ ନାନାକାର ।। ୮
ସେ ରୂପେ ମାୟାମୟ ପଥେ । ସୁଖ ବାସନାରେ ଧାମନ୍ତେ ।। ୯
ପରମ ସୁଖ ଯେ ଅଟଇ । ତହିଁରେ ତାହାକୁ ନ ପାଇ ।। ୧୦
୩ ଏ ଘେନି ହୋଇବ ଯେ ଜ୍ଞାନୀ । ଭୋଗକୁ ମିଥ୍ୟା ବୋଲି ମାନି ।। ୧୧
ଯେତେକ ରକ୍ଷା ହେବ ଦେହ । କରିବ ତେତେ ପରିଗ୍ରହ ।। ୧୨
ଭୋଗରେ ଆସକ୍ତ ନୋହିବ । ଦୁଃଖପ୍ରାଏକ ମଣିଥିବ ।। ୧୩
ସେ ଅର୍ଥ ପୂର୍ବ କର୍ମବଳେ । ମିଳନ୍ତେ ଆସି କରତଳେ ।। ୧୪
ତହିଁରେ ଦେଖି ପରିଶ୍ରମ । କେବେହେଁ ନ କରେ ଉଦ୍ୟମ ।। ୧୫
୪ କ୍ଷିତି ଥାଆନ୍ତେ ବସ୍ତ୍ରଶେଯ । ଖୋଜିବା ଶ୍ରମରେ କି କାର୍ଯ୍ୟ ।। ୧୬
ଯେବେ ସ୍ୱସିଦ୍ଧ ଅଛି ବାହୁ । କି କାର୍ଯ୍ୟ ମୁତୁଳାରେ ଆଉ ।। ୧୭
ଅଂଜଳି ଥାନ୍ତେ ନାନାବିଧ । ଭୋଜନପାତ୍ରରେ କି ସଧ ।। ୧୮
ଦିଗ, ବଲ୍କଳ ଆଦି ଯେବେ । ଅଛି କି କାର୍ଯ୍ୟ ବସ୍ତ୍ରେ ତେବେ ।। ୧୯
୫ ଯେ ଚିରା କନା ପୁରାତନ । ଦାଣ୍ଡେ କି ନ ଥାନ୍ତି ସେମାନ ।। ୨୦
ଯେ ବୃକ୍ଷେ ପୋଷନ୍ତି ପରକୁ । ସେ କି ନ ଦିଅନ୍ତି ଭିକ୍ଷାକୁ ।। ୨୧

| | | | | |
|---|---|---|---|---|
| | ନଦୀମାନେ କି ଶୁଖିଗଲେ | । ଗୁହାମାନେ କି ବୁଜି ହେଲେ | ।। | ୨୨ |
| | *ଶରଣାଗତ ଯେ ହୁଅନ୍ତି | । ତାଙ୍କୁ କି ହରି ନ ରଖନ୍ତି | ।। | ୨୩ |
| | ଯେ ଧନମଦେ ଅନ୍ଧ, ତାଙ୍କୁଁ[୧] | । ଜ୍ଞାନି ଭଜନ୍ତି କି କାର୍ଯ୍ୟକୁ | ।। | ୨୪ |
| ୬ | ଏ ରୂପେ ଆପଣା ଚିତ୍ତରେ | । ଯେ ସିଦ୍ଧ ଆପଣା ଇଚ୍ଛାରେ | ।। | ୨୫ |
| | ଯେଣୁ ସେ ଆତ୍ମାରୂପ ଧରେ | । ଏ ଘେନି ପ୍ରିୟ ଜଗତରେ | ।। | ୨୬ |
| | ସତ୍ୟସ୍ୱରୂପୀ ଭଗବାନ | । ଏଣୁ ଅଟନ୍ତି ଅନ୍ତହୀନ | ।। | ୨୭ |
| | ଭଜିବ ତାଙ୍କୁ ସୁଖୀ ହୋଇ | । ଏହି ସେ ମୂଳ ବୋଲି ଧ୍ୟାୟି | ।। | ୨୮ |
| | ସଂସାର ହେତୁ ଅବିଦ୍ୟାର | । ବିନାଶ ଭଜନେ ତାହାର | ।। | ୨୯ |
| ୭ | ପଶୁଙ୍କ ବିନୁ ଈଶ୍ୱରର | । ଚିନ୍ତାକୁ କରି ଅନାଦର | ।। | ୩୦ |
| | କେ କରେ ସଂସାରଚିନ୍ତନ | । ଜନକୁ ଦେଖନ୍ତେ ଲୋଚନ | ।। | ୩୧ |
| | ଭବବୈତରଣୀ ମଧ୍ୟରେ | । ପଡ଼ି ଯେ ଜନ ନିରନ୍ତରେ | ।। | ୩୨ |
| | ସ୍ୱକର୍ମଜାତ ତାପମାନ | । ଭଜଇ ହୋଇ ହତଜ୍ଞାନ | ।। | ୩୩ |
| ୮ | କେହୁ ଆପଣା ଦେହଦେଶେ | । ହୃଦୟ ମଧ୍ୟେ ଅବକାଶେ | ।। | ୩୪ |
| | ବସିଅଛନ୍ତି ନାରାୟଣ | । ପ୍ରାଦେଶ[୨] ମାତ୍ର ପରିମାଣ | ।। | ୩୫ |
| | ଚାରି ଭୁଜରେ ଧରେ ସଦା | । ଶଙ୍ଖ, ରଥାଙ୍ଗ, ପଦ୍ମ, ଗଦା | ।। | ୩୬ |
| | ଏ ରୂପେ ଧାରଣା ଯୋଗରେ | । ସ୍ମରଣା କରନ୍ତି ନିର୍ଭରେ | ।। | ୩୭ |
| ୯ | ପ୍ରସନ୍ନ ଅଟେ ଯା' ବଦନ | । ନଳିନ ଆୟତ ନୟନ | ।। | ୩୮ |
| | କଦମ୍ବକେଶର ପିଶଙ୍ଗ[୩] | । ବସନ ଦୁଇ ଶୋଭା ଅଙ୍ଗ | ।। | ୩୯ |
| | ଯହିଁରେ ମହାରତ୍ନମାନ | । ଦିଶୁଅଛନ୍ତି ଶୋଭମାନ | ।। | ୪୦ |
| | ଏମନ୍ତ ହେମମୟ ହୋଇ | । ଅଙ୍ଗଦ ଅଛି ଯାହା ଠାଇଁ | ।। | ୪୧ |
| | ସ୍ଫୁରଇ ମହାରତ୍ନମୟ | । କିରୀଟକୁଣ୍ଡଳ ଯା କାୟ | ।। | ୪୨ |
| ୧୦ | ବିକଚ ହୃଦୟନଳିନ | । କର୍ଣ୍ଣିକାସ୍ଥାନେ ଯୋଗିଜନ | ।। | ୪୩ |
| | ପାଦପଲ୍ଲବକୁ ଯାହାର | । ସ୍ଥାପନ କଲେ ନିରନ୍ତର | ।। | ୪୪ |
| | ଯାର ହୃଦୟେ ଚିହ୍ନପ୍ରାଏ | । ସିନ୍ଧୁନନ୍ଦିନୀ ଶୋଭା ପାଏ | ।। | ୪୫ |

---

* ଭୋଜନାଚ୍ଛାଦନେ ଚିନ୍ତାଂ ବୃଥା କୁର୍ବନ୍ତି ବୈଷ୍ଣବାଃ ।
ଯୋଽସୌ ବିଶ୍ୱଂଭରୋ ଦେବଃ କଥଂ ଭକ୍ତାନୁପେକ୍ଷତେ ।।

୧. ତାକୁ । ୨. ପ୍ରାଦେଶ = ତର୍ଜନୀ ଓ ବୃଦ୍ଧାଙ୍ଗୁଳିର ବିସ୍ତାର ।

୩. ପିଶଙ୍ଗ = ପୀତ ।

କନ୍ଧରେ କୌସ୍ତୁଭରତନ । ଯାହାର ଶୋଭା ନୋହେ ମ୍ଳାନ ॥ ୪୬
ଏମନ୍ତ ବନମାଳା ଯେହି । ତେଣେ ସେ ଖଞ୍ଜିତ ଅଟଇ ॥ ୪୭
୧୧ ରତ୍ନମେଖଳା କଟିମାଝେ । ଅମୂଲ୍ୟ ମୁଦ୍ରିକା ବିରାଜେ ॥ ୪୮
ଅମୂଲ୍ୟ ନୂପୁରକଂକଣ । ଏ ଆଦି ଶୋହେ ଆଭରଣ ॥ ୪୯
ଚିକ୍କଣ, ଅମଳ, କୁଞ୍ଚିତ । ନୀଳ କୁନ୍ତଳେ ଯେ ରାଜିତ ॥ ୫୦
ସେ ମୁଖେ ଯେଉଁ ହାସ ସ୍ଥିତ । ତେଣେ ଯେ ଦିଶନ୍ତି ଶୋଭିତ ॥ ୫୧
୧୨ ଉଦାର ଲୀଳା ହାସେ ଯୁତ । ଅଟଇ ଯେଉଁ ଦୃଷ୍ଟିପାତ ॥ ୫୨
ତେଣେ ଶୋଭିତ ଭ୍ରୂଭଙ୍ଗରେ । ଅନେକ ଅନୁଗ୍ରହ କରେ ॥ ୫୩
ଏହୁ ଈଶ୍ୱର ଚିନ୍ତାମୟେ । ଦେଖି ଏହାଙ୍କୁ ତେତେଯାଏ ॥ ୫୪
ଯାବତ ଧାରଣାର ବଳେ । ମନ ରହଇ ସୁନିଶ୍ଚଳେ ॥ ୫୫
୧୩ ଏମନ୍ତେ ଏକ ଏକ ଅଙ୍ଗେ । ନିତ୍ୟେ ଚିନ୍ତିବ ବୁଦ୍ଧିଯୋଗେ ॥ ୫୬
ପାଦୁଂ ଅବଧି ହାସ ଯାଏ । ପ୍ରକାଶ ଯେହୁ ଯେହୁ ହୋଏ ॥ ୫୭
ସେ ସ୍ଥାନ କରିଣ ବିଭଙ୍ଗ । ଚିନ୍ତିବ ଆନ ଆନ ଅଙ୍ଗ ॥ ୫୮
ଯେମନ୍ତ ଯେମନ୍ତ ପ୍ରକାରେ । ରହେ ଆପଣା ବୁଦ୍ଧି ସ୍ଥିରେ ॥ ୫୯
୧୪ ବ୍ରହ୍ମାଦି ଯାହାଠାରୁ ସାନ । ଯେ ବିଶ୍ୱେଶ୍ୱର ଭଗବାନ ॥ ୬୦
ସକଳ ଲୋକଙ୍କୁ ଦେଖଇ । କାହାରି ଦୃଶ୍ୟ ସେ ନୁହଇ ॥ ୬୧
ଭଗତିଯୋଗ ତାହାଠାରେ । ଯାବତ ନୁହଇ ସଂସାରେ ॥ ୬୨
ତାବତ ସ୍ଥୂଳ ରୂପ ଚିନ୍ତି । କର୍ମର ଅବସାନେ ନିତି ॥ ୬୩
୧୫ ଯେବେ ସେ ପୁଣି ଯତିଜନ । ଦେହତ୍ୟାଗରେ କରେ ମନ ॥ ୬୪
ସୁପୁଣ୍ୟ କାଳ ପୁଣ୍ୟ ସ୍ଥାନ । ତହିଁ ନ ଦେଇ ନିଜ ମନ ॥ ୬୫
ଯେ ସ୍ଥିର ଅଟେ ସୁଖକର । ବସିଣ ସେ ଆସନପର ॥ ୬୬
ଜିଣିଣ ପ୍ରାଣ ପବନକୁ । ମନେ ରୁନ୍ଧିବ ଇନ୍ଦ୍ରିୟଙ୍କୁ ॥ ୬୭
୧୬ ମନକୁ ନିର୍ମଳ ବୁଦ୍ଧିରେ । ସଂଯତ କରି ଧାରଣାରେ ॥ ୬୮
ବୁଦ୍ଧିକି କ୍ଷେତ୍ରଜ୍ଞଙ୍କରେ ନେଇ । ଲୀନ କରିବ ଧୀର ହୋଇ ॥ ୬୯
ସେ କ୍ଷେତ୍ରଜ୍ଞଙ୍କୁ ନେଇ ପୁଣ । ଶୁଦ୍ଧ ଆତ୍ମାରେ ମିଶାଇଣ ॥ ୭୦
ଶୁଦ୍ଧ ଆତ୍ମାକୁ ବ୍ରହ୍ମଠାରେ । ଏକ କରିଣ ଯୋଗୀ ଧୀରେ ॥ ୭୧
ଶାନ୍ତିକି ଯେତେବେଳେ ପାଇ । ସକଳ କୃତ୍ୟକୁ ଛାଡ଼ଇ ॥ ୭୨
୧୭ ସକଳ ଦେବମାନଙ୍କର । ଯେ କାଳ ଅଟେ ଅଧୀଶ୍ୱର ॥ ୭୩
ଯେଉଁ ଆତ୍ମାରେ ତାହାରି ହିଁ । କିଛିହିଁ ଅଧିକାର ନାହିଁ ॥ ୭୪

ଜଗତ ଈଶ୍ୱର ଯେ ଦେବେ । ସେ ତାକୁ କି ଅବା କରିବେ ।। ୭୫
ତ୍ରିଗୁଣ, ଅହଂକାର ଯହିଁ । ମହତ, ପ୍ରକୃତି ଏ ନାହିଁ ।। ୭୬
୧୮ ସେ ଘେନି ଆତ୍ମାଭିନ୍ନ ଅର୍ଥ । ସେ ନୁହେ, ସେ ନୁହେ ଯଥାର୍ଥ।। ୭୭
ଏ ରୂପେ ସବୁ କଥା ଛାଡ଼ି । ଦୁରାତ୍ମାଭାବ ଦୂରେ ଏଡ଼ି ।। ୭୮
କ୍ଷଣେ କ୍ଷଣେକେ ଶ୍ରୀକୃଷ୍ଣଙ୍କ । ଚରଣ ଚିନ୍ତି ହୃଦୟର ।। ୭୯
ସୁହୃଦଭାବ ଅନ୍ୟଠାରେ । ଛାଡ଼ିଣ ସାଧୁଏ ସଂସାରେ ।। ୮୦
ବିଷ୍ଣୁର ପଦ ସର୍ବଠାରୁ । ଚିତ୍ତେ ମଣନ୍ତି ଅତି ଗୁରୁ ।। ୮୧
୧୯ ଏ ରୂପେ ବ୍ୟବସ୍ଥିତ ହୋଇ । ମୁନି ବିଷୟୁଁ ନିବର୍ତ୍ତଇ ।। ୮୨
ବିଷୟ ବାସନାକୁ ହେଳେ । ଖଣ୍ଡି ଶାସ୍ତ୍ରଜ ଜ୍ଞାନବଳେ ।। ୮୩
ପାଦମୂଳରେ ଗୁଦଦ୍ୱାର । ରୁନ୍ଧିଣ କ୍ଳମ କରି ଦୂର ।। ୮୪
ଯେ ନାଭି ଆଦି ଷଟ ସ୍ଥାନ । ତହିଁକି ଟେକଇ ପବନ ।। ୮୫
୨୦ ନାଭିରେ ଅଛି ଯେଉଁ ବାତ । ହୃଦେ ତା କରି ଆରୋପିତ ।। ୮୬
ଉଦାନ ଗତିରେ ତା ନେଇ । ଉରସ୍ଥଳରେ ନିବେଶଇ ।। ୮୭
ମୁନି ହୋଇଣ ଯତ୍ନଚିତ୍ତ । ବୁଦ୍ଧିରେ କରି ନିରୂପିତ ।। ୮୮
ସ୍ୱତାଳୁମୂଳକୁ ସ୍ଥିରେଣ । ଘେନିଯିବ ସେ ସମୀରଣ ।। ୮୯
୨୧ ସେଠାରୁ ପବନକୁ ନେବ । ଭ୍ରୂଲତା ମଧ୍ୟରେ ସ୍ଥାପିବ ।। ୯୦
ଚକ୍ଷୁ, ନାସିକା, ମୁଖ, କର୍ଣ୍ଣ । ଏ ସାତ ପ୍ରାଣର ଅୟନ ।। ୯୧
ଏହାଙ୍କୁ ନିରୋଧ କରିବ । କିଛିହିଁ ଅପେକ୍ଷା ନ ଥିବ ।। ୯୨
ମୁହୂର୍ତ୍ତ ଅର୍ଦ୍ଧେ ତହିଁ ବନ୍ଧେ । ପ୍ରାଣ ସ୍ଥାପିବ ବ୍ରହ୍ମରନ୍ଧ୍ରେ ।। ୯୩
ଅକୁଣ୍ଠଦୃଷ୍ଟି ହୋଇଥିବ । ପରମ ବ୍ରହ୍ମକୁ ଲଭିବ ।। ୯୪
ବ୍ରହ୍ମରନ୍ଧ୍ରକୁ ଭେଦିଯିବ । ପାର୍ଥିବ ଶରୀର ତେଜିବ ।। ୯୫
୨୨ ତେବେ ବ୍ରହ୍ମାଣ୍ଡେ ଯୋଗିଜନ । ବ୍ରହ୍ମଲୋକକୁ କରେ ମନ ।। ୯୬
ଅଥବା ଅଷ୍ଟଗୁଣ ଯୁତ । ସିଦ୍ଧଙ୍କ ସ୍ଥାନେ ବଳେ ଚିତ୍ତ ।। ୯୭
ମନ ଇନ୍ଦ୍ରିୟଗଣ ମେଳେ । ହେ ନୃପ ! ଗମଇଁ ସେ କାଳେ।। ୯୮
୨୩ ଲିଙ୍ଗଶରୀର ଯାହାଙ୍କର । ଅଛଇ ପବନ ମଧ୍ୟର ।। ୯୯
ବ୍ରହ୍ମାଣ୍ଡ ଭିତର ବାହାରେ । ଚରନ୍ତି ସେହୁ ଯୋଗେଶ୍ୱରେ ।।୧୦୦
ବିଦ୍ୟା ତପସ୍ୟା ଯୋଗ ଜ୍ଞାନ । ଲଭିଣ ଥାନ୍ତି ଯେଉଁ ଜନ ।।୧୦୧
ସେମାନଙ୍କର ଯେଉଁ ଗତି । କର୍ମଯୋଗରେ ତା ନ ପାନ୍ତି ।।୧୦୨

୨୪ ହୃଦୟେ ଜ୍ୟୋତିର୍ମୟ ହୋଇ । ସୁଷୁମ୍ନା ନାଡୀ ଯେ ଅଛଇ ॥୧୦୩
ସେହି ମାର୍ଗରେ ଆକାଶରେ । ଯେ ବ୍ରହ୍ମପଥେ ଗତି କରେ ॥୧୦୪
ସେ ବୈଶ୍ୱାନରକୁ ଲଭଇ । ସକଳ ମଳକୁ ତେଜଇ ॥୧୦୫
ହରିର ଚକ୍ର ଶିଶୁମାର । ହେ ନୃପ ! ମିଳଇ ତହିଁର ॥୧୦୬
୨୫ ସେ ଚକ୍ର ଅଟେ ବିଷ୍ଣୁ ସ୍ଥାନ । ସୂର୍ଯ୍ୟାଦି ଗ୍ରହଙ୍କ ଅୟନ ॥୧୦୭
ସୂକ୍ଷ୍ମ ନିର୍ମଳ ଲିଙ୍ଗଦେହେ । ଏକ ହୋଇ ତା' ବଳିଯାଏ ॥୧୦୮
ମିଳଇ ମହର୍ଲୋକେ ଯାଇଁ । ବ୍ରହ୍ମଜ୍ଞାନୀଙ୍କ ସ୍ଥାନ ସେହି ॥୧୦୯
ଯହିଁରେ କଳ୍ପାୟୁଷ ହୋଇ । ଅଛନ୍ତି ଭୃଗୁ ଆଦି ରହି ॥୧୧୦
୨୬ ସେ ପୁଣି କଳ୍ପକ୍ଷୟ କାଳେ । ଅନନ୍ତ ବଦନ ଅନଳେ ॥୧୧୧
ଦହନ ଦେଖି ବ୍ରହ୍ମାଣ୍ଡର । ସେଲୋକୁଁ ହୋଇଣ ବାହାର ॥୧୧୨
ମିଳଇ ବ୍ରହ୍ମଲୋକେ ଯାଇଁ । ଯେ ଦ୍ୱିପରାର୍ଦ୍ଧ ଯାଏ ଥାଇ ॥୧୧୩
ଯହିଁରେ ସିଦ୍ଧେଶ୍ୱର-ଯୁତ । ବିମାନେ ହୋଇଛନ୍ତି ସ୍ଥିତ ॥୧୧୪
୨୭ ଏରୂପେ ଭଗବାନ-ଧ୍ୟାନ । ଜାଣନ୍ତି ନାହିଁ ଯେଉଁ ଜନ ॥୧୧୫
ଦେଖି ତାହାଙ୍କ ଜନ୍ମ ଦୁଃଖ । କୃପାରୁ ହୋଏ ଯେଉଁ ଶୋକ ॥୧୧୬
ସେ ଶୋକ ବ୍ୟତିରେକେ ଯହିଁ । ଇତର ଶୋକ, ଜରା ନାହିଁ ॥୧୧୭
ଯହିଁ ମରଣଦୁଃଖ ନାହିଁ । ଉଦ୍‌ବେଗ ଥିବ ଅବା କାହିଁ ॥୧୧୮
୨୮ କି ରୂପେ ଲଭିବି ଏମାନ । ଏ ଶଙ୍କା ନ ଥାଇ ଯା ମନ ॥୧୧୯
ସେ ଯୋଗୀ ଲିଙ୍ଗଦେହ ବହି । ପୃଥିବୀ ସ୍ୱରୂପକୁ ପାଇ ॥୧୨୦
ଏ ରୂପେ ପୃଥିବୀକି ବଳି । ଜଳ ନିକଟେ ଯାଇ ମିଳି ॥୧୨୧
ଜଳରେ ଜଳରୂପ ହୋଇ । ମିଳଇ ତାକୁ ଲଙ୍ଘିଯାଇ ॥୧୨୨
ତେଜରେ ମିଳି ଅସତ୍ୱରେ[1] । ତହିଁରେ ତେଜରୂପ ଧରେ ॥୧୨୩
ସେ ରୂପେ ପବନରେ ହୋଇ । ପବନ ରୂପକୁ ବହଇ ॥୧୨୪
ସେ ରୂପେ ଆକାଶେ ମିଳଇ । କାଳେ ସେ ରୂପକୁ ଧରଇ ॥୧୨୫
ଯେଉଁ ଆକାଶ ଅପ୍ରମିତ । ଆତ୍ମାର ଲିଙ୍ଗ ସେ ବିଦିତ ॥୧୨୬
୨୯ ଗନ୍ଧକୁ ଘେନଇଁ ଘ୍ରାଣରେ । ରସ ଘେନଇଁ ରସନାରେ ॥୧୨୭
ଦୃଷ୍ଟିରେ ରୂପକୁ ସଂହରେ । ସ୍ପରଶ ଘେନଇଁ ତ୍ୱଚରେ[2] ॥୧୨୮
କର୍ଣ୍ଣରେ ଶବଦକୁ ପାଇ । ପ୍ରାଣରୂପକୁ ଧରିଥାଇ ॥୧୨୯
ସେ ରୂପେ କର୍ମେନ୍ଦ୍ରିୟଙ୍କର । କ୍ରିୟାକୁ ଲଭେ ଯୋଗୀ ନର ॥୧୩୦

---

୧. ଅସତ୍ୱରେ = ବିଳମ୍ବରେ　　୨. ତ୍ୱଚରେ = ଚର୍ମରେ ।

୩୦ ତହିଁ ଉତ୍ତାରୁ ଯୋଗବଳେ । ତ୍ରିବିଧ ଅହଂକାରେ ମିଳେ ।।୧୩୧
ରୂପ ରସାଦି ପଞ୍ଚ ଯହିଁ । ଇନ୍ଦ୍ରିୟ ସଙ୍ଗେ ଲୟ ହୋଇ ।।୧୩୨
ତାମସ ଅହଂକାର ସେହି । ରାଜସ ମନୋମୟ ହୋଇ ।।୧୩୩
ସାତ୍ତ୍ୱିକ ଅଟଇ ଯେ ପୁଣି । ତାହାକୁ ଦେବମୟ ଭଣି ।।୧୩୪
ଏ ତିନି ଅହଂକାର ସଙ୍ଗେ । ମହତ୍ ତତ୍ତ୍ୱରେ ମିଳେ ରଙ୍ଗେ ।।୧୩୫
ଯହିଁରେ ଲୟ ଗୁଣଙ୍କର । ଅଟେ ପ୍ରକୃତି ନାମ ତାର ।।୧୩୬
ତଦନ୍ତେ ନିଜ ଯୋଗବଳେ । ପ୍ରକୃତିସଙ୍ଗେ ଯାଇଁ ମିଳେ ।।୧୩୭
୩୧ ଉପାଧିଙ୍କର ଅବସାନେ । ପ୍ରକୃତି ରୂପେ ବିଦ୍ୟମାନେ ।।୧୩୮
ସ୍ୱୟଂ ଆନନ୍ଦମୟ ହୋଇ । ପରମାତ୍ମାକୁ ସେ ଲଭଇ ।।୧୩୯
ଏ ଅଟେ ଭାଗବତ ଗତି । ଏହାକୁ ଲଭେ ଯେଉଁ ଯତି ।।୧୪୦
ସେ ପୁଣ ଏ ଘୋର ସଂସାରେ । ଜାତ ନୁହଇ ଆଉ ବାରେ ।।୧୪୧
୩୨ *ଯହିଁ ତତ୍କାଳ ମୁକ୍ତି ହୋଇ । କ୍ରମରେ ଯହିଁ ଗତି ପାଇ ।।୧୪୨
ହେ ନୃପ ! ଏ ବେନି ପ୍ରକାର । କହିଲି ତୁମ୍ଭର ଆଗର ।।୧୪୩
ବେଦେ ଏ ହୋଇଛି ଗାୟନ । ଏ ମାର୍ଗ ଅଟେ ସନାତନ ।।୧୪୪
ବ୍ରହ୍ମା ଏ ଆରାଧନା କରି । ପୁଛନ୍ତେ, ଯାହା ଦେବ ହରି ।।୧୪୫
କହିଲେ ପୂର୍ବ ସମୟରେ । ତାହା କହିଲି ତୋ ଆଗରେ ।।୧୪୬
୩୩ ସଂସାରେ ପ୍ରବେଶି ଯେ ଥାଇ । ତାର ମଙ୍ଗଳପ୍ରଦ ହୋଇ ।।୧୪୭
ନାହିଁ ଏଥିରୁ ମାର୍ଗ ଆର । ଯେଉଁ ମାର୍ଗରୁ ମନୁଷ୍ୟର ।।୧୪୮
ଭଗତିଯୋଗ ହରିଠାରେ । ଜନମ ହୁଅଇ ନିର୍ଭରେ ।।୧୪୯
୩୪ ଯେ ବ୍ରହ୍ମା ଅଟେ ନିର୍ବିକାର । ସେ ସର୍ବବେଦ ତିନିବାର ।।୧୫୦
ସମଗ୍ର କରି ବିଚାରିଲେ । ସେହି କଥାକୁ ମୂଳ କଲେ ।।୧୫୧
ଯେଉଁ କଥାରୁ ବିଷ୍ଣୁଠାର । ରତି ହୁଅଇ ପ୍ରାଣୀଙ୍କର ।।୧୫୨
୩୫ ବୁଦ୍ଧିକି ଆଦି ହୋଇ ଯେତେ । ଦୃଶ୍ୟ ପଦାର୍ଥ ଆତ୍ମଗତେ ।।୧୫୩
ଅସିଦ୍ଧ ତାଙ୍କ ଦରଶନ । ନ ଥାନ୍ତେ ଦେଖିବାର ଜନ ।।୧୫୪
ଏ ଅନୁପପତ୍ତି ବଳରେ । ଅନୁମାପକ ଲକ୍ଷଣରେ ।।୧୫୫
ହରି ସକଳ ଭୂତଠାରେ । ଲକ୍ଷିତ ଆତ୍ମା ସ୍ୱରୂପରେ ।।୧୫୬

---

* ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦି ସ୍ଥିତାଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ।। (ଶ୍ରୁତିଃ)

୩୬ ତେଣୁ ହେ ନୃପ ! ସର୍ବାତ୍ମାରେ । ସର୍ବଦା ସକଳ ସ୍ଥାନରେ ॥୧୫୭
ହରିଙ୍କ ଶ୍ରବଣ, କୀର୍ତ୍ତନ । ସ୍ମରଣ କରିବେ ସୁଜନ ॥୧୫୮
୩୭ ସାଧୁଙ୍କ ଆତ୍ମା ଭଗବାନ । ତା' କଥା-ଅମୃତ ଯେ ଜନ ॥୧୫୯
ଧରିଣ ଶ୍ରବଣପୁଟରେ । ପାନ କରନ୍ତି ସେହୁ ନରେ ॥୧୬୦
ବିଷୟେ ଯେହୁ ବିଦୂଷିତ । ପବିତ୍ର କରନ୍ତି ସେ ଚିତ୍ତ ॥୧୬୧
ସେ ବିଷ୍ଣୁ ଚରଣ ନଳିନ । ପାଶକୁ କରନ୍ତି ଗମନ ॥୧୬୨
କୃଷ୍ଣଚରଣପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ॥୧୬୩
ଦ୍ୱିତୀୟ ସ୍କନ୍ଧ ଭାଷାଗୀତେ । ଭଣିଲା ସାଧୁଜନହିତେ ॥୧୬୪
ଶ୍ରବଣମାତ୍ରକେ ଯାହାର । ଭବବାସନା ହୋଏ ଦୂର ॥୧୬୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀମହାପୁରୁଷସଂସ୍ଥାନୁବର୍ଣ୍ଣନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ॥

## ତୃତୀୟୋଽଧ୍ୟାୟଃ

ତୃତୀୟେ ବିଷ୍ଣୁଭକ୍ତେସ୍ତୁ ବୈଶିଷ୍ଟ୍ୟଂ ଶୃଣ୍ୱତୋ ମୁନେଃ ।
ଭକ୍ତ୍ୟୁଦ୍ରେକେଣ ତତ୍‌କର୍ମଶ୍ରବଣାଦର ଈର୍ଯ୍ୟତେ ॥ ୧ ॥

ଶ୍ରୀଶୁକ ଉବାଚ

୧ ତୁ ଯାହା ପଚାରିଲୁ ମୋତେ । ସେ କଥା କହିଲି ମୁଁ ତୋତେ ॥ ୧
ମନୁଷ୍ୟମାନଙ୍କ ମଧ୍ୟରେ । ପଣ୍ଡିତ ଅଟନ୍ତି ଯେ ନରେ ॥ ୨
ତହିଁ ମରିବା ଲୋକଙ୍କର । ଉଚିତ ଅଟେ ଯେ ବେଭାର ॥ ୩
୨ ବ୍ରହ୍ମତେଜକୁ ଇଚ୍ଛା ଯାର । ବ୍ରହ୍ମାଙ୍କୁ ଭଜଇ ସେ ନର ॥ ୪
ଇନ୍ଦ୍ରିୟସୁଖ ଯେ ବାଞ୍ଛଇ । ସେ ନର ଇନ୍ଦ୍ରକୁ ପୂଜଇ ॥ ୫
ପୁତ୍ର କାମନା ଯେ କରଇ । ସେ ପ୍ରଜାପତିଙ୍କି ପୂଜଇ ॥ ୬
୩ ଶ୍ରୀକାମ ପ୍ରାଣୀ ଦୁର୍ଗା ଭଜେ । ତେଜସ୍କାମୀ ଯେ ଅଗ୍ନି[୧] ପୂଜେ ॥ ୭
ଯେ ବସୁ ବାଞ୍ଛା କରେ ଜନ । ବସୁଙ୍କୁ କରେ ସେ ଭଜନ ॥ ୮
ବୀର୍ଯ୍ୟଦାୟକ ରୁଦ୍ରଗଣ । ଭଜିବ ବୀର୍ଯ୍ୟକାମୀ ପୁଣ ॥ ୯

---
୧. ରବି । ଶ୍ରୀଧର ସ୍ୱାମିପାଦ 'ବିଭାବସୁ' ଶବ୍ଦର ଅର୍ଥ 'ଅଗ୍ନି' ବୋଲି କହିଅଛନ୍ତି ।

୪ ଅନ୍ନ ଆଦିରେ ଯାର ଚିନ୍ତା । ପୂଜେ ଅଦିତି ଦେବମାତା ॥ ୧୦
ସ୍ୱର୍ଗକୁ ବାଞ୍ଛା ଯେ କରଇ । ଦ୍ୱାଦଶାଦିତ୍ୟଙ୍କୁ ପୂଜଇ ॥ ୧୧
ଯାର କାମନା ଥାଇ ରାଜ୍ୟେ । ବିଶ୍ୱେ ଦେବାଙ୍କୁ ସେହୁ ପୂଜେ ॥ ୧୨
ପ୍ରଜାଙ୍କ ବଶ[1] ଚିନ୍ତି ମନ । ସାଧଗଣଙ୍କୁ ଭଜେ ଜନ ॥ ୧୩
୫ ଯେ ଜନ ଆୟୁଷ ବାଞ୍ଛଇ । ଅଶ୍ୱିନୀ କୁମାର ପୂଜଇ ॥ ୧୪
ଯେ ଲୋକ ହୋଏ ପୁଷ୍ଟିକାମୀ । ପୂଜା କରଇ ସେହୁ ଭୂମି ॥ ୧୫
ପ୍ରତିଷ୍ଠାକାମୀ ଯେବା ହୋଇ । ସେ ଦ୍ୟାବାପୃଥିବୀ ପୂଜଇ ॥ ୧୬
ସକଳ ଲୋକଙ୍କର ମାତ । ଯେ ଦ୍ୟାବାପୃଥିବୀ ବିଖ୍ୟାତ ॥ ୧୭
୬ ସୁନ୍ଦରପଣେ ଯାର ଭାବ । ଗନ୍ଧର୍ବମାନ ସେ ପୂଜିବ ॥ ୧୮
ଯେ ନର ଇଚ୍ଛେ ଦିବ୍ୟନାରୀ । ପୂଜେ ଉର୍ବଶୀ ଅପସରୀ ॥ ୧୯
ସକଳ ଆଧିପତ୍ୟେ ଚିନ୍ତା । ଯେ କରେ ପୂଜଇ ସେ ଧାତା ॥ ୨୦
୭ ଯେ ନର ଯଶକୁ ବାଞ୍ଛଇ । ସେ ଯଜ୍ଞମୂର୍ତ୍ତିକି ପୂଜଇ ॥ ୨୧
ଧନକୋଷକୁ ଯେ ବାଞ୍ଛଇ । ଜଳପତିକି ସେ ପୂଜଇ ॥ ୨୨
ଯେ ପୁଣ ବିଦ୍ୟାକାମୀ ହେବ । ସେ ମହେଶ୍ୱରଙ୍କୁ ପୂଜିବ ॥ ୨୩
ଏକ ଆରକେ ପ୍ରୀତି ଚିନ୍ତି । ଉମାଙ୍କୁ ପୂଜନ୍ତି ଦମ୍ପତି ॥ ୨୪
୮ ଧର୍ମକୁ ଯେ ବାଞ୍ଛା କରଇ । ଉତ୍ତମଶ୍ଳୋକ[2]ଙ୍କୁ ପୂଜଇ ॥ ୨୫
ସନ୍ତାନବୃଦ୍ଧି ଯେ ବାଞ୍ଛଇ । ପିତୃମାନଙ୍କୁ ସେ ପୂଜଇ ॥ ୨୬
ରକ୍ଷାର୍ଥୀ ଭଜଇ ଯକ୍ଷଙ୍କୁ । ବଳାର୍ଥୀ ମରୁତଗଣଙ୍କୁ ॥ ୨୭
୯ ରାଜାଭାବକୁ ଯେ ବାଞ୍ଛଇ । ମନୁଦେବଙ୍କୁ ସେ ପୂଜଇ ॥ ୨୮
ଶତ୍ରୁମରଣ ଇଚ୍ଛେ ଯେହୁ । ପୂଜଇ ନିର୍ଋତିକି ସେହୁ ॥ ୨୯
କାମ କାମନା ଯେ କରଇ । ସେ ଲୋକ ସୋମକୁ ପୂଜଇ ॥ ୩୦
ପୁରୁଷ ଯେ ପ୍ରକୃତିପର । ତାଙ୍କୁ ନିଷ୍କାମୀ ପୂଜେ ନର ॥ ୩୧
୧୦ ଅକାମ ଅବା ସର୍ବକାମ । ଯେ ଅବା ଅଟେ ମୋକ୍ଷକାମ ॥ ୩୨
ସେ ତୀବ୍ର ଭକ୍ତିଯୋଗେ ମଜ୍ଜି । ପରମ ପୁରୁଷକୁ ଭଜି ॥ ୩୩
୧୧ ଯେ ସର୍ବଦେବଙ୍କୁ ଭଜନ୍ତି । ଏତେ ତାଙ୍କର ମୋକ୍ଷଗତି ॥ ୩୪
ଅଚଳ ଭାବ ହରିଠାରେ । ସଙ୍ଗମୁଁ ବୈଷ୍ଣବ ଜନରେ ॥ ୩୫

---

୧. ବଶ = ସ୍ୱାଧୀନତା (ସ୍ୱାମିପାଦ) । ୨. ବିଷ୍ଣୁ ।

| | | | | |
|---|---|---|---|---|
| ୧୨ | ଯହିଁ ପ୍ରସରେ ଦିବ୍ୟ ଜ୍ଞାନ । | ନିବର୍ତ୍ତେ ରାଗ ଆଦିମାନ | ॥ | ୩୬ |
| | ମନପ୍ରସାଦହେତୁ ଯହିଁ । | ବୈରାଗ୍ୟ ଦୁଇଲୋକେ ହୋଇ | ॥ | ୩୭ |
| | କୈବଲ୍ୟପଥ ରୂପେ ମତ । | ଭଗତିଯୋଗ ଯହୁଁ ଜାତ | ॥ | ୩୮ |
| | ହରିକଥାରେ ସୁଖୀ ହୋଇ । | କେ ଅବା ରତି ନ କରଇ | ॥ | ୩୯ |

## ଶ୍ରୀଶୌନକ ଉବାଚ

| | | | | |
|---|---|---|---|---|
| ୧୩ | ଏମନ୍ତ ଶୁକମୁଖୁଁ ଶୁଣି । | ଭରତ ବଂଶ ଚୂଡ଼ାମଣି | ॥ | ୪୦ |
| | ଯେ କବି ବ୍ୟାସଙ୍କ ନନ୍ଦନ । | ତାଙ୍କୁ କି କଲା ପ୍ରଶ୍ନ ଆନ | ॥ | ୪୧ |
| ୧୪ | ସେ କଥା ଶ୍ରବଣେ ଆମ୍ଭର । | ଇଚ୍ଛା ହେଉଛି ନିରନ୍ତର | ॥ | ୪୨ |
| | ହେ ସୂତ ! ସେ କଥା ଆମ୍ଭଙ୍କୁ । | ସମର୍ଥ ହୁଅ କହିବାକୁ | ॥ | ୪୩ |
| | ଯହିଁ ଉତ୍ତରଫଳ ହୋଇ । | ହରିର କଥାମାନ ଥାଇ | ॥ | ୪୪ |
| | ସାଧୁ ସଭାରେ ଉତପନ୍ନ । | ହୋନ୍ତି ନିଶ୍ଚେ ସେ କଥାମାନ | ॥ | ୪୫ |
| ୧୫ | ସେ ରାଜା ମହାଭାଗବତ । | ପାଣ୍ଡବ ବଂଶେ ମହାରଥ | ॥ | ୪୬ |
| | ବାଳକକ୍ରୀଡ଼ାରେ ଖେଳନ୍ତେ । | ଘେନିଲା କୃଷ୍ଣଲୀଳା ଚିତ୍ତେ | ॥ | ୪୭ |
| ୧୬ | ବ୍ୟାସକୁମର ସତ୍ତ୍ୱଗୁଣ । | ସ୍ୱଭାବେ ବିଷ୍ଣୁପରାୟଣ | ॥ | ୪୮ |
| | ବିଷ୍ଣୁର ଗୁଣରେ ଯେ ସାର । | ସେ କଥାମାନ ନିରନ୍ତର | ॥ | ୪୯ |
| | ସାଧୁମାନଙ୍କର ସଙ୍ଗରେ । | ଜନିତ ହୁଅନ୍ତି ସଂସାରେ | ॥ | ୫୦ |
| ୧୭ | ଏ ରବି ଉଦେ ଅସ୍ତ ହୋଇ । | ପ୍ରାଣୀଙ୍କ ଆୟୁଷ ହରଇ | ॥ | ୫୧ |
| | ସେ ଲୋକ ଆୟୁଷ ବାହାରେ । | ଆନ ଆୟୁଷକୁ ଏ ହରେ | ॥ | ୫୨ |
| | ବିଷ୍ଣୁ କଥାରେ ଯେଉଁ ଜନ । | ନେଉଣ ଥାଇ କାଳମାନ | ॥ | ୫୩ |
| ୧୮ | ତରୁଏ ଅଜ୍ଞାନ ପ୍ରକାରେ । | ଜିଇ ନାହାନ୍ତି କି ସଂସାରେ | ॥ | ୫୪ |
| | ଲୋହକାରଙ୍କ ଘରେ ଭାତି । | ସେ କି ନିଶ୍ୱାସ ନ ଛାଡ଼ନ୍ତି | ॥ | ୫୫ |
| | ଗ୍ରାମେ କାନନେ ପଶୁଗଣ । | ନ ଭକ୍ଷନ୍ତି କି ଜଳ ତୃଣ | ॥ | ୫୬ |
| | ଯେ ବା ଅପର ପଶୁଗଣ । | କରନ୍ତି ନାହିଁ କି ରମଣ | ॥ | ୫୭ |
| ୧୯ | ଶ୍ୱାନ-ଘୁଷୁରି-ଓଟ-ଖର । | ଏଣେ ସଦୃଶ ପଶୁନର | ॥ | ୫୮ |
| | ଯା' କର୍ଣ୍ଣପଥେ କଦାଚିତ । | ବିଷ୍ଣୁ ନୋହିଲେ ଉପଗତ | ॥ | ୫୯ |
| ୨୦ | ଯେ ଉରୁକ୍ରମ ଭଗବାନ । | ତାହାଙ୍କ ପରାକ୍ରମମାନ | ॥ | ୬୦ |
| | ନ ଶୁଣେ ଯେଉଁ କର୍ଣ୍ଣ ଦୁଇ । | ତାହାକୁ ବିଳ ବୋଲି କହି | ॥ | ୬୧ |

ଉରୁଗାୟର ଗାଥାମାନ । ଯେ ଜିହ୍ୱା ନ କରେ ଗାୟନ ।। ୬୨
ଭେକର ଜିହ୍ୱା ପ୍ରାୟ ହୋଇ । ସେ ଦୁଷ୍ଟ ନିଷ୍ଫଳ ଅଟଇ ।। ୬୩
୨୧ ଯେଉଁ ଉତ୍ତମ ଅଙ୍ଗେ ପାଟ । ପଟୁକା ଶୋଭଇ ମୁକୁଟ ।। ୬୪
ସେ ଯେବେ କୃଷ୍ଣେ ନମ୍ର ନୋହି । ଭାର ବୋଲିଣ ତାକୁ କହି ।। ୬୫
ଯେଉଁ ସୁନ୍ଦର ବେନି ଭୁଜେ । କାଞ୍ଚନ କଙ୍କଣ ବିରାଜେ ।। ୬୬
ହରିଙ୍କି ଯେବେ ନ ପୂଜଇ । ସେ ଶବକର ସମ ହୋଇ ।। ୬୭
୨୨ କୃଷ୍ଣର ନାନା ମୂର୍ତ୍ତିମାନ । ନ ଦେଖେ ଯେବଣ ନୟନ ।। ୬୮
ତହିଁରୁ କିଛି କାର୍ଯ୍ୟ ନାହିଁ । ମୟୂରପିଚ୍ଛ ସମ ସେହି ।। ୬୯
ଯେ ପାଦ ଦୁଇ ମନୁଷ୍ୟର । ନ ଗମେ ବିଷ୍ଣୁର ମନ୍ଦିର ।। ୭୦
ତରୁ ଜନମକୁ ସେ ବେନି । ଭଜିଅଛନ୍ତି ବୋଲି ମାନି ।। ୭୧
୨୩ କୃଷ୍ଣଭଗତ ପାଦରେଣୁ । ମର୍ତ୍ତ୍ୟ ନ ବହେ ଦେହେ ଯେଣୁ ।। ୭୨
ସେଲୋକୁଁ କିଛି କାର୍ଯ୍ୟ ନାହିଁ । ଜିଅନ୍ତା ଶବ ତାକୁ କହି ।। ୭୩
ଶ୍ରୀବିଷ୍ଣୁପାଦରେ ଲାଗିଣ । ଯେଉଁ ତୁଳସୀ ଥାଇ ପୁଣ ।। ୭୪
ତା' ଗନ୍ଧ ନ ଜାଣଇଁ ଯେହୁ । ନିଶ୍ୱାସ ବହି ଶବ ସେହୁ ।। ୭୫
୨୪ କଠିନ ପାଷାଣର ପ୍ରାୟ । ଲୋକର ଅଟେ ସେ ହୃଦୟ ।। ୭୬
ଶୁଣନ୍ତେ ହରିନାମ ଯହିଁ । ବିକାର ଉପୁଜଇ ନାହିଁ ।। ୭୭
ବିକାର ଜାତ ହୋଏ ଯେବେ । ଲୋଚନେ ଅଶ୍ରୁଗଳେ ତେବେ ।। ୭୮
ଲୋମମାନଙ୍କରେ ହରଷ । ଅବଶ୍ୟ ହୁଅଇ ପ୍ରକାଶ ।। ୭୯
୨୫ ଅଭକ୍ତ ଲୋକର ଏ ଯେଣୁ । ସକଳ ବ୍ୟର୍ଥ ଅଟେ ତେଣୁ ।। ୮୦
ତୁମ୍ଭେ ଯେ ବୈଷ୍ଣବ ପ୍ରଧାନ । କହୁଛ ମଙ୍ଗଳ ବଚନ ।। ୮୧
ଯେ ଆତ୍ମବିଦ୍ୟାରେ ପଣ୍ଡିତ । ଅଟନ୍ତି ବ୍ୟାସଙ୍କର ସୁତ ।। ୮୨
ଉତ୍ତମ କରିଣ ନୃପତି । ପୁଚ୍ଛନ୍ତେ ତାହାଙ୍କୁ ସେ ଯତି ।। ୮୩
କହିଲେ ପୂର୍ବେ ବାକ୍ୟ ଯାହି । ଏବେ ଆମ୍ଭଙ୍କୁ କହ ତାହି ।। ୮୪
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସନ୍ତୋଷ ସାଧୁଜନ ତେଣେ ।। ୮୫

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ
ତୃତୀୟୋଽଧ୍ୟାୟଃ ।।

# ଚତୁର୍ଥୋଽଧ୍ୟାୟଃ

ତୁର୍ଯ୍ୟେ ପରୀକ୍ଷିତା ପୃଷ୍ଟଂ ସୃଷ୍ଟ୍ୟାଦି ହରିଚେଷ୍ଟିତମ୍ ।
ଶୁକେନ ବ୍ରହ୍ମତତ୍ପୁତ୍ରସଂବାଦେନୋପବର୍ଣ୍ଣ୍ୟତେ ॥ ୧ ॥

ଶ୍ରୀସୂତ ଉବାଚ

୧ ଆତ୍ମତତ୍ତ୍ୱର ଯେ ନିଶ୍ଚୟ । ସେ ଯହୁଁ ହୋଇଛି ଉଦୟ ॥ ୧
ଶୁକର ଏମନ୍ତ ବଚନ । ଶୁଣିଣ ଉତ୍ତରାନନ୍ଦନ ॥ ୨
କୃଷ୍ଣର ଠାରେ ନିଜ ମତି । ଦୃଢ଼େ ବହିଲା ନରପତି ॥ ୩
୨ ଦେହ, କଳତ୍ର, ସୁତ, ଘର । ପଶୁ, ଦ୍ରବିଣ, ବନ୍ଧୁ ଆର ॥ ୪
ଯେ ପୁଣ ଅବିକଳ ହୋଇ । ଆପଣା ରାଜ୍ୟ ନିତ୍ୟେ ତହିଁ ॥ ୫
ନିରୂଢ଼ ମମତା ଯେ ଥିଲା । ତାହାକୁ ପରିତ୍ୟାଗ କଲା ॥ ୬
୩ ସେ ମହାଯଶସ୍ୱୀ[1] କୃଷ୍ଣର । ଚରିତ ଶ୍ରବଣେ ସାଦର ॥ ୭
ଏ କଥା ପୁଚ୍ଛିଲା ନିୟତେ । ତୁମ୍ଭେ ଯା ପଚାରିଲ ମୋତେ ॥ ୮
୪ ମରିବା ଜାଣି ଆପଣାର । ତ୍ରିବର୍ଗ କର୍ମ କରି ଦୂର ॥ ୯
ଆତ୍ମଭାବକୁ ଅତିଶୟେ । ଗଲେ ସେ ଭଗବାନ ଠାଏ ॥ ୧୦
ଶୁକଙ୍କୁ ପୁଣ ଏ ପ୍ରକାରେ । ବଚନ ପୁଚ୍ଛିଲେ ସେଠାରେ ॥ ୧୧

ଶ୍ରୀପରୀକ୍ଷିତ ଉବାଚ

୫ ହେ ବିପ୍ର ! ତୁମ୍ଭର ବଚନ । ଅଟଇ ଅତି ସମୀଚୀନ ॥ ୧୨
ତୁମ୍ଭେ ସର୍ବଜ୍ଞ ଅକଳ୍ମଷ । ପ୍ରକାଶୁଅଛ ହରିଯଶ ॥ ୧୩
ତୁମ୍ଭ ବଚନ ଶୁଣି ମୋର । ଅଜ୍ଞାନ ହେଉଅଛି ଦୂର ॥ ୧୪
୬ ବ୍ରହ୍ମାଦିମାନେ ଆତ୍ମମତେ । ତର୍କି ଯା' ନ ପାରନ୍ତି ଚିତ୍ତେ ॥ ୧୫
ଆତ୍ମମାୟାରେ ସେ ଜଗତ । ଯେ ରୂପେ ସର୍ଜଇ ଅଚ୍ୟୁତ ॥ ୧୬
ସେ କଥା ଜାଣିମାକୁ ମୋର । ପୁଣି ହିଁ ହେଉଛି ବିଚାର ॥ ୧୭
୭ ଅପରିମିତ ଶକ୍ତି ଯାର । ପରମ ପୁରୁଷ ଈଶ୍ୱର ॥ ୧୮
ଯେବଣ ଯେବଣ ଶକତି । ଆଶ୍ରୟ କରି ଲକ୍ଷ୍ମୀପତି ॥ ୧୯
ଯେମନ୍ତେ ଜଗତ ପାଳଇ । ପୁଣି ଯେମନ୍ତେ ସଂହାରଇ ॥ ୨୦
କ୍ରୀଡ଼ା କରନ୍ତେ ଆପଣାକୁ । କରଇ ବ୍ରହ୍ମାଦି ରୂପକୁ ॥ ୨୧
କ୍ରୀଡ଼ା କରନ୍ତେ ନାନା ମତେ । ରୂପକୁ ଧରଇ ଜଗତେ ॥ ୨୨

---

୧. ମନସ୍ୱୀ (ମୂଳପାଠାନ୍ତର) ।

| | | | | | | |
|---|---|---|---|---|---|---|
| ୮ | ଅଦ୍ଭୁତକର୍ମା ଭଗବାନ | । | ତାର ଚେଷ୍ଟାକୁ ଜ୍ଞାନୀଜନ | ।। | ୨୩ |
| | ତରକି ନ ପାରନ୍ତି ଚିତ୍ତେ | । | ଏମନ୍ତ ଲାଗୁଅଛି ମୋତେ | ।। | ୨୪ |
| ୯ | ଏକ ଅଟଇ ଭଗବାନ | । | ଧରି ବ୍ରହ୍ମାଦି ରୂପମାନ | ।। | ୨୫ |
| | ଏକା ବେଳରେ ପ୍ରକୃତିର | । | ଗୁଣକୁ ଧରଇ ଈଶ୍ୱର | ।। | ୨୬ |
| | କିମ୍ବା କ୍ରମରେ ତାର ଗୁଣ | । | ଅନେକ କରଇ ଗ୍ରହଣ | ।। | ୨୭ |
| ୧୦ | ମୋହର ଅଛି ଏ ସନ୍ଦେହ | । | ଯଥାର୍ଥ କରି ଏହା କହ | ।। | ୨୮ |
| | ଶବଦ ବ୍ରହ୍ମ ଅଛ ଜାଣି | । | ପରମ ବ୍ରହ୍ମହିଁ ପ୍ରମାଣି | ।। | ୨୯ |

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୧୧ | ହରିର ଗୁଣାନୁକଥନ | । | ଏମନ୍ତ ପୁଚ୍ଛନ୍ତେ ରାଜନ | ।। | ୩୦ |
| | ସ୍ମରଣ କରିଣ ବିଷ୍ଣୁଙ୍କୁ | । | ଆରମ୍ଭ କଲେ କହିବାକୁ | ।। | ୩୧ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୨ | ନମସ୍ତେ ପରମ ପୁରୁଷ | । | ଅନନ୍ତ ଅଟେ ଯାର ଯଶ | ।। | ୩୨ |
| | ପ୍ରପଞ୍ଚ ଜନମ ପାଳନ | । | ନାଶ ଲୀଳାରେ ଭଗବାନ | ।। | ୩୩ |
| | କ୍ରମରେ ରଜ ଆଦି ତିନି | । | ଶକତି ଅଛନ୍ତି ଯେ ଘେନି | ।। | ୩୪ |
| | ସକଳ ପ୍ରାଣୀମାନଙ୍କର | । | ଅନ୍ତରେ କରେ ଯେ ବିହାର | ।। | ୩୫ |
| | ଲକ୍ଷି ନୁହଇ ମାର୍ଗ ଯାର | । | ଅଟନ୍ତି ଏମନ୍ତ ଈଶ୍ୱର | ।। | ୩୬ |
| ୧୩ | ମହତ ଜନଙ୍କର କ୍ଳେଶ | । | ଯେ ପ୍ରଭୁ କରନ୍ତି ବିନାଶ | ।। | ୩୭ |
| | ଅସାଧୁ ଜନଙ୍କ ସଂହାରେ | । | ଅଖିଳ ସତ୍ତ୍ୱ ମୂର୍ତ୍ତି ଧରେ | ।। | ୩୮ |
| | ପରମହଂସ ଆଶ୍ରମରେ | । | ଯେ ପୁଣି ବ୍ୟବସ୍ଥିତ କରେ | ।। | ୩୯ |
| | ଯେ ତାଙ୍କୁ ଆତ୍ମତତ୍ତ୍ୱ ଦେଇ | । | ମୁଁ ପୁଣି ତାହାଙ୍କୁ ନମଇ | ।। | ୪୦ |
| ୧୪ | ଭଗତ ଜନମାନଙ୍କର | । | ପାଳନକର୍ତ୍ତା ଯେ ଈଶ୍ୱର | ।। | ୪୧ |
| | ଅଭକ୍ତ ମନୁଷ୍ୟଙ୍କୁ ଦୂର | । | ଦିଗହିଁ ଅଟଇ ଯାହାର | ।। | ୪୨ |
| | ଯାହାର ସମ କାହିଁ ନାହିଁ | । | ଅଧିକ ଅବା ଥିବ କାହିଁ | ।। | ୪୩ |
| | ଏମନ୍ତ ଅଇଶ୍ୱର୍ଯ୍ୟେ କରି | । | ସ୍ୱରୂପବ୍ରହ୍ମେ ଯେ ବିହରି | ।। | ୪୪ |
| | ସେ ପ୍ରଭୁ ନିର୍ଦ୍ଦୋଷ ଶରୀର | । | ତାହାଙ୍କୁ ମୋର ନମସ୍କାର | ।। | ୪୫ |
| ୧୫ | ଯାହାର ଶ୍ରବଣ, କୀର୍ତ୍ତନ | । | ଯାହା ସ୍ୱରୂପ ଦରଶନ | ।। | ୪୬ |
| | ଯାହାର ବନ୍ଦନ, ସ୍ମରଣ | । | ଯା' ପୂଜା କଲୁଷଦହନ | ।। | ୪୭ |
| | ସୁଭଦ୍ର ଅଟେ ଯଶ ଯାର | । | ତାହାଙ୍କୁ ମୋର ନମସ୍କାର | ।। | ୪୮ |

୧୬ ପଣ୍ଡିତଜନ ଯାର ପାଦେ । ସେବା ସଂପାଦି ଅପ୍ରମାଦେ ॥ ୪୯
ମନରେ ଇହ ପର ବେନି । ଲୋକରେ ସଂଗକୁ ନ ଘେନି ॥ ୫୦
ଆତ୍ମାରେ ଶ୍ରମ ନ ଲଭନ୍ତି । ଅନ୍ତେ ଲଭନ୍ତି ବ୍ରହ୍ମଗତି ॥ ୫୧
ମଙ୍ଗଳ ଅଟେ କୀର୍ତ୍ତି ଯାର । ତାହାକୁ ମୋର ନମସ୍କାର ॥ ୫୨
୧୭ ଯେ ପ୍ରାଣୀ ତପ ଦାନ କରେ । ଯଶସ୍ୱୀ, ମନସ୍ୱୀ ସଂସାରେ ॥ ୫୩
ଯେ ମନ୍ତ୍ରମାନ ଜାଣିଥାନ୍ତି । ମଙ୍ଗଳ କର୍ମ ଆଚରନ୍ତି[୧] ॥ ୫୪
ଏଣେ ଅର୍ଜିତ କର୍ମଫଳ । ଯାକୁ ନ ଅର୍ପିଲେ ନିଷ୍ଫଳ ॥ ୫୫
ସେ ସୁମଙ୍ଗଳ ଯଶୋଧର । ନମୋ ନମ ତାହାଙ୍କୁ ମୋର ॥ ୫୬
୧୮ କିରାତ, ହୂଣ, ଆନ୍ଧ୍ର ଆର । ପୁଳିନ୍ଦ, ପୁକ୍କସ, ଆଭୀର ॥ ୫୭
କଙ୍କ, ଯବନ, ଖଶ ଆଦି । ଯେ ଆନ ପାପଜାତି ସିଦ୍ଧି ॥ ୫୮
ସେମାନେ ଯା ଭକ୍ତସେବାରେ । ଶୁଦ୍ଧିକି ଲଭନ୍ତି ସଂସାରେ ॥ ୫୯
ଏମନ୍ତ ପ୍ରଭାବ ଯାହାର । ତାହାଙ୍କୁ ମୋର ନମସ୍କାର ॥ ୬୦
୧୯ ଯେ ଆତ୍ମା ଅଟେ ଜ୍ଞାନୀଙ୍କର । ସକଳ ଲୋକଙ୍କ ଈଶ୍ୱର ॥ ୬୧
ଏ ତିନି ବେଦ ଯାର ଦେହ । ଯେ ଧର୍ମମୟ ତପୋମୟ ॥ ୬୨
ନିର୍ମଳ ଚିତ୍ତେ ଯୋଗୀଜନେ । ବ୍ରହ୍ମା ଶଙ୍କର ଆଦିମାନେ ॥ ୬୩
ନାନାପ୍ରକାରେ ଯାର ମୂର୍ତ୍ତି । ତର୍କିଣ ଗୋଚର କରନ୍ତି ॥ ୬୪
ଅଶେଷମୂର୍ତ୍ତି ଭଗବାନ । ସେ ମୋତେ ହେଉ ସୁପ୍ରସନ୍ନ ॥ ୬୫
୨୦ ଯେ ଲକ୍ଷ୍ମୀ-ଯଜ୍ଞ-ପ୍ରଜା-ପତି । ମତି-ଲୋକ-ଧରଣୀ-ପତି ॥ ୬୬
ଅନ୍ଧକ, ବୃଷ୍ଣି ଆଦିଙ୍କର । ଯେ ପତି ଗତି ଯେ ଈଶ୍ୱର ॥ ୬୭
ପ୍ରସନ୍ନ ହେଉନ୍ତୁ ସେ ମୋତେ । ସାଧୁଙ୍କ ଗତି[୨] ଯେ ଜଗତେ ॥ ୬୮
୨୧ ଯାହାର ପାଦଯୁଗଧ୍ୟାନ । ସେହି ସେ ସମାଧି ଭଜନ ॥ ୬୯
ତେଣେ ଶୋଧିତ ବୁଦ୍ଧିଦ୍ୱାରେ । ଦେଖନ୍ତି ଆତ୍ମତତ୍ତ୍ୱ ନରେ ॥ ୭୦
ଜ୍ଞାନୀମାନେ ହିଁ ଯେ ଯାହାରେ । ଆପଣା ରୁଚି ଅନୁସାରେ ॥ ୭୧
ସଗୁଣନିର୍ଗୁଣାଦି ଭେଦେ । ଯାକୁ ବଖାଣୁଥାନ୍ତି ବେଦେ ॥ ୭୨
ସେ ଯେ ମୁକୁନ୍ଦ ଭଗବାନ । ମୋତେ ହୁଅନ୍ତୁ ସୁପ୍ରସନ୍ନ ॥ ୭୩
୨୨ ଯେ ପୂର୍ବ କଳ୍ପର ଆଦ୍ୟରେ । ପିତାମହର ହୃଦୟରେ ॥ ୭୪
ସୃଷ୍ଟି କଳ୍ପନା ପ୍ରକାଶିଲେ । ସରସ୍ୱତୀକି ନିଯୋଜିଲେ ॥ ୭୫

---

୧. ଆରାଧନ୍ତି । ସୁମଙ୍ଗଳାଃ ସଦାଚାରାଃ (ସ୍ୱାମୀ)
୨. ପତି (ମୂଳପାଠାନ୍ତର) ।

| | | | |
|---|---|---|---|
| | ଶିକ୍ଷାଦି ଲକ୍ଷଣେ ସଂଯୁକ୍ତ । | ମୁଖରୁ ହେଲା ପ୍ରାଦୁର୍ଭୂତ | ॥ ୭୬ |
| | ସେ ଋଷିମାନଙ୍କ ଋଷଭ । | ପ୍ରସନ୍ନ ହୋନ୍ତୁ ବାସୁଦେବ | ॥ ୭୭ |
| ୨୩ | ପୃଥିବୀ ଆଦି ମହାଭୂତେ । | ପୁରଙ୍କୁ ଭିଆଇ ଜଗତେ | ॥ ୭୮ |
| | ତହିଁ ଯେ ଶୟନ କରଇ । | ଏ ଘେନି ପୁରୁଷ ବୋଲାଇ | ॥ ୭୯ |
| | ଇନ୍ଦ୍ରିୟ ଏକାଦଶେ ଯୁତ । | ଭୂମ୍ୟାଦି ପଞ୍ଚ ମହାଭୂତ | ॥ ୮୦ |
| | ଷୋଡ଼ଶ ଗୁଣ ଏ ବୋଲାଇ । | ଯେ ଏହା ପ୍ରକାଶ କରଇ | ॥ ୮୧ |
| | ଷୋଡ଼ଶକଳା ରୂପ ହୋଇ । | ସକଳ କଥା ଯେ ଜାଣଇଁ | ॥ ୮୨ |
| | ସେ ମୋର ବାକ୍ୟ ବିଭୂଷଣ । | କରନ୍ତୁ ପ୍ରଭୁ ନାରାୟଣ | ॥ ୮୩ |
| ୨୪ | ବ୍ୟାସଙ୍କୁ ନମସ୍କାର ମୋର । | ଅମିତ ଅଟେ ବୁଦ୍ଧି ଯାର | ॥ ୮୪ |
| | ଯା ମୁଖପଦ୍ମୁଁ ଜ୍ଞାନମୟ । | ମରନ୍ଦ ପିବେ ଜଗତ୍‌ତ୍ରୟ[1] | ॥ ୮୫ |
| ୨୫ | ହେ ନୃପ ତୁମ୍ଭେ ମୋତେ ଯାହା । | ପଚାରୁଅଛ ପୂର୍ବେ ଏହା | ॥ ୮୬ |
| | ବ୍ରହ୍ମାଙ୍କୁ ନାରଦ ପୁଛିଲେ । | ବ୍ରହ୍ମାଏ ତାଙ୍କୁ ତା କହିଲେ | ॥ ୮୭ |
| | ସାକ୍ଷାତ ହୋଇ ଚକ୍ରପାଣି । | ବ୍ରହ୍ମାଙ୍କୁ ଥିଲେ ଯାହା ଭଣି | ॥ ୮୮ |
| | ପ୍ରଣତ ଜନମାନଙ୍କର । | ବିପଦ କରେ ଯେ ସଂହାର | ॥ ୮୯ |
| | ସେ ହରିଚରଣ ପଙ୍କଜ । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ॥ ୯୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀ ମହାପୁରୁଷସଂସ୍ଥାନୁବର୍ଣ୍ଣନଂ
ନାମ ଚତୁର୍ଥୋଽଧ୍ୟାୟଃ ॥

## ପଞ୍ଚମୋଽଧ୍ୟାୟଃ

ପଞ୍ଚମେ ନାରଦେନାଥ ପୃଷ୍ଟଃ ସୃଷ୍ଟ୍ୟାଦି ବକ୍ତ୍ୟଜଃ ।
ହରେର୍ଲୀଳାଂ ବିରାଟ ସୃଷ୍ଟିଂ କାଳକର୍ମାଦିଶକ୍ତିଭିଃ ॥ ୧ ॥

ଶ୍ରୀନାରଦ ଉବାଚ

| | | | |
|---|---|---|---|
| ୧ | ହେ ଦେବଦେବ ନମୋଽସ୍ତୁତେ । | ତୁ ଭୂତଭାବନ ଜଗତେ | ॥ ୧ |
| | ତୁମ୍ଭେ ସକଳୁଁ ଆଦ୍ୟେ ଜାତ । | ଯେଣେ ଲକ୍ଷିତ ଆତ୍ମତତ୍ତ୍ୱ | ॥ ୨ |
| | ସେ ବିଷ୍ୟ[2] ବିଶେଷି ବଖାଣ । | ଯେ ଅଟେ ଜ୍ଞାନକୁ କାରଣ | ॥ ୩ |

---

୧. ଭକ୍ତଚୟ । ତୁଂ ସୌମ୍ୟା ଭକ୍ତାଃ (ସ୍ୱାମୀ) ୨. ବିଷୟ ।

| | | | | | |
|---|---|---|---|---|---|
| ୨ | ଯେଣୁ ଏ ଜଗତ ପ୍ରକାଶ | । | ଯେ ଅଟେ ଏହାର ନିବାସ | ॥ | ୪ |
| | ଯେ ଏହା ସର୍ଜନା କରଇ | । | ଯାହାଠାରେ ଏ ଲୀନ ହୋଇ | ॥ | ୫ |
| | ଏ ଅଟେ ଅଧୀନ ଯାହାର | । | ଯେ ଅବା ସ୍ୱରୂପ ଏହାର | ॥ | ୬ |
| | ଏ ସର୍ବକଥା ଯଥାର୍ଥରେ | । | ପ୍ରକାଶ କର ମୋ ଆଗରେ | ॥ | ୭ |
| ୩ | ଏ ସର୍ବକଥା ତୁମ୍ଭେ ଜାଣ | । | ତ୍ରିକାଳେ ଯେତେ ଜୀବଗଣ | ॥ | ୮ |
| | ତୁମ୍ଭେ ତାହାଙ୍କ ଅଧୀଶ୍ୱର | । | ଏ ବିଶ୍ୱ ତୁମ୍ଭଙ୍କୁ ଗୋଚର | ॥ | ୯ |
| | ଯେସନେ କର-ଆମଳକଂ[୧] | । | ଉତ୍ତମ କରି ଦେଖେ ଲୋକ | ॥ | ୧୦ |
| ୪ | ତୁମ୍ଭର ଜ୍ଞାନଦାତା ଯେହି | । | ତୁମ୍ଭ ଆଶ୍ରୟ ଯେ ଅଟଇ | ॥ | ୧୧ |
| ୫ | ତୁମ୍ଭେ ଅଧୀନ ଅଟ ଯାର | । | ତୁମ୍ଭର ଅଟେ ଯେ ଆକାର | ॥ | ୧୨ |
| | ଭୂତଙ୍କୁ ଭୂତେଁ ଏକ ହୋଇ | । | ମାୟାରେ ଜାତ କରୁ ତୁହି | ॥ | ୧୩ |
| | ପରସକାଶୁଁ ତାହାଙ୍କର | । | ପରାଭବକୁ କରି ଦୂର | ॥ | ୧୪ |
| | ତାଙ୍କୁ ଆତ୍ମାରେ ପ୍ରତିପାଳୁ | । | ତୁ ନାଥ ! ନିଜ ଶକ୍ତିବଳୁ | ॥ | ୧୫ |
| | ଉର୍ଣ୍ଣନାଭିର ପ୍ରାୟ ହୋଇ | । | ସର୍ଜୁ ତୁ କ୍ଲମ ତୋର ନାହିଁ | ॥ | ୧୬ |
| ୬ | ଉତ୍ତମ କନିଷ୍ଠ ମଧ୍ୟମେ | । | ବିଖ୍ୟାତ ଗୁଣ ରୂପ ନାମେ | ॥ | ୧୭ |
| | ସ୍ଥୂଳ ଅସ୍ଥୂଳ ହୋଇ ଯେତେ | । | ପ୍ରାଣୀ ଅଛନ୍ତି ଏ ଜଗତେ | ॥ | ୧୮ |
| | ସମସ୍ତେ ତୋହଠାରୁ ଜାତ | । | ଏମନ୍ତ ମଣଇଁ ମୁଁ ଚିତ୍ତ | ॥ | ୧୯ |
| ୭ | ତୁମ୍ଭେ ସଂଯତ ହୋଇ ଯେଣୁ | । | ଘୋର ତପସ୍ୟା କ୍ଲଲ ତେଣୁ | ॥ | ୨୦ |
| | ଆମ୍ଭ ମନରେ ଖେଦ ଜାତ | । | ଆଶଙ୍କା ହେଉଛି ବହୁତ | ॥ | ୨୧ |
| ୮ | ତୁମ୍ଭେ ସର୍ବଜ୍ଞ ସର୍ବେଶ୍ୱର | । | ଯାହା ପଚାରୁଛି ଆଗର | ॥ | ୨୨ |
| | ତୁମ୍ଭର ଠାରୁ ଶିକ୍ଷା ପାଇ | । | ସେ ସବୁ ଯେମନ୍ତେ ଜାଣଇଁ | ॥ | ୨୩ |
| | ସେ ରୂପେ ବିଶେଷିଣ ମୋତେ | । | ଜଣାଅ ପ୍ରଶ୍ନ ଅନୁମତେ | ॥ | ୨୪ |

ଶ୍ରୀବ୍ରହ୍ମା ଉବାଚ

| | | | | | |
|---|---|---|---|---|---|
| ୯ | ହେ ବତ୍ସ ! ସନ୍ଦେହ ତୋହର | । | ଅଟଇ ଅତି ମନୋହର | ॥ | ୨୫ |
| | କୃଷ୍ଣର ଗୁଣଗାନ ପଥେ | । | ଯେଣୁ ପ୍ରେରିତ କଲୁ ମୋତେ | ॥ | ୨୬ |
| | ଏ ଘେନି ତୋହର ମନରେ | । | କରୁଣା ଅଛି ମୋହଠାରେ | ॥ | ୨୭ |
| ୧୦ | ତୁ ଯାହା ପଚାରିଲୁ ମୋତେ | । | ଈଶ୍ୱରବୁଦ୍ଧି କରି ଚିତ୍ତେ | ॥ | ୨୮ |
| | ସେ ନୁହେ ତୋର ମିଥ୍ୟାବାଣି | । | ମୋଠାରୁ ବଡ଼କୁ ନ ଜାଣି | ॥ | ୨୯ |
| | ଏତେ ପ୍ରଭାବ ଅଛି ମୋର | । | ଯେଣୁ ତୁ କରିଛୁ ଗୋଚର | ॥ | ୩୦ |

୧. କରସ୍ଥିତ ଅଁଳା ।

୧୧ ଯେ ହରି ସ୍ୱପ୍ରକାଶ ହୋଇ । ବିଶ୍ୱକୁ ପ୍ରକାଶ କରଇ ॥ ୩୧
ତାହାକୁ ହୋଇ ଅନୁଗତ । ମୁଁ ତାହା କରଇ ଉଦିତ ॥ ୩୨
*ରବି ଶଶାଙ୍କ ହୁତାଶନେ । ଗ୍ରହ ନକ୍ଷତ୍ର ତାରାମାନେ ॥ ୩୩
ସେ ଯେହ୍ନେ କରନ୍ତି ଉଜ୍ଜ୍ୱଳ । ବୁଦ୍ଧି ପ୍ରକାଶିତ ସକଳ ॥ ୩୪
୧୨ ସେ ବାସୁଦେବ ଭଗବାନ । ତାହାଙ୍କୁ ମୋହର ବନ୍ଦନ ॥ ୩୫
ଯାହାର ଦୁର୍ଜୟ ମାୟାରୁ । ମୋତେ ବୋଲନ୍ତି ଜଗଦ୍‌ଗୁରୁ ॥ ୩୬
୧୩ ଯାହାର କଟାକ୍ଷମାର୍ଗରେ । ଥିବାକୁ ମାୟା ଲଜ୍ଜା କରେ ॥ ୩୭
ଯେଉଁ ମାୟାରେ ବିମୋହିତ । ହୋଇଣ ପ୍ରାଣୀ ଦୁଷ୍ଟଚିତ୍ତ ॥ ୩୮
ଏ ପୁତ୍ର କଳତ୍ର ମୋହର । ମୁଁ ଧନୀ ପଣ୍ଡିତ ଈଶ୍ୱର ॥ ୩୯
ଏମନ୍ତ ଘେନି ନିଜ ଚିତ୍ତେ । ଗର୍ବ କରଇ ଅବିରତେ ॥ ୪୦
୧୪ ଯେ ଦ୍ରବ୍ୟ, କାଳ, କର୍ମ, ଜୀବ । ଜୀବରେ ଯେ ଅବା ସ୍ୱଭାବ ॥ ୪୧
ବାସୁଦେବରୁ ଭିନ୍ନ ହୋଇ । ହେ ବିପ୍ର ! ଆନ ଦ୍ରବ୍ୟ ନାହିଁ ॥ ୪୨
୧୫ ବେଦମାନଙ୍କର କାରଣ । ଅଟନ୍ତି ପ୍ରଭୁ ନାରାୟଣ ॥ ୪୩
୧୬ ସେ ନାରାୟଣ ଅଙ୍ଗୁଁ ଜାତ । ଅଟନ୍ତି ସକଳ ଦୈବତ ॥ ୪୪
ଯେ ସ୍ୱର୍ଗ ଆଦି ଲୋକମାନ । ଯେ ଯଜ୍ଞେ ତହିଁକି ସାଧନ ॥ ୪୫
ଯେ ଯୋଗ ପ୍ରାଣାୟାମ ଆଦି । ତେଣେ ଯେବଣ ତପ ସାଧି ॥ ୪୬
ତପରୁ ଯେ ଜ୍ଞାନ ଉତ୍ପତି । ସେ ଜ୍ଞାନଫଳ ଯେଉଁ ଗତି ॥ ୪୭
ସେ ସର୍ବ ନାରାୟଣପର । ନାହିଁ ତହିଁରୁ ଭିନ୍ନ ଆର ॥ ୪୮
୧୭ ସେ କରେ ସକଳ ଗୋଚର । ଅଟଇ ସକଳ ଈଶ୍ୱର ॥ ୪୯
ସେହୁ ଅଟଇ ନିର୍ବିକାର । ଆତ୍ମା ସକଳ ପ୍ରାଣୀଙ୍କର ॥ ୫୦
ତାର ସର୍ଜିଲା ଏ ଜଗତ । ମୁଁ ତାରେ ହୋଇଣ ସର୍ଜିତ ॥ ୫୧
ତାର କଟାକ୍ଷ ଆଜ୍ଞା ପାଇ । ମୁଁ ଏହା ସର୍ଜନା କରଇ ॥ ୫୨
୧୮ ନିର୍ଗୁଣ ପୁରୁଷ ଈଶ୍ୱର । ସତ୍ତ୍ୱାଦି ତିନିଗୁଣ ତାର ॥ ୫୩
ପାଳନ ସୃଷ୍ଟି ନିରୋଧରେ । ଗୃହୀତ ଈଶ୍ୱର ମାୟାରେ ॥ ୫୪

---

* ନ ତତ୍ର ସୂର୍ଯ୍ୟୋ ଭାତି ନ ଚନ୍ଦ୍ର ତାରକଂ
ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।
ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାସା ସର୍ବମିଦଂ ବିଭାତି ॥ (ଶ୍ରୁତିଃ)

୧୯ ସେ ଦ୍ରବ୍ୟଜ୍ଞାନ କ୍ରିୟାଙ୍କର । ଆଶ୍ରୟ ତିନିଗୁଣ ସାର ॥ ୫୫
କାର୍ଯ୍ୟ କାରଣ କର୍ତ୍ତାଭାବ । ମାୟା ବିଷୟ ଯେଉଁ ଜୀବ ॥ ୫୬
ନିତ୍ୟବିମୁକ୍ତ ସେ ପ୍ରମାଣ । ତାହାକୁ ବାନ୍ଧନ୍ତି ଏ ପୁଣ ॥ ୫୭
୨୦ ଜୀବମାନଙ୍କୁ ଆବରଣ । କରନ୍ତି ଏହୁ ତିନି ଗୁଣ ॥ ୫୮
ଏଣେ ଲକ୍ଷିତ ଗତି ଯାର । ହେ ବିପ୍ର ! ସେ ସର୍ବଈଶ୍ୱର ॥ ୫୯
ମୋହର ପ୍ରଭୁ ସେ ଅଟଇ । ଏମନ୍ତ କରି ଜାଣ ତୁହି ॥ ୬୦
୨୧ ମାୟାର ଈଶ୍ୱର ସେ ହରି । ଇଚ୍ଛନ୍ତେ ନାନାରୂପ ଧରି ॥ ୬୧
ଆତ୍ମାରେ ଯେ ଅନାୟାସରେ । ମିଳିଲେ ଦଇବବଶରେ ॥ ୬୨
ସେ କାଳ କର୍ମ ସ୍ୱଭାବକୁ । ଘେନିଲେ ସୃଷ୍ଟି କରିବାକୁ ॥ ୬୩
୨୨ କାଳରୁ ଗୁଣମାନଙ୍କର । ଜାତ ହୋଇଲା ବ୍ୟତିକର ॥ ୬୪
ସ୍ୱଭାବୁଁ ଜାତ ପରିଣାମ । କର୍ମରୁ ମହତ ଜନମ ॥ ୬୫
ସେ କାଳକର୍ମସ୍ୱଭାବରେ । ପୁରୁଷ ଅଧକ୍ଷେ ବିହରେ ॥ ୬୬
୨୩ ରଜସତ୍ତ୍ୱରେ ବିବର୍ଦ୍ଧିତ । ମହତବିକାରୁଁ ସଂଭୂତ ॥ ୬୭
ତମ ପ୍ରଧାନ ଅହଂକାର । ସେ ଦ୍ରବ୍ୟଜ୍ଞାନକ୍ରିୟାକାର ॥ ୬୮
୨୪ ସେ ଅହଂକାର ବିକାରରେ । ତ୍ରିବିଧ ରୂପ ପୁଣି ଧରେ ॥ ୬୯
ସାତ୍ତ୍ୱିକ ବୈକାରିକ ହୋଇ । ରାଜସ ତୈଜସ ବୋଲାଇ ॥ ୭୦
ତମରୁ ଜାତ ଯେ ତାମସ । ଏ ରୂପେ ତା' ଭେଦ ପ୍ରକାଶ ॥ ୭୧
ଯେ ଦେବେ ଇନ୍ଦ୍ରିୟାଧିପତି । ତହିଁ ବୈକାରିକ ଶକତି ॥ ୭୨
ତୈଜସ ଯେଉଁ ଅହଂକାର । ଇନ୍ଦ୍ରିୟେ ତାର ଅଧିକାର ॥ ୭୩
ଯେବା ତାମସ ଅହଂକାର । ତା ଶକ୍ତି ମହା ମହାଭୂତଠାର ॥ ୭୪
୨୫ ଯେବେ ତାମସ ଅହଂକାର । ପ୍ରଥମେ ଲଭିଲା ବିକାର ॥ ୭୫
ତହିଁରୁ ସଂଭୂତ ଆକାଶ । ତା ସୂକ୍ଷ୍ମ ରୂପ ଯେ ପ୍ରକାଶ ॥ ୭୬
ସେ ପୁଣି ଶବଦ ବୋଲାଇ । ଦୃଶ୍ୟ ଦେଖିଲା ଲୋକ ଯେହି ॥ ୭୭
ସେ ବେନି ଲୋକଙ୍କର ଭେଦ । ପ୍ରକାଶ କରେ ଯେ ଶବଦ ॥ ୭୮
୨୬ ଆକାଶ ବିକାରୁଁ ତକ୍ଷଣ । ସ୍ପରଶଗୁଣ ସମୀରଣ ॥ ୭୯
ଆକାଶ ଅନୟରୁ ତାର । ଶବଦ ହୋଏ ଗୁଣ ଆର ॥ ୮୦
ପ୍ରାଣୀଙ୍କ ପ୍ରାଣ ସେ ଅନିଳ । ଇନ୍ଦ୍ରିୟ ମନ ଶକ୍ତିବଳ ॥ ୮୧

୨୭ ସେ କାଳ କର୍ମ ସ୍ୱଭାବରୁ । ତେଜ ହିଁ ବାତବିକାରରୁ ॥ ୮୨

ରୂପ ତାହାର ନିଜ ଗୁଣ । ବାତ ଆକାଶସଙ୍ଗୁଁ ପୁଣ ॥ ୮୩

ସ୍ପରଶ ଶବଦ ଏ ଦୁଇ । ଗୁଣ ତହିଁରେ ଜାତ ହୋଇ ॥ ୮୪

୨୮ ତେଜ ବିକାରରୁ ଉଦକ । ଅଟେ ସ୍ୱଭାବେ ରସାତ୍ମକ ॥ ୮୫

ଶବଦ ସ୍ପର୍ଶ ରୂପ ତିନି । ଆକାଶ ଆଦି ସଙ୍ଗୁଁ ଘେନି ॥ ୮୬

୨୯ ଜଳବିକାରୁଁ ମହୀ ଜାତ । ସ୍ୱଭାବେ ଅଟେ ଗନ୍ଧଯୁତ ॥ ୮୭

ଶବ୍ଦ-ସ୍ପରଶ-ରୂପ-ରସ । ଇତର ସଙ୍ଗରୁ ପ୍ରବେଶ ॥ ୮୮

୩୦ ବଇକାରିକ ଅହଂକାର । ତହିଁରୁ ଜାତ ନିଶାକର ॥ ୮୯

ଯେ ଦଶ ଇନ୍ଦ୍ରିୟ ଈଶ୍ୱର । ଦିଗ, ପବନ, ଦିବାକର ॥ ୯୦

ବରୁଣ, ଅଶ୍ୱିନକୁମାର । ବହ୍ନି, ଇନ୍ଦ୍ର, ଉପେନ୍ଦ୍ର ଆର ॥ ୯୧

ଆବର ମିତ୍ର ପ୍ରଜାପତି । ବୈକାରିକରୁ ଏ ହୁଅନ୍ତି ॥ ୯୨

୩୧ ତୈଜସ ଅହଂକାରୁଁ ପୁଣ । ଜନ୍ମିଲେ ଦଶେନ୍ଦ୍ରିୟ ଗଣ ॥ ୯୩

ଜ୍ଞାନର ଶକ୍ତି ବୁଦ୍ଧି ପୁଣ । କ୍ରିୟାର ଶକ୍ତି ଅଟେ ପ୍ରାଣ ॥ ୯୪

ଏ ବେନି ତୈଜସ ସଂଭୂତ । ଏଣୁ ଇନ୍ଦ୍ରିୟେ ଦ୍ୱିଧା ମତ ॥ ୯୫

ଶ୍ରବଣ, ଚର୍ମ, ଯେ ନୟନ । ନାସିକା, ରସନା, ବଚନ ॥ ୯୬

ଭୁଜ, ମେହନ, ପାଦ, ଗୁଦ । ଏ ଦଶ ଇନ୍ଦ୍ରିୟଙ୍କ ଭେଦ ॥ ୯୭

୩୨ ଭୂତ, ଇନ୍ଦ୍ରିୟ, ମନ, ଗୁଣ । ଏମାନେ ନୋହି ଏକ ସ୍ଥାନ ॥ ୯୮

ଯେବେ ହେ ବ୍ରହ୍ମଜ୍ଞାନିବର ! । କରି ନ ପାରିଲେ ଶରୀର ॥ ୯୯

୩୩ ଈଶ୍ୱର ଶକ୍ତିରେ ପ୍ରେରିତ । ଏକ ଆରକେ ହୋଇ ଯୁତ ॥୧୦୦

ସମଷ୍ଟି ବ୍ୟଷ୍ଟି ରୂପେ ପୁଣ । ଶରୀର କଲେ ସେ ନିର୍ମାଣ ॥୧୦୧

୩୪ ସୁବର୍ଣ୍ଣ ଅଣ୍ଡରୂପ ହେଲା । ସେ ଯାଇଁ ଉଦକେ ପଡ଼ିଲା ॥୧୦୨

ଅନେକ ସହସ୍ର ବରଷେ । ସେ ଅଣ୍ଡ ଜଳମଧ୍ୟେ ଭାସେ ॥୧୦୩

କାଳକର୍ମ ସ୍ୱଭାବେ ସ୍ଥିତ । ପରମ ଆତ୍ମା ଯେ ସାକ୍ଷାତ ॥୧୦୪

ଯେ ଅଣ୍ଡ ଅଟେ ଅଚେତନ । ତାକୁ ଜିଆଏ ଭଗବାନ ॥୧୦୫

୩୫ ସେ ଅଣ୍ଡୁ ପୁରୁଷେ ବାହାର । ସହସ୍ର ଊରୁ ପାଦ ତାର ॥୧୦୬

ବାହୁ ଲୋଚନ ମୁଖ ଶିର । ସହସ୍ର ସହସ୍ର ତାହାର ॥୧୦୭

୩୬ ଯା ଅବୟବେ ଲୋକମାନ । ପଣ୍ଡିତେ କରନ୍ତି କଳ୍ପନ ॥୧୦୮

କଟି ଆଦିରୁ ପାଦଯାଏ । ତଳ ସପତ ଲୋକ ହୋଏ ॥୧୦୯

ସେଠାରୁ ଶିରଯାକେ ପୁଣି । ଊର୍ଦ୍ଧ୍ୱ ସପତ ଲୋକ ଗଣି ॥୧୧୦

| | | | |
|---|---|---|---|
| ୩୭ | ମୁଖରୁ ଜାତ ବ୍ରହ୍ମକୁଳେ । | କ୍ଷତ୍ରିୟ ଜାତ ବାହୁବଳେ[୧] | ॥୧୧୧ |
| | ଉରୁ ଯୁଗଳୁଁ ବୈଶ୍ୟଗଣେ । | ଶୂଦ୍ର ଉପୁଜିଲା ଚରଣେ | ॥୧୧୨ |
| ୩୮ | ଭୂଲୋକ ପାଦରୁ ସଂଭୂତ । | ନାଭିରୁ ଭୁବଲୋକ ଜାତ | ॥୧୧୩ |
| | ହୃଦୁ ସ୍ୱର୍ଲୋକ ମହାତ୍ମାର । | ଉରରୁ ମହଲୋକ ଆର | ॥୧୧୪ |
| ୩୯ | ଗ୍ରୀବାରେ ଜନଲୋକ ହୋଏ । | ତପଲୋକ ହିଁ ସ୍ତନଦ୍ୱୟେ | ॥୧୧୫ |
| | ମୂର୍ଦ୍ଧାରେ ସତ୍ୟଲୋକ ପୁଣ । | ଯେ ବ୍ରହ୍ମଲୋକ ସନାତନ | ॥୧୧୬ |
| ୪୦ | ଅତଳ କଟିଭାଗେ ବସେ । | ଉରୁରେ ବିତଳ ପ୍ରକାଶେ | ॥୧୧୭ |
| | ସୁତଳ ବସେ ଜାନୁମୂଳ । | ଜଘନମୂଳେ ତଳାତଳ | ॥୧୧୮ |
| ୪୧ | ଏ ମହାତଳ ଗଲ୍‌ଫ ଦେଶେ । | ପାଦାଗ୍ରେ ରସାତଳ ବସେ | ॥୧୧୯ |
| | ପାତାଳ ପାଦତଳେ ରହି । | ପୁରୁଷ ଲୋକମୟ ହୋଇ | ॥୧୨୦ |
| ୪୨ | ଭୂଲୋକ ପାଦଯୁଗେ ବସେ । | ଏ ଭୁବଲୋକ ନାଭିଦେଶେ | ॥୧୨୧ |
| | ସ୍ୱର୍ଲୋକ ବସଇ ମୂର୍ଦ୍ଧାରେ । | ଅଥବା ଏମନ୍ତ ପ୍ରକାରେ | ॥୧୨୨ |
| | ଲୋକମାନଙ୍କର କଳ୍ପନ । | କରନ୍ତି ବିଜ୍ଞ ଯେଉଁ ଜନ | ॥୧୨୩ |
| | ହେ କୃଷ୍ଣ କୃପାମୟ ସିନ୍ଧୁ । | ଏ ଯେ ପତିତ ଦୀନବନ୍ଧୁ | ॥୧୨୪ |
| | ଏହାକୁ ବାରେ କୃପାକର । | ପତିତପାବନ ଈଶ୍ୱର | ॥୧୨୫ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀପୁରୁଷସଂସ୍ଥାନୁବର୍ଣ୍ଣନଂ
ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠୋଽଧ୍ୟାୟଃ

ଷଷ୍ଠେ ବିରାଡ୍‌ବିଭୂତିଶ୍ଚ ପ୍ରୋକ୍ତାଧ୍ୟାତ୍ମାଦିଭେଦତଃ ।
ଦୃଢ଼ୀକୃତଂ ଚ ପୂର୍ବୋକ୍ତଂ ସର୍ବଂ ପୁରୁଷସୂକ୍ତତଃ ॥ ୧ ॥

ଶ୍ରୀବ୍ରହ୍ମା ଉବାଚ

| | | | |
|---|---|---|---|
| ୧ | ବଚନ ବହ୍ନିଜନ୍ମ ସ୍ଥାନ । | ଅଟଇ ପୁରୁଷ ବଦନ | ॥ ୧ |
| | ଗାୟତ୍ରୀ ଆଦି ଛନ୍ଦଙ୍କର । | ତା' ସପ୍ତ ଧାତୁ ଜନ୍ମଘର | ॥ ୨ |
| | ଯେ ହବ୍ୟ, କବ୍ୟ, ଯଜ୍ଞଶେଷ । | ଅନ୍ନ, ଅମୃତ ଷଡରସ | ॥ ୩ |
| | ଏମାନଙ୍କର ଜନ୍ମସ୍ଥାନ । | ଅଟଇ ପୁରୁଷ-ରସନ | ॥ ୪ |

୧. ମୂଳେ ।

୨ ସକଳ ପ୍ରାଣର ବାତର । ଉତ୍ତମ କ୍ଷେତ୍ର ନାସା ତାର ॥ ୫
ଯେ ଖ୍ୟାତ ଅଶ୍ୱିନକୁମାର । ତାଙ୍କର, ଅଉଷଧିଙ୍କର ॥ ୬
ମୋଦ ପ୍ରମୋଦଙ୍କର ପୁଣ । ସ୍ଥାନ ସେ ପୁରୁଷର ଘ୍ରାଣ ॥ ୭
୩ ଯେ ତେଜମାନେ ଦିବାନିଶ । ରୂପକୁ କରନ୍ତି ପ୍ରକାଶ ॥ ୮
ସେମାନଙ୍କର ଜନ୍ମସ୍ଥାନ । ଅଟଇ ପୁରୁଷ ନୟନ ॥ ୯
ନେତ୍ରଗୋଲକ ଦୁଇ ତାର । କ୍ଷେତ୍ର ସୂର୍ଯ୍ୟର ତ୍ରିଦିବର[୧] ॥ ୧୦
ଶ୍ରୋତ୍ର ଇନ୍ଦ୍ରିୟ ପୁରୁଷର । ଆକାଶ-ଶବ୍ଦ-ଜନ୍ମଘର[୨] ॥ ୧୧
[୩]ଶ୍ରୋତ୍ର ଅଧିଷ୍ଠାନ ତାହାର । ଅଟଇ ଦିଗ-ତୀର୍ଥ-ଘର ॥
୪ ଯେ ଦ୍ରବ୍ୟଙ୍କର ସାର ଅଂଶ । ସୌନ୍ଦର୍ଯ୍ୟ ଯେତେକ ପ୍ରକାଶ ॥ ୧୨
ସେ ସମସ୍ତଙ୍କ ନିଜ ସ୍ଥାନ । ତାର ଶରୀର ବିଦ୍ୟମାନ ॥ ୧୩
ଏ ପୁରୁଷର ଚର୍ମ ପୁଣ । ସ୍ପରଶ ସ୍ଥାନ ବୋଲି ଜାଣ ॥ ୧୪
ସେ ପବନର ସ୍ଥାନ ପୁଣି । ଯଜ୍ଞର ସ୍ଥାନ ବୋଲି ଜାଣି ॥ ୧୫
୫ ସମସ୍ତ ବୃକ୍ଷମାନଙ୍କର । ତା ରୋମମାନେ ଜନ୍ମଘର ॥ ୧୬
ଯେବଣ ବୃକ୍ଷମାନଙ୍କରେ । ଯଜ୍ଞସଂଭାର ଲୋକ କରେ ॥ ୧୭
ତା କେଶ ମେଘଙ୍କର ସ୍ଥାନ । ଯେ ବିଦ୍ୟୁତ୍ ଶିଳା ଲୋହମାନ ॥ ୧୮
ସେମାନଙ୍କର ଜନ୍ମସ୍ଥାନ । ପୁରୁଷଶ୍ମଶ୍ରୁନଖମାନ ॥ ୧୯
୬/୭ ଯେବଣ ଲୋକପାଳମାନେ । ପାଳନକର୍ତ୍ତା ଏ ଭୁବନେ ॥ ୨୦
ସେ ଲୋକପାଳଙ୍କର ସ୍ଥାନ । ଅଟେ ପୁରୁଷ ଭୁଜମାନ ॥ ୨୧
ଭୂର୍ଭୁବ ସ୍ୱର[୪] ଲୋକଙ୍କର । କ୍ଷେମର, ଭୟ-ରକ୍ଷଣର ॥ ୨୨
ଆଶ୍ରୟ ରୂପରେ ପ୍ରକାଶ । ଅଟେ ତାହାର ପାଦନ୍ୟାସ ॥ ୨୩
ଯେ ସର୍ବ କାମବର[୫] ମାନ । ହରିଚରଣ ତାଙ୍କ ସ୍ଥାନ ॥ ୨୪
୮ ସଲିଳ, ବୀର୍ଯ୍ୟ, ପ୍ରଜାପତି । ସୃଷ୍ଟି, ପର୍ଜନ୍ୟ ଶିଶ୍ନେ ସ୍ଥିତି ॥ ୨୫
ପ୍ରଜା ଆନନ୍ଦ ସୁଖ ଦୁଇ । ଉପସ୍ଥ ଇନ୍ଦ୍ରିୟରେ ରହି ॥ ୨୬
୯ ଯେ ମଳତ୍ୟାଗ, ଯମ, ମିତ୍ର । ପାୟୁ ଇନ୍ଦ୍ରିୟ ତାଙ୍କ କ୍ଷେତ୍ର ॥ ୨୭
ତା ଗୁଦ ହିଂସା, ଅଲକ୍ଷ୍ମୀର । ମୃତ୍ୟୁଯାତନାର ଆଧାର ॥ ୨୮

---

୧. ସ୍ୱର୍ଗର । ୨. ପର ।
୩. ଶ୍ରୋତ ଓ ଅଧିଷ୍ଠାନ ଦ୍ୱାରା ପୁରୁଷର ଦୁଇ କର୍ଣ୍ଣ ଅଭିହିତ ।
୪. ସ୍ୱର = ସ୍ୱର୍ଗ । ୫. ବର = ବରଣ ।

୧୦ ଅଧର୍ମ ସହିତେ ଅଜ୍ଞାନ । ପରାଭବର ପୃଷ୍ଠସ୍ଥାନ ।। ୨୯
ଯେ ଅବା ନଦନଦୀମାନ । ତା ନାଡ଼ୀମାନେ ତାଙ୍କ ସ୍ଥାନ ।। ୩୦
ଅସ୍ଥିସମୂହ ପୁରୁଷର । ସ୍ଥାନ ପର୍ବତମାନଙ୍କର ।। ୩୧
୧୧ ପ୍ରକୃତି, ଅନ୍ନ ଆଦି ସାର । ପ୍ରାଣୀଙ୍କ ପ୍ରଳୟ ସାଗର ।। ୩୨
ଏହାଙ୍କ ସ୍ଥାନ ତା ଉଦର । ଜାଣନ୍ତି ଏହା ଜ୍ଞାନୀନର ।। ୩୩
ପୁରୁଷହୃଦ[1] ଯେ ଅଟଇ । ଲିଙ୍ଗଶରୀର ସ୍ଥାନ ସେହି ।। ୩୪
୧୨ ଧର୍ମର, ତୋହର, ମୋହର । ଶିବର, ସନକାଦିଙ୍କର ।। ୩୫
ଜ୍ଞାନର, ସତ୍ତ୍ୱର ପ୍ରମାଣ । ପୁରୁଷଚିତ୍ତ[2] ପରାୟଣ ।। ୩୬
୧୩ ମୁଁ ବ୍ରହ୍ମା, ତୁ ନାରଦ ଋଷି । ଶଙ୍କର, ସନକାଦି ମିଶି ।। ୩୭
୧୪ ସୁର, ଅସୁର, ନର, ନାଗ । ଯେ ସରୀସୃପ, ଖଗ, ମୃଗ ।। ୩୮
୧୫ ଯେ ପୁଣି ପିତୃ, ସିଦ୍ଧଗଣ । ଦ୍ରୁମ, ବିଦ୍ୟାଧର, ଚାରଣ ।। ୩୯
ଯେ ଅନ୍ୟ ନାନାବିଧ ଜୀବ । ଜଳ-ସ୍ଥଳ-ଆକାଶଭବ ।। ୪୦
ଗନ୍ଧର୍ବ, ଅପସର, ଯକ୍ଷ । ଉରଗ, ଭୂତଗଣ, ରକ୍ଷ ।। ୪୧
ଗ୍ରହ, ନକ୍ଷତ୍ର, କେତୁ ତାର[3] । ଯେ ବା ବିଜୁଳି ଜଳଧର ।। ୪୨
ଭୂତ ଭବିଷ୍ୟ ବର୍ତ୍ତମାନ । ଯେତେ ଅଛନ୍ତି ଜୀବମାନ ।। ୪୩
ଏ ସର୍ବ ପୁରୁଷ ପ୍ରମାଣ । ତହିଁରୁ ଭିନ୍ନ ନୋହେ ଜାଣ ।। ୪୪
୧୬ ଦ୍ୱାଦଶ ଆଙ୍ଗୁଳ ବିକ୍ରମି । ବ୍ୟାପିଣ ଅଛି ସେହୁ ଭୂମି ।। ୪୫
୧୭ ଯେହ୍ନେ ବିମ୍ବକୁ ଦିବାକର । ପ୍ରକାଶି ପ୍ରକାଶେ ସଂସାର ।। ୪୬
ନିଜ ଦେହକୁ ସେ ପ୍ରକାରେ । ପ୍ରକାଶ କରି ସ୍ୱବୀର୍ଯ୍ୟରେ ।। ୪୭
ଅନ୍ତର ବାହାର ପ୍ରକାଶ । କରିଣ ଅଛି ସେ ପୁରୁଷ ।। ୪୮
୧୮ ଅମୃତ ଅଭୟର ଈଶ । ପ୍ରତ୍ୟକ୍ଷ ଅଟେ ସେ ପୁରୁଷ ।। ୪୯
କର୍ମଫଳକୁ ଅନ୍ନ କହି । ମରଣଧର୍ମ ସେ ଅଟଇ ।। ୫୦
ତାହାକୁ ଯେଣୁ ସେ ପୁରୁଷ । ଅତିକ୍ରମିଣ ପରକାଶ ।। ୫୧
ଏଣୁ ମହିମା ପୁରୁଷର । ଲୋକରେ ନୁହଇ ଗୋଚର ।। ୫୨
୧୯ ଯାର ଭୂ-ଆଦି ଲୋକମାନ । ଅଟନ୍ତି ପାଦେ ବିଦ୍ୟମାନ ।। ୫୩
ସେ ପୁରୁଷର ସର୍ବଭୂତ । ଏଣୁ ଅଟନ୍ତି ପାଦଗତ ।। ୫୪
ଭୂ-ଆଦି ତିନି ଲୋକଙ୍କର । ଅଟଇ ମହର୍ଲୋକ ଶିର ।। ୫୫

---

୧. ମନ । ୨. ଆତ୍ମା । ୩. ତାର = ତାରା ।

ଯେ ଜନ ତପ ସତ୍ୟ ତିନି । ତାର ମସ୍ତକ ରୂପେ ଘେନି ।। ୫୬
ଅମୃତ, କ୍ଷେମ, ଭୟନାଶ । ସେ ତିନି ଲୋକରେ ପ୍ରକାଶ ।। ୫୭
୨୦ ଯେ ନଇଷ୍ଠିକ ବ୍ରହ୍ମଚାରୀ । ଯେ ବାନପ୍ରସ୍ଥ ଦଣ୍ଡଧାରୀ ।। ୫୮
ତାଙ୍କ ଆଶ୍ରମ ପୁରୁଷର । ତ୍ରିପାଦ ତ୍ରିଲୋକୁଁ ବାହାର ।। ୫୯
ଏ ଘେନି ତ୍ରିଲୋକ ଭିତରେ । ଅବ୍ରହ୍ମଚାରୀ ଗୃହୀ ଚରେ ।। ୬୦
୨୧ ଅବିଦ୍ୟା ବିଦ୍ୟା ରୂପ ହୋଇ । ଯେ ଭୋଗ ମୋକ୍ଷ ମାର୍ଗ ଦୁଇ ।। ୬୧
ପୁରୁଷ ତାହା ଆକ୍ରମିଲା । ଉଭୟ ମାର୍ଗ ଆଶ୍ରେ କଲା ।। ୬୨
୨୨ ଯହିଁରୁ ଅଣ୍ଡ ହେଲା ଜାତ । ତହିଁରୁ ବିରାଟ ସଂଭୂତ ।। ୬୩
ସେ ଭୂତେନ୍ଦ୍ରିୟ ମନୋମୟ । ଅତିକ୍ରମିଲା ନିଜ କାୟ ।। ୬୪
ଅଣ୍ଡକୁ ଆକ୍ରମିଲା ପୁଣି । ଯେହ୍ନେ କିରଣେ ଦିନମଣି ।। ୬୫
୨୩ ଯେବେ ମୁଁ ପୂର୍ବେ ପୁରୁଷର । ନାଭିପଙ୍କଜରୁ ବାହାର ।। ୬୬
ନ ଜାଣିଲି ତା ଅଙ୍ଗୁଁ ଭିନ୍ନ । କରିଣ ଯଜ୍ଞଦ୍ରବ୍ୟମାନ ।। ୬୭
୨୪ ଖୋଜନ୍ତେ ସେ ସଂଭାର ପୁଣ । ଯଜ୍ଞ ସହିତେ ପଶୁଗଣ ।। ୬୮
ଯୂପଉଚିତ କାଷ୍ଠମାନ । କୁଶ ସହିତେ ଯଜ୍ଞସ୍ଥାନ ।। ୬୯
ବହୁତ ଗୁଣେ ଲକ୍ଷି ହୋଇ । ବସନ୍ତ ଆଦି କାଳ ଯେହି ।। ୭୦
୨୫ ଯେ ପାତ୍ରମାନ ନାନାମତେ । ଘୃତ, ବ୍ରୀହିକି ଆଦି ଯେତେ ।। ୭୧
ମଧୁର ଆଦି ରସକୁଳ । ସୁବର୍ଣ୍ଣ ଆଦି, ମାଟି, ଜଳ ।। ୭୨
ରକ, ଯଜୁଷ, ସାମ ସିଦ୍ଧି । ଯେ ଚାତୁର୍ହୋତ୍ର କର୍ମବିଧି ।। ୭୩
୨୬ ଅଗ୍ନିଷ୍ଟୋମାଦି ନାମ ଯେତେ । ଯେ ବା ଦକ୍ଷିଣା ନାନାବ୍ରତେ ।। ୭୪
ଦେବତା ଅନୁକ୍ରମ କଳ୍ପ । କରିବା ପ୍ରକାର ସଂକଳ୍ପ ।। ୭୫
୨୭ ଯେ ଗତି, ମତି, ପ୍ରାୟଶ୍ଚିତ୍ତ । ଯେ କର୍ମଶେଷ ସମର୍ପିତ ।। ୭୬
ଏତେ ସମ୍ଭାର ଏ ପ୍ରକାରେ । ଲଭିଲି ପୁରୁଷ ଅଙ୍ଗରେ ।। ୭୭
୨୮ ଏମନ୍ତ ରୂପେ ପୁରୁଷର । ଅଙ୍ଗରେ କରିଣ ସମ୍ଭାର ।। ୭୮
ଈଶ୍ୱର ସେ ଯଜ୍ଞପୁରୁଷ । ତାକୁ ମୁଁ ଯଜ୍ଞେ କଲି ତୋଷ ।। ୭୯
୨୯ ତଦନ୍ତେ ଭାଇମାନେ ତୋର । ଯେ ନବ ପ୍ରଜାଙ୍କ ଈଶ୍ୱର ।। ୮୦
୩୦ ଇନ୍ଦ୍ରାଦି ରୂପେ ଯେ ପ୍ରକାଶ । ନିଜ ରୂପରେ ଯେ ଅଦୃଶ ।। ୮୧
ସେ ପୁରୁଷକୁ ସାବଧାନ । ହୋଇଣ କଲେ ସେ ଯଜନ ।। ୮୨

| | | | | |
|---|---|---|---|---|
| | ତଦନ୍ତେ କାଳେ ମନୁ, ଋଷି | । | ପିତୃ ଦେବତାମାନେ ମିଶି | ॥ ୮୩ |
| | ଦାନବ, ମାନବ ସହିତେ | । | ଯଜ୍ଞେ ପୂଜିଲେ ବେଦମତେ | ॥ ୮୪ |
| ୩୧ | ଏ ବିଶ୍ୱ ନାରାୟଣଠାରେ | । | ଅର୍ପିତ ଅଟେ ନିରନ୍ତରେ | ॥ ୮୫ |
| | ସ୍ୱଭାବେ ଅଟେ ସେ ନିର୍ଗୁଣ | । | ସୃଷ୍ଟିର ଆଦିକାଳେ ପୁଣ | ॥ ୮୬ |
| | ବହୁତ ମାୟାଗୁଣମାନ | । | ଘେନିଛନ୍ତି ସେ ଭଗବାନ | ॥ ୮୭ |
| ୩୨ | ତାହାର ଆଜ୍ଞାକୁ ମୁଁ ପାଇ | । | ଜଗତ ସର୍ଜନ କରଇ | ॥ ୮୮ |
| | ତାହାର ବଶ ହୋଇ ହର | । | ଜଗତ କରଇ ସଂହାର | ॥ ୮୯ |
| | ବିଷ୍ଣୁ ରୂପରେ ଏ ଜଗତ | । | ପାଳନ କରେ ସେ ଅଚ୍ୟୁତ | ॥ ୯୦ |
| | ଏଣୁ ତ୍ରିଗୁଣ ଶକ୍ତିଧର | । | ସୃଷ୍ଟି-ପାଳନ-କ୍ଷୟକର | ॥ ୯୧ |
| ୩୩ | ତୁ ଯାହା ପଚାରିଲୁ ତାତ ! | । | ଏ ରୂପେ କଲି ତା ଉକତ | ॥ ୯୨ |
| | ଭଗବାନରୁ ଆନ ହୋଇ | । | ସନ୍ତ ଅସନ୍ତ ରୂପ ବହି | ॥ ୯୩ |
| | ସଂସାରେ କେହି ନାହିଁ ଆନ | । | ଯେତେକ ହୁଅଇ ସର୍ଜନ | ॥ ୯୪ |
| ୩୪ | ମୋର ବଚନ ମିଥ୍ୟା ହୋଇ | । | କେବେହେଁ ଲକ୍ଷିତ ନୁହଇ | ॥ ୯୫ |
| | ମୋର ମନର ମିଥ୍ୟା ଗତି | । | କେବେହେଁ ନୋହେ ଉତପତି | ॥ ୯୬ |
| | ମୋର ଇନ୍ଦ୍ରିୟମାନେ ଯେତେ | । | ପଡ଼ନ୍ତି ନାହିଁ ଅସତ୍ ପଥେ | ॥ ୯୭ |
| | ଯେଣୁ ଉତ୍କଣ୍ଠାଭାବେ କରି | । | ହୃଦେ ମୁଁ ଧରିଅଛି ହରି | ॥ ୯୮ |
| ୩୫ | ନିଗମମୟ ମୁଁ ଅଟଇ | । | ତପସ୍ୟାମୟ ହିଁ ସେ ମୁହିଁ | ॥ ୯୯ |
| | ସକଳ ପ୍ରଜାପତିଙ୍କର | । | ଅଭିବନ୍ଦିତ ମୁଁ ଈଶ୍ୱର | ॥୧୦୦ |
| | ନିପୁଣ ଯୋଗ ଆସ୍ଥା କରି | । | ମନକୁ ନିଶ୍ଚଳ ଆଚରି | ॥୧୦୧ |
| | ତାହାକୁ ନ କଲି ଗୋଚର | । | ଯା'ଠାରୁ ଜନମ ମୋହର | ॥୧୦୨ |
| ୩୬ | ଶରଣାଗତ ଜନଙ୍କର | । | ଯା' ହେତୁ ତୁଟଇ ସଂସାର[୧] | ॥୧୦୩ |
| | ମଙ୍ଗଳସ୍ଥାନ ଯେ ଅଟଇ | । | ଭଗତଜନସେବ୍ୟ ଯେହି | ॥୧୦୪ |
| | ଏମନ୍ତ ଚରଣେ ତାଙ୍କର | । | କରୁଅଛି ମୁଁ ନମସ୍କାର | ॥୧୦୫ |
| | ସ୍ୱମାୟାବିଭବ ଯେ ପୁଣି | । | *ନ ପାରେ ତତ୍ତ୍ୱ କରି ଜାଣି | ॥୧୦୬ |
| | ଆପଣା ଅନ୍ତକୁ ଗମନ | । | ଜାଣି ନ ପାରଇ ଯେସନ | ॥୧୦୭ |
| | ତାହାଙ୍କୁ କାହୁଁ ଆନମାନେ | । | ଜାଣିପାରିବେ ଏ ଭୁବନେ | ॥୧୦୮ |

୧. ଅଟଇ ଈଶ୍ୱର

* ଯୋଽସ୍ୟାଧ୍ୟକ୍ଷଃ ପରମେ ବ୍ୟୋମନ୍
ସୋଽଙ୍ଗ ବେଦ ଯଦି ବା ନ ବେଦ । (ଶ୍ରୁତିଃ)

୩୭ ଯା' ପରମାର୍ଥ ରୂପ ମୁହିଁ । ନ ଜାଣେ ତୁମ୍ଭେ ଜାଣ ନାହିଁ ।।୧୦୯
ଜାଣଇଁ ନାହିଁ ତା ଶଙ୍କର । କାହୁଁ ଜାଣିମେ ଆନ ସୁର ।।୧୧୦
ତାହାର ମାୟାରେ ଆମ୍ଭର । ବୁଦ୍ଧି ମୋହିତ ନିରନ୍ତର ।।୧୧୧
ପ୍ରପଞ୍ଚ ରୂପ ଏ ଜଗତ । ତାହାର ଅଟଇ ନିର୍ମିତ ।।୧୧୨
ଏତେକ ମାତ୍ର ଆମ୍ଭେ ଜାଣି । ନିଜ ଜ୍ଞାନକୁ ପରିମାଣି ।।୧୧୩
୩୮ ଯା ଅବତାର କର୍ମମାନ । ମୋ ଆଦି ଯେତେ ଯୋଗୀଜନ ।।୧୧୪
ସନ୍ତତେ ଗାୟନ କରନ୍ତି । ତାକୁ ତତ୍ତ୍ୱରେ ନ ଜାଣନ୍ତି ।।୧୧୫
ସେ ଯେ ଅଟଇ ଭଗବାନ । ତାକୁ ମୁଁ କରୁଛି ବନ୍ଦନ ।।୧୧୬
୩୯ ସେ ଆଦିପୁରୁଷ ମୁରାରି । କଳ୍ପେ କଳ୍ପେକେ ସୃଷ୍ଟି କରି ।।୧୧୭
ଆତ୍ମାକୁ ଆତ୍ମାରୂପେ କରି । ଆତ୍ମାରେ ପାଳଇ ସଂହାରି ।।୧୧୮
୪୦ କେବଳ ଶୁଦ୍ଧ ଜ୍ଞାନମୟ । ସର୍ବ ଅନ୍ତର ନିଃସନ୍ଦେହ ।।୧୧୯
ନିଶ୍ଚଳ ସତ୍ୟ ପରିପୂର୍ଣ୍ଣ । ସେ ଆଦି-ଅନ୍ତରେ ବିହୀନ ।।୧୨୦
ଗୁଣରହିତ ସଦା ସ୍ଥାୟୀ । ଯେଣୁ ସେ ଅବ୍ୟୟ ଅଟଇ . ।।୧୨୧
୪୧ ଆତ୍ମା[୧] ଇନ୍ଦ୍ରିୟ ମନ ଯେବେ । ପ୍ରସନ୍ନ ହୋଏ ତାକୁ ତେବେ ।।୧୨୨
ଜାଣିପାରନ୍ତି ଋଷିମାନେ । ହେ ଋଷି ! ଅତି ସାବଧାନେ ।।୧୨୩
ପ୍ରକାଶ ହେଲେହେଁ କାଳରେ । ଯେବେ ଅସାଧୁଙ୍କ ତର୍କରେ ।।୧୨୪
ଉପପ୍ଲବ ଭାବକୁ ପାଇ । ତେବେ ସେ ଅନ୍ତର୍ଦ୍ଧାନ ହୋଇ ।।୧୨୫
୪୨ ଅପରିଚ୍ଛିନ୍ନ ଈଶ୍ୱରର । ପୁରୁଷ ଆଦ୍ୟ ଅବତାର ।।୧୨୬
କାଳ, ସ୍ୱଭାବ, ଏହୁ ବେନି । ପ୍ରକୃତି ମହତ୍‌ତତ୍ତ୍ୱ ଘେନି ।।୧୨୭
ଯେ ମହାଭୂତେ, ଅହଙ୍କାର । ସତ୍ତ୍ୱାଦି ଗୁଣେ, ଯେ ଆବର ।।୧୨୮
ଇନ୍ଦ୍ରିୟେ, ସ୍ୱରାଟ, ବିରାଟ । ସ୍ଥାବର, ଜଙ୍ଗମ ପ୍ରକଟ ।।୧୨୯
୪୩ ମୁଁ, ଶିବ, ଯଜ୍ଞ, ଦକ୍ଷ ଆଦି । ପ୍ରଜାଈଶ୍ୱର ଯେ ପ୍ରସିଦ୍ଧି ।।୧୩୦
ତୁମ୍ଭଙ୍କୁ ଆଦି ଯେବା ଆନ । ଯେବା ପାଳନ୍ତି ସ୍ୱର୍ଗ ସ୍ଥାନ ।।୧୩୧
ସେ ଖଗ-ନରଲୋକପତି । ପାତାଳ ଆଦି ଯେ ପାଳନ୍ତି ।।୧୩୨
୪୪ ଯେ ବା ଗନ୍ଧର୍ବ-ବିଦ୍ୟାଧର । ଚାରଣରକ୍ଷ-ଯକ୍ଷେଶ୍ୱର ।।୧୩୩
ଯେ ବା ଉରଗ-ନାଗପତି । ଯେ ଋଷି-ପିତୃ-ଶ୍ରେଷ୍ଠ ଅତି ।।୧୩୪
ଯେ ଦୈତ୍ୟ-ସିଦ୍ଧଙ୍କ ଈଶ୍ୱର । ଦାନବଙ୍କର ମଧ୍ୟେ ବର ।।୧୩୫

---

୧. ଆତ୍ମା = ଦେହ (ସ୍ୱାମୀ)

ଯେ ଅବା ଛନ୍ତି ଏଥୁଁ ଆନ । ପ୍ରେତ, ପିଶାଚ, ଭୂତମାନ ॥୧୩୬
କୁଷ୍ମାଣ୍ଡ[୧] ମିଶି ଜଳଚର । ମୃଗ-ପକ୍ଷୀଙ୍କ ଅଧୀଶ୍ୱର ॥୧୩୭
୪୫ ଯେ ଅଇଶ୍ୱର୍ଯ୍ୟ-ତେଜଯୁତ । ମନ-ଇନ୍ଦ୍ରିୟ-ଶକ୍ତିବନ୍ତ ॥୧୩୮
ବଳ, କ୍ଷମାରେ ଯୁତ ହୋଇ । ଲୋକ ପ୍ରସିଦ୍ଧ ଯେ ଅଟଇ ॥୧୩୯
ଯେ ଲଜ୍ଜାଶୀଳ, ଶୋଭାବନ୍ତ । ବିଭୂତିଶାଳୀ ବୁଦ୍ଧିଯୁତ ॥୧୪୦
ଆଶ୍ଚର୍ଯ୍ୟ ବର୍ଣ୍ଣରେ ବିଦିତ । ଯେ ବା ଅରୂପ, ରୂପବନ୍ତ ॥୧୪୧
ଏମାନେ ବିଷ୍ଣୁର ବିଭୂତି । ଏ ରୂପେ ଘେନ ତୁମ୍ଭେ ମତି ॥୧୪୨
୪୬ ବିଷ୍ଣୁର ଲୀଳା ଅବତାର । ବୋଲନ୍ତି ଯାଙ୍କୁ ସାଧୁ ନର ॥୧୪୩
ହେ ଋଷି ! ପ୍ରଧାନ ରୂପରେ । ତାହାଙ୍କୁ କହିବା କ୍ରମରେ ॥୧୪୪
ଯେ କର୍ଣ୍ଣଦୁର୍ବାସନାହର । ଅଟନ୍ତି ଅତି ମନୋହର ॥୧୪୫
ଏକାନ୍ତ ସ୍ଥାନେ ଯତିମାନେ । ଚିତ୍ତ ନିଶ୍ଚଳ କରି ଧ୍ୟାନେ ॥୧୪୬
ଯାଙ୍କୁ ଚିନ୍ତନ୍ତି ପୁଣ ପୁଣ । ଦୀନବନ୍ଧୁର ସେ ଶରଣ ॥୧୪୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ପୁରୁଷବିଭୂତିବର୍ଣ୍ଣନଂ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମୋଽଧ୍ୟାୟଃ

ସପ୍ତମେ ଭଗବଲ୍ଲୀଳାବତାରା ବ୍ରହ୍ମଣୋଦିତାଃ ।
ନାରଦାୟ ତୁ ତତ୍କର୍ମ ପ୍ରୟୋଜନଗୁଣୈଃ ସହ ॥ ୧ ॥

ଶ୍ରୀବ୍ରହ୍ମା ଉବାଚ

୧ ଧରଣୀତଳ ଉଦ୍ଧାରଣ । ନିମିତ୍ତେ ଯେବେ ନାରାୟଣ ॥ ୧
ସକଳଯଜ୍ଞମୟ ସାର । ଧରନ୍ତେ ବରାହ ଶରୀର ॥ ୨
ତାହାଙ୍କ ଠାରେ ଉପଗତ । ସେ ହିରଣ୍ୟାକ୍ଷ ଆଦିଦୈତ୍ୟ ॥ ୩
ତାହାକୁ ମହାଜଳଧିରେ । ତେବେ ବିଦାରିଲେ ଦନ୍ତରେ ॥ ୪
ଇନ୍ଦ୍ର ଯେସନେ ବଜ୍ର ଧରି । ଗିରିକି ପକାଇ ବିଦାରି ॥ ୫

---
୧. ଶିବଙ୍କ ଅନୁଚର ବିଶେଷ ।

୨ ସେ ପୁଣି ରୁଚିର ମନ୍ଦିରେ । ଜନ୍ମିଲେ ଆକୂତି ଉଦରେ ॥ ୬
ସେ ଅଟେ ଯଜ୍ଞ ଅବତାର । ଦକ୍ଷିଣା ଭାର୍ଯ୍ୟା ତାହାଙ୍କର ॥ ୭
ସୁଯମ ନାମେ ଦେବଗଣ । ତାଠାରେ ଜାତକଲେ ପୁଣ ॥ ୮
ତିନିଲୋକର ଅତିଶୟ । ହରିଲେ ଯେବେ ପୁଣ ଭୟ ॥ ୯
ଯେ ସ୍ୱାୟଂଭୁବ ମନୁ ଥିଲେ । ତାହାଙ୍କୁ ହରି ନାମ ଦେଲେ ॥ ୧୦
୩ କର୍ଦମ ଋଷିଗୃହେ ପୂର୍ବେ । ହେ ଦ୍ୱିଜ ! ଦେବହୂତିଗର୍ଭେ ॥ ୧୧
ଯେହୁ ଭଗିନୀ ନବ ନାରୀ । ତାହାଙ୍କ ସଙ୍ଗେ ଅବତରି ॥ ୧୨
ନିଜ ମାତାଙ୍କୁ ଆତ୍ମଗତି । କହିଲେ, ଯେଣେ ସେ ଝଟିତି ॥ ୧୩
ନାଶିଣ ଗୁଣ ସଙ୍ଗମୟ । ମଳିନ ପାପ ଅତିଶୟ ॥ ୧୪
ଏହି ଜନ୍ମରେ ସିଦ୍ଧ ହେଲେ । କପିଳଗତିକି ଲଭିଲେ ॥ ୧୫
୪ ଅପତ୍ୟ ହୋଇବା ନିମିତ୍ତେ । ଅତ୍ରି ବାଞ୍ଛନ୍ତେ ନିଜ ଚିତ୍ତେ ॥ ୧୬
ତାଙ୍କୁ ସନ୍ତୋଷେ ଭଗବାନ । ଯେଣୁ ବୋଇଲେ ଏ ବଚନ ॥ ୧୭
ମୁଁ ମୋତେ ଦତ୍ତ କଲି ତୋତେ । ତେଣୁ ସେ ଦତ୍ତ ଏ ଜଗତେ ॥ ୧୮
ଚରଣପଦ୍ମରଜେ ଯାର । ହୋଇଣ ପବିତ୍ରଶରୀର ॥ ୧୯
ଯଦୁ ହୈହୟାଦି ନୃପତି । ଲଭିଲେ ଭୁକତି ମୁକତି[୧] ॥ ୨୦
ଯୋଗ ସମୃଦ୍ଧି ରୂପ ହୋଇ । ଯେ ବେନି ପ୍ରକାଶ ଅଟଇ ॥ ୨୧
୫ ବିବିଧ ଲୋକଙ୍କ ସର୍ଜନ । ଇଚ୍ଛା କରିଣ ନିଜ ମନ ॥ ୨୨
ମୁଁ ତପ କଲି ଆଦ୍ୟ କାଳେ । ମୋର ସେ ତପ ଦାନ ଫଳେ ॥ ୨୩
ଜାତ ହୋଇଲେ ଚତୁଃସନ । ଯେ ପୂର୍ବ କଳ୍ପେ ହେଲା ଲୀନ ॥ ୨୪
ସେ ଆତ୍ମତତ୍ତ୍ୱ ଏ କଳ୍ପରେ । ବିସ୍ତାର କଲେ ସେ ନିର୍ଭରେ ॥ ୨୫
ମୁନିଏ ଯେଉଁ ତତ୍ତ୍ୱମାନ । ଆତ୍ମାରେ କଲେ ଦରଶନ ॥ ୨୬
୬ ଦକ୍ଷଦୁହିତା ମୂର୍ତ୍ତି ଖ୍ୟାତ । ତା ଗର୍ଭେ ଧର୍ମଠାରୁ ଜାତ ॥ ୨୭
ସେ ନର ନାରାୟଣ ନାମ । ଅସାଧାରଣ ତପଧାମ ॥ ୨୮
କାମର ସୈନ୍ୟରୂପଧାରୀ । ସୁନ୍ଦର ଅପସରା ନାରୀ ॥ ୨୯
ତା ତପନାଶକୁ ଯେବଣ । ନିୟମ କରିଥିଲେ ପୁଣ ॥ ୩୦
ତାହାଙ୍କ ତପଭଙ୍ଗ ପାଇଁ । ବଦରୀ ଆଶ୍ରମରେ ଯାଇଁ ॥ ୩୧
ସେ ନାରାୟଣ ଅଙ୍କୁ ଜାତ । ଉର୍ବଶୀ ଆଦି ଯେ ଯୋଷିତ ॥ ୩୨

---

୧. ଇହ ପର ଗତି

| | | | | |
|---|---|---|---|---|
| | ତାଙ୍କ ସୁନ୍ଦର ପଣ ଦେଖି | । | ଲାଜେ ହୋଇଣ ଅଧୋମୁଖୀ | ॥ ୩୩ |
| | ତାହାଙ୍କ ତପସ୍ୟା ଭଙ୍ଗରେ | । | ସମର୍ଥ ନୋହିଲେ ସେଠାରେ | ॥ ୩୪ |
| ୭ | ରୋଷଦୃଷ୍ଟିରେ ବୁଧଜନ | । | କାମକୁ କରନ୍ତି ଦହନ | ॥ ୩୫ |
| | ରୋଷ ଯେ ଦହେ ହୃଦୟକୁ | । | ଦହି ନ ପାରନ୍ତି ସେ ତାକୁ | ॥ ୩୬ |
| | ଯାର ନିର୍ମଳ ହୃଦୟରେ | । | ସେ ରୋଷ ମିଳନ୍ତେଣ ଡରେ | ॥ ୩୭ |
| | ତାହାର ମନେ ମନୋଭବ | । | କେମନ୍ତେ ପ୍ରବେଶ ହୋଇବ | ॥ ୩୮ |
| ୮ | ମାତା-ସପତ୍ନୀ ରାଜାପାଶେ | । | ବୋଇଲା ଯେଉଁ ବାକ୍ୟ ରୋଷେ | ॥ ୩୯ |
| | ସେ ବାଣୀ ଅଟେ ଶରପ୍ରାୟ | । | ତେଣେ ଭେଦିତ ଯା' ହୃଦୟ | ॥ ୪୦ |
| | ସେ ଧ୍ରୁବ ବାଳକ ହୋଇଣ | । | ତପନିମିତ୍ତେ ଗଲା ବଣ | ॥ ୪୧ |
| | ତାହାକୁ ପ୍ରସନ୍ନ ହୋଇଲେ | । | ସ୍ତୁତିରେ ଧ୍ରୁବପଦ ଦେଲେ | ॥ ୪୨ |
| | ସପତ ଋଷି ତଳେ ଥାଇଁ | । | ସ୍ତୁତି କରନ୍ତି ଯାକୁ ଚାହିଁ | ॥ ୪୩ |
| ୯ | ଯେବଣ କାଳେ ରାଜା ବେଣ | । | କଲାକ ଉତ୍ପଥେ ଗମନ | ॥ ୪୪ |
| | ବ୍ରାହ୍ମଣମାନଙ୍କ ବଚନ | । | କୁଳିଶ ପ୍ରାୟେକ କଠିନ | ॥ ୪୫ |
| | ତେଣେ ସେ ଯାହାର ପୌରୁଷ | । | ସଂପଦ ବେନି ହେଲା ନାଶ | ॥ ୪୬ |
| | ନରକେ ପଡ଼ନ୍ତେ ସେ ଯାଇଁ | । | ଋଷିଙ୍କ ପ୍ରାର୍ଥନାକୁ ପାଇ | ॥ ୪୭ |
| | ତାହାକୁ ନରକୁଁ ଉଦ୍ଧରି | । | ତା' ପୁତ୍ର[୧] ହେଲେ ନରହରି | ॥ ୪୮ |
| | ଯେ ପୃଥୁ ନାନା ବସୁମାନ | । | ପୃଥ୍ୱୀରୁ କଲେକ ଦୋହନ | ॥ ୪୯ |
| ୧୦ | ନାଭିସକାଶୁଁ ସେ ଋଷଭ | । | ସୁଦେବୀ ଉଦରୁ ସମ୍ଭବ | ॥ ୫୦ |
| | ସେ ସମଦୃଷ୍ଟି ସବୁଠାରେ | । | ଯୋଗରେ ଜଡ଼ ବୃତ୍ତି ଧରେ | ॥ ୫୧ |
| | ଯେବଣ ଯୋଗଚର୍ଯ୍ୟା ମୁନି | । | ପରମହଂସପଦେ ମାନି | ॥ ୫୨ |
| | ନିଜ ସ୍ୱରୂପରେ ସେ ସ୍ଥିତ | । | ଇନ୍ଦ୍ରିୟମାନେ ତାର ଶାନ୍ତ | ॥ ୫୩ |
| | ଏଣୁ ସେ ସକଳ ଭାବରେ | । | ସଙ୍ଗମାନଙ୍କୁ ଦୂର କରେ | ॥ ୫୪ |
| ୧୧ | ମୋ ଯଜ୍ଞେ ସେ ଯଜ୍ଞପୁରୁଷ | । | ସାକ୍ଷାତ ହୋଇଲେ ପ୍ରକାଶ | ॥ ୫୫ |
| | ନରଶରୀର ଅଶ୍ୱଶିର | । | ସୁବର୍ଣ୍ଣବର୍ଣ୍ଣ କଳେବର | ॥ ୫୬ |
| | ତା ତନୁ ବେଦଯଜ୍ଞମୟୀ | । | ସକଳ ଦେବ ଆତ୍ମା ସେହି | ॥ ୫୭ |
| | ନିଃଶ୍ୱାସ ପକାନ୍ତେ ଯାହାର | । | ହେଲା ନିଃଶ୍ୱାସୁଁ ବେଦ ତାର | ॥ ୫୮ |

---

୧. ପୁଂନାମ୍ନୋ ନରକାଦ୍ ଯସ୍ମାଦ୍ ପିତରଂ ତ୍ରାୟତେ ସୁତଃ ।
ତସ୍ମାତ୍ ପୁତ୍ର ଇତି ପ୍ରୋକ୍ତଃ ସ୍ୱୟମେବ ସ୍ୱୟଂଭୁବା ॥

୧୨ ମତ୍ସ୍ୟକୁ ଯୁଗପ୍ରାନ୍ତକାଳେ । ମନୁ ଲଭିଲା ସିନ୍ଧୁଜଳେ ।। ୫୯
ସେ ପୃଥ୍ୱୀମୟ ଭଗବାନ । ସକଳ ଜୀବଗଣସ୍ଥାନ ।। ୬୦
ମୋ ମୁଖୁଁ ବେଦମାନେ ଗଳି । ପ୍ରଳୟଜଳେ ଥିଲେ ମିଳି ।। ୬୧
ସେ ବେଦମାନଙ୍କୁ ଉଦ୍ଧରି । ସେ ଜଳେ ବିହରିଲେ ହରି ।। ୬୨
୧୩ ଦେବ-ଦାନବ-ଯୂଥପତି । ସୁଧାପ୍ରାପ୍ତିରେ କରି ମତି ।। ୬୩
କ୍ଷୀରସାଗରକୁ ମଥନ । କରନ୍ତେ ଦେବ ଭଗବାନ ।। ୬୪
ମନ୍ଦରଗିରିକି ପିଠିରେ । ଧଇଲେ କଚ୍ଛପ ବପୁରେ ।। ୬୫
ନିଦ୍ରାସକାଶରୁ ସନ୍ତତ । ଉତ୍ସବ ହୋଏ ଯାର ଜାତ ।। ୬୬
ଅଦ୍ରି ବୁଲନ୍ତେ ଘଷି ହୋଇ । କଣ୍ଡୂରେ ସୁଖ ଜାତ ହୋଇ ।। ୬୭
୧୪ *ଦେବତାମାନଙ୍କର ଭୀତି । ବିନାଶକର୍ତ୍ତା ସେ ଶ୍ରୀପତି ।। ୬୮
ଚଳ ଭ୍ରୂକୁଟି ଦଂଷ୍ଟ୍ର ଘୋର । ବଦନ ଅଟଇ ଯାହାର ।। ୬୯
ଏମନ୍ତ ନୃସିଂହ ଶରୀର । ଧରିଣ ଦୈତ୍ୟେନ୍ଦ୍ର ଆଗର ।। ୭୦
ସେ ଦୈତ୍ୟ ଗଦା ଧରି କୋପେ । ଧାଇଁଣ ଆସନ୍ତେ ସମୀପେ ।। ୭୧
ତକ୍ଷଣେ ଉରୁରେ ପକାଇ । ନଖେ ବିଦାରିଲେ ଗୋସାଇଁ ।। ୭୨
୧୫ କୁମ୍ଭୀର ଅତି ବଳିଆର । ଥାଇଣ ସରସୀଭିତର ।। ୭୩
୧୬ ଗଜକୁ ଚରଣେ ଧଇଲା । ସେ ଯୂଥପତି ଆର୍ତ୍ତ ହେଲା ।। ୭୪
ହସ୍ତରେ ଧରିଣ ନଳିନ । ବୋଇଲା ଏମନ୍ତ ବଚନ ।। ୭୫
ହେ ଆଦିପୁରୁଷ, ଈଶ୍ୱର । ଅଟୁ ଅଖିଳ ଲୋକଙ୍କର ।। ୭୬
ପ୍ରାଣୀଙ୍କ ତୀର୍ଥରୂପ ହୋଇ । ତୋ ଯଶ ବିଖ୍ୟାତ ଅଟଇ ।। ୭୭
ଶ୍ରବଣମଙ୍ଗଳ ରୂପରେ । ତୋ ନାମ ପ୍ରକାଶ ସଂସାରେ ।। ୭୮
ତାର ବଚନ ଶୁଣି ହରି । ଗରୁଡ଼ଭୁଜେ ବିଜେ କରି ।। ୭୯
ସେ ଅପ୍ରମେୟ ଚକ୍ରଧର । ଚକ୍ରକୁ କରିଣ ପ୍ରହାର ।। ୮୦
କୁମ୍ଭୀରବଦନ କାଟିଣ । ଶରଣଅର୍ଥୀ ଯେ ବାରଣ ।। ୮୧
ହସ୍ତେ ଧରିଣ ତାର କର । କୃପାରେ କଲେକ ବାହାର ।। ୮୨
୧୭ ଅଦିତିପୁତ୍ରଙ୍କରେ ସାନ । ହେଲେହେଁ ଦେବ ଭଗବାନ ।। ୮୩
ଗୁଣରେ ଅଟନ୍ତି ଅଧିକ । ଯେଣୁ ଆକ୍ରମିଲେ ତ୍ରିଲୋକ ।। ୮୪

---

* ଉଗ୍ରୋଽପ୍ୟନୁଗ୍ର ଏବାୟଂ ସ୍ୱଭକ୍ତାନାଂ ନୃକେଶରୀ ।
କେଶରୀବ ସ୍ୱପୋତାନାମନ୍ୟେଷାମୁଗ୍ରବିଗ୍ରହଃ । (ସ୍ୱାମୀ)

ଯେ ଧର୍ମମାର୍ଗେ ପ୍ରବର୍ତ୍ତଇ । ତାହାଙ୍କୁ ପ୍ରଭୁପଣେ ଥାଇ ॥ ୮୫
ଯାଚଞ୍ଚା ବିନୁ ଚାଳିବାର[୧] । ନୁହଇ ଉଚିତ ବେଭାର ॥ ୮୬
ଏଣୁ ତ୍ରିପାଦ ଭୂମି ଛଳେ । ବାମନରୂପ ଧରି କାଳେ ॥ ୮୭
ବଳିର ଠାରୁ ଏ ଧରଣୀ । ଘେନିଲେ ପ୍ରଭୁ ଚକ୍ରପାଣି ॥ ୮୮
୧୮ ଉରୁକ୍ରମର ପାଦବାରି । ଯେ ଅଛି ନିଜ ଶିରେ ଧରି ॥ ୮୯
ସେ ବଳିର ଏ ପୁରୁଷାର୍ଥ । ନୁହଇ ସୁରଆଧିପତ୍ୟ ॥ ୯୦
ଯେ ତିନିପାଦ ଭୂମିଦାନ । ପ୍ରତିଜ୍ଞା କରିଣ ବଚନ ॥ ୯୧
ତହିଁରୁ ଆନ କଥା କିଛି । ନ କରିବାକୁ ମନେ ବାଞ୍ଛି ॥ ୯୨
ତୃତୀୟ ପାଦପୂର୍ଣ୍ଣ ଅର୍ଥେ । ଦେହକୁ ବିଚାରିଲା ଚିତ୍ତେ ॥ ୯୩
୧୯ ନାରଦ ! ପୂର୍ବେ ଭଗବାନ । ଅତିଭକ୍ତିରେ ତୋଷମନ ॥ ୯୪
କହିଲେ ଭକ୍ତିଯୋଗ ତୋତେ । ଯେ ଜ୍ଞାନସାଧନ ଜଗତେ ॥ ୯୫
ଯାହାର ଭାଗବତ ନାମ । ଯେ ଆତ୍ମତତ୍ତ୍ୱେ ଦୀପସମ ॥ ୯୬
ହରିଶରଣ ମୁନିଙ୍କର । ଯେ ଅଟେ ଝଟିତି ଗୋଚର ॥ ୯୭
୨୦ ସେ ମନ୍ୱନ୍ତରମାନଙ୍କରେ । ଜନମି ମନୁଙ୍କ ବଂଶରେ ॥ ୯୮
କାହିଁରେ ନୁହଇ ନିବାର । ଯେ ତେଜ ଅଟେ ଆପଣାର ॥ ୯୯
ତାହାକୁ ଚକ୍ରପ୍ରାଏ ଯେହି । ସକଳ ଦିଗେ ଥାଇ ବହି ॥୧୦୦
ତ୍ରିଲୋକ ଉପରେ ବିଦିତ । ଯେ ଲୋକ ଅଛି ନାମେ ସତ୍ୟ ॥୧୦୧
ନିଜ ଚରିତେ ମନୋହର । କୀର୍ତ୍ତି ବିସ୍ତାରନ୍ତେ ତଥିର ॥୧୦୨
ଦଣ୍ଡବିଧାନ ତହିଁ କରେ । ଯେ ଦୁଷ୍ଟନୃପେ ଏ ସଂସାରେ ॥୧୦୩
୨୧ ସେ ଧନ୍ୱନ୍ତରିରୂପ ଧରି । ଭୁବନମଧ୍ୟେ ଅବତରି ॥୧୦୪
ହରଇ ମହାରୋଗୀଙ୍କର । ନାମମାତ୍ରକେ ରୋଗଘୋର ॥୧୦୫
ଯହୁଁ ମରଣଶୂନ୍ୟ ହୋଇ । ପ୍ରାଣୀଆୟୁଷ ପ୍ରବର୍ତ୍ତଇ ॥୧୦୬
ଯେ[୨] ଯଜ୍ଞଭାଗ ପୂର୍ବକାଳେ । ଦାନବେ ରୁନ୍ଧିଥିଲେ ବଳେ ॥୧୦୭
ସେ କୀର୍ତ୍ତିମୟ ତାହା ପାଇ । ଆୟୁର୍ବେଦକୁ ପ୍ରବର୍ତ୍ତାଇ ॥୧୦୮
୨୨ ଜଗତକ୍ଷୟ ଅର୍ଥେ ଜାତ । ଯାହାଙ୍କୁ କରିଛି ବିଧାତ ॥୧୦୯
କୁମାର୍ଗଗାମୀ, ବ୍ରହ୍ମଦ୍ୱେଷୀ । ନରକଦୁଃଖ ଅଭିଳାଷୀ ॥୧୧୦

---

୧. ଐଶ୍ୱର୍ଯ୍ୟରୁ ଭ୍ରଷ୍ଟ କରିବାର । ''ନ ଚାଲ୍ୟଃ ଐଶ୍ୱର୍ଯ୍ୟାଦ୍ ନ ଭ୍ରଂଶନୀୟଃ'' (ସ୍ୱାମୀ)
୨. ସେ ।

ଭୂମିକି କଣ୍ଟକପ୍ରକାର । ଏମନ୍ତ କ୍ଷତ୍ରଙ୍କୁ ସଂହାର ॥୧୧୧
ଯେ ଏକୋଇଶ ବାର କରେ । ତୀକ୍ଷ୍ଣ ପରଶୁ ଧରି କରେ ॥୧୧୨
୨୩ ଆମ୍ଭଙ୍କୁ ଅନୁଗ୍ରହ କରି । ଇକ୍ଷ୍ୱାକୁବଂଶେ ଅବତରି ॥୧୧୩
ଭରତ ଆଦି ସଙ୍ଗେ ତାର । ଅଟଇ ମାୟାର ଈଶ୍ୱର ॥୧୧୪
ପିତାଆଜ୍ଞାରେ ଭାର୍ଯ୍ୟା ଭାଇ । ସଙ୍ଗେ ମିଳିଲେ ବନେ ଯାଇ ॥୧୧୫
ଯା'ଠାରେ ବିରୋଧ କରିଣ । ବିନାଶ ହୋଇଲା ରାବଣ ॥୧୧୬
୨୪ ହରର ପ୍ରାୟ ରିପୁପୁର । ଦହନେ କରନ୍ତେ ବିଚାର ॥୧୧୭
ଭୟେ କଂପିତତନୁ ହେଲା । ଜଳଧି ଯାକୁ ମାର୍ଗ ଦେଲା ॥୧୧୮
ଦୂରରେ ଜାନକୀନିମିତ୍ତ । ଯେ ରୋଷ ହୃଦୟେ ମଥିତ ॥୧୧୯
ତେଣେ ସୁଶୋଣ ନୟନରେ । ଚାହାଁନ୍ତେ ସମୁଦ୍ର ଭିତରେ ॥୧୨୦
ମକର, ସର୍ପ ନକ୍ରଗଣେ । ଅତି ତାତିଲେ ତତକ୍ଷଣେ ॥୧୨୧
୨୫ ଯୁଦ୍ଧେ ଆପଣା ବକ୍ଷେ ଲାଗି । ଅଇରାବତ ଦନ୍ତ ଭାଙ୍ଗି ॥୧୨୨
ସେ ଦନ୍ତ ଦିଶନ୍ତି ଯେ ଶ୍ୱେତ । ସେ ଦିଗମାନଙ୍କେ ଯେ ସ୍ଥିତ ॥୧୨୩
ଭାର୍ଯ୍ୟାକୁ ନେଇଛି ଚୋରାଇ । ସୈନ୍ୟ ମଧ୍ୟରେ[୧] ଶୋଭା ପାଇ ॥୧୨୪
ଏମନ୍ତ ଅଟେ ଯେ ଦଶାସ୍ୟ । ତାହାର ଯେଉଁ ଗର୍ବହାସ ॥୧୨୫
ତାହା ସହିତେ ପ୍ରାଣ ନେମ । ଧନୁ ଟଙ୍କାର କରି ରାମ ॥୧୨୬
୨୬ ଅସୁର ସୈନ୍ୟପାଦ ଲାଗି । ଭୂମି ହୁଅନ୍ତେ ଦୁଃଖଭାଗୀ ॥୧୨୭
କ୍ଲେଶବିନାଶ ଅର୍ଥେ ତାର । ରାମକୁ ଘେନି ସଙ୍ଗତର ॥୧୨୮
*ସିତ, ଅସିତ କେଶ ଯାର । ସେ ପ୍ରଭୁ ହୋଇ ଅବତାର ॥୧୨୯

---

୧. ଅରିସୈନ୍ୟରେ (ପାଠ-'ଅରିସୈନ୍ୟେ') 'ଅଧିସୈନ୍ୟେ' ଇତି ବା ପାଠଃ ।
ଅର୍ଥ-ସ୍ୱପରସୈନ୍ୟମଧ୍ୟେ (ସ୍ୱାମୀ) ।

* ଉଜ୍ଜହାରାତ୍ମନଃ କେଶୌ ସିତକୃଷ୍ଣୌ ମହାବଳଃ । (ବିଷ୍ଣୁ ପୁରାଣ)
ସ ଚାପି କେଶୌ ହରିରୁଚ୍ଚକର୍ତ୍ତ
ଏକଂ ଶୁକ୍ଳମପରଂ ଚାପି କୃଷ୍ଣମ୍ ।
ତୌ ଚାପି କେଶାବାବିଶତାଂ ଯଦୂନାଂ
କୁଳେ ସ୍ତ୍ରୀୟୌ ରୋହିଣୀଂ ଦେବକୀଂ ଚ ॥ ୧ ॥
ତୟୋରେକୋ ବଳଭଦ୍ରୋ ବଭୂବ
ଯୋଽସୌ ଶ୍ୱେତସ୍ତସ୍ୟ ଦେବସ୍ୟ କେଶଃ ।
କୃଷ୍ଣୋ ଦ୍ୱିତୀୟଃ କେଶବଃ ସଂବଭୂବ
କେଶୋ ଯୋଽସୌ ବର୍ଣ୍ଣତଃ କୃଷ୍ଣ ଏବ ॥ ୨ ॥ (ମହାଭାରତ)

| | | | |
|---|---|---|---|
| | ନିଜ ମହିମା ପ୍ରକାଶନ । | କରିବେ ନାନା କର୍ମମାନ | ॥୧୩୦ |
| | ଜନମାନଙ୍କ ମାର୍ଗ ଯାର । | କେବେହେଁ ନୁହଇ ଗୋଚର | ॥୧୩୧ |
| ୨୭ | ବାଳକକାଳେ ପୂତନାର । | ପ୍ରାଣ ଯା କରିବେ ସଂହାର | ॥୧୩୨ |
| | ବୟସେ ତିନିମାସ ହୋଇ । | ପାଦେ ଯା ଶକଟ ଭାଞ୍ଜଇ | ॥୧୩୩ |
| | ଉଚ୍ଚେ ଆକାଶ ଥିଲେ ଛୁଇଁ । | ସେ ଅରଜୁନ ବୃକ୍ଷ ଦୁଇ | ॥୧୩୪ |
| | ତାହାଙ୍କ ମଧ୍ୟେ ଜାନୁ ମାଡ଼ି । | ଯାନ୍ତେ ସେ ପଡ଼ିବେ ଉପୁଡ଼ି | ॥୧୩୫ |
| | ଏକଥା ଈଶ୍ୱରବାହାରେ । | ଅସଂଭାବିତ ଆନଠାରେ | ॥୧୩୬ |
| ୨୮ | ବ୍ରଜରେ ବ୍ରଜପଶୁପାଳ । | ପାନ କରନ୍ତେ ବିଷଜଳ | ॥୧୩୭ |
| | କୃପାରେ ଯେ ଅବଲୋକନ । | ପୀୟୁଷବୃଷ୍ଟିର ସମାନ | ॥୧୩୮ |
| | ତେଣେ ସେମାନଙ୍କ ଜୀବନ । | ଦେବେ ଯା ପ୍ରଭୁ ଭଗବାନ | ॥୧୩୯ |
| | ସେ ଜଳୁଁ ବିଷ ଯିବ ନାଶ । | ଏମନ୍ତ ଅର୍ଥେ ପୀତବାସ | ॥୧୪୦ |
| | ନଦୀରେ ବିହରନ୍ତେ ଯାଇଁ । | ଅତ୍ୟନ୍ତ ବିଷ ବୀର୍ଯ୍ୟପାଇଁ | ॥୧୪୧ |
| | ଯେଉଁ କାଳିୟ ଭୁଜଗର । | ଜିହ୍ୱା ଚଞ୍ଚଳ ନିରନ୍ତର | ॥୧୪୨ |
| | ତାହାକୁ ଦେବେ ଘଉଡ଼ାଇ । | ଏହା କି ଆନରେ ହୁଅଇ | ॥୧୪୩ |
| ୨୯ | ସେ କଥା ଅଲୌକିକ ପ୍ରାଏ । | ଆମ୍ଭ ମନକୁ ପ୍ରତ୍ୟେ ହୋଏ | ॥୧୪୪ |
| | ଗୋକୁଳ ଯାକ ନଦୀତୀରେ । | ଶୋଇଥାଆନ୍ତେ ରଜନୀରେ | ॥୧୪୫ |
| | ଲାଗି ଅରଣ୍ୟ ହୁତାଶନ । | ଦଗ୍ଧ ହୁଅନ୍ତେ ଗ୍ରୀଷ୍ମବନ | ॥୧୪୬ |
| | ମରଣକାଳ ତାହାଙ୍କର । | ନିଶ୍ଚୟ ହୁଅନ୍ତେ ସେଠାର | ॥୧୪୭ |
| | ବଳରାମର ସଙ୍ଗେ ଥାଇ । | ତାହାଙ୍କ ଲୋଚନ ଘୋଡ଼ାଇ | ॥୧୪୮ |
| | ତହିଁରୁ କରିବେ ଉଦ୍ଧାର । | ଅଗମ୍ୟ ଅଟେ ବୀର୍ଯ୍ୟ ଯାର | ॥୧୪୯ |
| ୩୦ | ପୁତ୍ରବନ୍ଧନକୁ ସାଧନ[1] । | ଅଟେ ଏ ବୋଲି ବିଚାରିଣ | ॥୧୫୦ |
| | ଯେବଣ ଯେବଣ ଦଉଡ଼ି । | ଘେନିମ ଏହା ମାତା ଲୋଡ଼ି | ॥୧୫୧ |
| | ସୁତର ବନ୍ଧନକୁ ସେହି । | କେବେହେଁ ପୂର୍ଣ୍ଣ ହେବ ନାହିଁ | ॥୧୫୨ |
| | ସେ ପୁଣି ମୁଖକୁ ହାଇରେ[2] । | ବିସ୍ତାର କରନ୍ତେ ତହିଁରେ | ॥୧୫୩ |
| | ଯଶୋଦା ସକଳ ଭୁବନ । | ଦେଖି ଆଶଙ୍କା କରି ମନ | ॥୧୫୪ |
| | ଜ୍ଞାନରେ ଈଶ୍ୱର ବୋଲିଣ । | ତାକୁ ଜାଣିମ ଯାହା ପୁଣ | ॥୧୫୫ |
| | ତାହାର ଗୁଣ କର୍ମ ଯେତେ । | ଜାଣିଲା ଯାହା ନିଜ ଚିତ୍ତେ | ॥୧୫୬ |
| | ସେ କଥା ଅଲୌକିକ ହୋଇ । | କାହା ମନକୁ ନ ଆସଇ | ॥୧୫୭ |

---

୧. କାରଣ । ୨. ଜୃମ୍ଭାରେ ।

୩୧ ବରୁଣପାଶଭୟୁଁ ହରି । ନନ୍ଦକୁ ଦେବେ ମୋକ୍ଷ କରି ॥୧୫୮
ଗୋପମାନଙ୍କୁ ମୟସୁତ । ବିଳେ କରନ୍ତେ ଆଚ୍ଛାଦିତ ॥୧୫୯
ତହିଁରୁ ସେମାନଙ୍କୁ ପୁଣ । ଆଣିମେ ଉଦ୍ଧାର କରିଣ ॥୧୬୦
ଗୋକୁଳବାସୀଏ ଦିବସେ । ବ୍ୟାପାର କରିଣ ବିଶେଷେ ॥୧୬୧
ଏ ରୂପେ ଅତି ଶ୍ରମ ପାଇ । ରାତ୍ରେ ଥାଆନ୍ତେ ନିଦ୍ରା ଯାଇ ॥୧୬୨
ତାହାଙ୍କୁ ବଇକୁଣ୍ଠପୁର । ନେମେ ସେ ଦେବ ଚକ୍ରଧର ॥୧୬୩
୩୨ ଗୋପାଳେ ଯାଗ ବିନାଶନ୍ତେ । ବ୍ରଜର ବିଘାତ ନିମନ୍ତେ ॥୧୬୪
ବୃଷ୍ଟି କରନ୍ତେ ସୁରପତି । ପଶୁରକ୍ଷାଏ ଦେଇ ମତି ॥୧୬୫
ଶ୍ରମରହିତ ଏକ କରେ । ଶିଳୀନ୍ଧ୍ର[1] ପ୍ରାୟେକ ଲୀଳାରେ ॥୧୬୬
ଧରଣୀଧରକୁ କୃପାଏ । ଧରିବେ ସାତଦିନ ଯାଏ ॥୧୬୭
ସେଦିନ ସରିକି ବୟସ । ସପତ ବରଷ ପ୍ରବେଶ ॥୧୬୮
୩୩ ଶଶାଙ୍କକିରଣେ ଗଉର । ରଜନୀକାଳେ ଦାମୋଦର ॥୧୬୯
ଉତ୍ସକ ହୋଇ ରାସରସେ । କ୍ରୀଡ଼ା କରନ୍ତେ ବନଦେଶେ ॥୧୭୦
ଯେ ଦୀର୍ଘ ମୂର୍ଚ୍ଛନାସଂଯୁତ । ମଞ୍ଜୁଳପଦ ବେଣୁଗୀତ ॥୧୭୧
ତେଣେ ଗୋକୁଳବଧୂଙ୍କର । ପ୍ରକାଶ ହୋଏ କାମଜ୍ୱର ॥୧୭୨
ତାହାଙ୍କୁ ହରି ଦୁଷ୍ଟଚିତ୍ତେ । କୁବେର-ଅନୁଗ[2] ନିଅନ୍ତେ ॥୧୭୩
ତାହାର ଶିରକୁ ଛେଦନ । କରିବେ ପ୍ରଭୁ ଭଗବାନ ॥୧୭୪
୩୪ ପ୍ରଲମ୍ବ, ଖର[3], ବକ[4], କେଶୀ । ଅରିଷ୍ଟମଲ୍ଲ,ହସ୍ତୀ[5] ମିଶି ॥୧୭୫
କଂସ, ଯବନ, କ୍ଷିତିସୁତ[6] । ପୌଣ୍ଡ୍ରକ ଆଦି ଯେ ବିଦିତ ॥୧୭୬
ସାଲ୍ୱ, ଦ୍ୱିବିଦ[7] ଯେବା ଆନ । ବଲ୍ୱଳ, ଦନ୍ତବକ୍ର ଭିନ୍ନ ॥୧୭୭
ଶମ୍ବର, ବିଦୂରଥ ବାଦୀ । ସପତକ୍ଷଣ, ରୁକ୍ମୀ ଆଦି ॥୧୭୮
୩୫ ଯେ ବା ଯୁଦ୍ଧରେ ଧନୁର୍ଦ୍ଧର । ସଂଗ୍ରାମଶାଳୀ ମହାବୀର ॥୧୭୯
କାମ୍ବୋଜ, ମତ୍ସ୍ୟ, କୁରୁପତି । ସୃଂଜୟ, କେକୟ ପ୍ରଭୃତି ॥୧୮୦
ତାହାଙ୍କୁ ବଳ-ପାର୍ଥ-ଭୀମ । ଆଦି ଧରିଣ ବ୍ୟାଜନାମ ॥୧୮୧
ନିଜପୁରକୁ ଭଗବାନ । ନେମେ ସେ ହେବେ ଅଦର୍ଶନ ॥୧୮୨

---

୧. ଛତ୍ରୁ । ୨. ଶଙ୍ଖଚୂଡ଼ (ସ୍ୱାମୀ) । ୩. ଧେନୁକ ।
୪. ମୂଳପାଠସ୍ଥିତ 'ଦର୍ଦ୍ଦୁର' ଶବ୍ଦର ଅର୍ଥ । ୫. କୁବଳୟାପୀଡ଼ ।
୬. ନରକ । ୭. ମୂଳ ପାଠସ୍ଥିତ 'କପି' ଶବ୍ଦର ଅର୍ଥ ।

| | | | | |
|---|---|---|---|---|
| ୩୬ | କାଳେ ଆୟୁଷ, ବୁଦ୍ଧି ଦୁଇ | । | ଯୁଗକୁ ଯୁଗ ଅଳ୍ପ ହୋଇ | ॥୧୮୩ |
| | ଏଣୁ ସ୍ୱକୃତ ବେଦ ସାର | । | ଦୁର୍ଗମ ଅଟେ ଲୋକଙ୍କର | ॥୧୮୪ |
| | କରିଣ ଏମନ୍ତ ବିଚାର | । | ଜନ୍ମିଣ ସତ୍ୟବତୀଠାର | ॥୧୮୫ |
| | ନିଗମଦ୍ରୁମକୁ ସେ ହରି | । | ବାଣ୍ଟିବେ ଶାଖା ଶାଖା କରି | ॥୧୮୬ |
| ୩୭ | ଅସୁରେ ନିଗମମାର୍ଗରେ | । | ପ୍ରବେଶ ହୋଇ ସେ ବଳରେ | ॥୧୮୭ |
| | ଅଲକ୍ଷ୍ୟବେଗ ମୟକୃତ | । | ପୁରମାନଙ୍କେ ହୋଇ ସ୍ଥିତ | ॥୧୮୮ |
| | ଲୋକଙ୍କୁ କରନ୍ତେ ବିନାଶ | । | ତାଙ୍କର ଯେଉଣେ ବୁଦ୍ଧିଭ୍ରଂଶ | ॥୧୮୯ |
| | ମତିପ୍ରଲୋଭ[୧] ଜାତ ହୋଇ | । | ଏମନ୍ତ ବେଶକୁ ଭିଆଇ | ॥୧୯୦ |
| | ଅତି ପାଷାଣ୍ଡ ଧର୍ମମାନ | । | କହିବେ ପ୍ରଭୁ ଭଗବାନ | ॥୧୯୧ |
| ୩୮ | ଯେବେ ଗୃହରେ ସାଧୁଙ୍କର | । | ନୋହିବ କଥା ଶ୍ରୀହରିର | ॥୧୯୨ |
| | ପାଷଣ୍ଡି ହେବେ ଦ୍ୱିଜଜନ | । | ବୃଷଳେ ହୋଇବେ ରାଜନ | ॥୧୯୩ |
| | ସ୍ୱାହା, ସ୍ୱଧା ବଷଟକାର | । | ବାକ୍ୟ[୨] ନ ଥିବ ଯେଉଁଠାର | ॥୧୯୪ |
| | ଯୁଗପ୍ରାନ୍ତରେ ହରି ତେବେ | । | କଳିର ଶାସ୍ତାରୂପ ହେବେ | ॥୧୯୫ |
| ୩୯ | ସର୍ଜନା କାଳରେ କାରଣ | । | ତପ, ମୁଁ, ନବରଷି ପୁଣ | ॥୧୯୬ |
| | ଆବର ପ୍ରଜାପତିମାନେ | । | କାରଣ ଅଟନ୍ତି ପାଳନେ | ॥୧୯୭ |
| | ଯେ ଧର୍ମ, ଯଜ୍ଞ, ମନୁମାନେ | । | ଅମର ସକଳ, ରାଜନେ | ॥୧୯୮ |
| | ଅନ୍ତେ[୩] ଅଧର୍ମ ମହେଶ୍ୱର | । | ସର୍ପ, ଅସୁରପତି ଘୋର | ॥୧୯୯ |
| | ଯେ ନାନା ଶକ୍ତି ଧରେ ହରି | । | ଏ ମାୟାବିଭୂତି ତାହାରି | ॥୨୦୦ |
| ୪୦ | *ବିଷ୍ଣୁର ବୀର୍ଯ୍ୟକୁ ସଂସାରେ | । | କେବଣ ଲୋକ ଗଣିପାରେ | ॥୨୦୧ |
| | ଯେ କବି ଧରଣୀରେଣୁ ହିଁ | । | ଗଣଇଁ, ନ ପାରିବ ସେହି | ॥୨୦୨ |
| | ଯେ ବିଷ୍ଣୁ ମହିମାରେ କରି | । | ସତ୍ୟଲୋକକୁ ଅଛି ଧରି | ॥୨୦୩ |
| | ଯେଣୁ ତ୍ରିବିକ୍ରମ ରୂପରେ | । | ଅସ୍ଖଳିତ ପାଦବେଗରେ | ॥୨୦୪ |
| | ପ୍ରକୃତି ଠାରୁ ଆଦି ହୋଇ | । | ଅଧିକ ଭାବେ ସେ[୪] କଂପଇ | ॥୨୦୫ |

---

୧. ଅଯୁକ୍ତ ସ୍ୱୀକାର (ସ୍ୱାମୀ)　୨. କାବ୍ୟ ।　୩. ଲୟେ ।　୪. ସତ୍ୟଲୋକ ।

* ବିଷ୍ଣୋର୍ନୁ କଂ ବୀର୍ଯ୍ୟାଣି ପ୍ରବୋଚଂ
ଯଃ ପାର୍ଥିବାନି ବିମମେ ରଜାଂସି ।
ଯୋଽସ୍କମ୍ଭୟଦୁତ୍ତରଂ ସଧସ୍ଥଂ
ବିଚଂ କ୍ରମାଣସ୍ତ୍ରେଧୋରୁଗାୟଃ ॥ (ଋଗ୍‌ବେଦଃ)

୪୧ ବିଷ୍ଣୁର ମାୟାବଳ ଯେହି । ତା' ଅନ୍ତ ମୁହିଁ ନ ଜାଣଇଁ ॥୨୦୬
ଏ ଯେ ତୋହର ଜ୍ୟେଷ୍ଠ ଭାଇ । ମୁନିଏ ନ ଜାଣନ୍ତି ତାହି ॥୨୦୭
ପଛେ ଜନମ ଯାହାଙ୍କର । ସେ କାହୁଁ କରିବେ ଗୋଚର ॥୨୦୮
ଅନନ୍ତ ସହସ୍ର ବଦନ । ସେହି ଏହାର ଗୁଣମାନ ॥୨୦୯
ଗାୟନ କରନ୍ତେ ଆଜହିଁ । ପାରକୁ ଯାଇ ପାରି ନାହିଁ ॥୨୧୦
୪୨ ଯେଉଁମାନଙ୍କୁ ସେ ନିୟତ । କରୁଣା କରନ୍ତି ଅନନ୍ତ ॥୨୧୧
ସେମାନେ ଯଦି ସର୍ବାତ୍ମାରେ । ତାର ଚରଣ ଅମାୟାରେ ॥୨୧୨
ସତତେ ଆଶ୍ରୟ କରନ୍ତି । ମାୟାକୁ ଜାଣନ୍ତି, ତରନ୍ତି ॥୨୧୩
ଶୃଗାଳ କୁକ୍କୁରର ଭକ୍ଷ୍ୟ । ଯେ ଦେହ ଅଟଇ ପ୍ରତ୍ୟକ୍ଷ ॥୨୧୪
ତହିଁରେ ଅହଂ-ମମ[1] ହୋଇ । ବୁଦ୍ଧି ସେମାନଙ୍କର ନାହିଁ ॥୨୧୫
୪୩ ଏ ହରିଯୋଗମାୟା ଆମ୍ଭେ । ଜାଣୁଁ, ସନକ ଆଦି ତୁମ୍ଭେ ॥୨୧୬
ଶଙ୍କର, ପ୍ରହଲାଦ ବେନି । ଆବର ମନୁ, ମନୁପତ୍ନୀ[2] ॥୨୧୭
ପ୍ରିୟବ୍ରତାଦି ମନୁଙ୍କର । ଯେତକ କୁମାରୀ, କୁମର ॥୨୧୮
ପ୍ରାଚୀନବରହି ନୃପତି । ଅଙ୍ଗ, ଧ୍ରୁବହିଁ ତା ଜାଣନ୍ତି[3] ॥୨୧୯
୪୪ ଇକ୍ଷ୍ୱାକୁ, ପୁରୂରବା ସୁଧୀ । ବିଦେହ, ମୁଚୁକୁନ୍ଦ, ଗାଧି ॥୨୨୦
ରଘୁ, ଅମ୍ବରୀଷ, ସଗର । ଗୟ, ନାହୁଷ,[4] ଆଦି ଆର ॥୨୨୧
ମାନ୍ଧାତା ଅଳର୍କ ବୈଷ୍ଣବ । ଯେ ଶତଧନୁ ରନ୍ତିଦେବ ॥୨୨୨
ଯେ ଦେବବ୍ରତ, ବଳିଭୂପ । ଅମୂର୍ତ୍ତରୟ ଯେ ଦିଲୀପ ॥୨୨୩
୪୫ ଉତଙ୍କ, ସଉଭରି ମିଶି । ଶିବି, ଦେବଳ ମହାଋଷି ॥୨୨୪
ଯେ କୃପ, ପିପ୍‌ପଳାଦ୍ର ବେନି । ଉଦ୍ଧବ, ପରାଶର ମୁନି ॥୨୨୫
ସେ ଭୂରିଷେଣ, ବିଭୀଷଣ । ଶୁକ,[5] ଅର୍ଜୁନ, ହନୁମାନ ॥୨୨୬
ଜାଣେ ବିଦୁର, ଆର୍ଷ୍ଟିଷେଣ । ଶ୍ରୁତଦେବାଦି ମୁନିଗଣ ॥୨୨୭
୪୬ ସ୍ତ୍ରୀ, ଶୂଦ୍ର, ଶବର, ଯବନ । ଯେ ଅବା ପାପଜୀବମାନ ॥୨୨୮
ସେ ଦେବମାୟାକୁ ଜାଣନ୍ତି । ଆବର ବିଶେଷେ ତରନ୍ତି ॥୨୨୯

---

୧. ମୁଁ ମୋର । ୨. ଶତରୂପା ।
୩. ଏହି ପ୍ରସଙ୍ଗରେ 'ରଭୁ' ନାମ ମୂଳ ପାଠରେ ଥିଲେ ମଧ୍ୟ ଏଥିରେ ଦିଆଯାଇ ନାହିଁ ।
୪. ଯଯାତି । ୫. ମୂଳପାଠ ସ୍ଥିତ 'ଉପେନ୍ଦ୍ରଦତ୍ତ' ଶବ୍ଦର ଅର୍ଥ (ସ୍ୱାମୀ)

ହରିଭଗତଙ୍କ ଚରିତ । ଶିକ୍ଷାରେ ଯେବେ ସେ ନିୟତ ॥୨୩୦
କୀଟ ଆଦିହିଁ ହେଲେ ତରେ । ଯେ ହରିରୂପଧାରଣାରେ ॥୨୩୧
ହୋଇଣ ଥିବେ ଆସକତ । ତାଙ୍କ ତରିବା କି ଅଦ୍ଭୁତ ॥୨୩୨
୪୭ ନିତ୍ୟ, ପ୍ରଶାନ୍ତ ଯେ ଅଭୟ । ଅଟେ ସର୍ବଦା ବୋଧମୟ ॥୨୩୩
ଯେ ଶୁଦ୍ଧ, ସମ, ସଙ୍ଗହୀନ । ଆତ୍ମାରୁ ଅଟଇ ଅଭିନ୍ନ ॥୨୩୪
ଆରୋପନିବୃତ୍ତିରେ ଯହିଁ । ଶବ୍ଦବ୍ୟାପାର ପ୍ରବର୍ତ୍ତଇ ॥୨୩୫
କାରକସାଧ୍ୟ କ୍ରିୟାଅର୍ଥ । ଯାହାରଠାରେ ନୋହେ ସାର୍ଥ ॥୨୩୬
ଯାହା ସମ୍ମୁଖେ ଲଜ୍ଜା ପାଇ । ମାୟା ହିଁ ଦୂରକୁ ପଳାଇ ॥୨୩୭
୪୮ ଏମନ୍ତ ବ୍ରହ୍ମ ଯେ ଅଟଇ । ପରମ ପୁରୁଷର ସେହି ॥୨୩୮
ସ୍ୱରୂପ ଅଟଇ ନିୟତ । ମୁନିଏ କରନ୍ତି ଉକତ ॥୨୩୯
ନିଜ ମନକୁ ଯତିମାନେ । ଯତ୍ନ କରିଣ ଯାକୁ ଧ୍ୟାନେ ॥୨୪୦
ଅଭେଦଜ୍ଞାନକୁ ସାଧନ । ଯେ ଥିଲା ଛାଡ଼ିଲେ ସେମାନ ॥୨୪୧
କୂପଖନନେ ବାଞ୍ଛା ଥାଇ । ତା ଯେହ୍ନେ ଇନ୍ଦ୍ର ନିବର୍ତ୍ତାଇ ॥୨୪୨
୪୯ ସେ ଶ୍ରେୟମାନଙ୍କ ଈଶ୍ୱର । ଯେଣୁ ବ୍ରାହ୍ମଣମାନଙ୍କର ॥୨୪୩
ସ୍ୱଭାବବିହିତ ଯେ କର୍ମ । କରେ ତା ସିଦ୍ଧିକି ଜନମ ॥୨୪୪
ଧାତୁବିଗମେ ଦେହନାଶ । ହେଲେହେଁ ତହିଁ ଯେ ପୁରୁଷ ॥୨୪୫
କେବେହେଁ ଶୀର୍ଣ୍ଣ ସେ ନୁହଇ । ଆକାଶ ପ୍ରାୟ ହୋଇଥାଇ ॥୨୪୬
୫୦ ଭୋ ତାତ ତୋତେ ଏତେରୂପେ । ହରିଙ୍କି କହିଲି ସଂକ୍ଷେପେ ॥୨୪୭
କାର୍ଯ୍ୟ କାରଣ ଯେତେମାନ । ହରିରୁ ନୁହଇ ସେ ଭିନ୍ନ ॥୨୪୮
ସେ ବିଶ୍ୱହେତୁ ଭଗବାନ । କାର୍ଯ୍ୟମାନଙ୍କଠାରୁ ଭିନ୍ନ ॥୨୪୯
୫୧ ଏ ଗ୍ରନ୍ଥ ନାମ ଭାଗବତ । ଯେ ଭଗବନ୍ତରେ ଉକତ ॥୨୫୦
ସଂଗ୍ରହ ଏ ବିଭୂତିଙ୍କର । ତୁ ଏହା କରସି ବିସ୍ତାର ॥୨୫୧
୫୨ ସକଳ ଆତ୍ମା ସର୍ବାଧାର । ଯେ ଭଗବାନ ତାଙ୍କଠାର ॥୨୫୨
ଲୋକର ହୋଇବ ଭଗତି । ବର୍ଣ୍ଣ ତୁ ସେ ପ୍ରକାରେ ଚିନ୍ତି ॥୨୫୩
୫୩ ଏ ବିଷ୍ଣୁ ମାୟାକୁ ଯେ ଜନ । ଆନନ୍ଦେ କରଇ ବର୍ଣ୍ଣନ ॥୨୫୪
ଶ୍ରଦ୍ଧାରେ ଶ୍ରବଣ କରଇ । ଶୁଣିଣ ସନ୍ତୋଷ ଲଭଇ ॥୨୫୫
ମାୟାରେ ସେ ଲୋକର ଚିତ୍ତ । କେବେହେଁ ନୁହଇ ମୋହିତ ॥୨୫୬

ଶରଣଜନଙ୍କୁ ରକ୍ଷଣ । ଯେ ପ୍ରଭୁ କରେ ପୁଣ ପୁଣ ।।୨୫୭
ସେ କୃଷ୍ଣପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ।।୨୫୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀବ୍ରହ୍ମନାରଦସଂବାଦୋ
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମୋଽଧ୍ୟାୟଃ

ଅଷ୍ଟମେ ଦେହସଂବନ୍ଧମାକ୍ଷିପନ୍ନୀଶଜୀବୟୋଃ ।
ବହୂନ୍ ପରୀକ୍ଷିଦାପୃଚ୍ଛଦ୍ ପୁରାଣାର୍ଥାନ୍ ବୁଭୁତ୍ସିତାନ ।। ୧ ।।

ଶ୍ରୀପରୀକ୍ଷିତ ଉବାଚ

୧ ଭୋ ବିପ୍ର ! ଯେ ହରି ନିର୍ଗୁଣ । ବର୍ଣ୍ଣିମା ଅର୍ଥେ ତାର ଗୁଣ ।। ୧
ଦେବତାମାନଙ୍କ ସମାନ । ଅଟଇ ଯାର ଦରଶନ ।। ୨
ସେ ନାରଦଙ୍କୁ ପଦ୍ମଯୋନି । କହନ୍ତେ ସେହି ମହାମୁନି ।। ୩
ଯେମନ୍ତେ ଯାହାକୁ ଯାହାକୁ । କହିଲେ ମୁଁ ସେହି ତତ୍ତ୍ୱକୁ ।। ୪
ଜାଣିମା ନିମନ୍ତେ ବିଚାର । କରୁଛି ହେ ବେଦଜ୍ଞବର ।। ୫
୨ ଅଦ୍ଭୁତ ଅଟେ ବୀର୍ଯ୍ୟ ଯାର । ଭୋ ମହାଯୋଗୀ ସେ ହରିର ।। ୬
ଯେତେ ଅଛନ୍ତି କଥାମାନେ । ମଙ୍ଗଳକର ଏ ଭୁବନେ ।। ୭
ସେ କଥାମାନ କହ ମୋତେ । ଶ୍ରୀକୃଷ୍ଣଠାବରେ ଯେମନ୍ତେ ।। ୮
ନିଃସଙ୍ଗ ମନ କରି ସ୍ଥିର । ଛାଡ଼ିବି ନିଜ କଳେବର ।। ୯
୩ ନିଜ ଚେଷ୍ଟାକୁ ନିତ୍ୟେ ଯେହି । ଶ୍ରଦ୍ଧାରେ ଶୁଣଇଁ ଗୁଣଇଁ ।। ୧୦
ଅଦୀର୍ଘ କାଳେ ଭଗବାନ । ପ୍ରବେଶ ହୋଏ ତାର ମନ ।। ୧୧
୪ ଭଗତହୃଦୟପଦ୍ମରେ । ପଶିଣ ଶ୍ରବଣରନ୍ଧ୍ରରେ ।। ୧୨
ଦୁରିତ ନାଶେ ଭଗବାନ । ଶରଦ ସମୟ ଯେସନ ।। ୧୩
ସଲିଳମଧ୍ୟଗତ ମଳ । ବିନାଶ କରେ ତତକାଳ ।। ୧୪
୫ ନିଷ୍ପାପ ଅଟଇ ଯେ ନର । କରେ ରାଗାଦି କ୍ଲେଶ ଦୂର ।। ୧୫
କୃଷ୍ଣର ପାଦମୂଳ ସେହି । କେବେହେଁ ଛାଡ଼ି ନ ପାରଇ ।। ୧୬
ପଥିକ ପ୍ରବାସୁଁ ଆଗତ । ସ୍ୱଗୃହ ନ ଛାଡ଼େ ଯେମନ୍ତ ।। ୧୭

୬　ଅଧାତୁବନ୍ତ ଯେ ଅଟଇ । ସେ ଆତ୍ମା ଧାତୁଯୋଗ ପାଇ ॥ ୧୮
ଦେହକୁ ଲଭେ ଯଦୃଚ୍ଛାରେ । ଅଥବା ପ୍ରାଚୀନ କର୍ମରେ ॥ ୧୯
ତୁମ୍ଭେ ଯେମନ୍ତେ ଏ ବିଷୟ । ଜାଣ ଭୋ ବିପ୍ର ମୋତେ କହ ॥ ୨୦
୭　ଭୁବନମାନଙ୍କ ରଚନା । ଯାହାର ସ୍ୱରୂପ କଳ୍ପନା ॥ ୨୧
ଏମନ୍ତ ପଙ୍କଜ ଯାହାର । ଉଦରୁ ହୋଇଲା ବାହାର ॥ ୨୨
ଲୌକିକ ପୁରୁଷ ଯେମନ୍ତ । ସ୍ୱସଂଖ୍ୟ[୧] ଅବୟବେ ଯୁତ ॥ ୨୩
ସେ ଈଶ୍ୱରକୁ ହିଁ ସେମନ୍ତ । ଯେସନେ ଅବୟବବନ୍ତ ॥ ୨୪
କହିଣ ଅଛ ଏ ପ୍ରକାରେ । କି ଭେଦ ଦୁହିଁଙ୍କର ଠାରେ ॥ ୨୫
୮　*ଯାହାର ଅନୁଗ୍ରହ ପାଇ । ପ୍ରାଣୀମାନଙ୍କ ଶାସ୍ତା ହୋଇ ॥ ୨୬
ପ୍ରାଣୀଙ୍କି ସର୍ଜଇ ବିଧାତ । ନାଭିକମଳୁଁ ହୋଇ ଜାତ ॥ ୨୭
ସେ ରୂପ ଅନୁଗ୍ରହୁଁ ଯାର । କଲା ସେ ନୟନଗୋଚର ॥ ୨୮
୯　ଜଗତ ସ୍ଥିତି ଜନ୍ମ ନାଶ । ଯା ଠାରୁ ହୁଅଇ ପ୍ରକାଶ ॥ ୨୯
ମାୟାଈଶ୍ୱର ସେ ପୁରୁଷ । ସକଳଭୂତଗୁହାବାସ ॥ ୩୦
ନିଜ ମାୟାକୁ ଛାଡ଼ି ଯହିଁ । ଯେଉଁ ରୂପରେ ଅଛି ଶୋଇ ॥ ୩୧
୧୦　ପାଳକ ସହିତ ହୋଇଣ । ଯେତେ ଅଛନ୍ତି ଲୋକଗଣ ॥ ୩୨
ସେ ପୁରୁଷର ଅବୟବେ । କଳ୍ପିତ ହୋଇଛନ୍ତି ପୂର୍ବେ ॥ ୩୩
ପୁରୁଷ-ଅବୟବମାନ । ସପାଳ ଲୋକରେ କଳ୍ପନ ॥ ୩୪
ତୁମ୍ଭ ମୁଖରୁ ଏ ପ୍ରକାରେ । ଆମ୍ଭେ ତ ଶୁଣିଛୁଁ ଆଦ୍ୟରେ ॥ ୩୫
୧୧　ଯେ ମହା କଳ୍ପ ପରିମାଣ । ଯେ ଅବାନ୍ତର କଳ୍ପ ପୁଣ ॥ ୩୬
ଭୂତ, ଭବିଷ୍ୟ, ବର୍ତ୍ତମାନ । କାଳ ଯେ ରୂପେ ଅନୁମାନ ॥ ୩୭
ମନୁଷ୍ୟ, ପିତୃ, ଦେବ ଆଦି । ଆୟୁଷ ପ୍ରମାଣ ଯେ ସିଦ୍ଧି ॥ ୩୮
୧୨　କାଳର ଅନୁଗତି ଯେହି । ଅଳ୍ପ, ବହୁତ ଅବା ହୋଇ ॥ ୩୯
କର୍ମପ୍ରାପତ ଯେତେ ସ୍ଥାନ । ହେ ଦ୍ୱିଜଶ୍ରେଷ୍ଠ ! ସେ ଯେସନ ॥ ୪୦
୧୩　ସତ୍ତ୍ୱାଦିଗୁଣ ପରିଣାମ । ଦେବତା ଆଦି ରୂପେ ଜନ୍ମ ॥ ୪୧
ତାହା ବାଞ୍ଛନ୍ତି ଯେଉଁ ଜୀବେ । ସେମାନଙ୍କର ମଧ୍ୟେ ଏବେ ॥ ୪୨

---

୧. ସୁପରିମିତ (ସ୍ୱାମୀ)
* ତସ୍ୟାପି ଦ୍ରଷ୍ଟୁରୀଶସ୍ୟ କୂଟସ୍ଥସ୍ୟାଖିଳାତ୍ମନଃ ।
ସୃଜ୍ୟଂ ସୃଜାମି ସୃଷ୍ଟୋଽହମୀକ୍ଷୟୈବାଭିଚୋଦିତଃ ॥ (ସ୍ୱାମୀ)

| | | | | |
|---|---|---|---|---|
| | ଯେଉଁ ପରିଣାମେ କାରଣ । | ଯେବଣ ପୁଣ୍ୟପାପଗଣ | ॥ | ୪୩ |
| | ଯେଉଁ କର୍ମରେ ଯେଉଁ ଦେହ । | ଲଭନ୍ତି ତାହା ମୋତେ କହ | ॥ | ୪୪ |
| ୧୪ | ଭୂମି, ପାତାଳ ଦଶ ଦିଶ । | ଯେ ଗ୍ରହ ନକ୍ଷତ୍ର ଆକାଶ | ॥ | ୪୫ |
| | ପର୍ବତ, ସରିତ, ସାଗର । | ଯେ ଦ୍ୱୀପେ ଅଛନ୍ତି ଆବର | ॥ | ୪୬ |
| | କି ରୂପେ ହୁଅନ୍ତି ସଂଭବ । | ଏଥି ଅଛନ୍ତି ଯେତେ ଜୀବ | ॥ | ୪୭ |
| | ସେମାନେ ଯେମନ୍ତ ପ୍ରକାରେ । | ଜନମ ଲଭନ୍ତି ସଂସାରେ | ॥ | ୪୮ |
| ୧୫ | ଅଣ୍ଡକୋଷର ଯେ ପ୍ରମାଣ । | ବାହ୍ୟ ଅନ୍ତର ଭେଦେ ପୁଣ | ॥ | ୪୯ |
| | ମହତ ଜନମାନଙ୍କର । | ଅନୁଚରିତ ଯେ ଆବର | ॥ | ୫୦ |
| | ବିପ୍ରାଦି ବର୍ଣ୍ଣର[୧] ବିଷୟ । | ଚାରି ଆଶ୍ରମର ନିର୍ଣ୍ଣୟ | ॥ | ୫୧ |
| ୧୬ | ହରି-ଅବତାର ଚରିତ । | ଯେ ଅତି ଆଶ୍ଚର୍ଯ୍ୟ ବିଦିତ | ॥ | ୫୨ |
| | ଯେ ଯୁଗ, ଯୁଗପରିମାଣ । | ଯୁଗେ ଯୁଗେ ଯେ ଧର୍ମ ପୁଣ | ॥ | ୫୩ |
| ୧୭ | ଯେ ଧର୍ମ ସାଧାରଣ ହୋଇ । | ସକଳ ଲୋକଙ୍କର ଥାଇ | ॥ | ୫୪ |
| | ବର୍ଣ୍ଣ-ଆଶ୍ରମ-ଅନୁଗତ । | ଧର୍ମ ଅଟଇ ସେ ଯେମନ୍ତ | ॥ | ୫୫ |
| | ନାନା ବ୍ୟବସାୟେ ଯେ ଜନେ । | କୁଟୁମ୍ବ ପୋଷନ୍ତି ଭୁବନେ | ॥ | ୫୬ |
| | ତାଙ୍କର ଯେ ବା ବ୍ୟବହାର । | ନିୟମ ଅଛି ଯେ ଆବର | ॥ | ୫୭ |
| | ସେ ରୂପେ ଲକ୍ଷିତ ହୋଇଣ । | ଯେବଣ ଧର୍ମ ଅଛି ପୁଣ | ॥ | ୫୮ |
| | ଯେ ଧର୍ମ ରାଜରଷିଙ୍କର । | କଷ୍ଟେ ଜୀଅନ୍ତି ଯେଉଁ ନର | ॥ | ୫୯ |
| | ସେ ସମସ୍ତଙ୍କ ଧର୍ମ ଅବା । | ଯେ ତାହା ମୋ ଆଗେ କହିବା | ॥ | ୬୦ |
| ୧୮ | ପ୍ରକୃତି ଆଦି ତତ୍ତ୍ୱଙ୍କର । | ସଂଖ୍ୟା[୨], ଲକ୍ଷଣ ଯେ ଆବର | ॥ | ୬୧ |
| | କାର୍ଯ୍ୟକୁ ପ୍ରତି ସେ କାରଣ । | ଏ ଭାବେ ପୁଣ ଯେ ଲକ୍ଷଣ | ॥ | ୬୨ |
| | ବିଷ୍ଣୁ-ଆରାଧନା ପ୍ରକାର । | ଅଧ୍ୟାତ୍ମ ଯୋଗର ବିଚାର | ॥ | ୬୩ |
| ୧୯ | ଯୋଗୀନ୍ଦ୍ରମାନେ ଯା ଲଭନ୍ତି । | ଅଣିମା ଆଦି ସିଦ୍ଧିଗତି | ॥ | ୬୪ |
| | ଯୋଗୀମାନଙ୍କ ଲିଙ୍ଗଦେହ । | କିରୂପେ ଭଙ୍ଗ ହୋଏ କହ | ॥ | ୬୫ |
| | ବେଦ, ଜ୍ୟୋତିଷ ଆଦି, ସ୍ମୃତି । | ପୁରାଣ ଇତିହାସ ଗତି | ॥ | ୬୬ |
| ୨୦ | ସମସ୍ତ ପ୍ରାଣୀମାନଙ୍କର । | ଯେ ବା ପ୍ରଳୟ ଅବାନ୍ତର | ॥ | ୬୭ |
| | ତାଙ୍କ ଉଦ୍‌ଭବ ଯେ ଅଟଇ । | ମହାପ୍ରଳୟ ପୁଣ ଯେହି | ॥ | ୬୮ |

---

୧. ଜନଙ୍କ । ୨. ସାଂଖ୍ୟ ।

*ବୈଦିକ କର୍ମର ଯେ ବିଧି । ସ୍ମାର୍ତ୍ତ କର୍ମର ଯେ ବା ସିଦ୍ଧି ॥ ୬୯
ଯେ ମାର୍ଗ କାମ୍ୟ କର୍ମଙ୍କର । ତ୍ରିବର୍ଗ ଅବିରୋଧ ଆର ॥ ୭୦
୨୧ ଯେ ସର୍ଗ ଜୀବମାନଙ୍କର । ପାଷଣ୍ଡ ସଂଭବ ଆବର ॥ ୭୧
ଆତ୍ମାର ବନ୍ଧମୋକ୍ଷ ଦୁଇ । ତହିଁ ଅଭାବେ ଯଥା ରହି ॥ ୭୨
୨୨ ସେ ଆତ୍ମତନ୍ତ୍ର ଭଗବାନ । ଖେଳେ ସ୍ୱମାୟାରେ ଯେସନ ॥ ୭୩
ମାୟାକୁ ଛାଡ଼ିଣ ଯେମନ୍ତେ । ରହେ ପ୍ରଳୟେ ସାକ୍ଷିମତେ ॥ ୭୪
୨୩ ଭୋ ମହାମୁନି ! ଯେତେ ମୁହିଁ । ତୁମ୍ଭଙ୍କୁ ପଚାରୁ ଅଛଇଁ ॥ ୭୫
ସେ ସର୍ବ କ୍ରମେ ନିଷ୍ଠା କରି । କହ ମୋତେ ତା' ଅନୁସରି ॥ ୭୬
ଯେଣୁ ମୁଁ ତୁମ୍ଭର ଠାବରେ । ପ୍ରପନ୍ନ ହୋଇଛି ସଂସାରେ ॥ ୭୭
୨୪ ଏ ଭାଗବତ ବର୍ଣ୍ଣନାରେ । ବିଧାତା ପ୍ରମାଣ[୧] ଆଗରେ ॥ ୭୮
ଏହି ମାର୍ଗକୁ ଅନୁଗତ । ଇତରେ ଅଛନ୍ତି ବହୁତ ॥ ୭୯
ପୂର୍ବରୁ ପୂର୍ବଜାତ ଯେହି । ତେଣେ ରଚିତ ଯେ ଅଟଇ ॥ ୮୦
୨୫ ଅଚ୍ୟୁତକୀର୍ତ୍ତିସୁଧାଧାର । ମୁଖକମଳରୁ ତୋହର ॥ ୮୧
ଭୋ ବିପ୍ର ! ହେଉଛି ଗଳିତ । ପାନ କରନ୍ତେ ତା' ସନ୍ତତ ॥ ୮୨
ମୋ ପ୍ରାଣ ଅନଶନାଦିରେ । ବ୍ୟାକୁଳ ନୁହଇ ଦେହରେ ॥ ୮୩

ଶ୍ରୀସୂତ ଉବାଚ

୨୬ ସଭାରେ ନୃପ ପରୀକ୍ଷିତ । ପ୍ରଶ୍ନ କରନ୍ତେ ସେ ଏମନ୍ତ ॥ ୮୪
କହିବି[୨] ବୋଲି ତାଙ୍କ ପାଶ । ଶୁକ ଅତ୍ୟନ୍ତ ହେଲେ ତୋଷ ॥ ୮୫
ହରି କଥାରେ ବ୍ରହ୍ମରାତ । ଶୁକ ଅତ୍ୟନ୍ତ ହେଲେ ପ୍ରୀତ[୩] ॥ ୮୬
୨୭ କହିଲେ ଭାଗବତ ନାମ । ପୁରାଣ ଯେହୁ ବେଦସମ ॥ ୮୭
ବ୍ରହ୍ମକଳ୍ପେ ଯା' ଭଗବାନ । କହିଲେ ବ୍ରହ୍ମାସନ୍ନିଧାନ ॥ ୮୮
୨୮ ପାଣ୍ଡୁମାନଙ୍କ ମଧ୍ୟେ ସାର । ସେ ପରୀକ୍ଷିତ ନୃପବର ॥ ୮୯
ପୁଚ୍ଛଇ ଯେଉଁ ଯେଉଁ କଥା । ପ୍ରସ୍ତାବକ୍ରମେ ସେ ବ୍ୟବସ୍ଥା ॥ ୯୦

---

* ବୈଦିକ କର୍ମକୁ 'ଇଷ୍ଟ' ଏବଂ ସ୍ମାର୍ତ୍ତ କର୍ମକୁ 'ପୂର୍ତ୍ତ' କହନ୍ତି ।
ବାପୀକୂପତଡ଼ାଗାଦି ଦେବତାୟତନାନି ଚ ।
ଅନ୍ନପ୍ରଦାନମାରାମଃ ପୂର୍ତ୍ତମିତ୍ୟଭିଧୀୟତେ ॥

୧. ସମ୍ୟକ୍‌ଜ୍ଞାତା (ସ୍ୱାମୀ) । ୨. 'କଥୟାମୀତି' ପାଠର ଅନୁବାଦ । (ଖାଡ଼ଙ୍ଗା)
୩. 'କଥାୟାମିତି' ପାଠର ଅନୁବାଦ ।

କହିବା ଅର୍ଥେ ବ୍ୟାସସୁତ । ଆରମ୍ଭ କଲେକ ତୁରିତ ॥ ୯୧
ଭକ୍ତବତ୍ସଳ ଭଗବାନ । ଯେ ଅକିଂଚନଧନଜନ ॥ ୯୨
ଦୀନବନ୍ଧୁର ସେ ଦୁର୍ଗତି । ନାଶ କରିବେ ରମାପତି ॥ ୯୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀପରୀକ୍ଷିତ୍‌ପ୍ରଶ୍ନୋ
ନାମ ଅଷ୍ଟମୋଽଧ୍ୟାୟଃ ॥

## ନବମୋଽଧ୍ୟାୟଃ

ରାଜ୍ଞଃ[୧] ପ୍ରଶ୍ନୋତ୍ତରଂ ବକ୍ଷ୍ୟନ୍ ବ୍ରହ୍ମଣେ ହରିଣୋଦିତମ୍ ।
କଥୟାମାସ ନବମେ ଶୁକୋ ଭାଗବତଂ ପୁନଃ ॥ ୧ ॥

ଶ୍ରୀଶୁକ ଉବାଚ

୧ ହେ ନୃପ ! ଶରୀର ରୂପର । ଯେ ଆତ୍ମା ଅନୁଭବାକାର ॥ ୧
ବିଷ୍ଣୁ ମାୟାର ଅଭାବରେ । ତାର ସମ୍ବନ୍ଧ ଦେହାଦିରେ ॥ ୨
ଯଥାର୍ଥ ହୋଇ ନ ଘଟଇ । ସ୍ୱପ୍ନକୁ ଯେ ଜନ ଦେଖଇ ॥ ୩
ତାହାର ସ୍ୱପ୍ନଦେହ ଯୋଗ । ମାୟାରେ ଯଥା ହୋଏ ଭୋଗ ॥ ୪
୨ ଯେ ମାୟା ବହୁରୂପ ହୋଇ । ତା ସଙ୍ଗେ ଯେବେ ବିହରଇ ॥ ୫
ବାଳକ, ବୃଦ୍ଧ, ସୁର, ନର । ଏ ଆଦି ବହୁତ ଆକାର ॥ ୬
ହୋଇଲା ପ୍ରାଏ ଶୋଭା ପାଇ । ଦେହ ଆଦିରେ ବଶ ହୋଇ ॥ ୭
ମୁଁ ଏ, ଏମାନ ଅଟେ ମୋର । ମଣଇଁ ଏମନ୍ତ ଆକାର ॥ ୮
୩ କାଳରୁ ମାୟାରୁ ଅତୀତ । ଆପଣା ମହିମା ବିଦିତ ॥ ୯
ତହିଁରେ ଯେବେ ସେ ରମଇଁ । ସକଳ ସଂମୋହ ଛାଡ଼ଇ ॥ ୧୦
ଛାଡ଼ିଣ ଅହଂ ମମ ଦୁଇ । ପୂର୍ଣ୍ଣ ରୂପରେ ସେ ରହଇ ॥ ୧୧
୪ ଅବ୍ୟାଜ ବ୍ରତେ ପଦ୍ମାସନ । ହରିଙ୍କି କରନ୍ତେ ଭଜନ ॥ ୧୨
ଯେ ରୂପ ଅଟେ ଜ୍ଞାନଘନ । ତାହା କରାନ୍ତେ[୨] ଦରଶନ ॥ ୧୩
ଜୀବର ତତ୍ତ୍ୱଶୁଦ୍ଧି ଅର୍ଥେ । ଯାହା କହିଲେ ତାଙ୍କୁ[୩] ଗତେ ॥ ୧୪

---

୧. ରାଜ । ୨. କରନ୍ତେ । ୩. ବ୍ରହ୍ମାଙ୍କୁ (ବ୍ରହ୍ମଣେ) ।

୫ ସେ ଆଦିଦେବଙ୍କର ଠାରୁ । ଭଗତଙ୍କର ଶ୍ରେଷ୍ଠ ଗୁରୁ ॥ ୧୫
ବସିଣ ସ୍ୱପଦ୍ମ ଆସନେ । ସର୍ଜନା ଚିନ୍ତା କଲା ମନେ ॥ ୧୬
ଏ ସୃଷ୍ଟିବିଷୟେ ସଂମତ । ସେ ବୁଦ୍ଧି ନ କଲା ବିଦିତ ॥ ୧୭
ପ୍ରପଞ୍ଚନିର୍ମାଣର ବିଧି । ଯେଉଁ ବୁଦ୍ଧିରେ ହୋଏ ସିଦ୍ଧି ॥ ୧୮
୬ ଚିନ୍ତା କରନ୍ତେ ସେ ଜଳରେ । ବେନି ଅକ୍ଷର ସେ କାଳରେ ॥ ୧୯
ପାଶେ ଶୁଣିଲା ବେନି ବାର । କକାର ଆଦି ବର୍ଣ୍ଣଙ୍କର ॥ ୨୦
ମଧ୍ୟରେ ଯେ ଅଟେ ଷୋଡ଼ଶ[୧] । ହେ ନୃପ ଯେହୁ ଏକବିଂଶ[୨] ॥ ୨୧
ଯାହାକୁ ଅକିଞ୍ଚନଙ୍କର । ଧନ ବୋଲନ୍ତି ସର୍ବନର ॥ ୨୨
୭ ସେ କଥା ଶୁଣିଣ ବିଧାତା । ସେ ବଚନର ଯେ ବକତା ॥ ୨୩
ତାହାକୁ ଦେଖିବି ବୋଲିଣ । ଦିଗମାନଙ୍କୁ ସେ ଚାହିଁଣ ॥ ୨୪
ଆନକୁ ନ ଦେଖି ତହିଁରେ । ବସିଣ ନିଜ ଆସନରେ ॥ ୨୫
କେହି ପ୍ରତ୍ୟକ୍ଷେ ଉପଦେଶ । ଦେଲା ପ୍ରାୟେକ ହୋଇ ତୋଷ ॥ ୨୬
ସେ କଥା ବିଚାରିଣ ହିତ । ତପରେ ନିବେଶିଲେ ଚିତ୍ତ ॥ ୨୭
୮ ଅମୋଘ ଯାର ଦରଶନ । ଜିଣିଣ ସମୀରଣ, ମନ ॥ ୨୮
ଜ୍ଞାନ[୩]-କର୍ମ ଇନ୍ଦ୍ରିୟ ବେନି । ବଶ କରି ସେ ପଦ୍ମଯୋନି ॥ ୨୯
ଦେବ[୪] ବରଷେ ଦଶଶତ । ବରଷ ତପେ ଦେଲା ଚିତ୍ତ ॥ ୩୦
ଯେବଣ ତପେ ସର୍ବଲୋକ । ପ୍ରକାଶ ହୋଏ ଅତିରେକ ॥ ୩୧
ତପସ୍ୱୀମାନଙ୍କେ ସେ ବର । ନିଶ୍ଚଳ ଅଟେ ମନ ତାର ॥ ୩୨
୯ ପୂଜିତ ହୋଇ ହରି ତାକୁ । ଦେଖାଇଲେକ ସ୍ୱଲୋକକୁ ॥ ୩୩
ଯେଉଁ ଲୋକରୁ ଅତିରେକ । ହୋଇଣ ନାହିଁ ଆନ ଲୋକ ॥ ୩୪
ଯହିଁରୁ କ୍ଲେଶ, ମୋହ, ଭୀତି । ବିଗତ ହୋଇଣ ଅଛନ୍ତି ॥ ୩୫
*ଯାକୁ ସୁପୁଣ୍ୟବନ୍ତ ଦେବେ । ସ୍ତୁତି କରନ୍ତି ଠାବେ ଠାବେ ॥ ୩୬
୧୦ ଯହିଁରେ ନାହିଁ ରଜ ତମ । କେବଳ ଶୁଦ୍ଧ ସତ୍ତ୍ୱଧାମ ॥ ୩୭
ଯେ କାଳ ଜଗତ ନାଶଇ । ତାର ବିକ୍ରମ ଯହିଁ ନାହିଁ ॥ ୩୮
ଯେଉଁ ସ୍ଥାନରେ ମାୟା ନାହିଁ । ରାଗଲୋଭାଦି ଥିବ କାହିଁ ॥ ୩୯
ସୁର-ଅସୁରରେ ପୂଜିତ । ହରିର ଦାସେ ଯହିଁ ସ୍ଥିତ ॥ ୪୦

---

୧. ତକାର । ୨. ପକାର । (ତପ, ତପ) ବ୍ରହ୍ମା ଏହି ବେନି ଅକ୍ଷରକୁ ବେନିବାର ଶୁଣିଲେ । ୩. କାଳ । ୪. ଦିବ୍ୟ ।

* ଯାହାକୁ ପୁଣ୍ୟବନ୍ତ ଦେବେ ।

| | | | | |
|---|---|---|---|---|
| ୧୧ | ଶ୍ୟାମ-ଉଜ୍ଜ୍ୱଳ ତନୁବର୍ଣ୍ଣ । | କମଳ ପ୍ରାଏକ ଲୋଚନ | ॥ | ୪୧ |
| | ପୀତବସନ ମନୋହର । | ଅଟନ୍ତି ଅତି ସୁକୁମାର | ॥ | ୪୨ |
| | ସମସ୍ତେ ପୁଣି ଚାରି ଚାରି । | ସଂଖ୍ୟାରେ ଭୁଜ ଛନ୍ତି ଧରି | ॥ | ୪୩ |
| | ଚାହିଁଲାପ୍ରାଏ ପ୍ରଭାଯୁତ । | ଉତ୍ତମ ମଣି ଯହିଁ ସ୍ଥିତ | ॥ | ୪୪ |
| | ଏମନ୍ତ ପଦକନିକର । | ଭୂଷଣ ଅଟେ ଯାହାଙ୍କର | ॥ | ୪୫ |
| | ତେଜସ୍ୱୀ ପ୍ରବାଳ ବୈଦୁର୍ଯ୍ୟ । | ମୃଣାଳସମ ତନୁ-ତେଜ | ॥ | ୪୬ |
| | କୁଣ୍ଡଳ ମୁକୁଟନିକର । | ପ୍ରଦୀପ୍ତ ଦିଶେ ଯାହାଙ୍କର | ॥ | ୪୭ |
| ୧୨ | ମହାତ୍ମାଜନମାନଙ୍କର । | ବିମାନଶ୍ରେଣୀରେ ଯେ ପୁର | ॥ | ୪୮ |
| | ଶୋଭା ଦିଶଇ ସ୍ଥାନେ ସ୍ଥାନେ । | ଭାସୁର ସେ ବିମାନମାନେ | ॥ | ୪୯ |
| | କାନ୍ତିରେ ଦିବ୍ୟ-ସ୍ତିରୀଙ୍କର । | ପ୍ରଦୀପ୍ତ ଦିଶଇ ଯେ ପୁର | ॥ | ୫୦ |
| | ବିଜୁଳିଯୁତ ମେଘମାଳ । | ତେଣେ ଯେସନେ ନଭସ୍ଥଳ | ॥ | ୫୧ |
| ୧୩ | ଯହିଁରେ ହୋଇ ମୂର୍ତ୍ତିମତୀ । | ଘେନିଣ ସକଳ ବିଭୂତି | ॥ | ୫୨ |
| | ଉରୁଗାୟର ପାଦ ଦୁଇ । | କମଳା ସନ୍ତତେ ପୂଜଇ | ॥ | ୫୩ |
| | ହାନ୍ଦୋଳା ଆଶ୍ରୟ କରିଣ । | ଗାୟନ କରେ ପ୍ରିୟ ଗୁଣ | ॥ | ୫୪ |
| | ବସନ୍ତାନୁଗ ଭୃଙ୍ଗମାନ । | କରନ୍ତେ ବିବିଧ ଗାୟନ | ॥ | ୫୫ |
| ୧୪ | ସେ ପୁରେ କମଳ ଆସନ । | ପ୍ରଭୁଙ୍କୁ କଲେ ଦରଶନ | ॥ | ୫୬ |
| | ସେ ସର୍ବସାତ୍ୱତ-ଈଶ୍ୱର । | କ୍ଷୀରୋଦତନୁଜାର ବର | ॥ | ୫୭ |
| | ଯଜ୍ଞମାନଙ୍କର ସେ ପତି । | ଜଗତପତି ସେ ଅଟନ୍ତି | ॥ | ୫୮ |
| | ସୁନନ୍ଦ-ନନ୍ଦ-ପ୍ରବଳାଦି । | ସ୍ୱଦାସମୁଖ୍ୟ ଯେ ପ୍ରସିଦ୍ଧି | ॥ | ୫୯ |
| | ସେମାନେ ଯାହାକୁ ପୂଜନ । | କରୁଅଛନ୍ତି ଅନୁଦିନ | ॥ | ୬୦ |
| ୧୫ | ଭୃତ୍ୟମାନଙ୍କ ପ୍ରସାଦରେ । | ଯେ ଅଭିମୁଖ ନିରନ୍ତରେ | ॥ | ୬୧ |
| | ଆସବପ୍ରାୟ ଯା’ ନୟନ । | ତୋଷଇ ଦେଖିଲାର ଜନ | ॥ | ୬୨ |
| | ପ୍ରସନ୍ନ ହାସ ଅଛି ଯହିଁ । | ନୟନ ଅରୁଣ ଦିଶଇ | ॥ | ୬୩ |
| | ଏମନ୍ତ ଅଟେ ମୁଖ ଯାର । | କିରୀଟ କୁଣ୍ଡଳେ ସୁନ୍ଦର | ॥ | ୬୪ |
| | ଯେ ଚତୁର୍ଭୁଜ ପୀତବାସ । | ଲକ୍ଷ୍ମୀଲକ୍ଷିତ ବକ୍ଷଦେଶ | ॥ | ୬୫ |
| ୧୬ | ଉତ୍ତମ ଆସନ ଉପର । | ବସିଅଛନ୍ତି ଯୋଗେଶ୍ୱର | ॥ | ୬୬ |
| | ପ୍ରକୃତି, ପୁରୁଷ, ମହତ । | ଅହଂକାର ଏ ଚାରି ତତ୍ତ୍ୱ | ॥ | ୬୭ |
| | ଇନ୍ଦ୍ରିୟ, ପଞ୍ଚ ମହାଭୂତ । | ଷୋଡ଼ଶ ଅଟନ୍ତି ବିଦିତ | ॥ | ୬୮ |

ପଞ୍ଚ ତନୁମାତ୍ର ଯେ ଅଟନ୍ତି । ଏ ଶକ୍ତିମାନେ ବେଢ଼ିଛନ୍ତି ॥ ୬୯
ଯେ ଆନମାନଙ୍କର ଠାରେ । ପ୍ରକାଶେ ଅନିତ୍ୟ ରୂପରେ ॥ ୭୦
ନିଜ ଐଶ୍ୱର୍ଯ୍ୟ ଆଦି ଯେହି । ତେଣେ ଅଛନ୍ତି ଯୁତ ହୋଇ ॥ ୭୧
ନିତ୍ୟସ୍ୱରୂପେ ବିହରନ୍ତି । ଏଣୁ ଈଶ୍ୱର ସେ ଅଟନ୍ତି ॥ ୭୨
୧୭ ଦର୍ଶନ ଆହ୍ଲାଦେ ତାଙ୍କର । ପୂର୍ଣ୍ଣ ହୋଇଲା ତା' ଅନ୍ତର ॥ ୭୩
ରୋମାଞ୍ଚ ଜନ୍ମିଲା ଶରୀରେ । ଲୋଚନେ ଅଶ୍ରୁ ପ୍ରେମଭରେ ॥ ୭୪
ତାହାଙ୍କ ଚରଣନଳିନ । ବନ୍ଦିଲା କମଳ-ଆସନ ॥ ୭୫
ପରମହଂସପଥେ ଯତି । ଯେବଣ ପାଦକୁ ଦେଖନ୍ତି ॥ ୭୬
୧୮ ସେ କବି ଅଟେ ପ୍ରୀତିଯୁତ । ହୋଇଛି ନିଜ ପାର୍ଶ୍ୱେସ୍ଥିତ ॥ ୭୭
ପ୍ରଜାସର୍ଜନା ବିଷୟରେ । ସମର୍ଥ ଆପଣା ଆଜ୍ଞାରେ ॥ ୭୮
ତାହାକୁ ପ୍ରୀତମନା ହୋଇ । ପ୍ରିୟକୁ ପ୍ରିୟ କରେ ଛୁଇଁ ॥ ୭୯
ମନ୍ଦହାସରେ ଯେ ଶୋଭନ । କହିଲେ ଏମନ୍ତ ବଚନ ॥ ୮୦

ଶ୍ରୀଭଗବାନୁବାଚ

୧୯ ହେ ବେଦଗର୍ଭ ! ସୃଷ୍ଟି ପାଇଁ । ଚିରସଂଚିତ ତପେ ତୁହି ॥ ୮୧
ସନ୍ତୋଷ କରାଇଲୁ ମୋତେ । କୂଟଯୋଗୀଏ ଛନ୍ତି ଯେତେ ॥ ୮୨
ସଂତୋଷ କରିବାକୁ ମୋତେ । ଶକ୍ୟ ନୁହନ୍ତି ସେ ସମସ୍ତେ ॥ ୮୩
୨୦ ମଙ୍ଗଳ ହେଉ ତୋର ଜାତ । ଯେ ବର ତୋହର ବାଞ୍ଛିତ ॥ ୮୪
୨୧ ମୋତେ ତୁ ମାଗ ସେହି ବର । ମୁଁ ବରମାନଙ୍କ ଈଶ୍ୱର ॥ ୮୫
ପୁରୁଷମାନଙ୍କର ଯେହି । ଫଳସାଧନେ ଶ୍ରମ ଥାଇ ॥ ୮୬
ଅବଧି କାଳ ଅଟେ ତାର । ଭୋ ବ୍ରହ୍ମା ! ଦରଶନ ମୋର ॥ ୮୭
ମୁଁ ଯାହା ବିଚାରିଲି ଚିତ୍ତେ । ମୋ ଲୋକ ଦେଖାଇବି ତୋତେ ॥ ୮୮
ତାର ପ୍ରଭାବ ଏ ଅଟଇ । ମୋ ଲୋକ ଦେଖିଲୁ ଯା' ତୁହି ॥ ୮୯
୨୨ ଯାହାକୁ ଏକାନ୍ତରେ ଶୁଣି । ପରମ ତପ କଲୁ ପୁଣି ॥ ୯୦
କାର୍ଯ୍ୟମୋହିତ ହୋନ୍ତେ ତୁହି । ସେ ଉପଦେଶ ଦେଲି ମୁହିଁ ॥ ୯୧
୨୩ ତପ ମୋ ହୃଦୟ ସାକ୍ଷାତ । ତପର ଆତ୍ମା ମୁଁ ବିଦିତ ॥ ୯୨
ତପେ ଏ ସୃଷ୍ଟି ମୁଁ କରଇ । ତପରେ ପୁଣି ସଂହରଇ ॥ ୯୩
ତପେ ପାଳଇ ଏ ସଂସାର । ଦୁଷ୍କର ତପବୀର୍ଯ୍ୟ ମୋର ॥ ୯୪

## ଶ୍ରୀବ୍ରହ୍ମା ଉବାଚ

୨୪ ତୁ ସର୍ବଭୂତଙ୍କ ଈଶ୍ୱର । ପ୍ରାଣୀଙ୍କ ବୁଦ୍ଧି ସ୍ଥାନ ତୋର ॥ ୯୫
ଯାହା ବାଞ୍ଛଇ ଲୋକ ମନେ । ଜାଣୁ ଅପ୍ରତିରୁଦ୍ଧ ଜ୍ଞାନେ ॥ ୯୬
୨୫ ଭୋ ନାଥ ! ତଥାପି ମାଗଇ । ମୋର ପ୍ରାର୍ଥନା ଦିଅ ତୁହି ॥ ୯୭
ତୋ' ସୂକ୍ଷ୍ମ ସ୍ଥୂଳ ରୂପ ଦୁଇ । ଯେଉଁ ପ୍ରକାରେ ଜାଣିମଇଁ ॥ ୯୮
୨୬ ବିବିଧ ଶକ୍ତିରେ ବର୍ଦ୍ଧିତ । ଅଟଇ ଯେବଣ ଜଗତ ॥ ୯୯
ତା' ଆତ୍ମାମାୟାଯୋଗେ ଅନ୍ତେ । ନାଶନ୍ତେ ସୃଜନ୍ତେ ପାଳନ୍ତେ ॥୧୦୦
ଆତ୍ମାକୁ ବ୍ରହ୍ମାଦି ରୂପରେ । ପ୍ରକାଶ କରନ୍ତେ ଆତ୍ମାରେ ॥୧୦୧
୨୭ କ୍ରୀଡ଼ା କରୁ ତୁ ହେ ଈଶ୍ୱର । ଅମୋଘ ସଂକଳ୍ପ ତୋହର ॥୧୦୨
ସୂତ୍ରେ ଆତ୍ମାକୁ ଆଚ୍ଛାଦନ । କରେ ଉର୍ଣ୍ଣନାଭି ଯେସନ ॥୧୦୩
ସେ ବୁଦ୍ଧି ସୃଷ୍ଟି ବିଷୟରେ । ନିଧାନ କରିଣ ମୋ ଠାରେ ॥୧୦୪
୨୮ ତୁ ଯେଉଁ ଶିକ୍ଷା ଅଛୁ ଦେଇ । କରିବି ନିରଳସ ହୋଇ ॥୧୦୫
ଯେଣୁ ତୋର ଏ ଅନୁଗ୍ରହେ । ପ୍ରଜାସର୍ଗକୁ ମୁଁ କଲେହେଁ ॥୧୦୬
ତେଣେ ମୁଁ ନୋହିବି ବନ୍ଧନ । ଏ ଘେନି କରୁଛି ପ୍ରାର୍ଥନ ॥୧୦୭
୨୯ ସଖାକୁ ସଖା ପ୍ରାୟେ ହୋଇ । ମାନନା କଲୁ ମୋତେ ତୁହି ॥୧୦୮
ପ୍ରଜାସର୍ଜନ ଆଜ୍ଞା ତୋର । ସେବା ଅଟଇ ସେ ମୋହର ॥୧୦୯
ତହିଁରେ ଅବ୍ୟାକୁଳ ହୋଇ । ଯେତେକ ଦିନ ଥାଇ ମୁହିଁ ॥୧୧୦
ଉତ୍ତମ ମଧ୍ୟମାଦି ଯୋଗେ । ଜନଙ୍କୁ ବାଣ୍ଟିବି ବିଭାଗେ ॥୧୧୧
ଆତ୍ମାକୁ[୧] ଅଜ କରି ମଣି । ସ୍ୱତନ୍ତ୍ର ରୂପରେ ପ୍ରମାଣି ॥୧୧୨
ଉତ୍କଟ ମଦ ନୋହୁ ମୋର । ତାବତ କାଳ ହେ ଈଶ୍ୱର ॥୧୧୩

## ଶ୍ରୀଭଗବାନୁବାଚ

୩୦ ଶାସ୍ତ୍ରରେ ଯେଉଁ ଜ୍ଞାନ ଜାତ । ଅନୁଭବରେ ଯେ ବିଦିତ ॥୧୧୪
ଭକ୍ତିଯୋଗ ହିଁ ଅଛି ତହିଁ । ତାହାର ସାଧନ ଯେ ହୋଇ ॥୧୧୫
ସୁଗୋପ୍ୟ ହେଲେହେଁ ସେମାନ । କହିବି ମୋଠାରୁ ତା ଘେନ ॥୧୧୬
୩୧ ମୋହର ସ୍ୱରୂପ ଯେମନ୍ତ । ଯେତେ ମୋହର ଅବା ସତ୍ତ୍ୱ ॥୧୧୭
ଯେତେକ ରୂପ ଅଛି ମୋର । ଯେତେକ ଗୁଣ କର୍ମ ଆର ॥୧୧୮
ମୋ ଅନୁଗ୍ରହୁଁ ସେ ପ୍ରକାର । ତତ୍ତ୍ୱବିଜ୍ଞାନ ହେଉ ତୋର ॥୧୧୯

---

୧. ନିଜକୁ ।

୩୨　ସୃଷ୍ଟିର ପୂର୍ବକାଳେ ମୁହିଁ　।　ଥିଲି କେବଳ ଏକ ହୋଇ　॥୧୨୦
ନ ଥିଲେ ସ୍ଥୂଳ ସୂକ୍ଷ୍ମମାନ　।　ତାଙ୍କ କାରଣ ଯେ ପ୍ରଧାନ　॥୧୨୧
ସୃଷ୍ଟି ଅନ୍ତରେ ମୁହିଁ ପୁଣ　।　ଯେ ଏ ଜଗତ ସେ ମୁଁ ଜାଣ　॥୧୨୨
ପ୍ରଳୟକାଳେ ଶେଷ ହୋଇ　।　ଯେହୁ ରହଇ ସେଟି ମୁହିଁ　॥୧୨୩
୩୩　ଅର୍ଥ ଅଭାବେ ଯେ ଆତ୍ମାରେ　।　ପ୍ରତେ ହୁଅଇ ସତ୍ୟାକାରେ　॥୧୨୪
ଯେହ୍ନେ ଜଳରେ ଚନ୍ଦ୍ର ଦୁଇ　।　ପ୍ରତେ ହୁଅଇ ସତ୍ୟ ହୋଇ　॥୧୨୫
ଆତ୍ମାରେ ଆତ୍ମତତ୍ତ୍ୱ ଥାଇ　।　ତଥାପି ପ୍ରକାଶ ନୁହଇ　॥୧୨୬
ଆକାଶେ ଯେହ୍ନେ ରାହୁ ଥାଇ　।　ଲୋକଙ୍କୁ ପ୍ରତ୍ୟକ୍ଷ ନୁହଇ　॥୧୨୭
ସେ ମାୟା ଅଟଇ ମୋହର　।　ଜାଣଇଁ ତାହା ବିଜ୍ଞ ନର　॥୧୨୮
୩୪　ସୃଷ୍ଟିର ଅନ୍ତରେ ଜଗତେ　।　ଯେସନ ପଞ୍ଚ ମହାଭୂତେ　॥୧୨୯
ସକଳ ଭୂତରେ ଅଛନ୍ତି　।　ଯେଣୁ ସେ କାରଣ ଅଟନ୍ତି　॥୧୩୦
ସେ ଘେନି ନାହାନ୍ତି ତହିଁରେ　।　ମୁଁ ପୁଣି ସେହି ପରକାରେ　॥୧୩୧
ସକଳ ଭୂତଠାରେ ଥାଇ　।　ବାସ୍ତବ ନ ଥିଲା ଅଟଇ　॥୧୩୨
୩୫　ଆତ୍ମାର ତତ୍ତ୍ୱ ଜାଣିମାରେ　।　ଯେ ଇଚ୍ଛା କରଇ ସଂସାରେ　॥୧୩୩
ଏତେକ ମାତ୍ର ସେ ବିଚାର　।　କରିବ ଆପଣା ମନର　॥୧୩୪
କାର୍ଯ୍ୟେ କାରଣ ଭାବ ବହି　।　ଯେ ଅନୁଗତ ହୋଇ ଥାଇ　॥୧୩୫
କାରଣ ଅବସ୍ଥାରେ ପୁଣ　।　କାର୍ଯ୍ୟରୁ ବ୍ୟତିରେକ ଜାଣ　॥୧୩୬
ଜାଗ୍ରତ ଆଦି ଅବସ୍ଥାରେ　।　ଅନ୍ୱୟ ଯେ ସାକ୍ଷୀ ରୂପରେ　॥୧୩୭
ଯେ ବ୍ୟତିରେକ ରୂପ ହୋଇ　।　ସମାଧି ଆଦିରେ ସ୍ଫୁରଇ　॥୧୩୮
ଏ ରୂପେ ସକଳ ଠାବରେ　।　ଯେ ଅଛି ସକଳ କାଳରେ　॥୧୩୯
ସେହି ଆତ୍ମାଟି ମୁଁ ଅଟଇ　।　ସମାଧି ଆଦିରେ ସ୍ଫୁରଇ　॥୧୪୦
୩୬　ପରମ ସମାଧିରେ ମୋର　।　ଏହି ମତକୁ ଆସ୍ଥା କର　॥୧୪୧
ତୁ ନାନା କଳ୍ପମାନଙ୍କରେ　।　ଆବର ବିବିଧ ସୃଷ୍ଟିରେ　॥୧୪୨
କର୍ତ୍ତାଭାବରେ କଦାଚିତେ　।　ମୋହକୁ ନ ଲଭିବୁ ଚିତ୍ତେ　॥୧୪୩

ଶ୍ରୀଶୁକ ଉବାଚ

୩୭　ଜନମାନଙ୍କର ଉଦ୍ଭବ　।　ଅଧିପ ଭାବରେ ଯେ ସ୍ଥିତ　॥୧୪୪
ହରି ତାହାଙ୍କୁ ଏ ପ୍ରକାରେ　।　ଆଜ୍ଞା ଦେଇଣ ତଦନ୍ତରେ　॥୧୪୫
ବ୍ରହ୍ମା ଚାହାଁନ୍ତେ ଆପଣାର　।　ସେ ରୂପ କଲେ ସେ ଅନ୍ତର　॥୧୪୬

୩୮ ପ୍ରତ୍ୟକ୍ଷ ରୂପ ଅନ୍ତର୍ଦ୍ଧାନ । କରନ୍ତେ ପ୍ରଭୁ ଭଗବାନ ॥୧୪୭
ତାହାଙ୍କୁ ଉଦ୍ଦେଶ୍ୟ[୧] କରିଣ । କରଯୁଗଳକୁ ଯୋଡ଼ିଣ ॥୧୪୮
ସେ ଧାତା ସର୍ବ ଅପ୍ରମେୟ । ସୃଷ୍ଟି ସର୍ଜିଲା ପୂର୍ବପ୍ରାୟ ॥୧୪୯
୩୯ ସମସ୍ତ ଧର୍ମଙ୍କର ପତି । ଏକଦିନେ ସେ ପ୍ରଜାପତି ॥୧୫୦
ପ୍ରଜାମାନଙ୍କର କଲ୍ୟାଣ । ବାଞ୍ଛା କରନ୍ତେ ଚିତ୍ତେ ପୁଣ ॥୧୫୧
ସେ କାର୍ଯ୍ୟ ହୋଇବାକୁ ଭଲେ । ଯମ ନିୟମ ଆଚରିଲେ ॥୧୫୨
୪୦ ପୁତ୍ରମାନଙ୍କ ମଧ୍ୟେ ଅତି । ପ୍ରିୟ ନାରଦ ତାଙ୍କୁ ନିତି ॥୧୫୩
ସେବା କରନ୍ତେ ସୁଚରିତେ । ଦମେ ପ୍ରଶ୍ରୟେ ଅନୁଗତେ ॥୧୫୪
୪୧ ଯେ ହରି ମାୟାର ଈଶ୍ୱର । ତାହାର ମାୟାକୁ ଗୋଚର ॥୧୫୫
କରିବି ବୋଲି ମନେ ଘେନି । ସେ ମହାଭାଗବତ ମୁନି ॥୧୫୬
ହେ ନୃପ ! ପିତାଙ୍କୁ ସଂତୋଷ । କଲା ସେ ସେବାରେ ବିଶେଷ ॥୧୫୭
୪୨ ଲୋକମାନଙ୍କର ଯେ ଧାତା । ପ୍ରପିତାମହ ନିଜ ପିତା ॥୧୫୮
ସଂତୋଷ ହୋଇଲେ ସେ ଆସି । ଦେଖିଣ ତାହା ଦେବରଷି ॥୧୫୯
ତାହାଙ୍କୁ ପଚାରିଲେ ଏହା । ତୁ ମୋତେ ପଚାରିଲୁ ଯାହା ॥୧୬୦
୪୩ ଦଶ ଲକ୍ଷଣ[୨]ରେ ସଂଯୁତ । ଅଟେ ପୁରାଣ ଭାଗବତ ॥୧୬୧
ବ୍ରହ୍ମାଙ୍କୁ ଏହା ସଂକ୍ଷେପେଣ । କହିଣ ଥିଲେ ନାରାୟଣ ॥୧୬୨
ବ୍ରହ୍ମା ସେ ପୁତ୍ରଙ୍କୁ ସଂତୋଷେ । କହିଲେ ଏହାକୁ ବିଶେଷେ ॥୧୬୩
୪୪ ହେ ନୃପ ! ସରସ୍ୱତୀ ତୀରେ । ପରମ ବ୍ରହ୍ମକୁ ମନରେ ॥୧୬୪
ଅତି ତେଜସ୍ୱୀ ମହାରଷି । ଚିନ୍ତା କରନ୍ତେ ତାଙ୍କୁ ଆସି ॥୧୬୫
ପ୍ରସନ୍ନ ମନେ ବ୍ରହ୍ମାସୁତ । କହିଲେ ପୁଣ ଭାଗବତ ॥୧୬୬
୪୫ ବୈରାଜ ପୁରୁଷରୁ ଜାତ । କି ରୂପେ ହେଲା ଏ ଜଗତ ॥୧୬୭
ଯାହା ତୁ ପଚାରିଲୁ ମୋତେ । ସେ କଥା କହିବି ମୁଁ ତୋତେ ॥୧୬୮
ଆନ ଯେତେକ ପ୍ରଶ୍ନଗଣ । ସକଳ କରିବି ବଖାଣ ॥୧୬୯
ହେ ଶଙ୍ଖଚକ୍ର ଗଦାଧର । ନନ୍ଦନନ୍ଦନ ବଂଶୀଧର ॥୧୭୦
ଅନାଥ ଦୀନବନ୍ଧୁଠାରେ । ନିବେଶ କୃପା ଦୃଷ୍ଟିବାରେ ॥୧୭୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀଭାଗବତପ୍ରବୃତ୍ତିର୍ନାମ
ନବମୋଽଧ୍ୟାୟଃ ॥

୧. ଭୂତମୟ ।
୨. ସର୍ଗ, ବିସର୍ଗ, ସ୍ଥାନ, ପୋଷଣ, ଊତି, ମନ୍ୱନ୍ତର, ଈଶାନୁକଥା, ନିରୋଧ, ମୁକ୍ତି ଓ ଆଶ୍ରୟ ।

# ଦଶମୋଽଧ୍ୟାୟଃ

ତତୋ ଭାଗବତବ୍ୟାଖ୍ୟାଦ୍ୱାରୈବ ଦଶମେ ସ୍ଫୁଟମ୍ ।
ରାଜପ୍ରଶ୍ନୋତ୍ତରଂ ବକ୍ତୁମାରେଭେ ବାଦରାୟଣିଃ ॥ ୧ ॥

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ସର୍ଗ, ବିସର୍ଗ, ସ୍ଥିତି ଆର । | ପୋଷଣ, ଉତି, ମନ୍ୱନ୍ତର | ॥ | ୧ |
| | ଈଶାନୁଚରିତ, ନିରୋଧ । | ମୁକତି, ଆଶ୍ରୟ ପ୍ରସିଦ୍ଧ | ॥ | ୨ |
| | ଏ ଭାଗବତରେ ପ୍ରମାଣ । | ଅଛନ୍ତି ଏ ଦଶ ଲକ୍ଷଣ | ॥ | ୩ |
| ୨ | ଦଶମ ଲକ୍ଷଣର ତତ୍ତ୍ୱ । | ଜାଣିମା ନିମିତ୍ତେ ମହାନ୍ତ | ॥ | ୪ |
| | ପ୍ରତ୍ୟେକ୍ଷେ ସ୍ତୁତି ଆଦି ଠାରେ । | ଇତରେ ତାତପର୍ଯ୍ୟଦ୍ୱାରେ | ॥ | ୫ |
| | ସର୍ଗାଦି ଯେ ନବ ଲକ୍ଷଣ । | ଏଥି ତା କରନ୍ତି ବଖାଣ | ॥ | ୬ |
| ୩ | ପୃଥିବୀ, ଆପ, ତେଜ, ବାତ । | ଆକାଶ, ରୂପ, ରସ ଖ୍ୟାତ | ॥ | ୭ |
| | ଗନ୍ଧ ସ୍ପରଶ ଶବ୍ଦ ଆର । | ଯେ ମହତତ୍ତ୍ୱ ଅହଂକାର | ॥ | ୮ |
| | ଏମାନଙ୍କର ଜନ୍ମ ଯେହି । | ତାହାକୁ ସର୍ଗ ବୋଲି କହି | ॥ | ୯ |
| | ପରମେଶ୍ୱରଙ୍କ ସକାଶୁଁ । | ଗୁଣଙ୍କ ପରିଣାମବଶୁଁ | ॥ | ୧୦ |
| | ବିରାଟ ରୂପରେ ପ୍ରଚାର । | ଯେ ଜନ୍ମଭୂତ ଆଦିଙ୍କର | ॥ | ୧୧ |
| | ପୁରୁଷକୃତ ସର୍ଗ ଯେହି । | ବିସର୍ଗ ନାମ ସେ ବୋଲାଇ | ॥ | ୧୨ |
| ୪ | ବିଷ୍ଣୁର ପ୍ରାଣୀଙ୍କ ପାଳନ । | ବିଜୟ ଯେ ସେ ଅଟେ ସ୍ଥାନ | ॥ | ୧୩ |
| | ଭକ୍ତରେ ଅନୁଗ୍ରହ ଯେହି । | ପୋଷଣ ବୋଲି ତାକୁ କହି | ॥ | ୧୪ |
| | ଯେ ମନ୍ୱନ୍ତର ଅଧିପତି । | ସନ୍ତ ହୋଇଣ ତାଙ୍କ ଖ୍ୟାତି | ॥ | ୧୫ |
| | ଯେ ଧର୍ମ ଅଟେ ତାହାଙ୍କର । | ତାହାର ନାମ ମନ୍ୱନ୍ତର | ॥ | ୧୬ |
| | କର୍ମବାସନା ଯେତେ ଛନ୍ତି । | ଉତି ନାମରେ ସେ ବୋଲାନ୍ତି | ॥ | ୧୭ |
| ୫ | ହରିର ନାନା ଅବତାରେ । | ଅନୁଚରିତ ଯେ ପ୍ରଚରେ | ॥ | ୧୮ |
| | ହରିଙ୍କି କରି ଅନୁବୃତ୍ତି । | ପୁରୁଷମାନେ ଯେତେ ଛନ୍ତି | ॥ | ୧୯ |
| | ତାଙ୍କର କଥା ଯେ ବା ଥାଇ । | ନାନା ଆଖ୍ୟାନେ ଯୁତ ହୋଇ | ॥ | ୨୦ |
| | ଈଶ-ଅନୁକଥା ନାମରେ । | ବିଖ୍ୟାତ ଅଟେ ସେ ଏଥିରେ | ॥ | ୨୧ |
| ୬ | ଯେ ହରି ଯୋଗନିଦ୍ରା ଯାଇ । | ତାହାକୁ ଅନୁଗତ ହୋଇ | ॥ | ୨୨ |
| | ଶକ୍ତି ସଙ୍ଗତେ ଜୀବ ଲୟେ । | ନିରୋଧ ନାମ ସେ ବୋଲାଏ | ॥ | ୨୩ |

ଜୀବର ଅବିଦ୍ୟାଘଟିତ । କର୍ତ୍ତୃତ୍ୱ ଆଦି ଯେ ବିଦିତ ॥ ୨୪
ତା ଛାଡ଼ି ବ୍ରହ୍ମରୂପେ ସ୍ଥିତି । ତା ନାମ ଅଟଇ ମୁକତି ॥ ୨୫
୭ ସର୍ଜନ ପ୍ରଳୟ ଏ ଦୁଇ । ଯା'ଠାରୁ ପ୍ରକାଶିତ ହୋଇ ॥ ୨୬
ସେ ପରମାତ୍ମା ନିରାକାର । ଆଶ୍ରୟ ନାମ ଅଟେ ତାର ॥ ୨୭
୮ ନେତ୍ରାଦି ଇନ୍ଦ୍ରିୟରେ ମୁହିଁ । ଦେଖୁଛି ବୋଲି ଯେ ମଣଇଁ ॥ ୨୮
ସେ ଜୀବ ନେତ୍ର ଆଦିଙ୍କର । ଦେବତା, ସୂର୍ଯ୍ୟାଦି ଆକାର ॥ ୨୯
ସେ ଦୁହିଁଙ୍କର ଏକଠାରେ । ବିଚ୍ଛେଦ ଯା ଠାରୁ ପ୍ରସରେ ॥ ୩୦
ନେତ୍ରଗୋଲକାଦି ପ୍ରକାଶ । ଦୃଶ୍ୟ ଶରୀର ସେ ପୁରୁଷ ॥ ୩୧
୯ ଦୃଶ୍ୟ ଅଭାବ ଯେବେ ହୋଇ । ଚକ୍ଷୁ ଇନ୍ଦ୍ରିୟ ସିଦ୍ଧ ନୋହି ॥ ୩୨
ଚକ୍ଷୁରେ ଯଦ୍ୟପି ଅଭାବ । ସିଦ୍ଧ ନୁହଇ ଦ୍ରଷ୍ଟା ଜୀବ ॥ ୩୩
ଇନ୍ଦ୍ରିୟ ବିନୁ ସୂର୍ଯ୍ୟ ଆଦି । ଦେବତାଗଣ ଅପ୍ରସିଦ୍ଧି ॥ ୩୪
ସେ ଦେବଗଣ ଅଭାବରେ । ଇନ୍ଦ୍ରିୟ ପ୍ରବର୍ତ୍ତି ନ ପାରେ ॥ ୩୫
ଇନ୍ଦ୍ରିୟ ବିନୁ ଦୃଶ୍ୟ ଯେହି । ତାହାର ସିଦ୍ଧି ନ ଅଟଇ ॥ ୩୬
ଏ ରୂପେ ଏକ ଯେବେ ନାହିଁ । ଆରକ ତେବେ ସିଦ୍ଧ ନୋହି ॥ ୩୭
ଏ ତିନି କଥା ଯେ ଜାଣଇଁ । ଅଟଇ ପରମାତ୍ମା ସେହି ॥ ୩୮
ତାର ଆଶ୍ରୟ ନାହିଁ ଆର । ଆଶ୍ରୟ ଅଟେ ସେ ସର୍ବର ॥ ୩୯
୧୦ ଅଣ୍ଡକୁ ପାଦ ଆଦି ବଳେ । ଭେଦ କରିଣ ଆଦ୍ୟକାଳେ ॥ ୪୦
ପୁରୁଷ ହୋଇଲା ନିର୍ଗତ । ସେ ଶୁଦ୍ଧ ଅଟଇ ବିଦିତ ॥ ୪୧
ଆପଣା ସ୍ଥାନ ଇଚ୍ଛା କରି । ସର୍ଜନା କଲା ଶୁଦ୍ଧ ବାରି ॥ ୪୨
୧୧ ସେ ନିଜ କଳ୍ପିତ ଜଳର । ରହିଲା ସହସ୍ର ବତ୍ସର ॥ ୪୩
ସେ ଘେନି ନାରାୟଣ[୧] ନାମ । ଯେଣୁ ତାଠାରୁ ଜଳ ଜନ୍ମ ॥ ୪୪
୧୨ ଦ୍ରବ୍ୟ ସହିତେ କର୍ମ, କାଳ । ସ୍ୱଭାବ, ଜୀବ ଏ ସକଳ ॥ ୪୫
ଯାହାର ଅନୁଗ୍ରହେ ଛନ୍ତି । ଯାର ଉପେକ୍ଷାରେ ନାହାନ୍ତି ॥ ୪୬
୧୩ ଏକ ହୋଇଣ ନାନା ଭାବ । ବାଞ୍ଛା କରନ୍ତେ ସେହୁ ଦେବ ॥ ୪୭
ଯୋଗଶୟନରୁ ଉଠିଲା । ଯେ ତେଜବନ୍ତ ବୀର୍ଯ୍ୟ ଥିଲା ॥ ୪୮
ତାହାକୁ ଆପଣା ମାୟାରେ । ସର୍ଜିଲା ତିନି ପ୍ରକାରରେ ॥ ୪୯

---

୧. ଅପୋ ନାରା ଇତି ପ୍ରୋକ୍ତା ଆପୋ ବୈ ନରସୂନବଃ ।
ଅୟନଂ ତସ୍ୟ ତାଃ ପୂର୍ବଂ ତେନ ନାରାୟଣଃ ସ୍ମୃତଃ ॥ ୧ ॥

୧୪ ସେ ଆଧିଦୈବ, ଆଧ୍ୟାତ୍ମିକ । ଅଧିଭୂତ ସ୍ୱରୂପ ଏକ ।। ୫୦

ପୁରୁଷବୀର୍ଯ୍ୟ ଏକ ପୁଣ । ତିନି ପ୍ରକାର ହେଲା ଶୁଣ ।। ୫୧

୧୫ ଶରୀରମଧ୍ୟେ ଯେ ଆକାଶ । ତହିଁର ସକାଶୁ ପୁରୁଷ ।। ୫୨

କରନ୍ତେ ନାନା ଚେଷ୍ଟାମାନ । ଇନ୍ଦ୍ରିୟ ଶକ୍ତି ଉତପନ୍ନ ।। ୫୩

ମାନସ ଶକ୍ତି ବଳ ଦୁଇ । ଜନ୍ମିଲା ସୂକ୍ଷ୍ମରୂପ ସେହି ।। ୫୪

ତହିଁରୁ ସମ୍ଭବିଲା ପ୍ରାଣ । ସେ ମୁଖ୍ୟ ଅସୁରୂପ ଜାଣ ।। ୫୫

୧୬ ସକଳ ଜନ୍ତୁଙ୍କର ଠାରେ । ଯେବଣ ପ୍ରାଣ ଚେଷ୍ଟା କରେ ।। ୫୬

ତାହାକୁ ଅନୁଗତ ହୋଇ । ଇନ୍ଦ୍ରିୟଗଣ ଚେଷ୍ଟା ବହି ।। ୫୭

ଚେଷ୍ଟାକୁ ଛାଡ଼ନ୍ତେ ସେ ପୁଣ । ଅଚେଷ୍ଟ[1] ସେ ଇନ୍ଦ୍ରିୟଗଣ ।। ୫୮

ରାଜାକୁ ଅନୁଗତ ହୋଇ । ସେବକେ ଥାନ୍ତି ଯେହ୍ନେ ରହି ।। ୫୯

୧୭ ପ୍ରାଣ ହୁଅନ୍ତେ ଆତଯାତ । ଅନ୍ତରେ କ୍ଷୁଧାତୃଷା ଜାତ ।। ୬୦

ଇଚ୍ଛନ୍ତେ ସେ ଭୋଜନ, ପାନ । ପ୍ରଥମେ ହୋଇଲା ଆନନ ।। ୬୧

୧୮ ମୁଖରୁ ତାଳୁ ହେଲା ଜାତ । ରସନା ତହିଁରେ ସଂଭୂତ ।। ୬୨

ଜନ୍ମିଲା ନାନା ରସ ତହିଁ । ଜିହ୍ୱାରେ ଯାହା ଆସ୍ୱାଦଇ ।। ୬୩

୧୯ କହିବି ବୋଲିଣ ବିଚାର । କରନ୍ତେ ମୁଖରୁ ତାହାର ।। ୬୪

ଅଗ୍ନି, ବାକ ଇନ୍ଦ୍ରିୟ ଜାତ । ତାଙ୍କ ସଂଯୋଗରୁ ଭାଷିତ ।। ୬୫

୨୦ ତାର ବହୁତ କାଳଯାଏ । ନିରୋଧ ଜଳମଧ୍ୟେ ହୋଏ ।। ୬୬

ପ୍ରାଣ ପବନ ଅତିଶୟ । ଚଳନ୍ତେ ନାସିକା ଉଦୟ ।। ୬୭

ଗନ୍ଧ ଘେନିମାକୁ ସେ ପୁଣ । ବାଞ୍ଛା କରନ୍ତେ ତତକ୍ଷଣ ।। ୬୮

ନାସାରେ ଘ୍ରାଣେନ୍ଦ୍ରିୟ ଜାତ । ତହିଁରେ ଗନ୍ଧବହ ବାତ ।। ୬୯

୨୧ ଆତ୍ମାରେ ଯେତେବେଳେ ତାର । ଜାତ ହୋଇଲା ଅନ୍ଧକାର ।। ୭୦

ତେବେ ସଂଭବିଲା ନୟନ । ଆଦିତ୍ୟ ଦେବତା ସେ ସ୍ଥାନ ।। ୭୧

ଚକ୍ଷୁ ଇନ୍ଦ୍ରିୟ ଜାତ ତହିଁ । ରୂପ ଗ୍ରହଣ ସେ କରଇ ।। ୭୨

୨୨ ବୁଝାନ୍ତେ ବେଦମାନେ ତାକୁ । ସେ ଆପଣାର ପ୍ରବୋଧକୁ ।। ୭୩

ଘେନିମା ଅର୍ଥରେ ବିଚାର । କରନ୍ତେ କର୍ଣ୍ଣ ହେଲା ତାର ।। ୭୪

ଦିଗ, ଇନ୍ଦ୍ରିୟ ଯେ ଶ୍ରବଣ । ଆବର ଶବଦ ଗ୍ରହଣ ।। ୭୫

---

୧. ଅଚେଷ୍ଟା ।

୨୩ ମୃଦୁ, କଠିନ, ଲଘୁ, ଗୁରୁ । ଉଷ୍ଣ, ଶୀତ ଭାବ ଦ୍ରବ୍ୟରୁ ॥ ୭୬
ଘେନିମା ବିଚାରନ୍ତେ ତାର । ଚର୍ମ ହୋଇଲା ତା ଉପର ॥ ୭୭
*ତହିଁରେ ରୋମ ହେଲା ଜାତ । ବୃକ୍ଷମାନେ ତା' ଦଇବତ ॥ ୭୮
ସେ ଚର୍ମେ ଭିତର ବାହାର । ଆବୋରି ରହିଲା ସମୀର ॥ ୭୯
ପବନଗୁଣ ଯେ ସ୍ପରଶ । ତ୍ୱଚରେ ହୋଇଲା ପ୍ରକାଶ ॥ ୮୦
୨୪ ନାନା ପ୍ରକାରେ କର୍ମମାନ । କରିବି ବିଚାରନ୍ତେ ମନ ॥ ୮୧
ହସ୍ତଯୁଗଳ ହେଲା ଜାତ । ତହିଁରେ ଇନ୍ଦ୍ର ବଳବନ୍ତ ॥ ୮୨
ଉଭୟ ଅବଲମ୍ବ ହୋଇ । କର୍ମ ତହିଁରେ ସମ୍ଭବଇ ॥ ୮୩
୨୫ ଅଭୀଷ୍ଟ ଗତି କରିବାରେ । ଚିନ୍ତା କରନ୍ତେ ସେ ମନରେ ॥ ୮୪
ଚରଣଯୁଗଳ ସହିତ । ବିଷ୍ଣୁ ହୋଇଲେ ସ୍ୱୟଂ ଜାତ ॥ ୮୫
ହୋମ ଉଚିତ ହବ୍ୟ ନରେ । ବଭନ୍ତି ଗମନ କର୍ମରେ ॥ ୮୬
୨୬ ଅପତ୍ୟ, ସୁରତ ଅମୃତ । ଇଚ୍ଛା କରନ୍ତେ ଶିଶ୍ନ ଜାତ ॥ ୮୭
ଉପସ୍ଥ ଇନ୍ଦ୍ରିୟ ତାହାର । ସଂଭୋଗସୁଖ ନାରୀଙ୍କର ॥ ୮୮
ସେ ବେନି ଅବଲମ୍ବନରେ । ପ୍ରକାଶ ହୋଏ ଜଗତରେ ॥ ୮୯
୨୭ ଭୁଞ୍ଜିଲା ଦ୍ରବ୍ୟମାନଙ୍କର । ଯେ ଅଂଶ ଅଟଇ ଅସାର ॥ ୯୦
ତାହା ମୁଞ୍ଚିବା ଅର୍ଥେ ମନେ । କରନ୍ତେ ଗୁଦ ଉତପନ୍ନେ ॥ ୯୧
ପାୟୁ ଇନ୍ଦ୍ରିୟ ତହୁଁ ଜାତ । ମିତ୍ର ନାମରେ ତା ଦୈବତ ॥ ୯୨
ସେ ବେନି ଅବଲମ୍ବ ହୋଇ । ମଳ-ଉତ୍ସର୍ଗ ସଂଭବଇ ॥ ୯୩
୨୮ ଏ ଦେହ ଛାଡ଼ି ଦେହାନ୍ତର । ଯିବାକୁ କରନ୍ତେ ବିଚାର ॥ ୯୪
ସଂଭବ ହେବ ନାଭିଦ୍ୱାର । ଅପାନ ଇନ୍ଦ୍ରିୟ ତାହାର ॥ ୯୫
ମୃତ୍ୟୁ ଦେବତା ଅଟେ ତହିଁ । ବେନି ଆଶ୍ରୟେ ନାଶ ହୋଇ ॥ ୯୬
୨୯ ଇଚ୍ଛା କରନ୍ତେ ଅନ୍ନ, ପାନ । ଉଦର, ଅନ୍ତ, ନାଡ଼ୀମାନ ॥ ୯୭
ସଂଭବ ହୋଇଲା ତାହାର । ନଦୀ, ସମୁଦ୍ର ଅର୍ଧୀଶ୍ୱର ॥ ୯୮
ଯେ ପୁଣ ତୁଷ୍ଟି ପୁଷ୍ଟି ଦୁଇ । ତାହାଙ୍କ ଆଶ୍ରୟ ସେ ହୋଇ ॥ ୯୯
୩୦ ନିଜ ମାୟାକୁ ନିରନ୍ତର । ବିଚାର କରନ୍ତେ ମନର ॥୧୦୦
ହୃଦୟ ହୋଇଲା ସଂଭୂତ । ମନ ଇନ୍ଦ୍ରିୟ ରୂପେ ଜାତ ॥୧୦୧
ଚନ୍ଦ୍ରମା ଦେବତା ଅଟଇ । ସଂକଳ୍ପ କାମ କର୍ମ ଦୁଇ ॥୧୦୨

* "ତ୍ୱେକ ଏବାଂଶୋ ନିର୍ଦ୍ଦିଷ୍ଟଃ । ତ୍ୱଙ୍ ନିରଭିଦ୍ୟତ; ତ୍ୱଚୋ ଲୋମାନି; ଲୋମଭ୍ୟ ଓଷଧୟୋ ବନସ୍ପତୟଃ" (ଶ୍ରୁତିଃ) ।

୩୧ ଯେ ସ୍ଥୂଳ ସୂକ୍ଷ୍ମ ଚର୍ମ ବେନି । ମାଂସ, ରୁଧିର, ମେଦ ତିନି ॥୧୦୩
ମଜ୍ଜା ଅସ୍ଥି ଏ ଧାତୁ ସାତେ । ପ୍ରାଣ, ଆକାଶ, ଜଳ, ବାତେ ॥୧୦୪
ଭୂ, ଜଳ, ତେଜମୟ ହୋଇ । ଏ ସାତ ବିଦିତ ଅଟଇ ॥୧୦୫
୩୨ ବିଷୟ ଅଭିମୁଖ ହୋଇ । ଇନ୍ଦ୍ରିୟଗଣ ପ୍ରବର୍ତ୍ତଇ ॥୧୦୬
ଶବଦ ଆଦି ଗୁଣ ଯେହି । ଅହଂକାରରୁ ଜାତ ହୋଇ ॥୧୦୭
ସର୍ବବିକାରମୟ ମନ । ବୁଦ୍ଧି ବିଜ୍ଞାନମୟ ଘନ ॥୧୦୮
୩୩ ବିଷ୍ଣୁର ସ୍ଥୂଳ ରୂପ ଏହି । ମୁଁ ଏହା ତୋତେ କହିଲଇଁ ॥୧୦୯
ଭୂ ଆଦି ଅଷ୍ଟ ଆବରଣ । ବେଷ୍ଟିତ ବାହ୍ୟରେ ଏ ପୁଣ ॥୧୧୦
୩୪ ଏଥିରୁ ଭିନ୍ନରୂପ ଯେହି । ଅତ୍ୟନ୍ତ ସୂକ୍ଷ୍ମ ସେ ଅଟଇ ॥୧୧୧
ଅବ୍ୟକ୍ତ, ବିଶେଷଣହୀନ । ଅନାଦିମଧ୍ୟ, ଅନିଧନ ॥୧୧୨
ସର୍ବଦା ସ୍ଥାୟୀ ସେ ଅଟଇ । ମନବଚନଗମ୍ୟ ନୋହି ॥୧୧୩
୩୫ ଏ ଭଗବାନରୂପ ଦୁଇ । ମୁଁ ତୋର ଆଗେ ବର୍ଣ୍ଣିଲଇଁ ॥୧୧୪
ଏ ବେନି ମାୟାରେ ନିର୍ମିତ । ଜ୍ଞାନୀ ନ କରନ୍ତି ସମ୍ମତ[୧] ॥୧୧୫
୩୬ ବାଚ୍ୟବାଚକ ଭାବେ କରି । ସେ ହରି ବ୍ରହ୍ମରୂପ ଧରି ॥୧୧୬
ଯେ ନାମ, ରୂପ, କ୍ରିୟାମାନ । ଧରନ୍ତି ତାହା ଭଗବାନ ॥୧୧୭
ମାୟାରେ ସକର୍ମ ହୁଅନ୍ତି । ବାସ୍ତବ ଅକର୍ମ ଅଟନ୍ତି ॥୧୧୮
୩୭ ଯେ ପ୍ରଜାପତି, ମନୁମାନେ । ଦେବତା ଋଷି ପିତୃଗଣେ ॥୧୧୯
ସିଦ୍ଧ, ଚାରଣ, ବିଦ୍ୟାଧର । ଗନ୍ଧର୍ବ, ଗୁହ୍ୟକ, ଅସୁର ॥୧୨୦
୩୮ କିନ୍ନର, ନାଗ, ଅପ୍ସରସ । ଉରଗ, ଯକ୍ଷ, କିଂପୁରୁଷ ॥୧୨୧
ଯେ ଭୂତ, ପ୍ରେତ, ମାତୃଗଣ । ପିଶାଚ, ବିନାୟକ ପୁଣ ॥୧୨୨
୩୯ କୁଷ୍ମାଣ୍ଡ, ଗ୍ରହ, ଯାତୁଧାନ । ଉନ୍ମାଦ ବେତାଳ ଯେ ଆନ ॥୧୨୩
ଖଗ, ହରିଣ, ସରୀସୃପ । ଯେ ପଶୁ, ବୃକ୍ଷ, ଗିରି, ନୃପ । ॥୧୨୪
୪୦ ସ୍ଥାବର ଜଙ୍ଗମ ଭେଦରେ । ଦ୍ୱିବିଧ ଯେତେକ ସଂସାରେ ॥୧୨୫
ଯେ ଜରାୟୁଜ, ଯେ ଅଣ୍ଡଜ । ସ୍ୱେଦଜ, ଯେ ପୁଣ ଉଦ୍ଭିଜ୍ଜ ॥୧୨୬
ଯେ ଜଳ ସ୍ଥଳ-ଆକାଶରେ । ଜୀବ ସମୂହ ସ୍ଥାନ କରେ ॥୧୨୭
ଏ ସର୍ବ କୁଶଳାକୁଶଳ[୨] । ମିଶ୍ରିତ କର୍ମଙ୍କର ଫଳ ॥୧୨୮
୪୧ ଯେ ଖ୍ୟାତ ସତ୍ତ୍ୱ, ରଜ, ତମେ । ଏ ତିନି ଗତି ଯଥାକ୍ରମେ ॥୧୨୯
ଦେବତା, ମନୁଷ୍ୟ, ନାରକ । ତହିଁରେ ପୁଣ ଏକ ଏକ ॥୧୩୦

୧. ସନ୍ମତ । ୨. କୁଶଳ ଓ ଅକୁଶଳ

| | | | |
|---|---|---|---|
| | ତିନି ପ୍ରକାରରେ ସେ ଗତି । | ତିନିହେଁ ଭେଦକୁ ଲଭନ୍ତି | ॥୧୩୧ |
| | ଗୁଣଦ୍ୱୟରେ ଏକ ଗୁଣ । | ମିଶ୍ରିତ ହୋଏ ଯେବେ ପୁଣ | ॥୧୩୨ |
| ୪୨ | ତିର୍ଯ୍ୟକ, ମାନବ, ଅସୁର । | ଧରିଣ ଏ ଆଦି ଆକାର | ॥୧୩୩ |
| | ଜଗତ କରନ୍ତେ ପାଳନ । | ସେ ବିଶ୍ୱକର୍ତ୍ତା ଭଗବାନ | ॥୧୩୪ |
| | ଧର୍ମରୂପରେ ଏ ଜଗତ । | ପୁଷ୍ଟି କରଇ ଅବିରତ | ॥୧୩୫ |
| ୪୩ | ତଦନନ୍ତରେ ପୁଣ ହରି । | କାଳାଗ୍ନି ରୁଦ୍ର ରୂପ ଧରି | ॥୧୩୬ |
| | ଆପଣା ଠାବରୁ ଜନିତ । | ଅଟଇ ଯେବଣ ଜଗତ | ॥୧୩୭ |
| | କାଳରେ କରଇ ତା' ହତ । | ମେଘବୃନ୍ଦକୁ ଯେହ୍ନେ ବାତ | ॥୧୩୮ |
| ୪୪ | ସର୍ଜନ, ପାଳନ, ନିଧନ । | କର୍ତ୍ତା ଅଟନ୍ତି ଭଗବାନ | ॥୧୩୯ |
| | ଏ ରୂପେ କହିଲାଇଁ ତୋତେ । | ଯେ ପୁଣି ପଣ୍ଡିତ ଜଗତେ | ॥୧୪୦ |
| | ଏ ଭାବେ ତାହାକୁ ସେ ଜନ । | ଦେଖିତଂ[1] ନୁହନ୍ତି ଭାଜନ | ॥୧୪୧ |
| ୪୫ | ଏ ବିଶ୍ୱ-ଜନ୍ମ-ଆଦି ଯେହି । | ତହିଁ ଈଶ୍ୱର କର୍ତ୍ତା ନୋହି | ॥୧୪୨ |
| | କେବଳ କରିଣ ବର୍ଣ୍ଣନ । | *ମାୟାରେ କରି ଆରୋପଣ | ॥୧୪୩ |
| | କର୍ତ୍ତାଭାବକୁ ତାହାଙ୍କର । | ଖଣ୍ଡିବା ଅର୍ଥେ ସେ ବିଚାର | ॥୧୪୪ |
| ୪୬ | ଏ ଅବାନ୍ତର କଳ୍ପଯୁତ । | ବ୍ରହ୍ମକଳ୍ପକୁ ତୋ ଅଗ୍ରତ | ॥୧୪୫ |
| | କହିଲୁଁ ପ୍ରାକୃତ ବୈକୃତ । | ସର୍ଗେ ଅଟନ୍ତି ଯହିଁ ସ୍ଥିତ | ॥୧୪୬ |
| | ସକଳ ମହାକଳ୍ପେ ସିଦ୍ଧି । | ଏ ସାଧାରଣେ ବହୁ ବିଧି | ॥୧୪୭ |
| ୪୭ | କାଳର[2] ଯେବା ପରିମାଣ । | କଳ୍ପଲକ୍ଷଣବିଭାଗେଣ | ॥୧୪୮ |
| | ସେ କଥା କରିଣ ବିସ୍ତାର । | ଆଗେ କହିବା ତୋ ଆଗର | ॥୧୪୯ |
| | ପାଦ୍ମ କଳ୍ପକୁ ଏବେ ପୁଣ । | କହିବା, କର ତୁ ଶ୍ରବଣ | ॥୧୫୦ |

ଶ୍ରୀଶୌନକ ଉବାଚ

| | | | |
|---|---|---|---|
| ୪୮ | ହେ ସୂତ ! ଭାଗବତଙ୍କର । | ମଧ୍ୟେ ଉତ୍ତମ ସେ ବିଦୁର[3] | ॥୧୫୧ |
| | ଛାଡ଼ି ଦୁସ୍ତ୍ୟଜ ବନ୍ଧୁଜନ । | କଲା ଭୂମିର ତୀର୍ଥମାନ | ॥୧୫୨ |
| | ଆମ୍ଭଙ୍କୁ ଏମନ୍ତ ପ୍ରକାରେ । | ଯାହା କହିଲ ପ୍ରଥମରେ | ॥୧୫୩ |

---

୧. ଦେଖିବାକୁ । (ଦ୍ରଷ୍ଟୁଂ)
* ଇନ୍ଦ୍ରୋ ମାୟାଭିଃ ପୁରୁରୂପ ଈୟତେ । (ଶ୍ରୁତିଃ)
୨. କାଳରେ । ୩. ମୂଳପାଠ ଧୃତ 'କ୍ଷତ୍ତା' ଶବ୍ଦର ଅର୍ଥ ।

୪୯ କେବଣ ଠାବେ ମୈତ୍ରେୟଂର । ସଂବାଦ ହୋଇଲା ତାହାର ॥୧୫୪
ସଂବାଦ ଅଟେ ଜ୍ଞାନଯୁତ । ବିଦୁର ପୃଚ୍ଛନ୍ତେଣ ତତ୍ତ୍ୱ ॥୧୫୫
ଯାହା କହିଲେ ଭଗବାନ । [1]ମୈତ୍ରେୟ ନାମେ ତପୋଧନ ॥୧୫୬
୫୦ କହ ସେ ବିଦୁରଚରିତ । ବନ୍ଧୁତ୍ୟାଗରେ ଯେ ନିମିତ୍ତ ॥୧୫୭
ଯେମନ୍ତ ପ୍ରକାରେ ସେ ପୁଣ । ଗଲା ତା' କରସି ବଖାଣ ॥୧୫୮

ଶ୍ରୀସୂତ ଉବାଚ

୫୧ ପୁଚ୍ଛନ୍ତେ ରାଜା ପରୀକ୍ଷିତ । ସେ ମହାମୁନି ବ୍ୟାସସୁତ ॥୧୫୯
ଯାହା କହିଲେ ତା ଆଗରେ । ରାଜାର ପ୍ରଶ୍ନ-ଅନୁସାରେ ॥୧୬୦
ସେ କଥା ତୁମ୍ଭଙ୍କୁ ବଖାଣ । କରିବା ସେହିରୂପେ ଶୁଣ ॥୧୬୧
ଏ ଭାଗବତ ପ୍ରତିଦିନ । ଶୁଣଇଁ ପଢ଼ଇ ଯେ ଜନ ॥୧୬୨
ତାହାର ନାହିଁ ଭବଭୀତି । ତରଇ ସକଳ ଦୁର୍ଗତି ॥୧୬୩
ଏ ଘେନି ବଳିଲା ମୋ ଚିତ୍ତ । ଦେଶଭାଷାରେ କଲି ଗୀତ ॥୧୬୪
ସୁଜନେ ଏଣେ ହୁଅ ତୋଷ । ତୁମ୍ଭର ଦୀନବନ୍ଧୁ ଦାସ ॥୧୬୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଦଶ-ଲକ୍ଷଣକଥନଂ
ନାମ ଦଶମୋଽଧ୍ୟାୟଃ ॥

**ସମାପ୍ତଶ୍ଚାୟଂ ଦ୍ୱିତୀୟ ସ୍କନ୍ଧଃ**

---

୧. ମୂଳପାଠ ଧୃତ 'କୌଶାରବି' ଶବ୍ଦର ଅର୍ଥ ।

# ତୃତୀୟ ସ୍କନ୍ଧ

## ପ୍ରଥମୋଽଧ୍ୟାୟଃ

ତୃତୀୟେ ତୁ ତ୍ରୟସ୍ତ୍ରିଂଶଦଧ୍ୟାୟୈଃ ସର୍ଗବର୍ଣ୍ଣନମ୍ ।
ଈଶେଚ୍ଛୟା ଗୁଣକ୍ଷୋଭାଦ୍ ସର୍ଗୋ ବ୍ରହ୍ମାଣ୍ଡସଂଭବଃ ॥ ୧ ॥
ତତ୍ର ତୁ ପ୍ରଥମୋଽଧ୍ୟାୟେ ବନ୍ଧୁନ୍ ହିତ୍ୱା ଗତାୟୁଷଃ ।
ନିର୍ଗତସ୍ୟୋଦ୍ଧବେନାଦୌ ସଂବାଦଃ କ୍ଷତ୍ତୁରୁଚ୍ୟତେ ॥ ୨ ॥
ଭଗବଦ୍ ବ୍ରହ୍ମସଂପ୍ରୋକ୍ତଂ ସଂକ୍ଷିପ୍ତଂ ବର୍ଣ୍ଣିତଂ ପୁରା ।
*ପ୍ରାହ ଭାଗବତଂ ଶେଷପ୍ରୋକ୍ତଂ ବିସ୍ତରତଃ ପୁନଃ ॥ ୩ ॥

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କର ସୁତ । କୃଷ୍ଣଚରଣେ ଦେଇ ଚିତ୍ତ ॥ ୧
ଶୁଣ ପରୀକ୍ଷ ଦଣ୍ଡଧର । ଯେ ପାଦ୍ମ କଳ୍ପର ବିଚାର ॥ ୨
ସକଳ ସମୃଦ୍ଧିରେ ପୂର୍ଣ୍ଣ । ସ୍ୱଗୃହ ଛାଡ଼ି ଯାଇ ବନ ॥ ୩
ବିଦୁର ମୈତ୍ରେୟ ଆଗର । ପଚାରିଛନ୍ତି ଏ ପ୍ରକାର ॥ ୪
୨ ମନ୍ତ୍ରୀ ପାଣ୍ଡବମାନଙ୍କର । ଯେ କୃଷ୍ଣ ଅଖିଳ-ଈଶ୍ୱର ॥ ୫
ଛାଡ଼ିଣ ଦୁର୍ଯ୍ୟୋଧନବାସ । ଯହିଁରେ ହୋଇଲେ ପ୍ରବେଶ ॥ ୬
ବିଦୁରଗୃହ ମୋ ଭବନ । ଏମନ୍ତ ଥାଇ ତାଙ୍କ ମନ ॥ ୭

ଶ୍ରୀପରୀକ୍ଷିତ ଉବାଚ

୩ ଏମନ୍ତ ମୁନିବାକ୍ୟ ଶୁଣି । କହୁଅଛନ୍ତି ନୃପମଣି ॥ ୮
ମୈତ୍ରେୟ ସଙ୍ଗେ ବିଦୁରର । ସଂଗମ ହେଲା କେଉଁଠାର ॥ ୯
ସଂବାଦ ହୋଇଲା ସେ କେବେ । ସେ କଥା କହ ମୁନି ଏବେ ॥ ୧୦
୪ ମୈତ୍ରେୟ ଋଷି ଅଟେ ବର । ତା'ଠାରେ ମହାତ୍ମା ବିଦୁର ॥ ୧୧
ନ ଥିବେ ସେ ପ୍ରଶ୍ନ କରିଣ । ଯହିଁରେ ଅଳ୍ପ ପ୍ରୟୋଜନ ॥ ୧୨
ମୈତ୍ରେୟ ଋଷିଙ୍କ ଉତ୍ତର । ତେଣେ ଶ୍ଲାଘିତ ପ୍ରଶ୍ନ ଯାର ॥ ୧୩

---

* ଶ୍ରୀମଦ୍ଭାଗବତର ସଂପ୍ରଦାୟପ୍ରବୃତ୍ତି ଦ୍ୱିଧା । ଏକପକ୍ଷେ ଶ୍ରୀନାରାୟଣ-ବ୍ରହ୍ମାନାରଦାଦିଙ୍କ ଦ୍ୱାରା ସଂକ୍ଷିପ୍ତ ଭାବେ ଏବଂ ଅନ୍ୟପକ୍ଷେ ଶ୍ରୀଶେଷ-ସନତ୍କୁମାରସାଂଖ୍ୟାୟନାଦିଙ୍କ ଦ୍ୱାରା ବିସ୍ତୃତ ଭାବେ ଏହା ପ୍ରବର୍ତ୍ତିତ ।

ଶ୍ରୀସୂତ ଉବାଚ

୫ ଶୌନକ ଆଦିଙ୍କ ଅଗ୍ରତ । କହୁଅଛନ୍ତି ଏହା ସୂତ ॥ ୧୪
ସେ ମହାଋଷି ବ୍ୟାସସୁତ । ତାଙ୍କୁ ସେ ରାଜା ପରୀକ୍ଷିତ ॥ ୧୫
ଏ ରୂପେ ପ୍ରଶ୍ନ ଯହୁଁ କଲେ । ଶୁଣି ସଂତୋଷମନା ହେଲେ ॥ ୧୬
ବହୁତ କଥା ଛନ୍ତି ଜାଣି । ବୋଲନ୍ତି ଶୁଣ ନୃପମଣି ॥ ୧୭

ଶ୍ରୀଶୁକ ଉବାଚ

୬ ଚକ୍ଷୁବିହୀନ କର୍ମବଳେ । ସେ ଧୃତରାଷ୍ଟ୍ର ଯେତେବେଳେ ॥ ୧୮
ଅଧର୍ମମାର୍ଗେ ମନ ଦେଇ । ଆପଣା ପୁତ୍ରଙ୍କୁ ପୋଷଇ ॥ ୧୯
କନିଷ୍ଠ ଭାଇର ନନ୍ଦନ । ଅଟନ୍ତି ସେ ଯେ ବନ୍ଧୁହୀନ ॥ ୨୦
ତାଙ୍କୁ ପୂରାଇ ଯଉଗୃହେ । ଦହନ କଲା ବୁଦ୍ଧିମୋହେ ॥ ୨୧
୭ ଯେବେ ସଭାରେ ଯୁଧିଷ୍ଠିର । ପଟ୍ଟମହିଷୀ ଦ୍ରୌପଦୀର ॥ ୨୨
କେଶ-ଆକର୍ଷ କଲା ସୁତ । ସେ କର୍ମ ଅଟଇ ନିନ୍ଦିତ ॥ ୨୩
ଲୋତକଧାର ପଡ଼ି ଉରେ । କୁଚ କୁଙ୍କୁମକୁ ସେ ହରେ ॥ ୨୪
ବଧୂର ଏ ଦଶା ଦେଖିଲା । ସୁତଙ୍କୁ ବାରି ନ ପାରିଲା ॥ ୨୫
୮ ଅଧର୍ମଦ୍ୟୁତେ ଧନ ହାରି । ସତ୍ୟକୁ ଅବଲମ୍ବ କରି ॥ ୨୬
ବନକୁ ଯୁଧିଷ୍ଠିର ଗଲେ । ସମୟେ ଲେଉଟି ଅଇଲେ ॥ ୨୭
ମାଗନ୍ତେ ଭାଗକୁ ତାଙ୍କର । ଯେବେ ନ ଦେଲା ନୃପବର ॥ ୨୮
ଦୁଃଖିତ ହେବେ ମୋ ନନ୍ଦନ । ଏ ମୋହ ଥିଲା ତାର ମନ ॥ ୨୯
୯ ପୁଣି କୃଷ୍ଣଙ୍କୁ କରି ଦୂତ । ଯେବେ ପେଷିଲେ ପାଣ୍ଡୁସୁତ ॥ ୩୦
ସଭାରେ ଯେଉଁ ଯେଉଁ ବାଣୀ । ଜଗତଗୁରୁ କୃଷ୍ଣ ଭଣି ॥ ୩୧
ତାଠାରୁ ଆନ ଯେତେ ଜନ । ତାଙ୍କୁ ଅମୃତ ସେ ବଚନ ॥ ୩୨
ସେ କଥା ବଡ଼ କରି ମନ । ଘେନିଲା ନାହିଁ ସେ ରାଜନ ॥ ୩୩
ଯେ ତାର ପୁଣ୍ୟ ଲେଶ ଥିଲା । ସେହି ତାହାର ନାଶ ଗଲା ॥ ୩୪
୧୦ ଯେବଣ କାଳେ ବିଚାରକୁ । ରାଜା ଡାକିଲା ବିଦୁରକୁ ॥ ୩୫
ମନ୍ଦିରେ ମିଳନ୍ତେ ବିଦୁର । ତାଙ୍କୁ ପଚାରିଲା ବିଚାର ॥ ୩୬
ସେ ମନ୍ତ୍ରୀମାନଙ୍କର ବର । ବିଚାର କହିଲେ ବିଦୁର ॥ ୩୭
ଆଜହିଁ ଯାହା ମନ୍ତ୍ରୀମାନେ । ଦେଖନ୍ତି[୧] ବିଦୁରବଚନେ ॥ ୩୮

---

୧. ଦେଖାନ୍ତି ।

୧୧ ଶୁଣ ରାଜନ ! ଏକଚିତ୍ତେ । ଯାହା କହିବି ତୋ ଅଗ୍ରତେ ।। ୩୯
ଦୁଃସହ ଅପରାଧ ତୋର । ସହୁଣ ଅଛି ଯୁଧିଷ୍ଠିର ।। ୪୦
ତାହାକୁ ନିଜ ଭାଗ ଦିଅ । ଯହିଁରେ ଭୀମ ସର୍ପପ୍ରାୟ ।। ୪୧
ରୋଷରେ ନିଶ୍ୱାସ ପକାଇ । ସଙ୍ଗେ ଘେନିଣ ତିନି ଭାଇ ।। ୪୨
ଯେବଣ ଭୀମଠାରୁ ତୋର । ମନରେ ଭୟ ବଳିଆର ।। ୪୩
୧୨ ଯେ ଦେବବ୍ରାହ୍ମଣ ସହିତ । ଯାଦବେ ଯାକୁ ଅନୁଗତ ।। ୪୪
ସେ ହରି ଥାଇ ନିଜ ପୁରେ । ପାଣ୍ଡବ ବଂଶ[୧]ପକ୍ଷ ଧରେ ।। ୪୫
ଯେତେକ ବରିଷ୍ଠ ରାଜନ । ତାଙ୍କୁ ଜିଣିଛି ଭଗବାନ ।। ୪୬
୧୩ ତୋହର ଗୃହରେ ପ୍ରବେଶ । ହୋଇଅଛି ଏ ମୂଳ ଦୋଷ ।। ୪୭
କୃଷ୍ଣର ଦ୍ୱେଷୀ ଦୁର୍ଯ୍ୟୋଧନ । ତାଠାରେ କରି ପୁତ୍ରମନ ।। ୪୮
ପୋଷୁଛୁ ଅତି ସ୍ନେହ କରି । ଏ ଘେନି ନାଶ ତୋର ଶିରୀ ।। ୪୯
ସେ କୃଷ୍ଣ ଆସି ତୋର ଘରେ । ମିଳିଲା ବାନ୍ଧବ ବେଭାରେ ।। ୫୦
ମନୁଷ୍ୟବୁଦ୍ଧି ତାକୁ କଲୁ । ତାଠାରେବିମୁଖ ହୋଇଲୁ ।। ୫୧
*କୁଳମଙ୍ଗଳ ବାଞ୍ଛୁ ଯେବେ । ଏହାକୁ ତ୍ୟାଗ କର ତେବେ ।। ୫୨
୧୪ ଯାହାର ସୁଚରିତମାନ । ବାଞ୍ଛା କରନ୍ତି ସାଧୁଜନ ।। ୫୩
ଏମନ୍ତ ସେ ବିଦୁର ଭଣି । ତା ବାକ୍ୟ ଦୁର୍ଯ୍ୟୋଧନ ଶୁଣି ।। ୫୪
ସଙ୍ଗେ ଅଛନ୍ତି ତିନି ଜଣ । କର୍ଣ୍ଣ, ଶକୁନି, ଦୁଃଶାସନ ।। ୫୫
କୋପରେ କମ୍ପଇ ଅଧର । କଲା ତାହାକୁ ତିରସ୍କାର ।। ୫୬
୧୫ ଏ କୂଟ ବୁଦ୍ଧି ଦାସୀସୁତ । ଏହାକୁ ଡାକିଲା କେ ଏଥ ।। ୫୭
ଯାହାର ଅନ୍ନ ନିତ୍ୟେ ଖାଇ । ତାଠାରେ ବିରୁଦ୍ଧ କରଇ ।। ୫୮
ପାଣ୍ଡବମାନଙ୍କର ହିତ । ବିଚାର କରଇ ଏ ନିତ୍ୟ ।। ୫୯
ଏହାର ଯେତେ ଅଛି ଧନ । ସେମାନେ ଛଡ଼ାଇଣ ଘେନ ।। ୬୦
ଏହାକୁ ଦଣ୍ଡେ ହେଁ ନ ଥୁଅ । ରାଜ୍ୟୁଂ ବାହାର କରିଦିଅ ।। ୬୧
୧୬ ଏ ରୂପେ ତାର କଟୁବାଣୀ । କର୍ଣ୍ଣକୁ ଅଟେ ବାଣ ଜାଣି ।। ୬୨
ସେ ମର୍ମେ ବାଜିଲା ତାହାର । ଥିଲା ସେ ଭାଇସନ୍ନିଧିର ।। ୬୩
ଅଳପ ହୋଇଣ ହସିଲା । ବିଷ୍ଣୁ ମାୟାକୁ ପ୍ରଶଂସିଲା ।। ୬୪
ନ ପୁଣ ଏଠାରୁ ଏ ଯାଇ । ଜୁଝେ ପାଣ୍ଡବ ସାହା ପାଇ ।। ୬୫

---

୧. ବଂଶେ । * ''ତ୍ୟଜେତ୍ ଏକଂ କୁଳସ୍ୟାର୍ଥେ'' ଇତି ନ୍ୟାୟାତ୍ ।

ଏମନ୍ତ ଶଙ୍କା ନିଜ ମନ । କରଇ ଅବା ଦୁର୍ଯ୍ୟୋଧନ ॥ ୬୬
ଏତେ ବିଚାରି ତାହା ଦ୍ୱାର । ରଖିଣ ଧନୁ ଆପଣାର ॥ ୬୭
ମନରେ ନାହିଁ ବ୍ୟଥା ତାର । ଗଲା ସେ ଆପଣା ଇଚ୍ଛାର ॥ ୬୮
୧୭ କୌରବମାନଙ୍କ ପୁଣ୍ୟରେ । ଜାତ ଅଟଇ ସେ ମହୀରେ ॥ ୬୯
କରିବି ପୁଣ୍ୟ କଥାମାନ । ଏମନ୍ତ ବିଚାରିଣ ମନ ॥ ୭୦
ହସ୍ତିନାପୁରରୁ ଗମନ । କରି ଲଭିଲା ତୀର୍ଥମାନ ॥ ୭୧
ଯହିଁରେ ନାନା ମୂର୍ତ୍ତି ଧରି । ବିଜୟେ କରିଛନ୍ତି ହରି ॥ ୭୨
୧୮ ଯେ ପୁର ପୁଣ୍ୟ ଉପବନ । ଅଚଳ ଲତାଗୃହମାନ ॥ ୭୩
ଅପଙ୍କ ଜଳ, ନଦୀ, ସର । ବିଷ୍ଣୁ ମୂର୍ତ୍ତିରେ ମନୋହର ॥ ୭୪
ଯେ ତୀର୍ଥ-ଆୟତନମାନ । ତହିଁରେ କଲା ସେ ଭ୍ରମଣ ॥ ୭୫
୧୯ ସଙ୍ଗେ ତାହାର କେହି ନାହିଁ । ପୃଥିବୀ ଭ୍ରମଣ କରଇ ॥ ୭୬
କରଇ ପବିତ୍ର ଆହାର । ସର୍ବଦା ସ୍ନାନରେ ତତ୍ପର ॥ ୭୭
ଭୂମିଶୟନ, ଅସଂସ୍କୃତ । ଆପଣା ଲୋକେ ଅଲକ୍ଷିତ ॥ ୭୮
ଅବଧୂତର ପ୍ରାୟେ ବେଶ । ଯେଣେ ହରିର ହୋଏ ତୋଷ ॥ ୭୯
ଆଚରିଲା ସେ ବ୍ରତମାନ । ନିଶ୍ଚଳ କରି ନିଜ ମନ ॥ ୮୦
୨୦ ଏମନ୍ତ ଭାରତବରଷେ । ଭ୍ରମନ୍ତେ କାଳକେ ପ୍ରଭାସେ ॥ ୮୧
ଯାବତ ମିଳିଲା ବିଦୁର । ସେହି କାଳରେ ଯୁଧିଷ୍ଠିର ॥ ୮୨
କରିଣ ଏକଛତ୍ର ମହୀ । ପାଳିଲା କୃଷ୍ଣବଳ ପାଇ ॥ ୮୩
୨୧ ଏକ ଆରକେ ବାଦ କରି । ସଂଗ୍ରାମେ ହେଲେ ମରାମରି ॥ ୮୪
ବେଣୁଘର୍ଷଣେ ବହ୍ନି ଜାତ । ସେ ବନ ଯେହ୍ନେ ହୋଏ ହତ ॥ ୮୫
ଏ କଥା ବନ୍ଧୁମାନଙ୍କର । ସେଠାରେ ଶୁଣିଲା ବିଦୁର ॥ ୮୬
ଅନୁଶୋଚନା ତାଙ୍କୁ କରି । ମଉନ ବ୍ରତ ଭାବ ଧରି ॥ ୮୭
ଗଲା ପଶ୍ଚିମମୁଖ ହୋଇ । ଯେ ଦିଗେ ସରସ୍ୱତୀ ନଈ ॥ ୮୮
୨୨ ତାହାର ତୀରେ ଏକାଦଶେ । ତୀର୍ଥେ ଅଛନ୍ତି ପୁଣ୍ୟଦେଶେ ॥ ୮୯
ତ୍ରିତ, ମନୁ, ପୃଥୁ, ଉଶନ । ଅନଳ, ଅସିତ, ପବନ ॥ ୯୦
ସୁଦାସ, ଧେନୁ, ଗୁହ, ଯମେ । ବିଖ୍ୟାତ ଏହାଙ୍କର ନାମେ ॥ ୯୧
ସେ ତୀର୍ଥମାନଙ୍କରେ ସ୍ନାନ । କଲା ସେ ହୋଇ ତୋଷମନ ॥ ୯୨

୨୩ ଯେ ଦେବଦ୍ୱିଜକୃତ ଆନ । ବିଷ୍ଣୁର ନାନା ଆୟତନ ।। ୯୩
ଯହିଁରେ ସୁବର୍ଣ୍ଣକଳଶେ । ମନ୍ଦିରପରେ ଚକ୍ର ଦିଶେ ।। ୯୪
ଯାହାଙ୍କୁ କଲେ ଦରଶନ । କୃଷ୍ଣଙ୍କୁ ସୁମରନ୍ତି ଜନ ।। ୯୫
୨୪ ସେ ପୁଣି ବିଷ୍ଣୁ ଆୟତନେ । ରହିଣ ତହୁଁ କିଛିଦିନେ ।। ୯୬
ସୌରାଷ୍ଟ୍ର, ମତ୍ସ୍ୟ, ସଉବୀର । ଯେ କୁରୁ ଜାଙ୍ଗଳ ନଗର ।। ୯୭
ଏମାନ ଅତିକ୍ରମି ଗଲେ । କାଳକେ ଯମୁନାରେ ହେଲେ ।। ୯୮
ଦେଖିଲେ ଉଦ୍ଧବଙ୍କୁ ତହିଁ । ବିଷ୍ଣୁର ଭକ୍ତ ସେ ଅଟଇ ।। ୯୯
୨୫ ସେ ବିଷ୍ଣୁ ଅନୁଚର ଶାନ୍ତ । ବୃହସ୍ପତିର ଶିଷ୍ୟ ଖ୍ୟାତ ।।୧୦୦
ତାଙ୍କୁ ନିବିଡ଼େ ଆଲିଙ୍ଗନ । କରିଣ ଯେତେ ବନ୍ଧୁଜନ ।।୧୦୧
ପୋଷ୍ୟ ଅଟନ୍ତି ଗୋବିନ୍ଦର । ପୃଚ୍ଛିଲେ କୁଶଳ ତାଙ୍କର ।।୧୦୨
ପ୍ରଥମେ ରାମକୃଷ୍ଣବାର୍ତ୍ତା । ପଚାରୁଛନ୍ତି ଶୁଦ୍ଧଚେତା ।।୧୦୩
କୃଷ୍ଣର ପୁତ୍ର ଆଦି କରି । ଏକ ଆରକେ ନାମ ଧରି ।।୧୦୪
୨୬ ଶୁଣ ଉଦ୍ଧବ ମନ ଦେଇ । ମୁଁ ଯେଉଁ କଥା ପଚାରଇ ।।୧୦୫
ପୁରାଣ ପୁରୁଷ ଯେ ବେନି । ପିତାମହର ବାକ୍ୟ ଘେନି ।।୧୦୬
କଳାରେ ହେଲେ ଅବତାର । ଉଶ୍ୱାସି ଧରଣୀର ଭାର ।।୧୦୭
ରାମ ଗୋବିନ୍ଦ ନାମ ବହି । ପ୍ରାଣୀମାନଙ୍କୁ ସୁଖ ଦେଇ ।।୧୦୮
ଅଛନ୍ତିଟିକି ଦ୍ୱାରକାରେ । ଆନନ୍ଦେ ବସୁଦେବଘରେ ।।୧୦୯
୨୭ ପରମ ସୁହୃଦ ଆମ୍ଭର । ଯେ ବସୁଦେବ ତାହାଙ୍କର ।।୧୧୦
କୁଶଳ କହ ମୋର ଆଗେ । ଭଗିନୀମାନଙ୍କୁ ସରାଗେ ।।୧୧୧
ଯେ ନିଜ ପିତାପ୍ରାୟ ହୋଇ । ଅନେକ ସମ୍ଭାର ଦିଅଇ ।।୧୧୨
ପତିମାନଙ୍କୁ ତାହାଙ୍କର । ସନ୍ତୋଷେ କରଇ ଅପାର ।।୧୧୩
୨୮ ସେନାଧିପତି ଯଦୁଙ୍କର । ପ୍ରଦ୍ୟୁମ୍ନ ନାମେ ମହାବୀର ।।୧୧୪
ଅଛନ୍ତିଟିକି ସେ କୁଶଳେ । ଯାହାଙ୍କୁ ବିପ୍ରପୂଜାଫଳେ ।।୧୧୫
କୃଷ୍ଣସକାଶୁଁ ପୁତ୍ର କରି । ଲଭିଲେ ଭୀଷ୍ମକକୁମାରୀ ।।୧୧୬
ପୂର୍ବ ଜନ୍ମରେ ଯାର ନାମ । ଲୋକେ ବିଖ୍ୟାତ ଅଟେ କାମ ।।୧୧୭
୨୯ ସାତ୍ୱତ, ବୃଷ୍ଣି, ଭୋଜବଂଶ । ଦାଶାର୍ହମାନଙ୍କ ଅଧୀଶ ।।୧୧୮
ସେ ଉଗ୍ରସେନ ନିଜ ଘରେ । ଅଛନ୍ତିଟିକି କୁଶଳରେ ।।୧୧୯
ନୃପ-ଆସନବାଞ୍ଛା ଦୂରେ । ଛାଡ଼ିଣ ଥିଲେ ଯେ ଭୟରେ ।।୧୨୦
ତାହାଙ୍କୁ କମଳଲୋଚନ । ସ୍ୱବଂଶେ କଲେକ ରାଜନ ।।୧୨୧

| | | | |
|---|---|---|---|
| ୩୦ | ଅଗ୍ରଣୀ ରଥୀମାନଙ୍କର | । ଗୁଣେ ସମାନ ଗୋବିନ୍ଦର | ॥୧୨୨ |
| | ସେ ଶାମ୍ବ ଛନ୍ତିଟିକି ସୁଖେ | । ଯାକୁ ବହୁତ ବ୍ରତଦୁଃଖେ | ॥୧୨୩ |
| | ଲଭିଲେ ଜାମ୍ବବତୀ ପୂର୍ବେ | । ଯେ ସ୍କନ୍ଦ ଥିଲେ ଉମାଗର୍ଭେ | ॥୧୨୪ |
| ୩୧ | କ୍ଷେମେ କି ଅଛି ଯୁଯୁଧାନ[୧] | । ଯାହାକୁ ସନ୍ତୋଷେ ଅର୍ଜୁନ | ॥୧୨୫ |
| | କହିଲା ଧନୁର୍ବିଦ୍ୟା ସାର | । ଯେ ସେବା କରି କୃଷ୍ଣଠାର | ॥୧୨୬ |
| | ଶୀଘ୍ରେ ଲଭିଲା ତାର ଗତି | । ଲଭି ନାହାନ୍ତି ଯାହା ଯତି | ॥୧୨୭ |
| ୩୨ | ସେ ଜ୍ଞାନୀ, କଳୁଷରହିତ | । ସର୍ବଦା ଗୋବିନ୍ଦେ ଭଗତ | ॥୧୨୮ |
| | ଅକ୍ରୂର ଅଛି ନା କୁଶଳେ | । ଯେ ପୂର୍ବେ ଗୋପେ ଯିବାବେଳେ | ॥୧୨୯ |
| | ମାର୍ଗେ ଗଡ଼ିଲା ଦେହେ[୨]ବୋଳି | । କୃଷ୍ଣଚରଣ ଚିହ୍ନ ଧୂଳି | ॥୧୩୦ |
| | ପ୍ରେମ ଲଭିଣ ଗୋବିନ୍ଦରେ | । ଧୈର୍ଯ୍ୟକୁ ତ୍ୟାଗ କଲା ଦୂରେ | ॥୧୩୧ |
| ୩୩ | କୁଶଳଟିକି ଦେବକୀର | । ବିଷ୍ଣୁ ଅଟନ୍ତି ପୁତ୍ର ଯାର | ॥୧୩୨ |
| | ଅଦିତି ପ୍ରାୟେ ସେ ଅଟନ୍ତି | । ଯେ ଗର୍ଭେ ଧଇଲେ ଶ୍ରୀପତି | ॥୧୩୩ |
| | ଯଜ୍ଞବିତାନ ଅର୍ଥମାନ | । ତ୍ରୟୀ[୩] ପ୍ରକାଶଇ ଯେସନ | ॥୧୩୪ |
| ୩୪ | ଯେ ଉପାସନା କଲା ଜନ | । ମନୋରଥକୁ କରେ ପୂର୍ଣ୍ଣ | ॥୧୩୫ |
| | ସେ ଅନିରୁଦ୍ଧ ସୁଖୀ ହୋଇ | । ପୁରେ ଅଛନ୍ତିଟିକି ରହି | ॥୧୩୬ |
| | ଯେ ଅଟେ ଶାସ୍ତ୍ରର[୪] କାରଣ | । ମନର ପ୍ରବର୍ତ୍ତକ ପୁଣ | ॥୧୩୭ |
| | ସତ୍ତ୍ୱ-ତୁରୀୟ ଅଂଶ, ମନ | । ତା ଅଧିପତି ବିଦ୍ୟମାନ | ॥୧୩୮ |
| | ଏ ରୂପେ ଯାକୁ ଦେବମାନେ | । ଗାୟନ କରନ୍ତି ଭୁବନେ | ॥୧୩୯ |
| ୩୫ | ନିଜ ଆତ୍ମାର ପତି ହରି | । ତାଙ୍କୁ ଅନନ୍ୟବୃତ୍ତି କରି | ॥୧୪୦ |
| | ହୋଇ ଯେ ଥାନ୍ତି ଅନୁଗତ | । ହୃଦୀକ, ସତ୍ୟଭାମାସୁତ | ॥୧୪୧ |
| | ଗଦ, ଚାରୁଦେଷ୍ଣାଦି ଯେତେ | । କୁଶଳେ ଛନ୍ତି ନା ସମସ୍ତେ | ॥୧୪୨ |
| ୩୬ | କୃଷ୍ଣ ଅର୍ଜୁନ ବେନି ବୀର | । ଅଟନ୍ତି ଭୁଜଯୁଗ ଯାର | ॥୧୪୩ |
| | ତାହାଙ୍କ ବଳେ ଧର୍ମରାଜ | । ପାଳଇଟିକି ନିଜ ରାଜ୍ୟ | ॥୧୪୪ |
| | ଦିଗବିଜୟୁଁ ଜାତ ଯାର | । ସାମ୍ରାଜ୍ୟଲକ୍ଷ୍ମୀ ମନୋହର | ॥୧୪୫ |
| | ସଭାରେ ତାହା ଦୁର୍ଯ୍ୟୋଧନ | । ଦେଖି ହୋଇଲା ଖେଦମନ | ॥୧୪୬ |
| ୩୭ | ଯେ କରେ ଅପରାଧମାନ | । ତାହାଙ୍କଠାରେ ଭୀମସେନ | ॥୧୪୭ |
| | ସର୍ପର ପ୍ରାୟେ କ୍ରୋଧବନ୍ତ | । ଦେଲା କି ଯେ ଦଣ୍ଡ ଉଚିତ | ॥୧୪୮ |

---

୧. ସାତ୍ୟକି । ୨. ପଡ଼ିଲା, ବ୍ୟଲୁଠଦ୍ (ସ୍ୱାମୀ)
୩. ବେଦ (ଋକ, ସାମ, ଯଜୁଷ୍) । ୪. ଶସ୍ତ୍ରର

| | | |
|---|---|---|
| ବିଚିତ୍ର ଗଦାମାର୍ଗ ମାନ | । କରନ୍ତେ ଯାହାର ସାଧନ | ।।୧୪୯ |
| ପାଦଘାତକୁ ରଣମହୀ | । ଯାହାର ନ ପାରିଲା ସହି | ।।୧୫୦ |
| ୩୮ ରଥଯୂଥପମାନଙ୍କର | । ମଧ୍ୟେ ଯେ ଅଟେ ଯଶୋଧର | ।।୧୫୧ |
| ବିନାଶ କରି ଶତ୍ରୁମାନ | । ଅଛନ୍ତିଟିକି ଫାଲଗୁନ | ।।୧୫୨ |
| ମାୟାକିରାତରୂପଧର | । ଯୁଦ୍ଧରେ ଗିରିଶ ଈଶ୍ୱର | ।।୧୫୩ |
| ଯାହାର ଶରେ ଆଚ୍ଛାଦିତ | । ହୋଇ ହୋଇଲେ ତୋଷଚିତ୍ତ | ।।୧୫୪ |
| ୩୯ ନକୁଳ, ସହଦେବ ଦୁଇ | । ଅଛନ୍ତିଟିକି ବେନି ଭାଇ | ।।୧୫୫ |
| ପୃଥାର ସେ ବେନି କୁମର | । ସପତ୍ନ ଭେଦ ନାହିଁ ତାର | ।।୧୫୬ |
| ଚକ୍ଷୁକୁ ପିଛଡ଼ା ପରାଏ | । ପାର୍ଥରେ ବେଷ୍ଟିତ ସେ ଦୁହେଁ | ।।୧୫୭ |
| ଯୁଦ୍ଧରେ ଶତ୍ରୁଗଣ ଜିଣି | । ଅଛନ୍ତିଟିକି ଭାଗ ଆଣି | ।।୧୫୮ |
| ଯେସନେ ଖଗରାଜ ବେନି | । ଇନ୍ଦ୍ରର ଠାରୁ ସୁଧା ଘେନି | ।।୧୫୯ |
| ୪୦ ଯେ ପାଣ୍ଡୁ ଅଟେ ଅତିରଥ | । କେବଳ ଧନୁ ଧରି ହସ୍ତ | ।।୧୬୦ |
| ଚାରି ଦିଗରେ ରାଜା ଯେତେ | । ତାଙ୍କୁ ରଖିଲା କରଗତେ | ।।୧୬୧ |
| ସେ ରାଜରଷିଶ୍ରେଷ୍ଠ ବିନୁ | । କୁନ୍ତୀ ଯା ଧରିଅଛି ତନୁ | ।।୧୬୨ |
| ବାଳକମାନଙ୍କ ନିମିତ୍ତେ | । ଏମନ୍ତ ମଣୁଛି ମୁଁ ଚିତ୍ତେ | ।।୧୬୩ |
| ଏ ଘେନି କୁଶଳ ତାହାର | । କି ପଚାରିବା ତୋ ଆଗର | ।।୧୬୪ |
| ୪୧ ଆପଣା ଭାଇ ପାଣ୍ଡୁ ମଲା | । ତାରେ ଯେ ଦ୍ରୋହ ଅରଜିଲା | ।।୧୬୫ |
| ତାହାର ମୁଁ ଯେମନ୍ତ ଭାଇ | । ନିଜ ପୁତ୍ରର ବଶ ହୋଇ | ।।୧୬୬ |
| ମୋତେହେଁ ପୁରରୁ ବାହାର | । କଲା ଯେ କରି ଅବିଚାର | ।।୧୬୭ |
| ଏଣୁ ସେ ନରକଭାଜନ | । ତାକୁ ମୁଁ କରୁଛି ଶୋଚନ | ।।୧୬୮ |
| ୪୨ ମନୁଷ୍ୟପ୍ରାୟେ ଲୀଳା କରେ | । ଯେ ହରି ସଂସାରେ ବିହରେ | ।।୧୬୯ |
| ଭ୍ରମାଇଁ ମନ ପ୍ରାଣୀଙ୍କର | । ଲୀଳାକୁ ଦେଖାନ୍ତେ ତାହାର | ।।୧୭୦ |
| ମନେ ବିସ୍ମୟ ମୋର ନାହିଁ | । ମେଦିନୀତଳରେ ଭ୍ରମଇଁ | ।।୧୭୧ |
| ବିଦୁର ବୋଲି ଏ ଜଗତେ | । ଚିହ୍ନି ନ ପାରେ କେହି ମୋତେ | ।।୧୭୨ |
| ୪୩ ନିଜ ସୈନ୍ୟରେ ପୁଣ ପୁଣ | । ପୃଥୀକି କରନ୍ତେ ଚାଳଣ | ।।୧୭୩ |
| ବିଦ୍ୟା, ସଂପଦ, କୁଳ ତିନି | । ମଦେଂ ଉଦ୍‌ପଥ ଭାବ ଘେନି | ।।୧୭୪ |

୧. ବିଦ୍ୟାମଦୋ ଧନମଦସ୍ତଥୈବାଭିଜନୋ ମଦଃ ।
ଏତେ ମଦା ମଦାନ୍ଧାନାମେତ ଏବ ସତାଂ ଦମାଃ ।। (ସ୍ୱାମିଧୃତ ଶ୍ଳୋକ)

| | | | |
|---|---|---|---|
| | ଯେତେକ ରାଜା ଜଗତରେ | । ତାହାଙ୍କ ବିନାଶ ହେତୁରେ | ॥୧୭୫ |
| | ଦୋଷକୁ କୁରୁମାନଙ୍କର | । ସହିଣ ଥିଲେ ଚକ୍ରଧର | ॥୧୭୬ |
| ୪୪ | ଅଜର ଜନ୍ମ ଏ ସଂସାରେ | । ଉତ୍‌ପଥ ନାଶ କରିବାରେ | ॥୧୭୭ |
| | ଅକର୍ତ୍ତା କର୍ମ ସେ କରଇ | । ପ୍ରାଣୀଙ୍କି ଶିକ୍ଷା ଦେବାପାଇଁ | ॥୧୭୮ |
| | ଏଥିରୁ ଅଟେ ଯେବେ ଆନ | । ଯେ ଗୁଣାତୀତ ଭଗବାନ | ॥୧୭୯ |
| | ସେ କିପାଁ ଦେହକୁ ଭଜିବ[୧] | । କର୍ମତନ୍ତ୍ର ହିଁ ଆଚରିବ | ॥୧୮୦ |
| ୪୫ | ଶରଣାଗତବୃତ୍ତି ହୋଇ | । ନିଜ ଆଜ୍ଞାରେ ଛନ୍ତି ରହି | ॥୧୮୧ |
| | ଏମନ୍ତ ଲୋକପାଳଙ୍କର | । ନିମିତ୍ତେ ଯେ ଯଦୁବଂଶର | ॥୧୮୨ |
| | ଅବତରିଲେ ଅଜ ହୋଇ | । ଲୋକ ଯା' କୀର୍ତ୍ତିରୁ ତରଇ | ॥୧୮୩ |
| | ସେ ଗୋବିନ୍ଦର ବାର୍ତ୍ତାମାନ | । ଉଦ୍ଧବ କରସି କୀର୍ତ୍ତନ | ॥୧୮୪ |
| | ସେ ହରିଚରଣପଙ୍କଜେ | । ବ୍ରାହ୍ମଣ ଦୀନବନ୍ଧୁ ଭଜେ | ॥୧୮୫ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରୋଦ୍ଧବସଂବାଦୋ
ନାମ ପ୍ରଥମୋଽଧ୍ୟାୟଃ ॥

## ଦ୍ୱିତୀୟୋଽଧ୍ୟାୟଃ

ଦ୍ୱିତୀୟେ କୃଷ୍ଣବିଶ୍ଳେଷାଦନୁଶୋଚନ୍ନଥୋଦ୍ଧବଃ ।
କ୍ଷତ୍ତ୍ରେ ବାଳଚରିତ୍ରାଣି କୃଷ୍ଣସ୍ୟାବର୍ଣ୍ଣୟଦ୍ ଶ୍ୱସନ୍ ॥ ୧ ॥

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | କହନ୍ତି ବ୍ୟାସଙ୍କର ସୁତ | । ଶୁଣ ରାଜନ ପରୀକ୍ଷିତ | ॥ ୧ |
| | ଏମନ୍ତେ ବାର୍ତ୍ତା ଗୋବିନ୍ଦର | । ପ୍ରଶ୍ନ କରନ୍ତେ ସେ ବିଦୁର | ॥ ୨ |
| | ଉଦ୍ଧବ ମହାଭାଗବତ | । ଉତ୍‌କଣ୍ଠାଭାବେ ନିଜ ଚିତ୍ତ | ॥ ୩ |
| | ଗୋବିନ୍ଦଠାରେ ନିବେଶିଲା | । ଉତ୍ତର ଦେଇ ନ ପାରିଲା | ॥ ୪ |
| ୨ | ଯେ ପାଞ୍ଚ ବରଷ ସମୟେ | । ଖେଳନ୍ତେ ବାଳକଲୀଳାଏ | ॥ ୫ |
| | ବାଳକଯୋଗ୍ୟ ଦ୍ରବ୍ୟମାନ | । ଘେନି ପୂଜନ୍ତେ ଭଗବାନ | ॥ ୬ |

୧. ଧରିବ ।

ପ୍ରାତଭୋଜନ ଅର୍ଥେ ଯାଇଁ । ମାତା ଡାକନ୍ତେ ସ୍ନେହ ବହି ॥ ୭
ଭୋଜନଚିନ୍ତା ଦୂର କଲା । କୃଷ୍ଣ ପୂଜାରେ ମନ ଦେଲା ॥ ୮
୩ ସେ ପୁଣି ସେବାରେ ତାହାର । କାଳେ ହୋଇଲା ଜରଜର[୧] ॥ ୯
ତା' ବାର୍ତ୍ତା କହିବ କିପରି[୨] । ତା' ପାଦଯୁଗ ଚିତ୍ତେ ଧରି ॥ ୧୦
୪ ବିଦୁରବାକ୍ୟ ଶୁଣି କର୍ଣ୍ଣ । ବଦନୁଁ ନ ସ୍ଫୁରେ ବଚନ ॥ ୧୧
କୃଷ୍ଣଚରଣସୁଧାରସେ । ନିମଗ୍ନ ହୋଇଣ ଅବଶେ ॥ ୧୨
ଭକ୍ତିଯୋଗରେ ସୁଖୀ ହେଲା । ମୁହୂର୍ତ୍ତେ ମଉନ ହୋଇଲା ॥ ୧୩
୫ ସର୍ବାଙ୍ଗେ ପୂରିତ ପୁଲକ । ନୟନୁଁ ଗଳଇ ଲୋତକ ॥ ୧୪
ବୁଡ଼ିଲା ଅଗାଧ ସ୍ନେହରେ । ଏ ଭାବ ଦେଖି ତାହାଠାରେ ॥ ୧୫
ବିଦୁର ଚିନ୍ତିଲା ମନର । ଏ ଅଟେ କୃତାର୍ଥ ଶରୀର ॥ ୧୬
୬ ହରିର ଠାରେ ଥିଲା ମନ । ପୁଣି ଲଭିଲା ଚଇତନ ॥ ୧୭
ବେନି ଲୋଚନ ଘଷି କରେ । ନିଶ୍ୱାସ ଛାଡ଼ିଣ ପ୍ରଖରେ ॥ ୧୮
ବୋଲେ ବିଦୁରକୁ ବଚନ । ଉଦ୍ଧବ ହୋଇ ଦୁଃଖମନ[୩] ॥ ୧୯

ଶ୍ରୀଉଦ୍ଧବ ଉବାଚ

୭ ଯାଦବ ମଧ୍ୟେ କୃଷ୍ଣ ଥାଇ । ସୂର୍ଯ୍ୟର ପ୍ରାୟେ ପ୍ରକାଶଇ ॥ ୨୦
ତା' ଅସ୍ତେ କାଳେ ଅଜଗର । ଗିଳନ୍ତେ ବନ୍ଧୁଙ୍କର ଘର ॥ ୨୧
ହତଶ୍ରୀ ହୋଇଲା ସକଳ । କି ଅବା କହିବି ମଙ୍ଗଳ ॥ ୨୨
୮ ଦୁର୍ଭଗ ଜଗତ ଅଟଇ । ଯଦୁଏ ହୀନକର୍ମ ତହିଁ ॥ ୨୩
ବସନ୍ତି ନିତ୍ୟେ କୃଷ୍ଣସଙ୍ଗେ । ରାତ୍ରିଦିବସେ ନାନାରଙ୍ଗେ ॥ ୨୪
ତାଙ୍କୁ ନ ଜାଣିଲେ ସକଳେ । ଚନ୍ଦ୍ରକୁ ମୀନେ ଯେହ୍ନେ ଜଳେ ॥ ୨୫
୯ ସମେସ୍ତ ଇଙ୍ଗିତ ଜାଣନ୍ତି । ସ୍ୱଭାବେ ନିପୁଣ ଅଟନ୍ତି ॥ ୨୬
ରହିଣ ଥିଲେ ଏକା ସ୍ଥାନେ । ତଥାପି ଗୋବିନ୍ଦକୁ ମନେ ॥ ୨୭
ମଣିଲେ ଯଦୁଶ୍ରେଷ୍ଠ କରି । ନ ଜାଣିଲେ ଏ ନରହରି ॥ ୨୮
୧୦ ବିଷ୍ଣୁ ମାୟାରେ ମୋହ ଯେହି । ଯେ ତାଙ୍କୁ ବଇର କରଇ ॥ ୨୯
ତାଙ୍କ ବାକ୍ୟରେ ଜ୍ଞାନୀଙ୍କର । ମନ ନ ଭ୍ରମେ ହରିଠାର ॥ ୩୦
୧୧ ପୂର୍ବେ ବହୁତ ତପମାନ । କରି ନାହାନ୍ତି ଯେଉଁ ଜନ ॥ ୩୧
ଏ ଘେନି ଯାହାଙ୍କ ଲୋଚନ । ତୃପ୍ତିକି ଲଭି ନାହିଁ ମନ ॥ ୩୨

---

୧. ଜରାଗ୍ରସ୍ତ । ୨. କିକରି (କଥଂ) । ୩. ଖେଦମନ ।

| | | | | |
|---|---|---|---|---|
| | ସେମାନଙ୍କୁ ଯେ ନିଜ କାଏ | । ଦେଖାଇ ଏତେ କାଳଯାଏ | ।। | ୩୩ |
| | ଲୋକଲୋଚନକୁ ହରିଲେ | । ନିଜ ଧାମକୁ ବିଜେ କଲେ | ।। | ୩୪ |
| ୧୨ | ସ୍ୱଯୋଗ ମାୟାବଳେ କରି | । ଧଇଲେ ଯେଉଁ ଦେହ ହରି | ।। | ୩୫ |
| | ସେ ଦେହ କେମନ୍ତ ଅଟଇ | । ମାନବଲୀଳାକୁ ଘଟଇ | ।। | ୩୬ |
| | ବିସ୍ମୟ କରେ ଆପଣାର | । ସୌଭାଗ୍ୟ ସମ୍ପତ୍ତିର ଘର | ।। | ୩୭ |
| | ଭୂଷଣମାନଙ୍କ ଭୂଷଣ | । ଅଟଇ ଯହିଁ ଅଙ୍ଗମାନ | ।। | ୩୮ |
| ୧୩ | ଧର୍ମନନ୍ଦନ ଯଜ୍ଞକାଳେ | । ସକଳ ଲୋକ ଏକ ମେଳେ | ।। | ୩୯ |
| | ପ୍ରାଣୀନୟନସୁଖକର | । ଯେ ରୂପେ ଦେଖିଣ ସଭାର | ।। | ୪୦ |
| | ରୂପନିର୍ମାଣେ ପ୍ରଜାପତି | । ଯେତେ ଚାତୁର୍ଯ୍ୟ କଲା ସ୍ଥିତି | ।। | ୪୧ |
| | ସେ ସର୍ବ ଶେଷ ଏ ରୂପରେ | । ଏମନ୍ତ ମଣିଲେ ମନରେ | ।। | ୪୨ |
| ୧୪ | ଯା ଅନୁରାଗପ୍ଲୁତ[୧] ହାସ | । ସଲୀଳ[୨] ଅବଲୋକ ରାସ | ।। | ୪୩ |
| | ଏଣୁ[୩] କରିଣ ଲଭି ମାନ | । ପୂର୍ବରେ ବ୍ରଜବଧୂଜନ | ।। | ୪୪ |
| | ରହିଲେ କୃତ୍ୟଶେଷ ହୋଇ | । ନୟନ, ବୁଦ୍ଧି ଯାରେ ଦେଇ | ।। | ୪୫ |
| ୧୫ | ତାହାର ଶାନ୍ତ ରୂପମାନ | । ଅଟନ୍ତି ଦେବସାଧୁଜନ | ।। | ୪୬ |
| | ଆନହିଁ ସ୍ୱରୂପ ତାହାର | । ଅଟନ୍ତି ଯେ ଦୁଷ୍ଟ ଅସୁର | ।। | ୪୭ |
| | ସେମାନେ ତାଙ୍କୁ ଯେତେବେଳେ | । ନାନା ପ୍ରକାରେ ପୀଡ଼ା କଲେ | ।। | ୪୮ |
| | ସେ ପ୍ରଭୁ ପରାବରେଶ୍ୱର | । କରୁଣା ଲଭିଣ ମନର | ।। | ୪୯ |
| | ମହତ ଅଂଶେ ଯୁତ ହୋଇ | । ଯଦ୍ୟପି ଜନ୍ମ ତାର ନାହିଁ | ।। | ୫୦ |
| | ତଥାପି ହୋଇଲେ ସଂଭୂତ | । ଅନଳ ଯେହ୍ନେ କାଷ୍ଠୁଁ ଜାତ | ।। | ୫୧ |
| ୧୬ | ଏ କଥା ମୋର ଖେଦ କରେ | । ସେ ଅଜ ବସୁଦେବ ଘରେ | ।। | ୫୨ |
| | ଜାତ ହୋଇଣ କଂସାଡରେ | । ରହିଲେ ଯାଇଁ ଗୋପପୁରେ | ।। | ୫୩ |
| | *କାଳଯବନ ଆଦି କରି | । ରିପୁଭୟରୁ ନରହରି | ।। | |
| | ମଥୁରା ଛାଡ଼ି ପଳାଇଲେ | । ଏ ରୂପେ ବିଡ଼ମ୍ବନା କଲେ | ।। | |
| | ଅପରିମିତ ବୀର୍ଯ୍ୟ ଯାର | । ଅଟନ୍ତି ଏମନ୍ତ ଈଶ୍ୱର | ।। | ୫୪ |

---

୧. ବ୍ୟାପ୍ତ ।　୨. ଲୀଳାସହ ବର୍ତ୍ତମାନ ।　୩. ଏଣେ ।

* ଉକ୍ତ ସଂଖ୍ୟାଶୂନ୍ୟ ପଦଦ୍ୱୟ ଶ୍ରୀମଦ୍ଭାଗବତର ମୂଳ ଶ୍ଳୋକାନୁସାରେ ସଂକଳିତ ହୋଇଅଛି ।

୧୭ ଏ କଥା ସୁମରିଲେ ମୋର । ଚିତ୍ତ ଲଭଇ ଦୁଃଖଭର ॥ ୫୫
କଂସକୁ ମାରି ମଞ୍ଚାପରେ । ତାତ ଜନନୀଙ୍କ ପାଦରେ ॥ ୫୬
ପ୍ରଣାମ କରିଣ ବଚନ । ଯାହା କହିଲେ ଭଗବାନ ॥ ୫୭
ହେ ତାତ ! ମାତ ! କଂସ ଡରେ । ପଳାଇ ରହିଣ ଦୂରରେ ॥ ୫୮
ତୁମ୍ଭଙ୍କୁ ନ କଲୁଁ ଭକତି । ଆମ୍ଭର ଅଛି କି ନିଷ୍କୃତି ॥ ୫୯
୧୮ ସଂସାର ମଧ୍ୟେ ଜନ୍ମ ହୋଇ । ପିଣ୍ଡରେ ପ୍ରାଣ ବହିଥାଇ ॥ ୬୦
ତାର ଚରଣପଦ୍ମରଜ । ପାସୋରି ପାରେ କେ ମନୁଜ ॥ ୬୧
ଯେ ନିଜ ଭ୍ରୂଲତା[1] ବିଳାସେ । ଭୂମିର ଭାରାକୁ ବିନାଶେ ॥ ୬୨
୧୯ ତୁମ୍ଭେ ତ ଦେଖିଅଛ ଡୋଳେ । ଧର୍ମନନ୍ଦନ ଯଜ୍ଞକାଳେ ॥ ୬୩
କୃଷ୍ଣଙ୍କୁ ଶିଶୁପାଳ ନିନ୍ଦି । ପଶିଲା ତାର ଦେହେ ଭେଦି ॥ ୬୪
ଯେଉଁ ଗତିକି ଯୋଗୀଜନ । ଯୋଗରେ କରନ୍ତି ସାଧନ[2] ॥ ୬୫
ତାର ବିରହ[3] ଦେହ ବହି । କେବଣ ଲୋକ ପାରେ[4] ସହି ॥ ୬୬
୨୦ ଯୁଦ୍ଧରେ ଥିଲେ ବୀର ଯେତେ । ରଥି ପଦାତି ଅପ୍ରମିତେ ॥ ୬୭
ସୁନ୍ଦର ମୁଖପଦ୍ମ ତାର । ନିରେଖି ଚାହିଁ ଲୋଚନର ॥ ୬୮
ଅର୍ଜୁନବାଣେ ହତ ହେଲେ । ତାହାର ପଦକୁ ଲଭିଲେ ॥ ୬୯
୨୧ ଯାର ସମାନ କେହି ନାହିଁ । ଅଧିକ ଥିବ ଅବା କାହିଁ ॥ ୭୦
ବ୍ରହ୍ମାଦି ତିନି[5], ତିନି ଗୁଣ । ତିନି ଲୋକର ପ୍ରଭୁ ପୁଣ ॥ ୭୧
ପରମାନନ୍ଦ ନିଜ ଧାମ- । ସଂପତ୍ତିବଶେ ସର୍ବକାମ ॥ ୭୨
ଯେ ଲଭିଅଛନ୍ତି ଈଶ୍ୱର । ଘେନିଣ ନାନା ଉପହାର ॥ ୭୩
ପ୍ରାଚୀନ ଲୋକପାଳମାନେ । ମୁକୁଟ-ଅଗ୍ର-ଘରଷଣେ ॥ ୭୪
ଯା ପାଦପୀଠେ କରେ ସ୍ତୁତି । ଏମନ୍ତ ପ୍ରଭୁ ଯେ ଅଟନ୍ତି ॥ ୭୫
୨୨ କିଂକର ଭାବ ତାହାଙ୍କର । ମନକୁ ଆମ୍ଭମାନଙ୍କର ॥ ୭୬
ବିଦୁର ! କରାଉଛି ଗ୍ଲାନ । ଯେ ଥାଇ ରାଜସିଂହାସନ ॥ ୭୭
ସେ ଉଗ୍ରସେନ ଆଗେ ଯାଇଁ । ଯେ ପ୍ରଭୁ ଥାନ୍ତି ଉଭା ହୋଇ ॥ ୭୮
ହେ ଦେବ ! କର ଅବଧାନ । ବୋଲେ ଯା ଏମନ୍ତ ବଚନ ॥ ୭୯

---

୧. ଭ୍ରୂଲତାରୂପକ କୃତାନ୍ତ (ମୂଳପାଠ) ୨. ସ୍ମହଣ (ମୂଳପାଠ)
୩. ବିରହେ । ୪. ପାରୁ । ୫. ତିନି ପୁରୁଷ ।

୨୩ ଅସାଧ୍ୱୀ ପୂତନା ଅସୁରୀ । ସ୍ତନରେ କାଳକୂଟ ଭରି ॥ ୮୦
ଯାହାକୁ ପିଆଇଲା ନେଇ । ମରଣେ ଯାର ଚିତ୍ତ ଦେଇ ॥ ୮୧
ଯେ ଗତି ଯଶୋଦାର ଯୋଗ୍ୟ । ତାହାକୁ ହୋଇଲା ସେ ଭୋଗ୍ୟ ॥ ୮୨
ତାହାର ଠାରୁ ହୋଇ ଆନ । କେବା ଦୟାଳୁ ଅଛି ଜନ ॥ ୮୩
ତାହାକୁ ଶରଣ ପଶିବା । ସଂସାରଦୁଃଖ ଉପେକ୍ଷିବା ॥ ୮୪
୨୪ କ୍ରୋଧମାର୍ଗରେ ହରିଠାରେ । ଚିତ୍ତ ଯେ ନିବେଶିଲେ ଧୀରେ ॥ ୮୫
ସେ ଦୈତ୍ୟମାନେ ଭାଗବତ । ମୁଁ ପୁଣି ମଣଇଁ ଏମନ୍ତ ॥ ୮୬
କାନ୍ଧେ ବସାଇ ଚକ୍ରଧର । ଆସଇ ବିନତାକୁମର ॥ ୮୭
ଏମନ୍ତ କରି ଯେଉଁମାନେ । ଦେଖିଲେ ପୂର୍ବେ ରଣସ୍ଥାନେ ॥ ୮୮
୨୫ *କଂସରାଜାର ବନ୍ଦିଘରେ । ଜନ୍ମିଲେ ଦେବକୀ ଉଦରେ ॥ ୮୯
ବ୍ରହ୍ମାବଚନେ ଭୂମିଭାର । ବିନାଶ ଅର୍ଥେ ଚକ୍ରଧର ॥ ୯୦
୨୬ ସେ ବସୁଦେବ କଂସ ଡରେ । ନେଇ ଥୋଇଲା ନନ୍ଦଘରେ ॥ ୯୧
ଗୁପତେ ସଙ୍ଗେ ହଳଧର । ରହିଲେ ଏଗାର ବତ୍ସର ॥ ୯୨
୨୭ ଗୋପବାଳକ ସଙ୍ଗେ ଥାଇ । ସେ ପ୍ରଭୁ ବାଛୁରି ଚରାଇ ॥ ୯୩
ରମିଲେ ଯମୁନାକାନନେ । ଯହିଁ ମଧୁର ପକ୍ଷୀସ୍ୱନେ** ॥ ୯୪
୨୮ କୁମାରଲୀଳା ଅନୁଦିନେ । ଦେଖାଇ ବ୍ରଜବାସିଜନେ ॥ ୯୫
କ୍ଷଣକେ ହସଇ ରୋଦଇ । ବାଳକ ସିଂହ ପ୍ରାୟେ ଚାହିଁ ॥ ୯୬
୨୯ ଯେ ଅଟେ କମଳାର ସ୍ଥାନ । ଯହିଁରେ ଶୁକ୍ଳ ବୃଷମାନ ॥ ୯୭
ଏମନ୍ତ ଗୋଧନ କାଳରେ । ଚରାନ୍ତେ ଗୋପାଳ ମେଳରେ ॥ ୯୮
ମଧୁର ବେଣୁ ବଜାଇଲେ । ତାଙ୍କୁ ହରଷ କରାଇଲେ ॥ ୯୯
୩୦ କଂସ ଯା ଥିଲା ପଠିଆଇ । ମାୟାବୀ କାମରୂପୀ ହୋଇ ॥ ୧୦୦
ମିଳିଲେ ଆସି ସେ ଗୋପର । ତାହାଙ୍କୁ କଲେ ସେ ସଂହାର ॥ ୧୦୧
ତୃଣାଦିକୃତ ଜନ୍ତୁମାନ । ବାଳକ ଭାଙ୍ଗଇ ଯେସନ ॥ ୧୦୨
୩୧ କାଳିନ୍ଦୀବିଷଜଳ ପିଇ । ମରି ଯେ ଥିଲେ ଗୋପ, ଗାଈ ॥ ୧୦୩
ତାଙ୍କୁ ଜିଆଇ ନନ୍ଦବାଳ । ଅମୃତ କଲେ ବିଷଜଳ ॥ ୧୦୪
କାଳିର ଫଣାରେ ନାଚିଲେ । ତାହାକୁ ଘଉଡ଼ିଣ ଦେଲେ ॥ ୧୦୫
***ପିଆଇ ନିର୍ବିଷ ଜଳକୁ । ତୋଷିଲେ ସେ ଧେନୁମାନଙ୍କୁ ॥ ୧୦୬

* ବସୁଦେବର ଔରସରେ ।
** ପାଦପମାନେ ସଂକୁଳିତ । (ମୂଳପାଠ ଦ୍ରଷ୍ଟବ୍ୟ)
*** ଏହି ପଦ ମୂଳପାଠ ତଥା ସ୍ୱାମିଟୀକାର ଅନୁସରଣରେ ସଂକଳିତ ହୋଇଅଛି ।

୩୨ ଯେତେ ଅଶେଷ ଦ୍ରବ୍ୟମାନ[୧] । ସଫଳ[୨] ଅର୍ଥେ ଭଗବାନ ॥୧୦୭
ବ୍ରାହ୍ମଣମାନ ଘେନି ସଙ୍ଗେ । ନନ୍ଦଙ୍କୁ ଧେନୁପୂଜାରଙ୍ଗେ ॥୧୦୮
[୩]ଗୋସବ ବିଧି ଭିଆଇଲେ । ଇନ୍ଦ୍ର ଉତ୍ସବ ଭଙ୍ଗାଇଲେ ॥୧୦୯
୩୩ ଯଜ୍ଞବିଫଳୁଁ କୋପ କରି । ଇନ୍ଦ୍ର-ବରଷେ ଘୋର ବାରି ॥୧୧୦
ଗୋରୁ ଗୋପାଳଙ୍କ ବିକଳ । ତକ୍ଷଣେ ଦେଖି ନନ୍ଦବାଳ ॥୧୧୧
ଛତ୍ର ଆକାରେ ଗିରି ଧରି । ରଖିଲେ ଗୋପପୁର ଶିରୀ ॥୧୧୨
୩୪ ଶରଦ ଶଶିକରେ ସୁଖ । *ମାନନ୍ତେ ରଜନୀର ମୁଖ ॥୧୧୩
କାନନେ ବେଣୁକୁ ବଜାଇ । ନାରୀମଣ୍ଡଳ ମଧ୍ୟେ ଥାଇ ॥୧୧୪
ଆରମ୍ଭ କଲେ ଦାମୋଦର । ରାସଉତ୍ସବ ମନୋହର ॥୧୧୫
କହଇ ବିପ୍ର ଦୀନବନ୍ଧୁ । ସୁଜନେ ଭଜ କୃପାସିନ୍ଧୁ ॥୧୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରୋଦ୍ଧବସଂବାଦୋ
ନାମ ଦ୍ୱିତୀୟୋଽଧ୍ୟାୟ ॥

## ତୃତୀୟୋଽଧ୍ୟାୟଃ

ତୃତୀୟେ ମଥୁରାମେତ୍ୟ ବ୍ରଜାଦ୍ କଂସବଧାଦିକମ୍ ।
ଯଦ୍‌କୃତଂ ଦ୍ୱାରକାୟାଂ ଚ କୃଷ୍ଣେନ ତଦବର୍ଣ୍ଣୟଦ୍ ॥ ୧ ॥

ଶ୍ରୀଉଦ୍ଧବ ଉବାଚ

୧ ଶୁଣ ବିଦୁର ! ମୋ ବଚନ । ଦଣ୍ଡେ ନ କରି ଖେଦମନ ॥ ୧
କୁଶଳ ପିତାମାତାଙ୍କର । କରିବା ଅର୍ଥେ ଦାମୋଦର ॥ ୨
ଅକ୍ରୂରସଙ୍ଗେ ମଧୁପୁର । ଗମିଲେ ଘେନି ହଳଧର ॥ ୩
କଂସକୁ ଦୃଷ୍ଟିରେ ସଂହାରି । ମଞ୍ଚା ଉପରୁ କେଶ ଧରି ॥ ୪
ତଳେ ପକାଇ ରୋଷଭରେ । ମୃତ ପିଣ୍ଡକୁ ଆକର୍ଷିଲେ ॥ ୫

---

୧. ଅତିସମୃଦ୍ଧ ବିଭମାନ (ସ୍ୱାମୀ) । ୨. ସଦ୍‌ବ୍ୟୟ । ୩. ଗୋସବ = ଗୋଯଜ୍ଞ ।
* ମାନନ୍ତେ = ମନେକରି । ରଜନୀର ମୁଖ-ପ୍ରଦୋଷ ।

୨ ସାନ୍ଦୀପନିର ଘରେ ଗଲେ । ବେଦକୁ ବିସ୍ତାରି ପଢ଼ିଲେ ॥ ୬
ଗୁରୁଦକ୍ଷିଣା ଅର୍ଥେ ପୁଣି । ମଲା ପୁତ୍ରକୁ ଦେଲେ ଆଣି ॥ ୭
ଯେ ପଞ୍ଚଜନ[୧]ର ଉଦରେ । ମରିଣ ଥିଲା ସ୍ୱକର୍ମରେ ॥ ୮
୩ ଲକ୍ଷ୍ମୀର ଅଟଇ ସମାନ । ଭୀଷ୍ମକସୁତା ରୂପବର୍ଣ୍ଣ ॥ ୯
ଯା ଅର୍ଥେ ବର ବରଜାତି । ମିଳିଲେ ଯେତେକ ନୃପତି ॥ ୧୦
ସେମାନେ ଚାହୁଁଛନ୍ତି ରହି । ତାହାଙ୍କ ମୁଣ୍ଡେ ପାଦ ଦେଇ ॥ ୧୧
ଗରୁଡ଼ ନିଜ ଭାଗ ପ୍ରାଏ । ତାକୁ ହରିଲେ ଦେବରାଏ ॥ ୧୨
୪ ସାତ ବୃଷଭ ଏକାବେଳେ । ବାନ୍ଧିଣ ସ୍ୱୟଂବରସ୍ଥଳେ ॥ ୧୩
ନାଗ୍ନଜିତୀକି ବିଭା ହେଲେ । ସେଠାରେ ଯେତେ ରାଜା ଥିଲେ ॥ ୧୪
ବୃଷଭେ[୨] ଭଗ୍ନଗର୍ବ ହୋଇ । ଧାଇଁଲେ କନ୍ୟା ନେବାପାଇଁ ॥ ୧୫
ତାହାଙ୍କ ଶସ୍ତ୍ରେ ନୋହି କ୍ଷତ । ତାଙ୍କୁ ସ୍ୱଶସ୍ତ୍ରେ କଲେ ହତ ॥ ୧୬
୫ ଗ୍ରାମ୍ୟ ଲୋକର ପ୍ରାୟ ହୋଇ । ସତ୍ୟଭାମାର ପ୍ରୀତି ପାଇଁ ॥ ୧୭
ନନ୍ଦନବନୁଁ ପାରିଜାତ । ହରିଆଣିଲେ ରମାକାନ୍ତ ॥ ୧୮
ତାଙ୍କୁ ରୋଷରେ ହୋଇ ଅନ୍ଧ । ସଙ୍ଗତେ ଘେନି ଦେବବୃନ୍ଦ ॥ ୧୯
ଆପଣେ ଇନ୍ଦ୍ର ଗୋଡ଼ାଇଲା । ନ ପାରି ହାରି ପଳାଇଲା ॥ ୨୦
ଆପଣା ଶତ୍ରୁ ନାଶିବାକୁ । ଶରଣ ପଶିଲା ଯାହାକୁ ॥ ୨୧
ନାରୀବଚନେ ବଶ ହେଲା । ତାହାର ସଙ୍ଗେ ଯୁଦ୍ଧ କଲା ॥ ୨୨
ଏ ଘେନି ବଧୂମାନଙ୍କର । କ୍ରୀଡ଼ାମୃଗ ଏ ପୁରନ୍ଦର ॥ ୨୩
୬ ଗରୁଡ଼େ ବସି ଭାବଗ୍ରାହୀ । ନାରକାସୁର ପୁରେ ଯାଇ ॥ ୨୪
ଆପଣା ଶରୀରେ ଆକାଶ । ଗ୍ରାସୁଣ ଅଛି ଯେ ରାକ୍ଷସ ॥ ୨୫
ଚକ୍ରେ ତାହାର ମୁଣ୍ଡ ହାଣି । ଦେଖିଣ ମାଗିଲା ଧରଣୀ ॥ ୨୬
ତାର ପୁତ୍ରକୁ ରାଜ୍ୟ ଦେଲେ । ତା ଅନ୍ତଃପୁରେ ବିଜେ କଲେ ॥ ୨୭
୭ ସେ ରାଜକନ୍ୟାମାନ ଯେତେ । ଆଣିଣ ଥିଲା ବିଭାଅର୍ଥେ ॥ ୨୮
ସେମାନେ ହରିଙ୍କି ଦେଖିଣ । ଉଠିଲେ ହରଷ ହୋଇଣ ॥ ୨୯
ଲଜ୍ଜାରେ ଅନୁରାଗେ ମିଶି । କଟାକ୍ଷେ ଚାହିଁ ଚାରୁକେଶୀ ॥ ୩୦
ବର ବରିଲେ ଦାମୋଦର । ତାହାଙ୍କୁ ଆଣି ନିଜ ପୁର ॥ ୩୧
୮ ନାନା ମନ୍ଦିରେ ତାଙ୍କୁ ଥୋଇ । ମାୟାରେ ନାନାରୂପ ହୋଇ ॥ ୩୨
ଏକା ମୁହୂର୍ତ୍ତେ ବେଦମତେ । ବିବାହ ହେଲେ ଯଥୋଚିତେ ॥ ୩୩

---

୧. ପଞ୍ଚଜନ = ଏକ ଅସୁରର ନାମ । ୨. ବୃଷଭମାନଙ୍କ ଦ୍ୱାରା ।

୯ ଏକ ଏକକେ ତାଙ୍କଠାର । ଆପଣା ସମାନ କୁମର ॥ ୩୪
ଜନମ କଲେ ଦଶ ଦଶ । ମାୟା ବିସ୍ତାରି ହୃଷୀକେଶ ॥ ୩୫
୧୦ କାଳଯବନ[୧] ଜରାସନ୍ଧ । ସାଲ୍ୱ ପ୍ରଭୃତି ଯେତେ ମନ୍ଦ ॥ ୩୬
ଏମାନେ ରୁନ୍ଧନ୍ତେ ସ୍ୱପୁର । ନିଜ ଲୋକଙ୍କୁ ଚକ୍ରଧର ॥ ୩୭
ଆପଣା ତେଜ ପ୍ରକାଶିଲେ । ତାହାଙ୍କ ହାଥେ ସଂହାରିଲେ ॥ ୩୮
୧୧ ଶମ୍ବର ଦ୍ୱିବିଦ ବାନର । ମୂର, ବଲ୍ୱଳ, ବାଣାସୁର ॥ ୩୯
ଯେ ଦନ୍ତବକ୍ର ଆଦି ଆନ । ପରହସ୍ତରେ ଭଗବାନ ॥ ୪୦
କାହାକୁ କଲେ ସଂହାରଣ । କାହାକୁ ମାଇଲେ ଆପଣ ॥ ୪୧
୧୨ ତୋ ଭାଇ ପୁତ୍ରଙ୍କର ହିତେ । ମିଳିଲେ ଆସି ରାଜା ଯେତେ ॥ ୪୨
ଯା ସୈନ୍ୟପାଦଘାତ ପାଇ । କଂପିଲା କୁରୁକ୍ଷେତ୍ର ମହୀ ॥ ୪୩
ତାଙ୍କୁ ଅନ୍ୟୋନ୍ୟେ ନାଶ କଲେ । ଧରଣୀଭାର ଉଶ୍ୱାସିଲେ ॥ ୪୪
୧୩ କର୍ଣ୍ଣ, ଶକୁନି, ଦୁଃଶାସନ । ଏହାଙ୍କ କୁମନ୍ତ୍ର ବଚନ ॥ ୪୫
ପରିପାକରେ ଯାର ନାଶ । ହୋଇଲା ସଂପଦ ଆୟୁଷ ॥ ୪୬
ପଡ଼ିଲା ଜାନୁଭଗ୍ନ ହୋଇ । ଭୃତ୍ୟସହିତେ ରଣଭୂଇଁ ॥ ୪୭
ଏ ରୂପେ ଦୁର୍ଯ୍ୟୋଧନଗତି । ଦେଖି ନ ଲଭିଲେ ତୃପତି ॥ ୪୮
୧୪ ଭୀଷ୍ମ, ଅର୍ଜୁନ, ଭୀମ, ଦ୍ରୋଣ । ଏହାଙ୍କୁ କରିଣ କାରଣ ॥ ୪୯
କିବା ହରିଲି ଭୂମିଭାର । ମୋହର ଅଂଶେ ଯଦୁଙ୍କର ॥ ୫୦
ଅଠର ଅକ୍ଷୌହିଣୀ ବଳ । ଅଛନ୍ତି ଅତ୍ୟନ୍ତ ପ୍ରବଳ ॥ ୫୧
୧୫ ମଦିରାମଦରେ ଲୋଚନ । ହୋଇଣ ଥିବ ତାମ୍ରବର୍ଣ୍ଣ ॥ ୫୨
ଏମାନେ ଯେବେ କୋପଭରେ । କଳି କରିବେ ପରସ୍ପରେ ॥ ୫୩
ତେବେ ମରିବେ ନିଶ୍ଚେ ଏହି । ଆନ ଉପାୟ ଆଉ ନାହିଁ ॥ ୫୪
ଉଦ୍ୟମ କରନ୍ତେ ମୋହର । ସ୍ୱୟେଂ ମରଣ ଏହାଙ୍କର ॥ ୫୫
୧୬ ଏମନ୍ତ ମନେ ଚିନ୍ତା କରି । ଧର୍ମସୁତଙ୍କୁ ଦେବ ହରି ॥ ୫୬
ନୃପତି-ଆସନେ ବସାଇ । ସାଧୁଙ୍କ ମାର୍ଗକୁ ଦେଖାଇ ॥ ୫୭
ଯେ ଥିଲେ ଇଷ୍ଟ ବନ୍ଧୁଜନ । ତାଙ୍କୁ ତୋଷିଲେ ଭଗବାନ ॥ ୫୮
୧୭ ଅଭିମନ୍ୟୁର ବୀର୍ଯ୍ୟେ ଧୃତ । ଉତ୍ତରାଗର୍ଭେ ପରୀକ୍ଷିତ ॥ ୫୯
ଅଶ୍ୱତ୍ଥାମାର ଶସ୍ତ୍ରେ ହତ । ତାକୁ ରଖିଲେ ଯଦୁନାଥ ॥ ୬୦

---

୧. କାଳଯମନ ।

୧୮ ସେ ତିନି ଅଶ୍ୱମେଧ ଭଲେ । ଧର୍ମସୁତଙ୍କୁ କରାଇଲେ ।। ୬୧
ସଙ୍ଗତେ ଘେନି ଚାରି ଭାଇ । କୃଷ୍ଣଙ୍କୁ ଅନୁଗତ ହୋଇ ।। ୬୨
ପାଳନ୍ତେ ଧର୍ମରେ ଧରଣୀ । ଆନନ୍ଦ ଲଭିଲେ ସେ ପୁଣି ।। ୬୩
୧୯ ଲୋକ, ବେଦ ଏ ବେନି ପଥ । ତହିଁକି ହୋଇ ଅନୁଗତ ।। ୬୪
ସକଳ ଆତ୍ମା ଭଗବାନ । ଲଭିଲେ ସର୍ବ କାମମାନ ।। ୬୫
ପ୍ରକୃତି-ପୁରୁଷ ଯେ ବେନି । ତାଙ୍କ ବିବେକ ମନେ ଘେନି ।। ୬୬
ଅସକ୍ତ ହୋଇ ସର୍ବଠାରେ । ରହିଲେ ଦ୍ୱାରାବତୀପୁରେ ।। ୬୭
୨୦ ସ୍ନିଗ୍ଧ ସୁସ୍ମିତ ଅବଲୋକେ । ଅମୃତତୁଲ୍ୟ ନିଜ ବାକ୍ୟେ ।। ୬୮
୨୧ ନିର୍ଦ୍ଦୋଷ ନିଜ ଚରିତରେ । ଲକ୍ଷ୍ମୀନିକେତ ବିଗ୍ରହରେ ।। ୬୯
ଏ ଲୋକ ପରଲୋକ ଦୁଇ । ଯଦୁଙ୍କୁ ଆନନ୍ଦ କରାଇ ।। ୭୦
ରଜନୀକାଳେ ସାବକାଶ । ସ୍ତ୍ରୀଜନେ କ୍ଷଣେ ପ୍ରୀତିରସ ।। ୭୧
୨୨ ଏମନ୍ତ ପ୍ରକାରେ ରମନ୍ତେ । ବହୁତ ସମ୍ୱତ୍ସର ଅନ୍ତେ ।। ୭୨
ଗୃହସ୍ଥ ଧର୍ମରେ, ଭୋଗରେ । ବିରାଗ ହୋଇଲା ମନରେ ।। ୭୩
୨୩ ସ୍ୱାଧୀନ ଭୋଗେ ଈଶ୍ୱରର । ବିରାଗ ହୁଅନ୍ତେ ମନର ।। ୭୪
ଯେ ଯୋଗେଶ୍ୱର ରମାକାନ୍ତ । ତାହାଙ୍କୁ ହୋଇ ଅନୁବ୍ରତ ।। ୭୫
ଦଇବାଧୀନ କାମଠାରେ । କେ ପୁଣି ବିଶ୍ୱାସ ଆଚରେ ।। ୭୬
୨୪ ପୁରେ ଖେଳନ୍ତି ଏକଦିନେ । ସେ ଯଦୁ-ଭୋଜଙ୍କ ନନ୍ଦନେ ।। ୭୭
୨୫ ତେଣେ କୋପିତ ବିପ୍ରଜନ । ଜାଣିଣ ଗୋବିନ୍ଦର ମନ ।। ୭୮
ରୁଷ୍ଟ ହୋଇଣ ଶାପ ଦେଇ । ଯାଆନ୍ତେ କେତେ ମାସ ତହିଁ ।। ୭୯
ବୃଷ୍ଣି, ଅନ୍ଧକ ଭୋଜମାନେ । ରଥ ଚଢ଼ିଣ ତୋଷମନେ ।। ୮୦
ଦେବମାୟାରେ ମୋହ ହୋଇ । ପ୍ରଭାସେ ମିଳିଲେ ସେ ଯାଇଁ ।। ୮୧
୨୬ ସେ ଜଳେ ସ୍ନାହାନ କରିଣ । ଯେ ଦେବ, ଋଷି ପିତୃଗଣ ।। ୮୨
ତାହାଙ୍କୁ ତର୍ପଣ ସେ କଲେ । ଅନେକ ଗାଈ ଦାନ ଦେଲେ ।। ୮୩
୨୭ ହିରଣ୍ୟ, ରଜତ, ଶୟନ । ବସନ, କମ୍ୱଳ, ଅଜିନ ।। ୮୪
ରଥ, କୁଞ୍ଜର, ଅଶ୍ୱମାନ । ଧରଣୀତୁଲେ କନ୍ୟାଦାନ ।। ୮୫
୨୮ ଅନ୍ନ ସହିତେ ନାନା ରସ । ବିପ୍ରଙ୍କୁ ଦେଇଣ ସନ୍ତୋଷ ।। ୮୬
ସେ ଦାନ ବିଷ୍ଣୁପ୍ରୀତି ଅର୍ଥେ । ଚିନ୍ତି ନମିଲେ ଭୂମିଗତେ ।। ୮୭

| | | | | |
|---|---|---|---|---|
| | ସକଳେ ଶୂର, ଗୋବ୍ରାହ୍ମଣ । | ନିମିତ୍ତେ ଧରନ୍ତି ସେ ପ୍ରାଣ | ।। | ୮୮ |
| | ସେ ଯଦୁବଂଶର ଚରଣେ । | ସୁଜନେ ଚିନ୍ତ ଅନୁକ୍ଷଣେ | ।। | ୮୯ |
| | କୃଷ୍ଣଚରଣେ ମନ ଦେଇ । | ବ୍ରାହ୍ମଣ ଦୀନବନ୍ଧୁ କହି | ।। | ୯୦ |

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରୋଦ୍ଧବସଂବାଦୋ
ନାମ ତୃତୀୟୋଽଧ୍ୟାୟଃ ।।

## ଚତୁର୍ଥୋଽଧ୍ୟାୟଃ

ଚତୁର୍ଥେ ବନ୍ଧୁନିଧନଂ ଶ୍ରୁତ୍ୱାତ୍ମଜ୍ଞାନଲବ୍ଧୟେ ।
ଉଦ୍ଧବସ୍ୟୋପଦେଶେନ କ୍ଷତ୍ତା ମୈତ୍ରେୟମାଗମତ୍ ।। ୧ ।।

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧ | ଏବେ ବିଦୁର ! ଶୁଣ ସୁଖେ । | ସେ ଯଦୁଭୋଜେ ନିଶାମୁଖେ | ।। | ୧ |
| | ବିପ୍ରଙ୍କ ଠାରୁ ଆଜ୍ଞା ପାଇ । | ବାରୁଣୀ ମଦିରାକୁ ପିଇ | ।। | ୨ |
| | ତେଣୁ ବିନଷ୍ଟଜ୍ଞାନ ହେଲେ । | ମର୍ମ ବଚନକୁ କହିଲେ | ।। | ୩ |
| ୨ | ମଦିରାଦୋଷକୁ ଲଭିଲେ । | ବିଷମବୁଦ୍ଧି ସେ ହୋଇଲେ | ।। | ୪ |
| | ଅସ୍ତ ହୁଅନ୍ତେ ଦିବାକର । | ସଂମର୍ଦ୍ଦ[1] ହୋଇଲା ତାଙ୍କର | ।। | ୫ |
| | ପବନେ ଯେହ୍ନେ ବେଣୁମାନେ । | ମର୍ଦ୍ଦିତ ହୋନ୍ତି ସ୍ଥାନେ ସ୍ଥାନେ | ।। | ୬ |
| ୩ | ସେ ନିଜ ଆତ୍ମମାୟାଗତି । | ଦେଖିଣ ତାହା ଯଦୁପତି | ।। | ୭ |
| | ବସିଲେ ସରସ୍ୱତୀଜଳେ । | ଆଚାମ[2] କରି ବୃକ୍ଷମୂଳେ | ।। | ୮ |
| ୪ | ପ୍ରପନ୍ନ ଆର୍ତ୍ତିହର ହରି । | ସ୍ୱକୁଳସଂହାରି ବିଚାରି | ।। | ୯ |
| | ମୋତେ ଆଦେଶିଲେ ସଂଭ୍ରମେ । | ଚଳ ତୁ ବଦରିକାଶ୍ରମେ | ।। | ୧୦ |
| ୫ | ଅଭିପ୍ରାୟକୁ ତାହାଙ୍କର । | ଜାଣି କରିଣ ହେ ବିଦୁର | ।। | ୧୧ |
| | ପଛେ ତାଙ୍କର ଗୋଡ଼ାଇଲି । | ବିଚ୍ଛେଦ ସହି ନ ପାରିଲି | ।। | ୧୨ |
| ୬ | ଖୋଜି ଦେଖିଲି ଏକାନ୍ତରେ । | ଅଛନ୍ତି ସରସ୍ୱତୀ-ତୀରେ | ।। | ୧୩ |
| | ଅଟଇ କମଳାର ସ୍ଥାନ । | ଆଶ୍ରୟ ନାହିଁ ଯାର ଆନ | ।। | ୧୪ |
| ୭ | ସେ ଶୁଦ୍ଧ ସତ୍ତ୍ୱ ଶ୍ୟାମବର୍ଣ୍ଣ । | ପ୍ରଶାନ୍ତ ଅରୁଣଲୋଚନ | ।। | ୧୫ |

୧. ସଂମର୍ଦ୍ଦ = ସଂଘର୍ଷ । ୨. ଆଚାମ = ଆଚମନ ।

୮ ଲକ୍ଷିତ ଭୁଜଚତୁଷ୍ଟୟେ । ପୀତ କୌଶେୟ ବସ୍ତ୍ର ଶୋହେ ।। ୧୬
ଦକ୍ଷିଣ ଚରଣକମଳ । ନିବେଶି ବାମ ଉରୁତଳ ।। ୧୭
ଶିଶୁ ଅଶ୍ୱତ୍ଥ ତରୁବର । ବସିଣ ତାହାର ମୂଳର ।। ୧୮
ଆନନ୍ଦେ ହୋଇ ପରିପୂର୍ଣ୍ଣ । ବିଷୟରସେ ନାହିଁ ମନ ।। ୧୯
୯ ମୈତ୍ରେୟ ମହାଭାଗବତ । ବେଦବ୍ୟାସଙ୍କ ପ୍ରିୟ ମିତ ।। ୨୦
ଇଚ୍ଛାଏ ବୁଲନ୍ତେ ଭୁବନେ । ସେ ସିଦ୍ଧି ମିଳିଲେ ସେ ସ୍ଥାନେ ।। ୨୧
୧୦ ସେ ମୁନି ଅନୁରାଗ ବହି । ପ୍ରମୋଦଭରେ ନମ୍ର ହୋଇ ।। ୨୨
ଶୁଣନ୍ତେ ଅନୁରାଗ ହାସ । କଟାକ୍ଷେ ଚାହିଁ ପୀତବାସ ।। ୨୩
ଶ୍ରମକୁ ମୋର ଦୂର କଲେ । ଏମନ୍ତ ବଚନ କହିଲେ ।। ୨୪

ଶ୍ରୀଭଗବାନୁବାଚ

୧୧ ତୋହର ମନର ବାଞ୍ଛିତ । ଜାଣେ ମୁଁ ଥାଇ ଅନ୍ତର୍ଗତ ।। ୨୫
ଯେ ବିଶ୍ୱସୃଜ ବସୁମାନେ । ପୂର୍ବେ ତାହାଙ୍କ ଯଜ୍ଞସ୍ଥାନେ ।। ୨୬
ହେ ବସୁ ସିଦ୍ଧିକାମେ ମୋର । ଯାହା ତୁ ବାଞ୍ଛିଲୁ ମନର ।। ୨୭
ଦୁର୍ଲଭ ସେ ଅ[illegible]ଲୋକରେ । ଜ୍ଞାନସାଧନ ଦେବି ତୋରେ ।। ୨୮
୧୨ ତୋହର ଯେତେକ ଜନମ । ତହିଁରେ ଅଟେ ଏ ଚରମ ।। ୨୯
ମୋହର ଅନୁଗ୍ରହ ଏଥ । ହେଲା ଏ ତୋତେ ଉପଗତ ।। ୩୦
ମନୁଷ୍ୟଲୋକକୁ ଛାଡ଼ନ୍ତେ । ଯେଣୁ ଏକାନ୍ତେ ଆସି ମୋତେ ।। ୩୧
ଏକାନ୍ତ ଅନୁବୃତ୍ତି କଲୁ । ପୂର୍ବର ଭାଗ୍ୟରୁ ଦେଖିଲୁ ।। ୩୨
୧୩ ପାଦ୍ମ କଳ୍ପରେ ପୂର୍ବକାଳେ । ଜଗତ ଆଦିସର୍ଗ ବେଳେ ।। ୩୩
ନାଭିକମଳେ ମୋର ସ୍ଥିତି । କରିଣ ଥିଲା ପ୍ରଜାପତି ।। ୩୪
ତାହାକୁ କହିଛି ଏ ଜ୍ଞାନ । ମୋହର ମହିମାରେ ପୂର୍ଣ୍ଣ ।। ୩୫
ଯେଉଁ ଜ୍ଞାନକୁ ଭାଗବତ । ବୋଲି ପ୍ରକାଶନ୍ତି ପଣ୍ଡିତ ।। ୩୬
୧୪ ପରମ ପୁରୁଷ ଆଦରେ । କହିଲେ ମୋତେ ଏ ପ୍ରକାରେ ।। ୩୭
ମୁଁ ପ୍ରତିକ୍ଷଣେ ତାହାଙ୍କର । ପାତ୍ର ଅଟଇ ପ୍ରସାଦର ।। ୩୮
କୃଷ୍ଣର ସ୍ନେହେ ମୋର ଦେହେ । ପୁଲକଜାତ ଅଶ୍ରୁ ବହେ ।। ୩୯
କରଯୁଗଳ ଦେଇ ଶିରେ । କହିଲି ଗଦ୍‌ଗଦ ବାକ୍ୟରେ ।। ୪୦
୧୫ ଭୋ ନାଥ ତୋର ପଦ୍ମପାଦେ । ଯେ ପ୍ରାଣୀ ଭଜନ୍ତି ଆନନ୍ଦେ ।। ୪୧
ତାଙ୍କୁ ଏ ଅଶେଷ ଜଗତେ । ଯେ ଧର୍ମ-କାମ-ମୋକ୍ଷ-ଅର୍ଥେ ।। ୪୨
ଦୁର୍ଲଭ କେଉଁ ପୁରୁଷାର୍ଥ । ଏମନ୍ତ ମଣଇଁ ମୁଁ ଚିତ୍ତ ।। ୪୩

ମୋହର ତହିଁ ଆଶା ନାହିଁ । ତୁମ୍ଭର ପାଦପଦ୍ମ ଦୁଇ ।। ୪୪
ସେବା କରିବାରେ ସଂତତ । ଉତ୍ସୁକ ହେଉଛି ମୋ ଚିତ୍ତ ।। ୪୫
୧୬ ନିଃସ୍ପୃହ ହୋଇ କର୍ମ କରୁ । ତୁ ଅଜ ହୋଇ ଜନ୍ମ ଧରୁ ।। ୪୬
ତୁ କାଳରୂପୀ ଶତ୍ରୁଭୟୁ । ପଳାଇ ଦୁର୍ଗ କରି ରହୁ ।। ୪୭
ସ୍ୱଭାବେ ଅଟୁ ଆତ୍ମାରାମ । ଅନେକ ନାରୀରେ ଆଶ୍ରମ ।। ୪୮
ଏମନ୍ତ ଦେଖିଣ ତୋହର । ପଣ୍ଡିତ ଜନମାନଙ୍କର ।। ୪୯
ବୁଦ୍ଧି ଏଥିରେ ଲଭେ ଖେଦ । ନ ପାଇ ତୋର ତତ୍ତ୍ୱଭେଦ ।। ୫୦
୧୭ ଯାହାର ଜ୍ଞାନ ଅକୁଣ୍ଠିତ । ଅଖଣ୍ଡ ସଂଶୟ ରହିତ ।। ୫୧
ସେ ତୁମ୍ଭେ ବିଚାରକାଳରେ । ସକଳ ଜାଣିଣ ବାହ୍ୟରେ ।। ୫୨
ମୂଢ଼ ଲୋକର ପ୍ରାୟ ହୋଇ । ମୋତେ ପଚାର ପ୍ରଭୁ ! ଯାହି ।। ୫୩
ସେ କଥା ମନକୁ ମୋହର । ମୋହ କରଇ ଚକ୍ରଧର ।। ୫୪
୧୮ ଯେଣେ ପ୍ରକାଶ ତତ୍ତ୍ୱ ତୋର । ସେ ଜ୍ଞାନ ବ୍ରହ୍ମାର ଆଗର ।। ୫୫
ସମଗ୍ର କରି ଅଛ କହି । ତହିଁକି ଯୋଗ୍ୟ ଯେବେ ମୁହିଁ ।। ୫୬
ତେବେ ତା କହ ମୋ ଆଗର । ଯେଣେ ତରିବି ତମ ଘୋର ।। ୫୭
୧୯ ଏ ରୂପେ ଅଭିପ୍ରାୟ ମୋର । ଜାଣନ୍ତେ ପରମ ଈଶ୍ୱର ।। ୫୮
ଆତ୍ମାର ସ୍ଥିତି ତତ୍ତ୍ୱଜ୍ଞାନ । କହିଲେ କମଳଲୋଚନ ।। ୫୯
୨୦ ଏ ରୂପେ ଆରାଧିତ ହୋଇ । ସେ କୃଷ୍ଣ ଗୁରୁ ମୋ ଅଟଇ ।। ୬୦
ତାହାର ଠାରୁ ତତ୍ତ୍ୱଜ୍ଞାନ । ମାର୍ଗକୁ କରି ଅଧ୍ୟୟନ ।। ୬୧
ତା ପାଦଯୁଗେ ନମ୍ର ହେଲି । ତାହାକୁ ପ୍ରଦକ୍ଷିଣ କଲି ।। ୬୨
ତାହାର ବିରହେ ଆତୁର । ହୋଇଣ ମିଳିଲି ଏଠାର ।। ୬୩
୨୧ ତା' ଦରଶନେ ହୋଇ ସୁଖୀ । ତାର ବିୟୋଗେ ହୋଇ ଦୁଃଖୀ ।। ୬୪
ତାହାର ଅଟେ ପ୍ରିୟ ସ୍ଥଳ । ବଦରୀ ଆଶ୍ରମ ମଣ୍ଡଳ ।। ୬୫
ତହିଁକି କରିବି ଗମନ । ଶୁଣ ବିଦୁର ଦେଇ ମନ ।। ୬୬
୨୨ ଯହିଁରେ ନର ନାରାୟଣ । କରନ୍ତି ତପ ଆଚରଣ ।। ୬୭
ପର-ଅକାର୍ଯ୍ୟ ତହିଁ ନାହିଁ । ଯେ ତପ ଦୁଷ୍କର ଅଟଇ ।। ୬୮
ସକଳ ଲୋକମାନଙ୍କରେ । ସେ ବେନି ଅନୁଗ୍ରହ କରେ ।। ୬୯

ଶ୍ରୀଶୁକ ଉବାଚ

୨୩ ଶୁକ କହନ୍ତି ରାଏ ଶୁଣ । ଏମନ୍ତ ଉଦ୍ଧବ ବଚନ ।। ୭୦
ଶୁଣିଣ ବିଦୁର ମାନସ । ଯେ ଶୋକ ହୋଇଲା ପ୍ରକାଶ ।। ୭୧
ଦୁଃସହ ଅଟେ ସେ ଲୋକର । ଜ୍ଞାନେ ତା ନାଶିଲା ବିଦୁର ।। ୭୨

୨୪ କହିଣ ଏମନ୍ତ ବଚନ । ଉଦ୍ଧବ କରନ୍ତେ ଗମନ ॥ ୭୩
ଅଟେ ସେ ଭାଗବତବର । କୃଷ୍ଣର ଦାସବର୍ଗେ ସାର ॥ ୭୪
ବିଶ୍ୱାସ କରି ତାହାଠାଇଁ । ବିଦୁର ବଚନ କହଇ ॥ ୭୫

ଶ୍ରୀବିଦୁର ଉବାଚ

୨୫ ଯେବଣ ଆତ୍ମତତ୍ତ୍ୱଜ୍ଞାନ । କହିଲେ ତୋତେ ଭଗବାନ ॥ ୭୬
ସେ ଜ୍ଞାନ ମୋହର ଅଗ୍ରତେ । କହ ଉଦ୍ଧବ ତୋଷଚିତ୍ତେ ॥ ୭୭
ଆପଣା ଭୃତ୍ୟପ୍ରୟୋଜନେ । ଥାଆନ୍ତି ବିଷ୍ଣୁ ଦାସମାନେ ॥ ୭୮

ଶ୍ରୀଉଦ୍ଧବ ଉବାଚ

୨୬ ଯେବେ ନିର୍ମଳ ତତ୍ତ୍ୱଜ୍ଞାନ । ଜାଣିମା ଅର୍ଥେ ତୋର ମନ ॥ ୭୯
ମୈତ୍ରେୟ ଋଷିଙ୍କି ବିଦୁର । ଏବେ ତୁ ଆରାଧନା କର ॥ ୮୦
ମର୍ତ୍ତ୍ୟଲୋକକୁ ଭଗବାନ । ଛାଡ଼ିଣ କରନ୍ତେ ଗମନ ॥ ୮୧
ମୋର ନିକଟେ ତୋର ପାଇଁ । ତାହାଙ୍କୁ[୧] ଛନ୍ତି ଆଜ୍ଞା ଦେଇ ॥ ୮୨

ଶ୍ରୀଶୁକ ଉବାଚ

୨୭ ଏ ରୂପେ ବିଦୁରସଂଗରେ । ହରିଚରିତ-ଅମୃତରେ ॥ ୮୩
ସକଳ ତାପମାନ ନାଶି । ଯମୁନାପୁଳିନରେ ବସି ॥ ୮୪
ରାତ୍ରିକି କ୍ଷଣପ୍ରାୟେ କଲା । ତହୁଁ ଉଦ୍ଧବ ଚଳିଗଲା ॥ ୮୫

ଶ୍ରୀପରୀକ୍ଷିତ ଉବାଚ

୨୮ ଶୁକଚରଣେ ଦେଇ ହସ୍ତ । ପୁଣି ପଚାରେ ପରୀକ୍ଷିତ ॥ ୮୬
ବ୍ରାହ୍ମଣ ଶାପରେ ନିଧନ । ହୋଇଲେ ଯଦୁଭୋଜମାନ ॥ ୮୭
ଯେ ଅଧିରଥ[୨] ଯୂଥପତି- । ଯୂଥଙ୍କୁ ପାଳନା କରନ୍ତି ॥ ୮୮
କିପାଁ ଉଦ୍ଧବ ମୁଖ୍ୟ ହୋଇ । ରହିଲେ ନିଜ ଦେହ ବହି ॥ ୮୯
ବ୍ରହ୍ମାଦିଦେବଙ୍କ ଈଶ୍ୱର । ହରିହିଁ ଛାଡ଼ିଲେ ଶରୀର ॥ ୯୦

ଶ୍ରୀଶୁକ ଉବାଚ

୨୯ ଶୁଣି କହନ୍ତି ଶୁକମୁନି । ଆନନ୍ଦେ ହରିଭାବ ଘେନି ॥ ୯୧
ବ୍ରାହ୍ମଣଶାପବ୍ୟାଜେ କରି । ଅମୋଘବାଞ୍ଛିତ ମୁରାରି ॥ ୯୨

---

୧. ତାହାଙ୍କୁ = ମୈତ୍ରେୟଙ୍କୁ । ୨. ସାରଥି ।

ସ୍ୱକୁଳ କରିଣ ସଂହାର । ଛାଡ଼ନ୍ତେ ଆପଣା ଶରୀର ॥ ୯୩
ଏମନ୍ତ ମନେ ବିଚାରିଲେ । ଏ ମର୍ତ୍ତ୍ୟଲୋକରୁ ମୁଁ ଗଲେ ॥ ୯୪
୩୦ ମୋର ବିଷୟେ ଯେଉଁ ଜ୍ଞାନ । ତହିଁକି ଅଟେ ଏ ଭାଜନ ॥ ୯୫
ଯେଣୁ ଏ ଆତ୍ମଜ୍ଞାନୀଙ୍କର । ମଧ୍ୟେ ଉଦ୍ଧବ ଅଟେ ସାର ॥ ୯୬
୩୧ ଯେଣୁ ବିଷୟରସେ ଚିତ୍ତ । ଏହାର ନୁହଇ କ୍ଷୋଭିତ ॥ ୯୭
ଏଣୁ ଉଦ୍ଧବ ଅଳପହିଁ । ମୋହର ଠାରୁ ଊଣା ନୋହି ॥ ୯୮
ମୋ ଜ୍ଞାନ ପ୍ରାଣୀଙ୍କି ବୁଝାଉ । ଏଣୁ ଏ ନରଲୋକ ରହୁ ॥ ୯୯
୩୨ ଯେ ହରି ତିନିଲୋକଗୁରୁ । ବେଦ ସଂଭବ ଯାହାଠାରୁ ॥ ୧୦୦
ଏ ରୂପେ ତାର ଆଜ୍ଞା ପାଇ । ବଦରୀ-ଆଶ୍ରମକୁ ଯାଇ ॥ ୧୦୧
ଉଦ୍ଧବ କରିଣ ସମାଧି । ହରିଙ୍କି କଲା ପୂଜାବିଧି ॥ ୧୦୨
୩୩ କ୍ରୀଡ଼ାନିମିତ୍ତେ ଦେହ ଧରି । ଥିଲେ ଯେ ପରମାତ୍ମା ହରି ॥ ୧୦୩
ଉଦ୍ଧବଠାରୁ ତାହାଙ୍କର । ଚରିତ ଶୁଣିଣ ବିଦୁର ॥ ୧୦୪
୩୪ ପଶୁସମାନ ଯେଉଁ ନର । ବିକ୍ଳବ[1] ଅଟେ ଆତ୍ମା ଯାର ॥ ୧୦୫
ତାହାଙ୍କୁ ଦୁଷ୍କର ଅଟଇ । ଧୀର ଲୋକଙ୍କୁ ଧୈର୍ଯ୍ୟ ଦେଇ ॥ ୧୦୬
ଏ ରୂପେ ଗୋବିନ୍ଦଶରୀର । ତ୍ୟାଗକୁ ଶୁଣିଣ ବିଦୁର ॥ ୧୦୭
୩୫ ବୈକୁଣ୍ଠ ଯିବାବେଳେ ମୋତେ । ଗୋବିନ୍ଦ ସୁମରିଲେ ଚିତ୍ତେ ॥ ୧୦୮
ଏ କଥା ବିଚାରି ମନରେ । ଉଦ୍ଧବଗମନ ଉତ୍ତାରେ ॥ ୧୦୯
ପ୍ରେମେ ବିହ୍ୱଳଚିତ୍ତ ହୋଇ । ଉଚ୍ଚେ ରୋଦନ କଲା ତହିଁ ॥ ୧୧୦
୩୬ ସେ ସିଦ୍ଧ ଭାଗବତଙ୍କର । ମଧ୍ୟରେ ବରିଷ୍ଠ ବିଦୁର ॥ ୧୧୧
କାଳିନ୍ଦୀଠାରୁ କେତେଦିନେ । ମିଳିଲେ ଗଙ୍ଗାସନ୍ନିଧାନେ ॥ ୧୧୨
ଯହିଁ ଆଶ୍ରମ କରିଛନ୍ତି । ମିତ୍ରାତନୟ ମହାମତି ॥ ୧୧୩
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ ଏଣେ କର ଲୟେ ॥ ୧୧୪
ବିଦୁର ଉଦ୍ଧବ ସଂବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥ ୧୧୫
ସୁଜନେ ଏଣେ ଦିନ ବଞ୍ଚ । କୃଷ୍ଣଭଗତି ହୃଦେ ସଞ୍ଚ ॥ ୧୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରୋଦ୍ଧବସଂବାଦୋ
ନାମ ଚତୁର୍ଥୋଽଧ୍ୟାୟଃ ॥

---

୧. ଅଧୀର ।

# ପଞ୍ଚମୋଽଧ୍ୟାୟଃ

ପଞ୍ଚମେ ଭଗବଲ୍ଲୀଳାଂ କ୍ଷତ୍ରା ପୃଷ୍ଟୋ ମହାମୁନିଃ ।
ପ୍ରୋବାଚ ମହଦାଦୀନାଂ ସର୍ଗଂ ତୈଶ୍ଚ ହରେଃ ସ୍ତୁତିମ୍ ॥ ୧ ॥
ଉକ୍ତଶ୍ଚତୁର୍ଭିରଧ୍ୟାୟୈଃ କ୍ଷତ୍ତୁର୍ମୈତ୍ରେୟସଙ୍ଗମଃ ।
ସଂବାଦସ୍ତୁ ତୟୋଃ ସ୍କନ୍ଧଦ୍ୱୟେନାଥ ନିଗଦ୍ୟତେ ॥ ୨ ॥

ଶ୍ରୀଶୁକ ଉବାଚ

୧ ଶୁକ କହନ୍ତି ଅନୁରାଗେ । ନୃପତି ପରୀକ୍ଷିତ ଆଗେ ॥ ୧
କୁରୁମାନଙ୍କ ମଧ୍ୟେ ସାର । ଗଙ୍ଗାଦ୍ୱାରରେ ସେ ବିଦୁର ॥ ୨
ଅଗାଧବୋଧ ମହାଋଷି । ନିଜ ଆଶ୍ରମେ ଛନ୍ତି ବସି ॥ ୩
ମୈତ୍ରେୟ ନାମ ତାହାଙ୍କର । ସକଳ ଜ୍ଞାନୀମଧ୍ୟେ ସାର ॥ ୪
ତାହାଙ୍କ ସମୀପକୁ ଯାଇଁ । ଅଚ୍ୟୁତଭାବେ ଶୁଦ୍ଧ ହୋଇ ॥ ୫
ସୁଶୀଳ ଗୁଣ ଦେଖି ତାର । ସଂତୋଷେ ବୋଲଇ ବିଦୁର ॥ ୬

ଶ୍ରୀ ବିଦୁର ଉବାଚ

୨ ଏ ଜୀବଲୋକ ସୁଖଅର୍ଥେ । କର୍ମ ସଂପାଦୁଥାଇ ନିତ୍ୟେ ॥ ୭
ସେ କର୍ମେ ସୁଖ ନ ଲଭଇ । ଦୁଃଖନିବୃତ୍ତିକି ନ ପାଇ ॥ ୮
ପୁଣି ଲଭଇ ଦୁଃଖ ଘୋର । ଏଣୁ ଏ ସଂସାରେ ଆମ୍ଭର ॥ ୯
ଯୋଗ୍ୟ ଅଟଇ ଯେଉଁ କଥା । ଭୋ ମୁନି ! କହ ସେ ବ୍ୟବସ୍ଥା ॥ ୧୦
୩ ନିଜ କର୍ମର ବଶ ହୋଇ । କୃଷ୍ଣବିମୁଖ ଯେ ଅଟଇ ॥ ୧୧
ଅଧର୍ମ କରେ ଅବିରତ । ସେ ଘେନି ଅଟଇ ଦୁଃଖିତ ॥ ୧୨
ତାହାର ଅନୁଗ୍ରହ ଅର୍ଥେ । କୃଷ୍ଣସେବକେ ଏ ଜଗତେ ॥ ୧୩
ମଙ୍ଗଳରୂପ ଧରି ନିତ୍ୟେ । ଭ୍ରମନ୍ତି ମଣଇଁ ମୁଁ ଚିତ୍ତେ ॥ ୧୪
୪ ତୁମ୍ଭେ ସାଧୁଙ୍କ ମଧ୍ୟେ ସାର । ସେ ଘେନି ଆଗରେ ଆମ୍ଭର ॥ ୧୫
ମଙ୍ଗଳ ମାର୍ଗକୁ ପ୍ରକାଶେ । ଯେଣେ ଗୋବିନ୍ଦ ହୋଇ ତୋଷ ॥ ୧୬
ଭକ୍ତି ପବିତ୍ର ହୃଦେ ଥାଇ । ପୁରାଣ ଜ୍ଞାନ ପ୍ରକାଶଇ ॥ ୧୭
ଯେବଣ ଜ୍ଞାନମାର୍ଗେ ନର । ତତ୍ତ୍ୱକୁ କରଇ ଗୋଚର ॥ ୧୮
୫ ସେ ଆତ୍ମତନ୍ତ୍ର ଭଗବାନ । ତ୍ରିଗୁଣ ମାୟା ଯା’ ଅଧୀନ ॥ ୧୯
ସ୍ୱଭାବେ କ୍ରିୟା ନାହିଁ ଯାର । ଧରିଣ ନାନା ଅବତାର ॥ ୨୦

| | | | | |
|---|---|---|---|---|
| | କରଇ ଯେତେ କର୍ମମାନ । | ସୃଷ୍ଟିର ଆଦ୍ୟେ ଏ ଭୁବନ | ॥ | ୨୧ |
| | ସର୍ଜିଲା ଯେବଣ ପ୍ରକାରେ । | ପୁଣି ପାଳନା ଅବସରେ | ॥ | ୨୨ |
| | କି ରୂପେ ବୃତ୍ତି ଜଗତର । | ବିଧାନ କରଇ ଈଶ୍ୱର | ॥ | ୨୩ |
| ୬ | ଯେମନ୍ତେ ହୃଦୟ ଆକାଶ । | ମଧ୍ୟରେ ପୂରାଇ ଅଶେଷ | ॥ | ୨୪ |
| | ସକଳ ବୃତ୍ତିକି ଛାଡ଼ଇ । | ଯୋଗମାୟାରେ ସେ ଶୁଅଇ | ॥ | ୨୫ |
| | ଯୋଗେଶ୍ୱରଙ୍କ ଅଧୀଶ୍ୱର । | ପ୍ରବେଶ ହୋଇ ଏ ସଂସାର | ॥ | ୨୬ |
| | ଏକ ଅନେକ ମୂର୍ତ୍ତି ହୋଇ । | କେମନ୍ତେ ପ୍ରକାଶ ହୁଅଇ | ॥ | ୨୭ |
| ୭ | ମତ୍ସ୍ୟାଦି ନାନା ଅବତାର । | ଧରି ଯେ କରନ୍ତି ବିହାର | ॥ | ୨୮ |
| | ଦ୍ୱିଜ-ଗୋ-ଦେବକ୍ଷେମ ଅର୍ଥେ। | କର୍ମକୁ କରଇ ଜଗତେ | ॥ | ୨୯ |
| | ସେ ପୁଣ୍ୟଶ୍ଲୋକ ଲୋକଙ୍କର । | ମୁକୁଟ ଅଟେ ଦାମୋଦର | ॥ | ୩୦ |
| | ତାହାର ଚରିତ ଅମୃତ । | ଶୁଣନ୍ତେ ତୃପ୍ତ ନୋହେ ଚିତ୍ତ | ॥ | ୩୧ |
| ୮ | ସେ ସର୍ବଲୋକନାଥ ହରି । | ଯେବଣ ତତ୍ତ୍ୱଭେଦେ କରି | ॥ | ୩୨ |
| | ଲୋକ-ଅଲୋକ[୧] ଲୋକପାଳ । | ସହିତେ ସର୍ଜିଲା ସକଳ | ॥ | ୩୩ |
| | ଯହିଁ ସକଳ ଜୀବଙ୍କର । | ଭେଦ ଯେ ଯାହା ଅଧିକାର | ॥ | ୩୪ |
| | ତହିଁ ଅଛନ୍ତି ବଦ୍ଧ ହୋଇ । | ଏ କଥା ଖ୍ୟାତ ଅଟେ ଯହିଁ | ॥ | ୩୫ |
| ୯ | ସେ ଆତ୍ମଯୋନି ନାରାୟଣ । | ବିଶ୍ୱସର୍ଜକ ଯେଣେ ପୁଣ | ॥ | ୩୬ |
| | ପ୍ରଜାଙ୍କ ଆତ୍ମା[୨] କର୍ମମାନ । | ରୂପ ନାମକୁ କଲା ଭିନ୍ନ | ॥ | ୩୭ |
| | ହେ ଦ୍ୱିଜବର ମୋ ଆଗର । | ପ୍ରକାଶ କର ଏ ବିଚାର | ॥ | ୩୮ |
| ୧୦ | ଯେ ପରାବର ଚାରି ବର୍ଣ୍ଣ । | ତାଙ୍କର ଯେବା ଧର୍ମମାନ | ॥ | ୩୯ |
| | ବ୍ୟାସମୁଖରୁ ଅନୁକ୍ଷଣ । | ସେ କଥା କରିଛି ଶ୍ରବଣ | ॥ | ୪୦ |
| | ଅଳ୍ପ ସୁଖକୁ ସେ ବହନ୍ତି । | ତହିଁରେ ତୋଷ ହେଲା ମତି | ॥ | ୪୧ |
| | କୃଷ୍ଣର କଥାମୃତ ତହିଁ । | ଯେ ଅବା ଅଛି ସୂଚା ହୋଇ | ॥ | ୪୨ |
| | ତହିଁରେ ନାହିଁ ତୃପ୍ତି ମୋର । | କହିଲି ଶୁଣ ମୁନିବର ! | ॥ | ୪୩ |
| ୧୧ | ତୁମ୍ଭମାନଙ୍କ ସମାଜରେ । | ପଣ୍ଡିତେ ଯାକୁ ସ୍ତୁତି କରେ | ॥ | ୪୪ |
| | ସେ ତୀର୍ଥପଦର ଚରିତ । | ତେଣେ କେ ତୋଷ ଲଭୁ ଚିତ୍ତ | ॥ | ୪୫ |
| | ଯେଉଁ ଚରିତ ପୁରୁଷର । | ପଶିଣ ଶ୍ରବଣବିବର | ॥ | ୪୬ |
| | ଯେଣୁ ସଂସାରମତି ହୋଇ । | ସେ ଗୃହରତିକି ଛିଣ୍ଡାଇ | ॥ | ୪୭ |

୧. ଲୋକାଲୋକ ପର୍ବତ ୨. ଆତ୍ମା = ସ୍ୱଭାବ ।

୧୨ *ଭଗବାନର ଗୁଣମାନ । କହିବା ଅର୍ଥେ କରି ମନ ॥ ୪୮
ତୁମ୍ଭର ସଖା ବେଦବ୍ୟାସ । ଭାରତ କଲେକ ପ୍ରକାଶ ॥ ୪୯
ଯହିଁରେ ଗ୍ରାମ୍ୟ ସୁଖମାନ । ଆଦ୍ୟରେ କରିଣ ବର୍ଣ୍ଣନ ॥ ୫୦
ପ୍ରାଣୀଙ୍କ ମନ ସେହି ଦ୍ୱାରେ । ରଞ୍ଜିଲେ ଗୋବିନ୍ଦ-କଥାରେ ॥ ୫୧

୧୩ ଯେ ଲୋକ ଶ୍ରଦ୍ଧାବନ୍ତ ହୋଇ । ସେ ହରିକଥାକୁ ବଢ଼ାଇ ॥ ୫୨
ତାହାର ଇତର ସୁଖରେ । ଅବଶ୍ୟ ବିରକ୍ତି ସେ କରେ ॥ ୫୩
ହରିଚରଣ ଅନୁସ୍ମୃତି । ତେଣେ ଆନନ୍ଦ ଯାହା ମତି ॥ ୫୪
ତାର ସମସ୍ତ ଦୁଃଖମାନ । ସେ ନିଶ୍ଚେ କରଇ ଦହନ ॥ ୫୫

୧୪ ଯେ ଜନେ ପୂର୍ବଦୁରିତରେ । ବିମୁଖ ହରିକଥାଠାରେ ॥ ୫୬
ଯାଙ୍କୁ ଶୋଚନା କରେ ନର । ସେ ପୁଣି ଶୋଚ୍ୟ ତାହାଙ୍କର ॥ ୫୭
ଅଜ୍ଞାନୀ ଅଟନ୍ତି ସେ ନରେ । ତାଙ୍କ ଆୟୁଷ କାଳ ହରେ ॥ ୫୮
ତାଙ୍କ ବଚନ ଗତି ସ୍ମୃତି । ସକଳ ବିଅର୍ଥ ଅଟନ୍ତି ॥ ୫୯

୧୫ ଯେ ହରି ସୁଖକୁ ଦିଅଇ । ଆର୍ତ୍ତଜନର ବନ୍ଧୁ ହୋଇ ॥ ୬୦
ସଂସାରୁ ତାରେ କୀର୍ତ୍ତି ଯାର । ତେଣୁ ହେ ମୈତ୍ରେୟ ତାହାର ॥ ୬୧
ସକଳକଥା ମଧ୍ୟେ ସାର । କଥାକୁ କହ ମୋ ଆଗର ॥ ୬୨
ପୁଷ୍ପରୁ ଭ୍ରମର ଯେସନ । ଉଦ୍ଧରି ମଧୁ କରେ ପାନ ॥ ୬୩

୧୬ ଜଗତ ଜନମ-ପାଳନ- । ନାଶ ଅର୍ଥେ ସେ ଭଗବାନ ॥ ୬୪
ବିହରେ ନାନା ଅବତାରେ । ନାନା ପ୍ରକାରେ ଶକ୍ତି ଧରେ ॥ ୬୫
ଅତିମାନୁଷ କର୍ମ ଯେତେ । କରିଣ ଅଛି ଏ ଜଗତେ ॥ ୬୬
ସେମାନେ ମୋହର ଆଗର । ବିସ୍ତାରି କହ ମୁନିବର ! ॥ ୬୭

---

* କାମିନୋ ବର୍ଣ୍ଣୟନ୍ କାମାନ୍ ଲୋଭଂ ଲୁବ୍ଧସ୍ୟ ବର୍ଣ୍ଣୟନ୍ ।
ନରଃ କିଂ ଫଳମାପ୍ନୋତି କୂପେଽନ୍ଧମିବ ପାତୟନ୍ ॥ ୧
ଲୋକଚିତ୍ତାବତାରାର୍ଥଂ ବର୍ଣ୍ଣୟିତ୍ୱାତ୍ର ତେନ ତୌ ।
ଇତିହାସୈଃ ପବିତ୍ରାର୍ଥୈଃ ପୁନସ୍ତତ୍ରୈବ ନିନ୍ଦିତୌ ॥ ୨
ଅନ୍ୟଥା ଘୋରସଂସାରବନ୍ଧହେତୁ ଜନସ୍ୟ ତୌ ।
ବର୍ଣ୍ଣୟେତ୍ ସ କଥଂ ବିଦ୍ୱାନ୍ ମହାକାରୁଣିକୋ ମୁନିଃ ॥ ୩
(ସ୍ୱାମିଧୃତେ ଇତିହାସସମୁଚ୍ଚୟେ)

## ଶ୍ରୀଶୁକ ଉବାଚ

୧୭ ଏମନ୍ତେ ବିଦୁରର ବାଣୀ । ସେ କୌଶାରବ[୧] ମୁନି ଶୁଣି ॥ ୬୮
ତରିବା ଅର୍ଥେ ପ୍ରାଣୀଙ୍କର । ପ୍ରଶ୍ନ ଅଟଇ ଯେଣୁ ତାର ॥ ୬୯
ସେ ଘେନି ସମ୍ମାନନା କଲେ । ଏମନ୍ତ ବଚନ କହିଲେ ॥ ୭୦

## ଶ୍ରୀମୈତ୍ରେୟ ଉବାଚ

୧୮ ବିଦୁର ! ସାଧୁ ପ୍ରଶ୍ନ ତୋର । ଯେଣେ ତରିବେ ସର୍ବନର ॥ ୭୧
କୃଷ୍ଣର ଠାରେ ଦେଇ ମତି । ବିସ୍ତାର କଲୁ ନିଜ କୀର୍ତ୍ତି ॥ ୭୨
୧୯ ବ୍ୟାସବୀର୍ଯ୍ୟରୁ ଜାତ ତୁହି । ତୋଠାରେ ବିଚିତ୍ର ଏ ନୋହି ॥ ୭୩
ଅନନ୍ୟଭକ୍ତିଯୋଗମତେ । ହରିଙ୍କି ଧଇଲୁ ଯା ଚିତ୍ତେ ॥ ୭୪
୨୦ ତୁ ପ୍ରଜାସଂଯମନେ ଯମ । ମାଣ୍ଡବ୍ୟଶାପରୁ ଜନମ ॥ ୭୫
ଲଭିଲୁ ବ୍ୟାସର ବୀର୍ଯ୍ୟରେ । ବ୍ୟାସ-ଅନୁଜ[୨] ଦାସୀଠାରେ ॥ ୭୬
୨୧ ଯେତେ ଆପଣା ଅନୁଚର । ତାଙ୍କ ସହିତେ ଦାମୋଦର ॥ ୭୭
ତୋ ଠାରେ କରନ୍ତି ଆଦର । ତୋ ଜ୍ଞାନ ଅର୍ଥେ ସେ ବିଦୁର !॥ ୭୮
ଆଜ୍ଞା ଦେଇଣ ଛନ୍ତି ମୋତେ । ଆପଣା ପୁରକୁ ଚଳନ୍ତେ ॥ ୭୯
୨୨ ଏବେ ମୁଁ ତୋହର ଆଗରେ । ବର୍ଣ୍ଣନା କରିବି କ୍ରମରେ ॥ ୮୦
ଭଗବାନର ଲୀଳା ଯେହି । ଯୋଗମାୟାରେ ବୃଦ୍ଧି ହୋଇ ॥ ୮୧
ଜଗତ ସୃଷ୍ଟି-ସ୍ଥିତି-ନାଶ । ଯହିଁରୁ ହୁଅଇ ପ୍ରକାଶ ॥ ୮୨
୨୩ ଯେ ଆତ୍ମା ଅଟେ ଜୀବଙ୍କର । ସୃଷ୍ଟିର ପୂର୍ବେ ସେ ଈଶ୍ୱର ॥ ୮୩
ଏ ବିଶ୍ୱରୂପେ ଏକ ହୋଇ । ଥିଲେ, ନ ଥିଲା ଆନ କେହି ॥ ୮୪
ମାୟାର ଲୟେ ପୁଣ ସେହି । ନାନା ମତିରେ ଲକ୍ଷ୍ୟ ନୋହି ॥ ୮୫
୨୪ ସେ ଏକ ହୋଇ ଶୋଭାପାଇ । ଦେଖିଣ ଶକ୍ତିକି ବହଇ ॥ ୮୬
ଦୃଶ୍ୟକୁ ଯେଣୁ ନ ଦେଖିଲା । ଆତ୍ମାକୁ ମିଥ୍ୟାପ୍ରାୟେ କଲା ॥ ୮୭
ତା'ଠାରେ ସର୍ବଶକ୍ତି ରହି । ଜ୍ଞାନ ତାହାର ଲୀନ ନୋହି ॥ ୮୮
୨୫ ଶକ୍ତି ସେ ଦ୍ରଷ୍ଟା ପୁରୁଷର । କହିଲା ମାୟା ନାମ ତାର ॥ ୮୯
କାର୍ଯ୍ୟ-କାରଣ ରୂପ ସେହି । ତାଦ୍ୱାରେ ଜଗତ ସର୍ଜଇ ॥ ୯୦
୨୬ ତ୍ରିଗୁଣମୟୀ ମାୟାଠାରେ । ପୁରୁଷରୂପେ ସେ କାଳରେ ॥ ୯୧
ସ୍ଥାପିଲା ଜ୍ଞାନଶକ୍ତି ନେଇ । ସ୍ୱୟେଂ ଚିତ୍‌ଶକ୍ତିଯୁକ୍ତ ହୋଇ ॥ ୯୨

---

୧. ମୈତ୍ରେୟ । ୨. ବିଚିତ୍ରବୀର୍ଯ୍ୟ ।

| | | | |
|---|---|---|---|
| ୨୭ | *ସେ ମାୟା କାଳରେ ପ୍ରେରିତ । | ତା ଠାରୁ ହେଲା ମହତ୍ତତ୍ତ୍ୱ | ॥ ୯୩ |
| | ବିଜ୍ଞାନ ଆତ୍ମା ସେ ଅଟଇ । | ବିଶ୍ୱଦେହରେ ପ୍ରକାଶଇ | ॥ ୯୪ |
| | ଆପଣା ଦେହତେଜଭର । | ତେଣେ ନାଶଇ ଅନ୍ଧକାର | ॥ ୯୫ |
| ୨୮ | ସେ ମହତ୍ତତ୍ତ୍ୱ ଚିଦାଭାସ । | ଗୁଣ-କାଳର ହୋଇ ବଶ | ॥ ୯୬ |
| | ଭଗବାନର ଦୃଷ୍ଟିପାତେ । | ଜଗତସର୍ଜନାର ଅର୍ଥେ | ॥ ୯୭ |
| | ଆତ୍ମାକୁ ରୂପାନ୍ତର କଲା । | ତା ଠାରୁ ଅହଂକାର ହେଲା | ॥ ୯୮ |
| ୨୯ | ବିକାରୀ ଯେଉଁ ମହତ୍ତତ୍ତ୍ୱ । | ତହିଁରୁ ଅହଂକାର ଜାତ | ॥ ୯୯ |
| | କାର୍ଯ୍ୟକାରଣକର୍ତ୍ତା ଦେହ । | ଭୂତଇନ୍ଦ୍ରିୟମନୋମୟ | ॥୧୦୦ |
| ୩୦ | ବିକାରୀ, ରାଜସ, ତାମସ । | ଏ ତିନି ରୂପେ ସେ ପ୍ରକାଶ | ॥୧୦୧ |
| | ବଇକାରିକ ଅହଂକାର । | ଧରନ୍ତେ ପୁଣି ରୂପାନ୍ତର | ॥୧୦୨ |
| | ଜାତ ହୋଇଲା ତହୁଁ ମନ । | ଇନ୍ଦ୍ରିୟ ଅଧିଷ୍ଠାତାମାନ | ॥୧୦୩ |
| | ଶବଦ ଆଦିଙ୍କ ପ୍ରକାଶ । | ଅଟଇ ଯାହାଙ୍କର ବଶ | ॥୧୦୪ |
| ୩୧ | ଯେତେକ ଅଛନ୍ତି ଇନ୍ଦ୍ରିୟ । | ହୋଇଣ ଜ୍ଞାନକର୍ମମୟ | ॥୧୦୫ |
| | ତୈଜସ ଅହଂକାରୁଁ ଜାତ । | ତାମସୁଁ ଶବଦ ସଂଭୂତ | ॥୧୦୬ |
| | ଆତ୍ମାର ଲିଙ୍ଗ ଯେ ଆକାଶ । | ସେ ଯେଉଁ ଶବଦୁଁ ପ୍ରକାଶ | ॥୧୦୭ |
| ୩୨ | ଈଶ୍ୱରଦୃଷ୍ଟିରୁ ଆକାଶ । | ଲଭିଣ କାଳମାୟା ଅଂଶ | ॥୧୦୮ |
| | ସେ ସ୍ପରଶକୁ ଜାତ କଲା । | ତାର ବିକାରୁଁ ବାତ ହେଲା | ॥୧୦୯ |
| ୩୩ | ଆକାଶ ସହିତେ ସମୀର । | ସ୍ୱବଳେ ଲଭନ୍ତେ ବିକାର | ॥୧୧୦ |
| | ସ୍ୱରୂପଜ୍ୟୋତି ଜାତ କଲା । | ଲୋକପ୍ରକାଶ ସେ ହୋଇଲା | ॥୧୧୧ |
| ୩୪ | ପରମେଶ୍ୱର ଦୃଷ୍ଟିପାତେ । | ସେ ଜ୍ୟୋତି ପବନସହିତେ | ॥୧୧୨ |
| | ବିକାର ଲଭନ୍ତେ, ସଂଭୂତ । | ଜଳ ତହିଁରୁ ରସଯୁତ | ॥୧୧୩ |
| ୩୫ | କାଳମାୟାଂଶଯୋଗ ପାଇ । | ଜ୍ୟୋତିରେ ଜଳ ମିଶେ ଯାଇ | ॥୧୧୪ |
| | ଈଶ୍ୱରଦୃଷ୍ଟିରେ ବିକାର । | ଲଭନ୍ତେ ଗନ୍ଧଗୁଣାଧାର[୧] | ॥୧୧୫ |
| | ପୃଥିବୀ ହୋଇଲା ସଂଭୂତ । | ଶୁଣ ବିଦୁର ! ଏକଚିତ୍ତ | ॥୧୧୬ |
| ୩୬ | ଆକାଶ ଆଦି ଭୂତଙ୍କର । | ଯେ ବା ଅଟଇ ପରାବର | ॥୧୧୭ |
| | କାରଣସଂସର୍ଗୁଁ ଅଧିକେ । | ଗୁଣପ୍ରକାଶ ହୋଏ ଲୋକେ | ॥୧୧୮ |

---

* ବିଷ୍ଣୋସ୍ତୁ ତ୍ରୀଣି ରୂପାଣି ପୁରୁଷାଖ୍ୟାନ୍ୟଥୋ ବିଦୁଃ । ପ୍ରଥମଂ ମହତଃ ସ୍ରଷ୍ଟୃ ଦ୍ୱିତୀୟଂ ତ୍ୱଣ୍ଡସଂସ୍ଥିତମ୍ । ତୃତୀୟଂ ସର୍ବଭୂତ ସ୍ଥଂ ତାନି ଜ୍ଞାତ୍ୱା ବିମୁଚ୍ୟତେ ॥ (ସ୍ୱାତ୍ୱତତନ୍ତ୍ର)

୧. ଗନ୍ଧଗୁଣାକାର ।

୩୭ ମହତ ଆଦି ଯେ ଅଶେଷ । ବିଷ୍ଣୁର କଳା ଏ ବିଶେଷ ॥୧୧୯
ବିକାର, ବିକ୍ଷେପ, ଚେତନା । ଏ ତିନି ଯୁତ ହୋଇ ନାନା ॥୧୨୦
ବ୍ରହ୍ମାଣ୍ଡ ସର୍ଜିଣ ନ ପାରି । କରଯୁଗଳ ଯୋଡ଼ି କରି ॥୧୨୧
ସମସ୍ତେ ମିଳି ସଂଭ୍ରମରେ । ସ୍ତୁତି[୧] ରଚିଲେ ହରିଠାରେ ॥୧୨୨

ଶ୍ରୀଦେବା ଉଚୁଃ

୩୮ ଭୋ ଦେବ ! ପ୍ରଣାମ ଆମ୍ଭର । ଚରଣପଦ୍ମକୁ ତୋହର ॥୧୨୩
ପ୍ରପନ୍ନ-ତାପ ନାଶିବାରେ । ଯେ ସଦା ଛତ୍ରରୂପ ଧରେ ॥୧୨୪
ଯେଉଁ ଚରଣକମଳର । ମୂଳରେ କରିଣ ମନ୍ଦିର ॥୧୨୫
ସଂସାରଦୁଃଖ ଯତିମାନେ । ବିନାଶ କରନ୍ତି ଭୁବନେ ॥୧୨୬
ଯେହ୍ନେ ପଥିକ ଗୃହ ପାଇ । ପଥଶ୍ରମକୁ ପାସୋରଇ ॥୧୨୭
୩୯ ହେ ଧାତା ସଂସାରେ ଜନ୍ତୁଏ । ପୀଡ଼ିତ ହୋଇ ତାପତ୍ରୟେ ॥୧୨୮
ସୁଖକୁ ନ ଲଭନ୍ତି ଯେଣୁ । ତୋ ପାଦଛାୟା ଆମ୍ଭେ ତେଣୁ॥୧୨୯
ଆଶ୍ରୟ କରୁଛୁଁ ନିର୍ଭରେ । ବିଦ୍ୟାକୁ ଲଭନ୍ତି ଯହିଁରେ ॥୧୩୦
୪୦ ସଂସାରୁ ପ୍ରାଣୀଙ୍କି ତାରଇ । ଏଣୁ ତୋ ପାଦ ତୀର୍ଥ ହୋଇ ॥୧୩୧
ତୋ ମୁଖପଙ୍କଜ ମନ୍ଦିର । ଅଟଇ ବେଦପକ୍ଷୀଙ୍କର ॥୧୩୨
ତେଣୁ ଏକାନ୍ତେ ଋଷିଗଣ । ଖୋଜନ୍ତି ତୋହର ଚରଣ ॥୧୩୩
ଅଘନାଶନ ଜଳ ଯାର । ସ୍ଥାନ ଅଟଇ ସେ ଗଙ୍ଗାର ॥୧୩୪
ଆମ୍ଭେ ସକଳେ ସେ ଚରଣେ । ଭୋ ନାଥ ! ପଶୁଛୁଁ ଶରଣେ ॥୧୩୫
୪୧ ଶ୍ରଦ୍ଧାରେ ତୋ ଗୁଣ ଶୁଣନ୍ତି । ଜାତ ହୁଅଇ ତେଣୁ ଭକ୍ତି ॥୧୩୬
ଭକ୍ତିରେ ଶୁଦ୍ଧ ହୋଏ ମନ । ସେ ମନେ ଧ୍ୟାୟି ଯାହା ଜନ ॥୧୩୭
ପଣ୍ଡିତ ବୋଲାନ୍ତି ସଂସାରେ । ବୈରାଗ୍ୟବଳଜ୍ଞାନଦ୍ୱାରେ ॥୧୩୮
ସେ ପାଦକମଳେ ତୋହର । ଶରଣ ପଶୁଛୁଁ ଈଶ୍ୱର ॥୧୩୯
୪୨ ବିଶ୍ୱସୃଷ୍ଟି ସ୍ଥିତିସଂହାର । ଅର୍ଥେ ତୁ କରୁ ଅବତାର ॥୧୪୦
ତୋ ପାଦପଦ୍ମକୁ ଶରଣ । ପଶୁଛୁଁ ଆମ୍ଭେ ନାରାୟଣ ॥୧୪୧
ସେ ପାଦ ମନେ ଯେ ଚିନ୍ତଇ । ତାର ସଂସାରଭୟ ନାହିଁ ॥୧୪୨

---

୧. ମିଥଃ ସ୍ପର୍ଦ୍ଧିଷ୍ଣବୋ ଦେବା ନ ମିଳନ୍ତଃ ପରସ୍ପରମ୍
ବିଶ୍ୱକର୍ମଣ୍ୟନୀଶାନା ନିର୍ବିର୍ଣ୍ଣା ହରିମୀଡ଼ିରେ (ସ୍ୱାମୀ) ॥

୪୩ ତୁଛ ଅଟଇ ଯେ ଶରୀର । ଉପକରଣତୁଲେ ଘର ॥୧୪୩
ଅହନ୍ତା ମମତା ଆଚରି । ତହିଁ ଯେ ଥାନ୍ତି ଗ୍ରହ[1] କରି ॥୧୪୪
ଶରୀରେ ଥିଲେହେଁ ତାଙ୍କର । ଅଟଇ ଯେଉଁ ପାଦ ଦୂର ॥୧୪୫
ହେ ଭଗବାନ ସେ ଚରଣ । ଭକ୍ତଙ୍କୁ ତୋର ଅନୁକ୍ଷଣ ॥୧୪୬
୪୪ ବିଷୟଲାଳସ ଇନ୍ଦ୍ରିୟେ । ମନ ଯାଙ୍କର ବନ୍ଦୀ ହୋଏ ॥୧୪୭
ସେମାନେ ତାଙ୍କୁ ନ ଦେଖନ୍ତି । ତୋ ପାଦଶୋଭାକୁ ଯେ ଚିନ୍ତି ॥୧୪୮
୪୫ ହେ ଦେବ ! ତୋ କଥା ଅମୃତ । ପାନେ ନିର୍ମଳ ଯାଙ୍କ ଚିତ୍ତ ॥୧୪୯
ବଢ଼ଇ ଭକ୍ତି ତୋହଠାରେ । ବୈରାଗ୍ୟବଳଜ୍ଞାନଦ୍ୱାରେ ॥୧୫୦
ବୈକୁଣ୍ଠପୁରକୁ ସତ୍ୱରେ । ଗମନ କରନ୍ତି ସେ ନରେ ॥୧୫୧
୪୬ ଆନ ପଣ୍ଡିତ ମହୀତଳେ । ଆତ୍ମ ସମାଧି ଯୋଗବଳେ ॥୧୫୨
ବଳିଷ୍ଠ[2] ଅଟେ ଯେ ପ୍ରକୃତି । ତାହାକୁ ଜିଣି ଶାନ୍ତ-ମତି ॥୧୫୩
ତୋଠାରେ ପ୍ରବେଶ ହୁଅନ୍ତି । ସେମାନେ ଶ୍ରମକୁ ଲଭନ୍ତି ॥୧୫୪
ଯେ ଭକ୍ତି କରେ ତୋହଠାରେ । ସେ ଗତି ଲଭେ ନିଃଶ୍ରମରେ ॥୧୫୫
୪୭ ଲୋକସର୍ଜନା ଇଚ୍ଛା କଲୁ । ଆମ୍ଭଙ୍କୁ ତ୍ରିଗୁଣେ ସର୍ଜିଲୁ ॥୧୫୬
ଆମ୍ଭେ ବିରୁଦ୍ଧ ଧର୍ମ ବହି । ମିଶି ନ ପାରି ଏକ ହୋଇ ॥୧୫୭
ତୋ କ୍ରୀଡ଼ାଅର୍ଥେ ତୋରଠାଇଁ । ବ୍ରହ୍ମାଣ୍ଡ ନ ପାରିଲୁ ଦେଇ ॥୧୫୮
୪୮ ହେ ଅଜ ! ବଳିକି ଯେମନ୍ତେ । ଅର୍ପିବୁଁ ଯଥାକାଳେ ତୋତେ ॥୧୫୯
ଯେଉଁ ପ୍ରକାରେ ଆମ୍ଭେମାନେ । ଅନ୍ନକୁ ଭୁଂଜିବୁଁ ଭୁବନେ ॥୧୬୦
ଆମ୍ଭଙ୍କୁ ତୁମ୍ଭଙ୍କୁ ଏ ଜନେ । ବଳି ଦେଇଣ ତୋଷମନେ ॥୧୬୧
ଅନ୍ନ ଭୁଞ୍ଜିବେ ଅବିଘ୍ନରେ । ବିଧାନ କର ସେ ପ୍ରକାରେ ॥୧୬୨
୪୯ କାରଣ ସହିତ ହୋଇଣ । ଆମ୍ଭେ ଯେତେକ ସୁରଗଣ ॥୧୬୩
ଆମ୍ଭର ଆଦ୍ୟ ତୁ ପ୍ରମାଣ । କୂଟସ୍ଥ ପୁରୁଷ ପୁରାଣ ॥୧୬୪
ଗୁଣ-କର୍ମକୁ ଜାତ କରେ । ଯେ ମାୟା ତୁ ଦେବ ତାଠାରେ ॥୧୬୫
ପ୍ରଥମେ ନିବେଶିଲୁ ରେତ । ଯେ ଖ୍ୟାତ ଅଟେ ମହତ୍ତତ୍ତ୍ୱ ॥୧୬୬
୫୦ ମୁଁ[3] ଆଦି ତତ୍ତ୍ୱମାନେ ଯେତେ । ତୋଠାରୁ ଜନ୍ମିଲୁଁ ଯଦର୍ଥେ ॥୧୬୭
ତୋ ଆଜ୍ଞା ଶିରେ ଘେନି ଭାବେ । କହ ତୁ କି କରିବୁଁ ଏବେ ॥୧୬୮

---

୧. ଗ୍ରହ = ଆଗ୍ରହ
୨. ବରିଷ୍ଠ (?) ୩. ମୁଁ = ମହତ୍‌ତତ୍ତ୍ୱ ମଦ୍‌ପ୍ରମୁଖା ମହଦାଦୟଃ (ସ୍ୱାମୀ)

| | | | |
|---|---|---|---|
| ଆମ୍ଭଙ୍କୁ ଦିଅ ନିଜ ଜ୍ଞାନ | । | ଶକ୍ତି ସହିତେ ଜନାର୍ଦ୍ଦନ | ॥୧୬୯ |
| ସଂସାରରଚନା ତୋହର | । | ଏତେକ ଅନୁଗ୍ରହ ତୋର | ॥୧୭୦ |
| ହରିର ଚରଣ ପଙ୍କଜେ | । | ବ୍ରାହ୍ମଣ ଦିନବନ୍ଧୁ ଭଜେ | ॥୧୭୧ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ମହଦାଦ୍ୟୁତ୍ପତ୍ତିର୍ନାମ
ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠୋଽଧ୍ୟାୟଃ

ଷଷ୍ଠେ ତୈରୀଶ୍ୱରାବିଷ୍ଟୈଃ ସୃଷ୍ଟିମାହ ବିରାଟ୍‌ତନୋଃ ।
ଅଧ୍ୟଦୈବାଦିଭେଦଂ ଚ ତତ୍ରୈବ ଭଗବଦ୍‌କୃତମ୍ ॥ ୧ ॥

ଶ୍ରୀଋଷିରୁବାଚ

| | | | | | |
|---|---|---|---|---|---|
| ୧ | କହେ ମୈତ୍ରେୟ ମୁନିବର | । | ଏବେ ତୁ ଶୁଣ ହୋ ବିଦୁର | ॥ | ୧ |
| ୨ | ସଂମେଳ[1] ହୋଇଣ ନ ପାରି | । | ଲୋକରଚନାକୁ ପାସୋରି | ॥ | ୨ |
| | ଏ ରୂପେ ମହତ ଆଦିର | । | ଗତିକି ଦେଖିଣ ଈଶ୍ୱର | ॥ | ୩ |
| | ଯାହାର ନାମ କାଳ ଗୁଣ | । | ସେ ଦୈବୀ ଶକ୍ତିକି ଘେନିଣ | ॥ | ୪ |
| | ତ୍ରୟୋବିଂଶତି ତତ୍ତ୍ୱଗଣେ | । | ପ୍ରବେଶ ହେଲେ ଏକକ୍ଷଣେ | ॥ | ୫ |
| ୩ | ନିବୃତ୍ତ କର୍ମର ପ୍ରବୋଧେ | । | ଚେଷ୍ଟା ରୂପରେ ତାଙ୍କ ମଧ୍ୟେ | ॥ | ୬ |
| | ପ୍ରବେଶ ହେଲେ ଭଗବାନ | । | ସେ ହୋଇଥିଲେ ଭିନ୍ନ ଭିନ୍ନ | ॥ | ୭ |
| | ଯଥାକ୍ରମରେ ତାହାଙ୍କର | । | ସଂଯୋଗ କଲେ ସେ ଈଶ୍ୱର | ॥ | ୮ |
| ୪ | ବଢ଼ିଲା କ୍ରିୟାଶକ୍ତି ତହିଁ | । | ଦଇବେ ନିୟୋଜିତ ହୋଇ | ॥ | ୯ |
| | ତ୍ରୟୋବିଂଶତି ତତ୍ତ୍ୱଗଣ | । | ନିଜ ଅଂଶରେ ତତକ୍ଷଣ | ॥ | ୧୦ |
| | ଅଧିପୁରୁଷ କଲା ଜାତ | । | ବିରାଟ ରୂପରେ ବିଦିତ | ॥ | ୧୧ |
| ୫ | ଈଶ୍ୱର ସେ ଗଣମଧ୍ୟରେ | । | ପ୍ରବେଶ ହୁଅନ୍ତେ ମାତ୍ରାରେ | ॥ | ୧୨ |
| | ଏକ ଆରକେ କ୍ଷୋଭ ପାଇ | । | ସଚରାଚର ଲୋକ ଯହିଁ | ॥ | ୧୩ |
| ୬ | ସୁବର୍ଣ୍ଣମୟ ସେ ପୁରୁଷ | । | ଜଳରେ ସହସ୍ର ବରଷ | ॥ | ୧୪ |
| | ରହିଲା ଅଣ୍ଡକୋଷଗତେ | । | ସକଳ ଜୀବଙ୍କ ସଙ୍ଗତେ | ॥ | ୧୫ |

---
୧. ସଂମେଳ = ଏକତ୍ର ମିଳନ ।

୬ ବିଶ୍ୱସର୍ଜନାରେ ନିପୁଣ । ମହତ ଆଦି ଯେଉଁ ଗଣ ।।
ତାହାଙ୍କ ଚେଷ୍ଟାରୁ ସଂଭୂତ । ବିରାଟ ରୂପ ଯେ ବିଦିତ ।।
ଜ୍ଞାନଶକ୍ତିରେ ଏକ ହୋଇ । ଚୈତନ୍ୟ ରୂପରେ ସେ ରହି ।।
କ୍ରିୟା ଶକ୍ତିରେ ବାହ୍ୟାନ୍ତରେ । ସେ ଦଶପ୍ରାଣ-ରୂପ[1] ଧରେ ।।
ଇନ୍ଦ୍ରିୟ, ଶବ୍ଦାଦି ବିଷୟ । ଇନ୍ଦ୍ରିୟପତି ଦେବମୟ ।।
ଏରୂପେ ତ୍ରିବିଧ ହୋଇଲା । ଭୋଗଶକ୍ତିକି ଆଶ୍ରେ କଲା ।।
୮ ଅଶେଷ-ପ୍ରାଣୀ ଆତ୍ମା ସେହି । ପରମାତ୍ମାର ଅଂଶ ହୋଇ ।।
ବିଷ୍ଣୁର ଆଦ୍ୟ ଅବତାର । ଯହିଁରେ ଅଛି ଚରାଚର ।।
୯ ଅଧ୍ୟାତ୍ମ, ଅଧିଭୂତ ଦୁଇ । ସେ ଅଧିଦୈବ ରୂପ ହୋଇ ।।
ଏ ରୂପେ ତ୍ରିବିଧ ସେ ପୁଣ । ବିରାଟ ହୋଇ' ଦଶ ପ୍ରାଣ ।।
ହୃଦୟରୂପେ ଏକ ଯେହି । ଏ ରୂପେ ଭେଦ ପ୍ରକାଶଇ ।।
୧୦ ସେ ବିଶ୍ୱସୃଜମାନେ ଯାହି । ପୂର୍ବରେ ଅଛନ୍ତି ଜଣାଇଁ ।।
ତା' ଅଧୋକ୍ଷଜ ଚିନ୍ତା କରି । ବିବିଧ ଲାଭ ମନେ ଧରି ।।
ଜ୍ଞାନଶକ୍ତିରେ ବିରାଟର । ପଶିଲେ ହୃଦୟ ଭିତର ।।
୧୧ ଈଶ୍ୱର-ଅନୁପ୍ରବେଶରେ । ତକ୍ଷଣେ ବିରାଟ ଦେହରେ ।।
ଜନ୍ମିଲେ ଯେତେ ଯେତେ ସ୍ଥାନ । କହିବା ଶୁଣ ତୁ ସେମାନ ।।
୧୨ ମୁଖ ଜନ୍ମିଲା ବିରାଟର । ବାଚ ଇନ୍ଦ୍ରିୟେ ବୈଶ୍ୱାନର ।।
କଲା ତହିଁରେ ନିଜ ସ୍ଥାନ । ଯେଣେ ସେ କହଇ ବଚନ ।।
୧୩ ତାଳୁ ତାହାର ଜାତ ହୋଇ । ଜିହ୍ୱା ଇନ୍ଦ୍ରିୟ ଘେନି ତହିଁ ।।
ବରୁଣ ହୋଇଲା ପ୍ରବେଶ । ଯେଣେ ସେ ଜାଣେ ସର୍ବରସ ।।
୧୪ ନାସିକା ବେନି ଜାତ ତାର । ତହିଁରେ ଅଶ୍ୱିନ କୁମାର ।।
ଘ୍ରାଣ ଇନ୍ଦ୍ରିୟ ଘେନି ମିଳି । ଯେଣେ ସେ ଗନ୍ଧକୁ ଆକଳି ।।
୧୫ ଜାତ ତାହାର ଚକ୍ଷୁ ବେନି । ଚକ୍ଷୁ ଇନ୍ଦ୍ରିୟ ତ୍ୱଷ୍ଟା[2] ଘେନି ।।
ପ୍ରବେଶ ହେଲା ତହିଁ ଯାଇ । ଯେଣେ ସେ ରୂପକୁ ଦେଖଇ ।।
୧୬ ତାହାର ଚର୍ମମାନେ ଜାତ । ତହିଁରେ ଲୋକପାଳ ବାତ[3] ।।
ତ୍ୱକ ଇନ୍ଦ୍ରିୟ ଘେନି ହୋଇ । ଯେଣେ ସେ ସ୍ପର୍ଶକୁ ଜାଣଇ ।।

---

୧. "ନାଗଃ କୂର୍ମୋଽଥ କୃକରୋ ଦେବଦତ୍ତୋ ଧନଂଜୟଃ ।" ଏହି ପଞ୍ଚ ପ୍ରାଣ ବୃତ୍ତିଭେଦରେ ଦଶବିଧ ହୁଏ ।
୨. ଆଦିତ୍ୟ । ୩. ପବନ ।

୧୭ ଜାତ ହୋଇଲେ ବେନି କର୍ଣ୍ଣେ । ଶ୍ରୋତ୍ର ଅଂଶରେ ଦିଗମାନେ ।। ୪୨
ପ୍ରବେଶ ହେଲେ ତହିଁ ଯାଇ । ଯେଣେ ସେ ଶବ୍ଦକୁ ଶୁଣଇ ।। ୪୩
୧୮ ଚର୍ମ ତାହାର ହେଲା ଜନ୍ମ । ଲୋମ ଅଂଶେ ଔଷଧିମାନ ।। ୪୪
ପ୍ରବେଶ ହେଲେ ତହିଁ ଯାଇ । ଯେଣେ ସେ କଣ୍ଡୁ ଜାଣଇଁ ।। ୪୫
୧୯ ଜନ୍ମିଲା ତାର ଲିଙ୍ଗମୂର୍ତ୍ତି । ରେତ ଅଂଶରେ ପ୍ରଜାପତି ।। ୪୬
ପ୍ରବେଶ ହେଲା ତହିଁ ଯାଇ । ଯେଣେ ସେ ଆନନ୍ଦ ଲଭଇ ।। ୪୭
୨୦ ଗୁଦ ତାହାର ଜାତ ହୋଇ । ପ୍ରବେଶ ହେଲା ମିତ୍ର[୧] ତହିଁ ।। ୪୮
ପାୟୁକୁ ଘେନି ସଙ୍ଗତରେ । ଯେଣେ ସେ ମଳତ୍ୟାଗ କରେ ।। ୪୯
୨୧ ଜନ୍ମିଲେ ତାର ହସ୍ତବେନି । ବାର୍ତ୍ତା[୨] ଅଂଶକୁ ଇନ୍ଦ୍ର ଘେନି ।। ୫୦
ପ୍ରବେଶ ହେଲେ ତହିଁ ଯାଇ । ଯେଣେ ସେ ବୃତ୍ତିକି[୩] କରଇ ।। ୫୧
୨୨ ତାର ସମ୍ଭବେ ପାଦବେନି । ଗତି ଅଂଶକୁ ବିଷ୍ଣୁ ଘେନି ।। ୫୨
ସେ ସ୍ଥାନେ ହୋଇଲେ ପ୍ରବେଶ । ଯେଣେ ସେ ଲଭେ ପ୍ରାପ୍ୟ ଦେଶ ।। ୫୩
୨୩ *ବୁଦ୍ଧି ତାହାର ଜାତ ହୋଇ । ବାଗୀଶ ପ୍ରବେଶିଲା ତହିଁ ।।
ବୋଧ ଅଂଶକୁ ଘେନି ଯେଣେ । ବୋଦ୍ଧବ୍ୟ ବିଷୟ ସେ ଜାଣେ ।।
୨୪ ହୃଦୟ ଜନମିଲା ତାର । ତହିଁ ପ୍ରବେଶ ନିଶାକର ।। ୫୪
ମନ ଇନ୍ଦ୍ରିୟ ଅଂଶ ସେହି । ସଂକଳ୍ପ ଆଦି ଯହିଁ ପାଇ ।। ୫୫
୨୫ ଜନ୍ମିଲା ଅହଙ୍କାର ତାର । ରୁଦ୍ର ପ୍ରବେଶ ସେ ସ୍ଥାନର ।। ୫୬
ଅହଂମତିରେ ଯୁତ ହୋଇ । ଯେଣେ ସେ କ୍ରିୟାକୁ କରଇ ।। ୫୭
୨୬ ସତ୍ତ୍ୱ ତାହାର ହେଲା ଜାତ । ସେ ସ୍ଥାନେ ପ୍ରବେଶ ମହତ[୪] ।। ୫୮
୨୭ ମୂର୍ଦ୍ଧାରୁ ସ୍ୱର୍ଗ, ପାଦୁଁ ମହୀ । ଆକାଶ ତା' ନାଭିରୁ ହୋଇ ।। ୫୯
ଚିତ୍ତ ଅଂଶରେ ଯୁତ ହୋଇ । ଯେଣେ ସେ ବିଜ୍ଞାନକୁ ପାଇ ।। ୬୦
ଗୁଣର ପରିଣାମ ପାଇ । ଅଛନ୍ତି ସୁର ଆଦି ଯହିଁ ।। ୬୧

---

୧. ମିତ୍ର = ସୂର୍ଯ୍ୟ । ୨. କ୍ରୟବିକ୍ରୟାଦି ଶକ୍ତି ୩. ଜୀବିକା ।

* ''ବୁଦ୍ଧିଂଚାସ୍ୟ ବିନିର୍ଭିନ୍ନାଂ ବାଗୀଶୋ ଧିଷ୍ଣ୍ୟମାବିଶତ୍ ।
ବୋଧେନାଂଶେନ ବୋଦ୍ଧବ୍ୟପ୍ରତିପତ୍ତିର୍ଯତୋ ଭବେତ୍ ।।'' ଏହି ଶ୍ଳୋକ ପୋଥିରେ ନାହିଁ । କିନ୍ତୁ ଶୁଦ୍ଧ ସଂସ୍କରଣମାନଙ୍କରେ ଥିବା ହେତୁ ଏହାର ଅନୁବାଦ କରାହେଲା । ବିଶ୍ୱନାଥ ଚକ୍ରବର୍ତ୍ତୀ ମଧ୍ୟ ଏହାକୁ 'ଅସର୍ବସମ୍ମତ' କହିଛନ୍ତି ।

୪. ବ୍ରହ୍ମା ।

୨୮ ଉତ୍କଟ ସତ୍ତ୍ୱଗୁଣେଁ କରି । ଦେବତା ସ୍ୱର୍ଗରେ ବିହରି ॥ ୬୨
ମନୁଷ୍ୟ ପଶୁ ଆଦି ମହୀ । ଭଜିଲେ ରଜଗୁଣ ବହି ॥ ୬୩
୨୯ ଭୂମି ଆକାଶ ମଧ୍ୟସ୍ଥାନ । ଈଶ୍ୱରନାଭି ଯେ ଗଗନ ॥ ୬୪
ତାକୁ ଲଭିଲେ ତମୋଗୁଣେ । ରୁଦ୍ରପାର୍ଷଦ ଭୂତଗଣେ ॥ ୬୫
୩୦ ମୁଖୁଁ ତାହାର ବେଦ ଜାତ । ତା ମୁଖୁଁ ହେଲାକ ସଂଭୂତ ॥ ୬୬
ଯେ ସର୍ବବର୍ଣ୍ଣମୁଖ୍ୟ ଗୁରୁ । ସେ ବିପ୍ର ହୋଇଲା ମୁଖରୁ ॥ ୬୭
୩୧ ପାଳନ ବୃତ୍ତି ପୁରୁଷର । ଭୁଜରୁ ହୋଇଲା ବାହାର ॥ ୬୮
ସେହି ବୃତ୍ତିକି ଅନୁଗତ । କ୍ଷତ୍ରିୟ ତା ଭୁଜୁଁ ସଂଭୂତ ॥ ୬୯
ଯେ ଅଟେ ପୁରୁଷର ଅଂଶ । ଚୌରାଦି ଭୟ କରେ ଧ୍ୱଂସ ॥ ୭୦
ଯେ ରକ୍ଷା କରେ ହୋଇ ଜନ୍ମ । ବ୍ରାହ୍ମଣ ଆଦି ସର୍ବବର୍ଣ୍ଣ ॥ ୭୧
୩୨ କୃଷ୍ୟାଦି ବ୍ୟବସାୟ ଯେତେ । ଲୋକର ଜୀବିକା ଜଗତେ ॥ ୭୨
ସେ ତାର ଊରୁରୁ ସଂଭୂତ । ବୈଶ୍ୟ ହିଁ ହେଲା ତହୁଁ ଜାତ ॥ ୭୩
ଆପଣା ବୃତ୍ତି କରି ଯେହି । ପରଜୀବିକା ସଂପାଦଇ ॥ ୭୪
୩୩ ଧର୍ମର ସିଦ୍ଧି ଅର୍ଥେ ତାର । ଚରଣୁଁ ଶୁଶ୍ରୂଷା ବାହାର ॥ ୭୫
ସେହି ବିଷୟେ ଶୂଦ୍ର ଜାତ । ଯା' କର୍ମେ ହରି ତୋଷଚିତ୍ତ ॥ ୭୬
୩୪ ଏ ଚାରିବର୍ଣ୍ଣ ଏ ଜଗତେ । ଶ୍ରଦ୍ଧାରେ ଆତ୍ମଶୁଦ୍ଧି ଅର୍ଥେ ॥ ୭୭
ସ୍ୱଧର୍ମେ ହରିଙ୍କି ଭଜନ୍ତି । ଆପଣା ଗୁରୁ ବୋଲି ଚିନ୍ତି ॥ ୭୮
ଘେନି ଆପଣା ବୃତ୍ତିମାନ । ଯେଣୁ ତା ଠାରୁ ହେଲେ ଜନ୍ମ ॥ ୭୯
୩୫ ଦଇବ କର୍ମ ଆତ୍ମାରୂପୀ । ଯେ ଭଗବାନ ବିଶ୍ୱବ୍ୟାପୀ ॥ ୮୦
ତା ଯୋଗମାୟାବଳୁଁ ଜାତ । ବିରାଟ ରୂପ ଏ ସାକ୍ଷାତ ॥ ୮୧
ଏହା ସମଗ୍ରେ କହିବାରେ । କେ ଇଚ୍ଛା କରିବ ମନରେ ॥ ୮୨
୩୬ ତଥାପି ଯେତେ ଅଛି ଶୁଣି । ବୁଦ୍ଧିରେ ଯେତେ ଅଛି ଜାଣି ॥ ୮୩
ସେ ରୂପେ କୀର୍ତ୍ତିକି ହରିର । କହିବି ତୋହର ଆଗର ॥ ୮୪
ତା' ବିନୁ ଆନ କଥା ଭଣି । ମଳିନ ହୋଇଛି ଯେ ବାଣୀ ॥ ୮୫
ସେ ବାଣୀ ହୋଇବ ସଂସ୍କାର । ହରିର କୀର୍ତ୍ତନେ ବିଦୁର ॥ ୮୬
୩୭ ଗୁଣାନୁବାଦ ମୁକୁନ୍ଦର । ଏକାନ୍ତ ଲାଭ ବଚନର ॥ ୮୭
ପଣ୍ଡିତମାନେ ଯାହା ଭଣି । ସେ କଥାମୃତ ଯେବେ ଶୁଣି ॥ ୮୮
କର୍ଣ୍ଣର ଲାଭ ସେ ଅଟଇ । କହିବା ଏବେ ଶୁଣ ତାହି ॥ ୮୯

୩୮ ଯୋଗେ ନିର୍ମଳ ଯେଉଁ ମତି । ତେଣେ ଆପଣେ ପ୍ରଜାପତି ।। ୯୦
ସହସ୍ର ବରଷେ ହରିର । ମହିମା ନ କଲେ ଗୋଚର ।। ୯୧
୩୯ ଭଗବାନର ମାୟା ଯେହି । ମାୟାବୀ ଲୋକଙ୍କୁ ମୋହଇ ।। ୯୨
ହରିହିଁ ନିଜେ ଆତ୍ମଗତିଂ[1] । ନ ଜାଣେ, ଆନ କେ ଜାଣନ୍ତି ।। ୯୩
୪୦ ମନର ସହିତେ ବଚନ । ନିବର୍ତ୍ତେ ଯାକୁ ନ ଜାଣିଣ ।। ୯୪
ଜାଣି ନ ପାରେ ଯାକୁ ଶିବ । ଆନ ସକଳ ଯେତେ ଦେବ ।। ୯୫
ସେମାନେ ନ କଲେ ଗୋଚର। ତାକୁ ମୋହର ନମସ୍କାର ।। ୯୬
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ କର ଏଣେ ଲୟେ ।। ୯୭

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟ ସଂବାଦେ
ମହଦାଦ୍ୟୁତ୍ପତ୍ତିର୍ନାମ ଷଷ୍ଠୋଽଧ୍ୟାୟଃ ।।

## ସପ୍ତମୋଽଧ୍ୟାୟଃ

ସପ୍ତମେ ସଂଶୟଚ୍ଛେଦି ପ୍ରତିନନ୍ଦ୍ୟ ମୁନେର୍ବଚଃ ।
ପୁନଃ କ୍ଷତ୍ରା କୃତା ନାନା ପ୍ରଶ୍ନାଃ ସମ୍ୟଗୁଦୀରିତାଃ ।। ୧ ।।

ଶ୍ରୀଶୁକ ଉବାଚ

୧ ଏମନ୍ତେ ମୈତ୍ରେୟର ବାଣୀ । ବିଦୁର ଦୃଢ଼ ଚିତ୍ତେ ଶୁଣି ।। ୧
ସଂତୋଷେ ବ୍ୟାସଙ୍କ ନନ୍ଦନ । ପଚାରେ ଏମନ୍ତ ବଚନ ।। ୨

ଶ୍ରୀବିଦୁର ଉବାଚ

୨ ଭୋ ବିପ୍ର ! ଜ୍ଞାନରୂପୀ ହରି । ଅଟେ ସ୍ୱଭାବେ ନିର୍ବିକାରୀ ।। ୩
ତାହାର କ୍ରିୟା ଅବା କାହିଁ । ଏ ତ ଲୀଳାରେ ନ ଘଟଇ ।। ୪
ଯେ ହରି ଅଟଇ ନିର୍ଗୁଣ । ତାହାର କାହିଁ ଗୁଣ ପୁଣ ।। ୫
୩ ବାଳକ ଖେଳଇ ଇଚ୍ଛାରେ । ଅଥବା ମିତ୍ରବଚନରେ ।। ୬
ଯେ ହରି ଆପ୍ତକାମ ହୋଇ । ତାହାର ଇଚ୍ଛା ଅଛି କାହିଁ ।। ୭
ଯାହାର ସଙ୍ଗଲେଶ ନାହିଁ । କେ ଅବା ତାକୁ ପ୍ରବର୍ତ୍ତାଇ ।। ୮

---

୧. ସ୍ୱମାୟାଗତି (ସ୍ୱାମୀ)

| | | | |
|---|---|---|---|
| ୪ | ତ୍ରିଗୁଣ ମାୟାରେ ସଂସାର | । ସର୍ଜନା କରଇ ଈଶ୍ୱର | ॥ ୯ |
| | ପୁଣି ତା ପାଳନା କରଇ | । ପ୍ରାନ୍ତ କାଳରେ ସଂହାରଇ | ॥ ୧୦ |
| ୫ | ଦେଶରୁ, କାଳୁଁ, ଅବସ୍ଥାରୁ | । ଆତ୍ମାରୁଂ ପରସକାଶରୁ | ॥ ୧୧ |
| | ଯାହାର ଜ୍ଞାନ ନାଶ ନାହିଁ | । ସେ ଜୀବ ବ୍ରହ୍ମରୂପ ହୋଇ | ॥ ୧୨ |
| | ଅବିଦ୍ୟା-ସଙ୍ଗତେ ବିହରେ | । କି କାର୍ଯ୍ୟ କହ ମୋ ଆଗରେ | ॥ ୧୩ |
| ୬ | ସକଳ ଦେହେ ଭଗବାନ | । ଆତ୍ମାରୂପରେ ସନ୍ନିଧାନ | ॥ ୧୪ |
| | ତାର କି କାର୍ଯ୍ୟେ ସୁଖ ନାଶ | । କର୍ମସକାଶୁଁ ହୋଏ କ୍ଲେଶ | ॥ ୧୫ |
| ୭ | ଅଜ୍ଞାନସଂକଟେ ମୋ ମନ | । ପଡ଼ି ହେଉଛି ଛନଛନ | ॥ ୧୬ |
| | ସେ ଘେନି ଚିତ୍ତେ ମୋହ ମୋର | । ବିନାଶ କର ମୁନିବର ! | ॥ ୧୭ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୮ | କହନ୍ତି ଶୁକ ମୁନିବର | । ଶୁଣ ପରୀକ୍ଷ ଦଣ୍ଡଧର | ॥ ୧୮ |
| | ଜାଣିମାପାଇଁ ତତ୍ତ୍ୱସାର | । ଏ ରୂପେ ପୁଛନ୍ତେ ବିଦୁର | ॥ ୧୯ |
| | ବିଷ୍ଣୁର ଠାରେ ଚିତ୍ତ ଦେଇ | । ଅଳ୍ପ ହସିଲା ପ୍ରାୟ ହୋଇ | ॥ ୨୦ |
| | ମୈତ୍ରେୟ କହନ୍ତେ ବଚନ | । ସଂଦେହ ନାହିଁ ତାଙ୍କ ମନ | ॥ ୨୧ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୯ | ତର୍କବିରୋଧ ଯହିଁ ହୋଇ | । ଈଶ୍ୱରମାୟା ଅଟେ ସେହି | ॥ ୨୨ |
| | *ଈଶ୍ୱର ଅଟେ ଯେଉଁ ଜୀବ | । ସର୍ବଦା ବିମୁଖସ୍ୱଭାବ | ॥ ୨୩ |
| | ଦୁଃଖିତ ଭାବକୁ ସେ ପାଇ | । ବନ୍ଧନ ଅବିଦ୍ୟାରେ ହୋଇ | ॥ ୨୪ |
| ୧୦ | ଶିରଛେଦନ-ରୂପ କଥା | । ଯେହ୍ନେ ନ ଥିଲେହେଁ ସର୍ବଥା | ॥ ୨୫ |
| | ସ୍ୱପ୍ନ ଦେଖିବା ଲୋକଠାଇଁ | । ମିଥ୍ୟାରେ ପ୍ରତେ ସେ ହୁଅଇ | ॥ ୨୬ |
| ୧୧ | ଯେସନେ ଜଳେ ଚନ୍ଦ୍ରମାର | । ଚଞ୍ଚଳ ଦିଶଇ ଶରୀର | ॥ ୨୭ |
| | ଆକାଶେ ଯେଉଁ ଚନ୍ଦ୍ର ଥାଇ | । ଚଞ୍ଚଳ ଗୁଣ ତାର ନାହିଁ | ॥ ୨୮ |
| | ଦେହାଦି-ଧର୍ମ ସେରୂପରେ | । ଦେହାଭିମାନୀ ଜୀବଠାରେ | ॥ ୨୯ |
| | ଭ୍ରମେ ସେ ପ୍ରକାଶ ହୁଅଇ | । ଈଶ୍ୱରଠାବରେ ସେ ନାହିଁ | ॥ ୩୦ |

---

୧. ସ୍ୱତଃ (ମୂଳପାଠ)

* ଅତ୍ର..... କିଂ ଚିଦୈଶ୍ୱର୍ଯ୍ୟସଂଭବାଦ୍ ଜୀବୋଽପି ଈଶ୍ୱରଶବ୍ଦେନ ଉକ୍ତଃ (ବିଶ୍ୱନାଥ ଚକ୍ରବର୍ତ୍ତୀ) । ଜୀବଠାରେ ମଧ୍ୟ କିଂଚିଦ୍ ଐଶ୍ୱର୍ଯ୍ୟ ଥିବାହେତୁ ଏଠାରେ 'ଈଶ୍ୱର' ଶବ୍ଦଦ୍ୱାରା 'ଜୀବ' ହିଁ ଉକ୍ତ ହୋଇଅଛି ।

୧୨ ସେ ଗୁଣ ନିବୃତ୍ତି ଧର୍ମରେ । ବାସୁଦେବର କରୁଣାରେ ।। ୩୧
ବିଷ୍ଣୁରେ ଭକ୍ତି ଯେବେ ହୋଇ । କ୍ରମରେ ବିନାଶକୁ ପାଇ ।। ୩୨
୧୩ ଯେ ଅନ୍ତର୍ଯାମୀ ରୂପେ ହରି । ସକଳ ଦେଖେ ପୂର୍ଣ୍ଣ କରି ।। ୩୩
ଇନ୍ଦ୍ରିୟଗଣ ତା' ବିଷୟେ । ଯେବେ ନିଶ୍ଚଳ ହୋଇ ରହେ ।। ୩୪
ସୁଷୁପ୍ତ ଲୋକପ୍ରାୟ ହୋଇ । ତେବେ ସକଳ କ୍ଲେଶ ଯାଇ ।। ୩୫
୧୪ ମୁରାରିଗୁଣାନୁବାଦନ । ଯେବେ ଶ୍ରବଣ କରେ ଜନ ।। ୩୬
ଅଶେଷ ସଂକ୍ଲେଶ-ବିନାଶ । ବିଧାନ କରେ ସେ ଅବଶ୍ୟ ।। ୩୭
ତା' ପାଦପଦ୍ମ-ସେବା-ରତି । ଯେବେ ମନରେ ହୋଏ ସ୍ଫୂର୍ତ୍ତି ।। ୩୮
ସେ କ୍ଲେଶ ବିନାଶ କରଇ । ଏ କଥା ବିଚିତ୍ର ନୁହଇ ।। ୩୯

ଶ୍ରୀ ବିଦୁର ଉବାଚ

୧୫ ଭୋ ମୁନି ! ତୋର ବାକ୍ୟ-ଅସି । ମୋ ଚିତ୍ତସଂଶୟ ବିନାଶି ।। ୪୦
ତଥାପି ଏ ବେନି କଥାରେ । ମନ ମୋ ଧାଇଁ ସଂଶୟରେ ।। ୪୧
ସ୍ୱତନ୍ତ୍ର ଅଟଇ ଈଶ୍ୱର । ଜୀବ ଲଭଇ ବନ୍ଧ ଘୋର ।। ୪୨
୧୬ ଭୋ ବିପ୍ର ! ସାଧୁ ଏ ବଚନ । ହରିର ମାୟାରେ ରଚନ ।। ୪୩
ଜୀବର ଦୁଃଖୀ ଭାବ ହୋଇ । ନିଷ୍ପ୍ରୟୋଜନ ଏ ଅଟଇ ।। ୪୪
ତହିଁରେ ମୂଳ କିଛି ନାହିଁ । ମାୟାରୁ ଭିନ୍ନ ହୋଇ କାହିଁ ।। ୪୫
ସଂସାରମୂଳ ଯେ ଅଜ୍ଞାନ । ସେ ଅଟେ ମାୟାର ରଚନ ।। ୪୬
୧୭ ସେ ଲୋକଂ[1] ଅତି ମୂଢ଼ ହୋଇ । ଯେ ବୁଦ୍ଧିପାରକୁ ଗମଇ ।। ୪୭
ସେ ବେନି ସୁଖ ଲଭିଥାଇ । କ୍ଲେଶକୁ ମଧ୍ୟ ଲୋକ ପାଇ ।। ୪୮
୧୮ ଆତ୍ମାରୁ ଆନ ଦ୍ରବ୍ୟ ଯେତେ । ସତ୍ୟରୂପରେ ହୋଏ ପ୍ରତେ ।। ୪୯
ତହିଁରେ ଅର୍ଥ କିଛି ନାହିଁ । କେବଳ ପ୍ରତୀତି[2] ଅଟଇ ।। ୫୦
ତୁମ୍ଭର ଚରଣସେବାଏ । ଏମନ୍ତ କରିଣ ନିଶ୍ଚୟେ ।। ୫୧
କ୍ରମରେ ପୁଣି ସେ ପ୍ରତୀତି । ନାଶ କରିବି ନିଜମତି ।। ୫୨
୧୯ ଯେ ହରି ଆତ୍ମାରେ ବିହରେ । ସାଧୁସେବାରୁ ତା' ପାଦରେ ।। ୫୩
ପ୍ରେମଉତ୍ସବ ଅତି ହୋଇ । ଯେଣେ ବ୍ୟସନ ନାଶ ଯାଇ ।। ୫୪
୨୦ ଅଳ୍ପ ତପସ୍ୟା ଯାର ଥାଇ । ତାହାର ସାଧୁଲୋକଠାଇଁ ।। ୫୫
ଦୁର୍ଲଭ ଅଟଇ ସେବନ । ଯେ ସାଧୁଜନେ ଅନୁଦିନ ।। ୫୬
ଦେବତାଙ୍କର ଦେବ ହରି । ତାକୁ ଗାଆନ୍ତି ଅନୁସରି ।। ୫୭

୧. ଲୋକେ । ୨. ପ୍ରତୀତ ।

୨୧ ଇନ୍ଦ୍ରିୟ ଆଦିର[୧] ସହିତ । ମହତ ଆଦିଙ୍କି ଅଚ୍ୟୁତ ।। ୫୮
ଯଥାକ୍ରମରେ ଜାତ କରି । ତହୁଁ ବିରାଜକୁ ଉଦ୍ଧରି ।। ୫୯
ପ୍ରବେଶ ହୋଇଲା ତହିଁରେ । ସୃଷ୍ଟିର ଆଦ୍ୟ ସମୟରେ ।। ୬୦
୨୨ ସହସ୍ରସଂଖ୍ୟ ଅଟେ ଯାର । ଊରୁ, ଚରଣ, ବାହୁ, ଶିର ।। ୬୧
ଆଦ୍ୟ ପୁରୁଷ ବୋଲି ମୂଳ । ଯାହାକୁ କହନ୍ତି[୨] ସକଳ ।। ୬୨
ଯହିଁରେ ସାବକାଶ ହୋଇ । ସକଳ ଲୋକ ଶୋଭା ପାଇ ।। ୬୩
୨୩ ଯା'ଠାରେ ଦଶବିଧ ପ୍ରାଣ । ଇନ୍ଦ୍ରିୟ, ମହାଭୂତଗଣ ।। ୬୪
ଯେବା ଇନ୍ଦ୍ରିୟ-ଅଧିପତି । ଏ ତିନି ସଙ୍ଗେ କରି ସ୍ଥିତି ।। ୬୫
ରହିଅଛି ତ୍ରିବିଧ ପ୍ରାଣ । ଯା'ଠାରୁ ବର୍ଣ୍ଣସଂଚରଣ ।। ୬୬
ବ୍ରହ୍ମାଶଙ୍କର ଆଦି ହୋଇ । ଯେତେକ ଦେବତା ଅଛଇ ।। ୬୭
ସେମାନେ ବିଭୂତି ତାହାର । ତାହାଙ୍କୁ କହ ମୋ ଆଗର ।। ୬୮
୨୪ ଚିତ୍ର-ଆକୃତି ପ୍ରଜାଜନେ । ପୁତ୍ର, ପଉତ୍ର, ନାତିମାନେ ।। ୬୯
ଜ୍ଞାତିବନ୍ଧୁଙ୍କ ସଙ୍ଗେ ହୋଇ । ରହିଅଛନ୍ତି ଯାହାଠାଇଁ ।। ୭୦
ଯେଉଁ ପ୍ରଜାଙ୍କ ସଙ୍ଗୁଁ କରି । ସର୍ବ ଜଗତ ଅଛି ପୂରି ।। ୭୧
୨୫ କେବଣ ପ୍ରଜାପତିମାନ । କଲେ ସେ କମଳ-ଆସନ ।। ୭୨
କହ ପ୍ରସିଦ୍ଧ ସର୍ଗ ଯେତେ । ଯେ ଅନୁସର୍ଗ ଏ ଜଗତେ ।। ୭୩
ଯେ ମନୁ, ମନ୍ୱନ୍ତର-ଈଶ । ତାହାଙ୍କ ତହୁଁ ଯେତେ ବଂଶ ।। ୭୪
୨୬ ବଂଶାନୁଚରିତ ତାଙ୍କର । ବ୍ରହ୍ମାଣ୍ଡ ତଳ-ଉପରର ।। ୭୫
ଅଛନ୍ତି ଯେତେ ଲୋକମାନ । ମୈତ୍ରେୟ ! ତାଙ୍କର ସଂସ୍ଥାନ ।। ୭୬
୨୭ ପ୍ରମାଣ ଯେତେ ଭୂଲୋକର[୩] । ବିସ୍ତାରି କହ ସେ ପ୍ରକାର ।। ୭୭
ପଶୁ, ମନୁଷ୍ୟ, ଦେବଗଣ, । ଯେ ବା ଉରଗ ପକ୍ଷୀମାନ ।। ୭୮
ଯେ ଗର୍ଭୁଁ ଜାତ, ସ୍ୱେଦଭବ । ଅଟନ୍ତି ଯେ ଅଣ୍ଡସଂଭବ ।। ୭୯
ଯେ ବା ଅଛନ୍ତି ବୃକ୍ଷମାନ । କହ ତାହାଙ୍କର ସର୍ଜନ ।। ୮୦
୨୮ ଗୁଣାବତାରେ ଜଗତର । ସର୍ଜନ, ପାଳନ, ସଂହାର ।। ୮୧
କରଇ ଯେହୁ ଶ୍ରୀନିବାସ । ପ୍ରକାଶ କର ତାର ଯଶ ।। ୮୨
୨୯ ଯେ ବର୍ଣ୍ଣାଶ୍ରମର ବିଭାଗ । ଯେ ରୂପ, ଚରିତ, ସ୍ୱଭାବ ।। ୮୩
ଋଷିଙ୍କ ଜନ୍ମକର୍ମ ଯେତେ । ବେଦବିଭାଗ ଶାଖାମତେ ।। ୮୪

---

୧. ଆଦିରେ । ୨. କରନ୍ତି (ତୁଂ ଆହୁଃ) । ୩. ଭୂର୍ଲୋକର ।

୩୦ ଯଜ୍ଞର ଯେ ଅବା ବିତାନ । ଯୋଗର ଯେତେ ପଥମାନ ॥ ୮୫
ଜ୍ଞାନର, ସାଂଖ୍ୟର ବିଧାନ । ଯାହା କହିଲେ ଭଗବାନ ॥ ୮୬
୩୧ ପାଷାଣ ପଥ ବଇଷମ୍ୟ । ନିବେଶ ଅଟେ ପ୍ରତିଲୋମ ॥ ୮୭
ଗୁଣକର୍ମରୁ ଜାତ ହୋଇ । ଯେତେକ ଗତି ଜୀବ ପାଇ ॥ ୮୮
୩୨ ଧର୍ମାର୍ଥକାମ ମୋକ୍ଷଙ୍କର । ବିରୋଧାଭାବେ[1] ପରସ୍ପର ॥ ୮୯
ଅଛନ୍ତି ଯେ ଉପାୟମାନ । ବାର୍ତ୍ତା, ଦଣ୍ଡନୀତି, ବିଧାନ ॥ ୯୦
ଶାସ୍ତ୍ରର ଅଛି ଯେ ବା ବିଧି । ଯା ଭିନ୍ନ ଭିନ୍ନ ମତେ ସାଧି ॥ ୯୧
୩୩ ଶ୍ରାଦ୍ଧର ଯେ ଅବା ବିଧାନ । ଯେ ବା ପିତୃଙ୍କ ସର୍ଗମାନ ॥ ୯୨
ଗ୍ରହ-ନକ୍ଷତ୍ର-ତାରାଙ୍କର । କାଳଚକ୍ରରେ ଯେ ସଂଚାର ॥ ୯୩
୩୪ ଦାନ ତପରେ ଫଳ ଯେତେ । ଯେ ଫଳ ଅବା ଇଷ୍ଟାପୂର୍ତ୍ତେ[2] ॥ ୯୪
ବାନପ୍ରସ୍ଥର ଯେ ବା ଧର୍ମ । ବିପତ୍ତିକାଳେ ଯେ ବା କର୍ମ ॥ ୯୫
୩୫ ଯେ ଧର୍ମଜନକ ବୋଲାଇ । ସେ କୃଷ୍ଣ ଯେଣେ ତୋଷ ହୋଇ ॥ ୯୬
ଯାହାକୁ ହୋଏ ସେ ପ୍ରସନ୍ନ । ଭୋ ମୁନି ! କହସି ଏମାନ ॥ ୯୭
୩୬ ହେ ଦ୍ୱିଜବର ! ଶିଷ୍ୟ, ସୁତ । ଯେବେ ହୁଅନ୍ତି ଅନୁଗତ ॥ ୯୮
ସେ ନ ପଚାରିଲେହେଁ ସାର । କଥାକୁ ତାହାଙ୍କ ଆଗର ॥ ୯୯
ପ୍ରକାଶ କରନ୍ତି ଭୁବନେ । ଦୀନବତ୍ସଳ ଗୁରୁମାନେ ॥ ୧୦୦
୩୭ ମହତ ଆଦି ତତ୍ତ୍ୱଙ୍କର । ପ୍ରଳୟ କେତେକ ପ୍ରକାର ॥ ୧୦୧
ପ୍ରଳୟଜଳେ ଭଗବାନ । ଯେବେ ସେ କରନ୍ତି ଶୟନ ॥ ୧୦୨
ତାହାଙ୍କୁ ଅନୁଗତ ହୋଇ । ଶୟନ କରନ୍ତି କେ ତହିଁ ॥ ୧୦୩
୩୮ ଆତ୍ମାର ଯେ ଅବା ବିଚାର । ଯେ ରୂପ ପରମେଶ୍ୱରର ॥ ୧୦୪
ଯେ ଗୁରୁ-ଶିଷ୍ୟପ୍ରୟୋଜନ । ଉପନିଷଦୁଁ ଜାତ ଜ୍ଞାନ ॥ ୧୦୫
୩୯ ପଣ୍ଡିତେ ସେ ଜ୍ଞାନସାଧନ । କହିଅଛନ୍ତି ଯେଉଁମାନ ॥ ୧୦୬
ସେ କଥା କହ ମୋ ଆଗରେ । ନ ସେବି ଗୁରୁଚରଣରେ ॥ ୧୦୭
ନିଜ ଇଚ୍ଛାରେ କେଉଁ ଜନ । ଲଭେ ବୈରାଗ୍ୟ, ଭକ୍ତି, ଜ୍ଞାନ ॥ ୧୦୮
୪୦ ମାୟାରେ ନଷ୍ଟଜ୍ଞାନ ହୋଇ । ଯେତେକ ପ୍ରଶ୍ନ କଲି ମୁହିଁ ॥ ୧୦୯
ହରିର ତତ୍ତ୍ୱ ଜାଣିମାରେ । ସେକଥା କହ ମୋ ଆଗରେ ॥ ୧୧୦
ମୋଠାରେ ଧରି ମିତ୍ରଭାବ । ଭୋ ମୁନି କହ ଏ ପ୍ରସ୍ତାବ ॥ ୧୧୧

---

୧. ବିରୋଧର ଅଭାବରେ ଅର୍ଥାତ୍ ଅବିରୋଧରେ ।
୨. ବାପୀ, କୂପ ତଡ଼ାଗାଦିର ନିର୍ମାଣ ।

୪୧　ଯେତେକ ବେଦ, ଯାଗମାନ ।　ଯେତେକ ତପ, ଯେତେ ଦାନ ॥୧୧୨
ଜୀବକୁ ଅଭୟ ଯେ ଦେଇ ।　ତାର କଳାକୁ ସରି ନୋହି ॥୧୧୩

ଶ୍ରୀଶୁକ ଉବାଚ

୪୨　ପୁରାଣମଧ୍ୟରେ ପ୍ରକାଶ ।　ଯେ ନିଜ ମନରଂ[1] ସନ୍ଦେଶ ॥୧୧୪
କୁରୁପୁଙ୍ଗବ ସେ ଅର୍ଥକୁ ।　ପୃଚ୍ଛନ୍ତେ ମୁନିପ୍ରଧାନକୁ ॥୧୧୫
ସେ ଅତି ଆନନ୍ଦ ହୋଇଣ ।　କୃଷ୍ଣ କଥାରେ ଦେଇ ମନ ॥୧୧୬
ମନ୍ଦ ହସିଲା ପ୍ରାୟ ହୋଇ ।　ବୋଲନ୍ତି ବିଦୁରକୁ ଚାହିଁ ॥୧୧୭
ଏ ଭାଗବତ ପ୍ରଶ୍ନବାଣୀ ।　କର୍ଣ୍ଣେ ଶୁଣନ୍ତି ଯେ ବା ପ୍ରାଣୀ ॥୧୧୮
ଯେ-ଅବା ବଦନେ ଉଚ୍ଚାରି ।　ବିଷ୍ଣୁ ମାୟାରୁ ଯାନ୍ତି ତରି ॥୧୧୯
ବ୍ରାହ୍ମଣ ଦୀନବନ୍ଧୁ ଭଣେ ।　ସୁଜନେ ମନ ଦିଅ ଏଣେ ॥୧୨୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀବିଦୁରପ୍ରଶ୍ନୋ ନାମ ସପ୍ତମୋଽଧ୍ୟାୟ ॥

## ଅଷ୍ଟମୋଽଧ୍ୟାୟଃ

ଅଷ୍ଟମେ ସମଭୂଦ୍ ବ୍ରହ୍ମା ନାଭେସ୍ତୁ ଜଳଶାୟିନଃ ।
ତମଜାନନ୍ ଜଳେ ବିଭ୍ୟଦ୍ ତପସାତୋଷୟଦ୍ ପ୍ରଭୁମ୍ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧　ଏ ପୁରୁବଂଶ ମହାଭାଗ୍ୟ ।　ଅଟଇ ସାଧୁସେବାଯୋଗ୍ୟ ॥ ୧
ପ୍ରଧାନ ଅଟେ ବିଷ୍ଣୁ ତୋର ।　ତୁ ଲୋକପାଳ ଦଣ୍ଡଧର ॥ ୨
ଏ ବଂଶେ ଲଭି ଜନ୍ମଲୀଳା ।　ଭଗବାନର କୀର୍ତ୍ତିମାଳା ॥ ୩
ପଦେ ପଦେକେ ଆନୁଁ ଆନ[2] ।　ପ୍ରଶ୍ନରେ କରୁଛୁ ନବୀନ ॥ ୪
୨　ଅଳ୍ପ ସୁଖକୁ ମନେ ଚିନ୍ତି ।　ବହୁତ ଦୁଃଖ ଯେ ଲଭନ୍ତି ॥ ୫
ତାହାଙ୍କ ଦୁଃଖ ଉପଶମ- ।　ନିମିତ୍ତେ ଭାଗବତ ନାମ ॥ ୬

---

୧. ମନରେ ।　୨. ବିଭିନ୍ନ ।

| | | | | | |
|---|---|---|---|---|---|
| | ପୁରାଣ କହୁଥାଇ ଏବେ | । | ଯେବଣ ପୁରାଣକୁ ପୂର୍ବେ | ॥ | ୭ |
| | କହିଅଛନ୍ତି ଭଗବାନ | । | ଋଷିମାନଙ୍କ ସନ୍ନିଧାନ | ॥ | ୮ |
| ୩ | ତତ୍ତ୍ୱକୁ ବାସୁଦେବଙ୍କର | । | ଜାଣିମା କରି ଏ ବିଚାର | ॥ | ୯ |
| | କୁମାର ଆଦି ଋଷି ଗଲେ | । | ସଂକରଷଣଙ୍କୁ ପୃଛିଲେ | ॥ | ୧୦ |
| | ପାତାଳେ କରିଛନ୍ତି ସ୍ଥାନ | । | ଯେ ଆଦ୍ୟ ଦେବ ଭଗବାନ | ॥ | ୧୧ |
| | ତାହାର ସତ୍ତ୍ୱ ଶୋଭା ପାଇ | । | କେବେହେଁ କୁଣ୍ଠିତ ନୁହଇ | ॥ | ୧୨ |
| ୪ | ଯେ ନିଜ ଆଶ୍ରୟ ଅଟଇ | । | ଯାହାକୁ ବାସୁଦେବ କହି | ॥ | ୧୩ |
| | ତାହାଙ୍କୁ ଧ୍ୟାନପଥେ ଚିନ୍ତି | । | ଉତ୍ତମ ଭାବେ ଯେ ମାନନ୍ତି | ॥ | ୧୪ |
| | ନେତ୍ରକମଳକୋଷ ବୁଜି | । | ଥିଲେ ଯେ ଧ୍ୟାନପଥେ ହେଜି | ॥ | ୧୫ |
| | କୁମାର[୧] ଆଦି ଅନୁଗ୍ରହେ | । | ଅଳ୍ପ ପ୍ରକାଶି ଯେ ତା ଚାହେଁ | ॥ | ୧୬ |
| ୫ | ସୁରନଦୀରେ କରି ସ୍ନାନ | । | ଓଦା ହୋଇଛି ଜଟାମାନ | ॥ | ୧୭ |
| | ଚରଣପୀଠପଦ୍ମେ ତାର | । | ଲଗାଇ କଲେ ନମସ୍କାର | ॥ | ୧୮ |
| | ନାଗରାଜକନ୍ୟାଏ ମିଳି | । | ସପ୍ରେମେ ଘେନି ନାନା ବଳି | ॥ | ୧୯ |
| | ଯେବଣ ପାଦ ଶୁଦ୍ଧ ଚିତ୍ତେ | । | ପୂଜନ୍ତି ବରପ୍ରାପ୍ତି-ଅର୍ଥେ | ॥ | ୨୦ |
| ୬ | ଏ ଅନନ୍ତର କର୍ମ ଯେତେ | । | ପ୍ରକାଶ ହୋଇଛି ଜଗତେ | ॥ | ୨୧ |
| | ସ୍ନେହେ ସ୍ଖଳିତପଦ ହୋଏ | । | ପ୍ରତି କ୍ଷଣରେ ତାହା ଗାଏ | ॥ | ୨୨ |
| | ଜାଣନ୍ତି କର୍ମମାନ ତାର | । | କୁମାର ଆଦି ମୁନିବର | ॥ | ୨୩ |
| | କିରୀଟସହସ୍ରେ ଶୋଭିତ | । | ଦିବ୍ୟ ମଣିରେ ପ୍ରଦୀପିତ | ॥ | ୨୪ |
| | ଫଣା ସହସ୍ର ଅଟେ ଯାର | । | ମିଳି ସେ ଅନନ୍ତଛାମୁର | ॥ | ୨୫ |
| | କୁମାର ଆଦି ମୁନିଜନ | । | ପୃଛିଲେ ତତ୍ତ୍ୱସାର ଜ୍ଞାନ | ॥ | ୨୬ |
| ୭ | ନିବୃତ୍ତିଧର୍ମେ ଅଭିରତ | । | କୁମାର ଆଗରେ ଅନନ୍ତ | ॥ | ୨୭ |
| | ଦିବ୍ୟଜ୍ଞାନକୁ ପ୍ରକାଶିଲେ | । | ସାଂଖ୍ୟାୟନଙ୍କୁ ସେ କହିଲେ | ॥ | ୨୮ |
| ୮ | ସେ ସାଂଖ୍ୟାୟନ ମୁନିବର | । | ପରମହଂସ-ଧର୍ମେ ସାର | ॥ | ୨୯ |
| | ହରିର ବିଭୂତି ସଂସାରେ | । | ପ୍ରକାଶ କରିବା ଇଚ୍ଛାରେ | ॥ | ୩୦ |
| | ଯେ ଆମ୍ଭ ଗୁରୁ ପରାଶର | । | କହିଲେ ତାହାଙ୍କ ଆଗର | ॥ | ୩୧ |
| | ଆବର ବୃହସ୍ପତି ଆଗେ | । | ପ୍ରକାଶ କଲେ ଅନୁରାଗେ | ॥ | ୩୨ |

୧. ସନତ୍କୁମାର ।

| | | | | | |
|---|---|---|---|---|---|
| ୯ | ପୁଲସ୍ତ୍ୟ ମୁନି-ବଚନରେ* | । | ଦୟାକୁ ପରାଶର ମୋରେ | ॥ | ୩୩ |
| | ସେ ଆଦ୍ୟ ପୁରାଣକୁ ଭଣି | । | ମୁଁ ତାହା ତୋର ଆଗେ ପୁଣି | ॥ | ୩୪ |
| | କହିବି, ଯେଣୁ ଶ୍ରଦ୍ଧାବନ୍ତ | । | ତୁ ଅଟୁ ମୋତେ ଅନୁଗତ | ॥ | ୩୫ |
| ୧୦ | ଯେ ବ୍ରହ୍ମସୃଷ୍ଟି[୧] ପୂର୍ବେ ଥିଲା | । | ପ୍ରଳୟଜଳେ ମଗ୍ନ ହେଲା | ॥ | ୩୬ |
| | ଅନନ୍ତଶଯ୍ୟାରେ ଲୋଚନ | । | ବୁଜିଣ ଥିଲେ ଭଗବାନ | ॥ | ୩୭ |
| | ସଙ୍ଗରେ ନାହିଁ କେହି ଆନ | । | ବିଲୁପ୍ତ ହୋଇ ନାହିଁ ଜ୍ଞାନ | ॥ | ୩୮ |
| | ନିଜ ଆନନ୍ଦେ ସୁଖ ପାଇ | । | ରହିଲେ ଚେଷ୍ଟା କିଛି ନାହିଁ | ॥ | ୩୯ |
| ୧୧ | ସକଳ ଭୂତସୂକ୍ଷ୍ମମାନ | । | ଶରୀରମଧ୍ୟେ କରି ଲୀନ | ॥ | ୪୦ |
| | କାଳଶକ୍ତିକି ନିଜ କାଳେ | । | ପ୍ରକାଶ କରନ୍ତେ ସେ ଜଳେ | ॥ | ୪୧ |
| | ଶୟନ କଲେ ନିଜ ସ୍ଥାନେ | । | ଦାରୁରେ ଅନଳ ଯେସନେ | ॥ | ୪୨ |
| | ଥାଇ ନିରୁଦ୍ଧବୀର୍ଯ୍ୟ ହୋଇ | । | ଯଥାକାଳରେ ପ୍ରକାଶଇ | ॥ | ୪୩ |
| ୧୨ | ଯେ ଜ୍ଞାନଶକ୍ତି ଆପଣାର | । | ତାହାକୁ ଘେନିଣ ସଙ୍ଗର | ॥ | ୪୪ |
| | ଚାରିସହସ୍ର ଯୁଗ ଜଳେ | । | ଶୟନ କରନ୍ତେ ନିଶ୍ଚଳେ | ॥ | ୪୫ |
| | ପ୍ରବୋଧ-ଅର୍ଥେ ଆପଣାର | । | ନିଯୁକ୍ତ କାଳଶକ୍ତି ତାର | ॥ | ୪୬ |
| | ଈଶ୍ୱରମନରେ ସେ ଆସି | । | କ୍ରିୟାକଳାପକୁ ପ୍ରକାଶି | ॥ | ୪୭ |
| | ଯେ ଲୋକେ ନିଜ ଦେହେ ଲୀନ | । | ତାଙ୍କୁ ଦେଖିଲେ ଭଗବାନ | ॥ | ୪୮ |
| ୧୩ | ସେ ଲୋକସୃଷ୍ଟି ହେବାପାଇଁ | । | ଅର୍ଥ ସୂକ୍ଷ୍ମରେ ମନ ଦେଇ | ॥ | ୪୯ |
| | ଏ ଅତି ସୂକ୍ଷ୍ମ ଅର୍ଥ ତାର | । | ଥିଲା ଯେ ହୃଦୟ ଭିତର | ॥ | ୫୦ |
| | କାଳାନୁଗତ ରଜୋଗୁଣେ | । | କ୍ଷୋଭିତ ହୋଇ ତତକ୍ଷଣେ | ॥ | ୫୧ |
| | ତା' ନାଭିଦେଶରୁ ବାହାର | । | ହୋଇଲା ସୂକ୍ଷ୍ମ ରୂପ ତାର | ॥ | ୫୨ |
| ୧୪ | ଜୀବମାନଙ୍କ ଅଦୃଷ୍ଟରେ | । | ପ୍ରତିବୋଧିତ କାଳଦ୍ୱାରେ | ॥ | ୫୩ |
| | ସେ ସୂକ୍ଷ୍ମ ଅର୍ଥ ପଦ୍ମକୋଷ | । | ରୂପରେ ହୋଇଲା ପ୍ରକାଶ | ॥ | ୫୪ |
| | ନିଜ ତେଜରେ ମହାଜଳ | । | ପ୍ରକାଶ କରଇ ସକଳ | ॥ | ୫୫ |
| | ବିଷ୍ଣୁର ଠାରୁ ଅଟେ ଜାତ | । | ସୂର୍ଯ୍ୟର ପ୍ରାୟ ତେଜବନ୍ତ | ॥ | ୫୬ |

---

* ଅତ୍ର ଆଖ୍ୟାୟିକା- ପିତାଙ୍କୁ ରାକ୍ଷସ ଭକ୍ଷଣ କଲାବୋଲି ଶୁଣି ପରାଶର ରାକ୍ଷସ ସତ୍ରକୁ ଯିବା ପାଇଁ ପ୍ରବୃତ୍ତ ହୋଇଥିଲେ । ମାତ୍ର ବଶିଷ୍ଠଙ୍କ କଥା ମାନି ସେ ତହିଁରୁ ନିବୃତ୍ତ ହେଲେ । ତଦ୍ପରେ ପୁଲସ୍ତ୍ୟ ନିଜ ସନ୍ତତିମାନଙ୍କ ରକ୍ଷଣ ହେତୁ ତୁଷ୍ଟ ହୋଇ ତାଙ୍କୁ ବର ଦେଲେ- ''ତୁମ୍ଭେ ପୁରାଣବକ୍ତା ହେବ ।'' (ସ୍ୱାମୀ)

୧. ବ୍ରହ୍ମସୃଷ୍ଟି = ବିଶ୍ୱ ।

୧୫ ଯେ ଜୀବଭୋଗ୍ୟ ଅର୍ଥମାନ । ପ୍ରକାଶ କରେ ଅନୁଦିନ ॥ ୫୭
ସେ ଲୋକାତ୍ମକ ପଦ୍ମ ତହିଁ । ବିଷ୍ଣୁ ପ୍ରବେଶ ହେଲେ ଯାଇଁ ॥ ୫୮
ଧାତା ଜନ୍ମିଲା ସେ ପଦ୍ମର । ଶରୀର ବେଦମୟ ଯାର ॥ ୫୯
ଯାହାକୁ ସ୍ୱୟଂଭୂ ନାମରେ । ଲୋକେ ବୋଲନ୍ତି ଏ ସଂସାରେ॥ ୬୦
୧୬ ସେ ପଦ୍ମ କର୍ଣ୍ଣିକାରେ ରହି । ଲୋକଙ୍କୁ କାହାକୁ ନ ଚାହିଁ ॥ ୬୧
ଗ୍ରୀବାକୁ ଚାଳିଣ ଆକାଶେ । ରହନ୍ତେ ଲୋକଙ୍କ ଉଦ୍ଦେଶେ ॥ ୬୨
ନୟନ ଲେଉଟାଇ ଚାହିଁ । ଚାରି ଦିଗକୁ ମନ ଦେଇ ॥ ୬୩
ତକ୍ଷଣେ ହୋଇଲା ତାହାର । ଚାରି ବଦନ ମନୋହର ॥ ୬୪
୧୭ ପ୍ରଳୟ ପବନେ ଘୂର୍ଣ୍ଣିତ । ସଲିଳ-ଊର୍ମିରେ ଆବର୍ତ୍ତ ॥ ୬୫
ଅଛଇ ଅନେକ ଯହିଁରେ । ଏମନ୍ତ ସଲିଳ ମଧ୍ୟରେ ॥ ୬୬
ଯେବଣ ସରୋରୁହ ଜାତ । ତହିଁରେ ବସି ସେ ବିଧାତ ॥ ୬୭
ସକଳ ଦେବଙ୍କର ଆଦି । ହେଲେହେଁ ଆତ୍ମାକୁ ସଂପାଦି ॥ ୬୮
ମୁଁ କେ ବୋଲିଣ ନ ପାରିଲା । ଲୋକତତ୍ତ୍ୱ ହିଁ ନ ଜାଣିଲା ॥ ୬୯
ଏ ପଦ୍ମମଧ୍ୟେ ଅଛି ରହି । ମୁଁ ଅବା କେ ପୁଣ ଅଟଇ ॥ ୭୦
ଏ ପଦ୍ମ କାହୁଁ ଉପୁଜିଲା । ଏକା ହୋଇ ଏ ଜଳେ ଥିଲା ॥ ୭୧
*ଏଥି ତଳରେ ଅଛି କିଛି । ଯହିଁ ଏ ପଦ୍ମ ରହିଅଛି ॥ ୭୨
ଏମନ୍ତ ମନେ ମନେ ପାଞ୍ଚି । ବିସ୍ମୟ ଲଭି ସେ ବିରଞ୍ଚି ॥ ୭୩
କେବେହେଁ ଲକ୍ଷି ନ ପାରିଲା । ଏମନ୍ତେ କେତେକାଳ ଗଲା ॥ ୭୪
୧୯ ଏତେ ବିଚାରି ମନଦୁଃଖେ । ପୁଣି ରହିଲା ଅଧୋମୁଖେ ॥ ୭୫
ସେ ପଦ୍ମନାଳଛିଦ୍ରଦ୍ୱାରେ । ପଶିଲା ଜଳର ଭିତରେ ॥ ୭୬
ସେ ପଦ୍ମ ରହିଅଛି ଯହିଁ । ଖୋଜନ୍ତେ ତାହା ମନ ଦେଇ ॥ ୭୭
କେବେହେଁ ଖୋଜି ନ ପାଇଲା । କ୍ରମେ ତଳକୁ ବୋଲି ଗଲା ॥ ୭୮
୨୦ ଏମନ୍ତେ ମହା ଅନ୍ଧକାରେ । ଆତ୍ମସର୍ଗକୁ ଖୋଜିବାରେ ॥ ୭୯
ଗଲା କେତେକ କାଳ ତାର । ଭୟ ଜନ୍ମାଇ ପ୍ରାଣୀଙ୍କର ॥ ୮୦
ଆୟୁଷ ବିନାଶ ଯେ କରେ । ଶତ-ବରଷ-ସଂଖ୍ୟା ଧରେ ॥ ୮୧
ଜନ୍ମରହିତ ଯେ ଈଶ୍ୱର । ଆୟୁଧ[୧] ଅଟେ ସେ ତାହାର ॥ ୮୨

---

* "ସୋଽପଶ୍ୟତ୍ ପୁଷ୍କରପର୍ଣ୍ଣେ ତିଷ୍ଠନ୍ ସୋଽମନ୍ୟତ ଅସ୍ତିବୈ ।
ତଦ୍ ଯସ୍ମିନ୍ନି ଦମଧିତିଷ୍ଠତି ।" (ଶ୍ରୁତିଃ)

୧. ଆୟୁଧ = ସୁଦର୍ଶନଚକ୍ର ।

୨୧ ସିଦ୍ଧ ନୋହନ୍ତେ ମନୋରଥ । ତହିଁରୁ ହୋଇଲା ନିର୍ଗତ ॥ ୮୩

ସେହି ବିବରେ ବାହାରିଲା । ନିଜ ଆସନେ ବିଜେ କଲା ॥ ୮୪

ନିଜ ଆସନ ଦୃଢ଼ କରି । ମନପବନ ହୃଦେ ଧରି ॥ ୮୫

ଯୋଗମାର୍ଗରେ ପ୍ରଜାପତି । ନିବେଶ କଲା ନିଜ ମତି ॥ ୮୬

୨୨ ସେ ବ୍ରହ୍ମା ବସି ଯୋଗାସନେ । ଶତେ ବରଷ ଦୃଢ଼ମନେ ॥ ୮୭

ସେ କଥା ହୃଦୟେ ଦେଖିଲା । ପୂର୍ବେ ଯା' ଖୋଜି ନ ପାଇଲା ॥ ୮୮

୨୩ ମୃଣାଳଦେହ ଗୌରକାନ୍ତି । ଶେଷପର୍ଯ୍ୟଙ୍କେ ଲକ୍ଷ୍ମୀପତି ॥ ୮୯

ଏକା ହୋଇଣ ଶୋଇଛନ୍ତି । ଅନନ୍ତଫଣାରତ୍ନଦ୍ୟୁତି ॥ ୯୦

ତେଣେ ନିବୃତ୍ତ ଅନ୍ଧକାର । ଯୁଗାନ୍ତ ସଲିଳ ମଧ୍ୟର ॥ ୯୧

୨୪ ସନ୍ଧ୍ୟାସମୟ ମେଘ ଯହିଁ । ବସନପ୍ରାୟ ଶୋଭା ପାଇ ॥ ୯୨

ଅନେକ ହେମମୟ ଶିର । ରତ୍ନ, ଓଷଧି, ଜଳଧାର ॥ ୯୩

କୁସୁମମାନ, ବନମାଳ । ଯହିଁରେ ଦିଶନ୍ତି ନିର୍ମଳ ॥ ୯୪

ଭୁଜପ୍ରାୟକ ବେଣୁମାନେ । ଚରଣ ପ୍ରାୟ ବୃକ୍ଷଗଣେ ॥ ୯୫

ଏମନ୍ତ ମରକତଗିରି । ଶୋଭା ଯେ ହେଲେ ଅପହରି ॥ ୯୬

୨୫ ଦୀର୍ଘେ ବିସ୍ତାରେ ତିନି ପୁର । ଆକ୍ରମି ଦିଶଇ ସୁନ୍ଦର ॥ ୯୭

ଦିବ୍ୟ ଭୂଷଣ ବସ୍ତ୍ରମାନ । ଯା ସଙ୍ଗୁ ଦିଶନ୍ତି ଶୋଭନ ॥ ୯୮

ଯହିଁ ଉପମା ନ ଘଟଇ । ଏମନ୍ତ ଦେହେ ଶୋଭା ପାଇ ॥ ୯୯

ସକଳ ବେଶେ ମନୋହର । ଦିଶଇ ଯାହାର ଶରୀର ॥୧୦୦

୨୬ ନିଜ କାମନାସିଦ୍ଧି ଅର୍ଥେ । ଶୁଦ୍ଧ ନିଗମ-ଉକ୍ତ ପଥେ ॥୧୦୧

ପୂଜା କରନ୍ତି ଯେଉଁମାନେ । ତାଙ୍କ ଅଭୀଷ୍ଟ ସଂପାଦନେ ॥୧୦୨

ଯେ ଅଟେ କାମଧେନୁସମ । ସେ ପାଦପଦ୍ମ ମନୋରମ ॥୧୦୩

କୃପାରେ ଦେଖାଉଅଛନ୍ତି । ଯହିଁରେ ନଖ-ସିତଦ୍ୟୁତି ॥୧୦୪

ତାର କାନ୍ତିରେ ସ୍ଫୁଟ ହୋଇ । ଅଙ୍ଗୁଳିପତ୍ର ଶୋଭା ପାଇ ॥୧୦୫

୨୭ ଲୋକର ତାପ କରେ ହତ । ଯହିଁରେ ମନୋହର ସ୍ମିତ ॥୧୦୬

ସୁନ୍ଦର କୁଣ୍ଡଳେ ମଣ୍ଡିତ । ଅଧରକାନ୍ତିରେ ଶୋଭିତ ॥୧୦୭

ସୁନ୍ଦର ନାସିକା ଯହିଁରେ । ସେ ମୁଖେ ଚାରୁ ଭ୍ରୂଲତାରେ ॥୧୦୮

କରନ୍ତି ଆନନ୍ଦ ତାଙ୍କର । ପୂଜା କରନ୍ତି ଯେତେ ନର ॥୧୦୯

| | | | |
|---|---|---|---|
| ୨୮ | କଦମ୍ବକେଶର ସମାନ । | ପିଶଙ୍ଗ ଦିଶଇ ବସନ | ॥୧୧୦ |
| | ସେ ବସ୍ତ୍ରେ ମେଖଳାରେ ତାର । | ନିତମ୍ବ ଦିଶଇ ସୁନ୍ଦର | ॥୧୧୧ |
| | ଶ୍ରୀବତ୍ସ[୧] ଲକ୍ଷଣେ ସଂଯୁତ । | ବକ୍ଷସ୍ଥଳରେ ଯେ ଆଶ୍ରିତ | ॥୧୧୨ |
| | ବହୁତ ମୂଲ୍ୟ ଅଟେ ଯାର । | ଏମନ୍ତ ହାରରେ ସୁନ୍ଦର | ॥୧୧୩ |
| ୨୯ | ଦିବ୍ୟ କେୟୂର ମଣିବର । | ତେଣେ ସେ ଦିଶନ୍ତି ସୁନ୍ଦର | ॥୧୧୪ |
| | ଏମନ୍ତ ଭୁଜଦଣ୍ଡମାନ । | ଅନନ୍ତଶାଖା ଶୋଭମାନ | ॥୧୧୫ |
| | ଅବ୍ୟକ୍ତ ଅଟେ ମୂଳ ଯାର । | ଭୁବନରୂପୀ ବୃକ୍ଷବର[୨] | ॥୧୧୬ |
| | ଅହୀନ୍ଦ୍ରଫଣାରେ ବେଷ୍ଟିତ । | ସ୍କନ୍ଧ ଦିଶଇ ସୁଶୋଭିତ | ॥୧୧୭ |
| ୩୦ | ସଚରାଚରର ଯେ ସ୍ଥାନ । | ଅହୀନ୍ଦ୍ର ସଙ୍ଗେ ଶୋଭମାନ | ॥୧୧୮ |
| | ହିରଣ୍ୟଶୃଙ୍ଗ ପ୍ରାୟେ ଯହିଁ । | କିରୀଟସହସ୍ର ଶୋଭଇ | ॥୧୧୯ |
| | ସଲିଳେ ଅଟଇ ସଂଯୁତ । | କୌସ୍ତୁଭମଣି ଗର୍ଭଗତ | ॥୧୨୦ |
| | ଏଣୁ ପର୍ବତ ପ୍ରାୟେ ହୋଇ । | ଯେ ଭଗବାନ ଶୋଭା ପାଇ | ॥୧୨୧ |
| ୩୧ | ଭ୍ରମର ପ୍ରାଏ ବେଦମାନ । | ଯହିଁରେ ଦିଶନ୍ତି ଶୋଭନ | ॥୧୨୨ |
| | ଆପଣା କୀର୍ତ୍ତିପ୍ରାୟ ହୋଇ । | ଯେ ନିଜ କାନ୍ତିରେ ଶୋଭଇ | ॥୧୨୩ |
| | ଯାର ଏମନ୍ତ ବନମାଳ । | କଣ୍ଠୁ ଲମ୍ବଇ ପାଦତଳ | ॥୧୨୪ |
| | ସେ ସୂର୍ଯ୍ୟଶଶାଙ୍କ ସମୀର । | ଅଗ୍ନିରେ ଅଟେ ଅଗୋଚର | ॥୧୨୫ |
| | ତିନି ଲୋକରେ ଯେ ଶୋଭନ୍ତି । | ରକ୍ଷାର ନିମିତ୍ତେ ଧାବନ୍ତି | ॥୧୨୬ |
| | ଯୁଦ୍ଧେ ହୁଅନ୍ତି ପ୍ରୟୋଜନ । | ଚକ୍ର ଗଦାଦି ଶସ୍ତ୍ରମାନ | ॥୧୨୭ |
| | ତେଣେ ଅଗମ୍ୟ ଯାର ଦେହ । | ତାଙ୍କୁ ଦେଖିଲା ପିତାମହ | ॥୧୨୮ |
| ୩୨ | ଲୋକସର୍ଜନେ ଦୃଷ୍ଟି ଦେଲା । | ଯେବେ ସେ ହରିଙ୍କି ଦେଖିଲା | ॥୧୨୯ |
| | ସେ କାଳେ ନାଭିସରୋବର । | ପଦ୍ମକୁ କଲା ସେ ଗୋଚର | ॥୧୩୦ |
| | ଆପଣା ରୂପ, ଜଳ, ବାତ । | ଆକାଶ ଦେଖିଲା ବିଧାତ | ॥୧୩୧ |
| | ଏଥିରୁ ଆନ କିଛି ତହିଁ । | କଥାଏ ଦେଖିଲା ସେ ନାହିଁ | ॥୧୩୨ |
| ୩୩ | ରଜଗୁଣରେ ହୋଇ ଯୁତ । | ପ୍ରଜାସର୍ଗରେ ଦେଇ ଚିତ୍ତ | ॥୧୩୩ |
| | ଲୋକ ସୃଷ୍ଟିକି ହେତୁ କରି । | ଏତେ ମାତ୍ରକ ଅବଧାରି[୩] | ॥୧୩୪ |

---

୧. ଶ୍ରୀବତ୍ସ = ଭୃଗୁଙ୍କର ପାଦଚିହ୍ନ; ଦକ୍ଷିଣାବର୍ତ୍ତ ରୋମାବଳୀ ।

୨. ମହାଚନ୍ଦନବୃକ୍ଷ (ସ୍ୱାମୀ) । ୩. ଅବଧାରଣ କରି ।

| | | | |
|---|---|---|---|
| ବିସର୍ଗେ ଅଭିମୁଖ ହୋଇ | । | ଈଶ୍ୱରଠାରେ ମନ ଦେଇ | ॥୧୩୫ |
| ସ୍ତୁତିକି ଯୋଗ୍ୟ ଯେ ଶ୍ରୀପତି | । | ତାହାଙ୍କୁ ବ୍ରହ୍ମା କଲା ସ୍ତୁତି | ॥୧୩୬ |
| ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସୁଜନେ ! ଲୟ କର ଏଣେ | ॥୧୩୭ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀଭଗବଦ୍ଦର୍ଶନଂ ନାମ ଅଷ୍ଟମୋଽଧ୍ୟାୟଃ ॥

## ନବମୋଽଧ୍ୟାୟଃ

ନବମେ ତପସା ତୁଷ୍ଟଂ ଦୃଷ୍ଟ୍ୱା ନାରାୟଣଂ ଦ୍ୱିଜଃ ।
ଅସ୍ତୌଦେକାର୍ଣ୍ଣବେ ସୀଦନ୍ ଲୋକସର୍ଗଚିକୀର୍ଷୟା ॥ ୧ ॥

ଶ୍ରୀବ୍ରହ୍ମା ଉବାଚ

| | | | | | |
|---|---|---|---|---|---|
| ୧ | ଅନେକ କାଳ ତପ କରି | । | ତୋତେ ମୁଁ ଜାଣିଲଇଁ ହରି | ॥ | ୧ |
| | ତୋ ଗତି ନ ଜାଣେ ଯେ ନର | । | ଏ କଥା ଦୋଷ ଅଟେ ତାର | ॥ | ୨ |
| | ତୋ ତହୁଁ ଆନ କେହି ନାହିଁ | । | ଯେ ଅଛି ସତ୍ୟ ସେ ନୁହଇ | ॥ | ୩ |
| | ତୁ ମାୟାଗୁଣ-କ୍ଷୋଭୁଁ କରି | । | ବିରାଜୁ ନାନା ରୂପ ଧରି | ॥ | ୪ |
| ୨ | ଯେ ତୁମ୍ଭେ ନିତ୍ୟ ଜ୍ଞାନରସ | । | ଉଦୟେ ତମ କର ନାଶ | ॥ | ୫ |
| | ସାଧୁଙ୍କ ଅନୁଗ୍ରହ ଦ୍ୱାରେ | । | ଏ ରୂପ ଧଇଲ ଆଦ୍ୟରେ | ॥ | ୬ |
| | ଶତସଂଖ୍ୟକ ଅବତାର | । | ମୂଳ କାରଣ ଏ ଶରୀର | ॥ | ୭ |
| | ଯା' ନାଭିପଦ୍ମଭବନରୁ | । | ମୁଁ ଜାତ ହୋଇଲି ଆଦ୍ୟରୁ | ॥ | ୮ |
| ୩ | ଆନନ୍ଦ ମାତ୍ର ଭେଦହୀନ | । | ଅଟେ ସ୍ୱଭାବେ ଜ୍ୟୋତିପୂର୍ଣ୍ଣ | ॥ | ୯ |
| | ତୋର ଏମନ୍ତ ରୂପୁଁ ଭିନ୍ନ | । | ଦେଖୁ ନାହିଁ ମୁଁ ଏ ଲୋଚନ[୧] | ॥ | ୧୦ |
| | ଏ ବିଶ୍ୱ ତୋହର ସର୍ଜନ | । | ତୁ ଏକ ଏଥୁଁ ଅଟୁ ଆନ | ॥ | ୧୧ |
| | ଭୂତ-ଇନ୍ଦ୍ରିୟ-ଆତ୍ମା ତୁହି | । | ତୋତେ ଆଶ୍ରୟ କଲି ମୁହିଁ | ॥ | ୧୨ |
| ୪ | ଭୁବନମଙ୍ଗଳ ! ତୋହର | । | ଏଟି ଅଟଇ ସେ ଶରୀର | ॥ | ୧୩ |
| | ତୁମ୍ଭଙ୍କୁ ଭଜୁଁ ଆମ୍ଭେମାନେ | । | ଆମ୍ଭଙ୍କୁ ଦେଖାଇଲ ଧ୍ୟାନେ | ॥ | ୧୪ |
| | ଶ୍ରୀଭଗବାନ ! ନମସ୍କାର | । | ତୁମ୍ଭଙ୍କୁ ସଂତତେ ଆମ୍ଭର | ॥ | ୧୫ |

---

୧. ଲୋଚନଦ୍ୱାରା ।

| | | | | |
|---|---|---|---|---|
| | ତୁମ୍ଭଙ୍କୁ କରି ଅନାଦର । | ପଡ଼ନ୍ତି ନରକରେ ନର | ॥ | ୧୬ |
| | ଜଗତେ ଈଶ୍ୱର ନାହାନ୍ତି । | ଏହି କୁତର୍କ ଘେନିଥାନ୍ତି | ॥ | ୧୭ |
| ୫ | ବେଦ-ପବନ ଯାହା ନେଇ । | କର୍ଣ୍ଣରେ ପ୍ରବେଶ କରଇ | ॥ | ୧୮ |
| | ସେ ତୋର ପାଦପଦ୍ମଗନ୍ଧେ । | ଯେ ଆସ୍ୱାଦଇ କର୍ଣ୍ଣରନ୍ଧ୍ରେ | ॥ | ୧୯ |
| | ପରମ ଭକ୍ତିରେ ତୋହର । | ପାଦକୁ ଧରନ୍ତି ସେ ନର | ॥ | ୨୦ |
| | ତାଙ୍କ ହୃଦୟପଦ୍ମେ ଥାଉ । | କେବେହେଁ କେଣିକି ନ ଯାଉ | ॥ | ୨୧ |
| ୬ | ଦ୍ରବିଣ, ଦେହ, ମିତ୍ର ଅର୍ଥେ । | ତାବତ ଭୟ ଥାଇ ଚିତ୍ତେ | ॥ | ୨୨ |
| | ଯେ ଶୋକ, ସ୍ପୃହା ପରିଭବ । | ମମତା ଦୁଃଖହେତୁ, ଲୋଭ | ॥ | ୨୩ |
| | ଏମାନେ ଥାନ୍ତି ତେତେ କାଳ । | ଯାବତ ତୋ ପାଦକମଳ | ॥ | ୨୪ |
| | ଲୋକ ଆଶ୍ରୟ ନ କରଇ । | ଯାହା ସେବିଲେ ଭୟ ନାହିଁ | ॥ | ୨୫ |
| ୭ | ସେ ଲୋକମାନେ ଦଇବରେ । | ବିନଷ୍ଟମତି ଏ ସଂସାରେ | ॥ | ୨୬ |
| | ସର୍ବ-ଅଶୁଭ-ବିନାଶନ । | ତୁମ୍ଭର ଶ୍ରବଣ କୀର୍ତ୍ତନ | ॥ | ୨୭ |
| | ଏ ଆଦି ପ୍ରସଙ୍ଗରୁ ପୁଣି । | ବିମୁଖ-ଇନ୍ଦ୍ରିୟ ଯେ ପ୍ରାଣୀ | ॥ | ୨୮ |
| | କାମସୁଖର ଲେଶଲବ । | ନିମିତ୍ତେ ଯେବଣ ମାନବ | ॥ | ୨୯ |
| | ଲୋଭାଭିଭୂତମନା[୧] ହୋନ୍ତି । | ଅଭଦ୍ର ନିତ୍ୟେ ଆଚରନ୍ତି | ॥ | ୩୦ |
| ୮ | କ୍ଷୁଧା, ପିପାସା, ବାତ, ପିତ୍ତ । | ଶ୍ଳେଷ୍ମା, ଶୀତୋଷ୍ଣ, ବୃଷ୍ଟି, ବାତ | ॥ | ୩୧ |
| | ଏକ ଆରେକ ବିରୋଧରେ । | ଦୁଃସହ କାମାଗ୍ନି, ରୋଷରେ | ॥ | ୩୨ |
| | ପୀଡ଼ିତ ଦେଖି ପ୍ରଜାମାନ । | ବିଷାଦ ଲଭୁଛି ମୋ ମନ | ॥ | ୩୩ |
| ୯ | ଯାବତ ମାୟାବଳୁଁ ତୋର । | ଦେହକୁ ଆତ୍ମା ମଣେ ନର | ॥ | ୩୪ |
| | ତାବତ ନ ତୁଟେ ସଂସାର । | ଜାତ କରଇ ଦୁଃଖ ଘୋର | ॥ | ୩୫ |
| | କର୍ମଫଳକୁ ଯେ ଦିଅଇ । | ତେଣେ ଏ ଜୀବ ଭ୍ରମୁଥାଇ | ॥ | ୩୬ |
| ୧୦ | ନାନା ବ୍ୟାପାରରେ ଦିବସେ । | ଆର୍ତ୍ତ ଇନ୍ଦ୍ରିୟଗଣ ପୋଷେ | ॥ | ୩୭ |
| | ରାତ୍ରରେ ନିଦ୍ରା ଯାଇ ଯେବେ । | ସ୍ୱପ୍ନ ଦେଖଇ ନାନାଭାବେ | ॥ | ୩୮ |
| | ଚିନ୍ତିଣ ନାନା ମନୋରଥ । | କ୍ଷଣକ୍ଷଣକେ ନିଦ୍ରା ହତ | ॥ | ୩୯ |
| | ଯେବଣ ଅର୍ଥକୁ ପାଞ୍ଚଇ । | ସେ କଥା ଦଇବ ଭାଙ୍ଗଇ | ॥ | ୪୦ |
| | ଏ ଘେନି ତୋର ପ୍ରସଙ୍ଗରେ । | ବିମୁଖ ହୋଇ ଏ ସଂସାରେ | ॥ | ୪୧ |
| | ମୁନିହିଁ କରନ୍ତି ଭ୍ରମଣ । | ଲଭିଣ ଜନମ ମରଣ | ॥ | ୪୨ |

୧. ମନ ।

୧୧　ତୁ ଭକ୍ତିଯୋଗେ ବିଶୋଧିତ　।　ହୃଦୟପଦ୍ମରେ ବିଦିତ　॥ ୪୩
ଶ୍ରବଣ କରି କଥା ତୋର　।　ତୋ ମାର୍ଗ ଜାଣିପାରେ ନର　॥ ୪୪
ହେ ଉରୁଗାୟ ! ତୋର ଜନେ।　ଚିନ୍ତନ୍ତି ଯେଉଁ ରୂପ ମନେ　॥ ୪୫
ତାହାଙ୍କ ଅନୁଗ୍ରହ ଅର୍ଥେ　।　ସେ ରୂପ ପ୍ରକାଶୁ ଜଗତେ　॥ ୪୬
୧୨　ସକାମ ହୋଇ ସୁରଗଣ　।　ଘେନିଣ ଉପହାରମାନ　॥ ୪୭
ତୋତେ କରନ୍ତି ଆରାଧନ　।　ତୁ ତେଣେ ନୋହୁ ତୋଷମନ　॥ ୪୮
ଅସାଧୁ ଜନଙ୍କୁ ଦୁର୍ଲଭ　।　ସକଳ ଜୀବେ ଦୟାଭାବ　॥ ୪୯
ତେଣେ ସନ୍ତୋଷ ତୋର ଚିତ୍ତ।　ତୁ ଆତ୍ମା ସର୍ବଭୂତେ ସ୍ଥିତ　॥ ୫୦
୧୩　ଏଣୁ ଯାଗାଦି କର୍ମମାନ　।　ଉଗ୍ର ତପସ୍ୟା ବ୍ରତ ଦାନ　॥ ୫୧
ଏଣେ ତୋହର ଆରାଧନ　।　କରନ୍ତି ଯେବେ ସାଧୁଜନ　॥ ୫୨
ତାହାଙ୍କ କ୍ରିୟା ଫଳସାର　।　ଯେଣୁ ଧର୍ମକୁ ତୋହଠାର　॥ ୫୩
ଅର୍ପିତ କଲେ କଦାଚିତ　।　ଭୋ ନାଥ ! ନୁହଇ ସେ ହତ　॥ ୫୪
୧୪　ତୋହ ସ୍ୱରୂପ-ଚଇତନ　।　ବିନାଶ କରେ ଭେଦଜ୍ଞାନ　॥ ୫୫
ପ୍ରବୋଧ ବିଦ୍ୟାଶକ୍ତି ତୋର　।　ଭୋ ଦେବ ! ତୋତେ ନମସ୍କାର ॥ ୫୬
ବିଶ୍ୱ-ଉଦ୍‌ଭବସ୍ଥିତିନାଶେ　।　ନିମିତ୍ତଲୀଳା ତୋ ପ୍ରକାଶେ　॥ ୫୭
ତୁ ଅଟୁ ଜଗତ-ଈଶ୍ୱର　।　ତୋତେ ମୋହର ନମସ୍କାର　॥ ୫୮
୧୫　ଯା' ଅବତାର-ଗୁଣ-କର୍ମ　।　ଏଥକୁ ସଦୃଶ ଯେ ନାମ　॥ ୫୯
ପ୍ରାଣପ୍ରୟାଣକାଳେ ଚିନ୍ତି　।　ଯେ ତାହା ବିବଶେ ଗାଆନ୍ତି　॥ ୬୦
ଅନେକ ଜନ୍ମର କଳ୍ମଷ　।　ସେମାନେ କରିଣ ବିନାଶ　॥ ୬୧
ପ୍ରବେଶ ହୁଅନ୍ତି ବ୍ରହ୍ମରେ　।　ନାହିଁ ଆବରଣ ଯହିଁରେ　॥ ୬୨
ଏମନ୍ତ ପ୍ରଭୁ ଯେ ଅଟଇ　।　ତାକୁ ପ୍ରପନ୍ନ ହେଲି ମୁହିଁ　॥ ୬୩
୧୬　ଯେ ଆଦ୍ୟେ ଏକ ହୋଇଥିଲା ।　ପଛେ ପ୍ରକୃତିକି ଭେଦିଲା　॥ ୬୪
ସୃଷ୍ଟି-ସଂହାର-ପାଳନରେ　।　ଯେ ହେତୁ ରଜଆଦିଦ୍ୱାରେ　॥ ୬୫
ମୁଁ, ଶିବ, ସ୍ୱୟଂ ବିଷ୍ଣୁ ସେହି　।　ଏ ରୂପେ ତିନି ସ୍କନ୍ଧ ହୋଇ　॥ ୬୬
ମରୀଚି ଆଦି ଋଷିଗଣ　।　ଯାହାର ନାନା ଶାଖାମାନ　॥ ୬୭
ଭୁବନଦ୍ରୁମ ଯେ ଈଶ୍ୱର　।　ତାଙ୍କୁ ମୋହର ନମସ୍କାର　॥ ୬୮
୧୭　*ଲୋକ ବିକର୍ମରତ ହୋଇ　।　ତୁମ୍ଭେ ଯା ସ୍ୱୟେଂ ଅଛ କହି　॥ ୬୯
ହିତ ଅଟଇ ଆପଣାର　।　ଅର୍ଚ୍ଚନ ବିଧାନ ତୁମ୍ଭର　॥ ୭୦

---

* ଯତ୍ କରୋଷି ଯଦଶ୍ନାସି ଯଜ୍ଜୁହୋଷି ଦଦାସି ଯତ୍ ।
ଯତ୍ ତପସ୍ୟସି କୌନ୍ତେୟ ତତ୍କୁରୁଷ୍ୱ ମଦର୍ପଣମ୍ ॥ (ଗୀତା)

| | | | | | |
|---|---|---|---|---|---|
| | ତହିଁରେ ସାବଧାନ ନୋହେ | । | ଗୃହରେ ଥାଇ ମାୟାମୋହେ | ।। | ୭୧ |
| | ଜୀବନ-ଆଶାକୁ ତାହାରି | । | ଯେ ତୁମ୍ଭେ କାଳରୂପ ଧରି | ।। | ୭୨ |
| | କ୍ଷଣକ ମାତ୍ରକେ ସଂହାର | । | ତୁମ୍ଭଙ୍କୁ ମୋର ନମସ୍କାର | ।। | ୭୩ |
| ୧୮ | ସକଳ ଲୋକେ ଯା ବଦନ୍ତି | । | ପାଇ ସେ ଦ୍ୱିପରାର୍ଦ୍ଧସ୍ଥିତି | ।। | ୭୪ |
| | ମୁଁ ଯାହାଠାରୁ ଭୟ ପାଇ | । | ଯାହାକୁ ଲଭିବାର ପାଇଁ | ।। | ୭୫ |
| | ଅନେକ କାଳ କଲି ତପ | । | ସେ ଯଜ୍ଞ-ଅଧିପତି ରୂପ | ।। | ୭୬ |
| | ସକଳ ଲୋକର ଈଶ୍ୱର | । | ତାଙ୍କୁ ମୋହର ନମସ୍କାର | ।। | ୭୭ |
| ୧୯ | ସ୍ୱକୃତ ଧର୍ମମର୍ଯ୍ୟାଦାର | । | ପାଳନଇଚ୍ଛା ଏ ଈଶ୍ୱର | ।। | ୭୮ |
| | ପଶୁ-ମନୁଷ୍ୟ-ଦେବାଦିରେ | । | ଜନମ ଲଭି ଯେ ବିହରେ | ।। | ୭୯ |
| | ବିଷୟସୁଖ ଯାର ନାହିଁ | । | ପୁରୁଷୋତ୍ତମ[୧] ଯେ ବୋଲାଇ | ।। | ୮୦ |
| | ସେ ଭଗବାନ ସର୍ବେଶ୍ୱର | । | ତାଙ୍କୁ ମୋହର ନମସ୍କାର | ।। | ୮୧ |
| ୨୦ | ପଞ୍ଚବୃତ୍ତି ଅବିଦ୍ୟା ଯାର | । | କରି ନ ପାରେ ଅପକାର | ।। | ୮୨ |
| | ଉଦରେ ଧରି ଲୋକମାନ | । | ପ୍ରଳୟଜଳରେ ଶୟନ | ।। | ୮୩ |
| | କରିକୋମଳ ଅହିଶେଯେ | । | ଜନ[୨] ଆନନ୍ଦକୁ ଯେ ଭଜେ | ।। | ୮୪ |
| ୨୧ | ତ୍ରିଲୋକ ଉପକାର କର୍ମେ | । | ମୋ ଜନ୍ମ ଯାର ନାଭିପଦ୍ମେ | ।। | ୮୫ |
| | ଯୋଗନିଦ୍ରାର ଅବସାନେ | । | ବିକାଶ ଯା' ପଦ୍ମନୟନେ | ।। | ୮୬ |
| | ଯା' ଗର୍ଭେ ଅଛି ଏ ସଂସାର | । | ତାଙ୍କୁ ମୋହର ନମସ୍କାର | ।। | ୮୭ |
| ୨୨ | ସମସ୍ତ ଜଗତର ଏହି | । | ସୁହୃଦ ଏକ ଆତ୍ମା ହୋଇ | ।। | ୮୮ |
| | ଯେବଣ ଜ୍ଞାନ ଐଶ୍ୱର୍ଯ୍ୟରେ | । | ସର୍ବ ଜଗତ ସୁଖ କରେ | ।। | ୮୯ |
| | ପ୍ରଣତିପ୍ରିୟ ସେ ଜଗତେ | । | ଜ୍ଞାନଦୃଷ୍ଟିକି ଦେଉ ମୋତେ | ।। | ୯୦ |
| | ତା' ଅନୁଗ୍ରହୁଁ ମୁଁ ଯେମନ୍ତେ | । | ସୃଷ୍ଟି କରିବି ପୂର୍ବ ମତେ | ।। | ୯୧ |
| ୨୩ | ଶରଣାଗତ ଯେ ହୁଅଇ | । | ତାହାକୁ ବର ଏ ଦିଅଇ | ।। | ୯୨ |
| | ଧରିଣ ଗୁଣ ଅବତାର | । | ଲକ୍ଷ୍ମୀକି ଘେନିଣ ସଙ୍ଗର | ।। | ୯୩ |
| | କରିବ ଯେତେ କର୍ମମାନ | । | ତହିଁରେ ହୋଇ ସାବଧାନ | ।। | ୯୪ |

---

୧. ଯସ୍ମାଦ୍ କ୍ଷରମତୀତୋଽହମକ୍ଷରାଦପି ଚୌତ୍ତମଃ ।
ଅତୋଽସ୍ମି ଲୋକେ ବେଦେ ଚ ପ୍ରଥିତଃ ପୁରୁଷୋତ୍ତମଃ ।। (ଗୀତା)

୨. ନିଜ ।

ତାହାର ଆଜ୍ଞାରେ ଜଗତ । ସର୍ଜନା କରନ୍ତେ ନିୟତ ॥ ୯୫
ଚିତ୍ତକୁ ପ୍ରବର୍ତ୍ତାଉ ମୋର । ଯେଣେ ଛାଡ଼ିବି ପାପ ଘୋର ॥ ୯୬
୨୪ ପ୍ରଳୟଜଳେ ମୁଁ ଯାହାର । ନାଭିରୁ ହୋଇଲି ବାହାର ॥ ୯୭
ଅନନ୍ତଶକ୍ତି ଅଟେ ସେହି । ବିଜ୍ଞାନଶକ୍ତି ମୁଁ ଅଟଇ ॥ ୯୮
ଏ ବିଶ୍ୱ ଅଟେ ରୂପ ତାର । ଏହା ମୁଁ କରନ୍ତେ ବିସ୍ତାର ॥ ୯୯
ମୋହର ବେଦ-ଉଚ୍ଚାରଣ । କେବେହେ ନୋହୁ ପରିକ୍ଷଣ ॥୧୦୦
୨୫ ଏ ଅଟେ ପୁରାଣ ପୁରୁଷ । ଯାହାର କରୁଣା ଅଶେଷ ॥୧୦୧
ସଂସାରଜୟ ନିମିତ୍ତରେ । ନିଦ୍ରାରୁ ଉଠିଣ ସତ୍ୱରେ ॥୧୦୨
ଗାଢ଼ ସ୍ନେହରେ ମନ୍ଦ ହସି । ନୟନ କମଳ ପ୍ରକାଶି ॥୧୦୩
ମଧୁର ବାକ୍ୟରେ ମୋହର । ମନ ବିଷାଦ କରୁ ଦୂର ॥୧୦୪

ଶ୍ରୀମୈତ୍ରେୟ ଉବାଚ

୨୬ ଯାହାର ଠାରୁ ଆପଣାର । ଜାତ ହୋଇଛି କଳେବର ॥୧୦୫
ତପସ୍ୟା, ବିଦ୍ୟା, ସମାଧିରେ । ତାହାଙ୍କୁ ଦେଖି ଏ ପ୍ରକାରେ ॥୧୦୬
ଯେତେ ତା ମନବାକ୍ୟ ଗତି । ତେତେ ପ୍ରକାରେ କରି ସ୍ତୁତି ॥୧୦୭
ଖେଦଭାବକୁ କିଛି ଘେନି । ହୋଇଲା ପିତାମହ ତୁନି ॥୧୦୮
୨୭ ବିଷାଦଚିତ୍ତେ ସେ ଭାଳଇ । ପ୍ରଳୟ-ଜଳ-ମଧ୍ୟେ ଥାଇ ॥୧୦୯
ନ ଲଭି ଲୋକସୃଷ୍ଟିଜ୍ଞାନ । ଏ ଘେନି ଲଭେ ଖେଦ ମନ ॥୧୧୦
ଏମନ୍ତ ଅଭିପ୍ରାୟ ତାର । ଦେଖିଣ[୧] ଦେବ ଚକ୍ରଧର ॥୧୧୧
ଅତି ଗମ୍ଭୀର ବାକ୍ୟ କହି । ମୋହ ନାଶିଲା ପ୍ରାୟ ହୋଇ ॥୧୧୨

ଶ୍ରୀଭଗବାନୁବାଚ

୨୯ ହେ ବେଦଗର୍ଭ ! ଚତୁର୍ମୁଖ । ବେଗେ ତୁ ଛାଡ଼ ମନଦୁଃଖ ॥୧୧୩
ଯେମନ୍ତେ ସୃଷ୍ଟି ଜାତ ହୋଇ । ତହିଁ ଉପାୟ କର ତୁହି ॥୧୧୪
ତୁ ଯେଉଁ କଥା ମୋତେ ମାଗୁ । ମୁଁ ତାହା ସଂପାଦିଛି ଆଗୁଁ ॥୧୧୫
୩୦ ପୁଣି ତପକୁ ଆଶ୍ରେ କର । ମୋ ଆଶ୍ରେ ବିଦ୍ୟା ତୁ ଆଚର ॥୧୧୬
୩୧ ତେଣୁ ସକଳ ଲୋକମାନ । ହୃଦେ କରିବୁ ଦରଶନ ॥୧୧୭
ତୁ ପୁଣି ଭକ୍ତିଯୁତ ହୋଇ । ସମାଧିଠାରେ ମନ ଦେଇ ॥୧୧୮
ଆତ୍ମାରେ ଲୋକରେ ସଂତତ । ମୁଁ ଅଛି, ଦେଖିବୁ ଏମନ୍ତ ॥୧୧୯
ଜୀବମାନଙ୍କୁ ମୋହଠାରେ । ଦେଖିବୁ ଲୋକସହିତରେ ॥୧୨୦

୧. ଜାଣିଣ ।

୩୨ ସକଳ ଭୂତରେ ମୁଁ ଥାଇ । ଦାରୁରେ ଅଗ୍ନିପ୍ରାୟ ହୋଇ ।।୧୨୧
ଏ ରୂପେ ଦେଖଇ ଯେ ମୋତେ । ମୋହ ନ ଲଭେ ନିଜ ଚିତ୍ତେ ।।୧୨୨
୩୩ ଭୂତ-ଇନ୍ଦ୍ରିୟ-ଗୁଣାଶୟେ । ରହିତ ଆତ୍ମା ଯେବେ ହୋଏ ।।୧୨୩
ମୁଁ ତହିଁ ଏକ ହୋଇଥାଇ । ଏ ରୂପେ ଦେଖି ମୋକ୍ଷ ପାଇ ।।୧୨୪
୩୪ କର୍ମବିତାନେ ନାନାମତେ । ପ୍ରଜାଙ୍କୁ ସର୍ଜନ୍ତେ ଜଗତେ ।।୧୨୫
ତୋ ଆତ୍ମା ମୋର ଅନୁଗ୍ରହେ । ବୁଡ଼ିବ ନାହିଁ ମାୟାମୋହେ ।।୧୨୬
୩୫ ତୁ ଆଦ୍ୟ ଋଷି ମୋରେ ମନ । ଦେଇ ସର୍ଜିବୁ ପ୍ରଜାଜନ ।।୧୨୭
ଏ ଯେ ପାପିଷ୍ଠ ରଜୋଗୁଣ । ତୋତେ ନ କରିବ ବନ୍ଧନ ।।୧୨୮
୩୬ ପ୍ରାଣୀ ଦୁର୍ଲଭ ମୁଁ ଜଗତେ । ତୁ ଯେ ଜାଣିଲୁ ଏବେ ମୋତେ ।।୧୨୯
ଭୂତ-ଇନ୍ଦ୍ରିୟାଦିରେ ଯେଣୁ । ଅଯୁକ୍ତ କରି ମୋତେ ମଣୁ ।।୧୩୦
୩୭ ତୁ ଯେ ସଂଶୟଚିତ୍ତ ହୋଇ । କମଳନାଳମଧ୍ୟେ ଯାଇ ।।୧୩୧
ମୂଳ ଦେଖିବା ଇଚ୍ଛା କଲୁ । ଅନେକ କାଳହିଁ ଭ୍ରମିଲୁ ।।୧୩୨
ଦୟା ବସିଲା ମୋର ଚିତ୍ତେ । ଅନ୍ତରେ ଦେଖା ଦେଲି ତୋତେ ।।୧୩୩
୩୮ ମୋହର ଚରିତେ ମିଶାଇ । ମୋ ସ୍ତୁତି କଲୁ ଯାହା ତୁହି ।।୧୩୪
ଯେ ବା ତପରେ ନିଷ୍ଠା ତୋର । ସେ ଅଟେ ଅନୁଗ୍ରହ ମୋର ।।୧୩୫
୩୯ ସୁପ୍ରୀତ ହୋଇଲି ମୁଁ ତୋତେ । କଲ୍ୟାଣ ଲଭ ତୁ ଜଗତେ ।।୧୩୬
ଲୋକ-ବିଜୟ-କାମନାରେ । ଯେ ସ୍ତୁତି କଲୁ ମୋହଠାରେ ।।୧୩୭
ମୁଁ ଗୁଣମୟ ପ୍ରାୟ ଖ୍ୟାତ । ବର୍ଣ୍ଣିଲୁ ନିର୍ଗୁଣ ଚରିତ ।।୧୩୮
୪୦ ଏ ତୋର ସ୍ତୋତ୍ରେ କରି ସ୍ତୁତି । ଯେ ମୋତେ ଭଜେ ପ୍ରଜାପତି ।।୧୩୯
ମୁଁ ସର୍ବକାମବରପତି । ତା'ଠାରୁ ହୋଇ ତୋଷମତି ।।୧୪୦
୪୧ ପୂର୍ତ୍ତ, ତପସ୍ୟା, ଯଜ୍ଞ, ଦାନ । ଯୋଗ, ସମାଧି ଦ୍ୱାରେ ଜନ ।।୧୪୧
ଯେବଣ ମୋକ୍ଷକୁ ଲଭଇ । ସେ ମୋର ପ୍ରୀତି ଜ୍ଞାନୀ[୧] କହି ।।୧୪୨
୪୨ ମୁଁ ଆତ୍ମାଙ୍କର ଆତ୍ମା ହୋଇ । ପ୍ରିୟମାନଙ୍କ ପ୍ରିୟ ମୁହିଁ ।।୧୪୩
ଏଣୁ ମୋଠାରେ ପ୍ରୀତି କରେ । ଦେହାଦି ପ୍ରିୟ ଯା' ହେତୁରେ ।।୧୪୪
୪୩ ତୁ ଆତ୍ମା ସର୍ବ ବେଦସାର । ମୁଁ ଆତ୍ମା ଅଟଇ ତୋହର ।।୧୪୫
ପ୍ରଜାଏ ଛନ୍ତି ମୋର ଠାଏଁ । ତାହାଙ୍କୁ ସର୍ଜ ପୂର୍ବପ୍ରାୟେ ।।୧୪୬

---

୧. ଜ୍ଞାନୀମାନେ କହନ୍ତି ।

ଶ୍ରୀ ମୈତ୍ରେୟ ଉବାଚ

୪୪ ପ୍ରଧାନ-ପୁରୁଷ-ଈଶ୍ୱର । ବ୍ରହ୍ମାଙ୍କୁ କହି ଏ ଉତ୍ତର ॥୧୪୭
ପ୍ରକାଶି ଜଗତର ଭାବ । ଅନ୍ତର ହେଲେ ପଦ୍ମନାଭ ॥୧୪୮
ସେ ପଦ୍ମନାଭର ଚରଣ । ଦୀନବନ୍ଧୁର ସେ ଶରଣ ॥୧୪୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀବ୍ରହ୍ମସ୍ତବୋ ନାମ ନବମୋଽଧ୍ୟାୟଃ ॥

## ଦଶମୋଽଧ୍ୟାୟଃ

ଦଶମେ କାଳସଂପ୍ରଶ୍ନଂ ପ୍ରତିବକ୍ତୁଂ ତଦୁଦ୍ଭବଃ ।
ପ୍ରାକୃତାଦିବିଭାଗେନ ସର୍ଗସ୍ତୁ ଦଶଧୋଚ୍ୟତେ ॥ ୧ ॥

ଶ୍ରୀବିଦୁର ଉବାଚ

୧ ମୈତ୍ରେୟପାଦେ ଦେଇ ଶିର । ଆନନ୍ଦେ ପଚାରେ ବିଦୁର ॥ ୧
୨ ଭୋ ମୁନି ! କହ ଶୁଦ୍ଧ ମନେ । ହରି ଯେ ଗଲେ ଅନ୍ତର୍ଧାନେ ॥ ୨
କେତେ ପ୍ରକାରେ ପ୍ରଜାମାନ । ସର୍ଜିଲେ କମଳ-ଆସନ ॥ ୩
ଦେହରୁ କେତେ କଲେ ଜାତ । ମନରୁ କେତେକ ସଂଭୂତ ॥ ୪
ବହୁତ ଅର୍ଥ ଜାଣ ତୁମ୍ଭେ । ଯେତେକ ପଚାରିଲୁଁ ଆମ୍ଭେ ॥ ୫
ସେ କଥାମାନ କ୍ରମେ କହ । ଛିଣ୍ଡାଅ ସକଳ ସଂଶୟ ॥ ୬

ଶ୍ରୀସୂତ[୧] ଉବାଚ

୩ ବିଦୁର ପୁଚ୍ଛନ୍ତେ ଏମନ୍ତ । ମୈତ୍ରେୟ ହୋଇ ତୋଷଚିତ୍ତ ॥ ୭
କହିଲେ ସବୁ ପ୍ରଶ୍ନମାନ । ଯେ ଥିଲା ଆପଣାର ମନ ॥ ୮

ଶ୍ରୀମୈତ୍ରେୟ ଉବାଚ

୪ ଗୋବିନ୍ଦବାକ୍ୟେ ପ୍ରଜାପତି । ଆତ୍ମାରେ ନିବେଶିଣ ମତି ॥ ୯
ଶତେ ବତ୍ସର ଦେବମତେ । ତପ ସାଧିଲା ଦୃଢ଼ ଚିତ୍ତେ ॥ ୧୦
୫ ସେ ବ୍ରହ୍ମା ଯହିଁ ଥିଲେ ବସି । ସେ ପଦ୍ମ ସଙ୍ଗେ ଜଳରାଶି ॥ ୧୧
୬ କାଳସକାଶୁଁ ବଳିୟାର । ପବନେ କମ୍ପେ ଅତି ଖର ॥ ୧୨

---

୧. ଶ୍ରୀଶୁକ ଉବାଚ

ଦେଖି ଏମନ୍ତ ମହାତପେ । ଆପଣା ବିଦ୍ୟାର ପ୍ରତାପେ ।। ୧୩
ପିଇଲେ ଜଳସଙ୍ଗେ ବାତ । ବିଜ୍ଞାନବଳ-ଅପ୍ରମିତ ।। ୧୪
୭ ଯହିଁରେ କରିଛି ଆସନ । ସେ ପଦ୍ମ ବ୍ୟାପିଛି ଗଗନ ।। ୧୫
ଦେଖି ବିଚାରିଲା ଏମନ୍ତ । ଯେ ଲୋକମାନେ ହେଲେ ହତ ।। ୧୬
ସେ ଲୋକମାନେ ଏ ପଦ୍ମରେ । କଳ୍ପିବି ଆପଣା ବୁଦ୍ଧିରେ ।। ୧୭
୮ ଲଭିଣ ଈଶ୍ୱର ଆଦେଶ । ସେ ପଦ୍ମେ ହୋଇଣ ପ୍ରବେଶ ।। ୧୮
ତାହାକୁ ତିନି ଭାଗ କଲା । ତ୍ରିଲୋକ ତହିଁରେ ସର୍ଜିଲା ।। ୧୯
କ୍ରମରେ ଚତୁର୍ଦ୍ଦଶ ଲୋକ । କଳ୍ପିବ ଆବର ଅନେକ ।। ୨୦
୯ ଜୀବଙ୍କ କର୍ମଭୋଗସ୍ଥାନ । ରଚନା ଏ ତିନିଭୁବନ ।। ୨୧
ନିଷ୍କାମ କର୍ମର[୧] ବିପାକ । ଅଟେ କେବଳ ବ୍ରହ୍ମଲୋକ ।। ୨୨

ଶ୍ରୀବିଦୁର ଉବାଚ

୧୦ ଅଦ୍ଭୁତକର୍ମା ଭଗବାନ । ଧରଇ ନାନା ରୂପମାନ । ୨୩
କାଳ ଅଟଇ ରୂପ ତାର । ତୁମ୍ଭେ କହିଛ ଏ ପ୍ରକାର ।। ୨୪
କାଳକୁ ଯଥାର୍ଥ ଭାବରେ । ଭୋ ମୁନି ! କହ ମୋ ଆଗରେ ।। ୨୫

ଶ୍ରୀମୈତ୍ରେୟ ଉବାଚ

୧୧ ଯେ ଗୁଣମାନଙ୍କ ଆଦ୍ୟରେ । ମହତ ଆଦି ତତ୍ତ୍ୱ କରେ ।। ୨୬
ଯାକୁ ବିଶେଷି ନୋହେ କହି । ଯାହାର ଆଦିଅନ୍ତ ନାହିଁ ।। ୨୭
ସେ କାଳ, ତାକୁ ଉପାଦାନ । କରିଣ ଦେବ ଭଗବାନ ।। ୨୮
ଆତ୍ମାକୁ କଲେକ ସର୍ଜନ । ଯେଣୁ ତା' ତହୁଁ ନାହିଁ ଆନ ।। ୨୯
୧୨ ବିଷ୍ଣୁମାୟାରେ ଯା' ସଂହାର । ବ୍ରହ୍ମ ଅଟଇ ଏ ସଂସାର ।। ୩୦
ଅବ୍ୟକ୍ତ ଅଟେ ମୂର୍ତ୍ତି ଯାର । ଯେ ଅଟେ ଜଗତଈଶ୍ୱର ।। ୩୧
ସେ କାଳବଳେ ପ୍ରକାଶିତ । ହୋଇଣ ଅଛି ଏ ଜଗତ ।। ୩୨
୧୩ ବର୍ତ୍ତମାନରେ ଏ ସଂସାର । ହୋଇଛି ଯେମନ୍ତ ପ୍ରକାର ।। ୩୩
ପୂର୍ବେ ଏ ରୂପେ ଥିଲା ହୋଇ । ପଛେ ଏ ରୂପେ ଥିବ ରହି ।। ୩୪
୧୪ ପ୍ରାକୃତ ଷଟ ସର୍ଗ ତାର । ବିକୃତ ତିନିସର୍ଗ ଆର ।। ୩୫
ତ୍ରିବିଧ ପ୍ରଳୟ ଏହାର । କହିବା ଶୁଣ ତୁ ବିଦୁର ! ।। ୩୬

---

୧. କର୍ମରୁ ।

କେବଳ କାଳରେ ଯେ ହୋଇ । ନିତ୍ୟ ପ୍ରଳୟ ସେ ବୋଲାଇ ॥ ୩୭
ଅନନ୍ତ-ମୁଖାନଳୁଁ ଜାତ । ନଇମିତ୍ତିକ ସେ ବିଦିତ ॥ ୩୮
ନିଜ କାର୍ଯ୍ୟକୁ ଗୁଣମାନେ । ଗ୍ରାସ କରନ୍ତି ଯେଉଁ ଦିନେ ॥ ୩୯
ଅଟେ ପ୍ରାକୃତ ନାମ ତାର । ପ୍ରଳୟ ଯହିଁରେ ବ୍ରହ୍ମାର ॥ ୪୦
୧୫ ହରିସକାଶୁ ଗୁଣଙ୍କର । ବୈଷମ୍ୟ ଅଟେ ରୂପ ଯାର ॥ ୪୧
ମହତ ତତ୍ତ୍ୱ ସେ ବୋଲାଇ । ତା' ଜନ୍ମ ଆଦି ସର୍ଗ ହୋଇ ॥ ୪୨
ଜାତ ହୁଅଇ ଅହଂକାର । ଦ୍ୱିତୀୟ ସର୍ଗ ସେ ବିଦୁର ! ॥ ୪୩
ଯେ ଦ୍ରବ୍ୟ-ଜ୍ଞାନ-କ୍ରିୟା ତିନି । ଯହିଁରେ ଉଦୟକୁ ଘେନି ॥ ୪୪
୧୬ ତୃତୀୟେ ଭୂତସୂକ୍ଷ୍ମ ସର୍ଗ । ଯହିଁରେ ମହାଭୂତବର୍ଗ ॥ ୪୫
ଚତୁର୍ଥେ ଇନ୍ଦ୍ରିୟ ଜନମ । ଯେ ଜ୍ଞାନ-କ୍ରିୟାରୂପେ ଭିନ୍ନ ॥ ୪୬
୧୭ ପଞ୍ଚମ ସର୍ଗ ବୈକାରିକ । ସେ ରୂପୁଁ ମାନସ ସାତ୍ତ୍ୱିକ ॥ ୪୭
ଷଷ୍ଠ ଅବିଦ୍ୟା ସର୍ଗ ହୋଇ । ଯେ ମନବିକ୍ଷେପ କରଇ ॥ ୪୮
୧୮ ପ୍ରାକୃତ ସର୍ଗ ଏହୁ ଜାଣ । ବୈକୃତ ସର୍ଗ ଏବେ ଶୁଣ ॥ ୪୯
ଯାର ବିଷୟେ ଦେଇ ମତି । ପ୍ରାଣୀଏ ସଂସାରୁ ତରନ୍ତି ॥ ୫୦
ସେ ହରି ଧରେ ରଜୋଗୁଣ । ଯାହାର ଲୀଳା ଏହୁ ଜାଣ ॥ ୫୧
୧୯ ସପ୍ତମ ମୁଖ୍ୟ ସର୍ଗ ହୋଇ । ସ୍ଥାବର ଷଡ଼ବିଧ ଯେହି ॥ ୫୨
ଲତା, ଔଷଧି, ବନସ୍ପତି । ବେଣୁ, ବୀରୁଧ ଦ୍ରୁମ ଜାତି ॥ ୫୩
ଊର୍ଦ୍ଧ୍ୱେ ସଂଚାର ଏହାଙ୍କର । ଅଜ୍ଞାନ ଅଟଇ ପ୍ରଚାର ॥ ୫୪
ସ୍ପରଶ ଜାଣନ୍ତି ଅନ୍ତରେ । ନାନା ପ୍ରକାରେ ଭେଦ ଧରେ ॥ ୫୫
୨୦ *ଅଷ୍ଟମ ସର୍ଗ ପଶୁଙ୍କର । ସେ ଅଷ୍ଟାବିଂଶତି ପ୍ରକାର ॥ ୫୬
ସ୍ଥିର ନୁହଇ ତାଙ୍କ ଜ୍ଞାନ । ଭକ୍ଷ୍ୟେ କେବଳ ଥାଇ ମନ ॥ ୫୭
ଆଘ୍ରାଣେ ଅର୍ଥକୁ ଜାଣନ୍ତି । ଅନୁସଂଧାନ ନ କରନ୍ତି ॥ ୫୮
୨୧ ଗାଈ, ମହିଷ, ଛାଗ ତିନି । ଗବୟ, ଶୂକର ହରିଣୀ ॥ ୫୯
୨୪ ଯେ ମୃଗ, ମେଷ, ଉଷ୍ଟ୍ର ହୋଇ । ଦ୍ୱିଶଫ ବୋଲି ତାଙ୍କୁ କହି ॥ ୬୦
ଯେ ଖର, ଅଶ୍ୱ, ଅଶ୍ୱତର । ଚମରୀ, ଶରଭ, ଗଉର ॥ ୬୧
ଏକଶଫ ଏ ଜନ୍ତୁଗଣ । ପଞ୍ଚନଖାଙ୍କୁ ଏବେ ଶୁଣ ॥ ୬୨
ଶ୍ୱାନ, ଶୃଗାଳ, ବ୍ୟାଘ୍ର, ବୃକ । ମାର୍ଜାର, ଶଶକ, ଶଲ୍ଲକ ॥ ୬୩

* ''ଅଥ ଇତରେଷାଂ ପଶୂନାମ୍ ଅଶନାପିପାସେ ଏବାଭିର୍ବିଜ୍ଞାନଂ ନ ବିଜ୍ଞାତଂ ବଦନ୍ତି, ନ ବିଜ୍ଞାତଂ ପଶ୍ୟନ୍ତି, ନ ବିଦୁଃ ଶ୍ୱସ୍ତନମ୍, ନ ଲୋକାଲୋକୌ ॥'' (ଶ୍ରୁତିଃ)

ସିଂହ, ବାନର, ଗଜ, କୂର୍ମ । ଗୋଧା ବୋଲିଣ ଯାର ନାମ ॥ ୬୪
ମକର ଆଦି ଜଳଜୀବେ । ଗଗନଚର ଶୁଣ ଏବେ ॥ ୬୫
ଯେ କଙ୍କ[1], ବକ, ଗୃଧ୍ର, ଶ୍ୱେନ । ଭାସ[2], ଭଲ୍ଲୁକ[3], ବରହିଣ ॥ ୬୬
ହଂସ, ସାରସ, ଚକ୍ରବାକ । ଇତ୍ୟାଦି, ଯେ କାକ, ଉଲୂକ ॥ ୬୭
୨୫ ନବମ ସର୍ଗ ନରଙ୍କର । ଅଟନ୍ତି ସେ ଏକ ପ୍ରକାର ॥ ୬୮
ଭୂମିରେ ଆହାର ସଂଚାର । ରଜ-ଅଧିକ, କର୍ମପର ॥ ୬୯
ଦୁଃଖକୁ ସୁଖ କରି ଚିନ୍ତି । ଗୃହରେ ବନ୍ଦୀ ହୋଇଥାନ୍ତି ॥ ୭୦
୨୬ ବୈକୃତ ସର୍ଗ ଏହୁ ତିନି । ଦେବସର୍ଗ ହିଁ ଏଥି ଘେନି ॥ ୭୧
ପ୍ରାକୃତ ସର୍ଗେ ଥାଇ କହି । ବଇକାରିକକୁ ମିଶାଇ ॥ ୭୨
ମନୁଷ୍ୟ-ଦେବତା ସ୍ୱଭାବ । କୁମାର ସର୍ଗ ବେନିଭାବ ॥ ୭୩
୨୭ ବଇକାରିକ ଦେବଗଣ । ଆଠ ପ୍ରକାରେ ହୋଏ ଶୁଣ ॥ ୭୪
୨୮ ବିବୁଧ, ପିତୃ, ଦୈତ୍ୟଗଣ । ଗନ୍ଧର୍ବାପ୍‌ସର ଏକ ଜାଣ ॥ ୭୫
ଯକ୍ଷ ରାକ୍ଷସ ଏକ ହୋଇ । ଭୂତ, ପ୍ରେତ, ପିଶାଚ ଯେହି ॥ ୭୬
ସେ ତିନି ଏକଇ ପ୍ରକାର । ସିଦ୍ଧ, ଚାରଣ ବିଦ୍ୟାଧର ॥ ୭୭
ଏହାଙ୍କୁ ଏକ କରି ମାନି । କିନ୍ନର ଆଦି[4] ଏକ ଘେନି ॥ ୭୮
ବ୍ରହ୍ମାର କୃତ ସର୍ଗ ଦଶ । ତୋ ଆଗେ କଲାଇଁ ପ୍ରକାଶ ॥ ୭୯
୨୯ ଏଥି ଉତ୍ତାରୁ ତୋ ଆଗର । କହିବା ବଂଶ, ମନ୍ୱନ୍ତର ॥ ୮୦
ରଜୋଗୁଣରେ ହୋଇ ଯୁତ । କଳ୍ପ ଆଦିରେ ରମାକାନ୍ତ ॥ ୮୧
ଆତ୍ମାକୁ ଆତ୍ମାରେ ସର୍ଜଇ । ଅମୋଘ ସଂକଳ୍ପ ବୋଲାଇ ॥ ୮୨
୩୦ ଆବର୍ତ୍ତବୁଦ୍‌ବୁଦ ଯେମନ୍ତ । ନଦୀରେ ଜନ୍ମେ ଯୁଗପତ ॥
ମାୟାବି-ପଣରୁ ପ୍ରଭୁର । ସୃଷ୍ଟିରେ ତେମନ୍ତ ପ୍ରକାର ॥
ସକଳ ହୋଏ ଯୁଗପତ । ଏ ଘେନି ସୁଜ୍ଞାନୀ ପଣ୍ଡିତ ॥
ପୂର୍ବ ଅପର ନ ଇଚ୍ଛନ୍ତି । ଏ ଅଟେ ସର୍ଜନାର ରୀତି ॥
୩୧ ନାମରୂପର ଅନୁସାରେ । ଏ କଳ୍ପେ ଯେତେ ଦେବାସୁରେ ॥
କୀର୍ତ୍ତିତ ହୁଅନ୍ତି ବିଦୁର ! । ବିଗତ ଯେଉଁ ମନ୍ୱନ୍ତର ॥
ତହିଁରେ ଥିଲେ ସେହିମାନ । ସେ ନାମ ସେ ରୂପ ବହିଣ ॥

---

୧. ଲୋହପୃଷ୍ଠସ୍ତୁ କଙ୍କଃ ସ୍ୟାଦଥ ଚାଷଃ କିକୀଦିବି । (ଅମରକୋଷ)
୨. ଭାସ = ଶିକାରୀ ପକ୍ଷୀବିଶେଷ । ୩. ଭଲ୍ଲୁକ । ୪. କିଂପୁରୁଷ ଅଶ୍ୱମୁଖ ।

| | | | | |
|---|---|---|---|---|
| | ବିଦୁର ଆଗରେ ଏ ବାଣୀ । | ମୈତ୍ରେୟ ଋଷି ଛନ୍ତି ଭଣି | ।। | ୮୩ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣି । | ସୁଜନେ ତର ଏହା ଶୁଣି | ।। | ୮୪ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ତତ୍ତ୍ୱାଦ୍ୟୁତ୍ପତ୍ତିକ୍ରମୋ ନାମ ଦଶମୋଽଧ୍ୟାୟଃ ।।

## ଏକାଦଶୋଽଧ୍ୟାୟଃ

ତତ ଏକାଦଶେ କାଳଃ ପରମାଣ୍ୱାଦିଲକ୍ଷଣୈଃ ।
ଯୁଗମନ୍ୱନ୍ତରାଦିଭ୍ୟଃ କଳ୍ପମାନାଦି ବର୍ଣ୍ଣ୍ୟତେ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧ | କାଳବିଶେଷନିରୂପଣ । | ବିଦୁର ! ସାବଧାନେ ଶୁଣ | ।। | ୧ |
| | ନୟନଗୋଚର ଯେ ହୋଇ । | ତାହାକୁ କାର୍ଯ୍ୟ ବୋଲି କହି | ।। | ୨ |
| | ତାହାର ଅଂଶମାନଙ୍କରେ । | ଯେ ଅଂଶ ରହଇ ପ୍ରାନ୍ତରେ | ।। | ୩ |
| | ଯାହାର ଆଉ ଅଂଶ ନାହିଁ । | କାର୍ଯ୍ୟ ଅବସ୍ଥାକୁ ନ ପାଇ | ।। | ୪ |
| | ସଂଯୁତ ନୁହଇ ଆନରେ । | ସେ ପରମାଣୁ ନାମ ଧରେ | ।। | |
| | ଯେବଣ ପରମାଣୁମାନେ । | ରୁଣ୍ଡ ହୁଅନ୍ତି ଏକ ସ୍ଥାନେ | ।। | ୫ |
| | ତହିଁରୁ ଅବୟବି-ମତି । | ପ୍ରାଣୀମାନଙ୍କର ହୁଅନ୍ତି | ।। | ୬ |
| ୨ | ସ୍ୱରୂପେ ହୋଇ ଅବସ୍ଥିତ । | ବର୍ତ୍ତିଣ ଥାଇ ଯେ ପଦାର୍ଥ | ।। | ୭ |
| | ତାହାର ଐକ୍ୟ ଭାବ ଯେହି । | ପରମ ମହାନଟି ସେହି | ।। | ୮ |
| | ବିଶେଷ-ବିଚାରରହିତ । | ଭେଦବୁଦ୍ଧିରେ ବିବର୍ଜିତ | ।। | ୯ |
| | ହେଲେ ଏ ଲକ୍ଷଣ ଘଟଇ । | ସକଳ ପ୍ରପଞ୍ଚେ ମିଶଇ | ।। | ୧୦ |
| ୩ | ପରମାଣୁକୁ ଆଦି ହୋଇ । | ଯେତେକ ଅବସ୍ଥା ଅଛଇ | ।। | ୧୧ |
| | ଯାହାକୁ ବ୍ୟାପୀ ଏ ସଂସାରେ । | ଅବ୍ୟକ୍ତ ବ୍ୟକ୍ତେ ଭୋଗ କରେ | ।। | ୧୨ |
| | ଏମନ୍ତ ଯେ କାଳ ଅଟଇ । | ତା' ସ୍ଥୂଳସୂକ୍ଷ୍ମ ଭାବ ଦୁଇ | ।। | ୧୩ |
| | ଏ ରୂପେ କରି ଅନୁମାନ । | ଦ୍ରବ୍ୟର ବିଭାଗ ଯେସନ | ।। | ୧୪ |
| ୪ | ଏ ପ୍ରପଞ୍ଚର ପରମାଣୁ । | ଅବସ୍ଥା ଭୋଗ କରେ ଯେଣୁ | ।। | ୧୫ |
| | ସେ କାଳ ପରମାଣୁ ହୋଇ । | ଯେବେ ଅବିଶେଷ[1] ଭୁଞ୍ଜଇ | । | ୧୬ |
| | ପରମ ମହାନ ସେ ହୋଏ । | ଯେ ସଂବତ୍ସର-ସଂଜ୍ଞା ବହେ | ।। | ୧୭ |

୧. ଅବିଶେଷ = ସାମାନ୍ୟ, ସାକଲ୍ୟ ।

୫ ମିଶିଲେ ପରମାଣୁ ଦୁଇ । ତାହାକୁ ଅଣୁ ବୋଲି କହି ॥ ୧୮
ସଂଯୋଗ ହେଲେ ତିନି ଅଣୁ । ତା' ନାମ ହୋଏ ତ୍ରସରେଣୁ ॥ ୧୯
ଗବାକ୍ଷମାର୍ଗେ ରବିକରେ । ଦିଶୁଣ ଥାଇ ଯେ ଶୂନ୍ୟରେ ॥ ୨୦
୬ ଯେ ଭୁଞ୍ଜେ ତ୍ରସରେଣୁ ତିନି । ସେ କାଳ ତ୍ରୁଟି ବୋଲି ମାନି ॥ ୨୧
ଯହିଁରେ ଶତେ ତ୍ରୁଟି ଥାଇ । ତାହାକୁ ବେଧ ବୋଲି କହି ॥ ୨୨
ଏକ ହୋଇଲେ ବେଧ ତିନି । ତାହାକୁ ଲବ ବୋଲି ଘେନି ॥ ୨୩
୭ ତ୍ରିଲବେ ନିମେଷ ହୁଅଇ । ତିନି ନିମେଷେ କ୍ଷଣ କହି ॥ ୨୪
କାଷ୍ଠା ବୋଲାଇ ପଞ୍ଚକ୍ଷଣ । ତା'ପଞ୍ଚଦଶ ଲଘୁ ଜାଣ ॥ ୨୫
୮ ପନ୍ଦର ଲଘୁ ଯେବେ ହୋଇ । ତାହାକୁ ନାଡ଼ି ବୋଲି କହି ॥ ୨୬
ଭୋଗ ହୋଇଲେ ନାଡ଼ି ଦୁଇ । ମୁହୂର୍ତ୍ତ ବୋଲି ତାକୁ କହି ॥ ୨୭
ଛ ନାଡ଼ି ଅବା ନାଡ଼ି ସାତ । ପ୍ରହର ଯାମ ସେ ବିଦିତ ॥ ୨୮
୯ ଷଟ୍ ପଳକୃତ ତାମ୍ରପାତ୍ରେ । ସୁବର୍ଣ୍ଣ ଚାରିମଷା ମାତ୍ରେ ॥ ୨୯
ଚତୁରଙ୍ଗୁଳ ପରିମାଣ । ଶଳାକାରଚନା-ଭିଆଣ ॥ ୩୦
ମୂଳରେ ଥାଇ ଛିଦ୍ର କରି । ପ୍ରବେଶ ହୋଇ ତହିଁ ବାରି ॥ ୩୧
ସେ ଯେବେ ଜଳରେ ବୁଡ଼ଇ । ତାବତ କାଳେ ନାଡ଼ି ହୋଇ ॥ ୩୨
୧୦ ଆଠ ପ୍ରହରେ ହୋଏ ଶେଷ । ପ୍ରାଣୀଙ୍କ ରଜନୀଦିବସ ॥ ୩୩
ପନ୍ଦର ଅହୋରାତ୍ରେ ପକ୍ଷ । ଏ ଶୁକ୍ଳ କୃଷ୍ଣ ରୂପେ ଲକ୍ଷ୍ୟ ॥ ୩୪
୧୧ ବେନି ପକ୍ଷରେ ମାସ ହୋଇ । ପିତୃଙ୍କ ଅହୋରାତ୍ର ସେହି ॥ ୩୫
ଦୁଇ ମାସରେ ଋତୁ ହୋଇ । ଛ' ମାସେ ଅୟନ ବୋଲାଇ ॥ ୩୬
ଦକ୍ଷିଣ ଉତ୍ତର ସଂଜ୍ଞାରେ । ଅୟନ ବିଦିତ ସଂସାରେ ॥ ୩୭
୧୨ ବେନି ଅୟନ ଅବସାନ । ଦେବଙ୍କୁ ହୋଏ ରାତ୍ରଦିନ ॥ ୩୮
ଦ୍ୱାଦଶମାସେ ସଂବତ୍ସର । ହୋଏ ମନୁଷ୍ୟମାନଙ୍କର ॥ ୩୯
ଶତେ ବରଷ ପରିମାଣ । ପରମାୟୁଷ ନିରୂପଣ ॥ ୪୦
୧୩ ପରମାଣୁକୁ ଆଦି ହୋଇ । ଯେ କାଳ ବରଷ ବୋଲାଇ ॥ ୪୧
ଦ୍ୱାଦଶ ରାଶିରେ ପ୍ରଚାର । ହୁଅଇ ତେଣେ ଦିବାକର ॥ ୪୨
କାଳଚକ୍ରର ମଧ୍ୟସ୍ଥିତ । ଜଗତପ୍ରଭୁ ସେ ବିଦିତ ॥ ୪୩
୧୪ ବାର ରାଶିରେ ଦିବାକର । ଭ୍ରମନ୍ତେ ହୋଏ ସଂବତ୍ସର ॥ ୪୪
ରାଶିଏ ଗୁରୁ ଭୋଗ କଲେ । ପରିବତ୍ସର ବୋଲି ଭଲେ ॥ ୪୫
ଦିନଗଣନାରେ ଯେ ଶେଷ । ଇଦାବତ୍ସର ସେ ପ୍ରକାଶ ॥ ୪୬

ଯେ ଚନ୍ଦ୍ରମାନେ ବ୍ୟବହାର । ଅନୁବସ୍ତର ନାମ ତାର ॥ ୪୭
ନକ୍ଷତ୍ରମାନେ ଯାକୁ ଗଣି । ବସ୍ତର ବୋଲି ତାକୁ ଜାଣି ॥ ୪୮
୧୫ ସର୍ଜନାଯୋଗ୍ୟ ଯେ ଅଟନ୍ତି । ତାଙ୍କ ବିଷୟେ ନିଜ ଶକ୍ତି ॥ ୪୯
ଯେ ନିଜ କାଳାକ୍ଷ ଶକ୍ତିରେ । ପ୍ରକାଶେ ବହୁତ ପ୍ରକାରେ ॥ ୫୦
ପ୍ରାଣୀଙ୍କ ଭ୍ରମ ନିବାରଇ । ଯେ ମହାଭୂତ ରୂପ ହୋଇ ॥ ୫୧
ଧାମଇଁ ଆକାଶ ମଧ୍ୟରେ । ଯାଗରେ ସ୍ୱର୍ଗକୁ ବିସ୍ତାରେ ॥ ୫୨
ଯେ କରେ ବସ୍ତରପଞ୍ଚକ । ସେ ଆଦିତ୍ୟକୁ ସର୍ବଲୋକ ॥ ୫୩
ନାନା ପ୍ରକାରେ ଉପହାର । ଘେନିଣ ବେଗେ ପୂଜା କର ॥ ୫୪

ଶ୍ରୀବିଦୁର ଉବାଚ

୧୬ ଯେ ପିତୃ ଦେବତା ମନୁଷ୍ୟ । ଶୁଣିଲୁଁ ତାଙ୍କର ଆୟୁଷ ॥ ୫୫
ଗତିକି କହ ତାହାଙ୍କର । ଯେ ଜ୍ଞାନୀ ସଂସାରୁ ବାହାର ॥ ୫୬
୧୭ ଭୋ ମୁନି ! ଗତିକି କାଳର । ତୁମ୍ଭେ ଯେ କରିଛ ଗୋଚର ॥ ୫୭
ଯୋଗଚକ୍ଷୁରେ ଯୋଗୀଜନ । ଦେଖନ୍ତି ସକଳ ଭୁବନ ॥ ୫୮

ଶ୍ରୀମୈତ୍ରେୟ ଉବାଚ

୧୮ ସତ୍ୟ, ତ୍ରେତା, ଦ୍ୱାପର, କଳି । ଏ ରୂପେ ଚାରିଯୁଗ ମିଳି ॥ ୫୯
ଦ୍ୱାଦଶ ସହସ୍ର ବରଷ । ଦେବତାମାନରେ ପ୍ରକାଶ ॥ ୬୦
୧୯ ଚାରି ସହସ୍ର ଯୁଗସତ୍ୟ । ତିନି ସହସ୍ର ତ୍ରେତା ମତ ॥ ୬୧
ଦ୍ୱାପର ଦ୍ୱିସହସ୍ର ଜାଣି । କଳି ସହସ୍ରେ ପରିମାଣି ॥ ୬୨
ଯେତେ ସହସ୍ର ଯେବା ହୋଇ । ଦ୍ୱିଗୁଣ ଶତ ତହିଁ ଦେଇ ॥ ୬୩
ଏମନ୍ତେ ଦେବସଂଖ୍ୟା ମତେ । ଦ୍ୱାଦଶ ସହସ୍ର ସମସ୍ତେ ॥ ୬୪
୨୦ ଅଧିକ ଯେତେ ଶତମାନ । ଯେ ସଂଧ୍ୟାସଂଧ୍ୟାଂଶ ବିଧାନ ॥ ୬୫
ଯହିଁ ଧର୍ମବିଶେଷମାନ । ପଣ୍ଡିତେ କରନ୍ତି ବିଧାନ ॥ ୬୬
୨୧ ଚାରିପାଦରେ ଜନଠାରେ । ଧର୍ମ ଅନୁବର୍ତ୍ତେ ସତ୍ୟରେ ॥ ୬୭
ଆନ ଯୁଗରେ ପୁଣ ସେହି । ପାଦେ ପାଦେକେ ଊଣା ହୋଇ ॥ ୬୮
ଅଧର୍ମ ବଢ଼ଇ କ୍ରମରେ । ପାଦେ ପାଦେକେ ସେ ଯୁଗରେ ॥ ୬୯
୨୨ ଏ ତିନି ଲୋକୁଁ ହୋଇ ଆନ । ଅଛନ୍ତି ଯେତେ ଲୋକମାନ ॥ ୭୦
ମହର୍ଲୋକକୁ ଆଦି ହୋଇ । ବ୍ରହ୍ମଲୋକ ପର୍ଯ୍ୟନ୍ତେ ତହିଁ ॥ ୭୧

ଚାରି ସହସ୍ର ଯୁଗ ଶେଷ । ହୁଅଇ ଏକଇ ଦିବସ ॥ ୭୨
ପୁଣି ତେତିକି ନିଶା ହୋଇ । ଯହିଁରେ ପିତାମହ ଶୋଇ ॥ ୭୩
୨୩ ଆରମ୍ଭ ନିଶାଅବସାନେ । ଏ ଲୋକକଳ୍ପ ପ୍ରତିଦିନେ ॥ ୭୪
ଏମନ୍ତେ ବ୍ରହ୍ମାର ଦିବସ । ଭୁଞ୍ଜାଇ ମନୁ ଚତୁର୍ଦ୍ଦଶ ॥ ୭୫
କିଛି ଅଧିକ ଏକସ୍ତରି । ଯୁଗରେ ମନୁ ହୋଏ ସରି ॥ ୭୬
ଯେଉଁ ମନୁର କାଳ ଯେତେ । ଭୋଗ କରଇ ସେହୁ ତେତେ ॥ ୭୭
୨୪ ମନୁଅନ୍ତରେ ମନୁମାନ । ସପତ ଋଷି ସୁରଗଣ ॥ ୭୮
ଇନ୍ଦ୍ର, ଏହାଙ୍କ ଗଣ ଯେହି । ହୁଅନ୍ତି ଏକକାଳେ ସେହି ॥ ୭୯
ମନୁଙ୍କ ବଂଶେ ଜାତ ପୁଣି । କ୍ରମରେ ପାଳନ୍ତି ଧରଣୀ ॥ ୮୦
୨୫ ଯେ ବ୍ରହ୍ମା ତ୍ରିଲୋକ-ଈଶ୍ୱର । ଏ ଦିନେ ଦିନେ ସର୍ଗ[1] ତାର ॥ ୮୧
ପଶୁ, ମନୁଷ୍ୟ, ପିତୃ, ଦେବ । ଯହିଁରେ ସ୍ୱକର୍ମେ ସଂଭବ ॥ ୮୨
୨୬ ମନୁ-ଅନ୍ତରେ ଭଗବାନ । ସତ୍ତ୍ୱକୁ ଧରି ମୂର୍ତ୍ତିମାନ ॥ ୮୩
ବିଶ୍ୱକୁ ମନୁ ଆଦିଦ୍ୱାରେ । ପାଳଇ ନିଜ ପୌରୁଷରେ ॥ ୮୪
୨୭ ତମଲେଶକୁ ପୁଣି ଧରି । ଆପଣା ବିକ୍ରମ ସଂହରି ॥ ୮୫
କାଳେ ଉଦରେ ସର୍ବ ଘେନି । ଦିବସଶେଷେ ହୋଏ ତୁନି ॥ ୮୬
୨୮ ରଜନୀ ହୁଅନ୍ତେ ତାହାର । ନ ଥାନ୍ତି ଶଶି ଦିବାକର ॥ ୮୭
ବ୍ରହ୍ମାଙ୍କୁ ଅନୁଗତ ହୋଇ । ଏ ତିନି ଲୋକ ନାଶ ଯାଇ ॥ ୮୮
୨୯ ସଂକରଷଣମୁଖାନଳେ । ତ୍ରିଲୋକ ପୋଡ଼େ ଯେଉଁକାଳେ ॥ ୮୯
ଋଷିଏ ଭୃଗୁ ଆଦି ହୋଇ । ଉଷ୍ମ ତରଙ୍ଗେ ପୀଡ଼ା ପାଇ ॥ ୯୦
ମହର୍ଲୋକକୁ ଛାଡ଼ି ଶୋକେ । ମିଳନ୍ତି ଯାଇଁ ଜନଲୋକେ ॥ ୯୧
୩୦ କଳ୍ପାନ୍ତ କାଳେ ସିନ୍ଧୁମାନ । ବଢ଼ିଣ କରନ୍ତି ଗର୍ଜନ ॥ ୯୨
ଅତି ଆଟୋପ ଚଣ୍ଡାନିଳେ । ଊର୍ମି ଧାମନ୍ତି ଅନ୍ତରାଳେ ॥ ୯୩
ଏ ତିନି ଭୁବନ ସେ କାଳେ । ମଗ୍ନ କରନ୍ତି ନିଜ ଜଳେ ॥ ୯୪
୩୧ ନୟନ ଯୋଗନିଦ୍ରାଭରେ । ବୁଜି ଅନନ୍ତ ଶୟନରେ ॥ ୯୫
ସେ ଜଳେ ଶୋଏ ପ୍ରଜାପତି[2] । ଋଷି ଯେ ଜନଲୋକେ ଥାନ୍ତି ॥ ୯୬
ନାନା ପ୍ରକାରେ ସ୍ତୁତିମାନ । ତାହାଙ୍କୁ କରନ୍ତି ବିଧାନ ॥ ୯୭

---

୧. ସର୍ଗ = ସୃଷ୍ଟି । ୨. ମୂଳପାଠସ୍ଥ 'ହରି' ଶବ୍ଦର ଅର୍ଥ । ହରିବ୍ରହ୍ମା (ସ୍ୱାମୀ)

| | | | | | |
|---|---|---|---|---|---|
| ୩୨ | କାଳଗତିରେ ଯେ ଗଣନ | । | ଏ ରୂପେ ଅହୋରାତ୍ରମାନ | ॥ | ୯୮ |
| | ଏ ଭାବେ ଶତେକ ବରଷ | । | ବ୍ରହ୍ମାର ପରମ ଆୟୁଷ | ॥ | ୯୯ |
| | ସେହି କାଳର ବଶୁଁ କ୍ଷୀଣ | । | ହୋଇଲା ପ୍ରାୟ ବୋଲି ଜାଣ | ॥ | ୧୦୦ |
| ୩୩ | ବ୍ରହ୍ମାର ଆୟୁଷ ଯେ ଅର୍ଦ୍ଧ | । | ତା' ନାମ ବୋଲାଇ ପରାର୍ଦ୍ଧ | ॥ | ୧୦୧ |
| | ପୂର୍ବ ପରାର୍ଦ୍ଧ ଅବଶେଷ | । | ଦ୍ୱିତୀୟ ପରାର୍ଦ୍ଧ ପ୍ରବେଶ | ॥ | ୧୦୨ |
| ୩୪ | ପୂର୍ବ ପରାର୍ଦ୍ଧ ଆଦ୍ୟେ ଯେହି | । | ସେ ବ୍ରାହ୍ମ କଳ୍ପ ନାମ ବହି | ॥ | ୧୦୩ |
| | ଯହିଁରେ ବ୍ରହ୍ମା ହେଲେ ଜାତ | । | ଶବଦ ବ୍ରହ୍ମ ସେ ବିଦିତ | ॥ | ୧୦୪ |
| ୩୫ | ଯେ କଳ୍ପ ତାହାର ଅନ୍ତରେ | । | ସେ ପାଦକଳ୍ପ ନାମ ଧରେ | ॥ | ୧୦୫ |
| | ହରିର ନାଭିସରୁଁ ଯହିଁ | । | ଏ ଲୋକରୂପୀ ପଦ୍ମ ହୋଇ | ॥ | ୧୦୬ |
| ୩୬ | ଦ୍ୱିତୀୟ ପରାର୍ଦ୍ଧ ଆଗମ | । | ବାରାହ ଏ କଳ୍ପର ନାମ | ॥ | ୧୦୭ |
| | ଯହିଁ ବରାହତନୁ ଧରି | । | ପ୍ରକାଶ ହେଲେ ଦେବ ହରି | ॥ | ୧୦୮ |
| ୩୭ | ଯେହୁ ଅନନ୍ତ ଅବିକାର | । | ଅନାଦି, ଆତ୍ମା ଜଗତର | ॥ | ୧୦୯ |
| | ଯେ କାଳ ଦ୍ୱିପରାର୍ଦ୍ଧ ଗଣି | । | ତାର ନିମେଷ ବୋଲି ଜାଣି | ॥ | ୧୧୦ |
| ୩୮ | ଏ କାଳ ପରମାଣୁ ଆଦି | । | ଦୁଇ ପରାର୍ଦ୍ଧ ଅନ୍ତେ ସିଦ୍ଧି | ॥ | ୧୧୧ |
| | ସକଳ ଲୋକେ ତେଜ ଧରେ | । | ପ୍ରଭୁ ନୁହଇ ବିଷ୍ଣୁଠାରେ | ॥ | ୧୧୨ |
| ୩୯ | ଅଷ୍ଟ ପ୍ରକୃତିରେ ସଂଯୁତ | । | ଷୋଡ଼ଶ ବିକାର ସହିତ | ॥ | ୧୧୩ |
| ୪୦ | କ୍ରମରେ ଦଶ ଦଶ ଗୁଣ | । | ପୃଥିବୀ ଆଦି ଆବରଣ | ॥ | ୧୧୪ |
| | ବେଢ଼ିଣ ଅଛନ୍ତି ବାହାରେ | । | ପଞ୍ଚାଶ କୋଟି ଯେ ବିସ୍ତାରେ | ॥ | ୧୧୫ |
| | ପରମାଣୁର ପ୍ରାୟ ହୋଇ | । | ଏ ଅଣ୍ଡକୋଷ ଅଛି ରହି | ॥ | ୧୧୬ |
| | ଏ ରୂପେ କୋଟି ସଂଖ୍ୟା ଯହିଁ | । | ଅଛନ୍ତି ଅଣ୍ଡକୋଷ ରହି | ॥ | ୧୧୭ |
| ୪୧ | ସେ ସର୍ବକାରଣକାରଣ | । | ଅକ୍ଷର ବ୍ରହ୍ମ ବୋଲି ଜାଣ | ॥ | ୧୧୮ |
| | ଯେ ବିଷ୍ଣୁ ମହାତ୍ମା ପୁରୁଷ | । | ତାହା ସ୍ୱରୂପ ସେ ପ୍ରକାଶ | ॥ | ୧୧୯ |
| | ବ୍ରାହ୍ମଣ ଦୀନବନ୍ଧୁ କହେ | । | ସୁଜନେ କର ଏଣେ ଲୟେ | ॥ | ୧୨୦ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
କାଳସ୍ୱରୂପକଥନଂ ନାମ ଏକାଦଶୋଽଧ୍ୟାୟଃ ॥

# ଦ୍ୱାଦଶୋଽଧ୍ୟାୟଃ

ଦ୍ୱାଦଶେ ତୁ କୁମାରାଦିମନଃସର୍ଗାସମେଧନାତ ।
କାୟାଦ୍ ବୈଧେନ ଯୌନସ୍ତୁ ମନୁସର୍ଗୋଽନୁବର୍ଣ୍ଣ୍ୟତେ ॥

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ କହିଲୁଁ ବିଦୁର ! । କାଳବ୍ୟବସ୍ଥା ତୋ ଆଗର ॥ ୧
ଯେ ହରି ଆତ୍ମା ସକଳର । ସେ କାଳ ମହିମା ତାହାର ॥ ୨
ବିଧାତା ସଂସାର ଯେମନ୍ତେ । ସର୍ଜିଲା ଶୁଣ ଏକଚିତ୍ତେ ॥ ୩
୨ ସୃଷ୍ଟିର ଆଦ୍ୟରେ ବିଧାତ । ଅନ୍ଧତାମିସ୍ରଂ କଲେ ଜାତ ॥ ୪
ତାମିସ୍ର, ମହାମୋହ ବେନି । ମୋହ, ତମକୁ କଲା ପୁଣି ॥ ୫
ଅବିଦ୍ୟାବୃତ୍ତି ଏହୁ ପଞ୍ଚ । ଏହାଙ୍କୁ ଦେଖିଣ ବିରିଞ୍ଚ ॥ ୬
୩ ପାପବହୁଳ ସୃଷ୍ଟି ଜାଣି । ଆତ୍ମାକୁ ତୁଚ୍ଛ କରି ମଣି ॥ ୭
ଭଗବାନଙ୍କୁ କରି ଧ୍ୟାନ । ପବିତ୍ର କରି ନିଜ ମନ ॥ ୮
ଆନମାନଙ୍କୁ ତଦନ୍ତରେ । ସର୍ଜନା କଲା ସେ ମନରେ ॥ ୯
୪ ସନକ, ସନନ୍ଦ ଯେ ବେନି । ଆବର ସନାତନ ମୁନି ॥ ୧୦
ସନତକୁମାର ଯେ ସିଦ୍ଧି । ଏହାଙ୍କୁ ଜାତ କଲା ବିଧି ॥ ୧୧
ସର୍ବେ ଅଟନ୍ତି ଊର୍ଦ୍ଧ୍ୱରେତା । କର୍ମବର୍ଜିତ ବ୍ରହ୍ମବେତ୍ତା ॥ ୧୨
୫ ତାହାଙ୍କୁ ବୋଇଲେ ବିଧାତ । ହେ ପୁତ୍ରେ ! ପ୍ରଜା କର ଜାତ ॥ ୧୩
ଶ୍ରୀବାସୁଦେବପରାୟଣ । ହୋଇଣ ସମସ୍ତେ ସେ ପୁଣ ॥ ୧୪
ମୋକ୍ଷମାର୍ଗରେ ରତ ହେଲେ । ପିତାର ବଚନ ନ କଲେ ॥ ୧୫
୬ ଏ ରୂପେ ନ କରି ବଚନ । ଅବଜ୍ଞା କଲେ ସୁତମାନ ॥ ୧୬
ତେଣୁ ଯେବଣ କ୍ରୋଧ ଜାତ । ତାର ନିରୋଧେ କଲା ଚିତ୍ତ ॥ ୧୭
୭ କ୍ରୋଧବିନାଶକୁ ବିଚାର । କରନ୍ତେ ଭ୍ରୂରୁମଧ୍ୟୁଁ ତାର ॥ ୧୮
ସେ କ୍ରୋଧ ପୁତ୍ରରୂପେ ଜାତ । ଦିଶଇ ସେ ନୀଳଲୋହିତ ॥ ୧୯

---

୧. ତମୋଽବିବେକୋ ମୋହଃ ସ୍ୟାଦନ୍ତଃକରଣବିଭ୍ରମଃ ।
ମହାମୋହସ୍ତୁ ବିଜ୍ଞେୟୋ ଗ୍ରାମ୍ୟଭୋଗସୁଖୈଷଣା ॥ ୧ ॥
ମରଣଂ ହ୍ୟନ୍ଧତାମିସ୍ରଂ ତାମିସ୍ରଃ କ୍ରୋଧ ଉଚ୍ୟତେ ।
ଅବିଦ୍ୟା ପଞ୍ଚପର୍ବୈଷା ପ୍ରାଦୁର୍ଭୂତା ମହାତ୍ମନଃ ॥ ୨ ॥ (ବୈଷ୍ଣବେ)
"ଅବିଦ୍ୟା-ଅସ୍ମିତା-ରାଗ-ଦ୍ୱେଷ-ଅଭିନିବେଶାଃ ପଞ୍ଚକ୍ଲେଶାଃ" (ପାତଂଜଳେ)

୮ ଦେବଙ୍କ ପୂର୍ବେ ଜାତ ହୋଇ । ସେ ଭବ ରୋଦନ କରଇ ॥ ୨୦
ତୁମ୍ଭେ ତ ଗୁରୁ ଜଗତର । ମୋ ନାମ-ସ୍ଥାନମାନ କର ॥ ୨୧
୯ ଏମନ୍ତ ତାହାର ବଚନ । ସେ ବ୍ରହ୍ମା କରନ୍ତେ ପାଳନ ॥ ୨୨
ବୋଇଲେ ନ କାନ୍ଦ କୁମର ! । ସେ କଥା କରିବି ତୋହର ॥ ୨୩
୧୦ ବାଳକ ପ୍ରାୟେକ ଅସ୍ଥିର । ଯେଣୁ କାନ୍ଦିଲୁ ସୁରବର ! ॥ ୨୪
ଏଣୁ ସକଳ ପ୍ରଜା ତୋତେ । ରୁଦ୍ର ବୋଲିବେ ଏ ଜଗତେ ॥ ୨୫
୧୧ ମନ, ଇନ୍ଦ୍ରିୟ, ପ୍ରାଣ, ବ୍ୟୋମ । ବାୟୁ, ଅନଳ, ଜଳ, ନାମ ॥ ୨୬
ମହୀ, ମିହିର, ଚନ୍ଦ୍ର, ତପ । ଏମନ୍ତେ ଏକାଦଶ ରୂପ ॥ ୨୭
ସ୍ଥାନକୁ ତୋହ ନିମିତ୍ତରେ । ସଂପାଦି ଅଛି ମୁଁ ପୂର୍ବରେ ॥ ୨୮
୧୨ ପ୍ରଥମେ ମନ୍ୟୁ, ମନୁ ଦୁଇ । ତୃତୀୟେ ମହିନସ ହୋଇ ॥ ୨୯
ଚତୁର୍ଥେ ମହାନ ପଞ୍ଚମ । ଶିବ ଯେ ଋତଧ୍ୱଜ ନାମ ॥ ୩୦
ତଦନ୍ତେ ଊର୍ଦ୍ଧ୍ୱରେତା, ଭବ । ଆବର କାଳ, ବାମଦେବ ॥ ୩୧
ତଦନନ୍ତରେ ଧୃତବ୍ରତ । ଏମନ୍ତେ ତୋର ନାମ ଖ୍ୟାତ ॥ ୩୨
୧୩ ଧୀ, ବୃତ୍ତି[୧] ଅସହା[୨] ଏ ତିନି । ଉମା, ନିୟୁତ, ସର୍ପି, ଘେନି ॥ ୩୩
ଇଡ଼ା, ଅମ୍ବିକା, ଇରାବତୀ । ଯେ ସୁଧା,[୩] ଦୀକ୍ଷା ତୋ ଯୁବତୀ ॥ ୩୪
୧୪ ହେ ରୁଦ୍ର ତୋର ଏକାଦଶ । ରୁଦ୍ରାଣୀ ଏ ରୂପେ ପ୍ରକାଶ ॥ ୩୫
ଏ ନାମ, ସ୍ଥାନ, ଭାର୍ଯ୍ୟାମାନ । ମୋହର ଆଦେଶରୁ ଘେନ ॥ ୩୬
ଏଣେ ସର୍ଜନେ କର ମତି । ଯେଣୁ ତୁ ଅଟୁ ପ୍ରଜାପତି ॥ ୩୭
୧୫ ଏମନ୍ତ ଗୁରୁ-ଆଜ୍ଞା ପାଇ । ନୀଳ ଲୋହିତ ତୋଷ ହୋଇ ॥ ୩୮
ନିଜ ସ୍ୱଭାବ, ବଳ, ବର୍ଣ୍ଣ । ସମାନେ କଲେ ପ୍ରଜାମାନ ॥ ୩୯
୧୬ ସେ ରୌଦ୍ର ରୁଦ୍ର ପ୍ରଜାମାନ । ଗ୍ରାସନ୍ତେ[୪] ସକଳ ଭୁବନ ॥ ୪୦
ଦେଖି ତାହାଙ୍କ ଗଣମାନ । ବ୍ରହ୍ମା ଆଶଙ୍କା କଲେ ମନ ॥ ୪୧

ଶ୍ରୀବ୍ରହ୍ମୋବାଚ

୧୭ ଏ ପ୍ରଜାମାନଙ୍କୁ ଭିଆଇ । ହେ ସୁରବର ! କାର୍ଯ୍ୟ ନାହିଁ ॥ ୪୨
ମୋର ସହିତେ ଦିଗମାନ । ଚକ୍ଷୁରେ କରନ୍ତି ଦହନ ॥ ୪୩
୧୮ ଏବେ ତୁ ତପ ସାଧ କର । ଯେ ସର୍ବଜୀବ ସୁଖଘର ॥ ୪୪
ତପର ବଳେ ଏ ଜଗତ । ସର୍ଜନା କର ପୂର୍ବମତ ॥ ୪୫

୧. ଧୃତି । ୨. ରସଳା, ରସନା, ଉଶନା । ୩. ସ୍ୱଧା । ୪. ଗମନ୍ତେ ।

୧୯ ପରମ ଜ୍ୟୋତି ବିଦ୍ୟମାନ । ଯେ ଅଧୋକ୍ଷଜ ଭଗବାନ ॥ ୪୬
ସକଳ ପ୍ରାଣୀ ମନେ ଥାଇ । ତାଙ୍କୁ ତପରେ ଲୋକ ପାଇ ॥ ୪୭

ଶ୍ରୀମୈତ୍ରେୟ ଉବାଚ

୨୦ ଏମନ୍ତେ ବ୍ରହ୍ମା ଆଜ୍ଞା ପାଇ । ନୀଳଲୋହିତ ତୋଷ ହୋଇ ॥ ୪୮
ସ୍ୱୀକାର କରି ସେ ବଚନ । ତାହାଙ୍କୁ କରି ପ୍ରଦକ୍ଷିଣ ॥ ୪୯
ତପସ୍ୟା କରିବା ଇଚ୍ଛାରେ । ପ୍ରବେଶ ହୋଇଲା ବନରେ ॥ ୫୦
୨୧ ସେ ପିତାମହ ତଦନ୍ତରେ । ପ୍ରଜା ସର୍ଜନା ଧ୍ୟାନ କରେ ॥ ୫୧
ସେ ଅଟେ ବିଷ୍ଣୁ ଶକ୍ତିଯୁତ । ଜନ୍ମିଲେ ତାର ଦଶ ସୁତ ॥ ୫୨
ସେ ଲୋକ ସନ୍ତାନକାରଣ । କହିବା ତାଙ୍କ ନାମ ଶୁଣ ॥ ୫୩
୨୨ ମରୀଚି, ଅତ୍ରି, ଅଙ୍ଗିରସ । ପୁଲସ୍ତ୍ୟ, ପୁଲହ ପ୍ରକାଶ ॥ ୫୪
କ୍ରତୁ, ଭୃଗୁ, ବଶିଷ୍ଠ ତିନି । ଦକ୍ଷ ନାରଦ ମହାମୁନି ॥ ୫୫
୨୩ ନାରଦ ଜନ୍ମିଲେ କ୍ରୋଡ଼ରୁ । ଦକ୍ଷ ସଂଭୂତ ଅଙ୍ଗୁଷ୍ଠରୁ ॥ ୫୬
୨୪ ପ୍ରାଣୁଁ ବଶିଷ୍ଠ ମୁନି ଜାତ । ଭୃଗୁ ଚର୍ମରୁ ଉପଗତ ॥ ୫୭
କ୍ରତୁ ସମ୍ଭବିଲେ କରରୁ । ପୁଲହ ହୋଇଲେ ନାଭିରୁ ॥ ୫୮
ପୁଲସ୍ତ୍ୟ କର୍ଣ୍ଣଯୁଗୁଁ ଜାତ । ଅଙ୍ଗିରା ବଦନୁଁ ସଂଭୂତ ॥ ୫୯
ଅତ୍ରି ଲୋଚନୁଁ ସମ୍ଭବିଲା । ମରୀଚି ମନରୁ ହୋଇଲା ॥ ୬୦
୨୫ ଦକ୍ଷିଣ ସ୍ତନୁଁ ଧର୍ମ ହୋଏ । ଯହିଁରେ ନାରାୟଣ ଥାଏ ॥ ୬୧
ଅଧର୍ମ ପୃଷ୍ଠରୁ ବାହାର । ଯହିଁରେ ମୃତ୍ୟୁ ଭୟଙ୍କର ॥ ୬୨
୨୬ କାମ ତା' ହୃଦରୁ ସମ୍ଭୂତ । ଭ୍ରୂଯୁମଧ୍ୟରୁ କ୍ରୋଧ ଜାତ ॥ ୬୩
ଅଧର ଓଷ୍ଠୁଁ ଲୋଭ ଜାତ । ମୁଖୁଁ ସରସ୍ୱତୀ ସମ୍ଭୂତ ॥ ୬୪
ମେଢ୍ର[୧] ଦେଶରୁ ସିନ୍ଧୁମାନ । ପାୟୁରୁ ନିର୍ଋତି[୨] ଜନମ ॥ ୬୫
୨୭ କର୍ଦ୍ଦମ ଛାୟାରୁ ସଂଭୂତି । ଯେ ଅଟେ ଦେବହୂତିପତି ॥ ୬୬
ଏମନ୍ତେ ଅଶେଷ ଜଗତ । ବ୍ରହ୍ମାର ମନୁଁ ଦେହୁଁ ଜାତ ॥ ୬୭
୨୮ ଯେ କନ୍ୟା ବଦନୁଁ ଜନ୍ମିଲା । ବ୍ରହ୍ମାର ମନ ସେ ମୋହିଲା ॥ ୬୮
ତାର ନ ଥିଲା କାମମତି । ସକାମ ହୋଇ ପ୍ରଜାପତି ॥ ୬୯
କାମନା କଲା ତାକୁ ପୁଣି । ଶୁଣିଲା ଥାଇ ଏହୁ ବାଣୀ ॥ ୭୦

---

୧. ମେଢ୍ର = ଲିଙ୍ଗ ୨. ନିର୍ଋତି = ମୃତ୍ୟୁଦେବତା ।

୨୯ ଅଧର୍ମେ ଦେଖି ମତି ତାର । ମରୀଚି ଆଦି ମୁନିବର ॥ ୭୧
ସେ ପୁତ୍ରେ ବିଶ୍ୱାସବଚନ । ପିତାକୁ କଲେ ପ୍ରବୋଧନ ॥ ୭୨
୩୦ ଏ କଥା ପୂର୍ବକାଳେ କେହି । କରି ନାହାନ୍ତି ଦେହ ବହି ॥ ୭୩
କରିବେ ନାହିଁ ଆନଜନେ । କାମକୁ ନ ନିବାରି ମନେ ॥ ୭୪
ନିଜ ସୁତାକୁ ପ୍ରଭୁ ହୋଇ । ଗମନ କରୁଛ ଗୋସାଇଁ ॥ ୭୫
୩୧ ତେଜସ୍ୱୀ ଲୋକର ହିଁ ଏହି । କୀର୍ତ୍ତିଦାୟକ କଥା ନୋହି ॥ ୭୬
ଯେଉଁ ତେଜସ୍ୱୀ ଲୋକଙ୍କର । ବୃତ୍ତିକି କରିଣ ଆଚର ॥ ୭୭
ଆନ ଲୋକହିଁ କ୍ଷେମ ଅର୍ଥେ । କଳ୍ପିତ ହୁଅଇ ଜଗତେ ॥ ୭୮
୩୨ ଯେ ନିଜ ତେଜେ ଆତ୍ମସ୍ଥିତ । ଜଗତ କରଇ ବ୍ୟକତ ॥ ୭୯
ଆମ୍ଭେ ସେ ହରିଙ୍କି ପ୍ରଣାମ । କରୁଛୁଁ, ରଖୁ ସେ ଏ ଧର୍ମ ॥ ୮୦
୩୩ ଏକ ଆରକେ ପ୍ରଜାପତି । ସେ ପୁତ୍ରେ ଏ ରୂପେ କହନ୍ତି ॥ ୮୧
ତାହାଙ୍କୁ ଦେଖିଣ ଆଗର । ସେ ପ୍ରଜାପତିଙ୍କର ବର ॥ ୮୨
ମନରେ ଲଜ୍ଜାକୁ ଭଜିଲେ । ଆପଣା ତନୁକୁ ଛାଡ଼ିଲେ ॥ ୮୩
୩୪ ସେ ଘୋର ତନୁ ଦିଗମାନେ । ଘେନିଣ ଗଲେ ତୋଷମନେ ॥ ୮୪
ନୀହାର ତମ ରୂପେ ଯେହି । ସକଳ ଦିଗେ ପ୍ରକାଶଇ ॥ ୮୫
ସେ ପୁଣି କହୁଣସି ଦିନେ । ଏମନ୍ତ ବିଚାରିଲା ମନେ ॥ ୮୬
ପୂର୍ବ ପରାୟେ ବେଦମାନ । କେମନ୍ତେ କରିବି ସର୍ଜନ ॥ ୮୭
ଚାରିମୁଖରୁ ବେଦ ଚାରି । ଜନମ ହୋଇଲା ତାହାରି ॥ ୮୮
୩୫ ଯେ କର୍ମ ଚାରିହୋତ୍ରେ ସିଦ୍ଧ । ନ୍ୟାୟ ସହିତେ ଉପବେଦ ॥ ୮୯
ଧର୍ମ, ଧର୍ମର ପାଦମତ । ଯେ ତପ ଦୟା ଶୌଚ ସତ୍ୟ ॥ ୯୦
ଚାରି ଆଶ୍ରମ ଜାତ ହେଲେ । ଆଶ୍ରମବୃତ୍ତି ତାଙ୍କ ତୁଲେ ॥ ୯୧

ଶ୍ରୀବିଦୁର ଉବାଚ

୩୬ ସେ ବିଶ୍ୱସୃଜନଙ୍କର ପତି । ମୁଖରୁ ଜାତ କଲେ ଶ୍ରୁତି ॥ ୯୨
ଯେ ବେଦ ଯେ ମୁଖୁଁ ସୃଜନ । ତା' ମୋତେ କହ ତପୋଧନ ॥ ୯୩

ଶ୍ରୀମୈତ୍ରେୟ ଉବାଚ

୩୭ ରଗବେଦ ପୂର୍ବମୁଖୁଁ କଲା । ଦକ୍ଷିଣୁଁ ଯଜୁ ପ୍ରକାଶିଲା ॥ ୯୪
ସାମ ପଶ୍ଚିମମୁଖୁଁ ଜାତ । ଅଥର୍ବ ଉତ୍ତରୁଁ ସଂଭୂତ ॥ ୯୫

ସେ ଶସ୍ତ୍ର,[୧]ଇଜ୍ୟା,[୨] ସ୍ତୁତିସ୍ତୋମେ[୩]। ପ୍ରାୟଶ୍ଚିତ୍ତକୁ[୪] କଲା କ୍ରମେ ॥ ୯୬
ହୋତା ଅଧ୍ୱର୍ଯ୍ୟୁ ଆଦିଙ୍କର । କର୍ମ ଏ ପ୍ରକାଶ ଯଜ୍ଞର ॥ ୯୭
୩୮ ଯେ ଆୟୁର୍ବେଦ, ଧନୁର୍ବେଦ । ଗାନ୍ଧର୍ବ, ଶିଳ୍ପଶାସ୍ତ୍ର ଭେଦ ॥ ୯୮
ପୂର୍ବାଦି ମୁଖରୁ ଏମାନ । ସର୍ଜିଲେ କମଳ-ଆସନ ॥ ୯୯
୩୯ ପଞ୍ଚମ ବେଦ ଇତିହାସ । ପୁରାଣ ରୂପେ ଯେ ପ୍ରକାଶ ॥୧୦୦
ସକଳ ମୁଖୁଁ କଲା ଜାତ । ଜାଣଇଁ ସକଳ ବୃତ୍ତାନ୍ତ ॥୧୦୧
୪୦ ପୂର୍ବ ମୁଖରୁ କଲା ଜାତ । ଷୋଡ଼ଶୀ[୫] ଉକ୍ଥକୁ[୬] ବିଧାତ ॥୧୦୨
ପୁଣି ଚୟନ, ଅଗ୍ନିଷ୍ଟୋମ । ଏ ବେନି କଲା ସେ ଜନମ ॥୧୦୩
ଆପତୋର୍ଯ୍ୟାମ[୭] ଅତିରାତ୍ର । ଗୋସବ,[୮] ବାଜପେୟ ମତ ॥୧୦୪
୪୧ ବିଦ୍ୟା[୯] ଦାନ ତପସ୍ୟା ସତ । ଧର୍ମର ପାଦ ଏ ବିଦିତ ॥୧୦୫
ଆଶ୍ରମବୃତ୍ତିଙ୍କ ସହିତେ । ସର୍ଜନା କଲେ ଯଥାମତେ ॥୧୦୬
୪୨ ସାବିତ୍ର, ପ୍ରାଜାପତ୍ୟ ବ୍ରାହ୍ମ । ବୃହତ ନାମେ ଯେଉଁ କର୍ମ ॥୧୦୭
ଯେ ବାର୍ତ୍ତା,[୧୦] ସଂଚୟ, ଶାଳୀନ । ଶିଳୋଞ୍ଛ ଗୃହେ ଏ ବିଧାନ ॥୧୦୮

---

୧. ଶସ୍ତ୍ର – ଋଗ୍‌ବେଦୀ (ହୋତା)ର କର୍ମ ।
୨. ଇଜ୍ୟା – ଯଜୁର୍ବେଦୀ (ଅଧ୍ୱର୍ଯ୍ୟୁ)ର କର୍ମ ।
୩. ସ୍ତୁତିସ୍ତୋମ – ସାମବେଦୀ (ଉଦ୍‌ଗାତା)ର କର୍ମ ।
୪. ପ୍ରାୟଶ୍ଚିତ୍ତ – ଅଥର୍ବବେଦୀ (ବ୍ରହ୍ମା)ର କର୍ମ ।
୫. ଷୋଡ଼ଶୀ – ୧୬ ଭାଗବିଶିଷ୍ଟ ସ୍ତୋମ ବା ସ୍ତୋତ୍ର ।
୬. ଉକ୍ଥ – ଏକପ୍ରକାର ସାମଗାନପଦ୍ଧତି ।
୭. ଅପତୃଯାମ (ଆପ୍ତୋର୍ଯାମ, ମୂଳପାଠ) ।
୮. ଗୋସବ – ଗୋଯଜ୍ଞ ।
୯. କ୍ଷେତ୍ରଜ୍ଞସ୍ୟେଶ୍ୱରଜ୍ଞାନାଦ୍ ବିଶୁଦ୍ଧିଃ ପରମା ମତା ।
ଭୂତାଭୟପ୍ରଦାନସ୍ୟ କଳାଂ ନାର୍ହନ୍ତି ଷୋଡ଼ଶୀମ୍ ॥
୧୦. ବାର୍ତ୍ତା – ଅତିନିର୍ଦ୍ଧନେ କୃଷ୍ୟାଦିବୃତ୍ତି ।
ସଂଚୟ – ଯାଜନାଦି ବୃତ୍ତି ।
ଶାଳୀନ – ଅଯାଚିତ ବୃତ୍ତି ।
ଶିଳୋଞ୍ଛ – ପତିତକଣିଶକଣ ବୃତ୍ତି ।

| | | | | |
|---|---|---|---|---|
| ୪୩ | ବନସ୍ଥଚାରୀଙ୍କି ସର୍ଜିଲା | । | ଯେ ବୈଖାନସ,[୧] ବାଳଖିଲ୍ୟା | ॥୧୦୯ |
| | ଅଉଡମ୍ବର, ଫେନପାନ | । | ନ୍ୟାସରେ କଲା ଯାହା ଶୁଣ | ॥୧୧୦ |
| | ପ୍ରଥମେ କଲା କୁଟୀଚକ | । | ତଦନନ୍ତରେ ବହ୍ୱୋଦକ | ॥୧୧୧ |
| | ହଂସ,[୨] ନିଷ୍କ୍ରିୟ କଲା ବେନି | । | କ୍ରମରେ ଶ୍ରେଷ୍ଠ ଏହୁ ଜ୍ଞାନୀ | ॥୧୧୨ |
| ୪୪ | ଆନ୍ୱୀକ୍ଷିକୀ[୩] ହେଲା ଉତ୍ପତ୍ତି | । | ଯେ ତ୍ରୟୀ, ବାର୍ତ୍ତା, ଦଣ୍ଡନୀତି | ॥୧୧୩ |
| | ବ୍ୟାହୃତିମାନେ[୪] ହେଲେ ଜାତ | । | ପ୍ରଣବ ହୃଦୟୁଁ ସଂଭୂତ | ॥୧୧୪ |
| ୪୫ | ଉଷ୍ଣିକ ଛନ୍ଦ ରୋମୁଁ ଜାତ | । | ଗାୟତ୍ରୀ ଚର୍ମରୁ ସଂଭୂତ | ॥୧୧୫ |
| | ତ୍ରିଷ୍ଟୁପ ମାଂସୁଁ ସଂଭବିଲା | । | ସ୍ନାୟୁରୁ ଅନୁଷ୍ଟୁପ ହେଲା | ॥୧୧୬ |
| | ଜଗତୀ ହୋଇଲା ଅସ୍ଥିରୁ | । | ପଂକ୍ତି ଉପୁଜିଲା ମଜ୍ଜାରୁ | ॥୧୧୭ |
| | ବୃହତୀ ନାମେ ଛନ୍ଦ ତାର | । | ପ୍ରାଣରୁ ହୋଇଲା ବାହାର | ॥୧୧୮ |
| ୪୬ | ସ୍ପର୍ଶ[୫] ହୋଇଲା ଜୀବ ତାର | । | ସ୍ୱର ଉପୁଜିଲା ଶରୀର | ॥୧୧୯ |
| | ଉଷ୍ମକୁ ଇନ୍ଦ୍ରିୟ କହନ୍ତି | । | ଅନ୍ତଃସ୍ଥ ବଳ ବୋଲି ଚିନ୍ତି | ॥୧୨୦ |
| | ଷଡ଼ଜ ଆଦି ସପ୍ତସ୍ୱର | । | ବିହାରୁଁ ହୋଇଲେ ବ୍ରହ୍ମାର | ॥୧୨୧ |

---

୧. ବୈଖାନସ—ଅକୃଷ୍ଟପଚ୍ୟବୃତ୍ତିକ ।
ବାଳଖିଲ୍ୟ—ନୂତନ ଅନ୍ନ ମିଳିଲେ ପୂର୍ବସଞ୍ଚିତ ଅନ୍ନ ଯେ ତ୍ୟାଗ କରନ୍ତି ।
ଔଡୁମ୍ବର—ସକାଳୁ ଉଠି ପ୍ରଥମେ ଯେଉଁ ଦିଗକୁ ଚାହାଁନ୍ତି ସେହି ଦିଗରୁ ଆହୃତ ଫଳମୂଳ ଦ୍ୱାରା ଯେ ଜୀବିକା ନିର୍ବାହ କରନ୍ତି ।
ଫେନପ—ଛାଏଁ ପଡ଼ିଥିବା ଫଳଦ୍ୱାରା ଯେ ଜୀବିକା ଚଳାନ୍ତି ।
କୁଟୀଚକ—ସ୍ୱାଶ୍ରମଧର୍ମପ୍ରଧାନ ।
ବହ୍ୱୋଦ—କର୍ମତ୍ୟାଗପୂର୍ବକ ଜ୍ଞାନାଭ୍ୟ ସରତ ।

୨. ହଂସ—ଜ୍ଞାନାଭ୍ୟାସନିଷ୍ଠ । ନିଷ୍କ୍ରିୟ-ପ୍ରାପ୍ତତତ୍ତ୍ୱ ।

୩. ଆନ୍ୱୀକ୍ଷିକୀ ଆଦି ଧର୍ମ, ଅର୍ଥ, କାମ ଓ ମୋକ୍ଷସାଧନାର ବିଦ୍ୟା ।

୪. ''ଭୂର୍ଭୁବଃ ସ୍ୱର''— ଏହି ତିନୋଟି ବ୍ୟସ୍ତା ବ୍ୟାହୃତି । ଚତୁର୍ଥୀ (ମହଃ) ବ୍ୟାହୃତିକୁ ସମସ୍ତା କୁହାଯାଏ । ''ଏବଂ ବ୍ୟାହୃତୟଃ ପ୍ରୋକ୍ତାଃ ବ୍ୟସ୍ତାଃ ସମସ୍ତାଃ'' ଇତି (ଆଶ୍ୱଳାୟନଃ) । ''ଭୂର୍ଭୁବଃସ୍ୱରିତି ବା ଏତାସ୍ତିସ୍ରୋ ବ୍ୟାହୃତୟଃ । ତାସାଂ ମହଃ ସ୍ମୈତାଂ ଚତୁର୍ଥୀଂ ମାହାଚମସ୍ୟ ପ୍ରବେଦୟତେ ମହ ଇତି ।'' (ଶ୍ରୁତି)

୫. ସ୍ପର୍ଶ—'କ' ଠାରୁ 'ମ' ପର୍ଯ୍ୟନ୍ତ ବ୍ୟଞ୍ଜନ ବର୍ଣ୍ଣ ।
ସ୍ୱର—ଅକାରାଦି ସ୍ୱର ବର୍ଣ୍ଣ । ଉଷ୍ମ—ଶ, ଷ, ସ, ହ ।
ଅନ୍ତଃସ୍ଥ—ଯ ର ଳ ବ । ସପ୍ତସ୍ୱର—ଷଡ୍‌ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ ।

| | | | |
|---|---|---|---|
| ୪୭ | ଶବଦ ବ୍ରହ୍ମ ତାର ଦେହ । | ଅଟଇ ବ୍ୟକ୍ତାବ୍ୟକ୍ତମୟ | ।।୧୨୨ |
| ୪୮ | ଏଣୁ ତା'ଠାରୁ ହୋଇ ପର । | ପ୍ରକାଶେ ପରମ ଈଶ୍ୱର | ।।୧୨୩ |
| | ଅବ୍ୟକ୍ତ ଆତ୍ମା ଯେଣୁ ହୋଇ । | ବ୍ରହ୍ମରୂପରେ ଶୋଭା ପାଇ | ।।୧୨୪ |
| | ବ୍ୟକ୍ତ ଶରୀରୁଂ ନାନା ହୋଇ । | ଇନ୍ଦ୍ରାଦି ରୂପ ଶୋଭା ପାଇ | ।।୧୨୫ |
| | ସେ ଆନ ତନୁ ଧରି ପୁଣ । | ସର୍ଗନିମିତ୍ତେ କଲା ମନ | ।।୧୨୬ |
| ୪୯ | ବିପୁଳବୀର୍ଯ୍ୟ ଋଷିଙ୍କର । | ସର୍ଗ ଯେ ନୋହିଲା ବିସ୍ତାର | ।।୧୨୭ |
| | ଏମନ୍ତ ଜାଣି ସେ ବିଧାତା । | ମନେ ପାଇଲା ବଡ଼ ଚିନ୍ତା | ।।୧୨୮ |
| ୫୦ | ଅଦ୍ଭୁତ ଅଟେ ଏ ମୋହର । | ନିତ୍ୟରେ କରନ୍ତେ ବ୍ୟାପାର | ।।୧୨୯ |
| | ପ୍ରଜାସମୂହ ନ ବଢ଼ିଲା । | ଦଇବ ବିଘାତକ ହେଲା | ।।୧୩୦ |
| ୫୧ | ଏମନ୍ତେ ଦଇବକୁ ଚାହିଁ । | କରନ୍ତେ ଉଚିତକୁ ତହିଁ | ।।୧୩୧ |
| ୫୨ | ଦ୍ୱିଭାଗ ହେଲା ତାର ଦେହ । | ଅଦ୍ୟାପି ବୋଲାଇ ଯେ କାୟ | ।।୧୩୨ |
| ୫୩ | ସେ ବେନିଖଣ୍ଡ ବ୍ରହ୍ମାଦେହେ । | ନାରୀ-ପୁରୁଷ ଜାତ ହୋଏ | ।।୧୩୩ |
| ୫୪ | ଯେ ତହିଁ ପୁରୁଷ ଜନମ । | ସେ ସ୍ୱାୟଂଭୁବ ମନୁ ନାମ | ।।୧୩୪ |
| | ଯେ ତହିଁ ସ୍ତିରୀରୂପ ବହି । | ସେ ଶତରୂପା ନାମ ହୋଇ | ।।୧୩୫ |
| | ମନୁର ପତ୍ନୀ ସେ ହୋଇଲେ । | ମୈଥୁନେ ପ୍ରଜା ବୃଦ୍ଧି ହେଲେ | ।।୧୩୬ |
| ୫୫ | ସେ ମନୁ ଶତରୂପାଠାରେ । | ପାଞ୍ଚ ଅପତ୍ୟ ଜାତ କରେ | ।।୧୩୭ |
| | ପ୍ରଥମ ପୁତ୍ର ପ୍ରିୟବ୍ରତ । | ଉତ୍ତାନପାଦ ଆର ସୁତ | ।।୧୩୮ |
| | ଅପର ତିନି କନ୍ୟା ଜାତ । | କହିବା ଶୁଣ ହେ ଭାରତ ! | ।।୧୩୯ |
| ୫୬ | ଆକୂତି, ଦେବହୂତି ଦୁଇ । | ପ୍ରସୂତି ନାମେ ଏକ ହୋଇ | ।।୧୪୦ |
| | ରୁଚି ନାମରେ ପ୍ରଜାପତି । | ତାହାକୁ ଦେଲା ସେ ଆକୂତି | ।।୧୪୧ |
| | କର୍ଦ୍ଦମ ନାମେ ଋଷି ଥିଲା । | ଦେବହୂତିକି ତାକୁ ଦେଲା | ।।୧୪୨ |
| | ପ୍ରସୂତି ଦେଲା ସେ ଦକ୍ଷରେ । | ତାଙ୍କ ବଂଶରେ ବିଶ୍ୱ ପୁରେ | ।।୧୪୩ |
| | ଏମନ୍ତେ ଭାଗବତ-ବାଣୀ । | ମୈତ୍ରେୟ ବିଦୁରରେ ଭଣି | ।।୧୪୪ |
| | ତୃତୀୟ ସ୍କନ୍ଧ ଭାଗବତ । | ସୁଜନେ ଶୁଣ ତୋଷଚିତ୍ତ | ।।୧୪୫ |
| | ଏଣେ ହରିଙ୍କି କର ଲୟେ । | ବ୍ରାହ୍ମଣ ଦୀନବନ୍ଧୁ କହେ | ।।୧୪୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସମ୍ବାଦେ
ସୃଷ୍ଟି ବର୍ଣ୍ଣନଂ ନାମ ଦ୍ୱାଦଶୋଽଧ୍ୟାୟ ।।

# ତ୍ରୟୋଦଶୋଽଧ୍ୟାୟଃ

ତ୍ରୟୋଦଶେ ସିସୃକ୍ଷାୟାଂ ମନୋରାକସ୍ମିକାପ୍ଲୁତାମ୍ ।
ଧରାମୁଦ୍ଧର୍ତ୍ତୁମୁଦ୍‌ଭୂତାଦ୍ କ୍ରୋଡ଼ାଦ୍ ଦୈତ୍ୟେନ୍ଦ୍ର ସୂଦନମ୍ ॥ ୧ ॥

ଶ୍ରୀଶୁକ ଉବାଚ

୧ ମୈତ୍ରେୟମୁନିପୁଣ୍ୟବାଣୀ । ବିଦୁର ତୋଷମନେ ଶୁଣି ॥ ୧
କୃଷ୍ଣକଥାରେ ଦେଇ ମନ । ପୁଣି ପଚାରଇ ବଚନ ॥ ୨

ଶ୍ରୀବିଦୁର ଉବାଚ

୨ ପ୍ରିୟ ତନୟ ବିଧାତାର । ସେ ସ୍ୱାୟଂଭୁବ ମୁନିବର ॥ ୩
ପ୍ରିୟ ଭାର୍ଯ୍ୟାକୁ ସଙ୍ଗେ ଘେନି । କି କଲେ ପଛେ ପୁଣି ମୁନି ! ॥ ୪
୩ ସେ ଆଦିରାଜ ରାଜରଷି । ତାହାର ଚରିତ ବିଶେଷି ॥ ୫
କହ ତହିଁରେ ଶ୍ରଦ୍ଧା ମୋର । ଆଶ୍ରୟ ଅଟେ କୃଷ୍ଣ ଯାର ॥ ୬
୪ ଶାସ୍ତ୍ରେ ବହୁତ ଶ୍ରମ ପାନ୍ତି । ଯେ ଅବା ଅଭ୍ୟାସ କରନ୍ତି ॥ ୭
ସେ ଶାସ୍ତ୍ର ଶ୍ରମଫଳ ଏହି । ପଣ୍ଡିତ ଜନେ ଛନ୍ତି କହି ॥ ୮
ମୁକୁନ୍ଦପାଦପଦ୍ମ ଦୁଇ । ଯାହାଙ୍କ ହୃଦୟରେ ଥାଇ ॥ ୯
ସେ ସାଧୁଜନଙ୍କର ଗୁଣ । ଯାହା ସେ କରଇ ଶ୍ରବଣ ॥ ୧୦

ଶ୍ରୀଶୁକ ଉବାଚ

୫ ଯେ କୃଷ୍ଣଚରଣନଳିନ- । ଯୁଗର ଅଟେ ଉପଧାନ ॥ ୧୧
ବିନୟ ହୋଇ ସେ ବିଦୁର । ପୃଚ୍ଛନ୍ତେ ଏମନ୍ତ ପ୍ରକାର ॥ ୧୨
ରୋମପୁଲକ ଦେହେ ବହି । କୃଷ୍ଣ କଥାରେ ମନ ଦେଇ ॥ ୧୩
ସାନନ୍ଦେ କହିଲେ ଉତ୍ତର । ମୈତ୍ରେୟ ନାମେ ମୁନିବର ॥ ୧୪

ଶ୍ରୀମୈତ୍ରେୟ ଉବାଚ

୬ ଭାର୍ଯ୍ୟାକୁ ଘେନିଣ ସଙ୍ଗର । ସେ ସ୍ୱୟଂଭୁବ ମୁନିବର ॥ ୧୫
କରଅଞ୍ଜଳି ଶିରେ ଦେଲା । ବ୍ରହ୍ମାଙ୍କୁ ବଚନ କହିଲା ॥ ୧୬
୭ ତୁ ସର୍ବଜନ୍ତୁଙ୍କର ପିତା । ଜନ୍ମକାରଣ ବୃତ୍ତିଦାତା ॥ ୧୭
ଆମ୍ଭେ ସକଳେ ତୋର ପ୍ରଜା । ତୋତେ କରିବୁଁ କେଣେ ପୂଜା ॥ ୧୮
୮ ଆମ୍ଭେ ପାରିବୁଁ ଯାହା କରି । କର୍ମମାନଙ୍କେ ତା' ବିଚାରି ॥ ୧୯
ତାହା ବିଧାନ ତୁମ୍ଭେ କର । ତୁମ୍ଭଙ୍କୁ ମୋର ନମସ୍କାର ॥ ୨୦

| | | | |
|---|---|---|---|
| | କରନ୍ତେ ଯାହାର ବଚନ । | ରହଇ ଯଶ ଏ ଭୁବନ | ॥ ୨୧ |
| | ପରଲୋକରେ ସେ ଲୋକର । | ଗତି ହୁଅଇ ସର୍ବସାର | ॥ ୨୨ |

ଶ୍ରୀବ୍ରହ୍ମା ଉବାଚ

| | | | |
|---|---|---|---|
| ୯ | ହେ କ୍ଷିତୀଶ୍ୱର ! ତୋର ଠାରେ । | ପ୍ରୀତି ମୁଁ ଲଭିଲି ନିର୍ଭରେ | ॥ ୨୩ |
| | ପତ୍ନୀର ସହିତେ ତୋହର । | କୁଶଳ ହେଉ ନିରନ୍ତର | ॥ ୨୪ |
| | ତୁମ୍ଭଙ୍କୁ କି କରିବି ସେବା । | ସେ କଥା ମୋତେ ଆଜ୍ଞା ଦେବା | ॥ ୨୫ |
| | ଯେଣୁ ନିଷ୍କପଟ ଭାବରେ । | ଏମନ୍ତ କହିଲୁ ମୋ ଠାରେ | ॥ ୨୬ |
| ୧୦ | ଏତେମାତ୍ରକ ପୁତ୍ରମାନେ । | ପୂଜା କରିବେ ଗୁରୁଜନେ | ॥ ୨୭ |
| | ସାଦରେ ସାବଧାନ ହୋଇ । | ମତ୍ସର[୧] ଚିତ୍ତରେ ନ ବହି | ॥ ୨୮ |
| | ଯଥାଶକ୍ତିରେ ଗୁରୁଙ୍କର । | ଆଜ୍ଞା ବହିବେ ନିରନ୍ତର | ॥ ୨୯ |
| ୧୧ | ତୁ ଏହି ଶତରୂପାଠାରେ । | ଆପଣା ଗୁଣସମାନରେ | ॥ ୩୦ |
| | ପୁତ୍ରମାନଙ୍କୁ ଜାତ କରି । | ଧର୍ମରେ ପାଳ ବସୁନ୍ଧରୀ | ॥ ୩୧ |
| | ନାନା ପ୍ରକାର ଯଜ୍ଞମାନ । | କରିଣ ତୋଷ ଭଗବାନ | ॥ ୩୨ |
| ୧୨ | ହେ ନୃପ ! ପ୍ରଜାଙ୍କୁ ପାଳିଲେ । | ମୋହର ସେବା ହେବ ଭଲେ | ॥ ୩୩ |
| | ଯେ ରାଜା ପ୍ରଜାଙ୍କୁ ପାଳଇ । | ତାହାକୁ ବିଷ୍ଣୁ ତୋଷ ହୋଇ | ॥ ୩୪ |
| ୧୩ | ସେ ଯଜ୍ଞଲିଙ୍ଗ ଜନାର୍ଦ୍ଦନ । | ଯାହାକୁ ନୋହେ ତୋଷମନ | ॥ ୩୫ |
| | ତା' ଶ୍ରମ ବ୍ୟର୍ଥ ଏ ସଂସାରେ । | ଯେଣୁ ଆତ୍ମାକୁ ନ ଆଦରେ | ॥ ୩୬ |

ଶ୍ରୀମନୁରୁବାଚ

| | | | |
|---|---|---|---|
| ୧୪ | ହେ ପାପନାଶନ ! ତୁମ୍ଭର । | ଆଜ୍ଞାରେ ଥିବି ନିରନ୍ତର | ॥ ୩୭ |
| | ମୋହର ପ୍ରଜାମାନଙ୍କର । | ସ୍ଥାନକୁ କରସି ବିଚାର | ॥ ୩୮ |
| ୧୫ | ଯେ ସର୍ବ ପ୍ରାଣୀଙ୍କର ସ୍ଥାନ । | ସେ ମହୀ ମହାଜଳେ ମଗ୍ନ | ॥ ୩୯ |
| | ହେ ଦେବ ! ଉଦ୍ଧାରଣେ ତାର । | ଅବିଳମ୍ବରେ ଯତ୍ନ କର | ॥ ୪୦ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୧୬ | ଜଳ ମଧ୍ୟରେ ପ୍ରଜାପତି । | ସେ ରୂପେ ମଗ୍ନ ଦେଖି କ୍ଷିତି | ॥ ୪୧ |
| | କି ରୂପେ ଏହାକୁ ଉଦ୍ଧାର । | କରିବି ବୋଲିଣ ମନର | ॥ ୪୨ |
| | ବହୁତ ବେଳ କଲା ଧ୍ୟାନ । | ମନରେ ଚିନ୍ତଇ ଏସନ | ॥ ୪୩ |

---

୧. ମତ୍ସର = ମାତ୍ସର୍ଯ୍ୟ ।

୧୭ ସର୍ଜନା କରନ୍ତେଣ ମୁହିଁ । ଜଳସକାଶେ ଭରା ପାଇ ।। ୪୪
ପୃଥିବୀ ଗଲା ରସାତଳେ । କିବା କରିବା ଆମ୍ଭେ ବଳେ ।। ୪୫
ସୃଷ୍ଟିସର୍ଜନା ଅର୍ଥେ ହରି । ଆମ୍ଭଙ୍କୁ ଅଛି ଜାତ କରି ।। ୪୬
ଯାହା ହୃଦୟୁଁ ଜାତ ମୁହିଁ । ଏ କଥା ସଂପାଦିବ ସେହି ।। ୪୭
୧୮ ଏମନ୍ତ କରନ୍ତେ ବିଚାର । ନାସିକାବିବରୁଁ ତାହାର ।। ୪୮
ବରାହବାଳକ ବାହାର । ଅଙ୍ଗୁଷ୍ଠମାତ୍ର ତନୁ ତାର ।। ୪୯
୧୯ ଚାହିଁଅଛନ୍ତି ପ୍ରଜାପତି । କ୍ଷଣେ ଆକାଶେ କରି ସ୍ଥିତି ।। ୫୦
ପୁଣି ବଢ଼ିଲା ଗଜପ୍ରାୟେ । ଅତି ଅଦ୍ଭୁତ ସ୍ନେହୁ ହୋଏ ।। ୫୧
୨୦ ମରୀଚି ଆଦି ମୁନି ଯେତେ । କୁମାର, ମନୁଙ୍କ ସମେତେ ।। ୫୨
ଦେଖି ସେ ଶୂକରଶରୀର । ତର୍କିଲେ ବିବିଧ ପ୍ରକାର ।। ୫୩
୨୧ କିଏ ଶୂକରବ୍ୟାଜେ ସ୍ଥିତ । ଅଟଇ ଏହୁ ଦିବ୍ୟ ସତ୍ତ୍ୱ ।। ୫୪
ଏ କଥା ଅଟଇ ଅଦ୍ଭୁତ । ମୋର ନାସାରୁ ବିନିର୍ଗତ ।। ୫୫
୨୨ ଅଙ୍ଗୁଷ୍ଠ ଅଗ୍ର ପ୍ରାୟେ ହୋଇ । ପ୍ରଥମେ ଦେଖା ଦେଲା ଏହି ।। ୫୬
କ୍ଷଣକେ ଗଣ୍ଡଶିଳା[୧] ସମ । ହୋଇଲା ବିସ୍ତାର ଆୟାମ ।। ୫୭
ଏ ଅବା ଯଜ୍ଞରୂପୀ ହରି । ଆମ୍ଭଙ୍କୁ ଆଚ୍ଛାଦିତ କରି ।। ୫୮
ଖେଦ କରୁଛି ମନ ମୋର । ସୁତଙ୍କ ସଙ୍ଗତେ ବିଚାର ।। ୫୯
୨୩ ଏ ରୂପେ କରନ୍ତେ ବିଧାତା । ଯଜ୍ଞପୁରୁଷ ବିଶ୍ୱକର୍ତ୍ତା ।। ୬୦
ଗର୍ଜନ କଲେ ବାସୁଦେବ । ହୋଇଣ ପର୍ବତସନ୍ନିଭ ।। ୬୧
୨୪ ବ୍ରହ୍ମାଙ୍କୁ ଋଷିଙ୍କ ସମେତେ । ହରଷ କରାଇଲେ ଚିତ୍ତେ ।। ୬୨
ନିଜ ଗର୍ଜନେ ଭଗବାନ । ଯେଣେ ଦିଗରେ ପ୍ରତିସ୍ୱନ ।। ୬୩
୨୫ ସେ ମାୟାମୟ[୨] ବରାହର । ଶୁଣିଣ ଗର୍ଜନ ଘର୍ଘର ।। ୬୪
ଆପଣା ଖେଦବିନାଶନ । ଅଟଇ ଯେବଣ ଗର୍ଜନ ।। ୬୫
ଯେ ଜନ-ତପ-ସତ୍ୟଲୋକେ । ଋଷିଏ ରହିଥିଲେ ଥୋକେ ।। ୬୬
ପବିତ୍ର ଋକ, ଯଜୁ, ସାମ । ବେଦଙ୍କୁ ପଢ଼ି ଅବିଶ୍ରାମ ।। ୬୭
ମନ ଆନନ୍ଦେ କଲେ ସ୍ତୁତି । ସେ ବେଦ ଶୁଣି ଯଜ୍ଞମୂର୍ତ୍ତି ।। ୬୮
୨୬ ସେ ନିଜ ଗୁଣାନୁବାଦନ । ପୁଣିହିଁ କରିଣ ଗର୍ଜନ ।। ୬୯
ଦେବଙ୍କ ଉଦୟ ବିଚାରି । ଗଜେନ୍ଦ୍ରପ୍ରାୟ ଲୀଳା କରି ।। ୭୦
ସଲିଳ ମଧ୍ୟରେ ପ୍ରବେଶ । ହୋଇଲେ ସେ ଯଜ୍ଞପୁରୁଷ ।। ୭୧

---

୧. ସ୍ଥୂଳ ପାଷାଣ । ୨. ମାୟାମୟ = କୃପାମୟ ବା ଜ୍ଞାନମୟ (ଚକ୍ରବର୍ତ୍ତୀପାଦ)

୨୭ ନିଜ ଲାଙ୍ଗୁଡ଼ ଉର୍ଦ୍ଧେ କ୍ଷେପି । କଠିନ ଅନ୍ତରୀକ୍ଷ ବ୍ୟାପୀ ॥ ୭୨
ସଟାକୁ କରନ୍ତି କମ୍ପିତ । କର୍କଶ ଲୋମେ ଚର୍ମ ଯୁତ ॥ ୭୩
ଖୁରେ ଆହତ ଜଳଧର । ଶୁକ୍ଳ ଦିଶଇ ଦନ୍ତ ଯାର ॥ ୭୪
ଜ୍ୟୋତିଲୋଚନ ମହୀଧର । ଶୋଭା ପାଇଲେ ସେ ଶୂକର ॥ ୭୫
୨୮ ଆଘ୍ରାଣ କରି ପୃଥିବୀର । ମାର୍ଗକୁ କରନ୍ତି ଗୋଚର ॥ ୭୬
ବ୍ୟାଜେ ବରାହତନୁ ବହେ । ଅଟେ ସେ ଯଜ୍ଞଅଙ୍ଗ[୧] ସ୍ୱୟେଁ ॥ ୭୭
କରାଳ ଦିଶଇ ଦଶନ । ସ୍ତୁତି କରନ୍ତି ବିପ୍ରଜନ ॥ ୭୮
ତାହାଙ୍କୁ ଟେକି କରି ଚାହିଁ । ଜଳେ ପ୍ରବେଶ ହେଲେ ଯାଇଁ ॥ ୭୯
୨୯ ବଜ୍ରକୂଟର ପ୍ରାୟେ ଅଙ୍ଗ । ତାହାର ନିପାତନବେଗ ॥ ୮୦
ତେଣେ ବିଶୀର୍ଣ୍ଣକୁକ୍ଷି ହୋଇ । ଅତ୍ୟନ୍ତ ଉଚ୍ଚରେ ଗର୍ଜଇ ॥ ୮୧
ପ୍ରସାରି ଦୀର୍ଘ ଊର୍ମିକର । ଆରତ ପ୍ରାୟେ ସେ ସାଗର ॥ ୮୨
ଭୋ ଯଜ୍ଞେଶ୍ୱର ! କର ତ୍ରାହି । ଏମନ୍ତ ବୋଲି କି ଡାକଇ ॥ ୮୩
୩୦ ସବନତ୍ରୟ[୨] ମୂର୍ତ୍ତି ଯାର । ସେ ଭଗବାନ ଯଜ୍ଞେଶ୍ୱର ॥ ୮୪
ଯେବଣ ଜଳେ ପ୍ରଳୟରେ । ଶୟନ ଇଚ୍ଛାକୁ ସେ ଧରେ ॥ ୮୫
କ୍ଷୁରପ୍ର[୩] ସମ ନିଜ ଖୁରେ । ସେ ଜଳ ଭେଦି ପାତାଳରେ ॥ ୮୬
ଅପାର ଲୋକଙ୍କର ପାର । ଧରଣୀ କଲେ ସେ ଗୋଚର ॥ ୮୭
ଜୀବନିବାସ ଯେଉଁ କ୍ଷିତି । ଯାହାକୁ ସ୍ୱୟେଂ ଧରିଛନ୍ତି ॥ ୮୮
୩୧ ଜଳନିମଗ୍ନ ବସୁନ୍ଧରୀ । ତକ୍ଷଣେ ଦନ୍ତଅଗ୍ରେ ଧରି ॥ ୮୯
ପାତାଳୁଁ ହୁଅନ୍ତେ ବାହାର । ଶୋଭା ପାଇଲେ ସେ ଶୂକର ॥ ୯୦
ଚକ୍ରର ପ୍ରାୟେ ଦୀପ୍ତ ହୋଇ । ଯାହାର କ୍ରୋଧ ଶୋଭା ପାଇ ॥ ୯୧
୩୨ ସେଠାରେ ଗଦା ଧରି କରେ । ଆସନ୍ତେ ହିରଣ୍ୟାକ୍ଷ ଖରେ ॥ ୯୨
ଅସହ୍ୟ ବିକ୍ରମକୁ ବହି । ରୁନ୍ଧନ୍ତେ ଚାରିଦିଗେ ତହିଁ ॥ ୯୩
ତାହାକୁ ମାଇଲେ ଲୀଳାରେ । ହସ୍ତୀକି ସିଂହ ଯେ ପ୍ରକାରେ ॥ ୯୪
ତା' ରକ୍ତପଙ୍କରେ ଅଙ୍କିତ । ଗଣ୍ଡବଦନ ସୁଶୋଭିତ ॥ ୯୫
ଗଜେନ୍ଦ୍ର ଯେହ୍ନେ ଦଶନରେ । ଧରଣୀତଳକୁ ବିଦାରେ ॥ ୯୬
୩୩ ତମାଳପ୍ରାୟ ଦେହକାନ୍ତି । ଗଜଲୀଳାକୁ ଧରି କ୍ଷିତି ॥ ୯୭
ନିଶିତ ଦଶନକୋଟିରେ । ଉଦ୍ଧାର କରନ୍ତେ ସତ୍ୱରେ ॥ ୯୮

---

୧. ଯଜ୍ଞଅଙ୍ଗ = ଯଜ୍ଞମୂର୍ତ୍ତି । ୨. ପ୍ରାତଃ, ମଧ୍ୟାହ୍ନ ଓ ସାୟଂକାଳୀନ ଯଜ୍ଞ ।
୩. ଆୟତାଗ୍ର ଶର ।

ଦେଖି ବିରଞ୍ଚି ଆଦି ହୋଇ । ଯେତେକ ଋଷି ଥିଲେ ତହିଁ ॥ ୯୯
କରଯୁଗଳ ଶିରେ ଦେଲେ । ବେଦବାକ୍ୟରେ ସ୍ତୁତି କଲେ ॥୧୦୦

ଶ୍ରୀଋଷୟ ଉଚୁଃ

୩୪ ହେ ଯଜ୍ଞଭାବନ ଅଜିତ । ଜିଣିଲ, ଜିଣିଲ ସମସ୍ତ ॥୧୦୧
କମ୍ପାଉଅଛ ନିଜ ମୂର୍ତ୍ତି । ପ୍ରତ୍ୟକ୍ଷେ ଅଟଇ ଯେ ଶ୍ରୁତି ॥୧୦୨
ଯାର ଶରୀରରୋମଗର୍ତ୍ତେ । ଲୀନ ହୋଇଲେ ସିନ୍ଧୁସାତେ ॥୧୦୩
ସେ ତୁମ୍ଭେ କାରଣ ଶୂକର । ତୁମ୍ଭଙ୍କୁ ପ୍ରଣାମ ଆମ୍ଭର ॥୧୦୪
୩୫ ଏ ତୋର ରୂପ ପାପୀଜନେ । ଦେଖି ନ ପାରନ୍ତି ଲୋଚନେ ॥୧୦୫
ଯେଣୁ ସେ ଯଜ୍ଞମୟ ହୋଏ । ଯା' ଚର୍ମେ ଛନ୍ଦମାନ ରହେ ॥୧୦୬
ଅନଳ ରୋମେ ନେତ୍ରେ ଘୃତ । ପାଦମାନଙ୍କେ ଚାତୁର୍ହୋତ୍ର* ॥୧୦୭
୩୬ ସ୍ରୁକ ରହିଲା ତୁଣ୍ଡେ ତୋର । ସ୍ରୁବ ନାସିକା ଯୁଗଳର ॥୧୦୮
ଇଡ଼[୧] ଉଦରେ ତୋର ରହି । ଚମସ[୨] କର୍ଣ୍ଣରନ୍ଧ୍ରେ ଥାଇ ॥୧୦୯
ପ୍ରାଶିତ୍ର[୩] ବଦନେ ତୋହର । ଗ୍ରହ[୪] ବଦନଛିଦ୍ରେ ଆର ॥୧୧୦
ହେ ଈଶ ! ତୋହର ଚର୍ବଣ । ଅଟଇ ଅଗ୍ନିହୋତ୍ର ପୁଣ ॥୧୧୧
୩୭ ଯେ ଦୀକ୍ଷା ବାରମ୍ବାର ହୋଇ । ସେ ତୋର ଗ୍ରୀବା ବୋଲି କହି ॥୧୧୨
ଦୀକ୍ଷାନନ୍ତରରେ ଇଷ୍ଟି[୫] ଯେହି । ଯେ ଦୀକ୍ଷା ସମାପ୍ତିରେ ହୋଇ ॥୧୧୩
ସେ ବେନି ଦୀକ୍ଷା ତୋ ଦଶନ । ପ୍ରବର୍ଗ୍ୟ[୬] ଅଟଇ ରସନ ॥୧୧୪
ଯେ ଅଗ୍ନି ହୋମରୁ ରହିତ । ଯେ ଉପାସନା ଅର୍ଥେ ଜାତ ॥୧୧୫
ସେ ବେନି ଅଟେ ତୋର ଶିର । ଇଷ୍ଟକଚୟନ ପ୍ରାଣର ॥୧୧୬
୩୮ ତୋହର ରେତ ସୋମମୂର୍ତ୍ତି । ସବନମାନେ ଅବସ୍ଥିତି ॥୧୧୭
ଅଗ୍ନିଷ୍ଟୋମକୁ ଆଦି ହୋଇ । ସଂସ୍ଥାଦି[୭] ଭେଦ ଯାହା କହି ॥୧୧୮

---

* ହୋତା, ଉଦ୍‌ଗାତା, ଅଧ୍ୱର୍ଯ୍ୟୁ ଓ ବ୍ରହ୍ମାର କର୍ମ ।
୧. ଭକ୍ଷଣପାତ୍ର । ୨. ସୋମପାତ୍ରବିଶେଷ । ୩. ବ୍ରହ୍ମଭାଗପାତ୍ର
୪. ସୋମପାତ୍ରବିଶେଷ । ୫. ଏକ ପ୍ରକାର ଯଜ୍ଞ ।
୬. ପ୍ରବର୍ଗ୍ୟ = ମହାବୀର; ରସନ = ଜିହ୍ୱା ।
୭. ''ଅଗ୍ନିଷ୍ଟୋମ, ଅତ୍ୟଗ୍ନିଷ୍ଟୋମ, ଉକ୍‌ଥ, ଷୋଡ଼ଶୀ, ବାଜପେୟ, ଅତିରାତ୍ର ଓ ଆପ୍ତୋର୍ଯ୍ୟାମ''–ସପ୍ତ ଯଜ୍ଞସଂସ୍ଥା ।

| | | | |
|---|---|---|---|
| | ସେମାନେ ତୋର ସପ୍ତଧାତୁ । | ଦ୍ୱାଦଶାହାଦି[୧] ଯେତେ କ୍ରତୁ | ॥୧୧୯ |
| | ଶରୀରସଂଧି ସେ ତୋହର । | ତୁ ସର୍ବଯଜ୍ଞକ୍ରତୁବର | ॥୧୨୦ |
| | ତୋର ଶରୀର ଭଗବାନ । | ଇଷ୍ଟିରେ ହୋଇଛି ବନ୍ଧନ | ॥୧୨୧ |
| ୩୯ | ତୁ ସର୍ବମନ୍ତ୍ରଦେବରୂପୀ । | ତୁ ଦ୍ରବ୍ୟକ୍ରତୁକ୍ରିୟାବ୍ୟାପୀ | ॥୧୨୨ |
| | ବୈରାଗ୍ୟ ଭକ୍ତି ବେନି ଦ୍ୱାରେ । | ଆତ୍ମାକୁ ସ୍ଥିର ପ୍ରାଣୀ କରେ | ॥୧୨୩ |
| | ତେଣେ ପ୍ରତ୍ୟକ୍ଷ ଯେଉଁ ଜ୍ଞାନ । | ସେ ତୁମ୍ଭ ରୂପ ଭଗବାନ | ॥୧୨୪ |
| | ତୁ ବିଦ୍ୟାଗୁରୁ ଜନଙ୍କର । | ତୋତେ ଆମ୍ଭର ନମସ୍କାର | ॥୧୨୫ |
| ୪୦ | ଧରଣୀ ପର୍ବତସହିତ । | ତୋ ଦନ୍ତ-ଅଗ୍ରରେ ଶୋଭିତ | ॥୧୨୬ |
| | ଜଳରୁ ହୁଅନ୍ତେ ବାହାର । | ମତ୍ତଗଜେନ୍ଦ୍ରଦଶନର | ॥୧୨୭ |
| | ଯେହ୍ନେ ନଳିନ ଶୋଭା ପାଇ । | ପତ୍ରମାନଙ୍କେ ଯୁତ ହୋଇ | ॥୧୨୮ |
| ୪୧ | ସକଳ ବେଦମୟ ତୋର । | ଅଟେ ଶୂକର କଳେବର | ॥୧୨୯ |
| | ଦନ୍ତେ ଧରିଛ ଯେଉଁ ମହୀ । | ତେଣେ ଏ ଅତି ଶୋଭା ପାଇ | ॥୧୩୦ |
| | ଶୃଙ୍ଗରେ ଜଳଧର ବହି । | କୁଳ-ଅଚଳ ଯେହ୍ନେ ଶୋହି | ॥୧୩୧ |
| ୪୨ | ସ୍ଥାବର-ଜଙ୍ଗମଙ୍କ ଅର୍ଥେ । | ମହୀକି ସ୍ଥାପ ଏ ଜଗତେ | ॥୧୩୨ |
| | ଏ ତୁମ୍ଭ ପତ୍ନୀ ବିଶ୍ୱମାତା । | ତୁମ୍ଭେ ସକଳ ଲୋକପିତା | ॥୧୩୩ |
| | ଯହିଁରେ ଥାଇ ଆମ୍ଭେମାନେ । | ଯେଉଁ କ୍ଷିତିକି ଅନୁଦିନେ | ॥୧୩୪ |
| | ତୋର ସହିତେ ନମସ୍କାର । | କରି ସେବିବୁଁ ଚକ୍ରଧର | ॥୧୩୫ |
| | ଯେବଣ କ୍ଷିତିଠାରେ ତୁହି । | ଧାରଣାଶକ୍ତି ଅଛୁ ଦେଇ | ॥୧୩୬ |
| | ଅଗ୍ନିକି ଯେହ୍ନେ ଅରଣି[୨]ରେ । | ଯାଜ୍ଞିକ ପ୍ରକାଶେ ସତ୍ୱରେ | ॥୧୩୭ |
| ୪୩ | ତୋର ବିହୁନେ କେବା ଆନ । | ମହୀ-ଉଦ୍ଧାରେ କରେ ମନ | ॥୧୩୮ |
| | ତୋ'ଠାରେ ବିସ୍ମୟ ଏ ନୋହି । | ସବୁ ବିସ୍ମୟ ତୋହ ଠାଇଁ | ॥୧୩୯ |
| | ଅତି ବିସ୍ମୟ ଏ ଜଗତ । | ତୁ କଲୁ ମାୟାରେ ନିର୍ମିତ | ॥୧୪୦ |
| ୪୪ | ଶରୀର ବେଦମୟ ତୋର । | କମ୍ପାନ୍ତେ ତାହା ହେ ଈଶ୍ୱର | ॥୧୪୧ |
| | ଜନ-ତପ-ସତ୍ୟ-ନିବାସୀ । | ଆମ୍ଭେ ସକଳ ମହରଷି | ॥୧୪୨ |
| | ତୋ ସଟାଶିଖା-ଉଚ୍ଛଳିତ । | ସଲିଳବିନ୍ଦୁରେ ସିଞ୍ଚିତ | ॥୧୪୩ |
| | ହୋଇଲା ଯେଣୁ ଆମ୍ଭ ଗାତ୍ର । | ଏ ଘେନି ହୋଇଲୁଁ ପବିତ୍ର | ॥୧୪୪ |

---

୧. ଦ୍ୱାଦଶାହ + ଆଦି । ଦ୍ୱାଦଶାହ = ଏକପ୍ରକାର ଯଜ୍ଞ ।

୨. ଅରଣି = ଅଗ୍ନି-ଉତ୍ପାଦକ କାଠି ।

୪୫ ଅପାର ଅଟେ କର୍ମ ତୋର । ତୋ କର୍ମମାନଙ୍କର ପାର ॥୧୪୫
ଜାଣିବାକୁ ଯେ ମତି କରେ । ସେ ଭ୍ରଷ୍ଟମତି ଏ ସଂସାରେ ॥୧୪୬
ତୋ ମାୟାଗୁଣରେ ମୋହିତ । ଅଟଇ ଏ ସର୍ବଜଗତ ॥୧୪୭
ଏହା କୁଶଳ ଭଗବାନ । ସତ୍ୱରେ କର ତୁ ବିଧାନ ॥୧୪୮

ଶ୍ରୀମୈତ୍ରେୟ ଉବାଚ

୪୬ ଏ ରୂପେ ବ୍ରହ୍ମବାଦୀ ଯତି । କଲେ ସେ ବରାହଙ୍କୁ ସ୍ତୁତି ॥୧୪୯
ସ୍ୱପାଦ ଆକ୍ରାନ୍ତ ସଲିଳେ । ପୃଥ୍ୱୀ ରଖିଲେ ଯୋଗବଳେ ॥୧୫୦
୪୭ ଏ ରୂପେ ରସାତଳୁଁ କ୍ଷିତି । ଆଣି ସେ ଦେବ ପ୍ରଜାପତି ॥୧୫୧
ଜଳରେ ନ୍ୟାସ ତାକୁ କରି । ଯଥାସୁଖରେ ଗଲେ ହରି ॥୧୫୨
୪୮ କଥନଯୋଗ୍ୟ ଅଟେ ଯାର । ମାୟାଚରିତ ମନୋହର ॥୧୫୩
ତାର ମଙ୍ଗଳଲୀଳାବାଣୀ । ଶୁଣେ, ଶୁଣାଇ ଯେବା ପ୍ରାଣୀ ॥୧୫୪
ତାର ହୃଦୟେ ଭଗବାନ । ତୁରିତେ ହୁଅନ୍ତି ପ୍ରସନ୍ନ ॥୧୫୫
୪୯ ସକଳ ମଙ୍ଗଳର ପତି । ସେ ଯେବେ ପ୍ରସନ୍ନ ହୁଅନ୍ତି ॥୧୫୬
ପ୍ରାଣୀଙ୍କି କି ଅବା ଦୁର୍ଲଭ । ବ୍ୟର୍ଥ ଇତର ସୁଖଲବ ॥୧୫୭
ଯେ ତାଙ୍କୁ ଅନନ୍ୟ ଦୃଷ୍ଟିରେ । ସେବା କରନ୍ତି ସାଧୁ ନରେ ॥୧୫୮
ତାଙ୍କୁ ଦିଅନ୍ତି ନିଜଗତି । ସେ ଗୁହାଶୟ ଲକ୍ଷ୍ମୀପତି ॥୧୫୯
୫୦ ପୁରୁଷ-ଅର୍ଥସାର ଜାଣି । କେବା ଏ ରୂପେ ଅଛି ପ୍ରାଣୀ ॥୧୬୦
ଶୁଣନ୍ତେ ପ୍ରାଚୀନ ଚରିତ । ତା' ମଧ୍ୟେ ହରିକଥାମୃତ ॥୧୬୧
ପିଇଣ କର୍ଣ୍ଣ-ଅଞ୍ଜଳିରେ । ବିରକ୍ତ ହୋଇବ ସଂସାରେ ॥୧୬୨
କେବା ପଶୁରୁ ଆନ ହୋଇ । ହରିକଥାରେ ନ ରମଇଁ ॥୧୬୩
ତୃତୀୟ ସ୍କନ୍ଧ ଭାଗବତ । ଅଦ୍ଭୁତ ଗୋବିନ୍ଦଚରିତ ॥୧୬୪
ମନନିବେଶ କର ଏଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ॥୧୬୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥ୍ୱୁ୍ୟଦ୍ଧରଣଂ ନାମ ତ୍ରୟୋଦଶୋଽଧ୍ୟାୟଃ ॥

# ଚତୁର୍ଦ୍ଦଶୋଽଧ୍ୟାୟଃ

ଚତୁର୍ଦ୍ଦଶେ ନିଦାନଂ ତୁ ତଦ୍‌ବଧେ ବକ୍ତୁମୁଚ୍ୟତେ ।
ସଂଧ୍ୟାୟାଂ କଶ୍ୟପାଦ୍‌ଗର୍ଭସଂଭବଃ [1]କାମତୋ ଦିତେଃ ॥ ୧ ॥

ଶ୍ରୀଶୁକ ଉବାଚ

୧ ଯେ ହରି କାରଣଶୂକର । ତାହାଙ୍କ କଥା ମନୋହର ॥ ୧
ମୈତ୍ରେୟ କରନ୍ତେ ବର୍ଣ୍ଣନ । ବିଦୁର ଶୁଣି ସେ ବଚନ ॥ ୨
ମନରେ ତୃପ୍ତିକି ନ ପାଇ । କର-ଅଞ୍ଜଳି ଶିରେ ଦେଇ ॥ ୩
ପୁଣି ପଚାରିଲେ ଏମନ୍ତ । ଅଟନ୍ତି ସେହୁ ଧୃତବ୍ରତ ॥ ୪

ଶ୍ରୀବିଦୁର ଉବାଚ

୨ ହେ ମୁନିଶ୍ରେଷ୍ଠ ! ଯଜ୍ଞମୂର୍ତ୍ତି । ଅଟନ୍ତି ଦେବ ଲକ୍ଷ୍ମୀପତି ॥ ୫
ହିରଣ୍ୟାକ୍ଷକୁ କଲେ ହତ । ତୁମ୍ଭେ କହିଲ ଏ ବୃତ୍ତାନ୍ତ ॥ ୬
୩ ଲୀଳାରେ ଦନ୍ତଅଗ୍ରେ ମହୀ । ଉଦ୍ଧାର କରନ୍ତେଣ ସେହି ॥ ୭
କି ହେତୁ ଦୈତ୍ୟରାଜସଙ୍ଗେ । ସମର କଲେ ନାନା ରଙ୍ଗେ ॥ ୮
୪ ଶୁଣିତ ଶ୍ରଦ୍ଧା ମୋର ମନ । ବିସ୍ତାରି କହ ତାର ଜନ୍ମ ॥ ୯
ତୋଷ ନ ଲଭେ ମନ ମୋର । କୁତୂକ ଜନ୍ମଇ ଅପାର ॥ ୧୦

ଶ୍ରୀମୈତ୍ରେୟ ଉବାଚ

୫ ହେ ବୀର ! ସାଧୁ ପ୍ରଶ୍ନ ତୋର । ଯେଣୁ ହରିର ଅବତାର ॥ ୧୧
କଥା ପଚାରୁ ବାରମ୍ବାର । ଯେ ଲୋକମୃତ୍ୟୁପାଶହର ॥ ୧୨
୬ ପୂର୍ବେ ନାରଦ ଯାହା ଭଣି । ଉତ୍ତାନପାଦସୁତ ଶୁଣି ॥ ୧୩
ମୃତ୍ୟୁମୁଣ୍ଡରେ ପାଦ ଦେଲା । ପରମ ପଦ ଆରୋହିଲା ॥ ୧୪
୭ ପୂର୍ବେ ପୃଚ୍ଛନ୍ତେ ଦେବମାନେ । ବ୍ରହ୍ମା ତାହାଙ୍କ ସନ୍ନିଧାନେ ॥ ୧୫
ଭଣିଅଛନ୍ତି ଯେଉଁ ବାଣୀ । ସେ ଇତିହାସ ଅଛି ଶୁଣି ॥ ୧୬
୮ ଦକ୍ଷଦୁହିତା ନାମ ଦିତି । ମାରୀଚ[2] କଶ୍ୟପ ତା' ପତି ॥ ୧୭
ସେ ପୁତ୍ରବାଞ୍ଛା ମନେ ଧରି । ମଦନେ ତନୁ ହୋଏ ଘାରି ॥ ୧୮
ସଂଧ୍ୟାକାଳରେ ତାଙ୍କ ପାଶେ । ପ୍ରବେଶ ହେଲା ରତି-ଆଶେ ॥ ୧୯
୯ ସେ ମହାମୁନି ଅଗ୍ନି ଘରେ । ଆଦିତ୍ୟ-ଅସ୍ତ ସମୟରେ ॥ ୨୦
ଯାହାର ଜିହ୍ୱାରୂପୀ ହୋଇ । ଅଗ୍ନିଦେବତା ପ୍ରକାଶଇ ॥ ୨୧

---

୧. କାମତୋଦିତଃ । ୨. ମରୀଚିଙ୍କ ପୁତ୍ର ।

ସେ ଯଜ୍ଞପତିଙ୍କି ପୂଜିଣ । ଅଛନ୍ତି ହୋଇ ଶାନ୍ତମନ ॥ ୨୨
ତାହାଙ୍କ ପାଶରେ ମିଳିଲା । ଏମନ୍ତ ବଚନ ବୋଇଲା ॥ ୨୩

ଶ୍ରୀଦିତିରୁବାଚ

୧୦ ଭୋ ନାଥ ! ଶୁଣ ତପୋଧନ । ଏ କାମ ଧରି ଶରାସନ ॥ ୨୪
ବିକ୍ରମି ତୋହର ନିମିତ୍ତେ । ଦୁଃଖିତ କରୁଅଛି ମୋତେ ॥ ୨୫
ରମ୍ଭାକୁ ଯେହ୍ନେ ମତଙ୍ଗଜ[1] । ବିକ୍ରମି କରଇ ନିସ୍ତେଜ ॥ ୨୬
୧୧ ମୋର ସପତ୍ନୀ ଯେତେ ଛନ୍ତି । ସର୍ବେ ଅଟନ୍ତି ପୁତ୍ରବତୀ ॥ ୨୭
ତାହାଙ୍କ ସମ୍ପତ୍ତିକି ଚାହିଁ । ସଂତତେ ହେଉଛି ମୁଁ ଦହି ॥ ୨୮
ମୋଠାରେ ଅନୁଗ୍ରହ କର । ମଙ୍ଗଳ ଉପୁଜୁ ତୁମ୍ଭର ॥ ୨୯
୧୨ ଭର୍ତ୍ତାକୁ ମାନନା ଯେ କରେ । ତା' ଯଶ ରହଇ ସଂସାରେ ॥ ୩୦
ତୁମ୍ଭର ପରା ପତି ଯହିଁ । ପୁତ୍ରରୂପରେ ଜାତ ହୋଇ[2] ॥ ୩୧
୧୩ ମୋ ପିତା ଦକ୍ଷ ପ୍ରଜାପତି । ଦୁହିତାବତ୍ସଳ ସେ ଅତି ॥ ୩୨
କାହାକୁ ବରିବ ବୋଲିଣ । ଆମ୍ଭଙ୍କୁ ପୃଚ୍ଛି ଜଣେ ଜଣ ॥ ୩୩
୧୪ ଆମ୍ଭମାନଙ୍କ ଭାବ ଜାଣି । ସନ୍ତାନବୃଦ୍ଧି ମନେ ଗୁଣି ॥ ୩୪
ତୁମ୍ଭଙ୍କୁ ଦେଲା ତ୍ରୟୋଦଶ । ଦୁହିତା କରିଣ ବିଶ୍ୱାସ ॥ ୩୫
ଯେତେ ତୁମ୍ଭର ସୁଚରିତ । ତହିଁକି ହେଲୁଁ ଅନୁଗତ ॥ ୩୬
୧୫ ଭୋ କଂଜଲୋଚନ ମୋହର । ମନୋରଥକୁ ପୂର୍ଣ୍ଣ କର ॥ ୩୭
ବଡ଼କୁ ଶରଣ ପଶଇ । ଯେବଣ ଲୋକ ଆର୍ତ୍ତ ହୋଇ ॥ ୩୮
କେବେହେଁ ବିଫଳ ସେ ନୋହି । ଅବଶ୍ୟ ଫଳକୁ ଦିଅଇ ॥ ୩୯

ଶ୍ରୀମୈତ୍ରେୟ ଉବାଚ

୧୬ ଏ ରୂପେ କହନ୍ତେ ବହୁତ । କାମରେ ହୋଇ ମୋହଚିତ୍ତ ॥ ୪୦
ଦିତିକି ଅନୁନୟ କଲେ । କଶ୍ୟପ ବଚନ ବୋଇଲେ ॥ ୪୧
୧୭ ତୁ ଯାହା କରିଅଛୁ ମନ । ମୁଁ ତାହା କରିବି ବିଧାନ ॥ ୪୨
ତ୍ରିବର୍ଗସିଦ୍ଧି ଯହୁଁ ଜାତ । କେ ନ କରେ ତା' ମନୋରଥ ॥ ୪୩
୧୮ ଏଣୁ କଳତ୍ରବନ୍ତ ଯେହି । ସେ ଅନ୍ନ ଜଳ ଆଦି ଦେଇ ॥ ୪୪
ଇତର ଯେ ଆଶ୍ରମମାନ । ତାହାଙ୍କୁ କରି ଉପାଦାନ ॥ ୪୫
ବ୍ୟସନଜଳଧିକି ତରେ । ସିନ୍ଧୁକୁ ଯେହ୍ନେ ବୋହିତରେ ॥ ୪୬

---

୧. ହାତୀ । ୨. ତଜ୍ଜାୟା ଜାୟା ଭବତି ଯଦସ୍ୟାଂ ଜାୟତେ ପୁନଃ । (ଶ୍ରୁତିଃ)

୧୯ ମଙ୍ଗଳକାମନା ଲୋକର । ଅର୍ଦ୍ଧ ଯେ ଅଟଇ ଶରୀର ॥ ୪୭
ଯାହାର ତହିଁ[1] ଗୃହଭାର । ଦେଇ ନିଶ୍ଚିନ୍ତେ ଥାଇ ନର ॥ ୪୮
୨୦ ଇତର ଆଶ୍ରମେ ଅଜିତ । ଇନ୍ଦ୍ରିୟ ଅରାତି[2] ବହୁତ ॥ ୪୯
ଯାହାକୁ ଆଶ୍ରେ କରି ପୁଣି । ଆମ୍ଭେ ତାହାଙ୍କୁ ହେଲେ ଜିଣି ॥ ୫୦
ଯେସନେ ଦୁର୍ଗପତି ଜନ । ହେଲେ ଜିଣଇ ଦସ୍ୟୁମାନ ॥ ୫୧
୨୧ ତୁମ୍ଭେ ଆମ୍ଭର ଗୃହେଶ୍ୱରୀ । ଅନେକ ଉପକାର କରି ॥ ୫୨
ସମାନ ହୋଇବାକୁ ତୋତେ । ନ ପାରୁ ଆମ୍ଭେ ଏ ଜଗତେ ॥ ୫୩
ଅଛନ୍ତି ଗୁଣପ୍ରିୟ ଯେହି । ସଂପୂର୍ଣ୍ଣ ଆୟୁଷକୁ ଦେଇ ॥ ୫୪
ପତ୍ନୀର ଯେତେ ଉପକାର । ଶୁଝି ନ ପାରିବେ ସେ ନର ॥ ୫୫
୨୨ ତୋହର କାମ ପୁତ୍ରଅର୍ଥେ । ମୁଁ ତାହା କରିବି ନିଶ୍ଚିତେ ॥ ୫୬
ମୁହୂର୍ତ୍ତେ ମାତ୍ର ପ୍ରତିପାଳ । ନିନ୍ଦା ନ କରନ୍ତୁ ସକଳ ॥ ୫୭
୨୩ ଘୋର ଜନ୍ତୁଙ୍କ ବେଳ ଏହି । ପ୍ରତ୍ୟକ୍ଷେ ଘୋର ଏ ଦିଶଇ ॥ ୫୮
ମହେଶ-ଅନୁଚର ଭୂତେ । ଚରନ୍ତି ଯହିଁ ଅବିରତେ ॥ ୫୯
୨୪ ହେ ସାଧ୍ୱି ଏ ସଂଧ୍ୟାକାଳରେ । ଭୂତଗଣଙ୍କ ସଙ୍ଗତରେ ॥ ୬୦
ଭୂତଭାବନ ଭଗବାନ । ବୃଷେ ବୁଲନ୍ତି ତ୍ରିଲୋଚନ ॥ ୬୧
୨୫ ଶ୍ମଶାନ-ଚକ୍ରବାତ-ଧୂଳି । ଧୂସର ଦିଶେ ଜଟାବଳୀ ॥ ୬୨
ଦେହ ନିର୍ମଳ ହେମପ୍ରାୟେ । ଭସ୍ମ ଗୁଣ୍ଠନ ତହିଁ ହୋଏ ॥ ୬୩
ତିନି ଲୋଚନେ ପ୍ରାଣୀଙ୍କର । ଗତିକି ଦେଖେ ତୋ ଦେବର[3] ॥ ୬୪
୨୬ ତାହାର ନିଜ ପର ହୋଇ । ସଂସାର ମଧ୍ୟେ କେହି ନାହିଁ ॥ ୬୫
କାହାକୁ ଆଦରଇ ନାହିଁ । ନିନ୍ଦା କେବେହେଁ ନ କରଇ ॥ ୬୬
ମାୟାକୁ ଭୋଗ କରି ଯେହି । ଚରଣେ ଅଛି ଫିଙ୍ଗିଦେଇ ॥ ୬୭
ନାନା ପ୍ରକାରେ ବ୍ରତମାନ । କରିଣ ଆମ୍ଭେ ଅନୁଦିନ ॥ ୬୮
ଲଭିବା ଅର୍ଥେ ସେ ସଂପତ୍ତି । କରିଣଅଛୁଁ ନିଜ ମତି ॥ ୬୯
୨୭ ଅବିଦ୍ୟାପଟଳ ଭେଦନ । କରିବା ଅର୍ଥେ ବୁଧଜନ ॥ ୭୦
ଯାହାର ନିର୍ଦ୍ଦୋଷ ଚରିତ । ଗାୟନ କରନ୍ତି ସଂତତ ॥ ୭୧
ନାହିଁ ଯା' ସମ ହୋଇ କେହି । ଯା ଠାରୁ ଅତିଶୟ ନାହିଁ ॥ ୭୨
ସାଧୁ ଲୋକଙ୍କ ଗତି ସେହି । ପିଶାଚଚେଷ୍ଟା ଆଚରଇ ॥ ୭୩

---

୧. ଯାହାର ତହିଁ = ଯାହାର ଠାରେ ।
୨. ଅରାତି = ଶତ୍ରୁ । ୩. ଦେବର = ଭିଣୋଇ ।

୨୮ ଯେ ଅଟେ ନିଜ ଆତ୍ମାରତ । ନ ଜାଣି ତାହାର ଚରିତ ॥ ୭୪
ଅଭାଗ୍ୟବନ୍ତ ପ୍ରାଣୀମାନେ । ହାସ୍ୟ କରନ୍ତି ଦୁଷ୍ଟମନେ ॥ ୭୫
ଭକ୍ଷ୍ୟ ଅଟଇ କୁକ୍କୁରର । ଯେବଣ ଦେହ ଆପଣାର ॥ ୭୬
ଭୂଷଣ, ଗନ୍ଧ, ମାଲ୍ୟ, ବାସେ । ପୋଷନ୍ତି ତାହା ପ୍ରୀତିଆଶେ ॥ ୭୭
୨୯ ଯା କୃତ କର୍ମସେତୁ[୧] ମାନ । ବ୍ରହ୍ମାଦି କରନ୍ତି ପାଳନ ॥ ୭୮
ସଂସାରକାରଣ ଯେ ଅଟେ । ମାୟା ଯାହାର ପାଦେ ଖଟେ ॥ ୭୯
ପିଶାଚ-ଆଚରଣ ତାର । ବିଭୁଚରିତ ଅଗୋଚର ॥ ୮୦

ଶ୍ରୀମୈତ୍ରେୟ ଉବାଚ

୩୦ ଏମନ୍ତ ସ୍ୱାମୀବାକ୍ୟ ଶୁଣି । ମଦନେ ମୋହିତ ତରୁଣୀ ॥ ୮୧
ଧଇଲା ବିପ୍ରର[୨] ବସନ । ନିର୍ଲଜ୍ଜବୃଷଳୀ ଯେସନ ॥ ୮୨
୩୧ ଅକର୍ମ କଥାରେ ଭାର୍ଯ୍ୟାର । ନିର୍ବନ୍ଧ ଦେଖି ମୁନିବର ॥ ୮୩
ଦୈବକୁ କରି ନମସ୍କାର । ଏକାନ୍ତ ହେଲେ ତା' ସଙ୍ଗର ॥ ୮୪
୩୨ ତଦନନ୍ତରେ ସ୍ନାନ ସାରି । ମଉନେ ପ୍ରାଣାୟାମ କରି ॥ ୮୫
ବିରଜ,[୩] ସନାତନ ଜ୍ୟୋତି । ବ୍ରହ୍ମ[୪] ଜପିଲେ ମନେ ଚିନ୍ତି ॥ ୮୬
୩୩ କରି ନିନ୍ଦିତ କର୍ମ ଅତି । ନିର୍ବେଦ ଲଭି ମନେ ଦିତି ॥ ୮୭
ଲଜ୍ଜାରେ ଅଧୋମୁଖୀ ହୋଇ । କହେ କଶ୍ୟପପାଶେ ଯାଇଁ ॥ ୮୮

ଶ୍ରୀଦିତିରୁବାଚ

୩୪ ହେ ବିପ୍ର ! ଏ ଗର୍ଭକୁ ମୋର । ରୁଦ୍ର ନ କରନ୍ତୁ ସଂହାର ॥ ୮୯
ଯେ ଭୂତମାନଙ୍କ ଈଶ୍ୱର । ଦୋଷ ମୁଁ କଲି ଯାହାଠାର ॥ ୯୦
୩୫ ରୁଦ୍ରଙ୍କୁ ମୋର ନମସ୍କାର । ଯେ ଦେବ ଉଗ୍ର ମହେଶ୍ୱର ॥ ୯୧
ସକାମ ଜନ-କାମଦାୟୀ । ଯେ ଶିବ ନ୍ୟସ୍ତଦଣ୍ଡ ହୋଇ ॥ ୯୨
ଦୁଷ୍ଟ ଜନକୁ ଦଣ୍ଡ ଦିଏ । ସଂହାରେ ମନ୍ୟୁରୂପ ବହେ ॥ ୯୩
୩୬ ଭଗିନୀପତି ସେ ମୋହର । ପ୍ରସନ୍ନ ହୁଅନ୍ତୁ ଈଶ୍ୱର ॥ ୯୪
ଅତି ନିର୍ଦ୍ଦୟ ବ୍ୟାଧ ଯେହି । ସେହି ସ୍ତିରୀଙ୍କି ଦୟା ବହି ॥ ୯୫
କରନ୍ତି ଅନୁଗ୍ରହ ଅତି । ସେ ଭଗବାନ ସତୀପତି ॥ ୯୬

---

୧. ଧର୍ମସେତୁ । ୨. ବିପ୍ରର = କଶ୍ୟପଙ୍କର । ୩. ବିରଜ = ନିର୍ମଳ । ୪. ପ୍ରଣବ

### ଶ୍ରୀମୈତ୍ରେୟ ଉବାଚ

୩୭ ନିଜ ସନ୍ତାନ ଶୁଭ ଚିନ୍ତି । ଭୟରେ କମ୍ପୁଅଛି ଦିତି ॥ ୯୭
ସଂଧ୍ୟାନିୟମକୁ ବଢ଼ାଇ । ଭାର୍ଯ୍ୟାକୁ ପ୍ରଜାପତି କହି ॥ ୯୮

### ଶ୍ରୀକଶ୍ୟପ ଉବାଚ

୩୮ ତୋ ଚିତ୍ତ-ଅଶୁଚିଭାବରୁ । ମୁହୂର୍ତ୍ତ ଅଲଂଘ୍ୟ ଦୋଷରୁ ॥ ୯୯
୩୯ ମୋର ବଚନଲଘଂନରୁ । ରୁଦ୍ରଗଣଙ୍କ ହେଳନରୁ ॥୧୦୦
ଏ ଦୋଷୁଁ ତୋର ଗର୍ଭଗତେ । ହେବେ ନିନ୍ଦିତ ବେନି ସୁତେ ॥୧୦୧
ଲୋକପାଳଙ୍କ ସହିତରେ । ତିନି ଲୋକଙ୍କୁ ଏ ସଂସାରେ ॥୧୦୨
କନ୍ଦାଇବେ ସେ ପୁଣପୁଣ । ହେ କୋପବତି ! ଏ ପ୍ରମାଣ ॥୧୦୩
୪୦ ଅନପରାଧୀ ଅତି ଦୀନ । ପ୍ରାଣୀଙ୍କି କରନ୍ତେ ନିଧନ ॥୧୦୪
୪୧ ପର-ରମଣୀଙ୍କ କଷଣେ । କ୍ରୋଧ କରନ୍ତେ ସାଧୁଗଣେ ॥୧୦୫
ଲୋକଭାବନ ଭଗବାନ । ସେ କାଳେ ହୋଇ କ୍ରୁଦ୍ଧମନ ॥୧୦୬
ଧରଣୀମଧ୍ୟେ ବିଶ୍ୱେଶ୍ୱର । ସେ ବେନି କରିବେ ସଂହାର ॥୧୦୭
ଇନ୍ଦ୍ର ଯେସନେ ବଜ୍ର ଧରେ । ଘୋର ପର୍ବତଦର୍ପ ହରେ ॥୧୦୮

### ଶ୍ରୀଦିତିରୁବାଚ

୪୨ ଭୋ ମୁନି ଯେବେ ଚକ୍ରଧର । ମାରିବେ ମୋ ବେନିକୁମର ॥୧୦୯
ତହିଁକି ଭୟ ମୋର ନାହିଁ । ସେ କଥା ବାଞ୍ଛା ମୁଁ କରଇ ॥୧୧୦
କ୍ରୋଧୀ-ବ୍ରାହ୍ମଣ-ଶାପ ପାଇ । ନ ମରନ୍ତୁ ସେ ବେନି ଭାଇ ॥୧୧୧
୪୩ ଯେ ବ୍ରହ୍ମଦଣ୍ଡେ ହତ ହୋଇ । ପ୍ରାଣୀମାନଙ୍କୁ ଦୁଃଖ ଦେଇ ॥୧୧୨
ଯେବଣ ଯେବଣ ଯୋନିରେ । ଜନମ ଲଭେ ସେ ସଂସାରେ ॥୧୧୩
ନରକଗଣ ତାକୁ ତହିଁ । ଚିତ୍ତରେ ଦୟାକୁ ନ ବହି ॥୧୧୪

### ଶ୍ରୀକଶ୍ୟପ ଉବାଚ

୪୪ ଶୋକରେ ଅନୁତାପ କଲୁ । ଯୁକ୍ତ-ଅଯୁକ୍ତ ବିଚାରିଲୁ ॥୧୧୫
ଅତିମାନନା ହରିଠାରେ । ଆଦର କଲୁ ମହେଶରେ ॥୧୧୬
ମୋତେ ତୁ ଆଦରିଲୁ ଯେଣୁ । ନାତିମାନଙ୍କ ମଧ୍ୟେ ତେଣୁ ॥୧୧୭
ଜନମ ହେବ ଏକ ତୋର । ସେ ସାଧୁ ମଧ୍ୟେ ହେବ ବର ॥୧୧୮
୪୫ ଯା' ଯଶ କରିବେ ଗାୟନ । ବିଷ୍ଣୁ ଯଶରେ ମିଶାଇଣ ॥୧୧୯
୪୬ ଯାହାର ସୁଚରିତମାନ । ଲଭିବା ଅର୍ଥେ ସାଧୁଜନ ॥୧୨୦

| | | | |
|---|---|---|---|
| | ଆତ୍ମାକୁ ନିର୍ବୈର ଆଦିରେ । | ଭାବନା[୧] କରିବେ ସଂସାରେ | ॥୧୨୧ |
| | ମଳିନ ହେମ ଦେଇ ଜାଳ । | ଯେସନେ କରନ୍ତେ ନିର୍ମଳ | ॥୧୨୨ |
| ୪୭ | ଏ ବିଶ୍ୱ ଯାହାର ପ୍ରସାଦେ । | ପ୍ରସନ୍ନ ହୋଏ ଅପ୍ରମାଦେ | ॥୧୨୩ |
| | ଏ ବିଶ୍ୱ ଆତ୍ମା ଅଟେ ଯେହି । | ଆତ୍ମାର ସାକ୍ଷୀ ଯେ ବୋଲାଇ | ॥୧୨୪ |
| | ତୋଷ ହେବେ ସେ ଚକ୍ରଧର । | ଅନନ୍ୟ ଦୃଷ୍ଟିରେ ଯାହାର | ॥୧୨୫ |
| ୪୮ | ମହାତ୍ମା, ମହାଭାଗବତ । | ମହାନୁଭାବ ଯେ ସମ୍ମତ | ॥୧୨୬ |
| | ମହତ ଜନମାନଙ୍କର । | ମଧ୍ୟରେ ଅଟଇ ସେ ବର | ॥୧୨୭ |
| | ଦୃଢ଼ଭଗତି-ଶୁଦ୍ଧଚିତ୍ତେ । | ହରିଙ୍କି ନିବେଶି ସଂତତେ | ॥୧୨୮ |
| | ନିଜ ଦେହରେ ଅଭିମାନ । | ଯେ ଥିବ, କରିବ ଦହନ | ॥୧୨୯ |
| ୪୯ | ସେ ଅଲମ୍ପଟ ଗୁଣାକର । | ଅଟଇ ସୁଚରିତ୍ରଧର | ॥୧୩୦ |
| | ପରସଂପଦେ ସୁଖୀ ହୋଇ । | ପରଦୁଃଖରେ ଦୁଃଖୀ ଯେହି | ॥୧୩୧ |
| | ତାର ନ ଥିବେ ଶତ୍ରୁ ଲୋକ । | ହରିବ ଜଗତର ଶୋକ | ॥୧୩୨ |
| | ନିଦାଘ ଜାତ ତାପମାନ । | ହରଇ ଚନ୍ଦ୍ରମା ଯେସନ | ॥୧୩୩ |
| ୫୦ | ଯେ ବାହ୍ୟ ଅନ୍ତରେ ନିର୍ମଳ । | ସୁନ୍ଦର ନୟନ କମଳ | ॥୧୩୪ |
| | ଭକ୍ତ ଯେମନ୍ତ ଇଚ୍ଛା କରେ । | ସେ ଅନୁରୂପେ ତନୁ ଧରେ | ॥୧୩୫ |
| | ଯେ ଲକ୍ଷ୍ମୀବାମାର[୨] ମଣ୍ଡନ । | କୁଣ୍ଡଳେ ଶୋହେ ଯା' ଆନନ | ॥୧୩୬ |
| | ଯେ ପ୍ରଭୁ ଏମନ୍ତ ଅଟନ୍ତି । | ତାଙ୍କୁ ଦେଖିବ ତୋର ନାତି | ॥୧୩୭ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୫୧ | ନାତିକି ଶୁଣି ଭାଗବତ[୩] । | ଦିତି ହୋଇଲା ତୋଷଚିତ୍ତ | ॥୧୩୮ |
| | କୃଷ୍ଣସକାଶୁଁ ବେନିସୁତ । | ମରିବେ ଶୁଣି ଏ ବୃତ୍ତାନ୍ତ | ॥୧୩୯ |
| | ପୁତ୍ରଙ୍କ ଗତି ମନେ ଗୁଣି । | ଉତ୍ସାହ ଲଭିଲା ତରୁଣୀ | ॥୧୪୦ |
| | ଦିତି-କଶ୍ୟପର ସଂବାଦ । | ଶୁଣନ୍ତେ ନ ଲାଗେ ପ୍ରମାଦ | ॥୧୪୧ |
| | ତୃତୀୟ ସ୍କନ୍ଧର ଏ ବାଣୀ । | ବ୍ରାହ୍ମଣ ଦୀନବନ୍ଧୁ ଭଣି | ॥୧୪୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀଦିତିଗର୍ଭାଧାନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

---

୧. ଶୋଧନ । ୨. ବାମା = ଲଳନା । ୩. ଭାଗବତ = ଭକ୍ତ ।

## ପଞ୍ଚଦଶୋଽଧ୍ୟାୟଃ

ହତପ୍ରଭୈଃ ସୁରୈଃ ପୃଷ୍ଟଃ ପ୍ରାହ ପଞ୍ଚଦଶେ ବିଧିଃ ।
ତଦ୍‌ବୀଜଂ ବିପ୍ରଶାପାଦି ବୈକୁଣ୍ଠେ ବିଷ୍ଣୁଭୃତ୍ୟୟୋଃ ।।

ଶ୍ରୀମୈତ୍ରେୟ ଉବାଚ

୧ କଶ୍ୟପ-ପ୍ରଜାପତି-ବୀର୍ଯ୍ୟ । ବିନାଶ କରେ ପରତେଜ ।। ୧
ଶତେ ବରଷ ଗର୍ଭେ ଦିତି । ଧଇଲା ସୁରପୀଡ଼ା ଚିନ୍ତି ।। ୨
୨ ସେ ଗର୍ଭତେଜରେ ଭୁବନ । ହୁଅନ୍ତେ ଆଲୋକରେ ଶୂନ୍ୟ ।। ୩
ଇନ୍ଦ୍ରାଦି ଦଶଦିଗପାଳେ । ନିସ୍ତେଜ ହୋଇ ଏକ ମେଳେ ।। ୪
ଦିଗମାନଙ୍କ ଅନ୍ଧକାର । କହିଲେ ବ୍ରହ୍ମାଙ୍କ ଆଗର ।। ୫

ଶ୍ରୀଦେବା ଊଚୁଃ

୩ ହେ ପ୍ରଭୁ ! ତୁମ୍ଭେ ଅଛ ଜାଣି । ଏ ଅନ୍ଧକାରକୁ ପ୍ରମାଣି ।। ୬
ଯେବଣ ଅନ୍ଧକାରୁଁ ମନେ । ଭୟ ପାଉଛୁଁ ଆମ୍ଭେମାନେ ।। ୭
ତୁମ୍ଭର ଅଗୋଚର ହୋଇ । ସଂସାରେ କଥା କିଛି ନାହିଁ ।। ୮
ତୁମ୍ଭ ପ୍ରକାର ଯେ ଅଛଇ । କାଳକଳିତ ସେ ନୁହଇ ।। ୯
୪ ହେ ଦେବଦେବ ! ଜଗନ୍ନାଥ । ତୁ ଲୋକପାଳ ଶ୍ରେଷ୍ଠଭୂତ ।। ୧୦
ପର ଅପର ପ୍ରାଣୀଙ୍କର । ଭାବକୁ କରୁ ତୁ ଗୋଚର ।। ୧୧
୫ ବିଜ୍ଞାନ ଅଟେ ବୀର୍ଯ୍ୟ ତୋର । ମାୟାରେ ଧରୁ ଏ ଶରୀର ।। ୧୨
ରଜୋଗୁଣକୁ ଅଛୁ ଧରି । ଅବ୍ୟକ୍ତ ଉତ୍ପତ୍ତି ତୋହରି ।। ୧୩
ତୋତେ କରୁଛୁଁ ନମସ୍କାର । ତୁ ସର୍ବ ଜଗତ-ଈଶ୍ୱର ।। ୧୪
୬ ଜୀବଙ୍କୁ ତୁମ୍ଭେ କର ଜାତ । ଆତ୍ମାରେ ଗୁନ୍ଥ ଏ ଜଗତ ।। ୧୫
କାର୍ଯ୍ୟକାରଣ ବେନିଙ୍କର । ତୁମ୍ଭେ ହିଁ ଆତ୍ମା ତହୁଁ ପର ।। ୧୬
ତୁମ୍ଭଙ୍କୁ ଅନନ୍ୟ ଭାବରେ । ଭାବନା କରନ୍ତି ଯେ ନରେ ।। ୧୭
୭ ପ୍ରାଣ, ଇନ୍ଦ୍ରିୟ ଆତ୍ମା ଜିଣି । ସୁପକ୍ୱ-ଯୋଗ ସେହୁ ପ୍ରାଣୀ ।। ୧୮
ତୁମ୍ଭ ପ୍ରସାଦ ଲଭିଥାନ୍ତି । ସେ ପରାଭବ ନ ପାଆନ୍ତି ।। ୧୯
ଯାର ବଚନରଜ୍ଜୁ[୧] ଜାଣି । ତେଣେ ନିବଦ୍ଧ ସର୍ବ ପ୍ରାଣୀ ।। ୨୦

---

୧. ଯସ୍ୟ ବାକ୍ ତନ୍ତିଃ, ନାମାନି ଦାମାନି । (ଶ୍ରୁତିଃ)

| | | | |
|---|---|---|---|
| | ଆୟତ୍ତ ହୋଇଣ ତାହାର | । କରନ୍ତି ପୂଜା-ଉପହାର | ॥ ୨୧ |
| | ମୁଖ୍ୟ ସକଳ ଲୋକଙ୍କର | । ତୁମ୍ଭଙ୍କୁ ପ୍ରଣାମ ଆମ୍ଭର | ॥ ୨୨ |
| ୯ | ବିନଷ୍ଟ କର୍ମ ଲୋକଙ୍କର | । ନାଥ ! ମଙ୍ଗଳ ତୁମ୍ଭେ କର | ॥ ୨୩ |
| | ବିପତ୍ତି ଅଛୁଁ ଆମ୍ଭେ ପାଇ | । ଦୟାଦୃଷ୍ଟିରେ ବାରେ ଚାହିଁ | ॥ ୨୪ |
| ୧୦ | ଆମ୍ଭଙ୍କୁ ରକ୍ଷା ତୁମ୍ଭେ କର | । ଦିତିଗର୍ଭରେ କଶ୍ୟପର | ॥ ୨୫ |
| | ବୀର୍ଯ୍ୟ ବଢୁଛି ଦିନୁଁଦିନ | । କାଷ୍ଠରେ ଅନଳ ଯେସନ | ॥ ୨୬ |
| | ଦିଗମାନଙ୍କୁ ଅନ୍ଧକାରେ | । ଆଚ୍ଛନ୍ନ କରାଇ ସତ୍ୱରେ | ॥ ୨୭ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୧୧ | ଶବ୍ଦଗୋଚର ଭଗବାନ | । ହସିଣ କମଳ-ଆସନ | ॥ ୨୮ |
| | ମଧୁର ବାକ୍ୟେ କରି ପ୍ରୀତି | । ଦେବଙ୍କୁ ବଚନ କହନ୍ତି | ॥ ୨୯ |

ଶ୍ରୀବ୍ରହ୍ମୋବାଚ

| | | | |
|---|---|---|---|
| ୧୨ | ତୁମ୍ଭର ଠାରୁ ପୂର୍ବେ ଜାତ | । ମାନସ ପୁତ୍ର ମୋ ବିଦିତ | ॥ ୩୦ |
| | ଚଳିଲେ ଆକାଶମାର୍ଗରେ | । ସ୍ପୃହା ନ କରନ୍ତି ଲୋକରେ | ॥ ୩୧ |
| ୧୩ | ଅମଳ-ଆତ୍ମା ଭଗବାନ | । ବୈକୁଣ୍ଠ ନାମେ ତାର ସ୍ଥାନ | ॥ ୩୨ |
| | ସକଳଲୋକେ ନମସ୍କୃତ | । ତହିଁକି ଗଲେ ସେ ତୁରିତ | ॥ ୩୩ |
| ୧୪ | ପୁରୁଷମାନେ ଯହିଁ ଛନ୍ତି | । ସମସ୍ତେ ବଇକୁଣ୍ଠମୂର୍ତ୍ତି | ॥ ୩୪ |
| | ନିଷ୍କାମ ଧର୍ମକୁ ଆଚରି | । ଯେ ଆରାଧନା କଲେ ହରି | ॥ ୩୫ |
| ୧୫ | ଶବ୍ଦଗୋଚର ଭଗବାନ | । ଯହିଁରେ କରିଛନ୍ତି ସ୍ଥାନ | ॥ ୩୬ |
| | ନିର୍ମଳ ସତ୍ତ୍ୱଗୁଣ ଧରି | । ଆମ୍ଭମାନଙ୍କୁ ସୁଖୀ କରି | ॥ ୩୭ |
| | ଆଦ୍ୟ ପୁରୁଷ ଧର୍ମମୂର୍ତ୍ତି | । ସ୍ୱଜନେ ସୁଖ ଦିଏ ନିତି | ॥ ୩୮ |
| ୧୬ | ଯହିଁରେ ନୈଃଶ୍ରେୟସ ନାମେ | । ବିପିନ କାମଦୁଘ[୧] ଦ୍ରୁମେ | ॥ ୩୯ |
| | କୈବଲ୍ୟ କିବା ମୂର୍ତ୍ତିମନ୍ତ | । ସୁନ୍ଦର ଦିଶଇ ତେମନ୍ତ | ॥ ୪୦ |
| | ସର୍ବଋତୁରେ ଶୋଭା ପାନ୍ତି | । ଯେତେକ ବୃକ୍ଷେ ତହିଁ ଛନ୍ତି | ॥ ୪୧ |
| ୧୭ | ବିମାନବନ୍ତ ଲୋକେ ଯହିଁ | । ନାରୀମାନଙ୍କ ସଙ୍ଗେ ଥାଇଁ | ॥ ୪୨ |
| | ଗାଆନ୍ତି ବିଷ୍ଣୁର ଚରିତ | । ଯେ କରେ ନିଜ ପାପ ହତ | ॥ ୪୩ |
| | ବନ[୨] ମଧ୍ୟରେ ବିକଶିତ | । ମାଧବୀମଧୁ[୩] ଗନ୍ଧେ ଚିତ୍ତ | ॥ ୪୪ |
| | ଖଣ୍ଡିତ ହୁଅଇ ତାଙ୍କର | । ବାତକୁ କରନ୍ତି ଧିକ୍‌କାର[୪] | ॥ ୪୫ |

---

୧. କାମପୂରକ । ୨. ଜଳ । ୩. ମାଧବୀ=ବସନ୍ତକାଳୀନ ଲତା ବା ଫୁଲ । ମଧୁ = ମକରନ୍ଦ ।
୪. ତିରସ୍କୁର୍ବନ୍ତଃ (ସ୍ୱାମୀ) ।

୧୮ ପାରାବତ, ପିକ, ସାରସ । ଦାତ୍ୟୂହ[୧], ଚକ୍ରବାକ ହଂସ ॥
ଶୁକ, ତିତ୍ତିରି, ଶିଖିଙ୍କର । କଳହ ନିବର୍ତ୍ତେ ଯହିଁର ॥
ଗାଆନ୍ତେ ଭୃଙ୍ଗରାଜ ଯହିଁ । ହରିକଥାକୁ ପ୍ରାୟ ହୋଇ ॥
୧୯ ମନ୍ଦାର, କୁନ୍ଦ, କୁରୁବକ । ଉତ୍ପଳ, ପୁନ୍ନାଗ, ଚମ୍ପକ ॥
ବକୁଳ, ପଦ୍ମ, ପାରିଜାତ । ଇତ୍ୟାଦି କୁସୁମ ବହୁତ ॥
ଯହିଁ ତୁଳସୀତପ ଚିନ୍ତି । ବହୁତ ମାନନା କରନ୍ତି ॥
ଯେଣୁ ତୁଳସୀଗନ୍ଧ ହରି । ପୂଜନ୍ତି ଆଭରଣ କରି ॥
୨୦ ବୈଦୂର୍ଯ୍ୟ, ମରକତ, ହେମ । ଘଟିତ ବିମାନ ଉତ୍ତମ ॥
ତେଣେ ପୂରିତ ଯେଉଁ ପୁର । ଯେଉଁ ବିମାନେ ଭକ୍ତଙ୍କର ॥
ଯେ ହରିପାଦେ ନମ୍ର ନୋହି । ସେ ବିମାନ ସେ ନ ଦେଖଇ ॥
କୃଷ୍ଣର ଠାରେ ମନ ଦେଇ । ଅଛନ୍ତି ଭକ୍ତଜନେ ଯହିଁ ॥
ସେ ଭକ୍ତମାନଙ୍କର ଚିତ୍ତ । କାମେ କରିବାକୁ ମୋହିତ ॥
ସସ୍ମିତମୁଖୀ ନାରୀଜନ । ଚେଷ୍ଟାରେ ନୋହିଲେ ଭାଜନ ॥
୨୧ ସ୍ଫଟିକ ବାଡ଼ ମଧ୍ୟେ ଯହିଁ । ସୁବର୍ଣ୍ଣମାନ ଶୋଭା ପାଇ ॥
ସେ ହରିଗୃହେ ଯେଉଁ ପୁରେ । ଲୀଳାକମଳ ଘେନି କରେ ॥
କରିବା ପ୍ରାୟେ ସମ୍ମାର୍ଜନ । ଲକ୍ଷ୍ମୀ ଦିଶଇ ଶୋଭମାନ ॥
ଚାଳନ୍ତେ ଚରଣ ଯାହାର । ନୂପୁରଧ୍ୱନି ମନୋହର ॥
ଦୋଷବର୍ଜିତ ଯେ ଅଟଇ । ଯାହାର ଅନୁଗ୍ରହ ପାଇଁ ॥
ଯତ୍ନ କରନ୍ତି ଅବିରତେ । ବ୍ରହ୍ମାଦି ଦେବେ ଯେଝାମତେ ॥
୨୨ ଯେବଣ ପୁରେ ନିଜ ବନେ । ସଙ୍ଗତେ ଛନ୍ତି ଦାସୀଜନେ ॥
ଘେନି ତୁଳସୀଦଳମାନ । ହରିଙ୍କି କରନ୍ତେ ପୂଜନ ॥
ବିଦ୍ରୁମତଟ ସୁନିର୍ମଳ । ସୁଧାସମାନ ଯହିଁ ଜଳ ॥
ଏମନ୍ତ ବାପୀମଧ୍ୟେ ତହିଁ । ନିଜ ସୁନ୍ଦର ମୁଖ ଚାହିଁ ॥
ହରିଚୁମ୍ବିତ ବୁଦ୍ଧି କରି । ମଣଇଁ ଜଳଧିକୁମାରୀ ॥
୨୩ ହରିର ସଂସାରରଚନ । ଅନୁବାଦରୁ ଯେବା ଆନ ॥
ବୁଦ୍ଧିକି ନାଶ ସେ କରନ୍ତି । କୁକଥା ବୋଲି ଯାକୁ ଚିନ୍ତି ॥
ଯାହାକୁ ହତଭାଗ୍ୟ ନରେ । ଶୁଣନ୍ତି ଯେହୁ ପୁଣ୍ୟ ହରେ ॥

---

୧. ଚାତକ (ସ୍ୱାମୀ) ।

ଶୁଣିଲା ଲୋକଙ୍କୁ ଯେ କଥା । ନରକେ ପକାନ୍ତି ସର୍ବଥା ॥ ୭୨
ସେ କଥା ଶ୍ରବଣ ଯେ କରେ । ପ୍ରବେଶ ନୋହେ ସେ ଯହିଁରେ ॥ ୭୩
୨୪ ଧର୍ମସହିତେ ଯୁତ ହୋଇ । ସଂଭବେ ତତ୍ତ୍ୱଜ୍ଞାନ ଯହିଁ ॥ ୭୪
ଆମ୍ଭେମାନେହେଁ ଯାହା ଚିନ୍ତି । ଲଭି ଏମନ୍ତ ନରଗତି ॥ ୭୫
ଯେ ବିଷ୍ଣୁ ପୂଜା ନ କରନ୍ତି । ସେ ତା' ମାୟାରେ ମୋହ ହୋନ୍ତି ॥ ୭୬
୨୫ ଦେବମାନଙ୍କ ଶ୍ରେଷ୍ଠ ହରି । ତାହାଙ୍କ ସେବାଫଳୁଁ କରି ॥ ୭୭
ଯେଉଁମାନଙ୍କୁ ଅତିଦୂର । ହୋଇଣ ଅଛି ଦଣ୍ଡଧର ॥ ୭୮
ଯେଉଁମାନଙ୍କ ସୁଚରିତ । ବାଞ୍ଛା କରଇ ଆମ୍ଭ ଚିତ୍ତ ॥ ୭୯
ନିଜ ଭର୍ତ୍ତାର ଯଶମାନ । ଅନ୍ୟୋନ୍ୟେ କରିଣ କଥନ ॥ ୮୦
ଅନୁରାଗରୁ ଅଶ୍ରୁଧାର । ପୁଲକେ ପୂରିତ ଶରୀର ॥ ୮୧
ଏମନ୍ତ ସୁଚରିତ ନରେ । ପ୍ରବେଶ ହୁଅନ୍ତି ଯହିଁରେ ॥ ୮୨
୨୬ ସକଳଗୁରୁ ଭଗବାନ । ଯହିଁରେ କରିଛନ୍ତି ସ୍ଥାନ ॥ ୮୩
ବିବୁଧଶ୍ରେଷ୍ଠମାନଙ୍କର । ବିମାନତେଜରେ ଭାସ୍ୱର[୧] ॥ ୮୪
ସକଳଭୁବନେ ବନ୍ଦିତ । ଯେ ବଇକୁଣ୍ଠ ବିରାଜିତ ॥ ୮୫
ଯୋଗମାୟାର ବଳେ ତହିଁ । ପ୍ରବେଶ ମୁନିମାନେ ହୋଇ ॥ ୮୬
ଅତି ଆନନ୍ଦ ନିଜମନେ । ଲଭିଲେ ବୈକୁଣ୍ଠଦର୍ଶନେ ॥ ୮୭
୨୭ ଅଦ୍ଭୁତ ଯେତେ କଥାମାନ । ତହିଁରେ ନ ଦେଇ ନୟନ ॥ ୮୮
ସେ ପୁରେ ଷଷ୍ଠ ଦ୍ୱାର ଜିଣି । ସପ୍ତମ ଦ୍ୱାରେ ହୋନ୍ତେ ପୁଣି ॥ ୮୯
ଦେଖିଲେ ବେନି ଗଦା ଧରି । ରହିଅଛନ୍ତି ବେନି ଦ୍ୱାରୀ ॥ ୯୦
ଅମୂଲ୍ୟ ମୁକୁଟ କୁଣ୍ଡଳ । ଅଙ୍ଗଦେ ଦିଶନ୍ତି ଉଜ୍ଜ୍ୱଳ ॥ ୯୧
ଏକ ଆରକେ ବେନି ଜନ । ବୟସେ ଦିଶନ୍ତି ସମାନ ॥ ୯୨
୨୮ ମତ୍ତ ହୋଇଣ ମଧୁପାନ । କରନ୍ତି ଯହିଁ ଭୃଙ୍ଗମାନ ॥ ୯୩
ଶ୍ୟାମଳ ଚାରି ଭୁଜଙ୍କର । ମଧ୍ୟେ ଯେ ଦିଶଇ ସୁନ୍ଦର ॥ ୯୪
ଏମନ୍ତ ରୂପ ବନମାଳା । ଲମ୍ବିଣ ଅଛି ତାଙ୍କ ଗଳା ॥ ୯୫
କୁଟିଳ ଭ୍ରୂଲତା ଶୋଭନ । ଅରୁଣ ଦିଶଇ ଲୋଚନ ॥ ୯୬
ନାସିକା ଫୁଲାନ୍ତେ ବଦନ । ଦିଶଇ କୁପିତ ଯେସନ ॥ ୯୭
୨୯ ଚାହୁଁଅଛନ୍ତି ବେନି ଦ୍ୱାରୀ । ତାହାଙ୍କୁ ପ୍ରଶ୍ନ ହିଁ ନ କରି ॥ ୯୮
ସୁବର୍ଣ୍ଣକବାଟେ ସୁନ୍ଦର । ଯେହ୍ନେ ଜିଣିଲେ ଷଟ ଦ୍ୱାର ॥ ୯୯

୧. ଉଜ୍ଜ୍ୱଳ ।

| | | | |
|---|---|---|---|
| | ପୁଣି ସେ ସପ୍ତମ ଦ୍ୱାରରେ । | ପ୍ରବେଶ ହେଲେ ସେ ପ୍ରକାରେ | ।।୧୦୦ |
| | ସେ ଋଷିମାନଙ୍କର କାହିଁ । | ବିଷମ ବୁଦ୍ଧି ନ ହୁଅଇ | ।।୧୦୧ |
| | ଆଶଙ୍କା ଛାଡ଼ି ନିଜ ମନେ । | ଭ୍ରମୁଣ ଥାନ୍ତି ସର୍ବସ୍ଥାନେ | ।।୧୦୨ |
| ୩୦ | ସ୍ୱଭାବେ ବୃଦ୍ଧ ସେ ଅଟନ୍ତି । | ଆତ୍ମାର ତତ୍ତ୍ୱକୁ ଜାଣନ୍ତି | ।।୧୦୩ |
| | ପାଞ୍ଚବରଷ ପୁତ୍ରପ୍ରାଏ । | ଦିଶନ୍ତି ବସ୍ତ୍ର ନାହିଁ ଦେହେ | ।।୧୦୪ |
| | ତେଜକୁ ହସି ତାହାଙ୍କର[୧] । | ବେତ୍ର ଧରିଣ ନିଜ କର | ।।୧୦୫ |
| | ବ୍ରହ୍ମଣ୍ୟଦେବ ଯେ ଶ୍ରୀପତି । | ନ ଜାଣି କରି ତାଙ୍କ ରୀତି | ।।୧୦୬ |
| | ତାଙ୍କ ଗମନ-ନିବାରଣ । | କଲେ ସେ ବେନି ଦ୍ୱାରୀ ପୁଣ | ।।୧୦୭ |
| | ଦ୍ୱାରନିରୋଧକୁ ଉଚିତ । | ନୁହନ୍ତି ସେହୁ ଚାରିଭ୍ରାତ | ।।୧୦୮ |
| ୩୧ | ଦେଖନ୍ତି ଦେବମାନେ ରହି । | ସେ ବେନି ଦ୍ୱାରପାଳେ ତହିଁ | ।।୧୦୯ |
| | ନିଷେଧ କରନ୍ତେ ସେ ଦ୍ୱାର । | ପୂଜିତ ସେ ଚାରି କୁମାର | ।।୧୧୦ |
| | ଆପଣା ମିତ୍ର ଭଗବାନ । | ଦେଖିବା ଅର୍ଥେ ତାଙ୍କୁ ମନ | ।।୧୧୧ |
| | କରିଣ ମିଳିଥିଲେ ସେହି । | ତା' ଭଙ୍ଗେ ଅଳ୍ପ କ୍ରୋଧ ବହି | ।।୧୧୨ |
| | ବିକାର ଦିଶଇ ନୟନ । | କହିଲେ ଏମନ୍ତ ବଚନ | ।।୧୧୩ |

ଶ୍ରୀମୁନୟ ଊଚୁଃ

| | | | |
|---|---|---|---|
| ୩୨ | ଭଗବାନଙ୍କୁ ସେବା କରି । | ଏ ପୁରେ ହୋଇଅଛ ଦ୍ୱାରୀ | ।।୧୧୪ |
| | ସମଦରଶୀ ଏଥି ଜନ । | ଯେସନେ ଦେବ ଭଗବାନ | ।।୧୧୫ |
| | ତାହାଙ୍କ ମଧ୍ୟେ ଅଛ ରହି । | ବିଷମ ସ୍ୱଭାବ କିମ୍ପାଇଁ | ।।୧୧୬ |
| | ବିଗ୍ରହଲେଶ ତାର ନାହିଁ । | ପ୍ରଶାନ୍ତ ପୁରୁଷ ଅଟଇ | ।।୧୧୭ |
| | ଆପଣା ଆତ୍ମା ଅନୁସାରେ । | କୁଟିଳ ଭାବ ହରିଠାରେ | ।।୧୧୮ |
| | ଆଶଙ୍କା କର କାହିଁପାଇଁ । | ଏ ଭାବ ତାର ଠାରେ ନାହିଁ | ।।୧୧୯ |
| ୩୩ | ଜଗତ ଅଛି ଯା' ଉଦରେ । | ପଣ୍ଡିତେ ସେହି ହରିଠାରେ | ।।୧୨୦ |
| | ଆତ୍ମାର ଭେଦ ନ ଦେଖନ୍ତି । | ଆତ୍ମାରୂପରେ ପ୍ରମାଣନ୍ତି | ।।୧୨୧ |
| | ମହା ଆକାଶରେ ଯେସନ । | ଘଟ ଆକାଶ ଦେଖେ ଜନ | ।।୧୨୨ |
| | ତୁମ୍ଭେ ଧରିଛ ସୁରଚିହ୍ନ । | ଉଦରଭେଦୀ[୨] ଭୟମାନ | ।।୧୨୩ |
| | ଏ ବିଷ୍ଣୁଠାରେ ବିଚାରିଲ । | ଇତର ରାଜାପ୍ରାୟେ କଲ | ।।୧୨୪ |

---

୧. ଚତୁଃସନଙ୍କର । ୨. ଉଦର ଭେଦଯୁକ୍ତ ଅର୍ଥାତ୍ ଦେହାତ୍ମବୋଧ ବିଶିଷ୍ଟ ।

୩୪ ସେ ଘେନି ବୈକୁଣ୍ଠନାଥର । ତୁମ୍ଭେ ଯେ ବେନି ଅନୁଚର ॥୧୨୫
ସ୍ୱଭାବେ ମନ୍ଦମତି ତୁମ୍ଭେ । ଚିନ୍ତୁଛୁଁ ତୁମ୍ଭ ଭଲ ଆମ୍ଭେ ॥୧୨୬
ଭେଦ ଦୃଷ୍ଟିରେ ଦେଖ ଯେଣୁ । ଏ ଲୋକୁଁ ଚ୍ୟୁତ ହୁଅ ତେଣୁ ॥୧୨୭
ଆନ ଲୋକରେ ମିଳ ଯାଇଁ । ପାପିଷ୍ଠ ଲୋକଙ୍କର ଯହିଁ ॥୧୨୮
କାମକ୍ରୋଧାଦି ତିନି ଅରି । ଅଛନ୍ତି ସର୍ବଭାବେ ପୂରି ॥୧୨୯

ଶ୍ରୀବ୍ରହ୍ମୋବାଚ

୩୫ ଅସ୍ତ୍ରସମୂହେ ଅନିର୍ବାର । ସେ ବ୍ରହ୍ମଦଣ୍ଡ ଅଟେ ଘୋର ॥୧୩୦
ଏ ରୂପେ ତାହାଙ୍କ ବଚନ । ଶ୍ରବଣ କରି ବେନି ଜନ ॥୧୩୧
ଅତି କାତରେ ଦଣ୍ଡପ୍ରାୟେ । ପଡ଼ିଲେ ଋଷିଙ୍କର ପାଏ ॥୧୩୨
ବ୍ରାହ୍ମଣ-ଅବଜ୍ଞାରୁ ଅତି । ଭୟ ଯେ ଲଭେ ରମାପତି ॥୧୩୩
ସେ ବେନି ଦାସ ତାହାଙ୍କର । କହନ୍ତି ବଚନ ମଧୁର ॥୧୩୪

ଶ୍ରୀଦ୍ୱାରପାଳାବୂଚତୁଃ

୩୬ ଭୋ ମୁନିମାନେ ! ପାପୀଠାରେ । ଉଚିତ ଦଣ୍ଡ ଯେ ସଂସାରେ ॥୧୩୫
ତାହା ବିଧାନ କଲ ତୁମ୍ଭେ । ଯେଣେ ତରିବୁଁ ପାପୁଁ ଆମ୍ଭେ ॥୧୩୬
ମୂଢ଼ ଯୋନିକି କର୍ମଦୋଷେ । ଗମନ କରନ୍ତେ ଅବଶେ ॥୧୩୭
ତୁମ୍ଭର ଅନୁରାଗଲେଶ । ହୃଦୟ ହୁଅନ୍ତେ ପ୍ରକାଶ ॥୧୩୮
ହରିଚରଣସ୍ମୃତିହର । ମୋହନ ସଂଭବୁ ଆମ୍ଭର ॥୧୩୯

ଶ୍ରୀବ୍ରହ୍ମୋବାଚ

୩୭ ଏବେ ହୋ ଶୁଣ ଦେବଗଣ ! । ସେ ପଦ୍ମନାଭ ନାରାୟଣ ॥୧୪୦
ଦୋଷକୁ ବଡ଼ ଲୋକଠାରେ । କଲେ ଯେ ନିଜ ପରିଚାରେ ॥୧୪୧
ସେ କଥା ତତକ୍ଷଣେ ଜାଣି । ଲକ୍ଷ୍ମୀ ସହିତେ ଚକ୍ରପାଣି ॥୧୪୨
ପରମ ହଂସ ମୁନିଜନ । ଅବଲୋକନେ କରି ମନ ॥୧୪୩
ତ୍ୱରାରେ ଯାନ ନ ଆରୋହି । ପାଦେ ଗମିଲେ ଭାବଗ୍ରାହୀ ॥୧୪୪
୩୮ ଛତ୍ର ପାଦୁକା ଆଦିମାନ । ଘେନି ଧାଇଁଲେ ନିଜ ଜନ ॥୧୪୫
ହରିଙ୍କି ଲୋଚନେ ଗୋଚର । କଲେକ ସେ ଚାରି କୁମାର ॥୧୪୬
କରନ୍ତି ଯେବଣ ସମାଧି । ତାହାର ଭାଗ୍ୟ ସେ ପ୍ରସିଦ୍ଧି ॥୧୪୭
ହଂସର ପ୍ରାୟେକ ନିର୍ମଳ । ଯେ ଶୁକ୍ଳ ଚାମର ଯୁଗଳ ॥୧୪୮
ତାହାର ପବନେ କମ୍ପିତ । ଯେ ଚନ୍ଦ୍ର ସମ ଶ୍ୱେତଛତ୍ର ॥୧୪୯

| | | | |
|---|---|---|---|
| | ତାର କେଶର ପ୍ରାୟ ହୋଇ । | ମୁକୁତା ହାର ଯେ ଲମ୍ବଇ | ।।୧୫୦ |
| | ତହୁଁ ଶୀକର[1] ଜଳ-ପନ୍ତି । | ଗଳି ଯା' ଉପରେ ପଡ଼ନ୍ତି | ।।୧୫୧ |
| ୩୯ | ସକଳ ଜନେ ସୁପ୍ରସନ୍ନ । | ଅଟଇ ଯାହାର ବଦନ | ।।୧୫୨ |
| | ସ୍ପୃହା କରନ୍ତି ଯାକୁ ଜନ । | ସେ ଗୁଣଙ୍କର ଯେ ସଦନ | ।।୧୫୩ |
| | ପ୍ରେମ ସହିତ ବିଲୋକନ । | ତେଣେ ହରନ୍ତି ଜନମନ | ।।୧୫୪ |
| | ଶ୍ୟାମ ବିପୁଳ ଉରସ୍ଥଳେ । | ଯେ ଲକ୍ଷ୍ମୀ ବସଇ ନିଶ୍ଚଳେ | ।।୧୫୫ |
| | ତେଣେ ଯେ କରନ୍ତି ସୁନ୍ଦର । | ଆପଣା ବୈକୁଣ୍ଠମନ୍ଦିର | ।।୧୫୬ |
| | ସ୍ୱର୍ଗର ଚୂଡ଼ାମଣି ପ୍ରାୟେ । | ଯେ ବଇକୁଣ୍ଠ ଶୋଭା ପାଏ | ।।୧୫୭ |
| ୪୦ | ପୃଥୁ ନିତମ୍ବେ ପୀତବାସ । | ତଥିରେ ମେଖଳା ପ୍ରକାଶ | ।।୧୫୮ |
| | ଯହିଁ ଭ୍ରମର ଧ୍ୱନି କରେ । | ସେ ବନମାଳା ଅଛି ଉରେ | ।।୧୫୯ |
| | ଅତି ସୁନ୍ଦର ଚାରି ଭୁଜେ । | କନକବଳୟ ବିରାଜେ | ।।୧୬୦ |
| | ସ୍କନ୍ଧରେ ବିନତା ସୁତର[2] । | ନିବେଶିଛନ୍ତି ଏକ କର | ।।୧୬୧ |
| | ପଦ୍ମେ ଧରିଣ ଆର କରେ । | କମ୍ପାଉ ଅଛନ୍ତି ସଧୀରେ | ।।୧୬୨ |
| ୪୧ | ବିଜୁଳି ଜିଣି ଶୋଭମାନ । | ମକରକୁଣ୍ଡଳେ ମଣ୍ଡନ | ।।୧୬୩ |
| | ତହିଁକି ଯୋଗ୍ୟ ଗଣ୍ଡ ଯାର । | ଉଚ୍ଚ ନାସାରେ ମୁଖ ସାର | ।।୧୬୪ |
| | ମଣିଗଣରେ ଯୁତ ହୋଇ । | ଶିରେ କିରୀଟ ଶୋଭା ପାଇ | ।।୧୬୫ |
| | ଅମୂଲ୍ୟ ହାର ଶୋହେ ଉରେ । | କୌସ୍ତୁଭ ରତ୍ନ ସୁକଣ୍ଠରେ | ।।୧୬୬ |
| ୪୨ | ସୁନ୍ଦରପଣେ କମଳାର । | ଯେ ଅବା ଥିଲା ଅହଂକାର | ।।୧୬୭ |
| | ସେ ନାଶ ଏ ରୂପଦର୍ଶନେ । | ଏମନ୍ତ ନିଜ ଦାସ ମନେ | ।।୧୬୮ |
| | ବିଚାରେ ଯାହା ରୂପ ଚାହିଁ । | ଅତିସୁନ୍ଦର ଯେ ଅଟଇ | ।।୧୬୯ |
| | ମୋର, ତୁମ୍ଭର, ଶିବଙ୍କର । | ଅର୍ଥେ ଯେ ଧରେ କଳେବର | ।।୧୭୦ |
| | ତାହାଙ୍କୁ ଦେଖିଣ ଆନନ୍ଦେ । | ପ୍ରଣାମ କଲେ ଋଷିବୃନ୍ଦେ | ।।୧୭୧ |
| | ସେ ଭଗବାନ ରୂପ ଚାହିଁ । | ନିଜ ଲୋଚନେ ତୋଷ ନାହିଁ | ।।୧୭୨ |
| ୪୩ | ସେ ଅରବିନ୍ଦ ଲୋଚନର । | ଚରଣପଙ୍କଜ କେଶର | ।।୧୭୩ |
| | ତହିଁ ମିଶ୍ରିତ ଯେ ତୁଳସୀ । | ତା' ମକରନ୍ଦ ବାତେ ଆସି | ।।୧୭୪ |
| | ଅନ୍ତରେ ଆସି ନାସାଦ୍ୱାରେ । | ସେ ବ୍ରହ୍ମଜ୍ଞାନୀଙ୍କ ଚିତ୍ତରେ | ।।୧୭୫ |
| | ଆନନ୍ଦଭର କଲା ଜାତ । | ତନୁକୁ କଲା ପୁଲକିତ | ।।୧୭୬ |

---

୧. ଶୀକର = ଜଳକଣା । ୨. ଗରୁଡ଼ ।

୪୪ କୃଷ୍ଣର ବଦନ ପ୍ରକାଶ । ଯେହ୍ନେ ଅସିତ ପଦ୍ମକୋଷ ॥୧୭୭
ସେ ମୁଖେ ସୁନ୍ଦର ଅଧରେ । କୁନ୍ଦଧବଳ ହାସ ସ୍ଫୁରେ ॥୧୭୮
ଦେଖିଣ ଏମନ୍ତ ବଦନ । ଲଭିଲେ ମନୋରଥମାନ ॥୧୭୯
ନଖ-ଅରୁଣ ମଣିଗଣ । ଆଶ୍ରୟ ଯେବଣ ଚରଣ ॥୧୮୦
ପୁଣି କ୍ଷଣକେ ତାହା ଚାହିଁ । ଅତି ହରଷମନା ହୋଇ ॥୧୮୧
ସର୍ବାଙ୍ଗ ଶୋଭା ଏକାବେଳେ । ଘେନି ନ ପାରିଣ ନିଶ୍ଚଳେ ॥୧୮୨
ନୟନ ବୁଜି କଲେ ଧ୍ୟାନ । ଯେଣୁ ସେ ଧ୍ୟାନରେ ନିପୁଣ ॥୧୮୩
୪୫ ଯୋଗମାର୍ଗରେ ନିଜ ଗତି । ଯେ ଜନ ବାଞ୍ଛିତ କରନ୍ତି ॥୧୮୪
ତାହାଙ୍କ ଧ୍ୟାନକୁ ଉଚିତ । ବହୁତ ଜ୍ଞାନୀଙ୍କ ସମ୍ମତ ॥୧୮୫
ପ୍ରାଣୀନୟନମନୋହର । ଆପଣା ପୁରୁଷଶରୀର ॥୧୮୬
ଭଗତଜନଙ୍କୁ ଯେ ପୁଣି । ଦେଖାନ୍ତି ତାଙ୍କ ଭାବ ଜାଣି ॥୧୮୭
ଦୁର୍ଲଭ ଆନଲୋକଠାଇଁ । ଆପଣାଠାରେ ନିତ୍ୟେ ଥାଇ ॥୧୮୮
ଏମନ୍ତ ଅଷ୍ଟବିଭୂତିରେ । ଯୁକ୍ତ ଅଟନ୍ତି ଯେ ନିର୍ଭରେ ॥୧୮୯
ସେ ମୁକୁନ୍ଦଙ୍କୁ ଦିବ୍ୟ ସ୍ତୁତି । କଲେ ହରଷେ ଚାରି ଯତି ॥୧୯୦

ଶ୍ରୀକୁମାରା ଉଚୁଃ

୪୬ ଯେ ତୁମ୍ଭେ ଦୁରାତ୍ମା ଲୋକର । ହୃଦେ ଥିଲେହେଁ ଅଗୋଚର ॥୧୯୧
ସେ ଆଜ ଆମ୍ଭ ନେତ୍ରପଥ । ଗୋଚର ହୋଇଲ ଅନନ୍ତ ! ॥୧୯୨
ତୁମ୍ଭଠାରୁ ଯା' ଉତପତି । ସେ ଆମ୍ଭ ପିତା ପ୍ରଜାପତି ॥୧୯୩
ତୁମ୍ଭ ରହସ୍ୟ ଅନୁରାଗେ । ଯେବେ ବର୍ଣ୍ଣିଲେ ଆମ୍ଭ ଆଗେ ॥୧୯୪
କର୍ଣ୍ଣବିବରେ ସେହି ଦିନେ । ପ୍ରବେଶ ହେଲ ଆମ୍ଭ ମନେ ॥୧୯୫
୪୭ ବିଶୁଦ୍ଧ ସତ୍ତ୍ୱଗୁଣ ବହି । ଭକ୍ତଙ୍କ ପ୍ରୀତି କରୁ ତୁହି ॥୧୯୬
ପରମ ଆତ୍ମତତ୍ତ୍ୱ ଯେହି । ଆମ୍ଭେ ଜାଣୁଛୁ ତୁ ଟି ସେହି ॥୧୯୭
ଛାଡ଼ି ସକଳ ଅହଂକାର । ବିଷୟରାଗ କରି ଦୂର ॥୧୯୮
ତୋହ କୃପାରେ ଚିତ୍ତଭାଗେ । ମୁନିଏ ଦୃଢ଼ ଭକ୍ତିଯୋଗେ ॥୧୯୯
ଯେବଣ ତତ୍ତ୍ୱକୁ ଜାଣନ୍ତି । ଯେଣେ ସଂସାରକୁ ତରନ୍ତି ॥୨୦୦
୪୮ ପ୍ରାଣୀଙ୍କି ଭବୁଁ କରେ ପାର । କୀର୍ତ୍ତନଯୋଗ୍ୟ ଯଶ ଯାର ॥୨୦୧
ଭୋ ନାଥ ! ଏମନ୍ତ ତୁ ପୁଣି । ତୋ କଥାରସକୁ ଯେ ଜାଣି ॥୨୦୨
ସ୍ୱକାର୍ଯ୍ୟେ କୁଶଳ ଅଟନ୍ତି । ତୋ' ପାଦେ ଶରଣ ପଶନ୍ତି ॥୨୦୩

ନ ବାଞ୍ଛନ୍ତି ସେ ମୋକ୍ଷପଦ । ଯେ ଅଟେ ତୋହର ପ୍ରସାଦ ।।୨୦୪
ଭ୍ରୂଲତାପାତରେ ତୋହର । ଯହିଁରେ ଭୟ ମହାଘୋର ।।୨୦୫
ସେ ଇନ୍ଦ୍ର ଆଦି ପଦମାନ । କିପାଇଁ ବାଞ୍ଛିବେ ସେ ମନ ।।୨୦୬
୪୯ ତୁମ୍ଭ ଭକ୍ତଙ୍କୁ ଶାପ ଦେଇ । ବୃଜିନ ଅରଜିଲୁଁ ଯାହି ।।୨୦୭
ସେ ଘେନି ଆମ୍ଭମାନଙ୍କର । ଉପୁଜୁ ନାରକୀ ଶରୀର ।।୨୦୮
ଚିତ୍ତ ଭ୍ରମରପ୍ରାୟେ ହୋଇ । ତୋ ପାଦପଦ୍ମେ ଯେବେ ରହି ।।୨୦୯
ତୋ' ପାଦପଦ୍ମ ସଙ୍ଗ ଲାଗି । ଯେହ୍ନେ ତୁଳସୀ ସଉଭାଗୀ ।।୨୧୦
ସେ ରୂପେ ହୋଇବ ବଚନ । କରିଣ ତୋହର କୀର୍ତ୍ତନ ।।୨୧୧
ତୋ' ଗୁଣଗଣଶ୍ରବଣରେ । କର୍ଣ୍ଣବିବର ଯେବେ ପୁରେ ।।୨୧୨
୫୦ ହେ ପୁରୁହୂତ ! ଏ ଶରୀର । ଆମ୍ଭଙ୍କୁ କଲ ଯା ଗୋଚର ।।୨୧୩
ତେଣୁ ଆମ୍ଭର ନେତ୍ରମାନ । ସୁଖ ଲଭିଲେ ଭଗବାନ ! ।।୨୧୪
ଅଜିତ-ଇନ୍ଦ୍ରିୟ ଯେ ପ୍ରାଣୀ । ସେ ତୋତେ ନ ପାରନ୍ତି ଜାଣି ।।୨୧୫
ଆମ୍ଭ ଭାବରେ ହୋଇ ବଶ । ଆମ୍ଭଙ୍କୁ ହୋଇଲେ ପ୍ରକାଶ ।।୨୧୬
ଆମ୍ଭେହେଁ ନମସ୍କାର ତୋତେ । ବିଧାନ କରୁଅଛୁଁ ନିତ୍ୟେ ।।୨୧୭
ଶ୍ରୀକୃଷ୍ଣ ଅଭୟଚରଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ।।୨୧୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀବୈକୁଣ୍ଠବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।।

## ଷୋଡ଼ଶୋଽଧ୍ୟାୟଃ

ହରିଣା ସାତ୍ତ୍ୱିତୈର୍ବିପ୍ରୈରନୁତପ୍ତୈସ୍ତୁ ଷୋଡଶେ ।
ତୟୋରସୁରଭାବେଽପି କୃତୋଽନୁଗ୍ରହ ଈର୍ଯ୍ୟତେ ।।

ଶ୍ରୀବ୍ରହ୍ମୋବାଚ

୧ ସେ ଯୋଗଧର୍ମୀ ମୁନିଜନ । କହନ୍ତେ ଏମନ୍ତ ବଚନ ।। ୧
ତାଙ୍କ ବାକ୍ୟକୁ ପୂଜା କରି । କହିଲେ ବୈକୁଣ୍ଠବିହାରୀ ।। ୨

ଶ୍ରୀଭଗବାନୁବାଚ

୨ ଜୟ ବିଜୟ ବେନି ବୀର । ଅଟନ୍ତି ପାରିଷଦ ମୋର ।। ୩
ମୋତେ ଅବଜ୍ଞା କରି ଭଲେ । ତୁମ୍ଭଙ୍କୁ ଅତିକ୍ରମ କଲେ ।। ୪

୩ ଭୋ ମୁନିମାନେ ! ଅବିରତ । ତୁମ୍ଭେ ମୋ'ଠାରେ ଅନୁବ୍ରତ ॥ ୫
ଏହାଙ୍କୁ ଚିତ୍ତେ କ୍ରୋଧ[୧] ବହି । ଯେବଣ ଦଣ୍ଡ ଅଛ ଦେଇ ॥ ୬
ଦେବହେଳନୁଁ ଏହାଙ୍କର । ସେ କଥା ଆମ୍ଭର ସ୍ୱୀକାର ॥ ୭
୪ ସେ ଘେନି ତୁମ୍ଭଙ୍କୁ ପ୍ରସନ୍ନ । କରାଉଁଅଛି ମୁନିଜନ ! ॥ ୮
ପରମ ଦେବତା ମୋହର । ଯେଣୁ ଅଟନ୍ତି ଦ୍ୱିଜବର ॥ ୯
ମୋହର ଲୋକେ ଅସତ୍କାର । କଲେ ଯାହାଟି ତୁମ୍ଭଠାର ॥ ୧୦
ସେ କଥା ନିଷ୍ଟେ କରି ମୁହିଁ । ଏମନ୍ତ ମନେ ବିଚାରଇ ॥ ୧୧
୫ ଭୃତ୍ୟ କରନ୍ତେ ଅପକାର । ଲୋକେ ଧରନ୍ତି ନାମ ଯାର ॥ ୧୨
ସେ ସ୍ୱାମୀଯଶ ଯେତେ ଥାଇ । ସେ ଅପବାଦ ତା' ନାଶଇ ॥ ୧୩
କୁଷ୍ଠ ଯେସନ ଦେହେ ହୋଇ । ଚର୍ମକୁ ବିନାଶ କରଇ ॥ ୧୪
୬ ନିର୍ମଳ ଅମୃତ ସମାନ । ଯା' ଯଶ ଶ୍ରବଣମଜ୍ଜନ ॥ ୧୫
ଚଣ୍ଡାଳ ଆଦି ଏ ଜଗତ । ପବିତ୍ର କରେ ଅବିରତ ॥ ୧୬
ସେ ବଇକୁଣ୍ଠନାଥ ମୁହିଁ । ତୁମ୍ଭ ସକାଶୁଁ କୀର୍ତ୍ତି ପାଇ ॥ ୧୭
ତୁମ୍ଭଙ୍କୁ କଲେ ଅପକାର । ଛେଦିବି[୨] ଭୁଜକୁହିଁ ମୋର ॥ ୧୮
୭ ପବିତ୍ର ଧୂଳି ମୋ ପାଦର । ମୁଁ ସର୍ବଲୋକପାପହର ॥ ୧୯
ଲଭିଅଛି ମୁଁ ସୁଚରିତ । ଏ ଘେନି ସକଳ ବନ୍ଦିତ ॥ ୨୦
ଯାର କଟାକ୍ଷଲବ ଚିନ୍ତି । ବ୍ରହ୍ମାଦି ତପ ଆଚରନ୍ତି ॥ ୨୧
ସେ ଲକ୍ଷ୍ମୀ ମୋତେ ନ ଛାଡ଼ଇ । ବିରକ୍ତ ହୋଇଲେହେଁ ମୁହିଁ ॥ ୨୨
ଏତେକ ଗୁଣ ମୋହଠାରେ । ରହିଛି ତୁମ୍ଭର ସେବାରେ ॥ ୨୩
୮ ଯଜ୍ଞଶାଳାରେ ମୋତେ ଭାବି । ଅର୍ପଇ ଯଜମାନ ହବି ॥ ୨୪
ଅନଳ ମୁଖେ ତାହା ମୁହିଁ । ତେମନ୍ତ କରିଣ ନ ଖାଇ ॥ ୨୫
କର୍ମଫଳକୁ ମୋହଠାରେ । ଅର୍ପିତ କରି ସ୍ୱଭାବରେ ॥ ୨୬
ଯେ ବିପ୍ର ହୋଇଣ ସନ୍ତୋଷ । ଘୃତମିଶ୍ରିତ ପ୍ରତିଗ୍ରାସ ॥ ୨୭
ଭୁଞ୍ଜାଇ ତାହା ମୁଖେ ମୁହିଁ । ଯେମନ୍ତ ପ୍ରକାରେ ଭୁଞ୍ଜଇ ॥ ୨୮
୯ ଯାର ଅଖଣ୍ଡ ଅକୁଣ୍ଠିତ । ମାୟାବିଭୂତି ଅପ୍ରମିତ ॥ ୨୯
ପବିତ୍ର କରେ ପାଦୋଦକ । ଯାହାର ଶିବ ଆଦି ଲୋକ ॥ ୩୦
ଏମନ୍ତ ପରମ ଈଶ୍ୱର । ହୋଇଲେହେଁ ମୁଁ ଯାହାଙ୍କର ॥ ୩୧

---

୧. କୋପ । ୨. କାଟିବି ।

| | | | |
|---|---|---|---|
| | ଅମଳ ପାଦ-ରଜ ନେଇ । | ମୁକୁଟ-ଅଗ୍ରରେ ବହଇ | ।। ୩୨ |
| | ସେ ବିପ୍ର କଲେହେଁ ଅସାର । | କେ ତାଙ୍କୁ ନ ସହିବ ନର | ।। ୩୩ |
| ୧୦ | ମୋହର ତନୁ ବିପ୍ରବର । | ସୁରଭିଗଣ ଯେ ଆବର | ।। ୩୪ |
| | ଅରକ୍ଷ ପ୍ରାଣୀମାନେ ପୁଣି । | ଏତେ ଲୋକଙ୍କୁ ଯେ ନ ଜାଣି | ।। ୩୫ |
| | ଅଘଦୂଷିତଦୃଷ୍ଟି ହୋଇ । | ସର୍ପର ପ୍ରାୟେ କ୍ରୋଧ ବହି | ।। ୩୬ |
| | ଚାହାଁନ୍ତି ଭେଦ ଦୃଷ୍ଟି କରି । | ତାହାଙ୍କୁ ପରଲୋକେ ଧରି | ।। ୩୭ |
| | ଗୃଧ୍ର ଆକାର ଯମଦୂତେ । | ଥଣ୍ଟେ ଛିଣ୍ଡାନ୍ତି ଅବିରତେ | ।। ୩୮ |
| ୧୧ | ଗାଳି ଦେଲେହେଁ ବିପ୍ରମାନେ । | ମୋ ବୁଦ୍ଧି କରି ତାଙ୍କୁ ଜନେ | ।। ୩୯ |
| | ସଂତୋଷମନେ ଯେ ପୂଜନ୍ତି । | ସୁସ୍ମିତବଦନ ହୁଅନ୍ତି | ।। ୪୦ |
| | ଆତ୍ମଜପ୍ରାୟେ ଅନୁରାଗେ । | କରନ୍ତି ସମ୍ବୋଧନ ଆଗେ | ।। ୪୧ |
| | ମୋହର ପ୍ରାୟ କରି ମୋତେ । | ବଶ କରନ୍ତି ସେ ଜଗତେ | ।। ୪୨ |
| ୧୨ | ଏହାଙ୍କ ପ୍ରଭୁ ମୁଁ ଅଟଇ । | ମୋହର ଆଶ୍ରୟ ନ ପାଇ | ।। ୪୩ |
| | ତୁମ୍ଭଙ୍କୁ କଲେ ଦୁଷ୍ଟମତି । | ଭୋଗ କରିଣ ତହିଁ ଗତି | ।। ୪୪ |
| | ପୁଣି ଆସିବେ ପାଶେ ମୋର । | ଏ ଅନୁଗ୍ରହ ମୋତେ କର | ।। ୪୫ |
| | ଏ ବେନି ଭୃତ୍ୟଙ୍କ ପ୍ରବାସ । | ଅଳପ କାଳରେ ପ୍ରକାଶ | ।। ୪୬ |

### ଶ୍ରୀବ୍ରହ୍ମୋବାଚ

| | | | |
|---|---|---|---|
| ୧୩ | ଋଷିକୁଳକୁ ଯୋଗ୍ୟ ବାଣୀ । | ଯାହା କହିଲେ ଚକ୍ରପାଣି | ।। ୪୭ |
| | ସେ ବାକ୍ୟ କରି ଆସ୍ୱାଦନ । | ସେ ଋଷିମାନଙ୍କର ମନ | ।। ୪୮ |
| | କେବେହେଁ ତୃପ୍ତ ନ ଲଭିଲା । | କ୍ରୋଧଦଂଶିତ ହୋଇଥିଲା | ।। ୪୯ |
| ୧୪ | ଅତିସଂକ୍ଷେପ ସର୍ବସାର । | ଗୁରୁ ଅର୍ଥରେ ସୁଗହ୍ୱର | ।। ୫୦ |
| | ଅଗାଧ ଗମ୍ଭୀର ବଚନ । | ଶୁଣନ୍ତେ ପ୍ରସାରି ବଦନ | ।। ୫୧ |
| | ଏତେ ପ୍ରଶଂସା କି ହେତୁରେ । | କରୁଅଛନ୍ତି ଆତ୍ମଠାରେ | ।। ୫୨ |
| | ଏହା ବିଚାରି ନିଜ ମନେ । | ଜାଣିଲେ ନାହିଁ ମୁନିଜନେ | ।। ୫୩ |
| ୧୫ | ଯା' ଯୋଗମାୟାରେ ନିର୍ବାହ । | ପରମୈଶ୍ୱର୍ଯ୍ୟ ମହୋଦୟ | ।। ୫୪ |
| | ତାହାଙ୍କୁ ଯୋଡ଼ି ବେନି କର । | ଆନନ୍ଦେ ରୋମାଞ୍ଚ ଶରୀର | ।। ୫୫ |
| | ବିନୟ ହୋଇ ମୁନିଜନ । | କହିଲେ ଏମନ୍ତ ବଚନ | ।। ୫୬ |

### ଶ୍ରୀକୁମାରା ଊଚୁଃ

| | | | |
|---|---|---|---|
| ୧୬ | ଭୋ ଦେବଦେବ ! ଭଗବାନ । | ଆମ୍ଭେ ନ ଜାଣୁଁ ତୋର ମନ | ।। ୫୭ |
| | ତୁମ୍ଭେ ସକଳ-ଅଧୀଶ୍ୱର । | ବୋଲୁଛ ଅନୁଗ୍ରହ କର | ।। ୫୮ |

୧୭ ତୁମ୍ଭେ ବ୍ରହ୍ମଣ୍ୟ ଭଗବାନ । ଯେତେ ଅଛନ୍ତି ବିପ୍ରଜନ ॥ ୫୯
ପରମ ଦେବତା ସେ ତୋର । ଯେ ବିପ୍ରେ ଇଷ୍ଟ ଦେବଙ୍କର ॥ ୬୦
ତୁ ସେ ବ୍ରାହ୍ମଣଙ୍କର ନାଥ । ବୋଲାଉ ଆମ୍ଭ ଦଇବତ ॥ ୬୧
୧୮ ତୋ'ଠାରୁ ନିତ୍ୟ ଧର୍ମ ଜାତ । ତୋର ତନୁରେ ସେ ରକ୍ଷିତ ॥ ୬୨
ଧର୍ମର ଗୁହ୍ୟ ଫଳ ତୁହି । ଯହିଁ ବିକାର ଲେଶ ନାହିଁ ॥ ୬୩
୧୯ ଯା' ଅନୁଗ୍ରହୁଁ ଯୋଗୀଜନ । ମୃତ୍ୟୁକୁ ତରନ୍ତି ବହନ ॥ ୬୪
ତୁ ସେ ଈଶ୍ୱର ତୋତେ ଆନ । କେ ଅନୁଗ୍ରହ କରେ ଜନ ॥ ୬୫
୨୦ ଅର୍ଥକାମୁକ ଲୋକ ଯାର । ପାଦରେଣୁକୁ ଧରେ ଶିର ॥ ୬୬
ସେ ଲକ୍ଷ୍ମୀ ଯାକୁ କାଳେ କାଳେ । ସେବା କରଇ ଚିତ୍ତଭୋଳେ ॥ ୬୭
ସୁକୃତବନ୍ତ ଲୋକେ ନେଇ । ପାଦେ ତୁଳସୀମାଳ ଦେଇ ॥ ୬୮
ସେ ମାନେ ଥାଇ ଭୃଙ୍ଗବର । ଏଣୁ ସେ ପାଦ ସ୍ଥାନ ତାର ॥ ୬୯
ଲକ୍ଷ୍ମୀ ତା ବାଞ୍ଛା କଲା ପ୍ରାୟେ । ଆମ୍ଭ ମନକୁ ପ୍ରତ୍ୟେ ହୋଏ ॥ ୭୦
୨୧ ସେ ଲକ୍ଷ୍ମୀ ବିଶୁଦ୍ଧ ଚରିତେ । ସେବା କରଇ ଅବିରତେ ॥ ୭୧
ତାକୁ ତୁ ନ କରୁ ଆଦର । ବୈଷ୍ଣବ ଜନେ ସଙ୍ଗ ତୋର ॥ ୭୨
ବ୍ରାହ୍ମଣପଥ[୧]-ପୁଣ୍ୟରେଣୁ । ଶ୍ରୀବତ୍ସଚିହ୍ନ ତୋତେ ତେଣୁ ॥ ୭୩
କି ରୂପେ କରିବେ ପାବନ । ତୁ ସର୍ବସୌଭାଗ୍ୟଭାଜନ ॥ ୭୪
୨୨ ତୁ ଧର୍ମରୂପୀ ଭଗବାନ । ଷଡ଼୍‌ଗୁଣରେ ପରିପୂର୍ଣ୍ଣ ॥ ୭୫
ତପ ଆଦିକି ବିନାଶଇ । ଯେ ରଜ ତମ ଗୁଣ ଦୁଇ ॥ ୭୬
ବିନାଶି ତା ସତ୍ତ୍ୱଶରୀରେ । ତପ ଆଦି ତିନି ପାଦରେ ॥ ୭୭
ଦ୍ୱିଜ ଦେବତାଙ୍କ ଅର୍ଥରେ । ପାଳନା କରୁ ଚରାଚରେ ॥ ୭୮
୨୩ ଉତ୍ତମ ପୂଜାବିଧି କରି । ସୂନୃତ[୨] ବଚନ ଉଚ୍ଚାରି ॥ ୭୯
ଉତ୍ତମ ଦ୍ୱିଜଗଣମାନ । ଯେବେ ନ କରିବ ରକ୍ଷଣ ॥ ୮୦
ତୁମ୍ଭର ଭଦ୍ର ବେଦପଥ । ହୋଇବ ତତକ୍ଷଣେ ହତ ॥ ୮୧
*ଇତର ଲୋକ ତା ପ୍ରମାଣ । କରି ନ ପୂଜିବ ବ୍ରାହ୍ମଣ ॥ ୮୨
୨୪ ସେ ବେଦମାର୍ଗର ସଂହାର । ଅଭୀଷ୍ଟ ନୁହଇ ତୋହର ॥ ୮୩
ତୁ ଅଟୁ ସର୍ବସତ୍ତ୍ୱନିଧି । ଲୋକର କରୁ କ୍ଷେମବିଧି ॥ ୮୪

---

୧. ବ୍ରାହ୍ମଣ ଗମନ କରୁଥିବା ପଥ । ୨. ସୂନୃତ = ମିଠାକଥା ।
* ଯଦ୍ ଯଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ଼ ଜନଃ ।
ସ ଯତ୍ ପ୍ରମାଣଂ କୁରୁତେ ଲୋକସ୍ତଦନୁବର୍ତ୍ତତେ ॥ (ଗୀତା)

| | | | |
|---|---|---|---|
| | ଧରିଣ ନିଜ ଶକ୍ତିମାନ । | ଶତ୍ରୁକୁ କରି ବିନାଶନ | ॥ ୮୫ |
| | ତୁ ଅଟୁ ଜଗତର ନାଥ । | ବିପ୍ରଙ୍କୁ ହେଉ ଯା ପ୍ରଣତ | ॥ ୮୬ |
| | ତେଣେ ତୋ ତେଜ ନାଶ ନୋହି । | ତୋର ବିନୋଦ ସେ ଅଟଇ | ॥ ୮୭ |
| ୨୫ | ଯେଉଁ ଦଣ୍ଡକୁ ଏହାଙ୍କର । | ବିଧାନ କରିବ ଈଶ୍ୱର | ॥ ୮୮ |
| | ଅଧିକେ ଦେବ ଅବା ବୃତ୍ତି । | ଆମ୍ଭେ ତା କରୁଛୁଁ ସମ୍ମତି | ॥ ୮୯ |
| | କପଟ ଲେଶ ଏ ବିଷୟେ । | ନାହିଁଟି ଆମ୍ଭର ହୃଦୟେ | ॥ ୯୦ |
| | ନୋହିଲେ ଅବା ଆମ୍ଭଠାରେ । | ଉଚିତ ଦଣ୍ଡ ଏ ଦୋଷରେ | ॥ ୯୧ |
| | ବିଧାନ କର ଭଗବାନ । | ଯେଣୁ ତୋହର ପରିଜନ | ॥ ୯୨ |
| | ଅନପରାଧୀ ସେ ଅଟନ୍ତି । | ତାହାଙ୍କୁ ଦେଲୁଁ ଏହୁ ଶାସ୍ତି | ॥ ୯୩ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୨୬ | ଜୟ ବିଜୟ ଏହୁ ଦୁଇ । | ଅସୁରକୁଳେ ଜାତ ହୋଇ | ॥ ୯୪ |
| | କ୍ରୋଧବଶରେ ମୋତେ ଧ୍ୟାୟି । | ସମାଧି ଅନୁବନ୍ଧ ପାଇ | ॥ ୯୫ |
| | ପୁଣି ଆସିବେ ମୋ ସମୀପ । | ମୋର ନିର୍ମାଣ ଏହୁ ଶାପ | ॥ ୯୬ |
| | ତୁମ୍ଭେ ବିଶୁଦ୍ଧ ବିପ୍ରଗଣ । | ଏକଥା ତତ୍ତ୍ୱ କରି ଜାଣ | ॥ ୯୭ |

ଶ୍ରୀବ୍ରହ୍ମୋବାଚ

| | | | |
|---|---|---|---|
| ୨୭ | ନୟନ-ଆନନ୍ଦଭାଜନ । | ଯେ ବଇକୁଣ୍ଠ ଭଗବାନ | ॥ ୯୮ |
| | ତାହାଙ୍କ ସ୍ଥାନ-ରୂପ ହୋଇ । | ଯେ ବଇକୁଣ୍ଠ ବିରାଜଇ | ॥ ୯୯ |
| ୨୮ | ତାହା ଦେଖି ସେ ବିପ୍ରଗଣ । | ହରିଙ୍କି କରି ପ୍ରଦକ୍ଷିଣ | ॥୧୦୦ |
| | ପ୍ରଣାମ କରି ତୋଷଚିତ୍ତେ । | ଗମନ କଲେ ଯେଝାମତେ | ॥୧୦୧ |
| | ଦେଖିଣ ବିଷ୍ଣୁର ବିଭୂତି । | ବହୁତ ପ୍ରଶଂସା କରନ୍ତି | ॥୧୦୨ |
| ୨୯ | ଦ୍ୱାରପାଳଙ୍କ ମୁଖ ଚାହିଁ । | କହନ୍ତି ପ୍ରଭୁ ଭାବଗ୍ରାହୀ | ॥୧୦୩ |
| | ତୁମ୍ଭେ ଏ ପୁରୁଁ ବେଗେ ଯାଅ । | ମନରେ ଭୟକୁ ନ ପାଅ | ॥୧୦୪ |
| | ମଙ୍ଗଳ ହୋଇବ ତୁମ୍ଭର । | ମୁଁ ପୁଣି ହେଲେହେଁ ଈଶ୍ୱର | ॥୧୦୫ |
| | ବ୍ରାହ୍ମଣତେଜ ନ ନାଶଇ । | ଏ ଶାପ ବାଞ୍ଛିଅଛି ମୁହିଁ | ॥୧୦୬ |
| ୩୦ | *ମୋହର ଯୋଗନିଦ୍ରା ଗତେ । | ରମା ସେ ଦ୍ୱାରେ ପ୍ରବେଶନ୍ତେ | ॥ |
| | ତୁମ୍ଭେ ତାହାଙ୍କୁ ନିବାରିଲ । | ତାହାଙ୍କ କ୍ରୋଧ ଜନ୍ମାଇଲ | ॥ |

---

* ''ଏତଦ୍ ପୁରୈବ ନିର୍ଦ୍ଦିଷ୍ଟଂ ରମୟା କ୍ରୁଦ୍ଧୟା ଯଦା ।
ପୁରାପବାରିତା ଦ୍ୱାରି ବିଶନ୍ତୀ ମୟ୍ୟୁପାରତେ ।'' ସ୍ୱାମିଟୀକା ଏହି ଶ୍ଳୋକର ପ୍ରାମାଣିକତା ସୂଚାଏ ।

| | | | |
|---|---|---|---|
| | ସେ କାଳେ ରମା ତୁମ୍ଭ ଠାଇଁ । | ଏ ଶାପ ନିର୍ଦ୍ଦେଶି ଅଛଇ | ॥ |
| | ଯାହାକୁ ଏବେ ମୁନିଜନ । | ବାକ୍ୟରେ କଲେ ଉଚ୍ଚାରଣ | ॥ |
| ୩୧ | ମୋ ଠାରେ କ୍ରୋଧକୁ ଆଚରି । | ବ୍ରାହ୍ମଣଦଣ୍ଡରୁ ନିସ୍ତରି | ॥୧୦୭ |
| ୩୩ | ଅଳପ କାଳର ଅନ୍ତରେ । | ପ୍ରବେଶ ହେବ ମୋ ପାଶରେ | ॥୧୦୮ |
| | ଦ୍ୱାରପାଳଙ୍କୁ ଏ ବଚନ । | ଆଦେଶ କରି ଭଗବାନ | ॥୧୦୯ |
| | ବିମାନଶ୍ରେଣୀରେ ଭୂଷିତ । | ସର୍ବ-ଅଧିକ ଶୋଭାଯୁତ | ॥୧୧୦ |
| | ଅଟେ ଯେ ଆପଣା ମନ୍ଦିର । | ତହିଁ ମିଳିଲେ ଚକ୍ରଧର | ॥୧୧୧ |
| | ଦେବତାଗଣମଧ୍ୟେ ସାର । | ଜୟ ବିଜୟ ବେନି ବୀର | ॥୧୧୨ |
| | ଦୁସ୍ତର ବ୍ରହ୍ମଶାପ ପାଇ । | ତକ୍ଷଣେ ହତଲକ୍ଷ୍ମୀ ହୋଇ | ॥୧୧୩ |
| | ବିନଷ୍ଟଗର୍ବ ସେ ହୋଇଲେ । | ବୈକୁଣ୍ଠଲୋକରୁ ପଡ଼ିଲେ | ॥୧୧୪ |
| ୩୪ | ବୈକୁଣ୍ଠପୁରରୁ ସେ ବେନି । | ପଡ଼ନ୍ତେ ହାହାକାର ଧ୍ୱନି | ॥୧୧୫ |
| | ହେଲା ବିମାନମାନଙ୍କରେ । | ଏବେ କହିବା ଶୁଣ ସୁରେ ! | ॥୧୧୬ |
| ୩୫ | ସେ ହରିପାରିଷଦ ଦୁଇ । | କଶ୍ୟପରଷିବୀର୍ଯ୍ୟ ପାଇ | ॥୧୧୭ |
| | କାଳବଶରୁ ଆସି ଏବେ । | ପ୍ରବେଶ ହେଲେ ଦିତିଗର୍ଭେ | ॥୧୧୮ |
| ୩୬ | ଯାମଳ ସେ ବେନି ଅସୁର । | ତାହାଙ୍କ ତେଜରେ ସ୍ୱର୍ଗର | ॥୧୧୯ |
| | ଊଣା ହୋଇଛି ତେଜମାନ । | ହରି ତା' କରିବେ ବିଧାନ | ॥୧୨୦ |
| ୩୭ | ବିଶ୍ୱ ଉଦ୍ଭବ-ସ୍ଥିତି-ନାଶେ । | ହେତୁରୂପରେ ଯେ ପ୍ରକାଶେ | ॥୧୨୧ |
| | ଯା' ମାୟା ଯୋଗେଶ୍ୱରମାନେ । | ଜାଣି ନ ପାରନ୍ତି ଭୁବନେ | ॥୧୨୨ |
| | ତ୍ରିଗୁଣ-ଅଧୀଶ୍ୱର ହରି । | ମଙ୍ଗଳ କରିବେ ଆମ୍ଭରି | ॥୧୨୩ |
| | ଆମ୍ଭମାନଙ୍କ ବିଚାରରେ । | କି କାର୍ଯ୍ୟ ଅଛି ବା ତହିଁରେ | ॥୧୨୪ |
| | ଦେବଙ୍କ ଆଗେ ଏହୁ ବାଣୀ । | ବିଧାତା ପୂର୍ବେ ଛନ୍ତି ଭଣି | ॥୧୨୫ |
| | ସେ ହରିଚରଣପଙ୍କଜେ । | ବ୍ରାହ୍ମଣ ଦୀନବନ୍ଧୁ ଭଜେ | ॥୧୨୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଜୟବିଜୟଭ୍ରଂଶୋ ନାମ ଷୋଡ଼ଶୋଽଧ୍ୟାୟଃ ॥

## ସପ୍ତଦଶୋଽଧ୍ୟାୟଃ

ତତଃ ସପ୍ତଦଶେ ଜନ୍ମ ତୟୋର୍ଲୋକଭୟଂକରମ୍ ।
ହିରଣ୍ୟାକ୍ଷପ୍ରଭାବଶ୍ଚ ବର୍ଣ୍ଣ୍ୟତେ ଦିଗ୍‌ଜୟେଽଦ୍ଭୁତଃ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ବ୍ରହ୍ମାଙ୍କ ମୁଖୁଁ ଦେବଗଣ । ଶୁଣିଣ ଅଦ୍ଭୁତ କାରଣ ॥ ୧
ଆଶଙ୍କା ଛାଡ଼ି ନିଜ ମନେ । ମିଳିଲେ ଆପଣା ଭୁବନେ ॥ ୨
୨ ଦିତି କଶ୍ୟପ-ଆଜ୍ଞା ପାଇ । ପୁତ୍ର ଜନ୍ମରେ ଶଙ୍କା ବହି ॥ ୩
ଶତେ ବରଷ ପୂର୍ଣ୍ଣ ହେଲା । ବେନି କୁମର ଜନ୍ମ କଲା ॥ ୪
୩ ସେ ବେନିପୁତ୍ର ଜନ୍ମକାଳେ । ସ୍ୱର୍ଗ, ମେଦିନୀ, ଅନ୍ତରାଳେ[୧] ॥ ୫
ଜନ୍ମିଲେ ଉତ୍ପାତ ବହୁତ । ଯେଣେ ସଭୟ ଲୋକଚିତ୍ତ ॥ ୬
୪ ଅଚଳସଙ୍ଗେ ମହୀ ଚଳି । ସକଳ ଦିଗମାନ ଜଳି ॥ ୭
ଉଲ୍‌କାରେ ହୋଇଣ ସହିତ । ଅଶନି ପଡ଼ିଲା ବହୁତ ॥ ୮
୫ ଲୋକମାନଙ୍କ ପୀଡ଼ାହେତୁ । ଆକାଶେ ଉଦେ ହେଲେ କେତୁ[୨] ॥ ୯
କର୍କଶ ବହିଲା ସମୀର । ଉଚ୍ଛେ କରଇ ଫୁଫୁକାର ॥ ୧୦
ଉପାଡ଼େ ମହାଦ୍ରୁମମାନ । ସଙ୍ଗତେ ଘେନି ବାତ୍ୟାସୈନ୍ୟ ॥ ୧୧
ଧୂଳି ଆକାଶରେ ଉଡ଼ନ୍ତି । ଧ୍ୱଜର ପ୍ରାଏ ଶୋଭା ପାନ୍ତି ॥ ୧୨
୬ ଉଚ୍ଛେ ହସିଲା ପ୍ରାୟ ହୋଇ । ବିଜୁଳି ଯହିଁ ଶୋଭା ପାଇ ॥ ୧୩
ସେ ମେଘେ ସୂର୍ଯ୍ୟ ଆଦିଙ୍କର । କିରଣ ହୁଅନ୍ତେ ସଂହାର ॥ ୧୪
ଆକାଶେ ବ୍ୟାପେ ଅନ୍ଧକାର । ସ୍ଥାନ ହୋଇଲା ଅଗୋଚର ॥ ୧୫
୭ ସମୁଦ୍ର ହୋଇଣ ବିମନ । ଜାତ କରିଣ ଉର୍ମିମାନ ॥ ୧୬
ଗର୍ଜିଲା, ତାର ଗର୍ଭ ସ୍ଥାନେ । କ୍ଷୋଭ ପାଇଲେ ଜନ୍ତୁମାନେ ॥ ୧୭
ସହିତ ହୋଇ ଉଦପାନେ[୩] । କ୍ଷୋଭିତ ହେଲେ ନଦୀମାନେ ॥ ୧୮
ପଙ୍କଜମାନେ ଥିଲେ ତହିଁ । ତକ୍ଷଣେ ଗଲେ ଶୁଷ୍କ ହୋଇ ॥ ୧୯
୮ ରାହୁରେ ଗ୍ରସ୍ତ ରବିଶଶୀ । ମଣ୍ଡଳମାନ ତହିଁ ଦିଶି ॥ ୨୦
ନିର୍ଘାତ ପ୍ରଚଣ୍ଡ ନିସ୍ୱନ । ବିବରୁଁ ହୋଇଲେ ଉତ୍ପନ୍ନ ॥ ୨୧
ରଥଗର୍ଜନ ସମ ଧ୍ୱନି । କରନ୍ତି ଅନଭ୍ର[୪] ଅଶନି ॥

---

୧. ଅନ୍ତରାଳ = ଆକାଶ । ୨. କେତୁ = ଲଂଜାତାରା ।
୩. ଉଦପାନ = ବାପୀକୂପାଦି । ୪. ମେଘରହିତ ।

| | | | | |
|---|---|---|---|---|
| ୯ | ଗ୍ରାମମଧ୍ୟରେ ଶିବାକୁଳ[୧] | ମୁଖରୁ ବମନ୍ତେ ଅନଳ | ॥ | ୨୨ |
| | ଶୃଗାଳ ଉଲୂକ ନିସ୍ୱନ | ସହିତେ କଲେକ ଗର୍ଜନ | ॥ | ୨୩ |
| ୧୦ | ସଙ୍ଗୀତପ୍ରାୟେ କେହି କେହି | କେହି ରୋଦିଲା ପ୍ରାୟ ହୋଇ | ॥ | ୨୪ |
| | ଊର୍ଦ୍ଧ୍ୱକୁ ଟେକି ଗ୍ରୀବାମାନ | ଶ୍ୱାନେ ରଚିଲେ ନାନା ସ୍ୱନ | ॥ | ୨୫ |
| ୧୧ | କର୍କଶ ଖୁରେ ମହୀତଳ | ଆଘାତ କରି ଖରକୁଳ[୨] | ॥ | ୨୬ |
| | ଖାଦ୍‌କାର[୩] ଧ୍ୱନିମାନ କଲେ | ପ୍ରମତ୍ତ ହୋଇଣ ଧାଇଁଲେ | ॥ | ୨୭ |
| ୧୨ | ରାସଭଠାରୁ[୪] ପାଇ ତ୍ରାସ | ଶବଦ କରନ୍ତି ବିଶେଷ | ॥ | ୨୮ |
| | ବସାବୃକ୍ଷରୁ ମହୀତଳ | ପଡ଼ିଲେ ଯାଇଁ ଖଗକୁଳ | ॥ | ୨୯ |
| | ଘୋଷେ[୫] ଅରଣ୍ୟେ ପଶୁ ଥିଲେ | ଅନେକ ମଳମୂତ୍ର କଲେ | ॥ | ୩୦ |
| ୧୩ | ତ୍ରାସ ଲଭିଲେ ଧେନୁମାନେ | ରକତ ସ୍ରବିଲେ ଦୋହନେ | ॥ | ୩୧ |
| | ଆକାଶେ ରହି ମେଘଗଣ | କଲେକ ପୂଜ ବରଷଣ | ॥ | ୩୨ |
| | ପ୍ରତିମାମାନେ ଯେତେ ଥିଲେ | ଦୁଃଖେ ରୋଦନ ସର୍ବେ କଲେ | ॥ | ୩୩ |
| | ବାତବିହୁନେ ଦ୍ରୁମକୁଳ | ଭାଜିପଡ଼ିଲେ ମହୀତଳ | ॥ | ୩୪ |
| ୧୪ | ଗୁରୁବୁଧ[୬]ଙ୍କୁ ଆଦି ହୋଇ | ଯେ ପୁଣ୍ୟଗ୍ରହେ ଥିଲେ ରହି | ॥ | ୩୫ |
| | ଯେ ଅବା ଅନ୍ୟ ତାରାଗଣ | ବକ୍ର ଗତିରେ ତାଙ୍କୁ ପୁଣ | ॥ | ୩୬ |
| | ବଳିଣ ପାପଗ୍ରହେ ଗଲେ | ଏକ ଆରକେ ଯୁଦ୍ଧ କଲେ | ॥ | ୩୭ |
| ୧୫ | ସନକାଦିଙ୍କି ଛାଡ଼ି ଯେତେ | ପ୍ରଜାଏ ଥିଲେ ଏ ଜଗତେ | ॥ | ୩୮ |
| | ଦେଖିଣ ଉତପାତ ଘୋର | କାରଣ ନ ଜାଣି ତହିଁର | ॥ | ୩୯ |
| | ପ୍ରଳୟ ହୋଇଲା ସଂସାର | ଏମନ୍ତ ମଣିଲେ ମନର | ॥ | ୪୦ |
| ୧୬ | ସେ ବେନି ତନୁଜ ଦିତିର | ପ୍ରକାଶି ତେଜ ଆପଣାର | ॥ | ୪୧ |
| | ବଜ୍ରକଠିନ ନିଜ କାୟେ | ବଢ଼ିଲେ ଗିରିବରପ୍ରାଏ | ॥ | ୪୨ |
| ୧୭ | ହେମମୁକୁଟ ଶିରେ ଶୋହେ | ବ୍ୟାପିଣ ଦେବମାର୍ଗଯାଏ | ॥ | ୪୩ |
| | ଭୁଜେ ଅଙ୍ଗଦ ଶୋଭମାନ | ଦେହେ ବ୍ୟାପିଲେ ଦିଗମାନ | ॥ | ୪୪ |
| | ଗମନ କରନ୍ତେ ସେ ବେନି | ପାଦରେ କଂପାଇ ମେଦିନୀ | ॥ | ୪୫ |
| | କଟିରେ ଚାରୁ କାଞ୍ଚି ଶୋହି | ତେଜେ ସୂର୍ଯ୍ୟକୁ ବଳି ରହି | ॥ | ୪୬ |

---

୧. ଶିବାକୁଳ = ଶୃଗାଳ ।　୨. ଖର = ଗଧ ।　୩. ଖାର୍କାର ।　୪. ରାସଭ = ଗଧ ।
୫. ଘୋଷ = ଗଉଡ଼ସାଇ ।　୬. ଶୁକ୍ର ।

୧୮ *ସେ ବେନି ଦୈତ୍ୟଙ୍କର ମଧ୍ୟେ । ଯେ ନିଜ ଦେହୁଁ ଜାତ ଆଦ୍ୟେ ॥ ୪୭
ହିରଣ୍ୟକଶିପୁ ବିଖ୍ୟାତି । କଲେ ତାହାକୁ ପ୍ରଜାପତି ॥ ୪୮
ଯେ ଆଗେ ଦିତିଗର୍ଭୁଁ ଜାତ । ସେ ହରିଣ୍ୟାକ୍ଷ ନାମେ ଖ୍ୟାତ ॥ ୪୯
୧୯ ବ୍ରହ୍ମାରଠାରୁ ପାଇ ବର । ହିରଣ୍ୟକଶିପୁ ଅସୁର ॥ ୫୦
ସ୍ୱଭାବେ ଉଦ୍ଧତ ଅଟଇ । କାହାରିଠାରୁ ମୃତ୍ୟୁ ନାହିଁ ॥ ୫୧
ଲୋକପାଳଙ୍କୁ ଭୁଜବଳେ । ବଶେ ରଖିଲା ଲୋକମେଳେ ॥ ୫୨
୨୦ ତାର ଅନୁଜ ହିରଣ୍ୟାକ୍ଷ । ଗଦାସଂଗ୍ରାମେ ମହାଦକ୍ଷ ॥ ୫୩
ଜ୍ୟେଷ୍ଠ ଭ୍ରାତାର ପ୍ରିୟକାରୀ । ସ୍ୱର୍ଗକୁ ଗଲା ଗଦା ଧରି ॥ ୫୪
ସଂଗ୍ରାମ କରିବା ବିଚାରି । ବୀରଙ୍କୁ ଖୋଜେ ଅନୁସରି ॥ ୫୫
୨୧ ଦୁଃସହ ଅଟେ ବେଗ ତାର । ଚରଣେ କନକନୂପୁର ॥ ୫୬
୨୨ ବଇଜୟନ୍ତୀ ମାଳା ଶୋହି । କାନ୍ଧରେ ଗଦାକୁ ପକାଇ ॥ ୫୭
ଶଉର୍ଯ୍ୟ, ବୀର୍ଯ୍ୟ, ବ୍ରହ୍ମାବର । ଏତେ କଥାରେ ବଳିଆର ॥ ୫୮
ସ୍ୱଭାବେ ଅଟେ ନିରଙ୍କୁଶ । କାହିଁରୁ ନାହିଁ ଭୟଲେଶ ॥ ୫୯
ଦେଖି ତାହାକୁ ଦେବମାନେ । ଭୟେ ଲୁଚିଲେ ସ୍ଥାନେ ସ୍ଥାନେ ॥ ୬୦
ଗରୁଡ଼ଠାରୁ ତ୍ରସ୍ତ ହୋଇ । ଗର୍ତ୍ତେ ଲୁଚନ୍ତି ଯେହ୍ନେ ଅହି ॥ ୬୧
୨୩ ଆପଣା ତେଜେ ସ୍ୱର୍ଗପୁରେ । ଲୁଚିଲେ ଇନ୍ଦ୍ର ଆଦି ସୁରେ ॥ ୬୨
ତାଙ୍କୁ ନ ଦେଖି ଦୈତ୍ୟପତି । ଗର୍ଜିଲା ହୋଇ ମତ୍ତ ଅତି ॥ ୬୩
୨୪ ସେ ବୀର ସ୍ୱର୍ଗୁଁ ନିବର୍ତ୍ତିଲା । କ୍ରୀଡ଼ା କରିବି ବିଚାରିଲା ॥ ୬୪
ଯେ ସିନ୍ଧୁ ଅଟଇ ଅଗାଧ । କରଇ ଭୟଙ୍କର ନାଦ ॥ ୬୫
ଅବଗାହନ କଲା ତହିଁ । ମତ୍ତ ବାରଣ ପ୍ରାୟ ହୋଇ ॥ ୬୬

* ଦୁଇ ଯାଆଁଳା ସନ୍ତାନଙ୍କ ଭିତରୁ ଯେ ପ୍ରଥମେ କଶ୍ୟପଙ୍କ ଦେହରୁ ଦିତିଗର୍ଭରେ ପ୍ରବେଶ କଲା ତାର ନାମ ହିରଣ୍ୟକଶିପୁ ହେଲା । କିନ୍ତୁ ଦିତି ଯାହାକୁ ପ୍ରଥମେ ଜାତ କଲା ତାର ନାମ ହିରଣ୍ୟାକ୍ଷ ହେଲା । ତାତ୍ପର୍ଯ୍ୟ-ଗର୍ଭାଧାନ ସମୟରେ ବୀର୍ଯ୍ୟ ଯୋନିପୁଷ୍ପରେ ପ୍ରବେଶ କରୁ କରୁ ଯଦି ତାହା ଆଗପଛ କ୍ରମେ ଦୁଇ ଭାଗରେ ବିଭକ୍ତ ହୁଏ, ତେବେ ଯାଆଁଳା ସନ୍ତାନ ଜାତ ହୁଅନ୍ତି । ଦୁହିଁଙ୍କ ଭିତରୁ ଯେ ପ୍ରଥମେ ପିତାର ଦେହରୁ ମାତାର ଦେହରେ ପ୍ରବେଶ କରିଥାଏ, ସେ ମାତୃଗର୍ଭରୁ ପ୍ରଥମେ ବାହାର ନ ହୋଇ ପରେ ବାହାର ହୁଏ ।
''ଯଦା ବିଶେଦ୍ ଦ୍ୱିଧାଭୂତଂ ବୀର୍ଯ୍ୟଂ ପୁଷ୍ପଂ ପରିକ୍ଷରତ୍ ।
ଦ୍ୱୌ ତଦାଭବତୋ ଗର୍ଭୌ ସୂତିର୍ବେଶବିପର୍ଯ୍ୟୟାତ୍ ॥'' (ସ୍ୱାମୀ)

୨୫ ସେ ଜଳେ ପ୍ରବେଶ ହୁଅନ୍ତେ । ବରୁଣସୈନ୍ୟ ଥିଲେ ଯେତେ ॥ ୬୭
ସଭୟେ ଜଳଜନ୍ତୁଗଣ । ତକ୍ଷଣେ ହୋଇ ବୁଦ୍ଧିହୀନ ॥ ୬୮
ବଧ ନ କଲେହେଁ ଅସୁର । ତା' ତେଜେ ହୋଇଣ କାତର ॥ ୬୯
ଦୂରକୁ ବୋଲି ପଳାଇଲେ । ନିକଟେ ରହି ନ ପାରିଲେ ॥ ୭୦
୨୬ ବହୁତ ବରଷ ପର୍ଯ୍ୟନ୍ତେ । ରହିଲା ମହୋଦଧି-ଅନ୍ତେ ॥ ୭୧
ପବନେ କଂପିତ ହୋଇଣ । ଯେ ଥିଲେ ମହାଉର୍ମିମାନ ॥ ୭୨
ମୂର୍ବା[୧] ରଜ୍ଜୁରେ ଦୃଢ଼େ ବନ୍ଧା । ହୋଇଣ ଥିଲା ଯେହ୍ନେ ଗଦା ॥
ସେ ଗଦାଘାତେ ତା' ସଂହାରି । ମିଳିଲା ବରୁଣର ପୁରୀ ॥ ୭୩
ନାମ ଯାହାର ବିଭାବରୀ । ସର୍ବସଂପଦେ ଅଛି ପୂରି ॥
୨୭ ଯେ ପ୍ରଭୁ ପାତାଳପୁରର । ଜଳଜନ୍ତୁଙ୍କ ଅଧୀଶ୍ୱର ॥ ୭୪
ସେ ବରୁଣର ପାଶେ ଯାଇଁ । ନୀଚ ଲୋକର ପ୍ରାୟ ହୋଇ ॥ ୭୫
ପ୍ରଣାମ କରି ଉପହାସେ । ବଚନ ବୋଇଲା ବିଶ୍ୱାସେ ॥ ୭୬
ତୁ ହୋ ବରୁଣ ! ଅଧିରାଜ । ସଂଗ୍ରାମ ଦିଅ ମୋତେ ଆଜ ॥ ୭୭
୨୮ ତୁ ଲୋକପାଳମଧ୍ୟେ ବର । ଗର୍ବ ବିନାଶୁ ବୀରଙ୍କର ॥ ୭୮
ଦେବଦାନବଙ୍କୁ ଜିଣିଲୁ । ତୁ ରାଜସୂୟ ଯଜ୍ଞ କଲୁ ॥ ୭୯
୨୯ ଉନ୍ନତଗର୍ବୀ ସେ ରାକ୍ଷସ । କରନ୍ତେ ଏହ୍ନୁ ପରିହାସ ॥ ୮୦
ଯେ ରୋଷ ଚିତ୍ତେ ଜାତ ଆସି । ତା' ନିଜ ବୁଦ୍ଧିବଳେ ନାଶି ॥ ୮୧
ବଚନ କହେ ଜଳେଶ୍ୱର । ଶୁଣ ଅସୁର ମହାବୀର ॥ ୮୨
ଲଭିଣଅଛୁଁ ଆମ୍ଭେ ଶାନ୍ତି । ରଣରସରେ ନାହିଁ ମତି ॥ ୮୩
୩୦ ଯେ ହରି ପୁରୁଷ ପୁରାଣ । ତା' ବିନୁ ଦେଖୁ ନାହିଁ ଆନ ॥ ୮୪
ରଣେ ତୋଷିବ କେ ତୋ' ଚିତ୍ତ । ତୁ ରଣମାର୍ଗରେ ପଣ୍ଡିତ ॥ ୮୫
ତୋହର ପ୍ରାଏ ବୀର ରଣେ । ଯାକୁ ଖୋଜନ୍ତି ଅନୁକ୍ଷଣେ ॥ ୮୬
ତୁ ଏବେ ମୋର ବୋଲ କର । ପ୍ରବେଶ ହୁଅ ତା' ଛାମୁର ॥ ୮୭
୩୧ ସେ ବୀରଠାରେ ହେବୁ ଯେବେ । ଗର୍ବ ତୋହର ଯିବ ତେବେ ॥ ୮୮
ଶୋଇବୁ ରଣଭୂମିଗତେ । କୁକ୍କୁର ବେଢ଼ିଥିବେ ତୋତେ ॥ ୮୯
ତୋହର ପ୍ରାଏ ଦୁଷ୍ଟ ଯେତେ । ତାଙ୍କ ନାଶକୁ ଏ ଜଗତେ ॥ ୯୦

---

୧. ମୂର୍ବା = ଏକପ୍ରକାର ତୃଣ ।

ଯେ ହରି ନାନା ରୂପ ଧରେ । ସାଧୁଙ୍କୁ ଅନୁଗ୍ରହ କରେ ॥ ୯୧
ସେ ହରିଚରଣାରବିନ୍ଦେ । ସୁଜନେ ଚିନ୍ତ ହେ ଆନନ୍ଦେ ॥ ୯୨
କହଇ ବିପ୍ର ଦୀନବନ୍ଧୁ । ଏଣେ ତରିବ ଭବବନ୍ଧୁ ॥ ୯୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ହିରଣ୍ୟାକ୍ଷଦିଗ୍‌ବିଜୟେ ଆଦିଦୈତ୍ୟୋଦ୍‌ପତ୍ତିର୍ନାମ
ସପ୍ତଦଶୋଽଧ୍ୟାୟ ॥

## ଅଷ୍ଟାଦଶୋଽଧ୍ୟାୟଃ

ଅଷ୍ଟାଦଶେ ହିରଣ୍ୟାକ୍ଷ-ଧରୋଦ୍ଧର୍ତ୍ତୃବରାହୟୋଃ ।
ନିର୍ବିଶେଷଂ ମହାଯୁଦ୍ଧଂ ଦେବକ୍ଷୋଭି ନିରୂପ୍ୟତେ ॥

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ ବରୁଣର ବାଣୀ । ସେ ମହାବୀର କର୍ଣ୍ଣେ ଶୁଣି ॥ ୧
ମନେ ନ କଲା ଭୟ କିଛି । ରଣେ ଦୁର୍ମଦ ହୋଇଅଛି ॥ ୨
ବରାହରୂପେ ଚକ୍ରପାଣି । ଦନ୍ତରେ ଧଇଲେ ଧରଣୀ ॥ ୩
ନାରଦଠାରୁ ଶୁଣି ଏହା । ତକ୍ଷଣେ ହୋଇଣ ଉତ୍‌ସାହା ॥ ୪
ପାତାଳେ ହୋଇଲା ପ୍ରବେଶ । ଯୁଦ୍ଧରେ ହୋଇଣ ଲାଳସେ ॥ ୫
୨ ଯେ ସବୁଠାରେ ଜୟ କରି । ଦନ୍ତେ ଧରଣୀ ଅଛି ଧରି ॥ ୬
ଅରୁଣ ଅଟେ ନେତ୍ରକାନ୍ତି । ହେଳେ ନାଶଇ ଦୈତ୍ୟଜ୍ୟୋତି ॥ ୭
ହରିଙ୍କି ଏ ରୂପେ ଦେଖିଲା । ହସିଣ ଏମନ୍ତ ବୋଇଲା ॥ ୮
ଏ କଥା ଅଦ୍‌ଭୂତ ଅଟଇ । ବରାହ ଜଳମଧ୍ୟେ ଥାଇ ॥ ୯
୩ ବୋଲେ ଶୂକରମୁଖ ଚାହିଁ । ଦଶନୁଁ ବେଗେ ମୁଞ୍ଚ ମହୀ ॥ ୧୦
ପାତାଳଲୋକଙ୍କୁ ମେଦିନୀ । ଦେଇଣ ଅଛି ପଦ୍ମଯୋନି ॥ ୧୧
ଯେବେ ତୁ ଏହା ନ ଛାଡ଼ିବୁ । ମୋ ଠାରୁ କୁଶଳେ ନ ଯିବୁ ॥ ୧୨
ସୁର-ଅଧମ, ଅଜ୍ଞ ତୁହି । ଅଛୁ ଶୂକରରୂପ ବହି ॥ ୧୩
୪ ଆମ୍ଭର ଶତ୍ରୁମାନେ ତୋତେ । ପୋଷିଲେ ଆମ୍ଭ ନାଶ ଅର୍ଥେ ॥ ୧୪
ମାୟାରେ ମାରୁ ତୁ ଅସୁର । ଧରିଣ କପଟଶରୀର ॥ ୧୫

ତୋ ବଳ ଯୋଗମାୟା ହୋଏ । ଅଳ୍ପ ପୌରୁଷ ତୋର ଠାଏ ॥ ୧୬
ତୋତେ ମୁଁ କରିଣ ସଂହାର । ଶୋକ ନାଶିବି ମିତ୍ରଙ୍କର ॥ ୧୭
୫ ମୋ ଗଦାଘାତେ ଭାଜି ଶିର । ମରଣ ହୁଅନ୍ତେ ତୋହର ॥ ୧୮
ଯେବଣ ଋଷି ଦେବତାଏ । ବଳି[1] ଦିଅନ୍ତି ତୋର ଠାଏ ॥ ୧୯
ମୂଳବିନାଶେ ବୃକ୍ଷ ଯେହ୍ନେ । ସକଳ ମରିବେ ତେସନେ ॥ ୨୦
୬ ହିରଣ୍ୟାକ୍ଷର ଦୁଷ୍ଟ ବାଣୀ । ବାଜନ୍ତେ ହୃଦେ କୁନ୍ତ ଜାଣି ॥ ୨୧
ଦନ୍ତ-ଅଗ୍ରରେ କମ୍ପେ ମହୀ । ଏମନ୍ତ ଜାଣି ଭାବଗ୍ରାହୀ ॥ ୨୨
ଦୁଷ୍ଟ ବଚନ ଶୁଣି ତାର । ଜଳରୁ ହୋଇଲେ ବାହାର ॥ ୨୩
ବାରଣ ହସ୍ତିନୀ ସହିତେ । ଯେସନେ କୁମ୍ଭୀର-ଆଘାତେ ॥ ୨୪
୭ ଜଳୁଁ ସେ ହୁଅନ୍ତେ ବାହାର । ପଛେ ଗୋଡ଼ାଇଲା ଅସୁର ॥ ୨୫
ହସ୍ତୀର ଆଗେ ଯେହ୍ନେ ଝଷ[2] । ତେମନ୍ତେ ଦିଶଇ ରାକ୍ଷସ ॥ ୨୬
କରାଳ ଅଟେ ଦନ୍ତ ତାର । ବଚନ ବଜ୍ରପ୍ରାୟ ଘୋର ॥ ୨୭
ଚାହିଁଣ ବରାହବଦନ । ଅସୁର ବୋଲଇ ବଚନ ॥ ୨୮
ଯାହାର ମୁଖେ ଲାଜ ନାହିଁ । ତାର କି ନିନ୍ଦିତ ଅଟଇ ॥ ୨୯
୮ ସଲିଳ ପରେ ବସୁମତୀ । ରଖିଣ ଦେବ ରମାପତି ॥ ୩୦
ଧାରଣା ଶକ୍ତି ଆପଣାର । ରଖିଲେ ବସୁମତୀଠାର ॥ ୩୧
ସ୍ତୁତି କରନ୍ତି ପ୍ରଜାପତି । ଦେବେ କୁସୁମ ବରଷନ୍ତି ॥ ୩୨
ଏମନ୍ତ ବିଧି ଗୋବିନ୍ଦର । ସଂଭ୍ରମେ ଦେଖଇ ଅସୁର ॥ ୩୩
୯ ପୃଷ୍ଠେ ହୋଇଛି ଅନୁଗତ । ସୁବର୍ଣ୍ଣଭୂଷଣେ ଭୂଷିତ ॥ ୩୪
ମହାଗଦାକୁ ଅଛି ଧରି । ହେମକବଚ ଦେହେ ଭରି ॥ ୩୫
କହିଣ ଦୁର୍ବଚନମାନ । ମର୍ମକୁ କରୁଛି ଭେଦନ ॥ ୩୬
ଏମନ୍ତ ଅସୁରକୁ ଚାହିଁ । ମନେ ପ୍ରଚଣ୍ଡ କୋପ ବହି ॥ ୩୭
ଉତ୍ତରେ ହସି ଭଗବାନ । କହିଲେ ଏମନ୍ତ ବଚନ ॥ ୩୮

ଶ୍ରୀଭଗବାନୁବାଚ

୧୦ କହିଲୁ ସତ୍ୟ ବାକ୍ୟ ତୁହି । ବନଗୋଚର ମୃଗ ମୁହିଁ ॥ ୩୯
ତୋହର ପ୍ରାୟ ଏ ଜଗତେ । ଅଛନ୍ତି ଗ୍ରାମସିଂହ[3] ଯେତେ ॥ ୪୦
ତାହାଙ୍କୁ ଦେଖିବା ନିମିତ୍ତେ । ବୁଲୁଣ ଥାଇ ମୁଁ ସନ୍ତତେ ॥ ୪୧

---

୧. ବଳି = ପୂଜୋପହାର । ୨. ଝଷ = କୁମ୍ଭୀର । (ସ୍ୱାମୀ)
୩. ଗ୍ରାମସିଂହ = କୁକ୍କୁର ।

| | | | |
|---|---|---|---|
| | ମୃତ୍ୟୁପାଶରୁ ମୁକ୍ତ ନୋହି । | ଯେତେ କହୁଛୁ ଗର୍ବ ବହି | ॥ ୪୨ |
| | ପଣ୍ଡିତେ ସେ କଥାକୁ ତୋର । | ନିନ୍ଦା କରିବେ ଭୋ ଅସୁର | ॥ ୪୩ |
| ୧୧ | ପାତାଳବାସୀ ଲୋକଙ୍କରି । | ଦ୍ରବ୍ୟ ଅଟେ ଏ ବସୁନ୍ଧରୀ | ॥ ୪୪ |
| | ଏହାକୁ ଆମ୍ଭେ ହରିଥାଇଁ । | ଲଜ୍ଜା ଆମ୍ଭର ଯେଣୁ ନାହିଁ | ॥ ୪୫ |
| | ତୋହର ଗଦାଘାତ ପାଇ । | ସମରଭୂମିରୁ ପଳାଇ | ॥ ୪୬ |
| | ତଥାପି ଅତି କଷ୍ଟ ପାଇ । | ରଣଭୂମିରେ ଅଛୁଁ ରହି | ॥ ୪୭ |
| | ଥିବାର ଉଚିତ ଆମ୍ଭର । | ବଳିଷ୍ଠସଙ୍ଗତେ ବଇର | ॥ ୪୮ |
| | ବିଧାନ କରିଅଛୁଁ ପୂର୍ବେ । | କେଣିକି ଯିବୁଁ ଅବା ଏବେ | ॥ ୪୯ |
| ୧୨ | ପଦାତିମାନଙ୍କ ମଧର । | ତୁ ଯୂଥପତି ଅଟୁ ବୀର | ॥ ୫୦ |
| | ଆମ୍ଭର ଅମଙ୍ଗଳ-ଅର୍ଥେ । | ପ୍ରଯତ୍ନ କର ତୁ ତୁରିତେ | ॥ ୫୧ |
| | ମନରେ ଆଶଙ୍କା ନ କରି । | ଆମ୍ଭମାନଙ୍କୁ ଯୁଦ୍ଧେ ମାରି | ॥ ୫୨ |
| | ଲୋଚନୁଁ ନିଜ ଜନଙ୍କର । | ମାର୍ଜନା କର ଅଶ୍ରୁଧାର | ॥ ୫୩ |
| | ଯେ ନିଜ ପ୍ରତିଜ୍ଞା ନ ପାଳେ । | ଅସଭ୍ୟ ଅଟେ ସେ ଭୂତଳେ | ॥ ୫୪ |

### ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୧୩ | ଏ ରୂପେ ରୋଷେ ଭଗବାନ । | କହନ୍ତେ ଆକ୍ଷେପବଚନ | ॥ ୫୫ |
| | କରନ୍ତେ ପୁଣ ଉପହାସ । | ଦୈତ୍ୟ ଲଭିଲା ମହାରୋଷ | ॥ ୫୬ |
| | କ୍ରୀଡ଼ାସମୟେ ମହା ଅହି । | ଯେସନେ ମହାରୋଷ ବହି | ॥ ୫୭ |
| ୧୪ | କ୍ରୋଧ ଘେନନ୍ତେ ନିଜ ମନ । | ନିଶ୍ୱାସ ଛାଡ଼େ ଘନଘନ | ॥ ୫୮ |
| | ଇନ୍ଦ୍ରିୟଗଣ ଯେତେ ଥିଲେ । | କ୍ରୋଧରେ ପ୍ରଚଳିତ ହେଲେ | ॥ ୫୯ |
| | ଧାଇଁଆସିଣ ଅତି ବେଗେ । | ଗଦା ପିଟିଲା ହରି-ଅଙ୍ଗେ | ॥ ୬୦ |
| ୧୫ | ଶତ୍ରୁ ଯା' ନିଜ ଭୁଜବଳେ । | ପ୍ରହାର କଲା ବକ୍ଷସ୍ଥଳେ | ॥ ୬୧ |
| | ବକ୍ର ହୋଇଣ ହରି ଗଲେ । | ସେ ଗଦାବେଗ ବଞ୍ଚାଇଲେ | ॥ ୬୨ |
| | ଯୋଗନିବିଷ୍ଟ[୧] ହୋଇ ଜନ । | ମୃତ୍ୟୁକୁ ବଞ୍ଚାଇ ଯେସନ | ॥ ୬୩ |
| ୧୬ | ଅତି କୋପରେ ସେ ଅସୁର । | ଦନ୍ତରେ ଚାପିଣ ଅଧର | ॥ ୬୪ |
| | ପୁଣି ଆପଣା ଗଦା ଧରି । | ବୁଲାନ୍ତେ ଅତି ବେଗ କରି | ॥ ୬୫ |
| | ହରି ହିଁ ଅତି କ୍ରୋଧ କଲେ । | ତାର ନିକଟକୁ ଧାଇଁଲେ | ॥ ୬୬ |

---

୧. ଯୋଗାରୂଢ଼ । (ମୂଳପାଠ)

୧୭ ଧରିଣ ଗଦା ଆପଣାର । ଦକ୍ଷିଣ ଭ୍ରୂଲତାରେ ତାର ॥ ୬୭
ପ୍ରହାର କରନ୍ତେ ଅଚ୍ୟୁତ । ଅସୁର ରଣରେ ପଣ୍ଡିତ ॥ ୬୮
ନିଜ ଗଦାରେ ଗଦା ତାର । ବିନାଶ କଲା ମହାସୁର ॥ ୬୯
୧୮ ଏ ରୂପେ ଗୁରୁ ଗଦା ଘେନି । ବରାହ-ହିରଣ୍ୟାକ୍ଷ ବେନି ॥ ୭୦
ଜିଣିମା ଅର୍ଥେ ମନ ଦେଲେ । ଏକକୁ ଆରକ ପିଟିଲେ ॥ ୭୧
୧୯ ବାଜିଣ ବେନି ଗଦାଘାତ । ହୋଇଲା ବେନି ଅଙ୍ଗ କ୍ଷତ ॥ ୭୨
ଜିଣିମା କଥାକୁ ବିଚାରି । ଏକ ଆରକେ ସ୍ପୃହା କରି ॥ ୭୩
ଆଘ୍ରାଣ କରନ୍ତେ ରକତ । କ୍ରୋଧ ହୋଇଲା ଦେହେ ଜାତ ॥ ୭୪
ଗଦା ବିଚିତ୍ର ମାର୍ଗ କରି । ପିଟନ୍ତେ ବେଗେ ଅନୁସରି ॥ ୭୫
ଶବଦ ଶୁଭଇ ପ୍ରଚଣ୍ଡ । ଯେହ୍ନେ କୁଟନ୍ତି ବେନି ଷଣ୍ଢ ॥ ୭୬
ଗାଭୀକୁ[୧] କରିଣ ନିମିତ୍ତ । ପୃଥିବୀ ପାଇଁ ତେହ୍ନେ ମତ୍ତ ॥
୨୦ ଯେ ଯଜ୍ଞରୂପୀ ଚକ୍ରଧର । ମାୟାରେ ବରାହଶରୀର ॥ ୭୭
ତା' ଯୁଦ୍ଧ ଦନୁଜସଙ୍ଗରେ । ହୁଅନ୍ତେ ପୃଥିବୀ ହେତୁରେ ॥ ୭୮
ସେ ଯୁଦ୍ଧ ଦେଖିବାର ପାଇଁ । ଋଷିଗଣରେ ଯୁତ ହୋଇ ॥ ୭୯
ଆପଣେ କମଳ-ଆସନ । ମିଳିଲେ ଆସିଣ ଗଗନ ॥ ୮୦
୨୧ ଦେଖିଲେ ଅସୁରକୁ ତହିଁ । ବହୁତ ବଳ ଅଛି ପାଇ ॥ ୮୧
କଲା କଥାକୁ ପ୍ରତିକାର । କରଇ ଭୟ ନାହିଁ ତାର ॥ ୮୨
ଯେତେ ବିକ୍ରମ ଅଛି ତାର । ତହିଁକି ନାହିଁ ପ୍ରତିକାର ॥ ୮୩
ଏ ରୂପେ ଅସୁରକୁ ଚାହିଁ । ନାରାୟଣଙ୍କୁ ବ୍ରହ୍ମା କହି ॥ ୮୪

ଶ୍ରୀବ୍ରହ୍ମୋବାଚ

୨୨ ହେ ଦେବ ! ତୋହର ଚରଣେ । ନିତ୍ୟେ ଯେ ପଶିଲେ ଶରଣେ ॥ ୮୫
ସେ ଦେବ-ଦ୍ୱିଜ-ଗୋରୁମାନ । ଅନପରାଧୀ ଯେବା ଜନ ॥ ୮୬
ତାହାଙ୍କ ଅପରାଧକର । ଭୟଦ, ଦୁଷ୍ଟ ଏ ଅସୁର ॥ ୮୭
ମୋ ଠାରୁ ବର ଅଛି ପାଇ । ଏହାକୁ ପ୍ରତିଯୋଦ୍ଧା ନାହିଁ ॥ ୮୮
ସକଳ ଲୋକେ ଏ ବୁଲଇ । ଜଗତକଣ୍ଟକ ଅଟଇ ॥ ୮୯
୨୩ ଏ ଗର୍ବୀ ଅଟେ ମାୟାବଶ । ଦୁଷ୍ଟସ୍ୱଭାବ ନିରଙ୍କୁଶ ॥ ୯୦
୨୪ ଯେହ୍ନେ ବାଳକ ପୁଚ୍ଛ ଧରି । ଦୁଷ୍ଟ ସର୍ପକୁ ଲୋଡ଼େ ମାରି ॥ ୯୧

୧. ମୂଳପାଠଧୃତ 'ଇଳା' ଶବ୍ଦର ଅର୍ଥ ଭୂ, ଗୌ ଓ ବାକ୍ ।

ସେ ରୂପେ ନ କରସି ହେଳା । ଏ ଦୁଷ୍ଟ ଲଭି ନିଜ ବେଳା ॥ ୯୨
ଯାବତ ନ ବଢ଼େ ଅସୁର । ନିଜ ମାୟାରେ ତୁମ୍ଭେ ମାର ॥ ୯୩
୨୫ ଆସୁରୀ-ସଂଧ୍ୟାକାଳ ଘୋର । ବିନାଶକର ଯେ ଲୋକର ॥ ୯୪
ବେଗେଣ ବିନାଶ ଅସୁର । ଜୟ ପ୍ରକାଶ ଦେବଙ୍କର ॥ ୯୫
୨୬ ଏବେ ଏ ଅଭିଜିତଂ[1] ନାମ । ମୁହୂର୍ତ୍ତ ହେଲା ଅତିକ୍ରମ ॥ ୯୬
ମଙ୍ଗଳ ଅର୍ଥେ ମିତ୍ରଙ୍କର । ତୁ ଏ ଦୁସ୍ତରରୁ ନିସ୍ତର ॥ ୯୭
୨୭ ଭୋ ନାଥ ! ମୃତ୍ୟୁ ତୁ ଏହାର । ଭାଗ୍ୟେ ମିଳିଲା ତୋ ଛାମୁର ॥ ୯୮
ଏହାକୁ ପରାକ୍ରମେ ମାର । ମଙ୍ଗଳ କର ଲୋକଙ୍କର ॥ ୯୯
ସେ ହରି ବରାହଚରଣେ । ସୁଜନେ ଚିନ୍ତ ଅନୁକ୍ଷଣେ ॥୧୦୦
ତୃତୀୟ ସ୍କନ୍ଧର ଏ ବାଣୀ । ବ୍ରାହ୍ମଣ ଦୀନବନ୍ଧୁ ଭଣି ॥୧୦୧
ସୁଜନେ ଏଣେ କର ଲୟ । ଯେଣେ ତରିବ ଭବଭୟେ ॥୧୦୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ହିରଣ୍ୟାକ୍ଷଯୁଦ୍ଧେଽଷ୍ଟାଦଶୋଽଧ୍ୟାୟଃ ॥

## ଏକୋନବିଂଶୋଽଧ୍ୟାୟଃ

ଊନବିଂଶେ ବିରିଞ୍ଚ୍ୟାଦିପ୍ରାର୍ଥିତେନ ମହାମୃଧେ ।
ବରାହେଣ ହିରଣ୍ୟାକ୍ଷବଧଃ ଶ୍ଲାଘ୍ୟୋଽନୁବର୍ଣ୍ଣ୍ୟତେ ॥

ଶ୍ରୀମୈତ୍ରେୟ ଉବାଚ

୧ ଏମନ୍ତ ବ୍ରହ୍ମାର ବଚନ । ଅବ୍ୟାଜ ଅମୃତ ଯେସନ ॥ ୧
ସ୍ୱୀକାର କଲେ ଭାବଗ୍ରାହୀ । ପ୍ରେମକଟାକ୍ଷେ ହସି ଚାହିଁ ॥ ୨
୨ ନିର୍ଭୟ ହୋଇ ସେ ଅସୁର । ଚରଣେ ଆଗେ ଆପଣାର ॥ ୩
ଗଦା ଧରିଣ ଡେଇଁ ରୋଷେ । ପିଟିଲେ ତାର ହନୁଦେଶେ ॥ ୪
୩ ଆପଣା ଗଦାକୁ ଅସୁର । ପିଟିଲା ସେ ଗଦା ଉପର ॥ ୫
ହରିକରରୁ ହୋଇ ଚ୍ୟୁତ । ସେ ଗଦା ହୋଇଲା ଘୂର୍ଣ୍ଣିତ ॥ ୬
ପଡ଼ିଣ ସୁନ୍ଦର ଦିଶିଲା । ଅଦ୍ଭୁତ ପ୍ରାୟେ ସେ ହୋଇଲା ॥ ୭

---

୧. ମଧ୍ୟାହ୍ନ ।

୪ ଆୟୁଧ ନାହିଁ ହରିକର । ପାଇ ଏମନ୍ତ ଅବସର ॥ ୮
ହରିଙ୍କି ଘାତ ସେ ନ କଲା । କ୍ଷତ୍ରିୟ ଧର୍ମ ବିଚାରିଲା ॥ ୯
ହରିର କୋପ କରି ଜାତ । ସମର କରଇ ସେ ଦୈତ୍ୟ ॥ ୧୦
୫ ହରିର କରୁଁ ବିଗଳିତ । ଗଦା ହୁଅନ୍ତେ ଭୂମିଗତ[୧] ॥ ୧୧
ପ୍ରାଣୀମାନଙ୍କ ହାହାକାର । ହୁଅନ୍ତେ ସକଳ ଦିଗର ॥ ୧୨
ଭୟ ନ କର କେହି ମନ । ଦେବଙ୍କୁ କହି ଏ ବଚନ ॥ ୧୩
ନିଜ ଚକ୍ରକୁ ଭଗବାନ । ତକ୍ଷଣେ ସୁମରିଲେ ମନ ॥ ୧୪
୬ ଦିତିତନୟ ନାମ ତାର । ଆପଣା ଭୃତ୍ୟମଧ୍ୟେଁ ସାର ॥ ୧୫
ତାହାର ସଙ୍ଗେ ରଣ କରି । ତୀକ୍ଷ୍ଣ ଚକ୍ରକୁ ଛନ୍ତି ଧରି ॥ ୧୬
ଏମନ୍ତ ଦେଖିଣ ଖେଚର । ପ୍ରଭାବ ନ ଜାଣି ତାହାର ॥ ୧୭
ବୋଇଲେ ସ୍ୱସ୍ତି ହେଉ ତୋର । ମାର ଏ ଦୁଷ୍ଟ ନିଶାଚର ॥ ୧୮
୭ ପଦ୍ମପଲାଶନେତ୍ର ହରି । ଅଛନ୍ତି ଆଗେ ଚକ୍ର ଧରି ॥ ୧୯
ଅସୁର ଏମନ୍ତ ଦେଖିଲା । ଅତ୍ୟନ୍ତ କ୍ରୋଧରେ କମ୍ପିଲା ॥ ୨୦
ରୋଷରେ ଚାପଇ ଅଧର । ନିଃଶ୍ୱାସ ବହଇ ପ୍ରଖର ॥ ୨୧
୮ କରାଳ ଦିଶଇ ଦଶନ । ଅନଳ ପ୍ରକାଶେ ନୟନ ॥ ୨୨
ଦହନ କଲା ପ୍ରାୟେ ଚାହିଁ । ଗଦା ଧରିଣ ବେଗେ ଧାଇଁ ॥ ୨୩
ମଲୁ ତୁ ବୋଲି ଉଚ୍ଚସ୍ୱରେ । ହରିଙ୍କି ପିଟିଲା ସତ୍ୱରେ ॥ ୨୪
୯ ପବନପ୍ରାୟ ବେଗ ହୋଇ । ସେ ଗଦା ଆସନ୍ତେଣ ଧାଇଁ ॥ ୨୫
ସେ ଯଜ୍ଞଶୂକର ଲୀଳାରେ । ମାଇଲେ ବାମପାଦେ ତାରେ ॥ ୨୬
ନିକଟେ ଥାଇଣ ଅସୁର । ଦେଖଇ ପରାକ୍ରମ ତାର ॥ ୨୭
୧୦ ଆୟୁଧ ଧରି ଚେଷ୍ଟା କର । ଯେବେ ଜିଣିମା ମନ ତୋର ॥ ୨୮
ଏମନ୍ତ ବୋଇଲେ ଅଚ୍ୟୁତ । ପୁଣି ସେ ଗଦାରେ ଦଇତ ॥ ୨୯
ପିଟିଲା ବରାହ ଉପରେ । ଗର୍ଜନ କଲା ଉଚ୍ଚସ୍ୱରେ ॥ ୩୦
୧୧ ଗଦା ଆସିବା ବେଗ ଜାଣି । ନିଶ୍ଚଳେ ରହି ଚକ୍ରପାଣି ॥ ୩୧
ସେ ଗଦା ଧଇଲେ ତେସନେ । ଗରୁଡ଼ ଭୁଜଙ୍ଗୀ[୨] କି ଯେହ୍ନେ ॥ ୩୨
୧୨ ନିଜ ପୌରୁଷ ଯାନ୍ତେ ନାଶ । ଅସୁରଗର୍ବ ହେଲା ଧ୍ୱଂସ ॥ ୩୩
ହରି ଦିଅନ୍ତେ ଗଦା ନେଇ । ନ ନେଲା ହତପ୍ରଭ ହୋଇ ॥ ୩୪

---

୧. ବିଚଳିତ ।　　୨. ଭୁଜଙ୍ଗୀ = ସର୍ପିଣୀ ।

୧୩ ଲୀଳାବିଧୃତ-କଳେବର । ଯେ ଯଜ୍ଞରୂପୀ ଚକ୍ରଧର ॥ ୩୫
୧୪ ତାଙ୍କୁ ମାରିବା ଭଦ୍ର ନୋହେ । ବିପ୍ରଙ୍କୁ କୃତ୍ୟା[1] କଲା ପ୍ରାୟେ ॥ ୩୬
ତଥାପି ଅଜ୍ଞାନୀ ଅସୁର । ତ୍ରିଶୂଳ ଧଇଲା ସେ କର ॥ ୩୭
ଜଳିଲା ଅନଳର ପ୍ରାୟେ । ଯେ ଶୂଳ ଗ୍ରାସିବାକୁ ଧାଏଁ ॥ ୩୮
ସେ ଦୈତ୍ୟରାଜ ମହାବଳ । ବେଗେ ଫିଙ୍ଗିଲା ଯେଉଁ ଶୂଳ ॥ ୩୯
ଆକାଶମଧ୍ୟେ ଶୋଭା ପାଇ । କିରଣଗଣ ପ୍ରକାଶଇ ॥ ୪୦
ନିଶିତ ଚକ୍ର ଘେନି କର । ଛେଦିଲେ ତାହା ଚକ୍ରଧର ॥ ୪୧
ଯେହ୍ନେ ପକ୍ଷୀକି ଗରୁଡ଼ର । କାଟିଲା ପୂର୍ବେ ସୁନାସୀର[2] ॥ ୪୨
୧୫ ଚକ୍ରେ ବହୁତ ଖଣ୍ଡ କରି । ଶୂଳକୁ କାଟନ୍ତେ ଶ୍ରୀହରି ॥ ୪୩
ଅସୁର ଧାଇଁ ରୋଷଭରେ । ହରିର ଲକ୍ଷ୍ମୀବନ୍ତ ଉରେ ॥ ୪୪
କଠୋର ମୁଷ୍ଟିରେ ମାଇଲା । ଗର୍ଜିଣ ଅନ୍ତର୍ଧାନେ ଗଲା ॥ ୪୫
୧୬ ତାର ପ୍ରହାରେ ଯଜ୍ଞରୂପ । କିଛିହିଁ ନ ଲଭିଲେ କମ୍ପ ॥ ୪୬
ମାରନ୍ତେ ପୁଷ୍ପମାଳା ଧରି । ଯେସନେ ନ କମ୍ପଇ କରି ॥ ୪୭
୧୭ ଯୋଗମାୟାର ଅଧିପତି । ଯେ ହରି ପ୍ରସିଦ୍ଧ ଅଟନ୍ତି ॥ ୪୮
ତାହାଙ୍କ ଠାରେ ମାୟାମାନ । ରଚିଲା ଦିତିର ନନ୍ଦନ ॥ ୪୯
ପ୍ରଳୟ ବୋଲି ନିଜ ମନେ । ମଣିଲେ ଯାହା ଦେଖି ଜନେ ॥ ୫୦
୧୮ ପ୍ରଚଣ୍ଡ ବହିଲେ ସମୀର । ଧୂଳିରେ କଲେ ଅନ୍ଧକାର ॥ ୫୧
ଲେଣ୍ଟି[3]ରେ ଫିଙ୍ଗିଲା ପରାଏ । ପାଷାଣବୃଷ୍ଟି ଦିଗେ ହୋଏ ॥ ୫୨
୧୯ ବିଜୁଳିସଙ୍ଗେ ହୋଇ ଯୁତ । ଜଳଦଜାଳେ[4] ଅବିରତ ॥ ୫୩
ମୂତ୍ର, ପୁରୀଷ, ପୂଜ, ଅସ୍ଥି । କେଶ, ରକତ ବରଷନ୍ତି ॥ ୫୪
ମେଘରେ ଆଚ୍ଛନ୍ନ ଆକାଶ । ନକ୍ଷତ୍ରଗଣ ଅପ୍ରକାଶ ॥ ୫୫
୨୦ ଦୃଶ୍ୟ ହୋଇଲେ ଗିରିଗଣ । ମୁଞ୍ଚନ୍ତି [5]ନାନାୟୁଧମାନ ॥ ୫୬
ବିବସ୍ତ୍ର ହୋଇ ଶୂଳ ଧରି । କେଶମାନଙ୍କୁ ମୁକ୍ତ କରି ॥ ୫୭
ରାକ୍ଷସୀଗଣେ ସେ ସ୍ଥାନରେ । ଦିଶିଲେ ସକଳ ଦିଗରେ ॥ ୫୮

---

୧. କୃତ୍ୟା = ଆଭିଚାରିକ କର୍ମ କୁହକରଚନା ପରର ଅନିଷ୍ଟ ସାଧନ ପାଇଁ ଯେଉଁ ସ୍ତ୍ରୀ ଦେବତାଙ୍କୁ ବଳି ଅର୍ପଣ କରାଯାଏ ।
କୃତ୍ୟା କ୍ରିୟାଦେବତୟୋଃ (ଅମରଃ) । ୨. ଇନ୍ଦ୍ର ।
୩. ଲେଣ୍ଟି = କ୍ଷେପଣଯନ୍ତ୍ର । ୪. ଜାଳେ = ସମୂହ । ୫. ନାନା + ଆୟୁଧ ।

୨୧ ଯକ୍ଷରାକ୍ଷସ ଅପ୍ରମିତ । ପତ୍ତି, କୁଞ୍ଜର, ଅଶ୍ୱ, ରଥ ॥ ୫୯
ଆତତାୟୀଏ ହୋଇ ମେଳ । କରନ୍ତି ହାଣମାର ଗୋଳ ॥ ୬୦
୨୨ ଆସୁରୀ ମାୟା ବିନାଶନ । ନିମିତ୍ତେ ଦେବ ଭଗବାନ ॥ ୬୧
ଯେ ଥିଲା ପ୍ରିୟ ଚକ୍ର କରେ । ତାହାକୁ ଫିଙ୍ଗିଲେ କୋପରେ ॥ ୬୨
୨୩ ସେ କାଳେ ହୃଦୟ ଦିତିର । କମ୍ପିଲା ହୋଇଣ କାତର ॥ ୬୩
ଭର୍ତ୍ତାର ବଚନ ସୁମରେ । ସ୍ତନୁଁ ରୁଧିରଧାରା ଝରେ ॥ ୬୪
୨୪ ଚକ୍ରତେଜରେ ମାୟାଗଣ । ନାଶ ହୁଅନ୍ତେ ତତକ୍ଷଣ ॥ ୬୫
ହରିଙ୍କି ସ୍ୱଭୁଜମଧର । ଭିଡ଼ିଣ ଦିଶିଲା ଅସୁର ॥ ୬୬
୨୫ ତା' ମୁଷ୍ଟି ଅଟେ ବଜ୍ରପ୍ରାଏ । ମାରନ୍ତେ ତାହା ବିଷ୍ଣୁଦେହେ ॥ ୬୭
କର ପ୍ରସାରି କର୍ଣ୍ଣମୂଳେ । ଗୋବିନ୍ଦ ପ୍ରହାରିଲେ ବଳେ ॥ ୬୮
ପୂର୍ବେ ଯେସନେ ସୁରରାୟେ । ମାଇଲେ ବୃତ୍ରାସୁରଦେହେ ॥ ୬୯
୨୬ ଏ ରୂପେ ଅବଜ୍ଞାରେ କରି । ମାରନ୍ତେ ତାକୁ ଦେବ ହରି ॥ ୭୦
ଭୂମିରେ ପଡ଼ି ଦେହ ଲୋଟି । ବେନି ଲୋଚନ ଗଲା ଫୁଟି ॥ ୭୧
ଭୁଜ, ଚରଣ, ଗ୍ରୀବା ସ୍ଥାନ । ବିଶୀର୍ଣ୍ଣ ହୋଇଲେ ଏମାନ ॥ ୭୨
ପବନଭଗ୍ନ ଦ୍ରୁମ ଜାଣି । ଅସୁର ଶୋଇଲା ଧରଣୀ ॥ ୭୩
୨୭ ଭୂମିରେ ଦୈତ୍ୟ ଅଛି ଶୋଇ । ଦେହରୁ କାନ୍ତି ଲିଭି ନାହିଁ ॥ ୭୪
କରାଳ ଅଟେ ଦନ୍ତ ତାର । ରୋଷରେ ଭିଡ଼ିଛି ଅସୁର ॥ ୭୫
ବ୍ରହ୍ମାଦି ଦେଖିଣ ଏମନ୍ତ । ପ୍ରଶଂସା କଲେକ ବହୁତ ॥ ୭୬
ଅଦ୍ଭୁତ ମରଣ ଏହାର । ଏହା କେ ଲଭୁଁ ଆନ ନର ॥ ୭୭
୨୮ ଲିଙ୍ଗଶରୀର ମିଥ୍ୟା ଯେହି । ତହିଁରୁ ମୁକ୍ତ ହେବା ପାଇଁ ॥ ୭୮
ଯୋଗସମାଧିରେ ଏକାନ୍ତେ । ଯାହାକୁ ଯୋଗୀଜନ ଚିନ୍ତେ ॥ ୭୯
ତାହାର କରରେ ପ୍ରହାର । ପାଇଣ ଏ ଦିତିକୁମର ॥ ୮୦
ଚାହିଁଣ ମୁଖକୁ ତାହାର । ଛାଡ଼ିଲା ନିଜ କଳେବର ॥ ୮୧
୨୯ ଏହାର ପାରଷଦ ଦୁଇ । ଜୟ, ବିଜୟ ବେନି ଏହି ॥ ୮୨
ବ୍ରାହ୍ମଣଶାପକୁ ଲଭିଲେ । ଅଧୋଗତିକି ଏ ପାଇଲେ ॥ ୮୩
ପୁଣି ଏ କିଛୁ ଜନ୍ମ ଅନ୍ତେ । ସ୍ଥାନକୁ ଲଭିବେ ନିଶ୍ଚିନ୍ତେ ॥ ୮୪
ଏତେ ବିଚାରି ଦେବଗଣ । ହରିଙ୍କି କଲେ ସ୍ତୁତି ପୁଣ ॥ ୮୫

ଶ୍ରୀଦେବା ଊଚୁଃ

୩୦ ନମସ୍ତେ ସର୍ବଯଜ୍ଞତନ୍ତୁ । ପାଳନେ ତୋର ରୂପ ହେତୁ ।। ୮୬
ଆମ୍ଭର ଭାଗ୍ୟେ ଭଗବାନ । ଏ ଦୁଷ୍ଟ ଲଭିଲା ନିଧନ ।। ୮୭
ତୋ' ପାଦଭକ୍ତିରେ ଭୁବନେ । ସୁଖୀ ହୋଇଲୁଁ ଆମ୍ଭେମାନେ ।। ୮୮

ଶ୍ରୀମୈତ୍ରେୟ ଉବାଚ

୩୧ ଏ ରୂପେ ହିରଣ୍ୟାକ୍ଷ ମାରି । ଆଦି ଶୂକରରୂପ ହରି ।। ୮୯
ନିଜ ଭୁବନେ କଲେ ବିଜେ । ଯେ ପୂର୍ଣ୍ଣ ଉତ୍ସବେ ବିରାଜେ ।। ୯୦
ବ୍ରହ୍ମାଦି ଦେବଗଣ ତୋଷେ । ସ୍ତୁତି ଭଣିଲେ ଚଉପାଶେ ।। ୯୧
୩୨ ବିଦୁର ! ତୋହର ଆଗରେ । କହିଲି ତେମନ୍ତ ପ୍ରକାରେ ।। ୯୨
ଯେଉଁ ରୂପରେ ଥିଲି ଶୁଣି । ଯଜ୍ଞବରାହଲୀଳାବାଣୀ ।। ୯୩
ହିରଣ୍ୟାକ୍ଷକୁ ଯେ ପ୍ରକାରେ । ମାଇଲେ ମହା ସଂଗ୍ରାମରେ ।। ୯୪

ଶ୍ରୀସୂତ ଉବାଚ

୩୩ ମୈତ୍ରେୟଠାରୁ ଏ ପ୍ରକାରେ । ହରିର କଥା ଶୁଣି ଧୀରେ ।। ୯୫
ବିଦୁର ମହାଭାଗବତ । ତୋଷ ଲଭିଲେ ନିଜ ଚିତ୍ତ ।। ୯୬
୩୪ ଯେ ଆନ ପୁଣ୍ୟଶ୍ଳୋକ ଜନେ । ଉଦ୍ଦାମକୀର୍ତ୍ତି ସାଧୁମାନେ ।। ୯୭
ଶୁଣିଲେ ଚରିତ ତାଙ୍କର । ହରଷ ହୁଅଇ ମନର ।। ୯୮
କୃଷ୍ଣଚରିତ କର୍ଣ୍ଣେ ଶୁଣି । ତୋଷ ନ ଲଭେ କେବା ପ୍ରାଣୀ ।। ୯୯
୩୫ ଜଳେ ପଶନ୍ତି ଗଜବର । ତାହାକୁ ଧଇଲା କୁମ୍ଭୀର ।।୧୦୦
ହସ୍ତିନୀମାନେ ଚାରିପାଶେ । ରୋଦନ କରନ୍ତେ ଅବଶେ ।।୧୦୧
ଜଳରେ ଥାଇ ସେ ବାରଣ । ଚିନ୍ତିଲା ପଙ୍କଜଚରଣ ।।୧୦୨
ତାହାକୁ ସେ କଷ୍ଟୁଁ ଉଦ୍ଧାର । କଲେ ଯେ ଦେବ ଚକ୍ରଧର ।।୧୦୩
୩୬ ଆନକୁ ନ ଯାଇ ଶରଣ । ଋଜୁ[1] ଚରିତ ମୁନିଗଣ ।।୧୦୪
ଯାହାକୁ ସୁଖେ ଆରାଧନ୍ତି । ଅସାଧୁ ଜନେ ନ ଲଭନ୍ତି ।।୧୦୫
ଏମନ୍ତ ପ୍ରଭୁଙ୍କୁ ସଂସାରେ । କେ ଅବା ଭଜନ ନ କରେ ।।୧୦୬
୩୭ ଶୂକରରୂପ ଧରି ହରି । ଅଛନ୍ତି ଯେଉଁ କ୍ରୀଡ଼ା କରି ।।୧୦୭
ଅତି ଅଦ୍ଭୁତ ହିରଣ୍ୟାକ୍ଷ । ବିନାଶ ଯହିଁରେ ପ୍ରତ୍ୟକ୍ଷ ।।୧୦୮
ସେ କଥା ଯେ ଶୁଣେ ଯେ ଗାଇ । ଯେ ଅବା ଶୁଣି ତୋଷ ହୋଇ ।।୧୦୯
ବିପ୍ରବଧ ହିଁ କରିଥିଲେ । ଦୋଷ ନ ଲାଗେ ତାକୁ ଭଲେ ।।୧୧୦

---

୧. ଋଜୁ = ସରଳ ।

୩୮ ଏ ମହାପୁଣ୍ୟ ହରିକଥା । ପବିତ୍ର, ଧନ୍ୟ, ଯଶଦାତା ॥୧୧୧
ଆୟୁଷ ମଙ୍ଗଳର ସ୍ଥାନ । ପ୍ରାଣ, ଇନ୍ଦ୍ରିୟର ବର୍ଦ୍ଧନ ॥୧୧୨
ଯେ ଏହା କରଇ ଶ୍ରବଣ । ଅନ୍ତେ ତା' ଗତି ନାରାୟଣ ॥୧୧୩
ସେ ହରିଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥୧୧୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ହିରଣ୍ୟାକ୍ଷବଧୋ ନାମ ଏକୋନବିଂଶୋଽଧ୍ୟାୟଃ ॥

## ବିଂଶୋଽଧ୍ୟାୟଃ

ବିଂଶେ ବରାହଜନ୍ମାଦିବ୍ୟବଧାନାଦଥାଦିତଃ ।
ସର୍ଗୋଽନୁସ୍ମାର୍ଯ୍ୟତେ ବକ୍ତୁମନ୍ୱୟଂ ପ୍ରସ୍ତୁତଂ ମନୋଃ ॥

ଶ୍ରୀଶୌନକ ଉବାଚ

୧ ହେ ସୁତ ! ବ୍ରହ୍ମାର କୁମାର । ମନୁ ବିଖ୍ୟାତ ଏ ସଂସାର ॥ ୧
କ୍ଷିତିକି ଲଭି ନିଜ ସ୍ଥାନ । କରିବା ଅର୍ଥେ ପ୍ରଜାମାନ ॥ ୨
କଲା ସେ କେବଣ ଉପାୟ । ସେ କଥା ଆମ୍ଭ ଆଗେ କହ ॥ ୩
୨ ବିଦୁର ଭାଗବତବର । ଏକାନ୍ତ ମିତ୍ର ମୁକୁନ୍ଦର ॥ ୪
ଏ କୃଷ୍ଣଠାରେ ଅପରାଧୀ । ନିଶ୍ଚୟ କରି ଏହି ବୁଦ୍ଧି ॥ ୫
ଜ୍ୟେଷ୍ଠ ଭାଇକି ପୁତ୍ର ମେଳେ । ତ୍ୟାଗ ଯେ କଲା ପୂର୍ବକାଳେ ॥ ୬
୩ ଯେ ଅଟେ ବ୍ୟାସର ନନ୍ଦନ । ଗୁଣେ ତା'ଠାରୁ ନୋହେ ସାନ ॥ ୭
ହରିଙ୍କି ଭଜେ ସର୍ବାତ୍ମାରେ । କିଙ୍କର ସାଧୁଜନଠାରେ ॥ ୮
୪ ସେବାରୁ ତୀର୍ଥମାନଙ୍କର । ନିର୍ମଳ ଅଟେ ତା' ଶରୀର ॥ ୯
ମୈତ୍ରେୟ ବ୍ରହ୍ମଜ୍ଞାନୀ ହୋଇ । ଥିଲେ ଯେ କୁଶାବର୍ତ୍ତେ[୧] ରହି ॥ ୧୦
ତାହାଙ୍କ ଠାବରେ ମିଳିଣ । କି ଅବା କଲେ ପ୍ରଶ୍ନ ଆନ ॥ ୧୧
୫ ସେ ବେନି ଜନ ଏକସ୍ଥାନେ । ସଂବାଦ କରନ୍ତେ ସୁମନେ ॥ ୧୨
ନିର୍ମଳ ବିଷ୍ଣୁକଥାମାନ । ପଡ଼ିଣ ଥିବ ସେହୁ ସ୍ଥାନ ॥ ୧୩
ପାପନାଶନେ ଯେ କୁଶଳ । କି ଜାଣି ଭାଗୀରଥୀଜଳ ॥ ୧୪

---

୧. କୁଶାବର୍ତ୍ତ = ଗଙ୍ଗାଦ୍ୱାର ।

୬ କୀର୍ତ୍ତନଯୋଗ୍ୟ କର୍ମ ଯାର । କଥାମାନଙ୍କୁ ସେ କୃଷ୍ଣର ॥ ୧୫
ପ୍ରକାଶ ଆମ୍ଭର ଆଗର । ରସଜ୍ଞ ହୋଇ କେଉଁ ନର ॥ ୧୬
ପିଅନ୍ତେ ହରିଲୀଳାମୃତ । ତୋଷ କରିବ ଅବା ଚିତ୍ତ ॥ ୧୭

ଶ୍ରୀବ୍ୟାସ-ବାକ୍ୟମ୍

୭ ନୈମିଷବାସୀ ମୁନିଜନ । ଏମନ୍ତେ କରନ୍ତେ ସେ ପ୍ରଶ୍ନ ॥ ୧୮
ସେ ଉଗ୍ରଶ୍ରବା[୧] ନାମେ ସୂତ । କୃଷ୍ଣର ଠାରେ ଦେଇ ଚିତ୍ତ ॥ ୧୯
ଶୁଣ ବୋଲିଣ ଅନୁରାଗେ । ବାକ୍ୟ କହିଲେ ତାଙ୍କ ଆଗେ ॥ ୨୦

ଶ୍ରୀସୂତ ଉବାଚ

୮ ବିଷ୍ଣୁ ଶୂକରରୂପ ଧରି । ଧରଣୀ ପାତାଳୁଁ ଉଦ୍ଧରି ॥ ୨୧
ଅବଜ୍ଞା କରି ହିରଣ୍ୟାକ୍ଷ । ଦୈତ୍ୟକୁ ମାଇଲେ ପ୍ରତ୍ୟକ୍ଷ ॥ ୨୨
ସେ କଥା ଶୁଣି ତୋଷ ହେଲା । ପୁଣି ବିଦୁର ପଚାରିଲା ॥ ୨୩

ଶ୍ରୀବିଦୁର ଉବାଚ

୯ ବିଷ୍ଣୁ ନାଭିରୁ ଅବତାର । ଯେ ପ୍ରଜାପତିଙ୍କ ଈଶ୍ୱର ॥ ୨୪
ପ୍ରଜାପତିଙ୍କି ଜାତ କଲା । ସେ ପୁଣି କିବା ଆରମ୍ଭିଲା ॥ ୨୫
ସେ କଥା ମୋ ଆଗେ ବଖାଣ । ତୁମ୍ଭେ ଅବ୍ୟକ୍ତ ମାର୍ଗ ଜାଣ ॥ ୨୬
୧୦ ମରୀଚିମୁଖ୍ୟ ବିପ୍ରଗଣ । ଯେ ମନୁ ସ୍ୱାୟଂଭୁବ ପୁଣ ॥ ୨୭
ସେମାନେ ବ୍ରହ୍ମାର ଆଜ୍ଞାରେ । ଏ ସୃଷ୍ଟି କଲେ କି ପ୍ରକାରେ ॥ ୨୮
୧୧ ବିବାହ ହୋଇ ଭାର୍ଯ୍ୟାମାନ । ନିର୍ମାଣ କଲେ ଏ ଭୁବନ ॥ ୨୯
ଅଥବା ଭାର୍ଯ୍ୟାଦି ନ ଘେନି । ନିର୍ମାଣ କଲେ ମହାମୁନି ! ॥ ୩୦
ଅଥବା ଏକ ଆରକରେ । ମିଳିଣ ସକଳ କଣିରେ ॥ ୩୧
ନିର୍ମାଣ କଲେ ଏ ଭୁବନ । ଭୋ ମୁନି ! କହ ଏ ବଚନ ॥ ୩୨

ଶ୍ରୀମୈତ୍ରେୟ ଉବାଚ

୧୨ *ଅତର୍କ୍ୟ ଜୀବ-ଅଦୃଷ୍ଟରୁ । ଈଶ୍ୱର, କାଳର ହେତୁରୁ ॥ ୩୩
ବିଷ୍ଣୁ ସକାଶୁଁ ପ୍ରକୃତିର । କ୍ଷୋଭ ହୁଅନ୍ତେ ଦୁର୍ନିବାର ॥ ୩୪
ତା'ଠାରୁ ହୋଇଲା ସଂଭୂତ । ଆଦ୍ୟେ ମହତ ନାମେ ତତ୍ତ୍ୱ ॥ ୩୫

---

୧. ଉଗ୍ରଶ୍ରବା = ରୋମହର୍ଷଣପୁତ୍ର । ସୂତ = ପୁରାଣପ୍ରବକ୍ତା ।

* ବିଷ୍ଣୋସ୍ତୁ ତ୍ରୀଣି ରୂପାଣି ପୁରୁଷାଖ୍ୟାନ୍ୟଥୋ ବିଦୁଃ ।
ପ୍ରଥମଂ ମହତଃ ସ୍ରଷ୍ଟୃ ଦ୍ୱୀତୀୟତ୍ୱଂଣ୍ଡସଂସ୍ଥିତମ୍ ।
ତୃତୀୟଂ ସର୍ବଭୂତସ୍ଥଂ ତାନି ଜ୍ଞାତ୍ୱା ବିମୁଚ୍ୟତେ ॥ ୧ ॥ (ତନ୍ତ୍ରେ)

୧୩ ରଜପ୍ରଧାନ ସେ ମହତ । ଅଟଇ ଦଇବପ୍ରେରିତ ॥ ୩୬
ତା'ଠାରୁ ଅହଂକାର ଜାତ । ତ୍ରିଗୁଣ ଅଟେ ସେ ବିଦିତ ॥ ୩୭
ଆକାଶ ଆଦି ମହାଭୂତ । ପଞ୍ଚ ସେ ଅହଂକାରୁ ଜାତ ॥ ୩୮
ଶବଦ ଆଦି ପଞ୍ଚ ଯେହି । ଯେ ପଞ୍ଚ ଜ୍ଞାନେନ୍ଦ୍ରିୟ ହୋଇ ॥ ୩୯
ପଞ୍ଚ ଇନ୍ଦ୍ରିୟ-ଅଧିପତି । ଏ ଅହଂକାରୁ ଉତପତି ॥ ୪୦
୧୪ ସେ ଏକେ ଏକେ ଏ ଜଗତ । ନିର୍ମାଣେ ହୋଇ ଅଶକତ ॥ ୪୧
ଦୈବେ ସମସ୍ତେ ରୁଣ୍ଡ ହେଲେ । ସୁବର୍ଣ୍ଣ ଅଣ୍ଡ ଜାତ କଲେ ॥ ୪୨
୧୫ ଜଳମଧ୍ୟେ ସେ ଅଣ୍ଡକୋଷ । ଶୋଇଲା ସହସ୍ରେ ବରଷ ॥ ୪୩
ତହିଁ ଉତ୍ତାରୁ ମଧ୍ୟେ ତାର । ପ୍ରବେଶ ହୋଇଲେ ଈଶ୍ୱର ॥ ୪୪
୧୬ ତାର ନାଭିରୁ ପଦ୍ମ ଜାତ । ସହସ୍ରସୂର୍ଯ୍ୟଦୀପ୍ତିମନ୍ତ ॥ ୪୫
ସମସ୍ତ ଜୀବମାନଙ୍କର । ସେ ପଦ୍ମ ଅଟଇ ମନ୍ଦିର ॥ ୪୬
ଯେଉଁ ପଦ୍ମରେ ପ୍ରଜାପତି । ସ୍ୱୟେଂ ହୋଇଲେ ଉତପତି ॥ ୪୭
୧୭ ଯେ ଭଗବାନ ଜଳଶାୟୀ । ତା' ହୃଦେ ପଶନ୍ତେ ସେ ଯାଇଁ ॥ ୪୮
ପୂର୍ବ ସଂସ୍କାରେ ଲୋକମାନ । ସର୍ଜିଲା କମଳ-ଆସନ ॥ ୪୯
୧୮ ଅବିଦ୍ୟାପଞ୍ଚପର୍ବ ପୁଣ । ଛାୟାରେ କଲା ସେ ନିର୍ମାଣ ॥ ୫୦
ତାମିସ୍ର, ମୋହ, ମହତମ । ଅନ୍ଧତାମିସ୍ର, ତମ ନାମ ॥ ୫୧
୧୯ ସେ ସୃଷ୍ଟି ଦେଖି ତମୋମୟ । ଧାତା ଛାଡ଼ିଲା ନିଜ ଦେହ ॥ ୫୨
ସେ ଦେହ ହୋଇଲା ରଜନୀ । ଯହିଁରେ କ୍ଷୁଧା ତୃଷା ବେନି ॥ ୫୩
ଯକ୍ଷରାକ୍ଷସେ ଜାତ ହେଲେ । ସେ ତନୁ[୧] ଅଙ୍ଗୀକାର କଲେ ॥ ୫୪
୨୦ କ୍ଷୁଧାତୃଷାର ବଶ ହେଲେ । ବ୍ରହ୍ମାଙ୍କୁ ଖାଇ[୨] ସେ ଧାଇଁଲେ ॥ ୫୫
କ୍ଷୁଧାତୃଷାରେ ଆମ୍ଭ[୩] ଦେହ । ପୀଡ଼ା କରୁଛି ଅତିଶୟ ॥ ୫୬
କେ ବୋଲେ ଏହାଙ୍କୁ ନ ରଖ । କେ ବୋଲେ ବେଗ କରି ଭକ୍ଷ ॥ ୫୭
୨୧ ବ୍ରହ୍ମା ତାହାଙ୍କୁ ଭୟ କଲେ । ଏମନ୍ତ ବଚନ ବୋଇଲେ ॥ ୫୮
ତୁମ୍ଭେ ସକଳେ ରଖ ମୋତେ । ଭକ୍ଷ ନ କର କଦାଚିତେ ॥ ୫୯
ତୁମ୍ଭେ ମୋହର ପ୍ରଜା ହୁଅ । ଯକ୍ଷରାକ୍ଷସ ନାମ ବହ ॥ ୬୦

---

୧. ଯାସ୍ୟ ତନୁରାସୀତ୍ ତାମପାହରତ୍ ସା ତମିସ୍ରାଭବତ୍ । (ଶ୍ରୁତିଃ)
୨. ଖାଇ = ଖାଇବାକୁ । (ଜଗଧୂମ୍)
୩. ଆର୍ତ୍ତ ।

୨୨ ପ୍ରଧାନେ ଦେବଗଣମାନ । ସର୍ଜିଲେ କମଳ-ଆସନ ।। ୬୧
ନିଜ ପ୍ରଭାକୁ ତ୍ୟାଗ କଲା । ଦିବସରୂପ ସେ ହୋଇଲା ।। ୬୨
ଦେବତାମାନେ ବିହରନ୍ତେ । ତାହାକୁ ଘେନିଲେ ସମସ୍ତେ ।। ୬୩
୨୩ ଅସୁରଗଣକୁ ବିଧାତ । ଜଘନଦେଶୁଁ କଲା ଜାତ ।। ୬୪
ସେମାନେ ଲମ୍ପଟ ଭାବରେ । ମୈଥୁନ କରିବା ଆଶାରେ ।। ୬୫
ସମସ୍ତେ ଏକମେଳ ହେଲେ । ବ୍ରହ୍ମାଙ୍କୁ ଦେଖି ଗୋଡ଼ାଇଲେ ।। ୬୬
୨୪ ନିର୍ଲଜ୍ଜ ଅସୁରସମୂହ । ଧାମନ୍ତେ ହସି ପିତାମହ ।। ୬୭
ମନରେ କ୍ରୋଧ ସେ ବହିଲେ । ଭୟ କରିଣ ପଳାଇଲେ ।। ୬୮
୨୫ ଯେ ହରି ଭକ୍ତଜନଙ୍କର । ଆର୍ତ୍ତିକୁ କରଇ ସଂହାର ।। ୬୯
ଯେ ରୂପେ ବାଞ୍ଛେ ଭକ୍ତଜନ । ସେ ରୂପେ ଦିଅନ୍ତି ଦର୍ଶନ ।। ୭୦
ତାହାଙ୍କୁ ଚିନ୍ତିଣ ଏକାନ୍ତ । ବୋଇଲେ ବଚନ ଏମନ୍ତ ।। ୭୧
୨୬ ଭୋ ନାଥ ! ମୋତେ ରକ୍ଷା କର । ଅବଲୋକନରେ ତୋହର ।। ୭୨
ପ୍ରଜାସର୍ଜନା କଲି ମୁହିଁ । ସେ ମୋତେ ମୈଥୁନର ପାଇଁ ।। ୭୩
ଗୋଡ଼ାଇ ଅଛନ୍ତି ସମସ୍ତେ । ପାପିଷ୍ଠମାନେ ଏକଚିତ୍ତେ ।। ୭୪
୨୭ କ୍ଳେଶ ପାଇଲା ଲୋକଙ୍କର । କ୍ଳେଶନାଶନ ତୁ ଈଶ୍ୱର ।। ୭୫
ଯାହାଙ୍କୁ ଦୂର ତୋର ପାଦ । ତୁ ନାଥ ! ତାଙ୍କର କ୍ଳେଶଦ ।। ୭୬
୨୮ ନିଶ୍ଚୟ କରି ପରମନ । ଜାଣନ୍ତି ଯେଉଁ ଭଗବାନ ।। ୭୭
ବ୍ରହ୍ମାର ଆତଙ୍କ ଶୁଣିଲେ । ସେ ତନୁ ଛାଡ଼ ତୁ ବୋଇଲେ ।। ୭୮
ହରିବଚନେ ପିତାମହ । ତକ୍ଷଣେ ଛାଡ଼ିଲେ ସେ ଦେହ ।। ୭୯
୨୯ ସେ ତନୁ ନାରୀରୂପ ହୋଇ । ଅସୁରଙ୍କର ମନ ମୋହି ।। ୮୦
ଚରଣେ ନୂପୁରର ସ୍ୱନ । ମଦେ ବିହ୍ୱଳିତ ଲୋଚନ ।। ୮୧
କାଞ୍ଚୀଭୂଷଣେ ବିରାଜିତ । ବସନେ କଟି ଆଚ୍ଛାଦିତ ।। ୮୨
୩୦ ଏକ ଆରକେ ଲାଗି ଘଞ୍ଚ । ସ୍ତନଯୁଗଳ ଦିଶେ ଉଚ୍ଚ ।। ୮୩
ସୁନ୍ଦର ନାସା ଦନ୍ତମାନ । ସ୍ୱସ୍ମିତ ଲୀଳାବଲୋକନ ।। ୮୪
୩୧ ବସ୍ତ୍ର-ଅଞ୍ଚଳ ଲଜ୍ଜାଭରେ । ଆଚ୍ଛନ୍ନ କରେ କଳେବରେ ।। ୮୫
ନୀଳ ଅଳକ ମନୋହର । ଅମୂଲ୍ୟ ଅଟେ ରୂପ ତାର ।। ୮୬
ପାଇ ସେ ଯୁବତିରତନ । ମୋହିତ ଅସୁରଙ୍କ ମନ ।। ୮୭

| | | | | |
|---|---|---|---|---|
| ୩୨ | ବୋଲନ୍ତି ଏକୁ ଏକ ଚାହିଁ । | ଏ ରୂପ ଦେଖିଲା ତ ନାହିଁ | ।। | ୮୮ |
| ୩୩ | ଧୈର୍ଯ୍ୟ ଏହାର ନୋହେ ନାଶ । | ଅଦ୍ଭୁତ ନବୀନ ବୟସ | ।। | ୮୯ |
| | ଆମ୍ଭର ଏହାକୁ କାମନା । | ଅକାମା ପ୍ରାୟେ ଏ ଅଙ୍ଗନା | ।। | ୯୦ |
| | ଏମନ୍ତେ ସଂଧ୍ୟାରୂପ ଦେଖି । | ପ୍ରମଦା ପ୍ରାୟ ଉପଲକ୍ଷି | ।। | ୯୧ |
| | ବହୁତ ତର୍କ ତାକୁ କଲେ । | ଅନେକ ଗୌରବ ବିହିଲେ | ।। | ୯୨ |
| | ବିଶ୍ୱାସ କରି ପଚାରନ୍ତି । | ଯେଣୁ ସେ ଅଟନ୍ତି କୁମତି | ।। | ୯୩ |

ଶ୍ରୀଅସୁରା ଊଚୁଃ

| | | | | |
|---|---|---|---|---|
| ୩୪ | ରମ୍ଭାର ପ୍ରାୟେ ଊରୁ ତୋର । | ତୁ କେବା ଦୁହିତା କାହାର | ।। | ୯୪ |
| | ଅମୂଲ୍ୟ ରୂପ ତୋର ବିତ୍ତ । | କିଣିପାରିବ ସେ ଜଗତ | ।। | ୯୫ |
| | ତେଣୁ ବାନ୍ଧୁଛୁ ଆମ୍ଭ ମନ । | ଆମ୍ଭେ ଅଭାଗ୍ୟବନ୍ତ ଜନ | ।। | ୯୬ |
| ୩୫ | ତୁ ଅବା ହୁଅ ଯେହି କେହି । | ଆମ୍ଭେ ତ ଭାଗ୍ୟେ ଦେଖିଲାଇଁ | ।। | ୯୭ |
| | କନ୍ଦୁକକ୍ରୀଡ଼ାରେ ଆମ୍ଭର । | ମନକୁ କରୁଛୁ ଅସ୍ଥିର | ।। | ୯୮ |
| ୩୬ | କନ୍ଦୁକ ପଡ଼ନ୍ତେ ଭୂମିରେ । | ତା' ପୁଣି ଧରି ଫିଙ୍ଗୁ କରେ | ।। | ୯୯ |
| | ପାଦପଙ୍କଜ ସ୍ଥିର ହୋଇ । | ସେ ଘେନି ତୋର ନ ରହଇ | ।। | ୧୦୦ |
| | ଲଭି ବିଶାଳ ସ୍ତନଭାର । | ବିଷାଦ ପାଏ ମଝି[1] ତୋର | ।। | ୧୦୧ |
| | ମଛର ଅଟେ ଦୃଷ୍ଟି ତୋର । | କେଶସମୂହ ମନୋହର | ।। | ୧୦୨ |
| ୩୭ | ଏ ରୂପେ ପ୍ରମଦା ପରାଏ । | ଦିନାନ୍ତ ସଂଧ୍ୟା ଶୋଭା ପାଏ | ।। | ୧୦୩ |
| | ଲୋକଙ୍କୁ କରଇ ମୋହିତ । | ଦେଖି ଅସୁରେ ମୂଢ଼ଚିତ୍ତ | ।। | ୧୦୪ |
| | ଯୁବତିପ୍ରାୟେ ତାକୁ ମଣି । | ଘେନିଲେ ତତ୍ତ୍ୱକୁ ନ ଜାଣି | ।। | ୧୦୫ |
| ୩୮ | ଭାବଗମ୍ଭୀର ସେହୁ ହସି । | ଯେ କାନ୍ତି ଦେହେ ଅଛି ମିଶି | ।। | ୧୦୬ |
| | ତେଣେ ନିର୍ମାଣ କଲେ ପୁଣ । | ଗନ୍ଧର୍ବ ଅପସରାଗଣ | ।। | ୧୦୭ |
| ୩୯ | ଚନ୍ଦ୍ରିକାମୟ କାନ୍ତିଯୁତ । | ସେ ତନୁ ଛାଡ଼ିଲା ବିଧାତ | ।। | ୧୦୮ |
| | ଗନ୍ଧର୍ବମାନେ ତା' ଘେନିଲେ । | ଯେ ବିଶ୍ୱାବସୁ ଆଦି ଥିଲେ | ।। | ୧୦୯ |
| ୪୦ | ଆଳସ୍ୟ ଭାବେ ଭଗବାନ । | କଲେ ପିଶାଚଭୂତମାନ | ।। | ୧୧୦ |
| | ସେମାନେ ଅତି ଭୟଙ୍କର । | ବିମୁକ୍ତକେଶ ଦିଗମ୍ବର | ।। | ୧୧୧ |
| | ତାଙ୍କ ଏସନ ରୂପ ଦେଖି । | ବ୍ରହ୍ମା ବୁଜିଲେ ବେନି ଆଖି | ।। | ୧୧୨ |
| ୪୧ | ଜୃମ୍ଭଣ ନାମେ ସେ ବିଗ୍ରହ । | ତ୍ୟାଗ କରନ୍ତେ ପିତାମହ | ।। | ୧୧୩ |
| | ସେମାନେ ଘେନିଲେ ତା' ଯାଇ । | ଇନ୍ଦ୍ରିୟଗ୍ଲାନି ଯେଣେ ହୋଇ | ।। | ୧୧୪ |

୧. କଟି ।

| | | | |
|---|---|---|---|
| | ନିଦ୍ରା ହୋଇଲା ନାମ ଯାର । | ଦିଶଇ ପ୍ରାଣୀଙ୍କର ଠାର | ॥୧୧୫ |
| | ଯେଉଁ ଇନ୍ଦ୍ରିୟ ଅଦୃଶ୍ୟରେ । | ଶୟନ-କଲା ଲୋକଠାରେ | ॥୧୧୬ |
| | ଭ୍ରମକୁ ଜାତ ସେ କରନ୍ତି । | ତାହାକୁ ଉନ୍ମାଦ ବୋଲନ୍ତି | ॥୧୧୭ |
| ୪୨ | ଆତ୍ମାକୁ ବଳବନ୍ତ ମଣି । | ସେ ଭଗବାନ ପଦ୍ମଯୋନି | ॥୧୧୮ |
| | ଯେ ସାଧ୍ୟ, ପିତୃଗଣମାନ । | ପରୋକ୍ଷେ କଲା ତା' ସର୍ଜନ | ॥୧୧୯ |
| ୪୩ | ସେ ଦେହ କଲା ବିସର୍ଜନ । | ଘେନିଲେ ପିତୃଗଣମାନ | ॥୧୨୦ |
| | ଯେ ସାଧ୍ୟ-ପିତୃଗଣ ଅର୍ଥେ । | ପଣ୍ଡିତେ କରନ୍ତି ଜଗତେ | ॥୧୨୧ |
| | ସେ ହବ୍ୟ[୧] କବ୍ୟ ରୂପ ହୋଇ । | ବ୍ରହ୍ମାର ତନୁ ପ୍ରକାଶଇ | ॥୧୨୨ |
| ୪୪ | ସେ ସିଦ୍ଧ ବିଦ୍ୟାଧରଗଣ । | ସର୍ଜିଲା ଅନ୍ତର୍ଦ୍ଧାନେ ପୁଣ | ॥୧୨୩ |
| | ସେ ତନୁ ନାମ ଅନ୍ତର୍ଦ୍ଧାନ । | କଲା ସେମାନଙ୍କୁ ପ୍ରଦାନ | ॥୧୨୪ |
| ୪୫ | କିନ୍ନର କିଂପୁରୁଷ ବେନି । | ସର୍ଜିଲା ପ୍ରତିବିମ୍ବ ଘେନି | ॥୧୨୫ |
| | ଆତ୍ମାକୁ ଆତ୍ମାରେ ମାନିଲା । | ପ୍ରତିବିମ୍ବକୁ ଦେଖାଇଲା | ॥୧୨୬ |
| ୪୬ | ଧାତା ଛାଡ଼ନ୍ତେ ସେ ଶରୀର । | ସର୍ବ କିଂପୁରୁଷ, କିନ୍ନର | ॥୧୨୭ |
| | ସେ କଳେବରକୁ ଧଇଲେ । | ଯୁବତିମାନଙ୍କର ତୁଲେ | ॥୧୨୮ |
| | ବ୍ରହ୍ମାର ଯେତେ କର୍ମମାନ । | ପ୍ରଭାତେ କରନ୍ତି ଗାୟନ | ॥୧୨୯ |
| ୪୭ | ବିସ୍ତାରବନ୍ତ ଦେହ ଧରି । | ଶୋଇ ବହୁତ ଚିନ୍ତା କରି | ॥୧୩୦ |
| | ବୃଦ୍ଧି ନୁହନ୍ତେ ସର୍ଗ ତାର । | ବ୍ରହ୍ମା ଛାଡ଼ିଲା ସେ ଶରୀର | ॥୧୩୧ |
| ୪୮ | ଯେ କେଶମାନେ ବିଗଳିତ । | ସେ ଅହିରୂପେ ହେଲେ ଜାତ | ॥୧୩୨ |
| | ଚରଣ ଆଦି ଆକୁଞ୍ଚନେ । | ଜାତ ହୋଇଲେ ସର୍ପମାନେ | ॥୧୩୩ |
| | ସମସ୍ତେ ଅଟନ୍ତି ସେ କ୍ରୂର । | ଫଣାରେ ବିସ୍ତାର କନ୍ଧର | ॥୧୩୪ |
| ୪୯ | ଆତ୍ମାକୁ ଯେତେବେଳେ ପୁଣି । | ସେ କୃତକୃତ୍ୟ ପ୍ରାୟେ ମଣି | ॥୧୩୫ |
| | ଲୋକଭାବନ ମନୁମାନ । | ପ୍ରାନ୍ତରେ କଲେ ସେ ସର୍ଜନ | ॥୧୩୬ |
| ୫୦ | ପୁରୁଷାକାର ନିଜ ଦେହ । | ତାହାଙ୍କୁ ଦେଲେ ପିତାମହ | ॥୧୩୭ |
| | ଯେ ପୂର୍ବେ ହୋଇଥିଲେ ଜନ୍ମ । | ମନୁମାନଙ୍କୁ ସେ ଦେଖିଣ | ॥୧୩୮ |
| | ପିତାମହକୁ ପ୍ରଶଂସିଲେ । | ଏମନ୍ତ ବଚନ ବୋଇଲେ | ॥୧୩୯ |
| ୫୧ | ତୁମ୍ଭେ ଏ ଜଗତର ତାତ । | ରଚିଲ ଉତ୍ତମ ସୁକୃତ | ॥୧୪୦ |
| | ଯହିଁ ସକଳ କ୍ରିୟାମାନ । | ଆମ୍ଭେ ଭୁଞ୍ଜିବୁଁ ହବିଅନ୍ନ | ॥୧୪୧ |

୧. ହବ୍ୟ-କବ୍ୟ = ଦେବତା ଓ ପିତୃମାନଙ୍କ ଖାଦ୍ୟ ।

୫୨ ସେ ବ୍ରହ୍ମା ତପସ୍ୟାବିଦ୍ୟାରେ । ସଂଯୁତ ଯୋଗସମାଧିରେ ।।୧୪୨
ଋଷିମାନଙ୍କୁ କଲେ ଜାତ । ସେ ତାଙ୍କ ପ୍ରଜା ଅଭିମତ ।।୧୪୩
୫୩ ଜଣେ ଜଣେକେ ନିଜ ଦେହ । ଅଂଶକୁ ଦେଲେ ପିତାମହ ।।୧୪୪
ସମାଧି, ଯୋଗ, ବିଦ୍ୟା, ତପ । ବିରକ୍ତିମନ୍ତ ଯେଉଁ ରୂପ ।।୧୪୫
ଏମନ୍ତ ଭାଗବତ ବାଣୀ । ମୈତ୍ରେୟ ମୁନି ଆଗେ ଭଣି ।।୧୪୬
ବନେ ପିପ୍‌ପଳ ବୃକ୍ଷମୂଳେ । କୃଷ୍ଣ କହିଲେ ଯିବାବେଳେ ।।୧୪୭
ସେ କଥା ବ୍ୟାସ ସୁତ ଆଗେ । ମୁନି କହିଲେ ଅନୁରାଗେ ।।୧୪୮
ହରିଚରିତ ସୁଧାବାଣୀ । ବ୍ରାହ୍ମଣ ଦୀନବନ୍ଧୁ ଭଣି ।।୧୪୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଜଗତ୍‌ସୃଷ୍ଟିର୍ନାମ ବିଂଶୋଽଧ୍ୟାୟଃ ।।

## ଏକବିଂଶୋଽଧ୍ୟାୟଃ

ଏକବିଂଶେ ତପୋବିଦ୍ୟାତୋଷିତେନ ତୁ ବିଷ୍ଣୁନା ।
କର୍ଦମସ୍ୟ ମନୋଃ ପୁତ୍ର୍ୟା ବିବାହଘଟନୋଚ୍ୟତେ ।।

ଶ୍ରୀବିଦୁର ଉବାଚ

୧ ଯେ ମନୁ ସ୍ୱାୟମ୍ଭୁବ ଜାତ । ତା' ବଂଶ ପରମ ସମ୍ମତ ।। ୧
ଭୋ ମୁନି ! କହ ମୋ ଆଗରେ । ସ୍ତିରୀ-ପୁରୁଷ-ସଂଯୋଗରେ ।। ୨
ବୃଦ୍ଧି ହୋଇଲେ ପ୍ରଜାଗଣ । ଯେଉଁ ବଂଶରେ ପୂର୍ବେ ପୁଣ ।। ୩
୨ ସେ ସ୍ୱାୟମ୍ଭୁବ ମନୁଙ୍କର । ଜନ୍ମିଲେ ଯେ ବେନି କୁମର ।। ୪
ପ୍ରଥମ ଅଟେ ପ୍ରିୟବ୍ରତ । ଉତ୍ତାନପାଦ ଆର ସୁତ ।। ୫
ଧର୍ମେ ସପତଦ୍ୱୀପ ମହୀ । ଯେମନ୍ତେ ପାଳିଲେ ସେ ଦୁଇ ।। ୬
୩ ତାର ଦୁହିତା ଦେବହୂତି । କର୍ଦମ ଅଟେ ତାର ପତି ।। ୭
୪ ଯୋଗଲକ୍ଷଣଯୁତ ଅତି । ଅଟେ ସେ ସାଧ୍ୱୀ ଦେବହୂତି ।। ୮
ସେ ମହାଯୋଗୀ ଗର୍ଭେ ତାର । ସର୍ଜିଲେ କେତେକ କୁମର ।। ୯
ସେ କଥା କହ ମୁନିବର ! । ଶ୍ରବଣେ ଇଚ୍ଛା ଅଛି ମୋର ।। ୧୦

୫ ଯେ ରୁଚି ନାମେ ମୁନିବର ! । ଯେ ଦକ୍ଷ ବ୍ରହ୍ମାର କୁମର ॥ ୧୧
ଆକୂତି ପ୍ରସୂତି ଯେ ବେନି । ମନୁଦୁହିତା ତାଙ୍କୁ ଘେନି ॥ ୧୨
ଯେଉଁ ରୂପରେ ପ୍ରଜାମାନ । ସର୍ଜିଲେ କରି ସେ ବିଧାନ ॥ ୧୩

ଶ୍ରୀମୈତ୍ରେୟ ଉବାଚ

୬ ମୈତ୍ରେୟ ନାମେ ମୁନିବର । କହନ୍ତି ବିଦୁର ଆଗର ॥ ୧୪
ପ୍ରଜାଙ୍କୁ କର ତୁ ସର୍ଜନ । ବ୍ରହ୍ମା ବୋଲନ୍ତେ ଏ ବଚନ ॥ ୧୫
ବ୍ରହ୍ମାର ଆଜ୍ଞା ଘେନି ଶିରେ । କର୍ଦମ ସରସ୍ୱତୀ ତୀରେ ॥ ୧୬
ଦଶସହସ୍ର ସମ୍ବତ୍ସର । ତପ ସାଧିଲା ମୁନିବର ॥ ୧୭
୭ ସମାଧିଯୋଗ କ୍ରିୟାଯୋଗେ । କର୍ଦମ ଅତି ଅନୁରାଗେ ॥ ୧୮
ପ୍ରପନ୍ନବରଦାତା ହରି । ତାଙ୍କୁ ଭଜିଲେ ଦୃଢ଼ କରି ॥ ୧୯
୮ ସତ୍ୟଯୁଗରେ ଭଗବାନ । ତାହାଙ୍କୁ ହୋଇଣ ପ୍ରସନ୍ନ ॥ ୨୦
ଶବଦଗମ୍ୟ ବ୍ରହ୍ମରୂପ । ଧରି ମିଳିଲେ ତା' ସମୀପ ॥ ୨୧
୯ ଅତି ନିର୍ମଳ କଳେବର । ତେଜେ ସମାନ ଦିବାକର ॥ ୨୨
୧୨ ସିତ ଉତ୍ପଳ ପଦ୍ମମାଳ । ଶୋଭା ଦିଶଇ ଉରସ୍ଥଳ ॥ ୨୩
ସ୍ନିଗ୍ଧ ଅସିତ ଚୂର୍ଣ୍ଣକେଶ । ସମୂହେ ଶୋଭା ଭାଲଦେଶ ॥ ୨୪
ନିର୍ମଳ ବସ୍ତ୍ର ପରିଧାନ । କିରୀଟ କୁଣ୍ଡଳେ ଶୋଭନ ॥ ୨୫
ଶଙ୍ଖ, ରଥାଙ୍ଗ, ଗଦାବର । ଶ୍ୱେତ ଉତ୍ପଳ ଶୋହେ କର ॥ ୨୬
ସୁସ୍ମିତ କଟାକ୍ଷପାତରେ । ପ୍ରାଣୀମାନଙ୍କ ମନ ହରେ ॥ ୨୭
ଚରଣସରସିଜ ଦୁଇ । ଗରୁଡ଼କାନ୍ଧେ ଶୋଭା ପାଇ ॥ ୨୮
କମଳା ଶୋହେ ବକ୍ଷସ୍ଥଳ । କୌସ୍ତୁଭରତ୍ନ ଶୋହେ ଗଳ ॥ ୨୯
ଏ ରୂପେ ଆକାଶମଣ୍ଡଳେ । ବିଷ୍ଣୁଙ୍କୁ ଦେଖି ତତକାଳେ ॥ ୩୦
ହରଷ କେ କରିବ ଅନ୍ତ । ଲଭିଲା ନିଜ ମନୋରଥ ॥ ୩୧
ଭୂମିରେ ମସ୍ତକ ଲଗାଇ । ଶୋଇଲା ଦଣ୍ଡପ୍ରାୟେ ହୋଇ ॥ ୩୨
ପ୍ରୀତିରେ ବଶଚିତ୍ତ ହେଲା । କର ଯୋଡ଼ିଣ ସ୍ତୁତି କଲା ॥ ୩୩

ଶ୍ରୀକର୍ଦ୍ଦମ ଉବାଚ

୧୩ *ଭୋ ନାଥ ! ସକଳ ସତ୍ତ୍ୱର । ତୁ ନିଧି ପରମ ଈଶ୍ୱର ॥ ୩୪
ପାଇ ତୋହର ଦରଶନ । ସଫଳ ହେଲା ମୋ ନୟନ ॥ ୩୫

* ତ୍ୱାମୃତେ ପରମାତ୍ମାନଂ ଧିଗନ୍ୟବରକାମୁକଂ ।
ତଥାପି କୃପଣଂ ମାନୁଗୃହାଣ ବରଦାନତଃ ॥ (ସ୍ୱାମିଶ୍ଲୋକଃ)

| | | | |
|---|---|---|---|
| | ଯୋଗମାର୍ଗରେ ସିଦ୍ଧ ହୋଇ । | କ୍ରମେ ଉତ୍ତମ ଜନ୍ମ ପାଇ | ॥ ୩୬ |
| | ତୋହର ଯେଉଁ ଦରଶନ । | ବାଞ୍ଛା କରନ୍ତି ଯୋଗୀଜନ | ॥ ୩୭ |
| ୧୪ | ଚରଣପଦ୍ମ ତୋର ନାଥ । | ସଂସାରସିନ୍ଧୁକୁ ବୋହିତ | ॥ ୩୮ |
| | ନରକେ ପଡ଼ିଥିଲା ଜନ । | ଲଭନ୍ତି ଯେଉଁ କାମମାନ | ॥ ୩୯ |
| | ସେ କାମଲେଶର ନିମିତ୍ତେ । | ଯେ ଅବା ଭଜନ୍ତି[୧] ଜଗତେ | ॥ ୪୦ |
| | ତୋହର ମାୟାରେ ମୋହିତ । | ଅଟଇ ସେମାନଙ୍କ ଚିତ୍ତ | ॥ ୪୧ |
| | ସେମାନଙ୍କର କାମମାନ । | ଭୋ ନାଥ ! କରୁ[୨] ତୁ ପ୍ରଦାନ | ॥ ୪୨ |
| ୧୫ | ଆପଣାସମ ସୁଚରିତ । | ଗୃହକୁ କାମଧେନୁମତ | ॥ ୪୩ |
| | ଏମନ୍ତ ଭାର୍ଯ୍ୟା ବିଭାପାଇଁ । | ତଥାପି ବାଞ୍ଛା ମୁଁ କରଇ | ॥ ୪୪ |
| | ଏଣୁ ମୁଁ ଅଟେ ଦୁରାଶୟ । | ତୁ ନାଥ ! କଳ୍ପଦ୍ରୁମ ପ୍ରାୟ | ॥ ୪୫ |
| | ତୋର ପାଦକୁ ଉପଗତ । | ହେଲି ସେ ଘେନି ରମାକାନ୍ତ | ॥ ୪୬ |
| ୧୬ | ବ୍ରହ୍ମସ୍ୱରୂପୀ ତୁମ୍ଭେ ନାଥ । | ତୁମ୍ଭ ବଚନ ରଜ୍ଜୁମତ | ॥ ୪୭ |
| | ତେଣେ ଏ କାମହତ ଜନ । | ସକଳ ହୋଇଛି ବନ୍ଧନ | ॥ ୪୮ |
| | ଯେ ତୁମ୍ଭେ କାଳରୂପଧର । | ବିଶୁଦ୍ଧ-ସତ୍ତ୍ୱ କଳେବର | ॥ ୪୯ |
| | ଲୋକଙ୍କ ଅନୁଗତ ହୋଇ । | ତୁମ୍ଭଙ୍କୁ ସେବା କରିବଇଁ | ॥ ୫୦ |
| | ସେ ଘେନି ଭାର୍ଯ୍ୟା ଇଚ୍ଛା ମୋର । | କହିଲି ତୁମ୍ଭର ଛାମୁର | ॥ ୫୧ |
| ୧୭ | ସକାମ ଯେଉଁ ଲୋକମାନେ । | ତାଙ୍କୁ ଯେ ଅନୁଗତ ଆନେ | ॥ ୫୨ |
| | ସେମାନେ ପଶୁଙ୍କ ସମାନ । | ତାହାଙ୍କୁ ଛାଡ଼ି ଯେଉଁଜନ | ॥ ୫୩ |
| | ତୁମ୍ଭ ଚରଣଛତ୍ରଛାଇ । | ଆଶ୍ରେ କରନ୍ତି ସୁଖ ପାଇ | ॥ ୫୪ |
| | ତୁମ୍ଭର ଗୁଣାନୁକଥନ । | ଅଟଇ ମଦିରାସମାନ | ॥ ୫୫ |
| | ଯେଣୁ ସଂସାର ପାସୋରାଇ । | ଅମୃତପ୍ରାୟ ରୁଚ୍ୟ ହୋଇ | ॥ ୫୬ |
| | ତେଣେ ଯେ କରେ ବିନାଶନ । | କ୍ଷୁଧା ପିପାସା ଆଦିମାନ | ॥ ୫୭ |
| ୧୮ | ହେ ପ୍ରଭୁ ! ଓଟାରି ଜଗତ । | ଧାଉଁ ଯେ ଅଛି ଅବିରତ | ॥ ୫୮ |
| | ସେ କାଳଚକ୍ରହିଁ ତୁମ୍ଭର । | ଆୟୁଷ ଘେନି ଏହାଙ୍କର | ॥ ୫୯ |
| | ଧାଇଁମାକୁ ସମର୍ଥ ନୋହି । | ସେ ଚକ୍ର କେମନ୍ତ ଅଟଇ | ॥ ୬୦ |
| | ବ୍ରହ୍ମ ଅଟଇ ଅକ୍ଷମତ । | ତହିଁ ଯେ ଭ୍ରମୁଛି ସଂତତ | ॥ ୬୧ |
| | ଅଧିମାସ[୩]କୁ ମିଶି ତେର । | ମାସ ଅଟନ୍ତି ଯାକ ଅର | ॥ ୬୨ |

୧. ପୂଜନ୍ତି । ୨. କର । ୩. ମଳମାସ ।

ଯାହାର ପର୍ବ ତିନି ଶତ । ଷାଠି ଅଧିକ ଅହୋରାତ୍ର ॥ ୬୩
ଋତୁଷଟକ ନେମିପ୍ରାୟେ । ଯହିଁରେ ଗତାଗତ ହୋଏ ॥ ୬୪
ଯହିଁ ଅନନ୍ତ ଲବ କ୍ଷଣ । ନିମେଷ ଆଦି କାଳମାନ ॥ ୬୫
ପତ୍ର ପ୍ରକାରେ ସୂକ୍ଷ୍ମ ହୋଇ । ଧାରାରୂପରେ ଛନ୍ତି ରହି ॥ ୬୬
ଯହିଁରେ ତିନି ଚାତୁର୍ମାସ । ନାଭିରୂପରେ ପରକାଶ ॥ ୬୭
ଅଟଇ ଅତି ବେଗବନ୍ତ । ସେ ସମ୍ବତ୍ସରରୂପେ ଖ୍ୟାତ ॥ ୬୮
୧୯ ଯେ ତୁମ୍ଭେ ଥାଅ ଏକ ହୋଇ । ଜଗତ ସର୍ଜିବାର ପାଇଁ ॥ ୬୯
ଆତ୍ମାରୁ ମାୟା କର ଜାତ । ଦ୍ୱିତୀୟ ହୋଇ ସେ ବିଦିତ ॥ ୭୦
ତେଣେ ସତ୍ତ୍ୱାଦି ରୂପ ଧର । ସର୍ଜନା ଆଦି ଲୀଳା କର ॥ ୭୧
ଯେସନେ ଊର୍ଣ୍ଣନାଭି ଥାଇ । ଆତ୍ମାରୁ ସୃଷ୍ଟି ଏ ଭିଆଇ ॥ ୭୨
୨୦ ଶବ୍ଦକୁ ଆଦି ହୋଇ ଯେତେ । ବିଷୟସୁଖ ଏ ଜଗତେ ॥ ୭୩
ମାୟାରେ ଆମ୍ଭମାନଙ୍କର । ନିମିତ୍ତେ କରୁଛ ବିସ୍ତାର ॥ ୭୪
ତୋହର ବାଞ୍ଛିତ ସେ ନୋହେ । ହେଉ ଆମ୍ଭଙ୍କୁ ଅନୁଗ୍ରହେ ॥ ୭୫
ଲକ୍ଷିତ ତୁଳସୀମାଳାରେ । ତୋ' ରୂପ ଦିଶୁଛି ମାୟାରେ ॥ ୭୬
୨୧ ଆପଣା ଜ୍ଞାନକୁ ପ୍ରକାଶି । କର୍ମଫଳକୁ ଅଛ ନାଶି ॥ ୭୭
ଆପଣା ମାୟାରେ ନିର୍ମିତ । କରିଛ ସଂସାରଚରିତ ॥ ୭୮
ପ୍ରାଣୀ କରନ୍ତି ନମସ୍କାର । ଚରଣପଦ୍ମକୁ ତୁମ୍ଭର ॥ ୭୯
ଅଳ୍ପ ଭଜନ କଲେ ଜନ । ତୁମ୍ଭେ ବରଷ କାମମାନ ॥ ୮୦
ଏଣୁ ତୁମ୍ଭଙ୍କୁ ନମସ୍କାର । କରୁଅଛି ମୁଁ ନିରନ୍ତର ॥ ୮୧

ଶ୍ରୀମୈତ୍ରେୟ ଉବାଚ

୨୨ ଏ ରୂପେ ନିଷ୍କପଟ ଚିତ୍ତେ । କର୍ଦ୍ଦମ ସ୍ତୁତିକି କରନ୍ତେ ॥ ୮୨
ଗରୁଡ଼ପକ୍ଷ ପରେ ଥାଇ । ପ୍ରେମକଟାକ୍ଷେ ହସି ଚାହିଁ ॥ ୮୩
ଅମୃତସମାନ ବଚନ । କହିଲେ ତାକୁ ଭଗବାନ ॥ ୮୪

ଶ୍ରୀଭଗବାନୁବାଚ

୨୩ ପୂର୍ବେ ମୁଁ ଜାଣି ତୋର ଚିତ୍ତ । କଲି ଏଥିରେ ନିଯୋଜିତ ॥ ୮୫
ତୁ ମୋତେ ଯେଉଁ ନିମିତ୍ତରେ । ପୂଜିଲୁ ବ୍ରତନିୟମରେ ॥ ୮୬
୨୪ ମୋହର ଠାରେ ଦେଇ ମନ । ଯେ ମୋତେ କରନ୍ତି ପୂଜନ ॥ ୮୭
କେବେହେଁ ବିଫଳ ସେ ନୋହି । ଯେ ପୁଣି ତୁମ୍ଭ ପରା ହୋଇ ॥ ୮୮
ପୂଜା କରଇ ଦୃଢ଼ ଚିତ୍ତେ । ବ୍ୟର୍ଥ ହୋଇବ ସେ କେମନ୍ତେ ॥ ୮୯

୨୫ ଯେ ମନୁ ବ୍ରହ୍ମାର କୁମର । ମଙ୍ଗଳ ଖ୍ୟାତ ଅଟେ ଯାର ॥ ୯୦
ଯେ ବ୍ରହ୍ମାବର୍ତ୍ତ ଦେଶେ ଥାଇ । ପାଳଇ ସପ୍ତସିନ୍ଧୁ ମହୀ ॥ ୯୧
୨୬ ତାର ମହିଷୀ ଅନୁପମ । ଅଟଇ ଶତରୂପା ନାମ ॥ ୯୨
ସେ[୧] ପରଦିନ ତା'[୨] ସଙ୍ଗତେ । ଆସିବ ଦେଖିବାକୁ ତୋତେ ॥ ୯୩
୨୭ ନବବୟସୀ ସୁଚରିତା । ଗୁଣରେ ଅଟଇ ସଂଯୁତା ॥ ୯୪
୨୯ ଅସିତ ଅଟେ ନେତ୍ରକାନ୍ତି । ବାଞ୍ଛଇ ନିଜ ମନେ ପତି ॥ ୯୫
ଏମନ୍ତ ଦୁହିତା ତାହାର । ତୁ ତାକୁ ଅନୁରୂପ ବର ॥ ୯୬
ଆପଣା ଇଚ୍ଛାରେ ପ୍ରଦାନ । କରିବ ତୋତେ ସେ ରାଜନ ॥ ୯୭
ଏତେ ବରଷ ମନ ତୋର । ନିମଗ୍ନ ଯେଉଁ ଭାର୍ଯ୍ୟାଠାର ॥ ୯୮
ସେ ମନୁକନ୍ୟା ଶୀଘ୍ର ତୋତେ । ସେବା କରିବ ଇଚ୍ଛାମତେ ॥ ୯୯
ତୋ ବୀର୍ଯ୍ୟ ଗର୍ଭେ ସେ ଧରିବ । ନବ ଦୁହିତା ପ୍ରସବିବ ॥୧୦୦
ଋଷିଏ ସେ କନ୍ୟାଙ୍କ ଠାର । ବିହିବେ ତନୁଜ ଅପାର ॥୧୦୧
୩୦ ତୁ ପୁଣି ଶୁଦ୍ଧସତ୍ତ୍ୱ ହୋଇ । ମୋହର ନିଦେଶରେ ଥାଇ ॥୧୦୨
ମୋ'ଠାରେ ବର୍ମଫଳମାନ । ସମର୍ପି ହୋଇବୁ ପ୍ରପନ୍ନ ॥୧୦୩
୩୧ ସକଳ ଭୂତେ ଦୟା କରି । ପ୍ରାଣୀଙ୍କ ଭୟ ଅପହରି ॥୧୦୪
ମୋ'ଠାରେ ଦେଖିବୁ ଜଗତ । ଆତ୍ମାକୁ କରି ଏକମତ ॥୧୦୫
ସେହି ଆତ୍ମାରେ ପୁଣ ମୋତେ । ଦେଖିବୁ ଭାବିଣ ସଂତତେ ॥୧୦୬
୩୨ ଅଂଶକଳାରେ ମୁଁ ତୋହର । ବୀର୍ଯ୍ୟରେ ଲଭି ଅବତାର ॥୧୦୭
ତୋହର ଭାର୍ଯ୍ୟା ଦେବହୂତି । ତା ଗର୍ଭୁଁ ଲଭି ଉତପତି ॥୧୦୮
ସାଂଖ୍ୟଯୋଗକୁ ଏ ସଂସାରେ । ପ୍ରକାଶ କରିବି ନିର୍ଭରେ ॥୧୦୯

ଶ୍ରୀମୈତ୍ରେୟ ଉବାଚ

୩୩ ମୁନିଙ୍କି କହି ଏ ବଚନ । ସମାଧିଗମ୍ୟ ଭଗବାନ ॥୧୧୦
ଯେ ସରସ୍ୱତୀରେ ବେଷ୍ଟିତ । ଅଟଇ ବିନ୍ଦୁସରତୀର୍ଥ ॥୧୧୧
ସେଠାରୁ ଗଲେ ଦୂର ହୋଇ । କର୍ଦ୍ଦମ ଋଷି ଛନ୍ତି ଚାହିଁ ॥୧୧୨
୩୪ ଯା' ସିଦ୍ଧ ମାର୍ଗକୁ ସଂସାରେ । ସିଦ୍ଧ-ସମୂହ ସ୍ତୁତି କରେ ॥୧୧୩
ଗରୁଡ଼ପକ୍ଷ ଚଳିବାରେ । ଯେ ସାମବେଦ ଉଚ୍ଚେ ସ୍ୱରେ ॥୧୧୪
ସେ କଥା କରନ୍ତେ ଶ୍ରବଣ । ଗମନ କଲେ ନାରାୟଣ ॥୧୧୫

---

୧. ମନୁ । ୨. ତା = ଶତରୂପାର ।

୩୫ ଗମନ କରନ୍ତେ ଈଶ୍ୱର । କର୍ଦ୍ଦମ ନାମ ମୁନିବର ॥୧୧୬
ମନୁ ଆସିବା କାଳ ଚାହିଁ । ରହିଲେ ବିନ୍ଦୁସରଠାଇଁ ॥୧୧୭
୩୬ ଏମନ୍ତ ଶୁଣ ହୋ ବିଦୁର । ମନୁ ଯେ ବ୍ରହ୍ମାର କୁମର ॥୧୧୮
ସୁବର୍ଣ୍ଣବିଭୂଷିତ ରଥେ । ଆରୋହୀ ଭାର୍ଯ୍ୟାର ସମେତେ ॥୧୧୯
ସଙ୍ଗତେ ଘେନି ଦେବହୂତି । ଭୂମି ପର୍ଯ୍ୟଟନ କରନ୍ତି ॥୧୨୦
୩୭ ଯେବଣ ଦିନ ଆଜ୍ଞା ଦେଇ । ଅଛନ୍ତି ପ୍ରଭୁ ଭାବଗ୍ରାହୀ ॥୧୨୧
ପ୍ରବେଶ ହୋଇଲେ ମୁନିର । ଆଶ୍ରମପଦେ ସେ ଦିନର ॥୧୨୨
୩୮ କର୍ଦ୍ଦମଠାରେ ଭଗବାନ । କରନ୍ତେ କୃପାବଲୋକନ ॥୧୨୩
ନେତ୍ରୁଁ ଆନନ୍ଦଜଳ ବହି । ପଡ଼ନ୍ତେ ବିନ୍ଦୁମାନେ ଯହିଁ ॥୧୨୪
୩୯ ସେ ବିନ୍ଦୁସର ନାମେ ସିଦ୍ଧି । ବେଢ଼ିଛି ସରସ୍ୱତୀ ନଦୀ ॥୧୨୫
ପୁଣ୍ୟ ଆରୋଗ୍ୟ[୧] ସ୍ୱାଦୁ ଜଳ । ଅଛନ୍ତି ଯହିଁ ଋଷିକୁଳ ॥୧୨୬
୪୦ ପୁଣ୍ୟ ହରିଣ ଖଗମାନ । ଯହିଁରେ କରନ୍ତି ନିସ୍ୱନ ॥୧୨୭
ଏମନ୍ତ ଦ୍ରୁମଲତାଜାଳ । ବେଷ୍ଟିତ ଅଟେ ଯାର କୂଳ ॥୧୨୮
ସର୍ବ ଋତୁରେ ଦ୍ରୁମମାନ । ଫଳପୁଷ୍ପରେ ଶୋଭାବନ ॥୧୨୯
୪୧ ବନସମୂହେ ଶୋଭା ପାଇ । ମତ୍ତ ବିହଗେ ଛନ୍ତି ଯହିଁ ॥୧୩୦
ଧ୍ୱନି କରନ୍ତି ମତ୍ତ ଭୃଙ୍ଗେ । ମତ୍ତ ମୟୂରେ ନାଚେ ରଙ୍ଗେ ॥୧୩୧
ମତ୍ତ କୋକିଳମାନେ ଯହିଁ । ଶବଦ କରୁଛନ୍ତି ରହି ॥୧୩୨
୪୨ କଦମ୍ବ, ପନସ, ଚମ୍ପକ, । କରଞ୍ଜ, ଅସନ, ଅଶୋକ ॥୧୩୩
କୁନ୍ଦ, ମନ୍ଦାର, ଚୂତଦ୍ରୁମ । କୁଟଜେ ବିଶେ ମନୋରମ ॥୧୩୪
୪୩ ଯେ କାରଣ୍ଡବ, ପ୍ଲବ, ହଂସ । କୁରର, ଚକୋର, ସାରସ ॥୧୩୫
ଜଳକୁକ୍କୁଟ, ଚକ୍ରସ୍ୱନ[୨] । ତେଣେ ଯେ ଅଟଇ ଶୋଭନ ॥୧୩୬
୪୪ ହରିଣ, କୁଞ୍ଜର, ବରାହ । ଗୋପୁଚ୍ଛ, ଶଲ୍ଲକ, ଗବୟ ॥୧୩୭
ଯେ ହରି, ମର୍କଟ, ନକୁଳ । ମୃଗନାଭିରେ ସମାକୁଳ ॥୧୩୮
୪୫ ସେ ତୀର୍ଥେ ମିଳି ଆଦିରାଜା[୩] । ସୈନ୍ୟସହିତେ ମହାତେଜା ॥୧୩୯
ଦେଖିଲେ ଅଛନ୍ତି କର୍ଦ୍ଦମ । ଅନଳେ ସାରି ନିତ୍ୟ ହୋମ ॥୧୪୦
୪୬ ସ୍ୱଭାବେ ଘୋର ତପତେଜେ । ସୁନ୍ଦର ଶରୀର ବିରାଜେ ॥୧୪୧
ସ୍ନିଗ୍ଧ ଅପାଙ୍ଗେ ଭଗବାନ । କରିଅଛନ୍ତି ବିଲୋକନ ॥୧୪୨

---

୧. ଅରୋଗ । ୨. ଚକ୍ରବାକର ଧ୍ୱନି । ୩. ଆଦିରାଜା = ସ୍ୱାୟଂଭୁବ ମନୁ ।

| | | | | |
|---|---|---|---|---|
| | ବିଷ୍ଣୁର ବଚନ ଅମୃତ | । | ହୋଇଣ ଅଛି କର୍ଣ୍ଣଗତ | ।।୧୪୩ |
| | ଏ ଘେନି ଅତିକୃଶ ତାର | । | ହୋଇଣ ନାହିଁ କଳେବର | ।।୧୪୪ |
| ୪୭ | ଉଚ୍ଚ ଅଟଇ ତାଙ୍କ କାୟେ | । | ସୁନ୍ଦର ଜଟା ଶିରେ ଶୋହେ | ।।୧୪୫ |
| | ଲୋଚନ ପଦ୍ମପତ୍ର ପ୍ରାୟେ | । | କୌପୀନ କଟିଦେଶେ ବହେ | ।।୧୪୬ |
| | ମଳିନ ହୋଇଛି ଶରୀର | । | ଦିଶୁଣ ନାହିଁ ସେ ସଂସ୍କାର | ।।୧୪୭ |
| | ନିକଟେ ମିଳି ନରପତି | । | ଦେଖିଲେ ଏମନ୍ତ ମୂରତି | ।।୧୪୮ |
| ୪୮ | ପର୍ଣ୍ଣଶାଳାରେ ନୃପମଣି | । | ମିଳନ୍ତେ ଯୋଡ଼ି ବେନି ପାଣି | ।।୧୪୯ |
| | ଦେଇ ଉଚିତ ଉପଚାର | । | ଆନନ୍ଦ ହୋଇ ମୁନିବର | ।।୧୫୦ |
| | ତାହାଙ୍କୁ କରି ଦିବ୍ୟ ପୂଜା | । | ବଶ କଲେ ସେ ମହାତେଜା | ।।୧୫୧ |
| ୪୯ | ସ୍ୱୀକାର କରି ସେ ପୂଜନ | । | ସଂଯତେ ବସନ୍ତେ ରାଜନ | ।।୧୫୨ |
| ୫୦ | ବିଷ୍ଣୁ-ଆଦେଶ ମନେ ଗୁଣି | । | ସଂତୋଷ ଚିତ୍ତରେ ସେ ମୁନି | ।।୧୫୩ |
| | ଚାହିଁଣ ରାଜାର ବଦନ | । | କହନ୍ତି ଅମୃତ ବଚନ | ।।୧୫୪ |
| | ତୁମ୍ଭ ଭ୍ରମଣ ଏ ଜଗତେ | । | ସାଧୁଜନଙ୍କ ରକ୍ଷା ଅର୍ଥେ | ।।୧୫୫ |
| | ଅସାଧୁଜନ ନାଶପାଇଁ | । | ବିଷ୍ଣୁ-ପାଳନା ଶକ୍ତି ତୁହି | ।।୧୫୬ |
| ୫୧ | ଯେ ଅର୍କ, ଇନ୍ଦୁ, ଅଗ୍ନି, ବାତ | । | କୃତାନ୍ତ, ଧର୍ମ, ଜଳନାଥ | ।।୧୫୭ |
| | ଏହାଙ୍କ ରୂପକୁ ପାଳନେ | । | ଧରିଣ ଭ୍ରମଇ ଭୁବନେ | ।।୧୫୮ |
| | ସେ ଶୁଦ୍ଧମୂର୍ତ୍ତି ଚକ୍ରଧର | । | ତୁ ଅଟୁ, ତୋତେ ନମସ୍କାର | ।।୧୫୯ |
| ୫୨ | ଯଦ୍ୟପି ଧର୍ମରକ୍ଷା ପାଇଁ | । | ତୁମ୍ଭେ ବୁଲନ୍ତେ ସବୁଠାଇଁ | ।।୧୬୦ |
| | ଏଠାକୁ ତୁମ୍ଭ ଆଗମନ | । | ସମ୍ଭବ ଅଟେ ହେ ରାଜନ ! | ।।୧୬୧ |
| | ତଥାପି ବିଶେଷ କାର୍ଯ୍ୟରେ | । | ଆସିଛ ଯେବେ କହ ବାରେ | ।।୧୬୨ |
| | ମଣିଗଣରେ ବିଭୂଷିତ | । | ଜୟ କରଇ ଯେ ସଂତତ | ।।୧୬୩ |
| | ଏମନ୍ତ ରଥକୁ ଆରୋହି | । | ଚଣ୍ଡ କୋଦଣ୍ଡ କରେ ବହି | ।।୧୬୪ |
| | ଅସାଧୁ ଜନଙ୍କର ଚିତ୍ତେ | । | ଭୟକୁ ଜନ୍ମାଇ ସେ ରଥେ | ।।୧୬୫ |
| ୫୩ | ଆପଣା ସୈନ୍ୟପାଦଘାତ | । | ଲାଗି ଯେ ହୋଇଛି ଖଣ୍ଡିତ | ।।୧୬୬ |
| | ସେ ମହୀମଣ୍ଡଳ କମ୍ପାଇ | । | ବିପୁଳ ସୈନ୍ୟକୁ ଘେନାଇଁ | ।।୧୬୭ |
| | ସୂର୍ଯ୍ୟର ପ୍ରାୟ ତେଜ ବହି | । | ଯେବେ ତୁ ନ ବୁଲିବୁ ମହୀ | ।।୧୬୮ |
| ୫୪ | ତେବେ ଏ ଧର୍ମସେତୁମାନ | । | ବର୍ଣ୍ଣ-ଆଶ୍ରମ-ନିବନ୍ଧନ | ।।୧୬୯ |
| | ଯାହା ରଚିଛି[୧] ଭଗବାନ | । | ତାହା ନାଶିବେ ଦୁଷ୍ଟଜନ | ।।୧୭୦ |

୧. ରଞ୍ଚିଛି ।

୫୫ ଲୋକେ ଅଟନ୍ତି ନିରଙ୍କୁଶ । ସ୍ୱଭାବେ ବିଷୟେ ଲାଳସ ।।୧୭୧
ତେଣୁ ଅଧମ ପ୍ରବର୍ତ୍ତିବ । ତୁମ୍ଭେ ନିଶ୍ଚଳେ ଯେବେ ଥିବ ।।୧୭୨
ଏ ଲୋକ ଦସ୍ୟୁଗ୍ରସ୍ତ ହେବ । ତେବେ ନିଶ୍ଚୟେ ନାଶ ଯିବ ।।୧୭୩
୫୬ ଏବେ ମୁଁ ପଚାରଇ ବୀର ! । ଯଦର୍ଥେ ଆଗମନ ତୋର ।।୧୭୪
ସେ କଥା ନିଷ୍କପଟ ହୋଇ । ଆମ୍ଭେ ସ୍ୱୀକାର କରୁଥାଇଁ ।।୧୭୫
ଏମନ୍ତ କହି ରାଜା ଆଗେ । କର୍ଦ୍ଦମ ଅତି ଅନୁରାଗେ ।।୧୭୬
ବିଷ୍ଣୁ ବଚନ ସୁମରିଲେ । ଅଧିକ ପ୍ରିୟଭାବ କଲେ ।।୧୭୭
ସେ ମୁନି ଚରଣ ପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ।।୧୭୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀମନୁକର୍ଦ୍ଦମସଂବାଦୋ
ନାମ ଏକବିଂଶୋଽଧ୍ୟାୟଃ ।।

## ଦ୍ୱାବିଂଶୋଧ୍ୟାୟଃ

ଦ୍ୱାବିଂଶେ କର୍ଦ୍ଦମାୟାଦାଦ୍ ଯଥାଦିଷ୍ଟଂ ହି ବିଷ୍ଣୁନା ।
ମନୁର୍ଦୁହିତରଂ ଦେବହୂତିମିତ୍ୟନୁବର୍ଣ୍ଣ୍ୟତେ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ ଏମନ୍ତେ ରାଜାଗୁଣକର୍ମ । ପ୍ରକାଶ କରନ୍ତେ କର୍ଦ୍ଦମ ।। ୧
ରାଜା ସଲଜ୍ଜ ପ୍ରାୟେ ହେଲେ । ମୁନିଙ୍କି ବଚନ କହିଲେ ।। ୨

ଶ୍ରୀମନୁରୁବାଚ

୨ ବେଦସ୍ୱରୂପୀ ପ୍ରଜାପତି । ଜାଣିମା ଅର୍ଥେ ନିଜ ଗତି ।। ୩
ତପସ୍ୟା-ବିଦ୍ୟା-ଯୋଗରତ । ବିଷୟମାର୍ଗରେ ବିରତ ।। ୪
ଯେ ତୁମ୍ଭେ ବ୍ରାହ୍ମଣେ ଏମନ୍ତ । ତୁମ୍ଭଙ୍କୁ ମୁଖୁଁ କଲା ଜାତ ।। ୫
୩ ଯେ ବ୍ରହ୍ମା ସହସ୍ରଚରଣ । ଧରେ ସହସ୍ର ଭୁଜଗଣ ।। ୬
ସେ ବିପ୍ରଙ୍କର ରକ୍ଷାଅର୍ଥ । ଆମ୍ଭଙ୍କୁ ଭୁଜୁ କଲା ଜାତ ।। ୭
ବ୍ରାହ୍ମଣ ଜାତି ହୃଦ ତାର । କ୍ଷତ୍ରିୟ ଅଟଇ ଶରୀର ।। ୮

୪ ଏ ଘେନି ବିପ୍ର କ୍ଷତ୍ର ଦୁଇ । ଆତ୍ମାକୁ ଅନ୍ୟୋନ୍ୟେ ରଖଇ ॥ ୯
ଯେ ଦେବ ଅବ୍ୟୟ ଅଟଇ । ସତ-ଅସତ-ଆତ୍ମା[୧] ହୋଇ ॥ ୧୦
ସେ ପୁଣି ବିପ୍ର-କ୍ଷତ୍ର ବେନି । ରକ୍ଷା କରଇ ଭାବ ଘେନି ॥ ୧୧
୫ ତୁମ୍ଭର ଦରଶନୁଁ ମୋର । ସର୍ବ ସଂଶୟ ଗଲା ଦୂର ॥ ୧୨
ଯେ ତୁମ୍ଭେ ସ୍ୱୟେଂ ପ୍ରୀତି ବହି । ରକ୍ଷା କରିବା ଧର୍ମ କହି ॥ ୧୩
୬ ଭାଗ୍ୟେ ମୁଁ ଦେଖିଲି ତୁମ୍ଭଙ୍କୁ । ଅଜ୍ଞାନୀ ନ ଦେଖେ ଯାହାକୁ ॥ ୧୪
ଭାଗ୍ୟେ ତୁମ୍ଭର ପାଦଧୂଳି । ନିଜ ଶିରରେ ହେଲି ବୋଳି ॥ ୧୫
୭ ଭାଗ୍ୟରେ ମୋତେ ଶିକ୍ଷା ଦେଲ । ସେ ଘେନି ଅନୁଗ୍ରହ କଲ ॥ ୧୬
ଭାଗ୍ୟେ ତୁମ୍ଭର ବାକ୍ୟସାର । ପଶିଲା କର୍ଣ୍ଣରନ୍ଧ୍ରେ ମୋର ॥ ୧୭
୮ ଦୁହିତା ସ୍ନେହେ ଆତ୍ମା ମୋର । ଲଭୁଛି କ୍ଲେଶ ନିରନ୍ତର ॥ ୧୮
ଏଣୁ ମୁଁ ତୁମ୍ଭ ସନ୍ନିଧାନ । ଯାହା କହୁଛି ହୋଇ ଦୀନ ॥ ୧୯
ସେ କଥା ଶୁଣି ମୁନିବର । ମୋହର ଠାରେ କୃପା କର ॥ ୨୦
୯ ଉତ୍ତାନପାଦ, ପ୍ରିୟବ୍ରତ । ଅଟନ୍ତି ମୋର ବେନି ସୁତ ॥ ୨୧
ସେ ବେନି ଜନଙ୍କ ଭଗିନୀ । ଅଟଇ ଏ ମୋର ନନ୍ଦିନୀ ॥ ୨୨
ବୟସ, ଶୀଳ, ଗୁଣେ ଯୁତ । ପତିକି କରୁଛି ବାଞ୍ଛିତ ॥ ୨୩
୧୦ ତୁମ୍ଭ ଚରିତ, ରୂପ, ଗୁଣ । ଶାସ୍ତ୍ର, ବୟସ, ଯେବା ପୁଣ ॥ ୨୪
ନାରଦଠାରୁ ତା' ଶୁଣିଲା । ନିଶ୍ଚୟ ତୁମ୍ଭଠାରେ କଲା ॥ ୨୫
୧୧ ମୁହିଁ ଏହାକୁ ଶ୍ରଦ୍ଧାଚିତ୍ତେ । ଘେନି ମିଳିଲି ତୋ' ଅଗ୍ରତେ ॥ ୨୬
ସେ ଘେନି ତୁମ୍ଭେ ଦ୍ୱିଜବର । ଏହାକୁ ଅନୁଗ୍ରହ କର ॥ ୨୭
ଏ ଗୃହମେଧୀ କର୍ମ ଯେତେ । ତହିଁକି ଅନୁରୂପ ତୋତେ ॥ ୨୮
୧୨ ଯେ କାମ[୨] ଦଇବବଶରେ । ମିଳଇ ତାହାର ଇଚ୍ଛାରେ ॥ ୨୯
ସଙ୍ଗ[୩] ରହିତ ଲୋକର ହିଁ । ତାହା ଛାଡ଼ିବା ନ ଯୋଗାଇ ॥ ୩୦
ଯେ କାମଯୁତ ହୋଇଥିବ । ସେ ଅବା କିମ୍ପାଇଁ ଛାଡ଼ିବ ॥ ୩୧
୧୩ ମିଳିବା ଅର୍ଥ ଯେ ଛାଡ଼ଇ । କୃପଣ ଲୋକକୁ ମାଗଇ ॥ ୩୨
ତାହାର ଯଶ କ୍ଷୀଣ ହୋଇ । ମାନ ହିଁ ଅବଜ୍ଞାରେ ଯାଇ ॥ ୩୩
୧୪ ତୁମ୍ଭର ଯତ୍ନ ବିଭାପାଇଁ । ଏମନ୍ତ ଶୁଣିଲଇଁ ମୁହିଁ ॥ ୩୪
ଏ ଘେନି ଦେଲି ମୋର ସୁତା । ଏହାକୁ ଘେନ ବ୍ରହ୍ମବେତ୍ତା ॥ ୩୫

---

୧. ଆତ୍ମ। ୨. ବିଷୟ। ୩. ରଙ୍ଗ (?)

### ଶ୍ରୀକର୍ଦ୍ଦମ ଉବାଚ

୧୫ ବିବାହ-ଅର୍ଥେ ମୋର ମନ । ଏହାର ନୋହିଛି ପ୍ରଦାନ ।।
ଆମ୍ଭର ଅନୁରୂପ ଏହି । ଆଦ୍ୟ ବିବାହବିଧି ଯେହି ।।
୧୬ ହେ ନରନାଥ ! ତୋ ସୁତାର । ସେ କାମ ହେଉ ବାରମ୍ବାର ।।
ଯେ କାମ ବେଦବିଧାନରେ[1] । ବିଖ୍ୟାତ ହୋଇଛି ସଂସାରେ ।।
ତୋହର ସୁତାକୁ ଆଦର । କରିବ ନାହିଁ କେଉଁ ନର ।।
ନିଜ କାନ୍ତିରେ ଯେହୁ ଶୋହେ । ଶ୍ରୀ କି ଆକ୍ଷେପ କଲା ପ୍ରାୟେ ।।
୧୭ ନୂପୁରସ୍ୱନେ ପାଦ ଶୋହି । ଜଗତୀ-ଉପରେ ଖେଳଇ ।।
ହସ୍ତରୁ କନ୍ଦୁକପତନ । ହୁଅନ୍ତେ ବିହ୍ୱଳନୟନ ।।
ଯାହାକୁ ଏ ରୂପରେ ଚାହିଁ । ବିମାନେ ବିଶ୍ୱାବସୁ ଥାଇ ।।
ମୋହେ ବିମୂଢ଼ଚିତ୍ତ ହେଲା । ବିମାନୁଁ ତଳରେ ପଡ଼ିଲା ।।
୧୮ ଯେତେ ଅଛନ୍ତି ନାରୀଗଣ । ତାଙ୍କର ଅଟଇ ଭୂଷଣ ।।
ଲକ୍ଷ୍ମୀକି ନ ସେବିଲା ଜନ । ଯାକୁ ନ କରେ ଦରଶନ ।।
ମନୁର ଅଟଇ ନନ୍ଦିନୀ । ଉତ୍ତାନପାଦର ଭଗିନୀ ।।
ଆପଣା ଇଚ୍ଛାଏଁ ସେ ଆସି । ପ୍ରାର୍ଥନା କରୁଛି ବିଶେଷି ।।
ତାକୁ ପଣ୍ଡିତ ଲୋକ ହୋଇ । କେ ଅବା ଇଚ୍ଛା ନ କରଇ ।।
୧୯ ଏ ଘେନି ନିର୍ବନ୍ଧ ମୁଁ କରି । ଭଜିବି ତୋହର କୁମାରୀ ।।
ଏ ଯେତେକାଳେ ବୀର୍ଯ୍ୟ ମୋର । ଧରିବ ଗର୍ଭେ ଆପଣାର ।।
ତହିଁ ଉତ୍ତାରୁ ସୁପ୍ରତ୍ୟକ୍ଷ । ପରମହଂସଜ୍ଞାନମୁଖ୍ୟ ।।
ଅହିଂସ୍ର [2]ଶୁକ୍ଳରେ କଥିତ । ଧର୍ମକୁ ମଣଇଁ ବହୁତ ।।
୨୦ ବିଚିତ୍ର ସଂସାର ନିର୍ମାଣ । ଯା'ଠାରୁ ହୋଇଛି ପ୍ରମାଣ ।।
ଯାହାର ଠାରେ ସ୍ଥିତ ହୋଇ । ପ୍ରବେଶ ହୋଏ ଯାର ଠାଇଁ ।।
ସେ ପ୍ରଜାପତିଙ୍କର ନାଥ । ଏଥିରେ ପ୍ରମାଣ ଅନନ୍ତ ।।

### ଶ୍ରୀମୈତ୍ରେୟ ଉବାଚ

୨୧ ସେ ଋଷି ଏତେମାତ୍ର କହି । ରହିଲେ ପୁଣି ତୁନି ହୋଇ ।।
ନିଜ ବୁଦ୍ଧିରେ ଛନ୍ତି ଧରି । ପଦ୍ମନାଭକୁ ଦୃଢ଼ କରି ।।
ଦେଖାଇ ସୁସ୍ମିତ ବଦନ । ହରିଲେ ଦେବହୂତିମନ ।।

---

୧. ଗୃହ୍ଣାମି ତେ ସୌଭଗତ୍ୱାୟ ହସ୍ତଂ ମୟା ପତ୍ୟାଜରଦଷ୍ଟିର୍ଯଥାସଃ । (ଶ୍ରୁତିଃ)
୨. ଶୁକ୍ଳ = ବିଷ୍ଣୁ ।

୨୨ ସେ ମନୁ ଭାର୍ଯ୍ୟାଚିତ୍ତ ଜାଣି । ସୁତାର ଭାବ ପରିମାଣି ।। ୬୧
ମନରେ ହରଷ ଲଭିଲା । ଋଷିଙ୍କି ଦୁହିତାକୁ ଦେଲା ।। ୬୨
ଯେ ମୁନି ଗୁଣଗଣେ ଯୁତ । ସୁତାହିଁ ଅଟଇ ତେମନ୍ତ ।। ୬୩
୨୩ ମନର ଭାର୍ଯ୍ୟା ଅନୁପମ । ଅଟଇ ଶତରୂପା ନାମ ।। ୬୪
ସେ ବରକନ୍ୟାଙ୍କୁ ଅନେକ । ପ୍ରଦାନକଲା ଯଉତୁକ ।। ୬୫
ଯେ ବହୁମୂଲ୍ୟ ବିଭୂଷଣ । ବସନ, ଗୃହୋପକରଣ ।। ୬୬
୨୪ ସଦୃଶ ବରକୁ ପ୍ରଦାନ । କରିଣ ସୁତାକୁ ରାଜନ ।। ୬୭
ବ୍ୟଥା ଛାଡ଼ିଣ ନିଜମନ । ସୁତାକୁ କରି ଆଲିଙ୍ଗନ ।। ୬୮
ଉତ୍କଣ୍ଠାଭାବରୁ ମଥିତ । ହେଉଣ ଅଛି ନିଜ ଚିତ୍ତ ।। ୬୯
୨୫ ବିରହ ନ ପାରନ୍ତେ ସହି । ଲୋଚନୁଁ ଅଶ୍ରୁକଲା ବହି ।। ୭୦
ବୋଲନ୍ତେ ହେ ବତ୍ସା ହେ ମାତ । ଯେ ଜଳ ନେତ୍ରରୁ ଗଳିତ ।। ୭୧
ତେଣେ ସିଞ୍ଚିଲା ଦୁହିତାର । କେଶପାଶକୁ ନୃପବର ।। ୭୨
୨୬ ମୁନିଙ୍କି କରି ଆମନ୍ତ୍ରଣ । ତାହାଙ୍କ ଆଜ୍ଞା ଲଭି ପୁଣ ।। ୭୩
ସଙ୍ଗତେ ନିଜ ଗଣ ଛନ୍ତି । ରଥରେ ଚଢ଼ିଣ ନୃପତି ।। ୭୪
ଭାର୍ଯ୍ୟାକୁ ଘେନିଣ ସଙ୍ଗର । ପ୍ରସ୍ଥାନ କଲେ ନିଜପୁର ।। ୭୫
୨୭ ଋଷିକୁଳକୁ ହିତ ହୋଇ । ଯେ ସରସ୍ୱତୀ ଅଛି ବହି ।। ୭୬
ତାହାର ବେନି କୂଳେ ସ୍ଥାନ । କରିଅଛନ୍ତି ଋଷିମାନ ।। ୭୭
ତାହାଙ୍କ ଆଶ୍ରମସଂପତ୍ତି । ଦେଖିଣ ଚଳିଲେ ନୃପତି ।। ୭୮
୨୮ ଜାଣି ତାହାଙ୍କ ଆଗମନ । ବ୍ରହ୍ମାବର୍ତ୍ତରୁ ପ୍ରଜାମାନ ।। ୭୯
ଗୀତବାଦିତ୍ର ସ୍ତୁତି କଲେ । ହରଷେ ପାଛୋଟି ଅଇଲେ ।। ୮୦
୨୯ ଯେ ବର୍ହିଷ୍ମତୀ ନାମ ପୁରୀ । ସର୍ବସଂପଦେ ଅଛି ପୂରି ।। ୮୧
ଅଙ୍ଗ କଂପାନ୍ତେ ଯଜ୍ଞ[1] ଯହିଁ । ପଡ଼ିଲେ ରୋମମାନେ ଯାଇ ।। ୮୨
୩୦ ସେ ରୋମ ହେଲେ କୁଶ କାଶ । ନିତ୍ୟରେ ହରିତ ବର୍ଚ୍ଚସ[2] ।। ୮୩
ଯେଣେ ସକଳ ଋଷିଜନ । ଯଜ୍ଞନାଶକ ଦୈତ୍ୟମାନ ।। ୮୪
ବହୁତ ପରାଭବ କରି । ଯଜ୍ଞେ ସନ୍ତୋଷ କଲେ ହରି ।। ୮୫
୩୧ ସେ କୁଶ କାଶ ବର୍ହିମାନ । ମନୁ କରିଣ ଆସ୍ତରଣ ।। ୮୬
ଯଜ୍ଞପୁରୁଷକୁ ପୂଜିଲେ । ଯା'ଠାରୁ ଭୂମିକି ଲଭିଲେ ।। ୮୭

---

୧. ଯଜ୍ଞବରାହ　୨. ତେଜ

୩୨ ଯେ ବର୍ହିଷ୍ମତୀ ନାମେ ପୁର । ତହିଁରେ ମିଳି ନୃପବର ।। ୮୮
ମିଳିଲେ ଆପଣା ଭୁବନ । ଯେ ତାପତ୍ରୟ ବିନାଶନ ।। ୮୯
୩୩ ସଙ୍ଗତେ ଘେନି ଭାର୍ଯ୍ୟାସୁତ । ବିଷୟ ଭୁଞ୍ଜିଲେ ବହୁତ ।। ୯୦
ଯେ ଆନ ଥିଲେ ଧର୍ମ ଆଦି । ତାଙ୍କ ବିରୋଧକୁ ନ ସାଧି ।। ୯୧
ପ୍ରଭାତେ ସ୍ତିରୀଗଣ ସଂଗେ । ସୁରଗାୟକମାନେ ରଙ୍ଗେ ।। ୯୨
ଯାର ଉତ୍ତମ କୀର୍ତ୍ତିମାନ । ହରଷେ କରନ୍ତି ଗାୟନ ।। ୯୩
ସେ ମନୁ କରି ଦୃଢ଼ମନ । ଶୁଣନ୍ତି ହରିକଥାମାନ ।। ୯୪
୩୪ ସେ ଯୋଗମାୟାରେ ନିଷ୍ଣାତ । ପ୍ରତ୍ୟକ୍ଷେ ସ୍ୱୟଂଭୂର ସୁତ ।। ୯୫
ହରିଙ୍କି ଭଜନ କରନ୍ତି । ଚେଷ୍ଟାରେ ମୁନିଂ[1] ସେ ବୋଲାନ୍ତି ।। ୯୬
ତାହାଙ୍କ ଜ୍ଞାନ-ବିନାଶନେ । ଯୋଗ୍ୟ ନୋହିଲେ ଭୋଗମାନେ ।। ୯୭
୩୫ ଶୁଣନ୍ତେ ବିଷ୍ଣୁଗୁଣମାନ । ବିଷ୍ଣୁଙ୍କୁ କରନ୍ତେ ସେ ଧ୍ୟାନ ।। ୯୮
ବିଷ୍ଣୁର କଥା ନିରନ୍ତରେ । କହନ୍ତେ ନିଜ ବଦନରେ ।। ୯୯
ଆପଣା ମନ୍ୱନ୍ତରେ ସ୍ଥିତ । ଯେ କାଳମାନେ ଅପ୍ରମିତ ।।୧୦୦
ନିଷ୍ଫଳ ନୋହିଲେ ତାଙ୍କର । ଏ ରୂପେ ନିଜ ମନ୍ୱନ୍ତର ।।୧୦୧
୩୬ ଅଟଇ ଏକସ୍ତରି ଯୁଗ । ସେ ମନୁ କଲେ ତାହା ଭୋଗ ।।୧୦୨
ବିଷ୍ଣୁପ୍ରସଙ୍ଗେ ସେ ନୃପତି । ଜିଣିଲେ ଜାଗ୍ରଦାଦି[2] ଗତି ।।୧୦୩
୩୭ ହେ ବ୍ୟାସସୁତ ଯେଉଁ କ୍ଲେଶ । ଶରୀରୁଁ ମନରୁ ପ୍ରକାଶ ।।୧୦୪
ଯେ ବା ଆକାଶୁଁ ଉତପତି । ମନୁଷ୍ୟଠାରୁ ଯେ ହୁଅନ୍ତି ।।୧୦୫
ଯେ ଭୂତଗଣରୁ ସମ୍ଭବ । ଶୀତ-ଉଷ୍ଣାଦି ନାନାଭାବ ।।୧୦୬
ହରିସେବକଙ୍କୁ ସେମାନେ । କେମନ୍ତେ ବାଧିବେ ଭୁବନେ ।।୧୦୭
୩୮ ଯାହାକୁ ନାନା ଧର୍ମମାନ । ପୃଚ୍ଛା କରନ୍ତେ ମୁନିଜନ ।।୧୦୮
ମନୁଷ୍ୟଙ୍କର ଧର୍ମମାନ । ବର୍ଣ୍ଣାଶ୍ରମର ଯେ ବିଧାନ ।।୧୦୯
ସେ ସର୍ବ କଲେ ସେ ଉକତ । ଅଟନ୍ତି ସର୍ବଭୂତେ ହିତ ।।୧୧୦
୩୯ ଯେ ମନୁ ଆଦି ନୃପବର । ଅଦ୍ଭୁତ ଚରିତ ତାହାର ।।୧୧୧
କହିଲି ତୋର ଆଗେ ମୁହିଁ । ବର୍ଣ୍ଣନାଯୋଗ୍ୟ ସେ ଅଟଇ ।।୧୧୨
ତାହାର ସୁତା ଦେବହୂତି । ଏବେ ହୋ ଶୁଣ ତା' ବିଭୂତି ।।୧୧୩

---

୧. ମନୁ । ୨. ସାତ୍ତ୍ୱିକାଦି (ବା) । ଜାଗ୍ରତ୍ + ଆଦି = ଜାଗ୍ରଦାଦି ।

ମୈତ୍ରେୟ ବିଦୁର ସଂବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥୧୧୪
ସୁଜନେ ଭବୁଁ ତର ଏଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ॥୧୧୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀଦେବହୂତିପ୍ରଦାନଂ ନାମ
ଦ୍ୱାବିଂଶୋଽଧ୍ୟାୟଃ ॥

## ତ୍ରୟୋବିଂଶୋଽଧ୍ୟାୟଃ

ତ୍ରୟୋବିଂଶେ ତପୋଯୋଗନିର୍ମିତେ ସର୍ବସମ୍ପଦି ।
ବିମାନେ କାମଗେ ଚିତ୍ରା ତୟୋ ରତିରୁଦୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ପୁରକୁ ଯା'ନ୍ତେ ନିଜ ପିତା । ସେ ଦେବହୂତି ପତିବ୍ରତା ॥ ୧
ଇଙ୍ଗିତେ ଅଟଇ ପଣ୍ଡିତ । ପତିକି ସେବା କଲା ନିତ୍ୟ ॥ ୨
ଭବାନୀ ଯେସନ ପ୍ରୀତିରେ । ମହାଦେବଙ୍କୁ ସେବା କରେ ॥ ୩
୨ କରିଣ ବିଶ୍ୱାସ, ଗୌରବ । ସେବା, ସୌହୃଦ, ଶୁଦ୍ଧ ଭାବ ॥ ୪
ଇନ୍ଦ୍ରିୟ ନିଗ୍ରହ ଆଚରି । ମଧୁର ବଚନ ଉଚ୍ଚାରି ॥ ୫
୩ ଛାଡ଼ିଣ କାମ, ଦ୍ୱେଷ, ଦମ୍ଭ । ନିଷିଦ୍ଧାଚାର, ମଦ, ଲୋଭ ॥ ୬
ନିରତେ ସାବଧାନ ହେଲା । ତେଜସ୍ୱୀ ପତିକି ତୋଷିଲା ॥ ୭
୪ ସେ ମନୁସୁତା ଦେବହୂତି । ସତତେ ଅଛି ଅନୁବର୍ତ୍ତି ॥ ୮
ଦେବତାଠାରୁ ଗୁରୁ ଅତି । ଅଟଇ ଯେ ଆପଣା ପତି ॥ ୯
ତାହା ସକାଶୁଁ ସୁଖମାନ । ଇଚ୍ଛା କରଇ ନିଜ ମନ ॥ ୧୦
୫ ବ୍ରତଚର୍ଯ୍ୟାରେ ଲଭି କ୍ଲେଶ । କାଳେ ହୋଇଲା ଅତି କୃଶ ॥ ୧୧
ତାହାର ଏମନ୍ତ ପ୍ରକାର । ଦେଖି ସେ ଦେବ ଋଷିବର ॥ ୧୨
ସପ୍ରେମ ଗଦଗଦ ବାଣୀ । କରୁଣାବଶ ହୋଇ ଭଣି ॥ ୧୩

ଶ୍ରୀକର୍ଦ୍ଦମ ଉବାଚ

୬ ହେ ମନୁପୁତ୍ରି ! ଅତିଶୟେ । ସେବା ତୁ କଲୁ ମୋର ଠାଏ ॥ ୧୪
ଦୃଢ଼ ଭଗତି ଦେଖି ତୋର । ସନ୍ତୋଷ ହେଲା ମନ ମୋର ॥ ୧୫
ପ୍ରାଣୀମାନଙ୍କର ଯେ ଦେହ । ଅଟେ ଉଚିତ ନିଜ ପ୍ରିୟ ॥ ୧୬
ତା ନାଶ ଗଣିଲୁ ତୁ ନାହିଁ । ମୋହର ଅର୍ଥେ କ୍ଲେଶ ପାଇ ॥ ୧୭

୭ ନିଜ ଧର୍ମରେ ମୁଁ ତତ୍ପର । ତପ, ସମାଧି ଯେ ବା ମୋର ।। ୧୮
ଯେ ବିଦ୍ୟା, ଆତ୍ମଯୋଗ ଦୁଇ । ତେଣେ ମୁଁ ଯାହା ଅଛି ପାଇ ।। ୧୯
ବିଷ୍ଣୁର ପ୍ରସାଦୁଁ ସଂଭୂତ । ସ୍ୱର୍ଗାଦି ଭୋଗ ଅପ୍ରମିତ ।। ୨୦
ମୋର ଚରଣ ସେବାଫଳେ । ତୋତେ ମିଳିଲେ ସେ ସକଳେ ।। ୨୧
ଯହିଁରେ ନାହିଁ ଶୋକଭୀତି । ଏମନ୍ତ ଭୋଗ ସେ ଅଟନ୍ତି ।। ୨୨
ଦିବ୍ୟ ଦୃଷ୍ଟିକି ଦେବି ମୁହିଁ । ପ୍ରତ୍ୟକ୍ଷ କର ଏବେ ତାହି ।। ୨୩
୮ ଯେ ଉରୁକ୍ରମ ଭଗବାନ । ତାହାର ଭ୍ରୂଲତାପତନ ।। ୨୪
ତେଣେ ସକଳ ମନୋରଥ । ଯହିଁରେ ହୁଅଇ ବିହତ ।। ୨୫
ଏ ରୂପେ ଆନ ଭୋଗ ଯେତେ । କି କାର୍ଯ୍ୟ ତହୁଁ ଏ ଜଗତେ ।। ୨୬
ନିଜ ଧର୍ମରୁ ଯେ ସମ୍ଭବ । ନୃପଭୋଗରେ ଯେ ଦୁର୍ଲଭ ।। ୨୭
ସେ ଦିବ୍ୟ ସୁଖ ଭୋଗ କର । ସିଦ୍ଧ ହୋଇଲୁ ମୋ ସାଙ୍ଗର ।। ୨୮

ଶ୍ରୀମୈତ୍ରେୟ ଉବାଚ

୯ ଯେ ନାନା ଯୋଗମାୟାଗଣ । ବିଦ୍ୟାରେ ଅଟନ୍ତି ନିପୁଣ ।। ୨୯
ଏମନ୍ତ ବଚନ କହନ୍ତି । ତାହାଙ୍କୁ ଚାହିଁ ଦେବହୂତି ।। ୩୦
ମନରେ ଯେତେ ଦୁଃଖ ଥିଲା । ତକ୍ଷଣେ ସକଳ ଛାଡ଼ିଲା ।। ୩୧
ଲଜ୍ଜାବଶରେ ଅଳ୍ପ ଚାହିଁ । ମନ୍ଦହସିତମୁଖ ହୋଇ ।। ୩୨
ବିନୟ-ପ୍ରେମ-ବେନିଭରେ । କହିଲା ଗଦ୍‌ଗଦ ବାକ୍ୟରେ ।। ୩୩

ଶ୍ରୀଦେବହୂତିରୁବାଚ

୧୦ ଭୋ ନାଥ ! ଦ୍ୱିଜଗଣବର । ଏ ସର୍ବ ସିଦ୍ଧ ତୁମ୍ଭଠାର ।। ୩୪
ଅମୋଘ ଯୋଗମାୟାଗତି । ତୁମ୍ଭେ, ଜାଣଇଁ ମୁଁ ଏ ରୀତି ।। ୩୫
ଗର୍ଭସମ୍ଭବଯାଏ ମୋର । ଗୃହସ୍ଥ-ଆଶ୍ରମ ବେଭାର ।। ୩୬
ଯେଉଁ ନିର୍ବନ୍ଧ ଏ ପ୍ରକାରେ । କହିଛ, ହେଉ ସେ ଏଠାରେ ।। ୩୭
ପତିସକାଶୁଁ ସତୀଙ୍କର । ପ୍ରସବ ଅଟେ ଗୁଣସାର ।। ୩୮
୧୧ କାମଶାସ୍ତ୍ରର ଅନୁସାରେ । ଯେ ଉପଯୋଗ ସଂଗମରେ ।। ୩୯
ଉପକଳ୍ପନା ତାହା କର । ତପବଶରୁ ମୋ ଶରୀର ।। ୪୦
ବହୁତ କ୍ଳେଶ ଅଛି ପାଇ । ଯେଣେ ରତିକି ଯୋଗ୍ୟ ହୋଇ ।। ୪୧
ତୁମ୍ଭ ସକାଶୁଁ ମନୋଭବ । ମୋତେ କରୁଛି ପରାଭବ ।। ୪୨
ସେ ଘେନି ସଦୃଶ ଭବନ । ଭୋ ନାଥ ! ବିଚାର ବହନ ।। ୪୩

ଶ୍ରୀମୈତ୍ରେୟ ଉବାଚ

| | | | | | |
|---|---|---|---|---|---|
| ୧୨ | ହିତକୁ ବିଚାରି ପ୍ରିୟାର | । | ସେ ମୁନି କର୍ଦ୍ଦମ ବିଦୁର ! | ॥ | ୪୪ |
| | ତକ୍ଷଣେ କାମର ବିମାନ | । | ଯୋଗରେ କଲେ ଉତପନ | ॥ | ୪୫ |
| ୧୩ | ସକଳ କାମ କରେ ଜାତ | । | ସର୍ବ ରତ୍ନରେ ସମନ୍ୱିତ | ॥ | ୪୬ |
| | ସକଳ ସମ୍ପଦ ସମୃଦ୍ଧି | । | ଉତ୍ତରୋତ୍ତର ଯହିଁ ସିଦ୍ଧି | ॥ | ୪୭ |
| | ମଣିଘଟିତ ନାନା ସ୍ତମ୍ଭ | । | ତେଣେ ଯେ ଦିଶଇ ଆରମ୍ଭ | ॥ | ୪୮ |
| ୧୪ | ଦିବ୍ୟ ସାମଗ୍ରୀ ଅଛି ଯହିଁ | । | ଯେ ସର୍ବକାଳେ ସୁଖ ଦେଇ | ॥ | ୪୯ |
| | ବିଚିତ୍ର ପଟ୍ଟବସ୍ତ୍ରେ ଜାତ | । | ପତାକା ଗଣେ ଅଳଙ୍କୃତ | ॥ | ୫୦ |
| ୧୫ | ବିଚିତ୍ର ପୁଷ୍ପମାଳାମାନ | । | ଯହିଁ ମଞ୍ଜୁଳ ଭୃଙ୍ଗସ୍ୱନ | ॥ | ୫୧ |
| | କୌଷେୟ ଆଦି ନାନା ବାସ | । | ତେଣେ ଯେ ଦିଶେ ସୁପ୍ରକାଶ | ॥ | ୫୨ |
| ୧୬ | ଉପରେ ଉପରେ ରଚନ | । | ନାନା ପ୍ରକାରେ ଗୃହମାନ | ॥ | ୫୩ |
| | ଯହିଁରେ ହୋଇ ଭିନ୍ନ ଭିନ୍ନ | । | ପଲ୍ୟଙ୍କ ବ୍ୟଜନ ଆସନ | ॥ | ୫୪ |
| | ଦିବ୍ୟବସନମାନ ଥାଇ | । | ତେଣେ ଯେ ଅତି ଶୋଭା ପାଇ | ॥ | ୫୫ |
| ୧୭ | ନାନା ପ୍ରକାରେ ଶିଳ୍ପ ଯହିଁ | । | ନାନା ସ୍ଥାନରେ ଶୋଭା ପାଇ | ॥ | ୫୬ |
| ୧୮ | ଯେଉଁ ବିମାନ ମରକତ- | । | ସ୍ଥଳରେ ଅଟଇ ସଂଯୁତ | ॥ | ୫୭ |
| | ଯେ ଦିବ୍ୟ ବିଦ୍ରୁମେ ଘଟିତ | । | ବେଦିକା ମାନରେ ଶୋଭିତ | ॥ | ୫୮ |
| | ଦ୍ୱାରରେ ବିଦ୍ରୁମନିର୍ମିତ | । | ଦେହଳୀ ଦିଶଇ ଶୋଭିତ | ॥ | ୫୯ |
| | ହିରାରେ ହୋଇଣ ଜଡ଼ିତ | । | କବାଟ ଦିଶଇ ଶୋଭିତ | ॥ | ୬୦ |
| | ଇନ୍ଦ୍ରନୀଳରେ ଅଗ୍ରଦେଶ | । | ତହିଁରେ ସୁବର୍ଣ୍ଣକଳଶ | ॥ | ୬୧ |
| ୧୯ | ଉତ୍ତମ ପଦ୍ମରାଗେ ଯେହି | । | ନୟନବନ୍ତ ପ୍ରାୟେ ହୋଇ | ॥ | ୬୨ |
| | ହିରାଖଚିତ ବାଡ଼ମାନ | । | ତହିଁ ସେ ଦିଶଇ ଶୋଭନ | ॥ | ୬୩ |
| | ବିଚିତ୍ର ବିତାନନିକର | । | ଅଛନ୍ତି ଯହିଁ ନିରନ୍ତର | ॥ | ୬୪ |
| | ହେମ ତୋରଣମାନେ ଛନ୍ତି | । | *ହାରରେ ସହିତ ଅଟନ୍ତି | ॥ | ୬୫ |
| ୨୦ | କୃତ୍ରିମ ହଂସ ଆଦି ଯେହି | । | ତାହାଙ୍କୁ ଆରୋହି ଆରୋହି | ॥ | ୬୬ |
| | ଆପଣା ବର୍ଗପ୍ରାୟ ମଣି | । | ମରାଳ ପାରାବତ ଶ୍ରେଣୀ | ॥ | ୬୭ |
| | ରହିଣ ସେହି ସେହି ସ୍ଥାନେ | । | ଧ୍ୱନି କରନ୍ତି ତୋଷମନେ | ॥ | ୬୮ |

* ''ସହାରୈର୍ହୈମତୋରଣୈଃ''– ଏହି ପାଠ ଅନୁସାରେ ପଦରଚନା ହୋଇଅଛି । କିନ୍ତୁ ''ସହାରୈଃ'' ସ୍ଥାନରେ ''ମହାର୍ହୈ'' ପାଠାନ୍ତର ଶୁଦ୍ଧ ସଂସ୍କରଣମାନଙ୍କରେ ଦୃଷ୍ଟିଗୋଚର ହୁଏ ।

| | | | | | |
|---|---|---|---|---|---|
| ୨୧ | ବିହାରସ୍ଥାନ ଶଯ୍ୟାଘର | । | ଅଙ୍ଗଣ ସଂଭୋଗ ମନ୍ଦିର | ।। | ୬୯ |
| | ବାହ୍ୟ ଅଙ୍ଗଣା ଯଥାସ୍ଥାନେ | । | ନିର୍ମିତ ଅଟନ୍ତି ଏମାନେ | ।। | ୭୦ |
| | ବିସ୍ମୟ କରାଇଲା ପ୍ରାୟେ | । | ନିଜ ମନକୁ ପ୍ରତ୍ୟେ ହୋଏ | ।। | ୭୧ |
| ୨୨ | ସେ ଗୃହ ଚାହେଁ ଦେବହୂତି | । | ମନରେ ନାହିଁ ଅତି ପ୍ରୀତି | ।। | ୭୨ |
| | ଯେ ଜାଣେ ସର୍ବଭୂତମନ | । | ବୋଲେ ସେ କର୍ଦ୍ଦମ ବଚନ | ।। | ୭୩ |
| ୨୩ | ଏ ହ୍ରଦେ କରି ନିମଜ୍ଜନ | । | ସଖି ! ଆରୋହ ଏ ବିମାନ | ।। | ୭୪ |
| | ଶୁକ୍ଳ[1] ନିର୍ମିତ ତୀର୍ଥ ଏହି | । | ପ୍ରାଣୀଙ୍କି ମଙ୍ଗଳକୁ ଦେଇ | ।। | ୭୫ |
| ୨୪ | ନିଜ ସ୍ୱାମୀର ବାକ୍ୟ ମାନି | । | ସେ ଚାରୁ ଉତ୍ପଳନୟନୀ | ।। | ୭୬ |
| | ପିନ୍ଧିଛି ମଳିନ ବସନ | । | ଜଟା ହୋଇଛି କେଶମାନ | ।। | ୭୭ |
| ୨୫ | ମଳପଙ୍କରେ ଛନ୍ନ ହୋଇ | । | ସ୍ତନ ବିବର୍ଣ୍ଣ ଦିଶେ ଯହିଁ | ।। | ୭୮ |
| | ଧରିଣ ଏମନ୍ତ ଶରୀର | । | ମିଳିଣ ସରସ୍ୱତୀତୀର | ।। | ୭୯ |
| | ଯହିଁ ମଙ୍ଗଳଜଳେ[2] ଛନ୍ତି | । | ସେ ସରେ ମିଳିଲା ଯୁବତି | ।। | ୮୦ |
| ୨୬ | ସେ ସରମଧ୍ୟେ ଗୃହସ୍ଥିତ | । | ଦେଖିଲା କନ୍ୟା ଦଶ ଶତ | ।। | ୮୧ |
| | ସମସ୍ତେ କିଶୋରବୟସୀ | । | ଉତ୍ପଳ ପ୍ରାୟେ ଦେହ ବାସି | ।। | ୮୨ |
| ୨୭ | ତାକୁ ଦେଖିଣ ସେ ଉଠିଲେ | । | ପ୍ରାଞ୍ଜଳି ହୋଇଣ ବୋଇଲେ | ।। | ୮୩ |
| | ଆମ୍ଭେ ତୋ' ପରିଚାରୀଗଣ | । | କି କାର୍ଯ୍ୟ କରିବୁଁ ତା' ଭଣ | ।। | ୮୪ |
| ୨୮ | ଏମନ୍ତ କହି କନ୍ୟାଜନ | । | ଘେନିଣ ସ୍ନାନଦ୍ରବ୍ୟମାନ | ।। | ୮୫ |
| | ତାହାକୁ ସ୍ନାନ କରାଇଲେ | । | ଦିବ୍ୟ ବସନ ବେନି ଦେଲେ | ।। | ୮୬ |
| ୨୯ | ଦିବ୍ୟ ବିବିଧ ଅଳଂକାର | । | ଖଞ୍ଜିଲେ ଶରୀରେ ତାହାର | ।। | ୮୭ |
| | ସକଳଗୁଣଯୁତ ଅନ୍ନ | । | ମାଦକ ସୁଧାସମ ପାନ | ।। | ୮୮ |
| | ଏମାନ ସମର୍ପିଲେ ନେଇ | । | ସେ କନ୍ୟାମାନେ ଭାବେ ତହିଁ | ।। | ୮୯ |
| ୩୦ | ଦର୍ପଣ ଘେନି ନିଜ କର | । | ଦେଖିଲା ଆପଣା ଶରୀର | ।। | ୯୦ |
| | କୁସୁମମାଳାରେ ଶୋଭନ | । | ଦିବ୍ୟ ବସନ ପରିଧାନ | ।। | ୯୧ |
| | ନିର୍ମଳ ମଙ୍ଗଳସଂଯୁତ | । | କନ୍ୟାମାନଙ୍କରେ ସେବିତ | ।। | ୯୨ |
| ୩୧ | ଶିରରେ ଘେନିଣ ଅଭ୍ୟଙ୍ଗ[3] | । | ଜଳେ କ୍ଷାଳିତ ସର୍ବ ଅଙ୍ଗ | ।। | ୯୩ |
| | ସକଳ ଭୂଷଣେ ଭୂଷିତ | । | କଣ୍ଠେ ପଦକ ବିରାଜିତ | ।। | ୯୪ |
| | ରତ୍ନବଳୟ ଶୋହେ କରେ | । | କାଞ୍ଚନ ନୂପୁର ପାଦରେ | ।। | ୯୫ |

୧. ଶୁକ୍ଳ=ବିଷ୍ଣୁ । ୨. ଜଳମାନେ । ୩. ତୈଳାଦି ।

୩୨ ବହୁତ ରତ୍ନରେ ପ୍ରକଟ । କାଞ୍ଚନ କାଞ୍ଚୀ ଶ୍ରେଣୀତଟ ॥ ୯୬
କଣ୍ଠରେ ବହୁମୂଲ୍ୟ ହାର । କୁଙ୍କୁମ ଆଦିରେ[1] ସୁନ୍ଦର ॥ ୯୭
୩୩ ସୁନ୍ଦର ଭ୍ରୂଲତା, ଦଶନ । ସ୍ନିଗ୍ଧ ଅପାଙ୍ଗ ଶୋଭମାନ ॥ ୯୮
ନୟନ ପଦ୍ମକୋଷସମ । ଅଳକେ ମୁଖେ ଅଭିରାମ ॥ ୯୯
୩୪ ଏମନ୍ତ ରୂପେ ଦେବହୂତି । ଚିନ୍ତିଲା ଯେତେବେଳେ ପତି ॥୧୦୦
ଋଷିଗଣଙ୍କ ମଧ୍ୟେ ସାର । ପ୍ରିୟ ଅଟନ୍ତି ଆପଣାର ॥୧୦୧
ଏମନ୍ତ ଋଷିଙ୍କ ପାଖରେ । ରହିଛି ସ୍ତିରୀଙ୍କ ସାଙ୍ଗରେ ॥୧୦୨
୩୫ ସ୍ୱାମୀର ଆଗେ ନାରୀଗଣ । ସହିତେ ଆତ୍ମାକୁ ଦେଖିଣ ॥୧୦୩
ତା' ଯୋଗଗତି ବୋଲି ଜାଣି । ବିସ୍ମୟ ଲଭିଲା ତରୁଣୀ ॥୧୦୪
୩୬ ସ୍ନାନେ ନିର୍ଗତ ହୋଇ ମଳି । ଅପୂର୍ବ ଦିଶେ ଦେହ ଝଳି ॥୧୦୫
ପୂର୍ବପ୍ରାୟକ ଦେହବର୍ଣ୍ଣ । ବସ୍ତ୍ର ଆଚ୍ଛନ୍ନ ଚାରୁ ସ୍ତନ ॥୧୦୬
୩୭ ସହସ୍ରସଂଖ୍ୟ ବିଦ୍ୟାଧରୀ । ପାଦେ ଅଛନ୍ତି ସେବା କରି ॥୧୦୭
ପିନ୍ଧିଛି ରୁଚିର ଅମ୍ବର । ଏମନ୍ତ ଦେଖି ଋଷିବର ॥୧୦୮
ତକ୍ଷଣେ ଭାବବଶ ହେଲେ । ବିମାନେ ତାକୁ ବସାଇଲେ ॥୧୦୯
୩୮ ଯା'ର ମହିମା ନୋହେ ନାଶ । ନିଜ ପ୍ରିୟାର ହୋଇ ବଶ ॥୧୧୦
ସେବନ୍ତି ବିଦ୍ୟାଧରୀମାନେ । କର୍ଦ୍ଦମ ବସି ସେ ବିମାନେ ॥୧୧୧
ସ୍ୱଭାବେ ଅଟଇ ସୁନ୍ଦର । ଶୋଭା ପାଇଲା ମୁନିବର ॥୧୧୨
ସ୍ଫୁଟ କୁମୁଦଗଣ[2] ବନ୍ତ । ଆକାଶ ମଧ୍ୟରେ ଯେମନ୍ତ ॥୧୧୩
ତାରକାଗଣେ ବୃତ ହୋଇ । କୁମୁଦବନ୍ଧୁ[3] ଶୋଭା ପାଇ ॥୧୧୪
୩୯ ମଦନ ମିତ୍ର ସମୀରଣ । ବହନ୍ତେ ସୁଭଗ ଯେ ପୁଣ ॥୧୧୫
ଗଙ୍ଗାପ୍ରବାହ ପଡ଼ିବାରେ । ମଙ୍ଗଳନାଦ ଯହିଁ ସ୍ଫୁରେ ॥୧୧୬
ଯହିଁରେ ଅଷ୍ଟଲୋକପାଳ । କ୍ରୀଡ଼ା କରନ୍ତି ସର୍ବକାଳ ॥୧୧୭
ଏ ରୂପେ ଦିଶନ୍ତି ଶୋଭନ । ଯେ କୁଳାଚଳ-ଦରୀମାନ ॥୧୧୮
ତହିଁରେ କଲେ ସେ ବିହାର । ସଙ୍ଗରେ ଘେନି ନାରୀବର ॥୧୧୯

---

୧. ରୁଚକଂ ମଙ୍ଗଳଦ୍ରବ୍ୟେ ଗ୍ରୀବାଭରଣଦନ୍ତୟୋଃ । (ବିଶ୍ୱପ୍ରକାଶଃ)
ରୁଚକ = କୁଙ୍କୁମାଦି ମଙ୍ଗଳଦ୍ରବ୍ୟ ।
୨. ଗୁଣ (?) (ତୁ ମୂଳପାଠ) । ୩. ଚନ୍ଦ୍ର ।

| | | | |
|---|---|---|---|
| | ଯେ ବନ ନାମେ ଚୈତ୍ରରଥ । | ମାନସ ସର ଯେ ବିଦିତ | ।।୧୨୨ |
| | ରାମାର ସଙ୍ଗେ ରତ ହୋଇ । | ତହିଁରେ ବିହରିଲେ ଯାଇଁ | ।।୧୨୩ |
| ୪୧ | କାମଗ, ଅତି ଦୀପ୍ୟମାନ । | ଚଢ଼ିଣ ଏମନ୍ତ ବିମାନ | ।।୧୨୪ |
| | ପବନ ପରାଏ ଭ୍ରମନ୍ତେ । | ବିମାନବନ୍ତ ଲୋକ ଯେତେ | ।।୧୨୫ |
| | ତାହାଙ୍କୁ କଲେ ଅତିକ୍ରମ । | ଯେ ମହାଯଶସ୍ୱୀ କର୍ଦ୍ଦମ | ।।୧୨୬ |
| ୪୨ | ଉଦ୍ଧାମଚିତ୍ତ ପ୍ରାଣୀଙ୍କର । | କିବା ଅସାଧ ଏ ସଂସାର | ।।୧୨୭ |
| | ଯେଣେ ବ୍ୟସନ ହୋଏ ଶାନ୍ତି । | ସେ ବିଷ୍ଣୁପଦ ଯେ ସେବନ୍ତି | ।।୧୨୮ |
| ୪୩ | ଦ୍ୱୀପବରଷାଦି[୧] ସମେତେ । | ଭୂମିମଣ୍ଡଳ ଅଛି ଯେତେ | ।।୧୨୯ |
| | ଅନେକ ଅଦଭୂତ ତହିଁ । | ନିଜ ଭାର୍ଯ୍ୟାକୁ ତା' ଦେଖାଇ | ।।୧୩୦ |
| | ସେ ମହାଯୋଗୀ ଲେଉଟିଲେ । | ନିଜ ଆଶ୍ରମରେ ମିଳିଲେ | ।।୧୩୧ |
| ୪୪ | ରତି-ଉତ୍ସୁକ ଅଟେ ଅତି । | ମନୁର ସୁତା ଦେବହୂତି | ।।୧୩୨ |
| | ତାକୁ ରମନ୍ତେ ଅନୁରାଗେ । | ଆତ୍ମାକୁ କଳ୍ପି ନବ ଭାଗେ | ।।୧୩୩ |
| | ଏମନ୍ତେ ବହୁତ ବରଷ । | ମୁହୂର୍ତ୍ତପ୍ରାୟ କଲେ ଶେଷ | ।।୧୩୪ |
| ୪୫ | ସେ ବିମାନରେ ଦେବହୂତି । | ଉତ୍ତମ ଶେଯେ କରି ସ୍ଥିତି | ।।୧୩୫ |
| | ସୁନ୍ଦର ଅଟେ ନିଜ ନାଥ । | ତା' ସଙ୍ଗେ ହୋଇଣ ସଙ୍ଗତ | ।।୧୩୬ |
| | ଏ ରୂପେ ଯେତେ କାଳ ଗଲା । | ସେ ତାହା ଜାଣି ନ ପାରିଲା | ।।୧୩୭ |
| ୪୬ | ଏମନ୍ତେ ଯୋଗ ଅନୁଭାବେ । | ରମନ୍ତେ ଦମ୍ପତୀସ୍ୱଭାବେ | ।।୧୩୮ |
| | କାମକ୍ରୀଡ଼ାରେ ବେନିଜନ । | ଲାଳସ ହୋଇ ଅନୁଦିନ | ।।୧୩୯ |
| | ଅଳପ କାଳ ପ୍ରାୟ ଶେଷ । | ହୋଇଲା ଶତେକ ବରଷ | ।।୧୪୦ |
| ୪୭ | ସକଳ ଜନମାନଙ୍କର । | ସଂକଳ୍ପ ଯାହାକୁ ଗୋଚର | ।।୧୪୧ |
| | ସେ ଆତ୍ମଜ୍ଞାନୀ ତପଚାରୀ । | ଆତ୍ମାକୁ ନବ[୨] ଭାଗ କରି | ।।୧୪୨ |
| | ମୋ' ଅର୍ଦ୍ଧଦେହ ଦେବହୂତି । | ତାକୁ ଏମନ୍ତ ରୂପେ ଚିନ୍ତି | ।।୧୪୩ |
| | ତାହାର ଗର୍ଭେ ନିଜ ରେତ । | ସେ ମୁନି କଲେକ ସ୍ଥାପିତ | ।।୧୪୪ |
| ୪୮ | ସେ ଦେବହୂତି ଏକାଦିନ । | ଜନ୍ମିଲା[୩] ସ୍ତିରୀ ପ୍ରଜାମାନ | ।।୧୪୫ |
| | ସମସ୍ତେ ଅଟନ୍ତି ସୁନ୍ଦର । | ଉତ୍ପଳଗନ୍ଧ-କଳେବର | ।।୧୪୬ |

---

୧. ଦ୍ୱୀପବର୍ଷ + ଆଦି ।

୨. ''ପୁମାନ ପୁଂସୋଽଧିକେ ଶୁକ୍ରେ ସ୍ତ୍ରୀ ଭବେଦଧିକେ ସ୍ତ୍ରୀୟାଃ ।'' (ସ୍ମୃତିଃ)

୩. ଜନ୍ମ କଲା ।

୪୯ ସନ୍ନ୍ୟାସ କରିବେ ସ୍ୱପତି । ଏ କଥା ଜାଣି ଦେବହୂତି ॥୧୪୭
ମୁଖେ ମଣ୍ଡିତ ମନ୍ଦହାସ । ବିକଳ ହୋଏ ହୃଦଦେଶ ॥୧୪୮
୫୦ ଯେ ନଖମଣିରେ ଶୋହଇ । ସେ ପାଦେ ଭୂମିକି ଲେଖଇ ॥୧୪୯
ଲୋଚନଯୁଗୁଁ ବହେ ବାରି । ତାହା କ୍ରମରେ ରୋଧ କରି ॥୧୫୦
ତଳକୁ ପୋତିଣ ବଦନ । କହିଲା ଲଳିତ ବଚନ ॥୧୫୧

ଶ୍ରୀଦେବହୂତିରୁବାଚ

୫୧ ଯେତେ ପ୍ରତିଜ୍ଞା ମୋତେ କଲ । ନିର୍ବାହ ହେଲା ସେ ସକଳ ॥୧୫୨
ତଥାପି ଶରଣ ମୁଁ ତୋରେ । ଅଭୟ ଦାନ ଦିଅ ମୋରେ ॥୧୫୩
୫୨ ହେ ବିପ୍ର ! ତୁମ୍ଭ ସୁତାଙ୍କର । ସମାନ ବରଙ୍କୁ ବିଚାର ॥୧୫୪
ବନକୁ ଯାଆନ୍ତେ ତୁମ୍ଭର । ଯେ[1] ଶୋକ ହରିବ ମୋହର ॥୧୫୫
୫୩ ଭୋ ନାଥ ! ହୋଇଣ ନିଷ୍ଫଳ । ଗଲା ମୋହର ଏତେ କାଳ ॥୧୫୬
ଇନ୍ଦ୍ରିୟ-ଅର୍ଥପ୍ରସଙ୍ଗରେ । ଆମ୍ଭାକୁ କଲି ଅତିଦୂରେ ॥୧୫୭
ଇନ୍ଦ୍ରିୟ ଅର୍ଥେ ସକ୍ତ ହୋଇ । ତୁମ୍ଭର ସଙ୍ଗ କଲି ମୁହିଁ ॥୧୫୮
୫୪ ତୁମ୍ଭେ ସଂପୂର୍ଣ୍ଣ ବ୍ରହ୍ମଜ୍ଞାନୀ । ଏ ଭାବ ନ ପାରିଲି ଚିହ୍ନି ॥୧୫୯
ତଥାପି ସଙ୍ଗମ ତୁମ୍ଭର । ଅଭୟ ଅର୍ଥେ ହେଉ ମୋର ॥୧୬୦
୫୫ ଅଜ୍ଞାନେ ଦୁଷ୍ଟ ଜନଠାରେ । ଯେଉଁ ସଙ୍ଗକୁ ପ୍ରାଣୀ କରେ ॥୧୬୧
ସେ ଅଟେ ଭବକୁ କାରଣ । ତା' ସାଧୁଠାରେ କଲେ ପୁଣ ॥୧୬୨
ଅସଙ୍ଗଭାବକୁ ଲୋକର । କଳ୍ପନା କରେ ଦ୍ୱିଜବର ! ॥୧୬୩
୫୬ ଯା' କର୍ମ ଧର୍ମ ଅର୍ଥେ ନୋହି । ବିରାଗ ଅର୍ଥେ ନ କଳ୍ପଇ ॥୧୬୪
ବିଷ୍ଣୁର ସେବାରେ ନୋହିଲା । ସେ ଲୋକ ଜୀଉଁ ଜୀଉଁ ମଲା ॥୧୬୫
୫୭ ବିଷ୍ଣୁ ମାୟାରେ ଦୃଢ଼ ହୋଇ । ବଞ୍ଚିତ ହୋଇଅଛି ମୁହିଁ ॥୧୬୬
ତୁମ୍ଭେ ମୁକତିଦାତା ଅତି । ତୁମ୍ଭଙ୍କୁ କରି ନିଜପତି ॥୧୬୭
ସଂସାରବନ୍ଧନୁଁ ମୁକତ । ଯେଣୁ ନୋହିଲି ପ୍ରାଣନାଥ ! ॥୧୬୮
ଏମନ୍ତ କର୍ଦ୍ଦମସମ୍ମୁଖେ । ସେ ଦେବହୂତି ମନଦୁଃଖେ ॥୧୬୯
କରନ୍ତି ସିଦ୍ଧମାନେ ସ୍ତୁତି । ଯେସନେ ଶୋହେ ଧନପତି ॥୧୭୦

---

୧. (କେ) ?

୫୮ ବଇଶ୍ରମ୍ଭକ, ସୁରସେନ । ଯେ ପୁଷ୍ପଭଦ୍ରକ, ନନ୍ଦନ ।।୧୭୧
ଯେତେକ କହିଲେ ବିଶ୍ୱାସେ । ସୁଜନେ ରସ ଏହି ରସେ ।।୧୭୨
ତରିବ ଘୋର ଭବସିନ୍ଧୁ । କହଇ ବିପ୍ର ଦୀନବନ୍ଧୁ ।।୧୭୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀଦେବହୂତ୍ୟନୁତାପୋନାମ
ତ୍ରୟୋବିଂଶୋଽଧ୍ୟାୟଃ ।।

## ଚତୁର୍ବିଂଶୋଽଧ୍ୟାୟଃ

ଚତୁର୍ବିଂଶେ ତତୋ ଜନ୍ମ କପିଳସ୍ୟାହ ତତ୍ପିତୁଃ ।
ପ୍ରବ୍ରଜ୍ୟାଂ ତମନୁଜ୍ଞାପ୍ୟ ଋଣତ୍ରୟବିମୋକ୍ଷତଃ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ ମନୁଦୁହିତା ଏ ପ୍ରକାରେ । ନିର୍ବେଦ କହନ୍ତେ ଆଗରେ ।। ୧
ଶୁକ୍ଳର ବଚନ ଚିତୋଇ[1] । ଦୟାଳୁ ମୁନି ତାଙ୍କୁ କହି ।। ୨

ଶ୍ରୀକର୍ଦ୍ଦମ ଉବାଚ

୨ ହେ ରାଜପୁତ୍ରି ! ଅନିନ୍ଦିତା । ଆମ୍ଭାକୁ ନ କର ତୁ ଚିନ୍ତା ।। ୩
ମୁକୁନ୍ଦ ଏହି ନିକଟରେ । ପ୍ରବେଶ ହେବେ ତୋ ଉଦରେ ।। ୪
୩ ତୁ ଧରିଅଛୁ ନାନା ବ୍ରତ । ମଙ୍ଗଳ ହେଉ ତୋର ଜାତ ।। ୫
ଯମ, ନିୟମ, ତପ, ଦାନ । ଶ୍ରଦ୍ଧାରେ ଭଜ ଭଗବାନ ।। ୬
୪ କରନ୍ତେ ଆରାଧନା ତୋର । ଶୁକ୍ଳ ଜନ୍ମିଣ ତୋ' ଉଦର ।। ୭
ପ୍ରକାଶ କରି ଯଶ ମୋର । ଛେଦିବେ ହୃଦଗ୍ରନ୍ଥି ତୋର ।। ୮
ଯେ ବ୍ରହ୍ମମାର୍ଗ ଅଗୋଚର । ତାହା କହିବେ ତୋ' ଆଗର ।। ୯

ଶ୍ରୀମୈତ୍ରେୟ ଉବାଚ

୫ ସେ ପ୍ରଜାପତିର ସନ୍ଦେଶ । ଗୌରବେ କରିଣ ବିଶ୍ୱାସ ।। ୧୦
କୂଟସ୍ଥ ପୁରୁଷ ଶ୍ରୀପତି । ତାଙ୍କୁ ଭଜିଲା ଦେବହୂତି ।। ୧୧
୬ ବହୁତ କାଳର ଅନ୍ତରେ । ମଧୁସୂଦନ ତା' ଉଦରେ ।। ୧୨
କର୍ଦ୍ଦମବୀର୍ଯ୍ୟେ ହେଲେ ଜାତ । କାଷ୍ଠରୁ ଅନଳ ଯେମନ୍ତ ।। ୧୩

---

୧. ଚିତୋଇ = ମନେ ପକାଇ (ସ୍ମରନ୍) ।

୭ ବରଷା କଲା[୧] ମେଘମାନେ । ବାଦ୍ୟ ବଜାଇଲେ ଗଗନେ ।। ୧୪
ଗନ୍ଧର୍ବେ ଗାଇଲେକ ଗୀତ । ନାଚିଲେ ଅପସରାୟୂଥ ।। ୧୫
୮ ଖେଚରକରୁଁ ମୁକ୍ତ ହୋଇ । ପଡ଼ିଲେ ଦିବ୍ୟ ପୁଷ୍ପ ମହୀ ।। ୧୬
ସକଳ ଦିଗ, ଜନମନ । ସଲିଳ ହୋଇଲେ ପ୍ରସନ୍ନ ।। ୧୭
୯ କର୍ଦ୍ଦମ ଆଶ୍ରମମଣ୍ଡଳ । ବେଷ୍ଟିତ ସରସ୍ୱତୀଜଳ ।। ୧୮
ମରୀଚି ଆଦି ଋଷିବୃନ୍ଦେ । ବ୍ରହ୍ମା ସେ ଆଶ୍ରମେ ମିଳିଲେ ।। ୧୯
୧୦ ସତ୍ତ୍ୱ ଅଂଶରେ ଅବତାର । ପରମ ବ୍ରହ୍ମ ତା' ମନ୍ଦିର ।। ୨୦
ସାଂଖ୍ୟଯୋଗର ଖ୍ୟାତି ପାଇଁ । ସେ ଅଜ ଏମନ୍ତ ଜାଣଇଁ ।। ୨୧
୧୧ ସେ କର୍ଦ୍ଦମର ଚେଷ୍ଟା ଯେତେ । ବିଶୁଦ୍ଧ ଚିତ୍ତେ ପ୍ରଶଂସନ୍ତେ ।। ୨୨
ହୃଷ୍ଟ-ଇନ୍ଦ୍ରିୟଗଣ ହୋଇ । ସେ ପତିପତ୍ନୀମୁଖ ଚାହିଁ ।। ୨୩
କହିଲେ ଏମନ୍ତ ବଚନ । ଆପଣେ କମଳ-ଆସନ ।। ୨୪

ଶ୍ରୀବ୍ରହ୍ମୋବାଚ

୧୨ ଭୋ ତାତ ! ପୂଜାକୁ ମୋହର । କଲ୍ପନା କଲୁ ତୁ ଅପାର ।। ୨୫
ମୋ ବାକ୍ୟ ନିଷ୍କପଟ ହୋଇ । ମାନି ଘେନିଲୁ ଯେଣୁ ତୁହି ।। ୨୬
୧୩ ପିତାର ଠାରେ ସୁତେ ଏତେ । ସେବା କରିବେ ଏ ଜଗତେ ।। ୨୭
ପିତାବଚନ ଗଉରବେ । ସ୍ୱୀକାର କରି ଆଚରିବେ ।। ୨୮
୧୪ ହେ ବତ୍ସ ! ଅଛନ୍ତି ଏ ତୋର । ନବ ଦୁହିତା ମନୋହର ।। ୨୯
ଏ ସୃଷ୍ଟି ବିବିଧ ପ୍ରକାରେ । ବୃଦ୍ଧି କରିବେ ପ୍ରଭାବରେ ।। ୩୦
୧୫ ଏ ଘେନି ଯଥାରୁଚି କରି । ସୁଚରିତକୁ ଅନୁସରି ।। ୩୧
ଯେ ମରୀଚ୍ୟାଦି ଋଷିବର । ତାଙ୍କୁ ଏହାଙ୍କୁ ବିଭା କର ।। ୩୨
ତୋହର ଯଶ ସର୍ବକାଳେ । ପ୍ରକାଶ[୨] ଭୁବନମଣ୍ଡଳେ ।। ୩୩
୧୬ ଆଦ୍ୟ ପୁରୁଷ ତୋ' ମନ୍ଦିର । ନିଜ ମାୟାରେ ଅବତାର ।। ୩୪
ଭଗତ ଜନଙ୍କର ନିଧି । କପିଳ ରୂପ ଯେ ପ୍ରସିଦ୍ଧି ।। ୩୫
ଏ କଥା ଭଲେ ପରିମାଣି । ଭୋ ମୁନି ! ଅଛଇଁ ମୁଁ ଜାଣି ।। ୩୬
୧୭ ଏମନ୍ତ କର୍ଦ୍ଦମକୁ କହି । ଦେବହୂତିକି ବୋଲେ ଚାହିଁ ।। ୩୭
ଜ୍ଞାନ-ବିଜ୍ଞାନ ଶିକ୍ଷା ଦେବ । କର୍ମବାସନା ବିନାଶିବ ।। ୩୮
ହିରଣ୍ୟପ୍ରାୟ କେଶବର୍ଣ୍ଣ । ଅମଳ ପଙ୍କଜଲୋଚନ ।। ୩୯
ପଦ୍ମମୁଦ୍ରାରେ ଯୁତ ହୋଇ । ପାଦପଙ୍କଜ ଶୋଭା ପାଇ ।। ୪୦

---

୧. ବର୍ଷନ୍ତୋ ଘନାଃ । ୨. ପ୍ରକାଶ କର (ବିସ୍ତୃଣୀହି) ।

୧୮ ହେ ମନୁପୁତ୍ରି ! ଗର୍ଭେ ତୋର । ଏ ରୂପେ ବିଜେ ଚକ୍ରଧର ।। ୪୧

ଅବିଦ୍ୟା[୧] ସଂଶୟ[୨]ର ଗ୍ରନ୍ଥି । ଛିଣ୍ଡାଇ ବୁଲିବେ ସେ ପୃଥ୍ୱୀ ।। ୪୨

୧୯ ଏ ସିଦ୍ଧଗଣଙ୍କର ନାଥ । ସାଂଖ୍ୟ-ଆଚାର୍ଯ୍ୟରେ[୩] ସମ୍ମତ ।। ୪୩

ଲୋକେ କପିଳ ନାମ ହେବ । ତୋର କୀର୍ତ୍ତିକି ବିସ୍ତାରିବ ।। ୪୪

ଶ୍ରୀମୈତ୍ରେୟ ଉବାଚ

୨୦ କର୍ଦ୍ଦମ-ଦେବହୂତି ବେନି । ଆଶ୍ୱାସି ଦେବ ପଦ୍ମଯୋନି ।। ୪୫

କୁମାର-ନାରଦ ସଙ୍ଗତେ । ବସିଣ ହଂସମୟ ରଥେ ।। ୪୬

ଯେ ସାର ସ୍ୱର୍ଗର ଉପରେ । ମିଳିଲେ ସେ ସତ୍ୟଲୋକରେ ।। ୪୭

୨୧ ବିଧାତା କରନ୍ତେ ଗମନ । କର୍ଦ୍ଦମ ଶୁଣି ତା' ବଚନ ।। ୪୮

ଋଷିଙ୍କି ଦେଲା ତୋଷଚିତ୍ତେ । ନିଜ କନ୍ୟାଙ୍କୁ ଯଥୋଚିତେ ।। ୪୯

୨୨ ଯେ କନ୍ୟା କଳା ନାମେ ଥିଲା । ମରୀଚିଋଷିଙ୍କି ତା' ଦେଲା ।। ୫୦

୨୩ ଯାହାର ଅନସୂୟା ନାମ । ଅତ୍ରିଙ୍କି ଦେଲା ତା କର୍ଦ୍ଦମ ।। ୫୧

ଶ୍ରଦ୍ଧାକୁ ଦେଲା ଅଙ୍ଗିରାଙ୍କୁ । ହବିର୍ଭୂ ଦେଲା ପୁଲସ୍ତ୍ୟଙ୍କୁ ।। ୫୨

ଗତିକି ପୁଲହଙ୍କୁ ଦେଲା । କ୍ରତୁଙ୍କୁ କ୍ରିୟା ବିଭା ହେଲା ।। ୫୩

ଭୃଗୁଙ୍କୁ ସମର୍ପିଲା ଖ୍ୟାତି । ବଶିଷ୍ଠେ ଦେଲା ଅରୁନ୍ଧତୀ ।। ୫୪

୨୪ ଶାନ୍ତିକି ଦେଲା ଅଥର୍ବରେ । ଯଜ୍ଞବିସ୍ତାର ଯେଣେ କରେ ।। ୫୫

ବିବାହ ହୋଇ ଭାର୍ଯ୍ୟା ଘେନି । ଗଲେ ଯେ ନବ ମହାମୁନି ।। ୫୬

କର୍ଦ୍ଦମ ଋଷି ଯଥୋଚିତ । ସଂତୋଷ କଲେ ତାଙ୍କ ଚିତ୍ତ ।। ୫୭

୨୫ ସେ ଋଷିମାନେ ବିଭା ହୋଇ । କର୍ଦ୍ଦମଋଷି ଆଗେ କହି ।। ୫୮

ମନରେ ଲଭିଣ ସଂତୋଷ । ଯେ ଯାହା ଆଶ୍ରମେ ପ୍ରବେଶ ।। ୫୯

୨୬ ବିବୁଧଶ୍ରେଷ୍ଠ ଦେବ ହରି । ଗୃହେ ଅଛନ୍ତି ଅବତରି ।। ୬୦

ସେ ମୁନି ଜାଣିଣ ଏମନ୍ତ । ଏକାନ୍ତେ ହୋଇ ଉପଗତ ।। ୬୧

ନିଜ କପୋଳେ ଦେଇ କର । କହିଲେ ବଚନ ମଧୁର ।। ୬୨

ଶ୍ରୀକର୍ଦ୍ଦମ ଉବାଚ

୨୭ ନିଜ ଦୁରିତୁଁ ଏ ସଂସାରେ । ଦଗ୍ଧ ହୁଅନ୍ତି ଯେଉଁ ନରେ ।। ୬୩

ତାହାଙ୍କୁ ବହୁତ କାଳରେ । ପ୍ରସନ୍ନ ହୋନ୍ତି ନିଶ୍ଚେ ସୁରେ ।। ୬୪

---

୧. ଅବିଦ୍ୟା = ସ୍ୱରୂପାଜ୍ଞାନ ।

୨. ସଂଶୟ = ମିଥ୍ୟାଜ୍ଞାନ । ୩. (ଆଚାର୍ଯ୍ୟୈଃ) ।

୨୮ ବହୁତ ଜନ୍ମେ କରି ସିଦ୍ଧି । ଭଗତି ଯୋଗ ସୁସମାଧି ॥ ୬୫
ତେଣେ ଯା' ପାଦ ମୁନିଜନେ । ଦେଖି ବାଞ୍ଛନ୍ତି ଶୂନ୍ୟସ୍ଥାନେ ॥ ୬୬
୨୯ ତୁମ୍ଭେ ଅଟ ସେ ଭଗବାନ । ନ ଗଣି ଆମ୍ଭର ହେଳନ ॥ ୬୭
ସ୍ୱଭାବେ ଆମ୍ଭେ ଗ୍ରାମ୍ୟ ଜନ । ଆମ୍ଭର ଘରେ ହେଲ ଜନ୍ମ ॥ ୬୮
ଯେ ତୁମ୍ଭେ ନିଜଜନପକ୍ଷ । ସ୍ଥାପନେ ଅଟ ଅତି ଦକ୍ଷ ॥ ୬୯
୩୦ ବଚନ କହିଅଛୁ ଯାହା । ସତ୍ୟ କରିବା ପାଇଁ ତାହା ॥ ୭୦
ମୋ ଘରେ ନାଥ ! ହେଲୁ ଜନ୍ମ । କରିବା ଅର୍ଥେ ସାଂଖ୍ୟଜ୍ଞାନ ॥ ୭୧
ଭଗତ ଜନଙ୍କର ମାନ- । ବୃଦ୍ଧି କି ଅଟୁ ତୁ ନିଦାନ ॥ ୭୨
୩୧ ଅଛନ୍ତି ଅଲୌକିକ ହୋଇ । ଚତୁର୍ଭୁଜାଦି ରୂପ ଯେହି ॥ ୭୩
ତୋହର ଧାରଣକୁ ନାଥ । ସେ ରୂପମାନେ ହିଁ ଉଚିତ ॥ ୭୪
ମନୁଷ୍ୟାକାର ରୂପମାନ । ଯାହା ବାଞ୍ଛନ୍ତି ଭକ୍ତଜନ ॥ ୭୫
ଯୋଗାଇ ତୋତେ ସେ ରୂପହିଁ । ସ୍ୱଭାବେ ରୂପ ତୋର ନାହିଁ ॥ ୭୬
୩୨ ପଣ୍ଡିତେ ତତ୍ତ୍ୱଜ୍ଞାନ ଅର୍ଥେ । ତୋ ପାଦପୀଠକୁ ଜଗତେ ॥ ୭୭
କରନ୍ତି ସଦା ନମସ୍କାର । ତୁ ଅଟୁ ଏମନ୍ତ ଈଶ୍ୱର ॥ ୭୮
ଐଶ୍ୱର୍ଯ୍ୟ, ବଇରାଗ୍ୟ, ଜ୍ଞାନ । ଯଶ, ବୀର୍ଯ୍ୟରେ ଅଟୁ ପୂର୍ଣ୍ଣ ॥ ୭୯
ଭୋ ନାଥ ! ମୁହିଁ ଅବିରତେ । ଶରଣ ପଶୁଅଛି ତୋତେ ॥ ୮୦
୩୩ ତୁ ନାଥ ! ପରମ ଈଶ୍ୱର । ଅଧୀନ ଶକ୍ତିମାନେ ତୋର ॥ ୮୧
ପ୍ରଧାନ, ପୁରୁଷ ବୋଲାଉ । ମହତ କାଳରୂପୀ ହେଉ ॥ ୮୨
ତୁ ଅହଂକାର ଲୋକରୂପୀ । ତୁ ଲୋକପାଳ ରୂପେ ବ୍ୟାପୀ ॥ ୮୩
ଚିତ୍‌ଶକ୍ତିଯୋଗେ ହୋଏ ଲୀନ । ତୋ'ଠାରେ ସକଳ ଭୁବନ ॥ ୮୪
ସର୍ବଜ୍ଞ କପିଳ-ଶରୀର । ଶରଣ ପଶିଲି ତୋ' ଠାର ॥ ୮୫
୩୪ ତୁ ପ୍ରଜାପତିଙ୍କର ନାଥ । ତୁ ଯେ ହୋଇଲୁ ମୋର ସୁତ ॥ ୮୬
ତେଣୁ ଶୁଝିଲି ଋଣମାନ । କାମ ହିଁ ହେଲା ମୋର ପୂର୍ଣ୍ଣ ॥ ୮୭
ଏ ଘେନି ପଚାରୁଛି ତୋତେ । ପରିବ୍ରାଜକ ଦୀକ୍ଷାମତେ ॥ ୮୮
ନିଜ ହୃଦରେ ତୋତେ ଧରି । ଭ୍ରମିବି ଶୋକ ଦୂର କରି ॥ ୮୯

ଶ୍ରୀଭଗବାନୁବାଚ

୩୫ ବୈଦିକ ଲୌକିକ ଯେ କୃତ୍ୟ । ତହିଁ ପ୍ରମାଣ ମୋ ଭାଷିତ ॥ ୯୦
ତୋହର ପୁତ୍ର ହେବି ବୋଲି । ପୂର୍ବେ ମୁଁ ବଚନ କହିଲି ॥ ୯୧
ସେ ବାକ୍ୟ ସତ୍ୟ କରିବାରେ । ଜନ୍ମ ଲଭିଲି ତୋର ଘରେ ॥ ୯୨

୩୬ ଲିଙ୍ଗଶରୀରୁଁ ବିମୋକ୍ଷଣ । ବାଞ୍ଛନ୍ତି ଯେଉଁ ମୁନିଗଣ ॥ ୯୩
ତାଙ୍କର ଆତ୍ମା ଦରଶନେ । ସମ୍ମତ ତତ୍ତ୍ୱଙ୍କ ଗଣନେ ॥ ୯୪
ଏ ମର୍ତ୍ତ୍ୟଲୋକରେ ମୋହର । ଏ ଜନ୍ମ ଜାଣ ମୁନିବର ॥ ୯୫
୩୭ ଏ ସୂକ୍ଷ୍ମ ଆତ୍ମମାର୍ଗ ଥିଲା । କାଳବିଶେଷୁଁ ନାଶ ଗଲା ॥ ୯୬
ତାହା ପ୍ରବର୍ତ୍ତାଇବା ପାଇଁ । ଏ ଦେହ ଧଇଲଇଁ ମୁହିଁ ॥ ୯୭
୩୮ ଅନୁଜ୍ଞା ଦେଲଇ ମୁଁ ତୋତେ । ଗମନ କର ଯଥାମତେ ॥ ୯୮
ମୋ'ଠାରେ କର୍ମ ସମର୍ପିଣ । *ଦୁର୍ଜୟ ମୃତ୍ୟୁକୁ ଜିଣିଣ ॥ ୯୯
ମୋକ୍ଷକୁ ଲଭିବା ନିମିତ୍ତେ । ମୋତେ ତୁ ଭଜ ଦୃଢ଼ଚିତ୍ତେ ॥୧୦୦
୩୯ ମୁଁ ଆତ୍ମାରୂପୀ ସ୍ୱୟଂଜ୍ୟୋତି । ସକଳ ହୃଦେ ମୋର ସ୍ଥିତି ॥୧୦୧
ମୋତେ ତୁ ଆପଣାରଠାରେ । ଦେଖନ୍ତେ ନିଜ ମନଦ୍ୱାରେ ॥୧୦୨
ସକଳ ଶୋକ ଛାଡ଼ି ଦୂରେ । ମୋକ୍ଷକୁ ଲଭିବୁ ନିର୍ଭରେ ॥୧୦୩
୪୦ ସକଳ-କର୍ମବିନାଶନ । ଅଟଇ ଯେଉଁ ଆତ୍ମଜ୍ଞାନ ॥୧୦୪
ତାହା ମାତାକୁ ଦେବି ମୁହିଁ । ଯେଣେ ନିର୍ଭୟ ହେବ ଏହି ॥୧୦୫

ଶ୍ରୀମୈତ୍ରେୟ ଉବାଚ

୪୧ ଏମନ୍ତେ କପିଳବଚନ । ଶୁଣି କର୍ଦ୍ଦମ ତୋଷମନ ॥୧୦୬
ତାହାଙ୍କୁ ପ୍ରଦକ୍ଷିଣ କଲେ । ବନମାର୍ଗକୁ ଚଳିଗଲେ ॥୧୦୭
୪୨ ମଉନ ବ୍ରତକୁ ଧରିଣ । ଆତ୍ମାକୁ କରି ସେ ଶରଣ ॥୧୦୮
ସକଳ ସଙ୍ଗ ଦୂର କରି । ଅଗ୍ନିସେବନ ଅପହରି ॥୧୦୯
ଧରଣୀ ମଧ୍ୟରେ ଭ୍ରମିଲେ । ଗୃହ-ଆସକ୍ତି ଦୂର କଲେ ॥୧୧୦
୪୩ ଯେ ସତ, ଅସତ ରୂପର । ନିର୍ଗୁଣ, ସଗୁଣ ପ୍ରକାର ॥୧୧୧
ଅବ୍ୟଭିଚାରୀ ଭଗତିରେ । ପ୍ରତ୍ୟକ୍ଷ ହୋଏ ଯେ ଆତ୍ମାରେ ॥୧୧୨
୪୪ ସେ ବ୍ରହ୍ମଠାରେ ଦେଇ ମନ । ନିରତେ ଅହଂକାରଶୂନ୍ୟ ॥୧୧୩
ହୋଇଣ ମମତାରହିତ । ସହି ବରଷା, ଖରା, ଶୀତ ॥୧୧୪
ସମଦରଶୀ ସବୁଠାରେଁ । ସ୍ୱଦୃଷ୍ଟି ଅଟଇ ଆତ୍ମାରେ ॥୧୧୫
ବ୍ରହ୍ମପ୍ରବଣ ଶାନ୍ତ ମତି । ସେ ଧୀର ଜାଣେ ସର୍ବଗତି ॥୧୧୬
ଶାନ୍ତ ହୁଅନ୍ତେ ଊର୍ମିମାନ । ସମୁଦ୍ର ଦିଶଇ ଯେସନ ॥୧୧୭
୪୫ ଆତ୍ମା ସକଳ ଜୀବଙ୍କର । ଯେ ବାସୁଦେବ ଯୋଗେଶ୍ୱର ॥୧୧୮
ଦୃଢ଼ ଭାବରେ ତାଙ୍କଠାରେ । ମନ ଦେଇଣ ନିରନ୍ତରେ ॥୧୧୯

* "ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ତ୍ୱା ବିଦ୍ୟୟାମୃତମଶ୍ନୁତେ ॥" (ଈଶ.ଉପ.)

୪୬ ଆତ୍ମାରୂପରେ ସର୍ବଭୂତେ । ହରିଙ୍କି ଦେଖିଲା ସଂତତେ ॥୧୨୦
୪୭ ଯେ ଆତ୍ମରୂପୀ ଭଗବାନ । ତହିଁ ଦେଖିଲା ଭୂତମାନ ॥୧୨୧
ଯେ ଇଚ୍ଛାଦ୍ୱେଷରେ ରହିତ । ସକଳଠାରେ ସମଚିତ୍ତ ॥୧୨୨
ତେଣେ ବିଷ୍ଣୁରେ କରି ରତି । ଲଭିଲା ଭାଗବତ ଗତି ॥୧୨୩
ଏମନ୍ତ ବିଦୁରର ଆଗେ । ମୈତ୍ରେୟ କହେ ଅନୁରାଗେ ॥୧୨୪
ନିର୍ମଳ ଭାଗବତ ବାଣୀ । ଭାଷାପ୍ରବନ୍ଧେ ପରିମାଣି ॥୧୨୫
ସକଳ ପ୍ରାଣୀଙ୍କର ହିତ । ତୃତୀୟ ସ୍କନ୍ଧ ଭାଗବତ ॥୧୨୬
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ କର ଏଣେ ଲୟେ ॥୧୨୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀକର୍ଦ୍ଦମପ୍ରବ୍ରଜ୍ୟା ନାମ ଚତୁର୍ବିଂଶୋଽଧ୍ୟାୟଃ ॥

## ପଞ୍ଚବିଂଶୋଽଧ୍ୟାୟଃ

ପଞ୍ଚବିଂଶେ ଜନନ୍ୟା ତୁ ପୃଷ୍ଟୋ ବନ୍ଧବିମୋଚନମ୍ ।
ଆଦାବାହ ପରଂ ଭକ୍ତିଲକ୍ଷଣଂ କପିଳଃ ସୁତଃ ॥ ୧ ॥
କପିଳେନାର୍ପିତା ମାତ୍ରେ ଗୂଢ଼ଭାବନିୟନ୍ତ୍ରିତା ।
ଯୋଗମାଣିକ୍ୟମଞ୍ଜୁଷା ସ୍ଫୁଟମୁଦ୍‌ଘାଟ୍ୟତେଽଧୁନା ॥ ୨ ॥

ଶ୍ରୀଶୌନକ ଉବାଚ

୧ ପ୍ରାଣୀଙ୍କ ଆତ୍ମଜ୍ଞାନ ଅର୍ଥେ । ତତ୍ତ୍ୱସଂଖ୍ୟାନ ଏ ଜଗତେ ॥ ୧
କପିଳରୂପେ ଭଗବାନ । ନିଜ ମାୟାରେ ହେଲେ ଜନ୍ମ ॥ ୨
୨ ଅନେକ ବାର ମନ ଦେଇ । ବିଷ୍ଣୁଙ୍କୁ ଶୁଣି ମୁଁ ଅଛଇ ॥ ୩
ପୁରୁଷଙ୍କର ମଧ୍ୟେ ସାର । ଏ ସର୍ବଯୋଗୀମଧ୍ୟେ ବର ॥ ୪
ଶୁଣନ୍ତେ ତାହାଙ୍କର କୀର୍ତ୍ତି । ଇନ୍ଦ୍ରିୟେ ତୃପ୍ତି ନ ଲଭନ୍ତି ॥ ୫
୩ ସ୍ୱଚ୍ଛନ୍ଦ ଆତ୍ମା ଭଗବାନ । ମାୟାରେ ଯେଉଁ ଯେଉଁ ମାନ ॥ ୬
ବିଧାନ କରେ ଏ ଜଗତେ । ସେ କଥାମାନ କହ ମୋତେ ॥ ୭
କୀର୍ତ୍ତନଯୋଗ୍ୟ କଥା ସେହି । ତହିଁରେ ଶ୍ରଦ୍ଧା ମୋ ଅଛଇ ॥ ୮

### ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୪ | ମିତ୍ର ଅଟନ୍ତି ବ୍ୟାସଙ୍କର । | ମୈତ୍ରେୟ ନାମେ ମୁନିବର | ॥ | ୯ |
| | ତାଙ୍କୁ ବିଦୁର ଏ ପ୍ରକାରେ । | ପୃଚ୍ଛନ୍ତେ ସେ ଆତ୍ମବିଦ୍ୟାରେ | ॥ | ୧୦ |
| | ଚିତ୍ତେ ସଂତୋଷ ହୋଇ ମୁନି । | କହିଲେ ପ୍ରଶ୍ନକ୍ରମ ଘେନି | ॥ | ୧୧ |

### ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୫ | ପିତା ଗମନ୍ତେ ବନପଥେ । | ନିଜ ଜନନୀପ୍ରୀତି ଅର୍ଥେ | ॥ | ୧୨ |
| | ସେ ବିନ୍ଦୁସରେ କଲେ ସ୍ନାନ । | କପିଳରୂପୀ ଭଗବାନ | ॥ | ୧୩ |
| ୬ | ପ୍ରାଣୀଙ୍କି ତତ୍ତ୍ୱମାର୍ଗପାର । | ଦେଖାଇବାରେ ଶକ୍ତି ଯାର | ॥ | ୧୪ |
| | ଅଟନ୍ତି କର୍ମରେ ରହିତ । | ସ୍ୱଭାବେ ଆପଣାର ସୁତ | ॥ | ୧୫ |
| | ସ୍ମରନ୍ତେ ବିଧାତାର ବାଣୀ । | ତାହାଙ୍କୁ ବିଷ୍ଣୁ ବୋଲି ଜାଣି | ॥ | ୧୬ |
| | ଜ୍ଞାନମାର୍ଗରେ ଦେଇ ମତି । | ବୋଇଲେ ମାତା ଦେବହୂତି | ॥ | ୧୭ |

### ଶ୍ରୀଦେବହୂତିରୁବାଚ

| | | | | |
|---|---|---|---|---|
| ୭ | ବିଷୟ-ଅଭିଳାଷୁଁ ମୁହିଁ । | ଭୋ ନାଥ ! ଶ୍ରାନ୍ତି ଲଭିଲଇଁ | ॥ | ୧୮ |
| | ଯେଉଁ ବିଷୟରସ ନିତ୍ୟେ । | କରନ୍ତେ ସଂଭାବନା ଚିତ୍ତେ | ॥ | ୧୯ |
| | ଘୋର ସଂସାର ଅନ୍ଧକାରେ । | ପ୍ରବେଶ ହେଲି ମୁଁ ତହିଁରେ | ॥ | ୨୦ |
| ୮ | ଅପାର ଘୋର ଅନ୍ଧକାର । | ପାରଗ ଚକ୍ଷୁ ତୁ ମୋହର | ॥ | ୨୧ |
| | ଅନେକ ଜନ୍ମ ଅନ୍ତେ ମୁହିଁ । | ତୋ' ଅନୁଗ୍ରହୁଁ ଲଭିଲଇଁ | ॥ | ୨୨ |
| ୯ | ପ୍ରାଣୀଙ୍କ ପ୍ରଭୁ ଯେ ଅଟଇ । | ସେ ଆଦ୍ୟ ଭଗବାନ ତୁହି | ॥ | ୨୩ |
| | ଅଜ୍ଞାନ-ଅନ୍ଧ ଲୋକଙ୍କର । | ତୁ ନେତ୍ର ଯେହ୍ନେ ଦିବାକର | ॥ | ୨୪ |
| ୧୦ | ଭୋ ଦେବ ଏବେ ମୋର ମୋହ । | ନାଶିବାକୁ ତୁ ଯୋଗ୍ୟ ହୁଅ | ॥ | ୨୫ |
| | ଅହଂତା ମମତା ଏ ଦୁଇ । | ଆଗ୍ରହ ଦେହେ ଯେ ଅଛଇ | ॥ | ୨୬ |
| | ସେ ବେନି କଥା ଭୋ ଈଶ୍ୱର । | କଳ୍ପିତ ଅଟଇ ତୋହର | ॥ | ୨୭ |
| ୧୧ | ତୁ ନିଜ ଭୃତ୍ୟ ଜନଙ୍କର । | ସଂସାରତରୁକୁ କୁଠାର | ॥ | ୨୮ |
| | ଶରଣଯୋଗ୍ୟ ଅଟୁ ତୁହି । | ତୋତେ ଶରଣ ଗଲି ମୁହିଁ | ॥ | ୨୯ |
| | ପ୍ରକୃତି ପୁରୁଷ ଯେ ଦୁଇ । | ତାହାଙ୍କୁ ଜାଣିମାର ପାଇଁ | ॥ | ୩୦ |
| | ତୋତେ କରୁଛି ନମସ୍କାର । | ତୁ ଧର୍ମବନ୍ତ ମଧ୍ୟେ ବର | ॥ | ୩୧ |

### ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧୨ | ପୁରୁଷମାନଙ୍କର ଯେହି । | ଅପବର୍ଗକୁ ପ୍ରବର୍ତ୍ତାଇ | ॥ | ୩୨ |
| | ଏ ରୂପେ ମାତାର ବାଞ୍ଛିତ । | ଶ୍ରବଣ କରି କର୍ଣ୍ଣପଥ | ॥ | ୩୩ |

| | | | |
|---|---|---|---|
| | ପ୍ରଶଂସା କରି ନିଜ ମତି । | ସେ ଆତ୍ମବନ୍ତ ସାଧୁଗତି | ।। ୩୪ |
| | ମୁଖେ ଶୋଭିତ ମନ୍ଦହାସ । | ବଚନ କଲେକ ପ୍ରକାଶ | ।। ୩୫ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୧୩ | ଅଧ୍ୟାତ୍ମଯୋଗ ପ୍ରାଣୀଙ୍କର । | ମୋକ୍ଷାର୍ଥେ ମତ ଏ ମୋହର | ।। ୩୬ |
| | ଯହିଁରେ ଦୁଃଖସୁଖ ଦୁଇ । | ନିବୃତ୍ତି ଅତିଶୟ ହୋଇ | ।। ୩୭ |
| ୧୪ | ସେ ଯୋଗ କହିବଇଁ ତୋତେ । | ପୂର୍ବେ ମୁଁ ଋଷିଙ୍କ ଅଗ୍ରତେ | ।। ୩୮ |
| | ଯେ ଯୋଗ କରିଛି ବଖାଣ । | ଯେ ଅଟେ ଅଷ୍ଟାଙ୍ଗନିପୁଣ | ।। ୩୯ |
| ୧୫ | ଯେ ଆତ୍ମା ବନ୍ଧମୋକ୍ଷ ଦୁଇ । | ମନ କାରଣ ଅଟେ ତହିଁ | ।। ୪୦ |
| | ଗୁଣେ ଆସକ୍ତ ହୋଇ ଯେବେ । | ବନ୍ଧନନିମିତ୍ତେହୋଏ ତେବେ | ।। ୪୧ |
| | ଈଶ୍ୱରଠାରେ ହେଲେ ରତ । | ଅପବର୍ଗକୁ କରେ ଜାତ | ।। ୪୨ |
| ୧୬ | ଅହଂତା ମମତା ରୂପରେ । | ଯେ ଅଭିମାନ ପ୍ରାଣୀଠାରେ | ।। ୪୩ |
| | ତହୁଁ ଅଛନ୍ତି ଜାତ ହୋଇ । | କାମଲୋଭାଦି ମଳ ଯେହି | ।। ୪୪ |
| | ତେଣେ ରହିତ ଯେବେ ମନ । | ବିଶୁଦ୍ଧ ସୁଖଦୁଃଖହୀନ | ।। ୪୫ |
| ୧୭ | ତେବେ ଆତ୍ମାକୁ ଦେଖେ ନର । | ଯେ ଏକ, ପ୍ରକୃତିରୁ ପର | ।। ୪୬ |
| | ଭେଦରହିତ, ସ୍ୱୟଂଜ୍ୟୋତି । | ସୂକ୍ଷ୍ମ ଅପରିଚ୍ଛିନ୍ନ ଅତି | ।। ୪୭ |
| ୧୮ | ଜ୍ଞାନବୈରାଗ୍ୟ-ଭକ୍ତିଯୁତ । | ଅଟଇ ଯେଉଁ ନିଜ ଚିତ୍ତ | ।। ୪୮ |
| | ତେଣେ ଆତ୍ମାକୁ ଉଦାସୀନ । | 'କରିଣ ଦେଖଇ ସେ ଜନ | ।। ୪୯ |
| | ସେ ଲୋକ ନିସ୍ତେଜ କରିଣ । | ଦେଖଇ ପ୍ରକୃତିକି ପୁଣ | ।। ୫୦ |
| ୧୯ | ସର୍ବାତ୍ମା ଭଗବାନଠାରେ । | ଯେବେ ଭକ୍ତିକି ଯୁକ୍ତ କରେ | ।। ୫୧ |
| | ଯୋଗୀଙ୍କ ବ୍ରହ୍ମସିଦ୍ଧି ପାଇଁ । | ତା' ସମ ସୁଖ ମାର୍ଗ ନାହିଁ | ।। ୫୨ |
| ୨୦ | ସଙ୍ଗକୁ ମଣନ୍ତି ଆତ୍ମାର । | ସୁଦୃଢ଼ ପାଶ ଜ୍ଞାନୀ ନର | ।। ୫୩ |
| | ସେ ସଙ୍ଗ କଲେ ସାଧୁଠାର । | ନିରାବରଣ ମୋକ୍ଷଦ୍ୱାର | ।। ୫୪ |
| ୨୧ | ସହିଷ୍ଣୁ, କରୁଣାସଂଯୁତ । | ସକଳ ପ୍ରାଣୀଙ୍କର ମିତ | ।। ୫୫ |
| | ଅଜାତଶତ୍ରୁ ଯେ ଅଟନ୍ତି । | ଶାସ୍ତ୍ରକୁ ଅନୁବର୍ତ୍ତି ଥାନ୍ତି | ।। ୫୬ |
| | ସର୍ବଦା ଅଟନ୍ତି ଯେ ଶାନ୍ତ । | ଉତ୍ତମ ଚରିତେ ଭୂଷିତ | ।। ୫୭ |
| ୨୨ | ଅନନ୍ୟଭାବେ ମୋତେ ଚିନ୍ତି । | ଦୃଢ଼ ଭଗତି ଯେ କରନ୍ତି | ।। ୫୮ |
| | ମୋର ନିମିତ୍ତେ କର୍ମମାନ । | ଛାଡ଼ନ୍ତି ବାନ୍ଧବସ୍ୱଜନ | ।। ୫୯ |

୨୩ ମୋର ମଧୁର କଥାମାନ । ଶୁଣନ୍ତି, କରନ୍ତି ଗାୟନ ।। ୬୦
ତାଙ୍କୁ ବିବିଧ ତାପମାନେ । ବାଧି ନ ପାରନ୍ତି ଭୁବନେ ।। ୬୧
ଯେଣୁ ସେ ମୋରଠାରେ ଚିତ୍ତ । ଦେଇ ଥାଆନ୍ତି ଅବିରତ ।। ୬୨
୨୪ ହେ ସାଧ୍ୱି ! ସାଧୁ ସେ ଅଟନ୍ତି । ସକଳ ସଙ୍ଗକୁ ଛାଡ଼ନ୍ତି ।। ୬୩
ତାହାଙ୍କ ସଙ୍ଗ ତୁମ୍ଭେ କର । ସେ ଯେଣୁ ସଙ୍ଗଦୋଷହର ।। ୬୪
୨୫ ପ୍ରସଙ୍ଗୁଁ ସାଧୁଜନଙ୍କର । ବୀର୍ଯ୍ୟ ପ୍ରକାଶକ ମୋହର ।। ୬୫
ଜାତ ହୁଅନ୍ତି କଥାମାନ । ଯେ ହୃଦକର୍ଣ୍ଣ-ରସାୟନ ।। ୬୬
ଅପବର୍ଗକୁ ମାର୍ଗ ମୁହିଁ । ସେ କଥା ଶ୍ରବଣୁଁ ମୋଠାଇଁ ।। ୬୭
ପ୍ରଥମେ ଶ୍ରଦ୍ଧା, ପୁଣ ରତି । ଜାତ ହୁଅଇ କ୍ରମେ ଭକ୍ତି ।। ୬୮
୨୬ ସୃଷ୍ଟ୍ୟାଦି ଲୀଳା ମୋର ଯେତେ । ତା' ଅନୁଚିନ୍ତା କରି ଚିତ୍ତେ ।। ୬୯
ଯେବଣ ଭକ୍ତିଯୋଗ ଜାତ । ତେଣେ ପୁରୁଷ ହୋଇ ରତ ।। ୭୦
ନୟନଶ୍ରବଣଗୋଚରେ । ଇନ୍ଦ୍ରିୟସୁଖ ଯେ ସଂସାରେ ।। ୭୧
ତହିଁରୁ ବଇରାଗ୍ୟ ପାଇ । ଆପଣେ ଯୋଗଯୁତ ହୋଇ ।। ୭୨
ଯେ ଋଜୁ ଯୋଗମାର୍ଗମାନ । ତାହାଙ୍କୁ କରିଣ ସାଧନ ।। ୭୩
ଆପଣା ଚିତ୍ତବଶ ଅର୍ଥେ । ଯତ୍ନ କରିବ ଅବିରତେ ।। ୭୪
୨୭ ପ୍ରକୃତିଗୁଣମାନଙ୍କର । ସେବାକୁ କରି ପରିହାର ।। ୭୫
ବୈରାଗ୍ୟ ବିଜୃମ୍ଭିତ[୧] ଜ୍ଞାନେ । ଅଷ୍ଟାଙ୍ଗଯୋଗର ବିଧାନେ ।। ୭୬
ମୋଠାରେ ସମର୍ପିତ ହୋଇ । ଯେବଣ ଭକ୍ତିଯୋଗ ଥାଇ ।। ୭୭
ତେଣେ ପୁରୁଷ ମୋତେ ପାଇ । ସକଳ ଆତ୍ମାରୂପ ମୁହିଁ ।। ୭୮

ଶ୍ରୀଦେବହୂତିରୁବାଚ

୨୮ ତୁମ୍ଭର ଠାରେ ଯେ ଉଚିତ । ସେ ଭକ୍ତି କିରୂପେ ବିଦିତ ।। ୭୯
ସେ ଅବା କି ରୂପେ ମୋହର । ହେ ପ୍ରଭୁ ହୋଇବ ଗୋଚର ।। ୮୦
ତୋର ନିର୍ବାଣପଦ ମୁହିଁ । ଯେଉଁ ଭକ୍ତିରେ ଲଭିବଇଁ ।। ୮୧
୨୯ ଭଗବାନଙ୍କୁ ଲକ୍ଷ୍ୟ କରେ । ସ୍ୱୟେଂ ନିର୍ବାଣରୂପ ଧରେ ।। ୮୨
ଏମନ୍ତ ରୂପେ ଅଛୁ କହି । ଯେଉଁ ଯୋଗକୁ ପୂର୍ବେ ତୁହି ।। ୮୩
ସେ ଯୋଗ ଅଟେ କି ପ୍ରକାର । କେତେ ଅଛନ୍ତି ଅଙ୍ଗ ତାର ।। ୮୪
ତତ୍ତ୍ୱମାର୍ଗର ଅବବୋଧ । ଯେବଣ ଯୋଗରୁ ପ୍ରସିଦ୍ଧ ।। ୮୫

---

୧. ବିଜୃମ୍ଭିତ = ପ୍ରକାଶିତ ।

୩୦ ଦୁର୍ବୋଧ ଅଟଇ ସେ ଯୋଗ । ପ୍ରକାଶି କହ ତା' ମୋ ଆଗ ॥ ୮୬
ଭୋ ହରି ! ମନ୍ଦବୁଦ୍ଧି ମୁହିଁ । ସ୍ୱଭାବେ ବନିତା ଅଟଇ ॥ ୮୭
ଯେମନ୍ତେ ଅନୁଗ୍ରହୁଁ ତୋର । ସୁଖେ ଜାଣିମି ସେ ପ୍ରକାର ॥ ୮୮

ଶ୍ରୀମୈତ୍ରେୟ ଉବାଚ

୩୧ ଏମନ୍ତେ ମାତାଙ୍କର ଅର୍ଥ । ଜାଣି କପିଳ ତୋଷଚିତ୍ତ ॥ ୮୯
ଯାହା ଗର୍ଭରୁ ଦେହ ବହି । ସ୍ୱୟେଂ ଅଛନ୍ତି ଜନ୍ମ ହୋଇ ॥ ୯୦
ଯହିଁରେ ତତ୍ତ୍ୱଙ୍କ ଗଣନ । ଯାହାକୁ ସାଂଖ୍ୟ ବୋଲେ ଜନ ॥ ୯୧
ତାହା କହିଲେ ତାଙ୍କ ଆଗ । ଆବର ଭକ୍ତିଯୋଗ, ଯୋଗ ॥ ୯୨

ଶ୍ରୀଭଗବାନୁବାଚ

୩୨ ଯାହାର ବିଶୁଦ୍ଧ ମାନସ । ନ ଥାଇ ବିଷୟାଦି ଦୋଷ ॥ ୯୩
୩୩ ତାହାର ଯେତେକ ଇନ୍ଦ୍ରିୟ । ଯେତେ ଦେବତା ତଦାଶ୍ରୟ ॥ ୯୪
ତାହାଙ୍କ କର୍ମ ବେଦେ ଉକ୍ତ । ରୂପ ଆଦିରେ ସେହୁ ବ୍ୟକ୍ତ ॥ ୯୫
ସେମାନଙ୍କର ବିଷ୍ଣୁଠାରେ । ଯେ ବୃତ୍ତି ହୋଏ ସ୍ୱଭାବରେ ॥ ୯୬
ନିଷ୍କାମ ଭକ୍ତି ସେ ବୋଲାଇ । ମୋକ୍ଷସୁଖରୁ ସେ ବଳଇ ॥ ୯୭
ଲିଙ୍ଗଶରୀରକୁ ସେ ଦହେ । ଜଠରାନଳ ଯେହ୍ନେ ଦେହେ ॥ ୯୮
ଅନ୍ନବ୍ୟଞ୍ଜନ ଆଦିମାନ । ତକ୍ଷଣେ କରଇ ଦହନ ॥ ୯୯
୩୪ ଯେ ମୋର ପାଦେ ଅବିରତ । ମୋ' ଅର୍ଥେ ଯାହାଙ୍କ ଚେଷ୍ଟିତ ॥୧୦୦
ସାଯୁଜ୍ୟ ନାମେ ମୋକ୍ଷ ମୋର । ଇଚ୍ଛା ନ କରନ୍ତି ସେ ନର ॥୧୦୧
ଯେବଣ ଭାଗବତମାନେ[୧] । ଆସକ୍ତି କରି ଅନ୍ୟୋଅନ୍ୟେ[୨] ॥୧୦୨
ମୋହର ପଉରୁଷମାନ । ଶୁଣି କରନ୍ତି ସମ୍ମାନନ ॥୧୦୩
୩୫ ହେ ମାତ ! ସେହି ସାଧୁମାନେ । ମୋହର ଗୁଣାନବାଦନେ ॥୧୦୪
ରୁଚିର ପ୍ରସନ୍ନ ବଦନ । ବରଦ ଅରୁଣଲୋଚନ ॥୧୦୫
ଏମନ୍ତ ଦିବ୍ୟ ରୂପମାନ । କରନ୍ତି ମୋର ଦରଶନ ॥୧୦୬
ସେ ରୂପମାନଙ୍କ ସଙ୍ଗରେ । ଭାଷନ୍ତି ବଚନ ମଧୁରେ ॥୧୦୭
୩୬ ଯହିଁ ରୁଚିର ଅଙ୍ଗଠାଣି । ବିଳାସ ହାସ ନେତ୍ର ବାଣୀ ॥୧୦୮
ସେ ରୂପେ ଯାହାର ମାନସ । ଲୋଚନ ଆଦି ହୋଏ ବଶ ॥୧୦୯
ଇଚ୍ଛା ନ କଲେହେଁ ତାହାଙ୍କୁ । ମୋ ଭକ୍ତି ଦିଅଇ ମୋକ୍ଷକୁ ॥୧୧୦

---

୧. ଭକ୍ତମାନେ । ୨. ଅନ୍ୟୋଅନ୍ୟେ = ପରସ୍ପରେ ।

୩୭ ମୁଁ ଯେ ଅଟଇ ମାୟାଧର । ଯେ ବା ବିଭୂତି ଅଛି ମୋର ॥୧୧୧
ଯେ ଜାତ ଭକ୍ତି ଅନନ୍ତର । ଅଣିମା ଆଦି ଯୋଗସାର ॥୧୧୨
ମଙ୍ଗଳରୂପୀ ମୋ ସଂପତ୍ତି । ସେମାନେ ସ୍ପୃହା ନ କରନ୍ତି ॥୧୧୩
ତଥାପି ବଇକୁଣ୍ଠଲୋକେ । ଏମାନ ଲଭନ୍ତି ସେ ସୁଖେ ॥୧୧୪
୩୮ ଭୋ ମାତ ଯେ ମୋହର ଦାସ । କେବେହେଁ ନୁହନ୍ତି ସେ ନାଶ ॥୧୧୫
ଯେ କାଳଚକ୍ର ମୋ ଆୟୁଧ । ତାହାଙ୍କୁ ନ କରଇ ବଧ ॥୧୧୬
ଯାହାଙ୍କ ପ୍ରିୟ ଆତ୍ମା ମୁହିଁ । ସୁତପ୍ରାୟକ ସ୍ନେହଭୂଇଁ ॥୧୧୭
ସଖାର ପ୍ରାୟକ ବିଶ୍ୱାସୀ । ଗୁରୁପ୍ରାୟକ ହିତାଶଂସୀ[୧] ॥୧୧୮
ସୁହୃଦପ୍ରାୟ ହିତକାରୀ । ପୂଜ୍ୟ ଇଷ୍ଟଦେବତା ପରି ॥୧୧୯
୩୯ ଯେ ଇହ ପର ଲୋକ ଦୁଇ । ଆତ୍ମା ଏଥିରେ ସଂଚରଇ ॥୧୨୦
୪୦ ଆତ୍ମାକୁ ଅନୁଗତ ହୋଇ । ଯେ ଦ୍ରବ୍ୟ, ପଶୁ, ଗୃହ, ମହୀ ॥୧୨୧
ଛାଡ଼ି ସକଳ ଆନ ସୁଖ । ମୁଁ ଯେ ଅଟଇ ବିଶ୍ୱମୁଖ ॥୧୨୨
ଯେ ମୋତେ ଅନନ୍ୟ ଭକ୍ତିରେ । ଭଜନ୍ତି, ମୁଁ ତାହାଙ୍କୁ ତାରେ ॥୧୨୩
୪୧ ମୁଁ ଯେ ଅଟଇ ଭଗବାନ । ସମସ୍ତ ପ୍ରାଣୀଙ୍କ ଜୀବନ ॥୧୨୪
ପ୍ରଧାନ ପୁରୁଷ ଈଶ୍ୱର । ମୋହର ବିନୁ ଆନଠାର ॥୧୨୫
ନିବର୍ତ୍ତ[୨] ନୁହଇ ସଂସାର । ଜନିତ ଭୟ ମହାଘୋର ॥୧୨୬
୪୨ *ମୋହର ଭୟୁଁ ବହେ ବାତ । ମୋ ଭୟେ ତାପଇ ଆଦିତ୍ୟ ॥୧୨୭
ଇନ୍ଦ୍ର ବରଷେ ଅଗ୍ନି ଦହେ । ମୃତ୍ୟୁ ଭ୍ରମଇ ଜନ୍ତୁଦେହେ ॥୧୨୮
୪୩ ଜ୍ଞାନ-ବୈରାଗ୍ୟରେ ସଂଯୁତ । ଭଗତିଯୋଗରେ ଭୋ ମାତ ॥୧୨୯
ଆପଣା ମଙ୍ଗଳକାରଣେ । ମୋ ପାଦମୂଳେ ଯୋଗିଗଣେ ॥୧୩୦
ଶରଣ ପଶନ୍ତି ସେ ଯାଇଁ । ଯହିଁ କାହିଁରୁ ଭୟ ନାହିଁ ॥୧୩୧
୪୪ ଏତେକ ମାତ୍ର ଏ ସଂସାରେ । ତୀବ୍ର ଭକ୍ତିରେ ମୋର ଠାରେ ॥୧୩୨
ମନକୁ ଯାହା ସ୍ଥିର କରେ । ପୁରୁଷ ମଙ୍ଗଳ ବିସ୍ତାରେ ॥୧୩୩
ଏମନ୍ତ ତତ୍ତ୍ୱଜ୍ଞାନ ବାଣୀ । ଭାବେ କହିଲେ ଚକ୍ରପାଣି ॥୧୩୪

---

୧. ହିତାଶଂସୀ = ହିତୋପଦେଷ୍ଟା । ୨. ନିବୃତ୍ତ । (?)

* ଭୀଷାସ୍ମାଦ୍ ବାତଃ ପବତେ ଭୀଷୋଦେତି ସୂର୍ଯ୍ୟଃ ।
ଭୀଷାସ୍ମାଦଗ୍ନିଶ୍ଚେନ୍ଦ୍ରଶ୍ଚ ମୃତ୍ୟୁର୍ଧାବତି ପଞ୍ଚମଃ ॥ (ଶ୍ରୁତିଃ)

ସେ ଦୟାସାଗର ମୁରାରି । ମାତାବିଷୟେ ଦୟା କରି ।।୧୩୫
ସୁଜନ ଜନେ ରସ ତେଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ।।୧୩୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀ ଭକ୍ତିଯୋଗୋ ନାମ ପଞ୍ଚବିଂଶୋଽଧ୍ୟାୟଃ ।।

## ଷଡ୍‌ବିଂଶୋଽଧ୍ୟାୟଃ

ଷଡ଼ବିଂଶେ ପୁଂପ୍ରକୃତ୍ୟୋସ୍ତୁ ବିବେକାୟୋପବର୍ଣ୍ଣ୍ୟତେ ।
ସାଂଖ୍ୟେନ ସର୍ବଭାବାନାଂ ଜନ୍ମ ଲକ୍ଷଣଭେଦତଃ ।। ୧ ।।
ଧାତ୍ରା ପୁତ୍ରାୟ ଯଦ୍ ପ୍ରୋକ୍ତଂ କ୍ଷତ୍ରେ ମିତ୍ରାସୁତେନ ଯଦ୍ ।
ମାତ୍ରେ ସାଂଖ୍ୟଂ ତଦଧ୍ୟାତ୍ମଂ ପ୍ରାଧାନ୍ୟେନାହ ତତ୍ତ୍ୱବିଦ୍ ।। ୨ ।।

ଶ୍ରୀଭଗବାନୁବାଚ

୧ ଏବେ ଗୋ ତତ୍ତ୍ୱଙ୍କ ଲକ୍ଷଣ । କହିବା ଏକେ ଏକେ ଶୁଣ ।। ୧
ପୁରୁଷ ଯାହା ଜାଣିଥାଇ । ପ୍ରକୃତିଗୁଣୁଁ ମୁକ୍ତ ହୋଇ ।। ୨
୨ ଆତ୍ମପ୍ରକାଶ ଜ୍ଞାନ ଯେହି । ହୃଦୟଗ୍ରନ୍ଥିକି ଭେଦଇ ।। ୩
ତେଣେ ପୁରୁଷ ମୋକ୍ଷ ହୋଇ । ଏମନ୍ତ ଜ୍ଞାନୀ ଛନ୍ତି କହି ।। ୪
ତୋହର ଅଗ୍ରତେ ସେ କଥା । ପ୍ରକାଶ କରିବା ଗୋ ମାତା ।। ୫
୩ ଯେ ଆତ୍ମା ସେ ଅଟେ ପୁରୁଷ । ପ୍ରତିଲୋମରେ ତା' ପ୍ରକାଶ ।। ୬
ଅନାଦି, ପ୍ରକୃତିରୁ ପର । ଗୁଣସଂବନ୍ଧ ନାହିଁ ତାର ।। ୭
ସେ ସ୍ୱୟଂଜ୍ୟୋତିରୂପ ହୋଇ । ଯେଣେ ଜଗତ ପ୍ରକାଶଇ ।। ୮
୪ ବିଷ୍ଣୁର ସଂବନ୍ଧୀ ଯେ ହୋଇ । ସୂକ୍ଷ୍ମ ପ୍ରକୃତି ଗୁଣମୟୀ ।। ୯
ମିଳିଲା ଆସି ଯଦୃଚ୍ଛାରେ । ତାକୁ ଭଜିଲା ସେ ଲୀଳାରେ ।। ୧୦
୫ *ସତ୍ତ୍ୱାଦି ତିନି ଗୁଣ ଯେହି । ତେଣେ ସେ ବିଚିତ୍ର ଅଟଇ ।। ୧୧
ଆତ୍ମାସମାନେ ପ୍ରଜାମାନ । କରଇ ନିଜ ଦେହୁଁ ଜନ୍ମ ।। ୧୨

---

* ଅଜାମେକାଂ ଲୋହିତଶୁକ୍ଳକୃଷ୍ଣାଂ ବହ୍ୱୀଃ ପ୍ରଜାଃ ସୃଜମାନାଂ ସରୂପାଃ ।
ଅଜୋ ହ୍ୟେକୋ ଯୁଷମାଣୋଽନୁଶେତେ ।
ଯହାତ୍ୟେନାଂ ଭୁକ୍ତଭୋଗା ମଜୋଽନ୍ୟଃ (ଶ୍ରୁତିଃ)

ଏମନ୍ତ ପ୍ରକୃତି ଦେଖିଲା । ଜୀବ ତତ୍‌କାଳ ମୋହ ହେଲା ॥ ୧୩
ଲୋକର ଜ୍ଞାନ ଯେବା ଥାଇ । ତାହା ସେ ଆଚ୍ଛନ୍ନ କରଇ ॥ ୧୪
୬ ଏମନ୍ତ ପ୍ରକାରେ ପୁରୁଷ । ଲଭିଣ ପ୍ରକୃତି ସ୍ପରଶ ॥ ୧୫
ପ୍ରକୃତିଗୁଣେ ଦେଇ ମନ । କରନ୍ତେ ନାନା କର୍ମମାନ ॥ ୧୬
ନିଜ ଆତ୍ମାରେ କର୍ତ୍ତାଭାବ । ମଣଇ ସେ କାରଣୁଁ ଜୀବ ॥ ୧୭
୭ ସାକ୍ଷୀ ରୂପରେ ଯେଣୁ ଥାଇ । ଏ ଘେନି କର୍ତ୍ତା ସେ ନୋହଇ ॥ ୧୮
ଏମନ୍ତ ହେଲେହେଁ ତାହାର । ହୁଅଇ କର୍ମବନ୍ଧ ଘୋର ॥ ୧୯
ଯଦ୍ୟପି ଅଟେ ସେ ଈଶ୍ୱର । ପର-ଅଧୀନ ଭୋଗ ତାର ॥ ୨୦
ସୁଖସ୍ୱରୂପ ସେ ଅଟଇ । ଜନମମୃତ୍ୟୁକୁ ଲଭଇ ॥ ୨୧
ଆତ୍ମାକୁ କର୍ତ୍ତାପ୍ରାୟ ମଣି । ଏତେକ ଲଭେ ଜୀବ ପୁଣି ॥ ୨୨
୮ କାର୍ଯ୍ୟ ଅଟଇ ଯେ ଶରୀର । କାରଣ ଇନ୍ଦ୍ରିୟନିକର ॥ ୨୩
ଇନ୍ଦ୍ରିୟପତି ଦେବଗଣ । କର୍ତ୍ତାରୂପରେ ସେ ପ୍ରମାଣ ॥ ୨୪
ଜୀବର ଜନ୍ମାନ୍ତେ ଏ ପୁଣ । ବୋଲନ୍ତି ପ୍ରକୃତି କାରଣ ॥ ୨୫
ଯେ ଅଟେ ପ୍ରକୃତିରୁ ପର । ସେ ପୁରୁଷକୁ ଜ୍ଞାନୀ ନର ॥ ୨୬
ସୁଖଦୁଃଖଙ୍କ ଭୋକ୍ତାଭାବେ । କାରଣ ବୋଲନ୍ତି ସ୍ୱଭାବେ ॥ ୨୭

## ଶ୍ରୀଦେବହୂତିରୁବାଚ

୯ ହେ ପୁରୁଷୋତ୍ତମ ! ବଖାଣ । ପ୍ରକୃତିପୁରୁଷଲକ୍ଷଣ ॥ ୨୮
ବିଶ୍ୱକାରଣ ଯେହୁ ଦୁଇ । ଯହିଁରୁ ସ୍ଥୂଳସୂକ୍ଷ୍ମ ହୋଇ ॥ ୨୯

## ଶ୍ରୀ ଭଗବାନୁବାଚ

୧୦ ଭୋ ମାତ ! ପ୍ରଧାନ ଯେ ହୋଇ । ତାକୁ ପ୍ରକୃତି ବୋଲି କହି ॥ ୩୦
ବିଶେଷି ଯାକୁ ନୋହେ କହି । ବିଶେଷ-ଆଶ୍ରୟ ଅଟଇ ॥ ୩୧
ଅବ୍ୟକ୍ତରୂପ ସେ ତ୍ରିଗୁଣ । କାର୍ଯ୍ୟକାରଣ ରୂପେ ଜାଣ ॥ ୩୨
୧୧ ଯେ ପଞ୍ଚ, ପଞ୍ଚ, ଚାରି, ଦଶ । ଏ ରୂପେ ଗଣ ଚତୁର୍ବିଂଶ ॥ ୩୩
ପ୍ରଧାନକାର୍ଯ୍ୟରୂପୀ ଏହି । ଏହାଙ୍କୁ ବ୍ରହ୍ମ ବୋଲି କହି ॥ ୩୪
୧୨ ଭୂମି, ସଲିଳ, ଅଗ୍ନି, ବାତ । ନଭ ଏ ପଞ୍ଚ ମହାଭୂତ ॥ ୩୫
ଗନ୍ଧ, ସ୍ପରଶ ରୂପ ଆଦି । ପଞ୍ଚତନ୍ମାତ୍ର ଏ ପ୍ରସିଦ୍ଧି ॥ ୩୬
୧୩ ଇନ୍ଦ୍ରିୟମାନେ ଦଶ ପୁଣ । ରସନ, ନୟନ, ଶ୍ରବଣ ॥ ୩୭

୧୪ ଚର୍ମ, ନାସିକା, ପାଦ, କର । ବଚନ, ଶିଶ୍ନ, ଗୁଦଦ୍ୱାର ॥ ୩୮
ମାନସ, ଅହଂକାର, ବୁଦ୍ଧି । ଚିତ୍ତ ଏ ରୂପରେ ପ୍ରସିଦ୍ଧି ॥ ୩୯
ଅନ୍ତଃକରଣ ଭେଦ ଚାରି । ବୃତ୍ତି ଲକ୍ଷଣେ ଜାଣିପାରି ॥ ୪୦
୧୫ ସଗୁଣ ବ୍ରହ୍ମ ସନ୍ନିବେଶ । ଯେତେକ କଲି ମୁଁ ପ୍ରକାଶ ॥ ୪୧
ତତ୍ତ୍ୱଜ୍ଞେ କହନ୍ତି ଏତେକ । କାଳାଖ୍ୟ ଯେ ପଞ୍ଚବିଂଶକ ॥ ୪୨
୧୬ ଈଶ୍ୱରପ୍ରଭାବକୁ କେହି । କାଳ ବୋଲିଣ ଛନ୍ତି କହି ॥ ୪୩
ଯେ ଅହଂକାରେ ମୂଢ଼ ହୋଇ । ପ୍ରକୃତିବଶ ହୋଇଥାଇ ॥ ୪୪
ସେ କର୍ତ୍ତାରୂପୀ ଜୀବ ତାର । ଯାହା ସକାଶୁଁ ଭୟ ଘୋର ॥ ୪୫
୧୭ ଯେ ଗୁଣସାମ୍ୟରୂପ ହୋଇ । ପ୍ରକୃତି ବିଖ୍ୟାତ ଅଟଇ ॥ ୪୬
ସେ ପୁଣି ଅଟେ ନିର୍ବିଶେଷ । ତା' ଚେଷ୍ଟା ଯା'ଠାରୁ ପ୍ରକାଶ ॥ ୪୭
ହେ ମନୁପୁତ୍ରି ! କାଳ ହୋଇ । କଥିତ ହୋଇଅଛି ସେହି ॥ ୪୮
୧୮ ପୁରୁଷରୂପେ ଯେ ଅନ୍ତରେ । ବାହାରେ କାଳସ୍ୱରୂପରେ ॥ ୪୯
ମାୟାରେ ଅନୁଗତ ହୋଇ । ପ୍ରାଣୀଙ୍କ ଭଗବାନ ସେହି ॥ ୫୦
୧୯ ଜୀବ-ଅଦୃଷ୍ଟୁଁ[୧] ଯେଉଁ ସ୍ଥାନେ । କ୍ଷୁଭିତ ହେଲେ ଗୁଣମାନେ ॥ ୫୧
ଆପଣା ଯୋନି ସେ ଅଟଇ । ପ୍ରକୃତିନାମକୁ ବହଇ ॥ ୫୨
ତା'ଠାରେ ପରମ ପୁରୁଷ । ଚିଚ୍ଛକ୍ତି[୨] କଲେକ ନିବେଶ ॥ ୫୩
ସେ ମହତ୍‌ତତ୍ତ୍ୱ କଲା ଜାତ । ସେ ଅଟେ ଅତି ତେଜବନ୍ତ ॥ ୫୪
୨୦ ଲୟ-ବିକ୍ଷେପ ନାହିଁ ଯାର । ଯେ ଅଟେ ଜଗତ-ଅଙ୍କୁର ॥ ୫୫
ସକଳ ଲୋକ ଆତ୍ମଗତେ । ସେ ପୁଣି ପ୍ରକାଶ କରନ୍ତେ ॥ ୫୬
ଯେବା ପ୍ରଳୟତମ[୩]-ଥିଲା । ଆପଣା ତେଜେ ତା' ନାଶିଲା ॥ ୫୭
ଯେଉଁ ତମରେ ଲୀନ ହୋଇ । ଥିଲା ସେ ପ୍ରକୃତିରେ ରହି ॥ ୫୮
୨୧ ଯେ ସ୍ୱଚ୍ଛ, ଶାନ୍ତ ସତ୍ତ୍ୱଗୁଣ । ଭଗବାନର ପ୍ରାପ୍ତିସ୍ଥାନ ॥ ୫୯
ତାହାକୁ ବାସୁଦେବ କହି । ସେ ଚିତ୍ତ ମହଦାତ୍ମା ସେହି ॥ ୬୦
୨୨ ସ୍ୱଚ୍ଛ, ପ୍ରଶାନ୍ତ, ଅବିକାର । ଏ ଭାବେ ପୁଣ ସେ ଚିତ୍ତର ॥ ୬୧
ବୃତ୍ତିରେ ଲକ୍ଷଣ କଥିତ । ଜଳର ପ୍ରକୃତି ଯେମନ୍ତ ॥ ୬୨
ମଧୁର, ସ୍ୱଚ୍ଛ, ଶାନ୍ତ ହୋଇ । ଭୂମି[୪] ସଂସର୍ଗକୁ ନ ପାଇ ॥ ୬୩

---

୧. ଜୀବର ଅଦୃଷ୍ଟରୁ । ୨. ଜ୍ଞାନଶକ୍ତି । ୩. ପ୍ରଳୟ ଅନ୍ଧକାର ।
୪. ଭୂତ ।

୨୩ ଭଗବାନର ବୀର୍ଯ୍ୟୁ ଜାତ । ଅଟଇ ଯେଉଁ ମହତ୍ତତ୍ତ୍ୱ ॥ ୬୪
ବିକାର ଲଭନ୍ତେ ତାହାର । କ୍ରିୟାଶକତି ଅହଂକାର ॥ ୬୫
ତକ୍ଷଣେ ସଂଭୂତ ହୋଇଲା । ତ୍ରିବିଧ ରୂପ ସେ ଧଇଲା ॥ ୬୬
୨୪ ବଇକାରିକ, ତଇଜସ । ତାମସରୂପେ ସେ ପ୍ରକାଶ ॥ ୬୭
ମନ, ଇନ୍ଦ୍ରିୟ, ମହାଭୂତେ । ଅଧୀଶ ଦେବତା ସହିତେ ॥ ୬୮
ସେ ତିନି ଅହଂକାରୁ ଜାତ । ଏବେ କହିବି ଶୁଣ ମାତ ! ॥ ୬୯
୨୫ ସଂକରଷଣାଖ୍ୟ[୧] ପୁରୁଷ । ଅନନ୍ତ ସହସ୍ରଶିରଷ ॥ ୭୦
ଭୂତ-ଇନ୍ଦ୍ରିୟ-ମନୋବ୍ୟାପୀ । ଯେବଣ ଅହଂକାରରୂପୀ ॥ ୭୧
୨୬ ସେ ଅହଂକାରେ କର୍ତ୍ତାଭାବ । ଦେବତାରୂପେ ଅନୁଭବ ॥ ୭୨
ଇନ୍ଦ୍ରିୟରୂପେ ଗୁଣ ତହିଁ । କାରଣଭାବେ ଅଛି ରହି ॥ ୭୩
କାର୍ଯ୍ୟତ୍ୱ ସେହି ଅହଂକାରେ । ରହିଛି ଭୂତସ୍ୱରୂପରେ ॥ ୭୪
ଶାନ୍ତ, ଘୋର, ମୂଢ଼ତ୍ୱ ତହିଁ । ସତ୍ତ୍ୱାଦିରୂପେ ଅଛି ରହି ॥ ୭୫
୨୭ ବଇକାରିକ ଅହଂକାର । ତକ୍ଷଣେ ଲଭନ୍ତେ ବିକାର ॥ ୭୬
ମନସ୍ତତ୍ତ୍ୱ ହେଲା ତହିଁରୁ । ଯାର [୨]ସଂକଳ୍ପ ବିକଳ୍ପରୁ ॥ ୭୭
କାମ ସଂଭବ ହେଲା ତହିଁ । ସେ ବୃତ୍ତିରୂପେ ଏଣୁ ରହି ॥ ୭୮
୨୮ ଯାହାକୁ ଅନିରୁଦ୍ଧ କହି । ଇନ୍ଦ୍ରିୟ-ଅଧୀଶ ଅଟଇ ॥ ୭୯
ଶରଦକାଳ ଇନ୍ଦୀବର । ସମାନ ଶ୍ୟାମ କଳେବର ॥ ୮୦
ଦୁର୍ଗ୍ରହ ଭାବୁଁ ମନ୍ଦ ମନ୍ଦେ । ସାଧନ୍ତି ଯାଙ୍କୁ ଯୋଗିବୃନ୍ଦେ ॥ ୮୧
୨୯ ତୈଜସ ନାମ ଅହଂକାର । ହେ ସତି ! ଲଭନ୍ତେ ବିକାର ॥ ୮୨
ଯାହାର ବୁଦ୍ଧିତତ୍ତ୍ୱ ନାମ । ତହିଁରୁ ହେଲା ସେ ଜନମ ॥ ୮୩
ଦ୍ରବ୍ୟସ୍ଫୁରଣରୂପ ହୋଇ । ବିଜ୍ଞାନ ଉପୁଜଇ ଯହିଁ ॥ ୮୪
ସର୍ବଇନ୍ଦ୍ରିୟମାନଙ୍କର । ଅନୁଗ୍ରହର ଯେ ଆକାର[୩] ॥ ୮୫
୩୦ *ସଂଶୟ, ମିଥ୍ୟାଜ୍ଞାନ ଦୁଇ । ନିଶ୍ଚୟ, ସ୍ମୃତି ଯେବା ହୋଇ ॥ ୮୬
ନିଦ୍ରାସହିତେ ପଞ୍ଚ ପୁଣ । ଅଟନ୍ତି ବୁଦ୍ଧିର ଲକ୍ଷଣ ॥ ୮୭
ବୃତ୍ତିଭେଦରୁ ଭିନ୍ନେ ଭିନ୍ନେ । ପ୍ରକାଶ ହୁଅନ୍ତି ସେମାନେ ॥ ୮୮

---

୧. ସଂକର୍ଷଣନାମକ ।
୨. ସଂକଳ୍ପ = ଚିନ୍ତନ; ବିକଳ୍ପ = ବିଶେଷଚିନ୍ତନ (ସ୍ୱାମୀ) ।
୩. ଆକର (?)
* ''ପ୍ରମାଣ-ବିପର୍ଯ୍ୟୟ-ବିକଳ୍ପ-ନିଦ୍ରା-ସ୍ମୃତୟଃ'' (ପାତଂଜଳ ଯୋଗସୂତ୍ର) ।

୩୧ ବିଭାଗୁଁ କ୍ରିୟାର ଜ୍ଞାନର । ଇନ୍ଦ୍ରିୟେ ଯେ ବେନି ପ୍ରକାର ॥ ୮୯
ତୈଜସ ଅହଂକାରୁଁ ଜାତ । ସେମାନେ ଅଟନ୍ତି ସମସ୍ତ ॥ ୯୦
ତୈଜସ ଅଟଇ ଯେ ପ୍ରାଣ । ତାହାର କ୍ରିୟାଶକ୍ତି ଗୁଣ ॥ ୯୧
ସେ କ୍ରିୟାଯୋଗୁଁ କର୍ମେନ୍ଦ୍ରିୟ । ଅଟନ୍ତି-ତଇଜସମୟ ॥ ୯୨
ଯେ ବୁଦ୍ଧି ତୈଜସ ଅଟଇ । ବିଜ୍ଞାନଶକ୍ତି ଅଛି ଯହିଁ ॥ ୯୩
ଜ୍ଞାନ ଇନ୍ଦ୍ରିୟେ ସେ ହେତୁରେ । ତୈଜସ ଅଟନ୍ତି ସଂସାରେ ॥ ୯୪
୩୨ ନିଜ ବୀର୍ଯ୍ୟକୁ ଭଗବାନ । କରନ୍ତେ ନେଇ ନିଯୋଜନ ॥ ୯୫
ତାମସ ନାମେ ଅହଂକାର । ତକ୍ଷଣେ ଲଭିଲା ବିକାର ॥ ୯୬
ତହିଁରୁ ହୋଇଲା ଅମ୍ବର[1] । ତନ୍ମାତ୍ର ଅଟେ ଶବ୍ଦ ଯାର ॥ ୯୭
୩୩ ଶବ୍ଦକୁ ଅନୁଗତ ହୋଇ । ଶ୍ରୋତ ଇନ୍ଦ୍ରିୟ ପ୍ରବର୍ତ୍ତଇ ॥ ୯୮
ଅର୍ଥକୁ ବ୍ୟକତ କରଇ । ବକ୍ତାର ସ୍ୱରକୁ ଚିହ୍ନଇ ॥ ୯୯
ନଭର ତନ୍ମାତ୍ର ଅଟଇ । ଶବ୍ଦଲକ୍ଷଣ ଜ୍ଞାନୀ କହି ॥୧୦୦
୩୪ ବାହ୍ୟେ ଅନ୍ତରେ ଅବକାଶ । ପ୍ରାଣୀଙ୍କ କରଇ ପ୍ରକାଶ ॥୧୦୧
ପ୍ରାଣ, ଇନ୍ଦ୍ରିୟ ଆତ୍ମା[2]ଙ୍କର । ନାଡ଼ି-ଛିଦ୍ରଭାବୁଁ ଆଧାର ॥୧୦୨
ଆକାଶବୃତ୍ତି ଏ ଲକ୍ଷଣ । ଭୋ ମାତ ! ସାବଧାନେ ଶୁଣ ॥୧୦୩
୩୫ ଶବ୍ଦତନ୍ମାତ୍ର ଅଟେ ଯାର । କାଳବଳେ ସେ ଆକାଶର ॥୧୦୪
ବିକାର ହୁଅନ୍ତେ ପ୍ରକାଶ । ତହିଁରୁ ହୋଇଲା ସ୍ପରଶ ॥୧୦୫
ତହୁଁ ପବନ ଚର୍ମ ହୋଇ । ସ୍ପର୍ଶସଂଗ୍ରହ ଯହିଁ ପାଇ ॥୧୦୬
୩୬ ମୃଦୁ କଠିନ ଭାବବେନି । ଶୀତତ୍ୱ, ଉଷ୍ଣତ୍ୱ ଯା' ବେନି ॥୧୦୭
ସ୍ପର୍ଶର ଲକ୍ଷଣ ଅଟଇ । ପବନ-ତନ୍ମାତ୍ର ହିଁ ସେହି ॥୧୦୮
୩୭ ଶାଖାଦି କରଇ ଚାଳନ । ତୃଣାଦି କରଇ ମେଳନ ॥୧୦୯
ଯେ ଦ୍ରବ୍ୟ ହୋଇଥାଇ ସ୍ଥିର । ତାକୁ ପୁଆଇ ସ୍ଥାନାନ୍ତର ॥୧୧୦
ଯେ ଦ୍ରବ୍ୟ ହୋଇ ଗନ୍ଧବନ୍ତ । ତାକୁ ନିଅଇ ନାସାପଥ ॥୧୧୧
ଯେ ଶବ୍ଦ ଦୂରରେ ଶୁଭଇ । ତାହାକୁ ଶ୍ରବଣକୁ ନେଇ ॥୧୧୨
ଇନ୍ଦ୍ରିୟଙ୍କର ଆତ୍ମା ହୋଇ । ପବନକର୍ମ ଏ ଅଟଇ ॥୧୧୩
୩୮ ଦଇବପ୍ରେରିତ ଯେ ହୋଇ । ସ୍ପରଶ ତନ୍ମାତ୍ର ବହଇ ॥୧୧୪
୩୯ ସେ ପବନରୁ ରୂପ ଜାତ । ତହିଁରୁ ତେଜ ସମୁତ୍‌ଥିତ ॥୧୧୫

---

୧. ଅମ୍ବର = ଆକାଶ । ୨. ଆତ୍ମା = ମନ । (ସ୍ୱାମୀ)

| | | | |
|---|---|---|---|
| | ନୟନମୂର୍ତ୍ତି ସେ ହୋଇଣ । | ରୂପକୁ କରଇ ଗ୍ରହଣ | ॥୧୧୬ |
| | ଦ୍ରବ୍ୟର ଆକୃତି ଅଟଇ । | ଦ୍ରବ୍ୟରେ ମିଶି ବ୍ୟକ୍ତ ହୋଇ | ॥୧୧୭ |
| | ଦ୍ରବ୍ୟର ଯେତେ ସନ୍ନିବେଶ । | ସେ ରୂପେ ହୁଅଇ ପ୍ରକାଶ | ॥୧୧୮ |
| | ତେଜର ତନ୍‌ମାତ୍ର ଅଟଇ । | ରୂପମାତ୍ରର ବୃତ୍ତି ଏହି | ॥୧୧୯ |
| ୪୦ | ଦ୍ୟୋତ[୧]-ପଚନ-ଭକ୍ଷ-ପାନ । | ଶୋଷଣ, ହିମବିନାଶନ | ॥୧୨୦ |
| | ଆବର କ୍ଷୁଧାତୃଷା ବେନି । | ତେଜର ବୃତ୍ତିରୂପ ଘେନି | ॥୧୨୧ |
| ୪୧ | ରୂପ ତନ୍‌ମାତ୍ର ଅଟେ ଯାର । | ଦଇବବଶୁଁ ସେ ତେଜର | ॥୧୨୨ |
| | ବିକାରୁଁ ସମ୍ଭବିଲା ରସ । | ତହିଁରୁ ସଲିଳ ପ୍ରକାଶ | ॥୧୨୩ |
| | ଜିହ୍ୱା ଇନ୍ଦ୍ରିୟ ଜାତ ହୋଇ । | ରସକୁ ଗ୍ରହଣ କରଇ | ॥୧୨୪ |
| ୪୨ | କଷାୟ, ମଧୁର, ଲବଣ । | ତିକ୍ତ, କଟୂମ୍ଳ ରୂପେ ପୁଣ | ॥୧୨୫ |
| | ଭୌତିକ ବିକାରୁଁ ପ୍ରକାଶ । | ଷଡ଼ ପ୍ରକାର ଏକା ରସ | ॥୧୨୬ |
| ୪୩ | ମୃତ୍ତିକା ଆଦି ଦ୍ରବ୍ୟମାନ । | କରଇ କ୍ଲେଦନ, ପିଣ୍ଡନ, | ॥୧୨୭ |
| | ତୋଷକୁ ଦିଅଇ, *ଜିଆଇ । | ଆପ୍ୟାନ[୨], ମୃଦୁତ୍ୱ କରଇ | ॥୧୨୮ |
| | ତାପ ନାଶଇ, ହୋଏ ବୃଦ୍ଧି । | ଜଳପ୍ରକୃତି ଏ ପ୍ରସିଦ୍ଧି | ॥୧୨୯ |
| ୪୪ | ରସତନ୍‌ମାତ୍ର ଜଳ ଯେହି । | ଦଇବୁଁ ବିକାର ଲଭଇ | ॥୧୩୦ |
| | ତହିଁରୁ ଗନ୍ଧମାତ୍ର ଧରି । | ଜାତ ହୋଇଲା ବସୁନ୍ଧରୀ | ॥୧୩୧ |
| | ନାସିକା ଇନ୍ଦ୍ରିୟ ହୋଇଣ । | ସେ ଗନ୍ଧ କରଇ ଆଘ୍ରାଣ | ॥୧୩୨ |
| ୪୫ | ମିଶ୍ରିତ, ପୂତି, ସଉରଭ । | ଶାନ୍ତ, ଉଗ୍ର, ଅମ୍ଳାଦି ଭାବ | ॥୧୩୩ |
| | ଏ ରୂପେ ଭିନ୍ନ ଭିନ୍ନ ନାମେ । | ଦ୍ରବ୍ୟ-ଅଙ୍ଗର ବଇଷମ୍ୟେ | ॥୧୩୪ |
| | ଏକା ଗନ୍ଧର ଭେଦମାନେ । | ପ୍ରକାଶିଅଛନ୍ତି ଭୁବନେ | ॥୧୩୫ |
| ୪୬ | ବ୍ରହ୍ମର ପ୍ରତିମାଦିଦ୍ୱାରେ । | ସାକାର ଭାବ ସିଦ୍ଧି କରେ | ॥୧୩୬ |
| | ଜଳ-ଆଦିରୁ ଭିନ୍ନ ହୋଇ । | ନିରପେକ୍ଷରେ ଥାଇ ରହି | ॥୧୩୭ |
| | ସକଳ କରଇ ଧାରଣ । | ଆକାଶ-ଆଦି-ବିଶେଷଣ | ॥୧୩୮ |
| | ସର୍ବ ପ୍ରାଣୀଙ୍କ ପୁଂସ୍ତ୍ୱ[୩] ଆଦି । | ପରିଣାମରେ ପାରେ ସାଧି | ॥୧୩୯ |
| | ଏତେକ କଥାଏ ବିଖ୍ୟାତ । | ପୃଥିବୀଲକ୍ଷଣ ଭୋ ମାତ ! | ॥୧୪୦ |

୧. ଦ୍ୟୋତ = ପ୍ରକାଶ  * ''ଅପମୟଃ ପ୍ରାଣଃ'' (ଶ୍ରୁତିଃ)
୨. ତୃଷା କଷ୍ଟ ନିବାରଣ  ୩. ପୁଂସ୍ତ୍ୱ = ପୁରୁଷତ୍ୱ

୪୭ ଆକାଶଗୁଣ ଶବ୍ଦ ଯାର । ବିଷୟ ଶ୍ରୋତ୍ର ନାମ ତାର ॥୧୪୧
ଗୁଣବିଶେଷ ପବନର । ବିଷୟ ଅଟଇ ଯାହାର ॥୧୪୨
ସ୍ପର୍ଶନ ନାମେ ଜ୍ଞାନୀ ଜନେ । ତାହାକୁ ଜାଣନ୍ତି ଭୁବନେ ॥୧୪୩
୪୮ ତେଜ-ଗୁଣବିଶେଷ ଯାର । ବିଷୟ ଚକ୍ଷୁ ନାମ ତାର ॥୧୪୪
ଜଳଗୁଣବିଶେଷ ରସ । ଯାହାର ବିଷୟ ପ୍ରକାଶ ॥୧୪୫
ରସନା ବୋଲି ସାଧୁଜନ । ତାହାକୁ କରନ୍ତି କଥନ ॥୧୪୬
ଗୁଣବିଶେଷ ଧରଣୀର । ଗନ୍ଧ ବିଷୟ ଅଟେ ଯାର ॥୧୪୭
ଘ୍ରାଣ ଇନ୍ଦ୍ରିୟ ସେ ବୋଲାଇ । କହିବା ଶୁଣ ମନ ଦେଇ ॥୧୪୮
୪୯ କାରଣଧର୍ମ କାର୍ଯ୍ୟଠାଇଁ । ଅନ୍ୱୟଭାବରୁ ଦିଶଇ ॥୧୪୯
ଏଣୁ ଆକାଶ ଆଦିଙ୍କର । ଶବ୍ଦାଦି ଗୁଣ ଯେ ପ୍ରକାର[୧] ॥୧୫୦
ଧରଣୀରେ ସେ ସର୍ବଗୁଣ । ପ୍ରକାଶ ହୋଇଅଛି ପୁଣ ॥୧୫୧
୫୦ ଏ ମହଦାଦି ସପ୍ତ ଯେବେ । ମିଶିଲେ[୨] ନାହିଁ ଏକଭାବେ ॥୧୫୨
କାଳ-କର୍ମ-ଗୁଣ ସଙ୍ଗରେ । ଈଶ୍ୱର ମିଳିଲେ ତହିଁରେ ॥୧୫୩
୫୧ ସେ ସର୍ବେ ଈଶ୍ୱରପ୍ରବେଶେ । କ୍ଷୋଭିତ ହୁଅନ୍ତେ ଅବଶେ ॥୧୫୪
ତହିଁରୁ ଅଣ୍ଡ ହେଲା ଜନ୍ମ । ଅଟଇ ସେହୁ ଅଚେତନ ॥୧୫୫
ଯହିଁରୁ ବିରାଟ ପୁରୁଷ । ପ୍ରଥମେ ହୋଇଲା ପ୍ରକାଶ ॥୧୫୬
୫୨ ବିଶେଷ ନାମ ଏ ଅଣ୍ଡର । କ୍ରମବୃଦ୍ଧିରେ ଦଶୋତ୍ତର ॥୧୫୭
ଜଳାଦି-ଆବରଣେ ଯୁତ । ପ୍ରଧାନେ ବାହେ ସେ ବେଷ୍ଟିତ ॥୧୫୮
ହରିସ୍ୱରୂପ ଏ ଜଗତ । ଯହିଁରେ ହୋଇଛି ବିଦିତ ॥୧୫୯
୫୩ ହିରଣ୍ୟମୟ ଅଣ୍ଡକୋଷ । ଯେ ରହିଥିଲା ଜଳଦେଶ ॥୧୬୦
ତହିଁରୁ ସଚେତନ ହୋଇ । ବିରାଟହୃଦେ ମିଶି ଯାଇଁ ॥୧୬୧
ନାନା ପ୍ରକାରେ ଛିଦ୍ରମାନ । ପ୍ରକାଶ କଲେ ଭଗବାନ ॥୧୬୨
୫୪ ପ୍ରଥମେ ମୁଖ, ବାଣୀ ଜାତ । ତା' ସଙ୍ଗେ ଅନଳ ସଂଭୂତ ॥୧୬୩
ନାସିକାବେନି ହେଲେ ଜାତ । ପ୍ରାଣରେ[୩] ହୋଇଣ ଗ୍ରଥିତ ॥୧୬୪
ସେ ବେନି ନାସିକାରେ ଘ୍ରାଣ । ଇନ୍ଦ୍ରିୟ ଜାତ ହେଲା ପୁଣ ॥୧୬୫
୫୫ ଘ୍ରାଣୁଁ ପବନ ସମ୍ଭବିଲା । ଲୋଚନ ଯୁଗ ପୁଣ ହେଲା ॥୧୬୬
ଚକ୍ଷୁ ଇନ୍ଦ୍ରିୟ ହେଲା ଜାତ । ତହିଁରେ ମିଳିଲା ଆଦିତ୍ୟ ॥୧୬୭

---

୧. ପ୍ରସର । ୨. ମିଳିଲେ । ୩. ଘ୍ରାଣରେ (ତୁ.ପ୍ରାଣୋତଃ) ।

| | | | |
|---|---|---|---|
| | କର୍ଣ୍ଣଯୁଗଳ ସମ୍ଭବିଲା । | ଶ୍ରୋତ୍ର ଇନ୍ଦ୍ରିୟ ତହୁଁ ହେଲା | ॥୧୬୮ |
| | ଦେବତାରୂପେ ଦିଗମାନେ । | ପ୍ରବେଶ ହୋଇଲେ ସେ ସ୍ଥାନେ | ॥୧୬୯ |
| ୫୬ | ଜାତ ହୋଇଲା ତାର ଚର୍ମ । | ଜନ୍ମିଲେ ଶ୍ମଶ୍ରୁ ଆଦି ରୋମ | ॥୧୭୦ |
| | ଔଷଧିମାନେ ତଦନ୍ତରେ । | ଜାତ ହୋଇଲେ ସେ ସ୍ଥାନରେ | ॥୧୭୧ |
| | ତଦନନ୍ତରେ ଶିଶ୍ନ ଜାତ । | ତହିଁରୁ ହେଲା ଜଳ ରେତ | ॥୧୭୨ |
| ୫୭ | ଗୁହ୍ୟୁଁ ଅପାନ ସମ୍ଭବିଲା । | ଅପାନୁଁ ମୃତ୍ୟୁ ଜାତ ହେଲା | ॥୧୭୩ |
| | ସକଳ ଲୋକମାନଙ୍କର । | ଯେ ମୃତ୍ୟୁ ଅଟେ ଭୟଙ୍କର | ॥୧୭୪ |
| ୫୮ | ହସ୍ତଯୁଗଳୁଁ ବଳ ଜାତ । | ତହିଁ ରହିଲା ସୁରନାଥ | ॥୧୭୫ |
| | ଜନ୍ମିଲା ପାଦ ତହୁଁ ଗତି । | ତହିଁରେ ବିଷ୍ଣୁ ଅଧିପତି | ॥୧୭୬ |
| ୫୯ | ହୋଇଲେ ନାଡ଼ିମାନେ ଜାତ । | ତହିଁରେ ଜନ୍ମିଲା ରକତ | ॥୧୭୭ |
| | ତହିଁରୁ ଜାତ ନଦୀମାନ । | ପୁଣ ଉଦର ହେଲା ଜନ୍ମ | ॥୧୭୮ |
| ୬୦ | କ୍ଷୁଧାପିପାସା ତହୁଁ ଜାତ । | ତହିଁରେ ସମୁଦ୍ର ସଂଭୂତ | ॥୧୭୯ |
| | ତାର ହୃଦୟୁ ଜାତ ହେଲା । | ହୃଦୟୁଁ ମନ ସମ୍ଭବିଲା | ॥୧୮୦ |
| ୬୧ | ମନୁଁ ଚନ୍ଦ୍ରମା ଜାତ ହେଲା । | ତଦନ୍ତେ ବୁଦ୍ଧି ସମ୍ଭବିଲା | ॥୧୮୧ |
| | ପୁଣ ଅହଂକାର ସଂଭୂତ । | ସେ ଅହଂକାରୁଁ ରୁଦ୍ର ଜାତ | ॥୧୮୨ |
| | ବୁଦ୍ଧିରୁ ବ୍ରହ୍ମା ହେଲା ଜାତ । | କ୍ରମରେ ସମ୍ଭବିଲା ଚିତ୍ତ | ॥୧୮୩ |
| | ଚିତ୍ତରୁ କ୍ଷେତ୍ରଜ୍ଞ ପୁରୁଷ । | ଭୋ ମାତ ହୋଇଲା ପ୍ରକାଶ | ॥୧୮୪ |
| ୬୨ | ଏ ସର୍ବ ଦେବଗଣ ମିଳି । | ତାହାକୁ ନ ପାରିଲେ ଟୋଳି | ॥୧୮୫ |
| | ତାହାର ଉତ୍‌ଥାପନ ପାଇ । | ମିଳିଲେ ଇନ୍ଦ୍ରିୟରେ ଯାଇଁ | ॥୧୮୬ |
| ୬୩ | ବଚନ-ଇନ୍ଦ୍ରିୟଦ୍ୱାରରେ । | ତକ୍ଷଣେ ବଦନ ମଧ୍ୟରେ | ॥୧୮୭ |
| | ଅନଳ ପ୍ରବେଶ ହୋଇଲା । | ବିରାଟ ତେବେ ନ ଉଠିଲା | ॥୧୮୮ |
| | ଘ୍ରାଣ-ଇନ୍ଦ୍ରିୟ କରି ଦ୍ୱାର । | ନାସିକାବିବରକୁ ତାର | ॥୧୮୯ |
| | ପବନ ପ୍ରବେଶ ହୋଇଲା । | ବିରାଟ ତେବେ ନ ଉଠିଲା | ॥୧୯୦ |
| ୬୪ | ଚକ୍ଷୁ-ଇନ୍ଦ୍ରିୟ ଦ୍ୱାରେ ତାର । | ନେତ୍ରଯୁଗଳେ ଦିବାକର | ॥୧୯୧ |
| | ତକ୍ଷଣେ ପ୍ରବେଶ ହୋଇଲା । | ବିରାଟ ତେବେ ନ ଉଠିଲା | ॥୧୯୨ |
| | ଶ୍ରୋତ୍ରଇନ୍ଦ୍ରିୟ କରି ଦ୍ୱାର । | କର୍ଣ୍ଣଯୁଗଳକୁ ତାହାର | ॥୧୯୩ |
| | ଦିଗସମୂହ ଯେ ମିଳିଲା । | ବିରାଟ ତେବେ ନ ଉଠିଲା | ॥୧୯୪ |

୬୫ ଲୋମମାନଙ୍କୁ କରି ଦ୍ୱାର । ଚର୍ମଦେଶରେ ପୁରୁଷର ।।୧୯୫
ଔଷଧିସମୂହ ମିଳିଲା । ବିରାଟ ତେବେ ନ ଉଠିଲା ।।୧୯୬
ତାର ରେତକୁ ଦ୍ୱାର କରି । ଶିଶ୍ନ-ଇନ୍ଦ୍ରିୟକୁ ଆବୋରି ।।୧୯୭
ସଲିଳ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୧୯୮
୬୬ କରିଣ ଅପାନକୁ ଦ୍ୱାର । ଗୁଦଦେଶକୁ ପୁରୁଷର ।।୧୯୯
ମୃତ୍ୟୁ ଯେ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୦୦
ହସ୍ତଯୁଗଳରେ ତାହାର । ବଳଦ୍ୱାରରେ ସୁନାସୀର ।।୨୦୧
ତକ୍ଷଣେ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୦୨
୬୭ ଚରଣଯୁଗକୁ ତାହାର । ଗମନ କରିଣ ଦୁଆର ।।୨୦୩
ବିଷ୍ଣୁ ହିଁ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୦୪
ଲୋହିତ କରି ନିଜ ଦ୍ୱାର । ନାଡ଼ିମାନଙ୍କୁ ପୁରୁଷର ।।୨୦୫
ନଦୀସମୂହ ଯେ ମିଳିଲା । ବିରାଟ ତେବେ ନ ଉଠିଲା ।।୨୦୬
୬୮ କ୍ଷୁଧାପିପାସା କରି ଦ୍ୱାର । ଉଦରମଧ୍ୟେ ପୁରୁଷର ।।୨୦୭
ସିନ୍ଧୁ ଯେ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୦୮
ମନକୁ କରି ନିଜ ଦ୍ୱାର । ହୃଦୟ ମଧ୍ୟେ ପୁରୁଷର ।।୨୦୯
ଚନ୍ଦ୍ରମା ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୧୦
୬୯ ସେ ପୁରୁଷର ବୁଦ୍ଧିଦ୍ୱାରେ । ତକ୍ଷଣେ ହୃଦୟ ମଧରେ ।।୨୧୧
ବ୍ରହ୍ମାହିଁ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୧୨
ଅଭିମାନକୁ କରି ଦ୍ୱାର । ହୃଦୟମଧ୍ୟେ ପୁରୁଷର ।।୨୧୩
ରୁଦ୍ରହିଁ ପ୍ରବେଶ ହୋଇଲା । ବିରାଟ ତେବେ ନ ଉଠିଲା ।।୨୧୪
୭୦ ଚିତ୍ତରେ ହୃଦୟକୁ ଯେବେ । କ୍ଷେତ୍ରଜ୍ଞ ମିଳିଲା ସେ ତେବେ ।।୨୧୫
ସଲିଲୁଁ ବିରାଟ ପୁରୁଷ । ଉଠିଲା ହୋଇଣ ହରଷ ।।୨୧୬
୭୧ ଯେସନେ ଶୋଇଥିଲେ ଜନ । ପ୍ରାଣ, ଇନ୍ଦ୍ରିୟ, ବୁଦ୍ଧି, ମନ ।।୨୧୭
ଅଶକ୍ତ ତା' ଉତ୍‌ଥାପନରେ । ଯେଉଁ କ୍ଷେତ୍ରଜ୍ଞ ଅଭାବରେ ।।୨୧୮
୭୨ କ୍ଷେତ୍ରଜ୍ଞ-ରୂପ ଧରି ଯେହି । ଅଛି ଏ ଶରୀରରେ ରହି ।।୨୧୯
ଭକ୍ତି, ବିରକ୍ତି, ଯୋଗମତି । ଜ୍ଞାନେ ବିଶେଷି ତାଙ୍କୁ ଚିନ୍ତି ।।୨୨୦
ଏମନ୍ତେ ମାତାଙ୍କର ଆଗେ । ସାଂଖ୍ୟ ଯୋଗକୁ ଅନୁରାଗେ ।।୨୨୧

ଜଗତହିତେ ତତ୍ତ୍ୱଜ୍ଞାନ । କହିଲେ ଦେବ ଭଗବାନ ॥୨୨୨
ତାଙ୍କ ଚରଣେ ଚିତ୍ତ ଦେଇ । ବ୍ରାହ୍ମଣ ଦୀନବନ୍ଧୁ କହି ॥୨୨୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁର ମୈତ୍ରେୟସଂବାଦେ
ତତ୍ତ୍ୱସମାମ୍ନାୟୋ ନାମ ଷଡ୍‌ବିଂଶୋଽଧ୍ୟାୟଃ ॥

## ସପ୍ତବିଂଶୋଽଧ୍ୟାୟଃ

ସପ୍ତବିଂଶେ ତତଃ ସମ୍ୟଗ୍ ବହୁସାଧନଯୋଗତଃ ।
ପୁଂପ୍ରକୃତ୍ୟୋର୍ବିବେକେନ ମୋକ୍ଷରୀତିର୍ନିରୂପ୍ୟତେ[୧] ॥ ୧ ॥

ଶ୍ରୀଭଗବାନୁବାଚ

୧ ପୁରୁଷ ପ୍ରକୃତିରେ ଥାଇ । ପ୍ରକୃତିଗୁଣ ଅଟେ ଯେହି ॥ ୧
ସେ ସୁଖଦୁଃଖେ ବଶ ନୋହେ । ଯେଣୁ ନିର୍ଗୁଣ ଭାବ ବହେ ॥ ୨
ଏ ଘେନି କର୍ତ୍ତା ସେ ନୋହଇ । ବିକାର ଭାବ ତାର ନାହିଁ ॥ ୩
ଯେସନେ ସଲିଳ-ମଧ୍ୟର । ପ୍ରକାଶ ହୋଏ ଦିବାକର ॥ ୪
ଜଳଚଳାଦି[୨] ଗୁଣ ଯେହି । ସେ ପୁଣି ସୂର୍ଯ୍ୟଠାରେ ନାହିଁ ॥ ୫
୨ ସେ ଯେବେ ପ୍ରକୃତି ଗୁଣରେ । ଆସକ୍ତ ହୁଅଇ ସଂସାରେ ॥ ୬
୩ ଅହଂକାରରେ ମୂଢ଼ ହୋଏ । ଆତ୍ମାରେ କର୍ତ୍ତାଭାବ ବହେ ॥ ୭
ତେଣୁ ପ୍ରକୃତିସଙ୍ଗୁଁ ଜାତ । କର୍ମ ଦୋଷରେ ଅନିର୍ବୃତ[୩] ॥ ୮
ଦେବତା ନର ପଶୁ ଆଦି । ନାନା ଜାତିରେ ଯେ ପ୍ରସିଦ୍ଧି ॥ ୯
ତାଙ୍କ ଯୋନିରେ ଜାତ ହୋଇ । ଅବଶେ ସଂସାରକୁ ପାଇ ॥ ୧୦
୪ ପ୍ରତ୍ୟକ୍ଷ ନ ଥିଲେହେଁ ଅର୍ଥ । ସଂସାର ନୁହଇ ନିବୃତ୍ତ ॥ ୧୧
ଯେଣୁ ବିଷୟ ସୁଖମାନ । ମନେ ଚିନ୍ତୁଣ ଥାଇ ଜନ ॥ ୧୨
ସ୍ୱପ୍ନରେ ଅର୍ଥ ନ ଥିଲେହେଁ । ଯେହ୍ନେ ଅନର୍ଥ ତହୁଁ ହୋଏ ॥ ୧୩

---

୧. ନିଗଦ୍ୟତେ ।
୨. ଜଳଗତ କଂପାଦି ଗୁଣ ପ୍ରତିବିମ୍ବିତ ସୂର୍ଯ୍ୟଠାରେ ପ୍ରତୀୟମାନ ହେଲେ ମଧ୍ୟ ବସ୍ତୁତଃ ତାହା ସୂର୍ଯ୍ୟର ଗୁଣ ନୁହେଁ ।
୩. ଅନିର୍ବୃତ = ଅଶାନ୍ତ ।

୫ ଯେଣୁ ଏ ମନ ଗୁଣେ ରତ । ହୋଇଣ ବନ୍ଧ କରେ ଜାତ ॥ ୧୪
ଇନ୍ଦ୍ରିୟମାନଙ୍କ ମାର୍ଗରେ । ଆସକ୍ତ ଅଟେ ସ୍ୱଭାବରେ ॥ ୧୫
ଏ ଘେନି ତୀବ୍ର ଭକ୍ତିଯୋଗେ । ଦୃଢ଼ ସଂସାର-ବଇରାଗ୍ୟେ ॥ ୧୬
ଏହାକୁ କରିବ ସ୍ୱବଶ । ସର୍ବ ଅନର୍ଥ ହୋଏ ନାଶ ॥ ୧୭
୬ ଶ୍ରଦ୍ଧାରେ ହୋଇଣ ଅନ୍ୱିତ[1] । ଯମାଦି ଯେତେ ଯୋଗପଥ ॥ ୧୮
ଅଭ୍ୟାସ କରନ୍ତେ ତହିଁରେ । ଅବ୍ୟାଜ ପ୍ରେମେ ମୋହଠାରେ ॥ ୧୯
ଯେବା ମୋହର କଥାମାନ । ତାହାଙ୍କୁ କରିବ ଶ୍ରବଣ ॥ ୨୦
୭ ସକଳ ଭୂତେ ସମ ହେବ । କାହିଁ ବଇର ନ କରିବ ॥ ୨୧
ଛାଡ଼ି ଅସାଧୁ ସଙ୍ଗମାନ । କରିବ ବ୍ରହ୍ମଚର୍ଯ୍ୟ, ମୌନ ॥ ୨୨
ଆପଣା ଧର୍ମ ଯେତେ ଥିବ । ଈଶ୍ୱରଠାରେ ସମର୍ପିବ ॥ ୨୩
୮ ଯେ ଦ୍ରବ୍ୟ ମିଳେ ଅଯତ୍ନରେ । ସଂତୋଷ ହୋଇବ ତହିଁରେ ॥ ୨୪
ଅଳ୍ପ ଆହାରୀ ମୁନି ହୋଇ । ରହିବ ଏକାନ୍ତରେ ଯାଇ ॥ ୨୫
ଶାନ୍ତ ସ୍ୱଭାବ, ମୈତ୍ରଯୁତ । କରୁଣାଶୀଳ ଆତ୍ମବନ୍ତ ॥ ୨୬
୯ ପୁତ୍ରଦାରାଦିଯୁତ ହୋଇ । ଯେବଣ ଶରୀର ଅଛଇ ॥ ୨୭
ତହିଁ ଛାଡ଼ିବ ଅହଂକାର । କରିବ ମମତାକୁ ଦୂର ॥ ୨୮
ପ୍ରକୃତି ପୁରୁଷର ତତ୍ତ୍ୱ । ଯହିଁ ସେ ଜ୍ଞାନେ ହେବ ରତ ॥ ୨୯
୧୦ ଜାଗ୍ରତ ଆଦି ଅପହରି । ଅନ୍ୟ ଦର୍ଶନ ଦୂର କରି ॥ ୩୦
ଯେ ଅହଂକାରେ ଯୁତ ହୋଇ । ଆତ୍ମା ଶରୀରେ ଅଛି ରହି ॥ ୩୧
ଶୁଦ୍ଧ ଆତ୍ମାକୁ ତାହା ଦ୍ୱାରେ । ଜାଣିମ ମନ ଆଦି ଦ୍ୱାରେ ॥ ୩୨
ଅର୍କଅଂଶଭୂତ ନୟନେ । ଅର୍କକୁ ଦେଖଇ ଯେସନେ ॥ ୩୩
୧୧ ଯେ ନିରୁପାଧି ହୋଇ ସ୍ଫୁରେ । ସନ୍ତରୂପରେ ଅହଂକାରେ ॥ ୩୪
ପ୍ରକୃତିର ଯେ ଅଧିଷ୍ଠାନ । କାର୍ଯ୍ୟକୁ କରେ ପ୍ରକାଶନ ॥ ୩୫
ଯେ ପୂର୍ଣ୍ଣ ସର୍ବ ଅନୁଗତ । ସେ ବ୍ରହ୍ମ ଲଭଇ ସାକ୍ଷାତ ॥ ୩୬
୧୨ ଯେହ୍ନେ ପ୍ରତିବିମ୍ବ ସୂର୍ଯ୍ୟର । ପ୍ରକାଶି ଥାଇ ସଲିଳର ॥ ୩୭
ସେ ପ୍ରତିବିମ୍ବ କାନ୍ତି ଯାଇ । ଗୃହ ଭିତରେ ପଡ଼ିଥାଇ ॥ ୩୮
ଗୃହ-କୋଣରେ ଥିଲା ନର । ସେ କାନ୍ତି କରିଣ ଗୋଚର ॥ ୩୯
ଜଳପ୍ରତିବିମ୍ବକୁ ଚାହିଁ । ସେ ଦ୍ୱାରେ ସୂର୍ଯ୍ୟକୁ ଜାଣଇଁ ॥ ୪୦

---

୧. ଅନ୍ୱିତ = ଯୁକ୍ତ ।

୧୩ ଭୂତ-ଇନ୍ଦ୍ରିୟ-ମନୋମୟ । ଯେ ଆତ୍ମା ପ୍ରତିବିମ୍ବତ୍ରୟ ॥ ୪୧
ସେ ତିନି ଗୁଣରେ ସଂଯୁତ । ଯେ ଅହଂକାର ଯେ ତ୍ରିବୃତ୍ତ ॥ ୪୨
ବ୍ରହ୍ମ ଆଭାସ ଅଛି ଯହିଁ । ସେ ରୂପେ ତାକୁ ଲକ୍ଷି ହୋଇ ॥ ୪୩
ସେ ଅହଂକାରେ ସତ୍ୟରୂପୀ । ଆତ୍ମାକୁ ହୁଅଇ ନିରୂପି ॥ ୪୪
୧୪ ଭୂତ ସୂକ୍ଷ୍ମ ଇନ୍ଦ୍ରିୟ ମନ । ବୁଦ୍ଧ୍ୟାଦି ନିଦ୍ରାରେ ବିଲୀନ ॥ ୪୫
ଦେହେ ହୁଅନ୍ତେ ତହିଁ ଥାଇ । ଯେ ନିଦ୍ରା ଅହଂବଶ ନୋହି ॥ ୪୬
୧୫ ପୂର୍ବେ ଯେ ଦ୍ରଷ୍ଟାରୂପେ ଥାଇ । ସୁଷୁପ୍ତିକାଳେ ପୁଣ ସେହି ॥ ୪୭
ଭୂତାଦି ବିଲୀନ ହୁଅନ୍ତେ । ଅହଂକାର ନାଶ ଯାଆନ୍ତେ ॥ ୪୮
ମୃଷାରେ[୧] ମଣେ ନଷ୍ଟପ୍ରାୟେ । ଆତ୍ମାକୁ, ଅନଷ୍ଟ ହେଲେହେଁ ॥ ୪୯
ଯାହାର ବିତ୍ତ ନାଶ ଯାଇ । ସେ ଯେହ୍ନେ ନଷ୍ଟପ୍ରାୟ ହୋଇ ॥ ୫୦
୧୬ ଏ ରୂପେ କରିଣ ବିଚାର । ଆତ୍ମାକୁ ଲଭେ ଜ୍ଞାନୀ ନର ॥ ୫୧
ସଂଯୁତ ହୋଇ ଅହଂକାରେ । ଯେ ଦ୍ରବ୍ୟ ଦେହରୂପେ ସ୍ଫୁରେ ॥ ୫୨
ଆତ୍ମା ତାହାର ଅଧିଷ୍ଠାନ । ପ୍ରକାଶକର୍ତ୍ତା ବୋଲି ଘେନ ॥ ୫୩

ଶ୍ରୀଦେବହୂତିରୁବାଚ

୧୭ ହେ ବିପ୍ର[୨] ! ପୁରୁଷକୁ ପାଇ । ପ୍ରକୃତି ଛାଡ଼ି ନ ପାରଇ ॥ ୫୪
ଦୁହେଁ ଆଶ୍ରୟ ଦୁହିଁ କରି । ଅଛନ୍ତି ନିତ୍ୟତାକୁ ଧରି ॥ ୫୫
୧୮ ଯେସନେ ଭୂମିର ଗନ୍ଧର । ଏକ ଅଭାବେ ନାହିଁ ଆର ॥ ୫୬
ଜଳର ରସର ଯେସନ । ଏକ ଅଭାବେ ନାହିଁ ଆନ ॥ ୫୭
ତେହ୍ନେ ପ୍ରକୃତି ପୁରୁଷହିଁ । ଏକ ଅଭାବେ ଆର ନାହିଁ ॥ ୫୮
୧୯ ଯାହା ଆଶ୍ରୟୁଁ ପୁରୁଷର । କର୍ମଜନିତ ବନ୍ଧ ଘୋର ॥ ୫୯
ପ୍ରକୃତିର ସେ ଗୁଣେ ଥାଉଁ । କୈବଲ୍ୟ ପୁରୁଷର କାହୁଁ ॥ ୬୦
୨୦ ଉତ୍‌କଟ ଭୟ ତତ୍ତ୍ୱଜ୍ଞାନେ । ନିବର୍ତ୍ତେ କହୁଣିସି ମନେ ॥ ୬୧
ଅନିବୃତ୍ତିରୁ ଗୁଣଙ୍କର । ପୁଣି ହୋଏ ସେ ଭୟ ଘୋର ॥ ୬୨

ଶ୍ରୀଭଗବାନୁବାଚ

୨୧ ନିଷ୍କାମ ଧର୍ମ କରିବାରେ । ସମାଧି-ନିର୍ମଳ ମନରେ ॥ ୬୩
ଯେ କଥା ଶ୍ରବଣୁଁ ଜନ୍ମଇଁ । ସେ ତୀବ୍ର ଭକ୍ତିରେ ମୋ ଠାଇଁ ॥ ୬୪
୨୨ ତତ୍ତ୍ୱ ପ୍ରକାଶକ ଜ୍ଞାନରେ । ବଳବତ୍ତର ବୈରାଗ୍ୟରେ ॥ ୬୫
୨୩ ତପସ୍ୟାସଂଯୁତ ଯୋଗରେ । ସୁତୀବ୍ର ଆତ୍ମସମାଧିରେ ॥ ୬୬

୧. ମୃଷାରେ=ବୃଥାରେ । ୨. ପ୍ରଭୁ ।

| | | | | |
|---|---|---|---|---|
| | ରାତ୍ର ଦିବସେ ଦଗ୍ଧ ହୋଇ । | ପୁରୁଷର ପ୍ରକୃତି ଯେହି | ।। | ୬୭ |
| | କ୍ରମରେ ହୋଇବ ବିଲୀନ । | ଅଗ୍ନିରେ ଅରଣି ଯେସନ | ।। | ୬୮ |
| ୨୪ | ଭୋଗମାନଙ୍କୁ ଭୁଂଜେ ଯାର । | କରିଣ ଥାଇ ପରିହାର | ।। | ୬୯ |
| | ନିତ୍ୟରେ ଦୋଷମାନ ଯାର । | କରିଣ ଥାଇ ସେ ଗୋଚର | ।। | ୭୦ |
| | ଏମନ୍ତ ପ୍ରକୃତି ଯେ ହୋଇ । | ଆତ୍ମା-ଅଶୁଭ ନ କରଇ | ।। | ୭୧ |
| | ଯେ ଆତ୍ମା ଈଶ୍ୱର ଅଟଇ । | ଆପଣା ମହିମାରେ ଥାଇ | ।। | ୭୨ |
| ୨୫ | ଯେସନେ ଶୋଇଲା ଲୋକର । | ସ୍ୱପ୍ନେ ଅନର୍ଥ ହୋଏ ଘୋର | ।। | ୭୩ |
| | ସେ ପୁଣ ଲଭିଲେ ଚେତନା । | ସେ ସ୍ୱପ୍ନଜନିତ ବେଦନା | ।। | ୭୪ |
| | ସେ ଲୋକମୋହନିମିତ୍ତରେ । | କଳ୍ପିତ ନୋହେ ଏ ସଂସାରେ | ।। | ୭୫ |
| ୨୬ | ଏ ରୂପେ ତତ୍ତ୍ୱ ଜାଣି ଯେହି । | ମୋ'ଠାରେ ମନ ସମର୍ପଇ | ।। | ୭୬ |
| | ପ୍ରକୃତି ସେ ଆତ୍ମାରାମର । | କେବେହେଁ ନ କରେ ଅସାର | ।। | ୭୭ |
| ୨୭ | କାଳେ ଅନେକ ଜନ୍ମେ ଯାଇ । | ଯେବେ ଅଧ୍ୟାତ୍ମେ ରତ ହୋଇ | ।। | ୭୮ |
| | ବ୍ରହ୍ମାଭୁବନୁଁ ଆଦି ହୋଇ । | ବୈରାଗ୍ୟ ଲଭେ ସବୁଠାଇଁ | ।। | ୭୯ |
| ୨୮ | ମୋର ପ୍ରସାଦୁଁ ମୋ ଭଗତ । | ଜାଣି ସକଳ ଆତ୍ମତତ୍ତ୍ୱ | ।। | ୮୦ |
| | ଆଶ୍ରୟ ଅଟଇ ମୁଁ ଯାର । | ଯେ ଅଟେ ଦେହାଦିରୁ ପର | ।। | ୮୧ |
| | ମୋର କୈବଲ୍ୟ ନାମ ହୋଇ । | ନିରତିଶୟ ସୁଖ ଯେହି | ।। | ୮୨ |
| ୨୯ | ବେଗେ ତା ଲଭଇ ସେ ଧୀର । | ଜ୍ଞାନେ ସଂଶୟ କରି ଦୂର | ।। | ୮୩ |
| | ଲିଙ୍ଗଶରୀରଭଙ୍ଗେ ଯାଇ । | ଯହିଁରୁ ଯୋଗୀ ନ ଆସଇ | ।। | ୮୪ |
| ୩୦ | ଯୋଗସାଧନୁଁ ଆନ ହୋଇ । | କାରଣ ଯା ସଂଭବେ ନାହିଁ | ।। | ୮୫ |
| | ଯୋଗସାଧନେ ହୋନ୍ତି ବୃଦ୍ଧି । | ଯେ ମାୟା ଅଣିମାଦି ସିଦ୍ଧି | ।। | ୮୬ |
| | ଭୋ ମାତ ! ସିଦ୍ଧଲୋକଚିତ୍ତ । | ଯେବେ ତହିଁରେ ଅସକତ[୧] | ।। | ୮୭ |
| | ତେବେ ସେ ମୋର ଗତି ପାଇ । | ଯହିଁ ମୃତ୍ୟୁର ଗର୍ବ ନାହିଁ | ।। | ୮୮ |
| | ହରିଚରଣେ ଚିତ୍ତ ଦେଇ । | ସୁଜନମାନଙ୍କର ପାଇଁ | ।। | ୮୯ |
| | ତୃତୀୟ ସ୍କନ୍ଧର ଏ ବାଣୀ । | ବ୍ରାହ୍ମଣ ଦୀନବନ୍ଧୁ ଭଣି | ।। | ୯୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ପ୍ରକୃତିବିବେକୋ ନାମ ସପ୍ତବିଂଶୋଽଧ୍ୟାୟଃ ।।

---

୧. ଅସକତ = ଅନାସକ୍ତ ।

# ଅଷ୍ଟାବିଂଶୋଽଧ୍ୟାୟଃ

ଅଷ୍ଟାବିଂଶେ ତତୋଽଷ୍ଟାଙ୍ଗଯୋଗେନ ଧ୍ୟାନଶୋଭିନା ।
ସର୍ବୋପାଧିବିନିର୍ମୁକ୍ତଂ ସ୍ୱରୂପଜ୍ଞାନମୀର୍ଯ୍ୟତେ ॥ ୧ ॥
ଭକ୍ତିଂ ସଂକ୍ଷେପତଃ ପ୍ରୋଚେ ସାଂଖ୍ୟମାଖ୍ୟାୟ ବିସ୍ତୃତମ୍ ।
ଅଥାହ ବୈଷ୍ଣବଂ ଯୋଗମଷ୍ଟାଙ୍ଗଂ କପିଳୋ ହରି ॥ ୨ ॥

ଶ୍ରୀଭଗବାନୁବାଚ

୧ ସବୀଜ ଯୋଗର ଲକ୍ଷଣ । କହିବା ନୃପସୁତା ! ଶୁଣ ॥ ୧
ଯେବଣ ବିଧିରେ ପ୍ରସନ୍ନ । ହୋଇ ସଦ୍‌ପଥେ ଗମେ ମନ ॥ ୨
୨ ଶକ୍ତିରେ ସ୍ୱଧର୍ମ କରିବ । ପାପ କଥାରୁ ନିବର୍ତ୍ତିବ ॥ ୩
ଦଇବେ ମିଳିବ ଯେ ବିତ୍ତ । ତେଣେ ହୋଇବ ତୋଷଚିତ୍ତ ॥ ୪
ଯେ ଆତ୍ମବନ୍ତ ସାଧୁଗଣ । ପୂଜିବ ତାହାଙ୍କ ଚରଣ ॥ ୫
୩ ତ୍ରିବର୍ଗଧର୍ମୁଁ ନିବର୍ତ୍ତିବ । ମୋକ୍ଷଧର୍ମରେ ରତ ହେବ ॥ ୬
ପବିତ୍ର ଅଟେ ଯେବା ଅନ୍ନ । ତା, ଅଳ୍ପ[୧] କରିବ ଭୋଜନ ॥ ୭
ଯେ ବା ଏକାନ୍ତ ଭୟଶୂନ୍ୟ । ନିବାସ କରିବ ସେ ସ୍ଥାନ ॥ ୮
୪ *ସର୍ବଦା କୋମଳ କହିବ । ସକଳଭୂତହିତେ ଥିବ ॥ ୯
ଅହିଂସା ସତ୍ୟ ଆଚରିବ । ପରର ବିତ୍ତ ନ ହରିବ ॥ ୧୦
ଯେତେକେ ରକ୍ଷା ହେବ ଦେହ । କରିବ ତେତେ ପରିଗ୍ରହ ॥ ୧୧
ବ୍ରହ୍ମଚର୍ଯ୍ୟକୁ ଆଚରିବ । ତପସ୍ୟା ଶଉଚ ବିହିବ ॥ ୧୨
୫ ସ୍ୱାଧ୍ୟାୟ ପୁରୁଷପୂଜନ । ଆସନଜୟ, ସ୍ଥୈର୍ଯ୍ୟ ମୌନ ॥ ୧୩
ସାଧନକ୍ରମେ ସ୍ଥିର ସ୍ଥିର । ବିଜୟ ପ୍ରାଣ ପବନର ॥ ୧୪
ବିଷୟଠାରୁ ମନଦ୍ୱାରେ । ଓଟାରି ଆଣି ହୃଦୟରେ ॥ ୧୫
ଇନ୍ଦ୍ରିୟମାନଙ୍କୁ ସ୍ଥାପନ । କରିବ ହୋଇଣ ଯତନ ॥ ୧୬
୬ ମୂଳାଧାରକୁ ଆଦି ହୋଇ । ପ୍ରାଣର ସ୍ଥାନ ଯେ ଅଛଇ ॥ ୧୭
ତାହାଙ୍କ ମଧ୍ୟେ ଏକ ସ୍ଥାନେ । ପ୍ରାଣକୁ ନିରୋଧିବ ମନେ ॥ ୧୮

---

୧. ମିତଭୋଜନ :-
ଦ୍ୱୌ ଭାଗୌ ପୂରୟେଦନ୍ନୈସ୍ତୋୟେନୈକଞ୍ଚ ପୂରୟେତ୍ ।
ମାରୁତସ୍ୟ ପ୍ରଚାରାର୍ଥଂ ଚତୁର୍ଥମବଶେଷୟେଦ୍ ॥ (ସ୍ମୃତିଃ)

* ''ସର୍ବଦା ମୃଦୁଭାଷିତ୍ୱଂ ସର୍ବଭୂତହିତେ ରତିଃ ।'' ଏହି ଶ୍ଳୋକାର୍ଦ୍ଧ ପ୍ରକ୍ଷିପ୍ତ ବୋଧହୁଏ ।

ବଇକୁଣ୍ଠର ଲୀଳାମାନ । କରିବ ତାହା ଅଭିଧାନ ॥ ୧୯
ମନକୁ କରି ଆତ୍ମାକାର । ତେଜିବ ବିଷୟ ବିଚାର ॥ ୨୦
୭ ଯେ ମନ ଦୁଷ୍ଟମାର୍ଗେ ଥାଇ । ତାକୁ ଏ ଆଦି ମାର୍ଗେ ନେଇ ॥ ୨୧
ବୁଦ୍ଧିର ସଙ୍ଗେ ନେଇ ଧୀର । ଯୋଗ କରିବ ହୋଇ ସ୍ଥିର ॥ ୨୨
ପ୍ରାଣବାତକୁ ଜିଣିଥିବ । ପରର[1] ଅଧିନ ନୋହିବ ॥ ୨୩
୮ ପ୍ରଥମେ ହୋଇ ଜିତାସନ । ପବିତ୍ର ଅଟେ ଯେଉଁ ସ୍ଥାନ ॥ ୨୪
ତହିଁରେ ଆସନ ପକାଇ । ସ୍ୱସ୍ତିକାସନେ[2] ବସିଥାଇ ॥ ୨୫
ହୋଇଣ ଋଜୁ-କଳେବର । ସାଧିବ ପବନକୁ ଧୀର ॥ ୨୬
୯ ପୂରକ, କୁମ୍ଭକ, ରେଚକ । ପ୍ରାଣାୟାମରେ ଜ୍ଞାନୀ ଲୋକ ॥ ୨୭
ଅଥବା ପ୍ରତିକୂଳ କରି । ଏ ପ୍ରାଣାୟାମକୁ ଆଚରି ॥ ୨୮
ପ୍ରାଣର ମାର୍ଗକୁ ଶୋଧିବ । ମନ ଯେମନ୍ତେ ସ୍ଥିର ହେବ ॥ ୨୯
୧୦ ଯେ ଯୋଗୀ ଜିଣଇ ପବନ । ବେଗେ ନିର୍ମଳ ହୋଏ ମନ ॥ ୩୦
ଯେସନେ ଅଗ୍ନି ବାତଯୋଗୁଁ । ସୁବର୍ଣ୍ଣ ମଳ ଛାଡ଼େ ଅଙ୍ଗୁଁ ॥ ୩୧
୧୧ ବାତପିତ୍ତାଦି ଦେହଦୋଷ । ପ୍ରାଣାୟାମରେ କରେ ନାଶ ॥ ୩୨
ଧାରଣାବଶରୁ ବିନାଶ । କରଇ ସକଳ କଳୁଷ ॥ ୩୩
ବିଷୟସଙ୍ଗ ଯେ ବା ଥାଇ । ପ୍ରତ୍ୟାହାରରେ ତା’ ନାଶଇ ॥ ୩୪
ଯେବା ରାଗାଦି ଗୁଣମାନ । ଧ୍ୟାନରେ କରେ ତା’ ଦହନ ॥ ୩୫
୧୨ ଯେବେ ଯୋଗରେ ସମାହିତ । ହୋଇ ନିର୍ମଳ ହୋଏ ଚିତ୍ତ ॥ ୩୬
ନାସା-ଅଗ୍ରକୁ ଦୃଷ୍ଟି ଦେଇ । ଭଗବାନର ମୂର୍ତ୍ତି ଧ୍ୟାୟି ॥ ୩୭
୧୩ ବଦନକମଳ ଯାହାର । ଅଟେ ପ୍ରସନ୍ନ ମନୋହର ॥ ୩୮
ପଦ୍ମଗର୍ଭର ପ୍ରାୟ ହୋଇ । ଅରୁଣ ଅଟେ ନେତ୍ର ଦୁଇ ॥ ୩୯
ନୀଳଉତ୍ପଳଦଳାକାର । ଶ୍ୟାମ ଅଟଇ କଳେବର ॥ ୪୦
ଶଙ୍ଖ, ସୁଦରଶନ, ଗଦା । କରରେ ଶୋହଇ ସର୍ବଦା ॥ ୪୧

---

୧. ‘ଅତନ୍ତ୍ରିତଃ’ ଇତି ପାଠେ । ‘ଅତନ୍ଦ୍ରିତଃ’ ଇତି ପାଠେ “ତନ୍ଦ୍ରାର ଅଧୀନ ନୋହିବ ।” ଏହିପରି ଅନୁବାଦ ହେବ ।

୨. ଉରୁଜଘାଂନ୍ତରାଧାୟ ପାଦାଗ୍ରେ ଜାନୁମଧ୍ୟଗେ ।
ଯୋଗିନୋ ଯଦବସ୍ଥାନଂ ସ୍ୱସ୍ତିକଂ ତଦ୍‌ବିଦୁର୍ବୁଧାଃ ।

୧୪ ପଦ୍ମକେଶରପ୍ରାୟ ପୀତ । କୌଶେୟ ବସ୍ତ୍ର ବିରାଜିତ ॥ ୪୨
ଶ୍ରୀବତ୍ସଚିହ୍ନ ଶୋହେ ଉର । ପ୍ରଦୀପ୍ତ କୌସ୍ତୁଭ କନ୍ଧର ॥ ୪୩
୧୫ ମତ୍ତ ଭ୍ରମରଧ୍ୱନିଯୁତ । ବନମାଳାରେ ସୁଶୋଭିତ ॥ ୪୪
ଅମୂଲ୍ୟ ସୁବଳୟ ହାର । କିରୀଟ ଅଙ୍ଗଦ ନୂପୁର ॥ ୪୫
୧୬ କାଞ୍ଚୀରେ ଶ୍ରୋଣୀ ଉଲ୍ଲସିତ । ଭକ୍ତ ହୃଦୟପଦ୍ମେ ସ୍ଥିତ ॥ ୪୬
ସୁଶାନ୍ତ ଅତ୍ୟନ୍ତ ସୁନ୍ଦର । ମନ-ନୟନପ୍ରୀତିକର ॥ ୪୭
୧୭ ଅତି ସୁନ୍ଦର ଦୃଷ୍ଟିପାତ । ସକଳ ଲୋକରେ ବନ୍ଦିତ ॥ ୪୮
କିଶୋର ବୟସରେ ସ୍ଥିତ । ଭୃତ୍ୟାନୁଗ୍ରହେ ଦତ୍ତଚିତ୍ତ ॥ ୪୯
୧୮ କୀର୍ତ୍ତନଯୋଗ୍ୟ ପ୍ରାଣୀଙ୍କର । ତାରଣହେତୁ ଯଶ ଯାର ॥ ୫୦
ଯେ ପୁଣ୍ୟଶ୍ଳୋକ ବଳି ଆଦି । ସେମାନଙ୍କର ଯଶ ସାଧି ॥ ୫୧
ସକଳ ଅଙ୍ଗେ ପରିପୂର୍ଣ୍ଣ । କରିବ ଏ ରୂପରେ ଧ୍ୟାନ ॥ ୫୨
ଯାବତ କାଳଯାଏ ଚିତ୍ତ । ହୋଇ ନ ଥିବ ବିଚଳିତ ॥ ୫୩
୧୯ ପ୍ରାଣୀଙ୍କ ମାନସେ ଯେ ସ୍ଥିତ । ଦର୍ଶନେ ଯୋଗ୍ୟ ଯା' ଚେଷ୍ଟିତ ॥ ୫୪
ସେ ପ୍ରଭୁ ଉଭା ହୋଇଛନ୍ତି । କିବା ଗମନ କରୁଛନ୍ତି ॥ ୫୫
ବସିଛନ୍ତି ବା ଛନ୍ତି ଶୋଇ । ଏ ରୂପେ ଶୁଦ୍ଧ ଚିତ୍ତେ ଧ୍ୟାୟି ॥ ୫୬
୨୦ ହରିର ସର୍ବ ଅଙ୍ଗେ ଚିତ୍ତ । ହୋଇଲା ଦୃଢ଼ଭାବେ ସ୍ଥିତ ॥ ୫୭
ବିଶେଷି ମୁନି ଏହା ଜାଣି । ଅଙ୍ଗେ ଅଙ୍ଗେକେ ପରିମାଣି ॥ ୫୮
କରିବ ନେଇ ନିଯୋଜିତ । ନିଷ୍କଳ ଭାବେ ନିଜ ଚିତ୍ତ ॥ ୫୯
୨୧ ଚରଣପଦ୍ମକୁ ବିଷ୍ଣୁର । ଚିନ୍ତିବ ଆପଣା ମନର ॥ ୬୦
ଧ୍ୱଜ, କମଳ, ବଜ୍ରାଙ୍କୁଶ । ଲାଞ୍ଛନ ଯହିଁରେ ପ୍ରକାଶ ॥ ୬୧
ତୁଙ୍ଗ ଅରୁଣସୁଶୋଭନ । ଅଟନ୍ତି ଯେଉଁ ନଖମାନ ॥ ୬୨
ତାଙ୍କ କାନ୍ତିରେ ଅନ୍ଧକାର । ଯେ ନାଶେ ସାଧୁହୃଦୟର ॥ ୬୩
୨୨ ଯାହା ପ୍ରକ୍ଷାଳନୁଁ ନିର୍ଗତ । ଗଙ୍ଗାଉଦକ ନାମେ ତୀର୍ଥ ॥ ୬୪
ତା' ନିଜ ଶିରରେ ଧଇଲେ । ଶିବ ହିଁ ଶିବ ବୋଲାଇଲେ ॥ ୬୫
ଯେ ଧ୍ୟାନକଲା ଲୋକଙ୍କର । ପାପପର୍ବତକୁ [୧]ଭିଦୁର ॥ ୬୬
ସେ ବିଷ୍ଣୁ ଚରଣକମଳ । ଧ୍ୟାନ କରିବ ଚିରକାଳ ॥ ୬୭
୨୩ ଯେ ଲକ୍ଷ୍ମୀ ଜଳଜଲୋଚନୀ । ଜଗତଧାତାର ଜନନୀ ॥ ୬୮
ଅମରବନ୍ଦିତ ଅଟଇ । ସେ ନିଜ ଊରୁ ପରେ ଥୋଇ ॥ ୬୯

---

୧. ଭିଦୁର = ବଜ୍ର ।

କରପଲ୍ଲବେ ଯା ଘସଇ । ଜାନୁଯାଏଁ ସେ ପାଦଦୁଇ ।। ୭୦
ସ୍ମରଣ କରିବ ଅଜର । ଅଭବ ଅର୍ଥେ ହୃଦେ ଧୀର ।। ୭୧
୨୪ ଗରୁଡ଼ସ୍କନ୍ଧେ ଶୋଭାମାନ । ଅତସୀପୁଷ୍ପସମବର୍ଣ୍ଣ ।। ୭୨
ବିଷ୍ଣୁର ଉରୁଯୁଗ ନର । ଚିନ୍ତିବ ଯେ ବଳ-ଆଧାର ।। ୭୩
ଲମ୍ବିତ ସାର ପୀତପଟେ । କାଞ୍ଚୀକଳାପ ସୁପ୍ରକଟେ ।। ୭୪
ନିତମ୍ବବିମ୍ବସଙ୍ଗ ତହିଁ । ଚିନ୍ତା କରିବ ହୃଦେ ତାହି ।। ୭୫
୨୫ ଭୁବନ କୋଷର ଆଧାର । ଅଟଇ ଯେବଣ ଉଦର ।। ୭୬
ତହିଁରେ ଯାହାର ସଂଭବ । ସେ ନାଭିହ୍ରଦକୁ ଚିନ୍ତିବ ।। ୭୭
ଭୁବନାତ୍ମକ ପଦ୍ମ ଯହିଁ । ଜନ୍ମିଲା ବ୍ରହ୍ମାସ୍ଥାନ ସେହି ।। ୭୮
ହରିତମଣିପ୍ରାୟ ସାର । ସ୍ତନଯୁଗଳକୁ ବିଷ୍ଣୁର ।। ୭୯
ଚିନ୍ତା କରିବ ମୁକ୍ତାହାର । କାନ୍ତିସମୂହେ ଯେ ଗଉର ।। ୮୦
୨୬ ବକ୍ଷତଟକୁ ରକ୍ଷଭର । ଚିନ୍ତିବ ଯେ ଲକ୍ଷ୍ମୀମନ୍ଦିର ।। ୮୧
ପ୍ରାଣୀଙ୍କ ମାନସ-ନୟନ । ସୁଖକୁ କରେ ଯେ ବିଧାନ ।। ୮୨
ସକଳ ବନ୍ଦିତ ବିଷ୍ଣୁର । କଣ୍ଠକୁ ଚିନ୍ତିବ ମନର ।। ୮୩
ଆପଣା କାନ୍ତିଭରେ ଯେହି । କୌସ୍ତୁଭମଣିକି ମଣ୍ଡଇ ।। ୮୪
୨୭ ମନ୍ଦରଗିରି ଉତ୍ପାଟନ । ସମୟେ ପାଇ ସଂଘଟନ ।। ୮୫
ବାହୁ ବଳୟମାନେ ଯହିଁ । ଅଛନ୍ତି ଅତିଦୀପ୍ତ ହୋଇ ।। ୮୬
ଯହିଁରେ ଲୋକପାଳମାନ । କରିଅଛନ୍ତି ନିଜସ୍ଥାନ ।। ୮୭
ସେ ବାହୁମାନଙ୍କୁ ବିଷ୍ଣୁର । ଚିନ୍ତା କରିବ ସ୍ୱମନର ।। ୮୮
ଅସହ୍ୟ ଅଟେ ତେଜ ଯାର । ସେ ଚକ୍ର ଚିନ୍ତିବ କରର ।। ୮୯
ତା' କରପଦ୍ମ ହଂସ ଜାଣି । ଶଙ୍ଖକୁ ଚିନ୍ତା କରେ ପ୍ରାଣୀ ।। ୯୦
୨୮ *ଗଦାକୁ ସ୍ମରିବ ବିଷ୍ଣୁର । କଉମୋଦକୀ ନାମ ଯାର ।। ୯୧
ବିପକ୍ଷ ଯୋଦ୍ଧାଙ୍କ ଶୋଣିତ । କର୍ଦ୍ଦମେ ଅଟଇ ସଂଯୁତ ।। ୯୨
ମାଳାକୁ କରିବ ସ୍ମରଣ । ଯହିଁ ଶବ୍ଦିତ ଭୃଙ୍ଗଗଣ ।। ୯୩
କଣ୍ଠରେ ସୁମରିବ ମଣି । ଯାକୁ ଜୀବର ତତ୍ତ୍ୱ ଭଣି ।। ୯୪

---

* ଆତ୍ମାନମସ୍ୟ ଜଗତୋ ନିର୍ଲେପମଗୁଣାମଳମ୍ ।
ବିଭର୍ତ୍ତି କୌସ୍ତୁଭମଣିସ୍ୱରୂପଂ ଭଗବାନ୍ ହରିଃ ।। ୧ ।। (ବୈଷ୍ଣବେ)

୨୯ ଭୃତ୍ୟରେ କରି କୃପାମତି । ଯେ ପ୍ରଭୁ ଧରିଛନ୍ତି ମୂର୍ତ୍ତି ॥ ୯୫
ମୁଖପଦ୍ମକୁ ସେ ବିଷ୍ଣୁର । ଚିନ୍ତିବ ଚିତ୍ତେ ସାଧୁ ନର ॥ ୯୬
ସ୍ଫୁରିତ ମକର-ଆକାର । କୁଣ୍ଡଳ ଚଳନେ ଯାହାର ॥ ୯୭
ପ୍ରକାଶ ହୋଇ ଶୋଭା ପାଇ । ଅମଳ ସୁକପୋଳ ଦୁଇ ॥ ୯୮
ଯେଉଁ ବଦନେ ଶୋଭା ପାଇ । ଉନ୍ନତ ନାସାପୁଟ ଦୁଇ ॥ ୯୯

୩୦ ଯହିଁରେ ପଦ୍ମପ୍ରାୟ ହୋଇ । ନେତ୍ରଯୁଗଳ ଶୋଭାପାଇ ॥୧୦୦
କୁଟିଳ କେଶବୃନ୍ଦମାନେ । ସଂଯୁକ୍ତ ଯେବଣ ବଦନେ ॥୧୦୧
ଅଳିଗଣରେ ନିଷେବିତ । ମୀନ ଯୁଗଳରେ ସଂଯୁତ ॥୧୦୨
ଏମନ୍ତ ପଦ୍ମ ନିନ୍ଦା କରେ । ଯେ ମୁଖ ଆପଣା ଶୋଭାରେ ॥୧୦୩
ଭ୍ରୂଲତାଯୁଗ ଶୋହେ ଯହିଁ । ମନେ ଯେ ପ୍ରକାଶ ଅଟଇ ॥୧୦୪
ଚିନ୍ତା କରିବ ସେ ବଦନ । ଆଳସ୍ୟ ଛାଡ଼ି ସାଧୁଜନ ॥୧୦୫

୩୧ ଯେ ତାପତ୍ରୟ ଅତିଘୋର । ବିନାଶ ନିମିତ୍ତେ ତାହାର ॥୧୦୬
ନେତ୍ରଯୁଗରୁ ଜାତ କରି । ଅଛନ୍ତି କୃପାରେ ଯା' ହରି ॥୧୦୭
ସେ ଅବଲୋକନ ଚିତ୍ତରେ । ଚିନ୍ତିବ ଦୃଢ଼ ଭାବନାରେ ॥୧୦୮
ଯହିଁରେ ସ୍ନିଗ୍ଧ ମନ୍ଦହାସ । ବିପୁଳ ପ୍ରସାଦ ପ୍ରକାଶ ॥୧୦୯

୩୨ ନମ୍ର ଅଖିଳ ଲୋକଙ୍କର । ଯେ ତୀବ୍ର ଶୋକାଶ୍ରୁସାଗର ॥୧୧୦
ତାହାକୁ ଶୋଷଣ ଯେ କରେ । ସେ ହାସ ଚିନ୍ତିବ ମନରେ ॥୧୧୧
ମୁନିଙ୍କ ଉପକାର ଅର୍ଥେ । କାମକୁ ମୋହିବା ନିମିତ୍ତେ ॥୧୧୨
ନିଜ ମାୟାରେ ଭଗବାନ । କରିଅଛନ୍ତି ଯା' ରଚନ ॥୧୧୩
ଚିନ୍ତିବ ସେ ଭ୍ରୂଲତା ଦୁଇ । ଅତି ଉଦାର ଯେ ଅଟଇ ॥୧୧୪

୩୩ ଯେ ବିଷ୍ଣୁସୁଚିତ୍ତେ ପ୍ରକାଶ । ଚିନ୍ତିବ ତାର ଉଚ୍ଚ ହାସ ॥୧୧୫
ବହଳ ଅଧର ଓଷ୍ଠର । କାନ୍ତିରେ ଅରୁଣ ଆକାର ॥୧୧୬
ସୂକ୍ଷ୍ମ ଦଶନ-କୁନ୍ଦରାଜି । ଯହିଁରେ ଅଛନ୍ତି ବିରାଜି ॥୧୧୭
ଧ୍ୟାନ-ଆଶ୍ରୟ ହୋଇ କରି । ଯେବଣ ହାସ ଅଛି ସ୍ଫୁରି ॥୧୧୮
ପ୍ରେମଭକ୍ତିରେ ସେ ବିଷ୍ଣୁରେ । ମନକୁ ନିବେଶି ନିର୍ଭରେ ॥୧୧୯
ଦେଖିବାପାଇଁ ତହୁଁ ଆନ । କେବେହେଁ ନ କରିବ ମନ ॥୧୨୦

୩୪ *ଏ ରୂପେ ସାଧନ-ଭକ୍ତିରେ । ଭାବକୁ ଲଭି ବିଷ୍ଣୁଠାରେ ॥୧୨୧
ପ୍ରେମଭକ୍ତିରେ ଦ୍ରବୀଭୂତ । ହୋଇଣ ଥିବ ନିଜ ଚିତ୍ତ ॥୧୨୨
ଆନନ୍ଦଭରେ ନିଜ ଦେହେ । ପୁଲକମାନ ଜାତ ହୋଏ ॥୧୨୩
ଉତ୍କଣ୍ଠାଭାବୁଁ ଅଶ୍ରୁ ଜାତ । ତେଣୁ ହୋଇଣ ନିପୀଡ଼ିତ ॥୧୨୪
ବିଷ୍ଣୁକୁ କରିବାକୁ ବଶ । ବଡ଼ିଶ[୧] ଅଟେ ଯେ ମାନସ ॥୧୨୫
ତାହାକୁ ପୁଣ ବିଷ୍ଣୁଠାରୁ । ବିଚ୍ଛେଦ କରିବ କ୍ରମରୁ ॥୧୨୬
୩୫ ଏ ରୂପେ ବିଷୟରହିତ । ଯେବେ ହୁଅଇ କ୍ରମେ ଚିତ୍ତ ॥୧୨୭
ଧ୍ୟେୟ-ସଂବନ୍ଧ ଯେଣୁ ନାହିଁ । ଏ ଘେନି ଆଶ୍ରୟ ଛାଡ଼ଇ ॥୧୨୮
ଶବ୍ଦାଦି ବିଷୟହିଁ ନୋହି । ଯେଣୁ ସେ ବିରକ୍ତ ଅଟଇ ॥୧୨୯
ଏ ଘେନି ନିର୍ବାଣକୁ ପାଏ । କାଷ୍ଠ-ବିନାଶେ ଅଗ୍ନିପ୍ରାୟେ ॥୧୩୦
ଯାହାକୁ କରଇ ଚିନ୍ତନ । ଚିନ୍ତା କରଇ ଯେବା ଜନ ॥୧୩୧
ଏ ରୂପେ ଭେଦ ଯହିଁ ନାହିଁ । ଅଖଣ୍ଡ ହୋଇ ଅଛି ରହି ॥୧୩୨
ଆତ୍ମାକୁ ଦେଖେ ଏ ଦଶାରେ । ମୁକ୍ତ ପୁରୁଷ ଏ ପ୍ରକାରେ ॥୧୩୩
ଯେଣୁ ନିବର୍ତ୍ତିଲା ତାହାର । ଗୁଣ ପ୍ରବାହ ଦୁର୍ନିବାର ॥୧୩୪
୩୬ ଏ ରୂପେ ଯୋଗକୃତ ଥାଇ । ମନ ନିବୃତ୍ତି ଯେବେ ହୋଇ ॥୧୩୫
ସୁଖଦୁଃଖରୁ ବାହ୍ୟ ଯେହି । ସେ ବ୍ରହ୍ମେ ନିଷ୍ଠାକୁ ଲଭଇ ॥୧୩୬
ସୁଖଦୁଃଖକୁ ହେତୁଭାବ । ଆତ୍ମାର ଥିଲା ଯେବା ପୂର୍ବ ॥୧୩୭
ଅବିଦ୍ୟାକୃତ ଅହଂକାରେ । ତାକୁ ବିଧାନ ନେଇ କରେ ॥୧୩୮
ଯେଣୁ ସେ ପରମ ଆତ୍ମାର । ତତ୍ତ୍ୱକୁ କରିଛି ଗୋଚର ॥୧୩୯
୩୭ ଏ ରୂପେ ସିଦ୍ଧ ଯେ ହୁଅଇ । ନିଜ ଦେହକୁ ନ ଦେଖଇ ॥୧୪୦
ଯେବଣ ଦେହରେ ଆତ୍ମାର । ସ୍ଥିତିକି କରଇ ଗୋଚର ॥୧୪୧
ସେ ଦେହ ଆସନରେ ଅଛି । ଅଥବା ଉତ୍‌ଥିତ ହୋଇଛି ॥୧୪୨
ସେ ଆସନରୁ କେଣେ ଗଲା । ଅଥବା ଦୈବରେ ଅଇଲା ॥୧୪୩

---

* ନିର୍ବୀଜ ଯୋଗ :- (ଗୀତାୟାମ)
"ଯତୋ ଯତୋ ନିଶ୍ଚଳତି ମନଶ୍ଚଞ୍ଚଳମସ୍ଥିରମ୍ ।
ତତସ୍ତତୋ ନିୟମ୍ୟୈତଦାତ୍ମନ୍ୟେବ ବଶଂ ନୟେତ୍" ॥ ୧ ॥
ସବୀଜ ଯୋଗ : -"ହୃତାତ୍ମନୋ ହୃତପ୍ରାଣାଂଶ୍ଚ ଭକ୍ତିରନିଚ୍ଛତୋ ଗତିମଣ୍ୱୀଂ ପ୍ରଯୁଂକ୍ତେ ।"

୧. ବଡ଼ିଶ = ବନ୍ଶି ।

| | | | |
|---|---|---|---|
| | ମଦିରାମଦଅନ୍ଧ ଜନ । | କଟିରେ ଅଛଇ ବସନ | ॥୧୪୪ |
| | ଅଥବା ଗଳିତ ହୋଇଛି । | ଯେହ୍ନେ ନ ଜାଣେ ଏହା କିଛି | ॥୧୪୫ |
| ୩୮ | ପୂର୍ବ ସଂସ୍କାରର ଆୟତ୍ତ । | ଦେହ ହୁଅଇ ଗତାଗତ | ॥୧୪୬ |
| | ନିଜ ସଂଭବ ଯହୁଁ ହୋଇ । | ସେ କର୍ମ ଯେତେ କାଳ ଥାଇ | ॥୧୪୭ |
| | ଦେହହିଁ ତେତେ କାଳ ଥାଇ । | ଇନ୍ଦ୍ରିୟଗଣେ ଯୁତ ହୋଇ | ॥୧୪୮ |
| | ସମାଧିଯୋଗକୁ ଯେ ପାଇ । | ଆତ୍ମତତ୍ତ୍ୱକୁ ଜାଣିଥାଇ | ॥୧୪୯ |
| | ପୁତ୍ରାଦି ସହିତ ଯେ କାୟ । | ତାକୁ ମଣଇଁ ସ୍ୱପ୍ନପ୍ରାୟ | ॥୧୫୦ |
| | ଦେହେ ମମତା ଅହଂକାର । | କେବେହେଁ ନ କରେ ସେ ନର | ॥୧୫୧ |
| ୩୯ | ଆତ୍ମାଭାବରେ ଅତିସ୍ନେହେ । | ଘେନିଣ ଥାଇ ଯାହା ମୋହେ | ॥୧୫୨ |
| | ସେ ବିତ୍ତପୁତ୍ରୁଁ ଭିନ୍ନ ଥାଇ । | ଯେହ୍ନେ ମନୁଷ୍ୟ ପ୍ରତ୍ୟେ ହୋଇ | ॥୧୫୩ |
| | ଆତ୍ମା ତେସନ ଭିନ୍ନ ଥାଇ । | ଦେହ ଆଦିରୁ ପ୍ରତ୍ୟେ ହୋଇ | ॥୧୫୪ |
| ୪୦ | ଯେସନେ ଜ୍ୱଳିତ ଅଙ୍ଗାର । | ହେଲେହେଁ ଅଗ୍ନିର ଆକାର | ॥୧୫୫ |
| | ସ୍ଫୁଲିଙ୍ଗ, ଧୂମ ଯେହ୍ନେ ଦୁଇ । | ଅଗ୍ନିମଧ୍ୟରୁ ଜାତ ହୋଇ | ॥୧୫୬ |
| | ଅଗ୍ନିରୁ ଭିନ୍ନ କରି ଜନ । | ତାହାକୁ ମଣଇଁ ଯେସନ | ॥୧୫୭ |
| ୪୧ | ଇନ୍ଦ୍ରିୟ, ମହାଭୂତଗଣ । | ସହିତେ ଯେ ଅନ୍ତଃକରଣ | ॥୧୫୮ |
| | ଏମାନଙ୍କରୁଁ ଭିନ୍ନ ହୋଇ । | ଯେ ଦ୍ରଷ୍ଟା ଆତ୍ମା ସେ ଅଟଇ | ॥୧୫୯ |
| | ଅଟଇ ଜୀବସଂଜ୍ଞା ତାର । | ବ୍ରହ୍ମସଂଜ୍ଞକ ତହୁଁ ପର | ॥୧୬୦ |
| | ପ୍ରକୃତିଠାରୁ ଅଟେ ଭିନ୍ନ । | ସେହି ପ୍ରକାରେ ଭଗବାନ | ॥୧୬୧ |
| ୪୨ | ଅନନ୍ୟ ଭାବେ ସର୍ବଭୂତେ । | ଆତ୍ମାକୁ ଦେଖିବ ସଂତତେ | ॥୧୬୨ |
| | ଆତ୍ମାକୁ ସକଳ ଭୂତରେ । | ଦେଖିବ ସେହି ପରକାରେ | ॥୧୬୩ |
| | ଯେହ୍ନେ, ପ୍ରାଣୀଙ୍କ ଦେହଗତ । | ବିଦିତ ପଞ୍ଚ ମହାଭୂତ | ॥୧୬୪ |
| ୪୩ | ଅଗ୍ନି ଯେସନେ ଏକ ହୋଇ । | କାଷ୍ଠର ମଧ୍ୟେ ରହିଥାଇ | ॥୧୬୫ |
| | ସେ କାଷ୍ଠ ହ୍ରସ୍ୱ ଦୀର୍ଘ ଯେତେ । | ଅଗ୍ନିହିଁ ପ୍ରସରଇ ତେତେ | ॥୧୬୬ |
| | ସେ ରୂପେ ଦେହେ ଆତ୍ମା ଥାଇ । | ଦେହକୁ ଅନୁରୂପ ହୋଇ | ॥୧୬୭ |
| ୪୪ | ତେଣୁ ଯେ ସଦସତ[୧] ହୋଇ । | ବିଷ୍ଣୁର ଶକ୍ତି ପ୍ରସରଇ[୨] | ॥୧୬୮ |
| | ବନ୍ଧନହେତୁ ସେ ଜୀବର । | ତାହାକୁ ଜିଣି ସାଧୁନର | ॥୧୬୯ |

---

୧. ସଦସତ = ସଦ୍ + ଅସଦ୍ । ୨. ପ୍ରକାଶଇ ।

ବ୍ରହ୍ମରୂପରେ ପ୍ରକାଶଇ । ତାର ସଂସାରବନ୍ଧ ନାହିଁ ।।୧୭୦
କହଇ ବିପ୍ର ଦୀନବନ୍ଧୁ । ଏଣେ ତରିବ ଭବସିନ୍ଧୁ ।।୧୭୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ସାଧନାନୁଷ୍ଠାନଂ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।।

## ଏକୋନତ୍ରିଂଶୋଽଧ୍ୟାୟଃ

ଏକୋନତ୍ରିଂଶକେ ଭକ୍ତିଯୋଗସ୍ତୁ ବହୁଧୋଚ୍ୟତେ ।
କାଳସ୍ୟ ଚ ବଳଂ ଘୋରା ସଂସୃତିଶ୍ଚ ବିରକ୍ତୟେ ।। ୧ ।।

ଶ୍ରୀଦେବହୂତିରୁବାଚ

୧ ମହାଦାଦିଙ୍କର ଲକ୍ଷଣ । ପ୍ରକୃତି ପୁରୁଷର ପୁଣ ।। ୧
୨ ସାଂଖ୍ୟଯୋଗରେ ଅଛ କହି । ଯେଣେ ତାହାଙ୍କୁ ଲକ୍ଷି ହୋଇ ।। ୨
ଏକ ଆରକେ କରି ଭିନ୍ନ । କହିଛ ତାହାଙ୍କର ଚିହ୍ନ ।। ୩
ସାଂଖ୍ୟର ଭକ୍ତିଯୋଗ ମୂଳ । ଏମନ୍ତ କହନ୍ତି ସକଳ ।। ୪
ହେ ପ୍ରଭୁ ଭକ୍ତିଯୋଗମାର୍ଗ । ବିସ୍ତାରି କହ ମୋର ଆଗ ।। ୫
୩ ବିରକ୍ତ ହୋଏ ସବୁଠାରୁ । ପୁରୁଷ ଯାହା ଶ୍ରବଣରୁ ।। ୬
କହ ସେ ସକଳ ଲୋକର । ବିବିଧପ୍ରକାର ସଂସାର ।। ୭
୪ ତୁ କାଳସ୍ୱରୂପୀ ଈଶ୍ୱର । ତୁ ଶ୍ରେଷ୍ଠ ଶ୍ରେଷ୍ଠଲୋକଙ୍କର ।। ୮
ସ୍ୱରୂପ ଅଟେ କାଳ ତୋର । ଯା' ଭୟେ ପୁଣ୍ୟ କରେ ନର ।। ୯
୫ ଯହିଁ ଆଶ୍ରୟ କେହି ନାହିଁ । ଏମନ୍ତ ସଂସାରରେ ଥାଇ ।। ୧୦
ଦେହରେ ବହି ଅଭିମାନ । ଅଜ୍ଞାନେ ଶୋଇଅଛି ଜନ ।। ୧୧
କର୍ମମାନଙ୍କେ ମତି ଦେଇ । ବିଶେଷ ଅଛି ଶ୍ରାନ୍ତ ହୋଇ ।। ୧୨
ପ୍ରବୋଧ ଅର୍ଥରେ ତାହାର । ତୁ ଯୋଗପ୍ରକାଶଭାସ୍କର ।। ୧୩

ଶ୍ରୀମୈତ୍ରେୟ ଉବାଚ

୬ ଏରୂପେ ବଚନ ମଧୁର । ଶୁଣିଣ ନିଜ ଜନନୀର ।। ୧୪
ହେ କୁରୁଶ୍ରେଷ୍ଠ ! ପ୍ରୀତ ହୋଇ । ମୁନି କହିଲେ କୃପା ବହି ।। ୧୫

## ଶ୍ରୀଭଗବାନୁବାଚ

୭ ଭକ୍ତିଯୋଗ ହିଁ ମାର୍ଗ ଘେନି । ନାନା ପ୍ରକାର ଗୋ ଭାବିନି ! ॥ ୧୬
ପ୍ରାଣିଙ୍କ ସ୍ୱଭାବ ଅଟଇ । ସତ୍ତ୍ୱାଦି ତିନି ଗୁଣ ଯେହି ॥ ୧୭
ବୃତ୍ତିଭେଦରୁ ତାହାଙ୍କର । ଭାବ ପୁରୁଷମାନଙ୍କର ॥ ୧୮
ନାନାପ୍ରକାର ଅଟେ ଯେଣୁ । ଭକ୍ତିଯୋଗହିଁ ନାନା ତେଣୁ ॥ ୧୯
୮ ପରହିଂସାରେ ମନ ଦେଇ । ମୋ'ଠାରେ ଭାବ ଯେ କରଇ ॥ ୨୦
ସେ ଅଟେ ଅଧମ ତାମସ । ଯେ ଦମ୍ଭ କରିଣ ଉଦ୍ଦେଶ ॥ ୨୧
ମୋଠାରେ ଭକ୍ତିକି କରଇ । ମଧ୍ୟମ ତାମସ ବୋଲାଇ ॥ ୨୨
ମତ୍ସର ଭାବକୁ ଉଦ୍ଦେଶି । ଯେ ମୋତେ ଭଜଇ ବିଶେଷି ॥ ୨୩
ଉତ୍ତମ ତାମସ ବୋଲାଇ । କହିବା ଶୁଣ ମନ ଦେଇ ॥ ୨୪
୯ ଯେ ଭେଦଦରଶୀ ଅଟଇ । ବିଷୟସୁଖେ ମନ ଦେଇ ॥ ୨୫
ପ୍ରତିମାଦିରେ ପୂଜେ ମୋତେ । ରାଜସାଧମ ସେ ଜଗତେ ॥ ୨୬
ଯଶ ଉଦ୍ଦେଶି ଯେ ଭଜଇ । ରାଜସ ମଧ୍ୟମ ବୋଲାଇ ॥ ୨୭
ଯେ ଭଜେ ଅଇଶ୍ୱର୍ଯ୍ୟପାଇଁ । ରାଜସ ଉତ୍ତମ ଅଟଇ ॥ ୨୮
୧୦ ଯେ ଭେଦଦରଶୀ ଭାବରେ । ସକଳ ପାପ ନାଶିବାରେ ॥ ୨୯
ମୋତେ ଗୋ ଭଜନ କରଇ । ଅଧମ ସାତ୍ତ୍ୱିକଟି ସେହି ॥ ୩୦
ଯେ ପୁଣି ସବୁ କର୍ମ କରେ । ଅର୍ପଣ କରଇ ମୋ'ଠାରେ ॥ ୩୧
ମଧ୍ୟମ ସାତ୍ତ୍ୱିକ ବୋଲାଇ । ଯେ ପୁଣି ମୋରେ ମନ ଦେଇ ॥ ୩୨
ହରି ସେ ପୂଜାଯୋଗ୍ୟ ଅଟେ । ବୋଲିଣ ପୂଜଇ ଏ ବାଟେ ॥ ୩୩
ଉତ୍ତମ ସାତ୍ତ୍ୱିକ ବୋଲିଣ । ହେ ମାତ ! ତାକୁ ତୁମ୍ଭେ ଜାଣ ॥ ୩୪
୧୧ ସକଳ ଭୂତ ହୃଦେ ଥାଇ । ପୁରୁଷୋତ୍ତମ ଅଟେ ମୁହିଁ ॥ ୩୫
୧୨ ଶୁଣନ୍ତେ ମାତ୍ର ଗୁଣ ମୋର । ମୋ'ଠାରେ ମନଗତି ଯାର ॥ ୩୬
ସମୁଦ୍ରେ ଗଙ୍ଗାନୀର ପ୍ରାୟେ । କେବେହେଁ ବିଚ୍ଛେଦ ସେ ନୁହେ ॥ ୩୭
ଫଳାନୁସଂଧାନେ ରହିତ । ଭେଦଦୃଷ୍ଟିରେ ବିବର୍ଜିତ ॥ ୩୮
ଏମନ୍ତ ମନୋଗତି ଯେହି । ଭକ୍ତି ବୋଲିଣ ତାକୁ କହି ॥ ୩୯
କହିଲୁଁ ନିର୍ଗୁଣ ଭକ୍ତିର । ସ୍ୱରୂପ ତୋହର ଆଗର ॥ ୪୦
୧୩ ମୋ ସଙ୍ଗେ ଏକାଲୋକେ ବାସ । ମୋ' ସମ ଐଶ୍ୱର୍ଯ୍ୟ ପ୍ରକାଶ ॥ ୪୧
ମୋହ ନିକଟରେ ଥିବାର । ମୋର ସମାନ କଳେବର ॥ ୪୨
ମୋର ଶରୀର ଐକ୍ୟଗତି । ଏ ପଞ୍ଚ ପ୍ରକାରେ ମୁକତି ॥ ୪୩
ଘେନନ୍ତି ନାହିଁ ଦେଲେ ମୋର । ସେବନ ବିନୁ ସାଧୁନର ॥ ୪୪

୧୪ ସେ ଭକ୍ତିଯୋଗ ଆତ୍ୟନ୍ତିକ । କହିଅଛନ୍ତି ସାଧୁଲୋକ ।। ୪୫
ଯେବଣ ତ୍ରିଗୁଣକୁ ଜିଣଇଁ । ବ୍ରହ୍ମଭାବକୁ ଲୋକ ପାଇ ।। ୪୬
୧୫ ଯେ ନିତ୍ୟନୈମିତ୍ତିକ କର୍ମେ । ତାଙ୍କୁ ଆଚରିବ ନିଷ୍କାମେ ।। ୪୭
ପରର ହିଂସା ନ ବିଚାରି । ପ୍ରଶସ୍ତ କ୍ରିୟାଯୋଗେ କରି ।। ୪୮
୧୬ ମୋ' ମୂର୍ତ୍ତିସ୍ପରଶଦର୍ଶନ । ଅର୍ଚ୍ଚନ, ସ୍ତବନ, ବନ୍ଦନ ।। ୪୯
ମୋର ଭାବନା ସର୍ବଭୂତେ । ସତ୍ତ୍ୱରେ ଅସଙ୍ଗମ ପଥେ ।। ୫୦
୧୭ ବଡ଼ଲୋକର ସଂମାନନେ । ଦୀନରେ କରୁଣା ବିଧାନେ ।। ୫୧
୧୮ ସମାନ ଲୋକେ ମିତ୍ରପଣେ । ଯମ-ନିୟମ ଆଚରଣେ ।। ୫୨
ଅଧ୍ୟାତ୍ମ କଥା ଶ୍ରବଣରେ । ମୋହର ନାମକୀର୍ତ୍ତନରେ ।। ୫୩
ଋଜୁ ଭାବରେ ସାଧୁସଙ୍ଗେ । ଅହଂକାରର ପରିତ୍ୟାଗେ ।। ୫୪
୧୯ ମୋ' ଧର୍ମ ଅବଲମ୍ବ ଯାର । ଏତେ ଗୁଣରେ ସେ ଲୋକର ।। ୫୫
ନିର୍ମଳ ମନ ପାଇ ମୋତେ । ମୋ' ଗୁଣମାତ୍ରକୁ ଶୁଣନ୍ତେ ।। ୫୬
୨୦ ବାତକୁ ରଥ କରି ପାଇ । ଆଶ୍ରୟ ଠାରୁ ଗନ୍ଧ ଯାଇ ।। ୫୭
ନାସାକୁ ଆବୋରେ ଯେମନ୍ତ । ସେ ରୂପେ ଯୋଗରତ ଚେତ[୧] ।। ୫୮
ବିକାରରହିତ ହୋଇଣ । ଆତ୍ମାକୁ ଲଭଇ ତକ୍ଷଣ ।। ୫୯
୨୧ ସକଳ ଭୂତେ ଅଛି ମୁହିଁ । ଭୂତାତ୍ମା ରୂପ ସଦା ହୋଇ ।। ୬୦
ମୋତେ ଅବଜ୍ଞା କରି ଜନ । କରଇ ଅର୍ଚ୍ଚାବିଡ଼ମ୍ବନ ।। ୬୧
୨୨ ସକଳ ଭୂତରେ ମୁଁ ଥାଇ । ଆତ୍ମା ଈଶ୍ୱରରୂପୀ ହୋଇ ।। ୬୨
ଯେ ମୋତେ ପରିତ୍ୟାଗ କରେ । ପ୍ରତିମାପୂଜାକୁ ଆଚରେ ।। ୬୩
ସେ ଲୋକ ମୂଢ଼ ଭାବ ବହି । ଭସ୍ମରେ ହୋମ ଆଚରଇ ।। ୬୪
୨୩ ମୁଁ ଥାଇ ପରହୃଦଗତେ । ଅପ୍ରୀତି ଆଚରଇ ମୋତେ ।। ୬୫
୨୪ ମାନକୁ ଆଚରିଣ ଥାଇ । ପ୍ରାଣୀଙ୍କି ଭେଦବୁଦ୍ଧି ବହି ।। ୬୬
ପ୍ରାଣୀରେ ହୋଏ ବଦ୍ଧବୈର । ନ ଭଜେ ମନ ଶାନ୍ତି ତାର ।। ୬୭
ଘେନିଣ ନାନା ଦ୍ରବ୍ୟମାନ । ଯେ କରେ ପ୍ରତିମା ପୂଜନ ।। ୬୮
ପ୍ରାଣୀମାନଙ୍କୁ ନିନ୍ଦାକରେ । ମୁଁ ତୋଷ ନୁହଇ ତା'ଠାରେ ।। ୬୯
୨୫ ତେତିକି କାଳ ପରିଯନ୍ତେ । ପୂଜିବ ପ୍ରତିମାରେ ମୋତେ ।। ୭୦
ସ୍ୱହୃଦେ ସର୍ବଭୂତଗତେ । ଯାବତ ନ ଜାଣିମ ମୋତେ ।। ୭୧

---

୧. ଚିତ୍ତ ।

୨୬ ଯେ ଲୋକ ନିଜ ପରଠାରେ । ଅଳ୍ପହିଁ[1] ଭେଦକୁ ଆଚରେ ॥ ୭୨
ମୁଁ ମୃତ୍ୟୁସ୍ୱରୂପା ତାହାର । କରଇ ଭୟ ଅତି ଘୋର ॥ ୭୩
୨୭ ଏଣୁ ସକଳ ଭୂତେ ମୁହିଁ । ଅଛଇ ଅନ୍ତର୍ଯାମୀ ହୋଇ ॥ ୭୪
ମୋତେ ପୂଜିବ ଦାନମାନେ । ମୈତ୍ରୀରେ ସମାନ ଦର୍ଶନେ ॥ ୭୫
୨୮ ଯେତେ ଅଛନ୍ତି ଅଚେତନେ । ଶ୍ରେଷ୍ଠ ତହିଁରୁ ଜୀବମାନେ ॥ ୭୬
୨୯ ପ୍ରାଣବୃତ୍ତିକି ଯେ ଧରନ୍ତି । ତହିଁରୁ ଶ୍ରେଷ୍ଠ ସେ ଅଟନ୍ତି ॥ ୭୭
ତହୁଁ ସୁଚିତ୍ତମାନେ ସାର । ଇନ୍ଦ୍ରିୟବନ୍ତ ତହୁଁ ବର ॥ ୭୮
ଇନ୍ଦ୍ରିୟବନ୍ତ ସେ ବୋଲାନ୍ତି । *ଯେ ବୃକ୍ଷେ ସ୍ପରଶ ଜାଣନ୍ତି ॥ ୭୯
ରସ ଜାଣନ୍ତି ଯେ ମତ୍ସ୍ୟାଦି । ତହିଁରୁ ଶ୍ରେଷ୍ଠ ସେ ପ୍ରସିଦ୍ଧି ॥ ୮୦
ଗନ୍ଧଜ୍ଞମାନେ ସାର ତହୁଁ । ଅଟନ୍ତି ଭ୍ରମରାଦି ଯେହୁ ॥ ୮୧
ଶବ୍ଦ ଜାଣନ୍ତି ଯେ ସର୍ପାଦି । ତହିଁରୁ ଶ୍ରେଷ୍ଠ ସେ ପ୍ରସିଦ୍ଧି ॥ ୮୨
୩୦ ରୂପଭେଦଜ୍ଞ ତହୁଁ ସାର । କାକାଦି ନାମ ତାହାଙ୍କର ॥ ୮୩
ଉଭୟ ପାର୍ଶ୍ୱେ ଦନ୍ତ ଯାର । ତହିଁରୁ ଅଟନ୍ତି ସେ ବର ॥ ୮୪
ପାଦ ନ ଥିଲା ପ୍ରାଣୀଙ୍କରୁ । ଅଟନ୍ତି ବହୁପାଦେ ଗୁରୁ ॥ ୮୫
ତହିଁରୁ ଚତୁଷ୍ପାଦ ସାର । ମନୁଷ୍ୟ ଅଟେ ତହୁଁ ବର ॥ ୮୬
୩୧ ତହିଁରୁ ଚାରିବର୍ଣ୍ଣ ଶ୍ରେଷ୍ଠ । ବ୍ରାହ୍ମଣ ତହିଁରୁ ଗରିଷ୍ଠ ॥ ୮୭
ବ୍ରାହ୍ମଣମାନଙ୍କ ମଧ୍ୟରେ । ବେଦଜ୍ଞ ସାର ଏ ସଂସାରେ ॥ ୮୮
ଅର୍ଥ ଅଛନ୍ତି ଯେବା ଜାଣି । ତହିଁରୁ ଶ୍ରେଷ୍ଠ ତାଙ୍କୁ ଗଣି ॥ ୮୯
୩୨ ଅର୍ଥଜ୍ଞଠାରୁ ଅଟେ ସାର । ସଂଶୟ[2] ଛେଦଇ ଯେ ନର ॥ ୯୦
ନିଜ ଧର୍ମରେ ଯେବା ଥାଇ । ତହିଁରୁ ଶ୍ରେଷ୍ଠ ସେ ଅଟଇ ॥ ୯୧
ତହିଁରୁ ମୁକ୍ତସଙ୍ଗ ସାର । ନିଷ୍କାମ ଅଟଇ ଯେ ନର ॥ ୯୨
୩୩ ସକଳ କର୍ମଫଳ ହୁଇ । ଆତ୍ମା[3]କୁ ମୋତେ ଯେ ଅର୍ପଇ ॥ ୯୩
ସେ ପୁଣି ତହୁଁ ଅଟେ ସାର । ଅବ୍ୟବହିତ ସେହୁ ନର ॥ ୯୪
ଯେ ମୋର ଠାରେ ମନ ଦେଇ । କର୍ମ ମୋ'ଠାରେ ସମର୍ପଇ ॥ ୯୫

---

୧. ମୂଳଶବ୍ଦ ''ଉଦର'' ର ଅର୍ଥ ।
(ଉତ = ଅପି, ଅରମ୍ = ଅଳ୍ପମ୍, ଅତଏବ ଉଦର = ଅଳ୍ପହିଁ) ।

* ''ତସ୍ମାତ୍ ପଶ୍ୟନ୍ତି ପାଦପାଃ, ତସ୍ମାତ୍ ଜିଘ୍ରନ୍ତି ପାଦପାଃ ।'' ଇତ୍ୟାଦି ।
(ମହାଭାରତ, ମୋକ୍ଷଧର୍ମ)

୨. ସଂଶୟଚ୍ଛେତ୍ତା = ମୀମାଂସକ । ୩. ଆତ୍ମା = ଦେହ ।

ସମଦରଶୀ ସେ ମାନବ । ନାହିଁ ତାହାର କର୍ତ୍ତାଭାବ ।। ୯୬
ତା'ଠାରୁ ଅଧିକ କରିଣ । ଦେଖୁ ନାହିଁ ମୁଁ ଆନ ଜଣ ।। ୯୭
୩୪ ମନରେ କରିଣ ମାନନ । ପ୍ରାଣୀଙ୍କି କରିବ ବନ୍ଦନ ।। ୯୮
ଅନ୍ତରଯାମୀ ରୂପ ଧରି । ପ୍ରବେଶ ଏଥି ଯେଣୁ ହରି ।। ୯୯
୩୫ ହେ ମନୁପୁତ୍ରି ! ତୋର ଆଗ । କହିଲି ଭକ୍ତିଯୋଗ, ଯୋଗ ।।୧୦୦
ଏଥୁଁ କଥାଏ ମାତ୍ର ଜାଣି । ମୋତେ ଲଭଇ ସାଧୁ ପ୍ରାଣୀ ।।୧୦୧
୩୬ ବ୍ରହ୍ମ ପରମଆତ୍ମା ଯେହି । ତାହାର ରୂପ ଏ ଅଟଇ ।।୧୦୨
ପ୍ରଧାନ ପୁରୁଷ ଆକାର । ତହୁଁରୁ ଅଟେ ପୁଣ ପର ।।୧୦୩
ତାକୁ ଦଇବ ବୋଲି ପୁଣ । ସେ ନାନା ସଂସ୍କୃତିଲକ୍ଷଣ ।।୧୦୪
୩୭ ପ୍ରାଣୀଙ୍କ ରୂପଭେଦ ସ୍ଥାନ । ଯାହାକୁ କାଳ ବୋଲେ ଜନ ।।୧୦୫
୩୮ ମହତ ଆଦି ଭୂତମାନେ । ଯେ ଭିନ୍ନଦର୍ଶୀ ଅବା ଜନେ ।।୧୦୬
ତାଙ୍କର ଯାହାଠାରୁ ଭୟ । ଯେ ପଶି ପ୍ରାଣୀଙ୍କ ହୃଦୟ ।।୧୦୭
ପ୍ରାଣୀଙ୍କି ପ୍ରାଣୀରେ ନାଶଇ । ସକଳ-ଆଶ୍ରୟ ଅଟଇ ।।୧୦୮
ଅଟଇ ବିଷ୍ଣୁନାମ ତାର । ସେ ଯଜ୍ଞଫଳଦାତା ବର ।।୧୦୯
ଜଗତ କରନ୍ତି ଯେ ବଶ । ସେ କାଳରୂପୀ ତାଙ୍କ ଈଶ ।।୧୧୦
୩୯ ପ୍ରିୟ, ବିପକ୍ଷ, ବନ୍ଧୁ ହୋଇ । ତାହାର ପ୍ରାଣୀ କେହି ନାହିଁ ।।୧୧୧
ଅସାବଧାନ ଯେଉଁ ଜନ । ତା'ଠାରୁ ହୋଏ ସାବଧାନ ।।୧୧୨
ଏ କାଳ ପ୍ରବେଶ ହୁଅଇ । ସକଳ ଅନ୍ତ ଏ କରଇ ।।୧୧୩
୪୦ ଯା' ଭୟେ ବହଇ ସମୀର । ଯା' ଭୟେ ତାପେ ଦିବାକର ।।୧୧୪
ଯା' ଭୟେ ବାସବ ବରଷେ । ଯା' ଭୟେ ଭଗଣ[1] ପ୍ରକାଶେ ।।୧୧୫
୪୧ ଯାହାର ଠାରୁ ଲଭି ଭୀତି । ଲତା, ଓଷଧି, ବନସ୍ପତି ।।୧୧୬
ଯେ ଯାହା କାଳେ ଅନୁଆନ[2] । ଘେନନ୍ତି ପୁଷ୍ପଫଳମାନ ।।୧୧୭
୪୨ ଯା' ଭୟେ ନଦୀମାନେ ବହି । ସମୁଦ୍ର କୂଳ ନ ଲଂଘଇ ।।୧୧୮
ଅନଳ ଦୀପ୍ତିକି ଭଜଇ । ନ ବୁଡ଼େ ଗିରିସଙ୍ଗେ ମହୀ ।।୧୧୯
୪୩ ଗଗନ ଯାର ଆଜ୍ଞା ପାଇ । ପ୍ରାଣୀଙ୍କି ମାର୍ଗକୁ ଦିଅଇ ।।୧୨୦
ସପ୍ତ ଆବରଣେ ବେଷ୍ଟିତ । ନିଜ ଦେହକୁ ମହତ୍ତତ୍ତ୍ୱ ।।୧୨୧
ଲୋକ ରୂପରେ ବିସ୍ତାରଇ । ଯେଉଁକାଳର ଆଜ୍ଞା ପାଇ ।।୧୨୨

---

୧. ନକ୍ଷତ୍ରମାନେ । ୨. "ଅନ୍ୟୋନ୍ୟ"ର ଅପଭ୍ରଂଶ ।

୪୪ ସର୍ଜନ-ପାଳନ-ନାଶନେ । ବିଧାତା ଆଦି ଦେବମାନେ ।।୧୨୩
ଯାହାରଠାରୁ ଲଭି ଭୀତି । ପ୍ରତି ଯୁଗରେ ପ୍ରବର୍ତ୍ତନ୍ତି ।।୧୨୪
ଯେଉଁ ଦେବତାମାନଙ୍କର । ବଶରେ ଅଛି ଚରାଚର ।।୧୨୫
୪୫ ସେ କାଳ ଅଟଇ ଅନନ୍ତ । କରଇ ଜଗତର ଅନ୍ତ ।।୧୨୬
ଜନକୁ ଜନେ[୧] ଜାତ କରେ । ଯମକୁ ମୃତ୍ୟୁରେ ସଂହାରେ ।।୧୨୭
କପିଳ ଦେବହୂତି-ଆଗେ । ଯାହା କହିଲେ ଜ୍ଞାନଯୋଗେ ।।୧୨୮
ସୁଜନେ ତୋଷ ହୁଅ ଏଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ।।୧୨୯
ସୁଜନେ ଦୋଷ ମୋ' ନ ଧର । ମୁଁ ତୁମ୍ଭ ଚରଣେ କିଙ୍କର ।।୧୩୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଭକ୍ତିଯୋଗୋ ନାମ ଏକୋନତ୍ରିଂଶୋଽଧ୍ୟାୟଃ ।।

## ତ୍ରିଂଶୋଽଧ୍ୟାୟଃ

ତ୍ରିଂଶେ ତୁ କାୟକାନ୍ତାଦିଲାଳନାକୁଳଚେତସାମ୍ ।
କାମିନାଂ ତାମସୀ ପାପାଦଧୋଗତିରୁଦୀର୍ଯ୍ୟତେ ।। ୧ ।।

ଶ୍ରୀଭଗବାନୁବାଚ

୧ ସେ କାଳ ସମସ୍ତ କାଳଇ[୨] । ତାହାର ପରାକ୍ରମ କେହି ।। ୧
ଜାଣିପାରଇ ନାହିଁ ନର । ମେଘ ଯେସନେ ପବନର ।। ୨
୨ ଦୁଃଖରେ ଯେତେ ଯେତେ ଅର୍ଥ । ଘେନଇଁ ସୁଖ ବାଞ୍ଛି ଚିତ୍ତ ।। ୩
କାଳ ତା' କରଇ ସଂହାର । ଯେଣେ ଶୋଚନା କରେ ନର ।। ୪
୩ ପୁତ୍ରଦାରାଦିଯୁତ ହୋଇ । ଯେ ଦେହ ଅନିତ୍ୟ ଅଟଇ ।। ୫
ତାହାର ସଂବନ୍ଧୀ ହୋଇଣ । ଯେ ଗୃହ-କ୍ଷେତ୍ର-ବିତ୍ତଗଣ ।। ୬
ଅଥାଇ[୩] ସତ୍ୟ କରି ମଣି । ଯେଣୁ ଦୁର୍ମତି ଅଟେ ପ୍ରାଣୀ ।। ୭
୪ ଯେବଣ ଯେବଣ ଯୋନିରେ । ଜନ୍ତୁ ଜନ୍ମଇ ଏ ସଂସାରେ ।। ୮
ସୁଖ ଲଭଇ ତହିଁ ତହିଁ । କେବେହେଁ ବିରକ୍ତ ନୋହଇ ।। ୯

---

୧. ଜନେ = ଜନଦ୍ୱାରା ।
୨. ବିଚଳିତ କରାଏ । କାଲ୍ୟମାନଃ ବିଚାଲ୍ୟମାନଃ (ସ୍ୱାମୀ) । ୩. ଅସ୍ଥାୟୀ ।

୫ ପ୍ରାଣୀ ନରକମଧ୍ୟେ ଥାଇ । ଦେହକୁ ଛାଡ଼ି ନ ପାରଇ ॥ ୧୦
ଯେଣୁ ସେ ନରକଭୋଗରେ । ସୁଖକୁ ଲଭଇ ମନରେ ॥ ୧୧
ଦେବମାୟାରେ ବିମୋହିତ । ହୋଇଣ ଥାଇ ଅବିରତ ॥ ୧୨
୫(କ) ହୋଇଣ ସାଧୁସଙ୍ଗହୀନ । ସେବା ନ କରି ବୃଦ୍ଧଜନ ॥ ୧୩
ମୋତେ ନ ସେବି ଦୁଃଖ ପାଇ । କୁଟୁମ୍ବଠାରେ ମନ ଦେଇ ॥ ୧୪
୬ ଦେହ, ବନିତା, ଗୃହ, ସୁତ । ପଶୁନିଚୟ, ବନ୍ଧୁ ବିତ୍ତ ॥ ୧୫
ଏଥିରେ ମନ ଦୃଢ଼େ ଦେଇ । ଆତ୍ମାକୁ ଅଧିକ ମଣଇଁ ॥ ୧୬
୭ ସେ ପୁତ୍ର-ଦାରା ଆଦିଙ୍କର । ପୋଷଣ ଚିନ୍ତାଏ ଶରୀର ॥ ୧୭
ଅନବରତ ହୋଏ ଦହି । ତେଣୁ ଦୁର୍ବୁଦ୍ଧି ଭାବ ବହି ॥ ୧୮
ଅନବରତେ ପାପମାନ । କରୁଣ ଥାଇ ମୂଢ଼ ଜନ ॥ ୧୯
୮ ଅସତୀ ସ୍ତିରୀମାନେ ଯାହା । ଏକାନ୍ତେ ପ୍ରକାଶନ୍ତି ମାୟା ॥ ୨୦
ସଂଭୋଗ ଆଦିରୂପ ସେହି । ମନ ଇନ୍ଦ୍ରିୟକୁ ସେ ମୋହି ॥ ୨୧
ମଧୁରଭାଷୀ ଶିଶୁଙ୍କର । ଆଳାପେ ବଶ ହୋଇ ନର ॥ ୨୨
୯ ଯହିଁରେ କୂଟ ଧର୍ମମାନ । ଅଟଇ ଯେ ଦୁଃଖ-ପ୍ରଧାନ ॥ ୨୩
ସେ ଗୃହେ ଦୁଃଖ ପ୍ରତିକାର । କରନ୍ତେ ସୁଖ ମଣେ ନର ॥ ୨୪
୧୦ ଅତିହିଂସାରେ ଅର୍ଥମାନ । ଆଣିଣ ଏଣୁ ତେଣୁ ଜନ ॥ ୨୫
ଯେବଣ କୁଟୁମ୍ବ ପୋଷଇ । ସେ ଦୋଷେ ନରକକୁ ଯାଇ ॥ ୨୬
୧୧ ଜୀବିକା ପୁଣ ପୁଣ କରେ । ସେ ନାଶ ଯାଆନ୍ତେ କର୍ମରେ ॥ ୨୭
ଅଶକ୍ତ ହୋଇ ଲୋଭ ବହି । ପରର ବିତ୍ତକୁ ବାଞ୍ଛଇ ॥ ୨୮
୧୨ କୁଟୁମ୍ବପୋଷଣେ ଅଯୋଗ୍ୟ । ହୁଅଇ ଯେଣୁ ମନ୍ଦଭାଗ୍ୟ ॥ ୨୯
ଉଦ୍ୟମମାନ ହୋଏ ବ୍ୟର୍ଥ । ଲକ୍ଷ୍ମୀର ଅଭାବୁଁ ଦୁଃଖିତ ॥ ୩୦
ନିଃଶ୍ୱାସମାନଙ୍କୁ ପକାଇ । ସେ ମୂଢ଼ମତି ଚିନ୍ତା ବହି ॥ ୩୧
୧୩ ଏ ରୂପେ ନିଜ ପୋଷଣରେ । ଅଶକ୍ତ ହୁଅନ୍ତେ ତା'ଠାରେ ॥ ୩୨
ପୂର୍ବର ପ୍ରାୟକ ଆଦର । ପୁତ୍ରାଦି ନ କରନ୍ତି ତାର ॥ ୩୩
ବୃଦ୍ଧ ବଳଦଠାରେ ଯେହ୍ନେ । ହେଳା କରନ୍ତି ଚାଷୀମାନେ ॥ ୩୪

---

୫(କ) ସଦ୍‌ସଙ୍ଗରହିତୋ ମର୍ତ୍ତ୍ୟୋ ବୃଦ୍ଧସେବାପରିଚ୍ୟୁତଃ ।
ମାମନାରାଧ୍ୟ ଦୁଃଖାର୍ତ୍ତଃ କୁଟୁମ୍ବାସକ୍ତମାନସଃ ॥ ୧ ॥

୧୪ ତେତେବେଳେ ନିର୍ବେଦ ନୁହଇ । ପୂର୍ବେ ଯାହାକୁ ପୋଷିଥାଇ ।। ୩୫
ଖାଇ ତାହାଙ୍କ ଦେଲା ଅନ୍ନ । ଜରାରେ ହୁଅଇ ବିବର୍ଣ୍ଣ ।। ୩୬
ମରଣ ଅଭିମୁଖ ହୋଇ । ଗୃହ ମଧ୍ୟରେ ପଡ଼ିଥାଇ ।। ୩୭
୧୫ ଅବମାନନା କରି ଅନ୍ନ । ଦିଅନ୍ତି ଯାହା ଜ୍ଞାତିଜନ ।। ୩୮
କୁକୁରପ୍ରାୟ ତାହା ଖାଇ । ରୋଗୀ ମନ୍ଦାଗ୍ନି ସେ ହୁଅଇ ।। ୩୯
କ୍ରମେ ଆହାର ଊଣା ହୋଇ । ସେ ଘେନି ଚଳି ନ ପାରଇ ।। ୪୦
୧୬ ଊର୍ଦ୍ଧ୍ୱକୁ ଟେକନ୍ତେ ପବନ । ଖୋଷିଣ ଦିଅଇ ନୟନ ।। ୪୧
କଫସକାଶୁଁ ଦେହଗତେ । ରୁନ୍ଧି ହୁଅନ୍ତି ନାଡ଼ି ଯେତେ ।। ୪୨
କାସଶ୍ୱାସରେ ପୀଡ଼ା ପାଇ । କଣ୍ଠରେ ଘଡ଼ଘଡ଼ ହୋଇ ।। ୪୩
୧୭ କରିଣ ଥାଇ ସେ ଶୟନ । ଶୋଚନା କରି ବନ୍ଧୁଜନ ।। ୪୪
ବୋଲାନ୍ତେ ବୋଲି ନ ପାରଇ । କାଳପାଶର ବଶ ହୋଇ ।। ୪୫
୧୮ କୁଟୁମ୍ବପୋଷଣ ବ୍ୟାପାରେ । ଚିତ୍ତ ଦେଇଣ ଏ ପ୍ରକାରେ ।। ୪୬
କାନ୍ଦିଲା ଲୋକଙ୍କ ବେଦନା । ଘେନି ହୁଅଇ ହତମନା ।। ୪୭
ଅଜିତେନ୍ଦ୍ରିୟ ଯେ ଅଟଇ । ଏମନ୍ତ ପ୍ରକାରେ ମରଇ ।। ୪୮
୧୯ ସକ୍ରୋଧ ନେତ୍ର ଭୟଙ୍କର । ଯମର ବେନି ପରିଚାର ।। ୪୯
ମିଳନ୍ତେ ଭୟେ ତାଙ୍କୁ ଚାହିଁ । ମୂତ୍ର ପୁରୀଷ ସେ କରଇ ।। ୫୦
୨୦ ପାଶେ ବନ୍ଧନ କରି ଗଳେ । ଯାତନା ଦେହେ ଭରି ବଳେ ।। ୫୧
ଦୂରକୁ ନିଅନ୍ତି ଯେସନେ । ଚୋରକୁ ରାଜଭଟ[୧]ମାନେ ।। ୫୨
୨୧ କମ୍ପଇ ତର୍ଜନେ ତାଙ୍କର । ହୃଦୟ ହୋଇଣ ଅଧୀର ।। ୫୩
ବାଟେ ଭକ୍ଷନ୍ତି ତାକୁ ଶ୍ୱାନ । ଚିନ୍ତଇ ନିଜ ପାପମାନ ।। ୫୪
୨୨ ଯହିଁ ବାଲୁକା ତାତି ଥାଇ । ବିଶ୍ରାମ ସ୍ଥାନ, ଜଳ ନାହିଁ ।। ୫୫
ସେ ବାଟେ ଗମନ କରଇ । ବାଧଇ କ୍ଷୁଧାତୃଷା ଦୁଇ ।। ୫୬
ବନଅନଳ, ସୂର୍ଯ୍ୟ, ବାତେ । ସଂତାପ ପାଇ ଅବିରତେ ।। ୫୭
ଚର୍ମରଜ୍ଜୁକୁ ଘେନି କର । ପିଠିରେ କରନ୍ତି ପ୍ରହାର ।। ୫୮
୨୩ ଶ୍ରାନ୍ତ ହୋଇଣ ମୂର୍ଚ୍ଛା ଯାଇ । ପଡ଼ନ୍ତେ ସେହି ସେହି ଠାଇଁ ।। ୫୯
ଉଠି ଗମଇ ଅନ୍ଧକାରେ । ପାପମାର୍ଗରେ ଯମଦ୍ୱାରେ ।। ୬୦

---

୧. ରାଜଭଟ = ରାଜାନୁଚର ।

୨୪ ନଉ ସହସ୍ର ନବାଧିକ । ଯୋଜନ ଯମମାର୍ଗ ଏକ ॥ ୬୧
ତିନି ମୁହୂର୍ତ୍ତେ ଯାଇ ଏଥେ । ଅଥବା ଦ୍ୱିମୁହୂର୍ତ୍ତ ଅନ୍ତେ ॥ ୬୨
ତଦନନ୍ତରେ ପାପୀଜନ । ଲଭେ ଯମଯାତନାମାନ ॥ ୬୩
୨୫ ତୃଣାଦି ଦେହେ ଗୁଡ଼ିଆଇ । ଦହନ୍ତି ଅନଳ ଲଗାଇ ॥ ୬୪
ସ୍ୱହସ୍ତେ ଯାହା କାଟିଥାଇ । ପରଚ୍ଛେଦିତ ଅବା ହୋଇ ॥ ୬୫
ଏମନ୍ତ ମାଂସ ଆପଣାର । ଭକ୍ଷଣ କରଇ ସେଠାର ॥ ୬୬
୨୬ ଜିଇଥାଆନ୍ତେ ଅନ୍ତ ତାର । ଓଟାରେ ଶାଗୁଣା କୁକୁର ॥ ୬୭
ସର୍ପ ବୃଶ୍ଚିକ ଡାଂଶମାନେ । ଖାଆନ୍ତି ଯମର ସଦନେ ॥ ୬୮
ଆପଣା ପୀଡ଼ାକୁ ସ୍ମରଣ । କରୁଥାଆନ୍ତେ ପୁଣ ପୁଣ ॥ ୬୯
୨୭ କାଟନ୍ତି ଟିକି ଟିକି କରି । ଗଜ ଆଦିଙ୍କ ଦ୍ୱାରେ ଚିରି ॥ ୭୦
ପର୍ବତଶୃଙ୍ଗରୁ ପକାନ୍ତି । ସଲିଳେ, ଗର୍ତ୍ତରେ ରୁନ୍ଧନ୍ତି ॥ ୭୧
୨୮ ତାମିସ୍ର, ରଉରବ ଆଦି । ଅନ୍ଧତାମିସ୍ର ଯେ ପ୍ରସିଦ୍ଧି ॥ ୭୨
ଭୁଂଜେ ସେ ଯାତନା ପୁରୁଷ । ନାରୀ ବା ଲଭି ସଙ୍ଗଦୋଷ ॥ ୭୩
୨୯ ସ୍ୱର୍ଗ ନରକ ଯେବା ଦୁଇ । ଭୋ ମାତ ! ଏଥି ସେ ଅଛଇ ॥ ୭୪
ନରକଯାତ ନାହିଁ ଏଥି । ଏମନ୍ତ ପଣ୍ଡିତେ ବୋଲନ୍ତି ॥ ୭୫
୩୦ ଏ ରୂପେ ଆପଣା ଉଦର । କୁଟୁମ୍ବ ପୋଷଇ ଯେ ନର ॥ ୭୬
ସେ ବେନି ଛାଡ଼ି ପ୍ରେତଦେହେ । ଏମନ୍ତ ଫଳ ତହୁଁ ପାଏ ॥ ୭୭
୩୧ ପ୍ରାଣୀଙ୍କ ଠାରେ କରି ଦ୍ରୋହ । ପୋଷିଣ ଥାଇ ଯେଉଁ ଦେହ ॥ ୭୮
ଛାଡ଼ି ସେ ଆପଣା ଶରୀର । ଏକେ ଲଭଇ ତମ ଘୋର ॥ ୭୯
ଯେଉଁ ଦୁରିତ ଅର୍ଜିଥାଇ । ବାଟକୁ ସମ୍ବଳ ସେ ହୋଇ ॥ ୮୦
୩୨ କୁଟୁମ୍ବପୋଷଣ ଦୁରିତ । ଦଇବେ ହୁଅଇ ପ୍ରାପତ ॥ ୮୧
ନରକଭୋଗ ସେ କରଇ । ଅବଶଚିତ୍ତ ପ୍ରାୟ ହୋଇ ॥ ୮୨
୩୩ କେବଳ ଅଧର୍ମ କରିଣ । କୁଟୁମ୍ବ କରେ ଯେ ପୋଷଣ ॥ ୮୩
ଅନ୍ଧତାମିସ୍ରକୁ ସେ ଯାଇ । ନରକପ୍ରାନ୍ତ ସ୍ଥାନ ସେହି ॥ ୮୪
୩୪ ମନୁଷ୍ୟଦେହ ନୋହୁଁ ତଳ । ଯେତେକ ଯାତନାସକଳ ॥ ୮୫
ଶ୍ୱାନ ଶୂକର ଆଦି ଯୋନି । ସେ ସର୍ବଠାରେ ଜନ୍ମ ଘେନି ॥ ୮୬
କର୍ମରେ ନିଷ୍ପାପ ହୋଇଣ । ମନୁଷ୍ୟ ଦେହ ଧରେ ପୁଣ ॥ ୮୭

ହରିଚରଣେ ଦେଇ ଚିତ୍ତ । ତୃତୀୟ ସ୍କନ୍ଧ ଭାଗବତ ।। ୮୮
ବ୍ରାହ୍ମଣ ଦୀନବନ୍ଧୁ ଭଣି । ସଂସାର ସାଗର ତରଣୀ ।। ୮୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
କର୍ମବିପାକୋ ନାମ ତ୍ରିଂଶୋଽଧ୍ୟାୟଃ ।।

## ଏକତ୍ରିଂଶୋଽଧ୍ୟାୟଃ

ଏକତ୍ରିଂଶେ ବିମିଶ୍ରୈସ୍ତୁ ପୁଣ୍ୟପାପୈରିହାନ୍ତରା ।
ମନୁଷ୍ୟଯୋନିସଂପ୍ରାପ୍ତିର୍ବର୍ଣ୍ୟତେ ରାଜସୀ ଗତିଃ ।। ୧ ।।

ଶ୍ରୀଭଗବାନୁବାଚ

୧ ଦଇବ ପ୍ରବର୍ତ୍ତକ ଯହିଁ । ସେ କର୍ମେ ଦେହ ହେବା ପାଇଁ ।। ୧
ପ୍ରବେଶ ହୋଇ ନାରୀଗର୍ଭେ । ପୁରୁଷରେତ-ଅବଲମ୍ବେ ।। ୨
୨ ଶୁକ୍ର ଶୋଣିତ ଏହୁ ଦୁଇ । ମିଶ୍ରିତ ଏକରାତ୍ରେ ହୋଇ ।। ୩
ସେ ପୁଣି ପଞ୍ଚରାତ୍ର ଶେଷେ । ବର୍ତ୍ତୁଳ ହୋଏ ଗର୍ଭଦେଶେ ।। ୪
ବଦରୀ ଫଳର ପରାଏ । କଠିନ ଦଶଦିନେ ହୋଏ ।। ୫
ତଦନ୍ତେ ମାଂସପିଣ୍ଡ ପ୍ରାୟେ । ଯୋନି ଭେଦରେ ଅଣ୍ଡ ହୋଏ ।। ୬
୩ ମାସକେ ଶିର ଜାତ ହୋଇ । ବାହୁ, ଚରଣ ଆଦି ଯେହି ।। ୭
ସେ ଅଙ୍ଗମାନେ ବେନିମାସ । ଅନ୍ତରେ ହୁଅନ୍ତି ପ୍ରକାଶ ।। ୮
ଯେ ନଖ ଲୋମ ଚର୍ମ ଅସ୍ଥି । ଯେ ଲିଙ୍ଗଛିଦ୍ରମାନେ ଛନ୍ତି ।। ୯
ହୁଅନ୍ତେ ତିନି ମାସ ଶେଷ । ସେମାନେ ହୁଅନ୍ତି ପ୍ରକାଶ ।। ୧୦
୪ ଚାରିମାସର ଅନ୍ତେ ତହିଁ । ସପତ ଧାତୁ ସମ୍ଭବଇ ।। ୧୧
ଯେ କ୍ଷୁଧାତୃଷା ସେହୁ ଦୁଇ । ପାଞ୍ଚ ମାସରେ ସମ୍ଭବଇ ।। ୧୨
ଛମାସେ ଜରାୟୁବେଷ୍ଟିତ । ଭ୍ରମେ ଦକ୍ଷିଣ କୁକ୍ଷିଗତ ।। ୧୩
୫ *ଯହିଁରେ ଜନ୍ତୁ ହୋଏ ଜାତ । ଅଟେ ସେ ପ୍ରାଣୀ-ଅସମ୍ମତ ।। ୧୪
ବିଶେଷେ ବିଷ୍ଠାମୂତ୍ରଙ୍କର । ଗର୍ତ୍ତ ଅଟଇ ଯେ ଉଦର ।। ୧୫

---

* ନାଡୀ ଚାପ୍ୟାୟନୀ ନାମ ନାଭ୍ୟାଂ ତସ୍ୟ ନିବଧ୍ୟତେ ।
ସ୍ତ୍ରୀଣାଂ ତଥାନ୍ତ୍ରଶୁଷିରେଷ୍ୱାନିବଦ୍ଧୋପଜାୟତେ ।। ୧ ।।
କ୍ରମନ୍ତେ ଭୁକ୍ତପୀତାନି ସ୍ତ୍ରୀଣାଂ ଗର୍ଭୋଦରେ ତୟା ।
ତୈରାପ୍ୟାୟିତଦେହୋଽସୌ ଜନ୍ତୁର୍ବୃଦ୍ଧିମୁପୈତି ବୈ ।। ୨ ।।

ତହିଁରେ ଜନ୍ତୁ ଶୋଇଥାଇ । ମାତା ଯେ ଅନ୍ନପାନ ଖାଇ ॥ ୧୬
ତେଣେ ଜୀବର ଧାତୁମାନେ । ବୃଦ୍ଧି ହୁଅନ୍ତି ଦିନେ ଦିନେ ॥ ୧୭
୬ ଉଦରମଧ୍ୟେ କ୍ଷୁଧା ପାଇ । ଯେ କୃମିମାନେ ଥାନ୍ତି ରହି ॥ ୧୮
କ୍ଷତ କରନ୍ତି ତା ଶରୀର । ଯେଣୁ ସେ ଅଟେ ସୁକୁମାର ॥ ୧୯
ଏ ଘେନି ଅତି କ୍ଲେଶ ପାଇ । ପ୍ରତି କ୍ଷଣରେ ମୋହ ହୋଇ ॥ ୨୦
୭ କଟୁ, ତୀକ୍ଷ୍ଣ ଉଷ୍ଣ, ଲବଣ । ଅମ୍ଳାଦି ରସ ଯେ ଉଲ୍ବଣ[୧] ॥ ୨୧
ମାତା ଭକ୍ଷନ୍ତେ ତାହା ଖାଇ । ସର୍ବାଙ୍ଗେ ବେଦନା ଲଭଇ ॥ ୨୨
୮ ସେ ଅଟେ ଜରାୟୁବେଷ୍ଟିତ । ଅନ୍ତମାନଙ୍କରେ ଆବୃତ ॥ ୨୩
ପେଟେ ଲଗାଇ ଥାଇ ଶିର । କୁଟିଳ ପୃଷ୍ଠ ଗ୍ରୀବା ତାର ॥ ୨୪
ଅଙ୍ଗକୁ ଚାଳିଣ ନ ପାରେ । ଶକୁନ୍ତ ଯେସନେ ପଞ୍ଜରେ ॥ ୨୫
୯ ସେ ପୁଣି ଦୈବବଶ ହୋଇ । ଯା ଶତଜନ୍ମେ କରିଥାଇ ॥ ୨୬
ସେ କର୍ମ କରନ୍ତେ ସ୍ମରଣ । ନିରତେ ଉଦବେଗ ହୋଇଣ ॥ ୨୭
୧୦ କେଉଁ ସୁଖକୁ ଅବା ପାଇ । ସପ୍ତମ ମାସ ଆଦି ହୋଇ ॥ ୨୮
ଜ୍ଞାନ ତାହାର ଜାତ ହୋଇ । ସେ ଘେନି ଭୟରେ କଂପଇ ॥ ୨୯
ପ୍ରସୂତିପବନଚେଷ୍ଟାଏ । ରହି ନ ପାରେ ଏକଠାଏଁ ॥ ୩୦
ବିଷ୍ଠାଜନିତ କୃମିଙ୍କର । ଅଟଇ ଯେସନେ ସୋଦର ॥ ୩୧
୧୧ ସେ ଋଷି[୨] ଉପତାପ ପାଇ । ଗର୍ଭବାସରୁ ଭୀତ ହୋଇ ॥ ୩୨
ତାହାର ବନ୍ଧନକୁ ହେତୁ । ହୋଇ ଥାଆନ୍ତି ସପ୍ତଧାତୁ ॥ ୩୩
ଯେ ତାକୁ ଉଦରରେ ନେଇ । ଈଶ୍ୱର ଅର୍ପିତ କରଇ ॥ ୩୪
ତାହାକୁ ବିକଳ ଭାବରେ । କର ଯୋଡ଼ିଣ ସ୍ତୁତି କରେ ॥ ୩୫

ଶ୍ରୀଜୀବ ଉବାଚ

୧୨ ହୁଅଇ ଯେ ଶରଣାଗତ । ରଖିବାପାଇଁ ସେ ଜଗତ ॥ ୩୬
ଇଚ୍ଛାଏ ନାନା କଳେବର । ଧରନ୍ତି ଯେ ପରମେଶ୍ୱର ॥ ୩୭
ତାଙ୍କ ଚରଣପଦ୍ମ ଦୁଇ । ଲୀଳାରେ ଭୂମିରେ ଚଳଇ ॥ ୩୮
ଶରଣ ପଶୁଛି ମୁଁ ତହିଁ । ଯହିଁରେ କିଛି ଭୟ ନାହିଁ ॥ ୩୯

---

୧. ଉଲ୍ବଣ = ଦୁଃସହ । (ମାର୍କଣ୍ଡେୟ ପୁରାଣ)
୨. ଋଷି = ଦେହାତ୍ମଦର୍ଶୀ ।

ଏ ରୂପେ ଗର୍ଭବାସଗତି । ଯେ ମୋତେ ଦେଖାଇ ଅଛନ୍ତି ॥ ୪୦
ଦୁଷ୍ଟ ଅଟଇ ଯେଣୁ ମୁହିଁ । ମୋତେ ଏ ଉଚିତ ଅଟଇ ॥ ୪୧
୧୩ ଭୂତ ଇନ୍ଦ୍ରିୟ-ମନୋମୟୀ । ମାୟାକୁ ଅବଲମ୍ବ ପାଇ ॥ ୪୨
କର୍ମରେ ବଦ୍ଧପ୍ରାୟେ ହୋଇ । ଏ ଗର୍ଭମଧ୍ୟେ ମୁଁ ଅଛଇ ॥ ୪୩
ସଂତାପବନ୍ତ ହୃଦେ ମୋର । ପ୍ରତୀତ ଶୁଦ୍ଧ ଅବିକାର ॥ ୪୪
ଅଖଣ୍ଡବୋଧ ଯେ ଇଶ୍ୱର । ତାହାଙ୍କୁ ମୋର ନମସ୍କାର ॥ ୪୫
୧୪ ପୃଥିବୀ ଆଦି ପଞ୍ଚଭୂତ । ତେଣେ ଏ ଶରୀର ନିର୍ମିତ ॥ ୪୬
ଏଥି ମାୟାରେ ଛନ୍ନ ହୋଇ । ଅଛି ମୁଁ ଅସଙ୍ଗ ଅଟଇ ॥ ୪୭
ମୋର ଇନ୍ଦ୍ରିୟ ଅର୍ଥ ଗୁଣ । ଇତ୍ୟାଦି ଅଟେ ଅପ୍ରମାଣ ॥ ୪୮
ଅକୁଣ୍ଠ ମହିମା ଯାହାର । ପ୍ରକୃତି ପୁରୁଷୁଁ ଯେ ପର ॥ ୪୯
ଯେ ପ୍ରଭୁ ସର୍ବଜ୍ଞ ଅଟନ୍ତି । ତାହାଙ୍କୁ ମୋହର ପ୍ରଣତି ॥ ୫୦
୧୫ ଯହିଁରେ ଗୁଣରୁ ନିର୍ମିତ । କର୍ମବନ୍ଧନ ଅପ୍ରମିତ ॥ ୫୧
ସେ ଭବମାର୍ଗେ ଅତିଶ୍ରମେ । ଯାର ମାୟାରେ ମତିଭ୍ରମେ ॥ ୫୨
ଏ ଜନ କରଇ ଭ୍ରମଣ । ତା ଅନୁଗ୍ରହ ବିନୁ ପୁଣ ॥ ୫୩
କେଉଁ ଯୁଗୁତିବଳେ ଏହି । ଆପଣା ରୂପକୁ ଜାଣଇଁ ॥ ୫୪
୧୬ ଭୂତ ଭବିଷ୍ୟ ବର୍ତ୍ତମାନ । ଏ କାଳବିଷୟ ଯେ ଜ୍ଞାନ ॥ ୫୫
ତାହାଙ୍କ ବିନୁ ମୋହଠାଇଁ । କେ ତାହା ଅଛି ପ୍ରବର୍ତ୍ତାଇ ॥ ୫୬
ଏଣୁ ସେ ଅଟନ୍ତି ଇଶ୍ୱର । ସ୍ଥିର-ଜଙ୍ଗମେ ଅଂଶ ଯାର ॥ ୫୭
ଜୀବରୂପ କର୍ମପଦ୍ଧତି । ତହିଁକି ଥାଇ ଅନୁବର୍ତ୍ତି ॥ ୫୮
ତାପତ୍ରୟର ନାଶପାଇଁ । ଆମ୍ଭେ ତାହାଙ୍କୁ ଭଜୁଥାଇଁ ॥ ୫୯
୧୭ ମାତାଉଦର ଅଟେ କୂପ । ରକତ-ବିଷ୍ଠା-ମୂତ୍ରରୂପ ॥ ୬୦
ତହିଁ ମଧ୍ୟରେ ପଡ଼ିଥାଇ । ଜଠରାନଳେ ଦହି ହୋଇ ॥ ୬୧
ତହୁଁ ନିର୍ଗମ ବାଞ୍ଛିମନ । ଗଣନ୍ତେ ନିଜ ମାସମାନ ॥ ୬୨
ଏ ଜୀବ ଅଛି ଦୁଃଖୀ ହୋଇ । ହେ ଭଗବାନ କେବେ ତୁହି ॥ ୬୩
ଏ କୂପ ମଧ୍ୟରୁ ବାହାର । କରିବୁ ଏହାକୁ ଇଶ୍ୱର ॥ ୬୪
୧୮ ଏ ଜୀବ ଅଟେ ଦଶମାସ୍ୟ[୧] । ଏହାକୁ ଏ ଜ୍ଞାନ ପ୍ରକାଶ ॥ ୬୫
କରିଣ ଅଛ ତୁମ୍ଭେ ଯେହି । ଚିତ୍ତରେ ଅତି ଦୟା ବହି ॥ ୬୬

---

୧. ଦଶମାସ ।

| | | | |
|---|---|---|---|
| | ସେ ତୁମ୍ଭେ ତୁମ୍ଭରି ଇଚ୍ଛାରେ । | ତୋଷକୁ ଲଭ ସ୍ୱମନରେ | ॥ ୬୭ |
| | କରଯୁଗଳ ନିଜ ଶିରେ । | ଅର୍ପଣ କରିବା ବାହାରେ | ॥ ୬୮ |
| | ତୁମ୍ଭର ପ୍ରତି-ଉପକାର । | କରିପାରିବ କେଉଁ ନର | ॥ ୬୯ |
| ୧୯ | ଯେ ପଶୁ ଆଦି ଜୀବ ଆନ । | ଶରୀରସୁଖଦୁଃଖମାନ | ॥ ୭୦ |
| | କେବଳମାତ୍ର ସେ ଦେଖଇ । | ମୁଁ ଯାହାଠାରୁ ଜ୍ଞାନ ପାଇ | ॥ ୭୧ |
| | ଦଶମ ଆଦିରେ ସଂଯୁତ । | ଶରୀର ହୋଇଛି ବିଦିତ | ॥ ୭୨ |
| | ପୁରାଣ ପୁରୁଷ ରୂପରେ । | ତାହାଙ୍କୁ ଭିତରେ ବାହାରେ | ॥ ୭୩ |
| | ଦେଖୁଣ ଅଛି ମୁଁ ସଂତତ । | ଯେ ଭୋକ୍ତାପ୍ରାୟକ ବିଦିତ | ॥ ୭୪ |
| ୨୦ | ହେ ପ୍ରଭୁ ନାନା ଦୁଃଖ ପାଇ । | ଗର୍ଭରେ ରହିଲେହେଁ ମୁହିଁ | ॥ ୭୫ |
| | ଏ ଗର୍ଭମଧ୍ୟରୁ ବାହାର । | ହେବାକୁ ନାହିଁ ମନ ମୋର | ॥ ୭୬ |
| | ବାହାର ଅନ୍ଧକୂପପ୍ରାୟେ । | ତହିଁରେ ପ୍ରାଣୀ ଯେବେ ହୋଏ | ॥ ୭୭ |
| | ତାକୁ ଘୋଟଇ ମାୟା ତୋର । | ଯହୁଁ ଉପୁଜେ ଅହଂକାର | ॥ ୭୮ |
| | ସଂସାରଚକ୍ରେ ଜାତ ହୋଇ । | କ୍ରମେ ପୁତ୍ରାଦିସଙ୍ଗ ପାଇ | ॥ ୭୯ |
| ୨୧ | ସେ ଘେନି ଅବିକଳ ହୋଇ । | ଏହି ଗର୍ଭରେ ଥାଇ ମୁହିଁ | ॥ ୮୦ |
| | ମନକୁ ମିତ୍ର କରି ଲଭି । | ଆତ୍ମାକୁ ସଂସାରୁ ତାରିବି | ॥ ୮୧ |
| | ଯେମନ୍ତେ ନାନା ଗର୍ଭେ ମୋର । | ନିବାସ ନୋହିବ ଆବର | ॥ ୮୨ |
| | ତେଣୁ ବିଷ୍ଣୁର ପାଦ ଦୁଇ । | ହୃଦୟେ ଚିନ୍ତା କଲି ମୁହିଁ | ॥ ୮୩ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୨୨ | ଏ ରୂପେ ଗର୍ଭ ଜୀବ ଥାଇ । | ସ୍ତୁତି କରନ୍ତେ ମନ ଦେଇ | ॥ ୮୪ |
| | ଦଶମ ମାସ ପୂର୍ଣ୍ଣେ ତାର । | ତକ୍ଷଣେ ପ୍ରସୂତିସମୀର | ॥ ୮୫ |
| | ପ୍ରସବ ଅର୍ଥରେ ଓଟାରେ । | ତାହାକୁ ଅଧୋବଦନରେ | ॥ ୮୬ |
| ୨୩ | ହୁଅନ୍ତେ ପ୍ରସୂତିପବନ । | ତଳକୁ କରିଣ ବଦନ | ॥ ୮୭ |
| | ତକ୍ଷଣେ ହୋଇଣ ଆତୁର । | କଷ୍ଟରେ ହୁଅଇ ବାହାର | ॥ ୮୮ |
| | ଲଭଇ ନାହିଁ ସେ ଆଶ୍ୱାସ । | ପୂର୍ବ ଜ୍ଞାନହିଁ ହୋଏ ନାଶ | ॥ ୮୯ |
| ୨୪ | ଧରଣୀତଳରେ ପଡ଼ଇ । | ରକ୍ତମିଶ୍ରିତ-ତନୁ ହୋଇ | ॥ ୯୦ |
| | ଚେଷ୍ଟା କରଇ କୃମିପ୍ରାୟେ । | କାନ୍ଦଇ ନିଜ ଜ୍ଞାନକ୍ଷୟେ | ॥ ୯୧ |
| | ଗର୍ଭେ ଯେମନ୍ତ ହୋଇଥାଇ । | ତହିଁକି ବିପରୀତ ହୋଇ | ॥ ୯୨ |

| | | | |
|---|---|---|---|
| ୨୫ | ତାହାର ଅଭିପ୍ରାୟମାନ । | ଜାଣନ୍ତି ନାହିଁ ବନ୍ଧୁଜନ | ॥ ୯୩ |
| | କାନ୍ଦନ୍ତେ ସ୍ତନପାନ ଅର୍ଥେ । | ଉଦରବ୍ୟଥା କଳି ଚିତ୍ତେ | ॥ ୯୪ |
| | କରାନ୍ତି ନିମ୍ବରସ ପାନ । | ଉଦରବ୍ୟଥାରେ ରୋଦନ | ॥ ୯୫ |
| | କରନ୍ତେ ସ୍ତନ୍ୟ ମୁଖେ ଦ୍ୟନ୍ତି । | ଏ ରୂପେ ପୋଷଣ କରନ୍ତି | ॥ ୯୬ |
| | ସ୍ୱ ଅଭିପ୍ରାୟକୁ ନ ପାଇ । | କଥାହିଁ କହି ନ ପାରଇ | ॥ ୯୭ |
| ୨୬ | ଅଶୁଚି ଶେଯେ ଶୋଇଥାଇ । | ମଶକମାନେ ଛନ୍ତି ଯହିଁ | ॥ ୯୮ |
| | ଆପଣା ଅଙ୍ଗକଣ୍ଡୂୟନ । | କରିତ ନୁହଇ ଭାଜନ | ॥ ୯୯ |
| | ବସି ଉଠିଣ ନ ପାରଇ । | ଚେଷ୍ଟନ[୧] କରନ୍ତେ କାନ୍ଦଇ | ॥୧୦୦ |
| ୨୭ | କୋମଳ ଚର୍ମ ଅଟେ ତାର । | ଦଂଶାଦି[୨] କରନ୍ତି ଆହାର | ॥୧୦୧ |
| | ନରକେ କୃମିକି ଯେସନେ । | ଖାଉ ଥାଆନ୍ତି କୃମିମାନେ | ॥୧୦୨ |
| | ଏ ଘେନି କରଇ ରୋଦନ । | ନ ଥାଇ ଗର୍ଭକାଳଜ୍ଞାନ | ॥୧୦୩ |
| ୨୮ | ଏ ରୂପେ ପାଞ୍ଚବର୍ଷଯାଏ । | ନାନା ପ୍ରକାରେ ଦୁଃଖ ପାଏ | ॥୧୦୪ |
| ୨୯ | ପାଞ୍ଚବରଷ ତଦନ୍ତରେ । | ପୌଗଣ୍ଡ କାଳ ଦୁଃଖେ ହରେ | ॥୧୦୫ |
| | ଯେବଣ କଥାକୁ ବାଞ୍ଛଇ । | ସିଦ୍ଧି ନୋହନ୍ତେ ଶୋକ ପାଇ | ॥୧୦୬ |
| | ଅଜ୍ଞାନୁଁ ଅତି କ୍ରୋଧ ହୋଇ । | ଯେତେ ତା ଦେହ ପୁଷ୍ଟ ହୋଇ | ॥୧୦୭ |
| | ତେତିକି ହୋଇ ଗର୍ବ, ରୋଷ । | ବୃଦ୍ଧି ହୁଅନ୍ତେ ସେ ପୁରୁଷ | ॥୧୦୮ |
| | ଆପଣେ କାମୁକ ହୋଇଣ । | କାମୁକ ଲୋକ ସଙ୍ଗେ ପୁଣ | ॥୧୦୯ |
| | ବିଗ୍ରହ ନିରତେ କରଇ । | ଆପଣା ବିନାଶର ପାଇଁ | ॥୧୧୦ |
| ୩୦ | ପୃଥିବୀ ଆଦି ପଞ୍ଚଭୂତ । | ତେଣେ ଏ ଶରୀର ଘଟିତ | ॥୧୧୧ |
| | ଅହଂତା ମମତାକୁ ବହି । | ଅଜ୍ଞାନପଣେ ଏଥି ଦେହୀ | ॥୧୧୨ |
| | ମନ ନିବେଶେ ଅବିରତ । | ଏଣୁ ସେ କୁମତି ବିଦିତ | ॥୧୧୩ |
| ୩୧ | ଦେହନିମିତ୍ତେ କର୍ମ କରେ । | ନିବଦ୍ଧ ହୋଇଣ ଯହିଁରେ | ॥୧୧୪ |
| | ଏ ଜୀବ-ସଂସାରକୁ ପାଇ । | ସେ ଦେହ ଗତାଗତ ହୋଇ | ॥୧୧୫ |
| | ଦିଅଇ ନାନା କ୍ଳେଶମାନ । | ଅବିଦ୍ୟା-କର୍ମ ସେ ବନ୍ଧନ | ॥୧୧୬ |
| ୩୨ | ଶିଶ୍ନ-ଉଦର ସୁଖ ଚିନ୍ତି । | ଯେ ନିତ୍ୟେ ଉଦ୍ୟମ କରନ୍ତି | ॥୧୧୭ |
| | ଯେବେ ସେ ଅସାଧୁଙ୍କମାର୍ଗେ । | ଜନ୍ତୁ ରମଇ ଅନୁରାଗେ | ॥୧୧୮ |
| | ପୂର୍ବେ ଯେ ରୂପେ କହିଥାଇଁ । | ସେ ରୂପେ ନରକେ ପଡ଼ଇ | ॥୧୧୯ |

୧. ଚେଷ୍ଟା ନ (?) । ୨. ଦଂଶାଦି = ଡାଆଁଶ ପ୍ରଭୃତି ।

୩୩ ସତ୍ୟ, ଶଉଚ, ତପ, ଶମ । ଯେ ଦାନ, ବୁଦ୍ଧି, ଲଜ୍ଜା, ଦମ ॥୧୨୦
ସଂପଦ, କ୍ଷମା, ବୀର୍ଯ୍ୟ, ଯଶ । ଯା' ସଙ୍ଗୁଁ ହୁଅନ୍ତି ବିନାଶ ॥୧୨୧
୩୪ ଅଶାନ୍ତ, ମୂଢ଼ ସେହୁ ଜନେ । ଦେହାତ୍ମମତି ଦୁଷ୍ଟମାନେ ॥୧୨୨
କ୍ରୀଡ଼ାମୃଗର ପ୍ରାୟେ କରି । ବଶ କରନ୍ତି ତାଙ୍କୁ ନାରୀ ॥୧୨୩
ଶୋଚନାଯୋଗ୍ୟ ସେ ସଂସାରେ । ସଙ୍ଗ ନ କରି ତାଙ୍କଠାରେ ॥୧୨୪
୩୫ ଲୋକର ବନ୍ଧ ମୋହ ଦୁଇ । ଆନ ସଙ୍ଗରୁ ତେଡ଼େ ନୋହି ॥୧୨୫
ଯେଡ଼େ ହୁଅଇ ସ୍ତ୍ରୀସଙ୍ଗରୁ । ସ୍ତ୍ରୀସଙ୍ଗୀ ଜନଙ୍କ ସଙ୍ଗରୁ ॥୧୨୬
୩୬ ନିଜ ସୁତାକୁ ପ୍ରଜାପତି । ଦେଖି ତା' ରୂପେ ଦେଲା ମତି ॥୧୨୭
ସେ ମୃଗୀରୂପେ ପଳାଇଲା । ଧାତା ହିଁ ମୃଗରୂପ ହେଲା ॥୧୨୮
ଲଜ୍ଜାକୁ ପରିତ୍ୟାଗ କରି । ଧାଇଁଲା ତାକୁ ଅନୁସରି ॥୧୨୯
୩୭ ସେ ବ୍ରହ୍ମା କରିଛି ସର୍ଜନ । ମରୀଚି ଆଦି ଋଷିମାନ ॥୧୩୦
ମରୀଚି ଆଦି କଲେ ଜନ୍ମ । କଶ୍ୟପ ଆଦି ପୁତ୍ରମାନ ॥୧୩୧
କଶ୍ୟପ ଆଦିରୁ ସମ୍ଭବ । ଦେବ ମନୁଷ୍ୟ ଆଦି ଜୀବ ॥୧୩୨
ତାହାଙ୍କ ମଧ୍ୟେ କେବା ଜନ । ନାରାୟଣ ଋଷିରୁ ଆନ ॥୧୩୩
ଅଛି ଅଖଣ୍ଡ ବୁଦ୍ଧି ହୋଇ । ଯାକୁ ସ୍ତ୍ରୀମାୟା ନ ଲାଗଇ ॥୧୩୪
୩୮ ସ୍ତିରୀ ଅଟଇ ମାୟା ମୋର । ବଳକୁ ଦେଖ ତୁ ତାହାର ॥୧୩୫
ନିଜ ପ୍ରତାପେ ଦିଗମାନ । ଜିଣିଥାନ୍ତି ଯେ ବଳୀ[1] ଜନ ॥୧୩୬
ତାଙ୍କୁ ଯେ କଟାକ୍ଷପାତରେ । ପ୍ରଣତ କରଇ ପାଦରେ ॥୧୩୭
୩୯ ସାଧୁସେବାରୁ ଆତ୍ମଲାଭ । ଲଭି କରିଣ ଯେବେ ଜୀବ ॥୧୩୮
ଯୋଗପାରକୁ ଆରୋହଣ । କରି ବାଞ୍ଛଇ ଯେଉଁ ଜନ ॥୧୩୯
ସେ ଲୋକ ପ୍ରମଦାସଙ୍ଗତ । ହୋଇବ ନାହିଁ କଦାଚିତ ॥୧୪୦
ଯେଉଁ ପ୍ରମଦା ଏ ଲୋକର । ଅଟଇ ନରକକୁ ଦ୍ୱାର ॥୧୪୧
୪୦ ଯେ ମାୟା ଦେବତାନିର୍ମିତ । କାମିନୀରୂପେ ସେ ବିଦିତ ॥୧୪୨
ତାକୁ ଜାଣିମ ବିଜ୍ଞ ନର । ଯେସନେ ମୃତ୍ୟୁ ଆପଣାର ॥୧୪୩
ଯେ ତୃଣେ ଛନ୍ନ ହୋଇ ଥାଇ । ସେ କୂପପ୍ରାୟ ସେ ଅଟଇ ॥୧୪୪
୪୧ ସ୍ତିରୀସଙ୍ଗରୁ ସ୍ତିରୀଭାବ । ଲଭି କରିଣ ଏହୁ ଜୀବ ॥୧୪୫

---

୧. ବଳୀ = ବଳବାନ୍ ।

| | | | | |
|---|---|---|---|---|
| ୪୨ | ପୁରୁଷପ୍ରାୟେ ଆଚରିଣ[୧] | । | ଯେ ମାୟା ଥାଇ ମୋର ପୁଣ | ॥୧୪୬ |
| | ତାହାକୁ ପତି କରି ମଣେ | । | ବିତ୍ତପୁତ୍ରାଦି ଲଭେ ଯେଣେ | ॥୧୪୭ |
| | ପତି-ଅପତ୍ୟ-ଗୃହାକାର | । | ଯେ ମାୟା ସମ୍ଭବିଛି ମୋର | ॥୧୪୮ |
| | ଆପଣା ମୃତ୍ୟୁ ସେ ଅଟଇ | । | ଦଇବ ଅଛି ତାହା ଦେଇ | ॥୧୪୯ |
| | ଏ ରୂପେ ଜାଣିମ ସୁଜନ | । | ଯେସନେ ବ୍ୟାଧର ଗାୟନ | ॥୧୫୦ |
| | କର୍ଣ୍ଣକୁ ଶୁଭେ ମନୋହର | । | ମୃତ୍ୟୁ ଅଟେ ସେ ହରିଣର | ॥୧୫୧ |
| ୪୩ | ଉପାଧିଭାବରେ ଜୀବର | । | ଜନ୍ମିଲା ଯେ ଲିଙ୍ଗଶରୀର | ॥୧୫୨ |
| | ତେଣେ ଏ ଲୋକୁଁ ଲୋକାନ୍ତର | । | ଯାଆନ୍ତେ କର୍ମ କରେ ନର | ॥୧୫୩ |
| ୪୪ | ଆତ୍ମାକୁ ଅନୁଗତ ହୋଇ | । | ଯେ ଲିଙ୍ଗଦେହ ପ୍ରବର୍ତ୍ତଇ | ॥୧୫୪ |
| | ଭୂତ-ଇନ୍ଦ୍ରିୟ-ମନୋମୟ | । | ଭୋଗାୟତନ ସ୍ଥୂଳ ଦେହ | ॥୧୫୫ |
| | ନିରୋଧ ସେ ବେନି ଦେହର | । | ମରଣ ନାମ ଅଟେ ତାର | ॥୧୫୬ |
| | ସେ ଦେହ ଯେବେ ସମ୍ଭବଇ | । | ତାହାକୁ ଜନ୍ମ ବୋଲି କହି | ॥୧୫୭ |
| ୪୫ | ଦ୍ରବ୍ୟର ଉପଲବ୍ଧି ସ୍ଥାନ | । | ନୟନଗୋଲକଦର୍ଶନ | ॥୧୫୮ |
| | କାମଳ ଆଦି ଦୋଷେ ସେହି | । | ଯେବେ ଦ୍ରବ୍ୟକୁ ନ ଦେଖଇ | ॥୧୫୯ |
| | ତେବେ ନୟନ-ଇନ୍ଦ୍ରିୟର | । | ପଞ୍ଚତ୍ୱ ବୋଲନ୍ତି ସୁଧୀର | ॥୧୬୦ |
| | 'ଏ ମୁଁ ଅଟଇ' ଏ ପ୍ରକାରେ | । | ଯେ ଅଭିମାନ ତାହା ଦ୍ୱାରେ | ॥୧୬୧ |
| | ସ୍ଥୂଳ ଦେହର ଦରଶନ | । | ଉତ୍ପତ୍ତି ବୋଲନ୍ତି ସଜ୍ଜନ | ॥୧୬୨ |
| ୪୬ | ନେତ୍ରଗୋଲକର ଯେସନେ | । | ରୂପାବୟବଦରଶନେ | ॥୧୬୩ |
| | ହୁଅଇ ଅଯୋଗ୍ୟତା ଯେବେ | । | ଚକ୍ଷୁର, ଦ୍ରଷ୍ଟାର ସେ ତେବେ | ॥୧୬୪ |
| | ବିକଳ ହୋନ୍ତେ ତେହ୍ନେ ସ୍ଥୂଳ | । | ଲିଙ୍ଗ ସେ ହୁଅଇ ବିକଳ | ॥ |
| | ସେ ଅଟେ ଜୀବର ମରଣ | । | ସ୍ୱତଃ ସେ ନ ଘଟଇ ପୁଣ | ॥ |
| ୪୭ | ଏଣୁ କାର୍ପଣ୍ୟ, ତ୍ରାସ, ଦୈନ୍ୟ | । | କେବେହେଁ ଚିତ୍ତେ ନ ଘେନିମ | ॥୧୬୫ |
| | ଜୀବର ଗତି ଜାଣିଥାଇ | । | ଚରିବ ମୁକ୍ତସଙ୍ଗ ହୋଇ | ॥୧୬୬ |
| ୪୮ | ଯେଣେ ସେ ଉତ୍ତମ ବିଚାର | । | ଅବକଳନ କରେ ନର | ॥୧୬୭ |
| | ଜ୍ଞାନବୈରାଗ୍ୟ ଯହିଁ ସିଦ୍ଧି | । | ଏମନ୍ତ ଅଟଇ ଯେ ବୁଦ୍ଧି | ॥୧୬୮ |
| | ତେଣେ ଏ ଲୋକେ ନିଜ ଦେହ | । | ଅର୍ପି ଭ୍ରମିବ ଛାଡ଼ି ସ୍ନେହ | ॥୧୬୯ |
| | ଈଶ୍ୱରମାୟାରେ ନିର୍ମାଣ | । | ଅଟଇ ଯେ ଲୋକ ପ୍ରମାଣ | ॥୧୭୦ |
| | କପିଳରୂପେ ଚକ୍ରପାଣି | । | ମାତା ଆଗରେ ତାହା ଭଣି | ॥୧୭୧ |

୧. ଆଚରଣ (?) ତୁ. ପୁରୁଷବଦ୍ ଆଚରନ୍ତୀମ୍ । (ସ୍ୱାମୀ)

ତୃତୀୟ ସ୍କନ୍ଧ ଭାଗବତେ । ସମସ୍ତ ପ୍ରାଣୀଙ୍କର ହିତେ ॥୧୭୨
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ॥୧୭୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଜୀବଗତିର୍ନାମ ଏକତ୍ରିଂଶୋଽଧ୍ୟାୟଃ ॥

## ଦ୍ୱାତ୍ରିଂଶୋଽଧ୍ୟାୟଃ

ଦ୍ୱାତ୍ରିଂଶେ ସାତ୍ତ୍ୱିକୈର୍ଧର୍ମୈରୂର୍ଦ୍ଧ୍ୱା ଗତିରୁଦୀର୍ଯ୍ୟତେ ।
ତତ୍ତ୍ୱଜ୍ଞାନବିହୀନସ୍ୟ ତତଶ୍ଚ ପୁନରାଗତିଃ ॥ ୧ ॥

ଶ୍ରୀଭଗବାନୁବାଚ

୧ ଏବେ ଯେ ଗୃହାଶ୍ରମେ ଥାଇ । ଗୃହସ୍ଥଧର୍ମ ଆଚରଇ ॥ ୧
ବାଞ୍ଛନ୍ତେ କାମ-ଅର୍ଥମାନ । ସେ ଧର୍ମ କରଇ ଦୋହନ ॥ ୨
ସେ ଧର୍ମମାନ ପୁଣପୁଣ । କରି ସେ କରଇ ପୂରଣ ॥ ୩
୨ ବିଷ୍ଣୁ-ଆରାଧନଲକ୍ଷଣ । ଧର୍ମରୁ ବିମୁଖ ହୋଇଣ ॥ ୪
ସେ ଲୋକ କାମମୂଢ଼ ହୋଇ । ଯଜ୍ଞରେ ଦେବଙ୍କୁ ପୂଜଇ ॥ ୫
ପିତୃଗଣଙ୍କୁ ପୂଜା କରେ । ସଂଯୁତ ହୋଇଣ ଶ୍ରଦ୍ଧାରେ ॥ ୬
୩ ସେ ଦେବପିତୃଗଣଙ୍କର । ଶ୍ରଦ୍ଧା-ଆକ୍ରାନ୍ତମତି ନର ॥ ୭
ପିତୃଦେବତାଙ୍କ ନିମିତ୍ତେ । ବ୍ରତ କରଇ ଅବିରତେ ॥ ୮
ଚନ୍ଦ୍ରଲୋକରେ ସୋମପାନ । କରି ଆସିବ ଏ ଭୁବନ ॥ ୯
୪ ଅନନ୍ତ ଆସନ ଯାହାର । ସେ ହରି ଶେଷଶଯ୍ୟାପର ॥ ୧୦
ଶୟନ ଆଚରଇ ଯେବେ । ଗୃହସ୍ଥାଶ୍ରମୀଙ୍କର ତେବେ ॥ ୧୧
ଯେତେକ ଲୋକହିଁ ଥାଆନ୍ତି । ସେ ସବୁ ବିନାଶ ହୁଅନ୍ତି ॥ ୧୨
୫ ଯେ କାମ ଅର୍ଥ ବେନି ଚିନ୍ତି । ନିଜ ଧର୍ମକୁ ନ ଦୁହନ୍ତି ॥ ୧୩
କାହିଁ ଆସକ୍ତି ନ କରନ୍ତି । ଈଶ୍ୱରେ କର୍ମ ସମର୍ପନ୍ତି ॥ ୧୪
ଶାନ୍ତିକି ଭଜିଥାନ୍ତି ନିତ୍ୟ । ହୋଇ ଥାଆନ୍ତି ଶୁଦ୍ଧଚିତ୍ତ ॥ ୧୫
୬ ନିବୃତ୍ତିଧର୍ମରେ ତତ୍‌ପର । ନିର୍ମମ, ଗତ[1] ଅହଂକାର ॥ ୧୬
ସ୍ୱଧର୍ମ ଲଭି ସତ୍ତ୍ୱଗୁଣ । ତେଣେ ବିଶୁଦ୍ଧ ଚିତ୍ତେ ପୁଣ ॥ ୧୭

---

୧. ଗତି

| | | | | |
|---|---|---|---|---|
| ୭ | *ସୂର୍ଯ୍ୟମଣ୍ଡଳଦ୍ୱାରେ ଯାଇଁ । | ଲଭନ୍ତି ପୁରୁଷକୁ ସେହି | ॥ | ୧୮ |
| | ଯେଉଁ ପୁରୁଷ ପରିପୂର୍ଣ୍ଣ । | ଉତ୍ପତି-ବିନାଶଭାବନ | ॥ | ୧୯ |
| | ପ୍ରକୃତି ଅଟେ ଏ ବିଶ୍ୱର । | ପର-ଅପରର ଈଶ୍ୱର | ॥ | ୨୦ |
| ୮ | ବିଷ୍ଣୁର ଅଭେଦ ଦୃଷ୍ଟିରେ । | ବ୍ରହ୍ମାଙ୍କୁ ଚିନ୍ତନ୍ତି ଯେ ନରେ | ॥ | ୨୧ |
| | ଦୁଇ ପରାର୍ଧ ଶେଷ ହୋଇ । | ବ୍ରହ୍ମ-ପ୍ରଳୟ ଯେ ବୋଲାଇ | ॥ | ୨୨ |
| | ବ୍ରହ୍ମଲୋକରେ ଯେତେ କାଳ । | ଥାନ୍ତି ସେ ସୁଖେ ହୋଇ ଭୋଳ | ॥ | ୨୩ |
| ୯ | ଧରଣୀ, ସଲିଳ, ପବନ । | ନଭ, ଅଗ୍ନି, ଇନ୍ଦ୍ରିୟ ମନ | ॥ | ୨୪ |
| | ଶବଦ ଆଦି ଅହଂକାର । | ଏମାନେ ଆବରଣ ତାର | ॥ | ୨୫ |
| | ଏମନ୍ତ ବ୍ରହ୍ମାଣ୍ଡସଂହାର । | ବିଚାର କରିଣ ମନର | ॥ | ୨୬ |
| | ଦୁଇ ପରାର୍ଧ ଭୋଗ କରି । | ବ୍ରହ୍ମା ତ୍ରିଗୁଣରୂପଧାରୀ | ॥ | ୨୭ |
| | ଈଶ୍ୱରହୃଦୟରେ ଯାଇଁ । | ଯେବେ ସେ ପ୍ରବେଶ ହୁଅଇ | ॥ | ୨୮ |
| ୧୦ | **ସେ କାଳେ ଜିଣି ପ୍ରାଣମନ । | ଯେ ରାଗଶୂନ୍ୟ ଯୋଗୀଜନ | ॥ | ୨୯ |
| | ଦୂରକୁ ବୋଲିଣ ସେ ଯାଇ । | ବ୍ରହ୍ମାଙ୍କୁ ଅନୁଗତ ହୋଇ | ॥ | ୩୦ |
| | ଅମୃତ, ପୁରାଣ ପୁରୁଷ । | ପ୍ରକୃଷ୍ଟ ବ୍ରହ୍ମ ଯେ ପ୍ରକାଶ | ॥ | ୩୧ |
| | ତାହାଙ୍କୁ ଲଭନ୍ତି ସେ ପୁଣ । | ବ୍ରହ୍ମାର ସହିତେ ଯାଇଣ | ॥ | ୩୨ |
| | ଦେହ ଆଦିରେ ଅହଂକାର । | ସେ କାଳେ ନ ଥାଇ ତାଙ୍କର | ॥ | ୩୩ |
| ୧୧ | ଏବେ ଜନନି ! ତାକୁ ପୁଣ । | ଭାବରେ ପଶ ତୁ ଶରଣ | ॥ | ୩୪ |
| | ସକଳ ପ୍ରାଣୀମାନଙ୍କର । | ହୃଦୟ-ପଦ୍ମେ ଗୃହ ଯାର | ॥ | ୩୫ |
| | ଯାହାର ଅନୁଭାବମାନ । | ବିଦିତ ହୋଇଛି ଭୁବନ | ॥ | ୩୬ |
| ୧୨ | ମରୀଚି ଆଦି ଋଷିବର । | କୁମାର ଆଦି ଯୋଗେଶ୍ୱର | ॥ | ୩୭ |
| | ଯେ ସିଦ୍ଧେ ପ୍ରବର୍ତ୍ତାନ୍ତି ଯୋଗ । | ଘେନିଣ ଏମାନଙ୍କୁ ସଙ୍ଗ | ॥ | ୩୮ |
| | ସ୍ଥାବର-ଜଙ୍ଗମଙ୍କ ଆଦ୍ୟ । | ଅଟେ ଯେ ବେଦଗର୍ଭ ସିଦ୍ଧ | ॥ | ୩୯ |
| ୧୩ | କରିଣ ଭେଦଦୃଷ୍ଟି ସେହି । | ଦେହରେ ଅଭିମାନ ବହି | ॥ | ୪୦ |
| | ନିଃସଙ୍ଗ କର୍ମ ହିଁ କରିଣ । | କର୍ତ୍ତାଭାବରୁ ସେହି ପୁଣ | ॥ | ୪୧ |
| | ସଗୁଣ ବ୍ରହ୍ମ ସେ ଅଟନ୍ତି । | ଯେ କାଳ ଈଶ୍ୱରର ମୂର୍ତ୍ତି | ॥ | ୪୨ |

* ସୂର୍ଯ୍ୟଦ୍ୱାରେଣ ତେ ବିରଜାଃ ପ୍ରୟାନ୍ତି, ଯତ୍ରାମୃତଃ ପୁରୁଷୋ ହ୍ୟବ୍ୟୟାତ୍ମା । (ଶ୍ରୁତିଃ)

** ବ୍ରହ୍ମଣା ସହ ତେ ସର୍ବେ ସଂପ୍ରାପ୍ତେ ପ୍ରତିସଂଚରେ ।
ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦମ୍ ॥ (ସ୍ମୃତିଃ)

| | | | | | |
|---|---|---|---|---|---|
| ୧୪ | ସଂସାରି[୧] ତାହା ସଙ୍ଗତର | । | ଜାତ ହୁଅନ୍ତେ ଏ ସଂସାର | ॥ | ୪୩ |
| ୧୫ | ସେ ବ୍ରହ୍ମା ପୂର୍ବପ୍ରାୟ ହୋଇ | । | କଳ୍ପକୁ କଳ୍ପ ଜନମଇଁ | ॥ | ୪୪ |
| | କର୍ମରେ ନିର୍ମିତ ଯେ ହୋଇ | । | ସେ ବ୍ରହ୍ମସଂପତ୍ତିକି ପାଇ | ॥ | ୪୫ |
| | ପ୍ରଳୟେ ପୁରୁଷାବତାରେ | । | ମିଶିଣ କଳ୍ପର ଆଦ୍ୟରେ | ॥ | ୪୬ |
| | ଋଷିଏ ବ୍ରହ୍ମାଙ୍କ ସଙ୍ଗରେ | । | ରହନ୍ତି ଯେଝା ଅଧିକାରେ | ॥ | ୪୭ |
| ୧୬ | ଯେ ପୁଣି ଶ୍ରଦ୍ଧାବନ୍ତ ହୋଇ | । | କର୍ମମାର୍ଗରେ ମନ ଦେଇ | ॥ | ୪୮ |
| ୧୮ | କରନ୍ତି ଅନିଷିଦ୍ଧ କର୍ମ | । | ଅଟନ୍ତି ଯେହୁ ନିତ୍ୟ, କାମ୍ୟ | ॥ | ୪୯ |
| | ରଜକୁଣ୍ଠିତମତି ହୋଇ | । | କାମୀ ଅଜିତେନ୍ଦ୍ରୀୟ ସେହି | ॥ | ୫୦ |
| | ନିତ୍ୟରେ ପିତୃଙ୍କୁ ପୂଜନ୍ତି | । | ଗୃହରେ ଦେଇଥାନ୍ତି ମତି | ॥ | ୫୧ |
| | ସେମାନେ ତ୍ରିବର୍ଗ ତତ୍‌ପର | । | ଯା' ମତି ହରଇ ସଂସାର | ॥ | ୫୨ |
| | ଯାହାର ପରାକ୍ରମମାନ | । | ଅଟଇ କୀର୍ତ୍ତନଭାଜନ | ॥ | ୫୩ |
| | ଏମନ୍ତ ବିଷ୍ଣୁର କଥାରେ | । | ବିମୁଖ ଅଟନ୍ତି ସେ ନରେ | ॥ | ୫୪ |
| ୧୯ | ତାଙ୍କୁ ଦଇବ କଲା ନାଶ | । | ଅଚ୍ୟୁତ କଥା ସୁଧାରସ | ॥ | ୫୫ |
| | ଛାଡ଼ି କରିଣ ଯେଉଁ ପ୍ରାଣୀ | । | ଅସନ୍ତ ଲୋକଗାଥା ଶୁଣି | ॥ | ୫୬ |
| | ଯେ ଜନ ବିଷ୍ଠାକୁ ଭୁଞ୍ଜନ୍ତି | । | ସେ ଯେହ୍ନେ ବିଷ୍ଠାକୁ ରସନ୍ତି | ॥ | ୫୭ |
| ୨୦ | ଦକ୍ଷିଣ ମାର୍ଗରେ ସୂର୍ଯ୍ୟର | । | ପିତୃଲୋକକୁ ସେହୁ ନର | ॥ | ୫୮ |
| | ଗମନ୍ତି, ଦେହର ଅନ୍ତରେ | । | ଜନ୍ମନ୍ତି ପୁତ୍ର ଆଦିଠାରେ | ॥ | ୫୯ |
| | ଜନ୍ମୁଁ ମରଣଯାଏଁ ସେହି | । | କର୍ମ କରନ୍ତି ତୋଷ ହୋଇ | ॥ | ୬୦ |
| ୨୧ | ହେ ସତି ! କଲା କର୍ମମାନେ | । | କ୍ଷୀଣ ହୁଅନ୍ତେ ସେହି ଜନେ | ॥ | ୬୧ |
| | ବିବଶ ହୋଇଣ ପଡ଼ନ୍ତି | । | ଏ ଲୋକେ ପ୍ରବେଶ ହୁଅନ୍ତି | ॥ | ୬୨ |
| | ଦେବତାମାନେ ତାହାଙ୍କର | । | ଉଦୟ କରନ୍ତି ସଂହାର | ॥ | ୬୩ |
| ୨୨ | ସେହି କାରଣୁ ସର୍ବଭାବେ | । | ବିଷ୍ଣୁଙ୍କୁ ଭଜ ତୁ ଗୋ ଏବେ | ॥ | ୬୪ |
| | ସେ ବିଷ୍ଣୁଗୁଣ-ଆଶ୍ରୟରେ | । | ଯେବଣ ଭକ୍ତି ତାହା ଦ୍ୱାରେ | ॥ | ୬୫ |
| | ସେବାକୁ ଉଚିତ ଅଟଇ | । | ଯାହାର ପାଦପଦ୍ମ ଦୁଇ | ॥ | ୬୬ |
| ୨୩ | ଭକ୍ତିଯୋଗକୁ ବିଷ୍ଣୁଠାରେ | । | ଯେବେ ପ୍ରୟୋଗ ଲୋକ କରେ | ॥ | ୬୭ |
| | ବେଗେ ବୈରାଗ୍ୟ କରେ ଜନ୍ମ | । | ଯେ ଜ୍ଞାନ ବ୍ରହ୍ମଦରଶନ | ॥ | ୬୮ |

୧. ସଂସାରି = ସଂସାର ଲଭି ।

୨୪ ଯେବଣ କାଳେ ଏ ଭକ୍ତର । ବିଷ୍ଣୁରଠାରେ ଚିତ୍ତ ସ୍ଥିର ।। ୬୯
ସମାନ ସକଳ ଅର୍ଥରେ । ଇନ୍ଦ୍ରିୟଙ୍କର ବୃତ୍ତିଦ୍ୱାରେ ।। ୭୦
ପ୍ରିୟ ଅପ୍ରିୟ ବୋଲି କାହିଁ । ବିଷମ ଭାବ ନ ଘେନଇଁ ।। ୭୧
୨୫ ସେ କାଳେ ଆତ୍ମାକୁ ଆତ୍ମାରେ । ସେ ଲୋକ ଦେଖଇ ନିର୍ଭରେ ।। ୭୨
ଯେ ଆତ୍ମା ଅସଙ୍ଗ ଅଟଇ । ଯାହାର ତ୍ୟାଜ୍ୟଗ୍ରାହ୍ୟ ନାହିଁ ।। ୭୩
ପରମାନନ୍ଦ ମୁଁ ବୋଲିଣ । ବ୍ୟବସାୟକୁ ଆରୋହିଣ[୧] ।। ୭୪
ଥାଇ ସେ ଆତ୍ମା ଅନୁଦିନ । ଅଟଇ ସମଦରଶନ ।। ୭୫
୨୬ ଅଟଇ ଜ୍ଞାନମାତ୍ର ଯେହି । ପରମ ବ୍ରହ୍ମ ସେ ବୋଲାଇ ।। ୭୬
ପରମ ଆତ୍ମା ସେ ପୁମାନ[୨] । ଈଶ୍ୱର ଏକ ଭଗବାନ ।। ୭୭
ଦୃଶ୍ୟ ପଦାର୍ଥ ଯେ ଅଟଇ । ତାହାକୁ ପୁଣ ସେ ଦେଖଇ ।। ୭୮
ଦେଖଇ ଯେଉଁ ଇନ୍ଦ୍ରିୟରେ । ତାହାଙ୍କ ଭେଦଭାବଦ୍ୱାରେ ।। ୭୯
ନାନା ପ୍ରକାର ରୂପେ ସେହି । ଲୋକକୁ ପ୍ରତୀତ ହୁଅଇ ।। ୮୦
୨୭ ସମଗ୍ର ଯୋଗରେ ଯୋଗୀର । ବାଞ୍ଛିତ ଅର୍ଥେ ଏତେ ସାର ।। ୮୧
ସକଳ ଭାବରେ ପ୍ରାକୃତ । ସଙ୍ଗକୁ କରେ ଯା ତ୍ୟକତ ।। ୮୨
୨୮ ଯେ ଏକ ଅଟେ ଜ୍ଞାନରୂପୀ । ନିର୍ଗୁଣ ବ୍ରହ୍ମ ବିଶ୍ୱବ୍ୟାପୀ ।। ୮୩
ବିମୁଖ ଇନ୍ଦ୍ରିୟଙ୍କ ଦ୍ୱାରେ । ଭ୍ରାନ୍ତିରେ ଶବ୍ଦାଦି ଧର୍ମରେ ।। ୮୪
ସେ ବ୍ରହ୍ମ ଅର୍ଥରୂପ ହୋଇ । ନାନା ପ୍ରକାରେ ପ୍ରକାଶଇ ।। ୮୫
୨୯ ଯେସନେ ମହତ୍ତତ୍ତ୍ୱ ଥାଇ । ସେ ଅହଂକାରରୂପ ହୋଇ ।। ୮୬
ବଇକାରିକ ଆଦି ଦ୍ୱାରେ । ତ୍ରିବିଧ ରୂପକୁ ସେ ଧରେ ।। ୮୭
ସେ ପଞ୍ଚଭୂତ-ରୂପ କ୍ରମେ । ଏଗାର ଇନ୍ଦ୍ରିୟଙ୍କ ନାମେ ।। ୮୮
ଜୀବରୂପକୁ ସେ ଧରଇ । ତା' ବପୁ ବ୍ରହ୍ମାଣ୍ଡ ହୁଅଇ ।। ୮୯
ସେ ରୂପେ ବ୍ରହ୍ମ ଏକ ହୋଇ । ନାନା ରୂପରେ ପ୍ରକାଶଇ ।। ୯୦
୩୦ ଯେ ଅଟେ ସମାହିତ ମନ । ବିରକ୍ତ ସର୍ବସଙ୍ଗ ଶୂନ୍ୟ ।। ୯୧
ଶ୍ରଦ୍ଧାଭକ୍ତିରେ ଯୋଗାଭ୍ୟାସେ । ସେ ବ୍ରହ୍ମ ଦେଖେ ହୃଦଦେଶେ ।। ୯୨
୩୧ ହେ ମାତ କହିଲି ମୁଁ ଜ୍ଞାନ । ଯେଣେ ବ୍ରହ୍ମର ଦରଶନ ।। ୯୩
ଯେଣେ ପ୍ରକୃତିପୁରୁଷର । ତତ୍ତ୍ୱକୁ କରନ୍ତି ଗୋଚର ।। ୯୪

---

୧. ଆରୋହଣ, ୨. ପୁରୁଷ.

୩୨ ନିର୍ଗୁଣ ଜ୍ଞାନଯୋଗ ଯେହି । ଯାହାକୁ ଭକ୍ତିଯୋଗ କହି ॥ ୯୫
ସେ ବେନିଯୋଗ-ପ୍ରୟୋଜନ । ଅଟଇ ଏକ ଭଗବାନ[1] ॥ ୯୬
୩୩ ଯେସନେ ରୂପରସାଦିର । ଆଶ୍ରୟ ଗୁଡ଼ ମଧୁ କ୍ଷୀର ॥ ୯୭
ବିଭିନ୍ନ-ଭାବ ଯେ ଇନ୍ଦ୍ରିୟେ । ତେଣେ ସେ ଏକ ହୋଇଲେହେଁ ॥ ୯୮
ନାନା ପ୍ରକାରେ ପ୍ରତ୍ୟେ ହୋଇ । ଚକ୍ଷୁରେ ଶୁକ୍ଳ ବୋଲି କହି ॥ ୯୯
ଜିହ୍ୱାରେ ବୋଲିଣ ମଧୁର । ସ୍ପରଶେ ବୋଲାଇ ଶିଶିର ॥୧୦୦
ସେ ରୂପେ ଏକ ଭଗବାନ । ଶାସ୍ତ୍ରର ଭେଦୁଁ ହୋଏ ଭିନ୍ନ ॥୧୦୧
୩୪ ବାପୀ କୂପାଦି କ୍ରିୟାମାନ । ଅଗ୍ନିଷ୍ଟୋମାଦି ଯଜ୍ଞ, ଦାନ ॥୧୦୨
ତପସ୍ୟା, ସ୍ୱାଧ୍ୟାୟ, ବିଚାର । ବିଜୟ ଆତ୍ମା-ଇନ୍ଦ୍ରିୟର ॥୧୦୩
କର୍ମ ଅଛନ୍ତି ଯେ ଅଶେଷ । ସେମାନଙ୍କର ଯେ ସନ୍ନ୍ୟାସ ॥୧୦୪
୩୫ ବିବିଧ ଅଙ୍ଗେ ଯୋଗମାର୍ଗ । ଯେହୁ ପ୍ରସିଦ୍ଧ ଭକ୍ତିଯୋଗ ॥୧୦୫
ଯେ ଧର୍ମ ଉଭୟ[2] ଲକ୍ଷଣ । ପ୍ରବୃତ୍ତି ନିବୃତ୍ତି ମାର୍ଗେଣ ॥୧୦୬
୩୬ ଯେ ଆତ୍ମତତ୍ତ୍ୱ-ଅବବୋଧ । ଯେ ବା ବୈରାଗ୍ୟ ଦୃଢ଼ସିଦ୍ଧ ॥୧୦୭
ଇତ୍ୟାଦି ମାର୍ଗେ ସାଧୁଜନ । ଲଭିପାରନ୍ତି ଭଗବାନ ॥୧୦୮
ଯେ ବିଷ୍ଣୁ ସଗୁଣ, ନିର୍ଗୁଣ । ଅଟଇ ସ୍ୱପ୍ରକାଶ ପୁଣ ॥୧୦୯
୩୭ ସ୍ୱରୂପ ଭଗତିଯୋଗର । କହିଲି ତୋହର ଆଗର ॥୧୧୦
ତ୍ରିଗୁଣ ନିର୍ଗୁଣ ଭେଦରେ । ଯେ ଭକ୍ତି ଚାରି ରୂପ ଧରେ ॥୧୧୧
ଅବ୍ୟକ୍ତ ଅଟେ ଗତି ଯାର । ଧାମଇଁ[3] ଜନ୍ତୁଙ୍କ ମଧ୍ୟର ॥୧୧୨
ଏମନ୍ତ କାଳ ଯେ ଅଟଇ । ତାହା ଗତିକି କହିଲଇଁ ॥୧୧୩
୩୮ ଅବିଦ୍ୟା-କର୍ମରେ ନିର୍ମିତ । ଜୀବର ସଂସାର ବହୁତ ॥୧୧୪
ଯହିଁ ପ୍ରବେଶ ଆତ୍ମା ହୋଇ । ଆପଣା ଗତି ନ ଜାଣଇଁ ॥୧୧୫
ତାହି କହିଲି ଆଗେ ତୋର । ଭୋ ମାତ କରିଣ ବିଚାର ॥୧୧୬
୩୯ ଯେ ଖଳ, ଅବିନୟବନ୍ତ । ସାଧୁରେ ନୁହଇ ପ୍ରଣତ ॥୧୧୭
ଦାମ୍ଭିକ, ଦୁରାଚାର ଯେହି । ତାହାକୁ ଏ ଜ୍ଞାନ ନ କହି ॥୧୧୮
୪୦ ଲମ୍ପଟ, ଗୃହେ ଆସକତ । ଯେ ନୋହେ ମୋ'ଠାରେ ଭଗତ ॥୧୧୯
ମୋର ଭଗତଦ୍ୱେଷୀ ଯେହି । ତାହାକୁ ଏ ଜ୍ଞାନ ନ କହି ॥୧୨୦

---

୧. ତେ ପ୍ରାପ୍ନୁବନ୍ତି ମାମେବ ସର୍ବଭୂତହିତେ ରତାଃ । (ଗୀତା)
୨. ଉଭୟ = ସକାମ ନିଷ୍କାମ । ୩. ଉତ୍ପତ୍ତି, ନିଧନାଦି କରଇ ।

| | | | |
|---|---|---|---|
| ୭ | *ସୂର୍ଯ୍ୟମଣ୍ଡଳଦ୍ୱାରେ ଯାଇଁ । | ଲଭନ୍ତି ପୁରୁଷକୁ ସେହି ॥ | ୧୮ |
| | ଯେଉଁ ପୁରୁଷ ପରିପୂର୍ଣ୍ଣ । | ଉତ୍ପତି-ବିନାଶଭାବନ ॥ | ୧୯ |
| | ପ୍ରକୃତି ଅଟେ ଏ ବିଶ୍ୱର । | ପର-ଅପରର ଈଶ୍ୱର ॥ | ୨୦ |
| ୮ | ବିଷ୍ଣୁର ଅଭେଦ ଦୃଷ୍ଟିରେ । | ବ୍ରହ୍ମାଙ୍କୁ ଚିନ୍ତନ୍ତି ଯେ ନରେ ॥ | ୨୧ |
| | ଦୁଇ ପରାର୍ଦ୍ଧ ଶେଷ ହୋଇ । | ବ୍ରହ୍ମ-ପ୍ରଳୟ ଯେ ବୋଲାଇ ॥ | ୨୨ |
| | ବ୍ରହ୍ମଲୋକରେ ଯେତେ କାଳ । | ଥାନ୍ତି ସେ ସୁଖେ ହୋଇ ଭୋଳ ॥ | ୨୩ |
| ୯ | ଧରଣୀ, ସଲିଳ, ପବନ । | ନଭ, ଅଗ୍ନି, ଇନ୍ଦ୍ରିୟ ମନ ॥ | ୨୪ |
| | ଶବଦ ଆଦି ଅହଂକାର । | ଏମାନେ ଆବରଣ ତାର ॥ | ୨୫ |
| | ଏମନ୍ତ ବ୍ରହ୍ମାଣ୍ଡସଂହାର । | ବିଚାର କରିଣ ମନର ॥ | ୨୬ |
| | ଦୁଇ ପରାର୍ଦ୍ଧ ଭୋଗ କରି । | ବ୍ରହ୍ମା ତ୍ରିଗୁଣରୂପଧାରୀ ॥ | ୨୭ |
| | ଈଶ୍ୱରହୃଦୟରେ ଯାଇଁ । | ଯେବେ ସେ ପ୍ରବେଶ ହୁଅଇ ॥ | ୨୮ |
| ୧୦ | **ସେ କାଳେ ଜିଣି ପ୍ରାଣମନ । | 'ଯେ ରାଗଶୂନ୍ୟ ଯୋଗୀଜନ ॥ | ୨୯ |
| | ଦୂରକୁ ବୋଲିଣ ସେ ଯାଇ । | ବ୍ରହ୍ମାଙ୍କୁ ଅନୁଗତ ହୋଇ ॥ | ୩୦ |
| | ଅମୃତ, ପୁରାଣ ପୁରୁଷ । | ପ୍ରକୃଷ୍ଟ ବ୍ରହ୍ମ ଯେ ପ୍ରକାଶ ॥ | ୩୧ |
| | ତାହାଙ୍କୁ ଲଭନ୍ତି ସେ ପୁଣ । | ବ୍ରହ୍ମାର ସହିତେ ଯାଇଣ ॥ | ୩୨ |
| | ଦେହ ଆଦିରେ ଅହଂକାର । | ସେ କାଳେ ନ ଥାଇ ତାଙ୍କର ॥ | ୩୩ |
| ୧୧ | ଏବେ ଜନନି ! ତାକୁ ପୁଣ । | ଭାବରେ ପଶ ତୁ ଶରଣ ॥ | ୩୪ |
| | ସକଳ ପ୍ରାଣୀମାନଙ୍କର । | ହୃଦୟ-ପଦ୍ମେ ଗୃହ ଯାର ॥ | ୩୫ |
| | ଯାହାର ଅନୁଭାବମାନ । | ବିଦିତ ହୋଇଛି ଭୁବନ ॥ | ୩୬ |
| ୧୨ | ମରୀଚି ଆଦି ଋଷିବର । | କୁମାର ଆଦି ଯୋଗେଶ୍ୱର ॥ | ୩୭ |
| | ଯେ ସିଦ୍ଧେ ପ୍ରବର୍ତ୍ତାନ୍ତି ଯୋଗ । | ଘେନିଣ ଏମାନଙ୍କୁ ସଙ୍ଗ ॥ | ୩୮ |
| | ସ୍ଥାବର-ଜଙ୍ଗମଙ୍କ ଆଦ୍ୟ । | ଅଟେ ଯେ ବେଦଗର୍ଭ ସିଦ୍ଧ ॥ | ୩୯ |
| ୧୩ | କରିଣ ଭେଦଦୃଷ୍ଟି ସେହି । | ଦେହରେ ଅଭିମାନ ବହି ॥ | ୪୦ |
| | ନିଃସଙ୍ଗ କର୍ମ ହିଁ କରିଣ । | କର୍ତ୍ତାଭାବରୁ ସେହି ପୁଣ ॥ | ୪୧ |
| | ସଗୁଣ ବ୍ରହ୍ମ ସେ ଅଟନ୍ତି । | ଯେ କାଳ ଈଶ୍ୱରର ମୂର୍ତ୍ତି ॥ | ୪୨ |

---

* ସୂର୍ଯ୍ୟଦ୍ୱାରେଣ ତେ ବିରଜାଃ ପ୍ରୟାନ୍ତି, ଯତ୍ରାମୃତଃ ପୁରୁଷୋ ହ୍ୟବ୍ୟୟାତ୍ମା । (ଶ୍ରୁତିଃ)

** ବ୍ରହ୍ମଣା ସହ ତେ ସର୍ବେ ସଂପ୍ରାପ୍ତେ ପ୍ରତିସଂଚରେ ।
ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦମ୍ ॥ (ସ୍ମୃତିଃ)

୧୪ ସଂସାରି୧ ତାହା ସଙ୍ଗତର । ଜାତ ହୁଅନ୍ତେ ଏ ସଂସାର ॥ ୪୩
୧୫ ସେ ବ୍ରହ୍ମା ପୂର୍ବପ୍ରାୟ ହୋଇ । କଳ୍ପକୁ କଳ୍ପ ଜନମଇଁ ॥ ୪୪
କର୍ମରେ ନିର୍ମିତ ଯେ ହୋଇ । ସେ ବ୍ରହ୍ମସଂପତ୍ତିକି ପାଇ ॥ ୪୫
ପ୍ରଳୟେ ପୁରୁଷାବତାରେ । ମିଶିଣ କଳ୍ପର ଆଦ୍ୟରେ ॥ ୪୬
ଋଷିଏ ବ୍ରହ୍ମାଙ୍କ ସଙ୍ଗରେ । ରହନ୍ତି ଯେଝା ଅଧିକାରେ ॥ ୪୭
୧୬ ଯେ ପୁଣି ଶ୍ରଦ୍ଧାବନ୍ତ ହୋଇ । କର୍ମମାର୍ଗରେ ମନ ଦେଇ ॥ ୪୮
୧୮ କରନ୍ତି ଅନିଷିଦ୍ଧ କର୍ମ । ଅଟନ୍ତି ଯେହୁ ନିତ୍ୟ, କାମ୍ୟ ॥ ୪୯
ରଜକୁଣ୍ଠିତମତି ହୋଇ । କାମୀ ଅଜିତେନ୍ଦ୍ରୀୟ ସେହି ॥ ୫୦
ନିତ୍ୟରେ ପିତୃଙ୍କୁ ପୂଜନ୍ତି । ଗୃହରେ ଦେଇଥାନ୍ତି ମତି ॥ ୫୧
ସେମାନେ ତ୍ରିବର୍ଗ ତତ୍ପର । ଯା' ମତି ହରଇ ସଂସାର ॥ ୫୨
ଯାହାର ପରାକ୍ରମମାନ । ଅଟଇ କୀର୍ତ୍ତନଭାଜନ ॥ ୫୩
ଏମନ୍ତ ବିଷ୍ଣୁର କଥାରେ । ବିମୁଖ ଅଟନ୍ତି ସେ ନରେ ॥ ୫୪
୧୯ ତାଙ୍କୁ ଦଇବ କଲା ନାଶ । ଅଚ୍ୟୁତ କଥା ସୁଧାରସ ॥ ୫୫
ଛାଡ଼ି କରିଣ ଯେଉଁ ପ୍ରାଣୀ । ଅସନ୍ତ ଲୋକଗାଥା ଶୁଣି ॥ ୫୬
ଯେ ଜନ ବିଷ୍ଠାକୁ ଭୁଞ୍ଜନ୍ତି । ସେ ଯେହ୍ନେ ବିଷ୍ଠାକୁ ରସନ୍ତି ॥ ୫୭
୨୦ ଦକ୍ଷିଣ ମାର୍ଗରେ ସୂର୍ଯ୍ୟର । ପିତୃଲୋକକୁ ସେହୁ ନର ॥ ୫୮
ଗମନ୍ତି, ଦେହର ଅନ୍ତରେ । ଜନ୍ମନ୍ତି ପୁତ୍ର ଆଦିଠାରେ ॥ ୫୯
ଜନ୍ମୁଁ ମରଣଯାଏଁ ସେହି । କର୍ମ କରନ୍ତି ତୋଷ ହୋଇ ॥ ୬୦
୨୧ ହେ ସତି ! କଲା କର୍ମମାନେ । କ୍ଷୀଣ ହୁଅନ୍ତେ ସେହି ଜନେ ॥ ୬୧
ବିବଶ ହୋଇଣ ପଡ଼ନ୍ତି । ଏ ଲୋକେ ପ୍ରବେଶ ହୁଅନ୍ତି ॥ ୬୨
ଦେବତାମାନେ ତାହାଙ୍କର । ଉଦୟ କରନ୍ତି ସଂହାର ॥ ୬୩
୨୨ ସେହି କାରଣୁ ସର୍ବଭାବେ । ବିଷ୍ଣୁଙ୍କୁ ଭଜ ତୁ ଗୋ ଏବେ ॥ ୬୪
ସେ ବିଷ୍ଣୁଗୁଣ-ଆଶ୍ରୟରେ । ଯେବଣ ଭକ୍ତି ତାହା ଦ୍ୱାରେ ॥ ୬୫
ସେବାକୁ ଉଚିତ ଅଟଇ । ଯାହାର ପାଦପଦ୍ମ ଦୁଇ ॥ ୬୬
୨୩ ଭକ୍ତିଯୋଗକୁ ବିଷ୍ଣୁଠାରେ । ଯେବେ ପ୍ରୟୋଗ ଲୋକ କରେ ॥ ୬୭
ବେଗେ ବୈରାଗ୍ୟ କରେ ଜନ୍ମ । ଯେ ଜ୍ଞାନ ବ୍ରହ୍ମଦରଶନ ॥ ୬୮

---

୧. ସଂସାରି = ସଂସାର ଲଭି ।

୪୧ ଯେ ଶ୍ରଦ୍ଧାବନ୍ତ, ଭକ୍ତିଯୁତ । ବିନୟୀ, ଅସୂୟାରହିତ ।।୧୨୧
ଯେ ଭୂତେ ମିତ୍ରଭାବ ବହି । ଶୁଣିମା ଅର୍ଥେ ରତ ହୋଇ ।।୧୨୨
ବାହ୍ୟ ସୁଖରୁ ଯେ ବିରତ । ଅଟଇ ସଦା ଶାନ୍ତଚିତ୍ତ ।।୧୨୩
ମତ୍ସରହୀନ, ଶୁଚି ଯେହି । ଯାର ପ୍ରିୟରୁ ପ୍ରିୟ ମୁହିଁ ।।୧୨୪
ଏତେ ଗୁଣରେ ଯୁତ ଯେହି । ତାକୁ ଏ ଜ୍ଞାନମାର୍ଗ କହି ।।୧୨୫
୪୨ ଯେଉଁ ପୁରୁଷ ଏହା ବାରେ । ଭୋ ମାତ ! ଶୁଣଇଁ ଶ୍ରଦ୍ଧାରେ ।।୧୨୬
ଯେ କହେ ମୋରେ ଚିତ୍ତ ଦେଇ । ସେ ମୋର ପଦବୀକି ପାଇ ।।୧୨୭
ବ୍ରାହ୍ମଣ ଦୀନବନ୍ଧୁ ଭଣି । ସୁଜନେ ତୋଷ ହୁଅ ଶୁଣି ।।୧୨୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
କର୍ମବିପାକୋ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।।

## ତ୍ରୟସ୍ତ୍ରିଂଶୋଽଧ୍ୟାୟଃ

ତ୍ରୟସ୍ତ୍ରିଂଶେ ସୁତସ୍ୟୈବ କପିଳସ୍ୟୋପଦେଶତଃ ।
ଜ୍ଞାନଲାଭେନ ତନ୍ମାତୁର୍ଜୀବନମୁକ୍ତିରୁଦୀର୍ଯ୍ୟତେ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ କର୍ଦ୍ଦମଯୁବତୀ । କପିଳମାତା ଦେବହୂତି ।। ୧
ପୁତ୍ରର ବଚନକୁ ଶୁଣି । ବିନାଶ କରି ମୋହଶ୍ରେଣୀ ।। ୨
ତତ୍ତ୍ୱଚିହ୍ନିତ ସାଂଖ୍ୟଜ୍ଞାନ । ବକ୍ତା ଯେ ଆପଣା ନନ୍ଦନ ।। ୩
ତାହାଙ୍କୁ ପ୍ରଣାମ କରିଣ । ସ୍ତୁତିରଚନା କଲେ ପୁଣ ।। ୪

ଶ୍ରୀଦେବହୂତିରୁବାଚ

୨ ତୋହର ଜଠରୁଁ ସମ୍ଭବ । ହୋଇଣ ସ୍ୱୟେଁ ବେଦଗର୍ଭ ।। ୫
ଯେ ସତ୍ୟ ଜଳେ ଅଛି ଶୋଇ । ଭୂତ-ଇନ୍ଦ୍ରିୟ-ମନୋମୟୀ ।। ୬
ଗୁଣପ୍ରବାହ ଯହୁଁ ଜାତ । ଜଗତବୀଜ ଯେ ବିଦିତ ।। ୭
ଏମନ୍ତ ବପୁକୁ ତୋହରି । ଚିନ୍ତିଲା ଦେଖିଣ ନ ପାରି ।। ୮
୩ ସେ ତୁମ୍ଭେ ଜଗତସର୍ଜନ । ଆଦିକି କର ଭଗବାନ ।। ୯
ଗୁଣ ପ୍ରବାହରୂପେ ଆଗେ । ଶକ୍ତିକି କରିଛ ବିଭାଗେ ।। ୧୦

| | | | |
|---|---|---|---|
| | ସଂକଳ୍ପ ଅଟେ ସତ୍ୟ ତୋର । | ତୁ ଜୀବମାନଙ୍କ ଈଶ୍ୱର | ॥ ୧୧ |
| | ସହସ୍ର ପରିମିତ ତୋର । | ଶକ୍ତି ତର୍କକୁ ଅଗୋଚର | ॥ |
| ୪ | ହେ ନାଥ ! ଉଦରେ ଯାହାର । | ଅଛି ଏ ସକଳ ସଂସାର | ॥ ୧୨ |
| | ଯୁଗାନ୍ତେ ମାୟାଶିଶୁ ହୋଇ । | ଯେ ଥାଉ ବଟପତ୍ରେ ଶୋଇ | ॥ ୧୩ |
| | ଆପଣା ଚରଣକୁ ନେଇ । | ପିଉ ଅଧରପୁଟେ ଦେଇ | ॥ ୧୪ |
| | ଏମନ୍ତ ପ୍ରଭୁଙ୍କୁ ଉଦରେ । | ଧଇଲି ମୁଁ କେଉଁ ପ୍ରକାରେ | ॥ ୧୫ |
| ୫ | ପାପୀମାନଙ୍କ ନାଶପାଇଁ । | ଦେହବନ୍ଧକୁ ଧରୁ ତୁହି | ॥ ୧୬ |
| | ଯେ ତୋର ଆଜ୍ଞାରେ ଥାଆନ୍ତି । | କରିବା ଅର୍ଥେ ତାଙ୍କ ଭୂତି | ॥ ୧୭ |
| | ସୂକର ଆଦି ଯେତେ ତୋର । | ଅଛନ୍ତି ନାନା ଅବତାର | ॥ ୧୮ |
| | ସେ ରୂପେ ଆତ୍ମଜ୍ଞାନ ପାଇ । | ଧଇଲୁ ଏ ମୂର୍ତ୍ତିକି ତୁହି | ॥ ୧୯ |
| ୬ | ଯା' ନାମକୀର୍ତ୍ତନ ଶ୍ରବଣୁଁ । | ଯାହାର ପ୍ରଣାମ ସ୍ମରଣୁଁ | ॥ ୨୦ |
| | ପ୍ରାଣୀ ଚଣ୍ଡାଳ ହୋଇଲେହେଁ । | ସବନ[୧] ଯୋଗ୍ୟ ପ୍ରାୟେ ହୋଏ | ॥ ୨୧ |
| | ତୁମ୍ଭର ଦରଶନୁଁ ପୁଣି । | ପବିତ୍ର ନୋହିବ କେ ପ୍ରାଣୀ | ॥ ୨୨ |
| ୭ | ବର୍ତ୍ତଇ ଯେବଣ ପ୍ରାଣୀର । | ଜିହ୍ୱାଅଗ୍ରତେ ନାମ ତୋର | ॥ ୨୩ |
| | ଚଣ୍ଡାଳ ହୋଇଲେହେଁ ସେହି । | ଏ ଘେନି ଗରିଷ୍ଠ[୨] ଅଟଇ | ॥ ୨୪ |
| | ସେମାନେ ତପ, ହୋମ କଲେ । | ତୀର୍ଥରେ ସ୍ନାନ ଆଚରିଲେ | ॥ ୨୫ |
| | ଆର୍ଯ୍ୟ ଅଟନ୍ତି ସେହୁ ଜନ । | କଲେ ସେ ବେଦ-ଅଧ୍ୟୟନ | ॥ ୨୬ |
| | ତୋର ନାମକୁ ଯେଉଁ ଜନ । | ଭୋ ନାଥ ! କରନ୍ତି ଗାୟନ | ॥ ୨୭ |
| ୮ | ପରମ ବ୍ରହ୍ମ ତୁ ପୁରୁଷ । | ଆତ୍ମାରେ ଅଟେ ତୋ ପ୍ରକାଶ | ॥ ୨୮ |
| | ଏ ଗୁଣପ୍ରବାହକୁ ତୁହି । | ନିଜ ତେଜରେ ଅଛୁ ବହି | ॥ ୨୯ |
| | ତୋର ଉଦରେ ଭଗବାନ ! । | ଅଛି ସକଳ ବେଦମାନ | ॥ ୩୦ |
| | ତୁ ବିଷ୍ଣୁ କପିଳାବତାର । | ତୋତେ ମୋହର ନମସ୍କାର | ॥ ୩୧ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୯ | କପିଳ ଅଟେ ନାମ ଯାର । | ପରମ ପୁରୁଷ ଈଶ୍ୱର | ॥ ୩୨ |
| | ମାତବତ୍ସଳ ସେ ଅଟନ୍ତି । | 'ଏ ରୂପେ ଶୁଣି ମାତାସ୍ତୁତି | ॥ ୩୩ |
| | ଗମ୍ଭୀର ବାକ୍ୟ ଏ ପ୍ରକାରେ । | କହିଲେ ମାତାଙ୍କ ଆଗରେ | ॥ ୩୪ |

୧. ସବନ = ସୋମଯାଗ । ୨. ବରିଷ୍ଠ ।

## ଶ୍ରୀଭଗବାନୁବାଚ

୧୦ ଭୋ ମାତ ! ଯାହା କହିଲଇଁ । ସୁସେବ୍ୟ ମାର୍ଗ ସେ ଅଟଇ ।। ୩୫
ଏହି ମାର୍ଗକୁ ଆସ୍ଥା କଲେ । ନିକଟେ ମୁକ୍ତି ହେବୁ ଭଲେ ।। ୩୬
୧୧ ଯେମନ୍ତେ ବ୍ରହ୍ମବାଦୀ ଜନେ । ସେବା କରନ୍ତି ଅନୁଦିନେ ।। ୩୭
ତୁ ଏ-ମତକୁ ଶ୍ରଦ୍ଧା କର । ସଂଯତ ହୋଇଣ ଆଚର ।। ୩୮
ଅଭୟ ଅଟଇ ଯେ ମୁହିଁ । ମୋତେ ଲଭିବୁ ଯେଣେ ତୁହି ।। ୩୯
ଯେବଣ ମତକୁ ନ ଜାଣି । ମୃତ୍ୟୁକୁ ଲଭୁଛନ୍ତି ପ୍ରାଣୀ ।।

## ଶ୍ରୀମୈତ୍ରେୟ ଉବାଚ

୧୨ ଆତ୍ମାର ଗତି ଏ ପ୍ରକାରେ । ଦେଖାଇ ମାତାଙ୍କ ଆଗରେ ।। ୪୦
ବ୍ରହ୍ମବାଦିନୀ ସେ ଜନନୀ । ତାହାଙ୍କ ଅନୁଜ୍ଞାକୁ ଘେନି ।। ୪୧
କପିଳ କଲେ ସେ ଗମନ । ଶୁଣ ବିଦୁର ! ମୋ ବଚନ ।। ୪୨
୧୩ ଯହିଁରେ ମୁକୁଟ ପରାଏ । ବେଷ୍ଟିତ ସରସ୍ୱତୀ ହୋଏ ।। ୪୩
ସେହି ଆଶ୍ରମେ ରହିଥାଇ । ପୁତ୍ର ଅଛନ୍ତି ଯାହା କହି ।। ୪୪
ସେ ଉପଦେଶେ ସମାହିତ । ହୋଇ ହୋଇଲା ଯୋଗଯୁତ ।। ୪୫
୧୪ ଅନବରତେ କରି ସ୍ନାନ । ପିଙ୍ଗ[୧], କୁଟିଳ କେଶମାନ ।। ୪୬
ଉଗ୍ର ତପରେ ତନୁ କୃଶ । ବକଳ ଶୋହେ କଟିଦେଶ ।। ୪୭
୧୫ କର୍ଦମ ପ୍ରଜାପତିଙ୍କର । ଯୋଗରୁ ପ୍ରକାଶ ଯାହାର ।। ୪୮
ବିମାନସ୍ଥିତ ଦେବମାନେ । ବାଞ୍ଛା କରନ୍ତି ଯାହା ମନେ ।। ୪୯
ଅଟଇ ଯେହୁ ଅନୁପମ । ଆପଣା ଗୃହସ୍ଥ-ଆଶ୍ରମ ।। ୫୦
୧୬ ଯହିଁ ଅଛନ୍ତି ଶଯ୍ୟାମାନ । ଦିଶନ୍ତି ଯେହ୍ନେ ଦୁଗ୍ଧଫେନ ।। ୫୧
ପଲଙ୍କେ ସୁବର୍ଣ୍ଣଘଟିତ । ଗଜଦନ୍ତରେ ବିନିର୍ମିତ ।। ୫୨
ହେମ-ଆସନମାନ ଶୋହି । ସୁସ୍ପର୍ଶ ଆସ୍ତରଣ ତହିଁ ।। ୫୩
୧୭ ସ୍ଫଟିକ ମରକତେ ଯହିଁ । ଭିତ୍ତି ନିର୍ମିତ ଛନ୍ତି ହୋଇ ।। ୫୪
୧୮ ଯହିଁରେ ରତ୍ନଦୀପମାନେ । ଶୋଭା ପାଆନ୍ତି ସ୍ଥାନେ ସ୍ଥାନେ ।। ୫୫
ରତ୍ନରେ ବିଭୂଷିତ ହୋଇ । ଶୋଭା ପାଆନ୍ତି ନାରୀ ଯହିଁ ।। ୫୬
ଅନେକ ସୁରଦ୍ରୁମ ଯହିଁ । ଅଛନ୍ତି କୁସୁମିତ ହୋଇ ।। ୫୭
ଗୃହ-ଉଦ୍ୟାନ ତେଣେ ଶୋହେ । ମତ୍ତ ଭ୍ରମର ଯହିଁ ଗାଏ ।। ୫୮
ବିହଙ୍ଗ ମିଥୁନ ଯହିଁରେ । ଅନବରତେ ଧ୍ୱନି କରେ ।। ୫୯

---

୧. ପିଙ୍ଗ = ପିଙ୍ଗଳ ।

୧୯ କର୍ଦ୍ଦମ-ଋଷିଙ୍କର ସଙ୍ଗେ । ସେ ଦେବହୂତି ଅନୁରାଗେ ॥ ୬୦
ଯହିଁରେ ଉତ୍ପଳସୁବାସ । ବାପୀରେ ହୁଅନ୍ତେ ପ୍ରବେଶ ॥ ୬୧
ବିବୁଧ-ଅନୁଚରମାନ । ହରଷେ କରନ୍ତି ଗାୟନ ॥ ୬୨
୨୦ ପାକଶାସନ[୧] ନାରୀମାନେ । ବାଞ୍ଛା କରନ୍ତି ଯାହା ମନେ ॥ ୬୩
ଏମନ୍ତ ସଦନ ଛାଡ଼ିଲା । *କିଂଚିତ ଗୃହେ[୨] ଭିଆଇଲା ॥ ୬୪
ବିଚ୍ଛେଦୁଁ କରି ତନୟର । ହୋଇଣ ଅଛି ସେ ଆତୁର ॥ ୬୫
୨୧ ବନକୁ ଯାନ୍ତେ ନିଜ ପତି । ପୁତ୍ରବିରହେ ଖେଦମତି ॥ ୬୬
ତତ୍ତ୍ୱମାନଙ୍କୁ ଜାଣିଲେହେଁ । ବତ୍ସବିନାଶେ ଧେନୁପ୍ରାୟେ ॥ ୬୭
୨୨ ବତ୍ସଳଭାବ ଚିତ୍ତେ ବହି । କପିଳରୂପୀ ହରି ଯେହି ॥ ୬୮
ଅଟନ୍ତି ଆପଣା ନନ୍ଦନ । ତାଙ୍କୁ ସଂତତେ କରି ଧ୍ୟାନ ॥ ୬୯
ନିଃସ୍ପୃହ ହେଲା ସେ ମନ୍ଦିରେ । ହେ ବତ୍ସ ! ଅଚିର କାଳରେ ॥ ୭୦
୨୩ ପ୍ରସନ୍ନମୁଖ ହୋଇ ସୁତ । କରିଅଛନ୍ତି ଯା' ଉକତ ॥ ୭୧
ଯେ ଅଟେ ଧ୍ୟାନର ଗୋଚର । ରୂପକୁ ସେ ଭଗବାନର ॥ ୭୨
ସମସ୍ତ-ବ୍ୟସ୍ତ ଭାବେ ଚିନ୍ତି । ନିଜ ଚିତ୍ତରେ ଦେବହୂତି ॥ ୭୩
୨୪ ଭଗତିଯୋଗ ପ୍ରବାହରେ । ବଳବତ୍ତର ବୈରାଗ୍ୟରେ ॥ ୭୪
**ଉଚିତ କର୍ମର କରଣେ । ଯେ ବ୍ରହ୍ମହେତୁ ଜ୍ଞାନ, ତେଣେ ॥ ୭୫
୨୫ ସର୍ବତୋମୁଖ ଆତ୍ମା ଯେହି । ତାକୁ ବିଶୁଦ୍ଧ ମନେ ଧ୍ୟାୟି ॥ ୭୬
ସ୍ୱରୂପ ପ୍ରକାଶେ ବିନାଶ । ଯେଉଁ ଆତ୍ମାରେ ମାୟାଦୋଷ ॥ ୭୭
୨୬ ଜୀବମାନଙ୍କର ଆଶ୍ରୟ । ଯେ ଭଗବାନ ବ୍ରହ୍ମମୟ ॥ ୭୮
ତାହାଙ୍କ ଠାରେ ନିଜ ମତି । ନିଶ୍ଚଳ କଲେ ଦେବହୂତି ॥ ୭୯
୨୭ ହୁଅନ୍ତେ ଜୀବଭାବ ଲୀନ । ନାଶ ହୋଇଲେ କ୍ଳେଶମାନ ॥ ୮୦
ସେ ଘେନି ସୁଖକୁ ଲଭିଲା । ସମାଧିନିଷ୍ଠ ନିତ୍ୟେ ହେଲା ॥ ୮୧
ତାହାର ଗୁଣୁଁ ଜାତ ଭ୍ରମ । କ୍ରମେ ହୁଅନ୍ତେ ଉପଶମ ॥ ୮୨
ଆପଣା ଦେହକୁ ସେ ପୁଣ । ସେ କାଳେ ନ କଲା ସ୍ମରଣ ॥ ୮୩
ସ୍ୱପ୍ନେ ଦେଖିଲା ଦ୍ରବ୍ୟ ଯେହ୍ନେ । ନ ଦେଖି ନିଦ୍ରା ଅବସାନେ ॥ ୮୪

---

୧. ପାକଶାସନ = ଇନ୍ଦ୍ର ।　* ଅର୍ଥାତ୍ ଗୃହକୁ କିଞ୍ଚିତ୍ ମଣିଲା ।
୨. ମୁଖେ । (ଅର୍ଥାତ୍ ମୁଖକୁ ଶୋକବ୍ୟାକୁଳ କଲା ।)
** ଯୁକ୍ତାହାରବିହାରସ୍ୟ ଯୁକ୍ତଚେଷ୍ଟସ୍ୟ କର୍ମସୁ ।
ଯୁକ୍ତସ୍ୱପ୍ନାବବୋଧସ୍ୟ ଯୋଗୋ ଭବତି ଦୁଃଖହା ॥ (ଗୀତା)

୨୮ ଯାହାକୁ ବିଦ୍ୟାଧରୀମାନେ । ପାଳିଣ ଥିଲେ ଅତି ଯତ୍ନେ ॥ ୮୫
ସେ ଦେହ ହୋଇ ନାହିଁ କୃଶ । ମନର ବ୍ୟଥା ଯେଣୁ ନାଶ ॥ ୮୬
ମଳରେ ସମାବୃତ ହୋଇ । ଶୋଭା ପାଇଲା ସେହୁ ତହିଁ ॥ ୮୭
ଯେହ୍ନେ ଧୂମରେ ଯୁତ ହୋଇ । ଅନଳ ସୁନ୍ଦର ଦିଶଇ ॥ ୮୮
୨୯ ମୁକ୍ତ ହୋଇଛି ଯହିଁ କେଶ । ଅମ୍ବର ନାହିଁ କଟିଦେଶ ॥ ୮୯
ଯେ ଦେହ ତପଯୋଗଯୁତ । ଦଇବେ ହୋଇଛି ରକ୍ଷିତ ॥ ୯୦
ତାହାକୁ ଜାଣି ନ ପାରିଲା । ଯେଣୁ ବିଷ୍ଣୁରେ ମନ ଦେଲା ॥ ୯୧
୩୦ ଏ ରୂପେ ସେହୁ ଦେବହୂତି । କପିଳ ଯାହା କହିଛନ୍ତି ॥ ୯୨
ସେ ମାର୍ଗେ ଅଚିର କାଳରେ । ବିଷ୍ଣୁଙ୍କୁ ଲଭିଲା ନିର୍ଭରେ ॥ ୯୩
ଯେ [୧]ବ୍ରହ୍ମ ଆତ୍ମରୂପୀ ହରି । ନିତ୍ୟ ବିମୁକ୍ତରୂପଧାରୀ ॥ ୯୪
୩୧ ସେ କ୍ଷେତ୍ର ଅଟେ ପୁଣ୍ୟତମ । ଯାହାର ସିଦ୍ଧପଦ ନାମ ॥ ୯୫
ତ୍ରିଲୋକେ ଅଟେ ସେ ବିଖ୍ୟାତ । ଯହିଁ ତା’ ସିଦ୍ଧି ହେଲା ଜାତ ॥ ୯୬
୩୨ ଯହିଁରେ ଧାତୁମଳମାନ[୨] । ଯୋଗରେ ହୋଇଲେ ବିଲୀନ ॥ ୯୭
ସେ ମର୍ତ୍ତ୍ୟ ଶରୀର ତାହାର । ହୋଇଲା ଏକ ନଦୀବର ॥ ୯୮
ସିଦ୍ଧସେବିତ ସେ ଅଟଇ । ସିଦ୍ଧିଦା ବୋଲି ତାକୁ କହି ॥ ୯୯
୩୩ କପିଳ ମହାଯୋଗୀ ତହିଁ । ମାତାଙ୍କ ଛାମୁରେ ଜଣାଇଁ ॥୧୦୦
ପିତାଙ୍କ ଆଶ୍ରମରୁ ଗଲେ । ଈଶାନ ଦିଗରେ ମିଳିଲେ ॥୧୦୧
୩୪ ଗନ୍ଧର୍ବ, ଅପସରାଗଣ । ଯେ ସିଦ୍ଧ ମୁନି ସଚାରଣ ॥୧୦୨
ସେମାନେ ସ୍ତୁତି କରୁଛନ୍ତି । ଆପଣେ ଆସି ନଦୀପତି ॥୧୦୩
ଅର୍ଘ୍ୟ ଦେଇଣ ପୂଜା କଲା । ଆପଣାଠାରେ ସ୍ଥାନ ଦେଲା ॥୧୦୪
୩୫ ଯୋଗକୁ ଆସ୍ଥା କରିଛନ୍ତି । କରନ୍ତି ସାଂଖ୍ୟାଚାର୍ଯ୍ୟେ ସ୍ତୁତି ॥୧୦୫
ତିନି ଲୋକର ଶାନ୍ତି-ଅର୍ଥେ । ଅଛନ୍ତି ସମାହିତ ଚିତ୍ତେ ॥୧୦୬
୩୬ ହେ ତାତ ! ପଚାରିଲୁ ଯାହା । ତୋତେ ମୁଁ କହିଲଇଁ ତାହା ॥୧୦୭
କପିଳ-ଦେବହୂତିଙ୍କର । ସମ୍ବାଦ ଅଟେ ପାପହର ॥୧୦୮
୩୭ ଏ ଆତ୍ମଯୋଗରେ ଗୁପତ । କପିଳ ମୁନିଙ୍କର ମତ ॥୧୦୯
ଯେବଣ ଲୋକ ଏହା ଶୁଣେ । ଯେ ଏହା ହରଷେ ବଖାଣେ ॥୧୧୦

୧. ବ୍ରହ୍ମରୂପୀ ଆତ୍ମା । ୨. ଦୈହିକ ମଳ ।

| | | | |
|---|---|---|---|
| ଯେ ହରି ଗରୁଡ଼ବାହନ | । | ତାହାର ଠାରେ ଦେଇ ମନ | ॥୧୧୧ |
| ପଦାରବିନ୍ଦକୁ ତାହାର | । | ଅନ୍ତେ ଲଭଇ ସେହୁ ନର | ॥୧୧୨ |
| ସେ ହରି-ଅଭୟ ଚରଣେ | । | ଚିତ୍ତ ନିବେଶି ଅନୁକ୍ଷଣେ | ॥୧୧୩ |
| ବ୍ରାହ୍ମଣ ଦୀନବନ୍ଧୁ ଭଣି | । | ସୁଜନେ ତର ଏହା ଶୁଣି | ॥୧୧୪ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ଶ୍ରୀକପିଳୋପାଖ୍ୟାନଂ ନାମ
ତ୍ରୟୋସ୍ତ୍ରିଂଶୋଽଧ୍ୟାୟଃ ॥

**ସମାପ୍ତଶ୍ଚାୟଂ ତୃତୀୟ ସ୍କନ୍ଧଃ ।**

# ଶ୍ରୀମଦ୍ଭାଗବତ
## ଚତୁର୍ଥ ସ୍କନ୍ଧଃ
## ପ୍ରଥମୋଽଧ୍ୟାୟଃ

ଅଥୈକତ୍ରିଂଶତାଧ୍ୟାୟୈର୍ବିସର୍ଗସ୍ତୁର୍ଯ୍ୟ ଈର୍ଯ୍ୟତେ ।
ବିସର୍ଗସ୍ତ୍ୱୀଶ୍ୱରାଧୀନୈ–ର୍ବ୍ରହ୍ମମନ୍ୱାଦିଭିଃ କୃତଃ ॥ ୧ ॥
ତତ୍ର ତୁ ପ୍ରଥମୋଽଧ୍ୟାୟେ ମନୁକନ୍ୟାନ୍ୱୟାଃ[୧] ପୃଥକ୍ ।
ବର୍ଣ୍ଣ୍ୟନ୍ତେ[୨] ଯତ୍ର ଯଜ୍ଞାଦିମୂର୍ତ୍ତିଭିଃ ପ୍ରଭବୋ ହରେଃ ॥ ୨ ॥

| | | | | |
|---|---|---|---|---|
| | ବନ୍ଦଇଁ ଶ୍ରୀକୃଷ୍ଣଚରଣ । | ମଙ୍ଗଳମାନଙ୍କ କାରଣ | ॥ | ୧ |
| | ବ୍ରହ୍ମାଶଙ୍କର ଆଦି ସୁରେ । | ଚିନ୍ତନ୍ତି ଯାହା ମାନସରେ | ॥ | ୨ |
| | ସେ ପାଦସ୍ମରଣରୁ ମୋର । | ଅଜ୍ଞାନପୁଞ୍ଜ ହେଉ ଦୂର | ॥ | ୩ |
| | ମୈତ୍ରେୟ ବିଦୁରଙ୍କ ଆଗେ । | କହୁଅଛନ୍ତି ଅନୁରାଗେ | ॥ | ୪ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧ | ମନୁର ଶତରୂପା ନାମ । | ଯେବଣ ଭାର୍ଯ୍ୟା ଅନୁପମ | ॥ | ୫ |
| | ତା'ଠାରେ ହେଲେ କନ୍ୟା ତିନି । | ଆକୂତି ଦେବହୂତି ବେନି | ॥ | ୬ |
| | ପ୍ରସୂତି ଆରକ ଦୁହିତ । | ଏ ରୂପେ ତିନିହେଁ ବିଖ୍ୟାତ | ॥ | ୭ |
| ୨ | ଆକୂତି ନାମେ ଯେ ତନୁଜା । | ଭାଇ ଥିଲେହେଁ ତାକୁ ରାଜା | ॥ | ୮ |
| | ରୁଚିଙ୍କି କଲେକ ପ୍ରଦାନ । | ନିର୍ବନ୍ଧ କରି ଏ ବଚନ | ॥ | ୯ |
| | *ଏ କନ୍ୟା ଭୂଷଣସଂଯୁତେ । | ପ୍ରଦାନ କରୁଅଛି ତୋତେ | ॥ | ୧୦ |
| | ଯେ ଏହାଠାରେ ସମ୍ଭବିବ । | ମୋହର ପୁତ୍ର ସେ ହୋଇବ | ॥ | ୧୧ |
| | ଏହି ନିର୍ବନ୍ଧେ ବିଭାକଲେ । | ଶତରୂପା ହିଁ ତା' ମଙ୍ଗିଲେ | ॥ | ୧୨ |

---

୧. ନ୍ୱୟଃ । ୨. ବର୍ଣ୍ଣ୍ୟତେ ।

* ଅଭ୍ରାତୃକାଂ ପ୍ରଦାସ୍ୟାମି ତୁଭ୍ୟଂ କନ୍ୟାମଳଂକୃତାମ୍ ।
ଅସ୍ୟାଂ ଯୋ ଜାୟତେ ପୁତ୍ରଃ ସ ମେ ପୁତ୍ରୋ ଭବେଦିତି । ୧ ।
ଏହାକୁ ''ପୁତ୍ରିକାଧର୍ମ'' କହନ୍ତି । (ସ୍ୱାମୀଧୃତ ଶ୍ଳୋକ)

୩ ସେ ପ୍ରଜାପତି ରୁଚି ନାମ । ବ୍ରହ୍ମତେଜସ୍ୱୀ ଅନୁପମ ॥ ୧୩
ଅତିଶୟରେ ନିଜ ମନ । ବିଷ୍ଣୁରେ କରି ନିବେଦନ ॥ ୧୪
ତା'ଠାରେ କଲେ ବେନି ଜାତ । ଏକ ଦୁହିତା ଏକ ସୁତ ॥ ୧୫
୪ ସେ ବେନି ମଧ୍ୟରେ ଯେ ଜାତ । ପୁରୁଷ, ବିଷ୍ଣୁ ସେ ସାକ୍ଷାତ ॥ ୧୬
ଯଜ୍ଞସ୍ୱରୂପୀ ସେ ଈଶ୍ୱର । ଯେ ସ୍ତ୍ରୀ ଦକ୍ଷିଣା ନାମ ତାର ॥ ୧୭
ଅଂଶ ଅଟଇ ସେ ଲକ୍ଷ୍ମୀର । ଏଣୁ ବିନାଶ ନାହିଁ ତାର ॥ ୧୮
୫ ଯେ ଅତିଶୟ ତେଜଯୁତ । ଅଟଇ ଦୁହିତାର ସୁତ ॥ ୧୯
ହରଷ ହୋଇ ମନୁ ତାକୁ । ଆଣିଲେ ଆପଣା ଗୃହକୁ ॥ ୨୦
ଯେ କନ୍ୟା ଦକ୍ଷିଣାନାମରେ । ରୁଚି ରଖିଲେ ତାକୁ ଘରେ ॥ ୨୧
୬ ସେ କନ୍ୟା ବାଞ୍ଛିଲା ଯଜ୍ଞକୁ । ଯଜ୍ଞ ବିବାହ ହେଲେ ତାକୁ ॥ ୨୨
ସେ କନ୍ୟା ଯଜ୍ଞଙ୍କର ଠାରେ । ତୋଷକୁ ଲଭିଲା ମନରେ ॥ ୨୩
ଯଜ୍ଞ ତା'ଠାରେ ତୋଷ ହେଲେ । ଦ୍ୱାଦଶ ପୁତ୍ର ଜାତ କଲେ ॥ ୨୪
୭ ତୋଷ, ପ୍ରତୋଷ, ଭଦ୍ର, ଶାନ୍ତି । ସଂତୋଷ, ଇଧ୍ମ, ଇଡସ୍ପତି ॥ ୨୫
ସୁଦେବ, କବି, ବିଭୁ, ସ୍ୱାହ୍ନ । ରୋଚନ ଦ୍ୱାଦଶ ନନ୍ଦନ ॥ ୨୬
୮ *ସେ ସ୍ୱାୟମ୍ଭୁବ ମନ୍ୱନ୍ତରେ । ତୁଷିତା ନାମେ ହେଲେ ସୁରେ ॥ ୨୭
ମରୀଚି ଆଦି ମୁନିବର । ଯଜ୍ଞ ହୋଇଲେ ସୁରେଶ୍ୱର ॥ ୨୮
୯ ଅତି ତେଜସ୍ୱୀ ପ୍ରିୟବ୍ରତ । ଉତ୍ତାନପାଦ ମନୁସୁତ ॥ ୨୯
ସେ ବେନିପୁତ୍ରପୌତ୍ରନାତି । ବଂଶେ ସେ ମନ୍ୱନ୍ତର ସ୍ଥିତି ॥ ୩୦
୧୦ ଯେ ସୁତା ଦେବହୂତି ଥିଲା । ମନୁ ତା' କର୍ଦ୍ଦମକୁ ଦେଲା ॥ ୩୧
ଭୋ ତାତ ! ସମ୍ବନ୍ଧ ତାହାର । କହିଛି, ଶୁଣିଛୁ ଅପାର ॥ ୩୨
୧୧ ଯେ ଦକ୍ଷ ନାମରେ ବିଦିତ । ଅଟନ୍ତି ବ୍ରହ୍ମାଙ୍କର ସୁତ ॥ ୩୩
ପ୍ରସୂତିନାମେ ତନୁଜାକୁ । ମନୁ ପ୍ରଦାନ କଲେ ତାକୁ ॥ ୩୪
ଯାହାର ସୃଷ୍ଟି ତ୍ରିଲୋକରେ । ବିସ୍ତାର ହେଲା ଅତ୍ୟନ୍ତରେ ॥ ୩୫

---

* ମନ୍ୱନ୍ତରଂ ମନୁର୍ଦ୍ଦେବା ମନୁପୁତ୍ରାଃ ସୁରେଶ୍ୱରାଃ ।
ଋଷୟୋଂଶାବତାରାଶ୍ଚ ହରେଃ ଷଡ୍‌ବିଧମୁଚ୍ୟତେ ॥ ୧ । (ସ୍ୱାମିଧୃତ ଶ୍ଳୋକ)
ଅର୍ଥ – ମନୁ, ଦେବ, ମନୁପୁତ୍ର, ସୁରେଶ୍ୱର, ଋଷି ଓ ହରିଙ୍କ ଅଂଶାବତାରଙ୍କୁ ଷଡ୍‌ବିଧ ମନ୍ୱନ୍ତର କୁହାଯାଏ । (ସ୍ୱାୟମ୍ଭୁବ ମନ୍ୱନ୍ତରରେ ୧. ମନୁ = ସ୍ୱାୟମ୍ଭୁବ, ୨. ଦେବ = ତୁଷିତା, ୩. ମନୁପୁତ୍ର = ପ୍ରିୟବ୍ରତ ଓ ଉତ୍ତାନପାଦ, ୪. ଋଷି = ମରୀଚ୍ୟାଦି, ୫. ସୁରେଶ୍ୱର = ଯଜ୍ଞ, ୬. ହରିଙ୍କ ଅଂଶାବତାର = ଯଜ୍ଞ ।)

୧୨ କର୍ଦ୍ଦମ ଋଷିଙ୍କର ଯେତେ । ଦୁହିତା କହିଲାଇଁ ତୋତେ ॥ ୩୬
ସେମାନେ ବ୍ରହ୍ମଋଷିଙ୍କର । ପତ୍ନୀ ଅଟନ୍ତି ହେ ବିଦୁର ॥ ୩୭
ତାହାଙ୍କ ସନ୍ତତି ବିସ୍ତାର । ଶୁଣ କହୁଛି ତୋ' ଆଗର ॥ ୩୮
୧୩ କର୍ଦ୍ଦମସୁତା ନାମ କଳା । ମରୀଚିଋଷିଙ୍କ ଅବଳା ॥ ୩୯
ସେ ଜାତ କଲା ବେନି ସୁତ । କଶ୍ୟପ ପୂର୍ଣ୍ଣିମା ଯେ ଖ୍ୟାତ ॥ ୪୦
ଯାହାଙ୍କ ବଂଶରେ ପୂରିତ । ହୋଇଣ ଅଛି ଏ ଜଗତ ॥ ୪୧
୧୪ ବିରଜ, ବିଶ୍ୱଗ[1] ଯେ ସୁତ । ତାଙ୍କୁ ପୂର୍ଣ୍ଣିମା କଲେ ଜାତ ॥ ୪୨
ସୁତାଏ କଲେ ସେ ଜନମ । ତାହାର ଦେବକୁଲ୍ୟା ନାମ ॥ ୪୩
ହରିଚରଣ ଶଉଚରେ । ଯେ ଗଙ୍ଗା ହେଲା ଜନ୍ମାନ୍ତରେ ॥ ୪୪
୧୫ ଅତ୍ରିର ଅନସୂୟା ନାମ । ପତ୍ନୀ ଅଟଇ ଅନୁପମ ॥ ୪୫
ସେ ଜାତ କଲା ସୁତ ତିନି । ଦତ୍ତ, ଦୁର୍ବାସା, ସୋମମୁନି ॥ ୪୬
ସେ ବିଷ୍ଣୁ ଶିବ ବ୍ରହ୍ମାଅଂଶେ । ସମ୍ଭବ, ପୂରିତ ସୁଯଶେ ॥ ୪୭

ଶ୍ରୀବିଦୁର ଉବାଚ

୧୬ ପାଳନ ନାଶ ଉତ୍ପତ୍ତିର । ହେତୁ ଯେ ଦେବଗଣବର ॥ ୪୮
ସେ କେଉଁ କାର୍ଯ୍ୟ କରିବାରେ । ଜନ୍ମିଲେ ଅତ୍ରିଙ୍କ ଗୃହରେ ॥ ୪୯
ହେ ଗୁରୁ ! ଏ କଥା ମୋହର । ଆଗରେ କରସି ବିସ୍ତାର ॥ ୫୦

ଶ୍ରୀମୈତ୍ରେୟ ଉବାଚ

୧୭ ବେଦ ଜାଣିଲା ଲୋକଙ୍କର । ମଧ୍ୟରେ ଯେଉଁ ଅତ୍ରି ବର ॥ ୫୧
ସୃଷ୍ଟି ନିର୍ମାଣ କରିବାକୁ । ଆଜ୍ଞା ଦିଅନ୍ତେ ବ୍ରହ୍ମା ତାକୁ ॥ ୫୨
ଋକ୍ଷ ନାମରେ ସୁବିଦିତ । ଅଛଇ ଯେ କୁଳପର୍ବତ ॥ ୫୩
ତହିଁକି ନିଜ ଭାର୍ଯ୍ୟାତୁଲେ । ତପସ୍ୱୀ ହୋଇଣ ଗମିଲେ ॥ ୫୪
୧୮ ସେ କୁଳାଚଳେ ଯେ ଶୋଭନ । ପଲାଶ, ଅଶୋକ କାନନ ॥ ୫୫
କୁସୁମସ୍ତବକ ନିକର । ଯହିଁ ଦିଶନ୍ତି ମନୋହର ॥ ୫୬
ନିର୍ବିନ୍ଧ୍ୟା ନଦୀଜଳମାନେ । ସ୍ରବୁଅଛନ୍ତି ସ୍ଥାନେ ସ୍ଥାନେ ॥ ୫୭
ତେଣେ ସେ ଅଟଇ ନାଦିତ । ସେ ବନମଧ୍ୟେ ହୋଇ ସ୍ଥିତ ॥ ୫୮

---

୧: ବିଶ୍ୱପ ।

୧୯ ପ୍ରାଣାୟାମରେ ନିଜ ଚିତ୍ତ । ସେ ମୁନି କରି ସଂଯମିତ ॥ ୫୯
ଛାଡ଼ି ସକଳ ଦ୍ୱନ୍ଦ୍ୱମାନ । ଅନିଳ କରିଣ ଭୋଜନ ॥ ୬୦
ଶତେ ବରଷ ଯାଏ ତହିଁ । ରହିଲେ ଏକପାଦ ହୋଇ ॥ ୬୧
୨୦ ଜଗତ-ଈଶ୍ୱର ଯେ ଅଛି । ମୁଁ ତାକୁ ଶରଣ ପଶୁଛି ॥ ୬୨
ନିଜ ସମାନେ ମୋତେ ସୁତ । ଦେଉ ସେ ଚିନ୍ତନ୍ତେ ଏମନ୍ତ ॥ ୬୩
୨୧ ଯେ ପ୍ରାଣାୟାମରେ ବର୍ଦ୍ଧିତ । ସେ ଅଗ୍ନି ମୁନିଶିରୁଁ ଜାତ ॥ ୬୪
ସେ ଅନଳରେ ତିନିପୁର । ତପତ ହେଲା ନିରନ୍ତର ॥ ୬୫
ଏମନ୍ତ ଦେଖି ପ୍ରଭୁ ତିନି । ବିଷ୍ଣୁ, ଶଙ୍କର, ପଦ୍ମଯୋନି ॥ ୬୬
୨୨ ତାହାର ଯେ ଆଶ୍ରମମାନ । ତହିଁକି କଲେ ସେ ଗମନ ॥ ୬୭
ମୁନି, ଗନ୍ଧର୍ବ, ଅପସର । ଉରଗ, ସିଦ୍ଧ, ବିଦ୍ୟାଧର ॥ ୬୮
ତାହାଙ୍କ ଯଶକୁ ଏମାନେ । ବିସ୍ତାରୁ ଅଛନ୍ତି ବଚନେ ॥ ୬୯
୨୩ ତାହାଙ୍କ ପ୍ରକାଶ ସଂଯୋଗେ । ନିର୍ମଳ ଚିତ୍ତ ହୋଇ ବେଗେ ॥ ୭୦
ଏକା ପାଦରେ ଥାନ୍ତେ ମୁନି । ଦେଖିଲେ ସୁରଶ୍ରେଷ୍ଠ ତିନି ॥ ୭୧
୨୪ ବୃଷଭ, ହଂସ, ଗରୁଡ଼ର । ଉପରେ ସ୍ଥିତି ଯାହାଙ୍କର ॥ ୭୨
ଆପଣା ଆପଣାର ଚିହ୍ନେ । ଖ୍ୟାତ ଅଟନ୍ତି ଯେ ଭୁବନେ ॥ ୭୩
ଭୂମିରେ ଦଣ୍ଡପ୍ରାୟ ହୋଇ । ତାଙ୍କୁ ପ୍ରଣାମ କରି ଶୋଇ ॥ ୭୪
ପୁଷ୍ପାଦି ଧରି ଅଞ୍ଜଳିରେ । ପୂଜିଲେ ମୁନି ତାଙ୍କୁ ଧୀରେ ॥ ୭୫
ଯହିଁରେ କୃପା[୧] ବିଲୋକନ । ହସିଲା ଅଟେ ଯେ ବଦନ ॥ ୭୬
ତେଣେ ସେ ପ୍ରସନ୍ନ ଭାବରେ । ବିଖ୍ୟାତ ଅଟନ୍ତି ଲୋକରେ ॥ ୭୭
୨୫ ତାଙ୍କ ତେଜରେ ନେତ୍ର ବେନି । ହତ ହୁଅନ୍ତେ ବୁଜି ମୁନି ॥ ୭୮
ତାହାଙ୍କ ଠାବରେ ପ୍ରବଣ । ନିଜ ମାନସକୁ କରିଣ ॥ ୭୯
କରଯୁଗଳ ଯୋଡ଼ି ଧୀରେ । ମଧୁର ଗମ୍ଭୀର ବାକ୍ୟରେ ॥ ୮୦
ତାଙ୍କୁ ଏ ରୂପେ କଲେ ସ୍ତୁତି । ଯେ ସର୍ବଲୋକେ ଶ୍ରେଷ୍ଠ ଅତି ॥ ୮୧

ଶ୍ରୀଅତ୍ରିରୁବାଚ

୨୬ ବିଶ୍ୱ ଉଦ୍ଭବ, ସ୍ଥିତି ନାଶେ । ଭିନ୍ନ ହୋଇଣ ଯେ ପ୍ରକାଶେ ॥ ୮୨
ସେ ରଜ ଆଦି ତିନି ଗୁଣ । ମାୟାର ଅଟନ୍ତି ନିର୍ମାଣ ॥ ୮୩
ସେ ଗୁଣେ ନିଜ କଳେବର । ଯେ ତୁମ୍ଭେ କଲ୍ପେ କଲ୍ପେ ଧର ॥ ୮୪

---

୧. କୃପାରେ

ତୁମ୍ଭେ ସେ ବ୍ରହ୍ମା, ବିଷ୍ଣୁ, ହର । ତୁମ୍ଭଙ୍କୁ ପ୍ରଣାମ ମୋହର ॥ ୮୫
ମୁଁ ତୁମ୍ଭମାନଙ୍କ ମଧରେ । କାହାକୁ ଡାକିଲି ଏଠାରେ ॥ ୮୬
୨୭ ନାନାପ୍ରକାର ଉପଚାରେ । ଏକ ଦେବକୁ ମୁଁ ଏଠାରେ ॥ ୮୭
ଏକ ଭାବକୁ ନେଲି ଚିତ୍ତେ । ତନୁଜ-ଜନମ-ନିମିତ୍ତେ ॥ ୮୮
ତୁମ୍ଭେ ଯେ ପ୍ରାଣୀମାନଙ୍କର । ମନର ଅଟ ଅଗୋଚର ॥ ୮୯
ଏଠାକୁ ଅଇଲ କିପାଇଁ । କହ ପ୍ରସନ୍ନ ମୋତେ ହୋଇ ॥ ୯୦
ଏହି ବିଷୟେ ଅତିଶୟ । ମୋହର ହେଉଛି ବିସ୍ମୟ ॥ ୯୧

ଶ୍ରୀମୈତ୍ରେୟ ଉବାଚ

୨୮ ଏମନ୍ତ ତାର ବାକ୍ୟ ଶୁଣି । ସେ ତିନି ଦେବଶିରୋମଣି ॥ ୯୨
କୋମଳ ବାକ୍ୟରେ ପ୍ରଶଂସି । କହିଲେ ସେ ଋଷିଙ୍କି ହସି ॥ ୯୩

ଶ୍ରୀଦେବଦେବା ଊଚୁଃ

୨୯ ହେ ବିପ୍ର ! ଯେମନ୍ତ ପ୍ରକାରେ । ସଂକଳ୍ପ କଲୁ ତୁ ମନରେ ॥ ୯୪
ସେ କଥା ସେ ରୂପେ ହୋଇବ । କେବେହେଁ ଅନ୍ୟଥା ନୋହିବ ॥ ୯୫
ସଂକଳ୍ପ ଅଟେ ସତ୍ୟ ଯାର । ତୁ ଅଟୁ ତେମନ୍ତ ପ୍ରକାର ॥ ୯୬
ଯେଉଁ ତତ୍ତ୍ୱକୁ କରୁ ଧ୍ୟାନ । ସେହିଟି ଆମ୍ଭେ ମନେ ଘେନ ॥ ୯୭
୩୦ ଆମ୍ଭ ଅଂଶରେ ତୋର ସୁତେ । ହୋଇବେ ବିଖ୍ୟାତ ଜଗତେ ॥ ୯୮
ମଙ୍ଗଳ ହେଉ, ଯଶ ତୋର । ଭୁବନେ କରିବେ ବିସ୍ତାର ॥ ୯୯
୩୧ ତଦନ୍ତେ ପତିପତ୍ନୀ ଦୁଇ । ତାହାଙ୍କେ, ପୂଜାବିଧି ପାଇ ॥୧୦୦
ଏ ରୂପେ ଦେଇ କାମବର । ଗଲେ ସେ ତିନି ସୁରେଶ୍ୱର ॥୧୦୧
୩୨ ବ୍ରହ୍ମା ଅଂଶରେ ସୋମ ଜାତ । ବିଷ୍ଣୁ ଅଂଶରେ ହେଲେ ଦତ୍ତ ॥୧୦୨
ଦୁର୍ବାସା ଅଂଶ ମହେଶଂ[୧]ର । ପୁତ୍ରକୁ ଶୁଣ ଅଙ୍ଗିରାର ॥୧୦୩
୩୩ ଅଙ୍ଗିରାପତ୍ନୀ ଶ୍ରଦ୍ଧା ଖ୍ୟାତ । ଚାରି କନ୍ୟକା କଲା ଜାତ ॥୧୦୪
ସେ ସିନୀବାଳୀ, କୁହୂ, ରାକା । ଚତୁର୍ଥ ଅନୁମତି ଏକା ॥୧୦୫
୩୪ ପୁଣ ତାହାର ହେଲେ ଜାତ । ଏଥୁଁ ଅପର ବେନି ସୁତ ॥୧୦୬
ସେ ସ୍ୱାରୋଚିଷ ମନ୍ୱନ୍ତରେ । ବିଖ୍ୟାତ ଅଟନ୍ତି ଲୋକରେ ॥୧୦୭
ଏକ ଉତଥ୍ୟ ଭଗବାନ । ବ୍ରହ୍ମଷ୍ଟ ବୃହସ୍ପତି ଆନ ॥୧୦୮

---
୧. ମହେଶ୍ୱର (?)

୩୫ ହବିର୍ଭୂ ନାମେ ପୁଲସ୍ତ୍ୟର । ଯେବଣ ଭାର୍ଯ୍ୟା ତାହାଠାର ।।୧୦୯
ଅଗସ୍ତ୍ୟ ନାମେ ଏକ ସୁତ । ସେ ମହରଷି କଲେ ଜାତ ।।୧୧୦
ଜଠର ଅନଳ ରୂପରେ । ସେ ଖ୍ୟାତ ଇତର ଜନ୍ମରେ ।।୧୧୧
ବିଶ୍ରବା ନାମେ ଆର ସୁତ । ସେ ମହା ତପସ୍ୱୀ ବିଦିତ ।।୧୧୨
୩୬ ସେ ବିଶ୍ରବାର ଯକ୍ଷେଶ୍ୱର । କୁବେର ନାମରେ କୁମର ।।୧୧୩
ଜନ୍ମିଲା ଇଳବିଳାଠାରେ । ପୁଣି ତା' ଆରକ[୧] ଭାର୍ଯ୍ୟାରେ ।।୧୧୪
ରାବଣ, କୁମ୍ଭକର୍ଣ୍ଣ ପୁଣ । ତୃତୀୟ ସୁତ ବିଭୀଷଣ ।।୧୧୫
୩୭ ପୁଲହଭାର୍ଯ୍ୟାନାମ ଗତି । ତ୍ରିପୁରା ଜାତକଲା ସତୀ ।।୧୧୬
ସେ କର୍ମଶ୍ରେଷ୍ଠ, ବରୀୟାଂସ । ସହିଷ୍ଣୁ ନାମରେ ପ୍ରକାଶ ।।୧୧୭
୩୮ କ୍ରତୁର ଭାର୍ଯ୍ୟା କ୍ରିୟା ନାମ । ବାଳଖିଲ୍ୟଙ୍କୁ କଲା ଜନ୍ମ ।।୧୧୮
ଷାଠିଏ ସହସ୍ର ସେ ମୁନି । ଜ୍ୱଳନ୍ତି ବ୍ରହ୍ମତେଜ ଘେନି ।।୧୧୯
୩୯ ଭାର୍ଯ୍ୟାର[୨] ଠାରେ ବଶିଷ୍ଠର । ଜନ୍ମିଲେ ସପତ କୁମର ।।୧୨୦
ହେ ନୃପ ! ଚିତ୍ରକେତୁ ମୁଖ୍ୟ । ସପତ ଋଷି ସେ ପ୍ରତ୍ୟକ୍ଷ ।।୧୨୧
୪୦ ପ୍ରଥମ ଚିତ୍ରକେତୁ ମୁନି । ସୁରୋଚି, ବିରଜ ଏ ବେନି ।।୧୨୨
ମିତ୍ର, ଉଲ୍ବଣ ବେନି ଆନ । ଅପର ବସୁଭୃତଯାନ ।।୧୨୩
ଦ୍ୟୁମନ୍ତ ଆରକ ନନ୍ଦନ । ଶକ୍ତିକି[୩]ଆଦି ସୁତେ ଭିନ୍ନ ।।୧୨୪
୪୧ ଅଥର୍ବପତ୍ନୀ ଚିତ୍ତି ଖ୍ୟାତ । ପୁତ୍ର ଲଭିଲା ଧୃତବ୍ରତ ।।୧୨୫
ଦ୍ଧ୍ୟଞ୍ଚ[୪] ଅଶ୍ୱଶିରା ପୁଣ । ଭୃଗୁବଂଶକୁ ଏବେ ଶୁଣ ।।୧୨୬
୪୨ ଯେ ମହାଭାଗ ଭୃଗୁ ମୁନି । ଖ୍ୟାତି ନାମରେ ତା' କାମିନୀ ।।୧୨୭
ତା'ଠାରେ ପୁତ୍ର କଲା ଜାତ । ଧାତା, ବିଧାତା ନାମେ ଖ୍ୟାତ ।।୧୨୮
ଯେ ଲକ୍ଷ୍ମୀ ବିଷ୍ଣୁ ପରାୟଣ । ତାକୁ ହିଁ ଜନ୍ମକଲା ପୁଣ ।।୧୨୯
୪୩ ମେରୁ ସେ ଧାତା, ବିଧାତାକୁ । ଦେଲା ସ୍ୱବେନି ଦୁହିତାକୁ ।।୧୩୦
ଆୟତି, ନିୟତି ସେ ଦୁଇ । ଧାତା, ବିଧାତାଙ୍କର ତହିଁ ।।୧୩୧
ତାହାଙ୍କ ଠାରୁ ବେନି ସୁତ । ମୃକଣ୍ଡ, ପ୍ରାଣ ନାମେ ଖ୍ୟାତ ।।୧୩୨
୪୪ ମୃକଣ୍ଡ ଋଷିଙ୍କର ସୁତ । ନାମରେ ମାର୍କଣ୍ଡେୟ ଖ୍ୟାତ ।।୧୩୩
ପ୍ରାଣର ଠାରୁ ବେଦଶିର । ଜାତ ହୋଇଲେ ମୁନି ଆର ।।୧୩୪

---

୧. ଆରକ ଭାର୍ଯ୍ୟାର ନାମ କେଶିନୀ (ସ୍ୱାମୀ)
୨. ବଶିଷ୍ଠଙ୍କ ଭାର୍ଯ୍ୟାର ନାମ ଉର୍ଜ୍ଜା ବା ଅରୁନ୍ଧତୀ ।
୩. ଶକ୍ତି ପ୍ରଭୃତି । (ଶକ୍ତ୍ରି, ପାଠାନ୍ତର ।)
୪. ଦଧୀଚି (ସ୍ୱାମୀ)

କବି ଅଟଇ ଭୃଗୁସୁତ । ଯା’ ପୁତ୍ର ଉଶନା ବିଦିତ ॥୧୩୫
ସେମାନେ ପୁତ୍ର ଆଦି ଦ୍ୱାରେ । ସୃଷ୍ଟିକି କଲେ ଏ ସଂସାରେ ॥୧୩୬
୪୫ ଏ ଯେ କର୍ଦ୍ଦମସୁତାଙ୍କର । ବଂଶ କହିଲୁଁ ତୋ’ ଆଗର ॥୧୩୭
ଶ୍ରଦ୍ଧାରେ ଶୁଣେ ଯେ ପୁରୁଷ । ତତ୍‌କାଳ ହରେ ତା କଲ୍ମଷ ॥୧୩୮
୪୬ ପ୍ରସୂତି ନାମରେ ମନୁର । ଯେବଣ କନ୍ୟା ମନୋହର ॥୧୩୯
ବିବାହ ହେଲେ ତାକୁ ଦକ୍ଷ । ବ୍ରହ୍ମାର ସୁତ ଯେ ପ୍ରତ୍ୟକ୍ଷ ॥୧୪୦
ତା’ଠାରେ ଅମଳଲୋଚନୀ । ସର୍ଜିଲେ ଷୋଡ଼ଶ ନନ୍ଦିନୀ ॥୧୪୧
୪୭ ଧର୍ମକୁ ତେର କନ୍ୟା ଦେଲେ । ଏକ ଅଗ୍ନିକି ବିଭା କଲେ ॥୧୪୨
ସଂଯତ[1] ଯେଉଁ ପିତୃଗଣ । ତାହାଙ୍କୁ ଏକ ଦେଲେ ପୁଣ ॥୧୪୩
ଯେ ଭବଚ୍ଛେଦନ ଶଙ୍କର । ତାହାଙ୍କୁ ଦେଲେ କନ୍ୟା ଆର ॥୧୪୪
୪୮ ଶ୍ରଦ୍ଧା, ମୟିତ୍ରୀ, ଦୟା, ଶାନ୍ତି । ତୁଷ୍ଟି, ପୁଷ୍ଟି, କ୍ରିୟା, ଉନ୍ନତି ॥୧୪୫
ବୁଦ୍ଧି, ମେଧା, ତିତିକ୍ଷା ଆର । ହ୍ରୀ, ମୂର୍ତ୍ତି ପତ୍ନୀ ଏ ଧର୍ମର ॥୧୪୬
୪୯ ଶ୍ରଦ୍ଧା ଶୁଭ[2]କୁ ଜାତକଲା । ମୈତ୍ରୀ ପ୍ରସାଦ ପ୍ରସବିଲା ॥୧୪୭
ଦୟା ଅଭୟକୁ ଜନମ । କଲା ସୁଖକୁ ଶାନ୍ତି ନାମ ॥୧୪୮
ମୁଦକୁ ପ୍ରସବିଲା ତୁଷ୍ଟି । ସ୍ମୟକୁ ଜାତ କଲା ପୁଷ୍ଟି ॥୧୪୯
୫୦ ଯୋଗକୁ କ୍ରିୟା କଲା ଜାତ । ଦର୍ପକୁ ଉନ୍ନତି ତା’ ମାତ ॥୧୫୦
ଅର୍ଥକୁ ବୁଦ୍ଧି ମେଧା ନାମ । ସ୍ମୃତିକି କଲାକ ଜନମ ॥୧୫୧
ତିତିକ୍ଷା ପ୍ରସବେ କ୍ଷେମକୁ । ହ୍ରୀ ଜାତକଲା ପ୍ରଶ୍ରୟକୁ ॥୧୫୨
ସକଳ ଗୁଣମାନଙ୍କର । ଉତ୍‌ପତ୍ତି ହେଲା ଯାହାଠାର ॥୧୫୩
ସେ ମୂର୍ତ୍ତି ନରନାରାୟଣ । ଋଷିଙ୍କି ଜାତକଲା ପୁଣ ॥୧୫୪
୫୧ ଯାହାଙ୍କ ଜନ୍ମେ ଏ ଜଗତ । ହୋଇଲା ଆନନ୍ଦ ସୁଖିତ ॥୧୫୫
ପ୍ରାଣୀମାନଙ୍କର ମାନସ । ନଦୀ ସାଗର [3]ଦଶଦିଶ ॥୧୫୬
ପବନ ସହିତ ଏମାନେ । ପ୍ରସନ୍ନ ହେଲେ ସ୍ଥାନେ ସ୍ଥାନେ ॥୧୫୭
୫୨ ଯେ ଚତୁର୍ବିଧ ବାଦ୍ୟମାନେ । ଶବଦ କଲେ ସେ ଗଗନେ ॥୧୫୮

---

୧. ସଂଯୁତ । ସଂମିଳିତ (ସ୍ୱାମୀ)
୨. ଋତୁ ।
୩. ପର୍ବତ (?) (ତ୍ରୁଂ ଅଦ୍ରୟଃ ଇତି ବା ପାଠଃ)

୫୩ ନାଚିଲେ ଦେବନାରୀକୁଳ । ହୋଇଲା ପରମ ମଙ୍ଗଳ ॥୧୫୯
ବ୍ରହ୍ମାଦି ସକଳ ଅମରେ । ଭଜିଲେ ସ୍ତୁତିମାନଙ୍କରେ ॥୧୬୦

ଶ୍ରୀଦେବା ଊଚୁଃ

୫୪ ନିଜ ମାୟାରେ ବିରଚିତ । ଯେଉଁ ଆତ୍ମାରେ ଏ ଜଗତ ॥୧୬୧
ଆକାଶେ ଗନ୍ଧର୍ବନଗର । ପ୍ରାୟକ ଦିଶଇ ସୁନ୍ଦର ॥୧୬୨
ସେ ଆତ୍ମା ପ୍ରକାଶ ଅର୍ଥରେ । ଧର୍ମଦେବତାସଦନରେ ॥୧୬୩
ଏ ଋଷି ମୂର୍ତ୍ତିରେ ପ୍ରକାଶ । କଲେ ଆତ୍ମାକୁ ଯେ ପୁରୁଷ ॥୧୬୪
ସେ ସର୍ବଦେବଗଣେ ବର । ତାଙ୍କୁ ଆମ୍ଭର ନମସ୍କାର ॥୧୬୫
୫୫ ବିଶ୍ୱମର୍ଯ୍ୟାଦା ଅନ୍ୟଭାବ । ନାଶ ଅର୍ଥରେ ସେହୁ ଦେବ ॥୧୬୬
ସତ୍ତ୍ୱରେ ଯାହାକୁ ନିର୍ମାଣ । କଲା, ସେ ଆମ୍ଭେ ସୁରଗଣ ॥୧୬୭
ଲକ୍ଷ୍ମୀର ଅଟେ ନିଜ ବାସ । ଅମଳ ରୂପରେ ପ୍ରକାଶ ॥୧୬୮
ଏମନ୍ତ ପଦ୍ମକୁ ମଳିନ । କରଇ ଯେବଣ ନୟନ ॥୧୬୯
ଆମ୍ଭଙ୍କୁ ଚାହିଁ ସେ ନେତ୍ରରେ । ବିଶେଷ କରୁଣା ଯହିଁରେ ॥୧୭୦
ଶାସ୍ତ୍ର ବିଚାରି ତତ୍ତ୍ୱ ଯାର । ଅଟେ ଯେ ଏମନ୍ତ ଈଶ୍ୱର ॥୧୭୧
୫୬ ହେ ତାତ ! ସର୍ବ ସୁରଗଣ । ତାଙ୍କ ଦରଶନ ଲଭିଣ ॥୧୭୨
ସ୍ତୁତି କରିଣ ଏ ପ୍ରକାରେ । ପୂଜିଲେ ନାନା ଉପଚାରେ ॥୧୭୩
ଗନ୍ଧମାଦନକୁ ସେ ବେନି । ଗମନ କଲେ ମହାମୁନି ॥୧୭୪
୫୭ *ଧରଣୀଭାରର ବିନାଶ । ଅର୍ଥେ ସେ ବେନି ବିଷ୍ଣୁ ଅଂଶ ॥୧୭୫
ପ୍ରବେଶ ହେଲେ ଏ ଲୋକରେ । ବିଖ୍ୟାତ ସେ କୃଷ୍ଣ[୧] ନାମରେ ॥୧୭୬
ଯଦୁବଂଶରେ ଏକ ବର । କୁରୁବଂଶରେ ଶ୍ରେଷ୍ଠ ଆର ॥୧୭୭
୫୮ ଯେ ଦେବ ଅଗ୍ନି-ଅଭିମାନୀ । ତା'ଠାରୁ ସ୍ୱାହା ତା' କାମିନୀ ॥୧୭୮
ଜନମ କଲା ସୁତ ତିନି । ପାବକ ପବମାନ ବେନି ॥୧୭୯
ଶୁଚି ନାମରେ ଆର ସୁତ । ହୁତଭୋଜନ ଏ ବିଦିତ ॥୧୮୦
୫୯ ସେ ତିନିଠାରୁ ଉତପନ୍ନ । ପଞ୍ଚଚାଳିଶି ହୁତାଶନ ॥୧୮୧
ସେ ପିତୃପିତାମହ[୨] ତୁଲେ । ଏ ରୂପେ ଅଣଞ୍ଚାଶ ହେଲେ ॥୧୮୨

---

* "ଅର୍ଜୁନେ ତୁ ନରାବେଶଃ କୃଷ୍ଣୋ ନାରାୟଣଃ ସ୍ୱୟମ୍ ।"

୧. କୃଷ୍ଣ ଓ ଅର୍ଜୁନ—ଉଭୟଙ୍କ ନାମ କୃଷ୍ଣ । (ତନ୍ତ୍ର) ।

୨. ତୃ ୩ ଜଣ, ପିତାମହ ୧ ଜଣ ।

୬୦ ବୈଦିକ କର୍ମରୂପ ହୋଇ । ଯେବଣ ଯଜ୍ଞ ପ୍ରକାଶଇ ।।୧୮୩
ତହିଁରେ ବ୍ରହ୍ମବାଦୀ ନରେ । ଯେବଣ ଅଗ୍ନିଙ୍କ ନାମରେ ।।୧୮୪
ଆଗ୍ନେୟ ଇଷ୍ଟକି କରନ୍ତି । ସମସ୍ତେ ଅଗ୍ନି ସେ ବୋଲାନ୍ତି ।।୧୮୫
୬୧ ଯେ ବର୍ହିଷଦ, ଅଗ୍ନିଷ୍ୱାତ୍ତ । ଆଜ୍ୟପ, ସୌମ୍ୟ ଯେ ବିଦିତ ।।୧୮୬
ଯେ ସାଗ୍ନି, ନିରଗ୍ନି ରୂପରେ । ପିତୃଏ ପ୍ରକାଶ ଲୋକରେ ।।୧୮୭
ସ୍ୱଧା ତାହାଙ୍କର କାମିନୀ । ଅଟଇ ସେ ଦକ୍ଷନନ୍ଦିନୀ ।।୧୮୮
୬୨ ପିତୃଙ୍କ ଠାରୁ କନ୍ୟା ବେନି । ଧଇଲା ସ୍ୱଧା ଅତି ଜ୍ଞାନୀ ।।୧୮୯
ସେ ବେନି ବ୍ରହ୍ମବାଦୀ ମତ । ଜ୍ଞାନବିଜ୍ଞାନ ପାରଗତ ।।୧୯୦
୬୩ ଭବର ପତ୍ନୀ ନାମ ସତୀ । ଭବକୁ ଅନୁଗତ ଅତି ।।୧୯୧
ଗୁଣଶୀଳରେ ଆତ୍ମାସମ । ପୁତ୍ରଙ୍କୁ ନ କଲା ଜନମ ।।୧୯୨
୬୪ ନିରପରାଧୀ ଯେ ଶଙ୍କର । ଆପଣା ପିତା ତାଙ୍କ ଠାର ।।୧୯୩
ରୋଷେ କରନ୍ତେ ଦୁଷ୍ଟପଣ । ଅପ୍ରୌଢ଼ ବୟସେ ଯେ ପୁଣ ।।୧୯୪
ଯୋଗମାର୍ଗକୁ ଆଶ୍ରେ କଲା । ଆପଣା ଦେହକୁ ଛାଡ଼ିଲା ।।୧୯୫
କୃଷ୍ଣଚରଣେ ଦେଇ ଚିତ୍ତ । ଦେଶଭାଷାରେ କରି ଗୀତ ।।୧୯୬
ବ୍ରାହ୍ମଣ ଦୀନବନ୍ଧୁ ମନ । ହରଷ ହେଲା ଅନୁଦିନ ।।୧୯୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଦାକ୍ଷାୟଣଂ ନାମ ପ୍ରଥମୋଽଧ୍ୟାୟଃ ।।

## ଦ୍ୱିତୀୟୋଽଧ୍ୟାୟଃ

ଦ୍ୱିତୀୟେ ପ୍ରଥମାଧ୍ୟାୟୋପକ୍ଷିପ୍ତେ ଭବଦକ୍ଷୟୋଃ ।
ବିଦ୍ୱେଷେ ବର୍ଣ୍ଣ୍ୟତେ ହେତୁର୍ବିଶ୍ୱସୃଗ୍‌ଯଜ୍ଞସଂଭବଃ ।। ୧ ।।

ଶ୍ରୀବିଦୁର ଉବାଚ

୧ ଶୁଦ୍ଧଚରିତ ଲୋକଙ୍କର । ମଧ୍ୟରେ ଶ୍ରେଷ୍ଠ ଯେ ଶଙ୍କର ।। ୧
ଦକ୍ଷ କିମ୍ପାଇଁ ତାଙ୍କ ଠାରେ । ଅପ୍ରୀତି କଲା ଏ ସଂସାରେ ।। ୨
ସୁତାବତ୍ସଳ ହୋଇଥିଲା । ସତୀକି ଆଦର ନ କଲା ।। ୩

୨ ଯେ ଚରାଚରଗୁରୁ ହର । ନିର୍ବୈର ଶାନ୍ତ କଳେବର ॥
ଯେ ଆତ୍ମାରାମ ହୋଇ ଖ୍ୟାତ । ଜଗତଦେବତା ମହତ ॥
ତାଙ୍କୁ ଅପ୍ରୀତି ଆଚରଣ । କେ କରେ କି କାରଣେ ପୁଣ ॥
୩ ହେ ବିପ୍ର ! କହ ଏ ପ୍ରକାର । ଯେଣୁ ଜାମାତାଶ୍ୱଶୁରର ॥
ଅପ୍ରୀତି ହେଲା[1] ଅକାରଣ । ସତୀ ଛାଡ଼ିଲେ ଯେଣୁ ପ୍ରାଣ ॥

ଶ୍ରୀମୈତ୍ରେୟ ଉବାଚ

୪ ପୂର୍ବେ ପରମ ଋଷିମାନେ । ଅମରଗଣ ଯେବା ଆନେ ॥
ଅନୁଗ ସହିତ ହୋଇଣ । ଅଗ୍ନି ସହିତେ ପିତୃଗଣ ॥
ମିଳିଲେ ଆସିଣ ଏମାନେ । ବିଶ୍ୱସୃଜଙ୍କ ସତ୍ରସ୍ଥାନେ ॥
୫ ତେଜରେ ସୂର୍ଯ୍ୟର ସମାନ । ଦିଶୁଅଛନ୍ତି ଦୀପ୍ୟମାନ ॥
ସେ ମହାସଭା ଅନ୍ଧକାର । କରୁଅଛନ୍ତି ଅତିଦୂର ॥
ପ୍ରବେଶ ହେଲେ ଦକ୍ଷ ତହିଁ । ତାହାଙ୍କୁ ଋଷିମାନେ ଚାହିଁ ॥
୬ ଆସନୁଁ ଅଗ୍ନିଙ୍କର ତୁଲେ । ସଦସ୍ୟମାନେ ସେ ଉଠିଲେ ॥
ସେ ଦକ୍ଷତେଜରେ ତାଙ୍କର । ତେଜ ହୋଇଲା ଅପହାର ॥
ବ୍ରହ୍ମା ଶଙ୍କର ବେନି ଥିଲେ । କେବଳ ସେହୁ ନ ଉଠିଲେ ॥
୭ ଦକ୍ଷକୁ ସଭାପତିଜନ । କଲେ ଉତ୍ତମ ସମ୍ମାନନ ॥
ଯେ ବ୍ରହ୍ମା ଗୁରୁ ଜଗତର । ତାହାଙ୍କୁ କରି ନମସ୍କାର ॥
ବସିଲା ତାହାଙ୍କ ଆଜ୍ଞାରେ । ସେ ସଭାମଧ୍ୟେ କିଛି ଦୂରେ ॥
୮ ପୂର୍ବୁହୁଁ ବସିଥିଲେ ହର । ଦକ୍ଷକୁ ନ କଲେ ଆଦର ॥
ଦେଖି ସେ ନ ପାରିଲା ସହି । ଚକ୍ଷୁଯୁଗଳେ ବକ୍ରେ ଚାହିଁ ॥
ରୋଷେ କି କରୁଛି ଦହନ । କହିଲା ଏମନ୍ତ ବଚନ ॥
୯ ମୋ ବାକ୍ୟ ବ୍ରହ୍ମଋଷିମାନେ । ସୁରସହିତେ ହୁତାଶନେ ॥
ଶୁଣ ମୁଁ ସାଧୁଙ୍କ ଚରିତ । କହୁଛି ଯାହା ଯଥୋଚିତ ॥
ଅଜ୍ଞାନ ଭାବରେ ମତ୍ସରେ । କହୁ ନାହିଁ ମୁଁ ତୁମ୍ଭଠାରେ ॥
୧୦ ଲୋକପାଳଙ୍କ ଯଶହର । ଅଟେ ଏ ନିର୍ଲଜ୍ଜ ଶଙ୍କର ॥
ସାଧୁଜନରେ ଆଚରିତ । ମାର୍ଗକୁ ଯେ କଲା ଦୂଷିତ ॥
ଉଚିତ ଯେଉଁ କ୍ରିୟାମାନ । ତେଣେ ଏ ଅଟଇ ବିହୀନ ॥

---

୧. କଲା ।

| | | | | |
|---|---|---|---|---|
| ୧୧ | ସାବିତ୍ରୀ ପ୍ରାୟ ସୁତା ମୋର । | ଏ ସାଧୁପ୍ରାୟ ଯେଣୁ ତାର | ॥ | ୩୦ |
| | ହସ୍ତକୁ ଧରିଛି ପୂର୍ବରେ । | ବିପ୍ରଅନଳସମକ୍ଷ[୧]ରେ | ॥ | ୩୧ |
| | ଶିଷ୍ୟଭାବକୁ ତେଣୁ ମୋର । | ଲଭିଅଛି ଏ ମହେଶ୍ୱର | ॥ | ୩୨ |
| ୧୨ | ମୃଗଶାବକନେତ୍ରପ୍ରାୟ । | ଅଟେ ମୋ ସୁତାନେତ୍ରଦ୍ୱୟ | ॥ | ୩୩ |
| | ମର୍କଟଲୋଚନ ଏ ପୁଣ । | ତା' ପାଣି କରିଣ ଗ୍ରହଣ | ॥ | ୩୪ |
| | ପ୍ରତି-ଉତ୍‌ଥାନ, ନମସ୍କାର । | ଏ ବେନିଯୋଗ୍ୟ ମୁଁ ଶ୍ୱଶୁର | ॥ | ୩୫ |
| | ବଚନମାତ୍ରକ ହିଁ କହି । | ମୋ'ଠାରେ ମାନ୍ୟ କଲା ନାହିଁ | ॥ | ୩୬ |
| ୧୩ | ଏହାର କ୍ରିୟା କିଛି ନାହିଁ । | ଅଶୁଚି, ମାନୀ ଅଟେ ଏହି | ॥ | ୩୭ |
| | ଧର୍ମମର୍ଯ୍ୟାଦା ଯେତେ ଥିଲା । | ଏ ସେ ସମସ୍ତ ନାଶ କଲା | ॥ | ୩୮ |
| | ଇଚ୍ଛା ନ ଥିଲେହେଁ ଏହାକୁ । | ପ୍ରଦାନ କଲି ମୁଁ ବାଳାକୁ | ॥ | ୩୯ |
| | ବେଦସ୍ୱରୂପ ବାକ୍ୟ ନେଇ । | ଯେସନେ ଶୂଦ୍ର ଠାରେ ଦେଇ | ॥ | ୪୦ |
| ୧୪ | ଯେ ଘୋର ଭୂତପ୍ରେତଗଣ । | ତେଣେ ସେ ବେଷ୍ଟିତ ହୋଇଣ | ॥ | ୪୧ |
| | ଫିଟିଣଥାନ୍ତି କେଶମାନ । | ହସନ୍ତେ, କରନ୍ତେ ରୋଦନ | ॥ | ୪୨ |
| | ବାତୁଳ ପ୍ରାୟ ନଗ୍ନ ହୋଇ । | ଶ୍ମଶାନମାନଙ୍କେ ବୁଲଇ | ॥ | ୪୩ |
| ୧୫ | ଚିତାଭସ୍ମରେ ସ୍ନାନ କରି । | ପ୍ରେତସମ୍ବନ୍ଧି ମାଳା ଧରି | ॥ | ୪୪ |
| | ମନୁଷ୍ୟ ଅସ୍ଥି ବିଭୂଷିତ । | ମତ୍ତ ଜନଙ୍କ ପ୍ରିୟ ମତ୍ତ | ॥ | ୪୫ |
| | ଏହାର ନାମମାତ୍ର ଶିବ । | ଅଶିବ ଅଟଇ ବାସ୍ତବ | ॥ | ୪୬ |
| | କେବଳ ତମୋରୂପ ହୋଇ । | ଯାହାଙ୍କ ଆତ୍ମା ପ୍ରକାଶଇ | ॥ | ୪୭ |
| | ସେହୁ ପ୍ରମଥ ଶ୍ରେଷ୍ଠଙ୍କର । | ଅଟଇ ଯେହୁ ଅଧୀଶ୍ୱର | ॥ | ୪୮ |
| ୧୬ | ଯେ ଅଟେ ଉନ୍ମତ୍ତଙ୍କ ପତି । | ନାହିଁ ଯାହାର ଶୌଚରୀତି | ॥ | ୪୯ |
| | ଯା' ଚିତ୍ତ ଦୁଷ୍ଟଜନଠାରେ । | ତାକୁ ମୁଁ ବ୍ରହ୍ମା ବଚନରେ | ॥ | ୫୦ |
| | ପ୍ରଦାନ କଲି ନିଜ ସୁତା । | ଯେ ହାଦେ[୨] ଅଟେ ସୁଚରିତା | ॥ | ୫୧ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧୭ | ଦକ୍ଷକୁ ପ୍ରତିକୂଳ ନୋହି । | ଗିରୀଶ ବସିଥିଲେ ତହିଁ | ॥ | ୫୨ |
| | ଦକ୍ଷ ତାହାଙ୍କୁ ଏ ପ୍ରକାରେ । | ନିନ୍ଦା କରିଣ ସେ ସଭାରେ | ॥ | ୫୩ |
| | ଜଳ କରିଣ ଆଚମନ । | ଶାପ ଦେବାକୁ କଲା ମନ | ॥ | ୫୪ |

୧. ସମୟ ।
୨. ସହଜରେ, ନିଶ୍ଚିତରୂପେ ।

| | | | |
|---|---|---|---|
| ୧୮ | ଏହୁ ଦେବତାମାନଙ୍କର । | ଯଜନ ସମୟେ ଶଙ୍କର | ।। ୫୫ |
| | ଇନ୍ଦ୍ର ଉପେନ୍ଦ୍ର ଆଦି ଦେବ । | ସଙ୍ଗତେ ଭାଗ ନ ଲଭିବ | ।। ୫୬ |
| | ଦେବତାଗଣମାନଙ୍କର । | ମଧ୍ୟରେ ଅଟେ ଏ ଅବର | ।। ୫୭ |
| ୧୯ | ସଦସ୍ୟମାନଙ୍କେ ଯେ ମୁଖ୍ୟ । | ନିଷେଧ କଲେହେଁ ସେ ଦକ୍ଷ | ।। ୫୮ |
| | ଶିବଙ୍କୁ ଶାପକୁ ଦେଇଣ । | ସେଠାରୁ ବାହାର ହୋଇଣ | ।। ୫୯ |
| | ଗୃହକୁ ଗଲା ହେ ବିଦୁର ! । | ବଢ଼ିଛି ଚିତ୍ତେ କୋପ ତାର | ।। ୬୦ |
| ୨୦ | ଶିବସେବକମାନଙ୍କର । | ଶ୍ରେଷ୍ଠ ଯେ ଅଟେ ନନ୍ଦୀଶ୍ୱର | ।। ୬୧ |
| | ଶାପକୁ ଜାଣି ନେତ୍ର ଦୁଇ । | ରୋଷେ ଆରକ୍ତ କରି ଥାଇ | ।। ୬୨ |
| | ଯେ ଶାପ ଅଟଇ ଦାରୁଣ । | ଦକ୍ଷକୁ ଦେଲା ତାହା ପୁଣ | ।। ୬୩ |
| | ଯେବଣ ବିପ୍ରେ ସେ ଶିବର । | ନିନ୍ଦାକୁ କଲେକ ସ୍ୱୀକାର | ।। ୬୪ |
| | ତାଙ୍କୁହିଁ ଶାପ ଅତି ଘୋର । | ପ୍ରଦାନ କଲା ନନ୍ଦୀଶ୍ୱର | ।। ୬୫ |
| ୨୧ | ଦକ୍ଷରୂପରେ ଯେ ଶରୀର । | ଏହାକୁ ମଣି କରି ବର | ।। ୬୬ |
| | ଦ୍ରୋହକୁ ଆଚରିଲେ ନରେ । | ଯେ ପ୍ରତିଦ୍ରୋହକୁ ନ କରେ | ।। ୬୭ |
| | ଏମନ୍ତ ଭଗବାନଠାରେ । | ଦ୍ରୋହ ଯେ ଆଚରଣ କରେ | ।। ୬୮ |
| | ଭେଦଦରଶୀ ସେହୁ ମୂର୍ଖ । | ତତ୍ତ୍ୱରୁ ଅଟଇ ବିମୁଖ | ।। ୬୯ |
| ୨୨ | ଯହିଁରେ କୂଟଧର୍ମମାନେ । | ସକ୍ତ ହୋଇଣ ସେ ସଦନେ | ।। ୭୦ |
| | ଗ୍ରାମ୍ୟ ସୁଖରେ ଚିତ୍ତ ଦେଇ । | କର୍ମତନ୍ତ୍ରକୁ ବିସ୍ତାରଇ | ।। ୭୧ |
| | ବେଦରେ ଅର୍ଥବାଦ[୧] ହୋଇ । | ଯେ ବାକ୍ୟମାନ ପ୍ରକାଶଇ | ।। ୭୨ |
| | ତାର ଶ୍ରବଣେ ଯାର ମତି । | ବିନଷ୍ଟ ହୋଇଅଛି ଅତି | ।। ୭୩ |
| ୨୩ | ଆତ୍ମାରୁ ଭିନ୍ନ ଅଟେ କାୟ । | ତାକୁ ଯେ ମଣେ ଅର୍ଥପ୍ରାୟ | ।। ୭୪ |
| | ସେ ବୁଦ୍ଧିହେତୁ ଆତ୍ମଗତି । | ଯେହୁ ପାସୋରିଲା ଦୁର୍ମତି | ।। ୭୫ |
| | ସ୍ତ୍ରୀ କାମ ଅଟେ ଅତିଶୟ । | ଏଣୁ ସେ ଦକ୍ଷ ପଶୁପ୍ରାୟ | ।। ୭୬ |
| | ଛାଗର ମୁଖପ୍ରାୟ ତାର । | ମୁଖ ହେଉ ଏ ନିକଟର | ।। ୭୭ |
| ୨୪ | ଯେଉଁ[୨] ଅବିଦ୍ୟା କର୍ମମୟ । | ତାଠାରେ ତତ୍ତ୍ୱବିଦ୍ୟାପ୍ରାୟ | ।। ୭୮ |
| | ବୁଦ୍ଧିକି କରିଅଛି ଯେଣୁ । | ପଶୁ ଅଟଇ ଏହୁ ତେଣୁ | ।। ୭୯ |
| | ଶିବର ଠାବରେ ପ୍ରତ୍ୟକ୍ଷ । | ଯେ ଅମାନନା କଲା ଦକ୍ଷ | ।। ୮୦ |
| | ତାହାକୁ ଅନୁଗତ ହୋଇ । | ଯେ ଅବା ଅଛନ୍ତି ଏଠାଇଁ | ।। ୮୧ |
| | ସେ ଜନ୍ମମରଣ ରୂପରେ । | ଦୁଃଖ ଲଭନ୍ତୁ ଏ ସଂସାରେ | ।। ୮୨ |

---

୧. "ଅକ୍ଷୟ୍ୟଂ ହ ବୈ ଚାତୁର୍ମାସ୍ୟଯାଜିନଃ ସୁକୃତଂ ଭବତି ।" ଇତ୍ୟାଦି ।

୨. ଜଡ଼ (?) (ଶ୍ରୁତି)

୨୫ ପୁଷ୍ପର ପ୍ରାୟକ ଶୋଭନ । ଯହିଁରେ ଅର୍ଥବାଦମାନ ॥ ୮୩
ସେ ବେଦରୂପୀ ବଚନର । ଯେ ବା ମଧୁଗନ୍ଧ-ଆକାର ॥ ୮୪
ମନକ୍ଷୋଭକ ବାକ୍ୟମାନ । ତେଣେ ମଥିତ ଯାଙ୍କ ମନ ॥ ୮୫
ଶିବବଇରି ସେହିମାନେ । ମୋହକୁ ଲଭନ୍ତୁ ଭୁବନେ ॥ ୮୬
୨୬ ଭକ୍ଷ୍ୟ ଅଭକ୍ଷ୍ୟ ଏ ବିଚାର । ନାହିଁ ଯେବଣ ଦ୍ୱିଜଙ୍କର ॥ ୮୭
କେବଳ ଜୀବିକାନିମିତ୍ତ । ଧରନ୍ତି ବିଦ୍ୟାତପବ୍ରତ ॥ ୮୮
ଧନ, ଇନ୍ଦ୍ରିୟ, ଦେହେ ମତି । ବିନଷ୍ଟ କରିଥିବେ ନିତି ॥ ୮୯
ଯାଚକ ହୋଇ ଏ ଭୁବନେ । ଭ୍ରମଣ କରନ୍ତୁ ସେମାନେ ॥ ୯୦
୨୭ ବିପ୍ରକୁଳକୁ ଏ ପ୍ରକାର । ଶାପ ଦିଅନ୍ତେ ନନ୍ଦୀଶ୍ୱର ॥ ୯୧
ଦୁର୍ଲଙ୍ଘ୍ୟ ବ୍ରହ୍ମଦଣ୍ଡରୂପ । ଭୃଗୁ ସର୍ଜିଲେ ପ୍ରତିଶାପ ॥ ୯୨
୨୮ ଶିବବ୍ରତକୁ ଯେ ଧରନ୍ତି । ଯେ ତାଙ୍କୁ ଅନୁବ୍ରତି ଥାନ୍ତି ॥ ୯୩
ପାଷଣ୍ଡି ହେଉନ୍ତୁ ସେମାନେ । ଉତ୍ତମ ଶାସ୍ତ୍ରର ବିହୁନେ ॥ ୯୪
୨୯ ନଷ୍ଟଶଉଚ ମୂଢ଼ମତି । ଧରିଣ ଜଟା-ଭସ୍ମ-ଅସ୍ଥି ॥ ୯୫
ପ୍ରବେଶ ହେଉନ୍ତୁ ସେମାନେ । ଶିବଦୀକ୍ଷାରେ ଅନୁଦିନେ ॥ ୯୬
ସୁରା[୧], ଆସବ[୨] ଯହିଁ ଦୁଇ । ଦେବତାପ୍ରାୟ ପୂଜ୍ୟ ହୋଇ ॥ ୯୭
୩୦ ଯେ ବର୍ଣ୍ଣଆଶ୍ରମ ଆଚାର । ଯୁକ୍ତ ଅଟଇ ପୁଣ୍ୟତର ॥ ୯୮
ତାଙ୍କର ଧାରକ ହୋଇଣ । ଅଛି ଯେ ମର୍ଯ୍ୟାଦାରୂପେଣ ॥ ୯୯
ଯେଣୁ ସେ ବେଦକୁ ନିନ୍ଦୁଛ । ବ୍ରାହ୍ମଣମାନଙ୍କୁ ବାଛୁଛ ॥ ୧୦୦
ପାଷଣ୍ଡଭାବକୁ ସଂସାରେ । ଆଶ୍ରୟ କର[୩] ଏ ହେତୁରେ ॥ ୧୦୧
୩୧ ଏ ବେଦ ଲୋକମାନଙ୍କର । ନିତ୍ୟ ମଙ୍ଗଳ ପନ୍ଥା ଆର ॥ ୧୦୨
ତାଙ୍କୁ ସେବିଲେ ଋଷିଜନ । ଯହିଁ ପ୍ରମାଣ ଜନାର୍ଦ୍ଦନ ॥ ୧୦୩
୩୨ ଯେ ଅଟେ ପରମ ପାବନ । ସାଧୁଙ୍କ ମାର୍ଗ ସନାତନ ॥ ୧୦୪
ନିନ୍ଦା କରିଣ ସେ ବେଦକୁ । ଲଭିଲା[୪] ପାଷଣ୍ଡି ଭାବକୁ ॥ ୧୦୫
ଯହିଁରେ ଦେବତା ତୁମ୍ଭର । ଭୂତମାନଙ୍କର ଈଶ୍ୱର ॥ ୧୦୬

---

୧. ସୁରା—ଗୌଡୀ, ପୈଷ୍ଟୀ, ମାଧ୍ୱୀ ।
୨. ଆସବ—ତାଳାଦିରୁ ସଂଭୂତ ମଦ୍ୟ ।
୩. କଲ ।
୪. ଯାତଃ ଲଭିଲା, 'ଯାତ' (ଲଭ) ଇତି ବା ପାଠଃ ।

ଶ୍ରୀ ମୈତ୍ରେୟ ଉବାଚ

୩୩ ସେ ଭୃଗୁ ଏମନ୍ତ ପ୍ରକାରେ । ଶାପକୁ ଦିଅନ୍ତେ ସେଠାରେ ।।୧୦୭
ଅନୁଗମାନଙ୍କୁ ଘେନିଣ । କିଛିହିଁ ବିମନା ହୋଇଣ ।।୧୦୮
ସେଠାରୁ ବେଗରେ ଗମନ । କଲେ ସେ ଭବ ଭଗବାନ ।।୧୦୯
୩୪ ସେ ବିଶ୍ୱସୃଜମାନଙ୍କର । ସତ୍ର ସହସ୍ର ସମ୍ବତ୍ସର ।।୧୧୦
ସେମାନେ ସଂବିଧାନ କରି । ଯହିଁରେ ପୂଜ୍ୟ ଦେବ ହରି ।।୧୧୧
୩୫ ଯହିଁରେ ଯମୁନା ସହିତ । ଜାହ୍ନବୀ ହୋଇଛି ସଂଯୁତ ।।୧୧୨
ସେଠାରେ ଅବଭୃଥ ସ୍ନାନ । କରି ସେ ଋଷିଗଣମାନ ।।୧୧୩
ସମସ୍ତେ ନିର୍ମଳ ଶରୀରେ । ମିଳିଲେ ଯେ ଯାହା ଗୃହରେ ।।୧୧୪
ସେ କୃଷ୍ଣ ଚରଣ ନଳିନ । ଚିନ୍ତା କରିଣ ଅନୁଦିନ ।।୧୧୫
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ ଏଣେ କର ଲୟେ ।।୧୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଦକ୍ଷଶାପୋ ନାମ ଦ୍ୱିତୀୟୋଽଧ୍ୟାୟଃ ।।

## ତୃତୀୟୋଽଧ୍ୟାୟଃ

ତୃତୀୟେ ତୁ ସତୀ ତାତଯଜ୍ଞୋତ୍ସବଦିଦୃକ୍ଷୟା ।
ଗମିଷ୍ୟନ୍ତି ମହେଶେନ ବାରିତା ନୀତିହେତୁଭିଃ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ ଜାମାତା ଶ୍ୱଶୁର । କଳି କରନ୍ତେ ନିରନ୍ତର ।। ୧
ସେ ବେନିଙ୍କର ହିଁ ବିଶେଷ । କାଳ ହୋଇଲା କ୍ରମେ ଶେଷ ।। ୨
୨ ଦକ୍ଷକୁ ପରମେଷ୍ଠୀ ଯେବେ । ପ୍ରଜାପତିଙ୍କ ପତିଭାବେ ।। ୩
ଆପଣେ ଅଭିଷେକ କଲା । ସେ କାଳେ ତାର ଗର୍ବ ହେଲା ।। ୪
୩ *ସେ କରି ବାଜପେୟ ଯାଗ । ବ୍ରହ୍ମିଷ୍ଠ ଯେତେ ଥିଲେ ଆଗ ।। ୫
ତାହାଙ୍କୁ କରି ପରାଭବ । ଯା' ନାମ ବୃହସ୍ପତିସବ ।। ୬
ସେ କ୍ରତୁବର ଆରମ୍ଭିଲା । ସେ ଘେନି ଗର୍ବ ଅତି ହେଲା ।। ୭

---

* "ବାଜପେୟେନେଷ୍ଟ୍ୱା ବୃହସ୍ପତିସବେନ ଯଜେତ ।" (ଶ୍ରୁତିଃ)

୪ ଯେ ବ୍ରହ୍ମଋଷି ଦେବଋଷି । ପିତୃଦେବତାଗଣ ମିଶି ।। ୮
କରି ଯେ ଯାହାରେ ମଙ୍ଗଳ । ସେ ଯଜ୍ଞେ ମିଳିଲେ ସକଳ ।। ୯
ଭର୍ତ୍ତା ସହିତେ ତାହାଙ୍କର । ପତ୍ନୀଏ ମିଳିଲେ ସେଠାର ।। ୧୦
୫ ଖେଚରମାନେ ଆକାଶରେ । କହନ୍ତେ ତାହା ପରସ୍ପରେ ।। ୧୧
ପିତାର ଯଜ୍ଞୋତ୍ସବ ରୀତି । ଶୁଣିଣ ଦକ୍ଷସୁତା ସତୀ ।। ୧୨
୬ ଗନ୍ଧର୍ବ-ବରସ୍ତିରୀମାନେ । ସକଳ ଦିଗରୁ ସୁମନେ ।। ୧୩
ବିମାନ ଚଢ଼ି ଯାଉଛନ୍ତି । ପ୍ରିୟମାନେ ହିଁ ସଙ୍ଗେ ଛନ୍ତି ।। ୧୪
କଣ୍ଠରେ ଅଛି ନିଷ୍କ[୧] ମାନ । ପିନ୍ଧିଅଛନ୍ତି ସୁବସନ ।। ୧୫
୭ ଚଞ୍ଚଳନେତ୍ର ତାହାଙ୍କର । ଉଜ୍ଜ୍ୱଳ କୁଣ୍ଡଳ କର୍ଣ୍ଣର ।। ୧୬
ନିଜ ନିଳୟ ନିକଟରେ । ତାହାଙ୍କୁ ଦେଖି ଏ ପ୍ରକାରେ ।। ୧୭
ଭୂତମାନଙ୍କ ଅଧୀଶ୍ୱର । ଯେ ଦେବ ପତି ଆପଣାର ।। ୧୮
ତାହାଙ୍କୁ ଉତକଣ୍ଠା ଭାବେ । ଏମନ୍ତ ବୋଇଲେ ସେ ତେବେ ।। ୧୯

ଶ୍ରୀସତ୍ୟୁବାଚ

୮ ହେ ଶିବ ! ଯେ ତୁମ୍ଭ ଶ୍ୱଶୁର । ଆଜ ସେ ପ୍ରଜାପତିଙ୍କର ।। ୨୦
ହୋଇଛି ଯଜ୍ଞ ମହୋତ୍ସବ । ଯାଉଛନ୍ତି ଏ ସର୍ବଦେବ ।। ୨୧
ତୁମ୍ଭର ଇଚ୍ଛା ଅଛି ଯେବେ । ଆମ୍ଭେ ସେଠାକୁ ଯିବା ତେବେ ।। ୨୨
୯ ମୋର ଭଗିନୀ ଏ ତହିଁରେ । ଭର୍ତ୍ତାମାନଙ୍କ ସହିତରେ ।। ୨୩
ଅବଶ୍ୟ କରିବେ ଗମନ । ଦେଖିବାପାଇଁ ମିତ୍ରଜନ ।। ୨୪
ଭୂଷଣ ଆଦି ଦ୍ରବ୍ୟମାନ । ପିତା ଯା' କରିବେ ପ୍ରଦାନ ।। ୨୫
ତା' ତୁମ୍ଭ ସହିତେ ସ୍ୱୀକାର । କରିବା ଅର୍ଥେ ମନ ମୋର ।। ୨୬
୧୦ ଭଗିନୀମାନେ ତହିଁ ମୋର । ସଦୃଶ ଅଟନ୍ତି ଭର୍ତ୍ତାର ।। ୨୭
ଥିବେ ଯେ ମାତାର ଭଗିନୀ । ସ୍ନେହାର୍ଦ୍ରଚିତ୍ତ ଯେ ଜନନୀ ।। ୨୮
ତାଙ୍କୁ କରିବି ବିଲୋକନ । ଚିର ଉତ୍ସୁକ ମୋର ମନ ।। ୨୯
ମିଳି ସକଳ ମହଋଷି । ଯା' ପ୍ରବର୍ତ୍ତାଉଥିବେ ବସି ।। ୩୦
ଯଜ୍ଞରେ ଶ୍ରେଷ୍ଠ ସେ ଅଟଇ । ତାହା ମୁଁ ଯାଇ ଦେଖିବଇଁ ।। ୩୧
୧୧ ଆଶ୍ଚର୍ଯ୍ୟ ରୂପ ଏ ଜଗତ । ତୁମ୍ଭ ମାୟାରେ ବିନିର୍ମିତ ।। ୩୨
ଏ ଗୁଣ ତ୍ରୟରୂପୀ ହୋଇ । ହେ ଅଜ ! ଶୋହେ ତୁମ୍ଭଠାଇଁ ।। ୩୩

---

୧. ନିଷ୍କ = ପଦକ ।

ଏଣୁ ଆଶ୍ଚର୍ଯ୍ୟ ବୁଦ୍ଧି ତୋର । ଯଦ୍ୟପି ନାହିଁ ହେ ଈଶ୍ୱର ॥ ୩୪
ମୁଁ ଯେ ଜନ୍ମିଛି ସ୍ତିରୀ ହୋଇ । ତୋହର ତତ୍ତ୍ୱ ନ ଜାଣଇଁ ॥ ୩୫
ହେ ଭବ ! ଅଟଇ ମୁଁ ଦୀନ । ଦେଖିବି ମୋର ଜନ୍ମସ୍ଥାନ ॥ ୩୬
୧୨ ହେ ଅଜ ! ଭରି ଅଳଂକାର । କାନ୍ତକୁ ଘେନି ସଙ୍ଗତର ॥ ୩୭
ଦେଖ ହୋଇଣ ପନ୍ତି, ପନ୍ତି । ଇତର ସ୍ତିରୀଏ ଯାଆନ୍ତି ॥ ୩୮
ହେ ନୀଳକଣ୍ଠ ! ଯାହାଙ୍କର । ଗମନ୍ତେ ବିମାନ ନିକର ॥ ୩୯
ସେ କଳହଂସପ୍ରାୟେ ଶ୍ୱେତ । କଲେ ଆକାଶକୁ ମଣ୍ଡିତ ॥ ୪୦
୧୩ ହେ ସୁରଶ୍ରେଷ୍ଠ ! ପିତାଘର- । ଉତ୍ସବ ଶୁଣି ତନୟାର ॥ ୪୧
ଦେହ କେମନ୍ତେ ନ ଚଳିବ[୧] । ଦେଖିବା ପାଇଁ ସେ ଉତ୍ସବ ॥ ୪୨
ମିତ୍ରର, ପତିର, ଗୁରୁର । ନିଜ ପିତାର ଯେ ମନ୍ଦିର ॥ ୪୩
ସେ ଡାକି ନ ଥିଲେ ହେଁ ଜନ । ତହିଁକି କରନ୍ତି ଗମନ ॥ ୪୪
୧୪ ହେ ଦେବ ! ତେଣୁ ତୋଷଚିତ୍ତେ । ପ୍ରସନ୍ନ ହୁଅ ତୁମ୍ଭେ ମୋତେ ॥ ୪୫
କୃପାଳୁ ତୁମ୍ଭେ ବାଞ୍ଛା ମୋର । କରିବା ଅର୍ଥେ ଯତ୍ନ କର ॥ ୪୬
ନିଜ ଶରୀର-ଅର୍ଦ୍ଧେ ମୋତେ । ଧରିଛ ତୁମ୍ଭେ ଅବିରତେ ॥ ୪୭
ଜ୍ଞାନ ହିଁ ଅଧିକ ତୁମ୍ଭର । ମାଗୁଛି ଅନୁଗ୍ରହ କର ॥ ୪୮

ଶ୍ରୀମୈତ୍ରେୟ[୨] ଉବାଚ

୧୫ ଏମନ୍ତ ପ୍ରକାରେ ବଚନ । ପ୍ରିୟା କହନ୍ତେ ପଞ୍ଚାନନ ॥ ୪୯
କହିଲେ ତାହାଙ୍କୁ ହସିଣ । ଅଟନ୍ତି ମିତ୍ର ପ୍ରିୟ ପୁଣ ॥ ୫୦
ବିଶ୍ୱସୃଜଙ୍କ ନିକଟରେ । ଦକ୍ଷ ଯା' ବୋଇଲା ପୂର୍ବରେ ॥ ୫୧
ସେ ମର୍ମଭେଦି କୁବଚନ । ଅଟନ୍ତି ସାୟକ ଯେସନ ॥ ୫୨
ସେମାନ ପ୍ରତିବଚନରେ । ସ୍ମରଣ ହୋଇଲେ ମନରେ ॥ ୫୩

ଶ୍ରୀମହେଶ୍ୱର[୩] ଉବାଚ

୧୬ ନ ଡାକିଲେ ହେଁ ବନ୍ଧୁଜନ । ଗୃହକୁ କରନ୍ତି ଗମନ ॥ ୫୪
ତୁ ଯେଉଁ ବଚନ ସୁନ୍ଦରୀ ! । ଏ ରୂପେ କହିଲୁ ବିଚାରି ॥ ୫୫
ସୁନ୍ଦର ଅଟଇ ସେ ବାଣୀ । ସେ ବନ୍ଧୁମାନେ ଯେବେ ପୁଣି ॥ ୫୬

---

୧. ଚଳିବ । ତୁଂ ନେଙ୍ଗତେ ନ ପ୍ରଚଳତି ? (ସ୍ୱାମୀ)
୨. ଶ୍ରୀଋଷିରୁବାଚ ।
୩. ଶ୍ରୀଭଗବାନୁବାଚ ।

| | | | |
|---|---|---|---|
| | ଦେହାଦି ଅହଂକାରୁ ଜାତ । | ଯେ ମଦ କ୍ରୋଧ ବଳବନ୍ତ | ॥ ୫୭ |
| | ଦୋଷଦୃଷ୍ଟିକି ସେ ହେତୁରେ । | ଆରୋପି ନ ଥାନ୍ତି ତାଠାରେ | ॥ ୫୮ |
| ୧୭ | ବିଦ୍ୟା, ତପ, ବିତ୍ତ, ଶରୀର । | ବୟସ, କୁଳେ ଜନ୍ମିବାର | ॥ ୫୯ |
| | ଏ ଛ' ହେଁ ସାଧୁ ଲୋକଙ୍କର । | ଅଟନ୍ତି ବିବେକକୁ ଦ୍ୱାର | ॥ ୬୦ |
| | ଅସାଧୁଙ୍କର ଏହି ପୁଣ । | ଦୋଷକୁ ଅଟନ୍ତି କାରଣ | ॥ ୬୧ |
| | ଏଣେ ବିବେକୁଁ ଜାତ ଜ୍ଞାନ । | କ୍ରମରେ ହୁଅନ୍ତେ ନିଧନ | ॥ ୬୨ |
| | ଗର୍ବରେ ହୋଇ ନଷ୍ଟଦୃଷ୍ଟି । | ବିଦ୍ୟା ଆଦିରେ ଲଭି ପୁଷ୍ଟି | ॥ ୬୩ |
| | ମହତ ଜନମାନଙ୍କର । | ତେଜକୁ ନ ଦେଖନ୍ତି ନର | ॥ ୬୪ |
| ୧୮ | ଏମନ୍ତ ରୂପେ ଯେଉଁମାନେ । | ଚଞ୍ଚଳଚିତ୍ତ ଏ ଭୁବନେ | ॥ ୬୫ |
| | କରିଣ ନିଜ ବନ୍ଧୁଭାବ । | ତାଙ୍କ ଗୃହକୁ ନ ଚାହିଁବ | ॥ ୬୬ |
| | ଅଇଲା ଲୋକକୁ ଯେ ନରେ । | ଚାହାନ୍ତି କୁଟିଳ ବୁଦ୍ଧିରେ | ॥ ୬୭ |
| | ଭ୍ରୂଲତାଯୁଗ ଟେକି ଦେଇ । | ସକ୍ରୋଧ ନୟନେ ଅନାଇଁ | ॥ ୬୮ |
| ୧୯ | କାଣ୍ଡେ ଯାହାର ଶତ୍ରୁଜନ । | କାଟିଣ ଥିବେ ଅଙ୍ଗମାନ | ॥ ୬୯ |
| | ତେଡ଼େ ବ୍ୟଥାକୁ ସେ ନ ପାଇ । | ଯେଣୁ ସେ ଶୟନ କରଇ | ॥ ୭୦ |
| | ବକ୍ରବୁଦ୍ଧିରେ ନିଜ ଜନ । | ବୋଲନ୍ତି ଯେଉଁ ଦୁର୍ବଚନ | ॥ ୭୧ |
| | ତେଣେ ଦୁଃଖିତଚିତ୍ତ ହୋଇ । | ମର୍ମ ସ୍ଥାନରେ ପୀଡ଼ା ପାଇ | ॥ ୭୨ |
| | ରାତ୍ର ଦିବସେ ସେହୁ ଜନ । | ଯେତେ଼ ଲଭଇ ତାପ[୧] ମାନ | ॥ ୭୩ |
| ୨୦ | ଉଚ୍ଚ ଅଟଇ ଗତି ଯାର । | ହେ ସୁଭ୍ରୁ ! ସେ ପ୍ରଜାପତିର | ॥ ୭୪ |
| | ସୁତାଙ୍କ ମଧ୍ୟେ ପ୍ରିୟ ତୁହି । | ନିଶ୍ଚୟେ ଜାଣିଅଛି ମୁହିଁ | ॥ ୭୫ |
| | ପିତା ସକାଶୁଁ ତଥାପି ହି । | ମାନନା ନ ପାଇବୁ ତୁହି | ॥ ୭୬ |
| | ମୋର ଆଶ୍ରୟୁଁ ପ୍ରଜାପତି । | ଯେଣୁ ତାପକୁ ଲଭେ ଅତି | ॥ ୭୭ |
| ୨୧ | ନିରହଂକାରି ଲୋକଙ୍କର । | ଯେ ପୁଣ୍ୟକୀର୍ତ୍ତି ଆଦି ଆର | ॥ ୭୮ |
| | ତେଣେ ଅତ୍ୟନ୍ତ ଦହେ ମନ । | ଆତୁର-ଇନ୍ଦ୍ରିୟ ଯେସନ | ॥ ୭୯ |
| | ଅଇଶ୍ୱର୍ଯ୍ୟକୁ ତାହାଙ୍କର । | ସଂପାଦି ନ ପାରି ସେ ନର | ॥ ୮୦ |
| | ତାଙ୍କୁ କେବଳ ଦ୍ୱେଷ କରେ । | ବିଷ୍ଣୁଙ୍କୁ ଯେସନେ ଅସୁରେ | ॥ ୮୧ |
| ୨୨ | ଏକ ଆରକେ ଜନମାନେ । | ବନ୍ଧୁମାନଙ୍କ ଆଗମନେ | ॥ ୮୨ |
| | ଉଠିଣ ଅନୁସରି ଯାନ୍ତି । | ବିନୟେ ବନ୍ଦନ କରନ୍ତି | ॥ ୮୩ |

୧. ପାପ ।

| | | | |
|---|---|---|---|
| | ପଣ୍ଡିତେ ତା' ଉତ୍ତମ କରି । | ଆଚରିଛନ୍ତି ହେ ସୁନ୍ଦରି ! | ॥ ୮୪ |
| | ଚିତ୍ତରେ ଯେ ଈଶ୍ୱର ଛନ୍ତି । | ତାହାଙ୍କୁ ସେ ମାନ କରନ୍ତି | ॥ ୮୫ |
| | ଯେ ଅଟେ ଦେହମାନୀ ଜନ । | ତାକୁ ନ କରନ୍ତି ସେ ମନ | ॥ ୮୬ |
| ୨୩ | ବିଶୁଦ୍ଧ ସତ୍ତ୍ୱ ଅଟେ ଯେହି । | ତାହାକୁ ବସୁଦେବ କହି | ॥ ୮୭ |
| | ଯାହାର ଆବରଣ ନାହିଁ । | ସେ ବିଷ୍ଣୁ ପ୍ରକାଶଇ ତହିଁ | ॥ ୮୮ |
| | ସେ ଶୁଦ୍ଧ ସତ୍ତ୍ୱରେ ସଂସ୍ଥିତ । | ଯେ ବାସୁଦେବ ଅବିରତ | ॥ ୮୯ |
| | ମୁଁ ତାଙ୍କୁ ନମସ୍କାର ଦ୍ୱାରେ । | ସେବା କରିଛି ସେ କାଳରେ | ॥ ୯୦ |
| ୨୪ | ଦକ୍ଷ ଅଟଇ ତୋର ତାତ । | ଦେହକୁ କରିଛି ଯେ ଜାତ | ॥ ୯୧ |
| | ମୋହର ବଇରି ସେ ଯେଣୁ । | ଦେଖିବୁ ନାହିଁ ତାକୁ ତେଣୁ | ॥ ୯୨ |
| | ତା' ଅନୁଗତ ଯେତେ ଜନ । | ତାଙ୍କୁ ନ କରିବୁ ଲୋକନ | ॥ ୯୩ |
| | ବିଶ୍ୱସୃଜଙ୍କ ଯଜ୍ଞଶାଳେ । | ଥିଲି ସୁନ୍ଦରି ! ପୂର୍ବକାଳେ | ॥ ୯୪ |
| | ତା'ଠାରେ ଅପରାଧମାନ । | କରି ନ ଥିଲି ମୁଁ ରଞ୍ଜନ[1] | ॥ ୯୫ |
| | ଦୁଷ୍ଟ ବଚନରେ ଅପାର । | ଯେ ମୋତେ କଲା ତିରସ୍କାର | ॥ ୯୬ |
| ୨୫ | ବଳିଆଇଣ ମୋ ବଚନ । | ଯେବେ ତୁ କରିବୁ ଗମନ | ॥ ୯୭ |
| | ଶୁଭ ନୋହିବ ତୋର ତେବେ । | ସ୍ୱଜନସକାଶରୁ ଯେବେ | ॥ ୯୮ |
| | ଦଇବବଶେ ତିରସ୍କାର । | ହୋଏ ସଂଭାବିତ ଲୋକର | ॥ ୯୯ |
| | ମରଣନିମିତ୍ତ ସେ ଜନ । | ତକ୍ଷଣେ ହୁଅଇ କହ୍ନନ | ॥୧୦୦ |
| | ଆହେ ଶ୍ରୀକୃଷ୍ଣ କୃପାସିନ୍ଧୁ । | ମୁଁ ଯେ ପତିତ ଦୀନବନ୍ଧୁ | ॥୧୦୧ |
| | ମୋତେ ଉଦ୍ଧାର କର ବାରେ । | ରଖ ତୁମ୍ଭ ପାଦସେବାରେ | ॥୧୦୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ ଶ୍ରୀଉମାରୁଦ୍ର
ସଂବାଦୋ ନାମ ତୃତୀୟୋଽଧ୍ୟାୟଃ ॥

---

୧. ରଚନ ।

# ଚତୁର୍ଥୋଽଧ୍ୟାୟଃ

ଚତୁର୍ଥେ ତୁ ପତିଂ ହିତ୍ୱା ଗତା ପିତ୍ରାବମାନିତା ।
ରୁଷା ନିର୍ଭର୍ତ୍ସ୍ୟ ତଂ ଯଜ୍ଞେ ଜହୌ ଦେହମିତୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଏତେ ମାତ୍ରକ ବାକ୍ୟ କହି । ଶିବ ରହିଲେ ତୁନି ହୋଇ ॥ ୧
ଗଲେ ନ ଗଲେ ହେଁ ଭାର୍ଯ୍ୟାର । ନାଶକୁ ଚିନ୍ତନ୍ତେ ମନର ॥ ୨
ମିତ୍ରଙ୍କୁ ଦେଖିବା ବିଚାରି । ଶିବସକାଶୁଁ ଭୟ କରି ॥ ୩
ଗୃହରୁ ବାହାର ହୁଅଇ । ପୁଣି ସେ ଗୃହରେ ମିଳଇ ॥ ୪
ଏ ରୂପେ ଆନ୍ଦୋଳିତମନା । ହେଲା ସେ ଦକ୍ଷର ନନ୍ଦନା ॥ ୫
୨ ମିତ୍ରଜନଙ୍କ ଦରଶନେ । ଇଚ୍ଛା ଯେ ଥିଲା ତାର ମନେ ॥ ୬
ତା' ନାଶେ ହୋଇଣ ଦୁର୍ମନ । ସ୍ନେହରେ କରନ୍ତେ ରୋଦନ ॥ ୭
ଲୋତକ କଳାମାନଙ୍କରେ । ଆକୁଳ ହୋଇଣ ସେଠାରେ ॥ ୮
ଯେବଣ ଶିବର ସମାନ । ଜଗତେ ନାହିଁ କେହି ଆନ ॥ ୯
ତାହାଙ୍କୁ ରହିଲା ଅନାଇଁ । ରୋଷେ ଦହିଲା ପ୍ରାୟ ହୋଇ ॥ ୧୦
ନିଜ ଶରୀରେ ତାର ଜାତ । କମ୍ପ ହେଉଛି ଅବିରତ ॥ ୧୧
୩ ଯେ ସାଧୁଜନମାନଙ୍କର । ପ୍ରିୟ ଅଟନ୍ତି ମହେଶ୍ୱର ॥ ୧୨
ପ୍ରେମରେ ଶରୀର-ଅର୍ଦ୍ଧକୁ । ପ୍ରଦାନ କରିଛନ୍ତି ତାକୁ ॥ ୧୩
ଛାଡ଼ିଣ ସେ ଶିବଙ୍କୁ ସତୀ । ନିଶ୍ୱାସ ପକାଇ ତଡ଼ତି[୧] ॥ ୧୪
ଶୋକରେ ରୋଷରେ ତା' ମନ । ସତତ ହେଉଅଛି ମ୍ଳାନ ॥ ୧୫
ଯେ ପିତାମାତାଙ୍କ ସଦନ । ତହିଁକି କଲା ସେ ଗମନ ॥ ୧୬
ସ୍ତିରୀଭାବରେ ମୂଢ଼ମତି । ଅଟେ ସେ ଦେବୀ ଯେଣୁ ସତୀ ॥ ୧୭
୪ ଏକା ହୋଇଣ ସେହୁ ସତୀ । ଗମନ କରନ୍ତେ ଝଟତି ॥ ୧୮
ସହସ୍ର ସହସ୍ର ହୋଇଣ । ତ୍ରିନେତ୍ର ଅନୁଚରଗଣ ॥ ୧୯
ମୁଖ୍ୟ ପାର୍ଷଦେ ଯୁତ ହୋଇ । ମଣିମନ୍ତ ମଦାଦି ଯେହି ॥ ୨୦
ବୃଷଶ୍ରେଷ୍ଠକୁ କରି ଆଗେ । ତା' ପଛେ ଗୋଡ଼ାଇଲେ ବେଗେ ॥ ୨୧
ରୁଦ୍ରଙ୍କୁ ଅତିକ୍ରମ କଲେ । ଚିତ୍ତରେ ଭୟ ନ ଘେନିଲେ ॥ ୨୨

---

୧. ତଡ଼ତି (ଝଟତି) = ଅତିଶୀଘ୍ର, ସତ୍ୱର ।

୫ ସାରିକା, କନ୍ଦୁକ, ନଳିନ । ଶ୍ୱେତ ଆତପତ୍ର, ବ୍ୟଜନ ॥ ୨୩
ଦର୍ପଣ, ମାଳ ଆଦିମାନ । ଗୀତ ଆଶ୍ରୟେ ଯେ ଶୋଭନ ॥ ୨୪
ଦୁନ୍ଦୁଭି-ଶଙ୍ଖ-ବେଣୁ ସ୍ୱରେ । ଏ ମହାରାଜ ଉପଚାରେ ॥ ୨୫
ଗଲେ ସେମାନେ ଶୋଭା ପାଇ । ଦେବୀଙ୍କି ବୃଷଭେ ବସାଇ ॥ ୨୬
୬ ଯେ ସର୍ବ ଦିଗେ ବେଦସ୍ୱନ । ତେଣେ ଅଧିକ ଶୋଭମାନ ॥ ୨୭
ଯଜ୍ଞ ବିଷୟେ ପରସ୍ପର । ବିବାଦ ଯହିଁ ବିପ୍ରଙ୍କର ॥ ୨୮
ଦେବତା, ବିପ୍ର, ଋଷିମାନେ । ଯହିଁରେ ଛନ୍ତି ସର୍ବସ୍ଥାନେ ॥ ୨୯
ମୃତ୍ତିକା, ଦାରୁ, ଲୋହ, ହେମ । ଯେ ବା ଆବର କୁଶ, ଚର୍ମ ॥ ୩୦
ଏଣେ ଯହିଁରେ ପାତ୍ରମାନ । କରିଣ ଅଛନ୍ତି ରଚନ ॥ ୩୧
ସେ ଯଜ୍ଞଶାଳାରେ ତଡ଼ତି । ପ୍ରବେଶ ହୋଇଲେ ସେ ସତୀ ॥ ୩୨
୭ ଯେ ମାତା ଯେ ଭଗିନୀମାନେ । ତାହାଙ୍କ ବାହାରେ ସେ ସ୍ଥାନେ ॥ ୩୩
ଦକ୍ଷଭୟରେ ତାଙ୍କୁ ତହିଁ । କେହି ମାନନା କଲେ ନାହିଁ ॥ ୩୪
ଯେଣୁ ସେ ଦକ୍ଷ ପିତା ହୋଇ । ତାଙ୍କୁ ମାନନା ନ କରଇ ॥ ୩୫
ମାତା ଭଗିନୀଏ ସାଦରେ । ଆଶ୍ଳେଷ କଲେ ହରଷରେ ॥ ୩୬
ପ୍ରେମ-ଅଶ୍ରୁରେ କଣ୍ଠମାନ । ତାଙ୍କର ହେଉଛି ରୋଧନ ॥ ୩୭
୮ ସୋଦରଭାବେ ପ୍ରଶ୍ନ ଯେହି । ଯେ ଯୋଗ୍ୟ ବାର୍ତ୍ତା ଅବା ତହିଁ ॥ ୩୮
ତେଣେ ଜନନୀ ସହିତରେ । ମାଉସୀମାନେ ହିଁ ସାଦରେ ॥ ୩୯
ଉତ୍ତମ ଆସନ ଦେଇଣ । ପୂଜା କରନ୍ତେ ତତକ୍ଷଣ ॥ ୪୦
ସେମାନ ନ କଲା ସ୍ୱୀକାର । ପିତା କରନ୍ତେ ଅନାଦର ॥ ୪୧
୯ ଯହିଁ ରୁଦ୍ରର ନାହିଁ ଭାଗ । ଏ ରୂପେ ଦେଖିଣ ସେ ଯାଗ ॥ ୪୨
ଶଙ୍କରଠାରେ ପିତାକୃତ । ଅବଜ୍ଞା ଦେଖିଣ ବହୁତ ॥ ୪୩
ଆପଣେ ଆଦର ନ ପାଇ । ଯଜ୍ଞ ସଭାରେ ପୁଣ ଯାଇ ॥ ୪୪
କୋପ କଲା ସେ, ଲୋକମାନ । ରୋଷେ କି କରିବ ଦହନ ॥ ୪୫
୧୦ ଦକ୍ଷକୁ ମାରିବା କାରଣେ । ଉଠନ୍ତେ ନିଜ ଭୂତଗଣେ ॥ ୪୬
ତାହାଙ୍କୁ ନିବାରି ଆଜ୍ଞାରେ । ଶୁଣନ୍ତେ ସକଳେ ସେଠାରେ ॥ ୪୭
କର୍ମମାର୍ଗରେ ଶ୍ରମ କରି । ମନେ ଯେ ଅଛି ଗର୍ବ ଧରି ॥ ୪୮
ଯେ ଶିବଦ୍ୱେଷୀ ପ୍ରଜାପତି । ତାହାକୁ ନିନ୍ଦାକଲା ସତୀ ॥ ୪୯
କ୍ରୋଧରେ ଗଦଗଦ ହୋଇ । ବଚନ ତାହାର ଶୁଭଇ ॥ ୫୦

ଶ୍ରୀସତ୍ୟୁବାଚ[୧]

| | | | | | |
|---|---|---|---|---|---|
| ୧୧ | ଯା'ଠାରୁ ମହତ ହୋଇଣ | । | ଜଗତେ ନାହିଁ ଆନଜଣ | ॥ | ୫୧ |
| | ପ୍ରିୟ ଅପ୍ରିୟ ଯାର ନାହିଁ | । | ପ୍ରାଣୀଙ୍କ ପ୍ରିୟ ଆତ୍ମା ଯେହି | ॥ | ୫୨ |
| | ସେ ସର୍ବରୂପୀ ମହେଶ୍ୱର | । | ବଇର ଭାବ ନାହିଁ ଯାର | ॥ | ୫୩ |
| | ତୋହ ବିହୁନେ ତାହାଠାରେ | । | କେ[୨] ପ୍ରତିକୂଳ ପୁଣ କରେ | ॥ | ୫୪ |
| ୧୨ | ହେ ଦ୍ୱିଜ ! ତୋହର ସମାନ | । | ଅସୂୟାପର ଯେତେ ଜନ | ॥ | ୫୫ |
| | ସେମାନେ ପରର ଗୁଣରେ | । | ଦୋଷକୁ ଘେନନ୍ତି ସଂସାରେ | ॥ | ୫୬ |
| | ମଧ୍ୟସ୍ଥ ପ୍ରାୟ କେହି ଥାନ୍ତି | । | ଗୁଣରେ ଦୋଷ ନ ଘେନନ୍ତି | ॥ | ୫୭ |
| | ଗୁଣ କେବଳ ସାଧୁଜନ | । | ଘେନନ୍ତି ଛାଡ଼ି ଦୋଷମାନ | ॥ | ୫୮ |
| | ଯେ ଅଳ୍ପ ଗୁଣମାନେ ଥାନ୍ତି | । | ତାହାଙ୍କୁ ବହୁଳ କରନ୍ତି | ॥ | ୫୯ |
| | ମହତତମ ସେ ପୁରୁଷ | । | ତୁ ତାଙ୍କଠାରେ କଲୁ ଦୋଷ | ॥ | ୬୦ |
| ୧୩ | ଜଡ଼ ଶରୀରକୁ ଯେ ପ୍ରାଣୀ | । | ଆତ୍ମା ବୋଲିଣ ଥାନ୍ତି ଭଣି | ॥ | ୬୧ |
| | ଅସାଧୁ ଅଟନ୍ତି ସେ ନରେ | । | ରୋଷ-ସହିତେ ତାଙ୍କଠାରେ | ॥ | ୬୨ |
| | ସର୍ବଦା ସାଧୁନିନ୍ଦା କଥା | । | ଆଶ୍ଚର୍ଯ୍ୟ ନୁହଇ ସର୍ବଥା | ॥ | ୬୩ |
| | ମହାପୁରୁଷ ଯେ ହୁଅନ୍ତି | । | ନିଜ ନିନ୍ଦାକୁ ସେ ସହନ୍ତି | ॥ | ୬୪ |
| | ତଥାପି ତାଙ୍କ ପାଦରଜ | । | ନାଶେ ସେ ଦୁଷ୍ଟଙ୍କର ତେଜ | ॥ | ୬୫ |
| | ସେ ଘେନି ମହତ ନିନ୍ଦନ | । | ତାହାଙ୍କ ଠାବରେ ଶୋଭନ | ॥ | ୬୬ |
| ୧୪ | ଶିବ ହୋଇଣ ନାମ ଯାର | । | ପ୍ରସିଦ୍ଧ ଅଟେ ଦ୍ୱି-ଅକ୍ଷର | ॥ | ୬୭ |
| | ପ୍ରସଙ୍ଗେ ଯେବେ ତାହା ନର | । | ବଚନେ କହେ ଏକବାର | ॥ | ୬୮ |
| | ତେବେ ସେ ଲୋକର କଳୁଷ | । | ତକ୍ଷଣେ କରଇ ବିନାଶ | ॥ | ୬୯ |
| | ଯା' କୀର୍ତ୍ତି ଅଟଇ ପାବନ | । | ଅଲଂଘ୍ୟ ଅଟେ ଯା ଶାସନ | ॥ | ୭୦ |
| | ତୁ ସେ ଶିବଙ୍କୁ କରୁ ଦ୍ୱେଷ | । | ସ୍ୱୟେଂ ତୁ ଅଶୁଭ ପୁରୁଷ | ॥ | ୭୧ |
| ୧୫ | ବ୍ରହ୍ମ-ଆନନ୍ଦରୂପ ହୋଇ | । | ଯେବଣ ମଧୁ ପ୍ରକାଶଇ | ॥ | ୭୨ |
| | ତା' ବାଞ୍ଛା କରିଣ ଯାହାର | । | ପାଦପଦ୍ମକୁ ନିରନ୍ତର | ॥ | ୭୩ |
| | ମହତ ମନଭୃଙ୍ଗମାନେ | । | ସେବାକୁ କଲେ ଏ ଭୁବନେ | ॥ | ୭୪ |
| | ସକାମ ଲୋକର ବାଞ୍ଛିତ | । | କାମ ଯେ କରଇ ପୂରିତ | ॥ | ୭୫ |
| | ସେ ଶିବ ଜଗତବାନ୍ଧବ | । | ତୁ ତାଙ୍କୁ କରୁ ଦ୍ୱେଷଭାବ | ॥ | ୭୬ |

୧. ଶ୍ରୀଦେବ୍ୟୁବାଚ ।

୨. ଯେ ? କତମଃ

| | | | | |
|---|---|---|---|---|
| ୧୬ | ଯେ ଜଟା ଫେଇ ଶ୍ମଶାନରେ । | ଥିଲା ପିଶାଚଙ୍କ ସଙ୍ଗରେ | ॥ | ୭୭ |
| | ଶ୍ମଶାନେ ପତିତ ଯେ ମାଳ । | ଯେ ଭସ୍ମ, ଯେ ବା ନୃ-କପାଳ | ॥ | ୭୮ |
| | ଏମାନ ଭୂଷଣରୂପରେ । | ଅଛନ୍ତି ଯାହାର ଦେହରେ | ॥ | ୭୯ |
| | ଶିବ ଅଟଇ ନାମ ଯାର । | କିବା ଅଶିବ ସେ ଈଶ୍ୱର | ॥ | ୮୦ |
| | ଏ ରୂପେ ତୋର ତହୁଁ ଆନେ । | ବ୍ରହ୍ମାଦି ଦେବଗଣମାନେ | ॥ | ୮୧ |
| | ତାକୁ କି ନାହାନ୍ତି ଜାଣିଣ । | ତା' ପାଦୁଁ ଗଳିତ ହୋଇଣ | ॥ | ୮୨ |
| | ନିର୍ମାଲ୍ୟ ପଡ଼ନ୍ତେ ଭୂମିରେ । | ଯେ ତା' ଧରନ୍ତି ମସ୍ତକରେ | ॥ | ୮୩ |
| ୧୭ | ଧର୍ମରକ୍ଷକ ଯେ ଈଶ୍ୱର । | ତାହାଙ୍କୁ ନିରଙ୍କୁଶ ନର | ॥ | ୮୪ |
| | କହନ୍ତେ ଆକ୍ଷେପ ବଚନ । | ଅଶକ୍ତ[୧] ଅଟେ ଯେଉଁ ଜନ | ॥ | ୮୫ |
| | କର୍ଣ୍ଣଯୁଗକୁ ସେ ଘୋଡ଼ାଇ । | ସେଠାରୁ ଯିବ ଆଡ଼ ହୋଇ | ॥ | ୮୬ |
| | ପ୍ରଭୁତ୍ୱ ଯେବେ ତାର ଥାଇ । | ଯେ ଜିହ୍ୱା ନିଷ୍ଠୁର କହଇ | ॥ | ୮୭ |
| | ତାହାକୁ ଓଟାରିଣ ବଳେ । | ଛିନାଇ ପକାଇବ ତଳେ | ॥ | ୮୮ |
| | ପ୍ରାଣ ଛାଡ଼ିବ ତଦନ୍ତର । | ସେ କଥା ଧର୍ମ ଅଟେ ତାର | ॥ | ୮୯ |
| ୧୮ | ତୁ ଶିବନିନ୍ଦକ[୨] ତୋହର । | ସକାଶୁଁ ଜାତ ଏ ଶରୀର | ॥ | ୯୦ |
| | ଏଣୁ ଏହାକୁ ଛାଡ଼ିବଇଁ । | ଯେ ମୋହେ ନିନ୍ଦ୍ୟ ଅନ୍ନ ଖାଇ | ॥ | ୯୧ |
| | ସେ ଅନ୍ନ କରନ୍ତେ ବମନ । | ଶୁଦ୍ଧିକି କହନ୍ତି ସୁଜନ | ॥ | ୯୨ |
| ୧୯ | ରମଇଁ ଯେ ନିଜ ଆତ୍ମାରେ । | ସେ ମହାମୁନିର ସଂସାରେ | ॥ | ୯୩ |
| | ବେଦବାଦକୁ ଅନୁଗତ । | ବୁଦ୍ଧି ନୁହଇ କଦାଚିତ | ॥ | ୯୪ |
| | ଯେହ୍ନେ ଦେବତାମାନଙ୍କର । | ଗମନ ଆକାଶ ମଧ୍ୟର | ॥ | ୯୫ |
| | ମନୁଷ୍ୟମାନଙ୍କ ଗମନ । | କ୍ଷିତିତଳରେ ବିଦ୍ୟମାନ | ॥ | ୯୬ |
| | ନିଜ ଧର୍ମରେ ଯେହ୍ନୁ ଥାଇ । | ଆନକୁ ନିନ୍ଦା ନ କରଇ | ॥ | ୯୭ |
| ୨୦ | ଯେ ଅଗ୍ନିହୋତ୍ରା[୩]ଦି ରୂପରେ । | ପ୍ରବୃତ୍ତ କର୍ମ ଏ ସଂସାରେ | ॥ | ୯୮ |
| | ଶମ-ଦମାଦି ରୂପ ହୋଇ । | ନିବୃତ୍ତ କର୍ମ ଯେ ଅଟଇ | ॥ | ୯୯ |
| | ସେ ବେନି କର୍ମ ସତ୍ୟ ପୁଣ । | ବେଦେ ଯା' ବ୍ୟବସ୍ଥା କରିଣ | ॥ | ୧୦୦ |
| | ବିଧାନ କରିଛି ଅପାର । | ରାଗ ବୈରାଗ୍ୟ ଚିହ୍ନ ଯାର | ॥ | ୧୦୧ |

---

୧. ଆଶକ୍ତ । ୨. ନିନ୍ଦିତ ।
୩. "ଯାବଜ୍ଜୀବମଗ୍ନିହୋତ୍ରଂ ଜୁହୋତି ଶାନ୍ତୋ ଦାନ୍ତଃ" (ଶ୍ରୁତିଃ)

ସେ ବେନି ଏକ କର୍ତ୍ତାଠାରେ । ବିରୋଧୀ ଏକା ସମୟରେ ।।୧୦୨
ଯେ ବ୍ରହ୍ମରୂପୀ ମହେଶ୍ୱର । ସେ ବେନି ନ ଥାଇ ତା'ଠାର ।।୧୦୩
୨୧ ହେ ପିତା ! ଆମ୍ଭମାନଙ୍କର । ସମୃଦ୍ଧି ନାହିଁ ତୁମ୍ଭ ଘର ।।୧୦୪
ତୁମ୍ଭ ସମୃଦ୍ଧି ଯଜ୍ଞଶାଳେ । ସମ୍ଭବ ହୋଏ କିଛୁକାଳେ ।।୧୦୫
ସେ ଯଜ୍ଞଅନ୍ନେ ତୋଷ ହୋଇ । ସ୍ତୁତି କରନ୍ତି ପ୍ରାଣୀ ତା'ହିଁ[୧] ।।୧୦୬
ଧୂମମାର୍ଗେ ସେ ଭୋଗ ହୋଇ । ଆମ୍ଭର ଏ ରୂପ ନୁହଇ ।।୧୦୭
ଆମ୍ଭ ସମୃଦ୍ଧିର କାରଣ । ତର୍କି ନ ପାରେ ଆନ ଜଣ ।।୧୦୮
ବ୍ରହ୍ମାଦି ଦେବଗଣମାନେ । ସେବନ୍ତି ଯାହା ଅନୁଦିନେ ।।୧୦୯
୨୨ କୁତ୍ସିତ ଠାରୁ ଜନ୍ମ ଯାର । ଏ ରୂପେ ଅଟେ ମୋ ଶରୀର ।।୧୧୦
ଯେ ହରଠାରେ ଅପରାଧୀ । ତା'ଠାରୁ ହୋଇଅଛି ସିଦ୍ଧି ।।୧୧୧
ଏଣୁ ଏ ଦେହେ କାର୍ଯ୍ୟ ନାହିଁ । କୁଜନରୂପେ ଖ୍ୟାତ ତୁହି ।।୧୧୨
ତୋର ସଂବନ୍ଧୁ ଲଜ୍ଜା ମୋର । ଜନମ ନୋହୁ ପୁନର୍ବାର ।।୧୧୩
ମହତଜନମାନଙ୍କର । ଅପ୍ରିୟ କର୍ତ୍ତା ଯେଉଁ ନର ।।୧୧୪
ତା'ଠାରୁ ଯେଉଁ ଜନ୍ମ ହୋଇ । ସେ ଜନ୍ମ ଛାର ଧିକ ହୋଇ ।।୧୧୫
୨୩ ହେ ଦାକ୍ଷାୟଣି ! ବୋଲି ତୋର । ସମ୍ବନ୍ଧି ନାମେ ମୋତେ ହର ।।୧୧୬
ଯେବେ କରନ୍ତି ସମ୍ବୋଧନ । ଛାଡ଼ିଣ ନର୍ମସ୍ମିତମାନ ।।୧୧୭
ଦୁଃଖିତଚିତ୍ତ ମୁଁ ହୁଅଇ । ଏଣୁ ଏ ଦେହ ଛାଡ଼ିବଇଁ ।।୧୧୮
ଏ ଦେହ ତୋର ଅଙ୍ଗୁଁ ଜାତ । ଶବସନ୍ନିଭ ଏ ବିଦିତ ।।୧୧୯

ଶ୍ରୀମୈତ୍ରେୟ ଉବାଚ

୨୪ ଦକ୍ଷକୁ ଏମନ୍ତ ପ୍ରକାରେ । ବଚନ କହିଣ ଯଜ୍ଞରେ ।।୧୨୦
ମୌନେ ଉତ୍ତରମୁଖ ହୋଇ । ବସିଲା ଧରଣୀରେ ଯାଇଁ ।।୧୨୧
ପୀତବସନରେ ସଂବୃତ । କରି ଆଚମନ ତୁରିତ ।।୧୨୨
ନୟନ ଯୁଗଳ ବୁଜିଲା । ଯୋଗ ପଥକୁ ଆଶ୍ରେ କଲା ।।୧୨୩
୨୫ ସେ ସତୀ ଜିତାସନ ହୋଇ । ପ୍ରାଣ ଅପାନ ବାତ ଦୁଇ ।।୧୨୪
ନିରୋଧେ ସମାନ କରିଣ । ନାଭିଚକ୍ରରେ ନିବେଶିଣ ।।୧୨୫
ସେ ଉଦାନକୁ ହୃଦୟରେ । ସ୍ଥାପିଣ ବୁଦ୍ଧି ସହିତରେ ।।୧୨୬
କଣ୍ଠମାର୍ଗରେ ପୁଣ ତାକୁ । ନେଲା ସେ ଭ୍ରୂଲତା ମଧ୍ୟକୁ ।।୧୨୭

---

୧. ତହିଁ ।

୨୬ ମହତଜନମାନଙ୍କର । ପୂଜ୍ୟ ଅଟନ୍ତି ଯେ ଶଙ୍କର ॥୧୨୮
ସେ ଯେଉଁ ଅଙ୍ଗକୁ ଆଦରେ । ଆରୋପି ଅଛନ୍ତି ଅଙ୍କରେ ॥୧୨୯
ସେ ନିଜ ଦେହକୁ ଏ ରୂପେ । ଛାଡ଼ି[୧] ଲୋଡ଼ନ୍ତେ ଦକ୍ଷକୋପେ ॥୧୩୦
ଅନିଳ-ଅନଳଧାରଣ । ନିଜ ଦେହରେ କଲା ପୁଣ ॥୧୩୧
୨୭ ଜଗତଗୁରୁ ଯେ ଈଶ୍ୱର । ଭର୍ତ୍ତା ଅଟନ୍ତି ଆପଣାର ॥୧୩୨
ତାର ଚରଣ ପଙ୍କଜରେ । ଭଜନାନନ୍ଦ ଯେ ନିର୍ଭରେ ॥୧୩୩
ତାହା ସେ କରନ୍ତେ ଚିନ୍ତନ । ଭର୍ତ୍ତାରୁ ନ ଦେଖିଲା ଆନ ॥୧୩୪
ଯେବଣ ଶରୀରରୁ ତାର । କଲ୍ମଷମାନେ ହେଲେ ଦୂର ॥୧୩୫
ସମାଧିଜାତ ଅନଳରେ । ସେ ଦେହ ଜଳିଲା ବେଗରେ ॥୧୩୬
୨୮ ସେ କଥା ଅଦ୍ଭୁତ ଅଟଇ । ଯେ ଦେଖୁଥିଲେ ତାହା ଥାଇ ॥୧୩୭
ଆକାଶେ ଭୂମିରେ ତାଙ୍କର । ହୋଇଲା ଅତି ହାହାକାର ॥୧୩୮
ଯେ ପୂଜ୍ୟତମ ପଶୁପତି । ତାହାଙ୍କ ପ୍ରିୟା ଦେବୀ ସତୀ ॥୧୩୯
କୋପ କରାନ୍ତେ ଦକ୍ଷ ତାକୁ । ଛାଡ଼ିଲା ଆପଣା ପ୍ରାଣକୁ ॥୧୪୦
୨୯ ପ୍ରଜା ଯାହାର ଚରାଚର । ଦେଖ ହୋ ଏ ପ୍ରଜାପତିର ॥୧୪୧
ଅତିଶୟରେ ଦୁଷ୍ଟ ଭାବ । ଯା'ଠାରୁ ଲଭି ପରାଭବ ॥୧୪୨
ଯେ ସତୀ ନିଜ ସୁତା ପୁଣ । ସେ ପରିତ୍ୟାଗ କଲା ପ୍ରାଣ ॥୧୪୩
ଅଟଇ ମନସ୍ୱିନୀ ଯେହି । ନିତ୍ୟେ ମାନକୁ ଯୋଗ୍ୟ ସେହି ॥୧୪୪
୩୦ ଅତ୍ୟନ୍ତ ଅସହିଷ୍ଣୁ ହୋଇ । ଯାହା ହୃଦୟ ପ୍ରକାଶଇ ॥୧୪୫
ଜନମଧ୍ୟେ ସେ ପ୍ରଜାପତି । ଲଭିବ ନିନ୍ଦିତ ଅକୀର୍ତ୍ତି ॥୧୪୬
ନିଜ ଅପରାଧରେ ସୁତା । ମରଣେ ହୁଅନ୍ତେ ଉଦ୍ୟତା ॥୧୪୭
ଯେ ତାଙ୍କୁ ନିରୋଧିଲା ନାହିଁ । ଶିବର ଠାରେ ଦ୍ୱେଷ ବହି ॥୧୪୮
୩୧ ଏମନ୍ତ ରୂପେ ଜନମାନେ । କଥାକୁ କହନ୍ତେ ସେ ସ୍ଥାନେ ॥୧୪୯
ସତୀର ପ୍ରାଣତ୍ୟାଗବୃତ୍ତ । ଦେଖି ସେ ଗଣେ ଅଦଭୁତ ॥୧୫୦
ମାରିବା ନିମିତ୍ତେ ଦକ୍ଷକୁ । ଉଠିଲେ ଟେକି ଆୟୁଧକୁ ॥୧୫୧
୩୨ ସେମାନେ ଆସନ୍ତେ ତାଙ୍କର । ବେଗକୁ ଦେଖିଣ ସତ୍ୱର ॥୧୫୨
ହେ କୁରୁଶ୍ରେଷ୍ଠ ! ଭୃଗୁଋଷି । ହୋମ ଯେ କରୁଥିଲେ ବସି ॥୧୫୩
ଯଜ୍ଞଘାତକ ଦୈତ୍ୟଗଣ । ଯେଣେ ହୁଅନ୍ତି ନିବାରଣ ॥୧୫୪
ସେ ମନ୍ତ୍ରଭାଗକୁ ପଢ଼ିଲେ । ଦକ୍ଷିଣାଗ୍ନିରେ ହୋମ କଲେ ॥୧୫୫

୧. ଛାଡ଼ି = ଛାଡ଼ିବାକୁ ।

୩୩ ଅଧ୍ୱର୍ଯ୍ୟୁ କରନ୍ତେ ତା ହୋମ । ଦେବତାମାନେ ଋଭୁ ନାମ ।।୧୫୬
ସହସ୍ର ସଂଖ୍ୟାରେ ଉଠିଲେ । ତପରେ ସୋମକୁ ପାଇଲେ ।।୧୫୭
୩୪ ଯେବଣ ଋଭୁମାନଙ୍କର । ଆୟୁଧ ଜ୍ୱଳିତ ଅଙ୍ଗାର ।।୧୫୮
ବ୍ରହ୍ମତେଜରେ ସେ ସମସ୍ତ । ହୋଇ ଅଛନ୍ତି ପ୍ରଦୀପିତ ।।୧୫୯
ଗୁହ୍ୟକମାନଙ୍କ ସହିତେ । ପ୍ରମଥମାନେ ଥିଲେ ଯେତେ ।।୧୬୦
ତାଙ୍କୁ ସେ ଋଭୁଏ ମାଇଲେ । ସେ ଦିଗମାନଙ୍କୁ ଭଜିଲେ ।।୧୬୧
ହେ କୃଷ୍ଣ କମଳଲୋଚନ । ମୋ ଦୁଃଖ କର ବିମୋଚନ ।।୧୬୨
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ଚିତ୍ତ ଦିଅ ଏଣେ ।।୧୬୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀସତୀଦେହୋତ୍‌ସର୍ଗୋ ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମୋଽଧ୍ୟାୟଃ

ପଞ୍ଚମେ ତୁ ସତୀଦେହତ୍ୟାଗମାକର୍ଣ୍ଣ୍ୟ ଶଙ୍କରଃ ।
ବୀରଭଦ୍ରଂ ରୁଷୋତ୍‌ପାଦ୍ୟ ତେନ ଦକ୍ଷମଘାତୟତ୍ ।।

ଶ୍ରୀମୈତ୍ରେୟ ଉବାଚ

୧ ଦକ୍ଷସକାଶୁଁ ଅବମାନ । ଲଭନ୍ତେ ସତୀର ନିଧନ ।। ୧
ତା’ ଯଜ୍ଞେ ଜନମ ହୋଇଣ । ଋଭୁ ନାମରେ ଦେବଗଣ ।। ୨
ପାର୍ଷଦ ସୈନ୍ୟ ଆପଣାର । ବାହାର କରିଦେଲେ ଦୂର ।। ୩
ନାରଦଠାରୁ ଏହା ହର । ଶୁଣିଣ କୋପିଲେ ଅପାର ।। ୪
୨ କ୍ରୁଦ୍ଧ ହୋଇ ସେ ମହେଶ୍ୱର । ଓଷ୍ଠ କାମୁଡ଼ି ଆପଣାର ।। ୫
ତଡ଼ିତ ବହ୍ନି ସଟାଂ[୧] ପ୍ରାୟ । ଯେ ଉଗ୍ର ତେଜ ଅତିଶୟ ।। ୬
ହସନ୍ତେ ସେ ଜଟା ଛିନାଇ । ଉଠିଲେ ଅତିବେଗ ହୋଇ ।। ୭
ଗମ୍ଭୀର କରି ନାଦ କଲେ । ସେ ଜଟା ତଳେ ପକାଇଲେ ।। ୮
୩ ସେ ଜଟାସକାଶୁଁ ଜନମ । ପୁରୁଷ ବୀରଭଦ୍ର ନାମ ।। ୯
ତନୁରେ ସ୍ୱର୍ଗକୁ ଛୁଅଇଁ । ସହସ୍ର ବାହୁ ସେ ଅଟଇ ।। ୧୦

---

୧. (ଅର୍ଥାତ୍ ଜ୍ୱାଳା), ଜଟା (?)

ମେଘର ସମ ତନୁବର୍ଣ୍ଣ । ତ୍ରିସୂର୍ଯ୍ୟ ପ୍ରାୟ ତିଲୋଚନ ।। ୧୧
ଜଳିଲା[୧] ଅଗ୍ନିର ସମାନ । ଅଟନ୍ତି ତାର କେଶମାନ ।। ୧୨
କରାଳ ଦଂଷ୍ଟ୍ରମାନେ ତାର । କପାଳ ମାଳା ଶୋହେ ଉର ।। ୧୩
ନାନା ଆୟୁଧମାନେ ଛନ୍ତି । ଉଦ୍ୟତ ହୋଇ ଶୋଭା ପାନ୍ତି ।। ୧୪
୪ କରଯୁଗଳକୁ ଯୋଡ଼ିଣ । ମୁଁ କିସ କରିବି ବୋଲିଣ ।। ୧୫
କହନ୍ତେ ସେହୁ ଭଗବାନ । ଶଙ୍କର କହିଲେ ବଚନ ।। ୧୬
ହେ ରୁଦ୍ର ! ଭଟ ! ତୁ ମୋହର । ଭଟମାନଙ୍କେ ଅଗ୍ରସର[୨] ।। ୧୭
ଦକ୍ଷକୁ ଯଜ୍ଞ ସହିତରେ । ବିନାଶ କର ତୁ ସତ୍ୱରେ ।। ୧୮
ବ୍ରହ୍ମତେଜକୁ ତୁ ନ ଡ଼ର । ଯେଣୁ ତୁ ଅଂଶ ଅଟୁ ମୋର ।। ୧୯
୫ କ୍ରୋଧ କରିଣ ଏ ପ୍ରକାରେ । ଆଜ୍ଞା ଦିଅନ୍ତେ ରୁଦ୍ର ତାରେ ।। ୨୦
ଦେବଦେବଙ୍କୁ ପ୍ରଦକ୍ଷିଣ । କଲା ସେ ବୀରଭଦ୍ର ପୁଣ ।। ୨୧
ଯେ କାହିଁ ନୋହେ ପ୍ରତିଘାତ । ସେ ନିଜ ବେଗରେ ହେ ତାତ ।। ୨୨
ବଳିଷ୍ଠ ଲୋକଙ୍କ ବଳକୁ । ସହିଷ୍ଣୁ ମଣିଲା ଆତ୍ମାକୁ ।। ୨୩
୬ ତା'ପଛେ ରୁଦ୍ରପାରିଷଦେ । ଗୋଡ଼ାଇଛନ୍ତି ଘୋର ନାଦେ ।। ୨୪
ଯେ ମୃତ୍ୟୁ ଜଗତମୃତ୍ୟୁର । ସେ ଶୂଳ ଟେକି ନିଜ କର ।। ୨୫
ଗର୍ଜନ କଲା ଭୟଙ୍କର । ଚରଣେ ଶୋଭଇ ନୂପୁର ।। ୨୬
ଧରିଣ ଏମନ୍ତ ବେଶକୁ । ଗଲା ସେ ଦକ୍ଷର ଯଜ୍ଞକୁ ।। ୨୭
୭ ଋତ୍ୱିଜମାନେ, ଯଜମାନ । ସଦସ୍ୟ ଥିଲେ ଯେତେ ଜନ ।। ୨୮
ବ୍ରାହ୍ମଣେ, ଦ୍ୱିଜପତ୍ନୀମାନେ । ଏଥି ଉତ୍ତାରେ ଯଜ୍ଞସ୍ଥାନେ ।। ୨୯
ରଜକୁ ଉତ୍ତର ଦିଗରେ । ଦେଖିଣ ଚିନ୍ତିଲେ ମନରେ ।। ୩୦
କି ଏ ଅନ୍ଧକାର ପୂରିତ । କାହୁଁ ଏ ଧୂଳି ହେଲା ଜାତ ।। ୩୧
୮ ବହୁ ନାହାନ୍ତି ତ ପବନେ । ରାଜ୍ୟେ ନାହାନ୍ତି ଦସ୍ୟୁଜନେ ।। ୩୨
ପ୍ରାଚୀନବର୍ହି ଅଛି ଜିଇ । ଯେ ଉଗ୍ର ଦଣ୍ଡକୁ ଦିଅଇ ।। ୩୩
ଆସୁ ତ ନାହାନ୍ତି ଗୋଗଣ । ଏ ରଜ କାହୁଁ ହେଲା ପୁଣ ।। ୩୪
ପ୍ରଳୟନିମିତ୍ତେ ଜଗତ । ଏବେ କି ହେଉଛି କଳ୍ପିତ ।। ୩୫
୯ ପ୍ରସୂତି ଆଦି ନାରୀମାନେ । କହିଲେ ଉଦବେଗ ମନେ ।। ୩୬
ଦେଖନ୍ତେ ସୁତାମାନେ ଥାଇ । ଯାହାର ଅପରାଧ ନାହିଁ ।। ୩୭

---

୧. ଜଳନ୍ତା । ୨. ଅଗ୍ରଚର ।

| | | | |
|---|---|---|---|
| | ସେ ସତୀ ସୁତାକୁ ଆଦର । | ନ କଲା ଯେଣୁ ପ୍ରଜେଶ୍ୱର | ॥ ୩୮ |
| | ସେହି ଦୁରିତରୁ ଜନିତ । | ବିପାକ ଅଟେ ଏ ନିୟତ | ॥ ୩୯ |
| ୧୦ | ପ୍ରଳୟ କାଳେ ଯେ ଈଶ୍ୱର । | ଫିଟାଇଦେଇ ଜଟାଭାର | ॥ ୪୦ |
| | ଆପଣା ଶୂଳର ଅଗ୍ରରେ । | ଗୁନ୍ଥିଣ ଦିଗଦନ୍ତିବରେ | ॥ ୪୧ |
| | ଯହିଁ ଆୟୁଧମାନେ ଥାନ୍ତି । | ଧ୍ୱଜପ୍ରାୟକ ଯେ ଶୋଭନ୍ତି | ॥ ୪୨ |
| | ସେ ଭୁଜମାନଙ୍କୁ ବିସ୍ତାରି । | ଅତି ଉଚ୍ଚରେ ହସିକରି | ॥ ୪୩ |
| | ଗର୍ଜନେ[୧] ଦିଗେ ଫାଟି ଯାନ୍ତି । | ଏ ରୂପେ ନୃତ୍ୟକୁ କରନ୍ତି | ॥ ୪୪ |
| ୧୧ | ଅସହ୍ୟ ଅଟେ ତେଜ ଯାର । | ଯେ କ୍ରୋଧପୂର୍ଣ୍ଣ ନିରନ୍ତର | ॥ ୪୫ |
| | ଯେ ଦୁରାଲୋକ ଭ୍ରୁକୁଟିରେ । | କରାଳ ଦଂଷ୍ଟ୍ରାମାନଙ୍କରେ | ॥ ୪୬ |
| | ନକ୍ଷତ୍ରଗଣଙ୍କୁ କ୍ଷେପଣ । | କରନ୍ତି ସ୍ଥାନରୁ ଯେ ପୁଣ | ॥ ୪୭ |
| | ଏମନ୍ତ ପ୍ରଭୁ ଯେ ଅଟଇ । | ତାହାର କ୍ରୋଧକୁ କରାଇ | ॥ ୪୮ |
| | ସେ ପୁଣି ବିଧାତାହିଁ ହେଲେ । | ସ୍ୱସ୍ତି ହୋଏ କି ତାର ଭଲେ | ॥ ୪୯ |
| ୧୨ | ଏ ରୂପେ ଉଦ୍‌ବେଗ ଲୋଚନେ । | ବହୁତ କହନ୍ତେଣ ଜନେ | ॥ ୫୦ |
| | ଉତ୍‌ପାତମାନେ ଆକାଶରେ । | ଭୂମିରେ, ସକଳ ଦିଗରେ | ॥ ୫୧ |
| | ସହସ୍ର ସହସ୍ର ହୋଇଣ । | ଉତ୍ପନ୍ନ ହେଲେ ତତକ୍ଷଣ | ॥ ୫୨ |
| | ଯେହୁ ମହାତ୍ମା ପ୍ରଜାପତି । | କରାଉଛନ୍ତି ତାର ଭୀତି | ॥ ୫୩ |
| ୧୩ | ଧରନ୍ତି ନାନା ଶସ୍ତ୍ରମାନ । | କେ ପିଙ୍ଗ, ପିଶଙ୍ଗ ବାମନ | ॥ ୫୪ |
| | ମକର ପ୍ରାୟକ ଉଦର- । | ଆନନ ଦିଶେ ଯାହାଙ୍କର | ॥ ୫୫ |
| | ଧାବନ୍ତି ସକଳ ଦିଗରେ । | ଏ ରୂପେ ରୁଦ୍ର ଅନୁଚରେ | ॥ ୫୬ |
| | ପ୍ରବେଶ ହୋଇ ହେ ବିଦୁର ! । | ରୁନ୍ଧିଲେ ସେ ଯଜ୍ଞମନ୍ଦିର | ॥ ୫୭ |
| ୧୪ | ପ୍ରାଗ୍‌ବଂଶ[୨] ନାମେ କାଷ୍ଠ ଥାଇ। | ତାହା ଭାଙ୍ଗିଲେ ପୁଣ କେହି | ॥ ୫୮ |
| | କେ ପତ୍ନୀଶାଳା[୩], ସଦଘର[୪] । | ଅଗ୍ନିଧ୍ରଶାଳା[୫] ଯେ ଆବର | ॥ ୫୯ |

---

୧. ଗର୍ଜନ୍ତେ । ୨. ଯଜ୍ଞଶାଳାର ପୂର୍ବପଶ୍ଚିମ ସ୍ତମ୍ଭ ଉପରେ ଅର୍ପିତ ପୂର୍ବପଶ୍ଚିମାୟତ କାଷ୍ଠକୁ ପ୍ରାଗ୍‌ବଂଶ କୁହାଯାଏ ।

୩. ଯଜ୍ଞଶାଳାର ପଶ୍ଚିମକୁ ପତ୍ନୀଶାଳା ଥାଏ ।

୪. ଯଜ୍ଞଶାଳାର ପୁରୋଭାଗେ ସଦୋମଣ୍ଡପ ଥାଏ ।

୫. ସଦୋମଣ୍ଡପର ଆଗରେ ହବିର୍ଧାନ ଓ ତାର ଉତ୍ତରକୁ ଅଗ୍ନୀଧ୍ରଶାଳା ଥାଏ ।

ଯଜମାନର ଯେବା ସ୍ଥାନ । ଯେ ପାକଶାଳା ବିଦ୍ୟମାନ ॥ ୬୦
ଏ ସ୍ଥାନମାନ ଆନମାନେ । ଭାଙ୍ଗିଲେ ତହିଁ କୋପମନେ ॥ ୬୧
୧୫ ଭାଙ୍ଗିଲେ ଯଜ୍ଞପାତ୍ରମାନ । ଅଗ୍ନିକି କଲେ ବିନାଶନ ॥ ୬୨
କୁଣ୍ଡରେ କେହି ମୂତ୍ର କଲେ । ବେଦି-ମେଖଳା[1]କୁ ଭାଙ୍ଗିଲେ ॥ ୬୩
୧୬ ମୁନିଙ୍କି କେହୁ ପୀଡ଼ା ଦେଲେ । କେ ପତ୍ନୀମାନଙ୍କୁ ତର୍ଜିଲେ ॥ ୬୪
ନିକଟେ ଥିବା ଦେବମାନେ । ପଳାଇଯାନ୍ତେ ଭୟମନେ ॥ ୬୫
କେହୁଣିମାନେ ପୁଣ ଯାଇ । ତାହାଙ୍କୁ ଧଇଲେ ଗୋଡ଼ାଇ ॥ ୬୬
୧୭ ଭୃଗୁ ଋଷିଙ୍କି ମଣିମନ୍ତ । ବାନ୍ଧିଲା ହୋଇ କୋପଚିତ୍ତ ॥ ୬୭
ଯେ ବୀରଭଦ୍ର ନାମେ ଥିଲା । ପ୍ରଜାପତିଙ୍କି ସେ ବାନ୍ଧିଲା ॥ ୬୮
ପୂଷାକୁ ଚଣ୍ଡେଶ ଧଇଲା । ଭଗକୁ ନନ୍ଦୀ ବନ୍ଦି କଲା ॥ ୬୯
୧୮ ସେ ରୁଦ୍ରଗଣେ ପାଷାଣରେ । ପୀଡ଼ା ଦିଅନ୍ତେ କଳେବରେ ॥ ୭୦
ସଦସ୍ୟ, ଋତ୍ୱିଜ ସକଳେ । ଦେବତାମାନଙ୍କର ମେଳେ ॥ ୭୧
ଅନେକ ପ୍ରକାର ହୋଇଣ । ପଳାଇଗଲେ ତତକ୍ଷଣ ॥ ୭୨
୧୯ ସ୍ରୁବକୁ ନିଜ କରେ ଘେନି । ହୋମ କରନ୍ତେ ଭୃଗୁମୁନି ॥ ୭୩
କୋପେ ଉପାଡ଼ିଲେ ତାହାର । ଶ୍ମଶ୍ରୁକୁ ବୀରଭଦ୍ର ବୀର ॥ ୭୪
ଦାଢ଼ିକି ଦେଖାନ୍ତେ ପୂର୍ବରେ । ଯେ ହସିଥିଲା ସଭାପରେ ॥ ୭୫
୨୦ ଭଗକୁ ଭୂମିରେ ପକାଇ । ରୋଷେ ତାହାର ନେତ୍ର ଦୁଇ ॥ ୭୬
ଉପାଡ଼ିଲେ ସେ ଭଗବାନ । ଯେ ପୂର୍ବେ ଥାଇ ସଭାସ୍ଥାନ ॥ ୭୭
ଦକ୍ଷ ଶପନ୍ତେ ମହେଶଙ୍କୁ । ନେତ୍ରରେ ସୂଚିଲା ତାହାଙ୍କୁ ॥ ୭୮
୨୧ ପୂଷା[2] ଦେବତା ଦନ୍ତମାନ । ଭାଙ୍ଗି ପକାଇଲେ ବହନ ॥ ୭୯
ଯେହ୍ନେ କଳିଙ୍ଗ ନୃପତିର । ଦନ୍ତ ଭାଙ୍ଗିଲେ ହଳଧର ॥ ୮୦
ରୁଦ୍ରକୁ ନିନ୍ଦନ୍ତେ ଯେ ଥାଇ । ହସିଲା ଦନ୍ତକୁ ଦେଖାଇ ॥ ୮୧
୨୨ ଆକ୍ରମି ଦକ୍ଷର ବକ୍ଷର । ଧରି ଖଡ଼ଗ ତୀକ୍ଷ୍ଣଧାର ॥ ୮୨
ଛେଦନ କରନ୍ତେ ହେଁ ଶିର । କାଟି ନ ପାରିଲେ ଶଙ୍କର ॥ ୮୩

---

୧. ସୀମାସୂତ୍ର ।

୨. 'ପୂଷା' ଶବ୍ଦର ଦ୍ୱିବଚନପ୍ରୟୋଗ ହୋଇଅଛି । ଶ୍ରୁତିରେ ଆମ୍ନାତ ହୋଇଅଛି "ଐନ୍ଦ୍ରାପୌଷ୍ଣଶ୍ଚରୁର୍ଭବତି ।" ଅର୍ଥାତ୍ ଚରୁଅନ୍ନ ଇନ୍ଦ୍ର ଓ ପୂଷାଙ୍କ ପାଇଁ ହୁଏ । "ପୂଷା ତୁ ଯଜମାନସ୍ୟ ଦଦ୍‌ଭିର୍ଜକ୍ଷତୁ ପିଷ୍ଟଭୁକ୍" ଅର୍ଥାତ୍,ପିଷ୍ଟଭକ୍ଷଣକାରୀ ପୂଷା ଯଜମାନର ଦନ୍ତଦ୍ୱାରା ଭକ୍ଷଣ କରୁ । "ପୂଷା ପିଷ୍ଟଭାଗୋଽଦନ୍ତକୋ ହି, ତଂ ଦେବା ଅସ୍ତୁବନ୍" । (ଶ୍ରୁତିଃ)

୨୩ ଅସ୍ତ୍ର ସହିତ ଶସ୍ତ୍ରଙ୍କରେ । ଚର୍ମ ନ ଫାଟିଲା ଯା'ଠାରେ ॥ ୮୪
ଏ ରୂପେ ଦେଖି ତାକୁ ହର । ବିସ୍ମୟ ଲଭିଲେ ମନର ॥ ୮୫
ଅନେକ ବେଳ ପରିଯନ୍ତେ । ଧ୍ୟାନକୁ କଲେ ସେ ତଦନ୍ତେ ॥ ୮୬
୨୪ ଯାଗରେ କଣ୍ଠକୁ ମୋଡ଼ିଣ । ମାରଣ ଅଛନ୍ତି ବିହିଣ ॥ ୮୭
ଦେଖି ସେ ଉପାୟ ତାହାର । କାଟିଲେ ସେ ପ୍ରକାରେ ଶିର[୧] ॥ ୮୮
୨୫ ଦେଖନ୍ତେ ସେ କର୍ମ ତାହାର । ପ୍ରେତ-ପିଶାଚ-ଭୂତଙ୍କର ॥ ୮୯
ହୋଇଲା ସାଧୁ ସାଧୁ ସ୍ୱନ । ଯେ ଥିଲେ ବ୍ରାହ୍ମଣାଦି ଆନ ॥ ୯୦
ଅସାଧୁ ଶବଦ ଅପାର । ଜାତ ହୋଇଲା ତାହାଙ୍କର ॥ ୯୧
୨୬ ସେ ଶିର ଦକ୍ଷିଣ ଅଗ୍ନିରେ । ହୋମ କଲେ ସେ କ୍ରୋଧଭରେ ॥ ୯୨
ଦହିଣ ସେ ଯଜ୍ଞଶାଳାକୁ । ପ୍ରସ୍ଥାନ କଲେ କୈଳାସକୁ ॥ ୯୩
ଭାଷାପ୍ରବନ୍ଧେ ଏହୁ ରସ । ସୁଜନେ ଶୁଣି ହୁଅ ତୋଷ ॥ ୯୪
ଚିନ୍ତି ଶ୍ରୀକୃଷ୍ଣ ପଦାମ୍ବୁଜ । ହରଷ ଦୀନବନ୍ଧୁ ଦ୍ୱିଜ ॥ ୯୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଦକ୍ଷଯଜ୍ଞବିଧ୍ୱଂସନଂ ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠୋଽଧ୍ୟାୟଃ

ଷଷ୍ଠେ ତୁ ଦେବସଙ୍ଘେନ ସହ ଗତ୍ୱା ଭବଂ ବିଧିଃ ।
ସାନ୍ତ୍ୱୟାମାସ ଦକ୍ଷାଦିଜୀବିତାଦ୍ୟର୍ଥମାଦରାତ୍ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଏଥୁ ଅନ୍ତରେ ଯଜ୍ଞସ୍ଥାନେ । ସକଳ ଦେବଗଣମାନେ ॥ ୧
ରୁଦ୍ରର ସୈନ୍ୟ ଯେ ବହୁତ । ତେଣେ ହୋଇଣ ପରାଜିତ ॥ ୨
ଶୂଳ, ପଟ୍ଟିଶ, ନିସ୍ତ୍ରିଂଶରେ । ଗଦା, ପରିଘ, ମୁଦ୍ଗରେ ॥ ୩
୨ ସଂଛିନ୍ନ, ଭିନ୍ନ ଯାହାଙ୍କର । ହୋଇଲା ସର୍ବ କଳେବର ॥ ୪
ଋତ୍ୱିଜ, ସଭ୍ୟ ସହିତେଣ । ଭୟରେ ଆକୁଳ ହୋଇଣ ॥ ୫
ବ୍ରହ୍ମାଙ୍କୁ କରିଣ ବନ୍ଦନ । ସକଳ କଲେ ନିବେଦନ ॥ ୬

---

୧. ହର (?)

୩ ପୂର୍ବହୁଁ ଜାଣିଣ ଏମାନ । ପଦ୍ମସଂଭବ ଭଗବାନ ।। ୭
ଆତ୍ମା ସକଳ ପ୍ରାଣୀଙ୍କର । ଅଟନ୍ତି ଯେଉଁ ଚକ୍ରଧର ।। ୮
ଦକ୍ଷର ଯଜ୍ଞକୁ ଗମନ । ନ କଲେ ଏହୁ ବେନି-ଜନ[1] ।। ୯
୪ ଶୁଣି ସେମାନଙ୍କ ବଚନ । ବୋଇଲେ କମଳ-ଆସନ ।। ୧୦
ଅତି ତେଜସ୍ୱୀ ଲୋକ ହୋଇ । ଯେବେ ଅପରାଧ କରଇ ।। ୧୧
ତାହାର ଠାରେ ଯେବେ ଜନେ । ବାଞ୍ଛନ୍ତି ଅପରାଧ ମନେ ।। ୧୨
ସେ ବାଞ୍ଛା ମଙ୍ଗଳ ନିମିତ୍ତେ । ନୋହେ ତାଙ୍କର କଦାଚିତେ ।। ୧୩
୫ ଯଜ୍ଞରେ ଭାଗ ପାଏ ହର । ତୁମ୍ଭେ ସେ କଥା କଲ ଦୂର ।। ୧୪
ଦୋଷ କରିଛ ତାଙ୍କଠାରେ । ତଥାପି ବିଶୁଦ୍ଧ ଚିତ୍ତରେ ।। ୧୫
ଧରି ଚରଣକମଳକୁ । ପ୍ରସନ୍ନ କରାଅ ତାହାଙ୍କୁ ।। ୧୬
ଯେବେ ଭଜଇ ତାଙ୍କୁ ଜନ । ବେଗରେ ହୁଅନ୍ତି ପ୍ରସନ୍ନ ।। ୧୭
୬ ସଂପୂର୍ଣ୍ଣ ହୋଇବ ଅଧ୍ୱର । ଏମନ୍ତ ଯେବେ ବାଞ୍ଛା କର ।। ୧୮
ଯେ କ୍ରୋଧ କରନ୍ତେ ପାଳକ । ସହିତେ ନାଶ ଯାଏ ଲୋକ ।। ୧୯
ଦୁଷ୍ଟ ବଚନମାନେ ଯାର । ଭେଦିଅଛନ୍ତି ହୃଦୟର ।। ୨୦
ସେ ଦେବ ଭାର୍ଯ୍ୟାର ବିହୁନେ । ଅଛନ୍ତି ଆପଣା ସଦନେ ।। ୨୧
ବେଗରେ ଯାଇଁ ତାର ଠାକୁ । କ୍ଷମା କରାଅ ଏ ଦୋଷକୁ ।। ୨୨
୭ ମୁଁ ବ୍ରହ୍ମା, ଯଜ୍ଞ[2] ଅବତାର । ଯେ ତୁମ୍ଭେ, ଯେବା ଆନ ନର ।। ୨୩
ମୁନିଏ ଯାହାର ତତ୍ତ୍ୱକୁ । ବଳବୀର୍ଯ୍ୟର ପ୍ରମାଣକୁ ।। ୨୪
ଜାଣନ୍ତି ନାହିଁ କେବା ତାର । କରିବ ଉପାୟକୁ ନର ।। ୨୫
ସେ ପୁଣି କେହୁଣି ଲୋକର । ଅଧୀନ ନୁହଇ ଈଶ୍ୱର ।। ୨୬
୮ ସୁରମାନଙ୍କୁ ଏ ପ୍ରକାରେ । କହିଣ ବ୍ରହ୍ମା ତଦନ୍ତରେ ।। ୨୭
ସପ୍ରଜାପତି ପିତୃଗଣ । ସହିତେ ତାହାଙ୍କୁ ଘେନିଣ ।। ୨୮
ଯେ ପ୍ରିୟସ୍ଥାନ ମହେଶର[3] । କୈଳାସ ନାମେ ଅଦ୍ରିବର ।। ୨୯
ତହିଁକି କଲେ ସେ ଗମନ । ନିଜ ସ୍ଥାନରୁ ପଦ୍ମାସନ ।। ୩୦

---

୧. ନିବେଦନ ।
୨. ତଦାନୀନ୍ତନ ଇନ୍ଦ୍ର । (ସ୍ୱାମୀ)
୩. ମହେଶ୍ୱର ।

୯ ଜନ୍ମରୁ କେହି ଔଷଧିରେ । ତପସ୍ୟା, ମନ୍ତ୍ର, ଯୋଗଦ୍ୱାରେ ।। ୩୧
ଯେ ସିଦ୍ଧ, ନରରୁ ଇତର । ଅପ୍‌ସରା, ଗନ୍ଧର୍ବ, କିନ୍ନର ।। ୩୨
ସେମାନଙ୍କରେ ଯେ ପର୍ବତ । ସର୍ବଦା ଅଟଇ ବେଷ୍ଟିତ ।। ୩୩

୧୦ } ୧୧ } ନାନା ପ୍ରକାର ମୃଗଗଣେ । ବେଷ୍ଟିତ ଯହିଁ ଅନୁକ୍ଷଣେ ।। ୩୪

ନାନା ପ୍ରକାର ମଣିଯୁତ । ନାନା ଧାତୁରେ ବିଚିତ୍ରିତ ।। ୩୫
ନାନା ପ୍ରକାର ଦ୍ରୁମମାନ । ଲତା ଗୁଳ୍ମରେ ଯେ ଶୋଭନ ।। ୩୬
ନିର୍ମଳ ନାନା ଝରମାନେ । ଯହିଁ ଅଛନ୍ତି ସ୍ଥାନେ ସ୍ଥାନେ ।। ୩୭
ନାନା କନ୍ଦର ସାନୁମାନ । ଯହିଁ ଅଟନ୍ତି ବିଦ୍ୟମାନ ।। ୩୮
ଏମନ୍ତ ଶୃଙ୍ଗଙ୍କରେ ଯେହି । ସିଦ୍ଧ ନାରୀଙ୍କ ସୁଖଦାୟୀ ।। ୩୯
ଯେ ନାରୀମାନେ ପ୍ରିୟସଙ୍ଗେ । ବିହରୁଥାନ୍ତି ନାନା ରଙ୍ଗେ ।। ୪୦
୧୨ ମୟୂରଧ୍ୱନିରେ ନାଦିତ । ଅଟଇ ଯେବଣ ପର୍ବତ ।। ୪୧
ମଦାନ୍ଧ ଭ୍ରମରନିକରେ । ମୂର୍ଚ୍ଛନା କରନ୍ତି ଯହିଁରେ ।। ୪୨
କୋକିଳ-ଉଚ୍ଚସ୍ୱରେ ଯୁତ । ଅନ୍ୟ ପକ୍ଷୀରେ ନିନାଦିତ ।। ୪୩
୧୩ ଯେ କାମ କରନ୍ତି ଦୋହନ । ଉନ୍ନତଶାଖା ତରୁମାନ ।। ୪୪
ପକ୍ଷୀମାନଙ୍କୁ ତେଣେ କରି । ଡାକିଲା-ପ୍ରାୟ ଯେଉଁ ଗିରି ।। ୪୫
ହସ୍ତୀ ଗମନ୍ତେ ଚଉପାଶେ । ଚାଲିଲା-ପ୍ରାୟକ ଯେ ଦିଶେ ।। ୪୬
ନିର୍ଝରଧ୍ୱନିରେ ଯେ ପୁଣ । କି ଅବା କରୁଛି ଭାଷଣ ।। ୪୭
୧୪ ଅର୍ଜୁନ, ଅସନ, ତମାଳ । ଯେ କୋବିଦାର, ଶାଳ, ତାଳ ।। ୪୮
ମନ୍ଦାର, ତରୁ, ପାରିଜାତ । ସରଳ ଦ୍ରୁମରେ ଶୋଭିତ ।। ୪୯
୧୫ କେଶର, ପୁନ୍ନାଗ, ଚମ୍ପକ । ବକୁଳ, ପାଟଳ, ଅଶୋକ ।। ୫୦
ଚୂତ, କଦମ୍ବ, ନୀପ ଦ୍ରୁମ । କୁନ୍ଦ, କୁରୁବକ, ଉତ୍ତମ ।। ୫୧
୧୬ ସ୍ୱର୍ଣ୍ଣାର୍ଣ୍ଣ[୧] ଶତପତ୍ର ଆର । ବୀର ରେଣୁକ[୨] ଜାତି[୩] ସାର ।। ୫୨
କୁବ୍‌ଜକ, ମଲ୍ଲିକା ବିତତ । ମାଧବୀମାନଙ୍କେ ମଣ୍ଡିତ ।। ୫୩
୧୭ ପନସ ପ୍ଲକ୍ଷ, ଉଦୁମ୍ବର । ଅଶ୍ୱତ୍ଥ, ନ୍ୟଗ୍ରୋଧ ଆବର ।। ୫୪
ଭୂର୍ଜ, ଓଷଧି, ହିଙ୍ଗୁ ପୂଗ । ଜମ୍ବୁ ଆବର ରାଜପୂଗ ।। ୫୫

---

୧. ସ୍ୱର୍ଣ୍ଣବର୍ଣ୍ଣ । ୨. ବେଣୁକ (ରେଣୁକା = ଏଳା) ।
୩. ଜାତି = ମାଳତୀ ।

୧୮ ଖର୍ଜୂର,[୧] ଆମ୍ବଡ଼ା ରସାଳ । ମଧୂକ, ଇଙ୍ଗୁଦି, ପିୟାଳ ।। ୫୬
ବେଣୁ କୀଚକ ଏଥୁ ଆନ । ଦ୍ରୁମଜାତିରେ ଯେ ଶୋଭନ ।। ୫୭
୧୯ କୁମୁଦ, ଉତ୍ପଳ, କହ୍ଲାର । ଯେ ପଦ୍ମବନ ରଦ୍ଧିସାର ।। ୫୮
ତେଣେ ପୁଷ୍କରିଣୀମାନରେ । ମଧୁର ଧ୍ୱନିକି ଯେ କରେ ।। ୫୯
ସେ ଖଗବୃନ୍ଦରେ ଶୋଭିତ । ଅଟଇ ଯେବଣ ପର୍ବତ ।। ୬୦
୨୦ ବରାହ, ସିଂହ, ହସ୍ତୀ, ମୃଗ । ରକ୍ଷ, ଭଲ୍ଲୁକ, ଶାଖାମୃଗ ।। ୬୧
ଗବୟ, ଶଲଭ ଯେ ଆନ । ରୁରୁ, ମହିଷ ଆଦିମାନ ।। ୬୨
କର୍ଣ୍ଣୋ[୨]ର୍ଣ୍ଣ ଏକପଦ[୩] ଯୁତ । ବ୍ୟାଘ୍ର, ବୃକ, ନାଭି[୪] ସଂଯୁତ ।। ୬୩
୨୧ କଦଳୀ ସମୂହେ ଆବୃତ । ହୋଇଛନ୍ତି ଯେ ଅବିରତ ।। ୬୪
ନଳିନୀ[୫]ମାନଙ୍କ ପୁଳିନ । ତେଣେ ଯେ ଦିଶଇ ଶୋଭନ ।। ୬୫
ସତୀସ୍ନାନରେ ଜଳ ଯହିଁ । ଅତ୍ୟନ୍ତ ସୁଗନ୍ଧ ଅଟଇ ।। ୬୬
ସେ ନନ୍ଦା ନାମ ଗଙ୍ଗାଧର । ବେଷ୍ଟିତ ହୋଇଛି ଯହିଁର ।। ୬୭
୨୨ ଶଙ୍କର ଗିରିକି ଦେଖିଣ । ବିସ୍ମୟ ହେଲେ ଦେବଗଣ ।। ୬୮
ପୁଣି ସେ ଦେଖିଲେ ତହିଁର । ଅଳକା ନାମେ ରମ୍ୟ ପୁର ।। ୬୯
୨୩-୨୪ ସଉଗନ୍ଧିକ ନାମେ ବନ । ଯହିଁ ସେ ନାମରେ ନଳିନ ।। ୭୦
ନନ୍ଦା ଅଳକାନନ୍ଦା[୬] ଦୁଇ । ପୁରବାହ୍ୟରେ ଶୋଭା ପାଇ ।। ୭୧
ବିଷ୍ଣୁର ଚରଣନଳିନ । ଧୂଳିରେ ଯେ ଅତି ପାବନ ।। ୭୨
୨୫ ନିଜ ବିମାନୁଁ ଓହ୍ଲାଇଣ । ଯହିଁରେ ସୁର ନାରୀଗଣ ।। ୭୩
ପ୍ରବେଶ ହୋଇ ହେ ବିଦୁର । ରତିରେ ଲଭି ଶ୍ରମଭର ।। ୭୪
ପୁରୁଷମାନଙ୍କୁ ସିଞ୍ଚନ୍ତି । ହରଷେ କ୍ରୀଡ଼ାକୁ କରନ୍ତି ।। ୭୫

---

୧. କାଶ୍ମରୀ ।
ଗବୟ = ଗୋ ସଦୃଶ ପ୍ରାଣୀ । ରୁରୁ = ମୃଗବିଶେଷ । ଶଲଭ = ଅଷ୍ଟପାଦୀ ମୃଗ ।
୨. କର୍ଣ୍ଣ = ଗୋକର୍ଣ୍ଣ । ଉର୍ଣ୍ଣ = ପଶୁବିଶେଷ ।
୩. ଏକପଦ = ଚମରୀମୃଗ
୪. ନାଭି = କସ୍ତୁରୀମୃଗ, ବୃକ = ଗଧିଆ (Wolf)
୫. ନଳିନୀ = ପୁଷ୍କରିଣୀ ।
୬. ଅଳକନନ୍ଦା ।

୨୬ ସେ ନାରୀମାନଙ୍କ ସ୍ନାନରେ । ଗଳିତ ନବକୁଙ୍କୁମରେ ॥ ୭୬
ଯେବଣ ବେନି ନଦୀଙ୍କର । ଉଦକ ଦିଶଇ ପିଞ୍ଜର[୧] ॥ ୭୭
ତୃଷ୍ଣା ନ ଥିଲେ ହେଁ ସେ ବାରି । ଗଜେ ପିଅନ୍ତି ଯତ୍ନ କରି ॥ ୭୮
ହସ୍ତିନୀମାନେ ଯେ ଥାଆନ୍ତି । ସେମାନଙ୍କୁ ହିଁ ତା' ପିଆନ୍ତି ॥ ୭୯
୨୭ ରଜତ, ସୁବର୍ଣ୍ଣ ନିର୍ମିତ । ଯେ ମହାରତ୍ନରେ ଘଟିତ ॥ ୮୦
ବିମାନମାନେ ମନୋହର । ତେଣେ ସଂକୁଳ ଯେଉଁ ପୁର ॥ ୮୧
ପୁଣ୍ୟଜନସ୍ତ୍ରୀମାନଙ୍କରେ । ସଂଯୁତ ଅଟେ ନିରନ୍ତରେ ॥ ୮୨
ତଡ଼ିତ, ଘନରେ ସଂଯୁତ । ଯେସନେ ଆକାଶ ଶୋଭିତ ॥ ୮୩
୨୮ ଏ ରୂପେ ଦିଶେ ଯେ ସୁନ୍ଦର । ଲଘିଂ ସେ କୁବେରର ପୁର ॥ ୮୪
ଯହିଁ ସେ ମାଲ୍ୟ, ଫଳ, ପତ୍ର । ଏମାନେ ଦିଶନ୍ତି ପବିତ୍ର ॥ ୮୫
ସେ କାମଦୁଘ ଦ୍ରୁମେ ଶୋହି । ସଉଗନ୍ଧିକ ବନ ଯେହି ॥ ୮୬
୨୯ କୋକିଳସମୂହ ନାଦରେ । ମଣ୍ଡିତ ଯହିଁ ଭୃଙ୍ଗସ୍ୱରେ ॥ ୮୭
ଯହିଁରେ କଳହଂସପ୍ରିୟ । ପଦ୍ମ ସହିତ ଜଳାଶୟ ॥ ୮୮
୩୦ ବନକୁଞ୍ଜରମାନଙ୍କର । ଘଷି ହେବାରେ ନିରନ୍ତର ॥ ୮୯
ହରିଚନ୍ଦନ ଦ୍ରୁମୁଁ[୨] ଜାତ । ଅଟଇ ଯେବଣ ମାରୁତ ॥ ୯୦
ତେଣେ ଯକ୍ଷବଧୂଙ୍କ ମନ । ଅଧିକେ ମନ୍ଥେ ପୁନଃପୁନ ॥ ୯୧
୩୧ ବୈଦୁର୍ଯ୍ୟେ ସୋପାନ ରଚିତ । ଉତ୍ପଳମାଳାରେ ସଂଯୁତ ॥ ୯୨
ଏମନ୍ତ ବାପୀମାନେ ଯହିଁ । ଅଛନ୍ତି କିଂପୁରୁଷେ ରହି ॥ ୯୩
ସେ ବନ ଦେଖିଣ ସେ ବଟ । ତରୁକୁ ଦେଖିଲେ ନିକଟ ॥ ୯୪
୩୨ ଉଚ୍ଚରେ ସେ ଶତେ ଯୋଜନ । ଉଚ୍ଚକୁ[୩] ପାଦେକ ନିଉନ ॥ ୯୫
ବିଟପମାନେ ଛନ୍ତି ତାର । ତେତିକି ଅଟେ ତା' ବିସ୍ତାର ॥ ୯୬
ସକଳ ଦିଗେ ତାର ଛାଇ । କେବେହେଁ ଚକିତ ନୁହଇ ॥ ୯୭
ପକ୍ଷୀ ବସନ୍ତି ନାହିଁ ଯହିଁ । ତାପବର୍ଜିତ ଯେ ଅଟଇ ॥ ୯୮
୩୩ ସେ ଅଟେ ମହାଯୋଗମୟ । ମୁମୁକ୍ଷୁ ଲୋକଙ୍କ ଆଶ୍ରୟ ॥ ୯୯
ତା' ମୂଳେ ବସିଛନ୍ତି ଶିବ । ଦେଖିଲେ ଯାଇଁ ସର୍ବଦେବ ॥ ୧୦୦
କ୍ରୋଧକୁ କରି ଉପଶମ । ଯେସନେ ବସିଥାଇ ଯମ ॥ ୧୦୧

---

୧. ପିଞ୍ଜର = ପୀତବର୍ଣ୍ଣ ।
୨. ମୂଳୁ । ୩. ଉଚ୍ଚକେ (?)

| | | | | |
|---|---|---|---|---|
| ୩୪ | ଯେ ମହାସିଦ୍ଧ ଶାନ୍ତିଯୁତ | । | ସନକ ଆଦି ରୂପେ ଖ୍ୟାତ | ॥୧୦୨ |
| | ଗୁହ୍ୟକ-ରାକ୍ଷସ ଈଶ୍ୱର | । | ସଖା ଅଟଇ ଯେ କୁବେର | ॥୧୦୩ |
| | ସେମାନେ ଯାକୁ ସେବିଛନ୍ତି | । | ଶାନ୍ତ ଶରୀର ଯେ ଅଟନ୍ତି | ॥୧୦୪ |
| ୩୫ | ବିଦ୍ୟା-ତପସ୍ୟା-ଯୋଗଙ୍କର | । | ମାର୍ଗପ୍ରବର୍ତ୍ତକ ଈଶ୍ୱର | ॥୧୦୫ |
| | ଯେ ବିଶ୍ୱମିତ୍ର ବତ୍ସଳରେ | । | ଲୋକମଙ୍ଗଳକୁ ଆଚରେ | ॥୧୦୬ |
| ୩୬ | ସନ୍ଧ୍ୟା ସମୟ ମେଘ ପ୍ରାୟେ | । | ଯେବଣ ଅଙ୍ଗ ଶୋଭା ପାଏ | ॥୧୦୭ |
| | ତେଣେ ତପସ୍ୱୀ ଇଷ୍ଟ ଚିହ୍ନ | । | ଅଜିନ, ଭସ୍ମ, ଜଟାମାନ | ॥୧୦୮ |
| | ଦଣ୍ଡକୁ ଅଛନ୍ତି ଧରିଣ | । | ଚନ୍ଦ୍ରମାକଳାକୁ ହିଁ ପୁଣ | ॥୧୦୯ |
| ୩୭ | ବସି କୁଶମୟ ଆସନେ | । | ଶୁଣନ୍ତେ ନାନା ସାଧୁମାନେ | ॥୧୧୦ |
| | ନାରଦ ପୁଚ୍ଛନ୍ତେ ତାହାଙ୍କୁ | । | କହୁଣ ଅଛନ୍ତି ବ୍ରହ୍ମକୁ | ॥୧୧୧ |
| ୩୮ | ବାମ ଚରଣପଦ୍ମ ନେଇ | । | ଦକ୍ଷିଣ ଉରୁ ପରେ ଦେଇ | ॥୧୧୨ |
| | ବାମ ଜାନୁର ପରେ ପୁଣ | । | ବାମ ବାହୁକୁ ନିବେଶିଣ | ॥୧୧୩ |
| | ପ୍ରକୋଷ୍ଠେ ଅକ୍ଷମାଳା ଧରି | । | ଅଛନ୍ତି ତର୍କମୁଦ୍ରା[୧] କରି | ॥୧୧୪ |
| ୩୯ | ବ୍ରହ୍ମ ଆନନ୍ଦେ ନିଜ ଚିତ୍ତ | । | ଏକାଗ୍ର ଭାବକୁ ଆଶ୍ରିତ | ॥୧୧୫ |
| | ବାମ ଜାନୁର ଦୃଢ଼ ପାଇଁ | । | ଯୋଗପଟ୍ଟକୁ ବାନ୍ଧିଥାଇ | ॥୧୧୬ |
| | ସକଳ ମନୁମାନଙ୍କର | । | ଆଦ୍ୟ ଅଟନ୍ତି ଯେ ଈଶ୍ୱର | ॥୧୧୭ |
| | ତାହାଙ୍କୁ ଲୋକପାଳ ତୁଲେ | । | ମୁନିଏ ନମସ୍କାର କଲେ | ॥୧୧୮ |
| ୪୦ | ସୁର-ଅସୁର ଶ୍ରେଷ୍ଠ ଯାର | । | ପାଦେ କରନ୍ତି ନମସ୍କାର | ॥୧୧୯ |
| | ପୂଜ୍ୟ ଲୋକଙ୍କର ମଧ୍ୟରେ | । | ଉତ୍ତମ ଅଟେ ଯେ ସଂସାରେ | ॥୧୨୦ |
| | ବ୍ରହ୍ମାଙ୍କୁ ଦେଖିଣ ସେ ହର | । | ଉଠିଣ ନମ୍ର କଲେ ଶିର | ॥୧୨୧ |
| | କଶ୍ୟପ ଋଷିଙ୍କି ଯେସନ | । | ପ୍ରଣତ ହୁଅନ୍ତି ବାମନ | ॥୧୨୨ |
| ୪୧ | ଶିବଙ୍କୁ ହୋଇ ଅନୁଗତ | । | ଋଷିମାନଙ୍କର ସଙ୍ଗତ | ॥୧୨୩ |
| | ଯେ ଶିବଗଣମାନେ ଥିଲେ | । | ବ୍ରହ୍ମାଙ୍କୁ ନମସ୍କାର କଲେ | ॥୧୨୪ |
| | ପ୍ରଥମେ କଲେ ନମସ୍କାର | । | ଯେ ଦେବ ଶଶାଙ୍କଶେଖର | ॥୧୨୫ |
| | ହସିଲା ପ୍ରାୟକ ବଚନ | । | କହିଲେ ତାଙ୍କୁ ପଦ୍ମାସନ | ॥୧୨୬ |

ଶ୍ରୀବ୍ରହ୍ମୋବାଚ

| | | | | |
|---|---|---|---|---|
| ୪୨ | ତୁ ଅଟୁ ଜଗତଈଶ୍ୱର | । | ମୁଁ ତୋତେ କରିଛି ଗୋଚର | ॥୧୨୭ |
| | ଜଗତ ଯୋନି-ବୀଜ ହୋଇ | । | ଯେ ଶକ୍ତି-ଶିବ ରୂପେ ଦୁଇ | ॥୧୨୮ |

---

୧. ତର୍ଜନ୍ୟଙ୍ଗୁଷ୍ଠୟୋରଗ୍ରେ ମିଥଃ ସଂଯୋଜ୍ୟ ଚାଙ୍ଗୁଳୀଃ
ପ୍ରସାର୍ଯ୍ୟ ବନ୍ଧନଂ ପ୍ରାହୁସ୍ତର୍କମୁଦ୍ରେତି ମାନ୍ତ୍ରିକାଃ ॥ ୧ ॥ (ଯୋଗଶାସ୍ତ୍ର)

ତୁ ସେ ପ୍ରକୃତି-ପୁରୁଷର । କାରଣ ଅଟୁ ମହେଶ୍ୱର ।।୧୨୯
ଅଭେଦ ବ୍ରହ୍ମ ଅଟେ ଯେହି । ତୁ ସେ ଏ ରୂପେ ଜାଣେ ମୁହିଁ ।।୧୩୦
୪୩ ହେ ଈଶ ! ଅବିଭକ୍ତ ହୋଇ । ଯେ ଅଟେ ଶିବ-ଶକ୍ତି ଦୁଇ ।।୧୩୧
ତା'ଠାରେ କରନ୍ତେ କ୍ରୀଡ଼ନ । ବିଶ୍ୱକୁ କରୁ ତୁ ସର୍ଜନ ।।୧୩୨
ପାଳୁ, ସଂହାର କରୁ ତୁହି । ଊର୍ଣ୍ଣନାଭିର ପ୍ରାୟ ହୋଇ ।।୧୩୩
୪୪ *ଧର୍ମ, ଅର୍ଥକୁ ଯେ ଦୁହଇଁ । ସେ ବେଦରକ୍ଷା ହେବାପାଇଁ ।।୧୩୪
ଦକ୍ଷକୁ ସୂତ୍ର କରି ପୁଣ । ଯାଗକୁ କଲୁ ତୁ ଭିଆଣ ।।୧୩୫
ଧର୍ମମର୍ଯ୍ୟାଦାମାନ ଯେତେ । ବିଖ୍ୟାତ ଅଟନ୍ତି ଜଗତେ ।।୧୩୬
ତାହା ତୁ କରିଛୁ ନିର୍ଣ୍ଣୟ । ବ୍ରତକୁ ଧରି ବିପ୍ରଚୟ ।।୧୩୭
ଯେବଣ ଧର୍ମମର୍ଯ୍ୟାଦାକୁ । ଶ୍ରଦ୍ଧା କରନ୍ତି କରିବାକୁ ।।୧୩୮
୪୫ ମଙ୍ଗଳ କର୍ମମାନଙ୍କର । କର୍ତ୍ତା ଅଟଇ ଯେଉଁ ନର ।।୧୩୯
ତୁ ତାକୁ ସ୍ୱର୍ଗଲୋକ ଦେଉ । ମୋକ୍ଷଗତିକି ଅବା ନେଉ ।।୧୪୦
ଯେ କରେ ଅଶୁଭ କର୍ମକୁ । ଉଗ୍ର ନରକ ଦେଉ ତାକୁ ।।୧୪୧
କାହାରି କେବଣ ହେତୁରେ । ଅନ୍ୟଥା ହୁଅଇ ତହିଁରେ ।।୧୪୨
୪୬ ତୁମ୍ଭର ଚରଣେ ଅର୍ପିତ । କରନ୍ତି ଯେଉଁ ଜନେ ଚିତ୍ତ ।।୧୪୩
ସମସ୍ତ ଭୂତଙ୍କର ଠାରେ । ତୁମ୍ଭଙ୍କୁ ଦେଖନ୍ତି ତତ୍ତ୍ୱରେ ।।୧୪୪
ଆତ୍ମାରେ ଅଭିନ୍ନ କରିଣ । ଭୂତଙ୍କୁ ଦେଖନ୍ତି ଯେ ପୁଣ ।।୧୪୫
ସେ ସାଧୁମାନଙ୍କୁ ହେ ଈଶ । ଆକ୍ରମି ନ ପାରଇ ରୋଷ ।।୧୪୬
ଯେ ଦକ୍ଷ ପଶୁର ସମାନ । ତାକୁ ଆକ୍ରମିଲା ଯେସନ ।।୧୪୭
୪୭ ଯେ ଦୁଷ୍ଟଚିତ୍ତ ଭେଦମତି । କର୍ମରେ ଦୃଷ୍ଟି ଦେଇଥାନ୍ତି ।।୧୪୮
ପର-ଉଦୟେ ଯାହାଙ୍କର । ହୃଦରେ ବ୍ୟଥା ନିରନ୍ତର ।।୧୪୯
ମର୍ମଭେଦକ ଦୁର୍ବଚନେ । ପରକୁ ପୀଡ଼ନ୍ତି ଯେ ଜନେ ।।୧୫୦
ଦଇବ ସକାଶୁଁ ତାଙ୍କର । ବଧ ବିହିତ ଏ ସଂସାର ।।୧୫୧
ତୁମ୍ଭର ପରା ସାଧୁ ହୋଇ । ତାଙ୍କୁ ମାରିବା ନ ଯୋଗାଇ ।।୧୫୨
୪୮ ଯେବଣ କାଳେ ଯେଉଁ ଦେଶେ । ଦୁର୍ଲଙ୍ଘ୍ୟ ବିଷ୍ଣୁ ମାୟାବଶେ ।।୧୫୩
ମୋହିତଚିତ୍ତ ଯେ ହୁଅନ୍ତି । ଭେଦଦୃଷ୍ଟିକି ଆଚରନ୍ତି ।।୧୫୪
ସେ ଅପରାଧେ ସାଧୁ ନରେ । ତାହାଙ୍କ ଠାରେ ତଦନ୍ତରେ ।।୧୫୫

* ଧର୍ମ ଅଧର୍ମକୁ ଯେ ଦୁଇ । (?)

| | | | |
|---|---|---|---|
| | ମୋହର ଦୈବ ଏ ପ୍ରକାର । | କି ଅପରାଧ ଏଥି ତୋର | ॥୧୫୬ |
| | ଏ ରୂପେ କୃପା ଆଚରନ୍ତି । | ତାଙ୍କ ବଧକୁ ନ କରନ୍ତି | ॥୧୫୭ |
| ୪୯ | ବିଷ୍ଣୁ ମାୟାର ଅନ୍ତ ନାହିଁ । | ସେ ତୋ' ମତିକି ନ ଛୁଅଇଁ | ॥୧୫୮ |
| | ଏହି ସକାଶରୁ ତୋହର । | ସକଳ ଅଟଇ ଗୋଚର | ॥୧୫୯ |
| | ସେ ବିଷ୍ଣୁ ମାୟାରେ ବିହତ¹ । | ହୋଇଛି ଯାହାଙ୍କର ଚିତ୍ତ | ॥୧୬୦ |
| | କର୍ମକୁ ଅନୁଗତମନ । | ହୋଇଅଛନ୍ତି ଯେଉଁ ଜନ | ॥୧୬୧ |
| | ତାହାଙ୍କ ଠାରେ ଅନୁଗ୍ରହ । | କରିବାକୁ ସେ ଯୋଗ୍ୟ ହୁଅ | ॥୧୬୨ |
| ୫୦ | ହେ ପ୍ରଭୁ ! ଯାଗକୁ ଦକ୍ଷର । | ତୁ କରିଅଛୁ ଯେ ସଂହାର | ॥୧୬୩ |
| | ତେଣୁ ସମାପ୍ତି ହୋଇ ନାହିଁ । | ତା' ସମାପ୍ତିକି କର ତୁହି | ॥୧୬୪ |
| | ତୁ ଭାଗବନ୍ତ ଅଟୁ ଆଗ । | ନ ଦେଲେ ଯହିଁ ତୋତେ ଭାଗ | ॥୧୬୫ |
| | କୁତ୍ସିତ ଯାଗବନ୍ତ ସେହି । | ସେ ଘେନି ମଖ ନାଶ ହୋଇ | ॥୧୬୬ |
| ୫୧ | ଏ ଯଜମାନ ଲଭୁ ପ୍ରାଣ । | ନେତ୍ରକୁ ଲଭୁ ଭଗ ପୁଣ | ॥୧୬୭ |
| | ଭୃଗୁ ଋଷିଙ୍କର ବଦନେ । | ଜାତ ହୁଅନ୍ତୁ ରୋମମାନେ | ॥୧୬୮ |
| | ପୂଷାର ହେଉ ଦନ୍ତମାନ । | ଥିଲେ ସେ ପୂର୍ବରେ ଯେସନ | ॥୧୬୯ |
| ୫୨ | ହେ ରୁଦ୍ର ! ଆୟୁଧ ପାଷାଣ । | ବାଜନ୍ତେ ଯାଇଁ ପୁଣ ପୁଣ | ॥୧୭୦ |
| | ଋତ୍ୱିଜ ଦେବମାନଙ୍କର । | ଭଗ୍ନ ହୋଇଛି ଯେ ଶରୀର | ॥୧୭୧ |
| | ତୁମ୍ଭ ଅନୁଗ୍ରହେ ତାଙ୍କର । | ଆରୋଗ୍ୟ ହେଉ ହେ ଶଙ୍କର | ॥୧୭୨ |
| ୫୩ | ହେ ରୁଦ୍ର ! ଯଜ୍ଞ ସମାପତେ । | ଶେଷ ରହଇ ଅର୍ଥ ଯେତେ | ॥୧୭୩ |
| | ସେ ଭାଗରୂପେ ହେଉ ତୋର । | ହେ ଦକ୍ଷଯଜ୍ଞହର ! ହର ! | ॥୧୭୪ |
| | ତୋହର ଭାଗରେ ଦକ୍ଷର । | କଳ୍ପିତ ହେଉ ଏ ଅଧ୍ୱର | ॥୧୭୫ |
| | ଆହେ ଶ୍ରୀକୃଷ୍ଣ ! କୃପାସିନ୍ଧୁ । | ମୁଁ ଯେ ପତିତ ଦୀନବନ୍ଧୁ | ॥୧୭୬ |
| | ତୁମ୍ଭେ ଯେ ପତିତପାବନ । | ତେଣୁ ଲାଗଇ ମୋ ଅବନ² | ॥୧୭୭ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀରୁଦ୍ରସାନ୍ତ୍ୱନଂ ନାମ ଷଷ୍ଠୋଽଧ୍ୟାୟଃ ॥

---

୧. ମୋହିତ ।

୨. ଅବନ = ରକ୍ଷଣ

## ସପ୍ତମୋଽଧ୍ୟାୟଃ

ସପ୍ତମେ ବିଷ୍ଣୁରୁଦ୍ଭୂତଃ ସ୍ତୁତୋ ଦକ୍ଷଭବାଦିଭିଃ ।
ଯଜ୍ଞଂ ପ୍ରବର୍ତ୍ତୟାମାସ ଦକ୍ଷେଣେତି ନିରୂପ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ ପ୍ରାର୍ଥନାବଚନ । କହନ୍ତେ ପଙ୍କଜ-ଆସନ ॥ ୧
ସେ ବାକ୍ୟ ଶୁଣି ହେ ବିଦୁର ! । ପରିତୋଷକୁ ଲଭି ହର ॥ ୨
ବ୍ରହ୍ମାଙ୍କୁ ଶୁଣ ହେ ବୋଲିଣ । ଏ ରୂପେ କହିଲେ ହସିଣ ॥ ୩

ଶ୍ରୀମହାଦେବ[୧] ଉବାଚ

୨ ହେ ପରମେଶ ଏ ସଂସାରେ । ମୋହିତ ଯେ ଦେବମାୟାରେ ॥ ୪
ସେ ମୂର୍ଖଙ୍କର ଦୋଷ ମୁହିଁ । କହଇ ନାହିଁ, ନ ଚିନ୍ତଇ ॥ ୫
ଏମନ୍ତ ହେଲେହେଁ କୋପରେ । ଦଣ୍ଡ ଦେଲି ମୁଁ ଦକ୍ଷଠାରେ ॥ ୬
୩ ଯା' ଶିର ହୋଇଲା ଦହନ । ସେ ପ୍ରଜାପତିର ବହନ ॥ ୭
ଅଜାର ମୁଖ ଯହିଁ ସ୍ଥିତ । ସେ ରୂପେ ଶିର ହେଉ ଜାତ ॥ ୮
ଭଗ ନାମରେ ଯେ ଅମର । ସେ ଯାଗଭାଗ ଆପଣାର ॥ ୯
ମିତ୍ର ନାମରେ ଯେଉଁ ଦେବ । ତାର ଲୋଚନରେ ଦେଖିବ ॥ ୧୦
୪ ପୂଷା ଯଜମାନ ଦନ୍ତରେ । ପିଷ୍ଟକୁ ଖାଇବ ଯଜ୍ଞରେ ॥ ୧୧
ମୋତେ ଯଜ୍ଞର ଅବଶେଷ । ପ୍ରଦାନ କଲେ ଯେ ତ୍ରିଦଶ ॥ ୧୨
ଯଜ୍ଞରେ ତାଙ୍କ ଅଙ୍ଗମାନ । ସକଳ ହୋଇଛି ଖଣ୍ଡନ ॥ ୧୩
୫ ଅଶ୍ୱିନି ବାହୁରେ ସଂତତ । ହେଉନ୍ତୁ ସେହୁ ବାହୁଯୁତ ॥ ୧୪
ପୂଷାହସ୍ତରେ କୃତହସ୍ତ । ସେମାନେ ହେଉନ୍ତୁ ସମସ୍ତ ॥ ୧୫
ଋତ୍ୱିଜେ ଥିଲେ ଯେବା ଆନେ । ଏ ରୂପେ ହେଉନ୍ତୁ ସେମାନେ ॥ ୧୬
ବୋଦାର[୨] ପ୍ରାୟ ଦାଢ଼ି ଯାର । ଭୃଗୁ ହିଁ ହେଉ ଏ ପ୍ରକାର ॥ ୧୭

ଶ୍ରୀମୈତ୍ରେୟ ଉବାଚ

୬ ସେ କାଳେ ସର୍ବଭୂତଗଣ । ଶିବିର ବଚନ ଶୁଣିଣ ॥ ୧୮
ସନ୍ତୋଷମନେ ପୁଣ ପୁଣି । ବୋଇଲେ ସାଧୁ ସାଧୁ ବାଣୀ ॥ ୧୯

---

୧. ମହେଶ୍ୱର ।
୨. କେଦାର (?) (ତୁଂ ବସ୍ତ)

୭ ସକଳ ଅଭୀଷ୍ଟ ସେଚନ । କରନ୍ତି ଯେଉଁ ତ୍ରିଲୋଚନ ॥ ୨୦
ସେ ଯଜ୍ଞଶାଳାକୁ ଯିବାକୁ । ପ୍ରାର୍ଥନା କରିଣ ତାହାଙ୍କୁ ॥ ୨୧
ଶିବ, ବ୍ରହ୍ମାର ସହିତରେ । ଦେବତାମାନେ ତଦନ୍ତରେ ॥ ୨୨
ପୁଣିହିଁ କଲେକ ଗମନ । ଯେଉଁଠାରେ ସେ ଯଜ୍ଞସ୍ଥାନ ॥ ୨୩
୮ ଯେଉଁ ପ୍ରକାରେ ଭଗବାନ । ବାକ୍ୟ କହିଲେ ତ୍ରିଲୋଚନ ॥ ୨୪
ସକଳ କଥା ସେ ପ୍ରକାରେ । ବିଧାନ କରି ତଦନ୍ତରେ ॥ ୨୫
ଯଜ୍ଞପଶୁର ଶିର ନେଲେ । ଦକ୍ଷଶରୀରେ ଯୋଡ଼ିଦେଲେ ॥ ୨୬
୯ ସନ୍ଧାନ କରନ୍ତେ ସେ ଶିର । ରୁଦ୍ର ଚାହାଁନ୍ତେ ପ୍ରଜେଶ୍ୱର ॥ ୨୭
ଯେହ୍ନେ ଶୟନ କଲା ଜନ । ସେ ରୂପେ ଉଠିଲା ବହନ ॥ ୨୮
ଆଗେ ଅଛନ୍ତି ତ୍ରିଲୋଚନ । କଲା ତାହାଙ୍କୁ ବିଲୋକନ ॥ ୨୯
୧୦ ଶଙ୍କରବିଦ୍ୱେଷେ ମଳିନ । ହୋଇଣ ଥିଲା ତାର ମନ ॥ ୩୦
ଶିବଙ୍କୁ ଅବଲୋକ କଲା । ତେବେ ସେ ନିର୍ମଳ ହୋଇଲା ॥ ୩୧
ଶରଦ କାଳରେ ଅମଳ । ହୋଏ ଯେସନେ ହ୍ରଦ ଜଳ ॥ ୩୨
୧୧ ଶିବଙ୍କୁ କରିବାକୁ ସ୍ତୁତି । ମନ କଲେହେଁ ପ୍ରଜାପତି ॥ ୩୩
ସତୀ ଯେ ଲଭିଛି ମରଣ । ତାହାକୁ କରନ୍ତେ ସ୍ମରଣ ॥ ୩୪
ଅନୁରାଗରେ ଯେ ଜନ୍ମିଲା । ଉତ୍କଣ୍ଠ ଭାବେ ବାଷ୍ପକଲା ॥ ୩୫
ସେ ଘେନି ସ୍ତୁତି କରିବାରେ । ଶକ୍ୟ ନୋହିଲା ସେ କାଳରେ ॥ ୩୬
୧୨ କଷ୍ଟରେ ମନକୁ ସ୍ତମ୍ଭିଣ । ପ୍ରେମବିହ୍ୱଳିତ ହୋଇଣ ॥ ୩୭
ମହାଦେବଙ୍କୁ ପ୍ରଜାପତି । ଅଦମ୍ଭ ଭାବେ କଲା ସ୍ତୁତି ॥ ୩୮

ଶ୍ରୀଦକ୍ଷ ଉବାଚ

୧୩ ଯଦ୍ୟପି ତୁମ୍ଭଙ୍କୁ ମୁଁ ପୂର୍ବ । କରିଣ ଥିଲି ପରାଭବ ॥ ୩୯
ସେ ଘେନି ଦଣ୍ଡକୁ ଭିଆଣ । କଲ ମୋଠାରେ ତୁମ୍ଭେ ପୁଣ ॥ ୪୦
ହେ ରୁଦ୍ର ! ତୁମ୍ଭର, ବିଷ୍ଣୁର । ଅଧମ ବ୍ରାହ୍ମଣଙ୍କ ଠାର ॥ ୪୧
ଉପେକ୍ଷା ନୋହେ କଦାଚିତ । ଯେହୁ ଅଟନ୍ତି ଧୃତବ୍ରତ ॥ ୪୨
ସେ ଲୋକମାନଙ୍କର ଠାରେ । ସେ କାହୁଁ ହେବ ଏ ସଂସାରେ ॥ ୪୩
୧୪ ପ୍ରଥମେ ତୁମ୍ଭେ ବ୍ରହ୍ମା ହୋଇ । ଆତ୍ମତତ୍ତ୍ୱର ରକ୍ଷାପାଇଁ ॥ ୪୪
ବିଦ୍ୟା, ତପସ୍ୟା, ବ୍ରତମାନ । ଧରିଛନ୍ତି ଯେ ବିପ୍ରଜନ ॥ ୪୫

ତାହାଙ୍କୁ[1] ମୁଖୁଁ କଲ ଜାତ । ତେଣୁ ହେ ପରମ ! ବିଦିତ ॥ ୪୬
ବିପ୍ରଙ୍କୁ ସର୍ବ ବିପତ୍ତିରେ । ପାଳନା କର ନିରନ୍ତରେ ॥ ୪୭
ପାଳକ ଯେହ୍ନେ ଦଣ୍ଡ ଧରି । ପଶୁଙ୍କୁ ଥାଇ ରକ୍ଷା କରି ॥ ୪୮
୧୫ ତତ୍ତ୍ୱଜ୍ଞାନକୁ ଯା' ବିଷୟେ । ନ ଜାଣି କରିଣ ସଭାଏ ॥ ୪୯
ଦୁଷ୍ଟବଚନ ବିଶିଖରେ । ଆକ୍ଷେପ କଲି ମୁଁ କ୍ରୋଧରେ ॥ ୫୦
ମୁଁ ବଡ଼ଲୋକର ନିନ୍ଦାରେ । ପଡ଼ନ୍ତେ ଯାଇଁ ନରକରେ ॥ ୫୧
ସେ ଦୋଷ ନ ଘେନିଣ ମନେ । କରୁଣା-ଆର୍ଦ୍ର ବିଲୋକନେ ॥ ୫୨
ଯେ ମୋତେ କଲାକ ରକ୍ଷଣ । ସେ ପ୍ରଭୁ ତା' ଅନୁଗ୍ରହେଣ ॥ ୫୩
ସନ୍ତୋଷ ହେଉ, କେ ତାହାର । କରିବ ପ୍ରତି-ଉପକାର ॥ ୫୪

ଶ୍ରୀମୈତ୍ରେୟ ଉବାଚ

୧୬ ଶିବଙ୍କୁ କ୍ଷମା କରାଇଣ । ବ୍ରହ୍ମାର ଅନୁଜ୍ଞା ପାଇଣ ॥ ୫୫
ଋତ୍ୱିକ, ଉପାଧ୍ୟାୟଯୁତ । ଅଗ୍ନିକି ଘେନିଣ ସଙ୍ଗତ ॥ ୫୬
ସେ ଦକ୍ଷ ନାମ ପ୍ରଜାପତି । କର୍ମକୁ କଲେ ପୁଣ ଅତି ॥ ୫୭
୧୭ ଯଜ୍ଞର ବିସ୍ତାର ଅର୍ଥରେ । ବସି ସକଳ ଦ୍ୱିଜବରେ ॥ ୫୮
ବୈଷ୍ଣବ ଚରୁ-ପୁରୋଡାଶ[2] । ନିର୍ମାଣ କଲେ ସେ ଅଶେଷ ॥ ୫୯
ପ୍ରମଥ[3] ଆଦି ଭୂତଙ୍କର । ସଂସର୍ଗ କଲେ ଯେ ନିବାର ॥ ୬୦
୧୮ ଅଧ୍ୱର୍ଯ୍ୟୁ ହବିର୍ଭାଗ ଧରି । ଧ୍ୟାନ କରନ୍ତେ ଅନୁସରି ॥ ୬୧
ପ୍ରକାଶ ହେଲେ ଭଗବାନ । ସକଳ ଲୋକଙ୍କ ଜୀବନ ॥ ୬୨
୧୯ ଉତ୍ତମ ବୃହଦ୍ରଥନ୍ତର । ସାମନିର୍ମିତ ପକ୍ଷ[4] ଯାର ॥ ୬୩
ସେ ଖଗପତି ଯାକୁ ବହି । ପ୍ରବେଶ କଲେ ଆସି ତହିଁ ॥ ୬୪
ନିଜ ତେଜରେ ଦଶ ଦିଶ । କରୁଅଛନ୍ତି ଯେ ପ୍ରକାଶ ॥ ୬୫
ସେ ତେଜେ ସର୍ବଦେବଙ୍କର । ତେଜକୁ କରୁଛନ୍ତି ଦୂର ॥ ୬୬
୨୦ ଶ୍ୟାମ ଅଟଇ ବର୍ଣ୍ଣ ଯାର । ବସନ କନକ ଆକାର ॥ ୬୭
ସୂର୍ଯ୍ୟ ସମାନ ପ୍ରଦୀପିତ । କିରୀଟେ ଅଟନ୍ତି ସଂଯୁତ ॥ ୬୮
ଅସିତ ଅଳକ ନିକର । ଦିଶନ୍ତି ଯେସନେ ଭ୍ରମର ॥ ୬୯

---

୧. ତାହାଙ୍କ ।
୨. ଚରୁ-ଅନ୍ନ ପୁରୋଡାଶ = ଚାଉଳଚୂନାର ପିଷ୍ଟକ ।
୩. ପ୍ରଥମ । ୪. ପକ୍ଷି । ('ବୃହଦ୍ରଥନ୍ତରେ ପକ୍ଷୌ') ଶ୍ରୁତିଃ

ଯାହାର କୁଣ୍ଡଳ-ସହିତ । ମୁଖକୁ କଲେ ସେ ମଣ୍ଡିତ ॥
ଶଙ୍ଖ, କମଳ, ଚକ୍ର, ଶର । ଯେ ଚାପ, ଗଦା, ଖଡ୍ଗ ଆଉ ॥
ଯେ ଚର୍ମ, ସେ ଆୟୁଧଙ୍କରେ । ଭୃତ୍ୟମାନଙ୍କୁ ରଖିବାରେ ॥
ବ୍ୟଗ୍ର ଅଟନ୍ତି ଯେ ସଂତତ । ସୁବର୍ଣ୍ଣମୟ, ପ୍ରଦୀପିତ ॥
ସେ ଭୁଜେ ଯେହ୍ନେ କର୍ଣ୍ଣିକାର । ବୃକ୍ଷପ୍ରାୟକ ମନୋହର ॥

୨୧ ଯା' ବକ୍ଷସ୍ଥଳେ ଲକ୍ଷ୍ମୀ ସ୍ଥିତ । ଯେ ବନମାଳାରେ ସଂଯୁତ ॥
ଉଦାର ହାସ୍ୟ ଦୃଷ୍ଟିଲେଶ । ତେଣେ ଯେ ମୋହଇ ଅଶେଷ ॥
ରାଜହଂସର ପ୍ରାୟ ହୋଇ । ବେନି ପାରୁଶରେ ବୁଲଇ ॥
ଚାମର-ବ୍ୟଜନ ତାହାର । ଯେ ଶ୍ୱେତଛତ୍ର-ସୁଧାକର ॥
ଉପରେ ଅଛି ଧରା ହୋଇ । ତେଣେ ଯେ ଶୋଭିତ ଦିଶଇ ॥

୨୨ ବ୍ରହ୍ମା, ବାସବ, ମହେଶ୍ୱର । ଏମାନେ ମୁଖ୍ୟ ଯାହାଙ୍କର ॥
ସେ ସୁରଗଣ ଆଦିମାନ । ଜାଣି ତାହାଙ୍କ ଆଗମନ ॥
ଉଠି ସମସ୍ତେ ତତକାଳ । ନମିଲେ ତାଙ୍କ ପାଦତଳ ॥

୨୩ ସେ ବିଷ୍ଣୁ ତେଜେ ତାହାଙ୍କର । କାନ୍ତି ହୋଇଲା ଅତି ଦୂର ॥
ଗଦ୍‌ଗଦ ହେଲା ତାଙ୍କ ସ୍ୱର । ଭୟ ଉପୁଜିଲା ମନର ॥
କରଯୁଗଳ ମୁଣ୍ଡେ ଦେଲେ । ବିଷ୍ଣୁଙ୍କୁ ସ୍ତୁତି ସେ ଭଣିଲେ ॥

୨୪ ସେ ବ୍ରହ୍ମା ଆଦି ଯା' ବିଭୂତି । ଯା'ଠାରୁ ପଛେ ଉତପତି ॥
ତଥାପି ବୁଦ୍ଧି ଅନୁସାରେ । ଗୁଣିଲେ ସ୍ତୁତି ଯେ ଯାହାରେ ॥
ସେମାନଙ୍କର ଅନୁଗ୍ରହ । ବାଞ୍ଛି ସେ ଧରିଛନ୍ତି ଦେହ ॥

୨୫ *ଯେ ବିଶ୍ୱସୃଜମାନଙ୍କର । ନାୟକ, ଗୁରୁ ଯଜ୍ଞେଶ୍ୱର ॥
ସୁନନ୍ଦ, ନନ୍ଦ ଆଦି ଦାସେ । ବୃତ ଯାହାର ଚାରିପାଶେ ॥
ପୂଜାସାମଗ୍ରୀ ପାତ୍ରମାନ । ଘେନିଲେ ଯେହ୍ନେ ଭଗବାନ ॥
ଅଞ୍ଜଳି ଯୋଡ଼ି ପ୍ରଜାପତି । ହରଷେ କଲେ ତାଙ୍କୁ ସ୍ତୁତି ॥

---

* ଦକ୍ଷରତ୍ୱିକ୍ ସଦସ୍ୟେଶଭୃଗୁବ୍ରହ୍ମେନ୍ଦ୍ରଯୋଷିତଃ ।
ରକ୍ଷୟଶ୍ଚ ତଥା ସିଦ୍ଧା ଯଜମାନୀ ଚ ଲୋକପାଃ ॥ ୧ ॥
ଯୋଗିବ୍ରହ୍ମାଗ୍ନି ଦେବାଶ୍ଚ ସ୍ତୁବନ୍ତି ଜଗଦୀଶ୍ୱରମ୍ ।
ତଥା ଗନ୍ଧର୍ବବିଦ୍ୟାଧ୍ରବ୍ରାହ୍ମଣାଶ୍ଚ ପୃଥଙ୍‌ମତୈଃ ॥ ୨ ॥ (ସ୍ୱାମୀ)

ଶ୍ରୀଦକ୍ଷ ଉବାଚ

୨୬ ନିଜ ସ୍ୱରୂପେ ତୁମ୍ଭେ ସ୍ଥିତ । ଶୁଦ୍ଧ ଚୈତନ୍ୟରେ ପୂରିତ ॥ ୯୩
ନାନା ଅବସ୍ଥା ଯେ ବୁଦ୍ଧିର । ସେ ଯାହାଠାରୁ ହେଲା ଦୂର ॥ ୯୪
ତୁମ୍ଭେ ସେ ଅଟ ଅଦ୍ୱିତୀୟ । କାହାରି ଠାରୁ ନାହିଁ ଭୟ ॥ ୯୫
ମାୟାକୁ ପରାଭବ କରି । ସ୍ୱତନ୍ତ୍ର ହୋଇଣ ବିହରି ॥ ୯୬
ସେ ମାୟାଅବଲମ୍ବେ ପୁଣ । ମନୁଷ୍ୟରୂପକୁ ଧରିଣ ॥ ୯୭
ଅଶୁଦ୍ଧ ଲୋକପ୍ରାୟେ ହୋଇ । ଥାଅ ସେ ମାୟାରେ ଗୋସାଇଁ ॥ ୯୮

ଶ୍ରୀଋତ୍ୱିଜ ଊଚୁଃ

୨୭ ହେ ନିରଞ୍ଜନ ! ମହେଶ୍ୱର । ଶାପରୁ ଆମ୍ଭମାନଙ୍କର ॥ ୯୯
କର୍ମନିବଦ୍ଧ ମତି ଯେଣୁ । ନ ଜାଣୁଁ ତୋର ତତ୍ତ୍ୱ ତେଣୁ ॥୧୦୦
ଯେ ଅଟେ ଧର୍ମ-ଉପଲକ୍ଷ । ବେଦରେ ବିହିତ ପ୍ରତ୍ୟକ୍ଷ ॥୧୦୧
ଯଜ୍ଞ ହୋଇଣ ନାମ ଯାର । ସେ ରୂପ ଜାଣୁଁ ଆମ୍ଭେ ତୋର ॥୧୦୨
ଇନ୍ଦ୍ରାଦି ରୂପେ ଯହିଁ ଥାଇ । ଅଛ ଏ ବ୍ୟବସ୍ଥା ଭିଆଇ ॥୧୦୩

ଶ୍ରୀସଦସ୍ୟା ଊଚୁଃ

୨୮ ଯହିଁରେ ବିଶ୍ରାମନିମିତ୍ତେ । ସ୍ଥାନ ନ ମିଳେ କଦାଚିତେ ॥୧୦୪
ଯହିଁରେ ବଡ଼ କ୍ଳେଶମାନ । ହୋଇଅଛନ୍ତି ଦୁର୍ଗସ୍ଥାନ ॥୧୦୫
ଯମ-ଅଜଗର ଲକ୍ଷିତ । ଯେବଣମାର୍ଗ ଅବିରତ ॥୧୦୬
ଯହିଁରେ ସୁଖଦୁଃଖମାନ । ଗର୍ତ୍ତରୂପରେ ଶୋଭମାନ ॥୧୦୭
ଖଳ-ବ୍ୟାଘ୍ରଙ୍କ ସକାଶରେ । ଭୟ ଉପୁଜଇ ଯହିଁରେ ॥୧୦୮
ବନ-ଅନଳ ପ୍ରାୟ ଯହିଁ । ଶୋକସମୂହ ଛନ୍ତି ରହି ॥୧୦୯
ଯହିଁରେ ମୃଗତୃଷ୍ଣ ପ୍ରାୟ । ଅଛନ୍ତି ବିଷୟନିଚୟ ॥୧୧୦
ଏମନ୍ତ ଭବମାର୍ଗେ ଥାଇ । କାମରେ ନିପୀଡ଼ିତ ହୋଇ ॥୧୧୧
ଶରୀର, ଗୃହ ବେନି ଯାର । ଅଟନ୍ତି ଅତିଶୟ ଭାର ॥୧୧୨
ଏରୂପେ ଯେ ଅଜ୍ଞନିକର । ଶରଣଦାତା ! ହେ ଈଶ୍ୱର ! ॥୧୧୩
ତୋ ପଦରୂପ ଯେ ନିବାସ । କେବେ ମିଳିବ ତାର ପାଶ ॥୧୧୪

ଶ୍ରୀରୁଦ୍ର ଉବାଚ

୨୯ ହେ ବରଦାୟକ ! ଅଚ୍ୟୁତ ! । କାମରେ ନୋହି ଆସକତ ॥୧୧୫
ଆଦର କରି ମୁନିଜନ । ଯାହାକୁ କରନ୍ତି ପୂଜନ ॥୧୧୬

ସକଳ ଆଦ୍ୟ, ଅଟେ ସାର । ଯେବଣ ଚରଣ ତୁମ୍ଭର ।।୧୧୭
ତହିଁ ମୁଁ ଦେଇଥାଇ ମନ । ଅବିଦ୍ୟାବନ୍ତ ଯେଉଁ ଜନ ।।୧୧୮
ଭ୍ରଷ୍ଟ ବୋଲିଣ ବୋଲେ ମୋତେ । ମୁଁ ତାହା ନ ଗଣଇଁ ଚିତ୍ତେ ।।୧୧୯
ଯେଣୁ ତୁମ୍ଭର ବଡ଼ ହୋଇ । ମୋଠାରେ ଅନୁଗ୍ରହ ଥାଇ ।।୧୨୦

ଶ୍ରୀଭୃଗୁରୁବାଚ

୩୦ ଯାହାର ଦୁର୍ବୋଧ ମାୟାରେ । ବ୍ରହ୍ମାଦି ପ୍ରାଣୀ ଏ ସଂସାରେ ।।୧୨୧
ମୋହରେ କରନ୍ତେ ଶୟନ । ଛାଡ଼ିଲେ ନିଜ ଆତ୍ମଜ୍ଞାନ ।।୧୨୨
ଆତ୍ମାକୁ ହୋଇ ଅନୁଗତ । ଯେବଣ ତତ୍ତ୍ୱ ତୋର ସ୍ଥିତ ।।୧୨୩
ଆଜହିଁ ସେ ତତ୍ତ୍ୱ ସେମାନେ । ଜାଣି ନାହାନ୍ତି ଏ ଭୁବନେ ।।୧୨୪
*ପ୍ରଣତ-ଆତ୍ମା-ବନ୍ଧୁଜନ । ସେ ତୁମ୍ଭେ ହୁଅ ସୁପ୍ରସନ୍ନ ।।୧୨୫

ଶ୍ରୀବ୍ରହ୍ମୋବାଚ

୩୧ ପଦାର୍ଥଙ୍କର ଭେଦଜ୍ଞାନ । ଯେଣେ ହୁଅଇ ଉତପନ୍ନ ।।୧୨୬
ଏମନ୍ତ ଇନ୍ଦ୍ରିୟରେ ନର । ଏ ରୂପ ନ ଦେଖଇ ତୋର ।।୧୨୭
ତୁ ଜ୍ଞାନ-ଅର୍ଥ-ଗୁଣାଶ୍ରୟ । ଯେଣୁ ବିଭିନ୍ନ ମାୟାମୟ ।।୧୨୮

ଶ୍ରୀଇନ୍ଦ୍ର ଉବାଚ

୩୨ ଜଗତଯାକ ଅବିରତ । ଭାବନ୍ତି ଯାହା ହେ ଅଚ୍ୟୁତ ! ।।୧୨୯
ମନ-ନୟନ-ସୁଖକର । ଏ ବପୁ ଅଟଇ ତୋହର ।।୧୩୦
ରାକ୍ଷସବଧ ଯେ କରନ୍ତି । ଉଚ୍ଚେ ଆୟୁଧକୁ ଧରନ୍ତି ।।୧୩୧
ସେ ଅଷ୍ଟ ଭୁଜଦଣ୍ଡେ ସାର । ଲକ୍ଷିତ ଯେଉଁ କଳେବର ।।୧୩୨

ଋତ୍ୱିଜାଂ ପତ୍ନ୍ୟ ଊଚୁଃ

୩୩ ଯଜନନିମିତ୍ତେ ତୁମ୍ଭର । ଧାତା ସର୍ଜିଲା ଏ ଅଧ୍ୱର ।।୧୩୩
ଦକ୍ଷକୋପରେ ତ୍ରିଲୋଚନ । ଆଜ ତା' କଲେ ବିନାଶନ ।।୧୩୪
ଶ୍ମଶାନପ୍ରାୟେ ସେ ଦିଶଇ । ସେ ଅଛି ଶାନ୍ତମେଧ[୧] ହୋଇ ।।୧୩୫
ହେ ଯଜ୍ଞରୂପୀ ଭଗବାନ । ନଳିନପ୍ରାୟ ଯେ' ଶୋଭନ ।।୧୩୬
ଏମନ୍ତ ଲୋଚନେ ଆମ୍ଭର । ସେ ଯଜ୍ଞ ପବିତ୍ର ତୁ କର ।।୧୩୭

---

* ପ୍ରଣତମାନଙ୍କର ଆତ୍ମା ଓ ବନ୍ଧୁ । ପ୍ରଣତାନାମାତ୍ମାବନ୍ଧୁଶ୍ଚ (ସ୍ୱାମୀ)
୧. ପଶୁହିଂସାଦି ଉତ୍ସବ ଯହିଁରେ ଶାନ୍ତ ହୋଇଅଛି ।

### ଶ୍ରୀଋଷୟ ଊଚୁଃ

୩୪ ହେ ଭଗବାନ ! ତୋ ଚେଷ୍ଟିତ । ଘଟନା ନୋହେ କଦାଚିତ ॥୧୩୮
ତୁ ଯେ ଆପଣେ କର୍ମ କରୁ । ତହିଁ ଆସକତି ନ ଧରୁ ॥୧୩୯
ଯେବଣ ଲକ୍ଷ୍ମୀଙ୍କି ଇତରେ । ଭକତି ସଂପତ୍ତି ହେତୁରେ ॥୧୪୦
ସ୍ୱୟେଂ ସେ ତୋତେ ଅନୁଗତ । ହେଲେହେଁ ନ ଘେନୁ ଅଚ୍ୟୁତ ॥୧୪୧

### ଶ୍ରୀସିଦ୍ଧା ଊଚୁଃ

୩୫ ହେ ନାଥ ! ଆମ୍ଭମାନଙ୍କର । ମାନସ ଅଟଇ କୁଞ୍ଜର ॥୧୪୨
କ୍ଳେଶବିପିନ-ଅନଳରେ । ଦହନ ହୋଇଣ ସଂସାରେ ॥୧୪୩
ତୋ' କଥାବିଶୁଦ୍ଧଅମୃତ । ନଦୀରେ ବୁଡ଼ିଲା ତୁରିତ ॥୧୪୪
ତୃଷାରେ ଆର୍ତ୍ତ ଏ ହୁଅଇ । ତହୁଁ ବାହାର ହେଉ ନାହିଁ ॥୧୪୫
ସେ କ୍ଳେଶଦାବ ନ ସ୍ମରଇ । ବ୍ରହ୍ମସଂପନ୍ନ ପ୍ରାୟ ହୋଇ ॥୧୪୬

### ଶ୍ରୀଯଜମାନୀ (ପ୍ରସୂତିଃ) ଉବାଚ

୩୬ ସୁଖେ ଆଗମନ ତୁମ୍ଭର । ହୋଇଲାଟିକି ହେ ଈଶ୍ୱର ॥୧୪୭
ଆମ୍ଭଙ୍କୁ ହୁଅ ସୁପ୍ରସନ୍ନ । ତୁମ୍ଭଙ୍କୁ କରୁଛି ବନ୍ଦନ ॥୧୪୮
ଏ ଯଜ୍ଞ ଅଙ୍ଗମାନଙ୍କରେ । ନ ଶୋହେ ତୁମ୍ଭ ନ ଥିବାରେ ॥୧୪୯
କବନ୍ଧ ପୁରୁଷ ଯେସନ । ଶିର ନ ଥିଲେ ଅଶୋଭନ ॥୧୫୦
ଲକ୍ଷ୍ମୀ ଅଟଇ କାନ୍ତା ତୋର । ତାର ସହିତେ ରକ୍ଷା କର ॥୧୫୧

### ଶ୍ରୀଲୋକପାଳା ଊଚୁଃ

୩୭ ଅନିତ୍ୟ ବିଷୟନିକର । ନିତ୍ୟେ ଯେ କରନ୍ତି ଗୋଚର ॥୧୫୨
ଇନ୍ଦ୍ରିୟମାନେ ସେହୁ ଆର । ତୁମ୍ଭଙ୍କୁ କଲେ କି ଗୋଚର ॥୧୫୩
ଯେ ତୁମ୍ଭେ ଅନ୍ତର ଦୃଷ୍ଟିରେ । ବିଶ୍ୱକୁ[୧] କଲ ସ୍ୱଗୋଚରେ ॥୧୫୪
ଯେ ତୁମ୍ଭେ ଜୀବପ୍ରାୟ ହୋଇ । ପଞ୍ଚଭୂତରେ ଅଛ ଶୋହି ॥୧୫୫
ମାୟା ଅଟଇ ଏ ତୁମ୍ଭର । ତୁମ୍ଭେ ଇନ୍ଦ୍ରିୟ-ଅଗୋଚର ॥୧୫୬

### ଶ୍ରୀଯୋଗେଶ୍ୱରା ଊଚୁଃ

୩୮ ଆତ୍ମା ସକଳ ଲୋକଙ୍କର । ଯେ ତୁମ୍ଭେ ଅଟ, ତୁମ୍ଭଠାର ॥୧୫୭
ଜୀବମାନଙ୍କୁ ଯେଉଁ ଜନ । କେବେହେଁ ନ ଦେଖଇ ଭିନ୍ନ ॥୧୫୮

---

୧. ଦୃଶ୍ୟକୁ ।

ତାହାର ଠାରୁ ଅତିଶୟ । ନାହିଁ ତୁମ୍ଭର ଆନ ପ୍ରିୟ ॥୧୫୯
ତଥାପି ଅନନ୍ୟ ବୃତ୍ତିରେ । ଭୃତ୍ୟ-ଈଶ୍ୱର ଏ ଭାବରେ ॥୧୬୦
ଭଜୁଛୁଁ ତୁମ୍ଭଙ୍କୁ ଈଶ୍ୱର ! । ଆମ୍ଭଙ୍କୁ ଅନୁଗ୍ରହ କର ॥୧୬୧
୩୯ ବିଶ୍ୱ-ଉଦୟ[୧] ସ୍ଥିତି-ନାଶ । ଏ ତିନି ନିମିତ୍ତେ ପ୍ରକାଶ ॥୧୬୨
ଯେ ମାୟା ଜୀବ-ଅଦୃଷ୍ଟରେ । ଅନେକ ବିଭିନ୍ନ ଗୁଣରେ ॥୧୬୩
ତେଣେ ଯେ ଆମ୍ଭାରେ ନିର୍ମାଣ । କଲ ବ୍ରହ୍ମାଦି ରୂପେ ପୁଣ ॥୧୬୪
ନାନା ପ୍ରକାରେ ଭେଦମତି । ପ୍ରକାଶି ପୁଣ[୨] ଆତ୍ମଗତି ॥୧୬୫
ନିବର୍ତ୍ତାଇଲ ପ୍ରାଣୀଙ୍କର । ଭ୍ରମଗୁଣକୁ ଯେ ଈଶ୍ୱର ॥୧୬୬
ତୁମ୍ଭର ମହିମା ଏସନ । ତୁମ୍ଭଙ୍କୁ କରୁଛୁଁ ବନ୍ଦନ ॥୧୬୭

ଶ୍ରୀ (ଶଦ୍ଧ) ବ୍ରହ୍ମୋବାଚ

୪୦ ସତ୍ତ୍ୱକୁ କରିଛ ସ୍ୱୀକାର । ଧର୍ମାଦି ଫଳ ଜନ୍ମ କର ॥୧୬୮
ଯେ ପୁଣି ଅଟ ଗୁଣହୀନ । ତୁମ୍ଭଙ୍କୁ କରୁଛୁଁ ବନ୍ଦନ ॥୧୬୯
ଯା' ତତ୍ତ୍ୱ ନ ଜାଣଇଁ ମୁହିଁ । ଅପରେ ନ ଜାଣନ୍ତି କେହି ॥୧୭୦

ଶ୍ରୀଅଗ୍ନିରୁବାଚ

୪୧ ଯାହାର ତେଜରେ ମୁଁ ପୁଣ । ଅତ୍ୟନ୍ତ ତେଜସ୍ୱୀ ହୋଇଣ ॥୧୭୧
ପ୍ରଶସ୍ତ ଯଜ୍ଞେ ଘୃତଯୁତ । ହବିକି ବହଇ ତୁରିତ ॥୧୭୨
(ସେ ଯଜ୍ଞ ଅଟଇ ବିଦିତ । ଯେ ଅଗ୍ନିହୋତ୍ର ନାମେ ଖ୍ୟାତ)[୩]
ଯେ ଦର୍ଶପୌର୍ଣ୍ଣମାସ ନାମ । ଯେ ଚାତୁର୍ମାସ୍ୟ, ପଶୁ, ସୋମ ॥୧୭୩
ଏ ରୂପେ ପଞ୍ଚବିଧ[୩] ହୋଇ । ପଞ୍ଚମନ୍ତ୍ରେ[୪] ଯେ ପୂଜା ପାଇ ॥୧୭୪
ଯେ ଅଟେ ଯଜ୍ଞରୂପଧର । ତାହାଙ୍କୁ ମୋର ନମସ୍କାର ॥୧୭୫

---

୧. ଉଦ୍‌ଭବ । ୨. ଗୁଣ ।
୩. ''ସ ଏବ ଯଜ୍ଞଃ ପଞ୍ଚବିଧୋଽଗ୍ନିହୋତ୍ରଂ ଦର୍ଶ-ପୌର୍ଣ୍ଣମାସୌ ଚାତୁର୍ମାସ୍ୟାନି ପଶୁଃ ସୋମଃ ।'' (ଐତରେୟ ବ୍ରାହ୍ମଣ)
୪. 'ଆଶ୍ରାବୟ' ଇତି ଚତୁରକ୍ଷରମ୍; 'ଅସ୍ତୁ ଶ୍ରୌଷଟ୍' ଇତି ଚତୁରକ୍ଷରମ୍; 'ଯଜେ' ଇତି ଦ୍ୱ୍ୟକ୍ଷରମ୍; 'ଯେ ଯଜାମହେ' ଇତି ପଞ୍ଚାକ୍ଷରମ୍; ଦ୍ୱ୍ୟକ୍ଷରୋ ବଷଟ୍‌କାରଃ) (ଶ୍ରୁତିଃ)
ଚତୁର୍ଭିଶ୍ଚ ଚତୁର୍ଭିଶ୍ଚ ଦ୍ୱାଭ୍ୟାଂ ପଞ୍ଚଭିରେବ ଚ ।
ହୂୟତେ ଚ ପୁନର୍ଦ୍ୱାଭ୍ୟାଂ ସ ମେ ବିଷ୍ଣୁଃ ପ୍ରସୀଦତୁ ॥ ୧ ॥ (ସ୍ମୃତିଃ)

୪୨ ଆପଣା ଇଚ୍ଛାରେ ନିର୍ମିତ । କରିଛ ଯେବଣ ଜଗତ ।।୧୭୬
ତାହାକୁ ରଖିଣ ଉଦରେ । ପୂର୍ବେ କଳ୍ପର ବିନାଶରେ ।।୧୭୭
ଜଳେ ନାଗେନ୍ଦ୍ର ରୂପ ହୋଇ । ଅଧିକ ଶଯ୍ୟା ଯେ ଅଟଇ ।।୧୭୮
ତହିଁରେ କରିଛ ଶୟନ । ଆଦ୍ୟ ପୁରୁଷ ଭଗବାନ ।।୧୭୯
ଯେ ଜନଲୋକ ଆଦି ସ୍ଥାନେ । ରହିଣ ଥାନ୍ତି ସିଦ୍ଧମାନେ ।।୧୮୦
ଯେ ଜ୍ଞାନମାର୍ଗକୁ ଯାହାର । ଚିନ୍ତା କରନ୍ତି ହୃଦୟର ।।୧୮୧
ସେ ତୁମ୍ଭେ ଏମନ୍ତ ପ୍ରକାର । ଯେ ଆଜ ଆମ୍ଭମାନଙ୍କର ।।୧୮୨
ନୟନପଥେ ବିହରୁଛ । ଭୃତ୍ୟଙ୍କୁ ପାଳନା କରୁଛ ।।୧୮୩

ଶ୍ରୀଗନ୍ଧର୍ବାପ୍ସରସ ଉଚୁଃ

୪୩ ବ୍ରହ୍ମା ଇନ୍ଦ୍ରାଦି ଦେବଗଣ । ରୁଦ୍ରଙ୍କୁ ଆଗରେ କରିଣ ।।୧୮୪
ମରୀଚି ଆଦି ଯେ ଆବର । ଅଂଶର ଅଂଶ ଏ ତୋହର ।।୧୮୫
ଏ ବିଶ୍ୱ କ୍ରୀଡ଼ାଭାଣ୍ଡ ଯାର । ହେ ଦେବ ! ଅତି ଅଗୋଚର ।।୧୮୬
ତୁମ୍ଭଙ୍କୁ ଆମ୍ଭେମାନେ ନିତି । ହେ ନାଥ ! କରୁଛୁଁ ପ୍ରଣତି ।।୧୮୭

ଶ୍ରୀବିଦ୍ୟାଧରା ଉଚୁଃ

୪୪ ଅର୍ଥସାଧନ କଳେବର । ପାଇଣ କର୍ମବଶେ ନର ।।୧୮୮
ହେ ନାଥ ! ମାୟାରେ ସେ ତୋର । ଉତ୍ପଥ ମାର୍ଗେ ଆପଣାର ।।୧୮୯
ମୋ ବିତ୍ତ ମୁଁ ଏ ରୂପେ କରି । ଏ ଦେହେ ମାନକୁ ଆଚରି ।।୧୯୦
ପୁତ୍ରକଳତ୍ର ଆଦିମାନେ । ଆକ୍ଷେପ କଲେହେଁ ସେମାନେ[୧] ।।୧୯୧
ଅନିତ୍ୟ ବିଷୟନିକରେ । ତୃଷ୍ଣାକୁ ଧରେ ନିରନ୍ତରେ ।।୧୯୨
ତୁମ୍ଭର କଥାମୃତ ପୁଣ । ଯେ ନିତ୍ୟେ କରଇ ଶ୍ରବଣ ।।୧୯୩
ସେ ନିଜ ମୋହ ଛାଡ଼ି ପାରେ । ଆନ ନ ପାରଇ ସଂସାରେ ।।୧୯୪

ଶ୍ରୀବ୍ରାହ୍ମଣା ଉଚୁଃ

୪୫ ତୁ ଯଜ୍ଞ, ତୁ ହବି, ହୁତାଶ । ମନ୍ତ୍ର, ସମିଧ, ପାତ୍ର, କୁଶ ।।୧୯୫
ସଦସ୍ୟ, ଋତ୍ୱିଜ ତୁ ପୁଣି । ତୁ ଯଜମାନ ବେନି ପ୍ରାଣୀ ।।୧୯୬
ଦେବତା, ସ୍ୱଧା, ଅଗ୍ନିହୋତ୍ର । ତୁ ସ୍ୱୟେଂ ସୋମ, ପଶୁ ଘୃତ ।।୧୯୭

---

୧. ସେମନେ ।

୪୬ ବେଦ ଅଟଇ ତୋ ଶରୀର । ଯଜ୍ଞ ହିଁ ଅଟେ କର୍ମ ତୋର ॥୧୯୮
ହେ ପ୍ରଭୁ ଯୋଗୀମାନେ ତୋତେ । ସ୍ତୁତି କରନ୍ତେ ତୋଷଚିତ୍ତେ ॥୧୯୯
ତୁ ମହାବରାହ ରୂପରେ । ଗର୍ଜନ କରନ୍ତେ ଲୀଳାରେ ॥୨୦୦
ଦନ୍ତରେ ରସାତଳୁ କ୍ଷିତି । ଉଦ୍ଧାର କଲୁ ରମାପତି ! ॥୨୦୧
ଲୀଳାରେ କରୀନ୍ଦ୍ର ଯେସନେ । ଟେକେ ପଦ୍ମିନୀକି ଦଶନେ ॥୨୦୨
୪୭ ଉତ୍ତମ କର୍ମ ଯେବା ଥିଲା । ସେହି ଆମ୍ଭର ନାଶ ଗଲା ॥୨୦୩
ତୋ' ଦରଶନ ଆମ୍ଭେମାନେ । ବାଞ୍ଛା କରୁଛୁଁ ନିଜ ମନେ ॥୨୦୪
ଆମ୍ଭମାନଙ୍କୁ ଭଗବାନ । ଏବେ ତୁ ହୁଅ ସୁପ୍ରସନ୍ନ ॥୨୦୫
ମାନବେ ତୋ ନାମ ଗାୟନ । କରନ୍ତେ ଯଜ୍ଞବିଘ୍ନମାନ ॥୨୦୬
ନାଶ ହୁଅନ୍ତି ଯଜ୍ଞେଶ୍ୱର । ତୋତେ ଆମ୍ଭର ନମସ୍କାର ॥୨୦୭

### ଶ୍ରୀମୈତ୍ରେୟ ଉବାଚ

୪୮ ସମସ୍ତେ ଏମନ୍ତ ପ୍ରକାରେ । କୀର୍ତ୍ତନ କରନ୍ତେ ସେଠାରେ ॥୨୦୮
ଦକ୍ଷଯଜ୍ଞକୁ ଯେ ଈଶ୍ୱର । ବିନାଶିଥିଲେ ହେ ବିଦୁର ! ॥୨୦୯
ପ୍ରବର୍ତ୍ତାଇଲେ ତାହା ପୁଣ । ଯଜ୍ଞଭାବନ ନାରାୟଣ ॥୨୧୦
୪୯ ସକଳ ଆତ୍ମା ଯେ ଅଟନ୍ତି । ସକଳ ଭାଗକୁ ଭୁଞ୍ଜନ୍ତି ॥୨୧୧
ନିଜ ଭାଗରେ ତୋଷମନ । ହେଲା ପ୍ରାୟ ସେ ଭଗବାନ ॥୨୧୨
ଦକ୍ଷକୁ କରି ସମ୍ବୋଧନ । କହିଲେ ଏମନ୍ତ ବଚନ ॥୨୧୩

### ଶ୍ରୀଭଗବାନୁବାଚ

୫୦ ସକଳ-ଜଗତ-କାରଣ । ଆତ୍ମା-ଈଶ୍ୱର ସାକ୍ଷୀ ପୁଣ ॥୨୧୪
ଉପାଧିହୀନ ସ୍ୱପ୍ରକାଶ । ମୁଁ ବ୍ରହ୍ମା ଆବର ମହେଶ ॥୨୧୫
୫୧ ହେ ଦ୍ୱିଜ ! ଗୁଣମୟୀ ହୋଇ । ଯେ ମାୟା ମୋହର ଅଛଇ ॥୨୧୬
ତା' ଅବଲମ୍ବେ ଜଗତର । ସର୍ଜନ, ପାଳନ, ସଂହାର ॥୨୧୭
କରନ୍ତେ ସେ ନାମ ବହଇ । କର୍ମକୁ ଉଚିତ ଯେ ହୋଇ ॥୨୧୮
୫୨ କେବଳ ଅଦ୍ୱିତୀୟ ହୋଇ । ଯେ ପରମାତ୍ମା ବ୍ରହ୍ମ ମୁହିଁ ॥୨୧୯
ବ୍ରହ୍ମା-ରୁଦ୍ରଙ୍କୁ ମୋହଠାରେ । ପ୍ରାଣୀମାନଙ୍କୁ ଯେ ସଂସାରେ ॥୨୨୦
ଭେଦରେ କରେ[୧] ବିଲୋକନ । ଅଜ୍ଞ ଅଟଇ ସେହୁ ଜନ ॥୨୨୧

---

୧. କଲେ ।

୫୩ ଯେସନେ ଆପଣା ଅଙ୍ଗରେ । ମସ୍ତକ, କର ଆଦିଠାରେ ॥୨୨୨
ମୋ'ଠାରୁ ଅଟଇ ଏ ଭିନ୍ନ । ଏ ବୁଦ୍ଧି ନ କରଇ ଜନ ॥୨୨୩
ମୋହର ଠାରେ ତତପର । ହୋଇଣ ଥିବ ଯେଉଁ ନର ॥୨୨୪
ସେ ଲୋକ ପ୍ରାଣୀଙ୍କର ଠାରେ । ବୁଦ୍ଧି କରିବ ଏ ପ୍ରକାରେ ॥୨୨୫
୫୪ ଆତ୍ମା ସକଳ ପ୍ରାଣୀଙ୍କର । ତିନିହେଁ ଅଟୁ ଏକାକାର ॥୨୨୬
ଯେ ଆତ୍ମ ଭେଦ ନ ଦେଖଇ । ସେ ଲୋକ ଶାନ୍ତିକି ଲଭଇ ॥୨୨୭

ଶ୍ରୀମୈତ୍ରେୟ ଉବାଚ

୫୫ ସେ ଦକ୍ଷ ଏମନ୍ତ ରୂପେଣ । ବିଷ୍ଣୁର ଆଜ୍ଞାକୁ ଲଭିଣ ॥୨୨୮
ବିଷ୍ଣୁଙ୍କୁ ସେ ନିଜ କ୍ରତୁରେ । ପୂଜା କରିଣ ତଦନ୍ତରେ ॥୨୨୯
ଅଙ୍ଗରେ ପ୍ରଧାନ ଯଜ୍ଞରେ । ଦେବଙ୍କୁ ପୂଜିଲା କ୍ରମରେ ॥୨୩୦
୫୬ ଯେ ନିଜ ଭାଗ ଯଜ୍ଞ-ଶେଷ । ତେଣେ ରୁଦ୍ରଙ୍କୁ କଲା ତୋଷ ॥୨୩୧
କର୍ମରେ କରି ସୋମପାନ । ଯେ ଅବା ଥିଲେ ତହିଁ ଆନ ॥୨୩୨
କର୍ମର ଶେଷେ ଦେଇ ଧନ । ସନ୍ତୋଷ କଲା ତାଙ୍କ ମନ ॥୨୩୩
କର୍ମକୁ ସମାପ୍ତ କରିଣ । ଋତ୍ୱିଜଙ୍କର ସଙ୍ଗତେଣ ॥୨୩୪
ଯେମନ୍ତେ ଅବଭୃଥ ହୋଇ । ସେ ରୂପେ ସ୍ନାନ କଲା ସେହି ॥୨୩୫
୫୭ ଯେ ନିଜ ଅନୁଭାବେ ଦକ୍ଷ । ସିଦ୍ଧିକି ଲଭିଲା ପ୍ରତ୍ୟକ୍ଷ ॥୨୩୬
ଧର୍ମ[୧]ରେ ମତି ଦେଇ ତାକୁ । ଦେବେ ଗମିଲେ ତ୍ରିଦିବକୁ ॥୨୩୭
୫୮ ଦକ୍ଷନନ୍ଦିନୀ ଏ ପ୍ରକାର । ଛାଡ଼ିଣ ପର୍ବ କଳେବର ॥୨୩୮
ହିମବନ୍ତର ଭାର୍ଯ୍ୟା ହୋଇ । ମେନା ନାମରେ ଅଛି ଯେହି ॥୨୩୯
ଜନମ ହୋଇଲା ତାଠାରେ । ଶୁଣିମା[୨] ଅଛି ଏ ପ୍ରକାରେ ॥୨୪୦
୫୯ ଅନନ୍ୟଭାବେ ଯେ ଭଜନ୍ତି । ତାଙ୍କର ଯେହୁ ଏକଗତି ॥୨୪୧
ସେ ପ୍ରିୟ ପତିଙ୍କି ହିଁ ପୁଣ । ଅମ୍ବିକା କଲାକ ବରଣ ॥୨୪୨
ପ୍ରଳୟେ ଶକ୍ତି ଶୋଇଥାଇ । ଯେହ୍ନେ ପୁରୁଷକୁ ବରଇ ॥୨୪୩
୬୦ ଦକ୍ଷର ଯଜ୍ଞଭଙ୍ଗକାରୀ । ଯେ ଭଗବାନ ତ୍ରିପୁରାରି ॥୨୪୪
ଉଦ୍ଧବଠାରୁ ତାହାଙ୍କର । କର୍ମ ଶୁଣିଛି ଏ ପ୍ରକାର ॥୨୪୫
ଯେଉଁ ଉଦ୍ଧବ ଭାଗବତ । ବୃହସ୍ପତିର ଶିଷ୍ୟ ଖ୍ୟାତ ॥୨୪୬

---

୧. କର୍ମରେ । ୨. ଶୁଣିଲା ।

| | | | | |
|---|---|---|---|---|
| ୬୧ | ହେ କଉରବ ! ଏ ପବିତ୍ର | । | ଅଟଇ ଈଶ୍ୱର ଚରିତ୍ର | ।।୨୪୭ |
| | ଯଶ ଆୟୁଷକୁ ଦିଅଇ | । | ପାପସମୂହ ନିବାରଇ | ।।୨୪୮ |
| | ଭକ୍ତିଭାବରେ ଯେଉଁ ପ୍ରାଣୀ | । | ନିତ୍ୟେ କହଇ ଏହା ଶୁଣି | ।।୨୪୯ |
| | ସେହୁ ପରର ଆପଣାର | । | ପାପକୁ କରଇ ସଂହାର | ।।୨୫୦ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ।।୨୫୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀ ବିଦୁରମୈତ୍ରେୟ ସଂବାଦେ
ଦକ୍ଷଯଜ୍ଞସଂଧାନଂ ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମୋଽଧ୍ୟାୟଃ

ଦକ୍ଷକନ୍ୟାନ୍ୱୟେ ପ୍ରାପ୍ତା ଦକ୍ଷଯଜ୍ଞକଥୋଦିତା ।
ମନୁପୁତ୍ରାନ୍ୱୟେ ପ୍ରାପ୍ତା ଧ୍ରୁବଚର୍ଯ୍ୟାଥ ପଞ୍ଚଭିଃ ।। ୧ ।।
ଅଷ୍ଟମେ ଗୁରୁଦାରୋକ୍ତି-ରୋଷମସ୍ମରତଃ ପୁରାତ୍ ।
ନିର୍ଗତେନ ଧ୍ରୁବେଣାହ ତପସା ତୋଷଣଂ ହରେଃ ।। ୨ ।।

ଶ୍ରୀମୈତ୍ରେୟ ଉବାଚ

| | | | | | |
|---|---|---|---|---|---|
| ୧ | ସନକ-ଆଦି ଋଷିଗଣ | । | ନାରଦ, ଋଭୁ, ହଂସ ପୁଣ | ।। | ୧ |
| | ଅରୁଣି[୧], ଯତି ଯେ ଆବର | । | ଏମାନେ ବ୍ରହ୍ମାର କୁମର | ।। | ୨ |
| | ସମସ୍ତେ ଊର୍ଦ୍ଧ୍ୱରେତା ହେଲେ | । | ଗୃହକୁ ଆଶ୍ରୟ ନ କଲେ | ।। | ୩ |
| ୨ | ମୃଷା ଯେ ଅଧର୍ମ ରଜା | । | ସେ ଜାତ କଲା ଦମ୍ଭ, ମାୟା | ।। | ୪ |
| | ପୁତ୍ର ନ ଥିଲା ନିର୍ଋତିର | । | ସେ ବେନି ନେଲା ହେ ବିଦୁର | ।। | ୫ |
| ୩ | ଲୋଭ ନିକୃତି[୨] ନାମେ ଦୁଇ | । | ସେ ବେନିଠାରୁ ଜାତ ହୋଇ | ।। | ୬ |
| | ସେ ବେନି ପତିପତ୍ନୀ ହେଲେ | । | ହିଂସା, କ୍ରୋଧକୁ ଜାତ କଲେ | ।। | ୭ |
| | କଳିକି କଲେ ସେ ଜନମ | । | ଦୁରୁକ୍ତି ତା' ଭଗିନୀ ନାମ | ।। | ୮ |
| ୪ | ଦୁରୁକ୍ତି ଠାରେ ମୃତ୍ୟୁ, ଭୀତି | । | ସେ କଳି କଲା ଉତପତି | ।। | ୯ |
| | ଯାତନା, ନିରୟ ହୋଇଣ | । | ବେନି ସେ ଜାତ କଲେ ପୁଣ | ।। | ୧୦ |

---
୧. ଅରୁଣ । ୨. ନିକୃତି = ଶଠତା । (ନିବୃତି ?)

୫ ଏ ପ୍ରତିସର୍ଗ[୧] ତୋ ଆଗରେ । କହିଲୁଁ ଆମ୍ଭେ ସଂଗ୍ରହରେ ॥ ୧୧
ଏ ପୁଣ୍ୟ କଥା ତିନି ବାର । ଶୁଣି ଦୁରିତ ମୁଞ୍ଚେ ନର ॥ ୧୨
୬ ହରିର ଅଂଶଅଂଶୁ ଜାତ । ଯେ ପୁଣ୍ୟକୀର୍ତ୍ତି ବ୍ରହ୍ମାସୁତ ॥ ୧୩
ତାର ବଂଶକୁ ହେ ବିଦୁର । ଏବେ କହିବା ତୋ ଆଗର ॥ ୧୪
୭ ଉତ୍ତାନପାଦ ପ୍ରିୟବ୍ରତ । ଏ ସ୍ୱାୟଂଭୁବ ମନୁ ସୁତ ॥ ୧୫
ଜଗତ ରକ୍ଷା କରିବାରେ । ହେଲେ ଏ ବିଷ୍ଣୁର କଳାରେ ॥ ୧୬
୮ ଉତ୍ତାନପାଦର କାମିନୀ । ସୁନୀତି, ସୁରୁଚି ଯେ ବେନି ॥ ୧୭
ସୁରୁଚି ନାମେ ଭାର୍ଯ୍ୟା ଯେହି । ପତିର ପ୍ରିୟ ଅଟେ ସେହି ॥ ୧୮
ସୁନୀତି ଅପ୍ରିୟ ପତିର । ଧ୍ରୁବ ନାମରେ ଯା' କୁମର ॥ ୧୯
୯ ଏକ ଦିନକେ ସୁରୁଚିର । ଉତ୍ତମ ନାମେ ହେ କୁମର ॥ ୨୦
ତାହାକୁ ବସାଇ କୋଡ଼ରେ । ରାଜା ଖେଳାନ୍ତେ ହରଷରେ ॥ ୨୧
ବସି ଲୋଡ଼ନ୍ତେ ଧ୍ରୁବ ତହିଁ । ରାଜା ସ୍ୱୀକାର କଲା ନାହିଁ ॥ ୨୨
୧୦ ଯେ ଧ୍ରୁବ ସପତ୍ନୀନନ୍ଦନ । ଏ ରୂପେ ବିଚାରନ୍ତେ ମନ ॥ ୨୩
ନୃପତି କରନ୍ତେ ଶ୍ରବଣ । ସୁରୁଚି ଗର୍ବିତ ହୋଇଣ ॥ ୨୪
ସେ କଥା ସହି ନ ପାରିଲା । ଧ୍ରୁବକୁ ଏମନ୍ତ ବୋଇଲା ॥ ୨୫

ସୁରୁଚିରୁବାଚ

୧୧ ହେ ବତ୍ସ ! ନୃପତି-ଆସନ । ଚଢ଼ିବାକୁ ତୁ ଅଭାଜନ ॥ ୨୬
ଯେଉଁ ନ୍ୟାୟରୁ ତୋତେ ମୁହିଁ । ଉଦର ମଧ୍ୟେ ଧରି ନାହିଁ ॥ ୨୭
ପୁତ୍ର ହେଲେହେଁ ନୃପତିର । ଏ କଥା ନ କର ବିଚାର ॥ ୨୮
୧୨ ଅନ୍ୟ ଯୁବତୀର ଗର୍ଭରେ । ଜାତ ହୋଇଛି ଏ ପ୍ରକାରେ ॥ ୨୯
ଆମ୍ଭକୁ ନିଶ୍ଚୟେ ନ ଜାଣୁ । ଦୁର୍ଲଭ ବିଷୟରେ ତେଣୁ ॥ ୩୦
ବଳିଛି ମନୋରଥ ଯାର । ବାଳକ ଅଟୁ ତୁ କୁମର ॥ ୩୧
୧୩ ବିଷ୍ଣୁଙ୍କୁ ଆରାଧି ତପରେ । ତା' ଅନୁଗ୍ରହେ ମୋ ଉଦରେ ॥ ୩୨
ଜନମ ହୁଅ ତୁ ନନ୍ଦନ ! । ଯେବେ ବାଞ୍ଛୁଛୁ ରାଜାସନ ॥ ୩୩

ଶ୍ରୀମୈତ୍ରେୟ ଉବାଚ

୧୪ ମାତା ସପତ୍ନୀ ଦୁଷ୍ଟବାଣୀ । ତୀକ୍ଷଣ ଅଟେ ଶର ଜାଣି ॥ ୩୪
ସେ ଶରେ ହୋଇଛି ଭେଦିତ । ଦଣ୍ଡ-ଆଘାତରେ ଯେମନ୍ତ ॥ ୩୫

---

୧. ପ୍ରତିସର୍ଗ = ପ୍ରଳୟ ।

ରୋଷେ-ଉରଗ ଗର୍ଜୁଥାଇ । ସେ ରୂପେ ନିଃଶ୍ୱାସ ଛାଡ଼ଇ ॥ ୩୬
ପିତାହିଁ ମଉନ ହୋଇଣ । ଚାହାଁନ୍ତେ ତାହାଙ୍କୁ ଛାଡ଼ିଣ ॥ ୩୭
ରୋଦନ କରିଣ ମାତାର । ପାଶକୁ ଗଲା ସେ କୁମର ॥ ୩୮
୧୫ ଅଧର ଓଷ୍ଠକୁ କମ୍ପାଇ । ବାଳକ ନିଃଶ୍ୱାସ ପକାଇ ॥ ୩୯
ସୁନୀତି ତାହାକୁ ଆଣିଣ । ନିଜ କୋଳରେ ବସାଇଣ ॥ ୪୦
ସପତ୍ନୀ ଯେବଣ ଉତ୍ତର । ବୋଲିଛି ବାଳକ-ଆଗର ॥ ୪୧
ତା' ପୁରଜନମୁଖୁଁ ଶୁଣି । ବ୍ୟଥା ଲଭିଲା ସେ ତରୁଣୀ ॥ ୪୨
୧୬ ସେ ଶୋକଦାବାନଳେ ବାଳା । ବନଲତା ପ୍ରାୟେ ହେଲା ॥ ୪୩
କାନ୍ଦିଲା ଧୈର୍ଯ୍ୟ ଦୂର କରି । ସପତ୍ନୀବଚନ ସୁମରି ॥ ୪୪
ସରୋଜତାବୁନେତ୍ର ଯେହି । ବହିଲା ବାଷ୍ପକ୍ଲେଶ ତହିଁ ॥ ୪୫
୧୭ ଯେ ଦୁଃଖ ହୃଦେ ଜନମିଛି । ତାର ଅନ୍ତକୁ ନ ଦେଖୁଛି ॥ ୪୬
ଶ୍ୱାସ ପକାନ୍ତେ ଦୀର୍ଘ କରି । ଶିଶୁକୁ ବୋଇଲା ସେ ନାରୀ ॥ ୪୭
ଭୋ ତାତ ! ପରଠାରେ ପୁଣ । ଅପରାଧକୁ ତୁ ନ ଘେନ ॥ ୪୮
ଯେଣୁ ପରକୁ ଦୁଃଖ ଦେଇ । ସେ ଦୁଃଖ ଆପଣେ ଭୁଞ୍ଜଇ ॥ ୪୯
୧୮ ସୁରୁଚି-କହିଲା ବଚନ । ସତ୍ୟ ଅଟଇ ରେ ନନ୍ଦନ ॥ ୫୦
ଯେଣୁ ତୁ ଦୁର୍ଭଗା-ଉଦରେ । ଜନମ ହୋଇଲୁ ପୂର୍ବରେ[୧] ॥ ୫୧
ଦୁର୍ଭଗାସ୍ତନକ୍ଷୀରପାନେ । ବୃଦ୍ଧି ହୋଇଲୁ ଦିନେ ଦିନେ ॥ ୫୨
ଯାହାକୁ ଭାର୍ଯ୍ୟା ଏ ନୃପବର । ବୋଲି କରିବାକୁ ସ୍ୱୀକାର ॥ ୫୩
ଲଜ୍ଜାକୁ ଲଭେ ନିଜ ଚିତ୍ତେ । ଉତ୍ତାନପାଦ ମହୀପତି ॥ ୫୪
୧୯ ସପତ୍ନୀ ମାତ ଯେଉଁ ବାଣୀ । ଯଥାର୍ଥ କରି ଅଛି ଭଣି ॥ ୫୫
ଭୋ ତାତ । ହୋଇ ବିମତ୍ସର । ସେ କଥା କେବଳ ତୁ ଆଚର ॥ ୫୬
ବିଷ୍ଣୁର ଚରଣନଳିନ । ଭକ୍ତିରେ କର ଆରାଧନ ॥ ୫୭
ଯେବେ ଉତ୍ତମପ୍ରାୟ ହୋଇ । ରାଜା ଆସନ ବାଞ୍ଛୁ ତୁହି ॥ ୫୮
୨୦ ବିଶ୍ୱପାଳନ ଅର୍ଥେ କରି । ଯେ ସତ୍ତ୍ୱଗୁଣ ଅଛି ଧରି ॥ ୫୯
ଯାହାର ଚରଣନଳିନ । ବ୍ରହ୍ମା କରିଣ ଆରାଧନ ॥ ୬୦
ଲଭିଲା ସ୍ଥାନ ଅନୁପମ । ଯାହାର ପାରମେଷ୍ଠ୍ୟ ନାମ ॥ ୬୧
ଯେ ମନ-ପ୍ରାଣ ଜିଣିଛନ୍ତି । ସେ ଯେଉଁ ସ୍ଥାନକୁ ବାଞ୍ଛନ୍ତି ॥ ୬୨

---

୧. କର୍ମରେ ।

୨୧ ମନୁ ଯେ ପିତାମହ ତୋର । ଏକ ବୁଦ୍ଧିରେ ନିରନ୍ତର ॥ ୬୩
ବହୁତ ଦକ୍ଷିଣା ଯହିଁରେ । ଏମନ୍ତ ଯାଗମାନଙ୍କରେ ॥ ୬୪
ଯାହାକୁ ଆରାଧି ଲଭିଲା । ଭୂମିରେ ସୁଖ ଯେବା ଥିଲା ॥ ୬୫
ଯେ ସ୍ୱର୍ଗ-ଅପବର୍ଗୁଁ ଜାତ । ସେ ସୁଖ ଲଭିଲା ତୁରିତ ॥ ୬୬
୨୨ ଯେ ଭୃତ୍ୟବତ୍ସଳ ଈଶ୍ୱର । ହେ ବତ୍ସ ! ତାଙ୍କୁ ଆଶ୍ରେ କର ॥ ୬୭
ମୋକ୍ଷ ହେବାକୁ ଯେଉଁ ଜନେ । ବାଞ୍ଛା କରନ୍ତି ନିଜ ମନେ ॥ ୬୮
ଯା' ପାଦପଦ୍ମମାର୍ଗ ନିତି । ସେମାନେ ଖୋଜୁଣ ଅଛନ୍ତି ॥ ୬୯
ଯହିଁ ନ ଥିବ ଆନ ଭାବ । ନିଜ ଧର୍ମରେ ଶୁଦ୍ଧ ହେବ ॥ ୭୦
ସେ ହୃଦେ କରିଣ ସ୍ଥାପନ । ବିଷ୍ଣୁଙ୍କୁ କର ତୁ ଭଜନ ॥ ୭୧
୨୩ ତୋ ଦୁଃଖ କରିବ ଯେ ନାଶ । ହେ ବତ୍ସ ! ଏମନ୍ତ ପୁରୁଷ ॥ ୭୨
ସେ ପଦ୍ମପଲାଶଲୋଚନ । ବିନୁ ମୁଁ ନ ଦେଖୁଛି ଆନ ॥ ୭୩
ଯାହାକୁ ବ୍ରହ୍ମା ଆଦି ସୁରେ । ଖୋଜୁ ଅଛନ୍ତି ନିରନ୍ତରେ ॥ ୭୪
ସେ ଲକ୍ଷ୍ମୀ କରେ ପଦ୍ମ ଧରି । ଯାହାକୁ[୧] ଅଛି ଅନୁସରି ॥ ୭୫

ଶ୍ରୀମୈତ୍ରେୟ ଉବାଚ

୨୪ ଯହିଁରୁ କାର୍ଯ୍ୟ ହେବ ଜାତ । ଏ ରୂପେ କହନ୍ତେ ସେ ମାତ ॥ ୭୬
ତା' ବାକ୍ୟ ଶୁଣି ଏ ପ୍ରକାରେ । ଆପଣା ଆତ୍ମାକୁ ମନରେ ॥ ୭୭
ସଂଯତ କରିଣ ପିତାର । ପୁରରୁ ହୋଇଲା ବାହାର ॥ ୭୮
୨୫ ନାରଦ ସେ କଥାକୁ ଶୁଣି । ଏହା କରିବା[୨] କଥା ଜାଣି ॥ ୭୯
ପାପନାଶନ ନିଜ କର । ଲଗାଇ ବାଳକର ଶିର ॥ ୮୦
ବିସ୍ମୟ ହୋଇ ନିଜ ମନ । ବୋଇଲେ ଏମନ୍ତ ବଚନ ॥ ୮୧
୨୬ ଆପଣା ମାନଭଙ୍ଗ ଯେହି । କେବେହେଁ ନ ପାରନ୍ତି ସହି ॥ ୮୨
କ୍ଷତ୍ରିୟମାନଙ୍କର ତେଜ । ଅତି ଆଶ୍ଚର୍ଯ୍ୟ ଅଟେ ଆଜ ॥ ୮୩
ଯେବଣ ଦୁଷ୍ଟ ବାକ୍ୟ ପୁଣି । ମାତା ସପତ୍ନୀ ଅଛି ଭଣି ॥ ୮୪
ସେ ବାକ୍ୟ ବାଳକ ହୋଇଣ । ଅଛି ଏ ହୃଦରେ ଧରିଣ ॥ ୮୫

ଶ୍ରୀନାରଦ ଉବାଚ

୨୭ ହେ ପୁତ୍ର ଅଟୁ ତୁ କୁମାର । କ୍ରୀଡ଼ା ଆଦିରେ ତତପର ॥ ୮୬
ତୋର ଏକାଳେ ଅବମାନ । ଲକ୍ଷିତ ନୋହେ ସମ୍ମାନନ ॥ ୮୭

---

୧. ତାହାକୁ । ୨. କହିବା । ତୁଂ (ଚିକୀର୍ଷିତମ୍)

| | | | |
|---|---|---|---|
| ୨୮ | ଏ ମାନ ଏହୁ ଅପମାନ । | ଥିଲେହେଁ ଏ ବିବେକଜ୍ଞାନ | ॥ ୮୮ |
| | ମୋହ ବିହୁନେ ମନୁଷ୍ୟର । | କେ ଅସନ୍ତୋଷ ହେତୁ ଆର | ॥ ୮୯ |
| | ଯେ ସୁଖ ଦୁଃଖ ନାମେ ଦୁଇ । | ନିଜ କର୍ମରେ ସେ ହୁଅଇ | ॥ ୯୦ |
| ୨୯ | ହେ ତାତ ! ବୁଧ ଯେଉଁ ନର । | ଗତିକି ଦେଖି ଈଶ୍ୱରର | ॥ ୯୧ |
| | ଦଇବବଶେ ଯେ ମିଳିବ । | ତେତେମାତ୍ରକେ ତୋଷ ହେବ | ॥ ୯୨ |
| ୩୦ | ଏବେ ଜନନୀ-କହିଲାର । | ଉପାୟେ ପ୍ରସାଦକୁ ଯାର | ॥ ୯୩ |
| | ଲଭିବା ପାଇଁ ବାଞ୍ଛୁ ଚିତ୍ତେ । | ଦୁଃସାଧ୍ୟ ଅଟେ ସେ ଜଗତେ | ॥ ୯୪ |
| ୩୧ | ଅସଙ୍ଗ-ତୀବ୍ର-ଯୋଗ-ଯୁତ । | ଯେଉଁ ସମାଧି ଅବିରତ | ॥ ୯୫ |
| | ଖୋଜନ୍ତେ ସେହୁ ସମାଧିରେ । | ଅନେକ ଜନମ-ଅନ୍ତରେ | ॥ ୯୬ |
| | ମୁନିଏ ମାର୍ଗକୁ ଯାହାର । | କରି ନ ପାରିଲେ ଗୋଚର | ॥ ୯୭ |
| ୩୨ | ନିବର୍ତ୍ତୁ ଏ ନିର୍ବନ୍ଧ ଏଣୁ । | ବିଫଳ ଅଟଇ ଏ ଯେଣୁ | ॥ ୯୮ |
| | ବୃଦ୍ଧ-ବୟସ-ପ୍ରବେଶରେ । | ଯତ୍ନ କରିବୁ ସେ କଥାରେ | ॥ ୯୯ |
| ୩୩ | ସୁଖଦୁଃଖର ମଧ୍ୟେ ଯାର । | ବିଧିଭିଆଣ ଯେ ପ୍ରକାର | ॥୧୦୦ |
| | ସୁଖରେ ପୁଣ୍ୟ କ୍ଷୟ ହୋଇ । | ଦୁଃଖରେ ପାପ ନାଶ ଯାଇ | ॥୧୦୧ |
| | ଏ ରୂପେ ତୋଷନ୍ତେ ଆତ୍ମାକୁ । | ମନୁଷ୍ୟ ଲଭଇ ମୋକ୍ଷକୁ | ॥୧୦୨ |
| ୩୪ | ଗୁଣେ ଅଧିକ ଯେ ମାନବ । | ତାହାକୁ ଦେଖି ତୋଷ ହେବ | ॥୧୦୩ |
| | ଗୁଣବିହୀନ ଲୋକଠାରେ । | କରୁଣା କରିବ ମନରେ | ॥୧୦୪ |
| | ଗୁଣେ ସମାନ ଯେଉଁ ନର । | ମିତ୍ର ହୁଅନ୍ତେ ତା' ସଙ୍ଗର | ॥୧୦୫ |
| | ଏ ରୂପେ ଯେବେ ଥାଇ ଜନ । | ବାଧନ୍ତି ନାହିଁ ତାପମାନ | ॥୧୦୬ |

ଶ୍ରୀଧ୍ରୁବ ଉବାଚ

| | | | |
|---|---|---|---|
| ୩୫ | ସୁଖ ଦୁଃଖରେ ନିରନ୍ତର । | ଆତ୍ମା ପୀଡ଼ିତ ଯାହାଙ୍କର | ॥୧୦୭ |
| | ସେ ପ୍ରାଣୀମାନଙ୍କୁ କୃପାରେ । | ଶାନ୍ତି କହିଲ ଏ ପ୍ରକାରେ | ॥୧୦୮ |
| | ଆମ୍ଭର ପ୍ରାୟେ ଲୋକ ଯେହି । | ତାଙ୍କୁ ଅଗମ୍ୟ ଅଟେ ସେହି | ॥୧୦୯ |
| ୩୬ | କ୍ଷତ୍ରସ୍ୱଭାବ ଅଟେ ଘୋର । | ଲଭି ବିନୟ ନାହିଁ ମୋର | ॥୧୧୦ |
| | ସୁରୁଚି ଦୁର୍ବଚନ-ଶର । | ତେଣେ ଫାଟିଛି ହୃଦ ମୋର | ॥୧୧୧ |
| | ସେ ହୃଦେ ଏ ତୁମ୍ଭ ବଚନ । | କେବେହେଁ ନ ଲଭୁଛି ସ୍ଥାନ | ॥୧୧୨ |
| ୩୭ | ହେ ବିପ୍ର ! ଆମ୍ଭ ପିତୃମାନେ । | ଲଭି ନାହାନ୍ତି ଯାହା ଆନେ | ॥୧୧୩ |
| | ତିନି ଭୁବନରେ ଯେ ସାର । | ସେ ସ୍ଥାନ ଜିଣି ବାଞ୍ଛା ମୋର | ॥୧୧୪ |
| | ତହିଁକି ସାଧୁ ମାର୍ଗ ଯେହି । | ମୋତେ ସେ କଥା ଦିଅ କହି | ॥୧୧୫ |

| | | | | |
|---|---|---|---|---|
| ୩୮ | ବ୍ରହ୍ମାର ଅଙ୍ଗୁଁ ତୁମ୍ଭେ ଜାତ | । | ବୀଣା ବଜାନ୍ତେ ଅବିରତ | ॥୧୧୬ |
| | ସୂର୍ଯ୍ୟର ପ୍ରାୟେ ଜଗତର | । | ହିତେ ଭ୍ରମଣ ତୁମ୍ଭେ କର | ॥୧୧୭ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୩୯ | ଏ ରୂପେ ବାଳକ ବଚନ | । | ଶୁଣି ନାରଦ ତୋଷ ମନ | ॥୧୧୮ |
| | କୃପାରେ ବାଳକକୁ ପୁଣି | । | ପ୍ରକାଶ କଲେ ସାଧୁ ବାଣୀ | ॥୧୧୯ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୪୦ | ମାତା କହିଛି ଯାହା ତୋର | । | ବାଞ୍ଛିଲା ଅର୍ଥକୁ ସେ ଦ୍ୱାର | ॥୧୨୦ |
| | ଯେ ବାସୁଦେବ ଭଗବାନ | । | ତା'ଠାରେ ବଶ ଯେଉଁ ମନ | ॥୧୨୧ |
| | ସେ ମନ ନିବେଶି ତା'ଠାର | । | ଭଜ ତୁ ତାଙ୍କୁ ନିରନ୍ତର | ॥୧୨୨ |
| ୪୧ | ଧର୍ମାର୍ଥ-କାମ-ମୋକ୍ଷ ନାମ | । | ଆପଣା ଶ୍ରେୟ ଏ ଉତ୍ତମ | ॥୧୨୩ |
| | ଏହା ବାଞ୍ଛିବ ଯେଉଁ ଜନ | । | ହରିର ଚରଣସେବନ | ॥୧୨୪ |
| | ଏକ ହୋଇଣ ସେ କଥାରେ | । | କାରଣ ଅଟଇ ସଂସାରେ | ॥୧୨୫ |
| ୪୨ | ବାବୁ ! ମଙ୍ଗଳ ହେଉ ତୋର | । | ଯେ ଶୁଦ୍ଧ ତଟ ଯମୁନାର | ॥୧୨୬ |
| | ନାମ ତାହାର ମଧୁବନ | । | ପୁଣ୍ୟଦ ଅଟଇ ସେ ସ୍ଥାନ | ॥୧୨୭ |
| | ଯହିଁ ସର୍ବଦା ହରି ସ୍ଥିତ | । | ତହିଁକି ଯାଅ ତୁ ତୁରିତ | ॥୧୨୮ |
| ୪୩ | ସେ ପୁଣ୍ୟ କାଳିନ୍ଦୀସଲିଳେ | । | ସ୍ନାନ କରିଣ ତିନିକାଳେ | ॥୧୨୯ |
| | କରି ଉଚିତ କର୍ମମାନ | । | କଳ୍ପିଣ ଆପଣା ଆସନ | ॥୧୩୦ |
| ୪୪ | ପ୍ରାଣ-ଇନ୍ଦ୍ରିୟ-ମନସ୍ଥିତ | । | ଚଞ୍ଚଳ ଭାବ ଯେ ସତତ | ॥୧୩୧ |
| | ତ୍ରିବୃତ ପ୍ରାଣାୟାମ କରି | । | କ୍ରମରେ ତାହାକୁ ନିବାରି | ॥୧୩୨ |
| | ସ୍ଥିର ଅଟଇ ଯେଉଁ ମନ | । | ତେଣେ ବିଷ୍ଣୁଙ୍କୁ କର ଧ୍ୟାନ | ॥୧୩୩ |
| ୪୫ | ନିତ୍ୟେ ପ୍ରସାଦ ଅଭିମୁଖ | । | ପ୍ରସନ୍ନ ଅଟେ ନେତ୍ର, ମୁଖ | ॥୧୩୪ |
| | ଯାହାର ଅଟନ୍ତି ମଞ୍ଜୁଳ | । | ନାସିକା, ଭ୍ରୂଲତା, କପୋଳ | ॥୧୩୫ |
| | ଦେବତାମାନଙ୍କ ମଧ୍ୟରେ | । | ଯେହୁ ସୁନ୍ଦର ରୂପ ଧରେ | ॥୧୩୬ |
| ୪୬ | ତରୁଣ, ସୁନ୍ଦର ଶରୀର | । | ଅରୁଣ ଓଷ୍ଠ ନେତ୍ରାଧର | ॥୧୩୭ |
| | ପ୍ରଣତାଶ୍ରୟ, ସୁଖକର | । | ଶରଣ୍ୟ[୧] କରୁଣାସାଗର | ॥୧୩୮ |

---

୧. ଶରଣ୍ୟ

୪୭ ଶ୍ରୀବତ୍ସାଙ୍କିତ ଘନଶ୍ୟାମ । ପୁରୁଷଲକ୍ଷଣେ ଉତ୍ତମ ॥୧୩୯
ଶଙ୍ଖ, ସୁଦରଶନ, ଗଦା । ପଦ୍ମରେ ବ୍ୟକ୍ତ ହୋଇ ସଦା ॥୧୪୦
ଶୋଭଇ ଚାରି ଭୁଜ ଯାର । ବନମାଳାରେ ଶୋହେ ଉର ॥୧୪୧
୪୮ କିରୀଟ, କୁଣ୍ଡଳ, କେୟୁର । ବଳୟେ ଅନ୍ୱିତ ଶରୀର ॥୧୪୨
କୌସ୍ତୁଭଭୂଷା ଗଳେ ଯାର । ପୀତ-କୌଶେୟବସ୍ତ୍ରଧର ॥୧୪୩
୪୯ କାଞ୍ଚୀଭୂଷଣରେ ଭୂଷିତ । କାଞ୍ଚନନୂପୁରେ ଶୋଭିତ ॥୧୪୪
ପ୍ରଶାନ୍ତ, ଅତ୍ୟନ୍ତ ସୁନ୍ଦର । ମନନୟନ ସୁଖକର ॥୧୪୫
୫୦ ଯେ ନଖମଣିସମୂହରେ । ଶୋଭା ଦିଶଇ ନିରନ୍ତରେ ॥୧୪୬
ସେ ପାଦଯୁଗେ ଆକ୍ରମିଣ । ହୃଦୟପଦ୍ମମଧ୍ୟ ପୁଣ ॥୧୪୭
ପୂଜିଲା ଲୋକଙ୍କର ଚିତ୍ତ । ମଧ୍ୟରେ ହୋଇଛନ୍ତି ସ୍ଥିତ ॥୧୪୮
୫୧ ମନ୍ଦ ଅଟଇ ହାସ ଯାର । ବରଦମଧ୍ୟେ ଯେହୁ ସାର ॥୧୪୯
ଯାହାର ସାନୁରାଗ ହୋଇ । ଅବଲୋକନ ଶୋଭା ପାଇ ॥୧୫୦
ସୁସ୍ଥିର, ଏକାଗ୍ର ଯେ ମନ । ତେଣେ କରିବ ତାଙ୍କୁ ଧ୍ୟାନ ॥୧୫୧
୫୨ ବିଷ୍ଣୁର ରୂପ ସୁଶୋଭନ । ଏ ରୂପେ କରନ୍ତି ଯେ ଧ୍ୟାନ ॥୧୫୨
ସେ ଲୋକମାନଙ୍କର ଚିତ୍ତ । ପରମ ସୁଖରେ ତୁରିତ ॥୧୫୩
ସଂପନ୍ନ ଭାବକୁ ଭଜଇ । ସେ ଧ୍ୟାନୁଁ ନିବର୍ତ୍ତଇ ନାହିଁ ॥୧୫୪
୫୩ ଯେ ଜପ ପରମ ଗୋପିତ । ଶୁଣ ମୋ'ଠାରୁ ନୃପସୁତ ! ॥୧୫୫
ଯାହାକୁ ସାତ ରାତ୍ର ନର । ଜପ କରନ୍ତେ ତତପର ॥୧୫୬
ଖେଚରମାନଙ୍କୁ ଅଗ୍ରତ । ଲୋଚନେ ଦେଖଇ ସାକ୍ଷାତ ॥୧୫୭
୫୩(କ) ପ୍ରଣବ ବୋଲି ପୂର୍ବଗତେ । ତଦନ୍ତେ ନମୋ ଭଗବତେ ॥୧୫୮
ବାସୁଦେବାୟ ଶବ୍ଦ ପୁଣ । ଏ ଜପମନ୍ତ୍ର ଅଟେ ଶୁଣ ॥୧୫୯
୫୪ ଯେ ବୁଧ ଦେଶକାଳଙ୍କର । ବିଭାଗ କରଇ ଗୋଚର ॥୧୬୦
ଏ ମନ୍ତ୍ର ବିବିଧ ଦ୍ରବ୍ୟରେ । ବିଷ୍ଣୁର ପୂଜା ସେ ଆଚରେ ॥୧୬୧
୫୫ ବିଶୁଦ୍ଧ ଜଳରେ, ମାଲ୍ୟରେ । ବନର ଫଳମୂଳାଦିରେ ॥୧୬୨
ଦିବ୍ୟ[୧] ଅଙ୍କୁର ମାନଙ୍କରେ । ବସନେ[୨], ପ୍ରିୟ ତୁଳସୀରେ ॥୧୬୩
ବିଭୁଙ୍କୁ କରିବ ପୂଜନ । ଭକ୍ତି ଭାବରେ ଅନୁଦିନ ॥୧୬୪

---

"ଓଁ ନମୋ ଭଗବତେ ବାସୁଦେବାୟ" ଇତି ମନ୍ତ୍ର ।
୧. ଦୂର୍ବା । ୨. ଭୁଜବଲ୍କଳାଦି ।

| | | | | |
|---|---|---|---|---|
| ୫୬ | ପାଷାଣ ଆଦି ପ୍ରତିମାରେ | । | ପୂଜାକୁ ସଂପାଦି ଯତ୍ନରେ | ॥୧୬୫ |
| | କ୍ଷିତି-ସଲିଳ ଆଦି ସ୍ଥାନେ | । | ପୂଜଇ ମୁନି ଯତ୍ନମନେ | ॥୧୬୬ |
| | ବନସଂଭବ ଫଳମାନ | । | ଅଳପ କରଇ ଭୋଜନ | ॥୧୬୭ |
| | ନିତ୍ୟେ ପ୍ରଶାନ୍ତ ହୋଇଥାଇ | । | ବଚନ ସଂଯତ କରଇ | ॥୧୬୮ |
| ୫୭ | ନିଜ ଇଚ୍ଛାରେ ଭଗବାନ | । | ଧରିଣ ଅବତାରମାନ | ॥୧୬୯ |
| | ସେ ଅବତାରଙ୍କ ଚରିତେ | । | ନିଜ ମାୟାରେ ଏ ଜଗତେ | ॥୧୭୦ |
| | କରିବେ ଯେବଣ ବିଧାନ | । | ସେ ରମ୍ୟ କଥା କରେ ଧ୍ୟାନ | ॥୧୭୧ |
| ୫୮ | ବିଷ୍ଣୁର ପରିଚର୍ଯ୍ୟାମାନ | । | କର୍ତ୍ତବ୍ୟରୂପେ ଯେ ବିଧାନ | ॥୧୭୨ |
| | ଦ୍ୱାଦଶାକ୍ଷର-ମନ୍ତ୍ର ନେଇ | । | ମନ୍ତ୍ରମୂର୍ତ୍ତିରେ ତା' ଅର୍ପଇ | ॥୧୭୩ |
| ୫୯ ୬୦ } | ଏମନ୍ତ ରୂପେ ଭକ୍ତିଯୁତ | । | ପରିଚର୍ଯ୍ୟାରେ ଅବିରତ | ॥୧୭୪ |
| | କାୟରେ, ମନ-ବଚନରେ | । | ସେବନ୍ତେ ବିଷ୍ଣୁଙ୍କୁ ଶ୍ରଦ୍ଧାରେ | ॥୧୭୫ |
| | ଅମାୟାବନ୍ତ ଯେଉଁ ଜନ | । | କରନ୍ତି ଉତ୍ତମ ଭଜନ | ॥୧୭୬ |
| | ସେ ଧର୍ମେ, ଅର୍ଥରେ, କାମରେ | । | ଯାହା ବାଞ୍ଛନ୍ତି ମାନସରେ | ॥୧୭୭ |
| | ସେ କଥା କରନ୍ତି ପ୍ରଦାନ | । | ଭାବବର୍ଦ୍ଧନ ଭଗବାନ | ॥୧୭୮ |
| ୬୧ | ଇନ୍ଦ୍ରିୟସୁଖେ ବିରକତ | । | ଭଗତିଯୋଗରେ ଭଗତ | ॥୧୭୯ |
| | ତାଙ୍କୁ ନିରନ୍ତର ଭାବରେ | । | ଭଜଇ ମୁକତି-ଅର୍ଥରେ | ॥୧୮୦ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୬୨ | ନାରଦ ଏମନ୍ତ ବଚନ | । | କହନ୍ତେ ନୃପତିନନ୍ଦନ | ॥୧୮୧ |
| | ତାହାଙ୍କୁ କରି ପ୍ରଦକ୍ଷିଣ | । | ପ୍ରଣାମ କରି ପୁଣ ପୁଣ | ॥୧୮୨ |
| | ବିଷ୍ଣୁର ଚରଣେ ମଣ୍ଡିତ | । | ଯେ ପୁଣ୍ୟ ମଧୁବନ ଖ୍ୟାତ | ॥୧୮୩ |
| | ତହିଁକି କଲା ସେ ଗମନ | । | ବିଷ୍ଣୁରଠାରେ ଦେଇ ମନ | ॥୧୮୪ |
| ୬୩ | ଶୁଣି ନାରଦର ବଚନ | । | ଧ୍ରୁବ ଗମନ୍ତେ ତପୋବନ | ॥୧୮୫ |
| | ମୁନି ମିଳିଲେ ଅନ୍ତଃପୁର | । | ଅର୍ଘ୍ୟାଦି ଦେଇ ନୃପବର | ॥୧୮୬ |
| | ଉତ୍ତମ କରିଣ ପୂଜିଲେ | । | ସୁଖରେ ବସିଣ ବୋଇଲେ | ॥୧୮୭ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୬୪ | ହେ ରାଜା ! ଶୁଖିଛି ବଦନ | । | କରୁଛୁ ଅତିଶୟ ଧ୍ୟାନ | ॥୧୮୮ |
| | ଅର୍ଥରେ ହୋଇଣ ସଂଯୁତ | । | କାମ, ଧର୍ମ କି ହେଲା ହତ | ॥୧୮୯ |

ଶ୍ରୀରାଜୋବାଚ

୬୫　ହେ ବିପ୍ର ! ସ୍ତ୍ରୀଲମ୍ପଟ ମୁହିଁ　।　କରୁଣା ମୋର ହୃଦେ ନାହିଁ　॥୧୯୦
ପାଞ୍ଚବରଷ ମୋର ସୁତ　।　ଅଟଇ ଅତି ଜ୍ଞାନଯୁତ　॥୧୯୧
ମାତା ସହିତେ ତାକୁ ମୁହିଁ　।　ଛାଡ଼ିଲି ଅବିବେକ ହୋଇ　॥୧୯୨
୬୬　ହେ ବିପ୍ର ! ଅନାଥ ହୋଇଣ　।　ବନେ କରନ୍ତେ ସେ ଭ୍ରମଣ　॥୧୯୩
ମୁଖପଙ୍କଜ ଶୁଖି ଯାଇ　।　ଶ୍ରମେ କ୍ଷୁଧାରେ ଥିବ ଶୋଇ　॥୧୯୪
ହିଂସକ ଯେଉଁ ବନଜୀବେ　।　ତାହାକୁ ନିକି ନ ଖାଇବେ　॥୧୯୫
୬୭　ସ୍ତ୍ରୀବଶ ଅଟଇ ମୁଁ ପୁଣ　।　ମୋହର ଦୁଷ୍ଟ ଭାବ ଜାଣ　॥୧୯୬
ବାଳକ କୋଡ଼କୁ ସ୍ନେହରେ　।　ଚଢ଼ିଣ ବାଞ୍ଛନ୍ତେ ମନରେ　॥୧୯୭
ତାକୁ ନ ପାଇଲି ଆନନ୍ଦ　।　ଏଣୁ ମୁଁ ଅତିଶୟ ମନ୍ଦ　॥୧୯୮

ଶ୍ରୀନାରଦ ଉବାଚ

୬୮　ହେ ନୃପ ! ଦେବତାପାଳିତ　।　ଅଟଇ ଯେଉଁ ନିଜ ସୁତ　॥୧୯୯
ତାହାର ପ୍ରଭାବ ନ ଜାଣି　।　ଶୋକ ନ କର ତାକୁ ପୁଣି　॥୨୦୦
ଯାହାର ଯଶ ଏ ଜଗତ　।　ପୂର୍ଣ୍ଣ କରିବ ଅବିରତ　॥୨୦୧
୬୯　ଇନ୍ଦ୍ରାଦି ଲୋକପାଳଙ୍କର　।　ଯେବଣ କର୍ମ ସୁଦୁଷ୍କର　॥୨୦୨
ସେ କର୍ମ କରିଣ ତୋହର　।　କୀର୍ତ୍ତିକି କରନ୍ତେ ବିସ୍ତାର　॥୨୦୩
ଏହି ନିକଟେ ହେ ରାଜନ　।　ଆସିବ ତୋହର ନନ୍ଦନ　॥୨୦୪

ଶ୍ରୀମୈତ୍ରେୟ ଉବାଚ

୭୦　ଏ ରୂପେ ନାରଦ-ବଚନ　।　ଶ୍ରବଣ କରିଣ ରାଜନ　॥୨୦୫
ଯେ ରାଜଲକ୍ଷ୍ମୀ ଆପଣାର　।　ତାହାକୁ କରି ଅନାଦର　॥୨୦୬
ପୁତ୍ରକୁ କଲାକ ଚିନ୍ତନ　।　ଧ୍ରୁବ ଯେ ଗଲା ମଧୁବନ　॥୨୦୭
୭୧　ତହିଁ ଯତ୍ନରେ ସ୍ନାନ ସାରି　।　ସେ ରାତ୍ର ଉପବାସ କରି　॥୨୦୮
ଋଷି ଆଦେଶେ ସ୍ଥିର ମନ　।　ବିଷ୍ଣୁଙ୍କୁ କଲାକ ପୂଜନ　॥୨୦୯
୭୨　ତ୍ରିରାତ୍ର ତ୍ରିରାତ୍ର ଶେଷରେ　।　ଆପଣା ବୃତ୍ତି-ଅନୁସାରେ　॥୨୧୦
କପିତ୍ଥ, ବଦର ଖାଇଲା　।　ବିଷ୍ଣୁଙ୍କୁ ପୂଜି ମାସେ ନେଲା　॥୨୧୧
୭୩　ଛ'ଦିନ ଛ ଦିନରେ ଶୀର୍ଣ୍ଣ[୧]　।　ତୃଣ ପତ୍ରାଦି କରି ଅନ୍ନ　॥୨୧୨
ବିଷ୍ଣୁଙ୍କୁ ହରଷେ ପୂଜିଲା　।　ଦ୍ୱିତୀୟ ମାସ ଶେଷ କଲା　॥୨୧୩

---
୧.　ଜୀର୍ଣ୍ଣ ।

୭୪ ନବମ ନବମ ଦିନରେ । ଜଳ ଭକ୍ଷନ୍ତେ ସମାଧିରେ ॥୨୧୪
ଭଜିଲା ଉତ୍ତମଶ୍ଳୋକଙ୍କୁ । ନିଅନ୍ତେ ତୃତୀୟ ମାସକୁ ॥୨୧୫
୭୫ ଦ୍ୱାଦଶ ଦ୍ୱାଦଶ ଦିବସେ । ବାୟୁ ଭକ୍ଷିଣ ଜିତଶ୍ୱାସେ ॥୨୧୬
ବିଷ୍ଣୁଙ୍କୁ କରନ୍ତେ ସେ ଧ୍ୟାନ । ଚତୁର୍ଥ ମାସ କଲା ପୂର୍ଣ୍ଣ ॥୨୧୭
୭୬ ପଞ୍ଚମ ମାସ ପ୍ରବେଶରେ । ଶ୍ୱାସକୁ ଜିଣିଣ ଯୋଗରେ ॥୨୧୮
ବ୍ରହ୍ମକୁ ନୃପତିନନ୍ଦନ । କରନ୍ତେ ଅବିରତେ ଧ୍ୟାନ ॥୨୧୯
ସ୍ଥାଣୁପ୍ରାୟ ନିଶ୍ଚଳ ହୋଇ । ରହିଲା ଏକପାଦେ ତହିଁ ॥୨୨୦
୭୭ ଶବ୍ଦାଦି ଇନ୍ଦ୍ରିୟ ଯହିଁରେ । ରହିଅଛନ୍ତି ସେ ମନରେ ॥୨୨୧
କରନ୍ତେ ବିଷ୍ଣୁରୂପ ଧ୍ୟାନ । ଓଟାରି ସବୁଠାରୁ ମନ ॥୨୨୨
ସେ ବିଷ୍ଣୁରୂପ ବିନୁ ଆନି । ନ କଲା କିଛି ବିଲୋକନ ॥୨୨୩
୭୮ ମହତ ଆଦିଙ୍କ ଆଧାର । ପ୍ରଧାନପୁରୁଷ-ଈଶ୍ୱର ॥୨୨୪
ଯେ ବ୍ରହ୍ମ ଅଟନ୍ତି ଏସନ । ତାହାଙ୍କୁ କରନ୍ତେ ସେ ଧ୍ୟାନ ॥୨୨୫
ସହି ନ ପାରି ତେଜ ତାର । କମ୍ପିତ ହେଲେ ତିନିପୁର ॥୨୨୬
୭୯ ଯେତେବେଳେ ସେ ନୃପସତ । ଏକ ପାଦରେ ହେଲା ସ୍ଥିତ ॥୨୨୭
ତାର ଅଙ୍ଗୁଷ୍ଠେ ପୀଡ଼ା ପାଇ । ଧରଣୀ ଅର୍ଦ୍ଧେ ଗଲା ଲଇଁ ॥୨୨୮
ନିଶ୍ଚଳେ ନଉକା ଉପର । ସ୍ଥିତ ହୁଅନ୍ତେ କରିବର ॥୨୨୯
ପଦେ ପଦେକେ ସେ ଯେସନ । ବାମେ ଦକ୍ଷିଣେ ହୁଏ ନ୍ୟୂନ ॥୨୩୦
୮୦ ନିରୋଧ କରି ନିଜ ପ୍ରାଣ । ପ୍ରାଣର ଦ୍ୱାରକୁ ରୁନ୍ଧିଣ ॥୨୩୧
ଆତ୍ମାରୁ ଅଭେଦ ବୁଦ୍ଧିରେ । ବିଷ୍ଣୁଙ୍କୁ ଧ୍ୟାୟନ୍ତେ ତହିଁରେ ॥୨୩୨
ନିଃଶ୍ୱାସନିରୁଦ୍ଧ ହୋଇଣ । ଅତ୍ୟନ୍ତ ପୀଡାକୁ ପାଇଣ ॥୨୩୩
ସଲୋକପାଳ ଲୋକଗଣ । ବିଷ୍ଣୁଙ୍କୁ ଗଲେ ସେ ଶରଣ ॥୨୩୪

ଶ୍ରୀଦେବା ଊଚୁଃ

୮୧ ହେ ବିଷ୍ଣୁ ! ଏ ଚରାଚରର । ସକଳ ପ୍ରାଣୀମାନଙ୍କର ॥୨୩୫
ପ୍ରାଣନିରୋଧ ଏ ପ୍ରକାର । କେବେହେଁ ନ କଲୁଁ ଗୋଚର ॥୨୩୬
ଆମ୍ଭର କ୍ଳେଶରୁ ମୋଚଣ । ବିଧାନ କର ତୁମ୍ଭେ ପୁଣ ॥୨୩୭
ତୁମ୍ଭେ ଯେ ଶରଣ ରକ୍ଷଣ । ତୁମ୍ଭଙ୍କୁ ପଶିଲୁଁ ଶରଣ ॥୨୩୮

ଶ୍ରୀଭଗବାନୁବାଚ

୮୨ ଭୟ ନ ପାଅ ତୁମ୍ଭେ କେହି । ଗୃହେ ପ୍ରବେଶ ହୁଅ ଯାଇଁ ॥୨୩୯
ଦୁସ୍ତର ତପରୁ ବାଳକୁ । ନିବର୍ତ୍ତାଇବି ଆଜ ତାକୁ ॥୨୪୦

ଯାହାର ସକାଶୁଁ ତୁମ୍ଭର । ପ୍ରାଣନିରୋଧ ବଳିୟାର ॥୨୪୧
ମୋʼଠାରେ ଲଭି ଏକଭାବ । ରହିଣ ଅଛି ସେହୁ ଧ୍ରୁବ ॥୨୪୨
ବୋଲଇ ବିପ୍ର ଦୀନବନ୍ଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥୨୪୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀ ଧ୍ରୁବଚରିତେ
ଅଷ୍ଟମୋଽଧ୍ୟାୟଃ ॥

## ନବମୋଽଧ୍ୟାୟଃ

ନବମେ ତୁ ହରିଂ ସ୍ତୁତ୍ୱା ଲବ୍ଧ୍ୱା ତସ୍ମାଦ୍ ବରାନ୍ ଧ୍ରୁବଃ ।
ପ୍ରତ୍ୟାଗତ୍ୟାକରୋଦ୍ ରାଜ୍ୟଂ ପିତ୍ରା ଦତ୍ତମିତୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ ବିଷ୍ଣୁର ବଚନେ । ନିର୍ଭୟ ହୋଇଲେ ସେମାନେ ॥ ୧
ବିଷ୍ଣୁଚରଣେ ନମସ୍କାର । କରି ଚଳିଲେ ସ୍ୱର୍ଗପୁର ॥ ୨
ଗରୁଡ଼ ଉପରେ ଆସନ । କରି ତଦନ୍ତେ ଭଗବାନ ॥ ୩
ଭୃତ୍ୟକୁ ଦେଖିବା ଇଚ୍ଛାରେ । ମିଳିଲେ ମଧୁବିପିନରେ ॥ ୪
୨ ଯୋଗମାର୍ଗରେ ଦୃଢ଼ଭାବେ । ନିଶ୍ଚଳ ଅଟେ ଯେ ସ୍ୱଭାବେ ॥ ୫
ସେ ଧ୍ରୁବ ଏମନ୍ତ ମତିରେ । ହୃଦୟ-ପଙ୍କଜକୋଷରେ ॥ ୬
ତଡ଼ିତ ପ୍ରାୟ ଶୋଭମାନ । ସ୍ଫୁରୁଥିଲେ ଯେ ଭଗବାନ ॥ ୭
ସେ ଗଲେ ଅନ୍ତର୍ଧାନ ହୋଇ । ଏମନ୍ତ ଦେଖି ବ୍ୟଥା ପାଇ ॥ ୮
ଲୋଚନ ଫିଟାନ୍ତେ ବାହାରେ । ଦେଖିଲେ ସେହି ସ୍ୱରୂପରେ ॥ ୯
୩ ତାହାଙ୍କ ଦରଶନେ ତାର । ଭୟ ଉପୁଜିଲା ମନର ॥ ୧୦
ପିଇବା ପ୍ରାୟକ ନିର୍ଭରେ । ଚାହାଁନ୍ତେ ଲୋଚନଯୁଗରେ ॥ ୧୧
ମୁଖେ କି କରଇ ଚୁମ୍ବନ । ଭୁଜେ କି କରେ ଆଲିଙ୍ଗନ ॥ ୧୨
କ୍ଷିତିରେ ଦଣ୍ଡପ୍ରାୟ ହୋଇ । ନମିଲା ଅଙ୍ଗକୁ ଲୁଆଇଁ ॥ ୧୩
୪ ହରିର ଗୁଣକର୍ମମାନ । କହିବି ବୋଲି ବାଞ୍ଛେ ମନ ॥ ୧୪
କହି ନ ଜାଣି କରଯୁଗ । ଯୋଡ଼ିଣ ରହିଅଛି ଆଗ ॥ ୧୫
ସକଳଜନହୃଦେ ସ୍ଥିତ । ସେ ହରି ଜାଣିଣ ଏମନ୍ତ ॥ ୧୬
ବ୍ରହ୍ମଶଙ୍ଖରେ କପୋଳରେ । ଶିଶୁକୁ ଛୁଇଁଲେ କୃପାରେ ॥ ୧୭

୫ ସେ କାଳେ ଈଶ୍ୱରନିର୍ମାଣ । ବେଦବଚନ ଜାଣି ପୁଣ ॥ ୧୮
ଜୀବ-ପରମ ଆତ୍ମାଙ୍କର । ନିର୍ଣ୍ଣୟ କରିଣ ଗୋଚର ॥ ୧୯
ଯେଉଁ ବିଷ୍ଣୁର ମହାଯଶ । ଜଗତେ ହୋଇଛି ପ୍ରକାଶ ॥ ୨୦
ତାହାଙ୍କୁ କଲା ସେ ଗାୟନ । ଧ୍ରୁବ ହୋଇବ ଯାର ସ୍ଥାନ ॥ ୨୧
ଭକ୍ତିରେ ପ୍ରେମ ଅଛି ତାର । ସ୍ତୁତିରେ ନୋହିଛି ସତ୍ୱର ॥ ୨୨

ଶ୍ରୀଧ୍ରୁବ ଉବାଚ

୬ *ପ୍ରବେଶ ହୋଇ ଯେ ଅନ୍ତର । ନିଦ୍ରିତ ବଚନକୁ ମୋର ॥ ୨୩
କରାଉଛନ୍ତି ସଚେତନ । ଜ୍ଞାନଶକ୍ତିରେ ଭଗବାନ ॥ ୨୪
ନେତ୍ରାଦି ଜ୍ଞାନ-ଇନ୍ଦ୍ରିୟର । ଶକ୍ତି ପ୍ରକାଶେ ଯେ ଈଶ୍ୱର ॥ ୨୫
ଯେ ହସ୍ତ-ଚରଣ-ଶ୍ରବଣ । ଚର୍ମାଦି ଆନ ଯେବା ପ୍ରାଣ ॥ ୨୬
ଏମାନଙ୍କୁ ହିଁ ସଚେତନ । କରାନ୍ତି ଯଉଁ ଭଗବାନ ॥ ୨୭
ସେ ତୁମ୍ଭେ ପୁରୁଷ-ଉତ୍ତମ । ତୁମ୍ଭଙ୍କୁ କରୁଛି ପ୍ରଣାମ ॥ ୨୮
୭ ଅନେକ ଅଛି ଗୁଣ ଯାର । ସେ ମାୟାନାମେ ଶକ୍ତି ତୋର ॥ ୨୯
ତେଣେ ସର୍ଜିଣ ହେ ଅଚ୍ୟୁତ ! । ମହତ ଆଦି ଏ ଜଗତ ॥ ୩୦
ଏକ ଅନ୍ତରଯାମୀ ତୁହି । ପୁରୁଷରୂପେ ପଶି ତହିଁ ॥ ୩୧
ରହିଛୁ ଇନ୍ଦ୍ରିୟ ଆଦିରେ । ନାନା ଦେବତା ସ୍ୱରୂପରେ ॥ ୩୨
ଦାରୁ ମଧ୍ୟରେ ହୁତାଶନ । ଯେସନେ ଦିଶଇ ଶୋଭନ ॥ ୩୩
୮ ତୋହର ଦେଲା ଜ୍ଞାନେ ତୋତେ । ଶରଣ ପଶିଣ ଜଗତେ ॥ ୩୪
ବ୍ରହ୍ମା ଦେଖିଲେ ଏ ସଂସାର । ଯେହ୍ନେ ଶୟନ-କଲା ନର ॥ ୩୫
ନିଦ୍ରାର ଭଙ୍ଗ ଯେବେ ହୋଇ । ପୁଣ ଏ ଜଗତ ଦେଖଇ ॥ ୩୬
ଯେବଣ ପାଦମୂଳ ତୋର । ଶରଣ ମୁକ୍ତ ଲୋକଙ୍କର ॥ ୩୭
ସେ ପାଦମୂଳକୁ ମାନବ । କେମନ୍ତ କରି ପାସୋରିବ ॥ ୩୮
ହେ ଆର୍ତ୍ତବନ୍ଧୁ ! ଯେଉଁ ନର । ଜାଣିଥିବ ତୋ’ ଉପକାର ॥ ୩୯
୯ ପ୍ରାଣୀଙ୍କ ଜନମ ମରଣ । ମୋକ୍ଷକୁ ଯେ ତୁମ୍ଭେ କାରଣ ॥ ୪୦
ତୁମ୍ଭଙ୍କୁ ଭଜନ୍ତି ଯେ ଜନ । କାମ ଆଦିରେ ଦେଇ ମନ ॥ ୪୧
ନିଶ୍ଚେ ସେମାନଙ୍କର ଚିତ୍ତ । ତୁମ୍ଭର ମାୟାରେ ଖଣ୍ଡିତ ॥ ୪୨

---

* ଈଶାନୁଗ୍ରହସଂପ୍ରାପ୍ତବାଗାଦ୍ୟଦ୍ଭୁତବୃତ୍ତିଭିଃ ।
ଦ୍ୱାଦଶାଦିତ୍ୟସଂକାଶୈଃ ଶ୍ଲୋକୈରସ୍ତୌଦ୍ଧରିଂ ଧ୍ରୁବଃ ॥ ୧ (ସ୍ୱାମୀ)

| | | | | |
|---|---|---|---|---|
| | ଯେ ତୁମ୍ଭେ ଅଟ କଳ୍ପବୃକ୍ଷ | । ତୁମ୍ଭଙ୍କୁ ପୂଜନ୍ତି ପ୍ରତ୍ୟକ୍ଷ | ।। | ୪୩ |
| | ଯେ ଶବସମାନ ଶରୀରେ | । ଭୋଗ୍ୟ ଅଟନ୍ତି ଏ ସଂସାରେ | ।। | ୪୪ |
| | ସେ ସୁଖ ବାଞ୍ଛା ସେ କରନ୍ତି | । ଯେଣୁ ମୋହିତ ସେ ଅଟନ୍ତି | ।। | ୪୫ |
| | ଯେ ସୁଖ ବିଷୟରୁ ହୋଇ | । ସେ ତ ନରକେ ମିଳିଥାଇ | ।। | ୪୬ |
| ୧୦ | ତୋ' ପାଦପଙ୍କଜ ଧ୍ୟାନରୁ | । ତୋ' ଦାସକଥାଶ୍ରବଣରୁ | ।। | ୪୭ |
| | ପ୍ରାଣୀମାନଙ୍କର ସଂତତ | । ଯେବଣ ସୁଖ ହୋଏ ଜାତ | ।। | ୪୮ |
| | ସେ ସୁଖ ନାହିଁ ବ୍ରହ୍ମଠାର | । ଯେ ବ୍ରହ୍ମ ମହିମା ତୋହର | ।। | ୪୯ |
| | ଅନ୍ତକ-ଅସିରେ ଖଣ୍ଡନ | । ହୁଅଇ ଯେବଣ ବିମାନ | ।। | ୫୦ |
| | ସେ ବିମାନରୁ ଯେଉଁମାନେ | । ପଡ଼ନ୍ତି ମନୁଷ୍ୟଭୁବନେ | ।। | ୫୧ |
| | ସେ ସୁଖ ତାହାଙ୍କର ନାହିଁ | । ଏହା କେମନ୍ତ ହୋଏ କହି | ।। | ୫୨ |
| ୧୧ | ତୁମ୍ଭର ଠାରେ ହେ ଅନନ୍ତ ! | । ଭକ୍ତି କରନ୍ତି ଯେ ସନ୍ତତ | ।। | ୫୩ |
| | ସେମାନେ ଅଟନ୍ତି ମହତ | । ଅମଳ ତାହାଙ୍କର ଚିତ୍ତ | ।। | ୫୪ |
| | ସେମାନଙ୍କର ସଙ୍ଗେ ମୋର | । ପ୍ରସଙ୍ଗ ହେଉ ନିରନ୍ତର | ।। | ୫୫ |
| | ଯହିଁରେ ବହୁତ ବିପତ୍ତି | । ଯେ ଭୟଙ୍କର ଅଟେ ଅତି | ।। | ୫୬ |
| | ସେ ଭବସାଗର ବେଗରେ | । ତରିବି ଯେଉଁ ପ୍ରସଙ୍ଗରେ | ।। | ୫୭ |
| | ତୋହର ଗୁଣକଥାମୃତ | । ପାନରେ ହୋଇଥିବି ମତ୍ତ | ।। | ୫୮ |
| ୧୨ | ଯେ ଅତିପ୍ରିୟ ଆପଣାର | । ଅଟଇ ମର୍ତ୍ତ୍ୟ କଳେବର | ।। | ୫୯ |
| | ଯେ ସୁତ, ମିତ୍ର, ଗୃହ, ବିତ୍ତ | । ଭର୍ଯ୍ୟା ତହିଁକି ଅନୁଗତ | ।। | ୬୦ |
| | ଏକଥାମାନ ସୁମରଣ | । ସେମାନେ ନ କରନ୍ତି ପୁଣ | ।। | ୬୧ |
| | ତୋ' ପାଦପଦ୍ମସୁଗନ୍ଧରେ | । ଲାଳସଚିତ୍ତ ଲୋକଠାରେ | ।। | ୬୨ |
| | ହେ ପଦ୍ମନାଭ ! ଯେଉଁମାନେ | । ସଙ୍ଗ କରନ୍ତି ଅନୁଦିନେ | ।। | ୬୩ |
| ୧୩ | ତିର୍ଯ୍ୟକ, ବୃକ୍ଷ, ପକ୍ଷି, ସୁର | । ଯେ ସରୀସୃପ, ଦୈତ୍ୟ ନର[1] | ।। | ୬୪ |
| | ଏ ଆଦିମାନଙ୍କେ ପୂରିତ | । ତୋ ସ୍ଥୂଳ ରୂପ ଏ ଜଗତ | ।। | ୬୫ |
| | ସନ୍ତ ଅସନ୍ତ ହୋଇ ଦୁଇ | । ବିଶେଷ ଯହିଁରେ ଅଛଇଁ | ।। | ୬୬ |
| | ମହତ ଆଦି ରୂପେ ପୁଣ | । ଯହିଁରେ ଅନେକ କାରଣ | ।। | ୬୭ |
| | ହେ ଅଜ ! ଏ ରୂପ ତୋହର | । କେବଳ କରିଛି ଗୋଚର | ।। | ୬୮ |

---

୧. ବର (?) (ତୁଂ. ମର୍ତ୍ତ୍ୟାଦି....)

ଈଶ୍ୱରରୂପ ଏଥୁଁ ଭିନ୍ନ । ତହିଁରେ ନାହିଁ ମୋର ଜ୍ଞାନ ॥ ୬୯
ଶବ୍ଦବ୍ୟାପାର ଯହିଁ ନାହିଁ । ସେ ବ୍ରହ୍ମରୂପ ନ ଜାଣଇଁ ॥ ୭୦
୧୪ ଏ ସର୍ବ କଳ୍ପର ପ୍ରାନ୍ତରେ । ଧରନ୍ତେ ଆପଣା ଜଠରେ ॥ ୭୧
ନିଜ ଅନ୍ତରେ ଦୃଷ୍ଟି ଦେଇ । ବାହ୍ୟ ଜ୍ଞାନକୁ ନିବର୍ତ୍ତାଇ ॥ ୭୨
ଶୋଏ ଯେ ଅନନ୍ତକୋଳର । ସେ ଶେଷ ଅଟେ ସଖା ଯାର ॥ ୭୩
ଯା' ନାଭିସିନ୍ଧୁରୁ ଜନିତ । କାଞ୍ଚନମୟ ପ୍ରଦୀପିତ ॥ ୭୪
ଭୁବନପଙ୍କଜ ମଧ୍ୟରେ । ବିଧାତା ଜନ୍ମିଲା ପୂର୍ବରେ ॥ ୭୫
ଏମନ୍ତ ଯେଉଁ ଭଗବାନ । ତାଙ୍କୁ ମୁଁ କରୁଛି ବନ୍ଦନ ॥ ୭୬
୧୫ ସର୍ବଦା ମୁକ୍ତ ଅଟୁ ତୁହି । ତୋଠାରୁ ଜୀବ ମୁକ୍ତ ହୋଇ ॥ ୭୭
ତୁ ପରିଶୁଦ୍ଧ ସେ ମଳିନ । ତୁ ସର୍ବ ଜାଣୁ ସେ ଅଜ୍ଞାନ ॥ ୭୮
ତୁ ଆତ୍ମା, ଜୀବ ଜଡ଼ ହୋଇ । କୂଟସ୍ଥ ତୁ ବିକାରୀ ସେହି ॥ ୭୯
ଆଦି ପୁରୁଷ ତୁ ପ୍ରମାଣ । ସେ ଅଟେ ଆଦିମନ୍ତ[୧] ପୁଣ ॥ ୮୦
ତୁ ନାଥ ! ଅଟୁ ଭଗବାନ । ସେ ପୁଣ ଅଟେ ଭଗହୀନ ॥ ୮୧
ତୁ ଅଟୁ ତିନିଗୁଣ-ଈଶ । ସ ଅଟେ ଗୁଣପରବଶ ॥ ୮୨
ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି । ବୁଦ୍ଧିର ଏହୁ ଅବସ୍ଥିତି ॥ ୮୩
ଯେଣୁ ଅଖଣ୍ଡ ଚିଦ୍‌ଶକ୍ତିରେ । ଏମାନ ଦେଖୁ ତୁ ନିତ୍ୟରେ ॥ ୮୪
ଏ ତିନି କଥା ନାହିଁ ତୋର । ଏମାନେ ଅଛନ୍ତି ଜୀବର ॥ ୮୫
ପାଳନେ ଯଜ୍ଞ-ଅଧିଷ୍ଠାତା । ତୁ ବିଷ୍ଣୁ ଜଗତର କର୍ତ୍ତା ॥ ୮୬
ଏଣୁ ଜୀବରୁ ବିଲକ୍ଷଣ । ରୂପରେ ଅଛୁ ତୁ ପ୍ରମାଣ ॥ ୮୭
୧୬ ବିରୁଦ୍ଧ ଯାହାଙ୍କର ଗତି । ବିଦ୍ୟାଦି ସେ ନାନା ଶକତି ॥ ୮୮
ଜାତ ହୁଅନ୍ତି ଅକସ୍ମାତ । ଯା'ଠାରେ କ୍ରମେ ଅବିରତ ॥ ୮୯
ଯା'ଠାରୁ ଜାତ ଏ ଜଗତ । ଯେ ଏକ, ଆଦ୍ୟ ଯେ ଅନନ୍ତ ॥ ୯୦
ଆନନ୍ଦମାତ୍ର ଅବିକାର । ସେ ବ୍ରହ୍ମ ଶରଣ ମୋହର ॥ ୯୧
୧୭ ତୁ ଅଟୁ ପୁରୁଷାର୍ଥମୂର୍ତ୍ତି । ରାଜ୍ୟ ଆଦିରେ ଦେଇ ମତି ॥ ୯୨
ଏ ନିଶ୍ଚେ ପରମାର୍ଥ ଫଳ । ଏହି କଥାକୁ କରି ମୂଳ ॥ ୯୩
ନିତ୍ୟ ଭଜନ୍ତେ ନାଥ ତୋତେ । ଏମନ୍ତ ହେଲେହେଁ ଜଗତେ ॥ ୯୪
ସକାମ ଅଟୁଁ ଆମ୍ଭେମାନେ । ଆମ୍ଭଙ୍କୁ ଅନୁଗ୍ରହମନେ ॥ ୯୫

୧. ଆଦିଅନ୍ତ (?) ତୁଂ ଆଦିମାନ୍ (ସ୍ୱାମୀ)

ସଂସାରୁ ରକ୍ଷା କର ତୁହି । ଯେସନେ ବାଛୁରୀକି ଗାଈ ॥ ୯୬
କରାଇ ନିଜ କ୍ଷୀରପାନ । ଭୟରୁ କରଇ ପାଳନ ॥ ୯୭

ଶ୍ରୀମୈତ୍ରେୟ ଉବାଚ

୧୮ ସତ୍ୟସଂକଳ୍ପ ବୁଦ୍ଧିମନ୍ତ । ସେ ସ୍ତୁତି କରନ୍ତେ ଏମନ୍ତ ॥ ୯୮
ଭୃତ୍ୟଦୟାଳୁ ଭଗବାନ । ଆନନ୍ଦେ କହିଲେ ବଚନ ॥ ୯୯

ଶ୍ରୀଭଗବାନୁବାଚ

୧୯ ହେ ରାଜକୁମାର ! ତୋହର । ଜାଣଇଁ ହୃଦୟବିଚାର ॥୧୦୦
ଦୁର୍ଲଭ ହେଲେହେଁ ସେ କଥା । ତୋତେ ମୁଁ ଦେବଇଁ ସର୍ବଥା ॥୧୦୧
୨୦ ହେ ଭଦ୍ର ! ଆନମାନେ କେହି । ଯହିଁ ନ ପାରିଛନ୍ତି ରହି ॥୧୦୨
ଯେବଣ ସ୍ଥାନ ପ୍ରଦୀପିତ । ଯହିଁରେ ନିବାସ ନିୟତ ॥୧୦୩
ଗ୍ରହ-ନକ୍ଷତ୍ର-ତାରାମାନେ । ଜ୍ୟୋତିରୂପରେ ଯେ ଭୁବନେ ॥୧୦୪
ସେମାନଙ୍କର ଚକ୍ର ଯହିଁ । ଅର୍ପିତ ହୋଇଅଛି ରହି ॥୧୦୫
ମେଢ଼ୀରେ ବଳୀବର୍ଦ୍ଦଗଣ । ପ୍ରାୟ ସେ କରନ୍ତି ଭ୍ରମଣ ॥୧୦୬
ଯେ କଳ୍ପବାସୀମାନଙ୍କର । ଉପରେ ରହିଅଛି ସ୍ଥିର ॥୧୦୭
୨୧ ଧର୍ମ, କଶ୍ୟପ, ବୈଶ୍ୱାନର । ଇନ୍ଦ୍ର, ସପତ ଋଷି ଆର ॥୧୦୮
ଏମାନେ ତାରାରୂପ ଧରି । ଭ୍ରମନ୍ତେ ପ୍ରଦକ୍ଷିଣ କରି ॥୧୦୯
ତାରକାମାନଙ୍କ ସହିତେ । ଚରୁଅଛନ୍ତି ଯହିଁ ନିତ୍ୟେ ॥୧୧୦
୨୨ ଧରଣୀ କରିଣ ପ୍ରଦାନ । ପିତା ଗମନ୍ତେ ତୋର ବନ ॥୧୧୧
ଛତିଶ[1] ସହସ୍ର ବରଷ । ପାଳନା କରିବୁ ଅବଶ୍ୟ ॥୧୧୨
ଇନ୍ଦ୍ରିୟମାନେ କଦାଚିତ । ତୋହର ନୋହିବେ ବିହତ[2] ॥୧୧୩
୨୩ ଉତ୍ତମ ନାମେ ତୋର ଭାଇ । ମରନ୍ତେ ମୃଗୟାରେ ଯାଇଁ ॥୧୧୪
ବନେ ଖୋଜନ୍ତେ ମାତା ତାର । ପଡ଼ିବ ବନାଗ୍ନିମଧ୍ୟର ॥୧୧୫
*{ନ ଇଚ୍ଛିଲେ ହେଁ ତୁହି ଏହା । ତୋ' ଦ୍ରୋହୁଁ ଘଟିବଟି ତାହା ॥ }
୨୪ ମୋହର ଯେତେ ଛନ୍ତି ମୂର୍ତ୍ତି । ତହିଁରେ ଯଜ୍ଞ ପ୍ରିୟ ଅତି ॥୧୧୬
ବହୁତ ଦକ୍ଷିଣା ଯହିଁରେ । ମୋତେ ସେ ଯିଜ୍ଞମାନଙ୍କରେ ॥୧୧୭

---

୧ ଛବିଶ । ତୁଂ ଷଟ୍‌ତ୍ରିଂଶତ୍ । ୨. ବିହିତ (?) (ତୁଂ ଅବ୍ୟାହତେନ୍ଦ୍ରିୟଃ)
* ସ୍ୱାମୀଟୀକାନୁସାରେ ରଚିତ ।

ଭକ୍ତିରେ କରି ଆରାଧନ । ଏ ଲୋକେ ଭୁଞ୍ଜି ଭୋଗମାନ ॥୧୧୮
ଅନ୍ତ ସମୟରେ ତୁ ମୋତେ । ଚିନ୍ତା କରିବୁ ନିଜ ଚିତ୍ତେ ॥୧୧୯
୨୫ ସକଳ ଲୋକରେ ବନ୍ଦିତ । ଋଷିମାନଙ୍କ ଉର୍ଦ୍ଧ୍ୱେସ୍ଥିତ ॥୧୨୦
ଏମନ୍ତ ସ୍ଥାନକୁ ମୋହର । ଯିବୁ ତୁ ପୁଣ ତଦନ୍ତର ॥୧୨୧
ପ୍ରବେଶ ହେଲେ ଯତି ଯାଇଁ । ଯହୁଁ ଲେଉଟି ନ ଆସଇ ॥୧୨୨

ଶ୍ରୀମୈତ୍ରେୟ ଉବାଚ

୨୬ ଏ ରୂପେ ପୂଜାକୁ ଲଭିଣ । ଆପଣା ପଦକୁ ଦେଇଣ ॥୧୨୩
ଶିଶୁ ଚାହାନ୍ତେ ନିଜ ସ୍ଥାନ । ଗଲେ ସେ ଗରୁଡ଼ବାହନ ॥୧୨୪
୨୭ ଯାହା ଲଭିଲା ମାତ୍ରେ ଜନ । ବାଞ୍ଛଇ ନାହିଁ କିଛି ଆନ ॥୧୨୫
ସେ ମନୋରଥ ପାଇ ଧୀରେ । ବିଷ୍ଣୁର ଚରଣସେବାରେ ॥୧୨୬
ସେ ଅତି ସନ୍ତୋଷ ନୋହିଲା । ନିଜ ପୁରରୁ ଚଳିଗଲା ॥୧୨୭

ଶ୍ରୀବିଦୁର ଉବାଚ

୨୮ ସକାମ ଅଟେ ଯେଉଁ ଜନ । ତାର ଦୁର୍ଲଭ ବିଷ୍ଣୁ ସ୍ଥାନ ॥୧୨୮
ସେ ବିଷ୍ଣୁ ଚରଣପୂଜାରେ । ଅର୍ଜିଣ ତା' ଏକ ଜନ୍ମରେ ॥୧୨୯
ଆପଣା ଆତ୍ମାକୁ କିପାଁ ଏ । ମଣିଲା ଅକୃତାର୍ଥପ୍ରାୟେ ॥୧୩୦

ଶ୍ରୀମୈତ୍ରେୟ ଉବାଚ

୨୯ ମାତା-ସପତ୍ନୀ-ବାକ୍ୟଶର । ଭେଦନ୍ତେ ହୃଦୟରେ ତାର ॥୧୩୧
ସ୍ମରନ୍ତେ ସେହୁ ବାକ୍ୟମାନ । ଯେ ମୁକ୍ତିପତି ଭଗବାନ ॥୧୩୨
ତା'ଠାରୁ ମୁକ୍ତି ନ ବାଞ୍ଛିଲା । ପଛେ ସେ ତାପକୁ ପାଇଲା ॥୧୩୩

ଶ୍ରୀଧ୍ରୁବ ଉବାଚ

୩୦ ସନନ୍ଦ ଆଦି ଏ ଭୁବନେ । ଯେତେକ ଉର୍ଦ୍ଧ୍ୱରେତାମାନେ ॥୧୩୪
ଅନେକ ଜନ୍ମ-ସମାଧିରେ । ଯା' ପଦ ଜାଣନ୍ତି ଯୋଗରେ ॥୧୩୫
ତା' ପାଦଯୁଗଳର ଛାଇ । ଛ' ମାସ ଭିତରେ ମୁଁ ପାଇ ॥୧୩୬
ତହିଁରୁ ହୋଇଲି ବାହାର । ମୁଁ ଭେଦଦୃଷ୍ଟି ଦୁରାଚାର ॥୧୩୭
୩୧ ମୁଁ ମନ୍ଦଭାଗ୍ୟ ଏ ସଂସାରେ । ମୋ' ଅଜ୍ଞଭାବ ଦେଖ ନରେ ॥୧୩୮
ଯେ ପ୍ରଭୁ ସଂସାର ଛେଦଇ । ତା' ପାଦମୂଳକୁ ମୁଁ ଯାଇ ॥୧୩୯
କାଳରେ ହୋଏ ଯେ ନିଧନ । ସେ କଥା କଲି ମୁଁ ପ୍ରାର୍ଥନ ॥୧୪୦

| | | | |
|---|---|---|---|
| ୩୨ | ମୋ'ଠାରୁ ତଳରେ ଥାଇଣ । | ଦେବତାମାନେ ନ ସହିଣ | ॥୧୪୧ |
| | ଦୂଷିଲେ ମତିକି ମୋହର । | ମୁଁ ଯେ ଦୁଷ୍ଟଙ୍କ ମଧ୍ୟେ ବର | ॥୧୪୨ |
| | ତଥ୍ୟବଚନ ନାରଦର । | ଘେନିଲି ନାହିଁ ଯେ ମନର | ॥୧୪୩ |
| ୩୩ | ଯେହ୍ନେ ଶୟନ-କଲା ଜନ । | ଦେଖଇ ନାନା ସ୍ୱପ୍ନମାନ | ॥୧୪୪ |
| | ମୁଁ ପୁଣି ସେହି ପରକାରେ । | ଦଇବୀ ମାୟା ଆଶ୍ରୟରେ | ॥୧୪୫ |
| | ଏକ[୧] ଆତ୍ମାରୁ ଭିନ୍ନ ହୋଇ । | ଯଦ୍ୟପି ଆନ କେହି ନାହିଁ | ॥୧୪୬ |
| | ତଥାପି ଭ୍ରାତା ଶତ୍ରୁ ମୋର । | ଏହି ଦୃଷ୍ଟିରେ ନିରନ୍ତର | ॥୧୪୭ |
| | ହୃଦୟେ ଯେଉଁ ଶୋକ ଜାତ । | ତେଣେ ମୁଁ ହେଉଛି ତାପିତ | ॥୧୪୮ |
| ୩୪ | ଗତ-ଆୟୁଷ ଲୋକ[୨] ଠାଇଁ । | ଚିକିତ୍ସା ଯେହ୍ନେ ବ୍ୟର୍ଥ ହୋଇ | ॥୧୪୯ |
| | ସେହି ପ୍ରକାରେ ବିଷ୍ଣୁଠାର । | ପ୍ରାର୍ଥନା ବ୍ୟର୍ଥ ହେଲା ମୋର | ॥୧୫୦ |
| | ଜଗତ-ଆତ୍ମା ଯେ ଅଟଇ । | ଯାକୁ ତପସ୍ୟାରେ ନ ପାଇ | ॥୧୫୧ |
| | ସଂସାର କରେ ଯେ ଛେଦନ । | ତାହାକୁ କରାଇ ପ୍ରସନ୍ନ | ॥୧୫୨ |
| | ଏକଥା କଲି ମୁଁ ପ୍ରାର୍ଥନ । | ଏଣୁ ଅଟଇ ଭାଗ୍ୟହୀନ | ॥୧୫୩ |
| ୩୫ | ନିଜ ଆନନ୍ଦ ଯାଚି କରି । | ଦେଉଥିଲେ ଯେ ମୋତେ ହରି | ॥୧୫୪ |
| | ତା'ଠାରୁ ମୂଢ଼ଭାବେ ମୁହିଁ । | ଅଭିମାନକୁ ମାଗିଲଇଁ | ॥୧୫୫ |
| | କ୍ଷୀଣ ଅଟଇ ପୁଣ୍ୟ ମୋର । | ଯେସନ ଧନହୀନ ନର | ॥୧୫୬ |
| | ରାଜାକୁ କରାଇ ପ୍ରସନ୍ନ । | ମାଗଇ ଖୁଦକଣିମାନ | ॥୧୫୭ |

ଶ୍ରୀମୈତ୍ରେୟ ଉବାଚ

| | | | |
|---|---|---|---|
| ୩୬ | ହେ ତାତ ! ଯେଉଁ ଜନମାନେ । | ତୁମ୍ଭର ପ୍ରାୟ ଏ ଭୁବନେ | ॥୧୫୮ |
| | କୃଷ୍ଣଚରଣପଦ୍ମଗତ । | ଧୂଳିକି ସେବନ୍ତି ସଂତତ | ॥୧୫୯ |
| | କୃଷ୍ଣସେବକଭାବୁଁ ଆନ । | ଅର୍ଥ ନ ମାଗନ୍ତି ସେ ଜନ | ॥୧୬୦ |
| | ତାଙ୍କର ଯଥା ଇଚ୍ଛା ହୋଇ । | ମନର ସୁଖ ହୋଇଥାଇ | ॥୧୬୧ |
| ୩୭ | ପୁତ୍ର କରିଛି ଆଗମନ । | ଶୁଣିଣ ରାଜା ଏ ବଚନ | ॥୧୬୨ |
| | ମନେ ତା ବିଶ୍ୱାସ ନ କଲା । | ଆପଣେ ଏ ରୂପେ ଚିନ୍ତିଲା | ॥ |
| | ମୁଁ ଯେ ଅପୁଣ୍ୟବନ୍ତ ନର । | ସେ ଭାଗ୍ୟ କାହିଁଅଛି ମୋର | ॥୧୬୩ |
| | ଯେସନେ ମରି ଆସିବାର । | ବିଶ୍ୱାସ ନ କରଇ ନର | ॥୧୬୪ |
| ୩୮ | ନାରଦ-କହିଲା ବଚନ । | ସତ୍ୟ ମଣିଣ ସେ ରାଜନ | ॥୧୬୫ |
| | ଅତି ହରଷବନ୍ତ[୩] ହେଲା । | ଯେ ପୁଣି ବାର୍ତ୍ତା କହିଥିଲା | ॥୧୬୬ |
| | ତାକୁ ପ୍ରୀତିରେ ଦେଲା ହାର । | ବହୁତ ମୂଲ୍ୟ ଅଟେ ଯାର | ॥୧୬୭ |

୧. ଏକା । ୨. ଜନ । ୩. ହରଷବଶ ।

୩୯
୪୦ } ଉତ୍ତମ ଅଶ୍ୱ ଅଛି ଯହିଁ । ହେମଭୂଷିତ ଯେ ଅଟଇ ।।୧୬୮

ଏମନ୍ତ ରଥକୁ ଆରୋହୀ । ପୁତ୍ରକୁ ଦେଖିବାର ପାଇଁ ।।୧୬୯
ଉତ୍ସୁକ ହୋଇଅଛି ମନେ । ବ୍ରାହ୍ମଣ କୁଳବୃଦ୍ଧମାନେ ।।୧୭୦
ଅମାତ୍ୟ, ବନ୍ଧୁମାନେ ଯେତେ । ବେଢ଼ିଣ ଅଛନ୍ତି ସମସ୍ତେ[୧] ।।୧୭୧
ସ୍ଫୁରୁଛି ଶଙ୍ଖତୂର୍ଯ୍ୟନାଦ । ବ୍ରାହ୍ମଣେ ପଢୁଛନ୍ତି ବେଦ ।।୧୭୨
ପୁରରୁ ହୋଇଲେ ବାହାର । ସତ୍ୱର ହୋଇ ନୃପବର ।।୧୭୩
୪୧ ସୁନୀତି ସୁରୁଚି ନାମେଣ । ତାହାର ଭାର୍ଯ୍ୟା ଦୁଇ ପୁଣ ।।୧୭୪
ସୁବର୍ଣ୍ଣଭୂଷିତ ହୋଇଣ । ଏକା ପାଲିଙ୍କି ଆରୋହିଣ ।।୧୭୫
ଉତ୍ତମ ନାମେ ଅଛି ସୁତ । ସଙ୍ଗତେ ଗଲେ ସେ ତୁରିତ ।।୧୭୬
୪୨ ଆସନ୍ତେ ଉପବନପାଶେ । ତାହାକୁ ଦେଖିଣ ହରଷେ ।।୧୭୭
ନୃପତି ରଥରୁ ଓହ୍ଲାଇ । ପ୍ରେମରେ ବିହ୍ୱଳିତ ହୋଇ ।।୧୭୮
୪୩ ଅତ୍ୟନ୍ତ ଉତ୍କଣ୍ଠିତ ମତି । ନିଃଶ୍ୱାସ ପକାଉଅଛନ୍ତି ।।୧୭୯
ପାଶକୁ ଯାଇଣ ସତ୍ୱରେ । ପୁତ୍ରକୁ ଭିଡ଼ିଲେ ଭୁଜରେ ।।୧୮୦
ବିଷ୍ୱକସେନଚରଣରେ । ସ୍ମରଣେ ହତ ହେଲା ଯାର ।।୧୮୧
ଅର୍ଜିଲା ନାନା ଅଘମାନ । ଆବର ସଂସାରବନ୍ଧନ ।।୧୮୨
୪୪ ଏଥୁ ଉତ୍ତାରେ ପୁଣ ପୁଣ । ମୂର୍ଦ୍ଧାରେ କଲା ସେ ଆଘ୍ରାଣ ।।୧୮୩
ପୁତ୍ରକୁ ନୟନଜଳରେ । ସ୍ନାନ କରାଇଲା ନିର୍ଭରେ ।।୧୮୪
ଯାହାର ବଡ ମନୋରଥ । ବିଷ୍ଣୁ ସେବାରୁ ହେଲା ଜାତ ।।୧୮୫
୪୫ ଚରଣଯୁଗକୁ ପିତାର । ସେ ଧ୍ରୁବ କରି ନମସ୍କାର ।।୧୮୬
ପିତାଏ କରନ୍ତେ କଲ୍ୟାଣ । ତା' ସଙ୍ଗେ କରି ସମ୍ଭାଷଣ ।।୧୮୭
ବେନି ମାତାଙ୍କୁ ନମସ୍କାର । କଲା ସେ ଲୁଆଁଇଣ ଶିର ।।୧୮୮
ସାଧୁମାନଙ୍କ ମଧ୍ୟେ ବର । ବିଶେଷେ ଲଭିଛି ସତ୍କାର ।।୧୮୯
୪୬ ପାଦରେ ନମ୍ର ହେଲା ବାଳ । ତାକୁ ସୁରୁଚି ତତକାଳ ।।୧୯୦
ଉଠାଇ ଭୁଜଯୁଗଳରେ । ଭିଡ଼ିଣ ଅତି ସ୍ନେହଭରେ ।।୧୯୧
ଜୀବ[୨] ବୋଇଲା ସେ ତରୁଣୀ । ଶୁଭଇ ଗଦ୍ଗଦ ବାଣୀ ।।୧୯୨

---

୧. ସଙ୍ଗତେ । ୨. ତୋର ଆୟୁଷ ବଢୁ ।

| | | | |
|---|---|---|---|
| ୪୭ | ମଇତ୍ରୀ ଆଦି ଗୁଣେ କରି । | ଯାକୁ ପ୍ରସନ୍ନ ହୋଏ ହରି | ॥୧୯୩ |
| | ସ୍ୱୟେଂ ତାହାକୁ ଭୂତମାନେ । | ଅନୁସରନ୍ତି ଏ ଭୁବନେ | ॥୧୯୪ |
| | ଗଭୀର ଦେଶକୁ ଯେସନେ । | ଅନୁସରନ୍ତି ଜଳମାନେ | ॥୧୯୫ |
| ୪୮ | ଉତ୍ତମ, ଧ୍ରୁବ ବେନିଜନ । | ପ୍ରେମରେ ବିହ୍ୱଳ ହୋଇଣ | ॥୧୯୬ |
| | ଅଙ୍ଗସଙ୍ଗରୁ ପରସ୍ପରେ । | ପୁଲକ ଧରିଣ ଅଙ୍ଗରେ | ॥୧୯୭ |
| | ଲୋଚନଯୁଗେ ନିରନ୍ତର । | ବହିଲେ ପୁଣ ଅଶ୍ରୁଧାର | ॥୧୯୮ |
| ୪୯ | ସୁନୀତି ଜନନୀ ତାହାର । | ପ୍ରାଣରୁ ପ୍ରିୟ ଯେ କୁମର | ॥୧୯୯ |
| | ଆଶ୍ଲେଷ କରିଣ ତାହାକୁ । | ଛାଡ଼ିଲା ମାନସ ପୀଡ଼ାକୁ | ॥୨୦୦ |
| | ସେ ପୁତ୍ର-ଅଙ୍ଗସ୍ପରଶରେ । | ସୁଖକୁ ଲଭିଲା ମନରେ | ॥୨୦୧ |
| ୫୦ | ନେତ୍ରଜ ଆନନ୍ଦ ସଲିଳେ । | ସିଞ୍ଚିତ ହେଲେ ଯେ ସେ କାଳେ | ॥୨୦୨ |
| | ସେ ସ୍ତନୁଁ ବୀରଜନନୀର । | ସ୍ରବିଲା ପୁଣ ପୁଣ କ୍ଷୀର | ॥୨୦୩ |
| ୫୧ | ସେ ରାଜପତ୍ନୀକି ସୁମନେ । | କହିଲେ ଯାଇଁ ଲୋକମାନେ | ॥୨୦୪ |
| | ତୋ' ମନଦୁଃଖ ବିନାଶନ । | ଅଟଇ ଯେବଣ ନନ୍ଦନ | ॥୨୦୫ |
| | ଅନେକ କାଳ ଯାଏ ତହିଁ । | ଥିଲା ଦରଶନ ନ ଦେଇ | ॥୨୦୬ |
| | ଭାଗ୍ୟରେ ଲଭିଲୁ ଏହାକୁ । | ପାଳିବ ମହୀମଣ୍ଡଳକୁ | ॥୨୦୭ |
| ୫୨ | ପ୍ରଣତ-ଆର୍ତ୍ତି ବିନାଶନ । | କରନ୍ତି ଯେଉଁ ଭଗବାନ | ॥୨୦୮ |
| | ତାଙ୍କୁ ପୂଜିଛୁ ନିଶ୍ଚେ ତୁହି । | ପଣ୍ଡିତମାନେ ଯା'କୁ ଧ୍ୟାୟି | ॥୨୦୯ |
| | ଦୁଃଖରେ ଜିଣି ନୋହେ ଯା'କୁ । | ଜିଣିଲେ ଏମନ୍ତ ମୃତ୍ୟୁକୁ | ॥୨୧୦ |
| ୫୩ | ଏହି ପ୍ରକାରେ ଜନମାନେ । | ଲାଳନା[1] କରନ୍ତେ ସୁମନେ | ॥୨୧୧ |
| | ଧ୍ରୁବକୁ ଭ୍ରାତା ସହିତରେ । | ବସାଇ ହସ୍ତିନୀ ଉପରେ | ॥୨୧୨ |
| | ତୋଷେ ମିଳିଲେ ରାଜା ପୁର । | ସ୍ତୁତି କରନ୍ତି ସର୍ବନର | ॥୨୧୩ |
| ୫୪ | ମରକତ[2]ରେ ବିନିର୍ମିତ । | ତୋରଣେ ସ୍ଥାନେ ସ୍ଥାନେ ସ୍ଥିତ | ॥୨୧୪ |
| | ବର୍ତ୍ତୁଳ[3] ରମ୍ଭାବୃକ୍ଷମାନେ । | ବାଳ କ୍ରମୁକେ ସେ-ସମାନେ | ॥୨୧୫ |
| ୫୫ | ରସାଳପଲ୍ଲବ, ଅମ୍ବର । | କୁସୁମମାଳା, ମୁକ୍ତାହାର | ॥୨୧୬ |
| | ଏମାନେ ଲମ୍ବିଛନ୍ତି ଯହିଁ । | ସେ କୁମ୍ଭେ ଜଳେ ପୂର୍ଣ୍ଣ ହୋଇ | ॥୨୧୭ |
| | ଦୀପମାନଙ୍କ ସହିତରେ । | ଶୋଭା ପାଆନ୍ତି ପ୍ରତିଦ୍ୱାରେ | ॥୨୧୮ |

---

୧. ଲାଳନ ।

୨. ମକର ।　୩. ଫଳମଞ୍ଜରୀ ସହିତ (ସ୍ୱାମୀ)

୫୬ ସୁବର୍ଣ୍ଣମାନଙ୍କେ ରୁଚିର । ଗୃହ, ପ୍ରାକାର, ପୁରଦ୍ୱାର ॥୨୧୯
ବିମାନମାନଙ୍କର ପ୍ରାଏ । ଅଗ୍ର ତାଙ୍କର ଶୋଭା ପାଏ ॥୨୨୦
ତେଣେ ସେ ପୁର ଅବିରତ । ସକଳ ଦିଗରେ ମଣ୍ଡିତ ॥୨୨୧
୫୭ ପ୍ରସିଦ୍ଧ ମାର୍ଗ ମାର୍ଗ ଆନ । ଅଗଣା, ଉଚ୍ଚ ସ୍ଥାନମାନ ॥୨୨୨
ହୋଇଅଛନ୍ତି ଏ ମାର୍ଜିତ । ଚନ୍ଦନମାନଙ୍କେ ଚର୍ଚ୍ଚିତ ॥୨୨୩
ଲାଜ, ଅକ୍ଷତ, ପୁଷ୍ପଫଳେ । ଯେ ଯୁକ୍ତ ବଳି[1]ରେ ତଣ୍ଡୁଳେ ॥୨୨୪
୫୮-୫୯ ବାଟେ ଧ୍ରୁବକୁ ସ୍ଥାନେସ୍ଥାନେ । ଦେଖି ସେ ପୁରସ୍ତିରୀମାନେ ॥୨୨୫
ସିଦ୍ଧାର୍ଥ[2], ଅକ୍ଷତ[3], ସଲିଳ । ଦଧି, କୁସୁମ, ଦୂର୍ବା, ଫଳ ॥୨୨୬
ଏମାନ କଲେ ସମର୍ପଣ । ବତ୍ସଳ ଭାବରେ ସେ ପୁଣ ॥୨୨୭
ଆଶିଷ କଲେ ସତୀମାନେ । ତାଙ୍କ ରୁଚିର ଗୀତ କର୍ଣ୍ଣେ ॥୨୨୮
ଶୁଣନ୍ତେ ପିତାର ମନ୍ଦିରେ । ପ୍ରବେଶ ହେଲେ ତଦନ୍ତରେ ॥୨୨୯
୬୦ ଯେ ମହାମଣିଗଣମୟ । ଅଟେ ଭବନ ଅତିଶୟ ॥୨୩୦
ତହିଁରେ ରହିଲେ ସେ ଧ୍ରୁବ । ସ୍ୱର୍ଗେ ଯେସନେ ଥାଇ ଦେବ ॥୨୩୧
ପିତା ଅତିଶୟ ଲାଳନ । କଲେ ତାହାଙ୍କୁ ଅନୁଦିନ ॥୨୩୨
୬୧ ଦୁଧଫେନର ପ୍ରାୟେ କାନ୍ତି । ଯହିଁରେ ଶଯ୍ୟାମାନେ ଛନ୍ତି ॥୨୩୩
ଗଜଦନ୍ତରେ ବିନିର୍ମିତ । ସୁବର୍ଣ୍ଣମାନଙ୍କେ ବେଷ୍ଟିତ ॥୨୩୪
ଆସନମାନେ ଯହିଁ ଛନ୍ତି । ବହୁତ ମୂଲ୍ୟ ସେ ଅଟନ୍ତି ॥୨୩୫
ଯେଉଁ ଭବନେ ସୁବର୍ଣ୍ଣର । ଘଟିତ ଅଟେ ଉପସ୍କର[4] ॥୨୩୬
୬୨ ସ୍ଫଟିକ ମରକତେ ଯହିଁ । ବାଡ଼େ ଅଛନ୍ତି ଗଢ଼ା ହୋଇ ॥୨୩୭
ଯହିଁରେ ରତ୍ନଦୀପମାନେ । ଶୋଭା ପାଆନ୍ତି ସ୍ଥାନେ ସ୍ଥାନେ ॥୨୩୮
ରତ୍ନରେ ହୋଇଣ ଭୂଷିତ । ଅଛନ୍ତି ଲଳନା ବହୁତ ॥୨୩୯
୬୩ ବିହଙ୍ଗ ମିଥୁନ ଯହିଁରେ । ଶବଦ କରନ୍ତି ସୁସ୍ୱରେ ॥୨୪୦
ଯହିଁରେ ଭୃଙ୍ଗେ ମତ୍ତ ହୋଇ । ଗାୟନ କରୁଛନ୍ତି ରହି ॥୨୪୧
ସେ ଚିତ୍ର ଦେବଦ୍ରୁମଙ୍କରେ । ରମ୍ୟ ଉଦ୍ୟାନ ଯେଉଁ ପୁରେ ॥୨୪୨
୬୪ ବୈଦୂର୍ଯ୍ୟ ମଣିରେ ଘଟନ । ହୋଇଛି ଯହିଁରେ ସୋପାନ ॥୨୪୩
କୁମୁଦ, ଉତ୍ପଳ, କମଳ । ଏମାନେ ଅଛନ୍ତି ବହୁଳ ॥୨୪୪

---

୧. ବଳି = ପୂଜାଦ୍ରବ୍ୟ । ୨. ଶ୍ୱେତ ସୋରିଷ । ୩. ଯବ ।
୪. ଉପସ୍କର = ଘରକରଣା ଜିନିଷ ।

| | | | | |
|---|---|---|---|---|
| | ମରାଳ, କାରଣ୍ଡବଗଣ | । | ଚକ୍ର, ସାରସରେ ଭୂଷଣ | ॥୨୪୫ |
| | ଏମନ୍ତ ହୋଇ ବାପୀମାନେ | । | ଅଛନ୍ତି ଯେବଣ ଭୁବନେ | ॥୨୪୬ |
| ୬୫ | ଅତ୍ୟନ୍ତ ଅଦଭୁତ ହୋଇ | । | ପୁତ୍ର ପ୍ରଭାବ ଯେ ଅଟଇ | ॥୨୪୭ |
| | ସେ କଥା ଶୁଣି ଦେଖିଆସି | । | ଉତ୍ତାନପାଦ ରାଜରଷି | ॥୨୪୮ |
| | ବିସ୍ମୟ ଅତ୍ୟନ୍ତ ପ୍ରକାରେ | । | ଲଭିଲା ନିଜ ମାନସରେ | ॥୨୪୯ |
| ୬୬ | ଯୁବାବୟସ ହେଲା ସୁତ | । | ପ୍ରକୃତି[1]ମାନଙ୍କ ସମ୍ମତ | ॥୨୫୦ |
| | ତାହାର ଠାରେ ପ୍ରଜାଜନ | । | ହୋଇଲେ ସାନୁରାଗମନ | ॥୨୫୧ |
| | ଏମନ୍ତ ଦେଖିଣ ନୃପତି | । | ଧ୍ରୁବକୁ କଲେ ମହୀପତି | ॥୨୫୨ |
| ୬୭ | ଆତ୍ମାକୁ ବୃଦ୍ଧ କରି ମଣି | । | ବଇରାଗ୍ୟକୁ ଲଭି ପୁଣି | ॥୨୫୩ |
| | ବିଚାରନ୍ତେଣ ଆତ୍ମଗତି | । | ବନକୁ ଗଲେ ମହୀପତି | ॥୨୫୪ |
| | ଭକ୍ତକୁ ଆତ୍ମା ଦିଏ ଯେହୁ | । | ଦୀନବନ୍ଧୁର ବନ୍ଧୁ ସେହୁ | ॥୨୫୫ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀ ବିଦୁରମୈତ୍ରେୟସଂବାଦେ
ଶ୍ରୀ ଧ୍ରୁବରାଜ୍ୟାଭିଷେକଂ ନାମ ନବମୋଽଧ୍ୟାୟଃ ॥

## ଦଶମୋଽଧ୍ୟାୟଃ

ଦଶମେ ଭ୍ରାତୃହନ୍ତୃଣାଂ ଯକ୍ଷାଣାମକରୋଦ୍ ବଧମ୍ ।
ଏକ ଏବାଳକାଂ ଗତ୍ୱେତ୍ୟସ୍ୟ ବିକ୍ରମ ଉଚ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

| | | | | | |
|---|---|---|---|---|---|
| ୧ | ଯେ ପ୍ରଜାପତି ଶିଶୁମାର | । | ଭ୍ରମି ନାମରେ ସୁତା ତାର | ॥ | ୧ |
| | ତାହାକୁ ଧ୍ରୁବ ବିଭା ହେଲେ | । | ତାହାର ପୁତ୍ର ସଂଭବିଲେ | ॥ | ୨ |
| | କଳ୍ପ, ବତ୍ସର ନାମ ହୋଇ | । | ବିଖ୍ୟାତ ଅଟନ୍ତି ସେ ଦୁଇ | ॥ | ୩ |
| ୨ | ଇଡ଼ା ନାମରେ ଭାର୍ଯ୍ୟା ଯେହି | । | ପବନସୁତା ସେ ଅଟଇ | ॥ | ୪ |
| | ସେ ଧ୍ରୁବ ମହାଯଶୋବନ୍ତ | । | ତା'ଠାରେ ପୁତ୍ର କଲେ ଜାତ | ॥ | ୫ |
| | ଉତ୍କଳ ହୋଇ ନାମ ତାର | । | ସେହୁ ଅଟଇ ଯୋଗେଶ୍ୱର | ॥ | ୬ |

---

୧. ପ୍ରକୃତି = ପ୍ରଜା ।

{ ଯୋଷିତରତ୍ନ ପରି ସାର । ସେ ଅଟେ ଅତି ମନୋହର ॥ }
{ ପୁଣି କନ୍ୟାଏ କଲେ ଜାତ । ରତନସଦୃଶ ସାକ୍ଷାତ ॥ }

୩ ଉତ୍ତମ ନାମେ ଧ୍ରୁବଭାଇ । ବିବାହ ନୋହିଥିଲା ସେହି ॥ ୭
ବଳିଷ୍ଠ ଯକ୍ଷ ମୃଗୟାରେ । *ମାଇଲା ତାକୁ ହିମାଦ୍ରିରେ ॥ ୮
ସେ କଥା ଶ୍ରବଣ କରିଣ । ତା' ମାତା ଲଭିଲା ମରଣ ॥ ୯
୪ ଭାଇର ବଧ କର୍ଣ୍ଣେ ଶୁଣି । କୋପ-ଅମର୍ଷ-ଶୋକେ ପୁଣି ॥ ୧୦
ଜୟକୁ ହେତୁ ଅଟେ ଯେହି । ଧ୍ରୁବ ସେ ରଥକୁ ଆରୋହୀ ॥ ୧୧
**ଯକ୍ଷମାନଙ୍କରଯେ ସ୍ଥାନ । ତହିଁକି କଲା ସେ ଗମନ ॥ ୧୨
୫ ଶଙ୍କର-ଅନୁଚରଯୁତ । ଉତ୍ତର ଦିଗ ଯେ ବିଖ୍ୟାତ ॥ ୧୩
ତହିଁକି ଯାଇ ହିମାଦ୍ରିର । କନ୍ଦରେ ଯକ୍ଷଙ୍କର ପୁର ॥ ୧୪
ନୃପତି କଲା ବିଲୋକନ । ଗୁହ୍ୟକମାନଙ୍କେ ସେ ପୂର୍ଣ୍ଣ । ୧୫
୬ ପ୍ରତିଶବଦରେ ଆକାଶ । ପୂରାନ୍ତେ ପୁଣ ଦଶ ଦିଶ ॥ ୧୬
ଶଙ୍ଖ ବଜାଇଲା ସେ ବୀର । ବିଶାଳ ଅଟେ ଭୁଜ ତାର ॥ ୧୭
ଯେଉଁ ଶବଦେ ହେ ବିଦୁର ! । ନାରୀଏ ଯକ୍ଷମାନଙ୍କର ॥ ୧୮
ଉଦ୍‌ବେଗମାନସ[୧] ହୋଇଲେ । ଅଧିକେ ତ୍ରାସକୁ ପାଇଲେ ॥ ୧୯
୭ ତଦନ୍ତେ ହୋଇଣ ବାହାର । ମହାଯୋଦ୍ଧା ଏ ଯକ୍ଷଙ୍କର ॥ ୨୦
ସହି ନ ପାରନ୍ତେ ସେ ସ୍ୱନ । ଧାଇଁଲେ ଟେକି ଅସ୍ତ୍ରମାନ ॥ ୨୧
୮ ଉଗ୍ର ଅଟଇ ଧନୁ ଯାର । ସେ ମହାରଥ ଧ୍ରୁବ ବୀର ॥ ୨୨
ଧାଇଁ ଆସନ୍ତେ ସେ ସକଳେ । ସେ ସମସ୍ତଙ୍କୁ ଏକାବେଳେ ॥ ୨୩
ଜଣ ଜଣକେ ତିନି ତିନି । ଶରେ ବିନ୍ଧିଲେ ଅତିମାନୀ ॥ ୨୪
୯ ସେ କାଣ୍ଡମାନେ ଲଲାଟରେ । ଲାଗନ୍ତେ ସେ ସମସ୍ତ ବୀରେ ॥ ୨୫
ନିରସ୍ତ ମଣି ଆପଣାକୁ । ପ୍ରଶଂସା କଲେ ତା' କର୍ମକୁ ॥ ୨୬

---

{ ଏହି ଶ୍ଲୋକରେ 'ଯୋଗେଶ୍ୱରମଜୀଜନତ୍' ସ୍ଥାନରେ 'ଯୋଷିଦ୍‌ରତ୍ନମଜୀଜନତ୍' ପାଠାନ୍ତର ଅଛି । ସ୍ୱାମିପାଦ ଏହାର ଟୀକାରେ ଲେଖିଛନ୍ତି—
ଯୋଷିତାଂ ରତ୍ନମିବାତିମନୋହରମ୍, କନ୍ୟାରତ୍ନଂ ଚ ଇତି ବା ।

* "ମାଇଲା ତାହାକୁ ଯୁଦ୍ଧରେ ।" ପାଠାନ୍ତର ।
(ହୁଂ ଆଜାବିତି ପାଠେ ଯୁଦ୍ଧେ; ସ୍ୱାମୀ)

** ଅଳକାପୁରୀ ।

୧. ଲୋଚନ ।

୧୦ ପାଦସ୍ପରଶକୁ ଯେସନେ । ସହନ୍ତି ନାହିଁ ସର୍ପମାନେ ॥ ୨୭
ଧ୍ରୁବର କର୍ମକୁ ତେସନେ । ନ ସହନ୍ତେ ସେ ଯକ୍ଷମାନେ ॥ ୨୮
ଦ୍ୱିଗୁଣ ହୁଅଇ ଯେମନ୍ତେ । ବିଚାର କରି ନିଜ ଚିତ୍ତେ ॥ ୨୯
ଏକାବେଳକେ ଛ'ଛ' ବାଣ । ବିନ୍ଧିଲେ ଧ୍ରୁବକୁ ସେ ପୁଣ ॥ ୩୦
୧୧ ତଦନ୍ତେ ପରିଘ, ନିସ୍ତ୍ରିଂଶ । ଶୂଳ, ପରଶୁ, ଶକ୍ତି, ପ୍ରାସ ॥ ୩୧
ଋଷ୍ଟି, ଭୁଶୁଣ୍ଡୀ ଯେ ଇତର । ବିଚିତ୍ର ପକ୍ଷୀଯୁତ ଶର ॥ ୩୨
୧୨ ତେଣେ ବର୍ଷିଲେ କୋପଚିତ୍ତେ । ରଥକୁ ସାରଥି ସହିତେ ॥ ୩୩
ବାଞ୍ଛନ୍ତେ ତାକୁ ପ୍ରତିକାର । ତେର ଅୟୁତ ମହାବୀର ॥ ୩୪
୧୩ ଉତ୍ତାନପାଦରାଜାସୁତ । ସେ ଶସ୍ତ୍ରବୃଷ୍ଟିରେ ବହୁତ ॥ ୩୫
ଧାରାରେ ଗିରିପ୍ରାୟ ହୋଇ । ଦିଶିଲେ ନାହିଁ ଛନ୍ନ ହୋଇ ॥ ୩୬
୧୪ ବ୍ୟୋମେ ଦେଖନ୍ତେ ସିଦ୍ଧଙ୍କର । ହୋଇଲା ତେବେ ହାହାକାର ॥ ୩୭
ଏ ମନୁପୌତ୍ର[1]-ଦିବାକର । ବୁଡ଼ିଲା ଯକ୍ଷଜଳଧିର ॥ ୩୮
୧୫ ଜୟପ୍ରକାଶକ ଅସୁରେ । ଗର୍ଜନ କରନ୍ତେ ସମରେ ॥ ୩୯
ତା' ରଥ ହୋଇଲା ବାହାର । ନୀହାରୁ ଯେସନେ ଭାସ୍କର ॥ ୪୦
୧୬ ଓଟାରନ୍ତେ ସେ ଉଗ୍ରଚାପ । ଜନ୍ମାନ୍ତେ ଶତ୍ରୁଙ୍କର ତାପ ॥ ୪୧
ବାଣେ ନାଶିଲା ଅସ୍ତ୍ରକୁଳ । ମେଘକୁ ଯେସନେ ଅନିଳ ॥ ୪୨
୧୭ ଚାପରୁ ହୋଇଣ ବାହାର । ସେ ତୀକ୍ଷ୍ଣ ନାରାଚେ[2] ଧ୍ରୁବର ॥ ୪୩
ଦୈତ୍ୟଙ୍କ କବଚମାନଙ୍କୁ । ଭେଦିଣ ପଶିଲେ ଦେହକୁ ॥ ୪୪
ଗିରିକି ଭେଦିଣ ଯେସନେ । ଗଳିଯାଆନ୍ତି ବଜ୍ରମାନେ ॥ ୪୫
୧୮ ଭାଲି[3]ରେ ହୁଅନ୍ତେ ଛେଦନ । ଚାରୁକୁଣ୍ଡଳ ମୁଣ୍ଡମାନ ॥ ୪୬
ହେମଲତାର ପ୍ରାୟ କାନ୍ତି । ବହୁତ ହୋଇ ଯେ ଦିଶନ୍ତି ॥ ୪୭
ବଳୟମାନଙ୍କେ ସୁନ୍ଦର । ଯେ ପୁଣ ଭୁଜମାନେ ଆର ॥ ୪୮
୧୯ ବହୁତମୂଲ୍ୟ ଯେବା ହାର । ମୁକୁଟ, ପାଗ, ଯେ କେୟୁର ॥ ୪୯
ଏମାନେ ପଡ଼ନ୍ତେ ଶୋଭନ । ଦିଶିଲେ ରଣଭୂମିମାନ ॥ ୫୦
ବୀର ଲୋକଙ୍କର ମାନସ । ଯେ ଭୂମି କରନ୍ତି ଉଲ୍ଲାସ ॥ ୫୧
୨୦ ହତରୁ ଅବଶେଷ ହୋଇ । ରାକ୍ଷସଗଣେ ଥିଲେ ଯେହି ॥ ୫୨
କ୍ଷତ୍ରିୟବରବାଣେ ସେହି । ବହୁତେ ଛିନ୍ନ ଅଙ୍ଗ ହୋଇ ॥ ୫୩
ପଳାଇଗଲେ ସେ ଯେସନେ । ସିଂହ ଗୋଡ଼ାନ୍ତେ ହାତୀମାନେ ॥ ୫୪

---

୧. ମନୁପୌତ୍ର – ଧ୍ରୁବ । ୨. ନାରାଚ । ୩. ଭାଲି = ଅସ୍ତ୍ରବିଶେଷ ।

୨୧ ମହାଯୁଦ୍ଧରେ ଶସ୍ତ୍ରପାଣି । ନ ଦେଖି କାହାକୁ ହିଁ ପୁଣି ॥ ୫୫
ସେ ଧ୍ରୁବ ମନୁବଂଶସାର । ଦେଖି ବାଞ୍ଛନ୍ତେ ଶତ୍ରୁପୁର ॥ ୫୬
ପ୍ରବେଶ ନୋହିଲେ ସେ ତହିଁ । ମାୟାବୀ ଛନ୍ତି ଯେହି କେହି ॥ ୫୭
ସେ ଲୋକମାନଙ୍କ ବିଚାର । ଜାଣି ନ ପାରେ ଆନ ନର ॥ ୫୮
୨୨ ସେ ଧ୍ରୁବ ଏମନ୍ତ ବାଣୀକି । କହନ୍ତେ ନିଜ ସାରଥିକି ॥ ୫୯
ଶତ୍ରୁଙ୍କ ପୁଣ ଆଗମନ । ତର୍କିଣ ହୋଇଲେ ଯତନ ॥ ୬୦
ଜଳଧିଗର୍ଜନ ଯେସନ । ସେରୂପେ ଶୁଣିଲେ ନିଃସ୍ୱନ ॥ ୬୧
ପବନସକାଶରୁ ଧୂଳି । ଦିଶିଲା ସବୁଦିଗେ ମିଳି ॥ ୬୨
୨୩ ଯହିଁ ବିଜୁଳି ବିକାଶନ୍ତି । କୁଳିଶେ ତ୍ରାସକୁ କରାନ୍ତି ॥ ୬୩
ସେ ମେଘବୃନ୍ଦ କ୍ଷଣକରେ । ବ୍ୟାପିଲେ ସର୍ବ ଆକାଶରେ ॥ ୬୪
୨୪ ରୁଧିରଶ୍ଳେଷ୍ମ-ଆଦିମାନ । ଯେ ପୂଯ, ବିଷ୍ଠା, ମୂତ୍ର ଆନ ॥ ୬୫
ମେଦମାନଙ୍କୁ ବରଷିଲେ । ଏ ଧ୍ରୁବ ଆଗେ, ତାଙ୍କ ତୁଲେ ॥ ୬୬
ମୁଣ୍ଡ-ନ ଥିଲା ଦେହମାନ । ଗଗନୁଁ ହୋଇଲେ ପତନ ॥ ୬୭
୨୫ ଅଚଳମାନେ ତଦନ୍ତରେ । ଦିଶିଲେ ସକଳ ଦିଗରେ ॥ ୬୮
ଯେ ଗଦା, ପରିଘ, ନିସ୍ତ୍ରିଂଶ । ପଡ଼ିଲେ ମୁଷଳ ବିଶେଷ ॥ ୬୯
ପାଷାଣ ସହିତ ହୋଇଣ । ବୃଷ୍ଟିକି କରନ୍ତି ସେ ପୁଣ ॥ ୭୦
୨୬ ଯାହାଙ୍କ ନିଃଶ୍ୱାସ ପବନ । ଶୁଭଇ ବଜ୍ରର ସମାନ ॥ ୭୧
ରୋଷରେ ନୟନୁଁ ଅନଳ । ଜାତ କରନ୍ତି ତତକାଳ ॥ ୭୨
ଏମନ୍ତ ସର୍ପମାନେ ତହିଁ । ଅଇଲେ ସବୁ ଦିଗୁଁ ଧାଇଁ ॥ ୭୩
ମତ୍ତ କୁଞ୍ଜର ବ୍ୟାଘ୍ର ସିଂହ । ଧାଇଁଲେ ହୋଇ ସଂଘ ସଂଘ ॥ ୭୪
୨୭ ଊର୍ମିମାନଙ୍କେ ସର୍ବ ମହୀ । ବୁଡ଼ାନ୍ତେ ଭୟଙ୍କର ହୋଇ ॥ ୭୫
ସମୁଦ୍ର ଅତ୍ୟନ୍ତ ଗର୍ଜନ । କରନ୍ତେ ମିଳିଲା ସେ ସ୍ଥାନ ॥ ୭୬
କଳ୍ପାନ୍ତ-କାଳପ୍ରାୟେ ହୋଇ । ଅଟଇ ଭୟପ୍ରଦ ସେହି ॥ ୭୭
୨୮ ଏ ରୂପେ ଅନେକ ପ୍ରକାର । ଅବୀରଜନଭୟଙ୍କର ॥ ୭୮
କର୍ମକୁ ଆସୁରୀ ମାୟାରେ । ସର୍ଜନ କଲେ ସେ ଅସୁରେ ॥ ୭୯
ଯେଣୁ ସେମାନଙ୍କର ଗତି । ସ୍ୱଭାବେ ତୀକ୍ଷ୍ଣ ଅଟେ ଅତି ॥ ୮୦
୨୯ ସେ ମାୟା ଅତ୍ୟନ୍ତ ଦୁସ୍ତର । ଅସୁରେ କଲେ ଧ୍ରୁବଠାର ॥ ୮୧
ତା'ଦେଖି ମିଳି ମୁନିଜନ । କଲେ କୁଶଳ ଆଶଂସନ ॥ ୮୨

ଶ୍ରୀ ମୁନୟ ଉଚୁଃ

୩୦ ହେ ଧ୍ରୁବ ! ଶାର୍ଙ୍ଗଧନୁ ଯାର । ଯେ ଅବନତ-ଆର୍ତ୍ତିହର ।। ୮୩
ସେ ଦେବ ଭଗବାନ ତୋର । କରୁ ବିପକ୍ଷକୁ ସଂହାର ।। ୮୪
ଯା' ନାମ ଶ୍ରବଣ କୀର୍ତ୍ତନ । କରିଣ ସାକ୍ଷାତରେ ଜନ ।। ୮୫
ଦୁସ୍ତର ମୃତ୍ୟୁ ଯେ ଅଟଇ । ତାହାକୁ ସୁଖରେ ତରଇ ।। ୮୬
ଯେ ଭବସିନ୍ଧୁକୁ କାରଣ । ଦୀନବନ୍ଧୁର ସେ ଶରଣ ।। ୮୭
ସୁଜନେ ହୁଅ ଏଣେ ତୋଷ । ମୁଁ ତୁମ୍ଭ ଦାସଙ୍କର ଦାସ ।। ୮୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀଧ୍ରୁବଚରିତେ ଯକ୍ଷମାୟାଧାନଂ
ନାମ ଦଶମୋଽଧ୍ୟାୟଃ ।।

## ଏକାଦଶୋଽଧ୍ୟାୟଃ

ଏକାଦଶେ ତୁ ଯକ୍ଷାଣାଂ କ୍ଷୟଂ ଦୃଷ୍ଟ୍ୱା ମନୁଃ ସ୍ୱୟମ୍ ।
ଆଗତ୍ୟ ବାରୟାମାସ ଧ୍ରୁବଂ ତତ୍ତ୍ୱୋପଦେଶତଃ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ ଏମନ୍ତ ପ୍ରକାରେ ବଚନ । କହନ୍ତେ ତହିଁ ଋଷିଜନ ।। ୧
ସେ କଥା ଉପଦେଶପ୍ରାୟେ । ମଣିଣ ଆପଣା ହୃଦୟେ ।। ୨
ଉତ୍ତାନପାଦର ନନ୍ଦନ । ତକ୍ଷଣେ କରି ଆଚମନ ।। ୩
ଯେ ନାରାୟଣ-ଅସ୍ତ୍ର ଥିଲା । ଧନୁରେ ସଂଧାନ ତା' କଲା ।। ୪
୨ ଏ ଅସ୍ତ୍ର କରନ୍ତେ ସନ୍ଧାନ । ଗୁହ୍ୟକକୃତ ମାୟାମାନ ।। ୫
ବିନାଶ ହୋଇଲେ ବେଗରେ । ପ୍ରାଣୀର ଜ୍ଞାନ ଉଦୟରେ ।। ୬
ଯେସନେ ରାଗ ଆଦି କ୍ଳେଶ । ବିଦୁର ! ହୁଅନ୍ତି ବିନାଶ ।। ୭
୩ ଯେ ନାରାୟଣ-ଋଷିଠାରୁ । ସଂଭୂତ ହୋଇଛି ପୂର୍ବରୁ ।। ୮
ସେ ଅସ୍ତ୍ର ନେଇଣ ଧନୁରେ । ପ୍ରୟୋଗ କରନ୍ତେ ବେଗରେ ।। ୯
ସୁବର୍ଣ୍ଣ ମୂଳପ୍ରାନ୍ତେ ଯହିଁ । କଳହଂସର ପକ୍ଷୀ ଶୋହି ।। ୧୦

ବାହାର ହୋଇଣ ସେ ଶରେ । ମିଳିଲେ ଶତ୍ରୁଙ୍କ ସୈନ୍ୟରେ ।। ୧୧
ମୟୂରେ କରି ଭୀମ[୧]ସ୍ୱନ । ଯେହ୍ନେ ମିଳନ୍ତି ଯାଇଁ ବନ ।। ୧୨
୪ ଯେବଣ ଶରମାନଙ୍କର । ଅତିହିଁ ତୀକ୍ଷ୍ଣ ଅଟେ ଧାର ।। ୧୩
ଯୁଦ୍ଧେ ସେ ଶସ୍ତ୍ରେ ଏଣେ ତେଣେ । ଉଦ୍‌ବେଗ ପାଇ ଯକ୍ଷଗଣେ ।। ୧୪
କୋପରେ ଆୟୁଧ ଟେକିଲେ । ଧ୍ରୁବ ଉପରକୁ ଧାଇଁଲେ ।। ୧୫
ଫଣାକୁ ଟେକି ସର୍ପମାନେ । ଧାମନ୍ତି ଗରୁଡ଼କୁ ଯେହ୍ନେ ।। ୧୬
୫ ସେମାନେ ଧାମନ୍ତେ ବେଗରେ । ସେ ଧ୍ରୁବ ଶରମାନଙ୍କରେ ।। ୧୭
ବାହୁ, ଉଦର, ଊରୁ, ଗଳ । କାଟି ଏମାନ ତତକାଳ ।। ୧୮
ଉତ୍ତାନପାଦସୁତ ତାଙ୍କୁ । ପେଷିଲେ ସେ ପରଲୋକକୁ ।। ୧୯
ସୂର୍ଯ୍ୟମଣ୍ଡଳକୁ ଭେଦିଣ । ଯହିଁକି ଯାନ୍ତି ଯତିଗଣ ।। ୨୦
୬ ଯାହାର ରଥ ଅଟେ ଚିତ୍ର । ସେ ଯେ ଉତ୍ତାନପାଦପୁତ୍ର ।। ୨୧
ଅନପରାଧୀ ଯକ୍ଷମାନ । ମାଇଲା ଦେଖିଣ ଏସନ ।। ୨୨
ତା' ପିତାମହ ମନୁ ଆସି । ସଙ୍ଗତେ ଛନ୍ତି ନାନା ଋଷି ।। ୨୩
ଧ୍ରୁବକୁ କୃପାରେ ସଂଯୁତ । ହୋଇଣ ବୋଇଲେ ଏମନ୍ତ ।। ୨୪

ଶ୍ରୀମନୁରୁବାଚ

୭ ହେ ବତ୍ସ ! ଅତିଶୟ ରୋଷ । ବ୍ୟର୍ଥ ନ କର ତୁ ପ୍ରକାଶ ।। ୨୫
ଯେ ପାପ ନରକକୁ ଦ୍ୱାର । ଯେବଣ ରୋଷେ ତୁ ଅପାର ।। ୨୬
ନିରପରାଧ ଯକ୍ଷଗଣ । ବିନାଶ କଲୁ ଅକାରଣ ।। ୨୭
୮ ହେ ତାତ ! ଏ କର୍ମ ନିନ୍ଦିତ । ଆମ୍ଭ କୁଳକୁ ଅନୁଚିତ ।। ୨୮
ଅପରାଧକୁ ତୋର ଠାରେ । କରି ନ ଥିଲେ ଯେ ପୂର୍ବରେ ।। ୨୯
ସେ ଉପଦେବ ମାନଙ୍କର । ବଧକୁ କଲୁ ଯା ବିସ୍ତାର ।। ୩୦
୯ ଭ୍ରାତାବତ୍ସଳ ଅଟୁ ତୁହି । ଭାଇବଧରେ ତାପି ହୋଇ ।। ୩୧
ଅପରାଧକୁ କଲା ଏକ । ତା' ସଙ୍ଗୁଁ ମାଇଲୁ ଅନେକ ।। ୩୨
୧୦ ବିଷ୍ଣୁଙ୍କ ଅନୁବର୍ତ୍ତି ଯେତେ । ସାଧୁଏ ଅଛନ୍ତି ଜଗତେ ।। ୩୩
ସେ ସାଧୁଲୋକମାନଙ୍କର । ମାର୍ଗ ନୁହଇ ଏ ପ୍ରକାର ।। ୩୪
ଦେହକୁ ମଣି ଆତ୍ମାପ୍ରାୟେ । ହୋଇଣ ପଶୁଙ୍କ ପରାଏ ।। ୩୫
ପ୍ରାଣୀମାନଙ୍କୁ ଅକାରଣ । ବିନାଶ କଲୁ ଯାହା ପୁଣ ।। ୩୬

---

୧. ରମ୍ୟ ।

୧୧ ଯେ ହରି ପ୍ରାଣୀମାନଙ୍କର । ଅଟନ୍ତି ନିବାସ ପ୍ରକାର ॥ ୩୭
ସକଳ ଭୂତ ଆତ୍ମଭାବେ । ତାହାଙ୍କୁ ଆରାଧିଣ ପୂର୍ବେ ॥ ୩୮
ବିଷ୍ଣୁର ଯେ ପରମ ସ୍ଥାନ । ଲଭି ନ ପାରେ ଯାହା ଆନ ॥ ୩୯
ବିଷ୍ଣୁର ଅନୁଗ୍ରହୁଁ ପୁଣ । ସେ ସ୍ଥାନ ଅଛୁ ତୁ ଲଭିଣ ॥ ୪୦
୧୨ ତୁ ଅଟୁ ବିଷ୍ଣୁ ହୃଦେ ସ୍ଥିତ । ବୈଷ୍ଣବମାନଙ୍କେ ସମ୍ମତ ॥ ୪୧
ଯେ ସାଧୁମାନଙ୍କର ବ୍ରତ । ଶିକ୍ଷା କରନ୍ତେ ତୁ ସନ୍ତତ ॥ ୪୨
ନିନ୍ଦିତ କଥା ଯେ ଅଟଇ । ସେ କଥା କଲୁ ତୁ କିମ୍ପାଇଁ ॥ ୪୩
୧୩ ମହତ ଅଟନ୍ତି ଯେ ଜନ । ସହିବ ତାଙ୍କ ଦୋଷମାନ ॥ ୪୪
ନୀଚ ଲୋକରେ କୃପା ଥିବ । ସମାନ ଲୋକେ ମିତ୍ରଭାବ ॥ ୪୫
ସମତା ସକଳ ଜନ୍ତୁରେ । କରନ୍ତେ ଲୋକ ଏ ସଂସାରେ ॥ ୪୬
ସକଳ-ଆତ୍ମା ଭଗବାନ । ତାଙ୍କୁ ହୁଅନ୍ତି ସୁପ୍ରସନ୍ନ ॥ ୪୭
୧୪ ହରି ପ୍ରସନ୍ନ ହେଲେ ନର । ପ୍ରକୃତିଗୁଣ କରି ଦୂର ॥ ୪୮
ଲିଙ୍ଗଶରୀରୁଁ ମୁକ୍ତ ହୋଇ । ସୁଖସ୍ୱରୂପ ବ୍ରହ୍ମପାଇ ॥ ୪୯
୧୫ ପଞ୍ଚଭୂତରେ ଦେହ ହୋଇ । ସ୍ତିରୀ-ପୁରୁଷ ହୋଇ ଦୁଇ ॥ ୫୦
ସଂସାରେ ସୁରତୁଂ ତାଙ୍କର । ଜନ୍ମନ୍ତି ସ୍ତ୍ରୀ ପୁରୁଷ ଆର ॥ ୫୧
୧୬ ହେ ନୃପ ! ପରମ ଆତ୍ମାର । ଯେ ମାୟା ଅଟଇ ସଂସାର ॥ ୫୨
ତହୁଁ ଯେ ରୂପେ ସୃଷ୍ଟି ହୋଇ । ସ୍ଥିତି ପ୍ରଳୟ ପୁଣ ଦୁଇ ॥ ୫୩
୧୭ ପୁରୁଷଶ୍ରେଷ୍ଠ ଯେ ନିର୍ଗୁଣ । ତହିଁ ନିମିତ୍ତମାତ୍ର ପୁଣ ॥ ୫୪
କାର୍ଯ୍ୟକାରଣ ରୂପ ହୋଇ । ଏ ବିଶ୍ୱ ଯା'ଠାରେ ଭ୍ରମଇଁ ॥ ୫୫
ଚୁମ୍ବକଶିଳା-ସଙ୍ଗ ପାଇ । ଲୋହ ଯେସନେ ଭ୍ରମୁଥାଇ ॥ ୫୬
୧୮ ସେ ବିଷ୍ଣୁ କାଳଶକତିରେ । ଗୁଣମାନଙ୍କ ପ୍ରବାହରେ ॥ ୫୭
ସୃଷ୍ଟି ଆଦିରେ ଯେ ଶକତି । କ୍ରମେଣ ବିଭାଗ କରନ୍ତି ॥ ୫୮
କର୍ତ୍ତା ନୁହଇ କର୍ମ କରେ । ନାଶକ ନୋହି ଜନ୍ତୁ ମାରେ ॥ ୫୯
ଯାହାର ପରିଚ୍ଛିନ୍ନ ନାହିଁ । ତା' ଚେଷ୍ଟା ନ ଜାଣଇଁ କେହି ॥ ୬୦
୧୯ ସେ କାଳ ଅନନ୍ତ ଅଟଇ । ପରର ଅନ୍ତକୁ କରଇ ॥ ୬୧
ସ୍ୱୟେଂ ଅନାଦି ଆଦିକର । ବିନାଶ ନ ଘଟେ ତାହାର ॥ ୬୨
ଜନକୁ ଜନେ ଜାତ କରେ । ମୃତ୍ୟୁରେ ଚୌର ଆଦି ମାରେ ॥ ୬୩

୨୦ ସେ ମୃତ୍ୟୁରୂପୀ ସମ ହୋଇ । ପ୍ରଜାଙ୍କୁ ପ୍ରବେଶ ହୁଅଇ ॥ ୬୪
ସ୍ୱପକ୍ଷ ବିପକ୍ଷ ହୋଇଣ । ନାହିଁ ତାହାର ଏକ ଜଣ ॥ ୬୫
ଯେ କାଳ ଅବିରତେ ଧାଇଁ । ପ୍ରାଣୀଏ କର୍ମବଶ ହୋଇ ॥ ୬୬
ଧାବନ୍ତି ତାକୁ ଅନୁଗତେ । ପବନ ବହନ୍ତେ ଯେମନ୍ତେ ॥ ୬୭
ରେଣୁଏ ଅଣଆୟତ୍ତରେ । ଧାବନ୍ତି ତାହାର ପଛରେ ॥ ୬୮
୨୧ କର୍ମ-ଅଧୀନ ଯେଉଁ ନର । ଅକାଳମୃତ୍ୟୁକୁ ତାହାର ॥ ୬୯
ବିଧାନ କରନ୍ତେ ସେ ପୁଣି । କାଳମୃତ୍ୟୁରୁ ରଖେ ଜାଣି ॥ ୭୦
ଏ ବେନି କଥା ନାହିଁ ତାର । ଅଟେ ସେ ସକଳ-ଈଶ୍ୱର ॥ ୭୧
୨୨ ଏହାଙ୍କୁ କର୍ମ ବୋଲି କେହି । ଆନେ ସ୍ୱଭାବ ବୋଲି କହି ॥ ୭୨
କାଳ ବୋଲନ୍ତି ପୁଣ ଥୋକେ । ଦୈବ ବୋଲନ୍ତି କେହି ଲୋକେ ॥ ୭୩
ପୁରୁଷକାମ[୧] ବୋଲି ପୁଣ । ଅପରେ କରନ୍ତି ବଖାଣ ॥ ୭୪
୨୩ ବ୍ୟକ୍ତ ନୁହନ୍ତି ଯେ ଈଶ୍ୱର । ପ୍ରତ୍ୟକ୍ଷ ଆଦି-ଅଗୋଚର ॥ ୭୫
ନାନାପ୍ରକାର ଶକ୍ତିମାନ । ତାହାର ଠାରୁ ଉତପନ୍ନ ॥ ୭୬
ସେ ଯାହା କରିବାକୁ ମନେ । ବିଚାରେ କେ ତା' ଜାଣେ ଆନେ ॥ ୭୭
ଯା'ଠାରୁ ଜଗତ ସଂଭବ । *ତାହାକୁ କେ ଜାଣି ପାରିବ ॥ ୭୮
୨୪ ଏ ଯେ କୁବେର ଭୃତ୍ୟମାନେ । ତୋହର ଭାଇର ନିଧନେ ॥ ୭୯
ଏମାନେ ନୁହନ୍ତି କାରଣ । ହେ ପୁତ୍ର ! ମନ ଦେଇ ଶୁଣ ॥ ୮୦
ପୁରୁଷଜନ୍ମମରଣରେ । ଦଇବ ହେତୁ ଏ ସଂସାରେ ॥ ୮୧
୨୫ ସେ ବିଶ୍ୱ କରଇ ସର୍ଜନ । ପାଳଇ କରଇ ନିଧନ ॥ ୮୨
ଏମନ୍ତ ହେଲେହେଁ ତାହାର । ତଥାପି ନାହିଁ ଅହଙ୍କାର ॥ ୮୩
ଗୁଣକର୍ମରେ କଦାଚିତ । ସେ ପୁଣ ନୋହେ ଆସକତ ॥ ୮୪
୨୬ ଏ ଭୂତଆତ୍ମା, ଭୂତେଶ୍ୱର । ଭୂତଭାବନ ଚକ୍ରଧର ॥ ୮୫
ସ୍ୱଶକ୍ତି ଯେ ମାୟା ଅଟଇ । ତାର ସଙ୍ଗରେ ଯୁକ୍ତ ହୋଇ ॥ ୮୬
ସର୍ଜନା କରଇ ଜଗତ । ପାଳଇ, ପୁଣ କରେ ହତ ॥ ୮୭

---

୧. ବାତ୍ସାୟନାଦି ଋଷିଗଣ ଏହାଙ୍କୁ 'ପୁରୁଷକାମ' କହନ୍ତି । ଅତ୍ରଶ୍ରୁତିଃ—'କାମୋଽକାର୍ଷୀଦ୍ କାମଃ କରୋତି, କାମଃ କର୍ତ୍ତା, କାମଃ କାରୟିତା' ଇତ୍ୟାଦି ।

* କୋଽଦ୍ଧା ବେଦ କ ଇହ ପ୍ରାବୋଚଦ୍ କୁତ ଆୟାତା କୁତ ଇୟଂ ବିସୃଷ୍ଟିଃ ।
ଅର୍ବାଗ୍ ଦେବା ଅସ୍ୟ ବିସର୍ଜନେନାଥ କୋ ବେଦ ଯତ ଆବଭୂବ ॥ (ଶ୍ରୁତିଃ)

୨୭ ସେ ସତ୍ୟ[୧] ଅମୃତ ଅଟଇ । ଜଗତପରାୟଣ ସେହି ॥ ୮୮
ଭୋ ତାତ ! ସକଳ ପ୍ରକାରେ । ଶରଣ ପଶ ତାଙ୍କଠାରେ ॥ ୮୯
ଯାହାକୁ ବିଶ୍ୱସୃଜଗଣେ । ବଳି ବହନ୍ତି ଅନୁକ୍ଷଣେ ॥ ୯୦
ରଜ୍ଜୁରେ ନାସିକାବନ୍ଧନେ । ଯେସନେ ବଳୀବର୍ଦ୍ଦମାନେ ॥ ୯୧
୨୮ ସପତ୍ନୀ ମାତାର ବଚନ । ମନକୁ କରନ୍ତେ ଭେଦନ ॥ ୯୨
ପାଞ୍ଚବରଷ କାଳେ ତୁହି । ମାତାକୁ ଛାଡ଼ି ବନେ ଯାଇ ॥ ୯୩
ଇନ୍ଦ୍ରିୟମାନଙ୍କୁ ଅନ୍ତରେ । ଆରୋପି କରି ତପସ୍ୟାରେ ॥ ୯୪
ଯାକୁ ଆରାଧି ତ୍ରିଲୋକର । ଉପରେ ଲଭିଲୁ ମନ୍ଦିର ॥ ୯୫
୨୯ ଯେ ଏକ ନିର୍ଗୁଣ ଅକ୍ଷର । ବିରୋଧ ନାହିଁ ଯାହା ଠାର ॥ ୯୬
ଆତ୍ମାସ୍ୱରୂପ ଯେ ଅଟନ୍ତି । ମନରେ ସ୍ଥିତି କରିଛନ୍ତି ॥ ୯୭
ଅନିତ୍ୟ ଜଗତ ଯା'ଠାରେ । ପ୍ରତ୍ୟେ ହୁଅଇ ଭେଦଦ୍ୱାରେ ॥ ୯୮
ହେ ଧ୍ରୁବ ! ଆତ୍ମଦୃଷ୍ଟି ହୋଇ । ତାହାଙ୍କୁ ଚିନ୍ତା କର ତୁହି ॥ ୯୯
୩୦ ଯା'ଠାରେ ସର୍ବଶକ୍ତିମାନ । ହୋଇଅଛନ୍ତି ଉପପନ୍ନ ॥୧୦୦
ଆନନ୍ଦମାତ୍ର-ରୂପ ଯେହି । ଯାହାର ପୁଣ ଅନ୍ତ ନାହିଁ ॥୧୦୧
ସକଳ ପ୍ରାଣୀମାନଙ୍କର । ଆତ୍ମା ଅଟଇ ଯେ ଅନ୍ତର ॥୧୦୨
ପରମ ଭକ୍ତିକି ତା'ଠାରେ । ବିଧାନ କରି ସେ କାଳରେ ॥୧୦୩
ଯେ ଅହଂ ମମ ରୂପେ ଜାତ । ହୋଇଛି ହୃଦେ ଅବିରତ ॥୧୦୪
ଦୁର୍ଜୟ ଅବିଦ୍ୟାବନ୍ଧନ । କ୍ରମରେ କର ତୁ ଭେଦନ ॥୧୦୫
୩୧ ହେ ନୃପ ! ଲୋକର ମଙ୍ଗଳ । କଥାକୁ ଯେହୁ ପ୍ରତିକୂଳ ॥୧୦୬
ଶାସ୍ତ୍ରକୁ ବିଚାରି ବିଶେଷ । ତୁ ସେ କ୍ରୋଧକୁ କର ନାଶ ॥୧୦୭
ଔଷଧପ୍ରୟୋଗେ ଯେସନ । ରୋଗକୁ ନାଶ କରେ ଜନ ॥୧୦୮
୩୨ ଯେବଣ କ୍ରୋଧରେ ପୂରିତ । ପୁରୁଷଠାରୁ ଅବିରତ ॥୧୦୯
ଉଦବେଗକୁ ଲୋକ ପାଇ । ଯେ ପୁଣ ପଣ୍ଡିତ ଅଟଇ ॥୧୧୦
ନ ଯାଇ ସେ କ୍ରୋଧବଶକୁ । ବାଞ୍ଛନ୍ତେ ନିଜ ଅଭୟକୁ ॥୧୧୧
୩୩ କୁବେର ମହେଶର ଭାଇ । ତାର ଅବଜ୍ଞା କଲୁ ତୁହି ॥୧୧୨
ଘେନିଣ ଭାଇବଧ-ରୋଷ । ଯକ୍ଷଙ୍କୁ କଲୁ ଯେଣୁ ନାଶ ॥୧୧୩

---

୧. ମୃତ୍ୟୁ ।

୩୪ ମହତ ଲୋକମାନଙ୍କର । ତେଜ ଏ କୁଳକୁ ଆମ୍ଭର ।।୧୧୪
ନ କରୁଁ ପରାଭବ, ତୁହି । ବିନୟ ବଚନକୁ କହି ।।୧୧୫
ହେ ବତ୍ସ ! କରି ପ୍ରଣାମକୁ । ବେଗେ ପ୍ରସନ୍ନ କରା' ତାଙ୍କୁ ।।୧୧୬

ଶ୍ରୀମୈତ୍ରେୟ ଉବାଚ

୩୫ ଏ ରୂପେ ମନୁ ସ୍ୱାୟଂଭୁବ । ନାତି ଅଟଇ ଯେଉଁ ଧ୍ରୁବ ।।୧୧୭
ତାହାକୁ ଅନୁଶିକ୍ଷା ଦେଇ । ତା'ଠାରୁ ପ୍ରଣାମକୁ ପାଇ ।।୧୧୮
ଋଷିମାନଙ୍କ ସଙ୍ଗତରେ । ଗମନ କଲେ ନିଜ ପୁରେ ।।୧୧୯
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ମନ ଦେଇ କୃଷ୍ଣଚରଣେ ।।୧୨୦

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀଧ୍ରୁବଚରିତେ ଶ୍ରୀମନୁବାକ୍ୟଂ ନାମୈକାଦଶୋଽଧ୍ୟାୟଃ ।।

## ଦ୍ୱାଦଶୋଽଧ୍ୟାୟଃ

ଦ୍ୱାଦଶେ ଧନଦେନାଭିନନ୍ଦିତଃ[୧] ପୁରମାଗତଃ ।
ଯଜ୍ଞୈରିଷ୍ଟ୍ୱା ହରେଃ ସ୍ଥାନମାରୁରୋହେତି କୀର୍ତ୍ତ୍ୟତେ ।। ୧ ।।

ଶ୍ରୀମୈତ୍ରେୟ ଉବାଚ

୧ କ୍ରୋଧକୁ ଧ୍ରୁବ ଦୂର କଲେ । ଯକ୍ଷବଧରୁ ନିବର୍ତ୍ତିଲେ ।। ୧
ଏମନ୍ତ ଜାଣି ଧନେଶ୍ୱର । ପ୍ରବେଶ ହୋଇଲେ ସେଠାର ।। ୨
ସ୍ତୁତି କରୁଛନ୍ତି ଚାରଣ । ଯକ୍ଷକିନ୍ନରମାନେ ପୁଣ ।। ୩
ଅଞ୍ଜଳି ଯୋଡ଼ି ଧ୍ରୁବ ଥିଲେ । ତାଙ୍କୁ ସେ ବଚନ ବୋଇଲେ ।। ୪

ଶ୍ରୀଧନଦ ଉବାଚ

୨ ଭୋ ଭୋ ଅନଘ କ୍ଷତ୍ରିସୁତ । ମୁଁ ତୋତେ ହେଲି ତୋଷଚିତ୍ତ ।। ୫
ପିତାମହର ଆଜ୍ଞା ପାଇ । ଯେଣୁ ଶାନ୍ତିରେ ମନ ଦେଇ ।। ୬
ଦୁସ୍ତ୍ୟଜ ଅଟେ ଯେ ବଇର । ସେ କଥା କଲୁ ଅତିଦୂର ।। ୭
୩ ଯେ ଯକ୍ଷମାନଙ୍କ ନିଧନ । ତୁ କରି ନାହୁଁ ତା' ବିଧାନ ।। ୮
ତୋହର ଭ୍ରାତାର ମରଣ । କରି ନାହାନ୍ତି ଯକ୍ଷେ ପୁଣ ।। ୯
ପ୍ରାଣୀଙ୍କ ମରଣ ଜନ୍ମରେ । କାଳହିଁ ପ୍ରଭୁ ଏ ସଂସାରେ ।। ୧୦

୧. ଧନଦେନୈବ ବନ୍ଦିତଃ ।

୪ ମୁଁ ତୁମ୍ଭେ ଏମନ୍ତ ରୂପରେ । ବିଅର୍ଥ ମତି ଅଜ୍ଞାନରେ ॥ ୧୧
ପ୍ରକାଶେ ପୁରୁଷହୃଦୟେ । ସ୍ୱପ୍ନଜନିତ ବୁଦ୍ଧିପ୍ରାୟେ ॥ ୧୨
ଯେବଣ ବୁଦ୍ଧିରେ ପ୍ରକାଶ । ଦେହହେତୁରୁ ବନ୍ଧକ୍ଳେଶ ॥ ୧୩

୫-୬ } ସେ ଘେନି ଗମନ ତୁ କର । ଧ୍ରୁବ ! ମଙ୍ଗଳ ହେଉ ତୋର ॥ ୧୪

ସକଳ ପ୍ରାଣୀମାନଙ୍କର । ଆତ୍ମାସ୍ୱରୂପ ଯେ ଈଶ୍ୱର ॥ ୧୫
ସକଳ ଆତ୍ମା ରୂପେ ତାଙ୍କୁ । ଭଜ ତୁ ମୋକ୍ଷ ହୋଇବାକୁ ॥ ୧୬
ଭଜନଯୋଗ୍ୟ ତା' ଚରଣ । ଯେ ଭବ କରେ ନିବାରଣ ॥ ୧୭
ଯେ ନିଜ ମାୟା ଗୁଣମୟୀ । ଶକ୍ତି ତାହାର ସେ ଅଟଇ ॥ ୧୮
ତେଣେ ଯେ ଅଟଇ ସଂଯୁତ । କାଳରେ କରେ ତା' ତ୍ୟକତ ॥ ୧୯
୭ ହେ ନୃପ ! ଆଶଙ୍କା ନ ପାଇ । ମନରେ ତୋର ଯେ ଅଛଇ ॥ ୨୦
ସେ କଥା ମୋର ଠାରୁ ଘେନ । ତୁ ଅଟୁ ବରକୁ ଭାଜନ ॥ ୨୧
ପଦ୍ମନାଭର ପାଦ ଦୁଇ । ଅତି ନିକଟ ଅଟୁ ତୁହି ॥ ୨୨
ଏମନ୍ତ ରୂପେ ଆମ୍ଭେମାନେ । ତୋତେ ଶୁଣିଛୁ ଏ ଭୁବନେ ॥ ୨୩

ଶ୍ରୀମୈତ୍ରେୟ ଉବାଚ

୮ ଯେ ଭାଗବତ ମଧ୍ୟେ ବର । ବିଶାଳ ଅଟେ ବୁଦ୍ଧି ଯାର ॥ ୨୪
ଏମନ୍ତ ରୂପେ ସେ ଧ୍ରୁବକୁ । କୁବେର ଯାଚନ୍ତେ ବରକୁ ॥ ୨୫
ବିଷ୍ଣୁର ଠାରେ ଅଚଳିତ । ସ୍ମୃତିକି ବରିଲା ତୁରିତ ॥ ୨୬
ଯେଉଁ ସ୍ମୃତିରେ ଅଯତ୍ନରେ । ଦୁସ୍ତର ଭବ ପ୍ରାଣୀ ତରେ ॥ ୨୭
୯ ସନ୍ତୋଷମନରେ ତାହାଙ୍କୁ । ପ୍ରଦାନ କରି ସେ ବରକୁ ॥ ୨୮
ଧ୍ରୁବ ଚାହାଁନ୍ତେ ସେହି ସ୍ଥାନେ । କୁବେର ଗଲେ ଅନ୍ତର୍ଦ୍ଧାନେ ॥ ୨୯
ସେ ଧ୍ରୁବ ପୁଣି ତଦନ୍ତର । ପ୍ରବେଶ ହେଲା ନିଜ ପୁର ॥ ୩୦
୧୦ ବହୁତ ଦକ୍ଷିଣା ଯହିଁରେ । ଏମନ୍ତ ଯଜ୍ଞମାନଙ୍କରେ ॥ ୩୧
କ୍ରିୟା-ଦେବତା-ଦ୍ରବ୍ୟଙ୍କର । ଯେ କର୍ମରୂପୀ ଯଜ୍ଞେଶ୍ୱର ॥ ୩୨
ଯେ କର୍ମଫଳଦାତା ହରି । ତାଙ୍କୁ ପୂଜିଲେ ଯତ୍ନ କରି ॥ ୩୩
୧୧ ଯେ ଆତ୍ମା ସର୍ବପ୍ରାଣୀଙ୍କର । ସର୍ବ ଉପାଧି ନାହିଁ ଯାର ॥ ୩୪
ସେ ବିଷ୍ଣୁଠାରେ ଅବିଚ୍ଛିନ୍ନ[1] । ଭକ୍ତି ବହନ୍ତେ ଅନୁଦିନ ॥ ୩୫
ତାଙ୍କୁ ଆତ୍ମାରେ ସର୍ବଭୂତେ । ଅଛନ୍ତି ଦେଖିଲେ ଏମନ୍ତେ ॥ ୩୬

---

୧. ଅବିଚ୍ଛନ୍ନ ।

୧୨ ସେ ଧ୍ରୁବ ସୁଚରିତଯୁତ । ବ୍ରହ୍ମଣ୍ୟ ଦୀନଜନେ ହିତ ॥ ୩୭
ପାଳଇ ଧର୍ମମର୍ଯ୍ୟାଦାକୁ । ପ୍ରଜା ମଣିଲେ ପିତା ତାକୁ ॥ ୩୮
୧୩ ସୁଖଭୋଗରେ ପୁଣ୍ୟମାନ । କ୍ଷୟ କରନ୍ତେ ଅନୁଦିନ ॥ ୩୯
ଯଜ୍ଞାଦି କର୍ମ କରିବାରେ । ଉପବାସାଦି ଦୁଃଖଦ୍ୱାରେ ॥ ୪୦
ଯେ ବା ଦୁରିତ ଆପଣାର । ସେମାନେ କରନ୍ତେ ସଂହାର ॥ ୪୧
ଛତିଶ ସହସ୍ର ବତ୍ସର । ପୃଥ୍ୱୀକି ପାଳିଲେ ସେ ବୀର ॥ ୪୨
୧୪ ଇନ୍ଦ୍ରିୟମାନେ କଦାଚିତ । ତାଙ୍କର ନୁହନ୍ତି ଚଳିତ ॥ ୪୩
ବହୁତ କାଳ ଏ ପ୍ରକାରେ । କାଟି, ତ୍ରିବର୍ଗ ସାଧିବାରେ ॥ ୪୪
ଯେ ଥିଲା ଆପଣା ନନ୍ଦନ । ତାହାକୁ ଦେଲେ ନୃପାସନ ॥ ୪୫
୧୫ ଦେହାଦି ଏ ବିଶ୍ୱ ଆତ୍ମାରେ । ରଚିତ ବିଷ୍ଣୁର ମାୟାରେ ॥ ୪୬
ଅବିଦ୍ୟାରଚିତ ସ୍ୱପନ । ଗନ୍ଧର୍ବନଗର ସମାନ ॥ ୪୭
ଏ ଘେନି ନୁହଇ ଏ ସତ । ଚିତ୍ତରେ ମଣନ୍ତେ ଏମନ୍ତ ॥ ୪୮
୧୬ ଆପଣା ଶରୀର, କଳତ୍ର । ସୁହୃଦ ବଳ ଯେବା ପୁତ୍ର ॥ ୪୯
ସମୃଦ୍ଧ କୋଷ ଅନ୍ତଃପୁର । ବିହାରଭୂମି ମନୋହର ॥ ୫୦
ଯାକୁ ମେଖଳାପ୍ରାୟ ହୋଇ । ସମୁଦ୍ର ବେଢ଼ିଣ ଅଛଇଁ ॥ ୫୧
ଏମନ୍ତ ଯେ ମହୀମଣ୍ଡଳ । ଅନିତ୍ୟ ମଣି ଏ ସକଳ ॥ ୫୨
ବଦରୀ ନାମ ଯେଉଁ ସ୍ଥାନ । ତହିଁକି କଲେ ସେ ଗମନ ॥ ୫୩
୧୭ ସେ ସ୍ଥାନେ ମିଳି ଶୁଦ୍ଧଜଳେ । ସ୍ନାନ କରିଣ ତତକାଳେ[୧] ॥ ୫୪
ବିଶୁଦ୍ଧ-ଇନ୍ଦ୍ରିୟ ହୋଇଣ । ଆସନ ନିବନ୍ଧ କରିଣ ॥ ୫୫
ପ୍ରାଣକୁ ମନସଙ୍ଗେ ଜିଣି । ବିଷୟୁଁ ଇନ୍ଦ୍ରିୟକୁ ଆଣି ॥ ୫୬
ବିଷ୍ଣୁର ସ୍ଥୂଳରୂପ ହୋଇ । ବିରାଟ ରୂପ ଯେ ଦିଶଇ ॥ ୫୭
*ତହିଁ ଏମନ୍ତ ନିବେଶିଲେ । ସମାଧିସୁଖେ ମଗ୍ନ ହେଲେ ॥ ୫୮
ବିଷ୍ଣୁଙ୍କୁ କରୁଥାଇ ଧ୍ୟାନ । ବିଷ୍ଣୁରଠାରୁ ଆମ୍ଭେ ଭିନ୍ନ ॥ ୫୯
ଏମନ୍ତ ବୁଦ୍ଧିକି ନ କଲେ । ସେ ସ୍ଥୂଳରୂପକୁ ଛାଡ଼ିଲେ ॥ ୬୦
୧୮ ଏ ରୂପେ ଭଗବାନଠାରେ । ଭକ୍ତିକି କରନ୍ତେ ନିତ୍ୟରେ ॥ ୬୧
ଆନନ୍ଦଲୋତକଧାରେଣ । ପୀଡ଼ାକୁ ଲଭି ପୁଣ ପୁଣ ॥ ୬୨
ଦ୍ରବୁଛି ହୃଦୟ ତାଙ୍କର । ପୁଲକେ ବ୍ୟାପ୍ତ କଳେବର ॥ ୬୩

---

୧. ତିନିକାଳେ ।

* ତହିଁ ଏ ମନ (?)

| | | | | |
|---|---|---|---|---|
| | 'ମୁଁ ଧ୍ରୁବ' ଏମନ୍ତ ବୋଲିଣ | । ଆମ୍ଭାକୁ ନ କଲେ ସ୍ମରଣ | ।। | ୬୪ |
| | ଲିଙ୍ଗଶରୀର ଅଭିମାନ | । ଯେଣୁ କରିଛନ୍ତି ନିଧନ | ।। | ୬୫ |
| ୧୯ | ସେ ଧ୍ରୁବ କଲେ ବିଲୋକନ | । ଆକାଶୁଁ ଉତ୍ତମ ବିମାନ | ।। | ୬୬ |
| | ଧରଣୀତଳକୁ ଖସଇ | । ଦଶଦିଗକୁ ପ୍ରକାଶଇ | ।। | ୬୭ |
| | ପୌର୍ଣ୍ଣମୀ ଚନ୍ଦ୍ରମା ଯେସନ | । ଉଦୟ ହୋଇ ଶୋଭମାନ | ।। | ୬୮ |
| ୨୦ | ଦେଖିଲେ ତହିଁ ତଦନ୍ତର | । ଅଛନ୍ତି ବେନି ଦେବବର | ।। | ୬୯ |
| | ସେ ଚତୁର୍ଭୁଜ ତନୁଶ୍ୟାମ | । କିଶୋରବୟସ ଉତ୍ତମ | ।। | ୭୦ |
| | ଅରୁଣ-ପଦ୍ମପ୍ରାୟ ହୋଇ | । ଲୋଚନ ତାଙ୍କର ଶୋହଇ | ।। | ୭୧ |
| | ଗଦାକୁ ଆଶ୍ରୟ କରିଣ | । ଅଛନ୍ତି ସୁବସ୍ତ୍ର ପିନ୍ଧିଣ | ।। | ୭୨ |
| | କିରୀଟ, ହାର, ଅଙ୍ଗଦର | । ସହିତେ ଯେଉଁ ବେନି କର | ।। | ୭୩ |
| | ଚାରୁ କୁଣ୍ଡଳ ଦୁଇ ପୁଣ | । ଶୋଭା ପାଉଛି ଅନୁକ୍ଷଣ | ।। | ୭୪ |
| ୨୧ | ସେ ବେନି ବିଷ୍ଣୁର କିଂକର | । ଏମନ୍ତ ଜାଣିଣ ମନର | ।। | ୭୫ |
| | ବିଷ୍ଣୁର ଯେତେ ଦାସଗଣ | । ତହିଁ ଏ ପ୍ରଧାନ ବୋଲିଣ | ।। | ୭୬ |
| | ଆସନୁଁ ଉଠି ସସଂଭ୍ରମ | । ପାସୋରିଲେ ସେ ପୂଜାକ୍ରମ | ।। | ୭୭ |
| | ଗୁଣନ୍ତେ ମଧୁସୂଦନର | । ନାମମାନଙ୍କୁ ନିରନ୍ତର | ।। | ୭୮ |
| | ଅଞ୍ଜଳି କରି ବେନି କର | । କଲେ ତାହାଙ୍କୁ ନମସ୍କାର | ।। | ୭୯ |
| ୨୨ | କୃଷ୍ଣର ପାଦେ ନିଜ ଚିତ୍ତ | । କରିଅଛନ୍ତି ନିବେଶିତ | ।। | ୮୦ |
| | ବିନୟେ ଲୁଆଇଁ କନ୍ଧର | । ଯୋଡ଼ିଛନ୍ତି ସେ ବେନି କର | ।। | ୮୧ |
| | ଧ୍ରୁବକୁ ଦେଖି ଏ ପ୍ରକାରେ | । ସସ୍ମିତ ହୋଇଣ ପ୍ରୀତିରେ | ।। | ୮୨ |
| | ବିଷ୍ଣୁର ଅଟନ୍ତି ସମ୍ମତ | । ସୁନନ୍ଦ, ନନ୍ଦ ବେନି ଦୂତ | ।। | ୮୩ |
| | ହରଷ ହୋଇ ଏ ରୂପରେ | । ବଚନ କହିଲେ ସେଠାରେ | ।। | ୮୪ |

ଶ୍ରୀସୁନନ୍ଦନନ୍ଦାବୁଚତୁଃ

| | | | | |
|---|---|---|---|---|
| ୨୩ | ଭୋ ଭୋ ନୃପତି ! ଅବିରତ | । ମଙ୍ଗଳ ହେଉ ତୋର ଜାତ | ।। | ୮୫ |
| | ଆମ୍ଭମାନଙ୍କର ବଚନ | । ଶୁଣ ତୁ ହୋଇ ସାବଧାନ | ।। | ୮୬ |
| | ଲେଖାରେ ପାଞ୍ଚ ସଂବତ୍ସର | । ବୟସ ହୋଇଥିଲା ତୋର | ।। | ୮୭ |
| | ଏହି ସମୟେ ତପ କଲୁ | । ଯେବଣ ଦେବଙ୍କୁ ତୋଷିଲୁ | ।। | ୮୮ |
| ୨୪ | ଦେବତାଙ୍କର ସେ ଦେବତା | । ଅଖିଳ ଜଗତକରତା | ।। | ୮୯ |
| | ତାଂ ସେବକ ଆମ୍ଭେ ଦୁଇ | । ପ୍ରବେଶ ହୋଇଲୁ ଏଠାଇଁ | ।। | ୯୦ |
| | ବିଷ୍ଣୁର ସ୍ଥାନ ଯେ ଜଗତେ | । ତହିଁକି ନେବାପାଇଁ ତୋତେ | ।। | ୯୧ |

| | | | | |
|---|---|---|---|---|
| ୨୫ | ଦୁର୍ଜୟ ବିଷ୍ଣୁପଦ ଯେହି | । ତାକୁ ଜିଣିଲୁ ନୃପ ତୁହି | ॥ | ୯୨ |
| | ସପତ ଋଷି ଯା' ନ ପାଇ | । କେବଳ ମାତ୍ର ତଳେ ଥାଇ | ॥ | ୯୩ |
| | କରୁଅଛନ୍ତି ବିଲୋକନ | । ଚନ୍ଦ୍ରସୂର୍ଯ୍ୟାଦି ଯେବା ଆନ | ॥ | ୯୪ |
| | ଗ୍ରହନକ୍ଷତ୍ର ତାରାଗଣ | । କରନ୍ତି ଯାହା ପ୍ରଦକ୍ଷିଣ | ॥ | ୯୫ |
| ୨୬ | ତୋହର ପିତୃଗଣମାନ | । ଲଭି ନାହାନ୍ତି ଯେଉଁ ସ୍ଥାନ | ॥ | ୯୬ |
| | ଲଭିନାହାନ୍ତି ଆନ କେହି | । ଜଗତବନ୍ଦ୍ୟ ଅଟେ ଯେହି | ॥ | ୯୭ |
| | ବିଷ୍ଣୁର ସେ ପରମ ସ୍ଥାନ | । ତହିଁରେ ମିଳ ତୁ ବହନ | ॥ | ୯୮ |
| ୨୭ | ଉତ୍ତମଶ୍ଳୋକମାନଙ୍କର | । ଶ୍ରେଷ୍ଠ ଅଟନ୍ତି ଯେ ଈଶ୍ୱର | ॥ | ୯୯ |
| | ସେ କରିଛନ୍ତି ଉପସ୍ଥିତ | । ବିମାନଶ୍ରେଷ୍ଠ ତୋ' ଅଗ୍ରତ | ॥ | ୧୦୦ |
| | ଆୟୁଷମନ୍ତ୍ୟଂ[1] ତୁ ଆପଣ | । କର ଏହାକୁ ଆରୋହଣ | ॥ | ୧୦୧ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୨୮ | ବିଷ୍ଣୁ ସେବକମାନଙ୍କର | । ମଧ୍ୟେ ସେ ବେନି ଲୋକଙ୍କର | ॥ | ୧୦୨ |
| | ସୁଧାଗଳିତ ତାଙ୍କ ବାଣୀ | । ମୁକୁନ୍ଦପ୍ରିୟ ଧ୍ରୁବ ଶୁଣି | ॥ | ୧୦୩ |
| | ଯେ ସ୍ନାନ ନିତ୍ୟକର୍ମମାନ | । ମଙ୍ଗଳ-ଅର୍ପଣ-ବିଧାନ | ॥ | ୧୦୪ |
| | ସେ କଥାମାନଙ୍କୁ ଆଚରି | । ମୁନିଙ୍କି ନମସ୍କାର କରି | ॥ | ୧୦୫ |
| | ଆପଣେ ଆଶୀର୍ବାଦବାଣୀ | । ମୁନିଙ୍କି ବୋଲାଇଲେ ପୁଣି | ॥ | ୧୦୬ |
| ୨୯ | ବିମାନଶ୍ରେଷ୍ଠକୁ ତକ୍ଷଣ | । ପୂଜି କରିଣ ପ୍ରଦକ୍ଷିଣ | ॥ | ୧୦୭ |
| | ଦୂତଙ୍କୁ କରିଣ ବନ୍ଦନ | । ଆରୋହିବାକୁ କଲା ମନ | ॥ | ୧୦୮ |
| | ହିରଣ୍ୟପ୍ରାୟ ତେଜମୟ | । ବହିଛି ଆପଣାର କାୟ | ॥ | ୧୦୯ |
| ୩୦ | { *ଉତ୍ତାନପାଦର କୁମର | । ଦେଖିଲା ମୃତ୍ୟୁ ଆସିବାର | ॥ | } |
| | ମୃତ୍ୟୁର ମୁଣ୍ଡେ ପାଦ ଦେଲା | । ଅଦ୍ଭୁତ ବିମାନ ଚଢ଼ିଲା | ॥ | |

---

୧. ଆୟୁଷବନ୍ତ ।

* ତଦୋତ୍ତାନପଦଃ ପୁତ୍ରୋ ଦଦର୍ଶାନ୍ତକମାଗତମ ।
ମୃତ୍ୟୋର୍ମୂର୍ଧ୍ନିପଦଂ ଦତ୍ତ୍ୱା ଆରୁରୋହାଦ୍ଭୁତଂ ଗୃହମ୍ ॥
ଉକ୍ତ ଶ୍ଳୋକ ପୋଥିରେ ନ ଥିବାରୁ ଏହାର ଗୀତ ରଚିତ ହୋଇ ନାହିଁ । କିନ୍ତୁ ବିଶୁଦ୍ଧ ସଂସ୍କରଣମାନଙ୍କରେ ଏହି ଶ୍ଳୋକ ରହିଥିବାରୁ ଏହାକୁ ମୌଳିକ ଧରାଯାଇ ଏହାର ଗୀତ ରଚିତ ହେଲା । ଶ୍ରୀଧର ସ୍ୱାମୀ ମଧ୍ୟ ଏହି ଶ୍ଳୋକର ଟୀକା କରିଛନ୍ତି ।

| | | | | |
|---|---|---|---|---|
| ୩୧ | ଦୁନ୍ଦୁଭିମାନେ ସେ କାଳରେ | । | ଶବଦ କଲେ ଉଚ୍ଚସ୍ୱରେ | ॥୧୧୦ |
| | ମୃଦଙ୍ଗ ପଣବ ଆବର | । | ଏ ଆଦି ଶୁଭିଲେ ଅପାର | ॥୧୧୧ |
| | ଗନ୍ଧର୍ବବରେ କଲେ ଗାନ | । | ପଡ଼ିଲେ ପୁଷ୍ପବୃଷ୍ଟିମାନ | ॥୧୧୨ |
| ୩୨ | ସ୍ୱର୍ଗଲୋକକୁ ଆରୋହଣ | । | କରନ୍ତେ ସେହୁ ଧ୍ରୁବ ପୁଣ | ॥୧୧୩ |
| | ସ୍ମରଣ କଲେକ ମନର | । | ଦୁଃଖିତ ଅଟେ ମାତା ମୋର | ॥୧୧୪ |
| | ତାହାକୁ ଛାଡ଼ି କି ପ୍ରକାରେ | । | ଯିବି ଦୁର୍ଗମ ସ୍ୱର୍ଗପୁରେ | ॥୧୧୫ |
| ୩୩ | ଏ ରୂପେ ଅଭିପ୍ରାୟ ତାର | । | ଜାଣି ସେ ବେନି ସୁରବର | ॥୧୧୬ |
| | ଆଗରେ ଚଢ଼ିଣ ବିମାନ | । | ସୁନୀତି କରନ୍ତେ ଗମନ | ॥୧୧୭ |
| | 'ଏ ତୁମ୍ଭ ଜନନୀ' ବୋଲିଣ | । | ଦେଲେ ଧ୍ରୁବଙ୍କୁ ଦେଖାଇଣ | ॥୧୧୮ |
| ୩୪ | ବିମାନସ୍ଥିତ ସୁରମାନେ | । | ବାଟରେ ସେହି ସେହି ସ୍ଥାନେ | ॥୧୧୯ |
| | ପୁଷ୍ପ କରନ୍ତି ବରଷଣ | । | କ୍ରମେ ଦେଖିଲେ ଗ୍ରହଗଣ | ॥୧୨୦ |
| ୩୫ | ସେ ଧ୍ରୁବ ଦେବତାମାର୍ଗରେ | । | ତ୍ରିଲୋକ ଜିଣି ତଦନ୍ତରେ | ॥୧୨୧ |
| | ସପତ ଋଷିଙ୍କି ଜିଣିଣ | । | ଯେ ଅଛି ତହିଁ ଉପରେଣ | ॥୧୨୨ |
| | ନିତ୍ୟ ଅଟଇ ଗତି ଯାର | । | ମିଳିଲେ ସେ ବିଷ୍ଣୁ ପଦର | ॥୧୨୩ |
| ୩୬ | ସକଳ ଲୋକୁଁ ଅତିଶୟେ | । | ଯେ ବିଷ୍ଣୁଲୋକ ଶୋଭାପାଏ | ॥୧୨୪ |
| | ଯାହାର ତେଜରେ ଶୋଭନ | । | ଦିଶନ୍ତି ଆନ ଲୋକମାନ | ॥୧୨୫ |
| | ଖଳ ଅଟନ୍ତି ଯେଉଁ ଜନ | । | ପ୍ରାଣୀରେ ଅନୁଗ୍ରହହୀନ | ॥୧୨୬ |
| | ସଂତତେ ପାପ ଆଚରନ୍ତି | । | ସେମାନେ ଯହିଁକି ନ ଯାନ୍ତି | ॥୧୨୭ |
| | { ଯେ ସଦା ଭଦ୍ର ଆଚରନ୍ତି | । | ସେମାନେ ଯହିଁ ସୁଖେ ଯାନ୍ତି | ॥ } |
| ୩୭ | ଶାନ୍ତ ଅଟନ୍ତି ଯେଉଁ ନରେ | । | ସମାନଦୃଷ୍ଟି ସବୁଠାରେ | ॥୧୨୮ |
| | ବିଶୁଦ୍ଧ କଥା ଆଚରନ୍ତି | । | ସକଳ ଭୂତଙ୍କୁ ରଞ୍ଜନ୍ତି | ॥୧୨୯ |
| | ଯାହାଙ୍କ ପ୍ରିୟବନ୍ଧୁ ହରି | । | ସେମାନେ ଯାନ୍ତି ବିଷ୍ଣୁପୁରୀ | ॥୧୩୦ |
| ୩୮ | ଧ୍ରୁବ ଉତ୍ତାନପାଦସୁତ | । | ଏ ରୂପେ କୃଷ୍ଣେ ଦେଇ ଚିତ୍ତ | ॥୧୩୧ |
| | ତ୍ରିଲୋକଚୂଡ଼ାମଣି ପ୍ରାୟ | । | ଅମଳ ହେଲା ଅତିଶୟ | ॥୧୩୨ |
| ୩୯ | ଗମ୍ଭୀର ଅଟେ ବେଗ ଯାର | । | ଅଳସ ନାହିଁ ଯାହା ଠାର | ॥୧୩୩ |
| | ସେ ଜ୍ୟୋତିଶ୍ଚକ୍ର ଅବିରତ | । | ଯା'ଠାରେ ହୋଇ ସମର୍ପିତ | ॥୧୩୪ |
| | ଭ୍ରମୁଛି ହେ କୁରୁନନ୍ଦନ ! | । | ମେଢ଼ୀରେ ଗୋଗଣ ଯେସନ | ॥୧୩୫ |

୪୦ ସେ ଧ୍ରୁବମହିମା ଦେଖିଣ । ନାରଦ ଋଷି ହରଷେଣ ॥୧୩୬
ପ୍ରଚେତାମାନଙ୍କ ଯାଗରେ । ବିଷ୍ଣୁ ମାହାତ୍ମ୍ୟପ୍ରସଙ୍ଗରେ ॥୧୩୭
ବୀଣାକୁ କରନ୍ତେ ବାଦନ । ଗାୟନ କଲେ ଶ୍ଳୋକମାନ ॥୧୩୮

ଶ୍ରୀନାରଦ ଉବାଚ

୪୧ ଦେବତା ଅଟେ ଯାର ପତି । ଏମନ୍ତ ଅଟେ ଯେ ସୁନୀତି ॥୧୩୯
ତାହାର ସୁତ ଯେଉଁ ଧ୍ରୁବ । ସେ ଧ୍ରୁବତପସ୍ୟା-ପ୍ରଭାବ ॥୧୪୦
ତାହା ଲଭିବାକୁ ଭୁବନେ । ପ୍ରଭୁ ନୋହିଲେ ଋଷିମାନେ ॥୧୪୧
ତାର ବୈଷ୍ଣବ ଧର୍ମମାନ । ଦେଖି ନୋହିଲେ ସେ ଭାଜନ ॥୧୪୨
ନୃପତିମାନେ ତାହା ପୁଣ । କାହୁଁ କରିବେ ଆଚରଣ ॥୧୪୩
୪୨ ଯେ ପାଞ୍ଚବରଷ କାଳରେ । ମାତା-ସପତ୍ନୀବାକ୍ୟଶରେ ॥୧୪୪
ହୃଦ ଫାଟନ୍ତେ ଦୁଃଖୀ ହୋଇ । ଗୃହରୁ ବିପିନକୁ ଯାଇ ॥୧୪୫
କରନ୍ତେ ମୋହର ଆଜ୍ଞାକୁ । ଯେ ବଶ କଲା ଅଜିତଙ୍କୁ ॥୧୪୬
ଭଗତଜନଙ୍କ ଗୁଣରେ । ଯେ ବିଷ୍ଣୁ ବଶ ଏ ସଂସାରେ ॥୧୪୭
୪୩ ଯେଉଁ ପଦକୁ ଆରୋହଣ । *କରିଅଛି ସେ ଧ୍ରୁବ ପୁଣ ॥୧୪୮
ତାହା ଅନେକ ବରଷରେ । ଲଭିବ ବୋଲିଣ ମନରେ ॥୧୪୯
କେ କ୍ଷତ୍ରବନ୍ଧୁ ବାଞ୍ଛା କରେ । ଯେ ପଞ୍ଚ ଷଟ ବରଷରେ ॥୧୫୦
ବିଷ୍ଣୁଙ୍କୁ ଅଳପ ଦିନରେ । ପ୍ରସନ୍ନ କରାଇ ସେବାରେ ॥୧୫୧
ତାହାର ପଦକୁ ଲଭିଲା । ଏ ରୂପେ କେ ବା ଅଛି ଭଲା ॥୧୫୨

ଶ୍ରୀମୈତ୍ରେୟ ଉବାଚ

୪୪ ଯାହା ତୁ ପଚାରିଲୁ ମୋତେ । କହିଲି ଏ ସକଳ ତୋତେ ॥୧୫୩
ଉଦ୍ଦାମ ଅଟେ ଯଶ ଯାର । ଚରିତ ଶୁଦ୍ଧ ସେ ଧ୍ରୁବର ॥୧୫୪
ସାଧୁଜନଙ୍କର ସମ୍ମତ । ଅଟଇ ଯେବଣ ଚରିତ ॥୧୫୫
୪୫ ଧନ-ଆୟୁଷ-ଯଶକର । ପୁଣ୍ୟ ମଙ୍ଗଳ ପାପହର ॥୧୫୬
ଏ ସ୍ୱର୍ଗ-ଧ୍ରୁବଗତିଦାୟୀ । ପ୍ରଶଂସାଯୋଗ୍ୟ ଏ ଅଟଇ ॥୧୫୭
୪୬ ବିଷ୍ଣୁର ପ୍ରିୟ ଧ୍ରୁବ ଯେହି । ତାହା ଚରିତ ଅଟେ ଏହି ॥୧୫୮
ଶ୍ରଦ୍ଧାରେ ହୋଇଣ ସଂଯୁତ । ଯେ ଏହା ଶୁଣେ ଅବିରତ ॥୧୫୯
ବିଷ୍ଣୁର ଠାରେ ଭକ୍ତି ଜାତ । କ୍ଳେଶ ହୁଅଇ ଯେଣେ ହତ ॥୧୬୦

---

* କରିଛି ସେ ଧ୍ରୁବକୁ ପୁଣ ।

୪୭ ମହତ୍ତ୍ୱ ବାଞ୍ଛା ଯେ କରଇ । ତହିଁକି କାରଣ ଅଟଇ ॥୧୬୧
ଶୀଳକୁ[୧] ଆଦି ଯେତେ ଗୁଣ । ଶୁଣିଲା ଲୋକର ଏ ପୁଣ ॥୧୬୨
ଯେ ତେଜ ବାଞ୍ଛା କରେ ଜନ । ସେ ଯହିଁ ହୋଏ ଉତପନ ॥୧୬୩
ମହାତ୍ମାଙ୍କର ମନ[୨] ଯହିଁ । ସେ କଥା ନିଶ୍ଚୟ ହୁଅଇ ॥୧୬୪
୪୮ ପ୍ରଯତ[୩] ହୋଇଣ ପ୍ରାତରେ । ବ୍ରାହ୍ମଣମାନଙ୍କ ସଭାରେ ॥୧୬୫
ସଂଧ୍ୟାରେ ଧ୍ରୁବର ଚରିତ । ଗାଇବ, ଅଟେ ସେ ମହତ ॥୧୬୬
ଯେବଣ ଧ୍ରୁବଯଶମାନେ । ପୁଣ୍ୟ ଅଟନ୍ତି ଏ ଭୁବନେ ॥୧୬୭
୪୯ ପୌର୍ଣ୍ଣମାସୀରେ, ଦ୍ୱାଦଶୀରେ । ସିନୀବାଲୀ[୪]ରେ ଶ୍ରବଣାରେ ॥୧୬୮
ଅଥବା ଦିନର କ୍ଷୟରେ । ବ୍ୟତୀପାତରେ ସଂକ୍ରାନ୍ତିରେ ॥୧୬୯
ରବିବାସରେ ଅବା ପୁଣ । ସଂଯତମାନସ ହୋଇଣ ॥୧୭୦
୫୦ ବିଷ୍ଣୁଙ୍କୁ ଆଶ୍ରୟ କରିଣ । ଯେ ପୁଣ ନିଷ୍କାମ ହୋଇଣ ॥୧୭୧
ଶ୍ରଦ୍ଧାରେ ଶୁଣାଇଁ ଲୋକଙ୍କୁ । ଶ୍ରବଣେ ଆତ୍ମାରେ ଆତ୍ମାକୁ ॥୧୭୨
ସନ୍ତୁଷ୍ଟ ହୋଇଥାଇ ଯେଣୁ । ସିଦ୍ଧିକି ଲଭଇ ସେ ତେଣୁ ॥୧୭୩
୫୧ ବିଷ୍ଣୁ ମାର୍ଗରେ ସୁଧାସମ । ପ୍ରକାଶେ ଯେ ଜ୍ଞାନ ଉତ୍ତମ ॥୧୭୪
ଯେ ତା' ଅଜ୍ଞାନୀଠାରେ ଦେଇ । କୃପାଳୁ ଦୀନନାଥ ସେହି ॥୧୭୫
ତାହାକୁ ଦେବତା ସମୂହ । କରନ୍ତି ବେଗେ ଅନୁଗ୍ରହ ॥୧୭୬
୫୨ ବିଖ୍ୟାତ ଶୁଦ୍ଧ କର୍ମ ଯାର । ଏହୁ ଚରିତ ସେ ଧ୍ରୁବର ॥୧୭୭
ହେ କୁରୁଶ୍ରେଷ୍ଠ ! ତୋତେ ମୁହିଁ । ଏ କଥା କହିଲି ବୁଝାଇ ॥୧୭୮
ଯେ ଶିଶୁ କ୍ରୀଡ଼ାଦ୍ରବ୍ୟମାନ । ଛାଡ଼ିଣ ମାତା, ନିକେତନ ॥୧୭୯
ବିଷ୍ଣୁଙ୍କୁ ଶରଣ ପଶିଲା । ସେ ଘେନି ସଂସାରୁ ତରିଲା ॥୧୮୦
ଧ୍ରୁବକୁ ଯେହୁ କଲେ ଧ୍ରୁବ । ଦୀନବନ୍ଧୁକୁ ସେ ମାଧବ ॥୧୮୧
ଉଦ୍ଧାର କରୁ ଭବଜଳୁ । ନ ତେଜୁ ନିଜ ପାଦତଳୁ ॥୧୮୨
ସୁଜନମାନେ ଦୟା କର । ମୁଁ ତୁମ୍ଭ ଚରଣକିଙ୍କର ॥୧୮୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀ ବିଦୁରମୈତ୍ରେୟସଂବାଦେ
ଶ୍ରୀଧ୍ରୁବଚରିତଂ ନାମ ଦ୍ୱାଦଶୋଽଧ୍ୟାୟଃ ॥

---

୧. ଶ୍ରଦ୍ଧାକୁ । ୨. ମାନ । ୩. ପବିତ୍ର ।
୪. ଚତୁର୍ଦ୍ଦଶୀଯୁକ୍ତା ଅମାବାସ୍ୟା ।

# ତ୍ରୟୋଦଶୋଽଧ୍ୟାୟଃ

ଏବଂ ପଞ୍ଚଭିରଧ୍ୟାୟୈର୍ଧ୍ରୁବଚର୍ଯ୍ୟାନୁବର୍ଣ୍ଣିତା ।
ଅଥୈକାଦଶଭିଶ୍ଚିତ୍ରଂ ପୃଥୁଚାରିତ୍ରମୁଚ୍ୟତେ ॥ ୧ ॥
ତତ୍ର ତ୍ରୟୋଦଶେ ବକ୍ତୁଂ ପୃଥୋର୍ଜନ୍ମ ଧ୍ରୁବାନ୍ୱୟେ ।
ଅଙ୍ଗୋ ବେଣପିତା ପୁତ୍ରକ୍ରୌର୍ଯ୍ୟାଦ୍‌ଗତ ଇତୀର୍ଯ୍ୟତେ ॥ ୨ ॥

*ଶ୍ରୀସୂତ ଉବାଚ

୧ ଧ୍ରୁବ ବୈକୁଣ୍ଠ-ଆରୋହଣ । ମୈତ୍ରେୟ କରନ୍ତେ ବଖାଣ ॥ ୧
ସେ କଥା ଶୁଣିଣ ବିଦୁର । ଭକ୍ତିକି ଲଭି ବିଷ୍ଣୁଠାର ॥ ୨
ପଚାରିବାକୁ ତାଙ୍କୁ ପୁଣ । ଆରମ୍ଭ କଲେ ତତକ୍ଷଣ ॥ ୩

ଶ୍ରୀବିଦୁର ଉବାଚ

୨ ପ୍ରଚେତା ନାମେ ଯେ ବିଦିତ । କାହାର ଅଟନ୍ତି ସେ ସୁତ ॥ ୪
ବିଖ୍ୟାତ କାହାର ବଂଶରେ । ଯାଗ କଲେ ସେ କେଉଁଠାରେ ॥ ୫
୩ ମୁଁ ହାଦେ ମଣଇଁ ଏମନ୍ତ । ନାରଦ ମହାଭାଗବତ ॥ ୬
ଦେବତାପ୍ରାୟକ ତାଙ୍କର । ଅଟଇ ଦରଶନ ଯାର ॥ ୭
ବିଷ୍ଣୁର ପରିଚର୍ଯ୍ୟା ବିଧି । ଯେ କ୍ରିୟାଯୋଗରୂପେ ସିଦ୍ଧି ॥ ୮
ପଞ୍ଚରାତ୍ର¹ରେ ତାହା ପୁଣ । କରିଅଛନ୍ତି ଯେ ବଖାଣ ॥ ୯
୪ ସ୍ୱଧର୍ମଶୀଳ ସେ ଅଟନ୍ତି । ଯଜ୍ଞପୁରୁଷକୁ ପୂଜନ୍ତି ॥ ୧୦
ସେ ଯଜ୍ଞପୁରୁଷ ଶ୍ରୀପତି । ନାରଦ ତାଙ୍କୁ କଲେ ସ୍ତୁତି ॥ ୧୧
୫ ସେଠାରେ ବ୍ରହ୍ମାର ନନ୍ଦନ । ବିଷ୍ଣୁର ଯେଉଁ କଥାମାନ ॥ ୧୨
ବର୍ଣ୍ଣିଣ ଅଛନ୍ତି ସେମାନ । ମୋହର ଶୁଣିମାକୁ ମନ ॥ ୧୩
ହେ ବିପ୍ର ! ସମଗ୍ର କରିଣ । ବିଖ୍ୟାତ କର ତାହା ପୁଣ ॥ ୧୪

ଶ୍ରୀମୈତ୍ରେୟ ଉବାଚ

୬ ଉତ୍କଳ ନାମରେ ବିଖ୍ୟାତ । ଧ୍ରୁବର ଅଟେ ଜ୍ୟେଷ୍ଠ ସୁତ ॥ ୧୫
ବନକୁ ଯାନ୍ତେ ପିତା ତାର । ଯେ ରାଜ-ଆସନ ପିତାର ॥ ୧୬
ଯେ ସାର୍ବଭୌମର ସଂପତ୍ତି । ତହିଁକି ନ କଲା ସେ ମତି ॥ ୧୭
୭ ସେ ଜନ୍ମକାଳୁଁ ଶାନ୍ତମନ । ନିଃସଙ୍ଗ ସମଦରଶନ ॥ ୧୮
ଆତ୍ମାକୁ ଦେଖିଲା ଲୋକରେ । ଲୋକକୁ ଦେଖିଲା ଆତ୍ମାରେ ॥ ୧୯

---

* ଶୁକ ଉବାଚ । ୧. ନାରଦଙ୍କ ବିରଚିତ ବୈଷ୍ଣବ ତନ୍ତ୍ର ।

୯ } ଯେ ଶାନ୍ତ, ବିଗ୍ରହବିହୀନ । ଜ୍ଞାନରସରେ ଏକଘନ ।। ୨୦
ଆନନ୍ଦମୟ ନିରନ୍ତର । ଏମନ୍ତ ଆତ୍ମା ଆପଣାର ।। ୨୧
ବ୍ରହ୍ମରୂପରେ ମଣି ତାକୁ । ତହୁଁ ନ ଦେଖିଲା ଆନକୁ ।। ୨୨
ବିଚ୍ଛେଦ ନୋହି ତଦନ୍ତର[1] । ଯେ ଯୋଗ-ଅଗ୍ନି ଥିଲା ତାର ।। ୨୩
କର୍ମ-ମଳ ଆଶୟ ତେଣେ । ଦହନ କଲା ଅନୁକ୍ଷଣେ ।। ୨୪
୧୦ ଜଡ଼ାନ୍ଧ ଉନ୍ମତ୍ତ ବଧିର । ମୂକପ୍ରାୟକ ତା' ଆକାର ।। ୨୫
ଅଜ୍ଞାନ ଲୋକେ ଏ ପ୍ରକାରେ । ତର୍କିଲେ ତାହାକୁ ମାର୍ଗରେ ।। ୨୬
ଜଡ଼ ଆଦିଙ୍କ ପ୍ରାୟ ହୋଇ । ବାସ୍ତବ ତା' ବୁଦ୍ଧି ନୁହଇ ।। ୨୭
ଯେହ୍ନେ ଅନଳ ଶିଖାନାଶେ । ସେମନ୍ତ ରୂପେ ସେ ପ୍ରକାଶେ ।। ୨୮
୧୧ ମନ୍ତ୍ରୀସହିତେ ଥିଲେ ତାର । ଯେତେକ କୁଳବୃଦ୍ଧ ନର ।। ୨୯
ଜଡ଼ ଉନ୍ମତ୍ତ ମଣି ତାକୁ । ତାହାର କନିଷ୍ଠ ଭ୍ରାତାକୁ ।। ୩୦
ରାଜ୍ୟରେ କଲେ ଅଧୀଶ୍ୱର । ଭ୍ରମିର ପୁତ୍ର ସେ ବତ୍ସର ।। ୩୧
୧୨ ସ୍ୱର୍ବୀଥି ହୋଇ ନାମ ଯାର । ସେ ପ୍ରିୟ ଭାର୍ଯ୍ୟା ବତ୍ସରର ।। ୩୨
ସେ ଜାତ କଲା ଛ' କୁମାର । ପୁଷ୍ପାର୍ଣ୍ଣ, ତିଗ୍ମକେତୁ ଆର ।। ୩୩
ଯେ ଇଷ୍ଟ[2], ଉର୍ଜ, ବିଭୁ[3] ଜୟ । ଏ ରୂପେ ଖ୍ୟାତ ଷଟ[4] ପୁଅ ।। ୩୪
୧୩ ସେ ପୁଷ୍ପାର୍ଣ୍ଣର ଭାର୍ଯ୍ୟା ଦୁଇ । ହୋଇଲେ ପ୍ରଭା, ଦୋଷା ହୋଇ ।। ୩୫
ପ୍ରଭାର ହେଲେ ତିନି ପୁଅ । ସେ ପ୍ରାତ, ମଧ୍ୟନ୍ଦିନ, ସାୟ ।। ୩୬
୧୪ ଦୋଷାର ହେଲେ ତିନି ସୁତ । ପ୍ରଦୋଷ ନାମେ ଆଦ୍ୟ ଖ୍ୟାତ ।। ୩୭
ନିଶୀଥ ବ୍ୟୁଷ୍ଟ[5] ନାମ ହୋଇ । ବିଖ୍ୟାତ ଆର ପୁତ୍ର ଦୁଇ ।। ୩୮
ବ୍ୟୁଷ୍ଟର ଅଟେ ଯେ ତରୁଣୀ । ତାହାର ନାମ ପୁଷ୍କରିଣୀ ।। ୩୯
ତା'ଠାରେ ହେଲା ତାର ସୁତ । ସେ ସର୍ବତେଜା ନାମେ ଖ୍ୟାତ ।। ୪୦
୧୫ ସେ ସର୍ବତେଜାର ଯୁବତି । ନାମରେ ବିଖ୍ୟାତ ଆକୂତି ।। ୪୧
ତା'ଠାରେ ଲଭିଲେ ସେ ସୁତ । ସେ ମନୁ ଚକ୍ଷୁ ନାମେ ଖ୍ୟାତ ।। ୪୨
ମନୁର ଭାର୍ଯ୍ୟା ଯେ ନଡ୍ୱଳା । ସେ ବାର[6] ପୁତ୍ର ଜାତ କଲା ।। ୪୩

---

୧. ନିରନ୍ତର ।　୨. ଇଷ ।　୩. ବସୁ ।
୪. ଚାରି ।　୫. ବ୍ୟୁଷ୍ଟି ।　୬. ଦଶ ।

୧୬ *ପ୍ରଥମ ପୁରୁ, କୁତ୍ସ, ତ୍ରିତ । ଆବର ଦ୍ୟୁମ୍ନ, ସତ୍ୟବନ୍ତ ॥ ୪୪
ଯେ ରତ, ବ୍ରତ, ଅଗ୍ନିଷ୍ଟୋମ । ଅତୀରାତ୍ର, ସୁଦ୍ୟୁମ୍ନ[1] ନାମ ॥ ୪୫
ଶିବି, ଉଲ୍ମୁକ ନାମ ଆର । ଏ ରୂପେ ଦ୍ୱାଦଶ[2] କୁମର ॥ ୪୬
୧୭ ଉଲ୍ମୁକ ପୁଷ୍କରିଣୀଠାରେ । ଜନମ କଲା ଛ' କୁମାରେ ॥ ୪୭
ସେ ଅଙ୍ଗ, ଖ୍ୟାତି,[3] ସୁମନସ । କ୍ରତୁ, ଗୟ[4], ଯେ ଅଙ୍ଗିରସ ॥ ୪୮
୧୮ ସୁନୀଥା ଅଙ୍ଗପତ୍ନୀନାମ । ବେଣ[5]କୁ କଲା ସେ ଜନମ ॥ ୪୯
ଯାହାର ଦୁଃଶୀଳ ଭାବରୁ । ସେ ରାଜଋଷି ନିଜ ପୁରୁ ॥ ୫୦
ବନକୁ କଲାକ ଗମନ । ବୈରାଗ୍ୟ ଲଭି ନିଜ ମନ ॥ ୫୧
୧୯ ଯେବଣ ମୁନିଙ୍କ ବଚନ । ଅଟଇ ବଜ୍ରର ସମାନ ॥ ୫୨
ସେମାନେ କୁପିତ ହୋଇଲେ । ଯେଉଁ ବେଣକୁ ଶାପ ଦେଲେ ॥ ୫୩
ମରନ୍ତେ ସେ ବେଣ ତାହାର । ମନ୍ଥିଲେ ସେ ଦକ୍ଷିଣ କର ॥ ୫୪
୨୦ ରାଜା ନ ଥାନ୍ତେ ଜଗତରେ । ପ୍ରଜାମାନଙ୍କୁ ସେ କାଳରେ ॥ ୫୫
ମିଳି ସକଳ ଖଣ୍ଡମାନେ । ପୀଡ଼ାକୁ ଦେଲେ ଦିନେ ଦିନେ ॥ ୫୬
ତେଣୁ ନାରାୟଣ-ଅଂଶରେ । ପୃଥୁ ଜନ୍ମିଲେ ଜଗତରେ ॥ ୫୭
ମଧ୍ୟେ ସକଳ ରାଜାଙ୍କର । ସେ ପୃଥୁ ଆଦ୍ୟ କ୍ଷିତୀଶ୍ୱର ॥ ୫୮

ଶ୍ରୀବିଦୁର ଉବାଚ

୨୧ ସାଧୁ ସୁଚରିତର ସ୍ଥାନ । ବ୍ରହ୍ମଣ୍ୟ, ମହାତ୍ମା ସେ ଘେନ ॥ ୫୯
ଯେ ବେଣ ଅଟେ ଦୁରାଚାର । କିପାଁ ଏ ପୁତ୍ର ହେଲା ତାର ॥ ୬୦
ଯେଣୁ ସେ ବିମନ ହୋଇଲା । ଗୃହ ଛାଡ଼ିଣ ବନେ ଗଲା ॥ ୬୧
୨୨ ଧର୍ମ ଜାଣନ୍ତି ମୁନିମାନେ । ସେ କେଉଁ ଦୋଷ ଧରି ମନେ ॥ ୬୨
ଯେ ରାଜା[6] ଦଣ୍ଡବ୍ରତ ଧରେ । ଦଣ୍ଡ ବିହିଲେ ତାହାଠାରେ ॥ ୬୩
୨୩ ପାପିଷ୍ଠ ହୋଇଲେ ହେଁ ରାଜା । ଅବଜ୍ଞା ନ କରନ୍ତି ପ୍ରଜା ॥ ୬୪
ଯେଣୁ ସେ ଆପଣା ତେଜରେ । ଲୋକପାଳଙ୍କ ତେଜ ଧରେ ॥ ୬୫

---

* ଉକ୍ତ ଶ୍ଳୋକର ପାଠାନ୍ତରରେ ପୁରୁ ଓ କୁତ୍ସ ସ୍ଥଳେ 'ପୁରୁକୁତ୍ସ' ଏବଂ ରତ ଓ ବ୍ରତ ସ୍ଥଳେ 'ଧୃତବ୍ରତ'—ଏହି ସମସ୍ତପଦଦ୍ୱୟ ଅଛି । ଏହି ପାଠ ଅନୁସାରେ ନଡ୍ୱଲାର ପୁତ୍ରସଂଖ୍ୟା ଦ୍ୱାଦଶ ନ ହୋଇ ଦଶ ହେବ । ମାତ୍ର ଶ୍ରୀଧର ସ୍ୱାମୀ 'ପୁରୁପ୍ରମୁଖାନ୍ ଦ୍ୱାଦଶ ସୁତାନ୍ ଅସୂତ' କହିଥିବା ହେତୁ ଉପର୍ଯ୍ୟୁକ୍ତ ଅସମସ୍ତ ପଦ ପାଠ ସ୍ୱୀକୃତ ହୋଇଅଛି ।

୧. ପ୍ରଦ୍ୟୁମ୍ନ । ୨. ସେ ଦଶ । ୩. ସ୍ୱାତି । ୪. ଶୟ । ୫. ବନ । ୬. ପ୍ରଜା ।

୨୪ ଯେହୁ ଜାଣନ୍ତି ପରାପର । ତାହାଙ୍କ ମଧ୍ୟେ ତୁମ୍ଭେ ସାର ॥ ୬୬
ମୁଁ ତୁମ୍ଭ ଭକ୍ତ ଶ୍ରଦ୍ଧାଯୁତ । ସୁନୀଥାପୁତ୍ରର ଚେଷ୍ଟିତ ॥ ୬୭
ହେ ବିପ୍ର ! ପ୍ରକାଶ କରିଣ । ଏ କଥା ମୋର ଆଗେ ଭଣ ॥ ୬୮

ଶ୍ରୀମୈତ୍ରେୟ ଉବାଚ

୨୫ ଯେ ଅଟେ ଅଶ୍ୱମେଧ ନାମ । ଯଜ୍ଞମାନଙ୍କରେ ଉତ୍ତମ ॥ ୬୯
ସେ ଯଜ୍ଞ ଅଙ୍ଗ ରାଜରଷି । ଆରମ୍ଭ କଲାକ ବିଶେଷି ॥ ୭୦
ଡାକନ୍ତେ ବ୍ରହ୍ମବାଦୀମାନେ । ଦେବତା ନଇଲେ[୧] ସେ ସ୍ଥାନେ ॥ ୭୧
ଋତ୍ୱିଜେ ବିସ୍ମିତ ହୋଇଲେ । ଯଜମାନକୁ ସେ ବୋଇଲେ ॥ ୭୨

ଶ୍ରୀଋତ୍ୱିଜ ଉଚୁଃ

୨୬, ୨୭ } ହୋମ କରନ୍ତେ ହବି ତୋର । ଦେବେ ନ କରନ୍ତି ସ୍ୱୀକାର ॥ ୭୩
ହେ ନୃପ ! ଶ୍ରଦ୍ଧାରେ ପ୍ରାପତ । ଏ ହବିମାନ ଅଦୂଷିତ ॥ ୭୪
ଯେଉଁ ବ୍ରାହ୍ମଣେ ବ୍ରତମାନ । ଧରିଅଛନ୍ତି ଅନୁଦିନ ॥ ୭୫
ମନ୍ତ୍ରମାନଙ୍କୁ ସେ ପଢ଼ନ୍ତି । ସେ ମନ୍ତ୍ରେ ସବୀର୍ଯ୍ୟ ଅଟନ୍ତି ॥ ୭୬
୨୮ ଅଣୁମାତ୍ର ହିଁ ଦେବଙ୍କର । ହେଳା ନ କରୁଛୁଁ ଗୋଚର ॥ ୭୭
କର୍ମର ସାକ୍ଷୀ ଏ ଭୁବନେ । ଅଟନ୍ତି ସେ[୨] ଦେବତାମାନେ ॥ ୭୮
ଯେଣୁ ସେ ନିଜ ଭାଗମାନ । ଘେନୁଣ ନାହାନ୍ତି ବହନ ॥ ୭୯

ଶ୍ରୀମୈତ୍ରେୟ ଉବାଚ

୨୯ ବ୍ରାହ୍ମଣମାନଙ୍କ ବଚନ । ଶୁଣି ସେ ଅଙ୍ଗ ଯଜମାନ ॥ ୮୦
ଦୁର୍ମନ ହୋଇ ତଦନ୍ତରେ । ସେ ବିପ୍ରଙ୍କର ଅନୁଜ୍ଞାରେ ॥ ୮୧
ପଚାରିବାକୁ ସଦସ୍ୟଙ୍କୁ । ପ୍ରୟୋଗ କଲା ବଚନକୁ ॥ ୮୨

ଶ୍ରୀଅଙ୍ଗ ଉବାଚ

୩୦ ହେ ସଭାପତିମାନେ କହ । କଲି ମୁଁ ଅବା କେଉଁ ଦ୍ରୋହ ॥ ୮୩
ଏ ଯଜ୍ଞେ ପଢ଼ି ମନ୍ତ୍ରମାନ । ଋତ୍ୱିଜେ କରନ୍ତେ ଆହ୍ୱାନ ॥ ୮୪
ସୋମପାତ୍ରକୁ ଦେବତାଏ । ଘେନୁ ନାହାନ୍ତି କି କଥା ଏ ॥ ୮୫

---

୧. ନଇଲେ ଶ୍ୱନ ଅଇଲେ । ୨. ଯେ । (ତୁଂ ଯେ)

ଶ୍ରୀସଦସସ୍ପତୟ ଉଚୁଃ

| | | | | |
|---|---|---|---|---|
| ୩୧ | କିଛିହିଁ ପାପ ତୋହଠାରେ । | ହେ ନୃପ ନାହିଁ ଏ ଜନ୍ମରେ | ॥ | ୮୬ |
| | ପୂର୍ବ ଜନ୍ମରେ ବିରଚିତ । | ଅଛି ତୋ ଏକଇ ଦୁରିତ | ॥ | ୮୭ |
| | ଯେଣୁ ଏମନ୍ତ ଗୁଣୀ ହୋଇ । | ଅପୁତ୍ର ହୋଇଅଛୁ ତୁହି | ॥ | ୮୮ |
| ୩୨ | ଏଣୁ ଯେମନ୍ତେ ଦେବଗଣ । | ତୋ' ହବି କରିବେ ଗ୍ରହଣ | ॥ | ୮୯ |
| | ତେମନ୍ତେ କର ତୁ ସାଧନ । | ସୁପ୍ରଜା ଲଭ ହେ ରାଜନ | ॥ | ୯୦ |
| | ତୁ ପୁତ୍ରକାମ ହୋଇକରି । | ଯଜ୍ଞ ଭୋକତା ଯେଉଁ ହରି | ॥ | ୯୧ |
| | ତାହାକୁ କରନ୍ତେ ଯଜନ । | ପୁତ୍ର କରିବ ସେ ପ୍ରଦାନ | ॥ | ୯୨ |
| ୩୩ | ନିଜ ଭାଗମାନଙ୍କୁ ତେବେ । | ଦେବତା ଗ୍ରହଣ କରିବେ | ॥ | ୯୩ |
| | ଯଜ୍ଞ ପୁରୁଷଙ୍କୁ ତୁ ଯେଣୁ । | ବରିଛୁ ପୁତ୍ରଅର୍ଥେ ତେଣୁ | ॥ | ୯୪ |
| ୩୪ | ଯେଉଁ ଯେଉଁ କାମକୁ ଜନ । | ବାଞ୍ଛେ ତା' ଦିଏ ଭଗବାନ | ॥ | ୯୫ |
| | ଯେମନ୍ତ ରୂପେ ଆରାଧନ । | କରନ୍ତି ତାକୁ ବିଜ୍ଞ ଜନ | ॥ | ୯୬ |
| | ଫଳ-ଉଦୟ ସେ ପ୍ରକାରେ । | ତାଙ୍କର ହୁଅଇ ସଂସାରେ | ॥ | ୯୭ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୩୫ | ସେ ରାଜାପୁତ୍ର ଜନ୍ମପାଇଁ । | ଏ ରୂପେ ବିଚାର ଭିଆଇଁ | ॥ | ୯୮ |
| | {ବିଷ୍ଣୁର ଅର୍ଥେ ପୁରୋଡାଶ । | ବ୍ରାହ୍ମଣେ କଲେକ ପ୍ରକାଶ} | ॥ | ୯୯ |
| | ଯେ ବିଷ୍ଣୁ ଅଟେ ଶିପିବିଷ୍ଟ । | ଯେଣୁ ସେ ଶିପିରେ ପ୍ରବିଷ୍ଟ | ॥ | |
| ୩୬ | ପିନ୍ଧିଛି ଅମଳ ବସନ । | ହେମମାଳାରେ ଶୋଭମାନ | ॥ | ୧୦୦ |
| | ସୁବର୍ଣ୍ଣମୟ ପାତ୍ରେ ଭରି । | ସିଦ୍ଧ ପାୟସ ଅଛି ଧରି | ॥ | ୧୦୧ |
| | ସେ ଅଗ୍ନି ମଧ୍ୟରୁ ପ୍ରକାଶ । | ହୋଇଲା ଏକଇ ପୁରୁଷ | ॥ | ୧୦୨ |
| ୩୭ | ବ୍ରାହ୍ମଣେ ଅଛନ୍ତି ସଙ୍ଗରେ । | ସେ ଅନ୍ନ ଘେନି ଅଞ୍ଜଳିରେ | ॥ | ୧୦୩ |
| | ହରଷେ ଆଘ୍ରାଣ କରିଣ । | ପତ୍ନୀକି ଦେଲା ତତକ୍ଷଣ | ॥ | ୧୦୪ |
| ୩୮ | ଯେଣୁ ପୁରୁଷ ହୋଏ ଜାତ । | ସେ ଅନ୍ନ ଅଟଇ ଏମନ୍ତ | ॥ | ୧୦୫ |
| | ରାଜାର ପତ୍ନୀ ତା ଭକ୍ଷିଣ । | ଋତୁକାଳରେ ସେହୁ ପୁଣ | ॥ | ୧୦୬ |
| | ପତିସକାଶୁଁ ଗର୍ଭ ହେଲା । | କାଳେ କୁମାର ଜନ୍ମ କଲା | ॥ | ୧୦୭ |
| ୩୯ | ଅଧର୍ମ-ଅଂଶୁ ଯେ ଜନିତ । | ସେ ମୃତ୍ୟୁ ତା' ମାତାର ତାତ | ॥ | ୧୦୮ |
| | ଅନୁବର୍ତ୍ତିଲା ତାକୁ ଯେଣୁ । | ଅଧର୍ମୀ ହୋଇଲା ସେ ତେଣୁ | ॥ | ୧୦୯ |

---

**ଶିପିବିଷ୍ଟଃ** :- ଶିପିଷୁ ପଶୁଷୁ ଯଜ୍ଞରୂପେଣ ପ୍ରବିଷ୍ଟଃ । ତଥା ଚ ଶ୍ରୁତିଃ— ''ଯଜ୍ଞୋ ବୈ ବିଷ୍ଣୁ ପଶବଃ ଶିପିଃ । ଯଜ୍ଞ ଏବ ପଶୁଷୁ ପ୍ରତିତିଷ୍ଠତି ।''

୪୦ ସେ ଧନୁ ଧରି ବ୍ୟାଧବେଶ । ବନରେ-ହୁଅଇ ପ୍ରବେଶ ।।୧୧୦
ସେ ଦୁଷ୍ଟ ଦୀନ ମୃଗମାନ । ମାରନ୍ତେ ତାକୁ ଦେଖି ଜନ ।।୧୧୧
ବେଣ ଏ ଆସୁଛି ସକଳେ । ଡାକିଲେ ଏ ରୂପେ ବିକଳେ ।।୧୧୨
୪୧ ତାହାର ମିତ୍ର ଶିଶୁମାନେ । କ୍ରୀଡ଼ା କରନ୍ତେ କ୍ରୀଡ଼ାସ୍ଥାନେ ।।୧୧୩
ନିର୍ଦ୍ଦୟ ସେ ଅତି ଦାରୁଣ । ସେଠାରେ ପ୍ରବେଶ ହୋଇଣ ।।୧୧୪
ବଳେହେଁ ସେମାନଙ୍କୁ ଧରି । ମାରଇ ପଶୁପ୍ରାୟେ କରି ।।୧୧୫
୪୨ ପୁତ୍ରକୁ ଦେଖି ଖଳ କରି । ବିବିଧ ବାକ୍ୟେ ଦଣ୍ଡଧାରୀ ।।୧୧୬
ଯେବେ ବୁଝାଇ ନ ପାରିଲା । ଅତ୍ୟନ୍ତ ଦୁର୍ମନ ହୋଇଲା ।।୧୧୭

ଶ୍ରୀଅଙ୍ଗ ଉବାଚ

୪୩ ଯେ ଗୃହୀ ଅପୁତ୍ରିକ ଜନ । ବିଷ୍ଣୁଙ୍କୁ କଲେ ସେ ପୂଜନ ।।୧୧୮
କୁତ୍ସିତ ପୁତ୍ର ସକାଶରେ । ଯେ ଦୁଃଖ ଜନମେ ଚିତ୍ତରେ ।।୧୧୯
ସେ ଅସମ୍ଭାଳ ଦୁଃଖ ଯେହି । ଧରି ନାହାନ୍ତି ଦେହ ବହି ।।୧୨୦
୪୪ ଯହିଁରୁ ପାପକୀର୍ତ୍ତି ଜାତ । ଅଧର୍ମ ଯହିଁରୁ ବହୁତ ।।୧୨୧
ଯାହା ସକାଶୁଁ ସର୍ବଜନ । ସଙ୍ଗେ ବିରୋଧ ଅନୁଦିନ ।।୧୨୨
ଯା' ହେତୁ ଅତିଶୟ ହୋଇ । ମନର ବ୍ୟଥା ସମ୍ଭବଇ ।।୧୨୩
୪୫ କପଟେ ପୁତ୍ରନାମ ତାର । ମୋହବନ୍ଧନ ସେ ଆତ୍ମାର ।।୧୨୪
ପଣ୍ଡିତ ହୋଇ କେଉଁ ପ୍ରାଣୀ । ତାହାକୁ ବଡ଼ କରି ମଣି ।।୧୨୫
ଯାର ନିମିତ୍ତେ କ୍ଳେଶଦାୟୀ । ଆପଣା ଗୃହ ହିଁ ହୁଅଇ ।।୧୨୬
୪୬ *ଯାହାର ନ ଥାଇ ନନ୍ଦନ । ସେ ସର୍ବ ଶୋକଙ୍କର ସ୍ଥାନ ।।୧୨୭
ତା'ଠାରୁ ଶ୍ରେଷ୍ଠ ମୁଁ ମଣଇଁ । କୁପୁତ୍ରବନ୍ତ ଯେ ହୁଅଇ ।।୧୨୮
ଗୃହରୁ ବୈରାଗ୍ୟ ସେ ପାଏ । କୁପୁତ୍ରୁଁ ଗୃହ କ୍ଳେଶମୟେ ।।୧୨୯
୪୭ ଏ ରୂପେ ବୈରାଗ୍ୟ ମନରେ । ଲଭି ସେ ରଜନୀ-ଅର୍ଦ୍ଧରେ ।।୧୩୦
ନିଦ୍ରା ହିଁ ନୋହିଲା ତାହାର । ଜାଣିଲେ ନାହିଁ କେହି ନର ।।୧୩୧
ବେଣମାତା ଯେ ଥିଲା ଶୋଇ । ତାକୁ ଛାଡ଼ିଣ ନରସାଇଁ ।।୧୩୨
ଅନେକ ସଂପତ୍ତି ଯହିଁରେ । ଜନମିଛନ୍ତି ସମୟରେ ।।୧୩୩
ଏମନ୍ତ ଗୃହରୁ ଉଠିଣ । ଗଲା ସେ ବୈରାଗ୍ୟ ଲଭିଣ ।।୧୩୪

---

* 'କଦପତ୍ୟଂ ବରଂ ମନ୍ୟେଽସଦପତ୍ୟାଦ୍' ଅନୁସାରେ ଗୀତ ରଚିତ ହୋଇଅଛି ।
'କଦପତ୍ୟଂ ବରଂ ମନ୍ୟେ ସଦପତ୍ୟାଦ୍' ପାଠାନ୍ତର (ଖଣ୍ଡ − ଅକାର ବିହୀନ) ଅଛି ।

୪୮ ବୈରାଗ୍ୟ ହୋଇ ଗଲେ-ପତି । ଏମନ୍ତ ଜାଣିଣ ଝଟିତି ॥୧୩୫
ପ୍ରଜା-ଅମାତ୍ୟ-ପୁରୋହିତ । ମିତ୍ର ଆଦିରେ ହୋଇ ଯୁତ ॥୧୩୬
ଶୋକରେ କାତର ହୋଇଲେ । ଧରଣୀ ମଧ୍ୟରେ ଖୋଜିଲେ ॥୧୩୭
ଯେସନେ ଆତ୍ମା ଗୁପ୍ତେ ଥାଇ । କୁଯୋଗୀଜନ ତା' ନ ପାଇ ॥୧୩୮
୪୯ ପ୍ରଜାପତିର ମାର୍ଗ ତହିଁ । ଲକ୍ଷି ନ ପାରି ଲୋକ କେହି ॥୧୩୯
ହତ-ଉଦ୍ୟମ ସେ ହୋଇଣ । ଲେଉଟି ପୁରକୁ ଆସିଣ ॥୧୪୦
ମିଳି ଯେ ଥିଲେ ଋଷିଜନ । ତାହାଙ୍କୁ କରିଣ ବନ୍ଦନ ॥୧୪୧
ନାଶଂକୁ କହିଲେ ରାଜାର । ଲୋଚନୁଁ ଗଳୁଅଛି ନୀର ॥୧୪୨
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥୧୪୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀଅଙ୍ଗପ୍ରବ୍ରଜ୍ୟା ନାମ ତ୍ରୟୋଦଶୋଽଧ୍ୟାୟଃ ॥

## ଚତୁର୍ଦ୍ଦଶୋଽଧ୍ୟାୟଃ

ଚତୁର୍ଦ୍ଦଶେ ତୁ ଦୁଷ୍ଟୁତ୍ରଭୟାଦଙ୍ଗେ ଗତେ ଦ୍ୱିଜୈଃ ।
ଅଭିଷିକ୍ତସ୍ୟ ବେଣସ୍ୟ ରୋଷାଦ୍ବୈର୍ବଧ ଉଚ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଭୃଗୁ ଋଷିଙ୍କି ଆଦି ହୋଇ । ଯେତେକ ଥିଲେ ଋଷି ତହିଁ ॥ ୧
ପ୍ରାଣୀଙ୍କ ମଙ୍ଗଳ ସେମାନେ । ଚିନ୍ତା କରନ୍ତି ଅନୁଦିନେ ॥ ୨
ରାଜା-ଅଭାବେ ପ୍ରଜାଜନ । ହୁଅନ୍ତି ପଶୁର ସମାନ ॥ ୩
ଏକଥା ବିଚାରେ ସକଳେ । ନିର୍ଣ୍ଣୟ କରିଣ ସେ ସ୍ଥଳେ ॥ ୪
୨ ସୁନୀଥା ଯେ ବୀରଜନନୀ । ତାକୁ ଡାକି ସେ ସର୍ବମୁନି ॥ ୫
ଅମାତ୍ୟଆଦି-ଅସଂମତ । ଯେ ବେଣ ଅଙ୍ଗରାଜାସୁତ ॥ ୬
ତାହାକୁ ଧରଣୀନାୟକ । କରି ସେ କଲେ ଅଭିଷେକ ॥ ୭

---

୧. ଯଶକୁ (?) (ତୁଂ ଭର୍ତ୍ତୁଃ ବିପ୍ଳବଂ ନାଶମଦର୍ଶନମିତ୍ୟର୍ଥଃ)

୩　ଅତ୍ୟନ୍ତ ଉଗ୍ରଦଣ୍ଡ ଯାର । ସେ ବେଣ ରାଜାସନପର ॥ ୮
ମିଳିବା ଶୁଣି ଖଣ୍ଡଜନ । ତକ୍ଷଣେ ହୋଇଲେକ ଲୀନ ॥ ୯
*ଗରୁଡ଼ଠାରୁ ଭୟ ପାଇ । ସର୍ପେ ଲୁଚନ୍ତି ଯେହ୍ନେ ଯାଇ ॥ ୧୦
୪　ଚଢ଼ିଣ ନୃପତି-ଆସନ । ଦିନକୁ ଦିନ ସେହୁ ବେଣ ॥ ୧୧
ଇନ୍ଦ୍ରାଦି ଅଷ୍ଟଲୋକପାଳ । ଅଇଶ୍ୱର୍ଯ୍ୟରେ ହୋଇ ଭୋଳ ॥ ୧୨
ମୁଁ ବଡ଼ ବୋଲି ନିଜ ଦେହେଁ । ସମ୍ଭାବନାକୁ କରି ସ୍ୱୟେଂ ॥ ୧୩
କାହାକୁ ନମ୍ର ସେ ନୋହିଲା । ବଡ଼ ଲୋକଙ୍କୁ ନ ଗଣିଲା ॥ ୧୪
୫　ଏ ରୂପେ ମଦେ ଅନ୍ଧ ହୋଇ । ଅତ୍ୟନ୍ତ ଗର୍ବକୁ ସେ ବହି ॥ ୧୫
ଅଙ୍କୁଶ ନ ଥିଲେ ଯେମନ୍ତ । ହସ୍ତୀ ହୁଅଇ ଅନାୟତ୍ତ ॥ ୧୬
ରଥକୁ କରି ଆରୋହଣ । କ୍ଷିତିମଣ୍ଡଳେ ଭ୍ରମନ୍ତେଣ ॥ ୧୭
ଧରଣୀତଳ-ସ୍ୱର୍ଗ ଦୁଇ । କମ୍ପାଇଲାର ପ୍ରାୟ ହୋଇ ॥ ୧୮
୬　ହେ ବିପ୍ରମାନେ ! ଯଜ୍ଞ, ଦାନ । ହୋମ ନ କରିବ ବିଧାନ ॥ ୧୯
ଏ ରୂପେ ଭେରୀଘୋଷ ଦେଇ । ଧର୍ମ ବାରିଲା ସବୁଠାଇଁ ॥ ୨୦
୭　ଦୁର୍ବୃତ୍ତ ଅଟଇ ଯେ ବେଣ । ତା' ଚେଷ୍ଟା ଦେଖି ମୁନିଜନ ॥ ୨୧
ଲୋକର ବିପତ୍ତି ଦେଖିଣ । କୃପାରେ ବୋଇଲେ ମିଳିଣ ॥ ୨୨
୮　ଦୁଇ ପ୍ରକାରେ ତ ଲୋକର । ବିପତ୍ତି ହୋଇଲା ଅପାର ॥ ୨୩
ଯେସନେ କାଷ୍ଠ-ଅଗମୂଳ । ଦହନ କରନ୍ତେ ଅନଳ ॥ ୨୪
ମଧ୍ୟରେ ଥିବା ଜନ୍ତୁମାନ । ଅବଶ୍ୟ ହୁଅନ୍ତି ଦହନ ॥ ୨୫
ସେ ରୂପେ ଥିଲା ଯେବେ ରାଜା । କଷ୍ଟକୁ ଲଭୁଥିଲେ ପ୍ରଜା ॥ ୨୬
ରାଜାର ନ ଥିବାରେ ଚୋର । ସକାଶୁଁ ଭୟ ହେଲା ଘୋର ॥ ୨୭
୯　ରାଜାପଣକୁ ଏହୁ ବେଣ । କେବେହେଁ ନୁହଇ ଭାଜନ ॥ ୨୮
ହୁଅନ୍ତେ ଅରାଜକ-ଭୀତି । ଏହାକୁ କଲୁଁ ନରପତି ॥ ୨୯
ତାହା ସକାଶୁଁ ପୁଣ ଭୟ । ହୋଇଲା ଆଜ ଅତିଶୟ ॥ ୩୦
ସର୍ପକୁ ପିଆଇଣ କ୍ଷୀର । ଯେସନେ ପୋଷିଥାଇ ନର ॥ ୩୧
ପୋଷିଲା ଲୋକ-ଭୟ ପୁଣ । ଜାତ କରଇ ସେ ପୋଷଣ ॥ ୩୨

---

* 'ତାର୍କ୍ଷ୍ୟତ୍ରସ୍ତା ଇବାହୟଃ' ସ୍ଥଳରେ 'ସର୍ପତ୍ରସ୍ତା ଇବାଖବଃ' ଏହି ପାଠାନ୍ତର ଅଛି । ତଦନୁସାରେ ''ସାପସକାଶୁଁ ଭୟ ପାଇ । ମୂଷା ଲୁଚନ୍ତି ଯେହ୍ନେ ଯାଇ ।'' ଗୀତଟି ରଚିତ ହେଲା ।

୧୦ ସୁନୀଥାଗର୍ଭୁଁ ଜାତ ବେଣ । ସ୍ୱଭାବେ ଅଟେ ଖଳଜନ ॥ ୩୩
ତାହାକୁ କଲୁଁ ପ୍ରଜାପତି । ପ୍ରଜା ନାଶୁଛି ସେ ଦୁର୍ମତି ॥ ୩୪
୧୧ ମଙ୍ଗଳ ହୋଇବ କେମନ୍ତେ । ପ୍ରାଣୀମାନଙ୍କର ସଂତତେ ॥ ୩୫
ଆମ୍ଭମାନଙ୍କୁ ତାର ଦୋଷ । ତେବେ ନ କରିବ ସ୍ପରଶ ॥ ୩୬
ଦୁଷ୍ଟ ଅଟଇ ବୃତ୍ତ ଯାର । ସେ ବେଣ କୁତ୍ସିତ-ଆଚାର ॥ ୩୭
ଆମ୍ଭେ ତାହାକୁ କଲୁଁ ନୃପ । ଜାଣିଲେହେଁ ତାହାର ପାପ ॥ ୩୮
୧୨ ତଥାପି ଆମ୍ଭେମାନେ ଯିବା । ଏହାକୁ ସାନ୍ତ୍ୱନା କରିବା ॥ ୩୯
ବହୁତ କରନ୍ତେ ସାନ୍ତ୍ୱନ । ଆମ୍ଭ ବାକ୍ୟକୁ ପାପୀ ବେଣ ॥ ୪୦
ଘେନିବ ନାହିଁ ସେହୁ ଯେବେ । ଦହିବା ନିଜ ତେଜେ ତେବେ ॥ ୪୧
ଲୋକମାନଙ୍କର ଧିକ୍‌କାରେ । ଦଗ୍ଧ ହୋଇଛି ସେ ବେଭାରେ ॥ ୪୨
୧୩ ଏ ରୂପେ ବିଚାର[୧] ଭିଆଇ । ମୁନିଏ କ୍ରୋଧକୁ ଲୁଚାଇ ॥ ୪୩
ବେଣର ନିକଟକୁ ଯାଇ । ବୋଇଲେ ସାନ୍ତ୍ୱନା କରାଇ ॥ ୪୪

*ଶ୍ରୀମୁନୟ ଉଚୁଃ

୧୪ ହେ ନୃପଶ୍ରେଷ୍ଠ ! ଶୁଣ ତାହା । ଆମ୍ଭେ ଜଣାଉଅଛୁଁ ଯାହା ॥ ୪୫
ଭୋ ତାତ ତୋ' ବଳ-ଶ୍ରୀ-ଯଶ । ଆୟୁଷ କରେ ଯେ ବିଶେଷ ॥ ୪୬
୧୫ } କାୟ, ବଚନ, ବୁଦ୍ଧି, ମନେ । ଧର୍ମ ଆଚରନ୍ତେ ସୁଜନେ ॥ ୪୭
୧୬ } ବିଶୋକ ଯେଉଁ ଲୋକମାନ । ସେ ଧର୍ମ କରେ ତା' ପ୍ରଦାନ ॥ ୪୮
ସେ ପୁଣ ନିଷ୍କାମ ଲୋକଙ୍କୁ । ପ୍ରଦାନ କରଇ ମୋକ୍ଷକୁ ॥ ୪୯
ହେ ବୀର ! ପ୍ରଜାକ୍ଷେମକର । ସେ ଧର୍ମନାଶ ନୋହୁ ତୋର ॥ ୫୦
ଯାହାର ବିନାଶେ ନୃପତି । ଅଇଶ୍ୱର୍ଯ୍ୟରୁ ହୋଏ ଚ୍ୟୁତି ॥ ୫୧
୧୭ ଅସାଧୁ ଅମାତ୍ୟ ଯେ ଚୋର । ଏ ଆଦି ଯେବା ଦୁଷ୍ଟ ନର ॥ ୫୨
ତାଙ୍କ ସକାଶୁଁ ପ୍ରଜାଜନ । ପାଳନ କରନ୍ତେ ରାଜନ ॥ ୫୩
ଶାସ୍ତ୍ରପ୍ରମାଣେ କର ନେଇ । ଉଭୟ ଲୋକେ ସୁଖ ପାଇ ॥ ୫୪
୧୮ ଯେବଣ ରାଜା-ରାଜ୍ୟେ ପୁରେ । ବର୍ଣ୍ଣ-ଆଶ୍ରମରୂପୀ ନରେ ॥ ୫୫
ଯଜ୍ଞପୁରୁଷରୂପେ ଚିନ୍ତି । ବିଷ୍ଣୁଙ୍କୁ ସ୍ୱଧର୍ମେ ପୂଜନ୍ତି ॥ ୫୬
୧୯ ସକଳ-ଆତ୍ମା ଭଗବାନ । ତାକୁ ହୁଅନ୍ତି ତୋଷମନ ॥ ୫୭
ବିଷ୍ଣୁ-ଆଜ୍ଞାରେ ଅବିରତ । ଯେଣୁ ସେ ରାଜା ଅଟେ ସ୍ଥିତ ॥ ୫୮

---

୧. ବୁଦ୍ଧିଏ । * ଶ୍ରୀରଷୟ ଉଚୁଃ

୨୦　ଜଗତଜନମାନଙ୍କର　।　ଈଶ୍ୱର ଉପରେ ଈଶ୍ୱର　॥ ୫୯
ସେ ବିଷ୍ଣୁ ଯେବେ ତୋଷ ହୋଇ　।　ଦୁର୍ଲଭ ହୋଇ କି ଅଛଇ　॥ ୬୦
ଆଦର ହୋଇ ନିରନ୍ତରେ　।　ଲୋକପାଳଙ୍କ ସହିତରେ　॥ ୬୧
ସେ ନୃପତିକି ଲୋକମାନେ　।　ପୂଜା କରନ୍ତି ଏ ଭୁବନେ　॥ ୬୨
୨୧　ସକଳ ଲୋକଯଜ୍ଞସୁର　।　ସଂଗ୍ରହକର୍ତ୍ତା ସେ ଈଶ୍ୱର　॥ ୬୩
ବେଦସ୍ୱରୂପୀ ଜ୍ଞାନମୟ[୧]　।　ତପସ୍ୱରୂପୀ ବିଶ୍ୱକାୟ　॥ ୬୪
ହେ ରାଜା ତୋ ଭଦ୍ରଅର୍ଥରେ　।　ତାହାଙ୍କୁ ବିଚିତ୍ର ଯଜ୍ଞରେ　॥ ୬୫
ପୂଜା କରନ୍ତୁ ରାଜ୍ୟେ ନର　।　ତୁ ତାଙ୍କୁ ଅନୁରୋଧ କର　॥ ୬୬
୨୨　ତୋହର ରାଜ୍ୟେ ବିପ୍ରଗଣ　।　ଯଜ୍ଞମାର୍ଗକୁ ବିସ୍ତାରିଣ　॥ ୬୭
ଦେବତାମାନେ ବିଷ୍ଣୁଅଂଶ　।　ତାଙ୍କୁ ପୂଜନ୍ତେ ହୋଇ ତୋଷ　॥ ୬୮
ଦେବେ ତୋ' ବାଞ୍ଛାକୁ ସେ ବୀର　।　ତାହାଙ୍କୁ ଅବଜ୍ଞା ନ କର　॥ ୬୯

ଶ୍ରୀବେଣ ଉବାଚ

୨୩　ହେ ବିପ୍ରେ ! ତୁମ୍ଭେ ମୂର୍ଖଗଣ　।　ଅଧର୍ମ ଧର୍ମ କରି ମଣ　॥ ୭୦
ଯେ ବୃତ୍ତିଦାତା ପତି ଲେଛି[୨]　।　ଜାର ପତିକି ମନେ ଇଛି　॥ ୭୧
୨୪　ନୃପସ୍ୱରୂପୀ ଯେ ଈଶ୍ୱର　।　ତାହାଙ୍କୁ ଯେଉଁ ମୂଢ଼ନର　॥ ୭୨
ଅବଜ୍ଞା କରନ୍ତି ସେ ଲୋକେ[୩]　।　ସୁଖ ନ ପାନ୍ତି ବେନିଲୋକେ　॥ ୭୩
୨୫　ଯଜ୍ଞପୁରୁଷ ଅବା କେହି　।　ତୁମ୍ଭର ଏଡ଼େ ଭକ୍ତି ଯହିଁ　॥ ୭୪
ଭର୍ତ୍ତାସ୍ନେହକୁ କରି ଦୂର　।　ଜାରେ ଯେସନେ କୁସ୍ତ୍ରୀଙ୍କର　॥ ୭୫
୨୬　ବିଷ୍ଣୁ, ବିରିଞ୍ଚି, ମହେଶ୍ୱର　।　ଇନ୍ଦ୍ର, ପବନ, ଦଣ୍ଡଧର　॥ ୭୬
ରବି, ପର୍ଜନ୍ୟ, ଧନପତି　।　ବରୁଣ, ସୋମ, ଅଗ୍ନି, କ୍ଷିତି　॥ ୭୭
୨୭　ଏ ଆନ ଯେବା ଦେବମାନେ　।　ଈଶ୍ୱର ବରଶାପଦାନେ　॥ ୭୮
ବସନ୍ତି ନୃପତିର କାୟ　।　ନୃପ ସକଳଦେବମୟ　॥ ୭୯
୨୮　ତେଣୁ ହୋଇଣ ବିମତ୍ସର　।　ହେ ବିପ୍ରମାନେ ! ନିରନ୍ତର　॥ ୮୦
କର୍ମରେ ମୋତେ ଯାଗ କର　।　ମୋତେ ସମର୍ପ ଉପହାର　॥ ୮୧
ମୋଠାରୁ ଅଗ୍ରଭୋକ୍ତା ହୋଇ　।　କେ ଆନ ପୁରୁଷ ଅଛଇ　॥ ୮୨

ଶ୍ରୀମୈତ୍ରେୟ ଉବାଚ

୨୯　ବିରୁଦ୍ଧମତି ଏ ପ୍ରକାରେ　।　ପାପିଷ୍ଠ ଉତ୍ପଥେ ବିହରେ　॥ ୮୩
ବ୍ରାହ୍ମଣମାନେ ଅତିଶୟ　।　କରନ୍ତେ ତାଙ୍କୁ ଅନୁନୟ　॥ ୮୪
ତାଙ୍କ ଯାଚଞ୍ଚାକୁ ନ କଲା　।　ନଷ୍ଟ[୪] ମଙ୍ଗଳ ଯେଣୁ ହେଲା　॥ ୮୫

---

୧. ଦ୍ରବ୍ୟମୟ ।　୨. ଲେଛି = ତ୍ୟାଗ କରି ।　୩. ପାକେ ।　୪. ଭ୍ରଷ୍ଟ ।

| | | | | |
|---|---|---|---|---|
| ୩୦ | ପଣ୍ଡିତ-ଅଭିମାନୀ ବେଣ । | ବିପ୍ରଙ୍କୁ କଲା ଅସମ୍ମାନ | ॥ | ୮୬ |
| | ଭବ୍ୟ ଯାଚ୍ଞା ତାହାଙ୍କର । | ଭଗ୍ନ ହୁଅନ୍ତେ ହେ ବିଦୁର | ॥ | ୮୭ |
| | ଅବଜ୍ଞା ସହି ନ ପାରିଲେ । | ବିପ୍ରେ ତାହାକୁ କ୍ରୋଧ କଲେ | ॥ | ୮୮ |
| ୩୧ | ଏ ପାପୀ ସ୍ୱଭାବେ ଦାରୁଣ । | ଏହାକୁ ମାର ମାର ପୁଣ | ॥ | ୮୯ |
| | ଜୀଇ ଥାଆନ୍ତେ ଏ ଜଗତ । | ନିଶ୍ଚେ କରିବ ଭସ୍ମୀଭୂତ | ॥ | ୯୦ |
| ୩୨ | ଦୁଷ୍ଟଚରିତ ଏ ଅଟଇ । | ରାଜାସନକୁ ଯୋଗ୍ୟ ନୋହି | ॥ | ୯୧ |
| | ସକଳ ଯଜ୍ଞମାନଙ୍କର । | ବିଷ୍ଣୁ ଅଟନ୍ତି ଅଧୀଶ୍ୱର | ॥ | ୯୨ |
| | ନିନ୍ଦା କରୁଛି ତାଙ୍କୁ ଏହି । | ଲଜ୍ଜା ଏହାର ଠାରେ ନାହିଁ | ॥ | ୯୩ |
| ୩୩ | ପାପିଷ୍ଠ ବେଣ ବିନୁ ଆନ । | ଏହାଙ୍କୁ କରୁ କେ ନିନ୍ଦନ | ॥ | ୯୪ |
| | ଯା' ଅନୁଗ୍ରହପାତ୍ର ହେଲା । | ଏମନ୍ତ ଐଶ୍ୱର୍ଯ୍ୟ ପାଇଲା | ॥ | ୯୫ |
| ୩୪ | ମାରିବା ଅର୍ଥେ ଏ ପ୍ରକାରେ । | ବିଚାର କରିଣ ମନରେ | ॥ | ୯୬ |
| | *କ୍ରୋଧ ଲୁଚାଇ ମୁନି ଥିଲେ । | ହୁଁକାରେ ବେଣକୁ ମାଇଲେ | ॥ | ୯୭ |
| | ବିଷ୍ଣୁଙ୍କୁ ନିନ୍ଦିଣ ବହୁତ । | ସ୍ୱଭାବେ ହୋଇଛି ସେ ହତ | ॥ | ୯୮ |
| ୩୫ | ଋଷି ଚଳନ୍ତେ ଆଶ୍ରମକୁ । | ସୁନୀଥା ପୁତ୍ରଶରୀରକୁ | ॥ | ୯୯ |
| | ପାଳିଲା ମନ୍ତ୍ରଯୋଗଦ୍ୱାରେ । | ଶୋଚନା କରନ୍ତେ ମନରେ | ॥ | ୧୦୦ |
| ୩୬ | ସରସ୍ୱତୀର ଜଳେ ଦିନେ । | ସ୍ନାନ କରିଣ ଋଷିମାନେ | ॥ | ୧୦୧ |
| | ହୋମ ଦେଇଣ ଅନଳରେ । | ବସିଲେ ଯାଇଁ ନଦୀତୀରେ | ॥ | ୧୦୨ |
| | **ଉତ୍ତମ ଯେଉଁ କଥାମାନ । | ସେମାନ କଲେ ସେ ଗାୟନ | ॥ | ୧୦୩ |
| ୩୭ | ଲୋକମାନଙ୍କ ଭୟଙ୍କର । | ମହା ଉତ୍ପାତମାନେ ଘୋର | ॥ | ୧୦୪ |
| | ସକଳ ଦିଗରେ ଉଠିଲେ । | ସେମାନ ଦେଖି ସେ ବୋଇଲେ | ॥ | ୧୦୫ |
| | ଅନାଥା ହୋଇଛି ଧରଣୀ । | ଖଣ୍ଡଙ୍କ ସକାଶରୁ ପୁଣି | ॥ | ୧୦୬ |
| | ସେ ଧରଣୀର ଅବିରତ । | ଅଭଦ୍ର ନୁହଇ କି ଜାତ | ॥ | ୧୦୭ |
| ୩୮ | ଏହା ବିଚାରନ୍ତେ ସେ ସ୍ଥାନେ । | ରହି ଅଛନ୍ତି ଋଷିମାନେ | ॥ | ୧୦୮ |
| | ଲୁଟି କରିଣ ସ୍ଥାନେ ସ୍ଥାନେ । | ଧାମନ୍ତେ ତହିଁ ଚୋରମାନେ | ॥ | ୧୦୯ |
| | ସକଳ ଦିଗରୁ ତାଙ୍କର । | ଧୂଳି ଉଠିଲା ଅତି ଘୋର | ॥ | ୧୧୦ |

* 'ଗୂଢ଼ମନ୍ୟବଃ' ପାଠ ଅନୁସାରେ ଏ ପଂକ୍ତି ରଚିତ ହୋଇଅଛି । 'ରୂଢ଼ମନ୍ୟବଃ' ପାଠାନ୍ତର ଅନୁସାରେ 'କ୍ରୋଧକୁ ପ୍ରକଟାଇ ଥିଲେ' ରଚିତ ହୋଇପାରେ । 'ରୂଢ଼ମନ୍ୟବଃ ପ୍ରକଟକୋପାଃ' । (ସ୍ୱାମୀ)

** ବିଷ୍ଣୁ କଥାମାନ ।

| | | | |
|---|---|---|---|
| ୩୯ | ସେ ରାଜା ହୁଅନ୍ତେ ନିଧନ । | ଲୁଟି କରନ୍ତେ ଲୋକଧନ | ॥୧୧୧ |
| | ଏକ ଆରକେ ହଣାହଣି । | ହୋନ୍ତେ ସେ ଉପଦ୍ରବ ଜାଣି | ॥୧୧୨ |
| ୪୦ | ରାଜ୍ୟେ ବହୁତ ହେବେ ଚୋରେ । | ନିଃସତ୍ତ୍ୱ ରାଜା ନ ଥିବାରେ | ॥୧୧୩ |
| | ଚୋରଙ୍କୁ ନ ନାଶିଲେ ପୁଣି । | ଯେ ଦୋଷ ଥିଲେହେଁ ତା' ଜାଣି | ॥୧୧୪ |
| | ସମର୍ଥ ହେଲେହେଁ ସେ ତହିଁ । | ଲୋକଙ୍କୁ ନିବାରିଲେ ନାହିଁ | ॥୧୧୫ |
| ୪୧ | ଯେ ବିପ୍ର ସମ ଶାନ୍ତ ହୋଇ । | ଦୁଃଖୀଙ୍କି ଉପେକ୍ଷା କରଇ | ॥୧୧୬ |
| | ସ୍ରବଇ ତପସ୍ୟା ତାହାର । | ଭଗ୍ନ ଭାଣ୍ଡରୁ ଯେହ୍ନେ ନୀର | ॥୧୧୭ |
| ୪୨ } | ଅଙ୍ଗରାଜରଷି ସନ୍ତାନ । | ନାଶକୁ ନୋହେ ଏ ଭାଜନ | ॥୧୧୮ |
| ୪୩ } | ଅମୋଘବୀର୍ଯ୍ୟ ଏ ବଂଶରେ । | ରାଜାଏ ବିଷ୍ଣୁ ଆଶ୍ରୟରେ | ॥୧୧୯ |
| | ଋଷିଏ ଏମନ୍ତ ପ୍ରକାରେ । | ନିଶ୍ଚୟ କରିଣ ମନରେ | ॥୧୨୦ |
| | ମରି ଯେ ଥିଲା ମହୀପତି । | ତା' ଉରୁ ମନ୍ଥିଲେ ଝଟିତି | ॥୧୨୧ |
| | ତହୁଁ ଜନ୍ମିଲା ଏକ ନର । | ବାମନ ଅଟେ ତା' ଶରୀର | ॥୧୨୨ |
| ୪୪ | ସେ କାକକୃଷ୍ଣ ହ୍ରସ୍ୱତନୁ । | ଭୁଜ ହ୍ରାଙ୍ଗର ଦୀର୍ଘ ହନୁ | ॥୧୨୩ |
| | ଚରଣଯୁଗ ହ୍ରସ୍ୱ ତାର । | ନାସାଗ୍ର ଅଟଇ ଗଭୀର | ॥୧୨୪ |
| | ରଙ୍ଗ ଅଟଇ ତା' ଲୋଚନ । | ତମ୍ବାର ପ୍ରାୟ ବାଳମାନ | ॥୧୨୫ |
| ୪୫ | କି କରିବି ମୁଁ ବୋଲି ସେହି । | ନମ୍ର ହୋଇଛି ଦୀନ ହୋଇ | ॥୧୨୬ |
| | 'ନିଷୀ[୧] ଦ' ବୋଲି ଋଷିମାନେ । | ତାହାକୁ ବୋଇଲେ ବଚନେ | ॥୧୨୭ |
| | ତେଣୁ ସେ ନିଷାଦ ନାମରେ । | ବିଖ୍ୟାତ ହେଲା ଜଗତରେ | ॥୧୨୮ |
| ୪୬ | ନିଷାଦମାନେ ବଂଶ ତାର । | ଗିରି-କାନନେ ତାଙ୍କ ଘର | ॥୧୨୯ |
| | ଯେଣୁ ସେ ଜାତ ହୋଇ ଘୋର । | କଳୁଷ ବହିଲା ବେଣର | ॥୧୩୦ |
| | ତେଣୁ ତା' ବଂଶେ ହୋଇ ଜାତ । | ପ୍ରାଣୀ ହୋଇଲେ ସେହିମତ | ॥୧୩୧ |
| | ପତିତପାବନ ମୁରାରି । | ଦୀନଜନଙ୍କ ହିତକାରୀ | ॥୧୩୨ |
| | ଦୀନବନ୍ଧୁରେ କାହିଁପାଇଁ । | ଦିନେ କରୁଣା ହେଉ ନାହିଁ | ॥୧୩୩ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀ ବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁଚରିତେ ନିଷାଦୋତ୍ପତ୍ତିର୍ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

---

୧. ନିଷୀଦ = ବସ । (ନିଷାଦ ?)

# ପଞ୍ଚଦଶୋଽଧ୍ୟାୟଃ

ତତଃ ପଞ୍ଚଦଶେ ବିପ୍ରୈର୍ମଥନାଦ୍ ବେଣବାହୁତଃ ।
ଜାତସ୍ୟ ତୁ ପୃଥୋରୁକ୍ତମଭିଷେକାର୍ହଣାଦିକମ୍ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ବ୍ରାହ୍ମଣମାନେ ତଦନ୍ତର । ଅପୁତ୍ର ଅବନୀପତିର ॥ ୧
ମନ୍ଥନ୍ତେ ପୁଣ ଭୁଜଦୁଇ । ସ୍ତିରୀ ପୁରୁଷ ଜାତ ହୋଇ ॥ ୨
୨ ଦେଖିଣ ସେହି ମିଥୁନକୁ । ଲଭି ପରମ ସଂତୋଷକୁ ॥ ୩
ବିଷ୍ଣୁର କଳା ବୋଲି ଜାଣି । ମୁନିମାନେ ଏମନ୍ତ ଭଣି ॥ ୪

ଶ୍ରୀଋଷୟ ଊଚୁଃ

୩ ବିଷ୍ଣୁର କଳା ଏ ଅଟଇ । ଯେ ବିଶ୍ୱ ପବିତ୍ର କରଇ ॥ ୫
ଏ ଅବିନାଶୀ ଲକ୍ଷ୍ମୀକଳା । ଯେ ଅଟେ ବିଷ୍ଣୁର ଅବଳା ॥ ୬
୪ ଏଥି ଯେ ପୁରୁଷ ଜନମ । ସେ ରାଜାମାନଙ୍କ ପ୍ରଥମ ॥ ୭
ପୃଥୁ ଅଟଇ ଯଶ ତାର । ଯଶ କରିବ ସେ ବିସ୍ତାର ॥ ୮
ଏ ପୃଥୁ ନାମେ ମହାରାଜା । ସୁଖେ ପାଳିବ ଜନପ୍ରଜା ॥ ୯
୫ ଯାର ସୁନ୍ଦର ଦନ୍ତଗଣ । ଗୁଣ-ଭୂଷଣକୁ ଭୂଷଣ ॥ ୧୦
ଅର୍ଚ୍ଚିନାମରେ ଏହୁ ଦେବୀ । ପୃଥୁ ରାଜାକୁ ଥିବ ସେବି ॥ ୧୧
୬ ଏହୁ ସାକ୍ଷାତ ହରିଅଂଶ । ଲୋକପାଳନାକୁ ପ୍ରକାଶ ॥ ୧୨
ଏହାକୁ ହୋଇ ଅନୁଗତ । ଏ ଅବିନାଶୀ ଲକ୍ଷ୍ମୀ ଜାତ ॥ ୧୩

ଶ୍ରୀମୈତ୍ରେୟ ଉବାଚ

୭ ବ୍ରାହ୍ମଣେ ତାକୁ ପ୍ରଶଂସିଲେ । ଗନ୍ଧର୍ବପ୍ରବରେ ଗାଇଲେ ॥ ୧୪
ସିଦ୍ଧେ କୁସୁମ ବରଷିଲେ । ଦେବସ୍ତ୍ରୀମାନେ ନୃତ୍ୟକଲେ ॥ ୧୫
୮ ଶଙ୍ଖ ମୃଦଙ୍ଗ ଆଦି ତୂଲେ । ସ୍ୱର୍ଗେ ଦୁନ୍ଦୁଭିଏ ଶୁଭିଲେ ॥ ୧୬
ସେଠାକୁ ଅଇଲେ ସକଳ । ଦେବତା ଋଷି ପିତୃକୁଳ ॥ ୧୭
୯ ଯେ ବ୍ରହ୍ମା ଗୁରୁ ଜଗତର । ସେ ଆସି ଦେବଙ୍କ ସଙ୍ଗର ॥ ୧୮
ଦକ୍ଷିଣ ହସ୍ତରେ ପୃଥୁର । ଚକ୍ରକୁ ଦେଖିଣ ବିଷ୍ଣୁର ॥ ୧୯
୧୦ ଚରଣେ ଦେଖିଣ ପଦ୍ମକୁ । ମଣିଲେ ବିଷ୍ଣୁ ଅଂଶ ତାକୁ ॥ ୨୦
ଇତର ରେଖାରେ ନ ମିଶି । ଯାହାର କରେ ଚକ୍ର ଦିଶି ॥ ୨୧
ସେ ଲୋକ ସାଧାରଣ ନୋହି । ବିଷ୍ଣୁର ଅଂଶ ଅଟେ ସେହି ॥ ୨୨

୧୧ ଯେବଣ ବିପ୍ରେ ବେଦମାନ । କରିଅଛନ୍ତି ଅଧ୍ୟୟନ ॥ ୨୩
ସେମାନେ ସହରଷ ହେଲେ । ତା' ଅଭିଷେକ ଆରମ୍ଭିଲେ ॥ ୨୪
ତା' ଅଭିଷେକଦ୍ରବ୍ୟମାନ । ଆଣିଲେ ସର୍ବ ଦିଗୁଁ ଜନ ॥ ୨୫
୧୨ ନଦୀ, ସମୁଦ୍ର, ଗିରି, ନାଗ । ଯେ ଅନ୍ୟ ଧେନୁ, ଖଗ ମୃଗ ॥ ୨୬
ଭୂ, ସ୍ୱର୍ଗ ସର୍ବଭୂତମାନ । ଭେଟିଲେ ଆଣି ଉପାୟନ ॥ ୨୭
୧୩ ସେ ଅଭିଷେକ ହୋଇ ପୁଣ । ଉତ୍ତମ ବସନ ପିନ୍ଧିଣ ॥ ୨୮
ଧରି ଉତ୍ତମ ଅଳଙ୍କାର । ଯେ ଭାର୍ଯ୍ୟା ଅର୍ଚ୍ଚି ନାମେ ତାର ॥ ୨୯
ସେହି ହୋଇଛି ଅଳଂକୃତ । ତା' ଅଙ୍ଗେ ଦିଶିଲା ଶୋଭିତ ॥ ୩୦
ଯେସନେ ଦିଶେ ଅଗ୍ନି ଆର । ସେ ରୂପେ ଦିଶେ ନୃପବର ॥ ୩୧
୧୪ ହେ ବୀର ! ହେମବରାସନ । ତାକୁ କୁବେର କଲା ଦାନ ॥ ୩୨
ଯହିଁରୁ ସଲିଳ ସ୍ରବଇ । ଚନ୍ଦ୍ରପ୍ରାୟେ ଯେ ଶୋଭା ପାଇ ॥ ୩୩
ଏମନ୍ତ ଆତପତ୍ର ପୁଣି । ବରୁଣ ତାକୁ ଦେଲା ଆଣି ॥ ୩୪
୧୫ ବାଳ-ବ୍ୟଜନବେନି ପୁଣ । ପ୍ରଦାନ କଲା ସମୀରଣ ॥ ୩୫
ଯେ କୀର୍ତ୍ତିମୟ ମାଳା ଥିଲା । ଧର୍ମଦେବତା ତାହା ଦେଲା ॥ ୩୬
ଇନ୍ଦ୍ର ଉତ୍ତମ ମୁକୁଟକୁ । ପ୍ରଦାନ କଲା ସେ ପୃଥୁକୁ ॥ ୩୭
ଯେ ଦଣ୍ଡ ସଂଯମନ ନାମ । ପ୍ରଦାନ କଲା ତାହା ଯମ ॥ ୩୮
୧୬ ବେଦସ୍ୱରୂପୀ କବଚକୁ । ସଂତୋଷେ ବ୍ରହ୍ମା ଦେଲେ ତାକୁ ॥ ୩୯
ହାରରେ ଯେହୁ ଶ୍ରେଷ୍ଠ ଅତି । ଦେଲେ ତା' ଦେବୀ ସରସ୍ୱତୀ ॥ ୪୦
ସୁଦରଶନ ଚକ୍ର ହରି । ତା' ପତ୍ନୀ ଅବିନାଶୀ ଶିରୀ ॥ ୪୧
୧୭ ଚନ୍ଦ୍ର ଆକାର ହୋଇ ଦଶ । ବିମ୍ବ ଯା' କୋଷରେ ପ୍ରକାଶ ॥ ୪୨
ସେ ଖଣ୍ଡା ତାକୁ ରୁଦ୍ର ଦେଲେ । ତା' ପତ୍ନୀ ଅମ୍ବିକା ଯେ ଥିଲେ ॥ ୪୩
ସେ ଶତଚନ୍ଦ୍ର ଅସି ଆଣି । ପ୍ରଦାନ କଲେ ତାକୁ ପୁଣି ॥ ୪୪
ଅମୃତମୟ ଅଶ୍ୱମାନ । ଚନ୍ଦ୍ରମା କଲେ ତାକୁ ଦାନ ॥ ୪୫
ବିଶ୍ୱକର୍ମା ଯେ ତହିଁ ଥିଲେ । ସୁନ୍ଦର ରଥ ତାକୁ ଦେଲେ ॥ ୪୬
୧୮ ଅଜ-ଗୋ-ଶୃଙ୍ଗେ ଯେ ନିର୍ମାଣ । ସେ ଧେନୁ ଦେଲେ ଅଗ୍ନି ପୁଣ ॥ ୪୭
କିରଣମୟ ଶରମାନ । ଭାସ୍କର କଲେକ ପ୍ରଦାନ ॥ ୪୮
ଯୋଗମୟ[୧] ପାଦୁକା ବେନି । ପ୍ରଦାନ କଲାକ ଅବନୀ ॥ ୪୯
ପୁଷ୍ପଅଂଜଳି ପ୍ରତିଦିନ । ସ୍ୱର୍ଗ ତାହାକୁ କଲା ଦାନ ॥ ୫୦

---

୧. ଯୋଗମୟ = ପାଦସ୍ପର୍ଶମାତ୍ରେ ଅଭୀଷ୍ଟଦେଶପ୍ରାପକ ।

୧୯ ନାଟ୍ୟ ସୁଗୀତ ଅନ୍ତର୍ଧାନ । ବାଦ୍ୟ ଗନ୍ଧର୍ବେ କଲେ ଦାନ ॥ ୫୧
ଋଷିମାନେ ଯେ ତହିଁ ଥିଲେ । ସତ୍ୟ ଆଶିଷ ସେହୁ ଦେଲେ ॥ ୫୨
ଯେ ଶଙ୍ଖ ନିଜ ଜଳେ ଜାତ । ସମୁଦ୍ର ଦେଲେ ତା' ତୁରିତ ॥ ୫୩
୨୦ ନଦୀ, ପର୍ବତେ ସିନ୍ଧୁତୁଲେ । ରଥମାର୍ଗକୁ ତାର ଦେଲେ ॥ ୫୪
ସୂତ, ମାଗଧ, ବନ୍ଦୀ ତାକୁ । ମିଳିଲେ ସ୍ତୁତି କରିବାକୁ ॥ ୫୫
୨୧ ସ୍ତୁତି କରିବେ ସେହୁ ଜନେ । ଏକଥା ଜାଣି ନିଜ ମନେ ॥ ୫୬
ପ୍ରତାପୀ ପୃଥୁ ସେ କାଳରେ । ମେଘ ଗମ୍ଭୀର ବଚନରେ ॥ ୫୭
କହିଲେ ଏମନ୍ତ ବଚନ । ହସନ୍ତେ ବେଣର ନନ୍ଦନ ॥ ୫୮

ଶ୍ରୀପୃଥୁରୁବାଚ

୨୨ ସୂତ, ମାଗଧ, ବନ୍ଦିଜନ । କହଇ ଶୁଣ ମୋ ବଚନ ॥ ୫୯
ଏ ଜଗତରେ ମୋର ଗୁଣ । ପ୍ରକାଶ ନୋହିଅଛି ପୁଣ ॥ ୬୦
ମୋତେ କରିବ ଯେଉଁ ସ୍ତବ । ତାର କେ ଆଶ୍ରୟ ହୋଇବ ॥ ୬୧
ମୋର ବିଷୟେ ତୁମ୍ଭ ବାଣୀ । ମିଥ୍ୟା ନୁହନ୍ତୁ ଏଣୁ ପୁଣି ॥ ୬୨
୨୩ ସେ ଘେନି ଗଲେ କାଳାନ୍ତର । ବ୍ୟକ୍ତ ହୁଅନ୍ତେ ଗୁଣ ମୋର ॥ ୬୩
ତୁମ୍ଭେ ମଧୁର ବାକ୍ୟ ଭାଷି । ଆମ୍ଭର ଯଶକୁ ଉଦ୍ଦେଶି ॥ ୬୪
ସ୍ତୋତ୍ରକୁ ଅତିଶୟ କରି । ରଚନା କରିବ ବିଚାରି ॥ ୬୫
ଗୁଣାନୁବାଦ ଶ୍ରୀକୃଷ୍ଣର । ଥାଆନ୍ତେ ସଭାସଦ ନର ॥ ୬୬
ଆମ୍ଭର ଯଶ ତୁଚ୍ଛ ଅଟି । ତାକୁ କରାଉଛନ୍ତି ସ୍ତୁତି ॥ ୬୭
୨୪ ମହତ ଅଟନ୍ତି ଯେ ଜନ । ତାଙ୍କର ଯେଉଁ ଗୁଣମାନ ॥ ୬୮
ସେ ଗୁଣମାନଙ୍କୁ ଆମ୍ଭରେ । ସଂପାଦିବାକୁ କାଳାନ୍ତରେ ॥ ୬୯
ଶକ୍ୟ ହେଲେହେଁ କେଉଁ ଜନ । କରାଇ ନିଜ ସ୍ତୁତିମାନ ॥ ୭୦
ଶାସ୍ତ୍ର-ଅଭ୍ୟାସ ଆଦି ଯେବେ । କରି ଥାଆନ୍ତା ଏହୁ ତେବେ ॥ ୭୧
ବିଦ୍ୟାକୁ ଆଦି ଯେତେ ଗୁଣ । ଏହାର ହୋଇଥାନ୍ତେ ପୁଣ ॥ ୭୨
ଏ ରୂପେ ବଞ୍ଚନାକୁ ପାଇ । ସେ ଲୋକ କୁମତି ଅଟଇ ॥ ୭୩
ଉପହାସକୁ ଲୋକଙ୍କର । ଜାଣି ନ ପାରେ ସେହୁ ନର ॥ ୭୪
୨୫ ଯେବଣ ପ୍ରଭୁଏ ବିଖ୍ୟାତ । ଅତି ଉଦାର ଲଜ୍ଜାବନ୍ତ ॥ ୭୫
ପର କରନ୍ତେ ନିଜ ସ୍ତୁତି । ସେମାନେ ତାହା ନ ସହନ୍ତି ॥ ୭୬
ବ୍ରାହ୍ମଣବଧ ଆଦି ହୋଇ । ନିନ୍ଦିତ ପଉରୁଷ ଯେହି ॥ ୭୭
ସ୍ତୁତିରେ କହନ୍ତେ ତା' ଜନେ । ସହି ନ ପାରନ୍ତି ସେମାନେ ॥ ୭୮

୨୬　ହେ ସୂତ ଆଜହିଁ ଲୋକରେ　।　ଉତ୍ତମ କର୍ମମାନଙ୍କରେ　॥ ୭୯
ଆମ୍ଭେ ବିଦିତ ନୋହିଥାଇ　।　ବାଳକ-ଲୋକ ପ୍ରାୟ ହୋଇ　॥ ୮୦
କରନ୍ତେ ଆପଣାକୁ ସ୍ତବ　।　ତେଣେ କି କାର୍ଯ୍ୟ ଅବା ହେବ　॥ ୮୧
ହେ କୃଷ୍ଣ ! କମଳଲୋଚନ　।　କର ମୋ' ଦୁଃଖ ବିମୋଚନ　॥ ୮୨
ବ୍ରାହ୍ମଣ ଦୀନବନ୍ଧୁ ବାଣୀ　।　ଶୁଣି ସଂସାରୁ ତର ପ୍ରାଣୀ　॥ ୮୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁଚରିତଂ ନାମ ପଞ୍ଚଦଶୋଽଧ୍ୟାୟଃ ॥

## ଷୋଡ଼ଶୋଽଧ୍ୟାୟଃ

ଷୋଡ଼ଶେ ସର୍ବଲୋକେଶୈଃ ସତ୍କୃତଂ ଭାର୍ଯ୍ୟୟା ଯୁତଂ ।
ମୁନିପ୍ରଯୁକ୍ତାଃ ସୂତାଦ୍ୟାଃ ସ୍ତୁବନ୍ତି ସ୍ମେତି ବର୍ଣ୍ଣ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧　ଏମନ୍ତ ବୋଲନ୍ତେ ନୃପତି　।　ଗାୟକେ ତାଙ୍କୁ କଲେ ସ୍ତୁତି　॥ ୧
ତା' ବାକ୍ୟ ଅମୃତେ ସଂତୋଷ　।　ପାଇଣ ମୁନିଙ୍କ ଆଦେଶ　॥ ୨

ଶ୍ରୀସୂତା ଉଚୁଃ

୨　ତୋହର ମହିମା ବର୍ଣ୍ଣନେ　।　ସମର୍ଥ ନୋହୁ ଆମ୍ଭେମାନେ　॥ ୩
ଯେ ତୁମ୍ଭେ ଦେବମଧ୍ୟେ ସାର　।　ମାୟାରେ ହେଲ ଅବତାର　॥ ୪
ବେଣଅଙ୍ଗରୁ ତୁମ୍ଭେ ଜାତ　।　ତୁମ୍ଭ ପୌରୁଷ ଅତର୍କିତ　॥ ୫
ବ୍ରହ୍ମାଦିମାନଙ୍କର ମତି　।　ତର୍କି ନ ପାରି ଭ୍ରମେ ଅତି　॥ ୬
୩　ଉଦାର ଅଟେ ଯଶ ଯାର　।　ବିଷ୍ଣୁର ଅଂଶୁ ଅବତାର　॥ ୭
ସେ ପୃଥୁକଥା-ଅମୃତରେ　।　ସାଦର ହୋଇଣ ମନରେ　॥ ୮
ମୁନିଏ ଯାହା ଯୋଗବଳେ　।　ପ୍ରକାଶ କଲେ ହୃଦସ୍ଥଳେ　॥ ୯
ଆମ୍ଭେ ସେ ସୁଚରିତମାନ　।　ବିସ୍ତାରି କରିବୁଁ ଗାୟନ　॥ ୧୦
୪　ଏ ଧର୍ମବନ୍ତମାନଙ୍କର　।　ମଧ୍ୟରେ ଅଟେ ରାଜା ବର　॥ ୧୧
ଧର୍ମେ ପ୍ରବର୍ତ୍ତାନ୍ତେ ଲୋକକୁ　।　ପାଳିବ ଏ ଧର୍ମସେତୁକୁ　॥ ୧୨
ଧର୍ମବିରୋଧୀ ଯେବା ଥିବ　।　ସେ ଲୋକଙ୍କୁ ଏ ଦଣ୍ଡ ଦେବ　॥ ୧୩

୫ ଲୋକପାଳଙ୍କ ତନୁ ଏହି । ଧରିଛି ଦେହେ ଏକା ହୋଇ ॥ ୧୪
ପାଳନ ପୋଷଣ ଆଦିରେ । ଖ୍ୟାତ ସେ କାଳରେ କାଳରେ ॥ ୧୫
ଯଜ୍ଞାଦି କର୍ମରେ ସ୍ୱର୍ଗର । ବୃଷ୍ଟି ଆଦିରେ ଭୂଲୋକର ॥ ୧୬
ଯେମନ୍ତେ ସମ୍ଭବଇ ହିତ । କରନ୍ତେ ସେ ରୂପେ ଚରିତ ॥ ୧୭
୬ ବସୁକୁ କାଳରେ[୧] ରଖଇ । କାଳରେ[୨] ପ୍ରଦାନ କରଇ ॥ ୧୮
ସକଳ ଭୂତେ ସମ ହୋଏ । *ପ୍ରତାପ କରେ ସୂର୍ଯ୍ୟପ୍ରାୟେ ॥ ୧୯
୭ ଆର୍ତ୍ତ ହୋଇଣ ଯେବେ ନରେ । ପାଦରେ ଆକ୍ରମନ୍ତି ଶିରେ ॥ ୨୦
ସେ ଅତିକ୍ରମ ବେଣସୁତ । ସହଇ ହୋଇ କୃପାଯୁତ ॥ ୨୧
କ୍ଷିତି ଯେସନେ ସର୍ବ ସହେ । ତାହାର ବୃତ୍ତିକି ଏ ବହେ ॥ ୨୨
୮ ଦେବ ନ ବରଷନ୍ତେ ବାରି । ଏ ନରଦେବବପୁ ହରି ॥ ୨୩
ପ୍ରଜା ଧରିବେ କଷ୍ଟେ ପ୍ରାଣ । ଇନ୍ଦ୍ରର ପ୍ରାୟେକ ହୋଇଣ ॥ ୨୪
ଆପଣେ ବରଷା କରିବ । ପ୍ରଜାମାନଙ୍କୁ ଏ ରଖିବ ॥ ୨୫
୯ ଯହିଁରେ ସାନୁରାଗ ହୋଇ । ଅବଲୋକନ ଶୋଭା ପାଇ ॥ ୨୬
ବିଶଦ ସ୍ମିତେ ମନୋହର । ଯେ ମୁଖଚନ୍ଦ୍ରମା ଏହାର ॥ ୨୭
ତେଣେ ପ୍ରାଣୀଙ୍କି ଆପ୍ୟାୟନ । କରିବ ଏ ବେଣନନ୍ଦନ ॥ ୨୮
୧୦ ପ୍ରବେଶ ନିଗମ ଯାହାର । ଜାଣି ନ ପାରେ କେହି ନର ॥ ୨୯
ଆରମ୍ଭେ ଯେଉଁ କାର୍ଯ୍ୟ ପୁଣି । କେହି ନ ପାରେ ତାହା ଜାଣି ॥ ୩୦
ଏହା ବିଧାନ ଅବିଜ୍ଞାତ । ରଖିଣ ଥାଇ ଯତ୍ନେ ବିତ୍ତ ॥ ୩୧
ଅନନ୍ତ ମାହାତ୍ମ୍ୟ ଯାହାର । ଯେ ଏକ ସ୍ଥାନ ଗୁଣଙ୍କର ॥ ୩୨
ସେ ବିଷ୍ଟୁଛନ୍ତି ଯାହାଠାର । ସଂଯତ ଆତ୍ମା ଅଟେ ଯାର ॥ ୩୩
ତେଣୁ ବରୁଣପ୍ରାୟେ ହୋଇ । ଶୋଭା ପାଇବ କାଳେ ଏହି ॥ ୩୪
୧୧ ଯାକୁ ମନେହେଁ ଶତ୍ରୁମାନେ । ଲଭିବେ ନାହିଁ ଏ ଭୁବନେ ॥ ୩୫
ଶତ୍ରୁଏ ନ ପାରିବେ ସହି । 'ନିକଟେ ଥିଲେ ଦୂର ଯେହି ॥ ୩୬
ବେଣ-ଅରଣିରୁ ଉଦ୍‌ଥିତ । ଅନଳ ଅଟେ ଏ ବିଦିତ ॥ ୩୭
ଏହାକୁ ପରାଭବ କରି । ପାରିବେ ନାହିଁ କେହି ଅରି ॥ ୩୮

---

୧. କରାଦାନ ସମୟରେ । ୨. ଦୁର୍ଭିକ୍ଷାଦି ସମୟରେ ।

* ସୂର୍ଯ୍ୟ ଯେପରି ଆଠମାସ ଜଳ ଗ୍ରହଣ କରି ବର୍ଷାକାଳରେ ତାହା ପ୍ରଦାନ କରେ ସେହିପରି..... (ବସୁ = ଜଳ)

୧୨ ଏ ଗୁପ୍ତଚରେ ପ୍ରାଣୀଙ୍କର । ଦେଖନ୍ତେ ବାହାର ଭିତର ॥ ୩୯
ତାଙ୍କର ସ୍ତୁତିନିନ୍ଦା ସହି । ଥିବ ଉଦାସୀପ୍ରାୟ ହୋଇ ॥ ୪୦
ପ୍ରାଣୀଙ୍କ ଆତ୍ମାରୂପ ହୋଇ । ଯେହ୍ନେ ପ୍ରଧାନେ ବାତ ଥାଇ ॥ ୪୧
୧୩ ଶତ୍ରୁର ସୁତ ହୋଇ ଯେବେ । ଅଦଣ୍ଡ୍ୟ ନ ଦଣ୍ଡଇ ତେବେ ॥ ୪୨
ଦଣ୍ଡକୁ ଯେବେ ଯୋଗ୍ୟ ହୋଇ । ନିଜ ପୁତ୍ରକୁ ହିଁ ଦଣ୍ଡଇ ॥ ୪୩
ଯମ ଦେବତାର ଯେ ବୃତ୍ତ । ତହିଁ ଏ ରାଜା ଅଟେ ସ୍ଥିତ ॥ ୪୪
୧୪ ମାନସ ଅଚଳର ଯାଏ । ଏହାର ଆଜ୍ଞା ହତ ନୋହେ ॥ ୪୫
କିରଣଗଣେ ଦିବାକର । ତପ୍ତ[1] କରଇ ଯେତେ ଦୂର ॥ ୪୬
୧୫ ମନ ରଞ୍ଜନ ଯେହୁ କରେ । ଏମନ୍ତ ଚେଷ୍ଟାମାନଙ୍କରେ ॥ ୪୭
ଲୋକଙ୍କୁ ରଞ୍ଜିବ ଏ ଯେଣୁ । ଏହାକୁ ରାଜା ବୋଲେ ତେଣୁ ॥ ୪୮
୧୬ ଏ ସତ୍ୟସନ୍ଧ ଦୃଢ଼ବ୍ରତ । ବ୍ରହ୍ମଣ୍ୟ ବୃଦ୍ଧ-ଅନୁଗତ ॥ ୪୯
ସମସ୍ତ ଭୂତମାନଙ୍କର । ଶରଣଯୋଗ୍ୟ ଏହୁ ବୀର ॥ ୫୦
ଲୋକଙ୍କୁ[2] ମାନ ଏ ଦିଅଇ । ଦୀନବତ୍ସଳ ଏ ଅଟଇ ॥ ୫୧
୧୭ ପର ଯୁବତୀଙ୍କର ଠାରେ । ମାତାର ପ୍ରାଏ ଭକ୍ତି କରେ ॥ ୫୨
ନିଜ ଯୁବତୀ ଯେ ଅଟଇ । ତା'ଠାରେ ଅର୍ଦ୍ଧପ୍ରାୟ ହୋଇ ॥ ୫୩
ପିତାପ୍ରାୟକ ପ୍ରଜାଠାର । କିଙ୍କର ବ୍ରହ୍ମବାଦୀଙ୍କର ॥ ୫୪
୧୮ ପ୍ରାଣୀଙ୍କ ପ୍ରିୟ ଆତ୍ମାପ୍ରାୟେ । ମିତ୍ରଙ୍କ ଆନନ୍ଦ ବଢ଼ାଏ ॥ ୫୫
ଅସଙ୍ଗଜନ-ସଙ୍ଗତର । ଅଧିକ ସଙ୍ଗମ ଏହାର ॥ ୫୬
ଅସାଧୁ ଅଟନ୍ତି ଯେ ପ୍ରାଣୀ । ତାଙ୍କୁ ଯେସନେ ଦଣ୍ଡପାଣି ॥ ୫୭
୧୯ ତ୍ରିଗୁଣ-ଈଶ କୂଟସ୍ଥିତ । ଯେ ଆତ୍ମା ଅଟନ୍ତି ବିଦିତ ॥ ୫୮
ସେ ଭଗବାନ ଏ ସାକ୍ଷାତ । କଳାରେ ହୋଇଅଛି ଜାତ ॥ ୫୯
ଯା'ଠାରେ ଅବିଦ୍ୟାସମ୍ଭବ । ପ୍ରତୀତ ଯେଉଁ ନାନା ଭାବ ॥ ୬୦
ସେ କଥା ଅଟେ ଅର୍ଥହୀନ । ଦେଖନ୍ତି ଏହା ଜ୍ଞାନୀଜନ ॥ ୬୧
୨୦ ଏ ରାଜା ଉଦୟ-ଅଚଳ । ପର୍ଯ୍ୟନ୍ତେ ଅବନୀମଣ୍ଡଳ ॥ ୬୨
ପାଳିବ ଏକବୀର ହୋଇ । ଜଇତ୍ର ରଥକୁ ଆରୋହୀ ॥ ୬୩
ଧରିଣ ଦିବ୍ୟ ଶରାସନ । ଭ୍ରମିବ ସବିତା ଯେସନ ॥ ୬୪

---

୧. ତପ୍ତି । ୨. ଲୋକକୁ ।

୨୧ ଏହାକୁ ରାଜା ଏ ଜଗତେ । ଲୋକପାଳଙ୍କର ସହିତେ ॥ ୬୫
ବଳିକି ସେହି ସେହି ସ୍ଥାନେ । ପ୍ରଦାନ କରିବେ ଭୁବନେ ॥ ୬୬
ମଣିବେ ନାରୀଏ ତାଙ୍କର । ଆଦିରାଜାକୁ ଚକ୍ରଧର ॥ ୬୭
ତାହା ଯଶକୁ ଅବିରତେ । ଗାୟନ କରନ୍ତେ ସୁଚିତ୍ତେ ॥ ୬୮
୨୨ ଧରଣୀ ଗୋସ୍ୱରୂପୀ ହେବ । ତାହାକୁ ଏ ରାଜା ଦୁହିଁବ ॥ ୬୯
ଏ ଅଟେ ପ୍ରଜାଙ୍କ ଈଶ୍ୱର । ପ୍ରଜାମାନଙ୍କ ବୃତ୍ତିକର ॥ ୭୦
ଆପଣା ଧନୁର ଅଗ୍ରରେ । ଯେ ଇନ୍ଦ୍ରପ୍ରାୟ ଲୀଳା କରେ ॥ ୭୧
ଅଦ୍ରିକି କରନ୍ତେ ଭେଦନ । ପୃଥ୍ୱୀକି କରିବ ସମାନ ॥ ୭୨
୨୩ ଯେ ଆଜଗବ[୧] ନାମେ ଚାପ । ଓଟାରି କରନ୍ତେ ପ୍ରତାପ ॥ ୭୩
ଯେବେ ବୁଲିବ ଧରଣୀରେ । ଅସହ୍ୟ ଅଚ୍ଛ[୨] ସଂଗ୍ରାମରେ ॥ ୭୪
ଲାଙ୍ଗୁଳ ଟେକିଣ ଯେସନ । ମୃଗେନ୍ଦ୍ର କରଇ ଗମନ ॥ ୭୫
ଦୁଷ୍ଟ ନୃପତିମାନେ ତେବେ । ସକଳ ଦିଗେ ଲୀନ ହେବେ ॥ ୭୬
୨୪ ଯେବଣଠାରେ ସରସ୍ୱତୀ । ନଦୀ ହୋଇଛି ଉତପତି ॥ ୭୭
ସେଠାରେ ଅଶ୍ୱମେଧ ଶତ । ଏ ରାଜା କରିବ ଉଦିତ ॥ ୭୮
ପ୍ରାନ୍ତ ଯଜ୍ଞରେ ହୟ ଯାର । ହରିଣ ନେବ[୩] ପୁରନ୍ଦର ॥ ୭୯
୨୫ ଏ ରାଜା ଆପଣା ଗୃହର । ଉପବନର ଅଭ୍ୟନ୍ତର ॥ ୮୦
ନାମରେ ସନତକୁମାର । ଏକ ଅଟନ୍ତି ଯେ ଈଶ୍ୱର ॥ ୮୧
ଭକ୍ତିରେ ଆରାଧି ତାହାଙ୍କୁ । ଲଭିବ ନିର୍ମଳ ଜ୍ଞାନକୁ ॥ ୮୨
ପରଂବ୍ରହ୍ମକୁ ବିଜ୍ଞ ନରେ । ଜାଣନ୍ତି ଯେବଣ ଜ୍ଞାନରେ ॥ ୮୩
୨୬ ଏହାର ବିଖ୍ୟାତ ବିକ୍ରମ । ପୃଥୁ ଅଟଇ ପରାକ୍ରମ ॥ ୮୪
ଏ ପୁଣି ସେହି ସେହି ସ୍ଥାନେ । ଶୁଣିବ ନିଜ ଗାଥାମାନେ ॥ ୮୫
ଲୋକଙ୍କ ସେହି ସେହି ବାଣୀ । ଶୁଣିମ ଏହି ରୂପେ ପୁଣି ॥ ୮୬
୨୭ ଏହା ଚକ୍ରକୁ ରାଜା ହୋଇ । ନିରୋଧି ନ ପାରିବ କେହି ॥ ୮୭
ଦିଗକୁ ଜିଣି ସ୍ୱତେଜରେ । ଉପାଡ଼ି ଲୋକଶଲ୍ୟ ଦୂରେ ॥ ୮୮
ମହା ଅନୁଭାବ ଏହାର । ଗାଇବେ ଶ୍ରେଷ୍ଠ ସୁରାସୁର ॥ ୮୯
ଏମନ୍ତେ ମହା-ଅନୁଭାବ । ଧରଣୀପତି ଏ ହୋଇବ ॥ ୯୦

---

୧. ଅଜଗବ । ୨. ଅଚ୍ଛସଂଗ୍ରାମ = ମଲ୍ଲଯୁଦ୍ଧ ।
୩. ନେମ ।

କୃଷ୍ଣଚରଣସରସିଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥ ୯୧
ସୁଜନେ ଦୋଷ ମୋ' ନ ଧର । ସୁଚିତ୍ତେ ଅନୁଗ୍ରହ କର ॥ ୯୨

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁସ୍ତବୋ ନାମ ଷୋଡ଼ଶୋଽଧ୍ୟାୟଃ ॥

## ସପ୍ତଦଶୋଽଧ୍ୟାୟଃ

ତତଃ ସପ୍ତଦଶେ ଲୋକକ୍ଷୁଧାଂ ପ୍ରଶମୟନ୍ ପୃଥୁଃ ।
ଗ୍ରସ୍ତବୀଜାଂ ମହୀଂ ହନ୍ତୁଂ ଯତ୍ତୋ ଭୀତ୍ୟା ତୟା ସ୍ତୁତଃ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ଏ ରୂପେ ଗୁଣକର୍ମେ ଖ୍ୟାତ । କରନ୍ତେ ତାଙ୍କୁ ବେଣସୁତ ॥ ୧
ପୂଜା କରିଣ ତୋଷ ହୋଇ । ତୋଷିଲେ କାମବର ଦେଇ ॥ ୨
୨ ଯେ ବିପ୍ର ଆଦି ବର୍ଣ୍ଣ ସ୍ଥିତ । ଭୃତ୍ୟ, ଅମାତ୍ୟ ପୁରୋହିତ ॥ ୩
ପୁରରେ, ଦେଶରେ[୧] ସଂଭବ । ନାନା 'ଜାତି'[୨]ର ଯେ ମାନବ ॥ ୪
ଯେ ବା ନିଯୋଗୀ ଜନ ଆନ । ତାହାଙ୍କୁ କଲେ ସେ ପୂଜନ ॥ ୫

ଶ୍ରୀବିଦୁର ଉବାଚ

୩ ବହୁରୂପିଣୀ ଯେ ଧରଣୀ । କେବଣ ହେତୁରୁ ସେ ପୁଣି ॥ ୬
ଧଇଲା ଧେନୁସ୍ୱରୂପକୁ । ଦୁହିଁଲା ପୃଥୁ ରାଜା ତାକୁ ॥ ୭
ବସ ହୋଇଲା କେ ତହିଁରେ । କେ ପାତ୍ର ହେଲା ସେ ସ୍ଥାନରେ ॥ ୮
୪ ଧରଣୀ ସ୍ୱଭାବେ ବିଷମ । କେମନ୍ତେ କଲା ସେ ତା' ସମ ॥ ୯
କି ହେତୁ ମେଧ ହୟ ତାର । ହରିଲେ ଦେବ ପୁରନ୍ଦର ॥ ୧୦
୫ ବ୍ରହ୍ମଜ୍ଞାନୀଙ୍କ ମଧ୍ୟେ ସାର । ଅଟେ ଯେ ସନତକୁମାର ॥ ୧୧
ତାଙ୍କଠାରୁ ବିଜ୍ଞାନଯୁତ । ଜ୍ଞାନକୁ ଲଭିଣ ତୁରିତ ॥ ୧୨
ସେ ରାଜରଷି ପୃଥୁ ଭଲେ । ହେ ବିପ୍ର ! କି ଗତି ଲଭିଲେ ॥ ୧୩
୬ ଯାହାର ଯଶ ସୁଶୋଭନ । ସେ କୃଷ୍ଣ ପ୍ରଭୁ ଭଗବାନ ॥ ୧୪
ତାହାଙ୍କ ପୂର୍ବ ଅବତାର । କଥାଆଶ୍ରୟ ଯେବା ଆର ॥ ୧୫

---

୧. (ଜନପଦ ଶବ୍ଦର ଅନୁବାଦ) ।　୨. ତୈଳିକ, ତାମ୍ବୁଳିକାଦି ।

୭ ସେ ଯଶ କହିବାକୁ ମୋତେ । ସମର୍ଥ ହୁଅ ଏ ଜଗତେ ॥ ୧୬
ଯେ ବେଣସୁତରୂପ ହୋଇ । ଏ ପୃଥ୍ୱୀ ଦୁହିଁଲେ ଗୋସାଇଁ ॥ ୧୭
ମୁଁ ଭକ୍ତ ତୁମ୍ଭର, ବିଷ୍ଣୁର । ଅନୁରକତ ବେନିଠାର ॥ ୧୮

ଶ୍ରୀସୂତ ଉବାଚ

୮ ବିଷ୍ଣୁ କଥାକୁ ଅନୁଗତେ । ବିଦୁର ଏ ରୂପେ ପୁଚ୍ଛନ୍ତେ ॥ ୧୯
ତାଙ୍କୁ ପ୍ରଶଂସି ତୋଷମନ । ମୈତ୍ରେୟ କହିଲେ ବଚନ ॥ ୨୦

ଶ୍ରୀମୈତ୍ରେୟ ଉବାଚ

୯ ପୃଥୁଙ୍କୁ ବିପ୍ରମାନେ ପୂର୍ବେ । ଅଭିଷେକକୁ କଲେ ଯେବେ ॥ ୨୧
ପାଳନା କର ଜନମାନ । ଏ ରୂପେ କଲେ ନିଯୋଜନ ॥ ୨୨
ଅନ୍ନ ଅଭାବେ କ୍ଷିତିତଳେ । ପ୍ରଜାଏ ମିଳିଣ ସେକାଳେ ॥ ୨୩
କ୍ଷୁଧାରେ କୃଶଦେହ ହେଲେ । ପତିକି ବଚନ ବୋଇଲେ ॥ ୨୪
୧୦ ହେ ନୃପ ! ଜଠରଦହନେ । ତାପ ଲଭିଲୁ ଆମ୍ଭେମାନେ ॥ ୨୫
କୋଟରେ ଥାନ୍ତେ ଅଗ୍ନି ଯେହ୍ନେ । ତାପ ଲଭନ୍ତି ବୃକ୍ଷମାନେ ॥ ୨୬
ଆମ୍ଭର ବୃତ୍ତିଦାତା ତାତ । ଯେ ତୁ ହୋଇଛୁ ନିରୂପିତ ॥ ୨୭
ଶରଣଯୋଗ୍ୟ ତୁ ଜଗତେ । ଆଜ ଶରଣ ଗଲୁ ତୋତେ ॥ ୨୮
୧୧ ନୃପତିମାନଙ୍କ ଉପରେ । ପ୍ରଧାନ ଅଟୁ ତୁ ଭୂମିରେ ॥ ୨୯
ଆମ୍ଭେମାନେ ଯେ ଅବିରତ । କ୍ଷୁଧାରେ ହୋଇଛୁ ପୀଡ଼ିତ ॥ ୩୦
ଅନ୍ନ ନ ପାଇ ଯେତେଦିନ । ଲଭିଣ ନ ଥିବୁଁ ନିଧନ ॥ ୩୧
ଆମ୍ଭଙ୍କୁ ଅନ୍ନ ଦେବାପାଇଁ । ତୁ ଚେଷ୍ଟା କର ବେଗ ହୋଇ ॥ ୩୨
ଆମ୍ଭର ଜୀବିକାଦାୟକ । ତୁ ଲୋକମାନଙ୍କ ପାଳକ ॥ ୩୩

ଶ୍ରୀମୈତ୍ରେୟ ଉବାଚ

୧୨ କାରୁଣ୍ୟ ହୋଇ ପ୍ରଜାଙ୍କର । କାନ୍ଦିବା ଶୁଣି ପୃଥୁ ବୀର ॥ ୩୪
ବହୁତ ବେଳ ଧ୍ୟାନ କଲା । ତହିଁର ହେତୁ ସେ ଜାଣିଲା ॥ ୩୫
୧୩ ଔଷଧିବୀଜକୁ ଧରଣୀ । ଗ୍ରସ୍ତିଲା[1] ଏ କଥାକୁ ଜାଣି ॥ ୩୬
ଧନୁକୁ ଧରିଣ ହସ୍ତରେ । ରୁଦ୍ର ଯେସନେ କ୍ରୋଧ କରେ ॥ ୩୭
ଭୂମିକି ଉଦ୍ଦେଶି ରାଜନ । ସାୟକ କଲା ସେ ସଂଧାନ ॥ ୩୮

---

୧. ଗ୍ରସ୍ତିଲା = ଗ୍ରାସ କଲା ।

୧୪ ରାଜା ଆୟୁଧ ଅଛି ଧରି । ତାକୁ ଧରଣୀ ଦେଖି କରି ॥ ୩୯
ଭୟରେ କଂପିତ ହୋଇଲା । ଗୋରୂପ ଧରି ପଳାଇଲା ॥ ୪୦
ବ୍ୟାଧ ଗୋଡ଼ାନ୍ତେ ଭୟ ପାଇ । ହରିଣୀ ଯେସନେ ପଳାଇ ॥ ୪୧
୧୫ କ୍ରୋଧେ ଅରୁଣନେତ୍ର ହୋଇ । ଧନୁରେ ଶରକୁ ବସାଇ ॥ ୪୨
ତାହାକୁ ପୃଥୁ ଗୋଡ଼ାଇଲା । ସେ ଯେଣେଯେଣେ ପଳାଇଲା ॥ ୪୩
୧୬ ସେ ଦିଗ ବିଦିଗ ଆକାଶ । ଧାମନ୍ତେ ଭୂମି ସ୍ୱର୍ଗ ଦେଶ ॥ ୪୪
ଆୟୁଧ ଟେକି ନିଜ କରେ । ପୃଥୁ ଗୋଡ଼ାଇଛି ପଛରେ ॥ ୪୫
ଏ ରୂପେ ସେହି ସେହି ସ୍ଥାନେ । ସେ ଦେବୀ ଦେଖିଲା ନୟନେ ॥ ୪୬
୧୭ ମୃତ୍ୟୁସକାଶୁଁ ପ୍ରଜାଗଣ । ଯେସନେ ନ ଲଭନ୍ତି ତ୍ରାଣ ॥ ୪୭
ପୃଥୁ ସକାଶୁଁ ସେ ରୂପରେ । ତ୍ରାଣ ନ ଲଭିଲା ଲୋକରେ ॥ ୪୮
ହୃଦୟେ ଦୁଃଖିତ ହୋଇଲା । ତ୍ରସ୍ତ ହୋଇଣ ନିବର୍ତ୍ତିଲା ॥ ୪୯
୧୮ ବୋଇଲା ଧର୍ମ ତୁମ୍ଭେ ଜାଣ । ଅନାଥବତ୍ସଳ[୧] ହିଁ ପୁଣ ॥ ୫୦
ହେ ମହାଭାଗ ! ସର୍ବଭୂତ । ପାଳନେ ତୁମ୍ଭେ ଅବସ୍ଥିତ ॥ ୫୧
ମୁଁ ତହିଁ ମଧ୍ୟେ ଏକଜଣ । ମୋତେ ତୁ କର ପରିତ୍ରାଣ ॥ ୫୨
୧୯ ମୁଁ ପୁଣି ଦୁଃଖିତ ଅଟଇ । କିଛିହିଁ ଦୋଷ କରି ନାହିଁ ॥ ୫୩
ମୋତେ କରିବାକୁ ନିଧନ । କିମ୍ପାଇଁ କରିଛୁ ତୁ ମନ ॥ ୫୪
ଧର୍ମଜ୍ଞ ହୋଇ ଯେ ତୁ ଖ୍ୟାତ । କେହ୍ନେ କରିବୁ ସ୍ତିରୀ ହତ ॥ ୫୫
୨୦ ସ୍ତିରୀଏ ଦୋଷ କରିଥାନ୍ତି । ଜନ୍ତୁଏ ତାଙ୍କୁ ନ ମାରନ୍ତି ॥ ୫୬
ତୋହର ପ୍ରାୟେ କୃପାଯୁତ । ଦୀନବତ୍ସଳ ଯେ ବିଦିତ ॥ ୫୭
ସେ ଲୋକମାନେ କି ରୂପରେ । ସ୍ତିରୀଙ୍କି ମାରିବେ ସଂସାରେ ॥ ୫୮
୨୧ ଜଗତ ରହିଛି ଯା' ଠାଇଁ । ସେ ଦୃଢ଼ ନାବ ମୁଁ ଅଟଇ ॥ ୫୯
ମୋତେ ବିନାଶି ଆପଣାକୁ । ଆବର ପ୍ରଜାସମୂହକୁ ॥ ୬୦
ସଲିଳମଧ୍ୟେ କି ପ୍ରକାରେ[୨] । ଧରିବୁ କହ ମୋ' ଆଗରେ ॥ ୬୧

ଶ୍ରୀପୃଥୁରୁବାଚ

୨୨ ହେ କ୍ଷିତି ! ମାରିବି ମୁଁ ତୋତେ । ମୋ' ଆଜ୍ଞା ନ ମାନୁ ଜଗତେ ॥ ୬୨
ଯେ ତୁ ଦେବତାରୂପେ ଥାଉ । ଯଜ୍ଞମଧ୍ୟରେ ଭାଗ ଖାଉ ॥ ୬୩
ଆମ୍ଭଙ୍କୁ ନ କରୁ ପ୍ରଦାନ । ଯେ ଧାନ୍ୟ ଆଦିରୂପ ଧନ ॥ ୬୪

୧. ଆପନ୍ନ ବତ୍ସଳ । ୨. କି ରୂପରେ ।

୨୩ ଯେ ଧେନୁରୂପେ ତୃଣ ଖାଇ । ପହ୍ନାରୁ ଦୁଧକୁ ନ ଦେଇ ॥ ୬୫
ତା'ଠାରେ ଯେଉଁ ଦଣ୍ଡ ଦେଇ । ସେ ଦଣ୍ଡ ନିନ୍ଦିତ ନୁହଇ ॥ ୬୬
୨୪ ପୂର୍ବେ ଔଷଧିବୀଜମାନ । ବିଧାତା କଲା ଯା ସର୍ଜନ ॥ ୬୭
ତୋହ ଦେହରେ ରୁନ୍ଧି ହୋଇ । ସେ ବୀଜମାନେ ଛନ୍ତି ରହି ॥ ୬୮
ତୁ ତା' ନ ଛାଡୁ ମନ୍ଦମତି । ମୋତେ ଅବଜ୍ଞା କରୁ କ୍ଷିତି ॥ ୬୯
୨୫ ପ୍ରଜାଏ କ୍ଷୁଧାରେ ପୂରିତ । ହୋଇ ଅଛନ୍ତି ଯେ ଆରତ ॥ ୭୦
ମୋ' ବାଣେ ହେଲେ ତୁ ବିନାଶ । ତୋହ ଦେହରେ ଯେଉଁ ମାଂସ ॥ ୭୧
ତେଣେ ଏମାନଙ୍କ ରୋଦନ । ନାଶ କରିବି ମୁଁ ବହନ ॥ ୭୨
୨୬ ପୁରୁଷ, ସ୍ତିରୀ, ନପୁଂସକ । ଅଟଇ ଅବା ଯେଉଁ ଲୋକ ॥ ୭୩
ଅଧମ ହୋଇଣ ସଂସାରେ । ଆତ୍ମାକୁ ସଂଭାବନା କରେ ॥ ୭୪
{ଭୂତମାନଙ୍କଠାରେ ଯାର । ନ ଥାଇ ଦୟା ହୃଦୟର ॥}
ସେ ମନୁଷ୍ୟକୁ ମାରିବାର । ବଧ ନୁହଇ ରାଜାଙ୍କର ॥ ୭୫
୨୭ ତୁ ଯେ ଦୁର୍ମଦ, ନମ୍ର ନୋହୁ । ମାୟାରେ ଗାଈରୂପ ବହୁ ॥ ୭୬
ତୋତେ ମୁଁ ତିଳପ୍ରମାଣରେ । କରିଣ ଖଣ୍ଡ ଖଣ୍ଡ ଶରେ ॥ ୭୭
ଆପଣା ଯୋଗବଳେ ପୁଣ । ପ୍ରଜାଙ୍କୁ କରିବି ଧାରଣ ॥ ୭୮

ଶ୍ରୀମୈତ୍ରେୟ ଉବାଚ

୨୮ *ଏ ରୂପେ ଯମପ୍ରାୟ କରି । କ୍ରୋଧମୂର୍ତ୍ତିକି ଛନ୍ତି ଧରି ॥ ୭୯
ତାହାଙ୍କୁ ପ୍ରଣାମ କରିଣ । କରଯୁଗଳକୁ ଯୋଡ଼ିଣ ॥ ୮୦
ପୃଥିବୀ କହିଲା ବଚନ । ଭୟେ ହୋଇଛି କଂପମାନ ॥ ୮୧

ଶ୍ରୀପୃଥିବ୍ୟୁବାଚ

୨୯ ମାୟାରେ କଲେ ଯେ ରଚନ । ନାନାପ୍ରକାରେ ଦେହମାନ ॥ ୮୨
ଯେ ଗୁଣମୟ ଭାବେ ପ୍ରତେ । ହୁଅନ୍ତି ଏ ସର୍ବଜଗତେ ॥ ୮୩
ଯେ ଦ୍ରବ୍ୟ-କ୍ରିୟା-କାରକରେ । ଯେବଣ ଅହଂକାର ସ୍ଫୁରେ ॥ ୮୪
ସେ ଅହଂକାରୁ ଉତପନ୍ନ । ଯେ ରାଗଦ୍ୱେଷ ଆଦିମାନ ॥ ୮୫
ତାଙ୍କୁ ସ୍ୱରୂପ-ଅନୁଭବେ । ନିରସ୍ତ କଲେ ଯେହୁ ଭବେ ॥ ୮୬
ସେ ମହାପୁରୁଷ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥ ୮୭

---

* ଶୁଦ୍ଧସତ୍ତ୍ୱତନୁଂ ଦେବମକସ୍ମାଦତିଦାରୁଣମ୍ ।
ବୀକ୍ଷମାଣା ପୃଥୁଂ ପୃଥ୍ୱୀ ତୁଷ୍ଟାବ କରୁଣୋକ୍ତିଭିଃ ॥ (ସ୍ୱାମିପାଦରଚିତ ଶ୍ଲୋକ)

୩୦ ସକଳ ଭୂତମାନଙ୍କର । ଧାରଣା ଯେଉଁ ମୋହଠାର ।। ୮୮
ପ୍ରାଣୀଙ୍କ ସ୍ଥାନରୂପେ ମୋତେ । ଯେ ଧାତା ରଚିଲା ଜଗତେ ।। ୮୯
ସେ ଟେକି ନିଜ ଆୟୁଧକୁ । ଆସିଛି ମୋତେ ମାରିବାକୁ ।। ୯୦
ମୁଁ ଆନ କାହାକୁ ଶରଣ । ଯିବି ତା' ବିନୁ ଆଜ ପୁଣ ।। ୯୧
୩୧ ଜୀବବିଷୟ ଯେ ଅଟଇ । କେବେହେଁ ତର୍କିତ ନୁହଇ ।। ୯୨
ସେ ନିଜ ମାୟାରେ ନିର୍ମିତ । କଲା ଆଦ୍ୟେ ଯେ ଏ ଜଗତ ।। ୯୩
ସେହି ମାୟାରେ ଏ ଜଗତ । ପାଳିବା ପାଇଁ ଯେ ଉଦ୍ୟତ ।। ୯୪
ସେ ଧର୍ମପର ହୋଇ ମୋତେ । କିପାଁ ମାରିବା[୧] ବାଞ୍ଛେ ଚିତ୍ତେ ।। ୯୫
୩୨ ତାହାର ଦୁର୍ଜୟ ମାୟାରେ । ମୋହିତଚିତ୍ତ ଯେଉଁ ନରେ ।। ୯୬
ଈଶ୍ୱରଚେଷ୍ଟାକୁ ସେ ପୁଣି । ନିଶ୍ଚୟେ ନ ପାରନ୍ତି ଜାଣି ।। ୯୭
ବ୍ରହ୍ମାକୁ ନିର୍ମାଣ ଯେ କଲା । ତେଣେ ଜଗତ ଭିଆଇଲା ।। ୯୮
ଯେ ସ୍ୱୟେଂ ଏକଇ ଈଶ୍ୱର । ମାୟାରେ ଅନେକ ପ୍ରକାର ।। ୯୯
୩୩ ଦ୍ରବ୍ୟ-କାରକ କ୍ରିୟା ବୃଦ୍ଧି । ଆତ୍ମାରୂପରେ ଯେ ପ୍ରସିଦ୍ଧି ।।୧୦୦
ସେ ଶକ୍ତିମାନଙ୍କେ ସମ୍ପାଦି । ଯେ ଏ ଜଗତସର୍ଗ ଆଦି ।।୧୦୧
ବିରୁଦ୍ଧ[୨] ଶକ୍ତିମାନେ ଯହିଁ । ଉତ୍କଟ ହୋଇଛନ୍ତି ରହି ।।୧୦୨
ସେ ଧାତା ପୁରୁଷ ପରମ । ତାହାକୁ ମୋହର ପ୍ରଣାମ ।।୧୦୩
୩୪ ଇନ୍ଦ୍ରିୟ, ପଞ୍ଚ ମହାଭୂତ । ଅନ୍ତଃକରଣରୂପେ ଖ୍ୟାତ ।।୧୦୪
ଏ ରୂପେ ଆପଣା ନିର୍ମିତ । ଅଟଇ ଯେବଣ ଜଗତ ।।୧୦୫
ସ୍ଥାପନା କରନ୍ତେ ତାହାକୁ । ଧରିଣ ଶୂକରରୂପକୁ ।।୧୦୬
ହେ ଅଜ ! ମୋତେ ରସାତଳୁଁ । ଉଦ୍ଧାର କଲ ତୁମ୍ଭେ ଜଳୁଁ ।।୧୦୭
୩୫ ଜଳ ଉପରେ ନାବପ୍ରାୟେ । ମୁଁ ଅଛି, ପ୍ରଜାଏ ମୋ' ଠାଏ ।।୧୦୮
ତାହାକୁ ରଖିବାର ପାଇଁ । ସେହି ବରାହରୂପୀ ତୁହି ।।୧୦୯
ଆଜ ତୁ ପୃଥୁରୂପେ ଜାତ । ଯେ ହାଦେ ଦୁଷ୍ପର ନିମିତ୍ତ ।।୧୧୦
କରେ ଧରିଣ ଉଗ୍ରଶର । ମୋତେ ମାରିବାକୁ ବିଚାର ।।୧୧୧
୩୬ ଈଶ୍ୱରଗୁଣରୁ ସଂଭୂତ । ମାୟାରେ ବିମୋହିତ ଚିତ୍ତ ।।୧୧୨
ଆତ୍ମର ପ୍ରାୟ ଯେଉଁ ନର । ସେ ଲୋକେ ହରିଭକ୍ତଙ୍କର ।।୧୧୩
ଚେଷ୍ଟାକୁ ନ ପାରନ୍ତି ଜାଣି । କେ ଜାଣେ ବିଷ୍ଣୁ ଚେଷ୍ଟା ପୁଣି ।।୧୧୪
ଜିତ-ଇନ୍ଦ୍ରିୟମାନଙ୍କର । ଯଶ କରନ୍ତି ଯେ ବିସ୍ତାର ।।୧୧୫

---

୧. ମାରିବ । ୨. ନିରୁଦ୍ଧ ।

| | | | |
|---|---|---|---|
| ସେ ହରିଭକ୍ତିବନ୍ତ ଜନ | । | ତାଙ୍କୁ ମୁଁ କରୁଛି ବନ୍ଦନ | ॥୧୧୬ |
| ଯେ ଭକ୍ତଜନସୁଖଦାୟୀ | । | ତାଙ୍କ ଚରଣପଦ୍ମଧ୍ୟାୟି | ॥୧୧୭ |
| ତରିବ ବୋଲି ଭବସିନ୍ଧୁ | । | ଭଣିଲା ବିପ୍ର ଦୀନବନ୍ଧୁ | ॥୧୧୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସମ୍ବାଦେ
ଶ୍ରୀପୃଥୁଚରିତେ ଶ୍ରୀଧରାନିଗ୍ରହୋ ନାମ ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶୋଽଧ୍ୟାୟଃ

ଅଷ୍ଟାଦଶେ ମହୀବାକ୍ୟାଦ୍ ବତ୍ସପାତ୍ରାଦିଭେଦତଃ
*ପୃଥ୍ୱାଦିଭିସ୍ତୁ କ୍ରମଶଃ ସା ଚ ଦୁଗ୍ଧା ଇତୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧ | ରୋଷବଶରେ ଯାହାଙ୍କର | । | କମ୍ପିତ ହେଉଛି ଅଧର | ॥ ୧ |
| | ସେ ପୃଥୁରାଜାଙ୍କୁ ଧରଣୀ | । | ଏ ରୂପେ ସ୍ତୁତି କରି ପୁଣି | ॥ ୨ |
| | ଧଇର୍ଯ୍ୟ ହୋଇଣ ମନରେ | । | ବଚନ ବୋଇଲା ଭୟରେ | ॥ ୩ |

ଶ୍ରୀଧରୋବାଚ

| | | | | |
|---|---|---|---|---|
| ୨ | ହେ ପ୍ରଭୁ ! କୋପ ଶାନ୍ତି କର | । | ଶୁଣ ଜଣାଇମାକୁ ମୋର | ॥ ୪ |
| | ପଣ୍ଡିତ ଲୋକ ଯେ ଅଟଇ | । | ମଧୁକରର ପ୍ରାୟ ହୋଇ | ॥ ୫ |
| | ସକଳଠାରୁ ସେହୁ ପୁଣ | । | ସାରକୁ କରଇ ଗ୍ରହଣ | ॥ ୬ |
| ୩ | ପ୍ରାଣୀଙ୍କ ପୁରୁଷାର୍ଥମାନ | । | ପ୍ରସିଦ୍ଧ ହେବାକୁ ବହନ | ॥ ୭ |
| | ତତ୍ତ୍ୱଦରଶୀ ମୁନିଗଣ | । | ଉପାୟ କଲେକ ଚିନ୍ତିଣ | ॥ ୮ |
| | କୃଷି ଆଦିରେ ଇହଲୋକେ | । | ପ୍ରାଣୀଏ ବର୍ତ୍ତିଛନ୍ତି ଥୋକେ | ॥ ୯ |
| | ଅଗ୍ନିହୋତ୍ରାଦି ଯାଗଦ୍ୱାରେ | । | ସୁଖ ଲଭନ୍ତି ସେ ଲୋକରେ | ॥ ୧୦ |
| ୪ | ଯେଉଁ ଉପାୟ ପୂର୍ବଜନେ | । | ଦେଖାଇଛନ୍ତି ଏ ଭୁବନେ | ॥ ୧୧ |
| | ଏକାଳଲୋକ ତା' ଶ୍ରଦ୍ଧାରେ | । | ଉତ୍ତମ କରି ଯେ ଆଚରେ | ॥ ୧୨ |
| | ଉପାୟ ସାଧ ଅର୍ଥମାନ | । | ବେଗରେ ଲଭଇ ସେ ଜନ | ॥ ୧୩ |
| ୫ | ଯେ ପୁଣି ଅପଣ୍ଡିତ ନର | । | ସେମାନ ନ କରି ଆଦର | ॥ ୧୪ |
| | ଇଚ୍ଛାଏ ଆରମ୍ଭ କରଇ | । | ତାହାର ପୁଣ ପୁଣ ହୋଇ | ॥ ୧୫ |
| | ଆରମ୍ଭ କଲେହେଁ ସେ ଅର୍ଥେ | । | ସିଦ୍ଧିକି ନ ପାନ୍ତି ଯଥାର୍ଥେ | ॥ ୧୬ |

* ପୃଥ୍ୱାଦିଭିସ୍ତୁ ସା ଦୁଗ୍ଧା ସ୍ୱଂ ସ୍ୱଂ ଦୁଗ୍ଧମିତୀର୍ଯ୍ୟତେ ।

୬ ୭ } ହେ ନୃପ ! ଯେ ଔଷଧିମାନ । ସର୍ଜିଲା ପୂର୍ବେ ପଦ୍ମାସନ ।। ୧୭
ତାହା ଅବ୍ରତ[୧] ଦୁଷ୍ଟ ଜନେ । ଭୁଞ୍ଜିବା ଦେଖିଲି ନୟନେ ।। ୧୮
ତୁମ୍ଭ ସମାନ ନୃପେ ମୋତେ । ପାଳନା ନ କଲେ ସଂତତେ ।। ୧୯
ମୋତେ ସେ ନ କଲେ ଆଦର । ଲୋକେ ବହୁତ ହେଲେ ଚୋର ।। ୨୦
ଯଜ୍ଞ ହେବାକୁ ଉତପନ୍ନ । ଗିଳିଲି ସେ ଔଷଧିମାନ ।। ୨୧
୮ ଏମନ୍ତେ ବହୁତ କାଳରେ । ସେ ଲତାମାନେ ମୋହଠାରେ ।। ୨୨
କ୍ଷୀଣ ହୋଇଲେ, ତାଙ୍କୁ ଘେନ । ଉପାୟବଳେ ହେ ରାଜନ ।। ୨୩
୯ ୧୦ } ହେ ବୀର ! ବତ୍ସକୁ ମୋହର । କଳ୍ପନା କର ତୁ ସତ୍ୱର ।। ୨୪
ଯେବଣ ବତ୍ସରେ ମୁଁ ପୁଣ । ବତ୍ସଳଭାବକୁ ବହିଣ ।। ୨୫
ଯେ କ୍ଷୀରମୟ କାମମାନ । ସେମାନେ କରିବି ମୁଁ ପୂର୍ଣ୍ଣ ।। ୨୬
କ୍ଷୀରକୁ ଅନୁରୂପ ହୋଇ । ଦୋହନପାତ୍ର ଯେବା ଥାଇ ।। ୨୭
ଯେ ମୋତେ କରିବ ଦୋହନ । କର ତାହାକୁ ସମ୍ପାଦନ ।। ୨୮
ଯେବଣ ବଳପ୍ରଦ ଅନ୍ନ । ପ୍ରାଣୀ ବାଞ୍ଛନ୍ତି ନିଜ ମନ ।। ୨୯
ହେ ମହାବାହୁ ! ସେହୁ ଅନ୍ନ । ଯେବେ ବାଞ୍ଛୁଛ ତୁମ୍ଭ ମନ ।। ୩୦
୧୧ ହେ ନୃପ ! ମୋତେ ସମ କର । ବିରତୁ କାଳେ ହେଁ ମୋହର ।। ୩୧
ଦେବତାବୃଷ୍ଟ ଯେଉଁ କ୍ଷୀର । ଯେମନ୍ତେ ହୋଇବ ଦେହର ।। ୩୨

ଶ୍ରୀମୈତ୍ରେୟ ଉବାଚ

୧୨ ଏରୂପେ ପ୍ରିୟ ହିତବାଣୀ । ଭୂମିର ଠାରୁ ନୃପ ଶୁଣି ।। ୩୩
ମନୁଙ୍କୁ ବତ୍ସ କରି କରେ । ଦୁହିଁଲେ ଔଷଧି ନିକରେ ।। ୩୪
୧୩ ପଣ୍ଡିତମାନେ ସେ ପ୍ରକାରେ । ସାର ଘେନିଲେ ସବୁଠାରେ ।। ୩୫
ପୃଥୁର ବଶ ଯେ ଧରଣୀ । ତାହାକୁ ତଦନ୍ତରେ ପୁଣି ।। ୩୬
ଯେ ଯାହା ବାଞ୍ଛା ଅନୁସାରେ । ଦୋହନ କଲେ ସେ କାଳରେ ।। ୩୭
୧୪ ବୃହସ୍ପତିଙ୍କି ବତ୍ସ କରି । ଇନ୍ଦ୍ରିୟ-ପାତ୍ର ମଧ୍ୟେ ଭରି ।। ୩୮
ଯେ ଶୁଦ୍ଧ ଅଟେ ବେଦମୟ । ଋଷିଏ ଦୁହିଁଲେ ସେ ପୟ ।। ୩୯

---

୧. ଅବ୍ରତୀ ।

| | | | | |
|---|---|---|---|---|
| ୧୫ | ଇନ୍ଦ୍ରଙ୍କୁ ବତ୍ସ କରି ପୁଣ । | ସୁବର୍ଣ୍ଣପାତ୍ରରେ ଭରିଣ | ॥ | ୪୦ |
| | ଦେବେ ଦୁହିଁଲେ ସୋମ ପୟ । | ଯେ[୧] ବୀର୍ଯ୍ୟ-ଓଜ ତେଜମୟ | ॥ | ୪୧ |
| ୧୬ | ଦୈତ୍ୟଦାନବେ ଅନୁସରି । | ପ୍ରହଲାଦକୁ ବତ୍ସ କରି | ॥ | ୪୨ |
| | ସୁରା-ଆସବମୟ କ୍ଷୀର । | ଦୁହିଁଲେ ଲୋହପାତ୍ରପର | ॥ | ୪୩ |
| ୧୭ | ଗନ୍ଧର୍ବ-ଅପସରାମାନେ । | ପଦ୍ମପାତ୍ରରେ ତୋଷମନେ | ॥ | ୪୪ |
| | ଯେ ଗନ୍ଧ ବଚନମାଧୁର୍ଯ୍ୟ । | ଏ ବେନି ସହିତେ ସୌନ୍ଦର୍ଯ୍ୟ | ॥ | ୪୫ |
| | ଦୁଗ୍ଧ ଦୁହିଁଲେ ଅନୁସରି । | ବିଶ୍ୱାବସୁଙ୍କୁ ବତ୍ସ କରି | ॥ | ୪୬ |
| ୧୮ | ପୂଜା ଲଭନ୍ତି ଯେ ଶ୍ରାଦ୍ଧରେ । | ପିତୃଏ ଦେବତାରୂପରେ | ॥ | ୪୭ |
| | ସେ ଅର୍ଯ୍ୟମାଙ୍କୁ ବତ୍ସା କରି । | କଂଚା ମୃତ୍ତିକାପାତ୍ରେ ଭରି | ॥ | ୪୮ |
| | ଶ୍ରଦ୍ଧାରେ ପିତୃ-ଅନ୍ନ କ୍ଷୀର । | ଦୋହନ କଲେ ହେ ବିଦୁର ! | ॥ | ୪୯ |
| ୧୯ | କପିଳ ମୁନିଙ୍କି ବାଛୁରି । | ସକଳ ସିଦ୍ଧମାନେ କରି | ॥ | ୫୦ |
| | ଅଣିମା ଆଦି ସିଦ୍ଧିମାନ । | ସେକାଳେ କଲେ ସେ ଦୋହନ | ॥ | ୫୧ |
| | ଯେ ଆନ ବିଦ୍ୟାଧର ଆଦି । | କପିଳ ବତ୍ସଙ୍କୁ ସଂପାଦି | ॥ | ୫୨ |
| | ଖେଚର ଭାବ-ବିଦ୍ୟାମାନ । | ଆକାଶେ କଲେ ସେ ଦୋହନ | ॥ | ୫୩ |
| ୨୦ | ଯେ ଆନ ମାୟାବୀଏ ଥିଲେ । | ମୟକୁ ବତ୍ସ କରି ଭଲେ | ॥ | ୫୪ |
| | ଅଦ୍ଭୁତ ଆତ୍ମା ଯେଉଁମାନେ । | ଖ୍ୟାତ ଅଟନ୍ତି ଅନ୍ତର୍ଧାନେ | ॥ | ୫୫ |
| | ମାୟାକୁ ଦୁହିଁଲେ ତାଙ୍କର । | ଯେ ହୋଏ ମନୋରଥଦ୍ୱାର | ॥ | ୫୬ |
| ୨୧ | ଯକ୍ଷରାକ୍ଷସ ଭୂତମାନେ । | ପିଶାଚ, ପିଶିତ-ଅଶନେ | ॥ | ୫୭ |
| | ରୁଦ୍ରବତ୍ସେ ସେ କପାଳରେ । | ଦୁହିଁଲେ ମାଦକ ରୁଧିରେ | ॥ | ୫୮ |
| ୨୨ | ଫଣାସହିତ ଫଣାହୀନ । | ଯେ ନାଗ[୨] ବୃଶ୍ଚିକାଦିମାନ | ॥ | ୫୯ |
| | ତକ୍ଷକ ନାଗକୁ ସେମାନେ । | ବତ୍ସ କରିଣ ତୋଷମନେ | ॥ | ୬୦ |
| | ମୁଖରେ[୩] ବିଷମୟ କ୍ଷୀର । | ଦୋହନ କଲେ ହେ ବିଦୁର ! | ॥ | ୬୧ |
| ୨୩-୨୪ | ରୁଦ୍ରବୃଷକୁ ବତ୍ସା କରି । | ଅରଣ୍ୟପାତ୍ରେ ଅନୁସରି | ॥ | ୬୨ |
| | ପଶୁଏ ତୃଣମୟ କ୍ଷୀର । | ଦୁହିଁଲେ ହୋଇ ତତପର | ॥ | ୬୩ |
| | ମାଂସ ଯେ କରନ୍ତି ଭକ୍ଷଣ । | ଦନ୍ତସଂଯୁତ ପ୍ରାଣିଗଣ | ॥ | ୬୪ |

---

୧. ବୀର୍ଯ୍ୟ = ମନଶକ୍ତି; ଓଜ = ଇନ୍ଦ୍ରିୟଶକ୍ତି; ତେଜ = ଦେହଶକ୍ତି ।

୨. ଫଣାହୀନ = ଅହି, ସଫଣ = ସର୍ପ । ୩. ବିଳପାତ୍ର = ମୁଖ

| | | | | |
|---|---|---|---|---|
| | ସେ ବତ୍ସ କରିଣ ସିଂହକୁ | । ସ୍ୱଦେହେ ଦୁହିଁଲେ ମାଂସକୁ | ॥ | ୬୫ |
| | ଗରୁଡ଼ବତ୍ସେ ଖଗକୁଳ | । ଦୁହିଁଲେ କୀଟଆଦି ଫଳ | ॥ | ୬୬ |
| ୨୫ | ବଟକୁ ବନସ୍ପତିମାନେ | । ବତ୍ସ କରିଣ ତୋଷମନେ | ॥ | ୬୭ |
| | ଯେ ଭିନ୍ନ ଭିନ୍ନ ରସମୟ | । ଦୋହନ କଲେକ ସେ ପୟ | ॥ | ୬୮ |
| | ଯେ ହିମବନ୍ତ ନାମେ ଗିରି | । ତାକୁ ପର୍ବତେ ବତ୍ସ କରି | ॥ | ୬୯ |
| | ନିଜ ସାନୁମାନଙ୍କେ ପୁଣ | । ଦୁହିଁଲେ ନାନା ଧାତୁଗଣ | ॥ | ୭୦ |
| ୨୬ | ଯେ ମୁଖ୍ୟ ଆପଣା ଜାତିରେ | । ସେ ବତ୍ସେ ଯେ ଯାହା ପାତ୍ରରେ | ॥ | ୭୧ |
| | ପୃଥ୍ୱୀକି କଲେକ ଦୋହନ | । ସମସ୍ତେ ଦୁଗ୍ଧ ଭିନ୍ନ ଭିନ୍ନ | ॥ | ୭୨ |
| | ଯେ ସର୍ବକାମଦୁଘା ମହୀ | । ପୃଥୁରେ ଅଛି ବଶ ହୋଇ | ॥ | ୭୩ |
| ୨୭ | ହେ କୁରୁଶ୍ରେଷ୍ଠ ! ଏ ପ୍ରକାରେ | । ପୃଥୁ ଆଦି ଏ ସେ କାଳରେ | ॥ | ୭୪ |
| | ଦୁହିଁଲେ ଆପଣାର ଅନ୍ନ | । ଅନ୍ନ କରନ୍ତି ଯେ ଭୋଜନ | ॥ | ୭୫ |
| | ପାତ୍ର, ବତ୍ସାଦିଙ୍କ ଭେଦରେ | । ଯେ କ୍ଷୀରଭେଦମୂର୍ତ୍ତି ଧରେ | ॥ | ୭୬ |
| ୨୮ | ତହିଁ ଉତ୍ତାରେ ସେ ଭୂପତି | । ଯେ ସର୍ବକାମଦୁଘା କ୍ଷିତି | ॥ | ୭୭ |
| | ତାହାକୁ ଦୁହିତା ଭାବରେ | । ସ୍ୱୀକାର କଲେ ସେ ପ୍ରେମରେ | ॥ | ୭୮ |
| | ଦୁହିତାଠାବରେ ବତ୍ସଳ | । ଅଟନ୍ତି ଯେଣୁ ସେ ଭୂପାଳ | ॥ | ୭୯ |
| ୨୯ | ସେ ରାଜାମାନଙ୍କ ଈଶ୍ୱର | । ଶୃଙ୍ଗମାନଙ୍କୁ ଗିରିଙ୍କର | ॥ | ୮୦ |
| | ନିଜ ଧନୁର ଅଗ୍ରେ ଚୂର୍ଣ୍ଣ | । କରନ୍ତେ ବେଣର ନନ୍ଦନ | ॥ | ୮୧ |
| | ଏ ମହୀମଣ୍ଡଳକୁ ସମ | । କଲେ ସେ ନୃପତି-ଉତ୍ତମ | ॥ | ୮୨ |
| ୩୦ | ସେ ବେଣସୁତ ବୃତ୍ତିଦାତା | । ଅଟନ୍ତି ପ୍ରଜାଙ୍କର ପିତା | ॥ | ୮୩ |
| | ଲୋକଙ୍କୁ ସେହି ସେହି ସ୍ଥାନେ | । ନିବାସ କଳ୍ପିଲେ ଭୁବନେ | ॥ | ୮୪ |
| ୩୧ | ପୁର, ପାଟଣା, ଗ୍ରାମମାନ | । ଯେ ନାନାବିଧ ଦୁର୍ଗ[୧] ଆନ | ॥ | ୮୫ |
| | ଯହିଁ ଗୋ-ଗୋପାଳଙ୍କ ସ୍ଥିତି | । ସେନାନିବାସ[୨] ଯହିଁ ହୋନ୍ତି | ॥ | ୮୬ |
| | ସୁବର୍ଣ୍ଣ ଆଦି ଧାତୁମାନ | । ଯହିଁ ହୁଅନ୍ତି ଉତପନ୍ନ | ॥ | ୮୭ |
| | କୃଷକଙ୍କର ଗ୍ରାମମାନ | । ଯେ ଗ୍ରାମ ଗିରିପ୍ରାନ୍ତ[୩] ସ୍ଥାନ | ॥ | ୮୮ |

୧. 'ଔଦକଂ ପାର୍ବତଂ ବାର୍କ୍ଷମୈରିଣଂ ଧାନ୍ୱନଂ ତଥା' ଔଦକାଦି ଭେଦେ ଦୁର୍ଗ ନାନାବିଧ (ବୃହସ୍ପତି)　୨. ନିବେଶ ।　୩. ତଟ ।

| | | | | | |
|---|---|---|---|---|---|
| ୩୨ | ପୁର, ଗ୍ରାମକୁ ଆଦି ଯେତେ | । | କଳ୍ପନା ଅଛି ଏ ଜଗତେ | ।। | ୮୯ |
| | *ପୃଥୁଙ୍କ ଠାରୁ ପୂର୍ବ ହୋଇ | । | ସେମାନେ ନ ଥିଲେଟି କେହି | ।। | ୯୦ |
| | ନିର୍ଭୟ ହୋଇ ଯଥାସୁଖେ | । | ଥିଲେ ସେ ସେହି ସ୍ଥାନେ ଲୋକେ | ।। | ୯୧ |
| | କହଇ ଦ୍ୱିଜ ଦୀନବନ୍ଧୁ | । | ମୋତେ ଉଦ୍ଧର କୃପାସିନ୍ଧୁ | ।। | ୯୨ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁଚରିତେ ଶ୍ରୀପୃଥ୍ୱୀଦୋହୋ ନାମ
ଅଷ୍ଟାଦଶୋଽଧ୍ୟାୟ ।।

## ଊନବିଂଶୋଽଧ୍ୟାୟଃ

ଊନବିଂଶେଽଶ୍ୱମେଧାଙ୍ଗହୟାପହରଣାଦ୍ ପୃଥୋଃ ।
ଇନ୍ଦ୍ରଂ ହନ୍ତୁଂ ପ୍ରବୃତ୍ତସ୍ୟ ଧାତ୍ରା ବାରଣମୁଚ୍ୟତେ ।। ୧ ।।

**ଶ୍ରୀମୈତ୍ରେୟ ଉବାଚ

| | | | | | |
|---|---|---|---|---|---|
| ୧ | ଏଥୁ ଅନ୍ତେ ସେ ରାଜରଷି | । | ଶତେ ଅଶ୍ୱମେଧ ଉଦ୍ଦେଶି | ।। | ୧ |
| | ଦୀକ୍ଷାକୁ ଘେନିଲା ପବିତ୍ର | । | ବ୍ରହ୍ମାବର୍ତ୍ତେ¹ ଯେ ମନୁକ୍ଷେତ୍ର | ।। | ୨ |
| | ପୂର୍ବାଗାମିନୀ ହୋଇ ଯହିଁ | । | ଅଛଇ ସରସ୍ୱତୀ ବହି | ।। | ୩ |
| ୨ | ଆପଣା କର୍ମରୁ ସେ·କଥା | । | ଅଧିକ ଅଟଇ ସର୍ବଥା | ।। | ୪ |
| | ଏମନ୍ତ ଜାଣିଣ ବାସବ | । | ଯେ ଯଜ୍ଞରୂପ ମହୋତ୍ସବ | ।। | ୫ |
| | ପୃଥୁ ରାଜାର ପ୍ରବର୍ତ୍ତିଲା | । | ସେ କଥା ସହି ନ ପାରିଲା | ।। | ୬ |
| ୩ | ଯଜ୍ଞର ପତି ଯେ ଈଶ୍ୱର | । | ଆତ୍ମା ସକଳ ଲୋକଙ୍କର | ।। | ୭ |
| | ଅଖିଳ ଗୁରୁ ଭଗବାନ | । | ପ୍ରଭୁ ଯେ ଅନାଦିନିଧନ | ।। | ୮ |
| | ପ୍ରତ୍ୟକ୍ଷେ ଯେବଣ ଯଜ୍ଞରେ | । | ପ୍ରକାଶ ହେଲେ ସେ କାଳରେ | ।। | ୯ |
| ୪ | ନିଜ ସେବକଙ୍କର ମେଳେ | । | ଅଛନ୍ତି ସବୁ ଲୋକପାଳେ | ।। | ୧୦ |
| | ବ୍ରହ୍ମା, ଶଙ୍କର ବେନି ଛନ୍ତି | । | ଗନ୍ଧର୍ବେ ଗାୟନ କରନ୍ତି | ।। | ୧୧ |
| | ମୁନିଏ, ଅପସରାଗଣେ | । | ଗାଉଅଛନ୍ତି ଅନୁକ୍ଷଣେ | ।। | ୧୨ |

* ପୃଥୁରାଜାର ପୂର୍ବ ହୋଇ । ନ ଥିଲେ ସେମାନେହେଁ କେହି ।।
** ଶ୍ରୀଶୁକ ଉବାଚ
୧. ସରସ୍ୱତୀଦୃଶଦ୍ୱତ୍ୟୋର୍ଦେବନଦ୍ୟୋର୍ଯଦନ୍ତରମ୍ ।
ତଂ ଦେବନିର୍ମିତଂ ଦେଶଂ ବ୍ରହ୍ମାବର୍ତ୍ତଂ ପ୍ରଚକ୍ଷ୍ୟତେ ।।

୫　ସିଦ୍ଧ, ଦାନବ, ବିଦ୍ୟାଧର । ଦୈତ୍ୟ, ଗୁହ୍ୟକ ଆଦି ଆର ॥ ୧୩
ସୁନନ୍ଦ, ନନ୍ଦ ଆଦି ଯେତେ । ବିଷ୍ଣୁର ଭୃତ୍ୟ ଏ ଜଗତେ ॥ ୧୪
୬　କପିଳ, ଦତ୍ତ, ଯୋଗେଶ୍ୱର । ନାରଦ ସନକାଦି ଆର ॥ ୧୫
ତାର ସେବାରେ ଦେଇ ମନ । ଯେ ଥିଲେ ଭାଗବତ ଜନ ॥ ୧୬
ବିଷ୍ଣୁଙ୍କ ଅନୁଗତ ହୋଇ । ସେମାନେ ମିଳିଲେ ସେଠାଇଁ ॥ ୧୭
୭　ଯେବଣ ଯଜ୍ଞେ ବସୁମତୀ । ଧର୍ମ ଦୋହନ କଲେ ସତୀ ॥ ୧୮
ଯେ ଯାହା କରଇ ବାଞ୍ଛିତ । *ଦିଅଇ ତାହା ହେ ଭାରତ[୧] ! ॥ ୧୯
ଯା' ବାଞ୍ଛା କରେ ଯଜମାନ । ସେମାନେ କରଇ ଦୋହନ ॥ ୨୦
୮　ନଦୀ ବହିଲେ ସର୍ବରସ । କ୍ଷୀର, ଦଧି ଅନ୍ନ ଗୋରସ ॥ ୨୧
ମଧୁ ସ୍ରବନ୍ତେ ବୃକ୍ଷେ ତହିଁ । ଫଳିଲେ ମହାତନୁ ହୋଇ ॥ ୨୨
୯　ସମୁଦ୍ରମାନେ ରତ୍ନମାନ । ଗିରିଏ ଚତୁର୍ବିଧ[୨] ଅନ୍ନ ॥ ୨୩
ଉପାୟନକୁ ଲୋକପାଳେ । ଆଣିଲେ ପାଳକଙ୍କ ମେଳେ ॥ ୨୪
୧୦　ବିଷ୍ଣୁ ଅଟନ୍ତି ନାଥ ଯାର । ଏ ରୂପେ ସେ ପୃଥୁରାଜାର ॥ ୨୫
ଅତି ଉଦୟ ଯଜ୍ଞ ଯେହି । ସେ କଥା ନ ପାରିଣ ସହି ॥ ୨୬
ସେ ଯଜ୍ଞ ନାଶ ହୋଇବାକୁ । ଇନ୍ଦ୍ର ଆଚରିଲେ ବିଘ୍ନକୁ ॥ ୨୭
୧୧　ପ୍ରାନ୍ତ ଅଶ୍ୱମେଧେ ରାଜନ । ବିଷ୍ଣୁଙ୍କ କରନ୍ତେ ଯଜନ ॥ ୨୮
ଯଜ୍ଞପଶୁକୁ ବାଦ କରି । ଲୁଚିଣ ଇନ୍ଦ୍ର ନେଲା ହରି ॥ ୨୯
୧୨　ଆକାଶେ ଯାନ୍ତେ ତ୍ୱରା ହୋଇ । ଅତ୍ରି ଦେଖିଲେ ତାକୁ ତହିଁ ॥ ୩୦
ନିଜ କବଚ ପ୍ରାୟ କରି । ପାଷଣ୍ଡ ବେଶ ଅଛି ଧରି ॥ ୩୧
ଅଧର୍ମେ ଧର୍ମପ୍ରାୟ ହୋଇ । ବିଭ୍ରମ ଯହିଁରେ ହୁଅଇ ॥ ୩୨
୧୩　ଯେ ମହାରଥ ପୃଥୁସୁତ । ଅତ୍ରିବଚନେ ସେ ତୁରିତ ॥ ୩୩
ଇନ୍ଦ୍ରଙ୍କୁ ମାରିବାର ପାଇଁ । ଧାଇଁଲା ଅତି କ୍ରୁଦ୍ଧ ହୋଇ ॥ ୩୪
ବୋଲିଣ 'ରହ ରହ' ବାଣୀ । ଡାକିଲା ଉଚ୍ଚେ ବୀର ପୁଣି ॥ ୩୫
୧୪　ଏମନ୍ତ ରୂପରେ ଆକୃତି । ଧରିଛି ଯେଉଁ ଶଚୀପତି ॥ ୩୬
ତାକୁ ମଣିଲା ପୃଥୁସୁତ । ଧର୍ମ ହୋଇଛି ରୂପବନ୍ତ ॥ ୩୭

---

* ''ଦିଅଇ ତା' ହେ ପରୀକ୍ଷିତ !''

୧. ଭାରତ = ବିଦୁର, ପରୀକ୍ଷିତ ।

୨. ଭକ୍ଷ୍ୟ, ଭୋଜ୍ୟ; ଚୋଷ୍ୟ ଓ ଲେହ୍ୟ ।

ଜଟିଳ ରୂପ ଅଛି ଧରି । ଭସ୍ମରେ ତନୁ ଅଛି ପୂରି ।। ୩୮
ଏଣୁ ତାହାକୁ ନିଜ ବାଣ । ସେ ବୀର ନ କଲା ମୋକ୍ଷଣ ।। ୩୯
୧୫ ବଧରୁ ନିବର୍ତ୍ତନ୍ତେ ସେହି । ଇନ୍ଦ୍ରକୁ ମାରିବାର ପାଇଁ ।। ୪୦
ଅତ୍ରିଏ ଆଜ୍ଞା ଦେଲେ ତାକୁ । ହେ ତାତ ! ମାର ତୁ ଇନ୍ଦ୍ରକୁ ।। ୪୧
ଯଜ୍ଞକୁ ବିନାଶ କରଇ । ସୁର-ଅଧମ ଏ ଅଟଇ ।। ୪୨
୧୬ ଅତ୍ରି ଏ ପ୍ରକାରେ ବଚନ । କହନ୍ତେ ପୃଥୁର ନନ୍ଦନ ।। ୪୩
ଆକାଶମାର୍ଗେ ତ୍ୱରା ହୋଇ । ଇନ୍ଦ୍ର ଯେ ଯାଉଛି ପଳାଇ ।। ୪୪
ଧାଇଁଲା କ୍ରୁଦ୍ଧ ହୋଇ ତାକୁ । ଜଟାୟୁ ଯେହ୍ନେ ରାବଣକୁ ।। ୪୫
୧୭ ସେ ଗଲା ଅଶ୍ୱ, ରୂପ ଦୁଇ । ଛାଡ଼ିଣ ଅନ୍ତର୍ଧାନ ହୋଇ ।। ୪୬
ନିଜ ପଶୁକୁ ଘେନି ବୀର । ମିଳିଲା ପିତୃଯଜ୍ଞଠାର ।। ୪୭
୧୮ ପରମ ଋଷିମାନେ ତାର । ଦେଖି ଅଦ୍ଭୁତ କର୍ମସାର ।। ୪୮
ବିଜିତ-ଅଶ୍ୱ ବୋଲି ନାମ । ଦେଲେ ତାହାକୁ ନରୋତ୍ତମ ! ।। ୪୯
୧୯ ପୁଣ ହିଁ ତୀବ୍ର ଅନ୍ଧକାର । ସର୍ଜନା କରି ପୁରନ୍ଦର ।। ୫୦
ଚଷାଳ[୧] ଯୂପରୁ ଲୁଚିଣ । ଅଶ୍ୱକୁ କଲା ସେ ହରଣ ।। ୫୧
ସୁବର୍ଣ୍ଣମୟ ହୋଇ ଯାର । *ରଜ୍ଜୁ ଥିଲାକ ତୁରଙ୍ଗର ।। ୫୨
୨୦ କପାଳଖଟ୍ୱାଙ୍ଗ ଧରିଣ । ଆକାଶେ ସତ୍ୱର ହୋଇଣ ।। ୫୩
ଇନ୍ଦ୍ର ଯାଆନ୍ତେ ଅତ୍ରି ତାକୁ । ଦେଖାଇଲେ ପୃଥୁପୁତ୍ରକୁ ।। ୫୪
ତାହାକୁ ପୃଥୁର କୁମର । ନ ଗୋଡ଼ାଇଲା ସେହୁ ବୀର ।। ୫୫
୨୧ ଅତ୍ରିବଚନେ ରୋଷେ ତାକୁ । ସନ୍ଧାନ କଲା ବିଶିଖକୁ ।। ୫୬
ଛାଡ଼ି ସେ ଅଶ୍ୱ, ରୂପ ଦୁଇ । ଗଲା ସେ ଅନ୍ତର୍ଧାନ ହୋଇ ।। ୫୭
୨୨ ସେ ବୀର ଘେନି ତା' ଅଶ୍ୱକୁ । ଅଇଲା ପିତାର ଯଜ୍ଞକୁ ।। ୫୮
ସେ ନିନ୍ଦ୍ୟ ରୂପକୁ ଇନ୍ଦ୍ରର । ଘେନିଲେ ମନ୍ଦବୁଦ୍ଧି ନର ।। ୫୯
୨୩ ଅଶ୍ୱହରଣ ବାଞ୍ଛି ମନ । ଇନ୍ଦ୍ର ଯେବଣ ରୂପମାନ ।। ୬୦
ଘେନିଲା ପାପଷଣ୍ଡ ସେହି । ପାଷଣ୍ଡଲିଙ୍ଗ ତାଙ୍କୁ କହି ।। ୬୧

---

୧. ଯୂପ = ପଶୁବନ୍ଧନନିମିତ୍ତ ଯଜ୍ଞରେ ବ୍ୟବହୃତ ସଂସ୍କୃତ ଦାରୁବିଶେଷ ।
ଚଷାଳ = ଯୂପର ଅଗ୍ରେ ନିଃକ୍ଷିପ୍ତ କାଷ୍ଠକଟକ ।

* ରଜ୍ଜୁର ଦୃଢ଼ତା ହେତୁ ତାହା ଛେଦିବାକୁ ଅଶକ୍ତ ହୋଇ ରଜ୍ଜୁ ସହିତ ଅଶ୍ୱକୁ ଯୂପାଗ୍ରରୁ ହରଣ କଲା ।

୨୪ ପୃଥୁଯଜ୍ଞକୁ ନାଶିବାରେ । ଇନ୍ଦ୍ର ଏସନ ପରକାରେ ॥ ୬୨
ଅଶ୍ୱକୁ କରନ୍ତେ ହରଣ । ଯଉଁ ଯଉଁ ରୂପ ଧରିଣ ॥ ୬୩
ପୁଣ ଛାଡ଼ନ୍ତି ଭୟ ପାଇ । ପାଷଣ୍ଡ ମାର୍ଗ ତାକୁ କହି ॥ ୬୪
ସେ ମାର୍ଗେ ପ୍ରାଣୀମାନଙ୍କର । ବୁଦ୍ଧି ହୋଇଲା ବଳିଆର ॥ ୬୫
୨୫ ରକ୍ତବସନ[୧] ଦିଗମ୍ବର[୨] । ଏ ଆଦି[୩] ଯେତେ ଦୁରାଚାର ॥ ୬୬
ସେ ଉପଧର୍ମେ ଧର୍ମ ହୋଇ । ଭ୍ରାନ୍ତିରେ ମତି ପ୍ରବର୍ତ୍ତାଇ ॥ ୬୭
ଯେଣୁ ସେ ରମ୍ୟ ସହଜରେ । ଚତୁର ହେତୁ-ଉକ୍ତିଦ୍ୱାରେ ॥ ୬୮
୨୬ ପୃଥୁବିକ୍ରମ ବେଣସୁତ । ସେ କଥା ଜାଣିଣ ତୁରିତ ॥ ୬୯
ଇନ୍ଦ୍ରକୁ କୁପିତ ହୋଇଣ । ଧଇଲେ ଧନୁ ଟେକି ବାଣ ॥ ୭୦
୨୭ କ୍ରୋଧେ ନୁହଇ ତାଙ୍କୁ ଚାହିଁ । ଅସହ୍ୟ ବେଗ ଛନ୍ତି ବହି ॥ ୭୧
ଇନ୍ଦ୍ରକୁ କରିବାକୁ ନାଶ । ବିଚାରି ଅଛନ୍ତି ମାନସ ॥ ୭୨
ପୃଥୁ ଏ ପ୍ରକାରେ ହୁଅନ୍ତେ । ତାହାଙ୍କୁ ଋତ୍ୱିଜେ ତଦନ୍ତେ ॥ ୭୩
ନିବାରି କହିଲେ ସତ୍ୱରେ । ହେ ମହାମତି ! ଏ ଯାଗରେ ॥ ୭୪
ବେଦେ ହୋଇଛି ଯା ଉକତ । ପଶୁର ବଧ, ସେ ଉଚିତ ॥ ୭୫
ତହିଁରୁ ଅଟେ ଯେ ଇତର । ଅଯୁକ୍ତ ତାକୁ ମାରିବାର ॥ ୭୬
୨୮ ଯେ ତୁମ୍ଭ ଯଜ୍ଞ ବିନାଶନ । କରୁଣ ଅଛି ମଘବାନ ॥ ୭୭
ତୁମ୍ଭର କୀର୍ତ୍ତିରେ ତାହାର । ତେଜହିଁ ହୋଇଛି ସଂହାର ॥ ୭୮
ସବୀର୍ଯ୍ୟ ମନ୍ତ୍ର-ଆହ୍ୱାନରେ । ବଳେହେଁ ତାହାକୁ ଅଗ୍ନିରେ ॥ ୭୯
ହୋମ କରିବୁ ହେ ନୃପତି । ତୋହର ଅଟେ ଯେ ଅରାତି ॥ ୮୦
୨୯ ଏ ରୂପେ କରିଣ ବିଚାର । ଋତ୍ୱିଜେ ଏ ପୃଥୁରାଜାର ॥ ୮୧
ରୋଷରେ ସ୍ରୁକ[୪] ଧରି କର । ହୋମ କରନ୍ତେ ହେ ବିଦୁର ॥ ୮୨
ସ୍ୱୟମ୍ଭୂ ପ୍ରବେଶ ହୋଇଣ । ତାହାଙ୍କୁ କଲେ ନିବାରଣ ॥ ୮୩
୩୦ ଯଜ୍ଞ କରିଣ ମାରିବାକୁ । ବିଚାରୁ ଅଛଟି ଯାହାକୁ ॥ ୮୪
ହେ ବିପ୍ରେ ! ତୁମ୍ଭମାନଙ୍କର । ବଧ ନୋହେ ସେ ପୁରନ୍ଦର ॥ ୮୫

---

୧. ରକ୍ତବସନ = ବୌଦ୍ଧ ।　୨. ଦିଗମ୍ବର = ଜୈନ ।
୩. 'ଆଦି' ଶବ୍ଦଦ୍ୱାରା କାପାଳିକ ପ୍ରଭୃତି ।
୪. ସ୍ରୁକ (ଚ) = ସଂ (ସ୍ରୁକ୍) ଯଜ୍ଞପାତ୍ରବିଶେଷ ।

ଯେଉଁ ଦେବଙ୍କୁ ଯାଗ କର । ସେମାନେ ଯାହାର ଶରୀର ॥ ୮୬
* 'ଯଜ୍ଞ' ନାମେ ଏ ପୁରନ୍ଦର । ଅଟେ ବିଷ୍ଣୁର ଅବତାର ॥
୩୧ ରାଜାର ଏ କର୍ମନାଶନ । କରିବା ଅର୍ଥେ ମଘବାନ ॥ ୮୭
କଲେ ଯେ ଅନ୍ୟାୟ ଅପାର । ପାଷଣ୍ଡ ପଥ ଅନିବାର ॥ ୮୮
ସେକଥା ତୁମ୍ଭର ନୟନେ । ଦେଖ ତ ଆହେ ବିପ୍ରମାନେ ॥ ୮୯
୩୨ ବିଶାଳ ଅଟେ କୀର୍ତ୍ତି ଯାର । ଏ ପୃଥୁନାମେ ନୃପତିର ॥ ୯୦
ଏକ ଊଣା ଏ ଯଜ୍ଞଶତ । ମହୀତଳରେ ହେଉ ଖ୍ୟାତ ॥ ୯୧
ଏ ଯଜ୍ଞମାନଙ୍କୁ ଆଚରି । କି କାର୍ଯ୍ୟ ଅଛଇଁ ତୋହରି ॥ ୯୨
ତୁ ଯେଣୁ ମୋକ୍ଷଧର୍ମମାନ । ସକଳ ଜାଣୁ ହେ ରାଜନ ॥ ୯୩
୩୩ ଇନ୍ଦ୍ର ହିଁ ଅଟେ ଆତ୍ମା ତୋର । ରୋଷ ନ କର ତାକୁ ବୀର ॥ ୯୪
ଦୁହେଁ ବିଷ୍ଣୁର ଅବତାର । ମଙ୍ଗଳ ହେଉ ଦୁହିଁଙ୍କର ॥ ୯୫
୩୪ ହେ ମହାରାଜ ! ଏ ଯଜ୍ଞରେ । ଚିନ୍ତା ତୁ ନ କର ମନରେ ॥ ୯୬
ହୋଇ ଆଦରଯୁତ-ମନ । ଶୁଣ ତୁ ଆମ୍ଭର ବଚନ ॥ ୯୭
ଦଇବ ହତ କରେ ଯାହା । ପୁଣିହିଁ କରିବାକୁ ତାହା ॥ ୯୮
ଧ୍ୟାନ କରଇ ଯେଉଁ ଜନ । ତାହାର ଅତି ରୁଷ୍ଟମନ ॥ ୯୯
ଅତ୍ୟନ୍ତ ମୋହକୁ ଲଭଇ । କେବେହେଁ ଶାନ୍ତିକି ନ ପାଇ ॥୧୦୦
୩୫ ଦେବତାମାନଙ୍କର ଯହିଁ । ଦୁଷ୍ଟ ଆଗ୍ରହ ଅଛି ରହି ॥୧୦୧
ଇନ୍ଦ୍ରରେ ହୋଇଣ ନିର୍ମିତ । ପାଷଣ୍ଡମାର୍ଗ ଅବିରତ ॥୧୦୨
ଅଧର୍ମ ହୋଇଲା ଯହିଁରେ । ସେ ଯାଗ ନିବର୍ତ୍ତୁ ଏଠାରେ ॥୧୦୩
୩୬ ଯେ ଇନ୍ଦ୍ର ଯଜ୍ଞଦ୍ରୋହୀ ତୋର । ଆବର ଯଜ୍ଞ-ଅଶ୍ୱ-ଚୋର ॥୧୦୪
ସେହୁ ପାଷଣ୍ଡ-ପଥମାନ । କଲା, ସେ ହରୁଛନ୍ତି ମନ ॥୧୦୫
ତେଣେ ଯେ ନାଶ ହେଉଛନ୍ତି । ଦେଖ ସେ ଲୋକଙ୍କୁ ନୃପତି ! ॥୧୦୬
୩୭ ସାଂଖ୍ୟଯୋଗାଦି ନାନାମତ । ସିଦ୍ଧାନ୍ତ ରୂପେ ଯେ ବିଦିତ ॥୧୦୭
ସେ ଧର୍ମ ବେଣ-ଅନ୍ୟାୟରେ । ଲୁପ୍ତ ହୋଇଲା ଏ ସଂସାରେ ॥୧୦୮
ତା' ପାଳିବାକୁ ଆଜ ତୁହି । ବେଣଦେହରୁ ଅଛୁ ହୋଇ ॥୧୦୯
ବିଷ୍ଣୁର କଳା ଅବତାର । ତୁ ଅଟୁ ବେଣର କୁମର ॥୧୧୦

---

* ତତଃ ସପ୍ତମ ଆକୂତ୍ୟାଂ ରୁଚେର୍ଯଜ୍ଞୋଽଭ୍ୟଜାୟତ ।
ସଯାମାଦ୍ୟୈଃ ସୁରଗଣୈରପାତ୍ ସ୍ୱାୟମ୍ଭୁବାନ୍ତରମ୍ ॥ (ସ୍ୱାମିଧୃତ)

୩୮　ହେ ପ୍ରଜାପତି ! ଏ ଜଗତେ　।　ଶୁଭ ବିଚାରି ନିଜ ଚିତ୍ତେ　॥୧୧୧
ବିଶ୍ୱ-ରଚିଲା ଲୋକଙ୍କର　।　ମନୋରଥକୁ ପୂର୍ଣ୍ଣ କର　॥୧୧୨
ପ୍ରଚଣ୍ଡ ଯେ ପାଷଣ୍ଡପଥ　।　ଉପଧର୍ମକୁ କରେ ଜାତ　॥୧୧୩
ମାୟା ଅଟଇ ସେ ଇନ୍ଦ୍ରର　।　ହେ ପ୍ରଭୁ ! କର ତା' ସଂହାର　॥୧୧୪

ଶ୍ରୀମୈତ୍ରେୟ ଉବାଚ

୩୯　ବିଧାତା ଏମନ୍ତ ପ୍ରକାରେ　।　ଆଜ୍ଞା ଦିଅନ୍ତେ, ଇନ୍ଦ୍ରଠାରେ　॥୧୧୫
ବତ୍ସଳ ଭାବକୁ କରିଣ　।　ଯଜ୍ଞରେ ଆଗ୍ରହ ଛାଡ଼ିଣ　॥୧୧୬
ଇନ୍ଦ୍ରସଙ୍ଗେ ସେ ନରପତି　।　ବିଧାନ କଲେ ପୁଣି ପ୍ରୀତି　॥୧୧୭
୪୦　ବହୁତ ଅଟେ କର୍ମ ଯାର　।　ସେ ପୃଥୁ-ନାମ ନରେଶ୍ୱର　॥୧୧୮
କରନ୍ତେ ଅବଭୃଥ ସ୍ନାନ　।　ବରଦ ଦେବଗଣମାନ　॥୧୧୯
ଯାଗରେ ତୃପ୍ତିକି ଲଭିଲେ　।　ପୃଥୁଙ୍କୁ ବରମାନ ଦେଲେ　॥୧୨୦
୪୧　ସତ୍ୟ ଯାହାଙ୍କର ଆଶିଷ　।　ସେ ବିପ୍ରେ ହୋଇଣ ସଂତୋଷ　॥୧୨୧
ଦକ୍ଷିଣା ଲଭିଲେ ଯଜ୍ଞରେ　।　ସତ୍କାର ପାଇଣ ଶ୍ରଦ୍ଧାରେ　॥୧୨୨
ଆଶିଷ କଲେକ ଅପାର　।　ଆଦିରାଜାଙ୍କୁ ହେ ବିଦୁର !　॥୧୨୩
୪୨　ହେ ମହାବାହୁ ତୋ ବଚନେ　।　ଆସି ସମସ୍ତେ ଆମ୍ଭେମାନେ　॥୧୨୪
ପୂଜା ପାଇଲୁ ଦାନେ, ମାନେ　।　ପିତୃ-ଦେବତା-ଋଷିଜନେ　॥୧୨୫
ଗୋକୁଳାନନ୍ଦ ହେ ଗୋବିନ୍ଦ　।　ତୁମ୍ଭ ଶ୍ରୀଚରଣାରବିନ୍ଦ　॥୧୨୬
ଦୀନବନ୍ଧୁଙ୍କୁ ଦିଅ ବାରେ　।　ଆନନ୍ଦେ ରହୁ ସେ ସେବାରେ　॥୧୨୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସମ୍ବାଦେ
ଶ୍ରୀପୃଥୁବିଜୟୋ ନାମ ଏକୋନବିଂଶୋଽଧ୍ୟାୟଃ ॥

## ବିଂଶୋଽଧ୍ୟାୟଃ

ବିଂଶେ ତୁ ବିଷ୍ଣୁନା ସାକ୍ଷାଦ୍ ପୃଥୋର୍ଯଜ୍ଞେଽନୁଶାସନମ୍ ।
ବରଦାନପ୍ରସଙ୍ଗେନ ପ୍ରୀତିଶ୍ଚାନ୍ୟୋଽନ୍ୟମୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧　ଯେ ଯଜ୍ଞପତି ଭଗବାନ　।　ଯଜ୍ଞକୁ କରନ୍ତି ଭୋଜନ　॥　୧
ଯଜ୍ଞେ ସେ ଉତ୍ତମ ବିଧିରେ　।　ପୂଜିତ ହୋଇ ତଦନ୍ତରେ　॥　୨
ସଙ୍ଗରେ ଘେନିଣ ଇନ୍ଦ୍ରକୁ　।　ବଚନ କହିଲେ ପୃଥୁଙ୍କୁ　॥　୩

## ଶ୍ରୀଭଗବାନୁବାଚ

୨ ଶତ ତୁରଗମେଧ ତୋର । ଭଙ୍ଗ କଲା ଏ ପୁରନ୍ଦର ।। ୪
ଏ ଆପଣାକୁ ଭୟଚିତ୍ତେ । କ୍ଷମା କରାଉଅଛି ତୋତେ ।। ୫
କ୍ଷମା କରିବାକୁ ଭାଜନ । ହୁଅ ତୁ ଏହାକୁ ରାଜନ ! ।। ୬
୩ ସୁବୁଦ୍ଧି ସାଧୁ ଏ ଲୋକରେ । ହେ ନରଦେବ ନରବରେ ।। ୭
ପ୍ରାଣୀଙ୍କି ନ କରନ୍ତି ଦ୍ରୋହ । ଆତ୍ମା ନୁହଇ ଯେଣୁ ଦେହ ।। ୮
୪ ଯେବେ ତୁମ୍ଭର ପରା ଜନେ । ଦେବମାୟାରେ ଅନୁଦିନେ ।। ୯
ମୋହିତ ହେବେ ଏ ସଂସାରେ । ବୃଦ୍ଧଙ୍କୁ ଅତ୍ୟନ୍ତ ପ୍ରକାରେ ।। ୧୦
ସେବା କରିଣ କିବା ଫଳ । ଶ୍ରମ ଜନମଇଁ କେବଳ ।। ୧୧
୫ ଏଣୁ ଏ ଦେହ ଅନିୟତ । ଅବିଦ୍ୟା-କାମକର୍ମେ ଜାତ ।। ୧୨
ଏମନ୍ତ ଜାଣି କରି ଜନ । ଅଭ୍ୟାସ କରେ ଆତ୍ମଜ୍ଞାନ ।। ୧୩
ଏ ଦେହେ ଆସକତ ନୋହେ । ଆତ୍ମଜ୍ଞାନକୁ ଯେଣୁ ବହେ ।। ୧୪
୬ ଯେବଣ ଲୋକ ଏ ସଂସାରେ । ଆସକ୍ତ ନୋହେ ଏ ଦେହରେ ।। ୧୫
ଏ ଦେହସକାଶୁଁ ଯେ ଜାତ । ଗୃହ, ତନୁଜ, ବନ୍ଧୁ, ବିତ୍ତ ।। ୧୬
କେ କରେ ମମତା ତହିଁରେ । ପଣ୍ଡିତ ହୋଇଣ ବେଭାରେ ।। ୧୭
୭ ଆତ୍ମା-ରୂପରେ ଯେ ଅଛଇଁ । ଦେହରୁ ଭିନ୍ନ ଏ ଅଟଇ ।। ୧୮
ବାଳଯୁବାଦି ଭେଦୁଁ କରି । ନାନା ରୂପକୁ ଦେହ ଧରି ।। ୧୯
ମଳିନ, ଜଡ଼, ସେ ସଗୁଣ । ଗୁଣ-ଆଶ୍ରୟେ ଥାଇ ପୁଣ ।। ୨୦
ସେ ପୁଣି ଏତେ ତେତେ ହୋଇ । ପରିଚ୍ଛିନ୍ନ ଭାବକୁ ପାଇ ।। ୨୧
ସେ ଗୃହ-ଆଦିରେ ଆବୃତ । ଦୃଶ୍ୟ ରୂପରେ ସେ ବିଦିତ ।। ୨୨
ଆତ୍ମା ସହିତେ ବିଦ୍ୟମାନ । ସେ ଦେହ ଅଟେ ଅନୁଦିନ ।। ୨୩
ଏତେ କଥାରୁ ଭିନ୍ନ ହୋଇ । ଆତ୍ମା ପ୍ରକାଶି ଅଛି ରହି ।। ୨୪
୮ ଏ ରୂପେ ଦେହେ ଆତ୍ମା ଥାଇ । ଯେଉଁ ପୁରୁଷ ତା' ଜାଣଇଁ ।। ୨୫
ଦେହରେ ଥିଲେ ହେଁ ସେ ନର । ଦେହର ଯେତେକ ବିକାର ।। ୨୬
ତେଣେ ସେ ଲୋକ ଲିପ୍ତ ନୋହେ । ତେଣୁ[୧] ସେ ବ୍ରହ୍ମସୁଖେ ରହେ ।। ୨୭
୯ ଛାଡ଼ିଣ କାମନାକୁ ଚିତ୍ତେ । ଶ୍ରଦ୍ଧାରେ ସ୍ୱଧର୍ମେ ଯେ ମୋତେ ।। ୨୮
କ୍ରମରେ ଭଜେ ହେ ରାଜନ । ତା' ମନ ହୁଅଇ ପ୍ରସନ୍ନ ।। ୨୯

---

୧. ଯେଣୁ

୧୦ ପ୍ରସନ୍ନମନ ସେହୁ ନର । ଗୁଣମାନଙ୍କୁ କରି ଦୂର ॥ ୩୦
ଉତ୍ତମ କରି ସବୁ ଜାଣି । ଶାନ୍ତିକି ଲଭଇ ସେ ପ୍ରାଣୀ ॥ ୩୧
ମୋର ଉଦାସ ଭାବେ ସ୍ଥିତି । ବ୍ରହ୍ମ କୈବଲ୍ୟ ଅଟେ ଶାନ୍ତି ॥ ୩୨
୧୧ ଶରୀର, କର୍ମେନ୍ଦ୍ରିୟଙ୍କର । ଜ୍ଞାନ-ଇନ୍ଦ୍ରିୟ, ମାନସର ॥ ୩୩
ଯେ ଆତ୍ମା ଅଧ୍ୟକ୍ଷ ଅଟଇ । ଉଦାସୀ ପ୍ରାୟ ହୋଇଥାଇ ॥ ୩୪
କୂଟସ୍ଥ ଅଟେ ସେହୁ ପୁଣି । ତାକୁ ଏ ରୂପେ ଯେହୁ ଜାଣି ॥ ୩୫
ସେ ଲୋକ ସଂସାର ମଧ୍ୟରେ । ଜନ୍ମ ନ ଲଭେ ଆଉ ବାରେ ॥ ୩୬
୧୨ ଦ୍ରବ୍ୟ-କାରକ-କ୍ରିୟାରୂପୀ । ଚେତନାରୂପେ ଅଛି ବ୍ୟାପି ॥ ୩୭
ଯେ ଲିଙ୍ଗଶରୀର ଲୋକର । ତହୁଁ ଉପୁଜଇ ସଂସାର ॥ ୩୮
ଏଣୁ ପଣ୍ଡିତ ଯେଉଁ ନରେ । ସେହୁ ସମ୍ପତ୍ତି-ବିପତ୍ତିରେ ॥ ୩୯
ବିକାର ନ ଲଭନ୍ତି ପୁଣ । ମୋ'ଠାରେ ପ୍ରୀତିକି କରିଣ ॥ ୪୦
୧୩ *ଉତ୍ତମ ମଧ୍ୟମାଧମରେ । ସମାନ ଅଟୁ ତୁ ସଂସାରେ ॥ ୪୧
ସୁଖଦୁଃଖରେ ସମ ପୁଣି । ମନ ଇନ୍ଦ୍ରିୟ ଅଛୁ ଜିଣି ॥ ୪୨
ଅମାତ୍ୟ ଆଦି ଯେତେ ଜନ । ମୁଁ କରିଅଛି ସମ୍ପାଦନ ॥ ୪୩
ତେଣେ ସଂଯୁତ ହୋଇ ବୀର । ଅଖିଳ ଲୋକ ରକ୍ଷା କର ॥ ୪୪
୧୪ ପ୍ରଜାପାଳନ ଅଟେ ଯେହି । ରାଜା ମଙ୍ଗଳ ନିଷ୍ଠେ ସେହି ॥ ୪୫
ପ୍ରଜାମାନଙ୍କର ନିମିତ୍ତ । ଅଟଇ ଯେବଣ ସୁକୃତ ॥ ୪୬
ତହିଁରୁ ଷଷ୍ଠଅଂଶ ହରେ । ଯେଣୁ ସେ ପରଲୋକଠାରେ ॥ ୪୭
ସେ ଯେବେ ପାଳନା ନ କରେ । ପ୍ରଜାଙ୍କ ଠାରୁ କର ହରେ ॥ ୪୮
ପ୍ରଜା ହରନ୍ତି ପୁଣ୍ୟ ତାର । ଭୁଞ୍ଜେ ସେ ପାପ ପ୍ରଜାଙ୍କର ॥ ୪୯
୧୫ ବିପ୍ରବରଙ୍କ ସନମତ । ଯେ ପରଂପରାଧର୍ମ ଖ୍ୟାତ ॥ ୫୦
ପ୍ରଧାନ ଅଟେ ସେ ଯାହାର । ପ୍ରସଙ୍ଗେ ଅର୍ଥ[1] କାମ ଆର ॥ ୫୧
ଆସକ୍ତ ନୋହି ଧର୍ମାଦିରେ । ପୃଥ୍ୱୀ ପାଳନ୍ତେ ଏ ପ୍ରକାରେ ॥ ୫୨
ଗୃହେ ମିଳିଲେ ସିଦ୍ଧମାନେ[2] । ତାଙ୍କୁ ଦେଖିବୁ ଅଳ୍ପଦିନେ ॥ ୫୩
ତୋ'ଠାରେ ଅନୁରାଗ ବହି । ଲୋକେ ଅଛନ୍ତି ଯେଣୁ ରହି ॥ ୫୪

---

* ମଧ୍ୟମ + ଅଧମ = ମଧ୍ୟମାଧମ ।

୧. ଧର୍ମ (?) (ଅର୍ଥକାମୌ ତୁ ପ୍ରାସଙ୍ଗିକୌ; ସ୍ୱାମୀ)   ୨. ସନକାଦି

୧୬ ହେ ନରଇନ୍ଦ୍ର ! କିଛି ବର । ମାଗ ତୁ ଠାବରୁ ମୋହର ॥ ୫୫
ଯେଣୁ ତୋହର ସୁଚରିତ । ଗୁଣେ ମୁଁ ହେଲି ବଶୀକୃତ ॥ ୫୬
ମୁଁ ଯୋଗ-ତପସ୍ୟା-ଯାଗରେ । ସୁଲଭ ନୋହି ଏ ସଂସାରେ ॥ ୫୭
ସମ ଅଟଇ ଚିତ୍ତ ଯାର । ଯେଣୁ ମୁଁ ଥାଇ ତାହାଠାର ॥ ୫୮

ଶ୍ରୀମୈତ୍ରେୟ ଉବାଚ

୧୭ ଏ ରୂପେ ଲୋକଗୁରୁ ହରି । ଆଜ୍ଞା ଦିଅନ୍ତେ ସ୍ନେହ କରି ॥ ୫୯
ଶିରେ ଘେନିଲା ଆଜ୍ଞା ତାର । ବିଶ୍ୱବିଜୟୀ ନୃପବର ॥ ୬୦
୧୮ ନିଜ କର୍ମରେ ଲଜ୍ଜା ପାଇ । ପ୍ରେମେ ଛୁଅଁନ୍ତେ ପାଦଦୁଇ ॥ ୬୧
ଇନ୍ଦ୍ରକୁ କରି ଆଲିଙ୍ଗନ । ଦ୍ୱେଷ ଛାଡ଼ିଲେ ସେ ରାଜନ ॥ ୬୨
୧୯-୨୦ ପୃଥୁ ଅତ୍ୟନ୍ତ ଭକତିରେ । ଚରଣପଦ୍ମ ଧରି କରେ ॥ ୬୩
ଯାହାକୁ କଲେକ ପୂଜନ । ଯେ ବିଶ୍ୱ-ଆତ୍ମା ଭଗବାନ ॥ ୬୪
ପଦ୍ମପଲାଶ ପ୍ରାୟ ହୋଇ । ଶୋହେ ଯାହାର ନେତ୍ର ଦୁଇ ॥ ୬୫
ପ୍ରସ୍ଥାନ-ଅଭିମୁଖ ହୋଇ । ଯାନ୍ତେହେଁ ପୃଥୁକୁ ଅନାଇଁ ॥ ୬୬
ତା' ଅନୁଗ୍ରହ ବିଚାରିଣ । ବିଳମ୍ବ କିଛି ଆଚରିଣ ॥ ୬୭
ପ୍ରସ୍ଥାନ କଲେକ ଶ୍ରୀଧର । ଯେ ମିତ୍ର ସାଧୁଲୋକଙ୍କର ॥ ୬୮
୨୧ ସେ ଆଦିରାଜା ତଦନ୍ତରେ । ଅଞ୍ଜଳି ରଚି ବେନିକରେ ॥ ୬୯
ହରିଙ୍କି ନ ପାରିଲା ଚାହିଁ । ନୟନ ଯୁଗୁଁ ଅଶ୍ରୁ ବହି ॥ ୭୦
ଲୋତକେ ବିକ୍ଳବ ହୋଇଲା । କିଛିହିଁ କହି ନ ପାରିଲା ॥ ୭୧
ବିଷ୍ଣୁଙ୍କୁ ହୃଦେ ଆଲିଙ୍ଗନ । କରି ରହିଲା ସେହିସ୍ଥାନ ॥ ୭୨
୨୨ ଏଥୁ ଉତ୍ତାରୁ ଅଶ୍ରୁବାରି । ନିଜ ହସ୍ତରେ ପୋଛିକରି ॥ ୭୩
ଅତୃପ୍ତଲୋଚନ ଗୋଚର । ହୋଇଅଛନ୍ତି ଯେ ଈଶ୍ୱର ॥ ୭୪
ଉଚ୍ଚ କନ୍ଧରେ ଗରୁଡ଼ର । ଦେଇ ହସ୍ତାଗ୍ର ଆପଣାର ॥ ୭୫
ପାଦେ ଯେ କ୍ଷିତି ଛୁଇଁଛନ୍ତି । ତାଙ୍କୁ କହିଲା ମହୀପତି ॥ ୭୬

ଶ୍ରୀପୃଥୁରୁବାଚ

୨୩ *ହେ ପ୍ରଭୁ ଦିଅନ୍ତି ଯେ ବର । ତୁମ୍ଭେ ତାହାଙ୍କ ଅଧୀଶ୍ୱର ॥ ୭୭
ତୁମ୍ଭ ଠାବରୁ ବରମାନ । ବରିବ କେଉଁ ବୁଧଜନ ॥ ୭୮

---

* ବ୍ରହ୍ମାଦି ଦେବଗଣ ବର ପ୍ରଦାନ କରନ୍ତି । ସେମାନଙ୍କର ଆତ୍ମାରେ ଅହଂକାର ଅଛି ।

| | | | | |
|---|---|---|---|---|
| | ଯେବଣ ଲୋକମାନଙ୍କର | । | ଆତ୍ମାରେ ଅଛି ଅହଂକାର | ॥ ୭୯ |
| | ତାହାଙ୍କ ସମ୍ବନ୍ଧେ ବିଖ୍ୟାତ | । | ଯେବଣ ବରେ ଏ ଜଗତ | ॥ ୮୦ |
| | ନାରକୀ ଲୋକମାନଙ୍କର | । | ଅଛନ୍ତି ହାଦେ ଯେଉଁ ବର | ॥ ୮୧ |
| | ତାହାଙ୍କୁ ମୁହିଁ ନ ବରଇ | । | ଶୁଣ ହେ କୈବଲ୍ୟଗୋସାଇଁ | ॥ ୮୨ |
| ୨୪ | ହେ ନାଥ ଯେ ମହତ ନର | । | ହୃଦୟଭିତରୁ ତାଙ୍କର | ॥ ୮୩ |
| | ଗଳିତ ହୋଇ ମୁଖଦ୍ୱାରେ | । | ପ୍ରସରି ଥାଇ ଯେ ସଂସାରେ | ॥ ୮୪ |
| | ତୁମ୍ଭ ଚରଣପଙ୍କଜର | । | [1]ମରନ୍ଦରୂପ ଯଶସାର | ॥ ୮୫ |
| | ତାର ଶ୍ରବଣ ଯହିଁ ନାହିଁ | । | ସେ ମୋକ୍ଷ ନ ବାଞ୍ଛଇ ମୁହିଁ | ॥ ୮୬ |
| | ଶୁଣିମା ଅର୍ଥେ ଯଶ ତୋର | । | ଅୟୁତେ କର୍ଣ୍ଣ ମୋର କର | ॥ ୮୭ |
| | ବର କରିଣ ଏହି କଥା | । | ମାଗୁଣ ଅଛି ମୁଁ ସର୍ବଥା | ॥ ୮୮ |
| ୨୫ | ହେ ପ୍ରଭୁ ତୁମ୍ଭର ଚରଣ | । | ପଦ୍ମର ଯେଉଁ ସୁଧାକଣ | ॥ ୮୯ |
| | ତାର ସମ୍ବନ୍ଧୀ ଯେଉଁ ବାତ | । | ସାଧୁଙ୍କ ମୁଖରୁ ନିର୍ଗତ | ॥ ୯୦ |
| | ସେ ପୁଣ କରିବ ପ୍ରଦାନ | । | ଆମ୍ଭମାନଙ୍କୁ ତତ୍ତ୍ୱଜ୍ଞାନ | ॥ ୯୧ |
| | ଆମ୍ଭେ କୁତ୍ସିତ ଯୋଗୀଜନ | । | ପାସୋରିଅଛୁଁ ତତ୍ତ୍ୱଜ୍ଞାନ | ॥ ୯୨ |
| | ଏ ଘେନି ବରଦାନୁଁ ତୋର | । | କି କାର୍ଯ୍ୟ ଅଛିଟି ଆମ୍ଭର | ॥ ୯୩ |
| ୨୬ | ଶୋଭନ ଅଟେ ଯଶ ଯାର | । | ହେ ପ୍ରଭୁ ଜଗତ-ଈଶ୍ୱର | ॥ ୯୪ |
| | ସାଧୁସଙ୍ଗମେ ପ୍ରସଙ୍ଗରେ | । | ମଙ୍ଗଳ ଯଶ ତୋର ବାରେ | ॥ ୯୫ |
| | ଯେ ଜନ ଶ୍ରବଣ କରଇ | । | ସେ ଯେବେ ଗୁଣଜ୍ଞ ଅଟଇ | ॥ ୯୬ |
| | କେମନ୍ତେ ହୋଇବ ବିରତ | । | ପଶୁବିହୀନେ ହେ ଅଚ୍ୟୁତ | ॥ ୯୭ |
| | ଗୁଣସମୂହ ଇଚ୍ଛା କରି | । | *ବରିଲା ଯେଉଁ ଯଶ ଶିରୀ[2] | ॥ ୯୮ |
| ୨୭ | ତୁମ୍ଭେ ତ ପୁରୁଷ-ଉତ୍ତମ | । | ସମସ୍ତ ଗୁଣଙ୍କର ଧାମ | ॥ ୯୯ |
| | ତୁମ୍ଭଙ୍କୁ ଭଜୁଅଛି ମୁହିଁ | । | ଲକ୍ଷ୍ମୀପ୍ରାୟ ଲାଳସ ହୋଇ | ॥ ୧୦୦ |
| | ମୁଁ କ୍ଷୀରସାଗରନନ୍ଦିନୀ | । | ବାଞ୍ଛିଲୁ ଏକା ପତି ବେନି | ॥ ୧୦୧ |
| | ତୋର ଚରଣେ ଏକତାନ | । | ହୋଇଲା ଯେଣୁ ଆମ୍ଭ ମନ | ॥ ୧୦୨ |
| | ଏ ଘେନି ଆମ୍ଭ ଦୁହିଁଙ୍କର | । | କଳି ନୋହିବ ହେ ଈଶ୍ୱର | ॥ ୧୦୩ |

---

୧. ମରନ୍ଦ = ପୁଷ୍ପରସ ।

* ବରିଲା ଯା ସିନ୍ଧୁକୁମାରୀ ।

୨. ଶିରୀ (ଲକ୍ଷ୍ମୀ)

୨୮ ହେ ପ୍ରଭୁ ଜଗତ-ଈଶ୍ୱର । ଯେ ମାତା ଅଟେ ଜଗତର ।।୧୦୪
ସେ ଲକ୍ଷ୍ମୀଠାରେ କଳି ଜାତ । ହୋଇବ ଆମ୍ଭର ନିୟତ ।।୧୦୫
ତାହାର କର୍ମ ଯେ ସେବନ । ତହିଁରେ ଯେଣୁ ଆମ୍ଭ ମନ ।।୧୦୬
ଦୀନବତ୍ସଳ ତୁମ୍ଭେ ଯେଣୁ । ସାନହିଁ ବଡ଼ କର ତେଣୁ ।।୧୦୭
ନିଜ ସ୍ୱରୂପେ ଅବିରତ । ହୋଇଣ ଥାନ୍ତେ ହେ ଅଚ୍ୟୁତ ।।୧୦୮
ଲକ୍ଷ୍ମୀରେ କି କାର୍ଯ୍ୟ ତୁମ୍ଭର । ତାହାକୁ ନ କର ଆଦର ।।୧୦୯
୨୯ ଦୀନବତ୍ସଳ ତୁମ୍ଭେ ଯେଣୁ । ନିଷ୍କାମ ଲୋକମାନେ ତେଣୁ ।।୧୧୦
କାମନା ଅନ୍ତରେ ଭଜନ । କରନ୍ତି ଆହେ ଭଗବାନ ।।୧୧୧
ମାୟାଗୁଣଙ୍କ ବିଳାସରେ । ଉଦୟ ଯାହାର ସଂସାରେ ।।୧୧୨
ଏମନ୍ତ କାର୍ଯ୍ୟକୁ ଯେ ପୁଣି । ନିରସ୍ତ କରିଅଛ ଜାଣି ।।୧୧୩
ତୁମର ଚରଣ ସ୍ମରଣ । ବିନୁ ଏ ସଂସାରରେ ପୁଣ ।।୧୧୪
ନ ଦେଖୁଅଛୁ ସାଧୁଙ୍କର । ଆନ ଫଳକୁ ହେ ଈଶ୍ୱର ।।୧୧୫
୩୦ ବିଶ୍ୱମୋହନ ତୁମ୍ଭ ବାଣୀ । ଏମନ୍ତ ମଣୁଛି ମୁଁ ପୁଣି ।।୧୧୬
ଯେଣୁ ଭଜୁଛି ଯେଉଁ ଜନ । ତାକୁ ବୋଲୁଛ ଏ ବଚନ ।।୧୧୭
ମନରେ ଇଚ୍ଛା ଯେ ତୋହର । ସେ କଥା ମୋହଠାରୁ ବର ।।୧୧୮
ବଚନରଜ୍ଜୁରେ ତୁମ୍ଭର । ବଦ୍ଧ ନୁହଇ[୧] ଯେବେ ନର ।।୧୧୯
ତେବେ ସେ କର୍ମର ଫଳରେ । ମୋହିତ ହୋଇ ଏ ସଂସାରେ ।।୧୨୦
ସେହି କର୍ମକୁ ଆଚରଣ । କରଇ କି ନିମିତ୍ତେ ପୁଣ ।।୧୨୧
୩୧ ହେ ପ୍ରଭୁ ମାୟାରେ ତୁମ୍ଭର । ଖଣ୍ଡିତମତି ହୋଇ ନର ।।୧୨୨
ଆତ୍ମାରୁ ଆନ ଯେ ଅଟଇ । ଯେଣୁ ଅଜ୍ଞାନୀ ତା' ମାଗଇ ।।୧୨୩
ବାଳକମାନଙ୍କର ହିତ । ଯେସନେ ଆଚରଇ ତାତ ।।୧୨୪
ତୁମ୍ଭେ ସେ ପ୍ରକାରେ ଆମ୍ଭର । ହିତକଥାକୁ ଚେଷ୍ଟା କର ।।୧୨୫

ଶ୍ରୀମୈତ୍ରେୟ ଉବାଚ

୩୨ ଏମନ୍ତରୂପେ ତାଙ୍କୁ ସ୍ତୁତି । କରନ୍ତେ ପୃଥୁ ନରପତି ।।୧୨୬
ତାଙ୍କୁ କହିଲେ ଚକ୍ରଧର । ମୋଠାରେ ଭକ୍ତି ହେଉ ତୋର ।।୧୨୭
ଏମନ୍ତ ବୁଦ୍ଧି କି ଭାଗ୍ୟରେ । ହେ ନୃପ ! କଲୁ ତୁ ମୋ ଠାରେ ।।୧୨୮
ଦୁସ୍ତର ମାୟାକୁ ମୋହର । ହେଳେ ତରନ୍ତି ଯେଣେ ନର ।।୧୨୯

---

୧. ଅଟଇ (?) (ତୁଂ ଅସିତଃ ଅବଦ୍ଧଃ, ସ୍ୱାମୀ)

୩୩ ହେ ନୃପ ! ସାବଧାନ ହୋଇ । ମୋହର ଆଜ୍ଞା କର ତୁହି ।।୧୩୦
ମୋ ଆଜ୍ଞା ଯେଉଁ ଲୋକ କରେ । ମଙ୍ଗଳ ଲଭେ ସବୁଠାରେ ।।୧୩୧
୩୪ ଯେବଣ ଅର୍ଥଯୁତ ବାଣୀ । ବେଣତନୁଜ ଛନ୍ତି ଭଣି ।।୧୩୨
ସେ ବଚନକୁ ଦେବ ହରି । ଏ ରୂପେ ପ୍ରତିପୂଜା କରି ।।୧୩୩
ତା'ଠାରୁ ପୂଜାକୁ ଲଭିଣ । ତାକୁ ଅନୁଗ୍ରହ କରିଣ ।।୧୩୪
ଆପଣା ସ୍ଥାନକୁ ଗମନ । କରିବା ଅର୍ଥେ କଲେ ମନ ।।୧୩୫
୩୫ ଦେବତା-ଋଷି-ପିତୃଗଣ । ଗନ୍ଧର୍ବ-ସିଦ୍ଧ ଯେ ଚାରଣ ।।୧୩୬
ପନ୍ନଗ-ଅପ୍‌ସରା-କିନ୍ନର । ଯେ ନାନା ଭୂତ ଖଗ ନର ।।୧୩୭
୩୬ ତାହାଙ୍କୁ ମନ ବଚନରେ । ଅଞ୍ଜଳି ଯୋଡ଼ିଣ ଭକ୍ତିରେ ।।୧୩୮
ପୂଜନ୍ତେ ଯଜ୍ଞେଶବୁଦ୍ଧିରେ । ଗମନ କଲେ ତଦନ୍ତରେ ।।୧୩୯
ଯେ ବିଷ୍ଣୁପାରିଷଦ ଥିଲେ । ସେମାନେ ନିଜ ସ୍ଥାନେ ଗଲେ ।।୧୪୦
୩୭ ଉପାଧ୍ୟାୟଙ୍କ ସହିତରେ । ପୃଥୁ ଯେ ଥିଲେ ସେ ସ୍ଥାନରେ ।।୧୪୧
ହରନ୍ତେ ତାହାଙ୍କର ମନ । ବିଷ୍ଣୁ ଗମିଲେ ନିଜ ସ୍ଥାନ ।।୧୪୨
୩୮ ଦେବତାମାନଙ୍କର ଦେବ । ଅଟନ୍ତି ଯେଉଁ ବାସୁଦେବ ।।୧୪୩
ଶରୀର ପ୍ରକାଶି ଯେ ଥିଲେ । ପୁଣ ଅଦୃଶ୍ୟ ହୋଇଗଲେ ।।୧୪୪
ତାହାଙ୍କୁ କରି ନମସ୍କାର । ନୃପ ଚଳିଲେ ନିଜ ପୁର ।।୧୪୫
ଚିନ୍ତି ଶ୍ରୀକୃଷ୍ଣ ପଦାମ୍ବୁଜ । ଭଣଇ ଦୀନବନ୍ଧୁ ଦ୍ୱିଜ ।।୧୪୬

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସମ୍ବାଦେ
ଶ୍ରୀପୃଥୁସ୍ତବୋ ନାମ ବିଂଶୋଽଧ୍ୟାୟଃ ।।

## ଏକବିଂଶୋଽଧ୍ୟାୟଃ

ଏକବିଂଶେ ତୁ ପୃଥୁନା ପ୍ରଜାନାମନୁଶାସନମ୍ ।
ମହାସତ୍ରେ ସୁରାଦୀନାଂ ମହାସଦସି ବର୍ଣ୍ଣ୍ୟତେ ।।

ଶ୍ରୀମୈତ୍ରେୟ ଉବାଚ

୧ ମୁକ୍ତା, କୁସୁମମାଳାମାନ । ସୁବର୍ଣ୍ଣତୋରଣ ବସନ ।। ୧
ମହାସୁରଭି ଧୂପେ ପୁର । ମଣ୍ଡିତ ସେହି ସେହି ଠାର ।। ୨

୨ ଅଗୁରୁ-ଚନ୍ଦନ ଜଳରେ । ଓଦା ଅଟନ୍ତି ଯେ ନିର୍ଭରେ ॥ ୩
ସେ ହାଟ-ବାଟ-ଅଙ୍ଗଣାର । ସଂଯୋଗ ଅଛି ଯେଉଁ ପୁର ॥ ୪
ପୁଷ୍ପ, ଅକ୍ଷତ, ଫଳମାନ । ଲାଜା, ହରିତ[୧]ଯବ ଆନ ॥ ୫
ଦୀପ-ଆବଳୀରେ ପୂଜିତ । ଯେ ପୁର ଅଟଇ ସଂତତ ॥ ୬
୩ ବର୍ତ୍ତୁଳ[୨] ରମ୍ଭାତରୁ, ବାଳ । କ୍ରମୁକ ବୃକ୍ଷେ ଯେ ସଂକୁଳ ॥ ୭
ତରୁପଲ୍ଲବମାନଙ୍କରେ । ଭୂଷିତ ସକଳ ସ୍ଥାନରେ ॥ ୮
୪ ଦଧିକି ଆଦି ଯେ ଅଶେଷ । ମଙ୍ଗଳ ପଦାର୍ଥ ବିଶେଷ ॥ ୯
ସେମାନ କରିଣ ସମ୍ଭାର । ଦୀପ-ଆବଳୀ ଘେନି କର ॥ ୧୦
ପ୍ରଜା ମିଳିଲେ ତାଙ୍କ ଠାର । ଉତ୍ତମ କନ୍ୟାଏ ଆବର ॥ ୧୧
ଉଜ୍ଜ୍ୱଳ କୁଣ୍ଡଳେ ମଣ୍ଡିତ । ହୋଇଣ ମିଳିଲେ ତ୍ୱରିତ ॥ ୧୨
୫ ସ୍ଫୁରୁଛି ଶଙ୍ଖନାଦମାନ । ବିପ୍ରେ କରନ୍ତି ବେଦସ୍ୱନ ॥ ୧୩
ପ୍ରବେଶ ହେଲେ ଗୃହେ ବୀର । ମନରେ ନାହିଁ ଅହଂକାର ॥ ୧୪
୬ ପୃଥୁଙ୍କୁ ସେହି ସେହି ସ୍ଥାନେ । ଯେ ପୁର-ଜନପଦ-ଜନେ ॥ ୧୫
ପୂଜନ୍ତେ ସନ୍ତୋଷ ହୋଇଣ । ପୃଥୁ ପୂଜିଲେ ତାଙ୍କୁ ପୁଣ ॥ ୧୬
ବିପୁଳ ଯଶ ତାହାଙ୍କର । ଦାନ କରନ୍ତି ପ୍ରିୟ ବର ॥ ୧୭
୭ ନିର୍ଦ୍ଦୋଷ ଅଟେ ଚେଷ୍ଟା ଯାର । ସୁପୂଜ୍ୟତମ ଗୁଣେ ବର ॥ ୧୮
ଏ ଆଦି ନାନା କର୍ମମାନ । କରନ୍ତେ ସେ ପୃଥୁ ରାଜନ ॥ ୧୯
ପାଳିଲେ ମହୀମଣ୍ଡଳକୁ । ରଖିଣ ବିପୁଳ ଯଶକୁ ॥ ୨୦
ବିଷ୍ଣୁ-ପରମ-ପଦ ଯେହି । ପ୍ରବେଶ ହେଲେ ଅନ୍ତେ ତହିଁ ॥ ୨୧

ଶ୍ରୀସୂତ ଉବାଚ

୮ ଅଶେଷ ଗୁଣରେ ଉର୍ଜିତ । ଗୁଣୀମାନଙ୍କରେ ପୂଜିତ ॥ ୨୨
ଆଦିରାଜାର ସେହୁ ଯଶ । ମୈତ୍ରେୟ କରନ୍ତେ ପ୍ରକାଶ ॥ ୨୩
ତାହାଙ୍କୁ କରନ୍ତେ ପୂଜନ । ବିଦୁର କହିଲେ ବଚନ ॥ ୨୪
ହେ ଶଉନକ ! ଯେ ବିଦୁର । ବଇଷ୍ଣବଙ୍କ ମଧ୍ୟେ ବର ॥ ୨୫

---

୧. ହରିତ ଯବ-ମୂଳପାଠସ୍ଥିତ 'ତୋକ୍ମ' ଶବ୍ଦର ଅର୍ଥ ।
୨. ବର୍ତ୍ତୁଳ-ମୂଳପାଠସ୍ଥିତ 'ସବୃତ୍ତ' ଶବ୍ଦର ଅନୁବାଦ । 'ସବୃନ୍ତ' ପାଠାନ୍ତର ଅଛି ।
ସବୃନ୍ତ = ପୁଷ୍ପଫଳଯୁକ୍ତ (ସ୍ୱାମୀ)

### ଶ୍ରୀବିଦୁର ଉବାଚ

୯ ସକଳ ବ୍ରାହ୍ମଣେ ମିଳିଲେ । ଯାହାଙ୍କୁ ଅଭିଷେକ କଲେ ॥
ଅଶେଷ ଦେବତାଙ୍କ ପୂଜା । ଲଭିଲେ ସେହୁ ପୃଥୁରାଜା ॥
ଯେବଣ ଭୁଜଯୁଗେ କ୍ଷିତି । ଦୋହନ କଲେ ନରପତି ॥
ବହନ୍ତେ ବିଷ୍ଣୁତେଜ ତହିଁ । କି କଲେ ନରଦେହ ବହି ॥
୧୦ କେ ବା ପଣ୍ଡିତ ଜନ ହୋଇ । ଏହାର କୀର୍ତ୍ତି ନ ଶୁଣଇଁ ॥
ଅଶେଷ ଭୂପତି ଯାହାର । ବିକ୍ରମ-ଉଚ୍ଛିଷ୍ଟପ୍ରକାର ॥
ସଲୋକପାଳ ଲୋକଗଣ । ଅଛନ୍ତି ଯାହା ଆଶ୍ରୟେଣ ॥
ଆଜହିଁ ଶୁଦ୍ଧ କର୍ମ ଯାର । କହ ମୋତେ ହେ ବିପ୍ରବର ॥

### ଶ୍ରୀମୈତ୍ରେୟ ଉବାଚ

୧୧ ଗଙ୍ଗା ଯମୁନା ନଦୀ ବେନି । ମଧ୍ୟରେ ପୁଣ୍ୟ ଯେ ଅବନି ॥
ତହିଁ ବସନ୍ତେ ସେ ରାଜନ । ପୂର୍ବ ସଞ୍ଚିତ ଭୋଗମାନ ॥
ଭୁଞ୍ଜିଲେ ପୁଣ୍ୟଶେଷ ପାଇଁ । ସୁଖ-ଆସକ୍ତି ଚିତ୍ତେ ନାହିଁ ॥
୧୨ ନ ସ୍ଖଳେ ଆଜ୍ଞା ସବୁଠାରେ । ସାତ ଦ୍ୱୀପରେ ଦଣ୍ଡ ଧରେ ॥
ବ୍ରାହ୍ମଣ ବୈଷ୍ଣବଂ[1] ବାହାରେ । ପ୍ରଭୁତ୍ୱ କରେ ଆନଠାରେ ॥
୧୩ ଏକ ସମୟେ ହେଲା ତାର । ମହାସତ୍ରରେ ଦୀକ୍ଷା ବର ॥
ଦେବତା ବ୍ରହ୍ମରଷି[2]ଙ୍କର । ରାଜରଷିଙ୍କର ଆବର ॥
ସେ ମହାସତ୍ରେ ହେ ସତ୍ତମ ! । ସମାଜ ହୋଇଲା ଉତ୍ତମ ॥
୧୪ ଯଥା ଯୋଗ୍ୟରେ ପୂଜ୍ୟ ଜନ । ସେ ସତ୍ରେ ହୁଅନ୍ତେ ପୂଜନ ॥
ଉଠିଲେ ସଭାମଧ୍ୟେ ଆସି । ତାରାଙ୍କ ମଧ୍ୟେ ଯେହ୍ନେ ଶଶୀ ॥
୧୫ ସ୍ୱଭାବେ ଉନ୍ନତ ଗତ୍ତର । ପୀନ ପ୍ରଲମ୍ବ ଭୁଜ ତାର ॥
ସୁନାସା ସୁମୁଖ ଈକ୍ଷଣ । ପଙ୍କଜପ୍ରାୟକ ଅରୁଣ ॥
ସୁନ୍ଦର ପୀନ ତାର ଅଂସ । ଶୋଭନ ଦନ୍ତ ମନ୍ଦହାସ ॥

---

୧. ବୈଷ୍ଣବ—ମୂଳପାଠସ୍ଥିତ ଅଚ୍ୟୁତଗୋତ୍ର ଶବ୍ଦର ଅନୁବାଦ ।
ଅଚ୍ୟୁତଃ ଗୋତ୍ରପ୍ରବର୍ତ୍ତକଃ ଯେଷାଂ ବୈଷ୍ଣବାନାଂ.... ।
* ହୃଦି ରୂପଂ ମୁଖେ ନାମ ନୈବେଦ୍ୟମୁଦରେ ହରେଃ ।
ପାଦୋଦକଂ ଚ ନିର୍ମାଲ୍ୟଂ ମସ୍ତକେ ଯସ୍ୟ ସୋଽଚ୍ୟୁତଃ ॥

୨. ଦେବରଷି ।

୧୬ ବିଶାଳ ବକ୍ଷ ଅଟେ ଯାର । ଶ୍ରୋଣି ହିଁ ଅଟଇ ବିସ୍ତାର ॥ ୪୭
ଅଶ୍ୱତ୍ଥ ଦଳର ଅଗ୍ରକୁ । ଯେସନେ କରନ୍ତେ ତଳକୁ ॥ ୪୮
ଉପର ହୁଅଇ ବିସ୍ତାର । ତଳକୁ ହୋଏ ଊଣା ତାର ॥ ୪୯
ସେହି ପ୍ରକାରେ ଯା' ଉଦର । ବଳିରେ ଦିଶଇ ସୁନ୍ଦର ॥ ୫୦
ଯେହୁ ତେଜସ୍ୱୀ, ନାଭି ଯାର । ଆବର୍ତ୍ତପ୍ରାୟକ ଗମ୍ଭୀର ॥ ୫୧
ଯା' ଉରୁ କାଞ୍ଚନଉଜ୍ଜ୍ୱଳ । ଉନ୍ନତ ଚରଣ ଯୁଗଳ ॥ ୫୨
୧୭ ସୂକ୍ଷ୍ମ, କୁଟିଳ, ସ୍ନିଗ୍ଧ ଶ୍ୟାମ । କେଶ ଯାହାର ଅଭିରାମ ॥ ୫୩
ଶଙ୍ଖପ୍ରାୟକ ଯା' କନ୍ଧର । ତିନି ରେଖାରେ ମନୋହର ॥ ୫୪
ବହୁତମୂଲ୍ୟ ବସ୍ତ୍ର ବେନି । ପିନ୍ଧି, ଉତ୍ତରୀ କରି ଘେନି ॥ ୫୫
୧୮ ସକଳଗାତ୍ର ଶୋଭା ଯେହି । ପ୍ରକାଶ କରିଛନ୍ତି ତହିଁ ॥ ୫୬
ଭୂଷଣମାନଙ୍କୁ ଦେହରୁ । ମୁଞ୍ଚିଲେ ଦୀକ୍ଷା ଘେନିବାରୁ ॥ ୫୭
ଶ୍ରୀମନ୍ତ କୃଷ୍ଣାଜିନଧର । କୁଶକୁ ଧରିଛନ୍ତି କର ॥ ୫୮
କର୍ମ ଅଟନ୍ତି ଯେ ଉଚିତ । କରିଛନ୍ତି ତା' ସମାପତ ॥ ୫୯
୧୯-୨୦ ସ୍ନିଗ୍ଧ ସଂତାପ ବିନାଶନ । ଯା' ନେତ୍ରଡୋଳା ଶୋଭମାନ ॥ ୬୦
ଏ ରୂପେ କଲେ ସେ ରାଜନ । ସବୁ ଦିଗକୁ ବିଲୋକନ ॥ ୬୧
ହରଷ କରନ୍ତେ ସଭାକୁ । କହିଲେ ଏମନ୍ତ ବାକ୍ୟକୁ ॥ ୬୨
ଯେଉଁ ବାକ୍ୟରେ କର୍ଣ୍ଣପ୍ରିୟ । ଅଛନ୍ତି ଚିତ୍ରପଦଚୟ ॥ ୬୩
ଯେ ବାଣୀ ପ୍ରଶସ୍ତ ନିର୍ମଳ । ଗମ୍ଭୀର ଅତି ଅବ୍ୟାକୁଳ ॥ ୬୪
ସଭିଙ୍କ ଉପକାର ପାଇଁ । କହିଲେ କିବା ନରସାଇଁ ॥

ଶ୍ରୀପୃଥୁରୁବାଚ

୨୧ ହେ ସଭାସଦ ସାଧୁନର । ମଙ୍ଗଳ ସମ୍ଭବୁ ତୁମ୍ଭର ॥ ୬୫
ଯେତେକ ଆସିଛ ଏଠାକୁ । ସମସ୍ତେ ଶୁଣ ମୋ ବାକ୍ୟକୁ ॥ ୬୬
ଧର୍ମ ଜାଣିବାକୁ ଯେ ଜନେ । ବାଞ୍ଛା କରନ୍ତି ନିଜ ମନେ ॥ ୬୭
ସେ ମନକଥା ଆପଣାର । କହନ୍ତି ସାଧୁଙ୍କ ଆଗର ॥ ୬୮
୨୨ ମୁଁ ପ୍ରଜାଙ୍କର ଦଣ୍ଡଧାରୀ । ଜଗତେ ଧାତା ଅଛି କରି ॥ ୬୯
ପ୍ରଜାଙ୍କୁ କରିବି ପାଳନ । ତାଙ୍କୁ କରିବି ବୃତ୍ତି ଦାନ ॥ ୭୦
ତାହାଙ୍କୁ ଯେଝା ମର୍ଯ୍ୟାଦାରେ । ରଖିବି ନାନା ପରକାରେ ॥ ୭୧

୨୩ ପ୍ରାଣୀଙ୍କ ପୂର୍ବ କରମର । ସାକ୍ଷୀ ଅଟନ୍ତି ଯେ ଈଶ୍ୱର ॥ ୭୨
ତାହାଙ୍କୁ ସଂତୋଷ ସେ ହୋଇ । ସେ ଯେଉଁ ଲୋକମାନ ପାଇ ॥ ୭୩
କାମଦ ସେହୁ ଲୋକମାନେ । କହନ୍ତି ବ୍ରହ୍ମବାଦୀଜନେ ॥ ୭୪
ପ୍ରଜାପାଳନ ଆଦି କଲେ । ସେ ଲୋକେ ମୋର ହେବେ ଭଲେ ୭୫
୨୪ ପ୍ରଜାଙ୍କୁ ଧର୍ମ ନ ଶିଖାଇ । ଯେ ରାଜା କରକୁ ଘେନଇଁ ॥ ୭୬
ପ୍ରଜାଙ୍କ ପାପ ସେ ଭୁଞ୍ଜଇ । ନିଜ ଐଶ୍ୱର୍ଯ୍ୟକୁ ଛାଡ଼ଇ ॥ ୭୭
୨୫ ହେ ପ୍ରଜାମାନେ ! ମୁଁ ତୁମ୍ଭର । ପାଳନକର୍ତ୍ତା ତେଣୁ ମୋର ॥ ୭୮
ପରଲୋକରେ ହିତ[୧] ପାଇଁ । ମନରୁ ଅସୂୟା ଛଡ଼ାଇ ॥ ୭୯
ଧର୍ମକୁ ଆଚରଣ କର । ମନ ନିବେଶି କୃଷ୍ଣଠାର ॥ ୮୦
ତେବେ ଅତ୍ୟନ୍ତ ଅନୁଗ୍ରହ । ହୋଇବ ମୋର ନିଃସନ୍ଦେହ ॥ ୮୧
୨୬ ହେ ପିତୃ, ଦେବ, ଋଷିଜନେ । ନିର୍ମଳ ଅଟ ତୁମ୍ଭେମାନେ ॥ ୮୨
ସେ କଥା ଆନନ୍ଦ ହୋଇଣ । ସ୍ୱୀକାର କର ତୁମ୍ଭେ ପୁଣ ॥ ୮୩
ଯେ କର୍ମ କରେ, ଯେ ଶିଖାଇ । ଯେ ଶୁଣି ଆନନ୍ଦ ଲଭଇ ॥ ୮୪
ସେ ତିନିଙ୍କର ଫଳ ଯେଣୁ । ସମାନ ପରଲୋକେ ତେଣୁ ॥ ୮୫
୨୭ ହେ ପୂଜ୍ୟତମମାନେ ଶୁଣ । କେହୁଣିମାନଙ୍କ ମତେଣ ॥ ୮୬
ଅଛଇ ଏକ ଅଧୀଶ୍ୱର । ଯଜ୍ଞପତି ନାମ ତାହାର ॥ ୮୭
ଏ ଲୋକ ପରଲୋକ ଦୁଇ । ଏଥିରେ କାନ୍ତିମନ୍ତ ହୋଇ ॥ ୮୮
ଅଛନ୍ତି ଭୋଗଭୂମିମାନ । ଦୀପ୍ତ ଶରୀରମାନେ ଆନ ॥ ୮୯
୨୮ ମନୁ, ଉତ୍ତାନପାଦ ମିଶି । ଯେ ପ୍ରିୟବ୍ରତ ରାଜଋଷି ॥ ୯୦
ଯେ ରାଜା ଧ୍ରୁବ ନାମେ ଖ୍ୟାତ । ଯେ ଅଙ୍ଗ ଆମ୍ଭ ପିତାତାତ ॥ ୯୧
୨୯ ଏରୂପ ଆନମାନଙ୍କର । ପିତାମହର ଶଙ୍କରର ॥ ୯୨
ପ୍ରହ୍ଲାଦ-ବଳିର ବିଷ୍ଣୁରେ । କୃତ୍ୟ ଅଛି ଏ ସଂସାରରେ ॥ ୯୩
୩୦ ବେଣକୁ ଆଦି ହୋଇ ଯେତେ । ଧର୍ମମୋହିତ ଏ ଜଗତେ ॥ ୯୪
କେବଳ ତାହାଙ୍କ ବାହାରେ । ଶୋଚନାଯୋଗ୍ୟ ସେହୁ ନରେ ॥ ୯୫
ତ୍ରିବର୍ଗ, ସ୍ୱର୍ଗ, ମୋକ୍ଷଙ୍କର । ଏକାନ୍ତ ହେତୁ ଯେ ଈଶ୍ୱର ॥ ୯୬
୩୧ ଚରଣସେବା ଇଚ୍ଛା ଯାର । ସଂସାରତାପବନ୍ତଙ୍କର ॥ ୯୭
ଅଶେଷ ଜନ୍ମରେ ସଂଚିତ । ମନରେ ଯେଉଁ ମଳ ସ୍ଥିତ ॥ ୯୮

---

୧. ଗତି ।

| | | | |
|---|---|---|---|
| | ତତ୍‌କାଳ କରେ ତା' ଦହନ । | ବଢ଼ନ୍ତେ ଇଚ୍ଛା ଦିନୁଁ ଦିନ | ॥ ୯୯ |
| | ପାଦ-ଅଙ୍ଗୁଷ୍ଠଜାତ ନଦୀ । | ଯେସନେ କଳୁଷକୁ ଭେଦି | ॥୧୦୦ |
| ୩୨ | ମନର ବିବିଧ କଳୁଷ । | ବିନାଶ କରିଣ ପୁରୁଷ | ॥୧୦୧ |
| | ବୈରାଗ୍ୟଂ ବିଜ୍ଞାନ ଯେ ଜାତ । | ତାର ସକାଶୁଁ ବୀର୍ଯ୍ୟବନ୍ତ | ॥୧୦୨ |
| | ଚରଣମୂଳକୁ ଯାହାର । | ଆଶ୍ରୟ କରି, ଆପଣାର | ॥୧୦୩ |
| | କ୍ଳେଶମାନଙ୍କୁ ଯେ ଦିଅଇ । | ସେ ସଂସାରକୁ ସେ ନ ପାଇ | ॥୧୦୪ |
| ୩୩ | ଅଧ୍ୟାପନକୁ ଆଦି ଯେତେ । | ନିଜ ଜୀବିକା ଏ ଜଗତେ | ॥୧୦୫ |
| | ମନ, ବଚନ, କାୟ, ଗୁଣ । | ଯେ ଧ୍ୟାନ, ସ୍ତୁତି, ପୂଜା ପୁଣ | ॥୧୦୬ |
| | ତେଣେ ତାହାଙ୍କୁ ତୁମ୍ଭେ ଭଜ । | ସର୍ବ କପଟମାନ ତେଜ | ॥୧୦୭ |
| | କାମକୁ ପ୍ରଦାନ କରଇ । | ଯାହାର ପାଦପଦ୍ମ ଦୁଇ | ॥୧୦୮ |
| | ଯାହାର ଅଧିକାର ଯେତେ । | ସେ ରୂପେ ତାହାଙ୍କୁ ଭଜନ୍ତେ | ॥୧୦୯ |
| | ନିଶ୍ଚୟେଂ ଅର୍ଥସିଦ୍ଧି ହେବ । | ମନେ ଆଶଙ୍କା ନ ଧରିବ | ॥୧୧୦ |
| ୩୪ | ବିଶୁଦ୍ଧ ବିଜ୍ଞାନରେ ଘନ । | ହେଲେହେଁ ଏହୁ ଭଗବାନ | ॥୧୧୧ |
| | ଏ ହାଦେ ହେଲେହେଁ ନିର୍ଗୁଣ । | ଏ କର୍ମମାର୍ଗରେ ଏ ପୁଣ | ॥୧୧୨ |
| | ନାନା ବିଶେଷ ଗୁଣଯୁତ । | ଯଜ୍ଞରୂପରେ ସୁବିଖ୍ୟାତ | ॥୧୧୩ |
| | ନାନାପ୍ରକାରେ ଦ୍ରବ୍ୟ ଯେତେ । | ବ୍ରୀହି ଆଦିକି ଏ ଜଗତେ | ॥୧୧୪ |
| | ଯେ ଅଟେ ଶୁକ୍ଳଆଦି ଗୁଣ । | କୁଟିବା ଆଦି କ୍ରିୟା ପୁଣ | ॥୧୧୫ |
| | ମନ୍ତ୍ର ଅଟନ୍ତି ଯେ ଆବର । | ଯେ ଅଙ୍ଗସାଧ୍ୟ ଉପକାର | ॥୧୧୬ |
| | ସଂକଳ୍ପ, ପଦାର୍ଥ ଶକତି । | ଜ୍ୟୋତିଷ୍ଟୋମାଦି ଯେବା ଖ୍ୟାତି | ॥୧୧୭ |
| | ଏତେ ପ୍ରକାରେ ଭଗବାନ । | ଯେ ଯଜ୍ଞରୂପରେ ସଂପନ୍ନ | ॥୧୧୮ |
| ୩୫ | ଯେହୁ ଜନମେ ପ୍ରକୃତିରେ । | କାଳ, ବାସନା, କରମରେ | ॥୧୧୯ |
| | ସେ ଦେହେ[୧] ବିଷୟ-ଆକାର । | ବୁଦ୍ଧିକି ପାଇ ଏ ଈଶ୍ୱର | ॥୧୨୦ |
| | ଆନନ୍ଦସ୍ୱରୂପ ହୋଇଣ । | କ୍ରିୟାର ଫଳ ଯେହୁ ପୁଣ | ॥୧୨୧ |
| | ସେ ରୂପେ ହୁଅଇ ପ୍ରକାଶ । | କାଷ୍ଠରେ ଯେସନେ ହୁତାଶ | ॥୧୨୨ |
| | ଦାରୁ ହିଁ ବକ୍ର ଦୀର୍ଘ ଯେତେ । | ଅଗ୍ନିହିଁ ପ୍ରକାଶଇ ତେତେ | ॥୧୨୩ |

---

୧. ନୋହେ (?) * ''ଏତସ୍ୟ ଏବ ଆନନ୍ଦସ୍ୟ ଅନ୍ୟାନି ଭୂତାନି ମାତ୍ରାମୁପଜୀବନ୍ତି'' ଇତି ଶ୍ରୁତିଃ ।

୩୬ ଦେବତାମାନଙ୍କ ଈଶ୍ୱର । ଯେ ହରି ଗୁରୁ ଜଗତର ॥୧୨୪
ଏ ପ୍ରଜାମାନେ ତାଙ୍କୁ ମୋର । ଧରଣୀତଳେ ନିରନ୍ତର ॥୧୨୫
ସ୍ୱଧର୍ମଯୋଗେ ଭଜୁଛନ୍ତି । ଦୃଢ଼ବ୍ରତ ହିଁ ଏ ଅଟନ୍ତି ॥୧୨୬
ଏଣୁ ଏ ଅନୁଗ୍ରହ ମୋତେ । କରୁଅଛନ୍ତି ଏ ଜଗତେ ॥୧୨୭

୩୭ ଅତି ସମୃଦ୍ଧିରେ ସଂଯୁତ । ଯେ ରାଜକୁଳ ଅବିରତ ॥୧୨୮
ତା'ଠାରୁ ତେଜ ଜାତ ଯେହୁ । ସେ ବିପ୍ରକୁଳଠାରେ ନୋହୁ ॥୧୨୯
ସେ ନୋହୁ ବୈଷ୍ଣବକୁଳରେ । ସହିଷ୍ଣୁ ଭାବେ, ତପସ୍ୟାରେ ॥୧୩୦
ବିଦ୍ୟାରେ ଅତ୍ୟନ୍ତ ଦୀପିତ । ଯେ ବିପ୍ର, ବିଷ୍ଣୁର ଯେ ଭକ୍ତ ॥୧୩୧

୩୮ ବ୍ରହ୍ମଣ୍ୟଦେବ ପୁରାତନ । ପୁରୁଷ ଯେଉଁ ଭଗବାନ ॥୧୩୨
ସେ ଯେଉଁ ବିପ୍ରଙ୍କ ଚରଣ । ବନ୍ଦନ ସକାଶରୁ ପୁଣ ॥୧୩୩
ଯେ ଲକ୍ଷ୍ମୀ ନୁହଇ ବିନାଶ । ଜଗତପବିତ୍ର ଯେ ଯଶ ॥୧୩୪
ଏ ବେନି କଥାକୁ ଲଭିଲେ । ମହତମଧ୍ୟେ ଶ୍ରେଷ୍ଠ ହେଲେ ॥୧୩୫

୩୯ ସକଳ ଜନମାନଙ୍କର । ହୃଦୟବର୍ତ୍ତୀ ଯେ ଈଶ୍ୱର ॥୧୩୬
ନିଜ ଇଚ୍ଛାଏ ଶୋଭା ପାନ୍ତି । ବ୍ରାହ୍ମଣପ୍ରିୟ ଯେ ଅଟନ୍ତି ॥୧୩୭
ସେ ଯେଉଁ ବ୍ରାହ୍ମଣସେବାଏ । ତୋଷ ହୁଅନ୍ତି ଅତିଶୟେ ॥୧୩୮
ସେ ବିଷ୍ଣୁଧର୍ମପରାୟଣେ । ବିନୟ ହୋଇ ଅନୁକ୍ଷଣେ ॥୧୩୯
ସେ ବିପ୍ରକୁଳକୁ ମାନବେ । ଭଜ ହେ ତୁମ୍ଭେ ସର୍ବଭାବେ ॥୧୪୦

୪୦ ଯେବଣ ବ୍ରାହ୍ମଣକୁଳର । ପ୍ରତ୍ୟହ ସେବନରୁ ନର ॥୧୪୧
ଅତିଶୟରେ ସୁପ୍ରସନ୍ନ । ଅଟଇ ଯେଉଁ ନିଜ ମନ ॥୧୪୨
ସେ ବିପ୍ରଠାରୁ ଦେବଙ୍କର । ଶ୍ରେଷ୍ଠ ଅଛି କି ମୁଖ ଆର ॥୧୪୩

୪୧ ଇନ୍ଦ୍ରାଦି ଦେବଙ୍କ ନାମରେ । ହବିକି ବ୍ରାହ୍ମଣମୁଖରେ ॥୧୪୪
ଶ୍ରଦ୍ଧାରେ ତତ୍ତ୍ୱଜ୍ଞାନୀମାନେ । ହୋମ କରନ୍ତେ ଅନୁଦିନେ ॥୧୪୫
ଯେମନ୍ତ ରୂପେ ଭଗବାନ । ସେ ହବି କରଇ ଭୋଜନ ॥୧୪୬
ଚେତନାଶୂନ୍ୟ ଅନଳରେ । ହୋମ କରନ୍ତେ ସେ ପ୍ରକାରେ ॥୧୪୭
ବିଷ୍ଣୁ ନ କରନ୍ତି ଭୋଜନ । ସେ ଜ୍ଞାନଗମ୍ୟ ଭଗବାନ ॥୧୪୮
ଯାହାଠାରୁ ଇନ୍ଦ୍ରିୟମାନେ । ଗମନ୍ତି ନାହିଁ ଅନ୍ୟସ୍ଥାନେ ॥୧୪୯

| | | | | |
|---|---|---|---|---|
| ୪୨ | ନିତ୍ୟ, ନିର୍ମଳ, ସନାତନ | । | ବେଦକୁ ଯେଉଁ ବିପ୍ରଜନ | ।।୧୫୦ |
| | ଶ୍ରଦ୍ଧା, ତପସ୍ୟା, ମଙ୍ଗଳ୧ରେ | । | ମୌନ, ସଂଯମ ସମାଧିରେ | ।।୧୫୧ |
| | ଅର୍ଥଗୋଚର-ଅର୍ଥେ କରି | । | ଏକାନ୍ତ ଭାବେ ଛନ୍ତି ଧରି | ।।୧୫୨ |
| | ଯେଉଁ ବେଦରେ ଏ ଜଗତ | । | ଶୋଭା ପାଉଛି ଅବିରତ | ।।୧୫୩ |
| | ଦର୍ପଣତଳରେ ଯେସନ | । | ବିଶ୍ୱ ଦିଶଇ ଶୋଭମାନ | ।।୧୫୪ |
| ୪୩ | ସେ ବିପ୍ରମାନଙ୍କ ଚରଣ | । | ପଙ୍କଜରେଣୁ ଅନୁକ୍ଷଣ | ।।୧୫୫ |
| | ଆୟୁଷ ଥିବାଯାଏ ମୁହିଁ | । | କିରୀଟ ପରେ ଥିବି ବହି | ।।୧୫୬ |
| | ହେ ପୂଜ୍ୟମାନେ ନିଜ ଶିର | । | ବହନ୍ତେ ଯେଉଁ ଧୂଳି ନର | ।।୧୫୭ |
| | ଥାଇ ତାହାର ଯେ କଲୁଷ | । | ବେଗେ ସେ ହୁଅଇ ବିନାଶ | ।।୧୫୮ |
| | ଏହାକୁ ସବୁ ଗୁଣମାନେ | । | ଭଜନ୍ତି ଯାଇ ଏ ଭୁବନେ | ।।୧୫୯ |
| ୪୪ | ଯେ ଅଟେ ଗୁଣର ଅୟନ | । | ଯାହାର ସୁଚରିତ ଧନ | ।।୧୬୦ |
| | ଯେ ଲୋକ କୃତଜ୍ଞ ଅଟଇ | । | ବୃଦ୍ଧଙ୍କୁ ଆଶ୍ରୟ କରଇ | ।।୧୬୧ |
| | ତାହାକୁ ସକଳ ସଂପତ୍ତି | । | କରିଥାଆନ୍ତି ଅନୁବୃତ୍ତି | ।।୧୬୨ |
| | ଗୋଗଣ ବ୍ରହ୍ମଗଣ ମୋତେ | । | ପ୍ରସନ୍ନ ହୁଅନ୍ତୁ ସଂତତେ | ।।୧୬୩ |
| | ଭୃତ୍ୟସହିତେ ଜନାର୍ଦ୍ଦନ | । | ମୋତେ ହୁଅନ୍ତୁ ସୁପ୍ରସନ୍ନ | ।।୧୬୪ |

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୪୫ | ନୃପତି ବୋଲନ୍ତେ ଏ ବାଣୀ | । | ପିତୃ, ଦେବତା, ଦ୍ୱିଜ ଶୁଣି | ।।୧୬୫ |
| | ସ୍ତୁତିକି କଲେ ତୋଷମନେ | । | ସାଧୁବାଦରେ ସାଧୁଜନେ | ।।୧୬୬ |
| ୪୬ | ପୁତ୍ରରେ ପରଲୋକମାନ | । | ଜିଣଇଁ ଲୋକ, ଏ ବଚନ | ।।୧୬୭ |
| | କହିଣ ଅଛି ଯେଉଁ ଶ୍ରୁତି | । | ସେହୁ ଅଟଇ ସତ୍ୟବତୀ | ।।୧୬୮ |
| | ଯେ ପାପୀ ବେଣ ରାଜା ଥିଲା | । | ବ୍ରହ୍ମଦଣ୍ଡରେ ହତ ହେଲା | ।।୧୬୯ |
| | ଯେଣୁ ସେ ଉତ୍ତମ ପୁତ୍ରକୁ | । | ପାଇ ତରିଲା ନରକକୁ | ।।୧୭୦ |
| ୪୭ | ହିରଣ୍ୟକଶିପୁ ନିରୟେ | । | ପଡ଼ନ୍ତେ ବିଷ୍ଣୁର ନିନ୍ଦାଏ | ।।୧୭୧ |
| | ପ୍ରହ୍ଲାଦ ନାମେ ପୁତ୍ର ଥିଲା | । | ତା' ଅନୁଭାବରୁ ତରିଲା | ।।୧୭୨ |

---

୧. ମଙ୍ଗଳ :-

ପ୍ରଶସ୍ତାଚରଣଂ ନିତ୍ୟମପ୍ରଶସ୍ତସ୍ୟ ବର୍ଜନମ୍ ।
ଏତଦ୍ଧି ମଙ୍ଗଳଂ ପ୍ରୋକ୍ତମୃଷି ଭିସ୍ତତ୍ତ୍ୱଦର୍ଶିଭିଃ ।। ୧ ।।

| | | | | |
|---|---|---|---|---|
| ୪୮ | ହେ ବୀରବର ! ପୃଥ୍ୱୀତାତ | । | ଜୀଅ ତୁ ବରଷ ବହୁତ | ।।୧୭୩ |
| | ସମସ୍ତ ଲୋକମାନଙ୍କର | । | ଯେ ଏକକର୍ତ୍ତା ଚକ୍ରଧର | ।।୧୭୪ |
| | ଯାହାର ସେହି ବିଷ୍ଣୁଠାରେ | । | ଭଗତି ଅଛି ଏ ପ୍ରକାରେ | ।।୧୭୫ |
| ୪୯ | ତୁମ୍ଭର କୀର୍ତ୍ତି ମନୋହର | । | ପବିତ୍ର ଅଟଇ ଆବର | ।।୧୭୬ |
| | ତୁମ୍ଭଙ୍କୁ ପା'ନ୍ତେ ନାଥ କରି | । | ଆମ୍ଭର ନାଥ ହେଲେ ହରି | ।।୧୭୭ |
| | ବ୍ରହ୍ମଣ୍ୟଦେବ ଯେ ଈଶ୍ୱର | । | ଉତ୍ତମଶ୍ଳୋକମଧ୍ୟେ ବର | ।।୧୭୮ |
| | ଯେ ତୁମ୍ଭେ ତାହାଙ୍କ କଥାକୁ | । | ବ୍ୟକତ କରୁଛ ଆମ୍ଭଙ୍କୁ | ।।୧୭୯ |
| ୫୦ | ନିଜ ସେବକ ଯେଉଁ ଜନ | । | ତାହାକୁ ଧର୍ମଶିକ୍ଷାଦାନ | ।।୧୮୦ |
| | ହେ ନାଥ ! ଅତିଶୟ ହୋଇ | । | ଅଦ୍ଭୁତ ଏହା ତୋର ନୋହି | ।।୧୮୧ |
| | ମହତ ଅଟନ୍ତି ଯେ ଜନ | । | କରୁଣାବନ୍ତ ଅନୁଦିନ | ।।୧୮୨ |
| | ଯେ ଅନୁରାଗ ପ୍ରଜାଠାର | । | ସ୍ୱଭାବ ଅଟେ ସେ ତାଙ୍କର | ।।୧୮୩ |
| ୫୧ | ଅଦୃଷ୍ଟ ରୂପେ ଯେ ବିଖ୍ୟାତ | । | ସେ କର୍ମମାନଙ୍କେ ସଂତତ | ।।୧୮୪ |
| | ଆମ୍ଭେ ଅଜ୍ଞାନେ ଅନ୍ଧ ହୋଇ | । | ସଂସାରେ ଭ୍ରମୁଛୁ ଗୋସାଇଁ | ।।୧୮୫ |
| | ତୁମ୍ଭେ ଆମ୍ଭଙ୍କୁ ସେ ସଂସାର | । | ପାରକୁ ନେଲ ଆଜ ବୀର | ।।୧୮୬ |
| ୫୨ | ବିବୃଦ୍ଧ[୧]- ସତ୍ତ୍ୱ ଗୁଣ ଯାର | । | ଯେ ମହାପୁରୁଷ ଈଶ୍ୱର | ।।୧୮୭ |
| | ଯେହୁ ବ୍ରାହ୍ମଣ-ଜାତି ହୋଇ | । | କ୍ଷତ୍ରିୟମାନଙ୍କୁ ପାଳଇ | ।।୧୮୮ |
| | {କ୍ଷତ୍ରିୟ ଜାତି ପୁଣ ହୋଇ | । | ବ୍ରାହ୍ମଣମାନଙ୍କୁ ପାଳଇ} | |
| | ବ୍ରାହ୍ମଣ କ୍ଷତ୍ରିୟ ଜାତିରେ | । | ଆବେଶ ହୋଇ ତଦନ୍ତରେ | ।।୧୮୯ |
| | ଜଗତ କରେ ଯେ ପାଳନ | । | ତାହାକୁ କରୁଛୁଁ ବନ୍ଦନ | ।।୧୯୦ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ।।୧୯୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁବାକ୍ୟଂ ନାମ ଏକବିଂଶୋଽଧ୍ୟାୟଃ ।।

---

୧. ବିଶୁଦ୍ଧ ।

# ଦ୍ୱାବିଂଶୋଽଧ୍ୟାୟଃ

ଦ୍ୱାବିଂଶେ ତୁ ପରଂ ଜ୍ଞାନଂ ପୃଥବେ ହରିଶାସନାତ୍ ।
ସନତ୍କୁମାରୋ ଭଗବାନୁପାଦିଶଦିତୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ପୃଥୁଳ ବିକ୍ରମ ଯାହାର । ସେହି ପୃଥୁଙ୍କୁ ଏ ପ୍ରକାର ॥
ସ୍ତୁତି କରନ୍ତେ ଜନମାନେ । ପ୍ରବେଶ ହୋଇଲେ ସେ ସ୍ଥାନେ ॥
ସୂର୍ଯ୍ୟସମାନ ତେଜଧାରୀ । ସନକ ଆଦି ମୁନି ଚାରି ॥
୨ ସେମାନେ ସିଦ୍ଧଙ୍କ ଈଶ୍ୱର । ଆକାଶୁଁ ଆସନ୍ତି ଭୂମିର ॥
ତେଜରେ ଚିହ୍ନିତ ଅଟନ୍ତି । ଲୋକଙ୍କୁ ଅପାପ କରନ୍ତି ॥
ଭୃତ୍ୟଙ୍କ ସହିତେ ରାଜନ । ତାହାଙ୍କୁ କଲା ବିଲୋକନ ॥
୩ *ସେମାନଙ୍କର ଦରଶନେ । ଊର୍ଦ୍ଧ୍ୱକୁ ଯା'ନ୍ତେ ପ୍ରାଣମାନେ ॥
ସେ ପ୍ରାଣମାନ ଲେଉଟାଇ । ଆଣିମା ପରାୟେକ ହୋଇ ॥
ସଦସ୍ୟ ଭୃତ୍ୟର ସହିତ । ଉଠିଲେ ବେଣଙ୍କର ସୁତ ॥
ଶବଦ ଆଦିକି ଯେମନ୍ତ । ଜୀବ[୧] ହୁଅଇ ଅନୁଗତ ॥
୪ ଗଉରବରେ ବଶ ହୋଇ । ବିନୟେ ଗ୍ରୀବାକୁ ଲୁଆଁଇ ॥
ସଭ୍ୟ ଅଟଇ ଏ ଜଗତେ । ପୂଜିଲା ତାଙ୍କୁ ବିଧିମତେ ॥
ଆସନ, ଅର୍ଘ୍ୟ ଯେବା ପୁଣ । ସେମାନ କଲେ ସେ ଗ୍ରହଣ ॥
୫ ସେମାନଙ୍କର ପାଦ ଧୋଇ । ସେ ଜଳ ନରପତି ନେଇ ॥
ଧୋଇଲେ କେଶବନ୍ଧନକୁ । ସୁଶୀଳ ଲୋକଙ୍କ ବୃତ୍ତକୁ ॥
ମାନନା କଲା ପ୍ରାୟେ ହୋଇ । କଲେକ ଆଚରଣ ତହିଁ ॥
୬ ନିଜ ସ୍ଥାନରେ ଅଗ୍ନିମାନ । ଯେସନେ ଦିଶନ୍ତି ଶୋଭନ ॥
ହେମ-ଆସନେ ବସିଛନ୍ତି । ଶିବଙ୍କ ଅଗ୍ରଜ ଅଟନ୍ତି ॥
ଶ୍ରଦ୍ଧାସଂଯମେ ଯୁତ ହେଲେ । ନୃପତି ତାହାଙ୍କୁ ବୋଇଲେ ॥

---

* ଊର୍ଦ୍ଧ୍ୱଂ ପ୍ରାଣା ହ୍ୟୁତ୍କ୍ରାମନ୍ତି ଯୂନଃ ସ୍ଥବିର ଆୟତି ।
ପ୍ରତ୍ୟୁତ୍ଥାନାଭିବାଦାଭ୍ୟାଂ ପୁନସ୍ତାନ୍ ପ୍ରତିପଦ୍ୟତେ ॥ ୧ ॥ (ସ୍ମୃତିଃ)

୧. ଜୀବ-ମୂଳ'ଇନ୍ଦ୍ରିୟେଶ' ଶବ୍ଦର ଅର୍ଥ ।

### ଶ୍ରୀପୃଥୁରୁବାଚ

୭ ମଙ୍ଗଳ ଅଟେ ମାର୍ଗ ଯାର । ତୁମ୍ଭେ ଏମନ୍ତ ମୁନିବର ॥ ୨୦
ଯୋଗୀମାନେ ହେଁ ଦେଖିବାକୁ । ଶକତ ନୁହନ୍ତି ତୁମ୍ଭଙ୍କୁ ॥ ୨୧
କି ଶୁଭ କଲି ଆଚରଣ । ତୁମ୍ଭର ହେଲା ଦରଶନ ॥ ୨୨
୮ ଯା'ଠାରେ ବିପ୍ରେ ପରସନ୍ନ । ଶିବ, ସାନୁଗ[1] ବିଷ୍ଣୁ ପୁଣ ॥
ଦୁର୍ଲଭ କିବା ହୋଏ ତାର । ଏ ଲୋକେ ପରଲୋକେ ଆର ॥
୯ ଲୋକଙ୍କୁ କଲେହେଁ ଭ୍ରମଣ । ଯାଙ୍କୁ ନ ଜାଣେ ଆନ ଜଣ ॥ ୨୩
ଆତ୍ମା ଯେ ସମସ୍ତ ଦେଖଇ । ତାକୁ ଯେସନେ ଦୃଶ୍ୟ ହୋଇ ॥ ୨୪
ସମସ୍ତେ ନ ପାରନ୍ତି ଜାଣି । ମହତ ଆଦି ମଧ୍ୟେ ପୁଣି ॥ ୨୫
୧୦ ସେ ଗୃହମେଧି ସାଧୁଜନ । *ଅଧନ ହୋଇଲେହେଁ ଧନ୍ୟ ॥ ୨୬
ଯେବଣ ସାଧୁମାନଙ୍କର । ଗୃହ ଅଟନ୍ତି ଏ ପ୍ରକାର ॥ ୨୭
ଭୂମି, ସଲିଳ, ତୃଣ, ପତି । ସେବକ ଆଦି ଯେ ଅଛନ୍ତି ॥ ୨୮
ପୂଜ୍ୟ ଲୋକଙ୍କ ସାଉକାରେ । ଯୋଗ୍ୟ ଏମାନେ ଯେଉଁ ଘରେ ॥ ୨୯
୧୧ ସର୍ବ ସଂପତ୍ତିମାନେ ଯହିଁ । ରହିଥିଲେ ହେଁ ପୂର୍ଣ୍ଣ ହୋଇ ॥ ୩୦
ବୈଷ୍ଣବପାଦତୀର୍ଥେ ହୀନ । ହୁଅନ୍ତି ଯେଉଁ ଗୃହମାନ ॥ ୩୧
ସର୍ପଆଳୟ ଦ୍ରୁମ ପ୍ରାଏ । ସେମାନେ ଅଟନ୍ତି ନିଶ୍ଚୟେ ॥ ୩୨
୧୨ ହେ ଦ୍ୱିଜବରେ ! ସୁଶୋଭନ । ତୁମ୍ଭମାନଙ୍କ ଆଗମନ ॥ ୩୩
ଯେଣୁ ମୋକ୍ଷକୁ ବାଞ୍ଛି ମନେ । ବାଳକରୂପେ ତୁମ୍ଭେମାନେ ॥ ୩୪
କରୁଣ ଅଛ ବ୍ରତମାନ । ସ୍ୱଭାବେ ଅଟ ଧୀର ଜନ ॥ ୩୫
୧୩ ହେ ପ୍ରଭୁମାନେ ! ଯେ ସଂସାର । ବିପତ୍ତିଙ୍କର ଜନ୍ମଘର ॥ ୩୬
ଆମ୍ଭେ ଯେ ଆପଣୀ କର୍ମରେ । ପଡ଼ିଛୁଁ ଆସିଣ ଏଥିରେ ॥ ୩୭
ବିଷୟମାନଙ୍କୁ ବିଚାରି । ଜାଣିଛୁ ପୁରୁଷାର୍ଥ କରି ॥ ୩୮
ଆମ୍ଭର ଅଛି କି କଲ୍ୟାଣ । ତୁମ୍ଭଙ୍କୁ ପଚାରୁଛୁ ପୁଣ ॥ ୩୯
୧୪ ଆତ୍ମାରେ ବିହାର ତୁମ୍ଭର । ଏ ଘେନି କରି ତୁମ୍ଭ ଠାର ॥ ୪୦
କୁଶଳ ପଚାରିବା କଥା । ମନକୁ ନ ଆସେ ସର୍ବଥା ॥ ୪୧

---

୧. ସାନୁଗ = ଅନୁଗ ଅର୍ଥାତ୍ ଭୃତ୍ୟ ସହିତ ବର୍ତ୍ତମାନ ।

* ଫଳମୂଳତୃଣୈର୍ବାପି ବାଗ୍‌ଭିର୍ଦତ୍ତବିଲୋକନୈଃ ।
ପୂଜ୍ୟନ୍ତେଽତିଥୟଃ ସଦ୍‌ଭିର୍ବିଲୁପ୍ତବିଭବୈରପି । ୧ ।

କୁଶଳ, ଅକୁଶଳ ହୋଇ । ବୁଦ୍ଧିରେ ବୃତ୍ତିମାନ ଯେହି ॥ ୪୨
ସେମାନେ ଯେଉଁ ତୁମ୍ଭଠାରେ । ସଂଭବ ନୁହନ୍ତି ସଂସାରେ ॥ ୪୩
୧୫ ସଂତାପବନ୍ତ ଲୋକଙ୍କର । ତୁମ୍ଭେ ଯେ ସୁହୃଦ ଆକାର ॥ ୪୪
ତେଣୁ ମୁଁ ବିଶ୍ୱାସକୁ ପାଇ । ଏହି ବିଷୟେ ପଚାରଇ ॥ ୪୫
ଯେଉଁ ପ୍ରକାରେ ଏ ସଂସାରେ । ମଙ୍ଗଳ ହୁଅଇ ବେଗରେ ॥ ୪୬
୧୬ ଧୀର ଲୋକଙ୍କ ଆତ୍ମା ହୋଇ । ଆତ୍ମା-ଭାବେ ଯେ ପ୍ରକାଶଇ ॥ ୪୭
ସ୍ୱଜନ-ଅନୁଗ୍ରହ ପାଇଁ । ସେ ବିଷ୍ଣୁ ସିଦ୍ଧରୂପୀ ହୋଇ ॥ ୪୮
କ୍ଷିତିକି କରନ୍ତି ଭ୍ରମଣ । ଏ କଥା ଅଟଇ ପ୍ରମାଣ ॥ ୪୯

ଶ୍ରୀମୈତ୍ରେୟ ଉବାଚ

୧୭ ସାର, ଗମ୍ଭୀର ଅଳ୍ପାକ୍ଷର । ପ୍ରିୟ ଅଟଇ ଶ୍ରବଣର ॥ ୫୦
ଏରୂପେ ପୃଥୁ-ସୁବଚନ । ଶୁଣି ସନ୍ତୋଷ ହୋଇ ମନ ॥ ୫୧
ଅଳ୍ପ ହସିଲା ପ୍ରାୟେ ହେଲେ । କୁମାର ବଚନ ବୋଇଲେ ॥ ୫୨

ଶ୍ରୀସନତ୍କୁମାର ଉବାଚ

୧୮ ହେ ମହାରାଜ ! ସର୍ବଭୂତ । ହିତକୁ ବାଞ୍ଛେ ତୋର ଚିତ୍ତ ॥ ୫୩
ସକଳ କଥା ଜାଣିଥାଇ । ଉତ୍ତମ ପଚାରିଲୁ ତୁହି ॥ ୫୪
ସାଧୁ ଅଟନ୍ତି ଯେତେ ନର । ତାହାଙ୍କ ମତି ଏ ପ୍ରକାର ॥ ୫୫
୧୯ ସାଧୁଙ୍କ ସଙ୍ଗମ ବିହିତ[1] । ବକତା ଶ୍ରୋତାଙ୍କ ସଂମତ ॥ ୫୬
ଯେଉଁମାନଙ୍କ ସଂଭାଷଣ । ସହିତେ ଯେଉଁ ପ୍ରଶ୍ନ ପୁଣ ॥ ୫୭
ସେ ସର୍ବ ଲୋକମାନଙ୍କର । ମଙ୍ଗଳ କରଇ ବିସ୍ତାର ॥ ୫୮
୨୦ ହରିର ପାଦପଦ୍ମଗୁଣ । ପ୍ରଶ୍ନଦ୍ୱାରରେ ଯେ ଶ୍ରବଣ ॥ ୫୯
ତହିଁରେ ନିଷ୍ଠା ହୋଇ ରତି । ତୋହର ଅଛି ହେ ନୃପତି ॥ ୬୦
କଷାୟଙ୍କର ପ୍ରାୟ ହୋଇ । କେବେ ଯେ ନିବର୍ତ୍ତଇ ନାହିଁ ॥ ୬୧
ସେ କାମମଳ ଅନ୍ତେ ସ୍ଥିତ । ଯେ ତାହା ମନୁଁ କରେ ହତ ॥ ୬୨
୨୧ ଉତ୍ତମ ବିଚାରେ ସଂଯୁତ । ଯେବଣ ଶାସ୍ତ୍ରମାନେ ସ୍ଥିତ ॥ ୬୩
ପ୍ରାଣୀଙ୍କ ମଙ୍ଗଳକାରଣ । ତହିଁରେ ଏତେକ ପ୍ରମାଣ ॥ ୬୪
ଆତ୍ମାରୁ ଭିନ୍ନ ଯେ ଅଟଇ । ତହିଁ ଯା' ସଙ୍ଗ ନ କରଇ ॥ ୬୫
ଆତ୍ମା ନିର୍ଗୁଣ ବ୍ରହ୍ମମୂର୍ତ୍ତି । ତାଠାରେ ଯେଉଁ ଦୃଢ଼ ରତି ॥ ୬୬

---

୧. ବିଦିତ ।

୨୨ ସେ ଜାତ ହୁଅଇ ଶ୍ରଦ୍ଧାରେ । ବୈଷ୍ଣବ ଧର୍ମର ଚର୍ଯ୍ୟାରେ ॥ ୬୭
ବିଶେଷ ଜାଣିମା ଇଚ୍ଛାରେ । ଅଧ୍ୟାତ୍ମ ଯୋଗର ନିଷ୍ଠାରେ ॥ ୬୮
ଯୋଗ-ଈଶ୍ୱର ଯେଉଁମାନେ । ନିତ୍ୟେ ତାଙ୍କର ଉପାସନେ ॥ ୬୯
ପୁଣ୍ୟ ଅଟଇ କୀର୍ତ୍ତି ଯାର । ପୁଣ୍ୟ କଥାରେ ସେ ବିଷ୍ଣୁର ॥ ୭୦
୨୩ ଅର୍ଥେ, ଇନ୍ଦ୍ରିୟରେ ଲାଳସ । ଯେସନେ ତାମସ ରାଜସ ॥ ୭୧
ତାହାଙ୍କ ସଙ୍ଗତ ଗୋଷ୍ଠୀରେ । ତୃଷ୍ଣାକୁ ନିବର୍ତ୍ତାଇବାରେ ॥ ୭୨
ତାହାଙ୍କ ସଂମତ ଅଟଇ । ଯେବଣ ଅର୍ଥ କାମ ଦୁଇ ॥ ୭୩
ସେ କଥାଂ[1] ଅପରିଗ୍ରହରେ । ଏକାନ୍ତ ସ୍ଥାନର ଇଚ୍ଛାରେ ॥ ୭୪
ଆତ୍ମାରେ ପରିତୋଷ ଯେହି । ତେଣେ ସେ ଦୃଢ଼ ରତି ହୋଇ ॥ ୭୫
ହରିର ଗୁଣସୁଧାପାନ । ବିହୁନେ ଏକାନ୍ତରେ ଆନ ॥ ୭୬
ଆତ୍ମାରେ ଯେଉଁ ପରିତୋଷ । ସେ କଥା ନ କରେ ପୁରୁଷ ॥ ୭୭
୨୪ ଜନ୍ତୁଙ୍କ ଠାରେ ଅହିଂସାରେ । ସମାଧି-ପ୍ରଧାନ ବୃତ୍ତିରେ ॥ ୭୮
ଯେ ହିତ ଅଟଇ ଆତ୍ମାର । ଅନୁସଂଧାନରେ ତାହାର ॥ ୭୯
କୃଷ୍ଣଚରିତ-ଅମୃତରେ । ଯମେ, ଅକାମେ, ନିୟମରେ ॥ ୮୦
ଇତର ମାର୍ଗ-ଅନିନ୍ଦାରେ । ଯୋଗକ୍ଷେମର ଅଚେଷ୍ଟାରେ ॥ ୮୧
ଶୀତୋଷ୍ଣ ଆଦି ଯେ ସଂସାରେ । ସେ ଦ୍ୱନ୍ଦ୍ୱମାନ ସହିବାରେ ॥ ୮୨
୨୫ ସଂତତେ ହରି ଭକ୍ତଙ୍କର । ଯେ କର୍ଣ୍ଣଭୂଷଣ ପ୍ରକାର ॥ ୮୩
ସେ ହରିଗୁଣ କଥନରେ । ଯେ ଜାତ ହରି ଭକତିରେ ॥ ୮୪
କାର୍ଯ୍ୟକାରଣ ରୂପ ହୋଇ । ଆତ୍ମାରୁ ଭିନ୍ନ ଯେ ଅଟଇ ॥ ୮୫
ତହିଁରେ ଅସଙ୍ଗ ହୁଅଇ । ନିର୍ଗୁଣ ବ୍ରହ୍ମ ଯେ ବୋଲାଇ ॥ ୮୬
ତାହାର ଠାବରେ ଝଟିତି । ସଂଭବ ହୋଏ ଦୃଢ଼ ରତି ॥ ୮୭
୨୬ ନୈଷ୍ଠିକୀ ହୋଇ ଯେବେ ରତି । ବ୍ରହ୍ମର ଠାରେ ଉତପତି ॥ ୮୮
ତେବେ ଆଚାର୍ଯ୍ୟବନ୍ତ ହୋଇ । ଜ୍ଞାନ ବୈରାଗ୍ୟବେଗ ପାଇ ॥ ୮୯
ଯହିଁରେ ବାସନା ନ ଥାଇ । ସେ ଲିଙ୍ଗଶରୀରକୁ ଦହି ॥ ୯୦
ଜୀବକୁ କୋଶପ୍ରାୟ କରି । ଆଚ୍ଛାଦି ଥାଇ ଯେ ଆବୋରି ॥ ୯୧
ଅବିଦ୍ୟା ଆଦି ପଞ୍ଚ[2] କ୍ଲେଶ । ଯେବଣ ଲିଙ୍ଗରେ ପ୍ରକାଶ ॥ ୯୨
ଅନଳ ପ୍ରଜ୍ୱଳିତ ହୋଇ । ଯେହ୍ନେ ଅରଣିକି ଦହଇ ॥ ୯୩

---

୧. ଅର୍ଥାତ୍ ସେହି ଅର୍ଥ ଓ କାମ ଦୁହିଁଙ୍କ ।
୨. ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ।

୨୭ ଯେଉଁ ମନୁଷ୍ୟର ଆଶୟ । ଦଗଧ ହୁଅଇ ନିଶ୍ଚୟ ॥ ୯୪

କର୍ତ୍ତାଭାବକୁ ଆଦି ହୋଇ । ଆଶୟଗୁଣ ଯେତେ ଥାଇ ॥ ୯୫

ଛାଡ଼ିଣ ସେ ସମସ୍ତମାନ । ଆତ୍ମାସକାଶୁଁ ସେହୁ ଜନ ॥ ୯୬

ଘଟାଦି ଦ୍ରବ୍ୟ ଯେ ବାହ୍ୟରେ । ଯେ ସୁଖଦୁଃଖାଦି ଅନ୍ତରେ ॥ ୯୭

ଏକାଳେ କିଛି ହିଁ ସେମାନ । ନିଶ୍ଚେ ନ କରେ ବିଲୋକନ ॥ ୯୮

ଯେତେ ଅଛନ୍ତି ଦୃଶ୍ୟ ହୋଇ । ଯେ ଦ୍ରଷ୍ଟା[1] ହୋଇଣ ଦେଖଇ ॥ ୯୯

*ତାହାଙ୍କ ଭେଦକୁ କାରଣ । ପୂର୍ବରେ ଯେ ଅନ୍ତଃକରଣ ॥୧୦୦

ତାହାର ହୁଅନ୍ତେ ବିନାଶ । ସେ ସର୍ବ ହୋଏ ଅପ୍ରକାଶ ॥୧୦୧

ସ୍ୱପ୍ନେ 'ମୁଁ ରାଜା' ବୋଲି ମଣି । ସୈନ୍ୟାଦି ଆରୋପଇ ପୁଣି ॥୧୦୨

ସେ ସୈନ୍ୟ ଯେହୁ ଦେଖୁଥାଇ । ସେ ସ୍ୱପ୍ନଦେହ ସୈନ୍ୟ ଦୁଇ ॥୧୦୩

ଯେହ୍ନେ ନ କରେ ବିଲୋକନ । ସ୍ୱପ୍ନ-ଅବସ୍ଥା-ନାଶେ ଜନ ॥୧୦୪

୨୮ ଯେ ଆତ୍ମା ସକଳ ଦେଖଇ । ଯେ ଦୃଶ୍ୟ ବିଷୟ ଅଟଇ ॥୧୦୫

ସେ ବେନି ସଂବନ୍ଧ କାରଣ । ଅଟେ ଯେ ଅହଙ୍କାର ପୁଣ ॥୧୦୬

ଉପାଧିରୂପ ହୋଇ ଯେବେ । ଅନ୍ତଃକରଣ ଥାଇ ତେବେ ॥୧୦୭

ଏ ତିନି କରଇ ଗୋଚର । *ନ ଦେଖେ ଆନକାଳେ ନର ॥୧୦୮

୨୯ ଜଗତେ ସଲିଳ, ଦର୍ପଣ । ଆଦି ଯେ ଭେଦକୁ କାରଣ ॥୧୦୯

ସେ ଥାନ୍ତେ ଆତ୍ମାର ପରର । ଭେଦକୁ ଦେଖୁଥାଇ ନର ॥୧୧୦

ଜଳ ଆଦିର ଅଭାବରେ । ଭେଦକୁ ଦେଖି ସେ ନ ପାରେ ॥୧୧୧

୩୦ ଗୁଣମାନଙ୍କ ଆରୋପେଣ । ବିଷୟ କରନ୍ତେ ସ୍ମରଣ ॥୧୧୨

ଇନ୍ଦ୍ରିୟମାନଙ୍କୁ ବିଷୟେ । ଆକୃଷ୍ଟ କରନ୍ତି ନିଶ୍ଚୟେ ॥୧୧୩

ଇନ୍ଦ୍ରିୟମାନେ ହିଁ ମନକୁ । ପୁଆନ୍ତି[2] ବିଷୟସଙ୍ଗକୁ ॥୧୧୪

ବୁଦ୍ଧି ସକାଶୁଁ ମନ ପୁଣ । ହରଇ ଚେତନା ପ୍ରମାଣ ॥୧୧୫

କୁଶାଦି ସ୍ତମ୍ବ ତୀରେ ଜାତ । ହ୍ରଦରେ ଜଳ ଅଟେ ସ୍ଥିତ ॥୧୧୬

ସେ ଜଳ ଯେଉଁ ପରକାରେ । ହରେ ସେ ମୂଳମାନଙ୍କରେ ॥୧୧୭

---

୧. ଆତ୍ମା ।

* ଦୃଶ୍ୟାନୁରଞ୍ଜିତଂ ଦ୍ରଷ୍ଟୁ ଦୃଶ୍ୟଂ ଦ୍ରଷ୍ଟ୍ରନୁରଞ୍ଜିତମ୍ ।
ଅହଂକୃତ୍ୟୋଭୟଂ ରକ୍ତଂ ତନ୍ନାଶେଽଦ୍ୱୈତତାତ୍ମନଃ ॥

୨. ପାଇବା = ପୁଆଇବା (ପ୍ରେରଣାର୍ଥକ ପ୍ରୟୋଗ)

୩୧ ଚେତନା ଯେବେ ନାଶ ଯାଇ । ତାହାକୁ ଅନୁଗତ ହୋଇ ॥୧୧୮
ଯେ ପୂର୍ବାପରାନୁସନ୍ଧାନ । ଯେ ପୁଣ ହୁଅଇ ନିଧନ ॥୧୧୯
ସେ ଜ୍ଞାନଭ୍ରଂଶକୁ ଜଗତେ । ଜ୍ଞାନୀଏ କହନ୍ତି ଏମନ୍ତେ ॥୧୨୦
ଆପଣା ସକାଶୁଁ ବିନାଶ । ଜୀବର ହୋଇଲା ପ୍ରକାଶ ॥୧୨୧
୩୨ ଯେବଣ ଆତ୍ମସ୍ଥାନେ ନେଇ । ବିଷୟପ୍ରିୟ ଭାବ ଦେଇ ॥୧୨୨
ନିଜ ଇଚ୍ଛାରେ ସେ ଆତ୍ମାର । ଯେ ଅପ୍ରକାଶ ଭାବ ଆର ॥୧୨୩
ଜଗତେ ଏଥୁଁ ବଡ଼ ହୋଇ । ପ୍ରାଣୀର ସ୍ୱାର୍ଥନାଶ ନାହିଁ ॥୧୨୪
୩୩ ବିଷୟ କାମ୍ୟ ବେନି ଧ୍ୟାନ । ପ୍ରାଣୀଙ୍କ ସର୍ବାର୍ଥ ନିଧନ ॥୧୨୫
ଜ୍ଞାନବିଜ୍ଞାନୁଁ ଭ୍ରଷ୍ଟ ହୋଇ । ଯେଣେ ସ୍ଥାବର ଭାବ ପାଇ ॥୧୨୬
୩୪ ଦୁସ୍ତର ସଂସାରକୁ ଜନ । ତରି ବାଞ୍ଛଇ ଯେବେ ମନ ॥୧୨୭
ତେବେ ସେ ଲୋକ କାହାରିହିଁ । ସଙ୍ଗତେ ସଙ୍ଗ ନ କରଇ ॥୧୨୮
ଧର୍ମାର୍ଥକାମ ମୋକ୍ଷଙ୍କର । ଯେ ସଙ୍ଗ ଅତି ନାଶକର ॥୧୨୯
୩୫ ମୋକ୍ଷକୁ ଅତ୍ୟନ୍ତ ଭାବରେ । ଘେନି ସେ ଚାରିଙ୍କ ଭିତରେ ॥୧୩୦
ତ୍ରିବର୍ଗ ଯେଣୁ ହୋଏ[୧] ନିତ୍ୟ । କୃତାନ୍ତ ଭୟରେ ସଂଯୁତ ॥୧୩୧
୩୬ ବ୍ରହ୍ମାରୁ ସ୍ତମ୍ବ[୨] ଆଦି-ଯାଏ । ଯେ ଟୁଣକ୍ଷୋଭୁଁ ପଛେ ହୋଏ ॥୧୩୨
ନାହିଁ ତାହାଙ୍କର ମଙ୍ଗଳ । ତାଙ୍କ ସୁଖକୁ ହରେ କାଳ ॥୧୩୩
୩୭ ତେଣୁ କରି ହେ ନରେଶ୍ୱର । ଯେତେକ ଜଙ୍ଗମ ସ୍ଥାବର ॥୧୩୪
ଦେହ, ଇନ୍ଦ୍ରିୟ, ପ୍ରାଣ ମତି । ଅହଂତାବୃତ ହୋଇଛନ୍ତି ॥୧୩୫
ସେମାନଙ୍କର ହୃଦୟରେ । ଯେ ଅନ୍ତର୍ଯାମୀ ସ୍ୱରୂପରେ ॥୧୩୬
ପ୍ରତ୍ୟକ୍ଷେ ପ୍ରତିଲୋମ ହୋଇ । ବ୍ୟାପକରୂପେ ଅଛି ରହି ॥୧୩୭
ଏ ରୂପେ ଯେଉଁ ଭଗବାନ । ସେଟି ମୁଁ ବୋଲି ମନେ ଘେନ ॥୧୩୮
୩୮ କାର୍ଯ୍ୟକାରଣ ଭାବ ହୋଇ । ଏ ବିଶ୍ୱମାୟା ଶୋହେ ଯହିଁ ॥୧୩୯
ରଜ୍ଜୁରେ ସର୍ପ ବୁଦ୍ଧିପ୍ରାୟେ । ବିବେକ ଯେଣୁ ନାଶ ଯାଏ ॥୧୪୦
ସେ ଅଟେ ନିତ୍ୟରେ ମୁକତ । ସେ ପରିଶୁଦ୍ଧ ଶୁଦ୍ଧ ତତ୍ତ୍ୱ ॥୧୪୧
କର୍ମମାନଙ୍କରେ ପ୍ରକୃତି । ମଳିନରୂପ ଅଟେ ଅତି ॥୧୪୨
ତା'ପରାଭବ ଯେ କରଇ । ମୁଁ ତାକୁ ଶରଣ ପଶଇ ॥୧୪୩

---

୧. ନୋହେ । ୨. ସ୍ତମ୍ବ=ତୃଣ ।

୩୯ ଯା' ପାଦପଙ୍କଜ ପଲାଶ । ପ୍ରାୟ ଯେ ଅଙ୍ଗୁଳି ପ୍ରକାଶ ॥୧୪୪
ତାହାର କାନ୍ତି ସ୍ମରଣରେ । ମହତ ଜନେ ଏ ସଂସାରେ ॥୧୪୫
କର୍ମରେ ହୋଏ ଯେ ଗ୍ରଥିତ । ହୃଦରେ ଅହଂକାର ସ୍ଥିତ ॥୧୪୬
ତାହାକୁ ବିନାଶ କରନ୍ତି । ଯେ ପୁଣି ନିର୍ବିଷୟମତି ॥୧୪୭
ବିଷୟ ମାର୍ଗୁ ନିରୋଧିଣ । ରଖନ୍ତି ସ୍ୱ-ଇନ୍ଦ୍ରିୟଗଣ ॥୧୪୮
ସେ ଯତିମାନେ ସେ ପ୍ରକାର । ଛେଦନ୍ତି ନାହିଁ ଅହଂକାର ॥୧୪୯
ଶରଣ ଅଟନ୍ତି ସେ ହରି । ତାହାଙ୍କୁ ଭଜ ଅନୁସରି ॥୧୫୦
୪୦ ତରଣହେତୁ ନାବ ହୋଇ । ଈଶ୍ୱର ଯାହାଙ୍କର ନାହିଁ ॥୧୫୧
ତରିବା ବିଷୟରେ କ୍ଳେଶ । ତାଙ୍କର ଅଧିକ ପ୍ରକାଶ ॥୧୫୨
କାମକ୍ରୋଧାଦି ଛଏ ଯହିଁ । କୁମ୍ଭୀର ପ୍ରାୟେ ଛନ୍ତି ରହି ॥୧୫୩
ସେ ଭବସିନ୍ଧୁ ଯୋଗାଦିରେ । ତରି ବାଞ୍ଛନ୍ତି କେହି ନରେ ॥୧୫୪
ତେଣୁ ଭଜନଯୋଗ୍ୟ ହୋଇ । ହରିର ପାଦ ଯେ ଅଛଇ ॥୧୫୫
ତା' ନାବ କରିଣ ଦୁସ୍ତର । ବିପତ୍ତିସିନ୍ଧୁକୁ ତୁ ତର ॥୧୫୬

### ଶ୍ରୀମୈତ୍ରେୟ ଉବାଚ

୪୧ ଯେ ବ୍ରହ୍ମଜ୍ଞାନୀ ବ୍ରହ୍ମାସୁତ । କୁମାର ନାମରେ ବିଦିତ ॥୧୫୭
ଏ ରୂପେ ଉତ୍ତମ କରିଣ । ଆତ୍ମତତ୍ତ୍ୱକୁ ଦେଖାନ୍ତେଣ ॥୧୫୮
ପ୍ରଶଂସା କରିଣ ବଚନ । କହିଲେ ତାହାଙ୍କୁ ରାଜନ ॥୧୫୯

### ଶ୍ରୀପୃଥୁରୁବାଚ

୪୨ ହେ ବିପ୍ର ! ଆର୍ତ୍ତଜନଙ୍କର । କରୁଣାକର ଯେ ଈଶ୍ୱର ॥୧୬୦
ସେ ମୋତେ ଅନୁଗ୍ରହ ପୂର୍ବେ । କରିଅଛନ୍ତି ତୁମ୍ଭେ ଏବେ ॥୧୬୧
ସେ କଥା ସଂପାଦିବାପାଇଁ । ସମସ୍ତେ ମିଳିଲ ଏଠାଇଁ ॥୧୬୨
ସେ ଅନୁଗ୍ରହପୂର୍ଣ୍ଣ ଭାବେ । କଲ ଦୟାକୁ ତୁମ୍ଭେ ଏବେ ॥୧୬୩
୪୩ ଦେହ ସହିତେ ରାଜ୍ୟ ଆଦି । ଯେତେକ ଅଛି ମୁଁ ସଂପାଦି ॥୧୬୪
ସାଧୁଙ୍କୁ କଲି ସମର୍ପଣ । ସାଧୁଏ ସ୍ୱୀକାର କରିଣ ॥୧୬୫
ପ୍ରସାଦରୂପେ ଛନ୍ତି ଦେଇ । ତାଙ୍କ ଉଚ୍ଛିଷ୍ଟ ଏ ଅଟଇ ॥୧୬୬
ଏଣୁ କି କରିବି ଅର୍ପଣ । ଗୁରୁଦକ୍ଷିଣା ଅର୍ଥେ ପୁଣ ॥୧୬୭

{ ମୋଦକ ଆଦି ଯେ ସ୍ନେହରେ । ପିତା ଦିଅଇ ସଂତାନରେ ॥
ଦାନ ରୂପେ ସେ ତାହା ପୁଣ । ପିତାକୁ ନ କରେ ଅର୍ପଣ ॥ }

୪୪ ପ୍ରାଣ, ଭାରିଯା, ସୁତ ମୋର । ଯେ ଗୃହ, ଗୃହପରିକର ॥୧୬୮
ଯେ ରାଜ୍ୟ, ବଳ, ମହୀ, କୋଷ ନିବେଦିଲି ମୁଁ ସେ ଅଶେଷ ॥୧୬୯
{ ଭୃତ୍ୟ ଯେସନେ ସେବା ରୂପେ । ରାଜାଙ୍କୁ ତାମ୍ବୁଳ ସମର୍ପେ ॥ }

୪୫ ଯେ ସେନାପତି ଭାବ ମୋର । ରାଜତ୍ୱ ଦଣ୍ଡ-ଅଧିକାର ॥୧୭୦
ସକଳ ଲୋକେ ପ୍ରଭୁପଣ । ଏହା ମୁଁ କଲି ସମର୍ପଣ ॥୧୭୧
ଯେ ବେଦଶାସ୍ତ୍ର ବିଦ ଜନ । ସେ ସର୍ବ କଥାକୁ ଭାଜନ ॥୧୭୨

୪୬ ବ୍ରାହ୍ମଣ ଭୁଂଜେ ନିଜ ଅନ୍ନ । ପିନ୍ଧଇ ଆପଣା ବସନ ॥୧୭୩
ଦ୍ରବ୍ୟ ଆପଣାକୁ ଦିଅଇ । ତାହାରି ଅନୁଗ୍ରହ ପାଇ ॥୧୭୪
କ୍ଷତ୍ରିୟ ଆଦି ବର୍ଣ୍ଣମାନେ । ଅନ୍ନକୁ ଭୁଂଜନ୍ତି ଭୁବନେ ॥୧୭୫

୪୭ ଯେ ତୁମ୍ଭେ ଅଧ୍ୟାତ୍ମ ବିଚାରେ । ବେଦକୁ ଜାଣ ଏକାନ୍ତରେ ॥୧୭୬
ଏ ରୂପେ ଗତିକିଂ[୧] ବିସ୍ତୁର । ମୋତେ କରାଇଲ ଗୋଚର ॥୧୭୭
ଯେ ତୁମ୍ଭେମାନେ ଅତିଶୟ । କରୁଣାପୂରିତ-ହୃଦୟ ॥୧୭୮
ଦୁଃଖିତ ଲୋକଙ୍କୁ ଉଦ୍ଧାର । କର୍ମକୁ କଲ ଯା' ଆଚାର ॥୧୭୯
ସେହି କର୍ମରେ ହୁଅ ତୋଷ । ତୁମ୍ଭମାନଙ୍କୁ କେ ବିଶେଷ ॥୧୮୦
କରିପାରିବ ଉପକାର । ଅଞ୍ଜଳି ବିହୁନେଣ ନର ॥୧୮୧
ପ୍ରତ୍ୟୁପକାର ପ୍ରବର୍ତ୍ତଇ । ଯେ, ସେ ଉପହାସ ଲଭଇ ॥

ଶ୍ରୀମୈତ୍ରେୟ ଉବାଚ

୪୮ ପୂଜନ୍ତେ ଆଦି ନରପତି । ସେ ଆତ୍ମଯୋଗଙ୍କର ପତି ॥୧୮୨
ସେ ପୃଥୁରାଜା ସୁଚରିତ । ପ୍ରଶଂସା କରନ୍ତେ ବହୁତ ॥୧୮୩
ଚାହାଁନ୍ତେ ଲୋକମାନେ ତହିଁ । ଆକାଶମାର୍ଗେ ହେଲେ ଯାଇଁ ॥୧୮୪

୪୯ ମହତ ଲୋକମାନଙ୍କର । ମୁଖ୍ୟ ସେ ବେଣର କୁମର ॥୧୮୫
ଏକାଗ୍ର ଭାବ ଯେ ତା' ଠାରେ । ଜନ୍ମିଲା ଅଧ୍ୟାତ୍ମଶିକ୍ଷାରେ ॥୧୮୬
ତେଣେ ସେ ଆତ୍ମା ବିଷୟରେ । ନିରୂଢ଼ ହୋଇଣ ମନରେ ॥୧୮୭
ପୂର୍ଣ୍ଣସକଳକାମ ପ୍ରାୟେ । ଆତ୍ମାକୁ ମଣିଲାକ ରାଏ ॥୧୮୮

---

୧. କୀର୍ତ୍ତିକି ।

୫୦ କାଳକୁ, ଦେଶକୁ, ବଳକୁ । ଉଚିତ କଥାକୁ, ବିତ୍ତକୁ ॥୧୮୯
ଅତିକ୍ରମ ସେ ନ କରିଣ । ଯେମନ୍ତେ ହୋଏ ବ୍ରହ୍ମାର୍ପଣ ॥୧୯୦
ତେମନ୍ତ ରୂପେ କର୍ମମାନ । ବିଧାନ କଲାକ ରାଜନ ॥୧୯୧

୫୧ କର୍ମଫଳକୁ ବ୍ରହ୍ମେ ନେଇ । ଅର୍ପିଣ ସମାହିତ ହୋଇ ॥୧୯୨
କର୍ମେ ନୋହିଲା ଆସକତ । ଆତ୍ମାକୁ ଉଦାସୀନ ମତ ॥୧୯୩
'ମଣି ସେ କର୍ମମାନ କଲା । କାହିଁ ଆସକତ ନୋହିଲା ॥୧୯୪

୫୨ ଗୃହରେ ହୋଇଲେ ସେ ସ୍ଥିତ । ସାମ୍ରାଜ୍ୟ ଲକ୍ଷ୍ମୀରେ ଅନ୍ୱିତ ॥୧୯୫
ନିରହଂକାର ସୂର୍ଯ୍ୟପ୍ରାଏ । ଆସକ୍ତ ନୋହିଲା ବିଷୟେ ॥୧୯୬

୫୩ ଅଧ୍ୟାତ୍ମ ଯୋଗରେ ଏମନ୍ତେ । କର୍ମମାନଙ୍କୁ ଆଚରନ୍ତେ ॥୧୯୭
ଆପଣା ସମ ପାଞ୍ଚ ସୁତ । ଅର୍ଚ୍ଚିର ଠାରେ କଲା ଜାତ ॥୧୯୮
ଯେ ବିଜିତାଶ୍ୱ, ଧୂମ୍ରକେଶ । ଦ୍ରବିଣ, ବୃକ ଯେ ହର୍ଯ୍ୟଶ୍ୱ[1] ॥୧୯୯

୫୪ ଜଗତପାଳନ ଅର୍ଥରେ । ମନ ନିବେଶି କୃଷ୍ଣଠାରେ ॥୨୦୦
ସେ ଏକ ହୋଇ ପୃଥୁ ବୀର । ସମସ୍ତ ଲୋକପାଳଙ୍କର ॥୨୦୧
ଗୁଣମାନଙ୍କୁ ଭିନ୍ନ ଭିନ୍ନ । ପ୍ରକାରେ ଧଇଲା ରାଜନ ॥୨୦୨

୫୫ ମନ, ବଚନ, କଳେବର । ଯେ ଗୁଣମାନେ ଶାନ୍ତ ତାର ॥୨୦୩
ପ୍ରଜାମାନଙ୍କୁ ତେଣେ ଅତି । ରଞ୍ଜନ କରନ୍ତେ ନୃପତି ॥୨୦୪
ସୋମ ରାଜାର ପ୍ରାୟ ହୋଇ । ଧଇଲା ରାଜା ନାମ ସେହି ॥୨୦୫

୫୬ ବସୁକୁ ଘେନଇଁ, ମୁଞ୍ଚଇ । ତାପନ୍ତେ ସୂର୍ଯ୍ୟପ୍ରାୟ ହୋଇ ॥୨୦୬
ଦୁଃସହ ଅନଳର ପ୍ରାୟ । ବାସବ ପ୍ରାୟକ ଦୁର୍ଜୟ ॥୨୦୭

୫୭ ଧରିତ୍ରୀ ପ୍ରାୟ ସହିବାରେ । ପ୍ରାଣୀଙ୍କ ଅଭୀଷ୍ଟ ଦାନରେ ॥୨୦୮
ସ୍ୱର୍ଗର ପ୍ରାୟ ସେ ଅଟଇ । ଯେ ପୁଣି ତାକୁ ଯା ମାଗଇ ॥୨୦୯
ତୃପ୍ତି କରାନ୍ତେ ତାକୁ ସେହି । ମେଘର ପ୍ରାୟ ତା ବର୍ଷଇ ॥୨୧୦

୫୮ ସମୁଦ୍ର ପ୍ରାୟକ ତାହାର । ଗାମ୍ଭୀର୍ଯ୍ୟ ନ କଳଇ ନର ॥୨୧୧
ସତ୍ତ୍ୱରେ ମେରୁର ସମାନ । ଶିକ୍ଷାରେ ଶମନ ଯେସନ ॥୨୧୨
ଆଶ୍ଚର୍ଯ୍ୟ କଥାରେ ଯେମନ୍ତ । ଅଟଇ ଗିରି ହିମବନ୍ତ ॥୨୧୩

---

୧. ହର୍ଯ୍ୟକ୍ଷ ।

୫୯ କୁବେର ପ୍ରାୟ କୋଶେ ପୂର୍ଣ୍ଣ । ବରୁଣ ପ୍ରାୟ ଗୁପ୍ତଧନ ॥୨୧୪
ବଳରେ, ସହରେ,[୧] ଓଜରେ । ପବନପ୍ରାୟ ସବୁଠାରେ ॥୨୧୫
ସଞ୍ଚରିବାରେ ସେ ନୃପତି । ଅଟଇ ଶକ୍ତିମନ୍ତ ଅତି ॥୨୧୬
୬୦ ସେ ଅବିସହ୍ୟ ଭାବେ ଦେବ । ଯେସନେ ଭୂତପତି ଶିବ ॥୨୧୭
ସୌନ୍ଦର୍ଯ୍ୟେ କନ୍ଦର୍ପ ସମାନ । ସିଂହର ପ୍ରାୟ ଆଣ୍ଟମନ ॥୨୧୮
୬୧ ବତ୍ସଳଭାବେ ପ୍ରାଣୀଙ୍କର । ଯେସନ ମନୁ ନୃପବର ॥୨୧୯
ପ୍ରଭୁତ୍ୱ ପଣେ ଭଗବାନ । କମଳ-ଆସନ ଯେସନ ॥୨୨୦
ଆତ୍ମଜ୍ଞାନରେ ବୃହସ୍ପତି । ଇନ୍ଦ୍ରିୟଜୟେ ରମାପତି ॥୨୨୧
୬୨ ଗୋ-ଗୁରୁ-ବିପ୍ର-ବଇଷ୍ଣବ । ଏହାଙ୍କ ଠାରେ ଭକ୍ତିଭାବ ॥୨୨୨
ଲଜ୍ଜା, ବିନୟ, ସୁଚରିତ । ଉଦ୍ୟମ ପରର ନିମିତ୍ତ ॥୨୨୩
ଏତେ କଥାରେ ଆପଣାର[୨]- । ସମ ଅଟଇ ନୃପବର ॥୨୨୪
୬୩ କୀର୍ତ୍ତିକି ସେହି ସେହି ସ୍ଥାନେ । ଉଚ୍ଚେ ଗାଆନ୍ତେ ନରମାନେ ॥୨୨୫
ତେଣେ ଯୁବତୀମାନଙ୍କର । ପ୍ରବେଶ ଶ୍ରବଣରନ୍ଧ୍ରର ॥୨୨୬
ସାଧୁଙ୍କ କର୍ଣ୍ଣେ ସୀତାପତି । ଶୁଣନ୍ତେ ଯେସନେ ମିଳନ୍ତି ॥୨୨୭
ଯେ ନିତ୍ୟେ ସାଧୁମାନଙ୍କର । ମଙ୍ଗଳପ୍ରଦ ତାପହର ॥୨୨୮
ସେ କୃଷ୍ଣ ଚରଣ ପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥୨୨୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁଚରିତେ ଶ୍ରୀକୁମାରୋପଦେଶୋ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥

---

୧. ସହ = ସାମର୍ଥ୍ୟ । ଓଜ = ଶକ୍ତି ।   ୨. ଆପଣାର ସମ = ନିରୁପମ ।

# ତ୍ରୟୋବିଂଶୋଽଧ୍ୟାୟଃ

ତ୍ରୟୋବିଂଶେ ସଭାର୍ଯ୍ୟସ୍ୟ ବନେ ନିତ୍ୟସମାଧିତଃ ।
ବିମାନମଧିରୁହ୍ୟାଥ ବୈକୁଣ୍ଠଗତିରୀର୍ଯ୍ୟତେ ॥ ୧ ॥

ଶ୍ରୀମୈତ୍ରେୟ ଉବାଚ

୧ ବେଣନନ୍ଦନ ପ୍ରଜାପତି । ଆତ୍ମଜ୍ଞାନୀ ହିଁ ସେ ଅଟନ୍ତି ॥ ୧
୨ ଅନ୍ନ ଆଦିଙ୍କର ବିଧାନ । ପୁର-ଗ୍ରାମାଦି ସୃଷ୍ଟିମାନ ॥ ୨
୩ ଯାହା କରିଥିଲେ ଆପଣ । ସେମାନ ବୃଦ୍ଧି କଲେ ପୁଣ ॥ ୩
ସ୍ଥାବର ଜଙ୍ଗମ ଯେ ଛନ୍ତି । ତାହାଙ୍କୁ ଦେଇଛନ୍ତି ବୃତ୍ତି ॥ ୪
ସାଧୁମାନଙ୍କ ଧର୍ମମାନ । ଧରିଅଛନ୍ତି ସେ ରାଜନ ॥ ୫
ପ୍ରଜାପାଳନ ଆଦି ହୋଇ । ଈଶ୍ୱର ଆଜ୍ଞା ଯେ ଅଛଇ ॥ ୬
ସେମାନ ସବୁ ସଂପାଦିଲେ । ଯେଉଁ ନିମିତ୍ତେ ଜନମିଲେ ॥ ୭
ଆତ୍ମାକୁ ଦେଖି ବୃଦ୍ଧ କରି । ଏକଦିନେ ସେ ଦଣ୍ଡଧାରୀ ॥ ୮
ପୃଥ୍ୱୀ ଯେ ତନୁଜା ଅଟଇ । କି ସେ ବିରହରୁ କାନ୍ଦଇ ॥ ୯
ପୁତ୍ରଙ୍କ ଠାରେ ଦେଇ ତାକୁ । ସଙ୍ଗତେ ଘେନିଣ ଭାର୍ଯ୍ୟାକୁ ॥ ୧୦
ପ୍ରଜାଏ ହୁଅନ୍ତେ ବିମନ । ଗଲେ ସେ ଏକା ତପୋବନ ॥ ୧୧

୪ ଯେ ବାନପ୍ରସ୍ଥମାନଙ୍କର । ସମ୍ମତ ଅଟେ ତପ ଘୋର ॥ ୧୨
ସେ ତପ କଲେ ସେ ବନରେ । ଯେସନେ ପୂର୍ବ ସମୟରେ ॥ ୧୩
ଧରଣୀମଣ୍ଡଳର ଜୟ- । ଅର୍ଥେ ବର୍ତ୍ତିଲେ ଅତିଶୟ ॥ ୧୪
ତାହାଙ୍କ ନିୟମ ଅଶେଷ । ବିଘ୍ନରେ ନୋହିଲେ ବିନାଶ ॥ ୧୫

୫ ଯେ କନ୍ଦମୂଳଫଳମାନ । ଆହାର କରନ୍ତି ସେମାନ ॥ ୧୬
କେବଣ ସମୟେ ଭୋଜନ । କଲେ ଶୁଖିଲା ପତ୍ରମାନ ॥ ୧୭
କେହୁଣି କାଳେ ଭକ୍ଷ୍ୟ ଜଳ । ତଦନ୍ତେ ଭକ୍ଷିଲେ ଅନିଳ ॥ ୧୮

୬ ଚାରି ଅନଳ ଚାରିଦିଗେ । ରବି ଅଛନ୍ତି ଊର୍ଦ୍ଧ୍ୱଭାଗେ ॥ ୧୯
ଏମନ୍ତ ରୂପେ ପଞ୍ଚତାପ । ଗ୍ରୀଷ୍ମରେ ସହିଲେ ସେ ନୃପ ॥ ୨୦
ବରଷା ସମୟେ ରାଜନ । ସହିଲେ ଜଳଧାରାମାନ ॥ ୨୧

କଣ୍ଠପର୍ଯ୍ୟନ୍ତେ ଉଦକରେ । ବୁଡ଼ିଲେ ଶିଶିର ଋତୁରେ ॥ ୨୨
ରଜନୀକାଳେ ସେ ଋତୁରେ । ଶୟନ କରନ୍ତି ଭୂମିରେ ॥ ୨୩
୭ ବଚନ, ପ୍ରାଣ ନିରୋଧିଲେ । ତପସ୍ୟା କ୍ଳେଶକୁ ସହିଲେ ॥ ୨୪
କ୍ଷମା କରିବାରେ ଶକତା । ପୁଣ ହୋଇଲେ ଊର୍ଦ୍ଧ୍ୱରେତା ॥ ୨୫
କୃଷ୍ଣସେବାରେ ମନ ଦେଲେ । ଉତ୍ତମ ତପ ଆଚରିଲେ ॥ ୨୬
୮ ସେ ତପସ୍ୟାରେ କର୍ମମାନ । କ୍ରମରେ କଲେ ବିଧ୍ୱଂସନ ॥ ୨୭
ସେ ଘେନି ତାହାଙ୍କ ଆଶୟ । ନିର୍ମଳ ହେଲା ଅତିଶୟ ॥ ୨୮
ପ୍ରାଣାୟାମରେ ନିରୋଧିଲେ । ଜ୍ଞାନେନ୍ଦ୍ରିୟଙ୍କୁ ମନତୁଲେ ॥ ୨୯
ବାସନାମାନେ ଯେତେ ଥିଲେ । ସେମାନଙ୍କୁ ହିଁ ବିନାଶିଲେ ॥ ୩୦
୯ ଯେ ଆଧ୍ୟାତ୍ମିକ ଯୋଗସାର । କହିଲେ ସନତକୁମାର ॥ ୩୧
ତେଣେ ପୁରୁଷକୁ ପୂଜନ । କଲେ ସେ ପୁରୁଷପ୍ରଧାନ ॥ ୩୨
୧୦ ସେ ସାଧୁ ବିଷ୍ଣୁଧର୍ମଯୁତ । ଶ୍ରଦ୍ଧାରେ ପୂଜନ୍ତେ ସଂତତ ॥ ୩୩
ତାହାର ଅନନ୍ୟ ଭାବରେ । ଭକ୍ତି ହୋଇଲା ବ୍ରହ୍ମଠାରେ ॥ ୩୪
୧୧ ବିଷ୍ଣୁ ସେବାରୁ ତାର ମନ । ବିଶୁଦ୍ଧସତ୍ତ୍ୱ ଦିନୁଁ ଦିନ ॥ ୩୫
ସେ ବିଷ୍ଣୁ ସ୍ମରଣରୁ ସ୍ଫୁରେ । ଯେବଣ ଭକ୍ତି ତା' ହୃଦରେ ॥ ୩୬
ସେ ଭଗତିରେ ଉତପନ୍ନ । ବୈରାଗ୍ୟଯୁକ୍ତ ତୀକ୍ଷ୍ଣ ଜ୍ଞାନ ॥ ୩୭
ଅସଂଭାବନା ବିପରୀତ- । ଭାବନା ଆଦି ଯେ ବିଦିତ ॥ ୩୮
ସେ ସର୍ବ ସଂଶୟଙ୍କ ସ୍ଥାନ । ହୃଦଗ୍ରନ୍ଥି ଯେ ବିଦ୍ୟମାନ ॥ ୩୯
ତାକୁ ସେ ନିଶିତ ଜ୍ଞାନରେ । ଛେଦନ କଲା ସେ କାଳରେ ॥ ୪୦
୧୨ ଦେହରେ ଆତ୍ମା ହୋଇ ମତି । ଯେ ହୋଇଥିଲା ଉତପତି ॥ ୪୧
ତାହାକୁ ବିନାଶ ସେ କଲା । ଆତ୍ମାର ଗତିକି ଜାଣିଲା ॥ ୪୨
ମିଳିଲେ ଯେଉଁ ସିଦ୍ଧିମାନ । ତହିଁରେ ନ କରି ଯତନ ॥ ୪୩
ହୃଦୟ ଗ୍ରନ୍ଥି ଯେଉଁ ଜ୍ଞାନେ । ଛେଦିଣ ଥିଲା ପୂର୍ବଦିନେ ॥ ୪୪
ଛାଡ଼ିଲା କ୍ରମରେ ସେ ଜ୍ଞାନ । ଯେ ପୁଣି ଅଟେ ଯୋଗୀଜନ ॥ ୪୫
ଯୋଗସିଦ୍ଧିରେ ତେତେ ଯାଏ । ସେ ଅପ୍ରମତ୍ତ ନୋହିଥାଏ ॥ ୪୬
ଯାବତ କାଳଯାଏ ହରି- । କଥାରେ ରତି ସେ ନ କରି ॥ ୪୭
୧୩ ସେ ବୀରବର ଏ ପ୍ରକାରେ । ଆତ୍ମାକୁ ସଂଯୋଜି ଆତ୍ମାରେ ॥ ୪୮
ନିବିଡ଼େ ବ୍ରହ୍ମମୟ ହେଲା । କାଳେ ସ୍ୱଦେହକୁ ଛାଡ଼ିଲା ॥ ୪୯

୧୪ *ପାର୍ଷ୍ଣିଯୁଗଳେ ଗୁଦଦ୍ୱାର । ନିରୋଧ କରିଣ ସେ ବୀର ।। ୫୦
ମୂଳ ଆଧାରରୁ ବାୟୁକୁ । ସ୍ଥିରେ ନିଅନ୍ତେଣ ଊର୍ଦ୍ଧ୍ୱକୁ ।। ୫୧
ନାଭିରେ କରିଣ ସ୍ଥାପନ । ଯେ ପୁଣି ଛନ୍ତି କୋଷ୍ଠମାନ ।। ୫୨
ସେ ହୃଦେ, ଉରରେ, କଣ୍ଠରେ । ଭ୍ରୂଲତାଯୁଗର ମଧ୍ୟରେ ।। ୫୩
୧୫ ପ୍ରାଣମାନଙ୍କୁ କ୍ରମେ ନେଇ । ନିସ୍ପୃହେ ବ୍ରହ୍ମରନ୍ଧ୍ରେ ଥୋଇ ।। ୫୪
ପବନ ମଧ୍ୟେ ପବନକୁ । କ୍ଷିତିରେ କଠିନ ଅଂଶକୁ[୧] ।। ୫୫
ତେଜକୁ ତେଜମଧ୍ୟେ ନେଇ । ଏକ କଲାକ ସେ ମିଶାଇ ।। ୫୬
୧୬ ଯେ ବା ଇନ୍ଦ୍ରିୟ-ଛିଦ୍ରମାନେ । ତାହାଙ୍କୁ ନିବେଶି ଗଗନେ ।। ୫୭
ଜଳକୁ ନିବେଶି ଜଳରେ । ଯେ ଯାହା ସ୍ଥାନେ ବିଭାଗରେ ।। ୫୮
କ୍ଷିତିକି ଜଳେ ଏକ କରି । ସେ ଜଳ ତେଜମଧ୍ୟେ ଭରି ।। ୫୯
ସେ ତେଜ ନିବେଶି ପବନେ । ସେ ବାତ ନିବେଶି ଗଗନେ ।। ୬୦
୧୭ ଇନ୍ଦ୍ରିୟମାନଙ୍କେ ଗଗନ । ନିବେଶି ସେ ଇନ୍ଦ୍ରିୟମାନ ।। ୬୧
ଶବଦ ଆଦି ତନ୍ମାତ୍ରରେ । ଥୋଇ ଯେଝା ବୃତ୍ତିଲାଭରେ ।। ୬୨
ଏ ସର୍ବ ନେଇ ଅହଂକାରେ । ନିକ୍ଷେପ କରି ତା' ସଙ୍ଗରେ ।। ୬୩
ମହତ୍ତତ୍ତ୍ୱରେ ନେଇ ପୁଣ । କଲେ ସମସ୍ତଙ୍କୁ ସଂଧାନ ।। ୬୪
୧୮ ସକଳ ଗୁଣମାନଙ୍କର । ବିନ୍ୟାସ ଅଛି ଯାହାଠାର ।। ୬୫
ସେ ମହତ୍ତତ୍ତ୍ୱକୁ ନେଇଣ । ଜୀବରେ ନିବେଶିଲେ ପୁଣ ।। ୬୬
ଯେ ମାୟା-ଉପାଧି ପ୍ରଧାନ । ଜୀବ ଅଟଇ ବିଦ୍ୟମାନ ।। ୬୭
ଏ ପୃଥୁ ରାଜା ଅନୁଶୟୀ[୨] । ପୂର୍ବେ ଯେ ଥିଲେ ଜୀବ ହୋଇ ।। ୬୮
ଜୀବର ଉପାଧି ହୋଇଣ । ଯେ ପୁଣ ଥିଲା ଆତ୍ମଗୁଣ ।। ୬୯
ତାହାକୁ ପରିତ୍ୟାଗ କଲେ । ବ୍ରହ୍ମସ୍ୱରୂପକୁ ଧଇଲେ ।। ୭୦
୧୯ ତାହାର ପତ୍ନୀ ମହାଦେଈ । ଅର୍ଚ୍ଚି ନାମରେ ଖ୍ୟାତ ସେହି ।। ୭୧
ସୁକୁମାରାଙ୍ଗୀ, ପାଦେ ଭୂଇଁ । ଛୁଇଁମାକୁ ଯେ ଯୋଗ୍ୟ ନୋହି ।। ୭୨
ଏମନ୍ତ ହେଲେହେଁ ସେ କାନ୍ତ- । ସଙ୍ଗେ ବନକୁ ଅନୁଗତ ।। ୭୩

---

* ଏହାକୁ ମୁକ୍ତାସନ କୁହାଯାଏ । ଲକ୍ଷଣ ଯଥା—
ସଂପୀଡ୍ୟ ସୀବନୀଂ ସୂକ୍ଷ୍ମାଂ ଗୁଲ୍ଫେନୈବ ତୁ ମଧ୍ୟତଃ ।
ସବ୍ୟେ ଦକ୍ଷିଣଗୁଲ୍ଫେନ ମୁକ୍ତାସନମିତୀରିତମ୍ ।।

୧. ଦେହର କଠିନ ଅଂଶକୁ ।

୨. ଅନୁଶୟୀ = ଉପାଧିମାନ୍ (ଅନୁଶୟମ୍ ଉପାଧିମ୍, ସ୍ୱାମୀ) ।

୨୦ ଭୂମିଶୟନ ଆଦି ହୋଇ । ଭର୍ତ୍ତାର ବ୍ରତ ଯେ ଅଛଇ ॥ ୭୪
ତହିଁ ଅତିଶୟ ନିଷ୍ଠାରେ । ତାହାକୁ ସେବା କରିବାରେ ॥ ୭୫
କନ୍ଦମୂଳକୁ ଆଦି ହୋଇ । ଋଷିମାନଙ୍କ ଭକ୍ଷ୍ୟ ଯେହି ॥ ୭୬
ତେଣେ ହେଲେହେଁ କରଶିତ । ପୀଡ଼ାକୁ ନ ଲଭିଲା ଚିତ୍ତ ॥ ୭୭
ପ୍ରିୟର କରେ ସ୍ପରଶନ । ଯେ ପ୍ରିୟ କରେ ସଂମାନନ ॥ ୭୮
ଏ ବେନି କଥାରେ ତାହାର । ସୁଖ ଜନ୍ମିଲା ନିରନ୍ତର ॥ ୭୯
୨୧ ଚେତନା ଆଦି ହୋଇ ଯହିଁ । ସମସ୍ତ ଗଲା ନାଶ ହୋଇ ॥ ୮୦
ନିଜ ବଲ୍ଲଭ ଭୂପତିର । ଦେଖି ଏ ରୂପେ କଳେବର ॥ ୮୧
କିଛି ହିଁ ବିଳାପ କରିଣ । ଅଚଳ ସାନୁରେ ତକ୍ଷଣ ॥ ୮୨
ଅଗ୍ନିରେ ସେ ଦେହ ନେଇଣ । ଆପଣେ କଲା ଆରୋପଣ ॥ ୮୩
୨୨ ତତକାଳକୁ ଯେ ଉଚିତ । ସେ କର୍ମ କରି ସମାପତ ॥ ୮୪
ନଦୀଜଳରେ ସ୍ନାନ ସାରି । ଭର୍ତ୍ତା-ଉଦକ କର୍ମ କରି ॥ ୮୫
ଦେବଙ୍କୁ କରି ନମସ୍କାର । ଅଗ୍ନିକି ବୁଲି ତିନି ବାର ॥ ୮୬
ଚିନ୍ତନ୍ତେ ପତିପାଦ ମନେ । ପ୍ରବେଶ ହୋଇଲା ଦହନେ ॥ ୮୭
୨୩ ବୀରଙ୍କ ଉପରେ ଯେ ବୀର । ଯେ ପୃଥୁ ପତି ଆପଣାର ॥ ୮୮
ସେ ସାଧ୍ୱୀ ତାଙ୍କୁ ଅନୁଗତ । ହୋଇଲା, ଦେଖିଣ ଏମନ୍ତ ॥ ୮୯
ସହସ୍ର ସହସ୍ର ହୋଇଣ । ଦେବଙ୍କ ସଙ୍ଗତେ ଥାଇଣ ॥ ୯୦
ବରଦ ଦେବପତ୍ନୀମାନେ । ସ୍ତୁତିକି କଲେ ଏକମନେ ॥ ୯୧
୨୪ ମନ୍ଦର ପର୍ବତସାନୁରେ । ପୁଷ୍ପ ବରଷନ୍ତେ ତହିଁରେ ॥ ୯୨
ବାଜନ୍ତେ ଦେବବାଦ୍ୟମାନେ । କଥା ହୋଇଲେ ଅନ୍ୟୋଅନ୍ୟେ ॥ ୯୩

### ଶ୍ରୀଦେବ୍ୟ ଉଚୁଃ

୨୫ ଅଦ୍ଭୁତ ଧନ୍ୟ ଏ ଯୁବତୀ । ଯେ ପତି ରାଜାଙ୍କର ପତି ॥ ୯୪
ତାହାକୁ ସକଳ ଭାବରେ । ଯେ ସେବା କଲା ନିରନ୍ତରେ ॥ ୯୫
ଯଜ୍ଞ-ଈଶ୍ୱର ଭଗବାନ । ତାହାଙ୍କୁ ଶ୍ରୀବଧୂ ଯେସନ ॥ ୯୬
୨୬ ପତି ଅଟେ ଯେ ବେଣସୁତ । ତାହାକୁ ହୋଇ ଅନୁଗତ ॥ ୯୭
ପ୍ରାଣୀକି ଯେହୁ ଅଗୋଚର । ସେ କର୍ମଫଳେ ଆପଣାର ॥ ୯୮
ଦେଖ ଏ ଲଘିଂଶ ଆମ୍ଭଙ୍କୁ । ଅର୍ଚ୍ଚି ଯାଉଛି ଉପରକୁ ॥ ୯୯

୨୭ ସେହି ମନୁଷ୍ୟମାନଙ୍କର । କିବା ଦୁର୍ଲଭ ଅଛି ଆର ॥୧୦୦
ଭୂମିତଳରେ ଜନ୍ମ ପାଇ । ଚଞ୍ଚଳ-ଆୟୁଷ ଯେ ହୋଇ ॥୧୦୧
ତେଣେ ସୁଲଭ ଭଗବାନ । ସାଧନ୍ତି ଯେତେମତେ ଜ୍ଞାନ ॥୧୦୨
୨୮ ଅତି କ୍ଳେଶରେ ଯେଉଁ ଜନ । ମୋକ୍ଷକୁ ଅଟେ ଯେ ସାଧନ ॥୧୦୩
ଏମନ୍ତ ନରଦେହ ପାଇଁ । ବିଷୟେ ସକ୍ତ ହୋଇଥାଇ ॥୧୦୪
ସେ ଲୋକ ବଞ୍ଚିତ ଅଟଇ । ଆତ୍ମାକୁ ଦ୍ରୋହ ସେ କରଇ ॥୧୦୫

## ଶ୍ରୀମୈତ୍ରେୟ ଉବାଚ

୨୯ ଏ ରୂପେ ଦେବନାରୀମାନେ । ସ୍ତୁତିକି କରନ୍ତେ ଗଗନେ ॥୧୦୬
ସେ ଆତ୍ମଜ୍ଞାନୀଙ୍କ ମହତ । ବିଷ୍ଣୁ ଆଶ୍ରୟ ବେଣସୁତ ॥୧୦୭
ଯେବଣ ଲୋକକୁ ପାଇଲା । ବଧୂହିଁ ସେ ଲୋକକୁ ଗଲା ॥୧୦୮
୩୦ ଏ ରୂପେ ଅନୁଭାବ ଯାର । ସେ ପୃଥୁ ଜ୍ଞାନୀମଧ୍ୟେ ବର ॥୧୦୯
ତାର ଚରିତମାନ ଯେତେ । ଉଦ୍ଦାମ ଅଟନ୍ତି ଜଗତେ ॥୧୧୦
ତୋହର ଆଗରେ ବିଖ୍ୟାତ । କଲୁଁ ସେ ନୃପର ଚରିତ ॥୧୧୧
୩୧ ଏ ମହାପୁଣ୍ୟ ଉପାଖ୍ୟାନ । ଶ୍ରଦ୍ଧାରେ ହୋଇ ସାବଧାନ ॥୧୧୨
ଯେ ପଢ଼େ, ଶୁଣଇ, ଶୁଣାଇଁ । ପୃଥୁପଦବୀକି ସେ ପାଇ ॥୧୧୩
୩୨ ବ୍ରାହ୍ମଣ ବ୍ରହ୍ମତେଜବନ୍ତ । କ୍ଷତ୍ରିୟ ହୋଏ ଭୂମିନାଥ ॥୧୧୪
ବୈଶ୍ୟ ପଶୁଙ୍କ ପତି ହୋଇ । ଶୂଦ୍ର ଉତ୍ତମତ୍ୱକୁ ଯାଇ ॥୧୧୫
୩୩ ଯେ ନରନାରୀ ତିନି ଥର । ଶୁଣଇ ହୋଇଣ ଆଦର ॥୧୧୬
ଅପୁତ୍ର ହୋଇଲେ ହେଁ ସେହି । ଉତ୍ତମପୁତ୍ରବନ୍ତ ହୋଇ ॥୧୧୭
ନିର୍ଧନ ଯେବା ହୋଇଥାଇ । ଅତ୍ୟନ୍ତ ଧନବନ୍ତ ହୋଇ ॥୧୧୮
ଅବ୍ୟକ୍ତ ଅଟେ କୀର୍ତ୍ତି ଯାର । ଉତ୍ତମ ଯଶ ହୋଏ ତାର ॥୧୧୯
ଯେ ଜନ ମୂର୍ଖ ହୋଇଥାଇ । ସେ ପୁଣ ପଣ୍ଡିତ ହୁଅଇ ॥୧୨୦
୩୪ ଏ ଅଟେ ମଙ୍ଗଳ-ଅୟନ । ଅମଙ୍ଗଳର ବିନାଶନ ॥୧୨୧
ଧନ-ଆୟୁଷ ଯଶସ୍କର । ସ୍ୱର୍ଗଦ, କଳିମଳହର ॥୧୨୨
୩୫ ଧର୍ମାର୍ଥ-କାମ-ମୋକ୍ଷଙ୍କର । ଉତ୍ତମ ସିଦ୍ଧିକି ଯେ ନର ॥୧୨୩
ଲଭିବା ପାଇଁ ବିଚାରିବେ । ସେ ଏହା ଶ୍ରଦ୍ଧାରେ ଶୁଣିବେ ॥୧୨୪
ସେ ଚାରି କଥାର କାରଣ । ଅଟେ ଏ ଚରିତ ପ୍ରମାଣ ॥୧୨୫

୩୬ ବିଜୟ-ଅଭିମୁଖ ହୋଇ । ଯେ ରାଜା ଏହା ଶୁଣି ଯାଇ ॥୧୨୬
ରାଜାଏ ପୃଥୁପ୍ରାଏ ତାକୁ । ଅଗ୍ରତେ ଦିଅନ୍ତି କରକୁ ॥୧୨୭
୩୭ ଆନ ସଙ୍ଗକୁ ଦୂର କରି । କୃଷ୍ଣେ ନିର୍ମଳ ଭକ୍ତି ଧରି ॥୧୨୮
ପୃଥୁଚରିତ ପୁଣ୍ୟ ଶୁଣେ । ଶୁଣାଇଁ ଅବା ଆପେ ଗୁଣେ ॥୧୨୯
୩୮ ବିଦୁର ! ଏ ପୁଣ୍ୟ ଚରିତ । କଲୁଁ ତୋହର ଆଗେ ଖ୍ୟାତ ॥୧୩୦
ବିଷ୍ଣୁର ମାହାତ୍ମ୍ୟସୂଚନ । କରଇ ଏହୁ ଉପାଖ୍ୟାନ ॥୧୩୧
ଏଥି ଯେ ଜନ ଦିଏ ମତି । ସେ ଲଭେ ପୃଥୁରାଜା ଗତି ॥୧୩୨
୩୯ ସଙ୍ଗକୁ ଛାଡ଼ି ଅନୁଦିନ । ଆଦର ସହିତେ ଯେ ଜନ ॥୧୩୩
ଏ ପୃଥୁରାଜାର ଚରିତ । ଶୁଣନ୍ତେ, କରନ୍ତେ ବିଦିତ ॥୧୩୪
ଭବଜଳଧିକି ତାରଣ । ବୋଇତପ୍ରାୟେ ଯା' ଚରଣ ॥୧୩୫
ସେ କୃଷ୍ଣଠାରେ ରତି ପାଇ । ଯେ ରତି ନିପୁଣ ଅଟଇ ॥୧୩୬
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ ଏଣେ କର ଲୟେ ॥୧୩୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପୃଥୁ ଚରିତଂ ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

## ଚତୁର୍ବିଂଶୋଽଧ୍ୟାୟଃ

ଏକାଦଶଭିରଧ୍ୟାୟୈଃ ପୃଥୋଶ୍ଚରିତମୀରିତମ୍ ।
ପ୍ରଚେତସାମଥାଷ୍ଟା ଭିସ୍ତନ୍ମଧ୍ୟେ ପଞ୍ଚଭିଃ ପିତୁଃ ॥ ୧ ॥
ଚତୁର୍ବିଂଶେ ପ୍ରପୌତ୍ରାତ୍ତୁ ପୃଥୋଃ ପ୍ରାଚୀନବର୍ହିଷଃ ।
ପ୍ରଚେତସାଂ ଜନିସ୍ତେଭ୍ୟୋ ରୁଦ୍ରଗୀତଂ ଚ ବର୍ଣ୍ଣ୍ୟତେ ॥ ୨ ॥

ଶ୍ରୀମୈତ୍ରେୟ ଉବାଚ

୧ ବିଜିତ-ଅଶ୍ୱ ନାମ ହୋଇ । ପୃଥୁର ପୁତ୍ର ଯେ ଅଟଇ ॥ ୧
ବିଶାଳ ଅଟେ ଯଶ ତାର । ହୋଇଲା ଅଧିରାଜେଶ୍ୱର ॥ ୨
ଥିଲେ କନିଷ୍ଠ ଯେତେ ଭାଇ । ତାହାଙ୍କ ଠାରେ ସ୍ନେହ ବହି ॥ ୩
ସେମାନଙ୍କୁ ସେ ଦିଗମାନ । ପ୍ରଦାନ କଲା ସେ ରାଜନ ॥ ୪

୨ ହର୍ଯ୍ୟକ୍ଷ ନାମେ ଭାଇ ଥିଲା । ତାହାକୁ ପୂର୍ବଦିଗ ଦେଲା ॥ ୫
ଦକ୍ଷିଣ ନାମେ ଦିଗ ଯେହି । ଧୂମ୍ରକେଶକୁ ଦେଲା ତାହି ॥ ୬
ବୃକକୁ ଦେଲା ପଶ୍ଚିମକୁ । ଉତ୍ତର ଦେଲା ଦ୍ରବିଣକୁ ॥ ୭
୩ ଇନ୍ଦ୍ରର ଠାରୁ ସେ ନୃପତି । ଲଭିଣ ଅନ୍ତର୍ଧାନ ଗତି ॥ ୮
ସେଦିନୁ ଅନ୍ତର୍ଧାନ ହୋଇ । ନାମରେ ବିଖ୍ୟାତ ଅଟଇ ॥ ୯
ତାହାର ଭାର୍ଯ୍ୟା ଯେ ଉତ୍ତମ । ଯାହାର ଶିଖଣ୍ଡିନୀ ନାମ ॥ ୧୦
ତାହାର ଠାରେ ସୁସମ୍ମତ । ତିନି ତନୟ କଲା ଜାତ ॥ ୧୧
୪ ପାବକ, ପବମାନ ବେନି । ଶୁଚି ମିଶାଇ ଅଗ୍ନି ତିନି ॥ ୧୨
ବଶିଷ୍ଠଶାପୁଁ ଉପୁଜିଲେ । ପୁଣି ଅଗ୍ନିତ୍ୱକୁ ଲଭିଲେ ॥ ୧୩
୫ ସେ ଅନ୍ତର୍ଧାନ ନରପତି । ଯେ ଆନ ଭାର୍ଯ୍ୟା ନଭସ୍ୱତୀ ॥ ୧୪
ତା'ଠାରେ ହବିର୍ଧାନ ନାମ । ପୁତ୍ରକୁ କଲାକ ଜନମ ॥ ୧୫
ଇନ୍ଦ୍ର ଅଶ୍ୱକୁ ଅଛି ନେଇ । ଏମନ୍ତ ଜାଣିଲେ ହେଁ ସେହି ॥ ୧୬
ଇନ୍ଦ୍ରକୁ ନ ମାଇଲା ଯେଣୁ । ଲଭିଲା ଅନ୍ତର୍ଧାନ ତେଣୁ ॥ ୧୭
୬ କରଗ୍ରହଣ, ଶୁଳ୍କ ଦଣ୍ଡ । ଏ ଆଦି କଥାରୁ ପ୍ରଚଣ୍ଡ ॥ ୧୮
ନୃପତିମାନଙ୍କର ବୃତ୍ତି । ଏମନ୍ତ ମଣି ମହୀପତି ॥ ୧୯
ଦୀର୍ଘ ସତ୍ରକୁ ଆରମ୍ଭିଲା । ସେ ବ୍ୟାଜେ ରାଜ୍ୟକୁ ଛାଡ଼ିଲା ॥ ୨୦
୭ ପରମ-ଆତ୍ମା ଯେ ପୁରୁଷ । ନାଶନ୍ତି ଭକ୍ତଙ୍କର କ୍ଲେଶ ॥ ୨୧
ତାହାଙ୍କୁ ପୁଣ୍ୟ ସମାଧିରେ । ପୂଜା କରନ୍ତେ ସେ ତହିଁରେ ॥ ୨୨
ପାଇଲା ତାଙ୍କ ଲୋକଗତି । ଆତ୍ମଜ୍ଞାନୀ ସେ ନରପତି ॥ ୨୩
୮ ଯେ ହବିର୍ଧାନ ନରୋତ୍ତମ । ତା' ଭାର୍ଯ୍ୟା ହବିର୍ଧାନୀ ନାମ ॥ ୨୪
ପତିସକାଶୁଁ ହେ ବିଦୁର ! । ଜାତ କଲା ସେ ଛ' କୁମର ॥ ୨୫
ବରହିଷଦ, ଗୟ, ସତ୍ୟ । ଯେ କୃଷ୍ଣ, ଶୁକ୍ଳ, ଜିତବ୍ରତ ॥ ୨୬
୯ ହବିର୍ଧାନର ଯେ କୁମର । ବରହିଷଦ ନାମ ତାର ॥ ୨୭
ସେ ମହାଭାଗ ପ୍ରଜାପତି । କ୍ରିୟାକାଣ୍ଡରେ ଦକ୍ଷ ଅତି ॥ ୨୮
ଯୋଗମାନଙ୍କରେ ନିପୁଣ । ଅଟେ ହେ ବିଦୁର ! ସେ ପୁଣ ॥ ୨୯
୧୦ ଯଜ୍ଞ କରଇ ଯେଉଁଠାର । ସେହି ସମୀପେ ନୃପବର ॥ ୩୦
ପୁଣି କରଇ ଆଉ ଥରେ । ଯାହାର ଏମନ୍ତ ପ୍ରକାରେ ॥ ୩୧
ପୂର୍ବ ଆଡ଼କୁ ଅଗ୍ର ହୋଇ । ପଡ଼ନ୍ତି ଯେତେ କୁଶ ଭୂଇଁ ॥ ୩୨

| | | | | |
|---|---|---|---|---|
| | ସେ କୁଶମାନଙ୍କେ ସକଳ | । ପୂରିଲା ବସୁନ୍ଧରାତଳ | ।। | ୩୩ |
| | ଏଣୁ ପ୍ରାଚୀନବର୍ହି ହୋଇ | । ସେ ରାଜା ଜଗତେ ବୋଲାଇ | ।। | ୩୪ |
| ୧୧ | କନ୍ୟା ଯେ ଥିଲା ସମୁଦ୍ରର | । ଶତଦ୍ରୁତି ନାମ ତାହାର | ।। | ୩୫ |
| | ଆଜ୍ଞା ଦିଅନ୍ତେ ପିତାମହ | । ତାହାକୁ ହୋଇଲା ବିବାହ | ।। | ୩୬ |
| | ସୁନ୍ଦର ସର୍ବ ଅଙ୍ଗ ଯାର | । ବୟସ ଅଟଇ କିଶୋର | ।। | ୩୭ |
| | ଉତ୍ତମ ଅଳଙ୍କାରମାନ | । ଦେହରେ ହୋଇଛି ମଣ୍ଡନ | ।। | ୩୮ |
| | ବିଭାସମୟେ ପ୍ରଦକ୍ଷିଣ | । କରନ୍ତେ ଅଗ୍ନିକି ସେ ପୁଣ | ।। | ୩୯ |
| | ପୂର୍ବେ ସପତ ଋଷିଙ୍କର | । ଯାଗସମୟେ ବୈଶ୍ୱାନର[୧] | ।। | ୪୦ |
| | ସପ୍ତଋଷିଙ୍କ ଭାର୍ଯ୍ୟା ଚାହିଁ | । ଲଭନ୍ତେ କାମତାପ ତହିଁ | ।। | ୪୧ |
| | ଅଗ୍ନିର ଭାର୍ଯ୍ୟା ସ୍ୱାହା ଥିଲା | । ଭର୍ତ୍ତାର ଚିତ୍ତ ସେ ଜାଣିଲା | ।। | ୪୨ |
| | ସପ୍ତଋଷିଙ୍କ ଭାର୍ଯ୍ୟାରୂପେ | । ମିଳିଣ ଅଗ୍ନିର ସମୀପେ | ।। | ୪୩ |
| | ଅଗ୍ନିକି ରମଣ କରାଇ | । ଶୁକୀରୂପେ ସେ ରେତ ନେଇ | ।। | ୪୪ |
| | ଶରସ୍ତମ୍ବ[୨]ରେ ପକାଇଣ | । ଗୃହକୁ ଅଇଲା ସେ ପୁଣ | ।। | ୪୫ |
| | ଯେହ୍ନେ ସେ ଶୁକୀକି ଅନଳ | । କାମନା କଲେ ପୂର୍ବକାଳ | ।। | ୪୬ |
| | ଶତଦ୍ରୁତିକି ସେ ପ୍ରକାରେ | । କାମନା କଲେ ବିଭାଠାରେ | ।। | ୪୭ |
| ୧୨ | ବିବୁଧ, ଗନ୍ଧର୍ବ, ଅସୁର | । ମୁନି, ଉରଗ, ସିଦ୍ଧ, ନର | ।। | ୪୮ |
| | ନବୀନ ବିବାହବୟସେ | । ଏମାନଙ୍କୁ ସକଳ ଦିଶେ[୩] | ।। | ୪୯ |
| | ହେଲାରେ ମୋହିଲା କାମିନୀ | । କରନ୍ତେ ନୂପୁରରେ ଧ୍ୱନି | ।। | ୫୦ |
| ୧୩ | ପ୍ରାଚୀନବରହି ନୃପର | । ସେ ଶତଦ୍ରୁତି ଭାର୍ଯ୍ୟାଠାର | ।। | ୫୧ |
| | ପୁତ୍ର ଜନମ ହେଲେ ଦଶ | । ସର୍ବେ ଅଟନ୍ତି ପ୍ରଚେତସ | ।। | ୫୨ |
| | ତୁଲ୍ୟ ତାଙ୍କର ନାମବ୍ରତ | । ଧର୍ମପାରଗ ସେ ବିଦିତ | ।। | ୫୩ |
| ୧୪ | ପ୍ରଜାସର୍ଜନା କରିବାକୁ | । ପିତା ଦିଅନ୍ତେ ଆଜ୍ଞା ତାଙ୍କୁ | ।। | ୫୪ |
| | ତପସ୍ୟା କରିବା ଅର୍ଥରେ | । ମିଳିଲେ ଯାଇଁ ସମୁଦ୍ରରେ | ।। | ୫୫ |
| | ତପସ୍ୟାପତି ଯେ ଈଶ୍ୱର | । ଦଶସହସ୍ର ସମ୍ବତ୍ସର | ।। | ୫୬ |
| | ତାହାଙ୍କୁ ତପରେ ପୂଜନ | । କଲେ ସମସ୍ତ ଭାଇମାନ | ।। | ୫୭ |

---

୧. ବୈଶ୍ୱାନର = ଅଗ୍ନି ।

୨. ଶରସ୍ତମ୍ବ = ଶରତୃଣ । ୩. ଦିଶେ = ଦିଗରେ ।

୧୫ ବାଟେ ଦେଖିଲେ ମହେଶଙ୍କୁ । ସଂତୋଷ ହୋଇ ସେ ଏହାଙ୍କୁ ॥ ୫୮
ଯାହା କହିଲେ ତାହା ଧ୍ୟାନ । କରନ୍ତେ ରୁଦ୍ଧ କରି ମନ ॥ ୫୯
ପୂଜନ୍ତେ, ଜପନ୍ତେ ସେମାନେ । ସଂଯତ ହୋଇ ଦିନେ ଦିନେ ॥ ୬୦

ଶ୍ରୀବିଦୁର ଉବାଚ

୧୬ ପ୍ରଚେତାମାନଙ୍କର ପଥେ । ସଂଗମ ଶିବର ସଙ୍ଗତେ ॥ ୬୧
ହୋଇଲା ଯେମନ୍ତ ପ୍ରକାରେ । ହେ ବିପ୍ର ଶିବ ସନ୍ତୋଷରେ ॥ ୬୨
ଅଛନ୍ତି ଯେଉଁ ବାକ୍ୟ ଭଣି । କହ ସେ ଅର୍ଥବନ୍ତ ବାଣୀ ॥ ୬୩
୧୭ ଭୋ ବିପ୍ରଋଷି ! ମହେଶର । ସଙ୍ଗରେ ପ୍ରାଣୀମାନଙ୍କର ॥ ୬୪
ସଙ୍ଗମ ଦୁର୍ଲଭ ସଂସାରେ । ସଙ୍ଗକୁ ତ୍ୟାଗ କରି ଦୂରେ ॥ ୬୫
ମୁନିଏ ଯାଙ୍କୁ କଲେ ଧ୍ୟାନ । ଲଭିବା ଅର୍ଥେ ଦେଇ ମନ ॥ ୬୬
୧୮ ଆତ୍ମାରେ ବିହାର ଯାହାର । ଏମନ୍ତ ହେଲେହେଁ ଈଶ୍ୱର ॥ ୬୭
ଲୋକରଚନାର ପାଳନ । ନିମିତ୍ତେ ଭବ[୧] ଭଗବାନ ॥ ୬୮
ଘୋର ଅଟେ ଯେ ତମୋଗୁଣ । ତେଣେ ସେ କରନ୍ତି ଭ୍ରମଣ ॥ ୬୯

ଶ୍ରୀମୈତ୍ରେୟ ଉବାଚ

୧୯ ଶିରରେ ପିତାର ଆଦେଶ । ଘେନି ସେ ସାଧୁ ପ୍ରଚେତସ ॥ ୭୦
ତପେ ସାଦରଚିତ୍ତ ହେଲେ । ପଶ୍ଚିମ ଦିଗକୁ ଗମିଲେ ॥ ୭୧
୨୦ ସମୁଦ୍ରୁଁ କିଛି ଊଣା ହୋଇ । ଦେଖିଲେ ମହାସର ତହିଁ ॥ ୭୨
ମହତ-ମନ ପ୍ରାୟ ହୋଇ । ସେ ଅତି ନିର୍ମଳ ଅଟଇ ॥ ୭୩
ଯହିଁରେ ହୋଇଣ ପ୍ରସନ୍ନ । ଅଛନ୍ତି ମତ୍ସ୍ୟ ଆଦିମାନ ॥ ୭୪
୨୧ ନୀଳ, ରକତ ବର୍ଣ୍ଣ ହୋଇ । ଯେବଣ ଉତ୍ପଳ ଦୁଇ ॥ ୭୫
ପଦ୍ମ, କହ୍ଲାର, ଇନ୍ଦୀବର । ଯେ ଜନ୍ମଭୂମି ଏହାଙ୍କର ॥ ୭୬
ହଂସ, ସାରସ, କାରଣ୍ଡବ । ଚକ୍ର[୨] କରନ୍ତି ଯହିଁ ରବ ॥ ୭୭
୨୨ ମତ୍ତ ଭ୍ରମରମାନଙ୍କର । ସୁନ୍ଦର ହୋଇଛି ଯେ ସ୍ୱର ॥ ୭୮
ସେ ଭାବୁଁ ହୃଷ୍ଟରୋମ ହୋଇ । ଲତା-ଭୂରୁହ ଛନ୍ତି ଯହିଁ ॥ ୭୯
ପଦ୍ମମାନଙ୍କ ରଜ ନେଇ । ଦିଗମାନଙ୍କେ ଯେ ପକାଇ ॥ ୮୦
ଏ ରୂପେ ଅଛି ଯେଉଁ ବାତ । ତେଣେ ଉତ୍ସବ ଯହିଁ ଜାତ ॥ ୮୧

---

୧. ଭବ = ଶିବ । ୨. ଚକ୍ର = ଚକ୍ରବାକ ।

୨୩ ମୃଦଙ୍ଗ ପଣବାଦି ଯେହି । ତାହାକୁ ଅନୁଗତ ହୋଇ ॥ ୮୨
ଦିବ୍ୟ ମାର୍ଗରେ ମନୋହର । ଗାୟନ ଶୁଣିଣ ତହିଁର ॥ ୮୩
ସେ ରାଜପୁତ୍ରେ ଅତିଶୟ । ଚିତ୍ତରେ ଲଭିଲେ ବିସ୍ମୟ ॥ ୮୪

୨୪ ସେ ସରମଧରୁ ସେକାଳେ । ଆସୁଅଛନ୍ତି ଭୃତ୍ୟମେଳେ ॥ ୮୫
ସେ ଦେବମାନଙ୍କ ପ୍ରବର । ତାହାଙ୍କୁ ଚାରଣ, କିନ୍ନର ॥ ୮୬
ଏ ଆଦି ଦେବଭୃତ୍ୟମାନ । କରନ୍ତି ସମୀପେ ଗାୟନ ॥ ୮୭

୨୫ ତପତ ହେମରାଶିପ୍ରାଏ । କାନ୍ତି ତାଙ୍କର ଶୋଭା ପାଏ ॥ ୮୮
ଅସିକତଣ୍ଠ, ତ୍ରିଲୋଚନ । ଅନୁଗ୍ରହରେ ସୁପ୍ରସନ୍ନ ॥ ୮୯
ଏ ରୂପେ ଈଶ୍ୱରଙ୍କୁ ଚାହିଁ । ନମିଲେ କଉତୁକ ପାଇ ॥ ୯୦

୨୬ ପ୍ରପନ୍ନ-ଆର୍ତ୍ତି ବିନାଶନ । ଭକ୍ତବତ୍ସଳ ଭଗବାନ ॥ ୯୧
ଯେ ରାଜପୁତ୍ରେ ପ୍ରୀତିବନ୍ତ । ଧର୍ମଜ୍ଞ ଅତି ସୁଚରିତ ॥ ୯୨
ସଂତୋଷ ହୋଇଣ ତାହାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୯୩

ଶ୍ରୀରୁଦ୍ର ଉବାଚ

୨୭ ତୁମ୍ଭେ ବେଦିଷଦ-କୁମାର । କରିବା ଅର୍ଥେ ଯା' ବିଚାର ॥ ୯୪
ସେ କଥା ଜାଣିଅଛି ମୁହିଁ । ତୁମ୍ଭର ଅନୁଗ୍ରହ ପାଇଁ ॥ ୯୫
ଏମନ୍ତ ରୂପରେ ଶୋଭନ । କଲ ମୋହର ଦରଶନ ॥ ୯୬

୨୮ ସୂକ୍ଷ୍ମ ଅଟଇ ଯେ ପ୍ରକୃତି । ପୁରୁଷ-ଜୀବରୂପେ ଖ୍ୟାତି ॥ ୯୭
ଏ ବେନିଙ୍କର ଠାରୁ ପର । ଯେ ବାସୁଦେବ ସର୍ବେଶ୍ୱର ॥ ୯୮
ତାଙ୍କୁ ସାକ୍ଷାତେ ଯେ ପ୍ରପନ୍ନ । ମୋହର ବଲ୍ଲଭ ସେ ଜନ ॥ ୯୯

୨୯ ସ୍ୱଧର୍ମନିଷ୍ଠ ଯେ ପୁରୁଷ । ଶତେ ଜନମ ହେଲେ ଶେଷ ॥୧୦୦
ବିରଞ୍ଚିଭାବକୁ ଲଭଇ । ତହିଁରୁ ଅତିଶୟ ହୋଇ ॥୧୦୧
ପୁଣ୍ୟ କରନ୍ତେ ଲଭେ ମୋତେ । ଯେ ପୁଣି ବୈଷ୍ଣବ ଜଗତେ ॥୧୦୨
ବିଷ୍ଣୁର ପଦକୁ ସେ ପାଇ । ପ୍ରପଞ୍ଚ ବାହ୍ୟ ସ୍ଥାନ ସେହି ॥୧୦୩
ମୁଁ ଯେହ୍ନେ ଯେହ୍ନେ ଆନ ସୁରେ । ମିଳୁଁ ଅଧିକାର ଶେଷରେ ॥୧୦୪

୩୦ ତୁମ୍ଭେ ଯେ ବିଷ୍ଣୁର କିଙ୍କର । ବିଷ୍ଣୁର ପ୍ରାୟ ପ୍ରିୟ ମୋର ॥୧୦୫
ମୋହର ଠାରୁ ପ୍ରିୟ ହୋଇ । ବୈଷ୍ଣବଙ୍କର କେହି ନାହିଁ ॥୧୦୬

୩୧ *ତୁମ୍ଭମାନଙ୍କୁ ଯାହା ମୁହିଁ । କହୁଛି, ଶୁଣ ମନ ଦେଇ ।।୧୦୭
ମଙ୍ଗଳ, ପରମପାବନ । କରଇ ମୋକ୍ଷକୁ ସର୍ଜନ ।।୧୦୮
ବିରଳ ହୋଏ ଯେ ପ୍ରକାରେ । ଜପିବ ଏହା ସେ ରୂପରେ ।।୧୦୯

ଶ୍ରୀମୈତ୍ରେୟ ଉବାଚ

୩୨ କରଯୁଗଳ କରି ଯୁତ । ଆଗେ ଛନ୍ତି ଯେ ରାଜସୁତ ।।୧୧୦
ତାଙ୍କୁ ଏ ରୂପେ ବିଷ୍ଣୁପର । ବଚନ କହିଲେ ଶଙ୍କର ।।୧୧୧
ଦୟାରେ ଅଟଇ ସଂଯୁତ । ସେ ମହାଦେବଙ୍କର ଚିତ୍ତ ।।୧୧୨

ଶ୍ରୀରୁଦ୍ର ଉବାଚ

୩୩ ଯେ ଆତ୍ମଜ୍ଞାନୀମାନଙ୍କର । ମଧ୍ୟେ ଅଟନ୍ତି ଶ୍ରେଷ୍ଠ ନର ।।୧୧୩
ତାଙ୍କ ସ୍ୱାନନ୍ଦଲାଭ ପାଇଁ । ତୁମ୍ଭର ଉତ୍କର୍ଷ ଅଛଇ ।।୧୧୪
ସ୍ୱାନନ୍ଦଲାଭ ହେଉ ମୋର । ତୁମ୍ଭେ ଯେ ଆନନ୍ଦଶରୀର ।।୧୧୫
ତୁମ୍ଭେ ଯା' ଅଛ ସିଦ୍ଧ କରି । ସର୍ବ-ସ୍ୱରୂପ ଅଛ ଧରି ।।୧୧୬
ତୁମ୍ଭେ ଯେ ଆତ୍ମା ସମସ୍ତର । ତୁମ୍ଭଙ୍କୁ ମୋର ନମସ୍କାର ।।୧୧୭
୩୪ ଭୁବନରୂପୀ ପଦ୍ମ ଯାର । ନାଭିରେ ହେଲା ଅବତାର ।।୧୧୮
ଯେ ଭୂତ-ସୂକ୍ଷ୍ମ-ଇନ୍ଦ୍ରିୟର । ଆତ୍ମା, ତାହାଙ୍କୁ ନମସ୍କାର ।।୧୧୯
ଯେ ବାସୁଦେବ ନିର୍ବିକାର । ଯେ ଶାନ୍ତ, ଚିତ୍ତ-ଅଧୀଶ୍ୱର ।।୧୨୦
ଆପଣା ଜ୍ୟୋତିପ୍ରାୟ ହୋଇ । ଯା' ଜ୍ୟୋତି ତାକୁ ମୁଁ ବନ୍ଦଇ ।।୧୨୧
୩୫ ଯେ ସଂକର୍ଷଣ ଚିତ୍ତ[୧] ପତି । ଅନନ୍ତ ଅବ୍ୟକ୍ତ ମୂରତି ।।୧୨୨
ଜଗତ କରଇ ସଂହାର । ତାଙ୍କୁ ମୋହର ନମସ୍କାର ।।୧୨୩
ଯାହା ସକାଶରୁ ଜଗତ- । ପ୍ରକୃଷ୍ଟ ବୋଧ ହୋଏ ଜାତ ।।୧୨୪
ଯେହୁ ପ୍ରଦ୍ୟୁମ୍ନ ବୁଦ୍ଧିପତି । ତାଙ୍କୁ ମୁଁ କରୁଅଛି ନତି ।।୧୨୫
୩୬ ଇନ୍ଦ୍ରିୟମାନଙ୍କେ ପ୍ରଧାନ । ଇନ୍ଦ୍ରିୟ ଅଟଇ ଯେ ମନ ।।୧୨୬
ଅନିରୁଦ୍ଧ ତା' ଅଧୀଶ୍ୱର । ତାହାଙ୍କୁ ନମୋ ନମ ମୋର ।।୧୨୭
ଯେ ତେଜେ ବିଶ୍ୱକୁ ବ୍ୟାପଇ । ଯାହାର କ୍ଷୟବୃଦ୍ଧି ନାହିଁ ।।୧୨୮

---

* ସୃଷ୍ଟ୍ୟାଦୌ ବ୍ରହ୍ମଣା ସୃଷ୍ଟା ପୁତ୍ରେଭ୍ୟଃ ପ୍ରୋକ୍ତମିଷ୍ଟଦମ୍ ।
ସ୍ତୋତ୍ରଂ ପ୍ରାହ ପ୍ରଚେତୋଭ୍ୟଃ କୃପୟା ଭଗବାନ୍ ଶିବଃ ।।
(ସ୍ୱାମିପାଦରଚିତ ଶ୍ଲୋକ)

୧. ଚିତ୍ତ = ଅହଂକାର ।

୩୭ ଯେ ସ୍ୱର୍ଗ-ଅପବର୍ଗ ଦ୍ୱାର । ଶୁଦ୍ଧ ଚିତ୍ତ[1]ରେ ସ୍ଥିତି ଯାର ॥୧୨୯
ଏ ରୂପେ ସୂର୍ଯ୍ୟରୂପ ହୋଇ । ଯେ ଅଛି ତାଙ୍କୁ ମୁଁ ବନ୍ଦଇ ॥୧୩୦
ଯଜ୍ଞସାଧନ ଯେ ଅଟଇ । ଯଜ୍ଞକୁ ବିସ୍ତାର କରଇ ॥୧୩୧
ହିରଣ୍ୟ ବୀର୍ଯ୍ୟ ଅଟେ ଯାର । ସେ ଅଗ୍ନିକି ମୋ ନମସ୍କାର ॥୧୩୨

୩୮ ପିତୃ, ଦେବତାମାନଙ୍କର । ଯେ ଅନ୍ନରୂପୀ, ଯଜ୍ଞେଶ୍ୱର ॥୧୩୩
ଯେ ସୋମସ୍ୱରୂପୀ ଅଟଇ । ତାହାଙ୍କୁ ବନ୍ଦନ କରଇ ॥୧୩୪
ଜୀବମାନଙ୍କ ତୃପ୍ତିଦାୟୀ । ଯେ ସର୍ବରସରୂପୀ ହୋଇ ॥୧୩୫
ସେ ଜଳସ୍ୱରୂପୀ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥୧୩୬

୩୯ ସମସ୍ତ ପ୍ରାଣୀମାନଙ୍କର । ଆତ୍ମାର ଯେ ଅଟେ ଶରୀର ॥୧୩୭
ବିରାଟରୂପୀ ଯେହୁ କ୍ଷିତି । ତାଙ୍କୁ ମୁଁ କରୁଛି ପ୍ରଣତି ॥୧୩୮
ଯେ ବାତ ତିନିଲୋକପାଳ । ଯେ ଅଟେ ସହ-ଓଜବଳ[2] ॥୧୩୯
ତାହାଙ୍କୁ ମୋର ନମସ୍କାର । ଆକାଶରୂପୀ ଯେ ଈଶ୍ୱର ॥୧୪୦

୪୦ ଯେଣୁ ଶବଦ ଗୁଣ ତାର । ଏ ଘେନି ଅର୍ଥ[3] ମାନଙ୍କର ॥୧୪୧
ପ୍ରକାଶକର୍ତ୍ତା ଯେ ଅଟଇ । ବାହ୍ୟେ ଅନ୍ତରେ ପୁଣ ଯେହି ॥୧୪୨
ବ୍ୟବହାରକୁ ଆଲମ୍ବନ । ତାକୁ ମୁଁ କରୁଛି ବନ୍ଦନ ॥୧୪୩
ପବିତ୍ର ସ୍ୱର୍ଗଲୋକ ଯେହି । ଅତ୍ୟନ୍ତ ତେଜସ୍ୱୀ ଅଟଇ ॥୧୪୪

୪୧ ପ୍ରବୃତ୍ତି ନିବୃତ୍ତି ହୋଇଣ । ଦ୍ୱିବିଧ କର୍ମରୂପୀ ପୁଣ ॥୧୪୫
ପିତୃ ଦେବତାଙ୍କ ପ୍ରାପତି । ଫଳ ଯେ ତାଙ୍କୁ ମୋ ପ୍ରଣତି ॥୧୪୬
ଅଧର୍ମ ଫଳରୂପୀ ହୋଇ । ଯେ ମୃତ୍ୟୁ ତାଙ୍କୁ ମୁଁ ବନ୍ଦଇ ॥୧୪୭

୪୨ ସମସ୍ତ କର୍ମଫଳମାନ । ପ୍ରାଣୀଙ୍କି କରେ ଯେ ପ୍ରଦାନ ॥୧୪୮
ଯେ ମନୁ[4] ସର୍ବଜ୍ଞ ଅଟଇ । ତାଙ୍କୁ ମୁଁ ବନ୍ଦନ କରଇ ॥୧୪୯
ଯେ କୃଷ୍ଣ ପୁରାଣ ପୁରୁଷ । ଯେ ସାଂଖ୍ୟଯୋଗର ଅଧୀଶ ॥୧୫୦
ପରମ ଧର୍ମ-ଆତ୍ମା ପର । ତାଙ୍କୁ ମୋହର ନମସ୍କାର ॥୧୫୧

୪୩ କର୍ତ୍ତା-କରଣ-କର୍ମ ହୋଇ । ତ୍ରିଶକ୍ତିଯୁତ ଯେ ଅଟଇ ॥୧୫୨
ଯେ ଅହଂକାରରୂପୀ ହର । ତାହାଙ୍କୁ ମୋର ନମସ୍କାର ॥୧୫୩

---

୧. ଚିତ୍ତ = ଅନ୍ତଃକରଣ । ୨. ଓଜ = ଆଦିରୂପ, ବଳ = ଆଦିଧର୍ମ ।
୩. ଅର୍ଥ = ଘଟପଟାଦି ପଦାର୍ଥ । ୪. ମନୁ = ମନ୍ତ୍ରାତ୍ମକ ଈଶ୍ୱର ।

| | | | |
|---|---|---|---|
| | ଯେ ଜ୍ଞାନ-କ୍ରିୟାର ଆକାର । | ବିବିଧରୂପେ ବଚନର | ॥୧୫୪ |
| | ସୃଷ୍ଟି ଯାହାର ଠାରୁ ହୋଇ । | ସେ ବିଧାତାକୁ ମୁଁ ନମଇଁ | ॥୧୫୫ |
| ୪୪ | ଦେଖିବା ପାଇଁ ଆମ୍ଭେ ମନ । | କରିଛୁଁ, ଦିଅ ଦରଶନ | ॥୧୫୬ |
| | ଯେଉଁ ଦରଶନ ଜଗତେ । | ପୂଜା କରନ୍ତି ଭାଗବତେ | ॥୧୫୭ |
| | ଭଗତଜନମାନଙ୍କର । | ପ୍ରିୟ ଅଟଇ ରୂପ ତୋର | ॥୧୫୮ |
| | ସର୍ବ ଇନ୍ଦ୍ରିୟମାନଙ୍କର । | ଯେହୁ ବିଷୟର ଗୋଚର | ॥୧୫୯ |
| ୪୫ | ସ୍ନିଗ୍ଧ ବରଷା କାଳ-ଘନ । | ସମାନ ଦିଶେ ଶ୍ୟାମ ବର୍ଣ୍ଣ | ॥୧୬୦ |
| | ସର୍ବ ସୌନ୍ଦର୍ଯ୍ୟମାନଙ୍କର । | ସଂଗ୍ରହ ହୋଇଛି ଯହିଁର | ॥୧୬୧ |
| | ଯେ ଅଟେ ରୁଚିର ଆୟତ । | ସେ ଚାରିଭୁଜ ଯହିଁ ସ୍ଥିତ | ॥୧୬୨ |
| | ସର୍ବ-ଅବୟବ ଶୋଭନ । | ଯହିଁରେ ରୁଚିର ଆନନ | ॥୧୬୩ |
| ୪୬ | ପଦ୍ମକୋଷର ପତ୍ରପ୍ରାଏ । | ଯହିଁରେ ଚକ୍ଷୁ ଶୋଭା ପାଏ | ॥୧୬୪ |
| | ଯହିଁରେ ଭ୍ରୂଲତା ସୁନ୍ଦର । | ନାସିକା ଦିଶେ ମନୋହର | ॥୧୬୫ |
| | ଯହିଁରେ ସୁନ୍ଦର ଦଶନ । | ସୁନ୍ଦର କପୋଳ ଆନନ | ॥୧୬୬ |
| | ସମାନ କର୍ଣ୍ଣଯୁଗ ଯହିଁ । | ଭୂଷଣରୂପେ ଶୋଭା ପାଇ | ॥୧୬୭ |
| ୪୭ | ପ୍ରୀତିରେ ହସିଲା ପରାଏ । | ଅପାଙ୍ଗ ଯହିଁ ଶୋଭା ପାଏ | ॥୧୬୮ |
| | ଅଳକମାନଙ୍କେ ସୁନ୍ଦର । | ଦିଶଇ ଯାହାର ଆକାର | ॥୧୬୯ |
| | ପଦ୍ମକୋଷର ପ୍ରାୟେ ହୋଇ । | ବସ୍ତ୍ର ଯହିଁରେ ଶୋଭା ପାଇ | ॥୧୭୦ |
| | ମାର୍ଜନାବଶରୁ ଉଜ୍ଜ୍ୱଳ । | ଦିଶଇ ଯହିଁରେ କୁଣ୍ଡଳ | ॥୧୭୧ |
| ୪୮ | କିରୀଟ ବଳୟ ନୂପୁରେ । | ହାରମେଖଳା ଯହିଁ ସ୍ଫୁରେ | ॥୧୭୨ |
| | ଶଙ୍ଖ, ଚକ୍ର, ଗଦା, ନଳିନ । | ମାଳା, କୌସ୍ତୁଭମଣିମାନ | ॥୧୭୩ |
| | ଏଣେ ଉତ୍ତମ ହୋଇ ଯହିଁ । | ଅଛଇଁ ଶ୍ରେଷ୍ଠ ଭାବ ରହି | ॥୧୭୪ |
| ୪୯ | ସିଂହର ପ୍ରାୟେ ସ୍କନ୍ଧ ଦୁଇ । | ତହିଁରେ ଦୀପ୍ତି ଯେ ଧରଇ | ॥୧୭୫ |
| | ଯା'ହେତୁ ଗ୍ରୀବା ଶୋଭା ପାଇ । | ସେ କଉସ୍ତୁଭ ମଣି ଯହିଁ | ॥୧୭୬ |
| | ଅବିନାଶିନୀ ଲକ୍ଷ୍ମୀ ଯେହି । | ତାହାର ସକାଶରୁ ଯହିଁ | ॥୧୭୭ |
| | ସୁବର୍ଣ୍ଣରେଖାରେ ଅଙ୍କିତ । | କଷପାଷାଣ[୧]କୁ ଆକ୍ଷିପ୍ତ | ॥୧୭୮ |
| | କରଇ ଯେଉଁ ବକ୍ଷଦେଶ । | ତେଣେ ଯେ ହୋଇଛି ପ୍ରକାଶ | ॥୧୭୯ |

୧. କଷପାଷାଣ = କଷଟିପଥର ।

୫୦ ପୂରକ-ରେଚକ ରୂପରେ । ଯେବଣ ନିଃଶ୍ୱାସ ପ୍ରସରେ ॥୧୮୦
ତେଣେ ଯେ ଚଞ୍ଚଳ ଅଟଇ । ସେ ବଳି[1] ଯୋଗେ ରମ୍ୟ ହୋଇ ॥୧୮୧
ଅଶ୍ୱତ୍ଥ ପତ୍ରର ଆକାର । ଅଟଇ ଯହିଁରେ ଉଦର ॥୧୮୨
ଯେଉଁ ନାଭିରେ ଏ ଜଗତ । ପୂର୍ବେ ହୋଇଲା ବିନିର୍ମିତ ॥୧୮୩
ଆବର୍ତ୍ତ-ଗଭୀର ନାଭିରେ । ତାକୁ କି ପୂରାନ୍ତେ ତହିଁରେ ॥୧୮୪
୫୧ ଶ୍ୟାମ ଶ୍ରେଣୀରେ ଅତିଶୟେ । ଯେ ପୀତବସ୍ତ୍ର ଶୋଭା ପାଏ ॥୧୮୫
ତହିଁ ସୁବର୍ଣ୍ଣମୟ ହୋଇ । ମେଖଳା ଅଛି ଶୋଭା ପାଇ ॥୧୮୬
ଏକ ଆରକେ ସମ ଚାରୁ । ଚରଣଯୁଗ ଜଙ୍ଘ ଊରୁ ॥୧୮୭
ଯେ ଉଚ୍ଚ ନୋହେ ଜାନୁ ଦୁଇ । ତେଣେ ଯେ ସୁନ୍ଦର ଦିଶଇ ॥୧୮୮
୫୨ ଶରଦ ପଦ୍ମପତ୍ର ପ୍ରାଏ । ଯାହାର କାନ୍ତି ଶୋଭା ପାଏ ॥୧୮୯
ନଖଦ୍ୟୁତିରେ ଅନ୍ତର୍ଗତ । ଅଜ୍ଞାନ କରଇ ଯେ ହତ ॥୧୯୦
ସେ ପାଦେ ଲକ୍ଷିତ ଯେ ହୋଇ । ପ୍ରାଣୀଙ୍କ ଶରଣ ଅଟଇ ॥୧୯୧
ହେ ଗୁରୁ ! ହରଇ ଯେ ଭୟ । ସେ ନିଜ ରୂପକୁ ଦେଖାଅ ॥୧୯୨
ଅଜ୍ଞକୁ ମାର୍ଗ ଯେ ଦେଖାଇ । ଏମନ୍ତ ଗୁରୁ ଅଟୁ ତୁହି ॥୧୯୩
୫୩ ଆତ୍ମଶୁଦ୍ଧିକି ଯେ ବାଞ୍ଛଇ । ଏ ରୂପ ଧ୍ୟାନ ସେ କରଇ ॥୧୯୪
ନିଜ ଧର୍ମକୁ ଯେଉଁ ନର । ଆଚରୁଥାନ୍ତି, ତାହାଙ୍କର ॥୧୯୫
ଯେଣୁ ଅଭୟଦାତା ହୋଇ । ଭଗତିଯୋଗ ପ୍ରବର୍ତ୍ତଇ ॥୧୯୬
୫୪ ଭଗତିବନ୍ତ ଯେ ଅଟଇ । ସେ ଲୋକ ତୁମ୍ଭଙ୍କୁ ଲଭଇ ॥୧୯୭
ସମସ୍ତ ପ୍ରାଣୀମାନଙ୍କର । ଦୁର୍ଲଭ ତୁମ୍ଭେ ହେ ଈଶ୍ୱର ॥୧୯୮
ରାଜତ୍ୱ କରେ ଯେ ସ୍ୱର୍ଗରେ । ସେହି ତୁମ୍ଭଙ୍କୁ ସ୍ପୃହା କରେ ॥୧୯୯
ଜ୍ଞାନୀ ଅଟଇ ଯେଉଁ ନର । ଏକାନ୍ତେ ଗତି ତାହାଙ୍କର ॥୨୦୦
୫୫ ଅତି ଦୁଃଖରେ ଆରାଧନ । କରନ୍ତି ଯାକୁ ବିଜ୍ଞଜନ ॥୨୦୧
ସାଧୁମାନେ ହିଁ ଯା' ନ ପାନ୍ତି । ଏମନ୍ତ ଏକାନ୍ତ ଭଗତି ॥୨୦୨
ଏଣେ ତାହାକୁ ଆରାଧିଣ । ତା' ପାଦମୂଳକୁ ଛାଡ଼ିଣ ॥୨୦୩
ଯେ ବାହ୍ୟ ସ୍ୱର୍ଗ ଆଦି ସୁଖ । ତାହା ବାଞ୍ଛଇ ଯେଉଁ ଲୋକ ॥୨୦୪
୫୬ ପ୍ରଭାବ, ଉତ୍ସାହ ଯେ ଦୁଇ । ତହିଁରେ ଉଗ୍ର ଯେ ଅଟଇ ॥୨୦୫
ସେ ଭ୍ରୂକୁଟର୍ଜନେ ଜଗତ । ବିନାଶ କରନ୍ତେ କୃତାନ୍ତ ॥୨୦୬

---

୧. ବଳି = ଉଦରରେଖା ।

ଯେବଣ ପାଦରେ ଶରଣ । ପଶିଲା ଲୋକଙ୍କୁ ସେ ପୁଣ ॥୨୦୭
ମୋହର ବଶ ଏ ଅଟଇ । ଏମନ୍ତ ଗର୍ବ ନ କରଇ ॥୨୦୮
୫୭ ତୁମ୍ଭର ସଙ୍ଗିଜନଙ୍କର । ସଙ୍ଗର କ୍ଷଣାର୍ଦ୍ଧମାତ୍ରର ॥୨୦୯
ତହିଁକି ସଙ୍ଗ କରି ମୁହିଁ । ସ୍ୱର୍ଗ, ମୋକ୍ଷକୁ ନ ଗଣଇଁ ॥୨୧୦
ଲୋକର ରାଜ୍ୟ ଆଦି ଯେତେ । ସୁଖ ଅଛନ୍ତି ସେ ବା କେତେ ॥୨୧୧
୫୮ ଯାହାର ଚରଣଯୁଗଳ । ପାପକୁ କରଇ ନିର୍ମୂଳ ॥୨୧୨
ତୁମ୍ଭେ ଏମନ୍ତ ତୁମ୍ଭ ଯଶ । ଚରଣୁଁ ତୀର୍ଥ ଯେ ପ୍ରକାଶ ॥୨୧୩
ସେ ବେନି ଅନ୍ତରେ ବାହ୍ୟରେ । ସ୍ନାନେ ଯାହାଙ୍କ ପାପ ହରେ ॥୨୧୪
ପ୍ରାଣୀରେ ଦୟା କରିଥାନ୍ତି । ସତ୍ତ୍ୱ ସୁଚରିତ ଧରନ୍ତି ॥୨୧୫
ତାଙ୍କ ସଙ୍ଗେ ମୋ’ ସଙ୍ଗ ହେଉ । ତୁମ୍ଭର ଅନୁଗ୍ରହ ଏହୁ ॥୨୧୬
୫୯ ଯେବଣ ସାଧୁମାନଙ୍କର । ଭଗତିଯୋଗେ ମନୁଷ୍ୟର ॥୨୧୭
ମାନସ ଅନୁଗ୍ରହ ପାଇ । କ୍ରମରେ ବିଶୁଦ୍ଧ ହୁଅଇ ॥୨୧୮
ବାହ୍ୟରେ ଯେତେ ଅର୍ଥ ଥାଇ । ତହିଁରେ ବିକ୍ଷିପ୍ତ ନୁହଇ ॥୨୧୯
ତମ[୧] ସମ୍ବନ୍ଧି ଗୁହା ଯେହି । ସେ ଅବିଦ୍ୟାରେ ନାଶ ନୋହି ॥୨୨୦
ସେ ମାନସରେ ଗତି ତୋର । ବେଗେ ଦେଖଇ ଜ୍ଞାନୀ ନର ॥୨୨୧
୬୦ ଯହିଁ ଏ ବିଶ୍ୱ ପ୍ରକାଶଇ । ଏ ବିଶ୍ୱେ ଯେହୁ ଶୋଭା ପାଇ ॥୨୨୨
ଆକାଶ ପ୍ରାୟେକ ବିସ୍ତାର । ସେ ତତ୍ତ୍ୱ ଜ୍ୟୋତି ବ୍ରହ୍ମପର ॥୨୨୩
୬୧ ବହୁତ ଅଟେ ରୂପ ଯାର । ସେ ମାୟାଦ୍ୱାରେ ହେ ଈଶ୍ୱର ॥୨୨୪
ଏ ବିଶ୍ୱ ସର୍ଜଇ, ପାଳଇ । ନାଶେ ବିକାର ନ ଲଭଇ ॥୨୨୫
ଯେଉଁ ମାୟାରେ ଭେଦମତି । ଲୋକର ହୁଅଇ ଉତ୍ପତ୍ତି ॥୨୨୬
ଯେ ନିଜ କାର୍ଯ୍ୟ ତୁମ୍ଭଠାରେ । ସମର୍ଥ ନୋହେ କରିବାରେ ॥୨୨୭
ସେ ତୁମ୍ଭେ ଅଟ ଭେଦହୀନ । ଏମନ୍ତ ମଣୁଁ ଆମ୍ଭେ ମନ ॥୨୨୮
୬୨ କ୍ରିୟାକଳାପେ ଯୋଗୀଜନ । ସିଦ୍ଧିନିମିତ୍ତେ ଅନୁଦିନ ॥୨୨୯
ଇନ୍ଦ୍ରିୟ, ପଞ୍ଚମହାଭୂତ । ଅନ୍ତଃକରଣେ ଯେ ଲକ୍ଷିତ ॥୨୩୦
ଏ ରୂପେ ସାକାର ମୂରତି । ଶ୍ରଦ୍ଧା ସହିତେ ଯେ ପୂଜନ୍ତି ॥୨୩୧
ବେଦରେ ଆଗମେ ବିଦିତ । ସେମାନେ ଅଟନ୍ତି ପଣ୍ଡିତ ॥୨୩୨

---
୧. ତମ = ଅନ୍ଧକାର ।

୬୩ ଯା' ଶକ୍ତି ଅଛି ଲୀନ ହୋଇ । ଆଦ୍ୟ ପୁରୁଷ ଏକ ତୁହି ॥୨୩୩
ସେ ଶକତିରୁ ହୋଏ ଭିନ୍ନ । ପଛେ ସକଳ ଗୁଣମାନ ॥୨୩୪
ମହତ ତତ୍ତ୍ୱ, ଅହଂକାର । ଆକାଶ, ଅନଳ, ସମୀର ॥୨୩୫
ମହୀ, ସଲିଳ, ଋଷିଜନ । ଯେ ଭୂତଗଣେ ଛନ୍ତି ଆନ ॥୨୩୬
ଏମନ୍ତ ରୂପେ ଏ ଜଗତ । ଯେ ରଜଆଦିରୁ ସଂଭୂତ ॥୨୩୭
୬୪ ଯେ ଜରାୟୁଜ, ଯେ ଅଣ୍ଡଜ । ସ୍ୱେଦଜ ଆବର ଉଦ୍ଭିଜ୍ଜ ॥୨୩୮
ଏ ରୂପେ ଚତୁର୍ବିଧ ପୁର । ସର୍ଜନା କରି ଯେ ଈଶ୍ୱର ॥୨୩୯
ନିଜ ଅଂଶରେ ମିଳେ ତହିଁ । ସେ ପୁର ମଧ୍ୟେ ଯେ ପଶଇ ॥୨୪୦
ପୁରରେ ଶୁଅନ୍ତେ ସେ ଅଂଶ । ତାହାକୁ ବୋଲନ୍ତି ପୁରୁଷ ॥୨୪୧
ମକ୍ଷିକାମଧୁ ପ୍ରାୟ ହୋଇ । *ଅଳ୍ପ ବିଷୟସୁଖ ଯେହି ॥୨୪୨
ସେ ସୁଖ ଇନ୍ଦ୍ରିୟଦ୍ୱାରରେ । ଭୋଗ କରଇ ଯେ ସୁଖରେ ॥୨୪୩
୬୫ ଏ ରୂପେ କଲା ଯେ ସଂସାର । ତୁ ସେ ଜଗତର ଈଶ୍ୱର ॥୨୪୪
ଅତ୍ୟନ୍ତ ଚଣ୍ଡବେଗ ତୁହି । ତୋର ସ୍ୱରୂପ ଲକ୍ଷି ନୋହି ॥୨୪୫
ଘନଶ୍ରେଣୀକି ଯେହ୍ନେ ବାତ । ସେହି ପ୍ରକାରେ ଏ ଜଗତ ॥୨୪୬
ପ୍ରାଣୀଙ୍କି ପ୍ରାଣୀଙ୍କର ଦ୍ୱାରେ । କାଳାନ୍ତେ ସଂହାରୁ[୧] କାଳରେ ॥୨୪୭
୬୬ ଏ କୃତ୍ୟ ଏମନ୍ତ ପ୍ରକାରେ । କରିବା ଏମନ୍ତ ଚିନ୍ତାରେ ॥୨୪୮
ହୋଇ ନ ଥାଇ ସାବଧାନ । ବିଷୟଲାଳସୁଁ ଯେ ଜନ ॥୨୪୯
ପ୍ରାପତ ହୁଅନ୍ତେ ବିଷୟ । ଲୋଭ ବଢ଼ଇ ଅତିଶୟ ॥୨୫୦
ଅନ୍ତକରୂପୀ ଅଟୁ ତୁହି । ବେଗରେ ସାବଧାନ ହୋଇ ॥୨୫୧
ତାହାକୁ ହେଉ ଉପଗତ । ଭୋକେ ଲିହନ୍ତେ[୨] ଓଷ୍ଠପ୍ରାନ୍ତ ॥୨୫୨
ମୂଷିକ-ନିକଟରେ ଯାଇଁ । ଉରଗ ଯେମନ୍ତେ ମିଳଇ ॥୨୫୩
୬୭ ପଣ୍ଡିତ ହୋଇ କେଉଁ ଜନ । ଛାଡ଼ିବ ତୋ' ପାଦ-ନଳିନ ॥୨୫୪
ଅବମାନନାରୁ ତୋହର । ବିନଷ୍ଟ ଯାହାର ଶରୀର ॥୨୫୫
ବିଧାତା ଗୁରୁ ଯେ ଆମ୍ଭର । ଯେ ଚତୁର୍ଦ୍ଦଶ ମନୁ ଆର ॥୨୫୬
ଏମାନେ ଦୃଢ଼ ବିଶ୍ୱାସରେ । ପୂଜନ୍ତି ଯା'କୁ ବିଶଙ୍କା[୩]ରେ ॥୨୫୭

---

୧. ସଂହାର (ତ୍ୱଂ ସଂହରସି)
୨. ଲିହନ୍ତେ = ଚାଟନ୍ତେ । ୩. ବିଶଙ୍କା = ନାଶଶଙ୍କା ।

୬୮ ରୁଦ୍ରସକାଶୁଁ ଏ ଜଗତ । ଭୟରେ ହୋଇଅଛି ଧ୍ୱସ୍ତ ।।୨୫୮
ତୁ ବ୍ରହ୍ମ, ପରମାତ୍ମା ତୁହି । ଯହିଁ କାହିଁରୁ ଭୟ ନାହିଁ ।।୨୫୯
ଏମନ୍ତ ଗତି ତୁ ଆମ୍ଭର । ଏ କଥା ଆମ୍ଭର ଗୋଚର ।।୨୬୦
୬୯ ସ୍ୱଧର୍ମ କରନ୍ତେ ପାଳନ । ଈଶ୍ୱରଠାରେ ଦେଇ ମନ ।।୨୬୧
ତୁମ୍ଭେ ସକଳ ନୃପସୁତ । ବିଶ୍ୱାସ କରି ନିଜ ଚିତ୍ତ ।।୨୬୨
ଏ ବିଷ୍ଣୁ ସ୍ତୁତି ଜପ କର । ମଙ୍ଗଳ ହୋଇବ ତୁମ୍ଭର ।।୨୬୩
୭୦ ସେ ଆତ୍ମରୂପୀ ଆତ୍ମଗତ । ସକଳ ଭୂତେ ଅବସ୍ଥିତ ।।୨୬୪
ସ୍ମରନ୍ତେ ତାଙ୍କୁ ନିରନ୍ତର । ଗୁଣନ୍ତେ ପୂଜାକୁ ଆଚର ।।୨୬୫
୭୧ ମୁନିମାନଙ୍କ ବ୍ରତ ଧରି । ଚିତ୍ତକୁ ସମାଧାନ କରି ।।୨୬୬
ଏ ଯୋଗାଦେଶ[୧] ସ୍ତୁତି ସାରି । ସମସ୍ତେ ହୋଇଣ ଆଦରି ।।୨୬୭
ଲଭିଣ କରନ୍ତେ ଧାରଣ । ଅଭ୍ୟାସ କର ପୁଣପୁଣ ।।୨୬୮
୭୨ ଯେ ବିଶ୍ୱ କରନ୍ତି ସର୍ଜନ । ତାଙ୍କର ପତି ଭଗବାନ ।।୨୬୯
ବ୍ରହ୍ମା ଆମ୍ଭଙ୍କୁ ପୂର୍ବକାଳେ । ଭୃଗୁ ପ୍ରଭୃତି ପୁତ୍ରମେଳେ ।।୨୭୦
ଆମ୍ଭଙ୍କୁ କହିଲେ ଏ ସ୍ତୁତି । କରନ୍ତେ ସର୍ଜନାରେ ମତି ।।୨୭୧
ଆମ୍ଭେ ଏ ଜଗତ ସର୍ଜନ । ନିମିତ୍ତେ କରିଥାନ୍ତେ ମନ ।।୨୭୨
୭୩ ପ୍ରଜାଙ୍କ ସର୍ଜନା ନିମିତ୍ତ । ବିଧାତା କରନ୍ତେ ଉକତ ।।୨୭୩
ସମସ୍ତ ପ୍ରଜାମାନଙ୍କର । ଅଟୁ ଯେ ଆମ୍ଭେ ଅଧୀଶ୍ୱର ।।୨୭୪
ଏଣେ ତମ[୨]କୁ ନାଶ କଲୁଁ । ବିବିଧ ପ୍ରଜାଙ୍କୁ ସର୍ଜିଲୁଁ ।।୨୭୫
୭୪ ଏକାଗ୍ରଚିତ୍ତ ସାବଧାନ । ଯେ ନିତ୍ୟେ ଜପେ ଏହା ଜନ ।।୨୭୬
ସେ ବିଷ୍ଣୁପରାୟଣ ହୋଇ । ନିକଟେ ମଙ୍ଗଳ ଲଭଇ ।।୨୭୭
୭୫ ମଙ୍ଗଳମାନଙ୍କ ମଧ୍ୟର । ମୋକ୍ଷସାଧନ ଜ୍ଞାନ ବର ।।୨୭୮
ଜ୍ଞାନ ଅଟଇ ନାବ ଯାର । ଅନାୟାସରେ ସେହୁ ନର ।।୨୭୯
ବିପତ୍ତି ସିନ୍ଧୁକୁ ତରଇ । ଯେଉଁ ସିନ୍ଧୁରେ ପାର ନାହିଁ ।।୨୮୦
୭୬ ମୁଁ ଯାହା କରିଛି ଗାୟନ । ଏ ବିଷ୍ଣୁ ସ୍ତବ ଯେଉଁଜନ ।।୨୮୧
ଶ୍ରଦ୍ଧାରେ ହୋଇଣ ସଂଯୁତ । କରେ ଅଧ୍ୟୟନ ସୁଚିତ୍ତ ।।୨୮୨
ହରିଙ୍କି ପୂଜଇ ସେ ନର । ଦୁଃଖରେ ସାଧ୍ୟ ପୂଜା ଯାର ।।୨୮୩

---

୧. ଯୋଗାଦେଶ = ଏ ସ୍ତୋତ୍ରର ନାମ ।
୨. ତମ = ଅନ୍ଧକାର ।

| | | | | |
|---|---|---|---|---|
| ୭୭ | ସ୍ଥିର ହୋଇଣ ଯାହି ଯାହି | । | ସେ ଲୋକ ମନରେ ବାଞ୍ଛଇ | ॥୨୮୪ |
| | ସର୍ବମଙ୍ଗଳମାନଙ୍କର | । | ପ୍ରିୟ ଆଶ୍ରୟ ଯେ ଈଶ୍ୱର | ॥୨୮୫ |
| | ତାହାଙ୍କ ଠାରୁ ତାହା ପାଇ | । | ମୋର ସ୍ତୁତିରେ ତୋଷ ହୋଇ | ॥୨୮୬ |
| ୭୮ | ଉଠିଣ ପ୍ରଭାତକାଳରେ | । | ପ୍ରାଞ୍ଜଳି ହୋଇଣ ଶ୍ରଦ୍ଧାରେ | ॥୨୮୭ |
| | ଯେ ଏହା ଶୁଣଇଁ ଶୁଣାଇଁ | । | କର୍ମବନ୍ଧରୁ ମୁକ୍ତ ହୋଇ | ॥୨୮୮ |
| ୭୯ | ପରମ ଆତ୍ମା ଭଗବାନ | । | ଯେ ପ୍ରଭୁ ପୁରୁଷ ପ୍ରଧାନ | ॥୨୮୯ |
| | ତାହାଙ୍କ ସ୍ତୁତି ଏ ଅଟଇ | । | ହେ ରାଜପୁତ୍ରେ ପଢ଼ିଲଇଁ | ॥୨୯୦ |
| | ଏହା ଜପନ୍ତେ ଏକମନେ | । | ତପ କରିବ ଅନୁଦିନେ | ॥୨୯୧ |
| | ମନ ବାଞ୍ଛାକୁ ତଦନ୍ତରେ | । | ଲଭିବ ତପସ୍ୟା-ଅନ୍ତରେ | ॥୨୯୨ |
| | ପ୍ରଚେତାମାନେ ଯାକୁ ଧ୍ୟାୟି | । | ଆନନ୍ଦ ହେଲେ ଅନ୍ତେ ପାଇ | ॥୨୯୩ |
| | ତାହାଙ୍କ ଚରଣପଙ୍କଜେ | । | ବ୍ରାହ୍ମଣ ଦୀନବନ୍ଧୁ ଭଜେ | ॥୨୯୪ |

ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ
ଶ୍ରୀବିଦୁରମୈତ୍ରେୟସଂବାଦେ ଶ୍ରୀରୁଦ୍ରଗୀତଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥

## ପଞ୍ଚବିଂଶୋଽଧ୍ୟାୟଃ

ପ୍ରଚେତଃସୁ ତପସ୍ୟତ୍ସୁ ତତ୍ପିତ୍ରେ ନାରଦୋ ଘୃଣୀ ।
ପ୍ରାଚୀନବର୍ହିଷେଽଧ୍ୟାତ୍ମଂ ପାରୋକ୍ଷ୍ୟେଣାହ ପଞ୍ଚଭିଃ ॥ ୧ ॥
ପୁରଞ୍ଜନକଥାବ୍ୟାଜାଦ୍ ପଞ୍ଚବିଂଶେ ତୁ ନାରଦଃ ।
ଆତ୍ମନୋ ବୁଦ୍ଧିସଂଗେନ ବିବିଧାମାହ ସଂସୃତିମ୍ ॥ ୨ ॥
ପ୍ରଚେତଃସୁ ତପସ୍ତୀବ୍ରଂ ତପ୍ୟମାନେଷୁ ନାରଦଃ ।
ପୁରଞ୍ଜନକଥାକୂଟଂ ପ୍ରାହ ପ୍ରାଚୀନବର୍ହିଷେ ॥ ୩ ॥

ଶ୍ରୀମୈତ୍ରେୟ ଉବାଚ

| | | | | |
|---|---|---|---|---|
| ୧ | ବରହିଷଦ ପୁତ୍ରଙ୍କର | । | ପୂଜାକୁ ଲଭିଣ ଶଙ୍କର | ॥ ୧ |
| | ତାହାଙ୍କୁ କହି ଏ ପ୍ରକାରେ | । | ଚାହଁନ୍ତେ ସେ ରାଜକୁମାରେ | ॥ ୨ |
| | ସେହିଁ ସ୍ଥାନରେ ଅନ୍ତର୍ଧାନ | । | ହୋଇଲେ ପ୍ରଭୁ ତ୍ରିଲୋଚନ | ॥ ୩ |

୨ ଗାୟନ କଲେ ଯାହା ଶିବ । ସେ ବିଷ୍ଣୁ ଦେବଙ୍କର ସ୍ତବ ॥
ଜପନ୍ତେ ପ୍ରଚେତା ସକଳେ । ଅୟୁତେ ବରଷ ସଲିଳେ ॥
କଲେ ସେ ତପ ଆଚରଣ । ଚିନ୍ତନ୍ତେ ବିଷ୍ଣୁର ଚରଣ ॥
୩ ଯେ କର୍ମେ ଆସକତ ମତି । ପ୍ରାଚୀନବରହି ନୃପତି ॥
ତାହାଙ୍କୁ କଲେ ପ୍ରବୋଧନ । କୃପାଳୁ ବ୍ରହ୍ମାର ନନ୍ଦନ ॥
ଅଧ୍ୟାତ୍ମ ଜ୍ଞାନକୁ ଗୋଚର । ଯେ କରିଛନ୍ତି ହେ ବିଦୁର ॥
୪ କର୍ମମାର୍ଗେ ହେ ନୃପବର । କି ଫଳ ବାଞ୍ଛୁ ଆପଣାର ॥
ଯହିଁରେ ହୋଏ ଦୁଃଖ ହତ । ସୁଖହିଁ ହୁଅଇ ପ୍ରାପତ ॥
ଏମନ୍ତ ଶ୍ରେୟ ବିଜ୍ଞ ଜନେ । ବାଞ୍ଛନ୍ତି ନାହିଁ ଏଥି ମନେ ॥

ଶ୍ରୀରାଜୋବାଚ

୫ ହେ ମହାଭାଗ ମୋର ଚିତ୍ତ । କର୍ମରେ ହୋଇଛି ଭେଦିତ ॥
ଏ ଘେନି ନ ଜାଣଇଁ ମୁହିଁ । ବିମଳ ଜ୍ଞାନ ଦିଅ କହି ॥
ଯେବଣ ଜ୍ଞାନଶ୍ରବଣରୁ । ମୁକତ ହୋଇବି କର୍ମରୁ ॥
୬ ଯହିଁରେ କୂଟ ଧର୍ମମାନ । ସେ ଗୃହେ ଥାଇ ମୂଢ଼ଜନ ॥
ପୁତ୍ର, ବନିତା ଧନେ ନିତି । କରିଣ ପୁରୁଷାର୍ଥ ମତି ॥
ସଂସାରମାର୍ଗରେ ଭ୍ରମନ୍ତେ । ମୁକ୍ତିକି ନ ଲଭଇ ଅନ୍ତେ ॥

ଶ୍ରୀନାରଦ ଉବାଚ

୭ ହେ ପ୍ରଜାପତି ! ହେ ରାଜନ । ସହସ୍ରସଂଖ୍ୟ ଜୀବମାନ ॥
ନିର୍ଦ୍ଦୟେଁ ଯଜ୍ଞେ ପଶୁଭାବେ । ମାରିଛୁ ଯାହା ଦେଖ ଏବେ ॥
୮ ତୋହର କୃତ ପୀଡ଼ା ଚିନ୍ତି । ତୋତେ ଏ ବାଟ ଚାହିଁଛନ୍ତି ॥
ତୋତେ ଏ ମରଣ ଅନ୍ତରେ । ଲୋହଯନ୍ତ୍ରମୟ ଶୃଙ୍ଗରେ ॥
ଛେଦନ କରିବେ ନିୟତ । କ୍ରୋଧ ହୁଅନ୍ତେ ହୃଦେ ଜାତ ॥
୯ ମୁହିଁ ଏ ସଂକଟେ ନିସ୍ତାର । କଥା କହିବି ତୋ ଆଗର ॥
ଯେ ପୁରଞ୍ଜନର ଚରିତ । ଅଟଇ ପୁରାତନ ଖ୍ୟାତ ॥
ସେ କଥା କହିବି ମୁଁ ତୋତେ । ଶୁଣ ରାଜନ ! ଏକ ଚିତ୍ତେ ॥
୧୦ ହେ ରାଜା ! ଥିଲା ଯେ ରାଜନ । ନାମ ତାହାର ପୁରଞ୍ଜନ ॥
ସେ ନୃପତିର ଏକ ମିତ୍ର । ଥିଲା ତା' ନାମ ଅବିଜ୍ଞାତ ॥
ସେ ମିତ୍ର ଚେଷ୍ଟା ଯେ ଅଟଇ । କେହି ତା' ଜାଣି ନ ପାରଇ ॥

| | | | | |
|---|---|---|---|---|
| ୧୧ | ଗୃହ ଖୋଜନ୍ତେ ସେ ନୃପତି । | ଭ୍ରମଣ କଲା ବସୁମତୀ | ॥ | ୩୦ |
| | ଆପଣା ଅନୁରୂପ ସ୍ଥାନ । | ଯେବେ ନ ଲଭିଲା ରାଜନ | ॥ | ୩୧ |
| | ବିମନା ପ୍ରାୟ ସେ ହୋଇଲା । | ଯେଣୁ ସେ ରହି ନ ପାରିଲା | ॥ | ୩୨ |
| ୧୨ | ଭୂମିତଳରେ ଯେତେ ପୁର । | ଦେଖି ସେମାନ ନୃପବର | ॥ | ୩୩ |
| | କାମ ବାଞ୍ଛନ୍ତେ ନିଜ ଚିତ୍ତେ । | ସେ କାମ ପ୍ରାପତି ନିମିତ୍ତେ | ॥ | ୩୪ |
| | *ସେ ପୁରମାନ ସାଧୁ କରି । | ମଣିଲା ନାହିଁ ଦଣ୍ଡଧାରୀ | ॥ | ୩୫ |
| ୧୩ | ଏକଦିନେ ସେ ହିମାଦ୍ରିର । | ଦକ୍ଷିଣ ସାନୁଙ୍କ ଉପର | ॥ | ୩୬ |
| | ପୁରେ ଦେଖିଲା ନବଦ୍ୱାରେ । | ଲକ୍ଷିତ ଲକ୍ଷଣ ଯହିଁରେ | ॥ | ୩୭ |
| ୧୪ | ପାଚେରି, ଉପବନମାନ । | ଅଟ୍ଟାଳୀ, ଜଳି ବାତାୟନ | ॥ | ୩୮ |
| | ଏମାନଙ୍କରେ ଯେଉଁ ପୁର । | ତୋରଣମାନଙ୍କେ ରୁଚିର | ॥ | ୩୯ |
| | ସୁବର୍ଣ୍ଣ, ରୁପା, ଲୁହାମୟ । | ଯେବଣ ଶିଖରନିଚୟ | ॥ | ୪୦ |
| | ତେଣେ ସଂଯୁତ ଗୃହେ କରି । | ସଂକୁଳ ହୋଇଛି ଯେ ପୁରୀ | ॥ | ୪୧ |
| ୧୫ | ନୀଳ, ବୈଦୂର୍ଯ୍ୟ, ସ୍ଫଟିକରେ । | ମୁକ୍ତା, ମାଣିକ୍ୟ, ମର୍କତରେ | ॥ | ୪୨ |
| | ଅଟ୍ଟାଳୀମଧ୍ୟ-ବେଦିମାନ । | ଯହିଁରେ ହୋଇଛି ଘଟନ | ॥ | ୪୩ |
| | ଶୋଭାରେ ହୋଇଛି ଦୀପିତ । | ପାତାଳନଗରୀ ଯେମନ୍ତ | ॥ | ୪୪ |
| ୧୬ | ସଭା, ଅଙ୍ଗଣ, [୧]ରଥ୍ୟାମାନ । | ଦ୍ୟୂତ ଆଦି ବିହାର ସ୍ଥାନ | ॥ | ୪୫ |
| | ଯେ ହାଟ, ପ୍ରାଣୀମାନଙ୍କର । | ବିଶ୍ରାମ-ସ୍ଥାନ ଯେ ଆବର | ॥ | ୪୬ |
| | ଧ୍ୱଜେ ପତାକା ଶୋଭମାନ । | ବିଦ୍ରୁମ- ବେଦିମାନେ ଆନ | ॥ | ୪୭ |
| | ଏମାନଙ୍କରେ ଯେଉଁ ପୁର । | ସଂଯୁତ ଅଟେ ନିରନ୍ତର | ॥ | ୪୮ |
| ୧୭ | ପୁରବାହ୍ୟରେ ଉପବନ । | ଦିଶଇ ଅତ୍ୟନ୍ତ ଶୋଭନ | ॥ | ୪୯ |
| | ବିହଙ୍ଗ, ଅଳିକୁଳମାନେ । | ଶବଦ କରନ୍ତେ ସୁଘନେ | ॥ | ୫୦ |
| | ତାହାଙ୍କ କୋଳାହଳେ ଯୁତ । | ଯହିଁରେ ଜଳାଶୟେ ସ୍ଥିତ | ॥ | ୫୧ |
| | ଦିବ୍ୟ ବିଟପୀ ଲତାମାନ । | ତେଣେ ସଂଯୁତ ଯେଉଁ ବନ | ॥ | ୫୨ |
| ୧୮ | ହିମନିର୍ଝର ବିନ୍ଦୁଯୁତ । | ଯେହୁ ବସନ୍ତକାଳ-ବାତ | ॥ | ୫୩ |
| | ତେଣେ ଯାହାଙ୍କର କଂପନ । | ବନପଲ୍ଲବ, ଶାଖାମାନ | ॥ | ୫୪ |
| | ସେ ବୃକ୍ଷେ ସରସୀଙ୍କ ତଟେ । | ସମୃଦ୍ଧି ଯହିଁରେ ପ୍ରକଟେ | ॥ | ୫୫ |

---

* "ତାଭ୍ୟୋ ଗାମାନୟତ୍, ତା ଅବ୍ରୁବନ୍ ନ ବୈନୋଽୟମଲମିତି । ତାଭ୍ୟୋଽଶ୍ୱମାନୟତ୍, ତା ଅବ୍ରୁବନ୍ ନ ବୈନୋଽୟମଲମିତି" (ଶ୍ରୁତିଃ) ।

୧. ରଥ୍ୟା = ରାଜମାର୍ଗ

୧୯ ନାନା ପ୍ରକାରେ ବନଜାତ । ଯେ ଜନ୍ତୁ ମୃଗମାନେ ସ୍ଥିତ ॥
ମୁନିଙ୍କ ପ୍ରାୟ ସେ ଅଟନ୍ତି । ପରକୁ ହିଂସା ନ କରନ୍ତି ॥
ତାହାଙ୍କ ସକାଶରୁ ଯହିଁ । କେହୁଣି ରୂପେ ବାଧା ନାହିଁ ॥
ଯହିଁ କୋକିଳଧ୍ୱନି ଶୁଣି । ଡାକିଲା ପ୍ରାୟେ ପାନ୍ଥ ମଣି ॥
୨୦ ଏମନ୍ତ ଯେଉଁ ଉପବନ । ତହିଁ ସେ ରାଜା ପୁରଞ୍ଜନ ॥
ଉତ୍ତମ ସ୍ତିରୀକି ଦେଖିଲା । ନିଜ ଇଚ୍ଛାରେ ସେ ମିଳିଲା ॥
ଯେ ଶତେ ଲୋକର ନାୟକ । ଖ୍ୟାତ ଅଟନ୍ତି ଏକେ ଏକ ॥
ସେ ଦଶ ଭୃତ୍ୟ ସଙ୍ଗେ ଘେନି । ଆସୁଣ ଅଛି ସେ କାମିନୀ ॥
୨୧ ତାହାକୁ ପଞ୍ଚଶିର ଅହି । ରକ୍ଷା କରିଛି ଦ୍ୱାରୀ ହୋଇ ॥
ଭର୍ତ୍ତାକୁ ଖୋଜେ ଆପଣାର । ପ୍ରୌଢ଼ ବୟସନୋହେ ତାର ॥
କାମରୂପିଣୀ ସେ ଯୁବତୀ । ଚାରୁନାସିକା ଚାରୁଦନ୍ତୀ ॥
ସୁନ୍ଦର କପୋଳ ତାହାର । ଆନନ ଦିଶଇ ସୁନ୍ଦର ॥
୨୨ } ସମାନ ହୋଇ ଯେ ନିର୍ମାଣ । କର୍ଣ୍ଣଯୁଗଳ ତାର ପୁଣ ॥
୨୩ } କୁଣ୍ଡଳଶୋଭା ତେଣେ ଧରେ । ପିଶଙ୍ଗ ନୀବି ତାହାଠାରେ ॥
ସୁଶ୍ରୋଣୀ, ଶ୍ୟାମା[୧] ସେ ଅବଳା । ଶୋଭଇ କନକମେଖଳା ॥
ନୂପୁର ସଂଯୋଗରେ ଧ୍ୱନି । କରନ୍ତି ଯେଉଁ ପାଦବେନି ॥
ତେଣେ ସେ କରଇ ଗଗନ । ଦିଶଇ ଦେବତା ଯେସନ ॥
୨୪ ତାହାର ଯେଉଁ ବେନି ସ୍ତନ । ସମାନ ବର୍ତ୍ତୁଳ, ସୁଘନ ॥
କିଶୋର ବୟସ ପ୍ରକାଶେ । ସେ ବେନି ବସ୍ତ୍ର ଅନ୍ତଦେଶେ ॥
ଲଜ୍ଜାରେ କରେ ଆଚ୍ଛାଦନ । ଗଜର ପ୍ରାୟ ତା' ଗମନ ॥
୨୫ ଲଜ୍ଜା ସହିତ ମନ୍ଦହାସେ । ଶୋଭାକୁ ପାଇ ଯେ ବିଶେଷେ ॥
ପ୍ରେମରେ ଭ୍ରମେ ଯେ ଭ୍ରୂଲତା । ସେ ଧନୁରୂପେ ଯା ଶୋଭିତା ॥
ଏମନ୍ତ ଯେ କଟାକ୍ଷଶର । ସ୍ନିଗ୍ଧ ଅଟେ ସେ ଯୁବତୀର ॥
ତେଣେ ସେ ବୀର ବିନ୍ଧା ହେଲା । ତାହାକୁ ବଚନ ବୋଇଲା ॥
୨୬ ହେ ପଦ୍ମପଲାଶଲୋଚନି ! । କିଏ ତୁ କାହାର କାମିନୀ ॥
କେବଣ ସ୍ଥାନୁଁ ଆସି କରି । ଏ ପୁର ନିକଟ ଆବୋରି ॥
କି କରିବାକୁ କରୁ ମନ । ମୋ' ଆଗେ କହ ସେ ବଚନ ॥

---

୧. ଶ୍ୟାମା = ଶୀତକାଳେ ଭବେଦୁଷ୍ଣା ଗ୍ରୀଷ୍ମକାଳେ ଚ ଶୀତଳା ।
ତପ୍ତକାଞ୍ଚନବର୍ଣ୍ଣାଭା ସା ଶ୍ୟାମା ପରିକୀର୍ତ୍ତିତା ॥

୨୭ ଯେ ମହାଭଟ ଏକାଦଶ । ଗୋଡ଼ାଇ ଅଛନ୍ତି ତୋ' ପାଶ ॥ ୮୩
ଏମାନେ କେ ପୁଣ ଅଟନ୍ତି । ଏ ସ୍ତିରୀମାନେ କେ ହୁଅନ୍ତି ॥ ୮୪
ଯେ ଅଛି ଅଗ୍ରସର ହୋଇ । ଏ ଅହି କେ ଅବା ଅଟଇ ॥ ୮୫
୨୮ ତୋ' ପାଦ କାମନାରେ ପୂର୍ଣ୍ଣ । ଯାର ସକଳ କାମମାନ ॥ ୮୬
ଏମନ୍ତ ପତି ଯେ ଅଟଇ । ତାହାକୁ ମୁନିପ୍ରାୟ ହୋଇ ॥ ୮୭
ଏକାନ୍ତ ସ୍ଥାନରେ ବିପିନେ । ଖୋଜୁଅଛୁ କି ତୋଷମନେ ॥ ୮୮
ତୁ ଲଜ୍ଜା ଅଟୁ ମୂର୍ତ୍ତିମତୀ । ଉମା ଅଥବା ସରସ୍ୱତୀ ॥ ୮୯
ତୁ ଲକ୍ଷ୍ମୀ, କର-ଅଗ୍ରୁଁ ଯାଇ । ପଡ଼ିଲା ପଦ୍ମକୋଷ କାହିଁ ॥ ୯୦
୨୯ ଏ ସ୍ତିରୀମାନଙ୍କ ମଧ୍ୟରେ । ଆନ ନୋହୁ କି ତୁ ସଂସାରେ ॥ ୯୧
ତେଣୁ ତୁ ଛୁଇଁଅଛୁ କ୍ଷିତି । ଦେବେ ଯେ ଭୂମି ନ ଛୁଅନ୍ତି ॥ ୯୨
ଯେତେ ଅଛନ୍ତି ବୀରଜନ । ତାହାଙ୍କ ମଧ୍ୟେ ମୁଁ ପ୍ରଧାନ ॥ ୯୩
ମୋହର ସଙ୍ଗେ ପ୍ରତିଦିନ । ଏ ପୁର କର ତୁ ମଣ୍ଡନ ॥ ୯୪
ଅନେକ ଅଟେ କର୍ମ ଯାର । ସେ ଯଜ୍ଞପୁରୁଷସଙ୍ଗର ॥ ୯୫
ଯେସନେ ବୈକୁଣ୍ଠ ଭୁବନ । କମଳା କରଇ ମଣ୍ଡନ ॥ ୯୬
୩୦ ସଲଜ୍ଜ ପ୍ରେମ ମନ୍ଦହାସେ । ଭ୍ରମେ ଯେ ଭ୍ରୂଲତା ବିଶେଷେ ॥ ୯୭
ତେଣେ ନିଯୁକ୍ତ ହୋଇ ତୋର । ଏ ଭଗବାନ ପୁଷ୍ପଶର ॥ ୯୮
ଅତି ବାଧୁଛି ମୋତେ ଯେଣୁ । ତୁ ଅନୁଗ୍ରହ କର ତେଣୁ ॥ ୯୯
ତୋର ଅପାଙ୍ଗେ ବିଖଣ୍ଡିତ । ହୋଇଛି ଯେଣୁ ମୋର ଚିତ୍ତ ॥୧୦୦
୩୧ ଯହିଁରେ ଭ୍ରୂଲତା ସୁନ୍ଦର । ଲୋଚନ ଯୁଗ ଅତି ତାର[୧] ॥୧୦୧
ନୀଳ ଅଳକାକୁଳ ଯହିଁ । ଲମ୍ବିଣ ବେଢ଼ିଛନ୍ତି ଶୋହି ॥୧୦୨
ମଞ୍ଜୁଳ ବାକ୍ୟଛନ୍ତି ଯହିଁ । ଯେ ଲାଜେ ଅଭିମୁଖ ନୋହି ॥୧୦୩
ଟେକିଣ ସେ ମୁଖକୁ ମୋତେ । ଦେଖାଅ ଆଗୋ ଶୁଚିସ୍ମିତେ ॥୧୦୪

ଶ୍ରୀନାରଦ ଉବାଚ

୩୨ ହେ ବୀର ! ପୁରଞ୍ଜନ ରାଏ । ଏ ରୂପେ ଅଧୀର ପରାଏ ॥୧୦୫
ଯାଚଞ୍ଚା କରନ୍ତେ ସେ ପୁଣ । ହସନ୍ତେ ମୋହିତ ହୋଇଣ ॥୧୦୬
ଆନନ୍ଦ ପାଇ ସେ ବୀରକୁ । କହିଲା ଏମନ୍ତ ବାକ୍ୟକୁ ॥୧୦୭

---

୧. ତାର = ତୀକ୍ଷ୍ଣ ।

୩୩ ହେ ନରଶ୍ରେଷ୍ଠ ! ଯେ ନିର୍ମାଣ । କରିଛି ତୋତେ ମୋତେ ପୁଣ ।।୧୦୮
ଭଲେ ନ ଜାଣୁଁ ଆମ୍ଭେ ତାକୁ । କରିଛି ଯେ ନାମ ଗୋତ୍ରକୁ ।।୧୦୯
୩୪ ଏଠାରେ ଆଜ ଅଛି ମୁହିଁ । ଏଥୁ ଅଧିକ ନ ଜାଣଇଁ ।।୧୧୦
ମୋହର ଆଶ୍ରୟ ଏ ପୁର । ଯେ ଏହା କରିଛି ହେ ବୀର ।।୧୧୧
ତାହାକୁ ନିଶ୍ଚୟ କରିଣ । ନ ଜାଣୁ ଆମ୍ଭେମାନେ ପୁଣ ।।୧୧୨
୩୫ ଏ ଯେତେ ଛନ୍ତି ନାରୀ ନର । ଏମାନେ ସଖୀ, ସଖା ମୋର ।।୧୧୩
ନିଦ୍ରାରେ ଆସକତ ହୋଇ । ଯେବେ ମୁଁ ଶୟନ କରଇ ।।୧୧୪
ପୁରକୁ କରନ୍ତେ ପାଳନ । ଏ ନାଗ ହୋଏ ସଚେତନ ।।୧୧୫
୩୬ ଭାଗ୍ୟରେ ମିଳିଲୁ ଏଠାର । ମଙ୍ଗଳ ଉପୁଜୁ ତୋହର ।।୧୧୬
ଯେବଣ ଗ୍ରାମ୍ୟ ଭୋଗମାନ । ବାଞ୍ଛା କରୁ ତୁ ନିଜ ମନ ।।୧୧୭
ନିଜ ବନ୍ଧୁଙ୍କ ସଙ୍ଗତରେ । ସଂପାଦିବି ମୁଁ ତା' ତୋଠାରେ ।।୧୧୮
୩୭ ଏ ଅଟେ ନବମୁଖ ପୁର । ହେ ପ୍ରଭୁ ! ପଶ ତୁ ଏଥିର ।।୧୧୯
ଯେବଣ ଭୋଗମାନ ଆଣି । ଦେବି ମୁଁ ଭୁଂଜନ୍ତେ ତା' ପୁଣି ।।୧୨୦
ଶଏ ବରଷ ପରିଯନ୍ତେ । ଏ ପୁରେ ରହ ତୁ ନିଶ୍ଚିନ୍ତେ ।।୧୨୧
୩୮ ତୋହର ଠାରୁ କେଉଁ ଆନ । ଲୋକକୁ ବାଞ୍ଛିବଇଁ ମନ ।।୧୨୨
ଯେ ଲୋକ ରତି ନ ଜାଣଇଁ । ସ୍ୱଭାବେ ପଣ୍ଡିତ ନୁହଇ ।।୧୨୩
ପର ଲୋକକୁ ଯେ ଉଚିତ । ସେ ଚିନ୍ତା ନ ଘେନଇଁ ଚିତ୍ତ ।।୧୨୪
କାଲି ଏ କଥା କରିବଇଁ । ଯେ ପଶୁ ଏତେ ନ ଜାଣଇ ।।୧୨୫
୩୯ ଏ ଗୃହ ଆଶ୍ରମେ ଉତ୍ତମ । ସଂଭବେ ଧର୍ମ, ଅର୍ଥ, କାମ ।।୧୨୬
ପୁତ୍ର-ଆନନ୍ଦ, ମୋକ୍ଷ, ଯଶ । ଏମାନ ହୁଅଇ ପ୍ରକାଶ ।।୧୨୭
ବିଶୋକ, ରଜୋଗୁଣହୀନ । ଏମନ୍ତ ପରଲୋକମାନ ।।୧୨୮
ଏ ଗୃହଆଶ୍ରମେ ହୁଅନ୍ତି । ଯତିଏ ଯାହା ନ ଜାଣନ୍ତି ।।୧୨୯
୪୦ ପିତୃ, ଦେବତା, ଋଷି, ନର । ଯେ ଭୂତେ, ଆତ୍ମା ଆପଣାର ।।୧୩୦
ତାଙ୍କ ମଙ୍ଗଳପ୍ରଦ ସ୍ଥାନ । ଗୃହ-ଆଶ୍ରମ ବୋଲେ ଜନ ।।୧୩୧
୪୧ ତୋହର ପ୍ରାୟକ ଯେ ପତି । ଖ୍ୟାତ, ସୁନ୍ଦର, ଦାତା ଅତି ।।୧୩୨
ତାହାରି ଇଚ୍ଛାଏ ହେ ବୀର । ପ୍ରବେଶ ହୋଇବ ଆଗର ।।୧୩୩
ତାହାକୁ ମୋର ପ୍ରାୟ ହୋଇ । କେବଣ ସ୍ତିରୀ ନ ବରଇ ।।୧୩୪
୪୨ ହେ ବୀର ! ସର୍ପଦେହପ୍ରାଏ । ତୋ ଭୁଜ ଦୁଇ ଶୋଭା ପାଏ ।।୧୩୫
କେବଣ ଯୁବତୀର ଚିତ୍ତ । ନୋହିବ ତହିଁ ଆସକତ ।।୧୩୬

ଯେ ଅତି ଦୟା, ମନ୍ଦହାସେ । ସହିତ କଟାକ୍ଷ ପ୍ରକାଶେ ॥୧୩୭
ଦୁଃଖିତମାନଙ୍କର ଚିତ୍ତ । ମଧ୍ୟେ ଯେ ପୀଡ଼ା ଉପଗତ ॥୧୩୮
ତା' ନାଶିବାକୁ ଅତିଶୟେ । ଚରୁଛ ଧରଣୀବଳୟେ ॥୧୩୯

ଶ୍ରୀନାରଦ ଉବାଚ

୪୩ ହେ ନୃପ ! ଏମନ୍ତ ପ୍ରକାରେ । ସେ ପତି ପତ୍ନୀ ପରସ୍ପରେ ॥୧୪୦
ସମୟ ନିର୍ଣ୍ଣୟ କରିଣ । ସେ ପୁରଭିତରେ ପଶିଣ ॥୧୪୧
ଶଏ ବରଷ ପରିଯନ୍ତେ । ଲଭିଲେ ହରଷକୁ ଚିତ୍ତେ ॥୧୪୨
୪୪ ଗାୟକମାନେ ସ୍ଥାନେ ସ୍ଥାନେ । ଲଳିତେ ଗାଆନ୍ତେ ଗାୟନେ ॥୧୪୩
ଯୁବତୀମାନେ ବେଢ଼ିଛନ୍ତି । କ୍ରୀଡ଼ା କରନ୍ତେ ସେ ନୃପତି ॥୧୪୪
ଗ୍ରୀଷ୍ମସମୟ ଆଗମରେ । ପ୍ରବେଶ ହୋଇଲା ନଦୀରେ ॥୧୪୫
୪୫ ଈଶ୍ୱର ହୋଇ ଯେହି କେହି । ନାନା ଦେଶକୁ ଯିବା ପାଇଁ ॥୧୪୬
ଉପର ଭାଗେ ସେ ପୁରର । ନିର୍ମାଣ କଲା ସପ୍ତଦ୍ୱାର ॥୧୪୭
ପୁଣି ତଳକୁ ବେନି ଦ୍ୱାର । ନିର୍ମାଣ କଲା ସେ ପୁରର ॥୧୪୮
୪୬ ସେ ପୁର ପୂର୍ବ ବିଭାଗରେ । ଖ୍ୟାତ ଅଟନ୍ତି ପାଞ୍ଚଦ୍ୱାରେ ॥୧୪୯
ଯେ ବେନି ଦକ୍ଷିଣ, ଉତ୍ତର । ତହିଁରେ ଏକ ଏକ ଦ୍ୱାର ॥୧୫୦
ପଶ୍ଚିମେ ବେନି ଦ୍ୱାର ଆନ । ବର୍ଣ୍ଣିବା ତାଙ୍କ ନାମମାନ ॥୧୫୧
୪୭ [୧]ଖଦ୍ୟୋତ, [୨]ଆବିର୍ମୁଖୀ ହୋଇ । ଏକା ସଳଖେ ଦ୍ୱାର ଦୁଇ ॥୧୫୨
ପୂର୍ବ ଦିଗକୁ ସେ ନିର୍ମାଣ । ସେ ଦ୍ୱାରେ ଦ୍ୟୁମନ୍ତେ[୩] ସଙ୍ଗେଣ ॥୧୫୩
ଗମଇଁ ବିଭ୍ରାଜିତ[୪] ଦେଶେ । ସେ ପୁରଞ୍ଜନ ରାଜା ତୋଷେ ॥୧୫୪
୪୮ ନଳିନୀ[୫] ନାଳିନୀ[୬] ନାମରେ । ଏକ ସ୍ଥାନରେ ବେନି ଦ୍ୱାରେ ॥୧୫୫
ପୂର୍ବକୁ ସେହୁ ଦ୍ୱାର ବେନି । ଅବଧୂତ[୭]କୁ ସଙ୍ଗେ ଘେନି ॥୧୫୬
ସୌରଭ[୮] ନାମେ ଯେଉଁ ଦେଶ । ତହିଁ ସେ ହୁଅଇ ପ୍ରବେଶ ॥୧୫୭
୪୯ ପୂର୍ବରେ ମୁଖ୍ୟା[୯] ନାମେ ଆନ । ଯେବଣ ଦ୍ୱାର ବିଦ୍ୟମାନ ॥୧୫୮
ତେଣେ ଆପଣ[୧୦], ବହୂଦନ[୧୧] । ବେନି ଦେଶକୁ ପୁରଞ୍ଜନ ॥୧୫୯
ଗମନ କରଇ ତୁରିତେ । ରସଜ୍ଞ[୧୨] ବିପଣ[୧୩] ସହିତେ ॥୧୬୦

---

୧. ଖଦ୍ୟୋତ = ବାମନେତ୍ର । ୨. ଆବିର୍ମୁଖୀ = ଦକ୍ଷିଣ ନେତ୍ର । ୩. ଦ୍ୟୁମନ୍ତ = ଚକ୍ଷୁ । ୪. ବିଭ୍ରାଜିତ = ରୂପ । ୫. ନଳିନୀ = ବାମନାସିକା । ୬. ନାଳିନୀ = ଦକ୍ଷିଣ ନାସିକା । ୭. ଅବଧୂତ = ଘ୍ରାଣ । ୮. ସୌରଭ = ଗନ୍ଧ । ୯. ମୁଖ୍ୟା = ମୁଖ । ୧୦. ଆପଣ = ଭାଷଣ । ୧୧. ବହୂଦନ = ବିଚିତ୍ର ଅନ୍ନ । ୧୨. ରସଜ୍ଞ = ରସନେନ୍ଦ୍ରିୟ । ୧୩. ବିପଣ = ବାକ୍‌ଇନ୍ଦ୍ରିୟ ।

୫୦ ହେ ନୃପ ! ପିତୃହୂ[୧] ନାମରେ । ଯେବଣ ଦ୍ୱାର ଦକ୍ଷିଣରେ ॥୧୬୧
ଶ୍ରୁତଧରଙ୍କୁ[୨] ଘେନି ସଙ୍ଗେ । ସେ ପୁରଞ୍ଜନ ନୃପ ରଙ୍ଗେ ॥୧୬୨
ଦକ୍ଷିଣ ପଞ୍ଚାଳ[୩] ଦେଶରେ । ପ୍ରବେଶ ହୁଅଇ ସେ ଦ୍ୱାରେ ॥୧୬୩
୫୧ ଦେବହୂ[୪] ନାମରେ ପୁରର । ଉତ୍ତର ଦିଗକୁ ଯେ ଦ୍ୱାର ॥୧୬୪
ସେ ଦ୍ୱାରେ ଶ୍ରୁତଧର ତୁଲେ । ଗମନ କରଇ ସେ ଭଲେ ॥୧୬୫
ଉତ୍ତର ପଞ୍ଚାଳ ରାଜ୍ୟକୁ । ସେ ରାଜ୍ୟସୁଖ ଭୁଞ୍ଜିବାକୁ ॥୧୬୬
୫୨ ଆସୁରୀ[୫] ନାମରେ ସେ ପୁରେ । ପଶ୍ଚିମ ଦିଗେ ଅଛି ଦ୍ୱାରେ ॥୧୬୭
ଦୁର୍ମଦ[୬] ସଂଗେ ପୁରଞ୍ଜନ । ସେଦ୍ୱାରେ କରଇ ଗମନ ॥୧୬୮
ଗ୍ରାମକ[୭] ନାମେ ଯେଉଁ ଦେଶ । ତହିଁରେ ହୁଅଇ ପ୍ରବେଶ ॥୧୬୯
୫୩ ନିର୍ଋତି[୮] ନାମେ ପଶ୍ଚିମରେ । ଯେବଣ ଦ୍ୱାର ସେ ବାଟରେ ॥୧୭୦
ବୈଶସ[୯] ଦେଶକୁ ସେ ଯାଇ । ଲୁବ୍‌ଧକ[୧୦] ସଙ୍ଗେ ସଙ୍ଗ ହୋଇ ॥୧୭୧
୫୪ ଏ ପୁର ଲୋକମାନଙ୍କର । ମଧ୍ୟେ ନିର୍ବାକ[୧୧] ପେଶସ୍କର[୧୨] ॥୧୭୨
ଏ ରୂପେ ବେନି ଅନ୍ଧ ଛନ୍ତି । ତାହାଙ୍କ ଦ୍ୱାରେ ସେ ନୃପତି ॥୧୭୩
କରଇ ସର୍ବ କାର୍ଯ୍ୟମାନ । ଦେଶକୁ କରଇ ଗମନ ॥୧୭୪
୫୫ ସେ ଯେବେ ଅନ୍ତଃପୁରେ[୧୩]ମିଳେ । ସର୍ବତୋମୁଖ ମନମେଳେ ॥୧୭୫
ଭାର୍ଯ୍ୟା[୧୪] ତନୟ[୧୫]ଠାରୁ ଯେହି । ମୋହ ପ୍ରସାଦ ଉପୁଜଇ ॥୧୭୬
ଯେବା ଉପୁଜଇ ହରଷ । ତାହା ଲଭଇ ହୋଇ ବଶ ॥୧୭୭
୫୬ ଏ ରୂପେ କର୍ମେ ଆସକତ । ସେ କାମୀ ହୋଇଣ ବଞ୍ଚିତ ॥୧୭୮
ଭାର୍ଯ୍ୟା ବାଞ୍ଛଇ ଯାହି ଯାହି । ଅନୁବର୍ତ୍ତଇ ତାହି ତାହି ॥୧୭୯
୫୭ କେହୁଣି ସମୟେ ତରୁଣୀ । ମଦିରା ପିଅନ୍ତେ ସେ ପୁଣି ॥୧୮୦
ମଦରେ ବିହ୍ୱଳିତ ହୋଇ । ଆପଣେ ମଦିରା ପିଅଇ ॥୧୮୧

---

୧. ପିତୃହୂ = ଦକ୍ଷିଣ କର୍ଣ୍ଣ । ୨. ଶ୍ରୁତଧର = ଶ୍ରୋତ୍ର ଇନ୍ଦ୍ରିୟ । ୩. ପଞ୍ଚାଳ = ଶାସ୍ତ୍ର । (ପଞ୍ଚାନାଂ ବିଷୟାଣାଂ ପ୍ରକାଶାୟ ଅଳଂ ପଞ୍ଚାଳମ୍) । ୪. ଦେବହୂ = ବାମକର୍ଣ୍ଣ । ୫. ଆସୁରୀ = ଶିଶ୍ନଦ୍ୱାର । ୬. ଦୁର୍ମଦ = ଗୁହ୍ୟ ଇନ୍ଦ୍ରିୟ । ୭. ଗ୍ରାମକ = ମୈଥୁନ । ୮. ନିର୍ଋତି = ଗୁଦ । ୯. ବୈଶସ = ମଳତ୍ୟାଗ । ୧୦. ଲୁବ୍‌ଧକ = ପାୟୁଇନ୍ଦ୍ରିୟ । ୧୧. ନିର୍ବାକ = ପାଦ । ୧୨. ପେଶସ୍କର = ହସ୍ତ । ୧୩. ଅନ୍ତଃପୁର = ହୃଦୟ । ୧୪. ଭର୍ଯ୍ୟା = ବୁଦ୍ଧି । ୧୫. ତନୟ = ଇନ୍ଦ୍ରିୟ ପରିଣାମ ।

ଭାର୍ଯ୍ୟା ଭୁଂଜନ୍ତେ ଅନ୍ନମାନ । ଆପଣେ କରାଇ ଭୋଜନ ॥୧୮୨
ସେ ଖା'ନ୍ତେ ଆନ ଭକ୍ଷ୍ୟ ପୁଣ । ଆପଣେ କରାଇ ଭକ୍ଷଣ ॥୧୮୩
୫୮ କେତେ ବେଳରେ ସେ ତରୁଣୀ । ଗାଆନ୍ତେ ଏହୁ ଗାଏ ପୁଣି ॥୧୮୪
ରୋଦନ କରନ୍ତେ ଯୁବତୀ । ରୋଦନ କରଇ ନୃପତି ॥୧୮୫
ସେହୁ ହସିଲେ ଏ ହସଇ । କଥା କହିଲେ ଏ କହଇ ॥୧୮୬
୫୯ ଧାବନ୍ତେ ଭାର୍ଯ୍ୟା ପୁରଞ୍ଜନ । ଆପଣେ କରଇ ଧାବନ ॥୧୮୭
ସେ ସ୍ଥିତ ହୁଅନ୍ତେ ଏ ଥାଇ । ସେ ଶୋଇଥିଲେ ଏ ଶୁଅଇ ॥୧୮୮
ସେ ବସିଥିଲେ ଏହୁ ଯାଇ । ତାହାର ନିକଟେ ବସଇ ॥୧୮୯
୬୦ ଶ୍ରବଣ କରନ୍ତେ ସେ ପୁଣ । ଆପଣେ କରଇ ଶ୍ରବଣ ॥୧୯୦
ତାହା ଚାହାଁନ୍ତେ ଏହୁ ଚାହିଁ । ଆଘ୍ରାଣେ ଆଘ୍ରାଣ କରଇ ॥୧୯୧
ସ୍ପରଶ କରଇ ସେ ଯେବେ । ସ୍ପରଶ କରଇ ଏ ତେବେ ॥୧୯୨
୬୧ ଭାର୍ଯ୍ୟା କେହୁଣି ସମୟରେ । ଶୋଚନା କରନ୍ତେ ମନରେ ॥୧୯୩
ଦୀନ ଲୋକର ପ୍ରାୟ ହୋଇ । ତାହାକୁ ଶୋଚନା କରଇ ॥୧୯୪
ହରଷ ହୁଅନ୍ତେ ଯୁବତୀ । ହରଷ ଲଭଇ ନୃପତି ॥୧୯୫
ମୁଦିତ ହୁଅନ୍ତେ ସେ ଏହି । ମୋଦକୁ ତଦନ୍ତେ ବହଇ ॥୧୯୬
୬୨ ମହିଷୀ ଏମନ୍ତ ପ୍ରକାରେ । ବଂଚନା କରନ୍ତେ ତହିଁରେ ॥୧୯୭
ସର୍ବ ପ୍ରକୃତିରେ ବଂଚିତ । ହୋଇଣ ଅଜ୍ଞାନେ ମୋହିତ ॥୧୯୮
ଯେବଣ କଥା ନ ବାଞ୍ଛଇ । ତା' ବଶ ହୋଇ ତା କରଇ ॥୧୯୯
ବାନର ହୋଇ ପରାୟତ୍ତ । କର୍ମ ଆଚରଇ ଯେମନ୍ତ ॥୨୦୦
ଯାର ବଶରେ ଏ ଜଗତ । ଯନ୍ତ୍ରେ ହୁଅଇ ଆତଯାତ ॥୨୦୧
ସେ କୃଷ୍ଣ ପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥୨୦୨

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ପୁରଞ୍ଜନୋପାଖ୍ୟାନଂ ନାମ ପଞ୍ଚବିଂଶୋଽଧ୍ୟାୟଃ ॥

# ଷଡ୍‌ବିଂଶୋଽଧ୍ୟାୟଃ

ଷଡ୍‌ବିଂଶେ ମୃଗୟାବ୍ୟାଜାତ୍ ସ୍ୱପ୍ନଜାଗରଣୋକ୍ତିତଃ ।
ସଦ୍‌ବୁଦ୍ଧିତ୍ୟାଗଯୋଗାଭ୍ୟାଂ ସଂସୃତିଃ ସା ପ୍ରପଞ୍ଚ୍ୟତେ ॥ ୧ ॥

ଶ୍ରୀ ନାରଦ ଉବାଚ

୧ ଏକଦିନେ ସେ ପୁରଞ୍ଜନ । ଧରିଣ ମହା ଶରାସନ[୧] ॥ ୧
ପଞ୍ଚ ତୁରଗ[୨] ଛନ୍ତି ଯହିଁ । ବେଗେ ଯେ ଗମନ କରଇ ॥ ୨
ଚକ୍ର[୩] ଯୁଗଳ ଈଶ[୪] ଦୁଇ । ଏକ ଗୋଟାଏ ଅକ୍ଷ[୫] ଯହିଁ ॥ ୩
ଯହିଁରେ ଧ୍ୱଜ[୬] ତିନି ଶୋହେ । ବନ୍ଧନ ସ୍ଥାନ[୭] ପଞ୍ଚ ହୋଏ ॥ ୪
୨ ଏକ ଦଉଡ଼ି[୮] ଯହିଁ ଶୋହେ । ଏକ ସାରଥି[୯] ଯହିଁ ରହେ ॥ ୫
ଏକ ରଥିର ସ୍ଥାନ[୧୦] ଯହିଁ । ଜୁଆଳିବନ୍ଧସ୍ଥାନ[୧୧] ଦୁଇ ॥ ୬
ଯହିଁରେ ପଞ୍ଚ ପ୍ରହରଣ[୧୨] । ସପତ ଯହିଁ ଆବରଣ[୧୩] ॥ ୭
ଗମନପ୍ରକାର[୧୪] ଯହିଁରେ । ଶୋଭଇ ପଞ୍ଚ ପରକାରେ ॥ ୮
୩ ଯହିଁ ସୁବର୍ଣ୍ଣ ଆଭରଣ । ଏମନ୍ତ ରଥ[୧୫] ଆରୋହିଣ ॥ ୯
ସୁବର୍ଣ୍ଣ କବଚ[୧୬] ଭୂଷିତ । ଅକ୍ଷୟ ତୂଣୀର[୧୭] ସହିତ ॥ ୧୦
ସେ ଏକାଦଶ ଚମୂନାଥ[୧୮] । ଯେବଣ ବନ[୧୯] ପଞ୍ଚପ୍ରସ୍ଥ[୨୦] ॥ ୧୧
କଲା ସେ ଦେଶକୁ ଗମନ । ମୃଗୟାରସେ ଦେଇ ମନ ॥ ୧୨
୪ ଯେ ଛାଡ଼ିବାକୁ ଯୋଗ୍ୟ ନୋହି । ଛାଡ଼ିଣ ସେ ଭାର୍ଯ୍ୟା[୨୧]କୁ ତହିଁ ॥ ୧୩
ଗର୍ବିତ ହୋଇ ଧନୁଶର[୨୨] । ଧରିଣ ବିପିନ ମଧ୍ୟର ॥ ୧୪
ମୃଗ[୨୩] ବିଷୟେ ରତ ହେଲା । ମୃଗୟାବିହାର ସେ କଲା ॥ ୧୫
୫ ଆସୁରୀ ବୃତ୍ତି ଆଶ୍ରେ କରି । ଅନୁଗ୍ରହକୁ ପରିହରି ॥ ୧୬
ସେ ଘୋରଆତ୍ମା ତୀକ୍ଷ୍ଣ ଶରେ । ମୃଗଙ୍କୁ ମାଇଲା ବନରେ ॥ ୧୭

---

୧. ଶରାସନ = କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଅଭିନିବେଶ । ୨. ତୁରଗ = ଜ୍ଞାନେନ୍ଦ୍ରିୟ । ୩. ଚକ୍ର = ପୁଣ୍ୟପାପ । ୪. ଈଷ = ଅହଂତାମମତା । ୫. ଅକ୍ଷ = ପ୍ରଧାନ । ୬. ଧ୍ୱଜ = ଗୁଣ । ୭. ବନ୍ଧନ ସ୍ଥାନ = ପ୍ରାଣ । ୮. ଦଉଡ଼ି = ମନ । ୯. ସାରଥି = ବୁଦ୍ଧି । ୧୦. ରଥିର ସ୍ଥାନ = ହୃଦୟ । ୧୧. ଜୁଆଳିବନ୍ଧସ୍ଥାନ = ଶୋକମୋହ । ୧୨. ପ୍ରହରଣ = ଶବ୍ଦାଦି ବିଷୟ । ୧୩. ଆବରଣ = ଚର୍ମାଦି । ୧୪. ଗମନ ପ୍ରକାର = କର୍ମେନ୍ଦ୍ରିୟ । ୧୫. ରଥ = ଦେହ । ୧୬. ସୁବର୍ଣ୍ଣ କବଚ = ରଜୋଗୁଣ । ୧୭. ଅକ୍ଷୟ ତୂଣୀର = ଅନନ୍ତ ବାସନା । ୧୮. ଚମୂନାଥ = ସେନାପତି (ମନ) । ୧୯. ବନ = ଭଜନୀୟ ଦେଶ । ୨୦. ପଞ୍ଚପ୍ରସ୍ଥ = ଶବ୍ଦାଦି ପଞ୍ଚବିଷୟ । ୨୧. ଭାର୍ଯ୍ୟା = ବୁଦ୍ଧି । ୨୨. ଧନୁଶର = ରାଗ ଦ୍ୱେଷାଦି । ୨୩. ମୃଗ = ବିଷୟ ।

୬ ବେଦରେ ଯାହା ଅଛି କହି । ସେ ଶ୍ରାଦ୍ଧ ଆଦି କର୍ମପାଇଁ ॥ ୧୮
ଯେ ପୁଣି ରାଜା ହୋଇଥିବ । ତହିଁରେ ଲୋଭୀ ଯେ ହୋଇବ ॥ ୧୯
ସେ ମେଧ ପଶୁମାନ ବନେ । ନାଶ କରିବ ତୋଷମନେ ॥ ୨୦
ଯେତେକେ କାର୍ଯ୍ୟ ନିର୍ଭାପାଇ। ତେତେକ ବିନାଶ କରଇ ॥ ୨୧
ନିୟମ ଏମନ୍ତ ପ୍ରକାରେ । କରିଛି ଶାସ୍ତ୍ରମାନଙ୍କରେ ॥ ୨୨
୭ ଅବଶ୍ୟ ଜନ୍ତୁ ନାଶ କରି । ଏ ବାକ୍ୟ ନୁହଇ କାହାରି ॥ ୨୩
ଯେଉଁ ମାନବ ଏ ପ୍ରକାରେ । କର୍ମକୁ ଜାଣିଣ ଆଚରେ ॥ ୨୪
ସେ କର୍ମେ ଅବା ଆନ କର୍ମେ । ଯେବଣ ଜ୍ଞାନ ତାର ଜନ୍ମେ ॥ ୨୫
ସେ ଜ୍ଞାନ ହେତୁରୁ ସେ କର୍ତ୍ତା । ଲିପତ ନୁହଇ ସର୍ବଥା ॥ ୨୬
୮ ମନୁଷ୍ୟ ହୋଇ ମତିଭ୍ରମ । କରନ୍ତେ ଏଥୁଁ ଆନ କ୍ରମ ॥ ୨୭
ଅହଂକାରକୁ ଆରୋହିଣ । କର୍ମରେ ବଦ୍ଧ ହୋଇ ପୁଣ ॥ ୨୮
ସଂସାରେ ପଡ଼ି ନଷ୍ଟମତି । କ୍ରମେ ଲଭଇ ଅଧୋଗତି ॥ ୨୯
୯ ବିଚିତ୍ର ପକ୍ଷମାନେ ଯହିଁ । ସେ ଶରମାନେ ବାଜି ତହିଁ ॥ ୩୦
ଭେଦନ୍ତେ ଜନ୍ତୁଙ୍କ ଶରୀର । ବିନାଶ ହେଲା ତାହାଙ୍କର ॥ ୩୧
ଯେଉଁ କଥାକୁ ଦୟାବନ୍ତେ । ସହି ନ ପାରନ୍ତି ଜଗତେ ॥ ୩୨
୧୦ ବରାହ, ଗବୟ, ଯେ ଶଶ । ଯେ ରୁରୁ, ଶଲ୍ୟକ, ମହିଷ ॥ ୩୩
ମେଧ, ଅମେଧ ହୋଇ ବନେ। ଯେ ଆନ ଥିଲେ ଜନ୍ତୁମାନେ ॥ ୩୪
ବିନାଶ କରନ୍ତେ ତାହାଙ୍କୁ । ନୃପତି ଲଭିଲା ଶ୍ରମକୁ ॥ ୩୫
୧୧ କ୍ଷୁଧା ତୃଷାରେ ଶାନ୍ତ ହେଲା । ପୁଣି ସେ ଗୃହକୁ ଅଇଲା ॥ ୩୬
ସ୍ନାନ ସାରି ସେ ନୃପବର । ଭୁଞ୍ଜିଲା ଉଚିତ ଆହାର ॥ ୩୭
ଶ୍ରମକୁ କରିଣ ବିନାଶ । ଶର୍ଯ୍ୟାରେ ହୋଇଲା ପ୍ରବେଶ ॥ ୩୮
୧୨ ଧୂପ, ଚନ୍ଦନ, ମାଳାମାନ । ଏ ଆଦି ଯେ ଆନ ବିଧାନ ॥ ୩୯
ତେଣେ ଆପଣା କଳେବର । କରିଣ ଉଚିତ ସଂସ୍କାର ॥ ୪୦
ଉତ୍ତମ କରି ଅଳଂକାର । ଖଞ୍ଜି ସକଳ ଅଙ୍ଗେ ତାର ॥ ୪୧
ମହିଷୀଠାରେ ନେଇ ଚିତ୍ତ । ବିଧାନ କଲା ସେ ତୁରିତ ॥ ୪୨
୧୩ ସଂତୋଷେ ହୋଇଲା ନୃପତ । ହୁଅନ୍ତେ କାମବଶ ଚିତ୍ତ ॥ ୪୩
ତେଣେ ସେ ଗର୍ବିତ ହୋଇଲା । ନିଜ ଭାର୍ଯ୍ୟାକୁ ନ ଦେଖିଲା ॥ ୪୪
ଯେ ଭାର୍ଯ୍ୟା ଅଟଇ ସୁନ୍ଦର । କରଇ ଗୃହର ବେଭାର ॥ ୪୫

| | | | | | |
|---|---|---|---|---|---|
| ୧୪ | ହେ ବେଦିଷଦ୍[1] ନୃପବର | । | ବିମନା ହୋଇ ତଦନ୍ତର | ॥ | ୪୬ |
| | ଯେ ସ୍ତ୍ରୀଏ ଅନ୍ତଃପୁରେ ଥିଲେ | । | ତାଙ୍କୁ ସେ ନୃପ ପଚାରିଲେ | ॥ | ୪୭ |
| | ହେ ରାମାମାନେ ! ଈଶ୍ୱରୀର | । | ସହିତେ ତୁମ୍ଭମାନଙ୍କର | ॥ | ୪୮ |
| | ପୂର୍ବ କାଳର ପ୍ରାୟ ହୋଇ | । | କୁଶଳଟିକି ପଚାରଇ | ॥ | ୪୯ |
| ୧୫ | ଗୃହରେ ଗୃହର ସଂପତ୍ତି | । | ତେତେ ହୋଇଣ ନ ଶୋଭନ୍ତି | ॥ | ୫୦ |
| | ଗୃହେ ନ ଥାଇ ଯେବେ ମାତା | । | ଅଥବା ଭାର୍ଯ୍ୟା ପତିବ୍ରତା | ॥ | ୫୧ |
| | ଚକ୍ର ଆଦିଙ୍କ ଅଭାବରେ | । | ଯେ ଭଲେ ଗମନ ନ କରେ | ॥ | ୫୨ |
| | ସେ ରଥେ ବସିଲା ପରାଏ | । | କେବା ପଣ୍ଡିତ ଦୁଃଖୀ ନୋହେ | ॥ | ୫୩ |
| ୧୬ | ବିପତ୍ତିଜଳଧି ମଧ୍ୟରେ | । | ମଜ୍ଜନ୍ତେ ମୁହିଁ ଦଇବରେ | ॥ | ୫୪ |
| | ପଦେ ପଦେକେ ମତି ମୋର | । | ଦୀପ୍ତ କରାଇଣ ସତ୍ୱର | ॥ | ୫୫ |
| | ଯେ ମୋତେ ଉଦ୍ଧାର କରଇ | । | ସେହୁ ଲଳନା ଅଛି କାହିଁ | ॥ | ୫୬ |

ରାମା ଊଚୁଃ

| | | | | | |
|---|---|---|---|---|---|
| ୧୭ | ହେ ନରନାଥ ! ପ୍ରିୟା ତୋର | । | କରୁଛି ଯେବଣ ପ୍ରକାର | ॥ | ୫୭ |
| | ଆମ୍ଭେ ନ ଜାଣୁଁ ସେ କଥାକୁ | । | ତୁ ଏବେ ଚାହାଁ ଆସି ତାକୁ | ॥ | ୫୮ |
| | ଯହିଁରେ ଶଯ୍ୟା କିଛି ନାହିଁ | । | ସେ ଭୂମିତଳେ ଅଛି ଶୋଇ | ॥ | ୫୯ |

ଶ୍ରୀନାରଦ ଉବାଚ

| | | | | | |
|---|---|---|---|---|---|
| ୧୮ | ଶୁଣି ସେମାନଙ୍କ ବଚନ | । | ସେ ମହାରାଜା ପୁରଞ୍ଜନ | ॥ | ୬୦ |
| | ମଳିନ ହୋଇଣ ଭୂମିରେ | । | ଭାର୍ଯ୍ୟାକୁ ଦେଖି ତଦନ୍ତରେ | ॥ | ୬୧ |
| | ତା' ସଙ୍ଗେ ହତଜ୍ଞାନ ହେଲା | । | ବିକଳ ଭାବକୁ ଲଭିଲା | ॥ | ୬୨ |
| ୧୯ | କୋମଳ ବଚନେ ସାନ୍ତ୍ୱନ | । | କରନ୍ତେ ହୋଇଣ ଅଜ୍ଞାନ | ॥ | ୬୩ |
| | ପ୍ରଣୟକୋପ ନିଜଠାରେ | । | ଭାର୍ଯ୍ୟା କରିଛି କି ହେତୁରେ | ॥ | ୬୪ |
| | ସେ କଥା ବିଚାରନ୍ତେ ମନ | । | ଜାଣି ନ ପାରିଲା ରାଜନ | ॥ | ୬୫ |
| ୨୦ | ସେ ବୀର ଏଥୁ ଅନନ୍ତରେ | । | ତାହାକୁ ଚାଟୁ କଲା ସ୍ଥିରେ | ॥ | ୬୬ |
| | ଚାଟୁବଚନେ ଅଟେ ଧୀର | । | ଛୁଇଁଲା ପାଦଯୁଗ ତାର | ॥ | ୬୭ |
| | କୋଡ଼ରେ ବସାଇ ଲାଳନ | । | କରିଣ କହିଲା ବଚନ | ॥ | ୬୮ |

ପୁରଞ୍ଜନ ଉବାଚ

| | | | | | |
|---|---|---|---|---|---|
| ୨୧ | ଯେବଣ ଜନେ ହେ ଯୁବତି | । | ଅପରାଧକୁ କରିଥାନ୍ତି | ॥ | ୬୯ |
| | ତାହାଙ୍କୁ ଆପଣାର କରି | । | ଶିକ୍ଷାନିମିତ୍ତେ ତାହାଙ୍କରି | ॥ | ୭୦ |

୧. ବେଦିଷଦ = ପ୍ରାଚୀନବର୍ହି ।

| | | | |
|---|---|---|---|
| | ଦଣ୍ଡକୁ ଯେବେ ପ୍ରଭୁମାନେ । | ଦିଅନ୍ତି ନାହିଁ ଏ ଭୁବନେ | ॥ ୭୧ |
| | ସେ ଭୃତ୍ୟମାନେଟି ଅଧନ୍ୟ । | କରି ନାହାନ୍ତି ନିଶ୍ଚେ ପୁଣ୍ୟ | ॥ ୭୨ |
| ୨୨ | ଭୃତ୍ୟଙ୍କ ଠାରେ ପ୍ରଭୁ ହୋଇ । | ଯେବେ ଦଣ୍ଡକୁ ସମର୍ପଇ | ॥ ୭୩ |
| | ଶୁଣ କୃଶାଙ୍ଗି ! ମନ ଦେଇ । | ପରମ ଅନୁଗ୍ରହ ସେହି | ॥ ୭୪ |
| | ବନ୍ଧୁ କରଇ ଯେଉଁ ହିତ । | ସେ କଥା ଅଟଇ ତେମନ୍ତ | ॥ ୭୫ |
| | ଯେ ମୂର୍ଖ ଅଟେ କ୍ରୋଧୀ ପ୍ରାଣୀ। | ସେ ତାହା ନ ପାରଇ ଜାଣି | ॥ ୭୬ |
| ୨୩ | ସୁନ୍ଦର ଅଟେ ଦନ୍ତ ଯାର । | ଭ୍ରୂଲତା ଅଟଇ ସୁନ୍ଦର | ॥ ୭୭ |
| | ହେ ମନସ୍ୱିନି ! ତୁ ଏମନ୍ତ । | ଆମ୍ଭର ସ୍ୱାମିନୀ, ଏ ସତ | ॥ ୭୮ |
| | ଆମ୍ଭେ ତୋହର ନିଜ ଜନ । | ଆମ୍ଭଙ୍କୁ ଦେଖାଅ ବଦନ | ॥ ୭୯ |
| | ଅନୁରାଗର ଅତିଶୟେ । | ଯେବଣ ବିଳମ୍ବ ଲଜ୍ଜାଏ | ॥ ୮୦ |
| | ତେଣେ ହସିତ ବିଲୋକନ । | ଯେବଣ ମୁଖରେ ଶୋଭନ | ॥ ୮୧ |
| | ବକ୍ର ଅଳକା-ଭୃଙ୍ଗଗଣ । | ଯାହାକୁ କରିଛି ଭୂଷଣ | ॥ ୮୨ |
| | ଯେଉଁ ମୁଖରେ ନାସା ଉଚ୍ଚ । | ବଚନମାନେ ଅତି ସଞ୍ଚ[1] | ॥ ୮୩ |
| ୨୪ | ହେ ବୀରପତ୍ନୀ[2] ! ଯେ ମାନୁଷ। | କରିଛି ତୋହଠାରେ ଦୋଷ | ॥ ୮୪ |
| | ସେ ଯେବେ ବିପ୍ରକୁଳୁଁ ଆନ । | ବିଷ୍ଣୁ ଭକ୍ତରୁ ଅଟେ ଭିନ୍ନ | ॥ ୮୫ |
| | ସେ ଲୋକଠାରେ ନିଶ୍ଚେ ମୁହିଁ। | ଦଣ୍ଡ ବିଧାନ କରିବଇଁ | ॥ ୮୬ |
| | ମୋ'ଠାରୁ ଭୟକୁ ନ ପାଇ । | ଅତ୍ୟନ୍ତ ହରଷିତ ହୋଇ | ॥ ୮୭ |
| | ଏମନ୍ତ ହୋଇ ଯେଉଁ ନର । | ତାହାକୁ ତ୍ରିଲୋକ ମଧ୍ୟର | ॥ ୮୮ |
| | ତ୍ରିଲୋକୁଁ ବାହ୍ୟସ୍ଥାନ ଯେହି । | ତହିଁ ତ ଦେଖୁ ନାହିଁ ମୁହିଁ | ॥ ୮୯ |
| ୨୫ | ତିଳକବିହୀନ, ମଳିନ । | ଗତହରଷ, ସ୍ନେହଶୂନ୍ୟ | ॥ ୯୦ |
| | କ୍ରୋଧବଶରୁ ଭୟଙ୍କର । | ମାର୍ଜନା ଅଭାବୁଁ ଧୂସର | ॥ ୯୧ |
| | ଏରୂପେ ପୂର୍ବେ ତୋ ବଦନ । | କରି ନ ଥିଲି ବିଲୋକନ | ॥ ୯୨ |
| | ତୋର ସୁଜାତ ସ୍ତନ ଦୁଇ । | ଅଶ୍ରୁରେ ହୋଇଛନ୍ତି ଧୋଇ | ॥ ୯୩ |
| | କୁଙ୍କୁମ ପଙ୍କ ପ୍ରାୟ ରଙ୍ଗ । | ଅଧରେ ନୋହିଥାଇ ସଙ୍ଗ | ॥ ୯୪ |
| | ଏ ବେନି କଥା ହିଁ ତୋ'ଠାରେ । | ଦେଖି ନ ଥିଲି ମୁଁ ପୂର୍ବରେ | ॥ ୯୫ |
| ୨୬ | ମୁଁ ଯେ ଅଟଇ ମିତ୍ର ତୋର । | କେବଳ କଲି ଅପକାର | ॥ ୯୬ |
| | ବ୍ୟସନେ ଆତୁର ହୋଇଲି । | ଇଚ୍ଛାରେ ମୃଗୟାକୁ ଗଲି | ॥ ୯୭ |

୧. ସଞ୍ଚ = ମନୋହର (ବଲ୍‌ଗୁ) ।
୨. ବୀରପତ୍ନୀ = ବୀର ପତି ଯାହାର ସେହି ସ୍ତ୍ରୀ ।

ସେ ଦୋଷ ନ ଘେନିଣ ଚିତ୍ତେ । ତେଣୁ ପ୍ରସନ୍ନ ହୁଅ ମୋତେ ।। ୯୮
କନ୍ଦର୍ପବେଗୁଁ ଧୈର୍ଯ୍ୟଚ୍ୟୁତ । ହୋଇ କରିଣ ଯେଉଁ କାନ୍ତ[୧] ।। ୯୯
ବଶଭାବକୁ ଯାଇଥାଇ । କେ ବା ଉତ୍ତମସ୍ତିରୀ ହୋଇ ।।୧୦୦
ତାକୁ ଉଚିତ ସମୟରେ । ଭଜଇ ନାହିଁ ଏ ସଂସାରେ ।।୧୦୧
ଆହେ ଗୋବିନ୍ଦ କୃପାସିନ୍ଧୁ । ତୁମ୍ଭ ସେବକ ଦୀନବନ୍ଧୁ ।।୧୦୨
ତାହାକୁ ଅନୁଗ୍ରହ କର । ହେ କୃଷ୍ଣ କରୁଣାସାଗର ।।୧୦୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ଷଡ୍‌ବିଂଶୋଽଧ୍ୟାୟଃ ।।

## ସପ୍ତବିଂଶୋଽଧ୍ୟାୟଃ

ସପ୍ତବିଂଶେ ପ୍ରିୟାପୁତ୍ରାଦ୍ୟାସକ୍ତ୍ୟା ବିସ୍ମୃତାତ୍ମନଃ ।
କାଳକନ୍ୟାଦ୍ୟୁପାଖ୍ୟାନୈର୍ଜରାରୋଗାଦ୍ୟୁଦୀର୍ଯ୍ୟତେ ।। ୧ ।।

ଶ୍ରୀନାରଦ ଉବାଚ

୧ ପୁରଞ୍ଜନକୁ ଏ ପ୍ରକାରେ । ବଶ କରିଣ ବିଭ୍ରମରେ ।। ୧
ହେ ମହାରାଜ ! ତଦନ୍ତେଣ । ପତିକି କରାନ୍ତେ ରମଣ ।। ୨
ଯେ ପୁରଞ୍ଜନୀ ନାମେ ଖ୍ୟାତି । ବିହରିଲାକ ସେ ଯୁବତୀ ।। ୩
୨ ଉତ୍ତମ ରୂପେ କରି ସ୍ନାନ । ପିନ୍ଧିଣ ରୁଚିର ବସନ ।। ୪
ମଙ୍ଗଳ କୁଙ୍କୁମ ସିନ୍ଦୂରେ । ଭୂଷିତ ହୋଇ ସଂତୋଷରେ ।। ୫
ଭାର୍ଯ୍ୟା ହୁଅନ୍ତେ ଉପାଗତ । ସେ ରାଜା ହେଲା ଆନନ୍ଦିତ ।। ୬
୩ ସେ ଭାର୍ଯ୍ୟା କରନ୍ତେ ଆଶ୍ଳେଷ । କନ୍ଧେ ନିବେଶି ଭୁଜପାଶ ।। ୭
ଏକାନ୍ତେ ଦିବ୍ୟ ଭାଷାମାନ । କରାନ୍ତେ ହରାଇଲା ଜ୍ଞାନ ।। ୮
ଦିବାରଜନୀ ଅବା ଗଲା । ଏ କାଳବେଗ ନ ଜାଣିଲା ।। ୯
ତାହାର ପରିଗ୍ରହ ହୋଇ । କେବଳ ପ୍ରମଦା ଅଛଇ ।। ୧୦
୪ ଅତ୍ୟନ୍ତ ଗର୍ବବନ୍ତ ସେହି । ମହାମନସ୍ୱୀ ସେ ଅଟଇ ।। ୧୧
ଦିବ୍ୟଶଯ୍ୟାରେ ଶୋଇଥାଇ । ଭାର୍ଯ୍ୟାଭୁଜରେ ଶିର ଦେଇ ।। ୧୨

---

୧. କାନ୍ତ = ମୂଳ ପାଠସ୍ଥିତ 'ଦେବର' ଶବ୍ଦର ଅର୍ଥ ।
(ଦେବୋ ଦେବନଂ କ୍ରୀଡ଼ା, ତଂ ରାତି ଦଦାତୀତି ଦେବରଃ କାନ୍ତଃ) ସ୍ୱାମୀ ।

ଅଜ୍ଞାନେ ହୋଇ ଅଭିଭୂତ । ଇଚ୍ଛାରେ କରନ୍ତେ ସୁରତ ॥ ୧୩
ତାକୁ ହିଁ କେବଳ ଜାଣିଲା । ନିଜ ରୂପକୁ ନ ଚିହ୍ନିଲା ॥ ୧୪
୫ କାମେ ମୋହିତ ଚିତ୍ତ ଯାର । ଏ ରୂପେ ସେହୁ ନୃପବର ॥ ୧୫
ତା' ସଙ୍ଗେ କରନ୍ତେ ରମଣ । କ୍ଷଣାର୍ଦ୍ଧ ପ୍ରାୟକ ହୋଇଣ ॥ ୧୬
ନବୀନ ବୟସ ତାହାର । ଗଲା, ଶୁଣ ହେ ନୃପବର ॥ ୧୭
୬ ସେ ପୁରଞ୍ଜନୀଠାରେ ପୁଣି । ସେ ପୁରଞ୍ଜନ ନୃପମଣି ॥ ୧୮
ଏଥୁ ଉତ୍ତାରେ କଲା ଜାତ । ତନୟ[୧] ଏକାଦଶ ଶତ ॥ ୧୯
ଏମନ୍ତ ପ୍ରକାରେ ଆୟୁଷ । ଅର୍ଦ୍ଧ ହୋଇଲା ତାର ଶେଷ ॥ ୨୦
୭ ଦଶ-ଉତ୍ତର ଏକଶତ । ଦୁହିତା[୨] ପୁଣ କଲା ଜାତ ॥ ୨୧
ସେମାନେ ପିତାମାତାଙ୍କର । ଯଶକୁ କରନ୍ତି ବିସ୍ତାର ॥ ୨୨
ଉଦାରଗୁଣ, ସୁଚରିତ । ଏମାନଙ୍କରେ ଉପଗତ ॥ ୨୩
ସେ ପୁରଞ୍ଜନ ସୁତାଗଣ । ହେ ପ୍ରଜାପତି ! ତୁମ୍ଭେ ଶୁଣ ॥ ୨୪
୮ ସେହୁ ପଞ୍ଚାଳ-ନରପତି । ପିତାବଂଶକୁ ଯେ ବଢ଼ାନ୍ତି ॥ ୨୫
ସେ ପୁତ୍ରମାନଙ୍କୁ ଭାର୍ଯ୍ୟାରେ[୩] । ଯୋଜିତ କଲା ତଦନ୍ତରେ ॥ ୨୬
ଦୁହିତାମାନଙ୍କୁ ସମାନ । [୪]ବରରେ କଲା ସଂଯୋଜନ ॥ ୨୭
୯ ଏକ ଏକରେ ଶତ ଶତ । ହେଲା ସେ ପୁତ୍ରଙ୍କର ସୁତ[୫] ॥ ୨୮
ଯେବଣ ଯେବଣ ପୁତ୍ରରେ । ପଞ୍ଚାଳ[୬] ଦେଶ ମାନଙ୍କରେ ॥ ୨୯
ସେ ପୁରଞ୍ଜନ ନୃପବଂଶ । ଅଧିକେ ହୋଇଲା ପ୍ରକାଶ ॥ ୩୦
୧୦ ଯେତେ ଥିଲେ ସେ ପୁତ୍ରମାନେ । ସେ ପୁତ୍ରଙ୍କର ସେ ନନ୍ଦନେ ॥ ୩୧
ଗୃହ, କୋଷକୁ ଅନୁଗତ । ହୋଇଣ ଥିଲେ ସେ ସମସ୍ତ ॥ ୩୨
ତାହାଙ୍କ ଠାରେ ଅତିଶୟେ । ମମତା କରନ୍ତେ ବିଷୟେ ॥ ୩୩
ବଦ୍ଧ ହୋଇଲା ସେ ରାଜନ । ନାମ ତାହାର ପୁରଞ୍ଜନ ॥ ୩୪
୧୧ ନାନା କାମନା କରି ଚିତ୍ତ । ସେ ରାଜା ହୋଇ ଦୀକ୍ଷାବନ୍ତ ॥ ୩୫
ପଶୁଙ୍କ ମାରଣ ଯହିଁରେ । ସେ ଘୋର କ୍ରତୁମାନଙ୍କରେ ॥ ୩୬
ଦେବତା, ପିତୃ, ଭୂତପତି । ଏହାଙ୍କୁ ପୂଜିଲା ନୃପତି ॥ ୩୭
ତୁମ୍ଭେ ଯେମନ୍ତ ବିଧାନରେ । ପ୍ରବର୍ତ୍ତିଅଛ ଏ ସଂସାରେ ॥ ୩୮

---

୧. ତନୟ = ଇନ୍ଦ୍ରିୟ ପରିଣାମ ।
୨. ଦୁହିତା = ତଦନନ୍ତର ବୁଦ୍ଧିବୃତ୍ତି ।
୩. ଭାର୍ଯ୍ୟା = ଇନ୍ଦ୍ରିୟପରିଣାମାନନ୍ତର ହିତାହିତ ଚିନ୍ତା ।
୪. ବର = ଉଚିତ ବିଷୟଭୋଗ ।
୫. ପୁତ୍ରଙ୍କର ସୁତ = କର୍ମ ।
୬. ପଞ୍ଚାଳ = ଶବ୍ଦାଦି ବିଷୟ ।

| | | | | |
|---|---|---|---|---|
| ୧୨ | ଏ ରୂପେ ହୋଇଣ ପ୍ରମତ୍ତ । | କୁଟୁମ୍ବଠାରେ ଦେଇ ଚିତ୍ତ | ॥ | ୩୯ |
| | ପ୍ରବର୍ତ୍ତିଥାନ୍ତେ ନରପାଳ । | ମିଳିଲା ତାହାକୁ ସେ କାଳ[୧] | ॥ | ୪୦ |
| | ପ୍ରିୟ ବନିତାଙ୍କ ଅପ୍ରିୟ । | ଅଟଇ ଯେବଣ ସମୟ | ॥ | ୪୧ |
| ୧୩ | ଚଣ୍ଡବେଗ ନାମରେ ଖ୍ୟାତି । | ହେ ନୃପ ! ଗନ୍ଧର୍ବନୃପତି | ॥ | ୪୨ |
| | ତିନିଶ' ଷାଠିଏ ତାହାର । | ଗନ୍ଧର୍ବେ[୨] ଅତି ବଳିଆର | ॥ | ୪୩ |
| ୧୪ | ଗନ୍ଧର୍ବସ୍ତିରୀ[୩] ତେତେ ତାର । | ସେ [୪]ସିତ ଅସିତ ଆକାର | ॥ | ୪୪ |
| | ଯାଆନ୍ତେ, ଆସନ୍ତେ ଲେଉଟି । | ପୁରକୁ କରନ୍ତେ ସେ ଲୁଟି | ॥ | ୪୫ |
| | ସକଳ କାମରେ ସହିତ । | ଯେବଣ ପୁର ବିନିର୍ମିତ | ॥ | ୪୬ |
| ୧୫ | ସେ ଚଣ୍ଡବେଗ ଅନୁଚରେ । | ଆସିଣ ଯେବଣ କାଳରେ | ॥ | ୪୭ |
| | ଆରମ୍ଭ କଲେ ଭାଙ୍ଗିବାକୁ । | ସେ ପୁରଞ୍ଜନର ପୁରକୁ | ॥ | ୪୮ |
| | ପ୍ରଜାଗର[୫] ଯେ ତହିଁ ଥିଲା । | ସେ ପୁଣ ତାହା ନିଷେଧିଲା | ॥ | ୪୯ |
| ୧୬ | ଗନ୍ଧର୍ବୀ ଗନ୍ଧର୍ବ ହୋଇଣ । | ସେ ସପ୍ତଶତ ବିଂଶ ଜାଣ | ॥ | ୫୦ |
| | ତାହାଙ୍କ ସଙ୍ଗେ ଅତିବଳ । | ସେ ପୁରଞ୍ଜନପୁରପାଳ | ॥ | ୫୧ |
| | ସମର କଲା ଏକା ହୋଇ । | ଶଏ ବରଷ ଯାଏ ତହିଁ | ॥ | ୫୨ |
| ୧୭ | ଆପଣା ଲୋକ ଏକାଜଣ । | ବହୁତ ଲୋକ ସଂଗତେଣ | ॥ | ୫୩ |
| | କ୍ଷୀଣ ହୁଅନ୍ତେ ଯୁଦ୍ଧେ ତହିଁ । | ସେ ପୁରଞ୍ଜନ ଆର୍ତ୍ତ ହୋଇ | ॥ | ୫୪ |
| | ଦେଶ-ନଗରବାସୀ ଜନ । | ଯେ ଅବା ବନ୍ଧୁଥିଲେ ଆନ | ॥ | ୫୫ |
| | ତାଙ୍କ ସଙ୍ଗତେ ଅତିଶୟେ । | ଚିନ୍ତା କଲା ସେ ମନେ ଭୟେ | ॥ | ୫୬ |
| ୧୮ | ସେ ରାଜା ପଞ୍ଚାଳ ଦେଶରେ । | ବସନ୍ତେ ଆପଣାର ପୁରେ | ॥ | ୫୭ |
| | ସେବକେ ଦିଅନ୍ତି ଯା' ଆଣି । | ଘେନନ୍ତେ ସେ ସାମଗ୍ରୀ ପୁଣି | ॥ | ୫୮ |
| | ମଧୁକୁ ଭୋଜନ କରଇ । | ଯୁବତିଜନବଶ ହୋଇ | ॥ | ୫୯ |
| | ଯେ ଭୟ ହେବ ଉପସ୍ଥିତ । | ବିଚାର ନ କଲା ତା' ଚିତ୍ତ | ॥ | ୬୦ |
| ୧୯ | *କାଳ ଦେବତାର ନନ୍ଦିନୀ । | ଥିଲା ଯେ କେବଣ କାମିନୀ | ॥ | ୬୧ |
| | ବରକୁ ବାଞ୍ଛନ୍ତେ ସେ ମନ । | ଭ୍ରମୁଁ ଥାଆନ୍ତେ ତ୍ରିଭୁବନ | ॥ | ୬୨ |
| | ଶୁଣ ହେ ପ୍ରାଚୀନବରହି ! । | ତାହାକୁ ନ ଘେନିଲେ କେହି | ॥ | ୬୩ |

---

୧. କାଳ = ଜରାସମୟ । ୨. ଗନ୍ଧର୍ବ = ଦିବସ ୩. ଗନ୍ଧର୍ବ ସ୍ତ୍ରୀ = ରାତ୍ରି ।
୪. ସିତ ଅସିତ = ଶୁକ୍ଳ କୃଷ୍ଣପକ୍ଷ । ୫. ପ୍ରଜାଗର = ପ୍ରାଣ ।

* କାଳର ନନ୍ଦିନୀ = ଜରା । ଯଯାତି ଶୁକ୍ରଙ୍କ ଶାପ ହେତୁ ଜରାପ୍ରାପ୍ତ ହୋଇ ନିଜ ପୁତ୍ରମାନଙ୍କୁ କହିଲେ – ''ତୁମ୍ଭେମାନେ ଏହି ଜରାକୁ ଗ୍ରହଣ କର ।'' ଏହାଶୁଣି ଜ୍ୟେଷ୍ଠ ଚାରି ଜଣ ତାହା ଗ୍ରହଣ କଲେ ନାହିଁ । କିନ୍ତୁ ପୁରୁ ଗ୍ରହଣ କଲେ । ତେଣୁ ଯଯାତି ତାଙ୍କୁ ରାଜ୍ୟ ପ୍ରଦାନ କଲେ ।

୨୦ ଆପଣା ଦୁର୍ଭାଗ୍ୟ ଭାବରେ । ଦୁର୍ଭଗା ଖ୍ୟାତ ସେ ଲୋକରେ ॥ ୬୪
ପୁରୁନାମରେ ରାଜରଷି । ପୂର୍ବେ ବରନ୍ତେ ତାକୁଂ[1] ଆସି ॥ ୬୫
ସଂତୋଷ ହୋଇଣ ତାହାକୁ । ପ୍ରଦାନ କଲା ଯେ ବରକୁ ॥ ୬୬
୨୧ ସେ କନ୍ୟା ଏକ ସମୟରେ । ଗମନ କରନ୍ତେ ଇଚ୍ଛାରେ ॥ ୬୭
ମୁଁ ବ୍ରହ୍ମଲୋକୁଁ ମହୀଗତ । ହୋଇଅଛି ମୁଁ ମହାବ୍ରତ ॥ ୬୮
ଜାଣନ୍ତେ ବରିଲାକ ମୋତେ । ମଦନବିମୋହିତ ଚିତ୍ତେ ॥ ୬୯
୨୨ ସେ କଥା ନ ମଙ୍ଗନ୍ତେ ମୁହିଁ । ମୋହର ଠାରେ କ୍ରୋଧ ବହି ॥ ୭୦
ଭୋ ମୁନି ! ଯା' ମାଗିଲି ମୁହିଁ । ବିମୁଖ ହୋଇଲୁ ତୁ ତହିଁ ॥ ୭୧
ଏ ଘେନି କରି ଏକ ସ୍ଥାନ । ରହି ନୋହିବୁ ତୁ ଭାଜନ ॥ ୭୨
ଦୁଃସହ ବିପୁଳସ୍ୱରୂପ । ହେଲା ଏ ରୂପେ ମୋତେ ଶାପ ॥ ୭୩
୨୩ ମୋ'ଠାରୁ ଭଗ୍ନକାମ ହୋଇ । ମୁଁ ଯାହା ଦେଇଥିଲି କହି ॥ ୭୪
[2]ଯବନଙ୍କର ଅଧୀଶ୍ୱର । ଭୟ ଅଟଇ ନାମ ତାର ॥ ୭୫
ତାକୁ ବରିଲା କରି ପତି । କାଳର କନ୍ୟା ସେ ଯୁବତୀ ॥ ୭୬
୨୪ ତୁ ଯେ ଯବନମାନଙ୍କର । ମଧ୍ୟରେ ଶ୍ରେଷ୍ଠ ଅଟୁ ବୀର ! ॥ ୍୭୭
ଆପଣା ମାନସରେ ଚିନ୍ତି । ତୋତେ ମୁଁ ବରିଲଇଁ ପତି ॥ ୭୮
ପ୍ରାଣୀମାନଙ୍କର ବାଞ୍ଛିତ । ତୋଠାରେ ନୁହଇ ବିହତ ॥ ୭୯
୨୫ ଲୋକ-ଆଚାରେ ବେଦଦ୍ୱାରେ । ପ୍ରବେଶ ହୋଏ ଯେ ଆଗରେ ॥ ୮୦
ମାଗିଲା ଦ୍ରବ୍ୟ ଯେ ନ ଦେଇ । ଦେଲା ଦ୍ରବ୍ୟ ଯେ ନ ଘେନଇଁ ॥ ୮୧
ସେ ବେନି ବାଳକ ପ୍ରକାର । ଦୁଷ୍ଟ ଆଗ୍ରହ ତାହାଙ୍କର ॥ ୮୨
ତାହାଙ୍କୁ ସାଧୁଲୋକମାନେ । ଶୋଚନା କରନ୍ତି ଭୁବନେ ॥ ୮୩
୨୬ ଏଣୁ ହେ ବୀର ! ଭଜ ମୋତେ । ମୁଁ ହାଦେ ଭଜୁଅଛି ତୋତେ ॥ ୮୪
ମୋହଠାରେ ତୁ ଦୟା କର । ଏତେକ ମାତ୍ର ପୁରୁଷର ॥ ୮୫
କର୍ତ୍ତବ୍ୟ ଧର୍ମ ଏ ସଂସାରେ । ଦୀନକୁ ଯାହା ଦୟା କରେ ॥ ୮୬
୨୭ ଏ ବାକ୍ୟ ସେ କାଳକନ୍ୟାର । ଶୁଣିଣ ଯବନ-ଈଶ୍ୱର ॥ ୮୭
*ଦେବତାଙ୍କର ଯେ ଗୁପତ । କରି ବାଞ୍ଛନ୍ତେ ତାହା ଚିତ୍ତ ॥ ୮୮
ସ୍ମିତ ସହିତ ମୁଖ ହେଲା । ତାହାକୁ ବଚନ ବୋଇଲା ॥ ୮୯

---

୧. ତାକୁ = ଜରାକୁ । ପୁରୁ = ଯଯାତି ପୁତ୍ର । ୨. ଯବନ = ଆଧିବ୍ୟାଧି ।
* ଦେବତାଙ୍କର ଗୁପ୍ତ = ମରଣ (ପ୍ରାଣୀମାନଙ୍କର ବୈରାଗ୍ୟ-ଅନୁଦୟ ପାଇଁ ଦେବତାମାନେ ମରଣକୁ ଲୁଚାନ୍ତି) ।

୨୮ ତୁ ଯେ ଅଭଦ୍ର ଅସଂମତ । ତୋତେ ନ ବାଞ୍ଛେ ଲୋକଚିତ୍ତ ।। ୯୦
ଜ୍ଞାନଦୃଷ୍ଟିରେ ମୁଁ ତୋହର । ନିରୂପିଲଇଁ ନିଜ ବର ।। ୯୧
୨୯ କେହି ନ ଲକ୍ଷିବେ ତୋ' ଗତି । ପ୍ରବେଶ ହୋଇଣ ଝଟିତି ।। ୯୨
କର୍ମନିର୍ମିତ ଲୋକ ଯେହି । ତାହାକୁ ଭୋଗ କର ତୁହି ।। ୯୩
ମୋର ସୈନ୍ୟରେ ଯୁକ୍ତ ହୋଇ । ଏବେ ଗମନ କର ତୁହି ।। ୯୪
ପ୍ରଜ୍ୱାର ହୋଇ ନାମ ଯାର । ପ୍ରୀତି କରିବ ସଂଗେ ତୋର ।। ୯୫
(ଯବନସେନା ମୋର ଯେହି । ତା' ସଙ୍ଗେ ଯୁକ୍ତ ହୋଇ ତୁହି ।।
ମୁଁ ହେଲେ ପ୍ରତିକୂଳ ମୋତେ । ମାରିବ ଲୋକ ଅକସ୍ମାତେ ।।
ଏ ରୂପେ ଶଙ୍କା ନ ବିଚାରି । ପ୍ରଜା-ବିନାଶ ଯିବୁ କରି) ।।
୩୦ ପ୍ରଜ୍ୱାର[୧] ଅଟଇ ମୋ ଭାଇ । ମୋର ଭଗିନୀ ହୁଅ ତୁହି ।। ୯୬
ମୁଁ ତୁମ୍ଭ ଦୁହିଁଙ୍କ ସଙ୍ଗରେ । ଭ୍ରମଣ କରିବି ଲୋକରେ ।। ୯୭
ବ୍ୟକ୍ତ ନୁହଇ ରୂପ ମୋର । ମୋ ସୈନ୍ୟମାନେ ଭୟଙ୍କର ।। ୯୮
ଭଣଇ ଦୀନବନ୍ଧୁ ଦ୍ୱିଜ । ସୁଜନେ କୃଷ୍ଣପଦ ଭଜ ।। ୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ସପ୍ତବିଂଶୋଽଧ୍ୟାୟଃ ।।

## ଅଷ୍ଟାବିଂଶୋଽଧ୍ୟାୟଃ

ଅଷ୍ଟାବିଂଶେ ତୁ ବୈଦର୍ଭ୍ୟାଖ୍ୟାନେନ ସ୍ତ୍ରୀବିଚିନ୍ତୟା ।
ସ୍ତ୍ରୀତ୍ୱଂ ପ୍ରାପ୍ତସ୍ୟ ଦୈବେନ କଦାଚିନ୍ମୁକ୍ତିରୁଚ୍ୟତେଃ ।।

ଶ୍ରୀନାରଦ ଉବାଚ

୧ ଭୟ ନାମରେ ଯେ ବିଦିତ । ଅଟଇ ହେ ବରହିଷ୍ମନ୍ତ ।। ୧
ତାହାର ସୈନ୍ୟ ଯେଉଁମାନେ । ଥାଆନ୍ତି ତାହାର ବଚନେ ।। ୨
ପ୍ରଜ୍ୱାର-କାଳକନ୍ୟାତୁଲେ । ଏ ଧରଣୀକି ସେ ଭ୍ରମିଲେ ।। ୩
୨ ସେ ଏକ ଦିନେ ବେଗ ହୋଇ । ପୁରଞ୍ଜନର ପୁରୀ ଯେହି ।। ୪
ହେ ନୃପ ! ରୁନ୍ଧିଲେ ତାହାକୁ । ବୃଦ୍ଧ ପନ୍ନଗ[୨] ପାଳେ ଯାକୁ ।। ୫
ଭୂମିସଂବନ୍ଧୀ ଯେତେ ଭୋଗ । ତେଣେ ଅଟଇ ଯା' ସଂଯୋଗ ।। ୬

---

୧. ପ୍ରଜ୍ୱାର = ମାରକ ବୈଷ୍ଣବ ଜ୍ୱର । ୨. ବୃଦ୍ଧ ପନ୍ନଗ = ଜୀର୍ଣ୍ଣ ପ୍ରାଣ ।

୩ ବଳେ ସେ କାଳକନ୍ୟା ନାରୀ । ଭୁଞ୍ଜିଲା ପୁରଞ୍ଜନପୁରୀ ॥ ୭
ଯା' ପରାଭବୁଁ ବେଗ ହୋଇ । ପୁରୁଷ ନିର୍ବଳ ହୁଅଇ ॥ ୮
୪ କନ୍ୟା କରନ୍ତେ ଉପଭୋଗ । ସେହୁ ପୁରକୁ ସର୍ବ ଦିଗ ॥ ୯
ଯବନେ ଦ୍ୱାରମାନଙ୍କରେ । ପଶି ପୀଡ଼ିଲେ ସବୁଠାରେ ॥ ୧୦
୫ ଯବନମାନେ ମିଳିକରି । ପୀଡ଼ା କରନ୍ତେ ସେହୁ ପୁରୀ ॥ ୧୧
ସେ ଅଭିମାନୀ ପୁରଞ୍ଜନ । ଲଭିଲା ନାନା ତାପମାନ ॥ ୧୨
କୁଟୁମ୍ବବନ୍ତ ସେ ଭୂପାଳ । ଅଟଇ ମମତା ଆକୁଳ ॥ ୧୩
୬ କନ୍ୟା କରନ୍ତେ ଆଲିଙ୍ଗନ । ତା' ଶୋଭା ହୋଇଲା ନିଧନ ॥ ୧୪
ସେ ଦୁଃଖୀ ବିଷୟମାନସ । ବୁଦ୍ଧି ହୋଇଲା ତାର ନାଶ ॥ ୧୫
ଗନ୍ଧର୍ବେ ଯବନେ ତାହାର । ବଳେ ଐଶ୍ୱର୍ଯ୍ୟ କଲେ କ୍ରୂର ॥ ୧୬
୭ } ସ୍ୱପୁର ହୋଇଲା ବିଶୀର୍ଣ୍ଣ । ପୁତ୍ର, ପଉତ୍ର ମନ୍ତ୍ରିଜନ ॥ ୧୭
୮ } ବିରୁଦ୍ଧ ଆଚରଣ କଲେ । ଆଦରବନ୍ତ ସେ ନୋହିଲେ ॥ ୧୮
ଭାର୍ଯ୍ୟା ହିଁ ପ୍ରୀତିକି ଛାଡ଼ିଲା । ଆତ୍ମାକୁ କନ୍ୟା ଗ୍ରସ୍ତ କଲା ॥ ୧୯
ପଞ୍ଚାଳମାନେ ଯେତେ ଥିଲେ । ଅରିରେ ଦୂଷିତ ହୋଇଲେ ॥ ୨୦
ଏମନ୍ତ ଦେଖି ଅତିଶୟେ । ଚିନ୍ତାକୁ ଲଭିଲା ହୃଦୟେ ॥ ୨୧
ଏଥିକି ଯେଉଁ ପ୍ରତିକାର । ନ ଲଭିଲା ତା' ନୃପବର ॥ ୨୨
୯ କନ୍ୟାସକାଶୁଁ ଗତସାର । ହେଲେ ଯେ କାମମାନେ ତାର ॥ ୨୩
ଚିନ୍ତାରେ ତାଙ୍କୁ ଦୀନ ହୋଇ । ପରଲୋକର ଗତି ଯେହି ॥ ୨୪
ଯେ ଅବା ସ୍ନେହ ପୁତ୍ରାଦିରେ । ସେ କଥା ପରିହରି ଦୂରେ ॥ ୨୫
ଯେ ଛନ୍ତି ପୁତ୍ର, ଦାରମାନ । ତାହାଙ୍କୁ କରନ୍ତେ ପାଳନ ॥ ୨୬
୧୦ ଗନ୍ଧର୍ବେ ଯବନେ ଆକ୍ରାନ୍ତ । କାଳକନ୍ୟାରେ ବିମର୍ଦ୍ଦିତ ॥ ୨୭
ସେ ପୁର ଛାଡ଼ିବାକୁ ମନ । କଲା ଅନାୟତ୍ତେ ରାଜନ ॥ ୨୮
୧୧ } ଭୟ ନାମରେ ଯେ ବିଖ୍ୟାତ । ପ୍ରଜ୍ୱାର ତାର ଜ୍ୟେଷ୍ଠ ଭ୍ରାତ ॥ ୨୯
୧୨ } କରି ବାଞ୍ଛନ୍ତେ ଭାଇହିତ । ସେ ଆସି ହେଲା ଉପସ୍ଥିତ ॥ ୩୦
ସେ ପୁର ସମଗ୍ର କରିଣ । ଦହନ କଲା ତତକ୍ଷଣ ॥ ୩୧
ସେ ପୁର ହୁଅନ୍ତେ ଦହନ । ପୁରରେ ଥିଲେ ଯେତେ ଜନ ॥ ୩୨
ଗୃହିଣୀ, ଭୃତ୍ୟବର୍ଗମାନ । ଯେ ପୁତ୍ର, ପୌତ୍ର ଆଦି ଜନ ॥ ୩୩
ତାଙ୍କ ସଙ୍ଗତେ ଉପତାପ । ଲଭିଲା ସେ କୁଟୁମ୍ବୀ ନୃପ ॥ ୩୪

୧୩ ଯବନେ ଆୟତନମାନ । ରୁଦ୍ଧ କରନ୍ତେ ଅନୁଦିନ ॥ ୩୫
ଗ୍ରାସନ୍ତେ କାଳକନ୍ୟା ପୁର । ସ୍ୱରଶ କରନ୍ତେ ପ୍ରଜ୍ୱାର ॥ ୩୬
ପୁରପାଳକଙ୍କ[1] ଯେବା ଥିଲା । ସେ ଅନୁତାପକୁ ପାଇଲା ॥ ୩୭
୧୪ ନାନା ପ୍ରକାରେ କ୍ଲେଶ ପାଇ । କଂପୁଛି ଅତିଶୟ ହୋଇ ॥ ୩୮
ସେ ପୁରେ ରହି ନ ପାରିଲା । ତହୁଁ ଯିବାକୁ ମନ କଲା ॥ ୩୯
ପୋଡ଼ନ୍ତେ ବୃକ୍ଷର କୋଟର । ସର୍ପ ପଳାଏ ଯେହ୍ନେ ଦୂର ॥ ୪୦
୧୫ ତାହାର ଅବୟବମାନ । ଯେବେ ଛାଡ଼ିଲେ ଗଣ୍ଡିସ୍ଥାନ ॥ ୪୧
ପୁରୁଷକୃତ୍ୟ ଯେବା ତାର । ଗନ୍ଧର୍ବେ କଲେ ତାହା ଚୂର ॥ ୪୨
କଣ୍ଠକୁ ରୁନ୍ଧନ୍ତେ ଯବନେ । ରୋଦନ କଲା ଦୁଃଖମନେ ॥ ୪୩
୧୬ ସୁତ, ତନୁଜା, ନାତିମାନ । ବଧୂ, ଜୁଆଇଁ, ଭୃତ୍ୟଜନ ॥ ୪୪
ସ୍ୱତ୍ୱମାତ୍ରକେ ଅବଶେଷ । ଯେ କିଛି ଗୃହ, ବିତ୍ତ, କୋଷ ॥ ୪୫
୧୭ ସେମାନ ସବୁ କଲା ଧ୍ୟାନ । ହୋଇଛି ପ୍ରମଦା[2] ବିହୀନ ॥ ୪୬
ଦଇବବଶେ ଉପସ୍ଥିତ । ହୁଅନ୍ତେ ବିଚ୍ଛେଦ ଅଗ୍ରତ ॥ ୪୭
କେବଳ ଅହଂ ମମ ହୋଇ । ସଂସାରେ ଯେଉଁ କଥା ଦୁଇ ॥ ୪୮
ସ୍ୱୀକାର କରି ତା' କୁମତି । ଗୃହେ ହୋଇଛି ଗୃହପତି ॥ ୪୯
୧୮ ଯାଆନ୍ତେ ମୁହିଁ ଆନ ପୁର । ଅନାଥ ହୋଇ ଭାର୍ଯ୍ୟା ମୋର ॥ ୫୦
ବାଳକମାନଙ୍କୁ ଶୋଚନ । କରୁଥାଆନ୍ତେ ଅନୁଦିନ ॥ ୫୧
ଏକା ହୋଇଣ ଥାଇ ଘରେ । ବର୍ତ୍ତିବ କେମନ୍ତ ପ୍ରକାରେ ॥ ୫୨
୧୯ ମୋ'ଠାରୁ ବଡ଼ ତାର ନାହିଁ । ମୁଁ ନ ଭୁଂଜିଲେ ନ ଭୁଂଜଇ ॥ ୫୩
ସ୍ନାନ ନ କରିଥିଲେ ମୁହିଁ । ସେ ପୁଣି ସ୍ନାନ ନ କରଇ ॥ ୫୪
ମୁଁ ରୋଷ କଲେ ତ୍ରାସ ପାଇ । ମୁଁ ଯେବେ ଭର୍ତ୍ସନା କରଇ ॥ ୫୫
ନିରୁଦ୍ଧ କରିଣ ବଚନ । ଭୟରେ ହୁଅଇ ମଉନ ॥ ୫୬
୨୦ ହୁଅନ୍ତେ ମୁଁ ବିବେକହୀନ । ମୋତେ କରଇ ପ୍ରବୋଧନ ॥ ୫୭
ଅନ୍ୟ ଦେଶକୁ ଯାନ୍ତେ ମୁହିଁ । ଶୋକରେ କରଶିତ ହୋଇ ॥ ୫୮
ଗୃହମେଧିଙ୍କ ଧର୍ମ ଯେହି । ତା ଅନୁବର୍ତ୍ତାଇବ ନାହିଁ ॥ ୫୯
ଜାତ କରିଛି ବୀରସୁତ । ନିଶ୍ଚୟେ ହେବ ପ୍ରାଣହତ ॥ ୬୦

---

୧. ପୁରପାଳକ = ପ୍ରାଣ ।
୨. ଏହି ପ୍ରମଦା ପୁରଞ୍ଜନୀ ନୁହେଁ, କିନ୍ତୁ ମମତାସ୍ୱଦୀଭୂତା ବ୍ୟାବହାରିକୀ ବୁଦ୍ଧି ।

୨୧ ଆଶ୍ରୟ ନ ଥାନ୍ତେଣ ଆନ । ପୁତ୍ରେ, ସୁତାଏ ହୋଇ ଦୀନ ॥ ୬୧
ଗମନ୍ତେ ମୁହିଁ ଆନ ପୁରେ । ବର୍ତ୍ତିବେ କେମନ୍ତ ପ୍ରକାରେ ॥ ୬୨
ସମୁଦ୍ରେ ଭାଜି ଯାନ୍ତେ ନାବ । ଯେମନ୍ତ ହୁଅନ୍ତି ମାନବ ॥ ୬୩
୨୨ ଶୋକ କରିବାକୁ ଭାଜନ । ନୋହେ ଯେ ରାଜା ପୁରଞ୍ଜନ ॥ ୬୪
ସେ ରାଜା କୃପଣ ବୁଦ୍ଧିରେ । ଶୋକ କରନ୍ତେ ଏ ପ୍ରକାରେ ॥ ୬୫
ତାକୁ ଧରିବାକୁ ମିଳିଲା । ଯେ ଭୟ ନାମେ ପୂର୍ବେ ଥିଲା ॥ ୬୬
୨୩ ଯବନେ ପଶୁପ୍ରାୟେ କରି । ନିଅନ୍ତେ ସ୍ୱଗୃହକୁ ଧରି ॥ ୬୭
ତାହାର ପରିଚାର[1] ହୋଇ । ଯେତେକ ଥିଲେ ପୁରେ ରହି ॥ ୬୮
ଅତି ଆତୁରେ ଶୋକ କଲେ । ସମସ୍ତେ ପଛେ ଗୋଡ଼ାଇଲେ ॥ ୬୯
୨୪ ଯେ ରୁଦ୍ଧ ହୋଇ ସର୍ପ ଥିଲା । ପୁର ଛାଡ଼ି ସେ ଯେବେ ଗଲା ॥ ୭୦
ତା' ଅନୁପଦେ ହୋଇ ଶୀର୍ଣ୍ଣ । ସେ ପୁରୀ ହୋଇଲା ବିଲୀନ ॥ ୭୧
୨୫ ବଳିଷ୍ଠ ଯବନ ବଳରେ । ଓଟାରି ନିଅନ୍ତେ ସତ୍ୱରେ ॥ ୭୨
ଅଜ୍ଞାନେ ଆବିଷ୍ଟ ହୋଇଲା । ପୂର୍ବ ମିତ୍ରକୁ ନ ଲଭିଲା ॥ ୭୩
୨୬ ଏ ଯେତେ ଯଜ୍ଞପଶୁମାନ । ନିର୍ଦ୍ଦୟେ କରିଛି ନିଧନ ॥ ୭୪
ସେ ପାପକର୍ମକୁ ଏହାର । ସ୍ମରଣ କରନ୍ତେ ମନର ॥ ୭୫
ସମସ୍ତେ ସକ୍ରୋଧ ହୋଇଲେ । ତାହାକୁ କୁଠାରେ ଛେଦିଲେ ॥ ୭୬
୨୭ ଦୂଷିତ ହୋଇ ସ୍ତ୍ରୀସଙ୍ଗରେ । ବୁଡ଼ିଲା ଘୋର ନରକରେ ॥ ୭୭
ଯେ ଜ୍ଞାନ ପୂର୍ବକାଳେ ଥିଲା । ସେମାନ ସବୁ ନାଶ ହେଲା ॥ ୭୮
ବହୁତ ବରଷ ପର୍ଯ୍ୟନ୍ତେ । ପୀଡ଼ାକୁ ଲଭିଣ ଏକାନ୍ତେ ॥ ୭୯
୨୮ ସେହି ଯୁବତିକି ମନରେ । ଘେନନ୍ତେ ଏଥୁ ଅନନ୍ତରେ ॥ ୮୦
ଉତ୍ତମ ଯୁବତିରୂପରେ । ହେଲା ବିଦର୍ଭନୃପଘରେ ॥ ୮୧
୨୯ ମଳୟଧ୍ୱଜ ନାମ ଯାର । ଜିଣିଛି ଶତ୍ରୁଙ୍କର ପୁର ॥ ୮୨
ସେ ପାଣ୍ଡ୍ୟ-ନୃପତି ଯୁଦ୍ଧରେ । ରାଜାଙ୍କୁ ଜିଣି ପ୍ରତାପରେ ॥ ୮୩
ରାଜାଙ୍କ ବଳବୀର୍ଯ୍ୟ ଯାର । ଅଟଇ ମୂଲ୍ୟର ଆକାର ॥ ୮୪
ସେ ବଇଦର୍ଭୀବଧୂପାଣି । ଗ୍ରହଣ କଲା ନୃପମଣି ॥ ୮୫
୩୦ ତା'ଠାରେ ସୁତା କଲା ଜାତ । ଅସିତେକ୍ଷଣା[2] ନାମେ ଖ୍ୟାତ ॥ ୮୬
କନିଷ୍ଠ ସପତ କୁମର[3] । ଦ୍ରବିଡ଼ ଦେଶେ ଦଣ୍ଡଧର ॥ ୮୭

---

୧. ପରିଚାର = ପ୍ରାଣ ଓ ଇନ୍ଦ୍ରିୟମାନେ । ତଥା ଚ ଶ୍ରୁତିଃ – "ତମୁତ୍କ୍ରାମନ୍ତଂ ପ୍ରାଣୋଽନୂତ୍କ୍ରାମତି, ପ୍ରାଣମନୂତ୍କ୍ରାମନ୍ତଂ ସର୍ବେ ପ୍ରାଣା ଅନୂତ୍କ୍ରାମନ୍ତି ।"
୨. ଅସିତସ୍ୟ ଶ୍ରୀକୃଷ୍ଣସ୍ୟ ଈକ୍ଷଣଂ ଯୟା ସା ।
୩. ସପ୍ତ କୁମର = ସଖ୍ୟ ଓ ଆତ୍ମନିବେଦନକୁ ଛାଡ଼ି ବାକି ୭ ପ୍ରକାର ଭକ୍ତି ।

୩୧ ଏକେ ଏକେ ସେ ପୁତ୍ରଙ୍କର । ଅର୍ବୁଦ ଅର୍ବୁଦ କୁମର ॥ ୮୮
ଜନମ ହେଲେ ହେ ନୃପତି । ଯାହାଙ୍କ ବଂଶଧରେ କ୍ଷିତି ॥ ୮୯
ମନୁ-ଅନ୍ତରକୁ ବ୍ୟାପିଣ । ଭୋଗ କରିବେ ପୁଣ ପୁଣ ॥ ୯୦
୩୨ [1]ପ୍ରଥମୁଁ ହୋଇ ଧୃତବ୍ରତ । ଯେ ସୁତା ହୋଇଥିଲା ଜାତ ॥ ୯୧
ତାକୁ ଅଗସ୍ତ୍ୟ[2] ବିଭା ହେଲା । ତା'ଠାରେ ପୁତ୍ର ସଂଭବିଲା ॥ ୯୨
ସେ ମୁନି ଅଟେ ଦୃଢ଼ଚ୍ୟୁତ[3] । ତାହାର ଇଧ୍ମବାହ[4] ସୁତ ॥ ୯୩
୩୩ ମଳୟଧ୍ୱଜ ନରପତି । ପୁତ୍ରଙ୍କୁ ବାଣ୍ଟି ଦେଇ କ୍ଷିତି ॥ ୯୪
କୃଷ୍ଣ-ଆରାଧନ ବାଞ୍ଛିଲା । କୁଳ-ଅଚଳକୁ ସେ ଗଲା ॥ ୯୫
୩୪ ବିଦର୍ଭସୁତା ଗୃହ ସୁତ । ଭୋଗକୁ ଛାଡ଼ିଣ ତୁରିତ ॥ ୯୬
ଧାଇଁଲା ସେ ପାଣ୍ଡ୍ୟନୃପକୁ । ଚନ୍ଦ୍ରିକା[5] ଯେସନେ ଚନ୍ଦ୍ରକୁ ॥ ୯୭
୩୫ ଯେ ଚନ୍ଦ୍ରରସା[6] ତାମ୍ରପର୍ଣ୍ଣୀ । ଯେ ବଟ ଉଦକା ହ୍ରଦିନୀ ॥ ୯୮
ସେ ନଦୀମାନଙ୍କର ଜଳ । ଅଟଇ ପବିତ୍ର ନିର୍ମଳ ॥ ୯୯
ଅନ୍ତର ବାହ୍ୟ ମଳମାନ । ତେଣେ କରନ୍ତେ ସଂମାର୍ଜନ ॥୧୦୦
୩୬ ଯେ ବୀଜ, ଫଳ, ମୂଳମାନ । ତୃଣ, ଉଦକ, ପୁଷ୍ପ, ପର୍ଣ୍ଣ ॥୧୦୧
ତେଣେ ପୋଷନ୍ତେ ନିଜ ପ୍ରାଣ । ତପସ୍ୟା କଲା ଆଚରଣ ॥୧୦୨
ଯେବଣ ତପରେ ଶରୀର । କ୍ରମେ ହୋଇଲା କୃଶତର ॥୧୦୩
୩୭-୩୮ ବାତ, ବରଷା, ଉଷ୍ଣ, ଶୀତ । କ୍ଷୁଧା, ପିପାସା, ହିତାହିତ ॥୧୦୪
ଯେ ସୁଖ ଦୁଃଖ ଦ୍ୱନ୍ଦ୍ୱମାନେ । ଜିଣିଲା ତା' ସମଦର୍ଶନେ ॥୧୦୫
ତପସ୍ୟା, ଉପାସନା, ଯମ । ନିୟମେ ସେ ରାଜ-ଉତ୍ତମ ॥୧୦୬
କାମାଦି ବାସନା ଦହିଲା । ବ୍ରହ୍ମେ ଆତ୍ମାକୁ ଯୁକ୍ତ କଲା ॥୧୦୭
ଜିଣିଲା ଇନ୍ଦ୍ରିୟମାନଙ୍କୁ । ପ୍ରାଣକୁ, ନିଜ ଆଶୟକୁ[7] ॥୧୦୮
୩୯ ଦେବବରଷେ ଶତେ ଯାଏ । ସ୍ଥିର ହୋଇଲା ବୃକ୍ଷପ୍ରାଏ ॥୧୦୯
ବହନ୍ତେ ବିଷ୍ଣୁଠାରେ ରତି । ଆନ ନ ଜାଣିଲା ନୃପତି ॥୧୧୦
୪୦ ଦେହ ଆଦିରୁ ଆତ୍ମା ଭିନ୍ନ । ବ୍ୟାପକ ଭାବେ ପରିଚ୍ଛିନ୍ନ ॥୧୧୧
ଏମନ୍ତ ରୂପେ ନୃପବର । ଆତ୍ମାକୁ ଆତ୍ମାରେ ଗୋଚର ॥୧୧୨

---

୧. ପ୍ରଥମ ଜାତ ସୁତା = କୃଷ୍ଣସେବାରୁଚି ।
୨. ଅଗସ୍ତ୍ୟଃ = ଅଗାନି ନିଷ୍କ୍ରିୟାଣି ଗାତ୍ରାଣି ସ୍ତ୍ୟାୟତି ସଂଘାତୟତୀତି ଅଗସ୍ତ୍ୟୋ ମନଃ ।
୩. ଦୃଢ଼ଚ୍ୟୁତଃ = ଦୃଢ଼େଭ୍ୟଃ ସତ୍ୟଲୋକାଦିଭୋଗେଭ୍ୟୋଽପି ଚ୍ୟୁତଃ ରହିତଃ ।
୪. ଇଧ୍ମବାହଃ = ସମିତ୍‌ପାଣିଃ ।
୫. ଚନ୍ଦ୍ରିକା = ଚନ୍ଦ୍ରକିରଣ । ୬. ଚନ୍ଦ୍ରରସା = ଚନ୍ଦ୍ରବଶା । ୭. ଆଶୟ = ଚିତ୍ତ ।

କରନ୍ତେ ଦେହ ଆଦି ଯେହି । ତହୁଁ ବିରତ ହେଲା ସେହି ॥୧୧୩
ଯେ ଅନ୍ତଃକରଣର ବୃତ୍ତି । ଆମର୍ଶ ନାମେ ଅଟେ ଖ୍ୟାତି ॥୧୧୪
ଆତ୍ମା ତାହାର ଅଟେ ସାକ୍ଷୀ । ଏମନ୍ତ ରୂପେ ତାକୁ ଲକ୍ଷି ॥୧୧୫
ମୋହର ଶିର ହେଲା ଛିନ୍ନ । ଏମନ୍ତ ସ୍ୱପ୍ନ ଦେଖେ ଜନ ॥୧୧୬
ଆତ୍ମାକୁ ଦେହୁଁ ଭିନ୍ନ କରି । ମଣଇଁ ଯେମନ୍ତ ବିଚାରି ॥୧୧୭
୪୧ ସାକ୍ଷାତ ଭଗବାନ ହରି । ଅଟନ୍ତି ଗୁରୁରୂପଧାରୀ ॥୧୧୮
ସେ କହିଛନ୍ତି ଯେଉଁ ଜ୍ଞାନ । ସ୍ଫୁରଇ ଯେ ଅନବଚ୍ଛିନ୍ନ ॥୧୧୯
ଆତ୍ମାକୁ ସେ ବିଶୁଦ୍ଧ ଜ୍ଞାନେ । ନୃପ ଜାଣିଲା ଏକ ମନେ ॥୧୨୦
୪୨ ଆତ୍ମାକୁ ପରମ ବ୍ରହ୍ମରେ । ପରମ ବ୍ରହ୍ମକୁ ଆତ୍ମାରେ ॥୧୨୧
ଦେଖନ୍ତେ ମଣିଲା ଏସନ । ମୁଁ ବ୍ରାହ୍ମ ସଂସାରୀରୁ ଆନ ॥୧୨୨
ପ୍ରତ୍ୟକ୍ଷ କରନ୍ତେ ବ୍ରହ୍ମକୁ । ଛାଡ଼ିଣ ଦେଖିବା କଥାକୁ ॥୧୨୩
ଏ ସଂସାରରୁ ନରପତି । ଆପଣେ ଲଭିଲା ନିବୃତ୍ତି ॥୧୨୪
୪୩ } ପତି ଅଟଇ ଯା' ଦେବତା । ସେହୁ ବିଦର୍ଭନୃପସୁତା ॥୧୨୫
୪୪ } ମଳୟଧ୍ୱଜ ନାମ ଖ୍ୟାତି । ପରମ ଧର୍ମଜ୍ଞ ଯେ ପତି ॥୧୨୬
ପ୍ରେମରେ ତାହାଙ୍କୁ ସେବନ । କଲା ଛାଡ଼ିଣ ଭୋଗମାନ ॥୧୨୭
ଚୀର ବସନ ବ୍ରତକୃଶ । ବେଣୀ ହୋଇଛି ନିଜ କେଶ ॥୧୨୮
ପତିକି କିଛି ଊଣା ହୋଇ । ଶୋଭା ପାଇଲା ପାଖେ ଥାଇ ॥୧୨୯
ଅନଳ ହୁଅନ୍ତେଣ ଶାନ୍ତ । ତା' ଶିଖା ଦିଶଇ ଯେମନ୍ତ ॥୧୩୦
୪୫ ବସିଛି ସ୍ଥିର ଆସନରେ । ଜୀବନ ନାହିଁ ଶରୀରରେ ॥୧୩୧
ଏ ରୂପେ ପତିକି ନ ଜାଣି । ଲଭି ନିକଟକୁ ତରୁଣୀ ॥୧୩୨
ପୂର୍ବ ସମୟରେ ଯେସନ । ଏବେ ହିଁ କଲା ସେ ସେବନ ॥୧୩୩
୪୬ ସେବନ୍ତେ ପତିପାଦେ ଯେବେ । ଉଷ୍ମକୁ ନ ଲଭିଲା ତେବେ ॥୧୩୪
ଯୂଥରୁ ଭ୍ରଷ୍ଟ ମୃଗୀ ଯେହ୍ନେ । ଉଦ୍‌ବେଗ ଲଭିଲା ସେ ମନେ ॥୧୩୫
୪୭ ଦୁଃଖିତ ଅଟେ ବନ୍ଧୁହୀନ । ଏ ରୂପେ ଆତ୍ମାକୁ ଶୋଚନ ॥୧୩୬
କରନ୍ତେ ବିକଳ ଅଶ୍ରୁରେ । ସ୍ତନକୁ ସିଞ୍ଚିଣ, ସୁସ୍ୱରେ ॥୧୩୭
ବିପିନମଧ୍ୟେ ସେ ତରୁଣୀ । ରୋଦନ କଲା ପୁଣ ପୁଣି ॥୧୩୮
୪୮ ଉଠ ଉଠ ହେ ରାଜରଷି । ଯାର ମେଖଳା ବାରିରାଶି ॥୧୩୯
ସେ କ୍ଷିତି ଖଣ୍ଡଙ୍କର ଠାରୁ । ଦୁଷ୍ଟ ରାଜାଙ୍କ ସକାଶରୁ ॥୧୪୦
ସତତେ ଲଭୁଅଛି ଭୟ । ତା' ପାଳିବାକୁ ଯୋଗ୍ୟ ହୁଅ ॥୧୪୧

୪୯ ପତିକି ଅନୁଗତ ହୋଇ । ବନେ ଏ ପ୍ରକାରେ କାନ୍ଦଇ ।।୧୪୨
ପତିର ଚରଣେ ପଡ଼ିଲା । ରୋଦନ୍ତେ ଅଶ୍ରୁ ଜାତ କଲା ।।୧୪୩
୫୦ କରିଣ ଚିତା ଦାରୁମୟ । ତହିଁ ନିବେଶି ପତିକାୟ ।।୧୪୪
ଆଦୀପ୍ତ କରି ଅନଳରେ । ବିଳାପ କରନ୍ତେ ସୁସ୍ୱରେ ।।୧୪୫
ଅନୁମରଣେ ନିଜ ମନ । କଲା ତକ୍ଷଣେ ନିବେଶନ ।।୧୪୬
୫୧ ତହିଁରେ ଜ୍ଞାନୀ ବିପ୍ର ଯେହି । ପୂର୍ବେ ତାହାର ସଖା ହୋଇ ।।୧୪୭
ସେ ବାଳା କରନ୍ତେ ରୋଦନ । ପ୍ରିୟ ମଧୁର ଯେ ବଚନ ।।୧୪୮
ଶାନ୍ତ କରନ୍ତେ ତେଣେ ତାକୁ । କହିଲା ଏମନ୍ତ ବାକ୍ୟକୁ ।।୧୪୯

ଶ୍ରୀବ୍ରାହ୍ମଣ ଉବାଚ

୫୨ } ତୁ ବା କେ, ଯୁବତୀ କାହାର । ଶୟନ କରିଛି ଯେ ବୀର ।।୧୫୦
୫୩ } ଯାହାକୁ କରୁଛୁ ଶୋଚନ । କିଏ ସେ କହ ଗୋ ବହନ ।।୧୫୧
ପୂର୍ବ କାଳରେ ଯାର ସଙ୍ଗେ । ଭ୍ରମଣ କରୁଥିଲୁ ରଙ୍ଗେ ।।୧୫୨
ସେ ମିତ୍ର ଅଟଇ ମୁଁ ତୋର । ମୋତେ କଳୁଟିକି ଗୋଚର ।।୧୫୩
ଯାହାର ନାମ ଅବିଜ୍ଞାତ । ମୋହର ଅଟଇ ସେ ମିତ ।।୧୫୪
ହେ ମିତ୍ର ! ଆପଣାକୁ ପୁଣ । ଏ ରୂପେ କରୁ କି ସ୍ମରଣ ।।୧୫୫
ତୁ ମୋତେ କରି ପରିତ୍ୟାଗ । ବାଞ୍ଛା କଲୁ ଯେ ଭୂମିଭୋଗ ।।୧୫୬
ଖୋଜନ୍ତେ ରହିବାକୁ ସ୍ଥାନ । ଇଚ୍ଛାଏ କଲୁ ଯେ ଗମନ ।।୧୫୭
୫୪ ହେ ଆର୍ଯ୍ୟ ! ତୁମ୍ଭେ ଆମ୍ଭେ ହୋଇ । ମାନସବାସୀ ହଂସ ଦୁଇ ।।୧୫୮
ସହସ୍ରସଂଖ୍ୟକ ବରଷ । ପର୍ଯ୍ୟନ୍ତେ ନ କରି ନିବାସ ।।୧୫୯
ମିତ୍ର ହୋଇଣ ଥିଲେଁ ଦୁଇ । ଏକଥା ଜାଣୁଟିକି ତୁହି ।।୧୬୦
୫୫ ଗ୍ରାମ୍ୟ ସୁଖରେ ମତି ଦେଇ । ମୋତେ ଛାଡ଼ିଣ ଗଲୁ ମହୀ ।।୧୬୧
ଚରନ୍ତେ କେହୁଣିସି ନାରୀ । ନିର୍ମାଣ କରିଅଛି ପୁରୀ ।।୧୬୨
ନୟନଗୋଚର ତା’ କଲୁ । ତହିଁରେ ବଦ୍ଧ ତୁ ହୋଇଲୁ ।।୧୬୩
୫୬ ପଞ୍ଚ-ଆରାମ ନବ-ଦ୍ୱାର । ଏକ-ପାଳକ ଯେଉଁ ପୁର ।।୧୬୪
ତିନି ପ୍ରାକାର ଛନ୍ତି ଯହିଁ । ଷଡ଼ ବଣିଜେ ଛନ୍ତି ରହି ।।୧୬୫
ଯହିଁରେ ପଞ୍ଚ ହାଟସ୍ଥାନ । ପଞ୍ଚ ପ୍ରକୃତି ବିଦ୍ୟମାନ ।।୧୬୬
ଯେବଣ ପୁରେ ପ୍ରଭୁ ହୋଇ । ଏକ ଯୁବତୀ ଅଛି ରହି ।।୧୬୭

୫୭ ରୂପ, ରସକୁ ଆଦି ହୋଇ । ଯେ ପାଞ୍ଚ, ଉପବନ ସେହି ॥୧୬୮
ହେ ପ୍ରଭୁ ! ଯେ ବାସନା ଆଦି। ତାହାଙ୍କୁ ଦ୍ୱାର କରି ଭେଦି[୧] ॥୧୬୯
ପ୍ରାକାର କ୍ଷିତି-ଜଳ-ତେଜ । ଜ୍ଞାନ-ଇନ୍ଦ୍ରିୟ ଯେ ବଣିଜ ॥୧୭୦
୫୮ କର୍ମ-ଇନ୍ଦ୍ରିୟେ ହାଟମତ । ପ୍ରକୃତି ପଞ୍ଚ ମହାଭୂତ ॥୧୭୧
ଶକ୍ତି ଅଧୀଶ ଅଟେ ଯାର । ପୁରୁଷ ମିଳିଣ ସେ ପୁର ॥୧୭୨
ତାର ସଙ୍ଗତେ ବଶ ହୋଇ । ଆତ୍ମାକୁ ଜାଣି ନ ପାରଇ ॥୧୭୩
୫୯ ସେ ପୁରେ ହୋଇଲୁ ପ୍ରବେଶ । ଯୁବତି କରନ୍ତେ ସ୍ୱରଶ ॥୧୭୪
ତାହାକୁ କରନ୍ତେ ରମଣ । ଯା' ଅବଧାରିଥିଲୁ ପୁଣ ॥୧୭୫
ସେ ବ୍ରହ୍ମଭାବ ଆପଣାର । ମନରେ ନ କଲୁ ଗୋଚର ॥୧୭୬
ହେ ପ୍ରଭୁ ! ତା' ସଙ୍ଗୁ ଏମନ୍ତ । ପାପଦଶାକୁ ହେଲୁ ଗତ ॥୧୭୭
୬୦ ତୁ ନୋହୁ ସୁତା ବିଦର୍ଭର । ଏ ବୀର ନୋହେ ପତି ତୋର ॥୧୭୮
ଯେ ତୋତେ ନବମୁଖ ପୁରେ । ରୁନ୍ଧିଲା ପୂର୍ବେ ବଳାତ୍କାରେ ॥୧୭୯
ସେ ପୁରଞ୍ଜନୀ ନାମେ ନାରୀ । ତୁ ନୋହୁ ବଲ୍ଲଭ ତାହାରି ॥୧୮୦
୬୧ ଆତ୍ମାକୁ ପୁରୁଷ ରୂପରେ । ମଣିଲୁ ଯା' ପୂର୍ବ ଜନ୍ମରେ ॥୧୮୧
ଉତ୍ତମ ଯୁବତି କରିଣ । ଏବେ ମଣିଛୁ ଯାହା ପୁଣ ॥୧୮୨
ସେ ବେନି କଥା ସତ୍ୟ ନୋହି। ଯେଣୁ ସେ ଆମ୍ଭେ ହଂସ ଦୁଇ ॥୧୮୩
ଆମ୍ଭ ଦୁହିଁଙ୍କ ସ୍ୱରୂପକୁ । କହିବା ଶୁଣ ତୁ ତାହାକୁ ॥୧୮୪
୬୨ ମୁଁ ତୁମ୍ଭେ, ତୁମ୍ଭେ ଭିନ୍ନ ନୁହ । ତୁମ୍ଭେ ମୁଁ, ଏ କଥାକୁ ଚାହଁ ॥୧୮୫
ଜ୍ଞାନୀ ହୁଅନ୍ତି ଯେଉଁ ନର । ସେମାନେ ଆମ୍ଭ ଦୁହିଁଙ୍କର ॥୧୮୬
ଅଳ୍ପ ହିଁ ଭେଦ ନ ଦେଖନ୍ତି । କହିବା ଶୁଣ ତହିଁ ରୀତି ॥୧୮୭
୬୩ ଏକ ଦେହକୁ ମହତ୍ତର । ସ୍ଥିର ନିର୍ମଳ ଭାବେ ନର ॥୧୮୮
ଦର୍ପଣେ ଯେମନ୍ତ ଦେଖଇ । ସେହି ଦେହକୁ ପୁଣ ସେହି ॥୧୮୯
ପର ଲୋଚନେ ଦେଖେ ଆନ। ସୁକୃଶ, ଅସ୍ଥିର ମଳିନ ॥୧୯୦
ସେ ବେନି ପ୍ରକାର ଯେମନ୍ତ । ତୋ ଆମ୍ଭ ଭେଦ ହିଁ ତେମନ୍ତ ॥୧୯୧
୬୪ ଏମନ୍ତ ପ୍ରକାରେ ମାନସ । ହଂସକୁ ବୁଝାନ୍ତେ ସେ ହଂସ ॥୧୯୨
ସୁସ୍ଥ ହୋଇଣ ସେ ରହିଲା । ଈଶ୍ୱରବିଚ୍ଛେଦୁଁ ଯେ ଗଲା ॥୧୯୩
ବ୍ରହ୍ମସ୍ମରଣ ଆପଣାର । ପୁଣି ହିଁ କଲା ତା' ଗୋଚର ॥୧୯୪

---

୧. ଭେଦି = ଜାଣି ।

୬୫ ବରହିଷ୍ମନ୍ତ ହେ ରାଜନ ! । ଏ ଯେ ଅଟଇ ଆତ୍ମଜ୍ଞାନ ॥୧୯୫
ଏହାକୁ ରାଜକଥାରୂପେ । କହିଲୁଁ ତୁମ୍ଭର ସମୀପେ ॥୧୯୬
ବିଶ୍ୱଭାବନ ଦେବ ହରି । ପରୋକ୍ଷପ୍ରିୟ ଯେଣୁ କରି ॥୧୯୭
ସୁଜନେ ନ ଧର ମୋ' ଦୋଷ। ପଢ଼ି ଏ ଗୀତ ହୁଅ ତୋଷ ॥୧୯୮
ଶ୍ରୀକୃଷ୍ଣ ଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥୧୯୯
ପବିତ୍ର ପୁରଞ୍ଜନ କଥା । ଶୁଣନ୍ତେ ନାଶେ ଭବବ୍ୟଥା ॥୨୦୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ
ଅଷ୍ଟାବିଂଶୋଽଧ୍ୟାୟଃ ॥

## ଊନତ୍ରିଂଶୋଽଧ୍ୟାୟଃ

ଊନତ୍ରିଂଶେ ପରୋକ୍ଷାର୍ଥବ୍ୟାଖ୍ୟାନେନୋପସଂହୃତମ୍ ।
ସ୍ତ୍ରୀ ସଙ୍ଗତୋ ଭବସ୍ତ୍ରୀଶସଙ୍ଗାନ୍ ମୁକ୍ତିରିତି ସ୍ଫୁଟମ୍ ॥ ୧ ॥

ଶ୍ରୀପ୍ରାଚୀନବର୍ହିରୁବାଚ

୧ ହେ ଋଷି ବଚନ ତୁମ୍ଭରି । ଜାଣିଲୁଁ ନାହିଁ ଭଲ କରି ॥ ୧
କର୍ମମାର୍ଗରେ ଆମ୍ଭେମାନେ । ମୋହିତ ଯେଣୁ ଅନୁଦିନେ ॥ ୨
ଅଧ୍ୟାତ୍ମଜ୍ଞାନୀ ଯେଉଁ ନରେ । ଜାଣନ୍ତି ସେ କଥା ଭଲରେ ॥ ୩

ଶ୍ରୀନାରଦ ଉବାଚ

୨ ଏକ, ଦ୍ୱି, ତ୍ରି, ଚତୁଶ୍ଚରଣ । ଆପାଦ ବହୁପାଦ ପୁଣ ॥ ୪
ଏମନ୍ତ ଦେହ ପୁର ଅଟେ । ତାକୁ ଯେ କର୍ମରେ ପ୍ରକଟେ ॥ ୫
ସେହି ଆତ୍ମାକୁ 'ପୁରଞ୍ଜନ' । ଶବ୍ଦେ ଜାଣଇଁ ବୁଧଜନ ॥ ୬
୩ ଯେ 'ଅବିଜ୍ଞାତ' ଶବ୍ଦ ନରେ । କଥିତ ହୋଇଛି ପୂର୍ବରେ ॥ ୭
ପୁରୁଷସଖା ସେ ଈଶ୍ୱର । ଯେଣୁ ନ କରନ୍ତି ଗୋଚର ॥ ୮
ମନୁଷ୍ୟେ ତାକୁ ନାମଗୁଣେ । ଅଥବା କର୍ମ ଆଚରଣେ ॥ ୯
୪ ଯେତେକ ପ୍ରକୃତିର ଗୁଣ । ସମଗ୍ର କରି ତାହା ପୁଣ ॥ ୧୦
ଯେବେ ଘେନିମାକୁ ମାନସ । କଲା ସେ ଆପଣ ପୁରୁଷ ॥ ୧୧
ସେ ପୁରମାନଙ୍କେ ଯେ ପୁର । ଦ୍ୱିହସ୍ତପାଦ ନବଦ୍ୱାର ॥ ୧୨
ଉତ୍ତମ କରିଣ ସେମାନ । ଆପଣ ମଣିଲା ତା' ମନ ॥ ୧୩

୫ ବୁଦ୍ଧିକି ନାରୀ କରି ଜାଣ । ଏ ମୁଁ, ଏ ମୋହର ବୋଲିଣ ॥ ୧୪
ଏ କର୍ମ ଅଟେ ଯାର କୃତ । ଯାହାକୁ କରିଣ ଆୟତ୍ତ ॥ ୧୫
ପୁରୁଷ ଏ ଦେହ ଭିତରେ । ଗୁଣକୁ ଭୁଂଜେ ଇନ୍ଦ୍ରିୟରେ ॥ ୧୬
୬ 'ସଖା' ଇନ୍ଦ୍ରିୟଗଣମାନ । ଯାର ରଚିତ କର୍ମଜ୍ଞାନ ॥ ୧୭
ଯେ ବା ଇନ୍ଦ୍ରିୟବୃତ୍ତିକୁଳ । 'ସଖୀ' ଅଟନ୍ତି ଏ ସକଳ ॥ ୧୮
'ଉରଗ' ପ୍ରାୟ ପଞ୍ଚଶିର । ଯେ ପ୍ରାଣ ପାଳଇ ସେ ପୁର ॥ ୧୯
୭ ଜ୍ଞାନଇନ୍ଦ୍ରିୟ କର୍ମେନ୍ଦ୍ରିୟ । ଏ ରୂପେ ଅଟେ ଯେ ଉଭୟ ॥ ୨୦
ସେ ମନ ନାୟକ ତାଙ୍କର । ବହୁତ ଅଟେ ବଳ ଯାର ॥ ୨୧
ଶବଦ, ରୂପ, ରସ ଆଦି । ଯେ ପଞ୍ଚ ବିଷୟ ପ୍ରସିଦ୍ଧି ॥ ୨୨
'ପଞ୍ଚାଳ' ନାମ ତାହାଙ୍କର । ଯା ମଧ୍ୟେ ନବଛିଦ୍ର ପୁର ॥ ୨୩
୮ ନେତ୍ରଯୁଗଳ, ନାସାବେନି । କର୍ଣ୍ଣଯୁଗଳ ମୁଖ ଘେନି ॥ ୨୪
ଯେ ଶିଶ୍ନ, ଗୁଦ ଅଟେ ଆର । ଏ ରୂପେ ଦୁଇ ଦୁଇ ଦ୍ୱାର ॥ ୨୫
ସେ ସେହି ଇନ୍ଦ୍ରିୟରେ ଯୁତ । ବାହ୍ୟକୁ ହୋଏ ଉପଗତ ॥ ୨୬
୯ ନେତ୍ରଯୁଗଳ, ନାସା ଦୁଇ । ମୁଖକୁ ମିଶି ପାଞ୍ଚ ହୋଇ ॥ ୨୭
ଏ ରୂପେ ଯେହୁ ପାଞ୍ଚ ଦ୍ୱାର । ଏ ପୂର୍ବ ଦିଗରେ ପ୍ରଚାର ॥ ୨୮
'ଦକ୍ଷିଣା' କର୍ଣ୍ଣ ଯେ ଦକ୍ଷିଣ । 'ଉତ୍ତରା' ଉତ୍ତର ଯେ ପୁଣ ॥ ୨୯
ପଶ୍ଚିମେ ଅଧୋଦ୍ୱାର ଦୁଇ । ଯାହାକୁ ଗୁଦ ଶିଶ୍ନ କହି ॥ ୩୦
୧୦ 'ଖଦ୍ୟୋତ ଆବିର୍ମୁଖୀ' ହୋଇ । ଏକ ନିର୍ମିତ ନେତ୍ରଦୁଇ ॥ ୩୧
ରୂପର ନାମ 'ବିଭ୍ରାଜିତ' । ବିଷୟରୂପେ ସେ ବିଦିତ ॥ ୩୨
ପୁରୁଷ ଲୋଚନର ଦ୍ୱାରେ । ଅବଲୋକନ ତେଣେ କରେ ॥ ୩୩
୧୧ 'ନଳିନୀ ନାଳିନୀ' ନାମରେ । ଖ୍ୟାତ ନାସିକାବେନିଦ୍ୱାରେ ॥ ୩୪
ଗନ୍ଧକୁ 'ସଉରଭ' କହି । ଯେ ଘ୍ରାଣ 'ଅବଧୂତ' ସେହି ॥ ୩୫
ଯେ 'ମୁଖ୍ୟ' ଦ୍ୱାର ସେ ବଦନ । 'ବିପଣ' ଅଟଇ ବଚନ ॥ ୩୬
'ରସଜ୍ଞ' ଶବ୍ଦେ ଯେ କଥିତ । ରସନେନ୍ଦ୍ରିୟ ସେ ବିଦିତ ॥ ୩୭
୧୨ 'ଆପଣ' ଶବଦେ କଥନ । ବିଚିତ୍ର ଅନ୍ନ ବହୂଦନ ॥ ୩୮
'ପିତୃହୂ' ଦକ୍ଷିଣ ଶ୍ରବଣ । 'ଦେବହୂ' ଉତ୍ତର ଯେ ପୁଣ ॥ ୩୯
୧୩ ଯେ ଶାସ୍ତ୍ର ପ୍ରବୃତ୍ତ ନିବୃତ୍ତ । ସେ ପୁଣ 'ପଞ୍ଚାଳ', ସଂଜ୍ଞିତ ॥ ୪୦
ଶ୍ରୋତ୍ର ଇନ୍ଦ୍ରିୟ 'ଶ୍ରୁତଧର' । ତେଣେ ଗମନ ସେ ରାଜାର ॥ ୪୧
ଯେ 'ପିତୃଯାନ' 'ଦେବଯାନ' । ସେ ବେନି କର୍ଣ୍ଣଙ୍କ ଅୟନ ॥ ୪୨

୧୪ ଶିଶ୍ନ ପଶ୍ଚିମେ ଏକ ଦ୍ୱାର । 'ଆସୁରୀ' ନାମ ଅଟେ ତାର ॥ ୪୩
'ଗ୍ରାମକ' ନାମେ ଯେ ବିଦିତ । ସେ ଗ୍ରାମ୍ୟ ଲୋକଙ୍କର ମତ ॥ ୪୪
ଉପସ୍ଥ 'ଦୁର୍ମଦ' ବିଦିତ । 'ନିର୍ଋତି' ନାମେ ଗୁଦ ଖ୍ୟାତ ॥ ୪୫
୧୫ 'ବୈଶସ' ନରକ ବୋଲାଇ । ଯେ ପାୟୁ 'ଲୁବ୍ଧକ'ଟି ସେହି ॥ ୪୬
'ଅନ୍ଧ' ଯୁଗଳ ଯେ ବର୍ଣ୍ଣିତ । ଶୁଣ କହିବା ତା' ଚରିତ ॥ ୪୭
ହସ୍ତ ଚରଣ 'ଅନ୍ଧ' ଖ୍ୟାତ । ପୁରୁଷ ତେଣେ ହୋଇ ଯୁତ ॥ ୪୮
କରଇ ନାନା କର୍ମମାନ । ଇଚ୍ଛାଏ କରଇ ଗମନ ॥ ୪୯
୧୬ ତାହାର 'ଅନ୍ତଃପୁର' ଯେହି । ହୃଦୟ ଅଟଇଟି ସେହି ॥ ୫୦
'ବିଷୁଚି' ଶବଦରେ ମନ । ପୂର୍ବରେ ହୋଇଛି କଥନ ॥ ୫୧
ଯେ ସତ୍ତ୍ୱ, ରଜ, ତମ ତିନି । ତା' ମନଗୁଣ ରୂପେ ଘେନି ॥ ୫୨
ତେଣେ ସେ ମନରେ ମୋହକୁ । ଲଭେ ବା ହର୍ଷ ପ୍ରସାଦକୁ ॥ ୫୩
୧୭ ଯେମନ୍ତ ଯେମନ୍ତ ପ୍ରକାରେ । ସେ ବୁଦ୍ଧି ସ୍ୱପନ ଦଶାରେ ॥ ୫୪
ଲଭଇ ବିକ୍ରିୟାକୁ ପୁଣି । ଜାଗ୍ରତେ ଇନ୍ଦ୍ରିୟଙ୍କୁ ଆଣି ॥ ୫୫
ପରିଣାମକୁ ସେ ପୁଆଇ । ସେ ବୁଦ୍ଧିଗୁଣେ ଲିପ୍ତ ହୋଇ ॥ ୫୬
ଆତ୍ମା ହିଁ ସାକ୍ଷୀରୂପେ ଥାଇ । ସେ ବୁଦ୍ଧିବୃତ୍ତିମାନ ଯେହି ॥ ୫୭
ଯେ ଦରଶନ, ସ୍ପରଶନ । ଘ୍ରାଣ, ଶ୍ରବଣ, ଆସ୍ୱାଦନ ॥ ୫୮
ତାହାଙ୍କୁ ବଳେ ପ୍ରବର୍ତ୍ତାଇ । ସେ ସେହି ଚେଷ୍ଟାକୁ କରାଇ ॥ ୫୯
୧୮ ରଥସ୍ୱରୂପ ଏ ଶରୀର । ଇନ୍ଦ୍ରିୟମାନେ ଅଶ୍ୱ ଯାର ॥ ୬୦
ବସ୍ତରପ୍ରାୟେ ଅବିରତ । ଯା' ବେଗ ହୁଅଇ ପ୍ରତୀତ ॥ ୬୧
ବାସ୍ତବ ଗତି ନାହିଁ ତାର । ସ୍ୱପ୍ନଦଶାରେ ଯେଣୁ ସ୍ଥିର ॥ ୬୨
ଶୁଭ, ଅଶୁଭ କର୍ମ ଦୁଇ । ଯହିଁରେ ଚକ୍ର ଶୋଭା ପାଇ ॥ ୬୩
ତ୍ରିଗୁଣ ଧ୍ୱଜ, ପଞ୍ଚ ପ୍ରାଣ । ବନ୍ଧନ ଅଟନ୍ତି ପ୍ରମାଣ ॥ ୬୪
୧୯ ମନ ଦଉଡ଼ି ଅଟେ ଯାର । ବୁଦ୍ଧି ତା ସାରଥି-ପ୍ରକାର ॥ ୬୫
ରଥୀର ବସିବାର ସ୍ଥାନ । ହୃଦୟ ଅଟେ ବିଦ୍ୟମାନ ॥ ୬୬
ଯୁଗବନ୍ଧନ ସ୍ଥାନ ହୋଇ । ଅଛନ୍ତି ଶୋକ, ମୋହ ଦୁଇ ॥ ୬୭
ଶବ୍ଦାଦି ଯେ ପଞ୍ଚ ବିଷୟ । ଯହିଁରେ ପ୍ରକ୍ଷେପ ନିର୍ଣ୍ଣୟ ॥ ୬୮
ସପତ ଧାତୁ ଛନ୍ତି ଯହିଁ । ଚର୍ମାଦି ଆବରଣ ହୋଇ ॥ ୬୯
୨୦ ଆକୂତି ବିକ୍ରମ ବାହ୍ୟର । ଧାବନ ମୃଗତୃଷ୍ଣା ତାର ॥ ୭୦
ଏକାଦଶ ଇନ୍ଦ୍ରିୟଗଣ । ସୈନ୍ୟ ଅଟଇ ତାର ପୁଣ ॥ ୭୧
ପଞ୍ଚ ଇନ୍ଦ୍ରିୟରେ ବିଷୟ । ସେବାକୁ କରଇ ନିଶ୍ଚୟ ॥ ୭୨

୨୧ } ଯେଣେ କାଳକୁ ଲକ୍ଷି ଆଗ । ସେ ସମ୍ୱତ୍ସର ଚଣ୍ଡବେଗ ॥ ୭୩
୨୨ } ଗନ୍ଧର୍ବ ଦିବସସକଳ । ଗନ୍ଧର୍ବୀ ପଦେ ରାତ୍ରିକୁଳ ॥ ୭୪
ଷଷ୍ଟି ଅଧିକ ତିନିଶତ । ସେମାନେ ଅଟନ୍ତି ବିଦିତ ॥ ୭୫
ପରିଭ୍ରମଣରେ ଲୋକର । ଆୟୁଷ କରନ୍ତି ସଂହାର ॥ ୭୬
୨୩ ଯେ ଜରା ଅଟଇ ସାକ୍ଷାତ । କାଳର କନ୍ୟା ସେ ବିଦିତ ॥ ୭୭
ଯାହାକୁ ଲୋକ ଯୋଗେ ପାଇ। କେବେହେଁ ଆନନ୍ଦ ନୁହଇ ॥ ୭୮
ଯେ ମୃତ୍ୟୁ ଯବନ-ଈଶ୍ୱର । କ୍ଷୟନିମିତ୍ତେ ଲୋକଙ୍କର ॥ ୭୯
ଭଗିନୀରୂପେ ନିରନ୍ତର । କଲା ସେ ଜରାକୁ ସ୍ୱୀକାର ॥ ୮୦
୨୪ ଯେ ଆଧି ବ୍ୟାଧିମାନେ ଚର । ଯବନମାନେ ସୈନ୍ୟ ତାର ॥ ୮୧
ପ୍ରାଣୀପୀଡ଼ାରେ ଶୀଘ୍ରତର । ମରଣହେତୁ ବେଗ ଯାର ॥ ୮୨
ଯେ ଶିବ, ବିଷ୍ଣୁ, ଜ୍ୱର ବେନି । ପ୍ରଜ୍ୱାର ଶବଦେ ତା' ଘେନି ॥ ୮୩
୨୫ } ଆଧିଦୈବିକ ଆଦି ହୋଇ । ଏ ରୂପେ ନାନା ଦୁଃଖ ଯେହି ॥ ୮୪
୨୬ } ତେଣେ କ୍ଲେଶକୁ ଲଭି ପ୍ରାଣୀ । ଶତେ ବରଷଯାଏ ପୁଣି ॥ ୮୫
ଦେହରେ ହୋଇଥାଇ ସ୍ଥିତ । ତମୋଗୁଣରେ ହୋଇ ବୃତ ॥ ୮୬
କ୍ଷୁଧା, ପିପାସା ଆଦି ଯେତେ। ପ୍ରାଣର ଧର୍ମ ଏ ଜଗତେ ॥ ୮୭
ଅନ୍ଧତ୍ୱ ଆଦି ଯେବା ଆନ । ଇନ୍ଦ୍ରିୟଧର୍ମ ବିଦ୍ୟମାନ ॥ ୮୮
କାମାଦି ଧର୍ମ ଯେ ମନରେ । ତା' ଦେଇ ନିର୍ଗୁଣ ଆତ୍ମାରେ ॥ ୮୯
ବିଷୟସୁଖଲେଶମାନ । ନିରତେ କରନ୍ତେ ସେ ଧ୍ୟାନ ॥ ୯୦
ମୋହର ଏ ବିଷୟ ମୁହିଁ । ଏ ରୂପେ କର୍ମ କରେ ଦେହୀ ॥ ୯୧
୨୭ } ପରମଗୁରୁ ଭଗବାନ । ଆତ୍ମାସ୍ୱରୂପୀ ବିଦ୍ୟମାନ ॥ ୯୨
୨୮ } ତାହାଙ୍କୁ ନ ଜାଣି ପୁରୁଷ । ହୋଇଲେହେଁ ସେ ସ୍ୱପ୍ରକାଶ ॥ ୯୩
ଯେବେ ପ୍ରକୃତିଗୁଣଙ୍କରେ । ବିଷକ୍ତ ହୁଅଇ ଦୈବରେ ॥ ୯୪
ଗୁଣରେ ଅଭିମାନୀ ହୋଇ । ତେବେ ସେ ଅବଶ ହୁଅଇ ॥ ୯୫
ସାତ୍ତ୍ୱିକ, ତାମସ, ରାଜସ । କର୍ମକୁ କରଇ ପ୍ରକାଶ ॥ ୯୬
ଯେମନ୍ତ କର୍ମ ଆଚରଇ । ସେରୂପେ ଜନମ ହୁଅଇ ॥ ୯୭
୨୯ ଯେବଣ ଲୋକମାନଙ୍କରେ । ପ୍ରକାଶ ଅତିଶୟ ସ୍ଫୁରେ ॥ ୯୮
ସେ ଲୋକମାନଙ୍କୁ ସାତ୍ତ୍ୱିକ । କର୍ମକରଣୁଁ ଲଭେ ଲୋକ ॥ ୯୯
ଦୁଃଖ ଉତ୍ତରଫଳ ଯହିଁ । କର୍ମରେ ଆୟାସ ହିଁ ଥାଇ ॥୧୦୦
ରାଜସ କର୍ମ ଯେ କରଇ । ସେ ଲୋକମାନଙ୍କୁ ଲଭଇ ॥୧୦୧
ଯହିଁ ଉତ୍‌କଟ ତମ, ଶୋକ । ତାମସୁଁ ଲଭଇ ତା' ଲୋକ ॥୧୦୨

୩୦ ପୁରୁଷ କେବଣ ଜନ୍ମରେ । ଯୁବତୀ ହୁଅଇ କାହିଁରେ ॥୧୦୩
କେବଣ ଜନ୍ମେ ଅନ୍ଧମତି । ହୁଅଇ ନପୁଂସକ ଜାତି ॥୧୦୪
ଦେବତା, ମନୁଷ୍ୟ ବା ହୋଇ । ତିର୍ଯ୍ୟକ ଜନ୍ମ ଅବା ପାଇ ॥୧୦୫
ଯେମନ୍ତ କର୍ମ ଥାଇ କରି । ଜନ୍ମ ତା' କର୍ମ ଅନୁସରି ॥୧୦୬
୩୧ } କ୍ଷୁଧାରେ ବ୍ୟାପ୍ତ ହୋଇ ଦୀନ । ଗୃହକୁ ଗୃହକୁ ଯେସନ ॥୧୦୭
୩୨ } ଭ୍ରମଣ କରନ୍ତେ କୁକୁର । ଯେ ଥାଇ ଅଦୃଷ୍ଟ ତାହାର ॥୧୦୮
ଦଣ୍ଡତାଡ଼ନ କାହିଁ ପାଇ । କାହିଁରେ ଅବା ଅନ୍ନ ଖାଇ ॥୧୦୯
ଜୀବ ହିଁ ସେହି ପରକାରେ । ଆଶୟ ନିବେଶି କାମରେ ॥୧୧୦
ଯେ ଉଚ୍ଚ ନୀଚ ମାର୍ଗ ପୁଣ । ତହିଁରେ କରନ୍ତେ ଭ୍ରମଣ ॥୧୧୧
ଦଇବେ ଅଟଇ ବିହିତ । ଯେ ଆପଣାର ହିତାହିତ ॥୧୧୨
ତା' ଭୋଗ କରଇ ସ୍ୱର୍ଗରେ । ମର୍ତ୍ତ୍ୟରେ ଅବା ପାତାଳରେ ॥୧୧୩
୩୩ ନାନା ପ୍ରକାରେ ପ୍ରତିକାର । ଯଦ୍ୟପି ଆଚରଇ ନର ॥୧୧୪
ତଥାପି ଦୁଃଖରୂପ ହୋଇ । ଯେ ତାପତ୍ରୟ ଅଛି ରହି ॥୧୧୫
ତହୁଁ ଜୀବର ଗୋଟିକେ ହେଁ । ବିଚ୍ଛେଦ ନୁହଇ କେବେହେଁ ॥୧୧୬
୩୪ ଯେସନେ ଅତି ଗୁରୁଭାର । ଶିରରେ ବହିଥାନ୍ତେ ନର ॥୧୧୭
ମସ୍ତକ ଯେବେ ପୀଡ଼ା ପାଇ । ସେ ଭାର କାନ୍ଧରେ ବହଇ ॥୧୧୮
ସଂସାରେ ପ୍ରତିକାରମାନ । ସକଳ ଅଟଇ ତେସନ ॥୧୧୯
୩୫ ଜ୍ଞାନବିହୀନ କର୍ମ ଯେହୁ । ଇତର କର୍ମଙ୍କର ସେହୁ ॥୧୨୦
ଅତ୍ୟନ୍ତ ପ୍ରତିକାର ନୋହେ । ଯେଉଁ କାରଣରୁ ସେ ଦୁହେଁ ॥୧୨୧
ଅବିଦ୍ୟାହେତୁରୁ ପ୍ରାପତ । ସ୍ୱପନେ ସ୍ୱପନ ଯେମନ୍ତ ॥୧୨୨
୩୬ ଅର୍ଥାଭାବରେ ହିଁ ଲୋକର । ନିବୃତ୍ତ ନୁହଇ ସଂସାର ॥୧୨୩
ମନ ଯେ ଲିଙ୍ଗରୂପେ ଥାଇ । ତେଣେ ସକଳ ପ୍ରବର୍ତ୍ତଇ ॥୧୨୪
ସ୍ୱପନେ ଭ୍ରମିଲା ଲୋକର । ପ୍ରବର୍ତ୍ତେ ଯେମନ୍ତ ପ୍ରକାର ॥୧୨୫
୩୭ ସେ ଘେନି ପୁରୁଷାର୍ଥଭୂତ । ଯେ ଆତ୍ମା ଅଟଇ ନିୟତ ॥୧୨୬
ଯେବଣ ଅଜ୍ଞାନୁଁ ତାହାର । ଅନର୍ଥସମୂହ-ଆକାର ॥୧୨୭
ସଂସାର ହୁଅଇ ସମ୍ଭବ । ତାହାର ହୁଅଇ ଅଭାବ ॥୧୨୮
ଗୁରୁସ୍ୱରୂପୀ ହରିଠାରେ । ଅତି ସୁଦୃଢ଼ ଭଗତିରେ ॥୧୨୯
୩୮ ଭଗତିଯୋଗ ବିଷ୍ଣୁଠାରେ । ଯେବେ ସଂଭବଇ ଭାଗ୍ୟରେ ॥୧୩୦
ଜ୍ଞାନ, ବୈରାଗ୍ୟ ଅନାୟାସେ । ଜନମ କରିବ ବିଶେଷେ ॥୧୩୧

୩୯ ହେ ରାଜରଷି ! ଶ୍ରଦ୍ଧା ବହି । ଯେ ନିତ୍ୟେ ଶୁଣଇଁ ପଢ଼ଇ ॥୧୩୨
ସେ ଭକ୍ତିଯୋଗ ସେ ଲୋକର । ସମ୍ଭବ ହୁଅଇ ଅଚିର ॥୧୩୩
ହରିକଥାକୁ ଲକ୍ଷ୍ୟ ହୋଇ । ଯେ ଭକ୍ତିଯୋଗ ପ୍ରବର୍ତ୍ତଇ ॥୧୩୪
୪୦ କୃଷ୍ଣର ଯେବା ଅଛି ଗୁଣ । ତା' ଅନୁକଥନ ଶ୍ରବଣ ॥୧୩୫
ତହିଁରେ ବ୍ୟଗ୍ର ଯାଙ୍କ ମନ । ନିର୍ମଳ-ଆଶୟ ଯେସନ ॥୧୩୬
ସେ ସାଧୁ ଭାଗବତମାନେ । ଯହିଁ ଅଛନ୍ତି ଅନୁଦିନେ ॥୧୩୭
୪୧ ମହାନ୍ତ ଅଟନ୍ତି ଯେ ଜନ । ସେ ଯାହା କରନ୍ତି କୀର୍ତ୍ତନ ॥୧୩୮
ଶ୍ରୀକୃଷ୍ଣଚରିତ ପୀୟୁଷ । ସେ ମାତ୍ର ଯହିଁ ଅବଶେଷ ॥୧୩୯
ସର୍ବଦିଗେ ସେ ନଦୀମାନେ । ସ୍ରବୁ ଅଛନ୍ତି ସ୍ଥାନେ ସ୍ଥାନେ ॥୧୪୦
ହେ ନୃପ ! ତାହା ଯେଉଁମାନେ । ପାନ କରନ୍ତି ଗାଢ଼ କର୍ଣ୍ଣେ ॥୧୪୧
ପାନ କରନ୍ତେ ତାଙ୍କ ଚିତ୍ତେ । ଶାନ୍ତି ନୁହଇ କଦାଚିତେ ॥୧୪୨
ତାହାଙ୍କୁ ନ ଛୁଅଁଇ ମୋହ । କ୍ଷୁଧା, ପିପାସା, ଶୋକ, ଭୟ ॥୧୪୩
୪୨ କ୍ଷୁଧା, ପିପାସା ଆଦି ହୋଇ । ସ୍ୱଭାବଜାତ ଏ ଅଟଇ ॥୧୪୪
ଏମାନଙ୍କର ଉପଦ୍ରବ । ନିତ୍ୟରେ ଲଭଇ ଏ ଜୀବ ॥୧୪୫
ଅମୃତନିଧି ହରିକଥା । ତହିଁ ନ ରମଇଁ ସର୍ବଥା ॥୧୪୬
୪୩ } ବ୍ରହ୍ମା, ଶଙ୍କର, ମନୁ ଆର । ଯେ ଦକ୍ଷ ଆଦି ପ୍ରଜେଶ୍ୱର ॥୧୪୭
୪୪ } ସନକ ଆଦି ହୋଇ ଯେତେ । ନୈଷ୍ଠିକ ଅଛନ୍ତି ଜଗତେ ॥୧୪୮
ମରୀଚି, ଅତ୍ରି ଯେ ଅଙ୍ଗିର । ପୁଲସ୍ତ୍ୟ, ପୁଲହ ଆବର ॥୧୪୯
କ୍ରତୁ, ବଶିଷ୍ଠ, ଭୃଗୁ ଋଷି । ଏ ବ୍ରହ୍ମବାଦୀ ମୋତେ ମିଶି ॥୧୫୦
୪୫ ଏମାନେ ନୁହନ୍ତି ଇତର । ସମସ୍ତେ ବଚନ ଈଶ୍ୱର ॥୧୫୧
ତପସ୍ୟା, ବିଦ୍ୟା, ସମାଧିରେ । ଆଜହିଁ ବୁଦ୍ଧି ଅନୁସାରେ ॥୧୫୨
ଖୋଜି ନ କରନ୍ତି ଗୋଚର । ସକଳସାକ୍ଷୀ ଯେ ଈଶ୍ୱର ॥୧୫୩
୪୬ ଶବଦବ୍ରହ୍ମ ଯେ ଅପାର । ଅଟଇ ଅତ୍ୟନ୍ତ ବିସ୍ତାର ॥୧୫୪
ତହିଁ ଭ୍ରମନ୍ତେ ଅନୁଦିନ । ଇନ୍ଦ୍ରାଦିଦେବତା-ଆଖ୍ୟାନ ॥୧୫୫
ବେଦେ ହୋଇଛି ପରିଚ୍ଛିନ୍ନ । ଯେ ନାନାରୂପେ ଭଗବାନ ॥୧୫୬
ସେ ସେହି କର୍ମ ଆଗ୍ରହରେ । ଭଜନ୍ତେ ଯାହାକୁ ମନରେ ॥୧୫୭
ବିଶୁଦ୍ଧ ଅଟଇ ଯେ ପୁଣି । ତାହାକୁ ନ ପାରନ୍ତି ଜାଣି ॥୧୫୮
୪୭ ଆତ୍ମାରେ ଯାହାକୁ ଭାବନ । କରନ୍ତି ଶୁଦ୍ଧ ମନେ ଜନ ॥୧୫୯
ସେ ହରି ଯେବଣ କାଳରେ । ଯାହାକୁ ଅନୁଗ୍ରହ କରେ ॥୧୬୦
ସେ ବେଦେ ଲୋକ ବ୍ୟବହାରେ । ନିଷ୍ଠିତ ବୁଦ୍ଧିକି ନ କରେ ॥୧୬୧

୪୮ ତେଣୁ କର୍ମରେ ହେ ନୃପତି । ନ କର ପୁରୁଷାର୍ଥମତି ॥୧୬୨
ଅଜ୍ଞାନସକାଶୁଁ ହୃଦୟେ । ଆଭାସେ ପରମାର୍ଥ ପ୍ରାୟେ ॥୧୬୩
ସ୍ୱର୍ଗାଦି ଫଳର ଶ୍ରବଣୁଁ । କର୍ଣ୍ଣକୁ ପ୍ରିୟ ଅଟେ ତେଣୁ ॥୧୬୪
ଯେ ସର୍ବକାଳେ ସ୍ୱପ୍ରକାଶ । ତାକୁ ନ କରିଛି ସ୍ମରଣ ॥୧୬୫
୪୯ ମଳିନ ବୁଦ୍ଧି ଯାହାଙ୍କର । ବେଦ ନ କରନ୍ତି ଗୋଚର ॥୧୬୬
ବେଦକୁ ସକର୍ମକ କରି । ସେମାନେ କହନ୍ତି ବିଚାରି ॥୧୬୭
ଯହିଁରେ ଦେବ ଭଗବାନ । ସନ୍ତତ ଅଟେ ବିଦ୍ୟମାନ ॥୧୬୮
ସେ ନିଜ ଆତ୍ମତତ୍ତ୍ୱଭାବ । ସେମାନେ ନ କରନ୍ତି ଠାବ ॥୧୬୯
୫୦ ପୂର୍ବାଗ୍ର କୁଶରେ ସକଳ । ଆଚ୍ଛାଦି ଧରଣୀମଣ୍ଡଳ ॥୧୭୦
ବହୁତ ପଶୁବଧ କରି । ମୁଁ ଯଜ୍ୱା ବୋଲି ଅହଂକାରୀ ॥୧୭୧
ଏ ଅହଂକାର ଘେନୁ ଯେଣୁ । କାହାକୁ ନମ୍ର ନୋହୁ ତେଣୁ ॥୧୭୨
ବିଦ୍ୟାସ୍ୱରୂପ କର୍ମ ଯେହି । ତାହା ନ ଜାଣୁ ନୃପ ! ତୁହି ॥୧୭୩
ହରିଙ୍କି ତୋଷ କରେ ଯେହି । ତାହାକୁ କର୍ମ ବୋଲି କହି ॥୧୭୪
ଯେଣେ ସେ ହରିଠାରେ ମତି । ସେ ବିଦ୍ୟାରୂପେ ଲଭେ ଖ୍ୟାତି ॥୧୭୫
୫୧ ହରି ସେ ଆତ୍ମା ପ୍ରାଣୀଙ୍କର । ସ୍ୱତନ୍ତ୍ର କାରଣ ଈଶ୍ୱର ॥୧୭୬
ଚରଣମୂଳ ସେ ହରିର । ଯେଣୁ ଆଶ୍ରୟ ତାହାଙ୍କର ॥୧୭୭
ପ୍ରାଣୀମାନଙ୍କର ଯହିଁରେ । କ୍ଷେମ ଉପୁଜଇ ସଂସାରେ ॥୧୭୮
୫୨ ସେ ହରି ଆତ୍ମା ଅତି ପ୍ରିୟ । ଯହୁଁ ଅଳ୍ପହିଁ ନାହିଁ ଭୟ ॥୧୭୯
ଏ ରୂପେ କରେ ଯେ ଗୋଚର । ପଣ୍ଡିତ ଅଟଇ ସେ ନର ॥୧୮୦
ସେ ଗୁରୁ ଅଟଇ ସେ ହରି । ଯେ ଏହା ଜାଣେ ଭଲ କରି ॥୧୮୧

ଶ୍ରୀନାରଦ ଉବାଚ

୫୩ ହେ ନରଶ୍ରେଷ୍ଠ ! ତୋର ପ୍ରଶ୍ନ । ଏ ରୂପେ ହୋଇଲା ସଂଛିନ୍ନ ॥୧୮୨
ଏହି ବିଷୟରେ ମୁଁ ପୁଣ । ଯେ ଗୁହ୍ୟ କରିବି ବଖାଣ ॥୧୮୩
ସେ କଥା ନିଶ୍ଚୟ କରିଣ । ମୋ'ଠାରୁ କର ତୁ ଶ୍ରବଣ ॥୧୮୪
୫୪ ଅଳପ ଆହାର ଯେ କରେ । ସ୍ତ୍ରୀସଙ୍ଗେ ପୁଷ୍ପବାଟିକାରେ ॥୧୮୫
ମିଳିଣ ଅନୁରାଗୀ ହୋଇ । ଭ୍ରମରଗଣ ଯାହା ଗାଇ ॥୧୮୬
ସେ ଗୀତ ଶ୍ରବଣେ ଲୋଭିତ । ଯାହାର କର୍ଣ୍ଣ ଅବିରତ ॥୧୮୭
ପରପ୍ରାଣରେ ନିଜ ପ୍ରାଣ । ସନ୍ତୋଷ କରନ୍ତି ଯେ ପୁଣ ॥୧୮୮
ଅଗ୍ରେ ଯାନ୍ତେ ସେ ବୃକମାନେ । ତାହାଙ୍କୁ ନ ଗଣିଣ ମନେ ॥୧୮୯

| | | | |
|---|---|---|---|
| | ଗମନ କରନ୍ତେ ପଛରେ । | ଲୁବ୍ଧକ ବିନ୍ଧୁଅଛି ଶରେ | ॥୧୯୦ |
| | ସେ ବାଣ ଭେଦେ ଦେହ ଯାର । | ଖୋଜ ସେ ମୃଗ ନୃପବର ! | ॥୧୯୧ |
| ୫୫ | ପୁଷ୍ପସମାନ ଧର୍ମ ଯାର । | ଆଶ୍ରମେ ସେ ସ୍ତ୍ରୀମାନଙ୍କର | ॥୧୯୨ |
| | କୁସୁମମଧୁଗନ୍ଧ ସମ । | ଯେ ଅଟେ ଅତି କ୍ଷୁଦ୍ରତମ | ॥୧୯୩ |
| | କାମ୍ୟକର୍ମଫଳୁଁ ସଂଭବ । | ଯେ ଅଟେ କାମସୁଖଲବ | ॥୧୯୪ |
| | ତା ଜିହ୍ୱା, ଉପସ୍ଥ ଆଦିରେ । | ଯେ ନିତ୍ୟ ଅନ୍ୱେଷଣ କରେ | ॥୧୯୫ |
| | ନାରୀସଙ୍ଗତେ ସଙ୍ଗ ହୋଇ । | ତହିଁ ଯେ ଅଛି ମନ ଦେଇ | ॥୧୯୬ |
| | ଭ୍ରମରଗଣ-ସାମ-ଗୀତ । | ତା' ପ୍ରାୟ ହରଇ ଯେ ଚିତ୍ତ | ॥୧୯୭ |
| | ପ୍ରଳାପ ନାରୀମାନଙ୍କର । | ତହିଁ ଲୋଭିତ କର୍ଣ୍ଣ ଯାର | ॥୧୯୮ |
| | ହରନ୍ତେ ଆପଣା ଆୟୁଷ । | ଯେ ବୃକଯୂଥର ସଦୃଶ | ॥୧୯୯ |
| | ଅହୋରାତ୍ର୍ୟାଦି କାଳମାନ । | ଆଗରେ କରନ୍ତି ଗମନ | ॥୨୦୦ |
| | ତାହାଙ୍କୁ ଚିତ୍ତରେ ନ ଗଣି । | ଗୃହେ ବିହରେ ପୁଣ ପୁଣି | ॥୨୦୧ |
| | 'ପଛ' ଶବଦରେ ପରୋକ୍ଷ । | ତହିଁ ପ୍ରବର୍ତ୍ତିଛି ପ୍ରତ୍ୟକ୍ଷ | ॥୨୦୨ |
| | 'ଲୁବ୍ଧକ' ପଦେ ଦଣ୍ଡଧର[୧] । | ଅନ୍ତରେ ବିନ୍ଧୁଅଛି ଶର | ॥୨୦୩ |
| | ଏମନ୍ତ ଆତ୍ମା ହେ ରାଜନ । | ତା' ହୃଦ ହୋଇଅଛି ଭିନ୍ନ | ॥୨୦୪ |
| | ମୃଗୟୁ[୨] ହତ ମୃଗପ୍ରାୟ । | ତା' ଦେଖିବାକୁ ଯୋଗ୍ୟ ହୁଅ | ॥୨୦୫ |
| ୫୬ | ମୃଗଚେଷ୍ଟାକୁ ଆପଣାର । | ସେ ତୁମ୍ଭେ କରିଣ ବିଚାର | ॥୨୦୬ |
| | ଅନ୍ତରେ, ହୃଦୟେ, କର୍ଣ୍ଣରେ । | ଯେ ନଦୀପ୍ରାୟକ ପ୍ରଚରେ | ॥୨୦୭ |
| | ସେ ବାହ୍ୟ ବୃତ୍ତିକି ନେଇଣ । | ଚିତ୍ତରେ କର ଆରୋପଣ | ॥୨୦୮ |
| | କାମୁକଯୂଥମାନଙ୍କର । | ଚରିତ ଯହିଁରେ ପ୍ରଚାର | ॥୨୦୯ |
| | ସେ ନାରୀମାନଙ୍କ ମନ୍ଦିର । | ତାହାକୁ ଦୂରେ ପରିହର | ॥୨୧୦ |
| | ଯେ ବିଷ୍ଣୁ ଜୀବନଙ୍କ ଶରଣ । | ତାହାଙ୍କୁ ପ୍ରୀତି କର ପୁଣ | ॥୨୧୧ |
| | ସକଳଠାରୁ ଏ ପ୍ରକାରେ । | ବିରତ ହୁଅ ତୁ କ୍ରମରେ | ॥୨୧୨ |

ଶ୍ରୀରାଜୋବାଚ

| | | | |
|---|---|---|---|
| ୫୭ | ହେ ବିପ୍ର ! ଶୁଣିଲି ବିଚାର । | ଯାହା କହିଲ ମୋ' ଆଗର | ॥୨୧୩ |
| | ମୋର ଆଚାର୍ଯ୍ୟେ ଯେ ଅଛନ୍ତି । | ସେମାନେ ଏହା ନ ଜାଣନ୍ତି | ॥୨୧୪ |
| | ଯେବେ ସେମାନେ ଜାଣିଥାନ୍ତେ । | କିମ୍ପାଇଁ ମୋତେ ନ କହନ୍ତେ | ॥୨୧୫ |

---

୧. ଦଣ୍ଡଧର = ଯମ । ୨. ମୃଗୟୁ = ବାଣୁଆ ।

୫୮ ସେ ଗୁରୁମାନଙ୍କ ବଚନ । ବିରୋଧେ ହେଲା ଯେ ଉତ୍ପନ୍ନ ।।୨୧୬
ସେ ମହା ସଂଶୟ ମୋହର । ଛିଡ଼ିଲା ବଚନୁଁ ତୁମ୍ଭର ।।୨୧୭
ସଂଶୟ ଅଛି କିଛି ଆନ । ଯହିଁ ମୋହିତ ଋଷିଜନ ।।୨୧୮
ଇନ୍ଦ୍ରିୟବୃତ୍ତିମାନେ ଯହିଁ । କେବେହେଁ ପ୍ରବର୍ତ୍ତନ୍ତି ନାହିଁ ।।୨୧୯
୫୯ } ଯେବଣ କଳେବରେ ଜନ । ଆରମ୍ଭ କରେ କର୍ମମାନ ।।୨୨୦
୬୦ } ସେ ଦେହ ଛାଡ଼ି ଏ ଲୋକରେ । *ପରଲୋକେ ଆନ ଦେହରେ ।।୨୨୧
ଯେ କର୍ମମାନ ଉପଯୋଗ । ତା' ପୁଣ ପୁଣ କରେ ଭୋଗ ।।୨୨୨
ବେଦବାଦୀଙ୍କ ବାକ୍ୟ ଯେହି । ଏ ରୂପେ ଶୁଣି ତହିଁ ତହିଁ ।।୨୨୩
ଯେ କର୍ମ କଥିତ ବେଦରେ । ମନୁଷ୍ୟ ତାହାକୁ ଆଚରେ[୧] ।।୨୨୪
ସେ କର୍ମ ପ୍ରତ୍ୟକ୍ଷ ହୋଇଣ । ପ୍ରକାଶ ହେଉ ନାହିଁ ପୁଣ ।।୨୨୫

ଶ୍ରୀନାରଦ ଉବାଚ

୬୧ ଯେଉଁ ଦେହରେ କର୍ମ କରେ । ପର ଲୋକରେ ସେ ଦେହରେ ।।୨୨୬
ଯେ କର୍ତ୍ତା ଭୋକ୍ତା କଳେବର । ବିଚ୍ଛେଦବିହୁନେ ତାହାର ।।୨୨୭
ମନପ୍ରଧାନ ଲିଙ୍ଗଦେହେ । ଭୋଗ କରଇ ନିଃସନ୍ଦେହେ ।।୨୨୮
୬୨ ଯେସନେ ଜାଗ୍ରତ ଶରୀର । ଶୟନ କରିଥାନ୍ତେ ନର ।।୨୨୯
ଛାଡ଼ି ସେ ଦେହ-ଅଭିମାନ । ମନରେ ସଂସ୍କାରୁଁ ଉତ୍ପନ୍ନ ।।୨୩୦
କର୍ମକୁ ସେ ସଦୃଶ ଦେହେ । ଭୁଞ୍ଜାଇ ଅବା ଅନ୍ୟ କାୟେ ।।୨୩୧
୬୩ ଏ ମୋର, ଏ ମୁଁ ଏ ପ୍ରକାରେ । ଏମନ୍ତ ବୋଲନ୍ତେ ମନରେ ।।୨୩୨
ଯେବଣ ଯେବଣ ଶରୀର । ଗ୍ରହଣ କରିଥାଇ ନର ।।୨୩୩
ସେ ଦେହେ ଯେଉଁ କର୍ମ ହୋଇ। ସେ କର୍ମ ଗ୍ରହଣ କରଇ ।।୨୩୪
ଯେବଣ କର୍ମରେ ଲୋକର । ସଂଭବ ହୋଏ ଜନ୍ମ ଆର ।।୨୩୫
୬୪ ଯେ ଜ୍ଞାନ-କର୍ମରୂପେ ଆନ । ଇନ୍ଦ୍ରିୟଙ୍କର ଚେଷ୍ଟାମାନ ।।୨୩୬
ତେଣେ ଚିତ୍ତକୁ ଅନୁମାନ । କରଇ ପୁରୁଷ ଯେସନ ।।୨୩୭
ପୂର୍ବ କର୍ମକୁ ସେ ପ୍ରକାରେ । ଲକ୍ଷ୍ୟନ୍ତି ମାନସ ବୃତ୍ତିରେ ।।୨୩୮
୬୫ } ଏ ଯେଉଁ ଦେହ ବର୍ତ୍ତମାନ । ତା' କହୁଣିସି ଠାରେ ଜନ ।।୨୩୯
୬୬ } ଯା' ଅନୁଭବ କରି ନାହିଁ । ନ ଶୁଣିଅଛି ଯା' ନ ଚାହିଁ ।।୨୪୦
ଯେଉଁ ରୂପରେ ଯେ ପ୍ରକାରେ। ସ୍ୱପନ, ମନୋରଥାଦିରେ ।।୨୪୧

---

* ଶରୀରଜୈଃ କର୍ମଦୋଷୈର୍ଯାତି ସ୍ଥାବରତାଂ ନରଃ ।

୧. ଆଚରେ = ଆଦରେ ।

ସେ କଥା ଯେହ୍ନେ କଦାଚିତ । ମନରେ ନୋହେ ଉପସ୍ଥିତ ॥୨୪୨
ସେହି ହେତୁରୁ ଏ ଜୀବର । ପୂର୍ବ କାଳରେ ଯେ ଶରୀର ॥୨୪୩
ତେଣେ ତୋ' କର୍ମ ହୋଏ ଜାତ । ଏକଥା ମଣ ତୁ ନିୟତ ॥୨୪୪
ଯେଉଁ କଥାକୁ ଅନୁଭବ । ନ କରି ଥାଇ ପୂର୍ବେ ଜୀବ ॥୨୪୫
ସେ କଥା ଛୁଇଁବାକୁ ଜନ । କେବେହେଁ ନୁହଇ ଭାଜନ ॥୨୪୬
୬୭ ହେ ନୃପ ! ହେଉ ତୋ' କଲ୍ୟାଣ । ଏକଥା ସାବଧାନେ ଶୁଣ ॥୨୪୭
ଉତ୍ତମ ଜନ ହୋଇଥିବ । ଅଥବା ନୀଚତ୍ୱକୁ ଯିବ ॥୨୪୮
ଏମନ୍ତ ଅଟଇ ଯେ ନର । ଯେତେକ ଭାବୀ ରୂପ ତାର ॥୨୪୯
ଉଦାର କାର୍ପଣ୍ୟବୃତ୍ତିରେ । ମନ ପ୍ରକାଶ ତାହା କରେ ॥୨୫୦
୬୮ ଅଦୃଷ୍ଟ ଅଶ୍ରୁତ ଚରିତ । ପର୍ବତେ ସମୁଦ୍ର ପ୍ରତୀତ ॥୨୫୧
ଦିବସେ ନକ୍ଷତ୍ରପ୍ରଚାର । ଶିରଚ୍ଛେଦନ ଆପଣାର ॥୨୫୨
ସ୍ୱପ୍ନେ ଏମନ୍ତ ପ୍ରତ୍ୟେ ହୋଇ । ଏ କାହୁଁ ମନକୁ ଆସଇ ॥୨୫୩
ତହିଁକି କହିବା ସିଦ୍ଧାନ୍ତ । ଆନ ଦେଶରେ ସିନ୍ଧୁ ସ୍ଥିତ ॥୨୫୪
ସେ ପୁଣ ପର୍ବତ-ଅଗ୍ରରେ । ପ୍ରତ୍ୟେ ହୁଅଇ ସ୍ୱପନରେ ॥୨୫୫
ନିଶାରେ ନକ୍ଷତ୍ର ଯେ ଥାଇ । ଦିବସେ ପ୍ରତ୍ୟୟ ସେ ହୋଇ ॥୨୫୬
ଅଭ୍ୟଙ୍ଗ ଆଦି କ୍ରିୟାଙ୍କର । ଆଶ୍ରୟ ଅଟଇ ଯେ ଶିର ॥୨୫୭
ତହିଁରେ ଛେଦକ୍ରିୟା ଦିଶେ । ଏ ରୂପେ ନିଦ୍ରାଦିଙ୍କ ଦୋଷେ ॥୨୫୮
ଯେ ଦେଶ-କାଳ-କ୍ରିୟାମାନ । ଆନ ଠାବରେ ଦିଶେ ଆନ ॥୨୫୯
୬୯ ଯେତେକ ଇନ୍ଦ୍ରିୟ-ଗୋଚରେ । ସମସ୍ତେ କ୍ରମାନୁରୋଧରେ ॥୨୬୦
ସମୂହ ହୋଇ ମନେ ମିଳି । ଭୋଗ-ଅନ୍ତରେ ଯାନ୍ତି ଚଳି ॥୨୬୧
ମନ ସହିତ ସର୍ବ ଜନ । ଯେଣୁ ଅଟନ୍ତି ବିଦ୍ୟମାନ ॥୨୬୨
୭୦ ସତ୍ତ୍ୱରେ ଏକନିଷ୍ଠ ମନ । ଯେବେ ବିଷ୍ଣୁଙ୍କୁ କରେ ଧ୍ୟାନ ॥୨୬୩
ସଂଯୋଗ ପାଇଲା ପରାଏ । ତହିଁ ଏ ସର୍ବ ଶୋଭା ପାଏ ॥୨୬୪
ରାହୁ ସର୍ବଦା ନ ଦିଶଇ । ଚନ୍ଦ୍ରେ ଯେସନେ ପ୍ରକାଶଇ ॥୨୬୫
୭୧ ବୁଦ୍ଧି, ଇନ୍ଦ୍ରିୟ, ମନ, ଗୁଣ । ଯେ ରୂପ, ରସ ଆଦି ପୁଣ ॥୨୬୬
ଏମାନଙ୍କର ପରିଣାମ । ଲିଙ୍ଗଶରୀର ତାହା ନାମ ॥୨୬୭
ଅନାଦିମନ୍ତ ସେ ଅଟଇ । ସେ ଯେତେ କାଳ ଯାଏ ଥାଇ ॥୨୬୮
ଜୀବର ତେତେ କାଳ ଯାଏ । ସଂବନ୍ଧ ସ୍ଥୂଳ ଦେହେ ଥାଏ ॥୨୬୯

୭୨ } ସୁଷୁପ୍ତି, ମୂର୍ଚ୍ଛା, ଉପତାପେ । ମୃତ୍ୟୁ ପ୍ରଜ୍ୱାରଙ୍କ ପ୍ରକୋପେ ।।୨୭୦
୭୩ } ଇନ୍ଦ୍ରିୟ ହୁଅନ୍ତେ ନିଧନ । ନ ସ୍ଫୁରେ ଅହଂ ଇତି ଜ୍ଞାନ ।।୨୭୧
ଯେ ବା ଏକାଦଶ ପ୍ରକାର । ଲିଙ୍ଗଶରୀର ତରୁଣର ।।୨୭୨
ଅପୂର୍ଣ୍ଣ ଭାବରୁ ମାନସେ । ସେ ଗର୍ଭେ ବାଲ୍ୟେ ନ ପ୍ରକାଶେ ।।୨୭୩
କୁହୂ[୧] ରଜନୀରେ ଚନ୍ଦ୍ରର । ସ୍ଥିତି ଯେସନେ ଅଗୋଚର ।।୨୭୪
୭୪ ଅର୍ଥ ନ ଥିଲେହେଁ ସଂସାର । ନ ନିବର୍ତ୍ତଇ ମନୁଷ୍ୟର ।।୨୭୫
ବିଷୟମାନଙ୍କୁ ଯେ ଧ୍ୟାନ । କରନ୍ତା ହୋଇଥାଇ ଜନ ।।୨୭୬
*ସ୍ୱପ୍ନେ ଅନର୍ଥମାନଙ୍କର । ଆଗମ ଯେସନେ ତାହାର ।।୨୭୭
୭୫ ପଞ୍ଚ ତନ୍‌ମାତ୍ର, ତିନି ଗୁଣ । ଇନ୍ଦ୍ରିୟ ଏକାଦଶ ପୁଣ ।।୨୭୮
ଯେ ପଞ୍ଚ ମହାଭୂତ ଆର । ଏମାନଙ୍କର ଯେ ବିସ୍ତାର ।।୨୭୯
ଲିଙ୍ଗଶରୀର ଏ ପ୍ରକାରେ । ସଂଯୁତ ହୋଇ ଚେତନାରେ ।।୨୮୦
ଏମନ୍ତ ରୂପରେ ଦେହୀର । ବିଖ୍ୟାତ ଏ ଲିଙ୍ଗଶରୀର ।।୨୮୧
ହୋଇ ଚେତନାରେ ସଂଯୁତ । ଏ ଜୀବଶବଦେ କଥିତ ।।୨୮୨
୭୬ ଏ ଲିଙ୍ଗଶରୀରରେ ଦେହୀ । ଦେହକୁ ଘେନଇ ଛାଡ଼ଇ ।।୨୮୩
ହରଷ, ଶୋକ, ଭୟ, ଦୁଃଖ । ଏଣେ ଲଭଇ ନାନା ସୁଖ ।।୨୮୪
୭୭ ତୃଣଜଳୌକା ଯେହ୍ନେ ତୃଣ । ନ ଛାଡ଼ି ନ ଯାଇ ସେ ପୁଣ ।।୨୮୫
ଆନ ତୃଣକୁ ଯେବେ ଧରେ । ପୂର୍ବ ତୃଣକୁ ତ୍ୟାଗ କରେ ।।୨୮୬
ଯେ ପୂର୍ବଦେହେ ଅହଂକାର । ମଲେହେଁ ନ ଛାଡ଼େ ତା' ନର ।।୨୮୭
ପ୍ରାକ୍ତନ କର୍ମନାଶେ ଆନ । ଦେହ ନ ଲଭେ ଯେତେଦିନ ।।୨୮୮
୭୮ } ହେ ନୃପ ! ସଂସାରକାରଣ । ପ୍ରାଣୀଙ୍କ ମନ ବୋଲି ଜାଣ ।।୨୮୯
୭୯ } ଇନ୍ଦ୍ରିୟେ ଭୋଗ ଯା' କରଇ । ସେ ଅର୍ଥମାନ ଯେବେ ଧାୟି ।।୨୯୦
କର୍ମ-ଆରମ୍ଭେ ଅବିରତ । କର୍ମ ହୁଅନ୍ତେ ସମୁଦ୍‌ଭୂତ ।।୨୯୧
ଅବିଦ୍ୟା ହୁଅନ୍ତେ ଦେହର । କର୍ମରେ ବନ୍ଧ ଦୁର୍ନିବାର ।।୨୯୨
୮୦ ଏଣୁ ତା' ନାଶ ନିମିତ୍ତରେ । ହରିଙ୍କି ଭଜ ସର୍ବାତ୍ମାରେ ।।୨୯୩
ହରିସ୍ୱରୂପେ ଏ ଜଗତ । ଦେଖନ୍ତେ ହୁଅ ତୋଷଚିତ୍ତ ।।୨୯୪
ଉଦ୍‌ପତ୍ତି, ପାଳନ, ବିନାଶ । ଯା'ଠାରୁ ହୁଅଇ ପ୍ରକାଶ ।।୨୯୫

---

୧. କୁହୂ = ଅମାବାସ୍ୟା
* ସ୍ୱପ୍ନରେ ଅର୍ଥମାନଙ୍କର

ଶ୍ରୀମୈତ୍ରେୟ ଉବାଚ

୮୧ ବୈଷ୍ଣବମାନଙ୍କେ ପ୍ରଧାନ । ନାରଦ ଋଷି ଭଗବାନ ।।୨୯୬
ଜୀବାତ୍ମା, ପରମ ଆତ୍ମାର । ଗତିକି କରାଇ ଗୋଚର ।।୨୯୭
ରାଜାଙ୍କୁ କରି ଆମନ୍ତ୍ରଣ । ସିଦ୍ଧ ଲୋକକୁ ଗଲେ ପୁଣ ।।୨୯୮
୮୨ ପ୍ରାଚୀନବରହି ରାଜନ । ଯେ ପ୍ରଜା-ସର୍ଜନ-ପାଳନ ।।୨୯୯
ପୁତ୍ରଙ୍କୁ ମନ୍ତ୍ରିଙ୍କ ଆଗରେ । ଆଜ୍ଞା ଦେଇଣ ତଦନ୍ତରେ ।।୩୦୦
ଆପଣେ ତପ କରିବାକୁ । ଗଲେ କପିଳ-ଆଶ୍ରମକୁ ।।୩୦୧
୮୩ ତହିଁରେ ସଙ୍ଗ କରି ଦୂର । ଏକଗ୍ରମନା ହୋଇ ଧୀର ।।୩୦୨
ଗୋବିନ୍ଦଚରଣ ନଳିନ । ସେବା କରନ୍ତେ ଅନୁଦିନ ।।୩୦୩
ଭକ୍ତିରେ ଗୋବିନ୍ଦସମାନ । ଭାବକୁ ଲଭିଲେ ରାଜନ ।।୩୦୪
୮୪ ଏ ଅଧ୍ୟାତ୍ମ ପରୋକ୍ଷ ଜ୍ଞାନ । କହିଲେ ବ୍ରହ୍ମାର ନନ୍ଦନ ।।୩୦୫
ଯେ ଏହା ଶୁଣାଇଁ ଶୁଣଇ । ସେ ଲିଙ୍ଗଦେହୁଁ ମୁକ୍ତ ହୋଇ ।।୩୦୬
୮୫ ମୁକୁନ୍ଦଯଶେ ଏ ଚରିତ । ଭୁବନ କରଇ ପବିତ୍ର ।।୩୦୭
ଯେ ଦେବରଷିମଧ୍ୟେ ବର । ତା' ମୁଖୁଁ ହୋଇଛି ବାହାର ।।୩୦୮
ମନକୁ ନିର୍ମଳ କରଇ । ଯେ ଏହା କହନ୍ତେ ଶୁଣଇ ।।୩୦୯
ସକଳ ଶ୍ରେଷ୍ଠ ଫଳ ପାଇ । ଏ ସଂସାରେ ସେ ନ ଭ୍ରମଇଁ ।।୩୧୦
ସଂସାରେ ଯେତେ ବନ୍ଧମାନ । ତହିଁରୁ ହୁଅଇ ମୋଚନ ।।୩୧୧
୮୬ ଅଧ୍ୟାତ୍ମ, ପରୋକ୍ଷ, ଅଦ୍‌ଭୁତ । ମୁଁ ଏହା କଲି ଆତ୍ମଗତ ।।୩୧୨
ବୁଦ୍ଧି ସହିତ ଅହଂକାର । ଏ ରୂପେ ଛିଡ଼େ ପୁରୁଷର ।।୩୧୩
କି ରୂପେ କର୍ମଫଳଯୋଗ । ପରଲୋକରେ ହୋଏ ଭୋଗ ।।୩୧୪
ଏ ରୂପେ ଯେ ସଂଶୟ ଆନ । ସେହି ହୁଅଇ ଏଣେ ଲୀନ ।।୩୧୫
ବ୍ରାହ୍ମଣ ଦୀନବନ୍ଧୁ କହେ । ସୁଜନେ ଏଣେ କର ଲୟେ ।।୩୧୬
ପବିତ୍ର ପୁରଞ୍ଜନ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ।।୩୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀ ପ୍ରାଚୀନବର୍ହିନାରଦସଂବାଦୋ ନାମ ଏକୋନତ୍ରିଂଶୋଽଧ୍ୟାୟଃ ।।

# ତ୍ରିଂଶୋଽଧ୍ୟାୟଃ

ପ୍ରସଙ୍ଗାଦ୍ ପଞ୍ଚଭିଃ ପ୍ରୋକ୍ତଂ ବୃତ୍ତଂ ପ୍ରାଚୀନବର୍ହିଷଃ ।
ବର୍ଣ୍ଣ୍ୟତେ ଚ ପୁନର୍ଦ୍ୱାଭ୍ୟାଂ ପ୍ରସ୍ତୁତଂ ତଦ୍ ପ୍ରଚେତସାମ୍ ॥ ୧ ॥
ତତ୍ର ତ୍ରିଂଶେ ତପସ୍ତୁଷ୍ଟାଦୀଶାଲ୍ଲବ୍ଧବରାସ୍ତତଃ ।
ଆଗତ୍ୟ ବାର୍କ୍ଷୀମୁଦ୍ୱାହ୍ୟ ରାଜ୍ୟଂ ଚକ୍ରୁରିତୀର୍ଯ୍ୟତେ ॥ ୨ ॥

ପ୍ରାଚୀନବର୍ହିଙ୍କ ଚରିତ । ପଞ୍ଚ ଅଧ୍ୟାରେ କଲେ ଉକ୍ତ ॥ ୧
ପ୍ରଚେତାମାନଙ୍କର ରୀତି । ଦୁଇ ଅଧ୍ୟାରେ କହୁଛନ୍ତି ॥ ୨
ତପେ ଯେ ସଂତୋଷ ଈଶ୍ୱର । ତାହାଙ୍କ ଠାରୁ ଲଭି ବର ॥ ୩
ବୃକ୍ଷଙ୍କ କନ୍ୟାକୁ ଆଣିଣ । ବିବାହ ହୋଇ କରି ପୁଣ ॥ ୪
ରାଜ୍ୟ କଲେ ସେ ଏ ପ୍ରକାରେ । ବର୍ଣ୍ଣିବେ ତିରିଶ ଅଧ୍ୟାରେ ॥ ୫

ଶ୍ରୀବିଦୁର ଉବାଚ

୧ ଭୋ ମୁନି ! କହିଲ ଯାହାଙ୍କୁ । ପ୍ରାଚୀନବର୍ହିଙ୍କ ପୁତ୍ରଙ୍କୁ ॥ ୬
ରୁଦ୍ରଗୀତେ ତୋଷି ହରିଙ୍କି । ଲଭିଲେ ସେ କେଉଁ ସିଦ୍ଧିକି ॥ ୭
୨ ହେ ମଇତ୍ରେୟ ! ଯଦୃଚ୍ଛାରେ । ଶିବଙ୍କୁ ଲଭିଣ ମାର୍ଗରେ ॥ ୮
କୈବଲ୍ୟନାଥ ଦାମୋଦର । ତାହାଙ୍କ ପ୍ରିୟ ଯେ ଶଙ୍କର ॥ ୯
ତାହାଙ୍କ ପାର୍ଶ୍ୱବର୍ତ୍ତୀ ହୋଇ । ସେ ପ୍ରଚେତସ ଦଶ ଭାଇ ॥ ୧୦
ମୋକ୍ଷ ଲଭିଲେ ଏ ଜନ୍ମରେ । ଅଥବା ଜନମ ଅନ୍ତରେ ॥ ୧୧

ଶ୍ରୀମୈତ୍ରେୟ ଉବାଚ

୩ କରନ୍ତେ ପିତାର ଆଦେଶ । ସମୁଦ୍ରମଧ୍ୟେ ପ୍ରଚେତସ ॥ ୧୨
ରୁଦ୍ର କହିଲେ ଯେଉଁ ସ୍ତୁତି । ସେ ଅଟେ ଜପଯଜ୍ଞମୂର୍ତ୍ତି ॥ ୧୩
ସେ ଜପଯଜ୍ଞେ, ତପସ୍ୟାରେ । ହରିଙ୍କି ତୋଷିଲେ ସେଠାରେ ॥ ୧୪
୪ ନିଜ କାନ୍ତିରେ ତପକ୍ଲେଶ । କରନ୍ତେ ତାଙ୍କର ବିନାଶ ॥ ୧୫
ଦଶ ସହସ୍ର ସମ୍ୱତ୍ସର । ଅନ୍ତେ ସେମାନଙ୍କ ଆଗର ॥ ୧୬
ସତ୍ତ୍ୱଶରୀରେ ପରକାଶ । ହୋଇଲେ ପୁରାଣ ପୁରୁଷ ॥ ୧୭
୫ ଗରୁଡ଼ସ୍କନ୍ଧ ଆରୋହଣ । କରିଛନ୍ତି ଯେ ନାରାୟଣ ॥ ୧୮
ଆରୋହୀ ଶୃଙ୍ଗକୁ ମେରୁର । ଯେସନେ ଦିଶେ ଜଳଧର ॥ ୧୯
ପୀତ ବସନ ପରିଧାନ । କଣ୍ଠରେ ମଣି ଶୋଭମାନ ॥ ୨୦
ଦିଗମାନଙ୍କ ଅନ୍ଧକାର । କାନ୍ତିରେ କରନ୍ତେ ନିବାର ॥ ୨୧

୬ କନକମୟ ବର୍ଣ୍ଣବନ୍ତ । ଦୀପ୍ତ ଭୂଷଣରେ ରାଜିତ ॥ ୨୨
କପୋଳ ବଦନ ଯାହାର । କିରୀଟେ ଶୋଭା ଦିଶେ ଶିର ॥ ୨୩
ଅଷ୍ଟଆୟୁଧ ଅନୁଚର । ମୁନି, ସୁରେନ୍ଦ୍ର ଯେ ଆବର ॥ ୨୪
ସେମାନେ ଯେ ଯାହା ମତରେ । ସେବି ଅଛନ୍ତି ନିରନ୍ତରେ ॥ ୨୫
*ଗରୁଡ଼କିନ୍ନର ଗାୟନ । କରୁଅଛି ଯା' କୀର୍ତ୍ତିମାନ ॥ ୨୬
୭ ଅଷ୍ଟସଂଖ୍ୟକ ସୁବିଶାଳ । ଆୟତ ଯେ ଭୁଜମଣ୍ଡଳ ॥ ୨୭
କମଳା ବିଜେ ମଧ୍ୟେ ତାର । ତା'ସଙ୍ଗେ ବାଦୀ ଶୋଭା ଯାର ॥ ୨୮
ସେ ବନମାଳାରେ ବେଷ୍ଟିତ । ଯେ ଆଦ୍ୟ ପୁରୁଷ ଅଚ୍ୟୁତ ॥ ୨୯
ଭଗତଠାରେ ଦୟାଯୁତ । ଅଟେ ଯାହାର ଦୃଷ୍ଟିପାତ ॥ ୩୦
ସେ ବର୍ହିଷ୍ମନ୍ତଙ୍କ ନନ୍ଦନ । ହୋଇ ଯେ ଅଛନ୍ତି ପ୍ରପନ୍ନ ॥ ୩୧
ତାହାଙ୍କୁ ମେଘଧ୍ୱନିସମ । କହିଲେ ବଚନ ଉତ୍ତମ ॥ ୩୨

ଶ୍ରୀଭଗବାନୁବାଚ

୮ ହେ ନୃପନନ୍ଦନ ! ତୁମ୍ଭର । ମଙ୍ଗଳ ହେଉ ନିରନ୍ତର ॥ ୩୩
ସୁହୃଦଭାବେ ଧର୍ମମାନ । ନୋହେ ତୁମ୍ଭର ଭିନ୍ନ ଭିନ୍ନ ॥ ୩୪
ସୁହୃଦଭାବରେ ତୁମ୍ଭର । ତୋଷ ହୋଇଲି ମାଗ ବର ॥ ୩୫
୯ ଶଯ୍ୟାରେ ଥାଇ ଯେଉଁ ଜନ । ତୁମ୍ଭଙ୍କୁ ଚିନ୍ତେ ଅନୁଦିନ ॥ ୩୬
ଭ୍ରାତାମାନଙ୍କ ଠାରେ ତାର । ସମତା ହୋଇବ ଅପାର ॥ ୩୭
ସୁହୃଦଭାବ ସେ ପ୍ରକାରେ । ହୋଇବ ସକଳ ଭୂତରେ ॥ ୩୮
୧୦ ଯେ ମନ ଅଟଇ ଚଞ୍ଚଳ । ତାହାକୁ କରିଣ ନିଶ୍ଚଳ ॥ ୩୯
ଯେ ସଂଧ୍ୟା ପ୍ରଭାତରେ ମୋତେ । ସ୍ତୁତି କରନ୍ତି ରୁଦ୍ରଗୀତେ ॥ ୪୦
ତାଙ୍କୁ ମୁଁ ଦେବି କାମବର । ଶୋଭନ ବୁଦ୍ଧିକି ଆବର ॥ ୪୧
୧୧ ହରଷ ହୋଇ ତୁମ୍ଭେ ଯେଣୁ । ଘେନିଲ ପିତାଆଜ୍ଞା ତେଣୁ ॥ ୪୨
ସକଳ ଲୋକରେ ତୁମ୍ଭର । କୀର୍ତ୍ତି ବ୍ୟାପିବ ନିରନ୍ତର ॥ ୪୩
୧୨ ସକଳ ଭୁବନେ ବିଖ୍ୟାତ । ହେବ ତୁମ୍ଭର ଏକ ସୁତ ॥ ୪୪
ଗୁଣରେ ବ୍ରହ୍ମାଠାରୁ ସାନ । ନୁହଇ ଯେବଣ ନନ୍ଦନ ॥ ୪୫
ଆପଣା ବୀର୍ଯ୍ୟରେ[୧] ଯେ ପୂର୍ଣ୍ଣ । କରିବ ଏ ତିନି ଭୁବନ ॥ ୪୬
୧୩ ପ୍ରମ୍ଳୋଚା ଅପସରା ଥିଲା । କଣ୍ଡୁଙ୍କ ଠାରୁ ଯା' ଲଭିଲା ॥ ୪୭
କମଳପ୍ରାୟେ ନେତ୍ର ଯାର । ସେ କନ୍ୟା ଅତି ମନୋହର ॥ ୪୮

---

* ଗରୁଡ଼କିନ୍ନରଗୀତକୀର୍ତ୍ତିଃ–ଗରୁଡ଼ ଏବ କିନ୍ନରଃ, ତେନ ପକ୍ଷସ୍ୱନୈର୍ଗୀତା କୀର୍ତ୍ତିର୍ଯସ୍ୟ (ସ୍ୱାମୀ)

୧. ବୀର୍ଯ୍ୟ = ସନ୍ତାନ ।

| | | | | | |
|---|---|---|---|---|---|
| | ହେ ନୃପସୁତେ ! ଛାଡ଼ି ତାକୁ | । | ଯାନ୍ତେ ସେ ଅମରପୁରକୁ | ॥ | ୪୯ |
| | ବୃକ୍ଷମାନେ ଯେ ତହିଁ ଥିଲେ | । | ସେମାନେ ତାହାକୁ ଘେନିଲେ | ॥ | ୫୦ |
| ୧୪ | କୃଶ ହୁଅନ୍ତେ ସେ କ୍ଷୁଧାରେ | । | ରୋଦନ କରନ୍ତେ ସୁସ୍ୱରେ | ॥ | ୫୧ |
| | ସଦୟ ହୋଇ ରାଜା ଶଶୀ | । | ଅମୃତଧାରା ଯେ ବରଷି | ॥ | ୫୨ |
| | ସେ ବିଶି ଆଙ୍ଗୁଳିକି ନେଲା | । | ସେ କନ୍ୟାବଦନରେ ଦେଲା | ॥ | ୫୩ |
| ୧୫ | ମୋତେ ହୋଇଛି ଅନୁଗତ | । | ଯେ ତୁମ୍ଭମାନଙ୍କର ତାତ | ॥ | ୫୪ |
| | ସେ ପ୍ରଜାସର୍ଗବୃଦ୍ଧିପାଇଁ | । | ତୁମ୍ଭଙ୍କୁ ଅଛି ଆଜ୍ଞା ଦେଇ | ॥ | ୫୫ |
| | ତୁମ୍ଭେ ସେ କନ୍ୟାକୁ ସେଠାରେ | । | ବିବାହ ହୁଅ ତୁରିତରେ | ॥ | ୫୬ |
| ୧୬ | ତୁମ୍ଭ ସବୁରି ଧର୍ମମାନ | । | ସୁଚରିତ ହିଁ ନୋହେ ଭିନ୍ନ | ॥ | ୫୭ |
| | ଏ କନ୍ୟା ଅଟେ ସେହିମତି | । | ତୁମ୍ଭ ଠାବରେ ଦେଇ ମତି | ॥ | ୫୮ |
| | ତୁମ୍ଭ ସମସ୍ତ ଭାଇଙ୍କର | । | ପତ୍ନୀ ହୋଇବ ମନୋହର | ॥ | ୫୯ |
| ୧୭ | ସହସ୍ରେ ସହସ୍ର ବରଷ | । | ଦେବବରଷ ହୋନ୍ତେ ଶେଷ | ॥ | ୬୦ |
| | ନୋହିବ ତୁମ୍ଭ ବଳ ଶୀର୍ଣ୍ଣ | । | ଭୁଞ୍ଜିବ ଭୂମିଭୋଗମାନ | ॥ | ୬୧ |
| | ଦେବତାଭୋଗମାନ ପୁଣ | । | ଭୁଞ୍ଜିବ ମୋ' ଅନୁଗ୍ରହେଣ | ॥ | ୬୨ |
| ୧୮ | ଏଥି ଉତ୍ତାରୁ ମୋହଠାରେ | । | ଅଛିଦ୍ର ନିର୍ମଳ ଭକ୍ତିରେ | ॥ | ୬୩ |
| | କାମାଦି ମଳମାନ ଯେତେ | । | ନାଶ ହୁଅନ୍ତେ ତୁମ୍ଭ ଚିତ୍ତେ | ॥ | ୬୪ |
| | ଯେ ଇହପରଲୋକ ଦ୍ୱୟେ | । | ସେ ଭୋଗ ନରକର ପ୍ରାୟେ | ॥ | ୬୫ |
| | ତହିଁରୁ ନିର୍ବେଦ ଲଭିଣ | । | ଲଭିବ ମୋ ସ୍ଥାନକୁ ପୁଣ | ॥ | ୬୬ |
| ୧୯ | କର୍ମକୁ ସମର୍ପି ମୋ'ଠାରେ | । | କାଳ ନିଅନ୍ତି ମୋ' ବାର୍ତ୍ତାରେ | ॥ | ୬୭ |
| | ଏମନ୍ତ ଅଟନ୍ତି ଯେ ନରେ | । | ବର୍ତ୍ତିଥିଲେ ହେଁ ସେ ଗୃହରେ | ॥ | ୬୮ |
| | ବନ୍ଧନିମିତ୍ତେ ତାହାଙ୍କର | । | କେବେହେଁ ନୁହଇ ମନ୍ଦିର | ॥ | ୬୯ |
| ୨୦ | ମୁଁ ବ୍ରହ୍ମ, ସର୍ବଜ୍ଞ ଈଶ୍ୱର | । | ମୋ କଥା ଶ୍ରବଣୁଁ ଯାହାର | ॥ | ୭୦ |
| | ନବୀନ ପ୍ରାୟ ହୃଦୟରେ | । | ପ୍ରବେଶ ହୁଅଇ ସତ୍ୱରେ | ॥ | ୭୧ |
| | ତହିଁକି ଅଟନ୍ତି କାରଣ | । | ଯେ ବ୍ରହ୍ମବାଦୀ ବକ୍ତାଗଣ | ॥ | ୭୨ |
| | ମୋତେ ପାଆନ୍ତି, ମୋହ ଶୋକ | । | ଭୟ ନ ଲଭନ୍ତି ସେ ଲୋକ | ॥ | ୭୩ |

ଶ୍ରୀମୈତ୍ରେୟ ଉବାଚ

| | | | | | |
|---|---|---|---|---|---|
| ୨୧ | ପ୍ରାଣୀଙ୍କ ପୁରୁଷାର୍ଥମାନ | । | ପୁଆନ୍ତି ଯେଉଁ ଭଗବାନ | ॥ | ୭୪ |
| | ଏହା କରନ୍ତେ ସେ ବଖାଣ | । | ତାହାଙ୍କୁ ପ୍ରାଞ୍ଜଳି ହୋଇଣ | ॥ | ୭୫ |
| | ଯେ ରଜ-ତମ-ମଳମାନ | । | ତାଙ୍କ ଦର୍ଶନୁଁ ହେଲା ଲୀନ | ॥ | ୭୬ |
| | ତାହାଙ୍କୁ ଗଦ୍‌ଗଦ ବଚନେ | । | ଗୁଣିଲେ ସେ ପ୍ରଚେତାମାନେ | ॥ | ୭୭ |

ଶ୍ରୀପ୍ରଚେତସ ଊଚୁଃ

୨୨ ପ୍ରାଣୀମାନଙ୍କର ଯେ କ୍ଳେଶ । ତାହା ଯେ କରନ୍ତି ବିନାଶ ॥ ୭୮
ବେଦରେ ଯାହାର କଥନ । ଉଦାର ଗୁଣ ନାମ-ମାନ ॥ ୭୯
ମନ ବଚନ ବେଗୁଁ ଆଗ । ବର୍ତ୍ତି ଅଛଇ ଯାର ବେଗ ॥ ୮୦
ଇନ୍ଦ୍ରିୟମାର୍ଗେ ଅଗୋଚର । ଯା' ମାର୍ଗ ତାଙ୍କୁ ନମସ୍କାର ॥ ୮୧
୨୩ ଯେ ଶୁଦ୍ଧ ସ୍ୱରୂପସ୍ଥିତିରେ । ଶାନ୍ତ ଅଟନ୍ତି ଏ ପ୍ରକାରେ ॥ ୮୨
ପ୍ରାଣୀଙ୍କ ମନେ ନିଷ୍କାରଣ । ସ୍ଫୁରିତ ଦ୍ୱୟ ଯହିଁ ପୁଣ ॥ ୮୩
ଜଗତ-ପାଳନ, ସଂହାର, । ଉଦୟ ଅର୍ଥେ ଯେ ଈଶ୍ୱର ॥ ୮୪
ମାୟାଗୁଣରେ ପରିଗ୍ରହ । କଲେ ବ୍ରହ୍ମାଦି ନାନା ଦେହ ॥ ୮୫
ଏମନ୍ତ ଯେଉଁ ଭଗବାନ । ତାହାଙ୍କୁ ମୋହର ବନ୍ଦନ ॥ ୮୬
୨୪ ବିଶୁଦ୍ଧ ସତ୍ତ୍ୱ ଯା' ଆକାର । ଯା' ମେଧା ହରଇ ସଂସାର ॥ ୮୭
ସର୍ବ ସାତ୍ୱତମାନଙ୍କର । ଯେ ପ୍ରଭୁ ଅଟନ୍ତି ଈଶ୍ୱର ॥ ୮୮
ଯେ ବାସୁଦେବ କୃଷ୍ଣନାମ । ତାହାଙ୍କୁ ମୋହର ପ୍ରଣାମ ॥ ୮୯
୨୫ କମଳପ୍ରାୟ ନାଭି ଯାର । କମଳମାଳା ଯାର ଉର ॥ ୯୦
ଯା' ପାଦ, ନେତ୍ର ପଦ୍ମସମ । ତାହାଙ୍କୁ କରୁଛି ପ୍ରଣାମ ॥ ୯୧
୨୬ କମଳକେଶର ସମାନ । ପୀତ, ଅମଳ ଯା' ବସନ ॥ ୯୨
ଯେ ସାକ୍ଷୀ ସର୍ବଭୂତସ୍ଥିତି । ତାହାଙ୍କୁ କରୁଛି ମୁଁ ନତି ॥ ୯୩
୨୭ ପ୍ରାଣୀମାନଙ୍କ ସର୍ବ କ୍ଳେଶ । ଯାହା ସକାଶୁ ହୋଏ ନାଶ ॥ ୯୪
ଏରୂପ ତୁମ୍ଭେ ଭଗବାନ । ଆମ୍ଭଙ୍କୁ କଲ ପ୍ରକାଶନ ॥ ୯୫
ଆମ୍ଭେ ଯେ କ୍ଳେଶବନ୍ତ ଲୋକ । ଏଥୁଁ କରୁଣା କି ଅଧିକ ॥ ୯୬
୨୮ ହେ ପ୍ରଭୋ ! ଅଭଦ୍ରନାଶନ ! । ଦୀନ ଅଟନ୍ତି ଯେଉଁ ଜନ ॥ ୯୭
ବତ୍ସଳ ସେମାନଙ୍କ ଠାରେ । ଯେତେକ ପ୍ରଭୁ ଏ ସଂସାରେ ॥ ୯୮
ଏତେକ କରିବେ ସେମାନେ । ଏ ମୋର ବୋଲି ନିଜ ମନେ ॥ ୯୯
ଉଚିତ କାଳରେ ସ୍ମରଣ । କରନ୍ତି ଯାହା ତାଙ୍କୁ ପୁଣ ॥୧୦୦
୨୯ ଯେଉଁ ସ୍ମରଣେ ପ୍ରାଣୀଙ୍କର । ଶାନ୍ତି ହୁଅଇ ନିରନ୍ତର ॥୧୦୧
ଯେ କ୍ଷୁଦ୍ର ଜୀବ ଜଗତରେ । ସେମାନଙ୍କର ହିଁ ହୃଦରେ ॥୧୦୨
ଅନ୍ତରଯାମୀରୂପେ ସ୍ଥିତ । ଜାଣ ତାହାଙ୍କର ଚେଷ୍ଟିତ ॥୧୦୩
ଆମ୍ଭେ ଯେ ସେବକ ତୁମ୍ଭର । ମଙ୍ଗଳ କଥାକୁ ଆମ୍ଭର ॥୧୦୪
ତୁମ୍ଭେ ନ ଜାଣିମ କିପାଇଁ । ଏ ରୂପେ ଅନ୍ତର୍ଯାମୀ ହୋଇ ॥୧୦୫

୩୦ ହେ ପ୍ରଭୋ ! ଜଗତ-ଈଶ୍ୱର । ଆମ୍ଭର ବାଞ୍ଛିତ ଏ ବର ।।୧୦୬
ମୋକ୍ଷଦାୟକ ଭଗବାନ । ତୁମ୍ଭେ ଯାହାକୁ ସୁପ୍ରସନ୍ନ ।।୧୦୭
୩୧ ତୁମ୍ଭେ କାରଣରୁ ହିଁ ପର । ମାଗୁଛୁଁ ତୁମ୍ଭ ଠାରୁ ବର ।।୧୦୮
ତୁମ୍ଭର ଦେୟ ହୋଇ ଯେତେ । ବିଭୂତି ଅଛନ୍ତି ଜଗତେ ।।୧୦୯
ଯେଣୁ ତାଙ୍କର ନାହିଁ ଅନ୍ତ । ସେ ତୁମ୍ଭେ ସେ ଘେନି ଅନନ୍ତ ।।୧୧୦
୩୨ ପାରିଜାତକୁ ଯେବେ ପାଇ । ଭ୍ରମର ଆନକୁ ନ ଯାଇ ।।୧୧୧
ହେ ନାଥ ! ତୁମ୍ଭ ପାଦମୂଳ । ନେତ୍ରପଥରେ ତତକାଳ ।।୧୧୨
ପାଇ ବା ଆନ କି କି ବର । ଲଭିବୁଁ ଯେ ଅଟେ ଅସାର ।।୧୧୩
୩୩ ଯାବତକାଳ ତୋ' ମାୟାରେ । ବ୍ୟାପ୍ତ ହୋଇଣ ଏ ସଂସାରେ ।।୧୧୪
ଭ୍ରମିବୁ କର୍ମମାନଙ୍କରେ । ତାବତ ଜନ୍ମ ଜନମରେ ।।୧୧୫
ତୁମ୍ଭର ସଙ୍ଗିଜନଙ୍କର । ସଙ୍ଗମ ହୋଇବ ଆମ୍ଭର ।।୧୧୬
୩୪ ହରିଭଗତ ଜନସଙ୍ଗ- । ଲେଶକୁ ସମ ନୋହେ ସ୍ୱର୍ଗ ।।୧୧୭
ମୋକ୍ଷକୁ ନ କରୁଁ ସମାନ । ଯେ ବା ପ୍ରାଣୀଙ୍କ ଶିରୀମାନ ।।୧୧୮
ସେମାନେ ହୋଇବେ ସମାନ । କେ ବା କହିବ ଏ ବଚନ ।।୧୧୯
୩୫ ଯହିଁରେ ମୃଷ୍ଟ[୧] କଥାମାନ । ସ୍ତୁତ ହୁଅନ୍ତି ଅନୁଦିନ ।।୧୨୦
ଯହିଁରେ ତୃଷ୍ଣା ନାଶ ହୋଇ । ପ୍ରାଣୀଙ୍କ ଠାରେ ବୈର ନାହିଁ ।।୧୨୧
ଯେବଣ ବୈଷ୍ଣବଙ୍କ ଠାଇଁ । କେହୁଣି ଉଦବେଗ ନାହିଁ ।।୧୨୨
୩୬ } ସନ୍ନ୍ୟାସୀମାନଙ୍କର ଗତି । ଯହିଁ ସାକ୍ଷାତ ରମାପତି ।।୧୨୩
୩୭ } ଉତ୍ତମ କଥାପ୍ରସଙ୍ଗରେ । ସ୍ତୁତ ହୁଅନ୍ତି ନିରନ୍ତରେ ।।୧୨୪
ତୀର୍ଥଙ୍କ ପାବନ-ଇଚ୍ଛାରେ । ଭ୍ରମନ୍ତି ଯେ ନିଜ ପାଦରେ ।।୧୨୫
ସେ ତୁମ୍ଭ ଭଗତ ଉତ୍ତମ । ସେମାନଙ୍କର ସମାଗମ ।।୧୨୬
କି ସେ ଲୋକକୁ ନ ରୁଚଇ । ଯେ ଭବୁଁ ଭୟ ପାଇଥାଇ ।।୧୨୭
୩୮ ହେ ଭଗବାନ ! ଯେ ତୁମ୍ଭର । ପ୍ରିୟ ସୁହୃଦ ମହେଶ୍ୱର ।।୧୨୮
କ୍ଷଣସଂଗମେ ତାହାଙ୍କର । ଅସାଧ୍ୟ ଯେ ମୃତ୍ୟୁ ସଂସାର ।।୧୨୯
ତହିଁ ଉତ୍ତମ ବୈଦ୍ୟ ତୁମ୍ଭେ । ତୁମ୍ଭଙ୍କୁ ଗତି କରି ଆମ୍ଭେ ।।୧୩୦
ଲଭିଲୁ ଆଜ ହେ ଈଶ୍ୱର । ଶୁଣ ବରିବୁଁ ଯେଉଁ ବର ।।୧୩୧
୩୯ ଯାହାଙ୍କ ଠାରୁ ଅଧ୍ୟୟନ । କରିଛୁଁ ସେହି ଗୁରୁଜନ ।।୧୩୨
ତାଙ୍କୁ କରାଇଲୁ ପ୍ରସନ୍ନ । ଯେ ପୁଣ ବିପ୍ର ବୃଦ୍ଧ ଜନ ।।୧୩୩

---

୧. ମୃଷ୍ଟ = ଶୁଦ୍ଧ ।

ତାହାଙ୍କୁ ସକଳ କାଳରେ । ତୋଷିଲୁ ଅନୁବୃତ୍ତିଦ୍ୱାରେ ॥୧୩୪
ଯେ ବା ଅଟନ୍ତି ଆର୍ଯ୍ୟ ଜନ । ତାହାଙ୍କୁ କଲୁ ଯା' ବନ୍ଦନ ॥୧୩୫
ଯେ ବା ସୁହୃଦ, ଭ୍ରାତାମାନେ । ସକଳଭୂତ ଏ ଭୁବନେ ॥୧୩୬
ତାଙ୍କୁ ଅସୂୟା ପରିହରି । ଯାହା ସନ୍ତୋଷ ଅଛୁଁ କରି ॥୧୩୭
୪୦ ବହୁତ କାଳ ହେ ଈଶ୍ୱର ! । ଅନ୍ନଭୋଜନ କରି ଦୂର ॥୧୩୮
ସୁତପ କଲୁଁ ସଲିଳରେ । ତୁମ୍ଭ ସଂତୋଷ ନିମିତ୍ତରେ ॥୧୩୯
ସେ ସର୍ବ ହେଉ, ଏହି ବର । ବରୁଛୁଁ ଅନୁଗ୍ରହ କର ॥୧୪୦
୪୧ } ମନୁ, ସ୍ୱୟଂଭୂ, ଭଗବାନ । ଶଙ୍କର, ଯେ ବା ଏଥୁଁ ଆନ ॥୧୪୧
୪୨ } ତପସ୍ୟା, ଜ୍ଞାନ ମହିମାରେ । ବିଶୁଦ୍ଧସତ୍ତ୍ୱ ଜଗତରେ ॥୧୪୨
ସେମାନେ ଯାହା ମହିମାର । ପାରକୁ ନ କଲେ ଗୋଚର ॥୧୪୩
ଆପଣା ବୁଦ୍ଧି ଅନୁସାରେ । ସ୍ତୁତି କରନ୍ତି ସେ ପ୍ରକାରେ ॥୧୪୪
ତୁମ୍ଭଙ୍କୁ କରୁଅଛୁଁ ସ୍ତୁତି । ଯେତେ ଆମ୍ଭର ନିଜ ମତି ॥୧୪୫
ଯେ ବାସୁଦେବ ସର୍ବସମ । ବିଶୁଦ୍ଧ ପୁରୁଷ ଉତ୍ତମ ॥୧୪୬
ସତ୍ତ୍ୱସ୍ୱରୂପ ଭଗବାନ । ତୁମ୍ଭଙ୍କୁ କରୁଛୁ ବନ୍ଦନ ॥୧୪୭

ଶ୍ରୀମୈତ୍ରେୟ ଉବାଚ

୪୩ ଏ ରୂପେ ପ୍ରଚେତାଏ ସ୍ତୁତି । କରନ୍ତେ ହୋଇ ତୋଷମତି ॥୧୪୮
ଶରଣ୍ୟବତ୍ସଳ ଶ୍ରୀଧର । ସେ ରୂପେ କଲେ ତା' ସ୍ୱୀକାର ॥୧୪୯
ହରିଙ୍କ ଗମନ ସେମାନେ । ଇଚ୍ଛା ନ କରୁଛନ୍ତି ମନେ ॥୧୫୦
ତାହାଙ୍କ ଶ୍ରୀମୂର୍ତ୍ତିକି ଚାହିଁ । ନେତ୍ର ହିଁ ତୃପ୍ତ ହୋଇ ନାହିଁ ॥୧୫୧
ଅକୁଣ୍ଠବୀର୍ଯ୍ୟ ଭଗବାନ । କଲେ ସ୍ୱସ୍ଥାନକୁ ଗମନ ॥୧୫୨
୪୪ ଏଥୁ ଉତ୍ତାରୁ ଜଳଧିର । ସଲିଳୁ ହୋଇଲେ ବାହାର ॥୧୫୩
ରୁନ୍ଧିବା ପ୍ରାୟେ ସ୍ୱର୍ଗସ୍ଥାନ । ଯେ ବେଢ଼ିଛନ୍ତି[1] ବୃକ୍ଷମାନ ॥୧୫୪
ତେଣେ ଆଚ୍ଛନ୍ନ ହେଲା ମହୀ । ପ୍ରଚେତାମାନେ ତାହା ଚାହିଁ ॥୧୫୫
ଯେତେ ପୃଥ୍ୱୀରେ ବୃକ୍ଷ ଥିଲେ । ତାହାଙ୍କୁ ଅତି କୋପ କଲେ ॥୧୫୬
୪୫ ଲତାମାତ୍ର ହିଁ ଥିବ ନାହିଁ । ଏମନ୍ତ କରିବାକୁ ମହୀ ॥୧୫୭
ତଦନ୍ତେ ଅନଳ, ମାରୁତ । ରୋଷେ ମୁଖରୁ କଲେ ଜାତ ॥୧୫୮
କାଳାଗ୍ନିରୁଦ୍ର ପ୍ରଳୟରେ । କରଇ ଯେମନ୍ତ ପ୍ରକାରେ ॥୧୫୯

---

୧. ବଢ଼ିଛନ୍ତି ।

୪୬ ଭସ୍ମ କରନ୍ତେ ବୃକ୍ଷମାନ । ତା' ଦେଖି ଚତୁର-ଆନନ ॥୧୬୦
ପ୍ରବେଶ ହୋଇଲେ ସେଠାରେ । ଯେ ବର୍ହିଷ୍ମନ୍ତର କୁମରେ ॥୧୬୧
ଦ୍ରୁମମାନଙ୍କୁ ଦହୁଥିଲେ । ତାଙ୍କୁ ନୀତିରେ ଶାନ୍ତ କଲେ ॥୧୬୨
୪୭ ଦହନୁଁ ଅବଶେଷ ହୋଇ । ଯେତେକ ବୃକ୍ଷ ଥିଲେ ତହିଁ ॥୧୬୩
ବ୍ରହ୍ମାବଚନେ ପ୍ରଚେତାଙ୍କୁ । ଭୟେ ସେ ଦେଲେ ଦୁହିତାକୁ ॥୧୬୪
୪୮ ମାରିଷା ନାମ ଅଟେ ତାର । ସେମାନେ ଆଜ୍ଞାରୁ ବ୍ରହ୍ମାର ॥୧୬୫
ଦୋଷବିଚାର ଦୂର କଲେ । ସମସ୍ତେ ତାକୁ ବିଭା ହେଲେ ॥୧୬୬
ଯେ ପୂର୍ବେ ଦକ୍ଷ ପ୍ରଜାପତି । ବ୍ରହ୍ମାଙ୍କ ଠାରୁ ଉତପତ୍ତି ॥୧୬୭
ସେ ମହାଦେବଙ୍କ ନିନ୍ଦାରୁ । *ଜାତ ହୋଇଲା ଯାହାଠାରୁ ॥୧୬୮
୪୯ ଚାକ୍ଷୁଷ ହୋଇ ନାମ ଯାର । ମିଳନ୍ତେ ସେହୁ ମନ୍ୱନ୍ତର ॥୧୬୯
ପୂର୍ବ ଶରୀର କାଳବଶ । ହୋଇଣ ଲଭନ୍ତେ ବିନାଶ ॥୧୭୦
ଈଶ୍ୱରେ ହୋଇ ନିଯୋଜନ । ଯେ କଲା ଇଷ୍ଟ ପ୍ରଜାମାନ ॥୧୭୧
ତାହାର ନାମ ଦକ୍ଷ ହୋଇ । ଜଗତେ ପ୍ରସିଦ୍ଧ ଅଟଇ ॥୧୭୨
୫୦ ସର୍ବ ତେଜସ୍ୱୀମାନଙ୍କର । ତେଜକୁ ତେଜେ ଆପଣାର ॥୧୭୩
ଜନମ ହୁଅନ୍ତେ ଯେ ନେଲା । କର୍ମରେ ଦକ୍ଷଭାବ କଲା ॥୧୭୪
ତେଣୁ ତାହାକୁ ସର୍ବଜନେ । ଦକ୍ଷ ବୋଲନ୍ତି ଏ ଭୁବନେ ॥୧୭୫
୫୧ ରକ୍ଷା ପାଇବ ପ୍ରଜା ସୃଷ୍ଟି । ଏଥି ନିମିତ୍ତେ ପରମେଷ୍ଠୀ ॥୧୭୬
ତାହାଙ୍କୁ ଅଭିଷେକ କରି । ନିଯୁକ୍ତ କଲେ ସେ ବିଚାରି ॥୧୭୭
ଯେ ଆନ ପ୍ରଜାପତି ଥିଲେ । ତାଙ୍କୁ ସେ ଦକ୍ଷ ନିଯୋଜିଲେ ॥୧୭୮
ଶ୍ରୀକୃଷ୍ଣଚରଣ ନଳିନ । ଚିନ୍ତା କରିଣ ଅନୁଦିନ ॥୧୭୯
ସାଧୁମାନଙ୍କ ସୁଖପାଇଁ । ଦେଶଭାଷାରେ ଏହା ଗାଇ ॥୧୮୦
ତରିବ ବୋଲି ଭବସିନ୍ଧୁ । କହଇ ଦ୍ୱିଜ ଦୀନବନ୍ଧୁ ॥୧୮୧

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପ୍ରଚେତସାଂ ଚରିତ୍ରଂ ନାମ ତ୍ରିଂଶୋଽଧ୍ୟାୟଃ ॥

---

* ଶିବନିନ୍ଦା ହେତୁ ଦକ୍ଷ ପ୍ରଜାପତି ବ୍ରହ୍ମପୁତ୍ର ହୋଇ ମଧ୍ୟ କ୍ଷତ୍ରିୟା ମାରିଷାଠାରୁ ଜାତ ହେଲେ ।

## ଏକତ୍ରିଂଶୋଽଧ୍ୟାୟଃ

ଏକତ୍ରିଂଶେ ସୁତେ ଦକ୍ଷେ ଧୁରଂ ନ୍ୟସ୍ୟ ବନେ ସତାଂ ।
ନାରଦୋକ୍ତେନ ମାର୍ଗେଣ ମୁକ୍ତିରୁକ୍ତା ପ୍ରଚେତସାମ୍ ॥ ୧ ॥

ଦକ୍ଷଙ୍କ ଠାରେ ଭାର ଦେଇ । ବନେ ପଶନ୍ତେ ଦଶ ଭାଇ ॥ ୧
ନାରଦ ମୁନି-ଉପଦେଶେ । ମୁକ୍ତି ଲଭିଲେ ଏକତ୍ରିଂଶେ ॥ ୨

ଶ୍ରୀମୈତ୍ରେୟ ଉବାଚ

୧ ତଦନ୍ତେ ସେ ପ୍ରଚେତାମାନେ । ସ୍ମରନ୍ତେ ବିଷ୍ଣୁବାକ୍ୟ ମନେ ॥ ୩
ଭାର୍ଯ୍ୟାକୁ ପୁତ୍ରଠାରେ ଦେଇ । ବନକୁ ଗଲେ ଯତି ହୋଇ ॥ ୪
୨ ସକଳ ଭୂତେ ଆତ୍ମ-ଜ୍ଞାନ । ଯହିଁରେ ହୁଅଇ ଉତ୍ପନ୍ନ ॥ ୫
ସେ ବ୍ରହ୍ମସତ୍ରେ ଦୀକ୍ଷା କଲେ । ପଶ୍ଚିମ ଦିଗରେ ମିଳିଲେ ॥ ୬
ଯହିଁ ଜାଜଳି ସିନ୍ଧୁତୀରେ । ସେ ସିଦ୍ଧ ହୋଇଲେ ପୂର୍ବରେ ॥ ୭
୩ ସେ ପ୍ରାଣ, ବଚନ, ମନକୁ । ଜିଣିଲେ ନେତ୍ର, ଆସନକୁ ॥ ୮
ମୂଳ ଆଧାରୁ ଯାହାଙ୍କର । ଋଜୁ, ପ୍ରଶାନ୍ତ କଳେବର ॥ ୯
ପର, ଅମଳ ବ୍ରହ୍ମେ ମନ । ଯେ କରିଛନ୍ତି ନିଯୋଜନ ॥ ୧୦
ସେ ପ୍ରଚେତାଙ୍କୁ ଦେବଋଷି । ଦେଖିଲେ ସେ ସ୍ଥାନରେ ଆସି ॥ ୧୧
ଯେଉଁ ଋଷିଙ୍କି ସୁରାସୁରେ । ସ୍ତୁତି କରନ୍ତି ନିରନ୍ତରେ ॥ ୧୨
୪ ଉଠି ତାହାଙ୍କୁ ପ୍ରଣିପାତ । କରି ସେ ହୋଇଣ ପ୍ରଣତ ॥ ୧୩
ଯଥାବିଧିରେ ପୂଜା କଲେ । ସୁଖେ ବସନ୍ତେ ପଚାରିଲେ ॥ ୧୪

ଶ୍ରୀପ୍ରଚେତସ ଊଚୁଃ

୫ ହେ ସୁରଋଷି ! ଆଗମନ । ତୁମ୍ଭର ଅଟେ କି ଶୋଭନ ॥ ୧୫
ଭାଗ୍ୟରୁ ଆମ୍ଭମାନଙ୍କର । ହୋଇଲ ନୟନଗୋଚର ॥ ୧୬
ହେ ବିପ୍ର ! ତୁମ୍ଭର ଭ୍ରମଣ । ପ୍ରାଣୀଙ୍କ ଅଭୟକାରଣ ॥ ୧୭
ରବିର ଭ୍ରମଣେ ଯେସନ । ନିର୍ଭୟ ହୋଏ ସର୍ବଜନ ॥ ୧୮
୬ ଯାହା ଶଙ୍କର ଆଜ୍ଞା ଦେଲେ । ଯା' ଅଧୋକ୍ଷଜ ଭଣିଥିଲେ ॥ ୧୯
ହେ ପ୍ରଭୁ ! ଗୃହେ ଆସକତ । ହୁଅନ୍ତେ ହେଲା ସେ ବିସ୍ମୃତ ॥ ୨୦
୭ ଯହିଁ ତତ୍ତ୍ୱାର୍ଥ ଦରଶନ । ଆମ୍ଭଙ୍କୁ ସେ ଅଧ୍ୟାତ୍ମ ଜ୍ଞାନ ॥ ୨୧
ପ୍ରକାଶ କର ମୁନିବର ! । ଦୁସ୍ତର ଯେ ଭବସାଗର ॥ ୨୨
ତାହାକୁ ଯେଉଁ ଜ୍ଞାନବଳେ । ତରିବୁ ଆମ୍ଭେମାନେ ହେଳେ ॥ ୨୩

### ଶ୍ରୀମୈତ୍ରେୟ ଉବାଚ

୮ ପ୍ରଚେତାମାନେ ଏ ପ୍ରକାରେ । ପୁଛନ୍ତେ ନାରଦ ସେଠାରେ ॥ ୨୪
କୃଷ୍ଣେ ନିବେଶି ନିଜ ମନ । ତାହାଙ୍କୁ କହିଲେ ବଚନ ॥ ୨୫

### ଶ୍ରୀନାରଦ ଉବାଚ

୯ ଆତ୍ମା ସକଳ ଜଗତର । ଯେ ହରି ଅଟନ୍ତି ଈଶ୍ୱର ॥ ୨୬
ଯେଣେ ତାହାଙ୍କୁ ସେବେ ପ୍ରାଣୀ । ତାକୁ ଜନମ ବୋଲି ଜାଣି ॥ ୨୭
କର୍ମହିଁ ଅଟନ୍ତି ସେମାନ । ଯେଣେ ସେବଇ ଭଗବାନ ॥ ୨୮
ସେହି ସେ ଅଟଇ ଆୟୁଷ । ଯେଣେ ତୋଷଇ ପୀତବାସ ॥ ୨୯
ଯାହା ଶ୍ରୀକୃଷ୍ଣଠାରେ ଦେଇ । ମନ ବଚନ ଅଟେ ସେହି ॥ ୩୦
୧୦ ଯେ ଶୁଦ୍ଧ ମାତା ଠାଉଁ । ଶୁକ୍ର ସମ୍ବନ୍ଧି ଜନ୍ମ ସେହୁ ॥ ୩୧
ସାବିତ୍ରୀ ଗ୍ରହଣୁଁ ଯେ ଜାତ । ସାବିତ୍ରୀ ନାମେ ସେ ବିଦିତ ॥ ୩୨
ଯଜ୍ଞ ଦୀକ୍ଷାରେ ଯେ ହୁଅଇ । ଯାଜ୍ଞିକ ଜନ୍ମ ସେ ବୋଲାଇ ॥ ୩୩
ଏ ତିନି ଜନ୍ମେ ପୁରୁଷର । କି ପ୍ରୟୋଜନ ଅଛି ଆର ॥ ୩୪
ବେଦରେ ଯାହା ଅଛି ଧରି । କି କାର୍ଯ୍ୟ ସେ କର୍ମ ଆଚରି ॥ ୩୫
ଦେବତାମାନଙ୍କର ପ୍ରାଏ । ଚିର ଆୟୁଷ କିବା ହୋଏ ॥ ୩୬
୧୧ କି କାର୍ଯ୍ୟ ଶାସ୍ତ୍ର, ତପସ୍ୟାରେ । କିବା ବଚନଚାତୁରୀରେ ॥ ୩୭
ଯେ ଚିତ୍ତ ନାନା-ଅବଧାନ । ତେଣେ କି ଅବା ପ୍ରୟୋଜନ ॥ ୩୮
କି କାର୍ଯ୍ୟ ନିପୁଣ ବୁଦ୍ଧିରେ । ବଳ, ଇନ୍ଦ୍ରିୟ-ପାଟବରେ ॥ ୩୯
୧୨ ଅଷ୍ଟାଙ୍ଗ ଯୋଗ, ସାଂଖ୍ୟଜ୍ଞାନ । ସନ୍ନ୍ୟାସ, ବେଦ-ଅଧ୍ୟୟନ ॥ ୪୦
ଯେବା ଇତର ବ୍ରତ ଆଦି । ମଙ୍ଗଳ ସାଧନ ପ୍ରସିଦ୍ଧି ॥ ୪୧
ତେଣେ କି ଅବା ପ୍ରୟୋଜନ । ଯହିଁ ନାହାନ୍ତି ଭଗବାନ ॥ ୪୨
ଯେ ହରି ଭଜିଲା ଲୋକକୁ । ଦିଅନ୍ତି ଆପଣା ଆତ୍ମାକୁ ॥ ୪୩
୧୩ ସକଳ ଫଳମାନଙ୍କର । ଆତ୍ମା ଅଟେ ଅବଧି ପର ॥ ୪୪
ସକଳ ଭୂତମାନଙ୍କରି । ଅଟନ୍ତି ପ୍ରିୟ ଆତ୍ମା ହରି ॥ ୪୫
ଯେ ହରି ଅବିଦ୍ୟା ବିନାଶି । ଭକ୍ତଙ୍କୁ ସ୍ୱରୂପ ପ୍ରକାଶି ॥ ୪୬
୧୪ ତରୁର ମୂଳକୁ ସେଚନ । କରନ୍ତେ ତାହାର ଯେସନ ॥ ୪୭
ତୃପ୍ତ ହୁଅନ୍ତି ସ୍କନ୍ଧମାନେ । ଯେ ଭୁଜ, ଉପଶାଖା ଆନେ ॥ ୪୮

ଯେହ୍ନେ ଭୋଜନେ ଉତପତି । ଇନ୍ଦ୍ରିୟମାନଙ୍କ ତୃପତି ॥ ୪୯
ସେ ରୂପେ ଅଚ୍ୟୁତ ପୂଜନ । ସର୍ବ ଦେବତା ଆରାଧନ ॥ ୫୦
୧୫ ସୂର୍ଯ୍ୟରୁ ସଲିଳ ଯେମନ୍ତ । ବରଷାକାଳେ ହୋନ୍ତି ଜାତ ॥ ୫୧
ଗ୍ରୀଷ୍ମକାଳରେ ପୁଣ ତହିଁ । ପ୍ରବେଶ ହୁଅନ୍ତି ସେ ଯାଇଁ ॥ ୫୨
ସ୍ଥିର ଜଙ୍ଗମ ଭୂତମାନେ । ଭୂମିରୁ ସମ୍ଭବି ଯେସନେ ॥ ୫୩
ଲୀନ ହୁଅନ୍ତି ସେ ଭୂମିରେ । ଭବ ପ୍ରବାହ ସେ ପ୍ରକାରେ ॥ ୫୪
ହରିର ଠାରୁ ଜାତ ହୋଇ । ପ୍ରାନ୍ତେ ସେ ହରିରେ ମିଶଇ ॥ ୫୫
୧୬ *ଏ ବିଶ୍ୱ ବିଷ୍ଣୁଙ୍କର ପଦ । ଯେ ସର୍ବ ଶାସ୍ତ୍ରରେ ପ୍ରସିଦ୍ଧ ॥
ସମସ୍ତ ଉପାଧିରହିତ । ଯେଣୁ ଏ ତାଙ୍କଠାରୁ ଜାତ ॥
ଗନ୍ଧର୍ବ ନଗର ଯେମନ୍ତ । କଦାଚ ସ୍ଫୁରଇ ତେମନ୍ତ ॥
ସୂର୍ଯ୍ୟଙ୍କ କିରଣ ଯେସନ । ନୁହଇ ତାଙ୍କଠାରୁ ଭିନ୍ନ ॥
ଜାଗ୍ରତ ଅବସ୍ଥାରେ ପୁଣ । ଇନ୍ଦ୍ରିୟେ ହୁଅନ୍ତି ସ୍ଫୁରଣ ॥
ସୁପ୍ତ ଶକତି ସୁଷୁପ୍ତିରେ । ଯେହ୍ନେ ସ୍ଫୁରିତ, ସେ ପ୍ରକାରେ ॥
ଦ୍ରବ୍ୟ-କ୍ରିୟା-ଜ୍ଞାନ ରୂପରେ । ଯେ ଭେଦ ଅଛଇ ସଂସାରେ ॥
ତ୍ରିବିଧ ଅହଂକାର ପୁଣ । କାରଣ ତାର ନୃପଗଣ ॥
ସେ ଭେଦଭ୍ରମର ବିନାଶ । କରନ୍ତି ପ୍ରଭୁ ହୃଷୀକେଶ ॥
୧୭ ଆକାଶେ ମେଘ-ଅନ୍ଧକାର । ସୂର୍ଯ୍ୟାଦି ପ୍ରକାଶ ଯେ ଆର ॥ ୫୬
ଅନୁକ୍ରମରେ ସେ ଯେସନ । ସମ୍ଭବି ହୁଅନ୍ତି ନିଧନ ॥ ୫୭
ତ୍ରିଗୁଣ ଶକ୍ତି ସେ ପ୍ରକାରେ । ସମ୍ଭବେ ଭବସ୍ୱରୂପରେ ॥ ୫୮
ହେ ନୃପେ ! ସେ ବ୍ରହ୍ମରେ ଯାଇ । ଅନ୍ତ କାଳରେ ସେ ମିଳଇ ॥ ୫୯
୧୮ ସକଳ କାରଣ ସେ ଯେଣୁ । ଆତ୍ମାର ଏକ ଭାବେ ତେଣୁ ॥ ୬୦
ଭଜ ସେ ହରିଙ୍କି ସାକ୍ଷାତ । ଯେ ଏକ ଆତ୍ମା ସର୍ବମତ ॥ ୬୧
ଯେ କାଳ, ପ୍ରଧାନ, ପୁରୁଷ । ଏ ଘେନି ଅଟନ୍ତି ପରେଶ ॥ ୬୨
ଭବପ୍ରବାହ ନିବାରଣ । କଲେ ଯେ ନିଜ ତେଜେ ପୁଣ ॥ ୬୩

---

* ଏହି ଶ୍ଳୋକ ଭଗବତର ବିଶୁଦ୍ଧ ସଂସ୍କରଣମାନଙ୍କରେ ଥିବା ହେତୁ ଏବଂ ଏହା ଉପରେ ଶ୍ରୀଧର ସ୍ୱାମୀଙ୍କ ଟୀକା ଥିବା ହେତୁ ଏହାକୁ ମୌଳିକ ଧରାଗଲା ଏବଂ ଖାଡ଼ଙ୍ଗା ମହାଶୟ ଏହାର ଅନୁବାଦ କରି ନ ଥିବାରୁ ସ୍ୱାମୀ ଟୀକା ଓ ମୂଳ ପାଠାନୁସାରେ ଏହାର ଅନୁବାଦ ଦିଆଗଲା ।

୧୯ ସର୍ବଭୂତରେ ଦୟା ଥିବ । ସନ୍ତୋଷ ଯେଣେ କେଣେ ହେବା। ୬୪
ଯେତେ ଇନ୍ଦ୍ରିୟମାନେ ଛନ୍ତି । ତାହାଙ୍କୁ ଭଜାଇବ ଶାନ୍ତି ।। ୬୫
ଏତେ କଥାରେ ଜନାର୍ଦ୍ଦନ । ସନ୍ତୋଷ ହୁଅନ୍ତି ବହନ ।। ୬୬
୨୦ ତହିଁ ସକଳ କାମ ନାହିଁ । ଏ ଘେନି ଅମଳ ଅଟଇ ।। ୬୭
ଏମନ୍ତ ମନେ ସାଧୁଙ୍କର । ଭାବନାବଳୁଁ ନିରନ୍ତର ।। ୬୮
ପ୍ରବେଶ ହୋଇ ଭଗବାନ । ଯେସନେ ନିଶ୍ଚଳ ଗଗନ ।। ୬୯
ସେ ରୂପେ ବାହାର ନୁହନ୍ତି । ଭକ୍ତବଶତ୍ୱକୁ ଜାଣନ୍ତି ।। ୭୦
୨୧ ଏ ଘେନି ଶାସ୍ତ୍ର, କୁଳ, ବିତ୍ତ । କର୍ମଗର୍ବରେ ହୋଇ ମତ୍ତ ।। ୭୧
ମହତ ଅକିଞ୍ଚନ ଠାରେ । ପରାଭବକୁ ଯେ ବିସ୍ତାରେ ।। ୭୨
ସେ ମନ୍ଦମତି ଲୋକଙ୍କର । ପୂଜାକୁ ନ ଭଜେ ଶ୍ରୀଧର ।। ୭୩
ଯେବଣ ଲୋକେ ଅକିଞ୍ଚନ । ହରିଙ୍କି କରିଥାନ୍ତି ଧନ ।। ୭୪
ସେ ହରି ପ୍ରିୟ ତାହାଙ୍କର । ଜାଣନ୍ତି ଭକ୍ତିସୁଖ ସାର ।। ୭୫
୨୨ ଯେ ଲକ୍ଷ୍ମୀ ଅନୁବର୍ତ୍ତି ଥାଇ । ତାର ନିମିତ୍ତେ ଅର୍ଥୀ ହୋଇ ।। ୭୬
ଥାନ୍ତି ଯେ ନରପତିମାନେ । ଯେବା ଦେବତାମାନ ଆନେ ।। ୭୭
ତାହାଙ୍କୁ ଯେହୁ ନ ଭଜନ୍ତି । ଯେଣୁ ସେ ସ୍ୱପୂର୍ଣ୍ଣ ଅଟନ୍ତି ।। ୭୮
ଯେ ଅଟେ ନିଜ ଭୃତ୍ୟଗଣ । ତାଙ୍କ ଅଧୀନ ଯେହୁ ପୁଣ ।। ୭୯
ତାହାଙ୍କୁ କେମନ୍ତେ ଛାଡ଼ିବ । କୃତଘ୍ନ ଯେ ବା ହୋଇଥିବ ।। ୮୦

ଶ୍ରୀମୈତ୍ରେୟ ଉବାଚ

୨୩ ହେ ନୃପ ! ପ୍ରଚେତାମାନଙ୍କୁ । ଏ ରୂପେ ବିଷ୍ଣୁର କଥାକୁ ।। ୮୧
ଶୁଣାଇ ବ୍ରହ୍ମାର ନନ୍ଦନ । ପ୍ରସଙ୍ଗେ ଆନ କଥାମାନ ।। ୮୨
ଶ୍ରବଣ କରାଇ ତକ୍ଷଣ । ବ୍ରହ୍ମଲୋକକୁ ଗଲେ ପୁଣ ।। ୮୩
୨୪ ଲୋକର ପାପ କରେ ନାଶ । ଏମନ୍ତ ଯେଉଁ ହରିଯଶ ।। ୮୪
ନାରଦମୁଖୁଁ ବିଗଳିତ । ଶୁଣିଣ ତାହା ସେ ପ୍ରଚେତ ।। ୮୫
କରନ୍ତେ ହରିପାଦ ଧ୍ୟାନ । କଲେ ତା' ପଦକୁ ଗମନ ।। ୮୬
୨୫ ଯାହା ତୁ ପଚାରିଲୁ ମୋତେ । ବିଦୁର ! କହିଲି ତା' ତୋତେ ।। ୮୭
ପ୍ରଚେତାଙ୍କର ନାରଦର । ସଂବାଦ କୀର୍ତ୍ତନ ହରିର ।। ୮୮

ଶ୍ରୀଶୁକ ଉବାଚ

୨୬ ମନୁର ପୁତ୍ର ଯେ ଅଟନ୍ତି । ଉତ୍ତାନପାଦ ନରପତି ॥ ୮୯
ଏ ବଂଶ ଅଟଇ ତାହାର । ଯାହା ବର୍ଣ୍ଣିଲି ତୋ' ଆଗର ॥ ୯୦
ପ୍ରିୟବ୍ରତର ବଂଶ ପୁଣ । ହେ ନୃପଶ୍ରେଷ୍ଠ ! ଏବେ ଶୁଣ ॥ ୯୧
୨୭ ନାରଦଠାରୁ ଆତ୍ମଜ୍ଞାନ । ଲଭିଣ ଯେବଣ ରାଜନ ॥ ୯୨
ପୁଣି ଭୂମିକି କରି ଭୋଗ । ପୁତ୍ରଙ୍କୁ କରିଣ ବିଭାଗ ॥ ୯୩
ଈଶ୍ୱରସଂବନ୍ଧି ଯେ ସ୍ଥାନ । ତହିଁକି ଗଲେ ସେ ରାଜନ ॥ ୯୪
୨୮ ମୈତ୍ରେୟ ବର୍ଣ୍ଣିଲେ ଯାହାକୁ । ଅଜିତଚରଣ[୧] କଥାକୁ ॥ ୯୫
ଏକଥା ଶୁଣିଣ ବିଦୁର । ବଢ଼ିଲା ଯେଉଁ ଭାବ ତାର ॥ ୯୬
ତହୁଁ ଯେ ଅଶ୍ରୁକଳା ଜାତ । ତେଣେ ସେ ହୋଇଲା ପୂରିତ ॥ ୯୭
ମସ୍ତକେ ମୁନିଙ୍କ ଚରଣ । ହୃଦୟେ ହରିପାଦ ପୁଣ ॥ ୯୮
ଧରି ସେ ଚରଣକୁ ଧ୍ୟାନେ । ନିବେଶ କଲା ଅନୁଦିନେ ॥ ୯୯

ଶ୍ରୀବିଦୁର ଉବାଚ

୨୯ ଯାହାର ଆତ୍ମା ଅତିଶୟ । ଅଟଇ ନିତ୍ୟ କୃପାମୟ ॥୧୦୦
ସେ ତୁମ୍ଭେ ଏ ସଂସାରପାର । ଦେଖାଇଲ ହେ ଯୋଗିବର ! ॥୧୦୧
ଯେ ଅକିଂଚନଗତି ହରି । ସେ ଯହିଁ ଛନ୍ତି ବିଜେ କରି ॥୧୦୨

ଶ୍ରୀଶୁକ ଉବାଚ

୩୦ ମୈତ୍ରେୟ-ମୁନିଙ୍କି ବିଦୁର । ଏ ରୂପେ କରି ନମସ୍କାର ॥୧୦୩
ତାହାଙ୍କୁ କରି ଆମନ୍ତ୍ରଣ । ଜ୍ଞାତିଙ୍କି ଦେଖିବାକୁ ପୁଣ ॥୧୦୪
କଲା ହସ୍ତିନାକୁ ଗମନ । ସୁଖିତ ଅଟେ ତାହା ମନ ॥୧୦୫
୩୧ ହେ ନୃପ ! ହରିଠାରେ ମନ । ଯେ କରିଛନ୍ତି ନିବେଦନ ॥୧୦୬
ଏ ସେ ପ୍ରଚେତାଙ୍କ ଚରିତ । ଯେ ଏହା କରେ କର୍ଣ୍ଣଗତ ॥୧୦୭
ସେ ଧନ, ଗତି, ସ୍ୱସ୍ତି, ଯଶ । । ଲଭଇ ଐଶ୍ୱର୍ଯ୍ୟ, ଆୟୁଷ ॥୧୦୮
ଚତୁର୍ଥସ୍କନ୍ଧ ଭାଗବତ । ଦେଶଭାଷାରେ କରି ଗୀତ ॥୧୦୯
ଶ୍ରୀଧର ଗୋସାଇଁଙ୍କ ମତ । ଅନୁମତରେ ଏ ଚରିତ ॥୧୧୦

---

୧. ମୂଳପାଠ – ଅଜିତପାଦ... (ଅଜିତବାଦ... ପାଠାନ୍ତର) ।

| | | | | |
|---|---|---|---|---|
| ସାଧୁମାନଙ୍କ ସୁଖପାଇଁ | । | ଆନନ୍ଦ ହେଲି ଏହା ଗାଇ | ।।୧୧୧ |
| ସୁଜନେ ଦୋଷ ମୋ' ନ ଧର | । | ମୁଁ ତୁମ୍ଭମାନଙ୍କ କିଂକର | ।।୧୧୨ |
| ହେ କୃଷ୍ଣ ପଙ୍କଜଲୋଚନ | । | ଏ ଭବ ପଙ୍କୁ ବିମୋଚନ | ।।୧୧୩ |
| ଦୀନବନ୍ଧୁକୁ କରି ବାରେ | । | ରଖିବା ହେଉ ସ୍ୱସେବାରେ | ।।୧୧୪ |

ଚତୁର୍ଥେଽତ୍ର ଚତୁର୍ଥାର୍ଥସାଧନାଦନ୍ୟଦସ୍ତି ନ ।
ସତୀଧ୍ରୁବାଦିଚରିତେ ପୁରଞ୍ଜନକଥାମୃତେ ।। ୨ ।।

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଶ୍ରୀବିଦୁରମୈତ୍ରେୟସଂବାଦେ
ଶ୍ରୀପ୍ରାଚେତସୋପାଖ୍ୟାନଂ ନାମ ଏକତ୍ରିଂଶୋଽଧ୍ୟାୟଃ ।।

ଶ୍ରୀରାଧାକୃଷ୍ଣାଭ୍ୟାଂ ନମଃ ।
ସମାପ୍ତୋଽୟଂ ଚତୁର୍ଥସ୍କନ୍ଧଃ ।

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ।।

---



# ଶ୍ରୀମଦ୍‌ଭାଗବତ

## ଦ୍ୱିତୀୟ ଖଣ୍ଡ

ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ ଓ ନବମ ସ୍କନ୍ଧ

ନବାକ୍ଷରୀ ପଦ୍ୟାନୁବାଦ
ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା



ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ

# ଶ୍ରୀମଦ୍‌ଭାଗବତ

## ଦ୍ୱିତୀୟ ଖଣ୍ଡ

(ପଞ୍ଚମ, ଷଷ୍ଠ, ସପ୍ତମ, ଅଷ୍ଟମ ଓ ନବମ ସ୍କନ୍ଧ)

ଶ୍ରୀଧରସ୍ୱାମୀଙ୍କ ଟୀକାନୁସରଣରେ ନବାକ୍ଷରୀ ଓଡ଼ିଆ ପଦ୍ୟାନୁବାଦ

ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା

ସଂପାଦନା

ଅଧ୍ୟାପକ ରଙ୍ଗାଧର ଷଡ଼ଙ୍ଗୀ

ପ୍ରକାଶନ

ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ୍
ଭୁବନେଶ୍ୱର

# Shrimadbhagavata

Dwitiya Khanda

(Panchama, Shashtha, Saptama, Ashtama O Navama Skandha)

Sri Dinabandhu Mishra Khadanga

Published by

**Sri Puridas Goswami Trust**

Brahmeswarpatna, Bhubaneswar



ପ୍ରଥମ ପ୍ରକାଶ ଜାନୁୟାରୀ ୧୯୯୩

ଦ୍ୱିତୀୟ ପ୍ରକାଶ ଜାନୁୟାରୀ ୨୦୧୬

ପ୍ରକାଶକ

**ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ**

ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର

ପରିବେଷକ

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ଫୋନ୍ : ୦୬୭୧-୨୩୦୮୨୩୭

ମୁଦ୍ରଣ

ଗୋସ୍ୱାମୀ ପ୍ରେସ୍, ଭୁବନେଶ୍ୱର

ଆନୁକୂଲ୍ୟ ଟ ୮୦.୦୦

# ସୂଚୀପତ୍ର

## ପଞ୍ଚମ ସ୍କନ୍ଧ

**ଷଷ୍ଠ ସ୍କନ୍ଧ**

**ସପ୍ତମ ସ୍କନ୍ଧ**

## ଅଷ୍ଟମ ସ୍କନ୍ଧ

# ଶ୍ରୀମଦ୍ଭାଗବତ

## ପଞ୍ଚମ ସ୍କନ୍ଧ

### ପ୍ରଥମ ଅଧ୍ୟାୟ

ଅଥାତଃ ପଞ୍ଚମସ୍କନ୍ଧବ୍ୟାଖ୍ୟାନୈକବିଶେଷବାନ୍ ।
ପ୍ରିୟବ୍ରତାନ୍ୱୟୋ ଯତ୍ର ସପ୍ରପଞ୍ଚଃ ପ୍ରପଞ୍ଚ୍ୟତେ ।। ୧
ଷଡ୍‌ବିଂଶତ୍ୟଧୁନାଧ୍ୟାୟୈଃ ପଞ୍ଚମେ ସ୍ଥାନମୀର୍ଯ୍ୟତେ
ଲୋକଦ୍ୱୀପାଦିମର୍ଯ୍ୟାଦାପାଳନାଖ୍ୟମନେକଧା ।। ୨
ପୃଥିବ୍ୟୁପର୍ଯ୍ୟଧୋଲୋକୈର୍ମର୍ଯ୍ୟାଦା ତ୍ରିବିଧା ମତା ।
ପୁନଶ୍ଚୈକୈକଶସ୍ତେଷୁ ମର୍ଯ୍ୟାଦା ବହୁଧା ମତା ।। ୩
ଭୁବି ଦ୍ୱୀପାଦିମର୍ଯ୍ୟାଦାଃ ପାଲ୍ୟନ୍ତେ ରାଜଭିଃ ପୃଥକ୍ ।
ଭୂମେରୁପରି ଦେବାଦ୍ୟୈସ୍ତତଶ୍ଚାଧୋଽସୁରାଦିଭିଃ ।। ୪
ତତ୍ରାଧ୍ୟାୟୈସ୍ତୁ ବିଂଶତ୍ୟା ପ୍ରିୟବ୍ରତପୁରଃସରୈଃ ।
ଭୁବି ଦ୍ୱୀପାଦିମର୍ଯ୍ୟାଦାଃ ପାଲିତା ଇତି ବର୍ଣ୍ୟତେ ।। ୫
ତ୍ରିଭିଃ ସୂର୍ଯ୍ୟାଦିଭିର୍ଜ୍ୟୋତିଶ୍ଚକ୍ରାଦିଷ୍ୱିତି କୀର୍ତ୍ତ୍ୟତେ ।
ଅତଳାଦିଷୁ ଦୈତ୍ୟାଦ୍ୟୈଃ ପାଳନଂ ଚ ତତସ୍ତ୍ରିଭିଃ ।। ୬
ତତ୍ର ତୁ ପ୍ରଥମେଽଧ୍ୟାୟେ ଜ୍ଞାନିନୋ ରାଜ୍ୟନିର୍ବୃତିଃ ।
ପୁନଶ୍ଚ ଜ୍ଞାନନିଷ୍ଠେତି ପ୍ରିୟବ୍ରତକଥାଦ୍ଭୁତା ।। ୭

ଶ୍ରୀରାଜୋବାଚ

୧ ପରମପୁରୁଷ ଗୋବିନ୍ଦ । ତାଙ୍କର ପାଦ-ଅରବିନ୍ଦ ।। ୧
ତହୁଁ ଗଳିତ ମକରନ୍ଦ । ଯେ ପ୍ରାଣୀ ପିବନ୍ତି ଆନନ୍ଦ ।। ୨
ତାହାଙ୍କ ପାଦ ମୁଁ ବନ୍ଦଇ । ପଞ୍ଚମ ସ୍କନ୍ଧ ଗୀତ ଗାଇ ।। ୩
ଭୋ ମୁନି ! ରାଜା ପ୍ରିୟବ୍ରତ । ସେ ଆତ୍ମାରାମ ଭାଗବତ ।। ୪
ଗୃହରେ ରମିଲା କିଂପାଇଁ । କର୍ମରେ ଯେଉଁ ବନ୍ଧ ହୋଇ ।। ୫
ସେ ଟି ଜୀବର ପରାଭବ । ଗୃହେ ସେ ହୁଅଇ ସଂଭବ ।। ୬
୨ ହେ ଦ୍ୱିଜଶ୍ରେଷ୍ଠ ! ସେ ରୂପରେ । ମୁକତସଙ୍ଗ ଯେ ସଂସାରେ ।। ୭

ତାଙ୍କର ଗୃହେ ପ୍ରୀତିଭାବ । କେବେହେଁ ନୁହଇ ସଂଭବ ॥ ୮
୩ ହେ ବିପ୍ରଋଷି ! ଏ ଭୁବନେ । ମହତ ଅଟନ୍ତି ଯେ ଜନେ ॥ ୯
ଉତ୍ତମଶ୍ଳୋକ ପାଦ ଦୁଇ । ଛାୟାସୁଖିତଚିତ୍ତ ହୋଇ ॥ ୧୦
କୁଟୁମ୍ବଠାରେ ସ୍ନେହମତି । ସେ ଲୋକମାନେ ନ କରନ୍ତି ॥ ୧୧
୪ ହେ ବିପ୍ର ! ହୋଇ ଅତିଶୟ । ମୋହର ହେଉଛି ସଂଶୟ ॥ ୧୨
ଦାର, ଆଗାର, ସୁତାଦିରେ । ସକ୍ତ ଲୋକର କୃଷ୍ଣଠାରେ ॥ ୧୩
ଜାତ ହୋଇଲା ଯେଣୁ ବୁଦ୍ଧି । ସେ ଘେନି ସଂଭବିଲା ସିଦ୍ଧି ॥ ୧୪

ଶ୍ରୀଶୁକ ଉବାଚ

୫ ହେ ମହାରାଜ ! ପରୀକ୍ଷିତ । ଯାହା ପଚାରିଲ ଏ ସତ ॥ ୧୫
ଉତ୍ତମଶ୍ଳୋକ ଯେ ଗୋବିନ୍ଦ । ତାହାଙ୍କ ଚରଣାରବିନ୍ଦ ॥ ୧୬
ଗଳିତ ମକରନ୍ଦରସ । ତହିଁ ଯେ ଦିଅନ୍ତି ମାନସ ॥ ୧୭
ସେମାନେ ବିଘ୍ନ ଲଭିଲେ ହେଁ । ଆପଣା ମାର୍ଗକୁ କେବେହେଁ ॥ ୧୮
କ୍ଷଣେ ହିଁ ଛାଡ଼ି ନ ପାରନ୍ତି । ଯେ ଭାଗବତମାନେ ଛନ୍ତି ॥ ୧୯
ପରମହଂସ ସେ ବୋଲାନ୍ତି । ତାଙ୍କର ପ୍ରିୟ ରମାପତି ॥ ୨୦
ତାହାର କଥାରୂପ ହୋଇ । ସେ ମାର୍ଗ ବିଦିତ ଅଟଇ ॥ ୨୧
୬-୭ ସେ ରାଜପୁତ୍ର ପ୍ରିୟବ୍ରତ । ଅଟେ ପରମ ଭାଗବତ ॥ ୨୨
ନାରଦ ପାଦଯୁଗ ସେବି । ଆତ୍ମା-ଯଥାର୍ଥଜ୍ଞାନ ଲଭି ॥ ୨୩
ବ୍ରହ୍ମଜ୍ଞାନ ଜାଣିମା ଅର୍ଥେ । ଦୀକ୍ଷା ଘେନିମା ବିଚାରନ୍ତେ ॥ ୨୪
ସକଳଗୁଣମାନଙ୍କର । ଭାଜନ ଅଟେ ସେ କୁମର ॥ ୨୫
ପୃଥିବୀପାଳନ-ଆଶୟେ । ପିତାର ଆଜ୍ଞା ହୋଇଲେ ହେଁ ॥ ୨୬
ସେ କଥା ନ କଲା ସ୍ୱୀକାର । ପୂର୍ବହୁଁ ବାସୁଦେବଠାର ॥ ୨୭
ସର୍ବଇନ୍ଦ୍ରିୟକର୍ମମାନ । ସମାଧିଯୋଗେ କଲା ମଗ୍ନ ॥ ୨୮
ଯଦ୍ୟପି ବଚନ ପିତାର । ନ କରିବାର ଅବେଭାର ॥ ୨୯
ତଥାପି ରାଜ୍ୟ ଅଧିକାରେ । ମିଥ୍ୟାପ୍ରପଞ୍ଚ ଆତ୍ମାଠାରେ ॥ ୩୦
ପରାଭବକୁ କରି ଚିନ୍ତା । ସେ କଥା ନ କଲା ସର୍ବଥା ॥ ୩୧
ଏଥୁ ଅନ୍ତରେ ଆଦିଦେବ । ଯେ ଭଗବାନ ବେଦଗର୍ଭ ॥ ୩୨
ଗୁଣରୁ ଜାତ ଏ ଜଗତ । ଏହା'ସମୃଦ୍ଧି ଚିନ୍ତି ଚିତ୍ତ ॥ ୩୩
ସକଳଜନ-ଅଭିପ୍ରାୟ । ଜାଣି କରନ୍ତି ବ୍ୟବସାୟ ॥ ୩୪
ସକଳ ଦେବଗଣମାନେ । ମରୀଚି ଆଦି ଯେ ନନ୍ଦନେ ॥ ୩୫
ସେମାନେ ଅଛନ୍ତି ସଙ୍ଗର । ସ୍ୱପୁରୁଁ ହୋଇଲେ ବାହାର ॥ ୩୬
୮-୧୦ ଯାନ୍ତେ ଗଗନେ ଚନ୍ଦ୍ରପ୍ରାଏ । ସେ ପିତାମହ ଶୋଭା ପାଏ ॥ ୩୭
ଆରୋହି ବିମାନନିକର । ବାଟେ ତାହାଙ୍କୁ ସୁରବର ॥ ୩୮

ଘେନିଣ ଉପଚାରମାନ । ସାଦରେ କରନ୍ତି ପୂଜନ ॥ ୩୯
ସିଦ୍ଧ, ଗନ୍ଧର୍ବ, ମୁନିଗଣ । ଆବର ଯେ ସାଧ୍ୟ ଚାରଣ ॥ ୪୦
ସକଳେ ଏକ ରୁଣ୍ଡ ହୋଇ । ଗାୟନ କରୁଛନ୍ତି ତହିଁ ॥ ୪୧
ଗନ୍ଧମାଦନ ପର୍ବତର । କନ୍ଦରାଗତ ଅନ୍ଧକାର ॥ ୪୨
ବିନାଶ କରି ତେଜଭରେ । ପ୍ରବେଶ ହୋଇଲେ ସେଠାରେ ॥ ୪୩
ସେଠାରେ ନାରଦ ଯେ ଥିଲେ । ହିରଣ୍ୟଗର୍ଭଙ୍କୁ ଦେଖିଲେ ॥ ୪୪
ହଂସଯାନରେ ବସିଛନ୍ତି । ଆପଣା ପିତା ସେ ଅଟନ୍ତି ॥ ୪୫
ଏମନ୍ତ ଦେଖି ତତକ୍ଷଣ । କରେ ଘେନିଲେ ଅରହଣ ॥ ୪୬
[୧]ମନୁ ହିଁ ଛନ୍ତି ପୁତ୍ର ତୁଲେ । କର ଯୋଡ଼ିଣ ସ୍ତୁତି କଲେ ॥ ୪୭
ନାରଦ କଲେକ ପୂଜନ । ପଢ଼ିଣ ସୂକ୍ତବାକ୍ୟମାନ ॥ ୪୮
ଗୁଣସମୂହ, ଅବତାର । ଜୟକୁ ବର୍ଣ୍ଣିଲେ ତାଙ୍କର ॥ ୪୯
ଆଦିପୁରୁଷ ଭଗବାନ । କରି ସଦୟାବଲୋକନ ॥ ୫୦
ପ୍ରିୟବ୍ରତକୁ ଏ ବଚନ । କହିଲେ କମଳଆସନ ॥ ୫୧

ଶ୍ରୀବ୍ରହ୍ମୋବାଚ

୧୧ ହେ ବତ୍ସ ! ମୋ' ବଚନ ଶୁଣ । ଏ ବାକ୍ୟ ଅଟଇ ପ୍ରମାଣ ॥ ୫୨
ଯେ ଦେବ ଅଟେ ଅପ୍ରମେୟ । ତା' ଠାରେ ଅସୂୟା ନ ବହ ॥ ୫୩
[୨]ଆମ୍ଭେ, ତୁ, ତାତ ଏ ତୋହର । ଏ ଯେ ନାରଦ ଋଷିବର ॥ ୫୪
ସମସ୍ତେ ପରାଧୀନ ହୋଇ । ଯାହାର ଆଜ୍ଞା ବହି ଥାଇ ॥ ୫୫
୧୨ ତପସ୍ୟା, ବିଦ୍ୟା, ଯୋଗ ବୁଦ୍ଧି । ଯେ ଧର୍ମ, ଅର୍ଥ ବେନି ସିଦ୍ଧି ॥ ୫୬
ପରକୁ ଆଶ୍ରୟ କରିଣ । ଅଥବା ଆପଣା ବଳେଣ ॥ ୫୭
କରି ନ ପାରେ ଜୀବ ଆନ । ତାହାର କଲା କର୍ମମାନ ॥ ୫୮
୧୩ ଜନ୍ମ, ମରଣ ବେନି ଅର୍ଥେ । କର୍ମ ଆଚରିବା ନିମିତ୍ତେ ॥ ୫୯
ଯେ ବା ସର୍ବଦା ମୋହ ଶୋକ । ବନ୍ଧ-ବିମୋକ୍ଷ ସୁଖ-ଦୁଃଖ ॥ ୬୦
ଏମାନ କରିବାକୁ ଭୋଗ । ଈଶ୍ୱରଦତ୍ତ ଦେହଯୋଗ ॥ ୬୧
ଏ [୩]ଜନସମୂହ ବହଇ । ଅନ୍ୟଥା କରି ନ ପାରଇ ॥ ୬୨
୧୪ ଯାହାର ବେଦମୟ ବାଣୀ । ହେ ବତ୍ସ ! ଅଟେ ରଜ୍ଜୁ ଜାଣି ॥ ୬୩
ଯେ ସତ୍ତ୍ୱ ଆଦି ଗୁଣ କର୍ମ । ବିପ୍ର କ୍ଷତ୍ରିୟ ଆଦି ନାମ ॥ ୬୪
ତେଣେ ସମସ୍ତେ ଆମ୍ଭେ ତହିଁ । ସୁଦୃଢ଼େ ବନ୍ଧା ହୋଇଥାଇଁ ॥ ୬୫
ସେ ଅଟେ ଜଗତ-ଈଶ୍ୱର । ବହି ତାହାକୁ ଉପହାର ॥ ୬୬
ନାସାବିବରେ ରଜ୍ଜୁବନ୍ଧେ । ଥାନ୍ତି ଯେସନେ ବଳୀବର୍ଦେ ॥ ୬୭

---

୧ ସ୍ୱାୟଂଭୁବ ମନୁ ତାଙ୍କ ପୁଅ ପ୍ରିୟବ୍ରତଙ୍କ ସଙ୍ଗେ ଅଛନ୍ତି ।
୨ ମୁଁ, ଶିବ, ତାତ ଏ ତୋହର, (ବୟଂ ଭବସ୍ତେ ତତ..) ଇତି ପାଠାନ୍ତରମ୍ ।
୩। ଜୀବ ।

ସେ ଯେହ୍ନେ ଶ୍ରମ ପାଉଥାନ୍ତି । ପ୍ରାଣୀଙ୍କି ଉପକାର ଚିନ୍ତି ॥
୧୫ ଈଶ୍ୱର ଅଛି ଯାହା ଦେଇ । ସେ ସୁଖଦୁଃଖ ଅବା ହୋଇ ॥
ଆମ୍ଭେ ସ୍ୱୀକାର ତାହା କରୁ । ହାନିଲାଭକୁ ନ ବିଚାରୁ ॥
ଯେସନେ ସ୍ୱାମୀ ଦେଲେ ଶସ୍ୟ । କରଇ ବଳୀବର୍ଦ୍ଧ ଗ୍ରାସ ॥
ସେ ଶସ୍ୟ ଆପଣା ଇଚ୍ଛାଏ । ଖାଇବାକୁ ସେ ଶକ୍ୟ ନୋହେ ॥
ସଙ୍ଗରୁ ଗୁଣ କର୍ମଙ୍କର । ସୁର କୀଟାଦି ଯେ ଶରୀର ॥
ନାଥ କରିଛି ନିଯୋଜନ । ସ୍ୱୀକାର କରିଛୁ ସେମାନ ॥
ଚକ୍ଷୁଯୁଗଳ ଥିଲା ଜନ । ଛାୟା, ଆତପକୁ ଯେସନ ॥
ଅନ୍ଧମାନଙ୍କୁ ଘେନି ଯାଇ । ସେ ଅନ୍ଧଙ୍କର ଇଚ୍ଛା ନାହିଁ ॥
୧୬ ଯେ ଅବା ବନ୍ଧମୁକ୍ତ ହୋଇ । ସେହି ଯାବତ ଦେହ ଥାଇ ॥
ପ୍ରାରବ୍‌ଧ କର୍ମକୁ ଭୁଞ୍ଜିବ । ଅଭିମାନଶୂନ୍ୟ ହୋଇବ ॥
ସ୍ୱପ୍ନ ଅନୁଭବ ଯେସନେ । ନିଦ୍ରାର ଅନ୍ତେ ନିଜମନେ ॥
କେବଳ ସ୍ମରଣ କରଇ । ଅଭିମାନକୁ ନ ଧରଇ ॥
ଭୋଗବାସନାଦ୍ୱାରେ ତାର । ଜନ୍ମ ଏମନ୍ତ ନ ବିଚାର ॥
କେବଳ ମାତ୍ର ଆନ ଦେହ । ଦାୟକ ଯେ କର୍ମସମୂହ ॥
ବାସନାମାନ ହିଁ ତେଜିବ । ଏତେ ସଂଯତ ମାତ୍ର ଥିବ ॥
୧୭ ଯେ ପୁଣ ପ୍ରମତ୍ତ ଅଟଇ । ତାର ବନେ ହିଁ ୧ଭୟ ହୋଇ ॥
ଯେଣୁ ସଙ୍ଗତେ ଷଡ଼୨ ଅରି । ଘେନି ସେ ହୋଏ ବନଚାରୀ ॥
ଯେ ପୁଣ ହୁଅଇ ପଣ୍ଡିତ । ବିଜିତେନ୍ଦ୍ରିୟ ଆତ୍ମାରତ ॥
ତାହାର ଗୃହସ୍ଥ ଆଶ୍ରମ । କି ବାଧା କରିବାକୁ କ୍ଷମ ॥
୧୮ ଷଡ଼ ଅରିଙ୍କି ଯେଉଁ ନର । ଜିଣିତେ କରଇ ବିଚାର ॥
ସେ ଗୃହମଧ୍ୟେ ପୂର୍ବେ ବସି । ପ୍ରଯତ୍ନ କରିବ ବିଶେଷି ॥
ସେ ଅରିଗଣ ହେଲେ କ୍ଷୀଣ । ଗୃହରେ କରିବ ଭ୍ରମଣ ॥
ଅଥବା ବିପିନକୁ ଯିବ । ଯହିଁରେ ମନ ପ୍ରବର୍ତ୍ତିବ ॥
ଦୁର୍ଗ ଆଶ୍ରୟ କଲା ଜନ । ଅରିଙ୍କି ଜିଣଇଁ ଯେସନ ॥
ତଦନନ୍ତରେ ଯହିଁ ତହିଁ । ମନଇଚ୍ଛାରେ ସେ ଭ୍ରମଇଁ ॥
୧୯ ତୁ ବିଷ୍ଣୁ-ପାଦପଦ୍ମକୋଷ । ଦୁର୍ଗରେ ହୋଇଣ ପ୍ରବେଶ ॥
ଜିଣି କାମାଦି ରିପୁମାନ । ଯାହା ଦେଇଛି ଭଗବାନ ॥
ସେ ଭୋଗମାନ ଭୋଗ କର । ଜୀର୍ଣ୍ଣ ହୁଅନ୍ତେ ଏ ଶରୀର ॥
ଛାଡ଼ି ସକଳ ସଙ୍ଗମାନ । ନିବେଶ ଆତ୍ମଜ୍ଞାନେ ମନ ॥

---

୧. ଭୟ = ସଂସାର । ୨. ଷଡ଼ଅରି = ମନ ଓ ପଞ୍ଚ ଜ୍ଞାନେନ୍ଦ୍ରିୟ ।

ଶ୍ରୀଶୁକ ଉବାଚ

୨୦ ସେ ସ୍ୱାୟମ୍ଭୁବ ମନୁସୁତ । ଅଟଇ ମହାଭାଗବତ ॥ ୯୮
ତ୍ରିଲୋକଗୁରୁ ଭଗବାନ । ଏ ରୂପେ କହନ୍ତେ ବଚନ ॥ ୯୯
ତାହାଙ୍କ ଠାରୁ ଲଘୁ କରି । ନିଜ ଆତ୍ମାକୁ ଅନୁସରି ॥ ୧୦୦
ନମ୍ର କରିଣ ସେ କନ୍ଧର । ସାଦରେ କଲେ ତା' ସ୍ୱୀକାର ॥ ୧୦୧
୨୧ ଯଥାବିଧିରେ ମନୁ ରାଜା । ପିତାମହଙ୍କୁ କଲେ ପୂଜା ॥ ୧୦୨
ନାରଦ, ପ୍ରିୟବ୍ରତ ଦୁଇ । ଚାହାନ୍ତି ଅବିଷମ ହୋଇ ॥ ୧୦୩
ମନ-ବଚନ ଅଗୋଚର । ଅଟେ ଯେ ଆପଣା ମନ୍ଦିର ॥ ୧୦୪
ତହିଁକି କଲେ ସେ ଗମନ । ଯେ ଅଟେ ବ୍ୟବହାରଶୂନ୍ୟ ॥ ୧୦୫
ନିବୃତ୍ତ ବ୍ରହ୍ମ ସେ ବୋଲାଇ । ତାକୁ ଅଛନ୍ତି ପ୍ରବର୍ତ୍ତାଇ ॥ ୧୦୬
୨୨ ଏ ରୂପେ ନିଜ ମନୋରଥ । ବିଧାତା କରନ୍ତେ ବିଦିତ ॥ ୧୦୭
ନାରଦଋଷିଙ୍କ ସ୍ୱୀକାରେ । ପୁତ୍ରକୁ ଧରାମଣ୍ଡଳରେ ॥ ୧୦୮
ପାଳନ ଅର୍ଥେ ସ୍ଥାପି କରି । ସେ ସ୍ୱାୟମ୍ଭୁବ ଦଣ୍ଡଧାରୀ ॥ ୧୦୯
ବିଷମ ବିଷୟବିଷର । ତଡ଼ାଗ ଅଟେ ଯେ ମନ୍ଦିର[୧] ॥ ୧୧୦
ତା' ଭୋଗଇଚ୍ଛା ଯେ ବା ଥିଲା । ତହିଁରୁ ନିବୃତ୍ତ ହୋଇଲା ॥ ୧୧୧
୨୩ ଏ ରୂପେ ଈଶ୍ୱର ଇଚ୍ଛାରେ । ଥାଇଣ କର୍ମ ଅଧିକାରେ ॥ ୧୧୨
ସର୍ବଜଗତବନ୍ଧଧ୍ୱଂସ । ଯା' ଅନୁଭାବ ପରକାଶ ॥ ୧୧୩
ସେ ଆଦିପୁରୁଷଚରଣ । ଯୁଗଳ ସଂତତ ସ୍ମରଣ ॥ ୧୧୪
ଚିତ୍ତେ ରାଗାଦି ମଳମାନ । ଯେ ଥିଲା କଲା ତା' ଦହନ ॥ ୧୧୫
ସେ ଅତି ଶୁଦ୍ଧ ନୃପବର । ମହତ ଲୋକମାନଙ୍କର ॥ ୧୧୬
ପୂଜାକୁ କରନ୍ତି ବର୍ଦ୍ଧନ । ପୃଥିବୀ କଲେକ ପାଳନ ॥ ୧୧୭
୨୪} ଯେ ବିଶ୍ୱକର୍ମା ପ୍ରଜାପତି । ତାର ଦୁହିତା ବର୍ହିଷ୍ମତୀ ॥ ୧୧୮
୨୮} ତାକୁ ବିଧିରେ ବିଭା ହୋଇ । ଦଶ ତନୁଜ ତାର ତହିଁ ॥ ୧୧୯
ଜନମ କଲେ ପ୍ରିୟବ୍ରତ । ସମାନ ଶୀଳରୂପବନ୍ତ ॥ ୧୨୦
ଆତ୍ମସମାନ ବୀର୍ଯ୍ୟଗୁଣ । ସେ ପୁତ୍ର ସକଳେ ନିପୁଣ ॥ ୧୨୧
ପଛେ କନ୍ୟାଏ କଲା ଜାତ । ସେ ଊର୍ଜସ୍ୱତୀ ନାମେ ଖ୍ୟାତ ॥ ୧୨୨
ଆଗ୍ନୀଧ୍ର, ଇଧ୍ମଜିହ୍ୱ ଦୁଇ । ତୃତୀୟ ଯଜ୍ଞବାହୁ ହୋଇ ॥ ୧୨୩
ଚତୁର୍ଥ ମହାବୀର ନାମ । ହିରଣ୍ୟରେତା ସେ ପଞ୍ଚମ ॥ ୧୨୪
ଘୃତପୃଷ୍ଠ, ସବନ ପୁତ୍ର । ଯେ ମେଧାତିଥି, ବୀତିହୋତ୍ର ॥ ୧୨୫
ଦଶମ ନାମ କବି ଖ୍ୟାତ । ଅଗ୍ନିନାମା ସକଳ ସୁତ ॥ ୧୨୬
ତହିଁରେ କବି, ମହାବୀର । ସବନ ଏ ତିନି କୁମର ॥ ୧୨୭

୧. ମନ୍ଦିର = ଗୃହ ।

ବାଳକ କାଳରୁ ଅବଧି । ଆତ୍ମବିଦ୍ୟାରେ ଶ୍ରମ ସାଧି ॥ ୧୨୮
ସେ ଊର୍ଦ୍ଧ୍ୱରେତା ବୋଲାଇଲେ । ପରମହଂସଦୀକ୍ଷା କଲେ ॥ ୧୨୯
ସେମାନେ ଉପଶମଯୁତ । ପରମ ଋଷିରୂପେ ଖ୍ୟାତ ॥ ୧୩୦
ସକଳ ଜୀବସମୂହର । ନିବାସରୂପୀ ଯେ ଈଶ୍ୱର ॥ ୧୩୧
ଭୟ-ଆରତ ପ୍ରାଣୀଙ୍କର । ଶରଣ ଅଟେ ଯେ ଶ୍ରୀଧର ॥ ୧୩୨
ତାଙ୍କ ଚରଣପଦ୍ମଦୁଇ । ଅନବରତେ ମନେ ଧ୍ୟାୟି ॥ ୧୩୩
ତେଣେ ଯେ ହୋଇଅଛି ଜାତ । ଭଗତିଯୋଗ ଅଖଣ୍ଡିତ ॥ ୧୩୪
ସେ ଅନୁଭାବରେ ଶୋଧିତ । ହୋଇଣ ଅଛି ଯେଉଁ ଚିତ୍ତ ॥ ୧୩୫
ସେ ଚିତ୍ତେ ଅଛି ଯେ ପ୍ରସରି । ସକଳ-ଜୀବ-ଆତ୍ମା ହରି ॥ ୧୩୬
ତଦାତ୍ମ୍ ଭାବ ତାଙ୍କଠାରେ । ଲଭିଲେ ସେ ଅବିଶେଷରେ ॥ ୧୩୭
ଦ୍ୱିତୀୟ ପତ୍ନୀଗର୍ଭେ ତାର । ହୋଇଲେ ତିନି ସହୋଦର ॥ ୧୩୮
ଉତ୍ତମ, ତାମସ, ରୈବତ । ସେ ମନ୍ୱନ୍ତରପତି ଖ୍ୟାତ ॥ ୧୩୯
୨୯ ଶାନ୍ତିମାର୍ଗକୁ ଏ ପ୍ରକାରେ । ଭଜନ୍ତେ ଆପଣା କ୍ରମରେ ॥ ୧୪୦
ଏଗାର ଅର୍ବୁଦ ବରଷ । ସେ ମନୁ ପାଳିଲେ ଅଶେଷ ॥ ୧୪୧
ସର୍ବ ପୁରୁଷକୃତ୍ୟ ଯହିଁ । କେବେହେଁ ବିନାଶ ନୁହଇ ॥ ୧୪୨
ତେମନ୍ତ ବଳେ ପୂର୍ଣ୍ଣ ହୋଇ । ଅଛି ଯେ ଭୁଜଦଣ୍ଡ ଦୁଇ ॥ ୧୪୩
ତେଣେ ଓଟାରି ଶରାସନ । ଜାତ ସେ କଲା ଯେଉଁ ସ୍ୱନ ॥ ୧୪୪
ଧର୍ମବିପକ୍ଷ ରାଜଗଣେ । ନିବୃତ୍ତ ହେଲେ ତା' ଶ୍ରବଣେ ॥ ୧୪୫
ବର୍ହିଷ୍ମତୀ ତାହାଙ୍କୁ ଚାହିଁ । ହରଷେ ପାଛୋଟି ଆସଇ ॥ ୧୪୬
ତାହାର ଯେ ରସଲାବଣ୍ୟ । ସ୍ତିରୀସ୍ୱଭାବ-ଚେଷ୍ଟାମାନ ॥ ୧୪୭
ଲଜ୍ଜା, ହରଷେ ହସି ଚାହେଁ । ବିବିଧ ନର୍ମବାଣୀ କହେ ॥ ୧୪୮
ସେ କଥାମାନଙ୍କରେ ତହିଁ । ଅବିବେକୀର ପ୍ରାୟେ ହୋଇ ॥ ୧୪୯
ସେ ପ୍ରିୟବ୍ରତ ମହାମତି । ଭୋଗକଲେ ଏ ବସୁମତୀ ॥ ୧୫୦
୩୦ ମେରୁକୁ କରି ପ୍ରଦକ୍ଷିଣ । ତପନ କରନ୍ତେ ଭ୍ରମଣ ॥ ୧୫୧
୩୨ ଭୂତଳୁଁ ଅର୍ଦ୍ଧେ ଆଚ୍ଛାଦଇ । ଅର୍ଦ୍ଧକେ ତେଜ ପ୍ରକାଶଇ ॥ ୧୫୨
ଏମନ୍ତ ଦେଖିଣ ସେ କାଳେ । ବିଷ୍ଣୁଭଜନଯୋଗବଳେ ॥ ୧୫୩
ଲଭିଣ ଅମାନୁଷ ଶକ୍ତି । ସେ ପ୍ରିୟବ୍ରତ ନରପତି ॥ ୧୫୪
ତହିଁରେ ନ ଲଭିଣ ତୋଷ । ରଜନୀ କରିବ ଦିବସ ॥ ୧୫୫
ଏମନ୍ତ ମନରେ ବିଚାରି । ସୂର୍ଯ୍ୟରଥକୁ ସମ କରି ॥ ୧୫୬
ଚଢ଼ିଲେ ବେଗମନ୍ତ ରଥ । ସେ ରଥ ଅଟେ ଜ୍ୟୋତିଷ୍ମନ୍ତ ॥ ୧୫୭
ସୂର୍ଯ୍ୟଙ୍କୁ ଅନୁଗତ ଥାଇ । ଦ୍ୱିତୀୟ ସୂର୍ଯ୍ୟପ୍ରାୟେ ହୋଇ ॥ ୧୫୮
ଭ୍ରମଣ କଲେ, ତାଙ୍କ ଗତି । ଦେଖିଣ ସ୍ୱୟେଁ ପ୍ରଜାପତି ॥ ୧୫୯
ଏ ତୋର ଅଧିକାର ନୋହି । ବୋଲିଣ ଗଲେ ନିବର୍ତ୍ତାଇ ॥ ୧୬୦

ତା' ରଥଚକ୍ରନେମି ଯାନ୍ତେ । ଯେ ଜାତ ହେଲେ ସାତ ଖାତେ ॥ ୧୬୧
ସେ ହେଲେ ସପତ ସାଗର । ତହିଁ ମଧ୍ୟରେ ଯେ ବିସ୍ତାର ॥ ୧୬୨
ତାହାକୁ ସାତ ଦ୍ୱୀପ ବୋଲି । ଯେ ଜମ୍ବୁ, ପ୍ଲକ୍ଷ, ଶାଳମଳି ॥ ୧୬୩
ଯେ କୁଶ, କ୍ରୌଞ୍ଚ, ଶାକ ନାମ । ପୁଷ୍କର ଦ୍ୱୀପ ଯେ ସପ୍ତମ ॥ ୧୬୪
ସେ ଦ୍ୱୀପଙ୍କର ପରିମାଣ । ପୂର୍ବରୁ ପୂର୍ବରୁ କ୍ରମେଣ ॥ ୧୬୫
ଉତ୍ତର ଉତ୍ତରକୁ ପୁଣ । ଯଥାସଂଖ୍ୟାରେ ବେନି ଗୁଣ ॥ ୧୬୬
ସମୁଦ୍ରଙ୍କର ବାହ୍ୟ ସ୍ଥାନେ । କୃତ ଅଟନ୍ତି ଦ୍ୱୀପମାନେ ॥ ୧୬୭
୩୩ } ଲବଣ, ଇକ୍ଷୁ, ସୁରା, ଘୃତ । କ୍ଷୀର, ଦଧି, ସଲିଳ ସାତ ॥ ୧୬୮
୩୪ } ସାଗରେ ସପତ ଦ୍ୱୀପରେ । ପରିଖା ପ୍ରାୟେ ଅଭ୍ୟନ୍ତରେ ॥ ୧୬୯
ଦ୍ୱୀପର ବାହ୍ୟେ ସେ ନିର୍ମାଣ । ଦ୍ୱୀପମାନଙ୍କ ପରିମାଣ ॥ ୧୭୦
ସେ ପ୍ରିୟବ୍ରତ ନୃପତିର । ଥିଲେ ଯେ ସପତ କୁମର ॥ ୧୭୧
ଆଗ୍ନୀଧ୍ର, ଇଧ୍ମଜିହ୍ୱ ବେନି । ଯଜ୍ଞବାହୁକୁ ମିଶି ତିନି ॥ ୧୭୨
ହିରଣ୍ୟରେତା, ଘୃତପୃଷ୍ଠ । ଯେ ମେଧାତିଥି, ବୀତିହୋତ୍ର ॥ ୧୭୩
ତାହାଙ୍କୁ ଜମ୍ବୁଆଦି ଦ୍ୱୀପ । ସାତରେ କଲେ ସେ ଅଧିପ ॥ ୧୭୪
ଯେ ଉର୍ଜ୍ଜସ୍ୱତୀ ନାମେ ତାର । ଦୁହିତା ଥିଲା ନୃପତିର ॥ ୧୭୫
ତାହାଙ୍କୁ ଶୁକ୍ରଙ୍କୁ ପ୍ରଦାନ । କଲେ ସେ ମନୁଙ୍କ ନନ୍ଦନ ॥ ୧୭୬
ତାଠାରେ ଦେବଯାନୀ ନାମ । ଶୁକ୍ରର ସୁତା ହେଲା ଜନ୍ମ ॥ ୧୭୭
୩୫ ବିଷ୍ଣୁର ପାଦରଜ ଚିନ୍ତି । ଯେ ଷଡ଼ ଊର୍ମି[୧] ଜିଣିଛନ୍ତି ॥ ୧୭୮
ଯେ ପ୍ରାଣୀ ବିଷ୍ଣୁର ଭଗତ । ତାହାକୁ ଏ ପୁରୁଷକୃତ୍ୟ ॥ ୧୭୯
ଚିତ୍ର ନୁହଇ ନାମ ଯାର । ତୁଣ୍ଡେ ଉଚ୍ଚାରି ଏକ ବାର ॥ ୧୮୦
ଅନ୍ତ୍ୟଜ ଲୋକ ହିଁ ଯେ ହୋଇ । ସଂସାରବନ୍ଧକୁ ଛାଡ଼ଇ ॥ ୧୮୧
୩୬ } ଏ ରୂପେ ଅପ୍ରମିତ ବଳ । ଅଟନ୍ତି ସେହୁ ମହୀପାଳ ॥ ୧୮୨
୩୮ } ପୂର୍ବେ ନାରଦପାଦଦୁଇ । ସେବନ୍ତେ ଅକସ୍ମାତ ହୋଇ ॥ ୧୮୩
ଛାଡ଼ିଲା ରାଜ୍ୟ ବ୍ୟବହାର । ସଂସର୍ଗ ହୁଅନ୍ତେ ତହିଁର ॥ ୧୮୪
ଆତ୍ମାକୁ ମଣିଣ ଦୁଃଖିତ । ନିର୍ବେଦେ ବୋଇଲା ଏମନ୍ତ ॥ ୧୮୫
କଲି ଅସାଧୁ ଆଚରଣ । ଯେଉଁ ଅଭିନିବେଶୁଁ ପୁଣ ॥ ୧୮୬
ଇନ୍ଦ୍ରିୟେ ଅବିଦ୍ୟା-ରଚିତ । ବିଷୟ-ଅନ୍ଧକୂପେ ସ୍ଥିତ ॥ ୧୮୭
ବିଅର୍ଥ ବିଅର୍ଥ ସେ କଥା । ଅଛି ଯେ ଏ ମୋର ବନିତା ॥ ୧୮୮
ମୁଁ ଏହା' କ୍ରୀଡ଼ାମୃଗ ଯହୁଁ । ଏ ଘେନି ମୋତେ ଧିକ ହେଉ ॥ ୧୮୯
ଏମନ୍ତ ବୋଲି ନୃପବର । ଆତ୍ମାକୁ କଲା ତିରସ୍କାର ॥ ୧୯୦
ପରମ ଦେବ ଭଗବାନ । ତାର ପ୍ରସାଦୁଁ ଆତ୍ମଜ୍ଞାନ ॥ ୧୯୧

୧. ଊର୍ମି = କାମକ୍ରୋଧାଦି ଷଡ଼ରିପୁ ।

ଲଭିଣ ରାଜା ପ୍ରିୟବ୍ରତ । ଯେ ଥିଲେ ଆପଣାର ସୁତ ॥ ୧୯୨
ତାଙ୍କୁ ପୃଥିବୀ ବାଣ୍ଟି ଦେଲା । ନିଜ ମହିଷୀ ଯେ ବା ଥିଲା ॥ ୧୯୩
ଭୋଗ କରିଛି ତାକୁ ପୂର୍ବେ । ସଂପତ୍ତିତୁଲେ ଛାଡ଼ି ଏବେ ॥ ୧୯୪
ହରିବିହାର-ଅନୁଭାବ । ହୃଦରେ ଘେନି ନରଦେବ ॥ ୧୯୫
ସ୍ୱଏଁ ନିର୍ବେଦଚିତ୍ତ ହେଲା । ନାରଦମାର୍ଗକୁ ଗମିଲା ॥ ୧୯୬
ସେ ରାଜା-ଗୁଣାନୁବନ୍ଧନ । ଅଟନ୍ତି ଏହୁ ଶ୍ଳୋକମାନ ॥ ୧୯୭
୩୯ ପ୍ରିୟବ୍ରତର କର୍ମମାନ । ଈଶ୍ୱରବିନୁ କେବା ଆନ ॥ ୧୯୮
କରି ପାରିବ ଦେହ ବହି । ଯେ ନିବାରନ୍ତେ ମେରୁଛାଇ ॥ ୧୯୯
କରନ୍ତେ ରଥ ନେମିଘାତ । ନିର୍ମାଣ କଲା ସିନ୍ଧୁ ସାତ ॥ ୨୦୦
୪୦ ଯେ କଲା ଭୂମିର ସଂସ୍ଥାନ । ସରିତ, ଅଚଳ, କାନନ ॥ ୨୦୧
ଏ ଆଦିଦ୍ୱାରେ ପ୍ରାଣୀଙ୍କର । ସୁଖ ନିମିତ୍ତେ ନୃପବର ॥ ୨୦୨
ଦ୍ୱୀପେ ଦ୍ୱୀପେକେ ସୀମାମାନ । ରଚିଲା ହୋଇ ସାବଧାନ ॥ ୨୦୩
୪୧ ସ୍ୱର୍ଗରେ, ପାତାଳେ, ମର୍ତ୍ତ୍ୟରେ । ଯେ ମୁଖ୍ୟ କର୍ମଯୋଗଦ୍ୱାରେ ॥ ୨୦୪
ସେ ସର୍ବ ନରକ ସମାନ । ମଣିଲା ସେ ମନୁନନ୍ଦନ ॥ ୨୦୫
ବିଷ୍ଣୁଭଗତ ଯେଉଁ ନର । ପ୍ରିୟ ଅଟନ୍ତି ସେ ତାହାର ॥ ୨୦୬
ବ୍ରାହ୍ମଣ ଦୀନବଂଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ॥ ୨୦୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀପ୍ରିୟବ୍ରତବିଜୟୋ
ନାମ ପ୍ରଥମୋଽଧ୍ୟାୟଃ ॥

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ପ୍ରୋକ୍ତମାଗ୍ନୀଧ୍ରଚରିତ୍ରଂ[୧] ସ୍ତୈଣସଂମତମ୍ ।
ପତ୍ନ୍ୟାଂ ହି ପୂର୍ବଚିତ୍ତ୍ୟାଂ ଯୋ ନାଭିମୁଖ୍ୟାନଜୀଜନତ୍ ॥ ୧
ଅସ୍ମିନ୍ ବଂଶେ ପ୍ରସିଦ୍ଧୋଽୟମାଗ୍ନୀଧ୍ରଃ ସ୍ତୈଣପୁଙ୍ଗବଃ ।
ବିହସନ୍ନିବ ତସ୍ୟେଦଂ ଚରିତଂ ମୁନିରବ୍ରବୀତ୍ ॥ ୨

ଶ୍ରୀଶୁକ ଉବାଚ

୧ } ଏମନ୍ତେ ପିତାର ଆଜ୍ଞାରେ । ଥାଇଣ ତାହାର ଅନ୍ତରେ ॥ ୧
୩ } ଆଗ୍ନୀଧ୍ର ଧର୍ମକୁ ଚାହିଁଣ । ଜମ୍ବୁଦ୍ୱୀପରେ ପ୍ରଜାଗଣ ॥ ୨
ଆପଣା ପୁତ୍ରପ୍ରାୟେ କରି । ପାଳନା କଲେ ଅନୁସରି ॥ ୩
ସେ ପୁଣି କହୁଣିସି ଦିନେ । ପୁତ୍ରଉତ୍ପତ୍ତି ବାଞ୍ଛି ମନେ ॥ ୪

---
୧. ଚରିତଂ (ପାଠାନ୍ତର) ।

ସୁରବନିତାମାନଙ୍କର । କ୍ରୀଡ଼ାଅଚଳ ଯେ ମନ୍ଦର ॥ ୫
ତାର କନ୍ଦରେ କରି ସ୍ଥିତି । ଯେ ବ୍ରହ୍ମା ବିଶ୍ୱସୃଜପତି ॥ ୬
ତାହାଙ୍କୁ କଲେ ଆରାଧନ । ସଂପାଦି ଉପଚାରମାନ ॥ ୭
ଏକାଗ୍ର କରି ନିଜ ଚିତ୍ତ । ତପସ୍ୱୀ ପ୍ରିୟବ୍ରତସୁତ ॥ ୮
ଆଦିପୁରୁଷ ଭଗବାନ । ବିଧାତା ଜାଣି ତାର ମନ ॥ ୯
ନିଜ ସଭାରେ କରି ସ୍ଥିତି । ଅପ୍‌ସରା ନାମ ପୂର୍ବଚିତ୍ତି ॥ ୧୦
ଗାୟନ କରୁଥିଲା, ତାକୁ । ପେଷିଲେ ଆଗ୍ନୀଧ୍ରପାଶକୁ ॥ ୧୧
୪ } ସେ ମହୀପତିର ଆଶ୍ରମ । ଅଟଇ ଅତି ମନୋରମ ॥ ୧୨
୫ } ନିବିଡ଼ ନାନା ତରୁଗଣ । ଶାଖାରେ କରି ଆରୋହଣ ॥ ୧୩
ସୁବର୍ଣ୍ଣମୟ ଲତାମାନ । ବିଶେଷେ ଦିଶନ୍ତି ଶୋଭନ ॥ ୧୪
ତହିଁରେ କରିଛନ୍ତି ସ୍ଥାନ । ମୟୂର ଆଦିଙ୍କ ମିଥୁନ ॥ ୧୫
ତାହାଙ୍କ ଉଚ୍ଚାରିବା ସ୍ୱର । ଶୁଣି ଲଭନ୍ତି ବୋଧଭର ॥ ୧୬
ଜଳକୁକ୍‌କୁଟ, କାରଣ୍ଡବ । କଳହଂସାଦି ଯେତେ ଜୀବ ॥ ୧୭
ବିଚିତ୍ର କରିଣ ସେମାନେ । ଧ୍ୱନି କରନ୍ତି ସ୍ଥାନେ ସ୍ଥାନେ ॥ ୧୮
ଏରୂପେ ଦିଶନ୍ତି ଶୋଭନ । ନିର୍ମଳ ଜଳାଶୟମାନ ॥ ୧୯
ତହିଁରେ ଅଛି ପଦ୍ମମାନ । ତାଙ୍କ ଆକର ଯେଉଁ ବନ ॥ ୨୦
ସେ ବନେ ପୂର୍ବଚିତ୍ତି ଯାଇ । ଭ୍ରମଣ କଲା ତୋଷ ହୋଇ ॥ ୨୧
ଲଳିତ ଗମନ ତାହାର । ଚରଣବିନ୍ୟାସ ସୁନ୍ଦର ॥ ୨୨
ପଦେ ପଦେକେ ରୁଣଝୁଣ । ଶୁଭେ ନୂପୁର-ଆଭରଣ ॥ ୨୩
ସେ କଥା ଶୁଣି ରାଜସୁତ । ସମାଧିଯୋଗେ ନିମୀଳିତ ॥ ୨୪
ନୟନସରସିଜକୋଷ । ଅଳପ କରିଣ ବିକାଶ ॥ ୨୫
ଅବଲୋକନ କରିଦେଲା । ତାହାକୁ ନିକଟେ ଦେଖିଲା ॥ ୨୬
୬ ସେ ମଧୁକରୀପ୍ରାୟେ ହୋଇ । କୁସୁମ ଆଘ୍ରାଣ କରଇ ॥ ୨୭
ଦେବତା-ମନୁଷ୍ୟନୟନ । ମନ ଯେ କରେ ଆହ୍ଲାଦନ ॥ ୨୮
ଏମନ୍ତ ଗମନବିହାର । ବିନୟବୀକ୍ଷଣ ସୁସ୍ୱର ॥ ୨୯
ଅକ୍ଷର ଅବୟବମାନେ । ତେଣେ ମନୁଷ୍ୟଙ୍କର ମନେ ॥ ୩୦
କୁସୁମାୟୁଧକୁ ବିବର । ଦେଉଣ ଅଛି ନିରନ୍ତର ॥ ୩୧
ସୁସ୍ୱାଦୁ ଅମୃତପ୍ରାଏକ । ମଦିରାପ୍ରାଏକ ମାଦକ ॥ ୩୨
ଏମନ୍ତ ହାସ, ଭାଷା ଦୁଇ । ନିଜ ବଦନରୁ ଗଳଇ ॥ ୩୩
ତାର ଆମୋଦେ ମଦ-ଅନ୍ଧ । ହୋଇ ଧାମନ୍ତି ଭୃଙ୍ଗବୃନ୍ଦ ॥ ୩୪
ସେମାନେ ବେଢ଼ନ୍ତେ ତକ୍ଷଣ । ବେଗରେ ଚାଳଇ ଚରଣ ॥ ୩୫
ତେଣେ ସୁନ୍ଦର ମନ୍ଦ ହୋଇ । ଉରଜଯୁଗଳ ଚଳଇ ॥ ୩୬

କବର[୧] ଭାରର ରଚନ । କିଂଚିତ ହୁଅଇ କମ୍ପନ ।। ୩୭
ଏ ରୂପେ ସେ ଦେବୀକି ଚାହିଁ । ଯେ କାମ ଅବସର ପାଇ ।। ୩୮
ସେ କାମବଶ ସେ ହୋଇଲା । ଜଡ଼ର ପ୍ରାୟେକ ବୋଇଲା ।। ୩୯
୭ ହେ ମୁନିବର[୨] ! କେବା ତୁହି । କି କରୁ ଏ ଗିରିରେ ଥାଇ ।। ୪୦
ପରମ ଦେବତା ମୁରାରି । ତା' ମାୟାରୂପ ଅଛୁ ଧରି ।। ୪୧
ହେ ମିତ୍ର ! ଏହୁ ଗୁଣହୀନ । ଧରିଛୁ ବେନି ଶରାସନ ।। ୪୨
ଆପଣା ଅର୍ଥେ ଅଛୁ ଧରି । କି ଅବା ବନରେ ବିହରି ।। ୪୩
ମୃଗର ପ୍ରାଏକ ପ୍ରମତ୍ତ । ଯେ ଆମ୍ଭ ଆଦି ତପୋବନ୍ତ ।। ୪୪
ବଶ କରିବା ଅର୍ଥେ ତାଙ୍କୁ । କି ଅବା ଧରିଛୁ ଏହାଙ୍କୁ ।। ୪୫
୮ ତୋହର ଏ ବେନି ଇକ୍ଷଣ । ଦିଶୁଅଛନ୍ତି ଯେହ୍ନେ ବାଣ ।। ୪୬
ଯହିଁରେ ପିଞ୍ଛପ୍ରାୟେ ହୋଇ । କମଳ ଦୁଇ ଅଛି ରହି ।। ୪୭
ସେ ବେନି ହୋଇଅଛି ଶାନ୍ତ । ପୁଂଖ[୩]ବିହୀନେ ଶୋଭାବନ୍ତ ।। ୪୮
ତହିଁରେ ଅତି ତୀକ୍ଷ୍ଣ ହୋଇ । ଅଗ୍ରଭାଗ ହିଁ ଶୋଭା ପାଇ ।। ୪୯
ଯାହାକୁ ବିନ୍ଧି ଲୋଡ଼ୁ ଏହା । ଆମ୍ଭେ ନ ଜାଣିଅଛୁଁ ତାହା ।। ୫୦
ଅରଣ୍ୟେ କରିଅଛୁଁ ସ୍ଥିତି । ଆମ୍ଭେ ତପସ୍ୱୀ ଜଡ଼ମତି ।। ୫୧
ଆମ୍ଭମାନଙ୍କର ଯେ କ୍ଷେମ । ତଦର୍ଥେ ହେଉ ତୋ' ବିକ୍ରମ ।। ୫୨
୯ [୪]ତା' ଅଙ୍ଗସୁବାସଲୋଭେଣ । କରନ୍ତେ ତା' ଅନୁଗମନ ।। ୫୩
ଭୃଙ୍ଗମାନଙ୍କୁ ପୁଣ ଚାହିଁ । ଆଗ୍ନୀଧ୍ର ବଚନ କହଇ ।। ୫୪
ସକଳ ଦିଗେ ବେଢ଼ି ତୋତେ । ଏ ଶିଷ୍ୟମାନେ ଅବିରତେ ।। ୫୫
ପଢ଼ନ୍ତି ସରହସ୍ୟ[୫] ସାମ । କରନ୍ତି ଈଶ୍ୱରଙ୍କୁ ଗାନ ।। ୫୬
ତୋହରି ଶିଖାରୁ ଗଳିଣ । ହୋଇ ଯେ ପୁଷ୍ପବରିଷଣ ।। ୫୭
ତାହାକୁ ଭଜନ୍ତି ସେମାନେ । ବେଦଶାଖାକୁ ଋଷି ଯେହ୍ନେ ।। ୫୮
୧୦ ତାର ନୂପୁରଧ୍ୱନି ଶୁଣି । ବଚନ କହୁଛନ୍ତି ପୁଣି ।। ୫୯
ହେ ବିପ୍ର ! ତୋହର ଚରଣ । ପଞ୍ଜରେ[୬] ଯେ ତିତ୍ତିରି[୭] ଗଣ ।। ୬୦

---

୧. କବର = ଖୋଷା, ଜୁଡ଼ା ।
୨. 'ମୁନିବର' ଏହି ପୁଂଲିଙ୍ଗ ସଂବୋଧନରୁ ତାହାର ଜଡ଼ତା ପ୍ରମାଣିତ ହେଉଅଛି ।
୩. ପୁଙ୍ଖ = ବାଣର ମୂଳସ୍ଥାନ ।
୪. ପୟାର ସଂଖ୍ୟା ୫୨ ପରେ ପୋଥିରେ ୫୪ ଥିବାହେତୁ ସ୍ୱାମିଟୀକା ଅନୁସାରେ ୫୩ ସଂଖ୍ୟକ ପୟାର ରଚିତ ହେଲା ।
୫. ସରହସ୍ୟ = ରହସ୍ୟ ଅର୍ଥାତ୍ ଉପନିଷଦ ସହିତ ।
୬. ଚରଣପଞ୍ଜର = ନୂପୁର ।
୭. ତିତ୍ତିରି = ପକ୍ଷୀବିଶେଷ; ରତ୍ନ (ସ୍ୱାମୀ) ।

ଅଦୃଶ୍ୟ ହୋଇଣ ମୁଖର । ବଚନ ଶୁଣୁଛୁଁ ତାଙ୍କର ॥ ୬୧
ନିତମ୍ବକାନ୍ତିପ୍ରାଏ ମଣି । ପୀତ ବସ୍ତ୍ରକୁ ବୋଲି ଜାଣି ॥ ୬୨
କାନ୍ତି କଦମ୍ବ କୁସୁମର । ନିତମ୍ବେ ଲିଖିତ ତୋହର ॥ ୬୩
[1]ଅଲାତଅଗ୍ନି ଅଛି ଯହିଁ । ମଣ୍ଡଳାକାର ହୋଇ ରହି ॥ ୬୪
ଏ ଘେନି ତୋର ପରିଧାନ । ବଲ୍‌କଲ ଅଛି କେଉଁ ସ୍ଥାନ ॥ ୬୫
୧୧ ସ୍ତନଯୁଗକୁ ପୁଣ ଚାହିଁ । ବାକ୍ୟ କହନ୍ତି ମୋହ ହୋଇ ॥ ୬୬
ତୋହର ଚାରୁ ଶୃଙ୍ଗ ଦୁଇ । କି ପୂର୍ଣ୍ଣ କରିଅଛୁ ତହିଁ ॥ ୬୭
ବହିଛୁ ମଧ୍ୟେ କୃଶ ହୋଇ । ମୋ' ନେତ୍ର ରହିଅଛି ଯହିଁ ॥ ୬୮
ଏ ତୋର ଶୃଙ୍ଗରେ ଅରୁଣ । ପଙ୍କ ପ୍ରକାଶି ଅଛି ପୁଣ ॥ ୬୯
ହେ ଚାରୁଗାତ୍ର ! ମୋ ନିବାସ । ଯେଣେ ତୁ କରୁଛୁ ସୁବାସ ॥ ୭୦
୧୨ ହେ ମିତ୍ର ! ତୋହର ଯେ ସ୍ଥାନ । ମୋତେ କରାଅ ତା' ଦର୍ଶନ ॥ ୭୧
ଯହିଁରେ ଜାତ ହେଲା ଲୋକ । ମୋ' ମନ ଆନନ୍ଦଦାୟକ ॥ ୭୨
ଅପୂର୍ବ ଅବୟବ ବେନି । ଏରୂପେ ବକ୍ଷେ ଥାଇ ଘେନି ॥ ୭୩
ଅଦ୍ଭୁତ ସରସ ବିଳାସ । ସୁଧା ଆଦିରେ ମୁଖଦେଶ ॥ ୭୪
୧୩ କିସ ତୁ କରୁଛୁ ଆହାର । ଯାହାର ଚର୍ବଣୁଁ ଏ ମୋର ॥ ୭୫
ବହୁଛି ହବିର୍ଗନ୍ଧ[2] ବାତ । ବିଷ୍ଣୁର କଳା ତୁ ବିଦିତ ॥ ୭୬
ନିମେଷରହିତ ମକର । ଯୁଗଳ[3] ଅଛି ତୋ' କର୍ଣ୍ଣର ॥ ୭୭
ତୋ' ମୁଖ ସରସ[4] ଅଟଇ । ଚଞ୍ଚଳ ମୀନଯୁଗ[5] ଯହିଁ ॥ ୭୮
ଯହିଁରେ ଶୋହେ ଦ୍ୱିଜପନ୍ତି[6] । ନିକଟେ ଭୃଙ୍ଗଗଣେ[7] ଛନ୍ତି ॥ ୭୯
୧୪ କନ୍ଦୁକ ଦେଖିଣ ତା' କରେ । ପୁଣି ବୋଲନ୍ତି ମୋହଭରେ ॥ ୮୦
ତୋ' କରପଦ୍ମେ ଘାତ ପାଇ । ଯେ ସର୍ବଦିଗରେ ଭ୍ରମଇ ॥ ୮୧
ମୋହର ନୟନଯୁଗଳ । କରେ ସେ ପତଙ୍ଗ[8] ଚଞ୍ଚଳ ॥ ୮୨
ଫିଟୁଛି ବକ୍ର ଜଟାଗଣ । ଏହା କି ନ କରୁ ସ୍ମରଣ ॥ ୮୩
ଲମ୍ପଟ ଅଟେ ଏ ସମୀର । ନୀବୀକି ହରୁଛି ତୋହର ॥ ୮୪
୧୫ ହେ ତପୋଧନ ! ରୂପ ତୋର । ତପକୁ ନାଶେ ତପିଙ୍କର ॥ ୮୫
ତୁ ଏହା କେଉଁ ତପସ୍ୟାରେ । ଲଭିଲୁ କହ ମୋ' ଆଗରେ ॥ ୮୬
ମୋ' ସଙ୍ଗେ ତପ କରିବାରେ । ସମର୍ଥ ହୁଅ ତୁ ଏଠାରେ ॥ ୮୭
କି ଅବା ସେ ଭବଭାବନ[9] । ବ୍ରହ୍ମା ମୋଠାରେ ସୁପ୍ରସନ୍ନ ॥ ୮୮

---

୧. ଅଲାତ = ଅଙ୍ଗାର
୨. ହବିର୍ଗନ୍ଧ = ତାମ୍ବୂଳବାସ ।
୩. ମକରଯୁଗଳ = ମକରକୁଣ୍ଡଳଦ୍ୱୟ
୪. ସରସୀ ।
୫. ମୀନଯୁଗ = ନେତ୍ରଦ୍ୱୟ
୬. ଦ୍ୱିଜ = ଦାନ୍ତ, ଦ୍ୱିଜ = ରାଜହଂସ ପକ୍ଷୀ ।
୭. ଭୃଙ୍ଗଗଣ = କେଶସ୍ତୋମ
୮. ପତଙ୍ଗ = କନ୍ଦୁକ ।
୯. ଭବଭାବନ = ସଂସାରସ୍ରଷ୍ଟା ।

୧୬ ହେ ଦ୍ୱିଜ ! ଦେବଦତ୍ତ ତୁହି । ତୋତେ ମୁଁ ଛାଡ଼ିବଇଁ ନାହିଁ ॥ ୮୯
ତୁ ମୋର ପ୍ରିୟ, ତୋର ଠାରେ । ମୋ ମନ ନୟନ ନିର୍ଭରେ ॥ ୯୦
ରହିଣ ଅଛି ଲଗ୍ନ ହୋଇ । ଆନ ଦିଗକୁ ଯାଉ ନାହିଁ ॥ ୯୧
ହେ ଚାରୁଶୃଙ୍ଗି ! ଚିତ୍ତ ତୋର । ଯହିଁକି ଯିବାକୁ ବିଚାର ॥ ୯୨
ସେଠାକୁ ଘେନିଯାଅ ମୋତେ । ତୋ ସଖୀମାନେ ଅବିରତେ ॥ ୯୩
ମୋଠାରେ ଅନୁକୂଳ ହୋଇ । ସେବା କରନ୍ତୁ ଭାବ ବହି ॥ ୯୪

ଶ୍ରୀଶୁକ ଉବାଚ

୧୭-୧୮ ଏ ଘେନି କାମିନୀଜନର । ଅନୁନୟରେ ସେ ଚତୁର ॥ ୯୫
ପଣ୍ଡିତମତି ସେ ଅଟଇ । ଗ୍ରାମ୍ୟ ବିଦଗ୍ଧ ଭାଷା କହି ॥ ୯୬
ସୁରବଧୂକୁ ସମ୍ମାନନ । କଲା ସେ ଆଗ୍ନୀଧ୍ର-ରାଜନ ॥ ୯୭
ସେ ପୂର୍ବଚିତ୍ତି ତଦନ୍ତରେ । ସେ ବୀରଯୂଥପତିଠାରେ ॥ ୯୮
ଶୁଦ୍ଧ ଚରିତ, ରୂପ, ବୁଦ୍ଧି । ବିଦ୍ୟା, ବୟସ, ଭୂତି ଆଦି ॥ ୯୯
ଦେଖିଣ ହୋଇ ବଶମନ । ଅଯୁତ ଅଯୁତ ଲକ୍ଷଣ ॥ ୧୦୦
କାଳ ରହିଲା ଭୂମିଭାଗେ । ସେ ଜମ୍ବୁ ଦ୍ୱୀପପତିସଂଗେ ॥ ୧୦୧
ଭୂମି, ସ୍ୱର୍ଗରେ ଭୋଗ ଯେତେ । ଭୁଞ୍ଜିଲା ତାହା ତୋଷଚିତ୍ତେ ॥ ୧୦୨
୧୯-୨୦ ତା'ଠାରେ କଲାକ ସଂଭବ । ସେହୁ ଆଗ୍ନୀଧ୍ର-ସୁତ ନବ ॥ ୧୦୩
ନାଭି, କିଂପୁରୁଷ ଏ ବେନି । ହରିବର୍ଷକୁ ମିଶି ତିନି ॥ ୧୦୪
ଚତୁର୍ଥ ଇଳାବୃତ ନାମ । ରମ୍ୟକ ଅଟଇ ପଞ୍ଚମ ॥ ୧୦୫
ହିରଣ୍ମୟ, କୁରୁ ବେନି । ଭଦ୍ରାଶ୍ୱ, କେତୁମାଳ ଘେନି ॥ ୧୦୬
ନବ କୁମାର ଏ ପ୍ରକାରେ । ପ୍ରସବି ବର୍ଷରେ ବର୍ଷରେ ॥ ୧୦୭
ସେ ପୂର୍ବଚିତ୍ତି ଯାଇ ପୁଣ । ସେବିଲା ବ୍ରହ୍ମାଙ୍କ ଚରଣ ॥ ୧୦୮
୨୧ ଆଗ୍ନୀଧ୍ରତନୁଜସମୂହ । ଲଭିଣ ମାତା-ଅନୁଗ୍ରହ ॥ ୧୦୯
ଦୃଢ଼ଶରୀର, ବଳଯୁତ । ସ୍ୱଭାବେ ହୋଇଲେ ସମସ୍ତ ॥ ୧୧୦
ପିତାବିଭାଗ ଅନୁମତେ । ଜମ୍ବୁଦ୍ୱୀପର ଖଣ୍ଡ ଯେତେ ॥ ୧୧୧
ତା' ନିଜ ନାମେ ପ୍ରଚରାଇ । ଭୁଞ୍ଜିଲେ ତୋଷଚିତ୍ତ ହୋଇ ॥ ୧୧୨
୨୨ କାମଭୋଗରେ ଅତୃପତି । ହୋଇ ଆଗ୍ନୀଧ୍ର ନରପତି ॥ ୧୧୩
ଅପସରାକୁ ନିରନ୍ତରେ । ଅଧିକ ମଣିଣ ମନରେ ॥ ୧୧୪
ବେଦୋକ୍ତ ମନ୍ତ୍ର-ଆହୁତିରେ । ବ୍ରହ୍ମାଙ୍କୁ ତୋଷିଣ ଯଜ୍ଞରେ ॥ ୧୧୫
ଅପ୍ସରାସଙ୍ଗେ ଏକ ଲୋକେ । ରହିଲା ପ୍ରାନ୍ତେ ମନସୁଖେ ॥ ୧୧୬
ଯେଉଁ ଲୋକରେ ପିତୃମାନେ । ରହିଅଛନ୍ତି ତୋଷମନେ ॥ ୧୧୭
୨୩ ମାତାମରଣ ଅନନ୍ତରେ । ସେ ସର୍ବ ନବ ସହୋଦରେ ॥ ୧୧୮
ପ୍ରଥମେ ମେରୁଦେବୀ ବାମା । ଦ୍ୱିତୀୟେ ପ୍ରତିରୂପା ରାମା ॥ ୧୧୯

| | | | |
|---|---|---|---|
| ତୃତୀୟେ ଉଗ୍ରଦଂଷ୍ଟ୍ରା ତହିଁ | । ଚତୁର୍ଥ ଲତା ନାମ କହି | ॥ | ୧୨୦ |
| ଯେ ରମ୍ୟା, ଶ୍ୟାମା, ନାରୀ ତିନି | । ଭଦ୍ରା, ଦେବଦୀଧିତି,[1] ଘେନି | ॥ | ୧୨୧ |
| ଏ ରୂପେ ଥିଲେ ଯେ ମେରୁର | । ନବ କନ୍ୟକା ମନୋହର | ॥ | ୧୨୨ |
| ତାହାଙ୍କୁ ବିବାହ ହୋଇଲେ | । ଧର୍ମରେ ପୃଥିବୀ ପାଳିଲେ | ॥ | ୧୨୩ |
| କହଇ ଦ୍ୱିଜ ଦୀନବଂଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ॥ | ୧୨୪ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଆଗ୍ନୀଧ୍ରବର୍ଣ୍ଣନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ॥

## ତୃତୀୟ ଅଧ୍ୟାୟ

ତୃତୀୟେ ଚରିତଂ ନାଭେଃ ପରଂ ମଙ୍ଗଳମୀର୍ଯ୍ୟତେ ।
ଯସ୍ୟ ଯଜ୍ଞେ ପ୍ରତୀତଃ ସନ୍ ପୁତ୍ରୋଽଭୂଦୃଷଭୋ ହରିଃ ॥ ୧

| | | | | |
|---|---|---|---|---|
| ୧ | ଅପତ୍ୟକାମ ହୋଇ ନାଭି | । ଯେ ଅପୁତ୍ରିକ ମେରୁଦେବୀ | ॥ | ୧ |
| | ତା' ସଙ୍ଗେ ସମାହିତ ହେଲା | । ଯଜ୍ଞପୁରୁଷଙ୍କୁ ପୂଜିଲା | ॥ | ୨ |
| ୨ | ସେ ନାଭି ବିଶୁଦ୍ଧ ଭାବରେ | । ଯଜ୍ଞ ବିସ୍ତାରନ୍ତେ ଶ୍ରଦ୍ଧାରେ | ॥ | ୩ |
| | ପ୍ରବର୍ଗ୍ୟସଂଜ୍ଞ କର୍ମଗଣ | । ହୁଅନ୍ତେ ତହିଁ ପ୍ରଚରଣ | ॥ | ୪ |
| | ଯେ ଦେଶ, କାଳ, ମନ୍ତ୍ରମାନ | । ଋତ୍ୱିଜ, ଦକ୍ଷିଣାବିଧାନ | ॥ | ୫ |
| | ଯେ ଦ୍ରବ୍ୟ, ଯୋଗଉପପତ୍ତି | । ତେଣେ ଦୁର୍ଲ୍ଲଭ ଯେ ଶ୍ରୀପତି | ॥ | ୬ |
| | ଭକ୍ତ-ଅଭିପ୍ରାୟବିଧାନ | । ଅର୍ଥେ ଯେ ଘେନିଥାନ୍ତି ମନ | ॥ | ୭ |
| | ସେବକବତ୍ସଳ ଭାବରେ | । ଆତ୍ମା ପ୍ରକାଶିଲେ ସେଠାରେ | ॥ | ୮ |
| | ଅଟେ ସକଳ ଲୋକଙ୍କର | । ହୃଦୟଙ୍ଗମ[2] ଯେ ଶରୀର | ॥ | ୯ |
| | ମନନୟନ-ସୁଖକର | । ଅବୟବରେ ମନୋହର | ॥ | ୧୦ |
| ୩ | ପ୍ରକାଶିଛନ୍ତି ଚାରି ଭୁଜ | । ପୁରୁଷୋତ୍ତମ ଦିବ୍ୟତେଜ | ॥ | ୧୧ |
| | ପୀତ କୌଶେୟ-ବସ୍ତ୍ରଧର | । ଶ୍ରୀବତ୍ସଲାଞ୍ଛନ ସୁନ୍ଦର | ॥ | ୧୨ |
| | କୌସ୍ତୁଭମଣି ବନମାଳ | । ସୁନ୍ଦର ଦିଶେ ବକ୍ଷସ୍ଥଳ | ॥ | ୧୩ |
| | ଗଦା, କମଳ, ଚକ୍ର, ଦର[3] | । ଇତ୍ୟାଦି ଆୟୁଧେ ସୁନ୍ଦର | ॥ | ୧୪ |
| | ଯହିଁ କିରଣମାନ ସ୍ଫୁଟ | । ସେ ମଣିସଂଯୁତ ମୁକୁଟ | ॥ | ୧୫ |
| | କୁଣ୍ଡଳ, କଟିସୂତ୍ରହାର | । କେୟୂର, କନକ ନୂପୁର | ॥ | ୧୬ |
| | ଭୂଷିତ ଇତ୍ୟାଦି ଭୂଷଣେ | । ଦେଖି ତାହାଙ୍କୁ ତତକ୍ଷଣେ | ॥ | ୧୭ |

---

୧. ଦେବବୀତି (ପାଠାନ୍ତର) ।　　୨. ହୃଦୟଙ୍ଗମ = ସୁଖକର ।
୩. ଦର = ଶଙ୍ଖ, ଅବ୍ଜରି = ଚକ୍ର (ମୂଳପାଠେ 'ଚକ୍ର' ଅର୍ଥ ବାଚକ 'ଅବ୍ଜରି' ଶବ୍ଦ ଅଛି ।)

ଋତ୍ୱିକ, ସଭ୍ୟ, ଯଜମାନ । ସମସ୍ତେ କଲେ ବହୁମାନ୍ୟ ॥ ୧୮
ଯେହ୍ନେ ଦରିଦ୍ର ଲଭି ଧନ । ହୁଅଇ ହରଷିତ ମନ ॥ ୧୯
ପୂଜାସାମଗ୍ରୀ ଘେନି କରେ । ସ୍ତୁତି ଭଣିଲେ ନମ୍ର ଶିରେ ॥ ୨୦

ଶ୍ରୀଋତ୍ୱିଜ ଉଚୁଃ

୪ ହେ ପୂଜ୍ୟତମ ! ଆମ୍ଭେମାନେ । ତୋର ସେବକ ଏ ଭୁବନେ ॥ ୨୧
ଆମ୍ଭର ଯେ ଅବା ଅର୍ହଣ[୧] । ତୁ ତାହା ଘେନ ପୁଣ ପୁଣ ॥ ୨୨
ତୋର ସ୍ତୁତିରେ ନୋହୁ କ୍ଷମ । କେବଳମାତ୍ର ନମୋ ନମ ॥ ୨୩
ଶିଖିଣ ଅଛୁଁ ଏ ବଚନ । ଯା' କହିଛନ୍ତି ସାଧୁଜନ ॥ ୨୪
ପ୍ରକୃତି-ଗୁଣମାନଙ୍କର । ପ୍ରପଞ୍ଚ ଅଟେ ଏ ସଂସାର ॥ ୨୫
ଏଥି ଯାହାର ମନ ଥାଇ । ଆପଣା ଦେହେ ପ୍ରଭୁ ନୋହି ॥ ୨୬
ଏମନ୍ତ ହୋଇ କେଉଁ ନର । ସ୍ୱରୂପ ଜାଣିମାକୁ ତୋର ॥ ୨୭
ପ୍ରପଞ୍ଚଗତ ରୂପ, ନାମ । ଆକୃତିରେ ହୋଇବ କ୍ଷମ ॥ ୨୮
ପ୍ରକୃତି ପୁରୁଷ ଯେ ଦୁଇ । ତାଙ୍କ ଈଶ୍ୱର ଅଟୁ ତୁହି ॥ ୨୯
୫ ସକଳ ଜନମାନଙ୍କର । ବୃଜିନ କରେ ଯେ ସଂହାର ॥ ୩୦
ଅତିମଙ୍ଗଳ ଶ୍ରେଷ୍ଠ ଗୁଣ । ସମୂହ ଅଛି ଯେ ତୋ'ପୁଣ ॥ ୩୧
ତହିଁରୁ କିଛିମାତ୍ର କହି । ପାରିଲେ ତୋ' ରୂପ ଜାଣଇଁ ॥ ୩୨
୬ ତୋହର ପରିଜନମାନେ । ସରାଗେ ଗଦ୍‌ଗଦ[୨] ବଚନେ ॥ ୩୩
ସଲିଳ, ପଲ୍ଲବ[୩], ତୁଳସୀ । ଦୂର୍ବା ଅଙ୍କୁରରେ ବିଶେଷି ॥ ୩୪
ପୂଜା କରନ୍ତି ତୋ' ଚରଣେ । ସଂତୋଷ ହେଉ ନାଥ ! ତେଣେ ॥ ୩୫
୭ } ନାନାପ୍ରକାର ବିଭଭର । ତେଣେ ସମୃଦ୍ଧ ଏ ଅଧ୍ୱର[୪] ॥ ୩୬
୮ } ଏଣେ ଅପେକ୍ଷା ତୋର ନାହିଁ । ଏମନ୍ତ ଆମ୍ଭେ ଜାଣୁଁଥାଇଁ ॥ ୩୭
ଆତ୍ମାସକାଶୁଁ ସର୍ବଦିନେ । ସାକ୍ଷାତେ ବ୍ୟତିରେକହୀନେ ॥ ୩୮
ଯା' ଅନୁଭବ କରୁଁ ଥାଇ । ସେ ପୁରୁଷାର୍ଥରୂପ ତୁହି ॥ ୩୯
ଭୋ ନାଥ ! କାମ ବାଞ୍ଛି ମନେ । ଯାଗ କରୁଛୁଁ ଆମ୍ଭେମାନେ ॥ ୪୦
ତୋହର ଆରାଧନମାତ୍ର । ବିଦିତ ହେଉ ଏହୁ ସତ୍ର ॥ ୪୧
୯ ହେ ପ୍ରଭୁ ପରମପୁରୁଷ । ଯେ ପ୍ରାଣୀ ଅଟନ୍ତି ବାଳିଶ[୫] ॥ ୪୨
ନିଜ ମଙ୍ଗଳ ନ ଜାଣନ୍ତି । ତାଙ୍କୁ ଅଧିକ କୃପା ଚିନ୍ତି ॥ ୪୩
ମୁକତି ନାମେ ଆପଣାର । ମହିମା କରନ୍ତେ ପ୍ରଚାର ॥ ୪୪
ଯଥାବିଧାନରେ ପୂଜିତ । ହୋଇ ନ ଥିଲେ ହେଁ ତୁରିତ ॥ ୪୫

---

୧. ଅର୍ହଣ = ପୂଜନ ୨. ଜୟ ଜୟ ଇତି ଗଦ୍‌ଗଦବଚନ ।
୩. ସିତ ପଲ୍ଲବ । ଶିଳ ଇତି ପାଠେ, ଶିଳ = କୁଶାଦି ମଞ୍ଜରୀ ।
୪. ଅଧ୍ୱର = ଯଜ୍ଞ ୫. ବାଳିଶ = ମୂର୍ଖ ।

ଇତର ଲୋକପ୍ରାୟ ହୋଇ । ଲକ୍ଷିତ ହୋଇଲେ ଏଠାଇ ।। ୪୬
୧୦ ଯଦ୍ୟପି କାମବରମାନ । ଦେବାକୁ ହୋଇଛ ପ୍ରସନ୍ନ ।। ୪୭
ହେ ପୂଜ୍ୟତମ ! ତଥାପି ହି । ଆମ୍ଭର ବର ଏ ଅଟଇ ।। ୪୮
ଯାହାଟି ଏ ରାଜରଷିର । ଯଜ୍ଞରେ ଭକ୍ତଜନଙ୍କର ।। ୪୯
ହୋଇଲ ନୟନଗୋଚର । ତୁମ୍ଭେ ବରଦଙ୍କ ଈଶ୍ୱର ।। ୫୦
୧୧ ଅସଙ୍ଗେ[1] ନିଶ୍ଚିତ ଯେ ଜ୍ଞାନ । ସେ ହାଦେ ଅଟଇ ଦହନ ।। ୫୧
ତେଣେ ଅଶେଷ ମଳ ଦହି । ତୁମ୍ଭର ସ୍ୱଭାବକୁ ବହି ।। ୫୨
ଯେ ଆତ୍ମାରାମ ମୁନିଜନ । ସେ ପର-ମଙ୍ଗଳ ଅୟନ ।। ୫୩
ଗୁଣସମୂହକୁ ତୁମ୍ଭର । କହନ୍ତି ନ କରି ଗୋଚର ।। ୫୪
୧୨ ସ୍ଖଳନ, କ୍ଷୁତ[2], ନିପତନ । ଜୃମ୍ଭା, ଦୁଃସ୍ଥିତି ଆଦିମାନ ।। ୫୫
ଜ୍ୱର, ମରଣ ସମୟରେ । ଆମ୍ଭେ ତୁମ୍ଭର ସ୍ମରଣରେ ।। ୫୬
ଅବଶ ହୁଅନ୍ତେ ଈଶ୍ୱର । ସଗୁଣ ନାମମାନେ ତୋର ।। ୫୭
ହୁଅନ୍ତୁ ବଚନଗୋଚର । ଯେ ସର୍ବପାପଜାଳ[3] ହର ।। ୫୮
୧୩ ଏ ରାଜରଷି ପୁତ୍ରକାମ । ପୁତ୍ର ବାଞ୍ଛଇ ତୁମ୍ଭ ସମ ।। ୫୯
ଯେ ତୁମ୍ଭେ ଐହିକ ସୁଖର । ସ୍ୱର୍ଗ-ଅପବର୍ଗ-ଈଶ୍ୱର ।। ୬୦
ତୁମ୍ଭକୁ କରୁଛି ଭଜନ । ପୁତ୍ରରେ କରି ଅର୍ଥଜ୍ଞାନ ।। ୬୧
ଯେହ୍ନେ ଧନୀକି ଦୁଃଖିଜନ । ମାଗେ ତୁଷକଣାଦିମାନ ।। ୬୨
୧୪ ଅଜେୟ ଅଟେ ମାୟା ତୋର । ଅଲକ୍ଷ୍ୟମାର୍ଗ ଅଗୋଚର ।। ୬୩
ତେଣେ ଅପରାଜିତ ହୋଇ । ଆବୃତମତି ଅବା ନୋହି ।। ୬୪
ବିଷୟବିଷର ବେଗେଣ । ଆଚ୍ଛନ୍ନପ୍ରକୃତି ନୋହିଣ ।। ୬୫
କେ ଅବା ସଂସାରେ ଅଛଇ । ଯେ ସାଧୁପାଦ ସେବିନାହିଁ ।। ୬୬
୧୫ ସକଳ ଜୀବ[4]ମାନଙ୍କର । ଯେ ତୁମ୍ଭ କର୍ତ୍ତା ହେ ଈଶ୍ୱର ।। ୬୭
ଆମ୍ଭେ ସମସ୍ତ ମନ୍ଦଜନ । ପୁତ୍ରରେ କରି ଅର୍ଥଜ୍ଞାନ ।। ୬୮
ତୁମ୍ଭଙ୍କୁ ଏଠାକୁ ଆହ୍ୱାନ । କଲୁ ଯା' ସେ ଦେବହେଳନ[5] ।। ୬୯
ତୁମ୍ଭେ ସର୍ବାତ୍ମା ଅଟ ଯେଣୁ । ସେ କଥା କ୍ଷମା କର ତେଣୁ ।। ୭୦

ଶ୍ରୀଶୁକ ଉବାଚ

୧୬ ଏ ରୂପେ ପଢ଼ି ସ୍ତୁତିମାନ । ସ୍ତୁତି କରନ୍ତେ ବିପ୍ରଜନ ।। ୭୧
ସେ ନାଭି ବର୍ଷ ଅଧିପତି । କଲେ ଯା' ଚରଣକୁ ନତି ।। ୭୨
ସେ ଦେବଶ୍ରେଷ୍ଠ ଭଗବାନ । ସଦୟେ କହିଲେ ବଚନ ।। ୭୩

---

୧. ଅସଙ୍ଗ = ବୈରାଗ୍ୟ । ୨. କ୍ଷୁତ (ସଂ କ୍ଷୁତ୍) = କ୍ଷୁଧା । ୩. ଜାଳ = ସମୂହ ।
୪. କାର୍ଯ୍ୟ (ପାଠାନ୍ତର) । ୫. ଦେବହେଳନ = ଦେବତା-ଅବଜ୍ଞାନ ।

ଶ୍ରୀଭଗବାନୁବାଚ

୧୭ ହେ ଋଷିମାନେ ! ଏ ଭୁବନେ । ସତ୍ୟବଚନ ତୁମ୍ଭେମାନେ ॥ ୭୪
ମୋର ସମାନ ଏ ନୃପର । ଜନମ ହୋଇବ କୁମର ॥ ୭୫
ଦୁର୍ଲଭ ବର ଏ ପ୍ରକାରେ । ମୋତେ ମାଗିଲ ଏ ସଂସାରେ ॥ ୭୬
ମୋହର ଅନୁରୂପ ମୁହିଁ । ଯେଣୁ ମୋ'ଠାରୁ ଭିନ୍ନ ନାହିଁ ॥ ୭୭
ତଥାପି ନୁହଇ ଅନ୍ୟଥା । ବ୍ରାହ୍ମଣବଚନ ସର୍ବଥା ॥ ୭୮
ଯେଣୁ ଅଟନ୍ତି ମୁଖ ମୋର । ବରିଷ୍ଠ ବ୍ରାହ୍ମଣନିକର ॥ ୭୯
୧୮ ଏ ନାଭିପୁତ୍ରରୂପେ ମୁହିଁ । ଅଂଶରେ ଅବତରିବଇଁ ॥ ୮୦
ଯେଣୁ ମୁଁ ଆପଣା ସମାନ । କରିଣ ଦେଖୁନାହିଁ ଆନ ॥ ୮୧

ଶ୍ରୀଶୁକ ଉବାଚ

୧୯ ଶୁଣନ୍ତେ ମେରୁଦେବୀ ପୁଣି । ଏ ରୂପେ ତା' ପତିକି ଭଣି ॥ ୮୨
ସେ ଅଗ୍ନିମଧ୍ୟେ ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଧାନ ॥ ୮୩
୨୦ ହେ ପରୀକ୍ଷିତ ! ଏ ପ୍ରକାରେ । ପରମ ଋଷିଙ୍କର ଠାରେ ॥ ୮୪
ପ୍ରସନ୍ନ ହୋଇ ଦେବହରି । ନାଭିର ପ୍ରିୟ ବାଞ୍ଛା କରି ॥ ୮୫
ନାଭି-ରାଜାର ଅନ୍ତଃପୁରେ । ସେ ମେରୁଦେବୀର ଗର୍ଭରେ ॥ ୮୬
ତପସ୍ୱୀ, ଜ୍ଞାନୀ, ଦିଗମ୍ବର । ନୈଷ୍ଠିକ ବ୍ରହ୍ମଚାରିଙ୍କର ॥ ୮୭
ଧର୍ମକୁ ଦେଖାଇବା ପାଇଁ । ଜନ୍ମିଲେ ସତ୍ତ୍ୱମୂର୍ତ୍ତି ହୋଇ ॥ ୮୮
ସେ ହରିଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥ ୮୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଋଷଭଦେବାବିର୍ଭାବୋ
ନାମ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

ଚତୁର୍ଥାଦି-ତ୍ରିଭିଃ ପ୍ରୋକ୍ତମୃଷଭସ୍ୟେହିତଂ ମହତ୍ ।
ଲୋକାର୍ଥଂ ଯେନ ସତ୍‌କର୍ମ ନୈଷ୍କର୍ମ୍ୟଂ ଚ ନିଦର୍ଶିତମ୍ ॥ ୧
ଚତୁର୍ଥେ ଶତପୁତ୍ରସ୍ୟ ରାଜ୍ୟଂ ତସ୍ୟୋପବର୍ଣ୍ଣ୍ୟତେ ।
ଯସ୍ୟ ରାଜ୍ୟେ ଜନଃ ସର୍ବଃ ସନ୍ତୋଷାମୃତନିର୍ବୃତଃ ॥ ୨

ଶ୍ରୀଶୁକ ଉବାଚ

୧ ଏଥୁ ଅନ୍ତରେ ଶୁଣ ରାଏ । ନାଭିର ହୋଇଲା ତନୟେ ॥ ୧
ଜନ୍ମକାଳରୁ ତାହାଠାର । ଈଶ୍ୱରଲକ୍ଷଣ ଅପାର ॥ ୨

ସମତା, ବଇରାଗ୍ୟ, ଶାନ୍ତି । ଐଶ୍ୱର୍ଯ୍ୟ ଯେ ମହାବିଭୂତି ॥ ୩
ତେଣେ ତାହାର ଦିନୁଁଦିନ । ବଢୁଛି ଅନୁଭାବମାନ ॥ ୪
ଏ ରୂପେ ଦେଖି ତାକୁ ତେବେ । ଅମାତ୍ୟ, ପ୍ରଜା, ବିପ୍ର, ଦେବେ ॥ ୫
ଅବନିପାଳନନିମିତ୍ତେ । ଅତ୍ୟନ୍ତ ସ୍ପୃହା କଲେ ଚିତ୍ତେ ॥ ୬
୨ ବରିଷ୍ଠ ଅଟେ ତାଙ୍କ କାୟ । କବିଙ୍କ କବିତ୍ୱବିଷୟ ॥ ୭
ତେଜ, ସଂପତ୍ତି, ବଳ, ଯଶ । ବୀର୍ଯ୍ୟ, ଶଉର୍ଯ୍ୟ ଯେ ପ୍ରକାଶ ॥ ୮
ତାଠାରେ ଏତେକ ଦେଖିଲେ । ଋଷଭ ନାମ ପିତା ଦେଲେ ॥ ୯
୩ ବିବାଦ କରି ସଙ୍ଗେ ତାର । ତା' ଭୂମିଖଣ୍ଡେ ପୁରନ୍ଦର ॥ ୧୦
ନ କଲା ଜଳବୃଷ୍ଟି ଯେବେ । ଋଷଭ ଯୋଗେଶ୍ୱର ତେବେ ॥ ୧୧
ହସିଣ ସ୍ୱଯୋଗମାୟାରେ । ବର୍ଷିଲେ ଆପଣା ଖଣ୍ଡରେ ॥ ୧୨
ଜଗତେ ଅଜନାଭ ହୋଇ । ଯେ ଖଣ୍ଡ ବିଦିତ ଅଟଇ ॥ ୧୩
୪ } ନାଭି ଯେମନ୍ତ ବାଞ୍ଛା କଲା । ସେ ରୂପେ ସୁପୁତ୍ର ପାଇଲା ॥ ୧୪
୫ } ପ୍ରମୋଦେ ବିହ୍ୱଳ ହୋଇଣ । ଗଦ୍‌ଗଦ ବଚନ କହିଣ ॥ ୧୫
ପୁରାଣପୁରୁଷ ଯେ ହରି । ସ୍ୱେଚ୍ଛାରେ ନରଦେହ ଧରି ॥ ୧୬
ତାହାଙ୍କୁ ସାନୁରାଗ ହୋଇ । ଭୋ ବତ୍ସ ! ତାତ ! ବୋଲି ରାଇ ॥ ୧୭
ଲାଳନା କରି ନରପତି । ମାୟାରେ ହୋଇ ମୂଢ଼ମତି ॥ ୧୮
ପରମ ଆନନ୍ଦ ମନରେ । ଲଭିଲା ଅନବରତରେ ॥ ୧୯
ପୌର[୧], ପ୍ରକୃତି[୨], ଆଦିଙ୍କର । ସ୍ନେହକୁ ଜାଣି ପୁତ୍ରଠାର ॥ ୨୦
ସମୟେ ଧର୍ମରକ୍ଷା ଅର୍ଥେ । ରାଜା କରିଣ ଯଥୋଚିତେ ॥ ୨୧
ସମର୍ପି ବ୍ରାହ୍ମଣଙ୍କ ଠାରେ । ସେ ନାଭି ଭାର୍ଯ୍ୟାସଂଗତରେ ॥ ୨୨
ବଦରୀ ଆଶ୍ରମେ ମିଳିଣ । ଯେ ଅଟେ ପ୍ରସନ୍ନ, ନିପୁଣ ॥ ୨୩
ସେ ତପସମାଧିରେ ପୁଣ । ସେବିଣ ନରନାରାୟଣ ॥ ୨୪
ସମୟେ ତାହାଙ୍କ ପ୍ରସାଦେ । ମୁକ୍ତି ଲଭିଲା ଅପ୍ରମାଦେ ॥ ୨୫
୬ ହେ ପରୀକ୍ଷିତ ! ଶ୍ଲୋକ ଦୁଇ । ନାଭିବିଷୟେ ଛନ୍ତି କହି ॥ ୨୬
ଯେ ନାଭି ରାଜରଷି ତାର । କର୍ମକୁ କେ କରିବ ନର ॥ ୨୭
ଯାହାର ଶୁଦ୍ଧ କର୍ମେ କରି । ପୁତ୍ର ହୋଇଲେ ଦେବ ହରି ॥ ୨୮
୭ ନାଭି ନୃପତି ଠାରୁ ଆନ । କେ ଅଛି ହୋଇଣ ବ୍ରହ୍ମଣ୍ୟ ॥ ୨୯
ବ୍ରାହ୍ମଣେ ଯାହାର ଯଜ୍ଞରେ । ପୂଜିତ ହୋଇ ଦକ୍ଷିଣାରେ ॥ ୩୦
ଆପଣା ମନ୍ତ୍ରଙ୍କର ବଳେ । ଯଜ୍ଞେଶ୍ୱରଙ୍କୁ ଦେଖାଇଲେ ॥ ୩୧
୮ ହେ ନୃପ ! ଏଥୁ ଅନନ୍ତର । ଋଷଭ ରୂପୀ ସେ ଈଶ୍ୱର ॥ ୩୨

---

୧. ପୌର = ପୁରସ୍ଥ ଲୋକେ    ୨. ପ୍ରକୃତି = ଅମାତ୍ୟ ।

| | | | | |
|---|---|---|---|---|
| | ଯେଉଁ ବର୍ଷରେ ରହିଛନ୍ତି | ଟାହାଙ୍କୁ କର୍ମକ୍ଷେତ୍ର ଚିନ୍ତି | ॥ | ୩୩ |
| | ଗୁରୁକୁଳରେ ବାସ କଲେ | ଗୁରୁଙ୍କୁ ଦକ୍ଷିଣାକୁ ଦେଲେ | ॥ | ୩୪ |
| | ଗୁରୁଆଜ୍ଞାରେ ଗୃହମେଧି | ଧର୍ମଶିକ୍ଷାରେ ଦେଇ ବୁଦ୍ଧି | ॥ | ୩୫ |
| | ଶ୍ରୁତି-ସ୍ମୃତିରେ ଯେ ଉକତ | ସେ କର୍ମ ଆଚରନ୍ତେ ନିତ୍ୟ | ॥ | ୩୬ |
| | ଇନ୍ଦ୍ର ଅଛନ୍ତି ଯାକୁ ଦେଇ | ଜୟନ୍ତୀ ନାମ ଯେ ଅଟଇ | ॥ | ୩୭ |
| | ସେ କନ୍ୟାଠାରେ ପୁତ୍ର ଶତ | ଆମ୍ଭସମାନେ କଲେ ଜାତ | ॥ | ୩୮ |
| ୯ | ତାହାଙ୍କ ମଧ୍ୟେ ପୁଣ ଶ୍ରେଷ୍ଠ | ଭରତ ମହାଯୋଗୀ ଜ୍ୟେଷ୍ଠ | ॥ | ୩୯ |
| ୧୦ | ଏ ଭୂମି ଯାହାର ନାମରେ | ଭାରତ ବୋଲାଇ ସଂସାରେ | ॥ | ୪୦ |
| | ତାହାକୁ ଅନୁଗତ ହୋଇ | ପ୍ରଧାନ ଏହୁ ନବ ଭାଇ | ॥ | ୪୧ |
| | ଯେ କୁଶାବର୍ତ୍ତ, ଇଳାବର୍ତ୍ତ | ତୃତୀୟ ନାମ ବ୍ରହ୍ମାବର୍ତ୍ତ | ॥ | ୪୨ |
| | ମଳୟ, କେତୁ, ଭଦ୍ରସେନ | ଆବର ଇନ୍ଦ୍ରସ୍ପୃକ ନାମ | ॥ | ୪୩ |
| | ବିଦର୍ଭ, କୀକଟ ନାମରେ | ତଦନ୍ତେ ବେନି ସହୋଦରେ | ॥ | ୪୪ |
| ୧୧ | ତଦନ୍ତେ କବି, ହବି ଦୁଇ | ତୃତୀୟ ଅନ୍ତରୀକ୍ଷ ହୋଇ | ॥ | ୪୫ |
| | ପ୍ରବୁଦ୍ଧ[୧], ପିପ୍ପଳ-ଅୟନ | ଷଷ୍ଠ ତା' ଆବିର୍ହୋତ୍ର ନାମ | ॥ | ୪୬ |
| | ଦ୍ରବିଡ଼[୨], ଚମସ ଯା' ନାମ | କରଭାଜନ ସେ ନବମ | ॥ | ୪୭ |
| ୧୨ | ଏ ରୂପେ ଜାତ ନବ ଭାଇ | ଭାଗବତଧର୍ମ ଦେଖାଇ | ॥ | ୪୮ |
| ୧୩ | ସେମାନେ ମହାଭାଗବତ | ଯେ ବା ତାହାଙ୍କ ସୁଚରିତ | ॥ | ୪୯ |
| | ବିଷ୍ଣୁମହିମାଯୁତ ହୋଇ | ଶାନ୍ତିର ସ୍ଥାନ ସେ ଅଟଇ | ॥ | ୫୦ |
| | ନାରଦ-ବସୁଦେବଙ୍କର | ସଂବାଦ, ସେ କଥା ଉପର[୩] | ॥ | ୫୧ |
| | ତୋ' ଆଗେ କରିବା ବର୍ଣ୍ଣନ | ଥିଲେ ଯେ ଏକାଶୀ ନନ୍ଦନ | ॥ | ୫୨ |
| | ପିତାଆଜ୍ଞାରେ ଦେଇ ଚିତ୍ତ | ଶ୍ରୋତ୍ରିୟ ବିନୟସଂଯୁତ | ॥ | ୫୩ |
| | କର୍ମବିଶୁଦ୍ଧ, ଯଜ୍ଞଶୀଳ | ବ୍ରାହ୍ମଣ ହୋଇଲେ ସକଳ | ॥ | ୫୪ |
| ୧୪ | ଋଷଭ ନାମ ଭଗବାନ | ଅଟନ୍ତି ଆମ୍ଭର ଅଧୀନ | ॥ | ୫୫ |
| | ଅନର୍ଥପରମ୍ପରା ଯେହି | ତା' ନିତ୍ୟେ ଛନ୍ତି ନିବର୍ତ୍ତାଇ | ॥ | ୫୬ |
| | ବିଶୁଦ୍ଧାନନ୍ଦ-ଅନୁଭବେ | ଈଶ୍ୱର ଅଟନ୍ତି ସ୍ୱଭାବେ | ॥ | ୫୭ |
| | ଆନର ପ୍ରାଏ କରି କର୍ମ | ସ୍ୱୟେଂ ଘେନିଲେ ସେ ନିୟମ | ॥ | ୫୮ |
| | କାଳରେ ଯେ ଧର୍ମ ଉତ୍ପନ୍ନ | ତାହା କରନ୍ତେ ଆଚରଣ | ॥ | ୫୯ |
| | ସେ ଧର୍ମ ଯେହୁ ନ ଜାଣନ୍ତି | ତାହାଙ୍କୁ ଶିକ୍ଷା ସେ ଦିଅନ୍ତି | ॥ | ୬୦ |
| | ସକଳ ଭୂତେ ସମ, ଶାନ୍ତ | ମିତ୍ର ସ୍ୱଭାବ, କୃପାବନ୍ତ | ॥ | ୬୧ |
| | ଯେ ଧର୍ମ, ଅର୍ଥ, ପ୍ରଜା, ଯଶ | ସଂସାରେ ଭୋଗ, ମୋକ୍ଷରସ | ॥ | ୬୨ |
| | ଏମାନ ସଂଗ୍ରହ କରିଣ | ଗୃହସ୍ଥ ଆଶ୍ରମେ ଥାଇଣ | ॥ | ୬୩ |

୧. ପ୍ରବୁଦ୍ଧ। ୨. ଦ୍ରୁମିଳ। ୩. ଉପରେ = ଏକାଦଶସ୍କନ୍ଧରେ।

| | | | | | |
|---|---|---|---|---|---|
| | ଯେତେକ ପରଲୋକମାନ | । | ତା'ସବୁ ଜିଣିଲେ ରାଜନ | ।। | ୬୪ |
| ୧୫ } | ଯାହା ଆଚରେ ଶ୍ରେଷ୍ଠ ଜନ | । | ତହିଁକି ଅନୁବର୍ତ୍ତେ ଆନ | ।। | ୬୫ |
| ୧୬ | ଆପଣେ ଜାଣିଣ ଆଚରି | । | ଅଛନ୍ତି ଯାହା ମୂଳ କରି | ।। | ୬୬ |
| | ସେ ବେଦରହସ୍ୟ ଜାଣନ୍ତି | । | ସକଳ ଧର୍ମ ଯହିଁ ଛନ୍ତି | ।। | ୬୭ |
| | ତଥାପି ବିପ୍ରଙ୍କୁ ପଚାରି | । | ତାହାଙ୍କ ଶିକ୍ଷାମାର୍ଗେ କରି | ।। | ୬୮ |
| | ସାମାଦିଂ[1] ଯେ ଉପାୟମାନ | । | ତେଣେ ପାଳିଲେ ସର୍ବଜନ | ।। | ୬୯ |
| ୧୭ | ଦ୍ରବ୍ୟ, ବୟସ, କାଳ, ଦେଶ | । | ବିବିଧ ଦେବତା-ଉଦ୍ଦେଶ | ।। | ୭୦ |
| | ଶ୍ରଦ୍ଧା, ଋତ୍ୱିଜ ଏଣେ ପୂର୍ଣ୍ଣ | । | ଯେତେ ଅଛନ୍ତି କ୍ରତୁମାନ | ।। | ୭୧ |
| | ଯଥାବିଧିରେ ଶତେ ବାର | । | କଲେ ତା' ଋଷଭ ଈଶ୍ୱର | ।। | ୭୨ |
| ୧୮ | ଋଷଭ କରନ୍ତେ ପାଳନ | । | ଏ ଖଣ୍ଡେ କହୁଣିସି ଜନ | ।। | ୭୩ |
| | ପ୍ରଭୁର ଠାରେ ଅତିଶୟ | । | ଦିନକୁ ଦିନ ଯେଉଁ ସ୍ନେହ | ।। | ୭୪ |
| | ତହିଁରୁ ଆନ ନ ବାଞ୍ଛଇ | । | ଆନ ଅପେକ୍ଷା ନ କରଇ | ।। | ୭୫ |
| | ଯେହ୍ନେ ଆପଣା ବୃଦ୍ଧଭାବ | । | କେବେହେଁ ନ ବାଞ୍ଛେ ମାନବ | ।। | ୭୬ |
| ୧୯ | ସେ ପୁଣି କହୁଣିସି ଦିନ | । | ଋଷଭ ଦେବ ଭଗବାନ | ।। | ୭୭ |
| | ଭ୍ରମନ୍ତେ ଥାଇ ବ୍ରହ୍ମାବର୍ତ୍ତେ | । | ବ୍ରହ୍ମଋଷିଙ୍କ ସଭାଗତେ | ।। | ୭୮ |
| | ସଭାରେ ନିଜ ପ୍ରଜାଗଣ | । | ସମସ୍ତେ କରନ୍ତେ ଶ୍ରବଣ | ।। | ୭୯ |
| | ବିନୟଭରେ ବଶୀକୃତ | । | ଯେ ପୁତ୍ରେ ସାବଧାନଚିତ୍ତ | ।। | ୮୦ |
| | ତାଙ୍କୁ ଶିଖାନ୍ତେ ଏ ବିଧାନ | । | କହିଲେ ଏମନ୍ତ ବଚନ | ।। | ୮୧ |
| | ବ୍ରାହ୍ମଣ ଦୀନବଂଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ।। | ୮୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଋଷଭଦେବାନୁଚରିତଂ
ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ମୋକ୍ଷଧର୍ମୋପଦେଶୈଃ ପୁତ୍ରାନୁଶାସନମ୍ ।
ଭକ୍ତଂ ପାରମହଂସ୍ୟଂ ଚ ତସ୍ୟ ଦ୍ୱନ୍ଦ୍ୱତିତିକ୍ଷୟା ।। ୧

ଶ୍ରୀଋଷଭ ଉବାଚ

| | | | | | |
|---|---|---|---|---|---|
| ୧ | ଭୋ ପୁତ୍ରମାନେ ! ସାବଧାନ | । | ହୋଇଣ ଶୁଣ ମୋ ବଚନ | ।। | ୧ |
| | ଯେ ନିତ୍ୟେ ବିଷ୍ଠାକୁ ଭୁଞ୍ଜନ୍ତି | । | ତାହାଙ୍କ ଠାରେ ଯେ ଅଛନ୍ତି | ।। | ୨ |
| | ସେ ବିଷୟଙ୍କ ଭୋଗପାଇଁ | । | ଏ ନରତନୁ ଯୋଗ୍ୟ ନୋହି | ।। | ୩ |

୧. ସାମାଦି = ସାମ, ଦାମ, ଦଣ୍ଡ, ଭେଦ ।

ଯେବଣ ତନୁରେ ପରମ । ତପସ୍ୟା ହୁଅଇ ଜନମ ॥
ସତ୍ତ୍ୱ ଯେବଣ ତପସ୍ୟାରୁ । ଶୁଦ୍ଧ ହୁଅଇ ତଦୁତ୍ତାରୁ ॥
ଅନନ୍ତ ବ୍ରହ୍ମସୁଖ ଜାତ । କରଇ ଯେଉଁ ଶୁଦ୍ଧ ସତ୍ତ୍ୱ ॥
୨ ମହତଙ୍କର ସେବା ଯେହି । ବିମୁକ୍ତିଦ୍ୱାର ସେ ବୋଲାଇ ॥
କାମିନୀସଙ୍ଗିଜନଙ୍କର । ସଙ୍ଗମ ନରକକୁ ଦ୍ୱାର ॥
ସେମାନେ ବୋଲାନ୍ତି ମହତ । ଯେହୁ ପ୍ରଶାନ୍ତ ସମଚିତ୍ତ ॥
ଅକ୍ରୋଧ, ମିତ୍ର ସର୍ବଭୂତେ । ଯେ ସଦାଚାର ଏ ଜଗତେ ॥
୩ ମୁଁ ଯେ ଈଶ୍ୱର ମୋହଠାଇଁ । ଯେ ମିତ୍ରଭାବ ଛନ୍ତି ବହି ॥
ବିଷୟ ବାର୍ତ୍ତା ମୂଳ ହୋଇ । ଯେଉଁ ଜନରେ ଛନ୍ତି ରହି ॥
କଳତ୍ର, ସୁତ, ମିତ୍ର[1] ଯୁତ । ଯେ ଗୃହ, ତହିଁ ଅନାସକ୍ତ ॥
ଯେତେକେ ରକ୍ଷା ପାଏ ଗାତ୍ର । ବାଞ୍ଛନ୍ତି ତେତେ ଅର୍ଥ ମାତ୍ର ॥
୪ ଯେ ଜନ ପ୍ରମତ୍ତ ଅଟଇ । ସେ ଲୋକ ବିକର୍ମ କରଇ ॥
ଇନ୍ଦ୍ରିୟପ୍ରୀତିର ନିମିତ୍ତ । ଯେଉଁ ବିକର୍ମେ ହୋଏ ସକ୍ତ ॥
ତାହା ମୁଁ ସାଧୁ ନ ମଣଇଁ । ଯହୁଁ ଏ ନିଜ ଦେହ ହୋଇ ॥
ଯେ ଦେହ ହେଲେହେଁ ଅନିତ୍ୟ । କ୍ଳେଶମାନଙ୍କୁ କରେ ଜାତ ॥
୫ ଯାବତ କାଳ ଆତ୍ମଜ୍ଞାନ । ଅଭ୍ୟାସେ ନ କରଇ ମନ ॥
ଅଜ୍ଞାନୁଁ ଜାତ ପରାଭବ । ତାବତ ଲଭଇ ମାନବ ॥
ଯେତେ ହୁଅନ୍ତି କର୍ମ ଜାତ । ମନ ସେ କର୍ମର ଆୟତ୍ତ ॥
ଯେବଣ କର୍ମଯୁତ ମନେ । ଶରୀରବନ୍ଧ ଏ ଭୁବନେ ॥
୬ ଏରୂପେ ପୂର୍ବ କର୍ମ ଯେହି । ମନକୁ ବଶ ସେ କରଇ ॥
ଅବିଦ୍ୟା ଆତ୍ମାକୁ ସେକାଳେ । ନିଜଆୟତ୍ତ କରେ ବଳେ ॥
ମୁଁ ବାସୁଦେବ, ମୋହଠାଇଁ । ଯାବତ ପ୍ରୀତି ନ କରଇ ॥
ଦେହସଂଯୋଗରୁ ତାବତ । ମନୁଷ୍ୟ ନୁହଇ ମୁକତ ॥
୭ ଯେବେ ଇନ୍ଦ୍ରିୟମାନଙ୍କର । ଚେଷ୍ଟାକୁ ମିଥ୍ୟା କରି ନର ॥
ବିବେକୀ ହୋଇ ନ ଦେଖଇ । ସ୍ୱକାର୍ଯ୍ୟେ ପ୍ରମତ୍ତ ଅଟଇ ॥
ତେବେ ସେ ଅଜ୍ଞାନ ହୁଅଇ । ମୈଥୁନ ସୁଖ ଗୃହେ ପାଇ ॥
ଲଭଇ ନାନା ତାପମାନ । ବିମୂଢ଼ ଅଟଇ ସେ ଜନ ॥
୮ ନାରୀ ସଙ୍ଗତେ ପୁରୁଷର । ମିଥୁନଭାବ ଯେ ପ୍ରକାର ॥
ସେ ବେନି ଜନଙ୍କର ସେହି । ହୃଦୟଗ୍ରନ୍ଥି ବୋଲି କହି ॥
ତେଣୁ ସଦନ, କ୍ଷେତ୍ର, ସୁତ । ଯେ ବା ଆପତ[2] ଜନ, ବିତ୍ତ ॥

---

୧. ଧନ (ପାଠାନ୍ତର) । ମୂଳ 'ରାତ୍ରି' ଶବ୍ଦର ଅର୍ଥ ମିତ୍ର ବା ଧନ ।

୨. ଆପତ = ଆପ୍ତ (ବନ୍ଧୁବାନ୍ଧବ) ।

ତେଣେ ପ୍ରାଣୀର ମୋହ ହୋଇ । ଅହଂତା, ମମତା ଯେ ଦୁଇ ।। ୩୪
୯ ଲୋକର ମନୋରୂପ[1] ହୋଇ । ହୃଦୟଗ୍ରନ୍ଥି ଯେ ଅଛଇ ।। ୩୫
କର୍ମାନୁବନ୍ଧେ ଦୃଢ଼ ଅଟେ । ସେ ପୁଣି ଯେଉଁ କାଳେ ତୁଟେ ।। ୩୬
ତେବେ ମିଥୁନଭାବୁଁ ନର । ଫିଟଇ ଛାଡ଼ି ଅହଂକାର ।। ୩୭
ବିଷ୍ଣୁ-ପରମପଦ ଯେହି । ତହିଁକି ଗମନ କରଇ ।। ୩୮
୧୦ ମୁଁ ହଂସ ଗୁରୁ, ମୋ ପାଦରେ । ଭଜିବ ଅନୁବୃତ୍ତି[2] ଦ୍ୱାରେ ।। ୩୯
ତୃଷ୍ଣାକୁ କରିବ ବିନାଶ । ସହି ଶୀତ-ଉଷ୍ଣାଦି କ୍ଲେଶ ।। ୪୦
ସକଳ ଲୋକେ ମନୁଷ୍ୟର । ବ୍ୟସନ କରିବ ଗୋଚର ।। ୪୧
ଜ୍ଞାନ, ତପସ୍ୟା ଆଚରିବ । ସକଳ କାମନା ଛାଡ଼ିବ ।। ୪୨
୧୧ କରିବ ମୋର କର୍ମମାନ । ମୋ' କଥା କରିବ ଗାୟନ ।। ୪୩
ବୈଷ୍ଣବଜନେ ସଙ୍ଗ ହେବ । ସର୍ବଦା ମୋ' ଗୁଣ ଗାଇବ ।। ୪୪
ଜନ୍ତୁରେ ବୈର ନ କରିବ । ସମତା, ଶାନ୍ତି ଆଚରିବ ।। ୪୫
ହେ ପୁତ୍ରମାନେ ! ଦେହେ ଘରେ । ମମତା ଛାଡ଼ିବ ନିର୍ଭରେ ।। ୪୬
୧୨ ଅଧ୍ୟାତ୍ମ ଯୋଗ ଆଚରିବ । ଏକାନ୍ତ ସ୍ଥାନରେ ରହିବ ।। ୪୭
ପ୍ରାଣ, ଇନ୍ଦ୍ରିୟ, ଆତ୍ମାଙ୍କର । ଜୟକୁ କରିବ ଆଚର ।। ୪୮
ଶ୍ରଦ୍ଧା କରିବ ମୋହଠାରେ । ବ୍ରହ୍ମଚର୍ଯ୍ୟକୁ ନିରନ୍ତରେ ।। ୪୯
କର୍ତ୍ତବ୍ୟ ଅଟେ ଯେହି ଯେହି । କେବେ ହେଁ ନ ଛାଡ଼ିବ ତାହି ।। ୫୦
ବଚନମାନଙ୍କୁ ସଂଯତ । କରିବ ଛାଡ଼ିଣ ଅସତ୍ୟ ।। ୫୧
୧୩ ଯେତେ ଅଛନ୍ତି ଜୀବମାନେ । ତାଙ୍କୁ ଦେଖିବ ମୋ' ସମାନେ ।। ୫୨
ହେବା ପର୍ଯ୍ୟନ୍ତେ ଅନୁଭବ । ଜ୍ଞାନସମାଧି ଆଚରିବ ।। ୫୩
ଧୃତି, ଉଦ୍ୟମ, ଯୋଗ, ସତ୍ତ୍ୱ । ଏତେ କଥାରେ ହେବ ଯୁକ୍ତ[3] ।। ୫୪
ଯେ ଲୋକ ହୁଅଇ ନିପୁଣ । କରି ଏତେକ ଆଚରଣ ।। ୫୫
ଲିଙ୍ଗଶରୀରକୁ ନାଶଇ । ଯେ ଅହଂକାର ନାମ ବହି ।। ୫୬
୧୪ ହୃଦଗ୍ରନ୍ଥିରେ ବଦ୍ଧ ହୋଇ । ଯେ ଲିଙ୍ଗଶରୀର ଅଛଇ ।। ୫୭
କର୍ମମାନଙ୍କ ସ୍ଥାନ ସେହି । ଅବିଦ୍ୟା ଅଛି ତାହା ଦେଇ ।। ୫୮
ଯେ ତାହା ଏହି ଉପାୟରେ । ଗୁରୁ-ଉପଦେଶକ୍ରମରେ ।। ୫୯
ନାଶିବ ହୋଇ ସାବଧାନ । ପଛେ ଛାଡ଼ିବ ସେହୁ ଧ୍ୟାନ ।। ୬୦
୧୫ ଯେହୁ ବାଞ୍ଛଇ ଲୋକ ମୋର । ମୋ' ଅନୁଗ୍ରହେ ବାଞ୍ଛା ଯାର ।। ୬୧
ସେ ଯେବେ ପିତା ହୋଇଥିବ । ଏ ଜ୍ଞାନ ପୁତ୍ରକୁ କହିବ ।। ୬୨
ଗୁରୁ କହିବ ଶିଷ୍ୟଠାରେ । ନୃପତି କହିବ ପ୍ରଜାରେ ।। ୬୩
ଅଜ୍ଞାନି ଜନଙ୍କୁ ଶିଖାଇ । କ୍ରୋଧବଶକୁ ଯିବ ନାହିଁ ।। ୬୪

---

୧. ମନୋରୂପ = ମନରୂପକ।  ୨. ଅନୁବୃତ୍ତି = ତତ୍ପରତା।  ୩. ଶକ୍ତ (ପାଠାନ୍ତର)।

ସ୍ୱଭାବେ ମୂଢ଼ମତି ହୋଇ । ଲୋକ କର୍ମରେ ପ୍ରବର୍ତ୍ତଇ ॥ ୬୫
ତାହାଙ୍କୁ କର୍ମେ ନିଯୋଜନ । କରିବ ନାହିଁ ସାଧୁ ଜନ ॥ ୬୬
[1] { ନିଯୋଜି ଅବା ତାଙ୍କୁ କିସ । ଅର୍ଥକୁ ଲଭିବ ମନୁଷ୍ୟ ॥ ୧
କି ଲାଭ ନଷ୍ଟ ଚକ୍ଷୁ[2] ଯାର । ତାହାକୁ ପକାଇ ଗର୍ତ୍ତର[3] ॥ ୨ }
୧୬ ନ ଜାଣି ଶ୍ରେୟ ଆପଣାର । ବିନଷ୍ଟ ଦୃଷ୍ଟି ହୋଇ ନର ॥ ୬୭
ଯେ ଅର୍ଥମାନଙ୍କୁ ବାଞ୍ଛଇ । ଅତିଶୟରେ ତୃଷ୍ଣା ବହି ॥ ୬୮
ପାଇବା ପାଇଁ ସୁଖ ଲବ । ଅନ୍ୟୋଽନ୍ୟେ କରେ ବୈରଭାବ ॥ ୬୯
ଅଶେଷ ଦୁଃଖ ଯେହୁ ଅଛି । ମୂଢ଼ ତା' ନ ଜାଣଇଁ କିଛି ॥ ୭୦
୧୭ ଏମନ୍ତ କୁବୁଦ୍ଧି ଯେ ହୋଇ । ଅବିଦ୍ୟାମଧ୍ୟେ ବର୍ତ୍ତିଥାଇ ॥ ୭୧
ଦୁଷ୍ଟଭାବକୁ ତାର ଜାଣି । କେବଣ କୃପାବନ୍ତ ପ୍ରାଣୀ ॥ ୭୨
ତାହାକୁ ସେହି ଅମାର୍ଗରେ । ପ୍ରବର୍ତ୍ତାଇବ ଏ ସଂସାରେ ॥ ୭୩
ଯେହ୍ନେ ଅମାର୍ଗେ ଅନ୍ଧ ଗଲେ । କେ ତାକୁ 'ସେ ବାଟେ ଯା' ବୋଲେ ॥ ୭୪
୧୮ ସଂସାରେ ବନ୍ଧ ଯେଉଁ ଜନ । ତାହାକୁ କହି ଦିବ୍ୟ ଜ୍ଞାନ ॥ ୭୫
ଯେ ମୁକ୍ତ କରି ନ ପାରଇ । ସେ ଲୋକ ଗୁରୁ ନ ବୋଲାଇ ॥ ୭୬
ସେ ଲୋକ ସ୍ୱଜନ ନୁହଇ । ସେ ପିତାମାତା ନ ବୋଲାଇ ॥ ୭୭
ତାହାକୁ ଦେବତା ନ କହି । ସେ ଲୋକ ନୃପତି ହିଁ ନୋହି ॥ ୭୮
୧୯ ହେ ପୁତ୍ରମାନେ ! ଏ ମୋହର । ମନୁଷ୍ୟାକାର କଳେବର ॥ ୭୯
ତର୍କଗୋଚର ଏ ନୁହଇ । ମୋ' ଇଚ୍ଛାବଶୁଁ ଅଛି ହୋଇ ॥ ୮୦
ମୋର ହୃଦୟ ଅଟେ ତତ୍ତ୍ୱ । ତହିଁରେ ଅଛି ଶୁଦ୍ଧ ସତ୍ତ୍ୱ ॥ ୮୧
ଅଧର୍ମ ମାର୍ଗକୁ ମୁଁ ଯେଣୁ । ଦୂରୁହୁଁ ପିଠି କଲି ତେଣୁ ॥ ୮୨
ଋଷଭ ବୋଲନ୍ତି ଜଗତେ । ପଣ୍ଡିତଜନମାନେ ମୋତେ ॥ ୮୩
୨୦ ସେ ଘେନି ତୁମ୍ଭେମାନେ ମୋର । ହୃଦୟୁଁ ହୋଇଛ ବାହାର ॥ ୮୪
ସମସ୍ତଙ୍କର ଜ୍ୟେଷ୍ଠ ଭ୍ରାତ । ଭରତ ଅଟେ ଏ ବିଦିତ ॥ ୮୫
ଏହାକୁ ଅକ୍ଳେଶ ବୁଦ୍ଧିରେ । ଭଜିବ ସର୍ବ ସହୋଦରେ ॥ ୮୬
ତେତେବେଳେ ମୋର ସେବା ହେବ । ପ୍ରଜାଙ୍କ ପାଳନ ହୋଇବ ॥ ୮୭
୨୧ ହୋଇ ଚେତନ-ଅଚେତନ । ଅଛନ୍ତି ଯେତେ ଭୂତମାନ ॥ ୮୮
ସେମାନଙ୍କର ମଧ୍ୟେ ସାର । ଅଟନ୍ତି ବୃକ୍ଷାଦି ସ୍ଥାବର ॥ ୮୯
ତାହାଙ୍କ ଠାରୁ ଶ୍ରେଷ୍ଠପଣେ । ଅଟନ୍ତି ସରୀସୃପଗଣେ ॥ ୯୦
ତାହାଙ୍କ ଠାରୁ ବୋଧବନ୍ତ । ବ୍ୟାଘ୍ରାଦି ଅଟନ୍ତି ମହତ ॥ ୯୧

---

୧. "କଂ ଯୋଜୟନ୍ ମନୁଜୋଽର୍ଥଂ ଲଭେତ ନିପାତୟନ୍ ନଷ୍ଟଦୃଶଂ ହି ଗର୍ତ୍ତେ ।" ଏହି ଶ୍ଳୋକାଂଶ ଏବଂ ତାହାର ଅନୁବାଦ ପୋଥିରେ ନ ଥିଲେ ମଧ୍ୟ ଏହା ମୌଳିକ ହୋଇଥିବାରୁ ଏହାର ଅନୁବାଦ ରଚିତ ହେଲା ।

୨. ଚକ୍ଷୁ = ପ୍ରଜ୍ଞାଚକ୍ଷୁ ।  ୩. ଗର୍ତ୍ତ = ସସାଂରଗର୍ତ୍ତ ।

| | | | | |
|---|---|---|---|---|
| | ମନୁଷ୍ୟମାନେ ତହିଁ ସାର | । ପ୍ରମଥମାନେ ତହୁଁ ବର | ॥ | ୯୨ |
| | ତହିଁରୁ ବରିଷ୍ଠ ଗନ୍ଧର୍ବେ | । ଗନ୍ଧର୍ବୁଁ ଶ୍ରେଷ୍ଠ ସିଦ୍ଧ ସର୍ବେ | ॥ | ୯୩ |
| | ବିବୁଧଙ୍କର ପରିଚାର | । କିନ୍ନର ଆଦି ତହୁଁ ସାର | ॥ | ୯୪ |
| ୨୨ | ଅସୁରମାନେ ତହୁଁ ସାର | । ଇନ୍ଦ୍ରାଦି ସୁରେ ତହୁଁ ବର | ॥ | ୯୫ |
| | ଦକ୍ଷାଦି ବ୍ରହ୍ମାସୁତ ଯେହି | । ଇନ୍ଦ୍ର ଆଦିରୁ ଶ୍ରେଷ୍ଠ ସେହି | ॥ | ୯୬ |
| | ଶିବ ଅଧିକ ତାଙ୍କଠାରୁ | । ବିରଞ୍ଚି ଅଧିକ ଶିବରୁ | ॥ | ୯୭ |
| | ବ୍ରହ୍ମାର ଠାରୁ ମୁଁ ଯେ ସାର | । ବ୍ରାହ୍ମଣେ ଦେବତା ମୋହର | ॥ | ୯୮ |
| ୨୩ | ବ୍ରାହ୍ମଣତୁଲେ ଆନଜନ | । କରଇ ନାହିଁ ମୁଁ ସମାନ | ॥ | ୯୯ |
| | ବ୍ରାହ୍ମଣଠାରୁ ଶ୍ରେଷ୍ଠ ହୋଇ | । ଆନ ଦେଖିବା ଅବା କାହିଁ | ॥ | ୧୦୦ |
| | ଯେଉଁ ବ୍ରାହ୍ମଣଠାରେ ନର | । ଶ୍ରଦ୍ଧାରେ ଦେଲେ ଉପହାର | ॥ | ୧୦୧ |
| | ତାହା ମୁଁ ସରାଗ ହୋଇଣ | । ଯେ ରୂପେ କରଇ ଭକ୍ଷଣ | ॥ | ୧୦୨ |
| | ଅଗ୍ନିହୋତ୍ରରେ ହବିମାନ | । ସେ ରୂପେ ନ କରେ ଭୋଜନ | ॥ | ୧୦୩ |
| ୨୪ | ମୋହର ପୁରାତନ ମୂର୍ତ୍ତି | । ପ୍ରତ୍ୟକ୍ଷ ଅଟଇ ଯେ ଶ୍ରୁତି | ॥ | ୧୦୪ |
| | ତାହାକୁ ଯେଉଁ ବିପ୍ରବରେ | । ଧରି ଅଛନ୍ତି ଏ ସଂସାରେ | ॥ | ୧୦୫ |
| | ପରମ ଶୁଦ୍ଧସତ୍ତ୍ୱ, ଶମ | । ଯେ ଅନୁଗ୍ରହ, ସତ୍ୟ, ଦମ | ॥ | ୧୦୬ |
| | ତପ, ତିତିକ୍ଷା, ଅନୁଭବ | । ଅଛନ୍ତି ଯେଉଁ ବିପ୍ରଠାବ | ॥ | ୧୦୭ |
| ୨୫ | ମୁଁ ଯେ ଅନନ୍ତଠାରୁ ପର | । ସ୍ୱର୍ଗ-ଅପବର୍ଗ-ଈଶ୍ୱର | ॥ | ୧୦୮ |
| | ମୋହର ଠାରୁ ଆନ ହୋଇ | । ଯେ ବିପ୍ରଙ୍କର କେହି ନାହିଁ | ॥ | ୧୦୯ |
| | ମୋ' ଭକ୍ତିଯୁତ ଅକିଂଚନ | । ଅଟନ୍ତି ଯେଉଁ ବିପ୍ରଜନ | ॥ | ୧୧୦ |
| | ସେମାନଙ୍କର ଆନଠାରେ | । କି କାର୍ଯ୍ୟ ଅଛି ଏ ସଂସାରେ | ॥ | ୧୧୧ |
| ୨୬ | ହେ ପୁତ୍ରମାନେ ! ଅମତ୍ସର | । ଦୃଷ୍ଟି ହୋଇଣ ନିରନ୍ତର | ॥ | ୧୧୨ |
| | ସ୍ଥାବର, ଜଙ୍ଗମ ହୋଇଣ | । ଯେ ବା ଅଛନ୍ତି ଭୂତଗଣ | ॥ | ୧୧୩ |
| | ସେ ସମସ୍ତେ ହିଁ ମୋର ସ୍ଥାନ | । ଏ ରୂପେ କରିବ ମାନନ | ॥ | ୧୧୪ |
| | କଲେ ହିଁ ଏମନ୍ତ, ମୋ'ଠାର | । ଅର୍ହଣ ହୋଇବ ତୁମ୍ଭର | ॥ | ୧୧୫ |
| ୨୭ | ମନ, ବଚନ, ଦୃଷ୍ଟି ଆନ | । ଅଛନ୍ତି ଯେ ଇନ୍ଦ୍ରିୟମାନ | ॥ | ୧୧୬ |
| | ସେମାନଙ୍କର ଯେ ବ୍ୟାପାର | । ତା' ଫଳ ଅର୍ଚ୍ଚନ ମୋହର | ॥ | ୧୧୭ |
| | ନ କଲେ ଯେବଣ ଅର୍ଚ୍ଚନ | । କୃତାନ୍ତପାଶୁଁ ମୂଢ଼ଜନ | ॥ | ୧୧୮ |
| | ମୁକ୍ତ ହୋଇବାକୁ ଅକ୍ଷମ | । ସେ ପାଶ ମହାମୋହ ନାମ | ॥ | ୧୧୯ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୮ | ଋଷଭ ବ୍ୟାଜନାମ ଯାର | । ମହାନୁଭାବ ସେ ଈଶ୍ୱର | ॥ | ୧୨୦ |
| | ଶିକ୍ଷିତ ଅଟନ୍ତି ଯେ ସୁତେ | । ଏ ରୂପେ ଲୋକଶିକ୍ଷା ଅର୍ଥେ | ॥ | ୧୨୧ |
| | ତାହାଙ୍କୁ ଶାନ୍ତଗୁଣଯୁତ | । କର୍ମମାର୍ଗରୁ ବିନିବୃତ୍ତ | ॥ | ୧୨୨ |

ଏ ରୂପେ ଯେଉଁ ମୁନିଜନ । ତାହାଙ୍କ ଆଚରିଲା ଜ୍ଞାନ ॥ ୧୨୩
ଭକ୍ତି-ବୈରାଗ୍ୟରେ ଲକ୍ଷିତ । ପାରମହଂସ ଧର୍ମତତ୍ତ୍ୱ ॥ ୧୨୪
ଶିକ୍ଷା ଦେଇଣ ଏ ପ୍ରକାର । ଶତପୁତ୍ରରେ ଯେହୁ ସାର ॥ ୧୨୫
ବୈଷ୍ଣବପରାୟଣ ହୋଇ । ଭରତ ନାମ ଅଛି ବହି ॥ ୧୨୬
ଧରଣୀପାଳନ ବିଚାରି । ତାହାକୁ ଅଭିଷେକ କରି ॥ ୧୨୭
ସକଳ ଦ୍ରବ୍ୟ ପରିହରି । ନିଜ ଶରୀରମାତ୍ର ଧରି ॥ ୧୨୮
ଦିଶନ୍ତି ଉନ୍ମତ୍ତ ଯେସନ । ଗଗନ କରି ପରିଧାନ ॥ ୧୨୯
ପ୍ରକୀର୍ଣ୍ଣ କରି କେଶମାନ । ଆହବନୀୟ ଯେ ଦହନ ॥ ୧୩୦
ଆତ୍ମାରେ ତାହା ଆରୋପିଲେ । ବ୍ରହ୍ମାବର୍ତ୍ତରୁ ବାହାରିଲେ ॥ ୧୩୧
୨୯ ଜଡ଼, ବଧିର, ଅନ୍ଧ, ମୂକ । ଯେହ୍ନେ ପିଶାଚ, ଉନ୍ମାଦକ ॥ ୧୩୨
ଅବଧୂତର ବେଶ ହୋଇ । ପଚାରିଲେ ହେଁ ଲୋକେ ତହିଁ ॥ ୧୩୩
ମଉନ ବ୍ରତକୁ ଧଇଲେ । ଜନଙ୍କ ମଧ୍ୟେ ତୁନି ହେଲେ ॥ ୧୩୪
୩୦ ଆକର[୧], ଖେଟ[୨], ଗ୍ରାମ, ପୁର । ଯେ ବାଟୀ, ଖର୍ବଟ[୩], ଶିବିର ॥ ୧୩୫
ଯେ ଘୋଷ[୪], ବ୍ରଜ[୫], ଗିରି, ବନ । ନାନାବିଧ ଆଶ୍ରମମାନ ॥ ୧୩୬
ତହିଁରେ ଯେ ଦୁଷ୍ଟ ମାନବ । କରନ୍ତି ନାନା ପରାଭବ ॥ ୧୩୭
ତର୍ଜନା କରନ୍ତି, ମାରନ୍ତି । ମୂତ୍ର, ଶ୍ଳେଷ୍ମାକୁ[୬] ନିକ୍ଷେପନ୍ତି ॥ ୧୩୮
ପାଷାଣ, ବିଷ୍ଠା, ଧୂଳିମାନ । ଫିଙ୍ଗି ବୋଲନ୍ତି ଦୁର୍ବଚନ ॥ ୧୩୯
କରନ୍ତି ଦୁର୍ଗନ୍ଧ ପବନ । ତହିଁକି ନ କରେ ଗଣନ ॥ ୧୪୦
ଯେସନେ ବନଗଜ ଥାଇ । ମାଛି ଖାଇଲେ ଚିନ୍ତା ନାହିଁ ॥ ୧୪୧
ସ୍ୱଭାବେ ଅଟଇ ଅସନ୍ତ । ଦେହରୂପରେ ଯେ ଲକ୍ଷିତ ॥ ୧୪୨
ତହିଁରେ ଅହଂ ମମ ହୋଇ । ଅଭିମାନିତା ଯେଣୁ ନାହିଁ ॥ ୧୪୩
ସନ୍ତ, ଅସନ୍ତ ବେନିଙ୍କର । ଅନୁଭବରେ ଆତ୍ମାଠାର ॥ ୧୪୪
ନିଜ ମହିମା ଅବସ୍ଥାନ । ଏ ଘେନି ଅଖଣ୍ଡିତମନ ॥ ୧୪୫
ଏ ରୂପେ ଏକାକୀ ହୋଇଣ । ପୃଥିବୀ କଲେ ସେ ଭ୍ରମଣ ॥ ୧୪୬
୩୧ ଅଟଇ ଅତି ସୁକୁମାର । ଚରଣ-କରଯୁଗ, ଉର ॥ ୧୪୭
ବିପୁଳ ବାହୁଯୁଗ, ଅଂସ । ମୁଖାଦି ଅଙ୍ଗର ବିନ୍ୟାସ ॥ ୧୪୮
ଅଟଇ ପ୍ରକୃତିସୁନ୍ଦର । ସ୍ୱଭାବେ ହାସ ମୁଖେ ଯାର ॥ ୧୪୯
ନଳିନଦଳ ପ୍ରାଏ ଶୋଭା । ଶିଶିର[୭] ତାରା ଯହିଁ ଆଭା ॥ ୧୫୦
ଅରୁଣନୟନ ରୁଚିର । ସମ ସୁନ୍ଦର ଅଟେ ଯାର ॥ ୧୫୧

---

୧. ଆକର = ଖଣି । ୨. ଖେଟ = ଚଷାସାଇ । ୩. ଖର୍ବଟ = ପର୍ବତତଳିଆ ଗାଁ ।
୪. ଘୋଷ = ଗଉଡ଼ସାଇ । ୫. ବ୍ରଜ = ଗାଈଗୋଠ । ୬. ଶ୍ଳେଷ୍ମା = ଛେପଖଙ୍କାର ।
୭. ଶିଶିର ତାରା = ତାପହାରୀ କନୀନିକା ।

କପୋଳଯୁଗ, କର୍ଣ୍ଣଦୁଇ । କଣ୍ଠ, ନାସିକା ଶୋଭା ପାଇ ।। ୧୫୨
ଯହିଁ ନିଗୂଢ଼ ଅଟେ ସ୍ମିତ । ସେ ମୁଖଶୋଭାରେ ସଂତତ ।। ୧୫୩
ମନରେ ପୁରସ୍ତିରୀଙ୍କର । କରନ୍ତି କନ୍ଦର୍ପବିକାର ।। ୧୫୪
ପିଙ୍ଗଳ, ଜଟିଳ, କୁଟିଳ । ଅଟନ୍ତି ଯେଉଁ କେଶକୁଳ ।। ୧୫୫
ବଦନ-ଅଗ୍ରଭାଗେ ସେହି । ପଡ଼ିଅଛନ୍ତି ଲମ୍ୱି ହୋଇ ।। ୧୫୬
ମଳିନ ନିଜ କଳେବର । ତହିଁରେ ନ କରି ଆଦର ।। ୧୫୭
ବାତୁଳଲୋକ ଅଟେ ଯେହ୍ନେ । ଲୋକଙ୍କୁ ପ୍ରିୟ ହେଲେ ତେହ୍ନେ ।। ୧୫୮
୩୨ ସଂସାରେ ଛନ୍ତି ଯେତେ ପ୍ରାଣୀ । ତାହାଙ୍କୁ ଯୋଗବିଘ୍ନ ଜାଣି ।। ୧୫୯
ତହିଁକି ଅଟେ ପ୍ରତିକାର । ବୀଭତ୍ସ ଚରିତ ଆଚାର ।। ୧୬୦
ଏମନ୍ତ ମନେ ବିଚାରିଲେ । ସେ ଅଜଗରଦୀକ୍ଷା କଲେ ।। ୧୬୧
ଭୂମିରେ କରିଣ ଶୟନ । କରନ୍ତି ଅନ୍ନ, ଜଳପାନ ।। ୧୬୨
ସେ ରୂପେ ମଳମୂତ୍ର ଦୁଇ । ତ୍ୟାଗ କରନ୍ତି ଶୋଇ ଥାଇ ।। ୧୬୩
ଲୁଠନ୍ତେ ତହିଁ ନିଜ ଦେହେ । ଲାଗନ୍ତି ମଳ ମୂତ୍ର ଦୁହେଁ ।। ୧୬୪
୩୩ ପୁରୀଷଗନ୍ଧେ ତାହାଙ୍କର । ସୁଗନ୍ଧ ଅଟେ ଯେ ସମୀର ।। ୧୬୫
ଦଶଯୋଜନ ଚାରିପାଶ । ସୁରଭି କଲାକ ସେ ଦେଶ ।। ୧୬୬
୩୪} ଏମନ୍ତେ କାକ, ଗୋ, ମୃଗର । ଚେଷ୍ଟାକୁ କରନ୍ତେ ଆଚାର ।। ୧୬୭
୩୫} କାକ, ଗୋ, ମୃଗ ପ୍ରାଏ ହୋଇ । ବସିବା ଶୋଇବାର ଠାଇଁ ।। ୧୬୮
ମଳ ମୂତ୍ରକୁ ତ୍ୟାଗ କରି । ଅଶନ, ପାନକୁ ଆଚରି ।। ୧୬୯
କରନ୍ତି ନାନା ଯୋଗମାନ । ଋଷଭଦେବ ଭଗବାନ ।। ୧୭୦
ଅଟନ୍ତି କୈବଲ୍ୟଈଶ୍ୱର । ଯେ ଆତ୍ମା ସର୍ବଭୂତଙ୍କର ।। ୧୭୧
ପରମାନନ୍ଦ ଅନୁଭବ । ଅଟନ୍ତି ପ୍ରଭୁ ବାସୁଦେବ ।। ୧୭୨
ତାହାଙ୍କ ଠାରୁ ଭିନ୍ନ କରି । ନିଜ ଆତ୍ମାକୁ ନ ବିଚାରି ।। ୧୭୩
ଯେତେ ସକଳ ଅର୍ଥମାନ । ହେଲା ତାଙ୍କର ପରିପୂର୍ଣ୍ଣ ।। ୧୭୪
ଖେଚର ଭାବ, ମନପ୍ରାଏ । ବେଗ ହୋଇଣ ଯାହା ଯାଏ ।। ୧୭୫
ଚିନ୍ତିଲେ ହୋଏ ଅନ୍ତର୍ଧାନ । ପରଶରୀରେ ପ୍ରବେଶନ ।। ୧୭୬
ଦୂରରୁ ବିଷୟ ଦେଖଇ । ଇତ୍ୟାଦି ଯୋଗସିଦ୍ଧି ଯେହି ।। ୧୭୭
ଝଟିତି ହୁଅନ୍ତେ ପ୍ରବେଶ । ତହିଁ ଯେ ନ ଦେଲେ ମାନସ ।। ୧୭୮
ସେ ହରି ଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ।। ୧୭୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଋଷଭଦେବାନୁଚରିତଂ
ନାମ ପଞ୍ଚମୋଽଧ୍ୟାୟଃ ।।

# ଷଷ୍ଠ ଅଧ୍ୟାୟ

[1]ଷଷ୍ଠେ ଲୀନାଭିମାନସ୍ୟ ଦେହତ୍ୟାଗକ୍ରମାଭିଧା ।
ପ୍ରଦହନ୍ତଂ ଦବାଗ୍ନିଂ ଯଃ ପଶ୍ୟନ୍ନପି ନ ପଶ୍ୟତି ।। ୧

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | ଯୋଗପ୍ରଦୀପ୍ତ ଜ୍ଞାନେ ଯେହି | । କର୍ମବୀଜକୁ ଛନ୍ତି ଦହି | ।। | ୧ |
| | ଯେ ଆତ୍ମାରାମ ମୁନିବର | । କ୍ଳେଶ କରିବାକୁ ତାଙ୍କର | ।। | ୨ |
| | ଯୋଗ-ଐଶ୍ୱର୍ଯ୍ୟ ଅଶକତ | । ଯେ ନିଜେଚ୍ଛାରେ ଉପଗତ | ।। | ୩ |
| | କିଂପା ତା' ଛାଡ଼ିଲେ ଋଷଭ | । ଭୋ ମୁନି ! କହ ଏଥି ଭାବ | ।। | ୪ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨ } | ଭୋ ନୃପ ! ପଚାରିଲୁ ସତ୍ୟ | । ସଂସାରେ କେହି ବୁଦ୍ଧିମନ୍ତ | ।। | ୫ |
| ୩ } | ଚଞ୍ଚଳ ଅଟେ ଯେ ମାନସ | । ତାହାକୁ ନ ଯାନ୍ତି ବିଶ୍ୱାସ | ।। | ୬ |
| | ଶଠ କିରାତ ଯେହ୍ନେ ଥାଇ | । ମୃଗକୁ ବିଶ୍ୱାସ ନ ଯାଇ | ।। | ୭ |
| | ମନ ଚଞ୍ଚଳ ଯେବେ ହୋଇ | । କାହାରି ସଙ୍ଗେ ପ୍ରୀତି ନୋହି | ।। | ୮ |
| | ଚିରକାଳୁଁ ସଂଚିତ ହୋଇ | । ଶିବର ତପ ଥିଲା ଯେହି | ।। | ୯ |
| | ଯେଉଁ ମାନସକୁ ବିଶ୍ୱାସ | । [2]ଯାଆନ୍ତେ ହୋଇଲା ସେ ନାଶ | ।। | ୧୦ |
| ୪ | ବିଶ୍ୱାସ ଯାନ୍ତେ ଯୋଗିଜନ | । ନିତ୍ୟେ ତାଙ୍କର ନିଜମନ | ।। | ୧୧ |
| | କାମାଦି ଶତ୍ରୁମାନଙ୍କର | । ଛିଦ୍ରକୁ ଦିଏ ଆତ୍ମାଠାର | ।। | ୧୨ |
| | ବିଶ୍ୱାସ ଯାନ୍ତେ ନିଜ ପତି | । ଯେସନେ ପୁଂଶ୍ଚଳୀ ଯୁବତି | ।। | ୧୩ |
| | ଜାରକୁ ଦେଇ ଅବକାଶ | । ପତିକି କରଇ ବିନାଶ | ।। | ୧୪ |
| ୫ | ଯେଉଁ ମନରୁ କାମ, କ୍ରୋଧ | । ଯେ ଭୟ, ଶୋକ, ମୋହ, ମଦ | ।। | ୧୫ |
| | କର୍ମଜ ବନ୍ଧ, ଲୋଭ ହୋଇ | । କେ ବା ପଣ୍ଡିତ ଜନ ଥାଇ | ।। | ୧୬ |
| | ଏ ମୋର ଆୟତ୍ତ ଅଟଇ | । ଏ ରୂପେ ମନକୁ ମଣଇଁ | ।। | ୧୭ |
| ୬ | ଅଖିଳ ଲୋକପାଳଙ୍କର | । ମଣ୍ଡନଭୂତ ଯେ ଈଶ୍ୱର | ।। | ୧୮ |
| | ଏ ରୂପେ ଅନେକ ପ୍ରକାର | । ଜଡ଼, ଅବଧୂତ ଯେ ନର | ।। | ୧୯ |
| | ତାଙ୍କ ବେଷ, ଭାଷା, ଚରିତ | । ପ୍ରକାଶ କରନ୍ତେ ସଂତତ | ।। | ୨୦ |
| | ଆପଣା ଈଶ୍ୱରପ୍ରଭାବ | । ଲକ୍ଷି ନୋହିଲା ତାଙ୍କ ଠାବ | ।। | ୨୧ |
| | ଯେଉଁ ରୂପରେ ଦେହତ୍ୟାଗ | । ଯୋଗୀଏ କରନ୍ତି ସେ ମାର୍ଗ | ।। | ୨୨ |
| | ଶିକ୍ଷା ଦିଅନ୍ତେ ସ୍ୱଶରୀର | । ତ୍ୟାଗକୁ ବିଚାରି ମନର | ।। | ୨୩ |

---

୧. ଷଷ୍ଠେ ଲୀଳାଭିଧାନସ୍ୟ ଦେହତ୍ୟାଗକ୍ରିୟାଭିଧା । (ପାଠାନ୍ତର)

୨. ବିଷ୍ଣୁଙ୍କର ମୋହିନୀରୂପ ଦର୍ଶନ କରି ଶିବଙ୍କ ତପ ସ୍ଖଳିତ ହୋଇଥିଲା; ସୌଭରି ପ୍ରଭୃତିଙ୍କ ତପ ମଧ୍ୟ ସ୍ଖଳିତ ହେବାର ଉଲ୍ଲେଖ ଅଛି ।

ଆତ୍ମା ଅଟେ ଅବ୍ୟବଧାନ । ତାକୁ ଦେଖନ୍ତେ ଭେଦଶୂନ୍ୟ ।।
ଅନୁବୃତ୍ତିରୁ ନିବର୍ତ୍ତିଲେ । ଦେହାଭିମାନକୁ ଛାଡ଼ିଲେ ।।
୬ ଏମନ୍ତ ରୂପେ ଆପଣାର । ଛାଡ଼ିଲେ ସେ ଲିଙ୍ଗଶରୀର ।।
ଯୋଗମାୟାରେ ବାସନାରେ । ଅଭିମାନର ଆଭାସରେ ।।
ପାର୍ଥିବ ଦେହ ତାହାଙ୍କର । ଭ୍ରମନ୍ତେ ଧରଣୀମଧ୍ୟର ।।
ଯେ ଦେଶ କୋଙ୍କଣ, ବେଙ୍କଟ । ପ୍ରସିଦ୍ଧ ଦକ୍ଷିଣ କର୍ଣ୍ଣାଟ ।।
ତହିଁରେ ମିଳି ଇଚ୍ଛାବଶେ । କୁଟକାଚଳ ବନଦେଶେ ।।
ଭ୍ରମେ ଉନ୍ମାଦ ବେଶ ଧରି । ଶିଳାକବଳ ମୁଖେ ଭରି ।।
ଫିଟିଣ ପଡ଼ିଛନ୍ତି କେଶ । କଟିତଟରେ ନାହିଁ ବାସ ।।
୮ ଏଥୁ ଅନ୍ତରେ ସମୀରଣ । ବେଗେ କଂପନ୍ତେ ବେଣୁଗଣ ।।
ଏକ ଆରକେ ଘଷି ହୋଇ । ଜନ୍ମିଲା ଘୋର ଅଗ୍ନି ତହିଁ ।।
ଆକ୍ରମି ସକଳ ଦିଗରେ । ଋଷଭଦେହସହିତରେ ।।
କ୍ଷଣକମାତ୍ରକେ ସେ ବନ । ଦହନ କଲା ହୁତାଶନ ।।
୯ ବେଙ୍କଟ, କୋଙ୍କଣ ଯେ ଦେଶ । ଅର୍ହଣ ନାମେ ତହିଁ ଈଶ ।।
ଋଷଭଙ୍କର ଆଚରଣ । ଶ୍ରବଣ କରିଣ, ଶିଖିଣ ।।
କଳିଯୁଗରେ ବେଳୁଁ ବେଳ । ଅଧର୍ମ ହୁଅନ୍ତେ ପ୍ରବଳ ।।
ଆପଣା ଧର୍ମପଥ ଯେହି । ଯହିଁ କାହିଁରୁ ଭୟ ନାହିଁ ।।
ସେ ମାର୍ଗ କରି ପରିତ୍ୟାଗ । କୁପଥ, ପାଷଣ୍ଡ ଯେ ମାର୍ଗ ।।
ଅସମଂଜସ ଯେ ଅଟଇ । ପ୍ରବର୍ତ୍ତାଇବ ତାହା ସେହି ।।
୧୦ ଯେବଣ ମାର୍ଗେ ଅନୁରାଗେ । ଦୁଷ୍ଟ ମନୁଷ୍ୟେ କଳିଯୁଗେ ।।
ମାୟାରେ ହେବେ ମୂଢ଼ଚିତ୍ତ । ବେଦବିଧିରେ ଯେ ଉକତ ।।
ଶଉଚ, ସୁଚରିତ ଆଦି । ତାହା ନ ପାରିବେ ସଂପାଦି ।।
ସ୍ନାନ, ଶଉଚ, ଆଚମନ । କେଶଖଣ୍ଡନରୁ ଯେ ଆନ ।।
ଦେବ-ଅବଜ୍ଞାରୂପ ହୋଇ । କୁତ୍ସିତ ବ୍ରତେ ଛନ୍ତି ମହୀ ।।
ଆପଣା ଇଚ୍ଛାରେ ସେମାନ । ଆଚରୁଥିବେ ଦିନୁଁ ଦିନ ।।
ଯେ କଳି ଅଧର୍ମବହୁଳ । ତେଣେ ହୋଇଣ ମତିଭୋଳ ।।
ନିନ୍ଦିବେ ବ୍ରାହ୍ମଣମାନଙ୍କୁ । ବେଦକୁ, ଯଜ୍ଞପୁରୁଷକୁ ।।
ଯେ ଅବା ଲୋକମାନେ ଥିବେ । ତାଙ୍କୁ ହିଁ ଦୂଷଣ କରିବେ ।।
୧୧ ଏ ରୂପେ ଅବେଦପ୍ରମାଣ । ନିଜ ଇଚ୍ଛାରେ ଆଚରିଣ ।।
ସେହି ମାର୍ଗରେ ମନ ଦେଇ । ଅନ୍ଧସମୂହ ପ୍ରାଏ ହୋଇ ।।
ଘୋର ନରକେ ଦେହଅନ୍ତେ । ପଡ଼ିବେ ଯାଇ ସେ ସମସ୍ତେ ।।
୧୨ ରଜୋଗୁଣରେ ହୋଇ ଯୁତ । ଯେ ପ୍ରାଣୀ ଅଛନ୍ତି ଜଗତ ।।
ତାହାଙ୍କ ମୋକ୍ଷଶିକ୍ଷାଅର୍ଥ । ଏ ରୂପ ଧଇଲେ ଅଚ୍ୟୁତ ।।

ତାହାଙ୍କ ଗୁଣ ଯୁତ ଶ୍ଳୋକ । ଗାୟନ କରୁଛନ୍ତି ଲୋକ ।। ୫୭
୧୩ ଏ ଭୂମି ସପ୍ତସିନ୍ଧୁମତୀ । ଏଥିରେ ଯେତେ ଦ୍ୱୀପ ଛନ୍ତି ।। ୫୮
ଯେତେ ଅଛନ୍ତି ବର୍ଷମାନ । ତାଙ୍କ ଭିତରେ ମହାପୁଣ୍ୟ ।। ୫୯
ଭାରତବର୍ଷ ଏ ଅଟଇ । ଯେଉଁ ବର୍ଷରେ ଜାତ ହୋଇ ।। ୬୦
ମନୁଷ୍ୟେ କରନ୍ତି ଗାୟନ । ମୁର-ରିପୁର କର୍ମମାନ ।। ୬୧
ଋଷଭ ଆଦି ଅବତାରେ । ଅଛନ୍ତି ଯେବଣ କର୍ମରେ ।। ୬୨
୧୪ ଆଶ୍ଚର୍ଯ୍ୟ ପ୍ରିୟବ୍ରତକୁଳ । ଯଶରେ ଅଟଇ ଉଜ୍ଜ୍ୱଳ ।। ୬୩
ଯେ ଆଦ୍ୟ ପୁରାଣପୁରୁଷ । ସେ ଜନ୍ମ ହୋଇ ଯେଉଁ ବଂଶ ।। ୬୪
ଯେ ଧର୍ମ ମୋକ୍ଷକୁ କାରଣ । ତାହାକୁ କଲେ ଆଚରଣ ।। ୬୫
୧୫ ଆନ କେ ଯୋଗବନ୍ତ ହୋଇ । ଋଷଭ ଛନ୍ତି ଯହିଁ ଯାଇ ।। ୬୬
ମନୋରଥରେ ସେ ମାର୍ଗରେ । ଗମନ କରିବ ସଂସାରେ ।। ୬୭
ଯେବଣ ଯୋଗସିଦ୍ଧିଗଣ । ଋଷଭ ନ କଲେ ଗ୍ରହଣ ।। ୬୮
ସେମାନ ଲଭିବାର ପାଇଁ । ଥାଆନ୍ତି ଯତ୍ନବନ୍ତ ହୋଇ ।। ୬୯
୧୬ ସକଳ ବେଦ, ଦେବଗଣ । ଯେ ଅନ୍ୟ ଲୋକ, ଗୋ, ବ୍ରାହ୍ମଣ ।। ୭୦
ପରମ ଗୁରୁ ତାହାଙ୍କର । ଅଟନ୍ତି ଋଷଭ ଈଶ୍ୱର ।। ୭୧
ତାହାଙ୍କ ଚରିତ ଗାୟନ । ପରମ ମଙ୍ଗଳ ଅୟନ ।। ୭୨
ପ୍ରାଣୀମାନଙ୍କର ଅଶେଷ । ଦୁରିତ କରଇ ବିନାଶ ।। ୭୩
ଶ୍ରଦ୍ଧାରେ ସାବଧାନ ହୋଇ । ଯେ ଏହା ଶୁଣେ ଯେ ଶୁଣାଇଁ ।। ୭୪
ଏଣେ ଶ୍ରୀବାସୁଦେବଠାଇଁ । ସେ ଦୁହିଁଙ୍କର ଭକ୍ତି ହୋଇ ।। ୭୫
୧୭ ଯେଉଁ ଭକ୍ତିରେ ସାଧୁଜନ । ବିବିଧ ପ୍ରକାର ବୃଜିନ ।। ୭୬
ସଂସାର ତାପରେ ତାପିତ । ଆତ୍ମାକୁ ମଜ୍ଜାଇ ସଂତତ ।। ୭୭
ସେହି ସୁଖରେ ସୁଖୀ ହୋଇ । ପରମ ପୁରୁଷାର୍ଥ ଯେହି ।। ୭୮
ଈଶ୍ୱର ଯାହା ଥାନ୍ତି ଦେଇ । ତାହା ଇଚ୍ଛାଏ ଯେ ମିଳଇ ।। ୭୯
ଯେ ମୋକ୍ଷ ଆତ୍ୟନ୍ତିକ ସାର । ତହିଁ ନ କରନ୍ତି ଆଦର ।। ୮୦
ଆମ୍ଭେ ଶ୍ରୀକୃଷ୍ଣର କିଂକର । ଏ ଭାବ କରି ନିରନ୍ତର ।। ୮୧
ସକଳ ପୁରୁଷାର୍ଥ ମାନ । ଲଭିଣ ଥାନ୍ତି ଯେତେ ଜନ ।। ୮୨
୧୮ ହେ ନୃପ ! ଭଗବାନ ହରି । ତୁମ୍ଭରି ଯଦୁମାନଙ୍କରି ।। ୮୩
ଅଟନ୍ତି ପତି, ଗୁରୁମୂର୍ତ୍ତି । ଦେବତା, ପ୍ରିୟ, କୁଳପତି ।। ୮୪
କେହୁଣି ସ୍ଥାନରେ ତୁମ୍ଭର । ସେ ପୁଣି ହୁଅନ୍ତି କିଂକର[1] ।। ୮୫
ଏ ରୂପେ ହୋଇଲେ ହେଁ ପୁଣ । ଯେ ଭଜେ ତାହାଙ୍କ ଚରଣ ।। ୮୬
ତାହାଙ୍କୁ ଦିଅନ୍ତି ମୁକତି । କେବେହେଁ ନ ଦିଅନ୍ତି ଭକ୍ତି ।। ୮୭

---

୧. କିଂକର = ଦୂତରୂପେ ଆଜ୍ଞାନୁବର୍ତ୍ତୀ ।

୧୯ ନିତ୍ୟରେ ଅନୁଭୂତି ପାଇ । ତେଣେ ତୃଷ୍ଣାକୁ ନିବର୍ତ୍ତାଇ ।। ୮୮
ଦେହାଦି ଅର୍ଥ-ମନୋରଥେ । ଯେଉଁ ଲୋକର ଶ୍ରେୟ ଅର୍ଥେ ।। ୮୯
ବୁଦ୍ଧିପ୍ରସର ହେଲା ନାହିଁ । ସେ ଲୋକଠାରେ ଦୟା ବହି ।। ୯୦
ନିର୍ଭୟ ଆପଣା ଆକାର । କହିଲେ ଯେ ସର୍ବ-ଈଶ୍ୱର ।। ୯୧
ସେ ଦେବ ରଷଭଙ୍କୁ ମୋର । ଅନବରତେ ନମସ୍କାର ।। ୯୨
ବ୍ରାହ୍ମଣ ଦୀନବଂଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ।। ୯୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀରଷଭଦେବାନୁଚରିତଂ
ନାମ ଷଷ୍ଠୋଽଧ୍ୟାୟଃ ।।

## ସପ୍ତମ ଅଧ୍ୟାୟ

ଅଧ୍ୟାୟାନାଂ ତ୍ରୟେଣୈବମୃଷଭାଖ୍ୟାନମୀରିତମ୍ ।
ଅଷ୍ଟଭିର୍ଭରତାଖ୍ୟାନମତଃ ପ୍ରସ୍ତୂୟତେଽଦ୍‌ଭୁତମ୍ ।। ୧
ସପ୍ତମେ ଭରତୋ ରାଜ୍ୟେ ଚିରଂ ଯଜ୍ଞୈର୍ହରିଂ ଯଜନ୍ ।
ଆରବ୍ଧକର୍ମନିର୍ବାଣେ ହରିକ୍ଷେତ୍ରେଽଭଜଦ୍ଧରିମ୍ ।। ୨

ଶ୍ରୀଶୁକ ଉବାଚ

୧-୩ କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ।। ୧
ଭରତ ମହାଭାଗବତ । ତାହାଙ୍କୁ କ୍ଷିତି ରକ୍ଷାଅର୍ଥ ।। ୨
ଯେବେ ରଷଭ ଭଗବାନ । ଆପଣେ କଲେ ନିଯୋଜନ ।। ୩
ତାଙ୍କ ଆଜ୍ଞାରେ ବସୁମତୀ । ପାଳନ କଲେ ସେ ନୃପତି ।। ୪
ଯେ ବିଶ୍ୱରୂପର ନନ୍ଦିନୀ । ନାମ ଅଟଇ ପଞ୍ଚଜନୀ ।। ୫
ତାହାଙ୍କୁ ବିବାହ ସେ ହୋଇ । ଆତ୍ମାନୁରୂପେ ତାହାଠାଇ ।। ୬
ପଞ୍ଚ କୁମର କଲେ ଜନ୍ମ । ଭୂତାଦି[1] ଯେହ୍ନେ ଭୂତସୂକ୍ଷ୍ମ[2] ।। ୭
ସୁମତି, ରାଷ୍ଟ୍ରଭୃତ ବେନି । ସୁଦରଶନ ମିଶି ତିନି ।। ୮
ଚତୁର୍ଥ ନାମ ଆବରଣ । ପଞ୍ଚମ ଧୂମ୍ରକେତୁ ଜାଣ ।। ୯
ପୂର୍ବରୁ ଅଜନାଭ ହୋଇ । ବିଖ୍ୟାତ ଅଟଇ ଏ ଭୂଇଁ ।। ୧୦
ଭରତ ଯେବଣ ଦିନରେ । ନୃପତି ହୋଇଲେ ଏଥିରେ ।। ୧୧
ସେହିଦିନରୁ ମୂଳ ହୋଇ । ଭାରତବର୍ଷ ଏ ବୋଲାଇ ।। ୧୨
୪ ସକଳ ଜାଣନ୍ତି ସେ ରାଏ । ସ୍ୱପିତା, ପିତାମହ ପ୍ରାଏ ।। ୧୩

---

୧. ଭୂତାଦି = ଅହଂକାର । ୨. ଭୂତସୂକ୍ଷ୍ମ = ପଞ୍ଚ ତନ୍ମାତ୍ର ।

ଅତି ବତ୍ସଳ ଭାବ ବହି । ସ୍ୱକର୍ମରତ ପ୍ରଜା ଯେହି ।। ୧୪
ପରିପାଳନ ତାଙ୍କୁ କଲେ । ଆପଣା ଧର୍ମରେ ରହିଲେ ।। ୧୫
୫ ଶ୍ରଦ୍ଧାରେ ସାମାନ୍ୟ, ବିଶେଷ । କର୍ମକୁ କରିଣ ପ୍ରକାଶ ।। ୧୬
ଆଚରି ଅଗ୍ନିହୋତ୍ର, ଦର୍ଶ । ଯେ ପୌର୍ଣ୍ଣମାସ, ଚାତୁର୍ମାସ ।। ୧୭
ଯେ ପଶୁ, ସୋମ ଏହାଙ୍କର । ପ୍ରକୃତି[1] ବିକୃତି ବେଭାର ।। ୧୮
ତେଣେ ଚାତୁରହୋତ୍ର ବିଧି । ବିଭବ ଅନୁସାରେ ସାଧି ।। ୧୯
ଯେ କ୍ରତୁ[2]ରୂପୀ ଭଗବାନ । ତାହାଙ୍କୁ କଲେ ସେ ଯଜନ ।। ୨୦
୬ ତହିଁରେ ଅଙ୍ଗକ୍ରିୟାମାନ । ସକଳ ହୋଇଛି ରଚନ ।। ୨୧
ପ୍ରଚରନ୍ତେ ସେ ଯାଗକୁଳ । ତହିଁ ଅପୂର୍ବ[3] କ୍ରିୟାଫଳ ।। ୨୨
ଧର୍ମରୂପରେ ଯେ ଅଛଇ । ତାଙ୍କୁ ଭାବଇ ହରିଠାଇଁ ।। ୨୩
ପରମ ବ୍ରହ୍ମ ଯେଉଁ ହରି । ଯଜ୍ଞପୁରୁଷରୂପଧାରୀ ।। ୨୪
ସାକ୍ଷାତ କର୍ତ୍ତା ଯେ ଈଶ୍ୱର । ପ୍ରଭୁ ଇନ୍ଦ୍ରାଦି ଦେବଙ୍କର ।। ୨୫
ଏମନ୍ତ ରୂପେ ଆପଣାର । ନିପୁଣଭାବେ ନୃପବର ।। ୨୬
ରାଗାଦି ଯେତେ ମଳମାନ । ସକଳ କଲେ ସେ ଦହନ ।। ୨୭
ଅଧ୍ୱର୍ଯ୍ୟୁମାନେ ହବିମାନ । ଘେନନ୍ତେ ସ୍ୱୟେଂ ଯଜମାନ ।। ୨୮
ଯଜ୍ଞେ ପୂଜିତ ଯେତେ ଦେବେ । ତାହାଙ୍କୁ ବିଷ୍ଣୁଅବୟବେ ।। ୨୯
ନେତ୍ର, ଶ୍ରବଣ ଆଦି କରି । ଭାବନା କଲେ ଅନୁସରି ।। ୩୦
୭ ଏରୂପେ କର୍ମମାନଙ୍କର । ବିଶୁଦ୍ଧି ସକାଶୁଁ ତାହାର ।। ୩୧
ପ୍ରକାଶ ହୋଇଣ କ୍ରମରେ । ବିଶୁଦ୍ଧସତ୍ତ୍ୱ ହୃଦୟରେ ।। ୩୨
ପ୍ରାଣୀଙ୍କ ହୃଦୟ-ଆକାଶ । ଯାହାର ଅଟଇ ନିବାସ ।। ୩୩
ଯେ ମହାପୁରୁଷଲକ୍ଷଣ । ବ୍ରହ୍ମସ୍ୱରୂପୀ ନାରାୟଣ ।। ୩୪
ଅମଳ ଶିରୀବତ୍ସ ଚିହ୍ନ । କୌସ୍ତୁଭ, ବନମାଳାମାନ ।। ୩୫
ସୁଦରଶନ, ଶଙ୍ଖ, ଗଦା । ଏଣେ ଲକ୍ଷିତ ଯେ ସର୍ବଦା ।। ୩୬
ନିଜ ଭକ୍ତଙ୍କ ହୃଦେ ଯେହି । ଲେଖିଲାପ୍ରାଏ ଛନ୍ତି ରହି ।। ୩୭
ଧରିଣ ସେ ପୁରୁଷତନୁ । ଅନ୍ତର ନୁହନ୍ତି ଯେ ମନୁଁ ।। ୩୮
ସେ ହରିଠାରେ ସେ ନୃପର । ଭକ୍ତି ବଳିଲା ବାରମ୍ବାର ।। ୩୯

---

୧. ପ୍ରକୃତି = ସକଳାଙ୍ଗଯୁକ୍ତା, ବିକୃତି = ବିକଳାଙ୍ଗା । ୨. କ୍ରତୁ = ସଯୂପ ଯଜ୍ଞ ।

୩. ଯାଗାଦେବ ଫଳଂ ତଦ୍ଧି ଶକ୍ତିଦ୍ୱାରେଣ ସିଧ୍ୟତି ।
ସୂକ୍ଷ୍ମଂ ଶକ୍ତ୍ୟାତ୍ମକଂ ବାପି ଫଳମେବୋପଜାୟତେ ।। ୧
କର୍ମଭ୍ୟଃ ପ୍ରାଗଯୋଗ୍ୟସ୍ୟ କର୍ମଣଃ ପୁରୁଷସ୍ୟ ବା ।
ଯୋଗ୍ୟତା ଶାସ୍ତ୍ରଗମ୍ୟା ଯା ପରା ସାପୂର୍ବମିଷ୍ୟତେ ।। ୨
(କର୍ମ କ୍ରିୟମାଣ ହେବା ସଙ୍ଗେ ସଙ୍ଗେ ସୂକ୍ଷ୍ମ ଭାବରେ ଯେଉଁ ଫଳ ଉତ୍ପନ୍ନ ହୁଏ ତାହାକୁ 'ଅପୂର୍ବ' କହନ୍ତି, ଅଥବା କାଳାନ୍ତରେ ଫଳ ଉତ୍ପାଦନ କରୁଥିବା କର୍ମଶକ୍ତିକୁ 'ଅପୂର୍ବ' କହନ୍ତି)

| | | | |
|---|---|---|---|
| ୮ | ଏହି ପ୍ରକାରେ ସେ ନରେଶ । ଅୟୁତସହସ୍ରବରଷ ॥ | ୪୦ |
| | ଭୋଗ ଭୁଞ୍ଜିଣ ତଦନ୍ତରେ । କର୍ମକୁ ନାଶି ସେ ପ୍ରକାରେ ॥ | ୪୧ |
| | ଯା' ପିତୃପିତାମହକ୍ରମେ । ଲଭିଣ ଥିଲେ ଅସଂଭ୍ରମେ ॥ | ୪୨ |
| | ଯେ ଧନ ଭୋଗ କରୁଥିଲେ । ପୁତ୍ରଙ୍କୁ ତାହା ବାଣ୍ଟିଦେଲେ ॥ | ୪୩ |
| | ସକଳ ସଂପଦର ସ୍ଥାନ । ଅଟଇ ଯେଉଁ ନିକେତନ ॥ | ୪୪ |
| | ତହିଁରୁ ସନ୍ୟାସଦୀକ୍ଷାରେ । ମିଳିଲେ ପୁଲହାଶ୍ରମରେ ॥ | ୪୫ |
| ୯ | ଯେବଣ କ୍ଷେତ୍ର[୧] ସ୍ଥିତ ଜନେ । ଇଚ୍ଛା କରନ୍ତି ଯାହା ମନେ ॥ | ୪୬ |
| | ବତ୍ସଳଭାବୁଁ ସେ ରୂପରେ । ବିଷ୍ଣୁ ମିଳନ୍ତି ସେ ସ୍ଥାନରେ ॥ | ୪୭ |
| ୧୦ | ଗଣ୍ଡକୀ ନାମ ନଦୀ ଯହିଁ । ଶିଳାଚକ୍ରଙ୍କୁ ଘେନି ତହିଁ ॥ | ୪୮ |
| | ତଳେ ଉପରେ ନାଭିମାନ । ସେ ଶିଳାମାନଙ୍କେ ସନ୍ଧାନ ॥ | ୪୯ |
| | ଯେଣେ ଆଶ୍ରମସ୍ଥାନମାନ । ସେ ନଦୀ କରଇ ପାବନ ॥ | ୫୦ |
| ୧୧ | ପୁଲହାଶ୍ରମ ଉପବନେ । ଏକା ହୋଇଣ ତୋଷମନେ ॥ | ୫୧ |
| | ନାନାପ୍ରକାରେ ପୁଷ୍ପକୁଳ । ପଲ୍ଲବ, ତୁଳସୀସଲିଳ ॥ | ୫୨ |
| | ସୁକନ୍ଦମୂଳ, ନାନାଫଳ । ଏ ଉପହାର କରି ଠୁଳ ॥ | ୫୩ |
| | ବିଷ୍ଣୁଙ୍କୁ କରନ୍ତେ ପୂଜନ । ବିଶୁଦ୍ଧ ହୋଇ ସେ ରାଜନ ॥ | ୫୪ |
| | ବିଷୟ-ଅଭିଳାଷ ତାର । ସକଳ ହୋଇଲାକ ଦୂର ॥ | ୫୫ |
| | ଶାନ୍ତି ଅଧିକେ ସମ୍ଭବିଲା । ପରମ ସୁଖକୁ ଲଭିଲା ॥ | ୫୬ |
| ୧୨ | ଏହି ପ୍ରକାରେ ଅନୁଦିନ । କରନ୍ତେ ବିଷ୍ଣୁର ପୂଜନ ॥ | ୫୭ |
| | କ୍ରମରେ ଭଗବାନଠାର । ବଢ଼ିଲା ଅନୁରାଗଭର ॥ | ୫୮ |
| | ଦ୍ରବ ହୁଅନ୍ତେ ମନ ତେଣେ । ଉଦ୍ୟମ ଊଣା ହେଲା ଏଣେ ॥ | ୫୯ |
| | ହରଷବେଗୁଁ ଦେହେ ଜାତ । ପୁଲକକୁଳ ଅବିରତ ॥ | ୬୦ |
| | ଉତ୍କଣ୍ଠାଭାବରୁ ବାହାର । ଆନନ୍ଦଲୋତକ-ନିକର ॥ | ୬୧ |
| | ତେଣୁ ନୟନକୁ ନ ଦିଶି । ଏମନ୍ତରୂପେ ରାଜରଷି ॥ | ୬୨ |
| | ଅଟେ ଯେ ଆପଣା ଈଶ୍ୱର । ଅରୁଣପାଦପଦ୍ମ ତାର ॥ | ୬୩ |
| | ଧ୍ୟାନ କରନ୍ତେ ଅବିରତ । ହୋଇଲା ଭକ୍ତିଯୋଗ ଜାତ ॥ | ୬୪ |
| | ତେଣୁ ପରମାନନ୍ଦ ଯହିଁ । ଗମ୍ଭୀର ଚିତ୍ତହ୍ରଦେ ରହି ॥ | ୬୫ |
| | ତହିଁ ନିମଗ୍ନ ହେଲା ମତି । ଏମନ୍ତ କ୍ରମେ ସେ ନୃପତି ॥ | ୬୬ |
| | ଯେବଣ ପୂଜା କରୁଥିଲା । ତହିଁ କ୍ରମରେ ପାସୋରିଲା ॥ | ୬୭ |
| ୧୩ | ଏ ରୂପେ ବିଷ୍ଣୁବ୍ରତ ଧରି । ହରିଣଚର୍ମେ ବସ୍ତ୍ର କରି ॥ | ୬୮ |
| | ତ୍ରିସଂଧ୍ୟାସ୍ନାନୁଁ ଜଟାକୁଳ । ଆର୍ଦ୍ର, କପିଶ, ସୁକୁଟିଳ ॥ | ୬୯ |

୧. କ୍ଷେତ୍ର = ବିଦ୍ୟାଧର କୁଣ୍ଡ ।

| | | | | | |
|---|---|---|---|---|---|
| | ତେଣେ ଜାଜ୍ୱଲ୍ୟମାନ ଦିଶି | । | ସୂର୍ଯ୍ୟପ୍ରକାଶ-ମନ୍ତ୍ରଂ ଘୋଷି | ।। | ୭୦ |
| | ଗଗନେ ଆଦିତ୍ୟମଣ୍ଡଳ | । | ପ୍ରକାଶ ହୁଅନ୍ତେ ତତ୍‌କାଳ | ।। | ୭୧ |
| | ତହିଁ ଯେ ଛନ୍ତି ଭଗବାନ | । | ପୁରୁଷ ହିରଣ୍ୟବରନ | ।। | ୭୨ |
| | ତାହାଙ୍କୁ କରି ଉପସ୍ଥାନ | । | ବୋଇଲେ ଏମନ୍ତ ବଚନ | ।। | ୭୩ |
| ୧୪ | ରଜୋଗୁଣରୁ ଅଟେ ପର | । | ଯେ ତେଜ ଦେବ ସବିତାର | ।। | ୭୪ |
| | ଯା'ଠାରୁ ଜାତ ହୋଏ ଧନ | । | ମନରୁ ବିଶ୍ୱ ଉତପନ | ।। | ୭୫ |
| | ସେ ଅନ୍ତର୍ଯାମିସ୍ୱରୂପେଣ | । | ସ୍ୱକୃତ ସୃଷ୍ଟିରେ ପଶିଣ | ।। | ୭୬ |
| | ଯେ ଜୀବ ବିଷୟାଭିଳାଷୀ | । | ତାକୁ ଚିଦ୍‌ଶକ୍ତିକି ପ୍ରକାଶି | ।। | ୭୭ |
| | ସନ୍ତତେ ପାଳନା କରଇ | । | ବୁଦ୍ଧିବିଶେଷକୁ ଦିଅଇ | ।। | ୭୮ |
| | ସେ ସୂର୍ଯ୍ୟତେଜକୁ ଶରଣ | । | ପଶୁଛୁଁ ଆମ୍ଭେ ଅନୁକ୍ଷଣ | ।। | ୭୯ |
| | ବ୍ରାହ୍ମଣ ଦୀନବଂଧୁ କହେ | । | ସୁଜନେ ଏଣେ କର ଲଏ | ।। | ୮୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଭରତଚରିତେ ଶ୍ରୀଭଗବଦ୍‌ପରିଚର୍ଯ୍ୟା
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ଭଜତୋ ବିଷ୍ଣୁଂ ତସ୍ୟ କର୍ମାନ୍ତରାୟତଃ ।
ଏଣରକ୍ଷାପ୍ରସକ୍ତସ୍ୟ ଜାତମେଣତ୍ୱମୀର୍ଯ୍ୟତେ ।। ୧
କୃପୟାପି କୃତଃ ସଙ୍ଗଃ ପତନାୟୈବ ଯୋଗିନଃ ।
ଇତି ପ୍ରଦର୍ଶୟନ୍ନାହ ଭରତସ୍ୟୈଣପୋଷଣମ୍ ।। ୨

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ସେ ମହୀପତି ଏକଦିନ | । | ମହାନଦୀରେ କରି ସ୍ନାନ | ।। | ୧ |
| | ଯେ କର୍ମ ନିତ୍ୟ-ନୈମିତ୍ତିକ | । | ଯେ ଅବା ଥିଲା ଆବଶ୍ୟକ | ।। | ୨ |
| | ସେ କର୍ମମାନ ସବୁ ସାରି | । | ପ୍ରଣବ ବର୍ଣ୍ଣକୁ ଉଚ୍ଚାରି | ।। | ୩ |
| | ତିନି ମୁହୂର୍ତ୍ତ ନଦୀତୀରେ | । | ବସିଲା ନିଶ୍ଚଳ ମନରେ | ।। | ୪ |
| ୨ | ହେ ନୃପ ! ଏହି ସମୟରେ | । | ସେ ଚକ୍ରନଦୀ ସମୀପରେ | ।। | ୫ |
| | ତୃଷାରେ ପିଇବାକୁ ପାଣି | । | ମିଳିଲା ଏକଇ ହରିଣୀ | ।। | ୬ |

୧. ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସଂନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ
ହାରୀ ହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ।।

୩ ସଲିଳ କରନ୍ତେ ସେ ପାନ । ନିକଟେ ଏକ ପଞ୍ଚାନନ[୧] ॥ ୭
ଗର୍ଜନ୍ତେ ଅତି ଉଚ୍ଚତର । ନାଦ ଶୁଭିଲା ଭୟଙ୍କର ॥ ୮
୪ ସେ ମୃଗବଧୂ ଶୁଣି ତାହା । ଯିବାକୁ ଧରିଣ ଉତ୍ସାହା ॥ ୯
ଚାହାନ୍ତେ ଚଞ୍ଚଳନୟନ । ସ୍ୱଭାବେ ବିକଳ ତା' ମନ ॥ ୧୦
ବିଶେଷେ ସିଂହଠାରୁ ଭୟ । ସେ ଘେନି କମ୍ପୁଛି ହୃଦୟ ॥ ୧୧
ନିଜ ତୃଷାକୁ ପୂର୍ଣ୍ଣ କରି । ପିଇଣ ପାରି ନାହିଁ ବାରି ॥ ୧୨
ଅତିଭୟରେ ତତକ୍ଷଣ । ଗଲା ସେ ନଦୀକି ଲଙ୍ଘିଣ ॥ ୧୩
୫ ଗର୍ଭିଣୀ ଅଟେ ସେ ହରିଣୀ । ଡେଇଁ ଯାଆନ୍ତେ ଲଙ୍ଘି ପାଣି ॥ ୧୪
ସେ ଭୟୁଁ ଗଳି ଯୋନିଦ୍ୱାରେ । ସେ ଗର୍ଭ ପଡ଼ିଲା ସ୍ରୋତରେ ॥ ୧୫
୬ ଗର୍ଭପତନ, ତ୍ୱରାଗତି । ମନେ ଜନମି ଅଛି ଭୀତି ॥ ୧୬
ସାଥି ହିଁ ଗଲେ ଏଣେ ତେଣେ । ଖେଦ ଲଭିଲା ଏ କାରଣେ ॥ ୧୭
କେହୁଣି ପର୍ବତଗୁହାରେ । ପଡ଼ିଲା, ମଲା ସେ ତହିଁରେ ॥ ୧୮
୭ ଛାଡ଼ିଣଗଲେ ବନ୍ଧୁଜନ । ମାତା ହିଁ ହୋଇଲା ନିଧନ ॥ ୧୯
ସେ ମୃଗଶିଶୁ ଅଟେ ଦୁଃଖୀ । ସ୍ରୋତେ ଭାସୁଛି, ଏହା ଦେଖି ॥ ୨୦
ଦୟାରେ ଭରତ ତାହାକୁ । ଆଣିଲେ ନିଜ ଆଶ୍ରମକୁ ॥ ୨୧
୮ ମୃଗଶିଶୁରେ ସେ ରାଜନ । କରିଣ ନିଜ ଅଭିମାନ ॥ ୨୨
ତୃଣାଦି ଦେଇଣ ପୋଷନ୍ତି । ବ୍ୟାଘ୍ରାଦି-ସକାଶୁଁ ରଖନ୍ତି ॥ ୨୩
ଚୁମ୍ବନ ଆଦି ଦେଇ ମୁଖେ । ଲାଳନ କରେ ମହାସୁଖେ ॥ ୨୪
ଅଙ୍ଗ କରିଣ କଣ୍ଡୂୟନ । ତୋଷ କରନ୍ତି ତାର ମନ ॥ ୨୫
ଦିନକୁ ଦିନ ଏ ରୂପରେ । ସ୍ନେହ କରନ୍ତେ ତାହାଠାରେ ॥ ୨୬
ଯେ ଯମ, ନିୟମ ତାଙ୍କର । ବିଷ୍ଣୁପୂଜନ ଥିଲା ଆର ॥ ୨୭
ଏକେ ଏକେ ଏ କ୍ରିୟାମାନେ । ଉଚ୍ଛନ୍ନ ହେଲେ କେତେ ଦିନେ ॥ ୨୮
୯ ଏ ମୃଗଶିଶୁ ଅତିଦୀନ । କାଳବଶରୁ ବନ୍ଧୁହୀନ ॥ ୨୯
ଶରଣ କରି ମୋତେ ପାଇ । ତାତ, ଜନନୀ, ଜ୍ଞାତି, ଭାଇ ॥ ୩୦
ନିଜସମୂହ କରି ମଣେ । ଆନ କାହାକୁ ହିଁ ନ ଜାଣେ ॥ ୩୧
ବିଶ୍ୱାସୀ ଏ ମୋଠାରେ ପୁଣ । ମୁଁ ସେ ଏହାର ପରାୟଣ ॥ ୩୨
ଏ ଘେନି ଅସୂୟା ଛାଡ଼ିଣ । ଏହାର ପୋଷଣ, ରକ୍ଷଣ ॥ ୩୩
ଏ ଆଦି ଯେତେ କର୍ମମାନ । ସବୁ ମୁଁ କରିବି ବିଧାନ ॥ ୩୪
ଶରଣାଗତକୁ ଛାଡ଼ିଲେ । ଯେ ଦୋଷ ଜାଣଇଁ ତା' ଭଲେ ॥ ୩୫
୧୦ ଯେ ଆର୍ଯ୍ୟ, ଉପଶମଶୀଳ । ସଜ୍ଜନ, କୃପଣବତ୍ସଳ ॥ ୩୬
ଏ କାର୍ଯ୍ୟେ ଅତି ଗୁରୁତର । ସ୍ୱାର୍ଥ ହିଁ କରନ୍ତି ସେ ଦୂର ॥ ୩୭

---

୧. ପଞ୍ଚାନନ = ସିଂହ ।

୧୧ ଏ ରୂପେ ବିଚାର କରିଣ । ଶୟନ, ଆସନ, ଭ୍ରମଣ ॥ ୩୮
ସ୍ଥିତି, ଭୋଜନ ଆଦି କାଳେ । ଅନବରତ ମୃଗ-ବାଳେ ॥ ୩୯
ସ୍ନେହବନ୍ଧରେ ନିଜ ମନ । ଅର୍ପିତ କଲେ ସେ ରାଜନ ॥ ୪୦
୧୨ କୁଶ, କୁସୁମ, ପତ୍ର, ଫଳ । ଯେ ବା ସମିଧ, ଜଳ, ମୂଳ ॥ ୪୧
ଏ ଆଦି ନାନା ଦ୍ରବ୍ୟ ମାନ । ଆଣି ଯାଆନ୍ତେ ସେ ରାଜନ ॥ ୪୨
ବ୍ୟାଘ୍ର, ଶୃଗାଳ ଆଦି ଯେତେ । ହିଂସୁକ ଜନ୍ତୁ ବନଗତେ ॥ ୪୩
ତାଙ୍କ ସକାଶୁଁ ଭୟ ଚିନ୍ତି । ସଙ୍ଗେ ଘେନିଣ ତାକୁ ଯାନ୍ତି ॥ ୪୪
୧୩ ମାର୍ଗେ ଗମନ୍ତେ ଏଣେ ତେଣେ । ବାଳକଭାବୁଁ ବୃକ୍ଷେ, ତୃଣେ ॥ ୪୫
ଚିତ୍ତ ନିବେଶି ସେ ରହଇ । ତାହାକୁ ସ୍ନେହବଦ୍ଧ ହୋଇ ॥ ୪୬
ବରଷପତି ସେ ଭରତ । କରନ୍ତି ନିଜ ସ୍କନ୍ଧଗତ ॥ ୪୭
୧୪ ଲାଳନା କରି ଏ ପ୍ରକାରେ । ନିବେଶି ନିଜ ଅଙ୍ଗଭରେ ॥ ୪୮
ଅତି ହରଷ ନିଜ ଚିତ୍ତେ । ନୃପ ଲଭିଲେ ଅବିରତେ ॥ ୪୯
ସଂଧ୍ୟାଦି ନିତ୍ୟକର୍ମ ଯେତେ । କରୁଥାଆନ୍ତେ ମଧ୍ୟଗତେ ॥ ୫୦
ଦେଖନ୍ତି ଉଠି ପୁଣପୁଣି । ସେ ମହୀପତିଚୂଡ଼ାମଣି ॥ ୫୧
ହୋଇଣ ନିଶ୍ଚଳମାନସ । ତାହାକୁ ଦିଅନ୍ତି ଆଶିଷ ॥ ୫୨
ହେ ବତ୍ସ ! ସବୁଠାରେ ତୋର । କୁଶଳ ହେଉ ନିରନ୍ତର ॥ ୫୩
୧୫ ତାହାକୁ ନ ଦେଖନ୍ତି ଯେବେ । ଉଦ୍‌ବେଗ ମନ ହୋଏ ତେବେ ॥ ୫୪
ଯେସନେ ଦ୍ରବ୍ୟକୁ ହଜାଇ । କୃପଣ ଲୋକ ଆର୍ତ୍ତ ହୋଇ ॥ ୫୫
ହୋଇଣ ସକରୁଣ ଅତି । ଉତ୍ସୁକ ଭାବେ ଦେଇ ମତି ॥ ୫୬
ବିରହୁଁ ହରିଣଶିଶୁର । ବିହ୍ୱଳ ହୃଦେ ତାପଭର ॥ ୫୭
ତାହାକୁ ଚିନ୍ତି ମୋହ ଯାନ୍ତି । ଏମନ୍ତ ବଚନ ବୋଲନ୍ତି ॥ ୫୮
୧୬ ଶଠ କିରାତପ୍ରାଏ ମୋର । ବୁଦ୍ଧି ଅଟଇ ଅତି କ୍ରୂର ॥ ୫୯
ଏଣୁ ମୁଁ ଅସାଧୁ ଅଟଇ । ସୁକୃତମାର୍ଗ ନ ଜାଣଇଁ ॥ ୬୦
ମୋ'ଠାରେ କରିଣ ବିଶ୍ୱାସ । ମନେ ନ ଘେନି ମୋର ଦୋଷ ॥ ୬୧
ସେ ମୃଗ ଶିଶୁ ଅତିଦୀନ । ମୃତକ ହରିଣୀନନ୍ଦନ ॥ ୬୨
ସୁଜନ ଲୋକପ୍ରାୟ ହୋଇ । ଆସି ମିଳିବ କି ଏଠାଇ ॥ ୬୩
୧୭ ଏ ଯେ ଆଶ୍ରମ-ଉପବନ । ଏଥି କୋମଳ ତୃଣମାନ ॥ ୬୪
ଚରୁଣ ଥିବ, ତାକୁ ଦେବେ । ସମସ୍ତେ ରକ୍ଷା କରିଥିବେ ॥ ୬୫
ତାହାକୁ ଏମନ୍ତ ପ୍ରକାରେ । ସତେ ମୁଁ ଦେଖିବି କ୍ଷେମରେ ॥ ୬୬
୧୮, ୧୯ ବ୍ୟାଘ୍ର, ଶୃଗାଳ ଆଦି ଆନ । ଯେ ଅବା ବନଜନ୍ତୁମାନ ॥ ୬୭
ଏକେ ଚରନ୍ତି ଅବା ଯୂଥେ । ଖାଇଲେ ଅବା ତାକୁ ପଥେ ॥ ୬୮
ସକଳ ଜଗତ ଲୋକର । କ୍ଷେମକୁ ଉଦୟ ଯାହାର ॥ ୬୯

ବେଦସ୍ୱରୂପୀ ଭଗବାନ | ଅସ୍ତ ହେଉଛି ସେ ତପନ || ୭୦
ହରିଣବଧୂ ଯାହା ମୋତେ | ଦେଇ ଯାଇଛି ତୋଷଚିତ୍ତେ || ୭୧
ସେ ପୁଣି ଏତେବେଳ ଯାଏ | ପ୍ରବେଶ ନୋହିଲା ମୋ'ଠାଏ || ୭୨
୨୦ ନାନାପ୍ରକାରେ ମନୋହର | ଦର୍ଶନଯୋଗ ଯେ ବା ତାର || ୭୩
ମୃଗବାଳକ-ଲୀଳାମାନ | ତେଣେ ତୋଷନ୍ତେ ନିଜ ମନ || ୭୪
ହରିଣ-ନୃପତିକୁମାର | ପ୍ରବେଶ ହୋଇଣ ଏଠାର || ୭୫
ସୁଖିତ କରିବ କି ମୋତେ | ମୁଁ ପୁଣ୍ୟ କରି ନାହିଁ ତେତେ || ୭୬
୨୧ ମିଥ୍ୟା ସମାଧିରେ ମୁଁ ଯେବେ | ଚକ୍ଷୁ ବୁଜଇ କ୍ରୀଡ଼ାଭାବେ || ୭୭
ଚକିତ ଚକିତ ହୋଇଣ | ପ୍ରଣୟକୋପରେ ମିଳିଣ || ୭୮
ଜଳବିନ୍ଦୁର ପ୍ରାୟେ ହୋଇ | କୋମଳ ଅଟେ ଶିଙ୍ଘ ଦୁଇ || ୭୯
ସେ ଶିଙ୍ଘଅଗ୍ର ମୋ ଦେହରେ | ଘଟନା କରଇ ସ୍ନେହରେ || ୮୦
୨୨ ଯହିଁରେ ହବିର୍ଭାଗ ପାଇ | ସେ କୁଶ ଆସି ଯେବେ ଖାଇ || ୮୧
ତେବେ ମୁଁ କରଇ ଭର୍ତ୍ସନ | ଅତି ହିଁ ଭୟ ଲଭି ମନ || ୮୨
କ୍ରୀଡ଼ାରସକୁ ନିବର୍ତ୍ତାଇ | ଋଷିକୁମାର ପ୍ରାଏ ହୋଇ || ୮୩
ଇନ୍ଦ୍ରିୟମାନଙ୍କୁ ନିଶ୍ଚଳ | କରିଣ ରହେ ତତକାଳ || ୮୪
୨୩ ଏ ଭାଗ୍ୟବତୀ ବସୁନ୍ଧରୀ | ପୂର୍ବେ କି ତପ ଅଛି କରି || ୮୫
ଯେ ଅତିବିନୟସଂଯୁତ | ଅଟଇ କୃଷ୍ଣସାରସୁତ || ୮୬
ସୂକ୍ଷ୍ମ, ସୁନ୍ଦର, ଶୁଭକର | ତୀକ୍ଷ୍ଣ ଅଟଇ ତାର ଖୁର || ୮୭
ସେ ଖୁରଚିହ୍ନପନ୍ତି ମୋତେ | ଦେଖାଇ ଦେଇଛି ଅଗ୍ରତେ || ୮୮
ମୁଁ ହୋଇଅଛି ଅତିଦୀନ | ହଜାଇ ମୃଗରୂପ ଧନ || ୮୯
ଯେଣୁ ଏ ସେ ମୃଗମାର୍ଗକୁ | ସୂଚାଇ ଦେଉଛି ଆତ୍ମଙ୍କୁ || ୯୦
ସ୍ୱର୍ଗ, ମୋକ୍ଷକୁ ବାଞ୍ଛି ଯେତେ | ବ୍ରାହ୍ମଣ ଅଛନ୍ତି ଜଗତେ || ୯୧
ଆତ୍ମାକୁ ତାଙ୍କ ଯଜ୍ଞସ୍ଥାନ | କରିଣ ହୋଇଛି ମଣ୍ଡନ || ୯୨
୨୪ ମରିଣ ଅଛି ମାତା ଯାର | ସେ ମୃଗବାଳକ ମୋହର || ୯୩
ସିଂହସକାଶୁ ଭୟ ପାଇ | ଅଛି ଆଶ୍ରମୁଁ ଭ୍ରଷ୍ଟ ହୋଇ || ୯୪
ତାହାକୁ ଏହୁ ନିଶାକର | କୃପଣବତ୍ସଳ ଈଶ୍ୱର || ୯୫
କୃପା କରିଣ ନିଜ ମନେ | ରଖିଥିବେ କି ସ୍ୱଭୁବନେ || ୯୬
୨୫ ପୁତ୍ରବିଚ୍ଛେଦୁଁ ଜାତ ଜ୍ୱର | ଅନଳଶିଖାରେ ମୋହର || ୯୭
ପୋଡୁଛି ହୃଦୟ ନଳିନ | ଖୋଜୁଛି ମୃଗୀର ନନ୍ଦନ || ୯୮
ଶୀତଳ, ଶାନ୍ତ ଅବିରତ | ଅନୁରାଗରେ ଯେ ବର୍ଦ୍ଧିତ || ୯୯
ବଦନୁଁ ଗଳିତ ସଲିଳ | ଅମୃତକାନ୍ତି ସେ କେବଳ || ୧୦୦
ତେଣେ କରିବ ଶାନ୍ତି ମୋର | କିଏ ଉଦିତ ସୁଧାକର || ୧୦୧

୨୬ ଏହି ପ୍ରକାରେ ଅଘଟିତ । ମନୋରଥରେ ଅବିରତ ।। ୧୦୨
ଆକୁଳ ହୃଦୟ ଭାବରେ । ଭରତ ରହିଲେ ବନରେ ।। ୧୦୩
ପ୍ରାରବ୍ଧ କର୍ମ ଥିଲା ଯେହି । ସେ ମୃଗଶିଶୁରୂପ ବହି ।। ୧୦୪
ଯୋଗମାର୍ଗରୁ ଭ୍ରଷ୍ଟ କଲା । ବିଷ୍ଣୁପୂଜା ହିଁ ଛଡ଼ାଇଲା ।। ୧୦୫
ଏ କଥା ଯେବେ ନୋହେ ମୂଳ । ଜାତି-ଅନ୍ତର ମୃଗବାଳ ।। ୧୦୬
ତାହାର ଠାରେ ସ୍ନେହମତି । କିଂପାଇଁ କଲେ ସେ ନୃପତି ।। ୧୦୭
ମୋକ୍ଷମାର୍ଗକୁ ଏ ବିରୋଧୀ । ପୂର୍ବେ ଯେ କରିଣ ଏ ବୁଦ୍ଧି ।। ୧୦୮
ଦୁସ୍ତ୍ୟଜ ସ୍ୱଦେହସଂଭବ । ପୁତ୍ରଙ୍କୁ କଲେ ଦୂରଭାବ ।। ୧୦୯
ଏ ରୂପେ ବିଘ୍ନହେତୁ ତାର । ଯୋଗ-ଆରମ୍ଭ ଯାନ୍ତେ ଦୂର ।। ୧୧୦
ମୃଗବାଳକର ପୋଷଣ । ପାଳନ ଆଦି ଅନୁଦିନ ।। ୧୧୧
ଚିନ୍ତା କରନ୍ତେ ନୃପବର । ଆତ୍ମଚିନ୍ତାକୁ କଲେ ଦୂର ।। ୧୧୨
ଯେ ଅତିବେଗ ଅଲଙ୍ଘିତ । ସେ କାଳ ହେଲା ଉପଗତ ।। ୧୧୩
ଯେସନେ ମୂଷିକବିବର । ପ୍ରବେଶ ହୋଏ ବିଷଧର ।। ୧୧୪
୨୭ ସେ କାଳେ ପୁତ୍ରପ୍ରାଏ ହୋଇ । ଶୋକ କରନ୍ତେ ପାଶେ ଥାଇ ।। ୧୧୫
ମୃଗକୁ ଚାହିଁଣ ରାଜନ । ମୃଗଠାବରେ ଦେଇ ମନ ।। ୧୧୬
ଦେହକୁ ମୃଗ ସହିତରେ । ଛାଡ଼ିଣ ସେହି ଆଶ୍ରମରେ ।। ୧୧୭
ଲଭିଲେ ମୃଗକଳେବର । ଯେହ୍ନେ ଇତର ଅଜ୍ଞ ନର ।। ୧୧୮
ସେ ମୃଗଦେହେ ନୃପବର । କେବଳ ହେଲେ ଜାତିସ୍ମର ।। ୧୧୯
୨୮ ବର୍ତ୍ତିଣ ଥାଇ ମୃଗଭାବେ । ବିଷ୍ଣୁର ପୂଜା ଅନୁରାଗେ ।। ୧୨୦
ମୃଗଦେହକୁ ଯେ କାରଣ । ସେ କର୍ମ ମନରେ ଚିନ୍ତିଣ ।। ୧୨୧
ହୋଇଣ ଅତି ଖେଦମନ । ବୋଇଲେ ଏମନ୍ତ ବଚନ ।। ୧୨୨
୨୯ ବିଚିତ୍ର ଅଟେ ମୋର କଷ୍ଟ । ଜ୍ଞାନମାର୍ଗରୁ ହେଲି ଭ୍ରଷ୍ଟ ।। ୧୨୩
ଯେଣୁ ମୁଁ ଛାଡ଼ି ସର୍ବଜନ । ଆଶ୍ରୟ କରି ପୁଣ୍ୟବନ ।। ୧୨୪
ଯେ ସର୍ବ-ଆତ୍ମା ଭଗବାନ । ତାହାଙ୍କ ଶ୍ରବଣ, ମନନ ।। ୧୨୫
କୀର୍ତ୍ତନ, ଆରାଧନ, ସ୍ତୁତି । ଏଯୋଗୁଁ ମୋର ଦିବାରାତି ।। ୧୨୬
କ୍ଷଣେହେଁ ନୋହିଥିଲା ଆନ । ନିବେଶି କୃଷ୍ଣଠାରେ ମନ ।। ୧୨୭
ସମଗ୍ର ହୋଇ ମନ ତହିଁ । ନିଶ୍ଚଳେ ଥିଲା ମୋର ରହି ।। ୧୨୮
ମୁଁ ପୁଣି ଅଜ୍ଞପଣ କଲି । ମୃଗବାଳକକୁ ପୋଷିଲି ।। ୧୨୯
ତାହାର ସକାଶୁଁ ମୋହର । ସେ ସର୍ବ ହୋଇଲା ଅନ୍ତର ।। ୧୩୦
୩୦ ଏ କଥା ମନରେ ବିଚାରି । ବାହାରେ ପ୍ରକାଶ ନ କରି ।। ୧୩୧
ନିଜ ମାତାକୁ କରି ଦୂର । ଯେ କ୍ଷେତ୍ର ଅଟଇ ବିଷ୍ଣୁର ।। ୧୩୨
ଶାନ୍ତିସଂଯୁତ ମୁନିଗଣେ । ଛାଡ଼ି ଯା' ନ ପାରନ୍ତି କ୍ଷଣେ ।। ୧୩୩

ପୁଲସ୍ତ୍ୟ-ପୁଲହ ଆଶ୍ରମ । ଯହିଁ ଉପୁଜେ ଶାଳଗ୍ରାମ ॥ ୧୩୪
ପୁଣି ସେ ସ୍ଥାନକୁ ଅଇଲା । ଯହିଁରେ ମୃଗ ଜନ୍ମ ହେଲା ॥ ୧୩୫
ସେ କାଳଞ୍ଜର ନାମେ ଗିରି । ତାକୁ ଅଇଲା ଦୂର କରି ॥ ୧୩୬
୩୧ ସେ ପୁଣ୍ୟ ଆଶ୍ରମେ ଥାଇଣ । କାଳକୁ ପ୍ରତୀକ୍ଷା କରିଣ ॥ ୧୩୭
ଯେ କର୍ମୁଁ ହେଲା ମୃଗତନୁ । ତା' ନାଶ ଚିନ୍ତି ଦିନୁଁଦିନୁ ॥ ୧୩୮
ସଙ୍ଗରୁ ଅତି ଭୟ ପାଇ । ଭ୍ରମଣ କରେ ଏକା ହୋଇ ॥ ୧୩୯
ଚରଇ ଶୁଷ୍କ ପତ୍ରମାନ । ଯେ ତୃଣ, ଲତା ମିଳେ ଆନ ॥ ୧୪୦
ମୃଗଶରୀର ତୀର୍ଥଜଳେ । ଛାଡ଼ିଲା ପୁଣ ପ୍ରାନ୍ତକାଳେ ॥ ୧୪୧
କୃଷ୍ଣ ପଦାରବିନ୍ଦେ ନିତି । ବ୍ରାହ୍ମଣ ଦୀନବଂଧୁ ମତି ॥ ୧୪୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଭରତମୃଗତନୁତ୍ୟାଗୋ
ନାମ ଅଷ୍ଟମୋଽଧ୍ୟାୟଃ ॥

## ନବମ ଅଧ୍ୟାୟ

ନବମେ ଜଡ଼ବିପ୍ରତ୍ୱେ ତସ୍ୟ ରାଗାଦ୍ୟଭାବତଃ ।
ଭଦ୍ରକାଳୀପଶୁତ୍ୱେଽପି ନିର୍ବିକାରତ୍ୱମୀର୍ଯ୍ୟତେ ॥ ୧
ପିତୁଃ ପ୍ରାପ୍ତାତ୍ମବିଜ୍ଞାନୋ ଭରତୋ ମୃଗତାଂ ଗତଃ ।
ପ୍ରାରବ୍ଧକର୍ମବେଗେଣ ତଦନ୍ତେ ଜଡ଼ବିପ୍ରତାମ୍ ॥ ୨

ଶ୍ରୀଶୁକ ଉବାଚ

୧ ଥିଲା ଯେ କେହି ବିପ୍ରବର । ଆଙ୍ଗିର ଗୋତ୍ରମଧ୍ୟେ ସାର ॥ ୧
ତପସ୍ୟା, ଶମ, ଦମ, ଦାନ । ତିତିକ୍ଷା, ତୋଷ, ଅଧ୍ୟୟନ ॥ ୨
ବିଦ୍ୟା, ବିନୟ, ଆତ୍ମଜ୍ଞାନ । ପ୍ରୀତି, ଅନସୂୟା ଏମାନ ॥ ୩
ତାଠାରେ ଅଛନ୍ତି ନିୟତ । ତାହାର ନବ ସୁତ ଜାତ ॥ ୪
ଶାସ୍ତ୍ର, ସୁଚରିତ, ଆଚାର । ରୂପ, ଉଦାରଗୁଣେ ସାର ॥ ୫
ଅଟନ୍ତି ସକଳ କ୍ରମରେ । ପୁଣ କନିଷ୍ଠ ଭାର୍ଯ୍ୟାଠାରେ ॥ ୬
ଯାମଳ ହୋଇ ହେଲେ ଜାତ । ଏକ ତନୁଜା, ଏକ ସୁତ ॥ ୭
୨ ସେ ବେନିମଧ୍ୟରେ ଯେ ସୁତ । ସେ ଅଟେ ମହାଭାଗବତ ॥ ୮
ଭରତ ରାଜଋଷିବର । ଛାଡ଼ିଲେ ମୃଗକଳେବର ॥ ୯
ପ୍ରାନ୍ତରେ ହୋଇଲେ ବ୍ରାହ୍ମଣ । ଏହା କହନ୍ତି ଋଷିଗଣ ॥ ୧୦
୩ ସ୍ୱଜନସଙ୍ଗରୁ ଆତ୍ମାର । ବନ୍ଧନ ଚିନ୍ତିଣ ମନର ॥ ୧୧
ଯାର ଶ୍ରବଣ, ରୂପଧ୍ୟାନ । ଗୁଣଗଣର ସଂକୀର୍ତ୍ତନ ॥ ୧୨

କର୍ମବନ୍ଧକୁ ବିନାଶଇ । ସେ ବିଷ୍ଣୁ-ପାଦପଦ୍ମ ଦୁଇ ॥ ୧୩
ମନରୁ ନ ଛାଡ଼େ କ୍ଷଣେହେଁ । ସେହି ବିଷ୍ଣୁର ଅନୁଗ୍ରହେ ॥ ୧୪
ଯେ ନିଜ ପୂର୍ବ ଜନ୍ମମାନେ । ଜାଣଇଁ ତାହା ଦିବ୍ୟ ଜ୍ଞାନେ ॥ ୧୫
ଥିଲେ ହେଁ ଏମନ୍ତ ପ୍ରକାରେ । ସେ ଚେଷ୍ଟା ଲୁଚାଇ ଅନ୍ତରେ ॥ ୧୬
ଜଡ଼, ବଧିର, ମତ୍ତ, ହୋଇ । ଆତ୍ମାକୁ ଲୋକେ ପ୍ରକାଶଇ ॥ ୧୭
୪ ଯେ ସ୍ନେହ ଜାତ ପୁତ୍ରଠାରେ । ମନକୁ ନିବେଶି ତହିଁରେ ॥ ୧୮
ତାହାର ପିତା ବିପ୍ରବର । ଶାସ୍ତ୍ର ଉଦିତ[1] ଯେ ସଂସ୍କାର ॥ ୧୯
ସମାବର୍ତ୍ତନ ଯାଏ ସାରି । ଏ ରୂପେ ତାକୁ ବ୍ରତ କରି ॥ ୨୦
ଯେ ବା ଶଉଚ, ଆଚମନ । ଏ ଆଦି ନିତ୍ୟ କର୍ମମାନ ॥ ୨୧
ସେମାନ ଶିଖାଇଲା ତାକୁ । ସେ ନ ଯୋଗାଇ ତା' ମନକୁ ॥ ୨୨
ଯେ ନିଜ ଜନକ ହୋଇବ । ପୁତ୍ରକୁ ଶିକ୍ଷା କରାଇବ ॥ ୨୩
ଏମନ୍ତ କଥା ଅଛି ଯେଣୁ । ଜଡ଼କୁ ଶିଖାଇଲେ ତେଣୁ ॥ ୨୪
୫ ଜାଣି ମୋହର ଜଡ଼ଭାବ । ପିତା ଏ ଶିକ୍ଷାକୁ ନ ଦେବ ॥ ୨୫
ଏହି ବିଚାର ଧରି ମନେ । ନିଜ ପିତାର ସନ୍ନିଧାନେ ॥ ୨୬
ଶିକ୍ଷାରୁ ଅନ୍ୟଥା ପ୍ରକାରେ । ସେ କର୍ମମାନଙ୍କୁ ଆଚରେ ॥ ୨୭
ତାହାଙ୍କୁ ଶ୍ରାବଣାଦି ମାସେ । ବେଦ ପଢ଼ାଇବାର ଆଶେ ॥ ୨୮
ପ୍ରଣବ, ବ୍ୟାହୃତି ସହିତ । ଶିରରେ କରିଣ ସଂଯୁତ ॥ ୨୯
ଗାୟତ୍ରୀ ପଢ଼ାନ୍ତେ ନିଶ୍ଚଳେ । ଗ୍ରୀଷ୍ମ, ବସନ୍ତ ବେନି କାଳେ ॥ ୩୦
ଶିକ୍ଷା ଦିଅନ୍ତେ ତାକୁ ତାତ । ତହିଁରେ ନ ରସେ ତା' ଚିତ୍ତ ॥ ୩୧
ସ୍ୱରାଦି କ୍ରମରେ ମିଶାଇ । ତାଙ୍କୁ ନ ପାରିଲା ବୋଲାଇ ॥ ୩୨
୬ ଏ ରୂପେ ଅନୁରାଗଭରେ । ମନ ନିବେଶି ପୁତ୍ରଠାରେ ॥ ୩୩
ଶଉଚ, ବ୍ରତ, ଅଧ୍ୟୟନ । ନିୟମ, ଗୁରୁନିଷେବନ ॥ ୩୪
ଅଗ୍ନିସେବନ ଆଦି ହୋଇ । ଯେ କର୍ମ ସଂସାରେ ଅଛଇ ॥ ୩୫
ସକଳ ଶିକ୍ଷା ଦେଲା ତାତ । ସେ ନୋହେ ପୁତ୍ରର ସଂମତ ॥ ୩୬
କେବଳ ତାତ ଯେ ହୁଅଇ । ପୁତ୍ରକୁ ଶିକ୍ଷା ସେ ଦିଅଇ ॥ ୩୭
ସେ ବାଞ୍ଛା ସଂପୂର୍ଣ୍ଣ ନୋହିଲା । ଏ ଘେନି ଆଗ୍ରହ ସେ କଲା ॥ ୩୮
ଗୃହେ ପ୍ରମତ୍ତ ହୋଇ ଥାନ୍ତେ । ମରଣ ଲଭିଲା ତଦନ୍ତେ ॥ ୩୯
୭ ନିଜ ଗର୍ଭରୁ ଜାତ ହୋଇ । ଯେ ଥିଲେ ସୁତ ସୁତା ଦୁଇ ॥ ୪୦
ତାଙ୍କୁ ସପତ୍ନୀଠାରେ ଦେଇ । ପତିକି ଅନୁଗତ ହୋଇ ॥ ୪୧
କନିଷ୍ଠ ଭାର୍ଯ୍ୟା ତଦନ୍ତରେ । ପ୍ରବେଶ ହୋଇଲା ଅଗ୍ନିରେ ॥ ୪୨
୮ ପିତାର ମରଣଅନ୍ତରେ । ଥିଲେ ଯେତେକ ସହୋଦରେ ॥ ୪୩

---

୧. ଉଦିତ = କଥିତ ।

ବେଦରେ ନିବେଶିଣ ମନ । ଜାଣନ୍ତି ନାହିଁ ବ୍ରହ୍ମଜ୍ଞାନ ।। ୪୪
ଭାଇର ପ୍ରଭାବ ନ ଜାଣି । ଏ ଜଡ଼ମତି ବୋଲି ଭଣି ।। ୪୫
ଭାଇକି ଶିକ୍ଷା ନ ଦେଇଣ । ରହିଲେ ନିବୃତ୍ତ ହୋଇଣ ।। ୪୬
୯ ପଶୁର ପ୍ରାୟେକ ଅଜ୍ଞାନ । ଥିଲେ ଯେ ନୀଚ ଜନମାନ ।। ୪୭
ମତ୍ତ, ବଧିର, ଜଡ଼ଭାବେ । ମଣିଣ ତାଙ୍କୁ ଠାବେ ଠାବେ ।। ୪୮
ଯେ ଯେଉଁ ଭାଷା ଶିକ୍ଷା ଦେଇ । ସେ ଭାଷାମାନ ସେ ବୋଲଇ ।। ୪୯
ଯେ ଯେଉଁ କର୍ମକୁ କରାଇ । ପରଇଚ୍ଛାରେ ତା' କରଇ ।। ୫୦
ବେଠି[1] କରିଣ ମୂଲ ଲାଗି । ଯେ ଇଚ୍ଛାରୂପେ ଅବା ମାଗି ।। ୫୧
ଅଳ୍ପ ବହୁତ ଅବା ଆଣି । ସ୍ୱାଦୁ ବା ଅସ୍ୱାଦୁ ନ ମଣି ।। ୫୨
କେବଳ କରଇ ଭୋଜନ । ନାହିଁ ଇନ୍ଦ୍ରିୟ ପ୍ରୀତିମାନ ।। ୫୩
କାରଣରହିତ ସ୍ୱସିଦ୍ଧ । ଅନୁଭବରୂପ ବିଶୁଦ୍ଧ ।। ୫୪
ଆନନ୍ଦରୂପ ଯେ ଅଟଇ । ସେ ନିଜ ଆତ୍ମଲାଭ ପାଇ ।। ୫୫
ମାନ-ଅବମାନରୁ ଜାତ । ଯେ ସୁଖଦୁଃଖ ଅବିରତ ।। ୫୬
ତହିଁରେ ଦେହ-ଅଭିମାନ । କରଇ ନାହିଁ ଉତପନ୍ନ ।। ୫୭
୧୦ ବୃଷଭପ୍ରାୟେ ଅଟେ ପୀନ । ନିବିଡ଼ ଅଙ୍ଗ ବସ୍ତ୍ରହୀନ ।। ୫୮
ଶୀତ, ଗ୍ରୀଷମ, ବୃଷ୍ଟି, ବାତେ । ଶୟନ କରେ ମହୀଗତେ ।। ୫୯
ସ୍ନାନ, ମର୍ଦ୍ଦନ ବିନୁ ତାର । ରଜପୂରିତ କଳେବର ।। ୬୦
ସେ ଘେନି ନୁହଇ ଲକ୍ଷିତ । ବ୍ରାହ୍ମଣତେଜ ଅପ୍ରମିତ ।। ୬୧
ଧୂଳିମଧ୍ୟରେ ମହାମଣି । ପଡ଼ିଲେ ନୋହେ ଯେହ୍ନେ ଜାଣି ।। ୬୨
କୁତ୍ସିତ, ମଳିନ ବସନ । ଆବୃତ କରେ କଟିସ୍ଥାନ ।। ୬୩
ଯଜ୍ଞୋପବୀତ କଣ୍ଠଦେଶେ । କଜ୍ଜଳପ୍ରାୟେକ ପ୍ରକାଶେ ।। ୬୪
କେ ବୋଲେ ବିପ୍ର ଏ ଅଟଇ । ଗଲା ଆଚାରଭ୍ରଷ୍ଟ ହୋଇ ।। ୬୫
ଏ ଅଟେ ଅଧମ ବ୍ରାହ୍ମଣ । ଏମନ୍ତ ବଚନ ବୋଲିଣ ।। ୬୬
ତାହାର ପ୍ରଭାବ ନ ଜାଣି । ନିନ୍ଦା କରନ୍ତି ଦୁଷ୍ଟ ପ୍ରାଣୀ ।। ୬୭
ସେ ଅବମାନକୁ ନ ଘେନି । ଭ୍ରମଣ କରଇ ମେଦିନୀ ।। ୬୮
୧୧ ପରର ଠାରୁ ସେ ମୂଲ୍ୟରେ । ଆହାରବାଞ୍ଛା ଯେବେ କରେ ।। ୬୯
ତେବେ ତା' ଭାଇମାନେ ନେଇ । ବିଲେ ଲଗାନ୍ତି ମୂଲ ଦେଇ ।। ୭୦
ଆହାର ଅର୍ଥେ ମନ ଦେଇ । ବିଲରେ କିଆରି ତୁଲାଇ ।। ୭୧
ସମ, ବିଷମ ନ୍ୟୂନାଧିକ । ନ ଥାଇ ଏମନ୍ତ ବିବେକ ।। ୭୨
[2]ଖୁଦ, ପିଡ଼ିଆ, ପୋଡ଼ା ଅନ୍ନ । କୀଟଦୂଷିତ ବ୍ରୀହିମାନ ।। ୭୩

୧. ମୂଳ ଶବ୍ଦ ''ବିଷ୍ଟି''; ମୂଲ୍ୟଂ ବିନା ବଳାତ୍ ଯଦ୍ କର୍ମ କାର୍ଯ୍ୟତେ ସା ବିଷ୍ଟିଃ ।
୨. ତସ୍ୟ ରାଗାଦିରାହିତ୍ୟମଲୌଲ୍ୟଂ ଚୈବମୀରିତମ୍ ।
ଅଥାନ୍ୟଚ୍ଚରିତଂ ପ୍ରାହ ଚିତ୍ରଂ ମୃତ୍ୟାବସଂଭ୍ରମମ୍ ।। (ସ୍ୱାମୀ)

ତୁଷ ସହିତ ଯାହା ପାଇ | ଅମୃତ ପ୍ରାୟେ ତାହା ଖାଇ || ୭୪
୧୨ ଏଥୁ ଅନ୍ତରେ ଏକ ଦିନ | କେବଣ ବୃଷଳରାଜନ[1] || ୭୫
ଦୁର୍ଗାଙ୍କୁ ପୁତ୍ରକାମ ହୋଇ | ବାଞ୍ଛା ତା' ନରପଶୁ ଦେଇ || ୭୬
୧୩ ସେ ନୃପତିର ଦୈବବଶୁଁ | ପଳାଇ ଯାନ୍ତେ ନରପଶୁ || ୭୭
ଅନୁସରିଣ ମାର୍ଗ ତାର | ଧାମନ୍ତେ ରାଜ-ଅନୁଚର || ୭୮
ରଜନୀଅର୍ଦ୍ଧେ ଅନ୍ଧକାରେ | ପଶୁକୁ ନ ପାଇ କାହିଁରେ || ୭୯
ଦେଖିଲେ ଆକସ୍ମିକେ ଯାଇଁ | ବୀର-ଆସନେ ବସିଥାଇ || ୮୦
ଜଗି ଅଛନ୍ତି ବିଲେ ଧାନ | ଅଙ୍ଗିରା ବ୍ରାହ୍ମଣ ନନ୍ଦନ || ୮୧
ମୃଗ, ବରାହ ଆଦିମାନେ | ଯେ'ମନ୍ତେ ନ ପଶିବେ ଧାନେ || ୮୨
୧୪ ନିର୍ଦ୍ଦୋଷ ସକଳ ଲକ୍ଷଣ | ତାହାଙ୍କ ଠାରେ ଦେଖି ପୁଣ || ୮୩
ସ୍ୱାମୀର କାର୍ଯ୍ୟ ସିଦ୍ଧ ଜାଣି | ତାଙ୍କୁ ରଜ୍ଜୁରେ ବାନ୍ଧି ଟାଣି || ୮୪
ହରଷେ ବିକସେ ବଦନ | ନେଲେ ସେ ଚଣ୍ଡିକାସଦନ || ୮୫
୧୫ ଏଥୁ ଉତ୍ତାରେ ଚୌରମାନେ | ତାହାଙ୍କୁ ହିଂସାର ବିଧାନେ || ୮୬
କରାଇ ଯଥାବିଧି ସ୍ନାନ | ପିନ୍ଧାଇ ନବୀନ ବସନ || ୮୭
ଗନ୍ଧ, ତିଳକ, ମାଳ ଆଦି | ଭୂଷଣ ଶରୀରେ ସଂପାଦି || ୮୮
ନାନା ପ୍ରକାରେ ଅନ୍ନମାନ | ତାହାଙ୍କୁ କରାଇ ଭୋଜନ || ୮୯
ଧୂପ, ପ୍ରଦୀପ ଲାଜ, ମାଳ | ଅଙ୍କୁର, କିଶଳୟ, ଫଳ || ୯୦
ଇତ୍ୟାଦି ଉପଚାରେ ଯୁତ | ହିଂସାବିଧାନ ଯେଉଁମନ୍ତ || ୯୧
ମହତ ଗୀତ-ସ୍ତୁତିନାଦେ | ମୃଦଙ୍ଗ-ପଣବ-ଶବଦେ || ୯୨
ନରପଶୁକୁ ଘେନିଗଲେ | ଦେବୀଅଗ୍ରତେ ବସାଇଲେ || ୯୩
୧୬ ଏବେ ସେ ବୃଷଳରାଜାର | ଅଟେ ଯେ ପୁରୋହିତ ଚୌର || ୯୪
ପୁରୁଷପଶୁ ଶୋଣିତରେ | ଭଦ୍ରକାଳୀକି ପୂଜା କରେ || ୯୫
ଅଭିମନ୍ତ୍ରିତ, ଭୟଙ୍କର | ଖଡ଼ଗ ଘେନିଲା ହସ୍ତର || ୯୬
୧୭ ରାଜସ, ତାମସ ପ୍ରକୃତି | ଧନମଦରେ ଗର୍ବ ମତି || ୯୭
ଏ ରୂପେ ସେ ବୃଷଳଜନେ | ଅଜ୍ଞାନ ଅଟନ୍ତି ଭୁବନେ || ୯୮
ଯେ ବିଷ୍ଣୁକଳା ଧୀର ଜନ | ତାହାଙ୍କୁ କରି କଦର୍ଥନ || ୯୯
ନିଜ ଇଚ୍ଛାକୁ ଅନୁସରି | ଉତ୍‌ପଥେ ବିହାର ଆଚରି || ୧୦୦
ହିଂସାରେ କରନ୍ତି ବିହାର | ଦାରୁଣ କର୍ମ ତାହାଙ୍କର || ୧୦୧
ଯେଣୁ ସେ ଅଟେ ବ୍ରହ୍ମଭୂତ | ସାକ୍ଷାତ ବ୍ରହ୍ମଋଷିସୁତ || ୧୦୨
କାହାରି ସଙ୍ଗେ ବୈର ନୋହି | ସକଳେ ମିତ୍ରଭାବ ବହି || ୧୦୩
ଲୌକିକ ହିଂସାରେ ତାହାର | ବଧ ଅସମ୍ମତ ଶାସ୍ତ୍ରର || ୧୦୪

---

୧. ବୃଷଳ = ଶୂଦ୍ର ।

| | | | |
|---|---|---|---|
| | ଏମନ୍ତ ଜାଣିଣ ମନରେ | ଦୁଃସହ ବ୍ରହ୍ମ ତେଜଭରେ | ॥ ୧୦୫ |
| | ଦଗଧ ହୁଅନ୍ତେ ଶରୀର | ପ୍ରତିମାମଧ୍ୟରୁ ବାହାର | ॥ ୧୦୬ |
| | ହୋଇଣ ଦେବୀ ଭଦ୍ରକାଳୀ | ମନୁଷ୍ୟଙ୍କର ମଧ୍ୟେ ମିଳି | ॥ ୧୦୭ |
| ୧୮ | ଭ୍ରୂକୁଟି ଶାଖା ମୁଖ-ଦେଶେ | ବିଳସେ ଅତିଶୟ ରୋଷେ | ॥ ୧୦୮ |
| | ଅତିକୁଟିଳ ଦନ୍ତଗଣ | ଲୋଚନନିଚୟ ଅରୁଣ | ॥ ୧୦୯ |
| | ସେ ଘେନି ଅତି ଭୟଙ୍କର | ବଦନ ଦିଶଇ ତାହାର | ॥ ୧୧୦ |
| | କରିବ ଅବା ସର୍ବନାଶ | କ୍ରୋଧରେ ମୁଞ୍ଚେ ଅଟ୍ଟହାସ | ॥ ୧୧୧ |
| | ସେ ସ୍ଥାନୁଁ ଆସି ଖରତର | ସେ ଦୁଷ୍ଟମାନଙ୍କର ଶିର | ॥ ୧୧୨ |
| | କାଟିଣ ସେହି ଖଡ଼୍‌ଗରେ | ତାହାଙ୍କ କଣ୍ଠରୁ ଯେ ଝରେ | ॥ ୧୧୩ |
| | ସେ ଅତି ଉଷ୍ଣ ରକ୍ତମାନ | ଗଣସହିତେ କରି ପାନ | ॥ ୧୧୪ |
| | ରକତ ଅତିଶୟେ ପିଇ | ମଦରେ ବିହ୍ୱଳିତ ହୋଇ | ॥ ୧୧୫ |
| | ସଙ୍ଗତେ ଘେନି ଗଣମାନ | ଉଚ୍ଚରେ କଲା ସେ ଗାୟନ | ॥ ୧୧୬ |
| | ଆରମ୍ଭ କଲା ନୃତ୍ୟ ପୁଣି | ଘେନି ତାହାଙ୍କ ଶିରଶ୍ରେଣୀ | ॥ ୧୧୭ |
| | ଗେଣ୍ଡୁ[1] ପ୍ରାଏକ ତାହା ଚାଳି | ବିହାର କଲା ଭଦ୍ରକାଳୀ | ॥ ୧୧୮ |
| ୧୯ | ଏରୂପେ ବଡ଼ଲୋକଠାରେ | ଯେ ଜନ ଅତିକ୍ରମ କରେ | ॥ ୧୧୯ |
| | ସେମାନ ସବୁ ଠୁଳ ହୋଇ | ସେ ଲୋକ-ଆତ୍ମାରେ ଫଳଇ | ॥ ୧୨୦ |
| ୨୦ | ଭୋ ବିଷ୍ଣୁରାତ ! ଯେ ଜଗତେ | ପରମହଂସ ଭାଗବତେ | ॥ ୧୨୧ |
| | ଯେ ଆତ୍ମଭାବ ଦେହାଦିରେ | ହୃଦୟଗ୍ରନ୍ଥିରୂପ ଧରେ | ॥ ୧୨୨ |
| | ତାହାକୁ କରିଥାନ୍ତି ଦୂର | ଯେ ମିତ୍ର ଆତ୍ମା ପ୍ରାଣୀଙ୍କର | ॥ ୧୨୩ |
| | କାହାରି ସଂଗତରେ ଯେହି | ନ ଥାନ୍ତି ରିପୁଭାବ ବହି | ॥ ୧୨୪ |
| | ସାଧୁଙ୍କୁ ହୋଇ ସାବଧାନ | ସେ ସେହିରୂପେ ଅନୁଦିନ | ॥ ୧୨୫ |
| | ରଖିଣ ଥାଆନ୍ତି ଶ୍ରୀହରି | କାଳଚକ୍ର ଆୟୁଧ କରି | ॥ ୧୨୬ |
| | ତାହାର ନିର୍ଭୟ ଚରଣ | ତହିଁ ଯେ ପଶନ୍ତି ଶରଣ | ॥ ୧୨୭ |
| | ଶିରଚ୍ଛେଦନେ ହିଁ ତାଙ୍କର | ସଂଭ୍ରମ ନୋହିଲା ମନର | ॥ ୧୨୮ |
| | ଏ କଥା ଅଦଭୁତ କରି | ମନେ ନ ଧର ଦଣ୍ଡଧାରୀ | ॥ ୧୨୯ |
| | କହଇ ବିପ୍ର ଦୀନବନ୍ଧୁ | ମୋତେ ଉଦ୍ଧର କୃପାସିନ୍ଧୁ | ॥ ୧୩୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଜଡ଼ଭରତଚରିତେ
ନାମ ନବମୋଽଧ୍ୟାୟଃ ॥

---

୧. ପେଣ୍ଡୁ ।

# ଦଶମ ଅଧ୍ୟାୟ

ଦଶମେ କ୍ଷିପତା ରାଜ୍ଞା ଶିବିକାଂ ସ୍ୱାଂ ବହନ୍ ମୁନିଃ ।
ସ୍ୱଦୁର୍ବାଦାନୁବାଦେନ ବିଜ୍ଞାୟାଶୁ ପ୍ରସାଦିତଃ ।। ୧
ଏବଂଭୂତାବିକାରିତ୍ୱମଜ୍ଞସର୍ବଜ୍ଞୟୋଃ ସମମ୍ ।
ଇତି ସର୍ବଜ୍ଞତାସିଦ୍ଧ୍ୟୈ ରହୂଗଣକଥେରଣମ୍ ।। ୨

ଶ୍ରୀଶୁକ ଉବାଚ

୧ ହେ ନୃପ ! ଏଥୁ ଅନନ୍ତର । ସିନ୍ଧୁ-ସୌବୀରରାଜ୍ୟେଶ୍ୱର ।। ୧
ନାମ ତାହାର ରହୂଗଣ । ସେ ରାଜା କରନ୍ତେ ଭ୍ରମଣ ।। ୨
ଏମନ୍ତେ ଇକ୍ଷୁମତୀତୀରେ । ତାର ଶିବିକାବୁହାନ[୧]ରେ ।। ୩
ଶ୍ରମରେ ନ ପାରନ୍ତେ ଯାଇଁ । ଯେ ତହିଁ ଥିଲା କାର୍ଜି[୨] ହୋଇ ।। ୪
ଯାନବୁହାକୁ ଯୋଗ୍ୟ କରି । ନର ଖୋଜନ୍ତେ ଅନୁସରି ।। ୫
ସେ ଦ୍ୱିଜବରକୁ ଦୈବରେ । ଭେଟ ପାଇଲେ ସେହିଠାରେ ।। ୬
ଏ ଯୁବା ଅଟେ ବଳିଆର । କଠିନ ଶରୀର ଏହାର ।। ୭
ଗଧ-ବଳଦ ପ୍ରାଏ ହୋଇ । ଭାରକୁ ବହି ଏ ପାରଇ ।। ୮
ଏମନ୍ତ ମନରେ ବିଚାରି । ଯାହାଙ୍କୁ ପୂର୍ବେ ଥିଲା ଧରି ।। ୯
ସେହି ବେଠିଆଙ୍କ ସଙ୍ଗରେ । ତାକୁ ଧରାଇଲା ବଳରେ ।। ୧୦
ମହାନୁଭାବ ଅଟେ ସେହି । ଯାନବୁହାକୁ ଯୋଗ୍ୟ ନୋହି ।। ୧୧
ଶିବିକା ବୁହାନ୍ତେ ବଳରେ । ବହିଲେ ଆପଣା ଇଚ୍ଛାରେ ।। ୧୨
୨ ଶର ଅଟଇ ଲମ୍ବ ଯେତେ । ଅଗ୍ରପଥକୁ ଚାହିଁ ତେତେ ।। ୧୩
ସେ ଦ୍ୱିଜ ଗମନ କରଇ । ଜୀବବଧରୁ ଭୟ ପାଇ ।। ୧୪
ଗମନବିଳମ୍ୱୁଁ ଏହାର । ରୁନ୍ଧି ହୋଇଲେ ଆନ ନର ।। ୧୫
ଗତି ହୁଅନ୍ତେ ଅସମାନ । ବିଷମ ହୋଇଲା ସେ ଯାନ ।। ୧୬
ଏମନ୍ତ ଜାଣି ସେ ରାଜନ । ତାହାଙ୍କୁ ବୋଇଲେ ବଚନ ।। ୧୭
ଆହେ ବୁହାଳିମାନେ ! ରହି । ଚାଲ ସମସ୍ତେ ଭଲ ହୋଇ ।। ୧୮
କି ରୂପେ ବହୁଅଛ ଯାନ । ଏ ତ ହେଉଛି କଂପମାନ ।। ୧୯
୩ ଆକ୍ଷେପ ବଚନ ପ୍ରଭୁର । ଶୁଣିଣ ସେ ସକଳ ନର ।। ୨୦
ଦଣ୍ଡକୁ ମନେ ଭୟ କଲେ । ତାଙ୍କୁ ଏମନ୍ତ ଜଣାଇଲେ ।। ୨୧
୪ ହେ ନରଦେବ ! ଆମ୍ଭେ କେହି । ପ୍ରମତ୍ତ ଭାବ ନାହୁଁ ବହି ।। ୨୨
ତୁମ୍ଭ ଆଜ୍ଞାକୁ ଅନୁସରି । ଯାନ ବହିଛୁଁ ଭଲ କରି ।। ୨୩
ଏବେ ଯେ ବହିଅଛି ଯାନ । ବେଗେ ନ କରଇ ଗମନ ।। ୨୪
ଏହାର ସଙ୍ଗେ ଆମ୍ଭେ କେହି । ଶିବିକା ନ ପାରିବୁ ବହି ।। ୨୫

---

୧. ବୁହାନ = ବୋହିବା । ୨. କାର୍ଜି = କାଜି ଓ କାଜୀ ଏକାର୍ଥବାଚକ ।

୫ ଏମନ୍ତେ ଦୁଃଖୀଙ୍କର ବାଣୀ । ସେ ରହୂଗଣ ରାଜା ଶୁଣି ॥ ୨୬
ଏକ ସଂସର୍ଗୁଁ ଦୋଷ ଜାତ । ସେ ଦୋଷେ ନ ଦଣ୍ଡି ବହୁତ ॥ ୨୭
ଏମନ୍ତ ମନରେ ବିଚାରି । ସେ ରହୂଗଣ ଦଣ୍ଡଧାରୀ ॥ ୨୮
ବୃଦ୍ଧଜନଙ୍କୁ ଉପାସନ । କରିଣ ଜାଣିଲେ ହେଁ ଜ୍ଞାନ ॥ ୨୯
ହୋଇଣ ସ୍ୱଭାବ-ଆୟତ୍ତ । ଅଳପ କ୍ରୋଧ କରି ଜାତ ॥ ୩୦
ଭସ୍ମରେ ଅଗ୍ନିପ୍ରାୟ ହୋଇ । ଯା' ବ୍ରହ୍ମତେଜ ଅଛି ରହି ॥ ୩୧
ସେହି ବ୍ରାହ୍ମଣ ଆକ୍ଷେପରେ । ବାକ୍ୟ କହିଲେ ଏ ପ୍ରକାରେ ॥ ୩୨
୬ ନିଶ୍ଚୟେ କଷ୍ଟେ ତୁମ୍ଭେ ଭାଇ । ଅଛ ବହୁତ ଶ୍ରମ ପାଇ ॥ ୩୩
ବହୁତ ବେଳ ଏକା ହୋଇ । ବହୁତ ବାଟୁଁ ଅଛ ବହି ॥ ୩୪
ଅତି ପୀନ ତ ତୁମ୍ଭେ ନୁହ । କର୍କଶ ନୋହେ ତୁମ୍ଭ ଦେହ ॥ ୩୫
ତୁମ୍ଭେ ତ ବୃଦ୍ଧ ଅଟ ସୁଖୀ । ଏ ତୁମ୍ଭ ସାଙ୍ଗ ଲୋକେ ଦୁଃଖୀ ॥ ୩୬
ଏମନ୍ତ ପ୍ରକାରେ ନରେଶ । କଲେହେଁ ନାନା ଉପହାସ ॥ ୩୭
ପୂର୍ବପ୍ରାୟକ ହୋଇ ତୁନି । ଶିବିକା ବହିଲା ସେ ମୁନି ॥ ୩୮
ଅବିଦ୍ୟାନିର୍ମିତ ହୋଇଣ । ଦ୍ରବ୍ୟ, ଇନ୍ଦ୍ରିୟ, କର୍ମ, ଗୁଣ ॥ ୩୯
ଆଶୟ ଏମାନ ଯହିଁରେ । ସେ ନିଜ ପ୍ରାନ୍ତ କଳେବରେ ॥ ୪୦
ଯେଣୁ ସେ ଅହଂ ମମ ବେନି । ମିଥ୍ୟାପ୍ରତ୍ୟୟ ନାହିଁ ମାନି ॥ ୪୧
ଏଣୁ ଅଟଇ ବ୍ରହ୍ମ ସ୍ୱୟେଂ । ମନୁଷ୍ୟଦେହ ଧଇଲେ ହେଁ ॥ ୪୨
୭ ଏଥି ଉତ୍ତାରୁ ପୁଣି ଯାନ । ବକ୍ରେ ଚଳନ୍ତେ ସେ ରାଜନ ॥ ୪୩
ବୋଇଲେ ହୋଇ ପ୍ରକୋପିତ । ଆରେ ତୁ ଜୀଉଁ ହେଲୁ ମୃତ ॥ ୪୪
ମୋତେ ତୁ କଦର୍ଥନା କଲୁ । ମୋହର ଆଜ୍ଞାକୁ ଲଙ୍ଘିଲୁ ॥ ୪୫
ତୁ ଯେ ପ୍ରମତ୍ତ ଅଛୁ ହୋଇ । ତହିଁ ଚିକିତ୍ସା କରିବଇଁ ॥ ୪୬
ପାପୀଜନଙ୍କୁ ଦଣ୍ଡପାଣି । ଦଣ୍ଡ ଦିଅଇ ଯେହ୍ନେ ଜାଣି ॥ ୪୭
ନିଜ ସ୍ୱଭାବକୁ ଯେମନ୍ତେ । ଭଜିଣ ରହିବୁ ନିଶ୍ଚିନ୍ତେ ॥ ୪୮
୮ ଏମନ୍ତ ପ୍ରକାରେ ନିନ୍ଦିତ । ବଚନ କହନ୍ତେ ବହୁତ ॥ ୪୯
ଲୋକଙ୍କ ପରେ ରାଜା ମୁହିଁ । ଏ ରୂପେ ଗର୍ବ ଅଛି ବହି ॥ ୫୦
ରଜ, ତମରେ ହୋଇ ଯୁତ । ଯେ ମଦ ଅଛି ନିଜ ଚିତ୍ତ ॥ ୫୧
ତେଣେ ବିଷ୍ଣୁର ପ୍ରିୟସ୍ଥାନ । ଲୋକଙ୍କୁ କରଇ ନିନ୍ଦନ ॥ ୫୨
ପଣ୍ଡିତଭାବେ ଅଭିମାନୀ । ନୋହେ ବାସ୍ତବ ତତ୍ତ୍ୱଜ୍ଞାନୀ ॥ ୫୩
ଯେ ପ୍ରାଣୀମାନେ ଯୋଗେଶ୍ୱର । ତାହାଙ୍କ ଚେଷ୍ଟା କି ପ୍ରକାର ॥ ୫୪
ସେ କଥା ଭଲେ ନାହିଁ ଜାଣି । ସେ ରହୂଗଣ ନୃପମଣି ॥ ୫୫
ପ୍ରତ୍ୟକ୍ଷେ ବ୍ରହ୍ମ ସେ ବ୍ରାହ୍ମଣ । ଯେତେ ଅଛନ୍ତି ଭୂତଗଣ ॥ ୫୬
ସକଳଠାରେ ମିତ୍ରଭାବେ । ବର୍ତ୍ତନ୍ତି ଆତ୍ମାରେ ସ୍ୱଭାବେ ॥ ୫୭
ଗର୍ବ ଛାଡ଼ିଣ ମନ୍ଦ ହସି । ରାଜାକୁ ବୋଇଲେ ପ୍ରକାଶି ॥ ୫୮

## ଶ୍ରୀବ୍ରାହ୍ମଣ ଉବାଚ

୯ ହେ ନୃପ ! ବକ୍ରଭାବେ ତୁହି । ଯେଉଁ ବଚନ ଅଛୁ କହି ।।
ସେ ବାକ୍ୟ ପରିହାସ ନୋହି । ତା' ସତ୍ୟ ମଣୁଅଛି ମୁହିଁ ।।
ଯେ କେହି ଅଛି ଭାର ହୋଇ । ଦେହର ଧର୍ମ ସେ ଅଟଇ ।।
ସେ ଦେହ ଯେବେ ହେବ ମୋର । ତେବେ ହୋଇବ ମୋତେ ଭାର ।।
ଯେ ଲୋକ କରଇ ଗମନ । ମାର୍ଗ ଅଟଇ ତା' ଅଧୀନ ।।
ସେ ଲୋକ ହୋଇଥାନ୍ତା ମୋର । ମାର୍ଗ ହୁଅନ୍ତା ଅବା ଦୂର ।।
ପୀନ ବୋଲିଣ ଯେଉଁ ବାଣୀ । ଆମ୍ଭାକୁ ଉଦ୍ଦେଶିଣ ଭଣି ।।
ପଣ୍ଡିତବଚନ ସେ ନୋହି । ଭୌତିକ ଦେହରେ ତା' କହି ।।
୧୦ ଯେ ସ୍ଥୂଳ-କୃଶ-ଭାବ, ବ୍ୟାଧି । କ୍ଷୁଧା, ତୃଷା, ଯେ ଭୟ, ଆଧି ।।
ନିଦ୍ରା, ବୃଦ୍ଧତା, ଇଚ୍ଛା, କଳି । ମନ୍ୟୁ, ଅହଂତା, ମଦ ମିଳି ।।
ଯେ ରତି, ଶୋକ ଏ ଷୋଡ଼ଶ । ହୋଇଣ ଅଛନ୍ତି ପ୍ରକାଶ ।।
ଦେହାଭିମାନୀଠାରେ ଥାନ୍ତି । ଏମାନେ ମୋଠାରେ[1] ନାହାନ୍ତି ।।
୧୧ ଜୀବନମୃତ ଭାବ ଯେହି । ଏକା ହୋଇ ସେ ମୋର ନୋହି ।।
ଯେତେକ ପରିଣାମବନ୍ତ । ତାଙ୍କର ଅଛି ଆଦ୍ୟ ଅନ୍ତ ।।
ସ୍ୱାମୀ-ସେବକ ଭାବ ଦୁଇ । ଯେବେ ଥାଆନ୍ତା ଧ୍ରୁବ ହୋଇ ।।
କର୍ମରେ ନିଯୋଜନ, କୃତ୍ୟ । ଏ ବେନି ହୋଇଥାନ୍ତା ନିତ୍ୟ ।।
ଏଣୁ ରାଜତ୍ୱନାଶେ ତୋର । ରାଜତ୍ୱ ହୁଅନ୍ତେ ମୋହର ।।
ଏ ସର୍ବ ବିପରୀତ ହେବ । ଶୁଣ ହେ ରହୂଗଣ ଦେବ ।।
୧୨ ଏ ରାଜା, ରାଜଭୃତ୍ୟ ଏହି । ଏ ରୂପେ ଯେ ବୁଦ୍ଧି ଅଛଇ ।।
ସେ ମାତ୍ର ଲୋକବ୍ୟବହାର । ବାସ୍ତବ ଭେଦ ନାହିଁ ଆର ।।
କେ ତହିଁ ଅଟଇ ଈଶ୍ୱର । କେ ଅବା ଅଟେ ପରିଚାର ।।
ତଥାପି ତୋର ରାଜା ହୋଇ । ଯେବେ ଅଭିମାନ ଅଛଇ ।।
କି କାର୍ଯ୍ୟ କରିବି ତୋହର । ପ୍ରକାଶି କହ ନୃପବର ।।
୧୩ ମୁଁ ଜଡ଼ ମତ୍ତପ୍ରାୟ ହୋଇ । ବ୍ରହ୍ମଭାବକୁ ଅଛି ଯାଇ ।।
ଦଣ୍ଡଶିକ୍ଷାରୁ ତେବେ ତୋର । କି କାର୍ଯ୍ୟ ହୋଇବ ମୋହର ।।
ଯେବେ ମୁଁ ଅଟଇ ପ୍ରମତ୍ତ । ସ୍ତବଧସ୍ୱଭାବ ସଂତତ ।।
ତେବେ ଏ ତୋର ଶିକ୍ଷାମାନ । ପିଷ୍ଟପେଷଣ ହେ ରାଜନ ।।

## ଶ୍ରୀଶୁକ ଉବାଚ

୧୪ ଏତେ ମାତ୍ରକ ଅନୁବଦି[2] । ପ୍ରତି-ଉତ୍ତରକୁ ସଂପାଦି ।।
ବହିଲେ ଯାନକୁ ରାଜାର । ସେ ଶାନ୍ତିଶୀଳ ମୁନିବର ।।

---

୧. ମୋହର । ୨. ଅନୁବଦି = କହି ।

| | | | | |
|---|---|---|---|---|
| | ଦେହକୁ ଆତ୍ମା ବୋଲି ମଣି | । ଯେଉଁ କର୍ମବଶରୁ ପ୍ରାଣୀ | ।। | ୮୮ |
| | ସେ କର୍ମ ନାହିଁ ତାହାଙ୍କର | । କେବଳ ଅଛି ଯେ ପୂର୍ବର | ।। | ୮୯ |
| | ନିଜ ପ୍ରାରବ୍ଧ କର୍ମମାନ | । ତା' ନାଶେ କରନ୍ତି ଯତନ | ।। | ୯୦ |
| ୧୫ | ଶୁଣ ହେ ପାଣ୍ଡବନନ୍ଦନ | । ସେ ସିନ୍ଧୁସୌବୀର-ରାଜନ | ।। | ୯୧ |
| | ତତ୍ତ୍ୱଜ୍ଞାନରେ ମନ ଦେଇ | । ଶ୍ରଦ୍ଧାରେ ଅଧିକାରୀ ହୋଇ | ।। | ୯୨ |
| | ଅଛନ୍ତି ଯୋଗବିଷୟରେ | । ବହୁତ ଗ୍ରନ୍ଥ ଯେ ସଂସାରେ | ।। | ୯୩ |
| | ତହିଁ ଯେ ସଂମତ ଅଟଇ | । ହୃଦୟଗ୍ରନ୍ଥିକି ଫିଟାଇ | ।। | ୯୪ |
| | ଏ ରୂପେ ବ୍ରାହ୍ମଣ ବଚନ | । ଶୁଣି ଦ୍ୱରାରେ ଛାଡ଼ି ଯାନ | ।। | ୯୫ |
| | ବିପ୍ରର ପାଦତଳେ ପଡ଼ି | । ରାଜାଭାବରୁ ଗର୍ବ ଛାଡ଼ି | ।। | ୯୬ |
| | କ୍ଷମା କରାନ୍ତେ ଦୋଷମାନ | । କହିଲେ ଏମନ୍ତ ବଚନ | ।। | ୯୭ |
| ୧୬ | ବିପ୍ରଙ୍କ ମଧ୍ୟେ ତୁମ୍ଭେ କେହି | । ସୂତ୍ରକୁ କନ୍ଧେ ଅଛ ବହି | ।। | ୯୮ |
| | ନିଗୂଢ଼େ ଭ୍ରମୁଛ ଜଗତ | । ତୁମ୍ଭେ କେବଣ ଅବଧୂତ | ।। | ୯୯ |
| | କେଉଁ ଦେଶରେ ତୁମ୍ଭେ ଜାତ | । କାହାର ଅଟ ତୁମ୍ଭେ ସୁତ | ।। | ୧୦୦ |
| | କି କାର୍ଯ୍ୟ କରିଣ ଉଦ୍ଦେଶ | । ଏଠାରେ ହୋଇଲ ପ୍ରବେଶ | ।। | ୧୦୧ |
| | ଏମନ୍ତ ତର୍କୁଅଛି ମୁହିଁ | । ଆମ୍ଭର ମଙ୍ଗଳର ପାଇଁ | ।। | ୧୦୨ |
| | ପ୍ରବେଶ ହୋଇଅଛ ଯେବେ | । ତୁମ୍ଭେ କପିଳ[1] ମୁନି ତେବେ | ।। | ୧୦୩ |
| ୧୭ | ଇନ୍ଦ୍ରକୁଳିଶ ଶିବଶୂଳ | । ଯମର ଦଣ୍ଡ ଯେ ପ୍ରବଳ | ।। | ୧୦୪ |
| | ଅନଳ, ରବି, ନିଶାକର | । ଯେ ବା ପବନ, ଧନେଶ୍ୱର | ।। | ୧୦୫ |
| | ତାହାଙ୍କ ଅସ୍ତ୍ରଠାରୁ ମୁହିଁ | । ମନେ ଆଶଙ୍କା ନ ବହଇ | ।। | ୧୦୬ |
| | ବିପ୍ରେ କରାଇ ଅପମାନ | । ଅତିହିଁ ଶଙ୍କା ପାଇ ମନ | ।। | ୧୦୭ |
| ୧୮ | ବିଜ୍ଞାନରୂପେ ଆପଣାର | । ପ୍ରଭାବ ଅଛି ଯେ ଆନ୍ତର[2] | ।। | ୧୦୮ |
| | ସେମାନ ବାହ୍ୟରେ ଲୁଚାଇ | । ଜଡ଼ ଲୋକର ପ୍ରାୟ ହୋଇ | ।। | ୧୦୯ |
| | ଭ୍ରମୁଛ ସଙ୍ଗ କରି ଦୂର | । ଅନନ୍ତ ମହିମା ତୁମ୍ଭର | ।। | ୧୧୦ |
| | ତୁମ୍ଭର ଯେତେକ ବଚନ | । ଯୋଗରେ ଅଟଇ ଗ୍ରଥନ[3] | ।। | ୧୧୧ |
| | ସେ ବାକ୍ୟମାନ ଅତି ଗୁରୁ | । ମନେ ହେଁ ଭେଦି ତା' ନ ପାରୁ | ।। | ୧୧୨ |
| | ସେ ଘେନି କେ ତୁମ୍ଭେ ଏ ବାଣୀ | । ପ୍ରକାଶି କହ ମୋତେ ପୁଣି | ।। | ୧୧୩ |
| ୧୯ | ଯେ ଆତ୍ମଜ୍ଞାନୀ ମୁନିଙ୍କର | । ମଧ୍ୟେ ଅଟଇ ଗୁରୁ ସାର | ।। | ୧୧୪ |
| | ଜ୍ଞାନକଳାରେ ଅବତାର | । ସକଳ ଯୋଗଙ୍କ ଈଶ୍ୱର | ।। | ୧୧୫ |
| | ସାକ୍ଷାତ ଅଟନ୍ତି ଯେ ହରି | । କପିଳ ନାମ ଛନ୍ତି ଧରି | ।। | ୧୧୬ |
| | ଏ ଯେ ସଂସାର ଅତିଘୋର | । ଏଥିରେ ପ୍ରାଣୀମାନଙ୍କର | ।। | ୧୧୭ |
| | କେ ଅବା ଶରଣ ଅଟଇ | । ଏ କଥା ପଚାରିବାପାଇଁ | ।। | ୧୧୮ |
| | ତାହାଙ୍କ ପାଶକୁ ମୋହର | । ଗମନ ଶୁଣ ବିପ୍ରବର | ।। | ୧୧୯ |

୧. କପିଳ-ମୂଳପାଠସ୍ଥିତ 'ଶୁକ୍ଳ' ଶବ୍ଦର ଅର୍ଥ ।　୨. ଅନ୍ତର ।　୩. ପ୍ରଥନ ।

୨୦ ସେହି କପିଳ ଅବା ତୁମ୍ଭେ । ଏମନ୍ତ ତର୍କୁଅଛୁଁ ଆମ୍ଭେ ।। ୧୨୦
ଲୋକଙ୍କ ନ ଜାଣିମାପାଇଁ । ଭ୍ରମୁଛ ଚିହ୍ନକୁ ଲୁଚାଇ ।। ୧୨୧
ଯେ ଜନ ଅଟେ ଅନ୍ଧମତି । ଗୃହରେ କରିଥାଇ ସ୍ଥିତି ।। ୧୨୨
ଯୋଗେଶ୍ୱରଙ୍କ ଗତିମାନ । କେମନ୍ତେ ଜାଣିମ ସେ ଜନ ।। ୧୨୩
୨୧ ତୁମ୍ଭେ ବହିଛ କାନ୍ଧେ ଭାର । ଶ୍ରାନ୍ତ ହୋଇଛି କଳେବର ।। ୧୨୪
ଏଣୁ ଆପଣାପ୍ରାୟ କରି । ଶ୍ରମକୁ ଦେଖୁଛି ତୁମ୍ଭରି ।। ୧୨୫
ଯୁଦ୍ଧାଦି କାଳେ ଯେହ୍ନେ ମୁହିଁ । ଶରୀରେ ଶ୍ରମକୁ ଲଭଇ ।। ୧୨୬
ଯେସନେ ଘଟାଦି ନ ଥିଲେ । ଜଳାଦି ଆଣି ନୋହେ ଭଲେ ।। ୧୨୭
ପ୍ରମାଣ କରିଣ ଏ ଘେନି । ବ୍ୟବହାରମାର୍ଗକୁ ଘେନି ।। ୧୨୮
୨୨ ଲଭିଲେ ଅନଳ ସଂଯୋଗ । ସ୍ଥାଳୀ ତପତ ହୋଏ ଆଗ ।। ୧୨୯
ସଂଯୋଗ ଲଭି ସେ ସ୍ଥାଳୀର । ତପତ ହୋଏ ତହିଁ କ୍ଷୀର ।। ୧୩୦
କ୍ଷୀରସଂଯୋଗୁଁ ତାପ ପାଇ । ତଣ୍ଡୁଳଗର୍ଭ ପାକ ହୋଇ ।। ୧୩୧
ଦେହ, ଇନ୍ଦ୍ରିୟ, ପ୍ରାଣ, ମନ । ଉପାଧିବଶରୁ ତେସନ ।। ୧୩୨
ସଂସୃତି ହୋଏ ପୁରୁଷର । କେ ମିଥ୍ୟା ମଣୁ ଏ ପ୍ରକାର ।। ୧୩୩
ଗ୍ରୀଷ୍ମରେ ଶରୀର ତାତଇ[୧] । ତେଣୁ ଇନ୍ଦ୍ରିୟଙ୍କୁ ବାଧଇ ।। ୧୩୪
ଇନ୍ଦ୍ରିୟ ତାପରେ ପ୍ରାଣର । ମନର ତାପ ଦୁର୍ନିବାର ।। ୧୩୫
୨୩ ଯେବଣ କାଳ ନୃପ ଯେହି । ପ୍ରଜାଙ୍କୁ ପାଳେ ଶାସ୍ତା ସେହି ।। ୧୩୬
ଯେ ଅଟେ ହରିର କିଂକର । ନିଷ୍ଫଳ ନୋହେ କ୍ରିୟା ତାର ।। ୧୩୭
ଆପଣା ଧର୍ମ ଆଚରଣ । ହରିର ଆଜ୍ଞା ବୋଲି ଜାଣ ।। ୧୩୮
ସେ କଥା ଆଚରଣ କଲେ । ପାପସମୂହ ନାଶେ ଭଲେ ।। ୧୩୯
୨୪ ସେ ଘେନି ରାଜ ଅଭିମାନ । ମଦକୁ ଧରି ନିଜ ମନ ।। ୧୪୦
ସାଧୁ ଜନଙ୍କୁ ତୁଚ୍ଛ କରି । ମୁଁ ଯେ ଅଛଇ ଦେହ ଧରି ।। ୧୪୧
ମୋ ଠାରେ ସ୍ନେହଦୃଷ୍ଟି କର । ତୁମ୍ଭେ ଯେ ଦୁଃଖୀଙ୍କ ସୋଦର ।। ୧୪୨
ସାଧୁ ଅବଜ୍ଞାରୁ ସଂଭୂତ । ପାପ କରିବି ତେଣେ ହତ ।। ୧୪୩
୨୫ ତୁମ୍ଭେ ମିତ୍ର ଏ ଜଗତର । ସମତା ସବୁଠାରେ କର ।। ୧୪୪
ଏ ଘେନି ଅହଂଭାବ ଚିତ୍ତେ । ନାହିଁ ତୁମ୍ଭର କଦାଚିତେ ।। ୧୪୫
ତଥାପି ମୋହପରା ହୋଇ । ଯେ ସାଧୁ-ଅବଜ୍ଞା କରଇ ।। ୧୪୬
ହୁଅଇ କି ନା ଶୂଳପାଣି । ବିନାଶ ହୁଅଇ ସେ ପ୍ରାଣୀ ।। ୧୪୭
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ! ତୋଷ ହୁଅ ଏଣେ ।। ୧୪୮

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଜଡ଼ଭରତରହୂଗଣସଂବାଦୋ
ନାମ ଦଶମୋଽଧ୍ୟାୟଃ ।।

୧. ତାପଇ ।

# ଏକାଦଶ ଅଧ୍ୟାୟ

ଏକାଦଶେଽଥ ସଂପୃଷ୍ଟୋ ରହୂଗଣମହୀଭୃତା ।
ଉପାଦିଶତ୍ ପରଂ ଜ୍ଞାନଂ ସ ଯୋଗୀତି ନିଗଦ୍ୟତେ ।। ୧

ଶ୍ରୀବ୍ରାହ୍ମଣ ଉବାଚ

୧ ପଣ୍ଡିତ ନୋହିଲେ ହେଁ ତୁହି । ପଣ୍ଡିତେ ଯାହା ଛନ୍ତି କହି ।।
ତହିଁକି ସମ ଯେ ବଚନ । କହୁଣ ଅଛୁ ତା' ରାଜନ ।।
ଏ ଘେନି ଅତି ଜ୍ଞାନୀଙ୍କର । ମଧ୍ୟରେ ନୋହୁ ତୁ ପ୍ରବର ।।
ଏ ସ୍ୱାମୀ ଏ ଅଟେ କିଂକର । ଏରୂପେ ଯେଉଁ ବ୍ୟବହାର ।।
ଏହା ପଣ୍ଡିତଜନମାନେ । କହନ୍ତି ନାହିଁ ତତ୍ତ୍ୱଜ୍ଞାନେ ।।
୨ ହେ ନୃପ ! ସେହି ପରକାରେ । ଗୃହସ୍ଥାଶ୍ରମସମ୍ବନ୍ଧରେ ।।
ଯଜ୍ଞ-ବିତାନ-ବିଦ୍ୟାମାନ । ତେଣେ ଅଧିକେ ଶୋଭମାନ ।।
ସେ ବେଦବାଦେ ନିଷ୍ଠେ ହୋଇ । ତତ୍ତ୍ୱ ବଚନ ନ ଶୋଭଇ ।।
୩ ସ୍ୱପ୍ନଦୃଷ୍ଟାନ୍ତେ ଯେଉଁ ଜନ । ଗୃହସ୍ଥାଶ୍ରମ ସୁଖମାନ ।।
ଅନିତ୍ୟପ୍ରାୟେ ନ ମଣଇଁ । ତାହାର ତତ୍ତ୍ୱଜ୍ଞାନପାଇଁ ।।
ସମର୍ଥ ନୁହନ୍ତି ଭୁବନେ । ବେଦାନ୍ତସାର ବାକ୍ୟମାନେ ।।
୪ ଯାବତ କାଳ ଲୋକଚିତ୍ତ । ତ୍ରିଗୁଣେ ହୋଏ ବଶୀକୃତ ।।
ତାବତ ନିରଙ୍କୁଶ ହୋଏ । ଜ୍ଞାନ-ଇନ୍ଦ୍ରିୟ-କର୍ମେନ୍ଦ୍ରିୟେ ।।
ସୁକୃତ କର୍ମ ଆଚରଇ । ଅଥବା ଦୁରିତ କରଇ ।।
୫ ସେ ମନ ବାସନାସଂଯୁତ । ବିଷୟେ ହୋଇ ଆସକତ ।।
ଗୁଣରେ ଚାଳିତ ହୁଅଇ । ଏ ଘେନି ବିକୃତ ଅଟଇ ।।
ଭୂତ-ଇନ୍ଦ୍ରିୟରୂପ ହୋଇ । ଷୋଡ଼ଶ କଳା ଯେ ଅଟଇ ।।
ଏହାଙ୍କ ମଧ୍ୟେ ସେ ଉତ୍ତମ । ନାନା ପ୍ରକାରେ ବହି ନାମ ।।
ଧରନ୍ତେ ରୂପଭେଦମାନ । ତେଣେ ହୁଅଇ ଉଚ୍ଚ, ସାନ ।।
୬ ଯେ ସୁଖ, ଦୁଃଖ ଅବା ଆନ । କାଳେ ହୁଅଇ ଉତପନ ।।
ସେ ଫଳ ବ୍ୟକତ କରଇ । ମାୟାରେ ଜୀବକୁ ଭିଆଇ ।।
ଦେହୀକି କରି ଆଲିଙ୍ଗନ । ସଂସାରେ କରେ କୂଟମାନ ।।
୭ ପ୍ରକାଶ ସକଳ କାଳରେ । ସେ ରୂପେ ଲୋକବ୍ୟବହାରେ ।।
କ୍ଷେତ୍ରଜ୍ଞସାକ୍ଷୀ ସେ ଅଟଇ । ଜାଗ୍ରତ-ସ୍ୱପ୍ନରୂପ ହୋଇ ।।
ସେ ଘେନି ପରାବର ହୋଇ । ସଗୁଣ, ନିର୍ଗୁଣ ଯେ ଦୁଇ ।।
ତହିଁକି ହେତୁ ଅଟେ ମନ । ଏହା ବୋଲନ୍ତି ବିଜ୍ଞ ଜନ ।।
୮ ଗୁଣରେ ହେଲେ ଅନୁରତ । ପ୍ରାଣୀ ବିପତ୍ତି କରେ ଜାତ ।।
ଯେବେ ସେ ନିର୍ଗୁଣ ଅଟଇ । ଲୋକର ମୋକ୍ଷକୁ କରଇ ।।

ଘୃତ-ବଳିତାକୁ ଭୋଜନ । କରନ୍ତେ ପ୍ରଦୀପ ଯେସନ ॥
ସଧୂମ ଶିଖା କରେ ଜାତ । ସେ ଘୃତ ହୋଏ ଯେବେ ହତ ॥
ଉଜ୍ଜଳ ରୂପ ସେହୁ ଧରେ । ମନ ହିଁ ସେହି ପରକାରେ ॥
ଗୁଣକର୍ମରେ ଯୁତ ହୋଇ । ଅଶେଷ-ବୃତ୍ତିକି ଧରଇ ॥
ତହିଁରୁ ଇତର କାଳରେ । ତତ୍ତ୍ୱକୁ ଅବଲମ୍ବ କରେ ॥
୯ ପ୍ରସିଦ୍ଧ ଅଟେ ଯେ ମାନସ । ତାହାର ବୃତ୍ତି ଏକାଦଶ ॥
ସେ ବୃତ୍ତିମାନଙ୍କ ମଧ୍ୟର । ପଞ୍ଚ ଅଟଇ କର୍ମାକାର ॥
ଜ୍ଞାନ-ଆକାର ପଞ୍ଚ ଆନ । ଏକ ଅଟଇ ଅଭିମାନ ॥
ରୂପ-ରସାଦି ଯେ ବିଷୟ । ଯେ ଗତି ଆଦି କର୍ମ, କାୟ ॥
ଏ ଏକାଦଶ ତାହାଙ୍କର । ଭୂମି କହନ୍ତି ଏହା ଧୀର ॥
୧୦ ସ୍ପରଶ, ରୂପ, ଗନ୍ଧ, ରସ । ଶବ୍ଦ ମିଶିଣ ଯେ ପ୍ରକାଶ ॥
ଏ ପଞ୍ଚ ଜ୍ଞାନେନ୍ଦ୍ରିୟଦ୍ୱାରେ । ବୃତ୍ତିଙ୍କ ବିଷୟ ସଂସାରେ ॥
ମଳାଦିତ୍ୟାଗ, ରତି, ଗତି । ଅନେକ ଶିଳ୍ପ, ଯେ ଭଣିତି ॥
କର୍ମ-ଆକାର ବୃତ୍ତିଙ୍କର । ଏ ପଞ୍ଚ ବିଷୟ ପ୍ରଚାର ॥
ମମତାରୂପେ ଶରୀରର[1] । ସ୍ୱୀକାର ଅଟଇ ଏଗାର ॥
ଅହଂକାରକୁ କେହି ପୁଣି । ଦ୍ୱାଦଶ ବୋଲି ଛନ୍ତି ଭଣି ॥
ବିଷୟ ସେ ଅହଂକାରର । ଶଯ୍ୟାସଂଜ୍ଞକ ଅଟେ ପୁର ॥
୧୧ ବିଷୟ, ସ୍ୱଭାବ ଏ ବେନି । ସଂସ୍କାର, କର୍ମ, କାଳ ତିନି ॥
ଏହାଙ୍କ ହେତୁରୁ ମନର । ଅନେକ ହୁଅନ୍ତି ବିକାର ॥
ଶତେ ସହସ୍ର କୋଟି ଶତ । ଏହି ସଂଖ୍ୟାରେ ହୋନ୍ତି ଜାତ ॥
ନୁହନ୍ତି ଅନ୍ୟୋଅନ୍ୟବଶୁଁ । ହୁଅନ୍ତି କ୍ଷେତ୍ରଜ୍ଞ[2] ସକାଶୁଁ ॥
୧୨ ଜୀବ-ଉପାଧି ଅଟେ ମନ । ମାୟାରେ ହୋଇଛି ଉତ୍ପନ୍ନ ॥
ପ୍ରବାହ ରୂପରେ ତାହାର । ଯେ ନିତ୍ୟବିଭୂତି ଅପାର ॥
ଜାଗ୍ରତ-ସ୍ୱପ୍ନ ସମୟରେ । ଅଛନ୍ତି ପ୍ରକାଶରୂପରେ ॥
ସୁଷୁପ୍ତିସମୟେ ସେମାନ । କାଳରେ ହୁଅନ୍ତି ବିଲୀନ ॥
ତାହା ସେ ତିନି ଅବସ୍ଥାରେ । ଦେଖଇ ଯେ ସାକ୍ଷୀରୂପରେ ॥
କ୍ଷେତ୍ରଜ୍ଞରୂପୀ ସେ ଅଟଇ । ଆତ୍ମା ବୋଲିଣ ସେ ବୋଲାଇ ॥
୧୩ ଯେ ସେ ଆତ୍ମାକୁ ବ୍ୟାପିଥାଇ । ପୁରାଣ ପୁରୁଷ ଅଟଇ ॥
ସାକ୍ଷାତ ଅଟେ ସ୍ୱୟଂଜ୍ୟୋତି । ଅଜ ବ୍ରହ୍ମାଦିଙ୍କର ପତି ॥
ସକଳ ଜୀବଙ୍କ ଅୟନ । ସେ ବାସୁଦେବ ଭଗବାନ ॥
ନିଜ ମାୟାରେ ଜୀବଠାରେ । ବର୍ତ୍ତଇ ପ୍ରଭୁ ସ୍ୱରୂପରେ ॥

---

୧. ଶରୀରର । ୨. କ୍ଷେତ୍ରଜ୍ଞ = ପରମେଶ୍ୱର ।

| | | | | |
|---|---|---|---|---|
| | ସେ ହାଦେ କ୍ଷେତ୍ରଜ୍ଞ ବୋଲାଇ | ଏଣୁ କ୍ଷେତ୍ରଜ୍ଞ ଅଟେ ଦୁଇ | ।। | ୬୦ |
| | ଜୀବସ୍ୱରୂପେ ଖ୍ୟାତ ଏକ | ସକଳଈଶ୍ୱର ଆରକ | ।। | ୬୧ |
| ୧୪ | ପବନ ଯେମନ୍ତ ପ୍ରକାରେ | ସ୍ଥାବର ଜଙ୍ଗମଙ୍କ ଠାରେ | ।। | ୬୨ |
| | ପ୍ରାଣରୂପରେ ଦେହେ ଥାଇ | ସକଳ ଚେଷ୍ଟାକୁ କରଇ | ।। | ୬୩ |
| | ଭଗବାନ ହିଁ ସେ ପ୍ରକାରେ | କ୍ଷେତ୍ରଜ୍ଞ ଆତ୍ମା ସ୍ୱରୂପରେ | ।। | ୬୪ |
| | ସକଳ ଜନ୍ତୁଠାରେ ମିଳି | କରଇ ନାନାରୂପେ କେଳି | ।। | ୬୫ |
| ୧୫ | ହେ ନୃପ ! ଯେତେ କାଳ ଯାଏ | ମାୟାକୁ ନାଶି ଜ୍ଞାନୋଦୟେ | ।। | ୬୬ |
| | ସକଳ ସଙ୍ଗ ଦୂର କରି | ଜିଣି କାମାଦି ଷଡ଼ ଅରି | ।। | ୬୭ |
| | ଆତ୍ମତତ୍ତ୍ୱକୁ ନ ଜାଣଇଁ | ତାବତ କାଳ ମୋହ ହୋଇ | ।। | ୬୮ |
| | ଜନ୍ମ-ମରଣ ଆଦି ଦ୍ୱାରେ | ପ୍ରାଣୀ ଭ୍ରମଇଁ ଏ ସଂସାରେ | ।। | ୬୯ |
| ୧୬ | ଆତ୍ମ-ଉପାଧି ପ୍ରାଣୀ ମନ | ଜାଣି ନ ଥାଇ ଯେତେ ଦିନ | ।। | ୭୦ |
| | ସଂସାର ତାପମାନଙ୍କର | ମନ୍ଦିର ଅଟେ ଏ ଶରୀର | ।। | ୭୧ |
| | ଏ ରୂପେ ପ୍ରାଣୀଙ୍କର ମନ | ଜାଣି ନ ଥାଇ ଯେତେ ଦିନ | ।। | ୭୨ |
| | ତାବତ କାଳ ଏ ଜଗତେ | ଭ୍ରମୁଣ ଥାଇ ଅବିରତେ | ।। | ୭୩ |
| | ଯେ ମନ ଶୋକ, ମୋହ, ରୋଗ | ଲୋଭ, ବଇର, ଅନୁରାଗ | ।। | ୭୪ |
| | ଏମାନଙ୍କରେ ବଦ୍ଧ ହୋଇ | ମମତାବନ୍ଧକୁ ଧରଇ | ।। | ୭୫ |
| ୧୭ | ଗୁରୁସ୍ୱରୂପୀ ଭଗବାନ | ତାଙ୍କ ଚରଣ-ଉପାସନ | ।। | ୭୬ |
| | ତାହାକୁ ଅସ୍ତ୍ର କରି ଧରି | ବିନାଶ କର ତୁ ଏ ଅରି | ।। | ୭୭ |
| | ଏ ଶତ୍ରୁ ଅଟେ ଅତି ଗୁରୁ | ବଢ଼ିଛି ଉପେକ୍ଷା କଲାରୁ | ।। | ୭୮ |
| | ବାସ୍ତବ ସତ୍ୟ ସେ ନୁହଇ | ଆତ୍ମାକୁ ଆଚ୍ଛନ୍ନ କରଇ | ।। | ୭୯ |
| | ବ୍ରାହ୍ମଣ ଦୀନବଂଧୁ ଭଣେ | ସୁଜନେ ! ତୋଷ ହୁଅ ଏଣେ | ।। | ୮୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀବ୍ରାହ୍ମଣରହୂଗଣସଂବାଦେ
ନାମ ଏକାଦଶୋଽଧ୍ୟାୟଃ ।।

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ପୁନରାପୃଷ୍ଟଃ ସଂଦେହେନ ମହୀଭୃତା
ସ ଯୋଗୀ ସର୍ବସଂଦେହାନପାନୁଦଦିତୀର୍ଯ୍ୟତେ ।। ୧

ଶ୍ରୀରହୂଗଣ ଉବାଚ

| | | | | |
|---|---|---|---|---|
| ୧ | ସର୍ବକାରଣ ଯେ ଈଶ୍ୱର | ତାହାର ପ୍ରାଏକ ତୁମ୍ଭର | ।। | ୧ |
| | ଲୋକଙ୍କୁ ରକ୍ଷା କରିବାରେ | ଶରୀର ପ୍ରକାଶେ ସଂସାରେ | ।। | ୨ |

ପ୍ରକାଶି ପରମ ଆନନ୍ଦ । ତୁଚ୍ଛ କରିଛ ତୁମ୍ଭେ ଦ୍ୱନ୍ଦ୍ୱ ।। ୩
ହେ ଅବଧୂତ ! ଦ୍ୱିଜବେଷ । ସଂସାରେ କରିଣ ପ୍ରକାଶ ।। ୪
ଗୁପ୍ତ କରିଛ ଆପଣାର । ନିତ୍ୟ ଅନୁଭବ ବିଚାର ।। ୫
ଏଣୁ ତୁମ୍ଭଙ୍କୁ ବାରଂବାର । କରୁଅଛି ମୁଁ ନମସ୍କାର ।। ୬
୨ ଜ୍ୱର ରୋଗରେ ଯେ ପୀଡ଼ିତ । ତାହାକୁ ଔଷଧ ଯେମନ୍ତ ।। ୭
ନିଦାଘତପତ ଯେ ନର । ତାହାକୁ ଯେହ୍ନେ ହିମନୀର ।। ୮
ତୁମ୍ଭ ବଚନ ସେ ପ୍ରକାରେ । ଅମୃତ ଔଷଧ ମୋଠାରେ ।। ୯
କୁତ୍ସିତ ଦେହେ ଯେଉଁ ମାନ । ସେ ଅଟେ ଉରଗ ଯେସନ ।। ୧୦
ତାର ଦଂଶିବାରୁ ମୋହର । ବିବେକ ହୋଇଅଛି ଦୂର ।। ୧୧
୩ ତେଣୁ ବିଷମ ଅର୍ଥମାନ । ପଛେ ମୁଁ କରିବି ପ୍ରଶନ ।। ୧୨
ଅଧ୍ୟାତ୍ମ ଯୋଗରେ ଗ୍ରଥିତ । ଅଟଇ ତୁମର ଉକତ ।। ୧୩
ଯେମନ୍ତେ ସୁବୋଧ ହୋଇବ । ଏବେ ତା' ସେରୂପେ କହିବ ।। ୧୪
[1]ସେ କୌତୂହଳରେ ସଂଯୁତ । ତାହା ଶୁଣିମାକୁ ମୋ' ଚିତ୍ତ ।। ୧୫
୪ ହେ ଯୋଗେଶ୍ୱର ! ପ୍ରତ୍ୟକ୍ଷରେ । ଦୃଶ୍ୟ ଅଟଇ ଯେ ସଂସାରେ ।। ୧୬
ଭାର ବହିବା ଆଦି ହୋଇ । ଯେ କ୍ରିୟା ପ୍ରସିଦ୍ଧ ଅଟଇ ।। ୧୭
ତାହାର ଶ୍ରମ ଆଦି[2] ଫଳ । ଅଟଇ ବ୍ୟବହାରମୂଳ ।। ୧୮
ତତ୍ତ୍ୱବିଚାରକୁ ଏମାନ[3] । କେବେ ହେଁ ନୁହଇ ଭାଜନ ।। ୧୯
ଏରୂପେ କହିଅଛ ଯାହି । ମୋ ମନ ଭ୍ରମୁଅଛି ତହିଁ ।। ୨୦

## ଶ୍ରୀବ୍ରାହ୍ମଣ ଉବାଚ

୫ ହେ ନୃପ ! ପାର୍ଥିବ ବିକାରେ । କେହୁଣି ହେତୁରୁ ପୃଥ୍ୱୀରେ ।। ୨୧
ଚଳନ୍ତେ ମନୁଷ୍ୟ ବୋଲାଇ । ତାହାର ଥାଇ ପାଦଦୁଇ ।। ୨୨
ପାଦରେ ଗୁଲ୍ଫ ଜଙ୍ଘା ତହିଁ । ତାପରେ ଜାନୁ ଅଛି ରହି ।। ୨୩
ଜାନୁରେ ଊରୁ ଊରୁପର । ମଧ୍ୟ[4] ତା'ଉପରରେ ଉର ।। ୨୪
ଉର-ଉପରେ ବେକ ଖ୍ୟାତ । ତାଠାରେ ସ୍କନ୍ଧ ଯେ ବିଦିତ ।। ୨୫
୬ ଶିବିକା ଅଛି ସ୍କନ୍ଧପରେ । ସୌବୀରରାଜା-ଶବଦରେ ।। ୨୬
ଯହିଁରେ ଅଭିମାନ ବହି । ବସିଣ ଅଛୁ ନୃପ ! ତୁହି ।। ୨୭
ସିନ୍ଧୁଦେଶରେ ମୁଁ ନୃପତି । ଏ ଗର୍ବେ ଅଟୁ ଅନ୍ଧ ଅତି ।। ୨୮
୭ [5]ଏ ପ୍ରାଣୀମାନେ ଯେ ଅଛନ୍ତି । ଶୋଚନାଯୋଗ୍ୟ ଏ ଅଟନ୍ତି ।। ୨୯
ଏହାଙ୍କୁ ବେଠିରେ ଲଗାଇ । ତୁ ଅନୁଗ୍ରହଶୂନ୍ୟ ହୋଇ ।। ୩୦
ମୁଁ ପ୍ରାଣୀମାନଙ୍କ ପାଳକ । ଏରୂପେ କହନ୍ତେ ଅଧିକ ।। ୩୧

---

୧. କଉତୂହଳରେ ସଂଯୁତ (ପାଠାନ୍ତର) । ୨. ଆଦ୍ୟ ।
୩. ସେମାନ । ୪. ମଧ୍ୟ = କଟି । ୫. ଏ ପ୍ରାଣୀ ଯେ ଏଥେ ଅଛନ୍ତି ।

ତୁ ଧୂର୍ତ୍ତ ବୃଦ୍ଧଙ୍କ ସଭାରେ । ଶୋଭା ନ ପାଉଛୁ ସଂସାରେ ।। ୩୨
୮ କ୍ଷିତିର ମଧ୍ୟେ ଚରାଚର । ଲଭଇ ଜନମ-ସଂହାର ।। ୩୩
ଏକଥା ନିତ୍ୟ କରି ଜାଣି । ପାର୍ଥିବ ନାମୁଁ ଆନ ପୁଣି ।। ୩୪
ବ୍ୟବହାରକୁ ମୂଳ ହୋଇ । ନିତ୍ୟ ଭାବରେ ଅବା ତାହି ।। ୩୫
କରି ପାରି କି ଅନୁମାନ । ତୁ ନିରୂପଣ କର ମନ ।। ୩୬
୯ ଯାହାକୁ କ୍ଷିତି ବୋଲି କହି । ସେହି ବାସ୍ତବ ସତ୍ୟ ନୋହି ।। ୩୭
ଯେ ସୂକ୍ଷ୍ମ ପରମାଣୁମାନ । ତହିଁ ହୁଅଇ ଯେଣୁ ଲୀନ ।। ୩୮
ମନ, ଅବିଦ୍ୟାରେ କଳ୍ପନ । ଅଟନ୍ତି ପରମାଣୁମାନ ।। ୩୯
ତାହାଙ୍କ ସମୂହ ନିର୍ମିତ । ପୃଥିବୀରୂପରେ ବିଖ୍ୟାତ ।। ୪୦
୧୦ ଏ ରୂପେ କୃଶ ସ୍ଥୂଳ ଦୁଇ । ଅଣୁ, ବୃହତ ଯେବା ହୋଇ ।। ୪୧
କାର୍ଯ୍ୟକାରଣ ଜୀବମାନ । ଯେ ଅବା ଅଚେତନ ଆନ ।। ୪୨
ଦ୍ରବ୍ୟ, ସ୍ୱଭାବ, କର୍ମ, କାଳ । ଆଶ୍ରୟ ନାମେ ସେ ସକଳ ।। ୪୩
ଅଟଇ ମାୟାରେ ନିର୍ମିତ । ଏରୂପେ ହୋଇଅଛି ଦ୍ୱୈତ ।। ୪୪
୧୧ କେବଳ ସତ୍ୟ ଅଟେ ଜ୍ଞାନ । ଯେ ପରମାର୍ଥ ପ୍ରକାଶନ ।। ୪୫
ସେ ଏକ ପ୍ରସିଦ୍ଧ ଅଟଇ । ବାହ୍ୟାଭ୍ୟନ୍ତରଶୂନ୍ୟ ହୋଇ ।। ୪୬
ସେ ପରିପୂର୍ଣ୍ଣ, ନିର୍ବିଷୟ । ଅଟେ ସର୍ବଦା ଶାନ୍ତିମୟ ।। ୪୭
ଯେ ଭଗବାନ ଶବଦରେ । ବିଦିତ ହୋଇଛି ସଂସାରେ ।। ୪୮
ଯାହାକୁ ବାସୁଦେବରୂପେ । ଜ୍ଞାନୀ କହନ୍ତି କଳ୍ପେ କଳ୍ପେ ।। ୪୯
୧୨ ଯାଗ, ତପସ୍ୟା, ଅନ୍ନଦାନ । ଯେ ଗୃହ, ବେଦ-ଅଧ୍ୟୟନ ।। ୫୦
ଜଳ-ଅନଳ-ସୂର୍ଯ୍ୟାର୍ଚ୍ଚନ । ଏଣେ ନ ଲଭଇ ସେ ଜ୍ଞାନ ।। ୫୧
ମହତ ଜନଙ୍କ ଚରଣ । ସେବା ବିନୁ ହେ ରହୂଗଣ ।। ୫୨
୧୩ ଗ୍ରାମ୍ୟ କଥାର ବିନାଶନ । ବିଷ୍ଣୁର ଗୁଣାନୁବାଦନ ।। ୫୩
ଯେଉଁ ମହତଙ୍କ ସଙ୍ଗରେ । ପଢୁଣ ଥାଇ ନିରନ୍ତରେ ।। ୫୪
ସଂସାରୁ ମୁକତି ବାଞ୍ଛିଣ । ଯେ ତାହା କରଇ ଶ୍ରବଣ ।। ୫୫
ନିର୍ମଳ ମତି କୃଷ୍ଣଠାରେ । ଅର୍ପିତ କରଇ ସେ ତାରେ ।। ୫୬
୧୪ ମୁଁ ପୂର୍ବ ଜନ୍ମରେ ଭରତ । ନାମରେ ନୃପତି ବିଖ୍ୟାତ ।। ୫୭
ଯେ ଦୃଷ୍ଟ ଶ୍ରୁତ ସଙ୍ଗମାନ । ସକଳ କରି ବିମୋଚନ ।। ୫୮
କରନ୍ତେ ବିଷ୍ଣୁ-ଆରାଧନ । ମୃଗସଙ୍ଗରୁ ହେ ରାଜନ ।। ୫୯
ଲଭିଲି ମୃଗ କଳେବର । ହତ ହୋଇଲା ଅର୍ଥ ମୋର ।। ୬୦
୧୫ କୃଷ୍ଣପୂଜାରୁ ଉତପନ । ଯେ ହାଦେ ଥିଲା ପୂର୍ବ ଜ୍ଞାନ ।। ୬୧
ମୃଗଦେହରେ ହିଁ ମୋହର । ସେ ଜ୍ଞାନ ନ ଗଲା ହେ ବୀର ।। ୬୨
ଜନସଙ୍ଗରୁ ଭୟ ପାଇ । ଏଣୁ ଅସଙ୍ଗ ହୋଇ ମୁହିଁ ।। ୬୩

| | | | | | |
|---|---|---|---|---|---|
| | ଲୋକରେ ହୋଇ ଅବିଦିତ | । ଭ୍ରମଣ କରୁଛି ଜଗତ | ।। | ୬୪ |
| ୧୬ | ତେଣୁ ବିବେକୀ ଯେଉଁ ନର | । ଯେ ମୋହ ଥିବ ଆପଣାର | ।। | ୬୫ |
| | ମହତସଙ୍ଗମରୁ ଜାତ | । ଜ୍ଞାନଖଡ଼୍ଗେ କରି ହତ | ।। | ୬୬ |
| | ହରିଚରିତମାନ ଶୁଣି | । ସେମାନ ନିଜ ତୁଣ୍ଡେ ଭଣି | ।। | ୬୭ |
| | ହରିଙ୍କି ଲଭେ ଜ୍ଞାନ ପାଇ | । ସଂସାରମାର୍ଗ ବଳି ଯାଇ | ।। | ୬୮ |
| | ସେ ହରିଚରଣପଙ୍କଜେ | । ବ୍ରାହ୍ମଣ ଦୀନବଂଧୁ ଭଜେ | ।। | ୬୯ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀବ୍ରାହ୍ମଣରହୂଗଣସଂବାଦେ
ନାମ ଦ୍ୱାଦଶୋଽଧ୍ୟାୟଃ ।।

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେଽବିରକ୍ତାୟ ବୃଥା ତତ୍ତ୍ୱନିରୂପଣମ୍ ।
ଇତି ବୈରାଗ୍ୟଦାର୍ଢ୍ୟାୟ ଭବାଟବ୍ୟୁପବର୍ଣ୍ଣ୍ୟତେ ।। ୧

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୧ | ଦୁସ୍ତର ସଂସାରମାର୍ଗରେ | । ପ୍ରବେଶ ଲଭିଣ ମାୟାରେ | ।। | ୧ |
| | ରାଜସ ଆଦି କର୍ମ ତିନି | । କାର୍ଯ୍ୟରୂପରେ ଥାଇ ଘେନି | ।। | ୨ |
| | ସୁଖରେ ହୋଇ ଆସକତ | । ଜୀବସମୂହ ଅବିରତ | ।। | ୩ |
| | ଭ୍ରମନ୍ତେ ସୁଖକୁ ନ ପାଇ | । ଭବ-ଅଟବୀରେ ମିଳଇ | ।। | ୪ |
| | ଯେସନେ ବଣିଜାର[୧] ଜନ | । ଦ୍ରବ୍ୟହେତୁରେ ମିଳେ ବନ | ।। | ୫ |
| ୨ | ହେ ନୃପ ! ଖଣ୍ଟ ଭାବ ବହି | । ଛ'ଜଣ ରହିଛନ୍ତି ଯହିଁ | ।। | ୬ |
| | କୁତ୍ସିତ ନାୟକ ଯହିଁରେ | । ଲୁଟି କରନ୍ତି ସେ ସାର୍ଥରେ[୨] | ।। | ୭ |
| | ସେ ସାର୍ଥେ ଥାଇ ଯେଉଁ ଜନ | । କରି ନ ଥାଇ ଅବଧାନ | ।। | ୮ |
| | ତାକୁ ଶୃଗାଳମାନେ ଧରି | । ବଳରେ ନିଅନ୍ତି ଓଟାରି | ।। | ୯ |
| | ମେଷକୁ ଯେହ୍ନେ ବୃକମାନେ | । ଓଟାରି ନିଅନ୍ତି କାନନେ | ।। | ୧୦ |
| ୩ | ବହୁତ ଲତା, ତୃଣମାନ | । ଗୁଳ୍ମଗହ୍ୱର ସେ କାନନ | ।। | ୧୧ |
| | କଠୋର ଡାଁଶ ମଶାକୁଳ | । ତେଣେ ସେ ହୁଅଇ ଆକୁଳ | ।। | ୧୨ |
| | କେବଣ ସ୍ଥାନେ ପୁଣ ଯାଇ | । ଗନ୍ଧର୍ବପୁରକୁ ଦେଖଇ | ।। | ୧୩ |

୧. ବଣିଜାର = ବେପାର କରିବା ବ୍ୟକ୍ତି । ଯଥା :-
"ଗୋବିନ୍ଦଶୋଭା-ଗୁଣ-ନାମରତନେ ।
ବଣିଜାର କିଶୋରୀମଣି ଯତନେ ।।" (ବିଦଗ୍ଧ ଚିନ୍ତାମଣି)

୨. ସାର୍ଥ = ବଣିକସମୂହ ।

ଜ୍ୱଳିତ ଅଗ୍ନିପ୍ରାଏ ହୋଇ । ପିଶାଚ ଆସୁଥାଇ ଧାଇଁ ॥ ୧୪
ତାହାକୁ କେଉଣିସିଠାରେ । ଦେଖଇ ସେ ବନ ମଧ୍ୟରେ ॥ ୧୫
୪ ନିବାସ, ଜଳ, ଦ୍ରବ୍ୟମାନ । ତହିଁରେ ଦେଇ ନିଜ ମନ ॥ ୧୬
ବିପିନମଧ୍ୟରେ ଧାମଇଁ । ଏଣି ତେଣିକି ଏକା ହୋଇ ॥ ୧୭
କେହୁଣି ସ୍ଥାନେ ଚକ୍ରବାତ । ଉଡ଼ନ୍ତେ ତହିଁରୁ ଯେ ଜାତ ॥ ୧୮
ସେ ଧୂଳିଧୂମ୍ର ଦିଗମାନ । କରି ନ ପାରି ବିଲୋକନ ॥ ୧୯
ଯେଣୁ ତାହାର ନେତ୍ରଦୁଇ । ଧୂଳିପଟଳେ ପୂର୍ଣ୍ଣ ହୋଇ ॥ ୨୦
୫ ଅଦୃଶ୍ୟ ଝିଙ୍କାରୀରବରେ । ବ୍ୟଥା ଜନମଇଁ କର୍ଣ୍ଣରେ ॥ ୨୧
ଉଲୂକମାନଙ୍କ ବଚନେ । ବ୍ୟଥା ଜନମ ହୋଇ ମନେ ॥ ୨୨
କ୍ଷୁଧାରେ ପୀଡ଼ା ପାଇ ପୁଣ । ସେବେ ଅପୁଣ୍ୟ ବୃକ୍ଷଗଣ ॥ ୨୩
କେହୁଣି ସ୍ଥାନେ ପୁଣ ଯାଇଁ । ମୃଗତୃଷ୍ଣାକୁ ଦେଖି ଧାଇଁ ॥ ୨୪
୬ ନିର୍ଜଳ ନଦୀରେ ପଶଇ । ଜଳ ନ ପାଇ ଦୁଃଖ ପାଇ ॥ ୨୫
ଅନ୍ନ ବିହୁନେ ସେ ବନରେ । ଅନ୍ନ ମାଗନ୍ତି ପରସ୍ପରେ ॥ ୨୬
ବନାଗ୍ନି ଲଭି ଏକସ୍ଥାନେ । ତା' ତାପେ ଖେଦ ଲଭେ ମନେ ॥ ୨୭
କେହୁଣି ସ୍ଥାନେ ଯକ୍ଷଗଣ । ବନେ ହରନ୍ତି ତାର ପ୍ରାଣ ॥ ୨୮
୭ କେହୁଣିସ୍ଥାନେ ଆନମାନେ । ଧନ ହରନ୍ତି ତାର ବନେ ॥ ୨୯
ଶୋଚନା କରି ତାପ ପାଇ । ବିଷଣ୍ଣ ହୋଇ ମୋହ ଯାଇ ॥ ୩୦
କେହୁଣି ସ୍ଥାନେ ପୁଣ ଯାଇ । ଗନ୍ଧର୍ବପୁରରେ ମିଳଇ ॥ ୩୧
ତହିଁରେ ସୁଖୀପ୍ରାୟ ହୋଇ । ମୁହୂର୍ତ୍ତେମାତ୍ର ସୁଖ ପାଇ ॥ ୩୨
୮ ଚଳନ୍ତେ କହୁଣିସି ସ୍ଥାନେ । ବହେ ଝିଙ୍କର[1] କଣ୍ଟାମାନେ ॥ ୩୩
ପର୍ବତେ ଚଢ଼ି ନ ପାରଇ । ନ ପାରି ବିମନ ହୁଅଇ ॥ ୩୪
ଜଠରାନଳେ ବ୍ୟଥା ପାଇ । କ୍ଷଣେ କ୍ଷଣେକେ ତାପି ହୋଇ ॥ ୩୫
କ୍ରୋଧ କରଇ ଲୋକଠାରେ । କୁଟୁମ୍ବବନ୍ତ ସ୍ୱଭାବରେ ॥ ୩୬
୯ କେହୁଣି ସ୍ଥାନେ ପୁଣି ତହିଁ । ଗିଳଇ[2] ଅଜଗର ଅହି ॥ ୩୭
ସେ ବନେ ଶବପ୍ରାଏ ହୋଇ । କିଛି ହିଁ କଥା ନ ଜାଣଇଁ ॥ ୩୮
ତାହାକୁ ପୁଣ ଏକସ୍ଥାନେ । ଦଂଶନ୍ତି ଆନ ସର୍ପମାନେ ॥ ୩୯
ଅନ୍ଧକୂପରେ ଅନ୍ଧ ହୋଇ । ଅନ୍ଧକାରରେ ସେ ପଡ଼ଇ ॥ ୪୦
୧୦ ଲୋଡ଼ନ୍ତେ ମହୁମାନ କାହିଁ । ମାଛିଏ ମାରନ୍ତି ଗୋଡ଼ାଇ ॥ ୪୧
ସେ ଘେନି ହୁଅଇ ବ୍ୟଥିତ । ଗର୍ବ ହିଁ ହୋଏ ତାର ହତ ॥ ୪୨
ଯେବେ ତା' କଷ୍ଟକଷ୍ଟେ ପାଇ । ବଳେ ତା'ଆନ ଘେନି ଯାଇ ॥ ୪୩
୧୧ କେହୁଣି ସ୍ଥାନେ ଶୀତ, ବାତ । ବରଷା କରନ୍ତେ ବହୁତ ॥ ୪୪

---

୧. ଝିଙ୍କର = ଖପରା ।   ୨. ମିଳଇ ।

ତାର ନାଶକୁ ପ୍ରତିକାର । କରିବାକୁ ନୋହେ ଈଶ୍ୱର ।।
କେବଣ ସ୍ଥାନେ ପରସ୍ପର । କରନ୍ତେ କିଛି ବ୍ୟବହାର ।।
ବିତ୍ତରେ ବଞ୍ଚନାକୁ ପାଇ । ଲୋକଙ୍କୁ ବିଦ୍ୱେଷ କରଇ[1] ।।
୧୨ ଭ୍ରମଣ କରନ୍ତେ ସେ ବନେ । କେହୁଣି କେହୁଣିସି ସ୍ଥାନେ ।।
ଯେବଣ ଦ୍ରବ୍ୟ ଅର୍ଜିଥାଇ । ସେମାନ କ୍ରମେ କ୍ଷୀଣ ହୋଇ ।।
ଶଯ୍ୟା, ଆସନ, ଗୃହ, ଯାନ । ଏମାନଙ୍କରେ ହୋଇ ହୀନ ।।
ପରକୁ ପ୍ରାର୍ଥନା କରଇ । ଯେବେ ହେଁ ତହିଁରୁ ନ ପାଇ ।।
ପରଦ୍ରବ୍ୟରେ ଦେଇ ମନ । ଲଭଇ ନାନା ଅବମାନ ।।
୧୩ ସେ ବନମାର୍ଗେ ପରସ୍ପର । କରନ୍ତେ ବିତ୍ତେ ବ୍ୟବହାର ।।
ଅସମଞ୍ଜସ କିଛି ହେଲେ । ବଇର ଭାବ ବଢ଼େ ଭଲେ ।।
ବିବାହ ଆଦି ସମ୍ବନ୍ଧରେ । ଲୀଳା କରନ୍ତେ ପରସ୍ପରେ ।।
ଲଭଇ ନାନା ଶ୍ରମମାନ । ବହୁତ ବ୍ୟୟ ହୋଏ ଧନ ।।
ଅନେକ ବାଧା ହୋଏ ଜାତ । ସେ ଘେନି ହୋଏ ମୂରୁଛିତ ।।
୧୪ ମରନ୍ତି ଯେଉଁ ଯେଉଁ ମାନେ । ତାହାଙ୍କୁ ପକାଇ ସେ ବନେ ।।
ଜାତ ହୁଅଇ ଯେବା ତହିଁ । ତାହାକୁ ସଂଗେ ଘେନିଥାଇ ।।
ଆସିଣ ଅଛି ଯେଉଁ ସ୍ଥାନୁଁ । ଆଜ ହିଁ ଲେଉଟିଣ ବନୁଁ ।।
ସେ ସ୍ଥାନେ ନୁହଇ ପ୍ରବେଶ । ଯେଣେ ସେ ମାର୍ଗ ହୋଏ ଶେଷ ।।
ତହିଁକି ଯେଉଁ ଯୋଗ ଅଛି । ତାହା ସେ ନ ଜାଣଇ କିଛି ।।
୧୫ ବଳରେ ଦିଗଦନ୍ତୀମାନ । ଜିଣନ୍ତି ଯେଉଁ ଶୂରଜନ ।।
ଏକ ଆରକେ ଭୂମିପାଇଁ । ସମସ୍ତେ ବୈରଭାବ ହୋଇ ।।
ସମରଭୂମିରେ ଶୁଅନ୍ତି । ସେମାନେ ଯହିଁକି ନ ଯାନ୍ତି ।।
ସକଳଦଣ୍ଡପରିତ୍ୟାଗୀ । ନିର୍ବୈର ହୋଇ ବଇରାଗୀ ।।
ଯେବଣ ସ୍ଥାନକୁ ଲଭଇ । ସେ ସ୍ଥାନ ଇତର ନ ପାଇ ।।
୧୬ ସେ ବନେ କେହୁଣିସି ସ୍ଥାନେ । ଥାନ୍ତି ଯେ ନାନା ଲତାମାନେ ।।
ସେ ଲତାଙ୍କର ଶାଖାମାନ । ଆଶ୍ରୟ କରି ହରେ ଦିନ ।।
ସେ ଲତା ଅବଲମ୍ବ କରି । ଅବ୍ୟକ୍ତ ବର୍ଣ୍ଣକୁ ଉଚ୍ଚାରି ।।
ଥାନ୍ତି ଯେ ନାନା ପକ୍ଷୀଗଣ । ତାହାଙ୍କ ଠାରେ ଦିଏ ମନ ।।
ସେ ବନେ କେହୁଣିସି ଠାଏ । ସିଂହସମୂହ ଦେଖି ଭୟେ ।।
ଶାଗୁଣା, ବକ, କଙ୍କସଙ୍ଗେ । ପ୍ରୀତି କରଇ ନାନାରଙ୍ଗେ ।।
୧୭ ତେଣେ ବଞ୍ଚନା ପାଇ ପୁଣ । ଆଶ୍ରେ କରଇ ହଂସଗଣ ।।
ସେ ହଂସଗଣମାନଙ୍କର । ଯେ ଅବା ଉଚିତ ଆଚାର ।।

୧. କରାଇ ।

ସେମାନ ନ ଯୋଗାଇ ଯେଣୁ । ବାନରଠାକୁ ଯାଇ ତେଣୁ ॥ ୭୬
ବାନରଜାତିକ୍ରୀଡ଼ାରସେ । ବଶ ହୋଇଣ ନାରୀପାଶେ ॥ ୭୭
ମୁଖକୁ ଚାହିଁ ପରସ୍ପରେ । ମରଣକାଳ ନ ସୁମରେ ॥ ୭୮
୧୮ ଖେଳନ୍ତେ ଦ୍ରୁମମାନଙ୍କରେ । ବତ୍ସଳ ହୋଇ ପୁତ୍ରଦାରେ ॥ ୭୯
ସୁରତଅର୍ଥେ ହୋଇ ଦୀନ । ବନ୍ଧରେ ହୋଇଣ ଅଧୀନ ॥ ୮୦
କେହୁଣି ସ୍ଥାନେ ପ୍ରମାଦରେ । ପଡ଼ନ୍ତେ ଗିରିକନ୍ଦରରେ ॥ ୮୧
ଗଜସକାଶୁଁ ଭୟ ପାଇ । ଲତାକୁ ଧରିଣ ରହଇ ॥ ୮୨
୧୯ ସେ ବିପତ୍ତିରୁ ପୁଣ ତହିଁ । କଷ୍ଟ କଷ୍ଟରେ ମୁକ୍ତ ହୋଇ ॥ ୮୩
ସେ ସାର୍ଥେ ହୁଅଇ ପ୍ରବେଶ । ଏମନ୍ତ ରୂପେ ହେ ନରେଶ ॥ ୮୪
ଏ ବନମାର୍ଗେ ମାୟା ନେଇ । ଲୋକକୁ ପ୍ରବେଶ କରାଇ[୧] ॥ ୮୫
ଭ୍ରମଣ କରନ୍ତେ ଆଜ ହିଁ । ଜାଣି ନ ପାରେ ତତ୍ତ୍ୱ କେହି ॥ ୮୬
୨୦ ହେ ରହୂଗଣ ! ନୃପ ତୁହି । ଏହି ମାର୍ଗରେ ଅଛୁ ରହି ॥ ୮୭
ସକଳ ଦଣ୍ଡ ତ୍ୟାଗ କରି । ପ୍ରାଣୀରେ ମିତ୍ରଭାବ ଧରି ॥ ୮୮
ବିଷୟେ ନ ନିବେଶି ମନ । ହରିଙ୍କି କରିଣ ସେବନ ॥ ୮୯
ନିଶିତ ଜ୍ଞାନଖଡ୍‌ଗ ଧରି । ଏ ମାର୍ଗ ଯାଅ ବେଗେ ତରି ॥ ୯୦

ଶ୍ରୀରାଜୋବାଚ

୨୧ ଅଖିଳ ଜନ୍ମମାନଙ୍କର । ମଧ୍ୟେ ମନୁଷ୍ୟ ଜନ୍ମ ସାର ॥ ୯୧
ଏ ଘେନି କରି ଏ ସଂସାରେ । କି କାର୍ଯ୍ୟ ଇତର ଜନ୍ମରେ ॥ ୯୨
ବିଷ୍ଣୁର ଯଶେ ଦେଇ ମନ । ତୁମ୍ଭେ ମହାତ୍ମା ସାଧୁଜନ ॥ ୯୩
ତୁମ୍ଭର ସଙ୍ଗେ ବଡ଼ ହୋଇ । ସଂଗମ ଯେଉଁ ଜନ୍ମେ ନାହିଁ ॥ ୯୪
୨୨ ତୁମ୍ଭର ଚରଣଧୂଳିରେ । ନିଷ୍ପାପ ଅଟେ ଯେ ସଂସାରେ ॥ ୯୫
ବିଷ୍ଣୁର ଠାରେ ସେ ଲୋକର । ନିର୍ମଳ ଭଗତି ହେବାର ॥ ୯୬
ଅଦ୍ଭୁତ କରି ନିଜ ଚିତ୍ତେ । ମୁଁ ମଣୁନାହିଁ କଦାଚିତେ ॥ ୯୭
ମୁହୂର୍ତ୍ତମାତ୍ରସଙ୍ଗୁଁ ତୋର । ଭାଜିଲା ଅବିବେକ ମୋର ॥ ୯୮
ଯେଉଁ ଅବିବେକର ମୂଳ । ଅଟଇ ଦୁଷ୍ଟ ତର୍କ ବଳ ॥ ୯୯
୨୩ ଯେ ବ୍ରହ୍ମଜ୍ଞାନୀଙ୍କ ମଧ୍ୟରେ । ଚରନ୍ତି ଅଜ୍ଞାତ ବେଶରେ ॥ ୧୦୦
ବୟ ଅଧିକ ସେ ଅଟନ୍ତି । ତାହାଙ୍କୁ କରୁଛି ପ୍ରଣତି ॥ ୧୦୧
ଶିଶୁସ୍ୱରୂପୀ ଅବା କେହି । କେ ଅବା ଯୁବା ଛନ୍ତି ରହି[୨] ॥ ୧୦୨
ଯେ ବଟୁରୂପୀ କ୍ରୀଡ଼ାପର । ତାଙ୍କୁ ମୋହର ନମସ୍କାର ॥ ୧୦୩
ତାଙ୍କୁ ମୋହର ପ୍ରାଏ ହୋଇ । ଅବଜ୍ଞା କରନ୍ତି ବା କେହି ॥ ୧୦୪

୧. କରଇ ।　　୨. ତହିଁ ।

ତାହାଙ୍କ ଠାରୁ ରାଜାଙ୍କର । ମଙ୍ଗଳ ହେଉ ନିରନ୍ତର ॥ ୧୦୫

ଶ୍ରୀଶୁକ ଉବାଚ

୨୪ ଶୁଣ ହେ ଉତ୍ତରାକୁମର । ଏରୂପେ ବ୍ରହ୍ମଋଷି ବର ॥ ୧୦୬
ପରମ କୃପାଳୁ ଭାବରେ । ସେ ସିନ୍ଧୁରାଜାର ଆଗରେ ॥ ୧୦୭
ପ୍ରକାଶ କଲେ ଆତ୍ମଜ୍ଞାନ । ସେ ରାଜା କରିଣ ସମ୍ମାନ ॥ ୧୦୮
ଚରଣପଦ୍ମକୁ ତାହାର । ବିନୟେ କଲେ ନମସ୍କାର ॥ ୧୦୯
ସମୁଦ୍ର ପ୍ରାଏକ ନିଶ୍ଚଳ । ପ୍ରଶାନ୍ତ ଇନ୍ଦ୍ରିୟସକଳ ॥ ୧୧୦
ନିଶ୍ଚଳ ଅଟେ ତାଙ୍କ ମନ । ଧରଣି କଲେ ପର୍ଯ୍ୟଟନ ॥ ୧୧୧
୨୫ ତାହାଙ୍କ ଠାରୁ ଆତ୍ମଜ୍ଞାନ । ଲଭି ସେ ସୌବୀର ରାଜନ ॥ ୧୧୨
ଅବିଦ୍ୟାହେତୁ ନିଜ ମନେ । ଯେ ଜନ୍ମିଥିଲା ପୂର୍ବଦିନେ ॥ ୧୧୩
ନିଜ ଦେହରେ ଆତ୍ମମତି । ସେ କଥା ଛାଡ଼ିଲା ନୃପତି ॥ ୧୧୪
ହରିଙ୍କି ଭଜେ ଯେଉଁ ଜନ । ତାକୁ ଯେ କରଇ ସେବନ ॥ ୧୧୫
ତାର ମହିମା ଏ ପ୍ରକାର । ଦେହେ ନ ଥାଇ ଅହଂକାର ॥ ୧୧୬

ଶ୍ରୀରାଜୋବାଚ

୨୬ ହେ ମହାଭାଗ ! ତୁମ୍ଭେ ପୁଣି । ବହୁତ କଥା ଅଛ ଜାଣି ॥ ୧୧୭
ଭବମାର୍ଗକୁ ପ୍ରାଣୀଙ୍କର । ଠାରି କହିଲ ମୋ' ଆଗର ॥ ୧୧୮
ସେ କଥା ବଡ଼ଲୋକମାନେ । ଜାଣିମେ କଳ୍ପି ନିଜ ମନେ ॥ ୧୧୯
ଯେ ବୁଦ୍ଧିହୀନ ଅଟେ ନର । ତାହାର ନୋହେ ସେ ଗୋଚର ॥ ୧୨୦
ଏ ଘେନି ଯଥାର୍ଥ ରୂପରେ । ସେ କଥା କହ ମୋ' ଆଗରେ ॥ ୧୨୧
ବ୍ରାହ୍ମଣ ଦୀନବଂଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ॥ ୧୨୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀବ୍ରାହ୍ମଣରହୂଗଣସଂବାଦେ
ଭବାଟବ୍ୟପବର୍ଣ୍ଣନଂ ନାମ ତ୍ରୟୋଦଶୋଽଧ୍ୟାୟଃ ॥

# ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶେ ଭବାରଣ୍ୟରୂପକବ୍ୟାକୃତିଃ କୃତା ।
ପ୍ରସ୍ତୁତେ ଦସ୍ୟୁ-ଗୋମାୟୁମଶକାଦ୍ୟର୍ଥକଳ୍ପନୈଃ ॥

ସ ହୋବାଚ

୧ ଯେ ଆତ୍ମବୁଦ୍ଧି ନିଜ ଦେହେ । କରିଣ ଥାନ୍ତି ପ୍ରାଣୀ ମୋହେ ॥ ୧
ତାଙ୍କର ସତ୍ତ୍ୱ, ରଜ, ତମେ । କଳ୍ପିତ ହୋଇ ଥାଇ କ୍ରମେ ॥ ୨
ଶୁଭ-ଅଶୁଭ ବିମିଶ୍ରିତ । କର୍ମସଂଚୟ ଅଦଭୁତ ॥ ୩
ସେ କର୍ମେ ହୋଏ ଉତପନ୍ନ । ନାନା ପ୍ରକାରେ ଦେହମାନ ॥ ୪
ସଂଯୋଗ ବିଯୋଗ ଏ ଦୁଇ । ସେ ଦେହେ ଅବଶ୍ୟ ହୁଅଇ ॥ ୫
ସଂସାର-ଅନୁଭବ କଥା । ସେ ଘେନି ଅନାଦି ସର୍ବଥା ॥ ୬
ସେ ସଂସାରକୁ ଅଟେ ଦ୍ୱାର । ଯେ ଷଡ଼ ଇନ୍ଦ୍ରିୟ-ନିକର ॥ ୭
ତେଣେ ଅବଶଚିତ୍ତ ହୋଇ । ସଂସାର ମାର୍ଗରେ ପଡ଼ଇ ॥ ୮
ଦୁର୍ଗମପଥପ୍ରାଏ ହୋଇ । ସେ ମାର୍ଗ ଦୁସ୍ତର ଅଟଇ ॥ ୯
ବିଷ୍ଣୁମାୟାରେ ବିମୋହିତ । ଏ ଜୀବଲୋକ ଅବିରତ ॥ ୧୦
ବଣିକସମୂହ ଯେସନ । ଅର୍ଥେ ନିବେଶି ନିଜ ମନ ॥ ୧୧
ଦୁର୍ଗମ ମାର୍ଗକୁ ଭ୍ରମଇଁ । ସେ ଲୋକ ତେମନ୍ତ ଅଟଇ ॥ ୧୨
ଯେବଣ ପାପପୁଣ୍ୟ ଦୁଇ । ନିଜ ଦେହରେ ଅର୍ଜି ଥାଇ ॥ ୧୩
ତା' ଅନୁଭବ ଫଳଦ୍ୱାରେ । କରଇ ଆପଣା ଇଚ୍ଛାରେ ॥ ୧୪
ସୁଖନିମିତ୍ତେ ଚେଷ୍ଟା ଯେତେ । କରୁଣ ଥାଇ ଅବିରତେ ॥ ୧୫
ଉପୁଜି ନାନା ବିଘ୍ନମାନ । ସେ ସବୁ ହୁଅଇ ନିଧନ ॥ ୧୬
ହରିସ୍ୱରୂପୀ ଗୁରୁଙ୍କର । ଚରଣପଦ୍ମେ ଯେ ଭ୍ରମର ॥ ୧୭
ସେମାନେ କରନ୍ତି ଆଦର । ଯେବଣ ଭକ୍ତିମାର୍ଗ ସାର ॥ ୧୮
ସେ ଅଟେ ତାପ ବିନାଶନ । ତା' ଲଭି ନ ପାରେ ଏ ଜନ ॥ ୧୯
ଅଭଦ୍ର ଶ୍ମଶାନ-ଆକାର । ସଂସାରବନେ ଭ୍ରମେ ନର ॥ ୨୦
୨ ଯେବଣ ସଂସାରବନରେ । ଏ ଛହେଁ ଇନ୍ଦ୍ରିୟ ନାମରେ ॥ ୨୧
ଜଗତେ ବିଖ୍ୟାତ ହୁଅନ୍ତି । ଚେଷ୍ଟାରେ ଖଣ୍ଟ ଏ ଅଟନ୍ତି ॥ ୨୨
ଧର୍ମକୁ ଉପୈକ[୧] ଅଟଇ । ବହୁତ କଷ୍ଟରେ ମିଳଇ ॥ ୨୩
ପରଲୋକସୁଖକାରଣ । ବିଷ୍ଣୁଆରାଧନଲକ୍ଷଣ ॥ ୨୪
ଏମନ୍ତ ଯେଉଁ ଧର୍ମଧନ । ଅର୍ଜିଣ ଥାଇ ଦୁଃଖେ ଜନ ॥ ୨୫
ସେ ଧନ ହରନ୍ତି ଏମାନେ । କହିବା ଶୁଣ ସାବଧାନେ ॥ ୨୬

---

୧. ଉପୈକ - ମୂଳ ଶବ୍ଦ 'ଔପୟିକ'ର ଅପଭ୍ରଂଶ ।
ଔପୟିକ (ଉପାୟ+ଇକ) = କାରଣ

ଦର୍ଶନ, ସ୍ପର୍ଶନ, ଶ୍ରବଣ । ଯେ ଆସ୍ୱାଦନ, ଅବଘ୍ରାଣ ॥ ୨୭
ନୟନ ଆଦି ପାଞ୍ଚଙ୍କର । ଏ ପାଞ୍ଚ ଅଟଇ ପ୍ରକାର ॥ ୨୮
ନାନା ମନୋରଥ କରଇ । ଅନେକ ବିଷୟ ଧରଇ ॥ ୨୯
ଏ ଦୁଇ କଥା ମାନସର । ବୃତ୍ତି ଅଟଇ ନୃପବର ॥ ୩୦
ଏ ହେତୁ ଗୃହରେ ପ୍ରାଣୀର । ଯେ ଜାତ ଗ୍ରାମ୍ୟ ଭୋଗଭାର ॥ ୩୧
ତେଣେ ହରନ୍ତି ଧର୍ମଧନ । ଯେଣୁ କୁବୁଦ୍ଧି ସେହୁ ଜନ ॥ ୩୨
ଯେଣୁ ଅଜିତେନ୍ଦ୍ରିୟ ଅଟେ । ସେ ଘେନି ପଡ଼ଇ ସଂକଟେ ॥ ୩୩
ପଛେ ଚଳନ୍ତେ ସାର୍ଥମାନ[1] । ଅନବଧାନୀ ଯେଉଁ ଜନ ॥ ୩୪
ତାହାର ଦ୍ରବ୍ୟମାନ ଚୋରେ । ନିଅନ୍ତି ଯେମନ୍ତ ପ୍ରକାରେ ॥ ୩୫
୩ ଦାରା ତନୁଜ ଆଦି ଯେତେ । କୁଟୁମ୍ବରୂପେ ଏ ଜଗତେ ॥ ୩୬
ଚେଷ୍ଟାରେ ବୃକ ସେ ସକଳ । ନିଶ୍ଚୟେ ଅଟନ୍ତି ଶୃଗାଳ ॥ ୩୭
[2]କଦର୍ଯ୍ୟ କୁଟୁମ୍ବୀ ଯେ ଜନ । ଦୁଃଖରେ ସଂଚିଥାଇ ଧନ ॥ ୩୮
ଦେବାକୁ ନ ଥାଇ ତା' ମନ । ଚାହୁଁଣଥାଇ ସେହୁ ଜନ ॥ ୩୯
ତା' ବିତ୍ତ ମେଷପ୍ରାୟ କରି । ବଳେ ନିଅନ୍ତି ଅପହରି ॥ ୪୦
୪ ଯେବଣ କ୍ଷେତ୍ରେ ବୀଜମାନ । ହୋଇଣ ନ ଥାନ୍ତି ଦହନ ॥ ୪୧
ସେ ଭୂମି ଅତି ଯତ୍ନ କରି । ଚଷିଥିଲେହେଁ ଅନୁସରି ॥ ୪୨
ବୁଣିମାକାଳେ ତହିଁ ପୁଣ । ହୁଅଇ ଗୁଳ୍ମ, ଲତା, ତୃଣ ॥ ୪୩
ସେ ଘେନି ଗହ୍ୱର ହୁଅଇ । ସେ ରୂପେ ଗୃହସ୍ଥାଶ୍ରମ ହିଁ ॥ ୪୪
ଏ ନାନା କର୍ମଙ୍କର ସ୍ଥାନ । ଯହିଁ ଉପୁଜେ କର୍ମମାନ ॥ ୪୫
ଅପକ୍ୱ କାମ୍ୟ କର୍ମଙ୍କର । ପେଟିକା ଯେଣୁ ଏ ମନ୍ଦିର ॥ ୪୬
ଯେସନେ ସରିଲେ କର୍ପୂର । କର୍ପୂର-ଫରୁଆ-ମଧ୍ୟର ॥ ୪୭
ଆମୋଦ କେବେହେଁ ନ ସରେ । ଏ ଗୃହାଶ୍ରମେ ସେ ପ୍ରକାରେ ॥ ୪୮
ଅର୍ଥବାସନା କ୍ଷୀଣ ନୋହେ । କର୍ମସଂଚୟ ତେଣୁ ରହେ ॥ ୪୯
୫ ଡାଆଁଶ, ମଶାର ସମାନ । ଯେ ବା ନିନ୍ଦିତ କ୍ଷୁଦ୍ର ଜନ ॥ ୫୦
ଶଲଭ, ଶକୁନ୍ତ, ତସ୍କର । ମୂଷିକ ଆଦି ଯେ ଆବର ॥ ୫୧
ଦ୍ରବ୍ୟକୁ ହରନ୍ତି ସେମାନେ । ବୁଲନ୍ତେ ମହା ଘୋରବନେ ॥ ୫୨
ଅବିଦ୍ୟା-କାମ୍ୟ କର୍ମେ ଚିତ୍ତ । ହୋଇଣ ଥାଇ ଯେ ରଂଜିତ ॥ ୫୩
ତେଣୁ ଜଗତ ମଣେ ସତ୍ୟ । ବାସ୍ତବ ଅଟେ ଏ ଅନିତ୍ୟ ॥ ୫୪
ଗନ୍ଧର୍ବପୁରପ୍ରାଏ ହୋଇ । ଅନୁପପନ୍ନ ଏ ଅଟଇ ॥ ୫୫
ଏହାକୁ ଥାଇ ସତ୍ୟ ମଣି । ଯେଣୁ ସେ ମିଥ୍ୟାଦୃଷ୍ଟି ପ୍ରାଣୀ ॥ ୫୬
୬ ଭୋଜନ-ପାନ-ନାରୀରସ । ଏ ସୁଖେ ହୋଇଣ ଲାଳସ ॥ ୫୭
ଯେ ମୃଗତୃଷ୍ଣାପ୍ରାଏ ଧନ । ତାକୁ ଖୋଜଇ ଅନୁଦିନ ॥ ୫୮

୧. ସ୍ଥାନମାନ । ୨. କଦର୍ଯ୍ୟ = ଲୋଭୀ ।

୭　ସେ ପୁଣି କହୁଣିସି ସ୍ଥାନେ । ରଜୋଗୁଣକୁ ଘେନି ମନେ ॥ ୫୯
ଯେ ସର୍ବ ଦୋଷଙ୍କ ମନ୍ଦିର । ବିଷ୍ଠା ଅଟଇ ଯେ ଅଗ୍ନିର ॥ ୬୦
ଏମନ୍ତ ସୁବର୍ଣ୍ଣ ଅର୍ଜନ । ବାଞ୍ଛା କରଇ ନିଜ ମନ ॥ ୬୧
ଅନଳପ୍ରାଏ ଦୀପ୍ତ ହୋଇ । ପିଶାଚ[୧] ବନେ ଯାଉ ଥାଇ ॥ ୬୨
ତାହାକୁ ଶୀତାତୁର ପ୍ରାଣୀ । ଯେସନେ ଅଗ୍ନିପ୍ରାଏ ମଣି ॥ ୬୩
ତାକୁ ଗୋଡ଼ାଏ ଅନୁସରି । କାର୍ଯ୍ୟ ନ ପାଇ ଯାଏ ମରି ॥ ୬୪
୮　କେହୁଣି ସମୟେ ସେ ପୁଣ । ଗୃହ, ଅନ୍ନ, ଜଳ, ଦ୍ରବିଣ ॥ ୬୫
ଇତ୍ୟାଦି ନାନା ଦ୍ରବ୍ୟମାନ । ଅର୍ଜନ ଅର୍ଥେ ଦେଇ ମନ ॥ ୬୬
ଏ ଭବାରଣ୍ୟେ ଏଣେ ତେଣେ । ଧାଉଁ ଥାଆନ୍ତି ଅନୁକ୍ଷଣେ ॥ ୬୭
୯　ବାତମଣ୍ଡଳୀର ସମାନ । ଅଟଇ ଯେ ପ୍ରମଦା-ଜନ ॥ ୬୮
ସେ ପୁଣି କେହୁଣିସି ସ୍ଥାନେ । କୋଡ଼େ ବସାନ୍ତେ ତୋଷମନେ ॥ ୬୯
ସେ କାଳେ ଆପଣାର ଚିତ୍ତ । ଯେ ଅନୁରାଗ ହୋଏ ଜାତ ॥ ୭୦
ତେଣେ ପୂରିତ ହୋଏ ମନ । ମୁଦ୍ରିତ ହୁଅଇ ନୟନ ॥ ୭୧
ରଜନୀସମୟରେ ଭୂତ । ପ୍ରାୟେକ ଦିଶଇ ସାକ୍ଷାତ ॥ ୭୨
ପ୍ରମତ୍ତ ହୋଇ ଯେଉଁ ଜନ । ମର୍ଯ୍ୟାଦା କରଇ ଲଙ୍ଘନ ॥ ୭୩
ଯେ ତା’ ଦେଖନ୍ତି ସାକ୍ଷୀ ହୋଇ । ଦିଗମାନଙ୍କେ ରହିଥାଇ ॥ ୭୪
ସେ ଦେବତାଙ୍କୁ ନ ଗଣଇଁ । ଯେଣୁ ସେ ଅଜ୍ଞାନ ଅଟଇ ॥ ୭୫
୧୦　ବିଷୟଙ୍କର ମିଥ୍ୟାଗତି । ଜାଣିଥାଇ ନିଜ ମତି ॥ ୭୬
ଅଭିନିବେଶ କରେ ଦେହେ । ଜ୍ଞାନ ହାରଇ ତେଣେ ମୋହେ ॥ ୭୭
ମୃଗତୃଷ୍ଣିକାଜଳପ୍ରାଏ । ଅଟନ୍ତି ଯେବଣ ବିଷୟେ ॥ ୭୮
ସେହିମାନଙ୍କୁ ପୁଣ ଧାଏଁ । ସେ ବନେ କେହୁଣିସିଠାଏଁ ॥ ୭୯
୧୧　ଭ୍ରମନ୍ତେ କେହୁଣିସିଠାରେ । ପୁଣି ସେ ଭବଅରଣ୍ୟରେ ॥ ୮୦
ଯେହ୍ନେ ଉଲୂକଝିଙ୍କାରୀର । ଶବଦ ଅଟଇ ନିଷ୍ଠୁର ॥ ୮୧
ସେହି ପ୍ରକାରେ ରିପୁଜନେ । ଅଥବା ରାଜଭୃତ୍ୟମାନେ ॥ ୮୨
ଅତ୍ୟନ୍ତ ନିଷ୍ଠୁର ଆଟୋପେ । ପରୋକ୍ଷେ ଅଥବା ସମୀପେ ॥ ୮୩
ଭର୍ତ୍ସନା କରି ଯେଉଁ ବାଣୀ । ବୋଲନ୍ତି ସେ ବାକ୍ୟକୁ ଶୁଣି ॥ ୮୪
କର୍ଣ୍ଣ, ହୃଦୟ ବେନି ତାର । ବ୍ୟଥିତ ହୋଏ ନିରନ୍ତର ॥ ୮୫
୧୨　ତାହାର ପୂର୍ବ ପୁଣ୍ୟମାନେ । ଦୁଗ୍ଧ[୨] ହୁଅନ୍ତି ଯେଉଁ ଦିନେ ॥ ୮୬
ଯେ ବିଷକେନ୍ଦୁର ସମାନ । ଅପୁଣ୍ୟ ଦ୍ରୁମଲତାମାନ ॥ ୮୭
ଯେ ବିଷକୂପର ସମାନ । ଅଟନ୍ତି ପାପବନ୍ତ ଜନ ॥ ୮୮

---

୧. ପିଶାଚ = ଉଲୂକ ପିଶାଚ ।　୨. ଦୁଗ୍ଧ = ଉପଭୁକ୍ତ (ସ୍ୱାମୀ); ଦଗ୍ଧ (ପାଠାନ୍ତର) ।

ଉଭୟ ଲୋକେ ତାଙ୍କ ଧନ । ନୁହଇ କିଛି ପ୍ରୟୋଜନ ॥ ୮୯
ଜୀଇ ଥାଆନ୍ତେ ଯେଉଁମାନେ । ମଲାର ପ୍ରାଏ ଏ ଭୁବନେ ॥ ୯୦
ତାହାଙ୍କୁ ଭଜଇ ଯେ ସ୍ୱୟେଂ । ଅଟେ ଜୀଅନ୍ତା ଶବ ପ୍ରାଏ ॥ ୯୧
୧୩ ଅସାଧୁସଙ୍ଗୁଁ ତାର ମତି । ବଞ୍ଚିତ ହୋଏ ଯେବେ ଅତି ॥ ୯୨
ପାଷଣ୍ଡ ଲୋକଠାକୁ ଯାଇ । ମାଗଇ ସବିନୟ ହୋଇ ॥ ୯୩
ସଲିଲ-ନ ଥିଲା ନଦୀରେ । ଗୋଡ଼ ଖସିଲେ ସଂଭ୍ରମରେ ॥ ୯୪
ଯେସନେ ମୁଣ୍ଡ ଫାଟି ଯାଏ । ବେଦନା ନିରନ୍ତର ପାଏ ॥ ୯୫
ସେ ରୂପେ ଇହ-ପର ଲୋକେ । ଦୁଃଖଦ ଯେ ପାଷଣ୍ଡ ଲୋକେ ॥ ୯୬
୧୪ ବାଧନ୍ତେ କ୍ଷୁଧା, ତୃଷା ଦୁଇ । ଯେବେ ଅନ୍ନ ହିଁ ନ ମିଳଇ ॥ ୯୭
ପିତାର ପୁତ୍ରର ବା ଯହିଁ । ତୃଣମାତ୍ର ହିଁ ଅଛି ରହି ॥ ୯୮
ଭକ୍ଷଣ କରଇ ସେମାନ । ଯେଣୁ ଅଟଇ ଅକିଂଚନ ॥ ୯୯
୧୫ ସେ ପୁଣି କହୁଣିସି ଠାଇ । ଭାର୍ଯ୍ୟାସହିତ[୧] ଗୃହ ପାଇ ॥ ୧୦୦
ଶୋକଅନଳେ ଦହି ହୋଏ । ଅତି ହିଁ ଅନୁତାପ ପାଏ ॥ ୧୦୧
ଯେଣୁ ନ ଥାନ୍ତି ସେ ସଦନେ । ସୁଖଦାୟକ ଅର୍ଥମାନେ ॥ ୧୦୨
ପ୍ରାନ୍ତ ସମୟ ସେ ଗୃହର । ଯେଣୁ ନୁହଇ ସୁଖକର ॥ ୧୦୩
୧୬ କାଳବଶରୁ କେଉଁ ସ୍ଥାନେ । କ୍ରୋଧ କରନ୍ତି ରାଜାମାନେ ॥ ୧୦୪
ରାକ୍ଷସ ପ୍ରାୟ ସେ ଅଟନ୍ତି । ପ୍ରିୟ ବିତ୍ତକୁ ଘେନି ଯାନ୍ତି ॥ ୧୦୫
ସେ ଘେନି ଅହରଷ ହୋଇ । ଶବପ୍ରାଏ ସେ ହୋଇ ଥାଇ ॥ ୧୦୬
୧୭ କେବଣ ସ୍ଥାନେ ସେ ବନରେ । ମିଳନ୍ତି ମନୋରଥଦ୍ୱାରେ ॥ ୧୦୭
ପିତା, ପିତାମହାଦି ଜନେ । ଅନିତ୍ୟ ଅଟନ୍ତି ସେମାନେ ॥ ୧୦୮
ତାହାଙ୍କୁ ମଣେ ସତ୍ୟପ୍ରାଏ । ସ୍ୱପ୍ନସୁଖକୁ କ୍ଷଣେ ପାଏ ॥ ୧୦୯
୧୮ ଗୃହ ଆଶ୍ରମ-ବିଷୟରେ । ଯେ କର୍ମ ଲେଖିଛି ବେଦରେ ॥ ୧୧୦
ସେ କର୍ମମାନଙ୍କର ଭାର । ଅଟଇ ପର୍ବତ ଆକାର ॥ ୧୧୧
ତାର ଅନ୍ତକୁ ଯିବା ପାଇଁ । ମନ କରନ୍ତେ କେଉଁଠାଇଁ ॥ ୧୧୨
ଲୋକମାର୍ଗରୁ ଯେ ନିର୍ଗତ । ଲଭିଣ ସେ ବିପତ୍ତି ଚିତ୍ତ ॥ ୧୧୩
ଯହିଁ ଝିଙ୍କର[୨] କଣ୍ଟାମାନେ । ପଡ଼ିଣ ଥାନ୍ତି ସ୍ଥାନେ ସ୍ଥାନେ ॥ ୧୧୪
ସେ ସ୍ଥାନେ ମିଳିଲା ପରାଏ । ଅତି ବେଦନାକୁ ସେ ପାଏ ॥ ୧୧୫
୧୯ ଦୁଃସହ ହୋଇ ଗର୍ଭଗତେ । ଯେ ଅଗ୍ନି ଜଳେ ଅବିରତେ ॥ ୧୧୬
ସକଳ ବଳ ସେ ହରଇ । ସେ ଘେନି ପୁଣ କେଉଁଠାଇଁ ॥ ୧୧୭
କ୍ରୋଧ କରଇ କୁଟୁମ୍ବକୁ । ପୋଷି ନ ପାରେ ଯେଣୁ ତାକୁ ॥ ୧୧୮

---

୧. ଦାବସମାନ (ପାଠାନ୍ତର) । ମୂଳ ପାଠ = ଦାରବଦ୍ଧ । ଦାବବଦ୍ଧ ଇତି ବା ପାଠଃ ।
୨. ଝିଙ୍କର = ଖପରା; ଭଙ୍ଗାହାଣ୍ଡିଖଣ୍ଡ ।

୨୦ ନିଦ୍ରା ଅଜଗର ଆସିଣ । ବଳେ ଧରନ୍ତେ ତାକୁ ପୁଣ ॥ ୧୧୯
ବୁଡ଼ଇ ମହା ଅନ୍ଧକାରେ । ଶୋଇଲାପ୍ରାଏ ବନଘୋରେ ॥ ୧୨୦
କିଛି ହିଁ ଆଉ ନ ଜାଣଇଁ । ଶବପ୍ରାଏକ ପଡ଼ିଥାଇ ॥ ୧୨୧
୨୧ ଦୁର୍ଜନସର୍ପେ ବଳିୟାର । ଭାଙ୍ଗନ୍ତେ ଗର୍ବଦନ୍ତ ତାର ॥ ୧୨୨
ନ ଲଭେ ନିଦ୍ରା-ଅବକାଶ । ବ୍ୟଥିତ ହୋଏ ହୃଦଦେଶ ॥ ୧୨୩
ଯେ ଅବା ଥାଇ ତାର ଜ୍ଞାନ । ସେ ସର୍ବ ହୁଅଇ ନିଧନ ॥ ୧୨୪
ଅନ୍ଧ କୂପରେ ଅନ୍ଧପ୍ରାଏ । ପଡ଼ଇ ପୁଣ କେଉଁଠାଏ ॥ ୧୨୫
୨୨ ସେ କାମମଧୁଲେଶମାନ । ଖୋଜନ୍ତେ ପୁଣ କେଉଁସ୍ଥାନ ॥ ୧୨୬
ପର ବନିତା, ପର ବିତ୍ତ । ଏଥେ ନିବେଶେ ଯେବେ ଚିତ୍ତ ॥ ୧୨୭
ଏମନ୍ତ ଦୋଷ ତାର ଜାଣି । ନୃପ ପକାଇ ତାକୁ ହାଣି ॥ ୧୨୮
ଯାହାର ସେ ବନିତା, ଧନ । ସେ ଅବା କରଇ ନିଧନ ॥ ୧୨୯
ଦୁସ୍ତର ନରକମଧ୍ୟରେ । ପଡ଼ଇ ଯାଇଁ ସେ ପାପରେ ॥ ୧୩୦
୨୩ ସେ ଘେନି ପ୍ରବୃତ୍ତିମାର୍ଗରେ । କର୍ମକୁ ଉଭୟ ପ୍ରକାରେ ॥ ୧୩୧
ସଂସାର ଜନ୍ମଭୂମିଭାବେ । ସାଧୁ କହନ୍ତି ଅନୁଭବେ ॥ ୧୩୨
୨୪ ଏ ରୂପେ ପର ଦାର, ଧନ । ହରନ୍ତେ ଲଭଇ ବନ୍ଧନ ॥ ୧୩୩
ଯେବେ ତହିଁରୁ ମୁକ୍ତ ହୋଇ । ତାଠାରୁ ଦେବଦତ୍ତ[1] ନେଇ ॥ ୧୩୪
ସେ ଦେବଦତ୍ତଠାରୁ ଧନ । ହରଇ ବିଷ୍ଣୁମିତ୍ର[2] ଆନ ॥ ୧୩୫
ଏ ରୂପେ ନିୟତ ହୋଇଣ । ବ୍ୟବସ୍ଥା ନାହିଁ ଏଥି ପୁଣ ॥ ୧୩୬
୨୫ ଶୀତ ବାତାଦି ଯେ ଅନେକ । ଦୈବ, ଭୌତିକ ଆଧ୍ୟାତ୍ମିକ ॥ ୧୩୭
ସେ ଦଶାମାନ ନିବର୍ତ୍ତାଇ । ନ ପାରି ପୁଣ କେଉଁ ଠାଇଁ ॥ ୧୩୮
ଦୁରନ୍ତ ଚିନ୍ତାକୁ ଲଭଇ । ବିଷାଦ ପାଇଣ ରହଇ ॥ ୧୩୯
୨୬ କେହୁଣି ସ୍ଥାନେ ପରସ୍ପର । କରନ୍ତେ ଧନବ୍ୟବହାର ॥ ୧୪୦
ବୋଡ଼ିଏ[3]ଅବା ଯେତେ କେତେ । ହରଇ ପର-ଅସମ୍ମତେ ॥ ୧୪୧
ତେତେକେ ପ୍ରୀତିଭଙ୍ଗ ହୋଇ । ପରର ଠାରେ ଦ୍ୱେଷ ପାଇ ॥ ୧୪୨
୨୭ ଏ ଭବମାର୍ଗେ ଏ ପ୍ରକାରେ । ଶଠଭାବରୁ ବିତ୍ତଠାରେ ॥ ୧୪୩
ଏତେକ ଉପସର୍ଗମାନ । ହୁଅନ୍ତି ଏ ବାହାରେ ଆନ ॥ ୧୪୪
ସୁଖ ଦୁଃଖ ରାଗ ବିଦ୍ୱେଷ । ଭୟ ଅଭିମାନ ହରଷ ॥ ୧୪୫
ମାତ୍ସର୍ଯ୍ୟ, ଈର୍ଷ୍ୟା ଅବମାନ । କ୍ଷୁଧା ପିପାସା ବ୍ୟାଧିମାନ ॥ ୧୪୬
ଉନ୍ମାଦ ଶୋକ ଲୋଭ ପୁଣ । ମୋହ ଜନ୍ମ ଜରା ମରଣ ॥ ୧୪୭
[4]ଏ ଆଦି ନାନା ଦୁଃଖଗଣେ । ଜାତ ହୁଅନ୍ତି କ୍ଷଣେ କ୍ଷଣେ ॥ ୧୪୮

---

୧. ଓ ୨. ଯେ କୌଣସି ଲୋକ ଉଦ୍ଦେଶ୍ୟରେ ଏହି ଦୁଇଟି ନାମ ବ୍ୟବହାର କରାହୋଇଛି ।
୩. ବୋଡ଼ି - ମୂଳ ଶବ୍ଦ "କାକିଣିକା" ।
୪. ବ୍ୟାଦ୍ୟକ୍ରମୈଃ ପୁନରୁକ୍ତୈଶ୍ଚ ନାନାପାଠୈରତଃ ପରମ୍ ।
ଦୁର୍ଗମୋଽପି ଭବାଧ୍ୱାୟଂ ସଂପ୍ରଦାୟେନ ତୀର୍ଯ୍ୟତେ ॥ (ସ୍ୱାମୀ)

୨୮ ବିଷ୍ଣୁର ମାୟା ଏ ସଂସାରେ । ବିଦିତ ବନିତାରୂପରେ ।। ୧୪୯
ସେ ଯେବେ କରେ ଆଲିଙ୍ଗନ । ହଜାଇ ବିବେକବିଜ୍ଞାନ ।। ୧୫୦
ତା' ସଙ୍ଗେ ବିହରିବା ପାଇଁ । ଗୃହାରମ୍ଭକୁ ବିଚାରଇ ।। ୧୫୧
ତେଣୁ ଆକୁଳଚିତ୍ତ ହୋଏ । ତା' ପୁତ୍ର, ଦୁହିତା ଯେ ଥାଏ ।। ୧୫୨
ତାଙ୍କର କୋମଳ ବଚନ । ଚାହାଁଣି ନାନା ଚେଷ୍ଟାମାନ ।। ୧୫୩
ତେଣେ ସେ ବଶଚିତ୍ତ ହୋଇ । ଅଜିତ-ଆତ୍ମା ହିଁ ଅଟଇ ।। ୧୫୪
ଆତ୍ମାକୁ ଦୁସ୍ତର ନରକେ । ପକାଏ ତେଣୁ ଅବିବେକେ ।। ୧୫୫
୨୯ ଅତ୍ୟନ୍ତ ସୂକ୍ଷ୍ମ କାଳ ଯେହି । ତାହାକୁ ପରମାଣୁ କହି ।। ୧୫୬
ପରମାଣୁକୁ ଆଦି ହୋଇ । ପରାର୍ଦ୍ଧ ପର୍ଯ୍ୟନ୍ତ ଯେ ଥାଇ ।। ୧୫୭
ସେ କାଳଚକ୍ରଟି ବିଷ୍ଣୁର । ବେଗେ ବୁଲନ୍ତେ ନିରନ୍ତର ।। ୧୫୮
ବ୍ରହ୍ମାଦି ତୃଣପରିଯନ୍ତେ । ଯେତେକ ଜୀବ ଏ ଜଗତେ ।। ୧୫୯
ତାହାକୁ ପ୍ରତିକାର କରି । ନ ପାରନ୍ତି ଏ ଦେହ ଧରି ।। ୧୬୦
ସେ କାଳ ସକଳ ହରଇ । ଏମନ୍ତ ଶୁଣି ତ୍ରସ୍ତ ହୋଇ ।। ୧୬୧
ସେ କାଳଚକ୍ର ବଳିଆର । ଅଟଇ ଆୟୁଧ ଯାହାର ।। ୧୬୨
ସେ ଯଜ୍ଞପୁରୁଷ ଈଶ୍ୱର । ତାହାଙ୍କୁ କରି ଅନାଦର ।। ୧୬୩
ଯେ କଙ୍କ, ବକ, ଗୃଧ୍ର ପ୍ରାୟ । ଅଟନ୍ତି ପାଷଣ୍ଡ ନିଚୟ ।। ୧୬୪
ତାଙ୍କ ଆଶ୍ରୟବଟପ୍ରାୟ । ପାଷଣ୍ଡଦେବତାନିଚୟ ।। ୧୬୫
ମହତଜନଙ୍କ ଆଚାରେ । ଛାଡ଼ି ଅଛନ୍ତି ଯାଙ୍କୁ ଦୂରେ ।। ୧୬୬
ତାଙ୍କୁ ପାଷଣ୍ଡ ଆଗମରେ । ଭଜିଣ ଇଷ୍ଟବୁଦ୍ଧି କରେ ।। ୧୬୭
୩୦ ଆତ୍ମବଞ୍ଚିତ ଏ ସଂସାରେ । ଅଟନ୍ତି ସେ ପାଷଣ୍ଡୀ ନରେ ।। ୧୬୮
ଯେବେ ସେ ପାଷଣ୍ଡୀଙ୍କ ଠାଏ । ବଞ୍ଚନା ପାଇ ଅତିଶୟେ ।। ୧୬୯
ବ୍ରହ୍ମକୁଳକୁ ଅନୁଗତ । ହୋଇ ରହନ୍ତେ ଅବିରତ ।। ୧୭୦
ସେ ବିପ୍ରମାନଙ୍କର ଧର୍ମ । ବ୍ରତାଦି ଶ୍ରୌତ ସ୍ମାର୍ତ୍ତ କର୍ମ ।। ୧୭୧
ସେ କର୍ମମାନଙ୍କ ବିଧାନ । ଯଜ୍ଞପୁରୁଷ-ଆରାଧନ ।। ୧୭୨
ସେ କଥା ନ ରୋଚଇ ଯେଣୁ । ଶୂଦ୍ରର ପ୍ରାଏ ହୋଏ ତେଣୁ ।। ୧୭୩
ବେଦ-ଆଚାରେ ଅଧିକାର । ନ ଥିଲା ନ୍ୟାୟେ ସେ ଶୂଦ୍ରର ।। ୧୭୪
ବାନରଜାତିପ୍ରାଏ ହୋଇ । ଭାର୍ଯ୍ୟାସଙ୍ଗତେ ଗୃହେ ଥାଇ ।। ୧୭୫
କେବଳ କୁଟୁମ୍ବପୋଷଣ । ଅଗ୍ନିହୋତ୍ରାଦି ନାହିଁ ପୁଣ ।। ୧୭୬
୩୧ ତହିଁ ଅପ୍ରତିବନ୍ଧ ହୋଇ । ନିଜ ଇଚ୍ଛାରେ ବିହରଇ ।। ୧୭୭
ଅତିକୃପଣମତି ନର । ମୁଖ ଚାହାଁନ୍ତେ ପରସ୍ପର ।। ୧୭୮
ସୁରତ କର୍ମେ ବଶ ହୋଇ । ମରିବା କଥା ପାଶୋରଇ ।। ୧୭୯
୩୨ ଦେହଅର୍ଥରେ ପ୍ରୟୋଜନ । ଦ୍ରୁମର ପ୍ରାଏ ଗୃହମାନ ।। ୧୮୦
ବାନରପ୍ରାଏକ ତହିଁରେ । ବିହାର କରନ୍ତେ ନିର୍ଭରେ ।। ୧୮୧

| | | | | |
|---|---|---|---|---|
| | ସୁତ-ଦାରରେ ବଶ ହୋଇ | ସୁରତସୁଖେ କାଳ ନେଇ | ॥ | ୧୮୨ |
| ୩୩ | ଏ ରୂପେ ସଂସାରମାର୍ଗରେ | ସୁଖ ଦୁଃଖାଦିଙ୍କ ସ୍ୱୀକାରେ | ॥ | ୧୮୩ |
| | ଗିରିକନ୍ଦରର ସମାନ | ଅଛନ୍ତି ରୋଗଆଦି-ମାନ | ॥ | ୧୮୪ |
| | ତହିଁ ପଡ଼ଇ ପୁଣ ଯାଇ | ମୃତ୍ୟୁ ସକାଶୁଁ ଭୟ ପାଇ | ॥ | ୧୮୫ |
| ୩୪ | ଶୀତ ବାତକୁ ଆଦି ଯେତେ | ଦୈବିକ ଆଦି ଏ ଜଗତେ | ॥ | ୧୮୬ |
| | ସେ ତାପତ୍ରୟ ନିବର୍ତ୍ତାଇ | ନ ପାରି ଅତି ଚିନ୍ତା ପାଇ | ॥ | ୧୮୭ |
| | ବିଷାଦଚିତ୍ତ ହୋଇଥାଏ | ସେବନେ କେହୁଣିସିଠାଏ | ॥ | ୧୮୮ |
| ୩୫ | ଏକ ଆରକେ ବ୍ୟବହାର | କରନ୍ତେ କେହୁଣିସିଠାର | ॥ | ୧୮୯ |
| | ବିତ୍ତଶାଠ୍ୟରେ କିଛି ଧନ | ଅର୍ଜଇ ପୁଣ ଯେବେ ଜନ | ॥ | ୧୯୦ |
| | ପରସଙ୍ଗତେ ଦ୍ୱେଷ ପାଇ | ସେ କଥା ଦୁଃଖଦ ଅଟଇ | ॥ | ୧୯୧ |
| ୩୬ | ସେ ପୁଣି କେହୁଣିସି ସ୍ଥାନେ | ନାଶ ହୁଅନ୍ତେ ଧନମାନେ | ॥ | ୧୯୨ |
| | ଶୟନ, ଆସନ, ଭୋଜନ | ଏ ଆଦି ଭୋଗେ ହୋଇ ହୀନ | ॥ | ୧୯୩ |
| | ଯେବଣ, ମନୋରଥ କରେ | ସେ କଥା ସଂପାଦି ନ ପାରେ | ॥ | ୧୯୪ |
| | ଲଭିବା ନିମିତ୍ତେ ସେ ବିତ୍ତ | ଦୃଢ଼ କରିଣ ନିଜ ଚିତ୍ତ | ॥ | ୧୯୫ |
| | ଅବମାନନା ଆଦିମାନ | ଦୁର୍ଜନଠାରୁ ଲଭେ ଜନ | ॥ | ୧୯୬ |
| ୩୭ | ଏ ରୂପେ ବିତ୍ତେ ଦେଇ ଚିତ୍ତ | ପରର ସଙ୍ଗେ ଅବିରତ | ॥ | ୧୯୭ |
| | ବଇର-ଭାବକୁ ବଢ଼ାଇ | ପୂର୍ବବାସନାରେ ଯା' ପାଇ | ॥ | ୧୯୮ |
| | ସେ ବିତ୍ତ ଲଭି କରି ପୁଣି | ଦଇବବଶେ ଛାଡ଼େ ପ୍ରାଣୀ | ॥ | ୧୯୯ |
| ୩୮ } | ଏ ଭବମାର୍ଗେ ନାନା କ୍ଲେଶ | ଉପଦ୍ରବେ ହୋଇ ଅବଶ | ॥ | ୨୦୦ |
| ୩୯ } | ଯେ ଲୋକ ବିପତ୍ତି ଲଭଇ | ଯେ ଅବା ପ୍ରାଣକୁ ଛାଡ଼ଇ | ॥ | ୨୦୧ |
| | ସେ ଲୋକମାନଙ୍କୁ ଦୂରରେ | ଛାଡ଼ି କରିଣ ତଦନ୍ତରେ | ॥ | ୨୦୨ |
| | ଜନମୁଁଥାନ୍ତି ଯେଉଁମାନେ | ତାହାଙ୍କୁ ଘେନି ସଂନିଧାନେ | ॥ | ୨୦୩ |
| | ଶୋକ କରଇ, ମୋହ ଯାଇ | ଉଚ୍ଚରେ ଶବଦ କରଇ | ॥ | ୨୦୪ |
| | ରୋଦନ କରେ, ହରଷିତ | ହୋଇଣ ଗାଉଥାଇ ଗୀତ | ॥ | ୨୦୫ |
| | ସାଧୁରୁ ଯେବେ ହୋଏ ଆନ | ସଂସାରେ ଲଭଇ ବନ୍ଧନ | ॥ | ୨୦୬ |
| | ଏ ନରଲୋକସାର୍ଥ ପୁଣ | ଯହିଁରୁ ହୋଇଛି ନିର୍ମାଣ | ॥ | ୨୦୭ |
| | ଯାକୁ ସଂସାରମାର୍ଗପାର | ବୋଲି କହନ୍ତି ଜ୍ଞାନୀ ନର | ॥ | ୨୦୮ |
| | ତାକୁ ନ କରେ ଅନୁବୃତ୍ତି | ସେ ଲୋକ ଅତି ମୂଢ଼ମତି | ॥ | ୨୦୯ |
| | ଯେ ଅଟେ ଯୋଗାନୁଶାସନ | ସକଳ ଛାଡ଼ି ମୁନିଜନ | ॥ | ୨୧୦ |
| | [1]ଶାନ୍ତ ସଂଯତମନା ହୋଇ | ଯାହାକୁ ଶୁଭେ ଛନ୍ତି ପାଇ | ॥ | ୨୧୧ |
| ୪୦ | ଯେବଣ ରାଜରଷିମାନେ | ଯାଜ୍ଞିକ ଅଟନ୍ତି ଭୁବନେ | ॥ | ୨୧୨ |

୧. ଶାନ୍ତି ସଂଯୁତମନା ହୋଇ (ପାଠାନ୍ତର) ।

ଦିଗଦନ୍ତୀଙ୍କି ଭୁଜବଳେ । ଜିଣିପାରନ୍ତି ମହୀତଳେ ॥ ୨୧୩
ଏମନ୍ତ ହେଲେହେଁ କେବଳ । ଶୁଅନ୍ତି ରଣେ ଭୂମିତଳ ॥ ୨୧୪
ମୋହର ବୋଲି ଏ ଭୂମିରେ । ବଇରଭାବେ ପରସ୍ପରେ ॥ ୨୧୫
ଯେବଣ ଭୂମିକୁ ଛାଡ଼ିଣ । କାଳରେ ଲଭିଲେ ମରଣ ॥ ୨୧୬
୪୧ ଯେ କର୍ମ ଲତାପ୍ରାଏ ହୋଇ । ତହିଁରେ ବନ୍ଧା ହୋଇଥାଇ ॥ ୨୧୭
କଷ୍ଟେ କଷ୍ଟେ ସେ ବିପତ୍ତିରୁ । ମୁକତ ହୋଇ ନରକରୁ ॥ ୨୧୮
ପୁଣି ହିଁ ଏହି ପରକାରେ । ମିଳିଣ ସଂସାରମାର୍ଗରେ ॥ ୨୧୯
ମିଳଇ ନରଲୋକସାର୍ଥେ । ଏହି ପ୍ରକାରେ ସ୍ୱର୍ଗପଥେ ॥ ୨୨୦
ଯେବେ ସେ କରଇ ଗମନ । ତହିଁ ଲଭଇ ସ୍ଥାନମାନ ॥ ୨୨୧
ସେ ଭରତର କର୍ମ ଜନ । ଏ ରୂପେ କରନ୍ତି ଗାୟନ ॥ ୨୨୨
୪୨ ମହାତ୍ମା ରାଜରଷି ଖ୍ୟାତ । ଋଷଭସୁତ ଯେ ଭରତ ॥ ୨୨୩
ତାଙ୍କ ମାର୍ଗକୁ ନୃପ ଆନ । ମନେହେଁ ନ କରେ ଗମନ ॥ ୨୨୪
ଗରୁଡ଼ମାର୍ଗକୁ ଯେସନ । ମକ୍ଷିକା ନୁହଇ ଭାଜନ ॥ ୨୨୫
୪୩ ମଞ୍ଜୁଳ ଗୃହିଣୀ, ନନ୍ଦନ । ରାଜ୍ୟସହିତେ ମିତ୍ରଜନ ॥ ୨୨୬
ଏମାନ ପରିତ୍ୟାଗ କରି । ନ ପାରେ କେହୁ ଦେହ ଧରି ॥ ୨୨୭
ଯୁବାବୟସେ ଯେ ଭରତ । ଉତ୍ତମଶ୍ଲୋକେ ଦେଇ ଚିତ୍ତ ॥ ୨୨୮
ଏମାନ କଲା ଅତି ଦୂର । ମଳକୁ ତେଜେ ଯେହ୍ନେ ନର ॥ ୨୨୯
୪୪ ଅବନି, ସୁତ, ନିଜଜନ । ଭାର୍ଯ୍ୟାସହିତେ ବିତ୍ତମାନ ॥ ୨୩୦
ସଦୟ ଅବଲୋକ ଯାର । ବାଞ୍ଛନ୍ତି ଯାହା ସୁରବର ॥ ୨୩୧
ଏମନ୍ତ ସଂପତ୍ତିସହିତେ । ଯେ ନୃପ ନ ବାଞ୍ଛିଲା ଚିତ୍ତେ ॥ ୨୩୨
ସେ କଥା ଅଟଇ ଉଚିତ । କୃଷ୍ଣସେବାରେ ଯାର ଚିତ୍ତ ॥ ୨୩୩
ଅନୁରାଗକୁ ଲଭିଥାଇ । ମୋକ୍ଷ ହିଁ ତୁଚ୍ଛ ସେ କରଇ ॥ ୨୩୪
୪୫ ଯେ ଯଜ୍ଞରୂପୀ, ଧର୍ମପତି । ନିପୁଣ କର୍ମମାର୍ଗେ ଅତି ॥ ୨୩୫
ସାଂଖ୍ୟସ୍ୱରୂପ ଜ୍ଞାନସାର । ପ୍ରଧାନ ଫଳ ଅଟେ ଯାର ॥ ୨୩୬
ଯେ ନାରାୟଣ, ପ୍ରକୃତିର । ଈଶ୍ୱର ତାଙ୍କୁ ନମସ୍କାର ॥ ୨୩୭
ଏମନ୍ତ ବଚନ ଉଚ୍ଚରେ । ଯେ ପୂର୍ବେ ମୃଗକଳେବରେ ॥ ୨୩୮
ପ୍ରାଣ ଛାଡ଼ିବା ସମୟରେ । ବୋଇଲା ସୁବ୍ୟକ୍ତ ଅକ୍ଷରେ ॥ ୨୩୯
୪୬ ଯା’ ଶୁଦ୍ଧ ଗୁଣକର୍ମମାନ । ବୈଷ୍ଣବେ କରନ୍ତି ପୂଜନ ॥ ୨୪୦
ସେ ରାଜରଷି ଭରତର । ଚରିତ ଅଟେ ଭଦ୍ରକର ॥ ୨୪୧
ଆୟୁଷପ୍ରଦ ଧନ୍ୟ[୧] ଆର । ଯଶଦ[୨] ସ୍ୱର୍ଗ-ମୋକ୍ଷକର ॥ ୨୪୨
ଯେ ଶୁଣେ ଯେ ଏହା କହଇ । ଶୁଣି ଯେ ହରଷ ହୁଅଇ ॥ ୨୪୩

୧. ଧନ୍ୟ = ଧନଦ । ୨. ଯଶୋଦ (ଶୁଦ୍ଧପାଠ) ।

| | | | |
|---|---|---|---|
| ଆପଣା ସକାଶୁଁ ସେ ଜନ | । ଲଭେ ସକଳ ସୁଖମାନ | ॥ | ୨୪୪ |
| ପରସକାଶୁଁ କିଛି ଆନ | । ସୁଖକୁ ନ ବାଞ୍ଛଇ ମନ | ॥ | ୨୪୫ |
| କହଇ ବିପ୍ର ଦୀନବନ୍ଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ॥ | ୨୪୬ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀଭରତୋପାଖ୍ୟାନଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶ ଅଧ୍ୟାୟ

ଏବମଷ୍ଟଭିରଧ୍ୟାୟୈର୍ଭରତସ୍ୟୋକ୍ତମୀହିତମ୍ ।
ତତଃ ପଞ୍ଚଦଶେ ତସ୍ୟ କୀର୍ତ୍ତ୍ୟନ୍ତେ ବଂଶଜା ନୃପାଃ ॥

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ସୁମତି ନାମେ ଭରତର | । ଜନମ ହୋଇଲା କୁମର | ॥ | ୧ |
| | ଯେଉଁ ସୁମତି ଋଷଭର | । ମାର୍ଗକୁ କରନ୍ତେ ଆଚାର | ॥ | ୨ |
| | ତାଙ୍କୁ ଅପୂଜ୍ୟ ପାଷଣ୍ଡୀଏ | । ପାପିଷ୍ଠ ବୁଦ୍ଧିରେ ଥୋକାଏ | ॥ | ୩ |
| | କଳିଯୁଗର ପ୍ରବେଶରେ | । କଳ୍ପିବେ ଦେବତା ରୂପରେ | ॥ | ୪ |
| ୨ | ତାହାର ବୃଦ୍ଧସେନା ନାମ | । ଭାର୍ଯ୍ୟା ଅଟଇ ଅନୁପମ | ॥ | ୫ |
| | ତାଠାରେ ପୁତ୍ର ହେଲା ଜାତ | । ନାମ ତାହାର ଦେବାଜିତ | ॥ | ୬ |
| ୩ | ଦେବାଜିତୁଁ ଆସୁରୀ ଠାରେ | । ଜନମ ହୋଇଲା କୁମରେ | ॥ | ୭ |
| | ସେ ଦେବଦ୍ୟୁମ୍ନ ନାମେ ଖ୍ୟାତ | । ଦେବଦ୍ୟୁମ୍ନର ଏକ ସୁତ | ॥ | ୮ |
| | ଜନ୍ମିଲା ଧେନୁମତୀଠାର | । ପରମେଷ୍ଠୀ ନାମ ତାହାର | ॥ | ୯ |
| | ପରମେଷ୍ଠୀର ସୁବର୍ଚ୍ଚଳା | । ନାମରେ ଅଟଇ ଅବଳା | ॥ | ୧୦ |
| | ତାଠାରେ ସମ୍ଭବିଲା ସୁତ | । ପ୍ରତୀହ ନାମେ ସେ ବିଦିତ | ॥ | ୧୧ |
| ୪ | ବହୁତ ଲୋକଙ୍କୁ ସେ ପୁଣି | । ପ୍ରତୀହ ଆତ୍ମବିଦ୍ୟା ଭଣି | ॥ | ୧୨ |
| | ମହାପୁରୁଷଙ୍କୁ ଆତ୍ମାରେ | । ଦେଖିଲା ପ୍ରତ୍ୟକ୍ଷ ରୂପରେ | ॥ | ୧୩ |
| ୫ | ପ୍ରତୀହଭାର୍ଯ୍ୟା ସୁବର୍ଚ୍ଚଳା | । ସେ ତିନି ସୁତ ଜାତ କଲା | ॥ | ୧୪ |
| | ପ୍ରଥମ ସୁତ ପ୍ରତିହର୍ତ୍ତା | । ଆବର ପ୍ରସ୍ତୋତା ଉଦ୍‌ଗାତା | ॥ | ୧୫ |
| | ଯଜ୍ଞବିଷୟରେ ନିପୁଣ | । ହେଲେ ଏ ତିନି ସୁତ ପୁଣ | ॥ | ୧୬ |
| | ପ୍ରତିହର୍ତ୍ତାର ଯେ ଯୁବତି | । ତାହାର ନାମ ଅଟେ ସ୍ତୁତି | ॥ | ୧୭ |
| | ତାଠାରେ ଅଜ, ଭୂମା ହୋଇ | । ସେ ଜାତ କଲା ସୁତ ଦୁଇ | ॥ | ୧୮ |
| ୬ | ଭୂମାର ଋଷିକୁଲ୍ୟା ନାରୀ | । ଉଦ୍‌ଗୀଥ ତନୟ ତାହାରି | ॥ | ୧୯ |
| | ଉଦ୍‌ଗୀଥ ଦେବକୁଲ୍ୟାଠାର | । ଜନମ କଲାକ କୁମର | ॥ | ୨୦ |

ପ୍ରସ୍ତାବ ନାମେ ସେ ବିଦିତ । ତା' ଭାର୍ଯ୍ୟା ବିରୁତ୍‌ସତୀ[୧] ଖ୍ୟାତ ॥ ୨୧
ବିଭୁ ନାମରେ ସୁତ ତାର । ଜନ୍ମିଲା ବିରୁତ୍‌ସତୀ ଠାର ॥ ୨୨
ବିଭୁର ଭାର୍ଯ୍ୟା ଅଟେ ରତି । ତା' ସୁତ ପୃଥୁଷେଣ ଖ୍ୟାତି ॥ ୨୩
ସେ ପୃଥୁଷେଣର ଯୁବତି । ତା' ନାମ ଅଟଇ ଆକୂତି ॥ ୨୪
ଆକୂତିଠାରେ ହେଲା ତାର । ନକତ ନାମରେ କୁମର ॥ ୨୫
ନକ୍ତର ରତିଠାରେ ସୁତ । ଜନ୍ମିଲା ଗୟ ସେ ବିଦିତ ॥ ୨୬
ସେ ରାଜରଷିମଧ୍ୟେ ବର । ଉଦାର ଅଟେ କୀର୍ତ୍ତି ତାର ॥ ୨୭
ଜଗତ ରଖିବା ଇଚ୍ଛାରେ । ଯେ ବିଷ୍ଣୁ ସତ୍ତ୍ୱଗୁଣ ଧରେ ॥ ୨୮
ତାଙ୍କର କଳା ସେ ସାକ୍ଷାତ । ଜଗତେ ହୋଇଲା ବିଦିତ ॥ ୨୯
ଆତ୍ମଜ୍ଞାନକୁ ଆଦି କରି । ଅନେକ ଗୁଣ ଥିଲା ଧରି ॥ ୩୦
ଏ ଘେନି ଯେତେ ଦିନ ଥିଲା । ମହାପୁରୁଷ ବୋଲାଇଲା ॥ ୩୧
୭ ପ୍ରଜାମାନଙ୍କର ପାଳନ । ପୋଷଣ, ସନ୍ତୋଷ-ବିଧାନ ॥ ୩୨
୮ ସୁପଥଶିକ୍ଷା, ଆଶ୍ୱାସନ । ଏମନ୍ତ ଧର୍ମେ ସେ ରାଜନ ॥ ୩୩
ଯଜ୍ଞାଦି ଧର୍ମେ ଯେବା ଆନ । ସକଳ ଭାବରେ ସେମାନ ॥ ୩୪
ଅର୍ପିତ କଲା ବିଷ୍ଣୁଠାର । ଯେ ବିଷ୍ଣୁ ବ୍ରହ୍ମ ପରାବର ॥ ୩୫
ବ୍ରହ୍ମଜ୍ଞ ଲୋକଙ୍କ ଚରଣ । ଅନୁସେବାରେ ଅନୁକ୍ଷଣ ॥ ୩୬
ଭକ୍ତିଯୋଗକୁ ବିଷ୍ଣୁଠାରେ । ଲଭିଣ ସେ ଭକ୍ତିଯୋଗରେ ॥ ୩୭
ସଂସ୍କାରବନ୍ତ ଶୁଦ୍ଧମତି । ହୋଇଣ ସେ ଗୟ ନୃପତି ॥ ୩୮
ଯହିଁରେ ଦେହେ ଆତ୍ମମତି । ନିବୃତ୍ତ ହୋଇଲା ଝଟିତି ॥ ୩୯
ସେ ଚିତ୍ତେ ଆପଣା ଇଚ୍ଛାଏ । ଯେ ବ୍ରହ୍ମ ପ୍ରକାଶିତ ହୋଏ ॥ ୪୦
ସେ ବ୍ରହ୍ମଠାରେ ଆତ୍ମା କରି । ଅନୁଭବକୁ ସେ ଆଚରି ॥ ୪୧
ହୋଇଣ ଅଭିମାନ ହୀନ । ଅବନି କଲାକ ପାଳନ ॥ ୪୨
ହେ ପରୀକ୍ଷିତ ! ସେ ଗୟର । ଗାଥାମାନଙ୍କୁ ଏ ପ୍ରକାର ॥ ୪୩
ଗାୟନ କରନ୍ତି ସଂସାରେ । ପୁରାଣବେତ୍ତା ଯେଉଁ ନରେ ॥ ୪୪
୯ ବିଷ୍ଣୁର କଳା ଅଟେ ଗୟ । ତା' ବିନୁ ଆନ ଅତିଶୟ ॥ ୪୫
କର୍ମରେ ଗୟକୁ ସମାନ । ହୋଇବ କେବଣ ରାଜନ ॥ ୪୬
ଲଭେ ଯେ ସବୁଠାରେ ମାନ୍ୟ । ଜାଣେ ବହୁତ କଥାମାନ ॥ ୪୭
ଯେ ଧର୍ମ ପାଳନ କରଇ । ଲକ୍ଷ୍ମୀକି ଲଭିଣ ଅଛଇ ॥ ୪୮
ଯେ ପତି ସାଧୁଙ୍କ ସଭାର । ଅଟଇ ସାଧୁଙ୍କ କିଙ୍କର ॥ ୪୯
୧୦ ଶ୍ରଦ୍ଧା, ମଇତ୍ରୀ ଆଦି ଯେତେ । ଦକ୍ଷର କନ୍ୟା ଏ ଜଗତେ ॥ ୫୦
ସେ ଯେଉଁ ଆଶିଷ କରନ୍ତି । ସେ ଆନ ନୋହେ ସେହୁ ସତୀ ॥ ୫୧
ସେମାନେ ଅତି ହରଷରେ । ଯେବଣ ଗୟକୁ ପୂର୍ବରେ ॥ ୫୨

୧. ବିରୁତ୍‌ସା, ନିୟୁତ୍‌ସା (ପାଠାନ୍ତରଦ୍ୱୟ) ।

ଘେନିଣ ନଦୀଙ୍କର ବାରି । ଅଛନ୍ତି ଅଭିଷେକ କରି ॥ ୫୩
କାମନା ହୋଇ କଥା ଯେତେ । ତାହା ଯେ ନ ବାଞ୍ଛଇ ଚିତ୍ତେ ॥ ୫୪
ଯେଉଁ ଗୟର ପ୍ରଜାମାନେ । ବାଞ୍ଛା କରନ୍ତି ଯାହା ମନେ ॥ ୫୫
ସେ ବାଞ୍ଛାମାନ ବସୁମତୀ । ତାଙ୍କର ସଂପାଦଇ ଅତି ॥ ୫୬
ଗୟର ଯେତେ ଗୁଣମାନ । ବାଛୁରିପ୍ରାୟେ ସେ ଶୋଭନ ॥ ୫୭
ତେଣେ ଯେବଣ ପୃଥିବୀର । ସ୍ରବୁଣ ଥାଇ ପହ୍ନାଭାର ॥ ୫୮
୧୧ ବାଞ୍ଛା ନ ଥାଇ ସେ ରାଜାର । ତଥାପି ବେଦମାନେ ତାର ॥ ୫୯
କାମନାମାନଙ୍କୁ ଦୋହନ । କଲେ, ଯେ ନୃପମାନେ ଆନ ॥ ୬୦
ଯୁଦ୍ଧରେ ପାଇଣ ପୂଜନ । ଅର୍ପଣ କଲେ କରମାନ ॥ ୬୧
ଧର୍ମପାଳନେ ଦକ୍ଷିଣାରେ । ବିପ୍ରଙ୍କୁ ପୂଜନ୍ତେ ନିତ୍ୟରେ ॥ ୬୨
ପରଲୋକରେ ହୋଇ ତୋଷ । ଦେଲେ ସେ [1]ପୁଣ୍ୟ-ଷଡ଼ ଅଂଶ ॥ ୬୩
୧୨ ବହୁତ ସୋମପାନେ ଯାର । ଯାଗେ ମାତନ୍ତେ ପୁରନ୍ଦର ॥ ୬୪
ଶ୍ରଦ୍ଧାରେ ଶୁଦ୍ଧ ଅଟେ ସ୍ଥିର । ଯେ ଭକ୍ତିଯୋଗ ସେ ନୃପର ॥ ୬୫
ତେଣେ ସେ ଯୋଗଫଳମାନ । ଅର୍ପିତ କରନ୍ତେ ବହନ ॥ ୬୬
ଯଜ୍ଞପୁରୁଷ ଭଗବାନ । ପ୍ରତ୍ୟକ୍ଷେ କଲେ ଉପାଦାନ ॥ ୬୭
୧୩ ଯାହାର ହୁଅନ୍ତେ ସନ୍ତୋଷ । ଦେବତା, ତିର୍ଯ୍ୟକ, ମନୁଷ୍ୟ ॥ ୬୮
ଲତାତୃଣରୁ ବ୍ରହ୍ମାଯାଏ । ସକଳ ଲୋକ ପ୍ରୀତ ହୋଏ ॥ ୬୯
ସେ ସର୍ବ ଅନ୍ତର୍ଯ୍ୟାମୀ ହରି । ଯାହାର ଯଜ୍ଞେ ଆସି କରି ॥ ୭୦
ପ୍ରତ୍ୟକ୍ଷ ହୋଇ ବର ଦେଲେ । ସଂତୋଷ ହେଲି ମୁଁ ବୋଇଲେ ॥ ୭୧
୧୪ ଗାୟନ୍ତୀ[2] ଠାରେ ତିନି ସୁତ । ସେ ଗୟ ନୃପ କଲା ଜାତ ॥ ୭୨
ଚିତ୍ରରଥ, ଅବିରୋଧନ[3] । ସୁଗତି ମଧ୍ୟମ ନନ୍ଦନ ॥ ୭୩
ଚିତ୍ରରଥର ଊର୍ଣ୍ଣାଠାର । ସମ୍ରାଜ ହୋଇଲା କୁମର ॥ ୭୪
୧୫ ଉତ୍କଳାଠାରେ ହେଲା ଜାତ । ମରୀଚିନାମେ ତାର ସୁତ ॥ ୭୫
ମରୀଚିଭାର୍ଯ୍ୟା ବିନ୍ଦୁମତୀ । ତା' ପୁତ୍ର ବିନ୍ଦୁମତ[4] ଖ୍ୟାତି ॥ ୭୬
ସରଘାଠାରେ ମଧୁ ନାମ । ତାହାର ସୁତ ଅନୁପମ ॥ ୭୭
ମଧୁତନୁଜ ବୀରବ୍ରତ । ସୁମନାଠାରେ ହେଲା ଜାତ ॥ ୭୮
ବୀରବ୍ରତର ସୁତ ଦୁଇ । 'ମନ୍ଥୁ' 'ପ୍ରମନ୍ଥୁ' ନାମ ହୋଇ ॥ ୭୯
ଜାତ ହୋଇଲେ ଭୋଜାଠାରେ । ମନ୍ଥୁର ସତ୍ୟା ଯୁବତିରେ ॥ ୮୦
ସମ୍ଭବ ହୋଇଲା ନନ୍ଦନ । ଯା' ନାମ ଅଟଇ[5] ଭୌମନ[6] ॥ ୮୧
ଦୂଷଣା[7] ଠାରେ ଭୌମନର । ଯେ ପୁତ୍ର ତ୍ୱଷ୍ଟା ନାମ ତାର ॥ ୮୨

---

୧. ପୁଣ୍ୟଷଡ୍‌ଭାଗମାଦତ୍ତେ ନ୍ୟାୟେନ ପରିପାଳୟନ୍ । (ସ୍ମୃତିଃ) ୨. ଗୟନ୍ତୀ । ୩. ଅବରୋଧନ ।
୪. ବିନ୍ଦୁମାନ୍ (ମୂଳପାଠ) । ୫. ହୋଇଲା । ୬. ଭୌବନ । ୭. ଭୂଷଣା ।

ତ୍ୱଷ୍ଟାର ବିରୋଚନାଠାର । ବିରଜ ନାମରେ କୁମର ।। ୮୩
ବିଷୂଚୀଠାରେ ବିରଜର । ଜନ୍ମିଲା ଶତେକ କୁମର ।। ୮୪
ଶ୍ରେଷ୍ଠ ତହିଁରେ ଶତଜିତ । କନ୍ୟା ଗୋଟିଏ ପୁଣ ଜାତ ।। ୮୫
ଏ ଶ୍ଳୋକ ସେ ବଂଶବର୍ଣ୍ଣନେ । କହି ଅଛନ୍ତି ପୂର୍ବ ଜନେ ।। ୮୬
୧୬ ସକଳ ପଛରେ ବିରଜ । ନାମରେ ହେଲା ଯେ ତନୁଜ ।। ୮୭
କୀର୍ତ୍ତିରେ ପ୍ରିୟବ୍ରତକୁଳ । ଭୂଷଣ କଲା ସେ ଭୂପାଳ ।। ୮୮
ଦେବତାଗଣକୁ ଯେସନ । ଭୂଷଣ କଲେ ଭଗବାନ ।। ୮୯
କହଇ ବିପ୍ର ଦୀନବଂଧୁ । ହରିଚରିତ ସୁଧାସିନ୍ଧୁ ।। ୯୦
ସୁଜନେ ଏଣେ ହୁଅ ତୋଷ । ମୋହର ନ ଧରିବ ଦୋଷ ।। ୯୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀପ୍ରିୟବ୍ରତବଂଶାନୁକୀର୍ତ୍ତନଂ
ନାମ ପଞ୍ଚଦଶୋଽଧ୍ୟାୟଃ ।।

## ଷୋଡ଼ଶ ଅଧ୍ୟାୟ

ପୂର୍ବୋକ୍ତଦ୍ୱୀପସିନ୍ଧ୍ୱାଦି-ମାନଚିହ୍ନସ୍ୱରୂପତଃ ।
ସ୍ପଷ୍ଟଂ ପ୍ରବକ୍ତୁମାରବ୍ଧା ପରାଧ୍ୟାୟୀ[୧] ତତଃ ପରମ୍ ।। ୧
ଷୋଡ଼ଶେଽଧସ୍ତଥା ଚୋର୍ଦ୍ଧ୍ୱଂ ପରିତଃ ସନ୍ନିବେଶତଃ ।
ମେରୋଃ ସ୍ଥିତିର୍ମହୀକଞ୍ଜକର୍ଣ୍ଣିକେବୋପବର୍ଣ୍ଣ୍ୟତେ ।। ୨
ପ୍ରିୟବ୍ରତଚରିତ୍ରୋକ୍ତାବୁକ୍ତା ଦ୍ୱୀପାଦିକଳ୍ପନା ।
ତଦ୍‌ବିଶେଷବିଜିଜ୍ଞାସୁଃ କଥାନ୍ତେ ପରିପୃଚ୍ଛତି ।। ୩

ଶ୍ରୀରାଜୋବାଚ

୧ ଭୂମିମଣ୍ଡଳ ଦୀର୍ଘ ଯେତେ । ତୁମ୍ଭେ କହିଛ ମୁନି ! ମୋତେ ।। ୧
ଉଦୟ ହୋଇ ଦିବାକର । ତପତି କରେ ଯେତେ ଦୂର ।। ୨
ନକ୍ଷତ୍ରଗଣ ସହିତରେ । ଚନ୍ଦ୍ରମା ଦିଶଇ ଯହିଁରେ ।। ୩
୨ ମହୀମଣ୍ଡଳେ ପ୍ରିୟବ୍ରତ । ରଥଚକ୍ରର ଘାତେ ଜାତ ।। ୪
ହୋଇଛି ସପତ ସାଗର । ଯହିଁ ସକାଶୁ ଏ ଭୂମିର ।। ୫
ସପତ ଦ୍ୱୀପ ହେଲା ଜାତ । ଏ ପକ୍ଷ କଲ ନିରୂପିତ ।। ୬
ସେ ସର୍ବେ ଯେତେକ ପ୍ରମାଣ । ଯେ ଅବା ତହିଁର ଲକ୍ଷଣ ।। ୭
ସେ କଥା ଜାଣିମାର ପାଇଁ । ମନ କରିଣ ଅଛି ମୁହିଁ ।। ୮
୩ ଯେଉଁ ଜଗତ ଗୁଣମୟ । ଅଟେ ବିଷ୍ଣୁର ସ୍ଥୂଳକାୟ ।। ୯

୧. ପଞ୍ଚାଧ୍ୟାୟୀ ।

ତହିଁରେ ଯେବେ ନିଜ ମନ । ଆବେଶ କରେ ନେଇ ଜନ ॥ ୧୦
ତେବେ ନିର୍ଗୁଣ ସୂକ୍ଷ୍ମ ଅତି । ଯେ ପରଂବ୍ରହ୍ମ ଆତ୍ମଜ୍ୟୋତି ॥ ୧୧
ନିବେଶିବାକୁ ତାହାଠାରେ । ସେ ମନ କ୍ଷମ ଏ ସଂସାରେ ॥ ୧୨
ହେ ଗୁରୁ ! ଏଣୁ ତା' ବର୍ଣ୍ଣନ । କରିବାକୁ ହୁଅ ଭାଜନ ॥ ୧୩

ଶ୍ରୀଶୁକ[1] ଉବାଚ

୪ ହେ ମହାରାଜ ! ଯେ ଜଗତ । ବିଷ୍ଣୁର ମାୟାଗୁଣୁଁ ଜାତ ॥ ୧୪
ସ୍ଥାନବିଶେଷ ତହିଁ ଯେତେ । ବିଖ୍ୟାତ ଅଟନ୍ତି ଜଗତେ ॥ ୧୫
ନାମ ରୂପରେ ତାହାଙ୍କର । ଅନ୍ତ ନ ଜାଣିପାରେ ନର ॥ ୧୬
ଦେବତା ଆୟୁଷକୁ ପାଇ । ମନବଚନେ ନ ଜାଣଇଁ ॥ ୧୭
ଯେ ନାମ ଯେବା ପରିମାଣ । ଯେ ରୂପ ଯେ ଅବା ଲକ୍ଷଣ ॥ ୧୮
ଭୂଗୋଳରୀତି ସେ ପ୍ରକାରେ । କହିବା ପ୍ରଧାନ ରୂପରେ ॥ ୧୯
୫ ଭୂମିମଣ୍ଡଳ ପଦ୍ମରୂପ । ତାହାର କୋଷ ସାତ ଦ୍ୱୀପ ॥ ୨୦
ତହିଁରେ ମଧ୍ୟକୋଷପ୍ରାଏ । ଯେ ଜମ୍ବୁଦ୍ୱୀପ ଶୋଭା ପାଏ ॥ ୨୧
ଲକ୍ଷେ ଯୋଜନ ଏ ବିସ୍ତାର । ବର୍ତ୍ତୁଳ ପଦ୍ମଦଳାକାର ॥ ୨୨
୬ ଯହିଁରେ ନବଖଣ୍ଡ ହୋଇ । ଧରଣୀ ଅଛି ଶୋଭା ପାଇ ॥ ୨୩
ସେ ନବ ସହସ୍ର ଯୋଜନ । ବିସ୍ତାର ଅଟେ ଖଣ୍ଡମାନ ॥ ୨୪
ସୀମାବାରଣରୂପେ ଯହିଁ । ଆଠ ଅଚଳ ଛନ୍ତି ରହି ॥ ୨୫
ସେ ଆଠ ଅଚଳରେ ଭୂଇଁ । ପୂର୍ବହୁଁ ଅଛି ବନ୍ଧା ହୋଇ ॥ ୨୬
୭ ଏମାନଙ୍କର ମଧ୍ୟେ ସ୍ଥିତ । ଯେବଣ ଖଣ୍ଡ ଇଳାବୃତ[2] ॥ ୨୭
ସୁବର୍ଣ୍ଣମୟ ଗିରିବର । ଶୋହଇ ମଧ୍ୟଦେଶେ ତାର ॥ ୨୮
ଏ ଜଗତରେ ମେରୁ ହୋଇ । ସେ ଗିରି ବିଖ୍ୟାତ ଅଟଇ ॥ ୨୯
ଭୂମିବଳୟକମଳର । କର୍ଣ୍ଣିକା ଅଟେ ସେ ଭୂଧର ॥ ୩୦
[3]ଲକ୍ଷେ ଯୋଜନ ପରିମାଣ । ସେ ଗିରିବର ଉଚ୍ଚେ ଜାଣ ॥ ୩୧
ବତିଶ ସହସ୍ର ବିସ୍ତାର । ଅଟଇ ମୂର୍ଦ୍ଧ ଦେଶ ତାର ॥ ୩୨
ଷୋଡ଼ଶ ସହସ୍ର ଯୋଜନ । ତା' ମୂଳ ବିସ୍ତାର ରାଜନ ॥ ୩୩
ମୂଳବିସ୍ତାରସଂଖ୍ୟା ଯେତେ । ଭୂମିକି ପଶିଅଛି ତେତେ ॥ ୩୪
୮ ଇଳାବୃତକୁ ଉତ୍ତରରେ । ଅଛନ୍ତି ତିନି ମହୀଧରେ ॥ ୩୫

---

୧. ଶ୍ରୀଋଷିରୁବାଚ ।

୨. ଧନୁର୍ବତ୍‌ସଂସ୍ଥିତେ ଜ୍ଞେୟେ ଦ୍ୱେ ବର୍ଷେ ଦକ୍ଷିଣୋତ୍ତରେ ।
ଦୀର୍ଘାଣି ତତ୍ର ଚତ୍ୱାରି ଚତୁରସ୍ରମିଳାବୃତମ୍ ॥ (ବାୟୁପୁରାଣ)

୩. ଚତୁରଶୀତିସାହସ୍ରୈର୍ଯୋଜନୈରସ୍ୟ ଚୋଚ୍ଛ୍ରୟଃ
ପ୍ରବିଷ୍ଟଃ ଷୋଡ଼ଶାଧସ୍ତାଦ୍ ଦ୍ୱାତ୍ରିଂଶନ୍ମୂର୍ଦ୍ଧ୍ନି ବିସ୍ତୃତଃ ।
ମୂଳେ ଷୋଡ଼ଶସାହସ୍ରୋ ବିସ୍ତାରସ୍ତସ୍ୟ ଭୂଭୃତଃ ॥ (ବିଷ୍ଣୁପୁରାଣ)

ସେ ନୀଳ, ଶ୍ୱେତ, ଶୃଙ୍ଗବନ୍ତ । ଏ ରୂପେ ଅଟନ୍ତି ବିଖ୍ୟାତ ।। ୩୬
ରମ୍ୟକ, ହିରଣ୍ମୟ, କୁରୁ । ଏ ତିନିଖଣ୍ଡଙ୍କ ପାଖରୁ ।। ୩୭
ମର୍ଯ୍ୟାଦାଗିରିରୂପେ ଖ୍ୟାତ । ପୂର୍ବକୁ ଅଟନ୍ତି ଆୟତ ।। ୩୮
ବେନି ପାରୁଶେ ସେ ପର୍ବତେ । ଲବଣଜଳପରିଯନ୍ତେ ।। ୩୯
ବ୍ୟାପିଣ ଦିଶନ୍ତି ଶୋଭନ । ଓସାର ଦ୍ୱିସସ୍ର ଯୋଜନ ।। ୪୦
ସେ ଦଶସହସ୍ର ଯୋଜନ । ଉଚ୍ଚରେ ଅଟେ ବିଦ୍ୟମାନ ।। ୪୧
ଉତ୍ତର ଦିଗକୁ କ୍ରମରେ । ଏକୁ ଆରେକ ସେ ଭୂଧରେ ।। ୪୨
[1]ଲମ୍ବରେ ଅୟୁତେ ଯୋଜନ । ଅଧିକ ଅଂଶେ କ୍ରମେ ହୀନ ।। ୪୩
୯ ଏ ରୂପେ ସେ ଇଳାବୃତର । ଦକ୍ଷିଣେ ତିନି ମହୀଧର ।। ୪୪
ନିଷଧ ହେମକୂଟ ଦ୍ୱୟ । ଆର ଅଚଳ ହିମାଳୟ ।। ୪୫
ନୀଳ ଆଦିଙ୍କ ପ୍ରାୟେ ସେହି । ପୂର୍ବକୁ ଦୀର୍ଘେ ଛନ୍ତି ରହି ।। ୪୬
ଅୟୁତ ଯୋଜନ ଉଚ୍ଚରେ । ଦ୍ୱିସସ୍ରଯୋଜନ ଓସାରେ ।। ୪୭
ଦକ୍ଷିଣ ଦିଗକୁ କ୍ରମରେ । ଏକକୁ ଆରକ ଲମ୍ବରେ ।। ୪୮
ହରିବରଷ କିଂପୁରୁଷ । ଭାରତ ନାମେ ଯେ ବରଷ ।। ୪୯
ଏ ତିନିଙ୍କର ସୀମା ଖ୍ୟାତ । କରନ୍ତି ସେ ତିନି ପର୍ବତ ।। ୫୦
୧୦ ଇଳାବୃତକୁ ସେ ପ୍ରକାରେ । ପଶ୍ଚିମ ପୂର୍ବ ପ୍ରଦେଶରେ ।। ୫୧
ମାଲ୍ୟବନ୍ତ ଗନ୍ଧମାଦନ । ବେନି ଅଚଳ ବିଦ୍ୟମାନ ।। ୫୨
ଦୁଇ ସହସ୍ର ତାହାଙ୍କର । ଯୋଜନ ଅଟଇ ବିସ୍ତାର ।। ୫୩
କେତୁମାଳ ଭଦ୍ରାଶ୍ୱ ନାମ । ଯେ ବେନି ଖଣ୍ଡ ଅନୁପମ ।। ୫୪
ତାହାଙ୍କ ସୀମାକୁ ଦେଖାଇ । ରହି ଅଛନ୍ତି ଯେଝା ଠାଇଁ ।। ୫୫
ନୀଳ ନିଷଧ ବେନିଙ୍କର । ପର୍ଯ୍ୟନ୍ତେ ତାହାଙ୍କ ଓସାର ।। ୫୬
୧୧ ମେରୁର ଧାରଣାପର୍ବତ । ଚାରି ଦିଗରେ ଚାରି ସ୍ଥିତ ।। ୫୭
ମନ୍ଦର ନାମେ ଗିରି ଏକ । ମେରୁ-ମନ୍ଦର ସେ ଆରକ ।। ୫୮
ସୁପାର୍ଶ୍ୱ କୁମୁଦ ହୋଇଣ । ବିଖ୍ୟାତ ବେନି ଗିରି ପୁଣ ।। ୫୯
ଅୟୁତ ଯୋଜନ ବିସ୍ତାର । ଉଚ୍ଚ ହିଁ ତେତିକି ତାଙ୍କର ।। ୬୦
୧୨ ଏ ଚାରି ପର୍ବତ ଉପର । ଅଛନ୍ତି ଚାରି ତରୁବର ।। ୬୧
ରସାଳ, ଜମ୍ବୁ, ନୀପ, ବଟ । ଧ୍ୱଜପ୍ରାଏକ ସେ ପ୍ରକଟ ।। ୬୨
ଉଚ୍ଚରେ ଏକାଦଶଶତ । ଯୋଜନ ଅଟନ୍ତି ନିର୍ମିତ ।। ୬୩
ତେତିକି ପ୍ରମାଣେ ତାଙ୍କର । ଶାଖାସମୂହର ବିସ୍ତାର ।। ୬୪
ବିସ୍ତାର ଶତେକ ଯୋଜନ । ଏ ରୂପେ ଦିଶନ୍ତି ଶୋଭନ ।। ୬୫
୧୩ ଯହିଁ ଅଛନ୍ତି ହ୍ରଦ ଚାରି । ଯେବଣ ହ୍ରଦଙ୍କର ବାରି ।। ୬୬

---

୧. ଲକ୍ଷପ୍ରମାଣୌ ଦ୍ୱୌ ମଧ୍ୟେ ଦଶହୀନାସ୍ତଥାପରେ । (ବିଷ୍ଣୁପୁରାଣ)

ଦୁଧସମାନେ ମଧୁପ୍ରାଏ । ଗୁଡ଼ସମାନେ ମୃଷ୍ଟ[1] ହୋଏ ।। ୬୭
ତହିଁରେ ଉପଦେବମାନେ । ହେ ନୃପ ! ସ୍ନାନ, ଆଚମନେ ।। ୬୮
ସ୍ୱଭାବେ ସିଦ୍ଧପ୍ରାଏ ନିତି । ଯୋଗ-ଐଶ୍ୱର୍ଯ୍ୟକୁ ଧରନ୍ତି ।। ୬୯
୧୪ ଦେବତାମାନଙ୍କର ତହିଁ । ଚାରି ଉଦ୍ୟାନ ଛନ୍ତି ରହି ।। ୭୦
ନନ୍ଦନ, ଚୈତ୍ରରଥ ବେନି । ବଇଭ୍ରାଜକ ମିଶି ତିନି ।। ୭୧
ସର୍ବତୋଭଦ୍ର ନାମ ହୋଇ । ଚତୁର୍ଥ ଉଦ୍ୟାନ ଶୋଭଇ ।। ୭୨
୧୫ ଯେଉଁ ଉଦ୍ୟାନେ ଅନୁଦିନେ । ଅମରଗଣପ୍ରଭୁମାନେ ।। ୭୩
ଯେ ବରସୁରନାରୀଯୂଥ । ଅଟନ୍ତି ତାହାଙ୍କର ନାଥ ।। ୭୪
ଘେନି ଏମାନଙ୍କୁ ସଂଗରେ । ବିହାର କରନ୍ତି ନିର୍ଭରେ ।। ୭୫
ସେମାନଙ୍କର ଯଶମାନ । ଗନ୍ଧର୍ବେ କରନ୍ତି ଗାୟନ ।। ୭୬
୧୬ ମନ୍ଦରପର୍ବତେ ସୁସଞ୍ଚ । ଏଗାରଶତଯୁଣ[2] ଉଚ୍ଚ ।। ୭୭
ଯେବଣ ଦେବ-ଆମ୍ରତରୁ । ସେ ମହୀରୁହର ଶିଖରୁ ।। ୭୮
[3]ପର୍ବତଶୃଙ୍ଗପ୍ରାଏ ସ୍ଥୂଳ । ଫଳେ ପଡ଼ନ୍ତି ଆସି ତଳ ।। ୭୯
ଅମୃତପ୍ରାୟକ ସେମାନେ । ମଧୁର ଅଟନ୍ତି ଭୁବନେ ।। ୮୦
୧୭ ପଡ଼ିଣ ଧରଣୀର ତଳେ । ଫାଟିଣ ଯାଆନ୍ତେ ସେ ଫଳେ ।। ୮୧
ବହଳ ସୁରଭି ମଧୁର । 'ଅରୁଣ'ରସ ତାହାଙ୍କର ।। ୮୨
ସେ ରସ ଜଳପ୍ରାୟେ ହୋଇ । ବହନ୍ତେ ଜାତ ଏକ ନଈ ।। ୮୩
ତାହାର ନାମ ଅରୁଣୋଦା । ମନ୍ଦରଶିଖରୁ ସର୍ବଦା ।। ୮୪
ବହନ୍ତେ ପୂର୍ବେ ଇଳାବୃତ । ଖଣ୍ଡକୁ କରେ ଆପ୍ଲାବିତ ।। ୮୫
୧୮ ଭବାନୀଙ୍କର ଅନୁଚରୀ । ଯେତେକ ପୁଣ୍ୟଜନ-ନାରୀ ।। ୮୬
ସେ ରସପାନୁଁ ତାହାଙ୍କର । ସୁବାସ କରେ କଳେବର ।। ୮୭
ତାହାର ସ୍ପରଶେ ମାରୁତ । ସୁଗନ୍ଧ ହୋଇଣ ତୁରିତ ।। ୮୮
ବାସ କରଇ ଚାରିପାଶ । ଶତେ[4] ଯୋଜନ ଯାଏ ଦେଶ ।। ୮୯
୧୯ ଏମନ୍ତେ ଅତି ଉଚ୍ଚୁଁ ଝଡ଼ି । ଭୂମିରେ ଜମ୍ବୁଫଳେ ପଡ଼ି ।। ୯୦
ଶୀର୍ଣ୍ଣ ହୁଅନ୍ତି ସେହିଠାଏଁ । ଦିଶନ୍ତି ହସ୍ତୀକାୟପ୍ରାଏ ।। ୯୧
ଅତ୍ୟନ୍ତ ସୂକ୍ଷ୍ମରୂପେ ତହିଁ । ଥାଆନ୍ତି ବୀଜମାନେ ରହି ।। ୯୨
ତାହାଙ୍କର ସେ ଜମ୍ବୁନଦୀ । ମେରୁମନ୍ଦରଶିଖୁଁ ଭେଦି ।। ୯୩
ଅୟୁତ ଯୋଜନୁଁ ପ୍ରଖରେ । ପଡ଼ିଛି ଅବନିତଳରେ ।। ୯୪
ଯେବଣଠାରେ ଅଛି ରହି । ସେଠାରୁ ଦକ୍ଷିଣକୁ ବହି ।। ୯୫

---

୧. ମୃଷ୍ଟ = ବିଶୁଦ୍ଧ । ୨. ଯୁଣ = ଯୋଜନ ।
୩. ଅରତ୍ନୀନାଂ ଶତାନ୍ୟଷ୍ଟାବେକଷଷ୍ଟ୍ୟଧିକାନି ଚ ।
ଫଳପ୍ରମାଣମାଖ୍ୟାତମୃଷିଭିସ୍ତତ୍ତ୍ୱଦର୍ଶିଭିଃ ।। (ବାୟୁପୁରାଣ)
୪. ଦଶ ।

ଯେତେକ ଦୂର ଇଳାବୃତ । ତା'ସବୁ କରୁଚି ପ୍ଲାବିତ ।। ୯୬
୨୦ ସେ ନଦୀ-ବେନିତଟେ ତହିଁ । ଯେଉଁ ମୃତ୍ତିକା ଅଛି ରହି ।। ୯୭
ମିଶିଣ ସେ ଜମ୍ବୁରସରେ । ପବନ-ଅର୍କସଂପର୍କରେ ।। ୯୮
ବିପାକ ହୋଇ ତତକ୍ଷଣ । ଅମରଲୋକଆଭରଣ ।। ୯୯
ତାହାର ଜାମ୍ବୂନଦ ନାମ । ଜାତ ହୁଅଇ ସେହୁ ହେମ ।। ୧୦୦
୨୧ କୁବେର ଆଦି ଦିଗପାଳେ । ଯୁବତିମାନଙ୍କର ମେଳେ ।। ୧୦୧
ମୁକୁଟ, ରଶନା, କଙ୍କଣ । କୁଣ୍ଡଳ ଆଦି ଆଭରଣ ।। ୧୦୨
ଏମନ୍ତ ରୂପେ ହେ ରାଜନ । ଧରନ୍ତି ସେ ସୁବର୍ଣ୍ଣମାନ ।। ୧୦୩
୨୨ ସୁପାର୍ଶ୍ୱ-ପର୍ବତପାରୁଶେ । ଯେ ମହାକଦମ୍ବ ପ୍ରକାଶେ ।। ୧୦୪
କୋଟରମାନଙ୍କୁ ତାହାର । ବାହାର ପଞ୍ଚ ମଧୁଧାର ।। ୧୦୫
କର ସହିତେ ଭୁଜଦୁଇ । ମଣ୍ଡଳୀ କଲେ ଯେତେ ହୋଇ ।। ୧୦୬
ସେହି ରୂପରେ ପଞ୍ଚଗୁଣ । ସେ ଧାରାଙ୍କର ପରିମାଣ ।। ୧୦୭
ସୁପାର୍ଶ୍ୱଶିଖରୁଁ ପଡ଼ନ୍ତି । ପଶ୍ଚିମଦିଗକୁ ସେ ଯାନ୍ତି ।। ୧୦୮
ଇଳାବୃତର ଯେତେ ଦେଶ । ସେ ଦିଗେ କରନ୍ତି ତା' ବାସ ।। ୧୦୯
୨୩ ଯେବେଣ ମଧୁଧାରାମାନ । ପାନ କରନ୍ତି ଯେଉଁ ଜନ ।। ୧୧୦
ତାହାଙ୍କ ଦେହରୁ ଗଳିତ । ହୋଇ ବହଇ ଯେଉଁ ବାତ ।। ୧୧୧
ଶତେ ଯୋଜନ ଚାରିପାଶେ । ଆମୋଦ କରଇ ବିଶେଷେ ।। ୧୧୨
୨୪ କୁମୁଦଗିରିର ଉପର । ଯେ ଜାତ ବଟ ତରୁବର ।। ୧୧୩
ସେ ଶତବଲିଶ[1] ନାମରେ । ବିଖ୍ୟାତ ଅଟଇ ଲୋକରେ ।। ୧୧୪
ଏ ରୂପେ ବହୁଛନ୍ତି ଧାର । ସ୍କନ୍ଧମାନଙ୍କରୁ ତାଙ୍କର ।। ୧୧୫
ଦଧି, ଦୁଗୁଧ, ମଧୁ, ଘୃତ । ଗୁଡ଼ ଅନ୍ନାଦି ନାନାମତ ।। ୧୧୬
ବସନ, ଶୟନ, ଆସନ । ଯେ ଆଭରଣଆଦିମାନ ।। ୧୧୭
ଏ ରୂପେ ବହୁଛନ୍ତି ନଈ । ସମସ୍ତେ କାମଦୁଘା ହୋଇ ।। ୧୧୮
କୁମୁଦଅଚଳଶିଖର । ଭାଗରୁ ପଡ଼ିଣ ଭୂମିର ।। ୧୧୯
ଉତ୍ତର ଇଳାବୃତ ଭାଗ । କରୁଅଛନ୍ତି ଉପଯୋଗ ।। ୧୨୦
୨୫ ଯେବଣ ଦ୍ରବ୍ୟମାନେ ଜାତ । ହୁଅନ୍ତି ତହିଁ[2] ଅବିରତ ।। ୧୨୧
ତା' ଭୋଗ କଲା ପ୍ରଜାଙ୍କର । ଯେ ବଳୀ ଧବଳ ଚିକୁର ।। ୧୨୨
ସ୍ୱେଦ, ଦୁର୍ଗନ୍ଧ, କ୍ଲମ, ଜରା । ଅକାଳମୃତ୍ୟୁ, ଶୀତ, ଖରା ।। ୧୨୩
ବିବର୍ଣ୍ଣ ଭାବ ଉପସର୍ଗ । ଏ ଆଦି ଯେତେ ତାପବର୍ଗ ।। ୧୨୪
ଜାତ ନୁହନ୍ତି କଦାଚିତ । ଜୀଇଣ ଥାନ୍ତି ସେ ଯାବତ ।। ୧୨୫
ତାବତ କାଳ ତାହାଙ୍କର । ସୁଖ ଜନମଇଁ ଅପାର ।। ୧୨୬

୧. ଶତବଲ୍‌ଶଃ (ମୂଳପାଠ)   ୨. ତହୁଁ ।

୨୬ କୁରଙ୍ଗ, କୁସୁମ୍ଭ, ବୈକଙ୍କ । ନାଗ, ଜାରୁଧି, କୁରୁବକ ॥ ୧୨୭
ଋଷଭ, କାଳଞ୍ଜର, ହଂସ । ରୁଚକ, ଶଙ୍ଖ, ଶିତିବାସ ॥ ୧୨୮
ବୈଦୁର୍ଯ୍ୟ, ନିଷଧ, କପିଳ[୧] । ନାରଦ[୨], ତ୍ରିକୂଟ ଅଚଳ ॥ ୧୨୯
କୁରର, ପତଙ୍ଗ, ଶିଶିର । ଏ ରୂପେ ବିଂଶ ଗିରିବର ॥ ୧୩୦
କର୍ଣ୍ଣିକାପ୍ରାଏ ମେରୁ ଦିଶେ । ଏମାନେ ତାର ଚାରି ପାଶେ ॥ ୧୩୧
କେସରପ୍ରାଏକ ଶୋଭିତ । ହୋଇଣ ଅଛନ୍ତି କଳ୍ପିତ ॥ ୧୩୨
୨୭ ଜଠର, ଦେବକୂଟ ଦୁଇ । ମେରୁର ପୂର୍ବେ ଶୋଭା ପାଇ ॥ ୧୩୩
[୩]ଅଠର ସହସ୍ର ଯୋଜନ । ଅଟଇ ବିସ୍ତାରର ମାନ ॥ ୧୩୪
ଦ୍ୱିସସ୍ର ଯୋଜନ ବହଳ । ଉତ୍ତୁଙ୍ଗ ସେ ବେନି ଅଚଳ ॥ ୧୩୫
ଉତ୍ତର ଦିଗକୁ ବିସ୍ତାରେ । ବ୍ୟାପି ଅଛନ୍ତି ଗିରିବରେ ॥ ୧୩୬
ପବନ, ପାରିଯାତ୍ର[୪] ଦୁଇ । ଏ ରୂପେ ପଶ୍ଚିମେ ଅଛଇ ॥ ୧୩୭
କୈଳାସ, କରବୀର ବେନି । ଦକ୍ଷିଣେ ପୂର୍ବଦିଗ ଘେନି ॥ ୧୩୮
ବିସ୍ତାରେ ଅଟନ୍ତି ସୁନ୍ଦର । ଉତ୍ତରେ ତ୍ରିଶୃଙ୍ଗ, ମକର ॥ ୧୩୯
ଅଷ୍ଟ ଅଚଳେ ପରିବୃତ । ଶୋହଇ କାଞ୍ଚନ ପର୍ବତ ॥ ୧୪୦
ପରିଧିମାନଙ୍କେ ଯେସନ । ଶୋଭା ଦିଶଇ ହୁତାଶନ ॥ ୧୪୧
୨୮ ମେରୁର ମସ୍ତକେ ବ୍ରହ୍ମାର । ଶୋଭା ଦିଶଇ ପୁରବର ॥ ୧୪୨
ଅୟୁତେ ଯୋଜନ ସହସ୍ର । ଅଟଇ ସମଚତୁରସ୍ର ॥ ୧୪୩
ସୁବର୍ଣ୍ଣଘଟିତ ସେ ମହୀ । ଅଛନ୍ତି ମୁନିମାନେ କହି ॥ ୧୪୪
୨୯ [୫]ଚାରିପାରୁଶେ ସେ ପୁରର । ଇନ୍ଦ୍ରାଦି ଲୋକପାଳଙ୍କର ॥ ୧୪୫
ଯଥାବର୍ଣ୍ଣରେ ଯଥାଦିଶେ । ବ୍ରହ୍ମାଙ୍କ ପୁରଚାରିପାଶେ ॥ ୧୪୬
କଳ୍ପିତ ଅଟେ ଆଠପୁର । ଶୁଣ ସୁମନେ ନୃପବର ॥ ୧୪୭
କହଇ ବିପ୍ର ଦୀନବନ୍ଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥ ୧୪୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୁବନକୋଶବର୍ଣ୍ଣନଂ
ନାମ ଷୋଡ଼ଶୋଽଧ୍ୟାୟଃ ॥

---

୧. କାପିଳ ।　　　୨. ନାରଦ ।

୩. ବୈଷ୍ଣବାଦିପୁରାଣେଷୁ ପରିମାଣାଦି ଯତ୍ ପୁନଃ
ଅନ୍ୟଥା ବର୍ଣ୍ଣିତଂ ତତ୍ତୁ କଳ୍ପଭେଦାଦ୍ୟପେକ୍ଷୟା ॥ (ସ୍ୱାମୀ)

୪. ପାରିପାତ୍ର ।

୫. ମେରୌ ନବ ପୁରାଣି ସ୍ୟୁର୍ମନୋବତ୍ୟମରାବତୀ ।
ତେଜୋବତୀ ସଂଯମନୀ ତଥା କୃଷ୍ଣାଙ୍ଗନା ପରା ॥
ଶ୍ରଦ୍ଧାବତୀ ଗନ୍ଧବତୀ ତଥା ଚାନ୍ୟା ମହୋଦୟା ।
ଯଶୋବତୀ ଚ ବ୍ରହ୍ମେନ୍ଦ୍ରବହ୍ନ୍ୟାଦୀନାଂ ଯଥାକ୍ରମମ୍ ॥
(ପୁରାଣାନ୍ତରାତ୍ ସ୍ୱାମିଧୃତଶ୍ଳୋକୌ)

# ସପ୍ତଦଶ ଅଧ୍ୟାୟ

ତତଃ ସପ୍ତଦଶେ ଗଙ୍ଗାଗମନଂ ତଚ୍ଚତୁର୍ଦ୍ଦିଶମ୍ ।
ଇଳାବୃତେ ଚ ରୁଦ୍ରେଣ ସଂକର୍ଷଣନିଷେବଣମ୍ ॥ ୧

ଶ୍ରୀଶୁକ ଉବାଚ

୧ ବଳିର ଯଜ୍ଞରେ ଯାହାର । ହେଲା ତ୍ରିବିକ୍ରମ ଆକାର ॥
ସେ ବିଷ୍ଣୁ ସାକ୍ଷାତ ହୋଇଣ । କରନ୍ତେ ନିଜ ବିକ୍ରମଣ ॥
ତାହାଙ୍କ ବାମ ଚରଣର । ଅଙ୍ଗୁଷ୍ଠେ ଯେବଣ ନଖର[1] ॥
ତେଣେ ବ୍ରହ୍ମାଣ୍ଡକଟାହର । ଫାଟିଣ ଯାଆନ୍ତେ ଉପର ॥
ସେ ରନ୍ଧ୍ରେ ମିଳିଲା ଭିତରେ । ବାହାରୁ[2] ଏକ ଜଳଧାରେ ॥
ବିଷ୍ଣୁର ଚରଣନଳିନ । ସନ୍ତତେ କରନ୍ତେ କ୍ଷାଳନ ॥
କୁଙ୍କୁମ, କେସରେ ଶୋଭିତ । ଯେ ସ୍ନାନମାତ୍ରକେ ଜଗତ ॥
କଲୁଷମାନ ଅପହରେ । ନ ଲାଗେ ଲୋକପାପ ତାରେ ॥
ସାକ୍ଷାତ ବିଷ୍ଣୁପଦୀ ହୋଇ । ଜଗତେ ପ୍ରକାଶ ଅଟଇ ॥
ଜାହ୍ନବୀ ଭାଗୀରଥୀ ଆଦି । ନାମକୁ ଯାହାର ସଂପାଦି ॥
ସ୍ୱର୍ଗର ଶିରରେ ସେ ଧାର । ଭୂମିରେ ହେଲା ଅବତାର ॥
ଯେଉଁ ସ୍ୱର୍ଗଶିରକୁ ପ୍ରାଣୀ । ବିଷ୍ଣୁପଦ ବୋଲିଣ ଭଣି ॥
୨ ଯେବଣ ବିଷ୍ଣୁପାଦେ ସ୍ଥିତ । ଉତ୍ତାନପାଦରାଜାସୁତ ॥
ଦୃଢ଼ସଂକଳ୍ପ ଅଟେ ତାର । ଅଟଇ ଭାଗବତବର ॥
ମୋ' କୁଳଦେବତାଚରଣ । କମଳ-ଉଦକ ବୋଲିଣ ॥
ଆଜ ହିଁ ପରମ ଆଦରେ । ଯାହାକୁ ବହିଅଛି ଶିରେ ॥
ଭଗତିଯୋଗ ମୁକୁନ୍ଦର । ବଢ଼ନ୍ତେ ବେଳୁଁ ବେଳ ତାର ॥
ହୃଦୟ ଅଟେ ଦ୍ରବୀଭୂତ । ଉତ୍‌କଣ୍ଠାଭାବରେ ମୁଦ୍ରିତ ॥
ଲୋଚନଯୁଗ କଢ଼ିପ୍ରାୟ । ତହୁଁ ଗଳିତ ସ୍ୱଚ୍ଛତୋୟ ॥
ରୋମପୁଲକକୁଳ ତାର । ତେଣୁ ପ୍ରକାଶେ କଳେବର ॥
୩ ତଦନନ୍ତରେ ଋଷିଗଣ । ସେ ଗଙ୍ଗାପ୍ରଭାବ ଜାଣିଣ ॥
ଅତ୍ୟନ୍ତ ସିଦ୍ଧି ତପସ୍ୟାର । ଅଟଇ ଏତେକ ମାତର ॥
ଏମନ୍ତ ବୋଲି ବିଷ୍ଣୁଠାରେ । ସନ୍ତତ ଭଗତିଯୋଗରେ ॥
ଉପେକ୍ଷା କରି ଆତ୍ମଜ୍ଞାନ । ସକଳ ପୁରୁଷାର୍ଥମାନ ॥
ମୋକ୍ଷକୁ ବାଞ୍ଛା କଲା ନର । ମୁକ୍ତିକି ଧରେ ଯେ ପ୍ରକାର ॥
ସେହି ରୂପରେ ସମ୍ମାନନ । କରିଣ ସେହୁ ଋଷିଜନ ॥
ଜଟା ସମୂହରେ ଆଜ ହିଁ । ଅଛନ୍ତି ସେ ଗଙ୍ଗାକୁ ବହି ॥

---

୧. ନଖର = ନଖ । ୨. ବାହ୍ୟରୁ ।

୪ ତହିଁ ଉତ୍ତାରେ ଯେ ଅପାର । ସହସ୍ର କୋଟି ସଂଖ୍ୟାଧର ॥ ୨୮
ବିମାନସମୂହ ପ୍ରକାଶ । ତେଣେ ପୂରିତ ଯେ ଆକାଶ ॥ ୨୯
ସେହି ମାର୍ଗରେ ଅବତରି । ଚନ୍ଦ୍ରମଣ୍ଡଳକୁ ଆବୋରି ॥ ୩୦
ଯେ ବ୍ରହ୍ମାଗୃହ ମେରୁପରେ । ପଡ଼ିଛି ତହିଁର ଉପରେ ॥ ୩୧
୫ ବ୍ରହ୍ମାସଦନେ ପଡ଼ିଥାଇ । ସେଠାରେ ଚାରିଭାଗ ହୋଇ ॥ ୩୨
ଚାରି ନାମରେ ଚାରି ଦିଗେ । ଗମନ କରନ୍ତେ ସେ ବେଗେ ॥ ୩୩
ପଡ଼ିଛି ସମୁଦ୍ରରେ ଯାଇଁ । ସୀତା ଅଳକନନ୍ଦା[1] ହୋଇ ॥ ୩୪
ବଂକ୍ଷୁ[2] ନାମେ ତୃତୀୟ ଧାର । ଭଦ୍ରା ନାମରେ ଅଟେ ଆର ॥ ୩୫
୬ ବ୍ରହ୍ମାସଦନରୁ ବାହାର । ହୋଇଣ ସୀତାନାମେ ଧାର ॥ ୩୬
କେଶରାଚଳ ଆଦି ଗିରି । ଶିଖରୁଁ ତଳେ ତଳେ ଝରି ॥ ୩୭
ଗନ୍ଧମାଦନ ଶିରେ ପଡ଼ି । ଭଦ୍ରାଶ୍ୱଖଣ୍ଡମଧ୍ୟେ ମାଡ଼ି ॥ ୩୮
ପୂର୍ବଦିଗରେ ବହି ଯାଇ । ଲବଣ ସାଗରେ ପଡ଼ଇ ॥ ୩୯
୭ ଏ ରୂପେ ମାଲ୍ୟବନ୍ତ ଗିରି । ଶିଖର ଦେଶୁଁ ପଡ଼ିକରି ॥ ୪୦
ନିବର୍ତ୍ତି ନାହିଁ ବେଗ ଯାର । ବଂକ୍ଷୁ ନାମରେ ଯେଉଁ ଧାର ॥ ୪୧
ଯାଇଣ ପଶ୍ଚିମ ଦିଗରେ । ପଡ଼ିଛି ସମୁଦ୍ରଭିତରେ ॥ ୪୨
୮ ମେରୁଶିଖରୁଁ ଉତ୍ତରରେ । ପଡ଼ିଣ ଭଦ୍ରା ତଦନ୍ତରେ ॥ ୪୩
କୁମୁଦଗିରିଶିଖୁଁ ଯାଇ । ନୀଳ-ଶିଖରେ ପଡ଼ିଥାଇ ॥ ୪୪
ତହୁଁ ଚଳିଣ ଶ୍ୱେତଗିରି । ଶିଖରେ ପୁଣି ପଡ଼ିକରି ॥ ୪୫
ତାହା ଛାଡ଼ିଣ ଶୃଙ୍ଗବନ୍ତ । ଅଚଳେ ପଡ଼ିଣ ତୁରିତ ॥ ୪୬
ତା' ଶୃଙ୍ଗଉପରୁ ଭୂମିରେ । ପଡ଼ିଣ ଉତ୍ତର କୁରୁରେ ॥ ୪୭
ଉତ୍ତର ଦିଗକୁ ସେ ଯାଇ । ଲବଣ ସମୁଦ୍ରେ ପଡ଼ଇ ॥ ୪୮
୯ ବ୍ରହ୍ମାସଦନୁଁ ଦକ୍ଷିଣରେ । ଅଳକନନ୍ଦା ନାମ ଧାରେ ॥ ୪୯
ବହୁତ ଗିରିଶୃଙ୍ଗମାନ । ଆକ୍ରମ କରିଣ ବହନ ॥ ୫୦
ବେଗେ ଧାମନ୍ତେ ଅତିସୁଖେ । ଭାରତଖଣ୍ଡ ଅଭିମୁଖେ ॥ ୫୧
ଯାଇଣ ଦକ୍ଷିଣ ଦିଗରେ । ପଡ଼ଇ ଲବଣସିନ୍ଧୁରେ ॥ ୫୨
[3] {ସ୍ନାନ ନିମିତ୍ତେ ଆଗମନ । କରନ୍ତେ ଯହିଁ ପୁଂସ ଜନ ॥ ୧
ତୁରଗ-ମେଧ ରାଜସୂୟ । ଏ ଆଦି ଯେତେ ଯଜ୍ଞଚୟ ॥ ୨
ଫଳ ସେ ଯଜ୍ଞମାନଙ୍କର । ଦୁର୍ଲଭ ନୁହଇ ତାହାର ॥ ୩}
୧୦ ପ୍ରତି ଖଣ୍ଡରେ ଭିନେ ଭିନେ । ଅଛନ୍ତି ନଦ[4]-ନଦୀମାନେ ॥ ୫୩

---

୧. ଅଳକାନନ୍ଦା ।  ୨. ବକ୍ଷୁ, ଚକ୍ଷୁ ।
୩. ବନ୍ଧନୀସ୍ଥିତ ପଦମାନ ଶ୍ରୀଯୁକ୍ତ ଖାଡ଼ଙ୍ଗାଙ୍କ ରଚିତ ନ ହେଲେ ମଧ୍ୟ ବିଶୁଦ୍ଧ ସଂସ୍କରଣାନୁସାରେ ରଚିତ ।
୪. ଆନ ।

| | | | | |
|---|---|---|---|---|
| | ମେରୁକୁ ଆଦି ହୋଇ ଯେତେ | ରହିଣ ଅଛନ୍ତି ପର୍ବତେ | ॥ | ୫୪ |
| | ତାହାଙ୍କ ଠାରୁ ହୋଇ ଜାତ | ନଦୀ ଅଛନ୍ତି ଶତ ଶତ | ॥ | ୫୫ |
| ୧୧ | ତହିଁରେ କର୍ମଭୂମି ହୋଇ | ଭାରତ ଖଣ୍ଡ ହି ବୋଲାଇ | ॥ | ୫୬ |
| | ସ୍ୱର୍ଗରେ ଥାନ୍ତି ଯେ ପୁରୁଷ | ତାଙ୍କର ଯେଉଁ ପୁଣ୍ୟଶେଷ | ॥ | ୫୭ |
| | ତହିଁର ଉପଭୋଗ ସ୍ଥାନ | ଅଟନ୍ତି ଆଠଖଣ୍ଡ ଆନ | ॥ | ୫୮ |
| | ତାହାଙ୍କୁ ଭୂମିସ୍ୱର୍ଗ[୧] ସ୍ଥାନ | ବୋଲି କହନ୍ତି ଋଷିମାନ | ॥ | ୫୯ |
| ୧୨ | ଯେଉଁ ପୁରୁଷମାନେ ତହିଁ | ଜନ୍ମ ଲଭିଣ ଛନ୍ତି ରହି | ॥ | ୬୦ |
| | ପୁରୁଷପ୍ରମାଣେ ଆୟୁଷ | ତାଙ୍କର ଅୟୁତେ ବରଷ | ॥ | ୬୧ |
| | ଦେବତାସମ ସେ ସକଳ | ଅୟୁତେ ହସ୍ତୀସମ ବଳ | ॥ | ୬୨ |
| | ବଜ୍ରସମାନେ ତାହାଙ୍କର | କଠିନ ଅଟଇ ଶରୀର | ॥ | ୬୩ |
| | ବଳ-ବୟସ ହରଷରେ | ମୁଦିତ ଅଟନ୍ତି ନିର୍ଭରେ | ॥ | ୬୪ |
| | ମହାସୁରତେ ଆସକତ | ସ୍ତିରୀ ପୁରୁଷ ବେନି ମତ୍ତ | ॥ | ୬୫ |
| | ସଂଭୋଗ ଶେଷରେ ଆୟୁଷ | ଏକ ବରଷ ଥାଇ ଶେଷ | ॥ | ୬୬ |
| | ଏମନ୍ତ ସମୟରେ ତାଙ୍କ | ଭାର୍ଯ୍ୟା ଧରନ୍ତି ଗର୍ଭ ଏକ | ॥ | ୬୭ |
| | ତ୍ରେତାଯୁଗରେ ଯେହ୍ନେ ହୋଏ | ବିଷୟସୁଖ ଅତିଶୟେ | ॥ | ୬୮ |
| | ସକଳ ଦିନେ ତାହାଙ୍କର | କାଳ ବର୍ତ୍ତିଛି ସେ ପ୍ରକାର | ॥ | ୬୯ |
| ୧୩ | ଯେବଣ ଖଣ୍ଡମାନଙ୍କର | ଦେବତାମାନଙ୍କ ଈଶ୍ୱର | ॥ | ୭୦ |
| | ଥାନ୍ତି ଆପଣା ଆପଣାର | ଯେ ଗଣନାୟକନିକର | ॥ | ୭୧ |
| | ତେଣେ ବିବିଧ ଉପଚାରେ | ପୂଜାକୁ ଲଭି ସନ୍ତତରେ | ॥ | ୭୨ |
| | ସକଳ ଋତୁମାନଙ୍କରେ | ଥାନ୍ତି ଯେ ପ୍ରକାଶଭାବରେ | ॥ | ୭୩ |
| | କୁସୁମସ୍ତବକ ନିକର | ଫଳ, କିଶଳୟ ଆବର | ॥ | ୭୪ |
| | ଏମାନଙ୍କରେ ନମ୍ର ହୋଇ | ଲତା, ବିଟପେ ଛନ୍ତି ଯହିଁ | ॥ | ୭୫ |
| | ସେ ବୃକ୍ଷମାନଙ୍କେ ଶୋଭନ | ଯହିଁ ରୁଚିର ବନମାନ | ॥ | ୭୬ |
| | ସେ ସର୍ବ ଆଶ୍ରମସ୍ଥାନରେ | ଗିରି କନ୍ଦରମାନଙ୍କରେ | ॥ | ୭୭ |
| | ବିହାର କରନ୍ତି ନିଃଶଙ୍କେ | ନିର୍ମଳ ସରସୀମାନଙ୍କେ | ॥ | ୭୮ |
| | ବିବିଧ ନବବିକଶିତ | ପଙ୍କଜଗନ୍ଧରେ ମୁଦିତ | ॥ | ୭୯ |
| | ଜଳକୁକ୍କୁଟ, ରାଜହଂସ | ଚକ୍ର[୨] କାରଣ୍ଡବ, ସାରସ | ॥ | ୮୦ |
| | ଏ ଆଦି ନାନାଜାତି ଭୃଙ୍ଗ | ଶବଦ ହୋଏ ଯହିଁ ସଙ୍ଗ | ॥ | ୮୧ |
| | ତହିଁ ବିଚିତ୍ର ବିନୋଦରେ | ରମନ୍ତି ସଲିଳ କ୍ରୀଡ଼ାରେ | ॥ | ୮୨ |
| | ଯେ ସୁରସୁନ୍ଦରୀନିଚୟ | ରମ୍ୟ ଅଟନ୍ତି ଅତିଶୟ | ॥ | ୮୩ |

୧. ସ୍ୱର୍ଗ ତିନି ପ୍ରକାର ଯଥା :- ଦିବ୍ୟ, ଭୌମ ଓ ବିଳ। ୨. ଚକ୍ର = ଚକ୍ରବାକ।

କାମରେ କ୍ଷୋଭିତ ହୋଇଣ । ତାଙ୍କର ଯେ ବିଳାସ ପୁଣ ॥ ୮୪
ହସିତ, ଲୀଳାବିଲୋକନ । ତେଣେ ଲୋଚନଯୁଗ, ମନ ॥ ୮୫
ଆକୃଷ୍ଟ ହୋଏ ନିରନ୍ତର । ସେ ଦେବଶ୍ରେଷ୍ଠମାନଙ୍କର ॥ ୮୬
୧୪ ଏ ନବ ଖଣ୍ଡେ ଯେତେ ନର । ରହିଅଛନ୍ତି ତାହାଙ୍କର ॥ ୮୭
ଅନୁଗ୍ରହକୁ ମନ କରି । ମହାପୁରୁଷ ଦେବ ହରି ॥ ୮୮
ଘେନି ଆପଣା ତତ୍ତ୍ୱମାନ । ଅଦ୍ୟାପି କରିଛନ୍ତି ଧ୍ୟାନ ॥ ୮୯
୧୫ ଇଳାବୃତରେ ଭଗବାନ । ମହେଶ କରିଛନ୍ତି ଧ୍ୟାନ ॥ ୯୦
ପୁରୁଷଦେହ ଧରି ତହିଁ । ପ୍ରବେଶ ନୋହେ ଆନ କେହି ॥ ୯୧
ପାର୍ବତୀଶାପକୁ କାରଣ । ଜାଣି ଅଛଇଁ ଯେହୁ ପୁଣ ॥ ୯୨
ଯହିଁ ପ୍ରବେଶ ହେଲା ନର । ଧଇଲା ଯୁବତୀଶରୀର ॥ ୯୩
ସେ କଥା ପୁଣି ପ୍ରସଙ୍ଗରେ । ବିଖ୍ୟାତ କରିବା ପଛରେ ॥ ୯୪
୧୬ ଯେବଣ ସ୍ତିରୀମାନଙ୍କର । ଭବାନୀ ଅଟଇ ଈଶ୍ୱର ॥ ୯୫
ସେବନ୍ତି ସେହୁ ନିରନ୍ତରେ । ଅର୍ବୁଦସହସ୍ର ସଂଖ୍ୟାରେ ॥ ୯୬
ଯେ ମହାପୁରୁଷ ଈଶ୍ୱର । ଅଟନ୍ତି ଚାରିମୂର୍ତ୍ତି ଧର ॥ ୯୭
ତାହାଙ୍କ ଚତୁର୍ଥ ମୂରତି । ତମୋଗୁଣରୁ ଉତପତି ॥ ୯୮
ସଙ୍କରଷଣ ତାଙ୍କ ନାମ । ତାଠାରୁ ଲଭିଣ ଜନମ ॥ ୯୯
ତାହାଙ୍କୁ ଆପଣା ଆତ୍ମାରେ । ଚିନ୍ତା କରିଣ ସେ ରୂପରେ ॥ ୧୦୦
ହୃଦରେ[୧] କରି ସନ୍ନିଧାନ । ଏରୂପେ କରନ୍ତେ ଗାୟନ ॥ ୧୦୧
ସେ ମହାଦେବ ଉମାପତି । ଏ ରୂପେ କରୁଛନ୍ତି ସ୍ତୁତି ॥ ୧୦୨

ଶ୍ରୀଭଗବାନୁବାଚ

୧୭ ମହାପୁରୁଷ ଭଗବାନ । ମୁଁ ତାଙ୍କୁ କରୁଛି ବନ୍ଦନ ॥ ୧୦୩
ଯା' ଠାରୁ ସର୍ବଗୁଣମାନେ । ପ୍ରସରି ଅଛନ୍ତି ଭୁବନେ ॥ ୧୦୪
ଅନନ୍ତ ଅବ୍ୟକ୍ତ ଶରୀର । ତାହାଙ୍କୁ ମୋର ନମସ୍କାର ॥ ୧୦୫
୧୮ ଭଜନଯୋଗ୍ୟ ସକଳର । ତୁ ନାଥ ! ପରମ ଈଶ୍ୱର ॥ ୧୦୬
ଚରଣ ପଙ୍କଜ ତୋହର । ଶରଣ ଅଟେ ପ୍ରାଣୀଙ୍କର ॥ ୧୦୭
ଐଶ୍ୱର୍ଯ୍ୟ ଆଦି ଗୁଣଙ୍କର । ତୁ ଅଟୁ ଆଶ୍ରୟ ମନ୍ଦିର ॥ ୧୦୮
ଭଗତଠାରେ ଅତିଶୟ । ପ୍ରକାଶ କରୁ ନିଜ କାୟ ॥ ୧୦୯
ସଂସାର ହରୁ ଭକ୍ତଙ୍କର । ଅଭକ୍ତେ କରୁ ତା' ବିସ୍ତାର ॥ ୧୧୦
ଏମନ୍ତ ପ୍ରଭୁ ଅଟୁ ତୁହି । ସେବା କରୁଛି ତୋତେ ମୁହିଁ ॥ ୧୧୧
୧୯ ଈଶ୍ୱର ଭାବକୁ ପ୍ରକାଶ । କରି ଚାହାନ୍ତେ ଦିବାନିଶ ॥ ୧୧୨
ବିଷୟ ଇନ୍ଦ୍ରିୟ ତା' ଦୃଷ୍ଟି । ନୁହଇ ଅଳପ ହିଁ ନଷ୍ଟି ॥ ୧୧୩

୧. ହୃଦୟେ ।

କ୍ରୋଧବେଗକୁ ଆମ୍ଭେମାନେ । ଜିଣିଲା ନ ଥାଇ ଯେସନେ ।। ୧୧୪
ଆମ୍ଭର ଦୃଷ୍ଟି ଲୋପ ହୋଇ । ସେ ରୂପେ ଯାହାର ନୁହଇ ।। ୧୧୫
ନିଜ ଇନ୍ଦ୍ରିୟମାନଙ୍କର । ଜୟକୁ ବାଞ୍ଛି କେଉଁ ନର ।। ୧୧୬
ତାହାଙ୍କୁ ନିଜ ପ୍ରଭୁ କରି । ଚିତ୍ତରେ ନ ଥିବ ଆଦରି ।। ୧୧୭
୨୦ ମଧୁ ମଦିରାରେ ଯେସନ । ଅରୁଣ ଦିଶେ ଯା' ଲୋଚନ ।। ୧୧୮
ଅଙ୍ଗଲୋକକୁ ମତ୍ତପ୍ରାଏ । ମାୟାରେ ଯେହୁ ପ୍ରତ୍ୟେ ହୋଏ ।। ୧୧୯
ଚରଣସ୍ମରଣେ ଯାହାର । ଲଭିଣ ମାନସ ବିକାର ।। ୧୨୦
ଲଜ୍ଜାଏ ନାଗବଧୂମାନେ । ସମର୍ଥ ନୋହିଲେ ପୂଜନେ ।। ୧୨୧
୨୧ ଏ ବିଶ୍ୱ-ସର୍ଜନ-ପାଳନ । ନାଶକୁ ଅଟେ ଯେ ନିଧାନ ।। ୧୨୨
ଯାହାର ଜନ୍ମ ସ୍ଥିତି ଅନ୍ତ । ଏ ନାହିଁ, ଅଟେ ଯେ ଅନନ୍ତ ।। ୧୨୩
ଯାହାକୁ ଏମନ୍ତ ବିଧାନେ । କହିଅଛନ୍ତି ମନ୍ତ୍ରମାନେ ।। ୧୨୪
ସହସ୍ରେ ସ୍ଥାନ ଯାହା ଶିରେ । ତହିଁରେ କେହୁଣି ସ୍ଥାନରେ ।। ୧୨୫
ସୋରିଷପ୍ରାଏ ହୋଇ ମହୀ । ରହିଛି ନ ଜାଣେ ଯେ ତାହି ।। ୧୨୬
୨୨ ଗୁଣନିମିତ୍ତେ ହେଲା ଯାର । ମହତ ନାମେ କଳେବର ।। ୧୨୭
ଆଶ୍ରୟ ଯାର ସତ୍ତ୍ୱଗୁଣ । ଏମନ୍ତ ସେ ଶରୀର ପୁଣ ।। ୧୨୮
ଯା'ଠାରୁ ବିଧାତା ସଂଭୂତ । ମୁଁ ଯେଉଁ ଧାତାଠାରୁ ଜାତ ।। ୧୨୯
ତ୍ରିଗୁଣ ଯେଉଁ ଅହଂକାର । ସେ ଅଟେ ବିଭୂତି ମୋହର ।। ୧୩୦
ତେଣେ ଦେବତା ଭୂତଗଣ । ସର୍ଜଇ ଇନ୍ଦ୍ରିୟଙ୍କୁ ପୁଣ ।। ୧୩୧
୨୩ ଯେବଣ ମହାତ୍ମାର ବଶେ । ଅଛୁଁ ଏମାନେ ଦିବାନିଶେ ।। ୧୩୨
କ୍ରିୟାଶକ୍ତିରେ ବନ୍ଧା ହୋଇ । ସୂତ୍ରରେ ଯେସନେ ଚଢ଼େଇ ।। ୧୩୩
ମହତ ତତ୍ତ୍ୱ ଅହଂକାର । ବୈକୃତ ଭୂତସର୍ଗ ଆର ।। ୧୩୪
ଇନ୍ଦ୍ରିୟବର୍ଗ ସହିତରେ । ସମସ୍ତେ ଯା' ଅନୁଗ୍ରହରେ ।। ୧୩୫
ମିଳିଣ ହୋଇ ଏକସ୍ଥାନ । କରୁଁ ଏ ବ୍ରହ୍ମାଣ୍ଡରଚନ ।। ୧୩୬
୨୪ କର୍ମରୂପ ଗ୍ରନ୍ଥିକି ନେଇ । ଲୋକମାନଙ୍କୁ ଯେହୁ ଦେଇ ।। ୧୩୭
ସେ ମାୟା ଯାହାର ରଚନ । ଜାଣି ପାରଇ ତାକୁ ଜନ ।। ୧୩୮
ଗୁଣସର୍ଗରେ ମୋହ ହୋଇ । ତହୁଁ ତରିବା ନ ଜାଣଇଁ ।। ୧୩୯
ଲୟ, ଉଦୟ ରୂପ ଯାର । ତାହାଙ୍କୁ ମୋର ନମସ୍କାର ।। ୧୪୦
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ।। ୧୪୧

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୁବନକୋଶେ ଶ୍ରୀସଂକର୍ଷଣସ୍ତୋତ୍ରଂ
ନାମ ସପ୍ତଦଶୋଽଧ୍ୟାୟଃ ।।

# ଅଷ୍ଟାଦଶ ଅଧ୍ୟାୟ

ଅଷ୍ଟାଦଶେ ତତୋ ମେରୋଃ ପୂର୍ବାଦିକ୍ରମତସ୍ତ୍ରିଷୁ ।
ତ୍ରିଷୁ ଚୋତ୍ତରବର୍ଷେଷୁ ସେବ୍ୟସେବକବର୍ଣ୍ଣନମ୍ ॥ ୧

ଶ୍ରୀଶୁକ ଉବାଚ

୧ ଭଦ୍ରାଶ୍ୱ ନାମେ ଖ୍ୟାତ ହୋଇ । ଯେବଣ ବରଷ ଅଟଇ ॥ ୧
ସେ ବରଷର ଅଧୀଶ୍ୱର । ଭଦ୍ରଶ୍ରବା ନାମ ତାହାର ॥ ୨
ତାହାର କୁଳପତିମାନେ । ସେବକଶ୍ରେଷ୍ଠ ଯେଉଁ ଜନେ ॥ ୩
ଭଦ୍ରଶ୍ରବସ ନାମେ ଖ୍ୟାତ । ଅଟନ୍ତି ସେହୁ ଧର୍ମସୁତ ॥ ୪
ବିଷ୍ଣୁର ପ୍ରିୟ ଯେ ଶରୀର । ହୟଶୀରଷ ନାମ ତାର ॥ ୫
ତାଙ୍କୁ ପରମ ସମାଧିରେ । ସେମାନେ ସ୍ଥାପି ହୃଦୟରେ ॥ ୬
ଏରୂପେ କରନ୍ତେ ଗାୟନ । ସନ୍ତତେ କରୁଛନ୍ତି ଧ୍ୟାନ ॥ ୭

ଶ୍ରୀଭଦ୍ରଶ୍ରବସ ଉଚୁଃ

୨ ଭଗବାନଙ୍କୁ ନମସ୍କାର । ଧର୍ମାର୍ଥ ଯଶଧନ ଯାର ॥ ୮
[1]{ନମସ୍ତେ ଧର୍ମ ଭଗବାନ । ଜୀବ-ଅବିଦ୍ୟାବିଶୋଧନ ॥}
୩ ବିଷ୍ଣୁର ଯେବଣ ଚରିତ୍ର । ଆଶ୍ଚର୍ଯ୍ୟ ଅଟଇ ବିଚିତ୍ର ॥ ୯
ସେ ବିଷ୍ଣୁ କାଳରୂପୀ ହୋଇ । ପ୍ରାଣୀଙ୍କି ହିଂସା ଆଚରଇ ॥ ୧୦
ତାହାଙ୍କୁ ଚାହିଁଲେହେଁ ଜନ । ନୁହଇ ଦେଖିତ ଭାଜନ ॥ ୧୧
ବାଳକ ଅଟଇ ଯେ ସୁତ । ବୃଦ୍ଧ ଅଟଇ ଯେହୁ ତାତ ॥ ୧୨
ତାହାଙ୍କୁ କରିଣ ଦହନ । ସେ ବେନିଙ୍କର ଯେଉଁ ଧନ ॥ ୧୩
ସେ ଧନେ ଆପଣା ଜୀବନ । ପୋଷିବି ବୋଲି କରେ ମନ ॥ ୧୪
ତୁଚ୍ଛ ବିଷୟ ସୁଖମାନ । ଭଜିବା ଅର୍ଥେ ଅନୁଦିନ ॥ ୧୫
ଯେଣୁ ସେ ଲୋକ ପାପକଥା । ସ୍ମରଣା କରଇ ସର୍ବଥା ॥ ୧୬
୪ ଅନିତ୍ୟ ଅଟେ ଏ ସଂସାର । କହନ୍ତି ଏହା ଯୋଗ୍ୟ ନର ॥ ୧୭
ଜ୍ଞାନୀମାନେ ହିଁ ସମାଧିରେ । ଦେଖନ୍ତି ସେହି ପରକାରେ ॥ ୧୮
ହେ ଅଜ ! ତଥାପି ସେମାନେ । ତୋର ମାୟାରେ ଅନୁଦିନେ ॥ ୧୯
ମୋହକୁ ଲଭନ୍ତି, ବିଚିତ୍ର । ଏ ଘେନି ତୋହର ଚରିତ ॥ ୨୦
ଏଣୁ ଛାଡ଼ିଣ ନାନାଶ୍ରମ । ତୋତେ ମୁଁ କରୁଛି ପ୍ରଣାମ ॥ ୨୧
୫ ଭୋ ନାଥ ! କର୍ତ୍ତା ନୋହୁ ତୁହି । ଆବରଣ ହିଁ ତୋର ନାହିଁ ॥ ୨୨

---

୧. "ଓଁ ନମୋ ଭଗବତେ ଧର୍ମାୟାତ୍ମବିଶୋଧନାୟ ନମଃ" ଏହି ପାଠାନ୍ତର ଅନୁସାରେ ପଦ ରଚିତ ହେଲା । ଗ୍ରନ୍ଥକାରଙ୍କ ଅନୁସୃତ ପାଠ ହେଉଛି "ଓଁ ନମୋ ଭଗବତେ ଧର୍ମାର୍ଥଯଶୋଧନାୟ ।"

ଏମନ୍ତ ହେଲେହେଁ ତୋହର । ବେଦ କରିଛି ଅଙ୍ଗୀକାର ।। ୨୩
ଜଗତ-ସର୍ଜନ ପାଳନ । ନିରୋଧରୂପ କର୍ମମାନ ।। ୨୪
ସେ କଥା ଯୁକ୍ତ ତୋହଠାରେ । ଚିତ୍ର ନୁହଇ ସେ ମାୟାରେ ।। ୨୫
ଯେଣୁ ସକଳ କାର୍ଯ୍ୟଙ୍କର । କାରଣରୂପୀ ତୁ ଈଶ୍ୱର ।। ୨୬
ସକଳ-ଆତ୍ମା ଅଟୁ ଯେଣୁ । କର୍ମ ତୋଠାରେ ଯୁକ୍ତ ତେଣୁ ।। ୨୭
ସକଳଠାରୁ ଅଟୁ ଆନ । ଯେଣୁ ତୁ ଉପାଧିରେ ହୀନ ।। ୨୮
ଅକର୍ତ୍ତାଭାବ, ଅନାବୃତ୍ତି । ଅଟଇ ତେଣୁ ଯୁକ୍ତ ରୀତି ।। ୨୯
୬ ଯୁଗାନ୍ତ ସମୟେ ତାମସ । ରୂପୀ ଅଟଇ ଯେ ରାକ୍ଷସ ।। ୩୦
ସେ ନେଇଥିଲା ବେଦ ହରି । ଯେ ନର-ଅଶ୍ୱରୂପ ଧରି ।। ୩୧
ରସାତଳରୁ ତା' ଆଣିଲେ । ବ୍ରହ୍ମା ମାଗନ୍ତେ ତାଙ୍କୁ ଦେଲେ ।। ୩୨
ତୁମ୍ଭଙ୍କୁ ମୋର ନମସ୍କାର । ସଂକଳ୍ପ ସତ୍ୟ ଅଟେ ଯାର ।। ୩୩
୭ ହରିବରଷେ ଛନ୍ତି ହରି । ନୃସିଂହମୂରତିକି ଧରି ।। ୩୪
ତା'ରୂପଗ୍ରହଣକାରଣ । ଆଗରେ କରିବା ବଖାଣ ।। ୩୫
ମହାପୁରୁଷଗୁଣଙ୍କର । ଭାଜନ, ବଇଷ୍ଣବ ବର ।। ୩୬
ଦୈତ୍ୟଦାନବକୁଳ ପୂତ । କରଇ ଯାର ସୁଚରିତ ।। ୩୭
ସେ ପ୍ରହରାଦ ପ୍ରତିକାଳେ । ସେ ବର୍ଷପୁରୁଷଙ୍କ ମେଳେ ।। ୩୮
ଫଳକାମନାରେ ବିହୀନ । ଅଟେ ଯେ ବ୍ୟଭିଚାରଶୂନ୍ୟ ।। ୩୯
ଏମନ୍ତ ଭଗତିଯୋଗକୁ । କରିଣ ସେ ପ୍ରିୟ ରୂପକୁ ।। ୪୦
କରୁଣ ଅଛି ଉପାସନ । ବୋଲଇ ଏମନ୍ତ ବଚନ ।। ୪୧
୮ ଭଗବାନଙ୍କୁ ନମସ୍କାର । ଅତ୍ୟନ୍ତ ଅଟେ ତେଜ ଯାର ।। ୪୨
ନୃସିଂହ ଆକୃତି ଯାହାର । ତୁମ୍ଭଙ୍କୁ ମୋର ନମସ୍କାର ।। ୪୩
ହେ ବଜ୍ରନଖ ! ବଜ୍ରଦନ୍ତ । ପ୍ରକାଶ ହୁଅ ଅବିରତ ।। ୪୪
କର୍ମବାସନାମାନ ମୋର । ପୁଣ ପୁଣ ଦଗଧ କର ।। ୪୫
ତମୋଗୁଣକୁ କର ନାଶ । ଆତ୍ମା-ଅଭୟକୁ ପ୍ରକାଶ ।। ୪୬
୯ ମଙ୍ଗଳ ହେଉ ଜଗତର । ପ୍ରସନ୍ନ ହେଉ ଖଳନର ।। ୪୭
ମଙ୍ଗଳ ଏକ-ଆରକରେ । ବାଞ୍ଛା କରନ୍ତୁ ମନେ ନରେ ।। ୪୮
ସେ ପ୍ରାଣୀମାନଙ୍କର ମନ । ଶାନ୍ତିକି ଭଜୁ ଅନୁଦିନ ।। ୪୯
ତାଙ୍କ ଆମ୍ଭ ନିଷ୍କାମମତି । କୃଷ୍ଣେ ପ୍ରବେଶ ହେଉ ନିତି ।। ୫୦
୧୦ ଆମ୍ଭର କାହାରି ସଙ୍ଗତେ । ସଙ୍ଗମ ନୋହୁ କଦାଚିତେ ।। ୫୧
ଦଇବେ ହେଲେ ଗୃହ, ଧନ । ସୁତ, ତରୁଣୀ, ବନ୍ଧୁଜନ ।। ୫୨
ଏମାନଙ୍କର ତୁଲେ ନୋହୁ । ବୈଷ୍ଣବଙ୍କର ସଙ୍ଗେ ହେଉ ।। ୫୩
ପ୍ରାଣପୋଷଣେ ତୋଷମନ । ଲଭଇ ଯେଉଁ ଜ୍ଞାନୀଜନ ।। ୫୪
ସିଦ୍ଧିକି ଯେବଣ ପ୍ରକାରେ । ଲଭଇ ସେ ଅବିଳମ୍ବରେ ।। ୫୫

| | | | | | |
|---|---|---|---|---|---|
| | ଗୃହାଦି-ଆସକ୍ତ ଯେ ହୋଇ | । | ସେ ରୂପେ ସିଦ୍ଧ ସେ ନୁହଇ | ।। | ୫୬ |
| ୧୧ | ପ୍ରଭାବ ଅତିଶୟ ଯାର | । | ସେ ବିକ୍ରମକୁ ମୁକୁନ୍ଦର | ।। | ୫୭ |
| | ଯେଉଁ ବୈଷ୍ଣବଙ୍କ ସଙ୍ଗରେ | । | ଶ୍ରବଣେ ଶୁଣନ୍ତି ଯେ ନରେ | ।। | ୫୮ |
| | ତାଙ୍କ ଅନ୍ତରେ ହରି ପଶେ | । | ମାନସ ମଳକୁ ବିନାଶେ | ।। | ୫୯ |
| | ଗଙ୍ଗାଦିତୀର୍ଥ ପ୍ରତିଦିନ | । | ସେବା କରନ୍ତି ଯେଉଁ ଜନ | ।। | ୬୦ |
| | ତାହାଙ୍କ ଶରୀରରୁ ଜାତ | । | ଦୁରିତ କରଇ ନିହତ | ।। | ୬୧ |
| | ସେ ସାଧୁଜନଙ୍କୁ କେ ଅବା | । | ଏ ଘେନି ନ କରିବ ସେବା | ।। | ୬୨ |
| ୧୨ | ନିଷ୍କାମ ଭକ୍ତି ବିଷ୍ଣୁଠାର | । | ଅଛି ଯେବଣ ମନୁଷ୍ୟର | ।। | ୬୩ |
| | ଧର୍ମଜ୍ଞାନାଦି ସର୍ବଗୁଣେ | । | ସହିତ ହୋଇ ସୁରଗଣେ | ।। | ୬୪ |
| | ସେ ଲୋକଠାରେ ଥାନ୍ତି ନିତି | । | କୃଷ୍ଣେ ନ କରେ ଯେ ଭଗତି | ।। | ୬୫ |
| | ବାହ୍ୟରେ ବିଷୟସୁଖରେ | । | ଧାମଇଁ ଯେ ମନୋରଥରେ | ।। | ୬୬ |
| | ତାହାର କାହୁଁ ହେବ ପୁଣ | । | ମହତ ଲୋକଙ୍କର ଗୁଣ | ।। | ୬୭ |
| ୧୩ | ଅଟଇ ମୀନମାନଙ୍କର | । | ଆତ୍ମା ବାଞ୍ଛିତ ଯେହ୍ନେ ନୀର | ।। | ୬୮ |
| | ସେହିରୂପରେ ପ୍ରାଣୀଙ୍କରି | । | ସାକ୍ଷାତ ଆତ୍ମା ଅଟେ ହରି | ।। | ୬୯ |
| | ମହତ ଜନ ତାଙ୍କୁ ତେଜି | । | ଯେବେ ସଦନେ ସୁଖେ ମଜ୍ଜି | ।। | ୭୦ |
| | ତେବେ ଗୃହସ୍ଥଭାର୍ଯ୍ୟାଙ୍କର | । | ବୟସେ ମହତ୍ତ୍ୱ ବେଭାର | ।। | ୭୧ |
| | ଜ୍ଞାନେ ମହତ ଭାବ ନୋହି | । | ସେ ରୂପେ ଅଟେ ଏ କଥା ହି | ।। | ୭୨ |
| ୧୪ | ସେ ଘେନି ତୃଷ୍ଣା, କ୍ରୋଧ, ମାନ | । | ଅଭିନିବେଶ, ସ୍ପୃହା, ଦୈନ୍ୟ | ।। | ୭୩ |
| | [1]ବିଷାଦ, ଭୟ ଆଦିଙ୍କର | । | ମୂଳ ଅଟଇ ଯେ ମନ୍ଦିର | ।। | ୭୪ |
| | ଯହୁଁ ସଂସାର ପୁଣ ପୁଣ | । | ଏମନ୍ତ ଗୃହକୁ ଛାଡ଼ିଣ | ।। | ୭୫ |
| | ଅଭୟ ଅର୍ଥେ ନୃସିଂହର | । | ପାଦ ଆଶ୍ରୟ କର ନର | ।। | ୭୬ |
| ୧୫ | କାମଦେବରୂପକୁ ଧରି | । | କେତୁମାଳରେ ଛନ୍ତି ହରି | ।। | ୭୭ |
| | ଲକ୍ଷ୍ମୀର ପ୍ରିୟକଥାମାନ | । | କରିବା ଅର୍ଥେ ଦେଇ ମନ | ।। | ୭୮ |
| | ଯେ ପ୍ରଜାପତି ସମ୍ବତ୍ସର | । | ରାତ୍ରଦିବସରୂପେ ତାର | ।। | ୭୯ |
| | ପୁତ୍ରଦୁହିତାମାନେ ଛନ୍ତି | । | ଅଟନ୍ତି ସେ ବରଷପତି | ।। | ୮୦ |
| | ଶତେ ବରଷେ ଦିନ ଯେତେ | । | ସଂଖ୍ୟାରେ ଅଟନ୍ତି ସେ ତେତେ | ।। | ୮୧ |
| | ଯେଉଁ ଦୁହିତାମାନେ ତହିଁ | । | ପ୍ରଜାପତିର ଛନ୍ତି ରହି | ।। | ୮୨ |
| | ବିଷ୍ଣୁଚକ୍ରତେଜେ ତାଙ୍କର | । | ମାନସ ଅଟଇ ଅସ୍ଥିର | ।। | ୮୩ |
| | ତାଙ୍କର ଗର୍ଭ ଯେତେ ହୋଇ | । | ଚକ୍ରତେଜେ ସେ ଧ୍ୱସ୍ତ ଯାଇ | ।। | ୮୪ |
| | ମରିଣ ପୁଣି ଭୂମିଦେଶେ | । | ପଡ଼ନ୍ତି ସଂବତ୍ସର ଶେଷେ | ।। | ୮୫ |
| ୧୬ | ଅତ୍ୟନ୍ତ ସୁନ୍ଦର ଗମନ | । | ବିଳାସେ ଅଟେ ଯେ ଶୋଭନ | ।। | ୮୬ |
| | ସମନ୍ଦହାସ ଅବଲୋକ | । | ତାର ଲୀଳାରେ କିଛି ଟେକ | ।। | ୮୭ |

୧. ବିଷାଦ-ଆଧି-ଭୟଙ୍କର ।

ସୁନ୍ଦର ଭ୍ରୂଲତାମଣ୍ଡଳ । ତେଣେ ଯେ ବଦନ କମଳ ॥ ୮୮
ସୁନ୍ଦର ଅଟେ ତା' ଶୋଭାରେ । ଲକ୍ଷ୍ମୀକି ରମନ୍ତେ ତହିଁରେ ॥ ୮୯
ନିଜ ଇନ୍ଦ୍ରିୟଙ୍କୁ ହରଷ । କରୁଅଛନ୍ତି ଦିବାନିଶ ॥ ୯୦
୧୭ ବିଷ୍ଣୁର ମାୟାମୟ ହୋଇ । ସେ ଯେଉଁ ରୂପ ପ୍ରକାଶଇ ॥ ୯୧
ତାହାକୁ କମଳା ତହିଁରେ । ପରମ ସମାଧିଯୋଗରେ ॥ ୯୨
ସମ୍ବତ୍ସର ପ୍ରଜାପତିର । ସୁତାଙ୍କୁ ଘେନି ସଙ୍ଗତର ॥ ୯୩
ରାତ୍ରରେ କରେ ଉପାସନ । ଯେ ତାହାଙ୍କର ଭାଇମାନ ॥ ୯୪
ତାହାଙ୍କ ସଙ୍ଗତେ ଦିବସେ । ସେବା କରଇ ମନତୋଷେ ॥ ୯୫
ଏମନ୍ତ ପ୍ରକାର ବଚନ । କରେ ସେ କମଳା ଗାୟନ ॥ ୯୬
୧୮ ଇନ୍ଦ୍ରିୟମାନଙ୍କ ଈଶ୍ୱର । ଭଗବାନଙ୍କୁ ନମସ୍କାର ॥ ୯୭
ସର୍ବଗୁଣବିଶେଷେ ଯାର । ଲକ୍ଷିତ ଆତ୍ମା ଅଟେ ସାର ॥ ୯୮
କ୍ରିୟାମାନଙ୍କର ଚିତ୍ତର । ସଂକଳ୍ପମାନଙ୍କ ଈଶ୍ୱର ॥ ୯୯
ପଞ୍ଚ ବିଷୟ ଏକାଦଶ । ଇନ୍ଦ୍ରିୟ ଅଟନ୍ତି ଯା' ଅଂଶ ॥ ୧୦୦
ବେଦେ ଭକତ ଯେ ଅଟଇ । ସେ କର୍ମମାର୍ଗେ ଯାକୁ ପାଇ ॥ ୧୦୧
ଅନ୍ନମୟ, ଅମୃତମୟ । ଅଟନ୍ତି ଯେହୁ ସର୍ବମୟ ॥ ୧୦୨
ଯେ ସହ, ଓଜ, ବଳ ସାର । ତାଙ୍କୁ ମୋହର ନମସ୍କାର ॥ ୧୦୩
୧୯ ତୁମ୍ଭେ ଇନ୍ଦ୍ରିୟମାନଙ୍କର । ସ୍ୱଭାବେ ଅଟ ଅଧୀଶ୍ୱର ॥ ୧୦୪
ତୁମ୍ଭଙ୍କୁ ଆରାଧି ସନ୍ତତେ । ଯେବଣ ସ୍ତିରୀ ଏ ଜଗତେ ॥ ୧୦୫
ବାଞ୍ଛା କରନ୍ତି ପତି ଆନ । ତାଙ୍କ ଆୟୁଷ, ପୁତ୍ର, ଧନ ॥ ୧୦୬
ସେ ପତିମାନେ ପାଳିବାରେ । ସମର୍ଥ ନୁହନ୍ତି ସଂସାରେ ॥ ୧୦୭
ଯେଣୁ ସେ ଆପଣା ଶରୀର । ରକ୍ଷାରେ ନୁହନ୍ତି ଈଶ୍ୱର ॥ ୧୦୮
୨୦ ଭୟଆତୁର ଯେଉଁ ଜନ । ତାକୁ ଯେ କରଇ ପାଳନ ॥ ୧୦୯
ଆତ୍ମଲାଭରୁ ଯେ ଈଶ୍ୱର । ଅଧିକ ନ ମଣେ ଇତର ॥ ୧୧୦
ଯାର କାହିଁରୁ ନାହିଁ ଭୀତି । ସେ ତୁମ୍ଭେ ଅଟ ଏକ ପତି ॥ ୧୧୧
ଯେବେ ଏଥିରୁ ହୋଏ ଆନ । ଯେହ୍ନେ ମଣ୍ଡଳେଶ୍ୱରମାନ ॥ ୧୧୨
ପରସ୍ପରରେ ତାଙ୍କ ପ୍ରାୟ । ଜାତ ହୁଅଇ ତେବେ ଭୟ ॥ ୧୧୩
୨୧ ଯେ ତୁମ୍ଭେ ଏମନ୍ତ ଈଶ୍ୱର । ପାଦପଙ୍କଜକୁ ତୁମ୍ଭର ॥ ୧୧୪
ସକଳ କାମ ଦୂର କରି । ପୂଜା କରଇ ଯେଉଁ ନାରୀ ॥ ୧୧୫
ସକଳ କାମ ସେ ଲଭଇ । ଯେ କିଛି ବାଞ୍ଛିଣ ପୂଜଇ ॥ ୧୧୬
ଭୋ ନାଥ ! ତାହାକୁ କେବଳ । ପ୍ରଦାନ କର ସେହି ଫଳ ॥ ୧୧୭
ଯେଣୁ ସେ ଫଳଭୋଗ ଶେଷେ । ହେଲେ ସେ ଅର୍ଥ ଯାଇ ନାଶ ॥ ୧୧୮
ତେଣୁ ସେ ପରିତାପ ପାଇ । ସେ ଅର୍ଥ ଅନିତ୍ୟ ଅଟଇ ॥ ୧୧୯

୨୨ ବ୍ରହ୍ମାଦି ଦେବଗଣମାନେ । ମୋର ପ୍ରାପ୍ତିକି ବାଞ୍ଛି ମନେ ॥ ୧୨୦
ଇନ୍ଦ୍ରିୟସୁଖେ ଦେଇ ମନ । କରନ୍ତି ଉଗ୍ର ତପମାନ ॥ ୧୨୧
ତୁମ୍ଭର ପାଦପରାୟଣ । ବିନୁ ସେମାନେ ମୋତେ ପୁଣ ॥ ୧୨୨
ଲଭନ୍ତି ନାହିଁ ହେ ଈଶ୍ୱର । ତୋଠାରେ ଯେଣୁ ମନ ମୋର ॥ ୧୨୩
୨୩ ଯେ କରପଙ୍କଜ ତୁମ୍ଭର । ଭଗତମାନଙ୍କର ଶିର ॥ ୧୨୪
କରିଣ ଅଛ ନିବେଶିତ । ମୋ'ଶିରେ ଦିଅ ତା' ଅଚ୍ୟୁତ ॥ ୧୨୫
ହେ ଶ୍ରେଷ୍ଠ ! ଚିହ୍ନ କରି ମୋତେ । ବକ୍ଷରେ ଧରିଛ ସନ୍ତତେ ॥ ୧୨୬
ମୋଠାରେ କେବଳ ଆଦର । ଭକ୍ତଙ୍କଠାରେ କୃପା ତୋର ॥ ୧୨୭
ଏ ଘେନି ଈଶ୍ୱର-ଚେଷ୍ଟାକୁ । କେବା ସମର୍ଥ ତର୍କିବାକୁ ॥ ୧୨୮
୨୪ ରମ୍ୟକ ବରଷେ ବିଷ୍ଣୁର । ଯେ ପ୍ରିୟ ମତ୍ସ୍ୟ ଅବତାର ॥ ୧୨୯
ମନୁ ଯେ ଥିଲେ ସେ ଖଣ୍ଡରେ । ତାଙ୍କୁ ଦେଖାଇଲେ ପୂର୍ବରେ ॥ ୧୩୦
ମହତ ଭକ୍ତିଯୋଗେ ସେହି । ଏବେ ହିଁ ତାଙ୍କୁ ଆରାଧଇ ॥ ୧୩୧
ସେ ମନୁ ଏମନ୍ତ ପ୍ରକାରେ । ବଚନ ପଢ଼ି ସ୍ତୁତି କରେ ॥ ୧୩୨
୨୫ ଯେ ମୁଖ୍ୟତମ, ସତ୍ତ୍ୱ, ପ୍ରାଣ । ଯେ ଓଜ, ସହ, ବଳ, ପୁଣ ॥ ୧୩୩
ଯେ ଭଗବାନ ମହାମୀନ । ତାହାଙ୍କୁ କରୁଛୁଁ ବନ୍ଦନ ॥ ୧୩୪
୨୬ ସକଳ ଲୋକପାଳେ ଯାର । ରୂପକୁ ଅନ୍ତର ବାହାର ॥ ୧୩୫
କରି ନାହାନ୍ତି ବିଲୋକନ । ବେଦ ଅଟଇ ଯାର ସ୍ୱନ ॥ ୧୩୬
ବ୍ରାହ୍ମଣ ଆଦିଙ୍କ ନାମରେ । ବିଧିନିଷେଧ-ଅର୍ଥଦ୍ୱାରେ ॥ ୧୩୭
ବଶ କରିଛ ଏ ଜଗତ । ସେ ତୁମ୍ଭେ ଈଶ୍ୱର ଏମନ୍ତ ॥ ୧୩୮
କାଷ୍ଠପିତୁଳିକି ଯେସନ । ବଶ କରିଣ ଥାଇ ଜନ ॥ ୧୩୯
୨୭ ଯେବଣ ଲୋକପାଳଙ୍କର । ମତ୍ସରରୂପେ ଥାଇ ଜ୍ୱର ॥ ୧୪୦
ସେମାନେ ଯାହାକୁ ଛାଡ଼ିଣ । ଏକ ଆରେକରେ ମିଳିଣ ॥ ୧୪୧
ଦ୍ୱିପଦ ଚତୁଷ୍ପଦ ଆର । ଜଙ୍ଗମ ଯେ ଅବା ସ୍ଥାବର ॥ ୧୪୨
ଯେ କେହି ଆନ ଏ ଜଗତେ । ଦ୍ୱିଗୁଣ ଅଛନ୍ତି ସଂତତେ ॥ ୧୪୩
ତାଙ୍କୁ କରିବାକୁ ପାଳନ । କେବେହେଁ ନୋହିଲେ ଭାଜନ ॥ ୧୪୪
୨୮ ଯହିଁରେ ଊର୍ମିମାଳମାନେ । ଦିଶୁ ଥାଆନ୍ତି ସ୍ଥାନେ ସ୍ଥାନେ ॥ ୧୪୫
ତୁମ୍ଭେ ସେ ପ୍ରଳୟ-ସିନ୍ଧୁରେ । ହେ ଅଜ ! ମୋହ ସଙ୍ଗତରେ ॥ ୧୪୬
ପୃଥ୍ୱୀକି[1] ଧରି ନିଜ ବଳେ । ଭ୍ରମଣ କର[2] ପୂର୍ବକାଳେ ॥ ୧୪୭
ଯେତେ ଓଷଧି ଲତାମାନ । ତାଙ୍କର ଯେ ପୃଥିବୀ ସ୍ଥାନ ॥ ୧୪୮
ଜଗତପ୍ରାଣିଗଣଙ୍କର । ତୁ ଆତ୍ମା ତୋତେ ନମସ୍କାର ॥ ୧୪୯
୨୯ ହିରଣ୍ମୟ ଖଣ୍ଡେ[3] ହରି । ଅଛନ୍ତି କୂର୍ମତନୁ ଧରି ॥ ୧୫୦

୧. ପୃଥିବୀ । ୨. କଲ । ୩. ବର୍ଷେ ।

ପିତୃଗଣଙ୍କ ଅଧିପତି । ଅର୍ଯ୍ୟମା ନାମ ଯାର ଖ୍ୟାତି ॥ ୧୫୧
ସେ ବରଷରେ ଯେଉଁ ନରେ । ସେମାନଙ୍କର ସଙ୍ଗତରେ ॥ ୧୫୨
ସେ ପ୍ରିୟ ତନୁକୁ ବିଷ୍ଣୁର । ସ୍ତୁତି କରୁଛି ନିରନ୍ତର ॥ ୧୫୩
ପୁଣି ସେ ଅର୍ଯ୍ୟମା ତହିଁରେ । ଏମନ୍ତ ମନ୍ତ୍ର ଜପ କରେ ॥ ୧୫୪
୩୦ ଯେ କୂର୍ମରୂପୀ ଭଗବାନ । ସଂପୂର୍ଣ୍ଣ ସତ୍ତ୍ୱଗୁଣ ସ୍ଥାନ ॥ ୧୫୫
ଯାହାର ବିଶେଷଣ ନାହିଁ । ଯାର ସ୍ଥାନକୁ ଲକ୍ଷି ନୋହି ॥ ୧୫୬
ଯେ ନୋହେ କାଳରେ କଳିତ । ଯେ ପୁଣ ଅଟେ ସର୍ବଗତ ॥ ୧୫୭
ଯେ ତୁମ୍ଭେ ଜଗତ ଆଧାର । ତୁମ୍ଭଙ୍କୁ ମୋର ନମସ୍କାର ॥ ୧୫୮
୩୧ ବହୁତ ରୂପରେ ଲକ୍ଷିତ । ହୋଇ ଯେ ଦିଶଇ ଶୋଭିତ ॥ ୧୫୯
ସେ ପୃଥ୍ୱୀ ଆଦି ଏ ଯାହାର । ମାୟାନିର୍ମିତ କଳେବର ॥ ୧୬୦
ଯାହାର ସଂଖ୍ୟା କିଛି ନାହିଁ । ଉପଲମ୍ଭିତ[1] ଯେଣୁ ନୋହି ॥ ୧୬୧
ବଚନେ ନିରୁକ୍ତ ନୋହିଣ । ଅଛି ଏ ପ୍ରପଞ୍ଚ ଯେବଣ ॥ ୧୬୨
ସେ ଅଟେ ଯାହାର ଆକାର । ତୁମ୍ଭଙ୍କୁ ମୋର ନମସ୍କାର ॥ ୧୬୩
୩୨ ମନୁଷ୍ୟ ଆଦି କୃମି ଦଂଶ । ଅଣ୍ଡଜ, ତରୁ ଗୁଳ୍ମ-ବଂଶ ॥ ୧୬୪
ଏ ରୂପେ ଯେଉଁ ଚରାଚର । ପିତୃ, ଭୂତ ଇନ୍ଦ୍ରିୟ ଆର ॥ ୧୬୫
ସ୍ୱର୍ଗ, ଆକାଶ, କ୍ଷିତି, ଗିରି । ଦ୍ୱୀପ, ସମୁଦ୍ର ନଦୀବାରି ॥ ୧୬୬
ଗ୍ରହ, ନକ୍ଷତ୍ର ଏ ରୂପରେ । ଯେ ଏକ ବିଖ୍ୟାତ ସଂସାରେ ॥ ୧୬୭
୩୩ ଯେଉଁମାନଙ୍କର ବିଶେଷ । ଅସଂଖ୍ୟ ହୋଇଣ ପ୍ରକାଶ ॥ ୧୬୮
ଏମନ୍ତ ପ୍ରକାର ତୁମ୍ଭର । ଅଟେ ନାମ, ରୂପ, ଆକାର ॥ ୧୬୯
ଜ୍ଞାନୀଏ ତୁମ୍ଭର ଠାବରେ । ଚତୁର୍ବିଂଶ ଆଦି ରୂପରେ ॥ ୧୭୦
ସଂଖ୍ୟାକୁ କଲେକ କଳ୍ପନ । ଯେବଣ ତତ୍ତ୍ୱଜ୍ଞାନେ ଜନ ॥ ୧୭୧
ସେ ସଂଖ୍ୟା କରଇ ବିନାଶ । ତୁମ୍ଭେ ସେ ସାଂଖ୍ୟରେ ପ୍ରକାଶ ॥ ୧୭୨
ସିଦ୍ଧାନ୍ତରୂପ କଳେବର । ତୁମ୍ଭଙ୍କୁ ମୋର ନମସ୍କାର ॥ ୧୭୩
୩୪ ଯଜ୍ଞପୁରୁଷ ନାରାୟଣ । ବରାହରୂପକୁ ଧରିଣ ॥ ୧୭୪
ଉତ୍ତରକୁରୁରେ ଅଛନ୍ତି । ତହିଁ ଏ ଦେବୀ ବସୁମତୀ ॥ ୧୭୫
କୁରୁମାନଙ୍କ ସଙ୍ଗତରେ । ସୁଦୃଢ଼ ଭଗତିଯୋଗରେ ॥ ୧୭୬
ସ୍ତୁତି କରଇ ଏହୁ[2] ସାର । ଉପନିଷଦ ପଢ଼େ ଆର ॥ ୧୭୭
୩୫ ଭଗବାନଙ୍କୁ ନମସ୍କାର । ମନ୍ତ୍ରତତ୍ତ୍ୱରେ ଚିହ୍ନ ଯାର ॥ ୧୭୮
ଯାହାର ଯଜ୍ଞ-କ୍ରତୁ[3] ବେନି । ସ୍ୱରୂପ ବୋଲି କରି ମାନି ॥ ୧୭୯
ମହାଅଧ୍ୱରମାନେ ଯାର । ଅଟେ ଅବୟବ ଆକାର ॥ ୧୮୦
ଯେ ମହାପୁରୁଷ ଈଶ୍ୱର । କର୍ମରେ ଶୁଚିଭାବ ଯାର ॥ ୧୮୧

---

୧. ଉପଲମ୍ଭିତ = ଅନୁଭୂତ । ୨. ଯେହୁ । ୩. ଯଜ୍ଞ = ଅଯୂପ; କ୍ରତୁ = ସଯୂପ ।

ଯେ ତିନିଯୁଗେ¹ ପ୍ରକାଶିତ । ତୁମ୍ଭଙ୍କୁ ପ୍ରଣାମ ସଂତତ ।। ୧୮୨
୩୬ କର୍ମରେ କର୍ମଫଳେ ଯାର । ଅଦୃଶ୍ୟ ଅଟଇ ଶରୀର ।। ୧୮୩
ସେ ରୂପ ଦେଖିବାକୁ ମନେ । ବାଞ୍ଛନ୍ତି ପୁଣ ବୁଧଜନେ ।। ୧୮୪
ଦେହ ଇନ୍ଦ୍ରିୟ ଆଦିଠାରେ । ଖୋଜନ୍ତି ବିବେକି²ମନରେ ।। ୧୮୫
ଯେସନେ ଦାରୁରେ ଦହନ । ମନ୍ଥି ଦେଖନ୍ତି ପ୍ରାଜ୍ଞଜନ ।। ୧୮୬
ତେଣେ ପ୍ରକାଶେ ଆତ୍ମା ଯାର । ତାହାଙ୍କୁ ମୋର ନମସ୍କାର ।। ୧୮୭
୩୭ ବିଷୟ, ଇନ୍ଦ୍ରିୟବ୍ୟାପାର । ଦେବତା, ଦେହ, ଅହଂକାର ।। ୧୮୮
କାଳ, ଏ ସର୍ବ ମାୟାଗୁଣ । ଏଣେ ବସ୍ତୁରୂପରେ ପୁଣ ।। ୧୮୯
ଆତ୍ମରୂପରେ ବିଲୋକନ । କରୁଅଛନ୍ତି ଯାକୁ ଜନ ।। ୧୯୦
ଯେଉଁମାନଙ୍କର ବିଚାରେ । ଯମ ନିୟମ ଆଦିଦ୍ୱାରେ ।। ୧୯୧
ଆତ୍ମାରେ ଅତିଶୟ ହୋଇ । ବୁଦ୍ଧି ନିଶ୍ଚୟକୁ ଲଭଇ ।। ୧୯୨
ସେ ଯାହାହେତୁ କଲେ ଦୂର । ମାୟାନିମିତ୍ତ କଳେବର ।। ୧୯୩
ଏମନ୍ତ ଅଟେ ଯେ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ।। ୧୯୪
୩୮ ଜଗତ-ସର୍ଜନ-ପାଳନ । ବିନାଶ ଏ ତିନି ବିଧାନ ।। ୧୯୫
ଜୀବ ନିମିତ୍ତେ ଯେ ବାଞ୍ଛଇ । ଯାର ବାଞ୍ଛିତ ଏ ନୁହଇ ।। ୧୯୬
କେବଳ ସାକ୍ଷୀପ୍ରାଏ ହୋଇ । ସକଳ କଥାକୁ ଦେଖଇ ।। ୧୯୭
ଯାହାର ମାୟା ଗୁଣଦ୍ୱାରେ । ବିଶ୍ୱସର୍ଜନ ଆଦି କରେ ।। ୧୯୮
ସେ ମାୟା ହେଲେ ଅଚେତନ । ଯାର ନିକଟୁଁ ଲଭେ ଜ୍ଞାନ ।। ୧୯୯
ଯେହ୍ନେ ଚୁମ୍ବକଶିଳ ତୁଲେ । ସଂମୁଖ ହୋଇ ଲୌହ ବୁଲେ ।। ୨୦୦
ଯେ ତୁମ୍ଭେ ଗୁଣକର୍ମଙ୍କର । ସାକ୍ଷୀ, ତୁମ୍ଭଙ୍କୁ ନମସ୍କାର ।। ୨୦୧
୩୯ ଜଗତ-ଆଦି ଯେ ଶୂକର । ଧରିଣ ମୋତେ ଦଶନର ।। ୨୦୨
ପାତାଳୁଁ ପ୍ରଳୟସାଗର । ମଧ୍ୟରୁ ହୋଇଲେ ବାହାର ।। ୨୦୩
ଯେ ଗଜପ୍ରାୟ ପ୍ରତିଗଜ । ସମାନ ଅଟଇ ଦିତିଜ³ ।। ୨୦୪
ଯୁଦ୍ଧେ ତାହାକୁ ସଂହାରିଣ । ଖେଳିବା ପ୍ରାଏକ ହୋଇଣ ।। ୨୦୫
ହୋଇଲେ ଯେଉଁ ପ୍ରଭୁ ସ୍ଥିତ । ତାହାଙ୍କୁ କରୁଛି ବନ୍ଦିତ ।। ୨୦୬
ବ୍ରାହ୍ମଣ ଦୀନବଂଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ।। ୨୦୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୁବନକୋଶେ ଶ୍ରୀବର୍ଷଦେବସ୍ତୁତିର୍ନାମ ଅଷ୍ଟାଦଶୋଽଧ୍ୟାୟଃ ।।

---

୧. ତିନିଗୁଣେ । ୨. ବିବେକ । ୩. ଦିତିଜ - ଦିତିରପୁତ୍ର ହିରଣାକ୍ଷ୍ୟ ।

# ଊନବିଂଶ ଅଧ୍ୟାୟ

ଊନବିଂଶେ କିଂପୁରୁଷେ ଭାରତେ ଚୋପବର୍ଣ୍ଣ୍ୟତେ ।
ସେବ୍ୟସେବକଭାବଶ୍ଚ ଭାରତଶ୍ରେଷ୍ଠ୍ୟମେବ ଚ ॥ ୧

ଶ୍ରୀଶୁକ ଉବାଚ

୧ ନାମରେ ଯେବଣ ବରଷ । ବିଖ୍ୟାତ ଅଟେ କିଂପୁରୁଷ ॥ ୧
ତହିଁ ପରମ ଭାଗବତ । ଅଟନ୍ତି ଯେଉଁ ହନୁମନ୍ତ ॥ ୨
ଶୁଦ୍ଧ ଅଟଇ ଭକ୍ତି ତାର । କିଂପୁରୁଷଙ୍କ ସଙ୍ଗତର ॥ ୩
ଯେ ରାମ ଅଟେ ଭଗବାନ । ଲକ୍ଷ୍ମଣ ଯାର ଭାଇ ସାନ ॥ ୪
ଯେ ଆଦିପୁରୁଷ ଉତ୍ତମ । ଅଟନ୍ତି ସୀତା-ଅଭିରାମ ॥ ୫
ତାଙ୍କୁ ସେ କରଇ ସେବନ । ତା' ପାଦେ ଦେଇ ନିଜ ମନ ॥ ୬
୨ ଆର୍ଷ୍ଟିଷେଣର ସଙ୍ଗେ ଥାଇ । ଗନ୍ଧର୍ବେ ଯାହା ଛନ୍ତି ଗାଇ ॥ ୭
ନିଜ ସ୍ୱାମୀର କଥା ପୁଣ । ଅଟଇ ପରମ କଲ୍ୟାଣ ॥ ୮
ସେ କଥା ଶ୍ରବଣ କରନ୍ତି । ଆପଣେ ଏମନ୍ତ ଗାଆନ୍ତି ॥ ୯
୩ ଭଗବାନଙ୍କୁ ନମସ୍କାର । ଉତ୍ତମ ଅଟେ ଯଶ ଯାର ॥ ୧୦
ମହତ ଜନଙ୍କ ଲକ୍ଷଣ । ଶୁଦ୍ଧ ଚରିତ ବ୍ରତ ପୁଣ ॥ ୧୧
ଏମାନେ ଛନ୍ତି ଯାହାଠାର । ସଂଯତ ଅଟେ ଚିତ୍ତ ଯାର ॥ ୧୨
ଲୋକମାର୍ଗକୁ ଅବିରତ । ହୋଇଛନ୍ତି ଯେ ଅନୁଗତ ॥ ୧୩
ଯେ ସାଧୁ ପ୍ରସିଦ୍ଧିର ସ୍ଥାନ । କଷଟି ପାଷାଣ ଯେସନ ॥ ୧୪
ବ୍ରହ୍ମଣ୍ୟଦେବ ଯେ ବୋଲାନ୍ତି । ଯେ ମହାପୁରୁଷ ଅଟନ୍ତି ॥ ୧୫
ଯେ ମହାରାଜ ଅଧୀଶ୍ୱର । ତାହାଙ୍କୁ ମୋର ନମସ୍କାର ॥ ୧୬
୪ ବିଶୁଦ୍ଧ ଅନୁଭବ ମାତ୍ର । କେବଳ ଅଟେ ଯାର ଗାତ୍ର ॥ ୧୭
ଜାଗ୍ରତ ଆଦି ହୋଇ ଯେତେ । ଗୁଣଙ୍କ ବ୍ୟବସ୍ଥା ଜଗତେ ॥ ୧୮
ସ୍ୱରୂପ ପ୍ରକାଶେ ସେ ଦୂର । ହୋଇଣ ଗଲେ ଯାହାଠାର ॥ ୧୯
ଦୃଶ୍ୟରୁ ଅଟେ ଯେ ଇତର । ନାମରୂପ ହିଁ ନାହିଁ ତାର ॥ ୨୦
ଯେ ଶାନ୍ତ, ଅହଂକାର ହୀନ । ଯାହାକୁ ଶୁଦ୍ଧଚିତ୍ତ ଜନ ॥ ୨୧
ବ୍ରହ୍ମରୂପରେ ଚିନ୍ତା କରେ । ଶରଣ ପଶୁଛି ତାଠାରେ ॥ ୨୨
୫ ମନୁଷ୍ୟବିନୁ ରାବଣର । ଆନରେ ନୁହଇ ସଂହାର ॥ ୨୩
ଏ ଘେନି କେବଳ ପ୍ରଭୁର । ନୁହଇ ମର୍ତ୍ତ୍ୟ-ଅବତାର ॥ ୨୪
ଯୁବତିସଙ୍ଗ ଆଦିକୃତ । ଦୁଃଖ ନୁହଇ ନିବାରିତ ॥ ୨୫
ଲୋକମାନଙ୍କୁ ଏ ପ୍ରକାର । ଶିକ୍ଷା ଦେବାକୁ ଅବତାର ॥ ୨୬
ଯେବେ ଏ କଥା ଅଟେ ଆନ । ସୀତାସକାଶୁଁ ଯେ ବ୍ୟସନ ॥ ୨୭
ସେ ହେବ କାହୁଁ ଈଶ୍ୱରର । ନିଜ ଆତ୍ମାରେ ଯା' ବିହାର ॥ ୨୮

୬ ଯେ ବାସୁଦେବ ଭଗବାନ । ନୋହେ ତ୍ରିଲୋକେ ସକ୍ତମନ ।। ୨୯
ଯେ ଆତ୍ମା ଅଟେ ଜ୍ଞାନୀଙ୍କର । ପ୍ରଧାନ ମିତ୍ର ହିଁ ତାଙ୍କର ।। ୩୦
ଏ ଘେନି ସ୍ତିରୀସକାଶରେ । ମୋହ ନ ଲଭନ୍ତେ ସଂସାରେ ।। ୩୧
[1]ଲକ୍ଷ୍ମଣପରିତ୍ୟାଗ କଥା । ଯୁକ୍ତ ନୁହଇ ସେ ସର୍ବଥା ।। ୩୨
୭ ମହତଠାରୁ ଉତପତି । ରୂପ, ବଚନ, ବୁଦ୍ଧି ଜାତି ।। ୩୩
ତାହାଙ୍କ ତୋଷକୁ କାରଣ । ନୁହନ୍ତି ଏମାନେ ହିଁ ପୁଣ ।। ୩୪
ଏତେ କଥାରେ ଆମ୍ଭେ ହୀନ । କାନନେ ବୁଲୁଁ ଅନୁଦିନ ।। ୩୫
ଆମ୍ଭର ସଙ୍ଗେ ମିତ୍ରଭାବ । ଯେଣୁ ଆଚରିଲେ ରାଘବ ।। ୩୬
୮ ସୁର ଅସୁର ଅବା ହୋଇ । ନର ଅନର[2] ଯେହି କେହି ।। ୩୭
ଭଜିବ ରାମଙ୍କୁ ସଂତତ । ଯେ ରାମ ଜାଣଇଁ ସୁକୃତ ।। ୩୮
ମନୁଜ-ଆକୃତି ଈଶ୍ୱର । ଯେ ନେଲେ ବଇକୁଣ୍ଠ ପୁର ।। ୩୯
ଉତ୍ତରକୋଶଳନଗରୀ । ଯେତେକ ଥିଲେ ଦେହଧାରୀ ।। ୪୦
୯ ନରନାରାୟଣ ନାମରେ । ବିଖ୍ୟାତ ହୋଇ ଜଗତରେ ।। ୪୧
ଭାରତ ବରଷରେ ହରି । କଳ୍ପପ୍ରାନ୍ତକୁ ଅନୁସରି ।। ୪୨
ଯହିଁ ବୈରାଗ୍ୟ, ଧର୍ମ ଜ୍ଞାନେ । ଐଶ୍ୱର୍ଯ୍ୟ, ଇନ୍ଦ୍ରିୟଶମନେ ।। ୪୩
ନିରହଂକାର ଭାବ ପୁଣି । ଆତ୍ମଜ୍ଞାନକୁ ଲଭେ ପ୍ରାଣୀ ।। ୪୪
ଏମନ୍ତେ ତପ କରୁଛନ୍ତି । ଜ୍ଞାନୀଙ୍କି ଅନୁଗ୍ରହ ଚିନ୍ତି ।। ୪୫
ଅବ୍ୟକ୍ତଗତି ଯେ ଈଶ୍ୱର । କୃପା କରନ୍ତି ପ୍ରାଣୀଠାର ।। ୪୬
୧୦ ବିଷ୍ଣୁକଥିତ ସାଂଖ୍ୟଯୋଗ । ସହିତେ ସାବର୍ଣ୍ଣିର ଆଗ ।। ୪୭
ଯେ ପଞ୍ଚରାତ୍ର ଉପଦେଶ । ନାରଦ କରିବେ ପ୍ରକାଶ ।। ୪୮
ବର୍ଣ୍ଣ-ଆଶ୍ରମ-ଧର୍ମଯୁତ । ହୋଇ ଯେ ଅଛନ୍ତି ବହୁତ ।। ୪୯
ସେ ପ୍ରଜାମାନଙ୍କ ସଙ୍ଗରେ । ପରମ ଭଗତିଭାବରେ ।। ୫୦
ସେ ନରନାରାୟଣଙ୍କର । ପାଶକୁ ଯାଇ ମୁନିବର ।। ୫୧
ସନ୍ତୋଷେ କରନ୍ତି ସେବନ । କହନ୍ତି ଏମନ୍ତ ବଚନ ।। ୫୨
୧୧ ଭଗବାନଙ୍କୁ ନମସ୍କାର । ଶାନ୍ତ ସୁଚରିତ ଯାହାର ।। ୫୩
ଯେ ଅଟେ ଅହଂକାରହୀନ । ଅଟେ ଯେ ଅକିଂଚନଧନ ।। ୫୪
ରଷିମାନଙ୍କେ ଶ୍ରେଷ୍ଠ ପୁଣ । ଅଟନ୍ତି ଯେହୁ ନାରାୟଣ ।। ୫୫
ପରମହଂସମାନଙ୍କର । ପରମ ଗୁରୁ ଯେ ଈଶ୍ୱର ।। ୫୬
ଯେ ଆତ୍ମଜ୍ଞାନୀମାନଙ୍କର । ଈଶ୍ୱର ତାଙ୍କୁ ନମସ୍କାର ।। ୫୭

---

୧. ଦେବଦୂତ ଶ୍ରୀରାମଙ୍କୁ ଜଣାଇଲେ — ଏଠାକୁ ଯେ ଆସିବ, ଆପଣ ତାକୁ ମାରିବେ । ସେତେବେଳେ ଲକ୍ଷ୍ମଣ ଦ୍ୱାରରେ ଥିଲେ । ଦୁର୍ବାସା ଆସିଛନ୍ତି ବୋଲି ଜଣାଇବାକୁ ପ୍ରବିଷ୍ଟ ହୁଅନ୍ତେ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ମାରିବାକୁ ଉଦ୍ୟତ ହେଉଥିଲେ କିନ୍ତୁ ବଶିଷ୍ଠଙ୍କ କଥାରେ ଛାଡ଼ିଦେଲେ ।

୨. ବାନର ।

| | | | | | |
|---|---|---|---|---|---|
| | ଏମନ୍ତ ପ୍ରକାରେ ସେ ତହିଁ | । | ଗାୟନ କରୁଛନ୍ତି ରହି | ।। | ୫୮ |
| ୧୨ | ଏ ବିଶ୍ୱ-ସ୍ୱର୍ଗଆଦିଙ୍କର | । | କର୍ତ୍ତା ଅଟନ୍ତି ଯେ ଈଶ୍ୱର | ।। | ୫୯ |
| | ଏମନ୍ତ ହୋଇଲେହେଁ ତହିଁ | । | ଅହଂକାରରେ ବଦ୍ଧ ନୋହି | ।। | ୬୦ |
| | ଯେ ସର୍ବପ୍ରାଣୀମାନଙ୍କର | । | ଥିଲେହେଁ ଶରୀରଭିତର | ।। | ୬୧ |
| | ଦେହଜ କ୍ଷୁଧାତୃଷାଦିରେ | । | ପୀଡ଼ାକୁ ନ ଲଭେ ସଂସାରେ | ।। | ୬୨ |
| | ସକଳ କରେ ବିଲୋକନ | । | ଗୁଣରେ ଯାହାର ନୟନ | ।। | ୬୩ |
| | କେବେହେଁ ବନ୍ଧନ ନୁହଇ | । | ଏମନ୍ତ ଈଶ୍ୱର ଅଟଇ | ।। | ୬୪ |
| | କାହିଁରେ ନୋହେ ଆସକତ | । | ଏକାନ୍ତେ ଥାଇ ଅବିରତ | ।। | ୬୫ |
| | ଯେ ସାକ୍ଷୀ ଅଟେ ସକଳର | । | ତାହାକୁ ମୋର ନମସ୍କାର | ।। | ୬୬ |
| ୧୩ | ଯୋଗନିପୁଣଭାବ ଏହି | । | ବ୍ରହ୍ମା ଅଛନ୍ତି ଯାହା କହି | ।। | ୬୭ |
| | ତୁମ୍ଭେ ନିର୍ଗୁଣ ତୁମ୍ଭଠାରେ | । | ଜନ୍ତୁ ଅବଧି ଭକ୍ତି କରେ | ।। | ୬୮ |
| | ଦୁଷ୍ଟ ଦେହରେ ଅଭିମାନ | । | ଛାଡ଼ି କରିଣ ଯାହା ଜନ | ।। | ୬୯ |
| | ହେ ଯୋଗେଶ୍ୱର ! ଅନ୍ତେ ନେଇ | । | ତୋଠାରେ ମନକୁ ଦିଅଇ | ।। | ୭୦ |
| ୧୪ | ଯେ ଇହ ପରଲୋକେ ଜାତ | । | ସେ କାମସୁଖେ ଅବିରତ | ।। | ୭୧ |
| | ଲମ୍ପଟ ହୋଇ ଯେଉଁ ଜନ | । | ଚିନ୍ତଇ ସୁତ, ଦାରା, ଧନ | ।। | ୭୨ |
| | ଯେ ଦେହ କୁତ୍ସିତ ଅଟଇ | । | ତାର ନାଶରୁ ଭୟ ପାଇ | ।। | ୭୩ |
| | ପଣ୍ଡିତ ଲୋକ ହୋଇ ଯେବେ | । | ଏରୂପେ ଆଚରଇ ତେବେ | ।। | ୭୪ |
| | ବିଦ୍ୟାରେ ଯେତେ ଯତ୍ନ ତାର | । | କେବଳ ଶ୍ରମ ସେ ପ୍ରକାର | ।। | ୭୫ |
| ୧୫ | ଯେଣୁ ପଣ୍ଡିତମାନଙ୍କର | । | ଦଶା ଅଟଇ ଏ ପ୍ରକାର | ।। | ୭୬ |
| | ହେ ପ୍ରଭୁ ! ତେଣୁ ତୁ ଆମ୍ଭର | । | ଯୋଗମାର୍ଗ ବିଧାନ କର | ।। | ୭୭ |
| | ଯେ ଯୋଗ ପ୍ରବର୍ତ୍ତେ ତୋଠାରେ | । | ସହଜ ବାସନାରୂପରେ | ।। | ୭୮ |
| | ଆମ୍ଭ କୁତ୍ସିତ କଳେବରେ | । | ଯେ ହୋଇଅଛି ତୋ' ମାୟାରେ | ।। | ୭୯ |
| | ଅହଂତା ମମତା ଏ ଦୁଇ | । | ସ୍ୱଭାବେ ଦୁର୍ଭେଦ୍ୟ ଅଟଇ | ।। | ୮୦ |
| | ଯେବଣ ଯୋଗେ ତାହା ଆଜ | । | ନାଶ କରିବୁଁ ଅଧୋକ୍ଷଜ | ।। | ୮୧ |
| ୧୬ | ମଳୟ, ତ୍ରିକୂଟ, ମୈନାକ | । | ମଙ୍ଗଳପ୍ରସ୍ଥ, ଋଷ୍ୟମୂକ | ।। | ୮୨ |
| | ମହେନ୍ଦ୍ର, କୂଟକ, ଋଷଭ | । | ଯେ ଦ୍ରୋଣ, ରୈବତ, କକୁଭ | ।। | ୮୩ |
| | ବିନ୍ଧ୍ୟ, ବାରିଧାର, ବେଙ୍କଟ | । | ଯେ କୋଣ୍ୱ[୧], ସହ୍ୟ, ଚିତ୍ରକୂଟ | ।। | ୮୪ |
| | ଯେ ଦେବଗିରି, ଇନ୍ଦ୍ରକୀଳ | । | ଶ୍ରୀଶୈଳ, କାମଗିରି, ନୀଳ | ।। | ୮୫ |
| | ଯେ ଗୋକାମୁଖ, ଗୋବର୍ଦ୍ଧନ | । | ଯେ ରକ୍ଷଗିରି, ଶୁକ୍ତିମାନ | ।। | ୮୬ |
| | ପାରିପାତ୍ର ଏ ଆଦି ଆନ | । | ଶତସହସ୍ର ଗିରିମାନ | ।। | ୮୭ |
| | ତାହାଙ୍କ ନିତମ୍ବରୁ ଜାତ | । | ନଦ-ନଦୀଏ ଅସଂଖ୍ୟାତ | ।। | ୮୮ |

୧. କୋଳ, କୋଲ୍ଲକ, କୋନ୍ୱ ।

୧୭ ନାମମାତ୍ରକେ ଏ ଜଗତ । ପବିତ୍ର କରନ୍ତି ନିୟତ ॥ ୮୯
ସେ ନଦୀମାନଙ୍କର ନୀର । ପ୍ରଜାଏ ଭରତଖଣ୍ଡର ॥ ୯୦
କରନ୍ତି ସ୍ନାନ, ଆଚମନ । ତେଣେ ହରନ୍ତି ପାପମାନ ॥ ୯୧
ଯେ ଚନ୍ଦ୍ରବଶା, ପୟସ୍ୱତୀ । ଶର୍କରାବର୍ତ୍ତା, ବେଦସ୍ମୃତି ॥ ୯୨
ନିର୍ବିନ୍ଧ୍ୟା, ପୟୋଷ୍ଣୀ, କାବେରୀ । ସୁଷୋମା, ରେବା, ଗୋଦାବରୀ ॥ ୯୩
ଗଙ୍ଗା, ଯମୁନା, ସରସ୍ୱତୀ । ସରଯୂ, ବେଣ୍ୱା, ଦୃଷଦ୍ୱତୀ ॥ ୯୪
ଯେ ବେନି ନଦ ଅନ୍ଧ, ଶୋଣ । ତାପୀ, କୌଶିକୀ, ବିଶ୍ୱା ପୁଣ ॥ ୯୫
ଯେ ତାମ୍ରପର୍ଣ୍ଣୀ, ଅବଟୋଦା । ଅସିକ୍ନୀ, ବିତସ୍ତା[୧], ନର୍ମଦା ॥ ୯୬
ଯେ ମହାନଦୀ, ଓଘବତୀ[୨] । ଶତଦ୍ରୁ, ବୃଧା ଯେ ଗୋମତୀ ॥ ୯୭
ଯେ ଭୀମରଥୀ, କୃଷ୍ଣବେଣୀ[୩] । ତ୍ରିସାମା, ଋଷିକୁଲ୍ୟା ପୁଣି ॥ ୯୮
ଯେ କୃତମାଳା, ବୈହାୟସୀ । ମରୁ, ତୁଙ୍ଗଭଦ୍ରାକୁ ମିଶି ॥ ୯୯
ଚର୍ମଣବତୀ ନାମେ ଏକ । ଚନ୍ଦ୍ରଭାଗା ନାମେ ଆରକ ॥ ୧୦୦
ଏ ରୂପେ ମହାନଦୀମାନେ । ଅଛନ୍ତି ଏଥି ସ୍ଥାନେ ସ୍ଥାନେ ॥ ୧୦୧
୧୮ ଏହି ଭାରତ ବରଷରେ । ଜନମ ଲଭି କରି ନରେ ॥ ୧୦୨
ସାତ୍ତ୍ୱିକ, ରାଜସ, ତାମସ । କର୍ମରେ ଦେବତା, ମାନୁଷ ॥ ୧୦୩
ଲଭନ୍ତି ନାରକୀ ଶରୀର । କର୍ମ ଅନୁସାରେ ତାଙ୍କର ॥ ୧୦୪
ସମସ୍ତଙ୍କରି ସର୍ବଗତି । କାଳେ ହୁଅଇ ଉତପତି ॥ ୧୦୫
ଯେଉଁ ବର୍ଣ୍ଣରେ ଯେ ବିଧାନ । ମୋକ୍ଷକୁ ଅଟଇ ସାଧନ ॥ ୧୦୬
ସେ ରୂପେ କଲେ ଆଚରଣ । ମୋକ୍ଷାଦି ହୋଏ ଏଥି ପୁଣ ॥ ୧୦୭
୧୯ ଯେ ଆତ୍ମା ସର୍ବ ପ୍ରାଣୀଙ୍କର । ରାଗାଦି ଦୋଷ ନାହିଁ ଯାର ॥ ୧୦୮
ବଚନେ ଗୋଚର ଯେ ନୋହି । ଯାହାର ସ୍ଥାନ କିଛି ନାହିଁ ॥ ୧୦୯
ଯେହୁ ପରମ ଆତ୍ମାଭାବ । ଧରି ଅଛନ୍ତି ବାସୁଦେବ ॥ ୧୧୦
ଯେବେ ହୁଅଇ ତାଙ୍କ ଠାର । ନିଷ୍କାମ ଭକ୍ତିଯୋଗ ସାର ॥ ୧୧୧
ସେ ଅପବର୍ଗର ଲକ୍ଷଣ । ଏମନ୍ତରୂପେ ତୁମ୍ଭେ ଜାଣ ॥ ୧୧୨
ଯେ ନାନା ଗତିକି କାରଣ । ଅବିଦ୍ୟାଗ୍ରନ୍ଥି ଅଟେ ପୁଣ ॥ ୧୧୩
ତାର ଛେଦନଦ୍ୱାରେ ଯେବେ । ବୈଷ୍ଣବସଙ୍ଗ ହୋଏ ଭାବେ ॥ ୧୧୪
ସକଳ ପୁରୁଷାର୍ଥଙ୍କର । ସାଧନ ମନୁଷ୍ୟଶରୀର ॥ ୧୧୫
ଦେବତାମାନେ ଏହୁ ରୀତି । ଆଜହିଁ ଗାୟନ କରନ୍ତି ॥ ୧୧୬
୨୦ ଆଶ୍ଚର୍ଯ୍ୟ ଅଟଇ ଏମାନେ । କି ପୁଣ୍ୟ କଲେ ପୂର୍ବ ଦିନେ ॥ ୧୧୭
ନିଜ ଇଛାଏ ଭଗବାନ । ଏହାଙ୍କୁ ହେଲେ କି ପ୍ରସନ୍ନ ॥ ୧୧୮
ଯେ ଜନ୍ମ ମନୁଷ୍ୟମଧ୍ୟରେ । ଲଭିଲେ ଭରତଖଣ୍ଡରେ ॥ ୧୧୯

---

୧. ବିତ୍ରସ୍ତା । ୨. ରୋଧସ୍ୱତୀ । ୩. କୃଷ୍ଣବେଣ୍ୱା, କୃଷ୍ଣବେଣ୍ୟା (କୃଷ୍ଣା ବେଣ୍ୱା) ।

କୃଷ୍ଣସେବାକୁ ଯୋଗ୍ୟ ହୋଇ । ଯେବଣ ଜନମ ଅଟଇ ॥ ୧୨୦
ଆମ୍ଭମାନଙ୍କରି ହିଁ ଯହିଁ । କେବଳ ସ୍ପୃହା ଅଛି ରହି ॥ ୧୨୧
୨୧ ଯଜ୍ଞ, ତପସ୍ୟା, ବ୍ରତ, ଦାନ । ଏ ଆଦି ଯେତେ କର୍ମମାନ ॥ ୧୨୨
ଏମାନେ ଅଟନ୍ତି ଦୁଷ୍କର । ଏହି ସାଧନରେ ଆମ୍ଭର ॥ ୧୨୩
ଯେ ସ୍ୱର୍ଗପ୍ରାପ୍ତି ହେଲା ପୁଣ । ସେ ତୁଚ୍ଛ, ତେଣେ କି କାରଣ ॥ ୧୨୪
ଯେବଣ ସ୍ୱର୍ଗରେ ବିଷ୍ଣୁର । ପାଦପଙ୍କଜସ୍ମୃତି ଦୂର ॥ ୧୨୫
ଅତ୍ୟନ୍ତ ଇନ୍ଦ୍ରିୟ ଭୋଗରେ । ବିନାଶ ହେଲା ସେ କ୍ରମରେ ॥ ୧୨୬
୨୨ କଳ୍ପ ଆୟୁଷ ଯାହାଙ୍କର । ସେ ଧ୍ରୁବ ଆଦି ମୁନିବର ॥ ୧୨୭
ସ୍ଥାନ ବିଜୟ ଅନନ୍ତରେ । ଜନମ ଲଭନ୍ତି ସଂସାରେ ॥ ୧୨୮
କ୍ଷଣ ଆୟୁଷ ନରଙ୍କର । ଭାରତଭୂମିମଧ୍ୟେ ବର ॥ ୧୨୯
ମନସ୍ୱୀ ଅଟନ୍ତି ସେମାନେ । ମନୁଷ୍ୟଦେହେ ଅଳ୍ପଦିନେ ॥ ୧୩୦
ଯେଉଁ କର୍ମକୁ କରିଥାନ୍ତି । ତାହାଙ୍କୁ ସେ ନାଶ କରନ୍ତି ॥ ୧୩୧
ଯହିଁରେ ନାହିଁ କିଛି ଭୀତି । ସେ ହରିପଦକୁ ଗମନ୍ତି ॥ ୧୩୨
୨୩ ଯହିଁ ନାହାନ୍ତି ଭଗବାନ । କଥା-ଅମୃତନଦୀମାନ ॥ ୧୩୩
ସେ କଥା ଅମୃତ ଅଧୀନ । ସୁସାଧୁ ଭାଗବତ ଜନ ॥ ୧୩୪
ହରିପୂଜନ ସହିତରେ । ନାହାନ୍ତି ଯେବଣ ଲୋକରେ ॥ ୧୩୫
ସେ ଯେବେ ବ୍ରହ୍ମଲୋକ ହୋଇ । ତେବେହେଁ ସେବାଯୋଗ୍ୟ ନୋହି ॥ ୧୩୬
୨୪ ଯହିଁ ସଂପୂର୍ଣ୍ଣ ଅଛି ଜ୍ଞାନ । କ୍ରିୟା ଆବର ଦ୍ରବ୍ୟମାନ ॥ ୧୩୭
ସେ ନରଜନ୍ମ ଏ ଭୁବନେ । ଲଭି ଯେବଣ ଜନମାନେ ॥ ୧୩୮
ମୋକ୍ଷକୁ ଯତ୍ନ ନ କରନ୍ତି । ପୁଣି ସେ ବନ୍ଧନ ଲଭନ୍ତି ॥ ୧୩୯
ବନ୍ଧନେ ପକ୍ଷୀ ଯେହ୍ନେ ଥାଇ । ଲୁବ୍ଧକଠାରୁ ମୁକ୍ତ ହୋଇ ॥ ୧୪୦
ସେ ବୃକ୍ଷେ ପ୍ରମତ୍ତ ହୋଇଣ । ଭ୍ରମନ୍ତେ ବନ୍ଧା ଯାଏ ପୁଣ ॥ ୧୪୧
୨୫ ଶ୍ରଦ୍ଧାରେ ଯଜ୍ଞେ ଯେଉଁ ନରେ । ଯଥୋକ୍ତ ବିଧିରେ ମନ୍ତ୍ରରେ ॥ ୧୪୨
ସଂପାଦି ଚରୁ ପୁରୋଡାଶ । ହବିକି କରନ୍ତି ପ୍ରକାଶ ॥ ୧୪୩
ଏକ ଅଟନ୍ତି ଯେଉଁ ହରି । ତାଙ୍କୁ ଇନ୍ଦ୍ରାଦି ନାମ ଧରି ॥ ୧୪୪
ଡାକନ୍ତେ ଆସିଣ ସେ ପାଶେ । [୧]ଭାଗକୁ ଘେନନ୍ତି ସନ୍ତୋଷେ ॥ ୧୪୫
ସକଳ ସୁଖମାନଙ୍କର । ପ୍ରଭୁ ଅଟନ୍ତି ସେ ଈଶ୍ୱର ॥ ୧୪୬
୨୬ ବାଞ୍ଛା କରଇ ଯାହା ଜନ । ସେ ବାଞ୍ଛା କରନ୍ତି ପ୍ରଦାନ ॥ ୧୪୭
ଏ ସତ୍ୟ ଅଟେ ତଥାପି ହି । ଅର୍ଥଦାୟକ ସେହୁ ନୋହି ॥ ୧୪୮
ଯେଣୁ ପ୍ରଦାନ-ଅନନ୍ତର । ଅର୍ଥୀ ଭାବକୁ ଭଜେ ନର ॥ ୧୪୯
ଯେ ପୁଣ ଇଚ୍ଛା ନ କରଇ । କେବଳମାତ୍ରକ ଭଜଇ ॥ ୧୫୦

---

୧. ଅଗ୍ନୟେ ତ୍ୱା ଜୁଷ୍ଟଂ ନିର୍ବପାମି, ଇନ୍ଦ୍ରାୟ ତ୍ୱା ଜୁଷ୍ଟଂ ନିର୍ବପାମି । (ଶ୍ରୁତିଃ) ।

| | | | | |
|---|---|---|---|---|
| | ନିଜ ଚରଣପଲ୍ଲବକୁ | ପ୍ରଦାନ କରନ୍ତି ତାହାକୁ | ॥ | ୧୫୧ |
| | ଯେ ପାଦପଲ୍ଲବ ସଂସାରେ | ସକଳ କାମ ପୂର୍ଣ୍ଣ କରେ | ॥ | ୧୫୨ |
| ୨୭ | ଉତ୍ତମ ଯଜ୍ଞ, ଅଧ୍ୟୟନ | ଯେ ବା ଆମ୍ଭର କର୍ମମାନ | ॥ | ୧୫୩ |
| | ତହିଁରୁ ସ୍ୱର୍ଗଭୋଗୁଁ ଶେଷ | ଯେ ଅବା ଅଛି ପୁଣ୍ୟଲେଶ | ॥ | ୧୫୪ |
| | ଆମ୍ଭର ଭରତଖଣ୍ଡରେ | ଜନମ ହେଉ ସେ ପୁଣ୍ୟରେ | ॥ | ୧୫୫ |
| | ଯେଣେ ବିଷ୍ଣୁଙ୍କୁ ଭଜେ ଜନ | କେବଳ ଥିବ ଏତେ ଜ୍ଞାନ | ॥ | ୧୫୬ |
| | ଯେଣୁ ଭଜିଲା ଲୋକଙ୍କର | ସୁଖକୁ କରେ ସେ ବିସ୍ତାର | ॥ | ୧୫୭ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୮ | ଜମ୍ବୂଦ୍ୱୀପର ହେ ରାଜନ | ଅଛନ୍ତି ଉପଦ୍ୱୀପମାନ | ॥ | ୧୫୮ |
| | ଆଠ ପ୍ରକାର ସେ ଅଟନ୍ତି | ଋଷିଏ ଏରୂପେ କହନ୍ତି | ॥ | ୧୫୯ |
| | ସଗର ରାଜାର କୁମରେ | ଅଶ୍ୱ ଖୋଜିବା ସମୟରେ | ॥ | ୧୬୦ |
| | ଏ ଭୂମି ସକଳ ଦିଗରେ | ଖୋଳନ୍ତେ କଲେ ତା' ପୂର୍ବରେ | ॥ | ୧୬୧ |
| ୨୯ | ସୁବର୍ଣ୍ଣପ୍ରସ୍ଥ ନାମେ ଏକ | ଚନ୍ଦ୍ରଶୁକ୍ଳ ନାମେ ଆରକ | ॥ | ୧୬୨ |
| | ତୃତୀୟ ନାମ ଆବର୍ତ୍ତକ | ଚତୁର୍ଥ ଅଟେ ରମଣକ | ॥ | ୧୬୩ |
| | ମନ୍ଦହାରକ[୧] ଯେ ପଞ୍ଚମ | ଷଷ୍ଠର ପାଞ୍ଚଜନ୍ୟନାମ | ॥ | ୧୬୪ |
| | ସିଂହଳ ଲଙ୍କା ନାମ ହୋଇ | ଆବର ଉପଦ୍ୱୀପ ଦୁଇ | ॥ | ୧୬୫ |
| ୩୦ | ଏ ରୂପେ ହେ ଭାରତବର | ବିଭାଗ ଏ ଜମ୍ବୂଦ୍ୱୀପର | ॥ | ୧୬୬ |
| | ଆମ୍ଭର ଯଥା ଉପଦେଶ | କଲୁଁ ସେ ପ୍ରକାରେ ପ୍ରକାଶ | ॥ | ୧୬୭ |
| | କହଇ ବିପ୍ର ଦୀନବନ୍ଧୁ | ମୋତେ ଉଦ୍ଧର କୃପାସିନ୍ଧୁ | ॥ | ୧୬୮ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଜମ୍ବୂଦ୍ୱୀପବର୍ଣ୍ଣନଂ
ନାମ ଊନବିଂଶୋଽଧ୍ୟାୟଃ ॥

## ବିଂଶ ଅଧ୍ୟାୟ

ବିଂଶେ ପ୍ଲକ୍ଷାଦିଷଡ୍‌ଦ୍ୱୀପସ୍ଥିତିମାହ ସହାର୍ଣ୍ଣବୈଃ ।
ଲୋକାଲୋକସ୍ଥିତିଞ୍ଚାନ୍ତର୍ବହିର୍ଭାଗାଦିମାନତଃ ॥ ୧

[୨]ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ହେ ନୃପ ! ଏଥୁ ଅନନ୍ତର | ପ୍ଲକ୍ଷାଦି ଦ୍ୱୀପମାନଙ୍କର | ॥ | ୧ |
| | ଯେତେକ ଅଟଇ ପ୍ରମାଣ | ଯେ ଅବା ତାଙ୍କର ଲକ୍ଷଣ | ॥ | ୨ |

୧. ମନ୍ଦରହରିଣ। ୨. ଶ୍ରୀଋଷିରୁବାଚ।

| | | | | | |
|---|---|---|---|---|---|
| | ସେହି କ୍ରମରେ ତୋର ଆଗ | । | କହିବା ବରଷ ବିଭାଗ | ।। | ୩ |
| ୨ | ଏ ଜମ୍ବୂଦ୍ୱୀପର ଆକାର | । | ଯେତେକ ଅଟଇ ବିସ୍ତାର | ।। | ୪ |
| | ଏହାକୁ ଲବଣ ସାଗର | । | ବେଢ଼ିଛି ତେତିକି ଆକାର | ।। | ୫ |
| | ଯେସନେ ଜମ୍ବୂଦ୍ୱୀପମହୀ | । | ମେରୁକୁ ବେଢ଼ିଅଛି ରହି | ।। | ୬ |
| | ଲବଣସିନ୍ଧୁକୁ ଦ୍ୱିଗୁଣ | । | ବିସ୍ତାର ପ୍ଲକ୍ଷ ଦ୍ୱୀପ ପୁଣ | ।। | ୭ |
| | ବେଢ଼ିଛି ଯେହ୍ନେ ଉପବନ | । | ଢଳିକି[୧] ବେଢ଼ିଣ ଶୋଭନ | ।। | ୮ |
| | ସୁବର୍ଣ୍ଣପ୍ଲକ୍ଷ ତରୁବର | । | ଅଟଇ ଦ୍ୱୀପଖ୍ୟାତିକର | ।। | ୯ |
| | ଜମ୍ବୂସମାନ ଉଚ୍ଚ ସେହି | । | ଯହିଁରେ ଅଗ୍ନି ଅଛି ରହି | ।। | ୧୦ |
| | ଯେ ଇଧ୍ମଜିହ୍ୱ ନାମେ ଖ୍ୟାତ | । | ଅଟଇ ପ୍ରିୟବ୍ରତ ସୁତ | ।। | ୧୧ |
| | ନିଜ ଦ୍ୱୀପକୁ ସେ ପୂର୍ବରେ | । | ବାଣ୍ଟିଣ ସପତ ପ୍ରକାରେ | ।। | ୧୨ |
| | ସାତଖଣ୍ଡରାଜାଙ୍କ ନାମ | । | ଅଟନ୍ତି ତନୁଜ ଉତ୍ତମ | ।। | ୧୩ |
| | ତାଙ୍କୁ ଦେଇଣ ଯୋଗମାର୍ଗେ | । | ପ୍ରବେଶ ହେଲେ ଅପବର୍ଗେ | ।। | ୧୪ |
| ୩ | ଶିବ, ଯବସ ନାମେ ବେନି | । | ସୁଭଦ୍ର, ଶାନ୍ତ, କ୍ଷେମ ତିନି | ।। | ୧୫ |
| | ଅମୃତ, ଅଭୟ ଆବର | । | ସାତ ବରଷ ଏ ପ୍ରକାର | ।। | ୧୬ |
| | ତହିଁରେ ଛନ୍ତି ଗିରି ସାତ | । | ନଦୀ ହିଁ ସାତ ତହିଁ ଖ୍ୟାତ | ।। | ୧୭ |
| ୪ | ଯେ ମଣିକୂଟ, ବଜ୍ରକୂଟ | । | ଇନ୍ଦ୍ରସେନ ଆର ପ୍ରକଟ | ।। | ୧୮ |
| | ଜ୍ୟୋତିଷ୍ମନ୍ତ, ସୁବର୍ଣ୍ଣ ଶୈଳ | । | ହିରଣ୍ୟଷ୍ଠୀବ, ମେଘମାଳ | ।। | ୧୯ |
| | ଅରୁଣା, ନୃମଣା ଏ ବେନି | । | ଆଙ୍ଗିରସୀକି ମିଶି ତିନି | ।। | ୨୦ |
| | ସାବିତ୍ରୀ, ସୁପ୍ରଭାତା ଆର | । | [୨]ଯେ ଋତମ୍ଭର, ସତ୍ୟମ୍ଭର | ।। | ୨୧ |
| | ଏ ରୂପେ ମହାନଦୀ ସାତ | । | ସେ ସାତ ବରଷେ ବିଦିତ | ।। | ୨୨ |
| | ଯେଉଁ ନଦୀଙ୍କ ଜଳମାନ | । | କରନ୍ତେ ସ୍ନାନ ଆଚମନ | ।। | ୨୩ |
| | ରଜ ତମକୁ ଧ୍ୱସ୍ତ କରି | । | ବ୍ରାହ୍ମଣ ଆଦି ବର୍ଣ୍ଣ ଚାରି | ।। | ୨୪ |
| | ହଂସ, ପତଙ୍ଗ, ଉର୍ଦ୍ଧ୍ୱାୟନ | । | ସତ୍ୟାଙ୍ଗ ନାମରେ ଶୋଭନ | ।। | ୨୫ |
| | ସହସ୍ରସଂଖ୍ୟକ ବରଷ | । | ଅଟଇ ତାଙ୍କର ଆୟୁଷ | ।। | ୨୬ |
| | ଦେବତାଙ୍କର ପ୍ରାଏ ହୋଇ | । | ତାହାଙ୍କ ଶରୀର ଦିଶଇ | ।। | ୨୭ |
| | ବେଦସ୍ୱରୂପ, ସ୍ୱର୍ଗଦ୍ୱାର | । | ଯେ ସୂର୍ଯ୍ୟ ଆତ୍ମା ଜଗତର | ।। | ୨୮ |
| | ବେଦବିଦ୍ୟାରେ ତାଙ୍କୁ ନରେ | । | ପୂଜା କରନ୍ତି ସେ ଦ୍ୱୀପରେ | ।। | ୨୯ |
| ୫ | ପୁରାଣ ପୁରୁଷରୂପରେ | । | ଯେ ବିଷ୍ଣୁ ଖ୍ୟାତ ଜଗତରେ | ।। | ୩୦ |
| | ଯେ ଅଟେ ରୂପ ତାହାଙ୍କର | । | ଯେ ଆତ୍ମା [୩]ସତ୍ୟର, [୪]ଋତର | ।। | ୩୧ |

୧. ଢଳି = ପରିଖା ।

୨. ଏହି ପାଦସ୍ଥ ନଦୀଦୁଇଟିର ପ୍ରକୃତ ନାମ ଋତମ୍ଭରା ଓ ସତ୍ୟମ୍ଭରା । କିନ୍ତୁ ଛନ୍ଦୋଽନୁରୋଧରେ ଗ୍ରନ୍ଥକାର ଏପରି ଆକାରହୀନ ନାମକରଣ କରିଅଛନ୍ତି ।

୩. ସତ୍ୟ = ଅନୁଷ୍ଠୀୟମାନ ଧର୍ମ ।

୪. ଋତ = ପ୍ରତୀୟମାନ ଧର୍ମ ।

ଅମୃତ[୧], ମୃତ୍ୟୁ[୨] ବେନିଙ୍କର । ଆତ୍ମାସ୍ୱରୂପୀ ଯେ ଈଶ୍ୱର ।। ୩୨
ଆମ୍ଭେମାନେ ସେ ସୂର୍ଯ୍ୟଠାରେ । ଶରଣ ଯାଉଛୁଁ ସତ୍ୱରେ ।। ୩୩
୬ ପ୍ଲକ୍ଷାଦି ପଞ୍ଚଦ୍ୱୀପେ ଘର । କରିଣ ଅଛନ୍ତି ଯେ ନର ।। ୩୪
ତାଙ୍କର ଇନ୍ଦ୍ରିୟ, ଆୟୁଷ । ବୁଦ୍ଧି, ବିକ୍ରମ ଯେ ପ୍ରକାଶ ।। ୩୫
ଓଜ, ସହ, ବଳ ଆବର । ଜନ୍ମହୁଁ ଏ ସମସ୍ତଙ୍କର ।। ୩୬
ବିଶେଷ ରୂପରେ ପ୍ରକାଶ । ହୋଇଛି ସିଦ୍ଧି ଦିବାନିଶ ।। ୩୭
୭ ପ୍ଲକ୍ଷଦ୍ୱୀପର ପରିମାଣ । ଯେତେକ ଅଟଇ ପ୍ରମାଣ ।। ୩୮
ତାକୁ ଇକ୍ଷୁରସସାଗର । ବେଢ଼ିଛି ତେତିକି ବିସ୍ତାର ।। ୩୯
ଶାଲ୍ମଳୀ ଦ୍ୱୀପ ସେ ପ୍ରକାର । ପ୍ଲକ୍ଷକୁ ଦ୍ୱିଗୁଣ ବିସ୍ତାର ।। ୪୦
ସୁରାସାଗର ତା' ସମାନେ । ବେଢ଼ିଛି ତାକୁ ପ୍ରତିଷ୍ଠାନେ ।। ୪୧
୮ ପ୍ଲକ୍ଷସମାନ ହୋଇ ଯହିଁ । ଶାଲ୍ମଳୀ ତରୁ ଅଛି ରହି ।। ୪୨
ଯେଉଁ ଶାଲ୍ମଳୀରେ ମନ୍ଦିର । ବୋଲନ୍ତି ବାଳଖିଲ୍ୟ[୩]ଙ୍କର ।। ୪୩
ନିଜ ଅବୟବ ହୋଇଣ । ଅଛନ୍ତି ଯେତେ ଶ୍ରୁତିଗଣ ।। ୪୪
ତେଣେ ବିଷ୍ଣୁଙ୍କୁ କରେ ସ୍ତୁତି । ଯେ ପକ୍ଷୀମାନଙ୍କର ପତି ।। ୪୫
ସେ ଶାଳମଳୀ ତାହାଙ୍କର । ଚିହ୍ନନିମିତ୍ତେ ସେ ଦ୍ୱୀପର ।। ୪୬
୯ ପ୍ରିୟବ୍ରତ ରାଜାର ସୁତ । ଯଜ୍ଞବାହୁ ନାମେ ବିଦିତ ।। ୪୭
ସେ ଦ୍ୱୀପେ ଅଟେ ଅଧୀଶ୍ୱର । ସାତ ତନୁଜ ଥିଲେ ତାର ।। ୪୮
ତାହାଙ୍କ ନାମରେ ବିଖ୍ୟାତ । କଲେ ସେ ଦ୍ୱୀପଖଣ୍ଡ ସାତ ।। ୪୯
ପ୍ରଥମ ଖଣ୍ଡ ସୁରୋଚନ । ସଉମନସ ନାମେ ଆନ ।। ୫୦
ରମଣ, [୪]ଦେବବର୍ହ ଦୁଇ । ପଞ୍ଚମ ପାରିଭଦ୍ର ହୋଇ ।। ୫୧
ଷଷ୍ଠ ବରଷ ଆପ୍ୟାୟନ । ସପ୍ତମ ନାମ [୫]ଅଭିଜ୍ଞାନ ।। ୫୨
୧୦ ବରଷଗିରି ତହିଁ ସାତ । ନଦୀ ହିଁ ସାତ ସେ ବିଖ୍ୟାତ ।। ୫୩
ସୁରସ, ଶତଶୃଙ୍ଗ ବେନି । ବାମଦେବକୁ ମିଶି ତିନି ।। ୫୪
ଚତୁର୍ଥ କୁନ୍ଦନାମେ ଖ୍ୟାତ । ପଞ୍ଚମ କୁମୁଦ ବିଦିତ ।। ୫୫
ପୁଷ୍ପବରଷ, [୬]ସସ୍ରଶ୍ରୁତି । ଷଷ୍ଠ ସପ୍ତମେ ବେନି ଖ୍ୟାତି ।। ୫୬
ନଦୀ ଅନୁମତୀ ପ୍ରଥମ । ଦ୍ୱିତୀୟ ସିନୀବାଳୀ ନାମ ।। ୫୭
ତୃତୀୟ ସରସ୍ୱତୀ ହୋଇ । କୁହୂ, ରଜନୀ ପୁଣ ଦୁଇ ।। ୫୮
ଆବର ନନ୍ଦା, ରାକା ବେନି । ସାତ ଏ ପ୍ରକାରେ ତଟିନୀ ।। ୫୯
୧୧ ସେ ବରଷରେ ବିପ୍ରଙ୍କର । ନାମ ଅଟଇ ଶ୍ରୁତିଧର ।। ୬୦

---

୧. ଅମୃତ = ଶୁଭଫଳ । ୨. ମୃତ୍ୟୁ = ଅଶୁଭଫଳ । ୩. ବାଳଖିଲ୍ୟ = ବୃଦ୍ଧାଙ୍ଗୁଷ୍ଠପରିମାଣ ଋଷିବିଶେଷ ।
୪. ଦେବବର୍ଷ, ଦେବବର୍ହି । ୫. ଅବିଜ୍ଞାନ । ୬. ସସ୍ର = ସହସ୍ର ।

କ୍ଷତ୍ରିୟ ବୀର୍ଯ୍ୟଧର ଖ୍ୟାତ । ବୈଶ୍ୟ ବସୁଧର ବିଦିତ ॥ ୬୧
ଶୂଦ୍ରେ ବୋଲାନ୍ତି ଇଷୁଧର[୧] । ଏ ରୂପେ ସଂଜ୍ଞା ତାହାଙ୍କର ॥ ୬୨
ଯେ ବେଦମୟ ନିଶାକର । ଆତ୍ମା ଅଟନ୍ତି ପ୍ରାଣୀଙ୍କର ॥ ୬୩
ତାହାଙ୍କୁ ବେଦୋକ୍ତ ମନ୍ତ୍ରରେ । ପୂଜା କରନ୍ତି ସେ ଦ୍ୱୀପରେ ॥ ୬୪
୧୨ ଯେ କୃଷ୍ଣ, ଶୁକଳ ପକ୍ଷରେ । ନିଜ କିରଣମାନଙ୍କରେ ॥ ୬୫
ପିତୃଙ୍କୁ ଦେବତାମାନଙ୍କୁ । ବିଭାଗ କରଇ ଅନ୍ନକୁ ॥ ୬୬
ଆମ୍ଭ ସମସ୍ତ ପ୍ରଜାଙ୍କର । ରାଜା ହେଉ ସେ ନିଶାକର ॥ ୬୭
ସୁମୁଖ ହେଉ ଆମ୍ଭଠାରେ । ଏମନ୍ତ ଜପନ୍ତି ତହିଁରେ ॥ ୬୮
୧୩ ଏ ରୂପେ ସୁରାସାଗରର । ବାହ୍ୟରେ ଦ୍ୱିଗୁଣ ବିସ୍ତାର ॥ ୬୯
ପୂର୍ବ ଦ୍ୱୀପର ପ୍ରାଏ ତହିଁ । ଅଛଇ କୁଶଦ୍ୱୀପ ରହି ॥ ୭୦
ଯାହାକୁ ସମାନ ବିସ୍ତାର । ବେଢ଼ିଛି ଘୃତପାରାବାର ॥ ୭୧
ଯହିଁରେ ଦେବତାନିର୍ମିତ । ହୋଇଛି କୁଶସ୍ତମ୍ଭ ସ୍ଥିତ ॥ ୭୨
ସେ ଦ୍ୱୀପଖ୍ୟାତି ସେ କରଇ । ଜ୍ୱଳନପ୍ରାଏକ ଦିଶଇ ॥ ୭୩
କୋମଳ ଶିଖାଙ୍କ କାନ୍ତିରେ । ଦିଗମାନଙ୍କୁ ଦୀପ୍ତ କରେ ॥ ୭୪
୧୪ ହିରଣ୍ୟରେତା ନାମେ ଖ୍ୟାତ । ଯେ ପ୍ରିୟବ୍ରତରାଜାସୁତ ॥ ୭୫
ସେ ଦ୍ୱୀପେ ଅଟେ ଅଧୀଶ୍ୱର । ତାହାର ସପତ କୁମର ॥ ୭୬
ଯଥାଭାଗରେ ସେମାନଙ୍କୁ । ବାଣ୍ଟିଣ ଆପଣା ଦ୍ୱୀପକୁ ॥ ୭୭
ସକଳ ସଂପଦ ଛାଡ଼ିଲା । [୨]ଆପଣେ ତପ ଆସ୍ଥା କଲା ॥ ୭୮
ପ୍ରଥମ ବସୁ, ବସୁଦାନ । ଦୃଢ଼ରୁଚି ନାମରେ ଆନ ॥ ୭୯
ଚତୁର୍ଥ ସୁତ ନାଭିଗୁପ୍ତ । ପଞ୍ଚମ ନାମ ସତ୍ୟବ୍ରତ ॥ ୮୦
ବିପ୍ର, ବାମଦେବ ନାମରେ । ଆବର ବେନି ସହୋଦରେ ॥ ୮୧
୧୫ ବରଷମାନଙ୍କେ ତାଙ୍କର । ସୀମାବାରଣ ମହୀଧର ॥ ୮୨
ନଦୀ ହିଁ ଅଛନ୍ତି ବିଖ୍ୟାତ । ସଂଖ୍ୟାରେ ସେହୁ ସାତ ସାତ ॥ ୮୩
ବଭ୍ରୁ, ଚତୁଃଶୃଙ୍ଗ, କପିଳ । ଚିତ୍ରକୂଟ ଆର ଅଚଳ ॥ ୮୪
ଯେ ଦେବାନୀକ, ଊର୍ଦ୍ଧ୍ୱରୋମ । ଦ୍ରବିଣ ଅଟେ ଆର ନାମ ॥ ୮୫
ରସକୁଲ୍ୟା ନାମେ ପ୍ରଥମ । ଆବର ମଧୁକୁଲ୍ୟା ନାମ ॥ ୮୬
ତୃତୀୟ ଅଟେ ଶ୍ରୁତବିନ୍ଦା । ଚତୁର୍ଥ ନାମ ମିତ୍ରବିନ୍ଦା ॥ ୮୭
ପଞ୍ଚମେ ବେଦଗର୍ଭା ଖ୍ୟାତା । ଷଷ୍ଠ ଅଟଇ ଘୃତଚ୍ୟୁତା ॥ ୮୮
ମନ୍ତ୍ରମାଳା ନାମେ ଆବର । ଏ ରୂପେ ନଦୀ ସେ ଦ୍ୱୀପର ॥ ୮୯
୧୬ କୁଶଳ, କୋବିଦ ଏ କ୍ରମେ । ଅଭିଯୁକ୍ତ, କୁଳକ ନାମେ ॥ ୯୦
ସେ କୁଶଦ୍ୱୀପବାସୀ ନରେ । ଯେବଣ ନଦୀଙ୍କ ଜଳରେ ॥ ୯୧
ଯେ ଅଗ୍ନିରୂପୀ ଭଗବାନ । ତାହାଙ୍କୁ କରନ୍ତି ପୂଜନ ॥ ୯୨

୧. ଇଧ୍ମଧର । ୨. ...ତପ ସ୍ଥାନେ ଗଲା ।

୧୭ ହବିର୍ଭାଗକୁ ତୁ ବିଷ୍ଣୁର । ସାକ୍ଷାତ ବହ୍ନୁ ବୈଶ୍ୱାନର ॥ ୯୩
ବିଷ୍ଣୁର ଅଙ୍ଗରୂପେ ଖ୍ୟାତ । ଦେବତାମାନେ ଏ ଜଗତ ॥ ୯୪
ଯେ ଦତ୍ତ ତାହାଙ୍କ ନାମରେ । ସେ ହବିର୍ଭାଗ ବିଷ୍ଣୁଠାରେ ॥ ୯୫
ତୁ ନେଇ ସମର୍ପଣ କର । ଏମନ୍ତ ପଢନ୍ତି ସେ ନର ॥ ୯୬
୧୮ କ୍ରୌଞ୍ଚଦ୍ୱୀପ ତାର ବାହ୍ୟରେ । ଅଛଇ ଦ୍ୱିଗୁଣ ବିସ୍ତାରେ ॥ ୯୭
ତାହାକୁ ସମାନ ହୋଇଣ । ବେଢ଼ିଛି କ୍ଷୀରସିନ୍ଧୁ ପୁଣ ॥ ୯୮
କୁଶଦ୍ୱୀପକୁ ଯେହ୍ନେ ଘୃତ । ସାଗର ହୋଇଛି ବେଷ୍ଟିତ ॥ ୯୯
ଯହିଁରେ କ୍ରୌଞ୍ଚନାମ ହୋଇ । ପର୍ବତରାଜ ଶୋଭା ପାଇ ॥ ୧୦୦
ସେ ଦ୍ୱୀପନାମକୁ ବିଖ୍ୟାତ । କରି ରହିଛି ସେ ପର୍ବତ ॥ ୧୦୧
୧୯ ପୂର୍ବେ ଯେବଣ ପର୍ବତର । ବାଜିଣ କାର୍ତ୍ତିକେୟଶର ॥ ୧୦୨
ନିତମ୍ବଦେଶ, କୁଞ୍ଜମାନ । ହୋଇଲେ ସକଳ ମଥନ ॥ ୧୦୩
ଏମନ୍ତ ହେଲେହେଁ ବ୍ୟଥିତ । କ୍ଷୀରସିନ୍ଧୁରେ ଅବିରତ ॥ ୧୦୪
ଅଭିଷେକକୁ ସେ ଲଭିଲା । ବରୁଣ ତାକୁ ରକ୍ଷାକଲା ॥ ୧୦୫
ସେ ଘେନି ଭୟ କରି ଦୂର । ରହିଅଛି ସେ ମହୀଧର ॥ ୧୦୬
୨୦ ଯହିଁରେ ପ୍ରିୟବ୍ରତସୁତ । ଘୃତପୃଷ୍ଠ ନାମେ ବିଦିତ ॥ ୧୦୭
ଅଟଇ ଦ୍ୱୀପ-ଅଧୀଶ୍ୱର । ସେ ଦ୍ୱୀପ ସପତ ଭାଗର ॥ ୧୦୮
ବାଣ୍ଟିଣ ନିଜ ପୁତ୍ରଙ୍କର । ନାମରେ କରି ତା' ପ୍ରଚାର ॥ ୧୦୯
ସାତ ପୁତ୍ରଙ୍କୁ ସେ ସାତରେ । ନିବେଶି ପାଳକ ରୂପରେ ॥ ୧୧୦
ସେ ପ୍ରିୟବ୍ରତରାଜାସୁତ । ଅଟଇ ସ୍ୱୟେଂ ଜ୍ଞାନବନ୍ତ ॥ ୧୧୧
ପରମ କଲ୍ୟାଣ ଯା' ଯଶ । ଯେ ଆତ୍ମାରୂପରେ ପ୍ରକାଶ ॥ ୧୧୨
ସେ ହରିଚରଣକମଳେ । ପ୍ରବେଶ ହେଲା ଭକ୍ତିବଳେ ॥ ୧୧୩
୨୧ ଆମୋଦ[୧], ମଧୁରୁହ[୨] ବେନି । ମେଘପୃଷ୍ଠକୁ ମିଶି ତିନି ॥ ୧୧୪
ସୁଧାମା, ଭ୍ରାଜିଷ୍ଣୁ[୩] ନାମରେ । ଚତୁର୍ଥ ପଞ୍ଚମ କ୍ରମରେ ॥ ୧୧୫
ଯେ ଷଷ୍ଠ ଲୋହିତାର୍ଣ୍ଣ ଖ୍ୟାତି । ସପ୍ତମ ଅଟେ ବନସ୍ପତି ॥ ୧୧୬
ସେମାନଙ୍କର ସାତ ସାତ । ବରଷ-ନଦୀ, ଗିରି ଖ୍ୟାତ ॥ ୧୧୭
ଯେ ଶୁକ୍ଳ, ବର୍ଦ୍ଧନ, ଭୋଜନ । ଉପବର୍ହଣ ନାମେ ଆନ ॥ ୧୧୮
ନନ୍ଦନ, ନନ୍ଦ ବେନି ଖ୍ୟାତ । ସର୍ବତୋଭଦ୍ର ମିଶି ସାତ ॥ ୧୧୯
ଅଭୟା ଆଦ୍ୟ ନଦୀ ଖ୍ୟାତି । ଅମୃତ-ଓଘା, ତୀର୍ଥବତୀ ॥ ୧୨୦
ଆର୍ଯ୍ୟକା, ରୂପବତୀ ଘେନି । ପବିତ୍ରବତୀ, ଶୁକ୍ଳା ବେନି ॥ ୧୨୧
୨୨ ଏ ନଦୀମାନଙ୍କ ସଲିଳ । ଅଟଇ ପବିତ୍ର, ଅମଳ ॥ ୧୨୨
ସେ ଜଳ କରି ନିତ୍ୟେ ପାନ । ସେ କ୍ରୌଞ୍ଚଦ୍ୱୀପେ ଯେତେ ଜନ ॥ ୧୨୩
ପୁରୁଷ, ଋଷଭ, ଦ୍ରବିଣ । ଦେବକ ନାମରେ ସେ ପୁଣ ॥ ୧୨୪

୧. ଆମ୍ବା, ଆମ । ୨. ମଧୁରୁହ । ୩. ଭ୍ରାଜିଷ୍ଣ, ଯାଜିଷ୍ଣ ।

ବିଖ୍ୟାତ ଅଟନ୍ତି କ୍ରମରେ । ସେ ଜଳପୂର୍ଣ୍ଣ ଅଞ୍ଜଳିରେ ॥ ୧୨୫
ପୂଜନ୍ତି ବରୁଣଙ୍କୁ ଯାର । ସଲିଳମୟ କଳେବର ॥ ୧୨୬
୨୩ ହେ ଜଳମାନେ ! ଈଶ୍ୱରର । ସକାଶୁଁ ସାମର୍ଥ୍ୟ ତୁମ୍ଭର ॥ ୧୨୭
ଭୂଲୋକ, ଭୁବଲୋକ ବେନି । ସ୍ୱର୍ଗଲୋକକୁ ମିଶି ତିନି ॥ ୧୨୮
ଏହା ପବିତ୍ର ତୁମ୍ଭେ କର । ସ୍ୱରୂପେ ପ୍ରାଣୀ-ପାପ ହର ॥ ୧୨୯
ତୁମ୍ଭଙ୍କୁ ଛୁଅନ୍ତେ ଆମ୍ଭର । ଦେହମାନ ପବିତ୍ର କର ॥ ୧୩୦
ଏମନ୍ତ କରି ଅଧ୍ୟୟନ । ପୂଜା କରନ୍ତି ଅନୁଦିନ ॥ ୧୩୧
୨୪ କ୍ଷୀରସମୁଦ୍ରଅନନ୍ତରେ । ଶାକଦ୍ୱୀପ ହିଁ ଏ ପ୍ରକାରେ ॥ ୧୩୨
ବତିଶ ଲକ୍ଷ ଯୋଜନରେ । ବିସ୍ତାର ସକଳ ଦିଗରେ ॥ ୧୩୩
ତାକୁ ଦଧିମଣ୍ଡସାଗର । ବେଢ଼ିଛି ସମାନ ବିସ୍ତାର ॥ ୧୩୪
ଯହିଁରେ ଏକ [1]ଶାକଦ୍ରୁମ । ବିଖ୍ୟାତ କରେ ଦ୍ୱୀପନାମ ॥ ୧୩୫
ସେ ମହାସୁରଭି ଅଟଇ । ସେ ଦ୍ୱୀପ ସୁଗନ୍ଧ କରଇ ॥ ୧୩୬
୨୫ ତହିଁରେ ପ୍ରିୟବ୍ରତସୁତ । ଅଧିପ ମେଧାତିଥି ଖ୍ୟାତ ॥ ୧୩୭
ଦ୍ୱୀପଙ୍କୁ ପୁତ୍ରଙ୍କ ନାମରେ । ବାଣ୍ଟିଣ ସପତ ପ୍ରକାରେ ॥ ୧୩୮
ପ୍ରଥମ ପୁରୋଜବ ଖ୍ୟାତ । ମନୋଜବ ଦ୍ୱିତୀୟ ସୁତ ॥ ୧୩୯
ତୃତୀୟ ଅଟେ ବେପମାନ । ଧୂମ୍ରାନୀକ ନାମରେ ଆନ ॥ ୧୪୦
ପଞ୍ଚମ ନାମ ଚିତ୍ରରେଫ । ଷଷ୍ଠ ଅଟଇ ବହୁରୂପ ॥ ୧୪୧
ସପ୍ତମ ସୁତ ବିଶ୍ୱଧାର । ଏହାଙ୍କୁ କରି ଅଧୀଶ୍ୱର ॥ ୧୪୨
କୃଷ୍ଣେ ନିବେଶି ନିଜ ମନ । ପ୍ରବେଶ ହେଲା ତପୋବନ ॥ ୧୪୩
୨୬ ସେ ଦ୍ୱୀପମର୍ଯ୍ୟାଦା-ପର୍ବତ । ନଦୀ ଅଟନ୍ତି ସାତ ସାତ ॥ ୧୪୪
ଈଶାନ, ଉରୁଶୃଙ୍ଗ ଦୁଇ । ତୃତୀୟ ବଳଭଦ୍ର ହୋଇ ॥ ୧୪୫
ଶତକେଶର ନାମେ ଆର । ସହସ୍ରସ୍ରୋତା ତଦନ୍ତର ॥ ୧୪୬
ଯେ ଦେବପାଳ, ମହାନସ । ସାତ ପର୍ବତ ଏ ପ୍ରକାଶ ॥ ୧୪୭
ଅନଘା ଆୟୁର୍ଦା ଏ ବେନି । [2]ଉଭୟସ୍ପୃଷ୍ଟି ମିଶି ତିନି ॥ ୧୪୮
ଅପରାଜିତା, ପଞ୍ଚପଦୀ । ସହସ୍ରସ୍ତୁତି ନାମେ ନଦୀ ॥ ୧୪୯
ଆବର ନାମ ନିଜଧୃତି । ଏରୂପେ ସାତନଦୀ ଖ୍ୟାତି ॥ ୧୫୦
୨୭ ସେ ଦ୍ୱୀପେ ଯେତେକ ବରଷ । ତହିଁରେ ଛନ୍ତି ଯେ ପୁରୁଷ ॥ ୧୫୧
ବ୍ରାହ୍ମଣ ଜାତି ରତବ୍ରତ । କ୍ଷତ୍ରିୟମାନେ ସତ୍ୟବ୍ରତ ॥ ୧୫୨
ବଇଶ୍ୟମାନେ ଦାନବ୍ରତ । ଶୂଦ୍ରେ ବୋଲାନ୍ତି ଅନୁବ୍ରତ ॥ ୧୫୩
ସେମାନେ କରି ପ୍ରାଣାୟାମ । ନାଶ କରନ୍ତି ରଜ, ତମ ॥ ୧୫୪
ବିଷ୍ଣୁଙ୍କୁ ପବନରୂପରେ । ପୂଜା କରନ୍ତି ସମାଧିରେ ॥ ୧୫୫

---

୧. ଶାକ = ଯାହାର ପତ୍ରଗୁଡ଼ିକ ବାହାରେ କୋମଳ ଏବଂ ଭିତରେ କର୍କଶ । ୨. ଉଭୟସୃଷ୍ଟି ।

୨୮ ପ୍ରବେଶ ହୋଇଣ ଅନ୍ତରେ । ପ୍ରାଣାଦି ବୃତ୍ତିମାନଙ୍କରେ ॥ ୧୫୬
ଯେହୁ ପାଳଇ ସର୍ବଭୂତ । ଯାହାର ବଶେ ଏ ଜଗତ ॥ ୧୫୭
ଆମ୍ଭଙ୍କୁ ପାଳୁ ସେ ଈଶ୍ୱର । ଜାଣେ ଯେ ପ୍ରାଣୀଙ୍କ ଅନ୍ତର ॥ ୧୫୮
ଏମନ୍ତ କରି ଅଧ୍ୟୟନ । ସେମାନେ ଭଜନ୍ତି ପବନ ॥ ୧୫୯
୨୯ ଦଧିମଣ୍ଡ-ସିନ୍ଧୁରୁ ପର । ପୁଷ୍କରଦ୍ୱୀପ ଏ ପ୍ରକାର ॥ ୧୬୦
ତହିଁ ଦ୍ୱିଗୁଣ ବିସ୍ତାରରେ । କଳ୍ପିତ ସକଳ ଦିଗରେ ॥ ୧୬୧
ସୁସ୍ୱାଦୁ ଅଟେ ଜଳ ଯାର । ଏମନ୍ତ ରୂପେ ପାରାବାର ॥ ୧୬୨
ଦ୍ୱୀପକୁ ସମାନ ବିସ୍ତାରେ । ବେଢ଼ିଣ ରହିଛି ବାହାରେ ॥ ୧୬୩
ଅନଳଶିଖାପ୍ରାଏ ଯାର । ନିର୍ମଳ ଦିଶଇ ଆକାର ॥ ୧୬୪
ଏରୂପେ ଅୟୁତ ଅୟୁତ । କନକପତ୍ର ଯହିଁ ସ୍ଥିତ ॥ ୧୬୫
ଯେବଣ ଦ୍ୱୀପେ ସେ ପୁଷ୍କର । ବିସ୍ତାରି ଦିଶଇ ସୁନ୍ଦର ॥ ୧୬୬
ବ୍ରହ୍ମାର ଆସନ ହୋଇଣ । ସେ ପଦ୍ମ ହୋଇଛି ନିର୍ମାଣ ॥ ୧୬୭
୩୦ ଦ୍ୱୀପମଧ୍ୟରେ ମହୀଧର । ମାନସୋତ୍ତର ନାମ ତାର ॥ ୧୬୮
ବେନି ବରଷଙ୍କ ମଧ୍ୟରେ । ମର୍ଯ୍ୟାଦା ଅଚଳ ରୂପରେ ॥ ୧୬୯
ସ୍ଥିତ ସେ ଅୟୁତ ଯୋଜନ । ବିସ୍ତାରେ, ଉଚ୍ଚରେ ଶୋଭନ ॥ ୧୭୦
ଯହିଁ ଇନ୍ଦ୍ରାଦି ଦେବଙ୍କର । ଚାରି ଦିଗରେ ଚାରି ପୁର ॥ ୧୭୧
ମେରୁଗିରିକି ପ୍ରଦକ୍ଷିଣ । କରନ୍ତେ ସୂର୍ଯ୍ୟରଥ ପୁଣ ॥ ୧୭୨
ସମ୍ୱତ୍ସର ନାମରେ ତାର । ଚକ୍ର ବୁଲଇ ଯା' ଉପର ॥ ୧୭୩
ଅହୋରାତ୍ରରେ ଦେବଙ୍କର । ଭ୍ରମଇଁ ଚକ୍ର ସେ ରଥର ॥ ୧୭୪
୩୧} ସେ ଦ୍ୱୀପେ ପ୍ରିୟବ୍ରତଙ୍କର । ତନୁଜ ଅଟଇ ଈଶ୍ୱର ॥ ୧୭୫
୩୨} ସେ ଅଟେ ନାମେ ବୀତିହୋତ୍ର । ତାର ଥିଲେ ଯେ ବେନି ପୁତ୍ର ॥ ୧୭୬
ରମଣ, ଧାତୁକ[୧] ନାମରେ । ସେ ବେନି ପୁତ୍ରଙ୍କୁ ତହିଁରେ ॥ ୧୭୭
ବରଷପତି କରି ଥୋଇ । ଜ୍ୟେଷ୍ଠ ଭାଇଙ୍କ ପ୍ରାଏ ହୋଇ ॥ ୧୭୮
ବିଷ୍ଣୁବିଷୟ କର୍ମମାନ । କରି ରହିଲେ ସେ ରାଜନ ॥ ୧୭୯
ସେ ବରଷରେ ଯେତେ ନର । ବ୍ରହ୍ମସ୍ୱରୂପୀ ଯେ ଈଶ୍ୱର ॥ ୧୮୦
ତାହାଙ୍କୁ ନିଷ୍କାମ ଭକ୍ତିରେ । ପୂଜା କରନ୍ତି ସଂତତରେ ॥ ୧୮୧
ଏମନ୍ତ ପ୍ରକାରେ ସେମାନେ । ମନ୍ତ୍ର ଜପନ୍ତି ଅନୁଦିନେ ॥ ୧୮୨
୩୩ ଯେ ଅଟେ କର୍ମଫଳରୂପୀ । ବ୍ରହ୍ମକୁ ଯାଠାରୁ ନିରୋପି ॥ ୧୮୩
ଏକ ଈଶ୍ୱରଠାରେ ଯାର । ନିଶ୍ଚିତ ଅଦ୍ୱୈତ ଆକାର ॥ ୧୮୪
ପୂଜା କରଇ ଜନ ଯାକୁ । ଆମ୍ଭର ପ୍ରଣାମ ତାହାକୁ ॥ ୧୮୫
୩୪ ଶୁଦ୍ଧ ଜଳଧିର ଉତ୍ତାରେ । ପର୍ବତେ ବଳୟ ଆକାରେ ॥ ୧୮୬

୧. ଧାତକ, ଧାତକି ।

| | | | | |
|---|---|---|---|---|
| | ସେ ଲୋକାଲୋକନାମେ ଖ୍ୟାତ | । ଲୋକ-ଅଲୋକ ମଧ୍ୟଗତ | ॥ | ୧୮୭ |
| ୩୫ | ମାନସୋତ୍ତର ଗିରିବର | । ମେରୁର ଯେତେକ ଅନ୍ତର | ॥ | ୧୮୮ |
| | ଶୁଦ୍ଧ ଜଳଧି ଅନନ୍ତରେ | । ଭୂମିଏ ତେତିକି ବିସ୍ତାରେ | ॥ | ୧୮୯ |
| | ୧ସୁବର୍ଣ୍ଣମୟ ସେ ଅଟଇ | । ଦର୍ପଣପ୍ରାୟେକ ଦିଶଇ | ॥ | ୧୯୦ |
| | ପଦାର୍ଥ ପଡ଼ିଲେ ଯହିଁରେ | । ଦୃଶ୍ୟ ନୁହଇ ତା' ତେଜରେ | ॥ | ୧୯୧ |
| | ସେ ଘେନି ସର୍ବ ଜନ୍ତୁମାନେ | । ପ୍ରବେଶ ନୁହନ୍ତି ସେ ସ୍ଥାନେ | ॥ | ୧୯୨ |
| ୩୬ | ଲୋକାଲୋକ ନାମ ଗିରିର | । ଏ ଘେନି ହୋଇଛି ପ୍ରଚାର | ॥ | ୧୯୩ |
| | ଯେଣୁ ଏ ଅଚଳମଧ୍ୟରେ | । ଥାଆନ୍ତେ ଏହା ସକାଶରେ | ॥ | ୧୯୪ |
| | ଲୋକ ଅଲୋକ ବେନି କଥା | । ପୂର୍ବରୁ ହୋଇଛି ବ୍ୟବସ୍ଥା | ॥ | ୧୯୫ |
| ୩୭ | ତ୍ରିଲୋକ-ଅନ୍ତରେ ସେ ଗିରି | । ମର୍ଯ୍ୟାଦାଗିରିରୂପ କରି | ॥ | ୧୯୬ |
| | କରିଣ ଅଛନ୍ତି ନିର୍ମାଣ | । ତ୍ରିଲୋକକର୍ତ୍ତା ନାରାୟଣ | ॥ | ୧୯୭ |
| | ସୂର୍ଯ୍ୟାଦି ଧ୍ରୁବଯାଏ ପୁଣ | । ଯେତେ ଅଛନ୍ତି ଜ୍ୟୋତିଗଣ | ॥ | ୧୯୮ |
| | ସେମାନଙ୍କର ତେଜମାନେ | । ସକଳଦିଗେ ତ୍ରିଭୁବନେ | ॥ | ୧୯୯ |
| | ପ୍ରକାଶ କରନ୍ତେ ସନ୍ତତ | । ଯେଉଁ ଗିରିରୁ କଦାଚିତ | ॥ | ୨୦୦ |
| | ବଳିଣ ନ ପାରନ୍ତି ଯାଇ | । ଉଚ୍ଚ ବିସ୍ତାର ତେତେ ହୋଇ | ॥ | ୨୦୧ |
| ୩୮ | ଲୋକମାନଙ୍କର ବିନ୍ୟାସ | । ପ୍ରମାଣଲକ୍ଷଣେ ପ୍ରକାଶ | ॥ | ୨୦୨ |
| | କରି ଅଛନ୍ତି ଏ ପ୍ରକାରେ | । ପଣ୍ଡିତମାନେ ଶାସ୍ତ୍ରଦ୍ୱାରେ | ॥ | ୨୦୩ |
| | ପଞ୍ଚାଶ କୋଟି ଯେ ଯୋଜନ | । ଭୂଗୋଳ ହୋଇଛି ରଚନ | ॥ | ୨୦୪ |
| | ମେରୁକୁ ଅବଧି ତାହାର | । ଚତୁର୍ଥ ଭାଗ ଏ ଭୂଧର | ॥ | ୨୦୫ |
| ୩୯ | ସେ ଗିରିପରେ ଚାରିଦିଗେ | । ବ୍ରହ୍ମା ଯାହାକୁ ଯଥାଭାଗେ | ॥ | ୨୦୬ |
| | କରିଣ ଅଛି ନିବେଶନ | । ତେଣୁ ସେ ଦିଗଦନ୍ତୀମାନ | ॥ | ୨୦୭ |
| | ସକଳ ଲୋକମାନଙ୍କର | । ସ୍ଥିତିକି ହେତୁ ସେ ଆବର | ॥ | ୨୦୮ |
| | ଋଷଭ ଅଟଇ ପ୍ରଥମ | । ପୁଷ୍କରଚୂଡ଼ ଆର ନାମ | ॥ | ୨୦୯ |
| | ତୃତୀୟ ଅଟଇ ବାମନ | । ଅପରାଜିତ ନାମେ ଆନ | ॥ | ୨୧୦ |
| ୪୦ | ଅଟନ୍ତି ଯେ ଆପଣା ଅଂଶ | । ଇନ୍ଦ୍ରାଦି ଦିଗପାଳ ଦଶ | ॥ | ୨୧୧ |
| | ସେ ଦିଗଦନ୍ତୀଙ୍କ ସହିତେ | । ସେମାନଙ୍କର ଅବିରତେ | ॥ | ୨୧୨ |
| | ନାନା ପ୍ରକାରେ ବୀର୍ଯ୍ୟମାନ | । ବଢ଼ାଇବାକୁ ଭଗବାନ | ॥ | ୨୧୩ |
| | ସେ ମହା ପରମ ପୁରୁଷ | । ମହାବିଭୂତିର ସେ ଈଶ | ॥ | ୨୧୪ |

୧. କୋଟିଦ୍ୱୟଂ ତ୍ରିପଞ୍ଚାଶଲ୍ଲକ୍ଷାଣି ଚ ତତଃ ପରମ୍ ।
ପଞ୍ଚାଶଚ୍ଚ ସହସ୍ରାଣି ସପ୍ତଦ୍ୱୀପାଃ ସସାଗରାଃ । ୧ ।
ତତୋ ହେମମୟୀ ଭୂମିର୍ଦଶକୋଟ୍ୟୋ ବରାନନେ !
ଦେବାନାଂ କ୍ରୀଡ଼ନାର୍ଥାୟ ଲୋକାଲୋକସ୍ତତଃ ପରମ୍ । ୨ । (ଶୈବତନ୍ତ୍ରେ)

ଧର୍ମ, ଜ୍ଞାନ, ବୈରାଗ୍ୟବିଧି । ଐଶ୍ୱର୍ଯ୍ୟ ଆଦି ଅଷ୍ଟ ସିଦ୍ଧି ॥ ୨୧୫
ଉପଲକ୍ଷଣ ଏ ଯାହାର । ସେ ଶୁଦ୍ଧ ସତ୍ତ୍ୱ ଆପଣାର ॥ ୨୧୬
ପ୍ରକାଶ କରନ୍ତି ସନ୍ତତ । ଜାଣନ୍ତି ପ୍ରାଣୀ-ଅନ୍ତର୍ଗତ ॥ ୨୧୭
ବିଷ୍ୱକସେନ ଆଦି ସାର । ସେବକେ ଅଛନ୍ତି ସଙ୍ଗର ॥ ୨୧୮
ନିଜ ଆୟୁଧଶ୍ରେଷ୍ଠମାନ । ଯହିଁରେ ଦିଶନ୍ତି ଶୋଭନ ॥ ୨୧୯
ସେ ଭୁଜଦଣ୍ଡମାନଙ୍କରେ । ଯୁତ ହୋଇ ସେ ଗିରିବରେ ॥ ୨୨୦
ଅଛନ୍ତି ସକଳ ସ୍ଥାନରେ । ପ୍ରାଣୀଙ୍କ ମଙ୍ଗଳ ଅର୍ଥରେ ॥ ୨୨୧
୪୧ ଆପଣା ଯୋଗମାୟାଦ୍ୱାରେ । କଳ୍ପି ଅଛନ୍ତି ଯା' ପୂର୍ବରେ ॥ ୨୨୨
ସେ ନାନା ଲୋକମାନଙ୍କର । ପାଳନ ଅର୍ଥେ ଚକ୍ରଧର ॥ ୨୨୩
ରହିଅଛନ୍ତି କଳ୍ପଯାଏ । ଲୀଳାବଶରେ ସବୁଠାଏ ॥ ୨୨୪
୪୨ ମଧ୍ୟ ବିସ୍ତାର ଯେତେ ପୁଣ । ତେତେ[1] ଏ ଲୋକପରିମାଣ ॥ ୨୨୫
ପ୍ରକାଶ କରି ତୋ' ଆଗରେ । କହିଲୁଁ ଯଥା ସ୍ୱରୂପରେ ॥ ୨୨୬
ସେ ଲୋକାଲୋକ ପର୍ବତର । ଉତ୍ତାରେ ଯୋଗେଶ୍ୱରଙ୍କର ॥ ୨୨୭
[2]ବିଶୁଦ୍ଧ ଗତି ହୋଏ ଜାତ । ସାଧୁଏ କହନ୍ତି ଏମନ୍ତ ॥ ୨୨୮
୪୩ ଅଣ୍ଡର ମଧ୍ୟଗତ ହୋଇ । ସୂର୍ଯ୍ୟ ଜଗତ ପ୍ରକାଶଇ ॥ ୨୨୯
ସୂର୍ଯ୍ୟ[3]-ଭୂମିର ଯେ ଅନ୍ତର । ସେ ମଧ୍ୟ ଅଟେ ବ୍ରହ୍ମାଣ୍ଡର ॥ ୨୩୦
ସୂର୍ଯ୍ୟ-ଅଣ୍ଡ ଗୋଲ ମଧ୍ୟର । ପଞ୍ଚିଶ କୋଟିଏ ବିସ୍ତାର ॥ ୨୩୧
୪୪ ମୃତ ହୁଅନ୍ତେ ଅଣ୍ଡକୋଷ । ଏଥିରେ ହୁଅଇ ପ୍ରକାଶ ॥ ୨୩୨
ହିରଣ୍ୟ ଅଣ୍ଡେ ଜାତ ଯେଣୁ । ହିରଣ୍ୟଗର୍ଭ ନାମ ତେଣୁ ॥ ୨୩୩
୪୫ ଦିଗ, ଆକାଶ, ସ୍ୱର୍ଗ, ମହୀ । ଆନ ବିଭାଗ ଅବା ଯେହି ॥ ୨୩୪
ଉଦୟ ମାତ୍ରକେ ତପନ । ବିଭାଗ କରଇ ଏମାନ ॥ ୨୩୫
ସ୍ୱର୍ଗ ଅପବର୍ଗ ନରକ । ପ୍ରକାଶେ ରସାତଳ ଲୋକ ॥ ୨୩୬
୪୬ ଦେବ, ତିର୍ଯ୍ୟକ ଜନ୍ତୁ, ନର । ଉରଗ, ଖଗ, ଲତାଙ୍କର ॥ ୨୩୭
ସୂର୍ଯ୍ୟ ଏ ସକଳ ଜୀବର । ଆତ୍ମା ଲୋଚନ ଅଧୀଶ୍ୱର ॥ ୨୩୮
କହଇ ଦ୍ୱିଜ ଦୀନବଂଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥ ୨୩୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ସମୁଦ୍ରଦ୍ୱୀପବର୍ଣ୍ଣନଂ
ନାମ ବିଂଶୋଽଧ୍ୟାୟଃ ॥

---

୧. ତେଣେ । ୨. ଦ୍ୱିଜପୁତ୍ରଙ୍କୁ ଆଣିଲା ବେଳେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଯାହା ଦେଖାଇଥିଲେ । ୩. ସ୍ୱର୍ଗ ।

# ଏକବିଂଶ ଅଧ୍ୟାୟ

ଏବମଧ୍ୟାୟବିଂଶତ୍ୟା ଭୂମର୍ଯ୍ୟାଦା ନିରୂପିତା ।
ଅତଃ ପରଂ ଦ୍ୟୁମର୍ଯ୍ୟାଦାପାଳନଂ ତ୍ରିଭିରୁଚ୍ୟତେ ।। ୧
ଏକବିଂଶେ ରବେଃ କାଳଚକ୍ରେଣ ଭ୍ରମତୋଽନ୍ୱହଂ ।
ସ୍ୱଗତ୍ୟା ରାଶିସଂଚାରୈର୍ଲୋକଯାତ୍ରା ନିରୂପ୍ୟତେ ।। ୨

ଶ୍ରୀଶୁକ ଉବାଚ

୧ ଭୂମିବଳୟ ସନ୍ନିବେଶ । ଏତେକ ଅଟଇ ପ୍ରକାଶ ।। ୧
ପ୍ରମାଣ ଲକ୍ଷଣରେ ଯେତେ । କହିଲୁଁ ତୋହର ଅଗ୍ରତେ ।। ୨
୨ ଆକାଶମଣ୍ଡଳର ମାନ । ଏଣେ କହନ୍ତି ବିଜ୍ଞ ଜନ ।। ୩
ଯେହ୍ନେ ମସୁର[୧] ଆଦି ଫଳ । ହୋଇ ଥାଆନ୍ତେ ବେନିଦଳ ।। ୪
ଲାଗିଣ ଉଭୟ ଦଳରେ । ଆକାଶ ଥାଇ ତା' ମଧ୍ୟରେ ।। ୫
୩ ତପତି କଲା ଲୋକଙ୍କର । ତପନ ଅଟଇ ଈଶ୍ୱର ।। ୬
ସେ ଯେଉଁ ଆକାଶମଧ୍ୟରେ । ଥାଇଣ ନିଜ ଆତପରେ ।। ୭
ତପତି କରେ ତିନି ଲୋକ । କିରଣେ କରଇ ଆଲୋକ ।। ୮
ଉତ୍ତର ଦକ୍ଷିଣ ହୋଇଣ । ଅୟନଯୁଗଳ ଏ ପୁଣ ।। ୯
ବିଷୁବ ନାମେ ଯେ ଆବର । ଗତି ଅଟନ୍ତି ସେ ତାହାର ।। ୧୦
ଏ ମନ୍ଦ, କ୍ଷିପ୍ର, ସମ ଗତି । ଏଣେ ସେ ରବି ଗ୍ରହପତି ।। ୧୧
ଆରୋହଣ ଅବରୋହଣ । ସମସ୍ଥାନରେ ସେହୁ ପୁଣ ।। ୧୨
ମିଳିଣ ଯଥାସମୟରେ । ମକର ଆଦି ରାଶିଠାରେ ।। ୧୩
କରଇ ଅହୋରାତ୍ରମାନ । କ୍ରମେ ଦୀର୍ଘ, ହ୍ରସ୍ୱ, ସମାନ ।। ୧୪
୪ ଯେବେ ସେ ମେଷେ ତୁଳେ ଥାଇ । ଦିନ ରଜନୀ ସମ ହୋଇ ।। ୧୫
ବୃଷ ଆଦି ପଞ୍ଚ ରାଶିରେ । ଯେବେ ସେ ଚରଇ କ୍ରମରେ ।। ୧୬
ଦିବସମାନେ ସେ କାଳରେ । ବୃଦ୍ଧିକି ଭଜନ୍ତି କ୍ରମରେ ।। ୧୭
ରାତ୍ରରେ ଏକ ଏକ ଘଡ଼ି । ମାସ ମାସକେ ତୁଟି ପଡ଼ି ।। ୧୮
୫ ବୃଶ୍ଚିକ ଆଦି ପଞ୍ଚ ମାସେ । ଯେବେ ସେ ଥାନ୍ତି କାଳବଶେ ।। ୧୯
ଊଣା ହୁଅଇ ତେବେ ଦିନ । ବୃଦ୍ଧି ହୁଅଇ ରାତ୍ରମାନ ।। ୨୦
୬ ଯାବତ ଦକ୍ଷିଣ-ଅୟନ । ବୃଦ୍ଧି ହୁଅନ୍ତି ଦିନମାନ ।। ୨୧
ଉତ୍ତରାୟଣ ଯାଏ ପୁଣ । ବୃଦ୍ଧି ହୁଅନ୍ତି ରାତ୍ରିଗଣ ।। ୨୨
୭ ବେନି ପାରୁଶକୁ ମେରୁର । ମାନସ-ଉତ୍ତର ଗିରିର ।। ୨୩
ନ'କୋଟି ଏକାବନ ଲକ୍ଷ । ଯୋଜନମଣ୍ଡଳ ପ୍ରତ୍ୟକ୍ଷ ।। ୨୪

---

୧. ମୂଳଶବ୍ଦ 'ନିଷ୍ପାବ' = ଗହମ ଓ ଧାନ ଆଦି ଦ୍ୱିଦଳ ଶସ୍ୟ ଚୂନା କରିବାପାଇଁ ଶିଳ୍ପୀମାନେ ଯେଉଁ ଦ୍ୱିଦଳ ପାଷାଣ ନିର୍ମାଣ କରନ୍ତି, ତାହାକୁ ମଧ୍ୟ 'ନିଷ୍ପାବ' କହନ୍ତି ।

ମେରୁର ପୂର୍ବ ପ୍ରଦେଶରେ । ମାନସ-ଉତ୍ତର ଗିରିରେ ॥ ୨୫
ଇନ୍ଦ୍ରର ପୁର ଅନୁପମ । ତାହାର 'ଦେବଧାନୀ' ନାମ ॥ ୨୬
ଦକ୍ଷିଣ ଦିଗରେ ଯମର । ବିଖ୍ୟାତ 'ସଂଯମନୀ' ପୁର ॥ ୨୭
ବରୁଣନଗର ପଶ୍ଚିମେ । ବିଖ୍ୟାତ 'ନିମ୍ଳୋଚନୀ'[୧] ନାମେ ॥ ୨୮
ଉତ୍ତର ଦିଗରେ ସୋମର । ବିଖ୍ୟାତ 'ବିଭାବରୀ' ପୁର ॥ ୨୯
ସେ ପୁରମାନଙ୍କେ ଉଦୟ । ମଧ୍ୟାହ୍ନ କାଳ, ଅସ୍ତମୟ ॥ ୩୦
ରଜନୀଅର୍ଦ୍ଧ ଏ ରୂପରେ । ହୋଏ ସମୟବିଶେଷରେ ॥ ୩୧
ବିଷୟେ ପ୍ରାଣୀମାନଙ୍କର । ପ୍ରବୃତ୍ତି ନିବୃତ୍ତି ହେବାର ॥ ୩୨
ବେନି କଥାକୁ ସେ ନିଦାନ । ଉଦୟ ଆଦି କାଳମାନ ॥ ୩୩
ଏରୂପେ ମେରୁଚାରିଦିଗ । ହୁଅଇ କାଳର ବିଭାଗ ॥ ୩୪
ମେରୁ-ଦକ୍ଷିଣ ଦେଶଙ୍କର । ପୂର୍ବାଦି ଦିଗ-ବ୍ୟବହାର ॥ ୩୫
ଇନ୍ଦ୍ରର ପୁରରୁ ହୁଅଇ । ପଶ୍ଚିମ ଦେଶ ଯେ ଅଛଇ ॥ ୩୬
ରବି ମିଳନ୍ତେ ଯମପୁର । ପୂର୍ବ ହୁଅଇ ତାହାଙ୍କର ॥ ୩୭
ବରୁଣପୁରୁଁ ଆଦି ହୋଇ । ପୂର୍ବାଦି ଉତ୍ତରେ ହୁଅଇ ॥ ୩୮
ପୂର୍ବଦେଶଙ୍କର ପୂର୍ବାଦି । ସୋମନଗରୀରୁ ସଂପାଦି ॥ ୩୯
୮ ମେରୁନିବାସୀ ପ୍ରାଣୀଙ୍କର । ସକଳ କାଳେ ଦିବାକର ॥ ୪୦
ଦିବସମଧ୍ୟଗତ ହୋଇ । ନିଜ କିରଣ ପ୍ରକାଶଇ ॥ ୪୧

---

୧. ନିମ୍ଳୋଚତୀ ।
ଏହି ଶ୍ଳୋକର ଟୀକାରେ ସ୍ୱାମିପାଦଙ୍କ ଉଦ୍ଧୃତ ଶ୍ଳୋକ :
"ସର୍ବଗ୍ରହାଣାଂ ତ୍ରୀଣ୍ୟେବ ସ୍ଥାନାନି ଦ୍ୱିଜସତ୍ତମାଃ ।
ସ୍ଥାନଂ ଜାରଦ୍ଗବଂ ମଧ୍ୟଂ ତଥୈରାବତମୁତ୍ତରମ୍ ॥ ୧
ବୈଶ୍ୱାନରଂ ଦକ୍ଷିଣତୋ ନିର୍ଦ୍ଦିଷ୍ଟମିହ ତତ୍ତ୍ୱତଃ" । ଇତି
(ବାୟୁପୁରାଣ)

ପୁନସ୍ତତ୍ରୈବ :
ଅଶ୍ୱିନୀ କୃତ୍ତିକା ଯାମ୍ୟା ନାଗବୀଥୀତି ଶବ୍ଦିତା ।
ରୋହିଣ୍ୟାର୍ଦ୍ରା ମୃଗଶିରୋ ଗଜବୀଥ୍ୟଭିଧୀୟତେ ॥ ୧
ପୁଷ୍ୟାଶ୍ଳେଷା ତଥାଦିତ୍ୟା ବୀଥୀ ଚୈରାବତୀ ସ୍ମୃତା ।
ଏତାସ୍ତୁ ବୀଥୟସ୍ତିସ୍ର ଉତ୍ତରୋ ମାର୍ଗ ଉଚ୍ୟତେ ॥ ୨
ତଥା ଦ୍ୱେ ଚାପି ଫାଲ୍‌ଗୁନ୍ୟୌ ମଘା ଚୈବାର୍ଷଭୀ ମତା ।
ହସ୍ତଶ୍ଚିତ୍ରା ତଥା ସ୍ୱାତୀ ଗୋ ବୀଥୀତି ତୁ ଶବ୍ଦିତା ॥ ୩
ଜ୍ୟେଷ୍ଠା ବିଶାଖାନୁରାଧା ବୀଥୀ ଜାରଦ୍ଗବୀ ମତା ।
ଏତାସ୍ତୁ ବୀଥୟସ୍ତିସ୍ରୋ ମଧ୍ୟମୋ ମାର୍ଗ ଉଚ୍ୟତେ ॥ ୪
ମୂଳାଷାଢ଼ୋତ୍ତରାଷାଢ଼ା ଚାଜବୀଥ୍ୟଭିଶବ୍ଦିତା ।
ଶ୍ରବଣଂ ଚ ଧନିଷ୍ଠା ଚ ମାର୍ଗୀ ଶତଭିଷସ୍ତଥା ॥ ୫
ବୈଶ୍ୱାନରୀ ଭାଦ୍ରପଦେ ରେବତୀ ଚୈବ କୀର୍ତ୍ତିତା ।
ଏତାସ୍ତୁ ବୀଥୟସ୍ତିସ୍ରୋ ଦକ୍ଷିଣୋ ମାର୍ଗ ଉଚ୍ୟତେ ॥ ୬

ନାଗବୀଥି, ଗଜବୀଥି ଓ ଐରାବତୀ ବୀଥି =
ତିସ୍ରଃ ବୀଥୟଃ ଏମାନଙ୍କୁ ଉତ୍ତର ମାର୍ଗ କୁହାଯାଏ ।

ଅଶ୍ୱିନୀ, କୃତ୍ତିକା ଓ ଯାମ୍ୟା = ନାଗବୀଥି
ରୋହିଣୀ, ଆର୍ଦ୍ରା ଓ ମୃଗଶିରା = ଗଜବୀଥି
ପୁଷ୍ୟା, ଅଶ୍ଳେଷା ଓ ଆଦିତ୍ୟା = ଐରାବତୀବୀଥି ।
ଏମାନେ ତିନି ବୀଥି । ପୂର୍ବ ଓ ଉତ୍ତର ଦୁଇଟି
ଫାଲ୍ଗୁନୀ ।

ମଘା = ଆର୍ଷଭୀ ବୀଥି ।
ହସ୍ତା, ଚିତ୍ରା ଓ ସ୍ୱାତୀ = ଗୋବୀଥି ।
ଜ୍ୟେଷ୍ଠା, ବିଶାଖା ଓ ଅନୁରାଧା = ଜାରଦ୍‌ଗବୀ-
ବୀଥି । ଏଇ ତିନି ବୀଥିକୁ ମଧ୍ୟମ ମାର୍ଗ କହନ୍ତି ।

ମୂଳା, ପୂର୍ବାଷାଢ଼ା ଓ ଉତ୍ତରାଷାଢ଼ା = ଅଜବୀଥି ।
ଶ୍ରବଣା, ଧନିଷ୍ଠା ଓ ଶତଭିଷା = ମାର୍ଗୀବୀଥି ।
ଦୁଇ ଭାଦ୍ରପଦା ଓ ରେବତୀ = ବୈଶ୍ୱାନରୀବୀଥି ।
ଏଇ ତିନିକୁ ଦକ୍ଷିଣ ମାର୍ଗ କୁହାଯାଏ ।

ନକ୍ଷତ୍ର-ଅଭିମୁଖ ହୋଇ । ଯେବଣ ଗତି ପ୍ରକାଶଇ ॥ ୪୨
ତେଣେ ମେରୁକୁ ବାମ କରେ । [1]ସେ ଜ୍ୟୋତିଶ୍ଚକ୍ରର ଗତିରେ ॥ ୪୩
ପ୍ରତିଦିନରେ ପ୍ରଦକ୍ଷିଣ । ମେରୁକୁ କରଇ ସେ ପୁଣ ॥ ୪୪
୯ ଉଦୟ ହୁଅଇ ଯହିଁରେ । ସେ ସ୍ଥାନୁଁ ଅବଧିକ୍ରମରେ ॥ ୪୫
ସମାନ ସୂତ୍ରର ନିପାତ । ସ୍ଥାନେ ହୁଅଇ ଅସ୍ତଗତ ॥ ୪୬
ଦିବସମଧ୍ୟେ ଯହିଁ ସ୍ଥିତ । ତାର ସମାନେ ସୂତ୍ରପାତ ॥ ୪୭
ସ୍ଥାନରେ ମିଳିଲେ ଝଟିତି । ବେନି ପହର ହୋଏ ରାତି ॥ ୪୮
ଅସ୍ତ ଦେଖନ୍ତି ଯେଉଁମାନେ । ଦେଖି ନ ପାରନ୍ତି ସେ ସ୍ଥାନେ ॥ ୪୯
୧୦ ଇନ୍ଦ୍ରର ପୁରୁଁ ଚଳେ ଯେବେ । ପନ୍ଦର ଦଣ୍ଡରେ ସେ ତେବେ ॥ ୫୦
ଦ୍ୱିକୋଟି ଲକ୍ଷ ଶତ ତ୍ରିଂଶି । ପଞ୍ଚସ୍ତରି ସହସ୍ର ମିଶି ॥ ୫୧
ଏତେକ ସଂଖ୍ୟାରେ ଗମଇଁ । ଯମର ପୁରେ ସେ ମିଳଇ ॥ ୫୨
ଯମପୁରରୁ ଏ ପ୍ରକାରେ । ମିଳଇ ବରୁଣପୁରରେ ॥ ୫୩
ତହିଁରୁ ସୋମପୁରେ ମିଳେ । ଇନ୍ଦ୍ରପୁରକୁ ତହୁଁ ଚଳେ ॥ ୫୪

---

ପୁରାଣାନ୍ତରେ :

ଆକୃଷ୍ୟେତେ ଯଦା ତୌ ତୁ ଧ୍ରୁବେଣ ସମଧିଷ୍ଠିତୌ ।
ତଦାଭ୍ୟନ୍ତରତଃ ସୂର୍ଯ୍ୟୋ ଭ୍ରମତେ ମଣ୍ଡଳାନି ତୁ ॥ ୧
ଧ୍ରୁବେଣ ମୁଚ୍ୟମାନେନ ପୁନା ରଶ୍ମିଯୁଗେନ ତୁ ।
ତଥୈବ ବାହ୍ୟତଃ ସୂର୍ଯ୍ୟୋ ଭ୍ରମତେ ମଣ୍ଡଳାନି ଚ ॥ ୨
ଶକ୍ରାଦୀନାଂ ପୁରେ ତିଷ୍ଠନ୍ ସ୍ପୃଶତ୍ୟେଷ ପୁରତ୍ରୟମ୍ ।
ବିକୋଣୌ ଦ୍ୱୌ ବିକୋଣସ୍ଥସ୍ତ୍ରୀନ୍ କୋଣାନ୍ ଦ୍ୱେ ପୁରେ ତଥା ॥ ୩

× × ×

ତସ୍ମାଦ୍ ଦିଶ୍ୟୁତ୍ତରସ୍ୟାଂ ବୈ ଦିବା ରାତ୍ରିଃ ସଦୈବ ହି ।
ସର୍ବେଷାଂ ଦ୍ୱୀପବର୍ଷାଣାଂ ମେରୋରୁତ୍ତରତଃ ସ୍ଥିତିଃ ॥ ୪

୧. ଜ୍ୟୋତିଶ୍ଚକ୍ରର ଗତିବଶରୁ ସୂର୍ଯ୍ୟ ଭୂମିସଂଲଗ୍ନ ପରି ଦୃଷ୍ଟ ହେଲେ ଉଦୟ, ଆକାଶାରୂଢ଼ ପରି ଦୃଷ୍ଟ ହେଲେ ମଧ୍ୟାହ୍ନ, ଭୂମିରେ ପ୍ରବେଶ କଲା ଭଳି ଦୃଷ୍ଟ ହେଲେ ଅସ୍ତମୟ ଏବଂ ଅତିଦୂରକୁ ଚାଲିଗଲେ ନିଶୀଥ ହୁଏ । ସମୁଦ୍ର-ତୀରରେ ଥାଇ ଦେଖିଲେ - ସୂର୍ଯ୍ୟ ସକାଳେ ପାଣିରୁ ବାହାରେ ଏବଂ ସଂଧ୍ୟାରେ ପାଣିରେ ବୁଡ଼ିଯାଏ (ଅଦ୍‌ଭ୍ୟୋ ବା ଏଷ ପ୍ରାତରୁଦେତ୍ୟପଃ ସାୟଂ ପ୍ରବିଶତି ଇତି ଶ୍ରୁତିଃ) । ଏହା ବ୍ୟାବହାରିକ ସତ୍ୟ, କିନ୍ତୁ ପାରମାର୍ଥିକ ନୁହେଁ ।

ତେଣୁ ବିଷ୍ଣୁପୁରାଣ କହେ :-

ଉଦୟାସ୍ତମୟେ ଚୈବ ସର୍ବକାଳଂ ତୁ ସମ୍ମୁଖେ ।
ଦିଶାସ୍ୱଶେଷାସୁ ତଥା ମୈତ୍ରେୟ ବିଦିଶାସୁ ଚ ॥ ୧
ଯୈର୍ଯତ୍ର ଦୃଶ୍ୟତେ ଭାସ୍ୱାନ୍ ସ ତେଷାମୁଦୟଃ ସ୍ମୃତଃ ।
ତିରୋଭାବଞ୍ଚ ଯତ୍ରୈତି ତତ୍ରୈବାସ୍ତମନଂ ରବେଃ ॥ ୨
ନୈବାସ୍ତମନମର୍କସ୍ୟ ନୋଦୟଃ ସର୍ବଦା ସତଃ ।
ଉଦୟାସ୍ତମନାଖ୍ୟଂ ହି ଦର୍ଶନାଦର୍ଶନଂ ରବେଃ ॥ ୩

୧୧ ଏ ରୂପେ ସୋମ[1] ଆଦି ଆନ । ଅଛନ୍ତି ଯେତେ ଗ୍ରହମାନ ॥ ୫୫
ନକ୍ଷତ୍ରମାନଙ୍କର ମୂଳେ । ଜ୍ୟୋତିଶ୍ଚକ୍ରରେ ସେ ସକଳେ ॥ ୫୬
କ୍ରମରେ ଉଦୟ ହୁଅନ୍ତି । ତାଙ୍କ ସହିତେ ଅସ୍ତ ହୋନ୍ତି ॥ ୫୭
୧୨ ବେଦସ୍ୱରୂପୀ ରବିରଥ । ମୁହୂର୍ତ୍ତକରେ ଚଳେ ପଥ ॥ ୫୮
ଚୌତ୍ରିଂଶ ଲକ୍ଷ ଆଠଶତ । ଯୋଜନରୂପେ ଯେ ବିଦିତ ॥ ୫୯
ଏହି ପ୍ରକାରେ ଚାରି ପୁରେ । ପ୍ରବେଶ ହୁଅଇ କ୍ରମରେ ॥ ୬୦
୧୩ ଯାହାର ରଥେ ଏକ ଚକ । ଅଟଇ ସମ୍ବତ୍ସରାତ୍ମକ ॥ ୬୧
ଦ୍ୱାଦଶ ମାସ ଯହିଁ ଅର । ଛ’ ଋତୁ ନେମି ସେ ଚକର ॥ ୬୨
ଯହିଁରେ ତିନି ଚତୁର୍ମାସ । ନାଭିରୂପରେ ପରକାଶ ॥ ୬୩
ସେ ରଥ-ଅଖ ମେରୁପର । ଅଛଇ ଆର ଭାଗ ତାର ॥ ୬୪
ମାନସ-ଉତ୍ତର ପର୍ବତ । ଉପରେ ହୋଇଛି ଯୋଜିତ ॥ ୬୫
ରବିର ରଥଚକ୍ର ଯହିଁ । ମଧ୍ୟରେ ଅଛି ଖଞ୍ଜା ହୋଇ ॥ ୬୬
ତଇଳଯନ୍ତ୍ରପ୍ରାୟେ ହୋଇ । ଭ୍ରମଣ କରନ୍ତେ ସେ ତହିଁ ॥ ୬୭
ମାନସ-ଉତ୍ତର ଗିରିରେ । ଭ୍ରମଣ କରଇ ସତ୍ୱରେ ॥ ୬୮
୧୪ ମେରୁକୁ ମାନସ-ଉତ୍ତର । ପର୍ବତ ଅଟଇ ବିସ୍ତାର ॥ ୬୯
କୋଟିଏ ଲକ୍ଷ ସତାବନ । ପଞ୍ଚାଶ ସହସ୍ର ଯୋଜନ ॥ ୭୦
ପ୍ରଥମ ଅଖପରିମାଣ । ସୂର୍ଯ୍ୟର ରଥ ତେତେ ଜାଣ ॥ ୭୧
ଦ୍ୱିତୀୟ ଅଖପରିମାଣ । ଏହା ଚତୁର୍ଥ ଭାଗେ ପୁଣ ॥ ୭୨
ଅଣଚାଳିଶି ଲକ୍ଷ, ସାତ । ତିରିଶି ସହସ୍ର ବିଦିତ ॥ ୭୩
ଅଧିକ ପାଞ୍ଚଶ’ ଯୋଜନ । ଏରୂପେ ଅଟେ ତାର ମାନ ॥ ୭୪
ପ୍ରଥମ ଅଖେ ଖଞ୍ଜା ହୋଇ । ଦ୍ୱିତୀୟ ଅଖମୂଳ ରହି ॥ ୭୫
ତଇଳ ଯନ୍ତ୍ର-ଅଖ ପ୍ରାଏ । ଉପର ଭାଗ ଧ୍ରୁବଠାଏ ॥ ୭୬
୧୫ ରଥରେ ରହିବାର ସ୍ଥାନ । ଛତିଶ ଲକ୍ଷ ସେ ଯୋଜନ ॥ ୭୭
ଚତୁର୍ଥ ଭାଗ ଯେତେ ତାର । ତେତିକି ଅଟଇ ବିସ୍ତାର ॥ ୭୮
ତପନ-ରଥରେ ଯୁଆଳି । ତେତିକି ବିସ୍ତାରେ ଆକଳି ॥ ୭୯
ଗାୟତ୍ରୀ ଆଦି ଛନ୍ଦଙ୍କର । ନାମରେ ସାତ ଅଶ୍ୱବର ॥ ୮୦
ଯହିଁରେ ଯୋଚଇ ଅରୁଣ । [2]ବହନ୍ତି ସୂର୍ଯ୍ୟଙ୍କୁ ସେ ପୁଣ ॥ ୮୧
୧୬ ସୂର୍ଯ୍ୟର ଆଗରେ ଅରୁଣ । ପଶ୍ଚିମବଦନ ହୋଇଣ ॥ ୮୨
ସାରଥିକର୍ମେ ନିଯୋଜିତ । ହୋଇ ରହିଛି ଅବିରତ ॥ ୮୩

୧. ଇନ୍ଦ୍ର ।

୨. ସପ୍ତାଶ୍ୱରୂପଚ୍ଛନ୍ଦାଂସି ବହନ୍ତେ ବାମତୋ ରବିମ୍ ।
ଚକ୍ରପକ୍ଷନିବଦ୍ଧାନି ଚକ୍ରେ ଚାକ୍ଷଃ ସମାହିତଃ ॥ ୧
(ବାୟୁପୁରାଣ)

| | | | | | |
|---|---|---|---|---|---|
| ୧୭ | ଅଙ୍ଗୁଷ୍ଠ ପର୍ବର ସମାନ | । | ଯେ ବାଳଖିଲ୍ୟ ଋଷିଜନ | ॥ | ୮୪ |
| | ଷାଠିଏ ସହସ୍ର ସଂଖ୍ୟାରେ | । | ସେମାନେ ସୂର୍ଯ୍ୟର ଆଗରେ | ॥ | ୮୫ |
| | ସୂର୍ଯ୍ୟଙ୍କ ସ୍ତୁତିବାକ୍ୟ-ଅର୍ଥେ | । | ନିଯୁକ୍ତ ହୋଇଣ ସେ ରଥେ | ॥ | ୮୬ |
| | ସୂର୍ଯ୍ୟଙ୍କୁ କରୁଛନ୍ତି ସ୍ତୁତି | । | ଭକ୍ତି ଭାବରେ ହେ ନୃପତି | ॥ | ୮୭ |
| ୧୮ | ଋଷି, ଗନ୍ଧର୍ବମାନେ ଆନ | । | ଅପ୍‌ସରା, ନାଗ, ଯାତୁଧାନ | ॥ | ୮୮ |
| | ଗ୍ରାମଣୀ, ଦେବ ଏକେ ଏକେ | । | ଏ ସାତଗଣେ ଅତିରେକେ | ॥ | ୮୯ |
| | ଯୁଗଳ ଯୁଗଳ ହୋଇଣ | । | ସଂଖ୍ୟାରେ ଚତୁର୍ଦ୍ଦଶଗଣ | ॥ | ୯୦ |
| | ଏହାଙ୍କ ନାମ ଭିନ୍ନେ ଭିନ୍ନେ | । | ବିଭିନ୍ନ କର୍ମରେ ଏମାନେ | ॥ | ୯୧ |
| | ଯେ ଆତ୍ମା ରବି ଭଗବାନ | । | ତାଙ୍କୁ କରନ୍ତି ଉପାସନ | ॥ | ୯୨ |
| ୧୯ | ନ'କୋଟି ଏକାବନ ଲକ୍ଷ | । | ଯୋଜନ ଅଟେ ଯେ ପ୍ରତ୍ୟକ୍ଷ | ॥ | ୯୩ |
| | ମଣ୍ଡଳ ଭୂମିବଳୟର | । | ତତକ୍ଷଣେକେ ଦିବାକର | ॥ | ୯୪ |
| | ଦ୍ୱିସସ୍ର ଯୋଜନ ଦ୍ୱିକୋଷ | । | ଭୋଗ କରଇ ହେ ନରେଶ | ॥ | ୯୫ |
| | ବ୍ରାହ୍ମଣ ଦୀନବଂଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ॥ | ୯୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ରେ ଶ୍ରୀସୂର୍ଯ୍ୟରଥବର୍ଣ୍ଣନଂ
ନାମ ଏକବିଂଶୋଽଧ୍ୟାୟଃ ॥

## ଦ୍ୱାବିଂଶ ଅଧ୍ୟାୟ

ଦ୍ୱାବିଂଶେ ସୋମଶୁକ୍ରାଦେଃ ସ୍ଥାନମାହୋତ୍ତରୋତ୍ତରମ୍ ।
ତତ୍ତଦ୍‌ଗତ୍ୟନୁସାରେଣ [1]ରିଷ୍ଟାରିଷ୍ଟେ ତଥା ନୃଣାମ୍ ॥ ୧

ଶ୍ରୀରାଜୋବାଚ

| | | | | | |
|---|---|---|---|---|---|
| ୧ | ଏ ଯେ ଆଦିତ୍ୟ ଭଗବାନ | । | ଆକାଶମାର୍ଗେ ପ୍ରତିଦିନ | ॥ | ୧ |
| | ମେରୁକୁ, ଧ୍ରୁବକୁ ସତ୍ୱରେ | । | ଭ୍ରମନ୍ତି ପ୍ରଦକ୍ଷିଣାକାରେ | ॥ | ୨ |
| | ରାଶିଙ୍କ ଅଭିମୁଖ ହୋଇ | । | ଭ୍ରମନ୍ତେ ବାମ ସେ କରଇ | ॥ | ୩ |
| | ବର୍ଣ୍ଣିଲ ଏମନ୍ତ ପ୍ରକାରେ | । | ଆମ୍ଭେ ଜାଣିମୁ କି ରୂପରେ | ॥ | ୪ |

ସ ହୋବାଚ

| | | | | | |
|---|---|---|---|---|---|
| ୨ | କୁଲାଳଚକ୍ର ଭ୍ରମନ୍ତେଣ | । | ତାହାକୁ ଆଶ୍ରୟ କରିଣ | ॥ | ୫ |
| | ଭ୍ରମଣ କରନ୍ତି ଯେସନ | । | ପିପୀଲିକାଦି ଜନ୍ତୁମାନ | ॥ | ୬ |
| | ତାହାଙ୍କ ଗତି ହୋଏ ଆନ | । | ଯେଣୁ ତା' ଦେଖି ଆନ ସ୍ଥାନ | ॥ | ୭ |

୧. ଇଷ୍ଟାନିଷ୍ଟେ ।

ନକ୍ଷତ୍ର-ରାଶିରେ ନିୟତ । ଅଟଇ ଯେ ଉପଲକ୍ଷିତ ॥
ସେ କାଳଚକ୍ର ମେରୁ, ଧ୍ରୁବ । ବେନିଙ୍କି ପ୍ରଦକ୍ଷିଣଭାବ ॥
କରିଣ ଧାମନ୍ତେ ସତ୍ୱରେ । ସୂର୍ଯ୍ୟାଦି ଗ୍ରହ ତା' ସଙ୍ଗରେ ॥
ତାହାକୁ ଆଶ୍ରୟ କରିଣ । ଧାମନ୍ତେ, ତାହାଙ୍କର ପୁଣ ॥
ଆନ ପ୍ରକାରେ ହୋଏ ଗତି । ନକ୍ଷତ୍ର-ରାଶିରେ ସେ ନିତି ॥
ପ୍ରକାଶ ହୁଅଇ ଜଗତେ । ହେ ନୃପ ! କହିଲୁଁ ତା' ତୋତେ ॥
୩ ଆଦି ପୁରୁଷ ଯେହୁ ପୁଣ । ଅଟେ ସାକ୍ଷାତ ନାରାୟଣ ॥
ଯାହାକୁ ବେଦେ କବିମାନେ । ବାଞ୍ଛନ୍ତି ଜାଣିବାକୁ ମନେ ॥
ସେ ଭଗବାନ ପ୍ରାଣୀଙ୍କର । ମଙ୍ଗଳ ଅର୍ଥେ ନୃପବର ॥
କର୍ମବିଶୁଦ୍ଧିକି କାରଣ । ଅଟଇ ବେଦମୟ ପୁଣ ॥
ଏମନ୍ତ ଆପଣା ଶରୀର । କରିଣ ଦ୍ୱାଦଶ ପ୍ରକାର ॥
ବସନ୍ତ ଆଦି ଛ' ଋତୁରେ । କର୍ମଭୋଗର ଅନୁସାରେ ॥
ଶୀତ ଉଷ୍ଣାଦି ଋତୁଙ୍କର । ଗୁଣକୁ କରଇ ବିସ୍ତାର ॥
୪ ଯେ ବର୍ଣ୍ଣ-ଆଶ୍ରମଆଚାର । ଅନୁବର୍ତ୍ତିଣ ଥାନ୍ତି ନର ॥
ସେ ଲୋକମାନେ ଏ ସଂସାରେ । ଯେବଣ ସୂର୍ଯ୍ୟଙ୍କୁ ଶ୍ରଦ୍ଧାରେ ॥
ବେଦକଥିତ ଉଚ୍ଚ-ସାନ । ଯେ କର୍ମ ଯେ ଯୋଗବିତାନ ॥
ତେଣେ ପୂଜନ୍ତି ତତକାଳ । ଲଭନ୍ତି ପରମ ମଙ୍ଗଳ ॥
୫ ଆତ୍ମାସ୍ୱରୂପୀ ପ୍ରାଣୀଙ୍କର । ଅଟେ ସେ ଯେହୁ ଦିବାକର ॥
ଦ୍ୟାବାପୃଥିବୀ[୧] ମଧ୍ୟଦେଶ । ଅଛଇ ଯେବଣ ଆକାଶ ॥
ତା' ମଧ୍ୟେ କାଳଚକ୍ରେ ଥାଇ । ଦ୍ୱାଦଶ ରାଶିକି ଭୁଂଜଇ ॥
ସେ ମାସମାନେ ବରଷର । ଅଟନ୍ତି ଅବୟବାକାର ॥
ମେଷାଦି ରାଶିମାନଙ୍କର । ନାମରେ ସଂଜ୍ଞା ତାହାଙ୍କର ॥
ତାଙ୍କୁ ବୋଲନ୍ତି ପକ୍ଷଦୁଇ । ଦୁଇନକ୍ଷତ୍ର ପାଦେ ହୋଇ ॥
ପିତୃଲୋକଙ୍କ ଅନୁସାରେ । ସେ ଅହୋରାତ୍ର ଏ ସଂସାରେ ॥
ଯେତେକେ ଭୁଞ୍ଜେ ରାଶିଦୁଇ । ଋତୁ ବୋଲିଣ ତାକୁ କହି ॥
୬ ସେ ଯେତେ ଦିନେ ଆକାଶର । ଅର୍ଦ୍ଧରେ ହୁଅଇ ପ୍ରଚାର ॥
ସେ କାଳ ଅୟନରୂପରେ । କହନ୍ତି ପ୍ରାଣୀ ଜଗତରେ ॥
୭ ଦ୍ୟାବାପୃଥିବୀ-ବେନିଙ୍କର । ମଣ୍ଡଳ ସହିତେ ଭାସ୍କର ॥
ନଭୋମଣ୍ଡଳ ସମଗ୍ରରେ । ଭୁଞ୍ଜଇ ଯେତେକ କାଳରେ ॥
ସଂବତ୍ସର, ପରିବତ୍ସର । ଇଦାବତ୍ସର, ଇଦ୍ୱତ୍ସର ॥
ଅନୁବତ୍ସର ଆର ନାମ । ଭାନୁର ଶୀଘ୍ର, ମନ୍ଦ, ସମ ॥

୧. ଦ୍ୟାବାପୃଥିବୀ = ସ୍ୱର୍ଗ ଓ ପୃଥିବୀ ।

ଏ ରୂପେ ଅଟେ ଯେଉଁ ଗତି । ତେଣେ ସେ ବିଖ୍ୟାତ ହୁଅନ୍ତି ॥
ଏତେ ପ୍ରକାରେ ତେଣେ ହୋଇ । ବରଷଙ୍କର ନାମ ଏହି ॥
୮ ସୂର୍ଯ୍ୟକିରଣୁଁ ଏ ପ୍ରକାରେ । ଲକ୍ଷେ ଯୋଜନର ଉପରେ ॥
ଚନ୍ଦ୍ର ହୋଇଛି ବିଦ୍ୟମାନ । ବେଗେ କରଇ ସେ ଗମନ ॥
ତା' ରଥଚରଣର ଗତି । ସବୁହୁଁ ବେଗ ଅଟେ ଅତି ॥
ରବି ଯା' ଭୁଞ୍ଜେ ବରଷରେ । ଏ ତା' ମାସକେ ଭୋଗ କରେ ॥
ତପନ ଜ୍ୟୋତିଶ୍ଚକ୍ରଗତେ । ମାସକେ ଭୋଗ କରେ ଯେତେ ॥
ସପାଦ ବେନି ନକ୍ଷତ୍ରରେ । ଏ ପୁଣି ତାହା ଭୋଗ କରେ ॥
ପକ୍ଷକେ ଭୁଞ୍ଜେ ରବି ଯାହା । ଦିନକେ ଭୁଞ୍ଜଇ ଏ ତାହା ॥
୯ ଯେବଣ କଳାମାନେ ତାର । ବଢ଼ନ୍ତି ଛିଡ଼ନ୍ତି ଆବର ॥
ତେଣେ ପୂର୍ବ ଅପର ପକ୍ଷେ । ପିତୃମାନଙ୍କର ପ୍ରତ୍ୟକ୍ଷେ ॥
ଅହୋରାତ୍ରକୁ ବିସ୍ତାରଇ । ଜୀବନ ହେତୁ ସେ ଅଟଇ ॥
ସକଳ ଜୀବମାନଙ୍କର । ପ୍ରାଣସ୍ୱରୂପୀ ସୁଧାକର ॥
ତିରିଶି ମୁହୂର୍ତ୍ତେ ଭୁଞ୍ଜଇ । ନକ୍ଷତ୍ର ଏକ ଏକ ସେହି ॥
୧୦ ଷୋଡ଼ଶକଳା ଯେ ପୁରୁଷ । ମାନସମୟ ଏ ପ୍ରକାଶ ॥
ଯେ ପୁଣ ଅନ୍ନମୟ ହୋଇ । ଅମୃତମୟ ଯେ ଅଟଇ ॥
ଦେବତା, ପିତୃ, ଭୂତ, ନର । ପଶୁ, ପକ୍ଷୀ, ଉରଗଙ୍କର ॥
ଲତାଙ୍କ ପ୍ରାଣ-ଆପ୍ୟାୟନ । କରଇ ଯେଣୁ ଅନୁଦିନ ॥
ସକଳମୟ ବୋଲି ଜନ । ଏ ଘେନି କରନ୍ତି ବର୍ଣ୍ଣନ ॥
୧୧ '[1]ଲକ୍ଷେ ଯୋଜନେ ତା' ଉପରେ । ମେରୁକୁ ଦକ୍ଷିଣ ଭାଗରେ ॥
କାଳଚକ୍ରରେ ଭଗବାନ । କରିଛନ୍ତି ଯା' ନିଯୋଜନ ॥
ଅଭିଜିତ[2] ସହିତେ ପୁଣ । ଅଷ୍ଟାବିଂଶତି ତାରାଗଣ ॥
୧୨ ଶୁକ୍ର ଅଛନ୍ତି ତା' ଉପରେ । ଦ୍ୱିଲକ୍ଷ ଯୋଜନ ଅନ୍ତରେ ॥
ସୂର୍ଯ୍ୟର ଆଗରେ ପଛରେ । ଅଥବା ସୂର୍ଯ୍ୟସହିତରେ ॥
ଯେ ଶୀଘ୍ର, ମନ୍ଦ, ସମ ହୋଇ । ସୂର୍ଯ୍ୟର ଗତି ପ୍ରକାଶଇ ॥
ତେଣେ ସେ କରଇ ଗମନ । ସବିତା ଚରଇ ଯେସନ ॥
ସର୍ବଦା ଶୁଭ କରି ଜନ । କରନ୍ତି ତାଙ୍କୁ ଅନୁମାନ ॥
ଯେ ଗ୍ରହ ଦୃଷ୍ଟିକି ସ୍ତମ୍ଭଇ । ତାହାକୁ ଶାନ୍ତି ସେ କରଇ ॥
୧୩ ତାର ଉପରେ ବୁଧ ଚରେ । ଦ୍ୱିଲକ୍ଷ ଯୋଜନ ଅନ୍ତରେ ॥
ସୋମର ସୁତ ସେ ଅଟଇ । ପ୍ରାୟ ମଙ୍ଗଳ ଆଚରଇ ॥

---

୧. ଦ୍ୱିଲକ୍ଷ, ତ୍ରିଲକ୍ଷ । ୨. "ଅଭିଜିନ୍ନାମ ନକ୍ଷତ୍ରମୁପରିଷ୍ଟାଦୁତ୍ତରାଷାଢ଼ାନାମାଧସ୍ତାତ୍ ଶ୍ରୋଣାୟାଃ (ଶ୍ରୁତିଃ)" ।

| | | | | |
|---|---|---|---|---|
| | ସୂର୍ଯ୍ୟସଙ୍ଗରୁ ଚଳେ ଯେବେ | । ପ୍ରାଣୀଙ୍କ ଶୁଭ ହରେ ତେବେ | ॥ | ୬୯ |
| | ତହିଁରେ ବାତ, ମେଘପ୍ରାୟ | । କହନ୍ତି ଅନାବୃଷ୍ଟିଭୟ | ॥ | ୭୦ |
| | ଶୁକ୍ର ଯେସନେ ରବିସଙ୍ଗେ | । ଚରଇ ପୃଷ୍ଠ ଦେଶେ, ଆଗେ | ॥ | ୭୧ |
| | ସେହି ପ୍ରକାରେ ବୁଧଠାରେ | । ବ୍ୟାଖ୍ୟା କରନ୍ତି ଏ ସଂସାରେ | ॥ | ୭୨ |
| ୧୪ | ତହିଁରୁ ଦ୍ୱିଲକ୍ଷ ଯୋଜନ | । ଉଛେ ମଙ୍ଗଳ ବିଦ୍ୟମାନ | ॥ | ୭୩ |
| | ଏକ ରାଶିକି ତ୍ରିପକ୍ଷରେ | । ଭୋଗ କରଇ ଏ ପ୍ରକାରେ | ॥ | ୭୪ |
| | ଦ୍ୱାଦଶ ରାଶିକି ଭୁଞ୍ଜଇ | । ଯେବେ ସେ ବକ୍ର ନୋହିଥାଇ | ॥ | ୭୫ |
| | ସେ ଗ୍ରହ ଅଶୁଭ ଅଟଇ | । ପ୍ରାଣୀଙ୍କ ଦୁଃଖକୁ ଦିଅଇ | ॥ | ୭୬ |
| ୧୫ | ତାର ଉପରେ ବୃହସ୍ପତି | । ଦ୍ୱିଲକ୍ଷ ଯୋଜନରେ ସ୍ଥିତି | ॥ | ୭୭ |
| | ଯଦି ସେ ବକ୍ର ନୋହିଥାଇ | । ରାଶିକେ ବରଷେ ରହଇ | ॥ | ୭୮ |
| | ବିଶେଷେ ବ୍ରାହ୍ମଣ କୁଳର | । ମଙ୍ଗଳ କରଇ ଅପାର | ॥ | ୭୯ |
| ୧୬ | ଦ୍ୱିଲକ୍ଷ ଯୋଜନ ତହିଁର | । ଉପରେ ଅଛି ଶନୈଶ୍ଚର | ॥ | ୮୦ |
| | ଏକ ଏକ ରାଶିରେ ଥାଇ | । ସେ ଗ୍ରହ ବିଳମ୍ବ କରଇ | ॥ | ୮୧ |
| | ଅଢ଼ାଇ ଅଢ଼ାଇ ବରଷ | । ଚରେ ଏ ରୂପେ ରାଶିଶେଷ | ॥ | ୮୨ |
| | ବିଶେଷେ ପୁଣ ସର୍ବଜନ | । ଅଶାନ୍ତି କରଇ ବିଧାନ | ॥ | ୮୩ |
| ୧୭ | ଋଷିଏ ଛନ୍ତି ତହିଁ ପରେ | । ଏଗାର ଲକ୍ଷ ଯୋଜନରେ | ॥ | ୮୪ |
| | ଯେଉଁ ଋଷିଏ ପ୍ରାଣୀଙ୍କର | । କୁଶଳ ବାଞ୍ଛନ୍ତି ମନର | ॥ | ୮୫ |
| | ପରମ ପଦ ରୂପେ ଖ୍ୟାତ | । ଯେ ବିଷ୍ଣୁସ୍ଥାନ ଏ ଜଗତ | ॥ | ୮୬ |
| | ତାହାଙ୍କୁ ନିତ୍ୟେ ପ୍ରଦକ୍ଷିଣ | । କରୁଛନ୍ତି ସେ ଋଷିଗଣ | ॥ | ୮୭ |
| | ବୋଲଇ ବିପ୍ର ଦୀନବଂଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ॥ | ୮୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଜ୍ୟୋତିଶ୍ଚକ୍ରବର୍ଣ୍ଣନେ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥

## ତ୍ରୟୋବିଂଶ ଅଧ୍ୟାୟ

ତ୍ରୟୋବିଂଶେ ଧ୍ରୁବସ୍ଥାନଂ ଜ୍ୟୋତିଶ୍ଚକ୍ରାଶ୍ରୟଂ ତତଃ ।
ଶିଶୁମାରସ୍ୱରୂପେଣ ହରେଶ୍ଚ ସ୍ଥିତିରୁଚ୍ୟତେ ॥ ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଏଥୁ ଉତ୍ତାରେ ତହିଁ ପରେ | । ତେର ଲକ୍ଷ ଯୋଜନାନ୍ତରେ | ॥ | ୧ |
| | ବିଷ୍ଣୁର ଯେ ପରମ ସ୍ଥାନ | । ତାହା କହନ୍ତି ମୁନିଜନ | ॥ | ୨ |
| | ଅଗ୍ନି, ବାସବ, ପ୍ରଜାପତି | । କଶ୍ୟପ, ଧର୍ମ ଏହୁ ନିତି | ॥ | ୩ |

ଏମାନେ ସମାନ କାଳରେ । ଅଛନ୍ତି ନକ୍ଷତ୍ର ରୂପରେ ।।
ଏହାଙ୍କ ସଙ୍ଗେ ଅନୁଦିନ । କରି ଅତିଶୟ ସମ୍ମାନ ।।
ଯହିଁରେ ମହାଭାଗବତ । ଉତ୍ତାନପାଦ ରାଜାସୁତ ।।
ଦକ୍ଷିଣ କରିଣ ସେ ସ୍ଥାନ । ଆଜ ହିଁ କରେ ଉପାସନ ।।
ସେ କଳ୍ପଜୀବୀଙ୍କ ଜୀବନ । ବୃତ୍ତିକି ଅଟଇ ନିଦାନ ।।
ତାହାର ମହା ଅନୁଭାବ । ଆମ୍ଭେ ବର୍ଣ୍ଣିଲା ଥାଇଁ ପୂର୍ବ ।।
୨ ଅବ୍ୟକ୍ତ ଅଟେ ବେଗ ଯାର । ଯେ କାଳସ୍ୱରୂପୀ ଈଶ୍ୱର ।।
ସେ ଯେଉଁମାନଙ୍କୁ ଭ୍ରମଣ । କରାଉଅଛି ପୁଣ ପୁଣ ।।
ଗ୍ରହନକ୍ଷତ୍ର ଆଦି ହୋଇ । ସେ ଜ୍ୟୋତିର୍ଗଣ ପ୍ରକାଶଇ ।।
ଯେ ଧ୍ରୁବ ସେ ସମସ୍ତଙ୍କର । ସ୍ଥାଣୁର ପ୍ରାୟେକ ଆଧାର ।।
ଈଶ୍ୱର କରିଛି ନିର୍ମିତ । ଦୀପ୍ତଂ[1] କରୁଛି ଏ ଜଗତ ।।
୩ ବଳଦମାନଙ୍କୁ ଯେସନ । ମେଢ଼ିଖମ୍ଭରେ ଯୋଚେ ଜନ ।।
ଯେସନେ ବଳୀବର୍ଦ୍ଧମାନ । ଭ୍ରମିଣ କରନ୍ତି ଗମନ ।।
ସେମାନେ ଯଥାସ୍ଥାନେ ନିତି । ମଣ୍ଡଳାକାରରେ ଭ୍ରମନ୍ତି ।।
ଏରୂପେ ଗ୍ରହ ଆଦି ଯେତେ । ନକ୍ଷତ୍ରଗଣ ଏ ଜଗତେ ।।
ସେମାନେ ଏ କାଳଚକ୍ରରେ । ଅନ୍ତର ବାହିର[2] ଯୋଗରେ ।।
ଯୋଜିତ ହୋଇଣ ଧ୍ରୁବକୁ । ଅବଲମ୍ବନ କରି ତାକୁ ।।
ଭ୍ରମନ୍ତି କଳ୍ପପ୍ରାନ୍ତ ଯାଏ । ପବନ ତାହାଙ୍କୁ ବୁଲାଏ ।।
ଆକାଶେ ଜଳଦ ଯେସନେ । ଛଞ୍ଚାଣ ଆଦି ପକ୍ଷୀମାନେ ।।
ଭ୍ରମନ୍ତି ପବନବଶରେ । କର୍ମ ସହାୟ ତାଙ୍କଠାରେ ।।
ପ୍ରକୃତି ପୁରୁଷ ଯେ ଦୁହେଁ । ତାଙ୍କ ସଂଯୋଗ ଅନୁଗ୍ରହେ ।।
ଏ ରୂପେ ଜ୍ୟୋତିର୍ଗଣମାନ । ଭୂମିରେ ନୁହନ୍ତି ପତନ ।।
କର୍ମରେ ନିର୍ମିତ ହୋଇଣ । ଗତି ତାଙ୍କର ଯେଣୁ ପୁଣ ।।
୪ ଶିଶୁମାରସ୍ୱରୂପ ହୋଇ । ଯେବେଣ ସଂସ୍ଥାନ ଅଛଇ ।।
ଏ ଜୋତିଶ୍ଚକ୍ର ହିଁ ତହିଁରେ । ବିଷ୍ଣୁର ଯୋଗଧାରଣାରେ ।।
ସ୍ଥିତ ହୋଇଛି କେହି ପୁଣ । ଏ ରୂପେ କରନ୍ତି ବଖାଣ ।।
୫ ଯେଉଁ ଶିଶୁମାରଚକ୍ରର । ତଳକୁ ହୋଇଅଛି ଶିର ।।
କୁଣ୍ଡଳୀ-ଆକାରେ ତାହାର । ପ୍ରକାଶ ହୋଇଛି ଶରୀର ।।
ତାର ଲାଙ୍ଗୁଳେ କରି ସ୍ଥିତି । ଅଛନ୍ତି ଧ୍ରୁବ ପ୍ରଜାପତି ।।
ଅଛନ୍ତି ଅଗ୍ନି ଇନ୍ଦ୍ର ବେନି । ଧର୍ମକୁ ସଙ୍ଗତରେ ଘେନି ।।
ଧାତା, ବିଧାତା ପୁଚ୍ଛମୂଳେ । ସପତ ଋଷି କଟିସ୍ଥଳେ ।।

୧. ଦୀପ୍ତି । ୨. ବାହ୍ୟର ।

ଦକ୍ଷିଣାବର୍ତ୍ତ ହୋଇ ତାର । କୁଣ୍ଡଳୀ ଆକାରେ ଶରୀର ।। ୩୫
ଅଭିଜିତକୁ ଆଦି ହୋଇ । ପୁନର୍ବସୁ ପର୍ଯ୍ୟନ୍ତ ଯେହି ।। ୩୬
ଚଉଦ ନକ୍ଷତ୍ର ଏ ତାର । ଅଛନ୍ତି ଦକ୍ଷିଣ ପାର୍ଶ୍ୱର ।। ୩୭
ପୁଷ୍ୟାକୁ ଆଦି କରି ଯେହି । ଉତ୍ତରାଷାଢ଼ା ଯାଏ ହୋଇ ।। ୩୮
ବାମପାର୍ଶ୍ୱେ ଏ ଚତୁର୍ଦ୍ଦଶ । ନକ୍ଷତ୍ର ଅଟନ୍ତି ପ୍ରକାଶ ।। ୩୯
କୁଣ୍ଡଳାଭୋଗ ଦେହ ଯାର । ଯେସନେ ସେ ଶିଶୁମାରର ।। ୪୦
ବେନି ପାରୁଶେ ଅବୟବେ । ଥାଆନ୍ତି ସମସଂଖ୍ୟ ଭାବେ ।। ୪୧
ପୃଷ୍ଠରେ ଅଜବୀଥୀ ତାର । ଆକାଶଗଙ୍ଗା ଉଦରର ।। ୪୨
୬ ବାମ ଦକ୍ଷିଣ ଶ୍ରୋଣୀଦେଶେ । ଅଛନ୍ତି ପୁନର୍ବସୁପୁଷ୍ୟେ ।। ୪୩
ଦକ୍ଷିଣ ବାମ ଚରଣରେ । ଆର୍ଦ୍ରା, ଅଶ୍ଳେଷା ବେନି ତାରେ ।। ୪୪
ଅଭିଜିତନାମରେ ତାର । ଉତ୍ତରାଷାଢ଼ା ନାମେ ଆର ।। ୪୫
ଦକ୍ଷିଣ ବାମ ନାସିକାରେ । ଅଛନ୍ତି ଏ ଯଥାସଂଖ୍ୟାରେ ।। ୪୬
ଶ୍ରବଣା, ପୂର୍ବାଷାଢ଼ା ଦୁଇ । ଦକ୍ଷିଣ ବାମ ନେତ୍ରେ ଥାଇ ।। ୪୭
ଧନିଷ୍ଠା, ମୂଳା ଏ ଦକ୍ଷିଣ । ବାମ କର୍ଣ୍ଣରେ ସ୍ଥିତ ପୁଣ ।। ୪୮
ମଘାଦି ଆଠ ଯେ ବିଦିତ । ଦକ୍ଷିଣାୟନରୂପେ ସ୍ଥିତ ।। ୪୯
ଏମାନେ ବାମ ପାରୁଶରେ । ଯୋଜିତ ଅଟନ୍ତି ଅସ୍ଥିରେ ।। ୫୦
ମୃଗଶୀର୍ଷକୁ ଆଦି ହୋଇ । ଉତ୍ତରାୟଣ ଯେ ଅଟଇ ।। ୫୧
ସେହୁ ଦକ୍ଷିଣପାର୍ଶ୍ୱଗତ । ପ୍ରତିଲୋମରେ ନିଯୋଜିତ ।। ୫୨
ଶତଭିଷା, ଜ୍ୟେଷ୍ଠା ଏ ଦୁଇ । ଦକ୍ଷିଣ ବାମ ସ୍କନ୍ଧେ ଦେଇ ।। ୫୩
୭ ଉତ୍ତର ଅଧର ହନୁର । ଅଗସ୍ତ୍ୟ, ଯମ ବେନି ତାର ।। ୫୪
ମଙ୍ଗଳ ଅଛନ୍ତି ମୁଖରେ । ରବିତନୁଜ[1] ଉପସ୍ଥରେ ।। ୫୫
ବୃହସ୍ପତି କକୁଦେ ସ୍ଥିତ । ବକ୍ଷରେ ଅଛନ୍ତି ଆଦିତ୍ୟ ।। ୫୬
ହୃଦୟେ ଛନ୍ତି ନାରାୟଣ । ମନରେ ଚନ୍ଦ୍ର ଛନ୍ତି ପୁଣ ।। ୫୭
ଉଶନା ଅଛନ୍ତି ନାଭିରେ । ସ୍ତନରେ ଅଶ୍ୱିନ କୁମାରେ ।। ୫୮
ପ୍ରାଣ-ଅପାନେ ବୁଧ ସ୍ଥିତ । ରାହୁ ଗଳେ କେତୁଏ ଯୁତ ।। ୫୯
ସର୍ବାଙ୍ଗେ, ରୋମରେ ସକଳ । ଅଛନ୍ତି ତାର ତାରାକୁଳ ।। ୬୦
୮ ସର୍ବଦେବତାମୟ ହୋଇ । ଏ ବିଷ୍ଣୁରୂପ ପ୍ରକାଶଇ ।। ୬୧
ସଂଯତ ହୋଇଣ ମଉନ । ପ୍ରତିଦିନରେ ଏହା ଜନ ।। ୬୨
ତାହିଁଣ କରିବେ ସ୍ତବନ । କହିବା ତା' ମନ୍ତ୍ରବିଧାନ ।। ୬୩
ଆଶ୍ରୟ ଜ୍ୟୋତିମାନଙ୍କର । ଯେହୁ ତାହାଙ୍କୁ ନମସ୍କାର ।। ୬୪
ଯେ କାଳଚକ୍ରକଳେବର । ଦେବତାମାନଙ୍କ ଈଶ୍ୱର ।। ୬୫
ମହାପୁରୁଷକୁ ଆନ୍ତର । ପ୍ରଣାମ ଧ୍ୟାନ ବାରମ୍ବାର ।। ୬୬

---

୧. ରବିତନୁଜ = ଶନି ।

| | | | | | |
|---|---|---|---|---|---|
| ୯ | ଗ୍ରହ-ନକ୍ଷତ୍ର-ତାରାମୟ | । ଯେହୁ କରଇ ପାପକ୍ଷୟ | ॥ | ୬୭ |
| | ଅଧିଦେବତା ଯେ ଅଟନ୍ତି | । ତାଙ୍କୁ ତ୍ରିକାଳେ ଯେ ନମନ୍ତି | ॥ | ୬୮ |
| | ଏ ମନ୍ତ୍ର ପଢ଼ି ତ୍ରିସଂଧ୍ୟାରେ | । ସ୍ମରଣ କରନ୍ତି ଯେ ନରେ | ॥ | ୬୯ |
| | ତାଙ୍କର ତତକାଳେ ଜାତ | । ବିନାଶ ହୁଅଇ ଦୁରିତ | ॥ | ୭୦ |
| | ବୋଲଇ ବିପ୍ର ଦୀନବଂଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ॥ | ୭୧ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶିଶୁମାରସଂସ୍ଥାନଂ
ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

## ଚତୁର୍ବିଂଶ ଅଧ୍ୟାୟ

ଏବଂ ତ୍ରିଭିର୍ଦ୍ୟୁମର୍ଯ୍ୟାଦାପାଳନଂ ବର୍ଣ୍ଣିତଂ ତଥା ।
ଅଧୋଭୁବନମର୍ଯ୍ୟାଦାପାଳନଂ ତ୍ରିଭିରୁଚ୍ୟତେ ॥ ୧
ଚତୁର୍ବିଂଶେ ରବେରର୍ବାକ୍ ସ୍ୱର୍ଭାନ୍ୱାଦିସ୍ଥିତିଃ କ୍ରମାତ୍ ।
ଅତଳାଦିବିଳସ୍ୱର୍ଗମର୍ଯ୍ୟାଦାଃ ସପ୍ତ ବର୍ଣ୍ଣିତାଃ ॥ ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ସୂର୍ଯ୍ୟଙ୍କୁ ଅୟୁତେ ଯୋଜନ | । ତଳରେ ରାହୁଙ୍କର ସ୍ଥାନ | ॥ | ୧ |
| | ଭ୍ରମନ୍ତି ନକ୍ଷତ୍ରପରାଏ | । ଏ ରୂପେ କହନ୍ତି ଥୋକାଏ | ॥ | ୨ |
| | ଅସୁରଙ୍କର ମଧ୍ୟେ ହୀନ | । ଅଟେ ଯେ ସିଂହିକାନନ୍ଦନ | ॥ | ୩ |
| | ବିଷ୍ଣୁକୃପାରେ ଗ୍ରହ ହେଲା | । ଅମର ଭାବକୁ ଲଭିଲା | ॥ | ୪ |
| | ଏ ବେନି କଥାକୁ ଚେଷ୍ଟାରେ | । ଯୋଗ୍ୟ ନୁହଇ ସେ ସଂସାରେ | ॥ | ୫ |
| | ହେ ତାତ ! ଜନ୍ମ କର୍ମ ତାର | । ଆଗେ କହିବା ତୋ' ଆଗର | ॥ | ୬ |
| ୨ | ଯେବଣ ତରଣିମଣ୍ଡଳ | । ତପତି କରୁଅଛି ତଳ | ॥ | ୭ |
| | ବିସ୍ତାରେ ଅୟୁତ ଯୋଜନ | । କହନ୍ତି ତାହା ସାଧୁଜନ | ॥ | ୮ |
| | ଦ୍ୱାଦଶସହସ୍ର ଯୋଜନ | । ସୋମମଣ୍ଡଳ ବିଦ୍ୟମାନ | ॥ | ୯ |
| | ରାହୁମଣ୍ଡଳ ତ୍ରୟୋଦଶ | । ସହସ୍ର ଯୋଜନ ପ୍ରକାଶ | ॥ | ୧୦ |
| | ସେ ସୂର୍ଯ୍ୟ-ଚନ୍ଦ୍ରର ମଣ୍ଡଳ | । ଆଚ୍ଛାଦି କରି ପର୍ବକାଳ | ॥ | ୧୧ |
| | ସୂର୍ଯ୍ୟଚନ୍ଦ୍ରଙ୍କୁ ଯେ ଧାମଇଁ | । ପୂର୍ବେ ବଇର କରିଥାଇ | ॥ | ୧୨ |
| ୩ | ସେ କଥା ଶୁଣି ଭଗବାନ | । ସେ ସୂର୍ଯ୍ୟଚନ୍ଦ୍ରଙ୍କର ସ୍ଥାନ | ॥ | ୧୩ |
| | କରି ଅଛନ୍ତି ନିଯୋଜନ | । ବୈଷ୍ଣବ ଚକ୍ର ସୁଦର୍ଶନ | ॥ | ୧୪ |
| | ସେ ଚକ୍ର ଦୁଃସହ ଅଟଇ | । ଉପରେ ଆସିଣ ବୁଲଇ | ॥ | ୧୫ |
| | ଦେଖି ଅଭିମୁଖେ ଏମନ୍ତ | । ମୁହୂର୍ତ୍ତେ ହୋଇ ଅବସ୍ଥିତ | ॥ | ୧୬ |

ଦୂରୁଁ ଚକିତମନା ହୋଇ । ଉଦ୍‌ବେଗ ପାଇ ନିବର୍ତ୍ତଇ ॥ ୧୭
ଉପରାଗ[1] ବୋଲିଣ ଜନ । ସେ କଥା କରନ୍ତି ବ୍ୟାଖ୍ୟାନ ॥ ୧୮
୪ ତହିଁର ଉତ୍ତାରୁ ତଳରେ । ତେତିକି ଯୋଜନ ଅନ୍ତରେ ॥ ୧୯
ସିଦ୍ଧ ଚାରଣ ବିଦ୍ୟାଧର । କରିଣ ଅଛନ୍ତି ମନ୍ଦିର ॥ ୨୦
୫ ଯକ୍ଷ, ରାକ୍ଷସ, ପ୍ରେତ ଭୂତ । ପିଶାଚଗଣ ଯେ ବିଦିତ ॥ ୨୧
ଏହାଙ୍କ ବିହାରମନ୍ଦିର । ଆକାଶ ତହିଁରୁ ତଳର ॥ ୨୨
ପବନ ଯେତେଦୂରେ ବହି । ମେଘ ଯହିଁରେ ଛନ୍ତି ରହି ॥ ୨୩
୬ ଏ ପୃଥ୍ୱୀ ତହିଁରୁ ତଳରେ । ଶତ ଯୋଜନର ଅନ୍ତରେ ॥ ୨୪
ହଂସ, ସୁପର୍ଣ୍ଣ, ଭାସ, ଶ୍ୟେନ । ଇତ୍ୟାଦି ପକ୍ଷୀ ଶ୍ରେଷ୍ଠମାନ ॥ ୨୫
ପୃଥ୍ୱୀବିକାର ଏ ଅଟନ୍ତି । ଏମାନେ ଯହିଁରେ ଚରନ୍ତି ॥ ୨୬
୭ ଏ ଭୂମି ସନ୍ନିବେଶ ହୋଇ । ଯେମନ୍ତ ରୂପେ ଅଛି ରହି ॥ ୨୭
ସେ କଥା ତୋହର ଆଗରେ । ବର୍ଣ୍ଣିଲୁଁ ଯଥାର୍ଥ ରୂପରେ ॥ ୨୮
ଅବନିତଳେ ଭୂବିବର । ଅଛନ୍ତି ସପତ ପ୍ରକାର ॥ ୨୯
ଅଯୁତେ ଯୋଜନ ଅନ୍ତରେ । ବ୍ରହ୍ମାଣ୍ଡ ଭାଣ୍ଡ ଅନୁସାରେ ॥ ୩୦
ଏକ ଏକରେ ତାହାଙ୍କର । ବିଖ୍ୟାତ ଦୀର୍ଘ ପ୍ରତି ଆର ॥ ୩୧
ତଳକୁ ତଳ ସେ କ୍ରମରେ । ଅଛନ୍ତି ଧରଣୀବିବରେ ॥ ୩୨
ଅତଳ, ବିତଳ, ସୁତଳ । ଯେ ତଳାତଳ, ମହାତଳ ॥ ୩୩
ରସାତଳ, ପାତାଳ ପୁଣ । ଏ ରୂପେ ସପତ ପ୍ରମାଣ ॥ ୩୪
୮ ଐଶ୍ୱର୍ଯ୍ୟ-ଆନନ୍ଦ ସନ୍ତତି । ବିଭୂତି, କାମଭୋଗ, ଭୂତି ॥ ୩୫
ସ୍ୱର୍ଗରୁ ଅଧିକ ହୋଇଣ । ଏମାନେ ଛନ୍ତି ଯହିଁ ପୁଣ ॥ ୩୬
ଏଣେ ସମୃଦ୍ଧ ଯେ ଭବନ । ଗୃହ, ଉଦ୍ୟାନ, କ୍ରୀଡ଼ାସ୍ଥାନ ॥ ୩୭
ପ୍ରକାଶ ଅଟନ୍ତି ଯହିଁରେ । ସେ ବିଲସ୍ୱର୍ଗମାନଙ୍କରେ ॥ ୩୮
ଦୈତ୍ୟ, ଦାନବ, ସର୍ପମାନେ । ରହି ଅଛନ୍ତି ଯେଝା ସ୍ଥାନେ ॥ ୩୯
ଭାର୍ଯ୍ୟା, ତନୁଜ, ଅନୁଚର । ବନ୍ଧୁ, ସୁହୃଦ, ଗୃହେଶ୍ୱର ॥ ୪୦
ନିତ୍ୟେ ଯାହାଙ୍କର ଏମାନ । ମୁଦିତ, ଅନୁରାଗୀମନ ॥ ୪୧
ମନୋରଥକୁ ଯାହାଙ୍କର । ଭଙ୍ଗ ନ କରନ୍ତି ଈଶ୍ୱର ॥ ୪୨
ଯେଉଁମାନଙ୍କର ମାୟାରେ । ବିନୋଦ ସକଳ କାଳରେ ॥ ୪୩
୯ ଯହିଁ ମାୟାବୀ ମୟାସୁର । କରିଣ ଅଛି ନାନା ପୁର ॥ ୪୪
ଯେ ନାନା ଶ୍ରେଷ୍ଠ ମଣିମାନ । ତାହାଙ୍କ ମଧ୍ୟେ ଯେ ପ୍ରଧାନ ॥ ୪୫
ତେଣେ ଘଟିତ ଯେ ସୁନ୍ଦର । ଭବନ, ପ୍ରାକାର, ଗୋପୁର ॥ ୪୬
ସଭାଚଇତ୍ୟ ଆୟତନ । ଚତ୍ୱର ଆଦି ନାନା ସ୍ଥାନ ॥ ୪୭

---

୧. ଉପରାଗ = ଗ୍ରହଣ ।

ବିବରପତିମାନଙ୍କର । ଶ୍ରେଷ୍ଠ ଅଟନ୍ତି ଯେ ମନ୍ଦିର ॥ ୪୮
ତାହାଙ୍କ ସଙ୍ଗେ ଅଳଙ୍କୃତ । ହୋଇ ସେ ଦିଶନ୍ତି ଶୋଭିତ ॥ ୪୯
ମିଥୁନ ହୋଇଣ ଯେ ସ୍ଥିତ । ଶୁକ, ସାରିକା ପାରାବତ ॥ ୫୦
ନାଗ, ଅସୁର ଯେ ବା ଆନ । ସେମାନଙ୍କରେ ଅନୁଦିନ ॥ ୫୧
ଯହିଁରେ ହୋଇଛନ୍ତି ପୂର୍ଣ୍ଣ । କୃତ୍ରିମ ନାନା ଭୂମିମାନ ॥ ୫୨
୧୦ ଯହିଁରେ ଅତିଶୟ ହୋଇ । ଉଦ୍ୟାନମାନ ଶୋଭା ପାଇ ॥ ୫୩
ସେ ଫଳସ୍ତବକ, କୁସୁମ । ପଲ୍ଲବମାନ ମନୋରମ ॥ ୫୪
ଏଣେ ଆନମ୍ର ଯାହାଙ୍କର । ବିଟପମାନେ ମନୋହର ॥ ୫୫
ଲତାମାନଙ୍କର ଅଙ୍ଗରେ । ଯେ ଆଲିଙ୍ଗନ ନିରନ୍ତରେ ॥ ୫୬
ଏମନ୍ତ ବୃକ୍ଷମାନଙ୍କର । ଶୋଭାରେ ସ୍ୱର୍ଗରୁ ସୁନ୍ଦର ॥ ୫୭
ରଥାଙ୍ଗ ଆଦିଙ୍କ ମିଥୁନ । ସହିତ ନାନା ପକ୍ଷୀମାନ ॥ ୫୮
ଏଣେ ଅଟନ୍ତି ଯେ ସଂଯୁତ । ନିର୍ମଳ ଜଳରେ ପୂରିତ ॥ ୫୯
ସେ ଜଳାଶୟଙ୍କ ଶୋଭାରେ । ସ୍ୱର୍ଗକୁ ଜିଣନ୍ତି ପ୍ରଭାରେ ॥ ୬୦
ମୀନକୁଳଙ୍କର ଲଙ୍ଘନେ । କ୍ଷୁଭିତ ଯେଉଁ ନୀରମାନେ ॥ ୬୧
ତହିଁ ଅଛନ୍ତି ଯେ କମଳ । କୁମୁଦ, କୁବଳୟକୁଳ ॥ ୬୨
ନୀଳ ଉତ୍ପଳ, କହ୍ଲାର । ରକତ ପଦ୍ମ ଆଦି ଆର ॥ ୬୩
ତାହାଙ୍କ ବନେ ଅବିରତ । କରି ଅଛନ୍ତି ଯେ ନିକେତ ॥ ୬୪
ସେ ଦିବ୍ୟ ପକ୍ଷୀମାନଙ୍କର । ସ୍ୱଚ୍ଛନ୍ଦ ଅଟେ ଯେ ବିହାର ॥ ୬୫
ତେଣେ ସଂଯୁତ ମନୋହର । ନାନା ସ୍ୱନ ଆଦି ତାଙ୍କର ॥ ୬୬
ମନ ଇନ୍ଦ୍ରିୟକୁ ସେମାନେ । ହରଷ କରାନ୍ତି ଭୁବନେ ॥ ୬୭
ସେ ହେତୁ ହୁଅଇ ଯେ ଜାତ । ଇନ୍ଦ୍ରିୟ-ଉତ୍ସବ ସଂତତ ॥ ୬୮
ତେଣେ ଯେ ଅମରଭୁବନ । ଶୋଭାକୁ କରନ୍ତି ନିଜନ ॥ ୬୯
୧୧ ଦିବସ-ରଜନୀ ରୂପରେ । ଯେ କାଳବିଭାଗ ସଂସାରେ ॥ ୭୦
ତେଣୁ ଯେ ଭୟ ଜାତ ହୋଇ । ସେ ପୁରମାନଙ୍କେ ସେ ନାହିଁ ॥ ୭୧
୧୨ ଉରଗଶ୍ରେଷ୍ଠମାନଙ୍କର । ଯେ ଥାନ୍ତି ମଣିମାନେ ଶିର ॥ ୭୨
ସକଳ ତମକୁ ସେମାନେ । ନାଶ କରନ୍ତି ଯେଉଁ ସ୍ଥାନେ ॥ ୭୩
୧୩ ଏ ପୁରମାନଙ୍କେ ନିବାସ । କରିଣ ଥାନ୍ତି ଯେ ଅନିଶ ॥ ୭୪
ଦିବ୍ୟ ଓଷଧି ରସାୟନ । ରସ ଭୋଜନ ସ୍ନାନ ପାନ ॥ ୭୫
ଏ ଆଦି ମାନଙ୍କେ ତାଙ୍କର । ପୀଡ଼ା ନ ସମ୍ଭବେ ମନର ॥ ୭୬
ବଳୀପଳିତ ଜ୍ୱର ବ୍ୟାଧି । ଏମାନେ ନୁହନ୍ତି ସଂସିଦ୍ଧି ॥ ୭୭
ବିବର୍ଣ୍ଣଭାବ ଶରୀରର । ଦୁର୍ଗନ୍ଧ, ସ୍ୱେଦ, କ୍ଲମ ଆର ॥ ୭୮
ଉତ୍ସାହହାନି ଏ ପ୍ରକାରେ । ବୟସ-ଅବସ୍ଥା ରୂପରେ ॥ ୭୯
ଯେତେକ ବିଖ୍ୟାତ ଅଟନ୍ତି । ସେମାନେ ତାଙ୍କର ନୁହନ୍ତି ॥ ୮୦

୧୪ ସେମାନେ ମଙ୍ଗଳଶରୀର । କାହାରି ସକାଶୁଁ ତାଙ୍କର ।। ୮୧
ମରଣ ସମ୍ଭବ ନୁହଇ । ବିଷ୍ଣୁର ତେଜ ଯେ ଅଟଇ ।। ୮୨
ସେ ଚକ୍ର-ଆକାର ବିହୁନେ । ମୃତ୍ୟୁ ନ ଥାଇ ସେହୁ ସ୍ଥାନେ ।। ୮୩
୧୫ ପ୍ରବେଶେ ଯେବଣ ଚକ୍ରର । ଅସୁରବଧୂମାନଙ୍କର ।। ୮୪
[୧]ଭୟେ ସ୍ରବନ୍ତି ଗର୍ଭମାନ । ଥୋକାଏ ହୁଅନ୍ତି ପତନ ।। ୮୫
୧୬ ମୟ-ଅସୁରସୁତ ବଳ । ନିବାସ କରିଛି ଅତଳ ।। ୮୬
ଯେ ଛୟାଣୋଇ[୨] ମାୟାଗଣ । ଏ ଲୋକେ କରିଛି ନିର୍ମାଣ ।। ୮୭
ସେ ମାୟାମାନଙ୍କରୁ କିଛି । ମାୟାବୀଙ୍କର ଠାରେ ଅଛି ।। ୮୮
ହାଇ ମାରନ୍ତେ ସେ ଅସୁର । ମୁଖରୁ ଜନ୍ମିଲେ ତାହାର ।। ୮୯
ତିନି ପ୍ରକାର ସ୍ତିରୀଗଣ । ସ୍ୱୈରିଣୀ କାମିନୀ ଯେ ପୁଣ ।। ୯୦
ପୁଂଶ୍ଚଳୀ ନାମରେ ଆବର । କହିବା ତହିଁର ପ୍ରକାର ।। ୯୧
ସମାନ ଜାତିରେ ଯେ ରତ । ସ୍ୱୈରିଣୀ ନାମେ ସେ ବିଦିତ ।। ୯୨
ଆନ ଜାତିରେ ଯେହୁ ରମେ । ବିଖ୍ୟାତ ସେ କାମିନୀ ନାମେ ।। ୯୩
ଅତି ଚଞ୍ଚଳ ଯେହୁ ତହିଁ । ପୁଂଶ୍ଚଳୀ ନାମକୁ ସେ ବହି ।। ୯୪
୧୭ ପୁରୁଷ-ବିଳ ଆୟତନେ । ମିଳନ୍ତେ ଯେଉଁ ସ୍ତିରୀମାନେ ।। ୯୫
ତାକୁ ହାଟକ ନାମ ରସେ । ରତିସମର୍ଥ କରି ତୋଷେ ।। ୯୬
ଯେ ଅସାଧାରଣ ବିଳାସ । ସାଲୋକ ସାନୁରାଗ ହାସ ।। ୯୭
ତେଣେ ଯେ ଅନ୍ୟୋଽନ୍ୟ ଭାଷଣ । ଯେ ଆଲିଙ୍ଗନ ଆଦି ପୁଣ ।। ୯୮
ତେଣେ ସେ ତିନି ନାରୀଗଣ । ତାହାକୁ କରାନ୍ତି ରମଣ ।। ୯୯
ଯେଉଁ ହାଟକ ନାମ ରସ । ସେବା କରନ୍ତେ ସେ ପୁରୁଷ ।। ୧୦୦
ମୁଁ ସିଦ୍ଧ, ମୁଁ ଅଟେ ଈଶ୍ୱର । ଅୟୁତେ ଗଜ ବଳ ମୋର ।। ୧୦୧
ଆତ୍ମାକୁ ମଣି ଏ ପ୍ରକାରେ । ମଦାନ୍ଧ ହୋଇ ଗର୍ବ କରେ ।। ୧୦୨
୧୮ ବିତଳେ ହାଟକ-ଈଶ୍ୱର । ନାମେ ଅଛନ୍ତି ଦେବ ହର ।। ୧୦୩
ନିଜ ସେବକ ଭୂତଗଣେ । ବେଷ୍ଟିତ ହୋଇ ଅନୁକ୍ଷଣେ ।। ୧୦୪
ସେ ପ୍ରଜାପତିସର୍ଗବୃଦ୍ଧି । ନିମିତ୍ତେ କରି ନିଜ ବୁଦ୍ଧି ।। ୧୦୫
ଅଛନ୍ତି ଭବାନୀସଂଗତେ । ଯୁଗଳ ହୋଇ ଅବିରତେ ।। ୧୦୬
ଯେଉଁ ଭବାନୀ-ମହେଶ୍ୱର । ବୀର୍ଯ୍ୟରୁ ଜାତ ନଦୀବର ।। ୧୦୭
ସେ ନଦୀ ହାଟକୀ ନାମରେ । ବିଖ୍ୟାତ ଅଟେ ବିତଳରେ ।। ୧୦୮
ଅଗ୍ନି ପବନେ ବୃଦ୍ଧି ହୋଇ । ତେଜରେ ଯା' ପାନ କରଇ ।। ୧୦୯
ଫୁତ୍‌କାର କରି ତା' ପକାଇ । ହାଟକ ସୁବର୍ଣ୍ଣ ସେ ହୋଇ ।। ୧୧୦

---

୧. ''ଆ ଚତୁର୍ଥାଭବେଦ୍ ସ୍ରାବଃ ପାତଃ ପଞ୍ଚମଷଷ୍ଠୟୋଃ ।''
୨. ଛୟାଣୋଇ = ଛୟାନବେ (୯୬) ।

ଅସୁର ଇନ୍ଦ୍ର-ଅନ୍ତଃପୁରେ । ପୁରୁଷେ ସ୍ତିରୀଙ୍କ ସଙ୍ଗରେ ।। ୧୧୧
ସେ ହେମ ଭୂଷଣରୂପରେ । ଧରନ୍ତି ନିଜ କଳେବରେ ।। ୧୧୨
୧୯ ତାହାର ତଳେ ଯେଉଁ ପୁର । ସୁତଳ ଅଟେ ନାମ ତାର ।। ୧୧୩
ଯେ ପୁଣ୍ୟଶ୍ଳୋକ କୀର୍ତ୍ତିମନ୍ତ । ଅଟନ୍ତି ବିରୋଚନସୁତ ।। ୧୧୪
ସେ ବଳି ଆଜ ହିଁ ସେ ପୁରେ । ରହି ଅଛନ୍ତି ନିର୍ଭୟରେ ।। ୧୧୫
ଇନ୍ଦ୍ରପ୍ରୀତିକି ଭଗବାନ । କରିବା ବୋଲି ବାଞ୍ଛି ମନ ।। ୧୧୬
ଅଦିତିଠାରୁ ଅବତରି । ବଟୁବାମନରୂପ ଧରି ।। ୧୧୭
ତାଠାରୁ ତିନିଲୋକ ନେଲେ । ସଂପୂର୍ଣ୍ଣ ମନୋରଥ ହେଲେ ।। ୧୧୮
ପୁଣି ସେ ବିଷ୍ଣୁର କୃପାରେ । ପ୍ରବେଶ ହୋଇ ସୁତଳରେ ।। ୧୧୯
ଇନ୍ଦ୍ର ଆଦିଙ୍କର ଯେ ନାହିଁ । ତେମନ୍ତ ସଂପତ୍ତିକି ପାଇ ।। ୧୨୦
ଯେ ଆରାଧନଯୋଗ୍ୟ ହରି । ତାହାଙ୍କୁ ସ୍ୱଧର୍ମରେ କରି ।। ୧୨୧
ନିତ୍ୟେ କରନ୍ତେ ଆରାଧନ । ସୁଖେଣ ହରୁଛନ୍ତି ଦିନ ।। ୧୨୨
୨୦ ସକଳ ଜୀବସମୂହର । ଜୀବନ-ଆତ୍ମା ଯେ ଈଶ୍ୱର ।। ୧୨୩
ପରମ ଆତ୍ମା ଯେ ଅଟନ୍ତି । ପ୍ରାଣିଙ୍କି ଅତ୍ୟନ୍ତେ ତାରନ୍ତି ।। ୧୨୪
ସେ ବାସୁଦେବ ପାତ୍ରରୂପେ । ମିଳନ୍ତେ ଆସିଣ ସମୀପେ ।। ୧୨୫
ତାଠାରେ ପରମ ଆଦରେ । ସମାଧିନିଶ୍ଚଳ ମନରେ ।। ୧୨୬
ପରମ ଶ୍ରଦ୍ଧାରେ କଞ୍ଚନ । କରିଛି ଯେଉଁ ଭୂମିଦାନ ।। ୧୨୭
ସେ ଭୂମିଦାନଫଳ ନୋହି । ଐଶ୍ୱର୍ଯ୍ୟ ବିଳଗୃହେ ଯେହି ।। ୧୨୮
ମୋକ୍ଷ ହୋଇଣ ଯେ ବିଦିତ । ତାହାର ଦ୍ୱାର ସେ ସାକ୍ଷାତ ।। ୧୨୯
୨୧ କ୍ଷୁତ[୧] ପତନ ପ୍ରସ୍ଖଳନ । ଏ ଆଦି ବିଷୟରେ ଜନ ।। ୧୩୦
ବିବଶ ହୋଇ ଏକବାର । ଗୁଣନ୍ତେ ନାମକୁ ଯାହାର ।। ୧୩୧
କର୍ମରେ ଯେବଣ ବନ୍ଧନ । ବହନ[୨] କରେ ତା' ନାଶନ[୩] ।। ୧୩୨
ଯେବଣ କର୍ମବନ୍ଧବାଧା । ନିବୃତ୍ତି-ଅର୍ଥେ କରି ଶ୍ରଦ୍ଧା ।। ୧୩୩
ଯୋଗ, ସାଂଖ୍ୟାଦି କ୍ଳେଶମାନ । ଲଭନ୍ତି ମୋକ୍ଷକାମୀ ଜନ ।। ୧୩୪
୨୨ ଭକ୍ତଙ୍କୁ ଆତ୍ମାକୁ ଯେ ଦେଇ । ଜ୍ଞାନୀଙ୍କ ଆତ୍ମା ଯେ ଅଟଇ ।। ୧୩୫
{ ସେ ହରିଠାରେ ସମର୍ପଣ । ହୁଅଇ ଯେଉଁ ଭୂମିଦାନ ।। ୧
ଐଶ୍ୱର୍ଯ୍ୟ ତାର ଫଳ ନୋହି । [୪]କେବଳ ଅନ୍ତରାୟ ସେହି ।। ୨
ଈଶ୍ୱରଅନୁକଂପାଫଳ । ନୋହେ ଯେ ଐଶ୍ୱର୍ଯ୍ୟସକଳ ।। ୩ }
୨୩ ବିଷ୍ଣୁ ମନୁଷ୍ୟ ଆଦିଠାରେ । ଅନୁଗ୍ରହକୁ ନ ବିସ୍ତାରେ ।। ୧୩୬

---

୧. କ୍ଷୁତ = କ୍ଷୁଧା (କ୍ଷୁତ୍, ସଂ)। ୨. ବହନ = ଅକ୍ଲେଶରେ (ଅଞ୍ଜସା)। ୩. ଶମନ।
୪. ବାସୁଦେବେ ମନୋ ଯସ୍ୟ ଜପହୋମାର୍ଚ୍ଚନାଦିଷୁ।
ତସ୍ୟାନ୍ତରାୟୋ ମୈତ୍ରେୟ ! ଦେବେନ୍ଦ୍ରତ୍ୱାଦିକଂ ଫଳମ୍ ।।

| | | | | | |
|---|---|---|---|---|---|
| | ପରମାତ୍ମାର ଅନୁସ୍ମୃତି | । | ବିନାଶେ ଯେ ଭୋଗସଂପତ୍ତି | ।। | ୧୩୭ |
| | ଯେଣୁ ବିସ୍ତାର ତାହା କରେ | । | ପ୍ରାଣୀଙ୍କି ଅନୁଗ୍ରହ ଦ୍ୱାରେ | ।। | ୧୩୮ |
| ୨୪ | ଆନ ଉପାୟେ ରମାପତି | । | ହରି ନ ପାରି ତା' ସଂପତ୍ତି | ।। | ୧୩୯ |
| | ପ୍ରାର୍ଥନାଛଳରେ ତାହାର | । | କେବଳ ରଖିଣ ଶରୀର | ।। | ୧୪୦ |
| | ତ୍ରିଲୋକସଂପତ୍ତି ହରିଲେ | । | ବରୁଣପାଶରେ ବାନ୍ଧିଲେ | ।। | ୧୪୧ |
| | ସେ ପାଶୁଁ ଲଭିଣ ମୁକତି | । | ଗିରିକନ୍ଦରେ କରି ସ୍ଥିତି | ।। | ୧୪୨ |
| | ଏମନ୍ତ ପ୍ରକାରେ ବଚନ | । | ବୋଇଲେ ସେ ବଳି ରାଜନ | ।। | ୧୪୩ |
| ୨୫ | ଇନ୍ଦ୍ର ହୋଇଣ ଯେହୁ ଖ୍ୟାତ | । | ଅର୍ଥରେ ଅଟଇ ନିଷ୍ଣାତ | ।। | ୧୪୪ |
| | ଯାର ଏକାନ୍ତେ ବୃହସ୍ପତି | । | ସହାୟ ଅଟେ ମହାମତି | ।। | ୧୪୫ |
| | ସେ ବୃହସ୍ପତିକି ଏକାନ୍ତେ | । | ବରିଲା ବିଚାରନିମନ୍ତେ | ।। | ୧୪୬ |
| | ଯେ ବୃହସ୍ପତି ହିଁ ନିପୁଣ | । | ନୁହଇ ପୁରୁଷାର୍ଥେ ପୁଣ | ।। | ୧୪୭ |
| | ସେ ବୃହସ୍ପତିର ବିଚାର | । | ଲଙ୍ଘି କରିଣ ପୁରନ୍ଦର | ।। | ୧୪୮ |
| | ବିଷ୍ଣୁଙ୍କୁ ତ୍ରିଲୋକ ମାଗିଲା | । | ତା' ଦାସଭାବ ନ ବରିଲା | ।। | ୧୪୯ |
| ୨୬ | ଅତିଗମ୍ଭୀର ବେଗ ଯାର | । | ଏ ତିନିଲୋକ ସେ କାଳର | ।। | ୧୫୦ |
| | କେତେକ ପଦାର୍ଥ ଅଟଇ | । | ଏ ମନ୍ୱନ୍ତରଶେଷେ ଯାଇ | ।। | ୧୫୧ |
| | ଚତୁର ପିତାମହ ମୋର | । | ବରିଲା ଦାସଭାବ ଯାର | ।। | ୧୫୨ |
| | ଆପଣା ପିତାର ରାଜ୍ୟକୁ | । | ମାଗିଲା ନାହିଁ ସେ ବିଷ୍ଣୁଙ୍କୁ | ।। | ୧୫୩ |
| | ପିତାକୁ କରିଣ ବିନାଶ | । | ବିଷ୍ଣୁ ହୋଇଣ ମହାତୋଷ | ।। | ୧୫୪ |
| | ଅତି ନିର୍ଭୟ ରାଜ୍ୟ ତାର | । | ଦେଲେହେଁ ନ କଲା ସ୍ୱୀକାର | ।। | ୧୫୫ |
| | ଯେଣୁ ବିଷ୍ଣୁରୁ ଆନ କରି | । | ରାଜ୍ୟକୁ ଥିଲା ସେ ବିଚାରି | ।। | ୧୫୬ |
| ୨୭ | ସେ ଅଟେ ମହା-ଅନୁଭାବ | । | ତାର ମାର୍ଗକୁ କେବା ଯିବ | ।। | ୧୫୭ |
| | ଆତ୍ମର ପରା ଯେ ଅଟଇ | । | ଯାହାର ରାଗ[୧] ତୁଟି ନାହିଁ | ।। | ୧୫୮ |
| | ବିଷ୍ଣୁର ଅନୁଗ୍ରହ କ୍ଷୀଣ | । | ହୋଇଛି ଯାହାଠାରେ ପୁଣ | ।। | ୧୫୯ |
| | ସେ ବଳି ଏମନ୍ତ ପ୍ରକାରେ | । | କହିଲେ ପୂର୍ବେ ପ୍ରସଙ୍ଗରେ | ।। | ୧୬୦ |
| ୨୮ | ସେ ବଳିଚରିତ ଉପରେ | । | କହିବା ତୋହର ଆଗରେ | ।। | ୧୬୧ |
| | ଗୁରୁ ଅଖିଳ ଜଗତର | । | ଭକ୍ତଦୟାର୍ଦ୍ର ହୃଦ ଯାର | ।। | ୧୬୨ |
| | ସେ ନାରାୟଣ ଗଦା ଧରି | । | ଯା' ଦ୍ୱାରେ ହୋଇଅଛି ଦ୍ୱାରୀ | ।। | ୧୬୩ |
| | ଯେ ନିଜ ପାଦ-ଅଙ୍ଗୁଷ୍ଠରେ | । | ଅୟୁତେ ଯୋଜନ ଅନ୍ତରେ | ।। | ୧୬୪ |
| | ଫିଙ୍ଗିଲେ ଦଶକନ୍ଧରକୁ | । | ଯେ ଗଲା ଦିଗବିଜୟକୁ | ।। | ୧୬୫ |
| ୨୯ | ଯେବଣ ପୁର ତହିଁ ତଳ | । | ତାହାର ନାମ ତଳାତଳ | ।। | ୧୬୬ |
| | ମୟ ଦାନବ ଅଛି ତହିଁ | । | ତ୍ରିପୁର-ଅଧିପତି ସେହି | ।। | ୧୬୭ |

୧. ରାଗ = ଆସକ୍ତି ।

ତିନିଭୁବନଶୁଭକାରୀ । ଯେ ଭଗବାନ ତ୍ରିପୁରାରି ।। ୧୬୮
ଦହିଲେ ତାର ତିନି ପୁର । ପୁଣି ସନ୍ତୋଷେ ଦେଲେ ବର ।। ୧୬୯
ସେ ମହାଦେବର ପ୍ରସାଦେ । ସ୍ଥାନ ଲଭିଲା ଅପ୍ରମାଦେ ।। ୧୭୦
ମାୟାବୀ ଲୋକମାନଙ୍କର । ଆଚାର୍ଯ୍ୟ ଅଟେ ସେ ଅସୁର ।। ୧୭୧
ଯେଣୁ ତାହାକୁ ମହେଶ୍ୱର । ରଖିଲେ ତେଣୁ ସେ ଦୈତ୍ୟର ।। ୧୭୨
ସୁଦରଶନଠାରୁ ଜାତ । ଯେ ଭୟ ହୋଇଲା ସେ ହତ ।। ୧୭୩
୩୦ ଯେବଣ ପୁର ତହିଁ ତଳ । ନାମ ତାହାର ମହାତଳ ।। ୧୭୪
ଅନେକ ଶିର ଯାହାଙ୍କର । ସେ କଦ୍ରୁସୁତ ସର୍ପଙ୍କର ।। ୧୭୫
କ୍ରୋଧବଶ ନାମରେ ଗଣ । ସେ ପୁରେ ଅଛନ୍ତି ରହିଣ ।। ୧୭୬
କୁହକ, କାଳିୟ[୧], ତକ୍ଷକ । ସୁଷେଣ[୨] ଆଦି ଯେ ଅନେକ ।। ୧୭୭
ଏମାନେ ଶ୍ରେଷ୍ଠ, ତାହାଙ୍କର । ଅଟନ୍ତି ମହା କଳେବର ।। ୧୭୮
ଗରୁଡ଼ଠାରୁ ଅବିରତ । ଭୟ ଲଭିଣ ନିଜ ଚିତ୍ତ ।। ୧୭୯
ନିଜ ଯୁବତି, ମିତ୍ର, ସୁତ । କୁଟୁମ୍ବ ସଂଯୋଗେ ପ୍ରମତ୍ତ ।। ୧୮୦
ବିହରୁ ଅଛନ୍ତି ସେମାନେ । ସେ ପୁରେ କହୁଣିସି ସ୍ଥାନେ ।। ୧୮୧
୩୧ ଦୈତ୍ୟ, ଦାନବ ତହିଁ ତଳେ । ରହି ଅଛନ୍ତି ରସାତଳେ ।। ୧୮୨
ସେମାନେ ପଣିନାମେ ଖ୍ୟାତ । ନିବାତ-କବଚ ବିଦିତ ।। ୧୮୩
ହିରଣ୍ୟପୁରବାସୀ ସେହି । ବୋଲାନ୍ତି କାଳକେୟ କେହି ।। ୧୮୪
ରିପୁ ସେ ଦେବମାନଙ୍କର । ଜନ୍ମମାତ୍ରକେ ତାହାଙ୍କର ।। ୧୮୫
ତେଜ ଅଟଇ ଅପ୍ରମିତ । ସାହସ ଅଟଇ ବହୁତ ।। ୧୮୬
ସକଳ ଲୋକରେ ବିଦିତ । ଯା' ଅନୁଭାବ ଅବିରତ ।। ୧୮୭
ସେ ବିଷ୍ଣୁଚକ୍ରେ ତାହାଙ୍କର । ହୋଇଛି ବଳଗର୍ବ ଚୂର ।। ୧୮୮
ସର୍ପେ ଯେସନେ ଥାନ୍ତି ବିଳେ । ସେ ରୂପେ ଅଛନ୍ତି ସକଳେ ।। ୧୮୯
[୩]ସରମା ନାମରେ ଇନ୍ଦ୍ରର । ଦୂତୀ ଯେ ଗଲା ତାଙ୍କ ପୁର ।। ୧୯୦
ଇନ୍ଦ୍ରର ସ୍ତୁତିବ୍ୟାଜେ ତାଙ୍କୁ । କହିଲା ଯେବଣ ବାକ୍ୟକୁ ।। ୧୯୧
ସେ ମନ୍ତ୍ରମୟ ବାକ୍ୟମାନ । ଭୟ କରନ୍ତି ସେହୁ ମନ ।। ୧୯୨
୩୨ ତହିଁର ତଳରେ ପାତାଳେ । ଉରଗେ ଅଛନ୍ତି ସକଳେ ।। ୧୯୩

---

୧. କାଳିକ । ୨. ଶ୍ୱସେନ ।

୩. ଅତ୍ର ବୈଦିକ ଆଖ୍ୟାନ – ପଣିମାନେ ଇନ୍ଦ୍ରଙ୍କର ଗାଈକୁ ଚୋରାଇ ନେଇ ଲୁଚାଇ ରଖିଥିଲେ । ତାକୁ ଖୋଜିବା ପାଇଁ ଇନ୍ଦ୍ର ଦେବଶୁନୀ ସରମାକୁ ପଠାଇଥିଲେ । ସରମା ପଣିମାନଙ୍କ ନିକଟରେ ଇନ୍ଦ୍ରର ବୀରତ୍ୱ କହିବାରୁ ସେମାନେ ତା' ସହିତ ସନ୍ଧି କରିବାକୁ ଇଚ୍ଛା କରି କହିଲେ – ''ହେ ସରମା ! ତୁମର କ'ଣ ଇଚ୍ଛା କୁହ ।'' ସରମା ସେ ସନ୍ଧିରେ ରାଜି ନ ହୋଇ ଇନ୍ଦ୍ରସ୍ତୁତି ସହିତ ସେମାନଙ୍କ ପ୍ରତି କର୍କଶ ବାକ୍ୟ ପ୍ରୟୋଗ କରି କହିଲା –

''ଇନ୍ଦ୍ରଙ୍କ ଦ୍ୱାରା ପଣିମାନେ ହତ ହେଲେଣି । ତୁମ୍ଭେମାନେ ପଳାଇ ଯାଅ ।'' ଇତ୍ୟାଦି ।

ବାସୁକି ତାଙ୍କ ମଧ୍ୟେ ବଡ଼ । ଯେ ମହାଶଙ୍ଖ, ଶଙ୍ଖଚୂଡ଼ ॥ ୧୯୪
ଯେ ଶ୍ୱେତଧନଞ୍ଜୟ ପୁଣି । ଧୃତରାଷ୍ଟ୍ର ନାମରେ ଫଣୀ ॥ ୧୯୫
ଶଙ୍ଖ, କୁଳିକ, ଅଶ୍ୱତର । କମ୍ବଳ, ଦେବଦତ୍ତ ଆର ॥ ୧୯୬
ଅତ୍ୟନ୍ତ କ୍ରୋଧୀ ଏ ଅଟନ୍ତି । ବିଶାଳ ବପୁକୁ ବହନ୍ତି ॥ ୧୯୭
ପଞ୍ଚ ସପତ ଦଶ ଶତ । ସହସ୍ର ସଂଖ୍ୟା ଫଣାବନ୍ତ ॥ ୧୯୮
ଏ ରୂପେ ସେହୁ ସର୍ପମାନେ । ସେମାନଙ୍କର ଫଣାସ୍ଥାନେ ॥ ୧୯୯
ଯେବଣ ମଣିମାନେ ଛନ୍ତି । ଅତି ପ୍ରଦୀପ୍ତ ସେ ଅଟନ୍ତି ॥ ୨୦୦
ପାତାଳ-ବିବର-ତିମିର । ସ୍ୱତେଜେ କରନ୍ତି ସେ ଦୂର ॥ ୨୦୧
ଭଣଇ ଦୀନବନ୍ଧୁ ଦ୍ୱିଜ । ଚିନ୍ତି ଶ୍ରୀକୃଷ୍ଣ ପାଦାମ୍ବୁଜ ॥ ୨୦୨

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ବିବରତଳୋପବର୍ଣ୍ଣନଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥

## ପଞ୍ଚବିଂଶ ଅଧ୍ୟାୟ

ପଞ୍ଚବିଂଶେ ତତୋଽଧସ୍ତାଦାହ ଶେଷସ୍ୟ ସଂସ୍ଥିତିମ୍ ।
ସଂଜିହୀର୍ଷୋରିଦଂ କାଳେ ଯତୋ ରୁଦ୍ରସମୁଦ୍ଭବଃ ॥ ୧

ଶ୍ରୀଶୁକ ଉବାଚ

୧ ମୂଳଦେଶେ ସେ ପାତାଳରେ । ତିରିଶି ସହସ୍ର ଅନ୍ତରେ ॥ ୧
ବିଷ୍ଣୁ-ତାମସୀ କଳା ସେହିଂ[1] । ଅନନ୍ତ ବୋଲି ନାମ ବହି ॥ ୨
କରି ଅଛନ୍ତି ନିଜ ସ୍ଥାନ । ଯାହାକୁ ନିଜ ଭକ୍ତ ଜନ ॥ ୩
ଦେଖିବା ଲୋକର, ଦୃଶ୍ୟର । ଯେଣେ ହୁଅଇ ଏକାକାର ॥ ୪
ଯାହାର ଅଭିମାନ ହୋଇ । ଲକ୍ଷଣ ପ୍ରକାଶ ଅଟଇ ॥ ୫
ଅହଂକାରର ଅଧିଷ୍ଠାନେ । ସେ ଏକୀକରଣକୁ ମନେ ॥ ୬
ଯେଣୁ ସଙ୍କରଷଣ କରେ । ସଙ୍କରଷଣ ସେ ହେତୁରେ ॥ ୭
୨ ଯେବଣ ଅନନ୍ତ ମୂର୍ତ୍ତିର । ସହସ୍ରସଂଖ୍ୟ ଅଟେ ଶିର ॥ ୮
ଏ କ୍ଷିତିମଣ୍ଡଳ ତହିଁରେ । ରହି ଥାଆନ୍ତେ ଏକଶିରେ ॥ ୯
ସୋରିଷ ପ୍ରାଏକ ଦିଶଇ । ଏଣୁ ସେ ଅନନ୍ତ ଅଟଇ ॥ ୧୦
୩ କାଳେ ଏ ଜଗତ ସଂହାର । କରିଣ ବାଞ୍ଛନ୍ତେ ଯାହାର ॥ ୧୧
କ୍ରୋଧେ ବିରଚିତ ରୁଚିର । ଭ୍ରୂଲତାଯୁଗଳ ମଧ୍ୟର ॥ ୧୨
ଯେ ରୁଦ୍ର ହୋଇଲା ଜନମ । ସଂକରଷଣ ତାର ନାମ ॥ ୧୩

---

୧. ଯେହି ।

ବ୍ୟୂହ ଏକାଦଶ ତାହାର । ତିନି ଲୋଚନ ଅଟେ ଯାର ॥ ୧୪
ତ୍ରିଶିଖ ଶୂଳ ଧରି କରେ । ଉଠିଲା ଯେହୁ କୋପଭରେ ॥ ୧୫
୪ ଯେବଣ ଶେଷର ଚରଣ । କମଳଯୁଗଳେ ଅରୁଣ ॥ ୧୬
ବିଶଦ ନଖ ମଣିମାନ । ଦର୍ପଣପ୍ରାଏ ଶୋଭାବନ ॥ ୧୭
ସାତ୍ୱତ ଶ୍ରେଷ୍ଠଙ୍କ ସଙ୍ଗରେ । ଏକାନ୍ତ ଭଗତିଯୋଗରେ ॥ ୧୮
ନମନ୍ତେ ଅହିପତିଗଣେ । ସେ ନଖମଣ୍ଡଳଦର୍ପଣେ ॥ ୧୯
ହୋଇଣ ସହରଷ-ମନ । ଦେଖନ୍ତି ନିଜ ମୁଖମାନ ॥ ୨୦
ଯେ ଚାରୁମୁଖେ ଗଣ୍ଡସ୍ଥଳ । କୁଣ୍ଡଳେ ମଣ୍ଡିତ ଅମଳ ॥ ୨୧
୫ ଯେଉଁ ଅନନ୍ତର ରୁଚିର । ଅଙ୍ଗବଳୟେ ମନୋହର ॥ ୨୨
ବିଶଦ ବିପୁଳ ଧବଳ । ସୁଭଗ ରୁଚିର ବର୍ତ୍ତୁଳ ॥ ୨୩
ଭୁଜ-ରଜତସ୍ତମ୍ଭମାନ । ତହିଁରେ ଅଗୁରୁ, ଚନ୍ଦନ ॥ ୨୪
କୁଙ୍କୁମପଙ୍କବିଲେପନ । ଲେପ କରନ୍ତେ ପ୍ରତିଦିନ ॥ ୨୫
ନିଜ ଶୁଭକୁ ବାଞ୍ଛି ମନେ । ଉରଗରାଜକନ୍ୟାମାନେ ॥ ୨୬
ସେ ଭୁଜସ୍ପରଶେ ମଥିତ । ହୁଅଇ ଯେଉଁ ନିଜ ଚିତ୍ତ ॥ ୨୭
ମଦନ ଜନମନ୍ତେ ତହିଁ । ଚାରୁ ଲଳିତ ସ୍ମିତ ବହି ॥ ୨୮
ସଲଜ୍ଜ ହୋଇ ବିଲୋକନ । କରନ୍ତେ ତା’ ମୁଖନଳିନ ॥ ୨୯
ଯାହାର ଅନୁରାଗଯୁତ । ମଦରେ ଅଟଇ ମୁଦିତ ॥ ୩୦
ମଦବିଘୂର୍ଣ୍ଣିତ ଚଳିତ । ଅରୁଣ କରୁଣାସହିତ ॥ ୩୧
ଏମନ୍ତ ଅବଲୋକେ ଯୁତ । ନୟନ ଯେଉଁ ମୁଖେ ସ୍ଥିତ ॥ ୩୨
୬ ଅନନ୍ତ ଯାର ଗୁଣାର୍ଣ୍ଣବ । ସେ ଭଗବାନ ଆଦିଦେବ ॥ ୩୩
ନ ସହି ଯେଉଁ ରୋଷଭର । ସେ କଥା କରିଣ ସଂହାର ॥ ୩୪
ପ୍ରାଣୀଙ୍କ ମଙ୍ଗଳ ଅର୍ଥରେ । ରହି ଅଛନ୍ତି ସେ ସ୍ଥାନରେ ॥ ୩୫
୭ ସୁର ଗନ୍ଧର୍ବ ବିଦ୍ୟାଧର । ଯେ ସିଦ୍ଧ ଉରଗ ଅସୁର ॥ ୩୬
ଅନବରତେ ମୁନିଜନ । ଯାହାଙ୍କୁ କରୁଛନ୍ତି ଧ୍ୟାନ ॥ ୩୭
ମଦମୁଦିତ ନିରନ୍ତର । ବିହ୍ୱଳ ନୟନ ଯାହାର ॥ ୩୮
ଯେବଣ ଶ୍ରେଷ୍ଠ ଦେବଗଣ । ଅଛନ୍ତି କିଂକର ହୋଇଣ ॥ ୩୯
ପ୍ରକାଶି ବଚନ-ଅମୃତ । ତାଙ୍କୁ କରନ୍ତେ ଆପ୍ୟାୟିତ ॥ ୪୦
ଅପରିମ୍ଳାନ କାନ୍ତି ଯାର । ଏମନ୍ତ ନବ ତୁଳସୀର ॥ ୪୧
ଅତି ମଧୁର ସୁବାସରେ । ମତ୍ତ ଯେ ଭ୍ରମର-ନିକରେ ॥ ୪୨
ମଧୁର ଗୀତରେ ତାଙ୍କର । ଯହିଁରେ ଶୋଭା ନିରନ୍ତର ॥ ୪୩
ଧରିଛନ୍ତି ସେ ବନମାଳ । ଯେସନେ ଇନ୍ଦ୍ର-ଦନ୍ତାବଳ ॥ ୪୪
ସୁବର୍ଣ୍ଣରଜ୍ଜୁ ଧରିଥାଇ । ତେମନ୍ତ ଶୋଭା ଯେ ଦିଶଇ ॥ ୪୫
ନୀଳବସନ ପରିଧାନ । ଏକ କୁଣ୍ଡଳ ଶୋଭମାନ ॥ ୪୬

| | | | | |
|---|---|---|---|---|
| | ଯେବଣ ଭୁଜ ଆପଣାର | ଅଟଇ ସୁଭଗ ସୁନ୍ଦର | ।। | ୪୭ |
| | ହଳପୃଷ୍ଠରେ ତାହା ଦେଇ | ଅଛନ୍ତି ଶ୍ରେଷ୍ଠ ଲୀଳା ବହି | ।। | ୪୮ |
| ୮ | ଯାକୁ ଶ୍ରବଣ କରେ ଜନ | ସଂତତେ ଅବା କରେ ଧ୍ୟାନ | ।। | ୪୯ |
| | ତେବେ ମୁକତିକାମୀଙ୍କର | ପଶିଣ ହୃଦୟଭିତର | ।। | ୫୦ |
| | ଅନାଦି କର୍ମବାସନାରେ | ଗୁନ୍ଥା ଅଟେ ଯେ ନିରନ୍ତରେ | ।। | ୫୧ |
| | ଅବିଦ୍ୟାମୟ ଯେ ଅଟଇ | ତ୍ରିଗୁଣମୟ ଯେ ବୋଲାଇ | ।। | ୫୨ |
| | ହୃଦୟଗ୍ରନ୍ଥି ଯେ ଏସନ | ତାହାକୁ କରଇ ଭେଦନ | ।। | ୫୩ |
| | ନାରଦ ତୁମ୍ବୁରୁ ସହିତେ | ବ୍ରହ୍ମାସଭାରେ ତୋଷଚିତ୍ତେ | ।। | ୫୪ |
| | ବର୍ଣ୍ଣନା କଲେ ସେ ଶେଷର | ମହିମା-ଅନୁଭାବ ଆର | ।। | ୫୫ |
| ୯ | ଏ ବିଶ୍ୱ-ଉତ୍ପତ୍ତି-ପାଳନ | ନାଶକୁ ଅଟନ୍ତି ନିଦାନ | ।। | ୫୬ |
| | ସତ୍ତ୍ୱାଦି ପ୍ରକୃତିର ଗୁଣେ | ଯେଉଁ ଅନନ୍ତର ଇକ୍ଷଣେ | ।। | ୫୭ |
| | ନିଜ କାର୍ଯ୍ୟକୁ କରିବାରେ | ସମର୍ଥ ହୁଅନ୍ତି ସଂସାରେ | ।। | ୫୮ |
| | ଅନନ୍ତ ଅଟେ ରୂପ ଯାର | ଅନାଦି ନିତ୍ୟ ନିର୍ବିକାର | ।। | ୫୯ |
| | ଏ ନାନା ପ୍ରପଞ୍ଚ ଯେ ପୁଣ | ଆତ୍ମାରେ କରିଛି ଧାରଣ | ।। | ୬୦ |
| | ତାର ଚରିତକୁ ମାନବ | କେମନ୍ତ ପ୍ରକାରେ ଜାଣିବ | ।। | ୬୧ |
| ୧୦ | ନିତ୍ୟ ଅନିତ୍ୟ ଏ ଜଗତ | ଯାଠାରେ ଦିଶଇ ଶୋଭିତ | ।। | ୬୨ |
| | ସେ ଅତିକୃପାରେ ଆମ୍ଭଙ୍କୁ | ଧଇଲେ ସତ୍ତ୍ୱଶରୀରକୁ | ।। | ୬୩ |
| | ଉଦାର ଅଟେ ବୀର୍ଯ୍ୟ ଯାର | ବରଦମାନଙ୍କ ଈଶ୍ୱର | ।। | ୬୪ |
| | ଭଗତ ଜନଙ୍କର ମନ | କରିବା ଅର୍ଥେ ଉପାଦାନ | ।। | ୬୫ |
| | ନିର୍ଦୋଷ ଅଟେ ଯେଉଁ ଲୀଳା | ତାହାକୁ ସ୍ୱୀକାର ଯେ କଲା | ।। | ୬୬ |
| ୧୧ | ଆନ ସକାଶୁଁ ନାମ ଯାର | ଶ୍ରବଣ କରି ପାପୀ ନର | ।। | ୬୭ |
| | ଅନୁକୀର୍ତ୍ତନ ତାହା କରେ | ଆର୍ତ୍ତ ହୋଇଣ କେହି ଥରେ | ।। | ୬୮ |
| | ଯଦି ବା ପରିହାସେ କେହି | ସେ ନାମ ଗାୟନ କରଇ | ।। | ୬୯ |
| | ତେବେ ସେ ପ୍ରାଣୀଙ୍କ ଅଶେଷ | ପାପକୁ ବେଗେ କରେ ନାଶ | ।। | ୭୦ |
| | ଏମନ୍ତ ଅଟେ ଗୁଣ ଯାର | ମୁକ୍ତିକି ବାଞ୍ଛା କଲା ନର | ।। | ୭୧ |
| | ସେ ଶେଷବିହୁନେ କାହାକୁ | ଭଜିବ ଆନ ଦେବତାକୁ | ।। | ୭୨ |
| ୧୨ | ସହସ୍ର ଅଟେ ଶିର ଯାର | ଏକ ମସ୍ତକରେ ତାହାର | ।। | ୭୩ |
| | ଭୂଗୋଳ ନିବେଶିତ ହୋଇ | ଅଣୁପ୍ରାଏକ ଶୋଭା ପାଇ | ।। | ୭୪ |
| | ଯେଉଁ ଭୂଗୋଳ ନଦୀ-ଗିରି | ସିନ୍ଧୁପ୍ରାଣିଏ ଅଛି ପୂରି | ।। | ୭୫ |
| | ଅପରିମିତ-ବଳ ହୋଇ | ଯାଠାରୁ ଆନ କେହି ନାହିଁ | ।। | ୭୬ |
| | ତା' ଗୁଣ କେ ଗଣି ପାରଇ | ସହସ୍ର ଜିହ୍ୱାକୁ ହିଁ ବହି | ।। | ୭୭ |
| ୧୩ | ଏମନ୍ତ ଯାହାର ପ୍ରଭାବ | ଅଧିକ ଗୁଣ-ଅନୁଭାବ | ।। | ୭୮ |
| | ଦୁରନ୍ତବୀର୍ଯ୍ୟ ସେ ଅନନ୍ତ | ରସାତଳରେ ଅଟେ ସ୍ଥିତ | ।। | ୭୯ |

| | | | | |
|---|---|---|---|---|
| | ଲୀଳାରେ ଧରିଛି ଯେ ମହୀ | । କାହାରି ଅଧୀନ ନୁହଇ | ।। | ୮୦ |
| ୧୪ | ଯେମନ୍ତ କର୍ମ କରିଥାଇ | । ତହିଁକି ଅନୁରୂପ ହୋଇ | ।। | ୮୧ |
| | ଏତିକି ଗତି ତୋ' ଆଗରେ | । କହିଲୁଁ ଶୁଣିଲା ପ୍ରକାରେ | ।। | ୮୨ |
| | କାମନା କଲା ଲୋକମାନେ | । ମିଳନ୍ତି ଯାଇଁ ଯେଉଁ ସ୍ଥାନେ | ।। | ୮୩ |
| ୧୫ | ପ୍ରବୃତ୍ତିଲକ୍ଷଣ ଧର୍ମର | । ଗତି ଏତିକି ପରକାର | ।। | ୮୪ |
| | କର୍ମଫଳସ୍ୱରୂପ ହୋଇ | । ଯେ ଉଚ୍ଚ ନୀଚ ହିଁ ଅଟଇ | ।। | ୮୫ |
| | ହେ ନୃପ ! କଲୁଁ ତା' ବ୍ୟାଖ୍ୟାନ | । କିବା କହିବା ତୋତେ ଆନ | ।। | ୮୬ |
| | ବୋଲଇ ବିପ୍ର ଦୀନବନ୍ଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ।। | ୮୭ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଶ୍ରୀସଂକର୍ଷଣମାହାତ୍ମ୍ୟଂ
ନାମ ପଞ୍ଚବିଂଶୋଽଧ୍ୟାୟଃ ।।

## ଷଡ୍‌ବିଂଶ ଅଧ୍ୟାୟ

ଷଡ୍‌ବିଂଶେ ତୁ ତତୋଽଧସ୍ତାନ୍ନରକସ୍ଥିତିରୁଚ୍ୟତେ ।
ପାପିନୋ ଯତ୍ର ଦଣ୍ଡ୍ୟନ୍ତେ ଯମଦୂତୈର୍ଯଥାଯଥମ୍ ।। ୧

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | ହେ ମହରଷି ! ଏ ରୂପରେ | । ବିଚିତ୍ର ଭାବ ଏ ସଂସାରେ | ।। | ୧ |
| | କିଂପାଇଁ ହୁଅଇ ଲୋକର | । ଏ କଥା କରସି ବିସ୍ତାର | ।। | ୨ |

ଶ୍ରୀଋଷିରୁବାଚ

| | | | | |
|---|---|---|---|---|
| ୨ | କର୍ତ୍ତାର ତ୍ରିଗୁଣଭାବରେ | । ତ୍ରିଗୁଣମୟ ତା' ଶ୍ରଦ୍ଧାରେ | ।। | ୩ |
| | ସବୁରି ସବୁ କର୍ମଗତି | । ତାରତମ୍ୟରେ ନାନା ହୋନ୍ତି | ।। | ୪ |
| ୩ | ନିଷେଧ ଲକ୍ଷଣ ଯାହାର | । ଅଧର୍ମ ହୋଇ ନାମ ତାର | ।। | ୫ |
| | ଯେ ତାହା ଆଚରଇ ନର | । ଶ୍ରଦ୍ଧାର ତାରତମ୍ୟେ ତାର | ।। | ୬ |
| | କର୍ମଫଳ ହିଁ ନାନା ହୋଇ | । କହିଲୁଁ ଶୁଣ ମନ ଦେଇ | ।। | ୭ |
| | ଅନାଦି ଅବିଦ୍ୟା ରଚିତ | । ଯେ କାମମାନେ ଅପ୍ରମିତ | ।। | ୮ |
| | ତାଙ୍କ ପରିଣାମଲକ୍ଷଣ | । ସହସ୍ର ସହସ୍ରରୂପେଣ | ।। | ୯ |
| | ନରକମାନେ ଏ ଜଗତେ | । ବିସ୍ତାରି କହିବା ତା' ତୋତେ | ।। | ୧୦ |

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୪ | ଭୋ ମୁନି ! ନରକ ହୋଇଣ | । ଦେଶବିଶେଷ କିବା ପୁଣ | ।। | ୧୧ |
| | ଅଥବା ତ୍ରିଲୋକବାହାରେ | । କିବା ଭୂମିରୁ ଅଲଗାରେ | ।। | ୧୨ |

ଶ୍ରୀଋଷିରୁବାଚ[୧]

୫ ତିନି ଜଗତ-ଅନ୍ତରାଳେ । ଦକ୍ଷିଣ ଦିଗେ ଭୂମିତଳେ ।।
ଜଳଉପରେ ସ୍ଥାନ ଏକ । ବିଖ୍ୟାତ ଅଟେ ସେ ନରକ ।।
ଅଗ୍ନିଷ୍ୱାତ୍ତା ନାମରେ ଯହିଁ । ଅଛନ୍ତି ପିତୃଗଣେ ରହି ।।
ପରମ ସମାଧିରେ ନିତ୍ୟ । ଯେଉଁ ମଙ୍ଗଳ ଅଟେ ସତ୍ୟ ।।
ଆପଣା ଗୋତ୍ରମାନଙ୍କର । ବାଞ୍ଛା କରନ୍ତି ତା' ମନର ।।
୬ ପିତୃଗଣଙ୍କ ଅଧୀଶ୍ୱର । ଯହିଁରେ ତପନକୁମର ।।
ଯା' ଆଜ୍ଞା ଦେଇଛନ୍ତି ହରି । ସେ କଥା ଲଂଘନ ନ କରି ।।
ମଲା ଲୋକଙ୍କୁ ଯମଦୂତେ । ଆପଣା ଦେଶକୁ ଆଣନ୍ତେ ।।
ଯେତେ ତାଙ୍କର କର୍ମଦୋଷ । ଦୋଷକୁ କରିଣ ଉଦ୍ଦେଶ ।।
ଗଣମାନଙ୍କ ସହିତରେ । ଦଣ୍ଡକୁ ଦିଏ ନିରନ୍ତରେ ।।
୭ ଏକବିଂଶତି ପରକାରେ । ନରକ ଗଣନ୍ତି ତହିଁରେ ।।
ଯେ ଅଟେ ନାମ ତାହାଙ୍କର । ଯେ ରୂପ, ଲକ୍ଷଣ ଆବର ।।
ହେ ରାଜା ! ସେହି ସ୍ୱରୂପରେ । ବର୍ଣ୍ଣିମା ତୋହର ଆଗରେ ।।
ତାମିସ୍ର ନାମରେ ପ୍ରଥମ । ଅନ୍ଧ-ତାମିସ୍ର ଆର ନାମ ।।
ରୌରବ ନାମେ ପୁଣ ଏକ । ମହାରୌରବ, କୁମ୍ଭୀପାକ ।।
କାଳସୂତ୍ର ନାମରେ ଆନ । ଆରକ ଅସିପତ୍ରବନ ।।
ଶୂକରମୁଖ, ଅନ୍ଧକୂପ । କୃମିଭୋଜନ ନାମେ ନୃପ ।।
ସଂଦଂଶ, ତପ୍ତସୂର୍ମି ମିଳି । ଯେ ବଜ୍ରକଣ୍ଟକଶାଲ୍ମଳୀ ।।
ଏକ ବୈତରଣୀ ବୋଲାଇ । ପୂୟୋଦ, ପ୍ରାଣରୋଧ ଦୁଇ ।।
ଯେ ବିଶସନ, ଲାଳାଭକ୍ଷ । ସାରମେୟାଦନ ପ୍ରତ୍ୟକ୍ଷ ।।
ଅବୀଚି, ଅୟଃପାନ ଦୁଇ । ଏ ରୂପେ ଏକବିଂଶ ହୋଇ ।।
କ୍ଷାରକର୍ଦ୍ଦମ ଏକ ଶୁଣ । ରକ୍ଷୋଗଣଭୋଜନ ପୁଣ ।।
ଯେ ଶୂଳପ୍ରୋତ, ଦନ୍ଦଶୂକ । ଅବଟନିରୋଧନ ଏକ ।।
ପର୍ଯ୍ୟାବର୍ତ୍ତନ, ସୂଚୀମୁଖ । ଏ ଅଷ୍ଟାବିଂଶତି ନରକ ।।
ନାନା ଯାତନାମାନଙ୍କର । ଏମାନେ ଅଟନ୍ତି ମନ୍ଦିର ।।
୮ ପରତରୁଣୀ-ସୁତ-ଧନ । ହରଣ କରେ ଯେଉଁ ଜନ ।।
ତାହାକୁ ଅତିଭୟଙ୍କର । ପୁରୁଷମାନେ ଯେ ଯମର ।।
ବଳରେ ଧରି ଘେନି ଯାନ୍ତି । ତାମିସ୍ର ନରକେ ପକାନ୍ତି ।।
ନ ଦେଇ ଅନ୍ନ ଜଳପାନ । ଅତ୍ୟନ୍ତ କରି ନିପାତନ ।।
ଦଣ୍ଡତାଡ଼ନ ଆଦି ହୋଇ । ଯେତେକ ପୀଡ଼ା ତାହା ଦେଇ ।।

୧. ଶ୍ରୀଶୁକ ଉବାଚ ।

ଯହିଁରେ ପକାନ୍ତେ ଜନ୍ତୁକୁ । ତକ୍ଷଣେ ଲଭଇ ମୋହକୁ ॥ ୪୩
ତମିସ୍ର ପ୍ରାୟେ ସେ ଅଟଇ । ଏ ଘେନି ତାମିସ୍ର ବୋଲାଇ ॥ ୪୪
୯ ଏ ରୂପେ ଅନ୍ଧତାମିସ୍ରରେ । ପକାନ୍ତି ତାହାକୁ ବଳରେ ॥ ୪୫
କପଟ କରି ପୁରୁଷକୁ । ହରଇ ଯେ ତାର ଭାର୍ଯ୍ୟାକୁ ॥ ୪୬
ଯହିଁରେ ପ୍ରାଣୀକି ନେଇଣ । ପକାଇ ଦିଅନ୍ତେ ତକ୍ଷଣ ॥ ୪୭
ଯାତନାମଧ୍ୟରେ ସେ ଥାଇ । ଅତ୍ୟନ୍ତ ବେଦନାକୁ ପାଇ ॥ ୪୮
ବିନଷ୍ଟଦୃଷ୍ଟି ନଷ୍ଟମତି । ସେ ଲୋକ ହୁଅଇ ଝଟିତି ॥ ୪୯
ଛେଦନ କଲେ ଯେହ୍ନେ ମୂଳ । ବୃକ୍ଷ ପଡ଼ଇ ଭୂମିତଳ ॥ ୫୦
ସେ ଘେନି କରି ତାକୁ ପ୍ରାଣୀ । ଅନ୍ଧତାମିସ୍ର ନାମେ ଭଣି ॥ ୫୧
୧୦ ଏ ଦେହ ଅଟଇ ମୁଁ, ମୋର । ଏ ଧନ ଜନ ଏ ମନ୍ଦିର ॥ ୫୨
ଏରୂପେ ମନରେ ବିଚାରି । ପ୍ରାଣୀମାନଙ୍କୁ ଦ୍ରୋହ କରି ॥ ୫୩
ନିଜ କୁଟୁମ୍ବ ପ୍ରତିଦିନ । ପୋଷେ କେବଳ ଯେଉଁ ଜନ ॥ ୫୪
ସେ ଧନ ଆଦି ଏ ଲୋକରେ । ଛାଡ଼ିଣ ସେହି ଅଶୁଭରେ ॥ ୫୫
ରୌରବ ନରକେ ସେ ଜନ । କାଳରେ ହୁଅଇ ପତନ ॥ ୫୬
୧୧ ଯେବଣ ଜନ୍ତୁକୁ ଯେ ଖାଇ । ଏ ଲୋକେ ହିଂସା କରିଥାଇ ॥ ୫୭
ପରଲୋକରେ ସେହୁ ପୁଣ । ଯମଯାତନାରେ ମିଳିଣ ॥ ୫୮
ରୁରୁସ୍ୱରୂପକୁ ଧରନ୍ତି । ତାହାକୁ ହିଂସା ଆଚରନ୍ତି ॥ ୫୯
ସେ ନରକକୁ ତେଣୁ ପ୍ରାଣୀ । ରୌରବ ନାମେ ଛନ୍ତି ଭଣି ॥ ୬୦
ସର୍ପରୁ ଅତିକ୍ରୂର ଯେହି । ତାହାକୁ ରୁରୁ[1] ବୋଲି କହି ॥ ୬୧
୧୨ ମହାରୌରବ ନରକ ହିଁ । ଏ ରୂପେ ବିଖ୍ୟାତ ଅଟଇ ॥ ୬୨
ଯହିଁ ପଡ଼ନ୍ତେ ଲୋକ ଯାଇଁ । କ୍ରବ୍ୟାଦ ନାମେ ରୁରୁ ଯେହି ॥ ୬୩
ଭକ୍ଷିବା ନିମିତ୍ତେଣ ମାଂସ । ତାହାକୁ କରନ୍ତି ବିନାଶ ॥ ୬୪
କେବଳ ନିଜ କଳେବର । ପୋଷିଣ ଥାଇ ଯେଉଁ ନର ॥ ୬୫
ମହାରୌରବ ନରକରେ । ପଡ଼ଇ ସେ ଲୋକ ପ୍ରାନ୍ତରେ ॥ ୬୬
୧୩ ଯେ ଉଗ୍ର ହୋଇ ଏ ଲୋକରେ । ପଶୁଙ୍କୁ ପକ୍ଷୀଙ୍କି ବା ମାରେ ॥ ୬୭
ଦୟା ନ ଥାଇ ତାର ଦେହେ । ତାକୁ ନିନ୍ଦନ୍ତି ରାକ୍ଷସେ ହେଁ ॥ ୬୮
ଯମପୁରୁଷେ ପରଲୋକେ । ତାକୁ ପକାନ୍ତି କୁମ୍ଭୀପାକେ ॥ ୬୯
ତଇଳମାନଙ୍କୁ ତତାଇ । ଯହିଁରେ ଥାଆନ୍ତି ପୂରାଇ ॥ ୭୦
୧୪ ବ୍ରାହ୍ମଣଦ୍ରୋହ ଯେ ଆଚରେ । ବିଧାନବିନୁଁ ପଶୁ ମାରେ ॥ ୭୧
କାଳସୂତ୍ରରେ ଯମଦୂତ । ତାକୁ କରନ୍ତି ନିବେଶିତ ॥ ୭୨
ଅୟୁତ ଯୋଜନ ମଣ୍ଡଳ । ଅଟେ ସେ ତାମ୍ରମୟ ସ୍ଥଳ ॥ ୭୩

୧. ରୁରୁ = ଭାରଶୃଙ୍ଗ (ସ୍ୱାମୀ) ।

ସେ ସମଭୂମି, ତା' ଉପରେ । ତଳରେ ଅଗ୍ନି, ଦିବାକରେ ।। ୭୪
ତପ୍ତ କରିଣ ଥାନ୍ତି ନିତି । ତହିଁରେ ପ୍ରାଣୀ କଲେ ସ୍ଥିତି ।। ୭୫
କ୍ଷୁଧା-ପିପାସାରେ ତାହାର । ପୋଡ଼ଇ ବାହାର ଭିତର ।। ୭୬
ବସଇ, ଶୋଇଣ ପଡ଼ଇ । ଉଠଇ, ସବୁଦିଗେ ଧାଇଁ ।। ୭୭
ମାଇଲା ପଶୁଙ୍କର ଠାରେ । ଯେତେକ ରୋମ ସେ ସଂଖ୍ୟାରେ ।। ୭୮
ତେତିକି ସହସ୍ର ବରଷ । ଲଭୁଥାଇ ସେ ତେତେ କ୍ଲେଶ ।। ୭୯
୧୫ ଆପଣା ବେଦପଥୁଁ ଚଳେ । ଯେ ଲୋକ ଅବିପତ୍ତିକାଳେ ।। ୮୦
ପାଷଣ୍ଡପଥକୁ ଯେ ଯାଇ । ତାହାକୁ ଯମଦୂତେ ନେଇ ।। ୮୧
ପୂରାଇ ଅସିପତ୍ରବନେ । ଚାବୁକେ ପିଟନ୍ତି ସୁଘନେ ।। ୮୨
ତହିଁ ଏ ଲୋକ ଭୟ ପାଇ । ଏଣି ତେଣିକି ଯେବେ ଧାଇଁ ।। ୮୩
ତାଳବନର ପତ୍ରଙ୍କର । ବେନି ପାଖକୁ ଥାଇ ଧାର ।। ୮୪
ଖଣ୍ଡାର ପ୍ରାଏ ସେ ଅଟନ୍ତି । ତେଣେ ସର୍ବାଙ୍ଗେ ଛିଡ଼ି ଯାନ୍ତି ।। ୮୫
ହା କଷ୍ଟ ! ମଲି ମୁଁ ଏଠାରେ । ବୋଲି ପରମ ବେଦନାରେ ।। ୮୬
ମୂର୍ଚ୍ଛିତ ହୋଇଣ ତଳରେ । ପଡ଼ନ୍ତେ ପଦ ପଦକରେ ।। ୮୭
ନିଜ ଧର୍ମକୁ ତ୍ୟାଗ କରି । ପାଷଣ୍ଡମାର୍ଗ ଅନୁସରି ।। ୮୮
ଯେବଣ ଫଳ ଅର୍ଜିଥାଇ । ସେ ଫଳ ଆପଣେ ଭୁଞ୍ଜଇ ।। ୮୯
୧୬ ଇହଲୋକରେ ରାଜା ଯେହି । ରାଜପୁରୁଷ ଅବା କେହି ।। ୯୦
ଦଣ୍ଡକୁ ଯୋଗ୍ୟ ଯେ ନୁହଇ । ତାହାରଠାରେ ଦଣ୍ଡ ଦେଇ ।। ୯୧
ଅଥବା ବ୍ରାହ୍ମଣଶରୀରେ । ଦଣ୍ଡକୁ ଦିଅଇ କୋପରେ ।। ୯୨
ଶୂକରମୁଖ ନରକରେ । ସେ ପାପୀ ପଡ଼େ ସେ ଲୋକରେ ।। ୯୩
ତହିଁ ତା' ଅବୟବମାନ । ବଳେ ପେଷନ୍ତେ ଯମଜନ ।। ୯୪
ଇକ୍ଷୁଦଣ୍ଡର ପ୍ରାଏ ହୋଇ । ଯେବେ ସେ ପେଡ଼ି ହୋଇ ଯାଇ ।। ୯୫
ରୋଦନ କରି ଆର୍ତ୍ତସ୍ୱରେ । ମୋହିତେ ପଡ଼ଇ ତଳରେ ।। ୯୬
ନିର୍ଦ୍ଦୋଷ ଲୋକଙ୍କୁ ସେ ନେଇ । ପୂର୍ବେ ଯେ ବନ୍ଦୀ କରିଥାଇ ।। ୯୭
ସେମାନେ ଯେମନ୍ତ ରୂପରେ । ମୋହ ହୁଅନ୍ତି ସେ ପ୍ରକାରେ ।। ୯୮
୧୭ ମନୁଷ୍ୟ ଦେହ ରକ୍ତପାନ । ଏ ଆଦି ତୁମ୍ଭର ଭୋଜନ ।। ୯୯
ଏ ରୂପେ ବୃତ୍ତି ଯାହାଙ୍କର । କଳ୍ପନା କରିଛି ଈଶ୍ୱର ।। ୧୦୦
ମଶକ ଆଦି ସେ ସର୍ବଥା । ଜାଣନ୍ତି ନାହିଁ ପରବ୍ୟଥା ।। ୧୦୧
ପରୁଷ[1] ଭାବରେ ଯାହାର । ବୃତ୍ତିକି କରିଛି ଈଶ୍ୱର ।। ୧୦୨
ପରବ୍ୟଥାକୁ ଜାଣିଥାଇ । ଏ ରୂପେ ମନୁଷ୍ୟ ଯେ ହୋଇ ।। ୧୦୩
ସେ ମଶକାଦି ଜନ୍ତୁଙ୍କର । ବ୍ୟଥାକୁ ଆଚରେ ପାମର ।। ୧୦୪

୧. ପୁରୁଷଭାବରେ = ବ୍ରାହ୍ମଣାଦି ସ୍ୱଭାବରେ ।

| | | | |
|---|---|---|---|
| | ସେ ଭୂତଦ୍ରୋହଜାତ ପାପେ | ପ୍ରାନ୍ତେ ପଡ଼ଇ ଅନ୍ଧକୂପେ | ॥ ୧୦୫ |
| | ଯେବଣ ଜନ୍ତୁଙ୍କର ଠାଇଁ | ସେ ଦ୍ରୋହ ଆଚରିଣ ଥାଇ | ॥ ୧୦୬ |
| | ସେ ପଶୁ, ମୃଗ, ପକ୍ଷୀ, ଯୂକ[୧] | ପୋତକ[୨], ମଶକ, ମକ୍ଷିକ | ॥ ୧୦୭ |
| | ଉରଗ ଆଦି ଜନ୍ତୁମାନେ | ତାକୁ ଖାଆନ୍ତେ ସର୍ବସ୍ଥାନେ | ॥ ୧୦୮ |
| | ସେ ଅନ୍ଧକାରରେ ଭ୍ରମଇଁ | ନିଦ୍ରା-ଅବସ୍ଥିତି ନ ପାଇ | ॥ ୧୦୯ |
| | ଯେସନେ କୁତ୍ସିତ ଶରୀରେ | କ୍ଳେଶକୁ ଜୀବ ଭୋଗ କରେ | ॥ ୧୧୦ |
| ୧୮ | ଇହଲୋକରେ ଯେହି କେହି | ଭକ୍ଷ୍ୟ ପଦାର୍ଥ ମିଳି ଥାଇ | ॥ ୧୧୧ |
| | ଆନକୁ ନ ଦେଇ ବିଭାଗ | ଯେ ତାହା ଭକ୍ଷ କରେ ଆଗ | ॥ ୧୧୨ |
| | ଯେ ହୋମ ଆଦି ପଞ୍ଚ ଯଜ୍ଞ | ସମାପ୍ତ ନ କରିଣ ଅଜ୍ଞ | ॥ ୧୧୩ |
| | ଭୋଜନ କରଇ, ସେ ଜନ | କାକଙ୍କ ସ୍ତୁତିକି ଭାଜନ | ॥ ୧୧୪ |
| | ସେ ପ୍ରାଣୀ ପରଲୋକେ ଯାଇ | କୃମିଭୋଜନରେ ପଡ଼ଇ | ॥ ୧୧୫ |
| | ନରକମାନଙ୍କ ମଧ୍ୟରେ | ଅଧମ ଅଟେ ସେ ଗୁଣରେ | ॥ ୧୧୬ |
| | ସେ ଶତସହସ୍ର ଯୋଜନ | କୁଣ୍ଡ ଅଟଇ କୃମିସ୍ଥାନ | ॥ ୧୧୭ |
| | ତହିଁରେ ଥାଇ କୃମି ହୋଇ | କୃମିଙ୍କି ଭୋଜନ କରଇ | ॥ ୧୧୮ |
| | ମିଳି ସକଳ କୃମିମାନ | ତାହାକୁ କରନ୍ତି ଭୋଜନ | ॥ ୧୧୯ |
| | ପରକୁ କିଛି ହିଁ ନ ଦେଇ | ହୋମ ନ କରି ଖାଇ ଥାଇ | ॥ ୧୨୦ |
| | ସେ କଲୁଷକୁ ଯଥୋଚିତ | କରି ନ ଥାଇ ପ୍ରାୟଶ୍ଚିତ୍ତ | ॥ ୧୨୧ |
| | ସେ ପାପେ ନରକରେ ନେଇ | ନିଜ ଆତ୍ମାକୁ ସେ ପକାଇ | ॥ ୧୨୨ |
| ୧୯ | ଇହଲୋକରେ ଯେ ଚୋରାଇ | ଅଥବା ବଳକୁ ଦେଖାଇ | ॥ ୧୨୩ |
| | ହିରଣ୍ୟ ଆଦି ବ୍ରାହ୍ମଣର | ହରଇ ସୁସ୍ଥକାଳେ ନର | ॥ ୧୨୪ |
| | ତାହାକୁ ନେଇଣ ତୁରିତେ | ପରଲୋକରେ ଯମଦୂତେ | ॥ ୧୨୫ |
| | ଦିଶେ ଯେ ଅନଳ ବରନ | ଲୁହାର ସଣ୍ଡୁଆଶୀମାନ | ॥ ୧୨୬ |
| | ସେମାନ ଲଗାଇ ଚର୍ମରେ | ଓଟାରୁଥାନ୍ତି ନିରନ୍ତରେ | ॥ ୧୨୭ |
| ୨୦ | ଅଗମ୍ୟା ଅଟେ ଯେଉଁ ନାରୀ | ତାକୁ ଯେ ଇହଲୋକେ ହରି | ॥ ୧୨୮ |
| | ଅଗମ୍ୟ ପୁରୁଷ ସଙ୍ଗରେ | ଯେଉଁ ଯୁବତି କ୍ରୀଡ଼ା କରେ | ॥ ୧୨୯ |
| | ପରଲୋକରେ ଯମଲୋକେ | ତାହାକୁ ପିଟନ୍ତେ ଚାବୁକେ | ॥ ୧୩୦ |
| | ତାତିଲା ଲୁହାପ୍ରତିମାକୁ | କୋଳ କରାନ୍ତି ପୁରୁଷକୁ | ॥ ୧୩୧ |
| | ଯେବଣ ପ୍ରତିମା ଲୁହାର | ଅଟଇ ପୁରୁଷ-ଆକାର | ॥ ୧୩୨ |
| | ସ୍ତିରୀକି ତାହା ଆଲିଙ୍ଗନ | କରାନ୍ତି ହୋଇ କ୍ରୋଧମନ | ॥ ୧୩୩ |
| ୨୧ | ପଶୁ ଆଦିଙ୍କି ଯେ ରମଣ | କରଇ ଇହଲୋକେ ପୁଣ | ॥ ୧୩୪ |
| | ପରଲୋକରେ ସେହୁ ଜନ | ନରକେ ହୋଏ ବର୍ତ୍ତମାନ | ॥ ୧୩୫ |

୧. ଯୂକ = ଉଈ, ଉକୁଣି । ୨. ପୋତକ = କୀଟବିଶେଷ ।

| | | | | |
|---|---|---|---|---|
| | ବଜ୍ରକଣ୍ଟକଶାଲ୍ମଳୀରେ | ଚାହାଙ୍କୁ ଆରୋପି ସତ୍ୱରେ | ॥ | ୧୩୬ |
| | ଓଟାରୁଥାନ୍ତି ଯମଦୂତେ | ସେ ପାପକ୍ଷୟ ପରିଯନ୍ତେ | ॥ | ୧୩୭ |
| ୨୨ | ଯେଉଁ ରାଜାଏ ଏ ଭୁବନେ | ଯେବଣ ରାଜଭୃତ୍ୟମାନେ | ॥ | ୧୩୮ |
| | ପାଷଣ୍ଡମାର୍ଗୀ ଯେ ନୁହନ୍ତି | ସେ ଧର୍ମସେତୁକୁ ଭେଦନ୍ତି | ॥ | ୧୩୯ |
| | ମର୍ଯ୍ୟାଦାହୀନ ସେହିମାନେ | ମରିଣ ଯମର ଭୁବନେ | ॥ | ୧୪୦ |
| | ପଡ଼ନ୍ତି ବଇତରଣୀରେ | ନରକଙ୍କର ପରିଖାରେ | ॥ | ୧୪୧ |
| | ତାହାଙ୍କୁ ଜଳଜନ୍ତୁଗଣେ | ଭକ୍ଷ କରନ୍ତେ ଏଣେ ତେଣେ | ॥ | ୧୪୨ |
| | ଦେହବିଚ୍ଛେଦକୁ ନ ପାନ୍ତି | ଜଳଓଘରେ ଭାସୁଥାନ୍ତି | ॥ | ୧୪୩ |
| | କର୍ମବିପାକ ସୁମରନ୍ତେ | ତାପକୁ ଲଭନ୍ତି ସଂତତେ | ॥ | ୧୪୪ |
| | [1]{ ପୁରୀଷ, ମୂତ୍ର, ପୂଯ, ରକ୍ତ | କେଶ, ନଖ, ଅସ୍ଥି ଯେ ଖ୍ୟାତ | ॥ | ୧ } |
| | ମେଦ, ମାଉଁସ, [2]ବସାଦିର | ନଦୀ ଯେ ବହଇ, ତହିଁର | ॥ | ୨ } |
| ୨୩ | ଶଉଚ, ନିୟମ, ଆଚାର | ଲଜ୍ଜାକୁ କରି ଅତି ଦୂର | ॥ | ୧୪୫ |
| | ବୃଷଳୀପତି ଯେ ଅଟନ୍ତି | ଯା' ଇଚ୍ଛା ତାହା ଆଚରନ୍ତି | ॥ | ୧୪୬ |
| | ସେମାନେ ମରି ପରଲୋକେ | ପଡ଼ନ୍ତି ପୂୟୋଦ ନରକେ | ॥ | ୧୪୭ |
| | ଯେ ପୂୟ, ବିଷ୍ଠା, ମୂତ୍ର, ଲାଳ | ଶ୍ଲେଷ୍ମା ଏ ସମସ୍ତେ ହିଁ ଜଳ | ॥ | ୧୪୮ |
| | ଏଣେ ସମୁଦ୍ର ପ୍ରାଏ ହୋଇ | ସର୍ବଦା ପୂର୍ଣ୍ଣ ଯେ ଅଟଇ | ॥ | ୧୪୯ |
| | ଅତିନିନ୍ଦିତ ସେହିମାନ | ସେମାନେ କରନ୍ତି ଭୋଜନ | ॥ | ୧୫୦ |
| ୨୪ | ଇହଲୋକରେ ଯେଉଁମାନେ | ଶ୍ୱାନଗର୍ଦ୍ଦଭପତି ଯେହ୍ନେ | ॥ | ୧୫୧ |
| | କରନ୍ତି ମୃଗୟା ବିହାର | ବେଦରେ ଉକ୍ତ ଯେ ପ୍ରକାର | ॥ | ୧୫୨ |
| | ତହିଁରୁ ଇତର ସ୍ଥାନରେ | ପଶୁଙ୍କୁ ମାରନ୍ତି ଇଚ୍ଛାରେ | ॥ | ୧୫୩ |
| | ତାହାଙ୍କୁ ଯମର ପୁରୁଷେ | ପରଲୋକରେ ଅତି ରୋଷେ | ॥ | ୧୫୪ |
| | ଲାଖ କରିଣ ରଖିଥାନ୍ତି | [3]କାଣ୍ଡମାନଙ୍କରେ ବିନ୍ଧନ୍ତି | ॥ | ୧୫୫ |
| ୨୫ | ଇହଲୋକରେ ଯେଉଁ ଜନ | ଆଚରି ଦମ୍ଭଯଜ୍ଞମାନ | ॥ | ୧୫୬ |
| | ଦାମ୍ଭିକ ପଣ ଆଚରନ୍ତି | ପଶୁମାନଙ୍କୁ ବିନାଶନ୍ତି | ॥ | ୧୫୭ |
| | ବୈଶସ ନରକେ ସେମାନେ | ପଡ଼ନ୍ତି ଯମର ଭୁବନେ | ॥ | ୧୫୮ |
| | ତାଙ୍କୁ ନରକପତି[4] ଗଣ | କାଟନ୍ତି ଯାତନା ଦେଇଣ | ॥ | ୧୫୯ |
| ୨୬ | ଯେ ଦ୍ୱିଜ ସମାନ ବର୍ଣ୍ଣରେ | ବିବାହ ହୋଇ ଏ ସଂସାରେ | ॥ | ୧୬୦ |
| | କାମମୋହରେ ଭାରିଯାକୁ | ପିଆଏ ଆପଣା ରେତକୁ | ॥ | ୧୬୧ |
| | ସେ ପାପିଷ୍ଠକୁ ଯମପୁରେ | ପକାଇ ରେତକୁଲ୍ୟାନୀରେ | ॥ | ୧୬୨ |

---

୧. ବନ୍ଧନୀସ୍ଥିତ ପଦମାନ ଖାଡ଼ଙ୍ଗା ରଚିତ ନୁହେଁ, କିନ୍ତୁ ମୂଳ ଶ୍ଲୋକାନୁସାରେ ଅନୁବାଦିତ ହୋଇଅଛି ।

୨. ବସା = ଚର୍ବି ।

୩. ଏଠାରେ 'ପ୍ରାଣନିରୋଧ' ଦର୍ଶିତ ହୋଇଅଛି । ୪. ନରକପତି = ଯମପୁରୁଷ ।

ରୋଷରେ ସେହି ରେତମାନ । [1]କରାଉଥାନ୍ତି ତାକୁ ପାନ ।। ୧୬୩
୨୭ ଏ ଲୋକେ ଖଣ୍ଡ ଯେ ଅଟନ୍ତି । ଅଗ୍ନିକି, ବିଷକୁ ଦିଅନ୍ତି ।। ୧୬୪
ରାଜା ବା ରାଜଭୃତ୍ୟଜନ । ଭାଙ୍ଗନ୍ତି ଗ୍ରାମ, ସ୍ଥାନମାନ ।। ୧୬୫
ସେମାନେ ଲଭନ୍ତେ ମରଣ । ତାହାଙ୍କୁ ଯମଦୂତେ ପୁଣ ।। ୧୬୬
ସାତଶ' କୋଡ଼ିଏ ସଂଖ୍ୟାରେ । [2]ଖାଆନ୍ତି ଶ୍ୱାନସ୍ୱରୂପରେ ।। ୧୬୭
ବଜ୍ର ପ୍ରାଏକ ଦନ୍ତମାନ । ତାଙ୍କର ଅଟଇ କଠିନ ।। ୧୬୮
୨୮ ସାକ୍ଷ୍ୟରେ ଦ୍ରବ୍ୟପାଲଟରେ । ମିଥ୍ୟା କହେ ଯେ ଏ ଲୋକରେ ।। ୧୬୯
ମଲେ ସେ ଲୋକ ପରଲୋକେ । ଅବୀଚି[3] ନାମକ ନରକେ ।। ୧୭୦
ପଡ଼ଇ ଯାଇଣ ସେ ନର । ତଳକୁ କରିଥାଇ ଶିର ।। ୧୭୧
ଶତେ ଯୋଜନ ଯେ ଉଚ୍ଚରେ । ସେ ଗିରିଶୃଙ୍ଗରୁ ତଳରେ ।। ୧୭୨
ତାକୁ ନିରବକାଶ ସ୍ଥାନେ । ପକାନ୍ତି ଅତି ରୋଷମନେ ।। ୧୭୩
ଯହିଁ ପାଷାଣପୃଷ୍ଠସ୍ଥଳ । ଶୋଭା ଦିଶଇ ଯେହ୍ନେ ଜଳ ।। ୧୭୪
ତେଣୁ ଅବୀଚିମନ୍ତ ହୋଇ । ନାମ ସେ ନରକ ବହଇ ।। ୧୭୫
ତିଳପ୍ରମାଣରେ ତାହାର । ଫାଟିଣ ଯାଇ କଳେବର ।। ୧୭୬
ତେବେ ନ ମରେ ପୁଣ ତହିଁ । ଆରୋପି ପକାବନ୍ତି[4] ମହୀ ।। ୧୭୭
୨୯ ଇହଲୋକରେ ଯେ ବ୍ରାହ୍ମଣ । କ୍ଷତ୍ରିୟ, ବୈଶ୍ୟ ଅବା ପୁଣ ।। ୧୭୮
କରିଣ ଥାନ୍ତି ସୋମ ପାନ । ବ୍ରତସ୍ଥ ହୋଇ ଯେ ବା ଆନ ।। ୧୭୯
ଏମାନଙ୍କର ଅବା ନାରୀ । ସୁରା ପିଅନ୍ତି ନ ବିଚାରି ।। ୧୮୦
ନରକେ ପଡ଼ନ୍ତେ ସେ ଯାଇଁ । ତାଙ୍କ ବୁକୁରେ ପାଦ ଦେଇ ।। ୧୮୧
ଲୁହାକୁ ସିଞ୍ଚନ୍ତି ମୁଖରେ । ଦ୍ରବିତ ଅଟେ ଯେ ବହ୍ନିରେ ।। ୧୮୨
୩୦ ଇହଲୋକରେ ଯେଉଁ ଜନ । ଆତ୍ମାକୁ କରି ସଂଭାବନ ।। ୧୮୩
ଜନ୍ମ, ତପସ୍ୟା, ବିଦ୍ୟାଚାର । ବର୍ଣ୍ଣ, ଆଶ୍ରମରେ ଯେ ବର ।। ୧୮୪
ଏହାଙ୍କୁ ବଡ଼ ନ ମଣଇଁ । ଆପଣେ ଅଧମ ଅଟଇ ।। ୧୮୫
ସେ ଲୋକ ମରଣ ଅନ୍ତର । ତଳକୁ କରିଥାଇ ଶିର ।। ୧୮୬
କ୍ଷାର କର୍ଦ୍ଦମ ନାମ ଯାର । ପଡ଼ଇ ସେହୁ ନରକର ।। ୧୮୭
ଦୁରନ୍ତ ଯାତନାନିକର । ଭୋଗ କରଇ ନିରନ୍ତର ।। ୧୮୮
୩୧ ଇହଲୋକରେ ଯେଉଁ ନରେ । ମାରି ପୁରୁଷଙ୍କୁ ହିଂସାରେ ।। ୧୮୯
ଭୈରବ ଆଦିଙ୍କି ପୂଜନ୍ତି । ଯେ ସ୍ତିରୀ ନରପଶୁ ଖା'ନ୍ତି ।। ୧୯୦
ତାହାଙ୍କୁ ଯମର ସଦନେ । ଘାତ କରି ସେ ପଶୁମାନେ ।। ୧୯୧
ବ୍ୟାଧ ଯେସନେ ଆୟୁଧରେ । ପଶୁଙ୍କୁ କାଟଇ ନିର୍ଭରେ ।। ୧୯୨

---

୧. ଏଠାରେ 'ଲାଳାଭକ୍ଷ' ଦର୍ଶିତ ହୋଇଅଛି । ୨. ଏଠାରେ 'ସାରମେୟାଦନ' ଦର୍ଶିତ ହୋଇଅଛି ।
୩. ଅବୀଚି = (ବୀଚି = ତରଙ୍ଗ) ତରଙ୍ଗରହିତ । ୪. ପକାବନ୍ତି = ପକାନ୍ତି ।

| | | | | |
|---|---|---|---|---|
| | ସେରୂପେ ପିଅନ୍ତି ରକତ | । କରନ୍ତି ପୁଣ ନୃତ୍ୟଗୀତ | ॥ | ୧୯୩ |
| | ପ୍ରାଣୀଙ୍କି ମାରିଣ ଅସୁରେ | । ଖେଳନ୍ତି ଯେହ୍ନେ ହରଷରେ | ॥ | ୧୯୪ |
| ୩୨ | ଅନପରାଧୀ ଯେଉଁ ଜନେ | । ଥାଆନ୍ତି ଗ୍ରାମେ ଅବା ବନେ | ॥ | ୧୯୫ |
| | ଜୀଇବାନିମିତ୍ତେ ତାଙ୍କର | । ବାଞ୍ଛା ହିଁ ଥାଇ ନିରନ୍ତର | ॥ | ୧୯୬ |
| | ତାଙ୍କୁ ବିଶ୍ୱାସୀ ଲୋକଦ୍ୱାରେ | । ଅଣାଇଁ ଯେ ଇହଲୋକରେ | ॥ | ୧୯୭ |
| | ଗୁନ୍ଥିଣ ଶୂଳସୂତ୍ରାଦିରେ | । ବିନାଶ କରନ୍ତି କ୍ରୀଡ଼ାରେ | ॥ | ୧୯୮ |
| | ସେମାନେ ଯମଯାତନାରେ | । ସେରୂପେ ଶୂଳସୂତ୍ରାଦିରେ | ॥ | ୧୯୯ |
| | ଗୁନ୍ଥା ହୋଇଣ ରହିଥାନ୍ତି | । କ୍ଷୁଧାତୃଷାରେ ପୀଡ଼ା ପାନ୍ତି | ॥ | ୨୦୦ |
| | ବକ-କଙ୍କାଦି ପକ୍ଷୀଗଣେ | । ତାଙ୍କୁ ହାଣନ୍ତି ଏଣେ ତେଣେ | ॥ | ୨୦୧ |
| | ତୀକ୍ଷ୍ଣ ଅଟଇ ତାହାଙ୍କର | । ତୁଣ୍ଡ ଯେସନେ ବଜ୍ରଘୋର | ॥ | ୨୦୨ |
| | ଆପଣା କଲା ପାପମାନ | । ଚିତୋଉ ଥାନ୍ତି ସେହୁଜନ | ॥ | ୨୦୩ |
| ୩୩ | ପ୍ରାଣୀମାନଙ୍କୁ ଏ ଲୋକରେ | । ଉଦ୍ବେଗ କରନ୍ତି ଯେ ନରେ | ॥ | ୨୦୪ |
| | ସର୍ପର ପ୍ରାଏ ତାହାଙ୍କର | । ସ୍ୱଭାବ ଅଟେ ଅତି ଘୋର | ॥ | ୨୦୫ |
| | ସେ [1]ଦନ୍ଦଶୂକ-ନରକରେ | । ପଡ଼ନ୍ତି ମରଣଅନ୍ତରେ | ॥ | ୨୦୬ |
| | ପଞ୍ଚ, ସପତମୁଖ ହୋଇ | । ଯହିଁରେ ସର୍ପମାନେ ଥାଇ | ॥ | ୨୦୭ |
| | ସେ ଲୋକମାନଙ୍କୁ ବହନ | । ଗିଳନ୍ତି ମୂଷାକୁ ଯେସନ | ॥ | ୨୦୮ |
| ୩୪ | ଅନ୍ଧୁହାଁ ଗର୍ତ୍ତେ ଯେଉଁ ଜନେ | । କୁଶୂଳ[2], ଗୁହା ଆଦି ସ୍ଥାନେ | ॥ | ୨୦୯ |
| | ପ୍ରାଣୀଙ୍କି ରୁନ୍ଧନ୍ତି ଏ ଲୋକେ | । ତାହାଙ୍କୁ ପୁଣ ପରଲୋକେ | ॥ | ୨୧୦ |
| | ସେ ସ୍ଥାନମାନଙ୍କରେ ଥୋଇ | । ବିଷସହିତେ ଅଗ୍ନି ଦେଇ | ॥ | ୨୧୧ |
| | ଧୂମ ଦେଇଣ ସବୁସ୍ଥାନେ | । ରୁନ୍ଧନ୍ତି ଯମଦୂତମାନେ | ॥ | ୨୧୨ |
| ୩୫ | ଅତିଥି ହୋଇ ଯେଉଁମାନେ | । ମିଳନ୍ତି ଆସିଣ ଭୁବନେ | ॥ | ୨୧୩ |
| | ତାହାଙ୍କୁ ଗୃହପତି ହୋଇ | । ଯେ ଦୁଷ୍ଟ ବାକ୍ୟକୁ କହଇ | ॥ | ୨୧୪ |
| | ତାଙ୍କୁ ଦହିଲା ପ୍ରାୟ ହୋଇ | । ପାପଲୋଚନରେ ଅନାଇଁ | ॥ | ୨୧୫ |
| | ନରକମଧ୍ୟରେ ସେ ଜନ | । ଯେବେ ହୁଅଇ ନିପତନ | ॥ | ୨୧୬ |
| | ବଜ୍ରର ପ୍ରାଏକ କଠିନ | । ଅଟେ ଯାହାଙ୍କର ବଦନ | ॥ | ୨୧୭ |
| | ସେ ଗୃଧ୍ର, କାକ, କଙ୍କମାନ | । ବଳରେ ତାହାର ଲୋଚନ | ॥ | ୨୧୮ |
| | ଉପାଡ଼ି ପକାନ୍ତି ରୋଷରେ | । କ୍ଳେଶ ଲଭଇ ସେ ପାପରେ | ॥ | ୨୧୯ |
| ୩୬ | ଯେ ଅତି ଅହଂକାରୀ ହୋଇ | । କୁଟିଳ କରିଣ ଅନାଇଁ | ॥ | ୨୨୦ |
| | ସକଳଠାରେ ଶଙ୍କା କରେ | । ବିତ୍ତର ବିନାଶଚିନ୍ତାରେ | ॥ | ୨୨୧ |
| | ହୃଦୟମୁଖ ଶୁଖି ଯାଇ | । କାହିଁରେ ସୁଖ ନ ଲଭଇ | ॥ | ୨୨୨ |
| | ଅର୍ଥକୁ ଗ୍ରହପ୍ରାୟ ହୋଇ | । ଅନବରତେ ରଖିଥାଇ | ॥ | ୨୨୩ |
| | ସେ ଅର୍ଥଙ୍କର ସଂପାଦନେ | । ଉତ୍କର୍ଷ-ରକ୍ଷଣ-ବିଧାନେ | ॥ | ୨୨୪ |

୧. ଦନ୍ଦଶୂକ = ସର୍ପ (ଯେ ବାରଂବାର ଦଂଶନ କରେ) । ୨. କୁଶୂଳ = ଧାନ୍ୟଗର୍ତ୍ତ ।

| | | | |
|---|---|---|---|
| | ପାପ ପାଇ ସେ ପରଲୋକେ | ପଡ଼େ ନରକ ସୂଚୀମୁଖେ | ।। ୨୨୫ |
| | ଦ୍ରବ୍ୟେ ଯେ ଥାଇ ଗ୍ରହ କରି | ସେ ପାପପୁରୁଷକୁ ଧରି | ।। ୨୨୬ |
| | ଯହିଁରେ ଯମର କିଙ୍କରେ | ସୂତ୍ରମାନଙ୍କୁ ଧରି କରେ | ।। ୨୨୭ |
| | ସିଅଁନ୍ତି ସର୍ବ ଅଙ୍ଗ ତାର | ବସ୍ତ୍ର ସିଅଁନ୍ତି ଯେହ୍ନେ ନର | ।। ୨୨୮ |
| ୩୭ | ନରକମାନେ ଏ ପ୍ରକାରେ | ସେ ଶତ, ସହସ୍ର ସଂଖ୍ୟାରେ | ।। ୨୨୯ |
| | ଯମ-ଆଳୟରେ ଅଛନ୍ତି | ପାପୀଏ ତହିଁରେ ପଡ଼ନ୍ତି | ।। ୨୩୦ |
| | ହେ ନୃପ ! ଯେବଣ ପ୍ରକାରେ | କହିଲୁଁ ତୋତେ ସେ କ୍ରମରେ | ।। ୨୩୧ |
| | ଯେ ଧର୍ମକାରୀ ଲୋକମାନେ | ମିଳନ୍ତି ସ୍ୱର୍ଗ ଆଦି ସ୍ଥାନେ | ।। ୨୩୨ |
| | ଘେନି ସେ ପାପପୁଣ୍ୟଶେଷ | ଏଲୋକେ ହୁଅନ୍ତି ପ୍ରବେଶ | ।। ୨୩୩ |
| | ନିବୃତ୍ତିଲକ୍ଷଣର ମାର୍ଗ | କହିଲା ଥାଇଁ ତୋର ଆଗ | ।। ୨୩୪ |
| ୩୮ | ଏମନ୍ତ ରୂପେ ଅଣ୍ଡକୋଷ | ଗଣନାରେ ଯେ ଚତୁର୍ଦ୍ଦଶ | ।। ୨୩୫ |
| | ବିକଳ୍ପ ରୂପେ ପୁରାଣରେ | ଗାଆନ୍ତି ଯାହା ସାଧୁନରେ | ।। ୨୩୬ |
| | ଯେ ନାରାୟଣ ଭଗବାନ | ମହାପୁରୁଷ ବିଦ୍ୟମାନ | ।। ୨୩୭ |
| | ତା' ମାୟାଗୁଣେ ନିରୂପିତ | ତା' ସ୍ଥୂଳ ରୂପ ଏ ଜଗତ | ।। ୨୩୮ |
| | ଏହା ଯେ ପଢ଼ଇ ଶୁଣଇଁ | ଆନ ଲୋକଙ୍କୁ ଯେ ଶୁଣାଇଁ | ।। ୨୩୯ |
| | ଶ୍ରଦ୍ଧାଭକ୍ତିରେ ନିରନ୍ତର | ବିଶୁଦ୍ଧ ଅଟେ ବୁଦ୍ଧି ଯାର | ।। ୨୪୦ |
| | ସେ ବିଷ୍ଣୁସୂକ୍ଷ୍ମରୂପ ଜାଣେ | ଉପନିଷଦ ଯା' ବଖାଣେ | ।। ୨୪୧ |
| | ଯେବଣ ସୂକ୍ଷ୍ମରୂପ ତାର | ଅଟେ ମନର ଅଗୋଚର | ।। ୨୪୨ |
| ୩୯ | ବିଷ୍ଣୁର ସ୍ଥୂଳ ସୂକ୍ଷ୍ମ ହୋଇ | ଯେ ରୂପଯୁଗ ପ୍ରକାଶଇ | ।। ୨୪୩ |
| | ସ୍ଥୂଳ ରୂପରେ ଦେଇ ମନ | ଯେଉଁ ପ୍ରକାରେ ଯତିଜନ | ।। ୨୪୪ |
| | ସ୍ଥୂଳରେ ଆତ୍ମାକୁ ଜିଣଇଁ | ସୂକ୍ଷ୍ମ ବୁଦ୍ଧିରେ ତା' ନିଅଇ | ।। ୨୪୫ |
| ୪୦ | ଭୂ ଦ୍ୱୀପ ବରଷ ଅଚଳ | ସରିତ ସମୁଦ୍ର ପାତାଳ | ।। ୨୪୬ |
| | ନଦୀ ଆକାଶ ଦିଗମାନ | ନରକ ଭଗଣ ବିଧାନ | ।। ୨୪୭ |
| | ଏମନ୍ତରୂପେ ଏ ଲୋକର | ଯେବଣ ସଂସ୍ଥା ନୃପବର | ।। ୨୪୮ |
| | ଯେ ସ୍ଥୂଳରୂପ ଅଦଭୁତ | ବିଷ୍ଣୁର ଶରୀର ନିୟତ | ।। ୨୪୯ |
| | ଏ ସର୍ବଜୀବଙ୍କର ସ୍ଥାନ | କଲୁଁ ତୋ' ଆଗରେ ଗାୟନ | ।। ୨୫୦ |
| | କହଇ ବିପ୍ର ଦୀନବନ୍ଧୁ | ମୋତେ ଉଦ୍ଧର କୃପାସିନ୍ଧୁ | ।। ୨୫୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ନରକବର୍ଣ୍ଣନଂ
ନାମ ଷଡ୍‌ବିଂଶୋଽଧ୍ୟାୟଃ ।।

**ସମାପ୍ତୋଽୟଂ ପଞ୍ଚମସ୍କନ୍ଧଃ**

# ଷଷ୍ଠ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ପୁଣ୍ୟାରଣ୍ୟେ ନୃସିଂହୈକନାମସିଂହୋ ବିରାଜତେ ।
ଯନ୍ନାଦତଃ ପଳାୟନ୍ତେ ମହାକଲ୍ମଷକୁଞ୍ଜରାଃ ।। ୧
ବିସର୍ଗସମ୍ଭବାନ୍ ଜୀବାନ୍ ସ୍ୱମର୍ଯ୍ୟାଦାସୁ [୧]ସଂସ୍ଥିତାନ୍ ।
ବିଷ୍ଣୁଃ ପାତ୍ୟଖିଳୈ ରୂପୈରିତ୍ୟେବଂ ପଞ୍ଚମେ ସ୍ଥିତମ୍ ।। ୨
ଅଧ୍ୟାୟୈକୋନବିଂଶତ୍ୟା ଷଷ୍ଠେ ପୋଷଣମୁଚ୍ୟତେ ।
ଅତିଲଙ୍ଘିତମର୍ଯ୍ୟାଦଭକ୍ତରକ୍ଷଣଲକ୍ଷଣମ୍ ।। ୩
ଅଜାମିଳୋ ମନୁଷ୍ୟେଷୁ ମହାପାପୋ ଯଥେରିତଃ ।
ବିଶ୍ୱରୂପାଦିଘାତୀ ଚ ତଥା[୨] ଦେବେଷୁ ବାସବଃ ।। ୪
ଅଜାମିଳସ୍ୟ ଭକ୍ତତ୍ୱଂ ବିଷ୍ଣୁଦୂତୈର୍ନିରୂପିତମ୍ ।
ସଙ୍କେତଭଗବନ୍ନାମ-ପୁତ୍ରସ୍ନେହାନୁଷଙ୍ଗଜମ୍ ।। ୫
ଇନ୍ଦ୍ରୋଽପି ଭଗବଦ୍‌ଭକ୍ତଃ ସଖ୍ୟେନୋପେନ୍ଦ୍ରସେବକଃ ।
ତଦଧୀନସୁରୈଶ୍ୱର୍ଯ୍ୟଶତ୍ରୁନିର୍ଜୟଜୀବିତଃ ।। ୬
ତତ୍ରାଦୌ ତ୍ରିଭିରଧ୍ୟାୟୈରଜାମିଳକଥୋଚ୍ୟତେ ।
ବିଶ୍ୱରୂପକଥା ଷଡ୍‌ଭିରିନ୍ଦ୍ରଦୋଷୋକ୍ତୟେ ତତଃ ।। ୭
ଇନ୍ଦ୍ରସ୍ୟୈବ ତୁ ଦୋଷୋକ୍ତ୍ୟୈ ବୃତ୍ରାଖ୍ୟାନଂ ତଥାଷ୍ଟଭିଃ ।
ଦ୍ୱାଭ୍ୟାଂ ଚ ମରୁଦାଖ୍ୟାନମେବଂ ପ୍ରକରଣକ୍ରମଃ ।। ୮
ତତ୍ରାଦୌ ପ୍ରଥମେ ବିଷ୍ଣୋର୍ଦୂତୈଃ ପାତକିମୋଚନେ ।
ତତ୍‌ପାପଖ୍ୟାପନାୟୋକ୍ତଂ ଯାମ୍ୟୈର୍ଧର୍ମାଦିଲକ୍ଷଣମ୍ ୯ ।।

ଶ୍ରୀପରୀକ୍ଷିଦୁବାଚ

୧ ଶୁକ ଚରଣେ ଦେଇ ଶିର । କହେ ପରୀକ୍ଷ ନୃପବର ।। ୧
ନିବୃତ୍ତିମାର୍ଗକୁ ଆଦ୍ୟରେ । କହିଲ ଯଥାର୍ଥ ପ୍ରକାରେ ।। ୨
କ୍ରମରେ ଅର୍ଚ୍ଚି ଆଦିଙ୍କର । ଯେ ପ୍ରାପ୍ତି ଯୋଗ ନାମ ତାର ।। ୩
[୩]ତେଣେ ଯେ ବ୍ରହ୍ମା ପ୍ରାପ୍ତହୋଇ । ତାର ସହିତେ ମୋକ୍ଷ ଯେହି ।। ୪
୨ ହେ ମୁନି ! ପ୍ରବୃତ୍ତିଲକ୍ଷଣ । ମାର୍ଗ ହିଁ କରିଛ ବଖାଣ ।। ୫
ସ୍ୱର୍ଗାଦି ସୁଖମାନଙ୍କର । ପ୍ରାପ୍ତିକି ଅଟଇ ସେ ଦ୍ୱାର ।। ୬
ପ୍ରକୃତି ଲୀନ ନୋହେ ଯାର । ଭୋଗ ନିମିତ୍ତେ ସେ ଲୋକର ।। ୭

---

୧. ସଂସ୍ଥିରାନ୍ ।  ୨. ଯଥା ।  ୩. ବ୍ରହ୍ମଣା ସହ ତେ ସର୍ବେ ସଂପ୍ରାପ୍ତେ ପ୍ରତିସଞ୍ଚରେ ।
ପରସ୍ୟାନ୍ତେ କୃତାତ୍ମାନଃ ପ୍ରବିଶନ୍ତି ପରଂ ପଦମ୍ ।। (ସ୍ୱାମୀ)

ଦେହ ଆରମ୍ଭ ରୂପ ହୋଇ । [୧]ଯେ ମାର୍ଗ କଥିତ ଅଟଇ ॥ ୮
୩ ବର୍ଣ୍ଣିଲ ଅଧର୍ମଲକ୍ଷଣ । ନାନା ନରକମାନ ପୁଣ ॥ ୯
ବ୍ୟାଖ୍ୟାନ କଲ ମନ୍ୱନ୍ତର । ଆଦ୍ୟ ସ୍ୱାୟଂଭୁବ ଯହିଁର ॥ ୧୦
୪ ଉତ୍ତାନପାଦ, ପ୍ରିୟବ୍ରତ । ଯେ ତାଙ୍କ ବଂଶ ଯେ ଚରିତ ॥ ୧୧
ଦ୍ୱୀପ, ବରଷ, ପାରାବାର । ନଦୀ, ଉଦ୍ୟାନ, ମହୀଧର ॥ ୧୨
ଏମାନ କରିଛ ବର୍ଣ୍ଣନ । ଯେ ଆନ ବନସ୍ପତିମାନ ॥ ୧୩
୫ ଭାଗ-ଲକ୍ଷଣ-ପରିମାଣ । ପ୍ରମାଣେ କରିଛ ବଖାଣ ॥ ୧୪
ପୃଥିବୀମଣ୍ଡଳସଂସ୍ଥାକୁ । ବିଧାତା ଗ୍ରହାଦି ସ୍ଥାନକୁ ॥ ୧୫
ବିବରମାନଙ୍କ ସଂସ୍ଥାନ । କରିଛି ଯେମନ୍ତେ ସର୍ଜନ ॥ ୧୬
୬ ନାନାପ୍ରକାରେ ଉଗ୍ର ହୋଇ । ଯାତନାମାନେ ଛନ୍ତି ଯହିଁ ॥ ୧୭
ସେ ନରକଙ୍କୁ ଏ ସଂସାରେ । ମନୁଷ୍ୟ ଯେମନ୍ତ ପ୍ରକାରେ ॥ ୧୮
ନ ଯାଇ ସେକଥା ମୋ' ଆଗ । କହ ଏବେ ହେ ମହାଭାଗ ॥ ୧୯

ଶ୍ରୀଶୁକ ଉବାଚ

୭ ମନ, ବଚନ, କାୟେ ଜନ । କରଇ ଯେବଣ ବୃଜିନ ॥ ୨୦
ସେ ମନ ବଚନ କାୟରେ । ତା' ପ୍ରାୟଶ୍ଚିତ୍ତ ଏ ଦେହରେ ॥ ୨୧
ଯେବେ ନ କରେ ଯଥାର୍ଥରେ । ସେ ଜନ ମରଣ-ଅନ୍ତରେ ॥ ୨୨
ନିଶ୍ଚୟେ ନରକକୁ ଯାଇ । ଯାକୁ ତୋ' ଆଗେ କହିଥାଇ ॥ ୨୩
ଯେବଣ ନରକରେ ସ୍ଥିତ । ଦାରୁଣ ଯାତନା ବହୁତ ॥ ୨୪
୮ ସେ ଘେନି ମରଣୁଁ ପୂର୍ବରେ । ବିପତ୍ତି ନ ଥିବା କାଳରେ ॥ ୨୫
ଯେବଣ ଦୋଷ ଜନ୍ମିଥିବ । ଦେଖିଣ ଗୁରୁ-ଲଘୁଭାବ ॥ ୨୬
ସତ୍ୱରେ ସୁସଂଯତ ଚିତ୍ତେ । ଯତ୍ନ କରିବ ପ୍ରାୟଶ୍ଚିତ୍ତେ ॥ ୨୭
ରୋଗମାନଙ୍କର ନିଦାନ । ଯେ ଜାଣିଥାଇ ବୈଦ୍ୟ ଜନ ॥ ୨୮
ସେ ଯେହ୍ନେ ରୋଗଅନୁସାରେ । ଚିକିତ୍ସାମାନଙ୍କୁ ଆଚରେ ॥ ୨୯

ଶ୍ରୀରାଜୋବାଚ

୯ ଯେ ରାଜଦଣ୍ଡ ଆଦିମାନ । ପ୍ରତ୍ୟକ୍ଷେ ଦେଖିଅଛି ଜନ ॥ ୩୦
ଯେ ବା ନରକପାତ ଆଦି । ଶ୍ରବଣେ ଅଛଇ ସଂପାଦି ॥ ୩୧
ସେ ବେନି କଥାରୁ ଅହିତ । ଅଟେ ଆପଣାର ଦୁରିତ ॥ ୩୨
ଏମନ୍ତ ଜାଣିଲେହେଁ ନର । ସେ ପ୍ରାୟଶ୍ଚିତ୍ତ-ଅନନ୍ତର ॥ ୩୩
ଅବଶ ହୋଇ ପାପ କରେ । କି କାର୍ଯ୍ୟ ସେ ପ୍ରାୟଶ୍ଚିତ୍ତରେ ॥ ୩୪
ସମୂଳ ହୋଇ ଯେଣୁ ଦୋଷ । ପ୍ରାଣୀର ନୋହିଲା ବିନାଶ ॥ ୩୫

---

୧. "ଦକ୍ଷିଣେନ ପଥାର୍ଯ୍ୟମ୍ଣଃ ପିତୃଲୋକଂ ବ୍ରଜନ୍ତି ତେ ।" ଇତ୍ୟାଦିନା ।

୧୦ କେହୁଣି ସମୟେ ପାତକ । କଥାରୁ ନିବର୍ତ୍ତଇ ଲୋକ ॥ ୩୬
କେହୁଣି ସମୟରେ ପୁଣ । ସେ ପାପ କରେ ଆଚରଣ ॥ ୩୭
ଏ ଘେନି ବ୍ୟର୍ଥ ପ୍ରାୟଶ୍ଚିତ୍ତ । ମଣୁଛି ଗଜସ୍ନାନବତ[1] ॥ ୩୮
ସେ ଯେହ୍ନେ କରିଥାଇ ସ୍ନାନ । ଦେହେ ସିଞ୍ଚଇ ଧୂଳିମାନ ॥ ୩୯

[2]ଶ୍ରୀଶୁକ ଉବାଚ

୧୧ ପ୍ରାୟଶ୍ଚିତ୍ତରେ ସେ କଲୁଷ । ସମୂଳ ହୋଇ ହୋଏ ନାଶ ॥ ୪୦
ଏହା ନ ବାଞ୍ଛୁ ଆମ୍ଭେ ଚିତ୍ତେ । ଯେଉଁ ନ୍ୟାୟରୁ ପ୍ରାୟଶ୍ଚିତ୍ତେ ॥ ୪୧
ଅଜ୍ଞାନୀ ଜନ ଅଧିକାରୀ । ଅବିଦ୍ୟା ଥିବାରୁ ତାହାରି ॥ ୪୨
ଏକ ପାତକ ନିବର୍ତ୍ତଇ । ଆନ ପାତକ ପୁଣ ହୋଇ ॥ ୪୩
ସେ ଘେନି ମୁଖ୍ୟ ପ୍ରାୟଶ୍ଚିତ୍ତ । ଅଟଇ ଆତ୍ମଜ୍ଞାନ ମତ ॥ ୪୪
୧୨ ନିଶ୍ଚୟ କରି ପଥ୍ୟ ଅନ୍ନ । ଯେ ପ୍ରାଣୀ କରନ୍ତି ଭୋଜନ ॥ ୪୫
ତାହାଙ୍କୁ ବାଧି ନ ପାରନ୍ତି । ବ୍ୟାଧି ହୋଇଣ ଯେତେ ଥାନ୍ତି ॥ ୪୬
ହେ ରାଜା ! ସେହି ପରକାରେ । ନିୟମମାନ ଯେ ଆଚରେ ॥ ୪୭
କ୍ରମରେ ଜ୍ଞାନର ନିମିତ୍ତେ । ସମର୍ଥ ହୋଏ ସେ ଜଗତେ ॥ ୪୮
୧୩ ବ୍ରହ୍ମଚର୍ଯ୍ୟରେ[3] ତପସ୍ୟାରେ[4] । ମନ-ଇନ୍ଦ୍ରିୟ-ନିୟମରେ ॥ ୪୯
ଦାନରେ ସତ୍ୟରେ ଶୌଚରେ । ଅହିଂସାଦିରେ ଜପାଦିରେ ॥ ୫୦
୧୪ ଦେହ-ବଚନ-ବୁଦ୍ଧିଜାତ । ମହତ ଅଟେ ଯେ ଦୁରିତ ॥ ୫୧
ତାହାକୁ କରନ୍ତି ସଂହାର । ଶ୍ରଦ୍ଧାଳୁ, ଧୀର, ଧର୍ମୀ ନର ॥ ୫୨
ବେଣୁଗୁଳ୍ମକୁ ହୁତାଶନ । ଯେସନେ କରଇ ଦହନ ॥ ୫୩
୧୫ ତପ ଆଦିକି କରି ଦୂରେ । କେବଳ ଭଗତିମାତ୍ରରେ ॥ ୫୪
ଶ୍ରୀବାସୁଦେବପରାୟଣ । ଯେ କେହି ସମଗ୍ର କରିଣ ॥ ୫୫
ପାପକୁ କରନ୍ତି ନିବାର । ହିମକୁ ଯେସନେ ଭାସ୍କର ॥ ୫୬
୧୬ ତପ ଆଦିରେ ପାପୀ ଜନ । ସେ ରୂପେ ନୁହଇ ପାବନ ॥ ୫୭
ଯେ କୃଷ୍ଣେ ସମର୍ପିଇ ପ୍ରାଣ । ସେବଇ ବୈଷ୍ଣବଙ୍କୁ ପୁଣ ॥ ୫୮
ହେ ରାଜା ! ଯେମନ୍ତ ପ୍ରକାରେ । ପବିତ୍ର ହୋଏ ସେ ସଂସାରେ ॥ ୫୯
୧୭ ଭଗତିମାର୍ଗ ଏ ଉତ୍ତମ । ଯେଣୁ ଅଟଇ ଲୋକେ କ୍ଷେମ ॥ ୬୦

---

୧. ...ମତ ୨. ଶ୍ରୀବାଦରାୟଣିରୁବାଚ ।
୩. "ସ୍ମରଣଂ କୀର୍ତ୍ତନଂ କେଳିଃ ପ୍ରେକ୍ଷଣଂ ଗୁହ୍ୟଭାଷଣମ୍ ।
ସଂକଳ୍ପୋଽଧ୍ୟବସାୟଶ୍ଚ କ୍ରିୟାନିର୍ବୃତ୍ତିରେବ ଚ ॥ ୧
ଏତନ୍ମୈଥୁନମଷ୍ଟାଙ୍ଗଂ ପ୍ରବଦନ୍ତି ମନୀଷିଣଃ ।
ବିପରୀତଂ ବ୍ରହ୍ମଚର୍ଯ୍ୟମେତଦେବାଷ୍ଟଲକ୍ଷଣମ୍ ॥ ୨
୪. "ମନସଶ୍ଚେନ୍ଦ୍ରିୟାଣାଂ ଚ ଐକାଗ୍ର୍ୟଂ ପରମଂ ତପଃ ।" (ସ୍ମୃତିଃ)

[1]ବିଘ୍ନ ଆଦିରୁ ଭୟ ଯହିଁ । କେବେହେଁ ସମ୍ଭବଇ ନାହିଁ ॥ ୬୧
ଯହିଁରେ ବିଷ୍ଣୁପରାୟଣ । ଥାନ୍ତି ସୁଶୀଳ ସାଧୁଗଣ ॥ ୬୨
୧୮ ବିଷ୍ଣୁବିମୁଖ ଯେଉଁ ଜନ । ତାହାଙ୍କୁ ପ୍ରାୟଶ୍ଚିତ୍ତମାନ ॥ ୬୩
ପବିତ୍ର କରି ନ ପାରନ୍ତି । ଯଦ୍ୟପି କୃତ ହୋଇଥାନ୍ତି ॥ ୬୪
ହେ ନୃପ ! ସୁରାରେ ସଂଯୁତ । କୁମ୍ଭକୁ ନଦୀଏ ଯେମନ୍ତ ॥ ୬୫
ପବିତ୍ର କରି ନ ପାରନ୍ତି । ସେ କଥା ଅଟେ ସେହି ମତି ॥ ୬୬
୧୯ ସେ କୃଷ୍ଣଗୁଣେ [2]ଅନୁରାଗୀ । ହୋଇ ନ ଥାଇ ଜ୍ଞାନଭାଗୀ ॥ ୬୭
ଏମନ୍ତ ମନ ଏ ସଂସାରେ । କୃଷ୍ଣଚରଣକମଳରେ ॥ ୬୮
ଯେ ନିବେଶିଲେ ଏକ ବାର । ସ୍ୱପ୍ନକାଳେ ହେଁ ସେହୁ ନର ॥ ୬୯
ଯେ ପାଶଧର ଯମଦୂତେ । ଯମଙ୍କୁ ତାହାଙ୍କ ସହିତେ ॥ ୭୦
ଦେଖନ୍ତି ନାହିଁ କଦାଚିତ । ତେଣେ କଲେ ସେ ପ୍ରାୟଶ୍ଚିତ୍ତ ॥ ୭୧
୨୦ ଏହି ବିଷୟେ ପୁରାତନ । ଇତିହାସକୁ ଋଷିଜନ ॥ ୭୨
ପ୍ରକାଶ କରନ୍ତି ଯେ ବାଣୀ । ବିଷ୍ଣୁ-ଶମନଦୂତେ ଭଣି ॥ ୭୩
ସେ କଥା କରିବା ବଖାଣ । ଆମ୍ଭର ଠାରୁ ତାହା ଶୁଣ ॥ ୭୪
୨୧ କାନ୍ୟକୁବ୍ଜ ଦେଶେ ସ୍ଥିତ । ଅଜାମିଳ ନାମରେ ଖ୍ୟାତ ॥ ୭୫
ଦାସୀର ପତି ବିପ୍ର କେହି । ବିପ୍ର-ଆଚାର ତାର ନାହିଁ ॥ ୭୬
ଦାସୀକି କରନ୍ତେ ରମଣ । ଦୂଷିତ ହେଲା ତେଣୁ ପୁଣ ॥ ୭୭
୨୨ ଜୁଆ, କପଟ, ଚୋରପଣ । ଯେ ବଳେ ପରକୁ ଗ୍ରହଣ ॥ ୭୮
ଏ ରୂପେ ତୁଚ୍ଛ ଯେ ଜୀବିକା । ତାହା ଆଶ୍ରୟ କଲା ଏକା ॥ ୭୯
ଅଶୁଚି ଅଟଇ ଆପଣ । କୁଟୁମ୍ବ କରନ୍ତେ ପୋଷଣ ॥ ୮୦
ପ୍ରାଣୀମାନଙ୍କୁ ଅତିଘୋର । ପୀଡ଼ାକୁ ଦେଲା ଦୁରାଚାର ॥ ୮୧
୨୩ ହେ ମହାରାଜ ! ଏମନ୍ତରେ । ଥାଆନ୍ତେ ଗୃହ-ଆଶ୍ରମରେ ॥ ୮୨
ଯେତେ ସେ ଦାସୀସୁତମାନ । ତାହାଙ୍କୁ କରନ୍ତେ ଲାଳନ[3] ॥ ୮୩
ବହୁତ କାଳ ହେଲା ଶେଷ । ଅଠାଶୀ ବରଷ ଆୟୁଷ ॥ ୮୪
୨୪ ଦଶ ନନ୍ଦନ ସେ ବୃଦ୍ଧର । ସାନ ଯେ ତାହାଙ୍କ ଭିତର ॥ ୮୫
ବାଳକ ନାରାୟଣ ନାମ । ପିତାମାତାର ପ୍ରିୟତମ ॥ ୮୬
୨୫ ଅବ୍ୟକ୍ତ ମଧୁର ବଚନ । ଭାଷଇ ସେ ବାଳନନ୍ଦନ ॥ ୮୭
ତାଠାରେ ବାନ୍ଧିଲା ଚିତ୍ତକୁ । ଦେଖନ୍ତେ ତାହାର ଲୀଳାକୁ ॥ ୮୮
ହୋଇଲା ଅତିଶୟ ତୋଷ । ସେ ବିପ୍ର, ବୃଦ୍ଧ ତା' ବୟସ ॥ ୮୯

---

୧. ଜ୍ଞାନମାର୍ଗପରି ଅସହାୟତାନିମିତ୍ତ ଭୟ ବା କର୍ମମାର୍ଗପରି ମତ୍ସରାଦିଯୁକ୍ତ ବ୍ୟକ୍ତିମାନଙ୍କ ଠାରୁ ଭୟ ଭକ୍ତିମାର୍ଗରେ ନାହିଁ । (ସ୍ୱାମୀ)

୨. ମାତ୍ର ରାଗୀ । ୩. ପାଳନ । (ଲାଳୟାନସ୍ୟ) ।

୨୬ ଅନ୍ନଭୋଜନ ଜଳପାନ । କରନ୍ତେ ଇତର ଅଶନ ॥
ପୁତ୍ରସ୍ନେହରେ ବଶ ହୋଇ । ବାଳକୁ ଭୁଞ୍ଜାଇ ପିଆଇ ॥
ଅନ୍ତକ ନିକଟ ହୋଇଲା । ମୂଢ଼ ତା' ଜାଣି ନ ପାରିଲା ॥
୨୭ ସେ ମୂଢ଼ ଏମନ୍ତ ପ୍ରକାରେ । ବର୍ତ୍ତିଥାଆନ୍ତେ ସଦନରେ ॥
ମିଳନ୍ତେ ମରଣର କାଳ । ଯେ ନାରାୟଣ ନାମେ ବାଳ ॥
ତାହାର ଠାରେ ନିଜ ମନ । କଲା ସେ ବିପ୍ର ନିବେଶନ ॥
୨୮ ହସ୍ତରେ ପାଶ ଧରିଛନ୍ତି । ଅତି ଦାରୁଣ ଯେ ଅଟନ୍ତି ॥
ବକ୍ର ତାହାଙ୍କର ବଦନ । ଊର୍ଦ୍ଧ୍ୱ ଦିଶନ୍ତି ରୋମମାନ ॥
ଯେ ଆପଣାକୁ ନେବାପାଇଁ[୧] । ଅଇଲେ, ସେ ଦୂତଙ୍କୁ ଚାହିଁ ॥
୨୯ ଦୂରେ କ୍ରୀଡ଼ାରେ ଆସକତ । ଯେ ନାରାୟଣ ନାମେ ସୁତ ॥
ତାକୁ ଡାକିଲା ନାମ ଧରି । ବ୍ରାହ୍ମଣ ଅତି ଉଚ୍ଚ କରି ॥
ଆକୁଳ ହେଉଛନ୍ତି ତାର । ଇନ୍ଦ୍ରିୟମାନେ ବାରମ୍ବାର ॥
୩୦ ମରଣ ଲଭୁଛି ଯେ ଜନ । ତା' ମୁଖୁଁ ହରିର କୀର୍ତ୍ତନ ॥
ପ୍ରଭୁର ନାମକୁ ଶୁଣିଣ । ହେ ମହାରାଜ ! ତତକ୍ଷଣ ॥
ବିଷ୍ଣୁର ପାରିଷଦମାନେ । ପ୍ରବେଶ ହୋଇଲେ ସେ ସ୍ଥାନେ ॥
୩୧ ବ୍ରାହ୍ମଣ ଅଜାମିଳ ନାମ । ଦାସୀର ପତି ସେ ଅଧମ ॥
ହୃଦୟମଧ୍ୟୁଁ ଯମଦୂତେ । ତାକୁ ଓଟାରନ୍ତେ ତୁରିତେ ॥
ତାହାଙ୍କୁ ବିଷ୍ଣୁଦୂତେ ପୁଣ । ବାରିଲେ ଆପଣା ତେଜେଣ ॥
୩୨ ବିଷ୍ଣୁର ଦୂତେ ନିଷେଧନ୍ତେ । ବୋଇଲେ ତାଙ୍କୁ ଯମଦୂତେ ॥
କେ ତୁମ୍ଭେ ? ଧର୍ମରାଜାଙ୍କର । ଆଜ୍ଞାକୁ କରୁଛ ନିବାର ॥
୩୩ କାହାର ଦୂତ ତୁମ୍ଭେମାନେ । କାହିଁରୁ ମିଳିଲ ଏ ସ୍ଥାନେ ॥
ଏହାକୁ ନେବାକୁ ବାରଣ । କରୁଛ ଅବା କି କାରଣ ॥
ଦେବତା, ଉପଦେବ ଅବା । ସିଦ୍ଧସତ୍ତମ ଅଟ କିବା ॥
୩୪ ପଦ୍ମପଲାଶ ପ୍ରାୟେ ହୋଇ । ସବୁରି ଚକ୍ଷୁ ଶୋଭା ପାଇ ॥
ପିନ୍ଧିଛ ପୀତ ପାଟ ଚେଳ । ଧରିଛ କିରୀଟ, କୁଣ୍ଡଳ ॥
ସୁନ୍ଦର ସରସିଜମାଳ । ଲମ୍ବିଛି ସମସ୍ତଙ୍କ ଗଳ ॥
୩୫ ସମସ୍ତଙ୍କର ହିଁ ନବୀନ । ବୟସ ହୋଇଛି ଶୋଭନ ॥
ସୁନ୍ଦର ଭୁଜ ଚାରି ଚାରି । ସମସ୍ତେ ଅଛ ତୁମ୍ଭେ ଧରି ॥
ଧନୁ, ତୂଣୀର, ଗଦା, ଅସି । ଅମ୍ବୁଜ, ଶଙ୍ଖ, ଚକ୍ର ମିଶି ॥
ଏ ରୂପେ ଯେ ଆୟୁଧମାନ । ତେଣେ ଦିଶୁଛ ଶୋଭମାନ ॥
୩୬ ଅନ୍ୟ ଆଲୋକ ଅନ୍ଧକାର । ଯହିଁରୁ ହୋଇଲା ଅନ୍ତର ॥

---

୧. ନେମାପାଇଁ ।

ଦିଗମାନଙ୍କୁ ଏ ପ୍ରକାରେ । କରୁଛ ଆପଣା କାନ୍ତିରେ ॥ ୧୨୧
ଆମ୍ଭେ ଯେ ଯମର କିଙ୍କର । ଆମ୍ଭଙ୍କୁ କି ଅର୍ଥେ ନିବାର ॥ ୧୨୨

ଶ୍ରୀଶୁକ ଉବାଚ

୩୭ ସେ ଯମଦୂତେ ଏ ପ୍ରକାରେ । କହନ୍ତେ, ବିଷ୍ଣୁର କିଙ୍କରେ ॥ ୧୨୩
ହସି କହିଲେ ତାଙ୍କୁ ବାଣୀ । ଯେ ମେଘଧ୍ୱନିସମ ଜାଣି ॥ ୧୨୪

ଶ୍ରୀବିଷ୍ଣୁଦୂତା ଉଚୁଃ

୩୮ ଯେବେ ହୋ ଧର୍ମରାଜାଙ୍କର । ତୁମ୍ଭେ ସମସ୍ତେ ଆଜ୍ଞାକର ॥ ୧୨୫
ଆମ୍ଭଙ୍କୁ ଧର୍ମତତ୍ତ୍ୱ[1] ପୁଣ । କହ ଧର୍ମର ଯେ ଲକ୍ଷଣ[2] ॥ ୧୨୬
୩୯ କେଉଁ ପ୍ରକାରେ ଦଣ୍ଡ ଦେଇ । ଦଣ୍ଡର ବିଷୟ କେ ହୋଇ ॥ ୧୨୭
ଯେତେକ କର୍ମବନ୍ତ ଜନ । ଦଣ୍ଡକୁ କିବା ସେ ଭାଜନ ॥ ୧୨୮
ଅଥବା ଦଣ୍ଡଯୋଗ୍ୟ ହୋଇ । ମନୁଷ୍ୟଙ୍କର ମଧ୍ୟେ କେହି ॥ ୧୨୯

ଶ୍ରୀଯମଦୂତା ଉଚୁଃ

୪୦ ଯେ ବେଦବିହିତ ସେ ଧର୍ମ[3] । ତହିଁରୁ ଆନ ଯେ ଅଧର୍ମ ॥ ୧୩୦
ବେଦ ସାକ୍ଷାତ ନାରାୟଣ । [4]ବିଷ୍ଣୁର ନିଃଶ୍ୱାସମାତ୍ରେଣ ॥ ୧୩୧
ସ୍ୱୟଂ ସମ୍ଭବ ସେ ଅଟଇ । ଏମନ୍ତ ରୂପେ ଶୁଣିଥାଇଁ ॥ ୧୩୨
୪୧ ଏ ପ୍ରାଣୀଙ୍କି ଯେ ଆପଣାର । ସ୍ୱରୂପେ ପରମ ଈଶ୍ୱର ॥ ୧୩୩
ପ୍ରକାଶ କରିଛି ଗୁଣରେ । ନାମରେ କ୍ରିୟାରେ ରୂପରେ ॥ ୧୩୪
ସେହି ପୁରୁଷ ନାରାୟଣ । ସକଳ ଶାସ୍ତ୍ରରେ ପ୍ରମାଣ ॥ ୧୩୫
୪୨ [5]ସୂର୍ଯ୍ୟ, ଆକାଶ, ବୈଶ୍ୱାନର । ଯମ, ପବନ, ନିଶାକର ॥ ୧୩୬
ଦ୍ୱିସଂଧ୍ୟା, ଜଳ, ରାତ୍ରି, ଦିନ । ପୃଥିବୀ, ଦିଗ, ଧର୍ମମାନ ॥ ୧୩୭
ଏ ରୂପେ କହିଲାଇଁ ଯେତେ । ଜୀବର ସାକ୍ଷୀ ଏ ଜଗତେ ॥ ୧୩୮
୪୩ ଏହୁ ଜାଣନ୍ତି ଅଧର୍ମକୁ । କହିବା ଦଣ୍ଡର ସ୍ଥାନକୁ ॥ ୧୩୯
କର୍ମାନୁରୋଧେ କର୍ମୀ ଜନ । ସମସ୍ତେ ଦଣ୍ଡକୁ ଭାଜନ ॥ ୧୪୦
୪୪ କର୍ମୀମାନଙ୍କର ସଂଭୂତ । ହୁଅନ୍ତି ସୁକୃତ ଦୁଷ୍କୃତ ॥ ୧୪୧
ଯେଣୁ ତାହାଙ୍କର ଗୁଣରେ । ସଙ୍ଗମ ଅଛି ନିରନ୍ତରେ ॥ ୧୪୨
ହେ ଦୂତେ ! ଦେହବନ୍ତ ହୋଇ । କର୍ମ ନ କରି କେହି ନାହିଁ ॥ ୧୪୩

---

୧. ତତ୍ତ୍ୱ = ସ୍ୱରୂପ । ୨. ଲକ୍ଷଣ = ପ୍ରମାଣ । ୩. 'ଚୋଦନାଲକ୍ଷଣୋଽର୍ଥୋ ଧର୍ମଃ' (ଜୈମିନିଃ) ।
୪. ଅରେ ଅସ୍ୟ ମହତୋ ଭୂତସ୍ୟ ନିଃଶ୍ୱସିତମେତଦ୍ ଯଦ୍ ଋଗ୍‌ବେଦଃ....... (ଶ୍ରୁତିଃ)
୫. ଆଦିତ୍ୟଚନ୍ଦ୍ରାବନିଳୋଽନଳଶ୍ଚ ଦ୍ୟୌର୍ଭୂମିରାପୋ ହୃଦୟଂ ଯମଶ୍ଚ ।
ଅହଶ୍ଚ ରାତ୍ରିଶ୍ଚ ଉଭେ ଚ ସଂଧ୍ୟେ ଧର୍ମଶ୍ଚ ଜାନାତି ଜନସ୍ୟ ବୃତ୍ତମ୍ ॥ (ମନୁ)

୪୫ ଯେ ଯେତେ କରେ ଆଚରଣ । ଅଧର୍ମ ଧର୍ମ ଅବା ପୁଣ ॥ ୧୪୪
ତା' ଫଳ ତେତେ ସାବଧାନେ । ସେ ଭୁଞ୍ଜେ ପରଲୋକସ୍ଥାନେ ॥ ୧୪୫
୪୬ ହେ ଦେବଶ୍ରେଷ୍ଠ ! ଏ ଜନ୍ମରେ । ଗୁଣଙ୍କ ବିଚିତ୍ର ଭାବରେ ॥ ୧୪୬
ଯେ ଶାନ୍ତ-ଘୋର-ମୂଢ଼ ଭାବ । ପ୍ରାଣୀଙ୍କ ଠାବରେ ସମ୍ଭବ ॥ ୧୪୭
ସେ ତିନି ଭାବ ଅନୁମାନ । କରଇ ଆନ ଜନ୍ମେ ଜନ ॥ ୧୪୮
୪୭ ଯେ ହୋଇଥାଇ ବର୍ତ୍ତମାନ । ବସନ୍ତ ଆଦି କାଳମାନ ॥ ୧୪୯
ସେ ଯେହ୍ନେ ଭୂତ ଭବିଷ୍ୟର । ବସନ୍ତ ଆଦି କାଳଙ୍କର ॥ ୧୫୦
ଫଳପୁଷ୍ପାଦି ଯେତେ ଗୁଣ । ପ୍ରକାଶ କରଇ ତା' ପୁଣ ॥ ୧୫୧
ଏ ଜନ୍ମ ସେହି ପରକାରେ । ଭୂତ ଭବିଷ୍ୟ ଜନମରେ ॥ ୧୫୨
ଧର୍ମ ଅଧର୍ମ ଯେ ହୁଅଇ । ସେ କଥା ପ୍ରକାଶ କରଇ ॥ ୧୫୩
୪୮ ପୁରରେ ଥାଇ ଦଣ୍ଡଧର । ପୂର୍ବ ରୂପକୁ ମନୁଷ୍ୟର ॥ ୧୫୪
ମନରେ ବିଶେଷେ ଦେଖଇ । ପଛେ ତା' ମନେ ବିଚାରଇ ॥ ୧୫୫
ଯେଣୁ ସେ ଅଟେ ଭଗବାନ । ସାକ୍ଷାତ ଜନମବିହୀନ ॥ ୧୫୬
୪୯ ପୂର୍ବ କର୍ମରୁ ଯେ ସଂଭବ । ସେ କଳେବର ଲଭି ଜୀବ ॥ ୧୫୭
ମୁଁ ବୋଲି ତାକୁ ଜାଣିଥାଇ । ଭୂତ ଭବିଷ୍ୟ ଦେହ ଦୁଇ ॥ ୧୫୮
କରି ନ ପାରଇ ଗୋଚର । ଯେଣୁ ଜନମରୁ ତାହାର ॥ ୧୫୯
ସ୍ମରଣ ହୋଇଥାଇ ନାଶ । ଯେସନେ ନିଦ୍ରାରେ ପୁରୁଷ ॥ ୧୬୦
ସ୍ୱପ୍ନରେ ବ୍ୟକ୍ତ ଯେ ଶରୀର । କେବଳ କରେ ତା' ଗୋଚର ॥ ୧୬୧
ପୂର୍ବ-ଅପର ସ୍ୱପ୍ନଗତ । ଦେହକୁ ନ ଜାଣେ ଯେମନ୍ତ ॥ ୧୬୨
୫୦ ଷୋଡ଼ଶ ଅଟେ ଯେ ମାନସ । ତା' ସଙ୍ଗେ ଜୀବ ସପ୍ତଦଶ ॥ ୧୬୩
କର୍ମଇନ୍ଦ୍ରିୟ-ପଞ୍ଚ-ଦ୍ୱାରେ । ଭକତି ଆଦି କର୍ମ କରେ ॥ ୧୬୪
ଜ୍ଞାନଇନ୍ଦ୍ରିୟପାଞ୍ଚେ ସେହି । ଶବ୍ଦାଦି ପାଞ୍ଚକୁ ଜାଣଇଁ ॥ ୧୬୫
ମାନସ, ଜ୍ଞାନ-କର୍ମେନ୍ଦ୍ରିୟ । ଏ ତିନିଙ୍କର ଯେ ବିଷୟ ॥ ୧୬୬
ସେ ତିନି କଥା ଏକା ହୋଇ । ଜୀବ ଭୁଞ୍ଜଇ ଦେହେ ଥାଇ ॥ ୧୬୭
୫୧ ଅନାଦି ଏ ଲିଙ୍ଗଶରୀର । ଷୋଡ଼ଶ ଅଟେ କଳା ଯାର ॥ ୧୬୮
ଜୀବର ଅନୁଗତ ହୋଇ । ସଂସାରକୁ ଏ ଜନମାଇଁ ॥ ୧୬୯
ହରଷ, ଶୋକ, ଭୟ ଆର । ଆର୍ତ୍ତିକି ଦିଏ ଯେ ସଂସାର ॥ ୧୭୦
୫୨ [1]ଷଡ଼ବର୍ଗକୁ ଜିଣି ନାହିଁ । ଅଜ୍ଞାନୀ ଅଟଇ ଏ ଦେହୀ ॥ ୧୭୧
ଇଚ୍ଛା ନ କଲେହେଁ ମନରେ । ଏ ଲିଙ୍ଗଶରୀର ବଳରେ ॥ ୧୭୨
ଏହାକୁ ନାନା କର୍ମମାନ । କରାଏ ହୋଇ ସାବଧାନ ॥ ୧୭୩
କର୍ମେ ଆତ୍ମାକୁ ଆଚ୍ଛାଦିଣ । ମୋହକୁ ଲଭଇ ଏ ପୁଣ ॥ ୧୭୪

---
୧. ଷଡ଼ବର୍ଗ = ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ ।

ଯେସନେ କୋଷକାର କୀଟ । କର୍ମରେ ଲଭଇ ସଂକଟ ।। ୧୭୫
{ସେ କୋଷୁଁ ନିର୍ଗମଉପାୟ । ନ ଜାଣି ମରେ ଅସହାୟ ।। ୧}
୫୩ ସଂସାରେ କ୍ଷଣମାତ୍ରକ ହିଁ । କର୍ମ ନ କରି କେହି ନାହିଁ ।। ୧୭୬
ସଂସ୍କାରୁଁ ପୂର୍ବ କର୍ମଙ୍କର । ଯେ ରାଗ ଆଦି ହୋଏ ତାର ।। ୧୭୭
ଅବଶ ହୋଇ ତାହାଙ୍କରେ । କର୍ମମାନଙ୍କୁ ଏ ଆଚରେ ।। ୧୭୮
୫୪ ନିଜ ଅଦୃଷ୍ଟ ଅଟେ ଯେହି । ତାହାକୁ ହେତୁ କରି ପାଇ ।। ୧୭୯
ବଳିଷ୍ଠ ନିଜ ବାସନାରେ । ମାତାପିତାଙ୍କ ସଦୃଶରେ ।। ୧୮୦
ଶରୀର ହୁଅଇ ଜନମ । ଯେ ସ୍ଥୂଳ ଅଟଇ ଯେ ସୂକ୍ଷ୍ମ ।। ୧୮୧
୫୫ ଏ ରୂପେ ଜୀବର ସଂଭୂତ । ପ୍ରକୃତି-ସଙ୍ଗୁଁ ବିପରୀତ ।। ୧୮୨
ପରମେଶ୍ୱରଭଜନରେ । ସେ ଲୀନ ହୋଏ ନିକଟରେ[1] ।। ୧୮୩
୫୬ ଏ ଅଜାମିଳ ସୁଚରିତ । ଆଚାର-ଗୁଣର ନିକେତ ।। ୧୮୪
ଶାସ୍ତ୍ରରେ ଅଟଇ ସଂପନ୍ନ । କରିଛି ନାନା ବ୍ରତମାନ ।। ୧୮୫
ତପସ୍ୟାକ୍ଲେଶ ଅଛି ସହି । କୋମଳ, ସତ୍ୟବାକ୍ୟ କହି ।। ୧୮୬
ମନ୍ତ୍ରମାନଙ୍କୁ ଅଛି ଜାଣି । ଏଣୁ ଏ ଅଟେ ଶୁଦ୍ଧ ପ୍ରାଣୀ ।। ୧୮୭
୫୭ ଗୁରୁ-ଅତିଥି-ବୈଶ୍ୱାନର । ବୃଦ୍ଧଙ୍କୁ ସେବେ ନିରନ୍ତର ।। ୧୮୮
ଏହାର ନାହିଁ ଅହଂକାର । ମିତ୍ର ସକଳ ପ୍ରାଣୀଙ୍କର ।। ୧୮୯
ଏ ସାଧୁ ଅଳ୍ପ ବାକ୍ୟ କହେ । ପ୍ରାଣୀରେ ଅସୂୟା ନ ବହେ ।। ୧୯୦
୫୮ କରନ୍ତେ ଏ ପିତାବଚନ । ଏକ ସମୟେ ଗଲା ବନ ।। ୧୯୧
ସେ ବନୁଁ ଫଳପୁଷ୍ପମାନ । ସମିଧ କୁଶ ଯେବା ଆନ ।। ୧୯୨
ସେମାନ ଗ୍ରହଣ କରିଣ । ତହିଁରୁ ଲେଉଟିଲା ପୁଣ ।। ୧୯୩
୫୯ ପୈଷ୍ଟୀ ମଦିରା[2] କରି ପାନ । ଯେ ମଦେ ଘୂର୍ଣ୍ଣିତ ଲୋଚନ ।। ୧୯୪
ଏମନ୍ତ ଉପଭୋଗନାରୀ[3] । ସଙ୍ଗରେ ବଶ ହୋଇ କରି ।। ୧୯୫
କେହୁଣୀ କାମୀ ଶୂଦ୍ରଜନ । ତାକୁ ଏ କଲା ଦରଶନ ।। ୧୯୬
୬୦ ମଦରେ ହୋଇଛି ଯେ ମତ୍ତ । ଯା' ନୀବୀ ହୋଇଛି ସ୍ଖଳିତ ।। ୧୯୭
କ୍ରୀଡ଼ା କରନ୍ତେ ଏହା ସଙ୍ଗେ । ଗାଉଛି, ହସୁଛି ସେ ରଙ୍ଗେ ।। ୧୯୮
ତାର ନିକଟେ ଲଜ୍ଜା ନାହିଁ । ଆଚାରଭ୍ରଷ୍ଟ ସେ ଅଟଇ ।। ୧୯୯
୬୧ କାମକୁ ଯେ କରେ ଦୀପନ । ହରିଦ୍ରାଚନ୍ଦନାଦିମାନ ।। ୨୦୦
ଯେବଣ ଭୁଜେ ସେ ଲେପିତ । ତେଣେ ସେ ନାରୀ ଆଲିଙ୍ଗିତ ।। ୨୦୧
ତାହାକୁ ଦେଖି ମୋହ ହେଲା । କାମବଶକୁ ବେଗେ ଗଲା ।। ୨୦୨
୬୨ ଯେତେକ ସତ୍ତ୍ୱ[4] ଥିଲା ତାର । ଶାସ୍ତ୍ରୀୟ ଜ୍ଞାନ ଯେ ଆବର ।। ୨୦୩

---

୧. ଅଚିରେ । ୨. ପୈଷ୍ଟୀନାମକ ମଦ୍ୟ । ୩. ବେଶ୍ୟା । ୪. ସତ୍ତ୍ୱ = ଧୈର୍ଯ୍ୟ ।

| | | | |
|---|---|---|---|
| | ତେଣେ ସ୍ତମ୍ଭନ୍ତେହେଁ ଆମ୍ଭାକୁ | ମଦନ କମ୍ପାଉଛି ଯାକୁ | ॥ ୨୦୪ |
| | ସେ ମାନସକୁ ସମାଧାନ | କରି ତ ନୋହିଲା ଭାଜନ | ॥ ୨୦୫ |
| ୬୩ | ତାର ଦରଶନୁଁ ସଂଜାତ | ମଦନବ୍ୟାଜଗ୍ରହେ ଗ୍ରସ୍ତ | ॥ ୨୦୬ |
| | ଏଣୁ ହୋଇଲା ବିଚେତନ | ଘେନନ୍ତେ ସେ ନାରୀକି ମନ | ॥ ୨୦୭ |
| | ଯେ ଥିଲା ଧର୍ମ ଆପଣାର | ତହିଁରୁ ହୋଇଲା ବାହାର | ॥ ୨୦୮ |
| ୬୪ | ପିତାର ଯେତେ ଦ୍ରବ୍ୟମାନ | ଯେ ଗ୍ରାମ୍ୟ ଦିବ୍ୟ ଦ୍ରବ୍ୟ ଆନ | ॥ ୨୦୯ |
| | ତେଣେ ତୋଷିଲା ତାର ମନ | ଯେମନ୍ତେ ହୋଏ ସେ ପ୍ରସନ୍ନ | ॥ ୨୧୦ |
| ୬୫ | ଉତ୍ତମ ବିପ୍ରକୁଳେ ଜାତ | ବୟସ ନୁହଇ ବହୁତ | ॥ ୨୧୧ |
| | ସେ ଭାର୍ଯ୍ୟା ବିଭା ହୋଇଥିଲା | ପାପିଷ୍ଠ ବେଗେ ତା' ଛାଡ଼ିଲା | ॥ ୨୧୨ |
| | ନୟନ-କୋଣେ କୁଳଟାର | ବିଦ୍ଧ ହୋଇଲା ମତି ତାର | ॥ ୨୧୩ |
| ୬୬ | ନ୍ୟାୟରେ ଅଥବା ଅନ୍ୟାୟେ | ଯହିଁ ତହିଁରୁ ଧନ ପାଏ | ॥ ୨୧୪ |
| | ଏ ଭାର୍ଯ୍ୟାକୁଟୁମ୍ବ ପୋଷଣ | କଲା ଏ ମନ୍ଦବୁଦ୍ଧି ପୁଣ | ॥ ୨୧୫ |
| ୬୭ | ଯେଣୁ ଏ ଶାସ୍ତ୍ର ଉଲ୍ଲଂଘିଣ | କଲା ସ୍ୱଇଚ୍ଛା-ଆଚରଣ | ॥ ୨୧୬ |
| | ମହତ ଜନେ ନିନ୍ଦା ପାଇ | ବହୁତ କାଳ ଅଛି ଜୀଇ | ॥ ୨୧୭ |
| | କଳୁଷ ଆୟୁଷ ଏହାର | ଅଶୁଦ୍ଧ ଅଟେ କଳେବର | ॥ ୨୧୮ |
| | ସେ ଭାର୍ଯ୍ୟା-ଅନ୍ନ ମଳସମ | ତାହା ଭୁଞ୍ଜଇ ଏ ଅଧମ | ॥ ୨୧୯ |
| ୬୮ | କଳୁଷ ଅଛି ଏ ଆଚରି | ପ୍ରାୟଶ୍ଚିତ୍ତ ହିଁ ନାହିଁ କରି | ॥ ୨୨୦ |
| | ଦଣ୍ଡପାଣିର ନିକଟକୁ | ଏ ଘେନି ନେଉଛୁଁ ଏହାକୁ | ॥ ୨୨୧ |
| | ଯହିଁରେ ଦଣ୍ଡକୁ ଲଭିଣ | ଶୁଦ୍ଧ ହୋଇବ ତତକ୍ଷଣ | ॥ ୨୨୨ |
| | ଶ୍ରୀକୃଷ୍ଣଚରଣପଙ୍କଜ | ଚିନ୍ତିଣ ଦୀନବଂଧୁ ଦ୍ୱିଜ | ॥ ୨୨୩ |
| | ଷଷ୍ଠ ସ୍କନ୍ଧକୁ ଗୀତେ ଭଣେ | ସନ୍ତୋଷ ସାଧୁଜନେ ତେଣେ | ॥ ୨୨୪ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଅଜାମିଳୋପାଖ୍ୟାନେ
ଶ୍ରୀବିଷ୍ଣୁୟମପୁରୁଷସଂବାଦେ ପ୍ରଥମୋଽଧ୍ୟାୟଃ ॥

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ବୈଷ୍ଣବୈର୍ଯାମ୍ୟାନ୍ ନାମମାହାତ୍ମ୍ୟମଦ୍ଭୁତମ୍ ।
ଶ୍ରାବୟିତ୍ୱା ଦ୍ୱିଜୋ ବିଷ୍ଣୁଲୋକଂ ନୀତ ଇତୀର୍ଯ୍ୟତେ ॥ ୧

ଶ୍ରୀବାଦରାୟଣିରୁବାଚ

| | | | |
|---|---|---|---|
| ୧ | ଏ ରୂପେ ବିଷ୍ଣୁଦୂତେ ପୁଣି | ଯମଦୂତଙ୍କ ବାକ୍ୟ ଶୁଣି | ॥ ୧ |
| | ତାହାଙ୍କୁ କଲେ ସଂଭାଷଣ | ନ୍ୟାୟେ ସେ ଅଟନ୍ତି ନିପୁଣ | ॥ ୨ |

## ଶ୍ରୀବିଷ୍ଣୁଦୂତା ଊଚୁଃ

୨ ଆଶ୍ଚର୍ଯ୍ୟ ଅଟେ କଷ୍ଟ ଏହି । ଧର୍ମକୁ ଜାଣିଛନ୍ତି ଯେହି ।।
ତାହାଙ୍କ ସଭା ଯେବା ଅଛି । ତାହାକୁ ଅଧର୍ମ ଛୁଇଁଛି ।।
ଅପାପୀ ଅଦଣ୍ଡ୍ୟ ଯେ ନର । ଯେଉଁ ସଭାରେ ତାଙ୍କ ଠାର ।।
ବିଅର୍ଥ ଦଣ୍ଡ ଯେ ଦିଅନ୍ତି । ଧର୍ମଜ୍ଞ ହୋଇଣ ଥାଆନ୍ତି ।।
୩ ପ୍ରଜାମାନଙ୍କର ଯେ ପିତା । ସାଧୁସମ ଯେ ଶିକ୍ଷାଦାତା ।।
ଯଦି ସେମାନଙ୍କର ଠାଇଁ । ବିଷମ[୧] ଭାବ ସମ୍ଭବଇ ।।
ଯେ ପ୍ରାଣୀ ସଂସାରେ ଅଛନ୍ତି । କାହାକୁ ଶରଣ ଯାଆନ୍ତି ।।
୪ ମହତ ଜନ ଯା' ଆଚରେ । ଇତର ଲୋକ ତାହା କରେ ।।
ସେ ଯାହା ପ୍ରମାଣ କରଇ । ଲୋକ ତା' ଅନୁବର୍ତ୍ତୀ ଥାଇ ।।
୫ ଯାହାର କ୍ରୋଡ଼େ ଦେଇ ଶିର । ସୁଖରେ ଶୋଇଅଛି ନର ।।
ଧର୍ମ ଅଧର୍ମ ଅବା ସ୍ୱୟେଂ । ସେ ନ ଜାଣଇଁ ପଶୁପ୍ରାଏ ।।
୬ ଯେବେ କରୁଣାବନ୍ତ ହୋଇ । ପ୍ରାଣୀଙ୍କ ବିଶ୍ୱାସ ଅଟଇ ।।
ଯେ ଆତ୍ମା ଅର୍ପଣ କରିଛି । ମିତ୍ରଭାବକୁ ଆଚରିଛି ।।
ଯାହାର ଚେତନା ହିଁ ନାହିଁ । ଏମନ୍ତ ଲୋକଙ୍କୁ କିମ୍ପାଇଁ ।।
ଦ୍ରୋହ କରିବାପାଇଁ ମନ । ବାଞ୍ଛା କରୁଛି ସେ ଶମନ ।।
୭ ଏ କୋଟିଜନ୍ମେ ଯେ ଦୁରିତ । କଲା ତାଙ୍କୁ ହିଁ ପ୍ରାୟଶ୍ଚିତ୍ତ ।।
ଯେଣୁ ବିବଶ ହୋଇକରି । ହରିର ନାମକୁ ଉଚ୍ଚାରି ।।
[୨]ମୋକ୍ଷକୁ ଅଟଇ କାରଣ । ଯେବଣ ହରିନାମ ପୁଣ ।।
୮ ଏ ପାପବନ୍ତ ମନୁଷ୍ୟର । ଏତେକେ ପାପ ଗଲା ଦୂର ।।
ଯେଣୁ "ହେ ନାରାୟଣ ! ଆସ" । [୩]ଏ ରୂପେ ଯେ ନାମ-ଆଭାସ ।।

---

୧. ବିଷମଭାବ = ଅଦଣ୍ଡ୍ୟଦଣ୍ଡନ ।

୨. ସକୃଦୁଚ୍ଚରିତଂ ଯେନ ହରିରିତ୍ୟକ୍ଷରଦ୍ୱୟମ୍ ।
ବଦ୍ଧଃ ପରିକରସ୍ତେନ ମୋକ୍ଷାୟ ଗମନଂ ପ୍ରତି ।। (ସ୍ମୃତିଃ)

୩. ନାମମାହାତ୍ମ୍ୟେ ସ୍ୱାମିଚରଣୋଦ୍ଧୃତଶ୍ଳୋକାଃ, ଯଥା :

(କ) ନାମ୍ନଃ କର୍ମସାଦ୍‌ଗୁଣ୍ୟକରତ୍ୱମ୍ :-
"ଯସ୍ୟ ସ୍ମୃତ୍ୟା ଚ ନାମୋକ୍ତ୍ୟା ତପୋଯଜ୍ଞକ୍ରିୟାଦିଷୁ ।
ନ୍ୟୂନଂ ସଂପୂର୍ଣ୍ଣତାଂ ଯାତି ସଦ୍ୟୋ ବନ୍ଦେ ତମଚ୍ୟୁତମ୍ ।।" ୧

(ଖ) ପ୍ରାୟଶ୍ଚିତ୍ତାର୍ଥତ୍ୱମ୍ :
"ଅବଶେନାପି ଯନ୍ନାମ୍ନି କୀର୍ତ୍ତିତେ ସର୍ବପାତକୈଃ ।
ପୁମାନ୍ ବିମୁଚ୍ୟତେ ସଦ୍ୟଃ ସିଂହତ୍ରସ୍ତୈର୍ମୃଗୈରିବ ।।" ୨

(ଗ) ତପୋଦାନାଦିସର୍ବଧର୍ମାଧିକତ୍ୱମ୍ :
"ମର୍ତ୍ତ୍ୟା ଅମର୍ତ୍ତ୍ୟସ୍ୟ ତେ ଭୂରି ନାମ ମନାମହେ ବିପ୍ରାସୋ ଜାତବେଦସଃ ।
ଆଽସ୍ୟ ଜାନନ୍ତୋ ନାମ ଚିଦ୍ ବିବିକ୍ତନ ।।" (ଶ୍ରୁତିଃ)

| | | | | |
|---|---|---|---|---|
| | ଅକ୍ଷର ଚାରିଗୋଟି ଯହିଁ | । ସଂଭ୍ରମେ ଉଚ୍ଚାରିଲା ତାହି | ।। | ୨୩ |
| ୯ | ସୁବର୍ଣ୍ଣସ୍ତେୟ ସୁରାପାନ | । ଯେ ମିତ୍ରଦ୍ରୋହ କରେ ଜନ | ।। | ୨୪ |
| | ବ୍ରାହ୍ମଣବଧ ଯେ କରଇ | । ଗୁରୁଭାର୍ଯ୍ୟାକୁ ଯେ ହରଇ | ।। | ୨୫ |
| | ସ୍ତ୍ରୀ, ରାଜା, ପିତା, ଗାଈ ମାରେ | । ଇତର ପାପୀ ଯେ ସଂସାରେ | ।। | ୨୬ |
| ୧୦ | ସମସ୍ତ ପାପୀମାନଙ୍କର | । ଏ ପ୍ରାୟଶ୍ଚିତ୍ତ ଅଟେ ସାର | ।। | ୨୭ |
| | ବିଷ୍ଣୁର ନାମ ଯେ ଉଚ୍ଚାରେ | । ଯହୁଁ ଏ ମତି ବିଷ୍ଣୁଠାରେ | ।। | ୨୮ |
| | { ଏ ଯେଣୁ ଧରେ ମୋର ନାମ | । ଏଣୁ ଏ ମୋର ନିଜ ଜନ | ।। | ୧ } |
| | { ଏହାର କାହୁଁ ଭୟ ନାହିଁ | । ମୁଁ ଏହା' ରକ୍ଷକ ଅଟଇ | ।। | ୨ } |
| ୧୧ | ଯେ ପ୍ରାୟଶ୍ଚିତ୍ତ ବ୍ରତ ଆଦି | । କହି ଅଛନ୍ତି ବ୍ରହ୍ମବାଦୀ | ।। | ୨୯ |
| | ସେ ବ୍ରତ ଆଦିରେ ପାବନ | । ନୋହେ ସେ ରୂପେ ପାପୀ ଜନ | ।। | ୩୦ |
| | ହରିର ନାମପଦମାନ | । କୀର୍ତ୍ତନ କରନ୍ତେ ଯେସନ | ।। | ୩୧ |
| | ସେ ନାମପଦ-ଉଚ୍ଚାରଣ | । କହେ ଉତ୍ତମଶ୍ଳୋକଗୁଣ | ।। | ୩୨ |
| ୧୨ | ସେ ପ୍ରାୟଶ୍ଚିତ୍ତ ଅତିଶୟେ | । କଲୁଷବିନାଶନ ନୋହେ | ।। | ୩୩ |
| | କଲେହେଁ ଯେଉଁ ପ୍ରାୟଶ୍ଚିତ୍ତ | । ଅସତମାର୍ଗେ ଯେବେ ଚିତ୍ତ | ।। | ୩୪ |
| | ଗମନ କରେ ମନୁଷ୍ୟର | । ସେ ଘେନି କର୍ମର ସଂହାର | ।। | ୩୫ |
| | ବାଞ୍ଛା କରନ୍ତି ଯେଉଁମାନେ | । ସେମାନଙ୍କର ଏ ଭୁବନେ | ।। | ୩୬ |
| | ହରିର ଗୁଣ-ଅନୁବାଦ | । କରଇ ଚିତ୍ତକୁ ବିଶଦ | ।। | ୩୭ |
| ୧୩ | ଏ ଘେନି କରି ଅମାର୍ଗରେ | । ଏହାକୁ ନ ନିଅ ବଳରେ | ।। | ୩୮ |
| | ଯେ ଅଛି ଅଶେଷ ଦୁରିତ | । ତାକୁ କଲା ଏ ପ୍ରାୟଶ୍ଚିତ୍ତ | ।। | ୩୯ |
| | ହରିନାମକୁ ଏ ଗ୍ରହଣ | । କଲା ମରନ୍ତେ ଯେଣୁ ପୁଣ | ।। | ୪୦ |
| ୧୪ | ପୁତ୍ରଆଦିରେ ସଂକେତିତ | । ଅଥବା ପରିହାସକୃତ | ।। | ୪୧ |
| | ଗୀତ-ଆଳାପ ପୂରଣରେ | । କଥିତ ଅଟେ ଯେ ହେଳାରେ | ।। | ୪୨ |
| | ବୈକୁଣ୍ଠନାମ-ଉଚ୍ଚାରଣ | । ଅଶେଷଦୁରିତହରଣ | ।। | ୪୩ |
| | ଏମନ୍ତ ବୋଲି ସାଧୁଜନ | । କହିଣ ଅଛନ୍ତି ବଚନ | ।। | ୪୪ |
| ୧୫ | ଉଚ୍ଚସ୍ଥାନରୁ ଯେ ପଡ଼ଇ | । ଚାଲନ୍ତେ ଚରଣ ହୁଡ଼ଇ | ।। | ୪୫ |
| | ଯେ ଭଗ୍ନଗାତ୍ର ହୋଇଥାଇ | । ଯାହାକୁ ଉରଗ ଦଂଶଇ | ।। | ୪୬ |
| | ଜ୍ୱରରେ ହୁଅଇ ତପତ | । ଦଣ୍ଡରେ ହୁଅଇ ଆହତ | ।। | ୪୭ |
| | ଅବଶେ ହରି ବୋଲି ଭଣି | । ଯାତନାଯୋଗ୍ୟ ନୋହେ ପ୍ରାଣୀ | ।। | ୪୮ |
| ୧୬ | ଯେ ଗୁରୁ ଲଘୁ ଯେ ଦୁରିତ | । ତହିଁକି ଅଟଇ ଉଚିତ | ।। | ୪୯ |
| | [୧]ଯେ ଗୁରୁ ଲଘୁ ପ୍ରାୟଶ୍ଚିତ୍ତ | । ଜାଣି ପଣ୍ଡିତେ କଲେ ଉକ୍ତ | ।। | ୫୦ |
| ୧୭ | ସେ ତପ ଆଦି ବ୍ରତ ଦାନ | । ଯେ ପ୍ରାୟଶ୍ଚିତ୍ତ ବିଦ୍ୟମାନ | ।। | ୫୧ |

୧. ହରିନାମର ଏହି ବ୍ୟବସ୍ଥା ନାହିଁ । କାରଣ ''ବିଷ୍ଣୋଃ ସ୍ମରଣମାତ୍ରେଣ ମୁଚ୍ୟତେ ସର୍ବପାତକୈଃ'' ଆଦି ଉକ୍ତି ବିଦ୍ୟମାନ । (ସ୍ୱାମୀ)

ତେଣେ ସେ ପାପ ଯାନ୍ତି କ୍ଷୟ । ସେ ପାପକର୍ତ୍ତାର ହୃଦୟ ।। ୫୨
ହୋଇଛି ଅଧର୍ମରୁ ଜାତ । ସେ ପ୍ରାୟଶ୍ଚିତ୍ତେ ନୋହେ ପୂତ ।। ୫୩
ଈଶ୍ୱରଚରଣ ସେବାରେ । ସେ ପୂତ ହୁଅଇ ସଂସାରେ ।। ୫୪
୧୮ ଜ୍ଞାନେ ଅଜ୍ଞାନେ ଅବା ହରି । ନାମକୀର୍ତ୍ତନ ଯେବେ କରି ।। ୫୫
ପୁରୁଷଙ୍କର ପାପ ଦହେ । [1]କାଷ୍ଠକୁ ଅନଳ ପରାଏ ।। ୫୬
୧୯ ଅତ୍ୟନ୍ତ ବୀର୍ଯ୍ୟମନ୍ତ ହୋଇ । ଯେବଣ ଅଉଷଧି ଥାଇ ।। ୫୭
ତାହାକୁ ହୋଇ ଶ୍ରଦ୍ଧାହୀନ । ଭକ୍ଷଣ କରେ ଯେବେ ଜନ ।। ୫୮
ଗୁଣକୁ ସେହୁ ଔଷଧର । ନ ଜାଣି ଥାଇ ଯେଉଁ ନର ।। ୫୯
କରେ ତାହାକୁ ନିଜ ଗୁଣ । ସେରୂପେ ନାମମନ୍ତ୍ର ପୁଣ ।। ୬୦
ଗୁଣ ନ ଜାଣିଲା ଲୋକରି । ନିଜ ଗୁଣକୁ ଥାଏ କରି ।। ୬୧
{ ବସ୍ତୁଶକତି ଶ୍ରଦ୍ଧା ଆଦି । ଅପେକ୍ଷା ନ କରେ ଏ ସିଦ୍ଧି ।। ୧ }

ଶ୍ରୀଶୁକ ଉବାଚ

୨୦ ହେ ନୃପ ! ଏମନ୍ତ ପ୍ରକାରେ । ସେ ବିଷ୍ଣୁଦୂତେ ସେ ସ୍ଥାନରେ ।। ୬୨
ଯେ ଭାଗବତ ଧର୍ମ ତାକୁ । ନିର୍ଣ୍ଣୟ କରି ସେ ବିପ୍ରକୁ ।। ୬୩
ଯମପାଶରୁ ଫିଟାଇଣ । ମୃତ୍ୟୁରୁ କଲେକ ମୋକ୍ଷଣ ।। ୬୪
୨୧ ଯମଦୂତଙ୍କୁ ବିଷ୍ଣୁଦୂତେ । ଏମନ୍ତ ପ୍ରକାରେ କହନ୍ତେ ।। ୬୫
ହେ ରିପୁଦମନ ! ସେ ପୁଣ । ଯମନିକଟକୁ ଯାଇଣ ।। ୬୬
ଏଠାରେ ଯେତେକ ବୃତ୍ତାନ୍ତ । ସକଳ କଲେ ନିବେଦିତ ।। ୬୭
୨୨ ବ୍ରାହ୍ମଣ ପାଶୁଁ ମୁକ୍ତ ହେଲା । ନିର୍ଭୟେ ସ୍ୱଭାବକୁ ଗଲା ।। ୬୮
ବିଷ୍ଣୁଦୂତଙ୍କୁ ନମସ୍କାର । କଲା ଶିରରେ ଆପଣାର ।। ୬୯
ଦରଶନୁଁ ସେମାନଙ୍କର । ଉତ୍ସବ ହୋଇଛି ତାହାର ।। ୭୦
୨୩ ସେ ବିପ୍ର କହିବାକୁ ମନେ । ବାଞ୍ଛନ୍ତେ, ବିଷ୍ଣୁଦୂତମାନେ ।। ୭୧
ହେ ନୃପ ! ଚାହାନ୍ତେ ତାହାର । ବେଗେ ସେ ହୋଇଲେ ଅନ୍ତର ।। ୭୨
୨୪ ଯେ ଧର୍ମ ଯମଦୂତଙ୍କର । ବେଦୋକ୍ତ ତ୍ରିଗୁଣମନ୍ଦିର ।। ୭୩
ଈଶ୍ୱରକଥିତ ନିର୍ଗୁଣ । ବିଷ୍ଣୁଦୂତଙ୍କ ଧର୍ମ ପୁଣ ।। ୭୪
ସେ ଅଜାମିଳ ତା' କର୍ଣ୍ଣରେ । ଶ୍ରବଣ କରି ତଦନ୍ତରେ ।। ୭୫
୨୫ ମାହାତ୍ମ୍ୟଶ୍ରବଣୁଁ ହରିର । ଭକ୍ତି ଲଭିଲା ହରିଠାର ।। ୭୬
ଚିନ୍ତା କରନ୍ତେ ନିଜ ପାପ । ହୋଇଲା ବଡ଼ ଅନୁତାପ ।। ୭୭

---

୧. ଅଜ୍ଞାନରେ ମଧ୍ୟ ବାଳକ କାଷ୍ଠକୁ ଅଗ୍ନି ଫିଙ୍ଗିଲେ ସେ ଯେପରି ତାହାକୁ ଦହନ କରେ ସେହିପରି । (ସ୍ୱାମୀ)

ହରିର୍ହରତି ପାପାନି ଦୁଷ୍ଟଚିତ୍ତୈରପି ସ୍ମୃତଃ ।
ଅନିଚ୍ଛୟାପି ସଂସ୍ପୃଷ୍ଟୋ ଦହତ୍ୟେବ ହି ପାବକଃ ।। ୧ (ବିଷ୍ଣୁଧର୍ମେ)

୨୬ ଜିତ ନୋହିଲା ଆତ୍ମା ମୋର । ସେ ଘେନି କଷ୍ଟ ହେଲା ଘୋର ॥ ୭୮
ଯେଣୁ ମୁଁ ବୃଷଳୀଗର୍ଭରେ । ଜନ୍ମିଲି ପୁତ୍ରସ୍ୱରୂପରେ ॥ ୭୯
ସେ କାରଣରୁ ବିପ୍ରଜାତି । ବିନାଶ କଲି ମୁଁ ତଡ଼ତି[1] ॥ ୮୦
୨୭ ମୁଁ କୁଳ-କଜ୍ଜଳ-ଆକାର । ମୁଁ ଦୋଷକର୍ତ୍ତା ଦୁରାଚାର ॥ ୮୧
ସାଧୁରେ ନିନ୍ଦିତ ଜଗତେ । ଏ ଘେନି ଧିକ ହେଉ ମୋତେ ॥ ୮୨
ସତୀ ବାଳାକୁ ଯେ ଛାଡ଼ିଲି । ମଦ୍ୟପୀ, ଅସତୀକି ଗଲି ॥ ୮୩
୨୮ ବୃଦ୍ଧ, ଅନାଥ, ତାପବନ୍ତ[2] । ଇତର ବନ୍ଧୁରେ ବର୍ଜିତ ॥ ୮୪
ଏମନ୍ତ ପିତାମାତା ଦୁଇ । ତାହାଙ୍କୁ ନୀଚପ୍ରାଏ ହୋଇ ॥ ୮୫
ତକ୍ଷଣେ ପରିତ୍ୟାଗ କଲି । ଏଣୁ ମୁଁ ଅକୃତଜ୍ଞ ହେଲି ॥ ୮୬
୨୯ ଯେ ଅତିଦାରୁଣ ନରକ । ଯହିଁ ଧର୍ମଘ୍ନ କାମୀ ଲୋକ ॥ ୮୭
ଯମଯାତନା ପାନ୍ତି ଯାଇଁ । ନିଶ୍ଚୟେ ପଡ଼ିବି ମୁଁ ତହିଁ ॥ ୮୮
୩୦ ସଂଶୟ ହେଉଅଛି ମନ । କି ଅବା ଅଟେ ଏ ସ୍ୱପନ ॥ ୮୯
ଚିଆଁଇ ଥାଇ ଏହିଠାରେ । ଦେଖିଲି ଅଦ୍ଭୁତ ରୂପରେ ॥ ୯୦
ମୋତେ ଯେ ପାଶହସ୍ତ ହୋଇ । ଓଟାରିଲେ ସେ ଗଲେ କାହିଁ ॥ ୯୧
୩୧ ମୋତେ ବାନ୍ଧିଣ ଦୃଢ଼ ପାଶେ । ନିଅନ୍ତେ ଭୂମି-ଅଧୋଦେଶେ ॥ ୯୨
ଏଥୁ ଉତ୍ତାରେ ଯେହୁ ପୁଣ । ସୁନ୍ଦର ସିଦ୍ଧ ଚାରି ଜଣ ॥ ୯୩
ମୋତେ ବନ୍ଧନୁଁ ମୁକ୍ତ କଲେ । ସେମାନେ କେଣିକି ବା ଗଲେ ॥ ୯୪
୩୨ ତଥାପି ଦୁର୍ଭାଗା ମୁଁ ମୋର । ସେ ସୁରଶ୍ରେଷ୍ଠମାନଙ୍କର ॥ ୯୫
ଦର୍ଶନନିମିତ୍ତେ ବହୁତ । ପୂର୍ବରେ ମଙ୍ଗଳ ସମ୍ଭୃତ ॥ ୯୬
ଯେବଣ ଦରଶନେ ମନ । ପ୍ରାଣୀର ହୁଅଇ ପ୍ରସନ୍ନ ॥ ୯୭
୩୩ ଏକଥା ଅଟେ ଯେବେ ଆନ । ମରଣ ଲଭୁଛି ଯେ ଜନ ॥ ୯୮
ଶଉଚ କଥା ଯାର ନାହିଁ । ବୃଷଳୀପତି ଯେ ଅଟଇ ॥ ୯୯
ତା' ଜିହ୍ୱା ବଇକୁଣ୍ଠନାମ । ବୋଲିବାକୁ କି ହୋଏ କ୍ଷମ ॥ ୧୦୦
ଯେବଣ ନାମ ଏ ଜଗତ । କରଇ ହାଦେ ବଶୀକୃତ ॥ ୧୦୧
୩୪ ମୁଁ କାହିଁ ପାପୀ, ଧୂର୍ତ୍ତଜନ । ବ୍ରହ୍ମତ୍ୱନାଶୀ, ଲଜ୍ଜାହୀନ ॥ ୧୦୨
କାହିଁ ମଙ୍ଗଳ ନାରାୟଣ । ଏ ରୂପେ ବିଷ୍ଣୁନାମ ପୁଣ ॥ ୧୦୩
୩୫ ମନ, ଇନ୍ଦ୍ରିୟଗଣ, ବାତ । ଏହାଙ୍କୁ କରିଣ ଆୟତ୍ତ ॥ ୧୦୪
ଯତ୍ନ କରିବି ସେ ପ୍ରକାରେ । ଯେମନ୍ତ ପୁଣ ଆଉ ବାରେ ॥ ୧୦୫
ନିମଗ୍ନ ନ କରିବି ଘୋର । ନରକେ ଆତ୍ମାକୁ ମୋହର ॥ ୧୦୬
୩୬ ଅବିଦ୍ୟାକାମକର୍ମୁଁ ଜାତ । ଯେ ବନ୍ଧ ଛାଡ଼ି ତା' ତୁରିତ ॥ ୧୦୭
ପ୍ରୀତି କରିବି ସର୍ବଭୂତେ । ଶାନ୍ତି ଲଭିବି ନିଜ ଚିତ୍ତେ ॥ ୧୦୮
କରୁଣ, ମିତ୍ରଭାବଯୁତ । ହୋଇବି ପୁଣ ଆତ୍ମାବନ୍ତ ॥ ୧୦୯

---

୧. ତଡ଼ତି = ଶୀଘ୍ର ('ଝଟିତି' ଶବ୍ଦରୁ ଜାତ) । ୨. ତପୋବନ୍ତ ।

୩୭ ସ୍ତ୍ରୀମୟୀ-ଆତ୍ମମାୟା-ଗ୍ରସ୍ତ । ଆତ୍ମାକୁ କରିବି ମୁକତ ॥
କ୍ରୀଡ଼ାମୃଗ[1]କୁ ଘେନି ଜନ । ଯେହ୍ନେ ଖେଳଇ ଅନୁଦିନ ॥
ସେ ରୂପେ କଲା ସ୍ତିରୀ ମୋତେ । ଏଣୁ ମୁଁ ଅଧମ ଜଗତେ ॥
୩୮ 'ମୁଁ ମୋର' ବୋଲି ଦେହାଦିରେ । ଯେ ମତି ତାହା ଛାଡ଼ି ଦୂରେ ॥
ଦ୍ରବ୍ୟରେ ମିଥ୍ୟାମତି କରି । ନାମକୀର୍ତ୍ତନାଦି ଆଚରି ॥
ଯେ ଶୁଦ୍ଧ ହୋଇଥିବ ମନ । କୃଷ୍ଣେ ତା' କରିବି ନିଧାନ ॥
୩୯ କ୍ଷଣସଙ୍ଗମେ ସାଧୁଠାରେ । ଜାତ-ନିର୍ବେଦ ଏ ପ୍ରକାରେ ॥
ପୁତ୍ରାଦି ସ୍ନେହ କଲା ଦୂର । ମିଳିଲା ଯାଇଁ ଗଙ୍ଗାଦ୍ୱାର ॥
୪୦ ତହିଁ ଦେବସ୍ଥାନେ ରହିଲା । ଯୋଗମାର୍ଗକୁ ଆଶ୍ରେ କଲା ॥
ଇନ୍ଦ୍ରିୟଗଣ ଯେ ବାହ୍ୟରେ । ଭ୍ରମନ୍ତି, ତାହାଙ୍କୁ ଅନ୍ତରେ ॥
ନିବେଶ କରି, ନିଜ ମନ । ଆତ୍ମାରେ କଲା ନିଯୋଜନ ॥
୪୧ ଦେହ, ଇନ୍ଦ୍ରିୟାଦିରୁ ମନ । ଏକାଗ୍ର ଚିତ୍ତେ କରି ଭିନ୍ନ ॥
ବ୍ରହ୍ମରେ କଲା ତାହା ଯୁକ୍ତ । ଯେ ବ୍ରହ୍ମ ବିଷ୍ଣୁଧାମ ଖ୍ୟାତ ॥
ଯେ ଅନୁଭବରୂପ ହୋଇ । ଜଗତେ ବିଖ୍ୟାତ ଅଟଇ ॥
୪୨ ସେ ବିଷ୍ଣୁଧାମରେ ନିଶ୍ଚଳ । ମତି ହୋଇଲା ଯେତେବେଳ ॥
ତେବେ ଦେଖିଲା ସେମାନଙ୍କୁ । ପୂର୍ବରେ ଦେଖିଥିଲା ଯାଙ୍କୁ ॥
ସେ ବିଷ୍ଣୁଦୂତଙ୍କୁ ଦେଖିଣ । ଶିରରେ ବନ୍ଦିଲା ବ୍ରାହ୍ମଣ ॥
୪୩ ତାଙ୍କ ଦର୍ଶନ-ଅନନ୍ତର । ଗଙ୍ଗାତୀର୍ଥରେ କଳେବର ॥
ତ୍ୟାଗ କରିଣ ତତକ୍ଷଣ । ଯେ ବିଷ୍ଣୁପାର୍ଶ୍ୱବର୍ତ୍ତୀଗଣ ॥
ସେମାନଙ୍କର ଯେ ଆକାର । ଗ୍ରହଣ କଲା ସେ ପ୍ରକାର ॥
୪୪ ବିଷ୍ଣୁଦୂତଙ୍କ ସଙ୍ଗେ ସେହି । ସୁବର୍ଣ୍ଣବିମାନ ଆରୋହି ॥
ଗମିଲା ଆକାଶମାର୍ଗରେ । ଶ୍ରୀପତି ଅଛନ୍ତି ଯହିଁରେ ॥
୪୫ ଯେ ବିପ୍ର ଅଟଇ ପତିତ । ସକଳ ଧର୍ମ ଯାର ହତ ॥
ଦାସୀର ପତି ଥିଲା ହୋଇ । ନିନ୍ଦିତକର୍ମା ଯେ ଅଟଇ ॥
ତାହାକୁ[2] ଶମନକିଙ୍କରେ । ପକାଉଥିଲେ ନରକରେ ॥
ସ୍ୱଦାରନିୟମାଦି ବ୍ରତ । ଯାହାର ହୋଇଥିଲା ହତ ॥
ହରିର ନାମକୁ ଗ୍ରହଣ । କରନ୍ତେ ଏ ପ୍ରକାରେ ପୁଣ ॥
ସେ ଅଜାମିଳ ତତକ୍ଷଣ । ସଂସାରୁ ଲଭିଲା ମୋକ୍ଷଣ ॥
୪୬ ମୁକ୍ତି ବାଞ୍ଛନ୍ତି ଯେଉଁ ନର । ଏ ବିଷ୍ଣୁ-କୀର୍ତ୍ତନୁଁ ତାଙ୍କର ॥
କର୍ମବନ୍ଧର ବିନାଶନ । ଅଧିକ ହୋଇ ନାହିଁ ଆନ ॥
ଯେବଣ କୀର୍ତ୍ତନୁଁ ମାନସ । କର୍ମମାନଙ୍କେ ନୋହେ ବଶ ॥

---

୧. କ୍ରୀଡ଼ାମୃଗ = ବାନର । ୨. ଯାହାକୁ ।

ଇତର ପ୍ରାୟଶ୍ଚିତ୍ତେ ମନ । ରଜରେ ତମରେ ମଳିନ ॥ ୧୪୧
୪୭ ଅତିଗୁହ୍ୟ ଏ ଇତିହାସ । ସକଳ ପାପ କରେ ନାଶ ॥ ୧୪୨
ଯେ ଏହା ଶ୍ରଦ୍ଧାଯୁତ ହୋଇ । ଶୁଣେ, ଯେ ଭକ୍ତିରେ ପଢ଼ଇ ॥ ୧୪୩
୪୮ ସେହୁ ନ ଯାଇ ନରକକୁ । ଯମର ଦୂତମାନେ ତାକୁ ॥ ୧୪୪
ଦେଖନ୍ତି ନାହିଁ କଦାଚିତ । ଯଦ୍ୟପି ସେ ଅଶୁଭରତ ॥ ୧୪୫
ତଥାପି ବିଷ୍ଣୁଲୋକେ ଯାଇ । ସେ ମର୍ତ୍ତ୍ୟ ଆନନ୍ଦକୁ ପାଇ ॥ ୧୪୬
୪୯ ମରନ୍ତେ ପୁତ୍ର-ଉପଚାରେ । ଘେନନ୍ତେ ହରିନାମ ବାରେ ॥ ୧୪୭
ବିଷ୍ଣୁଲୋକକୁ ଅଜାମିଳ । ଗମନ କଲା ତତକାଳ ॥ ୧୪୮
ଶ୍ରଦ୍ଧାରେ ଗୁଣନ୍ତେ ତା' ପ୍ରାଣୀ । କି ହେବ ସେ କଥା ନ ଜାଣି ॥ ୧୪୯
କୃଷ୍ଣଚରଣସୁଧାରସ । ପାନରେ ଦୀନବନ୍ଧୁ ତୋଷ ॥ ୧୫୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଅଜାମିଳୋପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

ତୃତୀୟେ ତୁ ଯମେନାପି ବୈଷ୍ଣବୋତ୍କର୍ଷବର୍ଣ୍ଣନୈଃ ।
ସାନ୍ତ୍ୱୟିତ୍ୱା ସ୍ୱଦୂତାସ୍ତେ ବୈଷ୍ଣବେ କିଂକରୀକୃତାଃ ॥ ୧

ଶ୍ରୀରାଜୋବାଚ

୧ କହନ୍ତେ ନିଜ ଦୂତମାନେ । ଶ୍ରବଣ କରି ତାହା କର୍ଣ୍ଣେ[୧] ॥ ୧
ବିଷ୍ଣୁର କିଙ୍କରେ ବିହତ । ହୋଇ ଯେ ଥିଲେ ନିଜ ଦୂତ ॥ ୨
ତାଙ୍କୁ କି ବୋଇଲେ ଶମନ । ଯାହା ବଶେ ଏ ସର୍ବଜନ ॥ ୩
୨ ଯମଦେବତା-ଦଣ୍ଡଭଙ୍ଗ । ହୁଅଇ, ଏମନ୍ତ ପ୍ରସଙ୍ଗ ॥ ୪
କାହାରିଠାରୁ ଏକଥା ହିଁ । ହେ ଋଷି ଶୁଣିଲା ନ ଥାଇ ॥ ୫
ସକଳ ଲୋକର ଏ କଥା । ସଂଶୟ ହେଉଛି ସର୍ବଥା ॥ ୬
ତୋ' ବିନୁ ଏ ସଂଶୟ ଆନ । ହେ ମୁନି ! ନ କରେ ଛେଦନ ॥ ୭
ଏ କଥା ଅଟଇ ପ୍ରମାଣ । ଏ ଘେନି କରି ତା' ବଖାଣ ॥ ୮

ଶ୍ରୀଶୁକ ଉବାଚ

୩ ବିଷ୍ଣୁର ଦୂତେ ଯାହାଙ୍କର । ଉଦ୍ୟମ କଲେ ପରିହର[୨] ॥ ୯

୧. ମନେ । ୨. ପରିହର = ପ୍ରତିହତ ।

ସେ ଯମଦୂତେ ଯମ ଆଗେ । ସେ କଥା ଜଣାଇଲେ ବେଗେ ॥ ୧୦
ପତି ଅଟଇ ଆପଣାର । ଯେ ଯମ ସଂଯମନୀଶ୍ୱର ॥ ୧୧

### ଶ୍ରୀଯମଦୂତା ଊଚୁଃ

୪ ତ୍ରିବିଧ କର୍ମ ଯେ କରଇ । ସେ ଫଳବ୍ୟକ୍ତି[1]ହେତୁ ହୋଇ ॥ ୧୨
ହେ ପ୍ରଭୁ ! ଏ ଜୀବଲୋକର । କେତେ ଅଛନ୍ତି ଦଣ୍ଡଧର[2] ॥ ୧୩
୫ ଯେବେ ବହୁତ ଦଣ୍ଡଧର । ହୋଇବେ ଲୋକେ ଶାସ୍ତା ନର ॥ ୧୪
କରନ୍ତେ ବିରୋଧ ତାଙ୍କର । ଯେ ଦୁଃଖ ଯେ ସୁଖ ଆବର ॥ ୧୫
ଏ ଦୁହେଁ କାହାର ହୋଇବେ । ସେ ଯେବେ ବିଘ୍ନ ଆଚରିବେ ॥ ୧୬
ସୁଖ ଦେବାକୁ ବାଞ୍ଛେ ଏକ । ଦୁଃଖକୁ ଦେବାକୁ ଆରେକ ॥ ୧୭
ସେ ଦୁହେଁ ଯେବେ ପରସ୍ପର । କରିବେ ଏକତ୍ୱ ବିଚାର ॥ ୧୮
ସେ ସୁଖ ଦୁଃଖ ବେନି କଥା । କାହାର ନୋହିବ ସର୍ବଥା ॥ ୧୯
୬ ବହୁତ କର୍ମବନ୍ତ ଲୋକ । ଶାସ୍ତା ହିଁ ହୋଇବେ ଅନେକ ॥ ୨୦
ଯେ ଶାସ୍ତା ସମସ୍ତ-ଉପରେ । ମୁଖ୍ୟତ୍ୱ ଅଟଇ[3] ତା' ଠାରେ ॥ ୨୧
ସେ ମୁଖ୍ୟଭାବ ଉପଚାର । ହୁଅଇ ଆନ ଶାସ୍ତାଠାର ॥ ୨୨
ଯେ ଚକ୍ରବର୍ତ୍ତୀ ହୋଇ ଥାଇ । ସେ ମୁଖ୍ୟ ଶାସ୍ତା ଯେହ୍ନେ ହୋଇ ॥ ୨୩
ମଣ୍ଡଳବର୍ତ୍ତୀ ରାଜାଙ୍କର । ସେ ମୁଖ୍ୟଭାବ ଉପଚାର ॥ ୨୪
୭ ଏ ଘେନି ଈଶ୍ୱର ସହିତେ । ଯେତେକ ପ୍ରାଣୀ ଏ ଜଗତେ ॥ ୨୫
ତୁମ୍ଭେ ସେ ଲୋକମାନଙ୍କର । ଈଶ୍ୱର ଶାସ୍ତା ଦଣ୍ଡଧର ॥ ୨୬
ଯେ ଶୁଭାଶୁଭ ତାହାଙ୍କର । ତାହି ବ୍ୟବସ୍ଥା ତୁମ୍ଭେ କର ॥ ୨୭
୮ [4]ତୁମ୍ଭ ବିହିତ ଦଣ୍ଡ ଯେହି । ଆଜ ହିଁ ଲୋକେ ନ ବର୍ତ୍ତଇ ॥ ୨୮
ଅଦ୍ଭୁତ ଚାରି ସିଦ୍ଧ ଥିଲେ । ତୁମ୍ଭର ଆଜ୍ଞାକୁ ଲଙ୍ଘିଲେ ॥ ୨୯
୯ ତୁମ୍ଭ ଆଜ୍ଞାରେ ପାପିଷ୍ଠକୁ । ନିଅନ୍ତେ ଆମ୍ଭେ ଯାତନାକୁ ॥ ୩୦
ବଳେ ସେ ପାଶ ଛିନାଇଣ । ଛଡ଼ାଇଦେଲେ ତତକ୍ଷଣ ॥ ୩୧
୧୦ ଆମ୍ଭେ ତାହାଙ୍କୁ ତୁମ୍ଭଠାରୁ । ଜାଣିମାପାଇଁ ଇଚ୍ଛା କରୁ ॥ ୩୨
ଯେବେ ଆମ୍ଭର ହିତ ମଣ । ତାହାଙ୍କୁ କରସି ବଖାଣ ॥ ୩୩
ନ ଜାଣି ତାଙ୍କୁ ଦୁଷ୍ଟଭାବ । କଲେ ତ ଅନର୍ଥ ହୋଇବ ॥ ୩୪
ସେ ପାପୀ ଜନ ନାରାୟଣ । ଏତେ ବୋଲନ୍ତେ ତତକ୍ଷଣ ॥ ୩୫
'ଭୟ ନ କର' ବୋଲି ଯାଇ । ପ୍ରବେଶ ହୋଇଲେ ସେଠାଇଁ ॥ ୩୬

---

୧. ବ୍ୟକ୍ତି = ଅଭିବ୍ୟକ୍ତି । ୨. ଅଧୀଶ୍ୱର । ୩. ଅଛଇ ।
୪. 'ବିହତ' ଇତି ପାଠେ– ''ସେ ତୁମ୍ଭେ ତୁମ୍ଭ ଦଣ୍ଡ ଯେହି ।
ଆଜ ହିଁ ଲୋକେ ନାଶ ନୋହି ॥''

[୧]ଶ୍ରୀଶୁକ ଉବାଚ

୧୧ ପରଜାମାନଙ୍କୁ ସଂଯମ । କରନ୍ତି ଯେଉଁ ଦେବ ଯମ ।। ୩୭
ଏମନ୍ତ ପଚାରନ୍ତେ ଦୂତେ । ତାଙ୍କୁ କହିଲେ ତୋଷଚିତ୍ତେ ।। ୩୮
ହରିର ଚରଣକମଳ । ସ୍ମରନ୍ତେ ହୋଇଣ ନିଶ୍ଚଳ ।। ୩୯

ଶ୍ରୀଯମ ଉବାଚ

୧୨ ମୋହରଠାରୁ ହୋଇ ଆନ । ପ୍ରଭୁ ଯେ ଅଛି ବିଦ୍ୟମାନ ।। ୪୦
ଯେହୁ ସ୍ଥାବର-ଜଙ୍ଗମର । ଅଟଇ ପରମ ଈଶ୍ୱର ।। ୪୧
ଯାହାର ଠାରେ ଓତପ୍ରୋତ । ଏ ବିଶ୍ୱ ହୋଇଛି ସଂଜାତ ।। ୪୨
ଯେ ଊର୍ଦ୍ଧ୍ୱ ବକ୍ର ସୂତ୍ରମାନ । ତହିଁରେ ବସନ ଯେସନ ।। ୪୩
ଯା' ଅଂଶ ବ୍ରହ୍ମା-ବିଷ୍ଣୁ-ହର । ତାହାଙ୍କ ଠାରୁ ଜଗତର ।। ୪୪
ଜନମ, ପାଳନ, ବିନାଶ । ଏ ତିନି ହୁଅଇ ପ୍ରକାଶ ।। ୪୫
ନାସାରେ ରଜ୍ଜୁବଦ୍ଧ ହୋଇ । ଯେବଣ ବଳୀବର୍ଦ୍ଦ ଥାଇ ।। ୪୬
ତାହାର ପ୍ରାୟେ ହୋଇ ଯାର । ବଶେ ବର୍ତ୍ତିଛି ଏ ସଂସାର ।। ୪୭
୧୩ ଯେ ନିଜ ବଚନ-ରଜ୍ଜୁରେ । ବ୍ରାହ୍ମଣ ଆଦି ମାନଙ୍କରେ ।। ୪୮
ବନ୍ଧନ କରିଛି ଜନଙ୍କୁ । ଯେସନେ ବଳଦମାନଙ୍କୁ ।। ୪୯
ବାନ୍ଧନ୍ତି ଦାଉଁଣୀ[୨]ରେ ନରେ । ସେ ଜୀବେ ନାମରେ କର୍ମରେ ।। ୫୦
ଯାହାର ଅଧୀନ ହୋଇଣ । କରନ୍ତି କର୍ମ ଆଚରଣ ।। ୫୧
୧୪ ମୁଁ, ଇନ୍ଦ୍ର, ନିର୍ଋତି, ବରୁଣ । ଚନ୍ଦ୍ର, ଅନଳ, ସମୀରଣ ।। ୫୨
ବିରଞ୍ଚି, ଶମ୍ଭୁ, ଦିବାକର । ଆଦିତ୍ୟ, ବିଶ୍ୱେଦେବା ଆର ।। ୫୩
ମରୁତଗଣ, ବସୁ, ସାଧ୍ୟ । ଯେ ରୁଦ୍ରଗଣ, ଯେ ବା ସିଦ୍ଧ ।। ୫୪
୧୫ ବିଶ୍ୱକୁ କରନ୍ତି ସର୍ଜନ । ଯେ ଦେବେଶ୍ୱରମାନେ ଆନ ।। ୫୫
ଛୁଇଁ ନାହାନ୍ତି ରଜ-ତମ । ଯେ ସତ୍ତ୍ୱପ୍ରଧାନ ଉତ୍ତମ ।। ୫୬
ସେ ଭୃଗୁ ଆଦି ଋଷିବରେ । ବ୍ୟାପ୍ତ ହୋଇଣ ଯା' ମାୟାରେ ।। ୫୭
ଯା' ଚେଷ୍ଟା ନ ପାରନ୍ତି ଜାଣି । କେ ଜାଣେ ତହୁଁ ଆନ ପ୍ରାଣୀ ।। ୫୮
୧୬ ଆତ୍ମା-ରୂପରେ ପ୍ରାଣୀଙ୍କର । ହୃଦେ ଅଛନ୍ତି ଯେ ଈଶ୍ୱର ।। ୫୯
ଯାଙ୍କୁ ଇନ୍ଦ୍ରିୟମାନଙ୍କରେ । ମନରେ, ପ୍ରାଣରେ, ଚିତ୍ତରେ ।। ୬୦
ବଚନେ ଅବା ପ୍ରାଣୀମାନେ । ଜାଣନ୍ତି ନାହିଁ ଏ ଭୁବନେ ।। ୬୧
ଯେ ସର୍ବ ଆକୃତିମାନଙ୍କୁ । ପ୍ରକାଶ କରେ, ସେ ଚକ୍ଷୁକୁ ।। ୬୨
ଜାଣି ନ ପାରନ୍ତି ଯେମନ୍ତ । ଆକୃତିମାନେ କଦାଚିତ ।। ୬୩

---

୧. ଶ୍ରୀବାଦରାୟଣିରୁବାଚ ।
୨. ଦାଉଁଣୀ – ('ଦାମନୀ' ଶବ୍ଦଜ) = ଯେଉଁ ଦଉଡ଼ିରେ ଗାଈଗୋରୁ ବନ୍ଧା ହୁଅନ୍ତି ।

୧୭ ସେ ହରି ମାୟାପତି, ପର । ସ୍ୱବଶ, ମହାତ୍ମା, ଈଶ୍ୱର ॥ ୬୪
ଭ୍ରମୁ ଥାଆନ୍ତି ଏ ଜଗତେ । ମନୋଜ୍ଞରୂପୀ ତାଙ୍କ ଦୂତେ ॥ ୬୫
ସେ ହରିପ୍ରାୟେ ତାହାଙ୍କର । ସ୍ୱଭାବ, ଗୁଣ, କଳେବର ॥ ୬୬
୧୮ ଦେବତାମାନଙ୍କେ ପୂଜିତ । ବିଷ୍ଣୁର ଭୃତ୍ୟେ ଅଦ୍ଭୁତ ॥ ୬୭
ତାଙ୍କ ରୂପକୁ ପ୍ରାଣୀମାନେ । ଚାହିଁ ନ ପାରନ୍ତି ନୟନେ ॥ ୬୮
ବିଷ୍ଣୁଭଗତ ଯେଉଁ ଜନ । ତାହାଙ୍କୁ କରନ୍ତି ପାଳନ ॥ ୬୯
ଶତ୍ରୁଆଦିରୁ ମୋହଠାରୁ । ରଖନ୍ତି ସକଳ ଭୟରୁ ॥ ୭୦
୧୯ ସାକ୍ଷାତ କରି ଭଗବନ୍ତ । କରି ଯା' ଅଛନ୍ତି ଉକତ ॥ ୭୧
ସେ ଭକ୍ତିଧର୍ମକୁ ଋଷିଏ । ଜାଣନ୍ତି ନାହିଁ ଦେବତାଏ ॥ ୭୨
ଗନ୍ଧର୍ବମୁଖ୍ୟ ଯେ ଅସୁର । ଜାଣନ୍ତି ନାହିଁ ତାହା ନର ॥ ୭୩
କାହୁଁ ଜାଣିମେ ବିଦ୍ୟାଧର । ଚାରଣ ଆଦି ଯେ ଆବର ॥ ୭୪
୨୦ ବିରଞ୍ଚି, ନାରଦ, ଶଙ୍କର । ଯେ ମନୁ, କପିଳ, କୁମାର[୧] ॥ ୭୫
ଜନକ, ପ୍ରହରାଦ, ବଳି । ଯେ ଭୀଷ୍ମ, ଶୁକ, ଆମ୍ଭେ ମିଳି ॥ ୭୬
୨୧ ହେ ଭଟେ ! ଏହି ବାରଜଣ । ବୈଷ୍ଣବ ଧର୍ମ ଜାଣୁଁ ପୁଣ ॥ ୭୭
ଯେବଣ ଧର୍ମ ଗୁହ୍ୟ, ଶୁଦ୍ଧ । ଇତରଲୋକେ ନୋହେ ବୋଧ ॥ ୭୮
ଯାହା ଜାଣିମା ମାତ୍ରେ ନର । ଲଭଇ ମୋକ୍ଷକୁ ସତ୍ୱର ॥ ୭୯
୨୨ ଏତେକମାତ୍ର ପ୍ରାଣୀଙ୍କର । ଏ ଜୀବଲୋକେ ଧର୍ମ ସାର ॥ ୮୦
ତା' ନାମ-ଗ୍ରହଣ ଆଦିରେ । ଭଗତିଯୋଗ ବିଷ୍ଣୁଠାରେ ॥ ୮୧
୨୩ ଦେଖ ହେ ପୁତ୍ରେ ! ହରିନାମ । ଉଚ୍ଚାରିବାରେ ଯେ ମାହାତ୍ମ୍ୟ ॥ ୮୨
ଅଜାମିଳ ହିଁ ମୃତ୍ୟୁ ପାଶୁଁ । ମୁକ୍ତ ହୋଇଲା ଯାହା ବଶୁଁ ॥ ୮୩
୨୪ [୨]ଯେ ହରିନାମ-କର୍ମ-ଗୁଣ । ତାହାଙ୍କ ସଂକୀର୍ତ୍ତନ ପୁଣ ॥ ୮୪
ସେ ଲୋକଙ୍କର ପାପ ହରେ । ବ୍ୟର୍ଥ ଏ କଥା କହିବାରେ ॥ ୮୫
ପାପୀ ଅଜାମିଳ ବ୍ରାହ୍ମଣ । ମରଣକାଳେ ନାରାୟଣ ॥ ୮୬
ଏ ରୂପେ ଡାକିଣ ପୁତ୍ରକୁ । ଯେଣୁ ସେ ଲଭିଲା ମୋକ୍ଷକୁ ॥ ୮୭
୨୫ ଔଷଧ ମୃତସଂଜୀବନ । ନ ଜାଣି ଯେହ୍ନେ ବୈଦ୍ୟଗଣ ॥ ୧
ରୋଗଙ୍କ ନାଶ ମନେ ଚିନ୍ତି । ତ୍ରିକଟୁ ନିମ୍ବାଦି ଦିଅନ୍ତି ॥ ୨
ସ୍ୱୟମ୍ଭୂ ଆଦି ବାର ଜଣ । ବ୍ୟତିରେକେ ଯେ ମହାଜନ ॥ ୩

---

୧. କୁମାର = ସନତ୍‌କୁମାର ।

୨. ଅଜାମିଳ ମହାପାତକୀ ହୋଇ ମଧ୍ୟ 'ନାରାୟଣ' ବୋଲି କେବଳ ଡାକି, (ସମ୍ୟକ୍‌ଭାବେ କୀର୍ତ୍ତନ ନ କରି) ସେଥିରେ ପୁଣି ପୁଅକୁ (ହରିଙ୍କୁ ନୁହେଁ) ଡାକି, ଅସୁଷ୍ଠଚିତ୍ତ ହୋଇ ମଧ୍ୟ ମୁକ୍ତି (କେବଳ ପାପହାନିମାତ୍ର ନୁହେଁ) ପାଇଲା । ଏଣୁ ନାମର ଆଭାସମାତ୍ରେ ସର୍ବପାପ କ୍ଷୟ ହୁଏ ବୋଲି ବୁଝିବାକୁ ହେବ । ତାହାହେଲେ ନାମସଂକୀର୍ତ୍ତନ କେବଳମାତ୍ର ପାପ ନାଶ କରେ ବୋଲି କହିବା ଯଥେଷ୍ଟ ନୁହେଁ ।

ସେ ନ ଜାଣନ୍ତି ଏ ବିଧାନ । ଯେଣୁ ଏ ଅତିଗୁହ୍ୟ ଜ୍ଞାନ ॥ ୮୮
ଅତିଶୟରେ ତାଙ୍କ ଚିତ୍ତ । ମାୟାଦେବୀରେ ବିମୋହିତ ॥ ୮୯
ମଧୁର ହୋଇ ଯେ ପ୍ରକାର । ଅର୍ଥବାଦ[୧] ରେ ମନୋହର ॥ ୯୦
ଏମନ୍ତ ଅଟଇ ଯେ ଶ୍ରୁତି । ତହିଁ ନିବିଷ୍ଟ ଯାଙ୍କ ମତି ॥ ୯୧
ଯେ ଯଜ୍ଞ[୨]କର୍ମ ଗୁରୁତର । ତହିଁରେ ନିଯୁକ୍ତ ସେ ନର ॥ ୯୨
{ ଅନ୍ୟେ ତାଙ୍କର ଶ୍ରଦ୍ଧା ନାହିଁ । ଏ କଥା ଲୋକେ ଦେଖା ଯାଇ ॥ ୧
ମହତ ମନ୍ତ୍ରାଦିରେ ଶ୍ରଦ୍ଧା । ଅଳପେ ହୁଅଇ ଅଶ୍ରଦ୍ଧା ॥ ୨
ଏହା' ଗ୍ରାହକ ନାହିଁ ଯେଣୁ । ସେମାନେ ନ କହିଲେ ତେଣୁ ॥ ୩
କିମ୍ୱା ଶୃଗାଳ, ଶ୍ୱାନାଦିଙ୍କ । ବାରଣପାଇଁ ଯେହ୍ନେ ଲୋକ ॥ ୪
ସ୍ୱାଧୀନ ସିଂହ ଯେବେ ଥାଇ । ତାକୁ ପ୍ରୟୋଗ ନ କରଇ ॥ ୫
ତେସନେ ତୁଚ୍ଛ ପାପଙ୍କର । ବିନାଶପାଇଁ ସେହୁ ନର ॥ ୬
ପରମଶ୍ରେୟ ହରିନାମ । ଜାଣି ହିଁ ନ କଲେ ବିଧାନ ॥ ୭
ଅଥବା ମାହାତ୍ମ୍ୟ ନାମର । ଜାଣିଲେ, ସର୍ବ ଲୋକଙ୍କର ॥ ୮
ମୁକତିପ୍ରସଙ୍ଗ ଆସଇ । ଏ ଘେନି ନ କହିଲେ ସେହି ॥ ୯ }
୨୬ ଏମନ୍ତ ବିଚାରିଣ ମନ । ସୁମତି ଅଟନ୍ତି ଯେ ଜନ ॥ ୯୩
ଭାବଯୋଗ[୩]କୁ କୃଷ୍ଣଠାରେ । ବିଧାନ କରନ୍ତି ନିର୍ଭରେ ॥ ୯୪
ମୋହର ଦଣ୍ଡକୁ ସେମାନେ । ଯୋଗ୍ୟ ନୁହନ୍ତି ଏ ଭୁବନେ ॥ ୯୫
ଯେବେ ତାଙ୍କର ପାପ ହୋଇ । କୃଷ୍ଣକୀର୍ତ୍ତନ ତା' ନାଶଇ ॥ ୯୬
୨୭ ତାଙ୍କ ପବିତ୍ର ଗାଥାମାନ । କରନ୍ତି ଦେବେ ସିଦ୍ଧେ ଗାନ ॥ ୯୭
ଯେ ସମଦୃଷ୍ଟି ସାଧୁ ଜନ । କୃଷ୍ଣଙ୍କୁ ହୁଅନ୍ତି ପ୍ରପନ୍ନ ॥ ୯୮
ନ ଯାଅ ତାହାଙ୍କ ପାଖକୁ । ରଖଇ ହରିଗଦା ତାଙ୍କୁ ॥ ୯୯
ଯେ ଆମ୍ଭେ, କାଳରୂପୀ ଯେହୁ । ତାହାଙ୍କ ଦଣ୍ଡେ ପ୍ରଭୁ ନୋହୁ ॥ ୧୦୦
୨୮ ଯେ ଗୃହ ବାଟ ନରକକୁ । ତହିଁ ବାନ୍ଧିଲେ ଯେ ତୃଷ୍ଣାକୁ ॥ ୧୦୧
ଅନବରତେ ଅକିଂଚନ । ସାଧୁ ଯା' କରନ୍ତି ସେବନ ॥ ୧୦୨
ମୁକୁନ୍ଦପାଦକମଳରେ । ଯେ ଅଛି ମରନ୍ଦରୂପରେ ॥ ୧୦୩
ସେ ରସୁଁ ବିମୁଖ ଯେ ଜନ । ଅସାଧୁ ସେମାନଙ୍କୁ ଆଣ ॥ ୧୦୪
୨୯ କୃଷ୍ଣର ଗୁଣନାମମାନ । ଯା' ଜିହ୍ୱା ନ କରେ କୀର୍ତ୍ତନ ॥ ୧୦୫

---

୧. ଅର୍ଥବାଦ = ବିଧିର ପ୍ରଶଂଶାସୂଚକ ବେଦବାକ୍ୟ ।
୨. ଯଜ୍ଞ = ଅଗ୍ନିଷ୍ଟୋମାଦି ।
ବନ୍ଧନୀସ୍ଥିତ ପଦମାନ ସ୍ୱାମିଟୀକାନୁସାରେ ରଚିତ ।
୩. ଭାବଯୋଗ = ଭକ୍ତିଯୋଗ ।

ତାଙ୍କ ଚରଣପଦ୍ମ ପୁଣ । ଯା' ଚିତ୍ତ ନ କରେ ସ୍ମରଣ ॥ ୧୦୬
କୃଷ୍ଣଙ୍କୁ ବାରେହେଁ ମାତ୍ରକ । ନ ନମେ ଯାହାର ମସ୍ତକ ॥ ୧୦୭
ତାହାଙ୍କୁ ଆଣ ସେ ଅସନ୍ତ । ନ କଲେ ଯେଣୁ ବିଷ୍ଣୁକୃତ୍ୟ ॥ ୧୦୮
୩୦ ସେ ଭଗବାନ ନାରାୟଣ । ଅଟନ୍ତି ପୁରୁଷ ପୁରାଣ ॥ ୧୦୯
ଆମ୍ଭର ଦୂତେ କଲେ ଯାହା । ଅନ୍ୟାୟ ସହନ୍ତୁ ସେ ତାହା ॥ ୧୧୦
ଆମ୍ଭେ ଅଜ୍ଞାନୀ ତାଙ୍କ ଜନ । ଅଞ୍ଜଳି କରୁଛୁଁ ରଚନ ॥ ୧୧୧
ଯେ ବଡ଼ ଅଟେ ଜଗତରେ । କ୍ଷମା ହିଁ ଥାଇ ତାହାଠାରେ ॥ ୧୧୨
ସେହୁ ପୁରୁଷ ଅଗୋଚର । ତାହାଙ୍କୁ ପ୍ରଣାମ ଆମ୍ଭର ॥ ୧୧୩
୩୧ କହନ୍ତି ଶୁକ ହେ ରାଜନ । ସେ ଘେନି ବିଷ୍ଣୁ ସଂକୀର୍ତ୍ତନ ॥ ୧୧୪
ଜଗତଯାକର ମଙ୍ଗଳ । ସ୍ୱରୂପ ଅଟଇ କେବଳ ॥ ୧୧୫
ଅତି ହିଁ ବଡ଼ ଯେ ଦୁରିତ । ତାଙ୍କର ମୁଖ୍ୟ ପ୍ରାୟଶ୍ଚିତ୍ତ ॥ ୧୧୬
୩୨ ହରି-ଉଦ୍ଦାମବୀର୍ଯ୍ୟମାନ । ଯେ ଶୁଣେ ଗୁଣେ ପୁନଃପୁନ ॥ ୧୧୭
ତେଣୁ ଯେ ଭକ୍ତି ହୋଏ ଜାତ । ତେଣେ ତାହାଙ୍କ ଆତ୍ମା ପୂତ ॥ ୧୧୮
ହୁଅଇ ଯେମନ୍ତ ପ୍ରକାରେ । ତେଡ଼େ ନୁହଇ ବ୍ରତାଦିରେ ॥ ୧୧୯
୩୩ କୃଷ୍ଣଚରଣକମଳର । ମଧୁ ଆସ୍ୱାଦେ ଯେଉଁ ନର ॥ ୧୨୦
ବିଷୟସୁଖ ସେ ଛାଡ଼ଇ । ପୁଣି ତହିଁରେ ନ ରମଇଁ ॥ ୧୨୧
ଯେଣୁ ସକଳ ବୃଜିନର । ବିଷୟ ଅଟଇ ମନ୍ଦିର ॥ ୧୨୨
ସେ ମଧୁ-ଆସ୍ୱାଦବର୍ଜିତ । କାମକର୍ମେ ଯେ ହୋଏ ହତ ॥ ୧୨୩
ପାପନାଶକୁ କର୍ମ କରେ । ସେ କର୍ମୁଁ ପାପ ହିଁ ପ୍ରସରେ ॥ ୧୨୪
ସତ୍ତ୍ୱଶୋଧକ ଯେଣୁ ନୋହି । କୁଞ୍ଜରସ୍ନାନପ୍ରାଏ ସେହି ॥ ୧୨୫
୩୪ କହିଲେ ନିଜ ସ୍ୱାମୀ ଯାହା । କୃଷ୍ଣମହିମା ଶୁଣି ତାହା ॥ ୧୨୬
ହେ ନୃପ ! ସେ ଯମକିଙ୍କରେ । ବିସ୍ମୟ ନୋହିଲେ ମନରେ ॥ ୧୨୭
ସେ କଥା ସତ୍ୟ କରି ମଣି । ସେଦିନୁଁ ବୈଷ୍ଣବ ଯେ ପ୍ରାଣୀ ॥ ୧୨୮
ତାହାଙ୍କୁ ଆଶଙ୍କା କରନ୍ତି । ଦେଖିବାକୁ ହିଁ ଭୟ ପାନ୍ତି ॥ ୧୨୯
୩୫ ଥାଇ ମଳୟ ପର୍ବତରେ । ହରିଙ୍କି ପୂଜନ୍ତେ ସେଠାରେ ॥ ୧୩୦
ଏ ଗୃହ୍ୟ ଇତିହାସବାଣୀ । ଅଗସ୍ତ୍ୟଋଷି ଛନ୍ତି ଭଣି ॥ ୧୩୧
ହେ କୃଷ୍ଣ ! କୃପାମୟ ସିନ୍ଧୁ । ତୁମ୍ଭର ଦାସ ଦୀନବନ୍ଧୁ ॥ ୧୩୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଅଜାମିଳୋପାଖ୍ୟାନେ
ନାମ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

ଚତୁର୍ଥାଦିତ୍ରିଭିର୍ବିଶ୍ୱରୂପଜନ୍ମବିବକ୍ଷୟା ।
ପ୍ରଚେତଃସୁତଦକ୍ଷସ୍ୟ ବଂଶସ୍ତାବତ୍ ପ୍ରତନ୍ୟତେ ।। ୧
ଚତୁର୍ଥେ ତୁ ପ୍ରଜାସୃଷ୍ଟ୍ୟୈ ଦକ୍ଷେଣାରାଧନଂ ହରେଃ ।
ତପସା ହଂସଗୁହ୍ୟାଖ୍ୟସ୍ତୋତ୍ରେଣ ଚ ନିରୂପ୍ୟତେ ।।୨
ପ୍ରସକ୍ତାନୁପ୍ରସକ୍ତେନ ସ୍ୱାୟମ୍ଭୁବସୁତାନ୍ୱୟେ ।
ନାମମାହାତ୍ମ୍ୟମାକର୍ଣ୍ୟ ବଂଶବ୍ୟାସଂ ବୁଭୁତ୍ସତେ ।। ୩

ଶ୍ରୀରାଜୋବାଚ

୧ ଦେବ ଅସୁର ନାଗ ନର । ମୃଗ ପତଙ୍ଗ ମାନଙ୍କର ।। ୧
ସର୍ଗକୁ ସଂକ୍ଷେପରୂପରେ । କହିଛ ସ୍ୱାୟମ୍ଭୁବାନ୍ତରେ ।। ୨
୨ ହେ ମୁନି ! ସେ ସର୍ଗବିସ୍ତାର । ଶୁଣିମାପାଇଁ ଇଚ୍ଛା ମୋର ।। ୩
ଯଥାଶକ୍ତିରେ ପଦ୍ମାସନ । କଲେ ସେମାନଙ୍କୁ ସର୍ଜନ ।। ୪
ସେ ସର୍ଗ ଯେମନ୍ତ ପ୍ରକାରେ । ଅନୁବର୍ତ୍ତିଲା ଜଗତରେ ।। ୫
ସେ ଶକ୍ତିପ୍ରକାର ହିଁ ମୁହିଁ । ଜାଣିମାନିମିତ୍ତେ ବାଞ୍ଛଇ ।। ୬

ଶ୍ରୀସୂତ ଉବାଚ

୩ ଏରୂପେ ପରୀକ୍ଷିତଙ୍କର । ପ୍ରଶ୍ନକୁ ଶୁଣି ତଦନ୍ତର ।। ୭
ହେ ମୁନିଶ୍ରେଷ୍ଠମାନେ ! ପୁଣ । ତହିଁକି ଆନନ୍ଦ ପାଇଣ ।। ୮
କହିଲେ ବ୍ୟାସଙ୍କର ସୁତ । ଅଟନ୍ତି ମହାଯୋଗବନ୍ତ ।। ୯

ଶ୍ରୀଶୁକ ଉବାଚ

୪ ପ୍ରାଚୀନବର୍ହିଙ୍କର ଦଶ । ସୁତ, ସମସ୍ତେ ପ୍ରଚେତସ ।। ୧୦
ସମୁଦ୍ର ମଧ୍ୟରୁ ସେମାନେ । ବାହାର ହୋଇ ଯେଉଁ ଦିନେ ।। ୧୧
ପୃଥ୍ୱୀକି କଲେ ଦରଶନ । ଦ୍ରୁମେ ଯେ ହୋଇଅଛି ପୂର୍ଣ୍ଣ ।। ୧୨
୫ ତପସ୍ୟାବଳେ ତାହାଙ୍କର । କ୍ରୋଧ ହୋଇଛି ବଳିୟାର ।। ୧୩
କ୍ରୋଧ କରନ୍ତେ ସେ ବୃକ୍ଷଙ୍କୁ । ଦହିବା ଇଚ୍ଛାରେ ତାହାଙ୍କୁ ।। ୧୪
ମୁଖରୁ ପବନ, ଅନଳ । ସର୍ଜନା କଲେ ତତକାଳ ।। ୧୫
୬ ହେ କୁରୁଶ୍ରେଷ୍ଠ ! ବୃକ୍ଷମାନେ । ପୋଡ଼ନ୍ତେ ଅନଳ, ପବନେ ।। ୧୬
ଯେ କ୍ରୋଧ ହୋଇଛି ଉଦୟେ । ତାହାକୁ ଶାନ୍ତ କଲା ପ୍ରାଏ ।। ୧୭
ଦ୍ରୁମଙ୍କ ମହାରାଜା ସୋମ । କହିଲେ ବଚନ ଉତ୍ତମ ।। ୧୮
୭ ହେ ମହାଭାଗ ! ତୁମ୍ଭେମାନେ । ବୃଦ୍ଧିକି ବାଞ୍ଛିଅଛ ମନେ ।। ୧୯
ଜଗତେ ଯେତେ ପ୍ରଜା ଛନ୍ତି । ତୁମ୍ଭେ ସେମାନଙ୍କର ପତି ।। ୨୦
ଦୀନ ଦ୍ରୁମମାନଙ୍କୁ ଦ୍ରୋହ । କରିବା ଅର୍ଥେ ଯୋଗ୍ୟ ନୁହ ।। ୨୧

୮ ଆଦ୍ୟରେ ପ୍ରଜାପତିଙ୍କର । ଯେ ପତି ଅବ୍ୟୟ ଈଶ୍ୱର ॥
ଓଷଧି, ବନସ୍ପତିମାନ । ସର୍ଜିଲେ ପ୍ରାଣୀଭକ୍ଷ୍ୟ ଅନ୍ନ ॥
୯ ଚରମାନଙ୍କର ଅଚର । ତୃଣାଦି ଅଟନ୍ତି ଆହାର ॥
ପାଦେ ଯେ କରନ୍ତି ଗମନ । ଅପାଦ ଦ୍ରୁମେ ତାଙ୍କ ଅନ୍ନ ॥
ହସ୍ତଯୁକତ ଜନଙ୍କର । ଅହସ୍ତ ମତ୍ସ୍ୟାଦି ଆହାର ॥
ଦ୍ୱିପଦଙ୍କର ଅନ୍ନ ହୋଇ । ମୃଗାଦି ଚତୁଷ୍ପଦ ଯେହି ॥
୧୦ ତୁମ୍ଭେ ଅପାପୀ ଜଗତରେ । ପ୍ରଜାସର୍ଜନା ନିମିତ୍ତରେ ॥
ତୁମ୍ଭଙ୍କୁ ପିତା ଆଜ୍ଞା ଦେଲେ । ବ୍ରହ୍ମା ହିଁ କହିଛନ୍ତି ଭଲେ ॥
ବୃକ୍ଷମାନଙ୍କୁ କି ନିମିତ୍ତ । ଦହିବାପାଇଁ ବାଞ୍ଛ ଚିତ୍ତ ॥
୧୧ ସାଧୁଙ୍କ ମାର୍ଗ ଆଶ୍ରେ କର । ପ୍ରଦୀପ୍ତ କୋପକୁ ସଂହର ॥
ପିତା, ପିତାମହ ତୁମ୍ଭର । ପ୍ରପିତାମହ ଯେ ଇତର ॥
ଯେବଣ ମାର୍ଗକୁ ସେମାନେ । ଆଶ୍ରୟ କଲେ ପୂର୍ବ ଦିନେ ॥
୧୨ ବାଳକମାନଙ୍କର ବେନି । ବାନ୍ଧବ ଜନକ-ଜନନୀ ॥
ଚକ୍ଷୁର ପିଛଡ଼ା ବାନ୍ଧବ । ନାରୀ ଜନର ବନ୍ଧୁ ଧବ ॥
ପ୍ରଜାଙ୍କ ବାନ୍ଧବ ରାଜନ । ସନ୍ୟାସୀଙ୍କର ଗୃହୀ ଜନ ॥
ଅଜ୍ଞାନୀ ଅଟନ୍ତି ଯେ ନର । ଜ୍ଞାନଦ ବନ୍ଧୁ ତାହାଙ୍କର ॥
୧୩ ପ୍ରାଣୀଙ୍କ ଦେହମଧ୍ୟେ ହରି । ଅଛନ୍ତି ଆତ୍ମାରୂପ ଧରି ॥
ସମସ୍ତେ ତାଙ୍କର ଆସନ । ଏରୂପେ କର ବିଲୋକନ ॥
ଏମନ୍ତେ ବିଚାରନ୍ତେ ଚିତ୍ତ । ଏ ହରି ହୁଅନ୍ତି ତୋଷିତ ॥
୧୪ ଦେହରେ ଆକସ୍ମିକ ହୋଇ । ଯେ ଉଗ୍ର କ୍ରୋଧ ସମ୍ଭବଇ ॥
ଆତ୍ମବିଚାରେ ତାହା ପୁଣ । ଯେ ଲୋକ କରେ ନିବାରଣ ॥
ସେ ରଜ ଆଦି ଗୁଣମାନ । ହେଳାରେ କରଇ ଲଙ୍ଘନ ॥
୧୫ ବିଅର୍ଥ ଦହି ଦୁଃଖୀ ଦ୍ରୁମ । ତୁମ୍ଭର ଜାତ ହେଉ କ୍ଷେମ ॥
ଏ ଶ୍ରେଷ୍ଠ କନ୍ୟାକୁ ବିପିନେ । ପାଳିଅଛନ୍ତି ବୃକ୍ଷମାନେ ॥
ପତ୍ନୀଭାବରେ ତତପର । ଏହାକୁ ପ୍ରତିଗ୍ରହ କର ॥
୧୬ ହେ ନୃପ ! କହିଣ ଏମନ୍ତ । [1]ଅପ୍ସରାଠାରେ ଯେ ସଂଭୂତ ॥
ଦେଇ ସେ କନ୍ୟାକୁ ଗମନ । କଲେକ ସେ ସୋମ ରାଜନ ॥
ଧର୍ମରେ ତାହାକୁ ସେ ଦଶ । ବିବାହ ହେଲେ ପ୍ରଚେତସ ॥
୧୭ ହେ ନୃପ ! ତାହାଠାରେ ଜାତ । ଦକ୍ଷ ସେ ପ୍ରଚେତାଙ୍କ ସୁତ ॥
ପ୍ରଜାବିସର୍ଗରେ ଯାହାର । ପୂର୍ଣ୍ଣ ହୋଇଲା ତିନିପୁର ॥
୧୮ ସେ ଦକ୍ଷ ଦୁହିତାବତ୍ସଳ । ମନରେ ରେତରେ[2] ତତ୍‌କାଳ ॥

୧. ଅପ୍ସରା = ପ୍ରମ୍ଲୋଚାନାମ୍ନୀ । ୨. ଚିତ୍ତରେ ।

ପ୍ରଜାଙ୍କୁ ସର୍ଜିଲା ଯେମନ୍ତେ । ମୋଠାରୁ ଶୁଣ ତା' ସ୍ତୁତିରେ ॥ ୫୩
୧୯ ଯେ ଜଳ ସ୍ଥଳ ଅନ୍ତରୀକ୍ଷ । ନିବାସୀ ଅଟନ୍ତି ପ୍ରତ୍ୟକ୍ଷ ॥ ୫୪
ଦେବତା, ଅସୁର, ମାନବ । ଏ ଆଦି ହୋଇ ଯେତେ ଜୀବ ॥ ୫୫
ଏହାଙ୍କୁ ପ୍ରଜାପତି ମନେ । ସର୍ଜନ କଲେ ପୂର୍ବଦିନେ ॥ ୫୬
୨୦ ବଢ଼ିଲା ନାହିଁ ପ୍ରଜାଙ୍କର । ସେ ସୃଷ୍ଟି ଦେଖି ଏ ପ୍ରକାର ॥ ୫୭
ବିନ୍ଧ୍ୟପର୍ବତ ପାର୍ଶ୍ୱଗତ । ଅଛନ୍ତି ଯେତେକ ପର୍ବତ ॥ ୫୮
ତହିଁକି ଯାଇଣ ଦୁଷ୍କର । ତପକୁ କଲେ ସେ ଆଚର ॥ ୫୯
୨୧ ଅଘମର୍ଷଣ ନାମେ ଖ୍ୟାତ । ତହିଁରେ ପାପହର ତୀର୍ଥ ॥ ୬୦
କରିଣ ସ୍ନାନ ଆଚମନ । ତପେ ତୋଷିଲେ ଭଗବାନ ॥ ୬୧
୨୨ ଯେବଣ ହଂସଗୁହ୍ୟ ସ୍ତବେ । ବିଷ୍ଣୁଙ୍କୁ ସ୍ତୁତିକଲା ପୂର୍ବେ ॥ ୬୨
ତୋତେ ତା' କରିବା ପ୍ରକାଶ । ଯେଣେ ଦକ୍ଷକୁ ହରି ତୋଷ ॥ ୬୩

ଶ୍ରୀପ୍ରଜାପତିରୁବାଚ

୨୩ ସର୍ବ-ଉତ୍ତମ ଯେ ଅଟଇ । ଯାର ଚିତ୍‌ଶକ୍ତି-ନାଶ ନାହିଁ ॥ ୬୪
ଯେ ଜୀବ, ମାୟା ଦୁହିଁଙ୍କର । ଉପରେ ଅଟଇ ଈଶ୍ୱର ॥ ୬୫
ବିଷୟରସେ ତତ୍ତ୍ୱ ହୋଇ । ଯାହାଙ୍କ ବୁଦ୍ଧି ପ୍ରବର୍ତ୍ତଇ[1] ॥ ୬୬
ସେମାନଙ୍କର ଅଗୋଚର । ସ୍ୱରୂପ ଅଟଇ ଯାହାର ॥ ୬୭
ଯାହାର ଠାରୁ ପରିମାଣ । ନିବୃତ୍ତି ହୋଇଅଛି ପୁଣ ॥ ୬୮
ଯେ ସ୍ୱୟଂପ୍ରକାଶ ଈଶ୍ୱର । ତାଙ୍କୁ କରୁଛି ନମସ୍କାର ॥ ୬୯
୨୪ ପ୍ରପଞ୍ଚ କରେ ଯେ ଗୋଚର । ଜୀବ ଅଟଇ ସଖା ଯାର ॥ ୭୦
ଯେ ଏହି ଦେହରେ ଥିଲେହେଁ । ଯା' ମିତ୍ରଭାବକୁ କେବେହେଁ ॥ ୭୧
ଏହି ଦେହରେ ରହିଥାଇ । ଜୀବ ତା' ଜାଣି ନ ପାରଇ ॥ ୭୨
ଇନ୍ଦ୍ରିୟଆଦିମାନଙ୍କର । ପ୍ରକାଶ କରିବା ପ୍ରକାର ॥ ୭୩
ଜାଣି ନ ପାରନ୍ତି ଯେସନେ । ରୂପ ଆଦି ବିଷୟମାନେ ॥ ୭୪
ସେ ଅଟେ ପରମ ଈଶ୍ୱର । ତାଙ୍କୁ କରୁଛି ନମସ୍କାର ॥ ୭୫
୨୫ ଦେହ, ଇନ୍ଦ୍ରିୟ, ପ୍ରାଣ, ଭୂତେ । ଅନ୍ତଃକରଣ, ତନମାତ୍ରେ ॥ ୭୬
ଦୃଶ୍ୟ ଦେହକୁ, ଇନ୍ଦ୍ରିୟଙ୍କୁ । ଇନ୍ଦ୍ରିୟସ୍ଥିତ ଦେବତାଙ୍କୁ ॥ ୭୭
ଜାଣନ୍ତି ନାହିଁ ଏ ସକଳ । ସମଗ୍ରେ ଜାଣେ କେ ତା' ମୂଳ ॥ ୭୮
ଗୁଣମାନଙ୍କୁ ହିଁ ଜାଣଇଁ । ସେ ସର୍ବ-ଜ୍ଞାତା ସେ[2] ଅଟଇ ॥ ୭୯
ସର୍ବଜ୍ଞ ଅଟେ ଯେ ଈଶ୍ୱର । ତାଙ୍କୁ ନ କରଇ ଗୋଚର ॥ ୮୦
ଏ ରୂପେ ଅନନ୍ତ ଯେ ଅଛି । ତାଙ୍କୁ ମୁଁ ସ୍ତୁତି କରୁଅଛି ॥ ୮୧
୨୬ ନାମ-ରୂପକୁ ନିରୂପଣ । କରଇ ଯେଉଁ ମନ ପୁଣ ॥ ୮୨

୧. ପ୍ରବରଇ । ୨. ସେ = ଜୀବ ।

ଦୃଷ୍ଟି ସ୍ମରଣ ବେନିଙ୍କର । ନାଶ ହୁଅନ୍ତେ ତଦନ୍ତର ।।
ଯେବଣ କାଳେ ସେ ମାନସ । ସମାଧି ହୁଅଇ ପ୍ରକାଶ ।।
କେବଳ ସ୍ୱରୂପ ଜ୍ଞାନରେ । ପ୍ରତ୍ୟେ ହୋଇ ଯେ ସେ କାଳରେ ।।
ସେ ଶୁଦ୍ଧ ଶୁଦ୍ଧମନେ ସ୍ଥିତ । ହେଉଛି ତାହାଙ୍କୁ ପ୍ରଣତ ।।
୨୭ ପ୍ରକୃତି ପୁରୁଷ ଆବର । ମହତତତ୍ତ୍ୱ, ଅହଂକାର ।।
ପଞ୍ଚ ତନ୍ମାତ୍ରରୂପ ହୋଇ । ତ୍ରିଗୁଣ ନବଶକ୍ତି ଯେହି ।।
ଯେ ପଞ୍ଚଭୂତ ଏକାଦଶ । ଇନ୍ଦ୍ରିୟ ଏ ରୂପେ ଷୋଡ଼ଶ ।।
ତେଣେ ଯେ ଗୁପତ ଈଶ୍ୱର । ନିବେଶି ହୃଦୟମଧ୍ୟର ।।
ଯାହାକୁ କରି ବିବେଚନ । କରନ୍ତି ବୁଧ ଜନେ ଧ୍ୟାନ ।।
ଯେ ପଞ୍ଚଦଶ-ସାମିଧେନୀ[1] । ମନ୍ତ୍ରପ୍ରକାଶ୍ୟ ଅଟେ ବହ୍ନି ।।
ତାହାକୁ ଦାରୁରେ ଯେସନ । ପ୍ରକାଶ କରେ ବୁଧ ଜନ ।।
୨୮ ଯାହାର ଠାବରୁ ଅଶେଷ । ବିଶେଷ ହୋଇଛି ପ୍ରକାଶ ।।
ସେ ମାୟାନିଷେଧେ ନିର୍ବାଣ । ସୁଖେ ଯା’ ଅନୁଭବ ପୁଣ ।।
ଯେତେକ ନାମ ରୂପ ହୋଇ । ସେ ସର୍ବରୂପ ସେ ଅଟଇ ।।
ଯା’ ଆତ୍ମମାୟା ନୋହେ କହି । ମୋତେ ପ୍ରସନ୍ନ ହେଉ ସେହି ।।
୨୯ ଯେତେକ ଯେତେକ ବଚନେ । କଥିତ ହୋଇଛି ଭୁବନେ ।।
ଯା’ ବୁଦ୍ଧିବ୍ୟବସାୟେ ଜାଣି । ଯାହା ଇନ୍ଦ୍ରିୟେ ପରିମାଣି ।।
ମନେ ବିଚାରେ ଯାହି ଯାହି । ତାଙ୍କ ସ୍ୱରୂପ ନୋହେ ସେହି ।।
ଯେଉଁ ନ୍ୟାୟରୁ ସେ ସମସ୍ତ । ଗୁଣରେ ଅଟଇ ବର୍ଦ୍ଧିତ ।।
ଗୁଣଙ୍କ ଉତ୍ପତ୍ତି-ପ୍ରଳୟେ । ତାହାଙ୍କୁ ପୁଣ ଲକ୍ଷି ହୋଏ ।।
୩୦ ଯହିଁରେ ଦ୍ରବ୍ୟ ଆଦି ଥୋଇ । ଅଧିକରଣ ସେ ବୋଲାଇ ।।
ଯହିଁରୁ ନିଃସରଇ କିଛି । ସେ ଅପାଦାନ ବୋଲାଇଛି ।।
ଧାନ୍ୟାଦି ଛେଦେ ଯେଣେ ନର । କରଣସଂଜ୍ଞା ସେ ଦାତ୍ର[2]ର ।।
ଗୃହଦ୍ରବ୍ୟାଦି ସର୍ବ ଯାର । ସମ୍ବନ୍ଧ ନାମ ଅଟେ ତାର ।।
ଯାହାକୁ ଦେଇ ଦ୍ରବ୍ୟମାନ । ତାହାର ସଂଜ୍ଞା ସଂପ୍ରଦାନ ।।
କର୍ତ୍ତା ଯାହାକୁ ବାଞ୍ଛା କରେ । କର୍ମସଂଜ୍ଞାକୁ ସେହୁ ଧରେ ।।
ଯେ ପରବଚନ ଆଚରେ । ସ୍ୱତନ୍ତ୍ର କର୍ମକୁ ଯେ କରେ ।।
ପ୍ରଯୋଜ୍ୟ ପ୍ରଯୋଜକ ହୋଇ । ସେ ବେନି କର୍ତ୍ତାସଂଜ୍ଞା ବହି ।।
ସେ ସର୍ବ ମାୟାରେ ସଂଯୁତ । ବ୍ରହ୍ମ ଅଟଇ ଏ ନିୟତ ।।
ଯେଣୁ ସେମାନଙ୍କ କାରଣ । ପୂର୍ବରୁ ସିଦ୍ଧ ଅଟେ ପୁଣ ।।
ବ୍ରହ୍ମାଦି ଯେତେ ଜୀବଗଣ । ତାଙ୍କର ପରମ କାରଣ ।।

୧. ସାମିଧେନୀ = ସମିଧରେ ଅଗ୍ନିସଂଯୋଗ ବେଳେ ଯେଉଁ ଋକ୍‌ମନ୍ତ୍ର ଉଚ୍ଚାରଣ କରାଯାଏ ।
୨. ଦାତ୍ର = ଦାଆ ।

| | | | |
|---|---|---|---|
| | ସଜାତି ବିଜାତି ଆବର | ଏ ଦୁଇ କଥା ନାହିଁ ଯାର | ।। ୧୧୪ |
| ୩୧ | ବିଦ୍ୟାକୁ ଆଦି ହୋଇ ଯେତେ | ଯା' ମାୟାଶକ୍ତି ଏ ଜଗତେ | ।। ୧୧୫ |
| | ବଚନ କହନ୍ତି ଯେ ଜନ | ବିବାଦ କରନ୍ତି ଯେ ଆନ | ।। ୧୧୬ |
| | ତାଙ୍କ ବିବାଦ ସଂବାଦର | ସ୍ଥାନ ହୁଅନ୍ତି ତଦନ୍ତର | ।। ୧୧୭ |
| | ଆତ୍ମମୋହକୁ ତାହାଙ୍କର | କରନ୍ତି ପୁଣ ବାରମ୍ବାର | ।। ୧୧୮ |
| | ଅନନ୍ତ ଗୁଣ ଅଟେ ଯାର | ତାହାଙ୍କୁ ମୋର ନମସ୍କାର | ।। ୧୧୯ |
| ୩୨ | କର, ଚରଣ ଆଦି ଅଙ୍ଗ | ବିଷ୍ଣୁର ଅଛି ଏ ପ୍ରସଙ୍ଗ | ।। ୧୨୦ |
| | ଯୋଗଶାସ୍ତ୍ରରେ ଅଛି କହି | ଜ୍ଞାନଶାସ୍ତ୍ରେ ସେ ପୁଣ ନାହିଁ | ।। ୧୨୧ |
| | ଏକ ବିଷୟେ ଶାସ୍ତ୍ର ଦୁଇ | ଏରୂପେ ପ୍ରବର୍ତ୍ତି ଅଛଇ | ।। ୧୨୨ |
| | କେ ବୋଲେ ଅଛି, କେହୁ ପୁଣ | ନାହିଁ ବୋଲଇ ଏ ରୂପେଣ | ।। ୧୨୩ |
| | ସେ ବେନି ଶାସ୍ତ୍ରଙ୍କର ମତ | ବିରୁଦ୍ଧ ଅଟଇ ନିୟତ | ।। ୧୨୪ |
| | ତାହାଙ୍କୁ ଅନୁଗତ ହୋଇ | ପ୍ରତୀତ ଯେହୁ ବ୍ରହ୍ମ ସେହି | ।। ୧୨୫ |
| ୩୩ | ଯେହୁ ଅନନ୍ତ ଭଗବାନ | ଅଟଇ ନାମରୂପହୀନ | ।। ୧୨୬ |
| | ପାଦମୂଳକୁ ଆପଣାର | ଭଜିଲା ଲୋକମାନଙ୍କର | ।। ୧୨୭ |
| | ଅନୁଗ୍ରହାର୍ଥେ ଜନ୍ମ ହୋଇ | ବିବିଧ ରୂପକୁ ଧରଇ | ।। ୧୨୮ |
| | କର୍ମମାନଙ୍କେ ନାମମାନ | ଧରଇ ଯେଉଁ ଭଗବାନ | ।। ୧୨୯ |
| | ସେ ସର୍ବଜଗତେ ପ୍ରଧାନ | ମୋତେ ହୁଅନ୍ତୁ ସୁପ୍ରସନ୍ନ | ।। ୧୩୦ |
| ୩୪ | ପ୍ରାଣୀମାନଙ୍କ ଦେହେ ଥାଇ | ପ୍ରାକୃତ ଜ୍ଞାନପଥେ[୧] ଯେହି | ।। ୧୩୧ |
| | ତାଙ୍କ ବାସନା-ଅନୁସାରେ | [୨]ସେ ସେହି ଦେବତାରୂପରେ | ।। ୧୩୨ |
| | ପ୍ରକାଶ ହୋଇଛି ସଂତତେ | ପବନ ଯେସନେ ଜଗତେ | ।। ୧୩୩ |
| | ପଦ୍ମାଦିଗନ୍ଧଭେଦ ପାଇ | ବିବିଧ ଗନ୍ଧବନ୍ତ ହୋଇ | ।। ୧୩୪ |
| | { ରେଣୁର ଧୂସରାଦି ଗୁଣ | ପାଇ ସେ ରୂପବନ୍ତ ପୁଣ | ।। ୧ } |
| | { ନାନା ଦେବତାରୂପେ ସେହି | ତେସନେ ନାନା ଫଳ ଦେଇ | ।। ୨ } |
| | ଏମନ୍ତ ଅଟେ ଯେ ଈଶ୍ୱର | କରୁ ସେ ମନୋରଥ ମୋର | ।। ୧୩୫ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୫ | ସେ ଅଘମର୍ଷଣ ତୀର୍ଥରେ | ହେ କୁରୁଶ୍ରେଷ୍ଠ ! ଏ ପ୍ରକାରେ | ।। ୧୩୬ |

୧. ଜ୍ଞାନପଥ = ଉପାସନାମାର୍ଗ ।

୨. ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟାର୍ଚ୍ଚିତୁମିଚ୍ଛତି ।
ତସ୍ୟ ତସ୍ୟାଚଳାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ ।। ୧
ସ ତୟା ଶ୍ରଦ୍ଧୟା ଯୁକ୍ତସ୍ତସ୍ୟାରାଧନମୀହତେ ।
ଲଭତେ ଚ ତତଃ କାମାନ୍ ମୟୈବ ବିହିତାନ୍ ହି ତାନ୍ ।। ୨ (ଗୀତା)

ସ୍ତୁତି କରନ୍ତେ ପୂର୍ବେ ଦକ୍ଷ । ତାହାଙ୍କୁ ହୋଇଲେ ପ୍ରତ୍ୟକ୍ଷ ॥ ୧୩୭
ଭଗତ ଅଟନ୍ତି ଯେ ଜନ । ତାଙ୍କ ବତ୍ସଳ ଭଗବାନ ॥ ୧୩୮
୩୬ ସ୍କନ୍ଧଉପରେ ଗରୁଡ଼ର । ନିବେଶି ଅଛନ୍ତି ପୟର ॥ ୧୩୯
ପ୍ରଲମ୍ବ ମହାଭୁଜମାନ । ଆଠସଂଖ୍ୟକ ସୁଶୋଭନ ॥ ୧୪୦
ଶଙ୍ଖ, ସୁଦରଶନ, ଅସି । ଧନୁ, ସାୟକ, ଚର୍ମ ମିଶି ॥ ୧୪୧
ଯେ ପାଶ, ଗଦା ଯେ ଆବର । ଏ ରୂପେ ଅଷ୍ଟାୟୁଧଧର ॥ ୧୪୨
୩୭ ପୀତ ବସନ ପରିଧାନ । ମେଘର ପ୍ରାୟ ଶ୍ୟାମବର୍ଣ୍ଣ ॥ ୧୪୩
ପ୍ରସନ୍ନ ଦିଶେ ଯାହାଙ୍କର । ବଦନ, ନୟନ ଆବର ॥ ୧୪୪
କଣ୍ଠରୁ ପାଦ-ଅନ୍ତଯାଏ । ବନମାଳାରେ ବ୍ୟାପ୍ତ ହୋଏ ॥ ୧୪୫
ଯାର ସକଳ ଅଙ୍ଗମାନ । ଶ୍ରୀବତ୍ସ କୌସ୍ତୁଭେ ଶୋଭନ ॥ ୧୪୬
୩୮ କିରୀଟ କଟକଂ[୧] ବିଶାଳ । ସ୍ଫୁରଇ ମକର କୁଣ୍ଡଳ ॥ ୧୪୭
ବଳୟ, ଅଙ୍ଗଦ, ନୂପୁରେ । ଭୂଷିତ କାଞ୍ଚୀମୁଦ୍ରିକାରେ ॥ ୧୪୮
୩୯ ତ୍ରୈଲୋକ୍ୟମୋହନ ଆକାର । ଧରନ୍ତେ ତ୍ରିଭୁବନେଶ୍ୱର ॥ ୧୪୯
ନାରଦ, ନନ୍ଦ ଆଦି ଯେତେ । ବିଷ୍ଣୁର ପାର୍ଷଦ ସମସ୍ତେ ॥ ୧୫୦
ଯେ ଆନ ସୁରଯୂଥପତି । ସେମାନେ ବେଢ଼ିଣ ଅଛନ୍ତି ॥ ୧୫୧
ଯେ ସିଦ୍ଧ, ଗନ୍ଧର୍ବ, ଚାରଣ । ସ୍ତୁତି କରନ୍ତି ଗୀତେ ପୁଣ ॥ ୧୫୨
୪୦ ସେ ରୂପ ଅତି ଅଦଭୁତ । ଦେଖିଣ ଭୟ ହେଲା ଜାତ ॥ ୧୫୩
ସେ ପ୍ରଜାପତି ଅତିଶୟେ । ହରଷଚିତ୍ତ ପୁଣି ହୋଏ ॥ ୧୫୪
ଦଣ୍ଡପ୍ରାଏକ ମହୀତଳେ । ପ୍ରଣାମ କଲା ତତକାଳେ ॥ ୧୫୫
୪୧ ନିର୍ଝରମାନଙ୍କେ ଯେସନ । ପୂର୍ଣ୍ଣ ହୁଅନ୍ତି ନଦୀମାନ ॥ ୧୫୬
ଇନ୍ଦ୍ରିୟମାନେ ସେ ପ୍ରକାରେ । ପୂରନ୍ତେ ପୂର୍ଣ୍ଣ ଆନନ୍ଦରେ ॥ ୧୫୭
ବଚନ ଆଦିମାନଙ୍କର । ବୃତ୍ତି ହୁଅନ୍ତେ ଅତି ଦୂର ॥ ୧୫୮
ଶକତ ନୋହିଲା ବିଷ୍ଣୁଙ୍କୁ । କିଛି ବଚନ କହିବାକୁ ॥ ୧୫୯
୪୨ ସେ ପ୍ରଜାପତି ପ୍ରଜାକାମ । ସେ ରୂପେ କରନ୍ତେ ପ୍ରଣାମ ॥ ୧୬୦
ତାହାଙ୍କୁ ଏମନ୍ତ ବଚନ । ପ୍ରକାଶ କଲେ ଜନାର୍ଦ୍ଦନ ॥ ୧୬୧
ସମସ୍ତ ଭୂତମାନଙ୍କର । ଚିତ୍ତକୁ ଜାଣେ ଯେ ଈଶ୍ୱର ॥ ୧୬୨

ଶ୍ରୀଭଗବାନୁବାଚ

୪୩ ହେ ପ୍ରାଚେତସ ମହାଭାଗ । ତପେ ତୁ ସିଦ୍ଧ ହେଲୁ ବେଗ ॥ ୧୬୩
ଯେଣୁ ମୋ' ବିଷୟେ ଶ୍ରଦ୍ଧାରେ । ଭକ୍ତିକି ଲଭିଲୁ ମୋ'ଠାରେ ॥ ୧୬୪
୪୪ ହେ ପ୍ରଜାନାଥ ! ମୁହିଁ ତୋତେ । ପ୍ରୀତ ହୋଇଲି ନିଜ ଚିତ୍ତେ ॥ ୧୬୫
ଯେଉଁ ନ୍ୟାୟରୁ ତପ ତୋର । ଏ ଜଗତର ବୃଦ୍ଧିକର ॥ ୧୬୬

୧. କଟକ = ବଳୟ ।

ଏ ଅଟେ କାମନା ମୋହର । ଯା ବୃଦ୍ଧି ହେବ ପ୍ରାଣୀଙ୍କର ।। ୧୬୭
୪୫ ବ୍ରହ୍ମା, ଶଙ୍କର, ତୁମ୍ଭେ ଯେତେ । ପ୍ରଜାଙ୍କ ପତି ଏ ଜଗତେ ।। ୧୬୮
ଯେତେକ ମନୁ, ସୁରେଶ୍ୱର । ଏମାନେ ବିଭୂତି ମୋହର ।। ୧୬୯
ପ୍ରାଣୀଙ୍କ ଜନମକୁ ପୁଣ । ଏମାନେ ଅଟନ୍ତି କାରଣ ।। ୧୭୦
୪୬ ହେ ବିପ୍ର ! ତପସ୍ୟା ମୋହର । ହୃଦୟ, ଯେ ବିଦ୍ୟା ଆବର ।। ୧୭୧
ମୋହର ତନୁ ସେ ପ୍ରମାଣ । ଧ୍ୟାନବିଷୟ କ୍ରିୟା ପୁଣ ।। ୧୭୨
ଆକୃତି, ଯେ ଅଟନ୍ତି ଜାତ । [1]ସେ ଯଜ୍ଞେ[2] ମୋ' ଅଙ୍ଗ ବିଦିତ ।। ୧୭୩
ଧର୍ମ ଅଟଇ ଆତ୍ମା[3] ମୋର । ପ୍ରାଣ ଅଟନ୍ତି ସର୍ବ ସୁର ।। ୧୭୪
୪୭ ସୃଷ୍ଟିରୁ ଆଦ୍ୟେ ଏକା ହୋଇ । ମୁଁ ଥିଲି ଆନ କେହି ନାହିଁ ।। ୧୭୫
ଗ୍ରାହ୍ୟ ଗ୍ରାହକ ଯେହୁ ଦୁଇ । ଚୈତନ୍ୟମାତ୍ର ହୋଇ ରହି ।। ୧୭୬
ଅବ୍ୟକ୍ତ ଇନ୍ଦ୍ରିୟବୃତ୍ତିରେ । ପ୍ରସୁପ୍ତପ୍ରାୟ ସବୁଠାରେ ।। ୧୭୭
୪୮ ଅନନ୍ତ ଗୁଣ ମୁଁ ଅନନ୍ତ । ମୋଠାରେ ମାୟାରୁ ସଂଭୂତ ।। ୧୭୮
ଯେବେ ଏ ବ୍ରହ୍ମାଣ୍ଡ ହୋଇଲା । ତେବେ ସ୍ୱୟଂଭୂ ସଂଭବିଲା ।। ୧୭୯
ଆଦ୍ୟ ଅଟେ ସେ ସକଳର । ଯୋନି-ଜନମ ନାହିଁ ତାର ।। ୧୮୦
୪୯ ବୃଦ୍ଧିକି ଲଭି ମୋ' ବୀର୍ଯ୍ୟରେ । ସେ ବ୍ରହ୍ମା ଯେବଣ କାଳରେ ।। ୧୮୧
ଜଗତନିର୍ମାଣ ଯେ କର୍ମ । ତହିଁରେ କଲାକ ଉଦ୍ୟମ ।। ୧୮୨
ଆତ୍ମାକୁ ଅସମର୍ଥ ପ୍ରାଏ । ମଣିଲା ଆପଣା ଆଶୟେ ।। ୧୮୩
୫୦ ଏଥି ଉତ୍ତାରୁ ତାକୁ ମୁହିଁ । ତପ ବୋଲିଣ କହିଲଇଁ ।। ୧୮୪
ତପ ଆଚରିଲା ଦାରୁଣ । ଯେଉଁ ତପରେ ଆଦ୍ୟେ ପୁଣ ।। ୧୮୫
ତୁମ୍ଭ ନବଙ୍କୁ କଲା ଜାତ । ଯେ ତୁମ୍ଭେ ବିଶ୍ୱସୃଜ ମତ ।। ୧୮୬
୫୧ ଏ ପଞ୍ଚଜନ ପ୍ରଜାପତି । ସୁତା ଅସିକ୍ନୀ ନାମେ ଖ୍ୟାତି ।। ୧୮୭
ପତ୍ନୀଭାବେ ହେ ପ୍ରଜେଶ୍ୱର । ଏହାକୁ ପ୍ରତିଗ୍ରହ କର ।। ୧୮୮
୫୨ ସ୍ତିରୀପୁରୁଷ ବେନିଙ୍କର । ସୁରତ ଅଟେ ଧର୍ମ ଯାର ।। ୧୮୯
ଏରୂପେ ପ୍ରବର୍ତ୍ତିବୁ ତୁହି । ଏହି ପ୍ରକାରେ ହେବ ସେହି[4] ।। ୧୯୦
ଏ ପ୍ରଜାସର୍ଗ ତାହାଠାରେ । ସର୍ଜିବୁ ବହୁତ ପ୍ରକାରେ ।। ୧୯୧
୫୩ ତୋ'ଠାରୁ ତଳକୁ ଭୁବନେ । ହୋଇବେ ଯେତେ ପ୍ରଜାମାନେ ।। ୧୯୨
ସେ ସର୍ବେ ମୋହର ମାୟାରେ । ମିଥୁନ ହୋଇଣ ସ୍ତିରୀରେ ।। ୧୯୩
ପୁତ୍ରାଦିରୂପେ ସଂଭବିବେ । ମୋହର ବଳିକି ହରିବେ ।। ୧୯୪

ଶ୍ରୀଶୁକ ଉବାଚ

୫୪ ବିଶ୍ୱଭାବନ ଭଗବାନ । କହିଣ ଏତେକ ବଚନ ।। ୧୯୫

---

୧. ''ଶିରୋ ବା ଏତଦ୍ ଯଦ୍ ପ୍ରବର୍ଗ୍ୟୋ ଗ୍ରୀବା ଉପସଦଣ୍ଷକ୍ଷୁଷୀ ଆଜ୍ୟଭାଗୌ ।'' (ଶ୍ରୁତି)
୨. ଯଜ୍ଞେ = ଯଜ୍ଞମାନେ ।　　୩. ଆତ୍ମା = ମନ ।　　୪. ସେହି = ଅସିକ୍ନୀ ।

ଦକ୍ଷ କରନ୍ତେ ବିଲୋକନ । ସେଠାରେ ହେଲେ ଅନ୍ତର୍ଦ୍ଧାନ ॥ ୧୯୬
ସ୍ୱପ୍ନରେ ଲଭିଥିଲା ବିତ୍ତ । ଯେହ୍ନେ ହୁଅଇ ଅନ୍ତର୍ହିତ ॥ ୧୯୭
ହେ କୃଷ୍ଣ ଭଗତସୋଦର । ବିଶ୍ୱଭାବନ ! ଦାମୋଦର ॥ ୧୯୮
ଦୀନବନ୍ଧୁଙ୍କୁ ରଖ ବାରେ । ତୁମ୍ଭ ଶ୍ରୀଚରଣସେବାରେ ॥ ୧୯୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀହଂସଗୁହ୍ୟସ୍ତବୋ
ନାମ ଚୁତର୍ଥୋଽଧ୍ୟାୟଃ ॥

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ନାରଦେନାଥ ବାଚଃ କୂଟୈସ୍ତୁ ନାଶିତାନ୍ ।
ସୁତାନାକର୍ଣ୍ଣ୍ୟ ଦକ୍ଷୋଽମୁଂ ଶଶାପେତି ନିରୂପ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ବିଷ୍ଣୁମାୟାରେ ପୁଷ୍ଟ ହୋଇ । ସେ ପଞ୍ଚଜନସୁତାଠାଇଁ ॥ ୧
ହର୍ଯ୍ୟଶ୍ୱ ନାମରେ ଅୟୁତ । ପୁତ୍ର ସେ ପ୍ରଭୁ କଲା ଜାତ ॥ ୨
୨ ଅଭିନ୍ନଧର୍ମସୁଚରିତ । ସେ ଦକ୍ଷତନୂଜ ସମସ୍ତ ॥ ୩
ପ୍ରଜାସର୍ଜନା ବିଷୟରେ । ପିତା କହନ୍ତେ ତଦନ୍ତରେ ॥ ୪
ପଶ୍ଚିମ ଦିଗକୁ ଗମନ । କଲେ ସମସ୍ତେ ହେ ରାଜନ ॥ ୫
୩ ଯହିଁରେ ନଦୀସମୁଦ୍ରର । ସଙ୍ଗମ ନାରାୟଣ-ସର ॥ ୬
ସେ ତୀର୍ଥ ଅଟେ ସୁମହତ । ମୁନିସିଦ୍ଧରେ ନିଷେବିତ ॥ ୭
୪ ଆଚମନରୁ ସେ ଜଳର । ରାଗାଦି ମଳ[1] ଗଲା ଦୂର ॥ ୮
ତେଣୁ ପାରମହଂସ ଧର୍ମେ । ଉତ୍ପନ୍ନମତି ହେଲେ[2] କ୍ରମେ ॥ ୯
୫ ପିତା-ଆଜ୍ଞାରେ ବଶ ହେଲେ । ଉଗ୍ର ତପସ୍ୟା ଆଚରିଲେ ॥ ୧୦
ପ୍ରଜାଙ୍କ ବୃଦ୍ଧିକି ଉଦ୍ୟତ । ହୋଇଛନ୍ତି ଯେ ଦକ୍ଷସୁତ ॥ ୧୧
ତାହାଙ୍କୁ ସେ ସ୍ଥାନରେ ଆସି । ଦର୍ଶନ କଲେ ଦେବ-ଋଷି ॥ ୧୨
୬ ଏଥି ଉତ୍ତାରୁ ହର୍ଯ୍ୟଶ୍ୱଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୧୩
ନ ଦେଖି ଭୂମିର ଅନ୍ତକୁ । କେମନ୍ତେ ସର୍ଜିବ ପ୍ରଜାଙ୍କୁ ॥ ୧୪
ପାଳକ ହୋଇ ତୁମ୍ଭେମାନେ । ଅଜ୍ଞାନ ଅଟ ଏ ଭୁବନେ ॥ ୧୫
୭ ଏକ ପୁରୁଷ ଅଛି ଯହିଁ । ଏମନ୍ତ ରାଜ୍ୟକୁ ନ ଚାହିଁ ॥ ୧୬
ଯହୁଁ ନିର୍ଗମ ନୋହେ ପ୍ରାଣୀ । ଏମନ୍ତ ଗର୍ତ୍ତକୁ ନ ଜାଣି ॥ ୧୭
ବହୁତ-ରୂପୀ ଯେ ଯୁବତି । ପୁରୁଷ ଯେ ଅସତୀପତି ॥ ୧୮

୧. ମନୁଁ । ୨. କଲେ ।

୮ ଯେ ନଦୀ ଦୁଇଦିଗେ ବହି । ପଞ୍ଚିଶଚିତ୍ର ଗୃହ ଯହିଁ ॥ ୧୯
ଯା କଥା ବିଚିତ୍ର ଅଟଇ । ନ ଜାଣି ସେ ହଂସକୁ କାହିଁ ॥ ୨୦
କ୍ଷୁରରେ ବଜ୍ରରେ ନିର୍ମାଣ । ହୋଇଲା ପ୍ରାୟ ଯେ ତୀକ୍ଷଣ ॥ ୨୧
ଆପଣା ଆୟତ୍ତେ ଭ୍ରମଣ । କରେ ଯେ ତାକୁ ନ ଜାଣିଣ ॥ ୨୨
୯ ଯେ ପିତା ସର୍ବଜ୍ଞ ଅଟଇ । ସେ ଯେଉଁ ଆଜ୍ଞା ଅଛି ଦେଇ ॥ ୨୩
ସେ ଅନୁରୂପ ଆପଣାର । ତାହା ନ କରିଣ ଗୋଚର ॥ ୨୪
ନ ଜାଣି ଏତେ କଥାମାନ । କି ରୂପେ କରିବ ସର୍ଜନ ॥ ୨୫

ଶ୍ରୀଶୁକ ଉବାଚ

୧୦ ସେ ବାକ୍ୟ ଶୁଣି ଶ୍ରବଣରେ । ହର୍ଯ୍ୟଶ୍ୱମାନେ ତଦନ୍ତରେ ॥ ୨୬
ବିଚାର ଶକତି ଯହିଁରେ । ସହଜ ଅଟେ ସେ ବୁଦ୍ଧିରେ ॥ ୨୭
ନାରଦଙ୍କର କୂଟବାଣୀ । ସ୍ୱୟେଂ ବିଚାର କଲେ ପୁଣି ॥ ୨୮
୧୧ ଆପଣା ବନ୍ଧକୁ କାରଣ । ଅନାଦି ଅଟଇ ଯେ ପୁଣ ॥ ୨୯
ଲିଙ୍ଗସ୍ୱରୂପୀ ସେ ଈଶ୍ୱର[୧] । 'ଭୂମି'ଶବଦେ ସେ ପ୍ରଚାର ॥ ୩୦
ତାହାର ନାଶକୁ ନ ଚାହିଁ । ଯେ ମୋକ୍ଷ-ଉପଯୋଗୀ ନୋହି ॥ ୩୧
ସେ କର୍ମମାନଙ୍କରେ ଆନ । ଅଛି କେବଣ ପ୍ରୟୋଜନ ॥ ୩୨
୧୨ ଏକ ଅଟଇ ଯେ ଈଶ୍ୱର । ଯେ ସାକ୍ଷୀ ସକଳ ଲୋକର ॥ ୩୩
ଯେ ନିତ୍ୟମୁକ୍ତ ନିଜାଧାର । ତାହାକୁ ନ ଦେଖି ଲୋକର ॥ ୩୪
ଈଶ୍ୱରେ ଅର୍ପିତ ଯେ ନୋହି । ସେ କର୍ମେ କି କାର୍ଯ୍ୟ ଅଛଇ ॥ ୩୫
୧୩ ପାତାଳ-ଲୋକକୁ ଗମନ । କରିବା ମନୁଷ୍ୟ ଯେସନ ॥ ୩୬
ପୁଣି ଲେଉଟି ନ ଆସଇ । ସେ ମନୁଷ୍ୟର ପ୍ରାୟ ହୋଇ ॥ ୩୭
ଯାହାକୁ ପାଇଲେ ପୁରୁଷ । ସଂସାରେ ନୁହଇ ପ୍ରବେଶ ॥ ୩୮
ସେ ଜ୍ୟୋତିରୂପ ବ୍ରହ୍ମ ପର । ତାକୁ ନ ଜାଣିଲା ଲୋକର ॥ ୩୯
ସ୍ୱର୍ଗାଦିସାଧନ ଯେ ଆନ । ସେ କର୍ମେ କିବା ପ୍ରୟୋଜନ ॥ ୪୦
୧୪ ନାନାରୂପୀ ଆପଣା ମତି । ଯେସନେ କୁଳଟା ଯୁବତି ॥ ୪୧
ପ୍ରାଣୀଙ୍କି କରେ ଯେ ମୋହିତ । ସେ ଗୁଣମାନଙ୍କେ ସେ ଯୁତ ॥ ୪୨
ତାହାର ବିବେକକୁ ପୁଣି । ପାଇଲା ନାହିଁ ଯେଉଁ ପ୍ରାଣୀ ॥ ୪୩
ଅଶାନ୍ତ କର୍ମମାନଙ୍କରେ । କି କାର୍ଯ୍ୟ ତାର ଏ ସଂସାରେ ॥ ୪୪
୧୫ ତାହାର ସଙ୍ଗତେ ଯାହାର । ସ୍ୱତନ୍ତ୍ରଭାବ ହେଲା ଦୂର ॥ ୪୫
କୁତ୍ସିତଭାର୍ଯ୍ୟା-ଥିଲା ଜନ । ଯେହ୍ନେ ନ ରହେ ଏକ ସ୍ଥାନ ॥ ୪୬
ସେ-ରୂପେ ଜନମ ମରଣ । ଯେ ଲଭୁଅଛି ପୁଣ ପୁଣ ॥ ୪୭
ନ ଜାଣଇଁ ଯେ ସେ ଆତ୍ମାକୁ[୨] । ନ ବୁଝେ ତା' ଗତିମାନଙ୍କୁ ॥ ୪୮

୧. ଶରୀର । ୨. ଆତ୍ମାକୁ = ଜୀବକୁ ।

ବୁଦ୍ଧି-ଅବିବେକପ୍ରାପତ । କର୍ମରେ ତାହାର କି ଅର୍ଥ ।। ୪୯
୧୬ ଯେ ମାୟା ଆପଣା ଇଚ୍ଛାରେ । ସୃଷ୍ଟି-ପ୍ରଳୟ ଦୁଇ କରେ ।। ୫୦
ସମୁଦ୍ରସଦୃଶ ଆତ୍ମାର । ଯହିଁ ହେଉଛି ବ୍ୟବହାର ।। ୫୧
ଯେ ଦେହେ ବେଗକୁ ଯେ ଧରେ । ଜନ୍ମମରଣ ଆଦିଦ୍ୱାରେ ।। ୫୨
ଏମନ୍ତ ମାୟାକୁ ନ ଜାଣି । ମତ୍ତ ହୁଅଇ ଯେଉଁ ପ୍ରାଣୀ ।। ୫୩
ମାୟାସଂଭବ କାର୍ଯ୍ୟେ ତାର । କି ପ୍ରୟୋଜନ ହେବ ଆର ।। ୫୪
୧୭ ପଞ୍ଚବିଂଶତି ତତ୍ତ୍ୱଙ୍କର । ପୁରୁଷ ଅଦ୍ଭୁତ ଆଧାର ।। ୫୫
ଯେ କାର୍ଯ୍ୟ-କାରଣନିଚୟ । ତାହାର ଅଟେ ଯେ ଆଶ୍ରୟ ।। ୫୬
ଏମନ୍ତ ଆତ୍ମାକୁ ଗୋଚର । କରି ନ ପାରିଲା ଲୋକର ।। ୫୭
ମିଥ୍ୟା-ସ୍ୱତନ୍ତ୍ରଭାବକୃତ । କର୍ମରେ ଅଛି କେଉଁ ଅର୍ଥ ।। ୫୮
୧୮ ଯେ ଜ୍ଞାନ-ଜଡ଼ ରୂପ ଦୁଇ । ବସ୍ତୁକୁ ବିଭିନ୍ନ କରଇ ।। ୫୯
ପ୍ରତିପାଦଇ ଈଶ୍ୱରକୁ । ଦେଖାଇ ବନ୍ଧକୁ ମୋକ୍ଷକୁ ।। ୬୦
ସେ ଶାସ୍ତ୍ର ଛାଡ଼ି ମତିଭ୍ରମେ । କି କାର୍ଯ୍ୟ ବହିର୍ମୁଖ କର୍ମେ ।। ୬୧
୧୯ ଯେ ତୀକ୍ଷ୍ଣ ଅଟେ ନିଜାୟତ୍ତ । ଓଟାରେ ସକଳ ଜଗତ ।। ୬୨
ଭ୍ରମଣ କରେ ଅନୁକ୍ଷଣେ । ସେ କାଳଚକ୍ର ଯେ ନ ଜାଣେ ।। ୬୩
ଫଳରେ କରି ନିତ୍ୟମତି । କାମ୍ୟ କର୍ମ ଯା ଆଚରନ୍ତି ।। ୬୪
ବିଶେଷବିଗୁଣରୁ ତହିଁ । [1]ଅସତ କର୍ମରୁ କି ହୋଇ ।। ୬୫
୨୦ ଯେ ଶାସ୍ତ୍ର ଜନକ ଅଟଇ । ନିବୃତ୍ତି-ଅନୁରୂପ ହୋଇ ।। ୬୬
ନିବୃତ୍ତିକର ଆଜ୍ଞା ତାର । ତାହା ଯେ ନ ଜାଣଇଁ ନର ।। ୬୭
ପ୍ରବୃତ୍ତିମାର୍ଗରେ ବିଶ୍ୱାସ । ସଂଯୁତ ହୋଇ ସେ ପୁରୁଷ ।। ୬୮
ସୃଷ୍ଟି-ଆଦିରେ କି ପ୍ରକାରେ । ପ୍ରବର୍ତ୍ତଇ ସେ ଜଗତରେ ।। ୬୯
୨୧ ହେ ରାଜା ! ସେ ହର୍ଯ୍ୟଶ୍ୱମାନେ । ଏ ବ୍ୟବସାୟ[2] କରି ମନେ ।। ୭୦
ହୋଇଲେ ଏକଚିତ୍ତ ପୁଣ । ଋଷିଙ୍କି କରି ପ୍ରଦକ୍ଷିଣ ।। ୭୧
ଯହୁଁ ନିବର୍ତ୍ତେ ନାହିଁ ଜନ । କଲେ ସେ ପଥକୁ ଗମନ ।। ୭୨
୨୨ ଯେ ସ୍ୱରବ୍ରହ୍ମରେ ପ୍ରକାଶ । ହୋଇ ଅଛନ୍ତି ହୃଷୀକେଶ ।। ୭୩
ତା' ପାଦପଦ୍ମରେ ଅର୍ପିତ । କରି ଅଖଣ୍ଡ ନିଜ ଚିତ୍ତ ।। ୭୪
ସମସ୍ତ ଲୋକକୁ ଭ୍ରମଣ । କଲେକ ମୁନି ତଦନ୍ତେଣ ।। ୭୫
୨୩ ଆପଣା ଉତ୍ତମ ଚରିତେ । ଯେ ଶୋଭା ପାଉଥିଲେ ସୁତେ ।। ୭୬
ନାରଦଠାରୁ ତାହାଙ୍କର । ନାଶ[3] କୁ କରିଣ ଗୋଚର ।। ୭୭

---

୧. କ୍ଷେତ୍ରେଶବ୍ରହ୍ମବୁଦ୍ଧୀନାଂ ଜୀବମାୟାନ୍ତରାତ୍ମନାମ୍ ।
ଶାସ୍ତ୍ରକାଳୋପଦେଶାନାମଜ୍ଞାନେ କିମ୍ଭୁ କର୍ମଭିଃ ।। ଇତି
ବାଚଃ କୂଟସଂଗ୍ରହଶ୍ଳୋକଃ (ସ୍ୱାମୀ) ।

୨. ବ୍ୟବସାୟ = ନିଶ୍ଚୟ । ୩. ନାଶ = ଅଦର୍ଶନ ଅଥବା ସ୍ୱଧର୍ମଭ୍ରଂଶ ।

ଶୋଚନ୍ତେ ଏହା ନିଜମତି । ତାପ ଲଭିଲେ ପ୍ରଜାପତି ।।
ଉତ୍ତମ ପୁତ୍ର ଥିବା କଥା । ଶୋକର ସ୍ଥାନ ଏ ସର୍ବଥା ।।
୨୪ ବ୍ରହ୍ମା କରନ୍ତେ ତାଙ୍କୁ ଶାନ୍ତି । ପୁଣି ସେ ଦକ୍ଷ ପ୍ରଜାପତି ।।
ସେ ପାଞ୍ଚଜନୀଠାରେ ଜାତ । କଲା ସହସ୍ରସଂଖ୍ୟ ସୁତ ।।
ଶବଳ-ଅଶ୍ୱ[୧] ନାମେ ଖ୍ୟାତ । ଅଟନ୍ତି ସେ ସମସ୍ତ ସୁତ ।।
୨୫ ସର୍ଜନା ଅର୍ଥରେ ପ୍ରଜାଙ୍କୁ । ପିତା ଦିଅନ୍ତେ ଆଜ୍ଞା ତାଙ୍କୁ ।।
ସମସ୍ତେ ଧୃତବ୍ରତ ହେଲେ । ନାରାୟଣ ସରକୁ ଗଲେ ।।
ଆପଣା ଜ୍ୟେଷ୍ଠ ଭାଇମାନେ । ସିଦ୍ଧ ହୋଇଲେ ଯେଉଁ ସ୍ଥାନେ ।।
୨୬ ଆଚମନରୁ ସେ ଜଳର । ରାଗାଦି ମଳ ହେଲେ ଦୂର ।।
ପ୍ରଣବ ଜପନ୍ତେ ସେ ଭଲେ । ତହିଁ ପରମ ତପ କଲେ ।।
୨୭ କେତେ ହେଁ ମାସ[୨] ଜଳପାନ । କଲେ ସେ ଦକ୍ଷର ନନ୍ଦନ ।।
ତଦନ୍ତେ କେତେ ମାସ ପୁଣ । ଭକ୍ଷଣ କଲେ ସମୀରଣ ।।
ସର୍ବ ବଚନମାନଙ୍କର । ପ୍ରଭୁ ଅଟନ୍ତି ଯେ ଈଶ୍ୱର ।।
ତାହାଙ୍କୁ ଆରାଧିଲେ ନିତ୍ୟେ । ଏ ମନ୍ତ୍ର ଅଭ୍ୟାସ କରନ୍ତେ ।।
୨୮ ପ୍ରଣବରୂପୀ ନାରାୟଣ । ମହାତ୍ମା ପୁରୁଷ ଯେ ପୁଣ ।।
ଆଶ୍ରୟ ବିଶୁଦ୍ଧସତ୍ତ୍ୱର । ପରମହଂସ ଯେ ଈଶ୍ୱର ।।
ତାହାଙ୍କୁ ନମସ୍କାର, ମନେ । ଧ୍ୟାନ କରୁଛୁଁ ଆମ୍ଭେମାନେ ।।
୨୯ ଏ ରୂପେ ପ୍ରଜାସର୍ଗେ ମନ । କରିଛନ୍ତି ଯେ ନିବେଶନ ।।
ହେ ରାଜ-ଇନ୍ଦ୍ର ! ତାଙ୍କୁ ଯାଇଁ । ନାରଦ ପୂର୍ବ ପ୍ରାୟ ହୋଇ ।।
ସେହି ବଚନକୂଟମାନ । କହିଲେ ହୋଇ ସାବଧାନ ।।
୩୦ ହେ ଦକ୍ଷସୁତେ ! ତୁମ୍ଭେ ଶୁଣ । କହୁଛୁଁ ଉପଦେଶ ପୁଣ ।।
ଭ୍ରାତାଙ୍କ ଠାରେ ତୁମ୍ଭେମାନେ । ବତ୍ସଳ ଅଟ ଅନୁଦିନେ ।।
ଯେ ମାର୍ଗ ଭ୍ରାତାମାନଙ୍କର । ଅବଲୋକନ ତାହା କର ।।
୩୧ ଯେ ଭ୍ରାତା ଧର୍ମ ଜାଣିଥାଇ । ଭ୍ରାତାଙ୍କୁ ଗମନ କରଇ ।।
ସଙ୍ଗେ ମରୁତ ମାନଙ୍କର । ହରଷ ଲଭଇ ସେ ନର ।।
ତାହାର କେବଳ ସୁକୃତ । ବନ୍ଧୁରୂପରେ ଅଟେ ଖ୍ୟାତ ।।
୩୨ ହେ ନୃପ ! ଅମୋଘଦର୍ଶନ । ଅଟନ୍ତି ଯେ ବ୍ରହ୍ମାନନ୍ଦନ ।।
ଗଲେ ଏତେକମାତ୍ର ଭଣି । ସେ ଦକ୍ଷସୁତମାନେ ପୁଣି ।।
ମାର୍ଗକୁ ଭାଇମାନଙ୍କର । ଉଦ୍ଦେଶି ଗଲେ ତଦନ୍ତର ।।
୩୩ ଯେ ଅତି ଉତ୍ତମ ଅଟଇ । ପ୍ରତ୍ୟକ[୩] ବୃତ୍ତି ଲଭ୍ୟ ଯେହି ।।
ଉତ୍ତମ ପଥ ସେ ବ୍ରହ୍ମର । ତହିଁକି ଗଲେ ସେ ସତ୍ୱର ।।

---

୧. ସବନ-ଅଶ୍ୱ, ସବଳ-ଅଶ୍ୱ । ୨. କାଳ । ୩. ପ୍ରତ୍ୟକ - ପଛ (ପ୍ରତ୍ୟକ୍) ।

ଅଦ୍ୟାପି ନିବର୍ତ୍ତିଲେ ନାହିଁ । ଗଲା ରାତ୍ରିଙ୍କ ପ୍ରାୟ ହୋଇ ।। ୧୦୯
୩୪ ଏହି କାଳରେ ପ୍ରଜାନାଥ । ଦେଖନ୍ତେ ବହୁତ ଉତ୍ପାତ ।। ୧୧୦
ପୁତ୍ରଙ୍କ ଅଦର୍ଶନ ସ୍ୱୟେଂ । ନାରଦ ଋଷି ପୂର୍ବପ୍ରାୟେ ।। ୧୧୧
ରଚନା କଲେ ଏ ପ୍ରକାର । ଶ୍ରବଣ କଲେ ତଦନ୍ତର ।। ୧୧୨
୩୫ ପୁତ୍ରଶୋକରୁ ମୂର୍ଚ୍ଛା ଗଲେ । ନାରଦଙ୍କୁ ସେ କ୍ରୋଧ କଲେ ।। ୧୧୩
ଅତ୍ୟନ୍ତ କ୍ରୋଧରେ ଯାହାର । ବିଶେଷେ କମ୍ପୁଛି ଅଧର ।। ୧୧୪
[୧]ନିକଟେ ଲଭି ନାରଦଙ୍କୁ । କହିଲେ ଏମନ୍ତ ବାକ୍ୟକୁ ।। ୧୧୫

ଶ୍ରୀଦକ୍ଷ ଉବାଚ

୩୬ ତୁ ଅଟୁ ଅସାଧୁ ପୁରୁଷ । ସାଧୁଙ୍କ ପ୍ରାଏ ତୋର ବେଶ ।। ୧୧୬
ପ୍ରବର୍ତ୍ତିଥିଲେ ସ୍ୱଧର୍ମରେ । ମୋ ପୁତ୍ରମାନେ ଜଗତରେ ।। ୧୧୭
ସନ୍ନ୍ୟାସୀ-ଜନଙ୍କର ମାର୍ଗ । ତାହାଙ୍କୁ ଦେଖାଇଲୁ ଆଗ ।। ୧୧୮
୩୭ [୨]ଋଷି-ଦେବତା-ପିତୃଗଣ । ଏ ତିନିଙ୍କରି ତିନି ଋଣ ।। ୧୧୯
ଯେ ବ୍ରହ୍ମଚର୍ଯ୍ୟ, ଯଜ୍ଞ ବେନି । ପୁତ୍ର ଜନମ ମିଶି ତିନି ।। ୧୨୦
ଏ ତିନି ଋଣରୁ ମୁକତ । ହୋଇ ନ ଥିଲେ ମୋର ସୁତ ।। ୧୨୧
ବିହିତ କର୍ମମାନଙ୍କର । କରି ନ ଥିଲେ ସେ ବିଚାର ।। ୧୨୨
ହେ ପାପ ! ଉଭୟ ଲୋକର । ଶ୍ରେୟକୁ ନାଶିଲୁ ତାଙ୍କର ।। ୧୨୩
୩୮ ଏ ରୂପେ ଅଟୁ ତୁ ନିର୍ଦ୍ଦୟ । ଯେ ମତି ପୁତ୍ରାଦି ବିଷୟ ।। ୧୨୪
ଥିଲା ବାଳକମାନଙ୍କର । କଲୁ ସେ ମତିକି ନିବାର ।। ୧୨୫
ଯଶକୁ ନାଶିଲୁ ହରିର । ଲଜ୍ଜା ହିଁ ନାହିଁ ତୋହଠାର ।। ୧୨୬
ବିଷ୍ଣୁ ସେବକ ମଧ୍ୟେ ପୁଣ । କେମନ୍ତେ କରୁ ତୁ ଭ୍ରମଣ ।। ୧୨୭
୩୯ ତୋହ ବାହାରେ ଯେତେ ଆନ । ଅଛନ୍ତି ଭାଗବତ ଜନ ।। ୧୨୮
ପ୍ରାଣୀମାନଙ୍କ ଅନୁଗ୍ରହେ । ଅଧୀନ ଅଟନ୍ତି ସବିହେଁ[୩] ।। ୧୨୯
ତୁ ପ୍ରାଣୀଙ୍କର ପ୍ରୀତିହର । ଅବୈରୀଙ୍କର ବୈରକର ।। ୧୩୦
୪୦ ତୋହର ନାହିଁ ଜ୍ଞାନଲେଶ । ଧରିଛୁ ଅବଧୂତ ବେଶ ।। ୧୩୧

୧. 'ପୁତ୍ରମାନଙ୍କ ପରମାର୍ଥ ନିଷ୍ଠା ଶୁଣି ଦକ୍ଷ କାଳେ ବିରକ୍ତ ହୋଇଥିବେ' ଭାବି ନାରଦ ତାହାଙ୍କ ଅନୁଗ୍ରହ ପାଇଁ ତାଙ୍କ ପାଖକୁ ଆସିଥିଲେ ।

୨. ''ଜାୟମାନୋ ହ ବୈ ବ୍ରାହ୍ମଣସ୍ତ୍ରିଭିର୍ଋଣବାନ୍ ଜାୟତେ ବ୍ରହ୍ମଚର୍ଯ୍ୟେଣ ଋଷିଭ୍ୟୋ, ଯଜ୍ଞେନଦେବେଭ୍ୟଃ, ପ୍ରଜୟା ପିତୃଭ୍ୟଃ ଏଷ ବା ଅନୃଣୋ ଯଃ ପୁତ୍ରୀ ଯଜ୍ୱକୃତ୍ ବ୍ରହ୍ମଚାରୀ ବାସୀଦ୍ ।'' (ଶ୍ରୁତିଃ) ।
ତଥା ଚ ମନୁଃ – ଋଣାନି ତ୍ରୀଣ୍ୟପାକୃତ୍ୟ ମନୋ ମୋକ୍ଷେ ନିବେଶୟେତ୍ ।
ଅନପାକୃତ୍ୟ ମୋକ୍ଷଂ ତୁ ସେବମାନୋ ବ୍ରଜତ୍ୟଧଃ ।।

୩. ସବିହେଁ = ସଭିଏଁ (ସର୍ବେ) ।

| | | | | |
|---|---|---|---|---|
| | ଏ ରୂପେ ଚାଳନ୍ତେ ତୁ ମତି | । ଲୋକର ନୁହଇ ବିରକ୍ତିଂ[1] | ।। | ୧୩୨ |
| | ସ୍ନେହପାଶକୁ ଯେ କାଟଇ | । ସେ ଶାନ୍ତି ମଣୁଛୁ ତୁ ଯାହି | ।। | ୧୩୩ |
| ୪୧ | ବିଷୟଙ୍କର ତୀକ୍ଷ୍ଣଭାବ | । ଲୋକ ନ କରି ଅନୁଭବ | ।। | ୧୩୪ |
| | କରି ନ ପାରେ ତା' ଗୋଚର | । ସେ ଘେନି ବୁଦ୍ଧିକି ତାହାର | ।। | ୧୩୫ |
| | ଇତର ଲୋକ ଭେଦ କଲେ | । ବିରକ୍ତ ନୋହେ ସ୍ୱୟେଂ ଭଲେ | ।। | ୧୩୬ |
| ୪୨ | ଆମ୍ଭେ ଗୃହସ୍ଥାଶ୍ରମବନ୍ତ | । ସାଧୁ ହୋଇଣ ଲୋକେ ଖ୍ୟାତ | ।। | ୧୩୭ |
| | ଯେଉଁ ନ୍ୟାୟରୁ ତୁ ଆମ୍ଭର | । କର୍ମମର୍ଯ୍ୟାଦାମାନଙ୍କର | ।। | ୧୩୮ |
| | ବିପ୍ରିୟ କଲୁ ସେ କଥା ହିଁ | । ସହିଲୁଁ ସୁଦୁଃସହ ସେହି | ।। | ୧୩୯ |
| ୪୩ | ଆମ୍ଭମାନଙ୍କ ଅକଲ୍ୟାଣ | । ଯେଣୁ ତୁ ଆଚରିଲୁ ପୁଣ | ।। | ୧୪୦ |
| | ହେ ମୂଢ଼ ! ସନ୍ତତିନାଶନ | । ଭ୍ରମନ୍ତେ ସକଳ ଭୁବନ | ।। | ୧୪୧ |
| | ସେ ଘେନି କରି ସ୍ଥିର ହୋଇ | । ସ୍ଥାନକେ ରହିବୁ ତୁ ନାହିଁ | ।। | ୧୪୨ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୪ | ସାଧୁମାନଙ୍କରେ ସମ୍ମତ | । ଅଟନ୍ତି ଯେଉଁ ବ୍ରହ୍ମାସୁତ | ।। | ୧୪୩ |
| | ସେ ସେହିରୂପେ ତା' ଘେନିଲେ | । ଦକ୍ଷ ଯେବଣ ଶାପ ଦେଲେ | ।। | ୧୪୪ |
| | ସାଧୁ ଶବଦ ଏତେକ ହିଁ | । ସହେ ଯା ସ୍ୱୟେଂ ପ୍ରଭୁ ହୋଇ | ।। | ୧୪୫ |
| | ଶ୍ରୀକୃଷ୍ଣଚରଣପଙ୍କଜ | । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ।। | ୧୪୬ |
| | ଷଷ୍ଠ ସ୍କନ୍ଧକୁ ଗୀତେ ଭଣେ | । ସନ୍ତୋଷ ସାଧୁଜନେ ତେଣେ | ।। | ୧୪୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀନାରଦଶାପୋ
ନାମ ପଞ୍ଚମୋଽଧ୍ୟାୟଃ ।।

## ଷଷ୍ଠ ଅଧ୍ୟାୟ

ଷଷ୍ଠେ ଦକ୍ଷେଣ ସୃଷ୍ଟାୟାଂ କନ୍ୟାଷଷ୍ଟ୍ୟାଂ ପ୍ରକୀର୍ତ୍ତିତାଃ ।
ପୃଥଗ୍‌ବଂଶା ଯତୋ ଜାତୋ ବିଶ୍ୱରୂପୋ ଦିତେଃ ସୁତାତ୍ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ବ୍ରହ୍ମା କରନ୍ତେ ଅନୁନୟ | । ସେ ପ୍ରଚେତସଙ୍କ ତନୟ | ।। | ୧ |
| | ଅସିକ୍ନୀଠାରେ କଲେ ଜାତ | । ତଦନ୍ତେ ଷାଠିଏ ଦୁହିତ | ।। | ୨ |
| | ସେ ଦକ୍ଷଦୁହିତା ସକଳ | । ଅଟନ୍ତି ପିତାରେ ବତ୍ସଳ | ।। | ୩ |
| ୨ | ଧର୍ମକୁ ଦେଲା ସୁତା ଦଶ | । ଚନ୍ଦ୍ରକୁ ପୁଣ ସତାଇଶ | ।। | ୪ |

୧. ବିରତି ।

ଅପର ତେର ଦୁହିତାଙ୍କୁ । ପ୍ରଦାନ କଲା କଶ୍ୟପଙ୍କୁ ॥ ୫
ଯେ ଭୂତ, କୃଶାଶ୍ୱ, ଅଙ୍ଗିର । ତାହାଙ୍କୁ ଦୁଇ ଦୁଇ ଆର ॥ ୬
ଅପର ଚାରି ସୁତା ଥିଲେ । ତାଙ୍କୁ ତାର୍କ୍ଷ୍ୟଙ୍କୁ ବିଭାକଲେ ॥ ୭
ତାର୍କ୍ଷ୍ୟନାମକୁ ପୁଣ ସେହି । କଶ୍ୟପ ଋଷି ଥିଲେ ପାଇ ॥ ୮
୩ ପୁତ୍ରଙ୍କ ସହିତରେ ପୁଣ । ମୋ ଠାରୁ ତାଙ୍କ ନାମ ଶୁଣ ॥ ୯
ଯାହାଙ୍କ ପୁତ୍ରାଦିସନ୍ତାନେ । ପୂରିଲେ ଏ ତିନି ଭୁବନେ ॥ ୧୦
୪ ଭାନୁ, ଲମ୍ବା, କକୁଭ, ଘେନି । ଜାମି, ବିଶ୍ୱା, ସାଧ୍ୟା ଏ ତିନି ॥ ୧୧
ଯେ ମରୁତ୍ୱତୀ, ବସୁ, ଆର । ମୁହୂର୍ତ୍ତା, ସଂକଳ୍ପା, ଇତର ॥ ୧୨
ଏ ଦଶ ଧର୍ମର ଗୃହିଣୀ । ଶୁଣ ପୁତ୍ରଙ୍କ ନାମ ପୁଣି ॥ ୧୩
୫ ଦେବ[1] ଋଷଭ ଭାନୁସୁତ । ତହିଁରୁ ଇନ୍ଦ୍ରସେନ ଜାତ ॥ ୧୪
ହେ ନୃପ ! ଲମ୍ବାଠାରେ ଜାତ । ବିଦ୍ୟୋତନାମେ ଏକ ସୁତ ॥ ୧୫
ତାହାର ଠାରୁ ଉତପନ । ହୋଇଲେ ସ୍ତନୟିତ୍ନୁ ମାନ ॥ ୧୬
୬ କକୁଭତନୟ ସଂକଟ । ତାହାର ତନୟ କୀକଟ ॥ ୧୭
ଯେ ଭୂମି-ଦୁର୍ଗସ୍ଥାନମାନ । ଏମାନେ କୀକଟନନ୍ଦନ ॥ ୧୮
ସ୍ୱର୍ଗ ଅଟଇ ଜାମିସୁତ । ନନ୍ଦି ତା'ଠାରୁ ହେଲା ଜାତ ॥ ୧୯
୭ ବିଶ୍ୱେଦେବାଏ ବିଶ୍ୱାଠାରେ । ସମ୍ଭବ ହୋଇଲେ କ୍ରମରେ ॥ ୨୦
ତାହାଙ୍କୁ ଅପୁତ୍ର ବୋଲିଣ । ସମସ୍ତେ କରନ୍ତି ବଖାଣ ॥ ୨୧
ସାଧ୍ୟାର ଠାରେ ସାଧ୍ୟଗଣ । ତା' ସୁତ ଅର୍ଥସିଦ୍ଧି ପୁଣ ॥ ୨୨
୮ ଜୟନ୍ତ, ମରୁତ୍ୱନ୍ତ ଦୁଇ । ଜନ୍ମିଲେ ମରୁତ୍ୱତୀଠାଇଁ ॥ ୨୩
ଜୟନ୍ତନାମେ ଯେ ପ୍ରକାଶ । ସେ ଅଟେ ବାସୁଦେବ ଅଂଶ ॥ ୨୪
ଉପେନ୍ଦ୍ର ବୋଲି ଜଗତରେ । ଯାକୁ ଜାଣନ୍ତି ବିଜ୍ଞ ନରେ ॥ ୨୫
୯ ଯେ ମୌହୂର୍ତ୍ତିକ ଦେବଗଣ । ମୁହୂର୍ତ୍ତାଠାରେ ହେଲେ ପୁଣ ॥ ୨୬
ଯେ ଯାହା କାଳରେ ସମ୍ଭୂତ । ଯେ ଫଳ ତାହା ଅବିରତ ॥ ୨୭
ପ୍ରାଣୀଙ୍କି କରନ୍ତି ପ୍ରଦାନ । ଯେ ମୌହୂର୍ତ୍ତିକ ଦେବମାନ ॥ ୨୮
୧୦ ସଂକଳ୍ପ ସଂକଳ୍ପାର ସୁତ । ସଂକଳ୍ପଠାରୁ କାମ ଜାତ ॥ ୨୯
ବସୁନାମରେ ଯେ ବିଦିତ । ଅଷ୍ଟ ବସୁଏ ତାର ସୁତ ॥ ୩୦
ନାମକୁ ଅଷ୍ଟ ବସୁଙ୍କର । ମୋଠାରୁ କର ତୁ ଗୋଚର ॥ ୩୧
୧୧ ଯେ ଦ୍ରୋଣ, ପ୍ରାଣ, ଧ୍ରୁବ ତିନି । ଅର୍କ, ଅଗ୍ନିକି ପୁଣ ଘେନି ॥ ୩୨
ବେନି କୁମର ଦୋଷ, ବସୁ[2] । ଅଷ୍ଟମ ନାମ ବିଭାବସୁ ॥ ୩୩
ଦ୍ରୋଣର ଭାର୍ଯ୍ୟା ଅଭିମତି । ତାଠାରୁ ହୋଇଲେ ଉତ୍ପତ୍ତି ॥ ୩୪
ହରଷ, ଶୋକ, ଭୟ ପୁଣ । ଏ ଆଦି ହୋଇ ଯେତେ ଗୁଣ[3] ॥ ୩୫

୧. ବେଦ । ୨. ବାସ୍ତୁ । ୩. ଗଣ ।

୧୨ ପ୍ରାଣର ଭାର୍ଯ୍ୟା ଉର୍ଜସ୍ୱତୀ । ତାଠାରୁ ହୋଇଲେ ଉତ୍‌ପତ୍ତି ॥ ୩୬
ସହ, ଆୟୁଷ ବୋଲି ବେନି । ପୁରୋଜବକୁ ଘେନି ତିନି ॥ ୩୭
ଧ୍ରୁବର ଗୃହିଣୀ ଧରଣୀ । ଜନମ କଲା ସେହୁ ପୁଣି ॥ ୩୮
ବିବିଧ ପୁରମାନଙ୍କର । ଯେଉଁ ଦେବତାଏ ଈଶ୍ୱର ॥ ୩୯
୧୩ ଅର୍କଭାର୍ଯ୍ୟା ବାସନା ଖ୍ୟାତ । ତର୍ଷଆଦିଏ ତାର ସୁତ ॥ ୪୦
ବସୋର୍ଧାରା ଭାର୍ଯ୍ୟା ଅଗ୍ନିର । ଦ୍ରବିଣକାଦି ପୁତ୍ର ତାର ॥ ୪୧
୧୪ ଯେ ସ୍କନ୍ଦ କୃତ୍ତିକାର ସୁତ । ସେହି ଅଗ୍ନିର ପୁତ୍ର ଖ୍ୟାତ ॥ ୪୨
ବିଶାଖ-ଆଦି ଯେ ନନ୍ଦନ । ସ୍କନ୍ଦର ଠାରୁ ସେ ଉତ୍ପନ୍ନ ॥ ୪୩
ଦୋଷର ଶର୍ବରୀ ଗୃହିଣୀ । ସେ ଯାହା ଜନ୍ମ କଲା ପୁଣି ॥ ୪୪
ତାହାର ନାମ ଶିଶୁମାର । କଳା ଅଟଇ ସେ ବିଷ୍ଣୁର ॥ ୪୫
୧୫ ବସୁ[1] ର ଆଙ୍ଗିରସୀ ନାରୀ । ଯେ ପୁତ୍ର ଅଟଇ ତାହାରି ॥ ୪୬
ବିଶ୍ୱକର୍ମା ନାମ ତାହାର । ସେ ପତି ଶିଳ୍ପୀମାନଙ୍କର ॥ ୪୭
ଚାକ୍ଷୁଷ ମନୁ ତାର ସୁତ । ବିଶ୍ୱେସାଧ୍ୟା[2] ତାଠାରୁ ଜାତ ॥ ୪୮
୧୬ ବିଭାବସୁର ଠାରୁ ଜାତ । ଉଷା କଲାକ ତିନି ସୁତ ॥ ୪୯
ବ୍ୟୁଷ୍ଟ, ରୋଚିଷ ନାମେ ବେନି । ଆତପ ମିଶି ହୋଏ ତିନି ॥ ୫୦
ଆତପୁଁ ଦିବସ ସଂଭୂତ । ସେ ପଞ୍ଚଯାମ ନାମେ ଖ୍ୟାତ ॥ ୫୧
ପ୍ରାଣୀଏ ଯେଉଁ ଦିବସରେ । ଜାଗ୍ରତ ହୁଅନ୍ତି କର୍ମରେ ॥ ୫୨
୧୭ ଭୂତର ଭାର୍ଯ୍ୟା ଯେ ଅଟଇ । ସରୂପା ନାମେ ଖ୍ୟାତ ସେହି ॥ ୫୩
ଯେ କୋଟିସଂଖ୍ୟ ରୁଦ୍ରଗଣ । ତାଙ୍କୁ ସେ ଜାତ କଲା ପୁଣ ॥ ୫୪
ରୈବତ, ଅଜ, ଭବ, ଭୀମ । ଯେ ଉଗ୍ର ବୃଷାକପି ବାମ[3] ॥ ୫୫
୧୮ ଯେ ବହୁରୂପ ଯେ ମହାନ । ଅଜୈକପାଦ ଅହିର୍ବୁଧ୍ନ୍ୟ ॥ ୫୬
ରୁଦ୍ରର ପାରିଷଦ ଘୋର । ଯେ ପ୍ରେତ ବିନାୟକ ଆର ॥ ୫୭
ସେମାନେ ଆନ ଭାର୍ଯ୍ୟାଠାରେ । ଜନମ ହୋଇଲେ କ୍ରମରେ ॥ ୫୮
୧୯. ଯେ ଅଙ୍ଗିରସ ପ୍ରଜାପତି । ସ୍ୱଧାନାମରେ ତା' ଯୁବତି ॥ ୫୯
ପିତୃଙ୍କୁ ପୁତ୍ରଭାବେ କଲା । ଯେ ସତୀ ଆନ ଭାର୍ଯ୍ୟା ଥିଲା ॥ ୬୦
ପୁତ୍ରଭାବରେ କଲା ସେହି । ଅଥର୍ବାଙ୍ଗିର ବେଦ ଯେହି ॥ ୬୧
୨୦ କୃଶାଶ୍ୱ ନାମେ ଯେ ବିଦିତ । ତା' ଭାର୍ଯ୍ୟା ଅର୍ଚ୍ଚି ନାମେ ଖ୍ୟାତ ॥ ୬୨
ତା'ଠାରେ କଲା ସେ ଜନମ । ତାହାର ଧୂମ୍ରକେଶ[4] ନାମ ॥ ୬୩
ଧିଷଣାନାମେ ଭାର୍ଯ୍ୟା ଆର । ଚାରିତନୟ ତାହାଠାର ॥ ୬୪
ଦେବଳ ଏକ ବେଦଶିର । ମନୁ ବୟୁନ ନାମେ ଆର ॥ ୬୫
୨୧ ଯେ କଦ୍ରୁ, ପତଙ୍ଗୀ, ଯାମିନୀ । ବିନତା ତାର୍କ୍ଷ୍ୟର କାମିନୀ ॥ ୬୬

---

୧. ବାସ୍ତୁ । ୨. ବିଶ୍ୱସାଧ୍ୟ, ବିଶ୍ୱେସାଧ୍ୟା । ୩. ନାମ । ୪. ଧୂମକେତୁ ।

ପତଙ୍ଗୀ ପତଙ୍ଗମାନଙ୍କୁ । ଯାମିନୀ ପୁଣ ଶଲଭଙ୍କୁ ॥
୨୨ ସୁପର୍ଣ୍ଣା ବିନତାର ନାମ । କଲା ଗରୁଡ଼ଙ୍କୁ ଜନମ ॥
ବିଷ୍ଣୁର ବାହନ ସାକ୍ଷାତ । ଅଟେ ଯେ ଗରୁଡ଼ ବିଦିତ ॥
ସୂର୍ଯ୍ୟସାରଥି ଯେ ଅରୁଣ । ତାହାକୁ ଜାତ କଲା ପୁଣ ॥
କଦ୍ରୁନାମେ ଯେ ଭାର୍ଯ୍ୟା ଆନ । ଅନେକ ନାଗ କଲା ଜନ୍ମ ॥
୨୩ କୃତ୍ତିକା ଆଦି ତାରାମାନ । ଇନ୍ଦୁର ପତ୍ନୀ ବିଦ୍ୟମାନ ॥
ହେ ନୃପ ! ରୋହିଣୀର ଠାଏ । ପ୍ରେମ କରନ୍ତେ ଅତିଶୟେ ॥
ଉପେକ୍ଷା କରନ୍ତେ ଆନଙ୍କୁ । ଦକ୍ଷ କୁପିତ ହେଲେ ତା'ଙ୍କୁ ॥
ଦକ୍ଷଶାପରୁ କ୍ଷୟରୋଗେ । ପୀଡ଼ିତ ହୋଇଲା ସେ ବେଗେ ॥
ସେ ତେଣୁ ଭାର୍ଯ୍ୟାଙ୍କର ଠାରେ । ଅପୁତ୍ର ହୋଇଲା ସଂସାରେ ॥
୨୪ ଦକ୍ଷକୁ କରାଇ ପ୍ରସନ୍ନ । ପୁଣି ଲଭିଲା କଳାମାନ ॥
ଯେଉଁ କଳାଏ କୃଷ୍ଣପକ୍ଷେ । ଖଣ୍ଡିତ ହୁଅନ୍ତି ପ୍ରତ୍ୟକ୍ଷେ ॥
୨୫ ଯେ ଲୋକମାନଙ୍କର ମାତା । ଅଟନ୍ତି କଶ୍ୟପ-ବନିତା ॥
ଯାହାଙ୍କ ଠାରୁ ଏ ଜଗତ । ପ୍ରଥମେ ହୋଇଛି ସଂଭୂତ ॥
ନାମକୁ ତାହାଙ୍କର ପୁଣ । ଏବେ ହୋ କରସି ଶ୍ରବଣ ॥
ପ୍ରାଣୀମାନଙ୍କର କଲ୍ୟାଣ । କରନ୍ତି ଯେଉଁ ନାମେ ପୁଣ ॥
୨୬ ଅଦିତି, ଦିତି, ଦନୁ ତିନି । କାଷ୍ଠା, ଅରିଷ୍ଟା ପୁଣ ବେନି ॥
ସୁରସା, ଇଳା ମୁନି ପୁଣି । କ୍ରୋଧବଶା, ତାମ୍ରା ତରୁଣୀ ॥
ସୁରଭି, ସରମା ପ୍ରକାଶ । ତିମି ସହିତେ ତ୍ରୟୋଦଶ ॥
୨୭ ଯେତେକ ଜଳଜନ୍ତୁମାନ । ତିମିର ଠାରୁ ସେ ଉତ୍ପନ୍ନ ॥
ଯେତେ ଶ୍ୱାପଦ ଜନ୍ତୁମାନ । ସେମାନେ ସରମାନନ୍ଦନ ॥
ଗାଈ ମହିଁଷୀ ଯେବା ଆନ । ଯେତେ ଦ୍ୱିଶଫ[1] ଜନ୍ତୁମାନ ॥
ହେ ନୃପ ! ସୁରଭିର ସୁତ । ସେମାନେ ଅଟନ୍ତି ବିଦିତ ॥
୨୮ ଶ୍ୟେନ, ଗୃଧ୍ରକୁ ଆଦି ଯେତେ । ତାମ୍ରାର ସୁତ ସେ ସମସ୍ତେ ॥
ମୁନିର ଠାରୁ ହେଲେ ଜାତ । ଅପ୍ସରାଗଣ ଯେ ବିଦିତ ॥
ହେ ନୃପ ! କ୍ରୋଧବଶାସୁତ । ଯେ ଦନ୍ଦଶୂକ ସର୍ପ ମତ ॥
୨୯ ଇଳାର ସୁତ ବୃକ୍ଷମାନେ । ସୁରସାସୁତ ଯାତୁଧାନେ[2] ॥
ଗନ୍ଧର୍ବେ ଅରିଷ୍ଟାର ଠାରେ । କାଷ୍ଠାରେ ଦ୍ୱିଶଫୁଁ ଇତରେ[3] ॥
ଦନୁର ଏକଷଠି ସୁତ । ତାହାଙ୍କ ମଧ୍ୟେ ଯେ ବିଦିତ ॥
ସେମାନଙ୍କର ନାମ ପୁଣ । କହିବା ସାବଧାନେ ଶୁଣ ॥

---

୧. ଦ୍ୱିଶଫ = ଦୁଇ ଖୁରା ଥିବା । ୨. ଯାତୁଧାନେ = ଅସୁରମାନେ । ୩. ଇତରେ = ଅନ୍ୟମାନେ ।

୩୦ ୩୧ ଦ୍ୱିମୂର୍ଦ୍ଧା, ଅରିଷ୍ଟ, ଶମ୍ବର । ଯେ ଅୟୋମୁଖ, ଶଙ୍କୁଶିର ।। ୯୭
ସ୍ୱର୍ଭାନୁ, କପିଳ, ଅରୁଣ । ପୁଲୋମା, ହୟଗ୍ରୀବ ପୁଣ ।। ୯୮
ବିଭାବସୁ ନାମେ ଯେ ଆନ । ଏକଚକ୍ର, ଅନୁତାପନ ।। ୯୯
ଯେ ବୃଷପର୍ବା, ଧୂମ୍ରକେଶ । ବିରୂପାକ୍ଷ ମିଶି ଷୋଡ଼ଶ ।। ୧୦୦
ଦୁର୍ଜୟ, ବିପ୍ରଚିତ୍ତି ଆର । ଏରୂପେ ଅଠର କୁମର ।। ୧୦୧
୩୨ ସ୍ୱର୍ଭାନୁକନ୍ୟା ଅନୁପମ । ସୁପ୍ରଭା ଅଟଇ ତା' ନାମ ।। ୧୦୨
ନମୁଚି ନାମେ ଦୈତ୍ୟ ଥିଲା । ତାହାକୁ ବିବାହ ସେ ହେଲା ।। ୧୦୩
ଶର୍ମିଷ୍ଠା ନାମରେ ବିଦିତ । ଯେ ବୃଷପର୍ବାର ଦୁହିତ ।। ୧୦୪
ବଳିଷ୍ଠ ନହୁଷ-ନନ୍ଦନ[1] । ତାହାକୁ ବିଭା ହେଲା ପୁଣ ।। ୧୦୫
୩୩ ଯେ ବୈଶ୍ୱାନର ଦନୁସୁତ । ସୁନ୍ଦର ତା ଚାରି ଦୁହିତ ।। ୧୦୬
ଉପଦାନବୀ, ହୟଶିରା । ପୁଲୋମା, କାଳକା ଅପରା ।। ୧୦୭
୩୪ ୩୫ ଉପଦାନବୀକି ପ୍ରତ୍ୟକ୍ଷ । ବିବାହ ହେଲା ହିରଣ୍ୟାକ୍ଷ ।। ୧୦୮
ଯେ ହୟଶିରା ନାମେ ଥିଲା । ତାହାକୁ କ୍ରତୁ ବିଭା ଦେଲା ।। ୧୦୯
ପୁଲୋମା, କାଳକା ଯେ ବେନି । ବଇଶ୍ୱାନରର ନନ୍ଦିନୀ ।। ୧୧୦
ବ୍ରହ୍ମାଙ୍କ ବାକ୍ୟେ ବଶ ହୋଇ । କଶ୍ୟପ ବିଭା ହେଲେ ତାହି ।। ୧୧୧
ପୌଲୋମ, କାଳକେୟ ହୋଇ । ଦାନବ ସମ୍ଭବିଲେ ତହିଁ ।। ୧୧୨
ସେ ସମସ୍ତେ ହିଁ ବଳିଆର । ଯୁଦ୍ଧରେ ଅଟନ୍ତି ଚତୁର ।। ୧୧୩
୩୬ ସେ ଦୁଇ ଭାର୍ଯ୍ୟାରେ ସମ୍ଭବ । ଷାଠିଏ ସହସ୍ର ଦାନବ ।। ୧୧୪
ସେମାନେ ସମସ୍ତେ ରାଜନ । କରନ୍ତି ଯଜ୍ଞବିନାଶନ ।। ୧୧୫
[2]ତୋହର ପିତାର ଜନକ । ଇନ୍ଦ୍ରର ପ୍ରିୟପାଇଁ ଏକ ।। ୧୧୬
ହୋଇ ସେମାନଙ୍କୁ ମାଇଲା । ପୂର୍ବେ ସ୍ୱର୍ଗକୁ ଯାଇଥିଲା ।। ୧୧୭
୩୭ ଯେ ବିପ୍ରଚିତ୍ତି ଦନୁସୁତ । ସିଂହିକାଠାରେ କଲା ଜାତ ।। ୧୧୮
ଏକ-ଉତ୍ତର ଶତେ ସୁତ । ରାହୁ ବରିଷ୍ଠ କେତୁଶତ ।। ୧୧୯
ଗ୍ରହଭାବକୁ ଯେଉଁମାନେ । ପୂର୍ବେ ଲଭିଲେ ଏ ଭୁବନେ ।। ୧୨୦
୩୮ ଏବେ ଅଦିତିବଂଶ ଶୁଣ । କହିବା ଅନୁକ୍ରମେ ପୁଣ ।। ୧୨୧
ଯହିଁରେ ନାରାୟଣ ଦେବ । ନିଜାଂଶେ ହୋଇଲେ ସଂଭବ ।। ୧୨୨
୩୯ ବିବସ୍ୱାନ, ଅର୍ଯ୍ୟମା ବେନି । ପୂଷା, ତ୍ୱଷ୍ଟା, ସବିତା ତିନି ।। ୧୨୩
ଭଗ, ଧାତା, ବିଧାତା ଆର । ବରୁଣ, ମିତ୍ର ଯେ ଇତର ।। ୧୨୪
ଯେ ଶକ୍ର, ଉରୁକ୍ରମ ଆନ । ଏରୂପେ ଦ୍ୱାଦଶ ନନ୍ଦନ ।। ୧୨୫
୪୦ ଯେ ଶ୍ରାଦ୍ଧଦେବ ମନୁ ନାମ । ବିବସ୍ୱତଙ୍କ ଠାରୁ ଜନ୍ମ ।। ୧୨୬
କଲା ତାହାଙ୍କୁ ସଂଜ୍ଞା ଆଗ । ପୁଣି ଯମଳ ମହାଭାଗ ।। ୧୨୭
ସେ ଯମଳରେ ଯମ ଏକ । ଯମୁନା ଅଟଇ ଆରକ ।। ୧୨୮

୧. ନହୁଷ-ନନ୍ଦନ = ଯଯାତି । ୨. ଅର୍ଜୁନ ।

ଭୂମିରେ ବଡ଼ବା ସେ ହୋଇ । ଜାତକଲା ନାସତ୍ୟ[1] ଦୁଇ ॥ ୧୨୯
୪୧ ଛାୟା ନାମେ ଯେ ଭାର୍ଯ୍ୟା ଥିଲା । ସେ ଶନୈଶ୍ଚରଙ୍କୁ ଲଭିଲା ॥ ୧୩୦
ତଦନ୍ତେ ସାବର୍ଣ୍ଣି ମନୁଙ୍କୁ । ଲଭିଲା ତପତୀ କନ୍ୟାକୁ ॥ ୧୩୧
ସଂବରଣକୁ ଯେ ତପତୀ । ଲଭିଲା କରି ନିଜ ପତି ॥ ୧୩୨
୪୨ ମାତୃକା ପତ୍ନୀ ଅର୍ଯ୍ୟମାର । ହେଲେ ସେ ଦୁହିଁଙ୍କ କୁମର ॥ ୧୩୩
ଚର୍ଷଣି ନାମେ ସେ ବିଦିତ । କୃତ-ଅକୃତଜ୍ଞାନବନ୍ତ ॥ ୧୩୪
ମନୁଷ୍ୟଜାତିକି ପୂର୍ବରେ । ବିଧାତା କଳ୍ପିଲା ଯହିଁରେ ॥ ୧୩୫
୪୩ ପୂଷାର ନ ଜନ୍ମିଲା ସୁତ । ପୂର୍ବେ ଯେ ହେଲା ଭଗ୍ନଦନ୍ତ ॥ ୧୩୬
ପିଷ୍ଟ କରଇ ସେ ଭକ୍ଷଣ । ଯେ ଦନ୍ତମାନ ପ୍ରକାଶିଣ ॥ ୧୩୭
ହସିଲା ସେ ମହାଦେବଙ୍କୁ । ଯେ କୋପିଥିଲେ ସେ ଦକ୍ଷକୁ ॥ ୧୩୮
୪୪ ଅନୁଜା ଅଟଇ ଦୈତ୍ୟର । କନ୍ୟା ରୋଚନା ନାମ ଯାର ॥ ୧୩୯
ତ୍ୱଷ୍ଟା ନାମରେ ଯେ ଆଦିତ୍ୟ । ତାର ସେ ବନିତା ସଂଭୂତ ॥ ୧୪୦
ତହିଁରୁ ସନ୍ନିବେଶ ଜାତ । ଯେ ବିଶ୍ୱରୂପ ବୀର୍ଯ୍ୟବନ୍ତ ॥ ୧୪୧
୪୫ ଯଦ୍ୟପି ଶତ୍ରୁମାନଙ୍କର । ଅଟେ ସେ ଭଗିନୀକୁମର ॥ ୧୪୨
ତାହାକୁ ପୁରୋହିତପଣେ । ବରଣ କଲେ ସୁରଗଣେ ॥ ୧୪୩
ଯେ ବୃହସ୍ପତି ପୁରୋହିତ । କରନ୍ତେ ସେ ଦେବଙ୍କୁ ତ୍ୟକ୍ତ ॥ ୧୪୪
କୃଷ୍ଣଚରଣପଦ୍ମ ଚିନ୍ତି । ସଂତୋଷ ଦୀନବନ୍ଧୁମତି ॥ ୧୪୫

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଦକ୍ଷକନ୍ୟାବଂଶୋ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମ ଅଧ୍ୟାୟ

ସପ୍ତମେ ବିଶ୍ୱରୂପୋଽସୌ ପୌରୋହିତ୍ୟେ ବୃତଃ ସୁରୈଃ ।
ଗୁରୁଣା ସଂପରିତ୍ୟକ୍ତୈଃ ପୌରୋହିତ୍ୟମଥାକରୋତ୍ ॥ ୧

ଶ୍ରୀରାଜୋବାଚ

୧ ଆପଣା ଶିଷ୍ୟ ଯେ ଅଟନ୍ତି । ସେ ଦେବତାଙ୍କୁ ବୃହସ୍ପତି ॥ ୧
ଛାଡ଼ିଲେ ଯେବଣ ହେତୁରେ । ଯେ ଅପରାଧ ଗୁରୁଠାରେ ॥ ୨
ଶିଷ୍ୟମାନଙ୍କର ସଂଭୂତ । ଏହା କହ ହେ ଭଗବନ୍ତ ॥ ୩

ଶ୍ରୀବାଦରାୟଣିରୁବାଚ

୨-୫ ତିନିଭୁବନପ୍ରଭୁପଣେ । ଯେ ମଦ ସଂଭବିଲା ତେଣେ ॥ ୪
ଲଙ୍ଘିଲା ସାଧୁମାନଙ୍କର । ସାଧୁପନ୍ଥକୁ ପୁରନ୍ଦର ॥ ୫

---
୧. ନାସତ୍ୟ = ଅଶ୍ୱିନକୁମାର, ଦସ୍ର ।

ମରୁତ, ବସୁ, ରୁଦ୍ରଗଣ । ଆଦିତ୍ୟ, ଋଷିଏ ଯେ ପୁଣ ।। ୬
ନାସତ୍ୟ, ବିଶ୍ୱେଦେବା ଆନେ । ବେଢ଼ି ଅଛନ୍ତି ସାଧ୍ୟମାନେ ।। ୭
ଯେ ସିଦ୍ଧ, ଗନ୍ଧର୍ବ, ଚାରଣ । ଯେ ବ୍ରହ୍ମବାଦୀ ମୁନିଗଣ ।। ୮
ଯେ ଅପସରା, ବିଦ୍ୟାଧର । ପତଙ୍ଗ, ଉରଗ, କିନ୍ନର ।। ୯
କରନ୍ତେ ଇନ୍ଦ୍ରଙ୍କୁ ସେ ସ୍ତୁତି । ହେ ନୃପ ! ସେବା କରୁଛନ୍ତି[1] ।। ୧୦
ଲଳିତ କରିଣ ସେମାନେ । ଗାଉ ଅଛନ୍ତି ସନ୍ନିଧାନେ ।। ୧୧
ସଭାରେ ସିଂହାସନ ଯେହି । ନିବାସ କରିଛନ୍ତି ତହିଁ ।। ୧୨
୬ ଚନ୍ଦ୍ରମଣ୍ଡଳପ୍ରାୟ ହୋଇ । ଯେ ଶ୍ୱେତଛତ୍ର ଶୋଭା ପାଇ ।। ୧୩
ଚାମର, ବ୍ୟଜନାଦି ଆନ । ଯେ ଅବା ମହାରାଜଚିହ୍ନ ।। ୧୪
ତେଣେ ସେ ଅଟନ୍ତି ସଂଯୁତ । ଯେ ଅର୍ଦ୍ଧ ଆସନରେ ସ୍ଥିତ ।। ୧୫
ସେ ଶଚୀସଙ୍ଗେ ଅତିଶୟେ । ବିରାଜି ଅଛନ୍ତି ସଭାଏ ।। ୧୬
୭} ପରମ ଗୁରୁ ଦେବଙ୍କର । ଯେ ଗୁରୁ ଅଟେ ଆପଣାର ।। ୧୭
୮} ଯେ ମୁନିମାନଙ୍କରେ ବର । ଯାକୁ ନମନ୍ତି ସୁରାସୁର ।। ୧୮
ସେ ବୃହସ୍ପତି ସଭାତଳେ । ମିଳନ୍ତେ, ତାଙ୍କୁ ଯେତେବେଳେ ।। ୧୯
ସେ ଇନ୍ଦ୍ର ପାଛୋଟି ଆସିଣ । ଆସନ ଆଦିରେ ତକ୍ଷଣ ।। ୨୦
[2]ତାଙ୍କୁ ଆନନ୍ଦେ ନ ପାଇଲେ । ସେ ଆସି ସଭାରେ ମିଳିଲେ ।। ୨୧
ଇନ୍ଦ୍ର ଦେଖନ୍ତେ ହେଁ ଏମନ୍ତ । ଆସନୁଁ ନୋହିଲେ ଚଳିତ ।। ୨୨
୯ ସେ ପ୍ରଭୁ ଅଙ୍ଗିରାଙ୍କ ସୁତ । ଅଟନ୍ତି ମହା ଜ୍ଞାନବନ୍ତ ।। ୨୩
ସଂପତ୍ତିମଦେ ଯେ ବିକାର । ସେ କଥା କରନ୍ତେ ଗୋଚର ।। ୨୪
ତହୁଁ ଲେଉଟି ମୌନ ହୋଇ । ବେଗେ ମିଳିଲେ ଗୃହେ ଯାଇଁ ।। ୨୫
୧୦ ଗୁରୁ-ଅବଜ୍ଞା ଆପଣାର । ଜାଣି ସେକାଳେ ପୁରନ୍ଦର ।। ୨୬
ସ୍ୱୟେଂ ଆପଣାକୁ ମନରେ । ନିନ୍ଦାକୁ କଲେ ସେ ସଭାରେ ।। ୨୭
୧୧ ଏ ଅତି ଅଦ୍ଭୁତ ଚରିତ । ଅସାଧୁ ଅଟଇ ମୋ' କୃତ ।। ୨୮
ଅଳପବୁଦ୍ଧି ଅଟେ ମୁହିଁ । ଅଇଶ୍ୱର୍ଯ୍ୟରେ ମତ୍ତ ହୋଇ ।। ୨୯
ଯେଣୁ ସଭାରେ ତିରସ୍କାର । କଲି ଗୁରୁକୁ ଆପଣାର ।। ୩୦
୧୨ ଇନ୍ଦ୍ରସଂପତ୍ତି ହିଁ ମନରେ । କେଉଁ ପଣ୍ଡିତ ଇଚ୍ଛା କରେ ।। ୩୧
ସାତ୍ତ୍ୱିକ ଅଟନ୍ତି ଯେ ସୁର । ହେଲେ ହେଁ ମୁଁ ତାଙ୍କ ଈଶ୍ୱର ।। ୩୨
ଯେବଣ ସଂପତ୍ତିରେ ମୁହିଁ । ଅସୁରଭାବ ଲଭିଲଇଁ ।। ୩୩
୧୩ ରାଜ-ଆସନେ ବସିଥାଇ । ଉଠିବ ନାହିଁ କାହାକୁ ହିଁ ।। ୩୪
ଏମନ୍ତ ବୋଲନ୍ତି ଯେ ପ୍ରାଣୀ । ପରମ ଧର୍ମ ସେ ନ ଜାଣି ।। ୩୫

---

୧. କରିଛନ୍ତି । ୨. ଅର୍ଥାତ୍ ଆଦର କଲେ ନାହିଁ ।

୧୪ ସେମାନେ କୁପଥ କହନ୍ତି । ପାପରେ ନରକେ ପଡ଼ନ୍ତି ।। ୩୬
ସେ ଲୋକମାନଙ୍କ ବଚନ । ଶ୍ରଦ୍ଧା କରନ୍ତି ଯେଉଁଜନ ।। ୩୭
ପାଷାଣ ନାବ ଯେ କରଇ । ସେ ଯେଉଁ ପ୍ରକାରେ ବୁଡ଼ଇ ।। ୩୮
ସେ ଲୋକେ ସେହି ପରକାରେ । ବୁଡ଼ନ୍ତି ଘୋର ନରକରେ ।। ୩୯
୧୫ ଅଗାଧ ଅଟେ ବୁଦ୍ଧି ଯାର । ସେ ବିପ୍ର ଗୁରୁ ସୁରଙ୍କର ।। ୪୦
ମସ୍ତକେ ତାହାଙ୍କ ଚରଣ । ସ୍ପରଶ କରନ୍ତେ ତକ୍ଷଣ ।। ୪୧
ମୁଁ ହୋଇ ଶଠଭାବହୀନ । ତାଙ୍କୁ କରାଇବି ପ୍ରସନ୍ନ ।। ୪୨
୧୬ ସେ ଇନ୍ଦ୍ର ଚିନ୍ତନ୍ତେ ଏମନ୍ତ । ଅମରଗୁରୁ ଭଗବନ୍ତ ।। ୪୩
ସଦନୁଁ ଅଧ୍ୟାତ୍ମମାୟାରେ । ଅଦୃଶ୍ୟ ହୋଇଲେ ସତ୍ୱରେ ।। ୪୪
୧୭ ଦେବଙ୍କ ସଙ୍ଗତରେ ଯୁତ । ହୋଇଣ ଇନ୍ଦ୍ର ଭଗବନ୍ତ ।। ୪୫
ଗୁରୁଙ୍କୁ ଜାଣିମା ନିମିତ୍ତେ । ଯେ ଉପାୟ ତା' ନାନାମତେ ।। ୪୬
ପରୀକ୍ଷା କରନ୍ତେ ସର୍ବଥା । ଜାଣି ନ ପାରିଲେ ସେ କଥା ।। ୪୭
ଧ୍ୟାନ କରନ୍ତେ ମୌନ ହୋଇ । ଯେ ସୁଖ ନ ଲଭିଲେ ତାହି ।। ୪୮
୧୮ ଅସୁରେ ଶୁଣି ସେ ବୃତ୍ତାନ୍ତ । ଆଶ୍ରୟ କରି ଶୁକ୍ରମତ ।। ୪୯
ଉଦ୍ୟମ କଲେ ଦେବତାଙ୍କୁ । ଲକ୍ଷ୍ୟ କରିଣ ଯୁଝିବାକୁ ।। ୫୦
ଦୁର୍ମଦ ଅଟନ୍ତି ସମସ୍ତେ । ଆୟୁଧ ଧରିଛନ୍ତି ହସ୍ତେ ।। ୫୧
୧୯ ସେ ଦୈତ୍ୟେ ବିନ୍ଧିଲେ ଯେବଣ । ତୀକ୍ଷ୍ଣ ଶରଙ୍କୁ ତେଣେ ପୁଣ ।। ୫୨
ଛିଡ଼ିଲା ଦେବମାନଙ୍କର । ଯେ ବାହୁ, ଉରୁ, କଳେବର[1] ।। ୫୩
ଇନ୍ଦ୍ରଙ୍କୁ ସଙ୍ଗତେ ଘେନିଣ । ବ୍ରହ୍ମାଙ୍କୁ ଗଲେ ସେ ଶରଣ ।। ୫୪
ଭକ୍ତିଭାବରୁ ତାହାଙ୍କର । ବିନମ୍ର ହୋଇଛି କନ୍ଧର ।। ୫୫
୨୦ ତେମନ୍ତ ପ୍ରକାରେ ପୀଡ଼ିତ । ହୋଇ ଅଛନ୍ତି ସେ ସମସ୍ତ ।। ୫୬
ତାହାଙ୍କୁ ଦେଖି ଭଗବାନ । ଯେ ଅଜ କମଳଆସନ ।। ୫୭
ପରମ କୃପାରେ ବଚନ । କହିଲେ କରନ୍ତେ ସାନ୍ତ୍ୱନ ।। ୫୮

ଶ୍ରୀବ୍ରହ୍ମୋବାଚ

୨୧ ହେ ସୁରଶ୍ରେଷ୍ଠ ! ଏ ଅଦ୍ଭୁତ । କଲ ଅଭଦ୍ରକୁ ଅତ୍ୟନ୍ତ ।। ୫୯
ତପସ୍ୟା କ୍ଳେଶକୁ ଯେ ସହି । [2]ବ୍ରହ୍ମିଷ୍ଠ ବ୍ରାହ୍ମଣ ଅଟଇ ।। ୬୦
ଅଇଶ୍ୱର୍ଯ୍ୟରୁ ମତ୍ତ ହେଲ । ତାଙ୍କୁ ଆନନ୍ଦ ନ ପାଇଲ ।। ୬୧
୨୨ ଯେବଣ ଶତ୍ରୁମାନଙ୍କର । ତୁମ୍ଭେ ସମସ୍ତେ ପ୍ରାଣହର ।। ୬୨
ତୁମ୍ଭେ ସମୃଦ୍ଧ ସେହୁ କ୍ଷୀଣ । ସେମାନଙ୍କର ଠାରୁ ପୁଣ ।। ୬୩

---

୧. କଳେବର (ମୂଳ ଶବ୍ଦ 'ଅଙ୍ଗ') = ଉତ୍ତମାଙ୍ଗ ଅର୍ଥାତ୍ ଶିର (ସ୍ୱାମୀ) ।
୨. ବ୍ରାହ୍ମଣଂ କୁଳସଂପନ୍ନଂ ଭକ୍ତଂ ବିଷ୍ଣୋର୍ମହାତ୍ମନଃ ।
ଆୟାନ୍ତଂ ବୀକ୍ଷ୍ୟ ନୋତ୍ତିଷ୍ଠେଦ୍ ସ ଦୁଃଖୈଃ ପରିଭୂୟତେ ।।

ଜାତ ଯେବଣ ପରାଭବ । ଗୁରୁ-ଅବଜ୍ଞାରୁ ସଂଭବ ॥ ୬୪
ଫଳ ଅଟଇ ଏ ପ୍ରମାଣ । ଏକଥା ତତ୍ତ୍ୱ କରି ଜାଣ ॥ ୬୫
୨୩ ଗୁରୁ-ଅବଜ୍ଞାରୁ ପ୍ରକ୍ଷୀଣ । ଯେ ଶତ୍ରୁ ହୋଇଥିଲେ ପୁଣ ॥ ୬୬
ହେ ଇନ୍ଦ୍ର ! ତାଙ୍କୁ ଦେଖ ଏବେ । ଶୁକ୍ରଙ୍କୁ ପୂଜି ଭକ୍ତିଭାବେ ॥ ୬୭
ପୂର୍ବ କାଳରୁ ଅତିଶୟ । ଲଭିଣ ଅଛନ୍ତି ଉଦୟ ॥ ୬୮
ଦେବତାପ୍ରାୟ କରି ଚିନ୍ତି । ଭୃଗୁଙ୍କୁ ଯେ ମାନି ଅଛନ୍ତି ॥ ୬୯
ସେ ଦୈତ୍ୟମାନେ ମୋହୋରି ହି । ଘେନି ପାରନ୍ତି ସ୍ଥାନକୁ ହି ॥ ୭୦
୨୪ ଅଭେଦ୍ୟ ମନ୍ତ୍ର ଯାହାଙ୍କର । ସେ ଶିଷ୍ୟମାନେ ଭୃଗୁଙ୍କର ॥ ୭୧
ସ୍ୱର୍ଗକୁ ଦୁର୍ଜୟ ରୂପରେ । କି ସେ ଗଣନ୍ତି ମାନସରେ ॥ ୭୨
ବ୍ରାହ୍ମଣେ, ବିଷ୍ଣୁ, ଧେନୁମାନେ । ତୁଷ୍ଟି ଲଭନ୍ତି ଯାକୁ ମନେ ॥ ୭୩
ସେ ନୃପଙ୍କର କଦାଚିତ । ଅଭଦ୍ରେ ନୁହନ୍ତି ସଂଜାତ ॥ ୭୪
୨୫ ସେ ଘେନି ତ୍ୱଷ୍ଟାର ଯେ ସୁତ । ଅଟେ ତପସ୍ୱୀ ଆତ୍ମବନ୍ତ ॥ ୭୫
ତାହାକୁ ଭଜ ତୁମ୍ଭେ ଯାଇ । ତୁମ୍ଭଠାରୁ ସେ ପୂଜା ପାଇ ॥ ୭୬
ଯେ ବା ତୁମ୍ଭର ପ୍ରୟୋଜନ । ତାହା ସେ କରିବ ବିଧାନ ॥ ୭୭
ଅସୁରଙ୍କର ପକ୍ଷପାତ । ତାହାର କର୍ମ ଯେ ବିଦିତ ॥ ୭୮
ସେ କଥା ଯେବେ ତୁମ୍ଭେମାନେ । କ୍ଷମା କରିବ ନିଜ ମନେ ॥ ୭୯

ଶ୍ରୀଶୁକ ଉବାଚ

୨୬ ହେ ରାଜା ! ଏମନ୍ତ ପ୍ରକାରେ । ବ୍ରହ୍ମା କହନ୍ତେ ସେ ଅମରେ ॥ ୮୦
ହେଲେ ସେ ସଂତାପବିହୀନ । ଯେ ଋଷି ତ୍ୱଷ୍ଟାଙ୍କ ନନ୍ଦନ ॥ ୮୧
ତାହାଙ୍କୁ ଯାଇ ଆଲିଙ୍ଗନ । କରି କହିଲେ ଏ ବଚନ ॥ ୮୨

ଶ୍ରୀଦେବା ଊଚୁଃ

୨୭ ଆମ୍ଭେ ଅତିଥି ହୋଇ ତାତ । ହେଲୁଁ ତୋ' ଆଶ୍ରମେ ପ୍ରାପତ ॥ ୮୩
ଯେ କର୍ମ ପିତୃମାନଙ୍କର । କାଳକୁ ଉଚିତ ତା' କର ॥ ୮୪
୨୮ ଯେବଣ ପୁତ୍ରମାନଙ୍କର । ଜନମି ଥାଆନ୍ତି କୁମର ॥ ୮୫
ସେ ପୁତ୍ରଙ୍କରି ହିଁ ପରମ । ପିତୃସେବନରୂପ ଧର୍ମ ॥ ୮୬
ଯେ ହୋଇଥିବେ ବ୍ରହ୍ମଚାରୀ । କିପାଇଁ ନୋହିବ ତାଙ୍କରି ॥ ୮୭
୨୯ ଯେ ବେଦ କରେ ଅଧ୍ୟାପନ । ବେଦର ମୂରତି ସେ ଜନ ॥ ୮୮
ପ୍ରଜାପତିର ମୂର୍ତ୍ତି ତାତ । ଇନ୍ଦ୍ରର ମୂର୍ତ୍ତି ଅଟେ ଭ୍ରାତ ॥ ୮୯
ଯେ ମାତା ଜନମ କରଇ । ସାକ୍ଷାତ କ୍ଷିତିମୂର୍ତ୍ତି ସେହି ॥ ୯୦
୩୦ ଭଗିନୀ ଦୟାର ମୂରତି । ସ୍ୱୟେଂ ଧର୍ମମୂର୍ତ୍ତି ଅତିଥି ॥ ୯୧
ଅଗ୍ନିର ମୂର୍ତ୍ତି ଅଭ୍ୟାଗତ । ବିଷ୍ଣୁର ମୂର୍ତ୍ତି ସର୍ବଭୂତ ॥ ୯୨
୩୧ ସେ ଘେନି କରି ଆର୍ତ୍ତ ହୋଇ । ଯେ ପିତୃମାନେ ଅଛୁଁ ରହି ॥ ୯୩

ପର-ସକାଶରୁ ସଂଭବ । ତାଙ୍କର ଯେଉଁ ପରାଭବ ।। ୯୪
ନିଜ ତପସ୍ୟାରେ ହେ ତାତ । କରନ୍ତେ ସେ ପୀଡ଼ାକୁ ହତ ।। ୯୫
ତାଙ୍କ ସନ୍ଦେଶ କରିବାକୁ । ସମର୍ଥ ହୁଅ ଏ କାଳକୁ ।। ୯୬
୩୨ ଯେ ତୁମ୍ଭେ ବ୍ରହ୍ମିଷ୍ଠ ବ୍ରାହ୍ମଣ । ତୁମ୍ଭଙ୍କୁ ଗୁରୁ କରି ପୁଣ ।। ୯୭
ବରିବୁଁ କରି ଉପାଧ୍ୟାୟ । ଯେଉଁ ପ୍ରକାରେ ଅତିଶୟ ।। ୯୮
ବିପକ୍ଷମାନଙ୍କୁ ବେଗରେ । ଜିଣିମୁ ତୁମ୍ଭର ତେଜରେ ।। ୯୯
୩୩ କାର୍ଯ୍ୟନିମିତ୍ତେ କନିଷ୍ଠର । ଚରଣେ ଯେଉଁ ନମସ୍କାର ।। ୧୦୦
ତାହା ନ କରନ୍ତି ନିନ୍ଦନ । ହେ ବିପ୍ର ! ମନ୍ତ୍ରଠାରୁ ଆନ ।। ୧୦୧
ବୟସେ ଜ୍ୟେଷ୍ଠତ୍ୱ କାରଣ । ବୟସ ଅଟଇ ପ୍ରମାଣ ।। ୧୦୨
ଆମ୍ଭର ମନ୍ତ୍ରଦାତାଭାବେ । ତୁ ଜ୍ୟେଷ୍ଠ ହୋଇବୁ ସ୍ୱଭାବେ ।। ୧୦୩

ଶ୍ରୀଋଷିରୁବାଚ

୩୪ ଯାହାକୁ ପୁରୋହିତପଣେ । ପ୍ରାର୍ଥନା କଲେ ସୁରଗଣେ ।। ୧୦୪
ଯାହାର ଅତିଶୟ ତପ । ହସନ୍ତେ ସେହୁ ବିଶ୍ୱରୂପ ।। ୧୦୫
ସେ ଦେବମାନଙ୍କୁ କୋମଳ । ବଚନ କହିଲେ ତତ୍‌କାଳ ।। ୧୦୬

ଶ୍ରୀବିଶ୍ୱରୂପ ଉବାଚ

୩୫ ବ୍ରାହ୍ମଣ ତେଜର ଅଭାବ । କରଇ ପୁରୋହିତଭାବ ।। ୧୦୭
ଧର୍ମସଂଯୁତ ଯେତେ ଜନ । ସେ ତାହା କରନ୍ତି ନିନ୍ଦନ ।। ୧୦୮
ହେ ପ୍ରଭୁମାନେ ! ଲୋକଙ୍କର । ତୁମ୍ଭେ ସମସ୍ତେ ଅଧୀଶ୍ୱର ।। ୧୦୯
ତୁମ୍ଭେ ଯା' କରୁଛ ପ୍ରାର୍ଥନ । ମୋହର ପରା ଯେଉଁ ଜନ ।। ୧୧୦
କେମନ୍ତେ କରିବ ତା' ନାହିଁ । ସେମାନଙ୍କର ଶିଷ୍ୟ ହୋଇ ।। ୧୧୧
ତା ନାହିଁ ନ କରିବା କଥା । ଆପଣା କାର୍ଯ୍ୟ ସେ ସର୍ବଥା ।। ୧୧୨
୩୬ ଯେହୁ ଅଟଇ ଅକିଂଚନ । ତାହାର ଶିଳୋଞ୍ଛନ[୧] ଧନ ।। ୧୧୩
ତେଣେ ଗୃହସ୍ଥାଶ୍ରମେ ସେହି । ସାଧୁଙ୍କ ସୁକର୍ମ କରଇ ।। ୧୧୪
ନିନ୍ଦିତ ପୁରୋହିତପଣ । କେମନ୍ତେ କରିବି ମୁଁ ପୁଣ ।। ୧୧୫
ହେ ପ୍ରଭୁମାନେ ! ଯେଣେ ତୋଷ । ହୁଅଇ ଦୁର୍ବୁଦ୍ଧି ପୁରୁଷ ।। ୧୧୬
୩୭ ତଥାପି ତୁମ୍ଭମାନଙ୍କର । ପ୍ରାର୍ଥନା ଏ କେତେ ମାତର ।। ୧୧୭
ଏହା ମୁଁ ନ କରିବି ଆନ । ତୁମ୍ଭର ଯେ ଅବା ପ୍ରାର୍ଥନ ।। ୧୧୮
ପ୍ରାଣରେ ଅର୍ଥରେ ସେମାନ । ଅବଶ୍ୟ କରିବି ସାଧନ ।। ୧୧୯

ଶ୍ରୀବାଦରାୟଣିରୁବାଚ

୩୮ ତାହାଙ୍କୁ ଏମନ୍ତ ପ୍ରକାରେ । ପ୍ରତିଜ୍ଞା କରି ତଦନ୍ତରେ ।। ୧୨୦

---

୧. ଶିଳ = ଅମଳ କରି ଶସ୍ୟ ନେଇଯିବା ପରେ ବିଲରେ ପଡ଼ିଥିବା ଧାନ ।
ଉଞ୍ଛନ = ହାଟ ଆଦିରେ ବିକ୍ରି ସରିବା ପରେ ପଡ଼ିଥିବା ପରିତ୍ୟକ୍ତ ଧାନଚାଉଳ ।

ତପସ୍ୟା ଅତିଶୟ ଯାର । ସେ ବିଶ୍ୱରୂପ ବିପ୍ରବର ।। ୧୨୧
ଦେବେ ବରଣ କଲେ ଯେଣୁ । ପରମ ଉଦ୍ୟମରେ ତେଣୁ ।। ୧୨୨
ତାହାଙ୍କ ପୁରୋହିତପଣ । କଲେ ଆପଣେ ଆଚରଣ ।। ୧୨୩
୩୯ ଦେବତାଙ୍କର ଯେଉଁ ଅରି । ସେମାନଙ୍କର ଯେଉଁ ଶିରୀ ।। ୧୨୪
ଶୁକ୍ରଙ୍କ ବିଦ୍ୟାରେ ପାଳନ । ହୋଇଣ ଥିଲା ଅନୁଦିନ ।। ୧୨୫
ତା' ନାରାୟଣକବଚରେ । କାଟି ଅର୍ପିଲା ଇନ୍ଦ୍ରଠାରେ ।। ୧୨୬
୪୦ ଯେଉଁ ବିଦ୍ୟାରେ ପୁରନ୍ଦର । ରକ୍ଷିତ ହୋଇ ନିରନ୍ତର ।। ୧୨୭
ଜିଣିଲେ ଅସୁରସୈନ୍ୟକୁ । ତାହା କହିଲେ ସେ ଇନ୍ଦ୍ରଙ୍କୁ ।। ୧୨୮
ସେ ବିଶ୍ୱରୂପ ବିପ୍ରବର । ଉଦାର ଅଟେ ବୁଦ୍ଧି ଯାର ।। ୧୨୯
ଯେ କୃଷ୍ଣ କୃପାମୟ ସିନ୍ଧୁ । ତାଙ୍କୁ ଚିନ୍ତିଣ ଦୀନବନ୍ଧୁ ।। ୧୩୦
ଷଷ୍ଠ ସ୍କନ୍ଧକୁ ଗୀତେ ଭଣେ । ସଂତୋଷ ସାଧୁଜନ ତେଣେ ।। ୧୩୧
ଏ ରସେ ଯେହୁ ନିମଜ୍ଜନ୍ତି । ତାଙ୍କ ଚରଣେ ମୋ' ପ୍ରଣତି ।। ୧୩୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀବିଶ୍ୱରୂପୋପାଖ୍ୟାନଂ
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ବିଶ୍ୱରୂପସ୍ତୁ ବର୍ମ ନାରାୟଣାତ୍ମକଂ ।
ଇନ୍ଦ୍ରାୟ ପ୍ରାହ ଯେନେନ୍ଦ୍ରୋ ଗୁପ୍ତୋ ଦୈତ୍ୟାନଥାଜୟତ୍ ।। ୧

ଶ୍ରୀରାଜୋବାଚ

୧ ଯେବଣ ବିଦ୍ୟାରେ ରକ୍ଷିତ । ହୋଇଲେ ପୂର୍ବେ ପୁରୁହୂତ ।। ୧
ବାହନ[1] ସହିତ ହୋଇଣ । ଯେତେକ ରିପୁସୈନ୍ୟଗଣ[2] ।। ୨
ତାହାଙ୍କୁ କ୍ରୀଡ଼ା କଲା ପ୍ରାଏ । ହୋଇ ଜିଣିଣ ସୁରରାଏ ।। ୩
ତ୍ରିଲୋକସଂବନ୍ଧୀ ହୋଇଣ । ଯେ ଲକ୍ଷ୍ମୀ ଭୁଂଜିଲେ ତା'ପୁଣ ।। ୪
୨ ଯେ ନାରାୟଣସଂଜ୍ଞା ହୋଇ । କବଚ ପ୍ରକାଶ ଅଟଇ ।। ୫
ହେ ଭଗବନ୍ତ ! ତାହା ମୋତେ । କହିବା ହେଉ ଯଥାଶ୍ରୁତେ ।। ୬
ଯେଉଁ କବଚରେ ପାଳିତ । ହୋଇ ସମରେ ପୁରୁହୂତ ।। ୭
ଯେ ଆତତାୟୀ ଶତ୍ରୁ ଥିଲେ । ତାହାଙ୍କୁ ଯେମନ୍ତେ ଜିଣିଲେ ।। ୮

ଶ୍ରୀବାଦରାୟଣିରୁବାଚ

୩ ଯେ ବିଶ୍ୱରୂପ ତ୍ୱଷ୍ଟାସୁତ । ତାଙ୍କୁ କରନ୍ତେ ପୁରୋହିତ ।। ୯

୧. ତୁରଗ ।          ୨. ପୁଣ ।

ଇନ୍ଦ୍ର ପଚାରନ୍ତେ ତାହାଙ୍କୁ । ସେ ନାରାୟଣକବଚକୁ ॥ ୧୦
ଇନ୍ଦ୍ରଙ୍କୁ କହିଲେ ତା' ପୁଣ । ତୁ ଏକମନା ହୋଇ ଶୁଣ ॥ ୧୧

ଶ୍ରୀବିଶ୍ୱରୂପ ଉବାଚ

୪ ଉତ୍ତରମୁଖ ହୋଇଥାଇ । କରଚରଣଯୁଗ ଧୋଇ ॥ ୧୨
ପବିତ୍ର କୁଶ କରେ ଧରି । ତଦନ୍ତେ ଆଚମନ କରି ॥ ୧୩
ଦ୍ୱାଦଶାକ୍ଷର ଅଷ୍ଟାକ୍ଷର । ମନ୍ତ୍ରଯୁଗଳେ ତଦନ୍ତର ॥ ୧୪
ନିଜାଙ୍ଗକରନ୍ୟାସ ଦୁଇ । କରି ମଉନ ଶୁଚି ହୋଇ ॥ ୧୫
୫ ଧରିଣ ତାପତ୍ରୟମୂର୍ତ୍ତି । ଯେ ପୂର୍ବ କର୍ମେ ଦୁଃଖ ଦ୍ୟନ୍ତି ॥ ୧୬
ତାହାଙ୍କ ସକାଶୁଁ ତୁରିତ । ଭୟ ହୁଅନ୍ତେ ଉପଗତ ॥ ୧୭
ଯେ ନାରାୟଣମୟ ହୋଇ । କବଚ ପ୍ରକାଶ ଅଟଇ ॥ ୧୮
ତାକୁ ଧରିବ ନିଜ କାୟ । ପୁରୁଷ ନାରାୟଣମୟ ॥ ୧୯
ପାଦରେ, ଜାନୁରେ, ଊରୁରେ । ଉଦରେ ହୃଦରେ ଉରରେ ॥ ୨୦
୬ ଯଥାକ୍ରମରେ ମୁଖେ, ଶିରେ । ପ୍ରଣବ ଆଦି ନ୍ୟାସ କରେ ॥ ୨୧
ବିପରୀତରେ ନାରାୟଣ । ମନ୍ତ୍ର[1]କୁ ନ୍ୟାସେ ଅବା ପୁଣ ॥ ୨୨
୭ ଦ୍ୱାଦଶାକ୍ଷରେ ତଦନ୍ତରେ । କରନ୍ୟାସକୁ ପୁଣ କରେ ॥ ୨୩
ପ୍ରଣବଆଦି ଯେ 'ଯ' କାର[2] । ତେତେ ପର୍ଯ୍ୟନ୍ତେ ବିଜ୍ଞନର ॥ ୨୪
ଅଙ୍ଗୁଳି ଅଙ୍ଗୁଷ୍ଠ ପବରେ । ନ୍ୟାସ କରଇ ତଦନ୍ତରେ ॥ ୨୫
୮ ପ୍ରଣବ ନ୍ୟାସେ ହୃଦୟରେ । 'ବି' କାର ମସ୍ତକ-ଉପରେ ॥ ୨୬
ଭ୍ରୂଲତାଯୁଗରେ 'ଷ' କାର । ଶିଖାରେ ନ୍ୟାସିବ 'ଣ' କାର ॥ ୨୭
୯ 'ବେ' କାର ନେତ୍ରଯୁଗଳରେ । 'ନ' କାର ସମସ୍ତ ସନ୍ଧିରେ ॥ ୨୮
'ମ' କାର ଅସ୍ତ୍ର ଉଦ୍ଦେଶିଣ । ମନ୍ତ୍ରସ୍ୱରୂପ ହୋଏ ପୁଣ ॥ ୨୯
୧୦ ଫଡ଼ନ୍ତ[3] ବିସର୍ଗ ସହିତେ । ତା' ନ୍ୟାସେ ସକଳ ଦିଗନ୍ତେ ॥ ୩୦
ପ୍ରଣବ ଆଦ୍ୟେ ପ୍ରାନ୍ତେ ନମ । ଚତୁର୍ଥୀଯୁତ ବିଷ୍ଣୁ ନାମ ॥ ୩୧
ଏ ରୂପେ ଏ ଷଡ଼ ଅକ୍ଷର । ଅଟଇ ମନ୍ତ୍ରର ଉଦ୍ଧାର ॥ ୩୨
୧୧ ଷଟ ଶକ୍ତିରେ ଯୁତ ହୋଇ । ଧ୍ୟାନକୁ ଯୋଗ୍ୟ ଯେ ଅଟଇ ॥ ୩୩
ପରମ ଆତ୍ମା ଯେ ଏମନ୍ତ । ଧ୍ୟାନ କରଇ ତାକୁ ସନ୍ତ ॥ ୩୪
ବିଦ୍ୟା, ତପସ୍ୟା, ତେଜ ତିନି । ଯାହାର ମୂର୍ତ୍ତି କରି ମାନି ॥ ୩୫
ଏ କବଚକୁ ତଦନ୍ତର । କରିବ ମନ କରି ସ୍ଥିର ॥ ୩୬
୧୨ ଗରୁଡ଼ପୃଷ୍ଠରେ ଚରଣ । ପଦ୍ମ କରିଛନ୍ତି ଅର୍ପଣ ॥ ୩୭
ଯେ ଶଙ୍ଖ, ଚକ୍ର, ଧନୁ, ଶର । ଗଦା, ଖଡ଼ଗ, ଚର୍ମ ଆର ॥ ୩୮

---

୧. ମନ୍ତ୍ର = "ଓଁ ନମୋ ନାରାୟଣାୟ" । ୨. ଉକାର ।
୩. ଫଡନ୍ତ—ଫଟ୍ + ଅନ୍ତ । (ଓଁ ବିଷ୍ଣବେ ନମଃ ଅସ୍ତ୍ରାୟ ଫଟ୍) ।

| | | | | | |
|---|---|---|---|---|---|
| | ପାଶ ହିଁ ଧରିଛନ୍ତି କରେ | । | ଯେ ଯୁକ୍ତ ଅଷ୍ଟ ଐଶ୍ୱର୍ଯ୍ୟରେ | ।। | ୩୯ |
| | ସେ ହରି ସର୍ବ ରକ୍ଷା ମୋର | । | କରନ୍ତୁ ଅଷ୍ଟଭୁଜ ଯାର | ।। | ୪୦ |
| ୧୩ | ଯେ ଜଳଜନ୍ତୁ ଏ ଜଗତ | । | ବରୁଣପାଶରୂପେ ଖ୍ୟାତ | ।। | ୪୧ |
| | ତାହାଙ୍କ ଠାରୁ ଜଳଗତେ | । | ରଖନ୍ତୁ ମତ୍ସ୍ୟମୂର୍ତ୍ତି ମୋତେ | ।। | ୪୨ |
| | ବଟୁବାମନରୂପୀ ଯେହି | । | ରଖନ୍ତୁ ସ୍ଥଳେ ମୋତେ ସେହି | ।। | ୪୩ |
| | ଆକାଶେ ରଖୁ ତ୍ରିବିକ୍ରମ | । | ଯେ ବିଶ୍ୱରୂପ ଅନୁପମ | ।। | ୪୪ |
| ୧୪ | ଦୁର୍ଗମ ସ୍ଥାନମାନଙ୍କରେ | । | ବିପିନେ, ସଂଗ୍ରାମ ଆଦିରେ | ।। | ୪୫ |
| | ଅସୁର ଯୂଥପ-ବଇରି | । | ରଖନ୍ତୁ ମୋତେ ନରହରି | ।। | ୪୬ |
| | ଯେ ପୁଣ ଅଟ୍ଟମହାହାସ | । | ମୁଞ୍ଚନ୍ତେ ହୋଇ ରୋଷବଶ | ।। | ୪୭ |
| | ପ୍ରତିଶବଦ ଦିଗେ କଲେ | । | ଅସୁରଗର୍ଭେ ଚ୍ୟୁତ ହେଲେ | ।। | ୪୮ |
| ୧୫ | ଯଜ୍ଞରେ କଳ୍ପିତ ଯେ ହୋଇ | । | ଦନ୍ତରେ ଟେକିଲେ ଯେ ମହୀ | ।। | ୪୯ |
| | ମାର୍ଗରେ ଗମନ୍ତେ ସଂତତେ | । | ରଖନ୍ତୁ ସେ ବରାହ ମୋତେ | ।। | ୫୦ |
| | ଅଚଳ ଶୃଙ୍ଗମାନ ଯେହି | । | ରଖୁ ପରଶୁରାମ ତହିଁ | ।। | ୫୧ |
| | ପ୍ରବାସେ ଲକ୍ଷ୍ମଣ ସହିତେ | । | ରାମ ରଖନ୍ତୁ ଏଥୁ ଅନ୍ତେ | ।। | ୫୨ |
| ୧୬ | ଆଭିଚାରିକ କର୍ମ ଯେତେ | । | ସମସ୍ତ ପ୍ରମାଦ ଜଗତେ | ।। | ୫୩ |
| | ତହିଁରୁ ମୋତେ ନାରାୟଣ | । | ରକ୍ଷା କରନ୍ତୁ, ନର ପୁଣ | ।। | ୫୪ |
| | ରଖନ୍ତୁ ଗର୍ବସକାଶରୁ | । | ଦତ୍ତ[1] ରଖନ୍ତୁ ଅଯୋଗରୁ[2] | ।। | ୫୫ |
| | ସକଳ ଯୋଗମାନଙ୍କର | । | ଯେ ଦତ୍ତ ଅଟନ୍ତି ଈଶ୍ୱର | ।। | ୫୬ |
| | ଗୁଣେଶ କପିଳ ରକ୍ଷଣ | । | କରନ୍ତୁ କର୍ମବନ୍ଧୁଁ ପୁଣ | ।। | ୫୭ |
| ୧୭ | କାମସକାଶୁଁ ନିରନ୍ତର | । | ରଖନ୍ତୁ ସନତକୁମାର | ।। | ୫୮ |
| | ଦେବତାମାନଙ୍କୁ ପ୍ରଣାମ | । | ନ କରି ପଥେ ଯେ ଆଗମ | ।। | ୫୯ |
| | ତହୁଁ ରଖନ୍ତୁ ହୟଶିର | । | ଯେ ପୁଣ ଦେବରଷିବର | ।। | ୬୦ |
| | ଦେବତାପୂଜାଦି ବିଚ୍ଛେଦ | । | ଭୟୁଁ ରଖନ୍ତୁ ସେ ନାରଦ | ।। | ୬୧ |
| | ଅଶେଷ ନିରୟୁଁ ରକ୍ଷଣ | । | କରନ୍ତୁ କୂର୍ମରୂପୀ ପୁଣ | ।। | ୬୨ |
| ୧୮ | ଅପଥ୍ୟଠାରୁ ଅନୁସରି | । | ରଖନ୍ତୁ ମୋତେ ଧନ୍ୱନ୍ତରି | ।। | ୬୩ |
| | ଋଷଭ ଦ୍ୱନ୍ଦ୍ୱଭୟୁଁ ମୋତେ | । | ରକ୍ଷା କରନ୍ତୁ ଏ ଜଗତେ | ।। | ୬୪ |
| | ଯେଉଁ ଋଷଭ ପୂର୍ବେ ପୁଣି | । | ନିଜ ଆତ୍ମାକୁ ଛନ୍ତି ଜିଣି | ।। | ୬୫ |
| | ଲୋକ-ଅପବାଦରୁ ମୋତେ | । | ରଖନ୍ତୁ ଯଜ୍ଞ[3] ଅବିରତେ | ।। | ୬୬ |
| | ଯେ ଉପଘାତ ଜନଠାଉଁ | । | ରଖନ୍ତୁ ବଳଭଦ୍ର ତହୁଁ | ।। | ୬୭ |
| | ଯେ ସର୍ପଗଣ କ୍ରୋଧବଶ | । | ରକ୍ଷା କରନ୍ତୁ ତହୁଁ ଶେଷ | ।। | ୬୮ |
| ୧୯ | ଯେ ବେଦବ୍ୟାସ ଭଗବାନ | । | ଅଜ୍ଞାନୁଁ କରନ୍ତୁ ପାଳନ | ।। | ୬୯ |

୧. ଦତ୍ତ = ଦତ୍ତାତ୍ରେୟ ।　୨. ଅଯୋଗ = ଯୋଗଭ୍ରଂଶ ।　୩. ଯଜ୍ଞ = ବିଷ୍ଣୁ ।

ପ୍ରମାଦୁଁ ପାଷଣ୍ଡଗଣର । ବୁଦ୍ଧ ରଖନ୍ତୁ ନିରନ୍ତର ।।
କାଳର ମଳରୂପ ହୋଇ । ଯେ କଳି ପ୍ରକାଶ ଅଟଇ ।।
ତହୁଁ ରଖନ୍ତୁ କଲ୍‌କି ମୋତେ । ଧର୍ମର ପାଳନ ନିମିତ୍ତେ ।।
ଯେ କଲ୍‌କି ମହା ଅବତାର । କରିଣ ଅଛନ୍ତି ସ୍ୱୀକାର ।।
୨୦ ଗଦାରେ ପ୍ରାତଃକାଳେ ମୋତେ । କେଶବ ରଖନ୍ତୁ ସଂତତେ ।।
ସଙ୍ଗବ[1] କାଳକୁ ବ୍ୟାପିଣ । ଗୋବିନ୍ଦ କରନ୍ତୁ ରକ୍ଷଣ ।।
ବେଣୁକୁ ଧରିଛନ୍ତି କରେ । ଯେଉଁ ଗୋବିନ୍ଦ ନିରନ୍ତରେ ।।
ଉଚ୍ଚେ ଧରିଣ ଶକ୍ତି ପୁଣ । ପ୍ରାହ୍ନ ସମୟେ ନାରାୟଣ ।।
ଦିବସ ମଧ୍ୟେ ଚକ୍ରଧର । ବିଷ୍ଣୁ ରଖନ୍ତୁ ନିରନ୍ତର ।।
୨୧ ଉଗ୍ର ଅଟଇ ଧନୁ ଯାର । ମଧୁକୁ କଲେ ଯେ ସଂହାର ।।
ସେ ଦେବ ମୋତେ ଅପରାହ୍ନେ । ରକ୍ଷା କରନ୍ତୁ ଦିନେ ଦିନେ ।।
ମାଧବ ରଖନ୍ତୁ ସଂଧ୍ୟାରେ । ବ୍ରହ୍ମାଦି ତ୍ରିମୂର୍ତ୍ତି ଯେ ଧରେ ।।
ପ୍ରଦୋଷକାଳେ ହୃଷୀକେଶ । ପାଳନ କରନ୍ତୁ ଅବଶ ।।
ସେଠାରୁ ଅର୍ଦ୍ଧରାତ୍ରପାଏ । ନିଶୀଥ ସମୟ ଯେ ହୋଏ ।।
ତହୁଁ ରଖନ୍ତୁ ଏକ ମୋତେ । ସେ ପଦ୍ମନାଭ ଅବିରତେ ।।
୨୨ ତହିଁରୁ ପ୍ରଭାତପର୍ଯ୍ୟନ୍ତେ । ଶ୍ରୀବତ୍ସଧାମା ରଖୁ ମୋତେ ।।
ଖଡ଼ଗ ଧରି ଜନାର୍ଦ୍ଦନ । ପ୍ରତ୍ୟୂଷେ[2] କରନ୍ତୁ ପାଳନ ।।
ରଖନ୍ତୁ ଦାମୋଦର ପୁଣ । ସଂଧ୍ୟାସମୟକୁ ଲକ୍ଷିଣ ।।
ପ୍ରଭାତେ ରଖୁ ବିଶ୍ୱେଶ୍ୱର[3] । ଯେ ପ୍ରଭୁ କାଳମୂର୍ତ୍ତିଧର ।।
୨୩ ଯୁଗାନ୍ତକାଳ ଅଗ୍ନିପ୍ରାଏ । ଯାହାର ନେମି ଶୋଭା ପାଏ ।।
ପ୍ରୟୋଗ କରନ୍ତେ ଈଶ୍ୱର । ଭ୍ରମଇଁ ସକଳ ଦିଗର ।।
ସେ ଚକ୍ର ମୋର ରିପୁସୈନ୍ୟ । ଦହୁ ଦହୁ ଦିନକୁ ଦିନ ।।
ପବନସଙ୍ଗୀ[4] ହୁତାଶନ । କକ୍ଷ[5] କୁ ଦହଇ ଯେସନ ।।
୨୪ ଅଶନିପ୍ରାଏକ ସ୍ୱରଶ । ଯେଉଁମାନଙ୍କର ପ୍ରକାଶ ।।
ସେ ଅଗ୍ନିକୋଣମାନେ ଯହିଁ । ଅଛନ୍ତି ପ୍ରକାଶିତ ହୋଇ ।।
ହେ ଗଦେ ! ଅଟୁ ତୁ ଏମନ୍ତ । ବିଷ୍ଣୁର ପ୍ରିୟା[6] ତୁ ବିଦିତ ।।
କୁଷ୍ମାଣ୍ଡ[7], ବୈନାୟକ, ଯକ୍ଷ । ଯେ ଭୂତ ଗ୍ରହ ରିପୁ ରକ୍ଷ ।।
ତୁ ସେମାନଙ୍କୁ ପୁଣ ପୁଣ । ଚୂର୍ଣ୍ଣିତ କର ପ୍ରକୋପେଣ ।।

---

୧. ସଙ୍ଗବ = ଗୋଦୋହନ କାଳ । ପ୍ରାତଃକାଳର ପରମୁହୂର୍ତ୍ତତ୍ରୟ । ୨. ପ୍ରତ୍ୟୂଷେ । ୩. ଯୋଗେଶ୍ୱର ।
୪. ପବନସଙ୍ଗେ । ୫. କକ୍ଷ = ଶୁଷ୍କତୃଣ । ୬. ପ୍ରିୟ । ୭. କୁଷ୍ମାଣ୍ଡ = ଶିବ-ଅନୁଚର ବିଶେଷ ।

୨୫ ହେ ଶଙ୍ଖଶ୍ରେଷ୍ଠ ! ମୁଖାନିଲେ । କୃଷ୍ଣ ପୂରାନ୍ତେ ତୋତେ ବଳେ ॥ ୯୮
ଭୀମ ଅଟଇ ସ୍ୱନ ତୋର । କମ୍ପାନ୍ତେ ହୃଦକୁ ଶତ୍ରୁର ॥ ୯୯
ପ୍ରେତ, ପିଶାଚ, ଯାତୁଧାନ । ପ୍ରମଥ, ମାତୃଗଣ ଆନ ॥ ୧୦୦
ବ୍ରହ୍ମରାକ୍ଷସ ଯେ ଇତର । ଘୋର ନୟନ ଯାହାଙ୍କର ॥ ୧୦୧
ମୋ'ଠାରୁ ତାହାଙ୍କୁ ବାହାର । କରିଣ ଦିଅ ତୁ ସତ୍ୱର ॥ ୧୦୨
୨୬ ତୁ ଅସିବର ! ତୀକ୍ଷ୍ଣଧାର । ପ୍ରୟୋଗ କରନ୍ତେ ଈଶ୍ୱର ॥ ୧୦୩
ଛେଦ ଛେଦ ମୋ' ଶତ୍ରୁବଳ । ହେ ଶତଚନ୍ଦ୍ର¹ ରୂପ ଢାଲ ॥ ୧୦୪
ଯେ ପାପବନ୍ତ ଶତ୍ରୁ ମୋର । ଆଚ୍ଛାଦ ନେତ୍ରକୁ ତାଙ୍କର ॥ ୧୦୫
ଯେ ଉଗ୍ରଦୃଷ୍ଟିମାନେ ଆନ । ହର ତାହାଙ୍କର ଲୋଚନ ॥ ୧୦୬
୨୭ ଯେ ସରୀସୃପ, କେତୁ, ନର । ଯେ ଉଗ୍ରଦନ୍ତବନ୍ତ ଆର ॥ ୧୦୭
ଯେ ଅବା ପାପିଷ୍ଠ ଇତର । ତହିଁରୁ ଯେ ଭୟ ଆମ୍ଭର ॥ ୧୦୮
୨୮ ଈଶ୍ୱରନାମ-ରୂପମାନ । ଅସ୍ତ୍ରକୁ କରନ୍ତେ କୀର୍ତ୍ତନ ॥ ୧୦୯
ତହିଁରୁ ହୁଅନ୍ତୁ ସେ କ୍ଷୟ । ନାଶନ୍ତି ଯେ ବା ଆମ୍ଭ ଶ୍ରେୟ ॥ ୧୧୦
୨୯ ଯେ ସ୍ତୋତ୍ର² ସାମମାନଙ୍କରେ । ଯେ ସ୍ୱୟେଂ ଛନ୍ଦୋରୂପ ଧରେ ॥ ୧୧୧
ଅଶେଷ କଷ୍ଟରୁ ରକ୍ଷଣ । କରନ୍ତୁ ସେ ଗରୁଡ଼ ପୁଣ ॥ ୧୧୨
ବିଷ୍ୱକସେନ ନିରନ୍ତରେ । ରଖନ୍ତୁ ନାମମାନଙ୍କରେ ॥ ୧୧୩
୩୦ ହରିର ନାମ, ରୂପମାନ । ଯାନ, ଆୟୁଧ ଯେ ବା ଆନ ॥ ୧୧୪
ସେମାନେ ଆମ୍ଭ ମନ, ପ୍ରାଣ । ବୁଦ୍ଧି ଇନ୍ଦ୍ରିୟ ଅବା ପୁଣ ॥ ୧୧୫
ସକଳ ବିପତ୍ତିରୁ ତାଙ୍କୁ । ରଖନ୍ତୁ, ଏ ରୂପେ ଆମ୍ଭଙ୍କୁ ॥ ୧୧୬
ସୁନନ୍ଦ ଆଦି ପାରିଷଦେ । ରକ୍ଷା କରନ୍ତୁ ଅପ୍ରମାଦେ ॥ ୧୧୭
୩୧ ମୂର୍ତ୍ତି-ଅମୂର୍ତ୍ତିବନ୍ତ ହୋଇ । ଯେଉଁ ଜଗତ ଶୋଭା ପାଇ ॥ ୧୧୮
ସେ ଯେବେ ଅଟେ ଭଗବାନ । ଯଥାର୍ଥ କହେ ଏହା ଜନ ॥ ୧୧୯
ସେହି ସତ୍ୟେ ଆମ୍ଭର ସର୍ବେ । ନାଶ ଯାଆନ୍ତୁ ଉପଦ୍ରବେ ॥ ୧୨୦
୩୨ ଏକ ଆତ୍ମାରୂପରେ ଧ୍ୟାନ । ବିଷ୍ଣୁଙ୍କୁ କରନ୍ତି ଯେ ଜନ ॥ ୧୨୧
ଭେଦବର୍ଜିତ ହୋଇ ତାଙ୍କୁ । ଭୂଷଣ-ଆୟୁଧଲିଙ୍ଗଙ୍କୁ ॥ ୧୨୨
ଶକ୍ତିକି ଆପଣା ମାୟାରେ । ଯେବେ ଈଶ୍ୱର ସ୍ୱୟେଂ ଧରେ ॥ ୧୨୩
୩୩ ସେହି ସତ୍ୟରେ ଭଗବାନ । ସର୍ବଜ୍ଞ ପ୍ରଭୁ ଜନାର୍ଦ୍ଦନ ॥ ୧୨୪
ସର୍ବ ସ୍ୱରୂପେ ସବୁଠାରେ । ରଖନ୍ତୁ ସକଳ କାଳରେ ॥ ୧୨୫
୩୪ ଦିଗରେ, ବିଦିଗେ, ଊର୍ଦ୍ଧ୍ୱରେ । ତଳରେ, ସକଳ ଠାବରେ ॥ ୧୨୬
ବାହ୍ୟ ଅନ୍ତରେ ଭଗବାନ । ନୃସିଂହ କରନ୍ତୁ ପାଳନ ॥ ୧୨୭
ନିଜ ସ୍ୱନରେ ଲୋକଙ୍କର । ଭୟକୁ କରନ୍ତେ ସଂହାର ॥ ୧୨୮

---

୧. ଶତଚନ୍ଦ୍ର = ଶହେଟି ଚନ୍ଦ୍ରାକାର ମଣ୍ଡଳ ଯହିଁରେ ।
୨. ସ୍ତୋତ୍ର = ବୃହଦ୍ରଥନ୍ତରାଦି । ('ସୁପର୍ଣ୍ଣୋଽସି ଗରୁତ୍ମାନ୍' ଇତି ଶ୍ରୁତିଃ)

ନିଜ ତେଜରେ ଯେ ସମସ୍ତ । ତେଜମାନଙ୍କୁ କଲେ ଗ୍ରସ୍ତ ॥ ୧୨୯
୩୫ ହେ ଇନ୍ଦ୍ର ! କହିଲୁଁ ତୁମ୍ଭଙ୍କୁ । ଏ ନାରାୟଣକବଚକୁ ॥ ୧୩୦
ଯେବଣ କବଚ ଦେହରେ । ବିନ୍ୟାସ କରନ୍ତେ ସମରେ ॥ ୧୩୧
ଅସୁରଯୂଥପତିମାନ । ଜୟ କରିବୁ ତୁ ବହନ ॥ ୧୩୨
୩୬ ଏ କବଚକୁ ଧରି ଦେହେ । ଲୋଚନେ ଯାକୁ ଯାକୁ ଚାହେଁ ॥ ୧୩୩
ପାଦେ ଯାହାକୁ ଅବା ଛୁଇଁ । ତତ୍‌କାଳ ଭୟୁଁ ମୁକ୍ତ ହୋଇ ॥ ୧୩୪
୩୭ ବିଦ୍ୟାକୁ ଯେହୁ ଧରିଥାଇ । କାହିଁରୁ ତାର ଭୟ ନାହିଁ ॥ ୧୩୫
ରାଜନ, ଦସ୍ୟୁ, ଗ୍ରହାଦିରୁ । ନୁହଇ ବ୍ୟାଧ୍ର[୧] ଆଦିଙ୍କରୁ ॥ ୧୩୬
୩୮ କୁଶିକ ବଂଶେ ଜାତ ହୋଇ । ପୂର୍ବ କାଳରେ ବିପ୍ର କେହି ॥ ୧୩୭
ଏ ବିଦ୍ୟା କରନ୍ତେ ଧାରଣ । ଯୋଗ-ଧାରଣାରେ ସେ ପୁଣ ॥ ୧୩୮
ନିର୍ଜଳ ଦେଶେ ଆପଣାର । ତ୍ୟାଗ କଲାକ କଳେବର ॥ ୧୩୯
୩୯ ତାହା' ଉପରେ ଏକ ଦିନେ । ବେଷ୍ଟିତ ହୋଇ ସ୍ତିରୀଜନେ ॥ ୧୪୦
ବିମାନେ ଗନ୍ଧର୍ବଙ୍କ ନାଥ । ଗମନ କଲା ଚିତ୍ରରଥ ॥ ୧୪୧
ଯେବଣ ସ୍ଥାନରେ ବ୍ରାହ୍ମଣ । କ୍ଷୟ ସଂଭବିଥିଲା ପୁଣ ॥ ୧୪୨
୪୦ ତଳକୁ ହେଲା ତାର ଶିର । ବିମାନ ସହିତେ ସତ୍ୱର ॥ ୧୪୩
ଗଗନୁଁ ପଡ଼ିଲା ତଳରେ । ସେ ବାଳଖିଲ୍ୟଙ୍କ ବାକ୍ୟରେ ॥ ୧୪୪
ବିସ୍ମୟ ଲଭି ନିଜ ମନ । ଘେନି ବ୍ରାହ୍ମଣ-ଅସ୍ଥିମାନ ॥ ୧୪୫
ପୂର୍ବବାହିନୀ ସରସ୍ୱତୀ । ନଦୀରେ ପକାଇ ଝଟତି ॥ ୧୪୬
କରିଣ ସେ ନଦୀରେ ସ୍ନାନ । କଲା ସ୍ୱଗୃହକୁ ଗମନ ॥ ୧୪୭

ଶ୍ରୀଶୁକ ଉବାଚ

୪୧ ଯେ ଏହା କାଳରେ ଶୁଣଇଁ । ଆଦର ହୋଇ ଯେ ଧରଇ ॥ ୧୪୮
ତାକୁ କରନ୍ତି ନମସ୍କାର । ପ୍ରାଣୀଏ ହୋଇଣ ସାଦର ॥ ୧୪୯
ସକଳ ଭୟମାନଙ୍କରୁ । ମୁକତ ହୁଅଇ ସଂସାରୁ ॥ ୧୫୦
୪୨ ବିଶ୍ୱରୂପର ଠାରୁ ପୁଣ । ଇନ୍ଦ୍ର ଏ ବିଦ୍ୟାକୁ ଲଭିଣ ॥ ୧୫୧
ଯୁଦ୍ଧରେ ଜିଣି ଅସୁରଙ୍କୁ । ଭୁଞ୍ଜିଲେ ତ୍ରୈଲୋକ୍ୟଭୋଗକୁ ॥ ୧୫୨
ଶ୍ରୀକୃଷ୍ଣଚରଣପଙ୍କଜ । ଚିନ୍ତିଣ ଦୀନବଂଧୁ ଦ୍ୱିଜ ॥ ୧୫୩
ଷଷ୍ଠସ୍କନ୍ଧକୁ ଭଣେ ଗୀତେ । ସନ୍ତୋଷ ସାଧୁଜନ ଚିତ୍ତେ ॥ ୧୫୪
ସୁଜନେ ମୋତେ ଦୟା କର । ମୁଁ ତୁମ୍ଭ ଚରଣେ କିଂକର ॥ ୧୫୫

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀନାରାୟଣବର୍ମୋପଦେଶୋ
ନାମ ଅଷ୍ଟମୋଽଧ୍ୟାୟଃ ॥

---

୧. ବ୍ୟାଘ୍ର ।

## ନବମ ଅଧ୍ୟାୟ

ନବମେ ବିଶ୍ୱରୂପେ ତୁ ହତେ ଶକ୍ରେଣ କୋପତଃ ।
ତ୍ୱଷ୍ଟ୍ରା ଚୋତ୍ପାଦିତେ ବୃତ୍ରେ ଭୀତୈର୍ଦେବୈର୍ହରେଃ ସ୍ତୁତିଃ ।।

ଶ୍ରୀଶୁକ ଉବାଚ

୧ ହେ ନୃପ ! ସେ ବିଶ୍ୱରୂପର । ହୋଇଣ ଥିଲା ତିନି ଶିର ।।
ସୋମ ପିଅଇ ଏକ ଶିରେ । ମଦିରା ପିଅଇ ଇତରେ ।।
ଏକେ ଭକ୍ଷଣ କରେ ଅନ୍ନ । ଶୁଣିଛୁଁ ଏମନ୍ତ ବଚନ ।।
୨ ସେ ବିଶ୍ୱରୂପ ପ୍ରତ୍ୟକ୍ଷରେ । ହେ ନୃପ ! ବିନୟେ ଯଜ୍ଞରେ ।।
ଉଚ୍ଚରେ ଇନ୍ଦ୍ରାଦି ଦେବଙ୍କୁ । ଡାକଇ ଭାଗକୁ ଦେବାକୁ ।।
ଯେଣୁ ତାହାର ପିତୃକୁଳ । ଅଟନ୍ତି ଦେବତାସକଳ ।।
୩ ମାତାସ୍ନେହରେ ବଶ ହୋଇ । ଉଦ୍ଦେଶି ଅସୁରଙ୍କୁ ସେହି ।।
ଭାଗକୁ ଦେଲା ପରୋକ୍ଷରେ । ଦେବଙ୍କୁ ପୂଜନ୍ତେ ଯଜ୍ଞରେ ।।
ଅସୁରମାନଙ୍କ ନିମିତ୍ତେ । ଭାଗକୁ ବହିଲା ସୁଚିତ୍ତେ ।।
୪ ସେ ଦେବହେଳନ ତାହାର । ଧର୍ମକପଟ ପୁରନ୍ଦର ।।
ଦେଖିଣ ଭୟେ ରୋଷେ ବେଗ । ଛେଦିଲା ତାର ଉତ୍ତମାଙ୍ଗ ।।
୫ ଯହିଁରେ ସୋମ ପିଇଥିଲା । ସେ ଶିର କପିଞ୍ଜଳ[୧] ହେଲା ।।
ଯହିଁରେ ମଦିରା ପିଇଛି । ସେ ଶିର କଳବି[୨]ଙ୍କ ପକ୍ଷୀ ।।
ଯେଉଁ ଶିରରେ ଅନ୍ନ ଖାଇ । ତିତ୍ତିରି ପକ୍ଷୀ ହେଲା ସେହି ।।
୬ ହତ୍ୟାବାରଣକୁ ଶକତ । ଯଦ୍ୟପି ଅଟେ ପୁରୁହୂତ ।।
ବ୍ରହ୍ମହତ୍ୟାକୁ ତଥାପିହି । ଘେନିଲା ଅଞ୍ଜଳିରେ ସେହି ।।
ବରଷେ ଥାଇ ସେହିମତେ । ପୁଣି ବରଷକର ଅନ୍ତେ ।।
ଲୋକଙ୍କ ମଧ୍ୟେ ଆପଣାର । ବିଶୁଦ୍ଧିଅର୍ଥେ ପୁରନ୍ଦର ।।
ଭୂମି, ସଲିଳ, ଦ୍ରୁମ, ନାରୀ । ଏହାଙ୍କୁ ଚାରିଭାଗ କରି ।।
ସେ ବ୍ରହ୍ମହତ୍ୟାର ଦୁରିତ । ବାଣ୍ଟିଦେଲା ସେ ପୁରୁହୂତ ।।
୭ ଖୋଳିଲା ଖାତ ଯିବ ପୂରି । ଏହି ବରକୁ ମାଗି କରି ।।
ଚାରି ଭାଗରୁ ଭାଗେ ମହୀ । ଘେନିଲା ଇନ୍ଦ୍ର-ଆଜ୍ଞା ପାଇ ।।
ଭୂମିରେ ଦିଶେ ଯେ ଈରିଣ[୩] । ସେ ବ୍ରହ୍ମହତ୍ୟାରୂପ ପୁଣ ।।
୮ ଛେଦନ କଲେହେଁ ଅଙ୍କୁର । ସ୍ୱୟେଂ ଉପୁଜିବ ଆମ୍ଭର ।।
ଏ ବରେ ଚାରିଭାଗୁଁ ଭାଗେ । ଦ୍ରୁମେ ଘେନିଲେ ଇନ୍ଦ୍ର-ଆଗେ ।।
ନିର୍ଯ୍ୟାସରୂପେ ତାହାଙ୍କର । ଦିଶଇ ହତ୍ୟା ବ୍ରାହ୍ମଣର ।।
୯ ପ୍ରସବପରିଯନ୍ତେ ଗର୍ଭ । ସୁରତେ[୪] ବିନାଶ ନୋହିବ ।।

---

୧. କୁକ୍କୁଟବିଶେଷ । ୨. କୋଇଲି । ୩. ଈରିଣ = ଊଷର । (ଊଷରେ ଅଧ୍ୟୟନାଦି ନିଷିଦ୍ଧ ) ।
୪. ସୁରତ ।

ନାରୀଏ ମାଗି ଏ ବରକୁ । ଘେନିଲେ ଚତୁର୍ଥ ଭାଗକୁ ।। ୨୮
ତାହାଙ୍କ ଠାରେ ରଜୋରୂପ । ମାସକୁ ମାସ ଦିଶେ ପାପ ।। ୨୯
୧୦ ମିଶିଲେ କ୍ଷୀର ଆଦି ଦ୍ରବ୍ୟେ । ବହୁତ ହୋଇବେ ସେ ସର୍ବେ ।। ୩୦
ଚତୁର୍ଥ ଭାଗକୁ ଏ ବରେ । ଘେନିଲେ ସେ ପାପକୁ ନୀରେ ।। ୩୧
ଫେନବୁଦ୍‌ବୁଦେ ତାଙ୍କ ଠାଇଁ । ଯେ ଇନ୍ଦ୍ରପାପ ଦୃଶ୍ୟ ହୋଇ ।। ୩୨
ଆଡ଼େ କରନ୍ତେ ତା' ଜଳରୁ । ତରଇ ସେ ଲୋକ ପାପରୁ ।। ୩୩
୧୧ ତ୍ୱଷ୍ଟା ହୁଅନ୍ତେ ହତସୁତ । ଇନ୍ଦ୍ରକୁ ନାଶିବାନିମିତ୍ତ ।। ୩୪
ହେ ଇନ୍ଦ୍ରଶତ୍ରୁ[1] ! ବଢ଼ ତୁହି । ବେଗେ ଇନ୍ଦ୍ରକୁ ମାର ଯାଇଁ ।। ୩୫
ଏମନ୍ତ ପଢ଼ିଣ ଉଚ୍ଚରେ । ହୋମ କଲା ସେ ଅନଳରେ ।। ୩୬
୧୨ ଦକ୍ଷିଣାଗ୍ନିରୁ ଏଥୁଁ ଅନ୍ତ । ଅସୁରେ ହୋଇଲା ଉଦ୍‌ଥିତ ।। ୩୭
ଘୋର ଅଟେ ତା' ଦରଶନ । ଯୁଗାନ୍ତସମୟେ ଯେସନ ।। ୩୮
ଲୋକମାନଙ୍କର କୃତାନ୍ତ । ସେ ପୁଣ ଦିଶଇ ତେମନ୍ତ ।। ୩୯
୧୩ କାଣ୍ଡକୁ ବିନ୍ଧିଲେ ବେଗରେ । ପଡ଼େ ସେ ଯାଇ ଯେତେ ଦୂରେ ।। ୪୦
ଦିନେକେ ଦିନେକେ ତେତିକି । ବଢ଼ିଲା ସେ ଚାରିକତିକି ।। ୪୧
ଯେଉଁ ଅଚଳ ଦାହ ହୋଇ । ତାହାର ପ୍ରାୟକ ଦିଶଇ ।। ୪୨
ସଂଧ୍ୟାସମୟ ମେଘସୈନ୍ୟ । ପ୍ରାୟେକ ଦିଶଇ ତା' ବର୍ଣ୍ଣ ।। ୪୩
୧୪ ତପତତମ୍ବାପ୍ରାୟ ହୋଇ । ତା' ଶିଖା, ଶ୍ମଶ୍ରୁ ଶୋଭା ପାଇ ।। ୪୪
ମଧ୍ୟାହ୍ନକାଳ ସୂର୍ଯ୍ୟପ୍ରାଏ । ଉଗ୍ର ଲୋଚନ ଶୋଭା ପାଏ ।। ୪୫
ତ୍ରିଶିଖ ଦୀପ୍ତିମନ୍ତ ଶୂଳେ । ଆରୋପି ଆକାଶଭୂତଳେ ।। ୪୬
୧୫ ନାଚନ୍ତେ ଗର୍ଜନ୍ତେ ଉଚ୍ଚରେ । ମହୀକି ଚାଳନ୍ତେ ପାଦରେ ।। ୪୭
ପର୍ବତକନ୍ଦରାସମାନ । ଗମ୍ଭୀର ଯେବଣ ବଦନ ।। ୪୮
ପିଉଅଛି ଯେ ଆକାଶକୁ । ଜିହ୍ୱାରେ ଲେହୁଛି[2] ତାରାଙ୍କୁ ।। ୪୯
୧୬ ଗ୍ରାସୁଛି ଯେ ତିନିଭୁବନ । ଯହିଁରେ ତୀକ୍ଷ୍ଣ ଦଂଷ୍ଟ୍ରମାନ ।। ୫୦
ସେ ମହାମୁଖେ ପୁଣ ପୁଣ । ପ୍ରକାଶ କରୁଛି ଜୃମ୍ଭଣ ।। ୫୧

---

୧. ଇନ୍ଦ୍ରଶତ୍ରୁ – ଏହି ପଦ ଯଦି ଆଦ୍ୟୁଦାତ୍ତ ହୁଏ ତେବେ ବହୁବ୍ରୀହି ସମାସରେ ଅର୍ଥ କରିବାକୁ ହେବ । ଯଥା – ଇନ୍ଦ୍ରଃ ଶତ୍ରୁଃ ଯସ୍ୟ ସ ଇନ୍ଦ୍ରଶତ୍ରୁଃ । କିନ୍ତୁ ଏହା ଯଦି ଅନ୍ତୋଦାତ୍ତ ହୁଏ ତବେ ତତ୍‌ପୁରୁଷ ସମାସର ଅର୍ଥକୁ ବୁଝାଇବ । ଯଥା – ଇନ୍ଦ୍ରସ୍ୟ ଶତ୍ରୁଃ ଇନ୍ଦ୍ରଶତ୍ରୁଃ । ତ୍ୱଷ୍ଟା ଯଦି ଅନ୍ତୋଦାତ୍ତ ଉଚ୍ଚାରଣ କରିଥାନ୍ତେ ତାହାହେଲେ ତାଙ୍କର ମନୋରଥ ସିଦ୍ଧ ହୋଇଥାନ୍ତା ଅର୍ଥାତ୍ ଇନ୍ଦ୍ର ହତ ହୋଇଥାଆନ୍ତା । କିନ୍ତୁ ସେ ଭୁଲରେ ଆଦ୍ୟୁଦାତ୍ତ ଉଚ୍ଚାରଣ କରିବାରୁ ଇନ୍ଦ୍ର ଘାତକ (ଶତ୍ରୁ) ରେ ପରିଣତ ହେଲା । ଅତ୍ର ପାଣିନୀୟଶିକ୍ଷା :-

ମନ୍ତ୍ରୋ ହୀନଃ ସ୍ୱରତୋ ବର୍ଣ୍ଣତୋ ବା ମିଥ୍ୟାପ୍ରଯୁକ୍ତୋ ନ ତମର୍ଥମାହ ।
ସ ବାଗ୍‌ବଜ୍ରୋ ଯଜମାନଂ ହିନସ୍ତି ଯଥେନ୍ଦ୍ରଶତ୍ରୁଃ ସ୍ୱରତୋଽପରାଧାତ୍ ।।

୨. ଲେହୁଛି = ଚାଟୁଛି ।

ଦେଖି ସମସ୍ତ ଲୋକେ ତ୍ରାସେ । ପଳାଇ ଗଲେ ଦଶ ଦିଶେ ॥ ୫୨
୧୭ ତ୍ୱଷ୍ଟାତନୟମୂର୍ତ୍ତି ହୋଇ । ଯେ ତପ ପ୍ରକାଶ ଅଟଇ ॥ ୫୩
ଏ ସର୍ବ ଲୋକମାନେ ଯେଣେ । ଆବୃତ ହୋଇଲେ ତକ୍ଷଣେ ॥ ୫୪
ସେ ପାପ ବୃତ୍ର[୧] ନାମେ ପୁଣ । ବିଖ୍ୟାତ ପରମ ଦାରୁଣ ॥ ୫୫
୧୮ ତାହାଙ୍କୁ ବେଢ଼ି ସୁରବରେ । ସହିତେ ଗଣମାନଙ୍କରେ ॥ ୫୬
ଯେ ଦିବ୍ୟ ଅସ୍ତ୍ର ଆପଣାର । ଶସ୍ତ୍ରସମୂହ ଯେ ଇତର ॥ ୫୭
ତେଣେ ପ୍ରହାର କଲେ ତାକୁ । ଗିଳିଲା ସେ ସର୍ବ ଅସ୍ତ୍ରକୁ ॥ ୫୮
୧୯ ସେ ସର୍ବେ ଲଭିଲେ ବିସ୍ମୟ । ତେଜ ହୋଇଲା ଯେଣୁ କ୍ଷୟ ॥ ୫୯
ବିଷାଦ ହୋଇ ତଦନ୍ତର । ନିଜ ମନକୁ କରି ସ୍ଥିର ॥ ୬୦
ସକଳ ଲୋକଙ୍କ ଅନ୍ତର । ବାର୍ତ୍ତା ଯେ କରନ୍ତି ଗୋଚର ॥ ୬୧
ଆଦିପୁରୁଷ ଯେ ଅଟନ୍ତି । [୨]ତାହାଙ୍କୁ କଲେ ପୁଣ ସ୍ତୁତି ॥ ୬୨

ଶ୍ରୀଦେବା ଉଚୁଃ

୨୦ ପୃଥ୍ୱୀ ଆକାଶ ଜଳ ବାତ । ଅଗ୍ନି ଏ ପଞ୍ଚ ମହାଭୂତ ॥ ୬୩
ଏଣେ ନିର୍ମିତ ତିନି ଲୋକ । ବ୍ରହ୍ମାଦି ଏହାଙ୍କ ନାୟକ ॥ ୬୪
ତହିଁରୁ ପଛ ଆମ୍ଭେମାନେ । ଏ ସର୍ବେ ଉଦବେଗମନେ ॥ ୬୫
ଯାହାକୁ ଆମ୍ଭେ ବଳି ବହୁଁ । ସେ କାଳ ଡରେ ଯାହା ଠାଉଁ ॥ ୬୬
ସେ ପ୍ରଭୁ ସକାଶୁଁ ଆମ୍ଭର । ଶରଣ ହେଉ ନିରନ୍ତର ॥ ୬୭
୨୧ ଯାହାର ଅହଂକାର ନାହିଁ । ରାଗାଦିଶୂନ୍ୟ ଯେ ଅଟଇ ॥ ୬୮
ଯେ ନିଜ ଲାଭେ ପୂର୍ଣ୍ଣକାମ । ସକଳ ଭୂତେ ଅଟେ ସମ ॥ ୬୯
ଏମନ୍ତ ଈଶ୍ୱର ଛାଡ଼ିଇ । ଆନକୁ ଶରଣାର୍ଥୀ ହୋଇ ॥ ୭୦
ଉପସର୍ପଣ ଯେବା କରେ । ମୂର୍ଖ ଅଟଇ ସେ ସଂସାରେ ॥ ୭୧
କୁକ୍କୁରଲାଙ୍ଗୁଳେ ସାଗର । ତରିବାକୁ ସେ ବାଞ୍ଛେ ନର ॥ ୭୨
୨୨ ପୃଥିବୀ ନିଜ ନାବ ହୋଇ । ଥିଲା ତାହାକୁ ମନୁ ନେଇ ॥ ୭୩
ଯାହାର ବିଶାଳ ଶୃଙ୍ଗରେ । ବାନ୍ଧିଣ ଯଥାର୍ଥ ପ୍ରକାରେ ॥ ୭୪
ପୂର୍ବେ ତରିଲେ ସଂକଟକୁ । ସେ ମତ୍ସ୍ୟସ୍ୱରୂପୀ ଆମ୍ଭଙ୍କୁ ॥ ୭୫
ଦୁରନ୍ତ ତ୍ୱଷ୍ଟାସୁତଭୟ । ତହିଁରୁ ରଖିବେ ନିଶ୍ଚୟ ॥ ୭୬
ଆମ୍ଭର ଯେଣୁ ସେ ଈଶ୍ୱର । ଆଶ୍ରିତ ଆମ୍ଭେ ତାହାଙ୍କର ॥ ୭୭
୨୩ ଉଦ୍‌ଗତ[୩] ବାତ ଊର୍ମିଙ୍କର । ରବେ ଯେ ଅଟେ ଭୟଙ୍କର ॥ ୭୮

---

୧. "ସ ଇମାନ୍ ଲୋକାନ୍ ଆବୃଣୋତ୍ । ଏତଦ୍ ବୃତ୍ରସ୍ୟ ବୃତ୍ରତ୍ୱମ୍ ।" (ଶ୍ରୁତିଃ)

୨. ମହାଭୟେ ପରିତ୍ରାଣମନ୍ୟତୋ ନ ଭବେଦିତି ।
ହରିମେବ ପ୍ରପଦ୍ୟନ୍ତେ ସୁରାଃ ଶରଣମାତୁରାଃ ॥ (ସ୍ୱାମୀ)

୩. ଉଦକ ।

| | | | | |
|---|---|---|---|---|
| | ସେ ଲୟଜଳେ ଏକା ଥାଇ | । ନାଭିକମଳୁଁ ଚ୍ୟୁତ ହୋଇ | ।। | ୭୯ |
| | ସେ ଭୟୁଁ ବ୍ରହ୍ମା ଯେଣେ ପାର | । ହୋଇଲା[୧] ପୂର୍ବେ ସେ ଈଶ୍ୱର | ।। | ୮୦ |
| | ଏ ଭୟୁଁ ଆମ୍ଭମାନଙ୍କର | । ପାରକ[୨] ହୁଅନ୍ତୁ ସତ୍ୱର | ।। | ୮୧ |
| ୨୪ | ଏକା ହୋଇଣ ଯେ ଈଶ୍ୱର | । ଆମ୍ଭମାନଙ୍କୁ ଆପଣାର | ।। | ୮୨ |
| | ମାୟାରେ ଅଛନ୍ତି ସର୍ଜିଣ | । ତଦନ୍ତେ ଆମ୍ଭମାନେ ପୁଣ | ।। | ୮୩ |
| | କରୁ ଏ ବିଶ୍ୱକୁ ସର୍ଜନ | । ଯେ ପୂର୍ବେ ହୋଇ ବିଦ୍ୟମାନ | ।। | ୮୪ |
| | କରନ୍ତେ ନାନା ଚେଷ୍ଟା ତାର | । ରୂପକୁ ନ କରୁଁ ଗୋଚର | ।। | ୮୫ |
| | ଯେଣୁ ଆମ୍ଭର ପରସ୍ପର | । ଈଶ୍ୱର ହୋଇ ଅହଂକାର | ।। | ୮୬ |
| ୨୫ | ଆମ୍ଭେ ବଇରିମାନଙ୍କରେ | । ପୀଡ଼ାକୁ ଲଭନ୍ତେ ନିର୍ଭରେ | ।। | ୮୭ |
| | ଯେ ନିତ୍ୟ ହେଲେହେଁ ଈଶ୍ୱର | । ଦେବ, ତିର୍ଯକ, ଋଷି ନର | ।। | ୮୮ |
| | ଏତେ ଜାତିରେ ସ୍ୱମାୟାରେ | । ବାମନ ଆଦି କଳେବରେ | ।। | ୮୯ |
| | କରିଣ ନାନା ଅବତାର | । ଆମ୍ଭଙ୍କୁ କରି ଆପଣାର | ।। | ୯୦ |
| | ପ୍ରତି ଯୁଗରେ ସାବଧାନ | । ହୋଇଣ କରନ୍ତି ପାଳନ | ।। | ୯୧ |
| ୨୬ | ସେ ଅଟେ ଦେବତା ଆମ୍ଭର | । ଯେ ବିଶ୍ୱ ବିଶ୍ୱରୁ ଇତର | ।। | ୯୨ |
| | ଜଗତକାରଣ ବିଖ୍ୟାତ | । ପ୍ରକୃତିପୁରୁଷ ନିୟତ | ।। | ୯୩ |
| | ତାହାଙ୍କୁ ଆମ୍ଭେ ସର୍ବ ଦେବେ | । ଶରଣ ପଶୁଅଛୁଁ ଏବେ | ।। | ୯୪ |
| | ଶରଣଯୋଗ୍ୟ ସେ ଈଶ୍ୱର | । ଆମ୍ଭେହେଁ ଅଟୁ ତାହାଙ୍କର | ।। | ୯୫ |
| | ମହାତ୍ମା ଅଟନ୍ତି ସେ ପୁଣ | । କରିବେ ଆମ୍ଭର କଲ୍ୟାଣ | ।। | ୯୬ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୭ | ହେ ମହାରାଜ ! ଏ ପ୍ରକାରେ | । ସ୍ତୁତିକି କରନ୍ତେ ସେ ସୁରେ | ।। | ୯୭ |
| | ପ୍ରଥମେ ହୃଦେ ତଦନ୍ତରେ | । ପ୍ରକାଶ ହେଲେ ସେ ବାହ୍ୟରେ | ।। | ୯୮ |
| | ଯେ ଶଙ୍ଖଚକ୍ରଗଦାଧର | । ସକଳ ଲୋକଙ୍କ ଈଶ୍ୱର | ।। | ୯୯ |
| ୨୮ | ଶ୍ରୀବତ୍ସ-କୌସ୍ତୁଭବାହାରେ | । ସ୍ୱରୂପ ଶୋଭେ ଅଳଂକାରେ | ।। | ୧୦୦ |
| | ଅଟନ୍ତି ଆପଣା ସଦୃଶ | । ସୁନନ୍ଦ ଆଦି ଯେ ଷୋଡ଼ଶ | ।। | ୧୦୧ |
| | ସେମାନେ ସକଳ ଦିଗରେ | । ସେବି ଅଛନ୍ତି ନିରନ୍ତରେ | ।। | ୧୦୨ |
| | ପ୍ରଫୁଲ୍ଲ ଶରଦନଳିନ | । ପ୍ରାୟକ ଯାହାର ନୟନ | ।। | ୧୦୩ |
| ୨୯ | ଦର୍ଶନ-ଆହ୍ଲାଦେ ତାଙ୍କର | । ବିବଶ ହୋଇ ସର୍ବସୁର | ।। | ୧୦୪ |
| | ଦଣ୍ଡପ୍ରାୟକ ମହୀତଳେ | । ପ୍ରଣାମ କଲେ ଏକାବେଳେ | ।। | ୧୦୫ |
| | ଅଳପ ହୋଇଣ ଉଠିଣ | । ସ୍ତୁତିକି ଆରମ୍ଭିଲେ ପୁଣ | ।। | ୧୦୬ |

ଶ୍ରୀଦେବା ଉଚୁଃ

| | | | | |
|---|---|---|---|---|
| ୩୦ | ସ୍ୱର୍ଗାଦି[୩] ଫଳ ଦେବାପାଇଁ | । ଯଜ୍ଞେ ସମର୍ଥ ଯେ ଅଟଇ | ।। | ୧୦୭ |

୧. ହୁଅଇ । ୨. ତାରକ । ୩. ସର୍ଗାଦି ।

ସେ ଯଜ୍ଞଫଳଭୋଗାଦିରେ । କାଳସ୍ୱରୂପକୁ ଯେ ଧରେ ।। ୧୦୮
ଯଜ୍ଞବିଘାତୀ ଦୈତ୍ୟେ ଯେହି । ଚକ୍ରକୁ ପ୍ରକ୍ଷେପ କରଇ ।। ୧୦୯
ଏମନ୍ତ ପ୍ରଭାବନିକର । ଶୋଭନ ବହୁ ନାମ ଯାର ।। ୧୧୦
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ତୁମ୍ଭଙ୍କୁ କରୁଁ ନମସ୍କାର ।। ୧୧୧
୩୧ ଯେ ତୁମ୍ଭେ ତ୍ରିଗୁଣ-ଈଶ୍ୱର । ପରମ ପଦ ତ୍ରିଗୁଣର ।। ୧୧୨
ଅଧିଷ୍ଠାନ ଏ ପ୍ରପଞ୍ଚର । ଅଟଇ ସ୍ୱରୂପ ତୁମ୍ଭର ।। ୧୧୩
ପଛେ ଜନମ ହେଲା ପ୍ରାଣୀ । ସେ ତାହା ନ ପାରଇ ଜାଣି ।। ୧୧୪
୩୨ [1]ହେ ଭଗବାନ ! ବାସୁଦେବ । ନାରାୟଣ ମହାନୁଭାବ ।। ୧୧୫
ତୁମ୍ଭଙ୍କୁ ଆମ୍ଭମାନଙ୍କର । ପ୍ରଣାମ ହେଉ ବାରମ୍ବାର ।। ୧୧୬
ସକଳ ଲୋକଙ୍କର ଆଦି । ପୁରୁଷରୂପରେ ପ୍ରସିଦ୍ଧି ।। ୧୧୭
ହେ ମହାପୁରୁଷ ଈଶ୍ୱର । କେବଳ ଜଗତ-ଆଧାର ।। ୧୧୮
ପରମ ମଙ୍ଗଳ ପରମ । ଶୁଦ୍ଧ ଯାହାର ଅଟେ ଧର୍ମ ।। ୧୧୯
ଆହେ ପରମ କାରୁଣିକ । ଲୋକମାନଙ୍କର ନାୟକ ।। ୧୨୦
ସକଳ ଲୋକଙ୍କ ଈଶ୍ୱର । ଜଳଧିତନୟାର ବର ।। ୧୨୧
ପରମହଂସ ଯତି ନରେ । ଆପଣା ଯୋଗସମାଧିରେ ।। ୧୨୨
ଯା' ଅନୁଶୀଳନ କରନ୍ତେ । ସ୍ଫୁଟ ହୋଇଲା ଏ ଜଗତେ ।। ୧୨୩
ତୁମ୍ଭର ଯେବଣ ଭଜନ । ସେ ଘେନି ଫିଟିଲା ବହନ ।। ୧୨୪
ତମ[2] ରୂପ କବାଟ ଯହିଁ । ସେ ଚିତ୍ତ ଦ୍ୱାରରୂପ ହୋଇ ।। ୧୨୫
ତେଣେ ଯେ ହୋଇଲା ପ୍ରକାଶ । ଆତ୍ମାସ୍ୱରୂପୀ ବିସଦୃଶ[3] ।। ୧୨୬
ଯେ ନିଜସୁଖ ଅଛି ତହିଁ । ନିଜ ଇଚ୍ଛାରେ ବ୍ୟକ୍ତ ହୋଇ ।। ୧୨୭
ଯେ ବା ତାହାର ଅନୁଭବ । ତୁମ୍ଭେ ସେ ସ୍ୱରୂପ ହେ ଦେବ ।। ୧୨୮
୩୩ ଯେ ତୁମ୍ଭ କ୍ରୀଡ଼ାର ଉପାୟ । ଅଟଇ ସେ ଦୁର୍ବୋଧପ୍ରାୟ ।। ୧୨୯
ଯେଣୁ ଆଶ୍ରୟ ନାହିଁ ତୋର । ନାହିଁ ଆପଣା କଳେବର ।। ୧୩୦
ଯେ ସଙ୍ଗ ଆମ୍ଭମାନଙ୍କର । ତହିଁକି ଅପେକ୍ଷା ନ କର ।। ୧୩୧
କେବେହେଁ ନୋହେ ଯେ ବିକାର । ସେହି ଆତ୍ମାରେ ଏ ସଂସାର ।। ୧୩୨
ସଗୁଣ ନିର୍ଗୁଣ ରୂପରେ । ସର୍ଜନା କର ପ୍ରଥମରେ ।। ୧୩୩
ସମୟେ ପାଳନା ତା' କର । ପଛେ ଆପଣେ ତା' ସଂହାର ।। ୧୩୪
୩୪ ଦେବଦତ୍ତ ନାମରେ କେହି । ସେ ଯେହ୍ନେ ଗୃହାଦି ଭିଆଇ ।। ୧୩୫

---

୧. ମିତାକ୍ଷରାଣି ପଦ୍ୟାନି ନ ମାୟନ୍ତେ ହରେର୍ଗୁଣାଃ ।
ଇତି ପଦ୍ୟୈରତୁଷ୍ୟନ୍ତଃ ସଦ୍ୟୋ ଗଦ୍ୟେନ ତୁଷ୍ଟୁବୁଃ ।। (ସ୍ୱାମୀ)

୨. ତମ = ଅନ୍ଧକାର ।　　୩. ବିଶ୍ୱଦୃଶ ।

ତହିଁରେ ଯାହା କରିଥାଇ । ଶୁଭ ଅଶୁଭ କର୍ମ ଦୁଇ ।। ୧୩୬
ସେ ଫଳ ଭୁଞ୍ଜେ ଅନାୟତ୍ତେ । ତୁମ୍ଭେହେଁ ପୁଣି ସେହିମତେ ।। ୧୩୭
ବ୍ରହ୍ମସ୍ୱରୂପ ହୋଇଲେହେଁ । ଜୀବରୂପରେ ଥାଇ ଦେହେ ।। ୧୩୮
ସଂସାରେ ପଡ଼ିଥାଇ ଘେନ । କି ନିଜକର୍ମଫଳମାନ ।। ୧୩୯
ନୋହିଲେ ଅବା ହେ ଈଶ୍ୱର । ଆତ୍ମାରେ ବିହାର ତୁମ୍ଭର ।। ୧୪୦
ଏ ଘେନି ତୁମ୍ଭେ ଶାନ୍ତିଯୁତ । ତୁମ୍ଭ ଚିଦ୍‌ଶକ୍ତି ନୋହେ ଚ୍ୟୁତ ।। ୧୪୧
ସାକ୍ଷୀରୂପରେ ଥାଅ ବର୍ତ୍ତି । ଆମ୍ଭେ ନ ଜାଣୁଁ ଏହୁ ରୀତି ।। ୧୪୨
୩୫ କର୍ତ୍ତା ଅକର୍ତ୍ତା ଭାବ ଦୁଇ । ବିରୋଧ ତୁମ୍ଭଠାରେ ନାହିଁ ।। ୧୪୩
ଯେ ତୁମ୍ଭେ ଅଟ ଭଗବାନ । ତୁମ୍ଭର ଯେବା ଗୁଣମାନ ।। ୧୪୪
ଗଣନା ନ ଯାନ୍ତି ସେମାନେ । ତୁମ୍ଭ ମାହାତ୍ମ୍ୟକୁ ଭୁବନେ ।। ୧୪୫
କେହି ନ ପାରେ ଅବଗାହି । ସ୍ୱତନ୍ତ୍ର ତୁମ୍ଭେ ତୁମ୍ଭଠାଇଁ ।। ୧୪୬
ଏ ରୂପେ ହୋଇ ଅବା ନୋହି । ବିକଳ୍ପ ଏପ୍ରକାରେ ଯେହି ।। ୧୪୭
ଏଥିରେ କି ଅବା ଯୁକତ । ଏ ରୂପେ ବିଚାର ଯେ ଖ୍ୟାତ ।। ୧୪୮
ପ୍ରମାଣପ୍ରାୟ ଆଭାସନ୍ତି । ତହିଁ କୁତର୍କ ଯେବା ଛନ୍ତି ।। ୧୪୯
ଯେ ବସ୍ତୁସ୍ୱରୂପ ଅଟଇ । ତା' ଛୁଇଁ ନାହାନ୍ତି ଏ କେହି ।। ୧୫୦
ଏ ଯେଉଁ ଶାସ୍ତ୍ରରେ ଅଛନ୍ତି । ତେଣେ ବ୍ୟାକୁଳ ଯାଙ୍କ ମତି ।। ୧୫୧
ଦୁଷ୍ଟ ଆଗ୍ରହେ ଯେଉଁମାନେ । ବିବାଦୀ ଅଟନ୍ତି ଭୁବନେ ।। ୧୫୨
ତାହାଙ୍କ ବିବାଦ-ଗୋଚର । ନୁହଇ ସ୍ୱରୂପ[୧] ତୁମ୍ଭର ।। ୧୫୩
ଯହିଁ ସମସ୍ତ ମାୟାମୟ । ସଂସାର ହୋଇଥାଇ ଲୟ ।। ୧୫୪
ଅଛ କେବଳରୂପୀ ହୋଇ । ଆତ୍ମମାୟାକୁ ମଧ୍ୟେ ଥୋଇ ।। ୧୫୫
ଏମନ୍ତ ତୁମ୍ଭେ ତୁମ୍ଭଠାରେ । ଦୁର୍ଘଟ କେ ଅର୍ଥ ସଂସାରେ ।। ୧୫୬
କର୍ତ୍ତୃତ୍ୱ ଅକର୍ତ୍ତୃତ୍ୱ ଦୁଇ । ଅଭାବ ଅଟେ ତୁମ୍ଭଠାଇଁ ।। ୧୫୭
୩୬ ସମ-ବିଷମ-ମତିଙ୍କର । ମତକୁ ତୁମ୍ଭେ ଅନୁସର ।। ୧୫୮
ରଜ୍ଜୁଖଣ୍ଡରେ ସର୍ପଜ୍ଞାନ । ହେଲା ଲୋକଙ୍କର ଯେସନ ।। ୧୫୯
ସେ ରଜ୍ଜୁ ଦିଶେ ସର୍ପପ୍ରାଏ । ସେ ବୁଦ୍ଧି ନାହିଁ ଯାହାଠାଏ ।। ୧୬୦
ତାହାକୁ ରଜ୍ଜୁପ୍ରାଏ ଦିଶି । ତୁମ୍ଭଙ୍କୁ ସେ ରୂପେ ଉଦ୍ଦେଶି ।। ୧୬୧
ଅଜ୍ଞାନୀ ବୋଲନ୍ତି ସଂସାରୀ । ଜ୍ଞାନୀ ମଣନ୍ତି ବ୍ରହ୍ମ କରି ।। ୧୬୨
୩୭ ସମସ୍ତ ବସ୍ତୁମାନଙ୍କରେ । ବସ୍ତୁସ୍ୱରୂପେ ସେହି ସ୍ଫୁରେ ।। ୧୬୩
ଯେ ସର୍ବଲୋକଙ୍କ ଈଶ୍ୱର । କାରଣ ସର୍ବ କାରଣର ।। ୧୬୪
ଯେଣୁ ସକଳ ଲୋକଙ୍କର । ଅନ୍ତର କରଇ ଗୋଚର ।। ୧୬୫

---

୧. ଶରୀର ।

ସର୍ବ ବିଷୟଙ୍କ ପ୍ରକାଶେ । ଲକ୍ଷିତ ଅଟଇ ବିଶେଷେ ।। ୧୬୬
ନିଷେଧ କରନ୍ତେ ସକଳ । ରହଇ ହୋଇ ଏକ ମୂଳ ।। ୧୬୭
୩୮ ଏମନ୍ତ ପ୍ରଭୁ ତୁମ୍ଭେ ଯେଣୁ । ଆହେ ମଧୁମଥନ ! ତେଣୁ ।। ୧୬୮
ତୁମ୍ଭର ମହିମାପ୍ରସିଦ୍ଧି । ଅମୃତରସପୟୋନିଧି ।। ୧୬୯
ବିନ୍ଦୁମାତ୍ରକ ହିଁ ତାହାର । ଆସ୍ୱାଦ କଲେ ଏକ ବାର ।। ୧୭୦
ତେଣେ ଯେ ନିଜ ମାନସରେ । ଅଛିଦ୍ର ନିଜସୁଖ ସ୍ଫୁରେ ।। ୧୭୧
ତେଣେ ଦେଖିଲା ଶୁଣିଲାର । ଯେ ସୁଖଲେଶ ମାତ୍ର ଛାର ।। ୧୭୨
ତାହାଙ୍କ ଚିତ୍ତରୁ ନିର୍ଗତ । ସେଟି ପରମ ଭାଗବତ ।। ୧୭୩
ଏକାନ୍ତ ଭଗତ ସେ ଜନ । ତୁମ୍ଭେ ଯେ ଅଟ ଭଗବାନ ।। ୧୭୪
ସମସ୍ତ ପ୍ରାଣୀମାନଙ୍କର । ପ୍ରିୟ ସୁହୃଦ ଆତ୍ମା ଆର ।। ୧୭୫
ତୁମ୍ଭର ଠାରେ ଅବିରତ । ସେ ଲୋକମାନଙ୍କର ଚିତ୍ତ ।। ୧୭୬
ଅତିଶୟରେ ରତ ହୋଇ । ସୁଖକୁ ନିତ୍ୟେ ଭଜିଥାଇ ।। ୧୭୭
ହେ ମଧୁମଥନ ! ସେମାନେ । ସ୍ୱାର୍ଥକୁଶଳ ଏ ଭୁବନେ ।। ୧୭୮
ତୁମ୍ଭେ ଯେବଣ ଲୋକଙ୍କର । ପ୍ରିୟ ସୁହୃଦ ହେ ଈଶ୍ୱର ।। ୧୭୯
ତୁମ୍ଭ ଚରଣପଦ୍ମସେବା । କେମନ୍ତେ ଛାଡ଼ିବେ ସେ ଅବା ।। ୧୮୦
ଯେଉଁ ସେବାରେ ଏ ସଂସାର । ଲେଉଟି ନୋହେ ବାରମ୍ବାର ।। ୧୮୧
୩୯ ଯାହାର ସ୍ୱରୂପସଦନ । ଅଟଇ ଏ ତିନିଭୁବନ ।। ୧୮୨
ତିନି ବିକ୍ରମ ଅଟେ ଯାର । ଯେ ତିନି ଲୋକଙ୍କ ଈଶ୍ୱର ।। ୧୮୩
ତିନି ଲୋକଙ୍କ ମନୋହର । ଅଟଇ ଅନୁଭାବ ଯାର ।। ୧୮୪
ତୁମ୍ଭେ ଏମନ୍ତ ଏ ଜଗତେ । ଦୈତ୍ୟ ଦାନବ ଆଦି ଯେତେ ।। ୧୮୫
ସେମାନେ ସମସ୍ତେ ତୁମ୍ଭର । ଅଟନ୍ତି ବିଭୂତି-ଆକାର ।। ୧୮୬
ତାଙ୍କ ଉପକ୍ରମକୁ[1] ପୁଣି । ଏ କାଳ ନୋହେ[2] ଏହା ମଣି ।। ୧୮୭
ନିଜ ମାୟାରେ ସୁରନର । ମୃଗ, ମିଶ୍ରିତ ଜଳଚର ।। ୧୮୮
ଏ କଳେବରମାନଙ୍କରେ । ଅପରାଧର ଅନୁସାରେ ।। ୧୮୯
ଦଣ୍ଡକୁ କଲ ତାହାଙ୍କର । ଯେ ତୁମ୍ଭେ ଅଟ ଦଣ୍ଡଧର ।। ୧୯୦
ଏହି ରୂପେ ହେ ଭଗବାନ । ଯେ ଅଟେ ତ୍ୱଷ୍ଟାର ନନ୍ଦନ ।। ୧୯୧
ତାହାକୁ କରସି ନିଧନ । ଯେବେ ଏଥିକି ଅଛି ମନ ।। ୧୯୨
୪୦ ହେ ପିତାମହ ! ଆହେ ତାତ । ଆମ୍ଭେ ତୁମ୍ଭର ଅବନତ ।। ୧୯୩
ତୁମ୍ଭ ଚରଣପଦ୍ମ ଦୁଇ । ଧ୍ୟାନରେ ଅନୁବନ୍ଧ ହୋଇ ।। ୧୯୪
ହୃଦୟଶୃଙ୍ଖଳା ଆମ୍ଭର । ଦେଖାଇ ନିଜ କଳେବର ।। ୧୯୫
କଲ ଆମ୍ଭଙ୍କୁ ଆପଣାର । କୃପାରେ ରଞ୍ଜିତ ଶିଶିର ।। ୧୯୬

୧. ଉପକ୍ରମ = ଉଦ୍ୟମ ।  ୨. ହୋଏ ।

| | | | |
|---|---|---|---|
| | ଯେ ଅତିବିଶଦ ରୁଚିର । | ସେ ମନ୍ଦହାସେ ଯୁତ ସାର | ।। ୧୯୭ |
| | ଯେ ଅବଲୋକନ ବିଦିତ । | ଅନୁକଂପାରେ ବିଗଳିତ | ।। ୧୯୮ |
| | ଯେ ବା ମଧୁର ପ୍ରିୟ ବାଣୀ । | ଅମୃତରସପ୍ରାଏ ମଣି | ।। ୧୯୯ |
| | ଆମ୍ଭର ହୃଦୟତାପକୁ । | ତେଣେ ବିନାଶ କରିବାକୁ | ।। ୨୦୦ |
| | ହେ ପ୍ରଭୁ ଯୋଗ୍ୟ ତୁମ୍ଭେ ହୁଅ । | ଯେ ତୁମ୍ଭେ ଅନଘ ବୋଲାଅ | ।। ୨୦୧ |
| ୪୧ | ହେ ପ୍ରଭୁ ! ସର୍ବ ଜଗତର । | ଉତ୍ପତ୍ତି, ପାଳନ, ସଂହାର | ।। ୨୦୨ |
| | ତହିଁକି ନିମିତ୍ତ-ଆକାର । | ଦିବ୍ୟ ମାୟା-ବିନୋଦ ଯାର | ।। ୨୦୩ |
| | ଯେତେ ସମସ୍ତ ଜୀବଗଣ । | ତାଙ୍କ ହୃଦୟମଧ୍ୟେ ପୁଣ | ।। ୨୦୪ |
| | ବ୍ରହ୍ମ ଅନ୍ତର୍ଯ୍ୟାମୀରୂପରେ । | ବାହ୍ୟରେ ପ୍ରଧାନ-ଆକାରେ | ।। ୨୦୫ |
| | ନ ଲଙ୍ଘି ଦେଶକୁ କାଳକୁ । | ଦେହ-ଅବସ୍ଥା-ବିଶେଷକୁ | ।। ୨୦୬ |
| | ତାହାଙ୍କ ଉପାଦାନଭାବେ । | ଉପଲମ୍ଭକ[1]ର ସ୍ୱଭାବେ | ।। ୨୦୭ |
| | ସର୍ବ ଅନୁଭବ କରୁଛ । | ବୁଦ୍ଧିଆଦିସାକ୍ଷୀ ହୋଇଛ | ।। ୨୦୮ |
| | ଆକାଶପ୍ରାୟ ଅଲକ୍ଷିତ । | ଯାହାର ଶରୀର ବିଦିତ | ।। ୨୦୯ |
| | ସାକ୍ଷାତ ପରଂବ୍ରହ୍ମ ଯେହି । | ପରମ ଆତ୍ମା ଯେ ଅଟଇ | ।। ୨୧୦ |
| | ଯେ ତୁମ୍ଭେ ଏମନ୍ତ ପ୍ରକାର । | ବିଶେଷେ ପରମ ଈଶ୍ୱର | ।। ୨୧୧ |
| | କେବଳ ଅର୍ଥବିଶେଷକୁ । | ଆମ୍ଭେ ଜଣାଇମୁଁ ତୁମ୍ଭଙ୍କୁ | ।। ୨୧୨ |
| | ଅଗ୍ନିର ଅଂଶୁଁ ସମ୍ଭବିଣ । | ଅଗ୍ନିକଣିକାମାନେ ପୁଣ | ।। ୨୧୩ |
| | ଯେସନେ ସେହି ଅନଳର । | ପ୍ରକାଶେ ନୁହନ୍ତି ଈଶ୍ୱର | ।। ୨୧୪ |
| ୪୨ | ଯେ ତୁମ୍ଭେ ଅଟ ଭଗବାନ । | ପରମ ଗୁରୁ ବିଦ୍ୟମାନ | ।। ୨୧୫ |
| | ବିବିଧ ବୃଜିନେ[2] ଜନମ । | ଯେ ବା ସଂସାରେ ପରିଶ୍ରମ | ।। ୨୧୬ |
| | ତାହା ଯେ ନାଶଇ ତୁମ୍ଭର । | ଛାୟା ଚରଣପଙ୍କଜର | ।। ୨୧୭ |
| | ତହିଁକି ଯେବଣ ବାଞ୍ଛାରେ । | ପ୍ରାପିତ ହେଲୁଁ ଏ ସଂସାରେ[3] | ।। ୨୧୮ |
| | ଏ ଘେନି ସେ କଥା ଆମ୍ଭର । | ତୁମ୍ଭେ କଳ୍ପନା ବେଗେ କର | ।। ୨୧୯ |
| ୪୩ | ହେ ପ୍ରଭୁ ! ଯେ ତିନି ଭୁବନ । | ଗ୍ରାସୁଛି ତ୍ୱଷ୍ଟାର ନନ୍ଦନ | ।। ୨୨୦ |
| | ଏବେ ବିନାଶ କର ତାକୁ । | ହେ କୃଷ୍ଣ[4] ! ଆମ୍ଭର ତେଜକୁ | ।। ୨୨୧ |
| | ଅସ୍ତ୍ରଙ୍କୁ ଆୟୁଧଙ୍କୁ ପୁଣ । | ଗ୍ରାସିଲା ଯେବଣ ଦାରୁଣ | ।। ୨୨୨ |
| ୪୪ | ଯେ ହଂସ, ହୃଦୟ-ଆକାଶ । | ଅଟଇ ଯାହାର ନିବାସ | ।। ୨୨୩ |
| | ଯେ ସାକ୍ଷୀ ବୁଦ୍ଧି-ଆଦିଙ୍କର । | ଯେ ସଦାନନ୍ଦ କଳେବର | ।। ୨୨୪ |

---

୧. ଦର୍ଶକର । ୨. ପ୍ରତାରଣାରେ । ୩. ସ୍ଥାନରେ ।

୪. କୃଷିର୍ଭୂବାଚକଃ ଶବ୍ଦୋ ଣଶ୍ଚ ନିର୍ବୃତିବାଚକଃ ।
ତୟୋରୈକ୍ୟଂ ପରଂବ୍ରହ୍ମ କୃଷ୍ଣ ଇତ୍ୟଭିଧୀୟତେ ।।

| | | | |
|---|---|---|---|
| | ମୃଷ୍ଟ[୧] ଅଟଇ ଯଶ ଯାର | ଯେ ଆଦିରହିତ ଈଶ୍ୱର | ॥ ୨୨୫ |
| | ଯାହାକୁ ସାଧୁଜନମାନେ | ସଂଗ୍ରହ କରନ୍ତି ଭୁବନେ | ॥ ୨୨୬ |
| | ସଂସାରପଥିକ ଲୋକର | ଶ୍ରାନ୍ତ ହୁଅନ୍ତେ ସଂସାରର | ॥ ୨୨୭ |
| | ଗରିଷ୍ଠ[୨] ଅଟେ ଯେହୁ ଫଳ | ଯେ ଆର୍ତ୍ତି କରଇ ନିର୍ମୂଳ | ॥ ୨୨୮ |
| | ଏମନ୍ତ ତୁମ୍ଭେ ଭଗବାନ | ତୁମ୍ଭଙ୍କୁ କରୁଛୁଁ ବନ୍ଦନ | ॥ ୨୨୯ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୪୫ | ହେ ନୃପ ! ଏ ରୂପେ ସାଦରେ | ସ୍ତୁତିକି କରନ୍ତେ ଅମରେ | ॥ ୨୩୦ |
| | ଏଥୁ ଅନ୍ତରେ ଆପଣାର | ସ୍ତୁତିକି କରିଣ ଗୋଚର | ॥ ୨୩୧ |
| | ଆନନ୍ଦ ହୋଇ ଭଗବାନ | କହିଲେ ତାହାଙ୍କୁ ବଚନ | ॥ ୨୩୨ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୪୬ | ହେ ସୁରଶ୍ରେଷ୍ଠେ ! ମୋର ସ୍ତବ | ସହିତେ ଯେ ଜ୍ଞାନ ସଂଭବ | ॥ ୨୩୩ |
| | ହୋଇଲା ତୁମ୍ଭମାନଙ୍କର | ଐଶ୍ୱର୍ଯ୍ୟସ୍ମୃତି ଯେଣେ ମୋର | ॥ ୨୩୪ |
| | ଯେଣେ ଲୋକଙ୍କର ଭଗତି | ମୋ'ଠାରେ ହୋଏ ଉତପତି | ॥ ୨୩୫ |
| | ତେଣେ ମୁଁ ହୋଇଲି ସଂତୋଷ | ତୁମ୍ଭମାନଙ୍କୁ ଦିବାନିଶ | ॥ ୨୩୬ |
| ୪୭ | ସଂତୋଷ ହୁଅଇ ମୁଁ ଯେବେ | ଅଲଭ୍ୟ ଅଛି କିବା ତେବେ | ॥ ୨୩୭ |
| | ହେ ଦେବଶ୍ରଷ୍ଠେ ! ତଥାପିହି | ଏକାନ୍ତମତି ମୋର ଠାଇଁ | ॥ ୨୩୮ |
| | ମୋ'ଠାରୁ ନ ବାଞ୍ଛଇ ଆନ | ଯେଣୁ ସେ ତତ୍ତ୍ୱବିଦ ଜନ | ॥ ୨୩୯ |
| ୪୮ | ବିଷୟେ ତତ୍ତ୍ୱଦୃଷ୍ଟି ଯାର | କୃପଣ ଅଟଇ ସେ ନର | ॥ ୨୪୦ |
| | ଆପଣା ଶ୍ରେୟ ନ ଜାଣଇଁ | ଯେବେ ସେ ବିଷୟ ବାଞ୍ଛଇ | ॥ ୨୪୧ |
| | ତାକୁ ଯେ କରେ ତା' ପ୍ରଦାନ | ତାର ପ୍ରାୟେ ସେ ଅଜ୍ଞ ଜନ | ॥ ୨୪୨ |
| ୪୯ | ସ୍ୱୟେଂ ଯେ ଜାଣଇଁ ମୋକ୍ଷକୁ | ସେ ଲୋକ ଅଜ୍ଞାନୀ ଲୋକଙ୍କୁ | ॥ ୨୪୩ |
| | ପ୍ରବୃତ୍ତିମାର୍ଗ ନ କହଇ | ଉତ୍ତମ ବୈଦ୍ୟ ଯେ ହୁଅଇ | ॥ ୨୪୪ |
| | ବାଞ୍ଛା କଲେହେଁ ରୋଗୀ ଜନ | ଅପଥ୍ୟ ନ ଦିଏ ଯେସନ | ॥ ୨୪୫ |
| ୫୦ | ହେ ଇନ୍ଦ୍ର ! ତୁମ୍ଭମାନଙ୍କର | ମଙ୍ଗଳ ହେଉ ବାରମ୍ବାର | ॥ ୨୪୬ |
| | ଦଧୀଚି ନାମେ ଋଷିବର | ତାଙ୍କ ଠାକୁ ଗମନ କର | ॥ ୨୪୭ |
| | ବିଦ୍ୟା-ତପସ୍ୟା-ବ୍ରତସାର[୩] | ଅଟେ ଯେ ତାଙ୍କ କଳେବର | ॥ ୨୪୮ |
| | ବିଳମ୍ବ ନ କରି ତାହାଙ୍କୁ | ପ୍ରାର୍ଥନା କର ସେ ଗାତ୍ରକୁ | ॥ ୨୪୯ |

---

୧. ମୃଷ୍ଟ = ରୁଚିକର । 　୨. ପରୀଷ୍ଟ (ମୂଳପାଠାନ୍ତର) = ସର୍ବତଃ ପୂଜିତ । 　୩. ସାର = ଦୃଢ଼ ।

୫୧ ଦଧୀଚିଂ ଋଷି ପୂର୍ବେ ପୁଣି । ଶୁଦ୍ଧ ବ୍ରହ୍ମକୁ ଥିଲେ ଜାଣି ।। ୨୫୦
ଅଶ୍ୱିନକୁମାରେ ତାହାଙ୍କୁ । ମାଗିଲେ ସେ ବ୍ରହ୍ମବିଦ୍ୟାକୁ ।। ୨୫୧
ଦଧୀଚି ବୋଇଲେ କର୍ମରେ । ଅଛି ମୁଁ, କହିବି ପଛରେ ।। ୨୫୨
ସେ ଯାନ୍ତେ ବାସବ ଅଇଲେ । ଋଷିଙ୍କି ଏମନ୍ତ ବୋଇଲେ ।। ୨୫୩
ବିଦ୍ୟା ନ କହିବ ବୈଦ୍ୟଙ୍କୁ । ଯେବେ ଲଙ୍ଘିଣ ମୋ' ବାକ୍ୟକୁ ।। ୨୫୪
କହିବ, ବେଗେ ତୁମ୍ଭ ଶିର । ଛେଦିବି, ସଂଦେହ ନ କର ।। ୨୫୫
ଏମନ୍ତ କହି ଇନ୍ଦ୍ର ଗଲେ । ଅଶ୍ୱିନେ ପ୍ରବେଶ ହୋଇଲେ ।। ୨୫୬
ଋଷିଙ୍କ ମୁଖୁଁ ଇନ୍ଦ୍ରବାଣୀ । ଶୁଣି ବୋଇଲେ ବୈଦ୍ୟେ ପୁଣି ।। ୨୫୭
ପ୍ରଥମୁଁ କାଟି ତୁମ୍ଭ ଶିର । ଯୋଡ଼ିବୁଁ ଶିରକୁ ଅଶ୍ୱର ।। ୨୫୮
ସେ ଶିରେ ବିଦ୍ୟାକୁ କହିବ । ତା' ଇନ୍ଦ୍ର ଯେବେ ବିନାଶିବ ।। ୨୫୯
ଯୋଡ଼ିଣ ତୁମ୍ଭ ନିଜ ଶିର । ଦକ୍ଷିଣା ଦେଇ ଯିବୁଁ ଘର ।। ୨୬୦
ଦଧୀଚି ଋଷି ଏହା ଶୁଣି । ତାହାଙ୍କୁ ସେହିରୂପେ ଭଣି ।। ୧
ପ୍ରବର୍ଗ୍ୟ, ବ୍ରହ୍ମବିଦ୍ୟା ବେନି । ଯାହା ସେ ପୂର୍ବେ ଥିଲେ ଘେନି ।। ୨
ହୋଇଣ ଅସତ୍ୟଶଙ୍କିତ । ଆବର ସତ୍‌କାର ପ୍ରାପତ ।। ୩
[2]ଯେଣୁ ସେ ବିଦ୍ୟା ଅଶ୍ୱଶିରେ । କହିଲେ ଦଧୀଚି ପୂର୍ବରେ ।। ୨୬୧

---

୧.
ନିଶମ୍ୟାଥର୍ବଣଂ ଦକ୍ଷଂ ପ୍ରବର୍ଗ୍ୟବ୍ରହ୍ମବିଦ୍ୟୟୋଃ ।
ଦଧ୍ୟଞ୍ଚଂ ସମୁପାଗମ୍ୟ ତମୂଚତୁରଥାଶ୍ୱିନୌ ।। ୧

ଭଗବନ୍ ଦେହି ନୌ ବିଦ୍ୟାମିତି ଶ୍ରୁତ୍ୱା ସ ଚାବ୍ରବୀତ୍ ।
କର୍ମଣ୍ୟବସ୍ଥିତୋଽଦ୍ୟାହଂ ପଶ୍ଚାଦ୍ ବକ୍ଷ୍ୟାମି ଗଚ୍ଛତମ୍ ।। ୨

ତୟୋର୍ନିର୍ଗତୟୋରେବ ଶକ୍ର ଆଗତ୍ୟ ତଂ ମୁନିଂ ।
ଉବାଚ ଭିଷଜୋର୍ବିଦ୍ୟାଂ ମା ବାଦୀରଶ୍ୱିନୋର୍ମୁନେ ! ।। ୩

ଯଦି ମଦ୍‌ବାକ୍ୟମୁଲ୍ଲଙ୍ଘ୍ୟ ବ୍ରବୀଷି ସହସୈବ ତେ ।
ଶିରଶ୍ଛିନ୍ଦ୍ୟାଂ ନ ସନ୍ଦେହ ଇତ୍ୟୁକ୍ତ୍ୱା ପ୍ରଯଯୌ ହରିଃ ।। ୪

ଇନ୍ଦ୍ରେ ଗତେ ତଥାଭ୍ୟେତ୍ୟ ନାସତ୍ୟାବୂଚତୁର୍ଦ୍ୱିଜଂ ।
ତନ୍ମୁଖାଦିନ୍ଦ୍ରଗଦିତଂ ଶ୍ରୁତ୍ୱା ତାବୂଚତୁଃ ପୁନଃ ।। ୫

ଆବାଂ ତବ ଶିରଶ୍ଛିତ୍ତ୍ୱା ପୂର୍ବମଶ୍ୱସ୍ୟ ମସ୍ତକଂ ।
ସଂଧାସ୍ୟାବସ୍ତତୋ ବ୍ରୂହି ତେନ ବିଦ୍ୟାଂ ଚ ନୌ ଦ୍ୱିଜ ! ।। ୬

ତସ୍ମିନ୍ନିନ୍ଦ୍ରେଣ ସଂଛିନ୍ନେ ପୁନଃ ସଂଧାୟ ମସ୍ତକଂ ।
ନିଜଂ ତେ ଦକ୍ଷିଣାଂ ଦତ୍ତ୍ୱା ଗମିଷ୍ୟାବୋ ଯଥାଗତମ୍ ।। ୭

ଏତଚ୍ଛ୍ରୁତ୍ୱା ତଥାବୋଚଦ୍ ଦଧ୍ୟଙ୍ଙାଥର୍ବଣସ୍ତୟୋଃ ।
ପ୍ରବର୍ଗ୍ୟଂ ବ୍ରହ୍ମବିଦ୍ୟାଂ ଚ ସତ୍କୃତୋଽସତ୍ୟଶଙ୍କିତଃ ।। ୮
(ସ୍ୱାମୀଧୃତ ଶ୍ଳୋକାଃ)

ପ୍ରବର୍ଗ୍ୟ ଓ ବ୍ରହ୍ମବିଦ୍ୟାରେ ଦକ୍ଷ ଆଥର୍ବଣ ଦଧୀଚିଙ୍କୁ ଶୁଣି ଓ ତାଙ୍କ ପାଖକୁ ଯାଇ ଅଶ୍ୱିନକୁମାର ଦୁହେଁ କହିଲେ ।। ୧

'ହେ ଭଗବନ୍ ! ଆମ ଦୁହିଁଙ୍କୁ ବିଦ୍ୟା ଦିଅ ।' ଏତିକି ଶୁଣି ସେ କହିଲେ, ଆଜି ମୁଁ କର୍ମରେ ଅବସ୍ଥିତ; ପଛେ କହିବି; ତୁମେ ଦୁହେଁ ଯାଅ ।। ୨

ସେ ଦୁହେଁ ନିର୍ଗତ ହୁଅନ୍ତେ ଇନ୍ଦ୍ର ଆସି ସେ ମୁନିଙ୍କୁ କହିଲେ ଅଶ୍ୱିନ ବୈଦ୍ୟ ଦୁହିଁଙ୍କୁ ହେ ମୁନି ! ବିଦ୍ୟା କୁହ ନାହିଁ ।। ୩

ଯଦି ମୋ ବାକ୍ୟ ଉଲ୍ଲଘଂନ କରି ସହସା ସେ ଦୁହିଁଙ୍କୁ କହିବ, ତେବେ 'ମୁଁ ତୁମ ମୁଣ୍ଡ କାଟିବି; ସନ୍ଦେହ ନାହିଁ' ବୋଲି କହି ଇନ୍ଦ୍ର ଚାଲିଗଲେ ।। ୪

ଇନ୍ଦ୍ର ଚାଲିଯାନ୍ତେ ନାସତ୍ୟ ଦୁହେଁ ଆସି ଦ୍ୱିଜଙ୍କୁ କହିଲେ । ତାଙ୍କ ମୁଖରୁ ଇନ୍ଦ୍ରଙ୍କ କଥିତ ଶୁଣି ସେ ଦୁହେଁ ପୁଣି କହିଲେ ।। ୫

ଆମେ ଦୁହେଁ ଆଗ ତୁମ ମୁଣ୍ଡ କାଟି ଘୋଡ଼ାମୁଣ୍ଡ ଲଗାଇବୁ, ତହୁଁ ତା'ଦ୍ୱାରା ହେ ଦ୍ୱିଜ ! ଆମ ଦୁହିଁଙ୍କୁ ବିଦ୍ୟା କୁହ ।। ୬

ସେଇ ମୁଣ୍ଡକୁ ଇନ୍ଦ୍ର କାଟିଲେ ପୁଣି ତୁମ ମୁଣ୍ଡ ଲଗାଇ ଏବଂ ତୁମକୁ ଦକ୍ଷିଣା ଦେଇ ଦୁହେଁ ଯଥା ଆଗତ ତଥା ଯିବୁ ।। ୭

ଏହା ଶୁଣି ଆଥର୍ବଣ ଦଧୀଚି ସେ ଦୁହିଁଙ୍କୁ ଯଥା ତଥା ପ୍ରବର୍ଗ୍ୟ ଓ ବ୍ରହ୍ମବିଦ୍ୟାକୁ ସତ୍‌କୃତ ହୋଇ ଓ ସତ୍ୟଶଙ୍କିତ ନ ହୋଇ କହିଲେ ।। ୮

୨. 'ଅଶ୍ୱସ୍ୟ ଶୀର୍ଷ୍ଣା ପ୍ରଯତାନୁବାଚ' (ଶ୍ରୁତିଃ)

| | | | |
|---|---|---|---|
| | ସେ ଦିନୁଁ ଅଶ୍ୱଶିର ହୋଇ | ସେ ବିଦ୍ୟା ବିଖ୍ୟାତ ଅଟଇ | ।। ୨୬୨ |
| | ଜୀବନମୁକତି[୧] -ପ୍ରକାର | କଲେ ସେ ଋଷି ବୈଦ୍ୟଙ୍କର | ।। ୨୬୩ |
| ୫୨ | ଅଥର୍ବ ବେଦରେ ନିପୁଣ | ଅଟେ ଯେ ଦଧୀଚି ବ୍ରାହ୍ମଣ | ।। ୨୬୪ |
| | ଅଭେଦ୍ୟ କବଚ ମୋହର | କରିଣ ଥିଲେ ସେ ଗୋଚର | ।। ୨୬୫ |
| | ତ୍ୱଷ୍ଟାଙ୍କୁ ପ୍ରଦାନ ସେ କଲେ | ବିଶ୍ୱରୂପଙ୍କୁ ତ୍ୱଷ୍ଟା ଦେଲେ | ।। ୨୬୬ |
| | ଯା' ବିଶ୍ୱରୂପଠାରୁ ତୁହି | ଧଇଲୁ ସ୍ଥିରଚିତ୍ତ ହୋଇ | ।। ୨୬୭ |
| ୫୩ | ତୁମ୍ଭେ ମାଗନ୍ତେ ବିନୟରେ | ବିଶେଷେ ଅଶ୍ୱିଙ୍କ[୨] ପ୍ରୀତିରେ | ।। ୨୬୮ |
| | ଧର୍ମଜ୍ଞରୂପୀ ସେ ପ୍ରଦାନ | କରିବେ ନିଜ ଅସ୍ଥିମାନ | ।। ୨୬୯ |
| | ସେ ଅସ୍ଥିମାନଙ୍କେ ନିର୍ମାଣ | କରନ୍ତେ ବିଶ୍ୱକର୍ମା ପୁଣ | ।। ୨୭୦ |
| | ଆୟୁଧମାନଙ୍କେ ପ୍ରଧାନ | ବଜ୍ର ହୋଇବ ଉତପନ | ।। ୨୭୧ |
| | ମୋହର ତେଜେ ବୃଦ୍ଧି ହୋଇ | ଯେଉଁ ବଜ୍ରରେ କରି ତୁହି | ।। ୨୭୨ |
| | ଶିରକୁ ବୃତ୍ର ଅସୁରର | ବିନାଶ କରିବୁ ସତ୍ୱର | ।। ୨୭୩ |
| ୫୪ | ଯେ[୩] ବୃତ୍ର ହୁଅନ୍ତେ ନିଧନ | ତେଜ, ଆୟୁଧ, ଅସ୍ତ୍ରମାନ | ।। ୨୭୪ |
| | ଲଭିବ ସଂପତ୍ତିକି ପୁଣ | ତୁମ୍ଭର ସଂଭବୁ କଲ୍ୟାଣ | ।। ୨୭୫ |
| | ମୋହର ପରାୟଣ ଯେହି | ତାହାକୁ ନ ହିଂସଇ କେହି | ।। ୨୭୬ |
| | ଶ୍ରୀକୃଷ୍ଣଚରଣ-ପଙ୍କଜ | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ।। ୨୭୭ |
| | ଭଣଇ ଭାଗବତ ଗୀତ | ସଂତୋଷ ସାଧୁଜନଚିତ୍ତ | ।। ୨୭୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଭଗବଦୁପଦେଶୋ
ନାମ ନବମୋଽଧ୍ୟାୟଃ ।।

## ଦଶମ ଅଧ୍ୟାୟ

ଦଶମେ କେଶବାଦିଷ୍ଟଦଧ୍ୟଗସ୍ଥିଜବଜ୍ରଧୃକ୍ ।
ଇନ୍ଦ୍ରୋଽଯୁଧ୍ୟତ ବୃତ୍ରେଣ ସାସୁରେଣ ସନିର୍ଜରଃ ।। ୧

ଶ୍ରୀବାଦରାୟଣିରୁବାଚ

| | | | |
|---|---|---|---|
| ୧ | ଇନ୍ଦ୍ରକୁ କହି ଏ ବଚନ | ବିଶ୍ୱଭାବନ ଭଗବାନ | ।। ୧ |
| | ଅନ୍ତର ହେଲେ ସେହି ସ୍ଥାନେ | ଚାହାଁନ୍ତେ ଅନିମେଷ[୪] ମାନେ | ।। ୨ |
| ୨ | ହେ ରାଜା ! ସେହି ପରକାରେ | ପ୍ରାର୍ଥନା କରନ୍ତେ ଅମରେ | ।। ୩ |
| | ଅଥର୍ବବେଦରେ ବିଦିତ | ଯେ ଋଷି ଅଟନ୍ତି ମହତ | ।। ୪ |
| | ମନରେ ହୋଇଲେ ହରଷ | ବାହ୍ୟରେ କଲେକ ନିରାଶ | ।। ୫ |
| | ଦେବତାଙ୍କର ମୁଖୁଁ ଧର୍ମ | ଶୁଣିମାଅର୍ଥେ କରି ମନ | ।। ୬ |
| | ହସିଲା ପ୍ରାୟକ ହୋଇଲେ | ଏମନ୍ତ ବଚନ କହିଲେ | ।। ୭ |

୧. ଜୀବନ୍ମୁକ୍ତତ୍ୱ ।　　୨. ଅଶ୍ୱି = ଅଶ୍ୱିନକୁମାର ।　　୩. ସେ ।
୪. ଅନିମେଷ = ଦେବତା (ଯେହେତୁ ତାଙ୍କ ଆଖିରେ ପଲକ ନାହିଁ) ।

ଶ୍ରୀଦଧ୍ୟଙ୍ଙୁବାଚ

୩ ପ୍ରାଣୀମାନଙ୍କର ମୃତ୍ୟୁରେ । ଯେ ଦୁଃଖ ଚେତନାକୁ ହରେ ॥
ଦୁଃସହ ଅଟଇ ଯେ ପୁଣ । ହେ ଦେବେ ! ତାହା କି ନ ଜାଣ ॥
୪ ଜୀଇବି ବୋଲି ନିଜ ମନେ । ବାଞ୍ଛନ୍ତି ଯେଉଁ ଜୀବମାନେ ॥
ତାଙ୍କର ଯେ ଆତ୍ମା[୧] ଦୟିତ । ଯେ ଇହ ଲୋକରେ ବାଞ୍ଛିତ ॥
ବିଷ୍ଣୁ ମାଗିଲେହେଁ ଦେବାକୁ । କେ ଇଚ୍ଛା କରେ ସେ ଦେହକୁ ॥

ଶ୍ରୀଦେବା ଊଚୁଃ

୫ ପ୍ରାଣୀଙ୍କ ଠାରେ ଦୟାବନ୍ତ । ତୁମ୍ଭର ପ୍ରାୟ ଯେ ମହତ ॥
ଯେ ପୁଣ୍ୟଶ୍ଳୋକ ଜନେ ଛନ୍ତି । ସେହି କରନ୍ତି ଯାଙ୍କୁ ସ୍ତୁତି ॥
ଏମନ୍ତ ହୋଇ କର୍ମମାନେ । ଅଛନ୍ତି ତାଙ୍କର ଭୁବନେ ॥
ହେ ବିପ୍ର ! ଦୁସ୍ତ୍ୟଜ ହୋଇଣ । କି ଅଛି ତାହାଙ୍କର ପୁଣ ॥
୬ ଯେ ନିଜ କାର୍ଯ୍ୟପର ନର । ନ ଜାଣେ ସଂକଟ ପରର ॥
ପରସଂକଟ ଯେବେ ଜାଣି । ମାଗନ୍ତା ନାହିଁ ସେହୁ ପ୍ରାଣୀ ॥
ଦାନସମର୍ଥ ଯେ ଅଟଇ । ସେହି ସେ କଥା ନ ଜାଣଇଁ ॥
ସେ ତାହା ଜାଣିଥାନ୍ତା ଯେବେ । ନାହିଁ ବୋଲନ୍ତା ନାହିଁ ତେବେ ॥

ଶ୍ରୀଦଧ୍ୟଙ୍ଙୁବାଚ[୨]

୭ ଧର୍ମକୁ ତୁମ୍ଭମାନଙ୍କର । ଶୁଣିମା ଅର୍ଥେ ବାଞ୍ଛା ମୋର ॥
ପ୍ରତିବଚନ ଏଣୁ କରି । ତୁମ୍ଭଙ୍କୁ କହିଲି ବିଚାରି ॥
ଯେ ପ୍ରିୟ, ନିଶ୍ଚେ ନାଶ ହୋଇ । ସେ ଦେହ ଛାଡୁଛି ଏ ମୁହିଁ ॥
୮ ହେ ପ୍ରଭୁମାନେ ! ଯେ ଶରୀର । ଅନିତ୍ୟ ଅଟେ ଆପଣାର ॥
ପ୍ରାଣୀଦୟାରେ ଧର୍ମ ଯଶ । ତେଣେ ନ ଅର୍ଜେ ଯେ ପୁରୁଷ ॥
ସ୍ଥାବରଙ୍କର ହିଁ ଶୋଚନ । ଯୋଗ୍ୟ ଅଟଇ ସେହୁ ଜନ ॥
୯ ପ୍ରାଣୀଙ୍କ ଶୋକରେ ଶୋଚଇ । ହରଷେ ହରଷ ହୁଅଇ ॥
ଯେ ପ୍ରାଣୀ ତାର ଧର୍ମ ଯେହୁ । ଧର୍ମ ଅଟଇ ଖ୍ୟାତ ସେହୁ ॥
ଅବ୍ୟୟ ଧର୍ମ ବୋଲି ମନେ । ଘେନନ୍ତି ପୁଣ୍ୟଶ୍ଳୋକମାନେ ॥
୧୦ ଯେ ଭକ୍ଷ୍ୟ ଶୃଗାଳାଦିଙ୍କର[୩] । କ୍ଷଣକେ ହୋଏ ଯେ ସଂହାର ॥
ଯାହା ସକାଶୁଁ ଆପଣାର । କିଛି ହିଁ ନାହିଁ କାର୍ଯ୍ୟ ଆର ॥
ଏମନ୍ତ ଅଟଇ ଯେ ଧନ, । ଶରୀର, ପୁତ୍ର ଆଦିମାନ ॥
ତେଣେ ପରକୁ ଉପକାର । କରଇ ନାହିଁ ଯାହା ନର ॥
ଆଶ୍ଚର୍ଯ୍ୟ ଅଟଇ ଏ ରୀତି । ଏ ଦୈନ୍ୟ ଅଟେ କଷ୍ଟ ଅତି ॥

---

୧. ଆତ୍ମା = ଦେହ । ୨. ଶ୍ରୀଋଷିରୁବାଚ । ୩. ଶ୍ୱ-ଶୃଗାଳାଦିର ।

## ଶ୍ରୀଶୁକ ଉବାଚ[1]

୧୧ ନିଶ୍ଚୟ ଏମନ୍ତରୂପେଣ । କରି ଦଧୀଚି ଆଥର୍ବଣ[2] ।।
ଆତ୍ମାକୁ ପରମ ବ୍ରହ୍ମରେ । ଏକ କରିଣ ସମାଧିରେ ।।
ଆପଣା କଳେବର ଯେହୁ । ତାହାକୁ ତ୍ୟାଗ କଲେ ସେହୁ ।।
୧୨ ଇନ୍ଦ୍ରିୟ, ବୁଦ୍ଧି ପ୍ରାଣ ମନ । ସଂଯତ କଲେ ସେ ଏମାନ ।।
ବନ୍ଧନମାନ ନାଶ କଲେ । ତତ୍ତ୍ୱକୁ ପ୍ରତ୍ୟକ୍ଷେ ଦେଖିଲେ ।।
ପରମ ଯୋଗ ଆସ୍ଥା କଲେ । ଦେହ ଗଲା, ତା' ନ ଜାଣିଲେ ।।
୧୩-୧୪ ଯେ ମୁନି-ଅସ୍ଥିରେ ଉର୍ଜିତ । ବିଶ୍ୱକର୍ମାରେ ବିନିର୍ମିତ ।।
ସେ ବଜ୍ର ଟେକି ନିଜ କର । ଏଥୁ ଉତ୍ତାରେ ପୁରନ୍ଦର ।।
ବିଷ୍ଣୁର ତେଜରେ ଅନ୍ୱିତ । ଦେବତାଗଣେ ହୋଇ ବୃତ ।।
ସ୍ତୁତି କରନ୍ତେ ମୁନିଗଣେ । ତିନି ଲୋକକୁ ତତକ୍ଷଣେ ।।
ହରଷ କଲା ପ୍ରାୟ ହେଲେ । ଗଜେନ୍ଦ୍ର-ଉପରେ ଶୋହିଲେ ।।
୧୫ ଅସୁର ସୈନ୍ୟ ଯୁଥପତି । ଯାହାକୁ ବେଢ଼ିଣ ଅଛନ୍ତି ।।
ସେ ବୃତ୍ର ଆପଣା ବିପକ୍ଷ । ହେ ରାଜା ! ତାକୁ କରି ଲକ୍ଷ୍ୟ ।।
କ୍ରୋଧରେ ଧାଇଁଲେ ବାସବ । ଯେସନେ ଅନ୍ଧକକୁ[3] ଶିବ ।।
୧୬ ମନୁ-ପ୍ରଥମ ଚତୁର୍ଯୁଗେ । ତ୍ରେତାଯୁଗର ଆଦ୍ୟଭାଗେ ।।
ନର୍ମଦାନଦୀର ତଟରେ । ଅସୁରମାନଙ୍କ ସଙ୍ଗରେ ।।
ତଦନନ୍ତରେ ସୁରରଣ । ହୋଇଲା ପରମଦାରୁଣ ।।
୧୭-୧୮ ବସୁ, ଆଦିତ୍ୟ, ରୁଦ୍ର ଆର । ଯେ ଅଶ୍ୱୀ, ପିତୃ, ବୈଶ୍ୱାନର ।।
ଋଷି[4], ମରୁତ, ସାଧ୍ୟଗଣ । ଯେ ବିଶ୍ୱେଦେବାମାନେ ପୁଣ ।।
ତେଣେ ବେଷ୍ଟିତ ପୁରନ୍ଦର । ଯେ ଦେବମାନଙ୍କ ଈଶ୍ୱର ।।
ପ୍ରଦୀପ୍ତ ଆପଣା ଶୋଭାରେ । ବଜ୍ରକୁ ଧରିଛନ୍ତି କରେ ।।
ହେ ନୃପ ! ଏମନ୍ତ ପ୍ରକାରେ । ତାହାଙ୍କୁ ଦେଖିଣ ସମରେ ।।
ଯେ ଥିଲେ ବୃତ୍ର-ଆଦି ହୋଇ । ଅସୁରେ ନ ପାରିଲେ ସହି ।।
୧୯-୨୦ ନମୁଚି, ଦ୍ୱିମୂର୍ଦ୍ଧା, ଶମ୍ବର । ଅନର୍ବା, ଋଷଭ, ଅମ୍ବର ।।
ଯେ ହୟଗ୍ରୀବ, ଶଙ୍କୁଶିର । ଯେ ବିପ୍ରଚିତ୍ତି ମହାସୁର ।।
ପୁଲୋମା, ଅୟୋମୁଖ ବେନି । ବୃଷପର୍ବାକୁ ସଙ୍ଗେ ଘେନି ।।
ହେତି, ପ୍ରହେତି ଯେ ଆବର । ଉତ୍‌କଟ[5] ନାମ ମହାସୁର ।।

---

୧. ଶ୍ରୀବାଦରାୟଣିରୁବାଚ । ୨. ଆଥର୍ବଣ = ଅଥର୍ବବେଦଜ୍ଞ । ୩. ଅନ୍ତକକୁ । ୪. ଋଭୁ । ୫. ଉତ୍କଳ ।

ଦୈତ୍ୟ, ଦାନବ, ଯକ୍ଷ, ରକ୍ଷ । ଅଟନ୍ତି ଯେ ସହସ୍ରସଂଖ୍ୟ ।। ୬୨
୨୧ } ମାଳି, ସୁମାଳି ଆଦି ଯେତେ । ହେମପରିଚ୍ଛଦ ସମସ୍ତେ ।। ୬୩
୨୨ } ଯାହାକୁ ମୃତ୍ୟୁଦେବତା ହିଁ । ଭରସିବାକୁ ଶକ୍ୟ ନୋହି ।। ୬୪
ଏମନ୍ତ ବାସବସେନାର । ଯେ ଅଗ୍ରଭାଗ ବଳିୟାର ।। ୬୫
ସେ ଦୁଷ୍ଟେ ସିଂହନାଦେ ତାହି । ପୀଡ଼ିଲେ ଅସଂଭ୍ରମ ହୋଇ ।। ୬୬
୨୩ ଗଦା, ପରିଘ, ପ୍ରାସ, ଶର । ଯେ ଶୂଳ, ପରଶୁ, ମୁଦ୍‌ଗର ।। ୬୭
ଖଡ଼୍‌ଗ, [୧]ଶତଘ୍ନୀ, ତୋମର । [୨]ଭୁଶୁଣ୍ଡୀ ଶସ୍ତ୍ର ଅସ୍ତ୍ର ଆର ।। ୬୮
ବୃଷ୍ଟି କଲେ ସେମାନଙ୍କରେ । ଦେବଙ୍କୁ ସକଳ ଦିଗରେ ।। ୬୯
୨୪ ଏକ ଶରର ମୂଳଦେଶେ । ଆର ସାୟକମୂଳ ମିଶେ ।। ୭୦
ସକଳ ଦିଗେ ଏ ପ୍ରକାରେ । ସେମାନେ ଶରସମୂହରେ ।। ୭୧
ଆଚ୍ଛନ୍ନ ହୁଅନ୍ତେ ଅଦୃଶ୍ୟ । ହୋଇଲେ ସକଳ ତ୍ରିଦଶ ।। ୭୨
ଜଳଦେ ଜ୍ୟୋତିର୍ଗଣ ଯେହ୍ନେ । ଆଚ୍ଛନ୍ନ ହୁଅନ୍ତି ଗଗନେ ।। ୭୩
୨୫ ସେ ଶସ୍ତ୍ର-ଅସ୍ତ୍ର ବରଷାର । ଯେ ଓଘମାନେ ଦୁର୍ନିବାର ।। ୭୪
ଦେବତାସୈନ୍ୟଙ୍କୁ ସେମାନେ । ପ୍ରବେଶ ନୋହିଲେ ଗଗନେ ।। ୭୫
ସହସ୍ର ସହସ୍ର ପ୍ରକାରେ । ଦେବେ କାଟିଲେ ଶୀଘ୍ର କରେ ।। ୭୬
୨୬ ଅସ୍ତ୍ରଶସ୍ତ୍ରଙ୍କର ନିକର । କ୍ଷୀଣ ହୁଅନ୍ତେ ଦୈତ୍ୟଙ୍କର ।। ୭୭
ଏଥୁ ଅନ୍ତରେ ପାଷାଣରେ । ଦ୍ରୁମରେ, ପର୍ବତଶୃଙ୍ଗରେ ।। ୭୮
ଦେବସୈନ୍ୟଙ୍କୁ ବରଷିଲେ । ସେ ପୂର୍ବପ୍ରାୟ ତା' ଛେଦିଲେ ।। ୭୯
୨୭ ଶସ୍ତ୍ରାସ୍ତ୍ରସମୂହେ ଅକ୍ଷତ । ହୋଇଅଛନ୍ତି ସୁଖବନ୍ତ ।। ୮୦
ବିବିଧ ଅଚଳଶୃଙ୍ଗରେ । ଦ୍ରୁମମାନଙ୍କେ ପାଷାଣରେ ।। ୮୧
ବିଶେଷେ ନୋହିଛନ୍ତି କ୍ଷତ । ଇନ୍ଦ୍ରଙ୍କ ସଇନ୍ୟ ସମସ୍ତ ।। ୮୨
ଦେଖି ଏମନ୍ତ ତଦନ୍ତରେ । ତ୍ରାସକୁ ଲଭିଲେ ମନରେ ।। ୮୩
ସେ ବୃତ୍ରନାମେ ମହାସୁର । ପ୍ରଭୁ ଅଟଇ ଯାହାଙ୍କର ।। ୮୪
୨୮ ଯାହାଙ୍କ ଠାରେ ଭଗବାନ । ହୋଇଅଛନ୍ତି ସୁପ୍ରସନ୍ନ ।। ୮୫
ସେ ଦେବଗଣଙ୍କର ଠାରେ । ଯେତେକ ପ୍ରୟାସ ଅସୁରେ ।। ୮୬
ଅନବରତେ ଆଚରିଲେ । ସେମାନେ ସବୁ ବ୍ୟର୍ଥ ହେଲେ ।। ୮୭
ସାଧୁଙ୍କ ଠାରେ କ୍ଷୁଦ୍ରଜନେ । ପ୍ରୟୋଗ କରନ୍ତେ ଯେସନେ ।। ୮୮
ନିଷ୍ଠୁର ଅମଙ୍ଗଳ ବାଣୀ । କ୍ଷୋଭକୁ ନ କରନ୍ତି ପୁଣି ।। ୮୯
୨୯ ଅତିପ୍ରସିଦ୍ଧ ସେ ଅସୁରେ । ଭକ୍ତ ନୁହନ୍ତି ହରିଠାରେ ।। ୯୦

୧. ଶତଘ୍ନୀ ତୁ ଚତୁର୍ହସ୍ତା ଲୌହକଣ୍ଟକସଂଚିତା । ୨. ଭୁଶୁଣ୍ଡୀ ସର୍ବତୋ ଲୌହକଣ୍ଟକାନୁକ୍ରମୋନ୍ନତା ।

ଆପଣା ପ୍ରୟାସକୁ ପୁଣ । ବିଅର୍ଥ କରିଣ ଦେଖିଣ ॥ ୯୧
ଯୁଦ୍ଧଆରମ୍ଭ-ସମୟରେ । ପତିକି ଛାଡ଼ିଣ ଭୟରେ ॥ ୯୨
ପଳାଇ ଯିବା ଅର୍ଥେ ମନ । କଲେ ସେ ସକଳେ ବହନ ॥ ୯୩
ଯୁଦ୍ଧରେ ଯେତେ ଦର୍ପ ଥିଲା । ଯେଣୁ ତାଙ୍କର ନାଶ ହେଲା ॥ ୯୪
ଯେ ତାହାଙ୍କର ଧୈର୍ଯ୍ୟ ଥିଲା । ସେହି ଶତ୍ରୁରେ ନାଶ ହେଲା ॥ ୯୫
୩୦ ପଳାଉ ଅଛନ୍ତି ଅସୁରେ । ସୈନ୍ୟ ହିଁ ଅତ୍ୟନ୍ତ ଭୟରେ ॥ ୯୬
ପଳାଇ ଗଲେ ଭଗ୍ନ ହୋଇ । ମନସ୍ୱୀ ବୃତ୍ର ଏହା ଚାହିଁ ॥ ୯୭
ଉଚ୍ଚେ ହସିଣ ସେହୁ ବୀର । କହିଲା ଏମନ୍ତ ଉତ୍ତର ॥ ୯୮
୩୧ ଉଚିତ ଯେ ସେ ସମୟର । ମନସ୍ୱୀମାନଙ୍କ ରୁଚିର ॥ ୯୯
କହିଲେ ଏମନ୍ତ ବଚନ । ପୁରୁଷଙ୍କର ସେ ପ୍ରଧାନ ॥ ୧୦୦
ହେ ବିପ୍ରଚିତ୍ତି ! ହେ ଶମ୍ବର । ନମୁଚି ! ଅନର୍ବା ଅସୁର ॥ ୧୦୧
ମୟ ! ପୁଲୋମ ! ମୋର ବାଣୀ । ଶୁଣ ସମସ୍ତେ ତୁମ୍ଭେ ପୁଣି ॥ ୧୦୨
୩୨ ଜନମ ହୋଇଲା ଲୋକର । ମରଣ ଧ୍ରୁବ ସବୁଠାର ॥ ୧୦୩
ତହିଁକି ପ୍ରତିକାରବିଧି । ଏ ଲୋକେ ହୋଇ ନାହିଁ ସିଦ୍ଧି ॥ ୧୦୪
ମୃତ୍ୟୁରୁ ଇହଲୋକେ ଯଶ । ପରଲୋକ ହିଁ ପରକାଶ ॥ ୧୦୫
ଯେବେ ହୋଇବ, ସେ ମୃତ୍ୟୁକୁ । କେ ଇଚ୍ଛା ନ କରେ ହେବାକୁ ॥ ୧୦୬
ସେ ମୃତ୍ୟୁ ଯେଣୁ ସମୀଚୀନ । ତେଣୁ ଇଚ୍ଛନ୍ତି ବୀରଜନ ॥ ୧୦୭
ଏ ଘେନି ତାହା ଛାଡ଼ିକରି । ପଳାଉ ଅଛ କିଂପା ଡରି ॥ ୧୦୮
୩୩ [୧]ସର୍ବସମ୍ମତ ମୃତ୍ୟୁ ଦୁଇ । ଏ ଲୋକେ ଦୁର୍ଲ୍ଲଭ ଅଟଇ ॥ ୧୦୯
ଯେ ପ୍ରାଣୀ ଅଟେ ଜିତପ୍ରାଣ । କରନ୍ତେ ବ୍ରହ୍ମକୁ ଧାରଣ ॥ ୧୧୦
ଯୋଗମାର୍ଗରେ ରତ ହୋଇ । ନିଜ ଶରୀରକୁ ଛାଡ଼ଇ ॥ ୧୧୧
ସେ ଏକ ଅଟଇ ମରଣ । ଯେବଣ ବୀରଲୋକ ପୁଣ ॥ ୧୧୨
ସମରେ ପରାଙ୍ମୁଖ ନୋହି । ଆପଣା ଶରୀର ଛାଡ଼ଇ ॥ ୧୧୩
ସେ ଅଟେ ଆରକ ମରଣ । ହେ ଦୈତ୍ୟେ ! ସାବଧାନେ ଶୁଣ ॥ ୧୧୪
କୃଷ୍ଣଚରଣପଦ୍ମଧ୍ୟାନେ । ସଂତୋଷ ଦୀନବନ୍ଧୁ ମନେ ॥ ୧୧୫
ବୈଷ୍ଣବେ ହୁଅନ୍ତୁ ହରସ । ପଢ଼ି ଏ ଭାଗବତରସ ॥ ୧୧୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଇନ୍ଦ୍ର-ବୃତ୍ରାସୁରଯୁଦ୍ଧବର୍ଣ୍ଣନଂ
ନାମ ଦଶମୋଽଧ୍ୟାୟଃ ॥

---

୧. ଦ୍ୱାବିମୌ ପୁରୁଷୌ ଲୋକେ ସୂର୍ଯ୍ୟମଣ୍ଡଳଭେଦିନୌ ।
ପରିବ୍ରାଟ୍ ଯୋଗଯୁକ୍ତଶ୍ଚ ରଣେ ଚାଭିମୁଖେ ହତଃ ॥ (ସ୍ମୃତିଃ)

## ଏକାଦଶ ଅଧ୍ୟାୟ

ଏକାଦଶେ ତୁ ବୃତ୍ରସ୍ୟ ଯୁଧ୍ୟମାନସ୍ୟ ବଜ୍ରିଣା ।
ଭକ୍ତିଜ୍ଞାନବଲୋଦର୍କାଶ୍ଚିତ୍ରା ବାଚୋଽନୁବର୍ଣ୍ଣିତାଃ ॥ ୧

ଶ୍ରୀଶୁକ ଉବାଚ

୧ ଏମନ୍ତରୂପେ ହେ ରାଜନ । କହୁଚି ଯେ ଧର୍ମବଚନ ॥ ୧
ସେ ପତିବଚନ ସେମାନେ । ଘେନିଲେ ନାହିଁ ନିଜମନେ ॥ ୨
ସେ ଭୟତ୍ରସ୍ତ ବୁଦ୍ଧିହୀନ । ପଳାଇବାରେ କଲେ ମନ ॥ ୩
୨ } ଯାହାଙ୍କୁ ଅନୁକୂଳ ହୋଇ । କାଳ ଅଛି, ସେ ଦେବେ ତହିଁ ॥ ୪
୩ } କାଳୁଛନ୍ତି ସେ ଦୈତ୍ୟସୈନ୍ୟ । ଅନାଥ ଲୋକଙ୍କୁ ଯେସନ ॥ ୫
ଭାଜିବା ସୈନ୍ୟ ଦେଖି କରି । ହେ ନୃପଶ୍ରେଷ୍ଠ ! ଇନ୍ଦ୍ର-ଅରି ॥ ୬
କ୍ରୋଧରେ କଲାକ ତାପକୁ । ନିଜ ତେଜେ ସେ ଦେବତାଙ୍କୁ ॥ ୭
ନିବାରି କରିଣ ଭର୍ତ୍ସନ । ବୋଇଲା ଏମନ୍ତ ବଚନ ॥ ୮
୪ ଯେହୁ ପୃଷ୍ଠରେ ଘାତ ପାଇ । ଯାଉଣ ଅଛନ୍ତି ପଳାଇ ॥ ୯
ସେ ଦୈତ୍ୟେ ମାତାବିଷ୍ଠାପ୍ରାଏ । ତେଣେ ତୁମ୍ଭର କିବା ହୋଏ ॥ ୧୦
ନିଜ ଆତ୍ମାକୁ ଯେଉଁମାନେ । ମଣନ୍ତି ଶୂର କରି ମନେ ॥ ୧୧
ଭୟାଳୁ ଲୋକଙ୍କୁ ତାଙ୍କର । ମାରିବା ହୋଇ ଯେ ପ୍ରକାର ॥ ୧୨
ସେ କଥା ସ୍ତୁତିଯୋଗ୍ୟ ନୋହି । ଦିଅଇ ନାହିଁ ସ୍ୱର୍ଗକୁ ହିଁ ॥ ୧୩
୫ ହେ କ୍ଷୁଦ୍ରେ ! ସମରରେ କିଛି । ତୁମ୍ଭର ଯେବେ ଶ୍ରଦ୍ଧା ଅଛି ॥ ୧୪
ଧଇର୍ଯ୍ୟ ଅଛି ବା ହୃଦରେ । କ୍ଷଣେକ ରହ ମୋ' ଆଗରେ ॥ ୧୫
ନ କଲେ ଏମନ୍ତ ବିଚାର । ଇହଲୋକରେ ସ୍ପୃହା କର ॥ ୧୬
୬ ଯେ ସୁରଗଣେ ତାର ଅରି । ତାଙ୍କୁ ଏ ରୂପେ କ୍ରୋଧ କରି ॥ ୧୭
ଭୟ କରାନ୍ତେ ଆପଣାର । କଳେବରରେ ସେ ଅସୁର ॥ ୧୮
ଅତ୍ୟନ୍ତ ଅଟେ ବଳିୟାର । ଗର୍ଜିଲା ଅତି ଗୁରୁତର ॥ ୧୯
ଯେଉଁ ଗର୍ଜନେ ଅଚେତନ । ହେଲେ ଶ୍ରବଣ କଲା ଜନ ॥ ୨୦
୭ ସକଳ ଦେବଗଣମାନେ । ସେ ବୃତ୍ର-ଅସୁରଗର୍ଜନେ ॥ ୨୧
ପଡ଼ିଲେ ହୋଇଣ ମୂର୍ଚ୍ଛିତ । ବଜ୍ରରେ ହୋଇଣ ଆହତ ॥ ୨୨
ଧରଣୀତଳରେ ଯେସନ । ପଡ଼ନ୍ତି ମୂର୍ଚ୍ଛା ଯାଇ ଜନ ॥ ୨୩
୮ ବୁଜିଣ ଅଛନ୍ତି ନୟନ । ଯେଉଁ ଆତୁର ଦେବସୈନ୍ୟ ॥ ୨୪
ଚରଣଯୁଗଳେ ତାହାଙ୍କୁ । ମର୍ଦ୍ଦିଲା କଂପାନ୍ତେ ଧରାକୁ ॥ ୨୫
ଶୂଳକୁ ଟେକିଛି ତେଜରେ । ଦୁର୍ମଦ ସମରରଙ୍ଗରେ ॥ ୨୬
ଉନ୍ମଦ ହସ୍ତୀ ନଳବନ । ପାଦରେ ମର୍ଦଇ ଯେସନ ॥ ୨୭
୯ ଯେ ଶତ୍ରୁ ଅଟେ ଆପଣାର । ତାହାକୁ ଦେଖି ବଜ୍ରଧର ॥ ୨୮

ମହାଗଦାକୁ କ୍ରୋଧ ହୋଇ । ଫିଙ୍ଗିଲା ଆସନ୍ତେ ସେ ଧାଇଁ ॥ ୨୯
ଦୁଃସହ ଗଦାକୁ ଲୀଳାରେ । ଗ୍ରହଣକଲା ବାମକରେ ॥ ୩୦
୧୦ ବିକ୍ରମ ଅତିଶୟ ଯାର । ସେ ଇନ୍ଦ୍ରଶତ୍ରୁ ବୃତ୍ରାସୁର ॥ ୩୧
ଅତିଶୟରେ କ୍ରୋଧ କରି । ଧାମନ୍ତେ ସେହି ଗଦା ଧରି ॥ ୩୨
ଇନ୍ଦ୍ରଗଜକୁ କୁମ୍ଭସ୍ଥଳେ । ମାଇଲା ସମରମଣ୍ଡଳେ ॥ ୩୩
ହେ ନୃପ ! ସେ କର୍ମ ତାହାର । ପୂଜିଲେ ସର୍ବ ସୁରାସୁର ॥ ୩୪
୧୧ ବାଜନ୍ତେ ବୃତ୍ରଗଦା ଯାଇ । ଐରାବତ ଘୂର୍ଣ୍ଣିତ ହୋଇ ॥ ୩୫
କୁଳିଶେ ହୋଇଲେ ଆହତ । ଅଚଳ[୧] ହୁଅଇ ଯେମନ୍ତ ॥ ୩୬
ସେରୂପେ ହୋଇ ଅତିଆର୍ତ୍ତ । ଇନ୍ଦ୍ରସହିତେ ଧନୁସାତ[୨] ॥ ୩୭
ପଛକୁ ଗଲା ଅପସରି । ଫାଟିଲା ବଦନ ତାହାରି ॥ ୩୮
ସେ ଘେନି ମୁଖରୁ ରୁଧିର । ମୁଞ୍ଚନ୍ତେ ଅତି ଗୁରୁତର ॥ ୩୯
୧୨ ଦୁଃଖିତ ହେଲା ଯା' ବାହନ । ମନ ହିଁ ହୋଇଛି ବିଷଣ୍ଣ ॥ ୪୦
ଏମନ୍ତ ଯେଉଁ ପୁରନ୍ଦର । ତାକୁ ମହାତ୍ମା ବୃତ୍ରାସୁର ॥ ୪୧
ବିଚାରି ଗଦା ଆଉ ବାରେ । ପ୍ରୟୋଗ ନ କଲା ସମରେ ॥ ୪୨
କ୍ଷତ ହୋଇଛି ଯା' ବାହନ । ଏମନ୍ତ ଯେ ପାକଶାସନ[୩] ॥ ୪୩
ଅମୃତ ସ୍ରବେ ଯେଉଁ କର । ସ୍ପରଶ ହୁଅନ୍ତେ ତାହାର ॥ ୪୪
ଇନ୍ଦ୍ର ସେ ଦୁଃଖକୁ ଛାଡ଼ିଲା । ସମରନିମିତ୍ତେ ରହିଲା ॥ ୪୫
୧୩ ହେ ନୃପଶ୍ରେଷ୍ଠ ! ସେହୁ ଅରି । ହାତରେ ଅଛି ବଜ୍ର ଧରି ॥ ୪୬
ଭାଇକି ବିନାଶ କରିଛି । ଯୁଦ୍ଧନିମିତ୍ତେ ଯେ ମିଳିଛି ॥ ୪୭
ତାକୁ ଦେଖି ସେ ବୃତ୍ରାସୁର । ନିଷ୍ଠୁର ପାପକର୍ମ ତାର ॥ ୪୮
ସ୍ମରନ୍ତେ ଶୋକେ ରୋଷେ[୪] ପୁଣି । ହସନ୍ତେ କହିଲା ସେ ବାଣୀ ॥ ୪୯

ଶ୍ରୀବୃତ୍ର ଉବାଚ

୧୪ ମୋହର ଅଟୁ ତୁ ଅହିତ । ଭାଗ୍ୟରେ ହେଲୁ ଉପସ୍ଥିତ ॥ ୫୦
ଯେ ତୁ ବ୍ରାହ୍ମଣ ଅଛୁ ମାରି । ବିଶେଷେ ଗୁରୁ ଆପଣାରି ॥ ୫୧
ମୋହର ଭାଇ ଯେ ଅଟଇ । ତାକୁ ଯେ ମାରିଅଛୁ ତୁହି ॥ ୫୨
ହେ ଦୁଷ୍ଟଶ୍ରେଷ୍ଠ ! ଶୂଳେ ମୋର । ପାଷାଣତୁଲ୍ୟ ହୃଦ ତୋର ॥ ୫୩
ଫାଟି ଯାଆନ୍ତେ ଅଚିରେଣ । ଆଜ ମୁଁ ହୋଇବି ଅନୃଣ ॥ ୫୪
୧୫ ଯେ ଆମ୍ଭ ଅଗ୍ରଜ ଭୂସୁର[୫] । ଜ୍ଞାନୀ ଅପାପୀ ଗୁରୁ ତୋର ॥ ୫୫
କରି ଯେ ଅଛନ୍ତି ଦୀକ୍ଷାକୁ । ବିଶ୍ୱାସ କରିଣ ତାହାଙ୍କୁ ॥ ୫୬
ଯେ ତୁ କରୁଣାଶୂନ୍ୟ ହୋଇ । ସ୍ୱର୍ଗସୁଖରେ ମନ ଦେଇ ॥ ୫୭

---

୧. ଅଚଳ = ପର୍ବତ ।　୨. ଧନୁ = ପରିମାଣବିଶେଷ ।　୩. ପାକଶାସନ = ଇନ୍ଦ୍ର ।
୪. ମୋହେ ।　୫. ଭୂସୁର = ବ୍ରାହ୍ମଣ ।

ଛେଦିଲୁ ତାଙ୍କ ଶିରମାନ । ପଶୁର ଶିରକୁ ଯେସନ ॥ ୫୮
୧୬ ଲଜ୍ଜା, କରୁଣା, ଲକ୍ଷ୍ମୀ, କୀର୍ତ୍ତି । ଏମାନେ ତୋତେ ଛାଡ଼ିଛନ୍ତି ॥ ୫୯
ନିଜ କର୍ମରୁ କରି ତୋତେ । ଦୈତ୍ୟେହେଁ ନିନ୍ଦନ୍ତି ଜଗତେ ॥ ୬୦
କଷ୍ଟରେ ଶୂଳରେ ମୋହର । ଫାଟିଣ ଯିବ ତୋ' ଶରୀର ॥ ୬୧
ଅଗ୍ନିରେ ନୋହିବ ଦହନ । ଗୃଧ୍ରେ କରିବେ ତା' ଭୋଜନ ॥ ୬୨
୧୭ ତୁ ନିଷ୍ଠୁରକୁ ଅନୁଗତ । ହୋଇ ଯେ ଛନ୍ତି ଆନ ଏଥ ॥ ୬୩
ସେ ଅଙ୍ଗେ ଅସ୍ତ୍ର ଟେକି ମୋତେ । ଯେବେ ପ୍ରହାରିବେ ସନ୍ତତେ ॥ ୬୪
ସୂକ୍ଷ୍ମ ଅଟଇ ଯେ ତ୍ରିଶୂଳ । ତେଣେ ଛିଡ଼ନ୍ତେ ତାଙ୍କ ଗଳ ॥ ୬୫
ସେ ଗଳେ କରିବି ପୂଜନ । ସଗଣ ଭୂତପତିମାନ ॥ ୬୬
୧୮ ଅଥବା ହେ ବାସବ ! ବୀର । କୁଳିଶ ଘେନି ମୋର ଶିର ॥ ୬୭
ଏଠାରେ ମଥିବୁ ତୁ ଯେବେ । ମୁଁ କର୍ମବନ୍ଧ ଛାଡ଼ି ତେବେ ॥ ୬୮
ଭୂତମାନଙ୍କୁ ବଳିବିଧି । ନିଜ ଦେହରେ କରି ସିଦ୍ଧି ॥ ୬୯
ଧୀର ଲୋକଙ୍କର ଚରଣ । ରେଣୁକୁ ପଶିବି ଶରଣ ॥ ୭୦
୧୯ ହେ ଇନ୍ଦ୍ର ! ଅଛି ତୋ' ଆଗର । ବଇରି ଅଟଇ ତୋହର ॥ ୭୧
ଯେ ବଜ୍ର ଅମୋଘ ଅଟଇ । ମୋ'ଠାରେ ନ ଫିଙ୍ଗୁ କିଂପାଇଁ ॥ ୭୨
ନିଜ ଗଦାର ପ୍ରାୟ ହୋଇ । ନ ପୁଣ ବିଅର୍ଥ ହୁଅଇ ॥ ୭୩
କୃପଣଠାରୁ ପ୍ରୟୋଜନ । ଯାଚଞ୍ଚା ନିଷ୍ଫଳ ଯେସନ ॥ ୭୪
ଏ ବଜ୍ରକୁ ହିଁ ସେହିମତେ । ଆଶଙ୍କା ନ କର ତୁ ଚିତ୍ତେ ॥ ୭୫
୨୦ ହେ ଇନ୍ଦ୍ର ! ବିଷ୍ଣୁର ତେଜରେ । ଦଧୀଚି ଋଷିର ତପରେ ॥ ୭୬
ଏ ବଜ୍ର ନିର୍ମିତ, ନିଷ୍ଠୁର । ଏଣେ ଶତ୍ରୁକୁ ନାଶ କର ॥ ୭୭
ମୋତେ ମାରିବାର ନିମିତ୍ତେ । ବିଷ୍ଣୁ ପ୍ରେରଣ[1] କଲେ ତୋତେ ॥ ୭୮
ବିଷ୍ଣୁ ପକ୍ଷରେ ଥାନ୍ତି ଯାର । ଲକ୍ଷ୍ମୀ, ବିଜୟ, ଗୁଣ ତାର ॥ ୭୯
୨୧ ସଂକରଷଣ ମୋର ପତି । ସେ ମୋତେ ଯାହା କହିଛନ୍ତି ॥ ୮୦
ତାହାଙ୍କ ଚରଣପଦ୍ମରେ । ମନ ନିବେଶି ସେ ପ୍ରକାରେ ॥ ୮୧
ତୋ' ବଜ୍ରବେଗୁଁ ହେବ ନାଶ । ବିଷୟଭୋଗରୂପ ପାଶ ॥ ୮୨
ଛାଡ଼ିବି ନିଜ କଳେବର । ଗତିକି ଲଭିବି ମୁନିର ॥ ୮୩
୨୨ ଏକାନ୍ତମତି ଯେତେ ଜନ । ତାହାଙ୍କୁ ପ୍ରଭୁ ଭଗବାନ ॥ ୮୪
ଦିଅନ୍ତି ନାହିଁ ସେ ସଂପତ୍ତି । ଯେ ତିନି ଭୁବନେ ଅଛନ୍ତି ॥ ୮୫
ଉଦ୍‌ବେଗ, ମନବ୍ୟଥା, ମଦ । କଳି, ସଂପ୍ରୟାସ, ବିପଦ ॥ ୮୬
ଯେଉଁ ସଂପଦରୁ ଏମାନେ । ସଂଭବ ହୁଅନ୍ତି ଭୁବନେ ॥ ୮୭
୨୩ ହେ ଶକ୍ର ! ଧର୍ମ, ଅର୍ଥ, କାମେ । ଯେବଣ ଆୟାସ ଜନମେ ॥ ୮୮
ତାହା ପୁରୁଷର ନାଶନ୍ତି । ସଂକରଷଣ ଆତ୍ମ ପତି ॥ ୮୯

୧. ପ୍ରେଷଣ ।

ଈଶ୍ୱରପ୍ରସାଦକୁ ଜନ । ତେଣେ କରନ୍ତି ଅନୁମାନ ॥ ୯୦
ଯା' ନ ଲଭନ୍ତି ଆନ ନର । ଯେ ଅକିଂଚନଙ୍କ ଗୋଚର ॥ ୯୧
୨୪ ହେ ହରି ! ପାଦମୂଳ ତୋର । ଆଶ୍ରୟ ଯେଉଁ ଦାସଙ୍କର ॥ ୯୨
ତାହାଙ୍କୁ ଅନୁଗତ ହୋଇ । ଦାସ ହୋଇବି ପୁଣ ମୁହିଁ ॥ ୯୩
ପ୍ରାଣନାଥର ଗୁଣମାନ । ସ୍ମରଣା କରୁ ମୋର ମନ ॥ ୯୪
ଗୁଣକୀର୍ତ୍ତନ କରୁ ବାଣୀ । କର୍ମ ଆଚରୁ କାୟ ପୁଣି ॥ ୯୫
୨୫ ହେ ସର୍ବ-ସଉଭାଗ୍ୟନିଧି । ତୁମ୍ଭ ବିହୁନେ ଯୋଗସିଦ୍ଧି ॥ ୯୬
ସ୍ୱର୍ଗସମ୍ପତ୍ତି, ବ୍ରହ୍ମପଦ । ଯେ ସର୍ବ ଭୂମିର ସଂପଦ ॥ ୯୭
ଯେ ବା ରାଜତ୍ୱ, ମୋକ୍ଷ ଦୁଇ । ଏମାନ ବାଞ୍ଛା ନ କରଇ ॥ ୯୮
୨୬ ତୁମ୍ଭଙ୍କୁ ଦେଖିବାକୁ ମନ । ବାଞ୍ଛୁଛି ହେ ପଦ୍ମନୟନ ॥ ୯୯
ପକ୍ଷ[1] ବିହୀନ ଖଗମାନେ । ମାତାକୁ ଦେଖିବାକୁ ଯେହ୍ନେ ॥ ୧୦୦
କ୍ଷୁଧାର୍ତ୍ତ ବାଛୁରି ଯେସନ । କରନ୍ତି ସ୍ତନପାନେ ମନ ॥ ୧୦୧
ପ୍ରବାସଗତ ଯେଉଁ ପତି । ତାହାକୁ ଦେଖିବାକୁ ମତି ॥ ୧୦୨
କରିଣ ଥାଇ ନାରୀ ଯେହ୍ନେ । ବିଷାଦ ଲଭି ନିଜ ମନେ ॥ ୧୦୩
୨୭ ଆପଣା କର୍ମମାନଙ୍କରେ । ଭ୍ରମନ୍ତେ ସଂସାରଚକ୍ରରେ ॥ ୧୦୪
ବିଷ୍ଣୁ-ଭଗତ ଜନେ ମୋର । ମଇତ୍ରୀ ହେଉ ନିରନ୍ତର ॥ ୧୦୫
ତୁମ୍ଭ ମାୟାରେ ଦେହ, ସୁତ । ଭାର୍ଯ୍ୟା, ଗୃହରେ ଆସକତ ॥ ୧୦୬
ହୋଇଛି ମାନସ ମୋହର । ହେ ନାଥ ! ସେ ଦେହାଦିଠାର ॥ ୧୦୭
ଆସକ୍ତି ଆଉବାରେ ନୋହୁ । ଏମନ୍ତ ଆଜ୍ଞା ମୋତେ ହେଉ ॥ ୧୦୮
ଚିନ୍ତି ଶ୍ରୀକୃଷ୍ଣ-ପଦଦ୍ୱନ୍ଦ୍ୱ । ଭାଷାପ୍ରବନ୍ଧେ ଷଷ୍ଠସ୍କନ୍ଧ ॥ ୧୦୯
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସଂତୋଷ ସାଧୁଜନେ ତେଣେ ॥ ୧୧୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବୃତ୍ରବାକ୍ୟଂ ନାମ
ଏକାଦଶୋଽଧ୍ୟାୟଃ ॥

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେଽତିବିଷଣ୍ଣେନ ସ୍ୱୟମୁତ୍ସାହିତେନ ତୁ ।
ମହେନ୍ଦ୍ରେଣ ମହାଯୁଦ୍ଧେ ବୃତ୍ରସ୍ୟ ବଧ ଈର୍ଯ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ଏମନ୍ତେ ଯୁଦ୍ଧେ ଛାଡ଼ିବାକୁ । ବାଞ୍ଛନ୍ତେ ଆପଣା ଦେହକୁ ॥ ୧
ହେ ନୃପ ! ବିଜୟରୁ ସାର । ମଣନ୍ତେ ମୃତ୍ୟୁ ଆପଣାର ॥ ୨

---

୧. ପକ୍ଷି ।

ଶୂଳକୁ ଘେନି ନିଜ କର । ଇନ୍ଦ୍ରକୁ ଧାଇଁଲା ଅସୁର ।।
ବିଷ୍ଣୁଙ୍କୁ ପ୍ରଳୟଜଳରେ । କୈଟଭ ଯେସନେ ପୂର୍ବରେ ।।
୨ ଯୁଗାନ୍ତ-ଅନଳ ଆକାର । କଠୋର ଅଟେ ଶିଖା ଯାର ।।
ବେଗେ ବୁଲାଇ ସେ ଶୂଳକୁ । ଗର୍ଜିଣ ଫିଙ୍ଗିଲା ଇନ୍ଦ୍ରକୁ ।।
ହେ ପାପ ! ହେଲୁ ତୁ ନିଧନ । କ୍ରୋଧେ ବୋଇଲା ଏ ବଚନ ।।
ଅସୁରମାନଙ୍କ ଉପର । ଇନ୍ଦ୍ର ଅଟଇ ସେହୁ ବୀର ।।
୩ ଗ୍ରହ, ଉଲ୍‌କାର ପ୍ରାୟ ଯେହି । ଯାକୁ ନ ପାରେ ଲୋକ ଚାହିଁ ।।
ଭ୍ରମି ଆସୁଛି ଆକାଶରେ । ସେ ଶୂଳ ଏମନ୍ତ ପ୍ରକାରେ ।।
ଯେଉଁ ବଜ୍ରର ଶଏ[୧] ପବ । ତେଣେ କାଟିଲା ତା’ ବାସବ ।।
ବାସୁକିଶରୀର-ଆକାର । ଯେ ଭୁଜ ଅଟେ ସେ ବୃତ୍ରର ।।
ତାକୁ ହିଁ ବଜ୍ରରେ ଛେଦନ । କଲା ବିକ୍ଳବ ନୋହି ମନ ।।
୪ ଛିଡ଼ିଲା ଏକ ବାହୁ ଯାର । କ୍ରୋଧ ହୋଇ ସେ ବୃତ୍ରାସୁର ।।
ଯେ ବଜ୍ର ଘେନିଅଛି କରେ । ମିଳି ସେ ଇନ୍ଦ୍ର ନିକଟରେ ।।
ପରିଘ ଘେନିଣ ସତ୍ୱରେ । ପିଟିଲା କପୋଳପ୍ରାନ୍ତରେ ।।
ଏଥୁ ଉତ୍ତାରେ ଐରାବତ । ଗଜକୁ ପିଟିଲା ଦଇତ ।।
ମଘବାହସ୍ତୁଁ ତତକାଳ । ବଜ୍ର ପଡ଼ିଲା ଭୂମିତଳ ।।
୫ ଅତି ଅଦ୍ଭୁତ ସେ ବୃତ୍ରର । କର୍ମକୁ ଅମର ଅସୁର ।।
ଚାରଣ ସିଦ୍ଧସଂଘମାନେ । ପ୍ରଶଂସା କଲେ ତୋଷମନେ ।।
ସେ ଇନ୍ଦ୍ରସଂକଟ ଦେଖିଣ । ଉଚ୍ଚରେ କଲେ ହା ହା ପୁଣ ।।
୬ ହସ୍ତରୁ ରିପୁସନ୍ନିଧିରେ । ଯେ ବଜ୍ର ପଡ଼ିଲା ଭୂମିରେ ।।
ଲଜ୍ଜିତ ହୋଇ ପୁରନ୍ଦର । ସେ ବଜ୍ର ନ ଧଇଲେ କର ।।
ତାଙ୍କୁ ବୋଇଲା ବୃତ୍ରାସୁର । ହେ ଇନ୍ଦ୍ର ! ବଜ୍ର ଘେନି ମାର ।।
ନିଜ ଶତ୍ରୁକୁ ମାର ତୁହି । ବିଷାଦକାଳ ଏ ନୁହଇ ।।
୭ ଯେ ଆତତାୟୀ[୨] ହୋଇ ଜନେ । ଯୁଦ୍ଧ ବାଞ୍ଛନ୍ତି ନିଜ ମନେ ।।
ଜୟ ନୁହଇ ତାହାଙ୍କର । କେହୁଣି କାଳେ ସବୁଠାର ।।
ଦେହକୁ ଆତ୍ମା ବୋଲି ମଣି । ଥାଆନ୍ତି ନିରତେ ସେ ପ୍ରାଣୀ ।।
ଜନମ, ସ୍ଥିତି, ପ୍ରଳୟର । ଯେ ଆଦ୍ୟ ପୁରୁଷ ଈଶ୍ୱର ।।
ସର୍ବଜ୍ଞ, ସନାତନ ଯେହି । ଯେ ଏକ ତହୁଁ ଆନ ହୋଇ ।।
ସର୍ବଦା ଜୟକୁ ଲଭିବ । ଏମନ୍ତ ପୁରୁଷ ଦୁର୍ଲଭ ।।
୮ ଲୋକପାଳଙ୍କ ସହିତରେ । ଏ ଲୋକେ ଯାହାର ବଶରେ ।।
ବିବଶ ହୋଇଣ ଅଛନ୍ତି । ବିବିଧ ଚେଷ୍ଟା ଆଚରନ୍ତି ।।

---

୧. ଶହେ ।
୨. ଆତତ (ବିସ୍ତୃତ) ଆୟ (ପଶା) ଯାହାର ସେ; ହନ୍ତା ।

ଜାଲରେ ହୋଇଣ ବନ୍ଧନ । ଥାନ୍ତି ଯେସନେ ପକ୍ଷୀମାନ ॥ ୩୪
ଏ ଜୟ, ଅଜୟରେ ପୁଣ । ସେ କାଳ ଅଟଇ କାରଣ ॥ ୩୫
୯ ପ୍ରାଣୀଙ୍କ ସହ, ଓଜ, ବଳ । ପ୍ରାଣ, ଅମୃତ, ମୃତ୍ୟୁକାଳ ॥ ୩୬
ଏମନ୍ତ ଯେ ତାକୁ ନ ଜାଣି । ଅଜ୍ଞ ଆତ୍ମା[୧]କୁ ହେତୁ ମଣି ॥ ୩୭
୧୦ ଦାରୁରେ ଯେ ନାରୀନିର୍ମାଣ । ଯେ ଯନ୍ତ୍ରମୟ ମୃଗ ପୁଣ ॥ ୩୮
ସେ ଯେହ୍ନେ ଚାଳକ ଲୋକର । ଆୟତ୍ତେ ଲଭନ୍ତି ସଂଚାର ॥ ୩୯
ହେ ଇନ୍ଦ୍ର ! ଜାଣ ସେ ରୂପରେ । ସମସ୍ତେ ଈଶ୍ୱରବଶରେ ॥ ୪୦
୧୧ ପୁରୁଷ, ପ୍ରକୃତି, ମହତ । ଯେ ଅହଂକାର, ପଞ୍ଚଭୂତ ॥ ୪୧
ଇନ୍ଦ୍ରିୟ-ଆଶୟ ଏମାନେ । ଯା' ଅନୁଗ୍ରହର ବିହୀନେ ॥ ୪୨
ଏ ବିଶ୍ୱ-ସର୍ଜନ ଆଦିରେ । ସମର୍ଥ ନୁହନ୍ତି ସଂସାରେ ॥ ୪୩
୧୨ ଏ ରୂପେ ନ କରି ଗୋଚର । ଅଜ୍ଞାନୀ ଅଟଇ ଯେ ନର ॥ ୪୪
ଯେ ଆତ୍ମା ଅନୀଶ୍ୱର ପୁଣି । ତାକୁ ସ୍ୱତନ୍ତ୍ର ବୋଲି ମଣି ॥ ୪୫
ନିଜ ଇଚ୍ଛାରେ ଭଗବାନ । ଭୂତରେ ସୃଜେ ଭୂତମାନ ॥ ୪୬
ପୁଣି ସେ ଭୂତମାନଙ୍କରେ । ଭୂତମାନଙ୍କୁ ନାଶ କରେ ॥ ୪୭
୧୩ ଜୟକାଳରେ ପୁରୁଷର । ଆୟୁଷ, ଲକ୍ଷ୍ମୀ, ଯଶ ଆର ॥ ୪୮
ଐଶ୍ୱର୍ଯ୍ୟ, ମଙ୍ଗଳ ଯେ ଆନ । ଏମାନେ ହୁଅନ୍ତି ଉତ୍‌ପନ୍ନ ॥ ୪୯
ଯେସନେ ନ ବାଞ୍ଛିଲେ ଚିତ୍ତ । ଅକୀର୍ତ୍ତି ଆଦି ହୋଏ ଜାତ ॥ ୫୦
୧୪ ସେ ଘେନି ଅଯଶ-ଯଶରେ । ଜୟ-ଅଜୟ ବେନିଠାରେ ॥ ୫୧
ଜନ୍ମ-ମରଣ ବେନିଠାବ । ସୁଖ-ଦୁଃଖରେ ସମ ହେବ ॥ ୫୨
୧୫ ସତ୍ତ୍ୱାଦି ପ୍ରକୃତିର ଗୁଣ । ଆତ୍ମାର ନୁହନ୍ତି ପ୍ରମାଣ ॥ ୫୩
ଆତ୍ମାକୁ ସାକ୍ଷୀ କରି ତହିଁ । ଯେ ଜାଣେ ବଦ୍ଧ ସେ ନୁହଇ ॥ ୫୪
୧୬ ହେ ଶକ୍ର ! ମୋତେ ଦେଖ ତୁହି । ଯୁଦ୍ଧେ ନିର୍ଜିତ ଅଛି ହୋଇ ॥ ୫୫
ଛିଡ଼ିଛି ଭୁଜ ଶସ୍ତ୍ର ମୋର । ହରିବା ଅର୍ଥେ ପ୍ରାଣ ତୋର ॥ ୫୬
ଯେତେ ମୋହର ବଳ ଅଛି । ସେ ରୂପେ ଯତନ କରୁଛି ॥ ୫୭
୧୭ ଏ ଯୁଦ୍ଧ ଅଟେ ପ୍ରାଣପଣ । ସାୟକମାନେ କାଠି ଜାଣ ॥ ୫୮
ଏଣି ତେଣିକି ଯେ ଚଳନ୍ତି । ପଶା ସେ ବାହନ[୨] ହୁଅନ୍ତି ॥ ୫୯
ଏହାର ସମ୍ଭବିବ ଜୟ । ଏହାର ହେବ ପରାଜୟ ॥ ୬୦
ଏ ବେନି କଥାକୁ ଗୋଚର । କରି ନ ପାରେ ଏଥେଁ ନର ॥ ୬୧

ଶ୍ରୀଶୁକ ଉବାଚ

୧୮ ଇନ୍ଦ୍ର ଶୁଣି ବୃତ୍ରବାକ୍ୟକୁ । ଅଦମ୍ଭେ ପୂଜିଲା ତାହାକୁ ॥ ୬୨
ହସନ୍ତେ ବଜ୍ରକୁ ଘେନିଣ । କହିଲା ବିସ୍ମୟ ତେଜିଣ ॥ ୬୩

୧. ଆତ୍ମା = ଦେହ । ୨. ବାହନ = ହସ୍ତୀ ଆଦି ପଶାଖେଳର ଫଳକ ।

### ଶ୍ରୀଇନ୍ଦ୍ର ଉବାଚ

୧୯ ଅଦ୍ଭୁତ ସିଦ୍ଧ ତୁ ଅସୁର । ଏମନ୍ତ ମତି ଯେଉଁ ତୋର ॥ ୬୪
ଯେ ଅଟେ ଜଗତ-ଈଶ୍ୱର । ଯେ ଆତ୍ମା ସୁହୃଦ ଆବର ॥ ୬୫
ତାହାଙ୍କୁ ସର୍ବାତ୍ମଭାବରେ । ସେବା କରିଛୁ ତୁ ପୂର୍ବରେ ॥ ୬୬
୨୦ ଯେ ବିଷ୍ଣୁମାୟା ଜନ ମୋହେ । ତା' ତୁ ତରିଲୁ ନିଃସଂଦେହେ ॥ ୬୭
ଅସୁରଭାବ ଛାଡ଼ି ଯେଣୁ । ମହାପୁରୁଷ ହେଲୁ ତେଣୁ ॥ ୬୮
୨୧ ଅତି ଆଶ୍ଚର୍ଯ୍ୟ ଏପ୍ରକାର । ତୁ ରଜ ପ୍ରକୃତି ଅସୁର ॥ ୬୯
ସତ୍ତ୍ୱସ୍ୱରୂପୀ ଭଗବାନ । ବିଷ୍ଣୁଠାରେ ତୋ' ଦୃଢ଼ ମନ ॥ ୭୦
୨୨ ଯେ ହରି କୈବଲ୍ୟ-ଈଶ୍ୱର । ତାହାଙ୍କ ଠାରେ ଭକ୍ତି ଯାର ॥ ୭୧
ସେ ତୁ ଅମୃତଜଳଧିରେ । ବିହରୁଅଛୁ ନିରନ୍ତରେ ॥ ୭୨
ଯେ କ୍ଷୁଦ୍ର ଖାତଜଳ ପ୍ରାଏ । ସ୍ୱର୍ଗାଦି କିବା ତେଣେ ହୋଏ ॥ ୭୩

### ଶ୍ରୀଶୁକ ଉବାଚ

୨୩ ହେ ନୃପ ! ଏମନ୍ତ ପ୍ରକାରେ । ଧର୍ମ ଜାଣିମା ଆଶୟରେ ॥ ୭୪
ଅନ୍ୟୋଽନ୍ୟେ କହନ୍ତେ ବଚନ । ଯୋଦ୍ଧାମାନଙ୍କରେ ପ୍ରଧାନ ॥ ୭୫
ଯୁଝିଲେ ଇନ୍ଦ୍ର ବୃତ୍ରାସୁର । ଅତ୍ୟନ୍ତ ବୀର୍ଯ୍ୟ ଦୁହିଁଙ୍କର ॥ ୭୬
୨୪ ଅରିନାଶନ ବୃତ୍ରାସୁର । ଲୋହପରିଘ ଯେହୁ ଘୋର ॥ ୭୭
ହେ ନୃପ ! ବାମହସ୍ତେ ତାକୁ । ବୁଲାଇ ଫିଙ୍ଗିଲା ଇନ୍ଦ୍ରକୁ ॥ ୭୮
୨୫ ବାସବ ବୃତ୍ରପରିଘକୁ । ପରିଘ[1] ସମାନ ଭୁଜକୁ ॥ ୭୯
ଛେଦିଲା ଏକା ସମୟରେ । ସେ ଶତପର୍ବ କୁଳିଶରେ ॥ ୮୦
୨୬ ଛିଡ଼ିଲା ମୂଳ ଯାହାଙ୍କର । ସେ ବେନି ଭୁଜରୁ ରୁଧିର ॥ ୮୧
ସ୍ରବନ୍ତେ ଶୋହିଲା ଅସୁର । ଯେସନେ ପୂର୍ବେ ପୁରନ୍ଦର ॥ ୮୨
ବଜ୍ରେ କାଟନ୍ତେ ପକ୍ଷ, ଗିରି । ଶୋହେ ଆକାଶୁଁ ଖସି କରି ॥ ୮୩
୨୭ ଭୂମିରେ ତଳହନୁ କରି । ଆକାଶେ ଆରହନୁ ଭରି ॥ ୮୪
୨୯ ଆକାଶପ୍ରାୟକ ଗମ୍ଭୀର । ଯେ ମୁଖ ତେଣେ ସେ ଅସୁର ॥ ୮୫
ସର୍ପର ପ୍ରାୟେକ ଉଲ୍ବଣ[2] । ଯେବଣ ଜିହ୍ୱା ତେଣେ ପୁଣ ॥ ୮୬
କାଳଦେବତାର ସମାନ । ଅଟନ୍ତି ଯେଉଁ ଦନ୍ତମାନ ॥ ୮୭
ତେଣେ ଗ୍ରାସିଲାପ୍ରାୟ ହୋଇ । ତ୍ରିଜଗତକୁ ଅଛି ଧାଇଁ ॥ ୮୮
ଅତ୍ୟନ୍ତ ଉଚ୍ଚ ଅଟେ ତାର । ଅତିବିସ୍ତାର କଳେବର ॥ ୮୯

---

୧. କରଭ । ୨. ଉଲ୍ବଣ = ଉତ୍କଟ ।

ଚାଲିବା ବେଗେ ଗିରିମାନ । ସ୍ଥାନରୁ କରନ୍ତେ ଚାଳନ ॥ ୯୦
ଯେସନ ପାଦରେ ଗମନ । କରଇ ପର୍ବତରାଜନ ॥ ୯୧
କ୍ଷିତିକି ଚୂରନ୍ତେ ପାଦରେ । ପ୍ରବେଶ ହୋଇ ସେ ପାଶରେ ॥ ୯୨
ଇନ୍ଦ୍ରକୁ ବାହନସହିତେ । ଗିଳିଲା ଦାନବ ତୁରିତେ ॥ ୯୩
୩୦ ତାହାର ପ୍ରାଣ ବୀର୍ଯ୍ୟ ଦୁଇ । ଅତ୍ୟନ୍ତ ଅଧିକ ଅଟଇ ॥ ୯୪
ହସ୍ତୀକି ଗିଳଇ ସତ୍ୱର । ଯେସନେ ମହା ବିଷଧର ॥ ୯୫
ପ୍ରଜାପତିଙ୍କ ସହିତରେ । ପରମ ଋଷିଏ ଅମରେ ॥ ୯୬
ବୃତ୍ର ଗିଳିଲା ବାସବକୁ । ଦେଖିଣ ପାଇ ନିର୍ବେଦକୁ ॥ ୯୭
ହା କଷ୍ଟ ବୋଲିଣ ସକଳେ । ଶବଦ କଲେ ଏକାବେଳେ ॥ ୯୮
୩୧ ବୃତ୍ର ଗିଳନ୍ତେ ପୁରନ୍ଦର । ନ ମଲା ମିଳି ତା' ଉଦର ॥ ୯୯
ଶ୍ରୀନାରାୟଣ କବଚରେ । ସ୍ୱଯୋଗମାୟାର ବଳରେ ॥ ୧୦୦
୩୨ ସେ ବୃତ୍ର-ଅସୁର-ଉଦର । ବଜ୍ରରେ କାଟି ପୁରନ୍ଦର ॥ ୧୦୧
ତହିଁରୁ ବାହାର ହୋଇଣ । କାଟିଲେ ଶତ୍ରୁଶିର ପୁଣ ॥ ୧୦୨
ପର୍ବତ-ଶୃଙ୍ଗକୁ ଯେସନ । ସ୍ୱବଳେ କରଇ ଛେଦନ ॥ ୧୦୩
୩୩ ଅତ୍ୟନ୍ତ ବେଗ ସେ କୁଳିଶ । ତାର କନ୍ଧରଚାରିପାଶ ॥ ୧୦୪
ସେ ବୃତ୍ରହତ୍ୟାର ନିମିତ୍ତେ । ଛେଦନ କରନ୍ତେ ଭ୍ରମନ୍ତେ ॥ ୧୦୫
ତେତେକ ଦିବସଗଣରେ । ତାକୁ ପକାଇଲା ଭୂମିରେ ॥ ୧୦୬
ଯେତେ ଦିବସେ ଗ୍ରହଙ୍କର । ଜାତ ହୁଅଇ ସଂବତ୍ସର ॥ ୧୦୭
୩୪ ଗଗନେ ସେହି ସମୟରେ । ଦୁନ୍ଦୁଭି ବାଜିଲେ ନିର୍ଭରେ ॥ ୧୦୮
ଯେ ବୃତ୍ର-ଅସୁରବିନାଶ । ଯଶକୁ କରନ୍ତି ପ୍ରକାଶ ॥ ୧୦୯
ସିଦ୍ଧଗନ୍ଧର୍ବେ ସେ ମନ୍ତ୍ରରେ । ମହର୍ଷିସମୂହ ସଙ୍ଗରେ ॥ ୧୧୦
ସ୍ତୁତି କରନ୍ତେ ସେ ଇନ୍ଦ୍ରକୁ । ତୋଷେ ବର୍ଷିଲେ କୁସୁମକୁ ॥ ୧୧୧
୩୫ ବୃତ୍ରଦେହରୁ ନିଜଜ୍ୟୋତି । ବାହାର ହୋଇ ହେ ନୃପତି ॥ ୧୧୨
ଚାହାଁନ୍ତେ ସର୍ବଭୂତ[1] ମାନେ । ପଶିଲା ଯାଇ ଭଗବାନେ ॥ ୧୧୩
ହେ କୃଷ୍ଣଚନ୍ଦ୍ର କୃପାସିନ୍ଧୁ । ତୁମ୍ଭଙ୍କୁ ସେବି ଦୀନବନ୍ଧୁ ॥ ୧୧୪
ଭାଗବତକୁ ଭଣେ ଗୀତ । [2]ସଂତୋଷ ସାଧୁଜନଚିତ୍ତ ॥ ୧୧୫
ସେ ସାଧୁଜନଙ୍କର ପାଦେ । ମତି ମୋ' ରହୁ ଅପ୍ରମାଦେ ॥ ୧୧୬

ଇତି ଶ୍ରମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବୃତ୍ରବଧୋ
ନାମ ଦ୍ୱାଦଶୋଽଧ୍ୟାୟଃ ॥

---

୧. ସର୍ବଦେବ । ୨. 'ସୁଜନେ ଏଣେ ଦିଅ ଚିତ୍ତ ।'

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେ ତୁ ବୃତ୍ରାଖ୍ୟବ୍ରହ୍ମହତ୍ୟାମହାଭୟାତ୍ ।
ଚିରଂ ନଷ୍ଟୋଽବିତଃ ଶକ୍ରୋ ବିଷ୍ଣୁନେତି ନିରୂପ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ହେ ମହାରାଜ[୧] ପରୀକ୍ଷିତ । ବୃତ୍ର ହୁଅନ୍ତେ ପ୍ରାଣହତ ॥ ୧
ଇନ୍ଦ୍ରବିହୁନେ ତତକାଳ । ଯେ ତିନିଲୋକ ଲୋକପାଳ ॥ ୨
ସମସ୍ତେ ହୋଇଲେ ବିଜ୍ୱର । ସୁଖିତ ଇନ୍ଦ୍ରିୟ ତାଙ୍କର ॥ ୩
୨ ଦେବତା, ଋଷି, ପିତୃ, ଭୂତେ । ଦେବଙ୍କ ଅନୁଗେ ଦଇତେ ॥ ୪
ଆପଣା ଇଚ୍ଛାରେ ଗମନ । କଲେ ସେମାନେ ଯେଝା ସ୍ଥାନ ॥ ୫
ବ୍ରହ୍ମା, ଶଙ୍କର, ପୁରନ୍ଦର । ଏ ଆଦି ଗଲେ ତଦନ୍ତର ॥ ୬

ଶ୍ରୀରାଜୋବାଚ

୩ ବାସବଦୁଃଖକୁ କାରଣ । ବାଞ୍ଛଇ ଶୁଣିମାକୁ ପୁଣ ॥ ୭
ଯେବଣ ବୃତ୍ରର ନିଧନେ । ସୁଖୀ ହୋଇଲେ ଦେବମାନେ ॥ ୮
କେଉଁ କାରଣୁଁ ବାସବର । ଦୁଃଖ ହୋଇଲା ଗୁରୁତର ॥ ୯

ଶ୍ରୀଶୁକ ଉବାଚ

୪ ବୃତ୍ର-ଅସୁରବିକ୍ରମରେ । ଉଦ୍‌ବେଗ ହୋଇ ସର୍ବ ସୁରେ ॥ ୧୦
ମହରଷିଙ୍କ ସଙ୍ଗେ ଥାଇ । ସେ ବୃତ୍ରାସୁରବଧପାଇଁ ॥ ୧୧
ପ୍ରାର୍ଥନା କଲେ ବାସବକୁ । ସେ ଡରି ବ୍ରାହ୍ମଣବଧକୁ ॥ ୧୨
ଇଚ୍ଛା ନ କଲା ପୁରନ୍ଦର । ବୋଇଲା ଏମନ୍ତ ଉତ୍ତର ॥ ୧୩

ଶ୍ରୀଇନ୍ଦ୍ର ଉବାଚ

୫ ବିଶ୍ୱରୂପର ବଧୁଁ ଜାତ । ହୋଇଲା ଯେବଣ ଦୁରିତ ॥ ୧୪
ସ୍ତ୍ରୀ, ଭୂମି, ଜଳ, ଭୂମିରୁହ । ଏହୁ କରନ୍ତେ ଅନୁଗ୍ରହ ॥ ୧୫
ବାଣ୍ଟି ଘେନିଲେ ସେ ଦୁରିତ । ଯେ ବୃତ୍ରବଧୁଁ ହେବ ଜାତ ॥ ୧୬
ତାହା କେବଣଠାରେ ମୁହିଁ । ଦେଇ ପବିତ୍ର ହୋଇବଇଁ ॥ ୧୭

ଶ୍ରୀଶୁକ ଉବାଚ

୬ ଋଷିଏ ସେ କଥାକୁ ଶୁଣି । ଇନ୍ଦ୍ରକୁ ବୋଇଲେ ଏ ବାଣୀ ॥ ୧୮
ତୁମ୍ଭର ଭଦ୍ର ହେଉ ଜାତ । ଭୟ ନ କର ନିଜ ଚିତ୍ତ ॥ ୧୯
ତୁମ୍ଭଙ୍କୁ ହୟମେଧ-ଯାଗେ । ଦୀକ୍ଷାକୁ ଘେନାଇବୁଁ ବେଗେ ॥ ୨୦
୭ ପରମ ଆତ୍ମା ନାରାୟଣ । ପୁରୁଷ ଈଶ୍ୱର ଯେ ପୁଣ ॥ ୨୧
ତାହାଙ୍କୁ ତୁରଗମେଧରେ । ପୂଜା କରିଣ ଏ ସଂସାରେ ॥ ୨୨
ଜଗତବଧରୁ ଯେ ଜାତ । ହେବ ସେ ପାପୁଁ ହୁଁ ମୁକତ ॥ ୨୩

---

୧. ମହାଦାନୀ (ଭୂରିଦ) ।

ବୃତ୍ରବଧରୁ ଯେ ବା ଜାତ । କେତେ ମାତ୍ରକ ସେ ଦୁରିତ ॥ ୨୪
୮ ଯେ ବିପ୍ର, ଗୁରୁ[୧], ଧେନୁ ମାରେ । ମାତା, ଆଚାର୍ଯ୍ୟ ବଧ କରେ ॥ ୨୫
ଯେ ପାପୀ, ଚଣ୍ଡାଳ ଯେ ଆନ । ଭକ୍ଷଣ କରଇ ଯେ ଶ୍ୱାନ ॥ ୨୬
ଯାହାର କୀର୍ତ୍ତନୁଁ ସେମାନେ । ଶୁଦ୍ଧିକି ଲଭନ୍ତି ଭୁବନେ ॥ ୨୭
୯ ଆମ୍ଭେ ଯା' ଆଚରିବୁଁ ସୁଖେ । ସେ ଅଶ୍ୱମେଧ-ମହାମଖେ ॥ ୨୮
ତୁ ପୁଣ ହୋଇ ଶ୍ରଦ୍ଧାଯୁତ । ପୂଜି ସେ ବିଷ୍ଣୁଙ୍କୁ ତୁରିତ ॥ ୨୯
ବ୍ରହ୍ମାସହିତରେ ଜଗତ । ମାରି ହିଁ ନୋହିବୁ ଲିପତ[୨] ॥ ୩୦
ଏ ଖଳ ଅଟେ ବୃତ୍ରାସୁର । ଏହା ନିଗ୍ରହେ କି ବିଚାର ॥ ୩୧

ଶ୍ରୀଶୁକ ଉବାଚ

୧୦ ଏମନ୍ତେ ବ୍ରାହ୍ମଣେ ପ୍ରେରିତ । କରନ୍ତେ ପୁଣ ପୁରୁହୂତ ॥ ୩୨
ଶତ୍ରୁକୁ କଲା ବିନାଶନ । ସେ ଶତ୍ରୁ ହୁଅନ୍ତେ ନିଧନ ॥ ୩୩
ବ୍ରହ୍ମର ହତ୍ୟା ଇନ୍ଦ୍ରଠାରେ । ପ୍ରବେଶ ହୋଇଲା ସତ୍ୱରେ ॥ ୩୪
୧୧ ଯେ ତାପ ସେ ହତ୍ୟାରୁ ହେଲା । ଅମରପତି ତା' ସହିଲା ॥ ୩୫
ଏ ଇନ୍ଦ୍ରଠାରେ ସୁଖଲେଶ । କେବେହେଁ ନୋହିଲା ପ୍ରବେଶ ॥ ୩୬
ଯେ ଲଜ୍ଜାବନ୍ତ ହୋଇଥାଇ । ଦଇବବଶେ ବାଚ୍ୟ[୩] ପାଇ ॥ ୩୭
ଯେତେକ ଗୁଣମାନେ ଥାନ୍ତି । ତାହାକୁ ସୁଖ ନ କରାନ୍ତି ॥ ୩୮
୧୨ ଯେ ବ୍ରହ୍ମହତ୍ୟା ରୂପବନ୍ତ । ଦିଶୁଛି ଚାଣ୍ଡାଳୀ ଯେମନ୍ତ ॥ ୩୯
ଜରାରେ କମ୍ପୁଅଛି ଅଙ୍ଗ । ବ୍ୟାପିଛି ତାକୁ କ୍ଷୟରୋଗ ॥ ୪୦
ରକତଯୁତ ଯେ ବସନ । ତାହା କରିଛି ପରିଧାନ ॥ ୪୧
୧୩ ପକ୍ୱକୁନ୍ତଳମାନ ମେଲି । ଡାକୁଛି ରହ ରହ ବୋଲି ॥ ୪୨
ଯେ ମୀନପ୍ରାୟ ଗନ୍ଧ କରେ । ଏମନ୍ତ ନିଃଶ୍ୱାସ ସମୀରେ ॥ ୪୩
ସେ ମାର୍ଗ ଦୂଷଣ କରୁଛି । ଯେବଣ ମାର୍ଗରେ ଯାଉଛି ॥ ୪୪
୧୪ ହେ ନୃପ ! ଇନ୍ଦ୍ର ଆକାଶରେ । ଗମିଲା ସକଳ ଦିଗରେ ॥ ୪୫
ପୂର୍ବ ଉତ୍ତର ବେନି ଦିଶ । ମଧ୍ୟରେ ଯେ ସର ମାନସ ॥ ୪୬
ସେ ସରୋବରମଧ୍ୟେ ଯାଇ । ପ୍ରବେଶ ହେଲା ବେଗ ହୋଇ ॥ ୪୭
୧୫ ଚିତ୍ତରେ ବ୍ରହ୍ମବଧୁଁ ମୋକ୍ଷ । ଚିନ୍ତନ୍ତେ ହୋଇଣ ଅଲକ୍ଷ୍ୟ ॥ ୪୮
ପୁଷ୍କରନାଳସୂତ୍ରବାସ । କଲା ସେ ସହସ୍ର ବରଷ ॥ ୪୯
ଭୋଗ ନ ଲଭିଲା ଏଥିର । ଯେଣୁ ତା' ଦୂତ ବୈଶ୍ୱାନର[୪] ॥ ୫୦

---

୧. ଗୁରୁ = ପିତା । ୨. ଲିପିତ (ତୁଂ ଲିପ୍ତ) । ୩. ବାଚ୍ୟ = ନିନ୍ଦା । ୪. ବୈଶ୍ୱାନର = ଅଗ୍ନି ।

ସେ ଜଳେ ପ୍ରବେଶ ନୁହଇ । ହବିର୍ଭାଗକୁ ନ ବହଇ ।।
୧୬ ବିଦ୍ୟା-ତପସ୍ୟା-ଯୋଗବଳେ । ଯା' ଅନୁଭାବ ମହୀତଳେ ।।
ସେହୁ ନହୁଷ ସେ ସମୟେ । ସ୍ୱର୍ଗକୁ ପାଳିଲା ନିର୍ଭୟେ ।।
ଯେ ମଦ-ଐଶ୍ୱର୍ଯ୍ୟ-ସଂପତ୍ତି । ତେଣେ ହେଲା ସେ ଅନ୍ଧମତି ।।
ବୋଲେ ଶଚୀକି ଭଜ ମୋତେ । ସେ ଶଚୀ ଭୟ ପାଇ ଚିତ୍ତେ ।।
ବୃହସ୍ପତିଙ୍କି ଜଣାଇଲେ । ସେ ଗୁରୁ ଏମନ୍ତ ବୋଇଲେ ।।
ବ୍ରାହ୍ମଣେ ବହିଥିବେ ଯାନ । ଯେବେ କରିବୁ ଆଗମନ୍ ।।
ତେବେ କରିବି ତୋତେ ସ୍ନେହ । ଏମନ୍ତ ବୋଲି ତାକୁ କହ ।।
ବୃହସ୍ପତିଙ୍କ ଅନୁମତେ । ଶଚୀ ଏମନ୍ତ ନିବେଦନ୍ତେ ।।
ବିପ୍ରଙ୍କୁ ଶିବିକା ବୁହାଇ । ଅଗସ୍ତ୍ୟ ଋଷିଙ୍କି ଅନାଇଁ ।।
'ବେଗେ ଗମନ କର' ବୋଲି । ଚରଣେ ଦେଲା ତାଙ୍କୁ ପେଲି ।।
ତାହାଙ୍କ ଶାପରୁ ସତ୍ୱର । ବନେ ହୋଇଲା ଅଜଗର ।।
୧୭ ବ୍ରାହ୍ମଣମାନଙ୍କ ବାକ୍ୟରେ । ଆହୂତ ହୋଇ ତଦନ୍ତରେ ।।
ମିଳିଲା ଅମରଭୁବନେ । ପାପ ହରିଲା ବିଷ୍ଣୁଧ୍ୟାନେ ।।
ଯେ ଦିଗ-ଅଧିପତି ଶିବ । ପାପକୁ କଲେ ସେ ନିଷ୍ପ୍ରଭ[1] ।।
ଇନ୍ଦ୍ରକୁ ନ ବାଧିଲା ସେହୁ । ଲକ୍ଷ୍ମୀ ପାଳିଲେ ତାକୁ ଯହୁଁ ।।
୧୮ ହେ ନୃପ ! ବିଷ୍ଣୁ-ଆରାଧନ । ଯହିଁରେ ହୁଅଇ ସଂପନ୍ନ ।।
ଇନ୍ଦ୍ରକୁ ସେ ଅଶ୍ୱମେଧରେ । ବ୍ରହ୍ମଋଷିଏ ଯଥାର୍ଥରେ ।।
ମିଳିଣ ଦୀକ୍ଷା କରାଇଲେ । ସେ ଦୋଷ ଯେଣେ ଯିବ ଭଲେ ।।
୧୯, ୨୦ ଯାହାକୁ ବ୍ରହ୍ମବାଦୀମାନେ । ବିସ୍ତାର କଲେ ଦିନେ ଦିନେ ।।
ଇନ୍ଦ୍ର ସେ ଅଶ୍ୱମେଧ କରି । ଯେ ସର୍ବଦେବମୂର୍ତ୍ତି ହରି ।।
ତାହାଙ୍କୁ କରନ୍ତେ ପୂଜନ । ସେ ବୃତ୍ରଅସୁର ନିଧନ ।।
ଯଦ୍ୟପି ଅଟେ ଅତି ପାପ । ତେଣେ ଶୂନ୍ୟ ହେଲା ହେ ନୃପ ।।
ଉଦୟ ହୁଅନ୍ତେ ଭାସ୍କର । ଯେସନେ ନାଶଇ ନୀହାର ।।
୨୧ ମରୀଚି ଆଦି ଯଥୋଚିତେ । ଯାହା ବିଚାରିଲେ ସୁଚିତ୍ତେ ।।
ସେ ବାଜିମେଧଯଜ୍ଞେ କରି । ପୁରାଣ ପୁରୁଷ ଯେ ହରି ।।
ଯେ ଅଧିଯଜ୍ଞରୂପେ ଖ୍ୟାତ । ତାହାଙ୍କୁ ପୂଜି ପୁରୁହୂତ ।।
ବିନାଶ କଲେକ ଦୁରିତ । ସ୍ୱଭାବେ ଅଟେ ସେ ମହତ ।।
୨୨ ସକଳପାପବିନାଶନ । କରଇ ଏ ମହାଆଖ୍ୟାନ ।।
ବିଷ୍ଣୁକୀର୍ତ୍ତନ ଅଛି ଯହିଁ । ଯହିଁରେ ଭକ୍ତି ସମ୍ଭବଇ ।।
ଯହିଁରେ ଭକ୍ତ ଜନଙ୍କର । ବର୍ଣ୍ଣନ ବିଜୟ ଇନ୍ଦ୍ରର ।।

---

୧. ନିଷ୍ପ୍ରଭ, ଛେପ (ହେୟ) ।

| | | | | | |
|---|---|---|---|---|---|
| ୨୩ | ଏ ଆଖ୍ୟାନକୁ ବୁଧ ନରେ | । ସର୍ବଦା ପର୍ବମାନଙ୍କରେ | ।। | ୮୨ |
| | ସଂଯତ ହୋଇ ଯେ ପଢ଼ନ୍ତି | । ଯେ ଅବା ଶ୍ରବଣ କରନ୍ତି | ।। | ୮୩ |
| | ସର୍ବଦୁରିତବିନାଶନ | । ରିପୁବିଜୟ, ସ୍ୱସ୍ତ୍ୟୟନ | ।। | ୮୪ |
| | ଶୁଣିଲା ଲୋକମାନଙ୍କର | । ଆୟୁଷ କରଇ ବିସ୍ତାର | ।। | ୮୫ |
| | କୃଷ୍ଣଚରଣପଦ୍ମ ଧ୍ୟାୟି | । ଏ ଷଷ୍ଠ ସ୍କନ୍ଧ ଗୀତ ଗାଇ | ।। | ୮୬ |
| | ହରଷ ଦୀନବନ୍ଧୁ ଦ୍ୱିଜ | । ସୁଜନେ କୃଷ୍ଣପଦ ଭଜ | ।। | ୮୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଇନ୍ଦ୍ରବିଜୟୋ ନାମ
ତ୍ରୟୋଦଶୋଽଧ୍ୟାୟଃ ।।

## ଚତୁର୍ଦ୍ଦଶ ଅଧ୍ୟାୟ

ବୃତ୍ରସ୍ୟ ଜ୍ଞାନଭକ୍ତ୍ୟାଦି ଶ୍ରୁତ୍ୱା ପୃଷ୍ଟଃ ପରୀକ୍ଷିତା ।
ହେତୁମାହ ଚତୁର୍ଭିସ୍ତଦ୍ ପ୍ରାଗ୍‌ଜନ୍ମଚରିତୋକ୍ତିଭିଃ ।। ୧
ଚତୁର୍ଦ୍ଦଶେ ତୁ ସହସା କୃଚ୍ଛ୍ରଲବ୍ଧେ ସୁତେ ମୃତେ ।
ଚିତ୍ରକେତୋରତିସ୍ନେହାଦତିଶୋକୋ ନିରୂପ୍ୟତେ ।। ୨

ଶ୍ରୀପରୀକ୍ଷିଦୁବାଚ

| | | | | |
|---|---|---|---|---|
| ୧ | ହେ ବିପ୍ର ! ରଜତମ ଦୁଇ | । ଯାହାର ସ୍ୱଭାବ ଅଟଇ | ।। | ୧ |
| | ସେ ପାପ ଅଟେ ବୃତ୍ରାସୁର | । ତାହାର ନାରାୟଣଠାର | ।। | ୨ |
| | ଏମନ୍ତ ରୂପେ ଦୃଢ଼ ମତି | । କେମନ୍ତେ ହେଲା ଉତପତି | ।। | ୩ |
| ୨ | ଯେ ଶୁଦ୍ଧସତ୍ତ୍ୱ ଦେବମାନେ | । ଅମଳଆତ୍ମା ଋଷିଜନେ | ।। | ୪ |
| | ମୁକୁନ୍ଦଚରଣେ ବହୁତ | । ତାଙ୍କର ଭକ୍ତି ନୋହେ ଜାତ | ।। | ୫ |
| ୩ | ପୃଥିବୀ-ରେଣୁରେ ସମାନ | । ଗଣିତ ଏଥି ଜନ୍ତୁମାନ | ।। | ୬ |
| | ତାହାଙ୍କ ମଧ୍ୟେ ଯେହି କେହି | । ମନୁଷ୍ୟ ଆଦି ହୋଇ ଦେହୀ[୧] | ।। | ୭ |
| | ଧର୍ମକୁ ଅର୍ଜିବା ନିମିତ୍ତେ | । ଚେଷ୍ଟା କରନ୍ତି ନାନା ମତେ | ।। | ୮ |
| ୪ | ତାଙ୍କ ମଧ୍ୟେ ହେ ଦ୍ୱିଜବର | । ମୋକ୍ଷ ଇଚ୍ଛନ୍ତି କେହି ନର | ।। | ୯ |
| | ମୋକ୍ଷ ଇଚ୍ଛନ୍ତି ଯେଉଁ ନରେ | । ତାଙ୍କ ଅନେକ ସହସ୍ରରେ | ।। | ୧୦ |
| | ଗୃହାଦି ସଙ୍ଗ ଛାଡ଼ି କେହି | । ତତ୍ତ୍ୱକୁ ଗୋଚର କରଇ | ।। | ୧୧ |
| ୫ | ମୁକତ ସିଦ୍ଧମାନଙ୍କର | । ମଧ୍ୟେ ପୁଣ ହେ ମୁନିବର | ।। | ୧୨ |
| | ପ୍ରଶାନ୍ତ ଆତ୍ମା ଅଟେ ଯାର | । ଯେ ପରାୟଣ ବିଷ୍ଣୁଠାର | ।। | ୧୩ |
| | ଏମନ୍ତ ହୋଇ ଯେ ମାନବ | । କୋଟି କୋଟିକେ ସେ ଦୁର୍ଲ୍ଲଭ | ।। | ୧୪ |

୧. ଦେହୀ = ଜୀବ ।

୬ ସକଳଲୋକତାପକର । ପାପ ଅଟେ ସେ ବୃତ୍ରାସୁର ॥ ୧୫
ଭୟ ଜନକ ସଂଗ୍ରାମରେ । ଏମନ୍ତରୂପେ କୃଷ୍ଣଠାରେ ॥ ୧୬
କେମନ୍ତେ ହେଲା ଦୃଢ଼ମତି । ଅତିଆଶ୍ଚର୍ଯ୍ୟ ଏହୁ ରୀତି ॥ ୧୭
୭ ହେ ପ୍ରଭୋ ! ଏଥିରେ ଆମ୍ଭର । ସଂଶୟ ହେଉଛି ଅପାର ॥ ୧୮
ଶ୍ରବଣ କରିବା ନିମିତ୍ତେ । କୌତୁକ ଉପୁଜୁଛି ଚିତ୍ତେ ॥ ୧୯
ନିଜ ପୌରୁଷେ ଯେ ରାକ୍ଷସ । ଯୁଦ୍ଧେ ଇନ୍ଦ୍ରକୁ କଲା ତୋଷ ॥ ୨୦

ଶ୍ରୀସୂତ ଉବାଚ

୮ ନୈମିଷାରଣ୍ୟେ ସେ ଚରିତ । କହନ୍ତି ଶୌନକଙ୍କୁ ସୂତ ॥ ୨୧
ଶ୍ରଦ୍ଧାସଂଯୁତ ପରୀକ୍ଷିତ । ପ୍ରଶ୍ନକୁ ଶୁଣି ବ୍ୟାସସୁତ ॥ ୨୨
ପ୍ରଶଂସା କରି ତାଙ୍କୁ ବାଣୀ । କହିଲେ ଏଥୁଅନ୍ତେ ପୁଣି ॥ ୨୩

ଶ୍ରୀଶୁକ ଉବାଚ

୯ ହେ ନୃପ ! ସାବଧାନ ହୋଇ । ଏ ଇତିହାସକଥା ତୁହି ॥ ୨୪
ଯଥାର୍ଥ ପ୍ରକାରରେ ଶୁଣ । ଯେଉଁ କଥାକୁ ମୁଁ ପୂର୍ବେଣ ॥ ୨୫
ଶୁଣିଛି ବ୍ୟାସଙ୍କ ମୁଖରୁ । ନାରଦ, ଦେବଳଙ୍କ ଠାରୁ ॥ ୨୬
୧୦ ପୂର୍ବରେ ଥିଲା ନରପତି । ଯେ ଶୂରସେନଚକ୍ରବର୍ତ୍ତୀ ॥ ୨୭
ସେ ଖ୍ୟାତ ଚିତ୍ରକେତୁ ନାମ । ଯା' ମହୀ ଦୁହେଁ[୧] ସର୍ବକାମ ॥ ୨୮
୧୧ ସହସ୍ରସଂଖ୍ୟା ଭାର୍ଯ୍ୟାଙ୍କର । ଦଶ ସହସ୍ର ହେଲା ତାର ॥ ୨୯
ସନ୍ତାନଜନ୍ମରେ ସମର୍ଥ । ହୋଇଲେହେଁ ସେ ନରନାଥ ॥ ୩୦
ସେ ଭାର୍ଯ୍ୟାମାନଙ୍କର ଠାଇଁ । ସନ୍ତତି ନ ଲଭିଲା ସେହି ॥ ୩୧
୧୨ ରୂପ, ଉଦାରଭାବ ଦୁଇ । ବୟସ, କୁଳେ ଜନ୍ମ ଯେହି ॥ ୩୨
ବିଦ୍ୟା, ଐଶ୍ୱର୍ଯ୍ୟ, ଶ୍ରୀ ଆଦିରେ । ସଂପନ୍ନ ସମସ୍ତ ଗୁଣରେ ॥ ୩୩
ତଥାପି ସେ ବନ୍ଧ୍ୟାପତିର । ଚିନ୍ତା ହୋଇଲା ନିରନ୍ତର ॥ ୩୪
୧୩ ଯେତେକ ଥିଲା ତା' ସଂପତ୍ତି । ସୁନେତ୍ରୀ ସକଳ ଯୁବତୀ ॥ ୩୫
ସେ ସାର୍ବଭୌମର ଏ ମହୀ । ନୋହିଲେ ପ୍ରୀତିହେତୁ କେହି ॥ ୩୬
୧୪ ଯଥେଚ୍ଛାରେ ଏ ଲୋକମାନ । ଭ୍ରମୁଥାଆନ୍ତେ ଏକ ଦିନ ॥ ୩୭
ଅଙ୍ଗିରା ଋଷି ଭଗବାନ । ମିଳିଲେ ତାହାର ଭୁବନ ॥ ୩୮
୧୫ ପ୍ରତିଉତ୍ଥାନ ଅର୍ଘାଦିରେ । ତାହାଙ୍କୁ ପୂଜି ସବିଧିରେ ॥ ୩୯
ସଂଯତ ହୋଇ ନୃପବର । କରିଣ ଅତିଥିସତ୍କାର ॥ ୪୦
ବସିଲା ତାଙ୍କ ପାଶେ ଆସି । ସୁଖେ ଛନ୍ତି ସେ ମହରଷି ॥ ୪୧
୧୬ ହେ ମହାରାଜ ! ବିନୟରେ । ନମ୍ର ହୋଇଣ ଧରଣୀରେ ॥ ୪୨
ନିକଟେ ଅଛନ୍ତି ଯେ ବସି । ସେ ନୃପତିକି ମହରଷି ॥ ୪୩

---

୧. ଦୁହେଁ = ଦୋହନ କରେ ।

ପ୍ରଶଂସି କରି ସଂବୋଧନ । କହିଲେ ଏମନ୍ତ ବଚନ ॥ ୪୪

ଶ୍ରୀ ଅଙ୍ଗିରା ଉବାଚ

୧୭ ଆରୋଗ୍ୟ, କୁଶଳ ଆବର । ଅଛିଟି କି ତୋ' ଶରୀରର ॥ ୪୫
ପ୍ରକୃତି[୧] ଲୋକଙ୍କର ପୁଣ । ଅଛିଟି କି ସେ ବେନିଗୁଣ[୨] ॥ ୪୬
ମହତ ଆଦି ଯେ ସପତ । ପ୍ରକୃତି ଜୀବକୁ ଯେମନ୍ତ ॥ ୪୭
ଗୁରୁ, ଅମାତ୍ୟ, ଦୁର୍ଗ, ବିତ୍ତ । ଯେ ଦଣ୍ଡ, ଜନପଦ, ମିତ୍ର ॥ ୪୮
ରାଜାକୁ ଏ ସପ୍ତ[୩] ପ୍ରକୃତି । ସତତେ ପାଳନା କରନ୍ତି ॥ ୪୯
୧୮ ଆତ୍ମାକୁ ସାକ୍ଷାତ କରିଣ । ପ୍ରକୃତିଜନେ ନିବେଶିଣ ॥ ୫୦
ମଙ୍ଗଳ ଲଭେ ନରପତି । ହେ ନରଦେବ ! ସେହିମତି ॥ ୫୧
ପ୍ରକୃତିମାନଙ୍କ ମନର । ଦୁଃଖ ନାଶନ୍ତି ନରେଶ୍ୱର ॥ ୫୨
୧୯ ପ୍ରଜା, ଅମାତ୍ୟ, ଭୃତ୍ୟ, ଦାର । ମନ୍ତ୍ରୀ[୪], ବଣିଜ ଆଦି ପୌର ॥ ୫୩
ହେ ନୃପ ! ଦେଶଲୋକ ଯେତେ । ବଶେ ଅଛନ୍ତିଟି କି ସୁତେ ॥ ୫୪
୨୦ ଯେବେ ସ୍ୱବଶ ମନ ଯାର । ଏ ସର୍ବେ ବଶଗ ତାହାର ॥ ୫୫
ଲୋକପାଳଙ୍କ ସହିତରେ । ସମସ୍ତ ଲୋକେ ଏ ସଂସାରେ ॥ ୫୬
ତାହାକୁ ଅନାୟତ୍ତ ହୋଇ । ବଳିକି ସମର୍ପନ୍ତି ନେଇ ॥ ୫୭
୨୧ ପରସକାଶୁଁ ଆପଣାର । ଆତ୍ମା ନୋହୁଛି ତୋଷ ତୋର ॥ ୫୮
କି ଅବା ଆପଣା ହେତୁରେ । ତୋଷ ନୋହୁଛି ଏ ପ୍ରକାରେ ॥ ୫୯
ଚିତ୍ତରେ ତର୍କୁଅଛି ମୁହିଁ । କାମକୁ ଲଭିନାହୁଁ ତୁହି ॥ ୬୦
ଚିନ୍ତା ସକାଶୁଁ ତୋ' ବଦନ । ପ୍ରତ୍ୟକ୍ଷେ ଦିଶୁଛି ମଳିନ ॥ ୬୧

ଶ୍ରୀଶୁକ ଉବାଚ

୨୨ ହେ ନୃପ ! ବିଷୟ ଜାଣିଣ । ଏ ରୂପେ ସନ୍ଦେହ କରିଣ ॥ ୬୨
ମୁନି ପଚାରନ୍ତେ ରାଜାକୁ । ବିନୟେ ନମ୍ର ହୋଇ ତାଙ୍କୁ ॥ ୬୩
ବଚନ କହିଲେ ନୃପତି । ଯେ ପୁତ୍ରକାମ ହୋଇଛନ୍ତି ॥ ୬୪

ଶ୍ରୀଚିତ୍ରକେତୁରୁବାଚ

୨୩ ଯେହୁ ସମାଧି, ତପ, ଜ୍ଞାନ । ତେଣେ ନାଶିଲେ ପାପମାନ ॥ ୬୫
ସେ ଯୋଗୀଙ୍କର ଅବିଦିତ । କିବା ଅଛି ହେ ଭଗବନ୍ତ ॥ ୬୬
ପ୍ରାଣୀଙ୍କ ଅନ୍ତର-ବାହାରେ । ଯେ କଥା ଅଛି ଏ ସଂସାରେ ॥ ୬୭

---

୧. ପ୍ରକୃତି = ପ୍ରଜା । ୨. ବେନିଗୁଣ = ଆରୋଗ୍ୟ ଓ କୁଶଳ ।
୩. ସ୍ୱାମ୍ୟମାତ୍ୟୌ ଜନପଦା ଦୁର୍ଗଦ୍ରବିଣସଂଚୟାଃ ।
ଦଣ୍ଡୋ ମିତ୍ରଂ ଚ ତସ୍ୟୈତାଃ ସପ୍ତ ପ୍ରକୃତୟୋ ମତାଃ ॥
୪. ମନ୍ତ୍ରୀ = ମନ୍ତ୍ରସହାୟ; (ସ୍ୱାମୀ = ଗୁରୁ ବା ସ୍ୱୟଂ; ଅମାତ୍ୟ = କର୍ମସହାୟ) ।

୨୪ ହେ ବିପ୍ର ! ତୁମ୍ଭେ ଅଛ ଜାଣି । ତଥାପି ପଚାରୁଛ ପୁଣି ॥ ୬୮
ଯେ ଚିନ୍ତା ଅଛି ମୋ' ମନରେ । କହିବି ତା' ତୁମ୍ଭ ଆଜ୍ଞାରେ ॥ ୬୯
୨୫ ଲୋକପାଳେ ହେଁ ଯା' ବାଞ୍ଛନ୍ତି । ସାମ୍ରାଜ୍ୟ, ଐଶ୍ୱର୍ଯ୍ୟ, ସଂପତ୍ତି ॥ ୭୦
ତୋଷ ନ କରାନ୍ତି ସେ ମୋତେ । ଯେଣୁ ମୁଁ ଅପୁତ୍ର ଜଗତେ ॥ ୭୧
କ୍ଷୁଧା-ତୃଷାରେ କୃଶ ଯେହି । ଗନ୍ଧ, କୁସୁମ ଆଦି ହୋଇ ॥ ୭୨
ତାକୁ ଉତ୍ତମ ଦ୍ରବ୍ୟମାନ । ତୋଷ ନ କରାନ୍ତି ଯେସନ ॥ ୭୩
୨୬ ପୂର୍ବ ପୁରୁଷଙ୍କ ସଙ୍ଗତେ । ହେ ମହାଭାଗ ! ଏ ଜଗତେ ॥ ୭୪
ଦୁଷ୍ପାର ତମ[1] ଯେ ଅଟଇ । ତହିଁକି ଯାଇଅଛି ମୁହିଁ ॥ ୭୫
ଯେମନ୍ତେ ପୁତ୍ରରେ ମୁଁ ତାକୁ । ତରିବି କର ସେ କଥାକୁ ॥ ୭୬

ଶ୍ରୀଶୁକ ଉବାଚ

୨୭ ଏମନ୍ତ ରୂପେ ମହୀପତି । ପ୍ରାର୍ଥନା କରନ୍ତେ ଝଟିତି ॥ ୭୭
କୃପାଳୁ, ବ୍ରହ୍ମାଙ୍କର ସୁତ । ଯେ ଚରୁ ଅଟଇ ବିଦିତ ॥ ୭୮
ପାକ କରିଣ ସେ ଚରୁକୁ । ତେଣେ ପୂଜିଲେ ସେ ତ୍ୱଷ୍ଟାଙ୍କୁ ॥ ୭୯
୨୮ ରାଜାର ଯେତେକ ଯୁବତି । ତାହାଙ୍କ ମଧ୍ୟେ ହେ ନୃପତି ॥ ୮୦
ଯେ ଜ୍ୟେଷ୍ଠ ଅଟେ ପ୍ରିୟ ଅତି । ନାମ ତାହାର କୃତଦ୍ୟୁତି ॥ ୮୧
ଯଜ୍ଞର ଉଚ୍ଛିଷ୍ଟ ଯେ ଥିଲା । ତାହାକୁ ବ୍ରାହ୍ମଣ ତା' ଦେଲା ॥ ୮୨
୨୯ ରାଜାକୁ ଏଥୁ ଅନନ୍ତର । ବାକ୍ୟ କହିଲେ ମୁନିବର ॥ ୮୩
ହେ ନୃପ ! ତୋର ଏକ ସୁତ । ସଂଭବ ହୋଇବ ନିୟତ ॥ ୮୪
ତୋତେ ହରଷ, ଶୋକ ଦୁଇ । ଦେବ, ଏମନ୍ତ କଥା କହି ॥ ୮୫
ନିଜ ଆଶ୍ରମକୁ ଗମନ । କଲେ ସେ ବ୍ରହ୍ମାର ନନ୍ଦନ ॥ ୮୬
୩୦ ହବିର୍ଭାଗର ଭୋଜନରୁ । ନୃପତି ଚିତ୍ରକେତୁ ଠାରୁ ॥ ୮୭
ସେ ଦେବୀ ଗର୍ଭକୁ ଧଇଲା । ଯେ କୃତଦ୍ୟୁତି ନାମେ ଥିଲା ॥ ୮୮
ଅଗ୍ନିର ପୁତ୍ରକୁ ଯେମନ୍ତ । କୃତ୍ତିକା କଲେ ପୂର୍ବେ ଜାତ ॥ ୮୯
୩୧ ଯେ ଶୂରସେନ ଅଧିପତି । ତାର ବୀର୍ଯ୍ୟରେ ହେ ନୃପତି ॥ ୯୦
ଅଳ୍ପ ଅଳ୍ପକେ ଦିନୁଁ ଦିନ । ତା' ଗର୍ଭ ହେଲା ବର୍ଧମାନ ॥ ୯୧
ଶୁକ୍ଳ ପକ୍ଷରେ ନିଶାନାଥ । କ୍ରମରେ ବଢ଼ଇ ଯେମନ୍ତ ॥ ୯୨
୩୨ ଯେ ଶୂରସେନ-ଦେଶନରେ । ସେମାନେ ଶୁଣନ୍ତେ କର୍ଣ୍ଣରେ ॥ ୯୩
ସେ ଲୋକମାନଙ୍କର ଅତି । ପ୍ରୀତିକି କରନ୍ତେ ଉତ୍‌ପତ୍ତି ॥ ୯୪
ଏଥୁ ଅନ୍ତରେ[2] କେତେ କାଳ । ଯାଆନ୍ତେ ଜାତ ହେଲା ବାଳ ॥ ୯୫
୩୩ ରାଜା ହରଷେ ସ୍ନାନ କଲା । ଭୂଷଣେ ମଣ୍ଡିତ ହୋଇଲା ॥ ୯୬

---

୧. ତମ = ନରକ । ୨. ଉତ୍ତାରେ ।

| | | | | |
|---|---|---|---|---|
| | ଶୁଦ୍ଧ ହୋଇଣ ବିପ୍ରଦ୍ୱାରେ | । ମଙ୍ଗଳ ବୋଲାଇ ନିର୍ଭରେ | ॥ | ୯୭ |
| | ଯେ ଜାତକର୍ମ କୁମାରର | । ତାହା କରାଇଲା ସତ୍ୱର | ॥ | ୯୮ |
| ୩୪ | କଲା ସେ ବିପ୍ରଙ୍କୁ ପ୍ରଦାନ | । ହେମ, ରଜତ, ବସ୍ତ୍ରମାନ | ॥ | ୯୯ |
| | ଅନେକ ଆଭରଣ, ଗ୍ରାମ | । ଅନେକ ଗଜ, ତୁରଙ୍ଗମ | ॥ | ୧୦୦ |
| | ଷଡ଼ ଅର୍ବୁଦ[୧] ପୁଣ ଗାଈ | । ପ୍ରଦାନ କଲା ନରସାଇଁ | ॥ | ୧୦୧ |
| ୩୫ | ଯେ ପ୍ରାଣୀ ବାଞ୍ଛା କଲେ ଯାହା | । ବର୍ଷିଲା ମେଘପ୍ରାଏ ତାହା | ॥ | ୧୦୨ |
| | ଉଦ୍ଦେଶି ପୁତ୍ର-ଧନକୀର୍ତ୍ତି | । ଆୟୁଷକୁ ସେ ମହାମତି | ॥ | ୧୦୩ |
| ୩୬ | କଷ୍ଟେ ଲବଧ ଯେ କୁମର | । ରାଜରଷିର ତାହାଠାର | ॥ | ୧୦୪ |
| | ସ୍ନେହ ବଢ଼ିଲା ଦିନୁଁଦିନ | । କଷ୍ଟରେ ଲଭିଥିଲେ ଧନ | ॥ | ୧୦୫ |
| | ତହିଁରେ ଦରିଦ୍ରର ଯେହ୍ନେ | । ସ୍ନେହ ବଢ଼ଇ ଦିନେ ଦିନେ | ॥ | ୧୦୬ |
| ୩୭ | ଯେ ମାତା ଅଟେ କୃତଦ୍ୟୁତି | । ତାହାର ମୋହସମୁଦ୍ଭବତ୍ତି | ॥ | ୧୦୭ |
| | ତନୁଜ ସ୍ନେହ ଅତିଶୟ | । ଯେ ଆନ ସପତ୍ନୀନିଚୟ | ॥ | ୧୦୮ |
| | ପୁତ୍ରକାମନାରେ ତାଙ୍କର | । ସନ୍ତତେ ସଂଭବିଲା ଜ୍ୱର | ॥ | ୧୦୯ |
| ୩୮ | ପୁତ୍ରକୁ କରନ୍ତେ ଲାଳନ | । ଚିତ୍ରକେତୁର ଦିନୁଁଦିନ | ॥ | ୧୧୦ |
| | ଯେବେଣ ଭାର୍ଯ୍ୟା ପୁତ୍ରବତୀ | । ତହିଁ ଯେମନ୍ତ ଅତିପ୍ରୀତି | ॥ | ୧୧୧ |
| | ଜାତ ନୋହିଲା ସେ ପ୍ରକାରେ | । ଇତରଭାର୍ଯ୍ୟାଙ୍କର ଠାରେ | ॥ | ୧୧୨ |
| ୩୯ | ସେମାନେ ଅପୁତ୍ର ଦୁଃଖରେ | । ନରନାଥର ଅନାଦରେ | ॥ | ୧୧୩ |
| | ତାପ ଲଭିଲେ ଅସୂୟାରେ | । ଆତ୍ମାକୁ ନିନ୍ଦନ୍ତେ ନିର୍ଭରେ | ॥ | ୧୧୪ |
| ୪୦ | ପାପୀ ଅପୁତ୍ରୀ ଯେ ଯୁବତୀ | । ତାହାକୁ ଧିକ ହେଉ ଅତି | ॥ | ୧୧୫ |
| | ଭାର୍ଯ୍ୟା ବୋଲିଣ ଯାକୁ ପତି | । କେବେହେଁ ନ କରଇ ମତି | ॥ | ୧୧୬ |
| | ପୁତ୍ର ସହିତ ହୋଇ ଆନ | । ଥାଆନ୍ତି ଯେ ସପତ୍ନୀଜନ | ॥ | ୧୧୭ |
| | ଦାସୀଙ୍କ ପ୍ରାୟ ତିରସ୍କାର | । କରନ୍ତି ତାକୁ ବାରମ୍ବାର | ॥ | ୧୧୮ |
| ୪୧ | ସ୍ୱାମୀସେବାରେ ଅନୁକ୍ଷଣ | । ଯେ ମାନ ଲଭିଥାନ୍ତି ପୁଣ | ॥ | ୧୧୯ |
| | ସେ ଦାସୀମାନଙ୍କର ଚିତ୍ତ | । କେଉଁ ସନ୍ତାପ ଅବା ଜାତ | ॥ | ୧୨୦ |
| | ଦୁର୍ଭଗା ଅଟେ ପୁଣ ଯେହି | । ଦାସୀର ଦାସୀପ୍ରାୟ ସେହି | ॥ | ୧୨୧ |
| ୪୨ | ସପତ୍ନୀପୁତ୍ରସଂପଦରେ | । ଦଗ୍‌ଧ ହୁଅନ୍ତେ ଏ ପ୍ରକାରେ | ॥ | ୧୨୨ |
| | ରାଜା ବର୍ତ୍ତନ ନ ଦିଅନ୍ତେ | । ଅତି ବିଦ୍ୱେଷ ହେଲା ଚିତ୍ତେ | ॥ | ୧୨୩ |
| ୪୩ | ଦାରୁଣଚିତ୍ତ ସେ ଯୁବତୀ | । ବିଦ୍ୱେଷେ ହେଲେ ନଷ୍ଟମତି | ॥ | ୧୨୪ |
| | ସେ ନୃପତିକି କଲେ ରୋଷ | । କୁମାରକୁ ସେ ଦେଲେ ବିଷ | ॥ | ୧୨୫ |
| ୪୪ | ସପତ୍ନୀଙ୍କର ପାପ ଅତି | । ନ ଜାଣନ୍ତେ ସେ କୃତଦ୍ୟୁତି | ॥ | ୧୨୬ |

୧. ଅର୍ବୁଦ = ଦଶକୋଟି; କିନ୍ତୁ ବେଦରେ ଏକକୋଟି ।

ଦେଖି ଶୋଇଲା ବୋଲି ଚିନ୍ତି । ଗୃହରେ ଭ୍ରମିଲା ଯୁବତୀ ॥ ୧୨୭
୪୫ ବହୁତବେଳଯାଏ ସୁତ । ଶୋଇଛି ବିଚାରି ଏମନ୍ତ ॥ ୧୨୮
ଉତ୍ତମ ବୁଦ୍ଧିରେ ସଂଯୁତା । ଅଟଇ ସେ ରାଜବନିତା ॥ ୧୨୯
ଧାଈକି ବୋଇଲା ସେ ପୁଣ । ହେ ଭଦ୍ରେ ! ତନୟକୁ ଆଣ ॥ ୧୩୦
୪୬ ଯେ ସୁତ କରିଛି ଶୟନ । ତା'ଠାକୁ କରିଣ ଗମନ ॥ ୧୩୧
ଲୋଚନଯୁଗରେ ତାହାର । ତାରକା ହୋଇଛି ବାହାର ॥ ୧୩୨
ଇନ୍ଦ୍ରିୟମାନେ, ଆତ୍ମା, ପ୍ରାଣ । ଛାଡ଼ି ଅଛନ୍ତି ତାକୁ ପୁଣ ॥ ୧୩୩
ଏରୂପେ ଦେଖି 'ମଲି ମୁହିଁ' । ବୋଲିଣ ପଡ଼ିଲା ସେ ଭୂଇଁ ॥ ୧୩୪
୪୭ ଯେ ଧାତ୍ରୀ ଗାଢ଼େ ନିଜ କରେ । ପ୍ରହାର କରୁଛି ବକ୍ଷରେ ॥ ୧୩୫
ଅତିଆତୁର ଧ୍ୱନି ତାର । ସେ ରାଣୀ ଶୁଣିଣ ସତ୍ୱର ॥ ୧୩୬
ପୁତ୍ରର ନିକଟକୁ ଗଲା । ତନୁଜ ମରିଛି ଦେଖିଲା ॥ ୧୩୭
୪୮ ଶୋକ ବଢ଼ନ୍ତେ ମୋହ ଗଲା । ଧରଣୀମଧ୍ୟରେ ପଡ଼ିଲା ॥ ୧୩୮
୪୯ କେଶ, ବସନ ତାର ଫିଟି । ଭୂମିରେ ଯାଉଅଛି ଲୋଟି ॥ ୧୩୯
ତଦନ୍ତେ ରାଜାଅନ୍ତଃପୁର । ମଧ୍ୟରେ ଯେତେ ନାରୀ-ନର ॥ ୧୪୦
ରୋଦନ ଶୁଣିଣ ମିଳିଣ । ସମାନବିପତ୍ତି ହୋଇଣ ॥ ୧୪୧
ଦୁଃଖିତ ହୋଇଣ କାନ୍ଦିଲେ । ଯେ ପୂର୍ବେ ଦୋଷ କରିଥିଲେ ॥ ୧୪୨
ସେ ରାଜପତ୍ନୀମାନେ ତହିଁ । ରୋଦନ କଲେ ବ୍ୟାଜ[୧] ଭେଇ ॥ ୧୪୩
୫୦ ଲକ୍ଷି ନୋହିଲା ମୃତ୍ୟୁ ଯାର । ମଲା ସେ ଆପଣା କୁମର ॥ ୧୪୪
ନୃପତି ଏମନ୍ତ ଶୁଣିଣ । ପଛାରେ ଖସୁଛି ଚରଣ ॥ ୧୪୫
ନଷ୍ଟ ହୋଇଛି ଦୃଷ୍ଟି ତାର । ଅମାତ୍ୟେ ଅଛନ୍ତି ସଙ୍ଗର ॥ ୧୪୬
ବ୍ରାହ୍ମଣମାନେ ବେଢ଼ିଛନ୍ତି । ପ୍ରବୋଧଅର୍ଥେ ଚାରି କତି ॥ ୧୪୭
ସ୍ନେହାନୁବନ୍ଧେ ଯେ ବଢ଼ିଛି । ସେ ଶୋକେ ମୂର୍ଛିତ ହୋଇଛି ॥ ୧୪୮
୫୧ ମଲା ବାଳକର ଚରଣ । ତଳରେ ପଡ଼ିଲା ତକ୍ଷଣ ॥ ୧୪୯
ଖସି ପଡ଼ିଛି କେଶ, ବାସ । ପ୍ରଖରେ ବହୁଛି ନିଃଶ୍ୱାସ ॥ ୧୫୦
ବହନ୍ତେ ନୟନୁଁ ସଲିଳ । ନିରୁଦ୍ଧ ହେଲା ଯେଣୁ ଗଳ ॥ ୧୫୧
କହିବା ନିମିତ୍ତେ ବଚନ । ନୃପତି ନୋହିଲା ଭାଜନ ॥ ୧୫୨
୫୨ ଏକସନ୍ତତି ବାଳ ସୁତ । ଦଇବବଶେ ହେଲା ମୃତ ॥ ୧୫୩
ଅତିଶୋକରେ ବ୍ୟାପ୍ତ ପତି । ଦେଖିଣ ସେ ରାଜା-ଯୁବତୀ ॥ ୧୫୪
ପ୍ରକୃତିଜନଙ୍କ ହୃଦରେ । ଶୋକକୁ ଅର୍ପନ୍ତେ ନିର୍ଭରେ ॥ ୧୫୫
ବହୁତ ପ୍ରକାରେ ରୋଦନ । କଲା ହୋଇଣ ଖେଦମନ ॥ ୧୫୬
୫୩ କୁଙ୍କୁମପଙ୍କରେ ମଣ୍ଡନ । ଲଭିଛି ଯେଉଁ ବେନି ସ୍ତନ ॥ ୧୫୭

---

୧. ବ୍ୟାଜ = କପଟ ।

ଅଞ୍ଜନଯୁତ ନେତ୍ରବାରି । ବିନ୍ଦୁରେ ସିଞ୍ଚନ୍ତେ ତା' ନାରୀ ॥ ୧୫୮
ଖସୁଛି ଯହୁଁ ପୁଷ୍ପମାଳ । ଫିଟାଇ ସେ ଚିକୁରକୁଳ ॥ ୧୫୯
କୁରରୀ[1] ପ୍ରାୟକ ସୁସ୍ୱରେ । ପୁତ୍ରକୁ ରୋଦେ ଚିତ୍ରତରେ ॥ ୧୬୦
୫୪ ଅହୋ ବିଧାତା ଅତିଶୟ । ମୂର୍ଖ ତୁ ଅଟୁ ଯେ ନିଶ୍ଚୟ ॥ ୧୬୧
ଆପଣା ସର୍ଜନାକୁ ଯେହି । କେବେହେଁ ଅନୁରୂପ ନୋହି ॥ ୧୬୨
ଯେ ତୁ କରୁଛୁ ସେ ବିଧାନ । ଜୀଇ ଥାଆନ୍ତେ ବୃଦ୍ଧଜନ ॥ ୧୬୩
ଯେ ବାଳ ଲୋକର ନିଧନ । ଏଟି ଅସଙ୍ଗତ ବିଧାନ ॥ ୧୬୪
ଯେବେ ବୋଲିବୁ ବିପରୀତ । କର୍ତ୍ତା ମୁଁ ଅଟଇ ନିୟତ ॥ ୧୬୫
ତେବେହେଁ ପ୍ରାଣୀମାନଙ୍କର । ଦୁଃଖଦ ଅଟୁ ନିଶ୍ଚେ ପର[2] ॥ ୧୬୬
୫୫ ଯେବେ ବୋଲିବୁ ଏ ସଂସାରେ । ପ୍ରାଣୀଙ୍କ ଜନ୍ମମରଣରେ ॥ ୧୬୭
ପୁତ୍ର ଜୀଅନ୍ତେ ମରେ ତାତ । ପିତା ଜୀଅନ୍ତେ ହୋଏ ସୁତ ॥ ୧୬୮
ଏମନ୍ତ ହୋଇ କ୍ରମ ନାହିଁ । ନିଜ କର୍ମରେ ହୋଏ ସେହି ॥ ୧୬୯
ନିଜ ସର୍ଗର ବୃଦ୍ଧିପାଇଁ । ଯା ସ୍ନେହପାଶ କଲୁ ତୁହି ॥ ୧୭୦
ସେ ଏହି ପାଶକୁ ନିର୍ଭରେ । କାଟୁଛୁ ଆପଣା ଇଚ୍ଛାରେ ॥ ୧୭୧
ଯା' ଦେଖି ନୋହିବ ଜନର । ପୁତ୍ରାଦିଠାରେ ଏ ସଂସାର[3] ॥ ୧୭୨
୫୬ ହେ ପୁତ୍ର ! ଅନାଥ, କୃପଣ । ମୁଁ ତୋ' ଜନନୀ ମୋତେ ପୁଣ ॥ ୧୭୩
ଛାଡ଼ିବାକୁ ତୁ ଯୋଗ୍ୟ ନୋହ । ପିତା ଶୋକାର୍ତ୍ତ, ତାକୁ ଚାହଁ ॥ ୧୭୪
ପୁତ୍ର ନ ଥିଲା ଲୋକଙ୍କର । ଯେବଣ ନରକ ଦୁସ୍ତର ॥ ୧୭୫
ସେ ନରକକୁ ଆମ୍ଭେ ତୋରେ । ତରିବୁଁ ଅତ୍ୟନ୍ତ ସୁଖରେ ॥ ୧୭୬
ଯେ ଯମ ଅଟଇ ନିର୍ଦ୍ଦୟ । ତା' ସଙ୍ଗେ ଦୂରକୁ ନ ଯାଅ ॥ ୧୭୭
୫୭ ହେ ତାତ ! ମୁଞ୍ଚ ତୁ ଶୟନ । ସେ ଏ ବାଳକମିତ୍ରମାନ ॥ ୧୭୮
କ୍ରୀଡ଼ା କରିବାପାଇଁ ତୋତେ । ଡାକୁ ଅଛନ୍ତି ତୋଷଚିତ୍ତେ ॥ ୧୭୯
ଅପାର ବେଳରୁ ଶୟନ । କରିଛୁ ହେ ନୃପନନ୍ଦନ ॥ ୧୮୦
କ୍ଷୁଧାରେ ହୋଇଛୁ ସଂଯୁତ । ଭୋଜନ କର ତୁ ତୁରିତ ॥ ୧୮୧
ସ୍ତନକୁ ପିଅ, ଆମ୍ଭେ ତୋର । ଆମ୍ଭମାନଙ୍କ ଶୋକ ହର ॥ ୧୮୨
୫୮ ମଙ୍ଗଳହୀନ ମୁଁ ଅଟଇ । ପ୍ରଥମୁଁ ତୋର ପାଶେ ଥାଇ ॥ ୧୮୩
ସୁନ୍ଦର ଅଟେ ଯହିଁ ସ୍ମିତ । ଯହିଁରେ ବୀକ୍ଷଣ ମୁଦିତ ॥ ୧୮୪
ଏମନ୍ତ ତୋ' ମୁଖନଳିନ । ନ କଲି ଯେଣୁ ବିଲୋକନ ॥ ୧୮୫
ଯହିଁରୁ ପୁଣ ଆଗମନ । ନୋହିବ, ଯେମନ୍ତେ ଉତ୍ପନ୍ନ ॥ ୧୮୬
ସେ ପରଲୋକକୁ ନିର୍ଘୃଣ[4] । ଯମ ନେଲା କି ତୋତେ ପୁଣ ॥ ୧୮୭

---

୧. କୁରରୀ = କପୋତୀ ।　୨. ପର = ଶତ୍ରୁ ।
୩. ସଂସାର = ସାଂସାରିକ ସ୍ନେହ ।　୪. ନିର୍ଘୃଣ = ନିର୍ଦ୍ଦୟ ।

ତୋହର କଳବାଣୀମାନ । ଶୁଣୁ ନାହିଁ ମୁଁ ହେ ନନ୍ଦନ ।। ୧୮୮

ଶ୍ରୀଶୁକ ଉବାଚ

୫୯ ମୃତ ପୁତ୍ରକୁ ଏ ପ୍ରକାରେ । କାନ୍ଦନ୍ତେ ଚିତ୍ର ବିଳାପରେ ।। ୧୮୯
ନୃପତି ଅତି ଉଚ୍ଚ ହୋଇ । କାନ୍ଦିଲା ଅତିତାପ ପାଇ ।। ୧୯୦
୬୦ ରୋଦନ କରନ୍ତେ ସେ ଦୁଇ । ତାହାଙ୍କ ଅନୁଗତ ହୋଇ ।। ୧୯୧
ଯେତେକ ନର ନାରୀ ଥିଲେ । ସମସ୍ତେ ରୋଦନ ସେ କଲେ ।। ୧୯୨
ଏ ରୂପେ କରନ୍ତେ ରୋଦନ । ସମସ୍ତେ ହେଲେ ଅଚେତନ ।। ୧୯୩
୬୧ ଏମନ୍ତ ରୂପେ ସେ ରାଜନ । ହୋଇ ଅଛନ୍ତି ଅଚେତନ ।। ୧୯୪
ପ୍ରବୋଧ କରିବାକୁ କେହି । ନାୟକ ହୋଇ ତହିଁ ନାହିଁ ।। ୧୯୫
ମୋହ ଲଭନ୍ତେ ସେ ଏ ରୀତି । ଜାଣି ଅଙ୍ଗିରା ମହାଯତି ।। ୧୯୬
ପ୍ରବେଶ ହୋଇଲେ ସେଠାରେ । ନାରଦ ଅଛନ୍ତି ସଙ୍ଗରେ ।। ୧୯୭
କୌସ୍ତସ କୁଳରେ ଜନମ । ବ୍ରାହ୍ମଣ ଦୀନବନ୍ଧୁ ନାମ ।। ୧୯୮
ରଚିଲା ସ୍ୱାମୀଟୀକା ଚାହିଁ । ସୁଜନେ ! ତର ଏହା ଗାଇ ।। ୧୯୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଚିତ୍ରକେତୁପାଖ୍ୟାନେ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।।

## ପଞ୍ଚଦଶ ଅଧ୍ୟାୟ

ତତଃ ପଞ୍ଚଦଶେ ଚିତ୍ରକେତୋଃ ଶୋକାପନୋଦନମ୍ ।
କୃତଂ ତତ୍ତ୍ୱୋପଦେଶେନ ନାରଦେନାଙ୍ଗିରୋଯୁଜା ।। ୧

ଶ୍ରୀଶୁକ ଉବାଚ

୧ ଶବନିକଟେ ପଡ଼ିଥାଇ । ଦିଶୁଛି ଶବପ୍ରାୟ ହୋଇ ।। ୧
ଯେ ନୃପ ପୀଡ଼ିତ ଶୋକରେ । ତାହାକୁ ଉତ୍ତମ ଉକ୍ତିରେ ।। ୨
ବୋଧ କରନ୍ତେ ବେନି ଋଷି । ଏମନ୍ତ କହିଲେ ବିଶେଷି ।। ୩
୨ ପ୍ରଜାସର୍ଗରେ ପୂର୍ବକାଳେ । ଏବେ କି ଅବା ଆନ ବେଳେ ।। ୪
ଏ କେ ତୋହର ହେ ରାଜନ । ଯାହାକୁ କରୁଛୁ ଶୋଚନ ।। ୫
ତୁହି ଏହାର ବନ୍ଧୁଗଣ । ମଧ୍ୟରେ ଅଟୁ କେ ବା ପୁଣ ।। ୬
୩ ସ୍ରୋତବେଗରେ ବାଲିମାନେ । ସଂଯୋଗ-ବିୟୋଗକୁ ଯେହ୍ନେ ।। ୭
ଲଭନ୍ତି, ସେହି ପରକାରେ । ପ୍ରାଣୀଏ କାଳର ବଶରେ ।। ୮
ପିତା-ପୁତ୍ରାଦି ରୂପେ ମିଳି । କାଳେ ଯାଆନ୍ତି ପୁଣ ଚଳି ।। ୯
୪ ବୀଜମାନଙ୍କେ ବୀଜମାନ । ହୁଅନ୍ତି, ନୁହନ୍ତି ଯେସନ ।। ୧୦

ଈଶ୍ୱରମାୟାରେ ପ୍ରେରିତ । ହୋଇ କରିଣ ଅବିରତ ॥ ୧୧
ପିତ୍ରାଦି ଭୂତେ ଭୂତମାନେ । ହୁଅନ୍ତି ନୁହନ୍ତି ତେସନେ ॥ ୧୨
୫ ହେ ନୃପ ! ତୁମ୍ଭେ ଆମ୍ଭେ ହୋଇ । ଯେ ଏକକାଳେ ଥାଇ ରହି ॥ ୧୩
ଯେ ଅବା ଚରାଚର ଆନେ । ଜନମପୂର୍ବରୁ ସେମାନେ ॥ ୧୪
ମରଣଅନ୍ତରେ ସେ ଜନେ । ନ ଥାନ୍ତି, ଏବେହେଁ ତେସନେ ॥ ୧୫
ଯେମନ୍ତେ ସ୍ୱପ୍ନଦୃଷ୍ଟମାନ । ତ୍ରିକାଳେ ମିଥ୍ୟା, ଏ ତେସନ ॥ ୧୬
୬} ଯେ ଅଜ, ସର୍ବଭୂତେଶ୍ୱର । ଅପେକ୍ଷା ନାହିଁ କିଛି ଯାର ॥ ୧୭
୭} ଯେ ଅସ୍ୱତନ୍ତ୍ର ଭୂତମାନ । ତାହାଙ୍କୁ କରନ୍ତି ସର୍ଜନ ॥ ୧୮
ଭୂତମାନଙ୍କୁ ତେଣେ ଜାତ । କରଇ, ପାଳେ, କରେ ହତ ॥ ୧୯
ଯେହ୍ନେ ବାଳକ ଖେଳୁଥାଇ । କ୍ଷଣକେ ପୁଣ ତା' ଭାଙ୍ଗଇ ॥ ୨୦
ପିତାର ଦେହରେ ମାତାର । ଦେହରୁ ଦେହୀର ଶରୀର ॥ ୨୧
ଜନମ ଲଭେ ହେ ରାଜନ । ବୀଜରୁ ବୀଜ ଯେହ୍ନେ ଜନ୍ମ ॥ ୨୨
ଯେ ଦେହବନ୍ତ ଆତ୍ମା ତହିଁ । ଭୂମିର ପ୍ରାୟ ନିତ୍ୟ ସେହି ॥ ୨୩
୮ ଯେ ଦେହ, ଦେହୀ ବେନିଙ୍କର । ବିଭାଗ ଅନାଦି ସେ ସ୍ଥିର ॥ ୨୪
ଅଜ୍ଞାନକଳ୍ପିତ ଅଟଇ । ଯେ ଜାତି ଗୋତ୍ର ଆଦି ହୋଇ ॥ ୨୫
ଗୋ ଆଦି ବ୍ୟକ୍ତି ଯେବା ଆନ । ସେ ବେନି ବିଭାଗ ଯେସନ ॥ ୨୬
ସନ୍ମାତ୍ର ଆତ୍ମାରେ ସନ୍ତତ । ଅବିଦ୍ୟାବଶରେ କଳ୍ପିତ ॥ ୨୭

ଶ୍ରୀଶୁକ ଉବାଚ

୯ ଏମନ୍ତରୂପେ ଆଶ୍ୱାସନ । କଲେ ତାହାକୁ ବିପ୍ରଜନ ॥ ୨୮
ସେ ଚିତ୍ରକେତୁ ନରପତି । ଯେ ମନଦୁଃଖେ ମ୍ଳାନ ଅତି ॥ ୨୯
ହସ୍ତରେ ପୋଛି ସେ ବଦନ । କହିଲେ ଏମନ୍ତ ବଚନ ॥ ୩୦

ଶ୍ରୀଚିତ୍ରକେତୁରୁବାଚ

୧୦ କେ ତୁମ୍ଭେ ଦୁହେଁ ଜ୍ଞାନଯୁତ । ମହତ ମଧ୍ୟରେ ମହତ ॥ ୩୧
ଗୁପତେ ଅବଧୂତ ବେଶ । ଧରି ଏଥି ହେଲ ପ୍ରବେଶ ॥ ୩୨
୧୧ ମୋହର ପ୍ରାୟ ଗ୍ରାମ୍ୟମତି । ଯେତେକ ମାନବ ଅଛନ୍ତି ॥ ୩୩
ଜ୍ଞାନନିମିତ୍ତେ ତାହାଙ୍କର । ଯେ ବିପ୍ରେ ବଲ୍ଲଭ ବିଷ୍ଣୁର ॥ ୩୪
ଉନ୍ମତ୍ତ ବେଶ ଧରିଥାନ୍ତି । ଇଚ୍ଛାଏ କ୍ଷିତିରେ ଭ୍ରମନ୍ତି ॥ ୩୫
୧୨} ଯେ ଋଭୁ, ନାରଦ, କୁମାର । ଦେବଳ, ଅସିତ, ଅଙ୍ଗିର ॥ ୩୬
୧୫} ଯେ ବ୍ୟାସ, ଅପାନ୍ତରତମ । ଯେ ମାର୍କଣ୍ଡେୟ, ଗଉତମ ॥ ୩୭
ବଶିଷ୍ଠ, ରାମ ଭଗବାନ । କପିଳ, ବ୍ୟାସଙ୍କ ନନ୍ଦନ ॥ ୩୮
ଦୁର୍ବାସା, ଯାଜ୍ଞବଲ୍କ୍ୟ ଋଷି । ଆରୁଣି, ଜାତୂକର୍ଣ୍ଣ[୧] ମିଶି ॥ ୩୯

---

୧. ଜାତୂକର୍ଣ୍ୟ ।

ରୋମଶ, ଚ୍ୟବନ ଯେ ଦତ୍ତ । ଆସୁରି ପତଞ୍ଜଳିଯୁତ ॥ ୪୦
ଯେ ଧୌମ୍ୟ ଋଷି, ବେଦଶିର । ଯେ ପଞ୍ଚଶିଖ ମୁନିବର ॥ ୪୧
ହିରଣ୍ୟନାଭ, ଋତଧ୍ୱଜ । କୌଶଲ୍ୟ, ଶ୍ରୁତଦେବ ଦ୍ୱିଜ ॥ ୪୨
ଏମାନେ ଏହିରୂପେ ଆନେ । ଯେ ଅବା ସିଦ୍ଧେଶ୍ୱରମାନେ ॥ ୪୩
ପ୍ରାଣୀଙ୍କ ଜ୍ଞାନକୁ କାରଣ । ଜଗତେ କରନ୍ତି ଭ୍ରମଣ ॥ ୪୪
୧୬ ମୂଢ଼ ଅଟଇ ମତି ମୋର । ମୁଁ ଗ୍ରାମପଶୁର ଆକାର ॥ ୪୫
ବୁଡ଼ିଛି ଅନ୍ଧ ତମଘୋରେ । ତୁମ୍ଭେ ସମର୍ଥ ପ୍ରବୋଧରେ ॥ ୪୬
ତେଣୁ ପ୍ରକାଶ କର ଜ୍ଞାନ । ଯେ ଅଟେ ଦୀପର ସମାନ ॥ ୪୭

ଶ୍ରୀଅଙ୍ଗିରା ଉବାଚ

୧୭ ହେ ନୃପ ! ପୁତ୍ରକାମ ତୁହି । ତୋହର ପୁତ୍ରଦାତା ମୁହିଁ ॥ ୪୮
ଅଙ୍ଗିରା ନାମ ଅଟେ ମୋର । ସାକ୍ଷାତ ଏ ବ୍ରହ୍ମାକୁମର ॥ ୪୯
ଏ ଭଗବାନ ଅଟେ ଋଷି । ନାରଦ ନାମରେ ପ୍ରକାଶି ॥ ୫୦
୧୮-୧୯ ଏ ରୂପେ ତୁ ପୁତ୍ରଶୋକରେ । ବୁଡ଼ିଲୁ ଦୁସ୍ତର ତମରେ ॥ ୫୧
ତହିଁକି ଯୋଗ୍ୟ ନୋହୁ ପୁଣି । ତୁ ବିଷ୍ଣୁଭକ୍ତ ଏହା ଜାଣି ॥ ୫୨
ତୋହର ଅନୁଗ୍ରହ ପାଇଁ । ହେ ନୃପ ! ଆମ୍ଭେ ମୁନି ଦୁଇ ॥ ୫୩
ଏଠାରେ ପ୍ରବେଶ ହୋଇଲୁଁ । ମନରେ ଏହା ଚିନ୍ତା କଲୁଁ ॥ ୫୪
ବ୍ରହ୍ମଣ୍ୟ, ବିଷ୍ଣୁଭକ୍ତ ଜନ । କ୍ଲେଶୀ ହେବାକୁ ଅଭାଜନ ॥ ୫୫
୨୦ ତୋର ଗୃହକୁ ଆଗମନ । କଲି ମୁଁ ତୋତେ ଦେବି ଜ୍ଞାନ ॥ ୫୬
ତୋ' ଅଭିନିବେଶ ମୁଁ ଜାଣି । ପୁତ୍ରକୁ ନିଶ୍ଚେ ଦେବି ପୁଣି ॥ ୫୭
୨୧ ଅଥବା ପୁତ୍ରବନ୍ତ ହୋଇ । ସଂସାରେ ଯେତେ ଛନ୍ତି ରହି ॥ ୫୮
ସେମାନଙ୍କର ତାପ ଯେହି । କରୁଛୁ ଅନୁଭବ ତୁହି ॥ ୫୯
ଏ ରୂପେ ଦାରା, ଗୃହ, ଧନ । ବିବିଧ ଅଇଶ୍ୱର୍ଯ୍ୟମାନ ॥ ୬୦
୨୨ ଶବ୍ଦାଦି ବିଷୟ ସକଳ । ହେ ନୃପ ! ଭୂତି ଏ ଚଞ୍ଚଳ ॥ ୬୧
ଧରଣୀ, ରାଜ୍ୟ, ବଳ, ଭୃତ୍ୟ । କୋଷ, ସୁହୃଦ ଯେ ଅମାତ୍ୟ ॥ ୬୨
୨୩ ହେ ଶୂରସେନ ! ସର୍ବ ଏହି । ଭୟାର୍ତ୍ତି-ଶୋକ-ମୋହଦାୟୀ ॥ ୬୩
ଗନ୍ଧର୍ବନଗର ଯେସନ । ମିଳିଣ କରଇ ଗମନ ॥ ୬୪
ସେହି ପ୍ରକାରେ ଏ ମିଳନ୍ତି । କ୍ରମରେ ବିନାଶ ହୁଅନ୍ତି ॥ ୬୫
ତତ୍ତ୍ୱସ୍ୱରୂପେ ଏ ରହିତ । କେବଳ ମନବିଳସିତ ॥ ୬୬
ସ୍ୱପନ, ମାୟା, ମନୋରଥ । ଏମାନେ ଯେମନ୍ତ ଅନିତ୍ୟ ॥ ୬୭
ସେହିପ୍ରକାରେ ଏ ସକଳ । ଅଟନ୍ତି ଅନିତ୍ୟ, ଚଞ୍ଚଳ ॥ ୬୮
୨୪ କର୍ମବାସନାମାନଙ୍କରେ । ଅର୍ଥକୁ ଧ୍ୟାନ ଯେହୁ କରେ ॥ ୬୯
ମନସକାଶୁଁ ସେ ଲୋକର । କର୍ମ ସମ୍ଭବିଲେ ଅପାର ॥ ୭୦

କର୍ମ ହିଁ ଯେଣୁ ମନୁଁ ଜାତ । ସେରୂପେ ତହୁଁ ଜାତ ଅର୍ଥ ।। ୭୧
୨୫ ଯେ ଦ୍ରବ୍ୟ-ଜ୍ଞାନ-କ୍ରିୟାମୟ । ଅଟଇ ଦେହୀର ଏ କାୟ ।। ୭୨
ମୋହର ବୋଲି ଅଭିମାନ । କରଇ ଏହାକୁ ଯେ ଜନ ।। ୭୩
ତାର ବିବିଧ ତାପ କ୍ଳେଶ । କରେ ଏ ବୋଲନ୍ତି ଅଶେଷ ।। ୭୪
୨୬ ସେ ଘେନି ଯେ ଆତ୍ମାର ଗତି । ସୁସ୍ଥିର ମନେ ତାହା ଚିନ୍ତି ।। ୭୫
ଦ୍ୱୈତ ଦ୍ରବ୍ୟରେ ଧ୍ରୁବ କରି । ଯେବଣ ମତି ଅଛୁ ଧରି ।। ୭୬
ସେ କଥା ଛାଡ଼ି ଅସଂଭ୍ରମେ । ପ୍ରବେଶ ହୁଅ ଉପଶମେ ।। ୭୭

ଶ୍ରୀନାରଦ ଉବାଚ

୨୭ ମୋ ଠାରୁ ହୋଇ ସଯତନ । ଏ ମନ୍ତ୍ରୋପନିଷଦ ଘେନ ।। ୭୮
ଏହାକୁ ଘେନନ୍ତେ ଚିତ୍ତରେ । ଆଜହୁଁ ସପତ ରାତ୍ରରେ ।। ୭୯
ଯେ ସଂକର୍ଷଣ ଭଗବାନ । ତାଙ୍କୁ କରିବୁ ଦରଶନ ।। ୮୦
୨୮ ପୂର୍ବେ ଅଶେଷ ମହାଜନେ । ଶଙ୍କର ଆଦି ଏ ଭୁବନେ ।। ୮୧
ତାହାଙ୍କ ପାଦପଦ୍ମ ଭଜି । ଏ ଦ୍ୱୈତ ଭ୍ରମକୁ ହିଁ ତେଜି ।। ୮୨
ତକ୍ଷଣେ ମହିମା ତାଙ୍କର । ପାଇଲେ, ଯେଉଁ ମହିମାର ।। ୮୩
ଅଧିକ, ସମାନ ହିଁ ନାହିଁ । ଅଳପ ଦିବସରେ ତୁହି ।। ୮୪
ନରେନ୍ଦ୍ର ! ପାଇବୁ ତାହାକୁ । ହୃଦୟେ ଚିନ୍ତି ଏ ମନ୍ତ୍ରକୁ ।। ୮୫
ଚିନ୍ତିଣ କମଳଲୋଚନ । ହରଷ ଦୀନବନ୍ଧୁମନ ।। ୮୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଚିତ୍ରକେତୁସାନ୍ତ୍ୱନଂ
ନାମ ପଞ୍ଚଦଶୋଽଧ୍ୟାୟଃ ।।

## ଷୋଡ଼ଶ ଅଧ୍ୟାୟ

ଷୋଡ଼ଶେ ତତ୍‌ସୁତୋକ୍ତ୍ୟୈବ ବିଶୋକୀକୃତ୍ୟ ତଂ ନୃପମ୍ ।
ଆଦିଦେଶ ମହାବିଦ୍ୟାଂ ନାରଦଃ ଶେଷତୋଷଣୀମ୍ ।। ୧

ଶ୍ରୀବାଦରାୟଣିରୁବାଚ

୧ ଯେ ଦେବରଷିମଧ୍ୟେ ବର । ସେହୁ ନାରଦ ତଦନ୍ତର ।। ୧
ଜ୍ଞାତିଏ କରନ୍ତେ ଶୋଚନ । ମରିଛି ଯେ ନୃପନନ୍ଦନ ।। ୨
ତାକୁ ଦେଖାଇ ଏ ପ୍ରକାରେ । ବଚନ କହିଲେ ସେଠାରେ ।। ୩

ଶ୍ରୀନାରଦ ଉବାଚ

୨ ଜୀବାତ୍ମା ! ହେଉ ତୋର ସୁଖ । ପିତାମାତାଙ୍କୁ ତୋର ଦେଖ ।। ୪

ମିତ୍ର ବନ୍ଧୁଏ ତୋ' ସକାଶେ । ତାପକୁ ଲଭନ୍ତି ବିଶେଷେ ॥ ୫
୩ ଆୟୁଷ ଅଛି ଶେଷ ତୋର । ପ୍ରବେଶ ହୁଅ ତୋ' ଶରୀର ॥ ୬
ସୁହୃଦ ଲୋକେ ହୋଇ ବୃତ । ଯେ ଭୋଗମାନେ ପିତୃଦତ୍ତ ॥ ୭
ସେ ଭୋଗମାନ ଭୁଞ୍ଜ ତୁହି । ରାଜ-ଆସନେ ବସ ଯାଇଁ ॥ ୮

ଶ୍ରୀଜୀବ ଉବାଚ

୪ ଦେବ, ତିର୍ଯ୍ୟକ, ନୃ-ଯୋନିରେ । ଭ୍ରମନ୍ତେ ମୁଁ ନିଜ କର୍ମରେ ॥ ୯
ଏମାନେ କେଉଁ ଜନ୍ମେ ମୋର । ହୋଇଲେ ଜନନୀ ପିଅର ॥ ୧୦
୫ ଅରି, ମଧ୍ୟସ୍ଥ, ବନ୍ଧୁ, ଜ୍ଞାତି । ମିତ୍ର, ଉଦାସୀନ, ଅପ୍ରୀତି ॥ ୧୧
ସମସ୍ତେ ସବୁରି କ୍ରମରେ । ହୁଅନ୍ତି ଏହୁ ପରସ୍ପରେ ॥ ୧୨
୬ ସୁବର୍ଣ୍ଣ ଆଦି ହୋଇ ଯେତେ । ବିକ୍ରୟଦ୍ରବ୍ୟ ଏ ଜଗତେ ॥ ୧୩
ସେ ଯେହ୍ନେ ବ୍ୟବହାରୀ ନରେ । ଭ୍ରମନ୍ତି ସେଠାରେ ସେଠାରେ ॥ ୧୪
ସେ ରୂପେ କରଇ ଭ୍ରମଣ । ଯୋନିମାନଙ୍କେ ଜୀବ ପୁଣ ॥ ୧୫
୭ ଯେ ପଶୁ ଆଦି ଜୀଇ ଥାଇ । ତାର ସମ୍ବନ୍ଧ ଲୋକଠାଇଁ ॥ ୧୬
ଅନିତ୍ୟ ହୋଏ ଏ ସଂସାରେ । ବିକ୍ରୟ ଆଦି ନିମିତ୍ତରେ ॥ ୧୭
ଯାର ସମ୍ବନ୍ଧ ଯେତେ ଯାଏ । ମମତ୍ୱ ତେତେ କାଳ ହୋଏ ॥ ୧୮
୮ ଏ ରୂପେ ଜୀବ ଯୋନିଗତ । ହେଲେହେଁ ଅଟଇ ସେ ନିତ୍ୟ ॥ ୧୯
ଅହଂକାର ହିଁ ତାର ନାହିଁ । ଯେତେକ କାଳ ଯହିଁ ଥାଇ ॥ ୨୦
ତେତେକ କାଳଯାଏ ତାର । ମମତା ହୁଅଇ ପ୍ରଚାର ॥ ୨୧
୯ ଏ ନିତ୍ୟ, ଅପକ୍ଷୟଶୂନ୍ୟ । ଏ ସୂକ୍ଷ୍ମ, ଜନ୍ମ ଆଦି ହୀନ ॥ ୨୨
ଜନ୍ମାଦିମନ୍ତ ଯେହୁ କାୟ । ତାହାର ଅଟେ ଏ ଆଶ୍ରୟ ॥ ୨୩
ଏ ସ୍ୱପ୍ରକାଶ ଅଟେ ପୁଣ । ଯେ ଏହା' ଆତ୍ମମାୟାଗୁଣ ॥ ୨୪
ତେଣେ ଏ ଆତ୍ମାକୁ ସର୍ଜଇ । ବିଶ୍ୱରୂପରେ ପ୍ରଭୁ ଏହି ॥ ୨୫
୧୦ ଏହାର ଅତିପ୍ରିୟ ନାହିଁ । ପର ଅପର ନାହିଁ ଦୁଇ ॥ ୨୬
ଏ ଅଟେ ସଙ୍ଗରୁ ବିହୀନ । ଯେ ହିତାହିତ କରେ ଜନ ॥ ୨୭
ସେମାନଙ୍କର ବୁଦ୍ଧି ଯେହି । ତାହାର ସାକ୍ଷୀ ଏ ଅଟଇ ॥ ୨୮
୧୧ ଯେ ସୁଖ ଦୁଃଖ ହୋଇ ଦୁଇ । ରାଜ୍ୟାଦି କ୍ରିୟାଫଳ ଯେହି ॥ ୨୯
ଆତ୍ମା ସେମାନ ନ ଘେନଇଁ । ଉଦାସୀପ୍ରାୟ ହୋଇ ଥାଇ ॥ ୩୦
ସାକ୍ଷୀ କାରଣ-କାର୍ଯ୍ୟଙ୍କର । ଅଧୀନ ନୋହେ ଦେହାଦିର ॥ ୩୧

ଶ୍ରୀବାଦରାୟଣିରୁବାଚ

୧୨ ଜୀବ କହିଣ ଗଲା ଏତେ । ସେ କାଳେ ତାର ଜ୍ଞାତି ଯେତେ ॥ ୩୨
ଶାଙ୍କୁଳିପ୍ରାୟ ଆପଣାର । ଯେ ସ୍ନେହ ଥିଲା ତାହାଙ୍କର ॥ ୩୩
ବିସ୍ମୟ ହୋଇ ତା' କାଟିଲେ । ଶୋକକୁ ପରିତ୍ୟାଗ କଲେ ॥ ୩୪

୧୩ ଜ୍ଞାତିର[1] ଦେହକୁ ଦହିଣ । ଉଚିତ କ୍ରିୟାକୁ କରିଣ ।।
ଯେ ଆର୍ତ୍ତି, ଶୋକ, ଭୟ, ମୋହ । ପ୍ରଦାନ କରେ ବନ୍ଧୁସ୍ନେହ ।।
ଛାଡ଼ି ନ ପାରେ ଯାହା ଜନ । କଲେ ସେ ଶୋକକୁ ମୋଚନ ।।
୧୪ ଯେ ବାଳହତ୍ୟା କରିଥିଲେ । ସେ ତହିଁ ଲଜ୍ଜାକୁ ପାଇଲେ ।।
ବାଳକହତ୍ୟାରେ ତାଙ୍କର । ପ୍ରଭା ହିଁ ହୋଇଲା ସଂହାର ।।
ବାଳକହତ୍ୟାକୁ ଯେ ବ୍ରତ । ବ୍ରାହ୍ମଣେ ହୋଇ[2] ନିରୂପିତ ।।
ହେ ମହାରାଜ ! ଯମୁନାରେ । ସେ ବ୍ରତ କଲେ ସେ ଆଦରେ ।।
ଅଙ୍ଗିରା-ଋଷିଙ୍କ ବଚନ । ସ୍ମରନ୍ତେ ଆପଣାର ମନ ।।
୧୫ ସେ ଚିତ୍ରକେତୁ ଏ ପ୍ରକାରେ । ବ୍ରାହ୍ମଣଙ୍କର ବଚନରେ ।।
ଆତ୍ମାକୁ କଲାକ ଗୋଚର । ଯେ ଗୃହ ଅନ୍ଧକୂପାକାର ।।
ତହିଁରୁ ହୋଇଲା ନିର୍ଗତ । ସରପଙ୍କରୁ ହସ୍ତୀମତ ।।
୧୬ କାଳିନ୍ଦୀଜଳେ ବିଧିମନ୍ତ । ସ୍ନାନକୁ କରିଣ ତଦନ୍ତ ।।
ଯେ ପୁଣ୍ୟ ଜଳେ ତର୍ପଣାଦି । ସେ କ୍ରିୟାମାନଙ୍କୁ ସଂପାଦି ।।
ଇନ୍ଦ୍ରିୟମାନଙ୍କୁ ମୌନରେ । ସଂଯତ କରି ଅଭ୍ୟନ୍ତରେ ।।
ଯେ ବେନି ବ୍ରହ୍ମାଙ୍କ ନନ୍ଦନ । ତାହାଙ୍କୁ କଲାକ ବନ୍ଦନ ।।
୧୭ ପ୍ରପନ୍ନ ଅଟେ ଯେ ଭଗତ । ଆତ୍ମାକୁ କରିଛି ପ୍ରୟତ ।।
ସେ ଚିତ୍ରକେତୁକୁ ସୁପ୍ରୀତ । ହୋଇ ନାରଦ ଭଗବନ୍ତ ।।
ଏହୁ ବିଦ୍ୟାକୁ ଏକାନ୍ତରେ । କହିଲେ ଏଥୁ ଅନନ୍ତରେ ।।

ଶ୍ରୀନାରଦ ଉବାଚ

୧୮ ଯେ ବାସୁଦେବ ଭଗବାନ । ଯେ ଅନିରୁଦ୍ଧ ଯେ ପ୍ରଦ୍ୟୁମ୍ନ ।।
ଯେ ସଂକର୍ଷଣ ସେ ତୁମ୍ଭଙ୍କୁ । ମନେ କରୁଛୁଁ ପ୍ରଣାମକୁ ।।
୧୯ ବିଜ୍ଞାନମାତ୍ର ଯେ ଅଟଇ । ପରମାନନ୍ଦମୂର୍ତ୍ତି ଯେହି ।।
ଯେ ଅଟେ ଆତ୍ମାରାମ ଶାନ୍ତ । ଯେ ଦ୍ୱୈତଦୃଷ୍ଟିବିନିବୃତ୍ତ ।।
ଏମନ୍ତ ଅଟେ ଯେ ଈଶ୍ୱର । ତାଙ୍କୁ ଆମ୍ଭର ନମସ୍କାର ।।
୨୦ ଆତ୍ମା-ଆନନ୍ଦାନୁଭବରେ । ମାୟିକ ରାଗାଦି ଯେ ବାରେ[3] ।।
ମହତ, ଯେ ଇନ୍ଦ୍ରିୟପତି । ଯେ ବହୁମୂର୍ତ୍ତି ତାଙ୍କୁ ନତି ।।
୨୧ ଇନ୍ଦ୍ରିୟ ମନର ସହିତେ । ନ ପାଇ ନିବୃତ୍ତ ହୁଅନ୍ତେ ।।
ଯେ ଏକ ହୋଇ ପ୍ରକାଶଇ । ଯାହାର ନାମରୂପ ନାହିଁ ।।
କାର୍ଯ୍ୟକାରଣମାନଙ୍କର । କାରଣ ଅଟେ ଯେ ଈଶ୍ୱର ।।
ଚିନ୍ମାତ୍ର ଅଟେ ପ୍ରଭୁ ଯେହି । ଆମ୍ଭମାନଙ୍କୁ ରଖୁ ସେହି ।।
୨୨ ଏ କାର୍ଯ୍ୟକାରଣ ଅଶେଷ । ଯା'ଠାରୁ ହୁଅଇ ପ୍ରକାଶ ।।

---
୧. ଜ୍ଞାତିଏ । ୨. କଲେ । ୩. ବାରେ = ବାରଣ କରେ ।

ଯାହାର ଠାରେ ମଧ୍ୟେ ଥାଇ । ପ୍ରାନ୍ତେ ଯା'ଠାରେ ଲୟ ହୋଇ ।। ୬୫
ମୃତ୍ତିକାମୟ ଘଟେ ଲୀନ । ମୃତ୍ତିକାମାତ୍ରକ ଯେସନ ।। ୬୬
ସେ ତୁମ୍ଭେ ସର୍ବଗତ ବ୍ରହ୍ମ । ତୁମ୍ଭଙ୍କୁ କରୁଛି ପ୍ରଣାମ ।। ୬୭
୨୩ ଅନ୍ତରେ ବାହ୍ୟେ ଆକାଶର । ପ୍ରାୟ ଯେ ହେଲେହେଁ ବିସ୍ତାର ।। ୬୮
କ୍ରିୟାଶକ୍ତିରେ ଯାକୁ ପ୍ରାଣ । ସ୍ପରଶ ନ କରଇ ପୁଣ ।। ୬୯
ଜ୍ଞାନଶକ୍ତିରେ ମନ, ବୁଦ୍ଧି । ଇନ୍ଦ୍ରିୟେ ନ ପାରନ୍ତି ଭେଦି ।। ୭୦
ଏମନ୍ତ ରୂପେ ଯେ ବିଦିତ । ତାହାଙ୍କୁ ହେଉଛି ପ୍ରଣତ ।। ୭୧
୨୪ ଦେହ, ଇନ୍ଦ୍ରିୟ, ମନ, ପ୍ରାଣ । ବୁଦ୍ଧି ଏମାନେ ଯା' ଅଂଶେଣ ।। ୭୨
ଆବିଷ୍ଟ ହୋଇ ବିଷୟରେ । ପ୍ରଚରୁଛନ୍ତି ନିରନ୍ତରେ ।। ୭୩
ସୁଷୁପ୍ତି-ମୂର୍ଚ୍ଛାଦିରେ କେହି । ପ୍ରଚରି ନ ପାରନ୍ତି ସେହି ।। ୭୪
ତାତି ନ ଥିଲେ ଯେହ୍ନେ ଲୋହ । କରି ନ ପାରେ ଲୋକ ଦାହ ।। ୭୫
ସେ ଲୋହ ଅଗ୍ନିର ଶକ୍ତିରେ । ସମର୍ଥ ହେଲେ ଦହିବାରେ ।। ୭୬
ଅଗ୍ନିକି ଦହି ନ ପାରଇ । ସେହି ପ୍ରକାରେ ଦେହାଦି ହିଁ ।। ୭୭
ବ୍ରହ୍ମରୁ ଜ୍ଞାନ-କ୍ରିୟା ଶକ୍ତି । ଲଭି ବ୍ରହ୍ମକୁ ନ ଛୁଅନ୍ତି ।। ୭୮
ଜାଣି ହିଁ ନ ପାରନ୍ତି ପୁଣ । ଜାଗ୍ରତ ଆଦି ସମୟେଣ ।। ୭୯
ଦ୍ରଷ୍ଟାସଂଜ୍ଞାକୁ ସେହି ପାଇ । ଜୀବ[1] ନାମରେ କେହି ନାହିଁ ।। ୮୦
୨୫ ମହାପୁରୁଷ ଭଗବାନ । ତାହାଙ୍କୁ କରୁଛି ବନ୍ଦନ ।। ୮୧
ମହାନୁଭାବ ଯେ ବିଦିତ । ମହାବିଭୂତିର ଯେ ନାଥ ।। ୮୨
ସର୍ବ ସାତ୍ୱତଶ୍ରେଷ୍ଠଗଣ । କରକମଳ ମୁକୁଳେଣ ।। ୮୩
ଚରଣପଦ୍ମଯୁଗ ଯାର । ଉପଲାଳିତ ନିରନ୍ତର ।। ୮୪
ହେ ପରମେଷ୍ଠି ! ହେ ପରମ । ତୁମ୍ଭଙ୍କୁ କରୁଛି ପ୍ରଣାମ ।। ୮୫

ଶ୍ରୀଶୁକ ଉବାଚ

୨୬ ଯେ ଅଟେ ପ୍ରପନ୍ନ, ଭଗତ । ସେ ଚିତ୍ରକେତୁକୁ ତୁରିତ ।। ୮୬
ନାରଦ ଦେଇ ଏ ବିଦ୍ୟାକୁ । ସଙ୍ଗେ ଘେନିଣ ଅଙ୍ଗିରାଙ୍କୁ ।। ୮୭
ହେ ନୃପ ! ଯେ ବ୍ରହ୍ମାସଦନ । ତହିଁକି କଲେ ସେ ଗମନ ।। ୮୮
୨୭ ନାରଦ ଯାହା ଛନ୍ତି କହି । ସେ ବିଦ୍ୟା ସାବଧାନ ହୋଇ ।। ୮୯
ସେ ଚିତ୍ରକେତୁ ସାତଦିନ । ସଲିଳ କରନ୍ତେ ଭୋଜନ ।। ୯୦
ଧଇଲା ଯଥାର୍ଥ ପ୍ରକାରେ । ଗୁରୁ-ଉପଦେଶମାର୍ଗରେ ।। ୯୧
୨୮ ହେ ନୃପ ! ବିଦ୍ୟାକୁ ଧରନ୍ତେ । ତହିଁରୁ ସାତଦିନ ଅନ୍ତେ ।। ୯୨
ବିଦ୍ୟାଧରଙ୍କ ଅଧିପତି । ହୋଇଲା ଯହିଁ ନାହିଁ କ୍ଷତି ।। ୯୩
୨୯ ବିଦ୍ୟାରେ ଦୀପ୍ତ ଯେଉଁ ଚିତ୍ତ । ତେଣେ ଯାହାର ଗତି ଖ୍ୟାତ ।। ୯୪

୧. "ନାନ୍ୟୋ ଜୀବୋ ନାମାସ୍ତି ।" "ନାନ୍ୟୋଃତୋଃସ୍ତି ଦ୍ରଷ୍ଟା" (ଇତି ଶ୍ରୁତିଃ) ।

ଦେବତାଙ୍କର ଦେବ ହୋଇ । ବିଖ୍ୟାତ ଶେଷଦେବ ଯେହି ॥ ୯୫
ପାଦନିକଟକୁ ତାଙ୍କର । ଲଭିଲା କେତେ ଦିନାନ୍ତର ॥ ୯୬
୩୦ ମୃଣାଳପ୍ରାୟ ଯେ ଗଉର । ନୀଳ ଅଟଇ ଯା' ଅମ୍ବର ॥ ୯୭
କିରୀଟ, ମେଖଳା, କେୟୂର । କଙ୍କଣ ସ୍ଫୁରୁଛି ଯାହାର ॥ ୯୮
ପ୍ରସନ୍ନ ଯା' ବଦନ ମାନ । ଅରୁଣ ଦିଶନ୍ତି ଲୋଚନ ॥ ୯୯
ଯେ ସିଦ୍ଧେଶ୍ୱରବୃନ୍ଦେ ବୃତ । ଦେଖିଲା ସେ ପ୍ରଭୁଙ୍କୁ ଭୃତ୍ୟ ॥ ୧୦୦
୩୧ ତାହାଙ୍କ ଦରଶନେ ନାଶ । କଲା ଯେ ସମସ୍ତ କିଲ୍‌ବିଷ ॥ ୧୦୧
ସୁସ୍ଥ ହୋଇଲା ତତକ୍ଷଣ । ଅମଳ ଯା' ଅନ୍ତଃକରଣ ॥ ୧୦୨
ପ୍ରବୃଦ୍ଧ ଭକ୍ତିରେ ଯାହାର । ନେତ୍ରେ ପ୍ରଣୟ-ଅଶ୍ରୁଧାର ॥ ୧୦୩
ରୋମ ପୁଲକେ ଯାର କାୟେ । ସେ ଚିତ୍ରକେତୁ ମୁନିପ୍ରାଏ ॥ ୧୦୪
ଆଦିପୁରୁଷଙ୍କୁ ଶରଣ । ଗଲା, ବନ୍ଦନ କଲା ପୁଣ ॥ ୧୦୫
୩୨ ଉତ୍ତମଶ୍ଳୋକର ଚରଣ । ପଦ୍ମାସନକୁ ତତକ୍ଷଣ ॥ ୧୦୬
ପ୍ରେମେ ଯେ ଗଳେ ନେତ୍ରବାରି । ତା'ଲେଶେ ପୁଣ ପୁଣ କରି ॥ ୧୦୭
ସେଚନ କରନ୍ତେ ନୃପତି । ତାହାଙ୍କୁ କରିବାକୁ ସ୍ତୁତି ॥ ୧୦୮
ଶକ୍ତ ନୋହିଲା ଚିରକାଳେ । ପ୍ରେମେ ତାହାର କଣ୍ଠନାଳେ ॥ ୧୦୯
ଅଖିଳ ବର୍ଣ୍ଣମାନଙ୍କର । ନିରୁଦ୍ଧ ହୋଇଲା ସଂଚାର ॥ ୧୧୦
୩୩ ତଦନନ୍ତରେ ନିଜ ମନ । ବୁଦ୍ଧିରେ କରି ସମାଧାନ ॥ ୧୧୧
ନିୟତ କରିଣ ତାହାକୁ । ଲଭିଲା ସ୍ତୁତିବଚନକୁ ॥ ୧୧୨
ସର୍ବ ଇନ୍ଦ୍ରିୟମାନଙ୍କର । ବାହ୍ୟରେ ବୃତ୍ତି ଅଟେ ଯାର ॥ ୧୧୩
ସାତ୍ୱତ ଶାସ୍ତ୍ରରେ ଯାହାର । ଉକତ ହୋଇଛି ଶରୀର ॥ ୧୧୪
ଜଗତଗୁରୁ ଯେ ଅନନ୍ତ । ତାହାଙ୍କୁ କହିଲା ଏମନ୍ତ ॥ ୧୧୫

ଶ୍ରୀଚିତ୍ରକେତୁରୁବାଚ

୩୪ ତୁମ୍ଭଙ୍କୁ ନ ଜିଣନ୍ତି କେହି । ଯେ ସମ-ମତି ସାଧୁ ଯେହି ॥ ୧୧୬
ଆତ୍ମାକୁ ଯେ ଜିଣି ଅଛନ୍ତି । ସେମାନେ ତୁମ୍ଭଙ୍କୁ ଜିଣନ୍ତି ॥ ୧୧୭
ତୁମ୍ଭେ ଜିଣିଛ ତାଙ୍କୁ ପୁଣ । ଯେ ତୁମ୍ଭେ ଅତ୍ୟନ୍ତ କରୁଣ ॥ ୧୧୮
ଭଜନ୍ତି ଯେ ଅକାମ ହୋଇ । ତାହାଙ୍କୁ ଦିଅ ଆତ୍ମାକୁ ହିଁ ॥ ୧୧୯
୩୫ ହେ ଭଗବାନ ! ଜଗତର । ଉତ୍‌ପତ୍ତି, ପାଳନ, ସଂହାର ॥ ୧୨୦
ଏ ଆଦି କର୍ମମାନେ ଯେତେ । ତୁମ୍ଭ ମହିମା ସେ ସମସ୍ତେ ॥ ୧୨୧
ବ୍ରହ୍ମାଦି ବିଶ୍ୱସୃଜ ଯେହି । ତୁମ୍ଭ ଅଂଶର ଅଂଶ ସେହି ॥ ୧୨୨
ଏମନ୍ତ ହେଲେ ହେଁ ସେମାନେ । ଆମ୍ଭେ ଈଶ୍ୱର ବୋଲି ମନେ ॥ ୧୨୩
ବାଦ କରନ୍ତି ଏକେ ଏକେ । [1]ମୃଷାକୁ ବହି ଅତିରେକେ ॥ ୧୨୪

୧. 'ସେ କଥା ମିଥ୍ୟା ଏ ତ୍ରିଲୋକେ ।' (ପାଠାନ୍ତର)

| | | | | | |
|---|---|---|---|---|---|
| ୩୬ | ମୂଳ କାରଣ ଜଗତର | । | ଯେ ପରମାଣୁ ସୂକ୍ଷ୍ମତର | ।। | ୧୨୫ |
| | କାର୍ଯ୍ୟମାନଙ୍କର ଯେ ପ୍ରାନ୍ତ | । | ଅଟଇ ପରମ ମହତ | ।। | ୧୨୬ |
| | ତୁମ୍ଭେ ସେ ଦୁହିଁଙ୍କ ଆଦ୍ୟରେ | । | ବର୍ତ୍ତିଛ ମଧ୍ୟରେ, ପ୍ରାନ୍ତରେ | ।। | ୧୨୭ |
| | ଆଦି ମଧ୍ୟାନ୍ତ ତିନି କଥା | । | ତୁମ୍ଭର ନାହିଁ ଏ ସର୍ବଥା | ।। | ୧୨୮ |
| | ଏ ଘେନି କରି ତୁମ୍ଭେ ନିତ୍ୟ | । | ତୁମ୍ଭେ ଯା' ସର୍ଜ ସେ ଅନିତ୍ୟ | ।। | ୧୨୯ |
| | ସତ୍ୟରୂପରେ ଏ ଜଗତେ | । | ପ୍ରତ୍ୟେ ହୁଅନ୍ତି କାର୍ଯ୍ୟ ଯେତେ | ।। | ୧୩୦ |
| | ତାଙ୍କର ଆଦ୍ୟରେ ପ୍ରାନ୍ତରେ | । | ଯେ ଧ୍ରୁବ ଅଛି ତା' ମଧ୍ୟରେ | ।। | ୧୩୧ |
| | କୁଣ୍ଡଳ ଆଦିରେ ଯେସନ | । | ସୁବର୍ଣ୍ଣ ଆଦି ବିଦ୍ୟମାନ | ।। | ୧୩୨ |
| ୩୭ | ଏକକୁ ଏକ ଦଶ ଦଶ | । | ଗୁଣେ ଯେ ହୋଇଛି ପ୍ରକାଶ | ।। | ୧୩୩ |
| | ପୃଥିବୀ ଆଦି ହୋଇ ସାତ | । | ତେଣେ ଏ ଅଣ୍ଡକୋଷ ବୃତ | ।। | ୧୩୪ |
| | ବ୍ରହ୍ମାଣ୍ଡ କୋଟି କୋଟି ସଙ୍ଗେ | । | ଏ ଅଣୁପ୍ରାୟ ଯାହା' ଅଙ୍ଗେ | ।। | ୧୩୫ |
| | ଭ୍ରମଣ କରେ ଅବିରତ | । | ସେ ଘେନି ତୁମ୍ଭେ ସେ ଅନନ୍ତ | ।। | ୧୩୬ |
| ୩୮ | ବିଷୟେ ତୃଷ୍ଣା ଯାହାଙ୍କର | । | ଯେ ଜନେ ପଶୁର ଆକାର | ।। | ୧୩୭ |
| | ଇନ୍ଦ୍ରାଦି ଯେ ତୁମ୍ଭ ବିଭୂତି | । | ତାହାଙ୍କୁ ସେମାନେ ସେବନ୍ତି | ।। | ୧୩୮ |
| | ତହୁଁ ଅଧିକ ତୁମ୍ଭେ ଯେହି | । | ତୁମ୍ଭଙ୍କୁ ନ ଭଜନ୍ତି ସେହି | ।। | ୧୩୯ |
| | ହେ ଈଶ ! ସେ ଦେବତାମାନେ | । | ନାଶ ଯାଆନ୍ତି ଯେଉଁଦିନେ | ।। | ୧୪୦ |
| | ତଦନନ୍ତରେ ତାହାଙ୍କର | । | ମଙ୍ଗଳ ହୁଅଇ ସଂହାର | ।। | ୧୪୧ |
| | ରାଜାଙ୍କ ନାଶରେ ଯେମନ୍ତ | । | ରାଜସେବକ-କାର୍ଯ୍ୟ ହତ | ।। | ୧୪୨ |
| ୩୯ | ତୁମ୍ଭେ ଜ୍ଞାନାତ୍ମା ଗୁଣହୀନ | । | ଆହେ ପରମ ! ଯେଉଁ ଜନ | ।। | ୧୪୩ |
| | ବିଷୟକାମନା ହିଁ ଯେହି | । | ତୁମ୍ଭ ବିଷୟରେ କରଇ | ।। | ୧୪୪ |
| | ଗୁଣଶରୀର-ଉତପତି | । | ଅର୍ଥେ ସେ କାମନା ନୁହନ୍ତି | ।। | ୧୪୫ |
| | ଅଗ୍ନିଦଗଧ ବୀଜମାନେ | । | ଅଙ୍କୁର ନୁହନ୍ତି ଯେସନେ | ।। | ୧୪୬ |
| | ଗୁଣଗଣରୁ ଉତପନ | । | ଯେଣୁ ଏ ଜୀବଦୁଃଖମାନ | ।। | ୧୪୭ |
| | ତୁମ୍ଭେ ଯେ ନିର୍ଗୁଣ, ଯେ ଜନ | । | ତୁମ୍ଭଙ୍କୁ କରଇ ସେବନ | ।। | ୧୪୮ |
| | ତାହାର ହୁଅଇ କ୍ରମରେ | । | ନିର୍ଗୁଣ ଭାବ ଏ ସଂସାରେ | ।। | ୧୪୯. |
| ୪୦ | ହେ ଭଗବାନ ! ହେ ଅଜିତ | । | ସର୍ବଉପରେ ତୁମ୍ଭେ ସ୍ଥିତ | ।। | ୧୫୦ |
| | ବୈଷ୍ଣବ ଧର୍ମ ଯେ ନିର୍ଦ୍ଦୋଷ | । | ତା' ଯେଣୁ କରିଛ ପ୍ରକାଶ | ।। | ୧୫୧ |
| | ଯେ ଆତ୍ମାରାମ ଅକିଞ୍ଚନ | । | କୁମାର[୧] ଆଦି ମୁନିଜନ | ।। | ୧୫୨ |
| | ଯେଉଁ ଧର୍ମକୁ ମୋକ୍ଷଅର୍ଥେ | । | ସେମାନେ ଭଜନ୍ତି ଜଗତେ | ।। | ୧୫୩ |
| ୪୧ | ତୁ ମୁଁ ଏ ତୋହର ଏ ମୋର | । | ଏରୂପେ ପ୍ରାଣୀମାନଙ୍କର | ।। | ୧୫୪ |
| | ଯେବଣ ଭାଗବତ ଧର୍ମେ | । | ବିଷମମତି ନୋହେ ଭ୍ରମେ | ।। | ୧୫୫ |

୧. କୁମାର = ସନତ୍କୁମାର ।

ଯେରୂପେ ସେ ବିଷମମତି । ଇତର କାମ୍ୟଧର୍ମେ ସ୍ଥିତି ।। ୧୫୬
ଯେ ଶତ୍ରୁମାରଣାଦି କାମ । ବିଷମମତି ତାର ନାମ ।। ୧୫୭
ତେଣେ ଯେ ଧର୍ମ ବିରଚିତ । ସେ ରାଗଦ୍ୱେଷାଦିରେ ଯୁତ ।। ୧୫୮
ବିନାଶ ହୋଏ ତାର ଫଳ । [୧]ଯହିଁରେ ଅଧର୍ମ ବହୁଳ ।। ୧୫୯
୪୨ ଯେଉଁ ଧର୍ମରେ ଆପଣାକୁ । ଦ୍ରୋହ ଆଚରଇ ପରକୁ ।। ୧୬୦
ତେଣେ କି କ୍ଷେମ ଆପଣାର । କି କ୍ଷେମ ହୁଅଇ ପରର ।। ୧୬୧
ଅତ୍ୟନ୍ତ କାୟକ୍ଳେଶଦ୍ୱାରେ । ଯେବେ ଆପଣା ଦ୍ରୋହ କରେ ।। ୧୬୨
ତେବେ ତୁମ୍ଭର କୋପ[୨] ହୋଇ । ଯେବେ ସେ ପରକୁ ପୀଡ଼ଇ ।। ୧୬୩
ତେବେ ଅଧର୍ମ ସଂଭବଇ । ତୁମ୍ଭର କୋପ ଉପୁଜଇ ।। ୧୬୪
୪୩ ତୁମ୍ଭ ବିଚାର ଅଟେ ଯେହି । ସେ ପରମାର୍ଥ ନ ଛାଡ଼ଇ ।। ୧୬୫
ଯେଉଁ ଧର୍ମରେ ଭାଗବତ । ଧର୍ମକୁ କରିଛ ଉକତ ।। ୧୬୬
ଯେ ସ୍ଥିର-ଚର ସତ୍ତ୍ୱଗଣ । ସେମାନଙ୍କର ମଧ୍ୟେ ପୁଣ ।। ୧୬୭
ଅଭେଦମତି ଯେ ହୁଅନ୍ତି । ସେ ଯେଉଁ ଧର୍ମକୁ ସେବନ୍ତି ।। ୧୬୮
୪୪ ହେ ଭଗବାନ ! ଯା' ତୁମ୍ଭର । ଦରଶନରୁ ଲୋକଙ୍କର ।। ୧୬୯
ଅଖିଳ ପାପ ହୋଏ ହତ । ଏ କଥା ନୋହେ ଅଘଟିତ ।। ୧୭୦
ଯା' ନାମ ଥରେ ଚଣ୍ଡାଳ ହିଁ । ଶୁଣି ସଂସାରୁ ମୁକ୍ତ ହୋଇ ।। ୧୭୧
୪୫ ଏହି ହେତୁ ହେ ଭଗବାନ । ତୁମ୍ଭର ଯେଉଁ ଦରଶନ ।। ୧୭୨
ତେଣେ ଆମ୍ଭର ଚିତ୍ତମଳ । ନିରସ୍ତ ହୋଇଲା ସକଳ ।। ୧୭୩
ଏ ରୂପେ ଶୁଦ୍ଧ ହେଲୁଁ ଏବେ । ନାରଦ ତୁମ୍ଭ ଭକ୍ତ ପୂର୍ବେ ।। ୧୭୪
କହି ଅଛନ୍ତି ଯେଉଁ କଥା । କେମନ୍ତେ ହେବ ସେ ଅନ୍ୟଥା ।। ୧୭୫
୪୬ ଆହେ ଅନନ୍ତ ଜଗତର । ଯେ ଆତ୍ମା ତୁମ୍ଭେ ସେ ଈଶ୍ୱର ।। ୧୭୬
ଏଥି ସମସ୍ତ ଆଚରଣ । ମନୁଷ୍ୟଙ୍କର ତୁମ୍ଭେ ଜାଣ ।। ୧୭୭
ପରମ ଗୁରୁ ତୁମ୍ଭେ ଯେହି । ତୁମ୍ଭଙ୍କୁ ଜଣାଇମା ପାଇଁ ।। ୧୭୮
କି କଥା ଅଛି ଅବା ମୋର । ସର୍ବ ପ୍ରକାଶେ ଯେ ଭାସ୍କର ।। ୧୭୯
ତାର ପ୍ରକାଶକୁ ଖଦ୍ୟୋତେ । ଯେହ୍ନେ ଅଶକ୍ୟ ଏ ଜଗତେ ।। ୧୮୦
୪୭ ସକଳ ଜଗତର ସ୍ଥିତି । ଲୟ, ଉଦୟରେ ଯେ ପତି ।। ୧୮୧
କୁଯୋଗୀ ଜନମାନଙ୍କର । ଭେଦଦୃଷ୍ଟିରେ ଅଗୋଚର ।। ୧୮୨
ଅଟେ ଯାହାର ଆତ୍ମଗତି । ପରମହଂସ ଯେହୁ ଖ୍ୟାତି ।। ୧୮୩
ଏମନ୍ତ ତୁମ୍ଭେ ଭଗବାନ । ତୁମ୍ଭଙ୍କୁ କରୁଛି ବନ୍ଦନ ।। ୧୮୪

---

୧. ''ଉଭୟମିହ ଚୋଦନାୟାଂ ଲକ୍ଷ୍ୟତେଽର୍ଥୋଽନର୍ଥଶ୍ଚ'' । (ଶବର ସ୍ୱାମୀ)

୨. କୋପ = ପୀଡ଼ା (ସ୍ୱାମୀ) ।
କର୍ଷୟନ୍ତଃ ଶରୀରସ୍ଥଂ ଭୂତଗ୍ରାମମଚେତସଃ ।
ମାଞ୍ଚୈବାନ୍ତଃଶରୀରସ୍ଥଂ ତାନ୍ ବିଦ୍ଧ୍ୟାସୁରନିଶ୍ଚୟାନ୍ ।। (ଗୀତା ୧୭।୬) ।

୪୮ ଚେଷ୍ଟା କରନ୍ତେ ପ୍ରଭୁ ଯେହି । ଯାହାକୁ ଅନୁଗତ ହୋଇ ॥ ୧୮୫
ଇତର ବିଶ୍ୱସୃଜମାନେ । ଚେଷ୍ଟା କରନ୍ତି ଏ ଭୁବନେ ॥ ୧୮୬
କରନ୍ତେ ଯେ ଅବଲୋକନ । ତା' ଅନୁଗତେ ଅନୁଦିନ ॥ ୧୮୭
ଜ୍ଞାନଇନ୍ଦ୍ରିୟେ ଯେ ଅଛନ୍ତି । ସେ ଅବଲୋକନ କରନ୍ତି ॥ ୧୮୮
ଭୂମିମଣ୍ଡଳ ଯାହା ଶିରେ । ରହିଛି ସୋରିଷଆକାରେ ॥ ୧୮୯
ସହସ୍ରଶିର ଭଗବାନ । ତାହାଙ୍କୁ କରୁଛି ବନ୍ଦନ ॥ ୧୯୦

ଶ୍ରୀଶୁକ ଉବାଚ

୪୯ ହେ ନୃପ ! ଏ ପ୍ରକାରେ ସ୍ତୁତି । କରନ୍ତେ ବିଦ୍ୟାଧରପତି ॥ ୧୯୧
ସେ ଚିତ୍ରକେତୁକୁ ଏମନ୍ତ । ସଂତୋଷେ ବୋଇଲେ ଅନନ୍ତ ॥ ୧୯୨

ଶ୍ରୀଭଗବାନୁବାଚ

୫୦ ତୋତେ ନାରଦ, ଅଙ୍ଗିରସ । ଦେଲେ ଯା' ମୋର ଉପଦେଶ ॥ ୧୯୩
ସିଦ୍ଧ ହେଲୁ ତୁ ସେ ବିଦ୍ୟାରେ । ହେ ନୃପ ! ମୋର ଦର୍ଶନରେ ॥ ୧୯୪
୫୧ ସମସ୍ତ ଭୂତ ଅଟେ ମୁହିଁ । ମୁଁ ଟି ସେ ଭୂତଆତ୍ମା[୧] ଯେହି ॥ ୧୯୫
ଯେ ଶବ୍ଦବ୍ରହ୍ମରୂପେ ଖ୍ୟାତ । ଯେ ପରଂବ୍ରହ୍ମ ସର୍ବଗତ ॥ ୧୯୬
ମୋହର ନିତ୍ୟ କଳେବର । ସେ ଦୁହେଁ, କର[୨] ତୁ ଗୋଚର ॥ ୧୯୭
୫୨ ଭୋଗ୍ୟପ୍ରପଞ୍ଚେ ଭୋକ୍ତା ହୋଇ । ଯେ ଆତ୍ମା ବିତତ[୩] ଅଟଇ ॥ ୧୯୮
ଭୋକ୍ତା ଆତ୍ମାରେ ଭୋଗ୍ୟ ହୋଇ । ଯେ ଲୋକ ବ୍ୟାପିଅଛି ରହି ॥ ୧୯୯
ଦୁହିଁଙ୍କ କାରଣରୂପରେ । ବ୍ୟାପିଅଛି ମୁଁ ନିରନ୍ତରେ ॥ ୨୦୦
ସେ ଭୋଗ୍ୟ, ଭୋକ୍ତା ଦୁହେଁ ପୁଣ । ମୋ'ଠାରେ କଳ୍ପିତ ତୁ ଜାଣ ॥ ୨୦୧
୫୩ ଶୋଇଲା ପୁରୁଷ ଆତ୍ମାରେ । ବିଶ୍ୱକୁ ଦେଖେ ଯେ ପ୍ରକାରେ ॥ ୨୦୨
ସେ ସ୍ୱପ୍ନମଧ୍ୟେ ଉଠିଥାଇଁ । ଆତ୍ମାକୁ ଏକଦେଶେ ଚାହିଁ ॥ ୨୦୩
୫୪ ଏ ରୂପେ ଜାଗରଣ ଆଦି । ବୁଦ୍ଧିଅବସ୍ଥା ଯେ ପ୍ରସିଦ୍ଧି ॥ ୨୦୪
ଆତ୍ମାର ମାୟା ଅଟେ ସେହି । ଏମନ୍ତ ଜାଣି ପୁଣ ତହିଁ ॥ ୨୦୫
ଦ୍ରଷ୍ଟାକୁ କରିବ ସ୍ମରଣ । ତାର ନାହିଁ ଏମାନ ପୁଣ ॥ ୨୦୬
୫୫ ଯେଉଁ ପୁରୁଷ ଶୋଇଥାଇ । ସେ ସ୍ୱାପକାଳେ[୪] ପୁଣ ସେହି ॥ ୨୦୭
ଆପଣା ସ୍ୱାପ ଯେ ନିର୍ଗୁଣ । ତା' ଜାଣେ ଯେବଣ ରୂପେଣ ॥ ୨୦୮
ସେ ବ୍ରହ୍ମ ଆତ୍ମା ଅଟେ ମୁହିଁ । ଏମନ୍ତ ରୂପେ ଜାଣ ତୁହି ॥ ୨୦୯
୫୬ ପ୍ରସ୍ୱାପ, ପ୍ରତିବୋଧ ଦୁଇ । ଅନୁସଂଧାନ ଯେ କରଇ ॥ ୨୧୦
ସେ ସ୍ୱାପ-ପ୍ରତିବୋଧଙ୍କର । ପ୍ରକାଶକର୍ତ୍ତା ଯେ ଈଶ୍ୱର ॥ ୨୧୧

---
୧. ଭୂତଆତ୍ମା = ଭୋକ୍ତା (ସ୍ୱାମୀ) । ୨. କଲୁ । ୩. ବିତତ = ବ୍ୟାପ୍ତ ।
୪. ସ୍ୱାପକାଳ = ଶୋଇବା ସମୟ ।

| | | | |
|---|---|---|---|
| | ସେ ଦୁଇ ଠାରୁ ଭିନ୍ନ ପୁଣ | ସେ ଜ୍ଞାନ ପରଂବ୍ରହ୍ମ ଜାଣ | ।। ୨୧୨ |
| ୫୭ | ଯେ ବ୍ରହ୍ମସ୍ୱରୂପ ମୋହର | ତାହା ଆତ୍ମାରୁ ହୋଏ ପର | ।। ୨୧୩ |
| | ସେ ସକାଶୁଁ ଏ ପୁରୁଷର | ସଂଭବ ହୁଅଇ ସଂସାର | ।। ୨୧୪ |
| | ଦେହରୁ ଦେହ-ଉତପତି | ମରଣୁଁ ସଂଭବଇ ମୃତି | ।। ୨୧୫ |
| ୫୮ | ଶାସ୍ତ୍ରରୁ ସମ୍ଭବେ ଯେ ଜ୍ଞାନ | ଯେହୁ ଅପରୋକ୍ଷ ବିଜ୍ଞାନ | ।। ୨୧୬ |
| | ସେ ଦୁଇ ଯହୁଁ ଜାତ ହୋଇ | ସେ ନରଯୋନି ଲଭି ଯେହି | ।। ୨୧୭ |
| | ଆତ୍ମାକୁ ଗୋଚର ନ କରେ | କ୍ଷେମକୁ ନ ଲଭେ କାହିଁରେ | ।। ୨୧୮ |
| ୫୯ | ପ୍ରବୃତ୍ତିମାର୍ଗେ ହୋଏ କ୍ଲେଶ | ଫଳପ୍ରାପ୍ତି ହିଁ ହୋଏ ନାଶ | ।। ୨୧୯ |
| | ନିବୃତ୍ତିମାର୍ଗରେ ମୁକତି | ଲୋକର ହୋଏ ଉତପତି | ।। ୨୨୦ |
| | ଏହି ବଷୟ ମନେ ଘେନି | ଫଳକାମନା ଛାଡ଼େ ମୁନି | ।। ୨୨୧ |
| ୬୦ | ସୁଖ ହୋଇବ ଉତପତି | ଦୁଃଖର ହୋଇବ ନିବୃତ୍ତି | ।। ୨୨୨ |
| | ଏହି ନିମିତ୍ତେ ପତ୍ନୀପତି | କର୍ମକୁ ଆରଂଭ କରନ୍ତି | ।। ୨୨୩ |
| | ତହିଁରୁ ନ ତୁଟଇ ଦୁଃଖ | ପ୍ରାପ୍ତ ନୁହଇ ପୁଣ ସୁଖ | ।। ୨୨୪ |
| ୬୧ | ବିଜ୍ଞ ବୋଲିଣ ଅଭିମାନ | ଆତ୍ମାରେ କରନ୍ତି ଯେ ଜନ | ।। ୨୨୫ |
| | ସେମାନଙ୍କର ଏ ପ୍ରକାରେ | ଅନ୍ୟଥା ଜାଣି ଏ ସଂସାରେ | ।। ୨୨୬ |
| | ଆତ୍ମାର ଗତି ସୂକ୍ଷ୍ମ ପୁଣି | ତୁରୀୟ ବୋଲି ତାକୁ ଜାଣି | ।। ୨୨୭ |
| ୬୨ | ଯେ ଇହ ପରଲୋକେ ମିଳେ | ବିଷୟଭୋଗ କର୍ମଫଳେ | ।। ୨୨୮ |
| | ନିଜ ବିବେକ ବଳେ ଯେହି | ତହିଁରୁ ମୁକତ ହୁଅଇ | ।। ୨୨୯ |
| | ଜ୍ଞାନବିଜ୍ଞାନେ ହୋଏ ତୋଷ | ମୋ' ଭକ୍ତ ଅଟେ ସେ ପୁରୁଷ | ।। ୨୩୦ |
| ୬୩ | ଯୋଗନିପୁଣମତି ଜନେ | ଏତେକମାତ୍ର ଏ ଭୁବନେ | ।। ୨୩୧ |
| | ସର୍ବାତ୍ମଭାବେ ସ୍ୱାର୍ଥ କରି | ଜାଣିବେ ବୁଦ୍ଧି ଅନୁସରି | ।। ୨୩୨ |
| | ପରମ ଆତ୍ମାର ଜୀବର | ଯା ଏକ କରି ଦେଖିବାର | ।। ୨୩୩ |
| ୬୪ | ହେ ନୃପ ! ହୋଇ ସାବଧାନ | ଶ୍ରଦ୍ଧାରେ ତୁ ମୋ' ଏ ବଚନ | ।। ୨୩୪ |
| | ଧରନ୍ତେ ବେଗେ ହେବୁ ସିଦ୍ଧ | ଜ୍ଞାନବିଜ୍ଞାନରେ ସମୃଦ୍ଧ | ।। ୨୩୫ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୬୫ | ଆତ୍ମା ସକଳ ଜଗତର | ଜଗତଗୁରୁ ଯେ ଈଶ୍ୱର | ।। ୨୩୬ |
| | ଚିତ୍ରକେତୁକୁ ଏ ପ୍ରକାରେ | ଆଶ୍ୱାସି କରି ତଦନ୍ତରେ | ।। ୨୩୭ |
| | କରନ୍ତେ ସେ ଅବଲୋକନ | ହରି ହୋଇଲେ ଅନ୍ତର୍ଧାନ | ।। ୨୩୮ |
| | ଦୀନବନ୍ଧୁକୁ ଭକ୍ତବନ୍ଧୁ | ଉଦ୍ଧର ବାରେ କୃପାସିନ୍ଧୁ | ।। ୨୩୯ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଚିତ୍ରକେତୋଃ ପରମାତ୍ମଦର୍ଶନଂ
ନାମ ଷୋଡ଼ଶୋଽଧ୍ୟାୟଃ ।

## ସପ୍ତଦଶ ଅଧ୍ୟାୟ

ତତଃ ସପ୍ତଦଶେଽମୋଘମହର୍ଦ୍ଧିଂ ପ୍ରାପ୍ୟ ଖେ ଚରନ୍ ।
ବିହସ୍ୟ ଗିରିଶଂ ଶାପାଦୁମାୟା ବୃତ୍ରତାଂ ଗତଃ ।। ୧

ଶ୍ରୀଶୁକ ଉବାଚ

୧ ଯେଉଁ ଦିଗରେ ଅନ୍ତର୍ଧାନ । ହେଲେ ଅନନ୍ତ ଭଗବାନ ।। ୧
ସେ ଦିଗେ କରି ନମସ୍କାର । ସେ ଚିତ୍ରକେତୁ ବିଦ୍ୟାଧର ।। ୨
ଗଗନଚରରୂପ ହେଲା । ଭ୍ରମଣ ସବୁ ଦିଗେ କଲା ।। ୩
୨ ଲକ୍ଷେ ବରଷ ଲକ୍ଷେ ଗୁଣ । କରନ୍ତେ ଯେତେ ହୋଏ ପୁଣ ।। ୪
୩ ଅହତ ଯା' ଇନ୍ଦ୍ରିୟବଳ । ସେ ମହାଯୋଗୀ ତତକାଳ ।। ୫
ମୁନି ଚାରଣ ସିଦ୍ଧଜନେ । ସ୍ତୁତି କରନ୍ତେ ତୋଷମନେ ।। ୬
ସଂକଳ୍ପମାତ୍ରେ ନାନା ହୋଇ । ସିଦ୍ଧିଏ ଉପୁଜନ୍ତି ଯହିଁ ।। ୭
ସେ କୁଳାଚଳ-ଇନ୍ଦ୍ରଙ୍କର । [1]ଦ୍ରୋଣୀମାନଙ୍କେ ନିରନ୍ତର ।। ୮
ବିଦ୍ୟାଧରସ୍ତ୍ରୀଙ୍କ ସଙ୍ଗତେ । ରମିଲା ହରିଙ୍କି ଗୁଆନ୍ତେ[2] ।। ୯
୪ ଯା' ଦେଇଥିଲେ ଭଗବାନ । ପ୍ରଦୀପ୍ତ ସେ ନିଜ ବିମାନ ।। ୧୦
ତେଣେ ଯାଆନ୍ତେ ଏକଦିନ । ଶିବଙ୍କୁ କଲା ଦରଶନ ।। ୧୧
ଯାହାଙ୍କୁ ବେଢ଼ି ବସିଛନ୍ତି । ସିଦ୍ଧଚାରଣେ ଚଉକତି ।। ୧୨
୫ ମୁନିମାନଙ୍କର ସଭାରେ । ଦେବୀଙ୍କି ବସାଇ କୋଳରେ ।। ୧୩
ବାହୁରେ କରି ଆଲିଙ୍ଗନ । ବସି ଅଛନ୍ତି ତ୍ରିଲୋଚନ ।। ୧୪
ଦେବୀ ଶୁଣନ୍ତେ ଉଚ୍ଚ ହୋଇ । ହସି କହିଲା ପାଶେ ଯାଇ ।। ୧୫

ଶ୍ରୀଚିତ୍ରକେତୁରୁବାଚ

୬ ସାକ୍ଷାତ ଗୁରୁ ଏ ଲୋକର । ଧର୍ମବକତା ପ୍ରାଣୀଙ୍କର ।। ୧୬
ମୁଖ୍ୟ ଏ ଅଛନ୍ତି ସଭାରେ । ସଂଯୋଗ ହୋଇଣ ଭାର୍ଯ୍ୟାରେ ।। ୧୭
୭ ତୀବ୍ରତପସ୍ୱୀ ଜଟାଧର । ପତି ଅଟନ୍ତି ସାଧୁଙ୍କର ।। ୧୮
ବ୍ରହ୍ମକୁ ବଖାଣ କରନ୍ତି । କୋଡ଼ରେ ଘେନିଣ ଯୁବତୀ ।। ୧୯
ପ୍ରାକୃତ ଜନପ୍ରାଏ ହୋଇ । ସଭାରେ ଛନ୍ତି ଲଜ୍ଜା ନାହିଁ ।। ୨୦
୮ ବହୁତ ପ୍ରାକୃତ ଯେ ଜନେ । ସ୍ତିରୀକି ଘେନନ୍ତି ବିଜନେ ।। ୨୧
ଏ ପୁଣ ମହାବ୍ରତଧାରୀ । ସଭାରେ ଘେନିଛନ୍ତି ନାରୀ ।। ୨୨

ଶ୍ରୀଶୁକ ଉବାଚ

୯ ହେ ନୃପ ! ଶୁଣି ସେ ବଚନ । ଅଗାଧବୁଦ୍ଧି ଭଗବାନ ।। ୨୩
ହସି ସଭାରେ ତୁନି ହେଲେ । ଯେ ତାଙ୍କୁ ଅନୁବର୍ତ୍ତୀ ଥିଲେ ।। ୨୪

---

୧. ଦ୍ରୋଣୀ = ପର୍ବତର ପ୍ରାନ୍ତଭୂମି । ୨. ଗାନ କରାନ୍ତେ । ମୂଳପାଠ "ଗାପୟନ୍" ।

ସେ ସଭାସଦ ଲୋକମାନେ । ସମସ୍ତେ ରହିଲେ ମଉନେ ॥ ୨୫
୧୦ ଜିତ-ଇନ୍ଦ୍ରିୟ ବୋଲି ମନ । ଯେ ବହିଅଛି ଅଭିମାନ ॥ ୨୬
ଶିବବୀର୍ଯ୍ୟକୁ ସେ ନ ଜାଣି । ବହୁତ ଅସଙ୍ଗତ ବାଣୀ ॥ ୨୭
କହନ୍ତେ ପ୍ରଗଳ୍‌ଭ ହୋଇଣ । ଦେବୀ ବୋଇଲେ ରୋଷେ ପୁଣ ॥ ୨୮

ଶ୍ରୀପାର୍ବତ୍ୟୁବାଚ

୧୧ ଏବେ ଜଗତେ ଦଣ୍ଡଧର । ଶାସ୍ତା ଅଟେ କି ଏ ଈଶ୍ୱର ॥ ୨୯
ଆମ୍ଭର ପ୍ରାୟ ଲଜ୍ଜାହୀନ । ଅଛନ୍ତି ଯେତେ ଦୁଷ୍ଟଜନ ॥ ୩୦
ସେମାନଙ୍କର ଯେ ବିରୋଧ । ସେ କଥା କରଇ ଏ ସିଦ୍ଧ ॥ ୩୧
୧୨ ବିଧାତା, ବିଧାତାର ସୁତେ । ଭୃଗୁ, ନାରଦ ଆଦି ଯେତେ ॥ ୩୨
ମନୁ, କପିଳ ଯେ କୁମାର[୧] । ଏ ଧର୍ମ ନ କଲେ ଗୋଚର ॥ ୩୩
ଶିବଙ୍କୁ 'ଶାସ୍ତ୍ର ଲଂଘିଛନ୍ତି' । ଏ ରୂପେ ଯେ ନ ନିବର୍ତ୍ତାନ୍ତି ॥ ୩୪
୧୩ ଏମାନଙ୍କର ଧ୍ୟାନଯୋଗ୍ୟ । ଅଟେ ଯା' ପାଦପଦ୍ମଯୁଗ ॥ ୩୫
ଗୁରୁ ଅଟନ୍ତି ଜଗତର । ମଙ୍ଗଳ ଯେ ମଙ୍ଗଳଙ୍କର ॥ ୩୬
ତାହାଙ୍କୁ ପ୍ରଗଳ୍‌ଭ ହୋଇଣ । ପଣ୍ଡିତମାନଙ୍କୁ ନିନ୍ଦିଣ ॥ ୩୭
ଯେ ହୀନ କ୍ଷତ୍ରିୟ ନିନ୍ଦଇ । ଏ ଘେନି ଦଣ୍ଡଯୋଗ୍ୟ ଏହି ॥ ୩୮
୧୪ ଯେଉଁ ବିଷ୍ଣୁର ପାଦମୂଳ । ସେବା କରନ୍ତି ସାଧୁକୁଳ ॥ ୩୯
ତାହା କରିବାକୁ ସେବନ । ଅଯୋଗ୍ୟ ଅଟଇ ଏ ଜନ ॥ ୪୦
ମୁଁ ବଡ଼ ବୋଲି ମନେ ଧ୍ୟାୟି । ନମ୍ର ନୁହଇ କାହାକୁ ହିଁ ॥ ୪୧
୧୫ ହେ ଦୁଷ୍ଟମତି ! ତୁ ଏ ଘେନି । ପାପିଷ୍ଠ ଆସୁରୀ ଯେ ଯୋନି ॥ ୪୨
ତହିଁକି ଯାଆ ତୁ ହେ ସୁତ । ଜଗତେ ଯେତେକ ମହତ ॥ ୪୩
ଯେମନ୍ତେ ପୁଣ ଆଉ ବାର । ଦୋଷ ନ କରିବୁ ତାଙ୍କର ॥ ୪୪

ଶ୍ରୀଶୁକ ଉବାଚ

୧୬ ହେ ନୃପ ! ଏମନ୍ତ ପ୍ରକାରେ । ସେ ଶାପ ପାନ୍ତେ ନମ୍ରଶିରେ ॥ ୪୫
ସତୀଙ୍କି ବିମାନୁଁ ଓହ୍ଲାଇ । ପ୍ରସନ୍ନ କରାଇଲା ଯାଇଁ ॥ ୪୬

ଶ୍ରୀଚିତ୍ରକେତୁରୁବାଚ

୧୭ ହେ ଦେବି ! ଶାପକୁ ତୋହର । ଘେନୁଛି ଅଞ୍ଜଳିରେ ମୋର ॥ ୪୭
ମର୍ତ୍ତ୍ୟକୁ ଯା' ବୋଲନ୍ତି ସୁର । ପୂର୍ବ ଅଦୃଷ୍ଟ ସେ ତାହାର ॥ ୪୮
୧୮ ଜନ୍ତୁ ଏ ସଂସାରଚକ୍ରରେ । ମୋହିତ ହୋଇ ଅଜ୍ଞାନରେ ॥ ୪୯
ଭ୍ରମନ୍ତେ ଭୁଞ୍ଜେ ସବୁଠାରେ । ସୁଖଦୁଃଖ ସର୍ବକାଳରେ ॥ ୫୦
୧୯ ସୁଖଦୁଃଖର କର୍ତ୍ତା ହୋଇ । ଆତ୍ମା ହିଁ ନୋହେ ପର ନୋହି ॥ ୫୧

---

୧. କୁମାର—ସନତ୍‌କୁମାର ।

ଯେ ଅଜ୍ଞ କର୍ତ୍ତା କରି ସେହି । ଆତ୍ମାକୁ ପରକୁ ମଣଇଁ ।। ୫୨
୨୦ ଏ ସଂସାରରେ ଶାପ କେହି । କେ ଅନୁଗ୍ରହ ଅବା ହୋଇ ।। ୫୩
କେ ସ୍ୱର୍ଗ କେ ଅବା ନରକ । କେ ସୁଖ କେ ଅଟଇ ଦୁଃଖ ।। ୫୪
୨୧ ନିଜ ମାୟାରେ ଭଗବାନ । ପ୍ରାଣୀଙ୍କି କରଇ ସର୍ଜନ ।। ୫୫
ଏହାଙ୍କ ବନ୍ଧମୋକ୍ଷ ସୁଖ । ଦୁଃଖକୁ ସର୍ଜେ ହୋଇ ଏକ ।। ୫୬
ଏ ବନ୍ଧମୋକ୍ଷ ଆଦି ଯେହି । ତାହାଙ୍କ ଠାରେ ପୁଣ ନାହିଁ ।। ୫୭
୨୨ ଜ୍ଞାତି ବାନ୍ଧବ ନିଜ ପର । ପ୍ରିୟ ଅପ୍ରିୟ ନାହିଁ ତାର ।। ୫୮
ସକଳ ଠାରେ ଯେ ସମାନ । ବିଶେଷେ ଅଟେ ନିରଞ୍ଜନ ।। ୫୯
ତାହାର ରାଗ[୧] କାହୁଁ ହେବ । ରୋଷ କାହିଁରୁ ସଂଭବିବ ।। ୬୦
୨୩ ଏ ପ୍ରାଣୀଙ୍କର ସୁଖଦୁଃଖ । ହିତ ଅହିତ ବନ୍ଧମୋକ୍ଷ ।। ୬୧
ଜନମ ମରଣ ସଂସାର । ନିମିତ୍ତେ ତଥାପି ଈଶ୍ୱର ।। ୬୨
ତାହାର ମାୟାସର୍ଗ ପୁଣ । ଯେ ପୁଣ୍ୟପାପାଦିଲକ୍ଷଣ ।। ୬୩
ସେ କର୍ମ କରିବାର ପାଇଁ । ଆପଣେ ସମର୍ଥ ହୁଅଇ ।। ୬୪
୨୪ ହେ କ୍ରୋଧବତି ! ସତି ! ମୁହିଁ । ତୋତେ ସଂତୋଷ ହେବା ପାଇଁ ।। ୬୫
କେବଳ କରୁଛି ଯତନ । ଶାପମୋକ୍ଷରେ ନାହିଁ ମନ ।। ୬୬
ଅସାଧୁ ବଚନକୁ ମୋର । କେବଳମାତ୍ର କ୍ଷମା କର ।। ୬୭

ଶ୍ରୀଶୁକ ଉବାଚ

୨୫ ହେ ନୃପ ! ଏମନ୍ତ ପ୍ରକାରେ । ଉମାଶଙ୍କରଙ୍କୁ ସେଠାରେ ।। ୬୮
ପ୍ରସନ୍ନ କରାଇ ଗଗନେ । ଗଲା ଚିତ୍ରକେତୁ ବିମାନେ ।। ୬୯
ବିସ୍ମୟ ହୋଇ ବିଲୋକନ । କରନ୍ତେ ସେହୁ ବେନି ଜନ ।। ୭୦
୨୬ ତଦନନ୍ତରେ ଭଗବାନ । ଶଙ୍କର ଏମନ୍ତ ବଚନ ।। ୭୧
କହିଲେ ଉମାଙ୍କୁ ଶୁଣନ୍ତେ । ଦେବର୍ଷି ଦୈତ୍ୟ ସିଦ୍ଧ ଭୃତ୍ୟେ ।। ୭୨

ଶ୍ରୀରୁଦ୍ର ଉବାଚ

୨୭ ଅଦ୍ଭୁତକର୍ମା ଭଗବାନ । ଯେ ତାଙ୍କ ଭୃତ୍ୟଭୃତ୍ୟଜନ ।। ୭୩
ସେମାନଙ୍କର ସ୍ପୃହା ନାହିଁ । ମହାତ୍ମା ଅଟନ୍ତି ଗୋ ସେହି ।। ୭୪
ତାହାଙ୍କ ମାହାତ୍ମ୍ୟକୁ ପୁଣି । ଦେଖିଲୁଟିକି ଗୋ ସୁଶ୍ରୋଣି ।। ୭୫
୨୮ ଯେ ସର୍ବେ ନାରାୟଣପର । କାହିଁରୁ ନାହିଁ ତାଙ୍କ ଡର ।। ୭୬
ଯେ ସ୍ୱର୍ଗେ ନରକରେ ମୋକ୍ଷେ । ଅର୍ଥ ଦେଖନ୍ତି ସମକକ୍ଷେ ।। ୭୭
୨୯ ବିଷ୍ଣୁଲୀଳାରେ ପ୍ରାଣୀଙ୍କର । ସଂଯୋଗୁଁ ହୋଏ ଶରୀରର ।। ୭୮
ଯେ ସୁଖଦୁଃଖ ଜନ୍ମମୃତି । ଶାପ ଅନୁଗ୍ରହ ଏ ରୀତି ।। ୭୯
ଏ ଆଦି ଯେତେ ଦ୍ୱନ୍ଦ୍ୱମାନ । ଏ ସବୁ ହୁଅନ୍ତି ଉତ୍ପନ୍ନ ।। ୮୦

---
୧. ରାଗ = ଆସକ୍ତି ।

୩୦ ଏଥିରେ ଗୁଣଦୋଷ ହୋଇ । ଯେବଣ ଭେଦ ଉପୁଜଇ ।।
ସେ ସ୍ୱପ୍ନେ ଅବିବେକକୃତ । ଆତ୍ମାରେ ଅର୍ଥଭେଦ ମତ ।।
ମାଳାରେ ଯେହ୍ନେ ସର୍ପମତି । ଲୋକର ହୋଏ ଉତପତି ।।
୩୧ ଯେ ବାସୁଦେବେ ଭକ୍ତିଯୁତ । ଜ୍ଞାନ ବୈରାଗ୍ୟେ ବୀର୍ଯ୍ୟବନ୍ତ ।।
ତାହାଙ୍କର ଆଶ୍ରୟ ହୋଇ । ନାହିଁ ଏ ସଂସାରରେ କେହି ।।
୩୨ ମୁଁ, ବ୍ରହ୍ମା, ନାରଦ, କୁମାର । ଯେ ପୁତ୍ରମାନେ ବ୍ରହ୍ମାଙ୍କର ।।
ଯେ ମୁନି, ସୁରେଶ୍ୱରମାନେ । ଯା' ଅଂଶ-ଅଂଶ ଏ ଭୁବନେ ।।
ଜଣ ଜଣକେ ଭିନ୍ନ ଭିନ୍ନ । ଈଶ୍ୱର ହୋଇ ଅଭିମାନ ।।
ବହିଣ ଅଛୁଁ ଅବିରତ । ନ ଜାଣୁଁ ତା' ରୂପ ଚରିତ ।।
୩୩ ସମସ୍ତ ଭୂତମାନଙ୍କର । ଆତ୍ମଭାବରୁ ଈଶ୍ୱରର ।।
ପ୍ରିୟ ଅପ୍ରିୟ ନିଜ ପର । ଏ ରୂପେ କେହି ନାହିଁ ନର ।।
ଏଣୁ ସମସ୍ତ ଭୂତଙ୍କର । ପ୍ରିୟ ଅଟନ୍ତି ଚକ୍ରଧର ।।
୩୪ ଏ ଚିତ୍ରକେତୁ ମହାଭାଗ । ତାଙ୍କର ବଲ୍ଲଭ ଅନୁଗ ।।
ସକଳେ ସମଦୃଷ୍ଟି ଶାନ୍ତ । ମୁହିଁ ଅଚ୍ୟୁତପ୍ରିୟ ଖ୍ୟାତ ।।
୩୫ ମହାତ୍ମା ବିଷ୍ଣୁର ଭଗତ । ସମଦରଶୀ ଯେହ୍ନୁ ଶାନ୍ତ ।।
ସେ ଘେନି ସେମାନଙ୍କ ଠାରେ । ବିସ୍ମୟ ନ କର ସଂସାରେ ।।

ଶ୍ରୀଶୁକ ଉବାଚ

୩୬ ଯେ ଭଗବାନ ମହେଶ୍ୱର । ଏରୂପେ ବଚନ ତାଙ୍କର ।।
ଶୁଣି ଶାନ୍ତଧୀ ଉମା ହେଲେ । ଦେବୀ ବିସ୍ମୟକୁ ଛାଡ଼ିଲେ ।।
୩୭ ଦେବୀଙ୍କି ପ୍ରତିଶାପ ଯେହି । ଦେବାକୁ ସମର୍ଥ ଅଟଇ ।।
ସେ ଚିତ୍ରକେତୁ ଏ ପ୍ରକାରେ । ଶାପକୁ ଘେନିଲା ମୂର୍ଦ୍ଧାରେ ।।
ସାଧୁ ଲୋକଙ୍କର ଲକ୍ଷଣ । ଏତେମାତ୍ରକ ଅଟେ ପୁଣ ।।
୩୮ ତ୍ୱଷ୍ଟାର ଦକ୍ଷିଣ ଅଗ୍ନିରେ । ଜନ୍ମିଲା ଅସୁରଯୋନିରେ ।।
ବୃତ୍ର ହୋଇଣ ଯେ ବିଖ୍ୟାତ । ଜ୍ଞାନବିଜ୍ଞାନରେ ସଂଯୁତ ।।
୩୯ ପଚାରୁଅଛୁ ଯାହା ମୋତେ । ଏ ସର୍ବ କହିଲି ମୁଁ ତୋତେ ।।
ବିଷ୍ଣୁର ଠାରେ ମତି ଯାର । ଏମନ୍ତ ଯେ ବୃତ୍ର ଅସୁର ।।
ଅସୁରଜାତିକି କାରଣ । ଅଟେ ତା ଯେଉଁ କଥା ପୁଣ ।।
୪୦ ମହାତ୍ମା ଚିତ୍ରକେତୁ ଯେହି । ତା' ଇତିହାସ ପୁଣ୍ୟ ଏହି ।।
ବିଷ୍ଣୁଭଗତଙ୍କ ଚରିତ । ଶୁଣିଲେ ବନ୍ଧୁଁ ହୋଏ ମୁକ୍ତ ।।
୪୧ ପ୍ରାତଃକାଳରେ ଉଠି ଯେହି । ଶ୍ରଦ୍ଧାରେ ଯତବାକ୍ୟ ହୋଇ ।।
ସ୍ମରଣ କରିଣ ବିଷ୍ଣୁଙ୍କୁ । ପଢ଼ଇ ଏ ଇତିହାସକୁ ।।
ଉତ୍ତମ ଅଟଇ ଯେ ଗତି । ତାହା ସେ ଲଭଇ ଝଟିତି ।।

| | | | | |
|---|---|---|---|---|
| | ଗୋବିନ୍ଦପାଦପଦ୍ମେ ଚିତ୍ତ | ନିବେଶି ଷଷ୍ଠସ୍କନ୍ଧଗୀତ | ।। | ୧୧୨ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | ସଂତୋଷ ସାଧୁଜନେ ତେଣେ | ।। | ୧୧୩ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀଚିତ୍ରକେତୁଶାପୋ
ନାମ ସପ୍ତଦଶୋଽଧ୍ୟାୟଃ ।

## ଅଷ୍ଟାଦଶ ଅଧ୍ୟାୟ

ଆଦିତ୍ୟାନାଂ ଚତୁର୍ଥସ୍ୟ ତ୍ୱଷ୍ଟୁର୍ବଂଶପ୍ରସଙ୍ଗତଃ ।
ପ୍ରୋକ୍ତମିନ୍ଦ୍ରକୃତଂ ବିଶ୍ୱରୂପବୃତ୍ରବଧାଦିକମ୍ ।। ୧
ଅଦିତେଃ ପଞ୍ଚମାଦୀନାଂ ପୁତ୍ରାଣାମନ୍ୱୟୋକ୍ତିଭିଃ ।
ଅଷ୍ଟାଦଶେ ଦିତେର୍ଗର୍ଭେ ଶକ୍ରେଣ ମରୁତାଂ ଭିଦା ।। ୨
ତ୍ୱଷ୍ଟୁର୍ବଂଶମନୁକ୍ରମ୍ୟ ସପ୍ରସଙ୍ଗଂ ଯଥାକ୍ରମଂ ।
[୧]ଆଦିତ୍ୟାନାମଥାନ୍ୟେଷାଂ ବଂଶାନାହ ମୁନୀଶ୍ୱରଃ ।। ୩

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ସବିତାପତ୍ନୀ ପୃଶ୍ନି ନାମ | କଲା ସାବିତ୍ରୀକି ଜନମ | ।। | ୧ |
| | ସେ ପୁଣି ବ୍ୟାହୃତି[୨], ତ୍ରୟୀକୁ | ଅଗ୍ନିହୋତ୍ର, ପଶୁଯାଗକୁ | ।। | ୨ |
| | କ୍ରମରେ ଚାତୁର୍ମାସ୍ୟ, ସୋମ | ପଞ୍ଚଯଜ୍ଞକୁ କଲା ଜନ୍ମ | ।। | ୩ |
| ୨ | ହେ ନୃପ ! ଭଗଭାର୍ଯ୍ୟା ଯେହି | ସିଦ୍ଧିନାମରେ ଖ୍ୟାତ ସେହି | ।। | ୪ |
| | ମହିମା, ବିଭୁ, ପ୍ରଭୁ ନାମ | କଲା ତିନି ପୁତ୍ର ଜନମ | ।। | ୫ |
| | ସୁନ୍ଦରୀ କନ୍ୟା କଲା ଜାତ | ଆଶିଷ ନାମରେ ସେ ଖ୍ୟାତ | ।। | ୬ |
| ୩ | ଧାତାର ଭାର୍ଯ୍ୟା କୁହୂ ନାମ | ସାୟଂ ପୁତ୍ରକୁ କଲା ଜନ୍ମ | ।। | ୭ |
| | ଯେ ସିନୀବାଲୀ, ରାକା ହୋଇ | ପୁଣ ତାହାର ଭାର୍ଯ୍ୟା ଦୁଇ | ।। | ୮ |
| | ଦର୍ଶ, ପ୍ରାତକୁ କଲେ ଜାତ | ଯେ ଅନୁମତିନାମେ ଖ୍ୟାତ | ।। | ୯ |
| | ସେ ଏକ ପୁତ୍ର ଜାତ କଲା | ତା' ନାମ ପୂର୍ଣ୍ଣମାସ ହେଲା | ।। | ୧୦ |
| ୪ | କ୍ରିୟାନାମରେ ଯେ ଗୃହିଣୀ | ବିଧାତା ତାହାଠାରେ ପୁଣି | ।। | ୧୧ |
| | ଅଗ୍ନିମାନଙ୍କୁ କଲା ଜାତ | ପୁରୀଷ୍ୟ[୩] ନାମରେ ଯେ ଖ୍ୟାତ | ।। | ୧୨ |
| | ଚର୍ଷଣୀ ବରୁଣଗୃହିଣୀ | ଯା'ଠାରେ ଭୃଗୁ ଜାତ ପୁଣି | ।। | ୧୩ |

୧. ଆଦିତ୍ୟ = "ବିବସ୍ୱାନର୍ଯ୍ୟମା ପୂଷା ତ୍ୱଷ୍ଟାଥ ସବିତା ଭଗଃ ।
ଧାତା ବିଧାତା ବରୁଣୋ ମିତ୍ରଃ ଶକ୍ର ଉରୁକ୍ରମଃ ।।"

୨. ବ୍ୟାହୃତି = ଭୂଃ, ଭୁବଃ, ସ୍ୱଃ ମହଃ ଜନଃ ତପଃ ସତ୍ୟମ୍ ।

୩. "ପୁରୀଷ୍ୟାସୋ ଅଗ୍ନୟ ଇତି ପଞ୍ଚଧା ଏତେ ଅଗ୍ନୟୋ ଯଚ୍ଛିତୟଃ" (ଶ୍ରୁତିଃ) ।

୫ ବାଲ୍ମୀକି ମହାଯୋଗୀ ଯେହି । ବଲ୍ମୀକୁଁ ଜାତ ହେଲେ ସେହି ।।
ମିତ୍ର ବରୁଣ ଦୁହିଁଙ୍କର । ଅଗସ୍ତ୍ୟ, ବଶିଷ୍ଠ କୁମର ।।
୬ [1]ଗଳିତ ରେତକୁ କୁମ୍ଭରେ । ସିଞ୍ଚିଲେ ଉର୍ବଶୀପାଶରେ ।।
ରେବତୀଠାରେ ମିତ୍ର ଜାତ । କଲା କ୍ରମରେ ତିନି ସୁତ ।।
ଉତ୍ସର୍ଗ, ଅରିଷ୍ଟ ସେ ଦୁଇ । ତୃତୀୟ ପିପ୍ପଳ ବୋଲାଇ ।।
୭ ପୌଲୋମୀଠାରେ ପୁରୁହୂତ । ଜନମ କଲା ତିନି ସୁତ ।।
ହେ ତାତ ! ଶୁଣିଛୁଁ ଏମନ୍ତ । ପ୍ରଥମ ତନୟ ଜୟନ୍ତ ।।
ଋଷଭନାମରେ ଇତର । ମୀଢୁଷ ତୃତୀୟ କୁମର ।।
୮ ଯେ ଉରୁକ୍ରମ ଦେବ ହରି । ମାୟାବାମନ ରୂପଧାରୀ ।।
ତାହାଙ୍କ ପତ୍ନୀ କୀର୍ତ୍ତି ଯେହି । ତାଠାରେ ବୃହଦ୍‌ଶ୍ଳୋକ ହୋଇ ।।
ସୌଭଗ ଆଦି ଯେ କୁମର । ହୋଇଲେ ସେ ବୃହଦ୍‌ଶ୍ଳୋକର ।।
୯ ମହାତ୍ମା ସେ କଶ୍ୟପସୁତ । ତାଙ୍କର ଯେ ଗୁଣ ଚରିତ ।।
ସେ କଥା କହିବା ପଛରେ । ସେ ବିଭୁ ଅଦିତିଙ୍କ ଠାରେ ।।
ଯେମନ୍ତ ରୂପେ ଅବତାର । ହୋଇଲେ ଜଗତ-ଈଶ୍ୱର ।।
୧୦ କଶ୍ୟପସୁତ ଦୈତ୍ୟ ଯେତେ । ତାଙ୍କୁ କହିବା ଏବେ ତୋତେ ।।
ଶ୍ରୀମନ୍ତ ପ୍ରହରାଦ ଯହିଁ । ବଳି ହିଁ ଅଛି ଜନ୍ମ ହୋଇ ।।
୧୧ ଦୈତ୍ୟଦାନବରେ ପୂଜିତ । ଦିତିର ହେଲେ ବେନି ସୁତ ।।
ହିରଣ୍ୟକଶିପୁ ପ୍ରଥମ । ଦ୍ୱିତୀୟ ହିରଣ୍ୟାକ୍ଷ ନାମ ।।
୧୨ କୟାଧୁ ନାମରେ ବିଦିତା । ହିରଣ୍ୟକଶିପୁ ବନିତା ।।
ସେ ସୁଭ୍ରୁ ଜମ୍ଭର କୁମାରୀ । ଜନମ କଲା ସୁତ ଚାରି ।।
୧୩ ସଂହ୍ରାଦ, ଅନୁହ୍ରାଦ ହୋଇ । ପ୍ରହ୍ରାଦ, ହ୍ରାଦ ଚାରି ଭାଇ ।।
ସିଂହିକାନାମରେ କାମିନୀ । ସେ ଭ୍ରାତାମାନଙ୍କ ଭଗିନୀ ।।
ବିପ୍ରଚିତ୍ତିର ଠାରୁ ଜନ୍ମ । କଲା ସେ ସୁତ ରାହୁନାମ ।।
୧୪ ଅମୃତ ପିବନ୍ତେ ଯାହାର । ଚକ୍ରେ ଛେଦିଲେ ହରି ଶିର ।।
ଆକୃତି ସଂହ୍ରାଦଗୃହିଣୀ । ତହିଁରୁ ପଞ୍ଚଜନ ପୁଣି ।।
୧୫ ଧମନୀ ହ୍ରାଦଭାର୍ଯ୍ୟାନାମ । ସେ ବେନି ସୁତ କଲା ଜନ୍ମ ।।
ବାତାପି ଇଲ୍ୱଳ ସେ ଦୁଇ । ଯେଉଁ ଇଲ୍ୱଳ ବିପ୍ର ହୋଇ ।।
ଯେ ମେଷରୂପ ହୋଇଥିଲା । ସେ ବାତାପିକି ପାକ କଲା ।।
ଅତିଥି ଯେ ଅଗସ୍ତ୍ୟ ଋଷି । ତାଙ୍କୁ ଭୋଜନ ଦେଲା ଆସି ।।
୧୬ ଅନୁହ୍ରାଦର ସୂର୍ମ୍ୟା[2] ଠାଇଁ । ବାଷ୍କଳ, ମହିଷ ଯେ ଦୁଇ ।।

---

୧. "ସତ୍ରେ ହ ଜାତାବିଷିତା ନାମଭିଃ ।
କୁମ୍ଭେ ରେତଃ ସିଷିଚତୁଃ ସମାନମ୍ ।।" (ଶ୍ରୁତିଃ) ।

୨. ସୂର୍ଯ୍ୟା ।

| | | | | | |
|---|---|---|---|---|---|
| | ପ୍ରହ୍ଲାଦସୁତ ବିରୋଚନ | । ତାର ଦେବୀରେ[1] ବଳି ଜନ୍ମ | ।। | ୪୪ |
| ୧୭ | ବଳିର ଅଶନାରେ[2] ଜାତ | । ବାଣପ୍ରଥମ ସୁତଶତ | ।। | ୪୫ |
| | ଗୁଣକୀର୍ତ୍ତିରେ ଯୁତ ହୋଇ | । ତାହାର ଅନୁଭାବ ଯେହି | ।। | ୪୬ |
| | ସେ କଥା ପୁଣ ପ୍ରସଙ୍ଗରେ | । ବିଖ୍ୟାତ କରିବା ପଛରେ | ।। | ୪୭ |
| ୧୮ | ଶିବଙ୍କୁ କରି ଆରାଧନ | । ତାହାଙ୍କ ଗଣରେ ପ୍ରଧାନ | ।। | ୪୮ |
| | ହୋଇ ରହିଲା ବାଣାସୁର | । ଯାହାର ପାଶେ ମହେଶ୍ୱର | ।। | ୪୯ |
| | ଆଜ ହିଁ ପୁରପାଳ ହୋଇ | । ରହି ଅଛନ୍ତି ଦୟା ବହି | ।। | ୫୦ |
| ୧୯ | ମରୁତ ନାମେ ହେଲେ ଜାତ | । ଯେ ଅଣଞ୍ଚାଶ ଦିତିସୁତ | ।। | ୫୧ |
| | ସେ ସର୍ବେ ଅପୁତ୍ର ହୋଇଲେ | । ତାଙ୍କୁ ଦେବତା ଇନ୍ଦ୍ର କଲେ | ।। | ୫୨ |

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୨୦ | ହେ ଗୁରୁ ! ସହଜ ଅଟଇ | । ନିଜ ଆସୁର ଭାବ ଯେହି | ।। | ୫୩ |
| | ତା' ଛାଡ଼ି ସମାନ ଭାବକୁ | । ଇନ୍ଦ୍ର କିଂପାଇଁ ନେଲେ ତାଙ୍କୁ | ।। | ୫୪ |
| | କେବଣ ପୁଣ୍ୟ ଆଚରଣ | । କଲେ ସେମାନେ ଅବା ପୁଣ | ।। | ୫୫ |
| ୨୧ | ହେ ବିପ୍ର ! ଆହେ ଭଗବନ୍ତ | । ଜାଣିମାଅର୍ଥେ ସେ ଚରିତ | ।। | ୫୬ |
| | ଏ ଋଷିମାନେ ମୋ ସହିତେ | । କରି ଅଛନ୍ତି ଶ୍ରଦ୍ଧା ଚିତ୍ତେ | ।। | ୫୭ |
| | ତାହା କରିବାକୁ ବଖାଣ | । ଆମ୍ଭଙ୍କୁ ଯୋଗ୍ୟ ହୁଅ ପୁଣ | ।। | ୫୮ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୨୨ | ସାଦର ଅଳ୍ପବର୍ଣ୍ଣଯୁତ | । ବହୁତ ଅର୍ଥରେ ପୂରିତ | ।। | ୫୯ |
| | ଏମନ୍ତ ବିଷ୍ଣୁରାତବାଣୀ | । ସର୍ବଦରଶୀ ଶୁକ ଶୁଣି | ।। | ୬୦ |
| | ହେ ଶଉନକ ! ପୂର୍ଣ୍ଣ ଚିତ୍ତେ | । କହିଲେ ତାଙ୍କୁ ପ୍ରଶଂସନ୍ତେ | ।।- | ୬୧ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୩ | ପୃଷ୍ଠସହାୟ ଇନ୍ଦ୍ର ଯାର | । ଦିତିପୁତ୍ରଙ୍କୁ ସେ ଶ୍ରୀଧର | ।। | ୬୨ |
| | ହତ କରନ୍ତେ ତଦନ୍ତରେ | । ଶୋକପ୍ରଦୀପିତ କ୍ରୋଧରେ | ।। | ୬୩ |
| | ଜ୍ୱଳିଲା ପ୍ରାୟ ହୋଇ ଦିତି | । ମନରେ ଚିନ୍ତିଲା ଏ ରୀତି | ।। | ୬୪ |
| ୨୪ | ଇନ୍ଦ୍ରିୟସୁଖେ ଯେ ଲାଳସ | । ଭାଇଙ୍କି କରାଇଲା ନାଶ | ।। | ୬୫ |
| | କଠିନଚିତ୍ତ, ପାପ, କ୍ରୂର | । ଏମନ୍ତ ଯେଉଁ ପୁରନ୍ଦର | ।। | ୬୬ |
| | ତାହାକୁ ବିନାଶ କରାଇ | । କେବେ ଶୋଇବି ସୁଖୀ ହୋଇ | ।। | ୬୭ |
| ୨୫ | ପୂର୍ବେ ଯେ ବୋଲାଇ ଈଶ୍ୱର | । ସେ ସର୍ବ ରାଜାଙ୍କ ଦେହର | ।। | ୬୮ |
| | କାଳରେ କୃମି, ଭସ୍ମ, ବିଷ୍ଠା | । ଏରୂପେ ହୋଏ ନାମନିଷ୍ଠା | ।। | ୬୯ |
| | ପ୍ରାଣୀଙ୍କ ଦ୍ରୋହ ତା' ଅର୍ଥରେ | । କରଇ ଯେହୁ ଏ ସଂସାରେ | ।। | ୭୦ |

୧. ଦର୍ବୀ ।  ୨. ଉଶନା ।

ସେ ଲୋକ ଆପଣାର ହିତ । ଜାଣଇଁ ନିକି ନିଜଚିତ୍ତ ॥ ୭୧
ଯେଣୁ କରିଣ ଭୂତଦ୍ରୋହେ । ନରକ ହୋଏ ନିଃସନ୍ଦେହେ ॥ ୭୨
୨୬ ଏ ଦେହ ଆଦି ମଣି ନିତ୍ୟ । ଉଭଟ ହୋଇଛି ଯା' ଚିତ୍ତ ॥ ୭୩
ଗର୍ବନାଶକ ସେ ଇନ୍ଦ୍ରର । ଯେମନ୍ତେ ହେବ ମୋ କୁମର ॥ ୭୪
ତେମନ୍ତ ପ୍ରକାରେ ଯତନ । କରିବି ବୋଲି କଲା ମନ ॥ ୭୫
୨୭ ଏ ଭାବରେ ସେ ପୁଣ ପୁଣ । ଭର୍ତ୍ତାର ପ୍ରିୟ ଆଚରଣ ॥ ୭୬
କଲା ସେବାରେ ବିନୟରେ । ଦମରେ ସେ ଅନୁରାଗରେ ॥ ୭୭
୨୮ ହେ ନୃପ ! ପରମ ଭକ୍ତିରେ । ମନୋଜ୍ଞ, ବଲ୍‌ଗୁ ବଚନରେ ॥ ୭୮
ସୁସ୍ମିତ ଅପାଙ୍ଗବୀକ୍ଷଣେ । ମନକୁ ହରିଲା ତକ୍ଷଣେ ॥ ୭୯
ନିଜ ଭର୍ତ୍ତାର ଭାବ ଯେହି । ସେ କଥା ଜାଣିଅଛି ସେହି ॥ ୮୦
୨୯ ବିଦଗ୍ଧ ଅଟଇ ଯେ ନାରୀ । ଏରୂପେ ତା' ଚେଷ୍ଟାରେ କରି ॥ ୮୧
ସେ ମୁନି ହେଲେହେଁ ପଣ୍ଡିତ । ହେଲେ ବିବଶ ଜଡ଼ୀଭୂତ ॥ ୮୨
ପୂରିବ ମନୋରଥ ତୋର । ବୋଇଲେ ଏ ଯେଉଁ ଉତ୍ତର ॥ ୮୩
ସେ କଥା ନାରୀଜନଠାରେ । ବିଚିତ୍ର ନୋହେ ଜଗତରେ ॥ ୮୪
୩୦ ସୃଷ୍ଟିଆଦ୍ୟରେ ପଦ୍ମାସନ । ଦେଖି ଅସଙ୍ଗ ପ୍ରଜାମାନ ॥ ୮୫
ମୈଥୁନସୃଷ୍ଟିରେ ଜଗତ । ବୃଦ୍ଧିନିମିତ୍ତେ କରି ଚିତ୍ତ ॥ ୮୬
ସ୍ୱଦେହୁଁ ଅର୍ଦ୍ଧେ ନାରୀ କଲା । ଜନଙ୍କ ମତି ଯେ ହରିଲା ॥ ୮୭
୩୧ ହେ ତାତ ! ଏମନ୍ତ ପ୍ରକାରେ । ସ୍ତିରୀ ସେବନ୍ତେ ତଦନ୍ତରେ ॥ ୮୮
କଶ୍ୟପ ଭଗବନ୍ତ ହସି । ଦିତିକି ବହୁତ ପ୍ରଶଂସି ॥ ୮୯
ପରମ ସଂତୋଷ ହୋଇଲେ । ଏମନ୍ତ ବଚନ ବୋଇଲେ ॥ ୯୦

ଶ୍ରୀକଶ୍ୟପ ଉବାଚ

୩୨ ହେ ଚାରୁଊରୁ ! ଅନିନ୍ଦିତେ । ସଂତୋଷ ହୋଇଲି ମୁଁ ତୋତେ ॥ ୯୧
ଯେ ତୋର ଇଚ୍ଛା ମାଗ ବର । ଭର୍ତ୍ତା ସୁପ୍ରୀତ ଯାହାଙ୍କର ॥ ୯୨
ସେ ସ୍ତିରୀଙ୍କର କେଉଁ କାମ । ଇହ ପରଲୋକେ ଅଗମ୍ୟ ॥ ୯୩
୩୩ ପତି ନିଶ୍ଚୟେ ନାରୀଙ୍କର । ବିଖ୍ୟାତ ପରମ ଅମର ॥ ୯୪
ସର୍ବଭୂତଙ୍କ ମନେ ସ୍ଥିତି । ଯେ ବାସୁଦେବ ଲକ୍ଷ୍ମୀପତି ॥ ୯୫
୩୪ ତାହାଙ୍କୁ ଇନ୍ଦ୍ରାଦି ନାମରେ । ବଜ୍ରହସ୍ତାଦି ସ୍ୱରୂପରେ ॥ ୯୬
ବିବିଧଭେଦେ ଦେବଲିଙ୍ଗେ । ନିଶ୍ଚେ ପୂଜନ୍ତି ଲୋକେ ଯାଗେ ॥ ୯୭
୩୫ ହେ ସୁମଧ୍ୟମା ! ତେଣୁ କରି । ଯେତେକ ପତିବ୍ରତା ନାରୀ ॥ ୯୮
ମଙ୍ଗଳ କାମନା କରନ୍ତି । ନିଜ ଈଶ୍ୱର ଯେଉଁ ପତି ॥ ୯୯
ତାହାଙ୍କୁ ଅନନ୍ୟଭାବରେ । ପୂଜା କରନ୍ତି ଜଗତରେ ॥ ୧୦୦
୩୬ ହେ ଭଦ୍ରେ ! ଏମନ୍ତ ଭାବରେ । ଯାକୁ ପୂଜିଲୁ ତୁ ଭକ୍ତିରେ ॥ ୧୦୧

ସେ ମୁଁ ତୋର ସେ ମନୋରଥ । ସଂପାଦିବଇଁ ଏ ନିୟତ ।। ୧୦୨
ଅସତୀ ନାରୀଙ୍କ ଦୁର୍ଲଭ । ଯେବଣ ମନୋରଥ ହେବ ।। ୧୦୩

ଶ୍ରୀଦିତିରୁବାଚ

୩୭ ହେ ବିପ୍ର ! ମୋତେ ବର ଯେବେ । ଦେବ ମୁଁ ବରୁଅଛି ତେବେ ।। ୧୦୪
ସ୍ୱୟେଂ ଅମୃତ୍ୟୁ ହୋଇଥିବ । ଇନ୍ଦ୍ରକୁ ବଧ ଯେ କରିବ ।। ୧୦୫
ଏମନ୍ତ ସୁତ ମୁଁ ମାଗୁଛି । ମୁଁ ହତପୁତ୍ର ହୋଇଅଛି ।। ୧୦୬
ଯେ ଇନ୍ଦ୍ର ବିଷ୍ଣୁରେ ନିହତ । କରାଇଲା ମୋ ବେନି ସୁତ ।। ୧୦୭
୩୮ ଦିତିର ଶୁଣି ସେ ବଚନ । ବ୍ରାହ୍ମଣ ହୋଇଲେ ବିମନ ।। ୧୦୮
ଅତ୍ୟନ୍ତ ତାପକୁ ଲଭିଲେ । ଏମନ୍ତ ମନେ ବିଚାରିଲେ ।। ୧୦୯
ମୋହର ଅଧର୍ମ ମହତ । ଆଜ ହୋଇଲା ଉପସ୍ଥିତ ।। ୧୧୦
୩୯ ଇନ୍ଦ୍ରିୟାରାମ ମୁଁ ଅଟଇ । କାମିନୀରୂପ ମାୟା ଯେହି ।। ୧୧୧
ଆଜ ମୋ' ମନକୁ ଗ୍ରହଣ । କଲା ସେ ଏଣୁ ମୁଁ କୃପଣ ।। ୧୧୨
ଅହୋ ଅବଶ୍ୟ ନରକରେ । ପଡ଼ିବି ଏ ଦେହଅନ୍ତରେ ।। ୧୧୩
୪୦ ଯେ ସ୍ୱଭାବକୁ ଅନୁବର୍ତ୍ତୀ । ଅଛି ଏ ସଂସାରେ ଯୁବତୀ ।। ୧୧୪
ତାହାର କେଉଁ ଅପରାଧ । ନିଜ କାର୍ଯ୍ୟରେ ମୁଁ ଅବୁଧ ।। ୧୧୫
ସେ ଘେନି ମୋତେ ଧିକ ହେଉ । ଇନ୍ଦ୍ରିୟପାଳକ[୧] ମୁଁ ଯହୁଁ[୨] ।। ୧୧୬
୪୧ ଶରଦକାଳପଦ୍ମପ୍ରାଏ । ମୁଖ ବିକାଶ ହୋଇଥାଏ ।। ୧୧୭
ବଚନ କର୍ଣ୍ଣକୁ ଅମୃତ । କ୍ଷୁରଧାରାର ପ୍ରାୟେ ଚିତ୍ତ ।। ୧୧୮
ଚେଷ୍ଟାକୁ ନାରୀମାନଙ୍କର । ଜାଣି ପାରିବ କେଉଁ ନର ।। ୧୧୯
୪୨ ଯେ ନିଜ ଅର୍ଥକାମନାଏ । ପ୍ରିୟ ଦିଶନ୍ତି ଆତ୍ମପ୍ରାଏ ।। ୧୨୦
ସେ ସ୍ତିରୀଙ୍କର ପ୍ରିୟ ହୋଇ । ସଂସାରମଧ୍ୟେ କେହି ନାହିଁ ।। ୧୨୧
ଯେ ପତି, ପୁତ୍ର ଅବା ଭାଇ । ମାରନ୍ତି ନିଜ କାର୍ଯ୍ୟପାଇଁ ।। ୧୨୨
ଅଥବା ଇତର ଜନର । ହସ୍ତରେ କରନ୍ତି ସଂହାର ।। ୧୨୩
୪୩ ତୋର ବାଞ୍ଛିତ ଦେବି ବୋଲି । ଯେବଣ ପ୍ରତିଜ୍ଞା ମୁଁ କଲି ।। ୧୨୪
ସେ ବାଣୀ ଅନୃତ ନୋହିବ । ବଧକୁ ଅଯୋଗ୍ୟ ବାସବ ।। ୧୨୫
ଏମନ୍ତ ହୋଇ ଯେ ବିଷୟ । ତହିଁକି କଳ୍ପିବା ଉପାୟ ।। ୧୨୬
କହିବା ବଇଷ୍ଣବ ବ୍ରତ । ତେଣେ ଏ ହେବ ଶୁଦ୍ଧଚିତ୍ତ ।। ୧୨୭
କ୍ରୋଧ ତୁଟିବ ଇନ୍ଦ୍ରଠାର । ପୁତ୍ର ହିଁ ହୋଇବ ଅମର ।। ୧୨୮
ବ୍ରତର ଦୀର୍ଘକାଳଭାବେ । ବିଗୁଣ ହେବ କିଛି ଯେବେ ।। ୧୨୯
ଇନ୍ଦ୍ରର ନୋହିବ ନିଧନ । ଏ ସର୍ବ ହୋଇବ ସଂପନ୍ନ ।। ୧୩୦
୪୪ ହେ କୁରୁନନ୍ଦନ ! ଏମନ୍ତ । ଚିନ୍ତିଣ ମରୀଚିଙ୍କ ସୁତ ।। ୧୩୧

୧. ଅଜିତ-ଇନ୍ଦ୍ରିୟ । ୨. ଯେହୁ ।

| | | | |
|---|---|---|---|
| | କିଂଚିତ କୁପିତ ହୋଇଲେ । | ଆମ୍ଭାକୁ ନିନ୍ଦନ୍ତେ ବୋଇଲେ | ।। ୧୩୨ |

ଶ୍ରୀକଶ୍ୟପ ଉବାଚ

| | | | |
|---|---|---|---|
| ୪୫ | ହେ ଭଦ୍ରେ ! ତୋର ସୁତ ହେବ । | ଇନ୍ଦ୍ରକୁ ଅବଶ୍ୟ ମାରିବ | ।। ୧୩୩ |
| | ଏ ବ୍ରତ ଯଥାର୍ଥ ପ୍ରକାରେ । | ଧରିବୁ ଯଦି ସଂବତ୍ସରେ | ।। ୧୩୪ |
| | ବୈଗୁଣ୍ୟ ପୁଣି ଯେବେ ହେବ । | ହୋଇବ ଅମରବାନ୍ଧବ | ।। ୧୩୫ |
| | ବୈଷ୍ଣବ ବ୍ରତ ତ ସର୍ବଥା । | କେବେହେଁ ନୁହଇ ଅନ୍ୟଥା | ।। ୧୩୬ |

ଶ୍ରୀଦିତିରୁବାଚ

| | | | |
|---|---|---|---|
| ୪୬ | ହେ ବିପ୍ର ! ବ୍ରତ ଧରିବଇଁ । | ଯେତେକ କରଣୀୟ ତହିଁ | ।। ୧୩୭ |
| | ନିଷିଦ୍ଧ ଏଥି ଯେ ଅଛନ୍ତି । | ଯେ ଅବା ବ୍ରତକୁ ନାଶନ୍ତି | ।। ୧୩୮ |
| | ସେ ସମସ୍ତଙ୍କୁ ମୋତେ କହ । | ଫିଟୁ ମୋ ମନର ସଂଦେହ | ।। ୧୩୯ |

ଶ୍ରୀକଶ୍ୟପ ଉବାଚ

| | | | |
|---|---|---|---|
| ୪୭ | ପ୍ରାଣୀଙ୍କି ହିଂସା ନ କରିବ । | ଆକ୍ରୋଶବାକ୍ୟ ନ ବୋଲିବ | ।। ୧୪୦ |
| | ମିଥ୍ୟାବଚନକୁ ନ କହି । | ନଖ, ରୋମକୁ ନ ଛିଣ୍ଡାଇ | ।। ୧୪୧ |
| | କପାଳ ଅସ୍ଥି ଆଦି ହୋଇ । | ଯେ ଅମଙ୍ଗଳ ତା' ନ ଛୁଇଁ | ।। ୧୪୨ |
| ୪୮ | ଜଳେ ପ୍ରବେଶ ହୋଇ ସ୍ନାନ । | କୋପ, ଦୁର୍ଜନସଂଭାଷଣ | ।। ୧୪୩ |
| | ଏକଥାମାନ ନ କରିବ । | ଅଧୌତ ବସ୍ତ୍ର ନ ପିନ୍ଧିବ | ।। ୧୪୪ |
| | ପୂର୍ବେ ଯା' ବାରେ ଧରିଥିବ । | ସେ ମାଳ ପୁଣ ନ ଧରିବ | ।। ୧୪୫ |
| ୪୯ | ଉଚ୍ଛିଷ୍ଟ ଅଟଇ ଯେ ଅନ୍ନ । | ଯେ ଚଣ୍ଡିକାକୁ ନିବେଦନ | ।। ୧୪୬ |
| | ଆମିଷ ହୋଇଥିବ ଯେହି । | ବୃଷଳ ଆଣିଥିବ ଯାଇଁ[1] | ।। ୧୪୭ |
| | ଯା' ରଜସ୍ୱଳା ଦେଖିଥିବ । | ତାହା ଭୋଜନ ନ କରିବ | ।। ୧୪୮ |
| | କରଯୁଗ ଅଞ୍ଜଳି କରି । | ପାନ କରିବ ନାହିଁ ବାରି | ।। ୧୪୯ |
| ୫୦ | ଭୋଜନ କରିଥାଇ ଅନ୍ନ । | ନ କରିଥାଇ ଆଚମନ | ।। ୧୫୦ |
| | ଯେ ଅଟେ ବେନି ସଂଧ୍ୟାକାଳ । | ତହିଁରେ ଫିଟିଥିବ ବାଳ | ।। ୧୫୧ |
| | ଦେହରେ ନ ଥିଲେ ମଣ୍ଡନ । | ହୋଇ ଅସଂଯତବଚନ | ।। ୧୫୨ |
| | ଦେହରେ ନ ଥାଇ ଅମ୍ବର । | ଗୃହରୁ ନୋହିବ ବାହାର | ।। ୧୫୩ |
| ୫୧ | ଧୋଇ ନ ଥାନ୍ତେ ପାଦଦୁଇ । | ଥାଆନ୍ତେ ଅପ୍ରୟତ ହୋଇ | ।। ୧୫୪ |
| | ଚରଣ ଆର୍ଦ୍ର ହୋଇଥାନ୍ତେ । | ଶିର ଉତ୍ତରକୁ ଦିଅନ୍ତେ | ।। ୧୫୫ |
| | ଦିଅନ୍ତେ ପଶ୍ଚିମକୁ ଶିର । | ସଙ୍ଗେ ଇତର ଜନଙ୍କର | ।। ୧୫୬ |
| | ବସ୍ତ୍ର ନ ପିନ୍ଧି ସଂଧ୍ୟାଦ୍ୱୟେ । | ନ ଶୋଇ[2] ଏତେକ କଥାଏ | ।। ୧୫୭ |
| ୫୨ | ପିନ୍ଧିଣ ଧଉତ ବସନ । | ଶୁଦ୍ଧ ହୋଇଣ ଅନୁଦିନ | ।। ୧୫୮ |

୧. ଯାହି ।　　୨. ଥାଇ ।

ସଂଯୁତ ସର୍ବମଙ୍ଗଳରେ । ପ୍ରଥମଭୋଜନୁଁ ପୂର୍ବରେ ॥ ୧୫୯
ଗୋ, ବିପ୍ର, ଲକ୍ଷ୍ମୀ, ଜନାର୍ଦ୍ଦନ । ଏହାଙ୍କୁ କରିବ ପୂଜନ ॥ ୧୬୦
୫୩ ପାଦ୍ୟ ଚନ୍ଦନ ଉପହାର । ମଣ୍ଡନ ଘେନି ବାରମ୍ବାର ॥ ୧୬୧
ସଧବା ଯେଉଁ ସ୍ତିରୀଜନ । ତାହାଙ୍କୁ କରିବ ପୂଜନ ॥ ୧୬୨
ପତିକି କରିଣ ପୂଜିତ । ତାକୁ ହୋଇବ ଉପସ୍ଥିତ ॥ ୧୬୩
ଯେ ପତି ସେ ଗର୍ଭମଧ୍ୟରେ । ଅଛି ଚିନ୍ତିବ ଏ ପ୍ରକାରେ ॥ ୧୬୪
୫୪ ଏ ପୁଂସବନ ନାମେ ବ୍ରତ । ହୋଇବ ନାହିଁ ଏ ବିହତ ॥ ୧୬୫
ବରଷେ ଯାଏଁ ଏ ପ୍ରକାରେ । ଯେବେ ଧରିବୁ ତଦନ୍ତରେ ॥ ୧୬୬
ଜାତ ହୋଇବ ତୋର ସୁତ । ଇନ୍ଦ୍ରକୁ କରିବ ଯେ ହତ ॥ ୧୬୭
୫୫ ହେ ନୃପ ! ଯେହୁ ମହାମତି । ଏଥୁ ଅନ୍ତରେ ସେହୁ ଦିତି ॥ ୧୬୮
କରିବି ବୋଲି ଅଙ୍ଗୀକାର । କରି ବଚନକୁ ଭର୍ତ୍ତାର ॥ ୧୬୯
କଶ୍ୟପସକାଶୁଁ ବହନ । କଲା ଗର୍ଭକୁ ସେ ଆଧାନ ॥ ୧୭୦
ବ୍ରତକୁ ଯଥାବିଧିମତେ । ଧଇଲା ପୁଣ ଶୁଦ୍ଧଚିତ୍ତେ ॥ ୧୭୧
୫୬ ହେ ମହୀପତି ! ଆପଣାର । କାର୍ଯ୍ୟକାରଣେ ଯେ ଚତୁର ॥ ୧୭୨
ସେ ଇନ୍ଦ୍ର ମାତାଭଗିନୀର । ଚେଷ୍ଟାକୁ କରିଣ ଗୋଚର ॥ ୧୭୩
ଆଶ୍ରମେ ଯେଉଁ ଦିତି ଥିଲା । ତାହାକୁ ପରିଚର୍ଯ୍ୟା କଲା ॥ ୧୭୪
୫୭ ନିତ୍ୟେ ବନରୁ ପୁଷ୍ପଫଳ । କୁଶ ସମିଧ ପତ୍ର ମୂଳ ॥ ୧୭୫
ଅଙ୍କୁର ମୃତ୍ତିକା ସଲିଳ । ଆଣି ଦିଅଇ କାଳେ କାଳ ॥ ୧୭୬
୫୮ ହେ ନୃପ ! ସେ ଦିତି ବ୍ରତରେ । ଥାଆନ୍ତେ ଏମନ୍ତ ପ୍ରକାରେ ॥ ୧୭୭
ବ୍ରତରେ ଛିଦ୍ର ହେବ ଯେହି । ସେ କଥା ଲଭିବାର ପାଇଁ ॥ ୧୭୮
କୁଟିଳ ହୋଇ ପୁରନ୍ଦର । ସେବିଲା ତାକୁ ନିରନ୍ତର ॥ ୧୭୯
ମୃଗକୁ ମାରିବାକୁ ବନେ । ଲୁବ୍ଧକ ମୃଗାକୃତି ଯେହ୍ନେ ॥ ୧୮୦
୫୯ ହେ ନୃପ ! ତତପର ହୋଇ । ବ୍ରତରେ ଛିଦ୍ର ହେବ ଯେହି ॥ ୧୮୧
ତାହା ନ ଜାଣିଲା ବାସବ । ଏ ବିଷୟରେ ମୋର ଶିବ ॥ ୧୮୨
କେମନ୍ତେ ହେବ ବିଚାରିଲା । ଅତ୍ୟନ୍ତ ଚିନ୍ତାକୁ ଲଭିଲା ॥ ୧୮୩
୬୦ ଏକ ଦିନକେ ସେ ସଂଧ୍ୟାରେ । କର୍ଶିତ[୧] ହୋଇଣ ବ୍ରତରେ ॥ ୧୮୪
ଉଚ୍ଛିଷ୍ଟ ହୋଇ ସଲିଳକୁ । ନ ଛୁଇଁ ନ ଧୋଇ ପାଦକୁ ॥ ୧୮୫
ବିଧି ମୋହିତ ହେଲା ଯେଣୁ । ଶୟନ କଲା ତଳେ ତେଣୁ ॥ ୧୮୬
୬୧ ସେ ଛିଦ୍ର ପାଇ ପୁରୁହୂତ । ନିଦ୍ରା ହରିଲା ଯାର ଚିତ୍ତ ॥ ୧୮୭
ପଶିଲା ସେ ଦିତି ଜଠରେ[୨] । ଯୋଗେଶ ସେ ଯୋଗମାୟାରେ ॥ ୧୮୮
୬୨ ସେ ଗର୍ଭ କନକସମାନ । ବଜ୍ରରେ ତା' ପାକଶାସନ ॥ ୧୮୯

୧. କ୍ଷୀଣ । ୨. ଉଦରେ ।

କାଟିଲା ସାତ ଖଣ୍ଡ କରି । ରୋଦନ୍ତେ ତାଙ୍କୁ ପୁଣି ଧରି ।। ୧୯୦
ନ କାନ୍ଦ ବୋଲିଣ ବଚନ । କଲାପ୍ରାୟକ ଆଶ୍ୱାସନ ।। ୧୯୧
ଏକ ଏକକେ ସାତ ସାତ । ବିଭାଗ କଲାକ ତ୍ୱରିତ ।। ୧୯୨
୬୩ ହେ ନୃପ ! ସେ ସର୍ବେ ଛେଦନ । ହୁଅନ୍ତେ ପ୍ରାଞ୍ଜଳି ହୋଇଣ ।। ୧୯୩
ଇନ୍ଦ୍ରକୁ ବୋଇଲେ ଏମନ୍ତ । ହେ ଇନ୍ଦ୍ର ! ଆମ୍ଭେ ତୋର ଭ୍ରାତ ।। ୧୯୪
ଆମ୍ଭେ ମରୁତ ତୁ କିପାଇଁ । ବାଞ୍ଛୁ ଆମ୍ଭର ବଧପାଇଁ ।। ୧୯୫
୬୪ ଆନରେ ଯାଙ୍କ ଭାବ ନାହିଁ । ଆପଣା ପାରିଷଦ ଯେହି ।। ୧୯୬
ଇନ୍ଦ୍ର ସେ ମରୁତଗଣଙ୍କୁ[୧] । କହିଲେ ଏମନ୍ତ ବାକ୍ୟକୁ ।। ୧୯୭
ଭୟ ନ ପାଅ ମନେ କେହି । ତୁମ୍ଭେ ସମସ୍ତେ ମୋର ଭାଇ ।। ୧୯୮
୬୫ ବଜ୍ରେ ବହୁତରୂପେ କ୍ଷୁଣ୍ଣ । ହେଲା ସେ ଦିତିଗର୍ଭ ପୁଣ ।। ୧୯୯
ନ ମଲା ବିଷ୍ଣୁର କୃପାରୁ । ତୁ ଯେହ୍ନେ ଦ୍ରୌଣିର ଅସ୍ତ୍ରରୁ ।। ୨୦୦
୬୬ ବିଷ୍ଣୁଙ୍କୁ ଥରେହେଁ ପୁରୁଷ । ପୂଜିଣ ହୋଏ ତା' ସଦୃଶ ।। ୨୦୧
ସଂବତ୍ସରକୁ ଊଣା କିଛି । ଦିତି ଯା' ବିଷ୍ଣୁଙ୍କୁ ପୂଜିଛି ।। ୨୦୨
୬୭ ଇନ୍ଦ୍ର ସହିତେ ସେ ପଞ୍ଚାଶ । ମରୁତ ହୋଇଲେ ତ୍ରିଦଶ ।। ୨୦୩
ମାତୃଦୋଷକୁ[୨] ତ୍ୟାଗ କରି । ସୋମପ କଲେ ତାଙ୍କୁ ହରି ।। ୨୦୪
୬୮ ସେ ଦିତି ଦେବୀ ଅନିନ୍ଦିତ । ହେ ନୃପ ! ଇନ୍ଦ୍ରଙ୍କ ସହିତ ।। ୨୦୫
ଅନଳପ୍ରଭ କୁମାରଙ୍କୁ । ଦେଖିଣ ଲଭିଲେ ତୋଷକୁ ।। ୨୦୬
୬୯ ଇନ୍ଦ୍ରକୁ ଏଥୁ ଅନନ୍ତରେ । ବୋଇଲେ ହେ ତାତ ! ଚିତ୍ତରେ ।। ୨୦୭
ବାଞ୍ଛନ୍ତେ ସୁରମାନଙ୍କର । ଭୟଜନକ ଯେ କୁମାର ।। ୨୦୮
ଦୁସ୍ତର ଅଟଇ ଏ ବ୍ରତ । ଏହା ମୁଁ କଲି ଆଚରିତ ।। ୨୦୯
୭୦ ବାଞ୍ଛା ମୁଁ କଲି ଏକ ସୁତ । ଏ କିମ୍ପା ହେଲେ ସାତ ସାତ ।। ୨୧୦
ହେ ପୁତ୍ର ! ଯେବେ ତୋ ବିଦିତ । ମିଥ୍ୟା ନ କହି କହ ସତ୍ୟ ।। ୨୧୧

ଶ୍ରୀଇନ୍ଦ୍ର ଉବାଚ

୭୧ ହେ ମାତ ! ବ୍ୟବସାୟ[୩] ତୋର । ଜାଣି ମୁଁ ମିଳିଲି ପାଶର ।। ୨୧୨
ଅଧର୍ମୀ ଅର୍ଥବୁଦ୍ଧି ହୋଇ । ଗର୍ଭ ଛେଦିଲି ଛିଦ୍ର ପାଇ ।। ୨୧୩
୭୨ ଗର୍ଭ କାଟନ୍ତେ କରି ସାତ । ସାତ କୁମାର ହେଲେ ଜାତ ।। ୨୧୪
କାଟନ୍ତେ ଏକ ଏକେ[୪] ସେହି । ସପ୍ତଧା ହେଲେ ମଲେ ନାହିଁ ।। ୨୧୫
୭୩ ଦେଖିଣ ପରମ ଅଦ୍ଭୁତ । ବିଚାର କରଇ ମୁଁ ଚିତ୍ତ ।। ୨୧୬
ବିଷ୍ଣୁପୂଜାର ସିଦ୍ଧି ଯେହି । କାର୍ଯ୍ୟସିଦ୍ଧିକି ଉପୁଜାଇ ।। ୨୧୭

---

୧. "ସପ୍ତ ଗଣା ବୈ ମରୁତଃ" ଇତି ଶ୍ରୁତିଃ ।
୨. ମାତୃଦୋଷ = ଆସୁର ଭାବ ।
୩. ବ୍ୟବସାୟ = ନିଶ୍ଚୟ ।
୪. ଏକେ ଏକ ।

୭୪ ଛାଡ଼ି ରାଜ୍ୟାଦି ସୁଖମାନ । କରନ୍ତେ ବିଷ୍ଣୁଆରାଧନ ॥ ୨୧୮
ମୋକ୍ଷକୁ ହିଁ ଯେ ନ ବାଞ୍ଛନ୍ତି । ସ୍ୱକାର୍ଯ୍ୟେ ଦକ୍ଷ ସେ ଅଟନ୍ତି ॥ ୨୧୯
୭୫ ଯେ ଦେବ ଜଗତ-ଈଶ୍ୱର । ଆତ୍ମଦ ଆତ୍ମା ଆପଣାର ॥ ୨୨୦
ତାହାଙ୍କୁ କରି ଆରାଧନ । ପଣ୍ଡିତ ହୋଇ କେଉଁ ଜନ ॥ ୨୨୧
ବିଷୟଭୋଗକୁ ବରଇ । ନରକରେ ହେଁ ଯେ ମିଳଇ ॥ ୨୨୨
୭୬ ହେ ମାତ ! ମହତ୍ତମ ତୁହି । ମୂର୍ଖ ଅଟଇ ଯେଣୁ ମୁହିଁ ॥ ୨୨୩
ସେ ଘେନି ମୋ ଦୁର୍ଜନଭାବ । କ୍ଷମାକୁ ତୁମ୍ଭେ ଯୋଗ୍ୟ ହେବ ॥ ୨୨୪
ଯେବଣ ଗର୍ଭ ମରିଥିଲା । ଭାଗ୍ୟରେ ସେହି ତ ଉଠିଲା ॥ ୨୨୫

ଶ୍ରୀଶୁକ ଉବାଚ

୭୭ ଶୁଦ୍ଧଭାବରେ ତୁଷ୍ଟ ହୋଇ । ଦିଅନ୍ତେ ଅନୁଜ୍ଞାକୁ ସେହି ॥ ୨୨୬
ତାହାଙ୍କୁ କରି ନମସ୍କାର । ସଙ୍ଗେ ମରୁତମାନଙ୍କର ॥ ୨୨୭
ଯେ ପ୍ରଭୁ ଅଟେ ପୁରନ୍ଦର । ଗମନ କଲେ ସ୍ୱର୍ଗପୁର ॥ ୨୨୮
୭୮ ମରୁତମାନଙ୍କ ଜନମ । ମଙ୍ଗଳଦାୟକ ଉତ୍ତମ ॥ ୨୨୯
ଏସର୍ବ କହିଲାଇଁ ତୋତେ । ଯାହା ତୁ ପଚାରିଲୁ ମୋତେ ॥ ୨୩୦
ପୁଣି କି କରିବା ବଖାଣ । ସେକଥା ଆଗ୍ନ ଆଗେ ଭଣ ॥ ୨୩୧
ଦୀନବନ୍ଧୁର ମନ ନିତି । ସାଧୁଙ୍କ ପାଦେ ଲଭି ପ୍ରୀତି ॥ ୨୩୨
ପୁରାଣ ଭାଷାଗୀତେ ଭଣେ । ସନ୍ତୋଷ ସାଧୁଜନେ ତେଣେ ॥ ୨୩୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀମରୁଦୁତ୍ପତ୍ତିର୍ନାମ
ଅଷ୍ଟାଦଶୋଽଧ୍ୟାୟଃ ॥

## ଏକୋନବିଂଶ ଅଧ୍ୟାୟ

ଉନବିଂଶେ ତୁ ଯତ୍ ପ୍ରୋକ୍ତଂ କଶ୍ୟପେନ ଦିତେର୍ବ୍ରତମ୍ ।
ତଦେବ ବିବୃତଂ ଲୋକହିତାୟ ହରିତୋଷଣମ୍ ॥ ୧

ଶ୍ରୀରାଜୋବାଚ

୧ ହେ ବିପ୍ର ! ପୁଂସବନ ବ୍ରତ । ଯା' ତୁମ୍ଭେ କରିଛ ଉକତ ॥ ୧
ତା' ଜାଣିମାକୁ ମୁଁ ବାଞ୍ଛଇ । ବିଷ୍ଣୁ ପ୍ରସନ୍ନ ଯେଣେ ହୋଇ ॥ ୨

ଶ୍ରୀଶୁକ ଉବାଚ

୨ ମାର୍ଗଶିର ଶୁକ୍ଳ ପକ୍ଷରେ । ନିଜ ଭର୍ତ୍ତାର ଅନୁଜ୍ଞାରେ ॥ ୩
ପ୍ରତିପ ଦିନୁଁ ଆଦିକରି । ଏ ବ୍ରତ ଆରମ୍ଭିବ ନାରୀ ॥ ୪

ଲୋକର ସର୍ବ କାମମାନ । ଯେ ବ୍ରତ କରଇ ପ୍ରଦାନ ।। ୫
୩ ମରୁତଙ୍କର ଜନ୍ମ ଶୁଣି । ବିପ୍ରଙ୍କୁ ପଚାରିଣ ପୁଣି ।। ୬
ମାର୍ଜନ କରନ୍ତେ ଅତ୍ୟନ୍ତେ । ଶୁକ୍ଳ ଦିଶନ୍ତି ଯାର ଦନ୍ତେ ।। ୭
ସ୍ନାନ କରିଣ ପିନ୍ଧି ଶ୍ୱେତ । ଦ୍ୱିବସ୍ତ୍ର ହୋଇ ଅଳଙ୍କୃତ ।। ୮
ପ୍ରାତେ ଭୋଜନୁଁ ପୂର୍ବକାଳେ । ପୂଜେ ବିଷ୍ଣୁଙ୍କୁ ଲକ୍ଷ୍ମୀମେଳେ ।। ୯
୪ ଇତରଲୋକେ ପ୍ରୟୋଜନ । ନାହିଁ ତୁମ୍ଭର କିଛି ଆନ ।। ୧୦
ଯେ ନିରପେକ୍ଷ, ପୂର୍ଣ୍ଣକାମ । ତୁମ୍ଭଙ୍କୁ କରୁଛୁଁ ପ୍ରଣାମ ।। ୧୧
ଯେ ମହାବିଭୂତିର ପତି । ସକଳ ସିଦ୍ଧିଙ୍କର ସ୍ଥିତି ।। ୧୨
ସଂଭବ ହୋଏ ଯାହାଠାର । ତାଙ୍କୁ ମୋହର ନମସ୍କାର ।। ୧୩
୫ ହେ ଈଶ ! ତୁମ୍ଭେ ଯଥାର୍ଥରେ । କୃପାରେ, ଭୂତିରେ, ତେଜରେ ।। ୧୪
ଓଜେ, ମହିମାରେ ସେବିତ । ଇତର ସର୍ବଗୁଣେ ଯୁତ ।। ୧୫
ତେଣୁ ତୁମ୍ଭଙ୍କୁ କଲୁଁ ସ୍ତୁତି । ଯେ ଭଗବାନ ବିଭୁମୂର୍ତ୍ତି ।। ୧୬
୬ ପରମେଶ୍ୱରପ୍ରାୟ ହୋଇ । ସର୍ବଲକ୍ଷଣ ଛନ୍ତି ଯହିଁ ।। ୧୭
ହେ ମହାଭାଗେ ! ମହାମାୟେ । ହେ ଲୋକମାତ ! ବିଷ୍ଣୁଜାୟେ ।। ୧୮
ତୁମ୍ଭେ ମୋଠାରେ ହୁଅ ପ୍ରୀତି । ତୁମ୍ଭଙ୍କୁ ମୋହର ପ୍ରଣତି ।। ୧୯
୭ ଯେ ଭଗବାନ ବାସୁଦେବ । ମହାପୁରୁଷ, ଅନୁଭାବ ।। ୨୦
୮ ମହତ ଅଟଇ ଯାହାର । ଯେ ମହାବିଭୂତିଈଶ୍ୱର ।। ୨୧
ତାହାଙ୍କୁ ମୋର ନମସ୍କାର । ମହାବିଭୂତିତୁଲେ ତାର ।। ୨୨
ବଳି କରୁଛି ସମର୍ପଣ । ଏ ବିଷ୍ଣୁପୂଜନମନ୍ତ୍ରେଣ ।। ୨୩
କରେ ବିଷ୍ଣୁର ଆବାହନ । ଯେ ଅର୍ଘ୍ୟ, ପାଦ୍ୟ, ଆଚମନ ।। ୨୪
ସ୍ନାନ, ବସନ, ଉପବୀତ । ଭୂଷଣ ଗନ୍ଧପୁଷ୍ପଯୁତ ।। ୨୫
ଯେ ଧୂପ, ଦୀପ, ଉପହାର । ଏ ଆଦି ନାନା ଉପଚାର ।। ୨୬
ଏମାନ ସମାହିତ ହୋଇ । ଅର୍ପିବ ବିଷ୍ଣୁଠାରେ ନେଇ ।। ୨୭
ଯେ ଉପହାର ଥିବ ହୋଇ । ତହିଁ ଯେ ଅବଶେଷ ରହି ।। ୨୮
ତା' ବାର ଆହୁତି ଅଗ୍ନିରେ । ହୋମ କରିବ ଏ ମନ୍ତ୍ରରେ ।। ୨୯
ପ୍ରଣବ ନମୋ ଭଗବାନ । ମହାପୁରୁଷ ପଞ୍ଚବର୍ଣ୍ଣ ।। ୩୦
ମହାବିଭୂତିପତି ପୁଣି । ଚତୁର୍ଥୀ ତିନିଅନ୍ତେ ପୁଣି ।। ୩୧
ତଦନ୍ତେ ବହ୍ନିଜାୟା ହୋଇ । ହୋମର ମନ୍ତ୍ର ଅଟେ ଏହି ।। ୩୨
୯ ସକଳ ସମ୍ପତ୍ତିମାନଙ୍କୁ । ଯେବେ ବାଞ୍ଛିବ ଲଭିବାକୁ ।। ୩୩
ମଙ୍ଗଳଙ୍କର ଅତିଶୟେ । ଉତ୍ପତ୍ତି ଯାଙ୍କ ଠାରୁ ହୋଏ ।। ୩୪
ବରଦ ସେ ଲକ୍ଷ୍ମୀଶ୍ରୀପତି । ତାଙ୍କୁ ଭକ୍ତିରେ ପୂଜେ ନିତି ।। ୩୫
୧୦ ଭଗତିପ୍ରଣତ ଚିତ୍ତରେ । ଦଣ୍ଡପ୍ରାୟକ ଧରଣୀରେ ।। ୩୬
ପ୍ରଣାମ କରି ଦଶ ବାର । ମନ୍ତ୍ର ଜପିବ ତଦନ୍ତର ।। ୩୭

ଜପ ହୁଅନ୍ତେ ଅବସାନ । ସ୍ତୋତ୍ରକୁ କରିବ ପଠନ ॥ ୩୮
୧୧ ବିଶ୍ୱର ବିଭୁ ତୁମ୍ଭେ ଦୁଇ । ଜଗତ ଶ୍ରେଷ୍ଠକାରଣ ହିଁ ॥ ୩୯
ଅଟଇ ଏ ସୂକ୍ଷ୍ମ ପ୍ରକୃତି । ଦୁର୍ଲଙ୍ଘ୍ୟ ଯେ ମାୟାଶକତି ॥ ୪୦
୧୨ ତାର ସାକ୍ଷାତ ଅଧୀଶ୍ୱର । ତୁମ୍ଭେ ଅଟ ପୁରୁଷ ପର ॥ ୪୧
ତୁମ୍ଭେ ସକଳଯଜ୍ଞମୂର୍ତ୍ତି । ଇଜ୍ୟାରୂପରେ ଏହା[୧] ଖ୍ୟାତି ॥ ୪୨
ସକଳ କ୍ରିୟା ଏ ବିଦିତା । ତୁମ୍ଭେ ସେ ଫଳର ଭୋକତା ॥ ୪୩
୧୩ ଦୃଶ୍ୟ ପ୍ରପଞ୍ଚ ଦେବୀ ଏହି । ଯେ ଏକା° ଦେଖାଉଛି ରହି ॥ ୪୪
ବିଷୟମାନଙ୍କୁ ଯେ ପୁଣ । ଭୁଞ୍ଜାଇ ସେ ତୁମ୍ଭେ ପ୍ରମାଣ ॥ ୪୫
ସର୍ବ ଶରୀରଧାରୀଙ୍କର । ଯେ ଆତ୍ମା ସେ ତୁମ୍ଭେ ଈଶ୍ୱର ॥ ୪୬
ଶରୀର ଇନ୍ଦ୍ରିୟ ଆଶୟା[୨] । ପ୍ରତ୍ୟକ୍ଷେ ଅଟେ ଦେବୀ ଶ୍ରିୟା ॥ ୪୭
ଯେ ନାମ ରୂପ ହୋଇ ଖ୍ୟାତି । ସେ ଲକ୍ଷ୍ମୀ ଦେବୀ ଭଗବତୀ ॥ ୪୮
ସେ ନାମ ରୂପର ପ୍ରକାଶ । ଆଧାର ତୁମ୍ଭେ ଅଟ ଈଶ ॥ ୪୯
୧୪ ତୁମ୍ଭେ ଯେମନ୍ତ ତ୍ରିଲୋକର । ବରଦ ଦୁହେଁ ପରସ୍ପର ॥ ୫୦
ଆହେ ଉତ୍ତମଶ୍ଳୋକ ଯେତେ । ମୋର ମଙ୍ଗଳ ଏ ଜଗତେ ॥ ୫୧
ସେମାନେ ସେହି ପରକାରେ । ସତ୍ୟ ହୁଅନ୍ତୁ ନିରନ୍ତରେ ॥ ୫୨
୧୫ ବରଦାୟକ ଯେ ଶ୍ରୀପତି । ଲକ୍ଷ୍ମୀସହିତେ ତାଙ୍କୁ ସ୍ତୁତି ॥ ୫୩
କରିଣ ଏମନ୍ତ ପ୍ରକାରେ । ନୈବେଦ୍ୟ ଆଦି ଯେ ସେଠାରେ ॥ ୫୪
ତା' ଆଡ଼େ[୩] କରି ଆଚମନ । ଦେଇଣ କରିବ ପୂଜନ ॥ ୫୫
୧୬ ସ୍ତୋତ୍ରରେ ଭକ୍ତିନମ୍ର ଚିତ୍ତେ । ସ୍ତୁତିକି କରିବ ତଦନ୍ତେ ॥ ୫୬
ଯଜ୍ଞଉଚ୍ଛିଷ୍ଟକୁ ଆଘ୍ରାଣ । କରି ବିଷ୍ଣୁଙ୍କୁ ପୂଜେ ପୁଣ ॥ ୫୭
୧୭ ପତିକି ପରମ ଭକ୍ତିରେ । ପୂଜିବ ଈଶ୍ୱରବୁଦ୍ଧିରେ ॥ ୫୮
ସେ ସେହି ପ୍ରିୟ ଦ୍ରବ୍ୟଙ୍କରେ । ଭଜିବ ତାକୁ ନିରନ୍ତରେ ॥ ୫୯
ପତ୍ନୀର ଉଚ୍ଚାବଚ ହୋଇ । ଯେ କର୍ମମାନ ଅବା ତହିଁ ॥ ୬୦
ପତି ହିଁ ପ୍ରେମଶୀଳ ହୋଇ । ସ୍ୱୟେଂ ତା' ବିହିତ କରଇ ॥ ୬୧
୧୮ ପତିପତ୍ନୀଙ୍କର ମଧ୍ୟରେ । ଏକ ହିଁ ଯେବେ ବ୍ରତ କରେ ॥ ୬୨
ସେ ଫଳ ଦୁହିଁଙ୍କରି ହୋଇ । ପତ୍ନୀ ଅଯୋଗ୍ୟ ହୋନ୍ତେ ତହିଁ ॥ ୬୩
ପତି ହୋଇଣ ସମାହିତ । ବିଧାନ କରିବ ଏ ବ୍ରତ ॥ ୬୪
୧୯ ଧରନ୍ତେ ବିଷ୍ଣୁର ଏ ବ୍ରତ । ଛିନ୍ଦାଇ[୪] ନାହିଁ କଦାଚିତ ॥ ୬୫
ଏରୂପେ ନିୟମ ଯେ ହୋଇ । ତାହାକୁ ଆଜ୍ଞା କରି ଥାଇ ॥ ୬୬

---

୧. ଏହା । ୨. ଆଶ୍ରୟା । ୩. ଆଡ଼େ କରି = ବାହାର କରି, ଆଡ଼େଇ ଦେଇ । ୪. ଛିନ୍ଦାଇ = ଛିଣ୍ଡାଇ ।

ଦିନକୁ ଦିନ ମଣ୍ଡନରେ । ମାଳ ଚନ୍ଦନ ଉପହାରେ ।। ୬୭
ଭକ୍ତିରେ ପୂଜିବ ବିପ୍ରଙ୍କୁ । ସଧବା ବଧୂଙ୍କୁ ଦେବଙ୍କୁ ।। ୬୮
୨୦ ନିଜ ହୃଦୟେ ବିସର୍ଜନ । କରିଣ ଦେବତାଙ୍କୁ ପୁଣ ।। ୬୯
ଆପଣା ବିଶୁଦ୍ଧିନିମିତ୍ତେ । ସମସ୍ତ କାମସିଦ୍ଧି ଅର୍ଥେ ।। ୭୦
ଅଗ୍ରେ ତାହାଙ୍କ ନିବେଦନ । ଆପଣେ କରିବ ଭୋଜନ ।। ୭୧
୨୧ ଏ ପୂଜାବିଧିରେ ଦ୍ୱାଦଶ । ମାସକୁ ନେଇଣ ବରଷ ।। ୭୨
କାର୍ତ୍ତିକ ମାସ ପ୍ରାନ୍ତ ଦିନ । ଉପାସ କରେ ସତୀ ଜନ ।। ୭୩
୨୨ ପ୍ରଭାତେ ଆଚମନ କରି । କୃଷ୍ଣଙ୍କୁ ପୂର୍ବପ୍ରାୟ କରି ।। ୭୪
ପୂଜା କରିଣ ତଦନ୍ତରେ । ଯେ ପାକ ହୋଇଥାଇ କ୍ଷୀରେ ।। ୭୫
ସେ ଚରୁ ଘୃତର ସହିତେ । ହୋମ କରିବ ଶୁଦ୍ଧଚିତ୍ତେ ।। ୭୬
ଯେ ଜାଣିଥିବ ଆତ୍ମଗତି । ଏମନ୍ତ ଅଟଇ ଯେ ପତି ।। ୭୭
ସେ ପାକଯଜ୍ଞ[୧] ବିଧାନରେ । ବାର ଆହୁତି ହୋମ କରେ ।। ୭୮
ବହୁତ ଭୋଜନରେ ପୁଣ । ଭୁଞ୍ଜାଇ ଦ୍ୱାଦଶ ବ୍ରାହ୍ମଣ ।। ୭୯
୨୩ ଉଦକପାତ୍ରର ସହିତ । ଗୁଡ଼ମାନଙ୍କରେ ସଂଯୁତ ।। ୮୦
ତିଳମାନଙ୍କୁ ହେ ରାଜନ । ତାହାଙ୍କୁ କରିବ ପ୍ରଦାନ ।। ୮୧
ବ୍ରାହ୍ମଣମାନେ ହୋଇ ତୋଷ । ପଢ଼ିବେ ଯେବଣ ଆଶିଷ ।। ୮୨
ତା' ଶିରେ ଘେନିଣ ଭକ୍ତିରେ । ପ୍ରଣାମ କରି ତାଙ୍କୁ ଶିରେ ।। ୮୩
ସେ ବିପ୍ରଙ୍କର ଅନୁଜ୍ଞାରେ । ଭୁଞ୍ଜିବ ତହିଁର ଉତ୍ତାରେ ।। ୮୪
୨୪ କରି ଆଚାର୍ଯ୍ୟଙ୍କୁ ଆଗରେ । ବନ୍ଧୁମାନଙ୍କ ସହିତରେ ।। ୮୫
ପତ୍ନୀକି କରିବ ପ୍ରଦାନ । ଚରୁଶେଷକୁ ହୋଇ ମୌନ ।। ୮୬
ଶୋଭନପୁତ୍ର ଯେଣେ ଜାତ । ସୁସଉଭଗ ହିଁ ପ୍ରାପତ ।। ୮୭
୨୫ ଏ ବ୍ରତ ଅଟଇ ବିଭୁର । ଏ ଜଗତରେ ଏହା ନର ।। ୮୮
ବିଧିମନ୍ତେ[୨] ଆଚରିଥାଇ । ବାଞ୍ଛିତ ଅର୍ଥକୁ ଲଭଇ ।। ୮୯
ଏହି ବ୍ରତକୁ ଆସ୍ଥା କରି । ସଉଭାଗ୍ୟକୁ ଲଭେ ନାରୀ ।। ୯୦
ସୁତ ସଂପଦ ଜୀବପତି[୩] । ଲଭଇ ପୁଣ ଗୃହ କୀର୍ତ୍ତି ।। ୯୧
୨୬ } ଯେ ପତି ସମଗ୍ରଲକ୍ଷଣ । କନ୍ୟା ତାହାକୁ ଲଭେ ପୁଣ ।। ୯୨
୨୭ } ନ ଥାଇ ଯାର ପୁତ୍ର ପତି । ଅପାପୀ ହୋଏ, ଲଭେ ଗତି ।। ୯୩
ଯାହାର ପୁତ୍ର ମରିଥାଇ । ସେ ଜୀବବତ୍ସା ପୁଣ ହୋଇ ।। ୯୪
ଯେ ହୋଇଥାଇ ଧନେଶ୍ୱରୀ । କର୍ମେ ଦୁର୍ଭଗା ହୋଏ ନାରୀ ।। ୯୫

---

୧. ପାକଯଜ୍ଞ = ପାର୍ବଣସ୍ଥାଳୀପାକ । ୨. ବିଧିବନ୍ତେ । ୩. ଦୀର୍ଘଜୀବୀ ସ୍ୱାମୀ ।

ସେ ପୁଣ ସୁଭଗା ହୁଅଇ । ଯେ ବା ଅରୂପା ହୋଇ ଥାଇ ॥ ୯୬
ଶ୍ରେଷ୍ଠରୂପକୁ ସେ ଲଭଇ । ଯେ ପୁଣ ରୋଗୀ ହୋଇଥାଇ ॥ ୯୭
ବିଶିଷ୍ଟ ରୋଗରୁ ବହନ । ମୁକତ ହୁଅଇ ସେ ଜନ ॥ ୯୮
ଇନ୍ଦ୍ରିୟଙ୍କର ସଙ୍ଗେ ସେହି । ଅରୋଗ ଦେହକୁ ଲଭଇ ॥ ୯୯
ଯେ ଅଭ୍ୟୁଦୟକର୍ମଠାଇଁ । ଏହା ପଢ଼ନ୍ତେ ବର୍ତ୍ତିଥାଇ ॥ ୧୦୦
ଅନନ୍ତତୃପ୍ତି ହୋଏ ତାର । ପିତୃଦେବତାମାନଙ୍କର ॥ ୧୦୧
୨୮ ହୋମପ୍ରାନ୍ତରେ ହୁତାଶନ । କମଳା ଦେବ ଭଗବାନ ॥ ୧୦୨
ଏମାନେ ସଂତୋଷ ହୁଅନ୍ତି । ସମସ୍ତ କାମକୁ ଦିଅନ୍ତି ॥ ୧୦୩
ହେ ନୃପ ! ମରୁତଙ୍କ ଜନ୍ମ । ଅଟଇ ଅତିଶୟ ପୁଣ୍ୟ ॥ ୧୦୪
ଦିତିର ମହତ ଯେ ବ୍ରତ । ମୁଁ ତୋତେ କଲି ତା' ବିଖ୍ୟାତ ॥ ୧୦୫
କୃଷ୍ଣ ଚରଣ ଚିନ୍ତି ଚିତ୍ତେ । ଷଷ୍ଠ ସ୍କନ୍ଧକୁ ଭାଷାଗୀତେ ॥ ୧୦୬
ବ୍ରାହ୍ମଣ ଦୀନବଂଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ॥ ୧୦୭
ମୋର ନ ଧର କବିଦୋଷ । ମୁଁ ତୁମ୍ଭମାନଙ୍କର ଦାସ ॥ ୧୦୮
ତୁମ୍ଭମାନଙ୍କର ଚରଣେ । ମତି ମୋ' ରହୁ ଅନୁକ୍ଷଣେ ॥ ୧୦୯
ତୁମ୍ଭେ ଯେ ଦୀନଜନବନ୍ଧୁ । ତୁମ୍ଭ ସେବକ ଦୀନବନ୍ଧୁ ॥ ୧୧୦
ଶ୍ରୀପୁରୁଷୋତ୍ତମନିକଟ । ବ୍ରାହ୍ମଣଶାସନ ପ୍ରକଟ ॥ ୧୧୧
ତା' ନାମ ବାମଦେବପୁର । କୌତ୍ସସମାନଙ୍କ ମନ୍ଦିର ॥ ୧୧୨
ଯେ ବାମଦେବ ବାଜପେୟୀ । ସେ ଗ୍ରାମ ଥିଲେ ଦାନ ପାଇ ॥ ୧୧୩
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ॥ ୧୧୪
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗାଦାସ ନାମ ହୋଇ ॥ ୧୧୫
ବାଲୁଙ୍କି ଦୀକ୍ଷିତ ନାମରେ । ସମ୍ଭବ ତାଙ୍କର କୁମରେ ॥ ୧୧୬
ତାଙ୍କ ତନୁଜ ଜୀବଦାସ । ମିଶ୍ର ନାମରେ ସେ ପ୍ରକାଶ ॥ ୧୧୭
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ ତାତ ॥ ୧୧୮
ମୋହର ଦୀନବନ୍ଧୁନାମ । [1]ଯେ ବୈତରଣୀତଟେ ଗ୍ରାମ ॥ ୧୧୯
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମେ ଅଟନ୍ତି ଯେ ସ୍ଥିତ ॥ ୧୨୦
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣଭକ୍ତିରେ ଲାଳସ ॥ ୧୨୧
ଶ୍ରୀନିତ୍ୟାନନ୍ଦପରିବାର । ଅଟନ୍ତି ଅତି ଶୁଦ୍ଧାଚାର ॥ ୧୨୨

---

୧. ଖଣ୍ଡପଡ଼ାଦୁର୍ଗେ ବିଶ୍ରାମ ॥
କରିଛି ତହିଁର ଭୂପତି । ସେ ଗୁରୁବୈଷ୍ଣବେ ଭଗତି ॥
ସେ ଦାତା ଧୀର ସତ୍ୟଭାଷୀ । ଶ୍ରୀଭାଗବତଗ୍ରନ୍ଥାଭ୍ୟାସୀ ॥
ନାମ ଅଟଇ ତାହାଙ୍କର । ମଙ୍ଗରାଜ ବାଲୁକେଶ୍ୱର ।
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତକୁ ଗୀତ କଲି ॥ (ପାଠାନ୍ତର)

ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥ ୧୨୩
ତାଙ୍କ ପ୍ରୀତିରେ ବଶ ହେଲି । ଶ୍ରୀଭାଗବତ ଗୀତ କଲି ॥ ୧୨୪
ଗୌଡ଼ ବାରାଣସୀ ଉତ୍କଳ । ଏ ତିନି ଦେଶ ପୋଥି ଠୁଳ ॥ ୧୨୫
କରିଣ ଶୁଦ୍ଧାଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥ ୧୨୬
ସୁଜନମାନେ ମୋର ଦୋଷ । ନ ଧର ମୁଁ ତୁମ୍ଭର ଦାସ ॥ ୧୨୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ପୁଂସବନବ୍ରତକଥନଂ ନାମ ଏକୋନବିଂଶୋଽଧ୍ୟାୟଃ ॥

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ॥

**ସମାପ୍ତୋଽୟଂ ଷଷ୍ଠସ୍କନ୍ଧଃ**

ମାତ୍ରାପଦଶ୍ଳୋକବିସର୍ଗବର୍ଣ୍ଣା
ନ୍ୟୂନାଧିକା ଯେ ମମ ପାଠଦୋଷାଃ ।
ଅନ୍ୟେଽପି ଦୋଷା ମମ ଦେବ ! ସହ୍ୟା
ଯତୋଽହମଜ୍ଞୋ ଜନିତସ୍ତ୍ୱୟୈବ ॥

ରାମଚନ୍ଦ୍ରସ୍ୟ ଭୂପତେଃ ପଞ୍ଚଦଶାଙ୍କେ କର୍କଟେ ଶ୍ରାବଣେ ମଳପୂର୍ଣ୍ଣିମାଚନ୍ଦ୍ରବାସର-ଶେଷେଽୟଂ ଲିଖିତୋ ବାଲୁଙ୍କେଶ୍ୱରମିଶ୍ରଶର୍ମଣା ।

# ସପ୍ତମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ସ୍ୱଭକ୍ତପକ୍ଷପାତେନ ତଦ୍‌ବିପକ୍ଷବିଦାରଣମ୍ ।
ନୃସିଂହମଦ୍ଭୁତଂ ବନ୍ଦେ ପରମାନନ୍ଦବିଗ୍ରହମ୍ ।। ୧
ଊତିଃ ପଞ୍ଚଦଶାଧ୍ୟାୟୈଃ ସପ୍ତମେ ବର୍ଣ୍ଣ୍ୟତେଽଧୁନା ।
ଊତିଶ୍ଚ ବାସନା ପ୍ରୋକ୍ତା ତତ୍ତତ୍‌କର୍ମାନୁସାରିଣୀ ।। ୨
ଅଶୁଭା ଚ ଶୁଭା ଚେତି ଦ୍ୱିଧା ସା ହେତୁଭେଦତଃ ।
ଅଶୁଭା ମହତାଂ କୋପାତ୍ ଶୁଭା ମହଦନୁଗ୍ରହାତ୍ ।। ୩
ନୃହରିଦ୍ୱାଃସ୍ଥୟୋର୍ଯଦ୍‌ବଦ୍ ବୈକୁଣ୍ଠେ ବସତୋରପି ।
ଚତୁଃସନରୁଷା ବିଷ୍ଣୁଦ୍ୱେଷାଦ୍ୟଶୁଭବାସନା ।। ୪
ଯଥା ଚ ଦୈତ୍ୟଗର୍ଭେଽପି ପ୍ରହ୍ଲାଦସ୍ୟ ସତଃ ସ୍ଥିରା ।
ନାରଦାନୁଗ୍ରହାଦାସ ବିଷ୍ଣୌ ସଦ୍‌ଭକ୍ତିବାସନା ।। ୫
ସ୍ୱଭକ୍ତଂ ଚ ସଦା ବିଷ୍ଣୁର୍ଦ୍ୱିଷନ୍ତମପି ରକ୍ଷତି ।
ତୃତୀୟେ ତୁ ଭବେ ଦ୍ୱାଃସ୍ଥାବକରୋଦାମୃସାତ୍ ପ୍ରଭୁଃ ।। ୬
ଅତୋ ମନୀଷିଣା ଯତ୍ନଃ କାର୍ଯ୍ୟୋ ମହଦନୁଗ୍ରହେ ।
ଇତ୍ୟେତଦର୍ଥମୂତୀନାମତ୍ର ଲକ୍ଷଣମୁଚ୍ୟତେ ।। ୭
ତତ୍ରାଦୌ ଦଶଭିର୍ଦ୍ଦୈତ୍ୟତତ୍‌ପୁତ୍ରମତିଭେଦତଃ ।
ମହତ୍‌କୋପାନୁକମ୍ପୋତ୍‌ଥବାସନାଭେଦ ଉଚ୍ୟତେ ।। ୮
ସଦ୍‌ବାସନା ଚ ଯୁଜ୍ୟେତ କର୍ମଭିଃ ଶୁଦ୍ଧଚେତସଃ ।
ପରୈସ୍ତୁ ପଞ୍ଚଭିସ୍ତସ୍ମାତ୍ କ୍ରିୟତେ ଧର୍ମନିଶ୍ଚୟଃ ।। ୯
ତତ୍ର ତୁ ପ୍ରଥମେଽଧ୍ୟାୟେ ହିରଣ୍ୟକଶିପୋଃ ସୁତେ ।
ବିଷ୍ଣୁଭକ୍ତେ ବିରୋଧସ୍ତୁ ବିପ୍ରଶାପଜ ଈର୍ଯ୍ୟତେ ।। ୧୦

ଶ୍ରୀରାଜୋବାଚ

୧ ଶ୍ରୀକୃଷ୍ଣଚରଣନଳିନ । ହୃଦୟେ କରିଣ ଚିନ୍ତନ ।। ୧
ସଜ୍ଜନମାନଙ୍କର ହିତେ । ସପ୍ତମ ସ୍କନ୍ଧ ଭାଷାଗୀତେ ।। ୨
ବର୍ଣ୍ଣନ କରୁଛି ମୋହର । ଦୋଷ ସୁଜନେ କ୍ଷମା କର ।। ୩
ଯହିଁରେ ବକ୍ତା ବ୍ୟାସସୁତ । ଶ୍ରୋତା ନୃପତି ପରୀକ୍ଷିତ ।। ୪
ଗ୍ରନ୍ଥ-ନିର୍ମାଣକର୍ତ୍ତା ବ୍ୟାସ । ତହିଁ ମୋର କି ଅବକାଶ ।। ୫
ତଥାପି ଯାହା ଭଗବାନ । ହୃଦୟେ କଲେ ନିୟୋଜନ ।। ୬
ଅନ୍ୟଥା କରିବାକୁ ତାହି । କେ ଅଛି ନରଦେହ ବହି ।। ୭
ବ୍ରହ୍ମା-ଶଙ୍କର ଯା' ଅନ୍ୟଥା । କରି ନ ପାରନ୍ତି ସର୍ବଥା ।। ୮

ଶୁକଚରଣେ ଦେଇ ଶିର । ପୁଛେ[1] ପରୀକ୍ଷ ନୃପବର ।। ୯
ସର୍ବପ୍ରାଣୀଙ୍କର ସମାନ । ଯେ ପ୍ରିୟ ମିତ୍ର ଭଗବାନ ।। ୧୦
ହେ ବିପ୍ର ! ଇନ୍ଦ୍ରନିମିତ୍ତରେ । ଦୈତ୍ୟମାନଙ୍କୁ କି ହେତୁରେ ।। ୧୧
ସ୍ୱୟେଂ ବିନାଶିଲେ ଗୋସାଇଁ । ବିଷମଲୋକପ୍ରାଏ ହୋଇ ।। ୧୨
୨ ସାକ୍ଷାତ ଅଟେ ଯେ ନିର୍ଗୁଣ । ପରମାନନ୍ଦ ରୂପ ପୁଣ ।। ୧୩
ଅମରଗଣଙ୍କରେ ଆନ । ନାହିଁ ତାହାର ପ୍ରୟୋଜନ ।। ୧୪
ବିଦ୍ୱେଷ ଉଦ୍‌ବେଗ ଯେ ଦୁଇ । ଅସୁରଙ୍କର ଠାରୁ ନାହିଁ ।। ୧୫
୩ ନିଗ୍ରହ ଅନୁଗ୍ରହ ଆଦି । ବିଷ୍ଣୁର ଗୁଣ ଯେ ପ୍ରସିଦ୍ଧି ।। ୧୬
ତହିଁକି ପ୍ରତି ଅତିଶୟ । ଯେ ଜାତ ଆମ୍ଭର ସଂଶୟ ।। ୧୭
ହେ ମହାଭାଗ ! ତା ଛେଦନ । କରିବାକୁ ହୁଅ ଭାଜନ ।। ୧୮

ଶ୍ରୀଋଷିରୁବାଚ

୪ ହେ ମହାରାଜ ! ତୁମ୍ଭେ ଭଲ । ପ୍ରଶ୍ନ ଆମ୍ଭଙ୍କୁ ପଚାରିଲ ।। ୧୯
ଅଦ୍ଭୁତ ଚରିତ ହରିର । ମାହାତ୍ମ୍ୟ ଯେ ପ୍ରହରାଦର ।। ୨୦
ବିଷ୍ଣୁଭଗତିବିବର୍ଦ୍ଧନ । କରଇ ଯେବଣ ଆଖ୍ୟାନ ।। ୨୧
୫ ନାରଦଆଦି ଋଷିଜନ । ଗାଆନ୍ତି ଯା' ପରମପୁଣ୍ୟ ।। ୨୨
ବ୍ୟାସଙ୍କୁ କରି ନମସ୍କାର । କହିବା କଥାକୁ ହରିର ।। ୨୩
୬ ନିର୍ଗୁଣ, ପ୍ରକୃତିରୁ ପର । ଅଜ, ଅବ୍ୟକ୍ତ ଯେ ଈଶ୍ୱର ।। ୨୪
ସ୍ୱମାୟାଗୁଣକୁ ସେ ପାଇ । ବାଧ୍ୟବାଧକତ୍ୱକୁ ଯାଇ ।। ୨୫
୭ ଯେ ସତ୍ତ୍ୱ ରଜ ତମ ହୋଇ । ତ୍ରିଗୁଣ ବିଖ୍ୟାତ ଅଟଇ ।। ୨୬
ପ୍ରକୃତିଗୁଣ ସେ ଅଟନ୍ତି । ଆତ୍ମାର ଗୁଣ ସେ ନୁହନ୍ତି ।। ୨୭
ହେ ନୃପ ! ହାନିବୃଦ୍ଧି ଯେହି[2] । ତାଙ୍କର ଏକକାଳେ ନୋହି ।। ୨୮
୮ ସତ୍ତ୍ୱର ଜୟକାଳେ ସେହି । କାଳକୁ ଅନୁଗତ ହୋଇ ।। ୨୯
ଭଜିଲେ ଋଷିଙ୍କି ଦେବଙ୍କୁ । ରଜସମୟେ ଅସୁରଙ୍କୁ ।। ୩୦
ତମର ଜୟ ଯେଉଁକାଳେ । ଯକ୍ଷରାକ୍ଷସଙ୍କୁ ସେ ବେଳେ ।। ୩୧
୯ ଯେସନେ କାଷ୍ଠାଦିରେ ଜ୍ୟୋତି । ପାତ୍ରେ ଯେସନେ ଜଳସ୍ଥିତି ।। ୩୨
ଆକାଶ ଘଟାଦିରେ ଥାଇ । ସେରୂପେ ନାନାରୂପେ ଶୋହି ।। ୩୩
ଦେହରୁ ସୁର ଆଦିଙ୍କର । ନୋହେ ବିବେଚନ ଗୋଚର ।। ୩୪
ନିପୁଣ ଅଟନ୍ତି ଯେ ନରେ । କାର୍ଯ୍ୟଦରଶନଲିଙ୍ଗରେ ।। ୩୫
ବିଚାରି ସ୍ୱଭାବକର୍ମାଦି । ଯେ ବାଦ ତାହାଙ୍କୁ ନିରୋଧି[3] ।। ୩୬
ପରମାତ୍ମାକୁ ସେ ଜାଣନ୍ତି । ଆତ୍ମାରେ ଅଟେ ଯାର ସ୍ଥିତି ।। ୩୭
ସୂର୍ଯ୍ୟକାନ୍ତାଦିରେ ଯେସନ । ଦାହକୁ କରି ଦରଶନ ।। ୩୮

୧. ପୁଛେ । ୨. ଦୁଇ । ୩. ନିଷେଧି ।

ଏଥିରେ ଅଛି ହୁତାଶନ । ଏରୂପେ ଜାଣେ ବିଜ୍ଞଜନ ॥ ୩୯
{ଗନ୍ଧଦରଶନୁଁ ଯେସନ । ବାୟୁକୁ ଜାଣେ ବୁଧ ଜନ ॥ ୧}
୧୦ ଯେବଣ କାଳରେ ଈଶ୍ୱର । ଭୋଗନିମିତ୍ତରେ ଜୀବର ॥ ୪୦
ଶରୀରମାନଙ୍କୁ ସର୍ଜନ । କରିବା ଅର୍ଥେ କରେ ମନ ॥ ୪୧
ସେକାଳେ ଆପଣା ମାୟାରେ । ରଜକୁ ସର୍ଜେ ଏ ଭେଦରେ ॥ ୪୨
ବିଚିତ୍ର ସେ ଶରୀରମାନ । ତହିଁ ବିହରିବାକୁ ମନ ॥ ୪୩
କରନ୍ତେ ଭିନ୍ନରୂପେ ପୁଣ । ସର୍ଜନା କରେ ସତ୍ତ୍ୱଗୁଣ ॥ ୪୪
ଭିନ୍ନ କରିଣ ତମୋଗୁଣ । ପ୍ରେରଇ ସଂହରନ୍ତେ ପୁଣ ॥ ୪୫
୧୧ ପ୍ରଧାନ ପୁରୁଷ ଯେ ବେନି । ତାଙ୍କୁ ନିମିତ୍ତ କରି ଘେନି ॥ ୪୬
ତାଙ୍କର ସହକାରୀ ହୋଇ । ଆଶ୍ରୟରୂପେ ଅଛି ଯେହି ॥ ୪୭
କରେ ସେ କାଳକୁ ସର୍ଜନ । ଅମୋଘକର୍ତ୍ତା ଭଗବାନ ॥ ୪୮
[୧]{ସେହି ପ୍ରକୃତିପୁରୁଷର । ଭୋଗମାନଙ୍କୁ ସେ ଈଶ୍ୱର ॥ ୪୯
ହେ ନରଦେବ ! ସବୁଠାରେ । ସଂପାଦେ ଯେବଣ କାଳରେ ॥ ୫୦
ସତ୍ତ୍ୱାଦି ଜୀବଗୁଣମାନେ । ଚେଷ୍ଟାକୁ କରନ୍ତି ସେଦିନେ ॥ ୫୧}
ଏ ଯେଉଁ କାଳ ସତ୍ତ୍ୱଗୁଣ । ବୃଦ୍ଧିକି କରେ ଏଣୁ ପୁଣ ॥ ୫୨
ମହତ ଅଟେ କୀର୍ତ୍ତି ଯାର । ହେଲେହେଁ କେବଳ ଈଶ୍ୱର ॥ ୫୩
ସୁରସୈନ୍ୟଙ୍କୁ ସେ ବଢ଼ାନ୍ତି । ସତ୍ତ୍ୱପ୍ରଧାନ ଯେ ଅଟନ୍ତି ॥ ୫୪
ହେ ନୃପ ! ସେ ଦେବଙ୍କ ଅରି । ଯେ ରଜତମଗୁଣଧାରୀ ॥ ୫୫
ସେ ଅସୁରଙ୍କୁ ବିନାଶନ୍ତି । ଅମରପ୍ରିୟ ସେ ଅଟନ୍ତି ॥ ୫୬
୧୨ ଯେ ହରି ଦ୍ୱେଷାଦିରହିତ । ସେ କିଂପା କଲେ ଦୈତ୍ୟ ହତ ॥ ୫୭
ଏହି ବିଷୟେ ହେ ରାଜନ । ମହାଯଜ୍ଞରେ ଏକ ଦିନ ॥ ୫୮
ପୁଚ୍ଛନ୍ତେ ପୂର୍ବେ ପାଣ୍ଡୁସୁତ । ତାହାଙ୍କୁ ହୋଇ ତୋଷଚିତ୍ତ ॥ ୫୯
ଯେଉଁ ଚରିତ ଇତିହାସ । ନାରଦ କଲେକ ପ୍ରକାଶ ॥ ୬୦
୧୩} ପୂର୍ବେ ରାଜସୂୟଯଜ୍ଞରେ । ଶିଶୁପାଳର କୃଷ୍ଣଠାରେ ॥ ୬୧
୧୪} ଦେଖିଣ ଅତି ଅଦଭୁତ । ସାଯୁଜ୍ୟମୁକ୍ତି ପାଣ୍ଡୁସୁତ ॥ ୬୨
ବିସ୍ମୟମନେ ହେ ରାଜନ । ଶୁଣନ୍ତେ ସର୍ବ ମୁନିଜନ ॥ ୬୩
ସେଠାରେ ନାରଦ ଯେ ଥିଲେ । ତାଙ୍କୁ ଏକଥା ପଚାରିଲେ ॥ ୬୪

## ଶ୍ରୀଯୁଧିଷ୍ଠିର ଉବାଚ

୧୫ ପରମ ତତ୍ତ୍ୱ ଯେ ଶ୍ରୀପତି । ତାହାଙ୍କ ଠାରେ ଯେ ପ୍ରାପତି ॥ ୬୫

---

ପ୍ରଥମ ବନ୍ଧନୀସ୍ଥିତ ପଦଟି ସ୍ୱାମିଟୀକାନୁସାରେ ରଚିତ ।

୧ । ସର୍ବତ୍ର ଯତ୍ରୋଭୟସିଦ୍ଧିମାପ୍ନୁୟା-
ଲ୍ଲିଙ୍ଗାହ୍ୱନୋ ଲିଙ୍ଗଗୁଣାଃ ଶ୍ୱସନ୍ତି । ଇତି ଖାଡ଼ଙ୍ଗାସଂପାଦିତଭାଗବତଗ୍ରନ୍ଥେ ଅଧିକଃ ପାଠଃ । ପଦ ୪୯-୫୧ ଏହାର ଅନୁବାଦ ।

ଏକାନ୍ତ ଭକ୍ତ ଯେ ମାନବ । ତାହାଙ୍କରି ହିଁ ଯେ ଦୁର୍ଲଭ ॥ ୬୬

ଶତ୍ରୁ ଚୈଦ୍ୟର ହେଲା ଜାତ । ଏକଥା ଅତି ଅଦଭୁତ ॥ ୬୭

୧୬ ହେ ମୁନି ! ଆମ୍ଭେ ଶୁଣିମାକୁ । ବାଞ୍ଛୁଛୁଁ ସର୍ବେ ଏ କଥାକୁ ॥ ୬୮

ବେଣକୁ ବିଷ୍ଣୁର ନିନ୍ଦାରେ । ଦ୍ୱିଜେ ପେଷିଲେ ନରକରେ ॥ ୬୯

୧୭ କୋମଳ ବଚନକୁ କହି । ପାରିଲାଦିନୁଁ ଆଦି[1] ହୋଇ ॥ ୭୦

ପାପିଷ୍ଠ ଦମଘୋଷସୁତ । ଗୋବିନ୍ଦଠାରେ କୋପବନ୍ତ ॥ ୭୧

ଆଜ ହିଁ ଅଟେ ସେହିମତି । ଦନ୍ତବକ୍ର ହିଁ ଦୁଷ୍ଟ ଅତି[2] ॥ ୭୨

୧୮ ଯେ ବିଷ୍ଣୁ ଅବ୍ୟୟ ଅଟନ୍ତି । ପରମ ବ୍ରହ୍ମରୂପେ ଖ୍ୟାତି ॥ ୭୩

ତାହାଙ୍କୁ ପୁଣ ପୁଣ କରି । ନିନ୍ଦା କରନ୍ତେ ଦୁହିଁଙ୍କରି ॥ ୭୪

କୁଷ୍ଠ ଜିହ୍ୱାରେ ଜାତ ନୋହି । ନ ଗଲେ ନରକକୁ ଦୁଇ ॥ ୭୫

୧୯ ଦୁଷ୍ପ୍ରାପ୍ୟ ଅଟେ ଧାମ ଯାର । କେମନ୍ତେ ସେ ବିଷ୍ଣୁର ଠାର ॥ ୭୬

ଲୟ[3] କୁ ଲଭିଲେ ବହନେ । ଦେଖନ୍ତେ ସର୍ବ ଲୋକମାନେ ॥ ୭୭

୨୦ ଅଦ୍ଭୁତ ଅଟଇ ଏ ରୀତି । ମୋ ଚିତ୍ତ[4] ଏହି କଥା ପ୍ରତି ॥ ୭୮

ଚଞ୍ଚଳ ହେଉଅଛି ବାୟେ[5] । ଦୀପସଂବନ୍ଧୀ ଶିଖାପ୍ରାଏ ॥ ୭୯

ଏଥିରେ କି ଅଛି କାରଣ । ତୁମ୍ଭେ ସର୍ବଜ୍ଞ ତାହା ଭଣ ॥ ୮୦

### ଶ୍ରୀବାଦରାୟଣିରୁବାଚ

୨୧ ରାଜାର ଶୁଣି ଏ ବଚନ । ନାରଦ ଋଷି ଭଗବାନ ॥ ୮୧

ଶୁଣନ୍ତେ ସଭାଲୋକମାନ । ରାଜାଙ୍କୁ କରି ସମ୍ବୋଧନ ॥ ୮୨

ମନରେ ହୋଇଣ ସଂତୋଷ । କଥାକୁ କଲେକ ପ୍ରକାଶ ॥ ୮୩

### ଶ୍ରୀନାରଦ ଉବାଚ

୨୨ ନିନ୍ଦାସତ୍କାର ତିରସ୍କାର । ସ୍ତୁତିନିମିତ୍ତେ କଳେବର ॥ ୮୪

କଳ୍ପିତ ହେ ନୃପ ! ଭୁବନେ । ପ୍ରକୃତିପୁରୁଷ-ଅଜ୍ଞାନେ ॥ ୮୫

୨୩ ହେ ନୃପ ! ଯେଉଁ ଅଭିମାନ । ସେ ଦେହେ ହୋଏ ଉତପନ ॥ ୮୬

୨୪ ମୁଁ, ମୋର ବୋଲିଣ ଯେମନ୍ତ । ବିଷମଭାବ ତେଣେ ଜାତ ॥ ୮୭

ଯେ ପୀଡ଼ା ତାଡ଼ନେ ନିନ୍ଦାରେ । ପ୍ରାଣୀମାନଙ୍କର ସଂଚରେ ॥ ୮୮

ଏ ଅଭିମାନବନ୍ଧ ଯହିଁ । ସେ ଦେହ ଯେବେ ବଧ ହୋଇ ॥ ୮୯

ତାହା' ବଧରେ ପ୍ରାଣୀଙ୍କର । ବଧ ହିଁ ସଂଭବେ ଆବର ॥ ୯୦

ଅଖିଳ ଆତ୍ମା ଯେ ଈଶ୍ୱର । କୈବଲ୍ୟଭାବରୁ ଯାହାର ॥ ୯୧

ସେରୂପେ ଅଭିମାନ ନାହିଁ । ପରର ଦଣ୍ଡକର୍ତ୍ତା ଯେହି ॥ ୯୨

ଏ ପରମେଶ୍ୱରହିଂସନ । କେବଣ ହେତୁରେ କଳ୍ପନ ॥ ୯୩

---

୧. ଆନ । ୨. ଦୁଷ୍ଟମତି । ୩. ଲୟ = ସାୟୁଜ୍ୟ । ୪. ବୁଦ୍ଧି । ୫. ବାୟେ = ବାୟୁଦ୍ୱାରା ।

| | | | | |
|---|---|---|---|---|
| ୨୫ | ସେ ଘେନି ବୈରାନୁବନ୍ଧରେ | । ଭୟରେ ଅବା ନିର୍ବୈରରେ | ।। | ୯୪ |
| | ସ୍ନେହେ କାମରେ ଅବା ମନ | । ନିଯୋଜେ, ନ ଦେଖଇ ଭିନ୍ନ | ।। | ୯୫ |
| ୨୬ | ବୈରାନୁବନ୍ଧରେ ଯେମନ୍ତ | । ଲଭେ ତନ୍ମୟତ୍ୱକୁ ମର୍ତ୍ତ୍ୟ | ।। | ୯୬ |
| | ସେରୂପେ ଭକ୍ତିଯୋଗେ ନୋହେ | । ମୋ ମନ ଏ ରୂପେ ନିଶ୍ଚୟେ[୧] | ।। | ୯୭ |
| ୨୭ | ଯେବଣ କୀଟକୁ ଭ୍ରମର | । ରୁନ୍ଧଇ କୁଟୀର ଭିତର | ।। | ୯୮ |
| | ସେ କ୍ରୋଧଭୟଯୋଗେ ତାକୁ | । ସ୍ମରନ୍ତେ ଲଭେ ତା' ରୂପକୁ | ।। | ୯୯ |
| ୨୮ | ମାୟାରେ ମନୁଜଆକାର | । ଅଟନ୍ତି ଯେ କୃଷ୍ଣ ଈଶ୍ୱର | ।। | ୧୦୦ |
| | ଏରୂପେ ତାହାଙ୍କର ଠାରେ | । ବଇରଭାବଚିନ୍ତନରେ | ।। | ୧୦୧ |
| | ପାପକୁ ବିନାଶ ଯେ କଲେ | । ଅନ୍ତେ ତାହାଙ୍କୁ ସେ ଲଭିଲେ | ।। | ୧୦୨ |
| ୨୯ | କାମରେ ଦ୍ୱେଷରେ ଭୟରେ | । ସ୍ନେହେ, ଭକ୍ତିରେ କୃଷ୍ଣଠାରେ | ।। | ୧୦୩ |
| | ଆବେଶ କରିଣ ମନକୁ | । ଛାଡ଼ି ସେ କାମାଦି ପାପକୁ | ।। | ୧୦୪ |
| | ଅନେକ ଲୋକ ତାହାଙ୍କର | । ଗତିକି ଲଭିଲେ ସତ୍ୱର | ।। | ୧୦୫ |
| ୩୦ | କାମରୁ ଗୋପାଳଯୁବତୀ | । ଭୟରୁ କଂସ ମହୀପତି | ।। | ୧୦୬ |
| | ଚୈଦ୍ୟାଦି ରାଜାଏ ଦ୍ୱେଷରୁ | । ବୃଷ୍ଣିଏ ସମ୍ବନ୍ଧବଶରୁ | ।। | ୧୦୭ |
| | ସ୍ନେହବଶରୁ କରି ତୁମ୍ଭେ | । ହେ ନୃପ ! ଭଗତିରୁ ଆମ୍ଭେ | ।। | ୧୦୮ |
| ୩୧ | ପୁରୁଷଠାରେ ପୁରୁଷର | । କାମସଂଭବ ଅପ୍ରକାର | ।। | ୧୦୯ |
| | ସେ ଘେନି ଭୟ ଦ୍ୱେଷ ଆଦି | । ଯେ ପାଞ୍ଚ ଭଜନ ପ୍ରସିଦ୍ଧି | ।। | ୧୧୦ |
| | ବିଷ୍ଣୁଙ୍କ ପ୍ରତି ବେଣ ଯେହି | । ସେ ପାଞ୍ଚମଧ୍ୟେ ନୋହେ କେହି | ।। | ୧୧୧ |
| | ସେ ଘେନି ନରକପତନ | । ଲଭିଲା ପୂର୍ବେ ନୃପ ବେଣ | ।। | ୧୧୨ |
| | ତେଣୁ କେହୁଣି ଉପାୟରେ | । ମନ ନିବେଶ କୃଷ୍ଣଠାରେ | ।। | ୧୧୩ |
| ୩୨ | ହେ ନୃପ ! ଦମଘୋଷସୁତ | । ଯେ ଦନ୍ତବକ୍ରନାମେ ଖ୍ୟାତ | ।। | ୧୧୪ |
| | ତୁମ୍ଭ ଜନନୀଭଗିନୀର | । ସେ ବେନି ଅଟନ୍ତି କୁମର | ।। | ୧୧୫ |
| | ସେ ବିଷ୍ଣୁପାରିଷଦବର | । ଶାପୁଁ ବ୍ରାହ୍ମଣମାନଙ୍କର | ।। | ୧୧୬ |
| | ବୈକୁଣ୍ଠସ୍ଥାନୁଁ ଚ୍ୟୁତ ହେଲେ | । ମର୍ତ୍ତ୍ୟଲୋକରେ ସମ୍ଭବିଲେ | ।। | ୧୧୭ |

ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୩୩ | ହରିର ଅଟନ୍ତି ଯେ ଦାସ | । ତାହାଙ୍କୁ କଲା ଯେ ସ୍ୱରଶ | ।। | ୧୧୮ |
| | ସେ ଶାପ କିରୂପେ କାହାର | । ଏକାନ୍ତ ଭକ୍ତ ଯେ ବିଷ୍ଣୁର | ।। | ୧୧୯ |
| | ଶ୍ରଦ୍ଧାକୁ ଅବିଷୟ ହୋଇ | । ତାହାଙ୍କ ଜନ୍ମ ଶୋଭା ପାଇ | ।। | ୧୨୦ |
| ୩୪ | ଜନ୍ମକୁ ଅଟେ ଯେ କାରଣ | । ପ୍ରାକୃତ ଦେହେନ୍ଦ୍ରିୟପ୍ରାଣ | ।। | ୧୨୧ |
| | ତେଣେ ଅଟନ୍ତି ଯେ ବିହୀନ | । ବୈକୁଣ୍ଠପୁରବାସୀ ଜନ | ।। | ୧୨୨ |
| | ତାଙ୍କର ପ୍ରାକୃତ ଦେହରେ | । ସମ୍ବନ୍ଧସଂବନ୍ଧ ଯହିଁରେ | ।। | ୧୨୩ |

୧. ନିଶ୍ଚୟେ = ନିଶ୍ଚିତ କରେ ।

ଏମନ୍ତ ଅଟେ ଯେ ଆଖ୍ୟାନ । ହୁଅ କହିବାକୁ ଭାଜନ ॥ ୧୨୪

ଶ୍ରୀନାରଦ ଉବାଚ

୩୫ ସନକ ଆଦି ଏକଦିନେ । ବ୍ରହ୍ମାଙ୍କ ପୁତ୍ର ତ୍ରିଭୁବନେ ॥ ୧୨୫
ଇଚ୍ଛାରେ କରନ୍ତେ ଭ୍ରମଣ । ବିଷ୍ଣୁଲୋକକୁ ଗଲେ ପୁଣ ॥ ୧୨୬
୩୬ ଯେ ମରୀଚ୍ୟାଦି ପୂର୍ବେ ଜାତ । ତାଙ୍କଠୁଁ ପୂର୍ବେ ଯେ ସଂଭୂତ ॥ ୧୨୭
ଛ' ପଞ୍ଚ ବରଷ କୁମର । ସମ ଅଟନ୍ତି ଦିଗମ୍ବର ॥ ୧୨୮
ତାହାଙ୍କୁ ମଣି ଶିଶୁପ୍ରାୟେ । ନିଷେଧ କଲେ ଦ୍ୱାରୀ ଦୁହେଁ ॥ ୧୨୯
୩୭ ସେମାନେ କୁପିତ ହୋଇଲେ । ଏରୂପେ ତାଙ୍କୁ ଶାପ ଦେଲେ ॥ ୧୩୦
ରଜରେ ତମରେ ରହିତ । ବିଷ୍ଣୁର ପାଦମୂଳ ଖ୍ୟାତ ॥ ୧୩୧
ଏଥିରେ ଥିବାକୁ ଭାଜନ । ନୁହଁ ହେ ତୁମ୍ଭେ ବେନି ଜନ ॥ ୧୩୨
ଏଣୁ ହେ ମୂର୍ଖେ ବେଗେ ଯାଅ । [1]ପାପିଷ୍ଠ ଦୈତ୍ୟଯୋନି ପାଅ ॥ ୧୩୩
୩୮ ଏମନ୍ତ ରୂପେ ଶାପ ପାଇ । ସ୍ୱସ୍ଥାନୁଁ ପଡ଼ନ୍ତେ ସେ ଦୁଇ ॥ ୧୩୪
କୃପାଳୁ ବ୍ରହ୍ମାର ନନ୍ଦନ । ବୋଇଲେ ପୁଣ ଏ ବଚନ ॥ ୧୩୫
ତିନି ଜନ୍ମରେ ତୁମ୍ଭ ସ୍ଥାନ । ପ୍ରାପତି ହୋଇବ କହ୍ନନ ॥ ୧୩୬
୩୯-୪୦ ସେ ଦୁହେଁ ହେଲେ ଦିତିସୁତ । ଦୈତ୍ୟଦାନବରେ ବନ୍ଦିତ ॥ ୧୩୭
ହିରଣ୍ୟକଶିପୁ ଅଗ୍ରଜ[2] । ହିରଣ୍ୟାକ୍ଷ ତାର ଅନୁଜ ॥ ୧୩୮
ହିରଣ୍ୟକଶିପୁକୁ ହରି । ମାଇଲେ ସିଂହରୂପ ଧରି ॥ ୧୩୯
ଧରନ୍ତେ ବରାହଶରୀର । ମହୀ-ଉଦ୍ଧାରେ ଚକ୍ରଧର ॥ ୧୪୦
ଯେ ହିରଣ୍ୟାକ୍ଷ ନାମେ ଖ୍ୟାତ । ତାହାକୁ କଲେକ ନିହତ ॥ ୧୪୧
୪୧-୪୨ ପ୍ରହ୍ଲାଦ ନାମରେ ବିଦିତ । କେଶବପ୍ରିୟ ଯେଉଁ ସୁତ ॥ ୧୪୨
ହିରଣ୍ୟକଶିପୁ ତାହାକୁ । ମନ କରନ୍ତେ ମାରିବାକୁ ॥ ୧୪୩
ମରଣନିମିତ୍ତରେ ନାନା । ପ୍ରକାରେ ରଚିଲା ଯାତନା ॥ ୧୪୪
ସମସ୍ତଭୂତ ଆତ୍ମଭୂତ । ସମଦରଶୀ ଯେଉଁ ସୁତ ॥ ୧୪୫
ଯେ ଅଟେ ଦ୍ୱେଷାଦିରହିତ । ବିଷ୍ଣୁର ତେଜରେ ବ୍ୟାପତ[3] ॥ ୧୪୬
ତାହାକୁ ନାନା ଉପାୟରେ । ଶକ୍ତ ନୋହିଲା ମାରିବାରେ ॥ ୧୪୭
୪୩ ସେ ଦୁହେଁ ପୁଣ ତଦନ୍ତରେ । ଜନ୍ମିଲେ କେଶିନୀ-ଉଦରେ ॥ ୧୪୮
ବିଶ୍ରବାଋଷିଙ୍କର ସୁତ । ରାବଣ କୁମ୍ଭକର୍ଣ୍ଣ ଖ୍ୟାତ ॥ ୧୪୯
ହୋଇଲେ ରାକ୍ଷସଶରୀର । ସକଳଲୋକତାପକର ॥ ୧୫୦
୪୪ ରାଘବ ହୋଇଣ ତହିଁରେ । ଶାପମୁକତିନିମିତ୍ତରେ ॥ ୧୫୧
ତାହାଙ୍କୁ କଲେକ ସଂହାର । ହେ ନୃପ ! ବୀର୍ଯ୍ୟ ଯେ ରାମର ॥ ୧୫୨
ତୁମ୍ଭେ ତା' କରିବ ଶ୍ରବଣ । ମାର୍କଣ୍ଡେୟର ମୁଖୁଁ ପୁଣ ॥ ୧୫୩

---

୧. ଅସୁର ଜନ୍ମ ତୁମ୍ଭେ ପାଅ ।　　୨. ଦନୁଜ ।　　୩. ବ୍ୟାପିତ ।

| | | | | |
|---|---|---|---|---|
| ୪୫ | ତୁମ୍ଭ ମାତାର ସ୍ୱସାସୁତ | । କ୍ଷତ୍ରିୟ ହୋଇଲେ ସେ ଜାତ | ॥ | ୧୫୪ |
| | ବିଷ୍ଣୁର ଚକ୍ରେ ପାପ ହତ | । ଏବେ ସେ ହୋଇଲେ ମୁକତ | ॥ | ୧୫୫ |
| ୪୬ | ତୀବ୍ର ବଇରାନୁବନ୍ଧନ | । ସେ ଦୁହିଁଙ୍କରି ଯେଉଁ ଧ୍ୟାନ | ॥ | ୧୫୬ |
| | ବିଷ୍ଣୁସାମ୍ୟକୁ ତେଣେ ଗଲେ | । ବିଷ୍ଣୁର ପାରୁଶେ ମିଳିଲେ | ॥ | ୧୫୭ |
| | ବିଷ୍ଣୁର ପାରିଷଦ ଦୁଇ | । ରହିଲେ ପୂର୍ବପ୍ରାୟ ହୋଇ | ॥ | ୧୫୮ |

ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୪୭ | ମହାତ୍ମା ପ୍ରିୟ ଯେଉଁ ସୁତ | । ତାଠାରେ ଦ୍ୱେଷ କି ନିମିତ୍ତ | ॥ | ୧୫୯ |
| | ସମ୍ଭବ ହୋଇଲା ତାତର | । ହେ ବିପ୍ର ! ଯେଣେ ପ୍ରହ୍ଲାଦର | ॥ | ୧୬୦ |
| | ଅଚ୍ୟୁତଠାରେ ଏକଚିତ୍ତ | । ସେକଥା କର ମୋତେ ଖ୍ୟାତ | ॥ | ୧୬୧ |
| | ଶ୍ରୀକୃଷ୍ଣଚରଣକମଳେ | । ମନକୁ ନିବେଶି ନିଶ୍ଚଳେ | ॥ | ୧୬୨ |
| | ସପ୍ତମସ୍କନ୍ଧଭାଗବତ | । ଭାଷାପ୍ରବନ୍ଧେ କଲି ଗୀତ | ॥ | ୧୬୩ |
| | କୌତ୍ସସକୁଳରେ ଜନମ | । ବ୍ରାହ୍ମଣ ଦୀନବନ୍ଧୁ ନାମ | ॥ | ୧୬୪ |
| | ସାଧୁଙ୍କ ପଠନନିମିତ୍ତେ | । ନିର୍ମାଣ କଲି ଏକଚିତ୍ତେ | ॥ | ୧୬୫ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଶ୍ରୀଯୁଧିଷ୍ଠିରନାରଦସଂବାଦୋ
ନାମ ପ୍ରଥମୋଽଧ୍ୟାୟଃ ॥

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ବିଷ୍ଣୁରୋଷେଣ ଲୋକଂ ବିପ୍ଲାବ୍ୟ ଦାନବୈଃ ।
ତତ୍ତ୍ୱତୋ ଭ୍ରାତୃପୁତ୍ରାଦୀନିତିହାସୈରସାନ୍ତ୍ୱୟତ୍ ॥ ୧

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୧ | ଏମନ୍ତରୂପେ ହେ ରାଜନ | । ବରାହରୂପୀ ଭଗବାନ | ॥ | ୧ |
| | ଭ୍ରାତାକୁ ବିନାଶ କରନ୍ତେ | । ହିରଣ୍ୟକଶିପୁ ତଦନ୍ତେ | ॥ | ୨ |
| | ରୋଷେ ଶୋକରେ ଅତିଶୟେ | । ତାପକୁ ଲଭିଲା ହୃଦୟେ | ॥ | ୩ |
| ୨ } | ରୋଷରେ ହୋଇଅଛି ପୂର୍ଣ୍ଣ | । ଓଷ୍ଠକୁ କରିଛି ଦଂଶନ | ॥ | ୪ |
| ୩ } | କୋପରେ ଅତିଶୟ ହୋଇ | । ଜଳୁଛନ୍ତି ଯେ ଚକ୍ଷୁ ଦୁଇ | ॥ | ୫ |
| | ତେଣେ କରନ୍ତେ ଆଲୋକନ | । ଧୂମରଂ[1] ବର୍ଣ୍ଣ ଯେ ଗଗନ | ॥ | ୬ |
| | କରାଳ ଦଂଷ୍ଟ୍ରମାନଙ୍କରେ | । ଯେ ଯୁକ୍ତ ଉଗ୍ରଦୃଷ୍ଟି ସ୍ଫୁରେ | ॥ | ୭ |
| | ତେଣେ ଦୁଷ୍ପ୍ରେକ୍ଷ୍ୟ ତା' ବଦନ | । କହିଲା ଏମନ୍ତ ବଚନ | ॥ | ୮ |

୧. ଧୂମର = ଧୂମ୍ର ।

ଅସୁରମାନଙ୍କୁ ସଭାରେ । ଶୂଳକୁ ଧରି ନିଜ କରେ ।।
୪-୬ ଭୋ ଭୋ ଦାନବଦୈତ୍ୟେ ଆର । ଦ୍ୱିମୂର୍ଦ୍ଧ ତ୍ରିଅକ୍ଷ[1] ଶମ୍ବର ।।
ହେ ଶତବାହୁ ହୟଗ୍ରୀବ । ନମୁଚି ହେ ପାକ ଦାନବ ।।
ଇଲ୍ୱଳ ବିପ୍ରଚିତ୍ତି ଦୁଇ । ପୁଲୋମା ଶକୁନାଦି ହୋଇ[2] ।।
ସମସ୍ତେ ମୋ' ବଚନ ଶୁଣ । କର ବେଗେ ଅବିଳମ୍ବେଣ ।।
ଯେ ସର୍ବଭୂତେ ସମ ହରି । ତାକୁ ଭଜନେ ବଶ କରି ।।
ପୃଷ୍ଠସହାୟ କରି ପାଇ । ପ୍ରିୟ ସୁହୃଦ ଯେ ମୋ' ଭାଇ ।।
ତାହାକୁ କରାଇଲେ ନାଶ । ମୋ କ୍ଷୁଦ୍ରଶତ୍ରୁ ଯେ ତ୍ରିଦଶ ।।
୭-୧୦ ତ୍ୟକ୍ତସ୍ୱଭାବ ତେଜୋମୟ । ମାୟାରେ ହୋଇଛି ବରାହ ।।
ଅସ୍ଥିରଚିତ୍ତ ବାଳପ୍ରାୟେ । ଭଜିଲା ଲୋକକୁ ଗୋଡ଼ାଏ ।।
ମୋହର ଶୂଳେ ଗ୍ରୀବା ତାର । ବିଭିନ୍ନ ହୁଅନ୍ତେ ସତ୍ୱର ।।
ରୁଧିରପ୍ରିୟ ଯେ ମୋ ଭାଇ । ତାହାକୁ ବ୍ୟଥାହୀନ ହୋଇ ।।
ବହୁତ ରୁଧିରେ ତର୍ପଣ । କରିବି ଯେଉଁ କାଳେ ପୁଣ ।।
ବ୍ରହ୍ମକ୍ଷତ୍ରରେ[3] ବୃଦ୍ଧି ହୋଇ । ସୁଖୀ ହୋଇଛି ଯେଉଁ ମହୀ ।।
ତହିଁକି ସେ କାଳପର୍ଯ୍ୟନ୍ତେ । ଗମନ କର ହେ, ସମସ୍ତେ ।।
କୂଟ ଅଟଇ ଯା' ଚରିତ । ନଷ୍ଟ ହୁଅନ୍ତେ ସେ ଅଚ୍ୟୁତ ।।
ସେ ବିଷ୍ଣୁ ପ୍ରାଣ ଯାହାଙ୍କର । ସ୍ୱୟେଂ ମରିବେ ସେ ଅମର ।।
ବୃକ୍ଷେ ହୁଅନ୍ତେ ଛିନ୍ନମୂଳ । ଯେହ୍ନେ ଶୁଖନ୍ତି ତାର ଡାଳ ।।
ତପସ୍ୟା ଯଜ୍ଞ ବ୍ରତ ଦାନ । ସ୍ୱାଧ୍ୟାୟବନ୍ତ ଯେତେ ଜନ ।।
ସେ ଲୋକମାନଙ୍କୁ ବିନାଶ । କର ହେ ସକଳରାକ୍ଷସ ।।
୧୧ ବ୍ରାହ୍ମଣଙ୍କର କ୍ରିୟା ଯେହି । ବିଷ୍ଣୁର ମୂଳ ଅଟେ ସେହି ।।
ଯଜ୍ଞସ୍ୱରୂପୀ ଧର୍ମମୟ । ପୁରୁଷ ଯେଣୁ ସେ ନିଶ୍ଚୟ ।।
ଦେବତା ଋଷି ପିତୃ ଭୂତ । ଧର୍ମର ପରାୟଣ ମତ ।।
୧୨ ଧେନୁ ଦେବତା ଦ୍ୱିଜଜନ । ବର୍ଣ୍ଣ ଆଶ୍ରମ କ୍ରିୟାମାନ ।।
ଯେବଣ ଯେବଣ ଦେଶରେ । ଥିବେ ଏମାନେ ନିରନ୍ତରେ ।।
ସେ ସେ ଦେଶକୁ ତୁମ୍ଭେ ଯାଅ । ଛେଦନ କର ପୋଡ଼ି ଦିଅ ।।
୧୩ ସ୍ୱାମୀର ଆଜ୍ଞା ଏ ପ୍ରକାରେ । ଶିରରେ ଘେନିଣ ଆଦରେ ।।
ପ୍ରଜାମାନଙ୍କର କଦନ । ସେରୂପେ କଲେ ସେ ବିଧାନ ।।
ପ୍ରାଣୀମାନଙ୍କ କଦନରେ । ପ୍ରିୟ ଅଟନ୍ତି ସେ ଅସୁରେ ।।
୧୪ ଯେ ପୁର ହାଟ ଆଦିଯୁତ । ଯେ ଗ୍ରାମ ତହିଁରେ ରହିତ ।।
ଯେ ବ୍ରଜ ଧେନୁଙ୍କର ସ୍ଥାନ । ଉଦ୍ୟାନ ଯେ କୃତ୍ରିମ ବନ ।।

୧. ତ୍ରିଅକ୍ଷ = ତ୍ର୍ୟକ୍ଷ । ୨. ଯେହି । ୩. କ୍ଷତ୍ରିଏ । (ତୁଂ ବ୍ରହ୍ମକ୍ଷତ୍ରସମେଧିତାମ୍) ।

ଯେ କ୍ଷେତ୍ର ଶସ୍ୟଜନ୍ମସ୍ଥାନ । ଆରାମ ଅକୃତ୍ରିମ ବନ ॥ ୪୦
ଆଶ୍ରମ ଋଷିମାନଙ୍କର । ରତ୍ନାଦିଜନ୍ମର ଆକର ॥ ୪୧
ଯେ ଖେଟ କୃଷୀବଳସ୍ଥାନ । ଖର୍ବଟ ଗିରିଗ୍ରାମମାନ ॥ ୪୨
ଯେ ଘୋଷ ଆଭୀରଙ୍କ ସ୍ଥାନ । ରାଜାଦିସ୍ଥାନ ଯେ ପତ୍ତନ ॥ ୪୩
ମିଳିଣ ଅସୁରେ ସେମାନ । ଭାଙ୍ଗିଲେ କଲେକ ଦହନ ॥ ୪୪
୧୫ କେହୁ ଖନିତ୍ରରେ ପ୍ରାକାର । ଭାଙ୍ଗିଲେ ସେତୁ ପୁରଦ୍ୱାର ॥ ୪୫
ପରଶୁହସ୍ତେ କେ ଛେଦନ । କଲେ ଜୀବିକାବୃକ୍ଷମାନ ॥ ୪୬
ଆନ ଅସୁରମାନେ ପୁଣ । ଜ୍ୱଳିତ ଉଲ୍ମୁକଂ[1] ଘେନିଣ ॥ ୪୭
ଯେ ପ୍ରଜାମାନଙ୍କ ସଦନ । ଦଗଧ କଲେକ ସେମାନ ॥ ୪୮
୧୬ ଦଇତେନ୍ଦ୍ରର ଅନୁଚରେ । ଲୋକଙ୍କୁ ଏମନ୍ତ ପ୍ରକାରେ ॥ ୪୯
ଯେ କଥା ଅଟେ ଅପକାର । ତାହା କରନ୍ତେ ବାରମ୍ବାର ॥ ୫୦
ଅଭାବୁଁ ଯଜ୍ଞଭାଗଙ୍କର । ସ୍ୱର୍ଗକୁ ଛାଡ଼ିଣ ସତ୍ୱର ॥ ୫୧
ଭୂମିରେ ଅଲକ୍ଷିତ ହୋଇ । ଭ୍ରମିଲେ ସୁରମାନେ ଯାଇ ॥ ୫୨
୧୭ ମରଣ ଲଭିଲା ଯେ ଭାଇ । ତାର ନିମିତ୍ତେ ଦୁଃଖୀ ହୋଇ ॥ ୫୩
ପ୍ରେତଉଦକ ଶ୍ରାଦ୍ଧ ଆଦି । ହିରଣ୍ୟକଶିପୁ ସଂପାଦି ॥ ୫୪
ଯେ ଥିଲେ ଭ୍ରାତୃପୁତ୍ରମାନ । ତାଙ୍କୁ କରାଇଲା ସାନ୍ତ୍ୱନ ॥ ୫୫
୧୮ ଯେ ଧୃଷ୍ଟି[2] ଶକୁନି ଶମ୍ବର । ଯେ ଭୂତସଂତାପନ ଆର ॥ ୫୬
୧୯ ଯେ ବୃକ କାଳନାଭ ଦୁଇ । ଯେ ମହାନାଭ ଆର ଭାଇ ॥ ୫୭
ଯେ ହରିଶ୍ମଶ୍ରୁ ଉତକର[3] । ଋଷଭାନୁ[4] ମାତା ତାଙ୍କର ॥ ୫୮
ନିଜ ଜନନୀ ଯେବା ଦିତି । କୋମଳବାକ୍ୟେ ଦୈତ୍ୟପତି ॥ ୫୯
ଏମନ୍ତ କହିଲା ତାହାଙ୍କୁ । ଜାଣଇଁ ଯେ ଦେଶକାଳକୁ ॥ ୬୦

ହିରଣ୍ୟକଶିପୁରୁବାଚ

୨୦ ହେ ମାତା ହେ ବଧୂ ହେ ସୁତେ । ତୁମ୍ଭେ ବୀରକୁ ନିଜ ଚିତ୍ତେ ॥ ୬୧
ଶୋଚନା କରିବା ନିମିତ୍ତେ । ଭାଜନ ନୁହ କଦାଚିତେ ॥ ୬୨
ରିପୁସମ୍ମୁଖେ ବୀରଙ୍କର । ମରଣବାଞ୍ଛା ଅଟେ ସାର ॥ ୬୩
୨୧ ଯେ ପୂର୍ବସଂଚିତ କର୍ମରେ । ଯୁକ୍ତ ହୁଅନ୍ତି ଏକଠାରେ ॥ ୬୪
ସ୍ୱକର୍ମମାନଙ୍କରେ ପୁଣି । ଲଭନ୍ତି ବିଚ୍ଛେଦକୁ ପ୍ରାଣୀ ॥ ୬୫
ସେମାନଙ୍କର ଏ ଜଗତେ । ଯେଉଁ ସଂବାସ ହେ ସୁବ୍ରତେ ॥ ୬୬
ପାନୀୟ ଶାଳାରେ ଯେମନ୍ତ । କ୍ଷଣେ ବସନ୍ତି ସେ ତେମନ୍ତ ॥ ୬୭
୨୨ ଆତ୍ମା ନିର୍ମଳ ସର୍ବଗତ । ମୃତ୍ୟୁ-ଅପକ୍ଷୟରହିତ ॥ ୬୮

---

୧. ଉଲ୍ମୁକ = ନିଆଁ ବଡ଼ିଆ । ୨. ଧୃଷ୍ଟ ।
୩. ଉତକର = ଉତ୍କର (ଉତ୍କଚ; ମୂଳ ପାଠାନ୍ତର) ୪. ଋଷାଭାନୁ ।

| | | | | |
|---|---|---|---|---|
| | ସର୍ବଙ୍କ ଦେହାଦିରୁ ପର | ଯେ ଦୁଃଖ ସୁଖ ଆଦି ଆର | ॥ | ୬୯ |
| | ଆପଣା ଅବିଦ୍ୟାରେ ତାକୁ | ଘେନନ୍ତେ ଧରେ ଶରୀରକୁ | ॥ | ୭୦ |
| ୨୩ | ସଲିଳ ଚଳନ୍ତେ ଯେସନ | ଚଳିଲା ପ୍ରାଏ ବୃକ୍ଷମାନ | ॥ | ୭୧ |
| | ଚକ୍ଷୁ ଭ୍ରମନ୍ତେ ଯେହ୍ନେ ମହୀ | ଚଳିଲା ପ୍ରାୟକ ଦିଶଇ | ॥ | ୭୨ |
| ୨୪ | ହେ ଭଦ୍ରେ ! ମନ ଏହି ମତେ | ଗୁଣରେ ଭ୍ରମକୁ ଲଭନ୍ତେ | ॥ | ୭୩ |
| | ଯେ ଆତ୍ମା ପରିପୂର୍ଣ୍ଣ ହୋଇ | ମନସାମ୍ୟକୁ ସେ ଲଭଇ | ॥ | ୭୪ |
| | ଯଦ୍ୟପି ଦେହହୀନ ହୋଏ | ଦିଶଇ ଦେହବନ୍ତ ପ୍ରାଏ | ॥ | ୭୫ |
| ୨୫ } | ଆତ୍ମା-ଅନ୍ୟଥା ଭାବ ଏହି | ଅଦେହେ ଦେହଚିନ୍ତା ଯେହି | ॥ | ୭୬ |
| ୨୬ } | ପ୍ରିୟମାନଙ୍କେ ଯେ ବିୟୋଗ | ଅପ୍ରିୟମାନଙ୍କେ ସଂଯୋଗ | ॥ | ୭୭ |
| | ବିବିଧ ଗର୍ଭରେ ପ୍ରବେଶ | ଜନମ ଯେ ପୁଣ ବିନାଶ | ॥ | ୭୮ |
| | ଏ ଚିନ୍ତା ନାନାବିଧ ଶୋକ | ନିରନୁସନ୍ଧି[୧] ଅବିବେକ | ॥ | ୭୯ |
| ୨୭ | ଏହି ବିଷୟେ ପୁରାତନ | ଚରିତ ପ୍ରକାଶନ୍ତି ଜନ | ॥ | ୮୦ |
| | ଯମର ପ୍ରେତବନ୍ଧୁଙ୍କର | ସମ୍ବାଦ, କର ତା ଗୋଚର | ॥ | ୮୧ |
| ୨୮ | ଉଶୀନରରେ ନରପତି | ସୁଯଜ୍ଞ ହୋଇ ତାର ଖ୍ୟାତି | ॥ | ୮୨ |
| | ଯୁଦ୍ଧେ ସେ ରାଜାକୁ ନିଧନ | କଲେ ତାହାର ଶତ୍ରୁଜନ | ॥ | ୮୩ |
| | ତାର ସମୀପକୁ ଆବୋରି | ରହିଲେ ଜ୍ଞାତିମାନେ ପୂରି | ॥ | ୮୪ |
| ୨୯ | ରତ୍ନକବଚ ତାର ଶୀର୍ଣ୍ଣ | ଛିଡ଼ିଲା ଭୂଷାମାଳାମାନ | ॥ | ୮୫ |
| | ଶରମାନଙ୍କରେ ହୃଦୟ | ଭିନ୍ନ ହୋଇଛି ଅତିଶୟ | ॥ | ୮୬ |
| | ରକ୍ତରେ ଲିପିତ ଯେ ହୋଇ | ରଣଭୂମିରେ ଅଛି ଶୋଇ | ॥ | ୮୭ |
| ୩୦ | ଫିଟିଛି ଯାର କେଶମାନ | ଧ୍ୱସ୍ତ ହୋଇଛି ଯା' ନୟନ | ॥ | ୮୮ |
| | ଆପଣା ଓଷ୍ଠକୁ କ୍ରୋଧରେ | ଦନ୍ତେ ଦଂଶିଛି ଯେ ନିର୍ଭରେ | ॥ | ୮୯ |
| | ଧୂଳି ଲାଗିବାରେ ମଳିନ | ହୋଇଛି ଯା' ମୁଖନଳିନ | ॥ | ୯୦ |
| | ଯାର ଆୟୁଧ ଭୁଜ ଦୁଇ | ଛିଡ଼ିଣ ପଡ଼ିଅଛି ଭୂଇଁ | ॥ | ୯୧ |
| ୩୧ | ଯେ ଉଶୀନରପୁରନ୍ଦର | ପତି ଅଟନ୍ତି ଆପଣାର | ॥ | ୯୨ |
| | ଦୈବେ ତେମନ୍ତ ଅଛି ହୋଇ | ପତ୍ନୀଏ ତାର ତାକୁ ଚାହିଁ | ॥ | ୯୩ |
| | ଦୁଃଖିତ ହୋଇ ନିଜକରେ | ଉରକୁ ତାଡ଼ନ୍ତେ ନିର୍ଭରେ | ॥ | ୯୪ |
| | ଭୋ ନାଥ ! ଲଭିଲୁଁ ମରଣ | ବୋଲନ୍ତେ ଏହା ପୁଣ ପୁଣ | ॥ | ୯୫ |
| | ତାହାର ପାଦସମୀପରେ | ପଡ଼ିଲେ ସକଳ ଦିଗରେ | ॥ | ୯୬ |
| ୩୨ | କୁଚକୁଙ୍କୁମରେ ଅରୁଣ | ଯେ ନେତ୍ରଜଳ ତେଣେ ପୁଣ | ॥ | ୯୭ |
| | ସିଞ୍ଚନ୍ତେ ନିଜ ବଲ୍ଲଭର | ପାଦପଦ୍ମକୁ ନିରନ୍ତର | ॥ | ୯୮ |
| | ଶୁଣିଲା ଲୋକଙ୍କର ଶୋକ | ବଢ଼ାନ୍ତେ କାନ୍ଦନ୍ତେ ଅଧିକ | ॥ | ୯୯ |

୧. ନିରନୁସନ୍ଧି = (ବିବେକର) ବିସ୍ମୃତି ।

ଫିଟିଛି କେଶ ଆଭରଣ । ବିଳାପ ଆରମ୍ଭିଲେ ପୁଣ ।। ୧୦୦
୩୩ ହେ ପ୍ରଭୁ ! କୃପା ନାହିଁ ଯାର । ସେ ଧାତା ତୁମ୍ଭଙ୍କୁ ଆମ୍ଭର ।। ୧୦୧
ନେତ୍ରକୁ ଗୋଚର ଯେ ନୋହି । ସେ ଦଶାକୁ ସେ ଅଛି ନେଇ ।। ୧୦୨
ଯେ ତୁମ୍ଭେ ଉଶୀନରଗତ । ପ୍ରାଣୀଙ୍କ ବୃତ୍ତିଦାତା ଖ୍ୟାତ ।। ୧୦୩
ସେ ତୁମ୍ଭେ ଏବେ ତାହାଙ୍କର । ଶୋକକୁ କରୁଛ ଅପାର ।। ୧୦୪
ଏମନ୍ତ କଥାକୁ ନିର୍ମାଣ । କଲା ଯେବଣ ଧାତା ପୁଣ ।। ୧୦୫
୩୪ ହେ ନୃପ ! ତୁମ୍ଭେ ମିତ୍ରବର । ବିଶେଷେ ଜାଣ ଉପକାର ।। ୧୦୬
ତୁମ୍ଭ ବିହୁନେ ଆମ୍ଭେମାନେ । କେମନ୍ତେ ରହିବୁଁ ଜୀବନେ ।। ୧୦୭
ହେ ବୀର ! ପାଦଯୁଗେ ତୋର । ସେବା ଯେ କରୁଁ ନିରନ୍ତର ।। ୧୦୮
ଆମ୍ଭଙ୍କୁ ତୋ' ଅନୁଗମନ । ଦିଅ ତୁ ଯିବୁ ଯେଉଁ ସ୍ଥାନ ।। ୧୦୯
୩୫ ଯେବଣ ପତି ଅଛି ମରି । ତାହାକୁ ଆଲିଙ୍ଗନ କରି ।। ୧୧୦
ଏରୂପେ ରୋଦନ କରନ୍ତେ । ତାକୁ ଦାହକୁ ନ ଛାଡ଼ନ୍ତେ ।। ୧୧୧
ଅସ୍ତଗିରିକି ଦିବାକର । ଗମନ କଲେ ତଦନ୍ତର ।। ୧୧୨
୩୬ ପ୍ରେତର ଯେତେ ବନ୍ଧୁଜନ । ଶୁଣି ସେମାନଙ୍କ ରୋଦନ ।। ୧୧୩
ସ୍ୱୟେଂ ବାଳକ ହୋଇ ତହିଁ । ଯମ କହିଲେ ତାଙ୍କୁ ଯାଇଁ ।। ୧୧୪

ଶ୍ରୀଯମ ଉବାଚ

୩୭ ଜନ୍ମମରଣାଦି ପ୍ରକାର । କରିଅଛନ୍ତି ଯେ ଗୋଚର ।। ୧୧୫
ବୟସେ ଅଟନ୍ତି ମହତ । ଏହାଙ୍କ ମୋହ ଅଦଭୁତ ।। ୧୧୬
[1]ଯେଉଁ ଅବ୍ୟକ୍ତୁଁ ଆସିଥିଲା । ତହିଁକି ଯେ ମନୁଷ୍ୟ ଗଲା ।। ୧୧୭
ତା' ସମ ମୃତ୍ୟୁଧର୍ମ ବହି । ତାକୁ ଶୋଚନ୍ତି[2] ବ୍ୟର୍ଥ ଏହି ।। ୧୧୮
୩୮ ଅତ୍ୟନ୍ତ ଧନ୍ୟ ଆମ୍ଭେମାନେ । ଯେଉଁ ନ୍ୟାୟରୁ ଏ ଭୁବନେ ।। ୧୧୯
ଛାଡ଼ି ଅଛନ୍ତି ମାତା ପିତା । ତଥାପି ନ କରୁଛୁଁ ଚିନ୍ତା ।। ୧୨୦
ଆମ୍ଭେ ଦୁର୍ବଳ ହୋଇଲେ ହେଁ । ଖାଉ ନାହାନ୍ତି ବୃକାଦିଏ ।। ୧୨୧
ଗର୍ଭରେ କରେ ଯେ ରକ୍ଷଣ । ଏ ବିଶ୍ୱ[3] ରଖଇ ସେ ପୁଣ ।। ୧୨୨
୩୯ ଅବ୍ୟୟ ଅଟେ ଯେ ଈଶ୍ୱର । ଇଚ୍ଛାଏ ସର୍ଜେ ଏ ସଂସାର ।। ୧୨୩
ଯେ ଏହା ପାଳନ କରଇ । ପ୍ରାନ୍ତରେ ପୁଣ ସଂହରଇ ।। ୧୨୪
ହେ ସ୍ତିରୀମାନେ ! ଚରାଚର । ବୋଲନ୍ତି ତାର କ୍ରୀଡ଼ାଘର ।। ୧୨୫
ଏଣୁ ସେ ସଂହାରପାଳନେ । ପ୍ରଭୁ ଅଟଇ ଏ ଭୁବନେ ।। ୧୨୬
୪୦ ଯାକୁ ଈଶ୍ୱର ରକ୍ଷା କରେ । ପଥେ ପଡ଼ିଲେହେଁ ନ ମରେ ।। ୧୨୭

---

୧. ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।
ଅବ୍ୟକ୍ତନିଧନାନ୍ୟେବ ତତ୍ର କା ପରିଦେବନା ।। (ଗୀତା)

୨. ଶୋଚନା । ୩. ଅବଶ୍ୟ ।

ଯେବେ ସେ ବିନାଶ କରଇ । ନାଶ ହୁଅଇ ଗୃହେ ଥାଇ ।। ୧୨୮
ବନେ ଅନାଥ ହୋଇ ଥାଇ । ଜୀଏ, ସେ ଯେବେ ଥାଏ ତାହିଁ ।। ୧୨୯
ସେ ଯେବେ ଉପେକ୍ଷା କରଇ । ଗୃହେ ଶୋଇଲେ ନ ଜୀଅଇ ।। ୧୩୦
୪୧ ନିଜ କାରଣଭୂତ ହୋଇ । ଲିଙ୍ଗଶରୀର ଯେହି ଯେହି ।। ୧୩୧
ତହିଁକି ନିମିତ୍ତ ହୋଇଣ । ଯେ କର୍ମମାନେ ଥାନ୍ତି ପୁଣ ।। ୧୩୨
କାଳେ ଦେବାଦି ଦେହମାନ । ତେଣେ ହୁଅନ୍ତି ଉତପନ ।। ୧୩୩
ପୁଣି ହୁଅନ୍ତି ସେ ନିହତ । ଯେ ଆତ୍ମା ଦେହେ ହୋଏ ସ୍ଥିତ ।। ୧୩୪
ଯେ ଜନ୍ମଆଦି ଦେହଗୁଣ । ତେଣେ ସେ ଯୁକ୍ତ ନୋହେ ପୁଣ ।। ୧୩୫
ଯେଣୁ ଦେହରୁ ଆନ ହୋଇ । ସେ ଆତ୍ମା ବିଦିତ ଅଟଇ ।। ୧୩୬
୪୨ ମୋହରୁ ଜାତ ପୁରୁଷର । ଏ ଦେହ ଆତ୍ମାରୁ ଇତର ।। ୧୩୭
ଯେଣୁ ଏ ଗୃହପ୍ରାୟ ହୋଇ । ଦିଶୁଛି ଭୌତିକ ଅଟଇ ।। ୧୩୮
ସଲିଳପରମାଣୁଙ୍କରେ । ବୁଦ୍‌ବୁଦ ଯେସନେ ପ୍ରଚରେ ।। ୧୩୯
ପାର୍ଥିବ ପରମାଣୁଚୟେ । ଘଟାଦି ଯେହ୍ନେ ଜାତ ହୋଏ ।। ୧୪୦
ତୈଜସ ପରମାଣୁବୃନ୍ଦେ । ଯେହ୍ନେ କୁଣ୍ଡଳ ଆଦି ଉଦେ ।। ୧୪୧
ସେମାନେ ପୁଣ ନାଶ ଯାନ୍ତି । ଏରୂପେ ବିକାରସଂତତି ।। ୧୪୨
ସେ ତିନି ପରମାଣୁ ଜାତ । କାଳେ ହୁଅଇ ପରିଣତ ।। ୧୪୩
କ୍ରମରେ ବିନାଶ ହୁଅଇ । ଆତ୍ମା ଦେହରେ ନାଶ ନୋହି ।। ୧୪୪
୪୩ ଯେହ୍ନେ ଦାରୁରେ ଅଗ୍ନି ସ୍ଥିତ । ଦାହ-ପ୍ରକାଶୁଁ ଭିନ୍ନ ମତ ।। ୧୪୫
ଯେହ୍ନେ ପବନ ଦେହେ ଥାଇ । ନାସାସଙ୍ଗରୁ ଭିନ୍ନ ହୋଇ ।। ୧୪୬
ଆକାଶ ସବୁଠାରେ ଥାଇ । ଯେହ୍ନେ କାହିଁରେ ନ ମିଶଇ[1] ।। ୧୪୭
ଦେହଇନ୍ଦ୍ରିୟ ଆଦିଙ୍କର । ଆଶ୍ରୟ ଆତ୍ମା ସେ ପ୍ରକାର ।। ୧୪୮
ଥିଲେ ସେମାନଙ୍କର ଠାଏଁ । ନିଶ୍ଚେ ତହିଁରୁ ଭିନ୍ନ ହୋଏ ।। ୧୪୯
୪୪ ସୁଯଜ୍ଞ ଅଛଇ ଏ ଶୋଇ । ଯାହାକୁ ଅନୁଲକ୍ଷ୍ୟ ହୋଇ ।। ୧୫୦
ହେ ମୂଢ଼େ ! କରୁଛ ଶୋଚନ । ଯେ ଏଥି କହଇ ବଚନ ।। ୧୫୧
ଯେ ଅବା ଶ୍ରବଣ କରଇ । କେବେହେଁ ଦୃଶ୍ୟ ସେ ନୁହଇ ।। ୧୫୨
୪୫ ସର୍ବ ଇନ୍ଦ୍ରିୟମାନଙ୍କର । ଚେଷ୍ଟାହେତୁ ଯେ ମୁଖ୍ୟ ଆର ।। ୧୫୩
ସେ ପ୍ରାଣ[2] ନ ଶୁଣେ ନ କହି । ଏଥି ଇନ୍ଦ୍ରିୟବନ୍ତ ହୋଇ ।। ୧୫୪
ଯେ ଆତ୍ମା ହୋଏ ବର୍ତ୍ତମାନ । ପ୍ରାଣରୁ ଦେହରୁ ସେ ଆନ ।। ୧୫୫
୪୬ ପୃଥିବୀ ଆଦି ମହାଭୂତ । ଇନ୍ଦ୍ରିୟ, ମନେ ଯେ ଲକ୍ଷିତ ।। ୧୫୬
ସେ ଉଚ୍ଚ ନୀଚ ଦେହମାନ । ଭଜଇ ଯେ ସେ ବିଭୁ ଆନ ।। ୧୫୭
ନିଜ ବିବେକବଳେ ତାହି । କ୍ରମରେ ତ୍ୟାଗ କରେ ସେହି ।। ୧୫୮

---

୧. ସଙ୍ଗ ନୋହି । ୨. 'ପ୍ରାଣୋ ବୈ ମୁଖ୍ୟଃ' (ଶ୍ରୁତିଃ) ।

୪୭ ଲିଙ୍ଗଶରୀରେ ଯୁତ ହୋଇ । ଯାବତ କାଳ ଆତ୍ମା ଥାଇ ।। ୧୫୯
ତାବତ କାଳଯାଏ ପୁଣ । କର୍ମ ହିଁ ବନ୍ଧକୁ କାରଣ ।। ୧୬୦
ଶରୀରଧର୍ମ ଭଜିବାର । କ୍ଳେଶ ହିଁ ହୋଏ ତଦନ୍ତର ।। ୧୬୧
ମାୟାର ଯୋଗ ସର୍ବ ଏହି । କେବେହେଁ ବାସ୍ତବ ନୁହଇ ।। ୧୬୨
୪୮ ଗୁଣର କାର୍ଯ୍ୟଭୂତ ହୋଇ । ସୁଖାଦି ବିଦ୍ୟମାନ ଯେହି ।। ୧୬୩
ତହିଁରେ ପରମାର୍ଥ ହୋଇ । ଦୃଷ୍ଟି ବଚନ ପୁଣ ଯେହି ।। ୧୬୪
ଏ ଅଭିନିବେଶ ବିତଥ । ଯେସନେ ସ୍ୱପ୍ନ ମନୋରଥ ।। ୧୬୫
ଇନ୍ଦ୍ରିୟଗ୍ରାହ୍ୟ ହୋଇ ଯେତେ । ସେ ସର୍ବ ମିଥ୍ୟା ଏ ଜଗତେ ।। ୧୬୬
୪୯ ଏଣୁ ଅନିତ୍ୟ ନିତ୍ୟ ହୋଇ । ଯେ ଦେହ ଆତ୍ମା ଅଟେ ଦୁଇ ।। ୧୬୭
ତାହା ଜାଣନ୍ତି ଯେଉଁ ଜନ । ତାଙ୍କୁ ନ କରନ୍ତି ଶୋଚନ ।। ୧୬୮
ଅଦୃଢ଼ ଭାବରୁ ଜ୍ଞାନର । ଶୋଚନା କଲା ଲୋକଙ୍କର ।। ୧୬୯
ସ୍ୱଭାବ ବର୍ତ୍ତିଥାଇ ଯେହି । କେବେହେଁ ଅନ୍ୟଥା ସେ ନୋହି ।। ୧୭୦
୫୦ ପକ୍ଷୀଙ୍କ ଅନ୍ତକରୂପେଣ । ଯେ ଅଟେ ବିଧାତାନିର୍ମାଣ ।। ୧୭୧
ବନେ ଲୁବ୍‌ଧକ ଜଣେ କେହି । ଜାଲ ବିସ୍ତାରି ତହିଁ ତହିଁ ।। ୧୭୨
[୧]ପକ୍ଷୀଙ୍କ ଆହାର ଆଦିରେ । ଲୋଭ କରାଇଲା ସତ୍ୱରେ ।। ୧୭୩
୫୧ କୁଲିଙ୍ଗ[୨] ପତିପତ୍ନୀ ଦୁଇ । ଚରନ୍ତେ ଦିଶିଲା ସେଠାଇଁ ।। ୧୭୪
ଲୁବ୍‌ଧକ କୁଲିଙ୍ଗୀକି ପୁଣ । ଲୋଭ କରାଇଲା ବେଗେଣ ।। ୧୭୫
୫୨ ଅବଶ ହୋଇ କାଳବଶେ । ବନ୍ଧା ହେଲା ସେ ଜାଲପାଶେ ।। ୧୭୬
ଏମନ୍ତ ବିପତ୍ତିକି ପାଇ । ଯେ ଭାର୍ଯ୍ୟା ଅଛି ତାକୁ ଚାହିଁ ।। ୧୭୭
କୁଲିଙ୍ଗ ପକ୍ଷୀ ଅତିଶୟେ । ଦୁଃଖକୁ ଲଭିଲା ହୃଦୟେ ।। ୧୭୮
ତାର ବନ୍ଧନ ମୋକ୍ଷଣରେ । ଅଶକ୍ତ ହୋଇଣ ସ୍ନେହରେ ।। ୧୭୯
ସେ ଦୁଃଖୀ କୁଲିଙ୍ଗୀକି ଦୀନ । ହୋଇଣ କଲା ସେ ରୋଦନ ।। ୧୮୦
୫୩ } ଦଇବ ଅଟେ ଦୟାହୀନ । ଯେ ସ୍ତିରୀ କରୁଣାଭାଜନ ।। ୧୮୧
୫୪ } କୃପଣ ହୋଇ ନିଜ ଚିତ୍ତେ । ଯେ ଶୋକ କରୁଅଛି ମୋତେ ।। ୧୮୨
ବିଶେଷେ ହୋଇଅଛି ଦୀନ । ତେଣେ କରିବ କି ବିଧାନ ।। ୧୮୩
ଦୁଃଖିତ ହୋଇ ଥିବ[୩] ଜୀଇ । ଭାର୍ଯ୍ୟାଶୂନ୍ୟରେ ଅନ୍ଧ ହୋଇ ।। ୧୮୪
ଦେହ ଅର୍ଦ୍ଧରେ କି କାରଣ । ମୋତେହେଁ ନେଉ ଦୈବ ପୁଣ ।। ୧୮୫
୫୫ ଯେବଣ ବାଳକଙ୍କ ଠାଇଁ । ପକ୍ଷ ହିଁ ଜାତ ହୋଇ ନାହିଁ ।। ୧୮୬
ଜନନୀଶୂନ୍ୟ ସେ ହୁଅନ୍ତେ । ତାହାଙ୍କୁ ପୋଷିବି କେମନ୍ତେ ।। ୧୮୭
ଅଳପ ଭାଗ୍ୟ ଯାହାଙ୍କର । ଏମନ୍ତ ପୁତ୍ରମାନେ ମୋର ।। ୧୮୮
ନିଜ ବସାରେ ବସିଛନ୍ତି । ମାତାକୁ ପ୍ରତୀକ୍ଷା କରନ୍ତି ।। ୧୮୯

---

୧. 'ପକ୍ଷୀଙ୍କି ଆମିଷ ଆଦିରେ'। ୨. କୁଲିଙ୍ଗ = କନ୍ଦଭକ୍ଷୀ ପକ୍ଷିବିଶେଷ। ୩. ଥିବି।

| | | | | |
|---|---|---|---|---|
| ୫୬ | ଆତୁର ପ୍ରିୟାବିୟୋଗରେ | । ଲୋତକ ପୂରିଛି କଣ୍ଠରେ | ॥ | ୧୯୦ |
| | କୁଳିଙ୍ଗ ଏମନ୍ତ ପ୍ରକାରେ | । ଶୋକ କରନ୍ତେ ନିକଟରେ | ॥ | ୧୯୧ |
| | କାଳରେ ନିୟୋଜିତ ହୋଇ | । ସେହି ଲୁବ୍ଧକ ଲୁଚି ଥାଇ | ॥ | ୧୯୨ |
| | ସେ କୁଳିଙ୍ଗକୁ ପୁଣ ଶରେ | । ବିନ୍ଧିଲା ତକ୍ଷଣେ ସେଠାରେ | ॥ | ୧୯୩ |
| ୫୭ | ଏରୂପେ ତୁମ୍ଭେ ବୁଦ୍ଧିହୀନ | । ନ ଜାଣ ଆପଣା ନିଧନ | ॥ | ୧୯୪ |
| | ଏ ରୂପେ ପତିକି ଶୋଚନ୍ତେ | । ପାଇବ ନାହିଁ ବର୍ଷଶତେ | ॥ | ୧୯୫ |

ହିରଣ୍ୟକଶିପୁରୁବାଚ

| | | | | |
|---|---|---|---|---|
| ୫୮ | ବାଳକ ଏମନ୍ତ ପ୍ରକାରେ | । କହନ୍ତେ ଜ୍ଞାତିଏ ସେଠାରେ | ॥ | ୧୯୬ |
| | ସମସ୍ତେ ମିଥ୍ୟାରୂପେ ଜାତ | । ମଣିଲେ ହୋଇଣ ବିସ୍ମିତ | ॥ | ୧୯୭ |
| ୫୯ | ଏମନ୍ତ କହିଣ ଶମନ | । ସେଠାରେ ହେଲେ ଅନ୍ତର୍ଧାନ | ॥ | ୧୯୮ |
| | ଜ୍ଞାତିଏ କଲେ ସୁଯଜ୍ଞର | । ଯେ ପରଲୋକକ୍ରିୟା ତାର | ॥ | ୧୯୯ |
| ୬୦ | ତେଣୁ ଆପଣାକୁ ପରକୁ | । ଶୋଚନା ନ କର କାହାକୁ | ॥ | ୨୦୦ |
| | ପର ଅପର ଏ ରୂପରେ | । ଯେ ଅବା ଅଛି ଏ ସଂସାରେ | ॥ | ୨୦୧ |
| | ସ୍ୱକୀୟ ପର ଏ ରୂପରେ | । ଯେ ଅଭିନିବେଶ ଚିତ୍ତରେ | ॥ | ୨୦୨ |
| | ଅଜ୍ଞାନରୂପ ଅଟେ ସେହି | । ତା' ବିନୁ ପ୍ରାଣୀଙ୍କର ନାହିଁ | ॥ | ୨୦୩ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୬୧ | ଦଇତପତିର ଏ ବାଣୀ | । ବଧୂସହିତେ ଦିତି ଶୁଣି | ॥ | ୨୦୪ |
| | ଯେ ଶୋକ ପୁତ୍ରବିନାଶରେ | । ଛାଡ଼ିଣ ତାହା କ୍ଷଣକରେ | ॥ | ୨୦୫ |
| | ତତ୍ତ୍ୱବିଷୟେ ନିଜ ଚିତ୍ତ | । ତକ୍ଷଣେ କଲା ନିବେଶିତ | ॥ | ୨୦୬ |
| | କୃଷ୍ଣଚରଣେ ଦେଇ ମତି | । ହରଷ ଦୀନବନ୍ଧୁ ନିତି | ॥ | ୨୦୭ |
| | ଏ ଗୀତ ଶୁଣି ଯେ ସଂତୋଷ | । ତାର ଶରଣ ପୀତବାସ | ॥ | ୨୦୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ସପ୍ତମସ୍କନ୍ଧେ ଶ୍ରୀଯୁଧିଷ୍ଠିରନାରଦସଂବାଦେ ଶ୍ରୀଦିତିଶୋକାପନୋଦନଂ
ନାମ ଦ୍ୱିତୀୟୋଽଧ୍ୟାୟଃ ॥

## ତୃତୀୟ ଅଧ୍ୟାୟ

ତୃତୀୟେ ତସ୍ୟ ତପସା ତପ୍ତଂ ବୀକ୍ଷ୍ୟ ଜଗଦ୍ୱିଧିଃ ।
ଆଗତ୍ୟ ବିସ୍ମିତସ୍ତେନ ସଂସ୍ତୁତଶ୍ଚ ବରାନଦାତ୍ ॥ ୧

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୧ | ଜିଣିମେ ନାହିଁ ମୋତେ କେହି | । ବୃଦ୍ଧ ନୋହିବି ଜୀଇଥାଇ | ॥ | ୧ |
| | ନ ଥିବେ କେହି ଶତ୍ରୁ ମୋର | । ହୋଇବି ଏକ ନୃପବର | ॥ | ୨ |

ହିରଣ୍ୟକଶିପୁ ଗର୍ବରେ । ଆମ୍ଭାକୁ ଏମନ୍ତ ରୂପରେ ।। ୩

କରିବା ଅର୍ଥେ କଲା ମନ । ପୂର୍ବ କାଳରୁ ହେ ରାଜନ ।। ୪

୨ ଊର୍ଦ୍ଧ୍ୱକୁ ଭୁଜ ହୋଇଅଛି । ଆକାଶେ ଦୃଷ୍ଟି ନିବେଶିଛି ।। ୫

ଚରଣଅଙ୍ଗୁଷ୍ଠରେ ମହୀ । କେବଳମାତ୍ର ଅଛି ଛୁଇଁ ।। ୬

ମନ୍ଦରଦ୍ରୋଣୀରେ ସେ ଥିଲା । ଅତି ଦାରୁଣ ତପ କଲା ।। ୭

୩ କିରଣେ ଜଟାମାନଙ୍କର । ପ୍ରଳୟକର୍ତ୍ତା ଯେ ଭାସ୍କର ।। ୮

ତାହାର ପ୍ରାୟକ ହୋଇଣ । ଶୋଭା ପାଇଲା ସେହୁ ପୁଣ ।। ୯

ସେ ତପ କରନ୍ତେ ବିଧାନ । ଦେବେ ଭଜିଲେ ନିଜ ସ୍ଥାନ ।। ୧୦

୪ ଯେ ତପୋମୟ ଧୂମଯୁତ । ସେ ଅଗ୍ନି ତା' ମସ୍ତକୁଁ ଜାତ ।। ୧୧

ବଢ଼ନ୍ତେ ସକଳ ଦିଗରେ । ଯେ ଲୋକମାନେ ଉପରରେ ।। ୧୨

ଯେ ତଳେ ଥିଲେ ଯେ ବକ୍ରରେ । ତାଙ୍କୁ ଦହିଲା ସେ ସତ୍ୱରେ ।। ୧୩

୫ କ୍ଷୋଭକୁ ଲଭିଲେ ସାଗରେ । ନଦୀମାନେହେଁ ତଦନ୍ତରେ ।। ୧୪

ଦ୍ୱୀପ, ଅଚଳରେ ସଂଯୁତ । ଧରଣୀ ହୋଇଲା କମ୍ପିତ ।। ୧୫

ଗ୍ରହମାନଙ୍କର ସହିତେ । ତାରା ପଡ଼ିଲେ ଭୂମିଗତେ ।। ୧୬

ହେ ନୃପ ! ଦଶ ଦିଗମାନ । ଜ୍ୱଳିତ ଦିଶିଲା ବହନ ।। ୧୭

୬ } ତାପକୁ ଲଭି ସେ ଅଗ୍ନିରେ । ସ୍ୱର୍ଗକୁ ଛାଡ଼ିଣ ଅମରେ ।। ୧୮

୭ } ବ୍ରହ୍ମଲୋକକୁ ବୋଲି ଗଲେ । ପରମେଷ୍ଠୀଙ୍କି ଜଣାଇଲେ ।। ୧୯

ଦେବ ତୁ ଅଟୁ ଦେବଙ୍କର । ଆହେ ଜଗତର ଈଶ୍ୱର ।। ୨୦

ଦୈତ୍ୟେନ୍ଦ୍ରତପେ ତାପି ହୋଇ । [୧]ସ୍ୱର୍ଗରେ ନ ପାରିଲୁଁ ରହି ।। ୨୧

ଯେବେ ଆସଇ ତୋ' ମନକୁ । ବିଧାନ କର ତା' ନାଶକୁ ।। ୨୨

ହେ ପ୍ରଭୁ ! ତୁମ୍ଭ ବଳିଦାନ । କରନ୍ତି ଯେଉଁ ଲୋକମାନ ।। ୨୩

ସକଳ ଦିଗରେ ଯାବତ । ସେମାନେ ନୁହନ୍ତି ନିହତ ।। ୨୪

୮ ଦୁଷ୍କର ତପ ଆଚରଣ । କରନ୍ତେ ସେ ଦୈତ୍ୟର ପୁଣ ।। ୨୫

ସଂକଳ୍ପ ଅଟଇ ଏମନ୍ତ । ତୁମ୍ଭର କିବା ଅବିଦିତ ।। ୨୬

ତଥାପି ଆମ୍ଭେ କହୁଁ ଯାହା । ଶ୍ରବଣ କର ତୁମ୍ଭେ ତାହା ।। ୨୭

୯ } ଏ ଚରାଚରକୁ ସର୍ଜନ । କରିଣ କମଳ ଆସନ ।। ୨୮

୧୦ } ନିଷ୍ଠାରେ ତପସ୍ୟାଯୋଗର । ସମସ୍ତ ସ୍ଥାନରୁ ଯେ ସାର ।। ୨୯

ସେ ସତ୍ୟଲୋକ ଆରୋହଣ । କରିଛି ଯେଉଁ ରୂପେ ପୁଣ ।। ୩୦

ବଢୁଅଛି ଯେ ନିରନ୍ତରେ । ସେ ତପଯୋଗସମାଧିରେ[୨] ।। ୩୧

ସେ ରୂପେ ମୋହର ସେ ସ୍ଥାନ । ହୋଇବ, କରିବି ସାଧନ ।। ୩୨

---

୧. 'ସ୍ୱର୍ଗରେ ନ ପାରୁଛୁଁ ଥାଇ ।'   ୨. ......ସାଧିବାରେ ।

| | | | | |
|---|---|---|---|---|
| | ଆୟୁଷ ଅର୍ଣ୍ଣ ବାରମ୍ବାର | । ଯଦ୍ୟପି ମରଣ ଦେହର | ॥ | ୩୩ |
| | ତଥାପି କାଳର ଆମ୍ଭର | । ନିତ୍ୟଭାବରୁ ସେ ମୋହର | ॥ | ୩୪ |
| | ବହୁତ ଜନ୍ମତପଫଳେ | । ସାଧ୍ୟ ହୋଇବ କେତେ କାଳେ | ॥ | ୩୫ |
| ୧୧ | ନିଜ ତେଜରେ ଏ ଜଗତ | । କରିବି ଅନ୍ୟଥା ବିହିତ | ॥ | ୩୬ |
| | ସୁରଙ୍କୁ କରିବି ଅସୁର | । କରିବି ଅସୁରଙ୍କୁ ସୁର | ॥ | ୩୭ |
| | ଯେ ଅବା ସୁକୃତ ଦୁଷ୍କୃତ | । ତାହା କରିବି ବିପରୀତ | ॥ | ୩୮ |
| | ପୂର୍ବରେ ଯେ ଅବା ବିଧାନ | । ସେ କଥା କରିବି ମୁଁ ଆନ | ॥ | ୩୯ |
| | ଯେ ଧ୍ରୁବ ଆଦି ଆନ ସ୍ଥାନ | । କାଳରେ ହୁଅନ୍ତି ନିଧନ | ॥ | ୪୦ |
| | ତେଣେ କି ଅବା ପ୍ରୟୋଜନ | । ଏଣୁ ସାଧିବି ବ୍ରହ୍ମସ୍ଥାନ | ॥ | ୪୧ |
| ୧୨ | ଶୁଣିଲୁଁ ଏମନ୍ତ ପ୍ରକାର | । ନିର୍ବନ୍ଧକୁ ସେ ଦୟିତର | ॥ | ୪୨ |
| | ଏଣୁ ହେ ତ୍ରିଭୁବନେଶ୍ୱର | । ଆରମ୍ଭ କଲା ତପ ଘୋର | ॥ | ୪୩ |
| | ଏଥୁ ଅନ୍ତରେ ଯେ ଯୁକତ | । ସ୍ୱୟେଂ ତୁ କର ତା' ବିହିତ | ॥ | ୪୪ |
| ୧୩ | ହେ ପ୍ରଭୋ ! ଜଗତଈଶ୍ୱର | । ବ୍ରହ୍ମଆସନ ଏ ତୁମ୍ଭର | ॥ | ୪୫ |
| | ଗୋବିପ୍ରଙ୍କର ଉତପତି | । ସୁଖ, ବିଜୟ, କ୍ଷେମ[1], ଭୂତି | ॥ | ୪୬ |
| | ଏତେ କଥାର ନିମିତ୍ତରେ | । ବିଖ୍ୟାତ ଅଟେ ଜଗତରେ | ॥ | ୪୭ |
| ୧୪ } | ହେ ନୃପ ! ଦେବେ ଏପ୍ରକାରେ | । ଜଣାନ୍ତେ ବ୍ରହ୍ମା ତଦନ୍ତରେ | ॥ | ୪୮ |
| ୧୬ | ଭୃଗୁ ଦକ୍ଷାଦି ଋଷିଗଣ | । ଅଛନ୍ତି ଚାରି ପାରୁଶେଣ | ॥ | ୪୯ |
| | ଯେ ଦୈତ୍ୟମାନଙ୍କ ଈଶ୍ୱର | । ଗଲେ ଆଶ୍ରମକୁ ତାହାର | ॥ | ୫୦ |
| | ବଲ୍ମୀକ ତୃଣ ସୂକ୍ଷ୍ମ ବେଣୁ | । ଏଣେ ଆଚ୍ଛନ୍ନ ଅଟେ ଯେଣୁ | ॥ | ୫୧ |
| | ଯେ ମେଦ ମାଂସ ଦେହଗତ | । ଆବର ଯେ ଚର୍ମ ଶୋଣିତ | ॥ | ୫୨ |
| | ସକଳ ଦିଗରେ ତାହାର | । କଲେ ପିପୀଲିକେ ଆହାର | ॥ | ୫୩ |
| | ଏଣୁ ତାହାକୁ ପ୍ରଜାପତି | । ଦେଖି ନ ପାରିଲେ ଝଟିତି | ॥ | ୫୪ |
| | ଲୋକମାନଙ୍କୁ ତପସ୍ୟାରେ | । ତତାଉ ଅଛି ଯେ ନିର୍ଭରେ | ॥ | ୫୫ |
| | ମେଘରେ ହୋଇଣ ଆଚ୍ଛନ୍ନ | । ଭାସ୍କର ତାପଇ ଯେସନ | ॥ | ୫୬ |
| | କେହୁଣୀ ପ୍ରକାରେ ଲକ୍ଷିଣ | । ତାହାକୁ ବିସ୍ମୟ ହୋଇଣ | ॥ | ୫୭ |
| | ହସନ୍ତେ ଏମନ୍ତ ବଚନ | । କହିଲେ ସେ ହଂସବାହାନ | ॥ | ୫୮ |

ଶ୍ରୀବ୍ରହ୍ମୋବାଚ

| | | | | |
|---|---|---|---|---|
| ୧୭ | ଉଠ ଉଠ ହେ କଶ୍ୟପର | । ତନୁଜ ! ଭଦ୍ର ହେଉ ତୋର | ॥ | ୫୯ |
| | ମିଳିଲି ବରଦାତା ମୁହିଁ | । ବାଞ୍ଛିତ ବର ବର ତୁହି | ॥ | ୬୦ |
| ୧୮ | ଅତି ଅଦ୍ଭୁତ ଏ ତୋହର | । ଧୈର୍ଯ୍ୟକୁ କଲି ମୁଁ ଗୋଚର | ॥ | ୬୧ |
| | ଦଂଶେ ଭକ୍ଷିଲେ କଳେବର | । ଅସ୍ଥିରେ ପ୍ରାଣ ଅଛି ତୋର | ॥ | ୬୨ |

୧. କ୍ଷେମ = ଲବ୍ଧପାଳନ ।

୧୯ ଏକଥା ପୂର୍ବ ଋଷିମାନେ । ନ କଲେ, ନ କରିବେ ଆନେ ॥ ୬୩
ଦେବ ବରଷେ ଶହେ ଯାଏ । ଜଳ ଛାଡ଼ି କେ ଜୀଇଥାଏ ॥ ୬୪
୨୦ ମନସ୍ୱୀମାନଙ୍କେ ଦୁଷ୍କର । ଏ ବ୍ୟବସାୟରେ ତୋହର ॥ ୬୫
ଜିଣିଲୁ ମୋତେ ଦିତିସୁତ । ତପରେ ହୁଅନ୍ତେ ନିଷ୍ଠିତ ॥ ୬୬
୨୧ ତେଣୁ ଅସୁରଶ୍ରେଷ୍ଠ ! ତୋତେ । ଦେବି ମଙ୍ଗଳ ଅଛି ଯେତେ ॥ ୬୭
ତୁ ମର୍ତ୍ତ୍ୟ ମୁଁ ଅମର୍ତ୍ତ୍ୟ ମୋର । ଦର୍ଶନ ବ୍ୟର୍ଥ ନୋହେ ତୋର ॥ ୬୮

ଶ୍ରୀନାରଦ ଉବାଚ

୨୨ ଆଦ୍ୟ ସମୟେ ଯେ ଉଭବ । ଏମନ୍ତ କହିଣ ସେ ଦେବ ॥ ୬୯
ଯା’ ଅଙ୍ଗ ପିପୀଲିକାମାନେ । ଭକ୍ଷିଣ ଅଛନ୍ତି ସେ ସ୍ଥାନେ ॥ ୭୦
ଅମୋଘ ପ୍ରଭାବ ଯାହାର । ସେ ଦିବ୍ୟ କମଣ୍ଡଲୁ ନୀର ॥ ୭୧
ତେଣେ ଦୈତ୍ୟକୁ ସେ ସେଚନ । କଲେ ହୋଇଣ ତୋଷମନ ॥ ୭୨
୨୩ ସେ ସହ, ଓଜ, ବଳଯୁତ । ସର୍ବ ଅବୟବେ ପୂରିତ ॥ ୭୩
କୁଳିଶ ପ୍ରାୟକ ଯାହାର । ଦୃଢ଼ ହୋଇଛି କଳେବର ॥ ୭୪
ଯୁବା ତପତହେମକାନ୍ତି । ସେ ବେଣୁବଲ୍ମୀକୁଁ ଝଟିତି ॥ ୭୫
ଅସୁର ହୋଇଲା ଉତ୍ଥିତ । ଦାରୁରୁ ଯେହ୍ନେ ବହ୍ନି ଜାତ ॥ ୭୬
୨୪ ଯାର ବାହାନ ଅଟେ ହଂସ । ସେ ଦେବ ଅଛନ୍ତି ଆକାଶ ॥ ୭୭
ଏମନ୍ତ ଦେଖିଣ ଭୂମିରେ । ପ୍ରଣାମ କଲା ମସ୍ତକରେ ॥ ୭୮
ତାହାଙ୍କ ଦରଶନୁଁ ତାର । ଉତ୍ସବ ହେଲା ବଳିଆର ॥ ୭୯
୨୫ ପୁଲକଭେଦ ନେତ୍ରନୀର । ହରଷେ ହୋଇଲା ଯାହାର ॥ ୮୦
ବିଭୁକୁ ଦେଖନ୍ତେ ନେତ୍ରରେ । ଉଠି ପ୍ରାଞ୍ଜଳି ହୋଇ ଧୀରେ ॥ ୮୧
ଗଦ୍‌ଗଦ ଅଟେ ଯେଉଁ ବାଣୀ । ସ୍ତୁତିକି କଲା ତେଣେ ପୁଣି ॥ ୮୨

ହିରଣ୍ୟକଶିପୁରୁବାଚ

୨୬ କଳ୍ପାନ୍ତେ କାଳସୃଷ୍ଟ ଯେହି । ପ୍ରକୃତିଗୁଣରୂପ ହୋଇ ॥ ୮୩
ସେହୁ ନିବିଡ଼ ତମେ ବୃତ୍ତ । ଅଟଇ ଏ ଯେଉଁ ଜଗତ ॥ ୮୪
ନିଜ ଜ୍ୟୋତିରେ ତା’ ବ୍ୟକତ । କଲେ ଯେ ଏ ସେ ଜ୍ୟୋତି ସତ୍ୟ ॥ ୮୫
୨୭ ତ୍ରିଗୁଣରୂପେ ଏ ଜଗତ । ଯେ ସର୍ଜେ ପାଳେ କରେ ହତ ॥ ୮୬
ସେ ରଜ-ସତ୍ତ୍ୱ-ତମଧାମ । ପରମେଶ୍ୱରଙ୍କୁ ପ୍ରଣାମ ॥ ୮୭
୨୮ କାରଣ ଆଦ୍ୟ ଯେ ଈଶ୍ୱର । ଜ୍ଞାନ ବିଜ୍ଞାନ ମୂର୍ତ୍ତି ଯାର ॥ ୮୮
ବିକାରରୂପେ ଯେ ପ୍ରସିଦ୍ଧି । ପ୍ରାଣ ଇନ୍ଦ୍ରିୟ ମନ ବୁଦ୍ଧି ॥ ୮୯
ତେଣେ ଯେ ଲଭେ କାର୍ଯ୍ୟାକାର । ତାହାଙ୍କୁ ମୋର ନମସ୍କାର ॥ ୯୦
୨୯ ତୁମ୍ଭେ ସ୍ଥାବର-ଜଙ୍ଗମର । ସୂତ୍ରାତ୍ମାରୂପେ ଅଧୀଶ୍ୱର ॥ ୯୧
ଏ ଘେନି ତୁମ୍ଭେ ପ୍ରଜାପତି । ଚିତ୍ତ ଚେତନା ଯେହୁ ଖ୍ୟାତି ॥ ୯୨

| | | | | | |
|---|---|---|---|---|---|
| | ମନ ଇନ୍ଦ୍ରିୟମାନେ ଯେହି | । | ତାହାଙ୍କ ପତି ନାଥ ! ତୁହି | ॥ | ୯୩ |
| | ଆକାଶ ଆଦି ମହାଭୂତ | । | ତାହାଙ୍କ ଗୁଣ ଯେ ବିଖ୍ୟାତ | ॥ | ୯୪ |
| | ଯେବା ବାସନାମାନେ ଆର | । | ତୁମ୍ଭେ ତାହାଙ୍କର ଈଶ୍ୱର | ॥ | ୯୫ |
| ୩୦ | ଚାରୋଟି ହୋତା ଛନ୍ତି ଯହିଁ | । | ସେ କର୍ମବିଷୟ ଯେ ହୋଇ | ॥ | ୯୬ |
| | ସେ ତ୍ରୟୀ ତୁମ୍ଭର ଶରୀର | । | ଯାଗକୁ ତେଣେ ତୁମ୍ଭେ କର | ॥ | ୯୭ |
| | ତୁମ୍ଭେ ଅନାଦି ପ୍ରାଣୀଙ୍କର | । | ଆତ୍ମା, ତୁମ୍ଭର ନାହିଁ ପାର | ॥ | ୯୮ |
| | ଅଖଣ୍ଡ ଅନ୍ତରାତ୍ମା ପୁଣ | । | ସକଳ କଥା ତୁମ୍ଭେ ଜାଣ | ॥ | ୯୯ |
| ୩୧ | ତୁମ୍ଭେ ସେ କାଳ ଅନିମିଷ | । | ପ୍ରାଣୀମାନଙ୍କର ଆୟୁଷ | ॥ | ୧୦୦ |
| | ଲବାଦି ଅବୟବ ଦ୍ୱାରେ | । | ବିନାଶ କର ଜଗତରେ | ॥ | ୧୦୧ |
| | ତୁମ୍ଭେ କୂଟସ୍ଥ ଜ୍ଞାନଘନ | । | ପରମେଶ୍ୱର ଜନ୍ମହୀନ | ॥ | ୧୦୨ |
| | ତୁମ୍ଭର ପରିଚ୍ଛିନ୍ନ ନାହିଁ | । | ଜନ୍ମାଦି ବିକାର ଯେ ପାଇ | ॥ | ୧୦୩ |
| | ଜୀବନ ସେ ଜୀବଲୋକର | । | ତୁମ୍ଭେ ନିୟନ୍ତା ହେ ଈଶ୍ୱର | ॥ | ୧୦୪ |
| ୩୨ | ତୁମ୍ଭର ଠାରୁ ଆନ ହୋଇ | । | ଯେବେ ଜଗତେ ଥାନ୍ତା କେହି | ॥ | ୧୦୫ |
| | ତୁମ୍ଭର ଜନ୍ମାଦି ବିକାର | । | ପ୍ରଭୁତ୍ୱ ତୁମ୍ଭର ଉପର | ॥ | ୧୦୬ |
| | ସିଦ୍ଧ ହୁଅନ୍ତା ଅବା ତାର | । | ସେ ରୂପେ ନାହିଁ କେହି ଆର | ॥ | ୧୦୭ |
| | ଯେ କାର୍ଯ୍ୟ ଯେ ଅବା କାରଣ | । | ସ୍ଥାବର ଜଙ୍ଗମ ଯେ ପୁଣ | ॥ | ୧୦୮ |
| | ତୁମ୍ଭରୁଁ ନୁହଇ ଏ ଆନ | । | ଯେ ବେଦ ବେଦଅଙ୍ଗମାନ | ॥ | ୧୦୯ |
| | ସେ ସର୍ବ ତୁମ୍ଭର ଶରୀର | । | ବ୍ରହ୍ମାଣ୍ଡ ତୁମ୍ଭର ଗର୍ଭର | ॥ | ୧୧୦ |
| | ଏ ଘେନି ତୁମ୍ଭେ ବ୍ରହ୍ମ ମତ | । | ପ୍ରଧାନୁଁ ଭିନ୍ନ ହୋଇ ସ୍ଥିତ | ॥ | ୧୧୧ |
| ୩୩ | ହେ ପ୍ରଭୋ ! କାର୍ଯ୍ୟରୂପେ ତୋର | । | ସ୍ଥୂଳ ଅଟଇ ଏ ଶରୀର | ॥ | ୧୧୨ |
| | ଇନ୍ଦ୍ରିୟ-ମନ-ପ୍ରାଣଙ୍କର | । | ଗୁଣକୁ ଯେଣେ ଭୋଗ କର | ॥ | ୧୧୩ |
| | ପରମ ଐଶ୍ୱର୍ଯ୍ୟ ଯେ ଧାମ | । | ତହିଁରେ ତୁମ୍ଭର ବିଶ୍ରାମ | ॥ | ୧୧୪ |
| | ଅବ୍ୟକ୍ତ ଆତ୍ମା ତୁମ୍ଭେ ମତ | । | ପୁରାଣ ପୁରୁଷ ବିଦିତ | ॥ | ୧୧୫ |
| ୩୪ | ଅବ୍ୟକ୍ତରୂପେ ହେ ଅନନ୍ତ | । | ଯେ ବ୍ୟାପେ ଅଖିଳ ଜଗତ | ॥ | ୧୧୬ |
| | ଯେ ବିଦ୍ୟା ମାୟା ହୋଇ ଦୁଇ | । | ତେଣେ ସଂଯୁତ ଯେ ଅଟଇ | ॥ | ୧୧୭ |
| | ଏମନ୍ତ ଯେଉଁ ଭଗବାନ | । | ତାହାଙ୍କୁ କରୁଛି ବନ୍ଦନ | ॥ | ୧୧୮ |
| ୩୫ | ଆହେ ବରଦଶ୍ରେଷ୍ଠ ! ମୋର | । | ମନବାଞ୍ଛିତ ଯେତେ ବର | ॥ | ୧୧୯ |
| | କରିବ ଯେବେ ତା' ପ୍ରଦାନ | । | ତୁମ୍ଭ ସର୍ଜିଲା ଜନ୍ତୁମାନ | ॥ | ୧୨୦ |
| | ଯେତେ ଅଛନ୍ତି ତହୁଁ ପୁଣ | । | ମୋହର ନୋହିବ ମରଣ | ॥ | ୧୨୧ |
| ୩୬ | ଗୃହର ଅନ୍ତରେ ବାହାରେ | । | ନୋହିବ ଦିବସେ ରାତ୍ରରେ | ॥ | ୧୨୨ |
| | ତୁମ୍ଭ ସର୍ଜନାରୁ ଯେ ଆନ | । | ନୋହିବ ତହିଁରୁ ନିଧନ | ॥ | ୧୨୩ |
| | ଆୟୁଧମାନେ ଯେତେ ଛନ୍ତି | । | ତହୁଁ ନୋହିବ ମୋର ମୃତି[1] | ॥ | ୧୨୪ |

୧. କ୍ଷତି ।

| | | | | | |
|---|---|---|---|---|---|
| | ନର ମୃଗାଦି ଯେବା ଆନ | । | ତେଣେ ନୋହିବ ମୋ ନିଧନ | ।। | ୧୨୫ |
| ୩୭ | ତୁମ୍ଭର ପ୍ରାୟ ଯୁଦ୍ଧେ ମୋର | । | ନୋହିବ ପ୍ରତିଦ୍ୱନ୍ଦ୍ୱୀ ଆର | ।। | ୧୨୬ |
| ୩୮ | ପ୍ରାଣୀମାନଙ୍କର ଉପର | । | ହୋଇବି ଏକ ଅଧୀଶ୍ୱର | ।। | ୧୨୭ |
| | ସମସ୍ତ ଲୋକମାନଙ୍କର | । | ମହିମା ଅଛି ଯେ ଆବର | ।। | ୧୨୮ |
| | ସେ କଥାମାନଙ୍କୁ ପ୍ରଦାନ | । | କର ହେ କମଳ ଆସନ | ।। | ୧୨୯ |
| | ତପସ୍ୟା, ଯୋଗେ ଯାହାଙ୍କର | । | ପ୍ରଭାବ ଅଟଇ ପ୍ରଚୁର | ।। | ୧୩୦ |
| | ତାଙ୍କର ଅଣିମାଦି ହୋଇ | । | ଐଶ୍ୱର୍ଯ୍ୟ ଯେ ଅବା ଅଛଇ | ।। | ୧୩୧ |
| | ନାଶ ନୋହିବ ସେ ଆମ୍ଭର | । | ତାହି ପ୍ରଦାନ ମୋତେ କର | ।। | ୧୩୨ |
| | ଜୟ ମୁକୁନ୍ଦ କୃପାସିନ୍ଧୁ | । | ତୁମ୍ଭର ଦାସ ଦୀନବନ୍ଧୁ | ।। | ୧୩୩ |
| | ଏ ଗୀତ ଶୁଣି ସାଧୁଜନେ | । | ସଂତୋଷ ହୁଅ ନିଜ ମନେ | ।। | ୧୩୪ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଶ୍ରୀଯୁଧିଷ୍ଠିରନାରଦସଂବାଦେ ହିରଣ୍ୟକଶିପୋର୍ବରଯାଚନଂ ନାମ ତୃତୀୟୋଽଧ୍ୟାୟଃ ।।

## ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ତୁ ବରାନ୍ ଲବ୍‌ଧ୍ୱା ବିଜିତ୍ୟାଖିଲଲୋକପାନ୍ ।
ବିଷ୍ଣୁଦ୍ୱେଷେଣ ତାନ୍ ସର୍ବାନ୍ ଦୈତ୍ୟେନ୍ଦ୍ରଃ ସମପୀଡ଼ୟଦ୍ ।।

ଶ୍ରୀନାରଦ ଉବାଚ

| | | | | | |
|---|---|---|---|---|---|
| ୧ | ବ୍ରହ୍ମାଙ୍କୁ ଏମନ୍ତ ପ୍ରକାରେ | । | ବର ମାଗନ୍ତେ ତଦନ୍ତରେ | ।। | ୧ |
| | ତା' ତପେ ସଂତୋଷ ହୋଇଣ | । | ହିରଣ୍ୟକଶିପୁକୁ ପୁଣ | ।। | ୨ |
| | ଦୁର୍ଲଭ ଯେଉଁ ବରମାନ | । | ତା' ଦେଲେ ପଙ୍କଜ ଆସନ | ।। | ୩ |

ଶ୍ରୀବ୍ରହ୍ମୋବାଚ

| | | | | | |
|---|---|---|---|---|---|
| ୨ | ଭୋ ତାତ ! ଯେବଣ ବରକୁ | । | ପ୍ରାର୍ଥନା କଲୁ ତୁ ଆମ୍ଭଙ୍କୁ | ।। | ୪ |
| | ପୁରୁଷମାନଙ୍କୁ ସେ ବରେ | । | ଦୁର୍ଲଭ ଅଟନ୍ତି ସଂସାରେ | ।। | ୫ |
| | ଦୁର୍ଲଭ ଅଟଇ ଯଦ୍ୟପି | । | ପ୍ରଦାନ କରିବି ତଥାପି | ।। | ୬ |
| ୩ | ପୂଜିଲା ଦିତିର ନନ୍ଦନ | । | ସ୍ତୁବନ୍ତେ ପ୍ରଜେଶ୍ୱରମାନ | ।। | ୭ |
| | ଅମୋଘ ଅନୁଗ୍ରହ ଯାର | । | ସେ ବ୍ରହ୍ମା ଗଲେ ତଦନ୍ତର | ।। | ୮ |
| ୪ | ଏ ରୂପେ ଦିତିର କୁମର | । | ଲଭିଲା ବ୍ରହ୍ମାଠାରୁ ବର | ।। | ୯ |
| | ଯେହୁ ଅଟଇ ହେମମୟ | । | ଧରିଛି ଏରୂପରେ କାୟ | ।। | ୧୦ |
| | ସ୍ମରନ୍ତେ ଭ୍ରାତାର ବିନାଶ | । | ବିଷ୍ଣୁର ଠାରେ କଲା ଦ୍ୱେଷ | ।। | ୧୧ |

୫ ସେ ମହାସୁର ତ୍ରିଲୋକକୁ । ଜିଣିଲା ସମସ୍ତ ଦିଗକୁ ॥ ୧୨
୭ ଦେବ ଅସୁର ଇନ୍ଦ୍ର ନର । ତାର୍କ୍ଷ୍ୟ ଗନ୍ଧର୍ବ ବିଷଧର ॥ ୧୩
ସିଦ୍ଧ ଚାରଣ ବିଦ୍ୟାଧର । ଯେ ଋଷି ପିତୃପତି ଆର ॥ ୧୪
ମନୁ ପିଶାଚେଶ ରାକ୍ଷସ । ଯେ ଭୂତ ଯକ୍ଷ ପ୍ରେତଈଶ ॥ ୧୫
ସମସ୍ତ ପ୍ରାଣୀମାନଙ୍କର । ଯେ ବା ଅଟନ୍ତି ଅଧୀଶ୍ୱର ॥ ୧୬
ତାଙ୍କୁ ସେ ବିଶ୍ୱଜେତା ଜିଣି । ବଶକୁ ସମସ୍ତଙ୍କୁ ଆଣି ॥ ୧୭
ଯେ ଲୋକପାଳଙ୍କର ସ୍ଥାନ । ତେଜରେ ହରିଲା ସେମାନ ॥ ୧୮
୮ ଦେବଉଦ୍ୟାନେ ଶୋଭାଯୁତ । ତ୍ରିପିଷ୍ଟପରେ ହେଲା ସ୍ଥିତ ॥ ୧୯
ତ୍ରୈଲୋକ୍ୟଲକ୍ଷ୍ମୀ ଆୟତନ । ସକଳ ସମୃଦ୍ଧିର ସ୍ଥାନ ॥ ୨୦
ବିଶ୍ୱକର୍ମାରେ ଯେ ନିର୍ମିତ । ସେ ଇନ୍ଦ୍ରଗୃହେ ହେଲା ସ୍ଥିତ ॥ ୨୧
୯ ଯହିଁରେ ବିଦ୍ରୁମଘଟିତ । ସୋପାନମାନ ବିରାଜିତ ॥ ୨୨
୧୦ ଯହିଁରେ ମହାମରକତ । ଭୂମିପ୍ରଦେଶମାନ ସ୍ଥିତ ॥ ୨୩
ସ୍ଫଟିକବାଡ଼ମାନେ ଯହିଁ । ବୈଦୂର୍ଯ୍ୟସ୍ତମ୍ଭପଂକ୍ତି ଶୋହି ॥ ୨୪
ନାନାବର୍ଣ୍ଣରେ ଚିତ୍ର ହୋଇ । ବିତାନମାନେ ଛନ୍ତି ଯହିଁ ॥ ୨୫
ପଦ୍ମରାଗରେ ବିନିର୍ମିତ । ଆସନେ ଅଛନ୍ତି ବହୁତ ॥ ୨୬
ମୁକୁତାମାଳାପରିକର । ଦୁଗ୍ଧଫେନର ଆକାର ॥ ୨୭
ଏମନ୍ତ ହୋଇ ଶର୍ଯ୍ୟାମାନ । ଯହିଁରେ ଦିଶନ୍ତି ଶୋଭନ ॥ ୨୮
୧୧ ନୂପୁରେ ଅସୁରକାମିନୀ । କରନ୍ତେ ଏଣେତେଣେ ଧ୍ୱନି ॥ ୨୯
ସୁନ୍ଦର ମୁଖକୁ ଦେଖନ୍ତି । ରତ୍ନସ୍ଥଳୀରେ ସେ ସୁଦତୀ[୧] ॥ ୩୦
୧୨ ଏମନ୍ତ ଯେ ଇନ୍ଦ୍ରମନ୍ଦିର । ତହିଁରେ କଲା ସେ ବିହାର ॥ ୩୧
ମହାବଳିଷ୍ଠ ମହାମନ । ଜିଣିଛି ସର୍ବଲୋକମାନ ॥ ୩୨
ଊର୍ଜିତ ଚଣ୍ଡ ଆଜ୍ଞା ଯାର । ଅଟଇ ଏକ ଅଧୀଶ୍ୱର ॥ ୩୩
ଯା' ପାଦଯୁଗକୁ ବନ୍ଦନ । କରନ୍ତି ସୁରଆଦିମାନ ॥ ୩୪
୧୩ ଯା' ଗନ୍ଧ ଉତ୍କଟ ଅଟଇ । ସେ ମଦେ ଅଛି ମତ୍ତ ହୋଇ ॥ ୩୫
ଘୂର୍ଣ୍ଣିତ ରକ୍ତ ଯା' ନୟନ । ଯେ ତପ ବଳ ଓଜସ୍ଥାନ ॥ ୩୬
ଏମନ୍ତ ଦୈତ୍ୟକୁ ସକଳ । ବାସବ ଆଦି ଦିଗପାଳ ॥ ୩୭
ଭେଟସାମଗ୍ରୀମାନଙ୍କରେ । ଧରି ସେବିଲେ ନିରନ୍ତରେ ॥ ୩୮
କେବଳ ବ୍ରହ୍ମା ବିଷ୍ଣୁ ଶିବ । ନ ଥାନ୍ତି ଏହୁ ତିନି ଦେବ ॥ ୩୯
୧୪ ଇନ୍ଦ୍ରଆସନେ ନିଜ ତେଜେ । ଦିତିନନ୍ଦନ କଲେ ବିଜେ ॥ ୪୦
ତୁମ୍ବୁରୁ ବିଶ୍ୱାବସୁ ଦୁଇ । ଯେ ଆମ୍ଭେ ଆମ୍ଭ ଆଦି ହୋଇ ॥ ୪୧
ସେମାନେ କରନ୍ତି ଗାୟନ । ଗନ୍ଧର୍ବ ସିଦ୍ଧ ଋଷିଜନ ॥ ୪୨
ଯେ ଅପସରା, ବିଦ୍ୟାଧର । ସ୍ତୁତି କଲେ ହେ ଯୁଧିଷ୍ଠିର ॥ ୪୩

୧. ସୁଦନ୍ତୀ ।

୧୫ ବହୁତ ଦକ୍ଷିଣା ଯହିଁରେ । ଏମନ୍ତ କ୍ରତୁମାନଙ୍କରେ ।।
ବର୍ଣ୍ଣଆଶ୍ରମବନ୍ତ ଜନ । ଯାଗକୁ କରନ୍ତେ ବିଧାନ ।।
ଘେନିଲା ଆପଣା ତେଜରେ । ହବିର୍ଭାଗକୁ ନିରନ୍ତରେ ।।
୧୬ ସପତଦ୍ୱୀପଯୁତ ହୋଇ । ଅଚାଷେ ଶସ୍ୟବତୀ ମହୀ ।।
ଯେ ବା ବାଞ୍ଛିତ କାମମାନ । 'ତ୍ରିଦିବ କରେ ତା' ଦୋହନ[1] ।।
ନାନା ଆଶ୍ଚର୍ଯ୍ୟମାନଙ୍କର । ଆକାଶ ହୋଇଲା ଆଧାର ।।
୧୭ ଲବଣ ଇକ୍ଷୁ ସୁରା ଘୃତ । ଦଧି ଦୁଗ୍ଧାମ୍ବୁ ଜଳ ସାତ ।।
ସମୁଦ୍ରେ ସରିତେ ଊର୍ମିରେ । ରତ୍ନକୁ ବହିଲେ ସତ୍ୱରେ ।।
୧୮ ଦ୍ରୋଣୀମାନଙ୍କେ କ୍ରୀଡ଼ାସ୍ଥାନ । ବହିଲେ ମହୀଧରମାନ ।।
ଯେ ପୁଷ୍ପଫଳରୂପ ଗୁଣ । ସକଳ ଋତୁରେ ଭିଆଣ ।।
ଏକ କାଳରେ ଦ୍ରୁମମାନେ । ବହିଲେ ତାହା ସ୍ଥାନେ ସ୍ଥାନେ ।।
ବର୍ଷଣ ଦହନ ଶୋଷଣ । ଏ ଆଦି ହୋଇ ଯେତେ ଗୁଣ[2] ।।
ସକଳ ଲୋକପାଳଙ୍କର । ଭିନ୍ନେ ହୋଇଛି ଯେ ପ୍ରଚାର ।।
ଏକ ହୋଇ ସେ ଗୁଣମାନ । ବହିଲା ଦିତିର ନନ୍ଦନ ।।
୧୯ ଏରୂପେ ଦିଗମାନ ଜିଣି । ଏକ ନୃପତି ହୋଇ ପୁଣି ।।
ପ୍ରିୟ ବିଷୟମାନ ଯେହି । ଭୁଞ୍ଜନ୍ତେ ଯଥୋଚିତେ ତାହି ।।
ତୃପ୍ତିକି ନ ଲଭିଲା ତେଣୁ । ଅଜିତେନ୍ଦ୍ରିୟ ଅଟେ ଯେଣୁ ।।
୨୦ ଏ ରୂପେ ଅଇଶ୍ୱର୍ଯ୍ୟମତ୍ତ । ଶାସ୍ତ୍ରଲଂଘନ ଗର୍ବଚିତ୍ତ ।।
ବ୍ରହ୍ମଶାପକୁ ଅଛି ପାଇ । ଏମନ୍ତ ଦୈତ୍ୟ ଯେ ଅଟଇ ।।
ଅନେକ କାଳ[3] ଗଲା ତାର । କରନ୍ତେ ବିଷୟ ବିହାର ।।
୨୧ ଲୋକପାଳଙ୍କର ସହିତେ । ସକଳ ଲୋକେ ଯେଝା ମତେ ।।
ତା' ଉଗ୍ରଦଣ୍ଡେ ତ୍ରସ୍ତ ହୋଇ । ଆନରେ ଶରଣ ନ ପାଇ ।।
ସେ ଭୟୁଂ ରକ୍ଷା ପାଇବାକୁ । ଶରଣ ଗଲେ ଅଚ୍ୟୁତଙ୍କୁ ।।
୨୨ ଆତ୍ମା ସକଳ ଲୋକଙ୍କର । ଯେ ହରି ଅଟନ୍ତି ଈଶ୍ୱର ।।
ଅଛନ୍ତି ସେ ଯେଉଁ ଦିଗର । ତାକୁ ଆମ୍ଭର ନମସ୍କାର ।।
ଅମଳ ଶାନ୍ତଚିତ୍ତ ଯତି । ଯହିଁକି ଗଲେ ନ ଆସନ୍ତି ।।
୨୩ ମନକୁ କରି ସମାଧାନ । ଏ ରୂପେ ସେ ସଂଯତମନ ।।
ନିଦ୍ରାକୁ କରିଣ ବିଦୂର । ପବନ କଲେକ ଆହାର ।।
ହୃଷୀକେଶଙ୍କୁ ଆରାଧନ । କଲେ ଅମଳ ସୁରମାନ ।।
୨୪ ମେଘର ପ୍ରାୟ ଧ୍ୱନି ଯାର । ଅଭୟ କରେ ସାଧୁଙ୍କର ।।

---

୧. ଧେନୁଏ କରନ୍ତି ଦୋହନ । ('ଗାବଃ' ଇତି ପାଠେ) ୨. ପୁଣ ।
୩. ଅନେକ କାଳ = ଏକସ୍ତରି ଯୁଗରୁ କିଛି ଅଧିକ ।

ଦିଗଙ୍କୁ ପ୍ରତିଧ୍ୱନି କରେ । ବକତା ନ ଦିଶେ ଯହିଁରେ ।। ୭୪
ଏମନ୍ତ ଅଟଇ ଯେ ବାଣୀ । ତାଙ୍କୁ ପ୍ରକାଶ ହେଲା ପୁଣି ।। ୭୫
୨୫ ହେ ସୁରଶ୍ରେଷ୍ଠ ! ତୁମ୍ଭେମାନେ । ଭୟ ନ ପାଅ ନିଜ ମନେ ।। ୭୬
ତୁମ୍ଭ ସବୁରି ଭଦ୍ର ହେଉ । ମୋହର ଦରଶନ ଯେହୁ ।। ୭୭
ପ୍ରାଣୀମାନଙ୍କର ଅଶେଷ । ଶୁଭନିମିତ୍ତେ ଯେ ପ୍ରକାଶ ।। ୭୮
୨୬ ଏ ନିନ୍ଦ୍ୟ ଦୈତ୍ୟର ଯେ ପୁଣି । ଦୁଷ୍ଟତ୍ୱ ମୁଁ ତା' ଅଛି ଜାଣି ।। ୭୯
ତାହା ମୁଁ ଶାନ୍ତି କରିବଇଁ । କାଳକୁ ଥାଅ ବାଟ ଚାହିଁ ।। ୮୦
୨୭ ଦେବତା ବିପ୍ର ବେଦ ଗାଇ । ସାଧୁରେ ଧର୍ମେ ମୋର ଠାଇଁ ।। ୮୧
ଯେବେ ବିଦ୍ୱେଷ ହେବ ଜାତ । ତେବେ ବେଗରେ ହେବ ହତ ।। ୮୨
୨୮ ନିର୍ବୈର ମହାତ୍ମା ଯେ ଶାନ୍ତ । ପ୍ରହ୍ରାଦନାମେ ନିଜ ସୁତ ।। ୮୩
ଦ୍ରୋହ କରିବ ତାକୁ ଯେବେ । ମାରିବି ସେ ଦୈତ୍ୟକୁ ତେବେ ।। ୮୪
ବ୍ରହ୍ମାର ବରସକାଶରେ । ଉଗ୍ର ହୋଇଛି ଜଗତରେ ।। ୮୫

ଶ୍ରୀନାରଦ ଉବାଚ

୨୯ ଯେ ଲୋକଗୁରୁ ଭଗବାନ । କହନ୍ତେ ଏମନ୍ତ ବଚନ ।। ୮୬
ତାହାଙ୍କୁ କରିଣ ପ୍ରଣାମ । ଦେବେ ଚଳିଲେ ନିଜ ଧାମ ।। ୮୭
ଗଲା ଉଦବେଗ ତାଙ୍କର । ମଣିଲେ ମଲା ସେ ଅସୁର ।। ୮୮
୩୦ ସେ ଦୈତ୍ୟପତିର ସଂଭୂତ । ଅତି ଅଦ୍ଭୁତ ଚାରି ସୁତ ।। ୮୯
ପ୍ରହ୍ରାଦ ତାହାଙ୍କ ମଧ୍ୟରେ । ମହତ ଅଟଇ ଗୁଣରେ ।। ୯୦
ମହତ ଅଟନ୍ତି ଯେ ଜନ । ତାହାଙ୍କୁ କରେ ଉପାସନ ।। ୯୧
୩୧ ଶୀଳସଂପନ୍ନ ବିପ୍ରପ୍ରିୟ । ସତ୍ୟନିରତ ଜିତେନ୍ଦ୍ରିୟ ।। ୯୨
ଆତ୍ମାର ପ୍ରାୟେ ପ୍ରାଣୀଙ୍କର । ଯେ ଏକ ପ୍ରିୟ ମିତ୍ରବର ।। ୯୩
୩୨ ଦାସଜନର ପ୍ରାୟ ହୋଇ । ସାଧୁଙ୍କ ପାଦେ ନମ୍ର ସେହି ।। ୯୪
ବତ୍ସଳ ଅଟେ ଦୀନଜନେ । ପୁତ୍ରଙ୍କ ଠାରେ ପିତା ଯେହ୍ନେ ।। ୯୫
ସମାନ ଜନେ ସ୍ନେହବନ୍ତ । ଆପଣା ସହଜ[୧] ଯେମନ୍ତ ।। ୯୬
ଯେତେ ଆପଣା ଗୁରୁଜନ । ତହିଁରେ ଈଶ୍ୱରଭାବନ ।। ୯୭
ବିଦ୍ୟାର୍ଥ-ରୂପ-ଜନ୍ମଯୁତ । ମାନସ୍ତମ୍ଭରେ ବିବର୍ଜିତ ।। ୯୮
୩୩ ବ୍ୟସନମାନଙ୍କେ ଯା' ଚିତ୍ତ । ଉଦ୍‌ବେଗ ନୋହେ କଦାଚିତ ।। ୯୯
ଶୁଣିଲା ଦେଖିଲା ହୋଇଣ । ବିଷୟମାନ ଯେତେ ପୁଣ ।। ୧୦୦
ତହିଁରେ ନିସ୍ପୃହ ଅଟଇ । ଦ୍ରବ୍ୟବୁଦ୍ଧି ହିଁ ନ କରଇ ।। ୧୦୧
ଇନ୍ଦ୍ରିୟ ପ୍ରାଣ ଦେହ ମତି । ଯାର ଏ ସଂଯତ ଅଟନ୍ତି ।। ୧୦୨
କାମନାମାନେ ମନୁଁ ଯାର । ପ୍ରଶାନ୍ତ ହେଲେ ନିରନ୍ତର ।। ୧୦୩

୧. ସହଜ = ଭାଇ ।

| | | | | | |
|---|---|---|---|---|---|
| | ଅସୁର ହୋଇଲେହେଁ ସେହି | । | ମତ୍ସର ଆଦି ଭାବ ନାହିଁ | ।। | ୧୦୪ |
| ୩୪ | ଯା' ଠାରେ ମହାଗୁଣମାନ | । | କବିଏ କରନ୍ତି ବର୍ଣ୍ଣନ | ।। | ୧୦୫ |
| | ଈଶ୍ୱରଠାରେ ପ୍ରାୟଂ[୧] ହୋଇ | । | ହେ ନୃପ ! ଅଛନ୍ତି ଆଜ ହିଁ | ।। | ୧୦୬ |
| ୩୫ | ଯାହାକୁ ସାଧୁଜନଙ୍କର | । | କଥାପ୍ରସଙ୍ଗସଭାଠାର | ।। | ୧୦୭ |
| | ରିପୁ ହେଲେ ହେଁ ସୁରମାନେ | । | ଦୃଷ୍ଟାନ୍ତ କରନ୍ତି ସୁମନେ | ।। | ୧୦୮ |
| | ତୁମ୍ଭର ପ୍ରାୟ ଯେବା ଆନେ | । | କିମ୍ପା ନ କରିବେ ସେମାନେ | ।। | ୧୦୯ |
| ୩୬ | ଅସଂଖ୍ୟ ଗୁଣରେ ନିର୍ଭର | । | ମାହାତ୍ମ୍ୟ ସୂଚୁଥାଇ ତାର | ।। | ୧୧୦ |
| | ସ୍ୱଭାବଜନ୍ୟ ରତି ଯାର | । | ବାସୁଦେବରେ ନିରନ୍ତର | ।। | ୧୧୧ |
| ୩୭ | ବାଳକ ଛାଡ଼ି କ୍ରୀଡ଼ାମାନ | । | ଜଡ଼ର ପ୍ରାୟେକ ତନ୍ମନ | ।। | ୧୧୨ |
| | କୃଷ୍ଣଗ୍ରହରେ ମନ ଯାର | । | ଗ୍ରହଣ ହେଲା ନିରନ୍ତର | ।। | ୧୧୩ |
| | ଜଗତ ଅଟଇ ଏମନ୍ତ | । | ଏ ରୂପେ ନ ଜାଣେ ଯା ଚିତ୍ତ | ।। | ୧୧୪ |
| ୩୮ | ବସନ୍ତେ ବୁଲନ୍ତେ ଭୁଞ୍ଜନ୍ତେ | । | ଶୁଅନ୍ତେ ପିଅନ୍ତେ ବୋଲନ୍ତେ | ।। | ୧୧୫ |
| | ଆସନ ଆଦି ଯେ ଏମାନ | । | ନ କଲା ତା' ଅନୁସଂଧାନ | ।। | ୧୧୬ |
| | ଗୋବିନ୍ଦସହିତେ ଆତ୍ମାରେ | । | ଏକ ହୋଇଛି ନିରନ୍ତରେ | ।। | ୧୧୭ |
| ୩୯ | ବିଷ୍ଣୁଚିନ୍ତାରେ ଅନୁଦିନ | । | ମିଶ୍ରିତ ଯାହାର ଚେତନ | ।। | ୧୧୮ |
| | ରୋଦେ କେହୁଣି ସମୟରେ | । | ସେ ବିଷ୍ଣୁଚିନ୍ତା-ଆହ୍ଲାଦରେ | ।। | ୧୧୯ |
| | ହସଇ କେହୁଣିସିଠାରେ | । | କାହିଁ ଗାୟନ ଉଚ୍ଚେ କରେ | ।। | ୧୨୦ |
| ୪୦ | ଉତକଣ୍ଠାରେ ଯୁତ ହୋଇ | । | ଧ୍ୱନି କରଇ ପୁଣ କାହିଁ | ।। | ୧୨୧ |
| | ସେ ପୁଣ କେବଣ ସ୍ଥାନରେ | । | ବିଲଜ୍ଜ ହୋଇ ନୃତ୍ୟ କରେ | ।। | ୧୨୨ |
| | କୃଷ୍ଣଭାବନାଯୁତ ହୋଇ | । | ତନ୍ମୟ ହୋଇ କେଉଁଠାଇଁ | ।। | ୧୨୩ |
| | ସେ କୃଷ୍ଣଚେଷ୍ଟା ଆଦି ଯେତେ | । | କରଇ ତାହା ନିଜ ମତେ | ।। | ୧୨୪ |
| ୪୧ | ଈଶ୍ୱରଭାବ ଲଭିଥାଇ | । | ସୁଖୀ ହୋଇଣ କେଉଁଠାଇଁ | ।। | ୧୨୫ |
| | ମଉନ ହୋଇ କରି ରହେ | । | ପୁଲକେ ପ୍ରକାଶନ୍ତି ଦେହେ | ।। | ୧୨୬ |
| | ନିଶ୍ଚଳ ପ୍ରେମରୁ ପ୍ରସରେ | । | ଆନନ୍ଦଜଳ ଯେ ନେତ୍ରରେ | ।। | ୧୨୭ |
| | ତେଣେ ଯାହାର ନେତ୍ର ଦୁଇ | । | ଅଳ୍ପ ମୁଦ୍ରିତ ହୋଇଥାଇ | ।। | ୧୨୮ |
| ୪୨ | ଯା' ଅକିଞ୍ଚନ ଜନଙ୍କର | । | ସଙ୍ଗମବଶୁଁ ଲଭେ ନର | ।। | ୧୨୯ |
| | ବିଷ୍ଣୁର ପାଦପଦ୍ମ ଦୁଇ | । | ସେବା ଯେ ଏମନ୍ତ ଅଟଇ | ।। | ୧୩୦ |
| | ତେଣେ ଯେ କରନ୍ତେ ବିସ୍ତାର | । | ନିଜ ସୁଖକୁ ବାରମ୍ବାର | ।। | ୧୩୧ |
| | ଯେ ଦୁଷ୍ଟଜନସଙ୍ଗମରେ | । | ଦୁଃଖିତ ଅଟଇ ସଂସାରେ | ।। | ୧୩୨ |
| | ଏମନ୍ତ ଲୋକର ହିଁ ମନ | । | ଶାନ୍ତିକି କଲାକ ବିଧାନ | ।। | ୧୩୩ |

---

୧. ପ୍ରିୟ । (ନତେଽଧୁନାପି ପ୍ରାୟନ୍ତେ ଇତି ପାଠେ ।);
ନ ତେଽଧୁନାପିଧୀୟନ୍ତେ ଇତି ପାଠେ 'ଆଜ ହିଁ ତିରୋହିତ ନୋହି' ହେବା ଉଚିତ ।

| | | | | |
|---|---|---|---|---|
| ୪୩ | ଯେ ପୁତ୍ର ମହାଭାଗବତ | । ମହାତ୍ମା ମହାଭାଗ୍ୟବନ୍ତ | ।। | ୧୩୪ |
| | ତା' ଠାରେ ଆଚରିଲା ପାପ | । ହିରଣ୍ୟକଶିପୁ ହେ ନୃପ | ।। | ୧୩୫ |

ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୪୪ | ଆହେ ସୁବ୍ରତ ଦେବରଷି | । ଏ ତୁମ୍ଭ ବାକ୍ୟକୁ ବିଶେଷି | ।। | ୧୩୬ |
| | ଜାଣିମାପାଇଁ ନିଜ ମନେ | । ବାଞ୍ଛା କରିଛୁଁ ଆମ୍ଭେମାନେ | ।। | ୧୩୭ |
| | ଯେ ଶୁଦ୍ଧ ସାଧୁ ନିଜ ସୁତ | । ତାକୁ ଯା' ଦ୍ରୋହ କଲା ତାତ | ।। | ୧୩୮ |
| ୪୫ | ଯେ ପ୍ରତିକୂଳ ଆଚରଣ | । କରନ୍ତି ନିଜ ପୁତ୍ରେ ପୁଣ | ।। | ୧୩୯ |
| | ପୁତ୍ରବତ୍ସଳ ଯେଉଁ ତାତେ | । ସେ ତାଙ୍କୁ ଶିକ୍ଷାର ନିମିତ୍ତେ | ।। | ୧୪୦ |
| | ଆକ୍ଷେପମାତ୍ରକ କରନ୍ତି | । ଶତ୍ରୁର ପ୍ରାୟ ନ ମାରନ୍ତି | ।। | ୧୪୧ |
| ୪୬ | ଯେ ସାଧୁ ଯେବଣ ପିତାର | । ଗୁରୁ ଦେବତା ଯାହାଙ୍କର | ।। | ୧୪୨ |
| | ଏମନ୍ତ ଯେବଣ ନନ୍ଦନେ | । ତାଙ୍କୁ ଉଦ୍ଦେଶି ତାତମାନେ | ।। | ୧୪୩ |
| | ଦ୍ରୋହ ନ କରନ୍ତି ସର୍ବଥା | । କି ବୋଲି କହିବା ଏ କଥା | ।। | ୧୪୪ |
| | ହେ ବିପ୍ର ! ଆମ୍ଭମାନଙ୍କର | । ଏ କଉତୁକକୁ ନିବାର | ।। | ୧୪୫ |
| | ଯେଣୁ ପୁତ୍ରର ଦ୍ୱେଷ ଯେହି | । ପିତାନାଶକୁ ହେଲା ସେହି | ।। | ୧୪୬ |
| | ଯେ କୃଷ୍ଣ ଜଗତଈଶ୍ୱର | । ଶରଣ ସେ ଦୀନବନ୍ଧୁର | ।। | ୧୪୭ |
| | [1]ଭକ୍ତଜନଙ୍କ ଅନୁମତେ | । ଶ୍ରୀଭାଗବତ କରି ଗୀତେ | ।। | ୧୪୮ |
| | ସାଧୁଜନଙ୍କର ମାନସ | । ବିଶେଷେ କଲା ଏଣେ ତୋଷ | ।। | ୧୪୯ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ସପ୍ତମସ୍କନ୍ଧେ ଶ୍ରୀଯୁଧିଷ୍ଠିରନାରଦସଂବାଦେ ଶ୍ରୀପ୍ରହ୍ଲାଦଚରିତଂ
ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ଗୁରୁତୋଽଧୀତଂ ତ୍ୟକ୍ତ୍ୱା ବିଷ୍ଣୁସ୍ତୁତୌ ରତମ୍ ।
ଘାତୟନ୍ ଦ୍ୱିପସର୍ପାଦ୍ୟୈଃ ସୁତଂ ଦୈତ୍ୟୋ ନ ଚାଶକତ୍ ।।

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୧ | ଶୁକ୍ରଙ୍କୁ ପୁରୋହିତଭାବେ | । ଅସୁରେ ବରିଲେକ ପୂର୍ବେ | ।। | ୧ |
| | ତାଙ୍କର ଶଣ୍ଡାମର୍କ ହୋଇ | । ଅଟନ୍ତି ଯେଉଁ ପୁତ୍ର ଦୁଇ | ।। | ୨ |
| | ସେ ଦୈତ୍ୟରାଜାର ସଦନ | । ନିକଟେ କଲେ ନିଜ ସ୍ଥାନ | ।। | ୩ |
| ୨ | ନୀତିରେ ଅଟେ ଯେ ପଣ୍ଡିତ | । ପ୍ରହ୍ଲାଦନାମେ ନିଜ ସୁତ | ।। | ୪ |

୧. କୃଷ୍ଣକୃପାକୁ ଘେନି ଚିତ୍ତେ ।

ତାକୁ ସେ ଦୁହିଁଙ୍କରି ତହିଁ । ରାଜା ପ୍ରବେଶ କଲେ ନେଇ ।। ୫
ସେ ଦୁହେଁ ସେ ପ୍ରହରାଦକୁ । ଆନ ଅସୁରବାଳକଙ୍କୁ ।। ୬
ଯେ ଦଣ୍ଡନୀତି ଆଦିମାନ । କରାଇଲେ ତା' ଅଧ୍ୟୟନ ।। ୭
୩ ତହିଁରେ ଗୁରୁ କହେ ଯାହା । ଶୁଣେ ତଦନ୍ତେ ପଢ଼େ ତାହା ।। ୮
କେବଳ ଉତ୍ତମ ରୂପରେ । ମଣିଲା ନାହିଁ ତା' ମନରେ ।। ୯
ଏ ନିଜ ଏ ଅଟଇ ପର । ଏ ରୂପେ ଯେ ମିଥ୍ୟାବିଚାର ।। ୧୦
ସେ କଥା ଆଶ୍ରୟରୂପରେ । ଅଛି ଯେଉଁ ଦଣ୍ଡନୀତିରେ ।। ୧୧
୪ ପୁତ୍ରକୁ ବସାଇ କୋଳରେ । ପାଳନ୍ତେ ଏକ ଦିନକରେ ।। ୧୨
କହିଲା ଅସୁରରାଜନ । ହେ ବତ୍ସ ! କହ ସେ ବଚନ ।। ୧୩
ଯେବଣ କଥା ସାଧୁ କରି । ମଣିଛୁ ମନରେ ବିଚାରି ।। ୧୪

ଶ୍ରୀପ୍ରହ୍ଲାଦ ଉବାଚ

୫ ହେ ଦୈତ୍ୟବର ! ଅହଂ ମମ । ଏରୂପେ ଯେ ମିଥ୍ୟା ଉଦ୍ୟମ ।। ୧୫
ସେ ଘେନି ଉଦବେଗମନ । ହୋଇ ଥାଆନ୍ତି ଯେଉଁ ଜନ ।। ୧୬
ଅଧୋଗତିକି ଆପଣାର । କାରଣ ଯେବଣ ମନ୍ଦିର ।। ୧୭
ଅନ୍ଧକୂପର ପ୍ରାୟ ହୋଇ । ଲୋକର ମୋହକୁ ଯେ ବହି ।। ୧୮
ଛାଡ଼ି ସେ ଗୃହ ବନେ ଯାଇ । ହରିଙ୍କି ଆଶ୍ରେ ଯା' କରଇ ।। ୧୯
ସେମାନଙ୍କର ସାଧୁ ହୋଇ । ସେକଥା ମଣୁଅଛି ମୁହିଁ ।। ୨୦

ଶ୍ରୀନାରଦ ଉବାଚ

୬ ବିଷ୍ଣୁପକ୍ଷରେ ନିଷ୍ଠ ହୋଇ । ପୁତ୍ରବଚନମାନ ଯେହି ।। ୨୧
ଦୈତ୍ୟ ହସିଲା ତାହା ଶୁଣି । ଏମନ୍ତ ବିଚାରିଲା ପୁଣି ।। ୨୨
ବାଳକମାନଙ୍କର ମନ । ପରବୁଦ୍ଧିରେ ହୋଏ ଭିନ୍ନ ।। ୨୩
୭ ଏବେ ଉତ୍ତମ ପରକାରେ । ରଖ ବାଳକୁ ଗୁରୁଘରେ ।। ୨୪
ଯେ ବିଷ୍ଣୁପକ୍ଷ ବିପ୍ରଜନେ । ଆଚ୍ଛନ୍ନ ହୋଇଣ ସେମାନେ ।। ୨୫
ଏହାର ବୁଦ୍ଧିକି ଯେମନ୍ତେ । ଭେଦ ନ କରନ୍ତି ଏକାନ୍ତେ ।। ୨୬
୮ ତଦନ୍ତେ ଦୈତ୍ୟମାନେ ତାକୁ । ଆଣିଲେ ଗୁରୁର ଗୃହକୁ ।। ୨୭
ସେ ପ୍ରହରାଦକୁ ଏକାନ୍ତେ । ଦିତିସୁତର ପୁରୋହିତେ ।। ୨୮
ପ୍ରଶଂସି କୋମଳ ବାଣୀରେ । ବଚନ ପୁଛିଲେ ସାମରେ ।। ୨୯
୯ ହେ ବତ୍ସ ! ପ୍ରହରାଦ ତୋର । ମଙ୍ଗଳ ହେଉ ନିରନ୍ତର ।। ୩୦
ମିଥ୍ୟା ନ କହ ସତ୍ୟ ଭଣ । ବାଳକମାନଙ୍କୁ ବଳିଣ ।। ୩୧
ଏ ତୋର ବୁଦ୍ଧି ବିପରୀତ । କେଉଁ ସକାଶୁଁ ହେଲା ଜାତ ।। ୩୨
୧୦ ତୋ ବୁଦ୍ଧିଭେଦ ପରଠାରୁ । ଅଥବା ହେଲା ସ୍ୱଭାବରୁ ।। ୩୩
ହେ କୁଳନନ୍ଦନ ! ଏ ବାଣୀ । ଶ୍ରବଣ କରିବାକୁ ପୁଣି ।। ୩୪

ବାଞ୍ଛୁଛୁଁ ଆମ୍ଭେ ଗୁରୁମାନେ । କହ ଆମ୍ଭଙ୍କୁ ତୋଷମନେ ॥ ୩୫

### ଶ୍ରୀପ୍ରହ୍ଲାଦ ଉବାଚ

୧୧ ଏ ପର ଏହୁ ଆପଣାର । ଏମନ୍ତରୂପେ ଲୋକଙ୍କର ॥ ୩୬
ଅଭିନିବେଶ ଯେ ମିଥ୍ୟାରେ । ରଚିତ ଯାହାର ମାୟାରେ ॥ ୩୭
ସେ ମାୟାବଶରୁ ମୋହିତ । ଯେବଣ ଲୋକଙ୍କର ଚିତ୍ତ ॥ ୩୮
ସେକଥା ଦେଖି ତାହାଙ୍କର । ମୋହର ନାହିଁ ସେ ପ୍ରକାର ॥ ୩୯
ଏମନ୍ତ ଯେଉଁ ଭଗବାନ । ତାହାଙ୍କୁ ମୋହର ବନ୍ଦନ ॥ ୪୦
୧୨ ଯେଉଁ କାଳେ ସେ ଭଗବାନ । ଲୋକଙ୍କୁ ହୁଅନ୍ତି ପ୍ରସନ୍ନ ॥ ୪୧
ପଶୁମାନଙ୍କ ପ୍ରାୟ ହୋଇ । ଏ ଭିନ୍ନ ମୁଁ ଭିନ୍ନ ଅଟଇ ॥ ୪୨
ଏମନ୍ତ ରୂପେ ମିଥ୍ୟା ହୋଇ । ଯେବଣ ବୁଦ୍ଧି ହୋଇଥାଇ ॥ ୪୩
ଅଭିନ୍ନ ଆତ୍ମାରେ ସେ ବୁଦ୍ଧି । ସେହି କାଳରେ ଲଭେ[୧] ସିଦ୍ଧି ॥ ୪୪
୧୩ ପରମ ଆତ୍ମା ସେହୁ ଏହି । ଏ ନିଜ ଏ ପର ଅଟଇ ॥ ୪୫
ଏରୂପେ ଅବିବେକୀ ଜନେ । ଯାକୁ ନିରୂପନ୍ତି ଭୁବନେ ॥ ୪୬
ତା' ମାର୍ଗ ଜାଣିମାକୁ ମନେ । ବ୍ରହ୍ମାଦି ବେଦବାଦୀମାନେ ॥ ୪୭
ମୋହକୁ ଲଭିଣ ଅଛନ୍ତି । ଭେଦ କରୁଛି ସେ ମୋ' ମତି ॥ ୪୮
ଦୁର୍ଘଟ ଚରିତ ଯାହାର । ଏମନ୍ତ ଅଟେ ସେ ଈଶ୍ୱର ॥ ୪୯
୧୪ ହେ ବିପ୍ର ! ଯେମନ୍ତ ପ୍ରକାରେ । ଚୁମ୍ବକଶିଳାସମୀପରେ ॥ ୫୦
ନିଜ ଇଚ୍ଛାଏ ଲୋହ ଭ୍ରମେ । ମୋ ଚିତ୍ତ ସେହିରୂପେ କ୍ରମେ[୨] ॥ ୫୧
ଭ୍ରମଣ କରେ ନିରନ୍ତର । ସମୀପେ ରଥାଙ୍ଗପାଣିର ॥ ୫୨
ଏ କେଉଁ ତପ ଆଦିଫଳ । ଏକଥା ନ କଲି ମୁଁ ମୂଳ ॥ ୫୩

### ଶ୍ରୀନାରଦ ଉବାଚ

୧୫ ବିପ୍ରକୁ ଏତେ ମାତ୍ର ଭଣି । ମହାତ୍ମା ନିବର୍ତ୍ତିଲା ପୁଣି ॥ ୫୪
ରାଜସେବକ ସେହୁ ଦୀନ । ତାହାକୁ କରିଣ ଭର୍ତ୍ସନ ॥ ୫୫
ଅତ୍ୟନ୍ତ କୁପିତ ହୋଇଲା । ଏମନ୍ତ ବଚନ ବୋଇଲା ॥ ୫୬
୧୬ ଆଣ ରେ ବେତ୍ରକୁ ଆମ୍ଭର । ନୁହଇ ଏ ତ ଯଶସ୍କର ॥ ୫୭
ଏହୁ ଦୁର୍ବୁଦ୍ଧି କୁଳାଙ୍ଗାର । ଉପାୟମାନଙ୍କ ମଧ୍ୟର ॥ ୫୮
ଯେ ଦଣ୍ଡ ଚତୁର୍ଥ ଅଟଇ । ଏହାକୁ ଯୁକ୍ତ ଅଟେ ସେହି ॥ ୫୯
୧୭ ଦୈତ୍ୟଚନ୍ଦନବନେ ଜାତ । କଣ୍ଟକଦ୍ରୁମ ଏ ବିଦିତ ॥ ୬୦
ଯେବଣ ଦୈତେୟ ବିପିନ । ମୂଳ କରିବାକୁ ଛେଦନ ॥ ୬୧
କୁଠାରରୂପ ବିଷ୍ଣୁ ଯେହି । ତା' ବେଣ୍ଟ ହେଲା ବାଳ ଏହି ॥ ୬୨
୧୮ ଏରୂପେ ତର୍ଜନା ଆଦିରେ । ତାହାକୁ ନାନା ଉପାୟରେ ॥ ୬୩

୧. ହୋଏ । ୨. କର୍ମେ ।

ଜନମ କରାନ୍ତେ ଭୟକୁ । ଗୁରୁ ପଢ଼ାଇଲେ ଶାସ୍ତ୍ରକୁ ॥ ୬୪
ଯେ ଶାସ୍ତ୍ର ଧର୍ମ ଅର୍ଥ କାମ । ପ୍ରତିପାଦିବାରେ[1] ଉତ୍ତମ ॥ ୬୫
୧୯ ଜାଣିମା-ଯୋଗ୍ୟ ଯେ ଅଟଇ । ସାମ-ଦାନକୁ[2] ଆଦି ହୋଇ ॥ ୬୬
ଏ ଚାରି ଉପାୟକୁ ଜାଣି । ଅଛି, ଏ ବାଳ ଏହା ମଣି ॥ ୬୭
ପ୍ରହରାଦକୁ ଗୁରୁ ନେଲେ । ଦୈତ୍ୟରାଜାକୁ ଦେଖାଇଲେ ॥ ୬୮
ସ୍ନାନ କରାଇ ମାତା ତାକୁ । ମଣ୍ଡିଛି ଭୂଷଣମାନଙ୍କୁ ॥ ୬୯
୨୦ ପଡ଼ିଛି ଯେ ପାଦଯୁଗରେ । ସେ ବାଳକକୁ ଆଶିଷରେ ॥ ୭୦
ଆନନ୍ଦ କରାଇ ଉତ୍ପନ୍ନ । ଭୁଜରେ କରି ଆଲିଙ୍ଗନ ॥ ୭୧
ଯେ ସୁଖ ଅଟଇ ବିସ୍ତର । ତାହାକୁ ଲଭିଲା ଅସୁର ॥ ୭୨
୨୧ ଅଙ୍କରେ କରି ଆରୋପଣ । ମସ୍ତକେ କରିଣ ଆଘ୍ରାଣ ॥ ୭୩
ଯେ ନେତ୍ରକଳାଜଳମାନ । ତେଣେ କଲା ତାକୁ ସେଚନ ॥ ୭୪
ପ୍ରସନ୍ନମୁଖେ ଏ ବଚନ । କହିଲା ହେ ଧର୍ମନନ୍ଦନ ॥ ୭୫

ହିରଣ୍ୟକଶିପୁରୁବାଚ

୨୨ ହେ ତାତ ! ହେ ଆୟୁଷବନ୍ତ । ହେ ପ୍ରହରାଦ ! ଯା' ଅଧୀତ ॥ ୭୬
କରିଛୁ ଉତ୍ତମ କରିଣ । ଉତ୍ତମ ଅଟଇ ଯେ ପୁଣ ॥ ୭୭
ମୋହର ଆଗେ ପଢ଼ ତାହି । ଏତେ କାଳରେ ଯାହା ତୁହି ॥ ୭୮
ଆପଣା ଗୁରୁର ସକାଶୁଁ । ଶିକ୍ଷା କରିଛୁ ବୁଦ୍ଧିବଶୁଁ ॥ ୭୯

ଶ୍ରୀପ୍ରହ୍ଲାଦ ଉବାଚ

୨୩ ବିଷ୍ଣୁର ଶ୍ରବଣ କୀର୍ତ୍ତନ । ସ୍ମରଣ ଚରଣସେବନ ॥ ୮୦
୨୪ ପୂଜା ବନ୍ଦନ ଦାସପଣ । ମିତ୍ରତା ଆତ୍ମସମର୍ପଣ[3] ॥ ୮୧
ନବଲକ୍ଷଣ ଏ ପ୍ରକାରେ । ଯେ ଭକ୍ତି ତାହା ବିଷ୍ଣୁଠାରେ ॥ ୮୨
ପୁରୁଷ କରନ୍ତେ ଅର୍ପିତ[4] । ଯେବେ ଆଚରଇ ସାକ୍ଷାତ ॥ ୮୩
ଉତ୍ତମ ଅଧ୍ୟୟନ ସେହି । ଏମନ୍ତ ମଣୁଅଛି ମୁହିଁ ॥ ୮୪
୨୫ ଏ ରୂପେ ସୁତର ବଚନ । ହିରଣ୍ୟକଶିପୁ ଶୁଣିଣ ॥ ୮୫
ତେବେ ଯେ ଥିଲା ଗୁରୁସୁତ । ତାହାକୁ ବୋଇଲା ଏମନ୍ତ ॥ ୮୬

---

୧. ପ୍ରତିପାଦିବାରେ = ପ୍ରତିପାଦନ କରିବାରେ । ୨. ଭେଦଦଣ୍ଡକୁ ।

୩. ଆତ୍ମସମର୍ପଣ – ଏଠାରେ 'ଆତ୍ମା' ଶବ୍ଦ 'ଦେହ' ଅର୍ଥରେ ବ୍ୟବହୃତ ହୋଇଅଛି । ଯେପରି ଗବାଦି ବିକ୍ରୀତ ପଶୁମାନଙ୍କର ଭରଣପାଳନ ଆଦି ଚିନ୍ତା ନ ଥାଏ, ସେହିପରି ବିଷ୍ଣୁଙ୍କଠାରେ ଦେହ ସମର୍ପଣ କରି ତାହାର ଭରଣପାଳନ ଚିନ୍ତା ବର୍ଜନ କରିବ ।

୪. ଅର୍ପିତ – ନବଲକ୍ଷଣା ଭକ୍ତି ଆଗେ ବିଷ୍ଣୁଙ୍କଠାରେ ଅର୍ପିତ ହୋଇ (ଅର୍ଥାତ୍ 'ଏହା ବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନୁଷ୍ଠିତ ହେଉଛି', ଏହିପ୍ରକାର ଚିନ୍ତାଯୁକ୍ତ ହୋଇ) ପରେ କୃତ ହେବା ବିଧେୟ; କିନ୍ତୁ ଆଗେ ସ୍ୱସୁଖାର୍ଥ କୃତ ହୋଇ ପରେ ବିଷ୍ଣୁଙ୍କୁ ଅର୍ପିତ ହେବା ଭକ୍ତି ନୁହେଁ ।

ରୋଷରେ ଅତିଶୟ ତାର । କମ୍ପିତ ହେଉଛି ଅଧର ॥ ୮୭

୨୬ ହେ ଦୀନ ବିପ୍ର ! ଏକି ତୋର । ଭଜନ୍ତେ ଶତ୍ରୁକୁ ଆମ୍ଭର ॥ ୮୮

ଅବଜ୍ଞା କରିଣ ଆମ୍ଭକୁ । ଦୁଷ୍ଟ ଦୁର୍ମତି ତୁ ବାଳକୁ ॥ ୮୯

ଯେ ମାର୍ଗ ଅଟଇ ଅସାର । ତାହା କରାଇଲୁ ସ୍ୱୀକାର ॥ ୯୦

୨୭ ଲୋକେ ଯେ ଅସାଧୁ ଅଟନ୍ତି । କପଟ ବେଶ ବହିଥାନ୍ତି ॥ ୯୧

ସେମାନଙ୍କର ମିତ୍ରପଣ । ସଙ୍ଗତ ନୋହେ ଏ ପ୍ରମାଣ ॥ ୯୨

ତାଙ୍କର ଦ୍ୱେଷଆଦି ଯେହି । କାଳେ ପ୍ରକାଶ ହୋଏ ସେହି ॥ ୯୩

ପାତକୀ ଅଟନ୍ତି ଯେ ଜନ । ରୋଗ ତାହାଙ୍କର ଯେସନ ॥ ୯୪

ଦେହରେ ଛନ୍ନ ହୋଇଥାଇ । [1]କାଳରେ ପ୍ରକଟ ହୁଅଇ ॥ ୯୫

### ଗୁରୁପୁତ୍ର ଉବାଚ

୨୮ ହେ ଇନ୍ଦ୍ରଶତ୍ରୁ ! ଯାହା ମୁହିଁ । ତୋହର ପୁତ୍ରକୁ ପଢ଼ାଇ ॥ ୯୬

ପଢ଼ାଇ ଯେହୁ ଅବା ଆନ । ଏ ତା ନ କରେ ଅଧ୍ୟୟନ ॥ ୯୭

ହେ ନୃପ ! ସ୍ୱଭାବଜନିତ । ମତି ଏହାର ଏ ବିଦିତ ॥ ୯୮

ବିନାଶ କର ନିଜ ରୋଷ । ଆମ୍ଭକୁ ନ ଦିଅ ତୁ ଦୋଷ ॥ ୯୯

### ଶ୍ରୀନାରଦ ଉବାଚ

୨୯ ଏମନ୍ତ ରୂପେ ପ୍ରତିବାଣୀ । ଗୁରୁ କହନ୍ତେ ଦୈତ୍ୟ ଶୁଣି ॥ ୧୦୦

ପୁତ୍ରକୁ ବୋଇଲା ଝଟତି । ଆରେ ଅଭଦ୍ର ଦୁଷ୍ଟମତି ॥ ୧୦୧

ଗୁରୁବାକ୍ୟରୁ ନୋହେ ଜାତ । ତେବେ ଏ କାହିଁରୁ ସମ୍ଭୂତ ॥ ୧୦୨

### ଶ୍ରୀପ୍ରହ୍ଲାଦ ଉବାଚ

୩୦ ଯେବଣ ଲୋକମାନଙ୍କର । ବ୍ରତ ଅଟଇ ଏ ମନ୍ଦିର ॥ ୧୦୩

ବିଷୟରସୁଁ ନ ନିବର୍ତ୍ତି । ଇନ୍ଦ୍ରିୟମାନେ ଯେ ଅଛନ୍ତି ॥ ୧୦୪

ତେଣେ ଯେ ସଂସାରେ ମିଳନ୍ତି । ଯେବଣ ଭୋଗ ଭୁଞ୍ଜିଥାନ୍ତି ॥ ୧୦୫

ସେହି ଭୋଗକୁ ପୁଣ ପୁଣ । ଯେ କରୁଥାଆନ୍ତି ଚର୍ବଣ ॥ ୧୦୬

ସେ ଲୋକଙ୍କର ଗୁରୁଠାରୁ । ଅଥବା ଆପଣା ବୁଦ୍ଧିରୁ ॥ ୧୦୭

ଅନ୍ୟୋଽନ୍ୟସଙ୍ଗୁଁ ଅବା ମତି । କୃଷ୍ଣରେ ନୋହେ ଉତପତି ॥ ୧୦୮

୩୧ ନିଜ ଆତ୍ମାରେ ନିରନ୍ତର । ଅଟେ ପୁରୁଷାର୍ଥ ଯାଙ୍କର ॥ ୧୦୯

ସେ ଲୋକମାନଙ୍କର ଗତି । ବିଖ୍ୟାତ ଯେ ବିଷ୍ଣୁ ଅଟନ୍ତି ॥ ୧୧୦

ସେମାନେ ତାଙ୍କୁ ନ ଜାଣନ୍ତି । [2]ବିଷୟବଦ୍ଧ ଯାଙ୍କ ମତି ॥ ୧୧୧

---

୧. ବ୍ରହ୍ମହା କ୍ଷୟରୋଗୀ ସ୍ୟାଦ୍ ସୁରାପଃ ଶ୍ୟାବଦନ୍ତକଃ ।
ସ୍ୱର୍ଣ୍ଣହାରୀ ତୁ କୁନଖୀ ଦୁଶ୍ଚର୍ମା ଗୁରୁତଳ୍ପଗଃ ॥ (ସ୍ମୃତିଃ)

୨. ବିଷୟାବିଷ୍ଟଚିତ୍ତାନାଂ ବିଷ୍ଣ୍ୱାବେଶଃ ସୁଦୂରତଃ ।
ବାରୁଣୀଦିଗ୍‌ଗତଂ ବସ୍ତୁ ବ୍ରଜନ୍ନୈନ୍ଦ୍ରୀଂ କିମାପ୍ନୁୟାଦ୍ ॥

ବାହ୍ୟ ବିଷୟ ପ୍ରୟୋଜନ । ମଣିଥାଆନ୍ତି ଯେଉଁ ଜନ ॥ ୧୧୨
ତାହାଙ୍କୁ ଯେ ଗୁରୁଭାବରେ । ମଣିଥାଆନ୍ତି ନିରନ୍ତରେ ॥ ୧୧୩
ଅନ୍ଧକୁ ଅନ୍ଧ କଢ଼ାଇଲେ । ଗର୍ତ୍ତେ ପଡ଼ନ୍ତି ଯେହ୍ନେ ଭଲେ ॥ ୧୧୪
ବେଦଲକ୍ଷଣ ଯେ ବଚନ । ସେ ଦୀର୍ଘ ରଜ୍ଜୁର ସମାନ ॥ ୧୧୫
ବ୍ରାହ୍ମଣ ଆଦି ଯେତେ ନାମ । ତହିଁ ଅଟନ୍ତି ଉରୁ ଦାମ ॥ ୧୧୬
କାମ୍ୟ କର୍ମରେ ବଦ୍ଧ ହୋଇ । ସେମାନେ ଛନ୍ତି ଯହିଁ ରହି ॥ ୧୧୭
୩୨ ଯେ ଅତି ସାଧୁ ଅକିଂଚନ । ତାହାଙ୍କ ପାଦରଜେ ସ୍ନାନ ॥ ୧୧୮
ନ କରିଥାଇ ଯେତେ ଦିନ । ଏ ଲୋକମାନଙ୍କର ମନ ॥ ୧୧୯
ବିଷ୍ଣୁପାଦକୁ ତେତେ ଦିନ । କରଇ ନାହିଁ ସ୍ପରଶନ ॥ ୧୨୦
ସଂସାରଦୁଃଖବିନାଶନ । ଯେଉଁ ବୁଦ୍ଧିର[୧] ପ୍ରୟୋଜନ ॥ ୧୨୧
୩୩ ଏତେ ବଚନ ସୁତ କହି । ରହିଲା ପୁଣି ତୁନି ହୋଇ ॥ ୧୨୨
ତାହାକୁ ନିଜ କୋଡ଼ୁଁ ବଳେ । ଦୈତ୍ୟ ପିଙ୍ଗିଲା ମହୀତଳେ ॥ ୧୨୩
ରୋଷସକାଶୁଁ ଆତ୍ମା ତାର । ଅନ୍ଧ ହୋଇଛି ନିରନ୍ତର ॥ ୧୨୪
୩୪ ଅସହିଷ୍ଣୁତାସହିତରେ । ଯେ ରୋଷ ଜନ୍ମିଲା ଆତ୍ମାରେ ॥ ୧୨୫
ତେଣେ ଆବିଷ୍ଟ ଅଛି ହୋଇ । ରକ୍ତ ହୋଇଛି ନେତ୍ର ଦୁଇ ॥ ୧୨୬
ବୋଇଲା ହେ ଦୈତ୍ୟେ ଏହାକୁ । ଏଠାରୁ ନିଅ ବାହାରକୁ ॥ ୧୨୭
ବଧକୁ ଅଟଇ ଏ ଯୋଗ୍ୟ । ଏହାକୁ ବଧ କର ବେଗ ॥ ୧୨୮
୩୫ ଭ୍ରାତୃହା ଅଧମ ଏ ମୋର । ମିତ୍ରଜନଙ୍କୁ ଆପଣାର ॥ ୧୨୯
ଛାଡ଼ିଣ ଦାସପ୍ରାୟ ହୋଇ । ପୂଜେ ବିଷ୍ଣୁର ପାଦ ଦୁଇ ॥ ୧୩୦
ଯେ ପିତୃଭ୍ରାତାକୁ ମାରିଛି । ନିଶ୍ଚେ ସେ ଏରୂପ ଧରିଛି ॥ ୧୩୧
୩୬ ଅସମଞ୍ଜସ ଏ ବିଷ୍ଣୁର । କରିବ ସାଧୁ କି ପ୍ରକାର ॥ ୧୩୨
ପିତାମାତାର ସ୍ନେହ ଯେହି । ସର୍ବଥା ଦୁସ୍ତ୍ୟଜ ଅଟଇ ॥ ୧୩୩
ସେକଥା କଲା ଅତିଦୂର । ବୟସେ ଯେ ପଞ୍ଚ ବସର ॥ ୧୩୪
୩୭ ଶତ୍ରୁହିଁ ଔଷଧ ପରାଏ । ଯେବେ ହିତକୁ କରିଥାଏ ॥ ୧୩୫
ଅପତ୍ୟପ୍ରାୟେ ତାକୁ ଜାଣି । ଦେହରୁ ଜନ୍ମିଲେହେଁ ପୁଣି ॥ ୧୩୬
ଅହିତ ହୋଏ ଯେବେ ସୁତ । ବ୍ୟାଧିର ପ୍ରାୟ ସେ ବିଦିତ ॥ ୧୩୭
ଅହିତ ଅଟେ ଆପଣାର । ଯେ ଅଙ୍ଗ, ଛିନ୍ଦାଏ[୨] ତା ନର ॥ ୧୩୮
ଯେତେକ ଅବଶେଷ ଥାଇ । ତା' ତ୍ୟାଗୁଁ ସୁଖେ ସେ ଜୀଅଇ ॥ ୧୩୯
୩୮ ମିତ୍ରରୂପକୁ ଥାଇ ଧରି । ନିଶ୍ଚୟେ ଅଟଇ ଯେ ଅରି ॥ ୧୪୦
ଭୋଜନ, ଶୟନ, ଆସନେ । ଗରଳଆଦିଙ୍କ ପ୍ରଦାନେ ॥ ୧୪୧
ସକଳ ଉପାୟେ ବିନାଶ । କରିବ ତାହାକୁ ଅବଶ୍ୟ ॥ ୧୪୨
ଦୁଷ୍ଟ ଇନ୍ଦ୍ରିୟ ଯେ ଅଟଇ । ମୁନିର ଶତ୍ରୁ ଯେହ୍ନେ ସେହି ॥ ୧୪୩

୧ . ବୁଦ୍ଧି = ମନ (ମୂଳଶବ୍ଦ 'ମତି') । ୨. ଛିନ୍ଦାଏ = ଛିଣ୍ଡାଏ ।

୩୯-୪୧ ଯେ ହସ୍ତେ ଧରିଛନ୍ତି ଶୂଳ । ଯାହାଙ୍କ ବଦନ କରାଳ ॥ ୧୪୪
ତାଙ୍କର ତୀକ୍ଷ୍ଣ ଦଂଷ୍ଟ୍ରମାନ । ଚିକୁର ଶ୍ମଶ୍ରୁ ରକ୍ତବର୍ଣ୍ଣ ॥ ୧୪୫
ଥିଲେ ଯେ ସେ ରାକ୍ଷସମାନେ । ଆପଣା ସ୍ୱାମୀର ଶାସନେ ॥ ୧୪୬
କରନ୍ତି ନାଦ ଭୟଙ୍କର । ବୋଲନ୍ତି ହାଣ, କାଟ, ମାର ॥ ୧୪୭
ଯେ ପ୍ରହରାଦ ଥିଲା ବସି । ଶୂଳ ଘେନିଣ ତାକୁ ଆସି ॥ ୧୪୮
ପ୍ରହାର କଲେକ ନିର୍ଭରେ । ସକଳ ମର୍ମମାନଙ୍କରେ ॥ ୧୪୯
ଯେ ବ୍ରହ୍ମ ଅଟେ ନିର୍ବିକାର । ବିଷୟମାନଙ୍କୁ ଇତର ॥ ୧୫୦
ତାହାର ଐଶ୍ୱର୍ଯ୍ୟ ଅସଂଖ୍ୟ । ଅଖିଳ ଆତ୍ମା ଯେ ପ୍ରତ୍ୟକ୍ଷ ॥ ୧୫୧
ସେ ପ୍ରଭୁଠାରେ ସମାଧାନ । କରି ଯେ ଥିଲା ନିଜ ମନ ॥ ୧୫୨
ସେ ପ୍ରହରାଦର ଶରୀରେ । ବିଫଳ ହେଲେ ସେ ପ୍ରହାରେ ॥ ୧୫୩
ଅଦୃଷ୍ଟଶୂନ୍ୟ[୧] ଯେଉଁ ଜନ । ତାହାର ଉଦ୍ୟମ ଯେସନ ॥ ୧୫୪
୪୨ ହେ ଯୁଧିଷ୍ଠିର ! ସେ ପ୍ରୟାସ । ତାଠାରେ ହୁଅନ୍ତେ ବିନାଶ ॥ ୧୫୫
ଦୈତ୍ୟରାଜନ ନିଜମତି । ଆଶଙ୍କା ଲଭିଲା ଝଟିତି ॥ ୧୫୬
ନିର୍ବନ୍ଧେ ତାହା' ମରଣକୁ । ରଚିଲା ନାନା ଉପାୟକୁ ॥ ୧୫୭
୪୩-୪୪ ଦିଗକୁଞ୍ଜରେ ଅହିବରେ । ଗିରିପାତନରେ କୃତ୍ୟାରେ[୨] ॥ ୧୫୮
ମାୟାମାନଙ୍କେ ବିଷଦାନେ । ଗର୍ତ୍ତନିରୋଧେ ଅଭୋଜନେ ॥ ୧୫୯
ହିମ ସଲିଳେ ହୁତାଶନେ । ପର୍ବତନିକ୍ଷେପେ ପବନେ ॥ ୧୬୦
ଅପାପୀ ସୁତକୁ ଅସୁର । କରିବା ନିମିତ୍ତେ ସଂହାର ॥ ୧୬୧
ଯେବେ ସେ ସମର୍ଥ ନୋହିଲା । ଅତ୍ୟନ୍ତ ଚିନ୍ତାକୁ ଲଭିଲା ॥ ୧୬୨
କରିବା ଅର୍ଥେ ସେ ନିଧନ । କେବେହେଁ ନୋହିଲା ଭାଜନ ॥ ୧୬୩
୪୫ ବହୁତ ନିଷ୍ଠୁର ଯେମନ୍ତେ । ଏହାକୁ ବୋଇଲି ତେମନ୍ତେ ॥ ୧୬୪
ବିନାଶନିମିତ୍ତେ ନିର୍ମାଣ । କଲି ଉପାୟମାନ ପୁଣ ॥ ୧୬୫
ସେ ସେହି ଦ୍ରୋହେ ଅପକାରେ । ମୁକ୍ତ ହୋଇଲା ସ୍ୱତେଜରେ ॥ ୧୬୬
୪୬ ନିକଟେ ଅଛି ମୋର ରହି । ନିର୍ଭୟ ଅଟେ ଶିଶୁ ହୋଇ ॥ ୧୬୭
ମୋହର ଯେ ଅନ୍ୟାୟକଥା । ନ ପାସୋରିବ ତା' ସର୍ବଥା ॥ ୧୬୮
[୩]ବିକନ୍ତେ ମାତା ତାତ ଦୁଇ । ତାହାଙ୍କ ଅପକାର ଯେହି ॥ ୧୬୯
ତା' ଶୁନଃଶେଫ ଦ୍ୱିଜବର । ଯେହ୍ନେ ନ କଲା ମନୁଁ ଦୂର ॥ ୧୭୦
ବିପକ୍ଷ ବିଶ୍ୱାମିତ୍ର ତାର । ତା' ଆଶ୍ରେ ହେଲା ଗୋତ୍ରାନ୍ତର ॥ ୧୭୧
୪୭ ଏହାର ଅନୁଭାବ ଯେହି । ଗଣନାକୁ ସେ ନ ଆସଇ ॥ ୧୭୨

୧. ଅଦୃଷ୍ଟଶୂନ୍ୟ = ଭାଗ୍ୟହୀନ ।
୨. କୃତ୍ୟା = କୁହୁକ, ମନ୍ତ୍ରତନ୍ତ୍ର, ଗୁଣିଗାରୁଡ଼ୀ ବିଦ୍ୟା, ଅପଦେବତାବିଶେଷ ।
୩. ଅଜୀଗର୍ତ୍ତ ଓ ତାଙ୍କ ଭାର୍ଯ୍ୟା ନିଜ ପୁତ୍ର ଶୁନଃଶେଫକୁ ହରିଶ୍ଚନ୍ଦ୍ରଙ୍କୁ ବିକିଥିଲେ ।

କେହୁଣି ସକାଶୁଁ ଏହାର । ଭୟ ହିଁ ନାହିଁ ଏ ଅମର ॥ ୧୭୩
ନିଶ୍ଚୟେ ବିରୋଧେ ଏହାର । [1]ମୃତ୍ୟୁ ବା ନୋହିବ ମୋହର ॥ ୧୭୪
୪୮ ଏରୂପେ ତା' ଚିନ୍ତାରେ କିଛି । ମ୍ଲାନ ଯା' ଶୋଭା ହୋଇଅଛି ॥ ୧୭୫
ତଳକୁ କରିଛି ବଦନ । ଏମନ୍ତ ଯେ ଦୈତ୍ୟରାଜନ ॥ ୧୭୬
ତାହାକୁ ଏକାନ୍ତେ ବଚନ । କହିଲେ ଶୁକ୍ରଙ୍କ ନନ୍ଦନ ॥ ୧୭୭
ଯେ ଶଣ୍ଡାମର୍କ ନାମ ହୋଇ । ଖ୍ୟାତ ଅଟନ୍ତି ବେନି ଭାଇ ॥ ୧୭୮
୪୯ ଯାହା ଭ୍ରୂଲତାନିକ୍ଷେପରେ । ଡରିଲେ ସର୍ବ ଲୋକେଶ୍ୱରେ ॥ ୧୭୯
ସେ ତିନି ଜଗତକୁ ପୁଣି । ଏକା ହୋଇ ତୁ ଅଛୁ ଜିଣି ॥ ୧୮୦
ହେ ନାଥ ! ଦେଖୁନାହୁଁ[2] କିଛି । ତୋ' ଚିନ୍ତାବିଷୟ ଯେ ଅଛି ॥ ୧୮୧
ଶିଶୁମାନଙ୍କ ବୃତ୍ତ ଯେହି । ଗୁଣଦୋଷର ସ୍ଥାନ ନୋହି ॥ ୧୮୨
୫୦ ଗୁରୁ ଅଟନ୍ତି ଯେ ଭାର୍ଗବେ । ସେ ଯେତେ କାଳରେ ଆସିବେ ॥ ୧୮୩
ସେ ଯାଏଁ ବରୁଣପାଶରେ । ଏହାକୁ ବାନ୍ଧି ରଖ ଘରେ ॥ ୧୮୪
ଭୟ ପାଇଣ ଏ ଯେମନ୍ତେ । ପଳାଇ ନ ଯାଏ ତୁରିତେ ॥ ୧୮୫
ବୟସ ବହୁତ ହୋଇଲେ । ଗୁରୁଜନଙ୍କୁ ସେବା କଲେ ॥ ୧୮୬
ସେ ଲୋକବୁଦ୍ଧି ଭଲ ହୋଇ । ଯେ ପୂର୍ବେ ଦୁଷ୍ଟ ହୋଇଥାଇ ॥ ୧୮୭
୫୧ ଯାହା କହିଲେ ଗୁରୁସୁତ । ସେ କଥା କରି ଅଙ୍ଗୀକୃତ ॥ ୧୮୮
ଏମନ୍ତ ବୋଇଲା ଅସୁର । ଗୃହସ୍ଥାଶ୍ରମୀ ରାଜାଙ୍କର ॥ ୧୮୯
ଯେ ଧର୍ମ ଅଛନ୍ତି ଅଶେଷ । ଏହାକୁ ଦିଅ ଉପଦେଶ ॥ ୧୯୦
୫୨ ବିନୟ ହୋଇ ଅବନତ । ଯେ ଅଟେ ଦୈତ୍ୟରାଜସୁତ ॥ ୧୯୧
ହେ ନୃପ ! କ୍ରମେ ତାକୁ ଧର୍ମ । କହିଲେ ପୁଣ ଅର୍ଥ, କାମ ॥ ୧୯୨
୫୩ ଯା' ଗୁରୁମାନେ ଆପଣାକୁ । ଶିକ୍ଷା ଦେଲେ ଯେ ତ୍ରିବର୍ଗକୁ ॥ ୧୯୩
ସେ ଶିକ୍ଷା ଉତ୍ତମ କରିଣ । ମଣିଲା ନାହିଁ ସେହୁ ପୁଣ ॥ ୧୯୪
ରାଗଦ୍ୱେଷାଦିରେ ବିହାର । ଅଛି ଯେବଣ ଲୋକଙ୍କର ॥ ୧୯୫
ଯେବଣ ଶିକ୍ଷାକୁ ସେମାନେ । ବର୍ଣ୍ଣିଅଛନ୍ତି ଏ ଭୁବନେ ॥ ୧୯୬
୫୪ ଗୃହସ୍ଥାଶ୍ରମକର୍ମ ଅର୍ଥେ । ଗୁରୁ ଯାଆନ୍ତେ ଆନପଥେ ॥ ୧୯୭
ମିତ୍ର ବାଳକମାନେ ତହିଁ । କାଳରେ ଅବକାଶ ପାଇ ॥ ୧୯୮
କ୍ରୀଡ଼ା କରିବା ନିମିତ୍ତରେ । ଡାକିଲେ ତାକୁ ସ୍ନେହଭରେ ॥ ୧୯୯
୫୫ ତାହାଙ୍କୁ ଏଥୁଁ ଅନନ୍ତରେ । ଡାକିଣ କୋମଳ ବାକ୍ୟରେ ॥ ୨୦୦
କୃପାରେ ସେ ମହାପଣ୍ଡିତ । କହିଲା ହସନ୍ତେ ଏମନ୍ତ ॥ ୨୦୧
ଜନ୍ମମରଣାଦି ତାଙ୍କର । ସମସ୍ତ କରିଛି ଗୋଚର ॥ ୨୦୨

---

୧. ଏହାର ବିରୋଧ କରିବା ଦ୍ୱାରା ମୋର ମୃତ୍ୟୁ ହୋଇପାରେ ଅଥବା ନ ହୋଇପାରେ ।

୨. ଦେଖୁନାହୁଁ = ଆମ୍ଭେ ଦେଖୁନାହୁଁ ।

| | | | | | |
|---|---|---|---|---|---|
| ୫୬ | ସେ ସର୍ବ ବାଳେ ପ୍ରହ୍ଲାଦର | । | ଗୌରବେ ଛାଡ଼ିଲେ ବିହାର | ॥ | ୨୦୩ |
| | ଯେ ରାଗଦ୍ୱେଷ ଆଦିରତ | । | ସେମାନଙ୍କରେ ଯେ କଥିତ | ॥ | ୨୦୪ |
| | ସେ ଚରିତରେ ଅଦୂଷିତ | । | ଯେବଣ ବାଳଙ୍କର ଚିତ୍ତ | ॥ | ୨୦୫ |
| ୫୭ | ତାହାର ଠାରେ ନେତ୍ର ମନ | । | ନିବେଶି କଲେ ଉପାସନ | ॥ | ୨୦୬ |
| | କରୁଣ ମହାଭାଗବତ | । | ମୈତ୍ର[୧] ଅଟେ ଯେ ଦୈତ୍ୟସୁତ | ॥ | ୨୦୭ |
| | ହେ ରାଜଶ୍ରେଷ୍ଠ ! ଏ ବଚନ | । | ତାହାଙ୍କୁ କଲାକ ରଚନ | ॥ | ୨୦୮ |
| | କୃଷ୍ଣଚରଣପଦ୍ମ ଚିନ୍ତି | । | ହରଷ ଦୀନବନ୍ଧୁ ମତି | ॥ | ୨୦୯ |
| | ସାଧୁଜନଙ୍କର[୨] ମାନସ | । | ଏ ଗୀତ ଲଭିଣ ହରଷ | ॥ | ୨୧୦ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମ ସ୍କନ୍ଧେ ଶ୍ରୀପ୍ରହ୍ଲାଦାନୁଚରିତଂ
ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠ ଅଧ୍ୟାୟ

ଷଷ୍ଠେ ଗୁରୌ ଗୃହବ୍ୟଗ୍ରେ ପ୍ରହ୍ଲାଦୋ ଦୈତ୍ୟବାଳକାନ୍ ।
ଅନୁକମ୍ପ୍ୟ ପରଂ ତତ୍ତ୍ୱଂ ନାରଦୋକ୍ତମୁପାଦିଶତ୍ ॥ ୧
ନିରର୍ଥକକ୍ରିୟାଳାପୈରାୟୁର୍ବ୍ୟୟମଜାନତାମ୍ ।
ପ୍ରହ୍ଲାଦଃ ସଦୟଂ ପ୍ରାହ ଧର୍ମଂ ଭାଗବତଂ କୃତୀ ॥ ୨

ଶ୍ରୀପ୍ରହ୍ଲାଦ ଉବାଚ

| | | | | | |
|---|---|---|---|---|---|
| ୧ | ଏ ନରଜନ୍ମେ ଧର୍ମମାନ | । | କରେ ପଣ୍ଡିତ ଯେଉଁ ଜନ | ॥ | ୧ |
| | ଅର୍ଥଦାୟକ ଯେଣୁ ଏହି | । | କୌମାର କାଳେ ଆଚରଇ | ॥ | ୨ |
| | ସେ ଜନ୍ମ ଅଧ୍ରୁବ ଅଟଇ | । | ବହୁତ ପ୍ରୟାସେ ମିଳଇ | ॥ | ୩ |
| | ଯହିଁରେ ଭାଗବତ ଧର୍ମ | । | ଆଚରେ ନ ଆଚରେ କାମ୍ୟ | ॥ | ୪ |
| ୨ | ଏ ଜନ୍ମେ ବିଷ୍ଣୁଚରଣର | । | ଯେ ସେବାଯୋଗ୍ୟ ସେ ଲୋକର | ॥ | ୫ |
| | ଯେଣୁ ଏ ସର୍ବଭୂତଙ୍କର | । | ପ୍ରିୟ ଆତ୍ମା ମିତ୍ର ଈଶ୍ୱର | ॥ | ୬ |
| ୩ | ହେ ଦୈତ୍ୟମାନେ ପ୍ରାଣୀଙ୍କର | । | ଯେ ସୁଖ ଇନ୍ଦ୍ରିୟୁଁ ପ୍ରଚାର | ॥ | ୭ |
| | ଶରୀରଯୋଗୁଁ ଅଦୃଷ୍ଟରେ | । | ମିଳେ ସେ ସକଳ ଜନ୍ମରେ | ॥ | ୮ |
| | ଯତ୍ନ ନ କଲେହେଁ ଯେମନ୍ତ | । | ଦୁଃଖ ହୁଅଇ ଉପସ୍ଥିତ | ॥ | ୯ |
| ୪ | ତେଣୁ ଇନ୍ଦ୍ରିୟନିମିତ୍ତରେ | । | ପ୍ରୟାସ କେବେହେଁ ନ କରେ | ॥ | ୧୦ |
| | ଯେବଣ ପ୍ରୟାସୁଁ ଆୟୁଷ | । | କେବଳ ହୁଅଇ ବିନାଶ | ॥ | ୧୧ |
| | ବିଷ୍ଣୁର ଚରଣପଦ୍ମକୁ | । | ଭଜନ୍ତେ ଯେମନ୍ତ ସୁଖକୁ | ॥ | ୧୨ |

୧. ସବୁ ପ୍ରାଣୀଙ୍କ ମିତ୍ର ।	୨. ବୈଷ୍ଣବଜନଙ୍କ ।

ମନୁଷ୍ୟ ଲଭଇ ସଂସାରେ । ନ ଲଭେ ତାହା ସେ ପ୍ରକାରେ ।।
୫ ସଂସାରେ ହୋଇଣ ପ୍ରବେଶ । କୁଶଳ ଅଟେ ଯେ ପୁରୁଷ ।।
ମଙ୍ଗଳ ଅର୍ଥେ ଆପଣାର । ଯତ୍ନ କରିବ ନିରନ୍ତର ।।
ସକଳ ଅବୟବେ ସାର । ଯେଉଁ ମନୁଷ୍ୟକଳେବର ।।
ଯାବତ କାଳଯାଏ ସେହି । ନାଶକୁ ଲଭିଣ ନ ଥାଇ ।।
୬ ଶତେ ବରଷ ପୁରୁଷର । ଆୟୁଷ, ଅଜିତ ଆତ୍ମାର ।।
ନିଷ୍ଫଳ ତହୁଁ ଅଧେ ହୋଇ । ଅତ୍ୟନ୍ତ ଅଜ୍ଞାନକୁ ପାଇ ।।
ଯେଣୁ ସେ ରଜନୀକାଳରେ । ଶୟନ କରଇ ନିତ୍ୟରେ ।।
୭ ବାଲ୍ୟ-କୈଶୋର ସମୟରେ । କ୍ରୀଡ଼ା କରନ୍ତେ ନିରନ୍ତରେ ।।
ତାହାର ବିଂଶତିବରଷ । ବିନାଶ ହୁଅଇ ଆୟୁଷ ।।
ଜରାରେ ଗ୍ରସ୍ତ ଯା' ଶରୀର । ସମର୍ଥ ନୁହଇ ଯେ ନର ।।
ଏରୂପେ ବିଂଶତି ବତ୍ସର । ବିନାଶ ଆୟୁଷ ତାହାର ।।
୮ ପୂରେ[1] ଯେ ଅତ୍ୟନ୍ତ ଦୁଃଖରେ । ସେ କାମେ, ପ୍ରବଳ ମୋହରେ ।।
ଗୃହେ ଆସକ୍ତ ହୋଇ ଥାଇ । ଶୁଭରେ ସାବଧାନ ନୋହି ।।
ଏମନ୍ତ ଲୋକର ଯେ ଶେଷ । ବିନାଶ ହୁଅଇ ଆୟୁଷ ।।
୯ ଅଜିତେନ୍ଦ୍ରିୟ ନର କେହି । ଗୃହେ ଆସକ୍ତ ଅଟେ ଯେହି ।।
ଯେ ଦୃଢ଼ ସ୍ନେହପାଶଙ୍କରେ । ବଦ୍ଧ ହୋଇଛି ଏ ସଂସାରେ ।।
ଏମନ୍ତ ଆତ୍ମାକୁ ମୁକତ । କରିବାକୁ ହେବ ଶକତ ।।
୧୦ ଅର୍ଥର ତୃଷ୍ଣା ଅଟେ ଯେହି । ପ୍ରାଣୁଁ ଅଧିକ ଯେ ଅଟଇ ।।
କେ ତାହା ଛାଡ଼ିପାରେ ନର । ସେବକ ବଣିଜ ତସ୍କର ।।
ଏମାନେ ଛାଡ଼ି ପ୍ରିୟ ପ୍ରାଣ । କିଣନ୍ତି ଯେଉଁ ଅର୍ଥ ପୁଣ ।।
୧୧ ଅଟଇ ଯେ ଅନୁକଂପିତା । ଏମନ୍ତ ଯେ ନିଜ ବନିତା ।।
ରହସ୍ୟ ସଙ୍ଗ ଯେ ତାହାର । ଶିକ୍ଷାବଚନ ଯେ ରୁଚିର ।।
କଳ ବଚନ ଶିଶୁଙ୍କର । ସଙ୍ଗମ ଅବା ଯେ ଆବର ।।
ଯେ ମିତ୍ରଲୋକରେ ସଙ୍ଗତି । ସେମାନଙ୍କୁ ସେ ମନେ ଚିନ୍ତି ।।
କେମନ୍ତ ପ୍ରକାରେ ତେଜିବ । ଯେ ତାଙ୍କ ସ୍ନେହେ ବଦ୍ଧ ହେବ ।।
ସେମାନଙ୍କର ଠାରେ ଚିତ୍ତ । ହୋଇବ ତାର ଅନୁରକ୍ତ ।।
୧୨ ଯେ ପୁତ୍ରମାନେ ଆପଣାର । ଦୁହିତାମାନେ ଯେ ସୁନ୍ଦର ।।
୧୩ ଭ୍ରାତା ଭଗିନୀ ଯେ ବା ଆନ । ଯେ ବା ଜନନୀ ତାତ ଦୀନ ।।
ଯହିଁରେ ବଡ଼ ମନୋହର । ଅଛନ୍ତି ସାମଗ୍ରୀ ଅପାର ।।
ଏମନ୍ତ ଯେଉଁ ଗୃହମାନ । ଯେ କୁଳକ୍ରମେ ବୃତ୍ତି ଆନ ।।

୧. ପୂରେ = ପୂର୍ଣ୍ଣ ହୁଏ ।

ଯେ ପଶୁ ଭୃତ୍ୟମାନେ ପୁଣ । ତାହାଙ୍କୁ କରନ୍ତେ ସ୍ମରଣ ।।
କୋଷକାରକ କୀଟପ୍ରାଏ । କର୍ମକୁ ଆଚରୁ ଯେ ଥାଏ ।।
ଲୋଭରୁ କାମନାମାନ ହିଁ । ପୂର୍ଣ୍ଣ ଯାହାର ନୋହିଥାଇ ।।
ଉପସ୍ଥ-ଜିହ୍ୱାସୁଖ ଦୁଇ । ଯେ ବଡ଼ କରି ମଣିଥାଇ ।।
ମୋହ ହିଁ ଯାହାର ଅନନ୍ତ । ସେ କେହ୍ନେ ହୋଇବ ବିରକ୍ତ ।।
୧୪ କୁଟୁମ୍ବପୋଷଣନିମିତ୍ତେ । କ୍ଷୀଣ ଯେ ଆୟୁଷ ସଂତତେ ।।
ପୁରୁଷାର୍ଥ ହିଁ ଯେ ବିହତ[1] । ତାହା ନ ଜାଣେ ଯେ ପ୍ରମତ୍ତ ।।
ଏ ଘେନି ତାପତ୍ରୟେ ତାର । ଚିତ୍ତ ଦୁଃଖିତ ନିରନ୍ତର ।।
ଦୁଃଖବୁଦ୍ଧିକି ନ କରଇ । ନିଜ କୁଟୁମ୍ବେ ରତ ହୋଇ ।।
୧୫ ଯେ ଇହ ପର ଲୋକ ଦୁଇ । ତହିଁରେ ଦଣ୍ଡ ଯେ ପଡ଼ଇ ।।
ପର ବିତ୍ତ ହରଣ କଲେ । ସେକଥା ଜାଣିଥାଇ ଭଲେ ।।
ଇନ୍ଦ୍ରିୟକୁ ଯେ ନ ଜିଣିଛି । ଯା' କାମ ଶାନ୍ତ ନୋହି ଅଛି ।।
ଏମନ୍ତ ଯେ କୁଟୁମ୍ବବନ୍ତ । ନିତ୍ୟରେ ବିତ୍ତେ ଦିଏ ଚିତ୍ତ ।।
ଅବଶ୍ୟ ହରେ ପର ଧନ । ନ ଜାଣେ ଆପଣା ନିଧନ ।।
୧୬ ଏ ମୋର ଏ ଅଟଇ ପର । ଏ ରୂପେ ଭାବନା ଯାହାର ।।
କୁଟୁମ୍ବ ପୋଷନ୍ତେ ସନ୍ତତ । ଆତ୍ମଜ୍ଞାନକୁ ଅସମର୍ଥ ।।
ପଣ୍ଡିତ ହୋଇଲେହେଁ ସେହି । ହେ ଦୈତ୍ୟେ ! ମୂଢ଼ପ୍ରାୟ ହୋଇ ।।
ଲଭଇ ଅଭିନିବେଶକୁ । ଯେଣେ ବିନାଶେ ଆପଣାକୁ ।।
୧୭ କେହୁଣିସିଠାରେ ହେଁ କେହି । ଅତି ହିଁ ଲମ୍ପଟ ଯେ ହୋଇ ।।
କାମ ଯା' ନେତ୍ରେ ରହିଥାଇ । ଏମନ୍ତ ବାମା ଯେ ଅଟଇ ।।
ବିହାରକ୍ରୀଡ଼ାମୃଗ[2] ତାର । ହୋଇ ଯେ ଥାଇ ନିରନ୍ତର ।।
ଯହିଁରେ ଶାଙ୍କୋଳିପରାଏ । ପୁତ୍ର ଆଦି ହିଁ ଜାତ ହୋଏ ।।
୧୮ ସେ ଲୋକ ଯେଣୁ ଆପଣାକୁ । ସମର୍ଥ ନୋହେ ତାରିବାକୁ ।।
ତେଣୁ ସଙ୍ଗମ କରି ଦୂର । ବିଷୟ-ଆତ୍ମ ଦୈତ୍ୟଙ୍କର ।।
ବିମୁକ୍ତସଙ୍ଗ ଲୋକଙ୍କର । ଯେ ଇଷ୍ଟ ଅପବର୍ଗାକାର ।।
ଯେ ଆଦିଦେବ ନାରାୟଣ । ତାହାଙ୍କୁ କରସି ଶରଣ ।।
୧୯ ହେ ଦୈତ୍ୟପୁତ୍ରେ ! ଅଚ୍ୟୁତର । ସେବାକୁ ଆଚରେ ଯେ ନର ।।
ତାହାର ଆୟାସ ବହୁତ । ଜାତ ନୁହଇ ଏ ନିୟତ ।।
ସର୍ବପ୍ରାଣୀଙ୍କ ଆତ୍ମାଭାବେ । ସିଦ୍ଧଭାବରେ ସବୁଠାବେ ।।
୨୦ ପର ଅପର ଜୀବଙ୍କରେ । ବ୍ରହ୍ମାନ୍ତ ସ୍ଥାବର-ଆଦିରେ ।।
ଘଟାଦି ଭୂତବିକାରରେ । ବ୍ୟୋମାଦି ମହାଭୂତଙ୍କରେ ।।

୧. ବିହିତ । ୨. କ୍ରୀଡ଼ାମୃଗ = ବାନର ।

୨୧ ସତ୍ତ୍ୱାଦି ଗୁଣେ ପ୍ରକୃତିରେ । ସେରୂପେ ଗୁଣବ୍ୟତିକରେ ॥ ୭୫
ପରମ ଆତ୍ମା ଯେ ଈଶ୍ୱର । ଏକ ଭଗବାନ ଅକ୍ଷର ॥ ୭୬
୨୨ ସେ ସ୍ୱୟେଂ ଭୋକ୍ତା ଦ୍ରଷ୍ଟାରୂପେ । ସେ ବ୍ୟାପ୍ୟ ବ୍ୟାପକ ସ୍ୱରୂପେ ॥ ୭୭
ଆବର ଯେହୁ ଭୋଗ୍ୟ ଦୃଶ୍ୟ । ଏମନ୍ତରୂପେ ଯେ ନିର୍ଦ୍ଦେଶ୍ୟ ॥ ୭୮
ଅବିକଳ୍ପିତ ଅନିର୍ଦ୍ଦେଶ୍ୟ । ହେଲେହେଁ, ମାୟାରେ ପ୍ରକାଶ୍ୟ ॥ ୭୯
୨୩ କେବଳ ଅନୁଭବରୂପୀ । ଈଶ୍ୱର ଆନନ୍ଦ ସ୍ୱରୂପୀ ॥ ୮୦
ଗୁଣସ୍ୱରୂପୀ ସର୍ଗ ଯାର । ଏମନ୍ତ ମାୟା ଯେ ତାଙ୍କର ॥ ୮୧
ତେଣେ ଈଶ୍ୱରଭାବ ଯାର । ହୋଇଛି ଅନ୍ତରଆକାର[1] ॥ ୮୨
୨୪ ମତ୍ସର ଆଦି ଯେ ଆସୁର । ଭାବ ତାହାକୁ କରି ଦୂର ॥ ୮୩
ସେ ଘେନି ସମସ୍ତ ଭୂତରେ । କର ଦୟାକୁ ନିରନ୍ତରେ ॥ ୮୪
ଯାହା ଆଚରନ୍ତେ ମନୁଜ । ତୁଷ୍ଟ ହୁଅନ୍ତି ଅଧୋକ୍ଷଜ ॥ ୮୫
୨୫ ସେ ଆଦ୍ୟ ଅନନ୍ତ ଈଶ୍ୱର । ସନ୍ତୋଷ ହୁଅନ୍ତେ ଲୋକର ॥ ୮୬
କି ଅବା ଅଲଭ୍ୟ ଅଟଇ । ତାଙ୍କ ଚରଣସୁଧା ଯେହି ॥ ୮୭
ତାହାକୁ କରୁଛୁଁ ସେବନ । କରୁଁ ତାହାଙ୍କ ଯେ ଗାୟନ ॥ ୮୮
ଯେ ସ୍ୱତଃସିଦ୍ଧ ଅଦୃଷ୍ଟରେ[2] । ଆମ୍ଭର କି ସେ ଧର୍ମାଦିରେ ॥ ୮୯
ଯେ ମୋକ୍ଷ ବାଞ୍ଛିତ ଅଟଇ । ତେଣେ କି ପ୍ରୟୋଜନ ହୋଇ ॥ ୯୦
୨୬ ଧର୍ମାର୍ଥକାମ ବୋଲି ଯେହି । ତ୍ରିବର୍ଗ ବେଦେ ଅଛି କହି ॥ ୯୧
ଯେ ଆତ୍ମବିଦ୍ୟା ତର୍କ ଶ୍ରୁତି । ନାନା ଜୀବିକା ଦଣ୍ଡନୀତି ॥ ୯୨
ଏ ସର୍ବ ବେଦଅର୍ଥଜାତ[3] । ତେବେ ତା' ମଣଇଁ ମୁଁ ସତ ॥ ୯୩
ପରମ ପୁରୁଷ ଈଶ୍ୱର । ଯେ ଅନ୍ତର୍ଯ୍ୟାମୀ ଆପଣାର ॥ ୯୪
ତାହାଙ୍କୁ ଆତ୍ମନିବେଦନ । କର୍ମକୁ ଯେବେ ସେ ସାଧନ ॥ ୯୫
୨୭ ଭଗବାନରେ ଏକଚିତ୍ତ । ଏମନ୍ତ ହୋଇ ଯେ ଭଗତ ॥ ୯୬
ଅଟନ୍ତି ଯେହୁ ଅକିଂଚନ । ତାହାଙ୍କ ପାଦଧୂଳିମାନ ॥ ୯୭
ସ୍ନାନ କରନ୍ତି ଯେ ନିର୍ଭରେ । ସେ ଯାହା ଲଭନ୍ତି ସୁଖରେ ॥ ୯୮
ଲଭି ନ ପାରେ ତାହା ଆନ । ଏମନ୍ତ ନିର୍ମଳ ଯେ ଜ୍ଞାନ ॥ ୯୯
ପୂର୍ବେ ନାରଦଙ୍କୁ ସେ ଜ୍ଞାନ । କହିଲେ ନରନାରାୟଣ ॥ ୧୦୦
୨୮ ଜ୍ଞାନବିଜ୍ଞାନରେ ସଂଯୁତ । ଏ ଶୁଦ୍ଧ ଧର୍ମ ଭାଗବତ ॥ ୧୦୧
ସେ ନାରଦଙ୍କ ଠାରୁ ଶୁଣି । ଅଛି ମୁଁ ପୂର୍ବକାଳେ ପୁଣି ॥ ୧୦୨
ଦେବତାଙ୍କର ପ୍ରାଏ ସାର । ଅଟଇ ଦରଶନ ଯାର ॥ ୧୦୩

ଦୈତ୍ୟପୁତ୍ରା ଉଚୁଃ

୨୯ ତୁମ୍ଭେ ଆମ୍ଭେ ହେ ପ୍ରହରାଦ । ନ ଜାଣି ଆନ ଗୁରୁପାଦ ॥ ୧୦୪

---

୧. ଅନ୍ତରଆକାର = ଅନ୍ତର୍ହିତ । ୨. ଅଯତ୍ନରେ । ୩. ଅର୍ଥଜାତ = ଅର୍ଥସମୂହ ।

ବିନୁ ଏ ଗୁରୁପୁତ୍ରଙ୍କର । ଏ ବେନି[୧] ଆମ୍ଭର ଈଶ୍ୱର ।। ୧୦୫
୩୦ ତୁମ୍ଭେ ତ ଥାଅ ଅନ୍ତଃପୁରେ । ଶିଶୁ ହିଁ ଅଟ ତ ବେଭାରେ ।। ୧୦୬
ମହତସଙ୍ଗତି ତୁମ୍ଭର । ଅତି ଦୁର୍ଘଟ ଅତିଦୂର ।। ୧୦୭
ପ୍ରହ୍ଲାଦ ! ଛେଦି ସଂଦେହକୁ । କହ ବିଶ୍ୱାସକାରଣକୁ ।। ୧୦୮
ଶ୍ରୀକୃଷ୍ଣଚରଣପଙ୍କଜ । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ ।। ୧୦୯
ଭଣେ ଏ ଗୀତ ଯେଣେ ତୋଷ । ହୋଇବ ସାଧୁଙ୍କ ମାନସ ।। ୧୧୦
ସପ୍ତମ ସ୍କନ୍ଧ ଭାଗବତ । ଶୁଣି ହରଷ କର ଚିତ୍ତ ।। ୧୧୧
ସୁଜନେ ନ ଘେନ ମୋ' ଦୋଷ । ହୋଇଣ ମୋଠାରେ ସନ୍ତୋଷ ।। ୧୧୨
ଏ ରସ କର୍ଣ୍ଣପୁଟେ ପିଅ । ନୃସିଂହପାଦେ ଚିତ୍ତ ଦିଅ ।। ୧୧୩

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଶ୍ରୀପ୍ରହ୍ଲାଦାନୁଚରିତେ
ନାମ ଷଷ୍ଠୋଽଧ୍ୟାୟଃ ।।

## ସପ୍ତମ ଅଧ୍ୟାୟ

ସପ୍ତମେ ମାତୃଗର୍ଭସ୍ଥେ ସ୍ୱସ୍ମିନ୍ ନାରଦଭାଷିତମ୍ ।
ପ୍ରହ୍ଲାଦୋ ବର୍ଣ୍ଣୟାମାସ ଶିଷ୍ୟପ୍ରତ୍ୟୟସିଦ୍ଧୟେ ।। ୧
ଅଶ୍ରାବି ନାରଦାଦେତନ୍ମାତୃଗର୍ଭ ଇତୀରିତମ୍ ।
ତତ୍ପ୍ରସ୍ତାବକଥାମାହ ପଦ୍ୟୈଃ ଷୋଡ଼ଶଭିଃ ସୁଧୀଃ ।। ୨

ଶ୍ରୀନାରଦ ଉବାଚ

୧ ଏରୂପେ ଦଇତ୍ୟକୁମରେ । ପ୍ରଶ୍ନ କରନ୍ତେ ତଦନ୍ତରେ ।। ୧
ସେ ବାଳ ମହାଭାଗବତ । ସ୍ମରନ୍ତେ ମୋହର ଭାଷିତ ।। ୨
ଅଳପ ହସନ୍ତେ ତାହାଙ୍କୁ । କହିଲା ଏମନ୍ତ ବାକ୍ୟକୁ ।। ୩

ଶ୍ରୀପ୍ରହ୍ଲାଦ ଉବାଚ

୨ ତପସ୍ୟା କରିବା ନିମିତ୍ତ । ମନ୍ଦରାଦ୍ରିକି ଆମ୍ଭ ତାତ ।। ୪
୩ ଗମନ କରନ୍ତେ ସେ ଦିନେ । ବାସବ ଆଦି ଦେବମାନେ ।। ୫
ଯୁଦ୍ଧକୁ ଅତିଶୟ କରି । ଉଦ୍ୟମ କଲେ ଆଗ ସରି ।। ୬
ଅହିକି ପିପୀଲିକାମାନେ । ଭକ୍ଷଣ କରନ୍ତି ଯେସନେ ।। ୭
ସେ ରୂପେ ପାପିଷ୍ଠ ଦଇତ । ପାପରେ ହୋଇଲା ଭକ୍ଷିତ ।। ୮
ଯେଣୁ ସେ ଲୋକଅପକାରୀ । ଏ କଥା ଭାଗ୍ୟ ସବୁଙ୍କରି ।। ୯
ଏମନ୍ତ ବୋଲନ୍ତେ ବଚନେ । ଉଦ୍ଦେଶି ଦାନବଙ୍କୁ ମନେ ।। ୧୦

୧. ବେନି = ଶଣ୍ଡାମର୍କ ଦୁହେଁ ।

୪ ସେ ଦେବଙ୍କର ଅତିଶୟେ । ବଳ ଉଦ୍‌ଯୋଗ ଦେଖି ଭୟେ ।।
ଲଭନ୍ତେ ଆଘାତକୁ ତେଣେ । ଅସୁରଯୂଥପତିଗଣେ ।।
ସ୍ଥାନରେ ରହି ନ ପାରିଲେ । ସବୁ ଦିଗକୁ ପଳାଇଲେ ।।
୫ କଳତ୍ର ବିତ୍ତ ଆପ୍ତ ସୁତ । ପଶୁ ପରିଚ୍ଛଦ ନିକେତ ।।
ଏମାନଙ୍କୁ ହିଁ ନ ଚାହାନ୍ତେ । ପ୍ରାଣକୁ ପାଇବା ନିମିତ୍ତେ ।।
ବିଚାର ନିଜ ମନେ କରି । ସମସ୍ତେ ଗଲେ ଅପସରି ।।
୬ ଜିଣିମା ବାଞ୍ଛା କରି ମନେ । ରାଜଗୃହକୁ ସୁରମାନେ ।।
କରି ସର୍ବସ୍ୱ ଅପହାର । ବିନାଶ କଲେ ତତପର ।।
ଯେ ରାଜଭାର୍ଯ୍ୟା ମାତା ମୋର । ତାକୁ ଧଇଲେ ପୁରନ୍ଦର ।।
୭ ନିଅନ୍ତେ ତାକୁ ସୁରପତି । ଭୟରେ ଉଦବେଗ ମତି ।।
କାନ୍ଦେ କୁରରୀପ୍ରାୟ ହୋଇ । ମାର୍ଗରେ ଯଦୃଚ୍ଛାରେ ତହିଁ ।।
ମିଳିଲେ ବ୍ରହ୍ମାଙ୍କ ନନ୍ଦନ । କଲେ ତାହାକୁ ଆଲୋକନ ।।
୮ ବୋଇଲେ ଆହେ ସୁରପତି । ଏ ପରପରିଗ୍ରହ ସତୀ ।।
ଏହାର ଅପରାଧ ନାହିଁ । ଏହାକୁ ଧରିନେବାପାଇଁ ।।
କେବେ ହେଁ ନୁହ ତୁମ୍ଭେ ଯୋଗ୍ୟ । ଛାଡ଼ ଛାଡ଼ ହେ ମହାଭାଗ ।।

ଶ୍ରୀଇନ୍ଦ୍ର ଉବାଚ

୯ ଦୁଃସହ ବୀର୍ଯ୍ୟ ଅସୁରର । ଅଛଇ ଉଦରେ ଏହାର ।।
ପ୍ରସବ ହେବା ପରିଯନ୍ତେ । ଏ ସ୍ଥାନେ ଥାଉ ଏ ନିଶ୍ଚିନ୍ତେ ।।
ତଦନ୍ତେ ମାରି ବାଳକକୁ । ଫିଟାଇ ଦେବଇଁ ଏହାକୁ ।।

ଶ୍ରୀନାରଦ ଉବାଚ

୧୦ ଅପାପୀ ଅଟେ ଏ ସାକ୍ଷାତ । ମହତ ମହାଭାଗବତ ।।
ଏ ବଳୀ[୧] ବିଷ୍ଣୁଅନୁଚର । ତୋରେ ନ ଲଭିବ ସଂହାର ।।
୧୧ ନାରଦ କହନ୍ତେ ଏମନ୍ତ । ତାହାକୁ ଛାଡ଼ି ପୁରୁହୂତ[୨] ।।
ମାନନ୍ତେ ଦେବରଷିବାଣୀ । ଅନନ୍ତପ୍ରିୟ ଯେ ମୁଁ ପୁଣି ।।
ମୋର ଭକ୍ତିରେ ପ୍ରଦକ୍ଷିଣ । କରି ସ୍ୱର୍ଗକୁ ଗଲେ ପୁଣ ।।
୧୨ ତଦନ୍ତେ ରଷି ମୋ ମାତାକୁ । ଆଣିଣ ନିଜ ଆଶ୍ରମକୁ ।।
ତାହାକୁ କରି ଆଶ୍ୱାସନ । ବୋଇଲେ ଏମନ୍ତ ବଚନ ।।
ହେ ବତ୍ସେ ! ଥାଅ ଏହିଠାଏ । ତୋ ଭର୍ତ୍ତା ଆଗମନଯାଏ ।।
୧୩ ସେ କଥା କରିଣ ସ୍ୱୀକାର । ନିକଟେ ଦେବରଷିଙ୍କର ।।
ରହିଲା ତେତେକାଳ ସେହି । କାହିଁରୁ ଯାର ଭୟ ନାହିଁ ।।

---

୧. ବଳୀ = ବଳବାନ୍ । ୨. ପୁରୁହୂତ = ଇନ୍ଦ୍ର ।

ଘୋର ତପରୁ ଦିତିସୁତ । ନିବର୍ତ୍ତି ନ ଥିଲା ଯାବତ ॥ ୩୯
୧୪ ନିଜ ଗର୍ଭର କ୍ଷେମ ଅର୍ଥେ । ଇଚ୍ଛାଏ ପ୍ରସବନିମିତ୍ତେ ॥ ୪୦
ଗର୍ଭିଣୀ ପରମ ଭକ୍ତିରେ । ଋଷିଙ୍କି ସେବିଲା ସେଠାରେ ॥ ୪୧
୧୫ ଈଶ୍ୱର କାରୁଣିକ ଋଷି । ତାହାକୁ ମୋତେ ହେଁ ଉଦ୍ଦେଶି ॥ ୪୨
ଯେ ଭକ୍ତିଯୋଗ ଶୁଦ୍ଧ ଜ୍ଞାନ[1] । ସେ ବେନି କଲେକ ପ୍ରଦାନ ॥ ୪୩
୧୬} ଦୀର୍ଘ ଭାବରୁ ଏ କାଳର । ସ୍ତିରୀଭାବରୁ ଜନନୀର ॥ ୪୪
୧୭} ସେ ଜ୍ଞାନ ହୋଇଲା ବିଲୟ । ଋଷି କରନ୍ତେ ଅନୁଗ୍ରହ ॥ ୪୫
ଆଜ ହିଁ ମୋତେ ସେ ସ୍ମରଣ । କ୍ଷଣେହେଁ ନ ଛାଡ଼ିଲା ପୁଣ ॥ ୪୬
ମୋହର ବଚନକୁ ଯେବେ । ଶ୍ରଦ୍ଧା କରିବ ତୁମ୍ଭେ ତେବେ ॥ ୪୭
ଦେହାଦି ଅହଂକାର ହୀନ । ବୁଦ୍ଧି ତୁମ୍ଭରି ହେବ ଜନ୍ମ ॥ ୪୮
ଶ୍ରଦ୍ଧାରୁ ସ୍ତିରୀ-ବାଳଙ୍କର । ଯେମନ୍ତେ ହେଲା ସେ ଆମ୍ଭର ॥ ୪୯
୧୮ ବିକାରସମର୍ଥ ଯା' ମୂର୍ତ୍ତି । ସେ କାଳହେତୁ ଉତପତି ॥ ୫୦
ଜନ୍ମାଦି ଯେ ଷଡ଼[2] ବିକାର । ଦୃଷ୍ଟ ଅଟଇ ସେ ଦେହର ॥ ୫୧
ଆତ୍ମାର ନୁହନ୍ତି ସେମାନେ । ବୃକ୍ଷର ଫଳମାନ ଯେହ୍ନେ ॥ ୫୨
ଲଭନ୍ତି ଜନ୍ମାଦି ବିକାର । ସେ ବୃକ୍ଷ ରହିଥାଇ ଚିର ॥ ୫୩
୧୯* ଯେ ଆତ୍ମା ନିତ୍ୟ ସେ ଅଟଇ । ତାହାର ଅପକ୍ଷୟ ନାହିଁ ॥ ୫୪
ଯେ ଶୁଦ୍ଧ କ୍ଷେତ୍ରଜ୍ଞ ଆଶ୍ରୟ । ଏକ ସ୍ୱଦୃକ ଅବିକ୍ରିୟ ॥ ୫୫
ହେତୁ ବ୍ୟାପକ ଅନାବୃତ । ସଙ୍ଗରେ ନୁହଇ ସଂଯୁତ ॥ ୫୬
୨୦ ଆତ୍ମାର ଏ ବାର ଲକ୍ଷଣ । ବିବେକଜନ୍ମକୁ ନିପୁଣ ॥ ୫୭

---

୧ । ଜ୍ଞାନ = ଆତ୍ମାନାତ୍ମବିବେକ ।
୨ । ଷଡ଼ ବିକାର = ଜନ୍ମ, ସ୍ଥିତି, ବିପରିଣାମ, ବୃଦ୍ଧି, ଅପକ୍ଷୟ ଓ ନାଶ ।
*୧ । ନିତ୍ୟ-"ଅବିନାଶୀ ବା ଅରେ ଅୟମାତ୍ମା" ଇତି ଶ୍ରୁତିଃ
୨ । ଅପକ୍ଷୟଶୂନ୍ୟ-"ଋଚୋଽକ୍ଷରେ ପରମେ ବ୍ୟୋମନ୍" "
୩ । ଶୁଦ୍ଧ-"ନିରବଦ୍ୟଂ ନିରଞ୍ଜନମ୍" "
୪ । ଏକ-"ଏକମେବାଦ୍ୱିତୀୟମ୍" "
୫ । କ୍ଷେତ୍ରଜ୍ଞ-"ବିଜ୍ଞାତାରମ୍ ଅରେ କେନ ବିଜାନୀୟାତ୍" "
୬ । ଆଶ୍ରୟ-"ଯସ୍ମିନ୍ ଦ୍ୟୌଃ ପୃଥିବୀ ଚାନ୍ତରୀକ୍ଷମ୍" "
୭ । ଅବିକ୍ରିୟ-"ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତମ୍" "
୮ । ସ୍ୱଦୃକ୍ (= ଆତ୍ମଜ୍ୟୋତି)-"ସମ୍ରାଡ଼ିତି ହୋବାଚ" "
୯ । ହେତୁ-"ସ ଇମାଁଲ୍ଲୋକାନସୃଜତ" "
୧୦ । ବ୍ୟାପକ-"ସତ୍ୟଂ ଜ୍ଞାନମନନ୍ତମ୍" "
୧୧ । ଅସଙ୍ଗୀ-"ଅସଙ୍ଗୋ ହ୍ୟୟଂ ପୁରୁଷଃ"
୧୨ । ଅନାବୃତ-"ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ।" "

ଏଣେ ପଣ୍ଡିତ ଜନ ଯେହି । ସେ ଲୋକ ଅହଂ ମମ ହୋଇ ॥
ଦେହଆଦିରେ ମୋହୁଁ ଜାତ । ମିଥ୍ୟାବୁଦ୍ଧିକି କରେ ହତ ॥
୨୧ ସୁବର୍ଣ୍ଣମାନଙ୍କ ଆକର । କ୍ଷେତ୍ରମାନଙ୍କେ ନିରନ୍ତର ॥
ଯେବଣ ଶିଳାମାନେ ଥାନ୍ତି । ସ୍ୱର୍ଣ୍ଣକଣକୁ ପ୍ରକାଶନ୍ତି ॥
ତହିଁ ସୁବର୍ଣ୍ଣ ପ୍ରାପ୍ତିରସ । ଉପାୟବିଜ୍ଞ ଯେ ପୁରୁଷ ॥
ଦହନ ଆଦି ଉପାୟରେ । ସୁବର୍ଣ୍ଣ ଲଭେ ଯେ ପ୍ରକାରେ ॥
ସେ ରୂପେ ଆତ୍ମଜ୍ଞାନୀ ଜନ । ଶରୀରକ୍ଷେତ୍ରେ ଦିନୁଁଦିନ ॥
ଆତ୍ମାର ପ୍ରାପ୍ତିକି କାରଣ । ଯେଉଁ ଉପାୟମାନ ପୁଣ ॥
ତେଣେ ସଂଯତଚିତ୍ତ ହୋଇ । ବ୍ରହ୍ମଗତିକି ସେ ଲଭଇ ॥
୨୨ [1]ମୂଳ ପ୍ରକୃତି ମହତ୍ତତ୍ତ୍ୱ । ଯେ ଅହଂକାର ତହୁଁ ଜାତ ॥
ଯେ ରୂପ ରସ ଗନ୍ଧ ତିନି । ସ୍ପରଶ ଶବଦକୁ ଘେନି ॥
ଏ ଅଷ୍ଟ ପ୍ରକୃତି ପ୍ରମାଣ । ଯେ ସତ୍ତ୍ୱ ଆଦି ତିନି ପୁଣ ॥
ପ୍ରକୃତିଗୁଣ ସେ ଅଟନ୍ତି । କେବେହେଁ ଭିନ୍ନ ସେ ନୁହନ୍ତି ॥
ଇନ୍ଦ୍ରିୟ ଏକାଦଶ ଖ୍ୟାତ । ଭୂମ୍ୟାଦି ପଞ୍ଚ ମହାଭୂତ ॥
ବିକାର ଅଟେ ଏ ଷୋଡ଼ଶ । ଯେ ଆତ୍ମା ଏକ ସେ ପୁରୁଷ ॥
ସାକ୍ଷୀରୂପରେ ଏଥୁଁ ଥାଇ । କପିଳ ଆଦି ଛନ୍ତି କହି ॥
୨୩ ଏ ସର୍ବ ମିଶି ଦେହ ହୋଇ । ସ୍ଥାବର ଜଙ୍ଗମ ସେ ଦୁଇ ॥
'ସେ ନୋହି ସେ ନୋହି ବୋଲନ୍ତେ'। କ୍ରମେ ଏମାନଙ୍କୁ ତେଜନ୍ତେ ॥
ପ୍ରାନ୍ତେ ଯେ ହୋଏ ଅବଶେଷ । ନିଷେଧେ ନୁହଇ ପ୍ରବେଶ ॥
ସେ ପୁରୁଷକୁ ଏ ଦେହରେ । ଖୋଜନ୍ତି ବିଜ୍ଞ ଯେଉଁ ନରେ ॥
୨୪ [2]ମଣିମାନଙ୍କେ ସୂତ୍ରପ୍ରାୟେ । ଯେ ସର୍ବବ୍ୟାପୀ ସେ ଅନ୍ୱୟେ ॥
ମଣିମାନଙ୍କେ ଏକ ଏକେ । ସୂତ୍ରଭିନ୍ନତା, ବ୍ୟତିରେକେ ॥
ଯେ ସୃଷ୍ଟି ପାଳନ ସଂହାର । ସେ ଅନୁସଂଧାନେ ଆବର ॥
ନିଶ୍ଚଳ ହୋଇ ବିଚାରନ୍ତି । ଶରୀରେ ଆତ୍ମାକୁ ଖୋଜନ୍ତି ॥
୨୫ ଯେ ବୁଦ୍ଧିବୃତ୍ତି ଜାଗରଣ । ସ୍ୱପ୍ନ ସୁଷୁପ୍ତି ବେନି ପୁଣ ॥
ତା' ଯେ ଅନୁଭବ କରଇ । ସାକ୍ଷୀ ପୁରୁଷ ପର ସେହି ॥
୨୬ ଜାଗ୍ରତ ସୁଷୁପ୍ତି ସ୍ୱପନ । ବୁଦ୍ଧିପରିଣାମ ଏମାନ ॥
ଆତ୍ମାର ଧର୍ମ ଏ ନୁହନ୍ତି । ଏଣୁ ଏ ନିରସ୍ତ ଅଟନ୍ତି ॥
ତ୍ରିଗୁଣମୟ ଏ ସକଳ । କର୍ମସଂଭବ ଏଣୁ ଚଳ ॥

---

୧. ମୂଳପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ ।
ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନ ବିକୃତିଃ ପୁରୁଷଃ ॥ (ସାଂଖ୍ୟକାରିକା)

୨. ମଣିମାନଙ୍କରେ ସୂତ୍ରର ସର୍ବବ୍ୟାପୀ ଭାବକୁ 'ଅନ୍ୱୟ' କହନ୍ତି ଏବଂ ମଣିମାନଙ୍କ ଠାରୁ ସୂତ୍ରର ଏକୈକ ଭିନ୍ନତାକୁ "ବ୍ୟତିରେକ" କୁହାଯାଏ ।

| | | | | | |
|---|---|---|---|---|---|
| | ବୁଦ୍ଧିର ଅବସ୍ଥା ଏମାନ | । | ଆତ୍ମା ବୁଦ୍ଧିରେ ଯେଣୁ ଲଗ୍ନ | ।। | ୮୭ |
| | ବୁଦ୍ଧିଅବସ୍ଥାବନ୍ତ ପ୍ରାଏ | । | ସେ ଘେନି ଆତ୍ମା ପ୍ରତ୍ୟେ ହୋଏ | ।। | ୮୮ |
| | ତତ୍ତ୍ୱ ବିଚାରନ୍ତେ ଏମାନ | । | ନାହାନ୍ତି ଆତ୍ମାସନ୍ନିଧାନ | ।। | ୮୯ |
| | ଆତ୍ମାରୂପକୁ ବିଜ୍ଞ ନର | । | କରେ ଏମାନଙ୍କେ ଗୋଚର | ।। | ୯୦ |
| | କୁସୁମଗନ୍ଧରେ ଯେସନ | । | ଜାଣଇଁ ଅନିଳକୁ ଜନ | ।। | ୯୧ |
| ୨୭ | ଏ ବୁଦ୍ଧି ଅଟେ ଯାର ଦ୍ୱାର | । | ଏମନ୍ତ ଅଟେ ଯେ ସଂସାର | ।। | ୯୨ |
| | ବୁଦ୍ଧିର ଗୁଣ କର୍ମ ଯେହି | । | ତେଣେ ନିବଦ୍ଧ ଏ ଅଟଇ | ।। | ୯୩ |
| | ଅଜ୍ଞାନମୂଳ ମିଥ୍ୟାମୟ | । | ଦିଶେ ଲୋକକୁ ସ୍ୱପ୍ନପ୍ରାୟ | ।। | ୯୪ |
| ୨୮ | ତ୍ରିଗୁଣାତ୍ମକ କର୍ମଙ୍କର | । | ଯେ ବୀଜ ଅଜ୍ଞାନ ଆକାର | ।। | ୯୫ |
| | ତୁମ୍ଭେ ତାହାକୁ ଦଗ୍ଧ କର | । | ଯୋଗ ନାମଟି ଯେ ଏହାର | ।। | ୯୬ |
| | ଜାଗ୍ରତ ଆଦି ରୂପ ହୋଇ | । | ବୁଦ୍ଧିପ୍ରବାହ ଯେ ଅଟଇ | ।। | ୯୭ |
| | ତାହାକୁ ଉପରମ କରେ | । | ଯେବଣ ଯୋଗ ଏ ସଂସାରେ | ।। | ୯୮ |
| ୨୯ | [1]ଉପାୟସହସ୍ରେ ତହିଁ | । | ଏହା ଶ୍ରୀବିଷ୍ଣୁ ଛନ୍ତି କହି | ।। | ୯୯ |
| | ଯେଉଁ ଧର୍ମ କରନ୍ତେ ରତି | । | ଉପୁଜେ କୃଷ୍ଣରେ ଝଟିତି | ।। | ୧୦୦ |
| ୩୦ } | ଗୁରୁସେବାରେ ଭଗତିରେ | । | ସମସ୍ତ ଲାଭ ଅର୍ପଣରେ | ।। | ୧୦୧ |
| ୩୨ } | ସାଧୁଭଗତଙ୍କ ସଙ୍ଗରେ | । | ଭଗବାନଆରାଧନରେ | ।। | ୧୦୨ |
| | ସେ ବିଷ୍ଣୁକଥାର ଶ୍ରଦ୍ଧାରେ | । | ଗୁଣକର୍ମଙ୍କ କୀର୍ତ୍ତନରେ | ।। | ୧୦୩ |
| | ତା' ପାଦପଙ୍କଜଧ୍ୟାନରେ | । | ତା' ମୂର୍ତ୍ତିଦରଶନାଦିରେ | ।। | ୧୦୪ |
| | ସକଳ ଭୂତେ ଭଗବାନ | । | ହରି ଈଶ୍ୱର ବିଦ୍ୟମାନ | ।। | ୧୦୫ |
| | ଏଘେନି ପ୍ରାଣିଙ୍କି ମନରେ | । | ପୂଜେ ସେ କାମମାନଙ୍କରେ | ।। | ୧୦୬ |
| ୩୩ | ଯେ ଷଡ଼୍‌ବର୍ଗ[2] ଛନ୍ତି ଜିଣି | । | ଏମନ୍ତ ରୂପରେ ସେ ପ୍ରାଣୀ | ।। | ୧୦୭ |
| | ବିଷ୍ଣୁରେ କରନ୍ତି ଭଗତି | । | ଯେଣେ ଲଭଇ ଲୋକ ରତି | ।। | ୧୦୮ |
| ୩୪ | ବିଷ୍ଣୁର ଯେବା କର୍ମମାନ | । | ଅତୁଲ୍ୟ ଗୁଣେ[3] ଯେବା ଆନ | ।। | ୧୦୯ |
| | ଯେବଣ ବୀର୍ଯ୍ୟମାନ ହରି | । | ଲୀଳାତନୁରେ ଛନ୍ତି ଧରି | ।। | ୧୧୦ |
| | ଶ୍ରବଣ କରିଣ ସେମାନ | । | ଅତିହରଷେ ଯେବେ ଜନ | ।। | ୧୧୧ |
| | ଉଦ୍‌ଗତ ପୁଲକ ଅଶ୍ରୁରେ | । | ଗଦ୍‌ଗଦ ହୋଏ ଯେମନ୍ତରେ | ।। | ୧୧୨ |
| | ସେ ରୂପେ ଅତିଶୟ ହୋଇ | । | ଉତକଣ୍ଠାକୁ ଭଜିଥାଇ | ।। | ୧୧୩ |
| | ଉଚ୍ଚରେ କରଇ ଗାୟନ | । | ନୃତ୍ୟ କରଇ କରେ ସ୍ୱନ[4] | ।। | ୧୧୪ |

---

୧. "ଯଦ୍ କରୋଷି ଯଦଶ୍ନାସି ଯଜ୍ ଜୁହୋଷି ଦଦାସି ଯଦ୍ ।।
ଯଦ୍ ତପସ୍ୟସି କୌନ୍ତେୟ ତଦ୍ କୁରୁଷ୍ୱ ମଦର୍ପଣମ୍ ।।"
'ଭକ୍ତ୍ୟା ମାମଭିଜାନାତି ଯାବାନ୍ ଯଶ୍ଚାସ୍ମି ତତ୍ତ୍ୱତଃ ।' (ଗୀତା)

୨. ଷଡ଼ବର୍ଗ = (କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ; ଅଥବା ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ) ।

୩. ଗୁଣେ = ଗୁଣମାନ ।  ୪. ସ୍ୱନ = ରୋଦନ । (ରୌତି)

୩୫ ଗ୍ରହରେ ଗ୍ରସ୍ତପ୍ରାୟ ହୋଇ । ଯେବେ କେହୁଣି ସ୍ଥାନେ ସେହି ।। ୧୧୫
ହସଇ, କାନ୍ଦେ, କରେ ଧ୍ୟାନ । ନିଃଶ୍ୱାସ ମୁଞ୍ଚେ ପୁନଃପୁନ ।। ୧୧୬
ହେ ହରେ ! ହେ ଜଗଦୀଶ୍ୱର । ହେ ନାରାୟଣ ଗଦାଧର ।। ୧୧୭
ଏମନ୍ତ ବଚନ ବୋଲଇ । ଲଜ୍ଜାକୁ ଦୂର କରିଥାଇ ।। ୧୧୮
୩୬ ଯେ ଚେଷ୍ଟାଆଦି ସେ ବିଷ୍ଣୁର । ତାହା ଭାବନାରେ ଯାହାର ।। ୧୧୯
ତଦାକାରକୁ ଲଭିଥାଇ । ମାନସ କଳେବର ଦୁଇ ।। ୧୨୦
ଏଣୁ ଯାହାର ଦଗ୍ଧ ହୋଇ । ଅଜ୍ଞାନ ବାସନା ଏ ଦୁଇ ।। ୧୨୧
ଏମନ୍ତ ରୂପେ ଯେଉଁ ଜନ । ଛାଡ଼ିଲା ସମସ୍ତ ବନ୍ଧନ ।। ୧୨୨
ସେ କାଳେ ଅତିଶୟ ହୋଇ । ଭକ୍ତିପ୍ରୟୋଗ ଯେ ଜନ୍ମଇ ।। ୧୨୩
ତେଣେ ସେ ଉତ୍ତମ କରିଣ । ଅଧୋକ୍ଷଜକୁ ଲଭେ ପୁଣ ।। ୧୨୪
୩୭ ରାଗ ଆଦିରେ ଯାହା ମନ । ସଂଯୁତ ଅଟେ ଅନୁଦିନ ।। ୧୨୫
ମନରେ ବିଷ୍ଣୁଙ୍କୁ ସ୍ମରଣ । କରଇ ଯେବେ ସେ ପୁରୁଷ ।। ୧୨୬
ସଂସାରଚକ୍ରକୁ ନିବାର । କରେ ସେ ସ୍ମରଣ ତାହାର ।। ୧୨୭
ବ୍ରହ୍ମନିର୍ବାଣସୁଖ ସେହି । ପଣ୍ଡିତମାନେ ଛନ୍ତି କହି ।। ୧୨୮
ସେ ଘେନି କରି ତୁମ୍ଭେମାନେ । ଅନ୍ତର୍ଯ୍ୟାମୀକି ଭଜ ମନେ ।। ୧୨୯
୩୮ ନିଜ ହୃଦୟମଧ୍ୟେ ଯେହି । ଆକାଶପ୍ରାୟେ ଅଛି ରହି ।। ୧୩୦
ଯେ ନିଜ ଆତ୍ମାମିତ୍ର ହରି । ହେ ଦୈତ୍ୟବାଳକେ ! ତାହାରି ।। ୧୩୧
ଉପାସନାରେ ଅତିଶୟ । କିବା ପ୍ରୟାସ ଅଛି କହ ।। ୧୩୨
ଯେତେ ଅଛନ୍ତି ଦେହଧାରୀ । ବିଷୟ ଅଟେ ସବୁଙ୍କରି ।। ୧୩୩
ଏ ଘେନି ବିଷୟଅର୍ଜନେ । କି ପ୍ରୟୋଜନ ଏ ଭୁବନେ ।। ୧୩୪
୩୯ ବିତ୍ତ, କଳତ୍ର, ପଶୁମାନ । ପୁତ୍ରାଦି, ଧରଣୀ, ସଦନ ।। ୧୩୫
ଯେବା କୁଞ୍ଜର, ଭୂତି, କୋଷ । ଯେ ଅର୍ଥ ଯେ କାମ ଅଶେଷ ।। ୧୩୬
କେହୁଣିଠାରେ ଚିର ହୋଇ । [୧]ଏମାନେ ନ ପାରନ୍ତି ରହି ।। ୧୩୭
କ୍ଷଣକେ ଭାଜେ ଯା' ଆୟୁଷ । ଏମନ୍ତ ଅଟେ ଯେ ମନୁଷ୍ୟ ।। ୧୩୮
କେତେବା[୨] ପ୍ରିୟ ଆଚରଣ । ତାହାର କରନ୍ତି ଏ ପୁଣ ।। ୧୩୯
୪୦ ଏରୂପେ କ୍ରତୁରେ ନିର୍ମିତ । ଏ ଲୋକମାନେହେଁ[୩] ଅନିତ୍ୟ ।। ୧୪୦

---

୧. ଧନଂ ହି ପୁରୁଷୋ ଲୋକେ ପୁରୁଷଂ ଧନମେବ ବା ।
ଅବଶ୍ୟମେକଂ ତ୍ୟଜତି ତସ୍ମାଦ୍ କିଂ ଧନତୃଷ୍ଣୟା ।। (ସ୍ୱାମୀ)

୨. କେତେ ବା = କି ଅବା ।

୩. "ଯନ୍ନ ଦୁଃଖେନ ସଂଭିନ୍ନଂ ନ ଚ ଗ୍ରସ୍ତମନନ୍ତରଂ ।
ଅଭିଳାଷୋପପନ୍ନଂ ଚ ସୁଖଂ ସ୍ୱର୍ଗପଦାସ୍ପଦମ୍ ।।"– ଏବମ୍ଭୂତ ସ୍ୱର୍ଗାଦି ସୁଖ ମଧ୍ୟ କ୍ଷୟଶୀଳ । ତାହାର ପ୍ରମାଣସ୍ୱରୂପ – 'ତଦ୍ ଯଥେହ କର୍ମଜିତୋ ଲୋକଃ କ୍ଷୀୟତେ ଏବମେବାମୁତ୍ର ପୁଣ୍ୟଜିତୋ ଲୋକଃ କ୍ଷୀୟତେ' ଇତ୍ୟାଦି ଶ୍ରୁତିବାକ୍ୟ ବିଦ୍ୟମାନ ।

| | | | | |
|---|---|---|---|---|
| | ତାରତମ୍ୟରେ ସୁକୃତର | । କେ ଅଳ୍ପ କେ ଅଟେ ପ୍ରଚୁର | ।। | ୧୪୧ |
| | ବିବାଦ ଆଦି ନାନା ଗୋଳ | । ଥିବାରୁ ନୁହନ୍ତି ନିର୍ମଳ | ।। | ୧୪୨ |
| | ସେ ଘେନି ବରିଷ୍ଠ ଭକ୍ତିରେ | । ଆତ୍ମାକୁ ଲଭିବା ଅର୍ଥରେ | ।। | ୧୪୩ |
| | ହରିଙ୍କି ଭଜ ଯା' ଦୂଷଣ | । ଅଦୃଷ୍ଟ ଅଶ୍ରୁତ ପ୍ରମାଣ | ।। | ୧୪୪ |
| ୪୧ | ଆତ୍ମାକୁ ପଣ୍ଡିତ ପରାଏ | । ଯେବଣ ଜନ ମଣିଥାଏ | ।। | ୧୪୫ |
| | ସେ ଯାହା ସଂକଳ୍ପ କରିଣ | । କର୍ମକୁ ଆଚରଇ ପୁଣ | ।। | ୧୪୬ |
| | ତହିଁରୁ ବିପରୀତ ଯେହି | । ଅବଶ୍ୟ ସେ ଫଳକୁ ପାଇ | ।। | ୧୪୭ |
| ୪୨ | ଦୁଃଖବିନାଶ ମୋକ୍ଷଅର୍ଥେ | । କର୍ମର ସଂକଳ୍ପ ଜଗତେ | ।। | ୧୪୮ |
| | ଚେଷ୍ଟାକୁ ନ କରନ୍ତେ ଯେହି | । ଥିଲା ପୂର୍ବରେ ସୁଖୀ ହୋଇ | ।। | ୧୪୯ |
| | ଚେଷ୍ଟାସକାଶୁଁ ସେହି ଜନ | । ଦୁଃଖକୁ ଲଭେ ଦିନୁଦିନ | ।। | ୧୫୦ |
| ୪୩ | ଯେବଣ ଦେହନିମିତ୍ତରେ | । ପୁରୁଷ କାମ୍ୟ କର୍ମ ଦ୍ୱାରେ | ।। | ୧୫୧ |
| | କାମନା କରେ ଭୋଗମାନ | । ସେଦେହ ଜନ୍ତୁଙ୍କ ଭୋଜନ | ।। | ୧୫୨ |
| | ସକଳ କାଳରେ ନ ଥାଇ | । ଗମନାଗମନକୁ ପାଇ | ।। | ୧୫୩ |
| ୪୪ | ଯେ ଭିନ୍ନ ମମତାର ସ୍ଥାନ | । ତନୁଜ ବନିତା ସଦନ | ।। | ୧୫୪ |
| | ଧନାଦି ରାଜ୍ୟ କୋଷବଳ | । ଅମାତ୍ୟ ଭୃତ୍ୟାପ୍ତ[୧] ସକଳ | ।। | ୧୫୫ |
| | ପାରକ୍ୟ[୨] ଅଟନ୍ତି ଏମାନେ | । ଏହାକି କହିବା ବଚନେ | ।। | ୧୫୬ |
| ୪୫ | ଏମାନେ ଅଟନ୍ତି ଅସାର | । ଶରୀର ସହିତେ ନଶ୍ୱର | ।। | ୧୫୭ |
| | ଅର୍ଥପ୍ରାୟେକ ଆଭାସନ୍ତି | । ବାସ୍ତବ ଅନର୍ଥ ଅଟନ୍ତି | ।। | ୧୫୮ |
| | ଏଣେ ଆତ୍ମାର କିସ ସିଦ୍ଧି | । ଯେ ନିତ୍ୟାନନ୍ଦର ସୋଦଧି | ।। | ୧୫୯ |
| ୪୬ | ପୂର୍ବ କର୍ମରେ କ୍ଲେଶ ପାଇ | । ଏମନ୍ତ ଅଟଇ ଯେ ଦେହୀ | ।। | ୧୬୦ |
| | ତାର ଏ ଦେହେ ହେ ଅସୁରେ | । ନିଷେକ[୩] ଆଦି ଅବସ୍ଥାରେ | ।। | ୧୬୧ |
| | କର୍ମରେ ନିଜ ପ୍ରୟୋଜନ | । କିଅବା କର ନିରୂପଣ | ।। | ୧୬୨ |
| ୪୭ | ଆତ୍ମାକୁ ଅନୁବର୍ତ୍ତୀ ଥାଇ | । ଯେ ଦେହ ତେଣେ କରି ଦେହୀ | ।। | ୧୬୩ |
| | କର୍ମମାନଙ୍କୁ ଆରମ୍ଭଇ | । ସେ କର୍ମେ ଦେହକୁ ଲଭଇ | ।। | ୧୬୪ |
| | ଅଜ୍ଞାନେ ଅଟଇ ଜନିତ | । ସେ ଦେହ ସେକର୍ମ ନିୟତ | ।। | ୧୬୫ |
| ୪୮ | ସେ ଧର୍ମ ଅର୍ଥ କାମମାନ | । ଯାହାର ଅଟନ୍ତି ଅଧୀନ | ।। | ୧୬୬ |
| | ଚେଷ୍ଟାରହିତ ଯେ ଈଶ୍ୱର | । ଆତ୍ମା ସକଳ ଲୋକଙ୍କର | ।। | ୧୬୭ |
| | ସେ ଘେନି ଭଜ ତୁମ୍ଭେ ତାଙ୍କୁ | । ଛାଡ଼ିଣ ଇତର ଚେଷ୍ଟାକୁ | ।। | ୧୬୮ |
| ୪୯ | ସ୍ୱକୃତ ପଞ୍ଚ ମହାଭୂତେ | । ଯାହାକୁ ରଚିଲେ ଜଗତେ | ।। | ୧୬୯ |
| | ସେ ସର୍ବଭୂତମାନଙ୍କରି | । ଈଶ୍ୱର ପ୍ରିୟ ଆତ୍ମା ହରି | ।। | ୧୭୦ |
| | ସମସ୍ତ ପ୍ରାଣୀହୃଦେ ସେହି | । ଅଛନ୍ତି ଅନ୍ତର୍ଯ୍ୟାମୀ ହୋଇ | ।। | ୧୭୧ |

୧. ଭୃତ୍ୟାପ୍ତ = ଭୃତ୍ୟ ଓ ଆପ୍ତଜନ । ୨. ପାରକ୍ୟ = ପରକୀୟ । ୩. ନିଷେକ = ବୀର୍ଯ୍ୟସେଚନ ।

୫୦ ସୁର ଅସୁର ଅବା ନର । ଯକ୍ଷ ଗନ୍ଧର୍ବ ବା ଇତର ॥ ୧୭୨
ଭଜନ୍ତେ ବିଷ୍ଣୁପାଦ ସ୍ୱୟେଂ । ସ୍ୱସ୍ତିକି ଲଭେ ଆମ୍ଭ ପ୍ରାଏ ॥ ୧୭୩
୫୧ ଦ୍ୱିଜତ୍ୱ ଦେବତ୍ୱ ଯେ ଆନ । ଯେ ବହୁଜ୍ଞତା ବୃତ୍ତ ଦାନ ॥ ୧୭୪
୫୨ ତପସ୍ୟା ଯୋଗ ସତ୍ୟ[1] ବ୍ରତ । ବିଷ୍ଣୁତୋଷକୁ ଅସମର୍ଥ ॥ ୧୭୫
ହେ ଦୈତ୍ୟପୁତ୍ରେ ! ହୃଷୀକେଶ । ନିର୍ମଳ ଭକ୍ତିରେ ସନ୍ତୋଷ ॥ ୧୭୬
ଆବର ଯେତେ କଥାମାନ । ସକଳ ଅଟେ ବିଡ଼ମ୍ବନ ॥ ୧୭୭
୫୩ ହେ ଦୈତ୍ୟମାନେ ! ସେ ହେତୁରେ । ଭକ୍ତିକି କର ହରିଠାରେ ॥ ୧୭୮
ସମସ୍ତ ପ୍ରାଣୀମାନଙ୍କର । ଯେ ଆତ୍ମା ଅଟନ୍ତି ଈଶ୍ୱର ॥ ୧୭୯
ଆପଣା ଆତ୍ମା ଅନୁସାରେ । ଭକ୍ତିକି କର ସବୁଠାରେ ॥ ୧୮୦
୫୪ ଯେ ଦୈତ୍ୟ ଯେ ଯକ୍ଷ ରାକ୍ଷସ । ଯେ ନାରୀ ଶୂଦ୍ର ବ୍ରଜବାସ[2] ॥ ୧୮୧
ଯେ ଖଗ ମୃଗ ପାପଜୀବେ । ମୋକ୍ଷକୁ ଲଭିଛନ୍ତି ପୂର୍ବେ ॥ ୧୮୨
୫୫ ଗୋବିନ୍ଦେ ଏକାନ୍ତ ଭଗତି । ସକଳଠାରେ ବିଷ୍ଣୁମତି ॥ ୧୮୩
ଏତେକ ମାତ୍ର[3] ପୁରୁଷର । ଏଲୋକେ ନିଜ ଅର୍ଥ ବର[4] ॥ ୧୮୪
ଶ୍ରୀକୃଷ୍ଣ ପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୧୮୫
ଆସ୍ୱାଦି ଭାଗବତ ରସ । ହରଷ ସାଧୁଙ୍କ ମାନସ ॥ ୧୮୬

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ବାଳାନୁଶାସନଂ
ନାମ ସପ୍ତମୋଽଧ୍ୟାୟଃ ॥

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେଽତିରୁଷା ସୂନୁଂ ନିଘ୍ନନ୍ ଦୈତ୍ୟୋ ହତଃ ସ୍ୱୟମ୍ ।
ଆବିର୍ଭୂୟ ନୃସିଂହେନ ସ ଚ ବ୍ରହ୍ମାଦିଭିଃ ସ୍ତୁତଃ ॥ ୧
ଅନ୍ତଃକୃପାସୁଧାପୂର୍ଣ୍ଣୋ ବହିଃକ୍ରୋଧୋ ନୃକେଶରୀ ।
ଦୈତ୍ୟେନ୍ଦ୍ରମରିଭାବେନ ଭଜନ୍ତଂ ସମଭାବୟତ୍[5] ॥ ୨

ଶ୍ରୀନାରଦ ଉବାଚ

୧ ସକଳ ଦାନବନନ୍ଦନ । ଏଥୁ ଅନ୍ତରେ ତା ବର୍ଣ୍ଣନ ॥ ୧
ଶୁଣିଣ ବିଶୁଦ୍ଧ ଭାବରେ । ଗ୍ରହଣ କଲେକ ମନରେ ॥ ୨
ଗୁରୁ ଶିଖାଇ ଥିଲେ ଯାହା । ମନରେ ନ ଘେନିଲେ ତାହା ॥ ୩
୨ ଏଥୁ ଅନ୍ତରେ ଗୁରୁସୁତ । ସେ ଦୈତ୍ୟଶିଶୁଙ୍କର ଚିତ୍ତ ॥ ୪

୧. ଶୌଚ । ୨. ବ୍ରଜବାସ = ବ୍ରଜବାସୀ, ଗୋପାଳ ।
୩. ଏତେ ମାତ୍ରକ । ୪. ପର । ୫. ସମବାରୟତ୍ ।

ବ୍ରହ୍ମନିଷ୍ଠିତ କରି ଜାଣି । ଭୟ ପାଇ ତ୍ୱରାରେ ପୁଣି ॥ ୫
ଯଥାର୍ଥ କରିଣ ସେମାନ । ରାଜାକୁ କଲେ ନିବେଦନ ॥ ୬
୩ ୧'ଦୁଃସହ ତନୟ୨' -ଅନ୍ୟାୟ । ଯେ ଅଟେ ଆପଣା ଅପ୍ରିୟ ॥ ୭
୪ ଦୈତ୍ୟ ତା ଶ୍ରବଣ କରିଣ । ନିଷ୍ଠୁର ବଚନରେ ପୁଣ ॥ ୮
ଆକ୍ଷେପ କରିଣ ପୁତ୍ରକୁ । ଧଇଲା ଆପଣା ମନକୁ ॥ ୯
କୋପର ଆବେଶେ ଯାହାର । ଚଞ୍ଚଳ ହୋଇଛି ଶରୀର ॥ ୧୦
ବକ୍ରଲୋଚନେ କୋପେ ତାକୁ । ଚାହାଁନ୍ତେ କହିଲା ବାକ୍ୟକୁ ॥ ୧୧
ବିନୟେ ନମ୍ର ଯେ ହୋଇଛି । କରଯୁଗଳକୁ ଯୋଡ଼ିଛି ॥ ୧୨
ପାଦରେ ସର୍ପ ହେଲେ ହତ । ନିଃଶ୍ୱାସ ପକାଇ ଯେମନ୍ତ ॥ ୧୩
ସ୍ୱଭାବେ ଦାରୁଣ ରାକ୍ଷସ । ବିଶେଷେ ଅଟେ କୋପବଶ ॥ ୧୪

ହିରଣ୍ୟକଶିପୁରୁବାଚ

୫ ହେ ମନ୍ଦମତି ଦୁର୍ବିନୀତ । ଅଧମ କୁଳଭେଦକୃତ ॥ ୧୫
ଅନମ୍ର ଅଟୁ ତୁ ମୋହର । ଆଜ୍ଞାକୁ ଲଙ୍ଘୁ ବାରମ୍ବାର ॥ ୧୬
ଯମର ସଦନକୁ ତୋତେ । ନେମଇଁ ଆଜ ମୁଁ ତୁରିତେ ॥ ୧୭
୬ ଯେ କ୍ରୋଧ କରନ୍ତେ ପାଳକ । ସଙ୍ଗେ କମ୍ପନ୍ତି ତିନି ଲୋକ ॥ ୧୮
ଭୟ ନ ଥିଲା ପ୍ରାୟ ହୋଇ । ତାହାର ଆଜ୍ଞାକୁ ଯେ ତୁହି ॥ ୧୯
ଅତିକ୍ରମିଲୁ ବେଳୁଁ ବେଳ । ହେ ମୂଢ଼ ! କିବା ତୋର ବଳ ॥ ୨୦

ଶ୍ରୀପ୍ରହ୍ଲାଦ ଉବାଚ

୭ ହେ ନୃପ ! କେବଳ ମୋହର । ବଳ ନୁହନ୍ତି ସେ ଈଶ୍ୱର ॥ ୨୧
ବଳିଷ୍ଠମାନେ ଯେ ଅଛନ୍ତି । ତାଙ୍କର ବଳ ସେ ଅଟନ୍ତି ॥ ୨୨
ବ୍ରହ୍ମାଦି ଯେ ପର ଅବର । ସ୍ଥାବର ଜଙ୍ଗମ ଆବର ॥ ୨୩
ଯେବଣ ପ୍ରଭୁ ଏମାନଙ୍କୁ । ନେଇଛି ଆପଣା ବଶକୁ ॥ ୨୪
୮ ସେ କାଳ ଅଟନ୍ତି ଈଶ୍ୱର । ବହୁତ ପରାକ୍ରମ ଯାର ॥ ୨୫
ଏ ଓଜ ସହ ବଳ ବୁଦ୍ଧି । ଇନ୍ଦ୍ରିୟ ଆତ୍ମାରୂପେ ସିଦ୍ଧି ॥ ୨୬
ନିଜ ଶକ୍ତିରେ ଆପଣାର । ସେ ପ୍ରଭୁ ତିନି ଜଗତର ॥ ୨୭
ସର୍ଜନ ପାଳନ ସଂହାର । କରନ୍ତି, ସବୁହୁଁ ସେ ସାର ॥ ୨୮
ତେଣୁ ସେ ସତ୍ତ୍ୱଆଦି ଗୁଣ । ତ୍ରୟର ପ୍ରଭୁ ଅଟେ ପୁଣ ॥ ୨୯
୯ ଅସୁର ଭାବ ଆପଣାର । ସ୍ୱଭାବ ଯେ ତା କର ଦୂର ॥ ୩୦
ସକଳ ଠାବରେ ସମାନ । କରିଣ ମାନସକୁ ଘେନ ॥ ୩୧
ଉପ୍ରଥସ୍ଥିତ ମନ ଯେହି । ସେ ଯେବେ ଜିତ ନୋହିଥାଇ ॥ ୩୨

---

୧. 'ଶ୍ରୁତ୍ୱା ତଦପ୍ରିୟଂ ଦୈତ୍ୟୋ ଦୁଃସହଂ ତନୟାନୟମ୍' ଇତି ପ୍ରକ୍ଷେପଃ ।

୨. ତନୁଜ ।

| | | | | | |
|---|---|---|---|---|---|
| | ତହିଁରୁ ଆନ ହୋଇକରି | । | ନାହାନ୍ତି ତ୍ରିଜଗତେ ଅରି | ।। | ୩୩ |
| | ମନର ସାମ୍ୟେ ସମାଧାନ | । | ବିଷ୍ଣୁର ମହା ଆରାଧନ | ।। | ୩୪ |
| ୧୦ | ଲୋକର ସର୍ବସ୍ୱାପହାରୀ | । | ଇନ୍ଦ୍ରିୟ ରୂପ ଷଡ଼ଅରି | ।। | ୩୫ |
| | ତାଙ୍କୁ ନ ଜିଣି ଆଦ୍ୟେ କେହି | । | ଜଗତେ ତୁମ୍ଭ ପରା ହୋଇ | ।। | ୩୬ |
| | ଜିଣିଲୁଁ ବୋଲି ଦଶଦିଶ | । | ମନରେ କରନ୍ତି ବିଶ୍ୱାସ | ।। | ୩୭ |
| | ଯେ ଜିତଚିତ୍ତ ସାଧୁଜନ | । | ପଣ୍ଡିତ ସକଳେ ସମାନ | ।। | ୩୮ |
| | ଶତ୍ରୁ ତାହାର କାହିଁଛନ୍ତି | । | ଅଜ୍ଞାନକୃତ ଯେ ଅଟନ୍ତି | ।। | ୩୯ |

ହିରଣ୍ୟକଶିପୁରୁବାଚ

| | | | | | |
|---|---|---|---|---|---|
| ୧୧ | ନିଶ୍ଚୟେ ମରିବା ନିମିତ୍ତ | । | କାମନା କରିଛୁ ତୁ ଚିତ୍ତ | ।। | ୪୦ |
| | ମୋ ଆଗେ ଅତିଶୟ ହୋଇ | । | ପ୍ରଗଲ୍‌ଭେ କହୁଛୁ ଯେ ତୁହି | ।। | ୪୧ |
| | ମରିବା ନିମିତ୍ତରେ ମନ | । | କରିଥାଆନ୍ତି ଯେଉଁ ଜନ | ।। | ୪୨ |
| | ହେ ମନ୍ଦମତି ! ତାଙ୍କ ବାଣୀ | । | ଅନ୍ୟଥା ହୋଏ ଏହା ଜାଣି | ।। | ୪୩ |
| ୧୨ | ମୋହର ଠାରୁ ଆନ ହୋଇ | । | ଜଗଦୀଶ୍ୱର ଅଛି କେହି | ।। | ୪୪ |
| | ହେ ମନ୍ଦଭାଗ୍ୟ ! ଯାହା ତୁହି | । | କହିଲୁ ଅଛି ସେହୁ କାହିଁ | ।। | ୪୫ |
| | ପ୍ରହ୍ଲାଦ କହିଲେକ ଚିନ୍ତି | । | ସକଳ ଠାରେ ସେ ଅଛନ୍ତି | ।। | ୪୬ |
| | ହିରଣ୍ୟକଶିପୁ ବୋଲଇ | । | ସ୍ତମ୍ଭେ କିମ୍ପାଇଁ ନ ଦିଶଇ | ।। | ୪୭ |
| | ପ୍ରହ୍ଲାଦ ସ୍ତମ୍ଭକୁ ଚାହିଁଲେ | । | ଦିଶୁଅଛନ୍ତି ତ ବୋଇଲେ | ।। | ୪୮ |
| | ହିରଣ୍ୟକଶିପୁ ଚାହିଁଲା | । | ନ ଦେଖି ଏମନ୍ତ ବୋଇଲା | ।। | ୪୯ |
| ୧୩ | ପ୍ରଗଲ୍‌ଭ ହୋଇଣ ବଚନ | । | ମୋ ଆଗେ କରୁଛୁ ରଚନ | ।। | ୫୦ |
| | ଦେହରୁ ହରିବି ତୋ' ଶିର | । | ଶରଣ ବାଞ୍ଛିତ ଯେ ତୋର | ।। | ୫୧ |
| | ସେ ହରି ଆଜ ଏ ଭୟରୁ | । | ପାରିଲେ ତୋତେ ରକ୍ଷା କରୁ | ।। | ୫୨ |
| ୧୪ | ଯେ ଅଟେ ଆପଣାର ସୁତ | । | ବିଶେଷେ ମହାଭାଗବତ | ।। | ୫୩ |
| | ଏମନ୍ତରୂପେ ଦୁରୁକ୍ତିରେ | । | ତାହାକୁ ପୀଡ଼ନ୍ତେ ରୋଷରେ | ।। | ୫୪ |
| | ଦିବ୍ୟ ଆସନରୁ ସତ୍ୱରେ | । | ଉଠିଲା ଖଡ୍‌ଗ ଧରି କରେ | ।। | ୫୫ |
| | ନିଜ ମୁଷ୍ଟିରେ ମହାସୁର | । | ସ୍ତମ୍ଭକୁ କଲାକ ପ୍ରହାର | ।। | ୫୬ |
| | { [1]ମୂର୍ଧାରେ ଅଞ୍ଜଳି ବାନ୍ଧିଣ | । | ପ୍ରହ୍ଲାଦ କଲା ନିରୀକ୍ଷଣ | ।। | ୧ } |
| | ଯେ ଦେବ ଅସୁରସକଳ | । | ତହୁଁ ଅଟଇ ମହାବଳ | ।। | ୫୭ |
| ୧୫ | ପ୍ରହାର କରନ୍ତେ ସ୍ତମ୍ଭରେ | । | ସେହି ସମୟେ ସେ ସଭାରେ | ।। | ୫୮ |
| | ଅତିଭୀଷଣ ଧ୍ୱନି ହେଲା | । | ଯେ ଅଣ୍ଡକଟାହ ଭେଦିଲା | ।। | ୫୯ |
| | ସେ ଧ୍ୱନି ଆପଣା ସ୍ଥାନରେ | । | ମିଳନ୍ତେ ଶୁଣି ତା' କର୍ଣ୍ଣରେ | ।। | ୬୦ |
| | ହେ ନୃପ ! ବ୍ରହ୍ମାଦି ଯେ ଥିଲେ | । | ସ୍ୱସ୍ଥାନଭଙ୍ଗ ସେ ମଣିଲେ | ।। | ୬୧ |

୧. (ସ୍ୱାମୀଟୀକାନୁସାରେ ରଚିତ) ।

୧୬ ନିଜ ତେଜରେ ପୁତ୍ରନାଶ । ବାଞ୍ଛି ଧାମନ୍ତେ ସେ ଦୈତ୍ୟେଶ ॥ ୬୨
ଅପୂର୍ବ ଅଦ୍ଭୁତ ନିନାଦ । ଶ୍ରବଣ କରି ସଭାମଧ୍ୟ ॥ ୬୩
ଧ୍ୱନିଆଶ୍ରୟ ଅଟେ ଯେହି । ତାହାକୁ ନ ଦେଖିଲା ତହିଁ ॥ ୬୪
ଦାନବ ଯୂଥପତିମାନେ । ତ୍ରାସ ଲଭିଲେ ଯେଉଁ ସ୍ୱନେ ॥ ୬୫
୧୭ ସ୍ତମ୍ଭ ଭିତରେ ଭଗବାନ । ଦିଶୁ ଅଛନ୍ତି ଏ ବଚନ ॥ ୬୬
ଯାହା କହିଛି ନିଜ ଭୃତ୍ୟ । ସେ କଥା କରିବାକୁ ସତ୍ୟ ॥ ୬୭
ସମସ୍ତ ଭୂତମାନଙ୍କରେ । ଆପଣା ବ୍ୟାପ୍ତିକି ପୂର୍ବରେ ॥ ୬୮
ସେ ପ୍ରହରାଦ ଅଛି କହି । ସତ୍ୟ କରିବା ଅର୍ଥେ ତାହି ॥ ୬୯
ସ୍ୱଭୃତ୍ୟ ସନକାଦିମାନେ । ଯାହା କହିଲେ ଖେଦମନେ ॥ ୭୦
ତିନି ଜନ୍ମରେ ହେବ ମୋକ୍ଷ । ତାହା କରିବାକୁ ପ୍ରତ୍ୟକ୍ଷ ॥ ୭୧
ଦିତିତନୁଜ ଯେଉଁ ବାଣୀ । ପୂର୍ବେ ବ୍ରହ୍ମାଙ୍କୁ ଅଛି ଭଣି ॥ ୭୨
ତୁମ୍ଭେ ସର୍ଜିଛ ଯେତେ ଜୀବ । ତହିଁରେ ମୋ ମୃତ୍ୟୁ ନୋହିବ ॥ ୭୩
ଅନ୍ତରେ ବାହ୍ୟରେ ଗୃହର । ମରଣ ନୋହିବ ମୋହର ॥ ୭୪
ହୋଉ ବୋଇଲେ ଧାତା ତାକୁ । ସେ କଥା ସତ୍ୟ କରିବାକୁ ॥ ୭୫
ଏହା[୧] ବିରୋଧେ ମୃତ୍ୟୁ ମୋର । ହୋଇବ ଏମନ୍ତ ଉତ୍ତର ॥ ୭୬
ଯାହା ବୋଲିଛି ଦିତିସୁତ । ସେ ବାକ୍ୟ କରିବାକୁ ସତ୍ୟ ॥ ୭୭
ଇନ୍ଦ୍ରଙ୍କୁ ପୂର୍ବେ ଦେବଋଷି । ଯେଉଁ ବଚନ ଛନ୍ତି ଘୋଷି ॥ ୭୮
ଏ ବଳୀ ବିଷ୍ଣୁଅନୁଚର । ମରଣ ନୋହିବ ଏହାର ॥ ୭୯
୧୮ ଶ୍ରୀହରି ଯାହା ଛନ୍ତି କହି । ମୋହ' ଭକ୍ତର ନାଶ ନାହିଁ ॥ ୮୦
ଏରୂପେ ଯେ ନିଜ ଭାଷିତ । ସେ କଥା କରିବାକୁ ସତ୍ୟ ॥ ୮୧
ଅତ୍ୟନ୍ତ ଅଦ୍ଭୁତ ଯେ ସେହି । ସିଂହ ହିଁ ନୋହି ନର ନୋହି ॥ ୮୨
ଏ ରୂପ ଧରନ୍ତେ ସଭାରେ । ଦିଶିଲେ ସ୍ତମ୍ଭର ଭିତରେ[୨] ॥ ୮୩
ସେ ଦୈତ୍ୟ ଏମନ୍ତ ପ୍ରକାରେ । ଧ୍ୱନିକି ଶୁଣିଣ ସଭାରେ ॥ ୮୪
୧୯ ଧ୍ୱନି ସମ୍ଭବ ହେଲା ଯହୁଁ । ତା' ସବୁଦିଗେ ଚାହୁଁ ଚାହୁଁ ॥ ୮୫
ସ୍ତମ୍ଭର ମଧ୍ୟରୁ ବାହାର । ହୁଅନ୍ତେ ନୃସିଂହ ଆକାର ॥ ୮୬
ଏ ମୃଗ ନୋହେ ନୋହେ ନର । ବିଚିତ୍ର କିବା ଏ ଶରୀର ॥ ୮୭
ଏମନ୍ତ ପ୍ରକାରେ ମାନସେ । ବିଚାର କଲା ଅତି ତ୍ରାସେ ॥ ୮୮
ଏମନ୍ତ କରନ୍ତେ ବିଚାର । ଯେ ଅଟେ ଅତି ଭୟଙ୍କର ॥ ୮୯
ସେ ନରସିଂହରୂପ ସ୍ଥିତ । ହୋଇଲା ତାହାର ଅଗ୍ରତ ॥ ୯୦
୨୦ ପ୍ରତପ୍ତ କନକ ସମାନ । ପିଙ୍ଗଳ ଅଟେ ଯା' ଲୋଚନ ॥ ୯୧
ସ୍ଫୁରନ୍ତି ଯେ ଜଟାକେସର । ତେଣେ ଆରମ୍ଭ[୩] ମୁଖ ଯାର ॥ ୯୨

୧. ଏହା = ଏହାର (ପ୍ରହଲାଦର) । ୨. ମଧ୍ୟରେ ।
୩. ଆରମ୍ଭ (ମୂଳଶବ୍ଦ 'ଜୃମ୍ଭିତ' ର ଭାବାନୁବାଦ) ।

କରାଳ ଦଂଷ୍ଟ୍ରାମାନ ଯହିଁ । ଖଡ୍‌ଗର ପ୍ରାୟ ଚଳ ହୋଇ ।। ୯୩
କ୍ଷୁରର ଅନ୍ତପ୍ରାୟ ଖର[୧] । ରସନା ଦିଶଇ ଯହିଁର ।। ୯୪
ଭ୍ରୂକୁଟୀଯୁତ ଯେ ବଦନ । ତେଣେ ଉଲ୍ବଣ[୨] ଯେ ଶୋଭନ ।। ୯୫
୨୧ ନିଶ୍ଚଳ ଶଙ୍କୁପ୍ରାୟ ହୋଇ । ଉନ୍ନତ ଯହିଁ କର୍ଣ୍ଣ ଦୁଇ ।। ୯୬
ଗିରିକନ୍ଦରର ସମାନ । ଅଦ୍ଭୁତବିସ୍ତାର ଆନନ ।। ୯୭
ନାସା ହିଁ ଦିଶୁଅଛି ଯହିଁ । ଯେ ବା କପୋଳପ୍ରାନ୍ତ ଦୁଇ ।। ୯୮
ତାଙ୍କର ଯେବା ବିଦାରଣ । ତେଣେ ଯେ ଦିଶଇ ଭୀଷଣ ।। ୯୯
ଆକାଶପରିଯନ୍ତେ ଯହିଁ । ବ୍ୟାପି ଶରୀର ଶୋଭା ପାଇ ।। ୧୦୦
ଯହିଁ ଅଦୀର୍ଘ ଗ୍ରୀବା ସ୍ଥୂଳ । ବିଶାଳ ଅଟେ ବକ୍ଷସ୍ଥଳ ।। ୧୦୧
ଯହିଁରେ ଅତିକୃଶ ହୋଇ । ଉଦରଭାଗ ଶୋଭା ପାଇ ।। ୧୦୨
୨୨ ଚନ୍ଦ୍ରକିରଣ ପ୍ରାଏ ଶ୍ୱେତ । ରୋମମାନଙ୍କେ ଯେ ସଂଯୁତ ।। ୧୦୩
ଯହିଁରେ ଭୁଜବୃନ୍ଦ ଶତ । ସକଳ ଦିଗକୁ ବ୍ୟାପିତ ।। ୧୦୪
ନଖ ଆୟୁଧ ଅଟେ ଯହିଁ । ଯାହାଙ୍କୁ ନ ଭରସେ କେହି ।। ୧୦୫
ଚକ୍ରାଦି ଅଟେ ଆପଣାର । ଯେ ନିଜ ଆୟୁଧ ନିକର ।। ୧୦୬
ବଜ୍ରକୁ ଆଦି ହୋଇ ଆନ । ଯେ ଅବା ଆୟୁଧ ପ୍ରଧାନ ।। ୧୦୭
ତେଣେ ଯେ କଲେ ସ୍ଥାନଚ୍ୟୁତ । ଦୈତ୍ୟ ଦାନବ ଅପ୍ରମିତ ।। ୧୦୮
୨୩ ମହାମାୟାବୀ ହରି ମୋର । ଏ ବଧ କରିଛି ବିଚାର ।। ୧୦୯
ଉଦ୍ୟତ ହେଲେ ଏଣେ କରି । ଅକାର୍ଯ୍ୟ କି ହେବ ମୋହରି ।। ୧୧୦
ଏମନ୍ତ ବୋଲନ୍ତେ ଗର୍ଜନ୍ତେ । ଦଇତଶ୍ରେଷ୍ଠ ସେ ତଦନ୍ତେ ।। ୧୧୧
ନରସିଂହକୁ ଲକ୍ଷ୍ୟ କରି । ଧାଇଁଲା, ଅଛି ଗଦା ଧରି ।। ୧୧୨
୨୪ ନୃସିଂହତେଜରେ ପଡ଼ିଲା । ସେ କାଳେ ଦୈତ୍ୟ କି ଦିଶିଲା ।। ୧୧୩
ପତଙ୍ଗ ଅନଳେ ପଡ଼ଇ । ଯେସନେ ଲକ୍ଷିତ ନୁହଇ ।। ୧୧୪
ଯେ ସତ୍ତ୍ୱପ୍ରକାଶକ ହରି । ତହିଁ ତାମସ ଯେ ସୁରାରି ।। ୧୧୫
ତାହାର ଅଲକ୍ଷିତ କଥା । ବିଚିତ୍ର ନୁହଇ ସର୍ବଥା ।। ୧୧୬
ପ୍ରଳୟ କାଳରେ ସମ୍ଭୂତ । ଯେବଣ ତମ ଅପ୍ରମିତ ।। ୧୧୭
ତାହା ଯେ ଆପଣା ତେଜରେ । ପିଇଲେ ସୃଷ୍ଟିର ଆଦ୍ୟରେ ।। ୧୧୮
୨୫ ମହତ ଅଟେ ଗଦା ଯାର । ସେ ଗଦାରେ ସେ ମହାସୁର ।। ୧୧୯
ତଦନନ୍ତରେ ବେଗେ ଧାଇଁ । ମାଇଲା ନୃସିଂହକୁ ଯାଇଁ ।। ୧୨୦
ଗଦାସହିତେ ସେ ଅସୁର । ଯୁଦ୍ଧ କରନ୍ତେ ଗଦାଧର ।। ୧୨୧
ତାହାକୁ ଧଇଲେ ତୁରିତ । ସର୍ପକୁ ଯେହ୍ନେ ତାର୍କ୍ଷ୍ୟସୁତ ।। ୧୨୨
୨୬ କ୍ରୀଡ଼ା କରନ୍ତେ ଗରୁଡ଼ର । ହସ୍ତୁଁ ଯେସନେ ବିଷଧର ।। ୧୨୩

---

୧. ଖର = ତୀକ୍ଷ୍ଣ । ୨. ଉଲ୍ବଣ = ଉତ୍‌କଟ ।

| | | | | |
|---|---|---|---|---|
| | ନୃସିଂହହସ୍ତୁଁ ସେ ପ୍ରକାରେ | । | ଅସୁର ପଡ଼ିଲା ତଳରେ | ॥ ୧୨୪ |
| | ଯେଉଁମାନଙ୍କ ସ୍ଥାନମାନ | । | ହରିଛି ଦିତିର ନନ୍ଦନ | ॥ ୧୨୫ |
| | ତା’ ଭୟେ ମେଘ ଉହାଡ଼ରେ | । | ଦେଖୁ ଯେ ଥିଲେ ଆନନ୍ଦରେ | ॥ ୧୨୬ |
| | ସେ ସର୍ବ ଦିଗପାଳମାନେ | । | ଦେବତା ଥିଲେ ଯେବା ଆନେ | ॥ ୧୨୭ |
| | ହେ ନୃପ ! ଅସୁରସୁକୃତ | । | ଦେଖି ମଣିଲେ ଅସଙ୍ଗତ | ॥ ୧୨୮ |
| ୨୭ | ଯାହା ହସ୍ତରୁ ମହାସୁର | । | ମୁକତ ହୋଇଲା ସତ୍ୱର | ॥ ୧୨୯ |
| | ଶଙ୍କିଲା ମୋହର ବୀର୍ଯ୍ୟକୁ | । | ଏ ରୂପେ ମଣିଣ ତାହାକୁ | ॥ ୧୩୦ |
| | ଖଡ଼ଗଚର୍ମକୁ ଧରିଣ | । | ବେଗେ ଧାଇଁଲା ତାକୁ ପୁଣ | ॥ ୧୩୧ |
| | ଯୁଦ୍ଧ କରନ୍ତେ ଯାହା ତହିଁ | । | କ୍ଲମ କେବେହେଁ ଜାତ ନୋହି | ॥ ୧୩୨ |
| ୨୮ | ଶ୍ୟେନର ପ୍ରାୟ ବେଗ ଯାର | । | ଖଡ଼ଗମାର୍ଗେ ସେ ଅସୁର | ॥ ୧୩୩ |
| | ଅଛିଦ୍ର ହୋଇଣ ସତ୍ୱରେ | । | ଧାଇଁଛି ତଳରେ ଉପରେ | ॥ ୧୩୪ |
| | ସ୍ୱଭାବେ ଅଟଇ ଯେ ଖର | । | ମହାଶବଦେ ଭୟଙ୍କର | ॥ ୧୩୫ |
| | ଏମନ୍ତ ଅଟ୍ଟହାସ କରି | । | ଅତ୍ୟନ୍ତ ବେଗବନ୍ତ ହରି | ॥ ୧୩୬ |
| | ଦୈତ୍ୟକୁ ଧଇଲେ ହସ୍ତରେ | । | ନେତ୍ର ଯେ ବୁଜିଛି ଭୟରେ | ॥ ୧୩୭ |
| ୨୯ | ଉରଗ ଯେହ୍ନେ ମୂଷିକକୁ | । | ଧରନ୍ତେ ସେ ତେହ୍ନେ ତାହାକୁ | ॥ ୧୩୮ |
| | ଗ୍ରହଣେ ଆତୁର ହୋଇଛି | । | ଏଣିକି ତେଣିକି ଖସୁଛି | ॥ ୧୩୯ |
| | ଚର୍ମ ହିଁ ଯାହାର ସମରେ | । | କ୍ଷତ ନୋହିଛି କୁଳିଶରେ | ॥ ୧୪୦ |
| | ଶ୍ରୀହରି ତାହାକୁ ସଭାରେ | । | ପକାଇ ଆପଣା ଊରୁରେ | ॥ ୧୪୧ |
| | ନଖମାନଙ୍କେ ତତକ୍ଷଣ | । | ଲୀଳାରେ କଲେ ବିଦାରଣ | ॥ ୧୪୨ |
| | ଗରୁଡ଼ ସର୍ପକୁ ଯେସନେ | । | ବିଦାରି ପକାଇ ତେସନେ | ॥ ୧୪୩ |
| ୩୦ | କ୍ରୋଧସକାଶୁଁ ଯାହା ଜନ | । | ଚାହିଁମାକୁ ହିଁ ଅଭାଜନ | ॥ ୧୪୪ |
| | ଦିଶୁ ଅଛନ୍ତି ଭୟଙ୍କର | । | ସେ ନେତ୍ରମାନେ ଯାହାଙ୍କର | ॥ ୧୪୫ |
| | ବିସ୍ତାର[୧] ବଦନାନ୍ତ ଖରେ | । | ଲିହିଲେ ଆପଣା ଜିହ୍ୱାରେ | ॥ ୧୪୬ |
| | ସ୍ୱଭାବେ ଅଟନ୍ତି ଅରୁଣ | । | କେଶର ଆନନ ଯେ ପୁଣ | ॥ ୧୪୭ |
| | ସେମାନେ ରକତବିନ୍ଦୁରେ | । | ସିକ୍ତ ହୋଇଛନ୍ତି ଯା’ଠାରେ | ॥ ୧୪୮ |
| | ଦାନବ-ଅନ୍ତକୁ[୨] ଯେ ମାଳ | । | କରିଣ ବହିଛନ୍ତି ଗଳ | ॥ ୧୪୯ |
| | ଯେହ୍ନେ ହସ୍ତୀକି ହତ୍ୟା କରି | । | କରାଳ ହୋଇଥାଇ ହରି | ॥ ୧୫୦ |
| ୩୧ | ହୃଦପଦ୍ମକୁ ନଖାଙ୍କୁରେ | । | ଉପାଡ଼ି ଛାଡ଼ି ତାକୁ ଖରେ | ॥ ୧୫୧ |
| | ତା’ ଅନୁଚର ଥିଲେ ଯେତେ | । | ଆୟୁଧମାନ ଟେକି ହସ୍ତେ | ॥ ୧୫୨ |
| | ସହସ୍ର ସହସ୍ର ସଂଖ୍ୟାରେ | । | ତାହାଙ୍କୁ ନଖଶସ୍ତ୍ରକରେ | ॥ ୧୫୩ |
| | ସକଳ ଦିଗେ କଲେ ହତ | । | ଶୋହେ ଯା ଭୁଜଦଣ୍ଡଯୂଥ | ॥ ୧୫୪ |

୧. ବିସ୍ତାର = ବିସ୍ତୃତ ।　　୨. ଅନ୍ତ = ଅନ୍ତ୍ର ।

୩୨ ସଟାରେ ଲଭିଣ କଂପନ । ଜଳଦମାନେ ହେଲେ ଶୀର୍ଣ୍ଣ ॥ ୧୫୫
ତାଙ୍କ ଦୃଷ୍ଟିରେ ଗ୍ରହଙ୍କର । ପ୍ରକାଶ ହୋଇଲା ଅନ୍ତର ॥ ୧୫୬
ବାଜନ୍ତେ ନିଶ୍ୱାସପବନ । କ୍ଷୋଭ ଲଭିଲେ ସିନ୍ଧୁମାନ ॥ ୧୫୭
ଗର୍ଜ୍ଜନେ ଭୟକୁ ଲଭିଲେ । ଦିଗଦନ୍ତୀଏ ଧ୍ୱନି କଲେ ॥ ୧୫୮
୩୩ ତାଙ୍କ ସଟାରେ ବିଚଳିତ । ହେଲେ ଯେ ବିମାନ ବହୁତ ॥ ୧୫୯
ସ୍ୱର୍ଗ ସଂକୁଳ ତେଣେ ହେଲା । ସ୍ଥାନରୁ ଅପସରି ଗଲା ॥ ୧୬୦
ଚରଣଆଘାତରେ ପୁଣି । କ୍ଷୋଭକୁ ଲଭିଲା ଧରଣୀ ॥ ୧୬୧
ଏହାଙ୍କ ଗମନବେଗରେ । ଉଡ଼ିଲେ ନାନା ମହୀଧରେ ॥ ୧୬୨
ତାହାଙ୍କ ତେଜେ ଦିଗମାନ । ଆକାଶ ନୋହିଲା ଶୋଭନ ॥ ୧୬୩
୩୪ ଯେ ଅଛି ତେଜ ଆପଣାର । କରି ନାହାନ୍ତି ତା' ସଂହାର ॥ ୧୬୪
ଲକ୍ଷିଲେ ନାହିଁ ଆପଣାର । ସଙ୍ଗକୁ ପ୍ରତିଯୋଦ୍ଧା ଆର ॥ ୧୬୫
ପ୍ରଚଣ୍ଡ ଅଟେ ମୁଖ ଯାର । ଅମର୍ଷ[1] ଅତି ବଳିୟାର ॥ ୧୬୬
ତହିଁ ଉତ୍ତାରେ ସେ ସଭାରେ । ଉତ୍ତମ ରାଜଆସନରେ ॥ ୧୬୭
ନିବାସ କଲେ ପ୍ରଭୁ ଯାଇଁ । ତାହାଙ୍କୁ ନ ସେବିଲେ କେହି ॥ ୧୬୮
୩୫ ମସ୍ତକବ୍ୟଥା ମନୁଷ୍ୟର । ଯେସନେ ଅତି ଦୁଃଖଭର ॥ ୧୬୯
ତିନି ଲୋକକୁ ସେ ପ୍ରକାରେ । ଯେ ବାଧୁଥିଲା ପ୍ରତାପରେ ॥ ୧୭୦
ଯୁଦ୍ଧରେ ସେ ଦୈତ୍ୟକୁ ହରି । ମାଇଲେ ଏହା ଦେଖି କରି ॥ ୧୭୧
ଅତିହରଷରେ ଶୋଭନ । ଦିଶେ ଯାହାଙ୍କ ମୁଖମାନ ॥ ୧୭୨
ସେ ଦେବନାରୀମାନେ ଥିଲେ । କୁସୁମବୃଷ୍ଟିମାନ କଲେ ॥ ୧୭୩
୩୬ ଦେଖିବା ନିମିତ୍ତରେ ମନ । କଲେ ଯେ ସ୍ୱର୍ଗବାସୀ ଜନ ॥ ୧୭୪
ତାଙ୍କ ବିମାନସମୂହରେ । ଆକାଶ ପୂରିଲା ନିର୍ଭରେ ॥ ୧୭୫
ବାଜିଲେ ସୁରମାନଙ୍କର । ପଟହ ଦୁନ୍ଦୁଭି ଆବର ॥ ୧୭୬
ଗନ୍ଧର୍ବବର ନାରୀଜନ । କଲେକ ନଟନ ଗାୟନ ॥ ୧୭୭
୩୭} ବ୍ରହ୍ମା ବାସବ ଶିବ ଆଦି । ଦେବତାମାନେ ଯେ ପ୍ରସିଦ୍ଧି ॥ ୧୭୮
୩୯} ଯେ ଋଷି ପିତୃଗଣମାନ । ଯେ ସିଦ୍ଧ ବିଦ୍ୟାଧର ଆନ ॥ ୧୭୯
ଯେ ନାଗ ମନୁ ପ୍ରଜାପତି । ଗନ୍ଧର୍ବ ଅପ୍‌ସରଯୁବତି ॥ ୧୮୦
ଚାରଣ ଯକ୍ଷ କିଂପୁରୁଷ । ବେତାଳ କିନ୍ନର ବିଶେଷ ॥ ୧୮୧
ସୁନନ୍ଦ କୁମୁଦାଦି ଯେତେ । ବିଷ୍ଣୁର ପାର୍ଷଦ ଜଗତେ ॥ ୧୮୨
ସେଠାରେ ଉପଗତ ହୋଇ । ଅଞ୍ଜଳିପୁଟ ଶିରେ ଦେଇ ॥ ୧୮୩
ତୀବ୍ର ଅଟଇ ତେଜ ଯାର । ପୁରୁଷମାନଙ୍କେ ଯେ ବର ॥ ୧୮୪
ଜଣେ ଜଣେଙ୍କେ ହୋଇ ଭିନ୍ନ । ସ୍ତୁତିକି କଲେ ସେ ବିଧାନ ॥ ୧୮୫

୧. ଅମର୍ଷ = ଅସହନ ।

### ଶ୍ରୀବ୍ରହ୍ମୋବାଚ

୪୦ ନମ୍ର ହେଉଛି ଅନନ୍ତଙ୍କୁ । ତାଙ୍କୁ ପ୍ରସନ୍ନ କରିବାକୁ ॥ ୧୮୬
ଦୁରନ୍ତ ଅଟେ ଶକ୍ତି ଯାର । ବିଚିତ୍ରବୀର୍ଯ୍ୟ ଯେ ଈଶ୍ୱର ॥ ୧୮୭
ପ୍ରାଣୀଙ୍କ ପାପ ବିନାଶନ । କରେ ଯାହାର କର୍ମମାନ ॥ ୧୮୮
ନିଜ ଲୀଳାରେ ଜଗତର । ଜନମ ପାଳନ ସଂହାର ॥ ୧୮୯
ଗୁଣଦ୍ୱାରରେ ଯେ କରନ୍ତି । ଅବ୍ୟୟ ରୂପ ଯେ ଅଟନ୍ତି ॥ ୧୯୦

### ଶ୍ରୀରୁଦ୍ର ଉବାଚ

୪୧ ସହସ୍ରଯୁଗଅନ୍ତ ଯେହି । ତୁମ୍ଭ କୋପକୁ ଯୋଗ୍ୟ ସେହି ॥ ୧୯୧
ଏ ଅଜ୍ଞ ଦୈତ୍ୟ ହେଲା ହତ । ଯେ ଅନୁଗତ ତାର ସୁତ ॥ ୧୯୨
ତୁମ୍ଭ ଭକ୍ତ ସେ ତାକୁ ପାଳ । ହେ ପ୍ରଭୁ ! ଭଗତବତ୍ସଳ ॥ ୧୯୩

### ଶ୍ରୀଇନ୍ଦ୍ର ଉବାଚ

୪୨ ଆମ୍ଭଙ୍କୁ କରନ୍ତେ ପାଳନ । ଯେ ତୁମ୍ଭ ଯଜ୍ଞଭାଗମାନ ॥ ୧୯୪
ଦଇତ ପୂର୍ବେ ଥିଲା ନେଇ । ତାହା ଆଣିଲ ଲେଉଟାଇ ॥ ୧୯୫
ହୃଦୟ କମଳ ଆମ୍ଭର । ହେ ନାଥ ତୁମ୍ଭର ମନ୍ଦିର ॥ ୧୯୬
ଭୟହେତୁରେ ସ୍ତୁତିପଥେ । ଦୈତ୍ୟ ଯେ ଥିଲା ତହିଁ ନିତ୍ୟେ ॥ ୧୯୭
ସେ ଭୟ କରନ୍ତେ ବିଧ୍ୱଂସ । ଏବେ କଲ ତାକୁ[୧] ବିକାଶ ॥ ୧୯୮
ତୋହର ତ୍ରୈଲୋକ୍ୟସଂପତ୍ତି । ପ୍ରାପ୍ତିନିମିତ୍ତେ ଏହୁ ରୀତି ॥ ୧୯୯
ଏମନ୍ତ ବିଚାରିଛ ଅବା । ତହିଁକି ଉତ୍ତର କହିବା ॥ ୨୦୦
ତୁମ୍ଭଙ୍କୁ କରନ୍ତି ଯେ ସେବା । ତାଙ୍କୁ ଏ ସୁଖ କେତେ ଅବା ॥ ୨୦୧
ହେ ନାରସିଂହ ! ଯେ ମୁକତି । ତାହି ସେ ବଡ଼ ନ ମଣନ୍ତି ॥ ୨୦୨
ଯେ ସ୍ୱର୍ଗଆଦି ସୁଖମାନ । ତେଣେ କି ଅବା ପ୍ରୟୋଜନ ॥ ୨୦୩

### ଶ୍ରୀଋଷୟ ଊଚୁଃ

୪୩ ହେ ଆଦି ପୁରୁଷ ! ତୁମ୍ଭର[୨] । ଯେ ତେଜରୂପ ତପବର ॥ ୨୦୪
ଆମ୍ଭଙ୍କୁ ଥିଲ ତୁମ୍ଭେ କହି । ଯେବଣ ତପରେ ପୁଣି ହିଁ ॥ ୨୦୫
ଆତ୍ମାରେ ଯେ ଜଗତ ଲୀନ । ତାହାକୁ କଲ ହେ ସର୍ଜନ ॥ ୨୦୬
ଧ୍ୟାନଲକ୍ଷଣ ସେହୁ ତପ । ଏ ଦୈତ୍ୟ କରିଥିଲା ଲୋପ ॥ ୨୦୭
ହେ ନାଥ ! ଶରଣରକ୍ଷଣ । ରକ୍ଷାନିମିତ୍ତେ ତୁମ୍ଭେ ପୁଣ ॥ ୨୦୮
ଏ କଳେବରକୁ ଧଇଲ । ସେ ତପ କରସି ବୋଇଲ ॥ ୨୦୯

### ଶ୍ରୀପିତର ଊଚୁଃ

୪୪ ତନୁଜମାନେ ଶ୍ରାଦ୍ଧମାନ । ଆମ୍ଭଙ୍କୁ କଲେ ଯା ପ୍ରଦାନ ॥ ୨୧୦

---

୧. ତାକୁ = ହୃଦୟକମଳକୁ ।    ୨. ତୁଂ ଆତ୍ମନସ୍ତବ; (ସ୍ୱାମୀ) ।

ବଳେ ହେଁ କଲା ତା' ଭୋଜନ । ତୀର୍ଥେ କରନ୍ତେ ପୁଣ ସ୍ନାନ ॥ ୨୧୧
ସେ ଦେଲେ ତିଳୋଦକ ଯାହା । ପିଇଲା ପୁଣ ବଳେ ତାହା ॥ ୨୧୨
ନଖରେ ହୋଇଲା ବିଦାର । ହୃଦୟଗତ ମେଦ ଯାର ॥ ୨୧୩
ଏମନ୍ତ ଉଦରୁଁ ତାହାର । ଯେ ତୁମ୍ଭେ କଲ ତା' ବାହାର ॥ ୨୧୪
ସକଳ ଧର୍ମର ପାଳନ । ସେ ନୃହରିଙ୍କି ମୋ' ବନ୍ଦନ ॥ ୨୧୫

ଶ୍ରୀସିଦ୍ଧା ଉଚୁଃ

୪୫ ଆମ୍ଭମାନଙ୍କର ଯେ ଗତି । ଯୋଗସିଦ୍ଧିରୁ ଉତପତି ॥ ୨୧୬
ତାହା ଯେ ଯୋଗତପବଳେ । ଅସାଧୁ ହରିଲା ଏ କାଳେ ॥ ୨୧୭
ଯାହାର ଅନେକ ରୂପରେ । ଗର୍ବ ଉପୁଜିଲା ସଂସାରେ ॥ ୨୧୮
ନଖରେ ତାକୁ ବିଦାରଣ । କଲ ଯେ ପ୍ରଭୁ ତୁମ୍ଭେ ପୁଣ ॥ ୨୧୯
ସେ ତୁମ୍ଭେ ତୁମ୍ଭଙ୍କୁ ଆମ୍ଭର । ହେ ନରସିଂହ ନମସ୍କାର ॥ ୨୨୦

ଶ୍ରୀବିଦ୍ୟାଧରା ଉଚୁଃ

୪୬ ଯେ ବିଦ୍ୟା ଅନ୍ତର୍ଧାନ ଆଦି । ଧାରଣାବଳେ ଥିଲୁଁ ସାଧି ॥ ୨୨୧
ବଳବୀର୍ଯ୍ୟରେ ଗର୍ବୀ ହୋଇ । ଯେ ଅଜ୍ଞ ନିଷେଧିଲା ତାହି ॥ ୨୨୨
ତାକୁ ଯେ ପଶୁପ୍ରାୟ କରି । ସମରେ ପକାଇଲେ ମାରି ॥ ୨୨୩
ସେ ମାୟାନୃସିଂହଙ୍କୁ ନିତ୍ୟେ । ପ୍ରଣାମ କରୁଛୁଁ ସମସ୍ତେ ॥ ୨୨୪

ଶ୍ରୀନାଗା ଉଚୁଃ

୪୭ ଆମ୍ଭର ଫଣାରତ୍ନମାନ । ସ୍ତ୍ରୀରତ୍ନମାନ ଯେବା ଆନ ॥ ୨୨୫
ଯେଉଁ ପାପିଷ୍ଠ ଦିତିସୁତ । ତାହାଙ୍କୁ ହରିଲା ତୁରିତ ॥ ୨୨୬
ବିଦାରି ତାହାର ବକ୍ଷକୁ । ଯେ ତୁମ୍ଭେ ଏ ସ୍ତିରୀମାନଙ୍କୁ ॥ ୨୨୭
କଲ ଆନନ୍ଦକୁ ପ୍ରଦାନ । ତୁମ୍ଭଙ୍କୁ ଆମ୍ଭର ବନ୍ଦନ ॥ ୨୨୮

ଶ୍ରୀମନବ ଉଚୁଃ

୪୮ ହେ ଦେବ ! ମନୁମାନେ ଆମ୍ଭେ । ଦେଇଛ ଯେଉଁ ଆଜ୍ଞା ତୁମ୍ଭେ ॥ ୨୨୯
ସେ ଆଜ୍ଞା ଆଚରୁଁ ନିୟତ । ଏ ସମୟରେ ଦିତିସୁତ ॥ ୨୩୦
ଯେ ବର୍ଣ୍ଣାଶ୍ରମଧର୍ମମାନ । ଆମ୍ଭର କଲା ତା' ନାଶନ[୧] ॥ ୨୩୧
ହେ ପ୍ରଭୋ ! ସେ ଖଳକୁ ତୁମ୍ଭେ । ନାଶିଲ କି କରିବୁଁ ଆମ୍ଭେ ॥ ୨୩୨
ଆମ୍ଭଙ୍କୁ ତାହା ଆଜ୍ଞା କର । ଆମ୍ଭେ ଯେ ତୁମ୍ଭର କିଙ୍କର ॥ ୨୩୩

ଶ୍ରୀପ୍ରଜାପତୟ ଉଚୁଃ

୪୯ ହେ ପ୍ରଭୋ ! ପ୍ରଜାପତି ଆମ୍ଭେ । ଆମ୍ଭଙ୍କୁ ସର୍ଜିଅଛ ତୁମ୍ଭେ ॥ ୨୩୪

୧. ନିଧନ ।

| | | | |
|---|---|---|---|
| | ଯେଉଁ ଅସୁର ନିଷେଧନ୍ତେ । | ପ୍ରଜାଙ୍କୁ ନ ସର୍ଜୁଁ ସମସ୍ତେ ॥ | ୨୩୫ |
| | ତୁମ୍ଭେ ବିଦାରିଲ ତା' ବକ୍ଷ । | ସେ ଏବେ ଶୋଇଛି ପ୍ରତ୍ୟକ୍ଷ ॥ | ୨୩୬ |
| | ହେ ସତ୍ତ୍ୱମୂର୍ତ୍ତି ! ଏ ତୁମ୍ଭର । | ସର୍ବମଙ୍ଗଳ ଅବତାର ॥ | ୨୩୭ |
| ୫୦ | ହେ ପ୍ରଭୋ ! ଆମ୍ଭେ ଯେ ତୁମ୍ଭର । | ନର୍ତ୍ତକ ନୃତ୍ୟେ ଗୀତକର ॥ | ୨୩୮ |
| | ଯେ ବଳବୀର୍ଯ୍ୟରେ ଓଜରେ । | ଆମ୍ଭଙ୍କୁ କଲା ଆୟତ୍ତରେ ॥ | ୨୩୯ |
| | ତୁମ୍ଭେ ଏବେ ସେ ଅସୁରକୁ । | ନେଲ ଏମନ୍ତ ଅବସ୍ଥାକୁ ॥ | ୨୪୦ |
| | ଉପୂଥେ ଯେଉଁ ଲୋକ ଥାଇ । | କୁଶଳ ଅର୍ଥେ କି ସେ ହୋଇ ॥ | ୨୪୧ |

ଶ୍ରୀଚାରଣା ଊଚୁଃ

| | | | |
|---|---|---|---|
| ୫୧ | ହେ ହରେ ! ସଂସାରନାଶନ । | ଯେ ତୁମ୍ଭ ଚରଣନଳିନ ॥ | ୨୪୨ |
| | ଆଶ୍ରୟ କଲୁଁ ଏବେ ଆମ୍ଭେ । | ଯେଣୁ ଏ ଅସୁରକୁ ତୁମ୍ଭେ ॥ | ୨୪୩ |
| | ନାଶିଲ, ଯେ ସାଧୁଜନର । | ହୃଦୟବର୍ତ୍ତୀ ଭୟଙ୍କର ॥ | ୨୪୪ |

ଶ୍ରୀଯକ୍ଷା ଊଚୁଃ

| | | | |
|---|---|---|---|
| ୫୨ | ମନୋଜ୍ଞ କର୍ମରେ ତୁମ୍ଭର । | ଅନୁଚରରେ ଆମ୍ଭେ ବର ॥ | ୨୪୫ |
| | ଦିତିର ସୁତ ଆପଣାକୁ । | ବୁହାଉଥିଲା ଯେ ଆମ୍ଭଙ୍କୁ ॥ | ୨୪୬ |
| | ଜନଙ୍କୁ ପରିତାପ ଯେତେ । | କରାଉଥିଲା ସେ ଜଗତେ ॥ | ୨୪୭ |
| | ହେ ନରହରି ! ତାହା ଜାଣି । | ତୁମ୍ଭେ ମାଇଲ ତାକୁ ପୁଣି ॥ | ୨୪୮ |
| | ଚତୁର୍ବିଂଶତି ତତ୍ତ୍ୱଙ୍କର । | ତୁମ୍ଭେ ପ୍ରବର୍ତ୍ତକ ଈଶ୍ୱର ॥ | ୨୪୯ |

ଶ୍ରୀକିଂପୁରୁଷା ଊଚୁଃ

| | | | |
|---|---|---|---|
| ୫୩ | ଆମ୍ଭେ କିଂପୁରୁଷ, ଈଶ୍ୱର । | ମହାପୁରୁଷ ତୁମ୍ଭେ ବର ॥ | ୨୫୦ |
| | କୁପୁରୁଷ[1] ଏ ହେଲା ହତ । | ଯେବେ ଏ ସାଧୁରେ ଧିକ୍ କୃତ ॥ | ୨୫୧ |

ଶ୍ରୀବୈତାଳିକା ଊଚୁଃ

| | | | |
|---|---|---|---|
| ୫୪ | ଯେତେ ଜଗତେ ଯାଗମାନ । | ଯେ ସଭାସ୍ଥାନମାନେ ଆନ ॥ | ୨୫୨ |
| | ତୁମ୍ଭ ନିର୍ମଳ ଯଶ ଗାଇ । | ଉତ୍ତମ ପୂଜା ପାଉଁ ତହିଁ ॥ | ୨୫୩ |
| | ଯେଉଁ ଦୁର୍ଜନ ସେମାନଙ୍କୁ । | ନେଲା ଆପଣାର ବଶକୁ ॥ | ୨୫୪ |
| | ହେ ଭଗବାନ ! ହେଲା କ୍ଷୟ । | ସେ ପାପୀ ଦୁଷ୍ଟ ରୋଗପ୍ରାୟ ॥ | ୨୫୫ |

ଶ୍ରୀକିନ୍ନରା ଊଚୁଃ

| | | | |
|---|---|---|---|
| ୫୫ | କିନ୍ନରଗଣ ଆମ୍ଭେ ତୋର । | ହେ ନାଥ ! ଅଟୁଁ ପରିଚାର ॥ | ୨୫୬ |
| | ଆମ୍ଭମାନଙ୍କୁ ଏ ଦଇତ । | ବେଠି କରାଇ ଅବିରତ ॥ | ୨୫୭ |
| | ହେ ନରସିଂହ ସେ ବୃଜିନ[2] । | ତୁମ୍ଭରେ ଲଭିଲା ନିଧନ ॥ | ୨୫୮ |

୧. କାପୁରୁଷ ।    ୨. ବୃଜିନ = ପାପୀ ।

| | | | | |
|---|---|---|---|---|
| | ହେ ପ୍ରଭୋ ! ଆମ୍ଭମାନଙ୍କର | ସମୃଦ୍ଧିନିମିତ୍ତେ ପ୍ରଚର | ।। | ୨୫୯ |

ଶ୍ରୀବିଷ୍ଣୁପାର୍ଷଦା ଉଚୁଃ

| | | | | |
|---|---|---|---|---|
| ୫୬ | ହେ ପ୍ରଭୋ ! ଆମ୍ଭମାନଙ୍କର | ଶରଣଦାୟକ ଈଶ୍ୱର | ।। | ୨୬୦ |
| | ସମସ୍ତ ଲୋକଶୁଭଙ୍କର | ଅଦ୍ଭୁତ ନୃସିଂହ ଆକାର | ।। | ୨୬୧ |
| | ଦେଖିଲୁଁ ଆମ୍ଭେ ଏ ପ୍ରକାରେ | ଏ ତୁମ୍ଭ ଦାସ ବୈକୁଣ୍ଠରେ | ।। | ୨୬୨ |
| | ବ୍ରାହ୍ମଣଶାପ ଥିଲା ପାଇ | ଏହା ନିଧନ ଅଟେ ଯେହି | ।। | ୨୬୩ |
| | ସେ କଥା ଅନୁଗ୍ରହ ଅର୍ଥେ | ଏମନ୍ତ ମଣୁଛୁଁ ସମସ୍ତେ | ।। | ୨୬୪ |
| | ମହତ ଜନଙ୍କର ହିତେ | ସପ୍ତମ ସ୍କନ୍ଧ ଭାଷାଗୀତେ | ।। | ୨୬୫ |
| | ବୈଷ୍ଣବଜନମାନଙ୍କର | ପଠନନିମିତ୍ତେ ପ୍ରଚାର | ।। | ୨୬୬ |
| | କରୁଛି ଦୀନବନ୍ଧୁ ଦ୍ୱିଜ | ସୁଜନେ ଚିନ୍ତ ଅଧୋକ୍ଷଜ | ।। | ୨୬୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ହିରଣ୍ୟକଶିପୁବଧେ
ଶ୍ରୀନୃସିଂହସ୍ତବୋ ନାମ ଅଷ୍ଟମୋଽଧ୍ୟାୟଃ ।।

## ନବମ ଅଧ୍ୟାୟ

ନବମେ ବ୍ରହ୍ମଣା ଭୀତ୍ୟା ଚୋଦିତୋଽସୁରବାଳକଃ ।
କୋପଂ ପ୍ରଶମୟନ୍ନସ୍ତୌନ୍ନୃସିଂହମତିଭୀଷଣମ୍ ।। ୧

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୧ | [1]ବ୍ରହ୍ମା ଶଙ୍କର ଅଗ୍ରସର | ହୋଇ ଅଛନ୍ତି ଯାହାଙ୍କର | ।। | ୧ |
| | ସେ ସୁରଆଦି ଏ ପ୍ରକାରେ | ସ୍ତୁତିକି କରନ୍ତେ ଭକ୍ତିରେ | ।। | ୨ |
| | କ୍ରୋଧରେ ଆବେଶ ଯାହାର | ଯାଙ୍କୁ ନ ଭରସେ ଇତର | ।। | ୩ |
| | ସେ ନରସିଂହଙ୍କ ପାଶକୁ | ସମର୍ଥ ନୋହିଲେ ଯିବାକୁ | ।। | ୪ |
| ୨ | ଲକ୍ଷ୍ମୀଙ୍କି ଅମରେ ସାକ୍ଷାତ | ପେଷିଲେ ସେ ଅତି ଅଦ୍‌ଭୁତ | ।। | ୫ |
| | ରୂପକୁ କରି ଦରଶନ | ନ କଲେ ପାଶକୁ ଗମନ | ।। | ୬ |
| | ନ ଦେଖି ନ ଶୁଣି ଥିଲାରେ | ଆଶଙ୍କା ଲଭିଲେ ମନରେ | ।। | ୭ |
| ୩ | ନିକଟେ ପ୍ରହ୍ଲାଦ ଯେ ଥିଲେ | ବିଧାତା ତାହାଙ୍କୁ ପେଷିଲେ | ।। | ୮ |
| | ଆପଣା ପିତାକୁ କୁପିତ | ହେଲେ ଯେ ପ୍ରଭୁ ଆହେ ତାତ | ।। | ୯ |
| | ଯାଅ ତାହାଙ୍କ ନିକଟକୁ | ଶାନ୍ତି କରାଅ ଏବେ ତାଙ୍କୁ | ।। | ୧୦ |

୧. ଉଗ୍ରୋଽପ୍ୟନୁଗ୍ର ଏବାୟଂ ସ୍ୱଭକ୍ତାନାଂ ନୃକେଶରୀ ।
କେଶରୀବ ସ୍ୱପୋତାନାମନ୍ୟେଷାମୁଗ୍ରବିଗ୍ରହଃ ।। (ସ୍ୱାମୀ)

୪ ହେ ନୃପ ! ବୋଲନ୍ତେ ତେମନ୍ତ । ସେ ବାଳ ମହାଭାଗବତ ॥ ୧୧
ନିକଟେ ମିଳି ମନ୍ଦ ହୋଇ । ଅଞ୍ଜଳି କରି କର ଦୁଇ ॥ ୧୨
ପ୍ରଣାମ କଲା ଧରଣୀରେ । ପଡ଼ି ଆପଣା ଶରୀରରେ ॥ ୧୩
୫ ଆପଣା ଚରଣର ତଳେ । ସେ ବାଳ ପଡ଼ିଛି ନିଶ୍ଚଳେ ॥ ୧୪
ସେ ଦେବ ଦେଖିଣ ଏମନ୍ତ । କୃପାରେ ହୋଇଣ ସଂଯୁତ ॥ ୧୫
ଧରଣୀତଳରୁ ସତ୍ୱରେ । ତାହାକୁ ତୋଳିଣ ଶ୍ରୀକରେ ॥ ୧୬
କାଳ-ଉରଗଠାରୁ ତ୍ରାସ । ଲଭିଛି ଯାହାଙ୍କ ମାନସ ॥ ୧୭
ତାଙ୍କ ଅଭୟ ଯେହୁ କରେ । ସେ କର ଦେଲେ ତାର ଶିରେ ॥ ୧୮
୬ କରସ୍ପରଶେ ତାହାଙ୍କର । ସର୍ବ ଅଶୁଭ ଗଲା ଯାର ॥ ୧୯
ଯାହାର ପୂର୍ଣ୍ଣ ବ୍ରହ୍ମଜ୍ଞାନ । ତତ୍‌କାଳ ହେଲା ଉତପନ୍ନ ॥ ୨୦
ରୋମ-ଅଞ୍ଚିତ[1] କଳେବର । ଅଶ୍ରୁ ନୟନରେ ଯାହାର ॥ ୨୧
ପ୍ରେମରେ ଆର୍ଦ୍ର ହୃଦ ଯାର । ଆନନ୍ଦେ ସେ ଦୈତ୍ୟକୁମର ॥ ୨୨
ଚରଣପଦ୍ମ ତାହାଙ୍କର । ଧଇଲା ଆପଣା ହୃଦର ॥ ୨୩
୭ [2]ଆତ୍ମାକୁ କରି ସମାଧାନ । ଆପଣା ହୃଦୟ ନୟନ ॥ ୨୪
ନିବେଶି ତାହାଙ୍କର ଠାରେ । ପ୍ରେମଗଦ୍‌ଗଦ ବଚନରେ ॥ ୨୫
ହରିଙ୍କି ଏକାଗ୍ର ମନରେ । ସ୍ତୁତି ଆରମ୍ଭିଲା ଭକ୍ତିରେ ॥ ୨୬

### ଶ୍ରୀପ୍ରହ୍ଲାଦ ଉବାଚ

୮ ଏକ ବିଷୟରେ ବିସ୍ତାର । ଅଟଇ ମତି ଯାହାଙ୍କର ॥ ୨୭
ସେ ବ୍ରହ୍ମା ଆଦି ସୁରଗଣ । ମୁନିଏ ସିଦ୍ଧମାନେ ପୁଣ ॥ ୨୮
ବଚନଙ୍କର ପ୍ରବାହରେ । ଧନାଦି ଦ୍ୱାଦଶ ଗୁଣରେ ॥ ୨୯
ଯାହାକୁ ଆରାଧିବା ପାଇଁ । ସମର୍ଥ ନୋହିଲେ ଆଜ ହିଁ ॥ ୩୦
ଉଗ୍ର ଅଟଇ ଜାତି ଯାର । ଏମନ୍ତରୂପେ ମୁଁ ଅସୁର ॥ ୩୧
ମୋତେ କେମନ୍ତେ ହେବେ ତୋଷ । ସେ ହରି ଜଗତର ଈଶ ॥ ୩୨
୯ ଯେ ଧନ, ସଦ୍‌କୁଳେ ଜନମ । ସୁନ୍ଦର ଭାବ, ଯେ ସ୍ୱଧର୍ମ ॥ ୩୩
ପଣ୍ଡିତଭାବ, ଯେ ବା ଓଜ । ପ୍ରତାପ, ବୁଦ୍ଧି, ବଳ, ତେଜ ॥ ୩୪
ପୌରୁଷ, ଯୋଗ ଯେ ଆବର । ଏମାନେ ପରପୁରୁଷର ॥ ୩୫
ଆରାଧନକୁ ଅଭାଜନ । ଏମନ୍ତ ମଣଇଁ ମୁଁ ମନ ॥ ୩୬
ଭକ୍ତିରେ ହୋଇଲେ ସନ୍ତୋଷ । ଗଜ-ଇନ୍ଦ୍ରକୁ ଜଗଦୀଶ ॥ ୩୭
୧୦ ଯେ ତପ ଶୌଚ ସତ୍ୟ ଦମ । ଜ୍ଞାନ ବିଜ୍ଞାନ କ୍ଷମା ଶମ ॥ ୩୮

---

୧. ଅଙ୍କିତ ।

୨. ସ୍ୱସ୍ମିନ୍ନିବ ସମସ୍ତେଷୁ ତଦ୍‌କୃପାମୃତବୃଷ୍ଟୟେ ।
ପ୍ରହ୍ଲାଦଃ ସ୍ତୌତି ସଦ୍‌ପଦ୍ୟୈର୍ଦ୍ୱିଚତ୍ୱାରିଂଶତା ହରିମ୍ ॥ (ସ୍ୱାମୀ)

ରଜୁତା ଆସ୍ତିକ୍ୟ ସନ୍ତୋଷ । ବିରକ୍ତି ମିଶିଣ ଦ୍ୱାଦଶ[1] ।। ୩୯
ଯେ ଏତେ ଗୁଣେ ଯୁତ ଦ୍ୱିଜ । ନ ଭଜେ ବିଷ୍ଣୁପାଦାମ୍ବୁଜ ।। ୪୦
ତାଠାରୁ ଚଣ୍ଡାଳକୁ ମନେ । ଶ୍ରେଷ୍ଠ ମଣେ ମୁଁ ଏ ଭୁବନେ ।। ୪୧
ଯେ ମନ ବାଣୀ ଚେଷ୍ଟା ଧନ । ବିଷ୍ଣୁରେ କଲା ନିବେଦନ ।। ୪୨
ପବିତ୍ର କରେ ସେ ଚଣ୍ଡାଳ । ପ୍ରାଣସହିତେ ନିଜ କୁଳ ।। ୪୩
ବରିଷ୍ଠ ଅଟେ ଗର୍ବ ଯାର । ନିଜ ଆତ୍ମାକୁ ସେ ଭୂସୁର ।। ୪୪
ପବିତ୍ର କରି ନ ପାରଇ । କୁଳ ତାରିବ ସେ ବା କାହିଁ ।। ୪୫
୧୧ ଅଜ୍ଞକ ଅଟଇ ଯେ ଜନ । ତାଠାରୁ ଯେ ପୂଜାବିଧାନ ।। ୪୬
ଏ ପ୍ରଭୁ ଆପଣା ନିମିତ୍ତେ । ଘେନନ୍ତି ନାହିଁ ଏ ଜଗତେ ।। ୪୭
ଯେଣୁ ଏ ନିଜ ଲାଭେ ପୂର୍ଣ୍ଣ । କିବା କରିବେ ପରଧନ ।। ୪୮
ବାରେକ ପୂଜା କରି ମୋତେ । ଏ ପୂଜ୍ୟ ହେଉ ଏ ଜଗତେ ।। ୪୯
ଏହି ଆଶୟରେ ଘେନନ୍ତି । ଯେଣୁ ଏ କୃପାଳୁ ଅଟନ୍ତି ।। ୫୦
କି ଅବା ଯେଉଁ ଯେଉଁ ମାନ । ବିଷ୍ଣୁଙ୍କୁ ଉଦ୍ଦେଶଇ ଜନ ।। ୫୧
ସେ ହୋଇ ଆପଣା ନିମିତ୍ତ । ଯେ ତିଳକାଦି ମୁଖେ କୃତ ।। ୫୨
ପ୍ରତିବିମ୍ବକୁ ସେ ଯେସନ । ପ୍ରତ୍ୟକ୍ଷେ କରଇ ମଣ୍ଡନ ।। ୫୩
୧୨ ଯେଣୁ କରି[2] ଏ ଭଗବାନ । ଭକ୍ତିରେ ହୋଏ ତୋଷମନ ।। ୫୪
ନୀଚ ହେଲେହେଁ ତେଣୁ ମୁହିଁ । ସନ୍ତତେ ନିର୍ବିଶଙ୍କ ହୋଇ ।। ୫୫
ନିଜ ମନୀଷା[3] ଅନୁସାରେ । ଈଶ୍ୱରମହିମାକୁ ଧୀରେ ।। ୫୬
ଗୁଣିମି ସର୍ବପ୍ରଯତ୍ନରେ । ଯେଉଁ ମହିମା ବର୍ଣ୍ଣନରେ ।। ୫୭
ମନୁଷ୍ୟ ପବିତ୍ର ହୁଅଇ । ଅବିଦ୍ୟାଦ୍ୱାରଭୂତ ହୋଇ ।। ୫୮
ସଂସାରମଧ୍ୟକୁ ପ୍ରବେଶ । ହୋଇଣ ଥାଇ ଯେ ପୁରୁଷ ।। ୫୯
୧୩ ସତ୍ତ୍ୱସ୍ୱରୂପ ମୂର୍ତ୍ତି ଯାର । ତୁମ୍ଭେ ଏମନ୍ତ ହେ ଈଶ୍ୱର ।। ୬୦
ଯେ ମନେ[4] ଲଭୁଛନ୍ତି ତ୍ରାସ । ଏ ବ୍ରହ୍ମା ଆଦି ତୁମ୍ଭ ଦାସ ।। ୬୧
ତହିଁରୁ ନୁହନ୍ତି ଏ ଆନ । ବଇର ଭାବରେ ଭଜନ ।। ୬୨
କରନ୍ତି ନାହିଁ ଆତ୍ମପ୍ରାଏ । ଶ୍ରଦ୍ଧାରେ ଭଜନ୍ତି ସଭିଏ ।। ୬୩
ରୁଚିର ଅବତାରମାନ । ତେଣେ ଯେ ବିବିଧ କ୍ରୀଡ଼ନ ।। ୬୪

---

୧ । ଦ୍ୱାଦଶ :- ''ଧର୍ମଶ୍ଚ ସତ୍ୟଂ ଚ ଦମସ୍ତପଶ୍ଚ ଅମାତ୍ସର୍ଯ୍ୟଂ ହ୍ରୀସ୍ତିତିକ୍ଷାନସୂୟା ।
ଯଜ୍ଞଶ୍ଚ ଦାନଂ ଚ ଧୃତିଃ ଶ୍ରୁତଂ ଚ ବ୍ରତାନି ବୈ ଦ୍ୱାଦଶ ବ୍ରାହ୍ମଣସ୍ୟ ।।''
(ମହାଭାରତ)

''ଶମୋ ଦମସ୍ତପଃ ଶୌଚଂ କ୍ଷାନ୍ତ୍ୟାର୍ଜ୍ଜବ-ବିରକ୍ତତାଃ ।।
(ଜ୍ଞାନ) ମୌନବିଜ୍ଞାନସଂତୋଷାଃ ସତ୍ୟାସ୍ତିକ୍ୟେ ଦ୍ୱିଷଡ୍ ଗୁଣାଃ ।।''

୨. ଯେଉଁ ନ୍ୟାୟେ । ୩. ଆପଣା ବୁଦ୍ଧି । ୪. ମାନେ ।

ସେମାନେ ସମସ୍ତେ ତୁମ୍ଭର । କ୍ଷେମଂ[1] ନିମିତ୍ତେ ଏ ବିଶ୍ୱର[2] ॥ ୬୫
ସୁଖସମୃଦ୍ଧିଅର୍ଥେ ହୋଇ । ଭୟନିମିତ୍ତରେ ନୁହଇ ॥ ୬୬
୧୪ ସେ ଘେନି କ୍ରୋଧକୁ ସଂହର । ସନ୍ତୋଷ ଅର୍ଥେ ସାଧୁଙ୍କର ॥ ୬୭
କଲ ତ ଅସୁରବିନାଶ । ହୋଇଲା ସାଧୁଜନତୋଷ ॥ ୬୮
ବୃଶ୍ଚିକ ବିଷଧର ଯେହି । ପରକୁ ଉପତାପ ଦେଇ ॥ ୬୯
ତାକୁ ନାଶନ୍ତେ ଆନ ଜନ । ଅଶୁଭ ହୁଅଇ ନିଧନ ॥ ୭୦
ଏମନ୍ତ ଜାଣି ସାଧୁ ନର । ହରଷ ଲଭଇ ମନର ॥ ୭୧
ବହୁତଲୋକସୁଖପାଇଁ । ଏ କ୍ରୋଧ ନ ଛାଡ଼ିବି ମୁହିଁ ॥ ୭୨
ଏମନ୍ତ ବିଚାରେ କି ମନେ । ସୁଖୀ ହେଲେଣି ସର୍ବଜନେ ॥ ୭୩
ହେବାକୁ ତୁମ୍ଭ କ୍ରୋଧଶାନ୍ତି । ପ୍ରତୀକ୍ଷା କରିଣ ଅଛନ୍ତି ॥ ୭୪
ଭୟନିବୃତ୍ତିନିମିତ୍ତରେ । ଆହେ ନୃସିଂହ ! ମାନସରେ ॥ ୭୫
ତୁମ୍ଭର ରୂପକୁ ସ୍ମରଣ । କରନ୍ତି ଲୋକମାନେ ପୁଣ ॥ ୭୬
୧୫ ଆହେ ଅଜିତ ! ଭୟଙ୍କର । ଅଟଇ ଯେ ରୂପ ତୁମ୍ଭର ॥ ୭୭
ବଦନ ଜିହ୍ୱା ଯେ ବା ଆନ । ଅର୍କସଦୃଶ ନେତ୍ରମାନ ॥ ୭୮
ଭ୍ରୂକୁଟୀ ଆଟୋପ ଆବର । ଯେ ଦଂଷ୍ଟ୍ରାମାନେ ଉଗ୍ରତର ॥ ୭୯
ଏ ଅତି ଭୟାନକ ହୋଇ । ଅଛନ୍ତି ଯେଉଁରୂପେ ରହି ॥ ୮୦
ଦାନବଅନ୍ତ[3] ମୟ ହୋଇ । ଅଛନ୍ତି ମାଳାମାନେ ଯହିଁ ॥ ୮୧
ରକତମାନଙ୍କେ ସଂଯୁତ । କେସରମାନେ ଯହିଁ ସ୍ଥିତ ॥ ୮୨
ଶଙ୍କୁର ପ୍ରାୟ ସ୍ତବ୍ଧ ହୋଇ । ଅଛନ୍ତି ଯହିଁ କର୍ଣ୍ଣଦୁଇ ॥ ୮୩
ଯାହା ସକାଶୁ ଦିଗଦନ୍ତୀ । ଗର୍ଜନେ ଭୟ ପାଇଛନ୍ତି ॥ ୮୪
ଯହିଁରେ ଅରିବିଦାରଣ । ନଖାଗ୍ରମାନେ ଛନ୍ତି ପୁଣ ॥ ୮୫
ଏମନ୍ତ ତୁମ୍ଭ ରୂପ ଯେହି । ତହୁଁ ମୁଁ ଭୟ ପାଉ ନାହିଁ ॥ ୮୬
୧୬ ଦୁଃସହ ଅଟେ ଉଗ୍ରତର । ଯେ ଦୁଃଖ ସଂସାରଚକ୍ରର ॥ ୮୭
ତହିଁରୁ ଅଛି ତ୍ରସ୍ତ ହୋଇ । ହିଂସ୍ର ଅଟଇ ପ୍ରାଣୀ ଯେହି ॥ ୮୮
ପଡ଼ିଛି ତାହାଙ୍କ ମଧ୍ୟରେ । ବଦ୍ଧ ହୋଇଣ ସ୍ୱକର୍ମରେ ॥ ୮୯
ହେ ଦୀନବତ୍ସଳ ! ଶରଣ । ଯେ ଅପବର୍ଗରୂପ ପୁଣ ॥ ୯୦
ହେ ପ୍ରଭୋ ! ଅତିମନୋହର । ସେ ପାଦମୂଳକୁ ତୁମ୍ଭର ॥ ୯୧
କେଉଁ ଦିନରେ ତୁମ୍ଭେ ମୋତେ । ଡାକିବ ଅତିତୋଷଚିତ୍ତେ ॥ ୯୨
୧୭ ପ୍ରିୟଜନରେ ସେ ବିୟୋଗ । ଅପ୍ରିୟଜନରେ ସଂଯୋଗ ॥ ୯୩
ତେଣେ ଯେ ଅଛି ଜାତ ହୋଇ । ସେ ଶୋକ ଅନଳରେ ମୁହିଁ ॥ ୯୪
ସକଳ ଯୋନିମାନଙ୍କରେ । ଦଗ୍ଧ ହେଉଛି ଜଗତରେ ॥ ୯୫

---

୧. କ୍ଷମାଂ (ଟୁଂ କ୍ଷେମାୟ) । ୨. ବିଚାର (ଟୁଂ ଅସ୍ୟ ବିଶ୍ୱସ୍ୟ) । ୩. ଅନ୍ତ = ଅନ୍ତ୍ର ।

ଦୁଃଖଔଷଧ ପ୍ରତିକାର । ସେ ଅଟେ ଦୁଃଖର ଆକାର ॥ ୯୬
ଶରୀରଅଭିମାନେ ଯେଣୁ । ମୋହିତ ହୋଇଅଛି ତେଣୁ ॥ ୯୭
ହେ ପ୍ରଭୋ ! ନିସ୍ତାର ଉପାୟ । ଯେ ତୁମ୍ଭ ଦାସ୍ୟଯୋଗ କହ ॥ ୯୮
୧୮ ପ୍ରିୟ ସୁହୃଦ ତୁମ୍ଭେ ମୋର । ପରମ ଦେବତା ଆବର ॥ ୯୯
ତୁମ୍ଭର ଲୀଳାକଥାମାନ । ବିରଞ୍ଚି କଲା ଯା' ଗାୟନ ॥ ୧୦୦
ଗୁଣନ୍ତେ ସେମାନଙ୍କୁ ମୁହିଁ । ରାଗଆଦିରେ ମୁକ୍ତ ହୋଇ ॥ ୧୦୧
ହେ ନରସିଂହ ! ତତକାଳ । ତରିବି ମହାଦୁଃଖଜାଳ ॥ ୧୦୨
{ ଆଳୟ ପଦଯୁଗ ତୋର । ଅଟଇ ଯେଉଁ ଭକ୍ତଙ୍କର ॥ ୧ }
{ ସେମାନେ ଜ୍ଞାନୀ, ମୁଁ ତାଙ୍କର । ସଙ୍ଗଙ୍କୁ ଲଭନ୍ତେ ଆବର ॥ ୨ }
୧୯ ହେ ନରସିଂହ ! ତାପି ହୋଇ । ଏ ଲୋକେ ଯେଉଁ ଜନ ଥାଇ ॥ ୧୦୩
ଝଟିତି ଦୁଃଖକୁ ତାହାର । ଯେ ବା ବାଞ୍ଛିତ ପ୍ରତିକାର ॥ ୧୦୪
କ୍ଷଣେ ସେ ସୁଖ କରେ ତାଙ୍କୁ । ତୁମ୍ଭେ ଉପେକ୍ଷା କର ଯାଙ୍କୁ ॥ ୧୦୫
ବାଳର ଜନକଜନନୀ । [1]ରକ୍ଷକ ନୁହନ୍ତି ଏ ବେନି ॥ ୧୦୬
ପାଳନ କରନ୍ତେ ସେ ଦୁହେଁ । ଦୁଃଖକୁ ଦେଖି ଶିଶୁଦେହେ ॥ ୧୦୭
ରୋଗୀ ଅଟଇ ଯେ ବା ପୁଣ । ଔଷଧ ନୋହେ ତା' ଶରଣ ॥ ୧୦୮
ଔଷଧ କଲେହେଁ ଲୋକର । ଯେଣୁ ସମ୍ଭବଇ ସଂହାର ॥ ୧୦୯
ସମୁଦ୍ରେ ବୁଡୁଥାଇ ଯେହି । ନାବ ଶରଣ ତାର ନୋହି ॥ ୧୧୦
ଯେଣୁ ସେ ନାବସହିତରେ । ନିମଗ୍ନ ହୋଏ ଜଳଧିରେ ॥ ୧୧୧
୨୦ ଅପର ପିତୃଆଦି ନର । ପର ବ୍ରହ୍ମାଦି ଯେ ବା ସୁର ॥ ୧୧୨
ସେ କର୍ତ୍ତାରୂପୀ ହୋଇ ଥାଇ । ସତ୍ତ୍ୱାଦି ପ୍ରକୃତି ଅଟଇ ॥ ୧୧୩
ଯେବଣ ଅଧିକରଣରେ । ଯେଉଁ ନିମିତ୍ତୁଁ ଯେ କାଳରେ ॥ ୧୧୪
ଯେବଣ କରଣ ହେତୁରେ । ଯେଉଁ କର୍ତ୍ତାର ପ୍ରେରଣରେ ॥ ୧୧୫
ଯାହାର ସମ୍ବନ୍ଧୀ ବିଖ୍ୟାତ । ଯେବଣ ଅପାଦାନୁଁ ଚ୍ୟୁତ ॥ ୧୧୬
ଯେଉଁ ସଂପ୍ରଦାନକୁ ଦେଇ । ଯେ ବା ବାଞ୍ଛିତ କର୍ମ ହୋଇ ॥ ୧୧୭
ଯେ କର୍ତ୍ତା ଯେଉଁ ପରକାରେ । କର୍ମକୁ ଉତ୍ପାଦନ କରେ ॥ ୧୧୮
ଅଥବା କରେ ରୂପାନ୍ତର । ସେ ସର୍ବ ସ୍ୱରୂପ ତୁମ୍ଭର ॥ ୧୧୯
୨୧ ହେ ଅଜ ! ଯେ ତୁମ୍ଭର ଅଂଶ । ବିଖ୍ୟାତ ଅଟଇ ପୁରୁଷ ॥ ୧୨୦
ଈକ୍ଷଣଅନୁଗ୍ରହେ ତାର । ମନ ପ୍ରଧାନ ଅଟେ ଯାର ॥ ୧୨୧
ମାୟା ସେ ଲିଙ୍ଗକୁ ସର୍ଜଇ । କାଳକ୍ଷୋଭିତଗୁଣ ଯେହି ॥ ୧୨୨
ସେ ମନ କର୍ତ୍ତାରୂପ ବଳୀ । ବେଦଉଦିତ[2] କର୍ମଶାଳୀ ॥ ୧୨୩

---

୧. ଅଜୀଗର୍ତ୍ତାଦିଙ୍କଠାରେ ମାତାପିତା ମଧ୍ୟ ପୁତ୍ରକୁ ବଧ କରିବାର ଦେଖାଯାଏ ।

୨. ଉଦିତ = ଉକ୍ତ ।

ଜୀବ-ଅବିଦ୍ୟା ଅଟେ ଯେହି । ଜୀବର ଭୋଗ-ଅର୍ଥେ ସେହି ॥ ୧୨୪
ଷୋଡ଼ଶ ବିକାର ଯହିଁରେ । ଅର୍ପିତ କରିଛି ପୂର୍ବରେ ॥ ୧୨୫
ଯେ ମନ ଏମନ୍ତ ଅଟଇ । ସଂସାରଚକ୍ରରୂପ ହୋଇ ॥ ୧୨୬
ତାହା କେ ଲଙ୍ଘି ପାରେ ଜନ । ଛାଡ଼ନ୍ତେ ତୁମ୍ଭର ଭଜନ ॥ ୧୨୭
୨୨ ଜ୍ଞାନଶକ୍ତିରେ ବୁଦ୍ଧିଗୁଣ । ନିତ୍ୟେ ଜିଣିଛ ତୁମ୍ଭେ ପୁଣ ॥ ୧୨୮
ସଂସାରନିମିତ୍ତେ ବହୁତ । କର ମାୟାକୁ ନିଯୋଜିତ ॥ ୧୨୯
ଯେ କାର୍ଯ୍ୟ ଯେ ଅବା ସାଧନ । ତାଙ୍କର ଯେବା ଶକ୍ତିମାନ ॥ ୧୩୦
ତା' ସର୍ବ କରିଅଛ ବଶ । ସେ ତୁମ୍ଭେ ଈଶ୍ୱର ପୁରୁଷ ॥ ୧୩୧
ସଂସାରଚକ୍ର ବଳିୟାର । ଷୋଡ଼ଶ ବିକାର ଯା' ଅର ॥ ୧୩୨
ଜୀବ-ଅବିଦ୍ୟା ତହିଁ ମୋତେ । ପକାଇ ପେଡ଼ୁଛି ସଂତତେ ॥ ୧୩୩
ଇକ୍ଷୁଦଣ୍ଡକୁ ଯେହ୍ନେ ଜନ । ପେଡ଼ଇ ହୋଇ ସଯତନ ॥ ୧୩୪
ତୁମ୍ଭର ସମୀପକୁ ମୋତେ । ହେ ନାଥ ! ନିଅ ହେ ତୁରିତେ ॥ ୧୩୫
୨୩ ହେ ପ୍ରଭୋ ! ଅମରଭୁବନେ । ଯେ ସର୍ବ ଦିଗପାଳମାନେ ॥ ୧୩୬
ତାଙ୍କର ଉଭବ ଆୟୁଷ । ଯେ ଅବା ସଂପତ୍ତି ପ୍ରକାଶ ॥ ୧୩୭
ସେମାନ ଦେଖିଅଛି ମୁହିଁ । ଏ ଲୋକ ଯାହାକୁ ଇଚ୍ଛଇ ॥ ୧୩୮
ସେ ଆମ୍ଭ ପିତାକୋପହାସ । ବିକୃତଭ୍ରୂଭଙ୍ଗେ ବିନାଶ ॥ ୧୩୯
ଏମନ୍ତ ପ୍ରତାପୀ ଯେ ତାତ । ତାହାକୁ ତୁମ୍ଭେ କଲ ହତ ॥ ୧୪୦
୨୪ ସେ ଘେନି ପ୍ରାଣୀଙ୍କର ଯେତେ । ଭୋଗ ଅଛନ୍ତି ଏ ଜଗତେ ॥ ୧୪୧
ଆୟୁଷ ବିଭବ ସଂପତ୍ତି । ଇନ୍ଦ୍ରିୟଭୋଗ ଯେ ଅଟନ୍ତି ॥ ୧୪୨
ବ୍ରହ୍ମାଙ୍କ ଭୋଗଯାଏ ମୁହିଁ । କିଛି ହିଁ ମନେ ବାଞ୍ଛୁ ନାହିଁ ॥ ୧୪୩
ବିକ୍ରମ ଅତିଶୟ ଯାର । ସେ କାଳରୂପରେ ତୁମ୍ଭର ॥ ୧୪୪
ସେ ସର୍ବ ହୁଅନ୍ତି ବିନାଶ । ଏ ଘେନି ତୁମ୍ଭର ଯେ ଦାସ ॥ ୧୪୫
ତାହାଙ୍କ ପାରୁଶକୁ ମୋତେ । ନିଅ ମୁଁ ମାଗୁଅଛି ଏତେ ॥ ୧୪୬
୨୫ ଶ୍ରବଣମାତ୍ରସୁଖ ଯହିଁ । ମୃଗତୃଷ୍ଣାର ପ୍ରାୟ ହୋଇ ॥ ୧୪୭
ଯେ ମିଥ୍ୟାସ୍ୱରୂପ ଅଟନ୍ତି । ସେ ଭୂତିମାନେ କାହିଁ ଛନ୍ତି ॥ ୧୪୮
ସକଳରୋଗଜନ୍ମ-ଘର । କାହିଁ ଅବା ଏ କଳେବର ॥ ୧୪୯
ଯଦ୍ୟପି ମନୁଷ୍ୟ ଏମନ୍ତ । ଜାଣଇଁ ନୋହେ ବିରକତ ॥ ୧୫୦
ଦୁଃସାଧ୍ୟ ମଧୁତୁଲ୍ୟ ହୋଇ । ଯେ ସୁଖଲବ ଉପୁଜଇ ॥ ୧୫୧
କାମ ଅନଳକୁ ସେ ଦ୍ୱାରେ । ଶମନ କରନ୍ତେ ସତ୍ୱରେ ॥ ୧୫୨
୨୬ ଅଧିକ ତମୋଗୁଣ ଯହିଁ । ସେ ଦୈତ୍ୟକୁଳେ ଜାତ ମୁହିଁ ॥ ୧୫୩
ରଜୋଗୁଣରୁ ଜନ୍ମ ଯାର । ଏମନ୍ତ ଅଟଇ ଅସୁର ॥ ୧୫୪
ମୁଁ କାହିଁ ତୁମ୍ଭ କୃପା କାହିଁ । ବ୍ରହ୍ମା ଶଙ୍କର ରମା ଯେହି ॥ ୧୫୫
ତାହାଙ୍କ ଶିରରେ ଅର୍ପଣ । ଯା କରି ନାହିଁ ପୂର୍ବେ ପୁଣ ॥ ୧୫୬

ପଦ୍ମର ପ୍ରାୟ ତାପହର । ଅଟଇ ଯେ ତୁମ୍ଭର କର ।। ୧୫୭
ପ୍ରସାଦରୂପେ ମୋର ଶିରେ । ଅର୍ପଣ କଲ ତା' କୃପାରେ ।। ୧୫୮
୨୭ ଏ ବ୍ରହ୍ମା ଆଦି ଦେବ ବର । ନୀଚ ଅଟଇ ଏ ଅସୁର ।। ୧୫୯
ଏମନ୍ତ ପରାବର ମତି । ପ୍ରାକୃତ ଲୋକର ଉପୁତ୍ତି ।। ୧୬୦
ସେ ରୂପେ ନୁହଇ ତୁମ୍ଭର । ଯେ ତୁମ୍ଭେ ଆତ୍ମା ଜଗତର ।। ୧୬୧
ମିତ୍ର ହିଁ ଅଟ ଜଗତର । ସେବାରେ ପ୍ରସାଦ ତୁମ୍ଭର ।। ୧୬୨
ସେବାକୁ ଅନୁରୂପ ହୋଇ । ଧର୍ମାଦି ଉଦେ ହୋଏ ଯହିଁ ।। ୧୬୩
ଅମରବିଟପୀ[୧] ଯେସନ । ଯାହା ବାଞ୍ଛଇ ଦାସ ଜନ ।। ୧୬୪
ସେ ଅନୁସାରେ ଫଳ ଦେଇ । ଉଚ୍ଚ-ନୀଚତ୍ୱ ନ ଘେନଇଁ ।। ୧୬୫
୨୮ କାମକୁ ସକଳ ଦିଗରେ । କାମନା ଯେଉଁ ଲୋକ କରେ ।। ୧୬୬
ସଂସାର-ଅହିଯୁତ କୂପେ । ପଡ଼ିଛି ସେ ଲୋକ ସ୍ୱପାପେ ।। ୧୬୭
ତାହାକୁ ଅନୁଗତ ହୋଇ । ପଡ଼ନ୍ତେ ପ୍ରସଙ୍ଗରେ ମୁହିଁ ।। ୧୬୮
ତୁମ୍ଭର ପ୍ରାୟ ହେ ଈଶ୍ୱର । ପୂର୍ବେ ନାରଦ ମୁନିବର ।। ୧୬୯
କରିଣ ଆପଣାର ମୋତେ । ଉଦ୍ଧାର କଲେ ଏ ଜଗତେ ।। ୧୭୦
ସେହି ମୁଁ ତୁମ୍ଭ ଭୃତ୍ୟସେବା । ଛାଡ଼ିବି କିରୂପରେ ଅବା ।। ୧୭୧
୨୯ ମୋ ପ୍ରାଣରକ୍ଷଣ, ପିତାର । ଯେ ବଧ ଅଟେ ହେ ଈଶ୍ୱର ।। ୧୭୨
ସ୍ୱଭୃତ୍ୟମୁନିଜନବାଣୀ । ସତ୍ୟ କରିବାକୁ ସେ ପୁଣି ।। ୧୭୩
ଅଯୁକ୍ତ ପୁତ୍ରର ନିଧନ । କରିବା ଅର୍ଥେ କରି ମନ ।। ୧୭୪
ଖଡ଼ଗ ଧରି ନିଜ କର । ଯାହା ବୋଇଲା ପିତା ମୋର ।। ୧୭୫
ମୋଠାରୁ ଆନ ଯେ ଈଶ୍ୱର । ରଖୁ ତୋତେ, କାଟିବି ଶିର ।। ୧୭୬
୩୦ ଏକ ହୋଇଣ ଏ ଜଗତ । ତୁମ୍ଭେ ସେ ହୋଇଛ ବିଦିତ ।। ୧୭୭
ଯେଣୁ ଏ ଜଗତଆଦ୍ୟରେ । ଅନ୍ତରେ ସନ୍‌ମାତ୍ରଭାବରେ ।। ୧୭୮
କାରଣରୂପରେ ବର୍ତ୍ତିଛ । ଏଣୁ ମଧ୍ୟରେ ତୁମ୍ଭେ ଅଛ ।। ୧୭୯
ଜଗତ ସର୍ଜିଣ ମାୟାରେ । ପ୍ରବେଶ ହୋଇଛ ତହିଁରେ ।। ୧୮୦
[୨]ରକ୍ଷକ ନାଶକ ଆକାରେ । ପ୍ରତ୍ୟେ ହେଉଛ ସେ ଗୁଣରେ ।। ୧୮୧
୩୧ କାର୍ଯ୍ୟକାରଣରୂପ ହୋଇ । ଏ ଯେଉଁ ଜଗତ ଦିଶଇ ।। ୧୮୨
ତୁମ୍ଭରୁଁ ନୁହଇ ସେ ଆନ । ତୁମ୍ଭେ ତହିଁରୁ ଅଟ ଭିନ୍ନ ।। ୧୮୩
ଏ ନିଜ ଏ ଅଟଇ ପର । ଏରୂପେ ଯେ ବୁଦ୍ଧି ଲୋକର ।। ୧୮୪
ସେ ବୁଦ୍ଧି ବିଅର୍ଥ ଅଟଇ । ତୁମ୍ଭର ମାୟାରୂପ ସେହି ।। ୧୮୫
ଏ ଜଗତର ଜନ୍ମ ନାଶ । ଯେ ଅବା ସ୍ଥିତି ଯେ ପ୍ରକାଶ ।। ୧୮୬
ସେମାନ ଏହି ପରକାରେ । ବିଦିତ ହୋଇଛି ସଂସାରେ ।। ୧୮୭

---

୧. ଅମରବିଟପୀ = ସୁରତରୁ, କଳ୍ପବୃକ୍ଷ ।
୨. "ନିର୍ଗୁଣୋଽପି ହ୍ୟଜୋଽବ୍ୟକ୍ତୋ ଭଗବାନ୍ ପ୍ରକୃତେଃ ପରଃ ।" (ସ୍କନ୍ଦୋପକ୍ରମେ)

ଯେ ବୀଜ ଅଟଇ କାରଣ । ଯେ ତରୁ କାର୍ଯ୍ୟରୂପ ପୁଣ ॥ ୧୮୮
ସେ ପୃଥ୍ୱୀମୟ ବୀଜାକାର । ସେ ଭୂତମୟ ସୂକ୍ଷ୍ମ ଆର ॥ ୧୮୯
୩୨ ନିଜ ଆତ୍ମାରେ ଏ ଜଗତ । ଆତ୍ମାରେ କରିଣ ଅର୍ପିତ ॥ ୧୯୦
ପ୍ରଳୟ ସଲିଳ ମଧ୍ୟରେ । ଶୟନ କର ଆନନ୍ଦରେ ॥ ୧୯୧
ସ୍ୱସୁଖ ଅନୁଭବ ଯାର । ଚେଷ୍ଟା ହିଁ ନ ଥାଇ ଆବର ॥ ୧୯୨
ଯୋଗରେ ମୁଦ୍ରିତ ନୟନ । ଆତ୍ମାରେ ନିଦ୍ରା କର ପାନ[୧] ॥ ୧୯୩
ଅବସ୍ଥାତିନିରୁଁ ଯେ ଆନ । ତହିଁରେ ଅଟେ ତୁମ୍ଭ ସ୍ଥାନ ॥ ୧୯୪
ସୁଷୁପ୍ତିକାଳରେ ଯେସନ । ତମକୁ ନ କର ଯୋଜନ ॥ ୧୯୫
ଜାଗ୍ରତସ୍ୱପ୍ନ କାଳ ପ୍ରାୟ । ନିଯୁକ୍ତ ନ କର ବିଷୟ ॥ ୧୯୬
୩୩ ଯେ ସତ୍ତ୍ୱଆଦି ତିନି ଗୁଣ । ପ୍ରକୃତିଧର୍ମରୂପ ପୁଣ ॥ ୧୯୭
ସ୍ୱକାଳଶକ୍ତିରେ ସେମାନ । ଯେ ତୁମ୍ଭେ କରିଛ ଯୋଜନ ॥ ୧୯୮
ଯେ ତୁମ୍ଭେ ଅଶେଷ ଆକାର । ଏ ବିଶ୍ୱ ସ୍ୱରୂପ ତୁମ୍ଭର ॥ ୧୯୯
ଅନନ୍ତଶୟନରୁ ଜଳେ । ସମାଧି ଛାଡ଼ିଲ ଯେ କାଳେ ॥ ୨୦୦
ତୁମ୍ଭର ନାଭିରୁ ଉତ୍ପନ୍ନ । ହୋଇଲା ମହତ ନଳିନ ॥ ୨୦୧
ଯେବଣ ପଦ୍ମ ତୁମ୍ଭଠାରେ । ଗୁପ୍ତ ହୋଇଥିଲା ପୂର୍ବରେ ॥ ୨୦୨
ଯେସନେ ସୂକ୍ଷ୍ମ ବୀଜ ଥାଇ । ତହିଁରୁ ମହାବଟ ହୋଇ ॥ ୨୦୩
୩୪ ସେ ପଦ୍ମୁଁ ବ୍ରହ୍ମା ଜାତ ହୋଇ । ଆନକୁ ନ ଦେଖନ୍ତେ ତହିଁ ॥ ୨୦୪
ଯେ ତୁମ୍ଭେ କାରଣରୂପରେ । ପ୍ରକାଶ ହୋଇଛ ଆତ୍ମାରେ ॥ ୨୦୫
ଶତ ବରଷ ପରିଯନ୍ତେ । ତୁମ୍ଭଙ୍କୁ ବାହାରେ ଖୋଜନ୍ତେ ॥ ୨୦୬
ବୁଡ଼ନ୍ତେ ସଲିଳମଧ୍ୟରେ । ଖୋଜି ନ ଲଭିଲା ସତ୍ୱରେ[୨] ॥ ୨୦୭
ଯେବେ ଅଙ୍କୁର ଜାତ ହୋଇ । ତହିଁ କିରୂପେ ବୀଜ ପାଇ ॥ ୨୦୮
୩୫ ସେ ଅତିବିସ୍ମିତ ହୋଇଲା । ସେହି ପଦ୍ମକୁ ଆଶ୍ରେ କଲା ॥ ୨୦୯
ତୀବ୍ର ତପସ୍ୟା ଧ୍ୟାନ ବଳେ । ମାନସ ଶୁଦ୍ଧ ହେଲା କାଳେ ॥ ୨୧୦
ଭୂତ-ଇନ୍ଦ୍ରିୟାଶୟମୟ । ଯେ ଆତ୍ମା ଅଟଇ ଅବ୍ୟୟ ॥ ୨୧୧
ତୁମ୍ଭଙ୍କୁ ଦେଖିଲା ତହିଁରେ । ଗନ୍ଧକୁ ଯେସନେ ଭୂମିରେ ॥ ୨୧୨
୩୬ ଅପରିମିତ ଏ ପ୍ରକାରେ । ବଦନ ଚରଣ ଯହିଁରେ ॥ ୨୧୩
ଶିର, ନାସିକା, ଉରୁ, କର । କର୍ଣ୍ଣ ନୟନ ଅଳଙ୍କାର ॥ ୨୧୪
ଆୟୁଧମାନେ ଯେ ଇତର । ତେଣେ ଯୁତ ଯେ କଳେବର ॥ ୨୧୫
ଯା' ପାଦ ଆଦି ଅଙ୍ଗମାନ । ପାତାଳ ଆଦିରେ ରଚନ ॥ ୨୧୬
ମାୟାପ୍ରଧାନ ଉରୁତର । ସେ ମହାପୁରୁଷ ଆକାର ॥ ୨୧୭
ଦେଖିଣ ବ୍ରହ୍ମା ସେ କାଳରେ । ହରଷ ଲଭିଲା ମନରେ ॥ ୨୧୮

୧. ପାନ = ନିରାସ ।  ୨. ତତ୍ତ୍ୱରେ ।

୩୭ ହୟର ପ୍ରାୟ ଯହିଁ ଶିର । ଧରନ୍ତେ ତୁମ୍ଭେ ସେ ଆକାର ।। ୨୧୯
ମଧୁ କୈଟଭ ନାମ ହୋଇ । ଯେ ରଜତମରୂପୀ ଦୁଇ ।। ୨୨୦
ସେ ଦେବଦ୍ରୋହୀ ଅତିବଳ । ତାହାଙ୍କୁ ମାରି ତତକାଳ ।। ୨୨୧
ସେ ନେଇଥିବା[1] ଦେବଗଣ । କଲେ ସେ ବ୍ରହ୍ମାଙ୍କୁ ଅର୍ପଣ ।। ୨୨୨
ଯେ ସତ୍ତ୍ୱଗୁଣ ସେ ତୁମ୍ଭର । ଅଟଇ ପ୍ରିୟ କଳେବର ।। ୨୨୩
୩୮ ଏମନ୍ତେ ତିର୍ଯ୍ୟକ[2], ମନୁଷ୍ୟ । ଋଷି, ଦେବତା, ଯେବା ଝଷ[3] ।। ୨୨୪
ସେ ଅବତାରମାନଙ୍କରେ । ଲୋକଙ୍କୁ ପାଳ ନିରନ୍ତରେ ।। ୨୨୫
ଜଗତରିପୁ ଯେ ଅସୁର । କର ସେମାନଙ୍କୁ ସଂହାର ।। ୨୨୬
ହେ ମହାପୁରୁଷ ! ଯେ ଧର୍ମ । ପ୍ରବର୍ତ୍ତେ ଯୁଗଅନୁକ୍ରମ ।। ୨୨୭
ତାହାକୁ କରସି ପାଳନ । ଯେଣୁ କଳିରେ ହେଲ ଛନ୍ନ ।। ୨୨୮
ଏହି ନ୍ୟାୟରୁ ତୁମ୍ଭେ ସେହି । ତ୍ରିଯୁଗ ନାମ ଅଛ ବହି ।। ୨୨୯
୩୯ ହେ ବଇକୁଣ୍ଠ ଅଧୀଶ୍ୱର । ଦୁରିତ ଦୁଷ୍ଟ ଯେ ଦୁର୍ଦ୍ଧର ।। ୨୩୦
ହରଷ-ଶୋକ-ଭୟେ ଆର୍ତ୍ତ । ଅସାଧୁ କାମରେ ପ୍ରମତ୍ତ ।। ୨୩୧
ଏମନ୍ତ ମନ ଯେ ମୋହର । ତହିଁରେ ତତ୍ତ୍ୱକୁ ତୁମ୍ଭର ।। ୨୩୨
ବିଚାର କରିବି କେମନ୍ତେ । ଯେ ଦୀନ ଅଟେ ମୁଁ ସନ୍ତତେ ।। ୨୩୩
୪୦ ତୃଷ୍ଣାରେ ନୋହେ ଯେ ବର୍ଜିତ । ଏମନ୍ତ ଜିହ୍ୱା ହେ ଅଚ୍ୟୁତ ।। ୨୩୪
ମଧୁର ଆଦି ରସ ଯହିଁ । ତହିଁକି ମୋତେ ଓଟାରଇ ।। ୨୩୫
ଶିଶ୍ନ ଓଟାରେ ଆନଦିଗେ । ଚର୍ମ ହିଁ ଆନ ଦିଗଭାଗେ ।। ୨୩୬
ଉଦର ଆହାରକୁ ପୁଣ । କେହୁଣି କଥାକୁ ଶ୍ରବଣ ।। ୨୩୭
ନାସିକା ନିଅଇ ଗନ୍ଧକୁ । ଚଞ୍ଚଳ ଲୋଚନ ରୂପକୁ ।। ୨୩୮
କର୍ମଇନ୍ଦ୍ରିୟମାନେ ଥାନ୍ତି । ଯେ ଯାହା ଦିଗକୁ ନିଅନ୍ତି ।। ୨୩୯
ବହୁତ ସପତ୍ନୀ ଯେସନେ । ଗୃହପତିକି ଭିନ୍ନେ ଭିନ୍ନେ ।। ୨୪୦
ଯେ ଯାହା ସୁଖ ବାଞ୍ଛା କରି । ବଳେହେଁ ନିଅନ୍ତି ଓଟାରି ।। ୨୪୧
୪୧ କେବଳ ଏକ ହୋଇ ମୁହିଁ । କଷ୍ଟଦଶାକୁ ଲଭି ନାହିଁ ।। ୨୪୨
ସଂସାରବଇତରଣୀରେ । ଏରୂପେ ପଡ଼ି ସ୍ୱକର୍ମରେ ।। ୨୪୩
ଅନ୍ୟୋଽନ୍ୟ ଜନ୍ମ ମୃତ୍ୟୁ ଦୁଇ । ଅଶନେ ଅତି ଭୀତ ଯେହି ।। ୨୪୪
ସ୍ୱଜନେ ପରଜନେ ଯାର । ମୈତ୍ର ବଇର ନିରନ୍ତର ।। ୨୪୫
ଏମନ୍ତ ମୂଢ଼ ଯେଉଁ ଜନ । ତାକୁ କରନ୍ତେ ବିଲୋକନ ।। ୨୪୬
ସେ ଭବନଦୀର ଯେ ପାର । ତହିଁରେ ଯେ ତୁମ୍ଭେ ବିହର ।। ୨୪୭
ଏ ଅତି କଷ୍ଟ ବୋଲି ଜାଣି । ତାହାଙ୍କୁ ଦୟା କରି ପୁଣି ।। ୨୪୮
ଲୋକଙ୍କୁ ସେ ନଦୀ ତରାଇ । ପାଳନା କର ଆଜ ଥାଇ ।। ୨୪୯

---

୧. ନେଇଥିଲା । ୨. ତିର୍ଯ୍ୟକ = ପଶୁପକ୍ଷୀ, ବୃକ୍ଷଇତା, କୀଟପତଙ୍ଗାଦି । ୩. ଝଷ = ମାଛ ।

୪୨ ହେ ବିଶ୍ୱଗୁରୁ ! ଭଗବାନ । ସଂସାରେ ଯେତେ ଛନ୍ତି ଜନ ।। ୨୫୦
ଉତ୍ତାରଣରେ ତାହାଙ୍କର । [1]କି ଅବା ପ୍ରୟାସ ତୁମ୍ଭର ।। ୨୫୧
ଏ ବିଶ୍ୱଜନମ, ପାଳନ । ନାଶକୁ ଯେ ତୁମ୍ଭେ ନିଦାନ ।। ୨୫୨
ହେ ଆର୍ତ୍ତବନ୍ଧୁ ! ମୂଢ଼ଠାରେ । ମହତ ଅନୁଗ୍ରହ କରେ ।। ୨୫୩
ଯେ ବା ତୁମ୍ଭର ପ୍ରିୟଜନ । ତାହାଙ୍କୁ କରନ୍ତେ ସେବନ ।। ୨୫୪
ସେ ନଦୀ ଉତ୍ତାରଣେ ଆର । କିବା ପ୍ରୟୋଜନ ଆମ୍ଭର ।। ୨୫୫
୪୩ ତୁମ୍ଭର ବୀର୍ଯ୍ୟମାନଙ୍କର । ଯେବା ଗାୟନ ହେ ଈଶ୍ୱର ।। ୨୫୬
ସେହୁ ଅଟଇ ମହାମୃତ । ତହିଁ ନିମଗ୍ନ ମୋର ଚିତ୍ତ ।। ୨୫୭
ଦୁର୍ଲଙ୍ଘ୍ୟ ବୈତରଣୀ ଯେହି । ତହୁଁ ଉଦ୍‌ବେଗ ଲଭୁ ନାହିଁ ।। ୨୫୮
ସେ ମହା ଅମୃତୁଁ ବିରତ । ଯେବଣ ଲୋକଙ୍କର ଚିତ୍ତ ।। ୨୫୯
ଇନ୍ଦ୍ରିୟ-ଅର୍ଥଙ୍କ ନିମିତ୍ତ । ଯେ ମାୟାସୁଖ ଉପସ୍ଥିତ ।। ୨୬୦
ତଦର୍ଥେ କୁଟୁମ୍ବଭାରକୁ । ଯେ ବହିଥାନ୍ତି ସେ ମୂଢ଼ଙ୍କୁ ।। ୨୬୧
କେବଳ କରୁଛି ଶୋଚନ । କିରୂପେ ତରିବେ ସେ ଜନ ।। ୨୬୨
୪୪ ହେ ଦେବ ! ଆପଣା ମୁକତି । କାମନା କରି ଯେ ଅଛନ୍ତି ।। ୨୬୩
ବିଜନ ସ୍ଥାନରେ ମଉନ । ଆଚରନ୍ତି ଯେ ମୁନିଜନ ।। ୨୬୪
ଇତର ଲୋକମାନଙ୍କର । କାର୍ଯ୍ୟରେ ନୁହନ୍ତି ତତ୍ପର ।। ୨୬୫
ଛାଡ଼ି ସେ କୃପଣ[2]ମାନଙ୍କୁ । ଇଚ୍ଛା ନ କରୁଛି ମୋକ୍ଷକୁ ।। ୨୬୬
ମୁକ୍ତିକି ଯେବେ ଇଚ୍ଛା ନାହିଁ । ଆନକୁ ମାଗ କିଛି ଯାଇଁ ।। ୨୬୭
ଏମନ୍ତ ମନେ ନ ବିଚାର । ସଂସାରେ ଭ୍ରମୁଛି ଯେ ନର ।। ୨୬୮
ତୁମ୍ଭର ଠାରୁ[3] ଆନ ହୋଇ । ଶରଣ ତାର ନ ଦେଖଇଁ ।। ୨୬୯
୪୫ ଯେବା ମିଥୁନସୁଖମାନ । ଯେ ଗୃହାଶ୍ରମସୁଖ ଆନ ।। ୨୭୦
ତୁଚ୍ଛ ଅଟନ୍ତି ସେହୁମାନ । କରଯୁଗଳକୁ ଯେସନ ।। ୨୭୧
କଣ୍ଡୂରେ ଘଷନ୍ତେ ଯେମନ୍ତ । ଦୁଃଖରୁ ଦୁଃଖ ହୋଏ ଜାତ ।। ୨୭୨
କାମୁକ ଅଛନ୍ତି ଯେ ନରେ । ଏ ଗୃହଆଶ୍ରମସୁଖରେ ।। ୨୭୩
ତୃପ୍ତିକି କେବେହେଁ ନ ପାନ୍ତି । ବହୁତ ଦୁଃଖ ଭଜିଥାନ୍ତି ।। ୨୭୪
କଣ୍ଡୂ ଯେମନ୍ତ ସହି ନୋହି । ତେମନ୍ତ ଅଟଇ କାମ ହି ।। ୨୭୫
ତୁମ୍ଭ ପ୍ରସାଦୁଁ ଜନ କେହି । ସେ କାମକୁ ହିଁ ଅଛି ସହି ।। ୨୭୬
୪୬ ମଉନ ବ୍ରତ ଶାସ୍ତ୍ର ତପ । ସ୍ୱଧର୍ମ ଅଧ୍ୟୟନ ଜପ ।। ୨୭୭

---

୧. କୋଽତିପ୍ରୟାସ ଇହ ନୋଽସୁରବାଳକାନାଂ
କୋଽନ୍ୱତ୍ର ତେଽଖିଳଗୁରୋ ଭଗବନ୍ ପ୍ରୟାସଃ ।
ପ୍ରହ୍ଲାଦ ଇତ୍ୟଥମୁପମନ୍ତ୍ୟ ମିଥୋ ନରାଣା-
ମୀଶେନ ସଖ୍ୟମକରୋଦପନୀୟ ମାୟାମ୍ ।। (ସ୍ୱାମୀ)

୨. କୃପାର ପାତ୍ର ।

୩. ତହୁଁ ।

| | | | | |
|---|---|---|---|---|
| | ବ୍ୟାଖ୍ୟା[୧] ଏକାନ୍ତସ୍ଥାନେ ବାସ | । ସମାଧି ମିଶିଣ ଏ ଦଶ | ।। | ୨୭୮ |
| | ମୋକ୍ଷକୁ କାରଣ ରୂପରେ | । ଖ୍ୟାତ ଏମାନ[୨] ଜଗତରେ | ।। | ୨୭୯ |
| | ହେ ଅନ୍ତର୍ଯ୍ୟାମୀ ! ଯେଉଁମାନେ | । ଅଜିତେନ୍ଦ୍ରିୟ ଏ ଭୁବନେ | ।। | ୨୮୦ |
| | ଏମାନେ କେବଳ ତାଙ୍କର | । ଜୀବନ-ଉପାୟ-ଆକାର | ।। | ୨୮୧ |
| | ଦାମ୍ଭିକ ଜନଙ୍କର ସେହି | । ବାର୍ତ୍ତା[୩] ହୁଅନ୍ତି, ଅବା ନାହିଁ | ।। | ୨୮୨ |
| ୪୭ | କାର୍ଯ୍ୟକାରଣରୂପ ଯେହି | । ତୁମ୍ଭର ରୂପ ଏହୁ[୪] ଦୁଇ | ।। | ୨୮୩ |
| | ବୀଜ ଅଙ୍କୁର ପ୍ରାୟ ହୋଇ | । ପ୍ରବାହରୂପ ଅଛି ପାଇ | ।। | ୨୮୪ |
| | ଏକଥା ବିବିଧ ପ୍ରକାରେ | । ପ୍ରକାଶ ହୋଇଛି ବେଦରେ | ।। | ୨୮୫ |
| | ଅରୂପ ଅଟ ତୁମ୍ଭେ ଯେଣୁ | । ନ ଲକ୍ଷି ରୂପାନ୍ତର ତେଣୁ | ।। | ୨୮୬ |
| | ଯୁକ୍ତ[୫] ଅଟନ୍ତି ଯେଉଁ ନରେ | । ସେମାନେ ଭକତିଯୋଗରେ | ।। | ୨୮୭ |
| | ଦେଖନ୍ତି କାର୍ଯ୍ୟକାରଣରେ | । ଅଗ୍ନିକି ଯେସନେ ଦାରୁରେ | ।। | ୨୮୮ |
| | ମଥନଯୋଗେ ଦେଖେ ଜନ | । ଆନ ପ୍ରକାରେ ନୋହେ ଜ୍ଞାନ | ।। | ୨୮୯ |
| ୪୮ | ତୁମ୍ଭେ ପୃଥିବୀ ହୁତାଶନ | । ଆକାଶ ସଲିଳ ପବନ | ।। | ୨୯୦ |
| | ପ୍ରାଣ, ଇନ୍ଦ୍ରିୟ, ରୂପ ଆଦି | । ମାନସ ଚିତ୍ତ ଯେ ପ୍ରସିଦ୍ଧି | ।। | ୨୯୧ |
| | ଯେ ସ୍ଥୂଳ, ସୂକ୍ଷ୍ମ ଦେବବର୍ଗ | । ହେ ପ୍ରଭୋ ! ତୁମ୍ଭେ ଅଟ ସର୍ବ | ।। | ୨୯୨ |
| | ମନ, ବଚନେ ଗ୍ରାହ୍ୟ ଯେହି | । ତୁମ୍ଭରୁଁ ଆନ କେହି ନାହିଁ | ।। | ୨୯୩ |
| ୪୯ | ଯେ ଗୁଣ ଅଭିମାନୀ ସୁରେ | । ପୁଣି ଅଭିମାନୀ ଇତରେ | ।। | ୨୯୪ |
| | ମହତ୍ତତ୍ତ୍ୱକୁ ଆଦି ହୋଇ | । ମନ ପ୍ରଭୃତି ଯେ ଅଛଇ | ।। | ୨୯୫ |
| | ସର୍ବଦେବତାମୟ ଗଣ | । ସେ ଆଦିଅନ୍ତବନ୍ତ ପୁଣ | ।। | ୨୯୬ |
| | ତୁମ୍ଭର ଆଦି ଅନ୍ତ ନାହିଁ | । ତୁମ୍ଭଙ୍କୁ ନ ଜାଣନ୍ତି ଏହି | ।। | ୨୯୭ |
| | ହେ ଉରୁଗାୟ ! ବୁଦ୍ଧିମତେ | । ଏକଥା ବିଚାରିଣ ଚିତ୍ତେ | ।। | ୨୯୮ |
| | [୬]ବେଦାଦିପଠନୁଁ ନିବର୍ତ୍ତି | । ତୁମ୍ଭଙ୍କୁ ସେବା କରିଛନ୍ତି | ।। | ୨୯୯ |
| ୫୦ | ହେ ପୂଜ୍ୟତମ ! ଯେ ତୁମ୍ଭର | । ପ୍ରଣାମ, ସ୍ତୁତି, ସେବା ଆର | ।। | ୩୦୦ |
| | ଚରଣ-ଯୁଗଳ-ସ୍ମରଣ | । ସମସ୍ତ-କର୍ମ-ସମର୍ପଣ | ।। | ୩୦୧ |
| | କଥାଶ୍ରବଣ ଯେବା ଆନ | । ଏ ରୂପେ ଷଡ଼ଙ୍ଗ ସେବନ | ।। | ୩୦୨ |
| | ଏହା ବିହୁନେ ତୁମ୍ଭ ଠାର | । ଭକ୍ତିକି ଲଭଇ କି ନର | ।। | ୩୦୩ |
| | ପରମହଂସମାନଙ୍କର | । ଯେ ତୁମ୍ଭେ ପ୍ରାପ୍ୟ ସର୍ବେଶ୍ୱର | ।। | ୩୦୪ |

---

୧. ଦୀକ୍ଷା । ୨. ଏମନ୍ତ । ୩. ବାର୍ତ୍ତା = ଜୀବନୋପାୟ । ୪. ଯେହୁ । ୫. ଯୁକ୍ତ = ସଂଯତ ।

୬. "କିମର୍ଥା ବୟମଧ୍ୟେଷ୍ୟାମହେ ? କିମର୍ଥା ବୟଂ ଯକ୍ଷ୍ୟାମହେ ?"
"ନାନୁଧ୍ୟାୟେଦ୍ ବହୂନ୍ ଶବ୍ଦାନ୍ ବାଚୋ ବିଗ୍ଲାପନଂ ହି ତଦ୍ ।" (ଶ୍ରୁତିଃ)

ଯଦା ତେ ମୋହକଲିଳଂ ବୁଦ୍ଧିର୍ବ୍ୟତିତରିଷ୍ୟତି ।
ତଦା ଗନ୍ତାସି ନିର୍ବେଦଂ ଶ୍ରୋତବ୍ୟସ୍ୟ ଶ୍ରୁତସ୍ୟ ଚ ।। (ଗୀତା)

ଶ୍ରୀନାରଦ ଉବାଚ

୫୧ ଭକ୍ତିରେ ଭକ୍ତ ଏତେ ଗୁଣ । ବର୍ଣ୍ଣିଲା ଯାହାର ସେ ପୁଣ ॥ ୩୦୫
ନିର୍ଗୁଣରୂପୀ ତୋଷ ହେଲେ । କ୍ରୋଧକୁ ପରିତ୍ୟାଗ କଲେ ॥ ୩୦୬
ଯେହୁ ପ୍ରଣତ ଦୈତ୍ୟସୁତ । ତାହାକୁ ବୋଇଲେ ଏମନ୍ତ ॥ ୩୦୭

ଶ୍ରୀଭଗବାନୁବାଚ

୫୨ ହେ ବତ୍ସ ପ୍ରହରାଦ ! ତୋର । ମଙ୍ଗଳ ହେଉ ନିରନ୍ତର ॥ ୩୦୮
ସଂତୋଷ ହେଲି ତୋହଠାର । ଯେ ତୋ' ବାଞ୍ଛିତ ମାଗ ବର ॥ ୩୦୯
ହେ ଦୈତ୍ୟଶ୍ରେଷ୍ଠ ! ପ୍ରାଣୀଙ୍କର । ମୁଁ ସେ କାମନାପୂର୍ଣ୍ଣକରଂ[୧] ॥ ୩୧୦
୫୩ ଆହେ ଆୟୁଷବନ୍ତ ! ଯେହି । ମୋତେ ସନ୍ତୋଷ ନ କରାଇ ॥ ୩୧୧
ତାକୁ ଦୁର୍ଲଭ ମୋ' ଦର୍ଶନ । ମୋତେ ଦେଖିଲେ ପୁଣ ଜନ ॥ ୩୧୨
ଆତ୍ମାକୁ ଅପୂର୍ଣ୍ଣ କାମରେ । ଶୋଚନା କରିଣ ନ ପାରେ ॥ ୩୧୩
୫୪ ଏ ଘେନି ଯେତେ ସାଧୁ ଧୀରେ । ସେ ମୋତେ ସମସ୍ତ ଭାଗରେ ॥ ୩୧୪
ସଂତୋଷ କରାନ୍ତି ଜଗତେ । ଶ୍ରେୟ କାମନା କରି ଚିତ୍ତେ ॥ ୩୧୫
ସର୍ବମଙ୍ଗଳମାନଙ୍କର । ହେ ମହାଭାଗ ! ମୁଁ ଈଶ୍ୱର ॥ ୩୧୬

ଶ୍ରୀନାରଦ ଉବାଚ

୫୫ ଲୋଭ କରନ୍ତି ଯାକୁ ଜନ । ଯାଚିଣ ସେହୁ ବରମାନ ॥ ୩୧୭
ଲୋଭ କରାନ୍ତେ ହେଁ ତହିଁରେ । ଏକାନ୍ତ ଭାବୁଁ ବିଷ୍ଣୁଠାରେ ॥ ୩୧୮
ଅସୁରଶ୍ରେଷ୍ଠ କଦାଚିତେ । ବାଞ୍ଛା ନ କଲା ତାହା ଚିତ୍ତେ ॥ ୩୧୯
କହଇ ବିପ୍ର ଦୀନବନ୍ଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥ ୩୨୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଶ୍ରୀନୃସିଂହସ୍ତବକଂ
ନାମ ନବମୋଽଧ୍ୟାୟଃ ॥

## ଦଶମ ଅଧ୍ୟାୟ

ଦଶମେ ତ୍ୱନୁଗୃହ୍ୟାମୁଂ ଭକ୍ତମନ୍ତର୍ହିତେ ହରୌ ।
ପ୍ରସଙ୍ଗାଦ୍ଧରିଣା ରୁଦ୍ରେ କୃତୋଽନୁଗ୍ରହ ଈର୍ଯ୍ୟତେ ॥ ୧

ଶ୍ରୀନାରଦ ଉବାଚ

୧ ସଂତୋଷ ହୋଇ ଭଗବାନ । ଯାଚିଲେ ଯେଉଁ ବରମାନ ॥ ୧
ଭକ୍ତିଯୋଗକୁ ସେ ସକଳ । ମଣନ୍ତେ ବିଘ୍ନଭାବେ ବାଳ ॥ ୨
ଅଳପ ହସନ୍ତେ ବିଷ୍ଣୁଙ୍କୁ । କହିଲା ଏମନ୍ତ ବାକ୍ୟକୁ ॥ ୩

---
୧. କର୍ତ୍ତା ।

## ଶ୍ରୀପ୍ରହ୍ଲାଦ ଉବାଚ

୨ ବିଷୟମାନଙ୍କରେ ମୁହିଁ । [1]ସ୍ୱଭାବେ ଆସକ୍ତ ଅଟଇ ॥
ବିଷୟସଙ୍ଗୁଁ ଭୟ ପାଇ । ନିର୍ବେଦ ଲଭିଅଛି ମୁହିଁ ॥
ବାଞ୍ଛନ୍ତେ ମୋକ୍ଷ ହୋଇବାକୁ । ଆଶ୍ରୟ କଲି ମୁଁ ତୁମ୍ଭଙ୍କୁ ॥
ମୋତେ ସେ ବରମାନଙ୍କରେ । ଲୋଭ ନ କରାଅ ମନରେ ॥
୩ ଭୃତ୍ୟଲକ୍ଷଣ ଯେ ଅଟଇ । ସେ କଥା ଜାଣିମାର ପାଇଁ ॥
କାମମାନଙ୍କରେ ପ୍ରେରଣ । କଲ ଭୃତ୍ୟକୁ ତୁମ୍ଭେ ପୁଣ ॥
୪ ଗୁରୁ ଅଖିଳ ଜଗତର । କରୁଣାଯୁତ ଆତ୍ମା ଯାର ॥
ଅନ୍ୟଥା ଏମନ୍ତ ପ୍ରଭୁର । କାମରେ ପ୍ରବର୍ତ୍ତାଇବାର ॥
ନ ଘଟେ, ଯେଉଁ କାମମାନ । ହୃଦୟ କରନ୍ତି ବନ୍ଧନ ॥
ଦୁଃଖଦାୟକ ଯେ ସଂସାର । ବୀଜ ଅଟନ୍ତି ଯେ ତାହାର[2] ॥
ଯେ ତୁମ୍ଭଠାରୁ ସୁଖମାନ । ବାଞ୍ଛେ ସେ ନୋହେ ପରିଜନ ॥
ସେ ଲୋକ ବଣିକ ଅଟଇ । ଯେଣୁ ସେ ଲାଭକୁ ଇଚ୍ଛଇ ॥
୫ ଯେ ସ୍ୱାମୀଠାରେ ଆପଣାର । ସୁଖକୁ ବାଞ୍ଛେ ନିରନ୍ତର ॥
ସେ ନ ବୋଲାଇ ପରିଚାର । ଯେ ଭୃତ୍ୟଠାରୁ ଆପଣାର ॥
ପ୍ରଭୁତ୍ୱ ବାଞ୍ଛନ୍ତେ ଦିଅଇ । ସେ ଜନ ସ୍ୱାମୀ ନ ବୋଲାଇ ॥
୬ ଅକାମ ଭକ୍ତ ମୁଁ ତୁମ୍ଭର । ଅହେତୁ ସ୍ୱାମୀ ତୁମ୍ଭେ ମୋର ॥
ରାଜା ସେବକ ଆମ୍ଭେ ଦୁଇ । ସେ ବେନିଜନ ପ୍ରାୟ ହୋଇ ॥
ଅନୁସଂଧାନେ କାମାଦିର । ପ୍ରୟୋଜନ ହିଁ ନାହିଁ ମୋର ॥
୭ ବରଦାୟକ ଯେତେ ସୁର । ତୁମ୍ଭେ ତାହାଙ୍କ ମଧ୍ୟେ ବର ॥
ହେ ପ୍ରଭୋ ! କାମ ବରମାନ । ଯେବେ କରିବ ମୋତେ ଦାନ ॥
ମୋର ହୃଦୟେ ଉତପନ । ନୋହିବ କାମାଙ୍କୁରମାନ ॥
ତୁମ୍ଭ ସକାଶୁଁ ଏହି ବର । ମାଗୁଛି ଅନୁଗ୍ରହ କର ॥
୮ ଇନ୍ଦ୍ରିୟ, ପ୍ରାଣ, ମନ, ଧୃତି । ଶରୀର, ଧର୍ମ, ଲଜ୍ଜା, ମତି ॥
ସତ୍ୟ, ଶ୍ରୀ, ତେଜ, ଯେବା ସ୍ମୃତି । ଏ ଯାହା ଜନ୍ମେ ନାଶ ଯାନ୍ତି ॥
୯ [3]ଯେ ମନେ ଥାନ୍ତି କାମମାନ । ତାଙ୍କୁ ଛାଡ଼ନ୍ତି ଯେବେ ଜନ ॥
ଆହେ ପୁଣ୍ଡରୀକାକ୍ଷ ! ତେବେ । କଳ୍ପିତ ହୋଏ ବିଷ୍ଣୁଭାବେ ॥
୧୦ ଅଦ୍ଭୁତସିଂହରୂପଧାରୀ । ଯେ ବ୍ରହ୍ମ ପରମାତ୍ମା ହରି ॥

---

୧. ସ୍ୱଭାବେ ସକତ ନୁହଇ । ୨. ତାଙ୍କର ।

୩. ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦି ସ୍ଥିତାଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ॥ (ଗୀତା)

ମହାତ୍ମା ସ୍ୱୟେଂ ଭଗବାନ । ପୁରୁଷ ତୁମ୍ଭଙ୍କୁ ବନ୍ଦନ ॥ ୩୧

ଶ୍ରୀନୃସିଂହ ଉବାଚ

୧୧ ତୋହର ପରା ଯେ ସଂସାରେ । ଏକାନ୍ତ ଭକ୍ତ ସେ ମୋ' ଠାରେ ॥ ୩୨
ଯେ ଇହପରଲୋକେ ଜାତ । ସେ ସୁଖ ନ ବାଞ୍ଛନ୍ତି ଚିତ୍ତ ॥ ୩୩
ତଥାପି ଦୈତ୍ୟେଶ୍ୱରଙ୍କର । ଯେ ଭୋଗମାନ ମନୋହର ॥ ୩୪
ଏ ମନ୍ୱନ୍ତରମାତ୍ର ତୁହି । ତା' ଭୋଗ କର ଏଥି ଥାଇ ॥ ୩୫
୧୨ ମୋହର ପ୍ରିୟ କଥାମାନ । ସେବା କରନ୍ତେ ଅନୁଦିନ ॥ ୩୬
ଯେ ଏକ ଅଛି ସର୍ବଭୂତେ । ଆତ୍ମାରେ ନିବେଶିଣ ମୋତେ ॥ ୩୭
ଯଜ୍ଞର ଅଧିଷ୍ଠାତା ମୁହିଁ । ଯାଗମାନଙ୍କୁ କର ତୁହି ॥ ୩୮
ଯଜ୍ଞ କରନ୍ତେ ଆଚରଣ । କର୍ମରେ ବନ୍ଧ ହେବ ପୁଣ ॥ ୩୯
ଏହା ବିଚାରୁ କି ମନରେ । ଅର୍ପଣ କରନ୍ତେ ମୋ' ଠାରେ ॥ ୪୦
କରନ୍ତେ ସେ କର୍ମକୁ ତ୍ୟାଗ । ନିଷ୍କାମ ରୂପେ କର ଯାଗ ॥ ୪୧
୧୩ ଅନୁଭବରେ ସୁଖଙ୍କର । ପ୍ରାରବ୍ଧ ପୁଣ୍ୟ କରି ଦୂର ॥ ୪୨
ଯେ ପାପ ମିଳେ କିଛି ଆସି । ପୁଣ୍ୟାଚରଣେ ତାହା ନାଶି ॥ ୪୩
ଅମର ଲୋକେ ଯା' ଗାଆନ୍ତି । ବିସ୍ତାର କରିଣ ସେ କୀର୍ତ୍ତି ॥ ୪୪
କାଳବେଗରେ ଛାଡ଼ି ତନୁ । ବିମୁକ୍ତ ହୋଇଣ ବନ୍ଧନୁଁ ॥ ୪୫
ମୋତେ ପାଇବୁ, ଏ କଥାରେ । ସଂଶୟ ନ କର ମନରେ ॥ ୪୬
୧୪ ଏ ମୋର ଚରିତକୁ ମୋତେ । ସ୍ମରଣା କରନ୍ତେ ଯେ ତୋତେ ॥ ୪୭
କାଳେ ତୋ ସ୍ତୁତିକି ପଢ଼ଇ । କର୍ମବନ୍ଧୁଁ ସେ ମୁକ୍ତ ହୋଇ ॥ ୪୮

ଶ୍ରୀପ୍ରହ୍ଲାଦ ଉବାଚ

୧୫ } ତୁମ୍ଭର ଠାରୁ ମୁଁ ଏ ବର । ମାଗୁଅଛି ହେ ମହେଶ୍ୱର ॥ ୪୯
୧୬ } ନ ଜାଣି ଈଶ୍ୱରତେଜକୁ । ପିତା ନିନ୍ଦିଲା ଯା' ତୁମ୍ଭଙ୍କୁ ॥ ୫୦
ସକଳ ଲୋକମାନଙ୍କର । ଯେ ଗୁରୁ ଯେ ତୁମ୍ଭେ ଈଶ୍ୱର ॥ ୫୧
ମାଇଲା ମୋ' ଭ୍ରାତାକୁ ଏହି । ଏ ରୂପେ ମିଥ୍ୟାଦୃଷ୍ଟି ହୋଇ ॥ ୫୨
କ୍ରୋଧରେ ଆଶୟ ଯାହାର । ବିଦ୍ଧ[1] ହୋଇଛି ନିରନ୍ତର ॥ ୫୩
ମୁଁ ଅଟେ ତୁମ୍ଭର ଭଗତ । ମୋ' ଠାରେ ହେଲା ପାପବନ୍ତ ॥ ୫୪
୧୭ ସେ ଘେନି ଦୁରନ୍ତ ଦୁସ୍ତର । ଯେ ଅଘ[2] ତହୁଁ ପିତା ମୋର ॥ ୫୫
ପବିତ୍ର ହେଉ ତତକାଳ । ହେ ପ୍ରଭୋ ! କୃପଣବତ୍ସଳ ॥ ୫୬
ତୁମ୍ଭ ଅପାଙ୍ଗେ ଅଛ ଚାହିଁ । ଏଣୁ ପବିତ୍ର ଅଛି ହୋଇ ॥ ୫୭
ତଥାପି କାର୍ପଣ୍ୟ ହୋଇଣ । ପ୍ରାର୍ଥନା କରୁଅଛି ପୁଣ ॥ ୫୮

---

୧. ବଦ୍ଧ । ୨. ଅଘ = ପାପ ।

ଶ୍ରୀଭଗବାନୁବାଚ

୧୮ [1]ତ୍ରିସପ୍ତ ପୁରୁଷ ସହିତ । ପବିତ୍ର ହେଲାଣି ତୋ' ତାତ ॥ ୫୯
ହେ ସାଧୁ ! ତୁ କୁଳପାବନ । ଯେଣୁ ଏହାର ଗୃହେ ଜନ୍ମ ॥ ୬୦
୧୯ ସାଧୁ ସମଦର୍ଶୀ ପ୍ରଶାନ୍ତ । ଉତ୍ତମ ଆଚରଣବନ୍ତ ॥ ୬୧
ଏମନ୍ତ ମୋର ଭକ୍ତମାନେ । ହୁଅନ୍ତି ଯେଉଁ ଯେଉଁ ସ୍ଥାନେ ॥ ୬୨
କୀକଟତୁଲ୍ୟ ଯେଉଁ ଦେଶ । ତାହା[2] ସମାନ ଅବା ବଂଶ ॥ ୬୩
ସେମାନେ ବିଶୁଦ୍ଧ ହୁଅନ୍ତି । ପରକୁ ପବିତ୍ର କରନ୍ତି ॥ ୬୪
୨୦ ଯେ ଉଚ୍ଚ ନୀଚ ଏ ଭୁବନେ । ଅଛନ୍ତି ପ୍ରାଣୀବୃନ୍ଦମାନେ ॥ ୬୫
ସେ ପ୍ରାଣୀମଧ୍ୟେ କାହାକୁ ହି । ଯେ ଲୋକ ହିଂସା ନ କରଇ ॥ ୬୬
ହେ ଦୈତ୍ୟ-ଇନ୍ଦ୍ର! ମୋ' ଭାବରେ । ବିଗତସ୍ପୃହ ଯେଉଁ ନରେ ॥ ୬୭
୨୧ ଏ ଲୋକେ ମୋହର ଭଗତ । ତୋତେ ହୋଇବେ ଅନୁବ୍ରତ ॥ ୬୮
ତୁ ମୋର ସର୍ବ ଭକ୍ତଙ୍କର । ହୋଇବୁ ପ୍ରତିରୂପଧର ॥ ୬୯
୨୨ ମୋହର ଅଙ୍ଗସ୍ପରଶରେ । ପବିତ୍ର ଯେ ସର୍ବ ପ୍ରକାରେ ॥ ୭୦
ସେ ପିତା-ପ୍ରେତକାର୍ଯ୍ୟମାନ । ହେ ଦୈତ୍ୟ ! କର ତୁ ବିଧାନ ॥ ୭୧
ଲଭିବ ଦିବ୍ୟଲୋକମାନ । ଯାର ତୁ ଉତ୍ତମ ନନ୍ଦନ ॥ ୭୨
୨୩ ହେ ତାତ ! ବ୍ରହ୍ମବାଦୀମାନେ । ଯାହା କହିଲେ ତୋଷମନେ ॥ ୭୩
ନ ଲଙ୍ଘି ମୋହର ବଚନ । ନିବେଶି ମୋହଠାରେ ମନ ॥ ୭୪
ମୋଠାରେ ହୋଇ ତତପର । କର୍ମମାନଙ୍କୁ ତୁ ଆଚର ॥ ୭୫

ଶ୍ରୀନାରଦ ଉବାଚ

୨୪-୨୫ ଯେବଣ ରୂପେ ଭଗବାନ । ହେ ନୃପ ! କହିଲେ ବଚନ ॥ ୭୬
ସେ ରୂପେ କଲେ ପ୍ରହରାଦ । ଯେ ପିତାପ୍ରେତଦାନ ଶ୍ରାଦ୍ଧ ॥ ୭୭
ଯେ ଦ୍ୱିଜବରମାନେ ଥିଲେ । ଅଭିଷେକକୁ ଆରମ୍ଭିଲେ ॥ ୭୮
ନୃସିଂହ ପ୍ରସାଦସୁମୁଖ । ହେଲେ ତା' ଦେଖି ଚତୁର୍ମୁଖ ॥ ୭୯
ପବିତ୍ର ବାକ୍ୟମାନଙ୍କରେ । ସ୍ତୁତି କରିଣ ତଦନ୍ତରେ ॥ ୮୦
ଦେବଆଦିରେ ହୋଇ ବୃତ । ବଚନ ବୋଇଲେ ଏମନ୍ତ ॥ ୮୧

ଶ୍ରୀବ୍ରହ୍ମୋବାଚ

୨୬-୨୭ ଭୂତଭାବନ ଦେବଦେବ । ଅଖିଳନାଥ ପୂର୍ବଭବ ॥ ୮୨
ଯେ ଲୋକତାପନ ଅସୁର । କଲ ତାହାକୁ ଯା' ସଂହାର ॥ ୮୩

---

୧. ଯଦ୍ୟପି କଶ୍ୟପ, ମରୀଚି ଓ ବ୍ରହ୍ମା — ଏହି ତିନିଜଣ ମାତ୍ର ହିରଣ୍ୟକଶିପୁର ପୂର୍ବଜ, ତଥାପି ପୂର୍ବକଳ୍ପଗତ ପିତୃ-ଅଭିପ୍ରାୟରେ ତ୍ରିସପ୍ତ ପୁରୁଷ ବୋଲି କୁହା ଯାଇଅଛି । (ସ୍ୱାମୀ)

୨. ତହିଁ ।

ଏ କଥା ଆମ୍ଭମାନଙ୍କର । ଭାଗ୍ୟ ଅଟଇ ହେ ଈଶ୍ୱର ॥ ୮୪
ମୋଠାରୁ ଲଭିଲା ଯେ ବର । ଅବଧ୍ୟ ସୃଷ୍ଟିରେ ମୋହର ॥ ୮୫
ତପସ୍ୟା ଯୋଗର ବଳରେ । ଉତ୍କଟ ହୋଇ ଜଗତରେ ॥ ୮୬
ପୃଥ୍ୱୀରେ ଯେତେ ଧର୍ମମାନ । ସମସ୍ତ କଲା ତା' ନିଧନ ॥ ୮୭
୨୮ ତାହାର ଅଟଇ ଯେ ସୁତ । ବାଳକ ମହାଭାଗବତ ॥ ୮୮
ଭାଗ୍ୟରେ ମୃତ୍ୟୁରୁ ତାହାକୁ । ରଖିଲ, ଲଭିଲା ତୁମ୍ଭଙ୍କୁ ॥ ୮୯
୨୯ ପ୍ରୟତ କରି ନିଜ ମନ । କରଇ ଯେଉଁ ଲୋକ ଧ୍ୟାନ ॥ ୯୦
ସକଳ ଭୟରୁ ତାହାର । ରକ୍ଷକ ଏ ତୁମ୍ଭ ଶରୀର ॥ ୯୧
ହେ ଭଗବାନ ! ଯେ ନାଶଇ । ସେ ମୃତ୍ୟୁଠାରୁ ହିଁ ରଖଇ ॥ ୯୨

ଶ୍ରୀଭଗବାନୁବାଚ

୩୦ ହେ ପଦ୍ମଭବ ! ଅଟେ କ୍ରୂର । ସ୍ୱଭାବ ଯେଉଁମାନଙ୍କର ॥ ୯୩
ସେ ଅସୁରଙ୍କୁ ଆଉ ଥରେ । ବର ନ ଦେବ ଏ ପ୍ରକାରେ ॥ ୯୪
ଅହିକି କ୍ଷୀର କଲେ ଦାନ । ବିଷ ସଂଭବଇ ଯେସନ ॥ ୯୫

ଶ୍ରୀନାରଦ ଉବାଚ

୩୧ ହେ ନୃପ ! କହି ଏ ବଚନ । ଅନ୍ତର ହେଲେ ଭଗବାନ ॥ ୯୬
୩୩ ସମସ୍ତ ଭୂତମାନଙ୍କର । ନୋହିଲେ ନୟନ ଗୋଚର ॥ ୯୭
ପରମ ଭକ୍ତିରେ ପୂଜନ । କଲେ ଯାହାଙ୍କୁ ପଦ୍ମାସନ ॥ ୯୮
ତଦନ୍ତେ ବ୍ରହ୍ମାଙ୍କୁ ଶିବଙ୍କୁ । ପ୍ରଜାପତିଙ୍କି ଦେବତାଙ୍କୁ ॥ ୯୯
ପ୍ରହ୍ରାଦ କରିଣ ପୂଜନ । ଶିରରେ କଲେକ ବନ୍ଦନ ॥ ୧୦୦
ସେମାନେ ସାକ୍ଷାତ ବିଷ୍ଣୁର । ଅଟନ୍ତି କଳା ଅବତାର ॥ ୧୦୧
କମଳାସନ ତଦନ୍ତରେ । ଶୁକ୍ରାଦି ମୁନିଙ୍କ ସଙ୍ଗରେ ॥ ୧୦୨
ଦୈତ୍ୟଦାନବଙ୍କ ଉପର । କଲେ ପ୍ରହ୍ରାଦଙ୍କୁ ଈଶ୍ୱର ॥ ୧୦୩
୩୪ ବ୍ରହ୍ମାଦି ଯେତେ ଦେବେ ଥିଲେ । ପ୍ରତିପୂଜିତ ସେ ହୋଇଲେ ॥ ୧୦୪
ମନରେ ଆନନ୍ଦ ହୋଇଣ । ଉତ୍ତମ ଆଶିଷ ଦେଇଣ ॥ ୧୦୫
ଯାହାର ଯେଉଁ ଯେଉଁ ସ୍ଥାନ । ତହିଁକି ଗଲେ ହେ ରାଜନ ॥ ୧୦୬
୩୫ ବିଷ୍ଣୁର ସେ ପାର୍ଷଦ ଦୁଇ । ଏରୂପେ ଦିତିସୁତ ହୋଇ ॥ ୧୦୭
ତାଙ୍କ ହୃଦୟେ ସ୍ଥିତ ହରି । ମାଇଲେ ବୈର ଭାବ କରି ॥ ୧୦୮
୩୬ ବିପ୍ରଶାପେ ସେ ପୁଣ ଦୁଇ । ରାବଣ କୁମ୍ଭକର୍ଣ୍ଣ ହୋଇ ॥ ୧୦୯
୩୭ ରାକ୍ଷସ ହୋଇ ଜନ୍ମ ହେଲେ । ରାମବିକ୍ରମେ ନାଶ ଗଲେ ॥ ୧୧୦
ରାମସାୟକେ ଦୁହିଁଙ୍କର । ହୃଦୟ ହୋଇଲା ବିଦାର ॥ ୧୧୧
ସେ ରାମଠାରେ ଦେଲେ ମନ । ଯୁଦ୍ଧରେ କଲେ ସେ ଶୟନ ॥ ୧୧୨
ପୂର୍ବଜନ୍ମର ପ୍ରାୟ ହୋଇ । ଶରୀର ଛାଡ଼ିଲେ ସେ ଦୁଇ ॥ ୧୧୩

୩୮ ସେ ଦୁହେଁ ଏଥୁ ଅନନ୍ତରେ । ଜନ୍ମ ହୋଇଲେ ଏ କ୍ଷିତିରେ ॥ ୧୧୪
ତହିଁରେ ଶିଶୁପାଳ ଏକ । କରୂଷନୃପତି[୧] ଆରକ ॥ ୧୧୫
ତୁମ୍ଭ ଦେଖନ୍ତେ ହରିଠାରେ । ପଶିଲେ ବୈରାନୁବନ୍ଧରେ ॥ ୧୧୬
୩୯ କୃଷ୍ଣବଇରି ରାଜାମାନେ । କୃଷ୍ଣନିନ୍ଦାରେ ପୂର୍ବଦିନେ ॥ ୧୧୭
କଲେ ସେ ଯେବଣ ଦୁରିତ । ଦିଅନ୍ତେ କୃଷ୍ଣଠାରେ ଚିତ୍ତ ॥ ୧୧୮
ସେ ପାପ ଦେଲେ ଦୂର କରି । ଯେସନେ କୀଟ ପେଶସ୍କାରୀ ॥ ୧୧୯
ଧ୍ୟାନ କରନ୍ତେ ଭ୍ରମରକୁ । ଲଭଇ ତାର ସ୍ୱରୂପକୁ ॥ ୧୨୦
୪୦ ଯେମନ୍ତ ଯେମନ୍ତ ପ୍ରକାରେ । ଅଭେଦପରମଭକ୍ତିରେ ॥ ୧୨୧
ବିଷ୍ଣୁସାମ୍ୟକୁ ଗଲେ ନରେ । ଚୈଦ୍ୟାଦି ନୃପେ ସେ ପ୍ରକାରେ ॥ ୧୨୨
ସେ ବିଷ୍ଣୁଚିନ୍ତାରେ ବିଷ୍ଣୁର । ଲଭିଲେ ସମାନ ଆକାର ॥ ୧୨୩
୪୧ ହେ ନୃପ ! ପୁଛିଲୁ ଯା' ମୋତେ । କହିଲି ସେ ସର୍ବ ମୁଁ ତୋତେ ॥ ୧୨୪
ଅରି ହେଲେହେଁ ହରିଠାର । ଯେ ସାମ୍ୟ ଚୈଦ୍ୟ ଆଦିଙ୍କର ॥ ୧୨୫
୪୨ ବ୍ରହ୍ମଣ୍ୟଦେବ ରୂପେ ଖ୍ୟାତ । ମହାତ୍ମା ଯେ ଦେବକୀସୁତ ॥ ୧୨୬
ଏ ଅବତାରକଥା ତାର । କହିଲୁଁ ତୁମ୍ଭର ଆଗର ॥ ୧୨୭
ଏ ପୁଣ୍ୟ ଅଟେ, ଯହିଁ ହତ । ହୋଇଲେ ବେନି ଆଦିଦୈତ୍ୟ ॥ ୧୨୮
୪୩ ଯେ ଅଟେ ମହାଭାଗବତ । ସେ ପ୍ରହ୍ଲାଦର ଚରିତ ॥ ୧୨୯
ଭକ୍ତି ବିରକ୍ତି ଜ୍ଞାନ ତାର । ଏକାତ୍ମଭାବ ଯେ ହରିର ॥ ୧୩୦
୪୪ ଯେ ସର୍ଗସ୍ଥିତିଲୟେଶ୍ୱର । ପ୍ରଭୁ ସକଳ ଜଗତର ॥ ୧୩୧
ତା' ଗୁଣକର୍ମାନୁବର୍ଣ୍ଣନ । ଯେ ଦେବଦୈତ୍ୟାଦିଙ୍କ ସ୍ଥାନ ॥ ୧୩୨
କାଳରେ ଯେମନ୍ତ ପ୍ରକାରେ । ଲୀନ ହୋଏ ବିଷ୍ଣୁଲୀଳାରେ ॥ ୧୩୩
୪୫ ବୈଷ୍ଣବମାନଙ୍କର ଧର୍ମ । ଯେଣେ ଈଶ୍ୱର ହୋଏ ଗମ୍ୟ ॥ ୧୩୪
ଏ ଆଖ୍ୟାନରେ ସେ ପ୍ରକାଶ । ଅଧ୍ୟାତ୍ମ ଜ୍ଞାନ ଯେ ଅଶେଷ ॥ ୧୩୫
୪୬ ପୁଣ୍ୟ ଅଟଇ ଏ ଆଖ୍ୟାନ । ବିଷ୍ଣୁବୀର୍ଯରେ ବର୍ଦ୍ଧମାନ ॥ ୧୩୬
ଶ୍ରଦ୍ଧାରେ ଶୁଣି ଯେ କହଇ । କର୍ମପାଶରୁ ମୁକ୍ତ ହୋଇ ॥ ୧୩୭
୪୭ ଏ ଲୀଳାଆଦି ପୁରୁଷର । ମୃଗେନ୍ଦ୍ରପ୍ରାୟ ବୀର୍ଯ୍ୟକର ॥ ୧୩୮
ଦୈତ୍ୟେନ୍ଦ୍ର ଯେ ଦିତିନନ୍ଦନ । ଯେ ତାର ଯୂଥପତିମାନ ॥ ୧୩୯
ସେମାନଙ୍କର ବଧ ଯେହି । ଶୁଚି ହୋଇଣ ଯେ ପଢ଼ଇ ॥ ୧୪୦
ସାଧୁମାନଙ୍କ ମଧ୍ୟେ ବର । ଯେ ଦିତିସୁତର କୁମର ॥ ୧୪୧
ତା' ପୁଣ୍ୟ ଅନୁଭାବ ଶୁଣି । ବଇକୁଣ୍ଠକୁ ଯାଏ ପ୍ରାଣୀ ॥ ୧୪୨
ଯେବଣ ବଇକୁଣ୍ଠଠାଇଁ । କେହୁଣିଠାରୁ ଭୟ ନାହିଁ ॥ ୧୪୩
୪୮ ପ୍ରହ୍ଲାଦ ଅତି ଭାଗ୍ୟବନ୍ତ । ପ୍ରତ୍ୟକ୍ଷେ ଦେଖିଲା ଅନନ୍ତ ॥ ୧୪୪

---

୧. କରୂଷ = ଦନ୍ତବକ୍ର ।

| | | | |
|---|---|---|---|
| | ଅଭାଗ୍ୟବନ୍ତ ଆମ୍ଭେମାନେ | ଏମନ୍ତ ବିଚାର କି ମନେ | ॥ ୧୪୫ |
| | ତୁମ୍ଭେ ଅତ୍ୟନ୍ତ ଭାଗ୍ୟବନ୍ତ | ମନୁଷ୍ୟଲୋକରେ ବିଦିତ | ॥ ୧୪୬ |
| | ପରମ ବ୍ରହ୍ମ ଗୂଢ଼ ହୋଇ | ନରସ୍ୱରୂପେ ଛନ୍ତି ରହି | ॥ ୧୪୭ |
| | ଏହି ସକାଶୁଁ ମୁନିଜନ | ଆସନ୍ତି ତୁମ୍ଭର ଭବନ | ॥ ୧୪୮ |
| | ଲୋକଙ୍କୁ ଯେଉଁ ମୁନିମାନେ | ପବିତ୍ର କରନ୍ତି ଭୁବନେ | ॥ ୧୪୯ |
| ୪୯ | ଏ କୃଷ୍ଣ ଅଟେ ବ୍ରହ୍ମ ସେହି | ମହତ ଜନ ଯା' ଖୋଜଇ | ॥ ୧୫୦ |
| | ଉପାଧିରହିତ ପରମ | ଯେ ବା ଆନନ୍ଦ ଅଭିରାମ | ॥ ୧୫୧ |
| | ତା' ଅନୁଭବରୂପ ଏହି | ତୁମ୍ଭର ପ୍ରିୟ ମିତ୍ର ଯେହି | ॥ ୧୫୨ |
| | ମାତୁଳସୁତ ଆତ୍ମା ମୂର୍ତ୍ତି | ଯେ ପୂଜ୍ୟ ଗୁରୁ ଆଜ୍ଞାବର୍ତ୍ତୀ | ॥ ୧୫୩ |
| ୫୦ | ଏ ଯେବେ ବ୍ରହ୍ମ ଏହାଙ୍କର | ବହୁତ ସ୍ଥିରୀରେ ବିହାର | ॥ ୧୫୪ |
| | କିମ୍ବା ଧର୍ମାଦି ଆଚରଣ | ଏମନ୍ତ ବିଚାର କି ପୁଣ | ॥ ୧୫୫ |
| | ଶିବବ୍ରହ୍ମାଦି ସ୍ୱବୁଦ୍ଧିରେ | ଯାର ରୂପକୁ ଏ ପ୍ରକାରେ | ॥ ୧୫୬ |
| | ଏ ରୂପେ ବର୍ଣ୍ଣି ନ ପାରନ୍ତି | ଏମନ୍ତ ଏ ସାତ୍ୱତପତି | ॥ ୧୫୭ |
| | ସ୍ୱୟେଂ ପ୍ରସନ୍ନ ତୁମ୍ଭଠାରେ | ମଉନ ଭକ୍ତି ଶମଦ୍ୱାରେ | ॥ ୧୫୮ |
| | ପୂଜିତ ହୋଇ ଅନୁଦିନ | ଆମ୍ଭଙ୍କୁ ହୁଅନ୍ତୁ ପ୍ରସନ୍ନ | ॥ ୧୫୯ |
| | ପରମ ବ୍ରହ୍ମ ଯେ ଅଟନ୍ତି | ପ୍ରହ୍ଲାଦଗୃହେ ସେ ନ ଥାନ୍ତି | ॥ ୧୬୦ |
| | ସେ ପରଂବ୍ରହ୍ମ ଦେଖିବାକୁ | ମୁନି ନ ଯାନ୍ତି ତା' ଗୃହକୁ | ॥ ୧୬୧ |
| | ନୁହନ୍ତି ତା' ମାତୁଳସୁତ | ପ୍ରସନ୍ନ ନୁହନ୍ତି ସଂତତ | ॥ ୧୬୨ |
| | ଏ ଘେନି ତୁମ୍ଭର ସମାନ | [1]ପ୍ରହ୍ଲାଦ ନୋହେ ଭାଗ୍ୟବାନ | ॥ ୧୬୩ |
| ୫୧ | ହେ ନୃପ ! ମହାମାୟାବନ୍ତ | ମୟ ନାମରେ ଯେ ଦଇତ | ॥ ୧୬୪ |
| | ରୁଦ୍ର ଦେବଙ୍କ ଯେଉଁ ଯଶ | ପୂର୍ବରେ କଲା ତାହା ନାଶ | ॥ ୧୬୫ |
| | ପୁଣ ବିସ୍ତାରିଲେ ତା' ଯେହି | ସେ ଭଗବାନ ଅଟେ ଏହି | ॥ ୧୬୬ |

### ଶ୍ରୀଯୁଧିଷ୍ଠିର ଉବାଚ

| | | | |
|---|---|---|---|
| ୫୨ | ଯେ ଦେବ ଜଗତଈଶ୍ୱର | ଯେଉଁ କର୍ମରେ ମୟ ତାର | ॥ ୧୬୭ |
| | କୀର୍ତ୍ତିକି କଲାକ ବିନାଶ | ଯେ କୃଷ୍ଣ କଲେ ତାହି ନାଶ | ॥ ୧୬୮ |
| | ଏ କଥା ଆମ୍ଭର ଆଗରେ | ବିସ୍ତାରି କହ ଏ ସଭାରେ | ॥ ୧୬୯ |

### ଶ୍ରୀନାରଦ ଉବାଚ

| | | | |
|---|---|---|---|
| ୫୩ | ଏ କୃଷ୍ଣେ ବୃଦ୍ଧି ହୋଇ ସୁରେ | ଦୈତ୍ୟଙ୍କୁ ଜିଣିଲେ ସମରେ | ॥ ୧୭୦ |
| | ସେ ଦୈତ୍ୟେ ଯୁଦ୍ଧରେ ଭାଜିଲେ | ମୟକୁ ଶରଣ ପଶିଲେ | ॥ ୧୭୧ |
| | ମାୟାବୀ ଲୋକମାନଙ୍କର | ପରମାଚାର୍ଯ୍ୟ ଯେ ଅସୁର | ॥ ୧୭୨ |
| ୫୪ | ଗମନାଗମନ ଯାଙ୍କର | ନୁହଇ ନୟନଗୋଚର | ॥ ୧୭୩ |

---

୧. ଆମ୍ଭେ ତ ନୋହୁଁ ଭାଗ୍ୟବାନ ।

| | | | |
|---|---|---|---|
| | ଲୋକେ ଯେ ତର୍କିତ ନୁହନ୍ତି | ସେ ସାମଗ୍ରୀଏ ଯହିଁ ଛନ୍ତି | ॥ ୧୭୪ |
| | ଯେ ହେମ-ରୌପ୍ୟ-ଲୋହମୟ | ଏରୂପେ ତିନିପୁର ମୟ | ॥ ୧୭୫ |
| | ନିର୍ମାଣ କରିଣ ତାହାଙ୍କୁ | ଦେଲା ସେ ଅସୁରମାନଙ୍କୁ | ॥ ୧୭୬ |
| ୫୫ | ଅସୁରସେନାପତିମାନେ | ଚିନ୍ତନ୍ତେ ପୂର୍ବ ବୈର ମନେ | ॥ ୧୭୭ |
| | ହେ ନୃପ ! ପାଳକ ସହିତ | ଅଟଇ ଯେଉଁ ତ୍ରିଜଗତ | ॥ ୧୭୮ |
| | ତାହାଙ୍କୁ ତେଣେ କଲେ ନାଶ | ଲୋକରେ ହୋଇ ଅପ୍ରକାଶ | ॥ ୧୭୯ |
| ୫୬ } | ପାଳକସହିତ ହୋଇଣ | ତଦନ୍ତେ ଲୋକମାନେ ପୁଣ | ॥ ୧୮୦ |
| ୫୭ } | ହେ ଦେବ ! ଯେଉଁମାନଙ୍କର | ତ୍ରିପୁର ଅଟଇ ମନ୍ଦିର | ॥ ୧୮୧ |
| | ସେ ଦୈତ୍ୟମାନେ ଦ୍ରୋହଂ[1] ଚିନ୍ତି | ଆମ୍ଭଙ୍କୁ ନାଶ କରୁଛନ୍ତି | ॥ ୧୮୨ |
| | ଆମ୍ଭେ ସମସ୍ତେ ତ ତୁମ୍ଭର | ଆମ୍ଭଙ୍କୁ ତୁମ୍ଭେ ରକ୍ଷା କର | ॥ ୧୮୩ |
| | ଏ ରୂପେ ସ୍ଥିର କରି ମନ | ଶିବଙ୍କୁ କଲେ ଉପାସନ | ॥ ୧୮୪ |
| | ଭୟ ନ କର ତୁମ୍ଭେ କେହି | ଏରୂପେ ଦେବତାଙ୍କୁ କହି | ॥ ୧୮୫ |
| | ଶରକୁ ଧନୁରେ ସଂଧାନ | କରିଣ ବିଭୁ ଭଗବାନ | ॥ ୧୮୬ |
| | ଅସ୍ତ୍ରକୁ ପୁରମାନଙ୍କରେ | ବିମୁକ୍ତ କଲେ ସେ ସତ୍ୱରେ | ॥ ୧୮୭ |
| ୫୮ | ସେ ଶରୁଁ ଅଗ୍ନିସମ ବର୍ଣ୍ଣ | ଊର୍ଦ୍ଧ୍ୱକୁ ଗଲେ ଶରମାନ | ॥ ୧୮୮ |
| | ରବିମଣ୍ଡଳରୁ ଯେସନ | କିରଣସମୂହ ଉତ୍ପନ୍ନ | ॥ ୧୮୯ |
| | ଯେଉଁ ଶରଙ୍କ ସକାଶରେ | ଅଦୃଶ୍ୟ ହୋଇଲେ ସେ ପୁରେ | ॥ ୧୯୦ |
| ୫୯ | ପୁରରେ ଯେତେ ଦସ୍ୟୁ ଥିଲେ | ସେ ଶର ବାଜନ୍ତେ ପଡ଼ିଲେ | ॥ ୧୯୧ |
| | ସେ ମହାଯୋଗୀ ମୟାସୁର[2] | ତାହାଙ୍କୁ ଆଣିଣ ସତ୍ୱର | ॥ ୧୯୨ |
| | ତାହାଙ୍କ ପ୍ରାଣଲାଭ ଆଶେ | ନିକ୍ଷିପ୍ତ କଲା କୂପରସେ | ॥ ୧୯୩ |
| ୬୦ | ସେ ସିଦ୍ଧ ଅମୃତରସର | ସ୍ପରଶେ ସମସ୍ତ ଅସୁର | ॥ ୧୯୪ |
| | କୂପୁଁ ଉଠିଲେ ତତକାଳ | ସର୍ବେ ଦୃଢ଼ାଙ୍ଗ ମହାବଳ | ॥ ୧୯୫ |
| | ମେଘକୁ ଭେଦିଣ ଯେସନ | ବିଦ୍ୟୁତରୂପ ବହ୍ନିମାନ | ॥ ୧୯୬ |
| ୬୧ } | ବିଭଗ୍ନସଂକଳ୍ପ ବିମନ | ହୋଇଲେ ବୃଷଭବାହନ | ॥ ୧୯୭ |
| ୬୨ } | ଏମନ୍ତ କରି ବିଲୋକନ | ତେବେ ଏ ବିଷ୍ଣୁ ଭଗବାନ | ॥ ୧୯୮ |
| | ସେ ବିଷୟରେ ଏ ପ୍ରକାର | ଉପାୟ କଳ୍ପିଲେ ମନର | ॥ ୧୯୯ |
| | ସେକାଳେ ବ୍ରହ୍ମା ବତ୍ସ ହେଲେ | ଏ ବିଷ୍ଣୁ ଗୋରୂପ ଧଇଲେ | ॥ ୨୦୦ |
| | ମଧ୍ୟାହ୍ନେ ମିଳି ତ୍ରିପୁରକୁ | ପିଇଲେ ସେ କୂପାମୃତକୁ | ॥ ୨୦୧ |
| ୬୩ } | ଅସୁରେ ବିମୋହିତ ହେଲେ | ଦେଖନ୍ତେ ନିଷେଧ ନ କଲେ | ॥ ୨୦୨ |
| ୬୪ } | ସେ ମହାଯୋଗୀ ମୟାସୁର | ସେ କଥା କରିଣ ଗୋଚର | ॥ ୨୦୩ |
| | ଅଳପ ହୋଇଣ ହସନ୍ତେ | ବିଶୋକ ହୋଇଣ ତଦନ୍ତେ | ॥ ୨୦୪ |
| | ଦଇବଗତି ଅଟେ ଯେହି | ମନରେ ସୁମରନ୍ତେ ତାହି | ॥ ୨୦୫ |

୧. ତାହା । ୨. ମାୟାସୁର ।

ଯେ ରସପାନେ ଶୋକଯୁତ । ତାହାଙ୍କୁ କହିଲେ ଏମନ୍ତ ॥ ୨୦୬
ଦେବ ଅସୁର ନର ଯେହି । ଏଥିରୁ ଆନ ଅବା କେହି ॥ ୨୦୭
ପରର ଅବା ଆପଣାର । ଦୈବକଳ୍ପିତ ଯେ ପ୍ରକାର ॥ ୨୦୮
ଅନ୍ୟଥା କରିବାକୁ ତାହି । ଈଶ୍ୱର ନାହିଁ ଏଥି କେହି ॥ ୨୦୯
୬୫ ଏ କୃଷ୍ଣ ଏଥୁ ଅନନ୍ତରେ । ଆପଣା ଶକ୍ତିମାନଙ୍କରେ ॥ ୨୧୦
୬୬ ଶମ୍ଭୁର ଯୁଦ୍ଧକୁ ସାଧନ । ଯେ କଥା କଲେ ତା' ବିଧାନ ॥ ୨୧୧
ଋଦ୍ଧି, ବିରକ୍ତି ଧର୍ମ ଜ୍ଞାନ । ତପସ୍ୟା ବିଦ୍ୟା କ୍ରିୟାମାନ ॥ ୨୧୨
ଇତ୍ୟାଦି ଆପଣା ଶକ୍ତିରେ । ଏ ବିଷ୍ଣୁ ଏଥୁ ଅନନ୍ତରେ ॥ ୨୧୩
ଯୁଦ୍ଧକୁ ସାଧନ ଶିବର । ଯେ ରଥ ସୂତ ଧ୍ୱଜ ଆର ॥ ୨୧୪
ଧନୁ କବଚ ଅଶ୍ୱମାନ । ଶରାଦି କଲେ ତା ବିଧାନ ॥ ୨୧୫
ସନ୍ନଦ୍ଧ ହୋଇ ଚଢ଼ି ରଥ । ଧଇଲେ ଧନୁଶର ହାଥ ॥ ୨୧୬
୬୭ ଶରକୁ ସନ୍ଧିଣ ଧନୁରେ । ସେ ଅଭିଜିତ[୧] ମୁହୂର୍ତ୍ତରେ ॥ ୨୧୭
ହେ ନୃପ ! ଦୁଃଖରେ ଭେଦନ । ହୁଅନ୍ତି[୨] ଯେଉଁ ପୁରମାନ ॥ ୨୧୮
ତାହାଙ୍କୁ ଦହିଲେ ସେ ଶରେ । ଦୁନ୍ଦୁଭି ବାଜିଲା ସ୍ୱର୍ଗରେ ॥ ୨୧୯
୬୮ ଶତସଂଖ୍ୟକ ବିମାନରେ । ସଂକୁଳ ହୋଇଣ ହର୍ଷରେ ॥ ୨୨୦
୬୯ ଦେବତା ଋଷି ସିଦ୍ଧେଶ୍ୱରେ । ପିତୃଏ କୁସୁମବୃନ୍ଦରେ ॥ ୨୨୧
ଜୟଶବଦେ ବରଷିଲେ । ଅପ୍‌ସରା ନୃତ୍ୟ ଗୀତ କଲେ ॥ ୨୨୨
ଏମନ୍ତ ରୂପେ ହେ ରାଜନ । ପୁରନାଶନ ଭଗବାନ ॥ ୨୨୩
ତିନି ପୁରକୁ କରି ନାଶ । ସ୍ୱସ୍ଥାନେ ହୋଇଲେ ପ୍ରବେଶ ॥ ୨୨୪
ବ୍ରହ୍ମାଦି ଦେବେ ତାଙ୍କୁ ସ୍ତୁତି । କରୁଅଛନ୍ତି ଲଭି ପ୍ରୀତି ॥ ୨୨୫
୭୦ ନିଜ ମାୟାରେ ନରାକାର । ଧରିଛନ୍ତି ଯେ ଆପଣାର ॥ ୨୨୬
ଏ ହରି ଗୁରୁ ଜଗତର । ଏହି ରୂପରେ ଏହାଙ୍କର ॥ ୨୨୭
ଅଛନ୍ତି ନାନା ବୀର୍ଯ୍ୟମାନ । ଋଷି କରନ୍ତି ଯା' ଗାୟନ ॥ ୨୨୮
ଶ୍ରୁତିଗୋଚର ହେଲେ ମାତ୍ର । ଲୋକଙ୍କୁ କରନ୍ତି ପବିତ୍ର ॥ ୨୨୯
ଏବେ ହୋ ତୁମ୍ଭର ଅଗ୍ରତ । କହିବା କି ଆନ ଚରିତ ॥ ୨୩୦
ଶ୍ରୀକୃଷ୍ଣପାଦସରସିଜ । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ ॥ ୨୩୧
ସପ୍ତମ ସ୍କନ୍ଧ ଭାଗବତ । କରୁଛି ଭାଷାବନ୍ଧେ ଗୀତ ॥ ୨୩୨
ପ୍ରକାଶ କରିବ ଜଗତେ । ସଜ୍ଜନମାନଙ୍କର ହିତେ ॥ ୨୩୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଶ୍ରୀପ୍ରହ୍ଲାଦଚରିତଂ ତ୍ରିପୁରବିଜୟଶ୍ଚ ନାମ ଦଶମୋଽଧ୍ୟାୟଃ ॥

୧. ଅଭିଜିତ = ମଧ୍ୟାହ୍ନ । ୨. ନୁହନ୍ତି ।

# ଏକାଦଶ ଅଧ୍ୟାୟ

ତଦେବଂ ଦଶଭିର୍ଜ୍ଞାନଭକ୍ତିଯୋଗାବୁଦୀରିତୌ ।
ଅଥ ପଞ୍ଚଭିରଧ୍ୟାୟୈଃ କର୍ମଯୋଗୋଽନୁବର୍ଣ୍ଣ୍ୟତେ ॥ ୧
ଏକାଦଶେ ନୃଣାଂ ଧର୍ମାଃ ସାଧାରଣ୍ୟେନ ବର୍ଣ୍ଣିତାଃ ।
ବିଶେଷେଣ ଚ ବର୍ଣ୍ଣାନାଂ ମୁଖ୍ୟା ମୁଖ୍ୟାଶ୍ଚ ଯୋଷିତାମ୍ ॥ ୨

ଶ୍ରୀଶୁକ ଉବାଚ

୧ ଅତି ମହତ ଜନଙ୍କର । ମଧ୍ୟରେ ଅଟଇ ଯେ ବର ॥ ୧
ବିଷ୍ଣୁର ଠାରେ ଆତ୍ମା ଯାର । ଏମନ୍ତ ଯେ ଦୈତ୍ୟ ଈଶ୍ୱର ॥ ୨
ସାଧୁଙ୍କ ସଭାରେ ପୂଜିତ । ଯେ ଅଟେ ତାହାର ଚରିତ ॥ ୩
ସେ କଥା ଶୁଣି ଧର୍ମସୁତ । ହରଷେ ହୋଇଣ ସଂଯୁତ ॥ ୪
ବ୍ରହ୍ମାଙ୍କ ତନୟ ଯେ ଥିଲେ । ତାଙ୍କୁ ଏମନ୍ତ ପଚାରିଲେ ॥ ୫

ଶ୍ରୀଯୁଧିଷ୍ଠିର ଉବାଚ

୨ ହେ ଭଗବାନ ବ୍ରହ୍ମାସୁତ । ଯେ ବର୍ଣ୍ଣାଶ୍ରମାଚାରଯୁତ ॥ ୬
ଲୋକଙ୍କ ଧର୍ମ ସନାତନ । ତାହା ଶୁଣିମାକୁ ମୋ' ମନ ॥ ୭
ଭଗତି ଜ୍ଞାନ ଏହୁ ଦୁଇ । ଯେଉଁ ଧର୍ମରୁ ଲୋକ ପାଇ ॥ ୮
୩ [୧]ଯେ ବ୍ରହ୍ମା ପ୍ରଜାଙ୍କ ଈଶ୍ୱର । ତୁମ୍ଭେ ସାକ୍ଷାତ ପୁତ୍ର ତାର ॥ ୯
ତପସ୍ୟା ଯୋଗ ସମାଧିରେ । ସମ୍ମତ ପୁତ୍ରମାନଙ୍କରେ ॥ ୧୦
୪ ଯେ ବିପ୍ରେ ନାରାୟଣପର । କରୁଣ ଶାନ୍ତ ସାଧୁ ଧୀର ॥ ୧୧
ଏ ରୂପେ ତୁମ୍ଭ ପ୍ରାୟ ଯେହି । ଜାଣନ୍ତି ଗୁହ୍ୟ କର୍ମ ସେହି ॥ ୧୨
ତହୁଁ ଇତର ଯେ ହୁଅନ୍ତି । ସେମାନେ ଜାଣି ନ ପାରନ୍ତି ॥ ୧୩

ଶ୍ରୀନାରଦ ଉବାଚ

୫ ଯେ ଧର୍ମ ଲୋକମାନଙ୍କର । ମର୍ଯ୍ୟାଦାହେତୁ ଯେ ତାଙ୍କର ॥ ୧୪
ସେ ନାରାୟଣ ଭଗବାନ । ତାହାଙ୍କୁ କରିଣ ବନ୍ଦନ ॥ ୧୫
ମୁଖରୁ ନାରାୟଣଙ୍କର । ଯାହା ମୁଁ କରିଛି ଗୋଚର ॥ ୧୬
ସେ ଧର୍ମ ଅଟେ ସନାତନ । ସେ କଥା କରିବି କଥନ ॥ ୧୭
୬ ଦକ୍ଷଦୁହିତା ମୂର୍ତ୍ତିଠାରେ । ଯେ ପୂର୍ବେ ଆପଣା ଅଂଶରେ ॥ ୧୮
ଧର୍ମସକାଶୁଁ ହେଲେ ଜାତ । ପ୍ରାଣୀଙ୍କ ମଙ୍ଗଳ ନିମିତ୍ତ ॥ ୧୯
ତପ ଆଚରୁଛନ୍ତି କ୍ରମେ । ଅଦ୍ୟାପି ବଦରିକାଶ୍ରମେ ॥ ୨୦

---

୧. ଯେ ବ୍ରହ୍ମା ପତି ପ୍ରଜାଙ୍କର ।

୭ ଯେ ହରି ସର୍ବବେଦମୟ । [1]ଧର୍ମର ମୂଳ ସେ ଅବ୍ୟୟ ॥ ୨୧
ବେଦ ଜାଣିଲା ଲୋକଙ୍କର । ସ୍ମୃତି ହିଁ ପ୍ରମାଣ ଆବର ॥ ୨୨
ହେ ନୃପ ! ପ୍ରାଣୀଙ୍କ ମାନସ । ଯେଣେ ସେ ହୁଅଇ ସନ୍ତୋଷ ॥ ୨୩
୮ ସତ୍ୟ ଶଉଚ ଦୟା ଶମ । ଏକାଦଶ୍ୟାଦି ବ୍ରତ ଦମ ॥ ୨୪
ଅହିଂସା ବ୍ରହ୍ମଚର୍ଯ୍ୟ ଦାନ । ଯେ ଯଥୋଚିତ ଜପ ଆନ ॥ ୨୫
ଯେ ଯୁକ୍ତ ଅଯୁକ୍ତ ବିଚାର । ତିତିକ୍ଷା ଅକୁଟିଳାଚାର ॥ ୨୬
୯ ସନ୍ତୋଷ ମହତସେବନ । ପ୍ରବୃତ୍ତ କର୍ମର ବର୍ଜନ ॥ ୨୭
ନିଷ୍କାମ କର୍ମ ଯେ ଲୋକର । ଅବଲୋକନ ଯେ ତାହାର ॥ ୨୮
ବୃଥା ଆଳାପ ବିବର୍ଜନ । ଦେହ ବିଭିନ୍ନ ଆତ୍ମଜ୍ଞାନ ॥ ୨୯
୧୦ ପ୍ରାଣୀମାନଙ୍କ ଯଥାଯୋଗ୍ୟ । ଅନ୍ନ ଆଦିରେ ଯେ ବିଭାଗ ॥ ୩୦
ହେ ନୃପ ! ସେମାନଙ୍କ ଠାର । ଆତ୍ମା ଦେବତା ବୁଦ୍ଧି ଆର ॥ ୩୧
ମନୁଷ୍ୟମାନଙ୍କର ଠାରେ । ସେ ବୁଦ୍ଧି ଆଚରେ ବେଭାରେ ॥ ୩୨
୧୧ ମହତଜନଙ୍କର ଗତି । ଅଟନ୍ତି ଏ ଯେଉଁ ଶ୍ରୀପତି ॥ ୩୩
ଏହାଙ୍କ ଶ୍ରବଣ କୀର୍ତ୍ତନ । ସ୍ମରଣ ସେବନ ଅର୍ଚ୍ଚନ ॥ ୩୪
ପ୍ରଣାମ, ଦାସ୍ୟ ମିତ୍ରପଣ । ଯେ ପୁଣ ଆତ୍ମସମର୍ପଣ ॥ ୩୫
୧୨ ସମସ୍ତ ଲୋକମାନଙ୍କର । ଏ ସାଧାରଣ ଧର୍ମ ସାର ॥ ୩୬
ହେ ନୃପ ! ତିରିଶ ଲକ୍ଷଣ । ସଂଯୁତ ଧର୍ମ ଏ ପ୍ରମାଣ ॥ ୩୭
ସକଳ ଆତ୍ମା ଭଗବାନ । ଯେଣେ ହୁଅନ୍ତି ତୋଷମନ ॥ ୩୮
୧୩ ଗର୍ଭାଧାନାଦି କର୍ମମାନ । ଯହିଁରେ ନୁହଇ ବିଚ୍ଛିନ୍ନ ॥ ୩୯
[2]ଦ୍ୱିଜ ଶବଦେ ଖ୍ୟାତ ସେହି । ଯାହାକୁ ବ୍ରହ୍ମା ଛନ୍ତି କହି ॥ ୪୦
ବିଶୁଦ୍ଧ କୁଳରେ ଆଚାରେ । ଶୁଦ୍ଧ ଅଟନ୍ତି ଯେ ସଂସାରେ ॥ ୪୧
ସେ ବିପ୍ରମାନଙ୍କର ଦାନ । ବିହିତ ଯାଗ ଅଧ୍ୟୟନ ॥ ୪୨
ବ୍ରହ୍ମଚର୍ଯ୍ୟାଦି ଆଶ୍ରମର । ଯେ କ୍ରିୟା କଥିତ ଇତର ॥ ୪୩
୧୪ ବିପ୍ରର ପ୍ରତିଗ୍ରହ ଦାନ । ଯେ ଅଧ୍ୟୟନ ଅଧ୍ୟାପନ ॥ ୪୪

---

୧. ଶ୍ରୁତିଃ ସ୍ମୃତିଃ ସଦାଚାରଃ ସ୍ୱସ୍ୟ ଚ ପ୍ରିୟମାତ୍ମନଃ ।
ସମ୍ୟକ୍ ସଂକଳ୍ପଜଃ କାମୋ ଧର୍ମମୂଳମିଦଂ ସ୍ମୃତମ୍ ॥ (ଯାଜ୍ଞବଲ୍କ୍ୟ)

ବେଦୋଽଖିଳୋ ଧର୍ମମୂଳଂ ସ୍ମୃତିଶୀଳେ ଚ ତଦ୍‌ବିଦାମ୍ ।
ଆଚାରଶ୍ଚୈବ ସାଧୂନାମାତ୍ମନସ୍ତୁଷ୍ଟିରେବ ଚ ॥ (ମନୁ)

୨. ବିବାହମାତ୍ରଂ ସଂସ୍କାରଂ ଶୂଦ୍ରୋଽପି ଲଭତାଂ ସଦା ।
ନ କେନଚିଦ୍ ସମସୃଜଚ୍ଛନ୍ଦସା ତଂ ପ୍ରଜାପତିଃ ॥ (ସ୍ମୃତିଃ)

"ଗାୟତ୍ର୍ୟା ବ୍ରାହ୍ମଣମସୃଜତ୍, ତ୍ରିଷ୍ଟୁଭା ରାଜନ୍ୟଂ, ଜଗତ୍ୟା ବୈଶ୍ୟଂ, ନ କେନଚିଦ୍ ଶୂଦ୍ରମ୍ ।
(ଶ୍ରୁତିଃ)"

ଯଜନ ଯାଜନ ଯେ ଦୁଇ । [1]ଏ ଷଡ଼ ବୃତ୍ତିରୂପ ହୋଇ ॥
ଯେ ପୁଣି ଅଟଇ ରାଜନ । ସେ ହୋଏ ପ୍ରତିଗ୍ରହହୀନ ॥
ଯାଜନ ଅଧ୍ୟାପନ[2] ତାର । ବିପତ୍ତିକାଳରେ ସ୍ୱୀକାର ॥
ଯେ ରାଜା ପ୍ରଜାଙ୍କୁ ପାଳଇ । ତାହାର ବୃତ୍ତି ଏ ଅଟଇ ॥
ବ୍ରାହ୍ମଣବ୍ୟତିରେକବର୍ଣ୍ଣେ । ଯେ ଆଜ୍ଞା କରାଦି ଆଦାନେ ॥
୧୫ କୃଷି ବାଣିଜ୍ୟ ଆଦିମାନ । ବୈଶ୍ୟର ବୃତ୍ତି ଏ ବିଧାନ ॥
ଏମନ୍ତ ବୈଶ୍ୟ ଯେ ସେ ନିତ୍ୟ । ବ୍ରହ୍ମକୁଳକୁ ଅନୁଗତ ॥
ସାମାନ୍ୟେ ଦ୍ୱିଜମାନଙ୍କର । ଯେ ସେବା ବୃତ୍ତି ସେ ଶୂଦ୍ରର ॥
ବିଶେଷେ ସ୍ୱାମୀ ଯେ ଅଟଇ । ତା' ସେବା ବୃତ୍ତି ତାର ହୋଇ ॥
୧୬ କୃଷିକି ଆଦି ହୋଇ ଆନ । ଯେ ବା ବିଚିତ୍ର ବାର୍ତ୍ତାମାନ ॥
ପ୍ରଗଲ୍‌ଭ ଭାବରେ ରହିତ । ଯେ ଅବା ଅଯାଚିତ ବିତ୍ତ ॥
ଯାଚଞ୍ଚା ଯେବା ଦିନୁଁଦିନ । ଯେ ଶାଳିକ୍ଷେତ୍ରଆଦିମାନ ॥
ଧାନ୍ୟମଞ୍ଜରୀମାନ ତହିଁ । ସ୍ୱାମୀ ଯା' ଛାଡ଼ି ଯାଇ ଥାଇ ॥
'ଶିଳ' ନାମ ତା' ଉପାଦାନ । ଯେ ପୁଣ ହଟ୍ଟ ଆଦି ସ୍ଥାନ ॥
ତହିଁ ଯେ କ'ଣ ପଡ଼ିଥାଇ । ତା' ଘେନିମାକୁ 'ଉଞ୍ଛ' କହି ॥
ଶିଳ ଉଞ୍ଛକୁ ଏକ କରି । ଏ ରୂପେ ବିପ୍ରବୃତ୍ତି ଚାରି ॥
ଯେ ଉତ୍ତରକୁ ଯେ ଉତ୍ତର । କ୍ରମେ ସେ ବୃତ୍ତି ଅଟେ ସାର ॥
୧୭ ନୀଚ ଅଟଇ ଯେଉଁ ଜନ । ଅଧ୍ୟାପନାଦି ବୃତ୍ତିମାନ ॥
ସେ ନର ସ୍ୱୀକାର ନ କରେ । ବିପତ୍ତି ନ ଥିବା ଦଶାରେ ॥
କେବଳ ଛାଡ଼ି କ୍ଷତ୍ରିୟକୁ । ବର୍ଜିଣ ସେ ପ୍ରତିଗ୍ରହକୁ ॥
ବିପତ୍ତିମାନଙ୍କରେ ଆନ । ଭଜେ ସବୁରି ବୃତ୍ତିମାନ ॥
୧୮ ଜୀଇବ ଋତ ଅମୃତରେ । ଅଥବା ମୃତ ପ୍ରମୃତରେ ॥
ସତ୍ୟାନୃତରେ ଅବା ଜୀଏ । କେବଳ ଶ୍ୱବୃତ୍ତିରେ ନୋହେ ॥
୧୯ ଉଞ୍ଛଶିଳକୁ କହି ଋତ । ଯେ ଅଯାଚିତ ସେ ଅମୃତ ॥
୨୦ ନିତ୍ୟ ଯାଚଞ୍ଚା ଅଟେ ମୃତ । କର୍ଷଣ ଅଟଇ ପ୍ରମୃତ ॥
ବାଣିଜ୍ୟ ସତ୍ୟାନୃତ ଖ୍ୟାତି । ଯେ ନୀଚସେବା ସେ ସ୍ୱବୃତ୍ତି ॥
ସେ କଥା ନିନ୍ଦିତ ଅଟଇ । ବିପ୍ର ରାଜନ୍ୟ ତା' ବର୍ଜଇ ॥
ବ୍ରାହ୍ମଣ ସର୍ବବେଦମୟ । ନୃପ ସମସ୍ତ ଦେବକାୟ ॥

---

୧. ଷଣ୍ଣାଂ ତୁ କର୍ମଣାମସ୍ୟ ତ୍ରୀଣି କର୍ମାଣି ଜୀବିକାଃ । ୬ଟି କର୍ମର ୩ଟି ଜୀବିକା ।
ଯାଜନାଧ୍ୟାପନେ ଚୈବ ବିଶୁଦ୍ଧାଚ୍ଚ ପ୍ରତିଗ୍ରହଃ ॥ (ମନୁ)
ଶ୍ରୀମୁଖେ ଆଜ୍ଞାଛନ୍ତି ଦେଇ (ପାଠାନ୍ତର) । ଯାଜନ, ଅଧ୍ୟାପନ ଓ ବିଶୁଦ୍ଧଠାରୁ ପ୍ରତିଗ୍ରହ ।

୨. ଅଶ୍ୱପତି ଓ କୈକେୟ ପ୍ରଭୃତି କ୍ଷତ୍ରିୟ ରାଜାମାନେ ଉପଦେଷ୍ଟା ଥିବାର ଶ୍ରୁତିରୁ ଜଣାଯାଏ ।
(ସ୍ୱାମୀ)

୨୧ ତପସ୍ୟା ଶୌଚ କ୍ଷମା ଦମ । ସନ୍ତୋଷ ଋଜୁତ୍ୱ ଯେ ଶମ ॥ ୭୩
ଜ୍ଞାନ କରୁଣା ସତ୍ୟବାଣୀ । ଶ୍ରୀବିଷ୍ଣୁପରତ୍ୱ ଯେ ପୁଣି ॥ ୭୪
ଯେ ପୁଣ ଅଟଇ ବ୍ରାହ୍ମଣ । ତାହାର ଏତେକ ଲକ୍ଷଣ ॥ ୭୫
୨୨ ଶଉର୍ଯ୍ୟ ଦାନ ଧୈର୍ଯ୍ୟ ତେଜ । ଯେ କ୍ଷମା ଆତ୍ମାଜୟ ବୀର୍ଯ୍ୟ ॥ ୭୬
ପ୍ରସାଦ ବ୍ରହ୍ମଣ୍ୟତା ପୁଣ । ରକ୍ଷଣ କ୍ଷତ୍ରିୟଲକ୍ଷଣ ॥ ୭୭
୨୩ ଗୁରୁଙ୍କ ଠାରେ ଅଚ୍ୟୁତରେ । ଭକ୍ତି କରିବ ଦେବତାରେ ॥ ୭୮
ତ୍ରିବର୍ଗ କାମ ଅର୍ଥ ଧର୍ମ । ତା' ରକ୍ଷାଅର୍ଥେ କରେ କର୍ମ ॥ ୭୯
ନିତ୍ୟ ଉଦ୍ୟମ କରୁଥିବ । ଅଟଇ ଯେ ଆସ୍ତିକଭାବ ॥ ୮୦
ନିପୁଣ ଭାବ ଯେବା ପୁଣ । ଏ ଅଟେ ବୈଶ୍ୟର ଲକ୍ଷଣ ॥ ୮୧
୨୪ ଶଉଚ ସାଧୁନମସ୍କାର । ଅମାୟା ସେବା ସ୍ୱାମୀଠାର ॥ ୮୨
ମନ୍ତ୍ରବିହୁନେ ନମସ୍କାରେ । [1]ଯା ପଞ୍ଚଯଜ୍ଞକୁ ବିସ୍ତାରେ ॥ ୮୩
ଗୋ-ବିପ୍ରରକ୍ଷା ସତ୍ୟବାଣୀ । ଅସ୍ତେୟ ଶୂଦ୍ରଚିହ୍ନ ଜାଣି ॥ ୮୪
୨୫ ପତିର ସେବନ ଯେ ନିତି । ତାଠାରେ ଅନୁକୂଳ ରୀତି ॥ ୮୫
ପତିର ଯେତେ ବନ୍ଧୁ ଥାନ୍ତି । ତାହାଙ୍କ ଠାରେ ଅନୁବୃତ୍ତି ॥ ୮୬
ପତିର ଯେଉଁ ଧର୍ମମାନ । ତାର ଧାରଣ ଅନୁଦିନ ॥ ୮୭
ପତି ଦେବତା ଯାହାଙ୍କର । ଏ ଧର୍ମ ସେହି ସ୍ତିରୀଙ୍କର ॥ ୮୮
୨୬ ନିତ୍ୟେ ମଣ୍ଡିତ ହୋଇ ଥାଇ । ଉପକରଣ ଗୃହେ ଯେହି ॥ ୮୯
କରିଣ ନିର୍ମଳ ସେମାନ । ସଂସ୍କାର କରେ ଦିନୁଁ ଦିନ ॥ ୯୦
ଉପଲେପନ ସଂମାର୍ଜନେ । ଗୃହର ମଣ୍ଡନ[2] ବର୍ତ୍ତନେ ॥ ୯୧
୨୭-୨୮ ଯେ ଉଚ୍ଚ ନୀଚ କାମମାନେ । ବିନୟେ ଇନ୍ଦ୍ରିୟଦମନେ ॥ ୯୨
ଯେ ପ୍ରେମ ସତ୍ୟ ପ୍ରିୟ ବାଣୀ । ସେମାନଙ୍କରେ ସାଧ୍ୱୀ ପୁଣି ॥ ୯୩
ପତିକି କାଳରେ କାଳରେ । ଭଜଇ ମନଅନୁସାରେ ॥ ୯୪
ଅଲୋଭୀ ଅଳସରହିତ । ଧର୍ମଜ୍ଞ ସଂତୋଷସଂଯୁତ ॥ ୯୫
ସମସ୍ତ କାର୍ଯ୍ୟେ ସାବଧାନ । କହେ ପ୍ରିୟ ସତ୍ୟବଚନ ॥ ୯୬
ଶୁଦ୍ଧ-ଆଚାର ସ୍ନେହବତୀ । ଏମନ୍ତ ହୋଇଣ ଯୁବତୀ ॥ ୯୭
[3]ଯେ ମହାପାତକୀ ନୁହଇ । ଏମନ୍ତ ପତିକି ଭଜଇ ॥ ୯୮
୨୯ ପତିକି ଲକ୍ଷ୍ମୀପ୍ରାୟ ହୋଇ । ହରିଭାବରେ ଯେ ଭଜଇ ॥ ୯୯
ତଦ୍‌ପରା ହୋଇଥାଇ ନିତି । ହରିସ୍ୱରୂପୀ ଯେଉଁ ପତି ॥ ୧୦୦
ତା' ସଙ୍ଗେ ଲକ୍ଷ୍ମୀପ୍ରାୟ ହୋଇ । ବୈକୁଣ୍ଠେ ହରଷ ଲଭଇ ॥ ୧୦୧
୩୦ ସଂକରଜାତିମାନଙ୍କର । ଯେ ବୃତ୍ତି ସେ ସେହି କୁଳର ॥ ୧୦୨

୧. 'ନମସ୍କାରେଣ ମନ୍ତ୍ରେଣ ପଞ୍ଚଯଜ୍ଞାନ୍ ନ ହାପୟେଦ୍ ।' (ଯାଜ୍ଞବଲ୍କ୍ୟ)    ୨. ମଣ୍ଡଳ ।

୩. 'ଆ ଶୁଦ୍ଧେଃ ସଂପ୍ରତୀକ୍ଷ୍ୟୋ ହି ମହାପାତକଦୂଷିତଃ' ଅର୍ଥାତ୍ ମହାପାତକରେ ଦୂଷିତ ପତିକୁ ଶୁଦ୍ଧିପର୍ଯ୍ୟନ୍ତ ଅପେକ୍ଷା କରିବ (ଯାଜ୍ଞବଲ୍କ୍ୟ) ।

ରଜକ ଚର୍ମକାର ଆଦି । ଅନ୍ତ୍ୟଜ[1] ଜାତି ଯେ ପ୍ରସିଦ୍ଧି ।। ୧୦୩
ଚଣ୍ଡାଳ ପୁକ୍କଶାଦି ଆନ । ଅନ୍ତେବସାୟୀ[2] ଯେ ବା ଜନ ।। ୧୦୪
ସେ ଯେବେ ଅପାପୀ ଅଚୌର । କୁଳଜ ବୃତ୍ତି ତାହାଙ୍କର ।। ୧୦୫
୩୧ [3]ହେ ନୃପ ! ସ୍ୱଭାବବିହିତ । ଯେ ଧର୍ମ ଯୁଗେ ଯୁଗେ ଖ୍ୟାତ ।। ୧୦୬
ସେ ପ୍ରାଣୀଙ୍କର ଇହ ପର । ଦୁଇ ଲୋକରେ ସୁଖକର ।। ୧୦୭
ଯେ ବେଦଦୃଷ୍ଟି[4] ବିପ୍ରଜନ । କହି ଅଛନ୍ତି ଏ ବଚନ ।। ୧୦୮
୩୨ ସ୍ୱଭାବବିହିତ ବୃତ୍ତିରେ । ବର୍ତ୍ତି ଯେ ସ୍ୱକର୍ମ ଆଚରେ ।। ୧୦୯
ଛାଡ଼ି ସ୍ୱଭାବଜ କର୍ମକୁ । କ୍ରମେ ସେ ଯାଇ ନିର୍ଗୁଣକୁ ।। ୧୧୦
୩୩ କ୍ଷେତ୍ରରେ ପୁଣ ପୁଣ ହୋଇ । ଯେବଣ ବୀଜ ବୁଣା ହୋଇ ।। ୧୧୧
ସେ ପୁଣ ତାହାରି ଇଚ୍ଛାରେ । ନିର୍ବୀର୍ଯ୍ୟ ହୁଅଇ କ୍ରମରେ ।। ୧୧୨
ପୁଣି ପ୍ରସବ ଅର୍ଥେ ନୋହି । ବୁଣିଲା ବୀଜ ନାଶ ଯାଇ ।। ୧୧୩
୩୪ ବାସନାରୂପେ କାମମାନେ । ରହିଅଛନ୍ତି ଯେଉଁ ମନେ ।। ୧୧୪
ବେଦୋକ୍ତ ନିୟମରେ ଥାଇ । ବହୁତ କାମ ଯେ ଭୁଞ୍ଜାଇ ।। ୧୧୫
ନିତ୍ୟ ନୈମିତ୍ତେ ସେହି ମନ । ବିଶୁଦ୍ଧ ହୋଇ ହେ ରାଜନ ।। ୧୧୬
ସେ କାମମାନଙ୍କରେ ଦୋଷ । ଦରଶନରେ ସେ ମାନସ ।। ୧୧୭
କ୍ରମରେ ବିରକତ ହୋଏ । ଯଯାତି ସୌଭରିଙ୍କ ପ୍ରାଏ ।। ୧୧୮
ଜ୍ୱଳିତ ଅଗ୍ନି ଯେ ହୁଅଇ । ଘୃତବିନ୍ଦୁରେ ନ ଲିଭଇ ।। ୧୧୯
ପଡ଼ନ୍ତେ ମହା ଘୃତପୂର । ନାଶ ଯାଇ ସେ ବୈଶ୍ୱାନର ।। ୧୨୦
୩୫ ବର୍ଣ୍ଣପ୍ରକାଶକ ହୋଇଣ । ଯାହାର ଯେବଣ ଲକ୍ଷଣ ।। ୧୨୧
ଯଦି ସେ ଆନ ବର୍ଣ୍ଣେ ଦିଶେ । ସେ ବର୍ଣ୍ଣେ ତାହାକୁ ନିର୍ଦ୍ଦିଶେ ।। ୧୨୨
ଶ୍ରୀକୃଷ୍ଣ ପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁମତି ।। ୧୨୩
ସପ୍ତମସ୍କନ୍ଧ ଭାଗବତ । ଭାଷାପ୍ରବନ୍ଧେ କୃତ ଗୀତ ।। ୧୨୪
ସାଧୁଜନଙ୍କ ସୁଖପାଇଁ । ପରମାନନ୍ଦେ ଗାଉଥାଇ ।। ୧୨୫

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ସଦାଚାରନିର୍ଣ୍ଣୟୋ
ନାମ ଏକାଦଶୋଽଧ୍ୟାୟଃ ।।

---

୧. ରଜକଶ୍ଚର୍ମକାରଶ୍ଚ ନଟୋ ବରୁଡ଼୍ ଏବ ଚ ।
କୈବର୍ତ୍ତ-ମେଦ-ଭିଲ୍ଲଶ୍ଚ ସପ୍ତୈତେ ଅନ୍ତ୍ୟଜାଃ ସ୍ମୃତାଃ ।।
(ମେଦ = ସ୍ତ୍ରୀମାନଙ୍କ ଚାକର)

ନଟ = ଭ୍ରଷ୍ଟ କ୍ଷତ୍ରିୟଜ ।
ବରୁଡ଼୍ = ନୀଚ୍ ସଙ୍କର ଜାତି ।
ଭିଲ୍ଲ = ବଣୁଆ ଜାତି ।

୨. ଗ୍ରାମ ବା ଜନପଦର ଅନ୍ତରେ 'ବାସ କରୁଥିବା ଜନ ।

୩. ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାତ୍ ସ୍ୱନୁଷ୍ଠିତାତ୍ ।
ସ୍ୱଭାବବିହିତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ ।। (ଗୀତା)

୪. ବେଦଦୃଷ୍ଟି = ବେଦ ଦୃଷ୍ଟି ଯାହାଙ୍କର ସେ ।

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ବର୍ଣ୍ଣ୍ୟତେ ଧର୍ମୋ ବ୍ରହ୍ମଚାରିବନସ୍ଥୟୋଃ ।
ଚତୁର୍ଣ୍ଣାମାଶ୍ରମାଣାଂ ଚ ସାଧାରଣ୍ୟେନ କଣ୍ଟନ ॥ ୧

ଶ୍ରୀନାରଦ ଉବାଚ

୧ ଗୁରୁକୁଳରେ ବ୍ରହ୍ମଚାରୀ । ବସନ୍ତେ ଗୁରୁହିତ କରି ॥ ୧
ତପସ୍ୟା କ୍ଳେଶକୁ ସହଇ । ଦାସର ପ୍ରାଏ ନୀଚ ହୋଇ ॥ ୨
ଗୁରୁର ଠାରେ ଥାଇ ବର୍ତ୍ତି । କରେ ଗୁରୁରେ ଦୃଢ଼ ପ୍ରୀତି ॥ ୩
୨ ଗୁରୁ ଅନଳ ଦିବାକର । ଉତ୍ତମ ଯେଉଁ ଯେଉଁ ସୁର ॥ ୪
ସଂଧ୍ୟାସମୟରେ ପ୍ରଭାତେ । ତାଙ୍କୁ ସେବିବ ଶୁଦ୍ଧଚିତ୍ତେ ॥ ୫
ସଂଧ୍ୟାଦ୍ୱୟରେ ହୋଇ ମୌନ । ଜପିବ ବ୍ରହ୍ମ ସନାତନ ॥ ୬
୩ ଗୁରୁ ଡାକନ୍ତେ ବଶ ହୋଇ । ବେଦ ପଢ଼ିବ ଗୁରୁଠାଇଁ ॥ ୭
୪ ବେଦାରମ୍ଭରେ ସେ ପ୍ରାନ୍ତରେ । ଗୁରୁଚରଣ ନମେ ଶିରେ ॥ ୮
ମେଖଳା ଅଜିନବସନ । ଯେ ଦଣ୍ଡ[୧] କମଣ୍ଡଳୁ ଆନ ॥ ୯
ଯାହାର ଯେ ଅବା ବିହିତ । ଘେନିମ ଯଜ୍ଞ-ଉପବୀତ ॥ ୧୦
କେଶସଂସ୍କାର ନ କରିବ । ହସ୍ତରେ କୁଶ ଘେନିଥିବ ॥ ୧୧
୫ ସାୟଂ ପ୍ରାତରେ ଭିକ୍ଷା କରେ । ତା ନିବେଦିବ ଗୁରୁଠାରେ ॥ ୧୨
୬ ସେ ଗୁରୁ ଯେବେ ଆଜ୍ଞା ଦେବ । ସେ ଅନ୍ନ ଭୋଜନ କରିବ ॥ ୧୩
ଆଜ୍ଞା ଅଭାବେ ଉପବାସେ । ରହିବ କେହୁଣି ଦିବସେ ॥ ୧୪
ଅଳ୍ପ ଭୋଜନ ସୁଚରିତ । ବିଜିତେନ୍ଦ୍ରିୟ ଶ୍ରଦ୍ଧାବନ୍ତ ॥ ୧୫
କର୍ମରେ ଦକ୍ଷ ହୋଇଥିବ । ସ୍ତିରୀନିର୍ଜିତ ଯେ ମାନବ ॥ ୧୬
ଯେ ଅବା ସ୍ତିରୀଜନ ଆନ । ତହିଁରେ ଯେତେ ପ୍ରୟୋଜନ ॥ ୧୭
କରିବ ତେତେ ବ୍ୟବହାର । ବର୍ଜିବ ଅଧିକ ପ୍ରଚାର ॥ ୧୮
୭ ଯେ ବ୍ରହ୍ମଚାରୀ ଗୃହହୀନ । ବର୍ଜିବ ନାରୀଗାଥାମାନ ॥ ୧୯
ପ୍ରମାଥୀ ଯେ ଇନ୍ଦ୍ରିୟମାନ । ହରନ୍ତି ଯତିର ହିଁ ମନ ॥ ୨୦
୮ ମର୍ଦ୍ଦନ କେଶପ୍ରସାଧନ । ସ୍ନାନ ଅଭ୍ୟଙ୍ଗ ଆଦିମାନ ॥ ୨୧
ସ୍ତିରୀ ଅଟନ୍ତି ଯେ ଗୁରୁର । ଯୁବତି ଯେ ଅବା ଇତର ॥ ୨୨
ତାହାଙ୍କ ହସ୍ତେ ଯୁବା ନର । ନ କରାଇବ ଆପଣାର ॥ ୨୩
୯ ପ୍ରମଦା ଅଟେ ଅଗ୍ନିନାମ । ପୁରୁଷ ଘୃତକୁମ୍ଭସମ ॥ ୨୪
ଦୁହିତାକୁ ହିଁ ଏକାନ୍ତରେ । ଘେନିମ ନାହିଁ ସଙ୍ଗତରେ ॥ ୨୫
ଏକାନ୍ତ ସମୟ ଯେ ନୋହି । କେଶବନ୍ଧନ ଆଦି ହୋଇ ॥ ୨୬
ଯେ କର୍ମ ତହିଁରୁ ଇତର । କରିବ ସେ କର୍ମ ମାତର ॥ ୨୭

---

୧ । 'ପାଲାଶୋ ଦଣ୍ଡୋ ବ୍ରାହ୍ମଣସ୍ୟ' । (ଶ୍ରୁତିଃ)

୧୦ ନିଜସ୍ୱରୂପସାକ୍ଷାତ୍‌କାରେ । ଯେ ଦେହ ଇନ୍ଦ୍ରିୟ ଆଦିରେ ॥ ୨୮
ଆଭାସ ହୋଏ ବିଦ୍ୟମାନ । ସେ କଥା କରିଣ କଳ୍ପନ ॥ ୨୯
ଏ ଜୀବ ଯେତେ କାଳ ଯାଏ । ସ୍ୱତନ୍ତ୍ର ହୋଇଣ ନ ଥାଏ ॥ ୩୦
ଏ ନାରୀ ଏ ଅଟେ ପୁରୁଷ । ଏ ରୂପେ ଯେ ଭେଦ ପ୍ରକାଶ ॥ ୩୧
ସେ ତେତେକାଳ ପରିଯନ୍ତେ । ତୁଟି ନ ଥାଇ ତାର ଚିତ୍ତେ ॥ ୩୨
ସେ ଭେଦବୁଦ୍ଧିରୁ ତୁରିତ । ଭୋଗ୍ୟତାବୁଦ୍ଧି ହୋଏ ଜାତ ॥ ୩୩
୧୧ ଏ ସର୍ବ ଗୃହସ୍ଥ ଲୋକର । ବିହିତ ଯତିର ଆବର ॥ ୩୪
୧୨ ଋତୁରେ କରଇ ଗମନ । ଏମନ୍ତ ଯେଉଁ ଗୃହୀ ଜନ ॥ ୩୫
ତାହାର ବିକଳ୍ପେ ବିହିତ । ଗୁରୁସେବନ ଯେ ବିଦିତ ॥ ୩୬
ଶରୀରକେଶର ସଂସ୍କାର । ଚିତ୍ରଲିଖିତ ସ୍ତ୍ରୀ-ଆକାର ॥ ୩୭
ଆମିଷ ମଧୁ ଅଳଂକାର । ମର୍ଦ୍ଦନ ପୁଷ୍ପମାଳା ଆର ॥ ୩୮
ଶରୀରଲେପ ଯେ ଚନ୍ଦନେ । ଛାଡ଼ିବେ ବ୍ରତଧାରୀମାନେ ॥ ୩୯
୧୩ ବ୍ରାହ୍ମଣ ଏମନ୍ତ ପ୍ରକାରେ । ରହିଣ ଗୁରୁର ମନ୍ଦିରେ ॥ ୪୦
ଶିକ୍ଷାଦି ଯେତେ ଅଙ୍ଗମାନ । ଉପନିଷଦ ଯେତେ ଆନ ॥ ୪୧
ସେମାନଙ୍କର ସହିତରେ । ନିଜାଧିକାର ଅନୁସାରେ ॥ ୪୨
ତ୍ରିବେଦ ଅଧୟନ କରି । ତାହାର ଅର୍ଥକୁ ବିଚାରି ॥ ୪୩
୧୪ ଯେବେ ଶକତ ହୋଇଥାଇ । ଗୁରୁ ଯା' କାମନା କରଇ ॥ ୪୪
ଗୁରୁଙ୍କୁ ସେ ବର ଦେଇଣ । ତାହାଙ୍କ ଆଜ୍ଞାକୁ ଲଭିଣ ॥ ୪୫
ଗୃହସ୍ଥ ଆଶ୍ରମ କରଇ । ବନେ ପ୍ରବେଶ ଅବା ହୋଇ ॥ ୪୬
ସନ୍ନ୍ୟାସ ଦୀକ୍ଷା ଅବା କରେ । ରହେ ବା ଆଦ୍ୟ ଆଶ୍ରମରେ ॥ ୪୭
୧୫ ଅଗ୍ନିରେ ଗୁରୁରେ ଆତ୍ମାରେ । ସମସ୍ତ ପ୍ରାଣୀଙ୍କର ଠାରେ ॥ ୪୮
ନିଜ ଆଶ୍ରୟ ଯେତେ ଜୀବ । ତାଙ୍କ ସହିତେ ବାସୁଦେବ ॥ ୪୯
ପ୍ରବେଶ ହେଲା ପ୍ରାୟ ତହିଁ । ଦେଖିବ ନ ଥିଲେ ହେଁ ସେହି ॥ ୫୦
୧୬ ଏ ରୂପେ ବ୍ରହ୍ମଚାରୀ ଯେହି । ଯେ ବାନପ୍ରସ୍ଥ ଯତି ଗୃହୀ ॥ ୫୧
ଏମନ୍ତ ରୂପେ ଆଚରନ୍ତେ । ବିଜ୍ଞେୟ ଯେ ତାହା ଜାଣନ୍ତେ ॥ ୫୨
ପରମ ବ୍ରହ୍ମ ଯେ ଅଟନ୍ତି । ତାହାଙ୍କୁ ନିଶ୍ଚୟେ ଲଭନ୍ତି ॥ ୫୩
୧୭ ବନସ୍ଥ ଲୋକର ବିହିତ । ନିୟମ ଯେ ମୁନିସମ୍ମତ ॥ ୫୪
କହିବା ଏବେ ସେମାନଙ୍କୁ । ମୁନି ଆଚରନ୍ତେ ତାହାଙ୍କୁ ॥ ୫୫
ଏ ଲୋକୁଁ କରଇ ଗମନ । ଯେ ମହର୍ଲୋକ ଋଷିସ୍ଥାନ ॥ ୫୬
୧୮ କର୍ଷଣବିନୁ ଯେ ନିଷ୍ପନ୍ନ । ଅଶନ କରିବ ସେ ଅନ୍ନ ॥ ୫୭
କର୍ଷଣବିନୁ ଶସ୍ୟ ଯେହି । ଅକାଳେ ପାଚେ ତା' ନ ଖାଇ ॥ ୫୮
ଯେ କଞ୍ଚା ଯେ ପକ୍ୱ ଅଗ୍ନିରେ । ଯେ ପକ୍ୱ ସୂର୍ଯ୍ୟକିରଣରେ ॥ ୫୯
ଏମନ୍ତ ଫଳ ଆଦିମାନ । ତାହା ସେ କରିବ ଭୋଜନ ॥ ୬୦

୧୯ ଯେ ଚରୁ ପୁରୋଡାଶମାନ । ନିତ୍ୟରେ ହୁଅଇ ବିଧାନ ॥ ୬୧
ବନଜ ନୀବାର ଆଦିରେ । ସମ୍ପାଦି ତାହା ଶରଧାରେ ॥ ୬୨
ମିଳିଲେ ନବ ନବ ଅନ୍ନ । ତ୍ୟାଗ କରିବ ପୁରାତନ ॥ ୬୩
୨୦ ହିମ ପବନ ହୁତାଶନ । ବରଷା ସୂର୍ଯ୍ୟତେଜମାନ ॥ ୬୪
ସହିବ ସ୍ୱୟେଂ ଏମାନଙ୍କୁ । ରଖିବା ଅର୍ଥେ ଅନଳକୁ ॥ ୬୫
ଯେ ପର୍ଣ୍ଣଶାଳା ଗିରିଦରୀ । ସେବିବ ତାହା ଗୃହ କରି ॥ ୬୬
୨୧ ଯେ ଶ୍ମଶ୍ରୁ ରୋମ ନଖ କେଶ । ଶରୀରେ ଯେ ମଳି ପ୍ରକାଶ ॥ ୬୭
ବକଳ ଦଣ୍ଡ ହୁତାଶନ । ଯେ କମଣ୍ଡଳୁ ଯେ ଅଜିନ ॥ ୬୮
ଏ ଆଦି ପରିଚ୍ଛଦ ପୁଣ । ଧରନ୍ତେ ଜଟିଳ ହୋଇଣ ॥ ୬୯
୨୨ ବିପିନେ ଦ୍ୱାଦଶ ବରଷ । ମୁନି କରିବ ନିଜ ବାସ ॥ ୭୦
ଅଥବା ଅଷ୍ଟ ଚାରି ଦୁଇ । ଏକ ବରଷ ରହି ତହିଁ ॥ ୭୧
ତପକ୍ଲେଶରୁ ନିଜ ମତି । ଯେମନ୍ତେ ନୁହଇ ବିହତି ॥ ୭୨
୨୩ ଯେବେ ସେ ଆପଣା କ୍ରିୟାରେ । ଜ୍ଞାନ ଅଭ୍ୟାସ ବିଷୟରେ ॥ ୭୩
ସମର୍ଥ ହୋଇ ନ ପାରଇ । ଜରା ବ୍ୟାଧିରେ ପୀଡ଼ା ପାଇ ॥ ୭୪
ଯେ ଅନଶନ ଆଦି ବ୍ରତ । ସେମାନ କରିବ ବିହିତ ॥ ୭୫
୨୪ ସେବଇ ଯେଉଁ ଅନଳକୁ । ଆତ୍ମାରେ ଆରୋପି ତାହାକୁ ॥ ୭୬
ଅହଂ ମମତା ଯେବା ପୁଣ । ତାହାକୁ ସନ୍ନ୍ୟାସ କରିଣ ॥ ୭୭
ଆକାଶ ଆଦି ହୋଇ ଯେତେ । କାରଣ ଖ୍ୟାତ ଏ ଜଗତେ ॥ ୭୮
ଯଥାଯୋଗ୍ୟରେ ତହିଁ ନେଇ । ଦେହକୁ ବିଲୀନ କରଇ ॥ ୭୯
୨୫ ଯେ ଦେହଗତ ଛିଦ୍ରମାନ । ଆକାଶେ କରିବ ତା' ଲୀନ ॥ ୮୦
ନିଃଶ୍ୱାସମାନଙ୍କୁ ବାତରେ । ଦେହଜ ଉଷ୍ମକୁ ତେଜରେ ॥ ୮୧
ରକତ ଶ୍ଳେଷ୍ମ ଶୁକ୍ରମାନ । ଜଳରେ କରିବ ବିଲୀନ ॥ ୮୨
ଯେ ଅସ୍ଥି ମାଂସ ଆଦି ହୋଇ । କଠିନ ଅଂଶ ଅବା ତହିଁ ॥ ୮୩
କ୍ଷିତିରେ ଲୀନ ତା' କରିବ । ଯେ ଯହୁଁ ଜାତ ହୋଇଥିବ ॥ ୮୪
୨୬ ବକ୍ତବ୍ୟ ସହିତେ ବଚନ । ଅଗ୍ନିରେ କରିବ ବିଲୀନ ॥ ୮୫
ଯେ ଶିଳ୍ପ ଯେବା କର ଦୁଇ । ଇନ୍ଦ୍ରଙ୍କ ଠାରେ ନ୍ୟାସେ ତାହି ॥ ୮୬
ପାଦକୁ ଗତିସହିତରେ । ନ୍ୟାସ କରିବ ବିଷ୍ଣୁଠାରେ ॥ ୮୭
ଶିଶ୍ନକୁ ରତି ସହିତରେ । ନ୍ୟାସିବ ପ୍ରଜାପତିଠାରେ ॥ ୮୮
୨୭ ପାୟୁ ବିସର୍ଗ ଯେବା ଦୁଇ । ମୃତ୍ୟୁରେ ନ୍ୟାସ କରେ ତାହି ॥ ୮୯
ଏମନ୍ତ ରୂପରେ ଏମାନ । ନିର୍ଦ୍ଦେଶ କରେ ଯଥାସ୍ଥାନ ॥ ୯୦
କର୍ଣ୍ଣକୁ ନାଦ ସହିତରେ । ନ୍ୟାସିବ ଦିଗମାନଙ୍କରେ ॥ ୯୧
ଚର୍ମକୁ ସ୍ପରଶ ସହିତେ । ପବନେ ବିନ୍ୟାସେ ତୁରିତେ ॥ ୯୨
୨୮ ହେ ନୃପ ! ରୂପ ଚକ୍ଷୁଦୁଇ । ଜ୍ୟୋତିରେ ପ୍ରବେଶ କରଇ ॥ ୯୩

| | | | | | |
|---|---|---|---|---|---|
| | ଜିହ୍ୱାକୁ ବରୁଣ ସଙ୍ଗରେ | । | ବିନ୍ୟାସ କରଇ ଜଳରେ | ।। | ୯୪ |
| | ଗନ୍ଧମାନଙ୍କେ ଯୁତ ହୋଇ | । | ଯେ କ୍ଷିତି ବିଦିତ ଅଟଇ | ।। | ୯୫ |
| | ବେନି ଅଶ୍ୱିନଙ୍କ ସଙ୍ଗରେ | । | ଘ୍ରାଣକୁ ନ୍ୟାସଇ ତହିଁରେ | ।। | ୯୬ |
| ୨୯ | ମନୋରଥଙ୍କ ସଙ୍ଗତରେ | । | ମନକୁ ଅର୍ପଇ ଚନ୍ଦ୍ରରେ | ।। | ୯୭ |
| | ବୋଧ୍ୟମାନଙ୍କ ସଙ୍ଗତରେ | । | ବୁଦ୍ଧିକି ଅର୍ପେ ବ୍ରହ୍ମାଠାରେ | ।। | ୯୮ |
| | ଅହଂମମତାପୂର୍ବ ଥାଇ | । | କର୍ମ ଯହିଁରୁ ଜାତ ହୋଇ | ।। | ୯୯ |
| | ସେ କର୍ମମାନଙ୍କୁ ରୁଦ୍ରରେ | । | ଅର୍ପଇ ଅହଂକାର ଦ୍ୱାରେ | ।। | ୧୦୦ |
| | ଚିତ୍ତକୁ ଚେତନା ସହିତେ | । | ଅର୍ପଇ କ୍ଷେତ୍ରଜ୍ଞେ ତୁରିତେ | ।। | ୧୦୧ |
| | ଯେ ଗୁଣମାନେ ହେତୁଭୂତ | । | ତେଣେ ଯେ ବିକାର ସଂଯୁତ | ।। | ୧୦୨ |
| | ସେ କ୍ଷେତ୍ରଜ୍ଞଙ୍କୁ ନିର୍ବିକାର | । | ବ୍ରହ୍ମରେ ଅର୍ପଇ ସତ୍ୱର | ।। | ୧୦୩ |
| | ବିକାରବନ୍ତ ନିର୍ବିକାରେ | । | ଲୟ ହୁଅଇ କି ପ୍ରକାରେ | ।। | ୧୦୪ |
| | ମନେ କି ଏମନ୍ତ ବିଚାର | । | ଉପାଧିଲୟଦ୍ୱାରେ ତାର | ।। | ୧୦୫ |
| | ନିର୍ଗୁଣ ବ୍ରହ୍ମରେ ପ୍ରବେଶ | । | କହିବା ତହିଁର ଉଦ୍ଦେଶ | ।। | ୧୦୬ |
| ୩୦ | ଜଳରେ କ୍ଷିତିକି ମିଶାଇ | । | ସେ ଜଳ ଜ୍ୟୋତିରେ ଅର୍ପଇ | ।। | ୧୦୭ |
| | ଜ୍ୟୋତିକି ମିଶାଇ ପବନେ | । | ପୁଣ ସେ ବାତକୁ ଗଗନେ | ।। | ୧୦୮ |
| | ଅହଂତତ୍ତ୍ୱରେ ସେ ଆକାଶ | । | ସେ ଅହଂତତ୍ତ୍ୱ କରେ ନ୍ୟାସ | ।। | ୧୦୯ |
| | ମହତ୍ତତ୍ତ୍ୱରେ ପୁଣ ନେଇ | । | ତାହାକୁ ପ୍ରଧାନେ ଅର୍ପଇ | ।। | ୧୧୦ |
| | ସେ ପ୍ରକୃତିକି ନେଇ ଧୀରେ | । | ବିନ୍ୟସେ ପରମ ଆତ୍ମାରେ | ।। | ୧୧୧ |
| ୩୧ | ଏ ରୂପେ ସର୍ବୋପାଧି ନ୍ୟାସ | । | ହୁଅନ୍ତେ ଯହୁଁ ଅବଶେଷ | ।। | ୧୧୨ |
| | ସେ କ୍ଷେତ୍ରଜ୍ଞଙ୍କୁ ବ୍ରହ୍ମଭାବେ | । | ଜାଣିଣ ସେ ଜ୍ଞାନପ୍ରଭାବେ | ।। | ୧୧୩ |
| | ଅଦ୍ୱୟ ହୋଏ ତଦନ୍ତରେ | । | ବିରମେ ଏ ଘୋର ସଂସାରେ | ।। | ୧୧୪ |
| | ଦଗ୍ଧ ହୁଅନ୍ତେ କାଷ୍ଠମାନ | । | ଅନଳ ଲିଭଇ ଯେସନ | ।। | ୧୧୫ |
| | ଶ୍ରୀକୃଷ୍ଣପାଦପଦ୍ମଧ୍ୟାନେ | । | ହରଷ ଦୀନବନ୍ଧୁ ମନେ | ।। | ୧୧୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଆଶ୍ରମଧର୍ମୋ ନାମ ଦ୍ୱାଦଶୋଽଧ୍ୟାୟଃ ।।

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେ ଯତେର୍ଧର୍ମଃ ସାଧକସ୍ୟୋଚ୍ୟତେ ମହାନ୍ ।
ଅବଧୂତେତିହାସେନ ସିଦ୍ଧାବସ୍ଥା ଚ ବର୍ଣ୍ଣ୍ୟତେ ।। ୧

ଶ୍ରୀନାରଦ ଉବାଚ

| | | | | | |
|---|---|---|---|---|---|
| ୧ | ସମର୍ଥ ଯେ ଆତ୍ମବିଦ୍ୟାରେ | । | ସେ ଧ୍ୟାନ କରି ଏ ରୂପରେ | ।। | ୧ |
| | ସନ୍ନ୍ୟାସ କରି ଆଚରଣ | । | ପୃଥିବୀ କରଇ ଭ୍ରମଣ | ।। | ୨ |

ଗ୍ରାମରେ ଏକରାତ୍ର ରହି । ଏ ରୂପେ ବିଧି ଅଟେ ଯେହି ॥
ଶରୀରମାତ୍ର ଶେଷ ଥାଇ । ଅପେକ୍ଷା କାହାକୁ ହିଁ ନାହିଁ ॥
୨ ଯେବେ ଏ ବାସକୁ ଘେନଇଁ । କୌପୀନମାତ୍ର ଆଚ୍ଛାଦଇ ॥
ବଲ୍କଳ ଅଜିନାଦି ଆନ । କରଇ ଅବା ପରିଧାନ ॥
ଯେବଣ କାଳରେ ବିପତ୍ତି । ହୋଇ ନ ଥାଇ ଉପସ୍ଥିତି ॥
ଯେ ଦଣ୍ଡ ଆଦି ଯତିଚିହ୍ନ । ତ୍ୟାଗ ନ କରିବ ସେମାନ ॥
୩ } ଆତ୍ମାରେ ବିହାର ଯାହାର । ନ ଥାଇ ଆଶ୍ରୟ ଇତର ॥
୪ } ସମସ୍ତ ଭୂତେ ମିତ୍ରପଣ । ଶ୍ରୀନାରାୟଣପରାୟଣ ॥
ଶାନ୍ତ ଭାବକୁ ଭଜିଥାଇ । ସନ୍ନ୍ୟାସୀ ଚରେ ଏକା ହୋଇ ॥
କାର୍ଯ୍ୟକାରଣୁଁ ଭିନ୍ନ ହୋଇ । ଯେ ଆତ୍ମା ଅବ୍ୟୟ ଅଟଇ ॥
ତହିଁ ଦେଖିବ ଏ ବିଶ୍ୱକୁ । ଯେ ଆତ୍ମା ପରଂବ୍ରହ୍ମ ତାକୁ ॥
ସମସ୍ତ କାର୍ଯ୍ୟକାରଣରେ । ଦେଖିବ ନିବିଷ୍ଟ ଚିତ୍ତରେ[୧] ॥
୫ [୨]ସୁଷୁପ୍ତିକାଳେ ତମୋବୃତ । ହୋଇ ଥାଇ ଯେ ଆତ୍ମତତ୍ତ୍ୱ ॥
ଜାଗ୍ରତ ସ୍ୱପ୍ନେ ପୁଣ ସେହି । ବିକ୍ଷିପ୍ତ ହୋଇ ପ୍ରକାଶଇ ॥
ଆତ୍ମବିକ୍ଷେପ ତମ ଦୁଇ । ସନ୍ଧିସମୟରେ ନ ଥାଇ ॥
ଏଣୁ ଆତ୍ମାକୁ କରି ଲକ୍ଷ୍ୟ । ତା' ତତ୍ତ୍ୱ ଦେଖନ୍ତେ ପ୍ରତ୍ୟକ୍ଷ ॥
ଯେ ବନ୍ଧ ମୋକ୍ଷ ଅଟେ ଦୁଇ । ଦେଖନ୍ତେ ମାୟାରୂପେ ତାହି ॥
ଆତ୍ମାକୁ ପରଂବ୍ରହ୍ମଭାବେ । ଦେଖଇ ପୁଣ ସର୍ବଠାବେ ॥
୬ ଯେ ଧ୍ରୁବ ମୃତ୍ୟୁ ଏ ଦେହର । ଅଧ୍ରୁବ ଜୀବିତ ଯେ ଆର ॥
ତହିଁକି ଆନନ୍ଦ ନ ପାଇ । କାଳପ୍ରତୀକ୍ଷା କରିଥାଇ ॥
ପ୍ରାଣୀଙ୍କ ଜୀବନ ବିନାଶ । ଯେବଣ କାଳରୁ ପ୍ରକାଶ ॥
୭ ଯେ ଶାସ୍ତ୍ର ନୋହେ ଆତ୍ମପର । ଆସକ୍ତି ନ କରେ ତହିଁର ॥
ବିଦ୍ୟାଦି ବୃତ୍ତି ଯେବା ଆନ । ନ କରେ ତା' ଉପଜୀବନ ॥
ବିତଣ୍ଡା ଆଦି ଯୁତ ହୋଇ । ଯେ ତର୍କ ଦୂର କରେ ତାହି ॥
କେହୁଣି ପକ୍ଷ ନିର୍ବନ୍ଧରେ । ଆଶ୍ରୟ ନ କରେ ଚିତ୍ତରେ ॥
୮ ଶିଷ୍ୟମାନଙ୍କୁ ଲୋଭାଦିରେ । ନ ସଂପାଦିବ ବଳାତ୍କାରେ ॥
ବହୁତ ଗ୍ରନ୍ଥମାନ ଯେହି । ଅଭ୍ୟାସ ନ କରିବ ତାହି ॥
ଯେ ଶାସ୍ତ୍ରମାନଙ୍କ ବ୍ୟାଖ୍ୟାନ । କରିବ ତାହା ବିସର୍ଜନ[୩] ॥

---

୧. ଭାବରେ ।

୨. ନିଦ୍ରାଦୌ ଜାଗରସ୍ୟାନ୍ତେ ଯୋ ଭାବ ଉପଜାୟତେ ।
ତଂ ଭାବଂ ଭାବୟନ୍ନିତ୍ୟଂ ମୁଚ୍ୟତେ ନେତରୋ ଯତିଃ ॥
(ଯୋଗଗ୍ରନ୍ଥେ)

୩. ବିବର୍ଜନ ।

ଯେ ମଠ ଆଦି ନାନାକାର । କରିବ ନାହିଁ ସେ ବ୍ୟାପାର ।।
୯ ମହାତ୍ମା ଶାନ୍ତ ସମମତି । ଏମନ୍ତ ଅଟଇ ଯେ ଯତି ।।
ତାହାର ଧର୍ମକୁ କାରଣ । ଆଶ୍ରମ ନୋହେ, ଏ ପ୍ରମାଣ ।।
ଆଶ୍ରୟ କରି ଆଶ୍ରମକୁ । ଚରନ୍ତେ ଯମନିୟମକୁ ।।
ଜ୍ଞାନନିମିତ୍ତେ ଯତ୍ନ କରେ । ଜ୍ଞାନ ଉତ୍ପନ୍ନ ହେବା ପରେ ।।
ନିୟମେ କୃତ୍ୟ ନାହିଁ ଆନ । ସ୍ୱଭାବୁଁ ଯମ ଉତପନ ।।
ଲିଙ୍ଗଆଦିରେ ସେ କାଳରେ । ପ୍ରୟୋଜନର ଅଭାବରେ ।।
ଲୋକସଂଗ୍ରହଅର୍ଥେ ଧରେ । ଅଥବା ଛାଡ଼େ ତା' ଇଚ୍ଛାରେ ।।
୧୦ ଆଶ୍ରମଚିହ୍ନ ଯେ ବିଦିତ । ସେ ନୋହେ ଯାହାର ବ୍ୟକତ ।।
ଅନୁସଂଧାନ ଯେ ଆତ୍ମାର । ସେ ବ୍ୟକ୍ତ ହୋଇ ଥାଇ ଯାର ।।
ପଣ୍ଡିତ ହୋଇଲେହେଁ ଯେହି । ଉନ୍ମତ୍ତ ଶିଶୁ ପ୍ରାୟ ହୋଇ ।।
କବି ହେଲେହେଁ ମୂକ ପ୍ରାୟେ । ଆତ୍ମାକୁ ଲୋକଙ୍କୁ ଦେଖାଏ ।।
୧୧ ଏ ଇତିହାସ ପୁରାତନ । କହନ୍ତି ଏ ବିଷୟେ ଜନ୍ତୁ ।।
ଯେ ଅଜଗରବ୍ରତଧର । ସେ ଦତ୍ତାତ୍ରେୟ ମୁନିଙ୍କର ।।
ପ୍ରହ୍ଲାଦସଙ୍ଗତେ ଅଦ୍ଭୁତ । ଯେଉଁ ସଂବାଦ ହେଲା ଜାତ ।।
୧୨ ଧୂଳିରେ ଅଟନ୍ତି ଧୂସର । ପ୍ରଦେଶମାନେ ଯେ ଦେହର ।।
ତେଣେ ଲକ୍ଷିତ ହୋଇ ନାହିଁ । ନିର୍ମଳ ତେଜ ଯାହା ଠାଇଁ ।।
ଏ ରୂପେ କାବେରୀତଟରେ । ସହ୍ୟପର୍ବତର ସାନୁରେ ।।
ଧରଣୀପୃଷ୍ଠେ ସୁଖୀ ହୋଇ । ସେ ମହାମୁନି ଥିଲେ ଶୋଇ ।।
୧୩ ଲୋକମାନଙ୍କ ତତ୍ତ୍ୱମାନ । ଜାଣିମା ଅର୍ଥେ କରି ମନ ।।
୧୪ ବିଷ୍ଣୁର ପ୍ରିୟ ଯେ ବିଦିତ । ହିରଣ୍ୟକଶିପୁର ସୁତ ।।
କେତେ ଅମାତ୍ୟଜନମାନେ । ବେଢ଼ି ଅଛନ୍ତି ସନ୍ନିଧାନେ ।।
ଚରନ୍ତେ ନାନା ଲୋକମାନ । ତାହାଙ୍କୁ କଲେ ଦରଶନ ।।
କର୍ମରେ ରୂପେ ବଚନରେ । ଲିଙ୍ଗରେ ବର୍ଣ୍ଣାଶ୍ରମାଦିରେ ।।
ଯାହାଙ୍କୁ ନ ଜାଣନ୍ତି କେହି । ସେହି ଏ ହୋଏ ଅବା ନୋହି ।।
୧୫ ତାହାଙ୍କ ଚରଣଦୁଇରେ । ସ୍ପରଶ କରନ୍ତେ ଶିରରେ ।।
ବନ୍ଦନ କରି ବିଧିମତ । ଅର୍ଚ୍ଚନା କରିଣ ତଦନ୍ତ ।।
ଦୟିତ ମହାଭାଗବତ । ଜାଣିମା ଅର୍ଥେ କରି ଚିତ୍ତ ।।
ତାହାଙ୍କୁ ଏମନ୍ତ ପ୍ରକାରେ । ବାକ୍ୟ ପୁଛିଲେ ହରଷରେ ।।

ଶ୍ରୀପ୍ରହ୍ଲାଦ ଉବାଚ

୧୬ ଉଦ୍ୟମବନ୍ତ ଲୋକପ୍ରାୟ । ଧରିଛ ପୁଷ୍ଟ ନିଜ କାୟ ।।
୧୭ ଉଦ୍ୟମବନ୍ତ ଯେଉଁ ଜନ । ତାଙ୍କର ଏ ସଂସାରେ ଧନ ।।

ଯେ ପୁଣି ଧନବନ୍ତ ନର । ଭୋଗ ସଂଭବେ ତାହାଙ୍କର ।। ୬୨
ଭୋଗୀଙ୍କ ଦେହ ପୁଷ୍ଟ ହୋଏ । ଆନ ପ୍ରକାରେ ପୁଣ ନୋହେ ।। ୬୩
୧୮ ହେ ବିପ୍ର ! ନିରୁଦ୍ୟମ ହୋଇ । ଭୂମିରେ ତୁମ୍ଭେ ଅଛ ଶୋଇ ।। ୬୪
ଏଣୁ ତୁମ୍ଭର ନାହିଁ ଧନ । ଯେଣୁ ହୁଅନ୍ତି ଭୋଗମାନ ।। ୬୫
ତୁମ୍ଭେ ଅଭୋଗୀ ତୁମ୍ଭ ଦେହ । ଯହିଁରୁ ପୁଷ୍ଟ ତାହା କହ ।। ୬୬
ଆମ୍ଭେ କରିବାକୁ ଶ୍ରବଣ । ଯୋଗ୍ୟ ସେ କଥା ଯେବେ ପୁଣ ।। ୬୭
୧୯ ପଣ୍ଡିତ ସମର୍ଥ ଚତୁର । ବିଚିତ୍ର ପ୍ରିୟ କଥା ଯାର ।। ୬୮
ତୁମ୍ଭେ ସମସ୍ତଠାରେ ସମ । ଯେ ଲୋକ କରୁଅଛି କର୍ମ ।। ୬୯
ତାହା କରନ୍ତେ ବିଲୋକନ । କିଂପାଇଁ କରିଛ ଶୟନ ।। ୭୦

ଶ୍ରୀନାରଦ ଉବାଚ

୨୦ ଏମନ୍ତରୂପେ ଦୈତ୍ୟେଶ୍ୱର । ପ୍ରଶ୍ନ କରନ୍ତେ ତଦନ୍ତର ।। ୭୧
ହସନ୍ତେ ମହାମୁନି ତାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ।। ୭୨
ବଚନାମୃତେ ପ୍ରହ୍ଲାଦର । ବଶ ହୋଇଲା ଚିତ୍ତ ଯାର ।। ୭୩

ଶ୍ରୀବ୍ରାହ୍ମଣ ଉବାଚ

୨୧ ହେ ଦୈତ୍ୟଶ୍ରେଷ୍ଠ ! ତୁ ସଂସାରେ । ସମ୍ମତ ଜ୍ଞାନୀମାନଙ୍କରେ ।। ୭୪
ପ୍ରବୃତ୍ତି ନିବୃତ୍ତି କର୍ମର । ଯେ ଫଳ ଲୋକମାନଙ୍କର ।। ୭୫
ଅଧ୍ୟାତ୍ମ ଦୃଷ୍ଟିରେ ସେ କଥା । ଜାଣିଛୁ ନୋହେ ଏ ଅନ୍ୟଥା ।। ୭୬
୨୨ ଯାହା ହୃଦରେ ଅନୁଦିନ । ଅଛନ୍ତି ଦେବ ଭଗବାନ ।। ୭୭
କେବଳ ଭକ୍ତିରେ ଅଜ୍ଞାନ । କରୁଅଛନ୍ତି ସେ ନିଧନ ।। ୭୮
ଅନ୍ଧକାରକୁ ଦିବାକର । ଯେସନେ କରଇ ସଂହାର ।। ୭୯
୨୩ ଏମନ୍ତ ହେଲେହେଁ ରାଜନ । ତୁମ୍ଭେ ଯା' କଲ ପ୍ରଶ୍ନମାନ ।। ୮୦
ସେ ପ୍ରଶ୍ନମାନ ଯଥାଶ୍ରୁତ । କହିବା ତୁମ୍ଭର ଅଗ୍ରତ ।। ୮୧
ଆପଣା ଶୁଦ୍ଧି ଯେ ବାଞ୍ଛଇ । ତୁମ୍ଭଙ୍କୁ କଥା ସେ କହଇ ।। ୮୨
୨୪} ଭବପ୍ରବାହକୁ ଯେ କରେ । ଯୋଗ୍ୟ କାମରେ ଯେ ନ ପୂରେ ।। ୮୩
୨୫} କର୍ମମାନଙ୍କୁ ସେ ତୃଷ୍ଣାରେ । କରନ୍ତେ ମୁଁ ପୂର୍ବଜନ୍ମରେ ।। ୮୪
ଅଶେଷ ଯୋନିରେ ସେ ପୁଣି । ନିଯୁକ୍ତ କଲା ମୋତେ ଆଣି ।। ୮୫
ମୁଁ କର୍ମମାନଙ୍କେ ଭ୍ରମନ୍ତେ । ସେ ତୃଷ୍ଣା ଯଦୃଚ୍ଛାରେ ମୋତେ ।। ୮୬
ହେଲା ଏ ମନୁଷ୍ୟଶରୀର । ଧର୍ମେ ଏ ସାଧନ ସ୍ୱର୍ଗର ।। ୮୭
ଅଧର୍ମେ ଶୂକରାଦିଙ୍କର । ଯୋନିକି ହୁଅଇ ଏ ଦ୍ୱାର ।। ୮୮
ଧର୍ମ ଅଧର୍ମ ମିଶେ ଯେବେ । ନରଦେହର ହେତୁ ତେବେ ।। ୮୯
୨୬ ଏ ଦେହେ ସଂଭବିବ ସୁଖ । ନାଶ ହୋଇବ ନାନାଦୁଃଖ ।। ୯୦
ଏହି ନିମିତ୍ତେ ପତ୍ନୀପତି । କର୍ମମାନଙ୍କୁ ଆଚରନ୍ତି ।। ୯୧

ତାଙ୍କର ଅନ୍ୟଥା ସେ ହୋଇ । ତା' ଦେଖି ନିବର୍ତ୍ତିଲି ମୁହିଁ ॥ ୯୨
୨୭ ସୁଖ ସ୍ୱରୂପ ସେ ଜୀବର । ଚେଷ୍ଟାନିବୃତ୍ତି ତନୁ ତାର ॥ ୯୩
ସମସ୍ତକ୍ରିୟା ନିବୃତ୍ତିରେ । ପ୍ରକାଶ ହୋଏ ସ୍ୱଇଚ୍ଛାରେ ॥ ୯୪
ଯେ ଭୋଗ ମନୋରଥୁଁ ଜାତ । ସେମାନେ ଅଟନ୍ତି ଅନିତ୍ୟ ॥ ୯୫
ତା' ଦେଖି ନିରୁଦ୍ୟମ ମୁହିଁ । ପ୍ରାରବ୍ଧ କର୍ମକୁ ଭୁଞ୍ଜାଇ ॥ ୯୬
୨୮ ଏ ରୂପେ ସୁଖରୂପ ହୋଇ । ଆତ୍ମାରେ ସ୍ୱାର୍ଥ ଅଛି ଯେହି ॥ ୯୭
ସେ କଥା କରି ବିସ୍ମରଣ । ଯେ ଦ୍ୱୈତ ନ ଥିଲେ ସେ ପୁଣ ॥ ୯୮
ଯେ ବା ବିଚିତ୍ର ଭୟଙ୍କର । ଲଭଇ ଏମନ୍ତ ସଂସାର ॥ ୯୯
୨୯ ତୃଣ ଶୈବାଳ ଆଦିମାନ । ଜଳରେ ହୋଏ ଯେ ଉତ୍ପନ୍ନ ॥ ୧୦୦
ତେଣେ ଆଚ୍ଛନ୍ନ ଯେଉଁ ନୀର । ତାହାକୁ ଛାଡ଼ି ଅଜ୍ଞ ନର ॥ ୧୦୧
ଜଳବୁଦ୍ଧିରେ ମୋହ ହୋଇ । ମୃଗତୃଷ୍ଣାକୁ ଯେହ୍ନେ ଧାଇଁ ॥ ୧୦୨
ଆତ୍ମାରୁ ଆନେ[୧] ଅର୍ଥଜ୍ଞାନ । କରିବା ଲୋକ ହିଁ ତେସନ ॥ ୧୦୩
୩୦ ଦୈବ ଅଧୀନ ଦେହାଦିରେ । ଯେ ନିଜସୁଖ ବାଞ୍ଛା କରେ ॥ ୧୦୪
ଅଦୃଷ୍ଟହୀନ ହୋଇଥାଇ । ଦୁଃଖନାଶକୁ ହିଁ ବାଞ୍ଛଇ ॥ ୧୦୫
ତାହାର କର୍ମମାନ ଯେତେ । ବିଅର୍ଥ ହୁଅନ୍ତି ସମସ୍ତେ ॥ ୧୦୬
୩୧ ଆଧ୍ୟାତ୍ମିକାଦି ଦୁଃଖୁଁ ଯେହି । କେବେହେଁ ମୁକ୍ତ ନୋହି ଥାଇ ॥ ୧୦୭
ମରଣ ନିୟତ ଯାହାର । କି କାର୍ଯ୍ୟ ଅର୍ଥେ କାମେ ତାର ॥ ୧୦୮
ଯେବଣ ଅର୍ଥ କାମ ଦୁଇ । ଅତ୍ୟନ୍ତ କଷ୍ଟରେ ମିଳଇ ॥ ୧୦୯
୩୨ ଆତ୍ମାକୁ ଜିଣି ଯେ ନ ଥାନ୍ତି । ଭୟରେ ନିଦ୍ରା ନ ଲଭନ୍ତି ॥ ୧୧୦
ଆଶଙ୍କାବନ୍ତ ସବୁଠାରେ । ଲୋଭୀ ଅଟନ୍ତି ଯେ ବେଭାରେ ॥ ୧୧୧
ଏମନ୍ତ ଯେଉଁ ଧନୀ ନର । ଦେଖୁଛି କ୍ଲେଶ ତାହାଙ୍କର ॥ ୧୧୨
୩୩ ଯେ ରାଜା, ଚୌର, ଶତ୍ରୁଜନ । ସ୍ୱଜନ, ପଶୁପକ୍ଷୀମାନ ॥ ୧୧୩
ଯେ ଅର୍ଥୀ, କାଳ ଯେହ୍ନୁ ତହୁଁ । ଭୋଗରୁ, ଆପଣା ଠାରୁହୁଁ ॥ ୧୧୪
ଭୟ ନିତ୍ୟରେ ତାହାଙ୍କର । ଯେ ପ୍ରାଣ-ବିତ୍ତବନ୍ତ ନର ॥ ୧୧୫
୩୪ ଯେ ଶୋକ ମୋହ ଭୟ ତିନି । କ୍ରୋଧ କ୍ଲୀବତା ରାଗ ଘେନି ॥ ୧୧୬
ଶ୍ରମାଦି ଯେ ଅବା ଇତର । ଯେ ମୂଳ ଅଟେ ଏହାଙ୍କର ॥ ୧୧୭
ସେ ବିତ୍ତେ ପ୍ରାଣେ ବୁଧ ଜନ । ସ୍ପୃହାକୁ କରଇ ବର୍ଜନ ॥ ୧୧୮
୩୫ ମଧୁମକ୍ଷିକା ଅଜଗର । ଲୋକେ ଆମ୍ଭର ଗୁରୁବର ॥ ୧୧୯
ଯାହା ଶିକ୍ଷାରୁ ଆମ୍ଭେ ତୋଷ । ଲଭିଲୁଁ ବୈରାଗ୍ୟ ବିଶେଷ ॥ ୧୨୦
୩୬ ବୈରାଗ୍ୟ ସମସ୍ତ କାମରୁ । ଶିଖିଲି ମଧୁବ୍ରତଠାରୁ ॥ ୧୨୧
କଷ୍ଟେ ଯା' ଲଭିଥାଇ ବିତ୍ତ । ବିତ୍ତପତିକି କରି ହତ ॥ ୧୨୨
ତା' ଅନ୍ୟ ଲୋକ ନିଏ ହରି । ମଧୁହା ମଧୁପ୍ରାୟ ପରି ॥ ୧୨୩
୩୭ ଯଦୃଚ୍ଛାରୂପେ ଯେଉଁ ବିତ୍ତ । ହୁଅଇ ଆସି ଉପସ୍ଥିତ ॥ ୧୨୪

୧. ଅନ୍ୟରେ ।

[1]ତେଣେ ସଂତୋଷ ମୋର ମନ । ଛାଡ଼ିଛି ଆନ ଚେଷ୍ଟାମାନ ॥ ୧୨୫
ଯେବେ କିଛି ହିଁ ନ ମିଳଇ । ବହୁତ ଦିନ ମୁଁ ଶୁଅଇ ॥ ୧୨୬
ଧଇର୍ଯ୍ୟବନ୍ତ ମୁଁ ଅଟଇ । ମହାଉରଗପ୍ରାୟ ହୋଇ ॥ ୧୨୭
୩୮ } ଅଳପ ଅନ୍ନ ଭୁଞ୍ଜେ କାହିଁ । ବହୁତ କେଉଁ କେଉଁ ଠାଇଁ ॥ ୧୨୮
୩୯ } ଉତ୍ତମ ଅନ୍ନ କାହିଁ ମିଳେ । ଅସ୍ୱାଦୁ ଅନ୍ନ କେଉଁ ସ୍ଥଳେ ॥ ୧୨୯
କାହିଁ ବହୁତଗୁଣଯୁତ । କାହିଁରେ ଗୁଣବିବର୍ଜିତ ॥ ୧୩୦
ଶ୍ରଦ୍ଧାରେ ମିଳେ ଅନ୍ନ କାହିଁ । ମାନବର୍ଜିତ କେଉଁ ଠାଇଁ ॥ ୧୩୧
ଭୁଞ୍ଜାଇ ଭୁଞ୍ଜି କେଉଁଠାରେ । ଦିବାରାତ୍ରରେ ଯଦୃଚ୍ଛାରେ ॥ ୧୩୨
୪୦ ସୂକ୍ଷ୍ମ ଦୁକୂଳ ଚର୍ମ ଚୀର[2] । ବଲ୍‌କଳ ଅଥବା ଇତର ॥ ୧୩୩
ମିଳଇ ଯେ ତାହା ପିନ୍ଧଇ । ଅଦୃଷ୍ଟ ଭୁଞ୍ଜି ତୋଷେ ଥାଇଁ ॥ ୧୩୪
୪୧ କେଉଁ ଠାବରେ ପୃଥିବୀରେ । ଶୁଅଇଁ ତୃଣରେ ପତ୍ରରେ ॥ ୧୩୫
ପାଷାଣେ ଭସ୍ମରେ ଶୁଅଇଁ । ଜଗତୀପରେ ଅବା କାହିଁ ॥ ୧୩୬
ପର୍ଯ୍ୟଙ୍କେ ଉତ୍ତମ ବସ୍ତ୍ରରେ । ଶୁଅଇଁ ପରର ଇଚ୍ଛାରେ ॥ ୧୩୭
୪୨ ସ୍ନାନ କରିଣ କେଉଁ ଠାଇଁ । ଚନ୍ଦନଲିପ୍ତ-ଅଙ୍ଗ ହୋଇ ॥ ୧୩୮
ଉତ୍ତମ ବସ୍ତ୍ରରେ ଶୋଭିତ । ମାଳାରେ ହୋଇଣ ମଣ୍ଡିତ ॥ ୧୩୯
ରଥରେ ହସ୍ତୀରେ ଅଶ୍ୱରେ । ଭ୍ରମଣ କରେଁ କେଉଁଠାରେ ॥ ୧୪୦
ହେ ପ୍ରଭୋ ! ବିବସନ ହୋଇ । ଚରଇଁ ଗ୍ରହପ୍ରାୟ କାହିଁ ॥ ୧୪୧
୪୩ ସ୍ୱଭାବବିଷମ ଯେ ଜନ । ତାକୁ ନ କରଇଁ ନିନ୍ଦନ ॥ ୧୪୨
ସ୍ତୁତି ହିଁ ନ କରଇଁ ତାକୁ । ବାଞ୍ଛନ୍ତେ ତାହାଙ୍କ ଶ୍ରେୟକୁ ॥ ୧୪୩
ଏକାତ୍ମ ଭାବ କୃଷ୍ଣ[3] ଠାର । ଚିନ୍ତା କରନ୍ତେ ତାହାଙ୍କର[4] ॥ ୧୪୪
୪୪ ଯେ ଭେଦ ଘେନେ ମନୋବୃତ୍ତି । ତାହାର ନାମ ଅଟେ ଚିତ୍ତି ॥ ୧୪୫
ତହିଁ ବିକଳ୍ପ କରେ ଲୀନ । ଅର୍ଥବିଭ୍ରମ ଯେଉଁ ମନ ॥ ୧୪୬
ତହିଁ ଚିତ୍ତକୁ ଲୀନ କରେ । ତାକୁ ବୈକାରିକାହଂକାରେ ॥ ୧୪୭
ସେ ଅହଂକାରକୁ ମାୟାରେ । ମିଶାଇ ମହଦ୍ ତତ୍ତ୍ୱ ଦ୍ୱାରେ ॥ ୧୪୮
୪୫ ସେ ମାୟା ଆତ୍ମାନୁଭବରେ । ବିଲୀନ କରଇ କ୍ରମରେ ॥ ୧୪୯
ସତ୍ୟକୁ ଯେ ମୁନି ଦେଖଇ । ତଦନନ୍ତରେ ପୁଣ ସେହି ॥ ୧୫୦
ଆତ୍ମାରେ ସ୍ୱାନୁଭବେ ଥାଇ । ନିଶ୍ଚେଷ୍ଟ ହୋଇ ବିରମଇ ॥ ୧୫୧
୪୬ ଲୋକରୁ ଶାସ୍ତ୍ରରୁ ବାହାର । ଯେ ଅଟେ ଚରିତ ମୋହର ॥ ୧୫୨

---

୧. ଅନଶ୍ୱତୋ ବଲଂ କାନ୍ତିସ୍ତୁଷ୍ଟିଃ ପୁଷ୍ଟିର୍ବିବର୍ଦ୍ଧନଂ ।
ଅନୁଗ୍ରହାଦ୍ ଭଗବତୋ ନ ମେ ରିଷ୍ୟନ୍ତି କର୍ହିଚିଦ୍ ॥ (ସ୍ୱାମୀ)

୨. ଚୀର = ଜୀର୍ଣ୍ଣବସ୍ତ୍ରଖଣ୍ଡ । ୩. ବିଷ୍ଣୁ । ୪. ଏହାଙ୍କର ।

| | | | | |
|---|---|---|---|---|
| | ଗୁପ୍ତ ହେଲେହେଁ ତୋତେ ତାହି | । ବର୍ଣ୍ଣିଲି ବିଷ୍ଣୁଭକ୍ତ ତୁହି | ।। | ୧୫୩ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୪୭ | ପରମହଂସମାନଙ୍କର | । ଯେ ଧର୍ମ ତା' ଅସୁରେଶ୍ୱର | ।। | ୧୫୪ |
| | ମୁନିଙ୍କ ଠାବରୁ ଶୁଣିଣ | । ସଂତୋଷେ ତାହାଙ୍କୁ ପୂଜିଣ | ।। | ୧୫୫ |
| | କରି ଆମନ୍ତ୍ରଣ ତାହାଙ୍କୁ | । ଚଳିଲେ ଆପଣା ଗୃହକୁ | ।। | ୧୫୬ |
| | କୃଷ୍ଣଚରଣେ ଦେଇ ଚିତ୍ତ | । ସପ୍ତମ ସ୍କନ୍ଧ ଭାଷାଗୀତ | ।। | ୧୫୭ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । ସଂତୋଷ ସାଧୁଜନ ତେଣେ | ।। | ୧୫୮ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଯତିଧର୍ମୋ
ନାମ ତ୍ରୟୋଦଶୋଽଧ୍ୟାୟଃ ।।

## ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶେ ଗୃହସ୍ଥସ୍ୟ ପରମୋ ଧର୍ମ ଈର୍ଯ୍ୟତେ ।
ଦେଶକାଳାଦିଭେଦେନ ପୁନଃଶ୍ରେୟୋବିଶେଷକୃତ୍ ।। ୧

ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୧ | ହେ ମୁନି ! ମୋର ପ୍ରାୟ ହୋଇ | । ଗୃହ ଆରୂଢ଼ମତି[୧] ଯେହି | ।। | ୧ |
| | ସେ ଗୃହୀ ଜନ ଯେ ବିଧିରେ | । ଏ ମାର୍ଗ ଲଭଇ ବେଗରେ | ।। | ୨ |
| | ସେ କଥା କହ ମୋ' ଅଗ୍ରତ | । ତେଣେ ଲାଳସ ମୋର ଚିତ୍ତ | ।। | ୩ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| *୧ | କରନ୍ତେ ଲୋକମାନଙ୍କର | । ଅନୁଗ୍ରହକୁ ନିରନ୍ତର | ।। | ୪ |
| | ହେ ମହାଭାଗ ! ଶ୍ରେଷ୍ଠ ଯେହି | । ସେ ପ୍ରଶ୍ନ ପଚାରିଲୁ ତୁହି | ।। | ୫ |
| | ସେ କଥା ତୁମ୍ଭଙ୍କୁ ତତ୍ତ୍ୱରେ | । କହିବି, ଯେବଣ କର୍ମରେ | ।। | ୬ |
| | ନିଷ୍କର୍ମ ଭାବ ଯେ ଅଟଇ | । ତତ୍‌କାଳ ସିଦ୍ଧ ସେ ହୁଅଇ | ।। | ୭ |
| ୨ | ଗୃହରେ ଥାଇ ହେ ରାଜନ | । ଯେ ଯଥୋଚିତ କର୍ମମାନ | ।। | ୮ |
| | କରନ୍ତେ ସେମାନ ସାକ୍ଷାତ | । କରିବ କୃଷ୍ଣରେ ଅର୍ପିତ | ।। | ୯ |
| | ଯେ ଅବା ମହାମୁନିମାନ | । ତାଙ୍କୁ କରିବ ଉପାସନ | ।। | ୧୦ |

୧. ଗୃହବିମୂଢ଼ମତି । ('ଗୃହମୂଢ଼ଧୀଃ' ଇତି ପାଠେ) ।

* "ସାଧୁ ପୃଷ୍ଟଂ ମହାଭାଗ ଲୋକାନାମନୁଗୃହ୍ଣତା ।
ତତ୍ତ୍ୱେନ ତଦହଂ ବକ୍ଷ୍ୟେ ନୈଷ୍କର୍ମ୍ୟଂ ଯେନ କର୍ମଣା ।।"
ଶ୍ରୀଯୁକ୍ତ ଖାଡ଼ଙ୍ଗାଙ୍କ ବ୍ୟବହୃତ ପୋଥିରେ ଉକ୍ତ ଶ୍ଳୋକ ଦୃଷ୍ଟ ହୁଏ ।

୩ ଶୁଣନ୍ତେ ବିଷ୍ଣୁର ସନ୍ତତ । ଯେ ଅବତାରକଥାମୃତ ॥
ଯଥାକାଳରେ ଶ୍ରଦ୍ଧାଯୁତ । ଶାନ୍ତ ଜନରେ ହେବ ବୃତ ॥
୪ ସାଧୁଙ୍କ ସଙ୍ଗରୁ କ୍ରମରେ । ସ୍ୱଦାର ପୁତ୍ର ଆଦିଠାରେ ॥
ଯେ ସଙ୍ଗ ତାହାକୁ ଛାଡ଼ଇ । ବିଚ୍ଛେଦ ହୋନ୍ତି ସ୍ୱୟେଂ ସେହି ॥
ଯେବଣ ପୁତ୍ର ଆଦି ଜନ । ସ୍ୱପ୍ନେ କରଇ ଦରଶନ ॥
ତାହାଙ୍କ ସଙ୍ଗକୁ ଯେସନେ । ଛାଡ଼ଇ ନିଦ୍ରାର ବିହୀନେ ॥
୫ ଦେହେ ଗୃହରେ ଅର୍ଥ ଯେତେ । ଭଜନ୍ତେ ବୁଧ ଜନ ତେତେ ॥
ଅନ୍ତରେ ଅସକ୍ତ ଅଟଇ । ବାହ୍ୟରେ ସକ୍ତପ୍ରାୟ ହୋଇ ॥
ପୁରୁଷକୃତ୍ୟ ଯେ ବା ପୁଣ । ନୃଲୋକେ କରିବ ଅର୍ପଣ ॥
୬ ଯେ ଜ୍ଞାତି ମାତା ପିତା ସୁତ । ଅପରେ ଯେ ବା ମିତ୍ର ଭ୍ରାତ ॥
ବୋଲନ୍ତି ଯାହା ଯାହା ସେହି । ସ୍ୱୀକାର କରି ତାହି ତାହି ॥
କେବଳ ମମତା ତହିଁରେ । କରି ନ ଥିବ ପ୍ରଯତ୍ନରେ ॥
୭ ବୃଷ୍ଟି ଆଦିରୁ ଉତପନ । ଯେ ଧାନ୍ୟ ଆଦି ଶସ୍ୟମାନ ॥
ବିବର ଆଦିରୁ ପ୍ରାପତ । ନିଧାନ ଆଦି ଯେ ବା ବିତ୍ତ ॥
ମିଳଇ ଯେବା ଅକସ୍ମାତ । ଯେ ସ୍ୱତଃ ବିଷ୍ଣୁରେ ନିର୍ମିତଂ[1] ॥
କରନ୍ତେ ଉପଯୋଗ ତାହି । ଏ ସର୍ବ କର୍ମାଦି କରଇ ॥
୮ ଯେତେକେ ପୂରଇ ଜଠର । ତେତେକ ସ୍ୱତ୍ୱ ପ୍ରାଣୀଙ୍କର ॥
ଯେ ଅଧିକକୁ ଅଭିମାନ । କରେ ସେ ଦଣ୍ଡଯୋଗ୍ୟ ସ୍ତେନ ॥
୯ ଖର ମର୍କଟ ଉଷ୍ଟ୍ର ମୃଗ । ମକ୍ଷିକା ସର୍ପ ଆଖୁ[2] ଖଗ ॥
ଏହାଙ୍କୁ ନିଜ ପୁତ୍ରପ୍ରାୟ । ଦେଖିବ ହୋଇଣ ସଦୟ ॥
ସେ ପୁତ୍ରତୁଲେ କି ଅନ୍ତର । ଅଛି ଏ ଖର ଆଦିଙ୍କର ॥
୧୦ ଅତିକଷ୍ଟରେ ଗୃହୀ ଜନ । ତ୍ରିବର୍ଗ ନ କରେ ସେବନ ॥
ଯେ ଦେଶ କାଳ ଅଟେ ଦୁଇ । ତାକୁ ଲଙ୍ଘନ ନ କରଇ ॥
ଦଇବ ଯେତେ ଦେଇଥାଇ । ତେତେକ ମାତ୍ର ସେ ଭଜଇ ॥
୧୧ ଚଣ୍ଡାଳ କୁକ୍କୁର ପତିତେ । ଏ ଆଦି ହୋଇ ଜନ୍ତୁ ଯେତେ ॥
ଯଥାଯୋଗ୍ୟରେ ସେମାନଙ୍କୁ । ବାଣ୍ଟିବ ଭୋଗ୍ୟ ପଦାର୍ଥକୁ ॥
ମୋହର ବୋଲି ପ୍ରାଣୀଙ୍କର । ଯହିଁରେ ଆଗ୍ରହ ଅପାର ॥
ସେ ଏକ ଆପଣା ଭାର୍ଯ୍ୟାହି । ଅତିଥିସେବା କରୁଥାଇ ॥
ଆପଣା ସେବା ତେଣୁ ଯେବେ । ତୁଟେ, ନ କରେ ତାପ ତେବେ ॥
୧୨ ଯା' ଅର୍ଥେ ପ୍ରାଣକୁ ଛାଡ଼ଇ । ପିତାକୁ ଗୁରୁକୁ ମାରଇ ॥
ସେ ସ୍ତିରୀଠାରେ ନିଜ ଭାବ । ଯେ ଥାଇ, ତାକୁ ଯେ ଛାଡ଼ିବ ॥

---

୧. ଅର୍ପିତ ।　　୨. ଆଖୁ = ମୂଷା ।

ଅଜିତ ହେଲେହେଁ ଅଚ୍ୟୁତ । ହୁଅନ୍ତି ସେ ଲୋକରେ ଜିତ ॥
୧୩ କୃମି ପୁରୀଷ ଭସ୍ମ ହୋଇ । ନିଷ୍ଠା ଯାହାର ଅନ୍ତେ ରହି ॥
ଏ ତୁଚ୍ଛ କଳେବର କାହିଁ । ତାହାର ରତିଅର୍ଥେ ଯେହି ॥
ସେ ଭାର୍ଯ୍ୟା ଅଛି ବା କାହିଁରେ । ଯେ ପୁଣ ନିଜ ମହିମାରେ ॥
ଆକାଶକୁ ହିଁ ଆଚ୍ଛାଦଇ । ଏମନ୍ତ ଆତ୍ମା ଅଛି କାହିଁ ॥
୧୪ ଦଇବେ ପ୍ରାପ୍ତ ହୋଇଥାଇ । ପଞ୍ଚଯଜ୍ଞରୁ[1] ଯେ ବଳଇ ॥
ନିଜ ବୃତ୍ତିକି ସେ ଅନ୍ନରେ । କଳ୍ପିବ ମନସଂତୋଷରେ ॥
ହେ ନୃପ ! ଶେଷ ଅନ୍ନ ଯେହି । ଛାଡ଼ନ୍ତେ ସ୍ୱତ୍ୱ ପୁଣ ତହିଁ ॥
ନିବୃତ୍ତ[2] ଲୋକମାନଙ୍କର । ମାର୍ଗକୁ ଲଭେ ପ୍ରାଜ୍ଞ ନର ॥
୧୫ ନିଜ ବୃତ୍ତିରେ ଯେଉଁ ବିତ୍ତ । ହୁଅଇ ଆସି ଉପସ୍ଥିତ ॥
ତେଣେ ପୂଜିବ ପ୍ରତିଦିନ । ଯେ ପଞ୍ଚଯଜ୍ଞଦେବମାନ ॥
ଏ ରୂପେ ଭିନ୍ନ ଭିନ୍ନ କରି । ପୂଜନ୍ତେ ପୂଜେ ନିଶ୍ଚେ ହରି ॥
୧୬ ଆପଣା ଅଧିକାର ଆଦି । ଯେବେ ହୋଇବ ପୁଣ ସିଦ୍ଧି ॥
ଯଜ୍ଞସଂପଦ ଯେ ସକଳେ । ମିଳନ୍ତି ସେ ବା ଯେଉଁ କାଳେ ॥
ବେଦବିଧିରେ ଯେବେ ସେହି । ଅଗ୍ନିହୋତ୍ରାଦି କରେ ତହିଁ ॥
୧୭ ସକଳ ଯଜ୍ଞକୁ ଭୋଜନ । କରନ୍ତି ଯେଉଁ ଭଗବାନ ॥
ସେ ବିପ୍ରମୁଖେ ଦେଲେ ଅନ୍ନ । ହୁଅନ୍ତି ଯେମନ୍ତ ପୂଜନ ॥
ଅଗ୍ନିମୁଖରେ ଦେଲେ ଘୃତ । ସେରୂପେ ନୁହନ୍ତି ପୂଜିତ ॥
୧୮ ସେ ଘେନି ଯେ ଅବା ବ୍ରାହ୍ମଣ । ଯେ ପଞ୍ଚଯଜ୍ଞ-ଦେବ ପୁଣ ॥
ମନୁଷ୍ୟ ଆଦି ଯେ ଇତର । କ୍ଷେତ୍ରଜ୍ଞରୂପେ ତାଙ୍କ ଠାର ॥
ଯେ ବର୍ତ୍ତିଛନ୍ତି ଅଧୋକ୍ଷଜ । ସେ ସେହି କାମେ ତାଙ୍କୁ ପୂଜ ॥
ବ୍ରାହ୍ମଣପୂଜାଅନନ୍ତର । ପୂଜା କରିବ ଆନ ନର ॥
୧୯ ଭାଦ୍ରବ ମାସରେ[3] ବ୍ରାହ୍ମଣ । ଅପରପକ୍ଷ ଶ୍ରାଦ୍ଧ ପୁଣ ॥
କରିବ ପିତାମାତାଙ୍କର । ଯଥାବିଭବ ଥିବ ତାର ॥
ଯେବେ ବିଭବବନ୍ତ ହେବ । ତା' ବନ୍ଧୁମାନଙ୍କ କରିବ ॥
୨୦ [4]ବ୍ୟତୀପାତରେ ବିଷୁବରେ । ଅୟନେ ଦିବସକ୍ଷୟରେ ॥
ଚନ୍ଦ୍ର-ଆଦିତ୍ୟଗ୍ରହଣରେ । ଶ୍ରବଣା ଦ୍ୱାଦଶୀ ତିଥିରେ ॥
୨୧ ବୈଶାଖ ଶୁକ୍ଳ ତୃତୀୟାରେ । କାର୍ତ୍ତିକ ଶୁକ୍ଳ ନବମୀରେ ॥
ହେମନ୍ତ ଶିଶିର ଋତୁରେ । ବିହିତ ଚାରି ଅଷ୍ଟକା[5]ରେ ॥
୨୨ ମାଘ ଶୁକ୍ଳ ସପ୍ତମୀରେ । ମଘାସଂଯୁତ ପୌର୍ଣ୍ଣମୀରେ ॥
ସଂପୂର୍ଣ୍ଣକଳ କଳାହୀନ । ଚନ୍ଦ୍ରମା ଯେଉଁ ଯେଉଁ ଦିନ ॥

---

୧. ପଞ୍ଚଯଜ୍ଞ = ବ୍ରହ୍ମଯଜ୍ଞ, ନୃଯଜ୍ଞ, ଦୈବଯଜ୍ଞ, ପିତୃଯଜ୍ଞ ଓ ଭୂତଯଜ୍ଞ ।
୨. ନିବୃତ୍ତ = ପରମହଂସ । ୩. ପଦରେ । ୪. ରବିବାରର (ପ୍ରତିପଦା ଚନ୍ଦ୍ର) ।
୫. ଅଷ୍ଟକା = (କାର୍ତ୍ତିକ ......ମାଘର) ୪ଟି କୃଷ୍ଣାଷ୍ଟମୀ ।

| | | | | |
|---|---|---|---|---|
| | [1]ମାସପ୍ରବୃତ୍ତିକି ନିମିତ୍ତ | ନକ୍ଷତ୍ରମାନେ ଯହିଁ ସ୍ଥିତ | ॥ | ୭୩ |
| ୨୩ | ଶ୍ରବଣା ଅନୁରାଧା ଦୁଇ | ଦ୍ୱାଦଶୀ ଦିନ ଯେବେ ହୋଇ | ॥ | ୭୪ |
| | ତିନି ଉତ୍ତରା[2] ସେ ତିଥିରେ | ଏକାଦଶୀ ବା ସେ ତିନିରେ | ॥ | ୭୫ |
| | ଜନମନକ୍ଷତ୍ର ଶ୍ରବଣ | ନକ୍ଷତ୍ରଯୋଗ ଦିନ ପୁଣ | ॥ | ୭୬ |
| | ଏ ତିଥିମାନଙ୍କ ଯୋଗରେ | ଶ୍ରାଦ୍ଧ କରିବ ପ୍ରଯତ୍ନରେ | ॥ | ୭୭ |
| ୨୪ | ଶ୍ରେୟର କାଳ ଏ ଅଟନ୍ତି | ପ୍ରାଣୀଙ୍କ ଶ୍ରେୟକୁ ବଢ଼ାନ୍ତି | ॥ | ୭୮ |
| | ପ୍ରାଣୀ ଏ ତିଥିମାନଙ୍କରେ | ଶ୍ରେୟ କରଇ ସର୍ବାତ୍ମାରେ | ॥ | ୭୯ |
| | ତେବେ ସଫଳ ଭାବ ତାର | ହୁଅଇ ନିଜ ଆୟୁଷର | ॥ | ୮୦ |
| ୨୫ | ଏଥିରେ ସ୍ନାନ ହୋମ ତପ | ଦେବବ୍ରାହ୍ମଣପୂଜା ଜପ | ॥ | ୮୧ |
| | ପିତୃ-ଦେବତା-ଭୂତ-ନରେ | ଯେ ଦତ୍ତ ସେ ଫଳ ନ ସରେ | ॥ | ୮୨ |
| ୨୬ | ପୁଂସବନକୁ ଆଦି ହୋଇ | ଭାର୍ଯ୍ୟାସଂସ୍କାରକାଳ ଯେହି | ॥ | ୮୩ |
| | ଜାତକର୍ମାଦି ଯେ ପୁତ୍ରର | ଯଜ୍ଞଦୀକ୍ଷାଦି ଆପଣାର | ॥ | ୮୪ |
| | ଯେ ବା ପ୍ରେତର ଦହନାଦି | ପିତାର ମୃତାହ ପ୍ରସିଦ୍ଧି | ॥ | ୮୫ |
| | ହେ ନୃପ ! ଏଥୁଁ ଯେବା ଆନ | ହୁଅଇ ଅଭ୍ୟୁଦୟଦିନ | ॥ | ୮୬ |
| | ତହିଁରେ ଶ୍ରେୟକଥାମାନ | ଯତ୍ନରେ କରିବ ବିଧାନ | ॥ | ୮୭ |
| ୨୭ } | ଏବେ କହିବା ଦେଶମାନ | ଯେ ଧର୍ମ ଆଦି ଶ୍ରେୟସ୍ଥାନ | ॥ | ୮୮ |
| ୨୮ } | ଏ ସର୍ବ ଚରାଚର ଯହିଁ | ସେ ବିଷ୍ଣୁରୂପ ଯେ ଅଟଇ | ॥ | ୮୯ |
| | ଏମନ୍ତ ସତପାତ୍ର ଜନ | ଯହିଁରେ ହୋଏ ବିଦ୍ୟମାନ | ॥ | ୯୦ |
| | ତପସ୍ୟା ବିଦ୍ୟାଦୟାଯୁତ | ବ୍ରାହ୍ମଣକୁଳ ଯହିଁ ସ୍ଥିତ | ॥ | ୯୧ |
| ୨୯ } | ବିଷ୍ଣୁପ୍ରତିମା ଯହିଁ ଯହିଁ | ମଙ୍ଗଳସ୍ଥାନ ଦେଶ ସେହି | ॥ | ୯୨ |
| ୩୦ } | ତହିଁରେ ପୁରାଣପ୍ରସିଦ୍ଧି | ଅଛନ୍ତି ଗଙ୍ଗାଆଦି ନଦୀ | ॥ | ୯୩ |
| | ପୁଷ୍କର ଆଦି ନାନା ସରେ | ଅଛନ୍ତି ଯେବଣ ଦେଶରେ | ॥ | ୯୪ |
| | ଉତ୍ତମ ଲୋକରେ ଆଶ୍ରିତ | କ୍ଷେତ୍ରମାନେ ହେଁ ଯହିଁ ସ୍ଥିତ | ॥ | ୯୫ |
| | ଯେ କୁରୁକ୍ଷେତ୍ର ଗୟଶିର | ପ୍ରୟାଗ ପୁଲହମନ୍ଦିର | ॥ | ୯୬ |
| ୩୧ } | ନୈମିଷ ସେତୁ ଫାଲଗୁନ | ପ୍ରଭାସ କୁଶସ୍ଥଳୀ ଆନ | ॥ | ୯୭ |
| ୩୨ } | ଯେ ବାରାଣସୀ ମଧୁପୁର | ଯେ ପମ୍ପା ନାମ ବିନ୍ଦୁସର | ॥ | ୯୮ |
| | ଯେ ନାରାୟଣଙ୍କ ଆଶ୍ରମ | ଯହିଁରେ ଥିଲେ ସୀତା ରାମ | ॥ | ୯୯ |
| | ଏ ଆଦି ଯେ ଆଶ୍ରମସିଦ୍ଧି | ଯେ ବା ମହେନ୍ଦ୍ର ମଳୟାଦି | ॥ | ୧୦୦ |
| | ସମସ୍ତ କୁଳାଚଳମାନ | ବର୍ତ୍ତି ଅଛନ୍ତି ହେ ରାଜନ | ॥ | ୧୦୧ |

---

୧. ପୁଷ୍ୟଯୁକ୍ତା ପୌର୍ଣ୍ଣମାସୀ ପୌଷୀ ମାସେ ତୁ ଯତ୍ର ସା ।
ନାମ୍ନା ସ ପୌଷୋ ମାଘାଦ୍ୟାଶ୍ଚୈବମେକାଦଶାପରେ ॥ (ତ୍ରିକାଣ୍ଡୀ)

୨. ଉତ୍ତରା = ଆଷାଢ଼ା, ଫାଲଗୁନୀ, ଭାଦ୍ରପଦା ।

୩୩ ଏ ଦେଶମାନେ ପୁଣ୍ୟତମ । ଯେବଣ ଜନ ଶ୍ରେୟସ୍କାମ ।। ୧୦୨
ଏ ଦେଶମାନଙ୍କୁ ସେ ଜନ । ସେବା କରିବ ଅନୁଦିନ ।। ୧୦୩
ଏଥିରେ ଧର୍ମ ଆଚରଣ । କରନ୍ତେ ପ୍ରାଣୀଙ୍କର ପୁଣ ।। ୧୦୪
ସହସ୍ର ଅଧିକ ଯେ ହୋଇ । ସେ ଫଳ ଉଦୟ ହୁଅଇ ।। ୧୦୫
୩୪ ପାତ୍ରଙ୍କ ଶ୍ରେଷ୍ଠ ଯେ ଅଟନ୍ତି । ପାତ୍ର ହିଁ ଏଥି କହିଛନ୍ତି ।। ୧୦୬
ହେ ମହୀପତି ! ଚରାଚର । ଅଟଇ ଯାହାର ଶରୀର ।। ୧୦୭
ନିଶ୍ଚୟ ହୋଇ ସେ ଅଚ୍ୟୁତ । ପାତ୍ରରୂପରେ ନିରୂପିତ ।। ୧୦୮
୩୫ ହେ ନୃପ ! ଦେବ, ଋଷିମାନେ । ବ୍ରହ୍ମପୁତ୍ରାଦି[1] ଯେବା ଆନେ ।। ୧୦୯
ସିଦ୍ଧ ସେ ତପରେ ଯୋଗରେ । ଥାଆନ୍ତେ ତୁମ୍ଭର ଯଜ୍ଞରେ ।। ୧୧୦
ଯେଣୁ ପାତ୍ରଭାବେ ଅଚ୍ୟୁତ । ଅଗ୍ରପୂଜାରେ ହେଲେ ମତ ।। ୧୧୧
୩୬ ଅଣ୍ଡକୋଷ ଦ୍ରୁମ ମହତ । ଜୀବରାଶିରେ ଏ ପୂରିତ ।। ୧୧୨
ମୂଳଭାବରୁ ସେ ବୃକ୍ଷର । ଯେ ପୂଜା ଅଟେ ଅଚ୍ୟୁତର ।। ୧୧୩
ତୃପ୍ତିକାରଣ ସେ ଆତ୍ମାର । ବିଶେଷେ ସର୍ବ ଜୀବଙ୍କର ।। ୧୧୪
୩୭ ତିର୍ଯ୍ୟକ ଋଷି ଦେବ ନର । ଏମନ୍ତ ରୂପେ ନାନା ପୁର ।। ୧୧୫
ଏ ହରି କରିଣ ନିର୍ମାଣ । ସେ ପୁରମାନଙ୍କରେ ପୁଣ ।। ୧୧୬
ଜୀବ ରୂପରେ ଶୋଇଛନ୍ତି । ସେ ଘେନି ପୁରୁଷ ବୋଲାନ୍ତି ।। ୧୧୭
୩୮ ସେ ପୁରମାନଙ୍କରେ ହରି । ତାରତମ୍ୟରେ ଛନ୍ତି ପୂରି ।। ୧୧୮
ହେ ନୃପ ! ସେ ଘେନି ପୁରୁଷ । ପାତ୍ରରୂପରେ ପରକାଶ ।। ୧୧୯
ଜ୍ଞାନାଂଶ ଯେତେ ଯେତେ ହୋଇ । ପ୍ରକାଶ ହୋଏ ଯହିଁ ଯହିଁ ।। ୧୨୦
ସେ ଲୋକ[2] ସେ ସେହି ରୂପରେ । ବିଦିତ ପାତ୍ରସ୍ୱରୂପରେ ।। ୧୨୧
୩୯ ଯେ ପରସ୍ପରେ ଅସମ୍ମାନ । ତହିଁ ନିଷ୍ଠିତ ଯାଙ୍କ[3] ମନ ।। ୧୨୨
ଏମନ୍ତ ଲୋକମାନଙ୍କର । ଭାବକୁ କରିଣ ଗୋଚର ।। ୧୨୩
ହେ ନୃପ ! ତ୍ରେତାଦି ଯୁଗରେ । ବିଷ୍ଣୁର ପୂଜାନିମିତ୍ତରେ ।। ୧୨୪
ପ୍ରତିମାରୂପକୁ ବିଧାନ । କଲେ ସମସ୍ତ ଜ୍ଞାନୀ ଜନ ।। ୧୨୫
୪୦ ସେ ଘେନି କେହି ଶ୍ରଦ୍ଧା କରି । ପୂଜନ୍ତି ପ୍ରତିମାଏ ହରି ।। ୧୨୬
ପ୍ରତିମା କଲେହେଁ ସେବନ । ପୁରୁଷଦ୍ୱେଷୀ ଯେଉଁ ଜନ ।। ୧୨୭
ସେମାନଙ୍କର ଅର୍ଥଦାୟୀ । କେବେହେଁ ସେ ପ୍ରତିମା ନୋହି ।। ୧୨୮
୪୧ ପୁରୁଷମାନଙ୍କରେ ପୁଣ । ସୁପାତ୍ର ଅଟଇ ବ୍ରାହ୍ମଣ ।। ୧୨୯
ହେ ରାଜଇନ୍ଦ୍ର ! ଏହା ପୁଣି । ପଣ୍ଡିତମାନେ ଛନ୍ତି ଜାଣି ।। ୧୩୦
ତପରେ ବିଦ୍ୟାରେ ତୋଷରେ । ବେଦକୁ ଯେଉଁ ବିପ୍ର ଧରେ ।। ୧୩୧
ହରିର କଳେବର ହୋଇ । ଯେ ବେଦ ପ୍ରକାଶ ଅଟଇ ।। ୧୩୨

---

୧. ବ୍ରହ୍ମପୁତ୍ରାଦି = ସନକାଦି । ୨. ଘେନି । ୩. ତାଙ୍କ ।

୪୨ ହେ ନୃପ ! ଆମ୍ଭ ଜଗତର । ଏ କୃଷ୍ଣ ପୁଣ ଏହାଙ୍କର ।। ୧୩୩
ବଡ଼ ଦେବତା ବିପ୍ରଜନ । ଯେ ପାଦରଜେ ତ୍ରିଭୁବନ ।। ୧୩୪
ପବିତ୍ର କରନ୍ତେ ସଂତତ । ସକଳ ଲୋକରେ ବିଦିତ ।। ୧୩୫
ଶ୍ରୀକୃଷ୍ଣ ଚରଣପଙ୍କଜ । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ ।। ୧୩୬
ସପ୍ତମ ସ୍କନ୍ଧ ଗୀତେ ଭଣେ । ସୁଜନେ ! ତୋଷ ହୁଅ ତେଣେ ।। ୧୩୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ସଦାଚାରନିର୍ଣ୍ଣୟୋ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।।

## ପଞ୍ଚଦଶ ଅଧ୍ୟାୟ

ତତଃ ପଞ୍ଚଦଶେ ସର୍ବବର୍ଣ୍ଣାଶ୍ରମନିବନ୍ଧନମ୍ ।
ସାରତଃ ସଂଗ୍ରହେଣାନୁବର୍ଣ୍ଣ୍ୟତେ ମୋକ୍ଷଲକ୍ଷଣମ୍ ।।

ଶ୍ରୀନାରଦ ଉବାଚ

୧ ହେ ନୃପ ! କର୍ମନିଷ୍ଠ ହୋଇ । ଅଛନ୍ତି ବିପ୍ରମାନେ କେହି ।। ୧
କେହି ତପରେ ସ୍ୱାଧ୍ୟାୟରେ । କେହି ବେଦାର୍ଥବ୍ୟାଖ୍ୟାନରେ ।। ୨
ଜ୍ଞାନଯୋଗରେ ନିଷ୍ଠ ହୋଇ । ଅଛନ୍ତି ପୁଣ କେହି କେହି ।। ୩
୨ ପିତୃଙ୍କୁ ଉଦ୍ଦେଶି ଯେ କବ୍ୟ । ଦେବଙ୍କୁ ଉଦ୍ଦେଶି ଯେ ହବ୍ୟ ।। ୪
ବାଞ୍ଛନ୍ତେ ଅନନ୍ତ ଫଳକୁ । ତା ଦେବ ଜ୍ଞାନନିଷ୍ଠିତକୁ ।। ୫
ଜ୍ଞାନନିଷ୍ଠିତ ଅଟେ ଯେହି । ସେ ଲୋକ ଯେବେ ନ ମିଳଇ ।। ୬
ଜ୍ଞାନାଦି ତାରତମ୍ୟ ଜାଣି । ଆନ ଲୋକକୁ ଦେଇ ପୁଣି ।। ୭
୩ ଦେବକାର୍ଯ୍ୟରେ ବେନି ଦ୍ୱିଜେ । ତିନି ବ୍ରାହ୍ମଣେ ପିତୃକାର୍ଯ୍ୟେ ।। ୮
ଅଥବା ଏକ ଏକ ଜଣ । ଉଭୟ କାର୍ଯ୍ୟେ ଭୁଞ୍ଜାଇଣ ।। ୯
ହେଲେହେଁ ସମୃଦ୍ଧି ସଂଭବ । ଶ୍ରାଦ୍ଧେ ବିସ୍ତର ନ କରିବ ।। ୧୦
୪ ଦେଶକାଳକୁ ଯେ ଉଚିତ । ଶ୍ରଦ୍ଧା ପୂଜନଦ୍ରବ୍ୟ ପାତ୍ର ।। ୧୧
ଉତ୍ତମ ନୁହନ୍ତି ଏମାନ । ଅଧିକ ଦେଖି ବନ୍ଧୁଜନ ।। ୧୨
ପାତ୍ରମାନଙ୍କୁ ବୃଦ୍ଧି କରି । ଯାହା ବିସ୍ତାରକୁ ଆଚରି ।। ୧୩
୫ ନୀବାର ଆଦି ବନ୍ୟ ହୋଇ । ମୁନିମାନଙ୍କ ଅନ୍ନ ଯେହି ।। ୧୪
ଦେଶକାଳରେ ସେ ମିଳିତ । ବିଷ୍ଣୁରେ ହୋଏ ନିବେଦିତ ।। ୧୫
ଶ୍ରଦ୍ଧା କରିଣ ବିଧିବନ୍ତଂ[1] । ପାତ୍ରରେ କଲେ ତା' ଅର୍ପିତ ।। ୧୬
କାମନାମାନଙ୍କୁ ଦୁହିଁଇ । କେବେହେଁ ବିନାଶ ନୁହଇ ।। ୧୭

୧. ବିଧିମତ ।

୬ ଦେବତା ଋଷି ପିତୃ ଭୂତ । ଯେ ଆତ୍ମା ସ୍ୱଜନ ଯେ ମତ ।। ୧୮
ଅନ୍ନକୁ ବାଣ୍ଟନ୍ତେ ତାହାଙ୍କୁ । ବିଷ୍ଣୁ ମଣିମ ସମସ୍ତଙ୍କୁ ।। ୧୯
୭ ଯେ ଧର୍ମତତ୍ତ୍ୱକୁ ଜାଣଇଁ । ଶ୍ରାଦ୍ଧେ ସେ ଆମିଷ ନ ଦେଇ ।। ୨୦
୮ ଆମିଷ ଭୋଜନ ନ କରେ । ମୁନିମାନଙ୍କର ଅନ୍ନରେ ।। ୨୧
ପରମ ପ୍ରୀତି ଯେ ହୁଅଇ । ପଶୁହିଂସାରେ ସେ ନୁହଇ ।। ୨୨
ଉତ୍ତମ ଧର୍ମ ଯେଉଁମାନେ । ବାଞ୍ଛା କରନ୍ତି ନିଜ ମନେ ।। ୨୩
ତାଙ୍କର ଏ ସମାନ ହୋଇ । ପରମ ଧର୍ମ ଆନ ନାହିଁ ।। ୨୪
ମନ ବଚନ ଦେହୁଁ ଜାତ । ଯେ ହିଂସା ସ୍ୱୟେଂ ଉପସ୍ଥିତ ।। ୨୫
ପ୍ରାଣୀମାନଙ୍କ ବିଷୟରେ । ଯା' ତାହା ପରିତ୍ୟାଗ କରେ ।। ୨୬
୯ ଯଜ୍ଞ ଜାଣିଲା ଲୋକେ ସାର । ନିଷ୍କାମ ଜ୍ଞାନୀ ଯେଉଁ ନର ।। ୨୭
ମନକୁ କରି ସଂଯମନ । ସେ କର୍ମମୟ ଯଜ୍ଞମାନ ।। ୨୮
[1]ଛାଡ଼ନ୍ତି ଅତିଶୟ ଦୂରେ । ତାଙ୍କ ହୃଦୟେ ଆତ୍ମା ସ୍ଫୁରେ ।। ୨୯
୧୦ [2]ଦ୍ରବ୍ୟଯଜ୍ଞରେ ଯେଉଁ ଜନ । ଆରମ୍ଭ କରେ ଯଜ୍ଞମାନ ।। ୩୦
ତାହାକୁ ଦେଖି ପ୍ରାଣୀମାନେ । ଭୟ ପାଆନ୍ତି ନିଜମନେ ।। ୩୧
ଏ ଆତ୍ମତତ୍ତ୍ୱ ନ ଜାଣଇଁ । କେବଳ ପ୍ରାଣକୁ ପୋଷଇ ।। ୩୨
ଏଣୁ ଅଟଇ ଅକରୁଣ । ନିଶ୍ଚେ ମାରିବ ମୋତେ ପୁଣ ।। ୩୩
୧୧ ସେ ଘେନି ଧର୍ମବେତ୍ତା ଯେହି । ଦଇବବଶେ ଯେ ମିଳଇ ।। ୩୪
୧୨ ସେ ମୁନିଅନ୍ନରେ ସେ ଜନ । ସଂତୋଷ ହୋଇ ଦିନୁଁଦିନ ।। ୩୫
ନିତ୍ୟ ନିମିତ୍ତଭବ ହୋଇ । ଯେ କ୍ରିୟାମାନ ତା' କରଇ ।। ୩୬
ବିଧର୍ମ ପରଧର୍ମ ଦୁଇ । ଆଭାସ ଉପମା ଯେ ହୋଇ ।। ୩୭
ଏ ପାଞ୍ଚ ଛଳରେ ମିଶ୍ରିତ । ଅଧର୍ମଶାଖାରୂପେ ଖ୍ୟାତ ।। ୩୮
ଅଧର୍ମ ପ୍ରାୟ କରି ଦୂରେ । ଧର୍ମଜ୍ଞ ଏହା ତ୍ୟାଗ କରେ ।। ୩୯
୧୩ ଧର୍ମବୁଦ୍ଧିରେ କଲେ ଯାହି । ନିଜ ଧର୍ମର ବାଧ[3] ହୋଇ ।। ୪୦
୧୪ ବିଧର୍ମ ନାମରେ ସେ ଖ୍ୟାତ । ଯେ ପୁଣି ଆନରେ ପ୍ରେରିତ ।। ୪୧
ସେ ପରଧର୍ମ ନାମ ହୋଇ । ଉପମାରୂପେ ଖ୍ୟାତ ଯେହି ।। ୪୨
ସେ ଉପଧର୍ମ ନାମ ପୁଣ । ପାଷଣ୍ଡ ଦମ୍ଭ ଅବା ଜାଣ ।। ୪୩
ଅନ୍ୟଥା କରି ଯା' ବଖାଣି । ସେ 'ଛଳ'ନାମେ ଖ୍ୟାତ ପୁଣି ।। ୪୪

---

୧. ପ୍ରତ୍ୟକ୍ସ୍ଫୂର୍ତ୍ତିରସଦ୍ସ୍ଫୂର୍ତ୍ତିସ୍ତତ୍ତ୍ୱନିଷ୍ଠାବିଘାତକମ୍ ।
ସଂଲକ୍ଷ୍ୟ ସଂତ୍ୟଜେଦ୍ କର୍ମ ତ୍ୟଜନ୍ ବିଘ୍ନହତୋଽନ୍ୟଥା ।।
(ସର୍ବଜ୍ଞସୂକ୍ତିଃ)

୨. ନ ତଂ ବିଦାଥ ଯ ଇମା ଜଜାନାନ୍ୟଦ୍ ଯୁଷ୍ମାକମନ୍ତରଂ ବଭୂବ ।
ନୀହାରେଣ ପ୍ରାବୃତା ଜଳ୍ପ୍ୟା ଚାସୁତୃପ୍ ଉକ୍ଥଶାସଶ୍ଚରନ୍ତି ।। (ଶ୍ରୁତିଃ)

୩. ବାଧ = ବାଧା ।

ଆଭାସ ଅଟେ ଇଚ୍ଛାକୃତ । ଆଶ୍ରମଧର୍ମୁଁ ବହିର୍ଗତ ॥ ୪୫
ଯେ ଧର୍ମ ସ୍ୱଭାବବିହିତ । କେ ତାହା ନ କରେ ବାଞ୍ଛିତ ॥ ୪୬
୧୫ ଅଧନ ଅଟଇ ଯେ ଜନ । ଧର୍ମାର୍ଥେ ନ ବାଞ୍ଛିବ ଧନ ॥ ୪୭
ସଂସାରଯାତ୍ରାନିମିତ୍ତରେ । ବାଞ୍ଛା ନ କରେ ତା' ମନରେ ॥ ୪୮
ଚେଷ୍ଟା ନ କରେ ଯେଉଁ ନର । ଚେଷ୍ଟା-ଅଭାବ ସେ ଲୋକର ॥ ୪୯
ଅଜଗରର ପ୍ରାୟ ହୋଇ । ଆପଣା ବୃତ୍ତିକି ଦିଅଇ ॥ ୫୦
୧୬ ସଂତୁଷ୍ଟ ନିଷ୍କାମ ଯେ ନର । ଆତ୍ମାରେ ଯାହାର ବିହାର ॥ ୫୧
୧୮ ତାହାର ଯେଉଁ ସୁଖ ହୋଇ । ଦ୍ରବ୍ୟଚେଷ୍ଟାରେ ମନ ଦେଇ ॥ ୫୨
କାମଲୋଭରେ ଦିନୁଁଦିନ । ଧାବଇ ନାନା ଦିଗମାନ ॥ ୫୩
ଏମନ୍ତ ଅଟେ ଯେ ମାନବ । ସେ ସୁଖ ତାର କାହୁଁ ହେବ ॥ ୫୪
ସଦା ସଂତୁଷ୍ଟ ମନ ଯାର । ସୁଖଦ ସର୍ବଦିଗ ତାର ॥ ୫୫
ପାଦରେ ଉପାନହ ଯାର । ଶର୍କରା କଣ୍ଟାଦିରୁ ତାର ॥ ୫୬
ମଙ୍ଗଳ ହୁଅଇ ଯେସନ । ସର୍ବଦା ତୁଷ୍ଟ ଯାର ମନ ॥ ୫୭
ତାହାର ସେ ଲୋକର ପ୍ରାୟ । ସକଳ ଦିଗ ସୁଖମୟ ॥ ୫୮
ହେ ନୃପ ! ସଂତୁଷ୍ଟ ଯେ କେହି । ଜଳରେ କିବା ନ ବର୍ତ୍ତଇ ॥ ୫୯
କାର୍ପଣ୍ୟୁଁ ଉପସ୍ଥ ଜିହ୍ୱାର । କୁକ୍କୁର ପ୍ରାୟ ହୋଏ ନର ॥ ୬୦
୧୯ ଯେ ବିପ୍ର ହୋଏ ଅସଂତୋଷ । ତା' ତେଜ ତପ ବିଦ୍ୟା ଯଶ ॥ ୬୧
୨୦ ଇନ୍ଦ୍ରିୟଚାପଳେ ସ୍ରବଇ । ଜ୍ଞାନ ହିଁ ବିନାଶ ହୁଅଇ ॥ ୬୨
କ୍ଷୁଧାରେ ତୃଷାରେ କାମର । ବିନାଶନକୁ ଲଭେ ନର ॥ ୬୩
କ୍ରୋଧର ଫଳ ହିଂସା ଯେହି । ସେ ହେଲେ କ୍ରୋଧକୁ ଜିଣଇଁ ॥ ୬୪
ଜିଣି ସକଳ ଦିଗମାନ । ଭୂମିକି ଭୋଗ କରି ଜନ ॥ ୬୫
ଲୋଭର ଅନ୍ତ ଅଟେ ଯେହି । ତାହାକୁ ଜିଣି ନ ପାରଇ ॥ ୬୬
୨୧ ହେ ନୃପ ! ଛିଣ୍ଡାନ୍ତି ସଂଶୟ । ଜାଣନ୍ତି ବହୁତ ବିଷୟ ॥ ୬୭
ଯେ ସଭାପତି ଏ ଜଗତେ । ଏ ରୂପେ ବହୁତ ପଣ୍ଡିତେ ॥ ୬୮
ଅସନ୍ତୋଷରୁ ନରକରେ । ପଡ଼ନ୍ତି ମରଣ ଅନ୍ତରେ ॥ ୬୯
୨୨ ଯେବେ ସଂକଳ୍ପ ନ କରଇ । ସକଳ କାମକୁ ଜିଣଇଁ ॥ ୭୦
କରନ୍ତେ କାମକୁ ବର୍ଜନ । କ୍ରୋଧକୁ ଜିଣିପାରେ ଜନ ॥ ୭୧
ଅର୍ଥେ ଅନର୍ଥ ଦୃଷ୍ଟି କଲେ । ଲୋଭକୁ ଜିଣିପାରେ ଭଲେ ॥ ୭୨
ଯେ ଭୟ ଜାତ ହୋଇଥାଇ । ତତ୍ତ୍ୱଜ୍ଞାନରୁ ତା' ଜିଣଇଁ ॥ ୭୩
୨୩ ଶୋକମୋହକୁ ଆତ୍ମଜ୍ଞାନେ । ଦମ୍ଭକୁ ମହତସେବନେ ॥ ୭୪
ଯେ ଯୋଗଜାତ ବିଘ୍ନମାନ । ମୌନରେ ଜିଣଇଁ ତା' ଜନ ॥ ୭୫
କାୟ ଆଦିଙ୍କ ଅଚେଷ୍ଟାରେ । ହିଂସାକୁ ଜିଣଇଁ ସତ୍ତ୍ୱରେ ॥ ୭୬
୨୪ ଯାହା ସକାଶୁଁ ଭୟ ଜାତ । ତା' ଦୟାରେ ତା' କରେ ହତ ॥ ୭୭

ଦଇବଉପସର୍ଗୁଁ ଜାତ । ଯେ ମନପୀଡ଼ାଦି ସଂତତ ॥ ୭୮
ଆତ୍ମସମାଧିରେ ତା' ଜନ । [1]ବିନାଶ କରଇ ବହନ ॥ ୭୯
ଯେ ଦୁଃଖ ଦେହୁଁ ଜାତ କାଳେ । ତାହାକୁ ଜିଣେ ଯୋଗବଳେ ॥ ୮୦
ସାତ୍ତ୍ୱିକ ଆହାର ଆଦିରେ । ନିଦ୍ରାକୁ ଜିଣଇଁ କ୍ରମରେ ॥ ୮୧
୨୫ ରଜକୁ ତମକୁ ସତ୍ତ୍ୱରେ । ସତ୍ତ୍ୱକୁ ଜିଣଇଁ ଶମରେ ॥ ୮୨
ଗୁରୁଭକ୍ତିରେ ଏ ସକଳ । ପୁରୁଷ ଜିଣେ ତତକାଳ ॥ ୮୩
୨୬ ଯେହୁ ସାକ୍ଷାତ ଭଗବାନ । କରନ୍ତି ଜ୍ଞାନଦୀପ ଦାନ ॥ ୮୪
ସେ ଗୁରୁଠାରେ ମର୍ତ୍ତ୍ୟ ହୋଇ । ଯାର କୁବୁଦ୍ଧି ଜନମଇଁ ॥ ୮୫
ତାର କୁଞ୍ଜରସ୍ନାନ ପ୍ରାଏ । ଶାସ୍ତ୍ରଶ୍ରବଣ ବ୍ୟର୍ଥ ହୋଏ ॥ ୮୬
୨୭ ଯାହା ଚରଣ ଯୋଗେଶ୍ୱରେ । ଖୋଜୁ ଅଛନ୍ତି ନିରନ୍ତରେ ॥ ୮୭
ପ୍ରକୃତି ପୁରୁଷ ଯେ ଦୁଇ । ତାଙ୍କର ଈଶ୍ୱର ଅଟଇ ॥ ୮୮
ଏହି ଶ୍ରୀକୃଷ୍ଣ ଭଗବାନ । ସାକ୍ଷାତ ଅଟନ୍ତି ଯେସନ ॥ ୮୯
ଗୁରୁ ହିଁ ଅଟେ ସେ ପ୍ରକାର । ଏ ଲୋକ ମଣେ ତାଙ୍କୁ ନର ॥ ୯୦
୨୮ ଯେବଣ ଧର୍ମମାନ ପୁଣ । ବେଦ କରିଛି ନିରୂପଣ ॥ ୯୧
ସଂଯମ ଷଡ଼ ଇନ୍ଦ୍ରିୟର[2] । ଏକାନ୍ତ ଅଟଇ ତହିଁର ॥ ୯୨
ତେମନ୍ତ ହେଲେହେଁ ସେ ଧ୍ୟାନ । ଧାରଣା ଆଦି ଯୋଗମାନ ॥ ୯୩
ଯେବେ ସଂପାଦି ନ ପାରନ୍ତି । କେବଳ ଶ୍ରମକୁ ବହନ୍ତି ॥ ୯୪
୨୯ କୃଷିକି ଆଦି ହୋଇ ଯେତେ । ଜୀବିକା ଅଛନ୍ତି ଜଗତେ ॥ ୯୫
ଯେ ବା ତାଙ୍କର ଫଳମାନ । ମୋକ୍ଷକୁ ନୁହନ୍ତି ସାଧନ ॥ ୯୬
ବାସ୍ତବ ସଂସାର ନିମିତ୍ତେ । ସେମାନେ ହୁଅନ୍ତି ସଂତତେ ॥ ୯୭
ଯାଗାଦି ନାନା ଧର୍ମମାନ । ଅସତ ଲୋକର ତେସନ ॥ ୯୮
୩୦ ଯେ ଚିତ୍ତଜୟରେ ଯତନ । [3]କରେ ସେ ଭିକ୍ଷୁ ହୋଏ ଜନ ॥ ୯୯
ପରିଗ୍ରହକୁ ନ କରଇ । ଏକାନ୍ତ ହୋଇ ଭ୍ରମୁଁଥାଇ ॥ ୧୦୦
ଏକାନ୍ତେ କରିଥାଇ ବାସ । ଅଳପ ଭିକ୍ଷା କରେ ଗ୍ରାସ ॥ ୧୦୧
୩୧ ଯେ ଶୁଚି ସମ ଦେଶ ହୋଇ । ନିଜ ଆସନ ସ୍ଥାପି ତହିଁ ॥ ୧୦୨
ସ୍ଥିରେ ସୁଖେ ସମେ ତହିଁରେ । ବସେ, ପ୍ରଣବକୁ ଉଚ୍ଚାରେ ॥ ୧୦୩
୩୨ ପୂର-କୁମ୍ଭକ-ରେଚକରେ । ପ୍ରାଣ ଅପାନ ରୋଧ କରେ ॥ ୧୦୪
୩୪ ଯେତେବେଳେକେ କାମମାନ । ତ୍ୟାଗ କରଇ ନିଜ ମନ ॥ ୧୦୫

୧. ବିମନା ବିଫଳାରମ୍ଭଃ ସଂସୀଦତ୍ୟନିମିତ୍ତତଃ (ଯାଜ୍ଞବଲ୍କ୍ୟ) ।
୨. ଷଡ଼େନ୍ଦ୍ରିୟପର ।
୩. ଦ୍ୱନ୍ଦ୍ୱାହତସ୍ୟ ଗାର୍ହସ୍ଥ୍ୟଂ ଧ୍ୟାନଭଙ୍ଗାଦିକାରଣମ୍ ।
ଲକ୍ଷୟିତ୍ୱା ଗୃହୀ ସ୍ପଷ୍ଟଂ ସଂନ୍ୟସେଦବିଚାରୟନ୍ ॥ (ସ୍ମୃତିଃ)

| | | | |
|---|---|---|---|
| | ଯେ ନିଜ ନାସାଅଗ୍ର ପୁଣ | । ତାକୁ କରଇ ନିରୀକ୍ଷଣ | ।। ୧୦୬ |
| | ଭ୍ରମନ୍ତେ କାମହତ ହୋଇ | । ଯହିଁ ଯହିଁ କି ମନ ଯାଇ | ।। ୧୦୭ |
| | ତହିଁ ତହିଁରୁ ଆଣି ମନ | । ହୃଦେ ରୁନ୍ଧଇ ବୁଧ ଜନ | ।। ୧୦୮ |
| | ଏମନ୍ତ ରୂପରେ ଅଭ୍ୟାସ | । କରନ୍ତେ ଯତିର ଅବଶ୍ୟ | ।। ୧୦୯ |
| | ଶାନ୍ତଭାବକୁ ଲଭେ ଚିତ୍ତ | । ଅକାଷ୍ଠ ଅନଳ ଯେମନ୍ତ | ।। ୧୧୦ |
| ୩୫ | ଯେ କାମ ଆଦିରେ ରହିତ | । ଯହିଁ ଅଖିଳ ବୃତ୍ତି ହତ | ।। ୧୧୧ |
| | ସେ ଚିତ୍ତ ବ୍ରହ୍ମସୁଖ ପାଇ | । କେବେହେଁ ବିଷୟେ ନ ଯାଇ | ।। ୧୧୨ |
| ୩୬ | ତ୍ରିବର୍ଗ ଉତପତି ସ୍ଥାନ | । ଅଟଇ ଯେବଣ ସଦନ | ।। ୧୧୩ |
| | ତହିଁରୁ ସନ୍ୟାସ କରିଣ | । ଯେ ଯତି ସେବେ ତାହା ପୁଣ | ।। ୧୧୪ |
| | ସେ ଯତି ନିର୍ଲ୍ଲଜ ଅଟଇ | । ବମନ କରେ ଯା' ତା' ଖାଇ | ।। ୧୧୫ |
| ୩୭ | ଯେ ବିଷ୍ଠା କୃମି ଭସ୍ମ ପ୍ରାୟ | । ଅତି ହିଁ ତୁଚ୍ଛ ନିଜ କାୟ | ।। ୧୧୬ |
| | ଆତ୍ମାରୁ ଅଟେ ସେ ଇତର | । ପୂର୍ବେ କରନ୍ତେ ଏ ବିଚାର | ।। ୧୧୭ |
| | ତାହାକୁ କରି ଆପଣାର | । ସ୍ତୁତି କରନ୍ତି ଦୁଷ୍ଟ ନର | ।। ୧୧୮ |
| ୩୮ } | କର୍ମବର୍ଜନ ଗୃହସ୍ଥର | । ବଟୁର ବ୍ରତପରିହାର | ।। ୧୧୯ |
| ୩୯ } | ବାନପ୍ରସ୍ଥର ଗ୍ରାମବାସ | । ଭିକ୍ଷୁର ଇନ୍ଦ୍ରିୟ ଲାଳସ | ।। ୧୨୦ |
| | ଏମାନେ ଆଶ୍ରମଅଧର୍ମ | । ବିଡମ୍ବ କରନ୍ତି ଆଶ୍ରମ | ।। ୧୨୧ |
| | ବିମୂଢ଼ ସେ ଦେବମାୟାରେ | । ଛାଡ଼ିବ ତାହାଙ୍କୁ କୃପାରେ | ।। ୧୨୨ |
| ୪୦ | ନିଜ ବାସନାକୁ ଜ୍ଞାନରେ | । ନିରସ୍ତ କଲା ଯେ ପୂର୍ବରେ | ।। ୧୨୩ |
| | ପରମ ବ୍ରହ୍ମ ବୋଲି ପୁଣି | । [1]ଆତ୍ମାକୁ ଯେବେ ଅଛି ଜାଣି | ।। ୧୨୪ |
| | କି ଇଚ୍ଛନ୍ତେ ବା କି ହେତୁରେ | । ଲମ୍ପଟ ଦେହ ପୁଷ୍ଟ କରେ | ।। ୧୨୫ |
| ୪୧ | ରଥ ଅଟଇ ନରକାୟ | । ଇନ୍ଦ୍ରିୟମାନେ ଯହିଁ ହୟ | ।। ୧୨୬ |
| | ଯେ ମନ ଇନ୍ଦ୍ରିୟ-ଈଶ୍ୱର | । ସେ ଅଟେ ରଜ୍ଜୁମାନ ତାର | ।। ୧୨୭ |
| | ଶବ୍ଦାଦି ଯେ ବିଷୟ ଆନ | । ତାର ଯିବାର ମାର୍ଗମାନ | ।। ୧୨୮ |
| | ମହାବନ୍ଧନ ଯହିଁ ଚିତ୍ତ | । ସେ ବନ୍ଧ ଈଶ୍ୱରନିର୍ମିତ | ।। ୧୨୯ |
| | ସାରଥି ଅଟେ ବୁଦ୍ଧି ଯହିଁ | । ଏରୂପେ ବୁଧେ ଛନ୍ତି କହି | ।। ୧୩୦ |
| ୪୨ | ବୋଲନ୍ତି ଅକ୍ଷ ଦଶ ପ୍ରାଣ[2] | । ଅଧର୍ମ ଧର୍ମ ଚକ୍ର ପୁଣ | ।। ୧୩୧ |

୧. ଆତ୍ମାନଂ ଚେଦ୍ ବିଜାନୀୟାଦୟମସ୍ମୀତି ପୁରୁଷଃ ।
କିମିଚ୍ଛନ୍ କସ୍ୟ କାମାୟ ଶରୀରମନୁ ସଞ୍ଚରେତ୍ ।। (ଶ୍ରୁତିଃ)
ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ ।। ୧
ଇନ୍ଦ୍ରିୟାଣି ହୟାନାହୁର୍ବିଷୟାଂସ୍ତେଷୁ ଗୋଚରାନ୍ ।
ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ ।। ୨ (ଶ୍ରୁତିଃ)

୨. ଦଶପ୍ରାଣ = ପ୍ରାଣାଦି ପଞ୍ଚ ଏବଂ ନାଗ, କୂର୍ମ, କୃକଳ, ଦେବଦତ୍ତ ଓ ଧନଂଜୟ ।

| | | | | |
|---|---|---|---|---|
| | ଯେ ଅଭିମାନଯୁତ ଜୀବ | । ଯହିଁ ଲଭିଛି ରଥୀଭାବ | ।। | ୧୩୨ |
| | ପ୍ରଣବ ଧନୁ ଜୀବ[1] ଶର | । ପରମ ଆତ୍ମା ଲକ୍ଷ୍ୟ ତାର | ।। | ୧୩୩ |
| ୪୩ } | ରାଗ ବିଦ୍ୱେଷ ଲୋଭ ମଦ | । ଶୋକ ମୋହ ଭୟ ପ୍ରମାଦ | ।। | ୧୩୪ |
| ୪୪ } | ମାନ ଅବମାନ ଅସୂୟା | । ହିଂସା ମତ୍ସର ରଜ ମାୟା | ।। | ୧୩୫ |
| | କ୍ଷୁଧା ନିଦ୍ରା ଇତ୍ୟାଦି ହୋଇ | । ଜିଣିମା ଶତ୍ରୁମାନେ ଯେହି | ।। | ୧୩୬ |
| | ରଜତମପ୍ରକୃତି ହୋଇ | । ସେ ଶତ୍ରୁମାନଙ୍କରେ କେହି | ।। | ୧୩୭ |
| | ଯେ ପର-ଉପକାର ଆଦି | । ସତ୍ତ୍ୱପ୍ରକୃତିରୂପେ ସିଦ୍ଧି | ।। | ୧୩୮ |
| | ଆରୂଢ଼ସମାଧି ଲୋକର | । ସେମାନେ ଶତ୍ରୁ କେଉଁଠାର | ।। | ୧୩୯ |
| ୪୫ | ଯହିଁରେ ପରିକର ହୋଇ | । ଇନ୍ଦ୍ରିୟମାନେ ଛନ୍ତି ରହି | ।। | ୧୪୦ |
| | ସେ ନରକାୟ ରଥ ଜନ | । ଧରିଣ ଥାଇ ଯେତେଦିନ | ।। | ୧୪୧ |
| | ମହତ ଜନଙ୍କ ଚରଣ | । ସେବାରେ ଯେହୁ ଅଟେ ତୀକ୍ଷ୍ଣ | ।। | ୧୪୨ |
| | ଧରନ୍ତେ ସେ ଜ୍ଞାନଖଡ୍‌ଗକୁ | । ଆଶ୍ରୟ କରନ୍ତେ କୃଷ୍ଣଙ୍କୁ | ।। | ୧୪୩ |
| | ଶତ୍ରୁକୁ ଜିଣେ ଶାନ୍ତ ହୋଇ | । ଆନନ୍ଦେ ତୋଷକୁ ଲଭଇ | ।। | ୧୪୪ |
| | ସେ ରଥଆଦି ହୋଇ ଯେତେ | । ଉପେକ୍ଷା କରେ ତା' ତୁରିତେ | ।। | ୧୪୫ |
| ୪୬ | କୃଷ୍ଣ-ଆଶ୍ରୟ ଯେ ନ କରେ | । ପ୍ରମତ୍ତ ହୋଏ ନିରନ୍ତରେ | ।। | ୧୪୬ |
| | ଦୁଷ୍ଟ ଇନ୍ଦ୍ରିୟବାଜୀଗଣ | । ଅସାଧୁ ଯେ ସାରଥି ପୁଣ | ।। | ୧୪୭ |
| | ଏମାନେ ବଳରେ ତାହାକୁ | । ନେଇଣ ପ୍ରବୃତ୍ତିମାର୍ଗକୁ | ।। | ୧୪୮ |
| | ବିଷୟଦସ୍ୟୁଙ୍କ ଆଗରେ | । ନିଃକ୍ଷେପ କରନ୍ତି ସତ୍ୱରେ | ।। | ୧୪୯ |
| | ସେ ଦସ୍ୟୁମାନେ ତାକୁ ପୁଣ | । ସାରଥିହୟସହିତେଣ | ।। | ୧୫୦ |
| | ସଂସାରକୂପରେ ପକାନ୍ତି | । ଯହିଁରେ ବଡ଼ ମୃତ୍ୟୁଭୀତି | ।। | ୧୫୧ |
| | ତମୋଗୁଣରେ ଅତିଶୟ | । ଯେ କୂପ ଅନ୍ଧକାରମୟ | ।। | ୧୫୨ |
| ୪୭ | ପ୍ରବୃତ୍ତି ନିବୃତ୍ତିରୂପରେ | । ଦ୍ୱିବିଧ କର୍ମ ଯେ ବେଦରେ | ।। | ୧୫୩ |
| | ପ୍ରବୃତ୍ତି କର୍ମ ଯେ ଆଚରେ | । ଜନ୍ମାଦି ଲଭେ ଏ ସଂସାରେ | ।। | ୧୫୪ |
| | ନିବୃତ୍ତିକର୍ମ ଯେ କରଇ | । ମୋକ୍ଷସୁଖକୁ ସେ ଭୁଞ୍ଜଇ | ।। | ୧୫୫ |
| ୪୮ | ଯେ ହିଂସ୍ର ଶ୍ୟେନ ଆଦି କର୍ମ | । ଯେ ପଶୁ ଦ୍ରବ୍ୟମୟ କାମ୍ୟ | ।। | ୧୫୬ |
| | ଅଗ୍ନିହୋତ୍ରାଦି କର୍ମମାନ | । ଅତି ଆସକ୍ତିର ନିଦାନ | ।। | ୧୫୭ |
| | ଯେ ପୁଣ ଦର୍ଶ ପୂର୍ଣ୍ଣମାସ | । ଯେ ପଶୁ ସୋମ ଚାତୁର୍ମାସ | ।। | ୧୫୮ |
| ୪୯ | ବୈଶ୍ୱଦେବ ବଳିହରଣ | । ଏ ଇଷ୍ଟ ପ୍ରବୃତ୍ତିଲକ୍ଷଣ | ।। | ୧୫୯ |
| | ଆରାମ ଦେବତାଭବନ | । ଯେ କୂପ ପ୍ରପାଦି[2] ବିଧାନ | ।। | ୧୬୦ |
| | ଏ କର୍ମମାନ ପୂର୍ତ୍ତ ହୋଇ | । ସଂସାରେ ବିଦିତ ଅଟଇ | ।। | ୧୬୧ |
| ୫୦ | ଯେ ଚରୁ-ପୁରୋଡାଶାଦିର | । ସୂକ୍ଷ୍ମ ବିପାକ ପ୍ରାଣୀଙ୍କର | ।। | ୧୬୨ |

୧. ଜୀବ = ଶୁଦ୍ଧ ଜୀବ । ୨. ପ୍ରପାଦି = ପ୍ରପା ଅର୍ଥାତ୍ ଜଳଛତ୍ର ଆଦି ।

୫୧ ଶରୀରାନ୍ତର ନିମିତ୍ତରେ । ସଂଭବେ ରେତସ୍ୱରୂପରେ ।। ୧୬୩
ଯେ ଦେବ ଧୂମ-ଅଭିମାନୀ । ଯେ କୃଷ୍ଣପକ୍ଷ ଯେ ରଜନୀ ।। ୧୬୪
ଯେ ସୋମ ଯେ ଦକ୍ଷିଣାୟନ । ଯେ ବା ଓଷଧିଲତାଂ[୧] ମାନ ।। ୧୬୫
ଯେ ଅନ୍ନ ହେ ଅବନୀଶ୍ୱର । ମାର୍ଗ ଏ ପ୍ରବୃତ୍ତିକର୍ମର ।। ୧୬୬
ଏଣେ ଜନମ ଲୋକଙ୍କର । ସଂଭବ ହୋଏ ବାରମ୍ବାର ।। ୧୬୭
ଯେ ଚରୁ ପୁରୋଡାଶ ଆଦି । ତା' ସୂକ୍ଷ୍ମବିପାକ[୨] ପ୍ରସିଦ୍ଧି ।। ୧୬୮
ତେଣେ ଯେ ସଂଯୁତ ଅଟଇ । ଧୂମାଦି ଦେବେ ତାହାକୁ ହି ।। ୧୬୯
ନିଅନ୍ତି ସେ ସୋମଲୋକକୁ । ତହିଁରେ ଲଭିଣ ଭୋଗକୁ ।। ୧୭୦
ତଦନନ୍ତରେ ବୃଷ୍ଟିଦ୍ୱାରେ । ମିଳି ଓଷଧିଲତାଦିରେ ।। ୧୭୧
ଅନ୍ନରୂପରେ ବୀର୍ଯ୍ୟ ହୋଇ । ଏ ରୂପେ ଏକ ଏକ ହୋଇ ।। ୧୭୨
ଜନମ ଲଭଇ ଭୂମିରେ । ନିଷେକାଦି ମରଣାନ୍ତରେ ।। ୧୭୩
ସଂସ୍କାରେ ସଂସ୍କୃତ ହୁଅଇ । ବ୍ରାହ୍ମଣଶରୀର ଯେ ପାଇ ।। ୧୭୪
୫୨ } ଯେବଣ ଇନ୍ଦ୍ରିୟେ ସଂତତ । ଜ୍ଞାନରେ ଅଟନ୍ତି ଦୀପିତ ।। ୧୭୫
୫୩ } ଇନ୍ଦ୍ରିୟମାନଙ୍କ ବ୍ୟାପାର । ଯେ ଇଷ୍ଟ ପୂର୍ତ୍ତ ଆଦି ଆର ।। ୧୭୬
ଇନ୍ଦ୍ରିୟ-ତାବନ୍ମାତ୍ରେ ତାହି । କରନ୍ତି ବିଭାବନା କେହି ।। ୧୭୭
ଦର୍ଶନ ଆଦିରେ ସଂକଳ୍ପ । ସେମାନେ ଅଟନ୍ତି ଯା' ରୂପ ।। ୧୭୮
ଇନ୍ଦ୍ରିୟମାନଙ୍କୁ ସେ ମନେ । କରନ୍ତି ବିଭାବନା ଜନେ ।। ୧୭୯
ଯେ ଅଟେ ବିକାରସଂଯୁତ । ସେ ମନ କରନ୍ତି ଅର୍ପିତ ।। ୧୮୦
ବିଧ୍ୟାଦିଲକ୍ଷଣ ବାଣୀରେ । ସେ ବାଣୀ ବର୍ଣ୍ଣସମୂହରେ ।। ୧୮୧
ଯେ ସ୍ୱରତ୍ରୟରୂପ ହୋଇ । ପ୍ରଣବ ବିଦିତ ଅଟଇ ।। ୧୮୨
ସେ ପ୍ରଣବରେ ବର୍ଣ୍ଣମାନ । ବିନ୍ଦୁରେ ସେ ପ୍ରଣବ ପୁଣ ।। ୧୮୩
ସେ ବିନ୍ଦୁ ବିନ୍ୟସେ ନାଦରେ । ସେ ନାଦ ନେଇ ସୂତ୍ରାତ୍ମାରେ ।। ୧୮୪
ସେ ସୂତ୍ରାତ୍ମାକୁ ବ୍ରହ୍ମେ ପୁଣ । ନେଇ କରଇ ସମର୍ପଣ ।। ୧୮୫
୫୪ ଅନଳ ତପନ ଦିବସ । ପୂର୍ବାହ୍ଣ ଶୁକ୍ଳପକ୍ଷଶେଷ ।। ୧୮୬
ଉତ୍ତରାୟଣ ବ୍ରହ୍ମା ପୁଣ । ସ୍ଥୂଳ ଉପାଧି ଯେ ପ୍ରମାଣ ।। ୧୮୭
ସୂକ୍ଷ୍ମେ ତାହାକୁ ଲୟ କରି । ତୈଜସ ରୂପ ପୁଣ ଧରି ।। ୧୮୮
ସୂକ୍ଷ୍ମ ତୈଜସ କାରଣରେ । ମିଶାଇ ପ୍ରାଜ୍ଞରୂପ ଧରେ ।। ୧୮୯

---

୧. କଣ ।

୨. ଉଷ୍ମବିପାକ (ପାଠାନ୍ତର) । ଉଷ୍ମବିପାକ = ହୃଦୟାଗ୍ର ପ୍ରଦ୍ୟୋତ ।
"ସ ଇମାସ୍ତେଜୋମାତ୍ରାଃ ସମଭ୍ୟାଦଦାନୋ ହୃଦୟମେବାନୁଚଂକ୍ରାମତି ତସ୍ୟ
ହୈତସ୍ୟ ହୃଦୟାଗ୍ରଂ ପ୍ରଦ୍ୟୋତତେ; ତେନ ପ୍ରଦ୍ୟୋତେନୈଷ ଆତ୍ମା ନିଷ୍କ୍ରାମତି ।" (ଶ୍ରୁତିଃ)

କାରଣେ[୧] ସାକ୍ଷୀରୂପେ ତହିଁ । ମିଶାଇ ତୁର୍ଯ୍ୟରୂପ[୨] ହୋଇ ॥ ୧୯୦
୫୫ ଏହା ବୋଲନ୍ତି ଦେବଯାନ । ଇତର ମନୁଷ୍ୟ ଯେସନ ॥ ୧୯୧
ପୁଣି ଜନମ ହୋଇ ହୋଇ । ସଂସାରମାର୍ଗେ ନିବର୍ତ୍ତଇ ॥ ୧୯୨
ଶାନ୍ତ ଅଟଇ ଯେଉଁ ଜନ । ଆତ୍ମାକୁ କରଇ ଯଜନ ॥ ୧୯୩
ସେ ଲୋକ ନୁହଇ ତେମନ୍ତ । ସର୍ବଦା ଆତ୍ମାରେ ଯେ ସ୍ଥିତ ॥ ୧୯୪
୫୬ ପିତୃଦେବ-ଅୟନ ହୋଇ । ବେଦନିର୍ମିତ[୩] ଏହୁ ଦୁଇ ॥ ୧୯୫
ଶାସ୍ତ୍ରଚକ୍ଷୁରେ ଯେ ଜାଣଇଁ । ଦେହେ ଥିଲେହେଁ ମୋହ ନୋହି ॥ ୧୯୬
୫୭ ଦେହ ଆଦିଙ୍କ ଆଦ୍ୟେ ଯେହି । କାରଣରୂପେ ବର୍ତ୍ତିଥାଇ ॥ ୧୯୭
ଅବଧିରୂପେ ଅଛି ଅନ୍ତେ । ଭୋଗ୍ୟରୂପରେ ବହିର୍ଗତେ ॥ ୧୯୮
ଅନ୍ତରେ ଭୋକ୍ତାରୂପେ ଥାଇ । ଯେ ଉଚ୍ଚ-ନୀଚ ହୋଇ ଦୁଇ ॥ ୧୯୯
ଯେ ଅଟେ ଜ୍ଞାନ-ଜ୍ଞାନଗମ୍ୟ । ଯେ ବାଣୀ-ବାଚ୍ୟ ଜ୍ୟୋତି-ତମ ॥ ୨୦୦
ସେ ସର୍ବ ଏହି ଭଗବାନ । ଏଠାରୁ କିଛି ନାହିଁ ଆନ ॥ ୨୦୧
୫୮ ତର୍କ ବିରୋଧ ସବୁଠାରେ । ବାଧିତ ହେଲେହେଁ ସଂସାରେ ॥ ୨୦୨
ପ୍ରତିବିମ୍ବାଦି ବସ୍ତୁଭାବେ । ଖ୍ୟାତ ହୋଇଛି ସବୁଠାବେ ॥ ୨୦୩
ଇନ୍ଦ୍ରିୟବିଷୟ ତେମନ୍ତ । ଅର୍ଥରୂପରେ ବିକଳ୍ପିତ ॥ ୨୦୪
ଦୁର୍ଘଟ ଭାବୁଁ କରି ସେହି । ବାସ୍ତବ ପରମାର୍ଥ ନୋହି ॥ ୨୦୫
୫୯ ପୃଥିବୀ ଆଦି ମହାଭୂତ । ଯେ ପଞ୍ଚ ଅଟଇ ବିଦିତ ॥ ୨୦୬
ଏକବୁଦ୍ଧିରେ ଆଲମ୍ବନ । ଦେହାଦି ଯେ ତାଙ୍କ ଉତ୍ପନ୍ନ ॥ ୨୦୭
ତାଙ୍କ ସଂଘାତ ଏ ନୁହଇ । ବୃକ୍ଷର ବନପ୍ରାୟ ହୋଇ ॥ ୨୦୮
ବନ ଯେମନ୍ତ ଏକଦେଶ । ବିନାଶେ ନୁହଇ ବିନାଶ ॥ ୨୦୯
ଏ ଦେହ ନୁହଇ ତେସନ । ଏକ ବିନାଶେ ହୋଏ ଆନ ॥ ୨୧୦
ଯେ ଅବୟବବନ୍ତ ହୋଇ । ଦେହ ଆରମ୍ଭ ଅଛି ପାଇ ॥ ୨୧୧
ଏକ ଅବୟବବିକାରେ । ନୋହେ ସର୍ବବିକାର ତାରେ ॥ ୨୧୨
ପରିଣାମ ହିଁ ନାହିଁ ତହିଁ । ଯେଣୁ ସେ ଅତି ଭିନ୍ନ ନୋହି ॥ ୨୧୩
ପ୍ରତ୍ୟବୟବେ[୪] ସର୍ବାନ୍ୱୟ । ସମ୍ଭବ ନୁହଇ ନିଶ୍ଚୟ ॥ ୨୧୪
ଅଙ୍ଗୁଳିମାତ୍ରେ ଦେହବୁଦ୍ଧି । ତେବେ ହୁଅନ୍ତା ଯେ ପ୍ରସିଦ୍ଧି ॥ ୨୧୫
ଆଂଶିକ ଅନ୍ୱୟ ହିଁ ନାହିଁ । ତା' ଅଂଶ-ଅଙ୍ଗୀକାରେ ତହିଁ ॥ ୨୧୬
ଯେଣୁ ହୁଅନ୍ତା ଅନବସ୍ଥା । ଏଣୁ ଏ ଦେହ ଆଦି ମିଥ୍ୟା ॥ ୨୧୭
୬୦ ତନ୍ମାତ୍ର ରୂପେ ସୂକ୍ଷ୍ମ ହୋଇ । ଯେ ଅବୟବେ ଛନ୍ତି ରହି ॥ ୨୧୮

---

୧. କାରଣେ = କାରଣକୁ ।
୨. ବିରାଟ୍ ହିରଣ୍ୟଗର୍ଭଶ୍ଚ କାରଣଂ ଚେତ୍ୟୁପାଧୟଃ ।
ଈଶସ୍ୟ ଯତ୍ ତ୍ରିଭିର୍ହୀନଂ ତୁରୀୟଂ ତତ୍ପଦଂ ବିଦୁଃ ॥ (ପୋଥିଧୃତ ଶ୍ଳୋକ)
୩. ଦେବନିର୍ମିତ । ୪. ପ୍ରତ୍ୟବୟବେ = ପ୍ରତି ଅବୟବରେ ।

ତାଙ୍କ ବିହୁନେ ମହାଭୂତେ । ପ୍ରସିଦ୍ଧ ନୁହନ୍ତି ଜଗତେ ॥ ୨୧୯
ଏଣୁ ଅବୟବୀ ଭାବରେ । ମିଥ୍ୟା ହିଁ ଅଛି ତାଙ୍କ ଠାରେ ॥ ୨୨୦
ଯେ ଅଟେ ଅବୟବବନ୍ତ । ସେ ପୁଣ ହୁଅନ୍ତେ ଅସନ୍ତ ॥ ୨୨୧
ଅବୟବ ହିଁ ଅନ୍ତକାଳେ । ଅସତ୍ୟ ହୋଏ ନ୍ୟାୟବଳେ ॥ ୨୨୨
ଅବୟବୀର ଯେ ପ୍ରତୀତି । ତା'ବିନୁ ଆନେ ଉପପତ୍ତି ॥ ୨୨୩
ନୁହଇ, ଏଣୁ ତା' ସତ୍ତାରେ । ପ୍ରମାଣ ନାହିଁ ଏ ସଂସାରେ ॥ ୨୨୪
୬୧ ଅବିଦ୍ୟାହେତୁରେ ବସ୍ତୁର । ବିକଳ୍ପେ ପୂର୍ବର ପୂର୍ବର ॥ ୨୨୫
[୧]ସଦୃଶଭାବୁଁ ସେହି ଏହି । ଏ ଭ୍ରମ ତେତେକାଳ ହୋଇ ॥ ୨୨୬
ଯାବତ କାଳ ଅବିଦ୍ୟାର । ନିବୃତ୍ତି ନୁହଇ ପ୍ରଚାର ॥ ୨୨୭
ସମସ୍ତଙ୍କର ମିଥ୍ୟା ହରେ । ବିଧି-ନିଷେଧ କି ପ୍ରକାରେ ॥ ୨୨୮
ଏମନ୍ତ ବିଚାରୁଛ ଯେବେ । ତହିଁ ସିଦ୍ଧାନ୍ତ ଶୁଣ ଏବେ ॥ ୨୨୯
ସ୍ୱପ୍ନର ମଧ୍ୟରେ ଜାଗର । ସ୍ୱପ୍ନବ୍ୟବସ୍ଥା ବ୍ୟବହାର ॥ ୨୩୦
ଯେମନ୍ତ ହୋଇ ସଂଭବଇ । ତେମନ୍ତ ଅଟେ ଏ କଥା ହି ॥ ୨୩୧
୬୨ ଭାବର କ୍ରିୟାର ଦ୍ରବ୍ୟର । ଯେ ତିନି ଅଦ୍ୱୈତ ଆତ୍ମାର ॥ ୨୩୨
ଯେ ଅଟେ ବସ୍ତୁଭେଦବୁଦ୍ଧି । ସେ ଏକ ସ୍ୱପ୍ନରୂପେ ସିଦ୍ଧି ॥ ୨୩୩
ଯେ କର୍ମଭେଦବୁଦ୍ଧି ଆନ । ସେ ଅଟେ ଦ୍ୱିତୀୟ ସ୍ୱପନ ॥ ୨୩୪
ଏ କର୍ମଫଳ ଭୋଗ୍ୟ ମୋର । ତୃତୀୟ ସ୍ୱପ୍ନ ଏ ପ୍ରକାର ॥ ୨୩୫
ଆତ୍ମତତ୍ତ୍ୱ-ଅନୁଭବରେ । ଏହା ବିଚାରନ୍ତେ ସତ୍ୱରେ ॥ ୨୩୬
ସେ ତିନି ସ୍ୱପ୍ନକୁ ନିବୃତ୍ତ । କରଇ ମୁନି ଯେ ବିଦିତ ॥ ୨୩୭
୬୩ ପଟତନ୍ତୁର ପ୍ରାୟ ହୋଇ । କାର୍ଯ୍ୟ କାରଣ ଯେହୁ ଦୁଇ ॥ ୨୩୮
ବସ୍ତୁର ଏକଭାବେ ତାର । ଏକ ବିଚାର ଯେ ଆବର ॥ ୨୩୯
ଅବସ୍ତୁଭାବୁଁ ବିକଳ୍ପର । ଭାବ-ଅଦ୍ୱୈତ ସେ ପ୍ରକାର ॥ ୨୪୦
୬୪ ହେ ପାର୍ଥ ! ପରମ ବ୍ରହ୍ମରେ । ଯେ ମନ ବଚନ ତନୁରେ ॥ ୨୪୧
ସମସ୍ତକର୍ମସମର୍ପଣ । କ୍ରିୟା-ଅଦ୍ୱୈତ ସେହୁ ପୁଣ ॥ ୨୪୨
୬୫ ଯେ ନିଜ ଭାର୍ଯ୍ୟାପୁତ୍ରାଦିର । ଇତର ପ୍ରାଣୀମାନଙ୍କର ॥ ୨୪୩
ଯେ ସ୍ୱାର୍ଥ କାମ ସେ ଦୁଇର । ପଞ୍ଚଭୂତତ୍ୱେ ଦେହାଦିର ॥ ୨୪୪
ତହିଁରେ ଭୋକ୍ତା ଯେଉଁ ଜୀବ । ତାହାର ପରମାତ୍ମଭାବ ॥ ୨୪୫
ଏଣେ ଯେ ଅଭେଦବିଚାର । ସେ ଅର୍ଥ କାମ ବେନିଙ୍କର ॥ ୨୪୬
ଯେ ଏକଭାବେ ଦରଶନ । ଦ୍ରବ୍ୟାଦ୍ୱୈତ ତା' ବୋଲେ ଜନ ॥ ୨୪୭
୬୬ ଯେ ଦ୍ରବ୍ୟ ଯେଉଁ ଉପାୟରେ । ଯାହା ସକାଶୁଁ ଯେଉଁଠାରେ ॥ ୨୪୮

---

୧. 'ସୋଽୟଂ ଦେବଦତ୍ତଃ' ଇତି ।
''ଆବିର୍ଭାବତିରୋଭାବଧର୍ମକେଷ୍ୱନପାୟି ଯତ୍ ।
ତଦ୍ଧର୍ମୀ..................................॥'' (କୁମାରିଲ)

| | | | |
|---|---|---|---|
| | ହେ ନୃପ ! ନିଷିଦ୍ଧ ନୁହଇ | କର୍ମ ଆଚରେ ତେଣେ ସେହି | ।। ୨୪୯ |
| | ବିପତ୍ତି ନ ଥିବା କାଳରେ | ଚେଷ୍ଟା ନ କରି ସେ ଆନରେ | ।। ୨୫୦ |
| ୬୭ | ଏମାନେ, ଯେ ଅଟନ୍ତି ଆନ | ବେଦୋକ୍ତ ନିଜ କର୍ମମାନ | ।। ୨୫୧ |
| | ତେଣେ ଯେ ବର୍ତ୍ତେ ଗୃହେ ଥାଇ | ଏ କୃଷ୍ଣଗତିକି ସେ ଯାଇ | ।। ୨୫୨ |
| | ହେ ମହୀପତି ! ସେ କୃଷ୍ଣର | ଭକ୍ତିକି ଲଭଇ ଯେ ନର | ।। ୨୫୩ |
| ୬୮ | ହେ ନୃପବର ! ଯେ ଦୁସ୍ତର | ଦୁସ୍ତ୍ୟଜ ବିପତ୍ତିନିକର | ।। ୨୫୪ |
| | ତା' ପାଦପଙ୍କଜ ସେବନେ | ତହିଁରୁ ତରିଲ ଯେସନେ | ।। ୨୫୫ |
| | ଯେ ଦିଗଦନ୍ତୀଙ୍କ ସମାନ | ଅଟନ୍ତି ମହୀପତିମାନ | ।। ୨୫୬ |
| | ତାହାଙ୍କୁ ଜିଣିଣ ବିଧାନ | କଲ ଅନେକ ଯାଗମାନ | ।। ୨୫୭ |
| | ସେହି ପ୍ରକାରେ ସଂସାରରୁ | ତର ସେ ଶ୍ରୀକୃଷ୍ଣସେବାରୁ | ।। ୨୫୮ |
| ୬୯ | ଅତୀତ ମହାକଳ୍ପେ ମୁହିଁ | ଉପବର୍ହଣ ନାମ ହୋଇ | ।। ୨୫୯ |
| | ଗନ୍ଧର୍ବମାନଙ୍କେ ସମ୍ମତ | ଗନ୍ଧର୍ବ ହୋଇ ଥିଲି ଜାତ | ।। ୨୬୦ |
| ୭୦ | ମାଧୁର୍ଯ୍ୟ ସୁକୁମାରପଣ | ରୂପସୌଗନ୍ଧ୍ୟ ଯେବା ପୁଣ | ।। ୨୬୧ |
| | ଏମାନଙ୍କରେ ମନୋହର | ଅଟଇ ଦରଶନ ଯାର | ।। ୨୬୨ |
| | ସ୍ୱଂ[1] ପୁରଲମ୍ପଟ ପ୍ରମତ୍ତ | ସ୍ତିରୀଙ୍କ ଅତି ପ୍ରିୟ ନିତ୍ୟ | ।। ୨୬୩ |
| ୭୧ | ଦେବତାସତ୍ରେ ଏକଦିନେ | ମିଳିଲେ ବିଶ୍ୱସୃଜମାନେ | ।। ୨୬୪ |
| | ବିଷ୍ଣୁଚରିତକଥାମାନ | କରିବା ନିମିତ୍ତେ ଗାୟନ | ।। ୨୬୫ |
| | ଗନ୍ଧର୍ବ ଅପସରାଙ୍କର | ଗଣକୁ ଡାକିଲେ ସତ୍ୱର | ।। ୨୬୬ |
| ୭୨ | ମୁଁ ସେ କଥାକୁ ଜାଣି ଥାଇ | ଗାଆନ୍ତେ ମତ୍ତପ୍ରାୟ ହୋଇ | ।। ୨୬୭ |
| | ବେଢ଼ି ଅଛନ୍ତି ନାରୀଜନେ | ସେଠାରୁ ଗଲି ଆନ ସ୍ଥାନେ | ।। ୨୬୮ |
| | ସେ ବିଶ୍ୱସୃଜମାନେ ମୋର | ସେ ହେଳା କରିଣ ଗୋଚର | ।। ୨୬୯ |
| | ଆମ୍ଭଙ୍କୁ ହେଳା କଲୁ ଯେଣୁ | ବେଗେ ତୁ ଶୂଦ୍ର ହୁଅ ତେଣୁ | ।। ୨୭୦ |
| | ନଷ୍ଟଶ୍ରୀ ହୁଅ ଏ ପ୍ରକାରେ | ଶାପକୁ ଦେଲେ ସ୍ୱତେଜରେ | ।। ୨୭୧ |
| ୭୩ | ସେହି ନିକଟେ ଦାସୀଠାଇଁ | ଜାତ ହୋଇଲି ମୁହିଁ ଯାଇଁ | ।। ୨୭୨ |
| | ତହିଁରେ ବ୍ରହ୍ମବାଦୀଙ୍କର | ସେବାରେ ସଙ୍ଗରୁ ଆବର | ।। ୨୭୩ |
| | ଯେ ଅଟେ ବ୍ରହ୍ମପୁତ୍ରଗୁଣ | ତାହାକୁ ଲଭିଲଇଁ ପୁଣ | ।। ୨୭୪ |
| ୭୪ | ଯେ ଧର୍ମ ଗୃହମେଧୀଙ୍କର | ପାପକୁ କରଇ ନିବାର | ।। ୨୭୫ |
| | ସେ ଧର୍ମ କଲି ମୁଁ ବର୍ଣ୍ଣନ | ଯେବଣ ଧର୍ମେ ଗୃହୀଜନ | ।। ୨୭୬ |
| | ସନ୍ନ୍ୟାସୀଙ୍କର ଯେଉଁ ଗତି[2] | ତାହାଙ୍କୁ ଲଭଇ ଝଟିତି | ।। ୨୭୭ |
| ୭୫ | ତୁମ୍ଭେ ଅତ୍ୟନ୍ତ ଭାଗ୍ୟବନ୍ତ | ମନୁଷ୍ୟଲୋକରେ ବିଦିତ | ।। ୨୭୮ |
| | ପରମ ବ୍ରହ୍ମ ଗୂଢ଼ ହୋଇ | ନରରୂପରେ ଛନ୍ତି ରହି | ।। ୨୭୯ |

୧. ସେ।  ୨. ରୀତି।

ଏହି ସକାଶୁ ମୁନିଜନ । ଆସନ୍ତି ତୁମ୍ଭର ସଦନ ॥ ୨୮୦
ଲୋକଙ୍କୁ ଯେଉଁ ମୁନିମାନେ । ପବିତ୍ର କରନ୍ତି ଭୁବନେ ॥ ୨୮୧
୭୬ ଏ କୃଷ୍ଣ ଅଟେ ବ୍ରହ୍ମ ସେହି । ମହତ ଜନ ଯା' ଖୋଜଇ ॥ ୨୮୨
ଉପାଧିରହିତ ପରମ । ଯେ ବା ଆନନ୍ଦ ଅଭିରାମ ॥ ୨୮୩
ତା' ଅନୁଭବରୂପ ଏହି । ତୁମ୍ଭର ପ୍ରିୟ ମିତ୍ର ଯେହି ॥ ୨୮୪
ମାତୁଳସୁତ ଆତ୍ମାମୂର୍ତ୍ତି । ଏ ପୂଜ୍ୟ ଗୁରୁ ଆଜ୍ଞାବର୍ତ୍ତୀ ॥ ୨୮୫
୭୭ ଶିବବ୍ରହ୍ମାଦି ସ୍ୱବୁଦ୍ଧିରେ । ଯାର ରୂପକୁ ଏ ପ୍ରକାରେ ॥ ୨୮୬
ଏରୂପେ ବର୍ଣ୍ଣି ନ ପାରନ୍ତି । ଏମନ୍ତ ଏ ସାତ୍ୱତପତି ॥ ୨୮୭
ସ୍ୱୟେଂ ପ୍ରସନ୍ନ ତୁମ୍ଭଠାରେ । ମଉନ ଭକ୍ତି ଶମଦ୍ୱାରେ ॥ ୨୮୮
ପୂଜିତ ହୋଇ ଅନୁଦିନ । ଆମ୍ଭଙ୍କୁ ହୁଅନ୍ତୁ ପ୍ରସନ୍ନ ॥ ୨୮୯

ଶ୍ରୀଶୁକ ଉବାଚ

୭୮ ଏରୂପେ ଯେବଣ ବଚନ । କହିଲେ ବ୍ରହ୍ମାଙ୍କ ନନ୍ଦନ ॥ ୨୯୦
ଭରତଶ୍ରେଷ୍ଠ ତାହା ଶୁଣି । ପ୍ରେମବିହ୍ୱଳ ହୋଇ ପୁଣି ॥ ୨୯୧
ସୁପ୍ରୀତ ହୋଇ ନାରଦଙ୍କୁ । ପୂଜିଲେ ଆବର କୃଷ୍ଣଙ୍କୁ ॥ ୨୯୨
୭୯ ଯେ କୃଷ୍ଣ ଯୁଧିଷ୍ଠିର ବେନି । ତେଣେ ପୂଜିତ ହୋଇ ମୁନି ॥ ୨୯୩
ତାହାଙ୍କୁ କରି ଆମନ୍ତ୍ରଣ । ତହୁଁ ଗମନ କଲେ ପୁଣ ॥ ୨୯୪
ଯେ କୃଷ୍ଣ ବସୁଦେବସୁତ । ପରମ ବ୍ରହ୍ମ ଏ ସାକ୍ଷାତ ॥ ୨୯୫
ଏମନ୍ତ ଶୁଣି ପୃଥାସୁତ । ହୋଇଲେ ପରମ ବିସ୍ମିତ ॥ ୨୯୬
୮୦ ଦକ୍ଷସୁତାଙ୍କ ବଂଶମାନ । ହୋଇ ଅଛନ୍ତି ଭିନ୍ନ ଭିନ୍ନ ॥ ୨୯୭
କହିଲଇଁ ତା' ଏ ପ୍ରକାରେ । ଯେ ବଂଶ ଦେବତା-ଅସୁରେ ॥ ୨୯୮
ମନୁଷ୍ୟ ଆଦି ଯେ ଇତର । ଯେ ଲୋକତ୍ରୟଚରାଚର ॥ ୨୯୯
ଯେ କୃଷ୍ଣ କୃପାମୟ ସିନ୍ଧୁ । ତାହାଙ୍କୁ ଚିନ୍ତି ଦୀନବନ୍ଧୁ ॥ ୩୦୦
ତୋଷିବା ଅର୍ଥେ ସାଧୁଚିତ୍ତ । ସପ୍ତମ ସ୍କନ୍ଧ କଲା ଗୀତ ॥ ୩୦୧
ଏ ଗୀତ ଶୁଣି ହୁଅ ତୋଷ । ସୁଜନେ ନ ଧର ମୋ ଦୋଷ ॥ ୩୦୨
ଯେବେ ଏ ଭବୁଁ ହେବ ପାର । ଶ୍ରୀକୃଷ୍ଣପାଦ ହୃଦେ ଧର ॥ ୩୦୩
ଏ ପାଦ ହୃଦେ ଲୟ କରି । ଚତୁରାଶ୍ରମୀ ଗଲେ ତରି ॥ ୩୦୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ସପ୍ତମସ୍କନ୍ଧେ ଶ୍ରୀଯୁଧିଷ୍ଠିରନାରଦସଂବାଦେ ସଦାଚାରୋ
ନାମ ପଞ୍ଚଦଶୋଽଧ୍ୟାୟଃ ॥

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ॥

**ସମାପ୍ତୋଽୟଂ ସପ୍ତମସ୍କନ୍ଧଃ**

# ଅଷ୍ଟମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଅଥାଷ୍ଟମେ ଚତୁର୍ବିଂଶତ୍ୟଧ୍ୟାୟୈର୍ମନୁବର୍ଣ୍ଣନମ୍ ।
ତତ୍ସୁତୈର୍ଋଷିଦେବେନ୍ଦ୍ରୈର୍ମୂର୍ତ୍ତିଭିଶ୍ଚ ହରେଃ ସହ ।। ୧
ପ୍ରତିମନ୍ୱନ୍ତରଂ ଚୈବ ମନ୍ୱାଦ୍ୟାଃ ଷଟ୍ ପୃଥକ୍ ପୃଥକ୍ ।
ପ୍ରବର୍ତ୍ତୟନ୍ତି ସଦ୍ଧର୍ମାନ୍ ପାଳୟନ୍ତ୍ୟାଚରନ୍ତି ଚ ।। ୨
ଅତୋ ମନ୍ୱନ୍ତରସ୍ୟୋକ୍ତଂ ସଦ୍ଧର୍ମ ଇତି ଲକ୍ଷଣମ୍ ।
ଯେନ ବୈ କ୍ରିୟମାଣେନ ନରୋ ନ ନିରୟଂ ବ୍ରଜେତ୍ ।। ୩
ତତ୍ର ତୁ ପ୍ରଥମେ ସ୍ୱାୟଂଭୁବଃ ସ୍ୱାରୋଚିଷସ୍ତଥା ।
ଉତ୍ତମସ୍ତାମସଶ୍ଚେତି ଚତୁର୍ମନୁନିରୂପଣମ୍ ।। ୪
ସ୍ୱାୟଂଭୁବେଽନ୍ତରେଽନନ୍ତଦୁରନ୍ତଗୁଣବର୍ଣ୍ଣନାତ୍ ।
ମୁଦିତଃ ପରିପପ୍ରଚ୍ଛ ସର୍ବମନ୍ୱନ୍ତରସ୍ଥିତିମ୍ ।। ୫

ଶ୍ରୀକୃଷ୍ଣଚରଣନଳିନ । ଚିନ୍ତା କରିଣ ଅନୁଦିନଂ ।। ୧
ସୁଜନମାନଙ୍କର ହିତେ । ଅଷ୍ଟମ ସ୍କନ୍ଧ ଭାଷାଗୀତେ ।। ୨
ବର୍ଣ୍ଣୁଛି ପୁରାଣକୁ ଚାହିଁ । ମୋହର ତେତେ ବୁଦ୍ଧି ନାହିଁ ।। ୩
ବିଶ୍ୱନାଟକସୂତ୍ରଧାର । ଯେ ପ୍ରଭୁ କରୁଣାସାଗର ।। ୪
ସେ ଯହିଁ କରେ ନିଯୋଜନ । ତହିଁ ପ୍ରବର୍ତ୍ତେ ପ୍ରାଣୀମନ ।। ୫
ଏଣୁ ନ ଧର ମୋର ଦୋଷ । ସୁଜନେ ଶୁଣି ହୁଅ ତୋଷ ।। ୬
ଯେଉଁ ଶ୍ରୀକୃଷ୍ଣନାମମାନ । ମନୁଷ୍ୟେ କରନ୍ତି କୀର୍ତ୍ତନ ।। ୭
କିଛି ହିଁ ହୋଇ ଅବ୍ୟକତ । ଶୁକତୁଣ୍ଡରୁ ହେଲେ ଜାତ ।। ୮
ସାଦର ହୋଇ ଟେକି କର୍ଣ୍ଣ । ତା' କି ନ ଶୁଣେ ସାଧୁଜନ ।। ୯
ଏ ପ୍ରସଙ୍ଗ ହିଁ ସେ ପ୍ରକାରେ । ସୁଜନେ ଘେନନ୍ତୁ ମନରେ ।। ୧୦
ଶୁକଙ୍କୁ ବିନୟ ହୋଇଣ । ପଚାରେ ପରୀକ୍ଷିତ ପୁଣ ।। ୧୧

ଶ୍ରୀରାଜୋବାଚ

୧ ହେ ଗୁରୁ ! ସ୍ୱାୟଂଭୁବ ନାମେ । ବିଖ୍ୟାତ ଯେ ଏଥି ପ୍ରଥମେ ।। ୧୨
ତାଙ୍କ ଏ ବଂଶକୁ ଶ୍ରବଣ । କରିଛୁଁ ବିସ୍ତାର କରିଣ ।। ୧୩
ମନୁକନ୍ୟାମାନଙ୍କ ଠାରେ । ମରୀଚି ଆଦି ଋଷିଙ୍କରେ ।। ୧୪
ପୁତ୍ରପୌତ୍ରାଦିରୂପ ହୋଇ । ସର୍ଗ ବିଖ୍ୟାତ ଅଛି ଯହିଁ ।। ୧୫
ଇତର ଯେବା ମନୁମାନ । ତାହାଙ୍କୁ କରସି କୀର୍ତ୍ତନ ।। ୧୬
୨ ଯେହୁ ମହତ ଭଗବାନ । ତାଙ୍କର ଜନ୍ମକର୍ମମାନ ।। ୧୭

---

୧. ନିଜମନ ।

| | | | | | |
|---|---|---|---|---|---|
| | ମନୁ-ଅନ୍ତରେ ମୁନିମାନେ | । | ଗୁଣି ଅଛନ୍ତି ଏ ଭୁବନେ | ॥ | ୧୮ |
| | ହେ ବିପ୍ର ! ଶୁଣିମୁଁ ସେମାନ | । | ଆମ୍ଭଙ୍କୁ କର ତା' ଗାୟନ | ॥ | ୧୯ |
| ୩ | ହେ ବିପ୍ର ! ଯେ ବିଶ୍ୱଭାବନ | । | ଅଟନ୍ତି ପ୍ରଭୁ ଭଗବାନ | ॥ | ୨୦ |
| | ଯେଉଁ ଅତୀତ ମନ୍ୱନ୍ତରେ | । | ସେ ଯାହା କଲେ ଜଗତରେ | ॥ | ୨୧ |
| | ଭବିଷ୍ୟ ମନ୍ୱନ୍ତରେ ପୁଣ | । | କରିବେ ଯାହା ଆଚରଣ | ॥ | ୨୨ |
| | ଯା' କରୁଛନ୍ତି ବର୍ତ୍ତମାନେ | । | କହ ଆମ୍ଭଙ୍କୁ ତା' ସୁମନେ | ॥ | ୨୩ |

ଶ୍ରୀଋଷିରୁବାଚ

| | | | | | |
|---|---|---|---|---|---|
| ୪ | ଏ କଳ୍ପେ ଛ' ମନୁ ଅତୀତ | । | ଯେ ସ୍ୱାୟଂଭୁବ ନାମେ ଖ୍ୟାତ | ॥ | ୨୪ |
| | ସେ ଆଦ୍ୟ ମନୁ ତୋ' ଆଗରେ | । | କହିଲୁଁ ଯେଉଁ ମନ୍ୱନ୍ତରେ | ॥ | ୨୫ |
| | ଦେବତାଆଦିମାନଙ୍କର | । | ସଂଭବ ବିବିଧ ପ୍ରକାର | ॥ | ୨୬ |
| ୫ | ଆକୂତି ଦେବହୂତି ହୋଇ | । | ସେ ମନୁଙ୍କର ସୁତା ଦୁଇ | ॥ | ୨୭ |
| | ତାହାଙ୍କ ଠାରେ ଧର୍ମଜ୍ଞାନ | । | ଉପଦେଶାର୍ଥେ ଭଗବାନ | ॥ | ୨୮ |
| | ଯଜ୍ଞ କପିଳରୂପ ହୋଇ | । | ପୁତ୍ରଭାବକୁ ଛନ୍ତି ଯାଇ | ॥ | ୨୯ |
| ୬ } | ଯେ ବା କପିଳ ଭଗବାନ | । | ପୂର୍ବେ କଲୁଁ ତାଙ୍କ ବର୍ଣ୍ଣନ | ॥ | ୩୦ |
| ୭ } | ଯଜ୍ଞସ୍ୱରୂପୀ ଭଗବନ୍ତ | । | କଲେ ସେ ଯେବଣ ଚରିତ | ॥ | ୩୧ |
| | ହେ କୁରୁଶ୍ରେଷ୍ଠ ! ତାହା ତୋତେ | । | କହିବା ଶୁଣ ଏକଚିତ୍ତେ | ॥ | ୩୨ |
| | ଯେ ପ୍ରଭୁ ଶତରୂପାପତି | । | ଯେ ଆଦ୍ୟ ମନୁରୂପେ ଖ୍ୟାତି | ॥ | ୩୩ |
| | ସେ କାମଭୋଗମାନଙ୍କରେ | । | ବିରକ୍ତ ହୋଇଣ କ୍ରମରେ | ॥ | ୩୪ |
| | ରାଜ୍ୟକୁ କରି ବିସର୍ଜନ | । | ତପନିମିତ୍ତେ କରି ମନ | ॥ | ୩୫ |
| | ଭାର୍ଯ୍ୟାକୁ ଘେନି ସଙ୍ଗତରେ | । | ପ୍ରବେଶ ହୋଇଲେ ବନରେ | ॥ | ୩୬ |
| ୮ | ଭୂମିକି ଏକଚରଣରେ | । | ଛୁଅନ୍ତେ ସୁନନ୍ଦାତଟରେ | ॥ | ୩୭ |
| | ଶତେ ବରଷ ପରିଯନ୍ତେ | । | ଘୋର ତପସ୍ୟା ଆଚରନ୍ତେ | ॥ | ୩୮ |
| | ହେ ନୃପ ସମାଧିରେ ଥାଇ[୧] | । | କଲେ ସେ ଅନୁଭବ ଯାହି | ॥ | ୩୯ |
| | ଶୟନ କଲା ଲୋକ ଯେହ୍ନେ | । | କହଇ ପ୍ରଳାପବଚନେ | ॥ | ୪୦ |
| | ବିସ୍ମୟକୁ ଯେ ଲଭିଥାଇ | । | ସେ ଲୋକ ଯେମନ୍ତ କହଇ | ॥ | ୪୧ |
| | ପରକୁ ଉପଦେଶବାଣୀ | । | ଯେଉଁ ପ୍ରକାରେ ଲୋକ ଭଣି | ॥ | ୪୨ |
| | ପରକୁ ଅନୁବଦେ ଜନ | । | ଯେବଣ ପ୍ରକାରେ ବଚନ | ॥ | ୪୩ |
| | ସେହି ପ୍ରକାରେ ହେ ଭାରତ | । | କଲେ ସେ ବଚନ ଉକତ | ॥ | ୪୪ |

ଶ୍ରୀମନୁରୁବାଚ

| | | | | | |
|---|---|---|---|---|---|
| ୯ | ଯେ ଜ୍ଞାନରୂପୀ ଭଗବାନ | । | ଯେଣେ ଏ ବିଶ୍ୱ ସଚେତନ | ॥ | ୪୫ |
| | ଯାହାର ଚେତନାକୁ ପୁଣ | । | ଏ ବିଶ୍ୱ ନୁହଇ କାରଣ | ॥ | ୪୬ |

୧. ଧ୍ୟାଇ ।

ଯେଣୁ ସେ ଜ୍ଞାନରୂପ ହୋଇ । ଆପଣା ଇଚ୍ଛାଏ ବର୍ତ୍ତଇ ॥ ୪୭
ଏ ଜନ କରନ୍ତେ ଶୟନ । ଯେ ସାକ୍ଷୀରୂପେ ବିଦ୍ୟମାନ ॥ ୪୮
ଏ ଜନ ନ ଜାଣଇଁ ତାଙ୍କୁ । ସେ ପୁଣ ଜାଣନ୍ତି ଏହାଙ୍କୁ ॥ ୪୯
୧୦ ଆପଣା ସତ୍ତା ଚୈତନ୍ୟରେ । ଏ ବିଶ୍ୱ ବ୍ୟାପ୍ୟ ଈଶ୍ୱରରେ ॥ ୫୦
ଜଗତେ ହୋଇଅଛି ସ୍ଥିତ । ଯତ କିଂଚିତ ଭୂତ ଜାତ ॥ ୫୧
ଏଣୁ ସେ ଈଶ୍ୱର ପ୍ରଦାନ । କରିଅଛନ୍ତି ଯେଉଁ ଧନ ॥ ୫୨
ଭୋଗମାନଙ୍କୁ ତେଣେ ଭୁଞ୍ଜ । ପରଧନରେ ସ୍ପୃହା ତେଜ ॥ ୫୩
୧୧ ଯେ କରୁଥାନ୍ତେ[1] ବିଲୋକନ । ଯାହାଙ୍କୁ ନ ଦେଖଇ ଜନ ॥ ୫୪
ଘଟନାଶରେ ଦେବଦତ୍ତ[2] । ଚାକ୍ଷୁଷ ଜ୍ଞାନ ହୋଏ ହତ ॥ ୫୫
ଈଶ୍ୱରଜ୍ଞାନ ସେ ପ୍ରକାରେ । ନାଶ ବିଷୟବିନାଶରେ ॥ ୫୬
ଏମନ୍ତ ପ୍ରକାରେ ନ ମଣ । ଯା' ଜ୍ଞାନନାଶ ନୋହେ ପୁଣ ॥ ୫୭
ସେ ସେ ରୂପେ ଯେ ଜନ୍ମିଥାଇ । ସେ ବୃତ୍ତିର ହିଁ ନାଶ ହୋଇ ॥ ୫୮
ଯେ ସ୍ୱତଃସିଦ୍ଧ ଅଟେ ଜ୍ଞାନ । ତାହାର ନାହିଁଟି ନିଧନ ॥ ୫୯
ଯେ ଘଟ ପଟ ଆଦି ହୋଇ । ସୂର୍ଯ୍ୟକିରଣ ପ୍ରକାଶଇ ॥ ୬୦
ତା' ନାଶେ ନୁହଇ ବିନାଶ । କେବେହେଁ ସୂର୍ଯ୍ୟର ପ୍ରକାଶ ॥ ୬୧
ସମସ୍ତ ଭୂତେ ଯା' ମନ୍ଦିର । ଶୋଭନ ପତନ ଯାହାର ॥ ୬୨
ଏମନ୍ତ ରୂପ ଯେ ଈଶ୍ୱର । ତାହାଙ୍କୁ ଭଜ ଆହେ ନର ॥ ୬୩
୧୨ ଯାହାର ଆଦି ମଧ୍ୟ ଅନ୍ତ । ଏ ତିନି ଅଟଇ ଅସତ ॥ ୬୪
ନାହିଁ ଯାହାର[3] ନିଜ ପର । ଅଥବା ଅନ୍ତର ବାହାର ॥ ୬୫
ଏ ବିଶ୍ୱ ଆଦି-ମଧ୍ୟ-ଅନ୍ତ । ଯହିଁରୁ ହୁଅଇ ବିଦିତ ॥ ୬୬
ଏ ବିଶ୍ୱ ଅଟେ ରୂପ ଯାର । ତେଣୁ[4] ସେ ସତ୍ୟ ବ୍ରହ୍ମାକାର ॥ ୬୭
୧୩ ବିଶ୍ୱ ଅଟଇ ରୂପ ଯାର । ଜନ୍ମାଦି ପ୍ରସିଦ୍ଧ ତାହାର ॥ ୬୮
ତାହାର ସ୍ୱପ୍ରକାଶ ଭାବ । ଏ ଘେନି ଅଟେ ଅସମ୍ଭବ ॥ ୬୯
କରନ୍ତେ ଜଗତଜନ୍ମାଦି । ବିକାର ଭାବ ତାର ସିଦ୍ଧି ॥ ୭୦
ସତ୍ୟତ୍ୱ ପୂର୍ଣ୍ଣତ୍ୱ ଏ ଦୁଇ । ବିକାରୀଠାରେ ସିଦ୍ଧ ନୋହି ॥ ୭୧
ଏମନ୍ତ ବିଚାରୁଛ ଯେବେ । ତହିଁ ସିଦ୍ଧାନ୍ତ ଶୁଣ ଏବେ ॥ ୭୨
ସେ ଅଜ ସତ୍ୟ ସ୍ୱପ୍ରକାଶ । ସେ ଅଟେ ନିର୍ବିକାର ଈଶ ॥ ୭୩
ଜଗତ କାୟରେ ଯାହାର । ବହୁତ ନାମମାନେ ଯାର ॥ ୭୪
ସ୍ୱଶକ୍ତିମାୟାରେ ଜଗତ । ଜନମ ଆଦି କରେ ଜାତ ॥ ୭୫
ବିଦ୍ୟାରେ ମାୟାକୁ ଛାଡ଼ିଣ । ରହଇ ନିଷ୍କ୍ରିୟ ହୋଇଣ ॥ ୭୬

---

୧. କରୁଥିଲେ । ୨. ସେହି ନାମଧାରୀ କୌଣସି ବ୍ୟକ୍ତି । ୩. ତାହାର । ୪. ଯେଣୁ ।

୧୪ ଏ ଘେନି ଆଦ୍ୟେ ଋଷିମାନେ । ମୋକ୍ଷନିମିତ୍ତେ ସାବଧାନେ ।। ୭୭
ଆଚରିଛନ୍ତି କର୍ମମାନ । ଚେଷ୍ଟା କରନ୍ତେ ଯେଣୁ ଜନ ।। ୭୮
କ୍ରମରେ ଅଚେଷ୍ଟାକୁ ପାଇ । ବହୁତ ଠାରେ ଏ ଅଛଇ ।। ୭୯
୧୫ ଆତ୍ମଲାଭରେ ଅର୍ଥମାନ । ଯାହାର ହୋଇଛନ୍ତି ପୂର୍ଣ୍ଣ ।। ୮୦
ସେ ଭଗବାନ କର୍ମ କରେ । ଆସକ୍ତ ନୁହଇ ତହିଁରେ ।। ୮୧
ଯେ ତାକୁ ଅନୁବର୍ତ୍ତୀ ଥାନ୍ତି । ସେହୁ ଆସକ୍ତି ନ କରନ୍ତି ।। ୮୨
୧୬ ନରରୂପକୁ ଯେ ଉଚିତ । ସେ ମାର୍ଗେ ଅଟନ୍ତି ଯେ ସ୍ଥିତ ।। ୮୩
କର୍ମ କରନ୍ତି ଆଚରଣ । ଏମନ୍ତ ହୋଇଲେହେଁ ପୁଣ ।। ୮୪
ଯେ ଅଟେ ଅହଂକାରହୀନ । ଶୁଭ ନ ବାଞ୍ଛେ ଯେଣୁ ପୂର୍ଣ୍ଣ ।। ୮୫
ପ୍ରଭୁ ଅଟନ୍ତି ସେହୁ ଯେଣୁ । ଆନେ ନିଯୁକ୍ତ ନୋହେ ତେଣୁ ।। ୮୬
ମନୁଷ୍ୟମାନଙ୍କୁ ଆଚାରେ । ଶିକ୍ଷା ଦିଅନ୍ତି ଯେ ସଂସାରେ ।। ୮୭
ପ୍ରବର୍ତ୍ତାନ୍ତି ଯେ ଧର୍ମମାନ । ତାଙ୍କୁ ମୁଁ ହେଉଛି ପ୍ରପନ୍ନ ।। ୮୮

ଶ୍ରୀଶୁକ ଉବାଚ

୧୭ ଆପଣେ ହୋଇ ସମାହିତ । ଯେ ମନୁ ସ୍ୱୟଂଭୁବସୁତ ।। ୮୯
ଏମନ୍ତ ଉପନିଷଦକୁ । ପଢ଼ନ୍ତେ ଦେଖିଣ ତାହାଙ୍କୁ ।। ୯୦
କ୍ଷୁଧାରେ ଭକ୍ଷିବାକୁ ଖରେ । ଗଲେ ଯାତୁଧାନ ଅସୁରେ ।। ୯୧
୧୮ ତାଙ୍କୁ ସେରୂପେ ଦେଖି ମାରି । ଯେ ସର୍ବଗତ 'ଯଜ୍ଞ' ହରି ।। ୯୨
ଯେ 'ଯାମ' ନାମରେ ବିଖ୍ୟାତ । ଦେବତାମାନେ ନିଜ ସୁତ ।। ୯୩
ତେଣେ ବେଷ୍ଟିତ ହୋଇ କରି । ପାଳନା କଲେ ସ୍ୱର୍ଗପୁରୀ ।। ୯୪
୧୯ ଦ୍ୱିତୀୟ ମନୁ ଅଗ୍ନିସୁତ । ଯେ ସ୍ୱାରୋଚିଷେ ନାମେ ଖ୍ୟାତ ।। ୯୫
ଦ୍ୟୁମଦ୍ ସୁଷେଣ ରୋଚିଷ୍ମନ୍ତ । ଏ ଆଦି ଅଟନ୍ତି ତା' ସୁତ ।। ୯୬
୨୦ 'ରୋଚନ' ନାମେ ଇନ୍ଦ୍ର ତହିଁ । ଦେବେ 'ତୁଷିତ' ଆଦି ହୋଇ ।। ୯୭
'ଊର୍ଜସ୍ତମ୍ଭ'କୁ ଆଦି ଖ୍ୟାତ । ଯେ ବ୍ରହ୍ମବାଦୀ ଋଷି ସାତ ।। ୯୮
୨୧ ଯେ ଋଷି ନାମେ ବେଦଶିର । ତୁଷିତା ନାମେ ପତ୍ନୀ ତାର ।। ୯୯
ତାଠାରେ ଦେବ ହେଲେ ଜାତ । 'ବିଭୁ'ନାମରେ ସେ ବିଖ୍ୟାତ ।। ୧୦୦
୨୨ ଅଠାଶୀ ସହସ୍ର ଯେ ମୁନି । ବ୍ରତମାନଙ୍କୁ ଥିଲେ ଘେନି ।। ୧୦୧
ସେ ତାଙ୍କ ବ୍ରତ ଶିକ୍ଷା କଲେ । କୁମାର ବ୍ରହ୍ମଚାରୀ ହେଲେ ।। ୧୦୨
୨୩ ତୃତୀୟ ପ୍ରିୟବ୍ରତସୁତ । 'ଉତ୍ତମ' ନାମେ ମନୁ ଖ୍ୟାତ ।। ୧୦୩
ତା' ସୁତ ସୃଞ୍ଜୟ ପବନ । ଯଜ୍ଞହୋତ୍ରାଦି ନୃପମାନ ।। ୧୦୪
୨୪ ବଶିଷ୍ଠଙ୍କର ଯେହୁ ସୁତ । 'ପ୍ରମଦ' ଆଦି ଋଷି ସାତ ।। ୧୦୫
ଯେ ଭଦ୍ର ସତ୍ୟ ବେଦଶ୍ରୁତ । ଦେବତା ଇନ୍ଦ୍ରେ 'ସତ୍ୟଜିତ' ।। ୧୦୬
୨୫ ଧର୍ମର ସୁନୃତାନାମରେ । ଯେବଣ ଭାର୍ଯ୍ୟା ତା' ଗର୍ଭରେ ।। ୧୦୭

ସତ୍ୟବ୍ରତଙ୍କ ସଙ୍ଗେ ଜନ୍ମ । ଲଭିଲେ ଶ୍ରୀପୁରୁଷୋତ୍ତମ ॥ ୧୦୮
ନାମ ତାଙ୍କର ସତ୍ୟସେନ । ବିଖ୍ୟାତ ଅଟେ ତ୍ରିଭୁବନ ॥ ୧୦୯
୨୬ ଅନୃତବ୍ରତ ଦୁଶ୍ଚରିତ । ଯେ ଯକ୍ଷରାକ୍ଷସେ ଅସନ୍ତ ॥ ୧୧୦
ଯେ ଭୂତଦ୍ରୋହୀ ଭୂତଗଣ । ତାଙ୍କୁ କଲେ ସେ ସଂହରଣ ॥ ୧୧୧
ଯେ ଇନ୍ଦ୍ର ଅଟେ ସତ୍ୟଜିତ । ତାହାଙ୍କ ସଖା ସେ ବିଖ୍ୟାତ ॥ ୧୧୨
୨୭ ଚତୁର୍ଥ ମନୁ ଉତ୍ତମର । ଭ୍ରାତା, 'ତାମସ' ନାମ ତାର ॥ ୧୧୩
ଯେ ବୃଷ[୧] ଖ୍ୟାତି କେତୁ ନର । ଏ ଆଦି ଦଶ ପୁତ୍ର ତାର ॥ ୧୧୪
୨୮ ସତ୍ୟକ ହରି ବୀର ସୁରେ । ବାସବ ତ୍ରିଶିଖ ନାମରେ ॥ ୧୧୫
ଜ୍ୟୋତିର୍ଦ୍ଧାମାଦି ଋଷି ସାତ । ତାମସ ଅନ୍ତରେ ବିଖ୍ୟାତ ॥ ୧୧୬
୨୯ ହେ ନୃପ ! ବିଧୃତିର ସୁତ । ଦେବେ 'ବୈଧୃତି' ନାମେ ଖ୍ୟାତ ॥ ୧୧୭
କାଳେ ଯେ ବେଦ ନାଶ ଗଲେ । ତାଙ୍କୁ ଯେ ସ୍ୱତେଜେ ଧଇଲେ ॥ ୧୧୮
୩୦ ସେ ମନ୍ୱନ୍ତରେ ଭଗବାନ । ହରିମେଧାର ଠାରୁ ଜନ୍ମ ॥ ୧୧୯
ହୋଇଲେ ହରିଣୀର ଠାରେ । କୁମ୍ଭୀରଠାରୁ ଯେ ପୂର୍ବରେ ॥ ୧୨୦
ଗଜଇନ୍ଦ୍ରକୁ ବିମୋଚନ । କଲେ ହୋଇଣ ସାବଧାନ ॥ ୧୨୧
ହୋଇଲେ ସେ 'ହରି' ନାମରେ । ବିଖ୍ୟାତ ସର୍ବ ଜଗତରେ ॥ ୧୨୨

ଶ୍ରୀରାଜୋବାଚ

୩୧ ହେ ଋଷି ! ତୁମ୍ଭ ଏ କଥାକୁ । ଆମ୍ଭର ଇଚ୍ଛା ଶୁଣିମାକୁ ॥ ୧୨୩
ଯେ ଗଜପତି ପୂର୍ବେ ତହିଁ । ଥିଲା କୁମ୍ଭୀରଗ୍ରସ୍ତ ହୋଇ ॥ ୧୨୪
ତାହାକୁ ଯେଉଁ ରୂପେ କରି । ମୁକତ କଲେ ଦେବ ହରି ॥ ୧୨୫
୩୨ ସେ କଥା ଅଟେ ମହାପୁଣ୍ୟ । ଧନ୍ୟ ଅତ୍ୟନ୍ତ ସ୍ୱସ୍ତ୍ୟୟନ ॥ ୧୨୬
ଉତ୍ତମଶ୍ଲୋକ ଭଗବାନ । ଯହିଁରେ ଯହିଁରେ ଗାୟନ ॥ ୧୨୭

ଶ୍ରୀସୂତ ଉବାଚ

୩୩ କରିଣ ଅନଶନ ବ୍ରତ । କୁଶ ଆସନେ ଯେହୁ ସ୍ଥିତ ॥ ୧୨୮
ସେ ପରୀକ୍ଷିତ ଏ ପ୍ରକାରେ । ଶୁକଙ୍କୁ କଥାମାନଙ୍କରେ ॥ ୧୨୯
ନିଯୁକ୍ତ କଲେ କହିବାକୁ । ପ୍ରଶଂସା କରି ସେ ରାଜାକୁ ॥ ୧୩୦
ହେ ବିପ୍ରେ ! କହିଲେ ସଭାରେ । ଶୁଣନ୍ତେ ମୁନିଏ ନିର୍ଭରେ ॥ ୧୩୧
କୃଷ୍ଣଚରଣସରସିଜ । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ ॥ ୧୩୨
ଅଷ୍ଟମସ୍କନ୍ଧ ଭାଷାଗୀତେ । ବର୍ଣ୍ଣିଲା ସାଧୁଙ୍କର ହିତେ ॥ ୧୩୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ମନ୍ୱନ୍ତରାନୁବର୍ଣ୍ଣନଂ
ନାମ ପ୍ରଥମୋଽଧ୍ୟାୟଃ ॥

---

୧. ପୃଥୁ।

# ଦ୍ୱିତୀୟ ଅଧ୍ୟାୟ

ତୁର୍ଯ୍ୟେ ମନ୍ୱନ୍ତରେ ପ୍ରୋକ୍ତଂ ଗଜେନ୍ଦ୍ରସ୍ୟ ବିମୋକ୍ଷଣମ୍ ।
ଦ୍ୱିତୀୟାଦିତ୍ରିଭିସ୍ତତ୍ତୁ ବିସ୍ତରେଣୋପବର୍ଣ୍ଣ୍ୟତେ ।। ୧
ଦ୍ୱିତୀୟେ ତୁ ଗଜେନ୍ଦ୍ରସ୍ୟ ଗଜୀଭିଃ କ୍ରୀଡ଼ତୋ ଜଳେ ।
ଦୈବାଦ୍ ଗ୍ରାହଗୃହୀତସ୍ୟ ହରିସ୍ମୃତିରୁଦୀର୍ଯ୍ୟତେ ।। ୨

### ଶ୍ରୀଶୁକ ଉବାଚ

୧ ଏମନ୍ତେ ରାଜାର ବଚନେ । ଶୁକ କହନ୍ତି ତୋଷମନେ ।।
ହେ ନୃପ ! ଅଛି ଗିରିବର । ତ୍ରିକୂଟ ନାମେ ଖ୍ୟାତି ତାର ।।
କ୍ଷୀରୋଦେ ଆବୃତ ଶ୍ରୀମନ୍ତ । ଅୟୁତେ ଯୋଜନ ଉଚ୍ଛ୍ରିତ[୧] ।।
୨ ସକଳ ଦିଗେ ଚକ୍ରାକାରେ । ବେଢ଼ିଛି ତେତିକି ବିସ୍ତାରେ ।।
ରଜତ ଲୋହ ସ୍ୱର୍ଣ୍ଣମୟ । ଏରୂପେ ଯେଉଁ ଶୃଙ୍ଗତ୍ରୟ ।।
ସିନ୍ଧୁକୁ ଦିଗଙ୍କୁ ଦୀପିତ । କରୁଛି ତେଣେ ସେ ପର୍ବତ ।।
୩ ରତ୍ନଧାତୁରେ ବିଚିତ୍ରିତ । ଯେ ଆନ ଶୃଙ୍ଗମାନେ ସ୍ଥିତ ।।
ନାନାପ୍ରକାରେ ଦ୍ରୁମମାନ । ଯେ ଲତାଗୁଳ୍ମମାନେ ଆନ ।।
ନିର୍ଝରଜଳମାନଙ୍କର । ନିର୍ଘୋଷମାନ ଯେ ଆବର ।।
ତେଣେ ଦିଗଙ୍କୁ ଦୀପ୍ତିମନ୍ତ । କରନ୍ତେ ଅଛି ସେ ପର୍ବତ ।।
୪ କ୍ଷୀରଲହରୀମାନଙ୍କରେ । ଗିରିର ସକଳ ଦିଗରେ ।।
ଧୌତ ହୋଇଛି ମଳମାନ । ହରିତ ଅଟେ ଯାଙ୍କ ବର୍ଣ୍ଣ ।।
ସେ ମରକତ ଶିଳାଙ୍କରେ । ଭୂମିକି ଶ୍ୟାମଳ ଯେ କରେ ।।
୫ ସିଦ୍ଧ ଚାରଣ ବିଦ୍ୟାଧର । ଅପ୍‌ସରା ଗନ୍ଧର୍ବ କିନ୍ନର ।।
୬ ଯେ ପୁଣ ମହାସର୍ପ ଆନେ । କରନ୍ତେ କ୍ରୀଡ଼ାକୁ ସେମାନେ ।।
ତେଣେ ସେବିତ ନିରନ୍ତର । ଅଟନ୍ତି ଯାହାର କନ୍ଦର ।।
କିନ୍ନର ଆଦିମାନଙ୍କର । ସଙ୍ଗୀତସନ୍ନାଦେ ଯହିଁର ।।
ଗୁହା କରନ୍ତି ପ୍ରତିସ୍ୱନ । ସହି ନ ପାରିଣ ସେମାନ ।।
ଉତ୍ତମସିଂହମାନେ ଯହିଁ । ଗର୍ଜନ୍ତି ସେ ଗୁହାକୁ ଚାହିଁ ।।
୭ ଯେ ନାନା ବନ୍ୟ ପଶୁଗଣ । ତେଣେ ସଂକୀର୍ଣ୍ଣ ଯେହୁ ପୁଣ ।।
ସେ ଦ୍ରୋଣୀ[୨] ମାନଙ୍କେ ମଣ୍ଡିତ । ହୋଇଛି ଯେବଣ ପର୍ବତ ।।
ଯହିଁରେ ଚିତ୍ରଦ୍ରୁମମାନ । ଏମନ୍ତ ଯେ ଦେବ-ଉଦ୍ୟାନ ।।
ତହିଁ ମଧୁରସ୍ୱନ ହୋଇ । ବିହଙ୍ଗମାନେ ଛନ୍ତି ଯହିଁ ।।
୮ ନିର୍ମଳ ସଲିଳ ଯହିଁରେ । ସେ ନଦୀ ସରମାନଙ୍କରେ ।।

---

୧. ଉନ୍ନତ । ୨. ଦ୍ରୋଣୀ = ଉପତ୍ୟକା ।

ମଣିବାଲୁକା[1] ଅଟେ ଯହିଁ । ସେ ପୁଲିନରେ ଯୁତ ଯେହି ।। ୨୫
ଦେବଯୁବତୀମାନଙ୍କର । ସ୍ନାନେ ଯେ ଆମୋଦ ପ୍ରଚାର ।। ୨୬
ତେଣେ ସୌରଭଯୁତ ଜଳ । ପବନେ ଯୁତ ଯେ ଅଚଳ ।। ୨୭
୯ ମହତ ଅଟେ ଆତ୍ମା ଯାର । ସେ ଭଗବନ୍ତ ବରୁଣର ।। ୨୮
ଉଦ୍ୟାନ ନାମ 'ଋତୁମନ୍ତ' । ସେ ଗିରିଦ୍ରୋଣୀରେ ଶୋଭିତ ।। ୨୯
ଅମର ନାରୀମାନଙ୍କର । ଯହିଁରେ ଅଟଇ ବିହାର ।। ୩୦
ଯହିଁରେ ପୁଷ୍ପଫଳମାନ । ନିତ୍ୟେ ଅଟନ୍ତି ବିଦ୍ୟମାନ ।। ୩୧
ସେ ଦେବଦ୍ରୁମମାନଙ୍କରେ । ମଣ୍ଡିତ ଯେ ସର୍ବଦିଗରେ ।। ୩୨
୧୦ } ମନ୍ଦାର ଅଶୋକ ପାଟଳ । ଚମ୍ପକ ପନସ ପିୟାଳ ।। ୩୩
୧୩ } ଯେ ଆମ୍ର ଆମ୍ରାତକ[2] ଚୂତ । ଯେ ବୃକ୍ଷମାନେ ପାରିଜାତ ।। ୩୪
କ୍ରମୁକ[3] ବୃକ୍ଷ ନାରିକେଳ । ଅଶନ ଅର୍ଜୁନ ତମାଳ ।। ୩୫
ତାଳ ଖର୍ଜୂର ବୀଜପୂର । ମଧୁକ ଶାଳ ଯେ ଆବର ।। ୩୬
ଅରିଷ୍ଟ ବଟ ଉଦୁମ୍ବର । କିଂଶୁକ ଚନ୍ଦନ ଆବର ।। ୩୭
ଯେ ପିଚୁମର୍ଦ୍ଦ କୋବିଦାର । ସରଳ ଦେବଦାରୁ ଆର ।। ୩୮
ଦ୍ରାକ୍ଷା କଦଳୀ ଇକ୍ଷୁ ପ୍ଲକ୍ଷ । ଅଭୟ ଆମଳକ ଅକ୍ଷ ।। ୩୯
ବଦରୀ ବିଲ୍ୱ ଯେ ଜମ୍ବୀର । କପିତ୍ଥ ଭଲ୍ଲାତକ ଆର ।। ୪୦
ଏ ବୃକ୍ଷମାନଙ୍କରେ ବୃତ । ହୋଇଛି ଯେବଣ ପର୍ବତ ।। ୪୧
୧୪ } ଯହିଁ ସୁବର୍ଣ୍ଣପଦ୍ମମାନ । ଦିଶନ୍ତି ଅତି ଶୋଭମାନ ।। ୪୨
୧୯ } କୁମୁଦ ଉତ୍ପଳ କହ୍ଲାର । ପଦ୍ମ ଶୋଭାରେ ଯେହୁ ସାର ।। ୪୩
ସେ ଅଚଳରେ ଏ ପ୍ରକାର । ଅଛି ବିପୁଳ ଏକ ସର ।। ୪୪
ମତ୍ତଭ୍ରମର କଳସ୍ୱନ । ପକ୍ଷୀଙ୍କ ଶବଦେ ଯେ ପୂର୍ଣ୍ଣ ।। ୪୫
ଯେ ଚକ୍ର କାରଣ୍ଡବ ଆନ । ହଂସ ସାରସରେ ଆକୀର୍ଣ୍ଣ ।। ୪୬
ଜଳକୁକ୍କୁଟ କୋୟଷ୍ଟିକ[4] । ଦାତ୍ୟୂହ ପକ୍ଷୀ ଯେ ଆରକ ।। ୪୭
ଏ ଜନ୍ତୁମାନଙ୍କ ନିକର । ଶବଦଯୁତ ଯେଉଁ ସର ।। ୪୮
ମତ୍ସ୍ୟକଚ୍ଛପଙ୍କ ସଂଚାରେ । ଚଳନ୍ତି ଯେ ପଦ୍ମ ତହିଁରେ ।। ୪୯
ତାହାଙ୍କ ରଜରେ ସଂଯୁତ । ଜଳ ଯହିଁରେ ବିରାଜିତ ।। ୫୦
କଦମ୍ବ ବେତସ ବଞ୍ଜୁଳ । ଅଶୋକ କୁରବକ ନଳ ।। ୫୧
କୁଟଜ ଶିରୀଷ ଇଙ୍ଗୁଦ । ଧୂଳିକଦମ୍ବ ଯେ ବା କୁନ୍ଦ ।। ୫୨
ମଲ୍ଲିକା ଶତପତ୍ର ଜାତି । ନାଗ ପୁନ୍ନାଗ ସ୍ୱର୍ଣ୍ଣଯୂଥୀ ।। ୫୩
ମାଧବୀ ଜାଲକାଦି ହୋଇ । ତୀରଜ ଆନ ଦ୍ରୁମେ ଯେହି ।। ୫୪

୧. ମଣିବାଲୁକା = ମଣିତୁଲ୍ୟ ବାଲୁକା । ୨. ଆମ୍ରାତକ = ଆମ୍ବଡ଼ା । ୩. କ୍ରମୁକ = ଗୁଆ ।
୪. କୋୟଷ୍ଟିକ = ଟିଟ୍ଟିଭ ପକ୍ଷୀ (କୋୟଷ୍ଟିକଃ ଟିଟ୍ଟିଭକ ଇତ୍ୟମରଃ) ।

ନିତ୍ୟରେ ଫଳ ପୁଷ୍ପ ଯହିଁ । ତେଣେ ଅତ୍ୟନ୍ତ ଯେ ଶୋଭଇ ।।<br>
୨୦ ସେ ଗିରିକାନନ ଯାହାର । ଆଶ୍ରୟ ଅଟେ ନିରନ୍ତର ।।<br>
ସେ ହସ୍ତୀଯୂଥପ ତହିଁରେ । ହସ୍ତିନୀମାନଙ୍କ ସଙ୍ଗରେ ।।<br>
ଭ୍ରମନ୍ତେ ଏକଦିନେ ପୁଣ । କଣ୍ଟକସହିତ ହୋଇଣ ।।<br>
କୀଚକ-ବେଣୁ-ବେତ୍ରବନ୍ତ । ବିଶାଳ ଗୁଳ୍ମରେ ସଂଯୁତ ।।<br>
ଅନେକ ବନସ୍ପତିମାନ । ପାଦରେ କରନ୍ତେ ଭଞ୍ଜନ ।।<br>
୨୧ ଯା' ଗନ୍ଧମାତ୍ରେ ସିଂହମାନେ । ଗଜେନ୍ଦ୍ର ବ୍ୟାଘ୍ର ଆଦି ଆନେ ।।<br>
ଯେ ବ୍ୟାଳ ମୃଗେ ଗଣ୍ଡାଯୁତ । ମହା ଉରଗେ ଅପ୍ରମିତ ।।<br>
ଗଉର କୃଷ୍ଣଯୁତ ହୋଇ । ଶରଭ ଚମରୀ ବା ଯେହି ।।<br>
ଭୟସକାଶୁଁ ଅନ୍ୟସ୍ଥାନେ । ଗମନ କରନ୍ତି ଏମାନେ ।।<br>
୨୨ ବୃକ ବରାହ ଶାଳାବୃକ[1] । ମର୍କଟ ମହିଷ ଶଲ୍ୟକ[2] ।।<br>
ଗୋପୁଚ୍ଛ[3] ଯେ ଅବା ହରିଣ । ଯେ କ୍ଷୁଦ୍ର ଶଶା ଆଦି ପୁଣ ।।<br>
ଯା' ଅନୁଗ୍ରହେ ଆନ ସ୍ଥାନେ । ଚରନ୍ତି ଭୟ ତେଜି ମନେ ।।<br>
୨୩ ହସ୍ତୀ-ହସ୍ତିନୀଙ୍କରେ ବୃତ । ହୋଇ ସେ ଗଜ ଘର୍ମତପ୍ତ ।।<br>
ପଡୁଛି ମଦଜଳ ବହି । ବାଳକେ ଅଛନ୍ତି ଗୋଡ଼ାଇ ।।<br>
ଗିରିକି ସକଳ ଦିଗରେ । କଂପାନ୍ତେ ନିଜ ମହତ୍ତ୍ୱରେ ।।<br>
ମଦଭୋଜନ ଭୃଙ୍ଗଗଣେ । ବେଢ଼ି ଅଛନ୍ତି ଅନୁକ୍ଷଣେ ।।<br>
୨୪ ମଦରେ ହୋଇଛି ବିହ୍ୱଳ । ଯାହାର ନୟନଯୁଗଳ ।।<br>
ତୃଷାରେ ଅଟେ ଯେ ପୀଡ଼ିତ । ବେଢ଼ିଅଛି ସେ ନିଜଯୂଥ ।।<br>
ପଙ୍କଜରେଣୁରେ ପ୍ରଚୁର । ଅଟଇ ଯେଉଁ ସରୋବର ।।<br>
ଦୂରୁଁ କରନ୍ତେ ତା' ଆଘ୍ରାଣ । ଗଲା ତା' ନିକଟକୁ ପୁଣ ।।<br>
ସେ ସରୋବରର ଭିତରେ । ପ୍ରବେଶ ହୋଇଣ ସତ୍ୱରେ ।।<br>
୨୫ ହେମପଙ୍କଜ ଉତପଳ । ରେଣୁରେ ବାସିତ ନିର୍ମଳ ।।<br>
ଅମୃତପ୍ରାୟେ ଯେଉଁ ବାରି । ସ୍ୱକରାଗ୍ରେ ତା' ଟେକି କରି ।।<br>
ପିଇଲା ଯେତେ ମନ ତାର । ଜଳେ ଆପଣା କଳେବର ।।<br>
ସ୍ନାନ କରାନ୍ତେ ତତକ୍ଷଣ । ହେଲା ସେ ଗତକ୍ଲମ ପୁଣ ।।<br>
୨୬ ଆପଣା ପୁଷ୍କର ଅଗ୍ରରେ । ଉଦ୍ଧୃତ ଶୀକର ଜଳରେ ।।<br>
ଯେବା ହସ୍ତିନୀ-ଶିଶୁମାନ । ତାହାଙ୍କୁ କରାନ୍ତେ ସେ ସ୍ନାନ ।।<br>
ଗୃହୀ ଲୋକର ପ୍ରାଏ ହୋଇ । ଦୟାସଂଯୁତ ଯେ ଅଟଇ ।।<br>
ଦୁର୍ମଦ ଅଟେ ସେ କୃପଣ । ଯେ କଷ୍ଟ ପଡ଼ିବ ତକ୍ଷଣ ।।

---

୧. ଶାଳାବୃକ = କୁକ୍କୁର । ୨. ଶଲ୍ୟକ = ଝିଙ୍କ । ୩. ଗୋପୁଚ୍ଛ = ଏକପ୍ରକାର ମର୍କଟ ।

| | | | | | |
|---|---|---|---|---|---|
| | ସେ କଥା ନ କଲା ଗୋଚର | । | ବିଷ୍ଣୁମାୟାରେ ସେ କୁଞ୍ଜର | ॥ | ୮୫ |
| ୨୭ | ଦୈବରେ ନିୟୋଜିତ ହୋଇ | । | ହେ ନୃପ ! ସେ ସ୍ଥାନରେ କେହି | ॥ | ୮୬ |
| | ଅତିବଳିଷ୍ଠ ଗ୍ରାହ ପୁଣ | । | ରୋଷେ ଧଇଲା ତା' ଚରଣ | ॥ | ୮୭ |
| | ସେ ଅତି ବଳିଷ୍ଠ ବାରଣ | । | କେହୁଣି ଅଭାଗ୍ୟବଶେଣ | ॥ | ୮୮ |
| | ଏମନ୍ତ ବିପତ୍ତି ପାଇଲା | । | ଯେତେ ତାହାର ବଳ ଥିଲା | ॥ | ୮୯ |
| | ନ କରି ତାହା ଅତିକ୍ରମ | । | କଲା ସେ ଆପଣା ବିକ୍ରମ | ॥ | ୯୦ |
| ୨୮ | ସେ ଯୂଥମାନଙ୍କ ଈଶ୍ୱର | । | ହୁଅନ୍ତେ ତେମନ୍ତ ଆତୁର | ॥ | ୯୧ |
| | ବଳିଷ୍ଠ କୁମ୍ଭୀର ବେଗରେ | । | ଓଟାରି ନିଅନ୍ତେ ଜଳରେ | ॥ | ୯୨ |
| | ହସ୍ତିନୀମାନେ ଦୀନ ହୋଇ | । | ରୋଦନ ମାତ୍ର କଲେ ତହିଁ | ॥ | ୯୩ |
| | ଯେ ଦୀନ ଗଜମାନେ ଥିଲେ | । | ସେ ପୃଷ୍ଠସହାୟ ହୋଇଲେ | ॥ | ୯୪ |
| | ତାହାକୁ ତାରିବା ନିମନ୍ତେ | । | ଶକ୍ତ ନୋହିଲେ ସେ ସମସ୍ତେ | ॥ | ୯୫ |
| ୨୯ | ଗଜେନ୍ଦ୍ର କୁମ୍ଭୀର ସେ ଦୁଇ | । | ଏକ ଆରକେ କ୍ରୋଧ ବହି | ॥ | ୯୬ |
| | ଜଳକୁ ଓଟାରନ୍ତେ ଏକ | । | କୂଳକୁ ଓଟାରେ ଆରେକ | ॥ | ୯୭ |
| | ହେ ମହୀପତି ! ଏ ପ୍ରକାରେ | । | ଯୁଦ୍ଧ କରନ୍ତେ ସଲିଳରେ | ॥ | ୯୮ |
| | ଗଲା ସହସ୍ର ସମ୍ବତ୍ସର | । | ପ୍ରାଣ ହିଁ ଅଛି ବେନିଙ୍କର | ॥ | ୯୯ |
| | ସେ କଥା ଦେଖିଣ ଗଗନେ | । | ଚିତ୍ର ମଣିଲେ ସୁରମାନେ | ॥ | ୧୦୦ |
| ୩୦ | ଗ୍ରାହ ଓଟାରନ୍ତେ ଜଳରେ | । | ଗ୍ଲାନ ହୋଇଛି ଯେ କ୍ରମରେ | ॥ | ୧୦୧ |
| | ତଦନ୍ତରେ ସେ ଗଜେନ୍ଦ୍ରର | । | ଉତ୍ସାହ ବଳ ଓଜ ଆର | ॥ | ୧୦୨ |
| | ବହୁତ କାଳେ ଅତିଶୟ | । | ସେମାନ ସବୁ ହେଲା କ୍ଷୟ | ॥ | ୧୦୩ |
| | ଗ୍ରାହର ପୁଣ ଦିନୁଁଦିନ | । | ଅଧିକ ହୋଇଲା ସେମାନ | ॥ | ୧୦୪ |
| ୩୧ | ଗଜେନ୍ଦ୍ର ଏମନ୍ତ ପ୍ରକାରେ | । | ପ୍ରାଣସଂକଟ ଯଦୃଚ୍ଛାରେ | ॥ | ୧୦୫ |
| | ଲଭିଲାକ ସେ ଯେଣୁ ଦେହୀ | । | ଏଣୁ ବିବଶ ଅଛି ହୋଇ | ॥ | ୧୦୬ |
| | ନିଜ ଆତ୍ମାର ବିମୋକ୍ଷଣ | । | କରି ନ ପାରନ୍ତେ ସେ ପୁଣ | ॥ | ୧୦୭ |
| | ବହୁତ କାଳ ଧ୍ୟାନ କଲା | । | ତଦନ୍ତେ ଏ ବୁଦ୍ଧି ଲଭିଲା | ॥ | ୧୦୮ |
| ୩୨ | ଆତୁର ହୋଇଛି ମୁଁ ଯେତେ | । | ଏ ଜ୍ଞାତିଗଜମାନେ ମୋତେ | ॥ | ୧୦୯ |
| | କରିବା ନିମନ୍ତେ ମୋଚନ | । | କେବେହେଁ ନୁହନ୍ତି ଭାଜନ | ॥ | ୧୧୦ |
| | କରିଣୀମାନେ ଅବା କାହିଁ | । | ପାରିବେ, ମୁହିଁ ନ ପାରଇ | ॥ | ୧୧୧ |
| | ଯେ ଗ୍ରାହରୂପୀ ଧାତାପାଶ | । | ତେଣେ ଆବୃତ ମୁଁ ଅବଶ | ॥ | ୧୧୨ |
| | ତଥାପି ଯେ ପରମେଶ୍ୱର | । | ଆଶ୍ରୟ ବ୍ରହ୍ମା ଆଦିଙ୍କର | ॥ | ୧୧୩ |
| | ତାହାଙ୍କୁ ପଶିବି ଶରଣ | । | ସେ ମୋତେ କରିବେ ମୋକ୍ଷଣ | ॥ | ୧୧୪ |
| ୩୩ | ପ୍ରଚଣ୍ଡ ଅଟେ ବେଗ ଯାର | । | ଯେ ବଳୀ ଧାବଇ ପ୍ରଖର | ॥ | ୧୧୫ |
| | ଏମନ୍ତ ଯେଉଁ ମୃତ୍ୟୁ-ଅହି | । | ତାହାର ଠାରୁ ଭୟ ପାଇ | ॥ | ୧୧୬ |

ଶରଣ ପଶଇ ଯେ ଜନ । ତାକୁ ଯେ କରଇ ପାଳନ ॥ ୧୧୭
ଏମନ୍ତ ପ୍ରଭୁ ଯେହି କେହି । [୧]‘ଯା’ ଭୟେ ମୃତ୍ୟୁ ହିଁ ଧାବଇ ॥ ୧୧୮
ତାହାକୁ ପଶୁଛୁଁ ଶରଣ । ଆମେ ସମସ୍ତେ ଅନୁକ୍ଷଣ ॥ ୧୧୯
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁମତି ॥ ୧୨୦

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀଗଜେନ୍ଦ୍ରୋପାଖ୍ୟାନେ
ଦ୍ୱିତୀୟୋଽଧ୍ୟାୟଃ ॥

## ତୃତୀୟ ଅଧ୍ୟାୟ

ତୃତୀୟେ ତୁ ଗଜେନ୍ଦ୍ରେଣ ସ୍ତୁତୋ ହରିରୁପେତ୍ୟ ତମ୍ ।
ସମୁଦ୍ଧାର ତଂ ଗ୍ରାହାଦ୍ ଗ୍ରାହଂ ଦେବଳଶାପତଃ ॥ ୧

ଶ୍ରୀବାଦରାୟଣିରୁବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ରାଜା ପରୀକ୍ଷିତ ॥ ୧
ଏମନ୍ତ ପ୍ରକାରେ ବୁଦ୍ଧିରେ । ବ୍ୟବସାୟକୁ କରି ଧୀରେ ॥ ୨
ସେ ଗଜଇନ୍ଦ୍ର ନିଜ ମନ । ହୃଦୟେ କରି ସମାଧାନ ॥ ୩
ପରମ ଜପ୍ୟକୁ ଜପିଲା । ଯା’ ପୂର୍ବେ ଜନ୍ମେ ଶିଖିଥିଲା ॥ ୪

ଶ୍ରୀଗଜେନ୍ଦ୍ର ଉବାଚ

୨ ଯାହାର ସକାଶେ ଚେତନ । ହୋଏ ଏ ଦେହ ଆଦିମାନ ॥ ୫
ଶରୀରମାନଙ୍କ କାରଣ । ରୂପରେ ପ୍ରକାଶେ ଯେ ପୁଣ ॥ ୬
ପ୍ରକୃତିପୁରୁଷ ଆକାର । ଅଟନ୍ତି ଯେ ପରମେଶ୍ୱର ॥ ୭
ଏମନ୍ତ ଯେଉଁ ଭଗବାନ । କରୁଛି ତାଙ୍କୁ ନିତି ଧ୍ୟାନ ॥ ୮
୩ ଯାଠାରେ ଅଛି ଏ ଜଗତ । ଯାଠାରୁ ହୋଇଅଛି ଜାତ ॥ ୯
ଯେଣେ ଏ ଅଟଇ ନିର୍ମିତ । ଯେ ସ୍ୱୟେଂ ଅଟେ ଏ ଜଗତ ॥ ୧୦
ଯେ କାର୍ଯ୍ୟଂ କାରଣରୁ ପର । ସ୍ୱୟେଂ ସଂଭୂତ ଯେ ଈଶ୍ୱର ॥ ୧୧
ତାହାଙ୍କୁ ଯାଉଛି ଶରଣ । ସେ ପ୍ରଭୁ ରଖନ୍ତୁ ମୋ ପ୍ରାଣ ॥ ୧୨
୪ ଏ ବିଶ୍ୱ ଯେ ନିଜ ମାୟାରେ । ଅର୍ପିତ କରେ ସ୍ୱଆତ୍ମାରେ ॥ ୧୩
କେହୁଣି ସମୟେ ବ୍ୟକତ । ହୁଅଇ ଯେବଣ ଜଗତ ॥ ୧୪
ପୁଣି କେହୁଣି ସମୟରେ । ଅଦୃଶ୍ୟ ହୁଅଇ ନିର୍ଭରେ ॥ ୧୫

---

୧. ଭୀଷାସ୍ମାଦ୍ ବାତଃ ପବତେ ଭୀଷୋଦେତି ସୂର୍ଯ୍ୟଃ ।
ଭୀଷାସ୍ମାଦଗ୍ନିଶ୍ଚେନ୍ଦ୍ରଶ୍ଚ ମୃତ୍ୟୁର୍ଧାବତି ପଞ୍ଚମଃ ॥ (ଶ୍ରୁତିଃ)

ଯେ ପୁଣ ସାକ୍ଷୀରୂପ ହୋଇ । କାର୍ଯ୍ୟକାରଣକୁ ଦେଖଇ ॥
ଯାହାର ଦୃଷ୍ଟି ନୋହେ ନାଶ । ଯେ ପ୍ରଭୁ ଅଟେ ସ୍ୱପ୍ରକାଶ ॥
ଜଗତପ୍ରକାଶକ ହୋଇ । [1]ନୟନ ଆଦ୍ୟ ଯେ ଅଟଇ ॥
ତହିଁରୁ ଅଟଇ ଯେ ପର । ସେ ମୋତେ ରଖନ୍ତୁ ଈଶ୍ୱର ॥
୫ ଯେ ଲୋକ ଲୋକପାଳମାନେ । ସମସ୍ତ ହେତୁ ଯେବା ଆନେ ॥
କାଳର ସକାଶେ ସେମାନେ । ନାଶକୁ ଲଭନ୍ତି ଭୁବନେ ॥
ସେ କାଳେ ହେଲା ଅନ୍ଧକାର । ଦୁରବଗାହ[2] ଯେ ଅପାର ॥
[3]ଯେବଣ ପ୍ରଭୁ ତାର ପାରେ । ବିରାଜି ଅଛନ୍ତି ନିର୍ଭରେ ॥
୬ ଦେବତା ଋଷିମାନେ ଯାର । ରୂପ ନ କରନ୍ତି ଗୋଚର ॥
ତହିଁରୁ ପଛେ ଜନ୍ମ ହୋଇ । ଏମନ୍ତ ପ୍ରାଣୀ ଅଛି କେହି ॥
ସେରୂପତତ୍ତ୍ୱ ଜାଣିମାକୁ । ଶକ୍ୟ ହୋଇବ କହିବାକୁ ॥
ନାନା ଆକୃତିରେ ଯେସନ । ନଟ କରଇ ଚେଷ୍ଟାମାନ ॥
ଯେ ଅଟେ ମୂଳରୂପ ତାର । ସେ ଯେହ୍ନେ ନୁହଇ ଗୋଚର ॥
ଦୁର୍ଗମ ଅଟେ ଯା' କଥନ । ସେ ମୋତେ କରନ୍ତୁ ପାଳନ ॥
୭ ମଙ୍ଗଳପଦକୁ ଯାହାର । କରିବା ନିମିତ୍ତେ ଗୋଚର ॥
ବାଞ୍ଛା କରନ୍ତି ଯେହୁ ମନେ । ଅସଙ୍ଗ ସାଧୁ ମୁନିମାନେ ॥
ଯେ ପ୍ରାଣିଠାରେ ଆତ୍ମମତି । କରନ୍ତି, ସୁହୃଦ ଅଟନ୍ତି ॥
ବ୍ରହ୍ମଚର୍ଯ୍ୟକୁ ଆଦି ହୋଇ । ଅଛିଦ୍ର ବ୍ରତମାନେ ଯେହି ॥
ବିପିନମଧ୍ୟରେ ସେମାନ । ଯତ୍ନେ କରନ୍ତି ସଂପାଦନ ॥
ଏମନ୍ତ ଯେ ପରମେଶ୍ୱର । ଗତି ହୁଅନ୍ତୁ ସେ ମୋହର ॥
୮ ନାହିଁ ଯାହାର ଜନ୍ମ କର୍ମ । ସ୍ୱରୂପ ଗୁଣଦୋଷ ନାମ ॥
ତଥାପି ଲୋକମାନଙ୍କର । ଜନ୍ମ ପ୍ରଳୟ ଯେ ଆବର ॥
ତାହା ନିମିତ୍ତେ ସ୍ୱମାୟାରେ । ଯେ ଭଜେ ତା'[4] ସର୍ବ କାଳରେ ॥
୯ ଯେ ବ୍ରହ୍ମ ପରମ ଈଶ୍ୱର । ତାଙ୍କୁ ମୋହର ନମସ୍କାର ॥
ଯାହା ଶକ୍ତିର ନାହିଁ ଅନ୍ତ । ଅରୂପ ଉରୁ[5] ରୂପବନ୍ତ ॥
ଏ ଘେନି ଯାର କର୍ମମାନେ । ଆଶ୍ଚର୍ଯ୍ୟ ଅଟନ୍ତି ଭୁବନେ ॥
୧୦ ଯେ ଆତ୍ମପ୍ରଦୀପ ଈଶ୍ୱର । ତାଙ୍କୁ ମୋହର ନମସ୍କାର ॥
ଯେ ପୁଣ ଅଟେ ସ୍ୱପ୍ରକାଶ । ଜୀବ ଅଟଇ ଯାର ବଶ ॥
[6]ଯେ ମନ-ବଚନ-ଚିତ୍ତର । ଅପ୍ରାପ୍ୟ ତାଙ୍କୁ ନମସ୍କାର ॥

---

୧. 'ଚକ୍ଷୁଷଶ୍ଚକ୍ଷୁଃ' ଇତି ଶ୍ରୁତିଃ । ୨. ଯହିଁ ବୁଡ଼ିବା କଷ୍ଟକର ।
୩. 'ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍' ଇତି ଶ୍ରୁତିଃ । ୪. ତା' = ଜନ୍ମପ୍ରଳୟାଦି । ୫. ବହୁ ।
୬. 'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ' ଇତି ଶ୍ରୁତିଃ ।

୧୧ ଯେହୁ ପଣ୍ଡିତମାନଙ୍କର । [1]ସନ୍ନ୍ୟାସ ଶୁଦ୍ଧ ସତ୍ତ୍ୱ ଆର ।। ୪୫
ତେଣେ ଯେ ପ୍ରତ୍ୟକ୍ଷ ପ୍ରାପତ । ଯେ ଅଟେ କୈବଲ୍ୟର ନାଥ ।। ୪୬
ମୋକ୍ଷଆନନ୍ଦଅନୁଭୂତି । ଯେ କରେ ତାକୁ ମୋ ପ୍ରଣତି ।। ୪୭
୧୨ ସତ୍ତ୍ୱାଦି ତିନି ଧର୍ମ ଯେହି । ତହିଁକି ଅନୁଗତ ହୋଇ ।। ୪୮
ଯେ ଶାନ୍ତ ଘୋର ମୂଢ଼ାକାର । ବିଶେଷ ନିର୍ଗତ ଯାହାର ।। ୪୯
ଯେ ସମ ଅଟେ ଜ୍ଞାନଘନ । ତାହାଙ୍କୁ ମୋହର ବନ୍ଦନ ।। ୫୦
୧୩ ଯେ ସାକ୍ଷୀ ସର୍ବଅଧୀଶ୍ୱର । କ୍ଷେତ୍ରଜ୍ଞ ପୁରୁଷ ଈଶ୍ୱର ।। ୫୧
[2]ଆତ୍ମାମାନଙ୍କ ମୂଳ ଯେହି । ପ୍ରକୃତି ଯହୁଁ ଜାତ ହୋଇ ।। ୫୨
ଏମନ୍ତ ଅଟେ ଯେ ଈଶ୍ୱର । ତାଙ୍କୁ ମୋହର ନମସ୍କାର ।। ୫୩
୧୪ ସର୍ବ ଇନ୍ଦ୍ରିୟମାନଙ୍କର । ବିଷୟ କରେ ଯେ ଗୋଚର ।। ୫୪
ସର୍ବ ଇନ୍ଦ୍ରିୟବୃତ୍ତିଙ୍କର । ହେତୁ ଅଟନ୍ତି ଯେ ଈଶ୍ୱର ।। ୫୫
ଅହଂକାରକୁ ଆଦି ହୋଇ । ପ୍ରପଞ୍ଚମାନେ ଛନ୍ତି ଯେହି ।। ୫୬
ଯେ ପ୍ରତିବିମ୍ବେ ବିମ୍ବପ୍ରାଏ । ଜଗତେ ସୂଚିତ ଯେ ହୋଏ ।। ୫୭
ସନ୍ତରୂପରେ ଯା' ଆଭାସ । ବିଷୟମାନଙ୍କ ପ୍ରକାଶ ।। ୫୮
ଏମନ୍ତ ଯେ ତୁମ୍ଭେ ଈଶ୍ୱର । ତୁମ୍ଭଙ୍କୁ ବନ୍ଦନ ମୋହର ।। ୫୯
୧୫ ଯେ ତୁମ୍ଭେ ଅଖିଳକାରଣ । କାରଣହୀନ ଅଟ ପୁଣ ।। ୬୦
ମୃତ୍ତିକାଆଦି ପ୍ରାୟ ହୋଇ । ବିକାର ତୁମ୍ଭଠାରେ ନାହିଁ ।। ୬୧
ଏ ଘେନି ଅଦ୍ଭୁତ କାରଣ । ତୁମ୍ଭେ ସେ ଏମନ୍ତ ପ୍ରମାଣ ।। ୬୨
ସର୍ବ ଆଗମମାନେ ନଦୀ । ତୁମ୍ଭେ ସମୁଦ୍ରପ୍ରାଏ ସିଦ୍ଧି ।। ୬୩
ଯେ ତୁମ୍ଭେ କଇବଲ୍ୟମୟ । ଏ ଘେନି ସାଧୁଙ୍କ ଆଶ୍ରୟ ।। ୬୪
ତୁମ୍ଭଙ୍କୁ ପୁଣ ପୁଣ ହୋଇ । ପ୍ରଣାମ କରୁଅଛି ମୁହିଁ ।। ୬୫
୧୬ ଗୁଣ-ଅରଣିରେ ଆଚ୍ଛନ୍ନ । ଯେ ଅଟେ ଜ୍ଞାନହୁତାଶନ ।। ୬୬
ସେ ଗୁଣକାର୍ଯ୍ୟେ ଯାହା ଚିତ୍ତ । ପ୍ରବର୍ତ୍ତେ ନାହିଁ କଦାଚିତ ।। ୬୭
ଯେ ଆତ୍ମତତ୍ତ୍ୱଭାବନାରେ । ଆଗମ[3]ମାନ କଲେ ଦୂରେ ।। ୬୮
ଯେ ପ୍ରଭୁ ତାହାଙ୍କ ହୃଦୟେ । ପ୍ରକାଶ ହୋଇଛନ୍ତି ସ୍ୱଏଁ ।। ୬୯
ଏମନ୍ତ ଯେ ପ୍ରଭୁ ଅଟନ୍ତି । ତାଙ୍କୁ ମୁଁ କରୁଛି ପ୍ରଣତି ।। ୭୦
୧୭ ମୋହର ପ୍ରାଏକ ପ୍ରପନ୍ନ । ପଶୁ ଅଟଇ ଯେବା ଆନ ।। ୭୧
ତାହାର ଅବିଦ୍ୟା ବିଶେଷେ । ନାଶ ହୁଅଇ ଯା' ସକାଶେ ।। ୭୨
ଯେ ମୁକ୍ତ ଅତ୍ୟନ୍ତ କରୁଣ । ଯାହାର ଲୟ ନାହିଁ ପୁଣ ।। ୭୩
[4]ଯେ ଅନ୍ତର୍ଯ୍ୟାମିସ୍ୱରୂପରେ । ସକଳ ପ୍ରାଣିଙ୍କ ମନରେ ।। ୭୪

---

୧. 'ସନ୍ନ୍ୟାସଯୋଗାଦ୍ ଯତୟଃ ଶୁଦ୍ଧସତ୍ତ୍ୱାଃ ଇତି' ଶ୍ରୁତିଃ ।
୨. 'ପୂର୍ବମେବାହମିହାସମ୍ ତଦ୍ ପୁରୁଷସ୍ୟ ପୁରୁଷତ୍ୱମ୍' । (ଶ୍ରୁତିଃ)
୩. ବିଧିନିଷେଧ । ୪. 'ଯ ଆତ୍ମନି ତିଷ୍ଠନ୍ ଆତ୍ମାନମ୍ ଅନ୍ତରୋ ଯମୟତି' । (ଶ୍ରୁତିଃ)

କରିବା ଅର୍ଥେ ନିୟମନ । ସମର୍ଥ ଅଟେ ଭଗବାନ ।। ୭୫
ମନରେ ଥିଲେହେଁ ତାଙ୍କର । ଅପରିଚ୍ଛିନ୍ନ ମୂର୍ତ୍ତି ଯାର ।। ୭୬
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ତୁମ୍ଭଙ୍କୁ ମୋର ନମସ୍କାର ।। ୭୭
୧୮ ଦେହ ତନୟ ଗୃହ ବିତ୍ତ । ଆପ୍ତ ଜନେ ଯେ ଆସକତ ।। ୭୮
ତେଣେ ଯେ ଅଟେ ଅପ୍ରାପତ । ଯେ ଗୁଣସଙ୍ଗବିବର୍ଜିତ ।। ୭୯
ବିମୁକ୍ତଆତ୍ମା ଯେଉଁ ନରେ । ଯାଙ୍କୁ ଚିନ୍ତନ୍ତି ସ୍ୱହୃଦରେ ।। ୮୦
ଯେ ଜ୍ଞାନରୂପୀ ଭଗବାନ । ଈଶ୍ୱର ତାଙ୍କୁ ମୋ ବନ୍ଦନ ।। ୮୧
୧୯ ଧର୍ମାର୍ଥକାମମୁକ୍ତି ମନେ । ବାଞ୍ଛା କରନ୍ତି ଯେଉଁ ଜନେ ।। ୮୨
ସେମାନେ ଭଜନ୍ତେ ଯାହାକୁ । ଲଭନ୍ତି ବାଞ୍ଛିତ ଫଳକୁ ।। ୮୩
ସେମାନେ ବାଞ୍ଛନ୍ତି ଯା' ଆନ । ତାହି ଯେ କରନ୍ତି ପ୍ରଦାନ ।। ୮୪
ଅକ୍ଷୟ କରେ ଯେ ଶରୀର । ବହୁତ ଅଟେ ଦୟା ଯାର ।। ୮୫
ଏମନ୍ତ ଅଟଇ ଯେ ପୁଣ । ସେ କରୁ ମୋହର ମୋକ୍ଷଣ ।। ୮୬
୨୦ ଯେ ଭଗବନ୍ତ ଭକ୍ତ ଜନ । ତାହାକୁ ଅଟନ୍ତି ପ୍ରପନ୍ନ ।। ୮୭
ଏମନ୍ତ ଯେ ଏକାନ୍ତ ଭକ୍ତ । ବାଞ୍ଛନ୍ତି ନାହିଁ କିଛି ଅର୍ଥ ।। ୮୮
ତାହାର ଅତି ଅଦଭୁତ । ମଙ୍ଗଳ ଯେବଣ ଚରିତ ।। ୮୯
ସେ କଥା କରନ୍ତେ ଗାୟନ । ଆନନ୍ଦସାଗରେ ଯେ ମଗ୍ନ ।। ୯୦
୨୧ ପରମ ବ୍ରହ୍ମ ଯେ ଅକ୍ଷର । ଅବ୍ୟକ୍ତ ଯେ ପରମେଶ୍ୱର ।। ୯୧
ଅଧ୍ୟାତ୍ମଯୋଗରେ ଯେ ଗମ୍ୟ । ଇନ୍ଦ୍ରିୟ-ଅଗୋଚର ସୂକ୍ଷ୍ମ ।। ୯୨
ରହିଥିଲେ ଯେ ସ୍ୱହୃଦୟେ । ଅତିଦୂରରେ ଥିଲା ପ୍ରାଏ ।। ୯୩
ଅନନ୍ତ ଆଦ୍ୟ ପୂର୍ଣ୍ଣ ଯେହି । ସ୍ତୁତି କରୁଛି ତାଙ୍କୁ ମୁହିଁ ।। ୯୪
୨୨ ବ୍ରହ୍ମାଦି ଦେବେ ବେଦମାନେ । ଯେ ଲୋକ ଚରାଚର ଆନେ ।। ୯୫
ଯା' ଅଳ୍ପ ଅଂଶରେ ସେ କୃତ । ନାମରୂପରେ ଭେଦଯୁତ ।। ୯୬
୨୩ ଅଗ୍ନିର ଠାରୁ ଶିଖା ଯେହ୍ନେ । ସୂର୍ଯ୍ୟର ଠାରୁ ରଶ୍ମିମାନେ ।। ୯୭
ଜାତ ହୁଅନ୍ତି ବାରମ୍ବାରେ । ପ୍ରବେଶ ହୁଅନ୍ତି ତହିଁରେ ।। ୯୮
ସେରୂପେ ଯାହାଠାରୁ ଜାତ । ଏ ଗୁଣପ୍ରବାହ ନିୟତ ।। ୯୯
ବୁଦ୍ଧି ଇନ୍ଦ୍ରିୟମାନେ ମନ । ଯେ କାର୍ଯ୍ୟଦେହ-ସର୍ଗ ଆନ ।। ୧୦୦
ଜନମ ହୋଇ ଏ ଆଦ୍ୟରେ । ପ୍ରବେଶ ହୁଅନ୍ତି ଯହିଁରେ ।। ୧୦୧
୨୪ ସେ ନୋହେ ଦେବତା ଅସୁର । ମନୁଷ୍ୟ ତିର୍ଯ୍ୟକ ଆବର ।। ୧୦୨
ପୁରୁଷ ସ୍ତିରୀ ନପୁଂସକ । ଜନ୍ତୁବିଶେଷ ନୋହେ ଏକ ।। ୧୦୩
ସନ୍ତ ଅସନ୍ତ କର୍ମ ଗୁଣ । ନୋହେ ସେ ଏମାନ ହିଁ ପୁଣ ।। ୧୦୪
ସେ ନୁହେଁ ସେ ନୁହେଁ ବୋଲିଣ । ନିଷେଧ-ଅନ୍ତରେ ଯେ ପୁଣ ।। ୧୦୫
ରହଇ ଅବଶେଷ ହୋଇ । ମାୟାରେ ନାନାରୂପ ବହି ।। ୧୦୬
ରକ୍ଷାର ନିମିତ୍ତେ ମୋହର । ପ୍ରକାଶ ହୁଅନ୍ତୁ ଈଶ୍ୱର ।। ୧୦୭

୨୫ କୁମ୍ଭୀରଠାରୁ ମୁକ୍ତ ହୋଇ । ଜୀଇବାକୁ ମୋ ଇଚ୍ଛା ନାହିଁ ॥ ୧୦୮
ଯେ ଅବିବେକେ ଅବିରତ । ଅନ୍ତରେ ବାହାରେ ବ୍ୟାପିତ ॥ ୧୦୯
ଏମନ୍ତ ଯେଉଁ ଗଜଜନ୍ମ । ତେଣେ ମୋର କି ପ୍ରୟୋଜନ ॥ ୧୧୦
କାଳରେ ବିନାଶ ଯେ ନୋହି । ଆତ୍ମପ୍ରକାଶକୁ ଘୋଡ଼ାଇ ॥ ୧୧୧
ଏମନ୍ତ ଅଟେ ଯେ ଅଜ୍ଞାନ । ତାର ମୋକ୍ଷକୁ ବାଞ୍ଛେ ମନ ॥ ୧୧୨
୨୬ ଯେ ବିଶ୍ୱ କରନ୍ତି ସର୍ଜନ । ଯେ ବିଶ୍ୱରୂପୀ ବିଶ୍ୱଭିନ୍ନ ॥ ୧୧୩
ବିଶ୍ୱର ଅଟନ୍ତି ଯେ ଧନ । ଯେ ବିଶ୍ୱ-ଆତ୍ମା ଭଗବାନ ॥ ୧୧୪
ଯେ ଅଜ ପରଂପଦ ଖ୍ୟାତ । ତାଙ୍କୁ ମୁଁ ହେଉଛି ପ୍ରଣତ ॥ ୧୧୫
୨୭ ଯୋଗମାର୍ଗରେ କର୍ମମାନ । ଦଗ୍ଧ କଲେ ଯେ ଯୋଗିଜନ ॥ ୧୧୬
ସେ ଯୋଗଭାବିତ ହୃଦରେ । ଯାହାକୁ ଦେଖନ୍ତି ନିର୍ଭରେ ॥ ୧୧୭
ଏମନ୍ତ ଯୋଗେଶ୍ୱର ଯେହି । ନମ୍ର ହେଉଛି ତାଙ୍କୁ ମୁହିଁ ॥ ୧୧୮
୨୮ ଯା' ରାଗ ଆଦି ଦୁର୍ନିବାର । ଏମନ୍ତ ଶକ୍ତିତ୍ରୟ ଯାର ॥ ୧୧୯
ଶବ୍ଦ ଆଦି ରୂପେ ପୁଣ । ଯେ ସର୍ବ ଇନ୍ଦ୍ରିୟଙ୍କ ଗୁଣ ॥ ୧୨୦
ପ୍ରପନ୍ନ ଜନ ଯେ ପାଳଇ । ଯାର ଶକ୍ତିର ଅନ୍ତ ନାହିଁ ॥ ୧୨୧
ଦୁଷ୍ଟ-ଇନ୍ଦ୍ରିୟ ଲୋକଙ୍କର । ଅପ୍ରାପ୍ୟ ଅଟେ ମାର୍ଗ ଯାର ॥ ୧୨୨
ତୁମ୍ଭେ ଏମନ୍ତ ମହତ୍ତମ । ତୁମ୍ଭଙ୍କୁ ମୋର ନମୋନମ ॥ ୧୨୩
୨୯ ଯେ ଦେହାଦିରେ ଅହଂବୁଦ୍ଧି । ସେ ଯାହା ମାୟାରୂପେ ସିଦ୍ଧି ॥ ୧୨୪
ତେଣେ ଯେ ନିଜ-ଆତ୍ମାଲୀନ । ତାଙ୍କୁ ନ ଜାଣଇଁ ଏ ଜନ ॥ ୧୨୫
ଯାହାର ମାୟା ଅଗୋଚର । ଅଟେ ସକଳ ଲୋକଙ୍କର ॥ ୧୨୬
ଏମନ୍ତ ଭଗବାନ ଯେହି । ତାଙ୍କୁ ଶରଣ ଗଲି ମୁହିଁ ॥ ୧୨୭

ଶ୍ରୀଶୁକ ଉବାଚ

୩୦ ଯେ ଭେଦ ନାନାମୂର୍ତ୍ତିଙ୍କରେ । ତାହା ନ ହେଜି ସେ ପ୍ରକାରେ ॥ ୧୨୮
ପରମ ତତ୍ତ୍ୱକୁ ସୁମନେ । ଗଜେନ୍ଦ୍ର ବର୍ଣ୍ଣିଲା ସେ ସ୍ଥାନେ ॥ ୧୨୯
ନାନାପ୍ରକାର ମୂର୍ତ୍ତିଙ୍କର । ଭେଦେ ଯାହାଙ୍କ ଅହଙ୍କାର ॥ ୧୩୦
ଏମନ୍ତ ବ୍ରହ୍ମା ଆଦି ଦେବେ । ମିଳିଲେ ନାହିଁ ତାକୁ ଯେବେ ॥ ୧୩୧
ସକଳ ଆତ୍ମାଭାବୁଁ କରି । ସକଳଦେବମୟ ହରି ॥ ୧୩୨
ସେଠାରେ ହେଲେ ଆବିର୍ଭୂତ । ତାହାକୁ ତାରିବା ନିମିତ୍ତ ॥ ୧୩୩
୩୧ ସେ ଗଜ ସେରୂପରେ ଆର୍ତ୍ତ । ହୋଇଛି ଜାଣି ଏ ବୃତ୍ତାନ୍ତ ॥ ୧୩୪
ସ୍ତୁତି କରନ୍ତା ଦେବଙ୍କର । ସଙ୍ଗେ ଶୁଣିଣ ସ୍ତୋତ୍ର ତାର ॥ ୧୩୫
ଯେ ଛନ୍ଦୋମୟ ପକ୍ଷିବର । ସେହୁ ବହନ୍ତେ ଚକ୍ରଧର ॥ ୧୩୬
ଜଗନ୍ନିବାସ ବେଗେ ତହିଁ । ମିଳିଲେ ଗଜଇନ୍ଦ୍ର ଯହିଁ ॥ ୧୩୭
୩୨ ବହୁତ ଅଟେ ବଳ ଯାର । ସରସୀମଧ୍ୟେ ସେ କୁମ୍ଭୀର ॥ ୧୩୮
ଯାହାକୁ ଗ୍ରହଣ କରିଛି । ସେ ଗଜ ଆର୍ତ୍ତ ହୋଇଅଛି ॥ ୧୩୯

ଗରୁଡ଼ପରେ ଚକ୍ର ଧରି । ବସି ଅଛନ୍ତି ଦେବ ହରି ॥ ୧୪୦
ଦେଖିଣ ଆକାଶେ ତାହାଙ୍କୁ । ପଙ୍କଜ ସହିତେ କରକୁ ॥ ୧୪୧
ଟେକି କଷ୍ଟେ ଏ ବାକ୍ୟ ପୁଣ । ବୋଇଲା ଆହେ ନାରାୟଣ ॥ ୧୪୨
ଅଖିଳଗୁରୁ ଭଗବାନ । ତୁମ୍ଭଙ୍କୁ କରୁଛି ବନ୍ଦନ ॥ ୧୪୩
୩୩ ପୀଡ଼ାକୁ ଲଭିଅଛି ଗଜ । ଏମନ୍ତ ଦେଖି ଦେବରାଜ ॥ ୧୪୪
ବେଗେ ଗରୁଡ଼ରୁ ଉତ୍ତରି । ଗ୍ରାହସହିତେ ତାକୁ ଧରି ॥ ୧୪୫
ସରସୀଭିତରୁ ବାହାରେ । ଓଟାରି ଆଣିଲେ ସତ୍ୱରେ ॥ ୧୪୬
ବ୍ରହ୍ମାଦି ଦେବଗଣମାନେ । ଚାହାଁନ୍ତେ ଥାଇ ସନ୍ନିଧାନେ ॥ ୧୪୭
ଚକ୍ରରେ ହୋଇଲା ଖଣ୍ଡନ । ଯେବଣ କୁମ୍ଭୀରଆନନ ॥ ୧୪୮
ତହିଁରୁ କଲେକ ମୋଚନ । ସେ ଗଜେନ୍ଦ୍ରକୁ ଭଗବାନ ॥ ୧୪୯
କୃଷ୍ଣଚରଣପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ॥ ୧୫୦
ସେ ପାଦପଦ୍ମେ କରି ଲୟେ । ଏ ଗୀତ ସାଧୁହିତେ ଗାଏ ॥ ୧୫୧

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀଗଜେନ୍ଦ୍ରମୋକ୍ଷଣଂ
ନାମ ତୃତୀୟୋଽଧ୍ୟାୟଃ ।

## ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ତୁ ତୟୋର୍ଗ୍ରାହଃ ପ୍ରାପ ଗନ୍ଧର୍ବତାଂ ପୁନଃ ।
ଗଜଂ ସ୍ୱପାର୍ଷଦଂ କୃତ୍ୱା ହରିର୍ନିନ୍ୟେ ସ୍ୱକଂ ପଦମ୍ ॥ ୧

ଶ୍ରୀଶୁକ ଉବାଚ

୧ ବ୍ରହ୍ମାଶଙ୍କର ବେନି ସୁର । ଅଗ୍ରେ ଅଛନ୍ତି ଯାହାଙ୍କର ॥ ୧
ସେ ଦେବ ଋଷି ଏଥୁ ଅନ୍ତେ । ଗନ୍ଧର୍ବମାନଙ୍କ ସହିତେ ॥ ୨
ହରିର ସେ ଗଜମୋକ୍ଷଣ । କର୍ମକୁ ପ୍ରଶଂସନ୍ତେ ପୁଣ ॥ ୩
ମନରେ ଆନନ୍ଦ ଲଭିଲେ । କୁସୁମମାନ ବରଷିଲେ ॥ ୪
୨ ଦିବ୍ୟ ଦୁନ୍ଦୁଭି ନାଦ କଲେ । ଗନ୍ଧର୍ବେ ନାଚିଲେ ଗାଇଲେ ॥ ୫
ସିଦ୍ଧେ ଚାରଣେ ଋଷିତୁଲେ । ବିଷ୍ଣୁଙ୍କ ସ୍ତୁତିମାନ କଲେ ॥ ୬
୩ [୧]ଗନ୍ଧର୍ବମାନଙ୍କରେ ସାର । ହୂହୂ ଅଟଇ ନାମ ଯାର ॥ ୭

୧. (ଇତିହାସୋତ୍ତମେ) ହୂହୂ ନାମକ ଏକ ଗନ୍ଧର୍ବ ଏକଦା ସରୋବରରେ ସ୍ତ୍ରୀମାନଙ୍କ ସହ ଜଳକ୍ରୀଡ଼ା କରୁଥିବା ସମୟରେ ଋଷି ଦେବଳ ସ୍ନାନପାଇଁ ସେହି ସରୋବରରେ ପ୍ରବେଶ କରନ୍ତେ ସେହି ଗନ୍ଧର୍ବ ତାଙ୍କ ପାଦକୁ ଧରି ଟାଣିଦେଲା । ଉକ୍ତ ଘଟଣାରେ କୁପିତ ହୋଇ 'ତୁମ୍ଭେ କୁମ୍ଭୀର ହୋଇ ଜନ୍ମ ହୁଅ' ବୋଲି ଋଷି ତାହାକୁ ଅଭିଶାପ ଦେଲେ । ପରେ ଗନ୍ଧର୍ବ ତାଙ୍କୁ କ୍ଷମାଭିକ୍ଷା ମାଗିବାରୁ ସେ କହିଲେ – କୁମ୍ଭୀର ହୋଇ ତୁମେ ଗଜେନ୍ଦ୍ରକୁ ଆକ୍ରମଣ କର । ତାହେଲେ ଗଜେନ୍ଦ୍ରକୁ ଉଦ୍ଧାର କରୁ କରୁ ହରି ତୁମକୁ ମଧ୍ୟ ମୁକ୍ତ କରିବେ ।

ସେ ସ୍ତିରୀମାନଙ୍କ ସଙ୍ଗରେ । କ୍ରୀଡ଼ା କରନ୍ତେ ସରସୀରେ ॥ ୮
ସ୍ନାନ କରିବା ନିମିତ୍ତରେ । ଦେବଳ ମିଳନ୍ତେ ଜଳରେ ॥ ୯
ପାଦ ଧଇଲା ତାହାଙ୍କର । କ୍ରୋଧ ଲଭିଣ ମୁନିବର ॥ ୧୦
'କୁମ୍ଭୀର ହୁଅ' ବୋଲି ଶାପ । ଦିଅନ୍ତେ ଲଭିଲା ସେ ତାପ ॥ ୧୧
ପ୍ରସନ୍ନ କରାଇଲା ତାଙ୍କୁ । ଋଷି ବୋଇଲେ ଗନ୍ଧର୍ବକୁ ॥ ୧୨
ଏରୂପେ ଗଜକୁ ଧରନ୍ତେ । ମୁକ୍ତ କରିବେ ହରି ତୋତେ ॥ ୧୩
ଏମନ୍ତ ଶାପକୁ ସେ ପାଇ । ଥିଲା କୁମ୍ଭୀରରୂପ ହୋଇ ॥ ୧୪
ତତ୍‌କାଳ ଅତି ଅଦଭୁତ । ରୂପେ ସେ ହୋଇଲା ସଂଯୁତ ॥ ୧୫
ଶାପୁଁ ଦେବଳଋଷିଙ୍କର । ମୁକ୍ତ ହୋଇଲା ସେ କୁମ୍ଭୀର ॥ ୧୬
୪ ଉତ୍ତମ ଅଟେ ଯଶ ଯାର । ଅବ୍ୟୟ ଯେହୁ ଅଧୀଶ୍ୱର ॥ ୧୭
କୀର୍ତ୍ତନଯୋଗ୍ୟ ଯାହା ଗୁଣ । ଉତ୍ତମ କଥାମାନ ପୁଣ ॥ ୧୮
ଆଶ୍ରୟ ଯେହୁ ଯଶଙ୍କର । ଏମନ୍ତ ଯେ ପରମେଶ୍ୱର ॥ ୧୯
ପ୍ରଣାମ କରି ତାଙ୍କୁ ଶିରେ । ଗାୟନ କଲା ତଦନ୍ତରେ ॥ ୨୦
୫ ଦୟା କରନ୍ତେ ତାକୁ ହରି । ତାହାଙ୍କୁ ପ୍ରଦକ୍ଷିଣ କରି ॥ ୨୧
ପ୍ରଣାମ କରନ୍ତେ ତଦନ୍ତେ । ଲୋକେ ଚାହାନ୍ତେ ତୋଷଚିତ୍ତେ ॥ ୨୨
ପାପରୁ ମୁକତ ହୋଇଲା । ଆପଣା ସ୍ଥାନକୁ ସେ ଗଲା ॥ ୨୩
୬ ହରିର ସ୍ପର୍ଶୁଁ ତୁରିତ । ଅଜ୍ଞାନବନ୍ଧୁଁ ହେଲା ମୁକ୍ତ ॥ ୨୪
ସ୍ୱରୂପ ଯେ ଭଗବାନର । ତାହା ଲଭିଲା କରିବର ॥ ୨୫
ପୀତ ବସନ ଅଛି ଧରି । ଶୋଭା ଦିଶଇ ଭୁଜ ଚାରି ॥ ୨୬
୭ ସେ ପୂର୍ବେ ଦ୍ରବିଡ଼ସତ୍ତମ । ନୃପତି ପାଣ୍ଡ୍ୟବଂଶେ ଜନ୍ମ ॥ ୨୭
ନାମରେ ଇନ୍ଦ୍ରଦ୍ୟୁମ୍ନ ଖ୍ୟାତ । ଆଚରି ଥାଇ ବିଷ୍ଣୁବ୍ରତ ॥ ୨୮
୮ ଏକଦିନେ ସେ ଆତ୍ମବନ୍ତ । ଧରିଣ ଥିଲା ମୌନବ୍ରତ ॥ ୨୯
ତାପସ-ବେଶ ଜଟାଧାରୀ । ପୂଜାସମୟେ ସ୍ନାନ ସାରି ॥ ୩୦
କଲା ହରିଙ୍କି ସଂପୂଜନ । ମଳୟାଚଳେ ତାର ସ୍ଥାନ ॥ ୩୧
୯ ଇଚ୍ଛାଏ କରନ୍ତେ ଭ୍ରମଣ । ବେଢ଼ି ଅଛନ୍ତି ଶିଷ୍ୟଗଣ ॥ ୩୨
ମହତ ଅଟେ ଯଶ ଯାର । ସେ ମୁନି ମିଳିଲେ ସେଠାର ॥ ୩୩
ଏକାନ୍ତେ ମୌନେ ବସିଅଛି । ନ କଲା ପୂଜା ଆଦି କିଛି ॥ ୩୪
ଏରୂପେ ତାହାକୁ ଦେଖିଣ । ମୁନିଏ କ୍ରୋଧ କଲେ ପୁଣ ॥ ୩୫
୧୦ ଅସାଧୁ ଦୁଷ୍ଟମତି ଏହି । ଶିକ୍ଷିତବୁଦ୍ଧି ଏ ନୁହଇ ॥ ୩୬
ବିପ୍ରଙ୍କୁ କରେ ଅବମାନ । ଆଜ ହିଁ ଲଭୁ ଏ ଅଜ୍ଞାନ ॥ ୩୭
ସ୍ତବଧମତି ଗଜ ଯେହ୍ନେ । ଗଜ ହେଉ ଏ ଆର ଜନ୍ମେ ॥ ୩୮
ଏମନ୍ତ ରୂପରେ ଶାପକୁ । ପ୍ରଦାନ କଲେ ମୁନି ତାକୁ ॥ ୩୯

### ଶ୍ରୀଶୁକ ଉବାଚ

୧୧} ଶାପକୁ ଦେଇ ଏ ପ୍ରକାରେ । ଅନୁଗ ଜନ ସହିତରେ ॥ ୪୦
୧୨} ସେଠାରୁ ଗଲେ ଭଗବାନ । ଅଗସ୍ତ୍ୟ ଋଷି ହେ ରାଜନ ॥ ୪୧
ଏ ଶାପ ଦଇବପ୍ରାପତ । ଏମନ୍ତ ବିଚାରନ୍ତେ ଚିତ୍ତ ॥ ୪୨
ସେ ଇନ୍ଦ୍ରଦ୍ୟୁମ୍ନ ରାଜଋଷି । ଯେ ନିଜ ସ୍ମୃତିକି ବିନାଶି ॥ ୪୩
ସେ ହସ୍ତିଯୋନିକି ଲଭିଲେ । ବିଷ୍ଣୁଙ୍କୁ ଯାହା ପୂଜିଥିଲେ ॥ ୪୪
ସେ ବିଷ୍ଣୁପୂଜା-ଅନୁଭାବେ । ଯେ ଅନୁସ୍ମୃତି ଗଜଭାବେ ॥ ୪୫
୧୩ ଏମନ୍ତ ରୂପେ ନାରାୟଣ । ଗଜକୁ କରିଣ ମୋକ୍ଷଣ ॥ ୪୬
ଦାସଭାବକୁ ତାକୁ ନେଇ । ତାହା ସଙ୍ଗତେ ଯୁକ୍ତ ହୋଇ ॥ ୪୭
ଯେ ସିଦ୍ଧ ଗନ୍ଧର୍ବ ଅମର । ସେ ଗାଉଛନ୍ତି କର୍ମ ଯାର ॥ ୪୮
ଅଦ୍ଭୁତ ନିଜ ଭବନକୁ । ଗଲେ ଆରୋହି ଗରୁଡ଼କୁ ॥ ୪୯
୧୪ ହେ ମହାରାଜ ! କୁରୁବର । ମୋକ୍ଷଣ ଯେହି ଗଜେନ୍ଦ୍ରର ॥ ୫୦
କୃଷ୍ଣର ଅନୁଭାବ ଏହି । ଏହା ତୁମ୍ଭଙ୍କୁ କହିଲାଇଁ ॥ ୫୧
ଶୁଣିଲା ଲୋକମାନଙ୍କର । କୀର୍ତ୍ତିବର୍ଦ୍ଧନ ସ୍ୱର୍ଗକର ॥ ୫୨
ଦୁଃସ୍ୱପ୍ନ ଯେ କଳିକଳୁଷ । ସେମାନ କରଇ ବିନାଶ ॥ ୫୩
୧୫ ନିଜ ମଙ୍ଗଳକୁ ଯେ ମନେ । ବାଞ୍ଛା କରନ୍ତି ଦ୍ୱିଜମାନେ ॥ ୫୪
ପ୍ରଭାତେ ଉଠି ଶୁଚି ହୋଇ । ଦୁଃସ୍ୱପ୍ନ ଆଦି ନାଶପାଇଁ ॥ ୫୫
ଯଥାର୍ଥ କରି ଏ ଆଖ୍ୟାନ । ସେମାନେ କରନ୍ତି କୀର୍ତ୍ତନ ॥ ୫୬
୧୬ ଶୁଣନ୍ତେ ସର୍ବଭୂତମାନେ । ହେ କୁରୁଶ୍ରେଷ୍ଠ ! ସେହିସ୍ଥାନେ ॥ ୫୭
ସମସ୍ତ ଦେବମୟ[1] ହରି । ମନରେ ପ୍ରୀତ ହୋଇ କରି ॥ ୫୮
ଗଜ-ଇନ୍ଦ୍ରକୁ ଏ ବଚନ । କହିଲେ ପ୍ରଭୁ ଭଗବାନ ॥ ୫୯

### ଶ୍ରୀଭଗବାନୁବାଚ

୧୭} ଯେବଣ ଜନମାନେ ମୋତେ । ଏ ପୁଣ୍ୟ ସରସୀକି ତୋତେ ॥ ୬୦
୨୪} କାନନ ଏ ଗିରିକନ୍ଦର । ବେତ୍ର କୀଚକ-ବେଣୁଙ୍କର ॥ ୬୧
ଗୁଳ୍ମଙ୍କୁ ଅମରଦ୍ରୁମଙ୍କୁ । ବ୍ରହ୍ମା, ଶିବର ମୋ' ସ୍ଥାନକୁ ॥ ୬୨
କ୍ଷୀରୋଦ ଯେ ମୋ ପ୍ରିୟସ୍ଥାନ । ଯେ ଶ୍ୱେତଦ୍ୱୀପ ଦୀପ୍ୟମାନ ॥ ୬୩
ଶ୍ରୀବତ୍ସ କୌସ୍ତୁଭ ଯେ ମୋର । ଗଦା କୌମୋଦକୀ ଆବର ॥ ୬୪
ମାଳା, ଶଙ୍ଖ ସୁଦରଶନ । ପତଗେଶ୍ୱର ଯେ ସୁପର୍ଣ୍ଣ ॥ ୬୫
ଯେ ଶେଷ ସୂକ୍ଷ୍ମ କଳା ମୋର । ଯେ ଲକ୍ଷ୍ମୀ ଆଶ୍ରୟ ମୁଁ ଯାର ॥ ୬୬
ଯେ ବ୍ରହ୍ମା ଯେ ଋଷି ନାରଦ । ଯେ ମହାଦେବ ପ୍ରହରାଦ ॥ ୬୭
ମତ୍ସ୍ୟ କଚ୍ଛପ ବରାହାଦି । ମୋ ଅବତାର ଯେ ପ୍ରସିଦ୍ଧି ॥ ୬୮

---

୧. ଭୂତ ।

ତେଣେ ରଚିତ ଯେ ଭୁବନେ । ଅନନ୍ତ ପୁଣ୍ୟକର୍ମମାନେ ।। ୬୯
ସବିତା, ସୋମ ହୁତାଶନ । ଏ ତିନି ଦେବ ଯେହ୍ନୁ ପୁଣ ।।
ପ୍ରଣବ ସତ୍ୟ ମାୟା ଆର । ଗୋବିପ୍ର ଭକ୍ତି ଧର୍ମ ମୋର ।। ୭୦
ଯେ ଦକ୍ଷସୁତାମାନେ ପୁଣି । ସୋମ-କଶ୍ୟପର ଗୃହିଣୀ ।। ୭୧
ଯେ ଗଙ୍ଗା, ନନ୍ଦା ସରସ୍ୱତୀ । କାଳିନ୍ଦୀ ଐରାବତ ହସ୍ତୀ ।। ୭୨
ଯେ ଧ୍ରୁବ ବ୍ରହ୍ମ ଋଷି ସାତ । ଯେ ନରେ ପୁଣ୍ୟଶ୍ଳୋକେ ଖ୍ୟାତ ।। ୭୩
ମୋହର ରୂପ ଏ ସକଳେ । ଏହାଙ୍କୁ ଯେ ପ୍ରଭାତ କାଳେ ।। ୭୪
ଉଠି ଏକାଗ୍ରଚିତ୍ତ ହୋଇ । ସ୍ମରଣ କରନ୍ତି ଚିତୋଇ ।। ୭୫
ଅଶେଷ ପାପରୁ ସେମାନେ । ମୁକ୍ତ ହୁଅନ୍ତି ଏ ଭୁବନେ ।। ୭୬
୨୫ ଯେ ମୋତେ ଉଠି ପ୍ରଭାତରେ । ସ୍ତୁତି କରନ୍ତି ଏ ସ୍ତୋତ୍ରରେ ।। ୭୭
ତାଙ୍କୁ ମରଣକାଳେ ମୁହିଁ । ନିର୍ମଳ[1] ଗତିକି ଦିଅଇ ।। ୭୮

ଶ୍ରୀଶୁକ ଉବାଚ

୨୬ ଏ ରୂପେ ହୃଷୀକେଶ କହି । ଉତ୍ତମ ଶଙ୍ଖକୁ ବଜାଇ ।। ୭୯
ଯେ ଦେବସୈନ୍ୟ ଥିଲେ ପାଶ । ତାହାଙ୍କୁ କରାନ୍ତେ ହରଷ ।। ୮୦
ଗରୁଡ଼ ଯେହ୍ନୁ ଖଗେଶ୍ୱର । ତାଙ୍କୁ ଆରୋହିଲେ ସତ୍ୱର ।। ୮୧
ଶ୍ରୀକୃଷ୍ଣଚରଣପଙ୍କଜେ । ବ୍ରାହ୍ମଣ ଦୀନବଂଧୁ ଭଜେ ।। ୮୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀଗଜେନ୍ଦ୍ରମୋକ୍ଷଣଂ
ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମ ଅଧ୍ୟାୟ

ଅମୃତାଖ୍ୟାନମଷ୍ଟାଭିରଧ୍ୟାୟୈରନୁବର୍ଣ୍ଣ୍ୟତେ ।
ସ୍ୱଭକ୍ତପକ୍ଷପାତେନ ଯତ୍ର ଯୋଷାୟିତଂ ବିଭୋଃ ।। ୧
ପଞ୍ଚମେ ପଞ୍ଚମଂ ଚାଥ ଷଷ୍ଠେ ଚାକଥୟନ୍ ମନୁମ୍ ।
ବିପ୍ରଶାପାଚ୍ଚ ନିଃଶ୍ରୀକୈଃ କୃତାଂ ଦେବୈର୍ହରିସ୍ତୁତିମ୍ ।। ୨

ଶ୍ରୀଶୁକ ଉବାଚ

୧ ହେ ନୃପ ! ଯେ ହରିଚରିତ । ଦୁରିତମାନ କରେ ହତ ।। ୧
ଯେ ପୁଣ୍ୟ ଗଜେନ୍ଦ୍ରମୋକ୍ଷଣ । ତୋ' ଆଗେ କଲୁଁ ତା' ବଖାଣ ।। ୨
ଯେ ରଇବତ ମନ୍ୱନ୍ତର । ଏବେ ତା' କର ତୁ ଗୋଚର ।। ୩
୨ ପଞ୍ଚମ ମନୁ ରଇବତ । ତାମସ ମନୁ ଯେ ଚତୁର୍ଥ ।। ୪

୧. ବିପୁଳ ।

ତାହାର ଭ୍ରାତା ସେ ଅଟଇ । ବଳି, ବିନ୍ଧ୍ୟକୁ ଆଦି ହୋଇ ॥
ବିଖ୍ୟାତ ସୁତମାନେ ତାର । ଅର୍ଜୁନ ପୂର୍ବ ଯାହାଙ୍କର ॥
୩ ହେ ନୃପ ! ବିଭୁ ଇନ୍ଦ୍ର ପୁଣ । ଭୂତରୟାଦି ଦେବଗଣ ॥
ହିରଣ୍ୟରେତା[1] ଉର୍ଦ୍ଧ୍ୱଶିର[2] । ଯେ ଉର୍ଦ୍ଧ୍ୱବାହୁ ଆଦି ଆର ॥
ଏହିମାନଙ୍କୁ ଆଦି ହୋଇ । ସପତ ଋଷି ଖ୍ୟାତ ତହିଁ ॥
୪ ବିକୁଣ୍ଠା ନାମରେ ଶୁଭ୍ରର । ଯେ ପତ୍ନୀ ସେ ଦୁହିଁଙ୍କ ଠାର ॥
ଯେ ଖ୍ୟାତ ବୈକୁଣ୍ଠନାମରେ । ସେ ସୁରଶ୍ରେଷ୍ଠଙ୍କ ସଙ୍ଗରେ ॥
ନିଜ କଳାରେ ଭଗବାନ । ସ୍ୱୟେଂ 'ବୈକୁଣ୍ଠ' ହେଲେ ଜନ୍ମ ॥
୫ କମଳା କରନ୍ତେ ପ୍ରାର୍ଥନ । ତା' ପ୍ରିୟକାମେ ଭଗବାନ ॥
ଯେ ଲୋକମାନଙ୍କେ ବନ୍ଦିତ । କଲେ ସେ ବୈକୁଣ୍ଠ କଳ୍ପିତ ॥
୬ ସେ ବଇକୁଣ୍ଠ ଅବତାର । ଯେ ଅନୁଭାବ ତାହାଙ୍କର ॥
ସନକାଦିଙ୍କ ଶାପ ପାଇ । ଦୈତ୍ୟ ହେଲେ ଯେ ଭୃତ୍ୟ ଦୁଇ ॥
ବରାହ ଆଦି ସ୍ୱରୂପରେ । ଯେ ଯୁଦ୍ଧ ତାହାଙ୍କ ସଙ୍ଗରେ ॥
ବ୍ରହ୍ମଣ୍ୟଭାବ ଆଦି ଗୁଣ । ପରମ ଉଦୟ ଯେ ପୁଣ ॥
ପୂର୍ବେ ସେମାନ ତୋ' ଅଗ୍ରତ । କହିଲା ଥାଇଁ ତ ବହୁତ ॥
ଭୂମିରେ ଯେତେ ରେଣୁମାନ । ତା' ଗଣି ପାରଇ ଯେ ଜନ ॥
ବିଷ୍ଣୁର ଗୁଣମାନ ଯେତେ । ତାହା ବର୍ଣ୍ଣିବ ସେ ଜଗତେ ॥
୭ ଯେ ଷଷ୍ଠ ମନୁ ଚକ୍ଷୁସୁତ । ଚାକ୍ଷୁଷ ନାମେ ସେ ବିଦିତ ॥
ପୂରୁ ପୂରୁଷ ସୁଦ୍ୟୁମ୍ନାଦି । ଚାକ୍ଷୁଷତନୟ ପ୍ରସିଦ୍ଧି ॥
୮ ମହେନ୍ଦ୍ର ମନ୍ତ୍ର[3] ଦ୍ରୁମ ପୁଣ । ଦେବତା ଆପ୍ୟ ଆଦି ଗଣ ॥
ହବିଷ୍ମଦ୍[4] ବୀରକାଦି ହୋଇ । ହେ ନୃପ ! ମୁନିମାନେ ତହିଁ ॥
୯ ତହିଁରେ ଜଗତ-ଈଶ୍ୱର । ଅଜିତ ନାମେ ଅବତାର ॥
ଅଂଶେ ସଂଭୂତିଠାରେ ଜାତ । ବଇରାଜର ହେଲେ ସୁତ ॥
୧୦ ଯେ ସୁରମାନଙ୍କ ଅମୃତ । ପୟୋଧି ମନ୍ଥି କଲେ ଜାତ ॥
ମନ୍ଦର ଭ୍ରମନ୍ତେ ଜଳରେ । ଧଇଲେ ଯେ କୂର୍ମରୂପରେ ॥

ଶ୍ରୀରାଜୋବାଚ

୧୧ ହେ ବିପ୍ର ! ଯେମନ୍ତ ପ୍ରକାରେ । କ୍ଷୀରସିନ୍ଧୁକୁ ଯଦର୍ଥରେ ॥
ମନ୍ଥିଲେ ଦେବ ନାରାୟଣ । ଯେବଣ ନିମିତ୍ତରେ ପୁଣ ॥
କୂର୍ମରୂପରେ ମହୀଧର । ଧଇଲେ ଜଗତ-ଈଶ୍ୱର ॥
୧୨ ଯେଉଁ ରୂପରେ ଦେବମାନେ । ଅମୃତ ଲଭିଲେ ସେ ସ୍ଥାନେ ॥

---

୧. ହିରଣ୍ୟରୋମା । ୨. ବେଦଶିର । ୩. ମନ୍ତ୍ର । ୪. ହର୍ଯ୍ୟସ୍ମଦ୍ ।

କି ଅବା ଆନ ତହୁଁ ଜାତ । ଏ ସର୍ବ ପରମ ଅଦ୍ଭୁତ ।। ୩୪
ଚରିତ ଅଟଇ ବିଷ୍ଣୁର । କହ ତା' ଆମ୍ଭର ଆଗର ।। ୩୫
୧୩ ବିଷ୍ଣୁମହିମା ସଂକୀର୍ତ୍ତନ । କରନ୍ତେ ତୁମ୍ଭେ ମୋର ମନ ।। ୩୬
ତେଣେ ତୃପ୍ତିକି ଲଭୁ ନାହିଁ । ବହୁତ କାଳୁଁ ତାପି ହୋଇ ।। ୩୭

ଶ୍ରୀସୂତ ଉବାଚ

୧୪ ହେ ବିପ୍ରେ ! ଏମନ୍ତ ପ୍ରକାରେ । ରାଜା ପୁଚ୍ଛନ୍ତେ ତଦନ୍ତରେ ।। ୩୮
ବ୍ୟାସନନ୍ଦନ ଭଗବାନ । ଆନନ୍ଦ ଲଭି ନିଜ ମନ ।। ୩୯
ରାଜାକୁ ବିଷ୍ଣୁର ବୀର୍ଯ୍ୟକୁ । ଆରମ୍ଭ କଲେ କହିବାକୁ ।। ୪୦

ଶ୍ରୀଶୁକ ଉବାଚ

୧୫ ତୀକ୍ଷ୍ଣ ଆୟୁଧ ଯାହାଙ୍କର । ସେ ଦୈତ୍ୟେ କରନ୍ତେ ସମର ।। ୪୧
ବହୁତ ଅମରେ ପଡ଼ିଲେ । ମଲେ ସେ ପୁଣ ନ ଜୀଇଲେ ।। ୪୨
୧୬ [୧]ମାର୍ଗେ ଗମନ୍ତେ ନାକପାଳ । ଦୁର୍ବାସା ତାଙ୍କୁ ଦେଲେ ମାଳ ।। ୪୩
ସଂପତ୍ତିମଦେ ପୁରନ୍ଦର । କରିଣ ତାହା ଅନାଦର ।। ୪୪
ଅଇରାବତ କୁମ୍ଭ ଦୁଇ । ମଧ୍ୟରେ ତାହା ଦେଲେ ଥୋଇ ।। ୪୫
ସେ ଐରାବତ ଗଜ ମଦେ । ସେ ମାଳା ଚୂର୍ଣ୍ଣ କଲା ପାଦେ ।। ୪୬
ତେଣୁ ଦୁର୍ବାସା କ୍ରୋଧ କଲେ । ଇନ୍ଦ୍ରଙ୍କୁ ଯେବେ ଶାପ ଦେଲେ ।। ୪୭
ହେ ନୃପ ! ବାସବର ତୁଲେ । ତ୍ରିଲୋକ ହତଲକ୍ଷ୍ମୀ ହେଲେ ।। ୪୮
ତହିଁ ଯାଗାଦି କ୍ରିୟାମାନ । ସମସ୍ତ ହୋଇଲା ନିଧନ ।। ୪୯
୧୭ ଶୁଣି ତା' ମହେନ୍ଦ୍ର ବରୁଣ । ଆଦି ସକଳ ସୁରଗଣ ।। ୫୦
ସ୍ୱୟେଂ ବିଚାରନ୍ତେ ସେ କଥା । ନିଶ୍ଚୟ ନ କଲେ ସର୍ବଥା ।। ୫୧
୧୮ ମେରୁଶିଖରେ ବ୍ରହ୍ମାଙ୍କର । ସଭାକୁ ଗଲେ ତଦନ୍ତର ।। ୫୨
ସମସ୍ତେ ପ୍ରଣତ ହୋଇଲେ । ବ୍ରହ୍ମାଙ୍କୁ ଯାଇଁ ଜଣାଇଲେ ।। ୫୩
୧୯ ଇନ୍ଦ୍ର ପବନ ଆଦି ହୋଇ । ଯେତେ ଦେବତାମାନେ ତହିଁ ।। ୫୪
ସେ ସତ୍ତ୍ୱଗୁଣେ ତେଜେ ହୀନ । ମଙ୍ଗଳହୀନ ଲୋକମାନ ।। ୫୫
ଅସୁରେ ବଳପୁଷ୍ଟିଯୁତ । ସେ ବିଭୁ ଦେଖିଣ ଏମନ୍ତ ।। ୫୬
୨୦ ବିଷ୍ଣୁଙ୍କୁ ନିଶ୍ଚଳ ମାନସେ । ସ୍ମରଣ କରନ୍ତେ ହରଷେ ।। ୫୭
ବିଷ୍ଣୁଙ୍କୁ ଯାଆନ୍ତେ ଶରଣ । ଲଭିବା ସବୁ ଆମ୍ଭେ ପୁଣ ।। ୫୮

୧. ଏକଦା ଇନ୍ଦ୍ର ମାର୍ଗରେ ଯାଉଥିବା ବେଳେ ଦୁର୍ବାସା ତାଙ୍କୁ ନିଜକଣ୍ଠସ୍ଥିତ ମାଳା ପ୍ରଦାନ କଲେ । ଇନ୍ଦ୍ର ଧନମଦରେ ମତ୍ତ ହୋଇ ସେ ମାଳାକୁ ଅନାଦର କରି ଐରାବତର ଦୁଇ କୁମ୍ଭ ମଧ୍ୟରେ ନିଃକ୍ଷେପ କଲେ । ଐରାବତ ଉନ୍ମତ୍ତ ହୋଇ ସେ ମାଳାକୁ ପାଦରେ ଦଳିଦେଲା । ତେଣୁ ଦୁର୍ବାସା କ୍ରୁଦ୍ଧ ହୋଇ ଇନ୍ଦ୍ରଙ୍କୁ ଅଭିଶାପ ଦେଲେ – ''ତିନିଲୋକ ସହିତ ତୁମେ ଶ୍ରୀହୀନ ହୁଅ ।''

ଏଣେ ଉତ୍‌ଫୁଲ୍ଲମୁଖ ହେଲେ । ସେ ବ୍ରହ୍ମା ଦେବଙ୍କୁ କହିଲେ ।। ୫୯

ଶ୍ରୀବ୍ରହ୍ମୋବାଚ

୨୧ ମୁଁ ଶିବ ତୁମ୍ଭେ ଯେତେ ସୁରେ । ଅସୁର ଆଦି ଯେ ଇତରେ ।। ୬୦
ଯେ ଜରାୟୁଜ ଯେ ଅଣ୍ଡଜ । ଯେ ଦ୍ରୁମ ଯେ ଅବା ସ୍ୱେଦଜ ।। ୬୧
ଏ ସର୍ବେ ଯେଉଁ ଈଶ୍ୱରର । ଯେ ବା ପୁରୁଷ ଅବତାର ।। ୬୨
ତାହାଙ୍କ ଅଂଶ ଅଟେ ବିଧି । ତାହାଙ୍କ କଳା ମରୀଚ୍ୟାଦି ।। ୬୩
ତାହାଙ୍କ ପୁତ୍ର ପୌତ୍ର ଆଦି । ରୂପେ ଯେ ସକଳ ପ୍ରସିଦ୍ଧି ।। ୬୪
ସମସ୍ତେ ତାହାଙ୍କୁ ଶରଣ । ଯିବା ସେ ଅବିନାଶୀ ପୁଣ ।। ୬୫
୨୨ ଯାହାର ବଧଯୋଗ୍ୟ ହୋଇ । ରକ୍ଷାଯୋଗ୍ୟ ହିଁ କେହି ନାହିଁ ।। ୬୬
ଉପେକ୍ଷାଯୋଗ୍ୟ ନାହିଁ ଆନ । ଆଦରଯୋଗ୍ୟ-ପକ୍ଷ ଜନ ।। ୬୭
ତଥାପି ସୃଷ୍ଟି ସ୍ଥିତି ନାଶ । କରିବା ନିମିତ୍ତେ ପ୍ରକାଶ ।। ୬୮
ଯଥାକାଳରେ ରଜୋଗୁଣ । ସତ୍ତ୍ୱ ତମକୁ ଧରେ ପୁଣ ।। ୬୯
୨୩ ପ୍ରାଣିଙ୍କ ମଙ୍ଗଳନିମିତ୍ତ । ଧରିଣ ଅଛନ୍ତି ଯେ ସତ୍ତ୍ୱ ।। ୭୦
ଏ ତାଙ୍କ ପାଳନ ସମୟ । ତେଣୁ କରି ସେ ସୁରପ୍ରିୟ ।। ୭୧
କରିବେ ମଙ୍ଗଳ ଆମ୍ଭର । ଆମ୍ଭେ ସମସ୍ତେ ତାହାଙ୍କର ।। ୭୨
ଜଗତଗୁରୁ ସେହୁ ଯେଣୁ । ତାଙ୍କୁ ଶରଣ ଯିବା ତେଣୁ ।। ୭୩

ଶ୍ରୀଶୁକ ଉବାଚ

୨୪ ହେ ନୃପ ! ଏ ରୂପେ ଦେବଙ୍କୁ । କହି ସଙ୍ଗତେ ଘେନି ତାଙ୍କୁ ।। ୭୪
ଯେ ଲୋକାଲୋକ ମହୀଧର । ଉତ୍ତାରୁ ଅଛି ଅନ୍ଧକାର ।। ୭୫
ତଦନ୍ତେ ଯେ ଅଜିତସ୍ଥାନ । ତହିଁକି କଲେ ସେ ଗମନ ।। ୭୬
୨୫ ହେ ନୃପ ! ଯେ ଇନ୍ଦ୍ରିୟମାନ । ତାହାଙ୍କୁ କରି ସମାଧାନ ।। ୭୭
ଦୃଷ୍ଟ ନୁହଇ ରୂପ ଯାର । କେବଳ ଶ୍ରବଣ ଗୋଚର ।। ୭୮
ଲୋକେ ଅପ୍ରସିଦ୍ଧ ବଚନେ । ସ୍ତୁତି କଲେ ତାଙ୍କୁ ସେ ସ୍ଥାନେ ।। ୭୯

ଶ୍ରୀବ୍ରହ୍ମୋବାଚ

୨୬ ଯେ ସତ୍ୟ ଆଦ୍ୟ ସକଳର । ଯେହୁ ଅନନ୍ତ ଅବିକାର ।। ୮୦
[୧]ମନରୁ ବେଗ ଯେ ଅଟନ୍ତି । [୨]ବଚନେ ନିରୁକ୍ତ ନୁହନ୍ତି ।। ୮୧
ଏଣୁ ତର୍କର ଅବିଷୟ । ଉପାଧିଶୂନ୍ୟ ଗୁହାଶୟ ।। ୮୨
ବରେଣ୍ୟ ଯେ ଦେବଙ୍କ ବର । ତାଙ୍କୁ ଆମ୍ଭର ନମସ୍କାର ।। ୮୩
୨୭ ଯେ ପ୍ରାଣ ମନ ଦେହ ବୁଦ୍ଧି । ଏମାନଙ୍କର ଜ୍ଞାତା ସିଦ୍ଧି ।। ୮୪

୧. 'ଅନେଜଦେକଂ ମନସୋ ଜବୀୟୋ, ନୈନଦ୍ ଦେବା ଆପ୍ନୁବନ୍ ପୂର୍ବମର୍ଷଦ୍ ।
ତଦ୍ ଧାବତୋଽନ୍ୟାନତ୍ୟେତି ତିଷ୍ଠଦ୍' । (ଶ୍ରୁତିଃ)
୨. 'ଯଦ୍ ବାଚା ନାଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ' । (ଶ୍ରୁତିଃ)

ରୂପରସାଦି ଯେ ବିଷୟେ । ତାଙ୍କ ଗ୍ରାହକ ଯେ ଇନ୍ଦ୍ରିୟେ ॥ ୮୫
ସେ ବେନିରୂପେ ଯେ ଜଗତେ । ଆଭାସି ଅଛନ୍ତି ସଂତତେ[1] ॥ ୮୬
ତଥାପି ସ୍ୱପ୍ନଦ୍ରଷ୍ଟା[2] ପ୍ରାୟ । ଅଜ୍ଞାନରହିତ ଅକାୟ ॥ ୮୭
ଆକାଶପ୍ରାୟ ସର୍ବଠାର । ଯେ ବ୍ୟାପିଛନ୍ତି, ଯେ ଅକ୍ଷର ॥ ୮୮
କଳିଯୁଗର ଅଭାବରେ । ପ୍ରକାଶ ଯେ ତିନିଯୁଗରେ ॥ ୮୯
ଜୀବର ପକ୍ଷପାତ ହୋଇ । ବିଦ୍ୟା ଅବିଦ୍ୟା ନାମେ ଦୁଇ ॥ ୯୦
ଯହିଁରେ ନାହାନ୍ତି ସେ ପୁଣ । ତାହାଙ୍କୁ ଯାଉଛୁଁ ଶରଣ ॥ ୯୧
୨୮ ଚକ୍ରର ପ୍ରାୟକ ହୋଇଣ । ଲେଉଟୁ ଥାଇ ପୁଣ ପୁଣ ॥ ୯୨
ଏମନ୍ତ ଦେହ ଆଦି ଯେତେ । ଜୀବସଂବନ୍ଧୀ ଏ ଜଗତେ ॥ ୯୩
ମାୟା ଚାଳକ ଅଟେ ଯହିଁ । ମନପ୍ରଧାନ ଯେ ଅଟଇ ॥ ୯୪
ଦଶ ଇନ୍ଦ୍ରିୟ ପଞ୍ଚ ପ୍ରାଣ । ଏମାନେ ଅର ଯହିଁ ପୁଣ ॥ ୯୫
ତ୍ରିଗୁଣ ନାଭିପ୍ରାୟ ଯହିଁ । ବିଜୁଳିପ୍ରାୟ ଚଳେ ଯେହି ॥ ୯୬
ଯେ ଶୀଘ୍ର ନେମିପ୍ରାୟ ହୋଇ । ଅଷ୍ଟ ପ୍ରକୃତି ଛନ୍ତି ଯହିଁ ॥ ୯୭
ଏମନ୍ତ ଚକ୍ରଅଧିଷ୍ଠାନ । ଯାକୁ ବୋଲନ୍ତି ବିଜ୍ଞଜନ ॥ ୯୮
ଯେ ତିନିକାଳେ ବିଦ୍ୟମାନ । ତାହାଙ୍କୁ ହେଉଛି ପ୍ରପନ୍ନ ॥ ୯୯
୨୯ ଯେ ଭକ୍ତରକ୍ଷଣ-ଅର୍ଥରେ । ନିବିଷ୍ଟ ଗରୁଡ଼ଉପରେ ॥ ୧୦୦
[3]ଜୀବସମୀପେ ଯେ ଈଶ୍ୱର । ନିୟନ୍ତାରୂପେ ଥାଏ ତାର ॥
ଜ୍ଞାନମାତ୍ର ହିଁ ରୂପ ଯାର । ଯେ ଅଟେ ପ୍ରକୃତିରୁ ପର ॥ ୧୦୧
ଯେ ନିର୍ବିକଳ୍ପକ ଅଟଇ । ଲୋକରେ ଦୃଶ୍ୟ ଯେ ନୁହଇ ॥ ୧୦୨
କେହୁଣି ଦେଶେ କାଳେ ଯେହି । କେବେହେଁ ପରିଚ୍ଛିନ୍ନ ନୋହି ॥ ୧୦୩
ଅଚ୍ୟୁତସ୍ୱରୂପ ଈଶ୍ୱର । [4]ଜୀବ ସମାନ ନୋହେ ଯାର ॥
ଯୋଗପଥରେ ଉପାସନ । କରନ୍ତି ଯାକୁ ଧୀର ଜନ ॥ ୧୦୪
୩୦ କେହି ଲଙ୍ଘନ କରିବାକୁ । ନ ପାରେ ଯାହାର ମାୟାକୁ ॥ ୧୦୫
ଯେଉଁ ମାୟାରେ ମୋହ ହୋଇ । ଲୋକ ଆତ୍ମାକୁ ନ ଜାଣଇ ॥ ୧୦୬
ଯେ ଆତ୍ମା ମାୟା ମାୟାଗୁଣ । ଏମାନ ଜିଣିଛନ୍ତି ପୁଣ ॥ ୧୦୭
ସମସ୍ତ ପ୍ରାଣୀଙ୍କର ଠାରେ । ସମାନ ହୋଇ ଯେ ସଂଚରେ ॥ ୧୦୮
ଏମନ୍ତ ଯେ ପରମେଶ୍ୱର । ତାଙ୍କୁ କରୁଛୁଁ ନମସ୍କାର ॥ ୧୦୯
୩୧ ଏ ଆମ୍ଭେ ଯେ ଦେବତାମାନେ । ଅଛନ୍ତି ଯେ ଋଷିଏ ଆନେ ॥ ୧୧୦
ଯା' ପ୍ରିୟତନୁ ସତ୍ତ୍ୱଗୁଣ । ତେଣେ ନିର୍ମିତ ଏହୁ ପୁଣ ॥ ୧୧୧
ସେ ସତ୍ତା-ପ୍ରକାଶ ରୂପରେ । ପ୍ରକଟେ ବାହ୍ୟରେ ଅନ୍ତରେ ॥ ୧୧୨

---

୧. ଯୁଗତେ । ୨. ସ୍ୱପ୍ନଦ୍ରଷ୍ଟୃବଦ୍ ଅଜ୍ଞାନରହିତମ୍ । (ସ୍ୱାମୀ)
୩. 'ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା, ସମାନଂ ବୃକ୍ଷଂ ପରିଷସ୍ୱଜାତେ' । (ଶ୍ରୁତିଃ)
୪. ତୟୋରନ୍ୟଃ ପିପ୍ପଳଂ ସ୍ୱାଦ୍ୱତ୍ତ୍ୟନଶ୍ନନନ୍ୟୋଽଭିଚାକଶୀତି । (ଶ୍ରୁତିଃ)

| | | | | |
|---|---|---|---|---|
| | ଏମନ୍ତ ହୋଇଲେ ଯାହାର | । ଉପାଧିଶୂନ୍ୟ ଯେ ଆକାର | ।। | ୧୧୩ |
| | ତାକୁ ନ ଜାଣୁଁ ଆମ୍ଭେମାନେ | । ଯେ ରଜତମମୟ ଆନେ | ।। | ୧୧୪ |
| | ଅସୁର ଆଦି ଏ ଜଗତେ | । ସେମାନେ ଜାଣିବେ କେମନ୍ତେ | ।। | ୧୧୫ |
| ୩୨ | ନିଜରଚିତ ଏ ମେଦିନୀ | । ଯାର ଅଟଇ ପାଦ ବେନି | ।। | ୧୧୬ |
| | ଯହିଁରେ ଜରାୟୁଜ ଆଦି | । ଚତୁର୍ଧା ଭୂତସର୍ଗ ସିଦ୍ଧି | ।। | ୧୧୭ |
| | ମହାପୁରୁଷ ସେ ଅଟନ୍ତି | । ଆନର ଅଧୀନ ନୁହନ୍ତି | ।। | ୧୧୮ |
| | ମହାବିଭୂତି ବ୍ରହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୧୯ |
| ୩୩ | ଯାହା ସକାଶୁଁ ଲୋକମାନେ | । ଅଖିଳ ଲୋକପାଳ ଆନେ | ।। | ୧୨୦ |
| | ସିଦ୍ଧିକି ଲଭନ୍ତି ଜୀଅନ୍ତି | । କ୍ରମରେ ବୃଦ୍ଧିକି ଲଭନ୍ତି | ।। | ୧୨୧ |
| | ଯା' ପରାକ୍ରମ ବଳବନ୍ତ | । ସେ ଜଳ ଅଟଇ ଯା' ରେତ | ।। | ୧୨୨ |
| | ମହାବିଭୂତି ବ୍ରହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୨୩ |
| ୩୪ | ଯେହୁ ଦେବତାମାନଙ୍କର | । ବଳ ଆୟୁଷ ଅନ୍ନ ଆର | ।। | ୧୨୪ |
| | ଯେ ବୃକ୍ଷମାନଙ୍କର ପତି | । ପ୍ରଜାଙ୍କ ବୃଦ୍ଧି ଯେ କରନ୍ତି | ।। | ୧୨୫ |
| | ଏମନ୍ତ ଯେଉଁ ନିଶାକର | । ତାକୁ ବୋଲନ୍ତି ମନ ଯାର | ।। | ୧୨୬ |
| | ମହାବିଭୂତି ବ୍ରହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୨୭ |
| ୩୫ | ଯାହା ସକାଶୁଁ ଧନ ଜାତ | । ଯା' ଜନ୍ମ କର୍ମକାଣ୍ଡ ଅର୍ଥ | ।। | ୧୨୮ |
| | ଅନ୍ନ ଆଦିକି ଯେ ଉଦରେ | । ପାକ କରଇ ନିରନ୍ତରେ | ।। | ୧୨୯ |
| | ବାଡ଼ବ-ଅଗ୍ନିରୂପ ଧରି | । ସିନ୍ଧୁରେ ପାକ କରେ ବାରି | ।। | ୧୩୦ |
| | ମହାବିଭୂତି ବ୍ରହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୩୧ |
| ୩୬ | ଯେ ଅର୍ଚ୍ଚି ଆଦି ମାର୍ଗଙ୍କର | । ଦେବତା, ବେଦମୟ[୧] ଆର | ।। | ୧୩୨ |
| | ବ୍ରହ୍ମାର ଉପାସନା ସ୍ଥାନ[୨] | । ମୁକ୍ତିର ଦ୍ୱାର ବିଦ୍ୟମାନ | ।। | ୧୩୩ |
| | ଯେହୁ ଅମୃତ-ମୃତ୍ୟୁକର | । ସେ ସୂର୍ଯ୍ୟ ଲୋଚନ ଯାହାର | ।। | ୧୩୪ |
| | ମହାବିଭୂତି ବ୍ରହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୩୫ |
| ୩୭ | ଚର ଅଚରଙ୍କର ପ୍ରାଣ | । ଯେ ସହ, ଓଜ, ବଳ ପୁଣ | ।। | ୧୩୬ |
| | ବୁଦ୍ଧି ଆଦିଙ୍କ ଅଧିଷ୍ଠାତା | । ଯେ ଆମ୍ଭ ସମସ୍ତ ଦେବତା | ।। | ୧୩୭ |
| | ତାହାଙ୍କୁ ହେଉଁ ଅନୁଗତ | । ମହାରାଜାଙ୍କୁ ଯେହ୍ନେ ଭୃତ୍ୟ | ।। | ୧୩୮ |
| | ଏମନ୍ତ ଯେ ଅଟେ ମରୁତ | । ସେ ଯାହା ପ୍ରାଣରୁ ସଂଭୂତ | ।। | ୧୩୯ |
| | ମହାବିଭୂତି ବହ୍ମ ଯେହୁ | । ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ।। | ୧୪୦ |
| ୩୮ | ଯା କର୍ଣ୍ଣୁଂ ଦିଗମାନେ ଜାତ | । ଯେ ଛିଦ୍ରମାନେ ଦେହଗତ | ।। | ୧୪୧ |
| | ସେ ଯାହା ହୃଦୟଦେଶରୁ | । ସଂଭବ ହୋଇଲେ ପୂର୍ବରୁ | ।। | ୧୪୨ |
| | ଯେ ଦେହପଞ୍ଚବୃତ୍ତି ପ୍ରାଣ | । ଇନ୍ଦ୍ରିୟମାନେ ଯେବା ପୁଣ | ।। | ୧୪୩ |

୧. 'ସୈଷା ତ୍ରୟୈବ ବିଦ୍ୟା ତପତି' । (ଶ୍ରୁତିଃ)

୨. 'ଯ ଏଷୋଽନ୍ତରାଦିତ୍ୟେ ହିରଣ୍ମୟଃ ପୁରୁଷଃ' । (ଶ୍ରୁତିଃ)

| | | | |
|---|---|---|---|
| | ଯେ ମନ, ନାଗ-କୂର୍ମ ଆଦି | ଯେ ପଞ୍ଚ ପବନ ପ୍ରସିଦ୍ଧି | ॥ ୧୪୪ |
| | ତାହାଙ୍କ ଆଶ୍ରୟ ଆକାଶ | ଯାହାର ନାଭିରୁ ପ୍ରକାଶ | ॥ ୧୪୫ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୪୬ |
| ୩୯ | ଯାହା ବଳରୁ ଇନ୍ଦ୍ର ଜାତ | ପ୍ରସାଦୁଁ ଦେବତା ସମସ୍ତ | ॥ ୧୪୭ |
| | କ୍ରୋଧରୁ ଜାତ ମହେଶ୍ୱର | ବୁଦ୍ଧିରୁ ବିରଞ୍ଚି ବାହାର | ॥ ୧୪୮ |
| | ଛିଦ୍ରମାନଙ୍କୁଁ ସଂଭବିଲେ | ଋଷିଏ ବେଦଙ୍କର ତୁଲେ | ॥ ୧୪୯ |
| | ଯାହା ଶିଶ୍ନରୁ ଉତପତି | ହୋଇ ଅଛଇ ପ୍ରଜାପତି | ॥ ୧୫୦ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୫୧ |
| ୪୦ | ଯାହା ବକ୍ଷରୁ ଲକ୍ଷ୍ମୀ ଜାତ | ପିତୃଏ ଛାୟାରୁ ସଂଭୂତ | ॥ ୧୫୨ |
| | ଯାହା ସ୍ତନରୁ ଧର୍ମ ଜାତ | ଅଧର୍ମ ପୃଷ୍ଠରୁ ସଂଭୂତ | ॥ ୧୫୩ |
| | ସ୍ୱର୍ଗ ସଂଭୂତ ଯା' ମୂର୍ଦ୍ଧାରୁ | ଅପ୍‌ସରାମାନେ ବିହାରରୁ | ॥ ୧୫୪ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୫୫ |
| ୪୧ | ଯା' ମୁଖୁଁ ଜନ୍ମିଲା ବ୍ରାହ୍ମଣ | ଯେ ଗୁହ୍ୟ ବେଦ ସେହୁ ପୁଣ | ॥ ୧୫୬ |
| | କ୍ଷତ୍ରିୟ, ତା'ବୃତ୍ତି ଯେ ବଳ | ଭୁଜଯୁଗରୁ ଏ ଯୁଗଳ | ॥ ୧୫୭ |
| | ଯେ ବୈଶ୍ୟ ତା ନିପୁଣଭାବ | ଊରୁଯୁଗଳରୁ ସଂଭବ | ॥ ୧୫୮ |
| | ଶୂଦ୍ର ଯା' ପାଦରୁ ଉତ୍‌ପତ୍ତି | ଯେ ବେଦହୀନ ତାର ବୃତ୍ତି | ॥ ୧୫୯ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୬୦ |
| ୪୨ | ଲୋଭ ଯା' ଅଧରୁଁ ଉତ୍‌ପନ୍ନ | ଉତ୍ତର ଓଷ୍ଠୁଁ ପ୍ରୀତି ଜନ୍ମ | ॥ ୧୬୧ |
| | ଯେ ଦ୍ୟୁତି ନାସାରୁ ଜନମ | ପଶୁଙ୍କ ହିତ ଯେଉଁ କାମ | ॥ ୧୬୨ |
| | ସେ ଅଟେ ସ୍ପରଶୁଁ ସଂଭୂତ | ଭ୍ରୂଲତାଯୁଗୁଁ ଯମ ଜାତ | ॥ ୧୬୩ |
| | ନୟନପିଛଡ଼ାରୁ ଯାର | ସମ୍ଭବ ଅଟଇ କାଳର | ॥ ୧୬୪ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୬୫ |
| ୪୩ | ଯେ କାଳ ପଞ୍ଚ ମହାଭୂତେ | ଯେ କର୍ମ ଗୁଣଙ୍କ ସହିତେ | ॥ ୧୬୬ |
| | ଭୌତିକ[1] ପ୍ରପଞ୍ଚ ଯେ ଆନ | ଯା' ଯୋଗମାୟାର ଏମାନ | ॥ ୧୬୭ |
| | ମହିମା ବୋଲି କହେ ଜନ | ଯେ ଦୁଃଖେ ହୋଏ ବିଭାବନ[2] | ॥ ୧୬୮ |
| | ପଣ୍ଡିତମାନେ ବୁଦ୍ଧିବଳେ | ଯାହାକୁ ତର୍କନ୍ତି ଭୂତଳେ | ॥ ୧୬୯ |
| | ମହାବିଭୂତି ଅଟେ ଯେହୁ | ଆମ୍ଭଙ୍କୁ ପ୍ରସନ୍ନ ସେ ହେଉ | ॥ ୧୭୦ |
| ୪୪ | ଯେ ଉପଶାନ୍ତ ଶକ୍ତି ହୋଏ | ଯେ ଶୋହେ ଆପଣା ଇଚ୍ଛାଏ | ॥ ୧୭୧ |
| | ସ୍ୱଭାବଲାଭରେ ପୂରିତ | ଯାହାର ଆତ୍ମା ଅବିରତ | ॥ ୧୭୨ |
| | ମାୟାରେ ରଚିତ ହୋଇଣ | ଅଛନ୍ତି ଯେତେ ଯେତେ ଗୁଣ | ॥ ୧୭୩ |
| | ଦର୍ଶନ ଆଦି ଦ୍ୱାରେ ତହିଁ | ଯେ ପୁଣ ଆସକ୍ତ ନୁହଇ | ॥ ୧୭୪ |

୧. ଲୌକିକ ।　　୨. ବିଭାବିତ ।

ପବନ ସବୁଠାରେ ଥାଇ । କାହିଁରେ ମିଶ୍ରିତ ନୁହଇ ।। ୧୭୫
ସେହିପ୍ରକାରେ ଲୀଳା ଯାର । ତାହାଙ୍କୁ ହେଉ ନମସ୍କାର ।। ୧୭୬
୪୫ ସ୍ମିତସହିତେ ବର୍ତ୍ତମାନ । ତୁମ୍ଭର ବଦନନଳିନ ।। ୧୭୭
ଦେଖିବା ଅର୍ଥେ କରି ମନ । ଆମ୍ଭେ ଯେ ହୋଇଛୁଁ ପ୍ରପନ୍ନ ।। ୧୭୮
ଆମ୍ଭ ନୟନ ଆଦିଙ୍କର । ହୁଅଇ ଯେମନ୍ତେ ଗୋଚର ।। ୧୭୯
ସେରୂପେ ତୁମ୍ଭର ଆତ୍ମାକୁ । ଦର୍ଶନ କରାଅ ଆମ୍ଭଙ୍କୁ ।। ୧୮୦
୪୬ ଯା' ଧର ଆପଣା ଇଚ୍ଛାରେ । ହେ ପ୍ରଭୋ ! ସେ ସେହି ରୂପରେ ।। ୧୮୧
ଯେ କର୍ମ ଅଶକ୍ୟ ଆମ୍ଭର । ସ୍ୱୟଂ ତା କାଳେ କାଳେ କର ।। ୧୮୨
୪୭ ଯହିଁ ବହୁତ କ୍ଲେଶମାନ । ଅଳପ ଫଳ ବିଦ୍ୟମାନ ।। ୧୮୩
ସେମାନେ କାମିଜନଙ୍କର । ହୁଅନ୍ତି ଅଫଳ ଆକାର ।। ୧୮୪
ତୁମ୍ଭ ଠାବରେ ଯେ ଅର୍ପିତ । ସେ କର୍ମ ନୁହଇ ତେମନ୍ତ ।। ୧୮୫
୪୮ ଅଳ୍ପ ହିଁ କର୍ମାଭାସ ଯେହି । ଈଶ୍ୱରେ ଅର୍ପିତ ହୁଅଇ ।। ୧୮୬
ସେ କର୍ମ ଶ୍ରମନିମିତ୍ତରେ । କଳ୍ପିତ ନୁହଇ ସଂସାରେ ।। ୧୮୭
ଯେଣୁ ପ୍ରାଣିର ଏ ଈଶ୍ୱର । ଆତ୍ମା, ବଲ୍ଲଭ, ହିତ ଆର ।। ୧୮୮
୪୯ ମୂଳରେ ସିଞ୍ଚନ୍ତେ ବୃକ୍ଷର । ଯେସନେ ସ୍କନ୍ଧ-ଶାଖାଙ୍କର ।। ୧୮୯
ସେଚନ ହୁଅଇ ନିୟତ । ବିଷ୍ଣୁର ପୂଜା ହିଁ ତେମନ୍ତ ।। ୧୯୦
ସବୁରି ଆରାଧନ ହୋଇ । ଆତ୍ମାର ଆରାଧନ ସେଇ ।। ୧୯୧
୫୦ ଯାର ସ୍ୱଭାବ, ଚେଷ୍ଟାମାନ । ନ ପାରେ ତର୍କିବାକୁ ଜନ ।। ୧୯୨
ଯେହୁ ସତ୍ତ୍ୱସ୍ଥ, ଗୁଣେଶ୍ୱର । ନିର୍ଗୁଣ, ଅନ୍ତ ନାହିଁ ଯାର ।। ୧୯୩
ତୁମ୍ଭଙ୍କୁ ଆମ୍ଭେ ବର୍ତ୍ତମାନ । ହେ ପ୍ରଭୋ ! କରୁଛୁଁ ବନ୍ଦନ ।। ୧୯୪
କୃଷ୍ଣଚରଣେ ଦାସପଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ।। ୧୯୫

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାମଷ୍ଟମସ୍କନ୍ଧେ
ଶ୍ରୀବ୍ରହ୍ମସ୍ତୁତିର୍ନାମ ପଞ୍ଚମୋଽଧ୍ୟାୟଃ ।।

## ଷଷ୍ଠ ଅଧ୍ୟାୟ

ଷଷ୍ଠେ ପୁନଃ ସ୍ତୁତିର୍ବିଷ୍ଣାବାବିର୍ଭୂତେ ସୁରୈଃ କୃତା ।
ତନ୍ମନ୍ତ୍ରାଚ୍ଚାସୁରୈଃ ସାକମମୃତାର୍ଥେ ମହୋଦ୍ୟମଃ ।। ୧

ଶ୍ରୀଶୁକ ଉବାଚ

୧ ଦେବତାମାନେ ଏ ରୂପରେ । ସ୍ତୁତି କରନ୍ତେ ତଦନ୍ତରେ ।। ୧
ସହସ୍ରେ ସୂର୍ଯ୍ୟର ଉଦୟେ । ଯେବଣ ଦ୍ୟୁତି ଜାତ ହୋଏ ।। ୨

ସେ ରୂପେ ଦ୍ୟୁତି ଅଟେ ଯାର । ହେ ନୃପ ! ସେ ହରି ଈଶ୍ୱର ॥ ୩
ଦେବତାମାନଙ୍କ ଅଗ୍ରତେ । ପ୍ରକାଶ ହୋଇଲେ ତୁରିତେ ॥ ୪
୨ ସେହି ତେଜରେ ନେତ୍ରମାନ । ତାଙ୍କର ହୋଇଲା ନିଧନ ॥ ୫
ସେ ସର୍ବଦେବେ ଆକାଶକୁ । ଭୂମିକି ସକଳ ଦିଗକୁ ॥ ୬
ଦେହକୁ ନ ପାରିଲେ ଚାହିଁ । ପ୍ରଭୁଙ୍କୁ ଦେଖିବେ ବା କାହିଁ ॥ ୭
୩ ମରକତର ପ୍ରାୟ ହୋଇ । ଯେ ଶ୍ୟାମ ନିର୍ମଳ ଅଟଇ ॥ ୮
ଯହିଁ କମଳଗର୍ଭପ୍ରାୟ । ଅରୁଣବର୍ଣ୍ଣ ନେତ୍ରଦ୍ୱୟ ॥ ୯
୪ ଯେ ଦଗ୍‌ଧହେମପ୍ରାୟ ପୀତ । ଚାରୁ କୌଶେୟ ବସ୍ତ୍ରେ ଯୁତ ॥ ୧୦
ପ୍ରସନ୍ନ ମନୋହର ହୋଇ । ସମସ୍ତ ଅଙ୍ଗମାନେ ଯହିଁ ॥ ୧୧
ଯହିଁରେ ବଦନ ସୁନ୍ଦର । ଭ୍ରୂଲତାଯୁଗ ମନୋହର ॥ ୧୨
୫ ଯହିଁ ଉତ୍ତମ ମଣିମାନ । ସେ ମୁକୁଟରେ ଯେ ଶୋଭନ ॥ ୧୩
କେୟୂରଯୁଗେ ଯେ ଶୋଭଇ । କୁଣ୍ଡଳେ ଶୋହେ କର୍ଣ୍ଣ ଯେହି ॥ ୧୪
ତେଣୁ ବଦନପଦ୍ମେ ଯାର । ଶୋଭା ପ୍ରକାଶେ ନିରନ୍ତର ॥ ୧୫
୬ ଯେ କାଞ୍ଚୀକଳାପ-ବଳୟେ । ହାର-ନୂପୁରେ ଶୋଭା ପାଏ ॥ ୧୬
କୌସ୍ତୁଭ ଆଭରଣ ଯହିଁ । କଣ୍ଠଦେଶରେ ଶୋଭା ପାଇ ॥ ୧୭
ଲକ୍ଷ୍ମୀକି ଧରେ ବକ୍ଷସ୍ଥଳେ । ବନମାଳା ହିଁ ଅଛି ଗଳେ ॥ ୧୮
୭ ସୁଦରଶନ ଆଦି ହୋଇ । [1]ରୂପଧାରୀ ସ୍ୱଶସ୍ତ୍ରେ ଯେହି ॥ ୧୯
ସେ ସେବା କରିଛନ୍ତି ଯାକୁ । ଏମନ୍ତରୂପେ ସେ ତନୁକୁ ॥ ୨୦
ଶିବସହିତେ ବିଲୋକନ । କରିଣ କମଳଆସନ ॥ ୨୧
ସାଷ୍ଟାଙ୍ଗେ ପ୍ରଣାମ ଯେ କଲେ । ସକଳସୁରଗଣତୁଲେ ॥ ୨୨
ଶିବସହିତେ ପ୍ରଜାପତି । ବିଷ୍ଣୁଙ୍କୁ ପୁଣ କଲେ ସ୍ତୁତି ॥ ୨୩

ଶ୍ରୀବ୍ରହ୍ମା[2] ଉବାଚ

୮ ଜନମ ପାଳନ ସଂହାର । ଏ ତିନି ନାହାନ୍ତି ଯାହାର ॥ ୨୪
ଗୁଣସଂବନ୍ଧ ଯାର ନାହିଁ । ନିର୍ବାଣସୁଖସିନ୍ଧୁ ଯେହି ॥ ୨୫
ଅଣୁରୁ ଅଣୁ ଯେ ଅଟଇ । ଯା ମୂର୍ତ୍ତି ଗଣନା ନୁହଇ ॥ ୨୬
ଅଚିନ୍ତ୍ୟ ଅନୁଭାବ ଯାର । ତୁମ୍ଭଙ୍କୁ ନମୋ ନମ ମୋର ॥ ୨୭
୯ ଆହେ ପୁରୁଷଶ୍ରେଷ୍ଠ ! ତୋର । ଦିଶୁଛି ଏ ଯେଉଁ ଶରୀର ॥ ୨୮
ମଙ୍ଗଳ ବାଞ୍ଛା କଲା ଜନେ । ବୈଦିକ ତାନ୍ତ୍ରିକ ବିଧାନେ ॥ ୨୯
ଏହାକୁ ସର୍ବଦା ପୂଜନ୍ତି । ଏଥିରେ ସମସ୍ତେ ଅଛନ୍ତି ॥ ୩୦

---

୧. ସ୍ୱରୂପଧାରୀ ଶସ୍ତ୍ରେ ।
୨. ଅନାବିରାବିରାସେୟଂ ମା ଭୂତାଭୂଦିତି ବ୍ରୁବନ୍ ।
ବ୍ରହ୍ମାଭିପ୍ରେତି ନିତ୍ୟତ୍ୱବିଭୁତ୍ୱେ ଭଗବତ୍ତନୋଃ ॥ (ସ୍ୱାମୀ)

| | | | | | |
|---|---|---|---|---|---|
| | ଆମ୍ଭଙ୍କୁ ତ୍ରିଲୋକସହିତ | । | ତୋଠାରେ ଦେଖୁଛୁଁ ହେ ଧାତ | ।। | ୩୧ |
| ୧୦ | ତୁ ଅଟୁ ପ୍ରକୃତିରୁ ପର | । | ଅଧୀନ ନୋହୁ ଇତରର | ।। | ୩୨ |
| | ଆଦ୍ୟରେ ମଧ୍ୟରେ ପ୍ରାନ୍ତରେ | । | ଏ ବିଶ୍ୱ ଥିଲା ତୋହଠାରେ | ।। | ୩୩ |
| | ତୁ ବିଶ୍ୱଆଦି-ମଧ୍ୟ-ଅନ୍ତ | । | ଘଟର ମୃତ୍ତିକା ଯେମନ୍ତ | ।। | ୩୪ |
| ୧୧ | ତୁ ଅଟୁ ଆଶ୍ରୟ ଯାହାର | । | ସ୍ୱକୀୟ ଯେ ଅଟେ ତୋହର | ।। | ୩୫ |
| | ଏମନ୍ତ ମାୟାରେ ଜଗତ | । | ନିର୍ମାଣ କରିଣ ତଦନ୍ତ | ।। | ୩୬ |
| | ପ୍ରବେଶ ହୋଇଲୁ ତହିଁରେ | । | ଏ ଘେନି ଯୁକ୍ତ ଯେଉଁ ନରେ | ।। | ୩୭ |
| | ବିବେକୀ ଶାସ୍ତ୍ରରେ ନିପୁଣ | । | ଗୁଣପରିଣାମେ ସେ ପୁଣ | ।। | ୩୮ |
| | ଗୁଣବର୍ଜିତ କରି ତୋତେ | । | ଭୋ ନାଥ ! ଦେଖନ୍ତି ଜଗତେ | ।। | ୩୯ |
| ୧୨ | କାଷ୍ଠରେ ଅନଳ ଯେସନେ | । | ଧେନୁରେ ଘୃତକୁ ଦୋହନେ | ।। | ୪୦ |
| | ଭୂମିରେ କର୍ଷଣ ଆଦିରେ | । | ଅନ୍ନକୁ ଯେମନ୍ତ ପ୍ରକାରେ | ।। | ୪୧ |
| | ଜଳକୁ ଖନନେ ଯେସନ | । | ଉଦ୍ୟମେ ବୃତ୍ତି ଲଭେ ଜନ | ।। | ୪୨ |
| | ସେହି ପ୍ରକାରେ ଉପାୟରେ | । | ଗୁଣମାନଙ୍କେ ସ୍ୱବୁଦ୍ଧିରେ | ।। | ୪୩ |
| | ନିପୁଣ ଯେ ଜନ ଅଟନ୍ତି | । | ତୁମ୍ଭଙ୍କୁ ଲଭନ୍ତି ବଦନ୍ତି | ।। | ୪୪ |
| ୧୩ | ଆହେ ସରୋଜନାଭ ନାଥ | । | ଯେ ଯୋଗେ ପ୍ରାପ୍ୟ ଏକ ଅର୍ଥ | ।। | ୪୫ |
| | ପ୍ରକାଶ ହୋଇଲ ସେ ତୁମ୍ଭେ | । | ତୁମ୍ଭଙ୍କୁ ଦେଖି କରି ଆମ୍ଭେ | ।। | ୪୬ |
| | ସୁଖ ଲଭିଲୁଁ ଆଜ ମନେ | । | ବନାଗ୍ନିଦଗ୍ଧ ଗଜେ ଯେହ୍ନେ | ।। | ୪୭ |
| | ଜାହ୍ନବୀଜଳକୁ ଲଭିଣ | । | ସୁଖ ଲଭନ୍ତି ତତକ୍ଷଣ | ।। | ୪୮ |
| ୧୪ | ଆମ୍ଭେ ସକଳ ଲୋକପାଳେ | । | ମିଳିଲୁଁ ତୁମ୍ଭ ପାଦମୂଳେ | ।। | ୪୯ |
| | ଯେବଣ ନିମିତ୍ତେ, ସତ୍ୱର | । | ହେ ଅନ୍ତରାତ୍ମା ତାହା କର | ।। | ୫୦ |
| | ଅଶେଷସାକ୍ଷୀ ଅଟୁ ତୁହି | । | ଆନର ଜଣାଇବା ପାଇଁ | ।। | ୫୧ |
| | କେବଣ କାର୍ଯ୍ୟ ଅବା ଅଛି | । | ଯେ ବାହ୍ୟ ବିଦିତ ହୋଇଛି | ।। | ୫୨ |
| ୧୫ | ମୁଁ, ଶିବ, ସୁରଆଦିମାନେ | । | ଯେ ଦକ୍ଷ ଆଦି ପୁଣ ଭିନ୍ନେ | ।। | ୫୩ |
| | ଅଗ୍ନିରୁ କଣିକା ଯେସନ | । | ତୁମ୍ଭ ଠାବରୁ ହୋଇ ଭିନ୍ନ | ।। | ୫୪ |
| | ବିଭାତ[୧] ହୋଇଅଛୁଁ ଯେଣୁ | । | ନିଜ ମଙ୍ଗଳ କିବା ଜାଣୁଁ | ।। | ୫୫ |
| | ଏ ଘେନି ଦ୍ୱିଜଦେବଙ୍କର | । | ହୋଇଛି ଯେବଣ ବିଚାର | ।। | ୫୬ |
| | 'ଏ ରୂପେ କର' ବୋଲି ତହିଁ | । | ଉପାୟ ଦିଅ ତୁମ୍ଭେ କହି | ।। | ୫୭ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୬ | ବିରଞ୍ଚି ଆଦି ଏ ପ୍ରକାରେ | । | ସ୍ତୁତି କରନ୍ତେ ସେ ସ୍ଥାନରେ | ।। | ୫୮ |
| | ଇନ୍ଦ୍ରିୟମାନ ସଂଯମିତ | । | କରି ସେ ଯୋଡ଼ିଛନ୍ତି ହସ୍ତ | ।। | ୫୯ |
| | ଯେ ଅଭିପ୍ରାୟ ତାହାଙ୍କର | । | ସେରୂପେ କରିଣ ଗୋଚର | ।। | ୬୦ |

୧. ବିଭାତ = ପ୍ରତିଭାତ ।

ମେଘଗମ୍ଭୀର ଯେଉଁ ବାଣୀ । ତେଣେ କହିଲେ ତାଙ୍କୁ ପୁଣି ॥ ୬୧
୧୭ ଯେ ଭଗବାନ ସୁରେଶ୍ୱର । ସେ ସୁରକାର୍ଯ୍ୟେ ତାହାଙ୍କର ॥
କେବଳ ଥିଲେହେଁ ଶକତି । ସମୁଦ୍ରମନ୍ଥନ ପ୍ରଭୃତି ॥
ଲୀଳାବିହାରକାମନାରେ । ତାଙ୍କୁ କହିଲେ ଏ ରୂପରେ ॥

ଶ୍ରୀଭଗବାନୁବାଚ

୧୮ ହେ ବ୍ରହ୍ମା ହେ ଶମ୍ଭୋ ହେ ସୁରେ । ଗନ୍ଧର୍ବ ଆଦି ଯେ ଇତରେ ॥ ୬୨
ସମସ୍ତେ ହୋଇ ସାବଧାନ । ଶ୍ରବଣ କର ମୋ' ବଚନ ॥ ୬୩
ଯେମନ୍ତ ପ୍ରକାରେ ତୁମ୍ଭର । ମଙ୍ଗଳ ହୋଇବ ସତ୍ୱର ॥ ୬୪
୧୯ ତୁମ୍ଭେ ସମସ୍ତେ ଏବେ ଯାଅ । ଯେତେକ ଦାନବ ଦୈତେୟ ॥ ୬୫
ଶୁକ୍ରଅନୁଗ୍ରହୁଁ ପ୍ରବଳ । ତାଙ୍କ ସଙ୍ଗତେ ତେତେକାଳ ॥ ୬୬
ବିଧାନ କର ତୁମ୍ଭେ ସନ୍ଧି । ଆପଣା ସକାଶରୁ ବୃଦ୍ଧି ॥ ୬୭
ଯେତେଦିନରେ ଆପଣାର । ହୋଇବ ତୁମ୍ଭମାନଙ୍କର ॥ ୬୮
୨୦ ହେ ଦେବେ କରିବାର ପାଇଁ । ଯେ ନିଜ ପ୍ରୟୋଜନ ଥାଇ ॥ ୬୯
ସେ ନିଜସାଧ୍ୟ ନୋହି ଯେବେ । ଭଜିବ ଅରିକିହିଁ ତେବେ ॥ ୭୦
ସେ କାର୍ଯ୍ୟ ହେଲେ ଉତପତି । ଅହିମୂଷିକ ପ୍ରାୟ ବର୍ତ୍ତି ॥ ୭୧
ପେଡ଼ାରେ ନିବଦ୍ଧ ଯେ ଅହି । ସେ ଯେହ୍ନେ ଦ୍ୱାରଲାଭପାଇଁ ॥ ୭୨
ମୂଷାସଙ୍ଗତେ ପ୍ରୀତି କରେ । କାଳେ ସେ ମୂଷାକୁ ହିଁ ମାରେ ॥ ୭୩
ସେରୂପେ କାର୍ଯ୍ୟଲାଭ ହେଜି । ପ୍ରଥମେ ଶତ୍ରୁକୁ ହିଁ ଭଜି ॥ ୭୪
୨୧ ଅମୃତଉତପତି ପାଇଁ । ପ୍ରଯତ୍ନ କର ବେଗ ହୋଇ ॥ ୭୫
ଯେ ଅଟେ ମୃତ୍ୟୁଗ୍ରସ୍ତ ନର । ଯା' ପାନେ ହୋଇ ସେ ଅମର ॥ ୭୬
୨୨ ସକଳ ତୃଣଲତାମାନ । ବୀରୁଧ ଓଷଧି ଯେ ଆନ ॥ ୭୭
ପକାଇ ତା' କ୍ଷୀରସାଗର । ମନ୍ଦର ନାମ ଯେ ଭୂଧର ॥ ୭୮
ମନ୍ଥନଦଣ୍ଡ କରି ତାକୁ । କରିଣ ରଜ୍ଜୁ ବାସୁକିକୁ ॥ ୭୯
୨୩ ସହାୟ ହୋଇବି ମୁଁ ତହିଁ । ମନ୍ଥ ତା' ନିରଳସ ହୋଇ ॥ ୮୦
ଦଇତ୍ୟେ କ୍ଳେଶକୁ ଲଭିବେ । ଫଳ ପାଇବ ତୁମ୍ଭେ ସର୍ବେ ॥ ୮୧
୨୪ ଇଚ୍ଛା କରିବେ ଯା' ଅସୁର । ତୁମ୍ଭେ ତା' କରିବ ସ୍ୱୀକାର ॥ ୮୨
ହେ ଦେବେ ସଂରମ୍ଭେ[୧] ସମସ୍ତ । ସିଦ୍ଧିକି ନ ଭଜନ୍ତି ଅର୍ଥ ॥ ୮୩
ସାମମାର୍ଗରେ ସେ ଯେମନ୍ତେ । ସିଦ୍ଧିକି ଲଭନ୍ତି ଜଗତେ ॥ ୮୪
୨୫ ସମୁଦ୍ରୁଁ ହୋଇବ ପ୍ରକାଶ । ଯେ କାଳକୂଟ ନାମେ ବିଷ ॥ ୮୫
ତହିଁରୁ ଭୟ ନ ପାଇବ । ମଥନୁଁ ଯେବା ଉପୁଜିବ ॥ ୮୬
ସେ ଦ୍ରବ୍ୟମାନଙ୍କରେ ଲୋଭ । ରୋଷ ସଂକଳ୍ପ ନ କରିବ ॥ ୮୭

୧. ସଂଭ୍ରମେ ।

## ଶ୍ରୀଶୁକ ଉବାଚ

୨୬ ଏମନ୍ତ ରୂପେ ହେ ରାଜନ । ପୁରୁଷୋତ୍ତମ ଭଗବାନ ॥ ୮୮
ଆଜ୍ଞା ଦେଇଣ ଦେବତାଙ୍କୁ । ଅନ୍ତର ହୋଇ ଗଲେ ତାଙ୍କୁ ॥ ୮୯
ଯେ ସର୍ବଜଗତ ଈଶ୍ୱର । ସ୍ୱଚ୍ଛନ୍ଦ ଅଟେ ଗତି ଯାର ॥ ୯୦
୨୭ ଏଥୁ ଅନ୍ତରେ ବିଧି, ଶିବ । ପ୍ରଧାନ ଯେଉଁ ଦୁଇ ଦେବ ॥ ୯୧
ପ୍ରଣାମ କରିଣ ବିଷ୍ଣୁଙ୍କୁ । ଗଲେ ସେ ଯେ ଯାହା ସ୍ଥାନକୁ ॥ ୯୨
ଯେ ଆନ ଦେବତାଏ ଥିଲେ । ବଳିକି ଉପଗତ ହେଲେ ॥ ୯୩
୨୮ ଯେ ହୋଇ ନାହାନ୍ତି ସଂଯତ । ଦେଖି ସେ ଶତ୍ରୁଙ୍କୁ ତ୍ୱରିତ ॥ ୯୪
କ୍ଷୋଭିତ ହୋଇଲେ ଯେ ମନେ । ଆପଣା ସେନାପତିମାନେ ॥ ୯୫
ବଳି ନିଷେଧିଲେ ତାହାଙ୍କୁ । ଯେ ଯୋଗ୍ୟ ଅଟନ୍ତି ଯଶକୁ ॥ ୯୬
ସନ୍ଧିବିଗ୍ରହକାଳରୀତି । ଯେ ବଳି ଆପଣେ ଜାଣନ୍ତି ॥ ୯୭
୨୯ ଅସୁରଯୂଥପତିମାନ । ଯାଙ୍କୁ କରିଛନ୍ତି ପାଳନ ॥ ୯୮
ଯେ ଅତି ସଂପତ୍ତିରେ ଯୁତ । ଜିଣି ଅଛନ୍ତି ତ୍ରିଜଗତ ॥ ୯୯
ସେ ବଳି ବସନ୍ତେ ସଭାରେ । ଗଲେ ତାହାଙ୍କ ଠାକୁ ସୁରେ ॥ ୧୦୦
୩୦ ମହତ ଅଟେ ମତି ଯାର । ମୃଦୁ ବାକ୍ୟେ ସେ ପୁରନ୍ଦର ॥ ୧୦୧
ବଳିକି ସାନ୍ତ୍ୱନା କରାଇ । କହିଲେ ସକଳ ବୁଝାଇ ॥ ୧୦୨
ଅମୃତମଥନାଦିମାନ । ଯା' ଶିକ୍ଷା ଦେଲେ ଭଗବାନ ॥ ୧୦୩
୩୧ ବଳିକି ରୁଚିଲା ସେ ରୀତି । ସେଠାରେ କରିଥିଲେ ସ୍ଥିତି ॥ ୧୦୪
ପୌଲୋମ କାଳକେୟ[1] ଆଦି । ଅସୁରାଧିପ ଯେ ପ୍ରସିଦ୍ଧି ॥ ୧୦୫
ଅରିଷ୍ଟନେମି ଯେ ଶମ୍ବର । ତ୍ରିପୁରବାସୀ ଯେ ଇତର ॥ ୧୦୬
ସେ ଦୈତ୍ୟଙ୍କର ହିଁ ସେକଥା । ଅଭୀଷ୍ଟ ହୋଇଲା ସର୍ବଥା ॥ ୧୦୭
୩୨ ସୁର ଅସୁରେ ତଦନ୍ତର । ପ୍ରୀତି କରିଣ ପରସ୍ପର ॥ ୧୦୮
ଯେ କଥା କରିବେ ନିୟତ । ତହିଁକି କରିଣ ଶପଥ ॥ ୧୦୯
ଅମୃତଅର୍ଥେ ଏକ ହେଲେ । ପରମ ଉଦ୍ୟମ ସେ କଲେ ॥ ୧୧୦
୩୩ ଯେଉଁମାନଙ୍କ ବାହୁମାନ । ଦିଶଇ ପରିଘ[2] ସମାନ ॥ ୧୧୧
ସମସ୍ତେ ସମର୍ଥ ଅଟନ୍ତି । ଅତ୍ୟନ୍ତ ଗର୍ବକୁ ବହନ୍ତି ॥ ୧୧୨
ମନ୍ଦର ଗିରିକି ବଳରେ । ଉପାଡ଼ି କରି ତଦନ୍ତରେ ॥ ୧୧୩
କରନ୍ତେ ମହାଗର୍ଜନକୁ । ଘେନିଗଲେ ସେ ସମୁଦ୍ରକୁ ॥ ୧୧୪
୩୪ ବାସବ ବଳି ଆଦି ହୋଇ । ସୁର ଅସୁର ଯେତେ ତହିଁ ॥ ୧୧୫
ଦୂରରୁ ଭାର ବହିବାରେ । ଶ୍ରମ ଲଭିଲେ ଶରୀରରେ ॥ ୧୧୬
ନ ପାରନ୍ତେ ସେ ବହିବାକୁ । ବାଟେ ଛାଡ଼ିଲେ ପର୍ବତକୁ ॥ ୧୧୭

---

୧. କାଳେୟ । (ସ୍ୱାମୀ)   ୨. ପରିଘ = ଅର୍ଗଳ, ଲୌହଦଣ୍ଡ ।

୩୫ ଖସି ପଡ଼ନ୍ତେ ମହୀଧର । ବହୁତ ଦାନବ ଅମର ॥ ୧୧୮
ଚୂର୍ଣ୍ଣ କଲା ସେ ମହାଭାରେ । କନକ ଅଚଳ ସେଠାରେ ॥ ୧୧୯
୩୬ ବାହୁ କନ୍ଧର ଉରୁମାନ । ହୋଇଲା ତାହାଙ୍କର ଭଗ୍ନ ॥ ୧୨୦
ଗରୁଡ଼ଧ୍ୱଜ ସେ ପ୍ରକାରେ । ଜାଣିଣ ମିଳିଲେ ସେଠାରେ ॥ ୧୨୧
୩୭ ପର୍ବତପାତେ ପେଷି ହେଲେ । ଦେବ ଦାନବେ ଯେତେ ମଲେ ॥ ୧୨୨
ତାହାଙ୍କୁ ଦେଖି ନାରାୟଣ । ଯେମନ୍ତେ ଅରୋଗ ଅବ୍ରଣ ॥ ୧୨୩
ହେବେ ସେମାନେ ସେ ପ୍ରକାରେ । ତାଙ୍କୁ ଜୀଆଇଲେ ଦୃଷ୍ଟିରେ ॥ ୧୨୪
୩୮ ଲୀଳାରେ ଗିରି ଏକ କରେ । ଆରୋପି ଗରୁଡ଼ଉପରେ ॥ ୧୨୫
ତାହାକୁ ଆରୋହଣ କରି । ଚଳିଲେ ସମୁଦ୍ରକୁ ହରି ॥ ୧୨୬
ସୁର ଅସୁର ଗଣେ ତୋଷେ । ବେଢ଼ିଅଛନ୍ତି ଚାରି ପାଶେ ॥ ୧୨୭
୩୯ ଯେହୁ ଗରୁଡ଼ ପକ୍ଷିବର । କାନ୍ଧୁଁ ଓହ୍ଲାଇ ସେ ଭୂଧର ॥ ୧୨୮
ରଖିଣ ଜଳନିକଟରେ । ଗଲା ଶ୍ରୀହରିର ଆଜ୍ଞାରେ ॥ ୧୨୯
ସେ ହରିଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ॥ ୧୩୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଅମୃତମଥନେ ମନ୍ଦରାନୟନଂ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମ ଅଧ୍ୟାୟ

ସପ୍ତମେ ମଥନୋଦ୍‌ଭୂତ-ବିଷଭୀତ୍ୟାଖିଳୈର୍ଜନୈଃ ।
ସ୍ତୁତଃ ସନ୍ କୃପୟା ରୁଦ୍ରଃ ପପୌ ବିଷମିତୀର୍ଯ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ଯେ ସୁଧା ତହିଁ ସମ୍ଭବିବ । ତହିଁ ତୁମ୍ଭର ଭାଗ ହେବ ॥ ୧
ଏମନ୍ତ କରି ଆମନ୍ତ୍ରଣ । ନାଗରାଜାଙ୍କୁ ଦେବଗଣ ॥ ୨
ବାସୁକିରଜ୍ଜୁକୁ ଗିରିରେ । ବେଢ଼ାଇ କରି ହରଷରେ ॥ ୩
ହେ ନୃପ ! ହୋଇଣ ସଂଯତ । ଲଭିବା ନିମିତ୍ତେ ଅମୃତ ॥ ୪
ମନ୍ଥିବା ନିମିତ୍ତେ ସାଗର । ଆରମ୍ଭ କଲେକ ସତ୍ୱର ॥ ୫
୨ ପ୍ରଥମେ ମୁଖଭାଗ ହରି । ଧଇଲେ ତାଙ୍କୁ ଅନୁସରି ॥ ୬
ଦେବତାମାନେ ହିଁ ବଦନ । ଭାଗକୁ କଲେ ଉପାଦାନ ॥ ୭
ତେମନ୍ତ ଚେଷ୍ଟାକୁ ପ୍ରଭୁର । ଦୈତ୍ୟେନ୍ଦ୍ର ନ କଲେ ସ୍ୱୀକାର ॥ ୮
୩ ଯେ ଶାସ୍ତ୍ର-ବେଦ ଅଧ୍ୟୟନ । ସେ ବେନିକଥାରେ ସଂପନ୍ନ ॥ ୯
ବିଖ୍ୟାତ ଜନମେ କର୍ମରେ । ଆମ୍ଭେ ଏମନ୍ତ ଜଗତରେ ॥ ୧୦

| | | | | | |
|---|---|---|---|---|---|
| | ଯେ ଅହିଅଙ୍ଗ ଅମଙ୍ଗଳ | । | ଧରିବୁଁ ନାହିଁ ସେ ଲାଙ୍ଗୁଳ | ।। | ୧୧ |
| ୪ | ଏମନ୍ତ ବୋଲି ତୁନି ହୋଇ | । | ରହିଲେ ଦୈତ୍ୟମାନେ ଯେହି | ।। | ୧୨ |
| | ପୁରୁଷୋତ୍ତମ ତାଙ୍କୁ ଚାହିଁ | । | ଅଳପ ହସହସ ହୋଇ | ।। | ୧୩ |
| | ଅଗ୍ରକୁ ଛାଡ଼ିଣ ତୁରିତେ | । | ଦେବତାମାନଙ୍କ ସହିତେ | ।। | ୧୪ |
| | ଅହିର ପୁଚ୍ଛଭାଗ ଯେହି | । | ଗ୍ରହଣ କଲେ ତାହା ଯାଇଁ | ।। | ୧୫ |
| ୫ | ସ୍ଥାନବିଭାଗ ଏ ପ୍ରକାରେ | । | କଲେ ସେ କଶ୍ୟପକୁମରେ | ।। | ୧୬ |
| | ସିନ୍ଧୁକୁ ଅମୃତନିମିତ୍ତ | । | ମନ୍ଥିଲେ ହୋଇଣ ସଂଯତ | ।। | ୧୭ |
| ୬ | ହେ ପାଣ୍ଡୁନନ୍ଦନ ! ଅମୃତ | । | ମନ୍ଥନ୍ତେ ଯେବା ବଳବନ୍ତ | ।। | ୧୮ |
| | ଧରିଥିଲେହେଁ ସେ ସକଳେ | । | ଆଶ୍ରୟ ନ ଥିବାରୁ ତଳେ | ।। | ୧୯ |
| | ଗୁରୁଭାବରୁ ମହୀଧର | । | ବୁଡ଼ିଲା ସଲିଳମଧ୍ୟର | ।। | ୨୦ |
| ୭ | ଯେ ଅଟେ ଅତି ବଳିୟାର | । | ସେ ଦୈବହେତୁ ଆପଣାର | ।। | ୨୧ |
| | ପୌରୁଷ କୃତ୍ୟ ଯାନ୍ତେ ନାଶ | । | ସେ ସର୍ବ ଦାନବ ତ୍ରିଦଶ | ।। | ୨୨ |
| | ମନେ ବିଷାଦକୁ ଲଭିଲେ | । | ମୁଖଶୋଭାକୁ ମ୍ଳାନ କଲେ | ।। | ୨୩ |
| ୮ | ଯାହା ବୀର୍ଯ୍ୟର ନାହିଁ ଅନ୍ତ | । | ଯାର ସଂକଳ୍ପ ଅଟେ ସତ୍ୟ | ।। | ୨୪ |
| | ସେ ସମୟେ ସେ ଭଗବାନ | । | ଦେଖିଣ ବିଘ୍ନେଶବିଧାନ | ।। | ୨୫ |
| | ଅତ୍ୟନ୍ତ ଅଦ୍ଭୁତ କଚ୍ଛପ | । | କରିଣ ଆପଣାର ରୂପ | ।। | ୨୬ |
| | ଜଳେ ପ୍ରବେଶ ହୋଇକରି | । | ଟେକିଲେ ଉପରକୁ ଗିରି | ।। | ୨୭ |
| ୯ | ଯେ ଜଳୁ ହୋଇଲା ଉଦ୍‌ଧୃତ | । | ଦେଖିଣ ସେ କୁଳପର୍ବତ | ।। | ୨୮ |
| | ପୁଣି ମନ୍ଥିବାକୁ ସତ୍ୱରେ | । | ଉଦ୍ୟମ କଲେ ସୁରାସୁରେ | ।। | ୨୯ |
| | ଯେହ୍ନେ ଇତର ମହାଦ୍ୱୀପ | । | ସେରୂପେ ସେ ପ୍ରଭୁ କଚ୍ଛପ | ।। | ୩୦ |
| | ଯେ ଲକ୍ଷେ ଯୋଜନ ବିସ୍ତାର | । | ସେ ପୃଷ୍ଠେ ଧଇଲେ ଭୂଧର | ।। | ୩୧ |
| ୧୦ | ସୁର ଅସୁରମାନଙ୍କର | । | ଭୁଜବୀର୍ଯ୍ୟରେ ଯେ ଭୂଧର | ।। | ୩୨ |
| | କମ୍ପନ୍ତେ ଭ୍ରମଇଁ ସତ୍ୱରେ | । | ସେ ଗିରି ବହନ୍ତେ ପୃଷ୍ଠରେ | ।। | ୩୩ |
| | ଆଦି କଚ୍ଛପ ଭଗବାନ | । | ଯେ ଗିରିବର ଆବର୍ତ୍ତନ | ।। | ୩୪ |
| | ମଣିଲେ ଅଙ୍ଗକଣ୍ଡୁପ୍ରାୟ | । | ହେ ନୃପ ! ଯେଣୁ ଅପ୍ରମେୟ | ।। | ୩୫ |
| ୧୧ | ବଳବୀର୍ଯ୍ୟକୁ ଦୈତ୍ୟଙ୍କର | । | ପ୍ରବର୍ତ୍ତାଆନ୍ତେ ସେ ଈଶ୍ୱର | ।। | ୩୬ |
| | ଆସୁର ରୂପେ ତାଙ୍କ ଠାରେ | । | ପ୍ରବେଶ ହେଲେ ସେ କାଳରେ | ।। | ୩୭ |
| | ଦେବଗଣଙ୍କୁ ଉଦ୍ଦୀପନ | । | କରାନ୍ତେ ପୁଣ ଭଗବାନ | ।। | ୩୮ |
| | ଦେବତାମାନଙ୍କ ଶରୀରେ | । | ମିଳିଲେ ଦଇବ ଆକାରେ | ।। | ୩୯ |
| | ଅଦୃଶ୍ୟରୂପ ହୋଇ କରି | । | ପଶିଲେ ସର୍ପଦେହେ ହରି | ।। | ୪୦ |
| ୧୨ | ସହସ୍ରବାହୁ ହୋଇ କରି | । | ଗିରିଇନ୍ଦ୍ରକୁ ହସ୍ତେ ଧରି | ।। | ୪୧ |
| | ଆକାଶେ ରହିଲେ ଶ୍ରୀଧର | । | ଯେହ୍ନେ ଇତର ଗିରିବର | ।। | ୪୨ |
| | ବ୍ରହ୍ମା ଶଙ୍କର ପୁରନ୍ଦର | । | ଏ ଆଦି ସକଳ ଅମର | ।। | ୪୩ |

ସ୍ତୁତି କରନ୍ତେ କୁସୁମରେ । ବୃଷ୍ଟିକି କଲେ ହରଷରେ ॥ ୪୪
୧୩ ଅଧୋଭାଗରେ ଉପରରେ । ଦେବଦାନବଙ୍କ ମଧ୍ୟରେ ॥ ୪୫
ଗିରିମଧ୍ୟରେ ଦୃଢ଼ରୂପେ । ରଜ୍ଜୁରେ ଅବୋଧସ୍ୱରୂପେ ॥ ୪୬
ପ୍ରବେଶ ହେଲେ ଭଗବାନ । ତେଣେ ହୋଇଲେ ଯେ ସଂପନ୍ନ ॥ ୪୭
ମଦେ ଉତ୍କଟ ଅତିଶୟେ । ହୋଇଛନ୍ତି ଯେ ସେ ସମୟେ ॥ ୪୮
ସେମାନେ ମହା ମହୀଧରେ । ସିନ୍ଧୁକୁ ମନ୍ଥିଲେ ସତ୍ୱରେ ॥ ୪୯
କ୍ଷୋଭିତ ନକ୍ର ଚକ୍ର ଯହିଁ । ଏମନ୍ତ ସିନ୍ଧୁ ଯେ ଅଟଇ ॥ ୫୦
୧୪ ଅହିର ଯେ ଅପରିମିତ । କଠୋର ମୁଖ, ଶ୍ୱାସ, ନେତ୍ର ॥ ୫୧
ତହୁଁ ଯେ ଧୂମ ଅଗ୍ନି ଜାତ । ତେଣେ ତାହାଙ୍କ ତେଜ ହତ ॥ ୫୨
ସେ ବଳି ପୌଲୋମ କାଳେୟ । ଇଲ୍ୱଳ ଆଦି ଦୈତ୍ୟଚୟ[୧] ॥ ୫୩
ବନ-ଅନଳରେ ଯେସନ । ଦଗ୍ଧ ସରଳ[୨] ତରୁମାନ ॥ ୫୪
ମଳିନଭାବୁଁ ସେ ପ୍ରକାରେ । ସେମାନେ ହେଲେ ସେ କାଳରେ ॥ ୫୫
୧୫ ଶ୍ୱାସଶିଖାରେ ସେ ସର୍ପର । ବିହତ ପ୍ରଭା ଯାହାଙ୍କର ॥ ୫୬
ଯାହାଙ୍କ ବସନ ଆନନ । ମାଳା କବଚ ଧୂମ୍ର ବର୍ଣ୍ଣ ॥ ୫୭
ଏମନ୍ତ ଯେ ଦେବତାମାନେ । ତାଙ୍କୁ ଈଶ୍ୱରବଶ ଘନେ ॥ ୫୮
ବରଷା କଲେ ନିରନ୍ତରେ । ଯେ ପୁଣ ସମୁଦ୍ରଉର୍ମିରେ ॥ ୫୯
ହୋଇଅଛନ୍ତି ଆଲିଙ୍ଗନ । ବହିଲେ ସେ ପବନମାନ ॥ ୬୦
୧୬ ଦେବ-ଅସୁରବରୂଥପ[୩] । ସିନ୍ଧୁ ମନ୍ଥନ୍ତେ ସେହିରୂପ ॥
ନୋହିଲା ଯେବେ ସୁଧା ଜାତ । ଆପଣେ ମନ୍ଥିଲେ ଅଜିତ ॥
୧୭ ଯେ ବନମାଳୀ ପୀତବାସ । ଯେ ପ୍ରଭୁ ପରମ ପୁରୁଷ ॥
ଯା' କର୍ଣ୍ଣଯୁଗେ ଶୋଭମାନ । ବିଦ୍ୟୁତ କୁଣ୍ଡଳଲକ୍ଷଣ ॥
ମୂର୍ଦ୍ଧାରେ ବିଲୁଳିତ ହୋଇ । ଯା' କେଶମାନ ଶୋଭା ପାଇ ॥
ଅଭୟପ୍ରଦ ଜଗତର । ଜଇତ୍ର[୪] ବାହୁମାନ ଯାର ॥
ତେଣେ ଯେ ଧରିଣ ସର୍ପକୁ । ଧରିଅଛନ୍ତି ପର୍ବତକୁ ॥
ମନ୍ଥନ୍ତେ ମନ୍ଥନଦଣ୍ଡରେ । ଶୋଭିତ ହେଲେ ତଦନ୍ତରେ ॥
ସେ ରକ୍ତନେତ୍ର ଘନଶ୍ୟାମ । ପ୍ରତିଦ୍ୱନ୍ଦ୍ୱୀ ପର୍ବତସମ ॥
୧୮ ସମ୍ଭ୍ରାନ୍ତ ମୀନମାନେ ଯହିଁ । ମକର କୂର୍ମ ଯେ ବା ଅହି ॥ ୬୧
ଯହିଁରେ ଏମାନେ ବହୁତ । ମଥନବଶରୁ ଉତ୍‌ଥିତ ॥ ୬୨
ତିମି, କୁମ୍ଭୀର, ତିମିଙ୍ଗିଳ । ଦ୍ୱିପ[୫] ରେ ଅଟେ ଯେ ଆକୁଳ ॥ ୬୩
ସେ ସିନ୍ଧୁ ହୁଅନ୍ତେ ମଥନ । ତହୁଁ ପ୍ରଥମେ ବିଷ ଜନ୍ମ ॥ ୬୪

---

୧. ଦଇତେୟ । ୨. ସରଳ = ଦ୍ରୁମବିଶେଷ । ୩. ବରୂଥପ = ସେନାପତି ।
୪. ଜଇତ୍ର = ଜୟଶୀଳ । ୫. ଦ୍ୱିପ = ହସ୍ତୀ ।

ଅତି ଉତ୍କଟ ଯେ ଗରଳ । ଯାହାର ନାମ ହଳାହଳ ।। ୬୫
୧୯ ଉଗ୍ର ଅଟଇ ବେଗ ଯାର । ଯାହାକୁ ନାହିଁ ପ୍ରତିକାର ।। ୬୬
ସକଳଦିଗେ ଯେ ବ୍ୟାପଇ । ତଳକୁ ଉପରକୁ ଧାଇଁ ।। ୬୭
ସହି ନ ପାରେ କେହି ଯାକୁ । ଦେଖିଣ ଏମନ୍ତ ବିଷକୁ ।। ୬୮
ପାଳକମାନଙ୍କ ସହିତେ । ପ୍ରଜାଏ ଥିଲେ ଯେ ଜଗତେ ।। ୬୯
ଅରକ୍ଷ ହୋଇ ଭୟ କଲେ । ଶିବଙ୍କୁ ଶରଣ ପଶିଲେ ।। ୭୦
୨୦ ତ୍ରୈଲୋକ୍ୟ-ଉଦ୍‌ଭବନିମିତ୍ତେ । କୈଳାସେ ଦେବୀର ସହିତେ ।। ୭୧
ବସି ଅଛନ୍ତି ଯେ ଶଙ୍କର । ଯେ ଅଭିମତ ମୁନିଙ୍କର ।। ୭୨
ସେ ମୁନିଙ୍କର ମୋକ୍ଷପାଇଁ । ଯେ ପ୍ରଭୁ ତପ ଆଚରଇ ।। ୭୩
ଦେଖିଣ ସେ ମହାଦେବଙ୍କୁ । ସ୍ତୁତିରେ କଲେ ପ୍ରଣାମକୁ ।। ୭୪

ଶ୍ରୀପ୍ରଜାପତୟ ଉଚୁଃ[୧]

୨୧ ଭୂତଭାବନ ମହାଦେବ । ହେ ଭୂତ-ଆତ୍ମା ଦେବଦେବ ।। ୭୫
ଶରଣାଗତ ଆମ୍ଭେମାନେ । ଆମ୍ଭମାନଙ୍କୁ ତୋଷମନେ ।। ୭୬
ସେହି ବିଷରୁ ରକ୍ଷା କର । ଦହନ ଯେ ତିନିଲୋକର ।। ୭୭
୨୨ ତୁ ଏକ ସର୍ବ ଜଗତର । ବନ୍ଧରେ ମୋକ୍ଷରେ ଈଶ୍ୱର ।। ୭୮
ତୁମ୍ଭେ ପ୍ରପନ୍ନ-ଆର୍ତ୍ତିହର । ନିୟନ୍ତା ସର୍ବଲୋକଙ୍କର ।। ୭୯
କୁଶଳ ଯେଉଁ ଜନମାନେ । ତୋତେ ପୂଜନ୍ତି ସେ ଭୁବନେ ।। ୮୦
୨୩ ବୋଲିବ ଅବା ଏ ରୂପରେ । ବିଷ୍ଣୁ ପ୍ରସିଦ୍ଧ ଏ ସଂସାରେ ।। ୮୧
କହିବା ତହିଁ ତତ୍ତ୍ୱ ପୁଣ । ସାବଧାନରେ ପ୍ରଭୁ ଶୁଣ ।। ୮୨
ଯେ ଗୁଣମୟୀ ନିଜ ଶକ୍ତି । ଯେଣେ ଏ ଜଗତ-ଉତ୍‌ପତ୍ତି ।। ୮୩
ପରିପାଳନ ଯେ ସଂହାର । ହେ ବିଭୁ ଯେଉଁ କାଳେ କର ।। ୮୪
ସେ କାଳେ ବ୍ରହ୍ମା ବିଷ୍ଣୁ ହର । ଏ ତିନି ସଂଜ୍ଞା ତୁମ୍ଭେ ଧର ।। ୮୫
ତୁମ୍ଭ ସେ ସ୍ୱତଃସିଦ୍ଧ ଜ୍ଞାନ । ଏରୂପେ ନୋହେ ପୁଣ ଆନ ।। ୮୬
୨୪ ଦେବ ତିର୍ଯ୍ୟକ ଆଦି ମୂର୍ତ୍ତି । ପ୍ରକାଶ କରେ ଯେହୁ ଏଥି ।। ୮୭
ତୁମ୍ଭେ ପରମ ଗୁହ୍ୟ ବ୍ରହ୍ମ । ତୁ ଆତ୍ମା ନିତ୍ୟସୁଖ ଧାମ ।। ୮୮
ତୁ ନାନା ଶକ୍ତିରେ ରୁଚିର । ଯେଣୁ ତୁ ଜଗତଈଶ୍ୱର ।। ୮୯
୨୫ ତୁ ଅଟୁ ବେଦର କାରଣ । ତୁହି ମହତ ତତ୍ତ୍ୱ ପୁଣ ।। ୯୦
ପ୍ରାଣ ଇନ୍ଦ୍ରିୟ ଦ୍ରବ୍ୟଙ୍କର । କାରଣ ରୂପଗୁଣ ଯାର ।। ୯୧
ରାଜସ ଆଦି ଯେ ତ୍ରିବିଧ । ସେ ଅହଂକାର, ତୁ ପ୍ରସିଦ୍ଧ ।। ୯୨

---

୧. ନିର୍ଗୁଣଂ ସଗୁଣଂ ଚୈବ ଶିବଂ ହରିପରାକ୍ରମୈଃ ।
ସ୍ତୁବନ୍ତସ୍ତୁ ପ୍ରଜେଶାନା ନାମନ୍ୟନ୍ତାନ୍ତରଂ ତୟୋଃ ।। (ସ୍ୱାମୀ)

ତୁହି ସ୍ୱଭାବ କାଳତତ୍ତ୍ୱ । ତୁ ଧର୍ମ କ୍ରତୁ ଋତ ସତ୍ୟ ।। ୯୩
ପ୍ରଣବ ତ୍ରିବୃତ ଅକ୍ଷର । କରଇ ପ୍ରକାଶକୁ ତୋର ।। ୯୪
ତ୍ରିଗୁଣାତ୍ମକ ଯେ ପ୍ରଧାନ । ତୁ ତାର ଆଶ୍ରୟନିଧାନ ।।
ଏମନ୍ତରୂପେ ଜ୍ଞାନୀମାନେ । ମଣିଅଛନ୍ତି ଏ ଭୁବନେ ।। ୯୫
୨୬ ଅଖିଳଦେବରୂପୀ ଯେହି । ସେ ଅଗ୍ନି[1] ତୋ' ମୁଖ ଅଟଇ ।। ୯୬
ହେ ଲୋକଭବ ! ସର୍ବଦେବ । ସ୍ୱରୂପୀ ଯେ ତୁ ସଦାଶିବ ।। ୯୭
ତୋ ପାଦପଦ୍ମ ବସୁମତୀ । ଜିହ୍ୱା, ବରୁଣ, ଦିଗେ, ଶ୍ରୁତି ।। ୯୮
କାଳ ଅଟଇ ଗତି ତୋର । ଏହା ଜାଣନ୍ତି ଜ୍ଞାନୀ ନର ।। ୯୯
୨୭ ତୋ ନାଭି ଅଟଇ ଆକାଶ । ପବନ ତୋହର ନିଃଶ୍ୱାସ ।। ୧୦୦
ତୋ ଚକ୍ଷୁମାନେ ଦିବାକର । ଜଳ ଅଟଇ ରେତ ତୋର ।। ୧୦୧
ଆଶ୍ରୟ ଯେ ସର୍ବଜୀବର । ସେ ଅଟେ ଅହଂକାର ତୋର ।। ୧୦୨
ସ୍ୱର୍ଗ ତୋ ଶିର ଭଗବାନ । ଚନ୍ଦ୍ରମା ଅଟେ ତୋର ମନ ।। ୧୦୩
୨୮ ସମୁଦ୍ରମାନେ ତୋ ଉଦର । ପର୍ବତେ ଅସ୍ଥିସଂଘ ତୋର ।। ୧୦୪
ସର୍ବ ଓଷଧି ଲତା ଯେହି । ବିଖ୍ୟାତ ସେ ତୋ ରୋମ ହୋଇ ।। ୧୦୫
ତ୍ରିଷ୍ଟୁପ ଆଦି ଛନ୍ଦ ସାତ । ତୋ ସପ୍ତ ଧାତୁ ସେ ସାକ୍ଷାତ ।। ୧୦୬
ସେ ଧର୍ମ ହୃଦୟ ତୋହର । ତ୍ରିବେଦସ୍ୱରୂପ ! ହେ ହର ।। ୧୦୭
୨୯ ପଞ୍ଚୋପନିଷଦ[2] ହେ ଈଶ । ତୋ ପଞ୍ଚ ବଦନ ପ୍ରକାଶ ।। ୧୦୮
ଯେବଣ ବଦନରେ ପୁଣ । ଅଠତିରିଶ ମନ୍ତ୍ରଗଣ ।। ୧୦୯
ଯେ ପରମାତ୍ମତତ୍ତ୍ୱ ଶିବ । ନାମରେ ବିଖ୍ୟାତ ହେ ଦେବ ।। ୧୧୦
ଯେ ପରତତ୍ତ୍ୱ ସ୍ୱୟଂ ଜ୍ୟୋତି । ସେ ତୋ ଉପର ଅବସ୍ଥିତି ।। ୧୧୧
୩୦ ଅଧର୍ମଊର୍ମିରେ ଯେ ଥାଇ । ସେ ଦମ୍ଭ ଲୋଭାଦି ତୋ ଛାଇ ।। ୧୧୨
ବିବିଧ ସର୍ଗ ଯେଣେ ପୁଣ । ସେ ସତ୍ତ୍ୱ ରଜ ତମ ଗୁଣ ।। ୧୧୩
ସେ ତୋର ତ୍ରିନେତ୍ର ଅଟଇ । ସାଂଖ୍ୟ ଶାସ୍ତ୍ରର କର୍ତ୍ତା ତୁହି ।। ୧୧୪
ହେ ଦେବ ! ଯେହୁ ପୁରାତନ । ଯହିଁ ବହୁତ ଛନ୍ଦମାନ ।। ୧୧୫
ଏମନ୍ତ ଅଟଇ ଯେ ଶ୍ରୁତି । ସେ ତୋ ଈକ୍ଷଣରୂପେ ଖ୍ୟାତି ।। ୧୧୬
୩୧ ବିରଞ୍ଚି ବିଷ୍ଣୁ ପୁରନ୍ଦର । ଯେ ବା ଅଖିଳ ଲୋକେଶ୍ୱର ।। ୧୧୭
ସେମାନେ କେହି ନ ଜାଣନ୍ତି । ହେ ପ୍ରଭୁ ତୋ ପରମ ଜ୍ୟୋତି ।। ୧୧୮
ଯହିଁ ସତ୍ତ୍ୱାଦି ତ୍ରୟ ନାହିଁ । ଅଭେଦ ବ୍ରହ୍ମ ଅଟେ ଯେହି ।। ୧୧୯
୩୨ କୁସୁମଶର ଦକ୍ଷାଧ୍ୱର । ତ୍ରିପୁରାସୁର କାଳଗର[3] ।। ୧୨୦

---

୧. 'ଅଗ୍ନିଃ ସର୍ବଦେବତା' । (ଶ୍ରୁତିଃ)
୨. ''ତତ୍ପୁରୁଷ-ଅଘୋର-ସଦ୍ୟୋଜାତ-ବାମଦେବ-ଈଶାନ'' ମନ୍ତ୍ର । (ସ୍ୱାମୀ)
୩. କାଳଗର = କାଳକୂଟ ବିଷ । ''କାଳୋ ଗରଶ୍ଚ ଦୈତ୍ୟବିଶେଷ ଆସୀତ୍'' ।(ଶ୍ରୀଲ ଚକ୍ରବର୍ତ୍ତିପାଦ)

ଏ ଆଦି ଯେତେ ପ୍ରାଣୀଦ୍ରୋହୀ । ତାଙ୍କୁ ଯା' ନାଶ କଲୁ ତୁହି ॥ ୧୨୧
ଏ କର୍ମ ସ୍ତୁତିକି ତୋହର । ସମର୍ଥ ନୋହେ ପ୍ରଭୁ ହର ॥ ୧୨୨
ଯେ ତୁମ୍ଭେ ସଂହାରକାଳରେ । ସ୍ୱନେତ୍ରଦହନଶିଖାରେ ॥ ୧୨୩
ଯା' ଭସ୍ମ କର ତ୍ରିଜଗତ । ନ କର ତାହା ଆଲୋକିତ ॥ ୧୨୪
୩୩ ଉମାସହିତେ ନିରନ୍ତରେ । ଭ୍ରମୁ ତୁ କାମଲାଳସାରେ ॥ ୧୨୫
ତୁ ହିଂସ୍ର ଅଟୁ ଅତି କ୍ରୂର । ଶ୍ମଶାନେ ଭ୍ରମୁ ନିରନ୍ତର ॥ ୧୨୬
ଏମନ୍ତ ବୋଲିଣ ଯେ ତୋତେ । ନିନ୍ଦା କରନ୍ତି ଏ ଜଗତେ ॥ ୧୨୭
ସେ କି ତୋ ଲୀଳାକୁ ଜାଣନ୍ତି । ନିଶ୍ଚୟେ ନିର୍ଲଜ୍ଜ ଅଟନ୍ତି ॥ ୧୨୮
ଯେ ପୁଣ ଆତ୍ମାରାମ ହୋଇ । ସେ ଚିନ୍ତେ ତୋର ପାଦଦୁଇ ॥ ୧୨୯
ତୁ ଅଟୁ ତପରେ ତାପିତ । ଏ ଘେନି ଶାନ୍ତ ତୋର ଚିତ୍ତ ॥ ୧୩୦
୩୪ ଯେ ସନ୍ତ ଅସନ୍ତ ରୂପର । ଯେ ଅଟୁ ବ୍ୟାପକ ଈଶ୍ୱର ॥ ୧୩୧
ଯେ ତୋର ସ୍ୱରୂପମାତ୍ରକୁ । ଶକ୍ତ ନୁହନ୍ତି ଜାଣିମାକୁ ॥ ୧୩୨
ସେ ପିତାମହ ଆଦି ଦେବେ । କିଂପା ସମର୍ଥ ହେବେ ସ୍ତବେ ॥ ୧୩୩
ସେ ଯା' ସର୍ଜନା କରିଛନ୍ତି । ତହିଁରୁ ଯେ ପୁଣ ଉତ୍‌ପତ୍ତି ॥ ୧୩୪
ତାର ବିଷୟ ଆମ୍ଭେ ପୁଣି । କେମନ୍ତେ ପାରିବୁଁ ତା ଜାଣି ॥ ୧୩୫
ତଥାପି ଆମ୍ଭ ଶକ୍ତି ଯେତେ । କରୁଣ ଅଛୁଁ ସ୍ତୁତି ତେତେ ॥ ୧୩୬
୩୫ କେବଳ ଦେଖୁଛୁଁ ଏରୂପ । ନ ଜାଣୁଁ ତୋ ନିଜ ସ୍ୱରୂପ ॥ ୧୩୭
ହେ ମହେଶ୍ୱର ! ଲୋକଙ୍କର । ସୁଖପାଇଁ ତୋ ଅବତାର ॥ ୧୩୮
ଅବ୍ୟକ୍ତକର୍ମା ତୁହି, ତୋତେ । ଦେଖି କୃତାର୍ଥ ଏ ସମସ୍ତେ ॥ ୧୩୯

ଶ୍ରୀଶୁକ ଉବାଚ

୩୬ ଏ ରୂପରେ ସେ ପ୍ରଜାଙ୍କର । ବିପତ୍ତି ଦେଖି କରି ହର ॥ ୧୪୦
ସେ ସର୍ବ ପ୍ରାଣୀଙ୍କର ମିତ । କୃପାରେ ହୋଇଲେ ପୀଡ଼ିତ ॥ ୧୪୧
ଯେ ପ୍ରିୟା ସତୀ ପାଖେ ଥିଲେ । ତାହାଙ୍କୁ ଏମନ୍ତ ବୋଇଲେ ॥ ୧୪୨

ଶ୍ରୀଶିବ ଉବାଚ

୩୭ ଆଗୋ ଭବାନି ! ପ୍ରଜାଙ୍କର । ଦେଖ ଏ ଦୁଃଖ ଅବତାର ॥ ୧୪୩
କ୍ଷୀରୋଦମଥନୁଁ ଯେ ଜାତ । ସେ କାଳକୂଟୁଁ ଉପସ୍ଥିତ ॥ ୧୪୪
୩୮ ପ୍ରାଣକୁ ପାଇବା ନିମିତ୍ତେ । ଏମାନେ ବାଞ୍ଛୁଛନ୍ତି ଚିତ୍ତେ ॥ ୧୪୫
ଏମାନଙ୍କର ଯେ ଅଭୟ । ମୁଁ ତାହା କରିବି ନିଶ୍ଚୟ ॥ ୧୪୬
ପ୍ରଭୁର କାର୍ଯ୍ୟମାତ୍ର ଏହି । ଦୀନଲୋକଙ୍କୁ ଯା' ପାଳଇ ॥ ୧୪୭
୩୯ ଯେ ପ୍ରାଣମାନେ ଆପଣାର । କ୍ଷଣେକେ ହୁଅନ୍ତି ଭଙ୍ଗୁର ॥ ୧୪୮
ତେଣେ ପ୍ରାଣୀଙ୍କ ପ୍ରାଣମାନ । ରକ୍ଷା କରନ୍ତି ସାଧୁଜନ ॥ ୧୪୯

| | | | | |
|---|---|---|---|---|
| | ବିଷ୍ଣୁମାୟାରେ ମୋହ ହୋଇ | । ଅନ୍ୟୋଽନ୍ୟେ ବଦ୍ଧବୈର ଯେହି | ।। | ୧୫୦ |
| | ହେ ଭଦ୍ରେ ! ସେ ପ୍ରାଣୀଙ୍କ ଠାରେ | । ଯେଉଁ ପୁରୁଷ କୃପା କରେ | ।। | ୧୫୧ |
| | ସକଳଆତ୍ମା ଭଗବାନ | । ତାକୁ ହୁଅନ୍ତି ତୋଷମନ | ।। | ୧୫୨ |
| ୪୦ | ଶ୍ରୀହରି ସଂତୋଷ ହୁଅନ୍ତେ | । ମୁଁ ତୋଷ ଜଗତସହିତେ | ।। | ୧୫୩ |
| | ସେ ଘେନି କରି ମୁଁ ଏ ବିଷ | । ଭୋଜନ କରିବି ଅବଶ୍ୟ | ।। | ୧୫୪ |
| | ମୋ ଠାରୁ ହେଉ ଉତପତି | । ସୁଖରେ ପ୍ରଜାଙ୍କର ସ୍ଥିତି | ।। | ୧୫୫ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୧ | ବିଶ୍ୱଭାବନ ଭଗବାନ | । ସତୀଙ୍କି କହି ଏ ବଚନ | ।। | ୧୫୬ |
| | ଭକ୍ଷିବା ଅର୍ଥେ ସେ ଗରଳ | । ଆରମ୍ଭ କଲେ ତତକାଳ | ।। | ୧୫୭ |
| | ପ୍ରଭାବ ଜାଣନ୍ତି ତାଙ୍କର | । ସତୀ ତା କଲେକ ସ୍ୱୀକାର | ।। | ୧୫୮ |
| ୪୨ | ଯେ ହଳାହଳ ନାମେ ବିଷ | । ଜଗତ ବ୍ୟାପିଣ ପ୍ରକାଶ | ।। | ୧୫୯ |
| | ତଦନନ୍ତରେ ତାହା ଧରି | । ଅଞ୍ଜଳିପରିମିତ କରି | ।। | ୧୬୦ |
| | ସେ ମହାଦେବ ଭଗବାନ | । କୃପାରେ କଲେ ତା' ଭୋଜନ | ।। | ୧୬୧ |
| ୪୩ | ଯେ ହଳାହଳ ନାମେ ବିଷ | । ଅଟଇ ଜଳର କଳୁଷ | ।। | ୧୬୨ |
| | ତଥାପି ଆପଣା ବୀର୍ଯ୍ୟକୁ | । ଦେଖାଇଲା ସେ ସମସ୍ତଙ୍କୁ | ।। | ୧୬୩ |
| | ଯା ତାଙ୍କ କଣ୍ଠଦେଶେ ନୀଳ | । ବର୍ଣ୍ଣକୁ କଲା ସେ ଗରଳ | ।। | ୧୬୪ |
| | ପରମ କୃପାଳୁ ଯେ ହର | । ତାଙ୍କୁ ସେ ହେଲା ଅଳଂକାର | ।। | ୧୬୫ |
| ୪୪ | ଲୋକତାପରେ ସଂତାପିତ | । ହୁଅନ୍ତି ସାଧୁଏ ବହୁତ | ।। | ୧୬୬ |
| | ପରମ ଆରାଧନ ହୋଇ | । ବିଷ୍ଣୁର ସେ କଥା ହୁଅଇ | ।। | ୧୬୭ |
| ୪୫ | ଦକ୍ଷତନୟା, ବ୍ରହ୍ମା, ହରି | । ପ୍ରଜାମାନେ ହେଁ ଦେଖି କରି | ।। | ୧୬୮ |
| | ସେ କର୍ମ ମହାଦେବଙ୍କର | । ପ୍ରଶଂସା କଲେକ ସତ୍ୱର | ।। | ୧୬୯ |
| ୪୬ | ବିଷକୁ ପିବନ୍ତେ ଯେ ହର | । ଯେ କିଛି ହସ୍ତରୁ ତାଙ୍କର | ।। | ୧୭୦ |
| | ଗଳି ପଡ଼ିଲା ଅବନିରେ | । ତାହାକୁ ଘେନିଲେ ସତ୍ୱରେ | ।। | ୧୭୧ |
| | ବୃଶ୍ଚିକ ଅହି ଦନ୍ଦଶୂକ | । ବିଷ-ଓଷଧିଏ ଯେତେକ | ।। | ୧୭୨ |
| | ଯେ ବିଷବନ୍ତ ଜନ୍ତୁ ଆନେ | । କିଛି ହିଁ ଘେନିଲେ ସେମାନେ | ।। | ୧୭୩ |
| | ହେ କୃଷ୍ଣ କରୁଣାସାଗର | । ଦୀନବନ୍ଧୁକୁ ଦୟା କର | ।। | ୧୭୪ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଅମୃତମଥନେ ହଳାହଳପାନଂ
ନାମ ସପ୍ତମୋଽଧ୍ୟାୟଃ ।।

# ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ମଥ୍ୟମାନେଽବ୍ଧୌ ଲକ୍ଷ୍ମ୍ୟା ବିଷ୍ଣୌ ବୃତେଽସୁରୈଃ ।
ଧନ୍ୱନ୍ତରେର୍ହୃତେ ସୋମେ ମୋହିନ୍ୟୁଭବ ଈର୍ଯ୍ୟତେ ।। ୧

ଶ୍ରୀଶୁକ ଉବାଚ

୧ ଗରଳ ପିଅନ୍ତେ ଶଙ୍କର । ସୁପ୍ରୀତ ହୋଇ ସୁରାସୁର ।। ୧
ମନ୍ଥିଲେ ସିନ୍ଧୁକୁ ସତ୍ୱରେ । ସୁରଭି ହେଲା ତଦନ୍ତରେ ।। ୨
୨ ଯେ ବ୍ରହ୍ମବାଦୀ ଋଷି ଥିଲେ । ସେ ଅଗ୍ନିହୋତ୍ରୀକି ଲଭିଲେ ।। ୩
ଯେ ବ୍ରହ୍ମଲୋକଦାୟୀ ଯାଗ । ତାର ଯେ ଶୁଦ୍ଧ ହବିର୍ଭାଗ ।। ୪
ଏଥୁଁ ସେ ଜାତ ହେବ ପୁଣ । ହେ ନୃପ ! ଏହା ବିଚାରିଣ ।। ୫
୩ ଯେ ଶୁକ୍ଳ ଦିଶେ ଚନ୍ଦ୍ରପ୍ରାୟ । ସେ ଉଚ୍ଚୈଃଶ୍ରବା ନାମେ ହୟ ।। ୬
ତଦନ୍ତେ ସଂଭୂତ ହୋଇଲା । ବଳି ତହିଁକି ବାଞ୍ଛା କଲା ।। ୭
ବିଷ୍ଣୁଶିକ୍ଷାରେ ଶଚୀପତି । ନ କଲେ ସେ ହୟରେ ମତି ।। ୮
୪ ତଦନନ୍ତରେ ଐରାବତ । ନାମେ କରୀନ୍ଦ୍ର ହେଲା ଜାତ ।। ୯
ଚନ୍ଦ୍ରମାପ୍ରାଏ ସେ ପାଣ୍ଡୁର । ଚାରିଦନ୍ତରେ ସେ କୁଞ୍ଜର ।। ୧୦
କୈଳାସପର୍ବତର ଯେହି । ସେ ମହିମାକୁ ସେ ହରଇ ।। ୧୧
୫ ଅଇରାବଣ[1] ଯେ କୁଞ୍ଜର । ସେ ଆଦି ଅଟଇ ଯାହାର ।। ୧୨
ତଦନନ୍ତରେ ଉତପତି । ହେଲେ ସେ ଆଠ ଦିଗଦନ୍ତୀ ।। ୧୩
ଅଭ୍ରମୁ ଆଦି ଯେ କରିଣୀ । ସେ ଆଠ ହେଲେ ନୃପମଣି ।। ୧୪
୬ କୌସ୍ତୁଭ ହୋଇ ନାମ ଯାର । ସେ ପଦ୍ମରାଗ ରତ୍ନସାର ।। ୧୫
ବକ୍ଷୋମଣ୍ଡନର ନିମିତ୍ତେ । ହରି ବାଞ୍ଛିଲେ ତାହା ଚିତ୍ତେ ।। ୧୬
ଯେ ସୁରଲୋକବିଭୂଷଣ । ହେଲା ସେ ପାରିଜାତ[2] ପୁଣ ।। ୧୭
ଅର୍ଥିଙ୍କି ଅର୍ଥମାନଙ୍କରେ । ଯେ ପୁଣ ପୁଣ ପୂର୍ଣ୍ଣ କରେ ।। ୧୮
ହେ ନୃପ ! ମହୀରେ ଯେସନ । ତୁ ତୋଷ କରୁ ଅର୍ଥିଜନ ।। ୧୯
୭ ମଞ୍ଜୁଳ ଯେବଣ ଗମନ । ଲୀଳାସହିତେ ବିଲୋକନ ।। ୨୦
ଏଣେ ଯେ ସ୍ୱର୍ଗବାସିଙ୍କର । ରତି କରନ୍ତି ନିରନ୍ତର ।। ୨୧
ଯା' କଣ୍ଠେ ପଦକ ଶୋଭନ । ରୁଚିର ଯାହାଙ୍କ ବସନ ।। ୨୨
ତଦନନ୍ତରେ ଉତପନ୍ନ । ହେଲେ ସେ ଅପସରାମାନ ।। ୨୩
୮ ତଦନନ୍ତରେ ହେଲେ ଜାତ । ପରମ ଲକ୍ଷ୍ମୀ ସେ ସାକ୍ଷାତ ।। ୨୪
ସେହୁ ତତ୍ପରା କୃଷ୍ଣଠାରେ । ଦିଗଙ୍କୁ ରଞ୍ଜଇ କାନ୍ତିରେ ।। ୨୫
ସୁଦାମା ପର୍ବତରୁ ଜାତ । ବିଜୁଳି ଝଟକେ ଯେମନ୍ତ ।। ୨୬

---

୧. ଅଇରାବତ । ୨. କଳ୍ପବୃକ୍ଷ ।

୯ ସୁରମାନଙ୍କ ସହିତରେ । ଥିଲେ ଯେ ଦାନବ[୧] ଅସୁରେ ।।
ଉଦାରଭାବ ଯେ ଲକ୍ଷ୍ମୀର । ରୂପ ବୟସ ବର୍ଣ୍ଣ ଆର ।।
ସେ ମହିମାରେ ବଶ ହେଲେ । ତାହାର ଠାରେ ବାଞ୍ଛା କଲେ ।।
୧୦ ଆସନ ଯେ ଅତି ଅଦ୍ଭୁତ । ଦେଲେ ତାହାଙ୍କୁ ପୁରୁହୂତ ।।
ସରିତଶ୍ରେଷ୍ଠମାନେ ତହିଁ । ଆପଣେ ମୂର୍ତ୍ତିମନ୍ତ ହୋଇ ।।
କନକକୁମ୍ଭେ ଶୁଚି ଜଳ । ଆଣିଣ ଦେଲେ ତତକାଳ ।।
୧୧ ଅଭିଷେଚନକୁ ଉଚିତ । ଯେବା ଓଷଧି ନାନାମତ ।।
ସେମାନ ଆଣିଲେ ଧରଣୀ । ଧେନୁଏ ପଞ୍ଚଗବ୍ୟ ପୁଣି ।।
ମଧୁ-ମାଧବ[୨] ଭବ ଫଳ । ଦେଲାକ ସେ ବସନ୍ତ କାଳ ।।
୧୨ ଯଥାବିଧିରେ ଋଷିମାନ । କଲେ ଅଭିଷେକ କଳ୍ପନ ।।
ଗନ୍ଧର୍ବେ ଉତ୍ତମ ଗାଇଲେ । ନଟୀଏ ନୃତ୍ୟ ଗୀତ କଲେ ।।
୧୩ ପରସ୍ପରରେ ଆନୁଁଆନ । ମିଶ୍ରିତ ଯାହାଙ୍କ ନିସ୍ୱନ ।।
ସେ ବେଣୁ ବୀଣା ଭେରୀ ଶଙ୍ଖ । ମୃଦଙ୍ଗ, ପଣବ, ଗୋମୁଖ ।।
ମୁରଜ ଆନକ ଆବର । ବଜାଇଲେ ତା' ଜଳଧର ।।
୧୪ ବ୍ରାହ୍ମଣେ କରନ୍ତେ ପଠନ । ଉତ୍ତମ ସୂକ୍ତ ବାକ୍ୟମାନ ।।
ଶୋଭିତ ପଦ୍ମ ଯାର ହସ୍ତେ । ସେ ଲକ୍ଷ୍ମୀଦେବୀଙ୍କି ତଦନ୍ତେ ।।
[୩]ସ୍ନାନ କରାଇଲେ ସୁବର୍ଣ୍ଣ । କୁମ୍ଭରେ ଦିଗଦନ୍ତିମାନ ।।
୧୫ ସମୁଦ୍ର ଦେଲା ବେନି ବାସ । ଯେ ପୀତ କୋଷରୁ ପ୍ରକାଶ ।।
ଯହିଁ ମଧୁରେ ମତ୍ତ ହୋଇ । ଭ୍ରମରମାନେ ଛନ୍ତି ରହି ।।
ସେ ବଇଜୟନ୍ତୀ ମାଳାକୁ । ବରୁଣ ଆଣି ଦେଲା ତାଙ୍କୁ ।।
୧୬ ରତ୍ନରେ ବିଚିତ୍ର ସୁନ୍ଦର । ଯେ ନାନାବିଧ ଅଳଂକାର ।।
ତା' ବିଶ୍ୱକର୍ମା ପ୍ରଜାପତି । ଦେଲା ସେ ଦେବୀଙ୍କି ଝଟିତି ।।
ହାରକୁ ଦେଲା ସରସ୍ୱତୀ । ପଦ୍ମକୁ ଦେଲେ ବେଦପତି ।।
କୁଣ୍ଡଳଯୁଗଳ ଅର୍ପଣ । କଲେ ଉରଗମାନେ ପୁଣ ।।
୧୭ ଯେବଣ ବଦନେ ନିର୍ମଳ । ସୁନ୍ଦର କପୋଳକୁଣ୍ଡଳ ।।
ବ୍ରୀଡ଼ା ସହିତେ ହାସ ଯହିଁ । ଯେ ଅତି ସୁନ୍ଦର ଦିଶଇ ।।
ଧରେ ଯେ ଏମନ୍ତ ବଦନ । କଲେ ଯାହାକୁ ସ୍ୱସ୍ତ୍ୟୟନ ।।
ସେ ଲକ୍ଷ୍ମୀ ପଦ୍ମମାଳା କରେ । ଘେନି ଚଳିଲେ ଧୀରେ ଧୀରେ ।।
ଯେଉଁ ମାଳାରେ କଳସ୍ୱନ । କରୁ ଅଛନ୍ତି ଭୃଙ୍ଗମାନ ।।
୧୮ ସମାନ ଅଟନ୍ତି ଯେ ଦୁଇ । ଯାହାଙ୍କ ମଧ୍ୟେ ଛିଦ୍ର ନାହିଁ ।।
ଯହିଁରେ ହୋଇଛି ସେଚନ । ଉତ୍ତମ କୁଙ୍କୁମ ଚନ୍ଦନ ।।

---

୧. ମାନବ । ୨. ମଧୁ-ମାଧବ = ଚୈତ୍ର ବୈଶାଖ । ୩. 'ସ୍ନାହାନ କରାଇଲେ ପୂର୍ଣ୍ଣ' ।

ଏମନ୍ତ ସ୍ତନଦ୍ୱୟ ଧରି । ଅଛି ଯେ ଅତି କୃଶୋଦରୀ ॥ ୫୮
ମନୋଜ୍ଞ ନୂପୁର ଧ୍ୱନିରେ । ଭ୍ରମନ୍ତେ ଏଠାରେ ସେଠାରେ ॥ ୫୯
ସୁବର୍ଣ୍ଣଲତିକା ଯେସନ । ସେରୂପେ ଦିଶିଲେ ଶୋଭନ ॥ ୬୦
୧୯ ଯହିଁରେ ବ୍ୟଭିଚାରୀ ନୋହି । ଉତ୍ତମ ଗୁଣମାନ ଥାଇ ॥ ୬୧
ଯେ ସର୍ବକାଳେ ବିଦ୍ୟମାନ । ଏମନ୍ତ ଆପଣାର ସ୍ଥାନ ॥ ୬୨
ଗନ୍ଧର୍ବ ଅସୁର ଚାରଣ । ଯକ୍ଷ ଅମର ସିଦ୍ଧ ଗଣ ॥ ୬୩
ଏ ଆଦି ମାନଙ୍କର ଠାଇଁ । ଦେଖନ୍ତେ ଲଭିଲା ସେ ନାହିଁ ॥ ୬୪
୨୦ ଦୁର୍ବାସା ଆଦି ଋଷିଙ୍କର । ତପସ୍ୟା ଅଛି ଗୁରୁତର ॥ ୬୫
ତାଙ୍କର କ୍ରୋଧଜୟ ନାହିଁ । ଗୁରୁ ଶୁକ୍ରାଦି ପୁଣ ଯେହି ॥ ୬୬
ସେମାନଙ୍କର ଅଛି ଜ୍ଞାନ । ସେ ନୋହେ ସଙ୍ଗବିବର୍ଜନ ॥ ୬୭
ବ୍ରହ୍ମସୋମାଦି ହୋଇ ଯେତେ । ମହତ ଅଟନ୍ତି ଜଗତେ ॥ ୬୮
ତାଙ୍କର କାମଜୟ ନାହିଁ । ଯେ ଆନ ଇନ୍ଦ୍ର ଆଦି ହୋଇ ॥ ୬୯
ସେ କି ଅଟନ୍ତି ଅଧୀଶ୍ୱର । ପର ଆଶ୍ରୟ ଯାହାଙ୍କର ॥ ୭୦
୨୧ ପରଶୁରାମ ଆଦି ଠାରେ । ଧର୍ମ ଅଛି ଏ ଜଗତରେ ॥ ୭୧
ପ୍ରାଣୀଙ୍କ ଠାରେ ପ୍ରୀତିପଣ । ସେମାନଙ୍କର ନାହିଁ ପୁଣ ॥ ୭୨
ଶିବିପ୍ରଭୃତିଠାରେ ଯେହି । ସେ ଦାନ ମୁକ୍ତିହେତୁ ନୋହି ॥ ୭୩
କାର୍ତ୍ତବୀର୍ଯ୍ୟାଦି ପୁରୁଷର । ବିକ୍ରମ ଅଛି ଗୁରୁତର ॥ ୭୪
କେବଳ କାଳବେଗେ ସେହି । କିଛି ଦିନରେ ନାଶ ହୋଇ ॥ ୭୫
ଗୁଣସଙ୍ଗରେ ଯେ ବର୍ଜିତ । ସନକ ଆଦି ତପୋବନ୍ତ ॥ ୭୬
ସେ ତ ନୋହିବେ ମୋର ବର । ଯେଣୁ ସେ ସମାଧିତତ୍ପର ॥ ୭୭
୨୨ ମାର୍କଣ୍ଡେୟାଦି ଋଷି ଯେହି । ଚିରଆୟୁଷ ଅଛି ତହିଁ ॥ ୭୮
ତଥାପି ସେମାନଙ୍କ ଠାଇଁ । ଶୀଳ ମଙ୍ଗଳ ସ୍ଥିତି ନାହିଁ ॥ ୭୯
ଇନ୍ଦ୍ରିୟଦମନସ୍ୱଭାବ । ଯେଣୁ ତାଙ୍କର ଉଦଭବ ॥ ୮୦
ହିରଣ୍ୟକଶିପୁ ପ୍ରଭୃତି । ଯେ ଅବା ଦିତିସୁତେ ଏଥି ॥ ୮୧
ଏମାନ[୧] ଥିଲେହେଁ ତାଙ୍କର । ସ୍ଥୈର୍ଯ୍ୟ ନ ଜାଣି ଆୟୁଷର ॥ ୮୨
ବିଷ୍ଣୁବିଦ୍ୱେଷରୁ ପ୍ରାପତ । ତାଙ୍କ ମରଣ ଅକସ୍ମାତ ॥ ୮୩
ଇନ୍ଦ୍ରିୟଦମନାଦି ଯେହି । ଯେଣୁ ସେ ରୁଦ୍ରଙ୍କର ନାହିଁ ॥ ୮୪
ଏଣୁ ମଙ୍ଗଳ ଶୀଳ ତାର । ଆୟୁଷନିଶ୍ଚୟ[୨] ଅପାର ॥ ୮୫
ପୂର୍ବ ଉକତ ଦୋଷମାନ । ନାହିଁ ତାହାଙ୍କ ସନ୍ନିଧାନ ॥ ୮୬
ତଥାପି ଅମଙ୍ଗଳ ସେହି । ଶ୍ମଶାନବାସ ଆଦି ହୋଇ ॥ ୮୭
ଯେ ବା ଅମଙ୍ଗଳଚେଷ୍ଟିତ । ତାହାଙ୍କ ଠାରେ ସେ ବିଦିତ ॥ ୮୮

୧. ଏମାନ = ଶୀଳ ମଙ୍ଗଳ । ୨. ନିର୍ଣ୍ଣୟ ।

ଶ୍ରୀଭଗବାନ ଯେ ପ୍ରକାଶ । ନାହିଁ ତହିଁରେ କିଛି ଦୋଷ ॥ ୮୯
ସେ ଆତ୍ମାରାମଭାବୁଁ ମୋତେ । ବାଞ୍ଛା ନ କଲେ ନିଜ ଚିତ୍ତେ ॥ ୯୦
୨୩ ରମା ଏମନ୍ତ ବିଚାରିଣ । କଲା ମୁକୁନ୍ଦଙ୍କୁ ବରଣ ॥ ୯୧
ଅପେକ୍ଷା ନ ଥିଲେହେଁ ତାର । ଯେଣୁ ସେ ବାଞ୍ଛିତ ରମାର ॥ ୯୨
ଅବ୍ୟଭିଚାରୀ ସନ୍ତ ଗୁଣ । ଧର୍ମ ଜ୍ଞାନାଦି ଯେବା ପୁଣ ॥ ୯୩
ସେ ନିରପେକ୍ଷେ ଛନ୍ତି ଯହିଁ । ସର୍ବ ଉତ୍ତମ ଏଣୁ ସେହି ॥ ୯୪
ସେ ଅଟେ ତ୍ରିଗୁଣରେ ହୀନ । ଅଣିମା ଆଦି ଯେ ବା ଆନ ॥ ୯୫
ସେ ଗୁଣମାନେ ନିରନ୍ତର । ଅଛନ୍ତି ଯେଉଁ ପ୍ରଭୁଠାର ॥ ୯୬
୨୪ ଯେ ମତ୍ତ ମଧୁବ୍ରତଯୂଥ । ନାଦେ ହୋଇଛି ଶବଦିତ ॥ ୯୭
ଯେ ଅଟେ ଅତ୍ୟନ୍ତ ମଞ୍ଜୁଳ । ନବୀନ ସରସିଜମାଳ ॥ ୯୮
ସେ ମାଳା ହରିଅଂସଦେଶେ । ନିବେଶି ଦେବୀ ମନତୋଷେ ॥ ୯୯
ସେ ମୁକୁନ୍ଦର ଯେଉଁ ଉର । ସ୍ଥାନ ଅଟଇ ଆପଣାର ॥ ୧୦୦
ପ୍ରତୀକ୍ଷା କରି ତା' ନେତ୍ରରେ । ରହିଲେ ହରିର ପାଶରେ ॥ ୧୦୧
ଲଜ୍ଜାସହିତ ଯେଉଁ ହାସ । ତେଣେ ଯେ ନୟନବିକାଶ ॥ ୧୦୨
୨୫ ଯାହାର ବିଭବ ବହୁତ । ଯେ ତିନି ଜଗତର ମାତ ॥ ୧୦୩
ପରମ ସ୍ଥାନ ସେ ଲକ୍ଷ୍ମୀର । କଲେ ସେ ଆପଣାର ଉର ॥ ୧୦୪
ତିନିଜଗତତାତ ହରି । ସେ ଲକ୍ଷ୍ମୀ ଯହିଁ ରହିକରି ॥ ୧୦୫
କରୁଣାକଟାକ୍ଷେ ଚାହିଁଲେ । ନିଜ ପ୍ରଜାଙ୍କୁ ବୃଦ୍ଧି କଲେ ॥ ୧୦୬
ଯେ ଅଧିପତିମାନଙ୍କର । ସହିତେ ତ୍ରିଲୋକ ଆବର ॥ ୧୦୭
୨୬ ଯେ ଦେବେ ଯେ ଦେବଯୁବତୀ । ନୃତ୍ୟ ଗାୟନ କରୁଛନ୍ତି ॥ ୧୦୮
ଶଙ୍ଖ ମୃଦଙ୍ଗ ତୂର୍ଯ୍ୟ ହୋଇ । ତାଙ୍କର ବାଦ୍ୟମାନେ ଯେହି ॥ ୧୦୯
ସେମାନଙ୍କର ଧ୍ୱନିମାନ । ଶୁଭିଲେ ହୋଇ ଭିନ୍ନ ଭିନ୍ନ ॥ ୧୧୦
୨୭ ବ୍ରହ୍ମା ଅଙ୍ଗିରା ରୁଦ୍ରମୁଖ୍ୟ । ଯେ ପ୍ରଜାପତିଏ ପ୍ରତ୍ୟକ୍ଷ ॥ ୧୧୧
ସେମାନେ ପୁଷ୍ପ ବରଷିଲେ । ଯଥାର୍ଥ ମନ୍ତ୍ରେ ସ୍ତୁତି କଲେ ॥ ୧୧୨
ଯେଉଁ ମନ୍ତ୍ରରେ ଭଗବାନ । ସାକ୍ଷାତ ହୋଏ ପ୍ରତିପନ୍ନ ॥ ୧୧୩
୨୮ ଲକ୍ଷ୍ମୀ ଚାହାଁନ୍ତେ ଦେବମାନେ । ଯେ ପ୍ରଜା ପ୍ରଜାପତି ଆନେ ॥ ୧୧୪
ଶୀଳାଦି ଗୁଣେ ପୂର୍ଣ୍ଣ ହେଲେ । ଅତ୍ୟନ୍ତ ସୁଖକୁ ଲଭିଲେ ॥ ୧୧୫
୨୯ ସେ ଦୈତ୍ୟଦାନବଙ୍କୁ ଯେବେ । ତେଜିଲେ ମହାଲକ୍ଷ୍ମୀ ତେବେ ॥ ୧୧୬
ହେଲେ ସେ ଲୋଭୀ ଲଜ୍ଜାହୀନ । ନିଃସତ୍ତ୍ୱ ଉଦ୍ୟୋଗଶୂନ୍ୟ ॥ ୧୧୭
୩୦ ଏଥୁ ଅନ୍ତରେ ହେଲା ଜାତ । କନ୍ୟା ବାରୁଣୀ ନାମେ ଖ୍ୟାତ ॥ ୧୧୮
ଲୋଚନ ଯୁଗଳ ଯାହାର । କମଳପ୍ରାୟ ମନୋହର ॥ ୧୧୯
ତାହାକୁ ହରିର ସ୍ୱୀକାରେ । ଘେନିଲେ ସକଳ ଅସୁରେ ॥ ୧୨୦

୩୧ ହେ ମହାରାଜ ! ଏଥୁଅନ୍ତେ । କଶ୍ୟପ ଋଷିଙ୍କର ସୁତେ ॥ ୧୨୧
ଅମୃତଅର୍ଥେ କରି ମନ । ସମୁଦ୍ର କରନ୍ତେ ମଥନ ॥ ୧୨୨
ତହିଁରୁ ଅତି ଅଦଭୁତ । ପୁରୁଷେ ହୋଇଲା ସଂଭୂତ ॥ ୧୨୩
୩୨ ଯା' ବାହୁ ପ୍ରଲମ୍ବ ପୀବର[୧] । ଅରୁଣ ଲୋଚନ ଯାହାର ॥ ୧୨୪
ଯା' ଗ୍ରୀବା ଶଙ୍ଖନାଭି ପ୍ରାୟ । ସୁବୃତ୍ତ, ଧରେ ରେଖାତ୍ରୟ ॥ ୧୨୫
ଶ୍ୟାମ, ତରୁଣ, ମାଳାଯୁତ । ଯେ ସର୍ବାଭରଣେ ଭୂଷିତ ॥ ୧୨୬
୩୩ ପୀତ ଅଟଇ ଯା' ଅମ୍ବର । ବିଶାଳ ବକ୍ଷସ୍ଥଳ ଯାର ॥ ୧୨୭
ଯା' ମଣିକୁଣ୍ଡଳ ଦୀପିତ । ସ୍ନିଗ୍ଧ କୁଞ୍ଚିତ ଯା' କେଶାନ୍ତ ॥ ୧୨୮
ଭଦ୍ର ଯାହାର ଅଙ୍ଗମାନ । ବିକ୍ରମେ ସିଂହର ସମାନ ॥ ୧୨୯
ବଳୟେ ଅଟେ ଯେ ଭୂଷିତ । ଯହିଁରେ ପୂରିଛି ଅମୃତ ॥ ୧୩୦
ସେ କଳଶକୁ ଧରି କରେ । ପ୍ରବେଶ ହୋଇଲେ ସେଠାରେ ॥ ୧୩୧
୩୪ ସେ ଭଗବାନର ସାକ୍ଷାତ । ଅଂଶର ଅଂଶରୁ ସଂଭୂତ ॥ ୧୩୨
ସେ ଧନ୍ୱନ୍ତରି ନାମେ ଖ୍ୟାତ । ଜାଣନ୍ତି ଆୟୁର୍ବେଦତତ୍ତ୍ୱ ॥ ୧୩୩
ହୁଅଇ ଯେତେ ଯେତେ ଯାଗ । ତହିଁରେ ଲଭନ୍ତି ସେ ଭାଗ ॥ ୧୩୪
୩୫ ସିନ୍ଧୁରୁ ସର୍ବଦ୍ରବ୍ୟମାନ । କରନ୍ତେ ହରିବାକୁ ମନ ॥ ୧୩୫
ସେ ଧନ୍ୱନ୍ତରିଙ୍କି ସେଠାରେ । ଦେଖିଲେ ସକଳ ଅସୁରେ ॥ ୧୩୬
ଅମୃତପୂର୍ଣ୍ଣ କୁମ୍ଭ ପୁଣ । ଚାହିଁ ତା' ନେଲେ ତତକ୍ଷଣ ॥ ୧୩୭
୩୬ ଅସୁରେ ଅମୃତକଳଶ । ନିଅନ୍ତେ ସକଳ ତ୍ରିଦଶ ॥ ୧୩୮
ବିଷଣ୍ଣମାନସ ହୋଇଣ । ହରିଙ୍କି ପଶିଲେ ଶରଣ ॥ ୧୩୯
୩୭ ଯେ ଭୃତ୍ୟମନୋରଥମାନ । କରନ୍ତି ପ୍ରଭୁ ଭଗବାନ ॥ ୧୪୦
ଏରୂପେ ଦେଖି ତାଙ୍କ ଦୈନ୍ୟ । କହିଲେ ଏମନ୍ତ ବଚନ ॥ ୧୪୧
ହେ ଦେବତାଏ ! ନିଜମନେ । ଖେଦ ନ ଲଭ ତୁମ୍ଭେମାନେ ॥ ୧୪୨
ଦାନବଙ୍କର ପରସ୍ପରେ । କଳହ ଉତପତିଦ୍ୱାରେ ॥ ୧୪୩
ମୁଁ ନିଜମାୟାରେ ସାଧିତ । କରିବି ତୁମ୍ଭର ଯେ ଅର୍ଥ ॥ ୧୪୪
୩୮ ମୁଁ ଆଗ ସୁଧା ପିଇବଇଁ । ପ୍ରଥମୁଁ ପିଇବୁ ତୁ ନାହିଁ ॥ ୧୪୫
ହେ ନୃପ ! ଏରୂପେ ତାଙ୍କର । କଳି ହୋଇଲା ପରସ୍ପର ॥ ୧୪୬
ଅମୃତଅର୍ଥେ ବାଞ୍ଛାଯୁତ । ହୋଇଛି ଯେଣୁ ତାଙ୍କ ଚିତ୍ତ ॥ ୧୪୭
୩୯ ଆମ୍ଭର ସମାନ ଆୟାସ । ହେତୁ ଅଟନ୍ତି ଯେ ତ୍ରିଦଶ ॥ ୧୪୮
ନିଜ ଭାଗକୁ ଦେବତାଏ । ଯୋଗ୍ୟ ଅଟନ୍ତି ସେ ନିଶ୍ଚୟେ ॥ ୧୪୯
ସତ୍ରେ[୨] ଯେସନ ଯଜମାନ । ଋତ୍ୱିଜେ ଫଳରେ ସମାନ ॥ ୧୫୦

---

୧. ମୋଟା ।

୨. ''ଋଦ୍ଧିକାମାଃ ସତ୍ରମାସୀରନ୍'' ଇତି, ''ଯେ ଯଜମାନାସ୍ତ ଋତ୍ୱିଜଃ'' ଇତି ଚ । (ଶ୍ରୁତିଃ)

| | | | | |
|---|---|---|---|---|
| | ଏଣୁ ଏ ଧର୍ମ ସନାତନ | । ଏଥି ନ କର କିଛି ଆନ | ।। | ୧୫୧ |
| ୪୦ | ହେ ନୃପ ! ଅମୃତକଳଶ | । ନେଲେ ଯେ ବଳିଷ୍ଠ ରାକ୍ଷସ | ।। | ୧୫୨ |
| | ଦୁର୍ବଳ ମତ୍ସରୀ ଅସୁରେ | । ତାହାଙ୍କୁ ଏମନ୍ତ ପ୍ରକାରେ | ।। | ୧୫୩ |
| | ନିଷେଧ କଲେ ବାରମ୍ବାର | । ଯେ ପୁଣ ସ୍ୱକୀୟ ତାଙ୍କର | ।। | ୧୫୪ |
| ୪୧ | ସର୍ବ ଉପାୟଙ୍କ ଈଶ୍ୱର | । ଯେ ବିଷ୍ଣୁ ସେ ଏଥୁଁ ଅନ୍ତର | ।। | ୧୫୫ |
| | ଧଇଲେ ଅତି ଅଦଭୁତ | । ବନିତାରୂପକୁ ତୁରିତ | ।। | ୧୫୬ |
| | ଯେବଣ ରୂପକୁ ବିଶେଷି | । ବଚନେ ନ ପାରି ନିର୍ଦ୍ଦେଶି | ।। | ୧୫୭ |
| ୪୨ | ଯେ ରମ୍ୟ ନୀଳୋତ୍ପଳଶ୍ୟାମ | । ସର୍ବାବୟବେ ଅଭିରାମ | ।। | ୧୫୮ |
| | ସମାନ ଯେ ବେନି ଶ୍ରବଣ | । ତହିଁ ଯାହାର ଆଭରଣ | ।। | ୧୫୯ |
| | ସୁନ୍ଦର କପୋଳ, ଉନ୍ନତ | । ନାସାରେ ଯା' ମୁଖ ଶୋଭିତ | ।। | ୧୬୦ |
| ୪୩ | ଯେ ନବଯଉବନଭର | । ସୁଜାତ ସ୍ତନ କୃଶୋଦର | ।। | ୧୬୧ |
| | ମୁଖ ଆମୋଦରେ ସନ୍ତତ | । ଯେ ଅଳିମାନେ ଅନୁରତ | ।। | ୧୬୨ |
| | ତାଙ୍କ ଝଙ୍କାରେ ଉଦବେଗ | । ଲଭିଛି ଯା' ଲୋଚନଯୁଗ | ।। | ୧୬୩ |
| ୪୪ | ବିକଚ ମଲ୍ଲୀମାଳ ଯେହି | । ସ୍ୱକେଶଭାରେ ଅଛି ବହି | ।। | ୧୬୪ |
| | ଯା ହେତୁ ଗ୍ରୀବା ମନୋହର | । କଣ୍ଠାଭରଣ ସେ ଯାହାର | ।। | ୧୬୫ |
| | ଶୋଭନ ଭୁଜଯୁଗ ଯେହି | । ଅଙ୍ଗଦଯୁଗେ ଶୋଭା ପାଇ | ।। | ୧୬୬ |
| ୪୫ | ନିର୍ମଳ ବସ୍ତ୍ରରେ ବେଷ୍ଟିତ | । ନିତମ୍ବଦ୍ୱୀପେ ଯେ ଶୋଭିତ | ।। | ୧୬୭ |
| | ଏମନ୍ତ କାଞ୍ଚୀରେ ସୁନ୍ଦର | । ଯା' ଚଳଚରଣନୂପୁର | ।। | ୧୬୮ |
| ୪୬ | ସଲଜ୍ଜ ସ୍ମିତେ ବିକ୍ଷିପିତ | । ଭ୍ରୂଲତାବିଳାସସହିତ | ।। | ୧୬୯ |
| | ଏମନ୍ତ ଦୃଷ୍ଟିର ନିପାତେ | । ଦୈତ୍ୟଯୂଥପତିଙ୍କ ଚିତ୍ତେ | ।। | ୧୭୦ |
| | ମନସିଜକୁ ଅନୁକ୍ଷଣ | । ଯେ କରେ ଉଦ୍ଦୀପନ ପୁଣ | ।। | ୧୭୧ |
| | ନନ୍ଦନନ୍ଦନପାଦଧ୍ୟାନେ | । ହରଷ ଦୀନବନ୍ଧୁ ମନେ | ।। | ୧୭୨ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଅମୃତମଥନେ ଶ୍ରୀଭଗବନ୍ମାୟୋପଲମ୍ଭନଂ
ନାମ ଅଷ୍ଟମୋଽଧ୍ୟାୟଃ ।।

# ନବମ ଅଧ୍ୟାୟ

ନବମେ ମୋହିତୈର୍ଦୈତ୍ୟୈରର୍ପିତେଽମୃତଭାଜନେ ।
ତଦ୍‌ବଞ୍ଚନେନ ଦେବେଭ୍ୟୋଽମୃତଂ ଦତ୍ତଂ ତୟେର୍ଯ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ମିତ୍ରଭାବକୁ ଦୂର କରି । ଦସ୍ୟୁଙ୍କ ଧର୍ମକୁ ଆଚରି ॥ ୧
ଅନ୍ୟୋଽନ୍ୟେ କଳହ କରନ୍ତେ । ଅମୃତପାତ୍ରକୁ ହରନ୍ତେ ॥ ୨
ଦେଖିଲେ ସେ ଅସୁରେ ତହିଁ । ଏକ ଯୁବତିଏ ଆସଇ ॥ ୩
୨ ଅହୋ ଏହାର ସଉନ୍ଦର୍ଯ୍ୟ । ବୟସ ଦ୍ୟୁତି ହିଁ ଆଶ୍ଚର୍ଯ୍ୟ ॥ ୪
ଏମନ୍ତ ବୋଲନ୍ତେ ଯାଇଣ । ପୁଛିଲେ ତାହାକୁ ସେ ପୁଣ ॥ ୫
ଯେଣୁ ହୃଦୟେ ତାହାଙ୍କର । ଜାତ ହୋଇଛି ପୁଷ୍ପଶର ॥ ୬
୩ ହେ ପଦ୍ମପଳାଶଲୋଚନେ । କେ ତୁ କାହିଁରୁ ଏ ଭୁବନେ ॥ ୭
କି କରିବାକୁ କରୁ ଚିନ୍ତା । କହ ତୁ କାହାର ବନିତା ॥ ୮
ମନକୁ ଆମ୍ଭମାନଙ୍କର । ମନ୍ଥୁଅଛୁ କି ନିରନ୍ତର ॥ ୯
୪ ଯେ ସିଦ୍ଧ ଗନ୍ଧର୍ବ ଚାରଣ । ଯେ ବା ଅମର ଦୈତ୍ୟଗଣ ॥ ୧୦
ସେମାନେ ପୂର୍ବକାଳେ ତୋତେ । ଛୁଇଁ ନାହାନ୍ତି ଏ ଜଗତେ ॥ ୧୧
ଯେ ବା ଅଛନ୍ତି ଲୋକ-ଈଶ । ସେ କରି ନାହାନ୍ତି ସ୍ପରଶ ॥ ୧୨
ଏମନ୍ତରୂପେ ନିଜମନେ । ନିଶ୍ଚେ ଜାଣୁଛୁଁ ଆମ୍ଭେମାନେ ॥ ୧୩
୫ ବିଧାତା ପ୍ରାଣୀମାନଙ୍କର । ସର୍ବ ଇନ୍ଦ୍ରିୟର ମନର ॥ ୧୪
ପ୍ରୀତିକି ବିହିବାର ପାଇଁ । ହେ ସୁଭ୍ରୁ ! ଦୟାଯୁତ ହୋଇ ॥ ୧୫
ନିଶ୍ଚୟେ ପେଷିଅଛି ତୋତେ । ଏମନ୍ତ ମଣୁଅଛୁଁ ଚିତ୍ତେ ॥ ୧୬
୬ ଏକା ପଦାର୍ଥେ ସ୍ପୃହା କରି । ଅଛୁଁ ଯେ ଆମ୍ଭେ ହେ ସୁନ୍ଦରି ॥ ୧୭
ଜ୍ଞାତି ହେଲେହେଁ ଶତ୍ରୁପଣ । ପ୍ରକାଶିଅଛୁଁ ଆମ୍ଭେ ପୁଣ ॥ ୧୮
ଭାମିନି[1] ! ଆମ୍ଭମାନଙ୍କର । ମଙ୍ଗଳ-ବିଧାନ ତୁ କର ॥ ୧୯
୭ ଆମ୍ଭେ କଶ୍ୟପଋଷିଙ୍କର । ସମସ୍ତେ ଅଟୁଁ ଗୋ କୁମର ॥ ୨୦
ଏକ ଆରକେ ଆମ୍ଭେ ଭାଇ । କରିଛୁଁ ପଉରୁଷକୁ ହି ॥ ୨୧
ଯଥାବିଧିରେ ତୁ ଆମ୍ଭଙ୍କୁ । ବାଣ୍ଟି ଦିଅ ଏ ଅମୃତକୁ ॥ ୨୨
ଯେମନ୍ତେ ଆମ୍ଭମାନଙ୍କର । ଭେଦ ନୋହିବ ପରସ୍ପର ॥ ୨୩
୮ ଏମନ୍ତ ରୂପରେ ଦଇତେ । ତାହାଙ୍କୁ ବଚନ କହନ୍ତେ ॥ ୨୪
ମାୟାଯୋଷିତବପୁ ହରି । ରୁଚିର ଅପାଙ୍ଗରେ କରି ॥ ୨୫
ଚାହାଁନ୍ତେ ତାହାଙ୍କୁ ହସିଣ । କହିଲେ ଏ ବାକ୍ୟକୁ ପୁଣ ॥ ୨୬

---

୧. ଭାବିନି ।

ଶ୍ରୀଭଗବାନୁବାଚ

୯ କଶ୍ୟପଙ୍କର ସୁତ ହୋଇ । ମୁଁ ଯେ ପୁଂଶ୍ଚଳୀ ମୋର ତହିଁ ॥
କିମ୍ପାଇଁ ହୋଇଲ ସଙ୍ଗତ । ତୁମ୍ଭର ନୋହେ ଏ ଉଚିତ ॥
ପଣ୍ଡିତ ଜନ ଯେ ହୁଅଇ । ସ୍ତିରୀଙ୍କି ବିଶ୍ୱାସ ନ ଯାଇ ॥
୧୦ ଯେ ବା ମର୍କଟ ଯେ ସ୍ୱୈରିଣୀ । ଇତର ସ୍ତିରୀଜାତି ପୁଣି ॥
ତାହାଙ୍କ ମିତ୍ରଭାବ ଯେହି । ନିତ୍ୟ ହୋଇ ସେ ନ ରହଇ ॥
[1]ନୂଆକୁ ନୂଆକୁ ସଂସାରେ । ଯେ ଖୋଜୁଥାନ୍ତି ନିରନ୍ତରେ ॥

ଶ୍ରୀଶୁକ ଉବାଚ

୧୧ ଏ ରୂପେ ସେ ଅସୁରମାନେ । ତାଙ୍କ ପରିହାସ ବଚନେ ॥
ଭାଗ ଗମ୍ଭୀର କରି ତହିଁ । ହସିଲେ ମନ୍ଦ ମନ୍ଦ ହୋଇ ॥
ମନରେ ବିଶ୍ୱାସ ଲଭିଲେ । ଅମୃତପାତ୍ର ସମର୍ପିଲେ ॥
୧୨ ଅଳପ ହାସରେ ଶୋଭନ । ହୋଇଛି ଯେବଣ ବଚନ ॥
ତଦନ୍ତେ କହିଲେ ତା ହରି । ଅମୃତକୁମ୍ଭ ଘେନି କରି ॥
ସାଧୁ ଅସାଧୁ ପୁଣ ମୁହିଁ । କରିବି ଅବା କାହିଁ କାହିଁ ॥
ଏ ଦୋଷ ନ ଘେନିମ ମୋର । ସେ କଥା କରିବ ସ୍ୱୀକାର ॥
ଏମନ୍ତ ହୋଇଲେ ତୁମ୍ଭଙ୍କୁ । ବାଣ୍ଟି ଦେବି ଏ ଅମୃତକୁ ॥
୧୩ ଏମନ୍ତ ତାହାଙ୍କର ବାଣୀ । ଅସୁର ଶ୍ରେଷ୍ଠମାନେ ଶୁଣି ॥
ସେ କଥା ହେଉ ସେହିମତ । କଲେ ଏ ରୂପରେ ସଂମତ ॥
ତାହାଙ୍କ ମହିମା ଗୋଚର । ନୁହଇ ସେ ଅସୁରଙ୍କର ॥
୧୪ ଏଥୁ ଅନ୍ତରେ ଉପବାସ । କରିଣ ସେ ସର୍ବ ରାକ୍ଷସ ॥
ପ୍ରଭାତକାଳେ ସ୍ନାନ ହୋମ । କରି ଗୋ ବିପ୍ରାଦି ପ୍ରଣାମ ॥
ସ୍ୱସ୍ତିବାଚନ ବିଧି ଯେହି । ବ୍ରାହ୍ମଣଦ୍ୱାରା ତା' କରାଇ ॥
୧୫ ଯାହାର ଯହିଁ ଅଭିଳାଷ । ପିନ୍ଧିଣ ସେ ଅହତ[2] ବାସ ॥
ଭୂଷିତ ହୋଇ ଅଳଂକାରେ । ବସିଲେ ପୂର୍ବାଗ୍ର କୁଶରେ ॥
୧୬ ଧୂପଧୂମରେ ସୁବାସିତ । ଯେ ମାଲ୍ୟଦୀପରେ ସଂଯୁତ ॥
ଏମନ୍ତ ଶାଳାମଧ୍ୟେ ଯାଇ । ପୂର୍ବଦିଗେ ସଂମୁଖ ହୋଇ ॥
ଅମର-ଦୈତ୍ୟପତିମାନେ । ବସନ୍ତେ ଯଥାବିଧି ସ୍ଥାନେ ॥
୧୭ ଯେ ନାରୀରୂପୀ ଭଗବାନ । ଯା ଉରୁ କରଭ[3] ସମାନ ॥

---

୧. ଉଣାକୁ ଉଣାକୁ (ନ୍ୟୂନଂ ନ୍ୟୂନମିତି ପାଠାନ୍ତରମ୍) ।

୨. ଅହତସ୍ୟ ଲକ୍ଷଣମ୍ : - ଯେଉଁ ବସ୍ତ୍ର ଯନ୍ତ୍ରମୁକ୍ତ ବା ତନ୍ତୁମୁକ୍ତ ସ୍ୱୟଂଭୂ ତାକୁ ଅହତ 'ବାସ' କହନ୍ତି । ତାହା ମାଙ୍ଗଳିକ କର୍ମରେ ପ୍ରଶସ୍ତ ।
''ଅହତଂ (ତନ୍ତୁ) ଯନ୍ତ୍ରନିର୍ମୁକ୍ତମୁକ୍ତଂ ବାସଃ ସ୍ୱୟଂଭୁବା ।
ଶସ୍ତଂ ତନ୍ମାଙ୍ଗଲିକ୍ୟେଷୁ ତାବନ୍ମାତ୍ରେଣ ସର୍ବଦା ॥'' (ସ୍ୱାମୀ)

୩. କରଭ-''ମଣିବନ୍ଧାଦାକନିଷ୍ଠଂ କରସ୍ୟ କରଭୋ ବହିଃ'' (ଅମରଃ) । କରର ମଣିବନ୍ଧଠାରୁ କନିଷ୍ଠ ଅଙ୍ଗୁଳର ଅଗ୍ରଭାଗ ପର୍ଯନ୍ତ ବହିର୍ଭାଗକୁ 'କରଭ' କହନ୍ତି ।

ଉତ୍ତମ ଦୁକୂଳେ ସୁନ୍ଦର । ଯେ ଶ୍ରୋଣୀତଟ ଅଟେ ତାର ॥ ୫୩
ତେଣେ ଅଳସ ଯା ଗମନ । ମଦେ ବିହ୍ୱଳ ଯା' ଲୋଚନ ॥ ୫୪
କନକନୂପୁରଶିଞ୍ଜିତେ । ଯେ କରେ ଧ୍ୱନି ଅବ୍ୟକତେ ॥ ୫୫
କୁମ୍ଭସମାନେ ଯାର ସ୍ତନ । ଯା କରେ କଳଶ ଶୋଭନ ॥ ୫୬
ହେ ପରୀକ୍ଷିତ ! ଏ ଅନ୍ତରେ । ପ୍ରବେଶ ହେଲେ ସେ ଶାଳାରେ ॥ ୫୭
୧୮ ଯା କର୍ଣ୍ଣେ କନକକୁଣ୍ଡଳ । ରୁଚିର ଯା' ନାସା କପୋଳ ॥ ୫୮
ମନୋଜ୍ଞ ଅଟେ ଯାର ମୁଖ । ଯେ ପରଦେବତା ପ୍ରତ୍ୟକ୍ଷ ॥ ୫୯
ସ୍ତନରୁ କିଂଚିତ ସ୍ଖଳିତ । ହୋଇଛି ଯା' ବସନପ୍ରାନ୍ତ ॥ ୬୦
ଯେ ମହାଲକ୍ଷ୍ମୀଙ୍କର ସଖୀ । ସେ ମୋହିନୀଙ୍କି ତହିଁ ଦେଖି ॥ ୬୧
ସ୍ମିତସହିତ ବୀକ୍ଷଣରେ । ମୋହିତ ହେଲେ ସୁରାସୁରେ ॥ ୬୨
୧୯ ଦୈତ୍ୟଙ୍କୁ ଅମୃତ ଦେବାର । ସର୍ପଙ୍କୁ ଦେଲା ପ୍ରାଏ କ୍ଷୀର ॥ ୬୩
ଏ ଦୁଷ୍ଟ ଜାତିମାତ୍ରେ କ୍ରୂର । ଏଣୁ ଏକଥା ଅସୁନ୍ଦର ॥ ୬୪
ପୂର୍ବରେ ଏ ଅଛନ୍ତି କହି । ନ୍ୟାୟରେ ବାଣ୍ଟିଦିଅ ତୁହି ॥ ୬୫
ଏ ତ ସ୍ୱୀକାର କରିଛନ୍ତି । ପୂର୍ବେ ମୋ ଭଲ ମନ୍ଦ ରୀତି ॥ ୬୬
ଦେବତାମାନେ ମୋର ଭକ୍ତ । ଦେବା ତାହାଙ୍କୁ ଏ ଅମୃତ ॥ ୬୭
ଏମନ୍ତ ବିଚାରି ଅମୃତ । ନ ଦେଲେ ଦୈତ୍ୟଙ୍କୁ ଅଚ୍ୟୁତ ॥ ୬୮
୨୦ ଦେବ ଅସୁର ବେନିଙ୍କର । ଭିନ୍ନେ ପଂକ୍ତିକି କରି ଦୂର ॥ ୬୯
ଜଗତଗୁରୁ ଭଗବାନ । ବିଚାରି ଯଥାବିଧି ସ୍ଥାନ ॥ ୭୦
ଯେ ଯାହା ପଂକ୍ତିରେ ସେ ଭଲେ । ଦେବାସୁରଙ୍କୁ ବସାଇଲେ ॥ ୭୧
୨୧ କରେ କଳଶ ଧରି[୧] ହରି । ପ୍ରିୟ ବାକ୍ୟକୁ[୨] କହି କରି ॥ ୭୨
ଅସୁରମାନଙ୍କୁ ବଞ୍ଚାଇ[୩] । କ୍ରମେ କ୍ରମେ ସେ ବଳି ଯାଇ ॥ ୭୩
ଦେବେ ଯେ ଦୂରେ ବସିଥିଲେ । ତାହାଙ୍କୁ ସୁଧା ପିଆଇଲେ ॥ ୭୪
ଯେବଣ ସୁଧା ପ୍ରତ୍ୟକ୍ଷରେ । ଜରା ମରଣ ବେନି ହରେ ॥ ୭୫
୨୨ ସ୍ୱକୃତ ନିୟମକୁ[୪] ତହିଁ । ଦୈତ୍ୟେ ପ୍ରତୀକ୍ଷା କରି ରହି ॥ ୭୬
ତୁନି ହୋଇଲେ ତାଙ୍କ ସ୍ନେହେ । ନାରୀବିବାଦନିନ୍ଦାଭୟେ ॥ ୭୭
୨୩ ଏ ଯେ ଦେବତାଏ କୃପଣ । ଏମାନେ କିଛି କିଛି ପୁଣ ॥ ୭୮
ପ୍ରଥମୁଁ କରିଥାନ୍ତୁ ପାନ । ତୁମ୍ଭେମାନେ ତ ଧୀରମନ ॥ ୭୯
କ୍ଷଣେ ପ୍ରତୀକ୍ଷା କରିଥାଅ । ମନରେ ଉଦବେଗ ନୁହ ॥ ୮୦
ଇତ୍ୟାଦି ସମ୍ଭାବନା ବାଣୀ । ସେ ହରି ଶ୍ରୀମୁଖରୁ ଶୁଣି ॥ ୮୧
ଏ ମାନନାରେ ବଦ୍ଧ ହୋଇ । ସ୍ନେହଭଙ୍ଗକୁ ଭୟ ପାଇ ॥ ୮୨
ଯେତେ ଅସୁରେ ତହିଁ ଥିଲେ । କିଛି ବି ପ୍ରିୟ ନ କହିଲେ ॥ ୮୩

୧. ଘେନି । ୨. ବାକ୍ୟାଦି । ୩. ବଞ୍ଚିତ କରି । ୪. ସମୟକୁ ।

ଅତ୍ୟନ୍ତ ପ୍ରୀତି ହରିଠାରେ । ଯେ କରି ଅଛନ୍ତି ମନରେ ॥ ୮୪
୨୪ ଆଚ୍ଛନ୍ନ କରି ଦେବତନୁ । ଦେବତାସଭାରେ ସ୍ୱର୍ଭାନୁ[୧] ॥ ୮୫
ଚନ୍ଦ୍ର ସୂର୍ଯ୍ୟଙ୍କ ମଧ୍ୟେ ବସି । ଅମୃତ ପିଇଲା ଭରସି ॥ ୮୬
ତାହାକୁ ଚନ୍ଦ୍ର ସୂର୍ଯ୍ୟେ ଦୁଇ । ଠାରି ବିଷ୍ଣୁଙ୍କୁ ଦେଲେ କହି ॥ ୮୭
୨୫ ସେ ପିଉଥିଲା ଯେ ପୀୟୂଷ । ତାର ଶିରକୁ ହୃଷୀକେଶ ॥ ୮୮
ହରିଲେ ସୁତୀକ୍ଷ୍ଣ ଚକ୍ରରେ । କବନ୍ଧ ପଡ଼ିଲା ସୁଧାରେ ॥ ୮୯
୨୬ ତାର ଯେ ଶିର ଥିଲା ତାକୁ । ନେଲେ ସେ ଅମରଭାବକୁ ॥ ୯୦
ରାହୁ ନାମରେ ତାକୁ ଗ୍ରହ । କଲେ ସାକ୍ଷାତ ପିତାମହ ॥ ୯୧
ଚନ୍ଦ୍ର-ସୂର୍ଯ୍ୟଙ୍କୁ ଯେ ପର୍ବରେ । ଧାବଇ ବଇର ବୁଦ୍ଧିରେ ॥ ୯୨
୨୭ ଦେବତାମାନେ ଅତିପୂର୍ଣ୍ଣ । କରି କରନ୍ତେ ସୁଧାପାନ ॥ ୯୩
ଲୋକଭାବନ ହୃଷୀକେଶ । କଲେ ସ୍ୱରୂପକୁ ପ୍ରକାଶ ॥ ୯୪
ସମସ୍ତ ଦୈତ୍ୟପତିମାନେ । ଚାହୁଁଣ ଅଛନ୍ତି ନୟନେ ॥ ୯୫
୨୮ ଯେ ହେତୁ ସମୁଦ୍ରମଥନେ । ଯେ ଦେଶ-କାଳ-କର୍ମମାନେ ॥ ୯୬
ବୁଦ୍ଧି ହିଁ ଅବା ସେ ସମସ୍ତ । ସମାନ ହେଲେ ହେଁ ନିୟତ ॥ ୯୭
ଦେବ ଦାନବ ଦୁହିଁଙ୍କର । ତଥାପି ଫଳରେ ଅନ୍ତର ॥ ୯୮
ଯା' ପାଦପଦ୍ମ ରଜଙ୍କର[୨] । ଆଶ୍ରୟୁଁ ଅମରନିକର ॥ ୯୯
ଅମୃତପାନରୂପ ଫଳ । ଯେଣୁ ଲଭିଲେ ତତକାଳ ॥ ୧୦୦
ତହିଁରେ ତତ୍ତ୍ୱ ନ ଥିବାରେ । ପିଇ ନ ପାରିଲେ ଅସୁରେ ॥ ୧୦୧
ଯାହାର ସେବାଫଳ ଏତେ । ସେହି ସେ ସେବ୍ୟ ଏ ଜଗତେ ॥ ୧୦୨
୨୯ ପ୍ରାଣମାନଙ୍କରେ ବିତ୍ତରେ । ମନବଚନରେ କର୍ମରେ ॥ ୧୦୩
ଦେହ ତନୁଜ ଆଦିପାଇଁ । ପ୍ରାଣୀ ଯେ କର୍ମ ଆଚରଇ ॥ ୧୦୪
ବିଅର୍ଥ ଅଟେ ସେ ନିଶ୍ଚୟେ । ଯେଣୁ ସେ ଭେଦାଶ୍ରୟ ହୋଏ ॥ ୧୦୫
ଏକଶାଖାରେ ଦେଲେ ଜଳ । ଯେହ୍ନେ ସେ ହୁଅଇ ନିଷ୍ଫଳ ॥ ୧୦୬
ହରିର ପ୍ରୀତିକି ଉଦ୍ଦେଶି । ଯେବେ କରଇ ତା' ବିଶେଷି ॥ ୧୦୭
ସେହି ସେ ଅଟେ ମହାଫଳ । ଯେସନେ ତରୁମୂଳଜଳ ॥ ୧୦୮
ନନ୍ଦନନ୍ଦନପାଦ ଧ୍ୟାନେ । ହରଷ ଦୀନବନ୍ଧୁ ମନେ ॥ ୧୦୯
ଅଷ୍ଟମ ସ୍କନ୍ଧ ସୁଧାରସ । ଆସ୍ୱାଦେ ସାଧୁଜନ ତୋଷ ॥ ୧୧୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଅମୃତବଣ୍ଟନଂ ନାମ ନବମୋଽଧ୍ୟାୟଃ ॥

୧. ରାହୁ । ୨. ନିରନ୍ତର ।

## ଦଶମ ଅଧ୍ୟାୟ

ଦଶମେ ମତ୍ସରାଦ୍ ଦୈତ୍ୟୈରାରବ୍ଧେ ତୁ ମୃଧେଽସୁରୈଃ ।
ଦୈତ୍ୟମାୟାବିଷଣ୍ଣେଷୁ ଦେବେଷ୍ୱାବିର୍ବଭୌ ହରିଃ ॥ ୧
ତଦେବମମୃତାବାପ୍ତିର୍ନାଭକ୍ତାନାମିତୀରିତମ୍ ।
ଭକ୍ତମତ୍ସରତଃ ପ୍ରାଣହାନିଃ ପୁନରୁଦୀର୍ଯ୍ୟତେ ॥ ୨

ଶ୍ରୀଶୁକ ଉବାଚ

୧ ହେ ନୃପ ! ଏମନ୍ତ ପ୍ରକାରେ । ସକଳ ଦାନବ ଅସୁରେ ॥
କର୍ମରେ ଯୁକ୍ତ ସେ ହୋଇଣ । ସଂଯତ ହୋଇଥିଲେ ପୁଣ ॥
ବିଷ୍ଣୁରେ ଯେଣୁ ଅଭକତ । ତେଣୁ ନ ଲଭିଲେ ଅମୃତ ॥
୨ ହେ ନୃପ ! ସଂପାଦି ସୁଧାକୁ । ପିଆଇ ନିଜ ଦେବତାଙ୍କୁ ॥
ଚାହାଁନ୍ତେ ସର୍ବ ଭୂତମାନ । ଗଲେ ସେ ଗରୁଡ଼ବାହନ ॥
୩ ଦେବଙ୍କ ପରମ ସିଦ୍ଧିକି । ଦିତିନନ୍ଦନମାନେ ଦେଖି ॥
ସହି ନ ପାରି ଆୟୁଧଙ୍କୁ । ଟେକି ଧାଇଁଲେ ଦେବତାଙ୍କୁ ॥
୪-୫ ତଦନ୍ତେ ସକଳ ଅମରେ । ବଳିଷ୍ଠ ସୁଧା ପିଇବାରେ ॥
ଆଶ୍ରୟ ଅଟେ ଯାହାଙ୍କର । ଚରଣ ଶ୍ରୀନାରାୟଣର ॥
ଅସୁରମାନଙ୍କର ତୁଲେ । ପ୍ରତିଯୁଦ୍ଧକୁ ଆରମ୍ଭିଲେ ॥
ତୁମୁଳ ରୋମହରଷଣ । ହେ ନୃପ ! ଯେ ଅତିଦାରୁଣ ॥
ସିନ୍ଧୁତଟରେ ସେ ସଂଗ୍ରାମ । ହୋଇଲା ଦେବାସୁର ନାମ ॥
୬ ତଦନ୍ତେ ହୋଇ ମିଶାମିଶି । ଘେନି ଅନ୍ୟୋଽନ୍ୟେ ବାଣ ଅସି ॥
ଏ ଆଦି ନାନା ଆୟୁଧରେ । ପ୍ରହାର କଲେକ ସମରେ ॥
ସେ ଶତ୍ରୁମାନେ ଅବିରତ । ହୋଇ ଅଛନ୍ତି କ୍ରୁଦ୍ଧଚିତ୍ତ ॥
୭ ନାଦ କରନ୍ତେ ରଣେ ହସ୍ତୀ । ତୁରଙ୍ଗ ଶତାଙ୍ଗ[1] ପଦାତି ॥
ଶଙ୍ଖ ମୃଦଙ୍ଗ ତୂର୍ଯ୍ୟ ଭେରୀ । ନିଃସ୍ୱନ ଭୁବନରେ ପୂରି ॥
୮ ରଥୀଙ୍କ ସଙ୍ଗତରେ ରଥୀ । ପଦାତିସଙ୍ଗତେ ପଦାତି ॥
ଅଶ୍ୱସଂଗତେ ଅଶ୍ୱଙ୍କର । ହସ୍ତୀରେ ଯୋଗ ହସ୍ତୀଙ୍କର ॥
୯ କେ ଉଷ୍ଟ୍ର କେ ହସ୍ତୀ କେ ଖର । ଆରୋହି କରନ୍ତି ସମର ॥
କେ ଗୌରମୃଗ[2] ଚଢ଼ି କେହି । କେ ଋକ୍ଷ[3] କେ ବ୍ୟାଘ୍ର ଆରୋହି ॥
କେ ସିଂହ ଆରୋହି ସମର । ନିମିତ୍ତେ ଗଲେ ଦୈତ୍ୟ-ସୁର ॥

---

୧. ରଥ (ଶତାଙ୍ଗଃ ସ୍ୟନ୍ଦନୋ ରଥ ଇତ୍ୟମରଃ) । ୨. ଗୌରମୁଖ । ୩. ଭାଲୁ ।

୧୦ କେ ଗୃଧ୍ର କେ ବକ କେ ଶ୍ୟେନ । କେ ଭାସ[୧] ତିମିଙ୍ଗିଳ[୨] ଆନ ॥ ୨୩
୧୨ କେ ଖଡ଼୍‌ଗ[୩] ଶରଭ ମହିଷ । ଗବୟ[୪] ଉରଗ[୫] ଗୋବୃଷ ॥ ୨୪
କେ ଶିବା ଆଖୁ[୬] କୃକଳାସ[୭] । କେ ଅଜ[୮] କେ ମନୁଷ୍ୟ ଶଶ ॥ ୨୫
କେ ପୁଣ ତହିଁ କୃଷ୍ଣସାର[୯] । କେ ହଂସ କେହି ବା ଶୂକର ॥ ୨୬
କେ ଜଳସ୍ଥଳଖଗ ତହିଁ । ବିକୃତଗାତ୍ର ସତ୍ତ୍ୱ କେହି ॥ ୨୭
ହେ ନୃପ ! ସେ ବେନିସୈନ୍ୟରେ । ମିଳିଲେ ଆଗରେ ଆଗରେ ॥ ୨୮
୧୩ ଯେ ଚିତ୍ରଧ୍ୱଜପଟମାନ । ଯେ ସିତ ଛତ୍ର ହେ ରାଜନ ॥ ୨୯
ଯେ ହେମଦଣ୍ଡ ମହାଧନ । ଚାମର ଯେ ପିଚ୍ଛ ବ୍ୟଜନ ॥ ୩୦
୧୪ ବାତେ କମ୍ପିତ ଉତ୍ତରୀୟ । ଯେ ଚିତ୍ର ଉଷ୍ଣୀଷ[୧୦] ସଂଚୟ ॥ ୩୧
ବିଚିତ୍ର କବଚେ ଭୂଷଣ । ନାନାବିଧ ଯେ ଅଶ୍ୱଗଣ ॥ ୩୨
ସୂର୍ଯ୍ୟକିରଣେ ଦୀପ୍ୟମାନ । ଯେବା ବିଶଦ ଶସ୍ତ୍ରମାନ ॥ ୩୩
୧୫ ଯେ ଅବା ବୀର ଯୂଥପତି । ତାଙ୍କ ସମୂହେ ହେ ନୃପତି ॥ ୩୪
ଦେବ-ଦାନବବୀରଙ୍କର । ସେ ସୈନ୍ୟ ଦିଶିଲା ସୁନ୍ଦର ॥ ୩୫
ସମୂହେ ଜଳଜନ୍ତୁଙ୍କର । ଯେସନେ ଶୋହେ ଦ୍ୱିସାଗର ॥ ୩୬
୧୬ ଯେଉଁ ବିମାନ ଆକାଶରେ । ଚଳଇ ଆପଣା ଇଚ୍ଛାରେ ॥ ୩୭
୧୮ ସଂଗ୍ରାମ-ଉପଯୋଗୀ ଦ୍ରବ୍ୟ । ଯହିଁରେ ଉପଗତ ସର୍ବ ॥ ୩୮
ଯେ ଯାନ ସର୍ବାଶ୍ଚର୍ଯ୍ୟମୟେ । ଯାହାକୁ ଜାଣି ତର୍କ ନୋହେ ॥ ୩୯
ଯେହୁ ଦିଶଇ ନ ଦିଶଇ । ଏମନ୍ତ ବିମାନ ଆରୋହି ॥ ୪୦
ବଇରୋଚନ ବଳି ତହିଁ । ଅସୁରସେନାପତି ହୋଇ ॥ ୪୧
ଉଦୟାଚଳେ ନିଶାକର । ପ୍ରାୟକ ଦିଶିଲା ରୁଚିର ॥ ୪୨
ସମସ୍ତସେନାପତିଙ୍କରେ । ଆବୃତ ହୋଇ ନିରନ୍ତରେ ॥ ୪୩
ବାଳବ୍ୟଜନ ଛତ୍ରବରେ । ଲକ୍ଷିତ ହୋଇଛି ସମରେ ॥ ୪୪
୧୯ ତାହାର ସମସ୍ତ ଦିଗରେ । ମିଳିଲେ ଯାନମାନଙ୍କରେ ॥ ୪୫
୨୪ ଅସୁରସେନାପତିମାନେ । ବିଖ୍ୟାତ ଯେ ତିନିଭୁବନେ ॥ ୪୬
ନମୁଚି ଦ୍ୱିମୂର୍ଦ୍ଧା ଶମ୍ବର । ସେ ବିପ୍ରଚିତ୍ତି ବାଣାସୁର ॥ ୪୭
ଇଲ୍ୱଳ ଅୟୋମୁଖ ହେତି । ଯେ ମେଘଦୁନ୍ଦୁଭି ପ୍ରହେତି ॥ ୪୮
ଭୂତସନ୍ତାପ କାଳନାଭ । ଶକୁନି ମୟ ହୟଗ୍ରୀବ ॥ ୪୯
ସେ ବଜ୍ରଦଂଷ୍ଟ୍ର ବିରୋଚନ । କପିଳ ଶଙ୍କୁଶିରା ଆନ ॥ ୫୦
ଅରିଷ୍ଟନେମି ଯେ ବା ଶୁମ୍ଭ । ଉତ୍କଳ ତାରକ ନିଶୁମ୍ଭ ॥ ୫୧

---

୧. ଏକପ୍ରକାର ପକ୍ଷୀ । ୨. ଯେ ତିମିକୁ ମଧ୍ୟ ଗିଳିପାରେ ଏପରି ଏକ ମତ୍ସ୍ୟ । ୩. ଗଣ୍ଡାର ।
୪. ଗୋସଦୃଶ ଏକ ପ୍ରାଣୀ । ୫. ମୂଳପାଠ ଅରୁଣ = ଏକ କ୍ଷୁଦ୍ର ବିଷଧର ପ୍ରାଣୀ । ୬. ମୂଷା ।
୭. 'କୃକ' ଅର୍ଥାତ୍ ମୁଣ୍ଡକୁ ଯେ ନଚାଏ (ଲସ୍ ଧାତୁ) ଏଣ୍ଟୁଅ । ୮. ଛାଗ । ୯. ମୃଗ । ୧୦. ପଗଡ଼ି ।

ତ୍ରିପୁରାଧିପ ସେ ଅରିଷ୍ଟ । ଯେ ଚକ୍ରଦୃକ ସୁବଳିଷ୍ଟ ॥
ଆନ ଯେ ପୌଲୋମ କାଳେୟ । ନିବାତକବଚସଂଚୟ ॥
ଏ ଆଦି ବହୁତ ଅସୁର । ଭାଗ ନ ଲଭିଣ ସୁଧାର ॥
କେବଳ କ୍ଳେଶଭାଗୀ ହୋଇ । ସେ ସର୍ବେ ରଣମୁଖେ ଯାଇଁ ॥
ଛାଡ଼ନ୍ତି ଉଚ୍ଚେ ସିଂହରଡ଼ି । ଯେସନେ ମେଘ ଘଡ଼ଘଡ଼ି ॥
ମହାନିଃସ୍ୱନ ଶଙ୍ଖମାନ । ଉଚ୍ଚରେ କଲେକ ବାଦନ ॥
ଯେଉଁ ଅସୁରେ ବହୁବାର । ଜିଣିଲେ ଅମରନିକର ॥
୨୫ ବଇରିମାନେ ବଳବନ୍ତ । ଏମନ୍ତ ଦେଖି ପୁରୁହୂତ ॥
ଅତ୍ୟନ୍ତ ହୋଇଲେ କୁପିତ । ଯେ ଦିଗଦନ୍ତୀ ଐରାବତ ॥
ତାହାକୁ ଆରୋହି ପ୍ରବେଶ । ହୋଇଲେ ସୁରଲୋକ-ଈଶ ॥
ସ୍ରବଇ ପ୍ରସ୍ରବଣ ଯହିଁ । ଏମନ୍ତ ଉଦୟାଦ୍ରି ଯେହି ॥
ତାକୁ ଆରୋହି ସୂର୍ଯ୍ୟ ଯେହ୍ନେ । ଏ ଇନ୍ଦ୍ର ଦିଶୁଛନ୍ତି ତେହ୍ନେ ॥
୨୬ ନାନାପ୍ରକାର ଯାହାଙ୍କର । ବାହନ ଧ୍ୱଜ ଶସ୍ତ୍ର ଆର ॥
ସେ ଅଗ୍ନି ବରୁଣ ପବନ । ଏ ଆଦି ଲୋକପାଳମାନ ॥
ସେ ଇନ୍ଦ୍ର ସକଳ ଦିଗରେ । ମିଳିଲେ ଗଣସହିତରେ ॥
୨୭ ଏକକୁ ଆରେକ ଆଗରେ । ମିଳିଣ ନାମେ[1] ପରସ୍ପରେ ॥
ଆକ୍ଷେପ କରନ୍ତେ ଡାକନ୍ତେ । ଆଗରେ ପ୍ରବେଶ ହୁଅନ୍ତେ ॥
ଜଣକ ସଙ୍ଗେ ଜଣେ ମିଳି । ଆରମ୍ଭ କଲେ ଯୁଦ୍ଧ କଳି ॥
୨୮ ଯୁଝିଲା ଇନ୍ଦ୍ରସଙ୍ଗେ ବଳି । ତାରକାସୁରସଙ୍ଗେ ମିଳି ॥
ଶିଖିବାହନ[2] ଯୁଦ୍ଧ କଲେ । ବରୁଣ ହେତିଦୈତ୍ୟତୁଲେ ॥
ହେ ନୃପ ! ପ୍ରହେତିସଙ୍ଗତେ । ମିତ୍ର ଯୁଝିଲେ କ୍ରୁଦ୍ଧଚିତ୍ତେ ॥
୨୯ କାଳନାଭର ସଙ୍ଗେ ଯମ । ଆରମ୍ଭ କଲେକ ସଂଗ୍ରାମ ॥
ସେ ବିଶ୍ୱକର୍ମା ମୟସଙ୍ଗେ । ଶମ୍ବର ତ୍ୱଷ୍ଟାତୁଲେ ରଙ୍ଗେ ॥
ସବିତା ସଙ୍ଗେ ବିରୋଚନ । କଲା ସେ ସମର ବିଧାନ ॥
୩୦ ନମୁଚି ଅପରାଜିତର । ସଂଗେ ଆରମ୍ଭିଲା ସମର ॥
ବୃଷପର୍ବାର ସଙ୍ଗତରେ । ଯୁଝିଲେ ଅଶ୍ୱିନକୁମାରେ ॥
ଯହିଁରେ ଜ୍ୟେଷ୍ଠ ବାଣାସୁର । ବଳିର ସେ ଶତ କୁମର ॥
ତାହାଙ୍କ ସଙ୍ଗେ ଏକା ହୋଇ । ଯୁଝିଲେ ସୂର୍ଯ୍ୟଦେବ ଯାଇଁ ॥
୩୧ ରାହୁ ସଙ୍ଗତେ ନିଶାକର । ପୁଲୋମାସଙ୍ଗତେ ସମୀର ॥
ନିଶୁମ୍ଭ-ଶୁମ୍ଭଙ୍କର ତୁଲେ । ସେ ଭଦ୍ରକାଳୀ ଯୁଦ୍ଧ କଲେ ॥
ଯେ ଦେବୀ ଅତ୍ୟନ୍ତ ବେଗରେ । ଗମନ ଆଦି ଯୁଦ୍ଧ କରେ ॥

୧. ପାଶେ ।  ୨. କାର୍ତ୍ତିକେୟ ।

୩୨ ଯେ ବୃଷାକପି ଜମ୍ଭସଙ୍ଗେ । ସମର ଆରମ୍ଭିଲେ ରଙ୍ଗେ ॥ ୮୩
ମହିଷସଙ୍ଗତେ ସମର । କଲା ସେ ବିଭାବସୁ ସୁର ॥ ୮୪
ଇଲ୍ୱଳ-ବାତାପିତୁଲରେ । ହେ ନୃପ ! ବ୍ରହ୍ମାଙ୍କ କୁମରେ ॥ ୮୫
୩୩ କାମଦେବର ତୁଲେ ପୁଣ । ଦୁର୍ମର୍ଷ ଆରମ୍ଭିଲା ରଣ ॥ ୮୬
ଉତ୍କଳ ମାତୃଗଣତୁଲେ । ଘୋର ସମର ଆରମ୍ଭିଲେ ॥ ୮୭
ଶୁକ୍ରଙ୍କ ସଙ୍ଗତେ ଝଟିତି । ସମର କଲେ ବୃହସ୍ପତି ॥ ୮୮
ନରକ ନାମେ ଯେ ଅସୁର । ତାର ସଙ୍ଗତେ ଶନୈଶ୍ଚର ॥ ୮୯
୩୪ ନିବାତ[1]କବଚଙ୍କ ତୁଲେ । ମରୁତମାନେ ଯୁଦ୍ଧ କଲେ ॥ ୯୦
କାଳେୟଙ୍କର ସଙ୍ଗେ ପୁଣ । ବସୁଏ ଆରମ୍ଭିଲେ ରଣ ॥ ୯୧
ପୌଲୋମଙ୍କର ସଙ୍ଗେ ତେବେ । ସମର କଲେ ବିଶ୍ୱେଦେବେ ॥ ୯୨
କ୍ରୋଧବଶଙ୍କ ତୁଲେ ପୁଣ । ସମର କଲେ ରୁଦ୍ରଗଣ ॥ ୯୩
୩୫ ଏରୂପେ ସେ ସୁରେ ଅସୁରେ । ସଙ୍ଗତ ହୋଇଣ ସମରେ ॥ ୯୪
ଏକକୁ ଆରକ ମିଶିଣ । କରନ୍ତେ ଯୁଗ୍ମ ହୋଇ ରଣ ॥ ୯୫
ତୀକ୍ଷ୍ଣ ତୋମର[2] ଅସି ଶରେ । ମାଇଲେ ନିଜ ପ୍ରତାପରେ ॥ ୯୬
ଜିଣିମି ବୋଲି ନିଜ ଚିତ୍ତ । କରିଅଛନ୍ତି ସେ ସମସ୍ତ ॥ ୯୭
୩୬ ଭୁଶୁଣ୍ଡି[3] ଚକ୍ର ଗଦା ପାଶ । ଋଷ୍ଟି[4] ପରିଘ[5] ଭଲ୍ଲାଙ୍କୁଶ ॥ ୯୮
ଶକତି ପରଶୁ ମୁଦ୍‌ଗର । ପଟ୍ଟିଶ[6] ଭିନ୍ଦିପାଳ[7] ଆର ॥ ୯୯
ଏ ଶସ୍ତ୍ରମାନଙ୍କରେ ଶିର । ଛେଦିଲେ ଶତ୍ରୁମାନଙ୍କର ॥ ୧୦୦
୩୭ ଦ୍ୱିରଦ ପଦାତି ତୁରଙ୍ଗ । ଆରୋହ[8] ବାହନ ଶତାଙ୍ଗ ॥ ୧୦୧
ଏମାନେ ବିବିଧ ପ୍ରକାରେ । ଖଣ୍ଡିତ ହୋଇଲେ ରଣରେ ॥ ୧୦୨
ଛିଡ଼ିଲା ବାହୁ ଶିରୋଧର[9] । ଊରୁ ଚରଣ ଯାହାଙ୍କର ॥ ୧୦୩
କାର୍ମୁକ[10] କବଚଭୂଷଣ । ଛିଡ଼ିଲେ ଯାହାଙ୍କର ପୁଣ ॥ ୧୦୪
ଏରୂପେ ନାନା ବୀରମାନେ । ପଡ଼ିଲେ ଧରଣୀଶୟନେ ॥ ୧୦୫
୩୮ ସେମାନଙ୍କର ପାଦଘାତ । ରଥାଙ୍ଗେ ହେଲା ଯେ ଚୂର୍ଣ୍ଣିତ ॥ ୧୦୬
ସେ ଯୁଦ୍ଧଭୂମିରୁ ପ୍ରବଳ । ଉଠିଲା ଯେ ଧୂଳିପଟଳ ॥ ୧୦୭
ଆଚ୍ଛାଦନ୍ତେ ସେ ଆକାଶକୁ । ଦିଗମାନଙ୍କୁ ତପନକୁ ॥ ୧୦୮
ସେ ଧୂଳି କ୍ଷଣମାତ୍ରକରେ । ନିବର୍ତ୍ତ ହୋଇଲା ତହିଁରେ ॥ ୧୦୯

---

୧. ନିର୍ବାତ । ୨. ଅସ୍ତ୍ରବିଶେଷ । ୩. ଆଗ୍ନେୟ ଅସ୍ତ୍ରବିଶେଷ ।
୪. ଦ୍ୱିଧାର ଖଡ୍‌ଗ (ଋଷ୍ଟିଃ ଖଡ୍‌ଗସ୍ତରବାରୀତି ତ୍ରିକାଣ୍ଡଶେଷଃ ।)
(ଚନ୍ଦ୍ରହାସାସି-ଋଷ୍ଟୟଃ-ଅମରଃ ।)
୫. ପରିଘ = ଶୂଳ; (ପରିଘଃ ପରିଘାତେଽସ୍ତ୍ରେ-ଅମରଃ) । ୬. ଅସ୍ତ୍ରବିଶେଷ ।
୭. କ୍ଷେପଣାସ୍ତ୍ରବିଶେଷ । ୮. ଗଜଯନ୍ତା ଅର୍ଥାତ୍ ମାହୁନ୍ତ । ୯. ଗ୍ରୀବା । ୧୦. ଧନୁ ।

ରକତ ସ୍ରବନ୍ତେ ଧରଣୀ । ଆର୍ଦ୍ର ହୋଇଲା ଯେଣୁ ପୁଣି[1] ।। ୧୧୦
୩୯ ଯହିଁରୁ କିରୀଟକୁଣ୍ଡଳ । ଛିଡ଼ିଣ ପଡ଼ିଛନ୍ତି ତଳ ।। ୧୧୧
କ୍ରୋଧରେ ହୋଇଣ ସଂଯୁତ । ନୟନମାନେ ଯହିଁ ସ୍ଥିତ ।। ୧୧୨
ଓଷ୍ଠମାନଙ୍କୁ ରୋଷଭରେ । ଦଂଶିଣ ଅଛନ୍ତି ଯହିଁରେ ।। ୧୧୩
ଏମନ୍ତ ଯେଉଁ ଶିରମାନେ । ଯେ ପୁଣ ମହାଭୁଜ ଆନେ ।। ୧୧୪
ଆୟୁଧ ଭୂଷଣେ ସହିତ । ଯେ ଉରୁମାନେ ବିରାଜିତ ।। ୧୧୫
କରଭ[2] ସଦୃଶ ଦିଶନ୍ତି । ସେମାନଙ୍କରେ ରଣକ୍ଷିତି ।। ୧୧୬
ବିଶେଷେ ଆବୃତ ହୋଇଲା । ସେ ଘେନି ଶୋଭାକୁ ଲଭିଲା ।। ୧୧୭
୪୦ ପଡ଼ିଛି ଯେଉଁ ଶିରମାନ । ତହିଁରେ ଯେ ନିଜ ନୟନ ।। ୧୧୮
ତେଣେ ଯେ ଚାହୁଁଣ ଅଛନ୍ତି । ଭୁଜରେ ଆୟୁଧ ଟେକନ୍ତି ।। ୧୧୯
ସମରେ ଧାବନ୍ତି ସତ୍ୱରେ । ଯୋଦ୍ଧାଙ୍କୁ ଯୁଝିବା ବାଞ୍ଛାରେ ।। ୧୨୦
ଏମନ୍ତ କବନ୍ଧ ସେ ରଣେ । ଡେଇଁ ପଡ଼ିଲେ ଜଣେ ଜଣେ ।। ୧୨୧
୪୧ ଇନ୍ଦ୍ରଦେବଙ୍କୁ ଦଶ ଶରେ । ଐରାବତକୁ ତିନିରେ ।। ୧୨୨
ଚାରି[3] ଘୋଡ଼ାଙ୍କୁ ଚାରି ବାଣେ । ଯନ୍ତାକୁ[4] ଏକବାଣେ ରଣେ ।। ୧୨୩
ବିନ୍ଧିଲା ଏକା ବେଳକରେ । ବଳି ଅସୁର ସେ ସତ୍ୱରେ ।। ୧୨୪
୪୨ ସେ ବାଣମାନେ ଆସିକରି । ପଡୁ ଯେ ଥିଲେ ଅନୁସରି ।। ୧୨୫
ପାଇ ନ ଥିଲେ ଏ କାଳରେ । ହସିଲା ପ୍ରାୟ ହୋଇ ଖରେ ।। ୧୨୬
ତେତିକି ବାଣେ ପୁରନ୍ଦର । ଛେଦନ କଲେ ତେତେ ଶର ।। ୧୨୭
ଯେଣୁ ବିକ୍ରମ ସେ ଇନ୍ଦ୍ରର । ସର୍ବଦା ଅଟେ ଶୀଘ୍ରତର ।। ୧୨୮
୪୩ ଇନ୍ଦ୍ରର ସେ ଉତ୍ତମ କର୍ମ । ଦେଖିଣ ଦୈତ୍ୟ ବଳି ନାମ ।। ୧୨୯
ସେ କଥା ସହି ନ ପାରିଲା । ଶକ୍ତିଏ ହସ୍ତରେ ଧଇଲା ।। ୧୩୦
ମହୋଲ୍‌କାପ୍ରାୟ ଯାର ଦ୍ୟୁତି । ଜଳି ଉଠୁଛି ଯେ ଶକତି ।। ୧୩୧
ହସ୍ତରେ ଥାନ୍ତେ ସେ ବଳିର । କାଟିଲା ତାହା ପୁରନ୍ଦର ।। ୧୩୨
୪୪ ତଦନ୍ତେ ଶୂଳ ପ୍ରାସ ଋଷ୍ଟି । ତୋମର ଆଦି ଶସ୍ତ୍ର ମୁଷ୍ଟି ।। ୧୩୩
ଯେତେ ଯେତେକ ଦୈତ୍ୟେ ଧରେ । ଇନ୍ଦ୍ର ତା କାଟିଲା କୋପରେ ।। ୧୩୪
୪୫ ଏଥୁ ଅନ୍ତରେ ଅନ୍ତର୍ଧାନେ । ଯାଇ ଅସୁର ସୁରସୈନ୍ୟେ ।। ୧୩୫
ହେ ପ୍ରଭୁ ଯେ ଅସୁରଙ୍କର । ସେ ମାୟା କଲା ସେ ପ୍ରଚାର ।। ୧୩୬
ପ୍ରକାଶ ହେଲା ତଦନ୍ତରେ । ଏକ ପର୍ବତ ସେ ସ୍ଥାନରେ ।। ୧୩୭
୪୬ ବନ-ଅନଳରେ ଦହନ । ହେଉଛନ୍ତି ଯେ ବୃକ୍ଷମାନ ।। ୧୩୮

---

୧. ସେହିକ୍ଷଣି । ୨. ମଣିବନ୍ଧାଦାକନିଷ୍ଠଂ କରସ୍ୟ କରଭୋ ବହିଃ ।
୩. ଚାରିଘୋଡ଼ା ଐରାବତର ପାଦରକ୍ଷକ ଥିଲେ । ୪. ମାହୁନ୍ତକୁ ।

| | | | |
|---|---|---|---|
| | ସେ ବୃକ୍ଷମାନେ ହେଲେ ଚ୍ୟୁତ । | ସେ ପର୍ବତରୁ ଅବିରତ ॥ | ୧୩୯ |
| | କଣ୍ଟକଶିଖରେ ସଂଯୁତ । | ଶିଳାଏ ହୋଇଲେ ନିର୍ଗତ ॥ | ୧୪୦ |
| | ଯେ ଶିଳାମାନେ ଶତ୍ରୁସୈନ୍ୟ । | କରନ୍ତି କ୍ଷଣମାତ୍ରେ ଚୂର୍ଣ୍ଣ ॥ | ୧୪୧ |
| ୪୭ | ମହା ଉରଗ ଦନ୍ଦଶୂକ[୧] । | ଯେ ସିଂହ ବରାହ ବୃଶ୍ଚିକ ॥ | ୧୪୨ |
| | ଯେ ବ୍ୟାଘ୍ର ମହାଗଜମାନେ । | ଧାଇଁଣ ପଡ଼ିଲେ ସେ ସ୍ଥାନେ[୨] ॥ | ୧୪୩ |
| ୪୮ | ବିବସ୍ତ୍ର ଶୂଳହସ୍ତ ହୋଇ । | ରାକ୍ଷସୀ ଶତଶତ ଧାଇଁ ॥ | ୧୪୪ |
| | ଛେଦସି ଛେଦସି ବୋଲିଣ । | ହେ ନୃପ ! ପୁଣ ଦୈତ୍ୟଗଣ ॥ | ୧୪୫ |
| ୪୯ | ତଦନନ୍ତରେ ମହାଘନେ । | ପ୍ରକାଶ ହୋଇଲେ ଗଗନେ ॥ | ୧୪୬ |
| | ଗମ୍ଭୀର ନିଷ୍ଠୁର ତାଙ୍କର । | ନିଃସ୍ୱନ, ଗର୍ଜନ୍ତି ସେ ଘୋର ॥ | ୧୪୭ |
| | ବାତେ ଆହତ ସେ ହୋଇଲେ । | ଅଙ୍ଗାରମାନ ବରଷିଲେ ॥ | ୧୪୮ |
| ୫୦ | ବହ୍ନିକି ସର୍ଜିଲା ଦଇତ । | ସେ ଉଗ୍ର ପବନ ସହିତ ॥ | ୧୪୯ |
| | ପ୍ରଳୟ କାଳରେ ଯେସନ । | ଦଗଧ କଲା ସୁରସୈନ୍ୟ ॥ | ୧୫୦ |
| ୫୧ | ପ୍ରଚଣ୍ଡ ବାତେ ଆନ୍ଦୋଳିତ । | ଅଟେ[୩] ଯେ ତରଙ୍ଗ ଆବର୍ତ୍ତ ॥ | ୧୫୧ |
| | ତେଣେ ଯେ ଦିଶେ ଭୟଙ୍କର । | କୂଳକୁ ଲଙ୍ଘିଛି ଆବର ॥ | ୧୫୨ |
| | ଏମନ୍ତ ସିନ୍ଧୁ ତଦନ୍ତରେ । | ଦିଶିଲା ସକଳ ଦିଗରେ ॥ | ୧୫୩ |
| ୫୨ | ଅଲକ୍ଷ୍ୟ ଗତି ଯାହାଙ୍କର । | ତାହାଙ୍କ ମାୟା ବଳିୟାର ॥ | ୧୫୪ |
| | ଏମନ୍ତରୂପେ ସେ ଅସୁରେ । | ମାୟାକୁ ସର୍ଜନ୍ତେ[୪] ସେଠାରେ ॥ | ୧୫୫ |
| | ଦେବତାଙ୍କର ସୈନ୍ୟମାନେ । | ବିଷାଦ ଲଭିଲେକ ମନେ ॥ | ୧୫୬ |
| ୫୩ | ଯେବେ ତହିଁକି ପ୍ରତିବିଧି । | ଜାଣି ନ ପାରିଲେ ଇନ୍ଦ୍ରାଦି ॥ | ୧୫୭ |
| | ହେ ନୃପ ! ହୋଇ ସ୍ଥିରମନ । | କରନ୍ତେ ସେ ଅମରେ ଧ୍ୟାନ ॥ | ୧୫୮ |
| | ଭୂତଭାବନ ଭଗବାନ । | ପ୍ରକାଶ ହୋଇଲେ ସେ ସ୍ଥାନ ॥ | ୧୫୯ |
| ୫୪ | ଚରଣପଲ୍ଲବକୁ ଧୀରେ । | ଦେଲେ ଯେ ଗରୁଡ଼ସ୍କନ୍ଧରେ ॥ | ୧୬୦ |
| | ପିଶଙ୍ଗବର୍ଣ୍ଣ ଯା' ବସନ । | ଯେ ନବପଙ୍କଜନୟନ ॥ | ୧୬୧ |
| | ଅଷ୍ଟ-ଆୟୁଧମନୋହର । | ଦିଶଇ ଅଷ୍ଟ ବାହୁ ଯାର ॥ | ୧୬୨ |
| | ଲକ୍ଷ୍ମୀ କୌସ୍ତୁଭ ବକ୍ଷସ୍ଥଳେ । | ଅନର୍ଘ୍ୟ କିରୀଟ କୁଣ୍ଡଳେ ॥ | ୧୬୩ |
| | ଯା' ଶିରେ କର୍ଣ୍ଣରେ ଉଲ୍ଲାସ । | ତଦନ୍ତେ ହେଲେ ସେ ପ୍ରକାଶ ॥ | ୧୬୪ |
| ୫୫ | ଯେ କୂଟ କର୍ମରୁ ଉତ୍ପନ୍ନ । | ଅସୁରଙ୍କର ମାୟାମାନ ॥ | ୧୬୫ |
| | ସେ କୃଷ୍ଣ ହୁଅନ୍ତେ ପ୍ରବେଶ । | ମହିମାରେ ସେ ହେଲେ ନାଶ ॥ | ୧୬୬ |
| | ପ୍ରବୋଧ ହୁଅନ୍ତେ ଆଗତ । | ଯେସନେ ସ୍ୱପ୍ନ ହୋଏ ହତ ॥ | ୧୬୭ |
| | ଯେଣୁ ଶ୍ରୀହରିର ସ୍ମରଣ । | ସର୍ବବିପତ୍ତିବିମୋକ୍ଷଣ ॥ | ୧୬୮ |
| ୫୬ | ଯେ ଚଢ଼ିଛନ୍ତି ଗରୁଡ଼କୁ । | ସମରେ ଦେଖି ସେ କୃଷ୍ଣଙ୍କୁ ॥ | ୧୬୯ |

୧. ଯେ ବାରମ୍ବାର ଦଂଶନ କରେ ।　୨. ସୈନ୍ୟେ ।　୩. କରେ ।　୪. ସର୍ଜିଲେ ।

| | | | | | |
|---|---|---|---|---|---|
| | ସିଂହ ବାହନ ଅଟେ ଯାର | । | ସେ କାଳନେମି ମହାସୁର | ।। | ୧୭୦ |
| | ଶୂଳକୁ ପ୍ରହାରିଲା ଖରେ | । | ପଡ଼ନ୍ତେ ସେ ଗରୁଡ଼ଶିରେ | ।। | ୧୭୧ |
| | ହେ ନୃପ ! ଏଥୁ ଅନନ୍ତର | । | ଯେ ପ୍ରଭୁ ତ୍ରିଲୋକ[୧]-ଈଶ୍ୱର | ।। | ୧୭୨ |
| | ଲୀଳାମାତ୍ରକେ ତାହା ଧରି | । | ସେହି ଶୂଳକୁ ଫିଙ୍ଗି କରି | ।। | ୧୭୩ |
| | ଅରିକି ବାହନ ସହିତେ | । | ବିନାଶ କଲେକ ତୁରିତେ | ।। | ୧୭୪ |
| ୫୭ | ମାଳୀ ସୁମାଳୀ ନାମ ହୋଇ | । | ଯେ ଅତିବଳୀ ଦୈତ୍ୟ ଦୁଇ | ।। | ୧୭୫ |
| | ଚକ୍ରେ କାଟିଲେ ତାଙ୍କ ଶିର | । | ପଡ଼ିଲେ ଯୁଦ୍ଧେ ସେ ଅସୁର | ।। | ୧୭୬ |
| | ଏଥୁ ଅନ୍ତରେ ମାଲ୍ୟବନ୍ତ | । | ନାମରେ ଯେ ଆନ ଦଇତ | ।। | ୧୭୭ |
| | ସଂମେଳ[୨] ହୋଇ ସେ ବିଷ୍ଣୁଙ୍କୁ | । | ତୀକ୍ଷ୍ଣ ଗଦାରେ ଗରୁଡ଼କୁ | ।। | ୧୭୮ |
| | ମାରିବା ନିମିତ୍ତେ ଉଦ୍ୟତ | । | ହୁଅନ୍ତେ[୩] ତତ୍କାଳେ ଅଚ୍ୟୁତ | ।। | ୧୭୯ |
| | ସେ ନାଦ କରନ୍ତେ ତାହାର | । | ଛେଦିଲେ ଚକ୍ର ଘେନି ଶିର | ।। | ୧୮୦ |
| | ସେ କୃଷ୍ଣଚରଣପଙ୍କଜେ | । | ବ୍ରାହ୍ମଣ ଦୀନବନ୍ଧୁ ଭଜେ | ।। | ୧୮୧ |
| | ସୁଜନେ ନ ଧର ମୋ ଦୋଷ | । | ଶୁଣି ଏ ଗୀତ ହୁଅ ତୋଷ | ।। | ୧୮୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଦେବାସୁରସଂଗ୍ରାମୋ
ନାମ ଦଶମୋଽଧ୍ୟାୟଃ ।।

## ଏକାଦଶ ଅଧ୍ୟାୟ

ଏକାଦଶେ ତୁ ଦେବେଷୁ ଦୈତ୍ୟଘାତିଷୁ ନାରଦଃ ।
ଦେବାନବାରୟଚ୍ଛକ୍ରୋ ମୃତାନ୍ ଦୈତ୍ୟାନଜୀବୟତ୍ ।। ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଇନ୍ଦ୍ର ପବନ ଆଦି ସୁରେ | । | ବିଷ୍ଣୁର ପରମ ଦୟାରେ | ।। | ୧ |
| | ତଦନ୍ତେ ଚେତନା ଲଭିଣ | । | ସେ ସେହି ଅସୁରଙ୍କୁ ପୁଣ | ।। | ୨ |
| | ଅତିଶୟରେ ପ୍ରହାରିଲେ | । | ଯେବଣ ଅସୁରଙ୍କ ତୁଲେ | ।। | ୩ |
| | ପ୍ରଥମେ ସଂହତ[୪] ହୋଇଣ | । | ରଣରେ ଥିଲେ ପ୍ରବର୍ତ୍ତିଣ | ।। | ୪ |
| ୨ | ସେ ଭଗବାନ ପୁରୁହୂତ | । | ହୋଇ ଅତ୍ୟନ୍ତ କ୍ରୋଧଚିତ୍ତ | ।। | ୫ |
| | ଯେବେ ବଳିକି ମାରିବାକୁ | । | ଟେକିଣ ଧଇଲେ ବଜ୍ରକୁ | ।। | ୬ |
| | ସେକାଳେ ପ୍ରଜାଏ ଯେ ଥିଲେ | । | ସେମାନେ ହାହାକାର କଲେ | ।। | ୭ |
| ୩ | ଯେ ମହା ଅଭିମାନବନ୍ତ | । | ଯେ ସୁସଂପନ୍ନ ଅଗ୍ରେ ସ୍ଥିତ | ।। | ୮ |
| | ଯେ ରଣେ କରୁଛି ଭ୍ରମଣ | । | ତାହାକୁ ଭର୍ତ୍ସନା କରିଣ | ।। | ୯ |

୧. ତ୍ରୈଲୋକ୍ୟ । ୨. ସମେଳ । ୩. କରନ୍ତେ । ୪ = ଏକାଠି ।

କ୍ରୁଦ୍ଧ ହୋଇଣ ବଜ୍ରପାଣି । କହିଲେ ଏ ରୂପରେ ବାଣୀ ॥
୪ ଯେ ଆମ୍ଭେ ମାୟାର ଈଶ୍ୱର । ଆମ୍ଭଙ୍କୁ ତୁ ମୂଢ଼ ଅସୁର ॥
ମାୟାରେ ବାଞ୍ଛୁ ଜିଣିମାକୁ । ନଟ ଯେସନେ ବାଳକଙ୍କୁ ॥
ଚକ୍ଷୁବନ୍ଧନ କରି ଜିଣି । ହରଇ ତାଙ୍କ ଧନ ପୁଣି ॥
୫ ଯେ ମାୟାମାନଙ୍କରେ ସ୍ୱର୍ଗ । ବାଞ୍ଛନ୍ତି ଯେବା ଅପବର୍ଗ ॥
ହେ ଅଜ୍ଞ ସେହୁ ଖଣ୍ଡମାନେ । ପୂର୍ବେ ଅଛନ୍ତି ଯେଉଁସ୍ଥାନେ ॥
ସେମାନଙ୍କୁ ମୁଁ ନିଜବଳେ । ପକାଇବଇଁ ଅତିତଳେ ॥
୬ ହେ ମନ୍ଦଆତ୍ମା ସେ ଯେ ମୁହିଁ । ଦୁଷ୍ଟ ମାୟାବୀ ଅଟୁ ତୁହି ॥
ଯେ ଶତପର୍ବ ବଜ୍ର ମୋର । ତେଣେ ହରିବି ତୋର ଶିର ॥
ଆପଣା ଜ୍ଞାତିଙ୍କ ସହିତେ । ଚେଷ୍ଟା କର ତୁ ଏକଚିତ୍ତେ ॥

ଶ୍ରୀବଳିରୁବାଚ

୭ କାଳପ୍ରେରିତ ଯାଙ୍କ କର୍ମେ । ବର୍ତ୍ତିଣ ଥାନ୍ତି ଯେ ସଂଗ୍ରାମେ ॥
ସେ ସର୍ବ ଲୋକଙ୍କର ଜୟ । କୀର୍ତ୍ତି ମରଣ ପରାଜୟ ॥
ଅନୁକ୍ରମରେ ଏ ସମସ୍ତ । ନିଶ୍ଚେ ହୁଅନ୍ତି ଉପସ୍ଥିତ ॥
୮ କାଳଯନ୍ତ୍ରିତ ଏ ଜଗତ । ପଣ୍ଡିତେ ଦେଖନ୍ତି ଏମନ୍ତ ॥
ଏଣୁ ସେ ହରଷ ନୁହନ୍ତି । କେବେହେଁ ଶୋକ ନ କରନ୍ତି ॥
ତୁମ୍ଭେ ଏମନ୍ତ ବିବେକରେ । ଅବୁଧ[1] ଅଟ ଏ ସଂସାରେ ॥
୯ କୀର୍ତ୍ତି ଜୟାଦିରେ ସାଧନ । କରି ଆମ୍ଭଙ୍କୁ ତୁମ୍ଭେ ମାନ ॥
ସାଧୁ ଅଟନ୍ତି ଯେଉଁ ଜନ । ତୁମ୍ଭଙ୍କୁ କରନ୍ତି ଶୋଚନ ॥
ମର୍ମତାଡ଼ନ ତୁମ୍ଭ ବାଣୀ । ନ ଘେନୁଁ ଆମ୍ଭେ ତାହା ପୁଣି ॥

ଶ୍ରୀଶୁକ ଉବାଚ

୧୦ ପ୍ରଥମେ ଆକ୍ଷେପରେ ହତ । ହୋଇଥିଲେ ଯେ ପୁରୁହୂତ ॥
ବୀରମାନଦ[2] ବଳି ତାଙ୍କୁ । ଏରୂପେ କରି ଆକ୍ଷେପକୁ ॥
ଆକର୍ଣ୍ଣପୂର୍ଣ୍ଣ[3] ଶରଙ୍କରେ । ଆହତ କଲା ପୁଣ ଖରେ ॥
୧୧ ଆପଣା ବୈର ଯେ ଅଟଇ । ତଥ୍ୟବଚନକୁ କହଇ ॥
ନିରାକରଣ ଏ ପ୍ରକାରେ । କରନ୍ତେ ସେ ରଣଭୂମିରେ ॥
ଅଙ୍କୁଶେ ହୋଇଲେ ଆହତ । ଗଜ ନ ସହଇ ଯେମନ୍ତ ॥
ସେ ଅଧିକ୍ଷେପକୁ ତାହାର । ସହିଲେ ନାହିଁ ପୁରନ୍ଦର ॥
୧୨ ଅମୋଘ ବଇରିମର୍ଦନ । ବଜ୍ର ତାହାକୁ ସଂକ୍ରନ୍ଦନ[4] ॥
ପ୍ରହାର କଲାକ କ୍ରୋଧରେ । ଯାନସହିତେ ସେ ଭୂମିରେ ॥
ପଡ଼ିଲା ଯେସନେ ଅଚଳ । ପକ୍ଷୀ ଛିଡ଼ନ୍ତେ ପଡ଼େ ତଳ ॥

---

୧. ଅବୁଦ୍ଧ ।　୨. ବୀରମର୍ଦ୍ଦନ ।　୩. ଆକର୍ଣ୍ଣପୂର ।　୪ = ଇନ୍ଦ୍ର ।

| | | | | | |
|---|---|---|---|---|---|
| ୧୩ | ଦେଖି ମିତ୍ରର ପଡ଼ିବାର | । ବଳିମିତ୍ର ଯେ ଜମ୍ଭାସୁର | ॥ | ୩୯ |
| | ମଲା ମିତ୍ରର ପ୍ରୀତିପଣ | । କରନ୍ତେ ମିଳିଲା ସେ ରଣ | ॥ | ୪୦ |
| ୧୪ } | ସେ ଚଢ଼ି ସିଂହର ଉପରେ | । ଗଦାକୁ ଘେନିଣ ବେଗରେ | ॥ | ୪୧ |
| ୧୫ } | ବାହୁସନ୍ଧିରେ ବାସବକୁ | । ମାଇଲା ପଛେ କୁଞ୍ଜରକୁ | ॥ | ୪୨ |
| | ଗଦାପ୍ରହାରେ ବ୍ୟଥା ପାଇ | । ଅତିବିହ୍ୱଳ ଗଜ ହୋଇ | ॥ | ୪୩ |
| | ଜାନୁରେ ଛୁଇଁ ବସୁଧାକୁ | । ପାଇଲା ପରମ ମୋହକୁ | ॥ | ୪୪ |
| ୧୬ | ତଦନ୍ତେ ମାତଳି ରଥକୁ | । ଆଣିଲା ଇନ୍ଦ୍ରନିକଟକୁ | ॥ | ୪୫ |
| | ଯେଉଁ ରଥରେ ଦଶଶତ | । ତୁରଙ୍ଗ ହୋଇଛି ଯୋଚିତ | ॥ | ୪୬ |
| | ମହେନ୍ଦ୍ର ତେଜିଣ ଗଜକୁ | । ଆରୋହିଲାକ ସେ ରଥକୁ | ॥ | ୪୭ |
| ୧୭ | ସାରଥି-ସେକର୍ମକୁ ପୁଣ | । ଅସୁରବର ପ୍ରଶଂସିଣ | ॥ | ୪୮ |
| | ହସନ୍ତେ ତାହାକୁ କର୍ମରେ | । ମାଇଲା ଜ୍ୱଳନ୍ତା ଶୂଳରେ | ॥ | ୪୯ |
| ୧୮ | ଯେ ଆପଣାର ସତ୍ତ୍ୱଗୁଣ | । ତା' ଅବଲମ୍ବ କରି ପୁଣ | ॥ | ୫୦ |
| | ଦୁଃସହ ଶୂଳବ୍ୟଥା ଯେହି | । ମାତଳି ପାରିଲା ତା' ସହି | ॥ | ୫୧ |
| | କ୍ରୋଧେ ବଜ୍ରରେ ପୁରନ୍ଦର | । ଛେଦିଲେ ଜମ୍ଭାସୁରଶିର | ॥ | ୫୨ |
| ୧୯ | ନାରଦଋଷିଠାରୁ ଶୁଣି | । ଜମ୍ଭର ମରିବାର ପୁଣି | ॥ | ୫୩ |
| | ନମୁଚି ପାକ ବଳାସୁର | । ବେଗେ ଧାଇଁଲେ ଜ୍ଞାତି ତାର | ॥ | ୫୪ |
| ୨୦ | ନିଷ୍ଠୁର ବଚନେ ଇନ୍ଦ୍ରକୁ | । ମର୍ମରେ କରନ୍ତେ ବାଧାକୁ | ॥ | ୫୫ |
| | ଶରବୃଷ୍ଟିରେ ଆଚ୍ଛାଦନ | । କଲେ ସେ ସମରେ ବହନ | ॥ | ୫୬ |
| | ଯେହ୍ନେ ଧାରାରେ ମେଘଘନ[୧] | । ଗିରିକି କରନ୍ତି ଆଚ୍ଛନ୍ନ | ॥ | ୫୭ |
| ୨୧ | ଇନ୍ଦ୍ରର ରଥେ ଦଶଶତ | । ଯେ ଅଶ୍ୱମାନେ ନିଯୋଜିତ | ॥ | ୫୮ |
| | ତାହାଙ୍କୁ ଏକା ବେଳକରେ | । ବିନ୍ଧିଲା ତେତିକି ଶରରେ | ॥ | ୫୯ |
| | ପ୍ରହାର କଲା ବଳାସୁର | । ସେ ଲଘୁହସ୍ତବନ୍ତ ବୀର | ॥ | ୬୦ |
| ୨୨ | ପାକ ଅସୁର ବେନି ଶତ | । ଶରେ ମାତଳିକି ତ୍ୱରିତ | ॥ | ୬୧ |
| | ରଥକୁ ପ୍ରତି ଅବୟବେ | । ବିନ୍ଧିଲା ଭିନ୍ନ ଭିନ୍ନ ଠାବେ | ॥ | ୬୨ |
| | ଏକାଥରକେ ଶରଙ୍କର | । ସନ୍ଧାନ ମୋକ୍ଷଣ ଆବର | ॥ | ୬୩ |
| | ଏ ବେନି କଥା ଅଦଭୁତ | । ରୂପରେ ହୋଇଲା ବିଦିତ | ॥ | ୬୪ |
| ୨୩ | ଇନ୍ଦ୍ରକୁ ସ୍ୱର୍ଣ୍ଣପୁଙ୍ଖ[୨] ଶରେ | । ନମୁଚି ବିନ୍ଧିଲା ସମରେ | ॥ | ୬୫ |
| | ପ୍ରହାର କରି କଲା ନାଦ | । ଯେସନେ ସଜଳ ଜଳଦ | ॥ | ୬୬ |
| ୨୪ | ସମସ୍ତ ଦିଗମାନଙ୍କରେ | । ତୀକ୍ଷ୍ଣ ବିଶିଖ ସମୂହରେ | ॥ | ୬୭ |
| | ରଥ ସାରଥି ସହିତରେ | । ପୁରନ୍ଦରକୁ ସେ ଅସୁରେ | ॥ | ୬୮ |
| | କଲେ ସେ ଶରରେ[୩] ଆଚ୍ଛନ୍ନ | । ବର୍ଷା-ରବିକି ଯେହ୍ନେ ଘନ | ॥ | ୬୯ |

୧. ଘନଘନ । ୨. ପୁଙ୍ଖ = ମୂଳଭାଗ । ୩. ସମରେ ।

୨୫ ଅନୁଗତୁଲେ ସୁରଗଣେ । ଇନ୍ଦ୍ରଙ୍କୁ ନ ଦେଖନ୍ତେ ରଣେ ॥
ଅତି ବିହ୍ବଳ ସେ ହୋଇଲେ । ଅନାଥ ହୋଇଣ କାନ୍ଦିଲେ ॥
ନିର୍ଜିତ ହୋଇ ଶତ୍ରୁବଳେ । ନାବ ଭାଜନ୍ତେ ସିନ୍ଧୁଜଳେ ॥
ଯେସନେ ବଣିଜାରମାନେ । ବ୍ୟାକୁଳ ହୁଅନ୍ତି ସେ ମନେ ॥
୨୬ ସାରଥି ରଥ ଅଶ୍ୱ ଧ୍ୱଜ । ସହିତେ ସ୍ୱୟେଂ ସୁରରାଜ ॥
ଶରନିବଦ୍ଧ ପଞ୍ଜରରୁ । ବାହାର[୧] ହୋଇଲେ ଜନ୍ତାରୁ ॥
ଆକାଶ ବସୁମତୀ ଦିଶ । କରନ୍ତେ ସ୍ୱତେଜେ ପ୍ରକାଶ ॥
ଯେସନେ ରଜନୀ-ନାଶରେ । ସବିତା ଶୋହେ ସେ ପ୍ରକାରେ ॥
୨୭ ନିଜ ସୈନ୍ୟକୁ ଶତ୍ରୁଗଣେ । ପୀଡ଼ିତ କରୁଛନ୍ତି ରଣେ ॥
ଦେଖି ଏମନ୍ତ ପୁରୁହୂତ । ଶତ୍ରୁଙ୍କୁ ମାରିବା ନିମିତ୍ତ ॥
ମନରେ ବିଚାର ସେ କଲେ । ରୋଷରେ ବଜ୍ରକୁ ଟେକିଲେ ॥
୨୮ ହେ ନୃପ ! ତାଙ୍କ ଜ୍ଞାତି ଯେତେ । ଚାହାଁନ୍ତେ ସେମାନେ ସମସ୍ତେ ॥
ଭୟ ଜନ୍ମାନ୍ତେ ତାହାଙ୍କର । ଯେ ବଜ୍ର ଅଟେ ଅଷ୍ଟଧାର ॥
ବଳ ପାକର ଶିର ତେଣେ । ଛେଦନ କଲେ ଇନ୍ଦ୍ର ରଣେ ॥
୨୯ ନମୁଚି ତାଙ୍କ ବଧ ଚାହିଁ । ଶୋକ-ରୋଷରେ ଯୁତ ହୋଇ ॥
ମାରିବା ଇଚ୍ଛାରେ ଇନ୍ଦ୍ରକୁ । କଲା ପରମ ଉଦ୍ୟମକୁ ॥
୩୦ ଯେ ଲୋହମୟ ଘଣ୍ଟାବନ୍ତ । ସୁବର୍ଣ୍ଣେ ହୋଇଛି ଭୂଷିତ ॥
ସେ ଶୂଳ ଘେନିଣ ହସ୍ତରେ । ନମୁଚି ଧାଇଁଲା କ୍ରୋଧରେ ॥
ତାହାର ବୀର୍ଯ୍ୟ ଅତିଶୟ । ଗର୍ଜନ୍ତେ ମୃଗରାଜପ୍ରାୟ ॥
ମଲୁ ତୁ ବୋଲି ଏ ବଚନ । ଇନ୍ଦ୍ରଙ୍କୁ କରନ୍ତେ ଭର୍ତ୍ସନ ॥
ବୁଲାଇ କରି ସେ ଶୂଳକୁ । ଫିଙ୍ଗିଲା ଅମର ରାଜାକୁ ॥
୩୧ ଗଗନତଳେ ମହାବେଗେ । ଶୂଳ ପଡ଼ନ୍ତେ ଇନ୍ଦ୍ର ରାଗେ ॥
ସହସ୍ର ଖଣ୍ଡ କରି ଖରେ । ଛେଦିଲା ଶରମାନଙ୍କରେ ॥
ହେ ପରୀକ୍ଷିତ କୁଳିଶରେ । ଦୈତ୍ୟକୁ ରୋଷରେ କନ୍ଧରେ ॥
ପ୍ରହାର କଲା ପୁରନ୍ଦର । ଛେଦିବା ଅର୍ଥେ ତାର ଶିର ॥
୩୨ ଯେଉଁ ବଜ୍ରକୁ ସୁରନାଥ । ବଳରେ କଲେକ ପ୍ରେରିତ ॥
ସେ ବଜ୍ର ଚର୍ମମାତ୍ରକୁ ହିଁ । ତାର ନ ପାରିଲା ଫୁଟାଇ ॥
ଯେ ଅତିବୀର୍ଯ୍ୟ ବୃତ୍ରାସୁର । ତାକୁ ହିଁ କରିଛି ସଂହାର ॥
ସେ ବଜ୍ର ନମୁଚିକନ୍ଧର । ଚର୍ମେ ଲଭିଲା ତିରସ୍କାର ॥
ଏକଥା ଅତିଶୟ ହୋଇ । ଅଦ୍ଭୁତ ହୋଇଲା ସେଠାଇଁ ॥
୩୩ ସେ ଶତ୍ରୁଠାରୁ ପୁରନ୍ଦର । ଭୟକୁ ଲଭିଲା ମନର ॥

୧. ନିର୍ଗତ ।

ଯା' ଠାରୁ ବଜ୍ର ପ୍ରତିହତ । କିଏ ଦଇବଯୋଗୁଁ ଜାତ ॥ ୧୦୧
ଶୁଣିଲା ଲୋକଙ୍କର ମନ । ଏ କଥା କରିବ ମୋହନ ॥ ୧୦୨
୩୪ ଯେ ପକ୍ଷମାନଙ୍କର ଭାରେ । ଉଡ଼ି ପଡ଼ନ୍ତେ ଧରଣୀରେ ॥ ୧୦୩
ପ୍ରଜାମାନଙ୍କର ବିନାଶ । ପୂର୍ବରେ ହୋଇଲା ପ୍ରକାଶ ॥ ୧୦୪
ସେ କାଳେ ଯଉଁ ବଜ୍ରେ ମୁହିଁ । ଗିରିଙ୍କ ପକ୍ଷ ଛେଦିଲଇଁ ॥ ୧୦୫
୩୫ ଯେ ତ୍ୱଷ୍ଟାବୀର୍ଯ୍ୟାଧିକ ତପ । ପ୍ରକାଶ ବୃତ୍ରାସୁରରୂପ ॥ ୧୦୬
ସେ ବୃତ୍ରାସୁରକୁ ମୁଁ ଯେଣେ । ବିନାଶ କରିଅଛି ରଣେ ॥ ୧୦୭
ସମସ୍ତ ଅସ୍ତ୍ରେ ଯାହାଙ୍କର । କ୍ଷତ ନୁହଇ ଚର୍ମସାର ॥ ୧୦୮
ସେ ଆନ ଅତି ବଳବନ୍ତ । ଦୈତ୍ୟଙ୍କୁ ଯେଣେ କଲି ହତ ॥ ୧୦୯
୩୬ } ଏ ଅଳ୍ପ ଅସୁର ଉପରେ । ଯେ ମୁକ୍ତ ହୋଇଲା ମୋହରେ[୧] ॥ ୧୧୦
୩୮ } ସେ ବଜ୍ର ହୋଇଲା ବିଅର୍ଥ । ଏହାକୁ ଘେନିମା କି ଅର୍ଥ ॥ ୧୧୧
ବ୍ରହ୍ମତେଜ ହିଁ ଅକାରଣ । ଏ ଦଣ୍ଡପ୍ରାୟ ଅଟେ ପୁଣ ॥ ୧୧୨
କରିବି ନାହିଁ ତା' ଆଦାନ । ଏମନ୍ତ ବୋଲି ସଂକ୍ରନ୍ଦନ[୨] ॥ ୧୧୩
ବିଷାଦ ହୋଇଣ ରହିଲା । ଶୂନ୍ୟରେ ବଚନ ଶୁଭିଲା ॥ ୧୧୪
ଯେ ଦ୍ରବ୍ୟ ଆର୍ଦ୍ର ଶୁଷ୍କ ଯେହି । ତେଣେ ଏ ଦୈତ୍ୟ ନ ମରଇ ॥ ୧୧୫
ଏ ଆର୍ଦ୍ର ଶୁଷ୍କେ ନ ମରିବ । ଏମନ୍ତ ବୋଲିଣ ମୁଁ ପୂର୍ବ ॥ ୧୧୬
ଏହାକୁ ଦେଇଅଛି ବର । ଏଣୁ କରି ହେ ପୁରନ୍ଦର ॥ ୧୧୭
ଆନ ଉପାୟ ଚିନ୍ତା କର । ଯେମନ୍ତେ ରିପୁର ସଂହାର ॥ ୧୧୮
୩୯ ଶୁଣି ସେ ଦଇବବଚନ । ମଘବା ହୋଇ ସାବଧାନ ॥ ୧୧୯
ଧ୍ୟାନ କରିଣ ଏ ଉତ୍ତାରେ । ଉପାୟ ଜାଣିଲା ମନରେ ॥ ୧୨୦
ଉଭୟରୂପ ଜଳଫେନ । ତାର ମରଣକୁ ନିଦାନ ॥ ୧୨୧
୪୦ ଯେ ଶୁଷ୍କ ନୋହେ ଆର୍ଦ୍ର ନୋହେ । ସେ ଫେନଖଣ୍ଡେ[୩] ଦେବରାଏ ॥ ୧୨୨
ନମୁଚିନାମେ ଯେ ଅସୁର । ଛେଦନ କଲେ ତାହା' ଶିର ॥ ୧୨୩
ସେ ମହେନ୍ଦ୍ରକୁ ମୁନିଗଣେ । ସ୍ତୁତିକି କଲେ ତତକ୍ଷଣେ ॥ ୧୨୪
ଇନ୍ଦ୍ରକୁ ମାଲ୍ୟମାନଙ୍କରେ । ଆଛନ୍ନ କଲେ ହରଷରେ ॥ ୧୨୫
୪୧ ଗନ୍ଧର୍ବମାନଙ୍କେ ଉତ୍ତମ । ଯେ ଅଟେ ବିଶ୍ୱାବସୁ ନାମ ॥ ୧୨୬
ଯେ ପରାବସୁ ନାମେ ଆନ । ସେ ବେନି କଲେକ ଗାୟନ ॥ ୧୨୭
ଦେବେ ଦୁନ୍ଦୁଭି ବଜାଇଲେ । ନର୍ତ୍ତକୀ ହରଷେ ନାଚିଲେ ॥ ୧୨୮
୪୨ ଯେ ଆନ ପବନ ଦହନ । ବରୁଣ ଆଦି ସୁରମାନ ॥ ୧୨୯

---

୧. ମୋହରେ = ମୋ' ଦ୍ୱାରା (ମୟା) । ୨. ଇନ୍ଦ୍ର ।
୩. "ଅପାଂ ଫେନେନ ନମୁଚେଃ ଶିର ଇନ୍ଦ୍ରୋଽଦାରୟତ୍" । (ଶ୍ରୁତିଃ)

ସେମାନେ ଏହି ପରକାରେ । ଦୈତ୍ୟଙ୍କୁ ମାଇଲେ ଶସ୍ତ୍ରରେ[୧] ।। ୧୩୦
ତାହାଙ୍କୁ ପ୍ରତିଦ୍ୱନ୍ଦ୍ୱୀ ହୋଇ । ଥିଲେ ଯେ ଦୈତ୍ୟମାନେ ତହିଁ ।। ୧୩୧
ମୃଗମାନଙ୍କୁ ସିଂହମାନେ । ବିନାଶ କରନ୍ତି ଯେସନେ ।। ୧୩୨
୪୩ ହେ ନୃପ ! ଦେବତାଙ୍କ ଠାକୁ । ବ୍ରହ୍ମା ପେଷିଲେ ନାରଦଙ୍କୁ ।। ୧୩୩
ଦାନବମାନଙ୍କ ମରଣ । ଦେଖି ସେ ଦେବରଷି ପୁଣ ।। ୧୩୪
ଦେବତାମାନଙ୍କୁ ବାରଣ । କଲେ ତହିଁରୁ ତତକ୍ଷଣ ।। ୧୩୫

ଶ୍ରୀନାରଦ ଉବାଚ

୪୪ ଯେ ଭୁଜ ନାରାୟଣଙ୍କର । ଆଶ୍ରୟ ଅଟେ ସେ ତୁମ୍ଭର ।। ୧୩୬
ସେଘେନି ଅମୃତ ଲଭିଲ । ସଂପତ୍ତି ବୃଦ୍ଧିକି ଭଜିଲ ।। ୧୩୭
ଦୈତ୍ୟଙ୍କ ସଙ୍ଗେ ଯେ ବିଗ୍ରହ । ତହୁଁ ନିବର୍ତ୍ତି ଏବେ ରହ ।। ୧୩୮

ଶ୍ରୀଶୁକ ଉବାଚ

୪୫ ମାନନ୍ତେ ମୁନିଙ୍କର ବାଣୀ । କ୍ରୋଧକୁ ନିବର୍ତ୍ତାଇ ପୁଣି ।। ୧୩୯
ସ୍ୱର୍ଗକୁ ଯେ ଯାହା ଇଚ୍ଛାଏ । ଗଲେ ସମସ୍ତ ଦେବତାଏ ।। ୧୪୦
ତାହାଙ୍କ[୨] ଯଶ ଅନୁଚରେ । ଗାୟନ କରନ୍ତି ନିର୍ଭରେ ।। ୧୪୧
୪୬ ସେ ରଣେ ଅବଶେଷ ହୋଇ । ଯେ ଦୈତ୍ୟମାନେ ଥିଲେ ଜୀଇ ।। ୧୪୨
ବଳି ଯେ ଯୁଦ୍ଧେ ମରିଥିଲେ । ସେ ତାଙ୍କୁ ନାରଦଙ୍କ ବୋଲେ ।। ୧୪୩
ସଙ୍ଗତେ ଘେନିଣ ବେଗରେ । ମିଳିଲେ ଅସ୍ତ ଅଚଳରେ ।। ୧୪୪
୪୭ ନାଶ ନୋହିଛି ଯାହାଙ୍କର । ନିଜ ଅବୟବନିକର ।। ୧୪୫
ଯାହାଙ୍କ ଶିରୋଧରମାନ[୩] । ହୋଇଣ ଅଛି ବିଦ୍ୟମାନ ।। ୧୪୬
ସେ ଦୈତ୍ୟମାନଙ୍କୁ ଭାର୍ଗବ[୪] । ବିଦ୍ୟାରେ ଜୀଆଇଲେ ସର୍ବ ।। ୧୪୭
ଯେ ବିଦ୍ୟା ଅଟେ ଆପଣାର । ସଂଜୀବନୀ ନାମ ଯାହାର ।। ୧୪୮
୪୮ ଶୁକ୍ର ଛୁଅଁନ୍ତେ ବଳି ପୁଣ । ଲଭିଲା ଇନ୍ଦ୍ରିୟ ସ୍ମରଣ ।। ୧୪୯
ଆପଣା ମନରେ କେବେହେଁ । ଖେଦ ନ କଲା ହାରିଲେହେଁ ।। ୧୫୦
ସେ ଲୋକତତ୍ତ୍ୱ ବିଚାରରେ । କୁଶଳ ଅଟଇ ସଂସାରେ ।। ୧୫୧
ବ୍ରାହ୍ମଣ ଦୀନବନ୍ଧୁ ନାମ । ଗୀତରେ ରଚିଲା ଅଷ୍ଟମ ।। ୧୫୨
ଏ ରସ କରି ଆସ୍ୱାଦନ । ହରଷ ହୁଅ ସାଧୁଜନ ।। ୧୫୩

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଦେବାସୁରଯୁଦ୍ଧଂ ନାମ
ଏକାଦଶୋଽଧ୍ୟାୟଃ ।।

---

୧. ଅସ୍ତ୍ରରେ ।  ୨. ଯାହାଙ୍କ ।  ୩. ଶିରୋଧର = ଗ୍ରୀବା ।  ୪. ଶୁକ୍ର ।

# ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ମୋହିନୀରୂପବିଭ୍ରମାଲୋକନୋତ୍ସୁକମ୍ ।
ଭବଂ ସମ୍ମୋହୟାମାସ ହରିଃ ପୁନରସାନ୍ତ୍ୱୟତ୍ ॥ ୧
ଅମୁହ୍ୟନ୍ନସୁରା ବିଷ୍ଣୁମାୟୟା ନ ତଦଦ୍ଭୁତମ୍ ।
ଇତି ବକ୍ତୁଂ ମହାଦେବମୋହୋଽୟମୁପବର୍ଣ୍ଣ୍ୟତେ ॥ ୨

### ଶ୍ରୀବାଦରାୟଣିରୁବାଚ

୧ ନାରୀରୂପରେ ଦାନବଙ୍କୁ । ମୋହିଣ ଅମରଗଣଙ୍କୁ ॥ ୧
ହରି ପିଆଇଲେ ଅମୃତ । ଶଙ୍କର ଶୁଣି ଏ ବୃତ୍ତାନ୍ତ ॥ ୨
୨ ସମସ୍ତ ଭୂତଗଣମାନେ । ବେଢ଼ି ଅଛନ୍ତି ସନ୍ନିଧାନେ ॥ ୩
ଦେବୀ ହିଁ ଅଛନ୍ତି ସଙ୍ଗର । ବୃଷକୁ ଆରୋହି ଶଙ୍କର ॥ ୪
ଗଲେ ସେ ଦେଖିବାର ପାଇଁ । ପୁରୁଷୋତ୍ତମ ଛନ୍ତି ଯହିଁ ॥ ୫
୩ ଶିବଙ୍କୁ ଉମାସହିତରେ । ଶ୍ରୀହରି ପୂଜିଲେ ସାଦରେ ॥ ୬
ହରିଙ୍କି ସ୍ୱୟେଂ ତ୍ରିପୁରାରି । ସାନନ୍ଦେ ପ୍ରତିପୂଜା କରି ॥ ୭
ସୁଖେ ସନ୍ନିଧିରେ ବସିଲେ । ଏମନ୍ତ ବଚନ ବୋଇଲେ ॥ ୮

### ଶ୍ରୀମହାଦେବ ଉବାଚ[1]

୪ ତୁମ୍ଭେ ଦେବତାମାନଙ୍କର । ଦେବତା ଜଗତ-ଈଶ୍ୱର ॥ ୯
ତୁମ୍ଭେ ଜଗତକୁ ବ୍ୟାପିଛ । ଜଗତସ୍ୱରୂପ ହୋଇଛ ॥ ୧୦
ସକଳଭୂତଙ୍କ କାରଣ । ଆତ୍ମା ଈଶ୍ୱର ତୁମ୍ଭେ ପୁଣ ॥ ୧୧
୫ ଏ ଜଗତର ଆଦି ଅନ୍ତ । ମଧ୍ୟହିଁ ବ୍ରହ୍ମଠାରୁ ଜାତ ॥ ୧୨
ଯେ ବ୍ରହ୍ମ ଅବ୍ୟୟ ଅଟଇ । ଆଦ୍ୟନ୍ତ ମଧ୍ୟ ତାର ନାହିଁ ॥ ୧୩
ଯେ ଦୃଶ୍ୟ ଅଟେ ଏ ଜଗତ । ଯେ ଦ୍ରଷ୍ଟା ଅହଂକାରଗତ ॥ ୧୪
ଯେ ଭୋଗ୍ୟ ବାହ୍ୟ ସୁଖମାନ । ଯେ ଭୋକ୍ତାରୂପ ଜୀବ ଆନ ॥ ୧୫
ସେ ବ୍ରହ୍ମ ଜ୍ଞାନରୂପ ସତ୍ୟ । ତୁମ୍ଭେ ସେ ଅଟ, ଏ ନିୟତ ॥ ୧୬
୬ ଯେ ନିଜ ମଙ୍ଗଳ ବାଞ୍ଛନ୍ତି । ଇତର ସୁଖକୁ ତେଜନ୍ତି ॥ ୧୭
ସେ ମୁନିମାନେ ଇହ ପର । ଲୋକେ ସଙ୍ଗକୁ କରି ଦୂର ॥ ୧୮
ତୁମ୍ଭର ଚରଣନଳିନ । କରନ୍ତି ନିତ୍ୟେ ଉପାସନ ॥ ୧୯
୭ ତୁ ବ୍ରହ୍ମ ଅଟୁ ଜଗତର । ଯେ ଜନ୍ମ ପାଳନ ସଂହାର ॥ ୨୦
ତାଙ୍କ କାରଣରୂପେ ଖ୍ୟାତ । ଜୀବଙ୍କ ଫଳଦାତା ମତ ॥ ୨୧
ରାଜାଦି ଯେହ୍ନୁ ସେବାପାଇଁ । ନିଜ ସେବକେ ଫଳ ଦେଇ ॥ ୨୨

---

୧. ତ୍ୱୟି କିଂଚିନ୍ନ ଚାଶ୍ଚର୍ଯ୍ୟଂ ବୟଂ ତ୍ୱାଶ୍ଚର୍ଯ୍ୟମାନସାଃ ।
ଇତି ବକ୍ଷ୍ୟନ୍ ମହାଦେବସ୍ତୁଷ୍ଟାବ ହରିମଷ୍ଟଭିଃ ॥ (ସ୍ୱାମୀ)

ତୁ ନାଥ ନୋହୁ ସେ ପ୍ରକାରେ । ଅପେକ୍ଷା ନାହିଁ ତୋହ ଠାରେ ।। ୨୩
ସେ ଜୀବେ ଫଳଦାନ ଅର୍ଥେ । ଅପେକ୍ଷା କରିଥାନ୍ତି ତୋତେ ।। ୨୪
ପୂର୍ଣ୍ଣ ଅମୃତ ଅବିକାର । ଆନନ୍ଦମାତ୍ର ତୁ ଈଶ୍ୱର ।। ୨୫
ତୁ ଶୋକରହିତ ନିର୍ଗୁଣ । ତୋ ତହୁଁ ଆନ ନାହିଁ ପୁଣ ।। ୨୬
ଏ ଜଗତରୁ ଅଟୁ ଆନ । କାରଣରୂପେ ବିଦ୍ୟମାନ ।। ୨୭
୮ ତୁ ଏକ ହେଲେ ଅଟୁ ଦୁଇ । କାର୍ଯ୍ୟକାରଣରୂପ ହୋଇ ।। ୨୮
ଯେଣୁ ତୁ ପରମ କାରଣ । ଏଣୁ ଅଦ୍ୱୟ ଅଟୁ ପୁଣ ।। ୨୯
ତୁ ପୂର୍ଣ୍ଣ ଯେହ୍ନେ କୁଣ୍ଡଳାଦି । ଦ୍ୱୟରୂପରେ ଅଟୁ ସିଦ୍ଧି ।। ୩୦
କୁଣ୍ଡଳାଦିରୁ ଯେହ୍ନେ ଆନ । ଅଦ୍ୱୟ ଅକୃତ ସୁବର୍ଣ୍ଣ ।। ୩୧
ଯଥାର୍ଥ[୧] ତୋର ଭେଦ ନାହିଁ । ଅଜ୍ଞାନୁଁ କରି ତୋହ ଠାଇଁ ।। ୩୨
ଜନେ ବିକଳ୍ପକୁ ବିଧାନ । କରନ୍ତି, ତୁ ଉପାଧିଶୂନ୍ୟ ।। ୩୩
ଯେଣୁ ତୋ' ଭେଦ ଗୁଣଦ୍ୱାରେ । ବାସ୍ତବ ନାହିଁ ସେ ତୋଠାରେ ।। ୩୪
୯ ବେଦାନ୍ତୀମାନେ ବ୍ରହ୍ମ ତୋତେ । ମଣନ୍ତି ମୀମାଂସକ ଯେତେ ।। ୩୫
ଧର୍ମରୂପରେ ସେ ମଣନ୍ତି । ଯେ ସାଂଖ୍ୟବାଦୀଏ ଅଛନ୍ତି ।। ୩୬
ପ୍ରକୃତି-ପୁରୁଷରୁ ଭିନ୍ନ । ପୁରୁଷରୂପେ ତାଙ୍କ ଜ୍ଞାନ ।। ୩୭
ଯେ ପଞ୍ଚରାତ୍ର ଆଗମରେ । ନିପୁଣ ଅଟନ୍ତି ସଂସାରେ ।। ୩୮
ବିମଳା[୨] ଆଦି ନବଶକ୍ତି । ସଂଯୁତ ପର[୩] ସେ ଜାଣନ୍ତି ।। ୩୯
ଯେ ପାତଞ୍ଜଳ ଶାସ୍ତ୍ର ଜାଣେ । ମହାପୁରୁଷ ବୋଲି ଭଣେ ।। ୪୦
ଅଧୀନ ଅଟୁ ଆପଣାର । ହେ ପ୍ରଭୁ ନାଶ ନାହିଁ ତୋର ।। ୪୧
୧୦ ମୁଁ ଶିବ ପିତାମହ ମିଶି । ମରୀଚି ଆଦି ଯେତେ ଋଷି ।। ୪୨
ହେଲେହେଁ ସତ୍ତ୍ୱଗୁଣେ ଜାତ । ତୁମ୍ଭର କୃତ ଯେ ଜଗତ ।। ୪୩
ତତ୍ତ୍ୱ[୪] କରି ତା' ନ ଜାଣନ୍ତି । ହେ ପ୍ରଭୁ ଆନ ଯେ ଅଛନ୍ତି ।। ୪୪
ଦଇତ୍ୟ ମର୍ତ୍ତ୍ୟ ଆଦି ପୁଣ । ଅଭଦ୍ର[୫] ଯାଙ୍କ[୬] ଆଚରଣ ।। ୪୫
ସେମାନେ ଜାଣିମେ[୭] କେମନ୍ତେ । ଯେ ତୋ ମାୟାରେ ନଷ୍ଟଚିତ୍ତେ ।। ୪୬
୧୧ ତୁମ୍ଭେ ସେ ସମସ୍ତକୁ ଜାଣ । କରିଛ ଯେତେକର୍[୮] ନିର୍ମାଣ ।। ୪୭
ବିହିତ ଏହୁ ଜଗତର । ଯେ ଜନ୍ମ ପାଳନ ସଂହାର ।। ୪୮
ପ୍ରାଣିଙ୍କ ଚେଷ୍ଟା ଅଟେ ଯେହି । ଜଗତ ବନ୍ଧ-ମୋକ୍ଷ ଦୁଇ ।। ୪୯
ସେ ସର୍ବ କଥା ତୁମ୍ଭେ ଜାଣ । ତାହାଙ୍କ ଆତ୍ମଭାବୁଁ ପୁଣ ।। ୫୦

---

୧. ବସ୍ତୁତଃ । ୨. ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା ଏବଂ ଅନୁଗ୍ରହା – ଏହି ନବଶକ୍ତି । ୩. ପର = ପରମାତ୍ମା ('କରି'-ପାଠାନ୍ତର) । ୪. ସତ୍ୟ । ୫. ରାଜସ ଓ ତାମସ । ୬. ତାଙ୍କ । ୭. ଜାଣିଲେ । ୮. ଯେ କର୍ମ ।

ଜ୍ଞାନସ୍ୱରୂପ ତୁମ୍ଭେ ଅଟ । ଯେସନେ ପବନ ପ୍ରକଟ ।। ୫୧
ଚର ଅଚରଙ୍କ ଦେହରେ । ପ୍ରବେଶ ହୋଏ ଆକାଶରେ ।। ୫୨
୧୨ ଗୁଣରେ କରନ୍ତେ ବିହାର । ତୁମ୍ଭର ଯେତେ ଅବତାର ।। ୫୩
ସେମାନ ଦେଖିଅଛି ମୁହିଁ । ଦେଖିବାପାଇଁ ତା' ବାଞ୍ଛଇ ।। ୫୪
ଯେବଣ ନାରୀକଳେବର । ଗ୍ରହଣ କରିଛ ପୂର୍ବର ।। ୫୫
୧୩ ଯେଣେ ମୋହିଲ ଦଇତ୍ୟଙ୍କୁ । ସୁଧା ପିଆଇଲ ଦେବଙ୍କୁ ।। ୫୬
ଦେଖିବା ଅର୍ଥେ ସେ ଶରୀର । ପରମ କୌତୁକ ଆମ୍ଭର ।। ୫୭
ପ୍ରବେଶ ହୋଇଲୁଁ ଏ ସ୍ଥାନେ । ଆସି ତୁମ୍ଭର ସନ୍ନିଧାନେ ।। ୫୮

ଶ୍ରୀଶୁକ ଉବାଚ

୧୪ ଏମନ୍ତ ରୂପେ ପଞ୍ଚାନନ । ବିଷ୍ଣୁଙ୍କୁ କରନ୍ତେ ପ୍ରାର୍ଥନ ।। ୫୯
ଭାବଗମ୍ଭୀରେ ହସି ପୁଣ । ତାଙ୍କୁ କହିଲେ ନାରାୟଣ ।। ୬୦

ଶ୍ରୀଭଗବାନୁବାଚ

୧୫ ଅମୃତପାତ୍ରକୁ ଅସୁରେ । ହରିଣ ନିଅନ୍ତେ ବଳରେ ।। ୬୧
ନାରୀବେଶରେ ଦେବଙ୍କର । କାର୍ଯ୍ୟ ହୋଇବ ତତପର ।। ୬୨
ଏମନ୍ତ ବିଚାରନ୍ତେ ମୁହିଁ । ଦୈତ୍ୟଙ୍କୁ ମୋହିବାର ପାଇଁ ।। ୬୩
କୌତୁକନିମିତ୍ତେ ତାଙ୍କର । ଧଇଲି ଯୁବତିଶରୀର ।। ୬୪
୧୬ ହେ ସୁରଶ୍ରେଷ୍ଠ ! ମୁଁ ତୁମ୍ଭଙ୍କୁ । ଦେଖାଇବି ସେ ସ୍ୱରୂପକୁ ।। ୬୫
ଯେଉଁରୂପକୁ କାମୀମାନେ । ମଣନ୍ତି ବଡ଼ କରି ମନେ ।। ୬୬
ଯେଉଁ ରୂପରୁ ମଦନର । ଉଦୟ ହୁଅଇ ସତ୍ୱର ।। ୬୭

ଶ୍ରୀଶୁକ ଉବାଚ

୧୭ ଏତେ କହନ୍ତେ ଭଗବାନ । ସେଠାରେ ହେଲେ ଅନ୍ତର୍ଧାନ ।। ୬୮
ସର୍ବଦିଗରେ ଆପଣାର । ଚକ୍ଷୁକୁ କରନ୍ତେ ସଂଚାର ।। ୬୯
ଉମାସହିତେ ତ୍ରିଲୋଚନ । ରହିଅଛନ୍ତି ସେହିସ୍ଥାନ ।। ୭୦
୧୮ ଯହିଁ ବିଚିତ୍ର ପୁଷ୍ପମାନ । ପଲ୍ଲବମାନେ ରକ୍ତବର୍ଣ୍ଣ ।। ୭୧
ଏମନ୍ତରୂପେ ବୃକ୍ଷମାନେ । ଅଛନ୍ତି ଯେଉଁ ଉପବନେ ।। ୭୨
ସେ ବନେ ଦେଖିଲେ ଶଙ୍କର । ଆସୁଛି ଏକ ନାରୀବର ।। ୭୩
କନ୍ଦୁକ ଘେନିଣ କରରେ । କ୍ରୀଡ଼ା କରୁଛି ସେ ଲୀଳାରେ ।। ୭୪
ନିତମ୍ବ ମେଖଳା ଆବର । ଶୋଭନ ବସ୍ତ୍ରେ ବୃତ ଯାର ।। ୭୫
୧୯ ସେ କନ୍ଦୁକ ହିଁ ଲୀଳାବଶେ । ପଡ଼ନ୍ତେ ଅଧ ଉର୍ଦ୍ଧ୍ୱ ଦେଶେ ।। ୭୬
ତାହା କରନ୍ତେ ପ୍ରକ୍ଷେପଣ । ଭୂମିରୁ କରନ୍ତେ ଗ୍ରହଣ ।। ୭୭
କଂପନ୍ତି ଯେଉଁ ବେନି ସ୍ତନେ । ତହିଁ ପ୍ରକୃଷ୍ଟ ହାରମାନେ ।। ୭୮

ଅତିଭରରେ ତାହାଙ୍କର । ପଦେ ପଦେକେ ମଧ୍ୟ ଯାର ।। ୭୯
ଭାଜି ପଡ଼ିଲା ପ୍ରାୟ ହୋଇ । ଚାହିଁଲା ଲୋକକୁ ଦିଶଇ ।। ୮୦
ପଲ୍ଲବପ୍ରାୟ ଯେ କୋମଳ । ଗମନବଶରୁ ଚଞ୍ଚଳ ।। ୮୧
ଏମନ୍ତ ଅଟେ ଯେ ଚରଣ । ତାହା ନିଅନ୍ତେ ଏଣେ ତେଣ ।। ୮୨
୨୦ ଦିଗମାନଙ୍କରେ ଭ୍ରମଣ । କରନ୍ତେ ସେ କନ୍ଦୁକ ପୁଣ ।। ୮୩
ଚଞ୍ଚଳ ଭାବରୁ ତାହାର । ଅତ୍ୟନ୍ତ ଉଦବେଗ ଯାର ।। ୮୪
ଏମନ୍ତ ତାରାଯୁଗ ଯହିଁ । ରହି ଅଛନ୍ତି ଶୋଭା ପାଇ ।। ୮୫
ଯାହାର ସେ ନେତ୍ରଯୁଗଳ । ଅଟନ୍ତି ବିଶାଳ[୧] ଚଞ୍ଚଳ ।। ୮୬
ଯେ ନିଜ କର୍ଣ୍ଣୁଁ[୨] ଅବିରତ । କୁଣ୍ଡଳଯୁଗ ବିରାଜିତ ।। ୮୭
ତାଙ୍କ ସକାଶୁଁ ଶୋଭା ପାଇ । ଅଛନ୍ତି ଯେ କପୋଳ ଦୁଇ ।। ୮୮
ଯେ ଆନ ନୀଳାଳକମାନ[୩] । ତେଣେ ମଣ୍ଡିତ ଯେ ଆନନ ।। ୮୯
୨୧ ଶ୍ଳଥ ହୋଇଛି ଯେ ଅମ୍ବର । ଖସିଲା କବରୀ ଆବର ।। ୯୦
ତା' ମନୋହର ବାମ କରେ । ବନ୍ଧନ କରୁଛି ସଧୀରେ ।। ୯୧
ଆର ହସ୍ତରେ ଆପଣାର । କନ୍ଦୁକ କରନ୍ତେ ପ୍ରହାର ।। ୯୨
ଆପଣା ମାୟାରେ ଜଗତ । ମୋହିତ କରନ୍ତେ ସନ୍ତତ ।। ୯୩
୨୨ ତାହାକୁ ଦେଖିଣ ଶଙ୍କର । ଯେ ଆତ୍ମା ଅଟେ ଆପଣାର ।। ୯୪
ତାହାକୁ ଜାଣି ନ ପାରିଲେ । ଯେ ଉମା ନିକଟରେ ଥିଲେ ।। ୯୫
ଯେ ନିଜ ଗଣ ଆପଣାର । ତାଙ୍କୁ ହିଁ ନ କଲେ ଗୋଚର ।। ୯୬
ଏ ରୂପେ କନ୍ଦୁକଲୀଳାରେ । ଅଳପ ଲଜ୍ଜା ଯେ ତା ଠାରେ ।। ୯୭
ତେଣେ ଅସ୍ଫୁଟ ଯେଉଁ ସ୍ମିତ । ତା'ସଙ୍ଗେ କଟାକ୍ଷ ପ୍ରେରିତ ।। ୯୮
ତେଣେ ସେ ହୋଇଲେ ବଞ୍ଚିତ । ତାଠାରେ ଯେଉଁ ଦୃଷ୍ଟିପାତ ।। ୯୯
ଜାତ ହୋଇଲା ଆପଣାର । ଯେ ପ୍ରତିଦୃଷ୍ଟି ପୁଣ ତାର ।। ୧୦୦
ସେ ବେନି କଥାରେ ଅତ୍ୟନ୍ତ । ବିହ୍ୱଳ ହୋଇଛି ଯା' ଚିତ୍ତ ।। ୧୦୧
୨୩ ଯେବେ ସେ କରାଗ୍ରରୁ ତାର । କନ୍ଦୁକ ଗଲା ଅତି ଦୂର ।। ୧୦୨
ତାହାକୁ ଅନୁଲକ୍ଷ୍ୟ କରି । ଗମନ କରନ୍ତେ ସେ ନାରୀ ।। ୧୦୩
ଆପଣେ ଦେଖନ୍ତେ ଶଙ୍କର । ମେଖଳାସହିତେ ତାହାର ।। ୧୦୪
ଯେ ସୂକ୍ଷ୍ମ ଅଟଇ ବସନ । ତାହାକୁ ହରିଲା ପବନ ।। ୧୦୫
୨୪ ରୁଚିର ଅପାଙ୍ଗ ଯାହାର । ଯେ ଦୃଷ୍ଟିଯୋଗ୍ୟ ମନୋହର ।। ୧୦୬
ଏରୂପେ ତାହାକୁ ଦେଖିଣ । କୁଞ୍ଚିତ କଟାକ୍ଷେ ସେ ପୁଣ ।। ୧୦୭
ଶିବଙ୍କୁ ଚାହାଁନ୍ତେ ତାଠାର । ମନ ନିବେଶିଲେ ଶଙ୍କର ।। ୧୦୮
୨୫ ତେଣେ ବିଜ୍ଞାନ ତାହାଙ୍କର । ତକ୍ଷଣେ ହୋଇଲା ସଂହାର ।। ୧୦୯

୧. ବିସ୍ତାର । ୨. କର୍ଣ୍ଣାଭ୍ୟାମ୍ (ସ୍ୱାମୀ) । ୩. ଲୀଳାଳକ (ଅଳକ = କେଶ) ।

ତାର ସକାଶୁଁ କାମ ଜାତ । ତେଣେ ବିହ୍ୱଳ ତାଙ୍କ ଚିତ୍ତ ।।
ଭବାନୀ ଚାହାଁନ୍ତେ ଲଜ୍ଜାକୁ । ଛାଡ଼ିଣ ଗଲେ ତା' ପାଶକୁ ।।
୨୬ ଆସୁଛନ୍ତି ଯେ ପଶୁପତି । ତାହାଙ୍କୁ ଦେଖି ସେ ଯୁବତି ।।
ବସ୍ତ୍ର ନ ଥିଲା ଯେଣୁ କାୟେ । ଲଜ୍ଜିତ ହେଲା ଅତିଶୟେ ।।
ବୃକ୍ଷମାନଙ୍କେ ଲୀନ ହୋଇ । ହସନ୍ତେ ରହିଲା ସେଠାଇଁ ।।
୨୭ ଇନ୍ଦ୍ରିୟମାନେ ଯାହାଙ୍କର । କ୍ଷୋଭିତ ହୋଇଲେ ସତ୍ୱର ।।
ସେ ଶିବ କାମବଶ ହେଲେ । ସେ ଯୁବତିକି ଗୋଡ଼ାଇଲେ ।।
ଦେଖି ହସ୍ତିନୀକି ଝଟିତି । ଯେହ୍ନେ ଗୋଡ଼ାଏ ଯୂଥପତି ।।
୨୮ ଯେ ନାରୀ ଇଚ୍ଛା କରୁନାହିଁ । ତାହାକୁ ଅତିବେଗେ ଯାଇଁ ।।
ଧରିଣ ସେ କେଶବନ୍ଧରେ । ଭୂମିରୁ ଟୋକିଣ ଊର୍ଦ୍ଧ୍ୱରେ ।।
ବାହୁଯୁଗଳେ ଆଲିଙ୍ଗନ । କଲେକ ଦେବ ତ୍ରିଲୋଚନ ।।
୨୮(କ)ଯାହାର ଲୋଚନ ବିସ୍ତୃତ । ଯେ ଦିଶେ ଅତ୍ୟନ୍ତ ଶୋଭିତ ।।
ଯେ ଦିବ୍ୟ ଗନ୍ଧରେ ସଂଯୁତ । ନୀଳ ଅଳକ[1]ଗଣେ ଯୁତ ।।
ଗାଢ଼େ ଆଲିଙ୍ଗନ କରିଣ । ତାହାକୁ କଲେ ସେ ଆଘ୍ରାଣ ।।
୨୯ କରି କରିଣୀକି ଯେସନ । ସେରୂପେ ତାକୁ ଭଗବାନ ।।
କରନ୍ତେ ଆଲିଙ୍ଗନ ସେହି । ଏଣିକି ତେଣିକି ଖସଇ ।।
ଫିଟନ୍ତେ କବରୀବନ୍ଧନ । ଲୋଟୁଛନ୍ତି ଯା' କେଶମାନ ।।
୩୦ ହେ ନୃପ ! ସେ ସୁରଶ୍ରେଷ୍ଠର । ଯେ ମଧ୍ୟ ବେନିଭୁଜଙ୍କର ।।
ତହୁଁ ଆପଣାକୁ ଫିଟାଇ । ସେ ପୃଥୁଶ୍ରୋଣୀ[2] ଗଲା ଧାଇଁ ।।
ବିଷ୍ଣୁରେ ଅଟଇ ନିର୍ମିତ । ମାୟାସ୍ୱରୂପ ସେ ସାକ୍ଷାତ ।।
୩୧ ଯାହାର କୃତ କର୍ମମାନେ । ଅଦ୍ଭୁତ ଅଟନ୍ତି ଭୁବନେ ।।
ସେ ବିଷ୍ଣୁମାର୍ଗକୁ ଶଙ୍କର । ପ୍ରପନ୍ନ ହୋଇଲେ ସତ୍ୱର ।।
ଯେ ପୂର୍ବ ରିପୁ କାମ ଥିଲା । ସେ ତାଙ୍କୁ କି ଅବା ଜିଣିଲା ।।
୩୨ ଅମୋଘ ରେତ ଯାହାଙ୍କର । ବେଗେ ଧାମନ୍ତେ ସେ ଶଙ୍କର ।।
ସ୍ଖଳିତ ହେଲା ତାଙ୍କ ରେତ । ସକାମ କୁଞ୍ଜର ଯେମନ୍ତ ।।
ସେ ଯେହ୍ନେ ହସ୍ତିନୀକି ଚାହିଁ । ଧାମନ୍ତେ ତା' ବୀର୍ଯ୍ୟ ସ୍ଖଳଇ ।।
୩୩ ମହତ ଅଟେ ଆତ୍ମା ଯାର । ହେ ମହୀପତି ! ସେ ରୁଦ୍ରର ।।
ଯେବଣ ଯେବଣ ସ୍ଥାନରେ । ରେତ ପଡ଼ିଲା ଧରଣୀରେ ।।
[3]ରୌପ୍ୟ-ସୁବର୍ଣ୍ଣକ୍ଷେତ୍ରମାନ । ହେଲେ ଏ ଜଗତେ ସେମାନ ।।

---

୨୮(କ) ତାଂ ସୁଗାଢ଼ଂ ପରିଷ୍ୱଜ୍ୟ ଦୋର୍ଭ୍ୟାମାୟତଲୋଚନାଂ ।
ଆଜିଘ୍ରଦ୍ଦିବ୍ୟଗନ୍ଧାଢ୍ୟାଂ ନୀଳାଳକବରୂଥିନୀମ୍* ।।

୧. କେଶ । ୨. ନିତମ୍ବ । * ସମୂହ ।

୩. ସୁବର୍ଣ୍ଣଉତପତିସ୍ଥାନ । (ରୂପ୍ୟସ୍ୟ ହେମ୍ନଶ୍ଚ) ।

୩୪ ସର ସରିତ ମହୀଧର । ବନ ଉପବନ ଆବର ॥ ୧୩୯
ରକ୍ଷିଏ ଛନ୍ତି ଯହିଁ କାହିଁ । ଶିବ ମିଳିଲେ ଯାଇଁ ତହିଁ ॥ ୧୪୦
୩୫ ହେ ନୃପଶ୍ରେଷ୍ଠ ନିଜ ରେତ । ସ୍ଖଳିତ ହୁଅନ୍ତେ ତୁରିତ ॥ ୧୪୧
ଦେବମାୟାରୁ ଜଡ଼ଭାବ । ଜାଣିଲେ ଆପଣାର ଶିବ ॥ ୧୪୨
ସେଘେନି ଯେ ନିଜ କଶ୍ମଳ । ତହୁଁ ନିବର୍ତ୍ତିଲେ ତତ୍କାଳ ॥ ୧୪୩
୩୬ ଯେ ଅଟେ ଆତ୍ମା ଜଗତର । ଅପରିଚ୍ଛେୟ ବୀର୍ଯ୍ୟ ଯାର ॥ ୧୪୪
ଏଥୁ ଅନ୍ତରେ ସେ ବିଷ୍ଣୁର । ମାୟାକୁ କଲେ ସେ ଗୋଚର ॥ ୧୪୫
ଆପଣା ଜଡ଼ଭାବ ଯେହି । ଅଦ୍ଭୁତ ନ ମଣିଲେ ତାହି ॥ ୧୪୬
୩୭ ବିକ୍ଳବ ଭାବ ଲଜ୍ଜା ଦୁଇ । ସେ ମହେଶ୍ୱର ଠାରେ ନାହିଁ ॥ ୧୪୭
ଏମନ୍ତ କଥା ଲକ୍ଷ୍ୟ[1] କରି । ଅତିସନ୍ତୋଷ ହେଲେ ହରି ॥ ୧୪୮
ନିଜ ପୁରୁଷଶରୀରକୁ । ଧରନ୍ତେ କହିଲେ ତାହାଙ୍କୁ ॥ ୧୪୯

ଶ୍ରୀଭଗବାନୁବାଚ

୩୮ ଯେ ନିଷ୍ଠା[2] ଅଟେ ଆପଣାର । ଲଭିଲ ତା' ହେ ସୁରବର ॥ ୧୫୦
ସ୍ତିରୀସମାନରୂପ ହୋଇ । ମୋହର ମାୟା ଯେ ଅଟଇ ॥ ୧୫୧
ତେଣେ ଯେ ଅତିଶୟ ହୋଇ । ମୋହବଶକୁ ଥିଲ ଯାଇଁ ॥ ୧୫୨
୩୯-୪୦ ଯେ ସେହି ସେହି ଭାବମାନ । ସଂତତେ କରଇ ସର୍ଜନ ॥ ୧୫୩
ଅବଶ ଆତ୍ମା ଯାହାଙ୍କର । ତେଣେ ଯେ ଅଟଇ ଦୁସ୍ତର ॥ ୧୫୪
ମୋ ମାୟା ଅଟଇ ଏମନ୍ତ । ତହିଁରେ ହୋଇ ଆସକତ ॥ ୧୫୫
ତାହାକୁ ତୋ ବିନୁ ସଂସାରେ । କେଉଁ ପୁରୁଷ ଅବା ତରେ ॥ ୧୫୬
ମୁଁ ଯାହା କାଳସ୍ୱରୂପରେ । ସୃଷ୍ଟି ଆଦିର ନିମିତ୍ତରେ ॥ ୧୫୭
କରିଛି ରଜଆଦିମାନ । ତା' ଅଂଶେ ଯେ ମୋର ଅଧୀନ ॥ ୧୫୮
ସେ ଗୁଣମୟୀ ମାୟା ତୋତେ । ଲଂଘି[3] ନ ପାରିବ ଜଗତେ ॥ ୧୫୯

ଶ୍ରୀଶୁକ ଉବାଚ

୪୧ ହେ ନୃପ ! ଏରୂପେ ଶ୍ରୀଧର । ତାହାଙ୍କୁ କରନ୍ତେ ସତ୍କାର ॥ ୧୬୦
ହରିଙ୍କି କରି ଆମନ୍ତ୍ରଣ । ପୁଣି କରିଣ ପ୍ରଦକ୍ଷିଣ ॥ ୧୬୧
ଗଣସହିତେ ଶୂଳଧର । ଗଲେ ଆପଣାର ମନ୍ଦିର ॥ ୧୬୨
୪୨ ହେ ନୃପଶ୍ରେଷ୍ଠ ! ମୁନିଙ୍କରେ । ଯେ ଉମା ସମ୍ମତ ମାନ୍ୟରେ ॥ ୧୬୩
ତାଙ୍କୁ କହିଲେ ତାହା ଶିବ । ଯେ ମାୟା ବିଷ୍ଣୁଅଂଶଭବ ॥ ୧୬୪
୪୩ ଯେ ଅଜ ପରମ ପୁରୁଷ । ପରମ ଦେବତା ପ୍ରକାଶ ॥ ୧୬୫
ଭୋ ଉମା ମାୟା ତାହାଙ୍କର । ପ୍ରତ୍ୟକ୍ଷେ କଲୁ କି ଗୋଚର ॥ ୧୬୬
ମୁଁ ଶ୍ରେଷ୍ଠ କଳାମାନଙ୍କରେ । ତଥାପି ଯେବଣ ମାୟାରେ ॥ ୧୬୭

୧. ଲକ୍ଷି । ୨. ନିଷ୍ଠା = ପ୍ରକୃତି (ସ୍ୱାମୀ) । ୩. ଲଙ୍ଘି (ଅଭିଭବିଷ୍ୟତି) ।

| | | | | |
|---|---|---|---|---|
| | ଅବଶେ ମୋହ ଲଭିଲଇଁ | ଦେହାଦି ପରତନ୍ତ୍ର ଯେହି | ।। | ୧୬୮ |
| | ତାହାଙ୍କ ମୋହିତ ହେବାର | କିବା କହିବା ସେ ପ୍ରକାର | ।। | ୧୬୯ |
| ୪୪ | ସହସ୍ରବର୍ଷଅନ୍ତେ ମୁହିଁ | ଯୋଗରୁ ନିବର୍ତ୍ତନ୍ତେ ତୁହି | ।। | ୧୭୦ |
| | ଯାହା ପୁଚ୍ଛିଲୁ ସେ ସାକ୍ଷାତ | ପୁରାଣ ପୁରୁଷ ବିଦିତ | ।। | ୧୭୧ |
| | ଯହିଁରେ କାଳ ବେଦ ଦୁଇ | ପ୍ରବେଶ ହୋଇ ନ ପାରଇ | ।। | ୧୭୨ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୫ | ବିଷ୍ଣୁର ବିକ୍ରମକୁ ତୋତେ | ହେ ନୃପ ! କହିଲୁଁ ଏମନ୍ତେ | ।। | ୧୭୩ |
| | ସିନ୍ଧୁମନ୍ଥନେ ମହାଗିରି | ପୃଷ୍ଠେ ଯେ ଧଇଲେ ଶ୍ରୀହରି[1] | ।। | ୧୭୪ |
| ୪୬ | ଏ ଚରିତକୁ ପୁଣ ପୁଣ | ଯେ ପଢ଼େ ଯେ କରେ ଶ୍ରବଣ | ।। | ୧୭୫ |
| | ତାର ଉଦ୍ୟମ ଯେ ସେ କାହିଁ | କେବେହେଁ ବିନାଶ ନୁହଇ | ।। | ୧୭୬ |
| | ଯେଣୁ ଉତ୍ତମଶ୍ଳୋକଙ୍କର | ଗୁଣାନୁବର୍ଣ୍ଣନପ୍ରକାର | ।। | ୧୭୭ |
| | ସଂସାରଜନିତ ସମସ୍ତ | ପରିଶ୍ରମକୁ କରେ ଅସ୍ତ | ।। | ୧୭୮ |
| ୪୭ | ଅସାଧୁଙ୍କୁ ଯେ ଅବିଦିତ | ଭାବରେ[2] ହୋଇଛି ପ୍ରାପତ | ।। | ୧୭୯ |
| | ଏମନ୍ତ ପାଦକୁ ପ୍ରପନ୍ନ | ହେଲେ ଯେ ଦେବବୃନ୍ଦମାନ | ।। | ୧୮୦ |
| | କପଟନାରୀବେଶ ହୋଇ | ଅମରବଇରିଙ୍କି ମୋହି | ।। | ୧୮୧ |
| | ତାଙ୍କୁ ପିଆଇଲେ ଅମୃତ | ଯେ ସିନ୍ଧୁମନ୍ଥନରୁ ଜାତ | ।। | ୧୮୨ |
| | ଶରଣାଗତ ଜନଙ୍କର | କାମପୂରକ ଯେ ଈଶ୍ୱର | ।। | ୧୮୩ |
| | ଏମନ୍ତ ଯେ ପୁରୁଷୋତ୍ତମ | ତାଙ୍କୁ ମୁଁ କରୁଛି ପ୍ରଣାମ | ।। | ୧୮୪ |
| | କୃଷ୍ଣଚରଣେ ଦେଇ ଚିତ୍ତ | ଅଷ୍ଟମ ସ୍କନ୍ଧ ଭାଗବତ | ।। | ୧୮୫ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | ହରଷ ସାଧୁଜନେ ତେଣେ | ।। | ୧୮୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀଶଙ୍କରମୋହନଂ
ନାମ ଦ୍ୱାଦଶୋଽଧ୍ୟାୟଃ ।।

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେ ତୁ ବର୍ଣ୍ଣ୍ୟନ୍ତେ ସପ୍ତମାଦୀନ୍ୟନୁକ୍ରମାତ୍ ।
ମନ୍ୱନ୍ତରାଣି ସର୍ବାଣି ଷଡ୍‌ବିଧାନି ପୃଥକ୍ ପୃଥକ୍ ।। ୧

| | | | | |
|---|---|---|---|---|
| ୧ | ଯେ ମନୁ ବିବସ୍ୱତପୁତ୍ର | ଯେ ଶ୍ରାଦ୍ଧଦେବ ନାମ ଖ୍ୟାତ | ।। | ୧ |
| | ଯେହୁ ସପ୍ତମ ବର୍ତ୍ତମାନ | ଶୁଣସି ତା' ଅପତ୍ୟମାନ | ।। | ୨ |
| ୨ | ଇକ୍ଷ୍ୱାକୁ ସେ ନଭଗ ଧୃଷ୍ଟ | ଶର୍ଯ୍ୟାତି ନରିଷ୍ୟନ୍ତ ଦିଷ୍ଟ | ।। | ୩ |

୧. ମୁରାରି । ୨. ଭାବ = ଭଜନ ।

୩ ନାଭାଗ ପୃଷଧ୍ର କରୁଣ[1] । ଦଶମ ବସୁମନ୍ତ ପୁଣ ॥ ୪
ବଇବସ୍ୱତ ମନୁଙ୍କର । ହେ ନୃପ ! ଏ ଦଶ କୁମର ॥ ୫
୪ ଆଦିତ୍ୟ ବସୁ ରୁଦ୍ରେ ପୁଣ । ଯେ ବିଶ୍ୱଦେବେ ମରୁଦ୍‌ଗଣ ॥ ୬
ଅଶ୍ୱିନିଦେବେ[2] ତାହାଙ୍କର । ହେ ନୃପ ! ଇନ୍ଦ୍ର ପୁରନ୍ଦର ॥ ୭
୫ କଶ୍ୟପ ଅତ୍ରି ଯେ ବଶିଷ୍ଠ । ଗୌତମ ବିଶ୍ୱାମିତ୍ର ଶ୍ରେଷ୍ଠ ॥ ୮
ଯେ ଜମଦଗ୍ନି ଭରଦ୍ୱାଜ । ସପତ ଋଷି ଏ ସମାଜ ॥ ୯
୬ କଶ୍ୟପଠାରୁ ଅଦିତିର । ଗର୍ଭେ ବାମନରୂପଧର ॥ ୧୦
ସେ ମନ୍ୱନ୍ତରେ ବିଷ୍ଣୁ ଜାତ । ଆଦିତ୍ୟଙ୍କର ସାନ ଭ୍ରାତ ॥ ୧୧
୭ ସଂକ୍ଷେପେ ସପ୍ତ ମନ୍ୱନ୍ତର । କହିଲି ତୋହର ଆଗର ॥ ୧୨
ଭବିଷ୍ୟ ମନ୍ୱନ୍ତର ଯେତେ । ଏବେ କହିବା ତାହା ତୋତେ ॥ ୧୩
ସଂଯୁତ ବିଷ୍ଣୁର ଶକ୍ତି[3] ରେ । ଯେଉଁ ଭବିଷ୍ୟ ମନ୍ୱନ୍ତରେ ॥ ୧୪
୮ ନାମରେ ସଂଜ୍ଞା ଛାୟା ହୋଇ । ଯେ ବିଶ୍ୱକର୍ମାସୁତା ଦୁଇ ॥ ୧୫
ହେ ନୃପ ! ଭାର୍ଯ୍ୟା ସେ ସୂର୍ଯ୍ୟର । ପୂର୍ବେ କହିଛୁଁ ତୋ' ଆଗର ॥ ୧୬
୯ ତୃତୀୟ ବଡ଼ବା[4] ଅଟଇ । ଏହା ବୋଲନ୍ତି ପୁଣ କେହି ॥ ୧୭
ଯମ ଯମୁନା ଶ୍ରାଦ୍ଧଦେବ । ସଂଜ୍ଞାର ଠାରୁ ଏ ସମ୍ଭବ ॥ ୧୮
ଛାୟାର ଯେତେ ସୁତ ପୁଣ । ତାହା କହିବା ଏବେ ଶୁଣ ॥ ୧୯
୧୦ ସାବର୍ଣ୍ଣିନାମେ ଏକ ସୁତ । ତପତୀ ନାମେ କନ୍ୟା ଜାତ ॥ ୨୦
ଯେ ସମ୍ବରଣ ମହୀପତି । ତାହାର ଭାର୍ଯ୍ୟା ସେ ତପତୀ ॥ ୨୧
ଯେ ବେନି ଅଶ୍ୱିନିକୁମାର । ସେହୁ ତନୟ ବଡ଼ବାର ॥ ୨୨
ନାମରେ ଯେହୁ ଶନୈଶ୍ଚର । ସେ ଅଟେ ତୃତୀୟ କୁମର ॥
୧୧ ଆସନ୍ତେ ଅଷ୍ଟମ ଅନ୍ତର । ସାବର୍ଣ୍ଣି ମନୁ ହେବ ଆର ॥ ୨୩
ନିର୍ମୋକ ବିରଜସ୍କ ଆଦି । ନୃପ ! ସାବର୍ଣ୍ଣିସୁତ ସିଦ୍ଧି ॥ ୨୪
୧୨ ଅମୃତପ୍ରଭ ବିରଜସ[5] । ସୁତପ ତହିଁରେ ତ୍ରିଦଶ ॥ ୨୫
ବଳି ବିରୋଚନକୁମର । ଇନ୍ଦ୍ର ହୋଇବ ତାହାଙ୍କର ॥ ୨୬
୧୩ ମାଗନ୍ତେ ତିନିପାଦ ମହୀ । ବିଷ୍ଣୁଙ୍କୁ ଯେଉଁ ବଳି ଦେଇ ॥ ୨୭
ଇନ୍ଦ୍ରପଦକୁ ତଦନ୍ତରେ । ଲଭି ଅଷ୍ଟମ ମନ୍ୱନ୍ତରେ ॥ ୨୮
ସେ ଇନ୍ଦ୍ରପଦକୁ ତେଜିଣ । ମୋକ୍ଷକୁ ଲଭିବ ସେ ପୁଣ ॥ ୨୯
୧୪ ଯାକୁ ସନ୍ତୋଷେ ବନ୍ଧ କରି । ରଖିଲେ ସୁତଳରେ ହରି ॥ ୩୦
ସ୍ୱର୍ଗୁଁ ଅଧିକ ସ୍ଥାନେ ସ୍ୱୟେଂ । ଆଜ ଅଛି ସେ ଇନ୍ଦ୍ରପ୍ରାଏ ॥ ୩୧

୧. କରୂଷ, ତରୂଷ । ୨. ମୂଳପାଠସ୍ଥିତ 'ଗଭୁ' ନାମ ଏଠାରେ ରହିବା ଉଚିତ ।
୩. ଶକ୍ତି = ଅବତାର (ସ୍ୱାମୀ) ।
୪. ଏକେ ବଡ଼ବାଂ ତୃତୀୟାମାହୁଃ; ମମ ତୁ ସଂଜ୍ଞା ଏବ ବଡ଼ବା ଇତି ମତମ୍ (ସ୍ୱାମୀ) ।
୫. ମୂଳଶବ୍ଦ 'ବିରଜାଃ' ।

| | | | | | |
|---|---|---|---|---|---|
| ୧୫ | ପରଶୁରାମ ଦୀପ୍ତିମନ୍ତ | । | କୃପ ଗାଲବ ଦ୍ରୋଣସୁତ | ।। | ୩୨ |
| | ବାଦରାୟଣ ଆମ୍ଭ ତାତ | । | ଯେ ଋଷ୍ୟଶୃଙ୍ଗ ମୃଗୀସୁତ | ।। | ୩୩ |
| ୧୬ | ଏ ସପ୍ତ ଋଷି ତହିଁ ହେବେ | । | ନିଜ ଯୋଗରୁ ପୁଣ ଏବେ | ।। | ୩୪ |
| | ଯେ ଯାହା ଆଶ୍ରମମଣ୍ଡଳେ | । | ହେ ନୃପ ! ଅଛନ୍ତି ସକଳେ | ।। | ୩୫ |
| ୧୭ | ଦେବଗୁହ୍ୟର ସକାଶରେ | । | ଜନମି ସରସ୍ୱତୀଠାରେ | ।। | ୩୬ |
| | ସେ ପ୍ରଭୁ ସାର୍ବଭୌମ ହୋଇ | । | ନାମକୁ ପ୍ରକାଶିବେ ତହିଁ | ।। | ୩୭ |
| | ଇନ୍ଦ୍ରର ଠାରୁ ହରି[1] ସ୍ଥାନ | । | ବଳିକି କରିବେ ପ୍ରଦାନ | ।। | ୩୮ |
| ୧୮ | ନବମ ବରୁଣର ସୂନୁ[2] | । | ଦକ୍ଷସାବର୍ଣ୍ଣି ନାମେ ମନୁ | ।। | ୩୯ |
| | ପ୍ରଥମ ଭୂତକେତୁ ଜାତ | । | ଦ୍ୱିତୀୟ ଦୀପ୍ତକେତୁ ଖ୍ୟାତ | ।। | ୪୦ |
| | ଏ ଆଦି ତାହାର ନନ୍ଦନ | । | ସମ୍ଭବ ହେବେ ହେ ରାଜନ | ।। | ୪୧ |
| ୧୯ | ପାର, ମରୀଚିଗର୍ଭ ଆଦି | । | ଦେବେ, ଅଦ୍ଭୁତ[3] ଇନ୍ଦ୍ର ସିଦ୍ଧି | ।। | ୪୨ |
| | ଦ୍ୟୁତିମନ୍ତକୁ ଆଦି ହୋଇ | । | ସପତ ଋଷି ହେବେ ତହିଁ | ।। | ୪୩ |
| ୨୦ | ଯେ ପୁଣ ଆୟୁଷ୍ମନ୍ତଦାରା | । | ନାମ ତାହାର ଅମ୍ବୁଧାରା | ।। | ୪୪ |
| | ଋଷଭ ନାମେ ବିଷ୍ଣୁ ଅଂଶ | । | ତାଠାରେ ହୋଇବ ପ୍ରକାଶ | ।। | ୪୫ |
| | ଯେଣେ ସଂସିଦ୍ଧ ତ୍ରିଜଗତ | । | ଭୋଗ କରିବ ସେ ଅଦ୍ଭୁତ[4] | ।। | ୪୬ |
| ୨୧ | ଯେ ବ୍ରହ୍ମସାବର୍ଣ୍ଣି ମହାନ୍ତ | । | ଦଶମ ଉପଶ୍ଳୋକସୁତ | ।। | ୪୭ |
| | ଭୂରିଷେଣାଦି ତାର ସୁତ | । | ଯେ ହବିଷ୍ମନ୍ତ ଯେ ସୁକୃତ | ।। | ୪୮ |
| ୨୨ | ଯେ ଜୟ, ସତ୍ୟ, ମୂର୍ତ୍ତି ପୁଣ | । | ସେକାଳେ ହେବେ ଋଷିଗଣ | ।। | ୪୯ |
| | ଯେ ସୁବାସନ ବିରୁଦ୍ଧାଦି | । | ଦେବତାରୂପରେ ପ୍ରସିଦ୍ଧି | ।। | ୫୦ |
| | ଶମ୍ଭୁ ନାମରେ ସୁରେଶ୍ୱର | । | ସେ କାଳେ ହୋଇବ ପ୍ରଚାର | ।। | ୫୧ |
| ୨୩ | ବିଶ୍ୱସୃଜର ସଦନରେ | । | ତା' ଭାର୍ଯ୍ୟା ବିଷୂଚୀଗର୍ଭରେ | ।। | ୫୨ |
| | ବିଷ୍ୱକସେନ ନାମେ ହରି | । | ଜନ୍ମିବେ ଅଂଶାଂଶରେ କରି | ।। | ୫୩ |
| | ଯେ ଶମ୍ଭୁ ନାମରେ ବାସବ | । | କରିବେ ତାର ସଖାଭାବ | ।। | ୫୪ |
| ୨୪ | ଧର୍ମସାବର୍ଣ୍ଣି ଏକାଦଶ | । | ମନୁ ହୋଇବ ସେ ପ୍ରକାଶ | ।। | ୫୫ |
| | ସତ୍ୟ ଧର୍ମାଦି ଦଶ ସୁତ | । | ତାହାର ହୋଇବେ ସଂଭୂତ | ।। | ୫୬ |
| ୨୫ | ଦେବଙ୍କ ନାମ ବିହଙ୍ଗମ | । | ନିର୍ବାଣରୁଚି କାମଗମ | ।। | ୫୭ |
| | ବୈଧୃତ ନାମେ ସୁରପତି | । | ଲଭିବ ସେ ମନୁରେ ଖ୍ୟାତି | ।। | ୫୮ |
| | ଅରୁଣ ଆଦି ଋଷି ସାତ | । | ସେ ମନ୍ୱନ୍ତରେ ହେବେ ଖ୍ୟାତ | ।। | ୫୯ |
| ୨୬ | ବୈଧୃତା ନାମେ ଆର୍ଯ୍ୟକର | । | ଯେବଣ ପତ୍ନୀ, ତାହାଠାର | ।। | ୬୦ |
| | ହରିର ଅଂଶ ହେବ ଜାତ | । | ସେ ଧର୍ମସେତୁ ନାମେ ଖ୍ୟାତ | ।। | ୬୧ |
| | ଏ ତିନିଲୋକକୁ ପାଳନ | । | କରିବେ ସ୍ୱୟେଂ ଭଗବାନ | ।। | ୬୨ |

୧. ହରଣ କରି । ୨. ପୁତ୍ର । ୩. ଅଶ୍ରୁତ । ୪. ଅଶ୍ରୁତ ।

୨୭ ରୁଦ୍ରସାବର୍ଣ୍ଣି ନାମେ ଖ୍ୟାତ । ଦ୍ୱାଦଶ ମନୁ ହେବ ଜାତ ।। ୬୩

ଯେ ଉପଦେବ ଦେବବନ୍ତ । ଦେବଶ୍ରେଷ୍ଠାଦି ତାର ସୁତ ।। ୬୪

୨୮ ତହିଁରେ ଇନ୍ଦ୍ର ଋତଧାମ । ଦେବତା ହରିତାଦି ନାମ ।। ୬୫

ତପସ୍ୱୀ ତପୋମୂର୍ତ୍ତି ଦୁଇ । ଅଗ୍ନୀଧ୍ର ଆଦି ଋଷି ତହିଁ ।। ୬୬

୨୯ ସତ୍ୟସହର ଯେ ବନିତା । ନାମରେ ବିଖ୍ୟାତ ସୂନୃତା ।। ୬୭

ସ୍ୱଧାମା[୧] ନାମେ ହରିଅଂଶ । ତା' ସୁତରୂପରେ ପ୍ରକାଶ ।। ୬୮

ସେ ମନ୍ୱନ୍ତରକୁ ପାଳନ । କରିବେ ପ୍ରଭୁ ଭଗବାନ ।। ୬୯

୩୦ ଦେବସାବର୍ଣ୍ଣି ଆତ୍ମବନ୍ତ । ସେ ତ୍ରୟୋଦଶ ମନୁ ଖ୍ୟାତ ।। ୭୦

ଯେ ଚିତ୍ରସେନ ବିଚିତ୍ରାଦି । ଦେବସାବର୍ଣ୍ଣିସୁତ ସିଦ୍ଧି ।। ୭୧

୩୧ ଦେବତା ସୁକର୍ମ ସୁତ୍ରାମ । ଇନ୍ଦ୍ରର ଦିବସ୍ପତି ନାମ ।। ୭୨

ନିର୍ମୋକ ତତ୍ତ୍ୱଦର୍ଶୀ[୨] ଆଦି । ସପତ ଋଷି ହେବେ ସିଦ୍ଧି ।। ୭୩

୩୨ ଦେବହୋତ୍ରର ଯେ ଯୁବତୀ । ନାମରେ ଅଟଇ ବୃହତୀ ।। ୭୪

ହରିର ଅଂଶ ତାହାଠାର । ହେବ ନାମରେ ଯୋଗେଶ୍ୱର ।। ୭୫

ଦିବସ୍ପତିକି ଇନ୍ଦ୍ରଭାବେ । ସେ ମନ୍ୱନ୍ତରେ ସଂପାଦିବେ ।। ୭୬

୩୩ ଇନ୍ଦ୍ରସାବର୍ଣ୍ଣି ଚତୁର୍ଦ୍ଦଶ । ମନୁ ହୋଇବ ପରକାଶ ।। ୭୭

ଉରୁ, ଗମ୍ଭୀର, ବୁଧ୍ୟ ଆଦି । ତାହାର ତନୟ ପ୍ରସିଦ୍ଧି ।। ୭୮

୩୪ ଯେ ଖ୍ୟାତ ପବିତ୍ର ଚାକ୍ଷୁଷ । ସେମାନେ ହୋଇବେ ତ୍ରିଦଶ ।। ୭୯

ଶୁଚି ନାମରେ ସୁରପତି । ଲଭିବ ସେ ମନୁରେ ଖ୍ୟାତି ।। ୮୦

ଯେ ଅଗ୍ନିବାହୁ ଶୁଚି ଶୁଦ୍ଧ । ଆବର ନାମରେ ମାଗଧ ।। ୮୧

ଏମନ୍ତ ରୂପେ ଋଷି ସାତ । ସେ ମନ୍ୱନ୍ତରେ ହେବେ ଖ୍ୟାତ ।। ୮୨

୩୫ ସତ୍ରାୟଣର ଯେ ବନିତା । ନାମରେ ବିଖ୍ୟାତ ବିନତା[୩] ।। ୮୩

ତା' ଠାରେ ହରି ହେବେ ସୁତ । ଯେ ବୃହଭାନୁ ନାମେ ଖ୍ୟାତ ।। ୮୪

କର୍ମସମୂହକୁ ବିସ୍ତାର । କରିବେ ସେ ହେ ନରେଶ୍ୱର ।। ୮୫

୩୬ ତିନି କାଳକୁ ଅନୁଗତ । ଯେ ମନୁ ଚତୁର୍ଦ୍ଦଶ ଖ୍ୟାତ ।। ୮୬

ହେ ନୃପ କହିଲୁଁ ତା' ତୋତେ । ସହସ୍ର ଯୁଗ ପରିଯନ୍ତେ ।। ୮୭

ଯେ କଳ୍ପ ଲଭେ ପରିବର୍ତ୍ତ[୪] । ଏଣେ ସେ ହୁଅଇ ଗଣିତ ।। ୮୮

ଶ୍ରୀକୃଷ୍ଣଚରଣପଙ୍କଜେ । ବ୍ରାହ୍ମଣ ଦୀନବନ୍ଧୁ ଭଜେ ।। ୮୯

ସୁଜନେ ନ ଧର ମୋ ଦୋଷ । ଶୁଣି ଏ ଗୀତ ହୁଅ ତୋଷ ।। ୯୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ମନ୍ୱନ୍ତରାନୁବର୍ଣ୍ଣନଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।।

---

୧. ସୁଧାମା । ୨. ବିରଜସ୍କ । ୩. ବିତାନା । ୪. ପରିବୃତ୍ତ ।

# ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶେ ତୁ ସର୍ବେଷାଂ ମନ୍ୱାଦୀନାଂ ଯଥାଯଥମ୍ ।
ପୃଥକ୍ କର୍ମାଣି ବର୍ଣ୍ଣ୍ୟନ୍ତେ ଭଗବଦ୍‌ବଶବର୍ତ୍ତିନାମ୍ ।। ୧

ଶ୍ରୀରାଜୋବାଚ

୧ ଯେ ମନ୍ୱନ୍ତର ମାନଙ୍କରେ । ମନ୍ୱାଦି ହୁଅନ୍ତି ଭୂମିରେ ।। ୧
ଯେ ଯେଉଁ କର୍ମରେ ନିଯୁକ୍ତ । ଯେଣେ ସେ ହୁଅନ୍ତି ପ୍ରେରିତ ।। ୨
ମୋହର ଆଗରେ ସେମାନ । କହ ହେ ବ୍ୟାସଙ୍କ ନନ୍ଦନ ।। ୩

ଶ୍ରୀଶୁକ ଉବାଚ

୨ ମୁନିଏ ମନୁ ମନୁସୁତେ । ଇନ୍ଦ୍ରାଦି ସୁରଗଣ ଯେତେ ।। ୪
ଏସର୍ବ ଆହେ ମହୀପତି । ବିଷ୍ଣୁରେ ନିଯୁକ୍ତ ଅଟନ୍ତି ।। ୫
୩ ଯେ ଯଜ୍ଞ ଆଦି ବିଷ୍ଣୁରୂପ । କଥିତ ଅଛି ଆହେ ନୃପ ।। ୬
ତେଣେ ହୋଇଣ ନିଯୋଜିତ । ମନ୍ୱାଦିମାନେ ଏ ସମସ୍ତ ।। ୭
ଜଗତଯାତ୍ରା ଯେ ଅଟଇ । ନିର୍ବାହ କରନ୍ତି ସେ ତାହି ।। ୮
୪ ଶ୍ରୁତିଏ ଚାରିଯୁଗଅନ୍ତେ । କାଳରେ ବିନାଶ ହୁଅନ୍ତେ ।। ୯
ଋଷିଏ ତପସ୍ୟାବଳରେ । ଦେଖନ୍ତି ତାହା ଯଥାର୍ଥରେ ।। ୧୦
ଯେବଣ ଶ୍ରୁତିଗଣୁଁ ଜାତ । ସେ ସନାତନଧର୍ମପଥ ।। ୧୧
୫ ମନୁଏ ହରିଆଜ୍ଞା ପାଇ । ଯେ ଧର୍ମ ଚତୁଷ୍ପାଦ ତାହି ।। ୧୨
ସଂଯୁତ ହୋଇ ଯେଝା କାଳେ । ନୃପ ! ସଞ୍ଚରାନ୍ତି ଭୂତଳେ ।। ୧୩
୬ } ମନୁମାନଙ୍କର କ୍ରମରେ । ପୁତ୍ରପୌତ୍ରାଦିଙ୍କ କ୍ରମରେ ।। ୧୪
୭ } ମନୁ-ଅନ୍ତରପ୍ରାନ୍ତଯାଏ । ପ୍ରଜାଙ୍କୁ ପାଳନ୍ତି ନିର୍ଭୟେ ।। ୧୫
ଯଉଁ ଦେବତା ଯଉଁ କର୍ମେ । ନିଯୁକ୍ତ ହୋଇଥାନ୍ତି କ୍ରମେ ।। ୧୬
ତାହାଙ୍କୁ ସଙ୍ଗତ ହୋଇଣ । ଯା' ଦେଇଛନ୍ତି ନାରାୟଣ ।। ୧୭
ସେ ତିନି ଲୋକର ସଂପତ୍ତି । ଭୋଗ କରନ୍ତେ ସୁରପତି ।। ୧୮
ତିନି ଜଗତକୁ ପାଳଇ । ପୂର୍ଣ୍ଣ କରିଣ ବରଷଇ ।। ୧୯
୮ ଜ୍ଞାନକୁ ପ୍ରତିଯୁଗେ ହରି । କହନ୍ତି ସିଦ୍ଧ[୧] ରୂପ ଧରି ।। ୨୦
ଋଷି[୨] ସ୍ୱରୂପରେ କର୍ମକୁ । ଯୋଗେଶ[୩] ରୂପରେ ଯୋଗକୁ ।। ୨୧
୯ ପ୍ରଜେଶ[୪] ରୂପେ ଭଗବାନ । ପ୍ରଜାଙ୍କୁ କରନ୍ତି ସର୍ଜନ ।। ୨୨
ଧରନ୍ତେ ନୃପତିଶରୀର । ଦସ୍ୟୁଙ୍କୁ କରନ୍ତି ସଂହାର ।। ୨୩
ଶୀତ ଉଷ୍ଣାଦି ଗୁଣ ଯହିଁ । ଅଛନ୍ତି ଭିନ୍ନ ଭିନ୍ନ ହୋଇ ।। ୨୪

---

୧. ସିଦ୍ଧ = ସନକାଦି । ୨. ଋଷି = ଯାଜ୍ଞବଲ୍କ୍ୟାଦି ।
୩. ଯୋଗେଶ = ଦତ୍ତାତ୍ରେୟାଦି । ୪. ପ୍ରଜେଶ = ମରୀଚ୍ୟାଦି ।

ସେ କାଳରୂପେ ସମସ୍ତର । ଅଭାବ କରଇ ଈଶ୍ୱର ॥ ୨୫
୧୦ ନାମରୂପାତ୍ମିକା ମାୟାରେ । ମୋହିତଆତ୍ମା ଯେଉଁ ନରେ ॥ ୨୬
ନାନାଶାସ୍ତ୍ରରେ କଲେ ସ୍ତୁତି । କେବେହେଁ ଦୃଶ୍ୟ ସେ ନୁହନ୍ତି ॥ ୨୭
୧୧ ଯେ ଅବାନ୍ତର କଳ୍ପ ପୁଣ । କହିଲୁଁ ଏ ତାର ପ୍ରମାଣ ॥ ୨୮
ଯହିଁ ଚଉଦ ମନ୍ୱନ୍ତର । କହନ୍ତି ପୁରାବିଦ ନର ॥ ୨୯
ଅଷ୍ଟମସ୍କନ୍ଧ ଭାଷାଗୀତେ । ସୁଜନମାନଙ୍କର ହିତେ ॥ ୩୦
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସନ୍ତୋଷ ସାଧୁଜନ ତେଣେ ॥ ୩୧
ମୋହର ତେତେ ବୁଦ୍ଧି ନାହିଁ । ବର୍ଣ୍ଣିଲି ପୁରାଣକୁ ଚାହିଁ ॥ ୩୨
ସମସ୍ତେ ବୁଝିବା ନିମିତ୍ତ । ପ୍ରାକୃତବନ୍ଧେ କଲି ଗୀତ ॥ ୩୩
ସୁଜନମାନଙ୍କର ପାଦେ । ମତି ମୋ ରହୁ ଅପ୍ରମାଦେ ॥ ୩୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ମନ୍ୱାଦିପ୍ରୟୋଜନାନୁବର୍ଣ୍ଣନଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶ ଅଧ୍ୟାୟ

ବଲିଂ ପଞ୍ଚଦଶେ ବିଶ୍ୱଜିତାଚାର୍ଯ୍ୟା ଅଯାଜୟନ୍ ।
ତତୋଽସୌ ସ୍ୱର୍ଗମଜୟଦ୍ ଭୟାଦ୍ଦେବା ନିଲିଲ୍ୟିରେ ॥ ୧
ଅତ୍ରେର୍ଯ୍ୟତେ ନବାଧ୍ୟାୟ୍ୟା[୧] ବାମଂ ବାମନଚେଷ୍ଟିତମ୍ ।
ନିଗ୍ରହଚ୍ଛଳତୋ ଯତ୍ର ବଲେର୍ଭୂୟାନନୁଗ୍ରହଃ ॥ ୨

ଶ୍ରୀରାଜୋବାଚ

୧ ଈଶ୍ୱର ହେଲେହେଁ କୃପଣ । ଲୋକର ପ୍ରାୟ ହରି ପୁଣ ॥ ୧
ବଳିକି କେବଣ ହେତୁରୁ । ତ୍ରିପାଦ ମାଗିଲେ ଭୂମିରୁ ॥ ୨
ଅର୍ଥକୁ ଲଭିଲା ଉତ୍ତାରେ । ତାକୁ ବାନ୍ଧିଲେ କି ହେତୁରେ ॥ ୩
୨ ଏ କଥା ଶୁଣିମାକୁ ମନେ । ଇଚ୍ଛା କରୁଛୁଁ ଆମ୍ଭେମାନେ ॥ ୪
ବଡ଼ କଉତୁକ ଆମ୍ଭର । ଯେ ପୂର୍ଣ୍ଣ ଅଟଇ ଈଶ୍ୱର ॥ ୫
କୃପଣଲୋକପ୍ରାୟ ହୋଇ । ତାହାର ପ୍ରାର୍ଥନା କିମ୍ପାଇଁ ॥ ୬
ଯେ ଅପରାଧୀ ନୋହେ ଜନ । ତାହାର କିମ୍ପାଇଁ ବନ୍ଧନ ॥ ୭

ଶ୍ରୀଶୁକ ଉବାଚ

୩ ବଳିର ଯେ ଥିଲା ସଂପତ୍ତି । ତାହା ହରିଲେ ଶଚୀପତି ॥ ୮

୧. ନବାଧ୍ୟାୟୈଃ ।

ସମରଭୂମିରେ ତାହାର । ପ୍ରାଣ ହିଁ ହରିଲେ ଆବର ॥
ହେ ନୃପ ! ଭୃଗୁବଂଶେ ଜାତ । ବ୍ରାହ୍ମଣେ ଦେଲେ ତା' ଜୀବିତ ॥
ମହାତ୍ମା ସେ ବଳି ଅସୁର । ଶିଷ୍ୟ ଅଟଇ ତାହାଙ୍କର ॥
ଅର୍ଥପ୍ରଦାନେ ସର୍ବାତ୍ମାରେ । ଭଜିଲା ତାହାଙ୍କୁ କାଳରେ ॥
୪ ଯେ ବଳି ମନରେ ସ୍ୱର୍ଗକୁ । ବାଞ୍ଛା କରିଛି ଜିଣିମାକୁ ॥
ମହାନୁଭାବ ଭୃଗୁମାନେ । ମହା ଅଭିଷେକ ବିଧାନେ ॥
ସଂତୋଷେ କରି ଅଭିଷେକ । ଯେ ବିଶ୍ୱଜିତ ନାମେ ମଖ[1] ॥
ସେ ଯାଗ କରାଇଲେ ତାକୁ । ସତ୍ୱରେ ସ୍ୱର୍ଗ ଜିଣିମାକୁ ॥
୫ ହବିର୍ଭାଗରେ ହୋମପାଇଁ । ଯେବଣ ଅଗ୍ନି ଥିଲା ତହିଁ ॥
ସେ ଅନଳରୁ ତଦନ୍ତରେ । ଯେ ଯୁତ ସୁବର୍ଣ୍ଣପଟ୍ଟରେ ॥
ସେ ରଥ ହୋଇଲା ଉତ୍ପନ୍ନ । ଯେ ଇନ୍ଦ୍ରଅଶ୍ୱସମବର୍ଣ୍ଣ ॥
ସେ ଅଶ୍ୱେ, ସିଂହେ ବିରାଜିତ । ଧ୍ୱଜହିଁ ହୋଇଲା ସଂଭୂତ ॥
୬ ସୁବର୍ଣ୍ଣବଦ୍ଧ ଶରାସନ । ଅକ୍ଷୟ ତୂଣ[2] ବେନି ଆନ ॥
ଦିବ୍ୟ କବଚ ଯେ ଅଟଇ । ପୁଣ ସଂଭବ ହେଲା ତହିଁ ॥
ଅମ୍ଳାନ ପଦ୍ମ[3] ଯହିଁ ଥିଲେ । ସେ ମାଳା ପ୍ରହରାଦ ଦେଲେ ॥
ଯେ ଶୁକ୍ର ତାର ପୁରୋହିତ । ସେ ଏକ ଶଙ୍ଖ କଲେ ଦତ୍ତ ॥
୭ ଏରୂପେ ଯୁଦ୍ଧପରିକର । ବ୍ରାହ୍ମଣେ ସଂପାଦିଲେ ଯାର ॥
ଯାହାର ପୁଣ ସ୍ୱସ୍ତ୍ୟୟନ[4] । କଲେ ସେ ବ୍ରାହ୍ମଣେ କଞ୍ଚନ ॥
ସେ ବଳି ତଦନ୍ତରେ ପୁଣ । ବିପ୍ରଙ୍କୁ କରି ପ୍ରଦକ୍ଷିଣ ॥
ପ୍ରଣାମ କଲା ପୁଣ ତାଙ୍କୁ । ସମରକଥା ପ୍ରହ୍ଲାଦଙ୍କୁ ॥
ପଚାରି କରି ମହାବୀର । କଲା ତାହାଙ୍କୁ ନମସ୍କାର ॥
୮ ଧରିଛି ଖଡ୍ଗ, ଶରାସନ । ତୂଣୀର, ପୁଷ୍ପମାଳାମାନ ॥
କବଚ ଖଞ୍ଜିଣ ଶରୀରେ । ସେ ମହାରଥ ତଦନ୍ତରେ ॥
ଦିବ୍ୟ ରଥକୁ ଆରୋହିଲେ । ଯା' ଭୃଗୁମାନେ ଦେଇଥିଲେ ॥
୯ ହେମ-ଅଙ୍ଗଦେ[5] ମନୋହର । ଦିଶଇ ଭୁଜଯୁଗ ଯାର ॥
ମୁକୁଟ ବିରାଜେ ଯା' ଶିରେ । କୁଣ୍ଡଳ ଶ୍ରବଣଯୁଗରେ ॥
ରଥ କରନ୍ତେ ଆରୋହଣ । ଦିଶିଲା ଦୀପ୍ତିମନ୍ତ ପୁଣ ॥
କୁଣ୍ଡମଧ୍ୟରେ ହୁତାଶନ । ପ୍ରଦୀପ୍ତ ଦିଶଇ ଯେସନ ॥
୧୦ ନେତ୍ରେ ପିଅନ୍ତି କି ଗଗନ । ଦହୁଛନ୍ତି କି ଦିଗମାନ ॥
୧୧ ଯେ ନିଜ ଯୂଥ ହୋଇଛନ୍ତି । ସେ ସର୍ବ ଦୈତ୍ୟଯୂଥପତି ॥
ବେଢ଼ି ଅଛନ୍ତି ଚାରି ପାଶେ । ଅସୁରସୈନ୍ୟଙ୍କୁ ହରଷେ ॥

୧. ଯଜ୍ଞ । ୨. ଶରମୁଣା । ୩. ପୁଷ୍ପ । ୪. ସ୍ୱସ୍ତିବାଚନ । ୫. ଅଙ୍ଗଦ = ବଳୟ ।

ଘେନାଇଁ ସଙ୍ଗତରେ ବୀର । ପ୍ରତାପେ ମର୍ତ୍ତ୍ୟସ୍ୱର୍ଗପୁର ।।
କମ୍ପାଉଥିଲାପ୍ରାୟ ହୋଇ । ଅତିସମୃଦ୍ଧ ଯେ ଅଟଇ ।।
ସେ ଇନ୍ଦ୍ରପୁରୀକି ସତ୍ୱର । ଗମନ କଲା ସେ ଅସୁର ।।
୧୨-୧୪ ଭ୍ରମରମାନେ ଉଚ୍ଚ ସ୍ୱରେ । ଗାୟନ କରନ୍ତି ଯହିଁରେ ।।
ଯହିଁରେ ବିହଙ୍ଗଦମ୍ପତୀ । ମଧୁର ଧ୍ୱନିକି କରନ୍ତି ।।
ପ୍ରବାଳପୁଷ୍ପମାନଙ୍କର । ଯହିଁରେ ଅତିଶୟ ଭାର ।।
ଏମନ୍ତ ଶାଖାମାନ ବହି । ଅମରଦ୍ରୁମେ ଛନ୍ତି ଯହିଁ ।।
ନନ୍ଦନ ଆଦି ସେ ଉଦ୍ୟାନ । ଶ୍ରୀମନ୍ତ ଉପବନମାନ ।।
ସେମାନଙ୍କରେ ଯଉଁ ପୁର । ଦିଶଇ ଅତି ମନୋହର ।।
ରଥାଙ୍ଗ, କାରଣ୍ଡବ, ହଂସ । ଆବର ଯେ ମତ୍ତ ସାରସ ।।
ଏମାନଙ୍କର ସମୂହରେ । ଯେ ପୂରିଛନ୍ତି ନିରନ୍ତରେ ।।
ସୁରସେବିତ ନାରୀମାନେ । କ୍ରୀଡ଼ନ୍ତି ଯହିଁ ଅନୁଦିନେ ।।
ଏମନ୍ତରୂପ ସରୋବରେ । ଶୋଭା ପାଆନ୍ତି ଯଉଁ ପୁରେ ।।
ଆକାଶଗଙ୍ଗା ଯାକୁ ଥାଇ । ବେଢ଼ିଛି ଜଲୀ[୧] ପ୍ରାୟ ହୋଇ ।।
୧୫ ଅଟ୍ଟାଳୀ ସହିତେ ଉନ୍ନତ । ଶୋଣ[୨] ପ୍ରାକାରେ ଯେ ଆବୃତ ।।
ହେମକବାଟେ ଯୁତ ହୋଇ । ସମାନ ଦ୍ୱାରମାନେ ଯହିଁ ।।
ଯହିଁରେ ପୁରଦ୍ୱାରେ ପୁଣ । ସ୍ଫଟିକେ ନିର୍ମିତ ଘଟଣ ।।
ଯହିଁରେ ରାଜମାର୍ଗମାନ । ହୋଇଅଛନ୍ତି ଭିନ୍ନ ଭିନ୍ନ ।।
ଯେବଣ ପୁରୀକି ନିର୍ମାଣ । କରିଛି ବିଶ୍ୱକର୍ମା ପୁଣ ।।
୧୬ ସଭା ଚତ୍ୱର[୩] ଅବାନ୍ତର । ମାର୍ଗରେ ଆଢ୍ୟ ଯଉଁ ପୁର ।।
ନ୍ୟର୍ବୁଦ[୪] ସଂଖ୍ୟ ଅଗଣିତ । ବିମାନଙ୍କରେ ଯେ ସଂଯୁତ ।।
ବଜ୍ରବିଦ୍ରୁମମୟ ହୋଇ । ଅଛନ୍ତି ବେଦିମାନେ ଯହିଁ ।।
ଏମନ୍ତ ଯେ ବା ଚତୁଷ୍ପଥ[୫] । ସେମାନଙ୍କରେ ଯେ ସଂଯୁତ ।।
୧୭ ନିତ୍ୟେ ତରୁଣୀ ସୁକୁମାରୀ । ଶ୍ୟାମା ନିର୍ମଳବସ୍ତ୍ରଧାରୀ ।।
ଏରୂପେ ଦିବ୍ୟ ରୂପବତୀ । ନାରୀଏ ଯହିଁ ଶୋଭା ପାନ୍ତି ।।
ଶିଖାମାନଙ୍କରେ ଯେସନ । ଶୋଭା ଦିଶନ୍ତି ହୁତାଶନ ।।
୧୮ ସୁରବନିତାକୁନ୍ତଳରୁ । ବିଭ୍ରଷ୍ଟ ହୋଇଛନ୍ତି ଦୂରୁ ।।
ଯେ ନବ ସୌଗନ୍ଧିକ ଦାମ[୬] । ତାଙ୍କ ଆମୋଦ ଯେ ଉତ୍ତମ ।।
ତାହାକୁ ଘେନି ସମୀରଣ । ଯହିଁ ମାର୍ଗରେ ବହେ ପୁଣ ।।
୧୯ ସୁବର୍ଣ୍ଣଗବାକ୍ଷୁଁ ନିର୍ଗମ । ପାଣ୍ଡର ଯେ ଅଗୁରୁଧୂମ ।।

---

୧. ଜଲୀ = ଗଡ଼ଖାଇ । ୨. ଶୋଣ = ରକ୍ତ ବର୍ଣ୍ଣ । ୩. ଅଗଣା । ୪. ନ୍ୟର୍ବୁଦ = ଦଶ କୋଟି ।
୫. ମୂଳ ଶବ୍ଦ 'ଶୃଙ୍ଗାଟକ' । ୬. ସୌଗନ୍ଧିକ ଦାମ = ସୁଗନ୍ଧ ପୁଷ୍ପମାଳା ।

ତେଣେ ଆଚ୍ଛନ୍ନ ମାର୍ଗ ଯେହି । ସୁରସ୍ତ୍ରୀମାନେ ଯାନ୍ତି ତହିଁ ।। ୭୦

୨୦ ମୁକ୍ତାମୟ ଯେ ବିତାନ[1] । ଯେ ମଣି-ହେମ-କେତୁମାନ ।। ୭୧

ନାନାପତାକାଯୁତ ହୋଇ । ବିମାନ-ଅଗ୍ରଭାଗ ଯେହି ।। ୭୨

ତେଣେ ଅଟଇ ଯେ ଆବୃତ । ଯେ ଶିଖୀ[2] ଭୃଙ୍ଗ ପାରାବତ ।। ୭୩

ତାହାଙ୍କ ନାଦରେ ସଂଯୁତ । ହୋଇଛି ଯେହୁ ଅବିରତ ।। ୭୪

ବିମାନ ମାନଙ୍କେ ବସିଣ । ଯେ ନିତ୍ୟେ କରନ୍ତି ଭ୍ରମଣ ।। ୭୫

କଳଗୀତେ ସେ ନାରୀଙ୍କର । ଯହିଁ ମଙ୍ଗଳ ନିରନ୍ତର ।। ୭୬

୨୧ ମୃଦଙ୍ଗ ଶଙ୍ଖ ଯେବା ଆନ । ଆନକ-ଦୁନ୍ଦୁଭି-ନିସ୍ୱନ ।। ୭୭

ବୀଣା ମୁରଜ ବେଣୁ ତାଳ । ନୃତ୍ୟ ଉତ୍ତମ ବାଦ୍ୟକୁଳ ।। ୭୮

ଯେ ଗୀତ [3]ଉପଦେବଙ୍କର । ତେଣେ ଯେ ଅଟେ ମନୋହର ।। ୭୯

ନିଜ ପ୍ରଭାରେ ଯାକୁ ପୁଣି । ଇତରେ ନ ପାରିଲେ ଜିଣି ।। ୮୦

୨୨ ଅଧର୍ମବନ୍ତ ଅଟେ ଯେହି । ଯେ ଶଠ ଖଳ ଭୂତଦ୍ରୋହୀ ।। ୮୧

କାମୀ ମାନୀ ଲୋଭୀ ଯେ ଜନେ । ନ ଯାନ୍ତି ସେ ଯଉଁ ଭୁବନେ ।। ୮୨

୨୩ ସେ ଇନ୍ଦ୍ରପୁର ସର୍ବଦିଗେ । ସୈନ୍ୟସହିତେ ବାହ୍ୟଭାଗେ ।। ୮୩

ସେ ବଳି ଯାଇଁ ନିରୋଧିଲେ । ତାଙ୍କୁ ଯା’ ଶୁକ୍ର ଦେଇଥିଲେ ।। ୮୪

ସେ ଶଙ୍ଖ ଅଟେ ମହାସ୍ୱନ । ତାହାକୁ କଲେ ସେ ବାଦନ ।। ୮୫

ଇନ୍ଦ୍ରଯୁବତୀମାନଙ୍କର । ଭୟ ଜନମାନ୍ତେ ମନର ।। ୮୬

୨୪ ଅତି ଉଦ୍ୟମ ସେ ବଳିର । ଗୋଚର କରି ପୁରନ୍ଦର ।। ୮୭

ସକଳ ଦେବେ ହୋଇ ଯୁତ । ଗୁରୁଙ୍କୁ କହିଲେ ଏମନ୍ତ ।। ୮୮

୨୫ ହେ ଗୁରୁ ଆମ୍ଭମାନଙ୍କରି । ଯେ ଅଟେ ପୂର୍ବୁହୁଁ ବଇରି ।। ୮୯

ଏବେ ହୋଇଛି ସେ ବଳିର । ଯୁଦ୍ଧ-ଉଦ୍ୟମ ଗୁରୁତର ।। ୯୦

ଏବେ ଏ ଅସହ୍ୟ ଅଟଇ । ଏମନ୍ତ ମଣୁଅଛି ମୁହିଁ ।। ୯୧

ଏହାକୁ ତେଜରେ ଊର୍ଜିତ । କରିଛି କେହି ଏ ନିୟତ ।। ୯୨

୨୬ କେହି ଏହାକୁ ଅପକାର । କରିବାକୁ ନୋହେ ଈଶ୍ୱର ।। ୯୩

ଏ ସର୍ବ ଆପଣା ମୁଖରେ । ପିଇ ଦେଉଛି କି କୋପରେ ।। ୯୪

ଲେହିଲା[4] ପ୍ରାଏ ଦିଗମାନ । ଦୃଷ୍ଟିରେ କରେ କି ଦହନ ।। ୯୫

ପ୍ରଳୟକାଳରେ ଯେସନ । ଜଳି ଉଠଇ ହୁତାଶନ ।। ୯୬

୨୭ ଯେ ମୋ ଶତ୍ରୁର ବଳିପଣ । କହ ତହିଁର କେ କାରଣ ।। ୯୭

ଯହିଁରୁ ଓଜ ତେଜ ବଳ । ସହ ହିଁ ହୋଇଛି ପ୍ରବଳ ।। ୯୮

ସେ ଓଜ ଆଦିରୁ ଜନମ । ହୋଇଅଛି ଏ ସମୁଦ୍ୟମ ।। ୯୯

---

୧. ଚାନ୍ଦୁଆ । ୨. ମୟୂର । ୩. ଉପଦେବ = ଗନ୍ଧର୍ବ ପ୍ରଭୃତି ।

୪. ଲେହିବା = ଚାଟିବା । ଓଜ (ଐନ୍ଦ୍ରିୟକ) ବଳ (ଶାରୀରିକ) ସହ (ମାନସିକ)

ଶ୍ରୀଗୁରୁରୁବାଚ

୨୮ ଭୋ ଇନ୍ଦ୍ର ଏ ତୋହ ଶତ୍ରୁର । କାରଣ ଯେ ବା ଉନ୍ନତିର ॥ ୧୦୦
ତାହା ମୁଁ ଜାଣିଅଛି ଧ୍ୟାନେ । ଯେ ବ୍ରହ୍ମବାଦୀ ଭୃଗୁମାନେ ॥ ୧୦୧
ସେମାନେ ଏ ତେଜ ସଞ୍ଚିତ । କଲେକ ଶିଷ୍ୟର ନିମିତ୍ତ ॥ ୧୦୨
୨୯ ବ୍ରହ୍ମତେଜରେ ସମନ୍ୱିତ୧ । ଯେ ବଳି ପୁଣ ଓଜଯୁତ ॥
କାହାର ନାହିଁ ପରାକ୍ରମ । ଯେ ତାକୁ ଯୁଦ୍ଧରେ ଜିଣିମ ॥
ଜଗତଈଶ୍ୱର ଯେ ହରି । କେବଳ ତାଙ୍କୁ ଛାଡ଼ି କରି ॥ ୧୦୩
ତୁ ଅବା ତୋର ପରା କେହି । ନ ପାରେ ତାର ଆଗେ ରହି ॥ ୧୦୪
କୃତାନ୍ତ ଆଗରେ ଯେସନ । ରହି ନ ପାରେ କେହି ଜନ ॥ ୧୦୫
୩୦ ତେଣୁ ସମସ୍ତେ ତୁମ୍ଭେମାନେ । ସ୍ୱର୍ଗକୁ ଛାଡ଼ିଣ ବହନେ ॥ ୧୦୬
ଅଦରଶନ ହୋଇ ଯାଅ । କାଳକୁ ବାଟ ଚାହିଁ ଥାଅ ॥ ୧୦୭
ଯେବଣ କାଳରୁ ହୋଇବ । ଶତ୍ରୁର ପୁଣ ପରାଭବ ॥ ୧୦୮
୩୧ ବିପ୍ରଙ୍କ ବଳୁଁ ବେଳୁଁବେଳ । ଏହାର ବଢୁଅଛି ଫଳ ॥ ୧୦୯
ବର୍ତ୍ତମାନରେ ଅତିଶୟ । ବିକ୍ରମ ହୋଇଛି ଉଦୟ ॥ ୧୧୦
ସେହି ବ୍ରାହ୍ମଣମାନଙ୍କର । ଅବମାନନାରେ ଅସୁର ॥ ୧୧୧
ଭୃତ୍ୟ ଦାରାଦି ସହିତରେ । ବିନାଶ ହୋଇବ କାଳରେ ॥ ୧୧୨

ଶ୍ରୀଶୁକ ଉବାଚ

୩୨ ଯେ କାର୍ଯ୍ୟ ଜାଣନ୍ତି ତତ୍ତ୍ୱରେ । ସେ ଗୁରୁ ଏମନ୍ତ ପ୍ରକାରେ ॥ ୧୧୩
ମନ୍ତ୍ରଣା କରନ୍ତେ କାର୍ଯ୍ୟକୁ । ଛାଡ଼ି ଅମରେ ତ୍ରିଦିବକୁ ॥ ୧୧୪
ଗଲେ ସେ କଥା ଅନୁସରି । ଯେଣୁ ସେ କାମରୂପଧାରୀ ॥ ୧୧୫
୩୩ ଦେବେ ହୁଅନ୍ତେ ଅନ୍ତର୍ଧାନ । ସେ ବିରୋଚନର ନନ୍ଦନ ॥ ୧୧୬
ତଦନନ୍ତରେ ଦେବଙ୍କର । ନିବାସ ଅଟଇ ଯେ ପୁର ॥ ୧୧୭
ତହିଁରେ କରିଣ ନିବାସ । ତିନି ଜଗତ କଲା ବଶ ॥ ୧୧୮
୩୪ ଯେ ଶିଷ୍ୟ ବିଶ୍ୱ ଅଛି ଜିଣି । ହୋଇଛି ଅନୁଗତ ପୁଣି ॥ ୧୧୯
ଶିଷ୍ୟବତ୍ସଳ ଭୃଗୁମାନେ । ତାହାକୁ ଉତ୍ତମ ବିଧାନେ ॥ ୧୨୦
ତୁରଗମେଧଯାଗ ଶତେ । କରାଇଲେ ସେ ତୋଷଚିତ୍ତେ ॥ ୧୨୧
୩୫ ଅନୁଭାବେ ସେ ଯାଗଙ୍କର । ତିନି ଭୁବନେ ଯେ ବିସ୍ତାର ॥ ୧୨୨
ସେ କୀର୍ତ୍ତି ତିନି ଭୁବନରେ । ବିସ୍ତାର କରନ୍ତେ ନିର୍ଭରେ ॥ ୧୨୩
ଶୋଭା ପାଇଲା ସେ ଅସୁର । ଯେସନେ ପୂର୍ଣ୍ଣ ନିଶାକର ॥ ୧୨୪
୩୬ ଆତ୍ମାକୁ କୃତକୃତ୍ୟପ୍ରାଏ । ମଣନ୍ତେ ମହାମନା ସ୍ୱଏଁ ॥ ୧୨୫
ଅତିସମୃଦ୍ଧ ଯେ ସଂପତ୍ତି । ତାହା ଭୁଞ୍ଜିଲା ଦୈତ୍ୟପତି ॥ ୧୨୬

୧. ସମେଧିତ।

ଯଉଁ ସଂପତ୍ତି କର୍ମଦ୍ୱାରେ । ସଂପାଦିଥିଲେ ଦ୍ୱିଜବରେ ।। ୧୨୭
ଶ୍ରୀକୃଷ୍ଣପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁମତି ।। ୧୨୮
ସୁଜନେ ଦୋଷ ମୋ ନ ଧର । ମୁଁ ତୁମ୍ଭ ଚରଣେ କିଙ୍କର ।। ୧୨୯

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବଳିବିଜୟୋ
ନାମ ପଞ୍ଚଦଶୋଽଧ୍ୟାୟଃ ।।

## ଷୋଡ଼ଶ ଅଧ୍ୟାୟ

ଷୋଡ଼ଶେ ପୁତ୍ରନାଶେନ ଶୋଚନ୍ତ୍ୟା ଅଦିତେଃ ପତିଃ ।
ପ୍ରାର୍ଥିତଃ କଶ୍ୟପଃ ପ୍ରାହ ପୟୋବ୍ରତମିତୀର୍ଯ୍ୟତେ ।। ୧

ଶ୍ରୀଶୁକ ଉବାଚ

୧ ଏମନ୍ତ ପ୍ରକାରେ ସେ ତେବେ । ସ୍ୱର୍ଗକୁ ଜିଣନ୍ତେ ଦାନବେ ।। ୧
ଲୁଚି ପଳାନ୍ତେ ପୁତ୍ରମାନେ । ଅଦିତି ଦେବମାତା ମନେ ।। ୨
ତାପ ଲଭିଲା ଅତିଶୟେ । ଦୀନ ଅନାଥ ଜନ ପ୍ରାୟେ ।। ୩
୨ କଶ୍ୟପ ଚିରକାଳେ ପୁଣ । ତପରୁ ନିବୃତ୍ତ[୧] ହୋଇଣ ।। ୪
ଉତ୍ସବ-ଆନନ୍ଦବିହୀନ । ଯେ ଅଟେ ଅଦିତିସଦନ ।। ୫
ତହିଁକି ଏକ ଦିନକରେ । ଗମନ କଲେ ଦେଖିବାରେ ।। ୬
୩ ଆସନ ପରିଗ୍ରହ କଲେ । ଉଚିତ ପୂଜାକୁ ଲଭିଲେ ।। ୭
ହେ କୁରୁଶ୍ରେଷ୍ଠ ! ଲଭି ଦୁଃଖ । ବିରସ ହୋଇଛି ଯା' ମୁଖ ।। ୮
ସେ ପତ୍ନୀ ଅଟେ ଆପଣାର । ତାଙ୍କୁ କହିଲେ ଏ ଉତ୍ତର ।। ୯

ଶ୍ରୀକଶ୍ୟପ ଉବାଚ

୪ [୨]ମୃତ୍ୟୁଇଚ୍ଛାକୁ ଅନୁବର୍ତ୍ତି । ଯେବଣ ଲୋକ ଅଛି ଏଥି ।। ୧୦
ତାହାର କି ଅବା ଧର୍ମର । ଅଥବା ବିପ୍ରମାନଙ୍କର ।। ୧୧
ହେ ଭଦ୍ରେ ! ଅଭଦ୍ର ଆଗତ । ହୋଇ ନାହିଁ ନା କହ ତଥ୍ୟ ।। ୧୨
୫ ଆଗୋ ଗୃହିଣି ! ଗୃହେ ତୋର । ଧର୍ମର ଅର୍ଥର କାମର ।। ୧୩
ଅଛିକି କିଛି ହିଁ ମଙ୍ଗଳ । ଯହିଁ ସ୍ୱଧର୍ମାଦିରେ ଫଳ ।। ୧୪
ଅଯୋଗୀ ଜନମାନଙ୍କର । ସମ୍ଭବ ହୁଅଇ ସତ୍ୱର ।। ୧୫
୬ କୁଟୁମ୍ବ ମାନଙ୍କରେ ତୁହି । ଥିଲୁ ଯେ ଆସକତ ହୋଇ ।। ୧୬
ମିଳିଲେ ଯେ ଅତିଥି ଘରେ । ତାହାଙ୍କୁ ପ୍ରତି-ଉତ୍‌ଥାନରେ ।। ୧୭

---
୧. ନିବର୍ତ୍ତ । ୨. ଅର୍ଥାତ୍ ମୃତ୍ୟୁବଶବର୍ତ୍ତୀ ହୋଇ ।

ପୂଜା ନ କଲୁ ଅବା କେବେ । ଗଲେ ସେ ଅସନ୍ତୋଷଭାବେ ॥ ୧୮
୭ ଅତିଥିମାନେ ଯଉଁ ଗୃହେ । ପୂଜିତ ନୋହି ସଲିଳେହେଁ ॥ ୧୯
ଯଦ୍ୟପି ଯାଆନ୍ତି ବାହାରି । ଶୃଗାଳରାଜଗର୍ତ୍ତସରି ॥ ୨୦
ଅଟନ୍ତି ସେହି ଗୃହମାନ । ଏକଥା ନିଶ୍ଚିତ ପ୍ରମାଣ ॥ ୨୧
୮ ହେ ସତି ! କାଳରେ ଅଗ୍ନିକି । ହବିରେ ହୋମ ନ କଲୁ କି ॥ ୨୨
ପ୍ରବାସ କରନ୍ତେ ମୁଁ ତୁହି । ଥିଲୁ ଯେ ଉଦବେଗ ହୋଇ ॥ ୨୩
୯ ଯାହା ପୂଜାରେ ଗୃହୀ ଜନ । ଲଭଇ କାମଦୁଘ ସ୍ଥାନ ॥ ୨୪
ଯେ ସର୍ବ ଦେବତାରୂପରେ । ବିଖ୍ୟାତ ସମସ୍ତ ଲୋକରେ ॥ ୨୫
ବ୍ରାହ୍ମଣ ଅନଳ ଆବର । ମୁଖ ଅଟନ୍ତି ସେ ବିଷ୍ଣୁର ॥ ୨୬
୧୦ ହେ ମନସ୍ୱିନି ! ସର୍ବସୁତେ । ତୋର ଅଛନ୍ତି କି ସୁଚିତ୍ତେ ॥ ୨୭
ମୁଖଲକ୍ଷଣେ ତୋ' ମନର । ଅସୁସ୍ଥ[୧] କରୁଛି ଗୋଚର ॥ ୨୮

ଶ୍ରୀଅଦିତିରୁବାଚ

୧୧ ହେ ବିପ୍ର ! ଗୋ-ବ୍ରାହ୍ମଣଙ୍କର । ଭଦ୍ର ଏ ଜନର ଧର୍ମର ॥ ୨୯
ହେ ଗୃହମେଧି ! ତ୍ରିବର୍ଗର । ପରମ କ୍ଷେତ୍ର ଏ ମନ୍ଦିର ॥ ୩୦
୧୨ ଅଗ୍ନି ଅତିଥି ଭୃତ୍ୟମାନ । ଯେ ଭିକ୍ଷୁ ଅନ୍ନ-ଅର୍ଥୀ ଜନ ॥ ୩୧
ହେ ବିପ୍ର ! ତୁମ୍ଭେ ଭଗବାନ । ତୁମ୍ଭଙ୍କୁ କରୁଛି ଯା ଧ୍ୟାନ ॥ ୩୨
ଏ ଘେନି ଏମାନେ ସମସ୍ତ । ଶୂନ୍ୟ ନୋହିବେ କଦାଚିତ ॥ ୩୩
୧୩ ହେ ଭଗବନ୍ତ ମୋର ମନ । କେ କାମ ନୋହିବ ସଂପନ୍ନ ॥ ୩୪
ଯାହାକୁ ତୁମ୍ଭେ ପ୍ରଜାନାଥ । କହୁଛ ଧର୍ମକୁ ଏମନ୍ତ ॥ ୩୫
୧୪ ଯେ ସତ୍ତ୍ୱ-ରଜ-ତମୋମୟ । ହେ ବିପ୍ର ! ଏ ପ୍ରଜାସଂଚୟ ॥ ୩୬
ତୋ ମନ-ଶରୀରରୁ ଜାତ । ତୁ ତାଙ୍କ ଠାରେ ସମଚିତ୍ତ ॥ ୩୭
ତଥାପି ଭକ୍ତ ଯଉଁ ନର । ତାହାକୁ ଭଜେ ମହେଶ୍ୱର ॥ ୩୮
୧୫ ହେ ପ୍ରଭୁ ହେ ସୁବ୍ରତ ତେଣୁ । ତୁମ୍ଭଙ୍କୁ ଭଜୁଛି ମୁଁ, ଯେଣୁ ॥ ୩୯
ଶତ୍ରୁଏ ନେଲେ ଆମ୍ଭ ସ୍ଥାନ । ହରିଲେ ସବୁ ଶିରିମାନ ॥ ୪୦
ଚିନ୍ତ ମଙ୍ଗଳକୁ ଆମ୍ଭର । ଆମ୍ଭଙ୍କୁ ପ୍ରଭୁ ରକ୍ଷା କର ॥ ୪୧
୧୬ ଶତ୍ରୁଙ୍କ ବ୍ୟବସାୟେ ମୁହିଁ । ଶୋକସାଗରେ ବୁଡ଼ିଲଇଁ ॥ ୪୨
ମୋ ଯଶ, ଶ୍ରୀ, ଐଶ୍ୱର୍ଯ୍ୟ, ସ୍ଥାନ । ପ୍ରବଳେ ହରିଲେ ଏମାନ ॥ ୪୩
୧୭ କଲ୍ୟାଣ କଲା ଲୋକଙ୍କର । ମଧ୍ୟରେ ଅଟ ତୁମ୍ଭେ ସାର ॥ ୪୪
ହେ ସାଧୁ ସେମାନ ଯେମନ୍ତେ । ପୁଣି ଲଭିବେ ମୋର ସୁତେ ॥ ୪୫
କଲ୍ୟାଣବିଧି ସେ ପ୍ରକାରେ । କର ଆପଣା ମନୀଷାରେ ॥ ୪୬

---

୧. ଅସୁସ୍ଥ = ଅସୁସ୍ଥତା ।

ଶ୍ରୀଶୁକ ଉବାଚ

୧୮ ଅଦିତି ଏମନ୍ତ ପ୍ରକାରେ । ପ୍ରାର୍ଥନା କରନ୍ତେ ଦୈନ୍ୟରେ ॥
ଅଳ୍ପ ହସିଲା ପ୍ରାଏ ତାଙ୍କୁ । କଶ୍ୟପ କହିଲେ ବାକ୍ୟକୁ ॥
ଅଦ୍ଭୁତ ବିଷ୍ଣୁମାୟାବଳ । ସ୍ନେହରେ ବଦ୍ଧ ଏ ସକଳ ॥
୧୯ ଅନାତ୍ମା ପଞ୍ଚଭୂତୁଁ ଜାତ । କାହିଁ ଏ ଶରୀର ଅସତ୍ୟ ॥
ଯେ ଆତ୍ମା ପ୍ରକୃତିରୁ ପର । ସେ ଅବା ଅଛି କଉଁଠାର ॥
କେ କାହା ପତି ପୁତ୍ର ଆଦି । ମୋହ କାରଣ ଏଥି ସିଦ୍ଧି ॥
୨୦ ସକଳ ପ୍ରାଣୀମାନଙ୍କର । ଅନ୍ତଃକରଣ ଯା' ମନ୍ଦିର ॥
ଜଗତଗୁରୁ ଜନାର୍ଦ୍ଦନ । ପୁରୁଷରୂପେ ବିଦ୍ୟମାନ ॥
ଯେ ବାସୁଦେବ ଭଗବାନ । ତାହାଙ୍କୁ କର ତୁ ପୂଜନ ॥
୨୧ ଯେ ଦୀନମାନଙ୍କର ଠାରେ । ଦୟା କରନ୍ତି ନିରନ୍ତରେ ॥
ତୋହର ମନୋରଥମାନ । ସେ ହରି କରିବେ ବିଧାନ ॥
ବିଷ୍ଣୁର ସେବା ଯେ ଅଟଇ । କେବେହେଁ ବ୍ୟର୍ଥ ସେ ନୁହଇ ॥
ସେ ରୂପେ ଆନସେବା ନୋହି । ମୋ ମତି ଏମନ୍ତ ଅଟଇ ॥

ଶ୍ରୀଅଦିତିରୁବାଚ

୨୨ ହେ ବିପ୍ର ! କେବଣ[1] ବିଧିରେ । ହରିଙ୍କି ପୂଜିବି ନିର୍ଭରେ ॥
୨୩ ସଂକଳ୍ପ ଅଟେ ସତ୍ୟ ଯାର । ସେ ହରି ମନୋରଥ ମୋର ॥
ଯେମନ୍ତେ କରିବେ ବିଧାନ । ମୋଠାରେ ହୋଇ ସାବଧାନ ॥
ଯେ ବିଧି ପୂଜାରେ ତାଙ୍କର । ତା' ଆଜ୍ଞା ଦିଅ ଦ୍ୱିଜବର ॥
ପୁତ୍ରମାନଙ୍କର ସହିତେ । ଦୁଃଖ ପାଉଛି ମୁଁ ସନ୍ତତେ ॥
ସେ ଦେବ ଯେମନ୍ତେ ସତ୍ୱରେ । ତୋଷ ହୋଇବେ ମୋହଠାରେ ॥

ଶ୍ରୀକଶ୍ୟପ ଉବାଚ

୨୪ ମୁଁ ପୂର୍ବେ ପ୍ରଜାକାମ ହୋଇ । ବ୍ରହ୍ମାଙ୍କୁ ପଚାରିଲି ଯାଇଁ ॥
ସେ ଭଗବାନ ଯାହା ମୋତେ । କହିଅଛନ୍ତି ପଚାରନ୍ତେ ॥
କେଶବସନ୍ତୋଷ ସେ ବ୍ରତ । କହିବି ତୋହର ଅଗ୍ରତ ॥
୨୫ ଶୁକ୍ଳପକ୍ଷରେ ଫାଲ୍‌ଗୁନର । ଆଦ୍ୟରୁ ଦ୍ୱାଦଶ ବାସର ॥
ଅତିଭକ୍ତିରେ ହୋଇ ଯୁତ । ହୋଇବ ତହିଁ ପୟୋବ୍ରତ ॥
ପୂଜା କରିବ ତୋଷମନେ । ଭଗବାନଙ୍କୁ ଅନୁଦିନେ ॥
୨୬ ବରାହ ଯାହା ଖୋଳିଥିବ । ଯେବେ ସେ ମୃତ୍ତିକା ମିଳିବ ॥
ତା' ଅଙ୍ଗେ କରିବ ଲେପନ । ପ୍ରଥମ ପ୍ରତିପଦା ଦିନ ॥

୧. ଯେବଣ ।

ସ୍ନାନ କରିବ ନଦୀସ୍ରୋତେ । ଏମନ୍ତ ମନ୍ତ୍ରକୁ ପଢ଼ନ୍ତେ ॥ ୭୪
୨୭ ଯେ ଆଦିବରାହ ସେ ସ୍ଥାନ । ଇଚ୍ଛା କରନ୍ତେ ନିଜ ମନ ॥ ୭୫
ହେ ଦେବି ! ଉଦ୍ଧାରିଲେ ତୋତେ । ମୋର ଦୁରିତ ଅଛି ଯେତେ ॥ ୭୬
ସେମାନ ବିନାଶ ତୁ କର । ତୋତେ ମୋହର ନମସ୍କାର ॥ ୭୭
୨୮ ନିତ୍ୟ ନୈମିତ୍ତିକ ଯେ ଥିବ । ସେ କର୍ମମାନ ଆଚରିବ ॥ ୭୮
ବାଲୁକାବେଦିରେ ସୂର୍ଯ୍ୟରେ । ଜଳରେ ବହ୍ନିରେ ଗୁରୁରେ ॥ ୭୯
ପରମେଶ୍ୱରଙ୍କୁ ପୂଜନ । କରିବ ହୋଇ ସାବଧାନ ॥ ୮୦
୨୯ ତୁ ଅଟୁ ମହତ ପୁରୁଷ । ସମସ୍ତ ଭୂତେ ତୋର ବାସ ॥ ୮୧
ତୁ ବାସୁଦେବ ଭଗବାନ । ତୁ ସାକ୍ଷୀ ତୋତେ ମୋ ବନ୍ଦନ ॥ ୮୨
୩୦ ଯେ ସୂକ୍ଷ୍ମ ଯେହୁ ଅବ୍ୟକତ । ପ୍ରକୃତି ପୁରୁଷ ଯେମନ୍ତ ॥ ୮୩
ଯେ ଜାଣେ ଚତୁର୍ବିଂଶ ଗୁଣ । ଯେ ଗୁଣସଂଖ୍ୟାନକାରଣ ॥ ୮୪
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ତୁମ୍ଭଙ୍କୁ ମୋର ନମସ୍କାର ॥ ୮୫
୩୧ [1]ଉଦୟନୀୟ ପ୍ରାୟଣୀୟ । ଏ ବେନି ଯାହା ଶିରଦ୍ୱୟ ॥ ୮୬
ତିନି ସବନ[2] ପାଦ ଯାର । ଚାରି ବେଦ ହିଁ ଶୃଙ୍ଗ[3] ଆର ॥ ୮୭
ସପ୍ତ ଛନ୍ଦେ ଯା ସପ୍ତ କର । ଯେ ଯଜ୍ଞଫଳବୃଦ୍ଧିକର ॥ ୮୮
ଯେ ଯଜ୍ଞରୂପୀ, ବେଦମାନ । ଯା' ଆତ୍ମା ତାଙ୍କୁ ମୋ ବନ୍ଦନ ॥ ୮୯
୩୨ ଯେ ଶିବ ଶାନ୍ତ[4] ଶକ୍ତିଧର । ସମସ୍ତବିଦ୍ୟା-ଅଧୀଶ୍ୱର ॥ ୯୦
ଯେ ଭୂତମାନଙ୍କର ପତି । ତାଙ୍କୁ ମୁଁ କରୁଛି ପ୍ରଣତି ॥ ୯୧
୩୩ ହିରଣ୍ୟଗର୍ଭ ଯେହୁ ପୁଣ । ଜଗତ-ଆତ୍ମା ଯେ ପ୍ରମାଣ ॥ ୯୨
ଯୋଗ-ଐଶ୍ୱର୍ଯ୍ୟ ଯା' ଆକୃତି । ଯେ ଯୋଗହେତୁ ତାଙ୍କୁ ନତି ॥ ୯୩
୩୪ ତୁ ଦେବମାନଙ୍କର ଆଦି । ତୁ ବାସୁଦେବରୂପେ ସିଦ୍ଧି ॥ ୯୪

---

୧. ଉଦୟନୀୟ ଓ ପ୍ରାୟଣୀୟ ଦୁଇ ଇଷ୍ଟିର ନାମ । ଇଷ୍ଟି ଏକପ୍ରକାର ଯଜ୍ଞ ଯହିଁରେ ଦେବତାଙ୍କୁ ଚରୁ ଓ ପୁରୋଡାଶ ଅର୍ପିତ ହୁଏ । ଚରୁ ଅନ୍ନବିଶେଷ ଏବଂ ପୁରୋଡାଶ ପିଷ୍ଟକବିଶେଷ । ଉଦୟନୀୟ = ଉଦୟକାଳୀନ; ପ୍ରାୟଣୀୟ = ଅସ୍ତକାଳୀନ ।

୨. ସବନ = ପ୍ରାତଃ, ମାଧ୍ୟନ୍ଦିନ ଓ ସାୟଂକାଳୀନ ଯଜ୍ଞ ।

୩. ଚତ୍ୱାରି ଶୃଙ୍ଗା ତ୍ରୟୋ ଅସ୍ୟ ପାଦା
ଦ୍ୱେ ଶୀର୍ଷେ ସପ୍ତ ହସ୍ତାସୋ ଅସ୍ୟ ।
ତ୍ରିଧା ବଦ୍ଧୋ ବୃଷଭୋ ରୋରବୀତି
ମହୋ ଦେବୋ ମର୍ତ୍ତ୍ୟାଁ ଆବିବେଶ ॥ (ଶ୍ରୁତିଃ)
ତ୍ରିଧା = ମନ୍ତ୍ର, ବ୍ରାହ୍ମଣ ଓ କଳ୍ପ-ଏହି ତିନି ପ୍ରକାରେ । ମହୋଦେବୋ = ଯଜ୍ଞ ।
ବୃଷଭ = କାମମାନଙ୍କର ବର୍ଷୟିତା । ରୋରବଣ = ଋଗ୍‌ଦ୍ୱାରା ଶଂସନ, ଯଜୁଃଦ୍ୱାରା ଯଜନ ଏବଂ ସାମଦ୍ୱାରା ସ୍ତବନ ।

୪. ରୁଦ୍ର ।

ତୁ ନାରାୟଣଋଷି ନର । ତୁ ହରି ତୋତେ ନମସ୍କାର ॥ ୯୫
୩୫ ଯାହାର ମରକତପ୍ରାୟ । ଶ୍ୟାମଳବର୍ଣ୍ଣ ଅଟେ କାୟ ॥ ୯୬
ଯେ ଶୋଭାଧାମ ପୀତାମ୍ବର । ସେ କେଶବଙ୍କୁ ନମସ୍କାର ॥ ୯୭
୩୬ ସର୍ବବରଦ ପ୍ରାଣୀଙ୍କର । ତୁ ଶ୍ରେଷ୍ଠ ବରଦ ଈଶ୍ୱର ॥ ୯୮
ପଣ୍ଡିତେ କ୍ଷେମଅର୍ଥେ ତେଣୁ । ଭଜନ୍ତି ତୋର ପାଦରେଣୁ ॥ ୯୯
୩୭ ତା' ପାଦପଦ୍ମଗନ୍ଧ ଯେହି । ତାକୁ ବାଞ୍ଛିଲା ପ୍ରାୟ ହୋଇ ॥ ୧୦୦
ଦେବେ କମଳାଳୟା[୧] ତୁଲେ । ଯାହାର ଅନୁବୃତ୍ତି କଲେ ॥ ୧୦୧
ସେ ପ୍ରଭୁ ଭଗବାନ ମୋତେ । ପ୍ରସନ୍ନ ହୋଅନ୍ତୁ ସନ୍ତତେ ॥ ୧୦୨
୩୮ ହରିଙ୍କି କରି ଆବାହନ । ଏ ମନ୍ତ୍ରମାନଙ୍କରେ ଜନ ॥ ୧୦୩
ପାଦ୍ୟ ଆଚମନ ଆଦିରେ । ଅର୍ଚ୍ଚନ କରିବ ଶ୍ରଦ୍ଧାରେ ॥ ୧୦୪
୩୯ ଗନ୍ଧମାଲ୍ୟାଦିରେ ଭୂଷଣ । ଦୁଗ୍ଧରେ କରାଇବ ସ୍ନାନ ॥ ୧୦୫
ବସ୍ତ୍ରୋପବୀତ ଆଭରଣ । ପାଦ୍ୟ ଆଚମନରେ ପୁଣ ॥ ୧୦୬
ପୂଜିବ ଗନ୍ଧପୁଷ୍ପା[୨]ଦିରେ । ଦ୍ୱାଦଶ-ଅକ୍ଷର[୩] ବିଦ୍ୟାରେ ॥ ୧୦୭
୪୦ ବିଭବ ଥିଲେ ନିବେଦନ । ଦୁଗ୍ଧସୁପକ୍ୱ ଶାଳି-ଅନ୍ନ ॥ ୧୦୮
ଗୁଡ଼ ଘୃତରେ ମିଶାଇଣ । ଦେଇ ତାମ୍ବୂଳମନ୍ତ୍ରେ ପୁଣ ॥ ୧୦୯
ହୋମକୁ ବିଧାନ କରିବ । ନୈବେଦ୍ୟ ଭଗତଙ୍କୁ ଦେବ ॥ ୧୧୦
୪୧ ଅଥବା ସେ ନୈବେଦ୍ୟ ଅନ୍ନ । ଆପଣେ କରିବ ଭୋଜନ ॥ ୧୧୧
ପୂଜିଣ ଆଚମନ ଦେବ । ତାମ୍ବୂଳ ଅର୍ପଣ କରିବ ॥ ୧୧୨
୪୨ ଯେ ମୂଳମନ୍ତ୍ର ଅଷ୍ଟୋତ୍ତର । ଜପିବ ତାହା ଶତେ ବାର ॥ ୧୧୩
୪୩ ପ୍ରଭୁଙ୍କୁ ବିବିଧ ପ୍ରକାରେ । ସ୍ତୁତି କରିବ ତଦନ୍ତରେ ॥ ୧୧୪
ତଦନ୍ତେ କରି ପ୍ରଦକ୍ଷିଣ । ଭୂମିରେ ଦଣ୍ଡପ୍ରାଏ ପୁଣ ॥ ୧୧୫
ପ୍ରଣାମ କରି ହରଷରେ । ପ୍ରସାଦ ଘେନିଣ ଶିରରେ ॥ ୧୧୬
ହରିଙ୍କି ତହିଁର ଅନ୍ତରେ । କରିବ ବିସର୍ଜନ ଧୀରେ ॥ ୧୧୭
ବିପ୍ରମାନଙ୍କୁ ଭୁଞ୍ଜାଇବ । ପାୟସେ ଯାହାର ଯେ ଭାବ ॥ ୧୧୮
ଅସମ୍ଭବରେ ବେନି ଜଣ । ନିଶ୍ଚେ ଭୁଞ୍ଜାଇବ ବ୍ରାହ୍ମଣ ॥ ୧୧୯
୪୪ ପୂଜା ଲଭିଥିଲେ ସେମାନେ । ତାହାଙ୍କ ଅନୁଜ୍ଞାବଚନେ ॥ ୧୨୦
ହୋମଶେଷକୁ ବନ୍ଧୁଜନ । ସହିତେ କରିବ ଭୋଜନ ॥ ୧୨୧
ସେ ରାତ୍ରେ ବ୍ରହ୍ମଚାରୀ ହୋଇ । ଆର ଦିନରେ ପୁଣ ତହିଁ ॥ ୧୨୨
୪୫ ପ୍ରଥମ ଦିବସରେ ସ୍ନାନ । କରିବ ହୋଇ ସମାଧାନ ॥ ୧୨୩
ଯାବତ କାଳରେ ଏ ବ୍ରତ । ହୋଇବ ପୁଣ ସମାପତ ॥ ୧୨୪
ସ୍ନାନ କରାଇବ ଦୁଗ୍ଧରେ । ବିଷ୍ଣୁଙ୍କୁ ଯଥୋକ୍ତ ପ୍ରକାରେ ॥ ୧୨୫

୧. କମଳାଳୟା = କମଳ ଆଳୟ ଯାହାଙ୍କର, ଲକ୍ଷ୍ମୀ । ୨. ଧୂପାଦିରେ ।
୩. ଓଁ ନମୋ ଭଗବତେ ବାସୁଦେବାୟ ।

୪୬ ଆପଣେ ଦୁଗ୍ଧ ଭକ୍ଷ୍ୟ କରେ । ବିଷ୍ଣୁଙ୍କୁ ପୂଜଇ ସାଦରେ ॥ ୧୨୬
ପୂର୍ବପରାୟେ ହୁତାଶନେ । ହୋମ କରିବ ସାବଧାନେ ॥ ୧୨୭
ବ୍ରାହ୍ମଣମାନ ଭୁଞ୍ଜାଇବ । ପ୍ରତିଦିନରେ ଏହି ଭାବ ॥ ୧୨୮
୪୭ ଦ୍ୱାଦଶ ଦିବସ ବିହିତ । ଏହାର ନାମ ପୟୋବ୍ରତ ॥ ୧୨୯
ବିଷ୍ଣୁର ସେବା, ପୂଜା, ହୋମ । ବ୍ରାହ୍ମଣତୃପ୍ତି ଉତ୍ତମ ॥ ୧୩୦
୪୮ ପ୍ରତିପ ଦିନରୁ ଏ ହୋଏ । ଶୁକଳ ତ୍ରୟୋଦଶୀ ଯାଏ ॥ ୧୩୧
ଭୂଶଯ୍ୟା ବ୍ରହ୍ମଚର୍ଯ୍ୟ ପୁଣ । ଆଚରେ ସ୍ନାନ ତ୍ରିଷବଣ[1] ॥ ୧୩୨
୪୯ ଆଳାପ ଦୁଷ୍ଟଜନସଙ୍ଗ । ବର୍ଜିବ ନାନାବିଧ ଭୋଗ ॥ ୧୩୩
ଅହିଂସ୍ର ସର୍ବଭୂତେ ପୁଣ । ହେବ ଶ୍ରୀହରିପରାୟଣ ॥ ୧୩୪
୫୦ ତଦନ୍ତେ ତ୍ରୟୋଦଶୀ ଦିନ । ବିଷ୍ଣୁଙ୍କୁ ପଞ୍ଚାମୃତେ ସ୍ନାନ ॥ ୧୩୫
କରାଇ ଶାସ୍ତ୍ରୋକ୍ତ ପ୍ରକାରେ । ବିଧିଜ୍ଞ ଜନଙ୍କ ସଙ୍ଗରେ ॥ ୧୩୬
୫୧ ମହା ପୂଜାକୁ ଆଚରିବ । ବିତ୍ତଶାଠ୍ୟକୁ ବିବର୍ଜିବ ॥ ୧୩୭
ଦୁଗ୍ଧରେ ନିରୂପି ଚରୁକୁ । ଯେ ଶିପିବିଷ୍ଟ[2] ବିଷ୍ଣୁ ତାଙ୍କୁ ॥ ୧୩୮
୫୨ ସେ ସୂକ୍ତେ କରିବ ପୂଜନ । ଆପଣେ ହୋଇ ସାବଧାନ ॥ ୧୩୯
ଯହିଁରେ ଅଛି ନାନା ଗୁଣ । ବିଷ୍ଣୁ ସଂତୋଷ ଯେଣେ ପୁଣ ॥ ୧୪୦
ଏମନ୍ତ ନୈବେଦ୍ୟ ଯେ ହେବ । ବିଷ୍ଣୁଙ୍କୁ ତାହା ସମର୍ପିବ ॥ ୧୪୧
୫୩ ବସ୍ତ୍ରାଭରଣ ଧେନୁ ଦେଇ । ଆଚାର୍ଯ୍ୟ ଜ୍ଞାନବନ୍ତ ଯେହି ॥ ୧୪୨
ପୂଜା କରିବ ତାହାଙ୍କୁ ହି । ଋତ୍ୱିଜମାନେ ପୁଣ ଯେହି ॥ ୧୪୩
ତାହାଙ୍କୁ କରିବ ପୂଜନ । ସେ ବିଷ୍ଣୁ ମହା ଆରାଧନ ॥ ୧୪୪
୫୪ ହେ ଶୁଚିସ୍ମିତେ ! ଗୁଣବନ୍ତ । ଉତ୍ତମ ଅନ୍ନ ଯେ ବିଦିତ ॥ ୧୪୫
ତେଣେ ଭୁଞ୍ଜାଇବ ତାଙ୍କୁ ହିଁ । ଯେ ପୁଣ ଆସିଥିବେ ତହିଁ ॥ ୧୪୬
ଇତର ଭୋକ୍ତା ବିପ୍ରଜନ । ତାଙ୍କୁ କରାଇବ ଭୋଜନ ॥ ୧୪୭
୫୫ ଯଥାଯୋଗ୍ୟରେ ଦକ୍ଷିଣାକୁ । ଦେବ ଗୁରୁଙ୍କୁ ଋତ୍ୱିଜଙ୍କୁ ॥ ୧୪୮
ଚଣ୍ଡାଳ ଆଦି ଆନ ଯେହି । ପ୍ରବେଶ ହୋଇଥିବେ ତହିଁ ॥ ୧୪୯
ତାହାଙ୍କୁ ଅନ୍ନ ଆଦି ଦେଇ । ତୋଷିବ ସମାହିତ ହୋଇ ॥ ୧୫୦
୫୬-୫୭ ଅନ୍ଧ କୃପଣ ଦୀନ ଜନ । ସମସ୍ତେ କରନ୍ତେ ଭୋଜନ ॥ ୧୫୧
ସେ ବିଷ୍ଣୁତୁଷ୍ଟିଦ ଜାଣିବ । ବନ୍ଧୁଙ୍କ ସଙ୍ଗତେ ଭୁଞ୍ଜିବ ॥ ୧୫୨
ନୃତ୍ୟ ବାଦିତ୍ର ଗୀତ ସ୍ତୁତି । ଯେ ସ୍ୱସ୍ତିବାକ୍ୟ ତେଣେ ନିତି ॥ ୧୫୩
ତା' କଥାମାନଙ୍କେ ପୂଜନ । କରେ ବିଷ୍ଣୁଙ୍କୁ ପ୍ରତିଦିନ ॥ ୧୫୪
୫୮ ଏ ପୟୋବ୍ରତ ନାମ ସାର । ପୁରୁଷ-ଆରାଧନ ପର ॥ ୧୫୫
ଏ ପିତାମହରେ କଥିତ । କଲି ମୁଁ ତୋ' ଠାରେ ଉଦିତ ॥ ୧୫୬

---

୧. ତ୍ରିଷବଣ = ସକାଳ, ଦ୍ୱିପ୍ରହର ଓ ସଂଧ୍ୟାରେ ।
୨. ଶିପି (କିରଣ) ଦ୍ୱାରା ଆବୃତ (ବିଷ୍ଟ) (pervaded by rays)

| | | | | | |
|---|---|---|---|---|---|
| ୫୯ | ଏ ବ୍ରତ ଉତ୍ତମ କରିଣ | । | ହେ ମହାଭାଗେ ! ଆଚରିଣ | ।। | ୧୫୭ |
| | ମନରେ ଶୁଦ୍ଧ ଭାବେ କରି | । | ସଂଯତ ହୋଇ ଭଜ ହରି | ।। | ୧୫୮ |
| ୬୦ | ସମସ୍ତ ଯଜ୍ଞ ସର୍ବବ୍ରତ | । | ହେ ଭଦ୍ରେ ! ଅଟେ ଏ ନିୟତ | ।। | ୧୫୯ |
| | ତପସ୍ୟାସାର ଦାନ ଏହି | । | ଈଶ୍ୱରତୃପ୍ତିଦ ଅଟଇ | ।। | ୧୬୦ |
| ୬୧ | ସେମାନ ନିୟମ ସାକ୍ଷାତ | । | ଉତ୍ତମ ଯଶ ସେ ବିଦିତ | ।। | ୧୬୧ |
| | ସେ ତପ ଯଜ୍ଞ ବ୍ରତ ଦାନ | । | ଯେଣେ ସଂତୋଷ ଭଗବାନ | ।। | ୧୬୨ |
| ୬୨ | ହେ ଭଦ୍ରେ ହୋଇଣ ପ୍ରୟତ | । | ଶ୍ରଦ୍ଧାରେ ଆଚର ଏ ବ୍ରତ | ।। | ୧୬୩ |
| | ସଂତୋଷ ହୋଇ ଭଗବାନ | । | ବିହିବେ ତୋର ବରମାନ | ।। | ୧୬୪ |
| | ଭବସାଗରୁଁ ହେ ଶ୍ରୀହରି | । | ଦୀନବନ୍ଧୁକୁ କର ପାରି | ।। | ୧୬୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀକଶ୍ୟପାଦିତିସଂବାଦେ
ପୟୋବ୍ରତକଥନଂ ନାମ ଷୋଡ଼ଶୋଽଧ୍ୟାୟଃ ।।

## ସପ୍ତଦଶ ଅଧ୍ୟାୟ

ତତଃ ସପ୍ତଦଶେଽଦିତ୍ୟା କୃତେ ତସ୍ମିନ୍ ବ୍ରତେ ହରିଃ ।
ତତ୍କାମପୂରଣାୟାଦୌ ତତ୍ପୁତ୍ରୋଽଭୂଦିତୀର୍ଯ୍ୟତେ ।।

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ହେ ନୃପ ! ସ୍ୱପତି କଶ୍ୟପେ | । | ବଚନ କହିଲେ ଏ ରୂପେ | ।। | ୧ |
| | ଅଦିତି ଅଳସବିହୀନେ | । | କଲା ଏ ବ୍ରତ ବାରଦିନେ | ।। | ୨ |
| ୨ | ଇନ୍ଦ୍ରିୟ-ଦୁଷ୍ଟ ଅଶ୍ୱମାନେ | । | ତାଙ୍କୁ ପ୍ରଗ୍ରହ କରି ମନେ | ।। | ୩ |
| | ବୁଦ୍ଧି ଅଟଇ ଯା' ସାରଥି | । | ଏମନ୍ତରୂପ ସେ ଅଦିତି | ।। | ୪ |
| | ମହାପୁରୁଷ ଯେ ଈଶ୍ୱର | । | ତାଙ୍କୁ ଚିନ୍ତନ୍ତେ ନିରନ୍ତର | ।। | ୫ |
| ୩ | ଅଖିଳ-ଆତ୍ମା ଭଗବାନ | । | ଯେ ବାସୁଦେବ ତହିଁ ମନ | ।। | ୬ |
| | ନିବେଶି ଏକାଗ୍ର ବୁଦ୍ଧିରେ | । | ପୟୋବ୍ରତକୁ କଲା ଧୀରେ | ।। | ୭ |
| ୪ | ଆଦିପୁରୁଷ ଭଗବନ୍ତ | । | ତାହାକୁ ହୋଇଲେ ସାକ୍ଷାତ | ।। | ୮ |
| | ଯେ ଚତୁର୍ଭୁଜ ପୀତାମ୍ବର | । | ଯେ ଶଙ୍ଖ-ଚକ୍ର-ଗଦାଧର | ।। | ୯ |
| ୫ | ତାହାଙ୍କୁ ନୟନଗୋଚରେ | । | ଦେଖି ସେ ଉଠିଣ ସାଦରେ | ।। | ୧୦ |
| | ଭୂମିତଳରେ ନିଜ କାୟେ | । | ପ୍ରଣାମ କଲା ଦଣ୍ଡପ୍ରାୟେ | ।। | ୧୧ |
| | ବିଷ୍ଣୁର ଠାରେ ଯେଉଁ ପ୍ରୀତି | । | ତେଣେ ବିହ୍ୱଳ ତାର ମତି | ।। | ୧୨ |
| ୬ | ସେ ଉଠି ଯୋଡ଼ିଣ କରକୁ | । | ରହିଲା ସ୍ତୁତି କରିବାକୁ | ।। | ୧୩ |
| | ଆନନ୍ଦଜଳରେ ଆକୁଳ | । | ହୋଇଛି ତା ନେତ୍ରଯୁଗଳ | ।। | ୧୪ |
| | ପୁଲକେ ଆକୁଳ ଶରୀର | । | ଦରଶନରୁ ସେ ବିଷ୍ଣୁର | ।। | ୧୫ |

ଯେ ଅତି ଉତ୍ସବପ୍ରଚାର । ତେଣେ କମ୍ପୁଛି କଳେବର ।। ୧୬
ସ୍ତୁତିକି ଉତ୍ସାହ ନ କଲା । ମଉନ ହୋଇଣ ରହିଲା ।। ୧୭
୭ ଯେ ଯଜ୍ଞପତି ରମାବର । ପତି ଅଟନ୍ତି ଜଗତର ।। ୧୮
ପିଇବା ପ୍ରାଏକ ତୃଷ୍ଣାରେ । ତାହାଙ୍କୁ ଚାହାଁନ୍ତେ ଚକ୍ଷୁରେ ।। ୧୯
ପ୍ରୀତିରେ ହୋଇ ମନ୍ଦମନ୍ଦ । ଯଉଁ ବଚନ ଗଦଗଦ ।। ୨୦
ତେଣେ ହରିଙ୍କି କଲା ସ୍ତୁତି । ହେ ନୃପ ! ସେ ଦେବୀ ଅଦିତି ।। ୨୧

ଶ୍ରୀଅଦିତିରୁବାଚ[୧]

୮ ଅଚ୍ୟୁତ ହେ ଯଜ୍ଞପୁରୁଷ । ହେ ତୀର୍ଥପାଦ ହେ ଯଜ୍ଞେଶ ।। ୨୨
ହେ ତୀର୍ଥକୀର୍ତ୍ତି ମହୋଦୟ । ଶ୍ରୁତିମଙ୍ଗଳନାମଧେୟ ।। ୨୩
ହେ ଭଗବାନ ଯେ ସଂସାରେ । ବିପତ୍ତି ଲଭିଥାନ୍ତି ନରେ ।। ୨୪
ତାହାଙ୍କ କ୍ଳେଶ ଅପଚୟ । କରଇ ତୁମ୍ଭର ଉଦୟ ।। ୨୫
ତୁ ନାଥ ଦୀନ ଜନଙ୍କର । ଆମ୍ଭର ମଙ୍ଗଳ ଆଚର ।। ୨୬
୯ ତୁମ୍ଭର ପରିଚ୍ଛିନ୍ନ ନାହିଁ । ବିଶ୍ୱରୂପରେ ଅଛ ରହି ।। ୨୭
ଜନମ ପାଳନ ସଂହାର । ଯେ ତିନି ଗୁଣ ଏ ବିଶ୍ୱର ।। ୨୮
ତହିଁ ନିମିତ୍ତେ ସ୍ୱଇଚ୍ଛାରେ । ଘେନିଛ ଯେ ଆପଣାଠାରେ ।। ୨୯
ନିଜ ମାୟାର ତିନି ଗୁଣ । ତଥାପି ସୁସ୍ଥ[୨] ଅଟ ପୁଣ ।। ୩୦
ନିତ୍ୟରେ ଯେ ଅଟେ ବର୍ଦ୍ଧିତ । ଆପଣା ପୂର୍ଣ୍ଣ ବୋଧତତ୍ତ୍ୱ ।। ୩୧
ତେଣେ ଯେ କଲ ନିବାରଣ । ଆପଣା ଠାରେ ତମୋଗୁଣ ।। ୩୨
ତୁମ୍ଭେ ଏମନ୍ତ ଅଟ ହରି । ତୁମ୍ଭଙ୍କୁ ପ୍ରଣାମ ମୋହରି ।। ୩୩
୧୦ ଯେ ବା ଆୟୁଷ ବିଧାତାର । ଅଭୀଷ୍ଟ ଦିବ୍ୟ କଳେବର ।। ୩୪
ଅତୁଲ୍ୟ ଯେ ଅବା ସଂପତ୍ତି । ସ୍ୱର୍ଗ ପାତାଳ ବସୁମତୀ ।। ୩୫
ତ୍ରିବର୍ଗ ସର୍ବଯୋଗଗୁଣ[୩] । କେବଳ ଜ୍ଞାନ ଯେବା ପୁଣ ।। ୩୬
ତୁମ୍ଭ ସନ୍ତୋଷେ ହେ ଅନନ୍ତ । ଏମାନେ ହୁଅନ୍ତି ସମସ୍ତ ।। ୩୭
ଶତ୍ରୁବିଜୟାଦି ମଙ୍ଗଳ । ହେବାର କେତେ ଅବା ଫଳ ।। ୩୮

ଶ୍ରୀଶୁକ ଉବାଚ

୧୧ ହେ ନୃପ ! ଏ ରୂପରେ ସ୍ତୁତି । କରନ୍ତେ ତାହାଙ୍କୁ ଅଦିତି ।। ୩୯
ଯେ ପ୍ରଭୁ ପଙ୍କଜଲୋଚନ । ଅନ୍ତରଯାମୀ ଭଗବାନ ।। ୪୦

---

୧. ଅଯତ୍ନତୋ ବିନିର୍ଜିତ୍ୟ ଦୈତ୍ୟାନତ୍ୟୂର୍ଜିତାନପି ।
ଭକ୍ତାନ୍ ରକ୍ଷିତୁମୀଶସ୍ତ୍ୱମିତ୍ୟସ୍ତୌଦଦିତିସ୍ତ୍ରିଭିଃ ।। (ସ୍ୱାମୀ)
'ଅତି ବଳବନ୍ତ ଦୈତ୍ୟମାନଙ୍କୁ ମଧ୍ୟ ବିନା ଯତ୍ନରେ ଜିଣି ଭକ୍ତଙ୍କୁ ରଖିବାକୁ ତୁମେ ଈଶ୍ୱର' ବୋଲି ଅଦିତି ତିନି ଶ୍ଳୋକରେ ସ୍ତୁତି କଲେ ।

୨. ସ୍ୱସ୍ଥ ।　　୩. ଗଣ ।

ତାହାଙ୍କୁ ପୁଣି ସେ ଏମନ୍ତ । ବାକ୍ୟ କହିଲେ ହେ ଭାରତ ।। ୪୧

ଶ୍ରୀଭଗବାନୁବାଚ

୧୨ ଶତ୍ରୁ ଯା ସଂପଦ ହରିଲେ । ସ୍ଥାନୁଁ ବାହାର କରି ଦେଲେ ।। ୪୨
ସେ ପୁତ୍ରମାନଙ୍କ ହେତୁରେ । ଯେ ଚିରବାଞ୍ଛା ତୋ' ମନରେ ।। ୪୩
ହେ ଦେବଜନନି ! ମୁଁ ପୁଣି । ପୂର୍ବରୁ ଅଛି ତାହା ଜାଣି ।। ୪୪
୧୩ ଦୁର୍ମଦ ଯେବଣ ଅସୁରେ । ତାହାଙ୍କୁ ଜିଣିଣ ସମରେ ।। ୪୫
ପୁଣି ଲଭିବେ ଜୟଶିରି । ତନୟମାନେ ଯେ ତୋହରି ।। ୪୬
ତାଙ୍କ ସଙ୍ଗତେ ଏକସ୍ଥାନେ । ଥିବାକୁ ବାଞ୍ଛୁଅଛୁ ମନେ ।। ୪୭
୧୪ ଯାହାଙ୍କ ଶ୍ରେଷ୍ଠ ପୁରନ୍ଦର । ସେ ପୁତ୍ରମାନଙ୍କେ ତୋହର ।। ୪୮
ଯୁଦ୍ଧେ ଯେ ରିପୁ ନାଶ ଯିବେ । ତାଙ୍କର ଯେତେ ସ୍ତିରୀ ଥିବେ ।। ୪୯
କାନ୍ଦିବେ ସେ ଦୁଃଖିତ ହୋଇ । ତା' ଦେଖିବାକୁ ବାଞ୍ଛୁ ତୁହି ।। ୫୦
୧୫ ତନୟେ ସମୃଦ୍ଧ ହୋଇଣ । ଲଭିବେ ଯଶ ଶ୍ରୀକି ପୁଣ ।। ୫୧
କ୍ରୀଡ଼ା କରନ୍ତେ ସ୍ୱର୍ଗେ ଥାଇ । ତା' ଦେଖିବାକୁ ବାଞ୍ଛୁ ତୁହି ।। ୫୨
୧୬ ସେ ଦୈତ୍ୟଯୂଥପତିମାନେ । ଜିଣା ନ ଯିବେ ବର୍ତ୍ତମାନେ ।। ୫୩
ଏମନ୍ତ ପ୍ରକାରେ ମୋ' ମତି । ହେଉଛି ହେ ଦେବି ଅଦିତି ।। ୫୪
ସମର୍ଥ ଅନୁକୂଳ ହୋଇ । ଅଛନ୍ତି ବିପ୍ରମାନେ ଯହିଁ ।। ୫୫
ଯେଣୁ ସେ ତାହାଙ୍କୁ ପାଳନ । କରି ଅଛନ୍ତି ଅନୁଦିନ ।। ୫୬
ବିକ୍ରମ ଆଚରିଲେ ତହିଁ । ସୁଖଦାୟକ ହେବ ନାହିଁ ।। ୫୭
୧୭ ଏମନ୍ତ ହେଲେହେଁ ହେ ଦେବି । ତହିଁକି ଉପାୟ ଚିନ୍ତିବି ।। ୫୮
ତୋହର ବ୍ରତଆଚରଣୁଁ । ସନ୍ତୋଷ ହୋଇଅଛି ଯେଣୁ ।। ୫୯
ମୋ ପୂଜା ଅନ୍ୟଥାଭାବକୁ । ସମର୍ଥ ନୁହଇ ଯିବାକୁ ।। ୬୦
ଯେ ଶ୍ରଦ୍ଧାଅନୁରୂପେ ପୁଣ । ଫଳକୁ ହୁଅଇ କାରଣ ।। ୬୧
୧୮ ପୁତ୍ରଙ୍କ ରକ୍ଷାର ନିମିତ୍ତେ । ତୁ ଯେ ଅର୍ଚ୍ଚନ କଲୁ ମୋତେ ।। ୬୨
ପୟୋବ୍ରତରେ ଅନୁଗୁଣ । ସ୍ତୁତିକି ଆଚରିଲୁ ପୁଣ ।। ୬୩
କଶ୍ୟପ ଯା ଅଛି ଆଚରି । ସେ ତପସ୍ୟାକୁ ମୂଳ କରି ।। ୬୪
ନିଜ ଅଂଶେ ତୋ ପୁତ୍ର ହୋଇ । ପାଳିବି ତୋ' ପୁତ୍ରଙ୍କୁ ମୁହିଁ ।। ୬୫
୧୯ ଅପାପୀ ଯଉଁ ପ୍ରଜାପତି । ହେ ଭଦ୍ରେ ! ଅଟଇ ତୋ ପତି ।। ୬୬
ଭଜ ତାହାକୁ ଏ ରୂପରେ । ମୋତେ ଚିନ୍ତନ୍ତେ ତାହାଠାରେ ।। ୬୭
୨୦ ହେ ଦେବି ! ଗୁପ୍ତ କଦାଚିତ । ପରକୁ ନ କରିବୁ ଖ୍ୟାତ ।। ୬୮
ହେ ଦେବି ! ଦେବଗୁହ୍ୟ ଯେହି । ସେ ସର୍ବ ଗୁପ୍ତେ ସିଦ୍ଧ ହୋଇ ।। ୬୯

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୧ | ଏତେକ କହି ଭଗବାନ | । | ସେଠାରେ ହେଲେ ଅନ୍ତର୍ଧାନ | ।। | ୭୦ |
| | ଅଦିତି ଜାଣି ନିଜ ଠାର | । | ଦୁର୍ଲଭ ଜନ୍ମକୁ ହରିର | ।। | ୭୧ |
| ୨୨ | ପତିଙ୍କି ପରମ ଭକ୍ତିରେ | । | ଭଜିଲା କୃତକୃତ୍ୟାକାରେ | ।। | ୭୨ |
| | କଶ୍ୟପ ସମାଧିଯୋଗରେ | । | ସେ କଥା ଜାଣିଲେ ମନରେ | ।। | ୭୩ |
| ୨୩ | ଆପଣାଠାରେ ହରିଅଂଶ | । | ହୋଇଲା ଯାହା ପରବେଶ | ।। | ୭୪ |
| | ଯଉଁ କଶ୍ୟପର ଈକ୍ଷଣ | । | ଅଟଇ ଅବିତଥ ପୁଣ | ।। | ୭୫ |
| | ନିଜ ମନକୁ ସମାଧାନ | । | କରି କଶ୍ୟପ ହେ ରାଜନ | ।। | ୭୬ |
| | ତପବଳରେ ଯେ ସଂଚିତ | । | ଚିର କାଳରୁ ଥିଲା ରେତ | ।। | ୭୭ |
| | ତାହାକୁ ଅଦିତିର ଠାରେ | । | ଆଧାନ କଲା ହରଷରେ | ।। | ୭୮ |
| | ପବନ ଦାରୁରେ ଯେସନ | । | ଅଗ୍ନିକି କରେ ସମାଧାନ | ।। | ୭୯ |
| ୨୪ | ଯେ ଭଗବାନ ସନାତନ | । | ଅଦିତିଗର୍ଭେ କଲେ ସ୍ଥାନ | ।। | ୮୦ |
| | ହିରଣ୍ୟଗର୍ଭ ତାହା ଜାଣି | । | ଗୁହ୍ୟ ନାମରେ ସ୍ତୁତି ଭଣି | ।। | ୮୧ |

ଶ୍ରୀବ୍ରହ୍ମୋବାଚ

| | | | | | |
|---|---|---|---|---|---|
| ୨୫ | ହେ ଭଗବାନ ତୁମ୍ଭେ ଜୟ | । | ହେ ଉରୁକ୍ରମ ଉରୁଗାୟ | ।। | ୮୨ |
| | ବ୍ରହ୍ମଣ୍ୟଦେବ ତୁହି ତୋତେ | । | କରୁଛି ନମସ୍କାର ନିତ୍ୟେ | ।। | ୮୩ |
| | ତୁ ପ୍ରଭୁ ତ୍ରିଗୁଣବିଖ୍ୟାତ | । | କରୁଛି ତୋତେ ନମୋ ନିତ୍ୟ | ।। | ୮୪ |
| ୨୬ | ତୁ ପୃଷ୍ଣିଗର୍ଭ[୧] ଶିପିବିଷ୍ଟ[୨] | । | ବିଧାତା ତ୍ରିନାଭ[୩] ତ୍ରିପୃଷ୍ଠ[୪] | ।। | ୮୫ |
| | ତୁ ବେଦଗର୍ଭ[୫] ବିଷ୍ଣୁ ତୋତେ | । | ବନ୍ଦନ କରୁଅଛି ନିତ୍ୟେ | ।। | ୮୬ |
| ୨୭ | ତୁ ଆଦି ଅନ୍ତ ଭୁବନର | । | ତୁ ପୁଣି ମଧ୍ୟ ଅଟୁ ତାର | ।। | ୮୭ |
| | ପୁରୁଷ ତୁ ଅନନ୍ତଶକ୍ତି | । | ଏମନ୍ତ ଯାହାକୁ ବୋଲନ୍ତି | ।। | ୮୮ |
| | ହେ ଈଶ ! କାଳରୂପୀ ତୁହି | । | ଆକର୍ଷୁ ଅଛୁ ବିଶ୍ୱକୁ ହିଁ | ।। | ୮୯ |
| | ମଧ୍ୟେ ପଡ଼ିଲା ଦ୍ରବ୍ୟ ଯେହ୍ନେ | । | ନିମ୍ନକୁ ସ୍ରୋତ ନିଏ ତେହ୍ନେ | ।। | ୯୦ |
| ୨୮ | ସ୍ଥିର ଜଙ୍ଗମ ପ୍ରଜାମାନ | । | ଯେ ପ୍ରଜାପତିମାନେ ଆନ | ।। | ୯୧ |
| | ତାଙ୍କ ଉତ୍ପତ୍ତି କରୁ ତୁହି | । | ତୋ ବିନୁ ଆନ ନାହିଁ କେହି | ।। | ୯୨ |

---

୧. ପୃଶ୍ନିଗର୍ଭ-ଅଦିତିଙ୍କର ପୂର୍ବଜନ୍ମରେ 'ପୃଶ୍ନି' ନାମ ଥିଲା । ତାଙ୍କର ଗର୍ଭ ଅର୍ଥାତ୍ ଅର୍ଭକ ।

୨. ଶିପିବିଷ୍ଟ-'ଶିପି' ଶବ୍ଦର ଅର୍ଥ ପଶୁ ବା ଜୀବ । ସେମାନଙ୍କ ଠାରେ ଯେ ଅନ୍ତର୍ଯ୍ୟାମିରୂପେ ପ୍ରବିଷ୍ଟ । 'ଯଜ୍ଞୋ ବୈ ବିଷ୍ଣୁଃ, ପଶବଃ ଶିପିର୍ଯଜ୍ଞ ଏବ ପଶୁଷୁ ପ୍ରତିତିଷ୍ଠତି' (ଶ୍ରୁତିଃ) ଅଥବା ଶିପି = ରଶ୍ମି । ତାହାଦ୍ୱାରା ବିଷ୍ଟ ଅର୍ଥାତ୍ ବେଷ୍ଟିତ ।

୩. ତ୍ରିନାଭ = ତିନି ଲୋକ ନାଭିରେ ଯାହାର ।

୪. ତ୍ରିପୃଷ୍ଠ = ତିନି ଲୋକର ପୃଷ୍ଠ ଅର୍ଥାତ୍ ଉପରିଭାଗେ ସ୍ଥିତ ।

୫. ବେଦଗର୍ଭ = ବେଦ ଗର୍ଭରେ ଯାହାର ।

ସ୍ୱର୍ଗବିଚ୍ୟୁତ ଦେବଙ୍କର । ତୁ ପରାୟଣ ହେ ଈଶ୍ୱର ॥ ୯୩
ଜଳରେ ମଗ୍ନ ଯଉଁ ଜନ । ତାହାକୁ ନଉକା ଯେସନ ॥ ୯୪
କୃଷ୍ଣ-ଚରଣେ ଦେଇ ମନ । ବଞ୍ଚଇ ଦୀନବନ୍ଧୁ ଦିନ ॥ ୯୫
ଅଷ୍ଟମ ସ୍କନ୍ଧ ଏ ଚରିତ । ପ୍ରାକୃତ ବନ୍ଧେ କଲି ଗୀତ ॥ ୯୬
ସୁଜନେ ଦୋଷ ମୋ ନ ଧର । ମୁଁ ତୁମ୍ଭ ଚରଣେ କିଙ୍କର ॥ ୯୭
ନିଜ ଲୋକକୁ ରଖିବାର । ଏ ଅଟେ ସହଜ ବିଚାର ॥ ୯୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀଭଗବଦବତାରୋ ନାମ
ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶ ଅଧ୍ୟାୟ

ତତସ୍ତ୍ୱଷ୍ଟାଦଶେ ଭୂତ୍ୱା ବାମନଃ ସତ୍କୃତୋଽଖିଳୈଃ ।
ଯଜ୍ଞଂ ଗତସ୍ତତସ୍ତେନ ସତ୍କୃତ୍ୟୋକ୍ତୋ ବରାନ୍ ବୃଣୁ ॥ ୧

ଶ୍ରୀଶୁକ ଉବାଚ

୧ ଏମନ୍ତ ରୂପେ ପ୍ରଜାପତି । ଯା କର୍ମ ବୀର୍ଯ୍ୟ କଲେ ସ୍ତୁତି ॥ ୧
ଜନ୍ମିଲେ ସେ ଅଦିତିଠାର । ଯେ ଶଙ୍ଖ ଚକ୍ରଗଦାଧର ॥ ୨
ଯେ ଚତୁର୍ଭୁଜ ପଦ୍ମକର । ପିଶଙ୍ଗ[୧] ବସନ ଯାହାର ॥ ୩
ନଳିନପ୍ରାୟକ ବିସ୍ତାର । ନୟନଯୁଗଳ ଯାହାର ॥ ୪
୨ ଯେ ଶ୍ୟାମବର୍ଣ୍ଣସମୁଜ୍ଜ୍ୱଳ । ମକରାକୃତି ଯେ କୁଣ୍ଡଳ ॥ ୫
ତାହାର ସହିତେ ଉଲ୍ଲାସ । ଯା' ମୁଖ ପଦ୍ମେ ଯେ ପୁରୁଷ ॥ ୬
ଶ୍ରୀବତ୍ସ ଯା' ବକ୍ଷସ୍ଥଳରେ । ବଳୟ ଅଙ୍ଗଦ[୨] ସଙ୍ଗରେ ॥ ୭
କିରୀଟ କାଞ୍ଚୀ ସୁନୂପୁର । ଉଲ୍ଲାସ ହୋଇଛି ଯାହାର ॥ ୮
୩ ଯେ ଅଳିକୁଳନାଦଯୁତ । ସ୍ୱବନମାଳାରେ ରାଜିତ ॥ ୯
ଯାହାର କଣ୍ଠଦେଶେ ପୁଣି । ନିବିଷ୍ଟ କଉସ୍ତୁଭ ମଣି ॥ ୧୦
କଶ୍ୟପଗୃହଅନ୍ଧକାର । ନାଶନ୍ତେ ତେଜେ ଆପଣାର ॥ ୧୧
ସେ ହରି ଅଦିତିର ଠାରେ । ପ୍ରକାଶ ହେଲେ ସୁଲଗ୍ନରେ ॥ ୧୨
୪ ଦିଗ ସଲିଳାଶୟମାନ । ସେକାଳେ ଦିଶିଲେ ପ୍ରସନ୍ନ ॥ ୧୩
ପ୍ରଜାଏ ହେଲେ ହରଷିତ । ଋତୁଏ ଗୁଣରେ ସଂଯୁତ ॥ ୧୪
ଯେ ସ୍ୱର୍ଗ ଅନ୍ତରିକ୍ଷ ମହୀ । ଯେ ବା ତ୍ରିଦଶେ ଦ୍ୱିଜେ ଗାଈ ॥ ୧୫
ପର୍ବତସହିତେ ସେମାନେ । ଆନନ୍ଦ ଲଭିଲେକ ମନେ ॥ ୧୬

---

୧. କସରା (ଫିକା ନାଲିଆ) । ୨. ବାହୁଟି ।

୫ ଭାଦ୍ରବ ଶୁକ୍ଳ ଦ୍ୱାଦଶୀରେ । ଶ୍ରବଣା-ଚନ୍ଦ୍ରମା-ଯୋଗରେ ।। ୧୭
[1]ଯେ ବା ମୁହୂର୍ତ୍ତ ଅଭିଜିତ । ହରି ହୋଇଲେ ତହିଁ ଜାତ ।। ୧୮
ନକ୍ଷତ୍ର ଯେବା ଅଶ୍ୱିନ୍ୟାଦି । ଶୁକ୍ରାଦି ତାରାରୂପେ ସିଦ୍ଧି ।। ୧୯
ତାହାଙ୍କୁ ଆଦି କରି ଆନ । ଯେ ସୂର୍ଯ୍ୟ ଆଦି ଗ୍ରହଗଣ ।। ୨୦
ତାହାଙ୍କ ଜନ୍ମକୁ ଶୋଭନ । କଲେକ ତତ୍‌କାଳ ସେମାନ ।। ୨୧
୬ ଦିନମଧ୍ୟରେ ଦିବାକର । ଅଛନ୍ତି ଦ୍ୱାଦଶୀତିଥିର ।। ୨୨
ବିଜୟା ନାମରେ ସେ ଖ୍ୟାତ । ଯହିଁରେ ଜନ୍ମିଲେ ଅଚ୍ୟୁତ ।। ୨୩
୭ ଶଙ୍ଖ ଦୁନ୍ଦୁଭି ଭେରୀରବ । ମୃଦଙ୍ଗ ଆନକ ପଣବ ।। ୨୪
ଚିତ୍ର ବାଦିତ୍ର ତୂର୍ଯ୍ୟଙ୍କର । ନିର୍ଘୋଷ ଶୁଭିଲାକ ଘୋର ।। ୨୫
୮ ଅପ୍‌ସରା ସନ୍ତୋଷେ ନାଚିଲେ । ଗନ୍ଧର୍ବପ୍ରବରେ ଗାଇଲେ ।। ୨୬
ସ୍ତୁତିକି କଲେ ମନୁ ମୁନି । ଦେବତା ପିତୃଗଣ ଅଗ୍ନି ।। ୨୭
୯ } ଯେ ସିଦ୍ଧ ବିଦ୍ୟାଧରଗଣ । ଯକ୍ଷ କିଂପୁରୁଷ ଚାରଣ ।। ୨୮
୧୦ } କିନ୍ନର ରାକ୍ଷସ ସୁପର୍ଣ୍ଣ । ଭୁଜଙ୍ଗଶ୍ରେଷ୍ଠମାନେ ଆନ ।। ୨୯
ଗାଆନ୍ତେ ପ୍ରଶଂସା କରନ୍ତେ । ବିବୁଧ-ଅନୁଗେ ନୃତ୍ୟନ୍ତେ ।। ୩୦
ଯେ ଅଟେ ଅଦିତିଆଶ୍ରମ । ତହିଁ ବରଷିଲେ କୁସୁମ ।। ୩୧
୧୧ ପରମ ପୁରୁଷ ଅଚ୍ୟୁତ । ନିଜ ଗର୍ଭରୁ ହେଲେ ଜାତ ।। ୩୨
ଅଦିତି ତାହାଙ୍କୁ ଦେଖିଣ । ହର୍ଷ ବିସ୍ମୟ ହେଲେ ପୁଣ ।। ୩୩
ସ୍ୱଯୋଗମାୟାରେ ଶରୀର । ଧରି ଅଛନ୍ତି ଯେ ଈଶ୍ୱର ।। ୩୪
ତାହାଙ୍କୁ ହୋଇଣ ବିସ୍ମୟ । ତାତ ବୋଇଲେ ପ୍ରଭୋ ଜୟ ।। ୩୫
୧୨ ଅବ୍ୟକ୍ତଜ୍ଞାନମୟାକାର । ଯେହୁ, ଅଦ୍ଭୁତ ଚେଷ୍ଟା ଯାର ।। ୩୬
ସେ ହରି ଆୟୁଧଭୂଷଣ । ଦୀପ୍ତିରେ ପ୍ରକାଶ କରିଣ ।। ୩୭
ଧରିଣ ଥିଲେ ଯଉଁ କାୟ । ଚାହାଁନ୍ତେ ପିତାମାତାଦ୍ୱୟ ।। ୩୮
ସେହି ଦେହରେ ତତକ୍ଷଣ । ବଟୁ ବାମନ ହେଲେ ପୁଣ ।। ୩୯
ଇତର ରୂପକୁ ପ୍ରକଟ । କରେ କ୍ଷଣକେ ଯେହ୍ନେ ନଟ ।। ୪୦
୧୩ ସେ ବଟୁବାମନଙ୍କୁ ଚାହିଁ । ହରଷେ ମୁନିମାନେ ତହିଁ ।। ୪୧
ପ୍ରଜାପତିଙ୍କି କରି ଆଗ । ଜାତ କର୍ମାଦି କଲେ ବେଗ ।। ୪୨
୧୪ ବ୍ରତ ହୁଅନ୍ତେ ସେ ବାମନ । ସାବିତ୍ରୀ[2] କହିଲେ ତପନ ।। ୪୩
ଦେଲେ ତାହାଙ୍କୁ ବୃହସ୍ପତି । ସେ ବ୍ରହ୍ମସୂତ୍ରକୁ ଝଟତି ।। ୪୪
ଯେ ମୌଞ୍ଜୀ ମେଖଳା ଶୋଭନ । କଶ୍ୟପ କଲେ ତା' ପ୍ରଦାନ ।। ୪୫
୧୫ କୃଷ୍ଣାଜିନକୁ ଦେଲେ କ୍ଷିତି । ଦଣ୍ଡକୁ ସୋମ ବନସ୍ପତି ।। ୪୬

---

୧. ''ଅଭିଜିନ୍ନାମ ନକ୍ଷତ୍ରମୁପରିଷ୍ଟାଦାଷାଢ଼ାନାମଧସ୍ତାତ୍ ଶ୍ରୋଣାୟାଃ''। (ଶ୍ରୁତିଃ)
ଆଷାଢ଼ା (ପୂର୍ବା ଓ ଉତ୍ତରା)ର ଉପରେ ଓ ଶ୍ରବଣାର ତଳେ ୪୮ ମିନିଟ୍‌ର ଶୁଭ ମୁହୂର୍ତ୍ତକୁ ଅଭିଜିତ୍ କୁହାଯାଏ ।

୨. ସାବିତ୍ରୀ = ସାବିତ୍ରୀମନ୍ତ୍ର ।

| | | | | | |
|---|---|---|---|---|---|
| | ଯେ କଉପୀନ-ଆଚ୍ଛାଦନ | । | ଜନନୀ କଲେ ତା' ପ୍ରଦାନ | ।। | ୪୭ |
| | ଜଗତ-ଈଶ୍ୱରଙ୍କୁ ଆଣି | । | ଛତ୍ରକୁ ଦେଲା ସ୍ୱର୍ଗ ପୁଣି | ।। | ୪୮ |
| ୧୬ | କମଣ୍ଡଳୁକୁ ବ୍ରହ୍ମା ଆସି | । | କୁଶକୁ ଦେଲେ ସପ୍ତଋଷି | ।। | ୪୯ |
| | ଅବ୍ୟୟ ଅଟେ ଆତ୍ମା ଯାର | । | ହେ ମହାରାଜ ! ସେ ଈଶ୍ୱର | ।। | ୫୦ |
| | ତାହାଙ୍କୁ ସରସ୍ୱତୀ ଆଣି | । | ଅକ୍ଷମାଳାକୁ ଦେଲେ ପୁଣି | ।। | ୫୧ |
| ୧୭ | ଉପନୟନ ଏ ପ୍ରକାରେ | । | ବାମନ ହୁଅନ୍ତେ ତହିଁରେ | ।। | ୫୨ |
| | ଭିକ୍ଷାପାତ୍ରକୁ ଧନେଶ୍ୱର[1] | । | ଦେଲେ ହୋଇଣ ତତପର | ।। | ୫୩ |
| | ଉମା ସାକ୍ଷାତ ଭଗବତୀ | । | ଭିକ୍ଷା ପ୍ରଦାନ କଲେ ସତୀ | ।। | ୫୪ |
| ୧୮ | ବରିଷ୍ଠ ବଟୁ ସେ ବାମନ | । | ଏ ରୂପେ ହୋନ୍ତେ ସମ୍ଭାବନ | ।। | ୫୫ |
| | ଯେ ବ୍ରହ୍ମଋଷିଗଣଯୁତ | । | ଏମନ୍ତ ସଭାକୁ ତ୍ୱରିତ | ।। | ୫୬ |
| | ବ୍ରହ୍ମବର୍ଚ୍ଚସେ ଅତିକ୍ରମ | । | କରିଣ ଦିଶିଲେ ଉତ୍ତମ | ।। | ୫୭ |
| ୧୯ | ପ୍ରଦୀପ୍ତ ଅଟେ ଯେ ଦହନ | । | କରି ତା' ପରିସମୂହନ[2] | ।। | ୫୮ |
| | ପରିସ୍ତରଣ[3] କରି ତାକୁ | । | କରିଣ ପୁଣ ଅର୍ଚ୍ଚନକୁ | ।। | ୫୯ |
| | ସମିଧଙ୍କରେ ହୋମ କଲେ | । | ଯେଣୁ ତକ୍ଷଣେ ଦ୍ୱିଜ ହେଲେ | ।। | ୬୦ |
| ୨୦ | ଭୃଗୁ ଯା' କଳ୍ପିଲେ ମନ୍ତ୍ରରେ | । | ସେ ଅଶ୍ୱମେଧମାନଙ୍କରେ | ।। | ୬୧ |
| | ଯାଗ କରୁଛି ବଳି ଦୈତ୍ୟ | । | ସେ ଘେନି ହୋଇଛି ଗର୍ବିତ | ।। | ୬୨ |
| | ଶ୍ରବଣ କରିଣ ଏମନ୍ତ | । | ଅଖିଳ ବଳେ ଯେ ପୂରିତ | ।। | ୬୩ |
| | କ୍ଷିତିକି ଆପଣାର ଭରେ | । | କମ୍ପାନ୍ତେ ପଦପଦକରେ | ।। | ୬୪ |
| | ସେ ଯାଗଶାଳାକୁ ଗମନ | । | କଲେ ସାକ୍ଷାତ ଭଗବାନ | ।। | ୬୫ |
| ୨୧ | ଯା' ନାମ ଭୃଗୁକଚ୍ଛ ଅଟେ | । | ନର୍ମଦା ସେ ଉତ୍ତର ତଟେ | ।। | ୬୬ |
| | ପ୍ରବର୍ତ୍ତାଆନ୍ତେ କ୍ରତୁବର | । | ବଳିର ଋତ୍ୱିଜନିକର | ।। | ୬୭ |
| | କଲେ ତାହାଙ୍କୁ ଦରଶନ | । | ନିକଟେ ଉଦେ କି ତପନ | ।। | ୬୮ |
| ୨୨ | ହେ ନୃପ ! ତେଜେ ବାମନର | । | ବିହତ ତେଜ ଯାହାଙ୍କର | ।। | ୬୯ |
| | ସେହୁ ଋତ୍ୱିଜେ ଯଜମାନ | । | ସଦସ୍ୟେ ଥିଲେ ଯେ ବା ଆନ | ।। | ୭୦ |
| | ସେମାନେ ତର୍କିଲେ ଏମନ୍ତ | । | ଯାଗକୁ ଦେଖିବା ନିମିତ୍ତ | ।। | ୭୧ |
| | ଅଗ୍ନି ଆସେ କି ଦିବାକର | । | ଅଥବା ସନତକୁମାର | ।। | ୭୨ |
| ୨୩ | ଏରୂପେ ଅନେକ ପ୍ରକାରେ | । | ଭୃଗୁଏ ତର୍କନ୍ତେ ସେଠାରେ | ।। | ୭୩ |
| | ସଦଣ୍ଡଛତ୍ର ଜଳଯୁତ | । | କମଣ୍ଡଳୁକୁ ଘେନି ହସ୍ତ | ।। | ୭୪ |
| | ବାମନ ମିଳିଲେ ସତ୍ୱରେ | । | ତୁରଗମେଧମଣ୍ଡପରେ | ।। | ୭୫ |
| ୨୪ | ଯେ ଯଜ୍ଞସୂତ୍ରପ୍ରାୟ କରି | । | ଧଇଲେ ଅଜିନ-ଉତ୍ତରୀ | ।। | ୭୬ |

---

୧. ଯକ୍ଷେଶ୍ୱର । (କୁବେର)
୨. ପରିସମୂହନ = ଏକାଠି ଗଦା କରିବା । ୩. ପରିସ୍ତରଣ = ଏକାଠି ଗଦା କରିବା ।

ମୁଞ୍ଜ ମେଖଳାରେ ସଂଯୁତ । ବାମନ ବିପ୍ର ଜଟାଯୁତ ॥ ୭୭
ମାୟାରେ ଶିଶୁରୂପ ହୋଇ । ପ୍ରକାଶ ହୋଇଛନ୍ତି ଯେହି ॥ ୭୮
୨୫ ପ୍ରବେଶ ହୁଅନ୍ତେ ସେ ହରି । ତାହାଙ୍କୁ ବିଲୋକନ କରି ॥ ୭୯
ଶିଷ୍ୟସହିତେ ଭୃଗୁମାନେ । ଅଗ୍ନିଙ୍କ ସହିତେ ସେ ସ୍ଥାନେ ॥ ୮୦
ବାମନତେଜରେ ସେ ସର୍ବ । ହେଲେ ନିସ୍ତେଜ ହତଗର୍ବ ॥ ୮୧
ଆସନମାନଙ୍କରୁ ଉଠି । ତାହାଙ୍କୁ ଅଇଲେ ପାଛୋଟି ॥ ୮୨
୨୬ ଯେ ଦୃଷ୍ଟିଯୋଗ୍ୟ ମନୋହର । ରୂପକୁ ଅନୁରୂପ ଯାର ॥ ୮୩
ସକଳ ଅବୟବମାନ । ତାହାଙ୍କୁ ଦେଖି ଯଜମାନ ॥ ୮୪
ମନରେ ହରଷ ହୋଇଲେ । ଆସନ ନିବେଦନ କଲେ ॥ ୮୫
୨୭ ସ୍ୱାଗତପ୍ରଶ୍ନେ ବଳି ପୁଣ । ତାହାଙ୍କୁ ଆନନ୍ଦ ହୋଇଣ ॥ ୮୬
ଭଗବାନଙ୍କ ପାଦ ଦୁଇ । ପୂଜିଲା ସଲିଳରେ ଧୋଇ ॥ ୮୭
ବିମୁକ୍ତସଙ୍ଗ ଜନଙ୍କର । ଯେ ପୁଣ ଅଟେ ମନୋହର ॥ ୮୮
୨୮ କୁଳକଳୁଷନାଶକାରି । ସୁଭଦ୍ର ତାଙ୍କ ପାଦବାରି ॥ ୮୯
ବଳି ଧଇଲେ ତା' ମସ୍ତକେ । ସ୍ୱଧର୍ମ ଜାଣନ୍ତି ସେ ଲୋକେ ॥ ୯୦
ଯେହୁ ଦେବତାମାନଙ୍କର । ଦେବତା ଅଟନ୍ତି ଶଙ୍କର ॥ ୯୧
ସେହି ଯା' ପରମ ଭକ୍ତିରେ । ବହିଲେ ଆପଣା ଶିରରେ ॥ ୯୨

ଶ୍ରୀବଳିରୁବାଚ

୨୯ ହେ ବିପ୍ର ! ତୁମ୍ଭ ଆଗମନ । ଅଟଇ ଟିକି ସୁଶୋଭନ ॥ ୯୩
ତୁମ୍ଭଙ୍କୁ ପ୍ରଣାମ ଆମ୍ଭର । କି କାର୍ଯ୍ୟ କରିବୁଁ ତୁମ୍ଭର ॥ ୯୪
ହେ ଆର୍ଯ୍ୟ ! ବ୍ରହ୍ମରଷିଙ୍କର । ଯେ ତପ ଧରିଛି ଶରୀର ॥ ୯୫
ସେ ତୁମ୍ଭେ ହୋଇଛ ସାକ୍ଷାତ । ମୁଁ ଏବେ ମଣୁଛି ଏମନ୍ତ ॥ ୯୬
୩୦ ଆଜ ଆମ୍ଭର ପିତୃମାନେ । ତୃପ୍ତିକି ଲଭିଲେକ ମନେ ॥ ୯୭
ଯେ ପୁଣ ଆମ୍ଭ ନିଜ ଗୋତ୍ର । ସେ ଆଜ ହୋଇଲା ପବିତ୍ର ॥ ୯୮
ଏ ଯାଗ ଉତ୍ତମ ବିଧାନେ । ନିର୍ମିତ ହେଲା ଆଜ ଦିନେ ॥ ୯୯
ଯେଣୁ ଆପଣ ମୋ ସଦନେ । ପ୍ରବେଶ ହୋଇଲେ ସୁମନେ ॥ ୧୦୦
୩୧ ଯଥାବିଧିରେ ବୈଶ୍ୱାନର । ଲଭିଲେ ଆଜ ହୋମ ମୋର ॥ ୧୦୧
ହେ ଦ୍ୱିଜସୁତ ! ତୋ ଚରଣ । ସଲିଳମାନଙ୍କରେ ପୁଣ ॥ ୧୦୨
ହତ ହୋଇଲା ପାପ ମୋର । ଯେ କ୍ଷୁଦ୍ର ପାଦଚିହ୍ନ ତୋର ॥ ୧୦୩
ସେମାନଙ୍କରେ ଏ ଧରଣୀ । ପବିତ୍ର ହେଲା ଆଜ ପୁଣି ॥ ୧୦୪
୩୨ ହେ ବଟୁ ! ବାଞ୍ଛୁ ଯାହା ଯାହା । ମୋହର ଠାରୁ ଘେନ ତାହା ॥ ୧୦୫
ହେ ବିପ୍ରସୁତ ! ଅର୍ଥୀ[1] ତୁହି । ଏମନ୍ତ ତର୍କୁଅଛି ମୁହିଁ ॥ ୧୦୬

୧. ପ୍ରାର୍ଥୀ ।

| | | | |
|---|---|---|---|
| ହେ ପୂଜ୍ୟତମ ! ଧେନୁ ହେମ | । ଅଥବା ଗୁଣବନ୍ତ ଧାମ | ।। | ୧୦୭ |
| କି ଅବା ସୁମୃଷ୍ଟ[୧] ଅନ୍ନକୁ | । ଅଥବା ବ୍ରାହ୍ମଣକନ୍ୟାକୁ | ।। | ୧୦୮ |
| ସମୃଦ୍ଧ ଯେବା ଗ୍ରାମମାନ | । ତୁରଗ କୁଞ୍ଜର ସ୍ୟନ୍ଦନ | ।। | ୧୦୯ |
| ଏମାନ ପ୍ରତିଗ୍ରହ କର | । ମୋ ଠାରୁ ଯେ ବା ବାଞ୍ଛା ତୋର | ।। | ୧୧୦ |
| ହେ କୃଷ୍ଣ କମଳଲୋଚନ | । ତୁମ୍ଭେ ଯେ ପତିତପାବନ | ।। | ୧୧୧ |
| ମୁଁ ଯେ ପତିତ ଦୀନବନ୍ଧୁ | । ମୋତେ ଉଦ୍ଧର ଭବବନ୍ଧୁଁ | ।। | ୧୧୨ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବଳିବାମନସଂବାଦୋ
ନାମ ଅଷ୍ଟାଦଶୋଽଧ୍ୟାୟଃ ।।

## ଊନବିଂଶ ଅଧ୍ୟାୟ

ଊନବିଂଶେ ତୁ ହରିଣା ଯାଚିତେ ଚ ପଦତ୍ରୟେ ।
ପ୍ରତିଶ୍ରୁତେ ଚ ବଳିନା ଜାନନ୍ ଭୃଗୁରବାରୟତ୍ ।। ୧
ଦାତୁଃ ସ୍ତୁତିଃ ସ୍ୱୟଂ ତୁଷ୍ଟିରିତ୍ୟାଦି ପ୍ରସ୍ତୁତୋଚିତମ୍ ।
ବକ୍ତବ୍ୟମିତି ଭିକ୍ଷୂଂସ୍ତୁ ଶିକ୍ଷୟନ୍ନାହ ବାମନଃ ।। ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଯେ ଧର୍ମଯୁତ ପ୍ରିୟ ପୁଣି | । ଏମନ୍ତେ ବଳିର ସେ ବାଣୀ | ।। | ୧ |
| | ଶୁଣି ପ୍ରଶଂସା କରି ତାକୁ | । ହରି କହିଲେ ଏ ବାକ୍ୟକୁ | ।। | ୨ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୨ | ଆପଣା କୁଳକୁ ଉଚିତ | । ଯଶକାରକ ଧର୍ମଯୁତ | ।। | ୩ |
| | ହେ ଜନଦେବ ! ଏ ତୋ ବାଣୀ | । ଲୋକର ପ୍ରିୟ ଅଟେ ପୁଣି | ।। | ୪ |
| | ତୋ' ପରଲୋକ ଧର୍ମ ଯେହି | । ପ୍ରମାଣ ଭୃଗୁମାନେ ଯହିଁ | ।। | ୫ |
| | ପ୍ରଶାନ୍ତ କୁଳବୃଦ୍ଧ ହୋଇ | । ପ୍ରହରାଦ ହିଁ ଅଛି ଯହିଁ | ।। | ୬ |
| ୩ | ଏ କୁଳେ ଜାତ ହୋଇ କେହି | । ନିଃସତ୍ତ୍ୱ[୨] କୃପଣ[୩] ନୁହଇ | ।। | ୭ |
| | ସେଟି ନିଃସତ୍ତ୍ୱ ଅଟେ ଯେହି | । ଅର୍ଥୀକି ନ ଦେବି ବୋଲଇ | ।। | ୮ |
| | ଯେ ନ ଦିଅଇ ଦେବା କରି | । କୃପଣ ନାମଟି ତାହାରି | ।। | ୯ |
| ୪ | ଦାନସମୟେ ଯୁଦ୍ଧକାଳେ | । ଅର୍ଥୀ ମାଗନ୍ତେ ତୁମ୍ଭ କୁଳେ | ।। | ୧୦ |
| | ବିମୁଖ ଅମନସ୍ୱୀ ହୋଇ | । ହେ ନୃପ ! ନାହାନ୍ତି ନା କେହି | ।। | ୧୧ |

---

୧. ଉତ୍ତମଭାବେ ପରିଷ୍କୃତ । ୨. ନିଃସତ୍ତ୍ୱ = ଯେ ଯାଚକ ବ୍ରାହ୍ମଣକୁ ପ୍ରତ୍ୟାଖ୍ୟାନ କରେ ।
୩. କୃପଣ = ପ୍ରଥମେ ପ୍ରତିଶ୍ରୁତି ଦେଇ ଯେ ନ ଦିଏ ।

ଯେ ଯଶ ଅଟଇ ନିର୍ମଳ । ତେଣେ ସଂଯୁତ ତୁମ୍ଭ କୁଳ ॥
ଆକାଶେ ଚନ୍ଦ୍ରପ୍ରାଏ ହୋଇ । ପ୍ରହ୍ଲାଦ ତହିଁ ଶୋଭା ପାଇ ॥
୫ ଯେଉଁ ବଂଶରେ ପୂର୍ବେ ଜାତ । ହୋଇଲା ହିରଣ୍ୟାକ୍ଷ ଦୈତ୍ୟ ॥
ଗଦା ଧରିଣ ଏକା ହୋଇ । ଭ୍ରମଣ କରନ୍ତେ ଏ ମହୀ ॥
ଦିଗବିଜୟେ ପ୍ରତିବୀର । ଲଭିଲା ନାହିଁ ସେ ଅସୁର ॥
୬ ମହୀ ଉଦ୍ଧାର ହୋନ୍ତେ ପୁଣି । କଷ୍ଟେ ଯାହାକୁ ଯୁଦ୍ଧେ ଜିଣି ॥
ମହତ ପରାକ୍ରମ ତାର । ସ୍ମରଣ କରନ୍ତେ ମନର ॥
ଆତ୍ମାକୁ ଜୟଯୁତ କରି । ମଣିଲେ ପୂର୍ବକାଳେ ହରି ॥
୭ ତା' ବଧ ଶୁଣି ଭ୍ରାତା ତାର । ହିରଣ୍ୟକଶିପୁ ଅସୁର ॥
ବିନାଶ କଲା ଯେ ଭ୍ରାତାକୁ । ମାରିବା ଅର୍ଥେ ସେ ବିଷ୍ଣୁକୁ ॥
କ୍ରୋଧ ଲଭିଣ ନିଜ ମନେ । ମିଳିଲା ବିଷ୍ଣୁର ଭୁବନେ ॥
୮ ଯମର ପ୍ରାଏ ସେ ଅସୁର । ଆସୁଛି ଶୂଳ ଧରି କର ॥
ତାକୁ ନିକଟେ ଦେଖି କରି । କାଳଜ୍ଞ ଅଟନ୍ତି ଯେ ହରି ॥
ମାୟାବିମଧ୍ୟରେ ଯେ ବର । ମନରେ କଲେ ସେ ବିଚାର ॥
୯ ମୁଁ ଯହିଁ ଯହିଁ ଏହୁ ତହିଁ । ପ୍ରାଣିଙ୍କି ମୃତ୍ୟୁପ୍ରାୟ ହୋଇ ॥
ପଶିବି ଏହା ହୃଦେ ତେଣୁ । ଏ ବାହ୍ୟଦୃଷ୍ଟି ଅଟେ ଯେଣୁ ॥
୧୦ ହେ ଅସୁରେନ୍ଦ୍ର ! ଏ ରୂପରେ । ନିଶ୍ଚୟ କରିଣ ମନରେ ॥
ସୂକ୍ଷ୍ମ ଦେହକୁ ଶ୍ୱାସବାତେ । କରି ଅନ୍ତର୍ଧାନ ତୁରିତେ ॥
ତା' ନାସାରନ୍ଧ୍ରଦ୍ୱାରେ ହରି । କମ୍ପିତଚିତ୍ତ ହୋଇ କରି ॥
ପଶିଲେ ତା' ଶରୀରେ ଯାଇଁ । ଯେ ରିପୁ ଆସୁଥିଲା ଧାଇଁ ॥
୧୧ ସେ ଶୂନ୍ୟ ଗୃହକୁ ବିଷ୍ଣୁର । ପ୍ରବେଶ ହୋଇଣ ଅସୁର ॥
ବିଷ୍ଣୁଙ୍କୁ ନ ଦେଖନ୍ତେ ତହିଁ । ଗର୍ଜିଲା କ୍ରୋଧଯୁକ୍ତ ହୋଇ ॥
ସ୍ୱର୍ଗ ଧରଣୀ ଦିଗମାନ । ସମୁଦ୍ର ବିବର ଗଗନ ॥
ଏମାନ ଖୋଜନ୍ତେ ସେ ବୀର । ବିଷ୍ଣୁଙ୍କୁ ନ କଲା ଗୋଚର ॥
୧୨ ବିଷ୍ଣୁଙ୍କୁ କାହିଁ ନ ଦେଖନ୍ତେ । ଏମନ୍ତ ବିଚାରିଲା ଚିତ୍ତେ ॥
ମୁଁ ଖୋଜିଲଇଁ ଏ ଜଗତ । ଯେ ମୋ' ଭ୍ରାତାକୁ କଲା ହତ ॥
ତହିଁକି କଲା ସେ ଗମନ । ଯହୁଁ ନ ଲେଉଟଇ ଜନ ॥
୧୩ ବଇର-ଅନୁବନ୍ଧ ଏତେ । ହୁଅଇ ମୃତ୍ୟୁପରିଯନ୍ତେ ॥
ଦେହରେ ଅଭିମାନବନ୍ତ । ଯେ ଶୂରଜନମାନେ ସ୍ଥିତ ॥
ତାଙ୍କର ଅଜ୍ଞାନରୁ ଜାତ । କ୍ରୋଧ ହୁଅଇ ଉପଗତ ॥
ସେ କ୍ରୋଧ ଅହଂକାରମାନେ[୧] । ବୃଦ୍ଧି ହୁଅଇ ଦିନେ ଦିନେ ॥
୧୪ ଦ୍ୱିଜବତ୍ସଳ ବିରୋଚନ । ତୋ ପିତା ପ୍ରହ୍ଲାଦନନ୍ଦନ ॥

୧. ମାନେ = ମାନରେ ଅର୍ଥାତ୍ ଅନୁସାରେ ।

ଦେବେ ଯେ ବିପ୍ରବେଶ ହୋଇ । ପ୍ରାର୍ଥନା କଲେ ତାକୁ ଯାଇଁ ॥
ଦେବତା ବୋଲି ଜାଣି ତାଙ୍କୁ । ଦେଲା ସେ ନିଜ ଆୟୁଷକୁ ॥
୧୫ ପୂର୍ବ କାଳରେ ଏ ଭୁବନେ । ଯେ ଜାତ ଗୃହମେଧିମାନେ ॥
ବ୍ରାହ୍ମଣେ ଇତରେ ଯେ ଶୂର । ଉଦ୍ଦାମ କୀର୍ତ୍ତି ଯାହାଙ୍କର ॥
ସେ ଯେଉଁ ଧର୍ମକୁ ବିହିଲେ । ତୁ ତାହା ଆସ୍ଥା କଲୁ ଭଲେ ॥
୧୬ ବର କରନ୍ତି ଯେ ପ୍ରଦାନ । ତୁ ତାଙ୍କ ମଧ୍ୟରେ ପ୍ରଧାନ ॥
ତେଣୁ ତୋ' ଠାରୁ ଅଳ୍ପ ମହୀ । ବରୁଛି ହେ ଦୈତ୍ୟେନ୍ଦ୍ର ମୁହିଁ ॥
ମୋର ଚରଣେ ପରିମିତ । ତ୍ରିପାଦ ମହୀ ଯେ ବିଖ୍ୟାତ ॥
୧୭ ହେ ନୃପ ! ତୁ ଜଗଦୀଶ୍ୱର । ଦାତାମାନଙ୍କ ମଧ୍ୟେ ବର ॥
ତୋ' ଠାରୁ ନ ମାଗୁଛି ଆନ । ପଣ୍ଡିତ ଅଟେ ଯେଉଁ ଜନ ॥
ଯେତେକ ପ୍ରୟୋଜନେ ତାର । ରକ୍ଷାକୁ ଲଭଇ ଶରୀର ॥
ତେତେକ ପରିଗ୍ରହ କରେ । ପାପକୁ ନ ଲଭେ ସଂସାରେ ॥

ଶ୍ରୀବଳିରୁବାଚ

୧୮ ହେ ବିପ୍ରସୁତ ! ତୋ' ବଚନେ । ବୃଦ୍ଧସଂମତ ଏ ଭୁବନେ ॥
ତୁ ବାଳ ବାଳିଶ[୧] ଯେ ଜନ । ତାହାଙ୍କ ପ୍ରାୟ ତୋର ମନ ॥
ଆପଣା ପ୍ରୟୋଜନ ଯେହି । ତୁ ଜାଣି ନ ପାରୁଛୁ ତାହି ॥
୧୯ ଈଶ୍ୱର ଯେ ବା ଲୋକଙ୍କର । ମୁଁ ସେମାନଙ୍କର ଈଶ୍ୱର ॥
ମୋତେ ବଚନେ କରି ସ୍ତୁତି । ଯେ ମାଗେ ତିନିପାଦ କ୍ଷିତି ॥
ସେ ଲୋକ ଅଟେ ବୁଦ୍ଧିହୀନ । ମୁଁ କରି ପାରେ ଦ୍ୱୀପ ଦାନ ॥
୨୦ ମୋ' ଠାରୁ ଆସିକରି ପ୍ରାଣୀ । ଆନକୁ ନ ମାଗଇ ପୁଣି ॥
ହେ ବଟୁ ! ତେଣୁ ଇଚ୍ଛା ଯେତେ । ମୋ' ଠାରୁ ଘେନ ଭୂମି ତେତେ ॥
ଯେବଣ ଭୂମିରେ ବର୍ତ୍ତନ । ହେବ ତୋହର ସଂପାଦନ ॥

ଶ୍ରୀଭଗବାନୁବାଚ

୨୧ ହେ ନୃପ ! ପ୍ରିୟ ହୋଇ ଯେତେ । ବିଷୟ ଅଛନ୍ତି ଜଗତେ ॥
ଅଜିତେନ୍ଦ୍ରିୟ ଯେଉଁ ଜନ । ତାହାକୁ କରିବାକୁ ପୂର୍ଣ୍ଣ ॥
ସେ ସର୍ବେ ସମର୍ଥ ନୁହନ୍ତି । ଏମନ୍ତ ବିଚାରଇ ମତି ॥
୨୨ ତ୍ରିପାଦ କ୍ରମେ ଯେବେ ମୁହିଁ । ସଂତୋଷଚିତ୍ତ ନୋହିବଇଁ ॥
ଶ୍ରେଷ୍ଠ ସପତ ଦ୍ୱୀପଙ୍କର । ଇଚ୍ଛାରେ ହୋଇଣ ଅଧୀର ॥
ଯେ ଦ୍ୱୀପ ନବଖଣ୍ଡଯୁତ । ତେଣେ ନ ପୂରିବ ମୋ' ଚିତ୍ତ ॥
୨୩ ସପତ ଦ୍ୱୀପେ ଅଧିପତି । ଯେ ପୃଥୁ ଗୟାଦି ନୃପତି ॥
ଅର୍ଥରେ କାମରେ ସେମାନେ । ହେତୁକୁ କଲେ ହେଁ ଭୁବନେ ॥

୧. ନିର୍ବୋଧ ।

ତୃଷ୍ଣାର ନ ଗଲେ ଅନ୍ତକୁ । ଆମ୍ଭେ ଶୁଣିଛୁଁ ଏ ବାର୍ତ୍ତାକୁ ॥ ୭୩
୨୪ ଯେ ଅନାୟାସେ ଉପପନ୍ନ । ତେଣେ ସଂତୁଷ୍ଟ ଯେବେ ଜନ ॥ ୭୪
ସେ ଲୋକ ସୁଖେ ବର୍ତ୍ତିଥାଇ । ଅଜିତ-ଆତ୍ମା ପୁଣ ଯେହି ॥ ୭୫
ଏ ତିନି ଜଗତକୁ ପାଇ । ଯେବେ ସେ ସଂତୋଷ ନୁହଇ ॥ ୭୬
ସେ ଲୋକ କେବେହେଁ ସଂସାରେ । ବର୍ତ୍ତି ନ ପାରଇ ସୁଖରେ ॥ ୭୭
୨୫ ଅତୁଷ୍ଟି ଅର୍ଥେ କାମେ ଯେହି । ଲୋକସଂସାରହେତୁ ସେହି ॥ ୭୮
ଅକ୍ଳେଶ-ଉପପନ୍ନ ବିତ୍ତେ[1] । ସଂତୋଷ ମୁକ୍ତିର ନିମିତ୍ତେ ॥ ୭୯
୨୬ ଯେ ଅନାୟାସେ ମିଳେ ବିତ୍ତ । ତେଣେ ସଂତୋଷ ଯାର ଚିତ୍ତ ॥ ୮୦
ସେ ବିପ୍ରତେଜ ବୃଦ୍ଧି ହୋଏ । ଅସନ୍ତୋଷେ ସେ ନାଶ ଯାଏ ॥ ୮୧
ସଲିଳସଂଯୋଗେ ଯେସନ । ନାଶ ହୁଅଇ ହୁତାଶନ ॥ ୮୨
୨୭ ବର ଦିଅନ୍ତି ଯେତେ ଜନ । ତୁ ତାଙ୍କ ମଧ୍ୟରେ ପ୍ରଧାନ ॥ ୮୩
ସେ ଘେନି ତିନିପାଦ ମହୀ । ତୋ' ଠାରୁ ବରୁଅଛି ମୁହିଁ ॥ ୮୪
ମୁଁ ସିଦ୍ଧ[2] ହୋଇବି ଏତେକେ । ନିଜ ପ୍ରୟୋଜନ ଯେତେକେ ॥ ୮୫
ସେ ବିତ୍ତ ସୁଖକର ହୋଇ । ଅଧିକ[3] କ୍ଳେଶକୁ ଦିଅଇ ॥ ୮୬

ଶ୍ରୀଶୁକ ଉବାଚ

୨୮ ବାମନ କହନ୍ତେ ଏ ବାଣୀ । ହସି ବୋଇଲା ଦୈତ୍ୟ ପୁଣି ॥ ୮୭
ବାଞ୍ଛିତ ଯଉଁ କଥା ତୋର । ଏବେ ତା' ପ୍ରତିଗ୍ରହ କର ॥ ୮୮
ମହୀ ଦେବାକୁ ବାମନକୁ । ଧଇଲା ଜଳଭାଜନକୁ ॥ ୮୯
୨୯ ଯେ ନିଜ ଶିଷ୍ୟ ଦୈତ୍ୟପତି । ବିଷ୍ଣୁଙ୍କୁ ଦ୍ୟନ୍ତେ ବସୁମତୀ ॥ ୯୦
ପଣ୍ଡିତବର ଶୁକ୍ର ତାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୯୧
ବିଷ୍ଣୁର ହୃଦୟ-ବିଚାର । କରି ଅଛନ୍ତି ସେ ଗୋଚର ॥ ୯୨

ଶ୍ରୀଶୁକ୍ର ଉବାଚ

୩୦ ହେ ବଳି ! ଏ ବିଷ୍ଣୁ ସାକ୍ଷାତ । କଶ୍ୟପଠାରୁ ହେଲେ ଜାତ ॥ ୯୩
ଗର୍ଭରେ ଅଦିତି ଦେବୀର । କାର୍ଯ୍ୟସାଧକ ଦେବଙ୍କର ॥ ୯୪
୩୧ ନ ଜାଣି ତ୍ରିପଦ ଦେବାକୁ । ପ୍ରତିଜ୍ଞା କଲୁ ତୁ ଏହାକୁ ॥ ୯୫
ଉତ୍ତମ କରିଣ ଏ କଥା । ନ ମଣୁଅଛି ମୁଁ ସର୍ବଥା ॥ ୯୬
ଦାନବଙ୍କର ଅତି ଅନ୍ତ । ଅନ୍ୟାୟ ହେଲା ଉପଗତ ॥ ୯୭
୩୨ ଏ ତୋର ସ୍ଥାନ ଅଇଶ୍ୱର୍ଯ୍ୟ । ଶିରି ବିପୁଳ ଯଶ ତେଜ ॥ ୯୮
ଇନ୍ଦ୍ରକୁ ଦେବ ହରି କରି । ଏ ମାୟାମାଣବକ ହରି ॥ ୯୯
୩୩ ଜଗତ ଯାହାର ଦେହରେ । ଏ ବିଷ୍ଣୁ ତିନି ବିକ୍ରମରେ ॥ ୧୦୦

---

୧. ଚିତ୍ତେ । ୨. ସିଦ୍ଧ = କୃତାର୍ଥ । ୩. ପ୍ରୟୋଜନରୁ ଅଧିକ ବିତ୍ତ ।

ତ୍ରିଲୋକ ଆକ୍ରମିବ ପୁଣ । ସର୍ବସ୍ୱ ବିଷ୍ଣୁଙ୍କୁ ଦେଇଣ ॥ ୧୦୧
ହେ ମୂଢ଼ ! କେମନ୍ତ ପ୍ରକାରେ । ବର୍ତ୍ତିବୁ ତୁ ଏ ଜଗତରେ ॥ ୧୦୨
୩୪ ଏକ ପାଦରେ ବସୁଧାକୁ । କ୍ରମନ୍ତେ ଦ୍ୱିତୀୟେ ସ୍ୱର୍ଗକୁ ॥ ୧୦୩
ବିଶାଳ ଅଟେ ଯେ ଶରୀର । ତେଣେ ଆକ୍ରମନ୍ତେ ଅମ୍ବର ॥ ୧୦୪
ତୃତୀୟ ପାଦର ଯେ ଗତି । ସେ କାହିଁ ହେବ ଉତପତି ॥ ୧୦୫
୩୫ ପ୍ରତିଜ୍ଞା କଲୁ ଯା ଦେବାକୁ । ପ୍ରଦାନ ନ କରନ୍ତେ ତାକୁ ॥ ୧୦୬
ତୋର ନିଷ୍ଠାକୁ ନରକରେ । ନିଶ୍ଚୟେ ମଣୁଛି ମନରେ ॥ ୧୦୭
ଯେ ତୁ ପ୍ରତିଜ୍ଞା କଲା ବିତ୍ତ । ପ୍ରତିପୂରଣେ ଅସମର୍ଥ ॥ ୧୦୮
୩୬ ଯଉଁ ଦାନରେ ବୃତ୍ତି ଯାଇ । କେହି ତା' ପ୍ରଶଂସନ୍ତି ନାହିଁ ॥ ୧୦୯
ଯଜ୍ଞ ତପସ୍ୟା[1] କର୍ମ[2] ଦାନ । ଏ ଆଦି ନାନା ପୁଣ୍ୟମାନ ॥ ୧୧୦
ଯେ ଲୋକେ ବୃତ୍ତିମନ୍ତ ଜନ । ତାର ସମ୍ଭବନ୍ତି ସେମାନ ॥ ୧୧୧
୩୭ ଯେ ଧର୍ମ ଯଶ କାମ ଅର୍ଥ । ସ୍ୱଜନମାନଙ୍କ ନିମିତ୍ତ ॥ ୧୧୨
ପାଞ୍ଚ ପ୍ରକାରେ ବାଣ୍ଟେ ଧନ । ସେ ବେନି ଲୋକେ ସୁଖୀ ଜନ ॥ ୧୧୩
୩୮ ବହ୍ବୃଚେ[3] ଏହି ବିଷୟରେ । କହିଲେ ଯା ପୂର୍ବ କାଳରେ ॥ ୧୧୪
ମୋ ଠାରୁ ହେ ଅସୁରବର । ସେ କଥା ଶ୍ରବଣ ତୁ କର ॥ ୧୧୫
[4]'ଦେବି' ବୋଲି ଯେ ଅଙ୍ଗୀକାର । ସତ୍ୟ ଅଟଇ ନାମ ତାର ॥ ୧୧୬
ନାହିଁ ବୋଲିଣ ଯେ ଶବଦ । ଅନୃତ ଅଟଇ ସେ ପଦ ॥ ୧୧୭
୩୯ ଯେ ଦେହବୃକ୍ଷ ଜୀଇଥାଇ । ସତ୍ୟ ତା' ଫଳ ପୁଷ୍ପ ଦୁଇ ॥ ୧୧୮
ସେ ବୃକ୍ଷ ନ ଜୀଅଇ ଯେବେ । ନ ଥାଇ ଫଳ ପୁଷ୍ପ ତେବେ ॥ ୧୧୯
ଆମ୍ରବୃକ୍ଷ[5] ର ମୂଳ ହୋଇ । ଅନୃତ ବିଖ୍ୟାତ ଅଟଇ ॥ ୧୨୦
୪୦ [6]ଯେସନେ ଉପାଡ଼ିଲେ ମୂଳ । ଶୁଖି ପଡ଼ଇ ବୃକ୍ଷ ତଳ ॥ ୧୨୧

---

୧. ଚିତ୍ତୈକାଗ୍ରତା । ୨ = ପୂର୍ତ୍ତ ।
୩. ବହ୍ବୃଚେ = ଋଗ୍‌ବେଦୀ ବ୍ରାହ୍ମଣ ବା ପୁରୋହିତମାନେ.।
୪. **'ପ୍ରଥମମୋମିତି ସତ୍ୟଂ ନେତ୍ୟନୃତମ୍'**-ଇତ୍ୟାଦି ଶ୍ରୁତିବାକ୍ୟ ଦ୍ୱାରା ସତ୍ୟ ବିହିତ ଓ ଅନୃତ ନିଷିଦ୍ଧ ଅଟେ । କିନ୍ତୁ **'ପରାଗ୍ୱା ଏତଦ୍ରିକ୍ତମକ୍ଷରଂ ଯଦେତଦୋମ୍'** – ଇତ୍ୟାଦି ଶ୍ରୁତିବାକ୍ୟଦ୍ୱାରା ସତ୍ୟରେ ଦୋଷ ଏବଂ ଅନୃତରେ ଗୁଣ କହି ''ତସ୍ମାଦ୍ କାଳ ଏବ ଦଦ୍ୟାଦ୍; କାଳେ ନ ଦଦ୍ୟାଦ୍ ତଦ୍ ସତ୍ୟାନୃତେ ମିଥୁନୀକରୋତି'' – ଏହି ଉପସଂହାର ଦ୍ୱାରା ବୃତ୍ତିସଂକଟାଦିରେ ଅନୃତ ମଧ୍ୟ ଆଦିଷ୍ଟ ହୋଇଅଛି ।
୫. ଦେହବୃକ୍ଷ ।
୬. ଓମିତି ସତ୍ୟଂ ନେତ୍ୟନୃତମ୍; ତଦେତଦ୍ ପୁଷ୍ପଫଳଂ ବାଚୋ ଯଦ୍ ସତ୍ୟମ୍; ସ ହେଶ୍ୱରୋ ଯଶସ୍ୱୀ କଲ୍ୟାଣକୀର୍ତ୍ତିର୍ଭବିତା; ପୁଷ୍ପଂ ହି ଫଳଂ ବାଚଃ ସତ୍ୟଂ ବଦତି; ଅଥୈତନ୍ମୂଳଂ ବାଚୋ ଯଦନୃତମ୍; ତଦ୍ୟଥା ବୃକ୍ଷ ଆବିର୍ମୂଳଃ ଶୁଷ୍ୟତି, ସ ଉଦ୍‌ବର୍ତ୍ତତେ, ଏବମେବାନୃତଂ ବଦନ୍ ଆବିର୍ମୂଳମାତ୍ମାନଂ କରୋତି; ସ ଶୁଷ୍ୟତି, ସ ଉଦ୍‌ବର୍ତ୍ତତେ; ତସ୍ମାଦ୍ ଅନୃତଂ ନ ବଦେଦ୍; ଦୟେତ ତ୍ୱେତେନେତି । (ଶ୍ରୁତିଃ)

ଆତ୍ମା ହିଁ ସେହି ପରକାରେ । ଅନୃତନାଶ ସମୟରେ ।। ୧୨୨
ତତକାଳ ହିଁ ଶୁଷ୍କ ହୋଇ । ଏଥି ସଂଶୟ କିଛି ନାହିଁ ।। ୧୨୩
୪୧ ଦେବି ବୋଲିଣ ଯେ ସ୍ୱୀକାର । ଅର୍ଥ ଘେନି ସେ ଯାଇ ଦୂର ।। ୧୨୪
ସେ ରିକ୍ତ ଅପୂର୍ଣ୍ଣ ଅଟଇ । ଦେବି ବୋଲିଣ ଯାହା କହି ।। ୧୨୫
ଯେବେ ସ୍ୱୀକାର କରେ ପ୍ରାଣୀ । ରିକ୍ତ ହୁଅଇ ତତକ୍ଷଣି ।। ୧୨୬
[1]ଦେବି ବୋଲିଣ ସମସ୍ତଙ୍କୁ । ସ୍ୱୀକାର କରନ୍ତେ ଭିକ୍ଷୁକୁ ।। ୧୨୭
ନିଜ ଆତ୍ମାକୁ ଅତିଶୟେ । କାମରେ ପର୍ଯ୍ୟାପ୍ତ ସେ ନୋହେ ।। ୧୨୮
୪୨ ଯେ ମୋର ନାହିଁ ବୋଲି ବାଣୀ । ଅନୃତ ଅଟଇ ସେ ପୁଣି ।। ୧୨୯
ଆତ୍ମାକୁ ଅଭିମୁଖ ହୋଇ । ଆନ ବିତ୍ତ ସେ ଆକର୍ଷଇ ।। ୧୩୦
ଯେ ବୋଲେ କିଛି ନାହିଁ ମୋର । ସେହି ଅନୃତେ ସେ ପରର ।। ୧୩୧
ଦ୍ରବ୍ୟକୁ ଆକର୍ଷଣ କରେ । ଏ କଥା ପ୍ରସିଦ୍ଧ ସଂସାରେ ।। ୧୩୨
[2]ସମସ୍ତ କଥାକୁ ଯେ ଜନ । ନାହିଁ ବୋଲଇ ଅନୁଦିନ ।। ୧୩୩
ଅକୀର୍ତ୍ତିବନ୍ତ ସେହୁ ଜନ । ଜୀଅନ୍ତେ ମଲାର ସମାନ ।। ୧୩୪
୪୩ ଏଣୁ ବୃତ୍ତିସଂକଟାଦିରେ । ଦୋଷ ନୁହଇ ଅନୃତରେ ।। ୧୩୫
ସ୍ୱୀକି କରନ୍ତେ ନିଜ ବଶେ । ସେକାଳେ ପୁଣ ପରିହାସେ ।। ୧୩୬
ବିବାହେ ବରଆଦିଙ୍କର । ସ୍ତୁତିବିଷୟରେ ଆବର ।। ୧୩୭
ହିତରେ ଗୋ-ବ୍ରାହ୍ମଣଙ୍କର । ହିଂସାସମୟରେ ଲୋକର ।। ୧୩୮
ଅନୃତ ବଚନ ଯା କହି । ସେ କଥା ନିନ୍ଦିତ ନୁହଇ ।। ୧୩୯
ବଳି ଯାହାକୁ ଦେଲେ ଦାନ । ବଟୁ ବାମନ ଭଗବାନ ।। ୧୪୦
ତାହାଙ୍କ ପାଦପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ।। ୧୪୧

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବାମନଚରିତଂ ନାମ
ଏକୋନବିଂଶୋଽଧ୍ୟାୟଃ ।।

---

୧. ''ଅତ୍ରୈବାସ୍ମୈ ତଦ୍ ରିଚ୍ୟତେ ସ ଯଦ୍, ସ ସର୍ବମୋଙ୍କୁର୍ଯ୍ୟାତ୍; ରିଚ୍ୟାଦାତ୍ମାନଂ ସ କାମେଭ୍ୟୋ ନାଲଂ ସ୍ୟାଦ୍'' । (ଶ୍ରୁତିଃ)
୨. ''ଅଥୈତଦ୍ ପୂର୍ଣ୍ଣମଭ୍ୟାତ୍ମଂ ଯନ୍ନେତି, ସ ଯଦ୍ ସର୍ବଂ ନେତି ବ୍ରୂୟାଦ୍, ପାତିକାସ୍ୟ କୀର୍ତ୍ତିର୍ଜାୟେତ, ସୈନ୍ୟଂ ତତ୍ରୈବ ହନ୍ୟାଦ୍'' । (ଶ୍ରୁତିଃ)
''ବର୍ଣ୍ଣିନାଂ ହି ବଧୋ ଯତ୍ର ତତ୍ର ସାକ୍ଷ୍ୟନୃତଂ ବଦେତ୍'' (ଯାଜ୍ଞବଲ୍‌କ୍ୟଃ)

# ବିଂଶ ଅଧ୍ୟାୟ

ବିଂଶେ ତ୍ୱନୃତଭୀତୋଽସୌ ଜ୍ଞାତ୍ୱାପି କପଟଂ ହରେଃ ।
ଦଦାବେବ ତତୋ ବିଷ୍ଣୁଃ ସହସାବର୍ଧତାଭୁତମ୍ ।। ୧

ଶ୍ରୀଶୁକ ଉବାଚ

୧ କୁଳଆଚାର୍ଯ୍ୟ ଏ ପ୍ରକାରେ । କହନ୍ତେ ତହିଁର ଉତ୍ତାରେ ।। ୧
ଯେ ଗୃହପତି ଅଟେ ତହିଁ । ସେ ବଳି କ୍ଷଣେ ତୁନି ହୋଇ ।। ୨
ହେ ନୃପ ! ହୋଇ ସାବଧାନ । ଗୁରୁଙ୍କୁ କହିଲା ବଚନ ।। ୩

ଶ୍ରୀବଳିରୁବାଚ

୨ ଯାହା କହିଲ ଭଗବାନ । ସତ୍ୟ ଅଟଇ ଏ ବଚନ ।। ୪
ଗୃହସ୍ଥାଶ୍ରମୀ ଲୋକଙ୍କର । ଧର୍ମ ହିଁ ଅଟେ ଏ ପ୍ରକାର ।। ୫
ଯେ ଧର୍ମ, ଅର୍ଥ, କାମ, ଯଶ । ବୃତ୍ତିକି ନ କରଇ ନାଶ ।। ୬
୩ ନିଶ୍ଚୟେ ଦେବି ମୁଁ ବୋଲିଣ । ବିତ୍ତ[1] ଲୋଭରେ ମୁଁ ସେ ପୁଣ ।। ୭
ପ୍ରହ୍ଲାଦବଂଶେ ଜାତ ହୋଇ । କିତବଲୋକପ୍ରାୟେ ମୁହିଁ ।। ୮
କେମନ୍ତ ପ୍ରକାରେ ବିପ୍ରକୁ । କହିବି ନିଷେଧବାକ୍ୟକୁ ।। ୯
୪ ଅସତ୍ତୁଁ ଅତିଶୟ ହୋଇ । ଅଧର୍ମ ଏ ଜଗତେ ନାହିଁ ।। ୧୦
ଯେ କହେ ଅନୃତ ବଚନ । ତାହା ବିହୁନେ ସର୍ବ ଆନ ।। ୧୧
ସମର୍ଥ ସହିବାକୁ[2] ମୁହିଁ । ଏମନ୍ତ ବୋଲୁଛି ଏ ମହୀ ।। ୧୨
୫ ନରକୁଁ ଦୁଃଖସାଗରରୁ । ନ ଡରଇ ମୁଁ ଦାରିଦ୍ର୍ୟରୁ ।। ୧୩
ଯେ ସ୍ଥାନଚ୍ୟୁତି ଯେ ମରଣ । ତହୁଁ ମୁଁ ନ ଡରଇ ପୁଣ ।। ୧୪
ଲୋଭ କରାଇ ବ୍ରାହ୍ମଣକୁ । ମୁଁ ଯେଡ଼େ ପାଉଛି ଭୟକୁ ।। ୧୫
୬ ପୃଥିବୀ ଆଦି ଯେହି ଯେହି । ମରିବା ଲୋକକୁ ଛାଡ଼ଇ ।। ୧୬
ଜୀଇ ଥାଆନ୍ତେ କିମ୍ବା ତାକୁ । ପ୍ରଦାନ ନ କରେ ବିପ୍ରକୁ ।। ୧୭
ତାହାର ଅର୍ଦ୍ଧଦାନେ ଯେବେ । ବିପ୍ର ସଂତୋଷ ନୋହେ ତେବେ ।। ୧୮
ସେ ତ୍ୟାଗେ କି ଅବା କାରଣ । ବିଅର୍ଥ ଅଟଇ ସେ ପୁଣ ।। ୧୯
୭ ଦଧିଚି ଶିବି ଆଦି ଯେତେ । ସାଧୁଏ ବିଖ୍ୟାତ ଜଗତେ ।। ୨୦
ଦୁସ୍ତ୍ୟଜ ପ୍ରାଣେ ଆପଣାର । ଶ୍ରେୟ କରନ୍ତି ପ୍ରାଣୀଙ୍କର ।। ୨୧
ପୃଥିବୀ ଆଦି ଯେ ଇତର । ତାହା ବିଷୟେ କି ବିଚାର ।। ୨୨
୮ ଯୁଦ୍ଧରୁ ଅନିବୃତ୍ତ ହୋଇ । ଯେ ପୂର୍ବେ ଭୁଞ୍ଜିଲେ ଏ ମହୀ ।। ୨୩
ସେ ଦାନବେନ୍ଦ୍ରମାନଙ୍କର । ଯେ ଇହ ପରଲୋକ ଆର ।। ୨୪
ତାହାକୁ କାଳ କଲା ଗ୍ରାସ । ସେ ଲଭିଥିଲେ ଯେଉଁ ଯଶ ।। ୨୫

---

୧. ବୃତ୍ତି ।  ୨. ବହିବାକୁ ।

ତାହାକୁ ଗ୍ରାସି ନ ପାରିଲା । ସେ ସର୍ବ କାଳରେ ରହିଲା ॥
୯ ହେ ବିପ୍ରଋଷି ! ନ ନିବର୍ତ୍ତି । ଯୁଦ୍ଧରେ ତନୁ ଯେ ତେଜନ୍ତି ॥
ଏମନ୍ତ ଯଉଁ ଲୋକମାନେ । ସେମାନେ ସୁଲଭ ଭୁବନେ ॥
ମିଳନ୍ତେ ଦାନପାତ୍ର ଜନ । ଶ୍ରଦ୍ଧାରେ ତେଜନ୍ତି ଯେ ଧନ ॥
ଏମନ୍ତ ହୋଇ ଯଉଁ ଜନେ । ସୁଲଭ ନୁହନ୍ତି ସେମାନେ ॥
୧୦ ମାଗନ୍ତେ ଯେହି କେହି ଜଣେ । ସେ ଲୋକ କାମନା ପୂରଣେ ॥
ମନସ୍ୱୀ ଦୟାଳୁ ଯେ ଜନ । ଶୋଭନ ଅଟେ ତାର ଦୈନ୍ୟ ॥
ଯେ ବ୍ରହ୍ମବାଦୀ ତୁମ୍ଭ ସମ । ତାଙ୍କର ଯେ ପୂରାଇ କାମ ॥
ସେ ଲୋକର ଯେ ଦୀନ ଭାବ । ସେ କିମ୍ପା ଶୋଭା ନ ପାଇବ ॥
ତେଣୁ ଏ ବଟୁର ବାଞ୍ଛିତ । ଅବଶ୍ୟ କରିବି ପ୍ରଦତ୍ତ ॥
୧୧ ବେଦ ବିଧାନେ ତୁମ୍ଭେମାନେ । ପଣ୍ଡିତ ଅଟ ଏ ଭୁବନେ ॥
ଯାହାକୁ କରିଣ ଆଦର । ଯାଗମାନଙ୍କେ ପୂଜା କର ॥
ବରଦ ସେହି ବିଷ୍ଣୁ ଏହି । ଅଥବା ଇତର ଅଟଇ ॥
ହେ ମୁନି ଏହାକୁ ବାଞ୍ଛିତ । ଭୂମିକି ଦେବି ମୁଁ ନିୟତ ॥
୧୨ ମୋହର ଅପରାଧ ନାହିଁ । ମୋତେ ଅଧର୍ମେ ଯେବେ ଏହି ॥
ବାନ୍ଧିବ, ତଥାପି ଏହାକୁ । କରିବି ନାହିଁ ମୁଁ ହିଂସାକୁ ॥
ଏ ରିପୁ ଭୟ ପାଇ କରି । ବ୍ରାହ୍ମଣତନୁ ଅଛି ଧରି ॥
୧୩ ଯେବେ ଉତ୍ତମଶ୍ଲୋକ ଏହି । ଯଶତ୍ୟାଗକୁ ନ ବାଞ୍ଛଇ ॥
ଯୁଦ୍ଧରେ ମୋତେ କରି ନାଶ । କ୍ଷିତିକି ହରିବ ଅବଶ୍ୟ ॥
ମୁଁ ଅବା କରନ୍ତେ ନିଧନ । କ୍ଷିତିରେ କରିବ ଶୟନ ॥

ଶ୍ରୀଶୁକ ଉବାଚ

୧୪ ଶିଷ୍ୟ ହୋଇଣ ଏ ପ୍ରକାରେ । ଆଜ୍ଞା ନ କଲା ଅଶ୍ରଦ୍ଧାରେ ॥
ମନସ୍ୱୀ ସତ୍ୟସନ୍ଧ ହୋଇ । ଜଗତେ ଖ୍ୟାତ ଯେ ଅଟଇ ॥
ଦଇବେ ହୋଇଣ ପ୍ରେରିତ । ତାକୁ ଶପିଲେ[1] ଭୃଗୁସୁତ ॥
୧୫ ଆତ୍ମାକୁ[2] ଆତ୍ମ ଉପେକ୍ଷାରେ । ମଣୁ ତୁ ପଣ୍ଡିତ ରୂପରେ ॥
ହେ ମୂଢ଼ ! ଏଣୁ କରି ତୁହି । ପ୍ରଣତ ନୋହୁ କାହାକୁ ହିଁ ॥
ମୁଁ ଦେଲି ଯେବଣ ଆଜ୍ଞାକୁ । ଅତିକ୍ରମିଲୁ ତୁ ତାହାକୁ ॥
ଏହି ନିକଟେ ଏ ହେତୁରୁ । ଭ୍ରଷ୍ଟ ହୋଇବୁ ସଂପତ୍ତିରୁ ॥
୧୬ ଏମନ୍ତ ରୂପେ ନିଜ ଗୁରୁ । ଶାପକୁ ଦେଲେହେଁ ସତ୍ୟରୁ ॥
ମହାତ୍ମା ନୋହିଲା ଚଳିତ । ଉଦକ କରିଣ ଅଗ୍ରତ ॥
ଅର୍ଚ୍ଚନ କରି ବାମନଙ୍କୁ । ପ୍ରଦାନ କଲା ବସୁଧାକୁ ॥

---
୧. ଶାପ ଦେଲେ । ୨. ନିଜକୁ ।

୧୭ ଯା' ଠାରେ ଅଛି ମୁକ୍ତାମାଳି । ସେ ବଳିଭାର୍ଯ୍ୟା ବିନ୍ଧ୍ୟାବଳି ॥ ୫୬
ସେ କାଳେ ହୋଇଣ ପ୍ରବେଶ । ସୁବର୍ଣ୍ଣମୟ ଯେ କଳସ ॥ ୫୭
ଶୁଦ୍ଧ ସଲିଳରେ ପୂରିତ । ତାହା ଆଣିଲା ସେ ତୁରିତ ॥ ୫୮
୧୮ ତାଙ୍କ ଶ୍ରୀମନ୍ତ ପାଦ ଦୁଇ । ବଳି ହରଷେ ସ୍ୱୟେଂ ଧୋଇ ॥ ୫୯
ସେ ଜଳ ବହିଲା ଶିରରେ । ଜଗତ ପବିତ୍ର ଯେ କରେ ॥ ୬୦
୧୯ ସିଦ୍ଧ ଚାରଣ ବିଦ୍ୟାଧରେ । ଗନ୍ଧର୍ବେ ଅମରନିକରେ ॥ ୬୧
ସେହି ସମୟେ ଆକାଶରେ । ଥାଇ ସମସ୍ତେ ହରଷରେ ॥ ୬୨
ଯେ ଅକୁଟିଳ କର୍ମ ତାର । ଗୁଣନ୍ତେ ତାହା ପରସ୍ପର ॥ ୬୩
ଅସୁରେନ୍ଦ୍ରକୁ ପୁଷ୍ପମାନ । ବରଷା କଲେ ଅବିଚ୍ଛିନ୍ନ ॥ ୬୪
୨୦ ଦୁନ୍ଦୁଭିମାନେ ନିରନ୍ତରେ । ବାଜିଲେ ସହସ୍ର ସଂଖ୍ୟାରେ ॥ ୬୫
ଗନ୍ଧର୍ବ କିଂପୁରୁଷମାନ । କିନ୍ନରେ କଲେକ ଗାୟନ ॥ ୬୬
ମନସ୍ୱୀ ଅଟଇ ଏ ଯେଣୁ । ଦୁଷ୍କର କର୍ମ କଲା ତେଣୁ ॥ ୬୭
ଯେଣୁ ଜାଣନ୍ତେ ତ୍ରିଭୁବନ । ଶତ୍ରୁକୁ କଲାକ ପ୍ରଦାନ ॥ ୬୮
୨୧ ତ୍ରିଗୁଣାତ୍ମକ ସେ ହରିର । ଅଦ୍ଭୁତ ବାମନ ଶରୀର ॥ ୬୯
ବୃଦ୍ଧିକି ଲଭିଲା ସତ୍ୱର । ଧରଣୀ ଆକାଶ ବିବର ॥ ୭୦
ଦିଗ ଜଳଧି ସ୍ୱର୍ଗ ମିଶି । ତିର୍ଯ୍ୟକ ନର ଦେବ ରଷି ॥ ୭୧
ଏମାନେ ଯେବଣ ଶରୀରେ । ରହିଣ ଅଛନ୍ତି ନିର୍ଭରେ ॥ ୭୨
୨୨ ରତ୍ୱିଜ ଆଚାର୍ଯ୍ୟ ସଦସ୍ୟେ । ଯେ ଥିଲେ ଆପଣାର ପାଶେ ॥ ୭୩
ବଳି ତାହାଙ୍କ ସଙ୍ଗତରେ । ସେ ବିଷ୍ଣୁ ସଗୁଣ ଶରୀରେ ॥ ୭୪
ତ୍ରିଗୁଣମୟ ଯେ ଜଗତ । ଭୂତ ଇନ୍ଦ୍ରିୟ ଅର୍ଥଯୁତ ॥ ୭୫
ଆଶୟ ଜୀବବିମିଶ୍ରିତ । ଦେଖିଲା ଏ ରୂପେ ଜଗତ ॥ ୭୬
୨୩ ଇନ୍ଦ୍ରର ପ୍ରାଏ ସେନା ଯାର । ସେ ବଳି ନୃପତି ବିଷ୍ଣୁର ॥ ୭୭
ଚରଣତଳେ ପାତାଳକୁ । ପାଦେ ଦେଖିଲା ବସୁଧାକୁ ॥ ୭୮
ପର୍ବତମାନଙ୍କୁ ଜଙ୍ଘରେ । ପତତ୍ରିମାନଙ୍କୁ ଜାନୁରେ ॥ ୭୯
ଊରୁଯୁଗଳରେ ମାରୁତ । ଗଣକୁ ଦେଖିଲା ଦଇତ୍ୟ ॥ ୮୦
୨୪ ସଂଧ୍ୟାକୁ ଦେଖିଲା ବସନେ । ପ୍ରଜାପତିଙ୍କି ଗୁହ୍ୟସ୍ଥାନେ ॥ ୮୧
ଆପଣେ ପ୍ରଧାନ ଯହିଁରେ । ସେ ଅସୁରଙ୍କୁ ଜଘନରେ ॥ ୮୨
ନାଭିଦେଶରେ ଆକାଶକୁ । ଉଦରେ ସପତ ସିନ୍ଧୁଙ୍କୁ ॥ ୮୩
ଯେ ଉରୁକ୍ରମବକ୍ଷସ୍ଥଳ । ତହିଁ ଦେଖିଲା ତାରାମାଳ ॥ ୮୪
୨୫ ହେ ନୃପ ! ମୁରାରିହୃଦୟେ । ଧର୍ମକୁ ପୁଣ ସ୍ତନଦ୍ୱୟେ ॥ ୮୫
ଦେଖିଲା ରତକୁ ସତ୍ୟକୁ । ମନରେ ରଜନୀକରକୁ ॥ ୮୬
ପଙ୍କଜ ଅଛି ଯା' ହସ୍ତରେ । ସେ ଶ୍ରୀକି ଦେଖିଲା ବକ୍ଷରେ ॥ ୮୭

| | | | | | |
|---|---|---|---|---|---|
| | କଣ୍ଠେ ଦେଖିଲା ସାମମାନ | । | ସମସ୍ତ ଶବଦ ଯେ ଆନେ | ॥ | ୮୮ |
| ୨୬ | ବାସବ ଆଦି ଯେ ଅମରେ | । | ତାହାଙ୍କୁ ଭୁଜମାନଙ୍କରେ | ॥ | ୮୯ |
| | ତାହାଙ୍କ କର୍ଣ୍ଣରେ ଦିଗଙ୍କୁ | । | ମୂର୍ଧାରେ ଦେଖିଲା ସ୍ୱର୍ଗକୁ | ॥ | ୯୦ |
| | କେଶେ ଦେଖିଲା ମେଘମାନ | । | ନାସିକା ଦେଶରେ ପବନ | ॥ | ୯୧ |
| | ସୂର୍ଯ୍ୟଙ୍କୁ ନୟନଯୁଗରେ | । | ବହ୍ନିକି ଦେଖିଲା ମୁଖରେ | ॥ | ୯୨ |
| ୨୭ | ଛନ୍ଦମାନଙ୍କୁ ବଚନରେ | । | ଜଳେଶ୍ୱରଙ୍କୁ ରସନାରେ | ॥ | ୯୩ |
| | ଭ୍ରୂଯୁଗେ ବିଧିନିଷେଧକୁ | । | ପକ୍ଷ୍ମରେ ରାତ୍ରିଦିବସକୁ | ॥ | ୯୪ |
| | ପରମ ପୁରୁଷ-ଭାଲରେ | । | ମନ୍ୟୁକୁ ଲୋଭକୁ ଅଧରେ | ॥ | ୯୫ |
| ୨୮ | ହେ ନୃପ ! ସ୍ପରଶେ କାମକୁ | । | ଦେଖିଲା ରେତରେ ଜଳକୁ | ॥ | ୯୬ |
| | ପୃଷ୍ଠେ ଦେଖିଲା ଅଧର୍ମକୁ | । | ପାଦକ୍ଷେପଣରେ ଯଜ୍ଞକୁ | ॥ | ୯୭ |
| | ମୃତ୍ୟୁକୁ ଦେଖିଲା ଛାୟାରେ | । | ମାୟାକୁ ଦେଖିଲା ହାସରେ | ॥ | ୯୮ |
| | ଓଷଧିଜାତିମାନେ ଯେତେ | । | ତାଙ୍କୁ ଦେଖିଲା ରୋମଗତେ | ॥ | ୯୯ |
| ୨୯ | ନଦୀଙ୍କି ନାଡ଼ିମାନଙ୍କରେ | । | ପାଷାଣମାନଙ୍କୁ ନଖରେ | ॥ | ୧୦୦ |
| | ବୁଦ୍ଧିରେ ଦେଖିଲା ବ୍ରହ୍ମାଙ୍କୁ | । | ପ୍ରାଣ[୧] ରେ ଋଷିଙ୍କି ଦେବଙ୍କୁ | ॥ | ୧୦୧ |
| | ସ୍ଥାବର ଜଙ୍ଗମ ରୂପରେ | । | ଯେ ସର୍ବଭୂତ ଜଗତରେ | ॥ | ୧୦୨ |
| | ବିଷ୍ଣୁର ଗାତ୍ରରେ ସେମାନ | । | ସେ ବୀର କଲା ଦରଶନ | ॥ | ୧୦୩ |
| ୩୦} | ଯେ ସର୍ବଆତ୍ମା ଭଗବାନ | । | ତା' ଠାରେ ଦେଖି ଏ ଭୁବନ | ॥ | ୧୦୪ |
| ୩୨} | ହେ ନୃପ ! ସମସ୍ତ ଅସୁରେ | । | ମୋହକୁ ଲଭିଲେ ସତ୍ୱରେ | ॥ | ୧୦୫ |
| | ଯାହାର ତେଜ ନୋହେ ସହି | । | ସେ ସୁଦର୍ଶନ ଚକ୍ର ତହିଁ | ॥ | ୧୦୬ |
| | ମେଘର ପ୍ରାଏ ଯାର ସ୍ୱନ | । | ସେ ଶାର୍ଙ୍ଗ ନାମ ଶରାସନ | ॥ | ୧୦୭ |
| | ପର୍ଜନ୍ୟପ୍ରାୟ ଧ୍ୱନି ଯାର | । | ସେ ପାଞ୍ଚଜନ୍ୟ ଶଙ୍ଖବର | ॥ | ୧୦୮ |
| | କଉମୋଦକୀ ନାମେ ଖ୍ୟାତ | । | ସେ ବିଷ୍ଣୁଗଦା ବଳବନ୍ତ | ॥ | ୧୦୯ |
| | ଯେ ବିଦ୍ୟାଧରନାମେ ଅସି | । | ଯହିଁରେ ଶତଚନ୍ଦ୍ର ଦିଶି | ॥ | ୧୧୦ |
| | ଅକ୍ଷୟ ଶରମାନେ ଯହିଁ | । | ଉତ୍ତମ ସେହୁ ତୂଣ ଦୁଇ | ॥ | ୧୧୧ |
| | ସୁନନ୍ଦ ଆଦି ଯେ ଆବର | । | ଆପଣା ପାରିଷଦବର | ॥ | ୧୧୨ |
| | ସେ ଲୋକପାଳଙ୍କ ସହିତ | । | ବିଷ୍ଣୁଙ୍କୁ ହେଲେ ଉପଗତ | ॥ | ୧୧୩ |
| | ସ୍ଫୁରୁଛି ମୁକୁଟ କେୟୂର | । | ମକରକୁଣ୍ଡଳେ ଯାହାର | ॥ | ୧୧୪ |
| | ଶ୍ରୀବତ୍ସରତନ-ଉତ୍ତମ | । | ମେଖଳାବସ୍ତ୍ର ମନୋରମ | ॥ | ୧୧୫ |
| ୩୩ | ଯହିଁରେ ମଧୁବ୍ରତକୁଳ | । | ଏମନ୍ତ ଯଉଁ ବନମାଳ | ॥ | ୧୧୬ |
| | ହେ ନୃପ ! ତେଣେ ବୃତ ହୋଇ | । | ଶୋହିଲେ ଉରୁକ୍ରମ ତହିଁ | ॥ | ୧୧୭ |
| | ବଳି କ୍ଷିତିକି କଲେ ପୁଣ | । | ଏକଚରଣେ ଆକ୍ରମଣ | ॥ | ୧୧୮ |

୧. ଇନ୍ଦ୍ରିୟ (ସ୍ୱାମୀ) ।

| | | | | |
|---|---|---|---|---|
| | ଆକାଶ କ୍ରମିଲେ ଶରୀରେ | । ଦିଗଙ୍କୁ ବାହୁମାନଙ୍କରେ | ।। | ୧୧୯ |
| ୩୪ | ଦ୍ୱିତୀୟ ପାଦେ ଆକ୍ରମଣ | । କରନ୍ତେ ତ୍ରିଦିବକୁ ପୁଣ | ।। | ୧୨୦ |
| | ତୃତୀୟ ପାଦନିମିତ୍ତର | । ଅଣୁ ହିଁ କିଛି ନାହିଁ ତାର | ।। | ୧୨୧ |
| | ଚରଣ ସେ ଉରୁକ୍ରମର | । ସ୍ୱର୍ଗରୁ ଉପରୁଁ ଉପର | ।। | ୧୨୨ |
| | କ୍ରମନ୍ତେ ମହର୍ଜନ ଦୁଇ | । ତପୋଲୋକକୁ ବଳି ଯାଇ | ।। | ୧୨୩ |
| | ଯେ ସତ୍ୟ ନାମେ ଲୋକ ଖ୍ୟାତ | । ତହିଁ ହୋଇଲା ଉପଗତ | ।। | ୧୨୪ |
| | ସେ ବିଷ୍ଣୁପାଦ କରି ଧ୍ୟାନ | । ହରଷ ଦୀନବନ୍ଧୁ ମନ | ।। | ୧୨୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବିଶ୍ୱରୂପଦର୍ଶନଂ ନାମ
ବିଂଶୋଽଧ୍ୟାୟଃ ।।

## ଏକବିଂଶ ଅଧ୍ୟାୟ

ଏକବିଂଶେ ପଦାପୂର୍ତ୍ତିମିଷେଣ ବଳିବନ୍ଧନମ୍ ।
ବିଷ୍ଣୁନା କୃତମୁତ୍କର୍ଷଂ ତସ୍ୟ ଖ୍ୟାପୟିତୁଂ ଜନେ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ହେ ନୃପ ! ସତ୍ୟଲୋକେ ପୁଣ | । ମିଳିଲା ଯେ ହରିଚରଣ | ।। | ୧ |
| | ତାହା ଦେଖିଣ ପ୍ରଜାପତି | । ପ୍ରବେଶ ହୋଇଲେ ଝଟିତି | ।। | ୨ |
| | ଚନ୍ଦ୍ରର ପ୍ରାୟ ଶୋଭମାନ | । ବିଷ୍ଣୁର ଯଉଁ ନଖମାନ | ।। | ୩ |
| | ତେଣେ ଯେବଣ ସ୍ୱୟମ୍ଭୂର | । ସ୍ୱପୁରଦ୍ୟୁତି ଗଲା ଦୂର | ।। | ୪ |
| | ମରୀଚି ଋଷିଙ୍କି ମିଶିଣ | । ଯେ ମହାବ୍ରତ ଋଷିଗଣ | ।। | ୫ |
| | ସନନ୍ଦନଙ୍କୁ ଆଦି ହୋଇ | । ଯେ ଯୋଗୀମାନେ ଥିଲେ ତହିଁ | ।। | ୬ |
| | ଯଉଁ ବ୍ରହ୍ମାର ସଙ୍ଗତରେ | । ବେଢ଼ି ଅଛନ୍ତି ନିରନ୍ତରେ | ।। | ୭ |
| ୨ | ଯେ ବେଦ ଉପବେଦମାନ | । ନିୟମ ନ୍ୟାୟମାନେ ଆନ | ।। | ୮ |
| | ତହିଁରେ ଅନୁଗତ ହୋଇ | । ଯେ ତର୍କ ଇତିହାସ ଦୁଇ | ।। | ୯ |
| | ଶିକ୍ଷାଦି ବେଦ-ଅଙ୍ଗ ଯେତେ | । ପୁରାଣ ସଂହିତାସମେତେ | ।। | ୧୦ |
| | ଯୋଗପବନରେ ଦୀପିତ | । ଜ୍ଞାନ-ଅନଳେ କଲେ ହତ | ।। | ୧୧ |
| | କର୍ମଫଳକୁ ନିରନ୍ତରେ | । ଏ ରୂପେ ଥିଲେ ଯେ ଇତରେ | ।। | ୧୨ |
| | ସେ ବିଷ୍ଣୁପାଦକୁ ସେମାନେ | । ବନ୍ଦନ କଲେ ଶୁଦ୍ଧମନେ | ।। | ୧୩ |
| | ଯାର ସ୍ମରଣପ୍ରଭାବରେ | । ମିଳିଲେ ସେ ବ୍ରହ୍ମଲୋକରେ | ।। | ୧୪ |
| | ଯେ ବ୍ରହ୍ମଲୋକ କର୍ମଦ୍ୱାରେ | । ପ୍ରାପ୍ୟ[୧] ନୁହଇ ଏ ସଂସାରେ | ।। | ୧୫ |

୧. ପ୍ରାପ୍ତ ।

୩ ଆକ୍ରମିଅଛି ଯେ ଊର୍ଦ୍ଧ୍ୱକୁ । ତଦନ୍ତେ ସେ ବିଷ୍ଣୁପଦକୁ ॥
ପୂଜାନିମିତ୍ତେ ଜଳ ଆଣି । ଭକ୍ତିରେ ପୂଜା କରି ପୁଣି ॥
ସ୍ତୁତି ରଚିଲେ ପ୍ରଜାପତି । ଶୁଦ୍ଧ ଅଟଇ ତାଙ୍କ କୀର୍ତ୍ତି ॥
ନାଭିପଙ୍କଜରୁ ବାହାର । ହୋଇଅଛନ୍ତି ସେ ଯାହାର ॥
୪ ହେ ନରନାଥ ! ବିଧାତାର । ଯେ କମଣ୍ଡଳୁସ୍ଥିତ ନୀର ॥
ସେ ଉରୁକ୍ରମର ପାଦରେ । ସଂସର୍ଗୁଁ ପବିତ୍ର ଭାବରେ ॥
ସ୍ୱର୍ଧୁନୀ[1] ହୋଇଣ ଆକାଶେ । ପଡ଼ନ୍ତେ ଆସି ଭୂମିଦେଶେ ॥
ପବିତ୍ର କରେ ଲୋକତ୍ରୟ । ବିଷ୍ଣୁ ନିର୍ମଳଯଶପ୍ରାୟ ॥
୫ ଅନୁଗମାନଙ୍କ ସହିତେ । ବ୍ରହ୍ମାଦି ଲୋକପାଳ ଯେତେ ॥
ଯେ ହରି ଆପଣା ଈଶ୍ୱର । ସଂକ୍ଷେପ କଲେ ସ୍ୱବିସ୍ତାର ॥
ତାହାଙ୍କୁ ହୋଇଣ ଆଦର । ଅର୍ପଣ କଲେ ଉପହାର ॥
୬-୮ ଉତ୍ତମ ଜଳ ମାଳାମାନେ । ଯେ ଦିବ୍ୟ ଗନ୍ଧାନୁଲେପନେ ॥
ସୁରଭି ଧୂପ ଦୀପ ପୁଣ । ଲାଜ ଅକ୍ଷତ ଫଳଗଣ ॥
ତା' ବୀର୍ଯ୍ୟମହିମାଅଙ୍କିତ । ଯେ ସ୍ତୁତି ଜୟଶବ୍ଦମତ ॥
ନୃତ୍ୟ ବାଦିତ୍ର ଗୀତମାନ । ଯେ ଶଙ୍ଖଦୁନ୍ଦୁଭିନିଃସ୍ୱନ ॥
ଏମାନଙ୍କରେ ପୁଣ ତାଙ୍କୁ । ବିଧାନ କଲେ ଅର୍ଚ୍ଚନକୁ ॥
ଯେ ଜାମ୍ବବନ୍ତ ଋକ୍ଷେଶ୍ୱର । ମନର ପ୍ରାୟ ବେଗ ଯାର ॥
ସେ ସର୍ବଦିଗେ ଭେରୀନାଦେ । ହରିବିଜୟକୁ ଆନନ୍ଦେ ॥
ଘୋଷଣା ଦେଲା, ଯହୁଁ ଜାତ । ହୋଇଲା ଉତ୍ସବ ମହତ ॥
୯ ତ୍ରିପାଦରୂପ ଯେ ପ୍ରାର୍ଥନ । ସେ ବ୍ୟାଜେ ଶ୍ରୀମଧୁସୂଦନ ॥
ଦୀକ୍ଷିତ ଯେହୁ ନିଜ ପତି । ହରିଲେ ତାର ସର୍ବକ୍ଷିତି ॥
ଏମନ୍ତ ଦେଖିଣ ଅସୁରେ । ବଚନ ବୋଇଲେ କ୍ରୋଧରେ ॥
୧୦ ଏ ବିଷ୍ଣୁ ମାୟାବୀଙ୍କ ବର । ନୁହଇ ଏହୁ ମହୀସୁର[2] ॥
ଦ୍ୱିଜରୂପରେ ଛନ୍ନ ହୋଇ । ଦେବତାଙ୍କର କାର୍ଯ୍ୟ ଯେହି ॥
ସେ କଥା କରିବା ନିମିତ୍ତେ । ବିଚାର କରିଅଛି ଚିତ୍ତେ ॥
୧୧ ଏ ଶତ୍ରୁ ବଟୁରୂପ ହୋଇ । ମାଗନ୍ତେ ଅଳ୍ପମାତ୍ର ମହୀ ॥
ଯେ ପ୍ରଭୁ ଅଟଇ ଆମ୍ଭର । ସର୍ବସ୍ୱ ହରିଲା ତାହାର ॥
ସେ ପୁଣ ଆରମ୍ଭନ୍ତେ ଯାଗ । କରିଛି ଦଣ୍ଡ ପରିତ୍ୟାଗ ॥
୧୨ ଏ ତ ସଂତତେ ସତ୍ୟବ୍ରତ । ବିଶେଷେ ହୋଇଛି ଦୀକ୍ଷିତ ॥
ବ୍ରହ୍ମଣ୍ୟ ଅଟେ ଦୟାବନ୍ତ । କହି ନ ପାରିବ ଅନୃତ ॥
୧୩ ସେ ଘେନି ଏହା' ବଧ ଯେହି । ସେ କଥା ଧର୍ମୁଁ ଆନ ନୋହି ॥

୧. ଗଙ୍ଗା । ୨. ବ୍ରାହ୍ମଣ ।

ବିଶେଷେ ସେ କଥା ଆମ୍ଭର । ସେବା ଅଟଇ ନୃପତିର ।। ୪୭
ଏମନ୍ତ ବୋଲିଣ ସତ୍ୱରେ । ବଳିର ସେବକ ଅସୁରେ ।। ୪୮
ଆୟୁଧ ଥିଲା ଯେ ଯାହାର । ଘେନିଲେ ସେମାନ ହସ୍ତର ।। ୪୯
୧୪ ମାରିବା ଅର୍ଥେ ବାମନଙ୍କୁ । ଧରନ୍ତେ ଶୂଳ ପଟ୍ଟିଶ[1]କୁ ।। ୫୦
ଧାଇଁଲେ କ୍ରୋଧଯୁତ ହୋଇ । ବଳିର ମାତ୍ର ଇଚ୍ଛା ନାହିଁ ।। ୫୧
୧୫ ଯେ ଥିଲେ ଦୈତ୍ୟସେନାପତି । ସେମାନେ ଧାଇଁ ଆସୁଛନ୍ତି ।। ୫୨
ତା' ଦେଖି ବିଷ୍ଣୁ ଅନୁଚରେ । ଆୟୁଧମାନ ଘେନି କରେ ।। ୫୩
ହେ ନୃପ ! ହସିଣ ତାହାଙ୍କୁ । ଆରମ୍ଭ କଲେ ନିଷେଧକୁ ।। ୫୪
୧୬ ଯେ ନନ୍ଦ ସୁନନ୍ଦ ବିଜୟ । ବଳ ପ୍ରବଳ ଯେ ବା ଜୟ ।। ୫୫
୧୭ କୁମୁଦ କୁମୁଦାକ୍ଷ ଆନ । ଗରୁଡ଼ ଯେ ବିଷ୍ୱକସେନ ।। ୫୬
ଯେ ଶ୍ରୁତଦେବ[2] ଯେ ଜୟନ୍ତ । ଯେ ପୁଷ୍ପଦନ୍ତ ଯେ ସାତ୍ୱତ ।। ୫୭
ଜଣ ଜଣକେ ଯେ ସକଳ । ଅୟୁତ ମତଙ୍ଗ[3]ଜବଳ ।। ୫୮
ଯେତେ ଅସୁରସୈନ୍ୟ ଥିଲେ । ତାହାଙ୍କୁ ସେମାନେ ମାଇଲେ ।। ୫୯
୧୮ ଆପଣା ଲୋକଙ୍କୁ ବିଷ୍ଣୁର । ସେବକେ କରନ୍ତେ ସଂହାର ।। ୬୦
ସେ ଲୋକେ କ୍ରୋଧ ହୋଇଛନ୍ତି । ଦେଖି ତାହାଙ୍କୁ ଦୈତ୍ୟପତି ।। ୬୧
ସ୍ମରନ୍ତେ ଶୁକ୍ରଶାପ ପୁଣ । କଲେ ତାହାଙ୍କୁ ନିବାରଣ ।। ୬୨
୧୯ ହେ ରାହୁ ଆହେ ବିପ୍ରଚିତ୍ତି । ଶୁଣ ମୋ ବଚନ ହେ ହେତି ।। ୬୩
ଯୁଦ୍ଧ ନ କର ତୁମ୍ଭେମାନେ । ନିବର୍ତ୍ତ[4] ମୋହର ବଚନେ ।। ୬୪
ଆମ୍ଭର ଅନୁକୂଳ ହୋଇ । ଏ ବର୍ତ୍ତମାନ କାଳ ନୋହି ।। ୬୫
୨୦ ସକଳ ପ୍ରାଣୀମାନଙ୍କର । ଯେ ସୁଖ ଦୁଃଖ ଯେ ଆବର ।। ୬୬
ତାହାର ଉପପତ୍ତି[5] ଅର୍ଥେ । ଯେ ପ୍ରଭୁ ଅଟଇ ଜଗତେ ।। ୬୭
ନିଜ ପୌରୁଷେ ସେ କାଳକୁ । ପୁରୁଷ ଅତିକ୍ରମିବାକୁ ।। ୬୮
କେବେହେଁ ସମର୍ଥ ନୁହଇ । ହେ ଦୈତ୍ୟେ ଶୁଣ ମନ ଦେଇ ।। ୬୯
୨୧ ଯେ ଶୁଭନିମିତ୍ତେ ଆମ୍ଭର । ଅଶୁଭଅର୍ଥେ ଦେବଙ୍କର ।। ୭୦
ଥିଲେ ପୂର୍ବରେ ଭଗବନ୍ତ । ସେ ଆଜ ହେଲେ ବିପରୀତ ।। ୭୧
୨୨ ବଳ ସହାୟ ଦୁର୍ଗ ବୁଦ୍ଧି । ଯେ ମନ୍ତ୍ର ଅଉଷଧ ଆଦି ।। ୭୨
ସାମ ଆଦି ଉପାୟେ କେହି । କାଳକୁ ଅତିକ୍ରମି ନାହିଁ ।। ୭୩
୨୩ ସମୃଦ୍ଧ ହୋଇ ଦଇବରେ । ତୁମ୍ଭେ ସମସ୍ତେହେଁ ପୂର୍ବରେ ।। ୭୪
ଏ ବିଷ୍ଣୁସେବକଙ୍କୁ ପୁଣି । ବହୁତ ବାର ଅଛ ଜିଣି ।। ୭୫
ଆଜ ସେ ଯୁଦ୍ଧରେ ତୁମ୍ଭଙ୍କୁ । ଜିଣି କରନ୍ତି ଗର୍ଜନକୁ ।। ୭୬
୨୪ ଦୈବ ପ୍ରସନ୍ନ ହେବେ ଯେବେ । ଏହାଙ୍କୁ ଆମ୍ଭେ ଜିଣି ତେବେ ।। ୭୭
ତେଣୁ କାଳକୁ ଥାଅ ଚାହିଁ । ଯେ ଆମ୍ଭ କାର୍ଯ୍ୟଅର୍ଥେ ହୋଇ ।। ୭୮

---

୧. ପଟ୍ଟିଶ = ଅସ୍ତ୍ରବିଶେଷ । ୨. ଶ୍ରୁତସେନ । ୩. ହାତୀ ।
୪. ନିବୃତ୍ତ ହୁଅ । ୫. ଯୁକ୍ତି ବା ପ୍ରାପ୍ତି ।

ଶ୍ରୀଶୁକ ଉବାଚ

୨୫ ଦୈତ୍ୟ ଦାନବ ଯୂଥଙ୍କର । ପାଳକ ଥିଲେ ଯେ ଅସୁର ॥ ୭୯
ବିଷ୍ଣୁର ପାରିଷଦଙ୍କରେ । ତାଡ଼ିତ ହୋଇଣ ନିର୍ଭରେ ॥ ୮୦
ହେ ନୃପ ! ପ୍ରଭୁବାକ୍ୟ ଶୁଣି । ପାତାଳେ ପଶିଲେ ସେ ପୁଣି ॥ ୮୧
୨୬ ଏଥୁ ଅନ୍ତରେ ଖଗେଶ୍ୱର । ଜାଣନ୍ତେ ପ୍ରଭୁର ବିଚାର ॥ ୮୨
ବଳିକି ସୁତ୍ୟା[1] ଦିବସରେ । ବାନ୍ଧିଲା ବରୁଣ ପାଶରେ ॥ ୮୩
୨୭ ଦୈତ୍ୟପତିକି ଭଗବାନ । ନିଗ୍ରହ କରନ୍ତେ ସେଦିନ ॥ ୮୪
ବସୁନ୍ଧରାରେ ଆକାଶରେ । ସକଳ ଦିଗମାନଙ୍କରେ ॥ ୮୫
ଅତିଶୟରେ ହାହାକାର । ହେଲା ସମସ୍ତ ଲୋକଙ୍କର ॥ ୮୬
୨୮ ନଷ୍ଟ ହୋଇଛି ଯା' ସଂପତ୍ତି । ସ୍ଥିର ଅଟଇ ଯାର ମତି ॥ ୮୭
ମହତ ଅଟେ ଯଶ ଯାର । ହେ ନୃପ ! ସେ ଅସୁରେଶ୍ୱର ॥ ୮୮
ବାରୁଣ[2] ପାଶମାନଙ୍କରେ । ନିବଦ୍ଧ ହୋଇଛି ନିର୍ଭରେ ॥ ୮୯
ତାକୁ ବାମନ ଭଗବାନ । କହିଲେ ଏମନ୍ତ ବଚନ ॥ ୯୦
୨୯ ହେ ଦୈତ୍ୟ ! ତିନିପାଦ ମହୀ । ତୁ ମୋତେ ଅଛୁ ଦାନ ଦେଇ ॥ ୯୧
ଦୁଇ ପାଦରେ ସର୍ବ ମହୀ । ତୋହର ଆକ୍ରମିଲି ମୁହିଁ ॥ ୯୨
ତୃତୀୟ ପାଦ ଯେ ଧରଣୀ । ତାହା କଳ୍ପନା କର ପୁଣି ॥ ୯୩
୩୦ କିରଣମାନଙ୍କେ ଭାସ୍କର । ତପ୍ତି[3] କରଇ ଯେତେ ଦୂର ॥ ୯୪
ନକ୍ଷତ୍ରମାନଙ୍କ ସହିତେ । ପ୍ରକାଶ କରେ ଇନ୍ଦୁ ଯେତେ ॥ ୯୫
ମେଘ ବରଷେ ଯେତେ ଦୂର । ସେ ସର୍ବ ଭୂମି ଏ ତୋହର ॥ ୯୬
୩୧ ତୁ ପୁଣି ଚାହୁଁଥାନ୍ତେ ମୁହିଁ । ପଦେକେ ଆକ୍ରମିଲି ମହୀ ॥ ୯୭
ଆକାଶ ଦିଗ ଯେ ଇତରେ । ତାଙ୍କୁ ଆକ୍ରମିଲି ତନୁରେ ॥ ୯୮
ତହିଁରେ ଦ୍ରବ୍ୟ ତୋର ଯେତେ । ଆକ୍ରମିଲି ମୁଁ ତା' ସହିତେ ॥ ୯୯
୩୨ ପ୍ରତିଜ୍ଞା କରିଅଛୁ ଯାହା । ପ୍ରଦାନ ନ କରନ୍ତେ ତାହା ॥ ୧୦୦
ବାଞ୍ଛିଲୁ ନରକବାସକୁ । ତେଣୁ ତୁ ଯାଅ ନରକକୁ ॥ ୧୦୧
ଗୁରୁ ଅଟଇ ଶୁକ୍ର ଯେହି । ଅନୁମୋଦିଲା ତୋତେ ସେହି ॥ ୧୦୨
୩୩ ବିଅର୍ଥ ମନୋରଥ ତାର । ସ୍ୱର୍ଗ ହିଁ ତାକୁ ଅଟେ ଦୂର ॥ ୧୦୩
ସେ ଲୋକ ନରକେ ପଡ଼ଇ । ଯାହା ପ୍ରତିଜ୍ଞା କରିଥାଇ ॥ ୧୦୪
ଅର୍ଥୀକି ତାହା ନ ଦେବାରେ । ବଞ୍ଚନା ଯେଉଁ ଲୋକ କରେ ॥ ୧୦୫
୩୪ ନିଜ ଆତ୍ମାକୁ ଯେ ତୁ ପୁଣି । ଧନୀ ରୂପରେ ଅଛୁ ମଣି ॥ ୧୦୬
ଦେବି ବୋଲିଣ ମୋତେ ଯେଣୁ । ବଞ୍ଚନା କଲୁ ସେ କାରଣୁଁ ॥ ୧୦୭
ସେ ବଞ୍ଚନାର ଫଳ ହୋଇ । ନରକଗତି ଅଛି ଯେହି ॥ ୧୦୮

---

୧. ସୁତ୍ୟା = ସୋମାଭିଷବ = ସୋମରସ ବାହାର କରିବା, ପାନ କରିବା ଇତ୍ୟାଦି ।
୨. ବରୁଣଙ୍କର । ୩. ତାତି ।

କିଛି ବରଷ ପରିଯନ୍ତେ । ଭୋଗ କର ତା’ ଦେହଅନ୍ତେ ।। ୧୦୯
କୃଷ୍ଣଚରଣ ହୃଦେ ଚିନ୍ତି । ହରଷ ଦୀନବନ୍ଧୁ ମତି ।। ୧୧୦

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବଳିନିଗ୍ରହୋ
ନାମ ଏକବିଂଶୋଽଧ୍ୟାୟଃ ।।

## ଦ୍ୱାବିଂଶ ଅଧ୍ୟାୟ

ଦ୍ୱାବିଂଶେ ତୁ ପ୍ରସନ୍ନଃ ସନ୍ ପ୍ରସ୍ଥାପ୍ୟ ସୁତଳଂ ବଳିମ୍ ।
ଦତ୍ତ୍ୱା ବରାନ୍ ହରିର୍ନୂନଂ[1] ମତ୍ୱା ତଦ୍ୱାରପୋଽଭବତ୍ ।। ୧
ସମର୍ପିତତନୂବିତ୍ତନିର୍ମଳାଚଳଭକ୍ତିତଃ ।
ଛଳିତୋ ବଳିନା ନୂନଂ ସ୍ୱମେବାର୍ପୟଦଚ୍ୟୁତଃ ।। ୨

ଶ୍ରୀଶୁକ ଉବାଚ

୧ ହେ ନୃପ ! ଏ ରୂପେ ଈଶ୍ୱର । ବଳିକି କଲେ ଅପକାର ।। ୧
ସତ୍ୟରୁ କରନ୍ତେ ଚାଳନ । ଭେଦ ନୋହିଲା ତାର ମନ ।। ୨
ବିଷ୍ଣୁଙ୍କୁ ଅବିକଳ ବାଣୀ । କହିଲା ଦୈତ୍ୟପତି ପୁଣି ।। ୩

ଶ୍ରୀବଳିରୁବାଚ

୨ ଉତ୍ତମ ଅଟେ ଯଶ ଯାର । ସେ ତୁମ୍ଭେ ହେ ଅମରବର ।। ୪
ଅସତ୍ୟ କରି ମୋ ବଚନ । ଯଦ୍ୟପି ମଣୁଅଛ ମନ ।। ୫
ସତ୍ୟ କରିବି ମୁଁ ସେ ବାଣୀ । ବଞ୍ଚନ ନୁହଇ ସେ ପୁଣି ।। ୬
ତୃତୀୟ ପାଦ ଯେ ତୁମ୍ଭର । ମୋହର ମସ୍ତକେ ତା’ କର ।। ୭
ବିଶ୍ୱକୁ ଦୁଇ ପାଦେ ମୁହିଁ । ହେ ବଳି ଆକ୍ରମି ଅଛଇଁ ।।
ଏଣୁ ମୋ ତୃତୀୟ ପାଦର । ପର୍ଯ୍ୟାପ୍ତ ନୋହିବ ତୋ ଶିର ।।
ଏ ରୂପେ ନ ଭାବିଣ ମନ । ଶୁଣିମା ହେଉ ମୋ ବଚନ ।।
ବିତ୍ତରେ ଯଦି ପାଦ ଦୁଇ । ତୁମ୍ଭର ବେଷ୍ଟିତ ଅଟଇ ।।
ତେବେ ମୋହର ଶିର ଏହି । ତହୁଁ ଅଧିକ ହୋଇବ ହିଁ ।।
ବିତ୍ତରୁ ବିତ୍ତବନ୍ତ ଜନ । ଯେଣୁ ଅଧିକ ହେ ବାମନ ।।
୩ ଆପଦ ଅର୍ଥେ ଧନ ରଖି । ଦାରାର୍ଥେ ଧନକୁ ଉପେକ୍ଷି ।।
ଧନ ଦାରାଦି ଦ୍ୱାରେ ପୁଣ । ରଖିବ ଆତ୍ମା ଅନୁକ୍ଷଣ ।।
ଏ ଆଦି ବଚନୁଁ ଆତ୍ମାର । ଭୟ କରନ୍ତେ ପରିହାର ।।

୧. ହରିଃ ପୁତ୍ରଂ ।

ପଣ୍ଡିତଜନ ଯେ ଅଟଇ । ସର୍ବସ୍ୱ ତ୍ୟାଗ ସେ କରଇ ।।
ତୁ କିଂପା କାହାକୁ ନ ଡରୁ । ଆମ୍ଭକୁ ସମର୍ପଣ କରୁ ।।
ଏ ରୂପେ କହନ୍ତେ ବାମନ । ବୋଇଲେ ସେ ବଳି ରାଜନ ।।
ନିଜ ସ୍ଥାନରୁ ହେଲେ ଚ୍ୟୁତ । ନରକୁଁ ନୋହୁଛି ମୁଁ ଭୀତ ।। ୮
ପାଶରେ ଯେ ଅଟେ ବନ୍ଧନ । ଅଲଙ୍ଘ୍ୟ ଯେ ଅବା ବ୍ୟସନ ।। ୯
ଅର୍ଥସକାଶୁଁ କ୍ଲେଶ ଯେହି । ତହିଁରୁ ଭୟ ପାଉ ନାହିଁ ।। ୧୦
ନିଗ୍ରହ କଲାରୁଁ ତୁମ୍ଭର । ଭୟ ହିଁ ନୋହୁଛି ମୋହର ।। ୧୧
ଅସାଧୁ ବଚନ ଯା' ମୋତେ । ସମସ୍ତେ ବୋଲିବେ ଜଗତେ ।। ୧୨
ତହିଁ ସକାଶୁଁ ଯେଡ଼େ ହୋଇ । ଉଦ୍‌ବେଗ ଲଭୁଅଛି ମୁହିଁ ।। ୧୩
୪ ମୁଁ କଲି ତୋତେ ନିଗୃହୀତ । ଏଣୁ ତୋ ଅପକୀର୍ତ୍ତି ଜାତ ।।
ଏ ରୂପେ ଯେବେ ମନେ ହୋଇ । ସେ କଥା ବାସ୍ତବ ନୁହଇ ।।
ଯେବଣ ଦଣ୍ଡକୁ ମହତ । ଲୋକେ କରନ୍ତି ସମର୍ପିତ ।। ୧୪
ସେ ଅତିଶ୍ରେଷ୍ଠ ପ୍ରାଣୀଙ୍କର । ଏମନ୍ତ ମଣଇଁ ମନର ।। ୧୫
ତାତ, ଜନନୀ, ମିତ୍ର, ଭ୍ରାତ । ଯାହା ନ କରନ୍ତି ଅର୍ପିତ ।। ୧୬
୫ ମୁହିଁ ହିତୈଷୀ ଦେବଙ୍କର । ନୁହଇ କେବେ ଦୈତ୍ୟଙ୍କର ।।
ଯେବେ ବା କହ ଏହିମତେ । ସେ ନ ଲାଗଇ ମୋର ଚିତ୍ତେ ।।
ତୁମ୍ଭେ ଅସୁରମାନଙ୍କର । ପରମ ଗୁରୁ ପରୋକ୍ଷର ।। ୧୭
ଅନେକ ମଦେ ଅନ୍ଧ ହୋଇ । ଯେ ଆମ୍ଭେମାନେ ବର୍ତ୍ତୁଁ ଥାଇ ।। ୧୮
ସେ ଗର୍ବବିନାଶ ନୟନ । ଆମ୍ଭଙ୍କୁ କଲୁଁ ତୁ ପ୍ରଦାନ ।। ୧୯
୬ ବହୁତ ଅସୁର ଯା'ଠାରେ । ନିରୂଢ଼ ବୈରାନୁବନ୍ଧରେ ।। ୨୦
ସିଦ୍ଧିକି ଲଭିଣ ଅଛନ୍ତି । ଏକାନ୍ତ ଯୋଗୀ ଯା' ଲଭନ୍ତି ।। ୨୧
୭ ତୋ କର୍ମ ଅଶେଷ ଜଗତେ । ନିଗ୍ରହ କଲୁ ତୁ ଯା' ମୋତେ ।। ୨୨
ବାରୁଣ ପାଶମାନଙ୍କରେ । ବନ୍ଧନ କଲୁ ରୋଷଭରେ ।। ୨୩
ଏ ବିଷୟରେ ଲଜ୍ଜା ବ୍ୟଥା । ନାହିଁ ନା ମୋହର ସର୍ବଥା ।। ୨୪
୮ ଦଣ୍ଡସ୍ୱରୂପ ମୋ' ଉପର । ଏ ଯେଉଁ ଅନୁଗ୍ରହ ତୋର ।।
ତୋ' ଭକ୍ତପୌତ୍ର ଯେଣୁ ମୁହିଁ । ସେ ଘେନି ତାହା କଲୁ ତୁହି ।।
ପାତ୍ର ମୁଁ ସେ ଅନୁଗ୍ରହର । ନୁହଇ ହାଦେ ହେ ଈଶ୍ୱର ।।
ପ୍ରହ୍ଲାଦ ପିତାମହ ମୋର । ତୁମ୍ଭେ ଆଶ୍ରୟ ଅଟ ତାର ।। ୨୫
ତୁମ୍ଭର ଯେତେ ଛନ୍ତି ଭୃତ୍ୟ । ତାହାଙ୍କ ମଧ୍ୟେ ସେ ସମ୍ମତ ।। ୨୬
ସାଧୁ ଶବଦ ତାହାଠାରେ । ପ୍ରକାଶ ହେଲା ଜଗତରେ ।। ୨୭
ବିପକ୍ଷ ହୋଇଣ ତୁମ୍ଭର । ଯେବଣ ପିତା ଥିଲା ତାର ।। ୨୮
ନାନାପ୍ରକାର ହିଂସାମାନ । କଲା ତାହାକୁ ସେ ବିଧାନ ।। ୨୯

୯ ପ୍ରାନ୍ତ କାଳରେ ଯେ ଛାଡ଼ଇ । ସେ ଦେହେ କିବା କାର୍ଯ୍ୟ ହୋଇ ।। ୩୦
ନିଜ ଦ୍ରବ୍ୟକୁ ଯେ ହରନ୍ତି । ସ୍ୱଜନ ନାମ ବହିଥାନ୍ତି ।। ୩୧
ସେହୁ ଅଟନ୍ତି ଖଣ୍ଡପ୍ରାୟେ । ତେଣେ କି କାର୍ଯ୍ୟ ଅବା ହୋଏ ।। ୩୨
ଯେହୁ ସଂସାରକୁ କାରଣ । କି ଅର୍ଥ ସେ ଭାର୍ଯ୍ୟାରେ ପୁଣ ।। ୩୩
ମର୍ତ୍ତ୍ୟର ଗୃହେ କିବା ହୋଇ । ତେଣେ ଆୟୁଷ ନାଶ ଯାଇ ।। ୩୪
୧୦ ଅପରିମିତ ଜ୍ଞାନ ଯାର । ସେ ପିତାମହ ଅଟେ ମୋର ।। ୩୫
ଆପଣା ମନେ ଏ ବିଚାର । ନିଶ୍ଚୟ କରି ସେ ଅସୁର ।। ୩୬
ଆପଣା ପକ୍ଷ ଦୈତ୍ୟବଂଶ । ଯେ ତୁମ୍ଭେ କରୁଛ ବିନାଶ ।। ୩୭
ତୁମ୍ଭର ଯେ ପାଦନଳିନ । ତହିଁକି ହେଲା ସେ ପ୍ରପନ୍ନ ।। ୩୮
ଯହିଁ କାହିଁରୁ ଭୟ ନାହିଁ । ଏମନ୍ତ ଯେ ପାଦ ଅଟଇ ।। ୩୯
୧୧ ଯେ ରିପୁ ତୁମ୍ଭେ ଆପଣାର । ମୋତେ ନିକଟକୁ ତୁମ୍ଭର ।। ୪୦
ଦଇବ ବଳେ ଘେନିଗଲା । ବଳେ ସଂପତ୍ତି ଛଡ଼ାଇଲା ।। ୪୧
ନିକଟବର୍ତ୍ତୀ କୃତାନ୍ତର । ଜୀବନ ଅଟଇ ଲୋକର ।। ୪୨
ସ୍ତବଧ ଅଟେ ମତି ଯାର । ଯଉଁ ସଂପତ୍ତିରେ ସେ ନର ।। ୪୩
ଅଧ୍ରୁବ ରୂପେ ଏ ଜୀବନ । ମଣଇଁ ନାହିଁ ନିଜ ମନ ।। ୪୪

ଶ୍ରୀଶୁକ ଉବାଚ

୧୨ ହେ କୁରୁଶ୍ରେଷ୍ଠ ! ଏ ପ୍ରକାରେ । ବଳି କହନ୍ତେ ସେ କାଳରେ ।। ୪୫
ପୂର୍ଣ୍ଣଚନ୍ଦ୍ରର ପ୍ରାୟ ହୋଇ । ମିଳିଲେ ପ୍ରହରାଦ ତହିଁ ।। ୪୬
ଯେ ପ୍ରହରାଦ ଅତିଶୟ । ଭଗବାନର ଅଟେ ପ୍ରିୟ ।। ୪୭
୧୩ ଶୋଭାରେ ଯେ ବିରାଜମାନ । ପଦ୍ମଆୟତ ଯା' ଲୋଚନ ।। ୪୮
ଯେ ଉଚ୍ଚ, ପୀତ ଯା' ଅମ୍ବର । ଅଞ୍ଜନପ୍ରାୟ କାନ୍ତି ଯାର ।। ୪୯
ପ୍ରଲମ୍ବ ଯାର ଭୁଜ ଦୁଇ । ସୁନ୍ଦର ଶ୍ରେଷ୍ଠ ଯେ ଅଟଇ ।। ୫୦
ସେ ପିତାମହପାଶେ ମିଳି । ତାଙ୍କୁ ଦର୍ଶନ କଲେ ବଳି ।। ୫୧
୧୪ ବାରୁଣ ପାଶେ ବନ୍ଧ ହୋଇ । ପୂର୍ବସମୟପ୍ରାୟ ତହିଁ ।। ୫୨
ତାହାଙ୍କୁ ପୂଜା ଉପହାର । ନ କଲା ବଳି ନୃପବର ।। ୫୩
ନମ୍ର କରିଣ ନିଜ ଶିର । କେବଳ କଲା ନମସ୍କାର ।। ୫୪
ଅଶ୍ରୁ ଗଳିବାରେ ଚଞ୍ଚଳ । ହୋଇଛି ଯା' ନେତ୍ରଯୁଗଳ ।। ୫୫
ସ୍ୱକୃତ ଅହଂକାର ରୂପ । ଅପରାଧୁଁ ସେ ବଳିନୃପ ।।
ସଲଜ୍ଜ ହୋଇ ବଦନକୁ । ନମ୍ର କରିଛି ସେ ତଳକୁ ।। ୫୬
୧୫ ସୁନନ୍ଦ ନନ୍ଦ ଆଦି ଦାସେ । ବେଢ଼ି ଅଛନ୍ତି ଚଉପାଶେ ।। ୫୭
ଏରୂପେ ବିଷ୍ଣୁଙ୍କୁ ସେ ଚାହିଁ । ଭୂମିରେ ଉପଗତ ହୋଇ ।। ୫୮
ସେ ମହାମତି ନିଜ ଶିରେ । ପ୍ରଣାମ କଲା ତଦନ୍ତରେ ।। ୫୯

[୧]ପୁଲକ ଅଶ୍ରୁଭରେ ତାର । ବିହ୍ୱଳ ହୋଇଛି ଶରୀର ॥ ୬୦

ଶ୍ରୀପ୍ରହ୍ଲାଦ ଉବାଚ

୧୬ ଉର୍ଜିତ ଇନ୍ଦ୍ରପଦ ଯେହି । ତୁମ୍ଭେ ଏହାକୁ ଦେଲ ତାହି ॥ ୬୧
ଆଜ ହରିଲ ତୁମ୍ଭେ ପୁଣ । ଶୋଭନ ଅଟେ ସେ ପ୍ରମାଣ ॥ ୬୨
ମୁଁ ମଣୁଅଛି ଅନୁଗ୍ରହ । କଲ ଏହାକୁ ଅତିଶୟ ॥ ୬୩
ନିଜମୋହନ ସଂପତ୍ତିରୁ । ବିଭ୍ରଂଶ କଲ ଯେ ହେତୁରୁ ॥ ୬୪
୧୭ ସଂଯତ ପଣ୍ଡିତ ଲୋକ ହିଁ । ଯେବଣ ଶ୍ରୀରେ ମୋହ ହୋଇ ॥ ୬୫
ସେ ସଂପତ୍ତିକି କଉଁ ନର । ଯଥାର୍ଥ କରି ଆପଣାର ॥ ୬୬
ଗତିକି କରେ ବିଲୋକନ । ତୁମ୍ଭଙ୍କୁ କରୁଛି ବନ୍ଦନ ॥ ୬୭
ଯେ ତୁମ୍ଭେ ପ୍ରଭୁ ନାରାୟଣ । ଈଶ୍ୱର ଜଗତର ପୁଣ ॥ ୬୮
ସକଳ ଲୋକମାନଙ୍କର । ସାକ୍ଷୀରୂପକୁ ତୁମ୍ଭେ ଧର ॥ ୬୯

ଶ୍ରୀଶୁକ ଉବାଚ

୧୮-୧୯ ହେ ନୃପ ! କୃତାଞ୍ଜଳି ହୋଇ । ପ୍ରହ୍ଲାଦ ଶୁଣନ୍ତେଣ ତହିଁ ॥ ୭୦
ହିରଣ୍ୟଗର୍ଭ କହିବାକୁ[୨] । ଏମନ୍ତେ ମଧୁସୂଦନଙ୍କୁ ॥ ୭୧
କ୍ଷଣେ ରହିଲେ ତୁନି ହୋଇ । ବିନ୍ଧ୍ୟାବଳିକୁ ମାନ ଦେଇ ॥
ବଦ୍ଧ ହୋଇଛି ଯାର ପତି । ତା' ଦେଖି ତାର ପତ୍ନୀ ସତୀ ॥ ୭୨
ଭୟରେ ବିହ୍ୱଳ ହୋଇଣ । କରଯୁଗଳକୁ ଯୋଡ଼ିଣ ॥ ୭୩
ହେ ନୃପ ! ପ୍ରଣତ ହୋଇଲା । ବିଷ୍ଣୁଙ୍କୁ ବଚନ କହିଲା ॥ ୭୪
ଲୋତକଧାରା ଅବିଚ୍ଛିନ୍ନେ । ସ୍ରବୁଛି ତାହାର ନୟନେ ॥ ୭୫

ଶ୍ରୀବିନ୍ଧ୍ୟାବଳିରୁବାଚ

୨୦ କ୍ରୀଡ଼ାନିମିତ୍ତେ ଏ ଜଗତ । ତୁମ୍ଭର ହୋଇଅଛି କୃତ ॥ ୭୬
ହେ ପ୍ରଭୁ କୁବୁଦ୍ଧି ଇତରେ । ସ୍ୱାର୍ଥକୁ କରନ୍ତି ତହିଁରେ ॥ ୭୭
ଜଗତ ପାଳନ-ସଂହାର । କାରଣ ଯେ ତୁମ୍ଭେ ଈଶ୍ୱର ॥ ୭୮
ତୁମ୍ଭଙ୍କୁ ଅବା ସେ କେବଣ । ଦ୍ରବ୍ୟ କରନ୍ତି ସମର୍ପଣ ॥ ୭୯
ସେମାନଙ୍କର କର୍ତ୍ତା ହୋଇ । ଯେ ବାଦ, ତୁମ୍ଭେ କର ତାହି ॥ ୮୦
ତ୍ରିଲୋକ କଲି ମୁଁ ଅର୍ପିତ । ତୃତୀୟ ପାଦର ନିମିତ୍ତ ॥ ୮୧
ଦେହକୁ କରି ସମର୍ପଣ । ପ୍ରତିଜ୍ଞା କଲି ମୁଁ ପୂରଣ ॥ ୮୨
ଏରୂପେ ନିଜ ଦେହାଦିରେ । ନିଜବୁଦ୍ଧିକି ଯେଣୁ କରେ ॥ ୮୩
ଏଣୁ କୁବୁଦ୍ଧି ଅଟେ ଏହି । ଏମନ୍ତ ମନେ ମୁଁ ମଣଇଁ ॥ ୮୪
କୃପାରେ ଏହାକୁ କେବଳ । ମୋଚନ କରି ପରିପାଳ ॥

---

୧. ବଳିପ୍ରତି ବିଷ୍ଣୁଙ୍କର ଅନୁଗ୍ରହ ଦେଖି ପ୍ରହ୍ଲାଦ ଆନନ୍ଦିତ ହେଲେ ।
୨. "ପ୍ରବୃତ୍ତ ହୋ'ନ୍ତେ" ଯୋଡ଼ିବାକୁ ହେବ ।

ଶ୍ରୀବ୍ରହ୍ମୋବାଚ

୨୧ ଭୂତଭାବନ ଭୂତେଶ୍ୱର । ଜଗତ ଅଟେ ଯା' ଆକାର ।। ୮୫
ହରିଲ ଏହା' ସର୍ବଧନ । ନିବାର ଏହାର ବନ୍ଧନ ।। ୮୬
ନିଗ୍ରହ କରିବାକୁ ଏହି । ହେ ବାସୁଦେବ ! ଯୋଗ୍ୟ ନୋହି ।। ୮୭
୨୨ ତୁମ୍ଭଙ୍କୁ ସକଳ ଭାବରେ । ଭୂର୍ଲୋକମାନଙ୍କୁ ନିର୍ଭରେ ।। ୮୮
କର୍ମରେ ଯାହା ଅର୍ଜିଥିଲା । ଏଣେ କରି ସେ ଦତ୍ତ ହେଲା ।। ୮୯
ଏରୂପେ କରି ନିବେଦନ । ନୋହିଣ ପୁଣ ସେ ବିମନ ।। ୯୦
ସର୍ବସ୍ୱ ଆତ୍ମାସହିତରେ । ଦେଲା ଅବିକ୍ଳବ ବୁଦ୍ଧିରେ ।। ୯୧
୨୩ ଶଠ ନୁହଇ ମତି ଯାର । ସେ ଲୋକ ପାଦଯୁଗେ ତୋର ।। ୯୨
ଦୂର୍ବା ଅଙ୍କୁରମାନଙ୍କର । ସଙ୍ଗେ ପ୍ରଦାନ କରି ନୀର ।। ୯୩
ପ୍ରଶସ୍ତ ପୂଜାକୁ ଭିଆଇ । ଉତ୍ତମ ଗତିକି ଲଭଇ ।। ୯୪
ଏ ହୋଇ ଅବିକ୍ଳବମନ । କଲା ତ୍ରିଲୋକକୁ ପ୍ରଦାନ ।। ୯୫
ଏମନ୍ତ ଲୋକ କି ହେତୁରେ । ପୀଡ଼ାକୁ ଲଭଇ ସଂସାରେ ।। ୯୬

ଶ୍ରୀଭଗବାନୁବାଚ

୨୪ ହେ ବ୍ରହ୍ମା ଯେବଣ ଲୋକକୁ । କରଇ ମୁଁ ଅନୁଗ୍ରହକୁ ।। ୯୭
ତାହାର ଯେତେ ଧନ ଥାଇ । ତାହାକୁ ବିନାଶ କରଇ ।। ୯୮
ଯଉଁ ଦ୍ରବ୍ୟରେ ମତ୍ତ ହୋଇ । ପରକୁ ନମ୍ର ସେ ନୁହଇ ।। ୯୯
ଲୋକକୁ ମୋତେ ଅବମାନ । ବିଶେଷେ କରଇ ସେ ଜନ ।। ୧୦୦
୨୫-୨୬ ଆପଣା କର୍ମମାନଙ୍କରେ । ଭ୍ରମନ୍ତେ ଅଶେଷ ଯୋନିରେ ।। ୧୦୧
ଜୀବାତ୍ମା ହୋଇ ପରାୟତ୍ତ । ଦଇବେ ଯଦି କଦାଚିତ ।। ୧୦୨
ପୁରୁଷଙ୍କର ଯଉଁ ଗତି । ତାହାକୁ ଲଭଇ ଝଟିତି ।। ୧୦୩
ଜନମ-କର୍ମ-ବୟସରେ । ରୂପରେ ବିଦ୍ୟା-ଐଶ୍ୱର୍ଯ୍ୟରେ ।। ୧୦୪
ଯେବେ ଏହାର ସ୍ତମ୍ଭ[୧] ନୋହି । ତହିଁ ମୋ ଅନୁଗ୍ରହ ଏହି ।। ୧୦୫
୨୭ ମାନକୁ ସ୍ତମ୍ଭକୁ କାରଣ । ଯେ ଜନ୍ମ କର୍ମ ଆଦି ପୁଣ ।। ୧୦୬
ପ୍ରାଣୀର ଯେତେକ ମଙ୍ଗଳ । ତହିଁକି ସେହୁ ପ୍ରତିକୂଳ ।। ୧୦୭
ସଂଭବିଥିଲେହେଁ ସେମାନ । ମୋ' ପରାୟଣ ଯଉଁ ଜନ ।। ୧୦୮
ସେ ଲୋକ କଦାଚିତ ହୋଇ । ତହିଁରେ ମୋହିତ ନୁହଇ ।। ୧୦୯
୨୮ ଦୈତ୍ୟଦାନବମାନଙ୍କର । ଅଗ୍ରଗଣନ ଏ ଅସୁର ।। ୧୧୦
ନିଜ କୀର୍ତ୍ତିକି ବଢ଼ାଇଲା । ଅଜୟ ମାୟାକୁ ଜିଣିଲା ।। ୧୧୧
ଅତ୍ୟନ୍ତ ଲଭିଲେହେଁ କ୍ଳେଶ । କେବେହେଁ ନୋହେ ମୋହବଶ ।। ୧୧୨
୨୯ କ୍ଷୀଣ ହୋଇଲା ଏହା' ବିତ୍ତ । ନିଜ ସ୍ଥାନରୁ ହେଲା ଚ୍ୟୁତ ।। ୧୧୩
ବହୁତ ଆକ୍ଷେପ ଲଭିଲା । ଶତ୍ରୁମାନଙ୍କେ ବଦ୍ଧ ହେଲା ।। ୧୧୪
ଜ୍ଞାତିରେ ପରିତ୍ୟକ୍ତ ହେଲା । ପୁଣି ଯାତନାକୁ ଲଭିଲା ।। ୧୧୫

---

୧. ଅହଂକାର, ଜଡ଼ତା ।

୩୦ ଗୁରୁ ଭର୍ତ୍ସିଲା ଶାପ ଦେଲା । ତଥାପି ସତ୍ୟ ନ ଛାଡ଼ିଲା ।। ୧୧୬
ଧରମ କହିଲି ମୁଁ ଛଳେ । ସତ୍ୟ ନ ଛାଡ଼ିଲା ଏ କାଳେ ।। ୧୧୭
ଏ ଘେନି ଅଟେ ଏ ସୁବ୍ରତ । ସତ୍ୟବଚନ ଏ ନିୟତ ।। ୧୧୮
୩୧ ଅମରମାନେ ହିଁ ଯେବଣ । ସ୍ଥାନ ନ ଲଭିଛନ୍ତି ପୁଣ ।। ୧୧୯
ସେ ସ୍ଥାନ ଲଭିଲା ଏ ମୋର । ସାବର୍ଣ୍ଣି ନାମେ ଯେ ଅନ୍ତର ।। ୧୨୦
ତାହାର ଇନ୍ଦ୍ର ହେବ ଏହି । ଏହା ପାଳକ ହେବିଂ ମୁହିଁ ।। ୧୨୧
୩୨ ବିଶ୍ୱକର୍ମାରେ ବିନିର୍ମିତ । ସୁତଳ ଲୋକ ଯେ ଅଦ୍ଭୁତ ।। ୧୨୨
ସେ କାଳପର୍ଯ୍ୟନ୍ତ ତହିଁରେ । ରହିଥାଉ ଏ ଆନନ୍ଦରେ ।। ୧୨୩
ଯହିଁରେ ଥିଲା ଲୋକଙ୍କର । କଟାକ୍ଷପାତରୁ ମୋହର ।। ୧୨୪
ନୁହଇ ଆଧି ବ୍ୟାଧି ଗ୍ଲାନି । ଆଳସ୍ୟ ପରାଭବ ବେନି ।। ୧୨୫
ଯେ ଆନ ଉପସର୍ଗମାନ । ସେହି ନୁହନ୍ତି ଉତପନ୍ନ ।। ୧୨୬
ବ୍ରହ୍ମାଙ୍କୁ ଏତେ କହି କରି । ବଳିକି ବୋଇଲେ ଶ୍ରୀହରି ।। ୧୨୭
୩୩ ହେ ମହାରାଜ ଇନ୍ଦ୍ରସେନ । ସୁତଳ ନାମେ ଯଉଁ ସ୍ଥାନ ।। ୧୨୮
ଯାହାକୁ ସ୍ୱର୍ଗବାସୀମାନେ । ବାଞ୍ଛା କରନ୍ତି ନିଜ ମନେ ।। ୧୨୯
ଜ୍ଞାତିମାନଙ୍କେ ବୃତ ହୋଇ । ତହିଁକି ଏବେ ଯାଅ ତୁହି ।। ୧୩୦
ମୋହର କରୁଣାରେ ତୋର । ମଙ୍ଗଳ ହେଉ ନିରନ୍ତର ।। ୧୩୧
୩୪ ତୋ' ପରାଭବ ଲୋକପାଳେ । କରି ନ ପାରିବେ ସକଳେ ।। ୧୩୨
ତହିଁରୁ ଇତର ଯେ ଥିବେ । ସେମାନେ କିରୂପେ କରିବେ ।। ୧୩୩
ତୋହର ଆଜ୍ଞାକୁ ଲଂଘନ । କରିବେ ଯଉଁ ଦୈତ୍ୟମାନ ।। ୧୩୪
ସେ ଦୈତ୍ୟମାନଙ୍କୁ ଅବଶ୍ୟ । ମୋ ଚକ୍ର କରିବ ବିନାଶ ।। ୧୩୫
୩୫ ତୋହର ଯେତେ ଭୃତ୍ୟଜନ । ଯେ ବା ସାମଗ୍ରୀ ଅଛି ଆନ ।। ୧୩୬
ତାହା ସହିତେ ସବୁଠାରେ । ତୋତେ ରଖିବି ସେ ସ୍ଥାନରେ ।। ୧୩୭
ହେ ବୀର ! ତୋର ନିକଟରେ । ଥିବି ମୁଁ ସେପୁରେ ନିତ୍ୟରେ ।। ୧୩୮
ମୋତେ ତହିଁରେ ଅନୁଦିନ । କରୁଥିବୁ ତୁ ଦରଶନ ।। ୧୩୯
୩୬ ଦୈତ୍ୟଦାନବମାନଙ୍କର । ତହିଁରେ ସଙ୍ଗରୁ ତୋହର ।। ୧୪୦
ମୋ ଅନୁଭାବକୁ ହିଁ ଚାହିଁ । ଆସୁର ଭାବ ଥିବ ଯେହି ।। ୧୪୧
କୁଣ୍ଠିତ ହୋଇ ତତକ୍ଷଣ । ବିନାଶ ହୋଇବ ସେ ପୁଣ ।। ୧୪୨
ହେ କୃଷ୍ଣ କୃପାମୟ ସିନ୍ଧୁ । ଏ ଯେ ପତିତ ଦୀନବନ୍ଧୁ ।। ୧୪୩
ଏହାକୁ ସଂସାରସାଗରୁ । ଉଦ୍ଧର ନିଜ କରୁଣାରୁ ।। ୧୪୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବଳିମୋକ୍ଷଣଂ ନାମ
ଦ୍ୱାବିଂଶୋଽଧ୍ୟାୟଃ ।।

---

୧. ଅଟେ ।

# ତ୍ରୟୋବିଂଶ ଅଧ୍ୟାୟ

ତ୍ରୟୋବିଂଶେ ବଳୌ ଯାତେ ସୁତଳଂ ସପିତାମହେ ।
ଉପେନ୍ଦ୍ରେଣ ଦିବଂ ଗତ୍ୱା ପୂର୍ବବନ୍‌ମୋଦତେ ହରିଃ ॥ ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଏମନ୍ତରୂପେ ପୁରାତନ | । | ପୁରୁଷ କହନ୍ତେ ବଚନ | ॥ | ୧ |
| | ଯା’ ଅନୁଭାବ ସୁମହତ | । | ଯେ ସର୍ବ ସାଧୁରେ ସମ୍ମତ | ॥ | ୨ |
| | ବାଷ୍ପସଲିଳରେ[୧] ଆକୁଳ | । | ହୋଇଛି ଯା’ ନେତ୍ରଯୁଗଳ | ॥ | ୩ |
| | ଭକ୍ତିରେ ହୋଇ ଉତ୍‌କଣ୍ଠିତ | । | ଅଞ୍ଜଳି ରଚି ବେନି ହସ୍ତ | ॥ | |
| | ଗଦ୍‌ଗଦ ବାକ୍ୟେ ଏ ବଚନ | । | କହିଲେ ସେ ବଳି ରାଜନ | ॥ | ୪ |

ଶ୍ରୀବଳିରୁବାଚ

| | | | | | |
|---|---|---|---|---|---|
| ୨ | ତୁମ୍ଭର ପ୍ରଣାମନିମିତ୍ତ | । | ଯଉଁ ଉଦ୍ୟମ ହୋଏ ଜାତ | ॥ | ୫ |
| | ପ୍ରପନ୍ନ ଭଗତଜନର | । | ଅର୍ଥବିଧାନେ ସେ ଚତୁର | ॥ | ୬ |
| | ଏ ଘେନି ତୁମ୍ଭର ପ୍ରଣାମ | । | ମହିମା ଅଦ୍ଭୁତ ଉତ୍ତମ | ॥ | ୭ |
| | ଯଉଁ ପ୍ରଣାମଉଦ୍ୟମରେ | । | ଯେ ଲୋକପାଳ ଅମରରେ | ॥ | ୮ |
| | ତୋ ଅନୁଗ୍ରହ ଅପ୍ରାପତ | । | ଅଧମ ଅସୁରେ ଅର୍ପିତ | ॥ | ୯ |
| | ତୁମ୍ଭେ ଯେ ପରମ ଈଶ୍ୱର | । | ମୁଁ ନୀଚ ବରାକ ଅସୁର | ॥ | |
| | ତୁମ୍ଭଙ୍କୁ ତିନି ଲୋକ ଦାନ | । | କଲି ମୁଁ ତଥାପି ଅଜ୍ଞାନ | ॥ | |
| | ଉଚିତେ ନ କଲି ପ୍ରଣାମ | । | ତଦର୍ଥେ କେବଳ ଉଦ୍ୟମ | ॥ | |
| | କଲି, ସେଘେନି ହେ ଈଶ୍ୱର | । | ଲଭିଲି ଅନୁଗ୍ରହ ତୋର | ॥ | |
| | ଯେ କୋଟି କର୍ମ ତପ ଦାନେ | । | ଅଲଭ୍ୟ ଅଟଇ ଭୁବନେ | ॥ | |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୩ | ଏମନ୍ତ ବଚନ କହିଣ | । | ହରିଙ୍କି ପ୍ରଣାମ କରିଣ | ॥ | ୧୦ |
| | ବ୍ରହ୍ମାଙ୍କୁ ଶିବସହିତରେ | । | ପ୍ରଣାମ କରି ତଦନ୍ତରେ | ॥ | ୧୧ |
| | ବନ୍ଧନୁଁ ହୋଇଲା ମୁକତ | । | ବଳି ହୋଇଣ ତୋଷଚିତ୍ତ | ॥ | ୧୨ |
| | ଅସୁରମାନଙ୍କର ମେଳେ | । | ପ୍ରବେଶ ହୋଇଲା ସୁତଳେ | ॥ | ୧୩ |
| ୪ | ଏମନ୍ତ ରୂପେ ଭଗବାନ | । | ଇନ୍ଦ୍ରକୁ ଦେଇ ସ୍ୱର୍ଗସ୍ଥାନ | ॥ | ୧୪ |
| | ପୂରାଇ ଅଦିତି-ବାଞ୍ଛିତ | । | ପାଳିଲେ ସକଳ ଜଗତ | ॥ | ୧୫ |
| ୫ | ଯେ ବଳି ନିଜ ବଂଶଧର | । | ନାତି ଅଟଇ ଆପଣାର | ॥ | ୧୬ |
| | ସେ ବିଷ୍ଣୁପ୍ରସାଦ ଲଭିଲା | । | ବନ୍ଧନୁଁ ମୁକତ ହୋଇଲା | ॥ | ୧୭ |
| | ଦେଖି ଭକ୍ତିରେ ହୋଇ ନତ | । | ପ୍ରହ୍ଲାଦ ବୋଇଲେ ଏମନ୍ତ | ॥ | ୧୮ |

୧. ସହିତରେ ।

### ଶ୍ରୀପ୍ରହ୍ଲାଦ ଉବାଚ

୬ ବିରିଞ୍ଚି ରମା ଉମାପତି । ଏ ଅନୁଗ୍ରହ ନ ଲଭନ୍ତି ॥ ୧୯
ସେଘେନି ଏହାକୁ ଇତରେ । କେ ଅବା ଲଭିବେ ସଂସାରେ ॥ ୨୦
ସକଳ ଲୋକଙ୍କ ବନ୍ଦନ । ଯୋଗ୍ୟ ଯେ ସୁର ମୁନିମାନ ॥ ୨୧
ସେମାନେ ପାଦକୁ ଯାହାର । ଭାବେ କରନ୍ତି ନମସ୍କାର ॥ ୨୨
ସେ ତୁମ୍ଭେ ହେଲ ଗଡ଼ଦ୍ୱାରୀ । ଆମ୍ଭେ ଯେ ଅସୁର ଆମ୍ଭରି ॥ ୨୩
୭ ସକଳ ଲୋକମାନଙ୍କର । ଆଶ୍ରୟପ୍ରଦ ହେ ଈଶ୍ୱର ॥ ୨୪
ଯା' ପାଦପଦ୍ମମରନ୍ଦ[1] ର । ସେବାରେ ବ୍ରହ୍ମାଦି ଅମର ॥ ୨୫
ନାନାପ୍ରକାର ଯେ ସଂପତ୍ତି । ସେମାନ ଲଭିଣ ଅଛନ୍ତି ॥ ୨୬
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ଆମ୍ଭେ ଯେ ଦୁର୍ବୃତ୍ତ ଅସୁର ॥ ୨୭
ବିଶେଷେ ଅଟୁଁ ଖଳଜାତି । ତୁମ୍ଭଠାରେ ଯେ ଅନୁବୃତ୍ତି ॥ ୨୮
ତେଣେ ପ୍ରକାଶ ମାର୍ଗ ଯେହି । ଲଭିଲୁଁ କି ହେତୁରେ ତାହି ॥ ୨୯
୮ ଯେ ମାୟା ଅଟେ ଅପ୍ରମିତ । ତାହା ଲୀଳାରେ ଏ ଜଗତ ॥ ୩୦
ଯେ ତୁମ୍ଭେ କରିଛ ନିର୍ମାଣ । ସର୍ବଜ୍ଞ ସର୍ବଆତ୍ମା ପୁଣ ॥ ୩୧
ସକଳଠାରେ ଦୃଷ୍ଟି ସମ । ସ୍ୱଭାବ ନୁହଇ ବିଷମ ॥ ୩୨
ତୁମ୍ଭର ଭକ୍ତଜନେ ପ୍ରିୟ । ସ୍ୱଭାବ କଳ୍ପତରୁ ପ୍ରାୟ ॥ ୩୩
ଆଶ୍ରିତ ଲୋକକାମମାନ । ପୂର୍ଣ୍ଣ କଲେହେଁ ସେ ଯେସନ ॥ ୩୪
ଇତର ଲୋକଙ୍କର ଠାରେ । ବିଷମ ସ୍ୱଭାବ ନ କରେ ॥ ୩୫

### ଶ୍ରୀଭଗବାନୁବାଚ

୯ ହେ ବତ୍ସ ! ପ୍ରହରାଦ ତୋର । ମଙ୍ଗଳ ହେଉ ନିରନ୍ତର ॥ ୩୬
ସୁତଳ ନାମେ ଯେ ଭୁବନ[2] । ତହିଁକି କର ତୁ ଗମନ ॥ ୩୭
ହରଷେ ନାତିସଂଗତର । ଜ୍ଞାତିଙ୍କ ସୁଖକୁ ଆଚର ॥ ୩୮
୧୦ ନିତ୍ୟେ ଦେଖିବୁ ମୋତେ ତୁହି । ମୁଁ ଥିବି ଗଦାପାଣି ହୋଇ ॥ ୩୯
ମୋ' ଦରଶନସୁଖେ ତୋର । କର୍ମବନ୍ଧନ ହେବ ଦୂର ॥ ୪୦

### ଶ୍ରୀଶୁକ ଉବାଚ

୧୧ ହେ ନୃପ ବଳିସହିତରେ । ବିଷ୍ଣୁଆଜ୍ଞାକୁ ମସ୍ତକରେ ॥ ୪୧
୧୨ ଘେନିଣ କୃତାଞ୍ଜଳି ହୋଇ । କରିବି ବୋଲନ୍ତେଣ ଥାଇ ॥ ୪୨
ସମସ୍ତ ଅସୁରସୈନ୍ୟର । ପତି ଯେ ପ୍ରହରାଦ ବୀର ॥ ୪୩
ଯେ ଆଦିପୁରୁଷ ଶ୍ରୀହରି । ତାହାଙ୍କୁ ପ୍ରଦକ୍ଷିଣ କରି ॥ ୪୪
ନମ୍ର ହୋଇ ସେ ଆଜ୍ଞା ପାଇ । ମିଳିଲା ମହାବିଳେ ଯାଇଁ ॥ ୪୫

---

୧. ମରନ୍ଦ = ମକରନ୍ଦ ।   ୨. ଭବନ ।

୧୩ ହେ ନୃପ ବ୍ରହ୍ମବାଦୀ ହୋଇ । ଯେତେ ଋଷିଏ[1] ଥିଲେ ତହିଁ ।। ୪୬
ସଭାରେ ତାହାଙ୍କ ମଧ୍ୟରେ । ଯେ ଶୁକ୍ର ଥିଲେ ନିକଟରେ ।। ୪୭
ଏଥି ଉତ୍ତାରେ ଭଗବାନ । ତାହାଙ୍କୁ କହିଲେ ବଚନ ।। ୪୮
୧୪ ହେ ବିପ୍ର ! କର୍ମକୁ ବିସ୍ତାର । କରୁ ଯେ ଥିଲା ଶିଷ୍ୟ ତୋର ।। ୪୯
ତାହାର କର୍ମଛିଦ୍ର ଯେହି । ବିସ୍ତାର କର ତୁମ୍ଭେ ତାହି ।। ୫୦
କର୍ମରେ ବଇଷମ୍ୟ ଯେହି । ବ୍ରହ୍ମଦୃଷ୍ଟିରେ ସମ ସେହି ।। ୫୧

ଶ୍ରୀଶୁକ୍ର ଉବାଚ

୧୫ ବିଷମ ଭାବ ତା' କର୍ମରେ । କାହୁଁ ଆସିବ ଜଗତରେ ।। ୫୨
ଯଜ୍ଞପୁରୁଷ ଯଜ୍ଞେଶ୍ୱର । ଯେ ପ୍ରଭୁ କର୍ମମାନଙ୍କର ।। ୫୩
ତୁମ୍ଭେ ଏମନ୍ତ, ସର୍ବଭାବେ । ତୁମ୍ଭଙ୍କୁ ପୂଜିଲା ସେ ଯେବେ ।। ୫୪
୧୬ ଯେ ମନ୍ତ୍ର ତନ୍ତ୍ର କାଳ ଦେଶ । ଯେ ପାତ୍ର ଯେ ଦ୍ରବ୍ୟବିଶେଷ ।। ୫୫
ତାହା ସକାଶୁଁ ଛିଦ୍ର ଯେହି । କର୍ମ କରନ୍ତେ ସମ୍ଭବଇ ।। ୫୬
ନିଶ୍ଛିଦ୍ର କରଇ ସେମାନ । ତୁମ୍ଭର ମାତ୍ର[2] ସଂକୀର୍ତ୍ତନ ।। ୫୭
୧୭ ତଥାପି କହନ୍ତେ ତୁମ୍ଭର । ଆଜ୍ଞା କରିବି ହେ ଈଶ୍ୱର ।। ୫୮
ଏ କଥା ଅଟେ ଅତିଶୟ । ପୁରୁଷମାନଙ୍କର ଶ୍ରେୟ ।। ୫୯
ତୁମ୍ଭର ଆଜ୍ଞାକୁ ଯା' ପୁଣି । ଅନୁପାଳନ କରେ ପ୍ରାଣୀ ।। ୬୦

ଶ୍ରୀଶୁକ ଉବାଚ

୧୮ ହରିଆଜ୍ଞାକୁ ଏ ପ୍ରକାରେ । ପ୍ରତିନନ୍ଦିତ କରି ଧୀରେ ।। ୬୧
ବ୍ରହ୍ମ-ଋଷିଙ୍କ ସଙ୍ଗେ ଥାଇ । ସେ ଭଗବନ୍ତ ଶୁକ୍ର ତହିଁ ।। ୬୨
ଯଜ୍ଞରେ ଯେ ବା ଛିଦ୍ର ଥିଲା । ତା' ପୁଣ ସମାଧାନ କଲା ।। ୬୩
୧୯ ଏ ରୂପେ ବଳିଠାରୁ କ୍ଷିତି । ମାଗିଣ ବାମନ ଶ୍ରୀପତି ।। ୬୪
ହେ ନୃପ ! ଭ୍ରାତା ମହେନ୍ଦ୍ରକୁ । ପ୍ରଦାନ କଲେ ସେ ସ୍ଥାନକୁ ।। ୬୫
ଯଉଁ ସ୍ଥାନକୁ ଶତ୍ରୁମାନେ । ହରିଣ ଥିଲେ ପୂର୍ବଦିନେ ।। ୬୬
୨୦-୨୧ ପ୍ରଜାପତିଙ୍କର ଈଶ୍ୱର । ସେ ବ୍ରହ୍ମା ଥିଲେ ସେ ସ୍ଥାନର ।। ୬୭
ଯେ ଦେବ ଋଷି ପିତୃଗଣ । ଯେ ଭୂମିପାଳ ମନୁ ପୁଣ ।।
ଯେ ଦକ୍ଷ ଭୃଗୁ ଯେ ଅଙ୍ଗିର । ଏ ଆଦି ଋଷି ଯେ ଆବର ।। ୬୮
ସେ ଶିବ କୁମାର ସଙ୍ଗରେ । କଶ୍ୟପ ଅଦିତି ପ୍ରୀତିରେ ।। ୬୯
ସମସ୍ତ ପ୍ରାଣିମାନଙ୍କର । ମଙ୍ଗଳନିମିତ୍ତେ ସତ୍ୱର ।। ୭୦
ଲୋକମାନଙ୍କ ସହିତରେ । ଯେ ଲୋକପାଳ ଜଗତରେ ।। ୭୧
ସେ ସମସ୍ତଙ୍କର ଉପର । କଲେ ବାମନଙ୍କୁ ଈଶ୍ୱର ।। ୭୨
୨୨ ସକଳ ଦେବ ବେଦଙ୍କର । ଧର୍ମର ଯଶର ଲକ୍ଷ୍ମୀର ।। ୭୩

୧. ଋତ୍ୱିକେ । ୨. ମନ୍ତ୍ର ।

| | | | | | |
|---|---|---|---|---|---|
| ୨୩ | ମଙ୍ଗଳ ବ୍ରତ ଯେ ବା ଆନ | । | ଯେ ସ୍ୱର୍ଗ ଅପବର୍ଗ ଭିନ୍ନ | ।। | ୭୪ |
| | ସେମାନଙ୍କର ପାଳନରେ | । | ଦକ୍ଷ ଅଟେ ଯେ ସ୍ୱଭାବରେ | ।। | ୭୫ |
| | ସମସ୍ତ ଲୋକମାନଙ୍କର | । | ବିଭୂତିନିମିତ୍ତେ ଆବର | ।। | ୭୬ |
| | ଉପେନ୍ଦ୍ର କରିଣ କଳ୍ପନ | । | କଲେ ତାହାଙ୍କୁ କୁଶାସନ[୧] | ।। | ୭୭ |
| | ସେକାଳେ ସର୍ବଭୂତେ ଅତି | । | ସଂତୋଷ ହେଲେ ହେ ନୃପତି | ।। | ୭୮ |
| ୨୪ | ସେ ବାମନଙ୍କୁ ବିମାନରେ | । | ବସାଇ ଇନ୍ଦ୍ର ତଦନ୍ତରେ | ।। | ୭୯ |
| | ଲୋକପାଳଙ୍କୁ ସଙ୍ଗେ ଘେନି | । | ହୃଷ୍ଟ ହୋଇଣ ପଦ୍ମଯୋନି | ।। | ୮୦ |
| | ଆଗରେ କରିଣ ତାହାଙ୍କୁ | । | ନେଲେ ଅମରଭୁବନକୁ | ।। | ୮୧ |
| ୨୫ | ଉପେନ୍ଦ୍ରଭୁଜରେ ପାଳନ | । | ହୋଇଛି ଯେ ସ୍ୱର୍ଗଭୁବନ | ।। | ୮୨ |
| | ତାହା ପାଇଣ ଶଚୀପତି | । | ଛାଡ଼ିଲେ ଦାନବଙ୍କ ଭୀତି | ।। | ୮୩ |
| | ଅତ୍ୟନ୍ତ ଶ୍ରୀରେ ହୋଇ ଯୁତ | । | ହରଷ ଲଭିଲେ ବହୁତ | ।। | ୮୪ |
| ୨୬ | ହେ ନୃପ ! ବ୍ରହ୍ମା ଉମାପତି | । | କୁମାର ଭୃଗୁଆଦି ଯତି | ।। | ୮୫ |
| ୨୭ | ପିତୃଏ ସର୍ବଭୂତମାନେ | । | ସିଦ୍ଧ ବିମାନସ୍ଥ ଯେ ଆନେ | ।। | ୮୬ |
| | ବିଷ୍ଣୁର ପରମ ଅଦ୍ଭୁତ | । | ମହତ ଅଟେ ଯେ ଚରିତ | ।। | ୮୭ |
| | ସେମାନ କରନ୍ତେ ଗାୟନ | । | ଗଲେ ସେ ଯେ ଯାହାର ସ୍ଥାନ | ।। | ୮୮ |
| | ଏ କଥା ଅଦିତିର ଆଗେ | । | କହିଲେ ଯାଇଣ ସେ ବେଗେ | ।। | ୮୯ |
| ୨୮ | ହେ କୁରୁନନ୍ଦନ ସମସ୍ତ | । | ଏ ଉରୁକ୍ରମର ଚରିତ | ।। | ୯୦ |
| | ଶୁଣିଲା ଲୋକପାପହର | । | କହିଲି ମୁଁ ତୋର ଆଗର | ।। | ୯୧ |
| ୨୯ | ବହୁତ ବିକ୍ରମ ଯାହାର | । | ସେ ବିଷ୍ଣୁମହିମାର ପାର | ।। | ୯୨ |
| | ଗାୟନ କରଇ ଯେ ଜନ | । | [୨]ସେହୁ ଗଣିଲା ଧୂଳିମାନ | ।। | ୯୩ |
| | [୩]ଯେ ଜନ୍ମିଅଛି ବର୍ତ୍ତମାନ | । | ଯେ ପୂର୍ବେ ହୋଇଅଛି ଜନ୍ମ | ।। | ୯୪ |
| | ଯେ ବିଷ୍ଣୁମହିମାର ପାର | । | ତହିଁକି ଯାଇ କି ସେ ନର | ।। | ୯୫ |
| | ଏ ରୂପେ ମନ୍ତ୍ରଦୃଶ[୪] ଋଷି | । | ବଶିଷ୍ଠ ପୂର୍ବେ ଛନ୍ତି ଭାଷି | ।। | ୯୬ |
| ୩୦ | ଦେବତା ଯେ ଦେବତାଙ୍କର | । | ଅଦ୍ଭୁତ କର୍ମ ଅଟେ ଯାର | ।। | ୯୭ |
| | ସେ ବିଷ୍ଣୁ ବାମନାବତାର | । | ଅନୁଚରିତ ଏହୁ ସାର | ।। | ୯୮ |
| | ଏହା ଶୁଣିଲା ଯେ ହୁଅଇ | । | ପରମ ଗତି ସେ ଲଭଇ | ।। | ୯୯ |
| ୩୧ | ଦେବତା ପିତୃ ନରଙ୍କର | । | କର୍ମକୁ କରନ୍ତେ ଯେ ନର | ।। | ୧୦୦ |
| | ଯହିଁ ଯହିଁରେ ଏହା ଗାଏ | । | ତାହାଙ୍କ ସୁକୃତ ସେ ହୋଏ | ।। | ୧୦୧ |

୧. କୁଶାସନ = ବ୍ରହ୍ମା (କୁଶ ଆସନ ଯାହାର) ।

୨. 'ବିଷ୍ଣୋର୍ନୁ କଂ ବୀର୍ଯ୍ୟାଣି ପ୍ର ବୋଚଂ ଯଃ ପାର୍ଥିବାନି ବିମମେ ରଜାଂସି ।' (ଶ୍ରୁତିଃ)

୩. "ନ ତେ ବିଷ୍ଣୋଜାୟମାନୋ ନ ଜାତୋ
ଦେବ ମହିମ୍ନଃ ପାରମନନ୍ତମାପ" । (ଶ୍ରୁତିଃ)

୪. ମନ୍ତ୍ରଦୃଶ = ମନ୍ତ୍ରଦ୍ରଷ୍ଟା ।

| | | | |
|---|---|---|---|
| ଏମନ୍ତ ବୋଲି ଲୋକମାନେ | ଜାଣି ଅଛନ୍ତି ଏ ଭୁବନେ | ॥ | ୧୦୨ |
| କୃଷ୍ଣଚରଣ କରି ଧ୍ୟାନ | ହରଷ ଦୀନବନ୍ଧୁ ମନ | ॥ | ୧୦୩ |
| ଏ ଭାବ ନିଜମନେ ଚିନ୍ତି | ହରଷ ସାଧୁଜନମତି | ॥ | ୧୦୪ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀବଳିବାମନଚରିତଂ
ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

## ଚତୁର୍ବିଂଶ ଅଧ୍ୟାୟ

ଚତୁର୍ବିଂଶେ ପ୍ରସଙ୍ଗେନ ମତ୍ସ୍ୟରୂପସ୍ୟ ଶାର୍ଙ୍ଗିଣଃ ।
ଲୀଲୋଚ୍ୟତେ ଯତଃ ସତ୍ୟବ୍ରତରକ୍ଷା ମହାର୍ଣ୍ଣବେ ॥ ୧
ତନୁଂ ତନୁଂ ନିଦର୍ଶ୍ୟାଦୌ ନିଜୈଶ୍ୱର୍ଯ୍ୟନିଦର୍ଶନାତ୍ ।
ମତ୍ସ୍ୟଂ ପୃଚ୍ଛତି ପୃଥ୍ୱୀଶୋ ଲୀଳୟା ବାମନୋପମମ୍ ॥ ୨

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | ଅଦ୍ଭୁତ କର୍ମମାନ ଯାର | ହେ ଭଗବନ୍ତ ସେ ବିଷ୍ଣୁର | ॥ | ୧ |
| | ମାୟାରେ ଧରି ମୀନାକାର | ଯେବଣ ଆଦ୍ୟ ଅବତାର | ॥ | ୨ |
| | [1]ସେ କଥା ଶୁଣିମାର ପାଇଁ | ଇଚ୍ଛା କରିଛି ଆଜ ମୁହିଁ | ॥ | ୩ |
| ୨ } | ଦୁଃସହ, ଲୋକେ ବିନିନ୍ଦିତ | ତମସ୍ୱଭାବ ଯେ ବିଦିତ | ॥ | ୪ |
| ୩ } | ଯଦର୍ଥେ ସେ ମତ୍ସ୍ୟଶରୀର | ଧଇଲେ ପୂର୍ବେ ସେ ଈଶ୍ୱର | ॥ | ୫ |
| | ଯେସନେ କର୍ମଗ୍ରସ୍ତ ଜନ | ଧରଇ ନୀଚ ତନୁମାନ | ॥ | ୬ |
| | ଯଥାର୍ଥ କରି ଏ ସମସ୍ତ | କହିବାକୁ ହୁଅ ସମର୍ଥ | ॥ | ୭ |
| | ହେ ମୁନି ଚରିତ ବିଷ୍ଣୁର | ସମସ୍ତ ଲୋକସୁଖକର | ॥ | ୮ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୪ | ଏମନ୍ତ ରୂପେ ପରୀକ୍ଷିତ | କହନ୍ତେ, ତାଙ୍କୁ ବ୍ୟାସସୁତ | ॥ | ୯ |
| | ବିଷ୍ଣୁଚରିତକୁ କହିଲେ | ମତ୍ସ୍ୟରୂପେ ସେ ଯାହା କଲେ | ॥ | ୧୦ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୫ | ଗୋ, ବିପ୍ର ସୁର ସାଧୁଜନ | ଯେ ବେଦ ଧର୍ମ ଅର୍ଥମାନ | ॥ | ୧୧ |
| | ରକ୍ଷା ବାଞ୍ଛନ୍ତେ ତାହାଙ୍କର | ତନୁକୁ ଧରନ୍ତି ଈଶ୍ୱର | ॥ | ୧୨ |

---

୧. ହଠାତ୍ ପରୀକ୍ଷିତଙ୍କର ମତ୍ସ୍ୟାବତାର ଶୁଣିବାକୁ ଇଚ୍ଛା ହେଲା କାହିଁକି ?-ଏହି ପ୍ରଶ୍ନର ଉତ୍ତରରେ କୁହାଯାଇଛି ଯେ ମତ୍ସ୍ୟାବତାର ଓ ବାମନାବତାର ମଧ୍ୟରେ ସାଦୃଶ୍ୟ ବିଦ୍ୟମାନ । ପରୀକ୍ଷିତ କହିଲେ "ହେ ପ୍ରଭୋ ! ବଳିଙ୍କି ଅନୁଗ୍ରହ କରିବା ପାଇଁ ଭଗବାନ୍ ଜୁଗୁପ୍ସିତ ଯାଚକରୂପ ଧାରଣ କଲେ ବୋଲି ଆପଣ ମୋତେ କହିଛନ୍ତି । ଏବେ କୁହନ୍ତୁ ସେ ଜୁଗୁପ୍ସିତ ମତ୍ସ୍ୟରୂପ କାହିଁକି ଧଇଲେ ?"

୬ ବୁଦ୍ଧିର ଗୁଣେ ଉଚ୍ଚ ସ୍ଥାନ । ଧରଇ ଯଉଁ ତନୁମାନ ।। ୧୩
ନିୟନ୍ତାଭାବେ ହରି ତହିଁ । ଥିଲେ ହେଁ ବାୟୁପ୍ରାୟ ହୋଇ ।। ୧୪
ଉଚ୍ଚ ନୀଚତ୍ୱକୁ ନ ପାଇ । ଯେଣୁ ସେ ନିର୍ଗୁଣ ଅଟଇ ।। ୧୫
ଯେ ପୁଣ ଶୁଦ୍ଧ-ସତ୍ତ୍ୱମୟ । ମତ୍ସ୍ୟ କୂର୍ମାଦି ନାନା କାୟ ।। ୧୬
ତହିଁରେ ଉଚ୍ଚ ନୀଚ ହୋଇ । ଏ ଶଙ୍କା ଥିବ ଅବା କାହିଁ ।। ୧୭
୭ ହେ ନୃପ ! ଯଉଁ କଳ୍ପ ଗଲା । ଯାହାର ଅନ୍ତେ ଲୟ ହେଲା ।। ୧୮
ବ୍ରହ୍ମାର ନିଦ୍ରାରୁ ସେ ଜାତ । ସେ ନିଦ୍ରା ଲୟକୁ ନିମିତ୍ତ ।। ୧୯
ଏଣୁ ନୈମିତ୍ତିକ ବୋଲାଇ । ଭୂମିଲୋକକୁ ଆଦି ହୋଇ ।। ୨୦
ସମୁଦ୍ରଜଳେ ଲୋକମାନ । ତତ୍‌କ୍ଷଣେ ହୋଇଲେ ନିମଗ୍ନ ।। ୨୧
୮ କାଳବଶରେ ନିଦ୍ରା ଯାର । ପ୍ରବେଶ ହୋଇଲା ସତ୍ୱର ।। ୨୨
ଶୟନନିମିତ୍ତରେ ମନ । କରନ୍ତେ ସେ ଚତୁରାନନ ।। ୨୩
ତାହାଙ୍କ ମୁଖରୁ ନିର୍ଗତ । ବେଦଙ୍କୁ ହୟଗ୍ରୀବ ଦୈତ୍ୟ ।। ୨୪
ହରିଲା ନିକଟରେ ଥାଇ । ଯେଣୁ ସେ ବଳିଷ୍ଠ ଅଟଇ ।। ୨୫
୯ ଦାନବଙ୍କର ମଧ୍ୟେ ବର । ସେ ହୟଗ୍ରୀବ ନିଶାଚର ।। ୨୬
ଜାଣିଣ ହରି ତା' ଚେଷ୍ଟାକୁ । ଧଇଲେ ଶଫରୀରୂପକୁ ।। ୨୭
୧୦ ନାମରେ ସତ୍ୟବ୍ରତ ହୋଇ । ସେକାଳେ ରାଜରଷି କେହି ।। ୨୮
ବିଷ୍ଣୁରେ ତତ୍‌ପର ହୋଇଲା । ଜଳ ଭକ୍ଷନ୍ତେ ତପ କଲା ।। ୨୯
୧୧ ଏ ମହାକଳ୍ପେ ପୁଣ ସେହି । ଜନ୍ମିଲା ସୂର୍ଯ୍ୟସୁତ ହୋଇ ।। ୩୦
ଯେ ଶ୍ରାଦ୍ଧଦେବ ନାମେ ଖ୍ୟାତି । ଲଭିଲା ଜଗତେ ନୃପତି ।। ୩୧
ମନୁରୂପରେ ତାକୁ ପୁଣ । ଅର୍ପିତ କଲେ ନାରାୟଣ ।। ୩୨
୧୨ ଯେ କୃତମାଳା ନାମେ ନଈ । ଏକଦିନେ ସେ ନୃପ ତହିଁ ।। ୩୩
କରନ୍ତେ ସଲିଳତର୍ପଣ । ତାର ଅଞ୍ଜଳିଜଳେ ପୁଣ ।। ୩୪
ପ୍ରବେଶ ହେଲା ଆସି କେହି । ମତ୍ସ୍ୟ ଗୋଟିଏ ଏକା ହୋଇ ।। ୩୫
୧୩ ଯେ ମତ୍ସ୍ୟ ଥିଲା ଅଞ୍ଜଳିରେ । ତାହାକୁ ଜଳସହିତରେ ।। ୩୬
ଦ୍ରବିଡ଼େଶ୍ୱର ସତ୍ୟବ୍ରତ । ନଦୀସଲିଳରେ ତୁରିତ ।। ୩୭
ବାଞ୍ଛା କରନ୍ତେ ତା' ଜୀବିତ । ପୁଣି ହିଁ କଲା ସମର୍ପିତ ।। ୩୮
୧୪ ଅତିଦୟାଳୁ ନୃପ ସେହି । ତାହାକୁ ଅତିଦୈନ୍ୟ ହୋଇ ।। ୩୯
ସେ ମତ୍ସ୍ୟ କହିଲା ବଚନ । ଦୀନବତ୍ସଳ ହେ ରାଜନ ।। ୪୦
ଜ୍ଞାତିଙ୍କି କରନ୍ତି ନିଧନ । ଯେବଣ ଜଳଜନ୍ତୁମାନ ।। ୪୧
ତାହାଙ୍କ ଠାରୁ ଭୟ ପାଇ । ମୁଁ ଅଛି ଏଥି ଦୀନ ହୋଇ ।। ୪୨
ନଦୀସଲିଳେ ମୋତେ ପୁଣ । କିମ୍ପା କରୁଛ ସମର୍ପଣ ।। ୪୩
୧୫ ଆପଣା ଅନୁଗ୍ରହପାଇଁ । ପ୍ରୀତିରେ ମତ୍ସ୍ୟବପୁ ହୋଇ ।। ୪୪

ଅଛନ୍ତି ଯେବଣ ଈଶ୍ୱର । ତାଙ୍କୁ ନ କରନ୍ତେ ଗୋଚର ॥
ମତ୍ସ୍ୟରକ୍ଷଣ ଅର୍ଥେ ଚିତ୍ତ । କଲା ସେ ନୃପ ସତ୍ୟବ୍ରତ ॥
୧୬ ତାହାର ଅତି ଦୀନ ବାଣୀ । ସେ ମହୀପତି କର୍ଣ୍ଣେ ଶୁଣି ॥
କଳସ ଜଳେ ରଖି ତାକୁ । ଦୟାଳୁ ନେଲା ଆଶ୍ରମକୁ ॥
୧୭ ସେ ମତ୍ସ୍ୟ ଏକ ରଜନୀରେ । ବଢ଼ନ୍ତେ ସେ କମଣ୍ଡଳୁରେ ॥
ନ ଲଭି ଅବକାଶ ପୁଣି । ରାଜାଙ୍କୁ ବୋଇଲା ଏ ବାଣୀ ॥
୧୮ ଏ କମଣ୍ଡଳୁମଧ୍ୟେ ମୁହିଁ । ଥାଆନ୍ତେ ଅତିକଷ୍ଟ ପାଇ ॥
ଥିବାକୁ କରୁ ନାହିଁ ଚିତ୍ତେ । ବିପୁଳ ସ୍ଥାନ କର ମୋତେ ॥
ଯେବଣ ସ୍ଥାନେ ସୁଖ ହୋଇ । ନିବାସ କରିବଇଁ ମୁହିଁ ॥
୧୯ ତଦନନ୍ତରେ ସେ ଭୂପାଳ । ମଣିକ[1]ସ୍ଥିତ ଯେ ସଲିଳ ॥
ତହିଁ ରଖିଲା ତାକୁ ନେଇ । ପଡ଼ିଲା ମାତ୍ରକେ ସେ ତହିଁ ॥
ମୁହୂର୍ତ୍ତମାତ୍ରେ ତିନିହାତ । ବୃଦ୍ଧିକି ଲଭିଲା ତୁରିତ ॥
୨୦ ପୁଣି କହିଲା ସେ ବଚନ । ହେ ନୃପ ଏହୁ ଉଦଞ୍ଚନ[2] ॥
ସମର୍ଥ ନୁହଇ ମୋହର । ସୁଖେ କରିବାକୁ ବିହାର ॥
ବିପୁଳ ସ୍ଥାନ ଦିଅ ମୋତେ । ଶରଣ ଗଲି ମୁଁ ଯେ ତୋତେ ॥
୨୧ ହେ ନୃପ ! ତାକୁ ତଦନ୍ତରେ । ସେ ନୃପ ଆଣି ସରୋବରେ ॥
ନିକ୍ଷେପ କରନ୍ତେ ସେ ଦିନ । ନିଜ ଦେହରେ ମହାମୀନ ॥
ସେ ସରୋବରକୁ ବେଢ଼ିଣ । ବୃଦ୍ଧିକି ଲଭିଲାକ ପୁଣ ॥
୨୨ ହେ ନୃପ ! ସଲିଳେ ଯା' ସ୍ଥାନ । ମୁଁ ସେ, ଜାତିରେ ଅଟେ ମୀନ ॥
ମୋହର ମଙ୍ଗଳନିମିତ୍ତ । ଏ ଜଳ ନୋହିଲା କଳ୍ପିତ ॥
ଯେମନ୍ତେ ମହାଜଳ ବିନୁ । ଶୁଷ୍କ ନୁହଇ ମୋର ତନୁ ॥
ସେହି ପ୍ରକାରେ ମୋତେ ନିଅ । ଅକ୍ଷୀଣ ହ୍ରଦେ ଛାଡ଼ିଦିଅ ॥
୨୩ ଏମନ୍ତ ରୂପରେ ବଞ୍ଚନ । ମତ୍ସ୍ୟ କରନ୍ତେ ସେ ରାଜନ ॥
ଜଳରେ ପୂରିତ ହୋଇଣ । ତଡ଼ାଗ ଯେବଣ ଯେବଣ ॥
ତହିଁକି ସେ ମତ୍ସ୍ୟକୁ ନେଲା । ସେମାନ ତାକୁ ନ ଅଣ୍ଟିଲା ॥
ପୁଣି ସେ ମତ୍ସ୍ୟକୁ ସାଗରେ । ନିକ୍ଷେପ କଲା ତଦନ୍ତରେ ॥
୨୪ ସମୁଦ୍ରେ କ୍ଷିପନ୍ତେ ସେ ମୀନ । ବୋଇଲା ଏମନ୍ତ ବଚନ ॥
ହେ ବୀର ! ଅତିବଳ ହୋଇ । ମକର ଆଦି ଜନ୍ତୁ ଯେହି ॥
ମୋତେ ଭକ୍ଷିବେ ଏ ସାଗରେ । ତୁ ମୋତେ ନ ଛାଡ଼ ଏଥିରେ ॥
୨୫ ଏରୂପେ ମଞ୍ଜୁଳ ବଚନ । କହନ୍ତେ ନୃପକୁ ସେ ମୀନ ॥
ତେଣେ ମୋହିତମତି ହେଲା । ନୃପତି ତାହାଙ୍କୁ କହିଲା ॥

୧. ଜଳପାତ୍ର । ୨. ଉଦଞ୍ଚନ = ଜଳୋତ୍ତୋଳନ ପାତ୍ର ।

| | | | | |
|---|---|---|---|---|
| | ମୋହନ୍ତେ ମୀନରୂପେ ମୋତେ | । କେ ତୁମ୍ଭେ କହ ମୋ ଅଗ୍ରତେ | ॥ | ୭୬ |
| ୨୬ | ଏ ରୂପେ ଅଟେ ବୀର୍ଯ୍ୟ ଯାର | । କେହୁଣି ସ୍ଥାନେ ଜଳଚର | ॥ | ୭୭ |
| | ଶୁଣିଲା ଦେଖିଲା ନ ଥାଇ | । ଏକଦିବସକେ ଯେ ତୁହି | ॥ | ୭୮ |
| | ଶତଯୋଜନ ଯଉଁ ସର | । ତାହାକୁ ବ୍ୟାପିଲୁ ସତ୍ୱର | ॥ | ୭୯ |
| ୨୭ | ଯେ ଭଗବାନ ନାରାୟଣ | । ତୁମ୍ଭେ ସାକ୍ଷାତ ସେହି ପୁଣ | ॥ | ୮୦ |
| | ଅନୁଗ୍ରହାର୍ଥେ ପ୍ରାଣୀଙ୍କର | । ଧରିଛ ମତ୍ସ୍ୟ କଳେବର | ॥ | ୮୧ |
| ୨୮ | ଉତ୍ପତ୍ତି ସ୍ଥିତି ପ୍ରଳୟର | । ଈଶ୍ୱର ହେ ପୁରୁଷବର | ॥ | ୮୨ |
| | ତୁମ୍ଭଙ୍କୁ କରୁଛି ବନ୍ଦନ | । ଯେ ଆମ୍ଭେ ହୋଇଛୁଁ ପ୍ରପନ୍ନ | ॥ | ୮୩ |
| | ସେ ଭକ୍ତଙ୍କର ତୁମ୍ଭେ ଗତି | । ମୁଖ୍ୟ ଆତ୍ମା ହିଁ ହେ ଶ୍ରୀପତି | ॥ | ୮୪ |
| ୨୯ | ଲୀଳାରେ ହୁଅନ୍ତି ପ୍ରଚାର | । ତୁମ୍ଭର ଯେତେ ଅବତାର | ॥ | ୮୫ |
| | ପ୍ରାଣୀମାନଙ୍କର ସଂପତ୍ତି | । କାରଣ[୧] ସେମାନେ ହୁଅନ୍ତି | ॥ | ୮୬ |
| | ଏ ରୂପ ଧୃତ ଯହିଁ ପାଇଁ | । ଜାଣିମାକୁ ହି ତା ବାଞ୍ଛଇ | ॥ | ୮୭ |
| ୩୦ | ତୁମ୍ଭେ ସକଳ ପ୍ରାଣୀଙ୍କର | । ସୁହୃଦ ପ୍ରିୟ ଆତ୍ମା ଆର | ॥ | ୮୮ |
| | ହେ ପଦ୍ମନେତ୍ର ତୁମ୍ଭ ପାଦେ | । ଯେ ଅନୁବୃତ୍ତି ଅପ୍ରମାଦେ | ॥ | ୮୯ |
| | କେବେହେଁ ମିଥ୍ୟା ସେ ନୁହଇ | । ଯେ ଦେହେ ଅଭିମାନୀ ହୋଇ | ॥ | ୯୦ |
| | ବର୍ତ୍ତିଥାଆନ୍ତି ଅନ୍ୟ ଜନ | । ତାଙ୍କ ଅନୁବୃତ୍ତି ଯେସନ | ॥ | ୯୧ |
| | ମିଥ୍ୟା ହୁଅଇ ଏ ସଂସାରେ | । ତୁମ୍ଭର ନୋହେ ସେ ରୂପରେ | ॥ | ୯୨ |
| | ଏ ରୂପେ ଅଦ୍ଭୁତ ତନୁକୁ | । ଯେଣୁ ଦେଖାଇଲ ଆମ୍ଭଙ୍କୁ | ॥ | ୯୩ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୩୧ | ସେ ସତ୍ୟବ୍ରତ ନରନାଥ | । କହନ୍ତେ ବଚନ ଏମନ୍ତ | ॥ | ୯୪ |
| | ଏକାନ୍ତ ଭକ୍ତଜନପ୍ରିୟ | । ଯେ ବିଶ୍ୱପତି ମତ୍ସ୍ୟକାୟ | ॥ | ୯୫ |
| | ଜଗତକ୍ଷୟ ସମୟରେ | । ପ୍ରଳୟଜଳଧିମଧ୍ୟରେ | ॥ | ୯୬ |
| | କରନ୍ତେ ବିହାରକୁ ଚିତ୍ତ | । କହିଲେ ଆପଣା ବାଞ୍ଛିତ | ॥ | ୯୭ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୩୨ | ଆଜହୁଁ ସପ୍ତମ ଦିନରେ | । ହେ ନୃପ ପ୍ରଳୟସିନ୍ଧୁରେ | ॥ | ୯୮ |
| | ଯେ ବା ଭୂର୍ଭୁବ ଆଦି ହୋଇ | । ତ୍ରୈଲୋକ୍ୟ ମଗ୍ନ ହେବ ସେହି | ॥ | ୯୯ |
| ୩୩ | ତ୍ରୈଲୋକ୍ୟ ପ୍ରଳୟଜଳରେ | । ମଗ୍ନ ହୁଅନ୍ତେ ସେ କାଳରେ | ॥ | ୧୦୦ |
| | ମୁଁ ଯା' ପେଷିବି ପୃଥୁ ନାବ | । ସେ ତୋତେ ଉପସ୍ଥିତ ହେବ | ॥ | ୧୦୧ |
| ୩୪ | ସମସ୍ତ ଅଉଷଧିମାନ | । ଯେ ଉଚ୍ଚ ନୀଚ ବୀଜ ଆନ | ॥ | ୧୦୨ |
| | ସେମାନ ଘେନି କରି ତୁହି | । ସପ୍ତ ଋଷିଙ୍କ ସଙ୍ଗେ ଥାଇ | ॥ | ୧୦୩ |
| | ସମସ୍ତ ସତ୍ତ୍ୱମାନଙ୍କରେ | । ବର୍ଦ୍ଧିତ ହୋଇଣ ସତ୍ୱରେ | ॥ | ୧୦୪ |

୧. କାରଣେ ।

| | | | | |
|---|---|---|---|---|
| ୩୫ | ସେ ମହାନାବକୁ ଆରୋହି | ବିକଳ ନୋହି କରି ତୁହି | ୧୦୫ |
| | ଆଲୋକଶୂନ୍ୟ ଯେ ଅଟଇ | ସେ ଏକାର୍ଣ୍ଣବମଧ୍ୟେ ଥାଇ | ୧୦୬ |
| | ଋଷିମାନଙ୍କର ତେଜରେ | ଭ୍ରମଣ କରିବୁ ନିର୍ଭରେ | ୧୦୭ |
| ୩୬ | ପ୍ରଳୟପବନେ ସେ ନାବ | ଅତିଚଞ୍ଚଳ ହୋଇ ଥିବ | ୧୦୮ |
| | ମୁଁ ପୁଣି ମିଳନ୍ତେ ସେଠାରେ | ତୁ ସେ ନାବକୁ ମୋ ଶୃଙ୍ଗରେ | ୧୦୯ |
| | ମହତ[୧] ଅଟଇ ଯେ ଅହି | ବାନ୍ଧିବୁ ତେଣେ କରି ତୁହି | ୧୧୦ |
| ୩୭ | ତୋତେ ଋଷିଙ୍କ ସଙ୍ଗତରେ | ନାବସହିତେ ସମୁଦ୍ରରେ | ୧୧୧ |
| | ଓଟାରି ଥାଆନ୍ତେ ଭ୍ରମଣ | କରିବି ତେତେକାଳ ପୁଣ | ୧୧୨ |
| | ବ୍ରହ୍ମାର ନିଶା ଯେତେ ଦିନ | ପର୍ଯ୍ୟନ୍ତେ ଥିବ ହେ ରାଜନ | ୧୧୩ |
| ୩୮ | ବିଖ୍ୟାତ ପରଂବ୍ରହ୍ମ ହୋଇ | ମୋର ମହିମା ଅଟେ ଯେହି | ୧୧୪ |
| | ଆପଣା ହୃଦୟ ଭିତରେ | ତୁ ତା' ଜାଣିବୁ ପ୍ରତ୍ୟକ୍ଷରେ | ୧୧୫ |
| | ପ୍ରସାଦ କରିବି ତା' ତୋତେ | କରନ୍ତେ ପ୍ରଶ୍ନମାନ ମୋତେ | ୧୧୬ |
| | ମୁଁ ତାହା କରିବି ପ୍ରକାଶ | ତୁ ତାହା ଜାଣିମୁ ଅବଶ୍ୟ | ୧୧୭ |
| ୩୯ | ରାଜାକୁ କହି ଏ ବଚନ | ହରି ହୋଇଲେ ଅନ୍ତର୍ଧାନ | ୧୧୮ |
| | ଯେବଣ କାଳକୁ ଆଦେଶ | ଦେଇ ଅଛନ୍ତି ହୃଷୀକେଶ | ୧୧୯ |
| | ସେ ମହୀପତି ହିଁ ସେଠାଇଁ | ରହିଲେ ସେ କାଳକୁ ଚାହିଁ | ୧୨୦ |
| ୪୦ | ପୂର୍ବ ଉତ୍ତର ଦିଗ ଦୁଇ | ମଧ୍ୟକୁ ଅଭିମୁଖ ହୋଇ | ୧୨୧ |
| | ଭୂମିରେ ପୂର୍ବାଗ୍ର କରିଣ | କୁଶମାନଙ୍କୁ ବିସ୍ତାରିଣ | ୧୨୨ |
| | ଚିନ୍ତନ୍ତେ ମତ୍ସ୍ୟପାଦଦୁଇ | ବସିଲେ ରାଜଋଷି ତହିଁ | ୧୨୩ |
| ୪୧ | ତୀରକୁ କଲା ଯେ ଲଙ୍ଘନ | ବୁଡ଼ାନ୍ତେ ସର୍ବମହୀମାନ | ୧୨୪ |
| | ବର୍ଷନ୍ତେ ମହାମେଘମାନେ | ଗର୍ଜୁଛି ଯେହୁ ଅତି ଘନେ | ୧୨୫ |
| | ଏମନ୍ତ ଅଟେ ଯେ ସାଗର | ଦିଶିଲା ସେହୁ ତଦନ୍ତର | ୧୨୬ |
| ୪୨ | ଯା' ଆଜ୍ଞା ଦେଲେ ଭଗବାନ | କରନ୍ତେ ନୃପ ତାହା ଧ୍ୟାନ | ୧୨୭ |
| | ଯେ ନାବ ପ୍ରବେଶ ହୋଇଲା | ତାହା ସେ ନୃପତି ଦେଖିଲା | ୧୨୮ |
| | ଓଷଧି ଲତାମାନ ଯେତେ | ଘେନି ତା' ବିପ୍ରଙ୍କ ସହିତେ | ୧୨୯ |
| | ସେ ନାବମଧ୍ୟେ ଆରୋହଣ | କଲା ସେ ଯାଇଁ ତତକ୍ଷଣ | ୧୩୦ |
| ୪୩ | ମୁନିଏ ତୋଷ ହୋଇ ତାକୁ | ବୋଇଲେ ଏମନ୍ତ ବାକ୍ୟକୁ | ୧୩୧ |
| | ହେ ନୃପ ଧ୍ୟାୟ ତୁ ବିଷ୍ଣୁଙ୍କୁ | ଏ ସଂକଟରୁ ସେ ଆମ୍ଭଙ୍କୁ | ୧୩୨ |
| | ରକ୍ଷା କରିବେ ଭଗବାନ | ମଙ୍ଗଳ କରିବେ ବିଧାନ | ୧୩୩ |
| ୪୪ | ଧ୍ୟାନ କରନ୍ତେ ସେ ଭୂପାଳ | ମହାର୍ଣ୍ଣବରେ ତତକାଳ | ୧୩୪ |
| | ଯେ ଅଟେ ଏକଶୃଙ୍ଗଧର | ନିୟୁତ ଯୋଜନ ବିସ୍ତାର | ୧୩୫ |
| | ସୁବର୍ଣ୍ଣମୟ ଏକ ମୀନ | ପ୍ରବେଶ ହୋଇଲା ସେ ଦିନ | ୧୩୬ |

୧. ମହତ ଅହି = ବାସୁକି ।

| | | | | |
|---|---|---|---|---|
| ୪୫ | ପୂର୍ବେ ଯା କହିଥିଲେ ହରି | । ତା' ଶୃଙ୍ଗେ ସେହିରୂପେ କରି | ॥ | ୧୩୭ |
| | ଅହି-ଡୋରରେ ବାନ୍ଧି ନାବ | । ବିଷ୍ଣୁଙ୍କୁ କଲା ନୃପ ସ୍ତବ | ॥ | ୧୩୮ |

[1]ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୪୬ | ଅନାଦି ଅବିଦ୍ୟା-ଆବୃତ | । ଯେଉଁମାନଙ୍କ ଆତ୍ମତତ୍ତ୍ୱ | ॥ | ୧୩୯ |
| | ଅବିଦ୍ୟାମୂଳ ସଂସାରର | । ପରିଶ୍ରମରେ ଯେ ଆତୁର | ॥ | ୧୪୦ |
| | ସେ ଲୋକମାନେ ଏ ସଂସାରେ | । ଯାହାର ଅନୁଗ୍ରହଦ୍ୱାରେ | ॥ | ୧୪୧ |
| | ଆଶ୍ରୟ କରନ୍ତେ ସନ୍ତତ | । ଯାହାକୁ ଲଭନ୍ତି ସାକ୍ଷାତ | ॥ | ୧୪୨ |
| | ସେ ତୁମ୍ଭେ ସାକ୍ଷାତ ଈଶ୍ୱର | । ମୁକତିଦାତା ଗୁରୁବର | ॥ | ୧୪୩ |
| ୪୭ | ଯେ ନିଜ କର୍ମରେ ବନ୍ଧନ | । ଅବୁଧ ଅଟଇ ଯେ ଜନ | ॥ | ୧୪୪ |
| | ସୁଖଇଚ୍ଛାରେ କରେ କର୍ମ | । ଅସୁଖ ହୋଏ ତହୁଁ ଜନ୍ମ | ॥ | ୧୪୫ |
| | ହୃଦୟଗ୍ରନ୍ଥିରୂପ ହୋଇ | । ସେ ସୁଖଇଚ୍ଛା ପ୍ରବର୍ତ୍ତଇ | ॥ | ୧୪୬ |
| | ଯା' ସେବାରେ ସେ ଦୁଷ୍ଟମତି | । ଯେ ନାଶ କରଇ ଝଟିତି | ॥ | ୧୪୭ |
| | ସେ ପ୍ରଭୁ ଆମ୍ଭମାନଙ୍କର | । ଗୁରୁ ଅଟନ୍ତି ନିରନ୍ତର | ॥ | ୧୪୮ |
| ୪୮ | ଅନଳସକାଶୁଁ ରଜତ[2] | । ଯେସନେ ହୁଅଇ ଦୀପିତ | ॥ | ୧୪୯ |
| | କ୍ଷାଳନ ଆଦି ଦ୍ୱାରେ ପୁଣ | । ନ ହୋଏ ସେହୁ ଦୀପ୍ତିମାନ | ॥ | |
| | ସେରୂପେ ସେବାରୁ ଯାହାର | । ତମମଳକୁ ଛାଡ଼େ ନର | ॥ | ୧୫୦ |
| | ଯଜ୍ଞାଦି ଇତର ସାଧନୁଁ | । ମଳ ନ ଛାଡ଼େ ନରମନୁଁ | ॥ | |
| | ନିଜ ବର୍ଣ୍ଣକୁ ପୁଣ ପାଇ | । ଏମନ୍ତ ପ୍ରଭୁ ସେଟି ଏହି | ॥ | ୧୫୧ |
| | ହୁଅନ୍ତୁ ଗୁରୁ ସେ ଆମ୍ଭର | । ଯେ ଗୁରୁ ଗୁରୁଙ୍କ ଉପର | ॥ | ୧୫୨ |
| ୪୯ | ଯାହା ପ୍ରସାଦର ଅୟୁତ | । ଭାଗର ଲେଶକୁ ସାକ୍ଷାତ | ॥ | ୧୫୩ |
| | କରିବା ନିମିତ୍ତେ ଭୁବନେ | । ଆନ ଦେବତା ଗୁରୁଜନେ | ॥ | ୧୫୪ |
| | ତୁମ୍ଭର ନିରପେକ୍ଷ ହୋଇ | । ସମର୍ଥ ନୁହନ୍ତି ସେ କେହି | ॥ | ୧୫୫ |
| | ତୁମ୍ଭେ ସେ ଈଶ୍ୱରପ୍ରମାଣ | । ତୁମ୍ଭଙ୍କୁ ପଶୁଛି ଶରଣ | ॥ | ୧୫୬ |
| ୫୦ | ଯେସନେ ଚକ୍ଷୁହୀନ ନର | । ଅଗ୍ରଣୀ ହୁଅଇ ଅନ୍ଧର | ॥ | ୧୫୭ |
| | ସେରୂପେ ଅଜ୍ଞ ଯେଉଁ ନର | । ଗୁରୁ ହୁଅଇ ସେ ଅଜ୍ଞର | ॥ | ୧୫୮ |
| | ଅର୍କର ପ୍ରକାଶ ଯେସନ | । ଆପଣାଠାରୁ ଉତପନ୍ନ | ॥ | ୧୫୯ |
| | ସେ ରୂପେ ପ୍ରକାଶ ହୁଅଇ | । ତୁମ୍ଭର ଜ୍ଞାନ ତୁମ୍ଭ ଠାଇଁ | ॥ | ୧୬୦ |
| | ସର୍ବ ଇନ୍ଦ୍ରିୟମାନଙ୍କର | । ପ୍ରକାଶକୁ ସେ ତୁମ୍ଭେ କର | ॥ | ୧୬୧ |

୧. ସାଗରଂ ତାରୟିଷ୍ୟନ୍ତଂ ତରିଷ୍ୟନ୍ ଭବସାଗରମ୍ ।
ସତ୍ୟବ୍ରତୋ ଗୁରୁତ୍ୱେନ ତୁଷ୍ଟାବ ହରିମଷ୍ଟଭିଃ ॥ (ସ୍ୱାମୀ)

୨. ମୂଳପାଠସ୍ଥ 'ରୁଦ୍ରରୋଦନ' ଶବ୍ଦର ଅର୍ଥ । ତଥା ଚ ଶ୍ରୁତିଃ-"ଯଦ୍ ଅରୋଦୀତ୍ ତଦ୍ ରୁଦ୍ରସ୍ୟ ରୁଦ୍ରତ୍ୱମ୍; ଯଦ୍ ଅଶ୍ରୁ ଅବଶୀର୍ଯ୍ୟତ ତଦ୍ ରଜତଂ ହିରଣ୍ୟମଭବତ୍ ।"

ଜ୍ଞାନକୁ ଲଭିବା ନିମିତ୍ତେ । ଆମ୍ଭେ ବାଞ୍ଛୁଁ ନିଜ ଚିତ୍ତେ ॥ ୧୬୨
ଏଣୁ ତୁମ୍ଭଙ୍କୁ ଗୁରୁ କରି । ଆମ୍ଭେ ବରିଲୁଁ ତା' ବିଚାରି ॥ ୧୬୩
୫୧ ଅର୍ଥକାମାଦି ଗତି ଯେହି । ଲୋକକୁ ଲୋକ ତା' କହଇ ॥ ୧୬୪
ଦୁସ୍ତର ସଂସାରକୁ ପ୍ରାଣୀ । ଯେଣେ ଲଭଇ ପୁଣପୁଣି ॥ ୧୬୫
ଯେ ଜ୍ଞାନ ଅମୋଘ ଅବ୍ୟୟ । ତୁମ୍ଭେ ଲୋକଙ୍କୁ ତାହା ଦିଅ ॥ ୧୬୬
ତୁମ୍ଭର ଯଉଁ ନିଜ ସ୍ଥାନ । ଯେଣେ ଲଭଇ ତାହା ଜନ ॥ ୧୬୭
୫୨ ତୁମ୍ଭେ ସମସ୍ତ ଲୋକଙ୍କର । ସୁହୃଦ ବଲ୍ଲଭ ଈଶ୍ୱର ॥ ୧୬୮
ଆବର ଗୁରୁ ଆତ୍ମା ଜ୍ଞାନ । ଅଭୀଷ୍ଟସିଦ୍ଧି ଯେ ବିଧାନ ॥ ୧୬୯
ତଥାପି ଯେହୁ ଅନ୍ୟଚିତ୍ତ[୧] । କାମରେ ହୋଇ ଆସକତ ॥ ୧୭୦
ତୁମ୍ଭେ ଥିଲେହେଁ ତା' ହୃଦର । ତୁମ୍ଭଙ୍କୁ ନ କରେ ଗୋଚର ॥ ୧୭୧
୫୩ ଦେବତାଙ୍କର ମଧ୍ୟେ ବର । ତୁମ୍ଭେ ସେ ବରେଣ୍ୟ ଈଶ୍ୱର ॥ ୧୭୨
ଲଭିବା ନିମିତ୍ତରେ ଜ୍ଞାନ । ତୁମ୍ଭଙ୍କୁ ହେଉଛି ପ୍ରପନ୍ନ ॥ ୧୭୩
ପରମାର୍ଥକୁ ଉଦ୍ଦୀପନ । କରନ୍ତି ଯଉଁ ବାକ୍ୟମାନ ॥ ୧୭୪
ତେଣେ ଆମ୍ଭର ହୃଦସ୍ଥିତ । ଅହଂକାରକୁ କର ହତ ॥ ୧୭୫
ନିଜ ସ୍ୱରୂପକୁ ତୁମ୍ଭର । ଆମ୍ଭଙ୍କୁ ପ୍ରକାଶ ତା' କର ॥ ୧୭୬

ଶ୍ରୀଶୁକ ଉବାଚ

୫୪ } ନୃପ କହନ୍ତେ ଏ ବଚନ । ଆଦିପୁରୁଷ ଭଗବାନ ॥ ୧୭୭
୫୬ } ଧରିଣ ମତ୍ସ୍ୟକଳେବର । ସମୁଦ୍ରେ କରନ୍ତେ ବିହାର ॥ ୧୭୮
ଯେ ତତ୍ତ୍ୱ ଅଟଇ ସନ୍ଦେଶ । ରାଜାକୁ କଲେ ତା ପ୍ରକାଶ ॥ ୧୭୯
ଯେ ସାଂଖ୍ୟଯୋଗକ୍ରିୟାଯୁତ । ପୁରାଣସଂହିତା[୨] ମହତ ॥ ୧୮୦
କହିଲେ ତା' ସତ୍ୟବ୍ରତକୁ । ଅଶେଷେ ଆତ୍ମାର ଗୁହ୍ୟକୁ ॥ ୧୮୧
ଋଷିମାନଙ୍କ ସଙ୍ଗତରେ । ଯେ ନୃପ ବସନ୍ତେ ନାବରେ ॥ ୧୮୨
ଯେବଣ ବ୍ରହ୍ମ ସନାତନ । ପ୍ରକାଶ କଲେ ଭଗବାନ ॥ ୧୮୩
ସେ ଆତ୍ମତତ୍ତ୍ୱକୁ ଶ୍ରବଣ । କଲେ ନିଃସଂଶୟ କରିଣ ॥ ୧୮୪
୫୭ ପ୍ରଳୟ ହୁଅନ୍ତେ ଅତୀତ । ଯେ ବ୍ରହ୍ମା ଉଠିଲେ ତ୍ୱରିତ ॥ ୧୮୫
ହୟଗ୍ରୀବଦୈତ୍ୟକୁ ମାରି । ତାହାଙ୍କୁ ବେଦ ଦେଲେ ହରି ॥ ୧୮୬
୫୮ ଜ୍ଞାନ ବିଜ୍ଞାନରେ ସଂଯୁତ । ସେ ସତ୍ୟବ୍ରତ ନରନାଥ ॥ ୧୮୭
ବିଷ୍ଣୁପ୍ରସାଦୁଁ ଏ କଳ୍ପରେ । ଜନ୍ମିଲା ମନୁ ସ୍ୱରୂପରେ ॥ ୧୮୮
ଯାହାର ନାମ ବୈବସ୍ୱତ । ସକଳ ଲୋକେ ହେଲା ଖ୍ୟାତ ॥ ୧୮୯
୫୯ ଯେ ରାଜରଷି ସତ୍ୟବ୍ରତ । ମାୟାରେ ମତ୍ସ୍ୟ ଯେ ଅଚ୍ୟୁତ ॥ ୧୯୦
ସଂବାଦ ଯେ ସେ ବେନିଙ୍କର । ଆଖ୍ୟାନ ଅଟଇ ବିସ୍ତାର ॥ ୧୯୧

---

୧. ଅନ୍ଧଚିତ୍ତ । ୨. ପୁରାଣସଂହିତା = ମତ୍ସ୍ୟପୁରାଣ ।

| | | | | | |
|---|---|---|---|---|---|
| | ତାହା ଯେ ଶ୍ରବଣ କରଇ | । | ପାପରୁ ମୁକ୍ତ ସେ ହୁଅଇ | ॥ | ୧୯୨ |
| ୬୦ | ଏ ଯଉଁ ମତ୍ସ୍ୟ ଅବତାର | । | ପ୍ରକାଶ ହୋଇଲା ବିସ୍ତର | ॥ | ୧୯୩ |
| | ଏହା ଭକ୍ତିରେ ଯଉଁ ଜନ | । | କୀର୍ତ୍ତନ କରେ ପ୍ରତିଦିନ | ॥ | ୧୯୪ |
| | ତା' ମନୋରଥ ସିଦ୍ଧ ହୋନ୍ତି | । | ଲଭଇ ସେ ପରମ ଗତି | ॥ | ୧୯୫ |
| ୬୧ | ଲୀନ ହୋଇଲା ଶକ୍ତି ଯାର | । | ପ୍ରଳୟଜଳେ ସେ ଧାତାର | ॥ | ୧୯୬ |
| | ମୁଖମାନଙ୍କରୁ ଗଳିଣ | । | ଥିଲେ ଯେବଣ ବେଦଗଣ | ॥ | ୧୯୭ |
| | ହୟଗ୍ରୀବକୁ ବଧ କରି | । | ତାହାଙ୍କୁ ଆଣିଲେ ଯେ ହରି | ॥ | ୧୯୮ |
| | ନାମରେ ସତ୍ୟବ୍ରତ ହୋଇ | । | ଯେ ନୃପ ବିଦିତ ଅଟଇ | ॥ | ୧୯୯ |
| | ଯେ ଋଷିମାନେ ସତ୍ୟବ୍ରତ | । | ବ୍ରହ୍ମକୁ[୧] ତାହାଙ୍କ ଅଗ୍ରତ | ॥ | ୨୦୦ |
| | ପ୍ରକାଶ କଲେକ ପ୍ରମାଣ | । | ଯେ ସର୍ବଜଗତକାରଣ | ॥ | ୨୦୧ |
| | ଏମନ୍ତ ଯଉଁ ମାୟାମୀନ | । | ତାଙ୍କୁ ମୁଁ କରୁଛି ବନ୍ଦନ | ॥ | ୨୦୨ |
| | କୃଷ୍ଣଚରଣପଦ୍ମ ଚିନ୍ତି | । | ହରଷ ଦୀନବନ୍ଧୁ ମତି | ॥ | ୨୦୩ |
| | ଶୁଣି ଅଷ୍ଟମସ୍କନ୍ଧ ଗୀତ | । | ସୁଜନେ ହୁଅ ତୋଷଚିତ୍ତ | ॥ | ୨୦୪ |
| | ପ୍ରାକୃତ ଭାଷା ବୋଲି ଚିତ୍ତେ | । | ଦୋଷ ନ ଧର କଦାଚିତେ | ॥ | ୨୦୫ |
| | ଥାଇ ଯେ ଶବରପଲ୍ଲୀରେ | । | ସେ ଦିବ୍ୟରତ୍ନକୁ ଯୋଗରେ | ॥ | ୨୦୬ |
| | ଲଭି କେ କଣ୍ଠେ ନ ଲମ୍ବାଇ | । | ସେହିରୂପରେ ଏ କଥାହି | ॥ | ୨୦୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାମଷ୍ଟମସ୍କନ୍ଧେ ଶ୍ରୀମତ୍ସ୍ୟାବତାରଚରିତଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥

## ସମାପ୍ତଶ୍ଚାୟମଷ୍ଟମସ୍କନ୍ଧଃ

୧. ବେଦକୁ ।

# ନବମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଗୁଣା ଯଂ ଗୁଣଭାବାପ୍ତ୍ୟୈ ବୃଣତେ କରୁଣାନିଧିମ୍ ।
ତମହଂ ଶରଣଂ ଯାମି ପରମାନନ୍ଦମାଧବମ୍ ।। ୧
ତ୍ରିଗୁଣାଷ୍ଟଭିରଧ୍ୟାୟୈର୍ବୈବସ୍ୱତସୁତାନ୍ୱୟଃ ।
ନବମେ କୃଷ୍ଣସତ୍କୀର୍ତ୍ତିପ୍ରସଙ୍ଗାୟ ବିତନ୍ୟତେ ।। ୨
ଏବମୁକ୍ତୋଽଷ୍ଟମସ୍କନ୍ଧେ ସଦ୍ଧର୍ମଃ ସତ୍ତ୍ୱଶୋଧକଃ ।
କର୍ତ୍ତୃପାଳକସଂଜ୍ଞାଦି ମନ୍ୱାଦୀନାଂ ନିରୂପଣୈଃ ।। ୩
ସଦ୍ଧର୍ମଶୁଦ୍ଧସତ୍ତ୍ୱାନାମନ୍ତରଙ୍ଗେଶସତ୍କଥା ।
ସୂର୍ଯ୍ୟସୋମାନ୍ୱୟାଖ୍ୟାନୈରଧୁନା ସଙ୍ଗତୋଚ୍ୟତେ ।। ୪
ତତ୍ର ଚ - ତ୍ରୟୋଦଶଭିରଧ୍ୟାୟୈଃ ସୂର୍ଯ୍ୟବଂଶୋଽନୁବର୍ଣ୍ଣ୍ୟତେ ।
ଏକାଦଶଭିରଧ୍ୟାୟୈଃ ସୋମବଂଶସ୍ତତଃ ପରୈଃ ।। ୫
ତତ୍ର ତୁ ପ୍ରଥମେଽଧ୍ୟାୟେ ବୈବସ୍ୱତସୁତାନ୍ୱୟେ ।
ସୋମବଂଶପ୍ରବେଶୋକ୍ତ୍ୟୈ ସୁଦ୍ୟୁମ୍ନସ୍ତ୍ରୀତ୍ୱମୁଚ୍ୟତେ ।। ୬

ଶ୍ରୀରାଜୋବାଚ

୧ ଯେ ଶୁକମୁନି ବ୍ୟାସସୁତ । ତାଙ୍କୁ ପୁଚ୍ଛିଲେ ପରୀକ୍ଷିତ ।।
ତୁମ୍ଭେ ଯା' କରିଛ କୀର୍ତ୍ତନ । ସେ ସର୍ବ ମନ୍ୱନ୍ତରମାନ ।।
ଶ୍ରବଣ କରିଛି ପୂର୍ବରେ । ଯଉଁ ସକଳ ମନ୍ୱନ୍ତରେ ।।
ଅନନ୍ତବୀର୍ଯ୍ୟ ଭଗବାନ । କଲେ ଯେବଣ କଥାମାନ ।।
ସେ କଥାମାନଙ୍କୁ ହିଁ ପୁଣ । ପୂର୍ବେ ମୁଁ କରିଛି ଶ୍ରବଣ ।।
୨ ଯେ ରାଜରଷି ସତ୍ୟବ୍ରତ । ଦ୍ରବିଡ଼େଶ୍ୱର ହୋଇ ଖ୍ୟାତ ।।
ଜ୍ଞାନକୁ ଗତ କଳ୍ପାନ୍ତରେ । ଲଭିଲା ଯେ ବିଷ୍ଣୁସେବାରେ ।।
୩ ସେ ହେଲା ସୂର୍ଯ୍ୟଙ୍କର ସୁତ । ମନୁରୂପରେ ସେ ବିଖ୍ୟାତ ।।
ତୁମ୍ଭର ଠାରୁ ଏକଥା ହିଁ । ପୂର୍ବେ ଶ୍ରବଣ କରିଥାଇଁ ।।
ତୁମ୍ଭେ କହିଛ ତା' କୁମର । ଇକ୍ଷ୍ୱାକୁ ଆଦି ନରେଶ୍ୱର ।।
୪ ହେ ବିପ୍ର ! ଭିନ୍ନ ଭିନ୍ନ କରି । ବଂଶମାନଙ୍କୁ ତାହାଙ୍କରି ।।
ବଂଶାନୁଚରିତକୁ ନିତ୍ୟ । ଶୁଣିମା ଅର୍ଥେ ଆମ୍ଭ ଚିତ୍ତ ।।
ସେମାନ ଆହେ ମହାଭାଗ । ପ୍ରକାଶ କର ଆମ୍ଭ ଆଗ ।।
୫ ଯେ ରାଜାମାନେ ଥିଲେ ପୂର୍ବେ । ଯେ ହେବେ ଯେ ଅଛନ୍ତି ଏବେ ।।
ପୁଣ୍ୟ ଅଟଇ ତାଙ୍କ କୀର୍ତ୍ତି । ସେ ସର୍ବେ ପୂର୍ବ ନରପତି ।।
ତାହାଙ୍କ ବିକ୍ରମମାନଙ୍କୁ । କହ ବିସ୍ତାରିଣ ଆମ୍ଭଙ୍କୁ ।।

ଶ୍ରୀସୂତ ଉବାଚ

୬ ଋଷିମାନଙ୍କର ସଭାରେ । ସେ ପରୀକ୍ଷିତ ଏ ପ୍ରକାରେ ॥
ପୃଚ୍ଛନ୍ତେ ତାଙ୍କୁ ଏ ବଚନ । କହିଲେ ବ୍ୟାସଙ୍କ ନନ୍ଦନ ॥
ପରମ ଧର୍ମମାନ ଜାଣି । ଅଛନ୍ତି ଯଉଁ ଶୁକ ପୁଣି ॥

ଶ୍ରୀଶୁକ ଉବାଚ

୭ ମନୁବଂଶକୁ ସଂକ୍ଷେପେଣ । ହେ ନୃପ ! କର ତୁ ଶ୍ରବଣ ॥
ଯାହା କହିବାକୁ ବିସ୍ତାରି । ଶତେ ବରଷେହେଁ ନ ପାରି ॥
୮ ବ୍ରହ୍ମରୁ କୀଟପରିଯନ୍ତେ । ଯେତେକ ପ୍ରାଣୀ ଏ ଜଗତେ ॥
ଯେ ଆତ୍ମା ସେ ସମସ୍ତଙ୍କରି । ପରମ ପୁରୁଷ ଶ୍ରୀହରି ॥
କଳ୍ପାନ୍ତେ ଥିଲେ ଏକା ସେହି । ଏ ବିଶ୍ୱ ଆନ କେହି ନାହିଁ ॥
୯ ତାହାଙ୍କ ନାଭିରୁ ପ୍ରକାଶ । ହେଲା ସୁବର୍ଣ୍ଣପଦ୍ମକୋଷ ॥
ହେ ନୃପ ! ଚତୁର୍ମୁଖ ହୋଇ । ବ୍ରହ୍ମା ଜନମ ହେଲା ତହିଁ ॥
୧୦ ମରୀଚି ତାଙ୍କ ମନୁଁ ଜାତ । କଶ୍ୟପ ମରୀଚିଙ୍କ ସୁତ ॥
ଅଦିତି ଯେ ଦକ୍ଷର ସୁତା । କଶ୍ୟପଙ୍କର ସେ ବନିତା ॥
ତା' ଠାରେ କଶ୍ୟପରୁ ଜାତ । ହୋଇଲା ସ୍ୱୟେଂ ସୂର୍ଯ୍ୟସୁତ ॥
୧୧ ସଂଜ୍ଞା ନାମରେ ତା ଗୃହିଣୀ । ହେ ନୃପ ! ତାହାଠାରେ ପୁଣି ॥
ସେ ସୂର୍ଯ୍ୟଠାରୁ ମନୁ ଜାତ । ସେ ଶ୍ରାଦ୍ଧଦେବ ନାମେ ଖ୍ୟାତ ॥
ସେ ଆତ୍ମବନ୍ତ ଦଶ ସୁତ । ଶ୍ରଦ୍ଧାର ଠାରେ କଲା ଜାତ ॥
୧୨ ଇକ୍ଷ୍ୱାକୁ ନୃଗ ଯେହୁ ଦିଷ୍ଟ । ଶର୍ଯ୍ୟାତି କରୂଷକ ଧୃଷ୍ଟ ॥
ପୃଷଧ୍ର ନରିଷ୍ୟନ୍ତ ଦୁଇ । ନାଭାଗ କବି ଦଶ ଏହି ॥
୧୩ ପୂର୍ବ ସମୟରେ ମନୁର । ସନ୍ତତି ନ ଥିଲା କୁମର ॥
ତା' ପୁତ୍ର ଜନମନିମିତ୍ତେ । ବଶିଷ୍ଠ ଋଷି ତୋଷଚିତ୍ତେ ॥
ଯେ ଇଷ୍ଟି ମିତ୍ରାବରୁଣର । ଆରମ୍ଭ କଲେ ତା' ସତ୍ୱର ॥
୧୪ ଯେ ଶ୍ରଦ୍ଧା ପତ୍ନୀ ମନୁଙ୍କର । ପୟ କରଇ ସେ ଆହାର ॥
ପ୍ରଣାମ କରିଣ ହୋତାଙ୍କୁ । ମାଗିଲା ସେ ସୁତା ହେବାକୁ ॥
୧୫ ହେ ହୋତା କର ତୁ ଯଜନ । ଏମନ୍ତ ପ୍ରକାରେ ବଚନ ॥
ଅଧ୍ୱର୍ଯ୍ୟୁ କରନ୍ତେ ଉକତ । ସେ ହୋତା ହୋଇ ସମାହିତ ॥
ମାଗିଲା ରାଜପତ୍ନୀ ଯାହା । ଚିନ୍ତା କରନ୍ତେ ମନେ ତାହା ॥
ଘେନନ୍ତେ ହବିର୍ଭାଗ କରେ । ହୋମକୁ କଲା ବଷଟ୍‌କାରେ ॥
୧୬ ଯେ ହୋମକର୍ତ୍ତା ସେ ଯଜ୍ଞରେ । ତାହାର କର୍ମବ୍ୟଭିଚାରେ ॥
କନ୍ୟାଏ ହୋଇଲା ଜନମ । ତାହାର ହେଲା ଇଳା ନାମ ॥

ମନୁ ସେ ଦୁହିତାକୁ ଚାହିଁ । ଅତିହରଷମନ ନୋହି ।। ୪୬
ଯେ ଗୁରୁ ସନ୍ନିଧିରେ ଥିଲେ । ତାହାଙ୍କୁ ଏମନ୍ତ କହିଲେ ।। ୪୭

ଶ୍ରୀମନୁରୁବାଚ

୧୭ ହେ ବିପ୍ର ! ବ୍ରହ୍ମବାଦୀ ହୋଇ । ବିଖ୍ୟାତ ତୁମ୍ଭେ ସବୁଠାଇଁ ।। ୪୮
ଏ କର୍ମ ତୁମ୍ଭମାନଙ୍କର । କିରୂପେ ହୋଇଲା ପ୍ରଚାର ।। ୪୯
କର୍ମ ହୋଇଲା ବିପରୀତ । ଏ କଷ୍ଟ ଅଟେ ଅଦଭୁତ ।। ୫୦
ମନ୍ତ୍ରର ନୋହୁ ଏ ରୂପରେ । ଅନ୍ୟଥାଭାବ ଆଉ ଥରେ ।। ୫୧
୧୮ ତୁମ୍ଭେ ସମସ୍ତେ ଯୋଗ୍ୟ ପୁଣି । ମନ୍ତ୍ରମାନ ହିଁ ଅଛ ଜାଣି ।। ୫୨
ତପଆଚରଣେ ବିନାଶ । କରିଛ ଅଶେଷ କଳୁଷ ।। ୫୩
ବିଷମଭାବ କି ପ୍ରକାରେ । ସମ୍ଭବ ହେଲା ସଂକଳ୍ପରେ ।। ୫୪
ଦେବତାମାନଙ୍କର ଠାଇଁ । ଯେସନେ ମିଥ୍ୟା ଉପୁଜଇ ।। ୫୫
୧୯ ଏ ରୂପେ ନୃପତିବଚନ । ଶୁଣି ବଶିଷ୍ଠ ଭଗବାନ ।। ୫୬
ହୋତାର ଅତିକ୍ରମ[୧] ଜାଣି । କହିଲେ ନୃପତିକି ପୁଣି ।। ୫୭
୨୦ ହୋମକର୍ତ୍ତାର ବ୍ୟଭିଚାରେ । ବିଷମ ଭାବ ସଂକଳ୍ପରେ ।। ୫୮
ସଂଭବ ହୋଇଲା ତୋହର । ତଥାପି ତେଜେ ଆପଣାର ।। ୫୯
ଯେମନ୍ତେ ତୋର ଦିବ୍ୟ ସୁତ । ହୋଇବ କରିବି ତେମନ୍ତ ।। ୬୦
୨୧ ହେ ନୃପ ! ଅତି କୀର୍ତ୍ତିମନ୍ତ । ସେହୁ ବଶିଷ୍ଠ ଭଗବନ୍ତ ।। ୬୧
ଏମନ୍ତ ବ୍ୟବସାୟ କରି । ଇଳା ଯେମନ୍ତେ ନୋହେ ନାରୀ ।। ୬୨
ବିଷ୍ଣୁଙ୍କୁ ସେହି କାମନାରେ । ସ୍ତୁତି ଆରମ୍ଭିଲେ ନିର୍ଭରେ ।। ୬୩
୨୨ ଶ୍ରୀହରି ସଂତୋଷ ହୋଇଲେ । ତାହାଙ୍କୁ କାମବର ଦେଲେ ।। ୬୪
ତେଣୁ ସେ ଇଳା କନ୍ୟା ପୁଣ । ଉତ୍ତମ ପୁରୁଷ ରୂପେଣ ।। ୬୫
ଖ୍ୟାତିକି ସୁଦ୍ୟୁମ୍ନ ନାମରେ । ଲଭିଲା ସକଳ ଲୋକରେ ।। ୬୬
୨୩} ହେ ମହାରାଜ ! ଏକ ଦିନେ । କରନ୍ତେ ମୃଗୟା ସେ ବନେ ।। ୬୭
୨୪} ଅମାତ୍ୟମାନେ କେତେ କେତେ । ବେଢ଼ିଣ ଥିଲେ ତା' ସଙ୍ଗତେ ।। ୬୮
ଯେ ସିନ୍ଧୁଦେଶରେ ସମ୍ଭୂତ । ସେ ଅଶ୍ୱ ଆରୋହି ତୁରିତ ।। ୬୯
ଧରିଣ ରୁଚିର ଚାପକୁ । ପରମ ଅଦ୍‌ଭୁତ ଶରକୁ ।। ୭୦
ଧରିଛି ଦେହେ କବଚକୁ । ଅନୁସରନ୍ତେ ସେ ମୃଗକୁ ।। ୭୧
ଉତ୍ତର ଦିଗକୁ ଗମନ । କଲା ସେ ସୁଦ୍ୟୁମ୍ନ ରାଜନ ।। ୭୨
୨୫ ମେରୁର ଅଧୋଭାଗେ ସ୍ଥିତ । କୁମାରବନ[୨] ଯେ ବିଦିତ ।। ୭୩
ପ୍ରବେଶ ହୋଇଲା ସେ ତହିଁ । ଶଙ୍କର ଉମାସଙ୍ଗେ ଯହିଁ ।। ୭୪

୧. ବ୍ୟତିକ୍ରମ । ୨. ସୁକୁମାର ବନ ।

| | | | | | |
|---|---|---|---|---|---|
| | ଏକାନ୍ତେ କରନ୍ତେ ବିହାର | । | ରହି ଅଛନ୍ତି ନିରନ୍ତର | ।। | ୭୫ |
| ୨୬ | ଯେ ଅରିବୀରଙ୍କ ସଂହାର | । | କର୍ତ୍ତା ସୁଦ୍ୟୁମ୍ନ ନରେଶ୍ୱର | ।। | ୭୬ |
| | ମିଳି ସେ ଆପଣାକୁ ତହିଁ | । | ଦେଖିଲା ସ୍ତିରୀ ଅଛି ହୋଇ | ।। | ୭୭ |
| | ହେ ନୃପ ! ବଡ଼ବାରୂପରେ | । | ଅଶ୍ୱକୁ ଦେଖିଲା କ୍ରମରେ | ।। | ୭୮ |
| ୨୭ | ହେ ନୃପ ! ଭୃତ୍ୟମାନେ ତାର | । | ପୁରୁଷଲିଙ୍ଗ ଆପଣାର | ।। | ୭୯ |
| | ଦେଖିଣ ଅନ୍ୟଥା ଭାବରେ | । | ଚାହାଁନ୍ତେ ଏକ ଆରକରେ | ।। | ୮୦ |
| | ସମସ୍ତେ ହୋଇଲେ ବିମନ | । | ଯେଣୁ ସ୍ୱଭାବ ହେଲା ଆନ | ।। | ୮୧ |

ଶ୍ରୀରାଜୋବାଚ

| | | | | | |
|---|---|---|---|---|---|
| ୨୮ | ହେ ମୁନି ! ଏମନ୍ତ ପ୍ରକାର | । | ଗୁଣ କେମନ୍ତେ ସେ ଦେଶର | ।। | ୮୨ |
| | କେ ଅବା କଲା ଏ ପ୍ରକାରେ | । | ଏ ପ୍ରଶ୍ନ କହ ମୋ ଆଗରେ | ।। | ୮୩ |
| | ଏକଥା ଶ୍ରବଣେ ଆମ୍ଭର | । | କୌତୁକ ହୋଇଛି ଅପାର | ।। | ୮୪ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୯ | ଯହିଁ ତିମିର ନାଶ ହେଲା | । | ଆନର ପ୍ରକାଶ ହିଁ ଗଲା | ।। | ୮୫ |
| | ଦିଗମାନଙ୍କୁ ଏ ପ୍ରକାରେ | । | କରନ୍ତେ ଏକଦିନକରେ | ।। | ୮୬ |
| | ଋଷିଏ ଗଲେ ସେ ଦେଶକୁ | । | ଦେଖିବା ନିମିତ୍ତେ ଶିବଙ୍କୁ | ।। | ୮୭ |
| ୩୦ | ଅମ୍ବିକା ଦେବୀ ଦେଖି ତାଙ୍କୁ | । | ଲଭିଲେ ଅତ୍ୟନ୍ତ ଲଜ୍ଜାକୁ | ।। | ୮୮ |
| | ବିବସ୍ତ୍ର ହୋଇଥିଲେ ଯେଣୁ | । | ଭର୍ତ୍ତାକୋଡ଼ରୁ ଉଠି ତେଣୁ | ।। | ୮୯ |
| | ଘେନିଣ ଉତ୍ତମ ବସନ | । | ବେଗେ କଲେ ତା' ପରିଧାନ | ।। | ୯୦ |
| ୩୧ | ରମଣ କରନ୍ତେ ସେ ଦୁଇ | । | ତାହାଙ୍କ ପ୍ରସଙ୍ଗକୁ[୧] ଚାହିଁ | ।। | ୯୧ |
| | {ସ୍ତିରୀପ୍ରସଙ୍ଗେ ଅକସ୍ମାତ | । | ମନ ହୁଅନ୍ତେ କଳୁଷିତ | ।।} | |
| | ଋଷିଏ ତହୁଁ ନିବର୍ତ୍ତିଲେ | । | ବଦରୀ ଆଶ୍ରମକୁ ଗଲେ | ।। | ୯୨ |
| ୩୨ | ଯେ ଉମା ପ୍ରିୟା ଆପଣାର | । | ପ୍ରିୟକାମନାରେ ତାହାର | ।। | ୯୩ |
| | ସେ ଘେନି ଏମନ୍ତ ବଚନ | । | କହିଲେ ଶିବ ଭଗବାନ | ।। | ୯୪ |
| | ଏ ସ୍ଥାନେ ପ୍ରବେଶ ଯେ ହେବ | । | ସ୍ତିରୀରୂପକୁ ସେ ଭଜିବ | ।। | ୯୫ |
| ୩୩ | ସେହି ଦିନରୁ ସେ କାନନ | । | ପୁରୁଷେ କରନ୍ତି ବର୍ଜନ | ।। | ୯୬ |
| | ଯେ ଥିଲେ ନିଜ ଅନୁଚରେ | । | ସେମାନଙ୍କର ସଙ୍ଗତରେ | ।। | ୯୭ |
| | ଏ ବନୁଁ ସେ ବନକୁ ପୁଣ | । | ସେ ଇଳା କଲାକ ଭ୍ରମଣ | ।। | ୯୮ |
| ୩୪ | ବେଢ଼ି ଅଛନ୍ତି ସ୍ତିରୀମାନେ | । | ଭ୍ରମେ ଆଶ୍ରମସନ୍ନିଧାନେ | ।। | ୯୯ |
| | ପ୍ରମଦାମାନଙ୍କ ମଧ୍ୟରେ | । | ଉତ୍ତମ ଅଟଇ ରୂପରେ | ।। | ୧୦୦ |
| | ତଦନ୍ତେ ବୁଧ ଦେଖି ତାକୁ | । | କାମନା କଲେ ରମିବାକୁ | ।। | ୧୦୧ |

୧. ପ୍ରସଙ୍ଗ = ରତିରେ ଅଭିନିବେଶ ।

| | | | | |
|---|---|---|---|---|
| ୩୫ | ସେ ସୋମତନୂଜ[୧]ଙ୍କୁ ପତି | । କରିବା ଅର୍ଥେ କଲା ମତି | ।। | ୧୦୨ |
| | ସେ ବୁଧ ତାହାଠାରେ ସୁତ | । ପୁରୂରବାକୁ କଲେ ଜାତ | ।। | ୧୦୩ |
| ୩୬ | ମନୁତନୟ ନରନାଥ | । ସୁଦ୍ୟୁମ୍ନ ନାମରେ ବିଖ୍ୟାତ | ।। | ୧୦୪ |
| | ସ୍ତିରୀଭାବକୁ ଏ ପ୍ରକାରେ | । ଲଭିଲା କର୍ମର ବଶରେ | ।। | ୧୦୫ |
| | ଆଚାର୍ଯ୍ୟ ଯେ ନିଜ କୁଳର | । ବଶିଷ୍ଠ ନାମେ ମୁନିବର | ।। | ୧୦୬ |
| | ସ୍ମରଣା କଲା ସେ ତାହାଙ୍କୁ | । ଆମ୍ଭେ ଶୁଣିଲୁଁ ଏ କଥାକୁ | ।। | ୧୦୭ |
| ୩୭ | ସେ ତାହା ସେ ଦଶାକୁ ଚାହିଁ | । କୃପାରେ ଅତି ପୀଡ଼ା ପାଇ | ।। | ୧୦୮ |
| | ବାଞ୍ଛନ୍ତେ ତା' ପୁରୁଷଭାବ | । ମହେଶ୍ୱରଙ୍କୁ କଲେ ସ୍ତବ | ।। | ୧୦୯ |
| ୩୮ | ତାଙ୍କୁ ସଂତୋଷ ହେଲେ ଶିବ | । କରନ୍ତେ ଋଷିପ୍ରୀତିଭାବ | ।। | ୧୧୦ |
| | ସତ୍ୟ କରନ୍ତେ ସ୍ୱବଚନ | । ହେ ନୃପ ! କହିଲେ ବଚନ | ।। | ୧୧୧ |
| ୩୯ | ଏ ତୁମ୍ଭ ଗୋତ୍ରରେ ସଂଭବ | । ମାସେ ପୁରୁଷ ଏ ହୋଇବ | ।। | ୧୧୨ |
| | ସ୍ତିରୀ ହୋଇବ ମାସକରେ | । ସୁଦ୍ୟୁମ୍ନ ଏହି ବ୍ୟବସ୍ଥାରେ | ।। | ୧୧୩ |
| | ଯଥାଇଚ୍ଛାରେ ନୃପ ହୋଇ | । ପାଳନା କରୁ ଏହୁ ମହୀ | ।। | ୧୧୪ |
| ୪୦ | ଆଚାର୍ଯ୍ୟଅନୁଗ୍ରହୁଁ ପୁଣ | । ପୁରୁଷଭାବକୁ ଲଭିଣ | ।। | ୧୧୫ |
| | ମାସବ୍ୟବସ୍ଥାରେ ନୃପତି | । ପାଳନା କଲା ବସୁମତୀ | ।। | ୧୧୬ |
| | ମାସେକ ସ୍ତିରୀରୂପ ହୋଇ | । ଗୃହରେ ଲୁଚି ସେ ବସଇ | ।। | ୧୧୭ |
| | ତେଣୁ ତାହାକୁ ପ୍ରଜାମାନେ | । ଆନନ୍ଦ ନ ଲଭିଲେ ମନେ | ।। | ୧୧୮ |
| ୪୧ | ହେ ନୃପ ! ଉତ୍କଳ ଗୟ | । ବିମଳ ନାମେ ସୁତତ୍ରୟ | ।। | ୧୧୯ |
| | ତାହାର ହୋଇଲେ ସମ୍ଭୂତ | । ଧର୍ମବତ୍ସଳ ସେ ବିଦିତ | ।। | ୧୨୦ |
| | ସମସ୍ତେ ଦକ୍ଷିଣାପଥରେ | । ରାଜା ହୋଇଲେ ସେ କ୍ରମରେ | ।। | ୧୨୧ |
| ୪୨ | ଯେ ନୃପ ପ୍ରତିଷ୍ଠାନପୁରେ | । ସେହୁ ସୁଦ୍ୟୁମ୍ନ ତଦନ୍ତରେ | ।। | ୧୨୨ |
| | କାଳ ହୁଅନ୍ତେ ପରିଣତ | । ଯେ ପୁରୂରବା ନାମେ ସୁତ | ।। | ୧୨୩ |
| | ପୃଥିବୀ ଦେଇଣ ତାହାକୁ | । ଗମନ କଲା ବିପିନକୁ | ।। | ୧୨୪ |
| | ଶ୍ରୀକୃଷ୍ଣଚରଣପଙ୍କଜ | । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ।। | ୧୨୫ |
| | ସୁଜନମାନଙ୍କର ହିତେ | । ନବମସ୍କନ୍ଧ ଭାଷାଗୀତେ | ।। | ୧୨୬ |
| | ବର୍ଣ୍ଣୁଛି ସହରଷ ହୋଇ | । ଲୋକେ ତରିବେ ଯାହା ଗାଇ | ।। | ୧୨୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଇଳୋପାଖ୍ୟାନଂ
ନାମ ପ୍ରଥମୋଽଧ୍ୟାୟଃ ।।

୧. ସୋମତନୂଜ = ବୁଧ ।

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ମନୁପୁତ୍ରାଣାଂ ଦ୍ୱାବପୁତ୍ରୌ ବିରାଗତଃ ।
କରୂଷକାଦିପଞ୍ଚାନାଂ ବଂଶାନାହ ଲଘୁକ୍ରମାତ୍ ॥ ୧

ଶ୍ରୀଶୁକ ଉବାଚ

୧ ସୁଦ୍ୟୁମ୍ନ ନାମେ ଯେ ବିଦିତ । ଏ ରୂପେ ଯାଆନ୍ତେ ସେ ସୁତ ॥ ୧
ଯେ ମନୁ ବୈବସ୍ୱତ ନାମ । ସେ ପୁଣ ହୋଇ ପୁତ୍ରକାମ ॥ ୨
ଶତ ବରଷ ଯମୁନାରେ । ତପସ୍ୟା କଲେ ମନସ୍ଥିରେ ॥ ୩
୨ ସେ ମନୁ ପୁଣ ତଦନ୍ତରେ । ତନୟ ଜନମ ଅର୍ଥରେ ॥ ୪
ଜଗତ-ଈଶ୍ୱର ଯେ ହରି । ତାଙ୍କୁ ପୂଜିଲା ଯତ୍ନ କରି ॥ ୫
ଇକ୍ଷ୍ୱାକୁ ଜ୍ୟେଷ୍ଠ ଯାହାଙ୍କର । ଲଭିଲା ସେ ଦଶ କୁମର ॥ ୬
ଗୁଣରେ ଆପଣା ସମାନ । ଅଟନ୍ତି ସେ ଦଶ ନନ୍ଦନ ॥ ୭
୩ ପୃଷଧ୍ର ନାମରେ ମନୁର । ଜନ୍ମିଲା ଯେବଣ କୁମର ॥ ୮
ଗୋପାଳ କଲେ ଗୁରୁ ତାକୁ । ଯତ୍ନେ ପାଳିଲେ ସେ ଧେନୁଙ୍କୁ ॥ ୯
ଖଡ୍‌ଗ ଧରି ଯା ଉଜାଗର । ବୀର ଆସନ ନାମ ଯାର[1] ॥ ୧୦
ସେ ବ୍ରତ ଆରମ୍ଭ ସେ କଲା । ସଂଯତ ହୋଇଣ ରହିଲା ॥ ୧୧
୪ ଏକଦିନକେ ରଜନୀରେ । ବରଷା କରନ୍ତେ ଗୋଷ୍ଠରେ ॥ ୧୨
ପ୍ରବେଶ ହେଲା ବ୍ୟାଘ୍ର ଯାଇଁ । ଧେନୁମାନେ ଯେ ଥିଲେ ଶୋଇ ॥ ୧୩
ସଭୟ ହୋଇ ସେ ଉଠିଣ । ଗୋଷ୍ଠରେ କଲେକ ଭ୍ରମଣ ॥ ୧୪
୫ ସେ ବଳବନ୍ତ ବ୍ୟାଘ୍ର ତହିଁ । ଗ୍ରହଣ କଲା ଏକ ଗାଈ[2] ॥ ୧୫
ସେ ଭୟେ ଆତୁର ହୋଇଣ । ଶବଦ କଲା ପୁଣ ପୁଣ ॥ ୧୬
ପୃଷଧ୍ର ତା' ରୋଦନ ଶୁଣି । ଅନୁସରିଲା ତାକୁ ପୁଣି ॥ ୧୭
୬ ରଜନୀକାଳେ ତାରାମାନ । ଗଗନେ ହୋଇଛନ୍ତି ଲୀନ ॥ ୧୮
ପୃଷଧ୍ର ସେହି ସମୟରେ । ଖଡ୍‌ଗ ଘେନିଣ ବେଗରେ[3] ॥ ୧୯
ନ ଜାଣି ବ୍ୟାଘ୍ରଭ୍ରମେ ଶିର । ଛେଦିଲା କପିଳା ଧେନୁର ॥ ୨୦
୭ ଖଡ୍‌ଗ ଅଗ୍ରେ ହେଲା ହତ । ବାଟରେ ମୁଞ୍ଚନ୍ତେ ରକତ ॥ ୨୧
ଅତ୍ୟନ୍ତ ଭୟେ ବ୍ୟାଘ୍ର ଗଲା । ଯେଣୁ ତା' ଶ୍ରବଣ ଛିଡ଼ିଲା ॥ ୨୨
୮ ଶାର୍ଦ୍ଦୂଳ ହୋଇଅଛି ହତ । ପୃଷଧ୍ର ମଣନ୍ତେ ଏମନ୍ତ ॥ ୨୩
ରଜନୀ ହୁଅନ୍ତେ ପ୍ରଭାତ । ଆପଣେ କରିଛି ଯା' ହତ ॥ ୨୪
ସେ କପିଳାକୁ ବୀର ଦେଖି । ମନରେ ହେଲା ବଡ଼ଦୁଃଖୀ ॥ ୨୫
୯ ଅକାମ ହୋଇ ଯେ ଗୋବଧ । କରି ଅର୍ଜିଲା ଅପରାଧ ॥ ୨୬

---

୧. ତାର । ୨. ତାହିଁ । ୩. ବ୍ୟଗ୍ରରେ ।

ତାହାକୁ ଗୁରୁ ଶାପ ଦେଲେ । 'ନ ହେବୁ କ୍ଷତ୍ରବନ୍ଧୁ[2]' ଭଲେ ॥ ୨୭
ଏହି ଗୋବଧ କର୍ମେ ପୁଣ । ଶୂଦ୍ର ହୋଇବୁ ଏ ପ୍ରମାଣ ॥ ୨୮
୧୦ ଏମନ୍ତ ପ୍ରକାରେ ତାହାକୁ । ଗୁରୁଏ ଦିଅନ୍ତେ ଶାପକୁ ॥ ୨୯
ଅଞ୍ଜଳି କରି ବେନି କର । ସେ ଶାପ ଘେନିଲା ସତ୍ୱର ॥ ୩୦
ସେ ବୀର ହୋଇ ଊର୍ଦ୍ଧ୍ୱରେତ । ଧଇଲା ମୁନିପ୍ରିୟ ବ୍ରତ ॥ ୩୧
୧୧ ଯେ ବାସୁଦେବ ଭଗବାନ । ସକଳ ଆତ୍ମା ବିଦ୍ୟମାନ ॥ ୩୨
ପରମ ନିର୍ମଳ ଈଶ୍ୱର । ଭଗତିବଶେ ତାଙ୍କ ଠାର ॥ ୩୩
ଏକାନ୍ତ ଭାବକୁ ଲଭିଲା । ସକଳ ଭୂତେ ମିତ୍ର ହେଲା ॥ ୩୪
୧୨ ସକଳ ସଙ୍ଗ କଲା ଦୂର । ପ୍ରଶାନ୍ତ ଆତ୍ମା ଅଟେ ତାର ॥ ୩୫
ସଂଯତ ଇନ୍ଦ୍ରିୟ ହୋଇଲା । ପରିଗ୍ରହକୁ[3] ଦୂର କଲା ॥ ୩୬
ମିଳଇ ଯେ ଅନାୟାସରେ । ନିଜ ବୃତ୍ତିକି ତେଣେ କରେ ॥ ୩୭
୧୩ ମନକୁ ନିବେଶି ଆତ୍ମାରେ । ସଂତୋଷ ହୋଇଲା ଜ୍ଞାନରେ ॥ ୩୮
ଏରୂପେ ସମାହିତ ହୋଇ । ଭ୍ରମିଲା ଏ ସକଳ ମହୀ ॥ ୩୯
ଜଡ଼ ବଧିର ଅନ୍ଧ ପ୍ରାୟ । ପ୍ରକାଶ କଲା ନିଜ କାୟ ॥ ୪୦
୧୪ ଧରିଛି ଏମନ୍ତ ବୃତ୍ତକୁ[4] । ଦିନେ ସେ ଯାଇ ବିପିନକୁ ॥ ୪୧
ଉଠିଛି ବିପିନଦହନ । ତାହା କରିଣ ବିଲୋକନ ॥ ୪୨
ସେ ମୁନି ତେଣେ ଦଗ୍‌ଧ ହେଲା । ପରମ ବ୍ରହ୍ମକୁ ଲଭିଲା ॥ ୪୩
୧୫ କବି ତାହାର ସାନ ଭାଇ । ବିଷୟେ ନିଃସ୍ପୃହ ସେ ହୋଇ ॥ ୪୪
ରାଜ୍ୟ ସକଳ ବନ୍ଧୁ ଜନ । ଛାଡ଼ି ପ୍ରବେଶ ହେଲା ବନ ॥ ୪୫
ଆପଣା ତେଜରେ ପ୍ରକାଶ । ଅଟନ୍ତି ଯେବଣ ପୁରୁଷ ॥ ୪୬
ତାହାଙ୍କୁ ଆପଣା ଚିତ୍ତରେ । ନିବେଶି କରିଣ ଭାଗ୍ୟରେ ॥ ୪୭
ଲଭନ୍ତେ କିଶୋର ବୟସ । ବ୍ରହ୍ମକୁ ହୋଇଲା ପ୍ରବେଶ ॥ ୪୮
୧୬ କରୂଷ ଯେ ମନୁର ସୁତ । କାରୂଷ ନାମେ ତହୁଁ ଜାତ ॥ ୪୯
କ୍ଷତ୍ରିୟଜାତି ଏ ହୋଇଲେ । ଉତ୍ତରାପଥକୁ ପାଳିଲେ ॥ ୫୦
ଧାର୍ମିକ ବ୍ରହ୍ମଣ୍ୟ ସେମାନେ । ଧର୍ମବତ୍ସଳ ଏ ଭୁବନେ ॥ ୫୧
୧୭ ଯେ ଧୃଷ୍ଟ ନାମେ ମନୁସୁତ । କ୍ଷତ୍ରଜାତିଏ ହେଲା ଜାତ ॥ ୫୨
ଧାର୍ଷ୍ଟ ନାମକୁ ସେ ବହିଲେ । କ୍ଷିତିରେ ବ୍ରାହ୍ମଣ ହୋଇଲେ ॥ ୫୩
ନୃଗର ସୁତ ଯେ ସୁମତି । ତା' ଠାରୁ ଜାତ ଭୂତଜ୍ୟୋତି ॥ ୫୪
ଭୂତଜ୍ୟୋତିର ଯେ ବା ସୁତ । ବସୁ ନାମରେ ସେ ବିଦିତ ॥ ୫୫
୧୮ ପ୍ରତୀକନାମେ ବସୁସୁତ । ତାର ତନୟ ଓଘବନ୍ତ ॥ ୫୬
ଓଘବନ୍ତର ସୁତ ଯେହି । ନାମରେ ଓଘବାନ ସେହି ॥ ୫୭

---

୧. କ୍ଷତ୍ରିୟ ହେଲେହେଁ ତୁ ଭଲେ । ୨. ଅଧମ କ୍ଷତ୍ରିୟ । ୩. ଗୃହଧନ୍ଦା । ୪. ବୃତ୍ତିକୁ ।

କନ୍ୟାଏ ନାମ ଓଘବତୀ । ସୁଦରଶନ ତାର ପତି ॥ ୫୮
୧୯ ନରିଷ୍ୟନ୍ତର ଯେ ନନ୍ଦନ । ତାହାର ନାମ ଚିତ୍ରସେନ ॥ ୫୯
ଋକ୍ଷ[1] ନାମରେ ତାହା ସୁତ । ମୀଢ୍ୱାନ ତାହା ତହୁଁ ଜାତ ॥ ୬୦
ତାହାର କୁକ୍ଷି[2] ନାମେ ସୁତ । ତା' ଠାରୁ ଇନ୍ଦ୍ରସେନ ଜାତ ॥ ୬୧
୨୦ ଇନ୍ଦ୍ରସେନର ଯେ ବା ପୁତ୍ର । ତାହାର ନାମ ବୀତିହୋତ୍ର ॥ ୬୨
ତା'ଠାରୁ ସମ୍ଭବ ଯେ ସୁତ । ତା'ନାମ ସତ୍ୟଶ୍ରବା ଖ୍ୟାତ ॥ ୬୩
ସତ୍ୟଶ୍ରବାର ଠାରୁ ଜାତ । ହୋଇଲା ଉରୁଶ୍ରବା ସୁତ ॥ ୬୪
ଉରୁଶ୍ରବାର ସୁତ ଯେହି । ନାମରେ ଦେବଦତ୍ତ ସେହି ॥ ୬୫
୨୧ ତା' ସୁତ ଅଗ୍ନିବେଶ୍ୟ ନାମ । ସ୍ୱୟେଂ ଅନଳ ହେଲେ ଜନ୍ମ ॥ ୬୬
ସେ ଅଗ୍ନିବେଶ୍ୟ ଭଗବନ୍ତ । କାନୀନ ନାମରେ ବିଖ୍ୟାତ ॥ ୬୭
ଜାତୂକର୍ଣ୍ଣ ନାମକୁ ବହି । ବିଖ୍ୟାତ ମହାମୁନି ସେହି ॥ ୬୮
୨୨ ହେ ନୃପ ! ଅଗ୍ନିବେଶ୍ୟାୟନ । ନାମରେ ସେଠାରୁ ଉତ୍ପନ୍ନ ॥ ୬୯
ବ୍ରାହ୍ମଣମାନଙ୍କର ବଂଶ । କହିଲୁଁ ନରିଷ୍ୟନ୍ତ ଅଂଶ ॥ ୭୦
ଯେ ଦିଷ୍ଟ ମନୁର କୁମର । ଏବେ ହୋ ଶୁଣ ବଂଶ ତାର ॥ ୭୧
୨୩ ନାଭାଗ ନାମେ ସୁତ ଆନ । ଦିଷ୍ଟର ହେଲା ଉତପନ୍ନ ॥ ୭୨
ବୈଶ୍ୟଭାବକୁ ଏ ସଂସାରେ । ଲଭିଲା ସେ ନିଜ କର୍ମରେ ॥ ୭୩
ତାହାର ଭଲନ୍ଦନ ସୁତ । ତାଠାରୁ ବତ୍ସପ୍ରୀତି ଜାତ ॥ ୭୪
୨୪ ବତ୍ସପ୍ରୀତିର ପ୍ରାଂଶୁ ସୁତ । ପ୍ରମତି ତାଠାରୁ ସମ୍ଭୂତ ॥ ୭୫
ଏହା ବୋଲନ୍ତି ସର୍ବ ଜନ । ଖନିତ୍ର ପ୍ରମତିନନ୍ଦନ ॥ ୭୬
ଚାକ୍ଷୁଷ ତା'ଠାରୁ ଉତ୍ପତ୍ତି । ତାହାର ସୁତ ବିବିଂଶତି ॥ ୭୭
୨୫ ବିବିଂଶତିର ରମ୍ଭ ପୁତ୍ର । ତାର ଧାର୍ମିକ ଖନିନେତ୍ର ॥ ୭୮
ହେ ମହାରାଜ ! କରନ୍ଧମ । ସେ ଖନିନେତ୍ରଠାରୁ ଜନ୍ମ ॥ ୭୯
୨୬ ତା' ସୁତ ଅବୀକ୍ଷିତ ନାମ । ମରୁତ୍ତ ତାଠାରୁ ଜନମ ॥ ୮୦
ସେ ଚକ୍ରବର୍ତ୍ତୀ ହୋଇ ଖ୍ୟାତ । ଯାହାଙ୍କୁ ଅଙ୍ଗିରାଙ୍କ ସୁତ ॥ ୮୧
ସଂବର୍ତ୍ତ କରାଇଲେ ଯାଗ । ସେ ମହାଯୋଗୀ ମହାଭାଗ ॥ ୮୨
୨୭ ମରୁତ୍ତ-ଯଜ୍ଞପ୍ରାୟେ ହୋଇ । ଇତର ଯଜ୍ଞ କେହି ନୋହି ॥ ୮୩
ଯେ କେହି ପାତ୍ର ଆଦିମାନ । ସୁବର୍ଣ୍ଣମୟ ସେ ଶୋଭନ ॥ ୮୪
୨୮ ସୋମପାନରେ ପୁରନ୍ଦର । ମତ୍ତ ହୋଇଲେ ନିରନ୍ତର ॥ ୮୫
ଋତ୍ୱିଜମାନେ ଯେ ବା ଥିଲେ । ଦକ୍ଷିଣାରେ ସେ ତୋଷ ହେଲେ ॥ ୮୬
ବେଢ଼ି ରହିଲେ ମରୁଦ୍‌ଗଣ । ଦେବେ ମଣ୍ଡିଲେ ସଭା ପୁଣ ॥

୧. ଦକ୍ଷ ।　　　୨. ପୂର୍ଣ୍ଣ, କୂର୍ଚ୍ଚ ।

୨୯ ମରୁତ୍ତଠାରୁ ଦମ ଜାତ । ରାଜବର୍ଧନ[୧] ତାର ସୁତ ॥ ୮୭
ସୁଧୃତି ତାହାର କୁମର । ସୁଧୃତି ପୁତ୍ର ଅଟେ ନର ॥ ୮୮
୩୦ କେରଳ[୨] ନାମେ ନରସୁତ । ତାହାର ସୁତ ଧୁନ୍ଧୁମନ୍ତ[୩] ॥ ୮୯
ଧୁନ୍ଧୁମନ୍ତର ଯୋଗବନ୍ତ[୪] । ଯୋଗବନ୍ତର ବୁଧ[୫] ସୁତ ॥ ୯୦
ଯେ ତୃଣବିନ୍ଦୁ ମହୀପତି । ବୁଧଠାରୁ ସେ ଉତପତ୍ତି ॥ ୯୧
୩୧ ଭଜନଯୋଗ୍ୟ ଯେତେ ଗୁଣ । ତାହାର ସ୍ଥାନ ସେହୁ ପୁଣ ॥ ୯୨
ଅପ୍‌ସରାମାନଙ୍କେ ଉତ୍ତମ । ଯାହାର ଅଳମ୍ବୁଷା ନାମ ॥ ୯୩
ତୃଣବିନ୍ଦୁକୁ ସେ ଭଜିଲା । ପୁତ୍ରମାନଙ୍କୁ ଜାତ କଲା ॥ ୯୪
କନ୍ୟାଏ କଲା ସେ ଜନମ । ତାହାର ଇଳବିଳା[୬] ନାମ ॥ ୯୫
୩୨ ତାଠାରେ[୭] ବିଶ୍ରବାଏ ଜାତ । କଲେ ଧନଦ[୮] ନାମେ ସୁତ ॥ ୯୬
ସେ ଯୋଗେଶ୍ୱର ତା' ପିତାକୁ । ଦେଇଣ ପରମ ବିଦ୍ୟାକୁ ॥ ୯୭
୩୩ ବିଶାଳ ପୁଣ୍ୟବନ୍ଧୁ[୯] ବେନି । ଧୂମ୍ରକେତୁକୁ ମିଶି ତିନି ॥ ୯୮
ତୃଣବିନ୍ଦୁର ଏ କୁମର । ବିଶାଳ ରାଜା ବଂଶକର ॥ ୯୯
ସେ ବଇଶାଳୀ ନାମେ ପୁର । ନିର୍ମାଣ କଲା ନରେଶ୍ୱର ॥ ୧୦୦
୩୪ ତା' ସୁତ ହେମଚନ୍ଦ୍ର ନାମ । ଧୂମ୍ରାକ୍ଷ[୧୦] ତା'ଠାରୁ ଜନମ ॥ ୧୦୧
ଯେ ଅଟେ ଧୂମ୍ରାକ୍ଷର ସୁତ । ସଂଯମ ନାମେ ସେ ବିଦିତ ॥ ୧୦୨
କୃଶାଶ୍ୱ ଦେବଜ[୧୧] ସହିତେ । ସଂଯମର ଏ ବେନି ସୁତେ ॥ ୧୦୩
୩୫ କୃଶାଶ୍ୱଠାରୁ ଯେ ସଂଭୂତ । ତାହାର ନାମ ସୋମଦତ୍ତ ॥ ୧୦୪
ଯେ ଅଶ୍ୱମେଧମାନଙ୍କରେ । ବିଷ୍ଣୁଙ୍କୁ ପୂଜିଣ ନିର୍ଭରେ ॥ ୧୦୫
ଉତ୍ତମ ଗତିକି ଲଭିଲା । ଯୋଗେଶ୍ୱରଙ୍କୁ ଆଶ୍ରେ କଲା ॥ ୧୦୬
୩୬ ସୁମତି ସୋମଦତ୍ତସୁତ । ଜନମେଜୟ ତହୁଁ ଜାତ ॥ ୧୦୭
ବିଶାଳନୃପତିବଂଶରେ । ଜନମ ଏତେ ନୃପବରେ ॥ ୧୦୮
ଯେ ତୃଣବିନ୍ଦୁ ନରପତି । ତା' ଯଶକୁ ଏ ଧରିଛନ୍ତି ॥ ୧୦୯
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବଂଧୁ ମତି ॥ ୧୧୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ
ନାମ ଦ୍ୱିତୀୟୋଽଧ୍ୟାୟଃ ॥

---

୧. ରାଜ୍ୟବର୍ଧନ । ୨. କେବଳ । ୩. ବନ୍ଧୁମନ୍ତ । ୪. ବେଗବନ୍ତ । ୫. ବନ୍ଧୁ । ୬. ଇଡ଼ବିଡ଼ା ।
୭. ଯା' ଠାରେ । ୮. କୁବେର । ୯. ଶୂନ୍ୟବନ୍ଧୁ । ୧୦. ଧୂମ୍ରାକ । ୧୧. ଦେବଳ ।

## ତୃତୀୟ ଅଧ୍ୟାୟ

ତୃତୀୟେ ମନୁପୁତ୍ରସ୍ୟ ଶର୍ଯ୍ୟାତେଃ କୀର୍ତ୍ତ୍ୟତେଽନ୍ୱୟଃ ।
ଯତ୍ର ସୌକନ୍ୟମାଖ୍ୟାନଂ ରେବତଂ ଚ ମହାଦ୍ଭୁତମ୍ ॥ ୧ ॥

ଶ୍ରୀଶୁକ ଉବାଚ

୧ ଯେ ମନୁତନୟ ଶର୍ଯ୍ୟାତି । ବେଦାର୍ଥଜ୍ଞାତା ସେ ନୃପତି ॥ ୧
ଯା କରି ଦ୍ୱିତୀୟ ଦିନରେ । ସେ କର୍ମମାନଙ୍କୁ ପୂର୍ବରେ ॥ ୨
ସତ୍ରେ ଅଙ୍ଗିରାମାନଙ୍କର । କହିଲା ଯଉଁ ନୃପବର ॥ ୩
୨ ସୁକନ୍ୟା ନାମେ କନ୍ୟା ତାର । କମଳପ୍ରାୟେ ନେତ୍ର ଯାର ॥ ୪
ତାହା ସଙ୍ଗତେ ସେ ବନକୁ । ଗଲା ଚ୍ୟବନ ଆଶ୍ରମକୁ ॥ ୫
୩ ସେ ସଖୀମାନଙ୍କ ସଙ୍ଗରେ । ବୃକ୍ଷଙ୍କୁ ଖୋଜନ୍ତେ ବନରେ ॥ ୬
ବଲ୍ମୀକ[1] ରନ୍ଧ୍ରେ ଜ୍ୟୋତିବେନି । ବୁଲନ୍ତେ ଦେଖିଲା କାମିନୀ ॥ ୭
ସେ ବେନି ଜ୍ୟୋତି ମନୋରମ । ଦିଶନ୍ତି ଖଦ୍ୟୋତ[2] ର ସମ ॥ ୮
୪ ଦଇବେ ନିଯୋଜିତ ହୋଇ । କଣ୍ଟକରେ ସେ ଜ୍ୟୋତି ଦୁଇ ॥ ୯
ମୂଢ଼ ଭାବରେ ସେ ଭେଦିଲା । ବହୁତ ରକ୍ତ ତହୁଁ ଗଲା ॥ ୧୦
୫ ସୈନ୍ୟମାନଙ୍କର ତତ୍‌କାଳ । ନିରୋଧ ହେଲା ମୂତ୍ରମଳ ॥ ୧୧
ସେ ରାଜଋଷି ତାହା ଜାଣି । ମନେ ବିସ୍ମୟ ହୋଇ ପୁଣି ॥ ୧୨
ଆପଣା ପୁରୁଷମାନଙ୍କୁ । ପୁଚ୍ଛିଲେ ଏମନ୍ତ ବାକ୍ୟକୁ ॥ ୧୩
୬ ତୁମ୍ଭେ ଭାର୍ଗବ[3] ଋଷିଙ୍କର । କଲ ନା ଅଭଦ୍ର[4] ଆଚାର ॥ ୧୪
ନିଶ୍ଚେ ତା' ଆଶ୍ରମ ଦୂଷଣ । ଆମ୍ଭର କେହି କଲା ପୁଣ ॥ ୧୫
୭ ସୁକନ୍ୟା ଭୟ ପାଇ ମନ । ପିତାଙ୍କୁ କହିଲା ବଚନ ॥ ୧୬
ନ ଜାଣନ୍ତେ ମୁଁ ଜ୍ୟୋତି ଦୁଇ । କଣ୍ଟା ଘେନିଣ ଭେଦିଲଇଁ ॥ ୧୭
୮ ସୁତାବଚନ ଶୁଣି ଭୀତି । ଲଭିଲା ଶର୍ଯ୍ୟାତି ନୃପତି ॥ ୧୮
ବଲ୍ମୀକମଧ୍ୟେ ଅନ୍ତର୍ଧାନ । ହୋଇଣ ଥିଲେ ଯେ ଚ୍ୟବନ ॥ ୧୯
ଅଳପ କରିଣ ପ୍ରସନ୍ନ । ତାଙ୍କୁ କରାଇଲା ରାଜନ ॥ ୨୦
୯ ଭୋ ମୁନି ! ଏକନ୍ୟା ମୋହର । ସହିବ ଦୋଷକୁ ଏହାର ॥ ୨୧
ନୃପତି ଏମନ୍ତ ବୋଲନ୍ତେ । ମୁନି ପଚାରିଲେ ତଦନ୍ତେ ॥ ୨୨
ହେ ନରପତି ! ଏ କନ୍ୟାର । ବିବାହ କେତେ ସଂବତ୍ସର ॥ ୨୩
କି ଅବା ଏହାକୁ ବିବାହ । ଆଜପର୍ଯ୍ୟନ୍ତେ କରି ନାହଁ ॥ ୨୪
ଏମନ୍ତ ରୂପେ ମୁନିଙ୍କର । ଇଙ୍ଗିତ କରିଣ ଗୋଚର ॥ ୨୫
ତାହାଙ୍କୁ ଦୁହିତାକୁ ଦେଲା । କଷ୍ଟରୁ ମୁକତ ହୋଇଲା ॥ ୨୬

---

୧. ବଲ୍ମୀକ = ଉଇହୁଙ୍କା    ୨. ଖଦ୍ୟୋତ = ଜୁକୁଜୁକିଆ ପୋକ
୩. ଭାର୍ଗବ = ଚ୍ୟବନ    ୪. ଅଭଦ୍ର = ଅପରାଧ ।

ରଷିଙ୍କି କରି ଆମନ୍ତ୍ରଣ । ନିଜ ପୁରକୁ ଗଲା ପୁଣ ॥
୧୦ ପରମ କ୍ରୋଧୀ ମୁନି ସେହି । ତାହାଙ୍କୁ ପତି କରି ପାଇ ॥
ସୁକନ୍ୟା ଜାଣି ତାଙ୍କ ମନ । ସନ୍ତତେ ହୋଇ ସାବଧାନ ॥
ଅନୁବୃତ୍ତିରେ ବାରମ୍ବାର । ତୋଷିଲା ମନ ତାହାଙ୍କର ॥
୧୧ କେତେହେଁ କାଳ ଅନନ୍ତର । ଆଶ୍ରମକୁ ସେ ଚ୍ୟବନର ॥
ଅଇଲେ ଅଶ୍ୱିନିକୁମାରେ । ତାହାଙ୍କୁ ପୂଜି ବିନୟରେ ॥
ରଷି ବୋଇଲେ ଏ ବଚନ । ତୁମ୍ଭେ ସୁବୈଦ୍ୟ[1] ବେନି ଜନ ॥
ତରୁଣ ବୟସକୁ ମୋତେ । ପ୍ରଦାନ କର ତୋଷଚିତ୍ତେ ॥
୧୨ ତୁମ୍ଭର ସୋମପାତ୍ର ନାହିଁ । ଯେ ସୋମପୂର୍ଣ୍ଣ ପାତ୍ର ତାହି ॥
ଯାଗରେ ଦେବି ମୁଁ ତୁମ୍ଭଙ୍କୁ । ଦିଅ ମୋ ବୟସ ରୂପକୁ ॥
ଯଉଁ ରୂପକୁ ନାରୀମାନେ । ବାଞ୍ଛା କରନ୍ତି ନିଜ ମନେ ॥
୧୩ ବିପ୍ରକୁ ବୈଦ୍ୟବର ଦୁଇ । ମନରେ ଆନନ୍ଦ କରାଇ ॥
୧୪ ଏକଥା ଆମ୍ଭର ସ୍ୱୀକାର । ବୋଇଲେ ଏମନ୍ତ ଉତ୍ତର ॥
ସିଦ୍ଧନିର୍ମିତ ହ୍ରଦ ଏହି । ଏଥି ନିମଗ୍ନ ହୁଅ ଯାଇଁ[2] ॥
ସେ ବୈଦ୍ୟେ ଏମନ୍ତ ବଚନ । କହନ୍ତେ ସେ ରଷି ଚ୍ୟବନ ॥
ଜରାରେ ଗ୍ରସ୍ତ ତାଙ୍କ କାୟ । ପୂରି ଅଛନ୍ତି ଶିରାଚୟ ॥
ବଳୀପଳିତେ[3] ହୋଇ ଯୁତ । ଶରୀର ଦିଶୁଛି ବିକୃତ ॥
ଧରି ତାହାଙ୍କୁ ବୈଦ୍ୟଦୁଇ । ହ୍ରଦରେ ବୁଡ଼ାଇଲେ ନେଇ ॥
୧୫ ଯେ ନାରୀମାନଙ୍କର ପ୍ରିୟ । ସୁନ୍ଦର ଦିଶେ ଯାଙ୍କ କାୟ ॥
ବକ୍ଷସ୍ଥଳରେ ପଦ୍ମମାଳ । କର୍ଣ୍ଣରେ ଶୋଭିତ କୁଣ୍ଡଳ ॥
ସ୍ୱରୂପ ତାଙ୍କର ସମାନ । ପିନ୍ଧିଅଛନ୍ତି ସୁବସନ ॥
ଏମନ୍ତ ରୂପେ ତିନି ଜଣ । ଉଠିଲେ ସେ ହ୍ରଦରୁ ପୁଣ ॥
୧୬ ସମାନ ରୂପ ଯାହାଙ୍କର । ତେଜରେ ଯେହ୍ନେ ଦିବାକର ॥
ସେ ପତିବ୍ରତା ଦେଖି ତାଙ୍କୁ । ଚିହ୍ନି ନ ପାରନ୍ତେ ଭର୍ତ୍ତାକୁ ॥
ତୁମ୍ଭେ ଅଲଗା ହୋଇ ରହି । ଦିଅ ମୋ ପତିକି ଦେଖାଇ ॥
ଏମନ୍ତ ବୋଲିଣ ଶରଣ । ଗଲା ସେ ଅଶ୍ୱିନିଙ୍କି ପୁଣ ॥
୧୭ ତା' ପତିବ୍ରତାଭାବୁଁ ଦୁଇ । ବୈଦ୍ୟେ ସନ୍ତୋଷଚିତ୍ତ ହୋଇ ॥
ପତିକି ଦେଖାଇ ତାହାକୁ । ପୃଚ୍ଛି କରି ସେ ଚ୍ୟବନକୁ ॥
ବିମାନ କରି ଆରୋହଣ । ସ୍ୱର୍ଗକୁ ଚଳିଲେ ତତ୍‌କ୍ଷଣ ॥
୧୮ ଶର୍ଯ୍ୟାତି ଏଥୁ ଅନନ୍ତରେ । ଯାଗ କରିବା ନିମିତ୍ତରେ ॥
ଗଲେ ଚ୍ୟବନ-ଆଶ୍ରମକୁ । କହିବା ନିମିତ୍ତେ ତାହାଙ୍କୁ ॥

---

୧. ସ୍ୱବୈଦ୍ୟ । ୨. ତୁହି ।
୩. ବଳୀ = ଜରାବିଶ୍ଳଥ ଚର୍ମ; ପଳିତ = ବୃଦ୍ଧାବସ୍ଥାରେ କେଶର ଶୁକ୍ଳତା ।

　　ଦେଖିଲା ଦୁହିତାପାଶରେ । ସୂର୍ଯ୍ୟସମାନ ଏକ ନରେ ॥ ୫୮
୧୯ ଚରଣଯୁଗକୁ ପିତାର । ଦେଖି ଯେ କଲା ନମସ୍କାର ॥ ୫୯
　　ସେ ନିଜ ତନୁଜାକୁ ପୁଣ । ପ୍ରଦାନ ନ କରି କଲ୍ୟାଣ ॥ ୬୦
　　ହୋଇଣ ଅସଂତୋଷମତି । ଏମନ୍ତ ବୋଇଲା ନୃପତି ॥ ୬୧
୨୦ ଯାହା ବାଞ୍ଛିଲୁ ନିଜ ମନ । ଏ ତୋର କେବଣ ବିଧାନ ॥ ୬୨
　　ଯାକୁ ସକଳ ଲୋକମାନେ । ପ୍ରଣାମ କରନ୍ତି ଭୁବନେ ॥ ୬୩
　　ସେ ମୁନି ନିଜ ପତି ତୋର । ତାହାଙ୍କୁ କଲୁ ତୁ ଅନ୍ତର ॥ ୬୪
　　ସେ ବୃଦ୍ଧ ବୋଲି ଛାଡ଼ି ତାଙ୍କୁ । ଭଜୁଛୁ ଅସତି ! ଏହାକୁ ॥ ୬୫
　　ଏ ଜାର ଅଟେ ଅସମ୍ମତ[1] । ପଥିକରୂପରେ ବିଦିତ ॥ ୬୬
୨୧ ଉତ୍ତମ ଲୋକମାନଙ୍କର । କୁଳରେ ଜନମ ତୋହର ॥ ୬୭
　　ତୋହର ମତି ବିପରୀତ । କେମନ୍ତେ ହୋଇଲା ବିଦିତ ॥ ୬୮
　　କୁଳଦୂଷଣ ଏ ବେଭାର । ଯେଣୁ ତୁ ଲଜ୍ଜା କଲୁ ଦୂର ॥ ୬୯
　　ଜାର ଅଟଇ ଯଉଁ ଜନ । ତାହାକୁ କରୁଛୁ ପାଳନ ॥ ୭୦
　　ପିତା ଭର୍ତ୍ତାର କୁଳ ଦୁଇ । ନରକେ ପକାଉଛୁ ନେଇ ॥ ୭୧
୨୨ ପିତା ବୋଲନ୍ତେ ଏହୁ ବାଣୀ । ଅଳପ ହସନ୍ତେ ତରୁଣୀ ॥ ୭୨
　　ବୋଇଲା ତାତ ! ତୋ ଜୁଆଇଁ । ଭୃଗୁନନ୍ଦନ ଅଟେ ଏହି ॥ ୭୩
୨୩ ଯୁବା ବୟସ ରୂପ ବେନି । ଲଭିଲେ ଯଉଁରୂପେ ମୁନି ॥ ୭୪
　　ତାତକୁ ସେ ସର୍ବ କହିଲା । ଶୁଣି ସେ ବିସ୍ମୟ ହୋଇଲା ॥ ୭୫
　　ପରମ ସଂତୋଷେ ରାଜନ । ସୁତାକୁ କଲେ ଆଲିଙ୍ଗନ ॥ ୭୬
୨୪ ବେନି ଅଶ୍ୱିନିଙ୍କର ଯାଗେ । ପୂର୍ବେ ନ ଥିଲା ସୋମ ଭାଗେ ॥ ୭୭
　　ରାଜାକୁ କରାନ୍ତେ ଯଜନ । ଆପଣା ତେଜରେ ଚ୍ୟବନ ॥ ୭୮
　　ଘେନିଲେ ସୋମର ଗ୍ରହକୁ । ସେ ବେନି ବୈଦ୍ୟଙ୍କୁ ଦେବାକୁ ॥ ୭୯
୨୫ ତତ୍‌କ୍ଷଣେ କ୍ରୋଧ ହେଲା ଯାର । ସେ ଅସହିଷ୍ଣୁ ପୁରନ୍ଦର ॥ ୮୦
　　ମାରିବା ଅର୍ଥେ ଚ୍ୟବନଙ୍କୁ । କରରେ ଧରି କୁଳିଶକୁ ॥ ୮୧
　　ଇନ୍ଦ୍ରର କୁଳିଶ ସହିତ । ଭୁଜ ସ୍ତମ୍ଭିଲେ ଭୃଗୁସୁତ ॥ ୮୨
୨୬ ସୋମଗ୍ରହକୁ ଅଶ୍ୱିଙ୍କର । ସର୍ବେ ମଙ୍ଗିଲେ ତଦନ୍ତର ॥ ୮୩
　　ବୈଦ୍ୟ ବୋଲିଣ ତାଙ୍କୁ ପୂର୍ବେ । ସୋମ-ଆହ୍ୱାନୁଁ ସର୍ବଦେବେ ॥ ୮୪
　　ଅଲଗା କରିଥିଲେ ଯେଣୁ । ଚ୍ୟବନ ଦେଲେ ଭାଗ ତେଣୁ ॥ ୮୫
୨୭ ଉତ୍ତାନବରହି ଆନର୍ତ୍ତ । ଭୂରିଷେଣ ଏ ତିନି ସୁତ ॥ ୮୬
　　ହେଲେ ସେ ଶର୍ଯ୍ୟାତି ନୃପର । ରେବତ ସୁତ ଆନର୍ତ୍ତର ॥ ୮୭
୨୮ ସେ କୁଶସ୍ଥଳୀ ନାମେ ପୁର । ଭିଆଇ ସମୁଦ୍ରମଧ୍ୟର ॥ ୮୮
　　ସେ ନୃପ ସେ ନଗରେ ଥାଇ । ଯେ ବା ଆନର୍ତ୍ତ ଆଦି ହୋଇ ॥ ୮୯

---

୧. ଅସମ୍ମତ = ଅନଭୀଷ୍ଟ ।

ପ୍ରସିଦ୍ଧ ନାନା ଦେଶମାନ । କଲା ସେ ସମସ୍ତ ପାଳନ ।। ୯୦
ଜନ୍ମିଲେ ପୁତ୍ରଶତ ତାର । କକୁଦ୍ମୀ ଶ୍ରେଷ୍ଠ[୧] ତାହାଙ୍କର ।। ୯୧
୨୯ ସେ କକୁଦ୍ମୀର କନ୍ୟା ଜାତ । ରେବତୀ ନାମେ ସେ ବିଦିତ ।। ୯୨
ତାହାକୁ ଘେନି ସଙ୍ଗତର । ଦୁହିତା-ଅନୁରୂପେ ବର ।। ୯୩
ପୁଛିବା ନିମିତ୍ତେ ବ୍ରହ୍ମାଙ୍କୁ । ଗଲାକ ସେ ବ୍ରହ୍ମଲୋକକୁ ।। ୯୪
ଯେବଣ ବ୍ରହ୍ମଲୋକେ ପୁଣ । କିଛି ହିଁ ନାହିଁ ଆବରଣ ।। ୯୫
୩୦ ହୁଅନ୍ତେ ନୃତ୍ୟ ଗୀତ ତହିଁ । କ୍ଷଣେମାତ୍ରକ ଥିଲା ରହି ।। ୯୬
ତଦନ୍ତେ ଲଭି ଅବସର । ବ୍ରହ୍ମାଙ୍କୁ କରି ନମସ୍କାର ।। ୯୭
ଯେ ନିଜ ଅଭିପ୍ରାୟ ଥିଲା । ସେ କଥା ନିବେଦନ କଲା ।। ୯୮
୩୧ ତାହା କଥାକୁ ବ୍ରହ୍ମା ଶୁଣି । ହସି କହିଲେ ତାକୁ ବାଣୀ ।। ୯୯
ହେ ନୃପ ! ଯାଙ୍କୁ ହୃଦୟରେ । କରିଛୁ ବିଭାନିମିତ୍ତରେ ।। ୧୦୦
କାଳବଶରେ ସେ ସକଳେ । ସଂହାର ହେଲେଣି ଭୂତଳେ ।। ୧୦୧
୩୨ ତାହାଙ୍କ ପୁତ୍ରନାତିଙ୍କର । ଯେ ନାତି ଜନ୍ମିଲେ ଆବର ।। ୧୦୨
ତାଙ୍କର ଯେ ବା ଗୋତ୍ରମାନେ । ତା' ଶୁଣିନାହୁଁ ଆମ୍ଭେ କର୍ଣ୍ଣେ ।। ୧୦୩
ସପତବିଂଶ ଚତୁର୍ଯୁଗ । କାଳ ହେଲାଣି ଏତେ ଭୋଗ ।। ୧୦୪
୩୩ ଏବେ ଗମନ କର ତୁହି । ବିଷ୍ଣୁର ଅଂଶ ଅଟେ ଯେହି ।। ୧୦୫
ସେ ବଳଦେବ ମହାବଳ । ଜନମି ଅଛନ୍ତି ଭୂତଳ ।। ୧୦୬
ଏ କନ୍ୟାରତ୍ନକୁ ପ୍ରଦାନ । କର ତାଙ୍କୁ ସେ ନରରତ୍ନ ।। ୧୦୭
୩୪ ଯେ ପୁଣ୍ୟଶ୍ରବଣକୀର୍ତ୍ତନ । ଦେବଙ୍କ ଦେବ ଜନାର୍ଦ୍ଦନ ।। ୧୦୮
ଭୂମିର ଭାରନାଶପାଇଁ । ଅବତରିଲେ ଅଂଶେ ସେହି ।। ୧୦୯
୩୫ ବିଧାତା କହନ୍ତେ ଏ ବାଣୀ । ଆବନ୍ଦ୍ୟ[୨] କରି ତାଙ୍କୁ ପୁଣି ।। ୧୧୦
ନିଜ ପୁରକୁ ମହୀପାଳ । ଗମନ କଲେ ତତକାଳ ।। ୧୧୧
ତାହାର ଥିଲେ ଯେତେ ଭାଇ । ଯକ୍ଷମାନଙ୍କ ଭୟେ ସେହି ।। ୧୧୨
ସେ ପୁର ଛାଡ଼ି ପଳାଇଲେ । ନାନା ଦିଗରେ ସ୍ଥିତି କଲେ ।। ୧୧୩
୩୬ ଯା' ଅଙ୍ଗ ନିର୍ଦ୍ଦୋଷ ଅଟଇ । ଏମନ୍ତ ସୁତାକୁ ସେ ନେଇ ।। ୧୧୪
ଅତ୍ୟନ୍ତ ବଳବନ୍ତ ବଳ- । ଦେବଙ୍କୁ ଦେଇଣ କେବଳ ।। ୧୧୫
ତପକରଣେ ରାଜା ଗମେ । ବଦରୀନାରାୟଣାଶ୍ରମେ ।। ୧୧୬
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ।। ୧୧୭
ନବମସ୍କନ୍ଧଗୀତରସେ । ଗାୟନେ ସର୍ବମନ ତୋଷେ ।। ୧୧୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ତୃତୀୟୋଽଧ୍ୟାୟଃ ।।

---

୧. ଜ୍ୟେଷ୍ଠ । ୨. ଆବେଦ୍ୟ ।

# ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ମନୁପୁତ୍ରସ୍ୟ ନଭଗସ୍ୟ କଥୋଚ୍ୟତେ ।
ତତ୍ସୂନୋଶ୍ଚାମ୍ବରୀଷସ୍ୟ କୃତ୍ୟା ପ୍ରତିହତା ଯତଃ ।। ୧

ଶ୍ରୀଶୁକ ଉବାଚ

୧ ନାଭାଗ ନାମେ ନଭଗର । ଜନମ ହୋଇଲା କୁମର ।। ୧
ଯେ କବି ବ୍ରହ୍ମଚାରୀ ହୋଇ । ଗୁରୁକୁଳରେ ଥିଲା ରହି ।। ୨
ନୈଷ୍ଠିକ ବୋଲି ଜାଣି ତାକୁ । ନ ରଖି ତାହାର ଭାଗକୁ ।। ୩
ଭାଇଏ ବାଣ୍ଟି ଦ୍ରବ୍ୟମାନ । ଘେନନ୍ତେ ଅଇଲା ସେ ସାନ ।। ୪
ସେ ଭାଗ ମାଗନ୍ତେ ବିଚାରି । ପିତାକୁ ଦେଲେ ଭାଗ କରି ।। ୫
୨ ଭାଇଙ୍କି ପୃଚ୍ଛିଲା ସେ ଯାଇଁ । କି ଭାଗ ବାଣ୍ଟିଲ ମୋ ପାଇଁ ।। ୬
ଭାଇଏ ବୋଇଲେ ତାହାକୁ । ପିତାକୁ ଦେଲୁଁ ତୋ' ଭାଗକୁ ।। ୭
ପିତାକୁ ବୋଇଲା ତା' ଶୁଣି । ଭୋ ତାତ ! ଭାଇମାନେ ପୁଣି ।। ୮
ମୋହର ଭାଗ କରି ତୋତେ । ବାଣ୍ଟିଣ ଦେଲେ ଯେଝା ମତେ ।। ୯
ପିତା ବୋଇଲା ସେ ବଚନ । ଆଦର ନ କର ନନ୍ଦନ ।। ୧୦
୩ ହେ କବି ! ଅଙ୍ଗିରସପୁତ୍ରେ । କରିଅଛନ୍ତି ଆଜ ସତ୍ରେ ।। ୧୧
ଯେ କର୍ମ ଷଷ୍ଠ ଷଷ୍ଠ[୧] ଦିନେ । ପ୍ରାପତି ହୁଅଇ ବିଧାନେ ।। ୧୨
ସୁବୁଦ୍ଧିମାନେ ହେଁ ସେ କର୍ମ । ନ ଜାଣି ହେଉଛନ୍ତି ଭ୍ରମ ।। ୧୩
୪-୫ [୨]ଯେ ବୈଶ୍ୱଦେବ ସୂକ୍ତ ଦୁଇ । କହ ସେ ମହାତ୍ମାଙ୍କୁ ଯାଇଁ ।। ୧୪
ସ୍ୱର୍ଗକୁ ସେମାନେ ଯାଆନ୍ତେ । ଯେ ଧନ ଥିବ ସତ୍ରଅନ୍ତେ ।। ୧୫
ସେ ତୋତେ ଦେବେ ସେ ଧନକୁ । ଏବେ ତୁ ଯାଅ ତାଙ୍କ ଠାକୁ ।। ୧୬
ଶୁଣିଣ ପିତାର ବଚନ । ତନୁଜ କଲା ସେ ବିଧାନ ।। ୧୭
ସତ୍ରରୁ ଅବଶେଷ ହୋଇ । ଯେତେକ ଧନ ଥିଲା ତହିଁ ।। ୧୮
ତାହାକୁ କଲେ ତା' ପ୍ରଦାନ । ସ୍ୱର୍ଗକୁ କଲେ ସେ ଗମନ ।। ୧୯
୬ ନାଭାଗ ଘେନନ୍ତେ ସେ ଧନ । ଏକ ପୁରୁଷ[୩] କୃଷ୍ଣବର୍ଣ୍ଣ ।। ୨୦
ଉତ୍ତର ଦିଗୁଁ ଆଗମନ । କରି ବୋଇଲା ଏ ବଚନ ।। ୨୧
ଏ ଯଜ୍ଞଭୂମିଗତ ବିତ୍ତ । ମୋହର ଅଟଇ ନିୟତ ।। ୨୨
୭ ନାଭାଗ ବୋଇଲା ଏ ବିତ୍ତ । ଋଷିଏ ମୋତେ କଲେ ଦତ୍ତ ।। ୨୩
ଶୁଣି ବୋଇଲେ ତା' ଶଙ୍କର । ବିବାଦେ ଆମ୍ଭ ଦୁହିଁଙ୍କର ।। ୨୪
ପ୍ରଶ୍ନ ହେଉ ତୋ' ପିତାଠାଇଁ । ପୃଚ୍ଛିଲା ପିତାକୁ ସେ ଯାଇଁ ।। ୨୫

---

୧. "ଅଭିପ୍ଳବଃ ଷଡ଼ହୋ ଭବତି" "ପୃଷ୍ଠ୍ୟଃ ଷଡ଼ହୋ ଭବତି" (ଶ୍ରୁତିଃ) ।
୨. "ଇଦମିତ୍ଥଂ ରୌଦ୍ରମ୍" "ଯେ ଯଜ୍ଞେ ଦକ୍ଷିଣାୟ" ।
୩. ପୁରୁଷ = ଶ୍ରୀରୁଦ୍ର।

| | | | | | |
|---|---|---|---|---|---|
| ୮ | ପିତା କହିଲା ଏ ବଚନ | । | ଯେ ଯଜ୍ଞବାସ୍ତୁଗତ ଧନ | ॥ | ୨୬ |
| | ଶେଷ ହୋଇଣ ରହିଥାଇ | । | [1]ରୁଦ୍ରଙ୍କ ଭାଗ ଅଟେ ସେହି | ॥ | ୨୭ |
| | କେହୁଣି ସମୟେ ଏ ବିଧି | । | ଋଷିଏ କରିଛନ୍ତି ସିଦ୍ଧି | ॥ | ୨୮ |
| | ସମସ୍ତ କଥାକୁ ସେ ଦେବ | । | ଯୋଗ୍ୟ ଅଟନ୍ତି ସଦାଶିବ | ॥ | ୨୯ |
| ୯ | ଶିବଙ୍କୁ କରିଣ ବନ୍ଦନ | । | ନାଭାଗ ବୋଇଲା ବଚନ | ॥ | ୩୦ |
| | ହେ ଦେବ ଏ ବାସ୍ତୁକ[2] ବିତ୍ତ | । | ତୁମ୍ଭର ଅଟଇ ନିୟତ | ॥ | ୩୧ |
| | ମୋ ପିତା ଏମନ୍ତ ରୂପରେ | । | କହିଲା ମୋହର ଆଗରେ | ॥ | ୩୨ |
| | ତୁମ୍ଭଙ୍କୁ ଶିରକୁ ଲୁଆଁଇ | । | ପ୍ରସନ୍ନ କରାଉଛି ମୁହିଁ | ॥ | ୩୩ |
| ୧୦ | ନାଭାଗଠାରୁ ଏହା ଶୁଣି | । | ରୁଦ୍ର କହିଲେ ତାକୁ ପୁଣି | ॥ | ୩୪ |
| | ଧର୍ମ କହିଲା ତୋର ତାତ | । | ତୁ ଯେଣୁ କହୁଅଛୁ ସତ୍ୟ | ॥ | ୩୫ |
| | ତୋତେ ମୁଁ ମନ୍ତ୍ରଦୃଶ ଜ୍ଞାନ | । | ଦେଉଛି ବ୍ରହ୍ମ ସନାତନ | ॥ | ୩୬ |
| ୧୧ | [3]ମୋ ସତ୍ରଶେଷ ଯଉଁ ଧନ | । | ଦେଲି ମୁଁ ଘେନ ତୁ ଏମାନ | ॥ | ୩୭ |
| | କହିଣ ଏମନ୍ତ ବଚନ | । | ସତ୍ୟବତ୍ସଳ ଭଗବାନ | ॥ | ୩୮ |
| | ଶଙ୍କର ଅନ୍ତର୍ଧାନ ହୋଇ | । | ଗମନ କଲେକ ସେଠାଇଁ | ॥ | ୩୯ |
| ୧୨ | ଯେ ଏହା ସମାହିତ ହୋଇ | । | ପ୍ରଭାତେ ସଂଧ୍ୟାରେ ସ୍ମରଇ | ॥ | ୪୦ |
| | କବି ମନ୍ତ୍ରଜ୍ଞ ସେ ହୁଅଇ | । | ଆପଣା ଗତିକି ଲଭଇ | ॥ | ୪୧ |
| ୧୩ | ନାଭାଗଙ୍କର ହେଲା ସୁତ | । | ପଣ୍ଡିତ ମହାଭାଗବତ | ॥ | ୪୨ |
| | ଯେ କାହିଁ ପ୍ରତିହତ ନୋହି | । | ସେ ବ୍ରହ୍ମଶାପ ଯାହାକୁ ହିଁ | ॥ | ୪୩ |
| | କେବେହେଁ ନ କଲା ସ୍ୱରଣ | । | ଏମନ୍ତ ସେହୁ ଅମ୍ବରୀଷ | ॥ | ୪୪ |

ଶ୍ରୀରାଜୋବାଚ

| | | | | | |
|---|---|---|---|---|---|
| ୧୪ | ଲଙ୍ଘନ ନୋହେ ଯେ ଦୁଃଖରେ | । | ସେ ବ୍ରହ୍ମଦଣ୍ଡ ଯାହାଠାରେ | ॥ | ୪୫ |
| | ସମର୍ଥ ହୋଇ ନ ପାରିଲା | । | ତହୁଁ ଯେ ମୁକତ ହୋଇଲା | ॥ | ୪୬ |
| | ସେ ରାଜରଷି ବୁଦ୍ଧିମନ୍ତ | । | ହେ ବିପ୍ର ! ତାହାର ଚରିତ | ॥ | ୪୭ |
| | ଶ୍ରବଣ କରିବା ନିମିତ୍ତ | । | ଇଚ୍ଛା କରୁଛି ନିଜ ଚିତ୍ତ | ॥ | ୪୮ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୫ } | ସେ ଅମ୍ବରୀଷ ନରନାଥ | । | ଅଟଇ ମହାଭାଗ୍ୟବନ୍ତ | ॥ | ୪୯ |
| ୧୬ } | ସପତ ଦ୍ୱୀପବନ୍ତ କ୍ଷିତି | । | ଅବ୍ୟୟ ଯେ ଅବା ସମ୍ପତ୍ତି | ॥ | ୫୦ |

---

୧. "ଉଚ୍ଛେଷଣଭାଗୋ ବୈ ରୁଦ୍ରଃ" (ଶ୍ରୁତିଃ)

୨. ବାସ୍ତୁକ = ଯଜ୍ଞଭୂମିଗତ ।

୩. "ନାଭାଗେନ ଦିଷ୍ଟଂ ଶଂସତି, ନାଭାଗେନ ଦିଷ୍ଟଂ ବୈ ମାନବଂ
ବ୍ରହ୍ମଚର୍ଯ୍ୟଂ ବସନ୍ତଂ ଭ୍ରାତରୋ ନିରଭଜନ୍, ସୋଽବ୍ରବୀଦ୍" ଇତ୍ୟାଦି ।
(ବହ୍ୱୃଚବ୍ରାହ୍ମଣମ୍)

ଧରଣୀ ମଧ୍ୟରେ ଅସମ । ବିଭବ ଯେ ଅତି ଉତ୍ତମ ॥
ପୁରୁଷମାନଙ୍କର ସର୍ବ । ସେମାନ ଅତ୍ୟନ୍ତ ଦୁର୍ଲଭ ॥
ସ୍ୱପ୍ନର[1] ନିରୂପଣପ୍ରାୟେ । ମଣିଲା ତା' ନିଜ ହୃଦୟେ ॥
ଯେଣୁ ବିଭବମାନଙ୍କର । ନାଶକୁ କରିଛି ଗୋଚର[2] ॥
ଯଉଁ ବିଭବ ହେଲେ ନାଶ । ମୋହରେ ମଜ୍ଜଇ ପୁରୁଷ ॥
୧୭ ଯେ ବାସୁଦେବ ଭଗବାନ । ଯେ ବା ତାହାଙ୍କ ଭକ୍ତଜନ ॥
ତାହାଙ୍କ ଠାରେ ଅତିଶୟେ । ଭାବକୁ ଲଭିଲା ହୃଦୟେ ॥
ଯଉଁ ଭାବରେ ଲୋଷ୍ଟମତ । ତୁଚ୍ଛ ମଣିଲା ଏ ଜଗତ ॥
୧୮ କୃଷ୍ଣର ପାଦପଦ୍ମଯୁଗେ । ମନକୁ କଲା ସେ ସରାଗେ ॥
ଯେ ବିଷ୍ଣୁଗୁଣାନୁବର୍ଣ୍ଣନ । ତହିଁରେ କଲା ବାଣୀମାନ ॥
ଗୃହମାର୍ଜନ ଆଦି ହୋଇ । ହରିର ସେବାମାନ ଯେହି ॥
କରଯୁଗଳକୁ ତହିଁରେ । ଅର୍ପିତ କଲା ନିରନ୍ତରେ ॥
ଯେ ହରିଦିବ୍ୟକଥାମାନ । ଅର୍ପିତ କଲା ତହିଁ କର୍ଣ୍ଣ ॥
୧୯ ମୁକୁନ୍ଦମୂର୍ତ୍ତିସ୍ଥାନ ଯେହି । ତାର ଦର୍ଶନେ ନେତ୍ର ଦୁଇ ॥
ବିଷ୍ଣୁଭଗତ ଯେତେ ନର । ଗାତ୍ରସ୍ପର୍ଶେ ତାହାଙ୍କର ॥
ଅଙ୍ଗସଙ୍ଗକୁ କଲା ସେହି । ଯେ ବିଷ୍ଣୁ ପାଦପଦ୍ମେ ଥାଇ ॥
ସୌରଭ ଲଭିଅଛି ପୁଣ । ସେ ତୁଳସୀରେ କଲା ଘ୍ରାଣ ॥
ବିଷ୍ଣୁର ନଇବେଦ୍ୟ ଯେହି । କଲା ସେ ରସନାକୁ ତହିଁ ॥
୨୦ ହରିର କ୍ଷେତ୍ରସ୍ଥାନ ଯେହି । ତାର ଗମନେ ପାଦ ଦୁଇ ॥
ଚରଣପ୍ରଣାମେ ବିଷ୍ଣୁର । ଅର୍ପିତ କଲା ନିଜ ଶିର ॥
ମାଳାଚନ୍ଦନ ଆଦି ହୋଇ । ଯେ କାମ ବିଖ୍ୟାତ ଅଟଇ ॥
ଘେନିଲା ତା' ଦାସ୍ୟଭାବରେ । ପ୍ରସାଦସ୍ୱୀକାର ଅର୍ଥରେ ॥
ବିଷୟସୁଖକାମନାରେ । ଘେନିଲା ନାହିଁ ତା' ମନରେ ॥
ବିଷ୍ଣୁଭଗତ[3] ଜନଠାରେ । ରତି ବଢ଼ଇ ଯେ ପ୍ରକାରେ ॥
୨୧ ଏମନ୍ତରୂପେ ବିଷ୍ଣୁଠାର । କର୍ମକୁଳକୁ ଆପଣାର ॥
ଅର୍ପିଲା ସମସ୍ତ କାଳରେ । ସର୍ବାତ୍ମଭାବନା ଯହିଁରେ ॥
ବୈଷ୍ଣବ ବିପ୍ରମାନେ ଯେହି । ତାହାଙ୍କ ଠାରୁ ଶିକ୍ଷା ପାଇ ॥
ଏ ମହୀତଳକୁ ପାଳନ । କଲା ଅମ୍ବରୀଷ ରାଜନ ॥
୨୨ ଯେବଣ ଦିଗରୁ ନିର୍ଗତ । ହୋଇଛି ସରସ୍ୱତୀସ୍ରୋତ ॥
ତାହାକୁ ଅଭିମୁଖ ହୋଇ । ଯେ ଜଳଶୂନ୍ୟ ଦେଶ ତହିଁ ॥
ବଶିଷ୍ଠ ଗଉତମ ଆଦି । କରିଅଛନ୍ତି ଯାହା ସିଦ୍ଧି ॥

୧. ସ୍ୱପନ । ୨. ବିଚାର । ୩. ବିଷ୍ଣୁର ଭକ୍ତ ।

ଯଜ୍ଞାଙ୍ଗଦକ୍ଷିଣା ଯହିଁରେ । ବଢ଼ାଇ ମହାବିଭୂତିରେ ।। ୮୨

ସେ ଅଶ୍ୱମେଧ ଯଜ୍ଞଙ୍କରେ । ବିଷ୍ଣୁଙ୍କୁ ପୂଜିଲା ନିର୍ଭରେ ।। ୮୩

୨୩ ସଦସ୍ୟ ରତ୍ୱିଜ ଯେ ଜନେ । ଯାହାର ଯଜ୍ଞରେ ଏମାନେ ।। ୮୪

ଆଶ୍ଚର୍ଯ୍ୟ କଥା ଦେଖିବାରେ । ନିମେଷ ନ ଥାନ୍ତେ ନେତ୍ରରେ ।। ୮୫

ଦିଶିଲେ ଦେବତାସମାନ । ପିନ୍ଧିଅଛନ୍ତି ସୁବସନ ।। ୮୬

୨୪ ଉତ୍ତମଶ୍ଲୋକର ଚରିତ । ଶୁଣନ୍ତେ ଗାଆନ୍ତେ ସନ୍ତତ ।। ୮୭

ଯେବଣ ସ୍ୱର୍ଗ ଅତିଶୟ । ଅମରମାନଙ୍କର ପ୍ରିୟ ।। ୮୮

ତାକୁ ହିଁ ନ କଲେ ପ୍ରାର୍ଥନ । ଯାହାର ନିଜ ଜନମାନ ।। ୮୯

୨୫ ନିଜ ହୃଦୟେ ଯଉଁ ଜନ । ବିଷ୍ଣୁ କରଇ ଦରଶନ ।। ୯୦

ଦୁର୍ଲଭ ଯେ ସିଦ୍ଧମାନଙ୍କୁ । ସେ କାମମାନେହେଁ ତାହାଙ୍କୁ ।। ୯୧

ହର୍ଷ କରାଇ ନ ପାରନ୍ତି । ସ୍ୱରୂପସୁଖେ ଯେ ବଢ଼ନ୍ତି ।। ୯୨

୨୬ ସେ ନୃପ ଏମନ୍ତ ପ୍ରକାରେ । ତପସ୍ୟାସଂଯୁକ୍ତ ଭକ୍ତିରେ ।। ୯୩

ସ୍ୱଧର୍ମେ ତୋଷନ୍ତେ ବିଷ୍ଣୁଙ୍କୁ । ଛାଡ଼ିଲା ସମସ୍ତ କାମଙ୍କୁ ।। ୯୪

୨୭ ଯେ ଗୃହ ଭାର୍ଯ୍ୟା ବନ୍ଧୁ ସୁତ । ତୁରଗ କୁଞ୍ଜର ଯେ ରଥ ।। ୯୫

ଯେ ଅବା ଆନ ଦ୍ରବ୍ୟମାନ । ଅକ୍ଷୟ ଆଭରଣ ରତ୍ନ ।। ୯୬

ଆୟୁଧ ଆଦି ଯେ ଇତର । କେବେହେଁ ଅନ୍ତ ନାହିଁ ଯାର ।। ୯୭

ଏମନ୍ତ ଯଉଁ କୋଷମାନ । ତହିଁରେ କଲା ତୁଚ୍ଛ ମନ ।। ୯୮

୨୮ ଏକାନ୍ତ ଭକ୍ତିଯୋଗେ ତାର । ସନ୍ତୋଷ ହୋଇ ଚକ୍ରଧର ।। ୯୯

ଭୃତ୍ୟଙ୍କୁ[1] ରକ୍ଷା ଯେ କରଇ । ଶତ୍ରୁମାନଙ୍କୁ ଭୟ ଦେଇ ।। ୧୦୦

ଏମନ୍ତ ଯଉଁ ଚକ୍ର ପୁଣ । ତାହାଙ୍କୁ କଲେ ତା' ଅର୍ପଣ ।। ୧୦୧

୨୯ ସମାନ ଅଟେ ଯା' ଚରିତ । ସେ ଭାର୍ଯ୍ୟାସଙ୍ଗେ ହୋଇ ଯୁତ ।। ୧୦୨

କୃଷ୍ଣର ଯେ ବା ଆରାଧନ । ତହିଁ ନିବେଶି ନିଜ ମନ ।। ୧୦୩

ସଂଯତେ ଏକ ସଂବତ୍ସର । ଦ୍ୱାଦଶୀବ୍ରତ କଲା ବୀର ।। ୧୦୪

୩୦ କାର୍ତ୍ତିକେ ବ୍ରତ ହୋନ୍ତେ ଶେଷ । ତ୍ରିରାତ୍ର କଲା ଉପବାସ ।। ୧୦୫

କାଳିନ୍ଦୀଜଳେ ଏକଦିନେ । ସ୍ନାନ କରିଣ ମଧୁବନେ ।। ୧୦୬

ହରିଙ୍କି ପୂଜିଲା ନୃପତି । ଯେ ସାଧୁଜନଙ୍କର ରୀତି ।। ୧୦୭

୩୧ ମହା ଅଭିଷେକବିଧିରେ । ସର୍ବସାମଗ୍ରୀସଂପତ୍ତିରେ ।। ୧୦୮

୩୨ ଆଚରି ଅଭିଷେକ ଜଳେ । ବସ୍ତ୍ରଭୂଷଣ ଗନ୍ଧମାଳେ ।। ୧୦୯

ଏ ଆଦି ପୂଜାସାମଗ୍ରୀରେ । ତଦ୍‌ଗତ ଅନ୍ତର ଭାବରେ ।। ୧୧୦

ହରିଙ୍କି କଲା ସେ ପୂଜନ । ଯେ ମହାଭାଗ ବିପ୍ରେ ଆନ ।। ୧୧୧

ବାଞ୍ଛା ନ କରନ୍ତି ଅର୍ଥକୁ । ଭକ୍ତିରେ ପୂଜିଲା ତାହାଙ୍କୁ ।। ୧୧୨

---

୧. ଭକ୍ତଙ୍କୁ ।

୩୩} ସୁବର୍ଣ୍ଣ ଶୃଙ୍ଗ ଯାହାଙ୍କର । ରଜତ-ମୟ ଅଟେ ଖୁର ॥ ୧୧୩
୩୪} ଉତ୍ତମ ବସ୍ତ୍ରେ ଯେ ଆବୃତ । ଯେ ଦୁଗ୍ଧ ରୂପ ସୁଚରିତ ॥ ୧୧୪
ବୟସ ବସ୍ତ୍ର ଆଦି ହୋଇ । ସମୃଦ୍ଧି ଅଛି ଯାଙ୍କ ତହିଁ ॥ ୧୧୫
ଏମନ୍ତ ଧେନୁମାନେ ଯେତି । ସଂଖ୍ୟାରେ ଯେ ଷାଠିଏ କୋଟି ॥ ୧୧୬
ଉତ୍ତମ ବିପ୍ରଙ୍କ ମନ୍ଦିରେ । ଅର୍ପିଲା ନେଇ ହରଷରେ ॥ ୧୧୭
ଯେ ସ୍ୱାଦୁ ଅତି ଗୁଣବନ୍ତ । ସେ ଅନ୍ନମାନଙ୍କୁ ତୁରିତ ॥ ୧୧୮
ବ୍ରାହ୍ମଣମାନଙ୍କୁ ଭୁଞ୍ଜାଇ । ସେମାନେ କାମନାକୁ ପାଇ ॥ ୧୧୯
ଆଜ୍ଞା ଦିଅନ୍ତେ ତୋଷ ହେଲା । ପାରଣା ଅର୍ଥେ ମନ କଲା ॥ ୧୨୦
୩୫} ତହିଁ ତା' ଅତିଥି ସାକ୍ଷାତ । ହେଲେ ଦୁର୍ବାସା ଭଗବନ୍ତ ॥ ୧୨୧
୩୬} ତାହାଙ୍କୁ ପାଛୋଟି ଯାଇଣ । ଆସନ ଆଦି ଦେଇ ପୁଣ ॥ ୧୨୨
ସେ ମହୀପତି ପୂଜା କଲା । ଚରଣତଳରେ ପଡ଼ିଲା ॥ ୧୨୩
ଭୋଜନ କରିବା ନିମିତ୍ତେ । ପ୍ରାର୍ଥନା କଲା ଶୁଦ୍ଧ ଚିତ୍ତେ ॥ ୧୨୪
୩୭ ପ୍ରାର୍ଥନା କଲା ଯା' ନୃପତି । ସ୍ୱୀକାର କରି ତାହା ଯତି ॥ ୧୨୫
ଯେ ଆବଶ୍ୟକ କର୍ମ ଥିଲେ । ତାହା କରିବା ଅର୍ଥେ ଗଲେ ॥ ୧୨୬
ମନେ କରନ୍ତେ ବ୍ରହ୍ମ ଧ୍ୟାନ । କାଳିନ୍ଦୀଜଳେ ହେଲେ ମଗ୍ନ ॥ ୧୨୭
୩୮ ମୁହୂର୍ତ୍ତ ଅର୍ଦ୍ଧ ଅବଶେଷ । ଦ୍ୱାଦଶୀ ଥାନ୍ତେ ସେ ଦିବସ ॥ ୧୨୮
ପାରଣା କରିବା ଅର୍ଥରେ । ଧର୍ମସଂକଟବିଷୟରେ ॥ ୧୨୯
ଚିନ୍ତିଲା ବିପ୍ରଙ୍କ ସଙ୍ଗତ । ଧର୍ମକୁ ଜାଣେ ସେ ବହୁତ ॥ ୧୩୦
୩୯} ବିପ୍ରଙ୍କୁ କଲେ ଅତିକ୍ରମ । ତେବେ ତ ଦୋଷ ହେବ ଜନ୍ମ ॥ ୧୩୧
୪୦} ନ କଲେ ଦ୍ୱାଦଶୀ ପାରଣ । ଯେଣୁ ସଂଭବେ ଦୋଷ ପୁଣ ॥ ୧୩୨
ଯାହା କରନ୍ତେ ଭଲ ହୋଇ । ଅଧର୍ମ ମୋତେ ନ ଛୁଅଇଁ ॥ ୧୩୩
କେବଳ ଜଳରେ ମୁଁ ପୁଣ । କରିବି ବ୍ରତର ପାରଣ ॥ ୧୩୪
ଜଳପାରଣ କରି ଯେବେ । ବ୍ରତସମାପ୍ତି ହୋଏ ତେବେ ॥ ୧୩୫
ଏ ଘେନି ଭକ୍ଷ୍ୟ ସେ ଅଟଇ । ଅନ୍ନାଦିପ୍ରାୟେ ଭକ୍ଷ୍ୟ ନୋହି ॥ ୧୩୬
ବ୍ରାହ୍ମଣେ ଏମନ୍ତ ପ୍ରକାରେ । [1]କହିଅଛନ୍ତି ବିଷୟରେ ॥ ୧୩୭
୪୧ ଏମନ୍ତ ରୂପେ ହେ ରାଜନ । ସଲିଳ କରିଣ ପ୍ରାଶନ ॥ ୧୩୮
ମନରେ ଚିନ୍ତନ୍ତେ ବିଷ୍ଣୁଙ୍କୁ । ଦୁର୍ବାସାଙ୍କର ଆସିବାକୁ ॥ ୧୩୯
ପ୍ରତୀକ୍ଷା କରିଥିଲେ ବସି । ସେ ଅମ୍ବରୀଷ ରାଜଋଷି ॥ ୧୪୦
୪୨ ଦୁର୍ବାସା ନିଜ କର୍ମ କଲେ । ଯମୁନା କୂଳରୁ ଅଇଲେ ॥ ୧୪୧
ତାହାଙ୍କୁ ଦେଖିଣ ନୃପତି । ହୋଇଲା ସହରଷମତି ॥ ୧୪୨
ଚେଷ୍ଟାକୁ ସେ ନରପତିର । ବୁଦ୍ଧିରେ କଲା ସେ ଗୋଚର ॥ ୧୪୩

---

୧. "ଅପୋଽଶ୍ନାତି ଯଦ୍ ତନ୍ନୈବାଶିତଂ ଭବତି ନୈବାନଶିତମ୍" (ଶ୍ରୁତିଃ)
ପାଣିର ଭୋଜନ ଭକ୍ଷଣ ନୁହେଁ କି ଅଭକ୍ଷଣ ନୁହେଁ ।

୪୩ କ୍ରୋଧେ ଯା' ଶରୀର ପ୍ରଚଳ । ମୁଖ ଭ୍ରୁକୁଟୀରେ କୁଟିଳ ॥ ୧୪୪
ସହଜେ ଭୋଜନନିମିତ୍ତ । କରି ଅଛନ୍ତି ନିଜ ଚିତ୍ତ ॥ ୧୪୫
ସେ ଋଷି କହିଲେ ରାଜାକୁ । ଯେ ରାଜା ଯୋଡ଼ିଛି କରକୁ ॥ ୧୪୬
୪୪ ସଂପଦେ ମତ୍ତ ଏହୁ କ୍ରୂର । ଅଭକ୍ତ ଅଟଇ ବିଷ୍ଣୁର ॥ ୧୪୭
ଈଶ୍ୱର ମୁଁ ବୋଲି ସଂତତେ । ମଣିଛି ଆପଣାକୁ ଚିତ୍ତେ ॥ ୧୪୮
ଦେଖ ଧର୍ମରେ ବ୍ୟତିକ୍ରମ । ଏହାର ହୋଇଲା ଜନମ ॥ ୧୪୯
୪୫ ଅତିଥି ହୋଇ ମୁଁ ଆସନ୍ତେ । ଅତିଥିଭାବେ ତୁ ଯେ ମୋତେ ॥ ୧୫୦
ପ୍ରଥମେ କରି ନିମନ୍ତ୍ରଣ । ଅନ୍ନ ଭୁଞ୍ଜିଲୁ ଯେଣୁ ପୁଣ ॥ ୧୫୧
ସେ ଅନ୍ନଭୋଜନର ଫଳ । ତୋତେ ଦେଖାଇବି ତତ୍‌କାଳ ॥ ୧୫୨
୪୬ ରୋଷରେ ହୋଇ ପ୍ରଦୀପିତ । କହନ୍ତେ ବଚନ ଏମନ୍ତ ॥ ୧୫୩
ଜଟା ଉପାଡ଼ି ରାଜାପାଇଁ । କୃତ୍ୟା ନିର୍ମାଣ କଲେ ତହିଁ ॥ ୧୫୪
କାଳଅନଳର ସମାନ । ଯେବଣ କୃତ୍ୟା ଉଦ୍ଦୀପନ ॥ ୧୫୫
୪୭ ସେ କୃତ୍ୟା ଜଳି ଆସୁଅଛି । ହସ୍ତେ ଖଡ଼୍‌ଗକୁ ଧରିଛି ॥ ୧୫୬
ପାଦେ କମ୍ପାଉଅଛି ମହୀ । ତାହାକୁ ନରପତି ଚାହିଁ ॥ ୧୫୭
ଯଉଁ ସ୍ଥାନରେ ରହିଥିଲା । ତହୁଁ ପହଣ୍ଡେ[୧] ନ ଚଳିଲା ॥ ୧୫୮
୪୮ ମହାତ୍ମା ପୁରୁଷ ପୂର୍ବରେ । ଭଗତରକ୍ଷାନିମିତ୍ତରେ ॥ ୧୫୯
ଚକ୍ରକୁ ଥିଲେ ଆଜ୍ଞା ଦେଇ । କୃତ୍ୟାକୁ ଦଗ୍‌ଧ କଲା ସେହି ॥ ୧୬୦
କ୍ରୋଧୀ ଭୁଜଙ୍ଗକୁ ଯେସନ । ଦହଇ ବିପିନଦହନ ॥ ୧୬୧
୪୯ ସେ ଚକ୍ର ଆସୁଅଛି ଧାଇଁ । ନିଷ୍ଫଳ ହେଲା ପ୍ରୟାସ ହିଁ ॥ ୧୬୨
ଦୁର୍ବାସା ଦେଖିଣ ଏମନ୍ତ । ଭୟକୁ ଲଭିଲେ ତ୍ୱରିତ ॥ ୧୬୩
ପ୍ରାଣ ପାଇବା ପ୍ରତ୍ୟାଶାରେ । ଧାଇଁଲେ ଦିଗମାନଙ୍କରେ ॥ ୧୬୪
୫୦ ତାହାଙ୍କ ଅନୁଗତ ହୋଇ । ବିଷ୍ଣୁର ଚକ୍ର ଗଲା ଧାଇଁ ॥ ୧୬୫
ଅହିକି ଉଚ୍ଚଶିଖାବନ୍ତ । ବନାଗ୍ନି ଧାମଇଁ ଯେମନ୍ତ ॥ ୧୬୬
ଯେବଣ ଚକ୍ର ସେ ପ୍ରକାରେ । ଲାଗୁଛି ଆପଣା ପିଠିରେ ॥ ୧୬୭
ଚାହାଁନ୍ତେ ସେ ଚକ୍ରକୁ ଋଷି । ମେରୁର କନ୍ଦରାରେ ଆସି ॥ ୧୬୮
ପ୍ରବେଶ ହୋଇବାକୁ ଚିତ୍ତ । କରନ୍ତେ ଧାଇଁଲେ ତ୍ୱରିତ ॥ ୧୬୯
୫୧ ଦିଗମାନଙ୍କୁ ଆକାଶକୁ । ଭୂମିକି ବିବରମାନଙ୍କୁ ॥ ୧୭୦
ଯେ ଅବା ସମୁଦ୍ର ସକଳ । ଯେ ଲୋକମାନେ ଲୋକପାଳ ॥ ୧୭୧
ଯେ ସୁରମାନଙ୍କ ନଗର । ତହିଁକି ଗଲେ ମୁନିବର ॥ ୧୭୨
ଯେବଣ ଯେବଣ ସ୍ଥାନକୁ । ଧାବନ୍ତି ପ୍ରାଣ ପାଇବାକୁ ॥ ୧୭୩
ଦୁଃସହ ଚକ୍ର ଅଟେ ଯେହି । ତାକୁ ଦେଖନ୍ତି ତହିଁ ତହିଁ ॥ ୧୭୪

୧. ପହଣ୍ଡ = ପାହୁଣ୍ଡ (ସଂ — ପାଦହୁଣ୍ଡନ)

୫୨　ସେ ତ୍ରସ୍ତଚିତ୍ତ ହୋଇ ପୁଣ　।　ଖୋଜନ୍ତେ ଆପଣା ଶରଣ　॥ ୧୭୫
ପ୍ରଭୁ କରିଣ କାହାକୁ ହିଁ　।　ଯେବେ ସେ ନ ଲଭିଲେ କାହିଁ　॥ ୧୭୬
ବିଷ୍ଣୁର ଚକ୍ରରୁ ସତ୍ୱର　।　ହେ ଧାତା ! ମୋତେ ରକ୍ଷା କର　॥ ୧୭୭
ବୋଲନ୍ତେ ଏମନ୍ତ ବଚନ　।　ଗଲେ ବ୍ରହ୍ମାଙ୍କ ସନ୍ନିଧାନ　॥ ୧୭୮

ଶ୍ରୀବ୍ରହ୍ମୋବାଚ

୫୩　ଦୁଇ ପରାର୍ଦ୍ଧ ନାମ ହୋଇ　।　ଯେ କ୍ରୀଡ଼ା ନାଶ ଯାନ୍ତେ ସେହି　॥ ୧୭୯
କାଳସ୍ୱରୂପୀ ଯେ ଈଶ୍ୱର　।　ଭ୍ରୂଭଙ୍ଗମାତ୍ରରେ ଯାହାର　॥ ୧୮୦
ଦଗଧ କରିବାକୁ ଚିତ୍ତ　।　କରନ୍ତେ ଏ ବିଶ୍ୱ ସହିତ　॥ ୧୮୧
ଏ ଯଉଁ ମୋର ନିଜ ସ୍ଥାନ　।　ଏହି ହୋଇବ ଅନ୍ତର୍ଧାନ　॥ ୧୮୨
୫୪　ମୁଁ ମହେଶ୍ୱର ଭୃଗୁ ଦକ୍ଷ　।　ଏହୁ ଅଟନ୍ତି ଯହିଁ ମୁଖ୍ୟ　॥ ୧୮୩
ଯେ ପ୍ରଜାପତି ଭୂତପତି　।　ଅମରନାୟକ ପ୍ରଭୃତି　॥ ୧୮୪
ଆମ୍ଭେ ସମସ୍ତେ ଏକ ହୋଇ　।　ଯାହା ଆଜ୍ଞାକୁ ପାଇ ଥାଇ　॥ ୧୮୫
ସକଳ ଲୋକଙ୍କର ହିତ　।　ଯହିଁରେ ହୁଅଇ ଉଦିତ　॥ ୧୮୬
ସେ ରୂପେ ସେ ଆଜ୍ଞାକୁ ଶିରେ　।　ଅର୍ପି ଘେନିଛୁଁ ନିରନ୍ତରେ　॥ ୧୮୭
ଏଣୁ ତା' ଭକ୍ତଦ୍ରୋହୀ ଜନ　।　ରକ୍ଷାରେ ମୁଁ ନୋହି ଭାଜନ　॥ ୧୮୮
୫୫　ନିରାଶ ବାଣୀ ଏ ରୂପରେ　।　ବ୍ରହ୍ମା କହନ୍ତେ ତଦନ୍ତରେ　॥ ୧୮୯
କଇଳାସରେ ନିଜ ବାସ　।　କରିଅଛନ୍ତି ଯେ ମହେଶ　॥ ୧୯୦
ତାହାଙ୍କୁ ପଶିଲେ ଶରଣ　।　ଦୁର୍ବାସା ମହାମୁନି ପୁଣ　॥ ୧୯୧

ଶ୍ରୀଶଙ୍କର ଉବାଚ

୫୬　ଭୋ ତାତ ! ଅପ୍ରମିତ ଯେହି　।　ତା' ଠାରେ ଆମ୍ଭେ ପ୍ରଭୁ ନୋହି　॥ ୧୯୨
ଏହି ବ୍ରହ୍ମାଣ୍ଡର ସମାନେ　।　ଆନବ୍ରହ୍ମାଣ୍ଡ କୋଷମାନେ　॥ ୧୯୩
ସହସ୍ର ସହସ୍ର ସଂଖ୍ୟାରେ　।　ଜନମ ହୁଅନ୍ତି ଯା' ଠାରେ　॥ ୧୯୪
କାଳେ ବିନାଶ ହୋନ୍ତି ସେହି　।　ଭ୍ରମୁଛୁଁ ଆମ୍ଭେମାନେ ଯହିଁ　॥ ୧୯୫
୫୭} ମୁଁ ଶିବ ସନତକୁମାର　।　ନାରଦ ବିଧାତା ଆବର　॥ ୧୯୬
୫୯} କପିଳ ଅପାନ୍ତରତମ　।　ଦେବଳ ଆସୁରି ଯେ ଧର୍ମ　॥ ୧୯୭
ମରୀଚିପ୍ରମୁଖ ଇତରେ　।　ଯେ ବା ସର୍ବଜ୍ଞ ସିଦ୍ଧେଶ୍ୱରେ　॥ ୧୯୮
ସମସ୍ତେ ମାୟାବୃତ ହୋଇ　।　ନ ଜାଣୁଁ ଯା' ମାୟାକୁ କେହି　॥ ୧୯୯
ଏ ଅସ୍ତ୍ର ସେ ବିଶ୍ୱେଶ୍ୱରର　।　ଅସହ୍ୟ ଅଟଇ ଆମ୍ଭର　॥ ୨୦୦
ହରି କରିବେ ତୋ' କଲ୍ୟାଣ　।　ତାହାଙ୍କୁ ପଶ ତୁ ଶରଣ　॥ ୨୦୧
୬୦　ଦୁର୍ବାସା ନିରାଶ ହୋଇଣ　।　ତହିଁରୁ ନିବର୍ତ୍ତିଲେ ପୁଣ　॥ ୨୦୨
ବୈକୁଣ୍ଠ ନାମେ ଯଉଁ ସ୍ଥାନ　।　ତହିଁକି କଲେ ସେ ଗମନ　॥ ୨୦୩
ଲକ୍ଷ୍ମୀସହିତେ ଶ୍ରୀନିବାସ　।　ଯହିଁରେ କରିଛନ୍ତି ବାସ　॥ ୨୦୪

୬୧ ସେ ଅସ୍ତ୍ରତେଜରେ ବିଷ୍ଣୁର । ଦଗ୍ଧ ହୁଅନ୍ତେ ମୁନିବର ॥ ୨୦୫
ଚରଣତଳେ ଶ୍ରୀପତିର । ପଡ଼ିଲା, କମ୍ପୁଛି ଶରୀର ॥ ୨୦୬
ବୋଇଲା ଏମନ୍ତ ବଚନ । ଅଚ୍ୟୁତ ହେ ବିଶ୍ୱଭାବନ ॥ ୨୦୭
ଯେ ସାଧୁ ଜନ ଏ ଜଗତେ । ହେ ପ୍ରଭୁ ସେ ବାଞ୍ଛନ୍ତି ତୋତେ ॥ ୨୦୮
କରିଛି ଅପରାଧ ମୁହିଁ । ମୋତେ ପାଳନ କର ତୁହି ॥ ୨୦୯
୬୨ ପରମ ଅନୁଭାବ ତୋର । ତା' ମୁଁ ନ କରନ୍ତେ ଗୋଚର ॥ ୨୧୦
ଯେ ପ୍ରିୟ ଜନମାନେ ତୋର । କଲି ଅପରାଧ ତାଙ୍କର ॥ ୨୧୧
ଆହେ ବିଧାତା ଯେ ତହିଁର । ନିଷ୍କୃତି ତା' ବିଧାନ କର ॥ ୨୧୨
ମୋର ଭଗତଜନଠାଇଁ । ଯେ ଲୋକ ଦ୍ରୋହ ଆଚରଇ ॥
ନିଷ୍କୃତି ନ ଦେଖଇଁ ତାର । ଯେବେ ଏ ଭାବନା ତୁମ୍ଭର ॥
ଯଥାର୍ଥ ନ ଅଟଇ ତାହି । ଏରୂପେ ଶାସ୍ତ୍ର ଅଛି କହି ॥
ଯେଣୁ ତୁମ୍ଭର ନାମ ଗାଇ । ମୁକ୍ତ ହୁଅଇ ନାରକୀ ହିଁ ॥ ୨୧୩

ଶ୍ରୀଭଗବାନୁବାଚ

୬୩ ହେ ବିପ୍ର ! ଆପଣାର କାୟେ । ଆୟତ୍ତ ନ ଥିଲା ପରାଏ ॥ ୨୧୪
ଯେ ବା ମୋହର ଭକ୍ତ ଜନ । ମୁଁ ସେମାନଙ୍କର ଅଧୀନ ॥ ୨୧୫
ସାଧୁ ଭଗତ ଯେଉଁ ନର । ଗ୍ରସ୍ତିଲେ[୧] ହୃଦୟକୁ ମୋର ॥ ୨୧୬
ଭଗତ ଜନେ ପ୍ରିୟ ମୋର । ମୁଁ ପୁଣ ପ୍ରିୟ ତାହାଙ୍କର ॥ ୨୧୭
୬୪ ଯେ ମୋ' ଭଗତ ସାଧୁଜନେ । ତାହାଙ୍କ ବିନୁ ଏ ଭୁବନେ ॥ ୨୧୮
ଆପଣା ଆତ୍ମା ଅଟେ ଯେହି । ତାକୁ ଆଶଂସା[୨] ନ କରଇ ॥ ୨୧୯
ଯେ ଲକ୍ଷ୍ମୀ ମୋର ଅତିଶୟେ । ତାକୁ ହିଁ ନ ବାଞ୍ଛେ ହୃଦୟେ ॥ ୨୨୦
ହେ ବିପ୍ର ! ଯେଉଁ ଭକ୍ତଙ୍କର । ପରମ ଗତି ମୁଁ ଈଶ୍ୱର ॥ ୨୨୧
୬୫ ଦାରା ସଦନ ଆପ୍ତ ସୁତ । ଯେ ପ୍ରାଣ ଲୋକଦ୍ୱୟ[୩] ବିତ୍ତ ॥ ୨୨୨
ଛାଡ଼ି ଶରଣ ଗଲେ ମୋତେ । ତାଙ୍କୁ ମୁଁ ଛାଡ଼ିବି କେମନ୍ତେ ॥ ୨୨୩
୬୬ ମୋଠାରେ ବଦ୍ଧ ଯାଙ୍କ ମନ । ଯେ ସାଧୁ ଯେ ସମଦର୍ଶନ ॥ ୨୨୪
ସେମାନେ ମୋତେ ଭଗତିରେ । ବଶ କରନ୍ତି ଜଗତରେ ॥ ୨୨୫
ଉତ୍ତମ ପତିଙ୍କି ଯେସନେ । ଭାବେ ଉତ୍ତମ ସ୍ତିରୀମାନେ ॥ ୨୨୬
୬୭ ମିଳେ ମୋ ସେବାରୁ ପ୍ରତ୍ୟକ୍ଷ । ଯେ ସାଲୋକ୍ୟାଦି ଚାରି ମୋକ୍ଷ ॥ ୨୨୭
ସେମାନେ ତାହା ନ ବାଞ୍ଛନ୍ତି । ସେବାରେ ପୂର୍ଣ୍ଣ ସେ ଅଟନ୍ତି ॥ ୨୨୮
ଯେ ଆନ କାଳେ ନାଶ ଯାଇ । ତାହା ବାଞ୍ଛିବେ କାହୁଁ ସେହି ॥ ୨୨୯
୬୮ ସାଧୁଏ ହୃଦୟ ମୋହର । ମୁଁ ହୃଦ ସାଧୁଜନଙ୍କର ॥ ୨୩୦
ମୋହର ବିହୁନେ ସେମାନେ । ଆନକୁ ନ ଜାଣନ୍ତି ମନେ ॥ ୨୩୧

୧. ଗ୍ରାସିଲେ । ୨. ଆଶଂସା = ସ୍ପୃହା । ୩. ଲୋକଦ୍ୱୟ = ଇହ ପର ଲୋକ ।

| | | | | |
|---|---|---|---|---|
| | ତାହାଙ୍କ ବିନୁ ଅଳପ ହିଁ | ଆନକୁ ନ ଜାଣଇଁ ମୁହିଁ | ।। | ୨୩୨ |
| ୬୯ | ହେ ବିପ୍ର ! ଉପାୟ ତୁମ୍ଭଙ୍କୁ | କହିବି ଶୁଣ ତୁମ୍ଭେ ତାକୁ | ।। | ୨୩୩ |
| | ଏ ନିଜ ଆତ୍ମା-ଅଭିଚାର[୧] | ଯାଠାରୁ ହୋଇଲା ତୁମ୍ଭର | ।। | ୨୩୪ |
| | ଗମନ କର ତାହା ଠାକୁ | ଆଉ ନ କର ବିଳମ୍ବକୁ | ।। | ୨୩୫ |
| | ଯେ ସାଧୁଜନଙ୍କର ଠାର | କରଇ ତେଜକୁ ପ୍ରଚାର | ।। | ୨୩୬ |
| | ତାହାରି ଅମଙ୍ଗଳକୁ ହିଁ | ସେ ତେଜ ଅବଶ୍ୟ କରଇ | ।। | ୨୩୭ |
| ୭୦ | ମୁଁ ତପ ବିଦ୍ୟାରେ ସଂଯୁକ୍ତ | କିରୂପେ ଅନର୍ଥ ସଂଜାତ | ।। | |
| | ହୋଇଲା ମୋହର ଏମନ୍ତେ | ବିସ୍ମୟ ତୁମ୍ଭେ ନୋହ ଚିତ୍ତେ | ।। | |
| | ତପସ୍ୟା ବିଦ୍ୟା ଯେବା ଦୁଇ | ବିପ୍ରଙ୍କ ମୁକ୍ତିକର ସେହି | ।। | ୨୩୮ |
| | ଯେବଣ କର୍ତ୍ତା ଅବିନୟ | ତାହାର ପୁଣ ସେହି ଦ୍ୱୟ | ।। | ୨୩୯ |
| | ଅନ୍ୟଥା ରୂପରେ କଳ୍ପିତ | ହୁଅଇ ଏକଥା ନିୟତ | ।। | ୨୪୦ |
| ୭୧ | ହେ ବିପ୍ର ! ଭଦ୍ର ହେଉ ତୋର | ଯେ ସୁତ ଅଟେ ନାଭାଗର | ।। | ୨୪୧ |
| | ସେ ନରପତି ମହାଭାଗ | ତାହାର ଠାକୁ ଯାଅ ବେଗ | ।। | ୨୪୨ |
| | କ୍ଷମା କରାଅ ତାକୁ ଏବେ | ଶାନ୍ତି ହୋଇବ ତୋର ତେବେ | ।। | ୨୪୩ |
| | କୃଷ୍ଣଚରଣେ ଦେଇ ଚିତ୍ତ | ଭଣିଲା ଦୀନବନ୍ଧୁ ଗୀତ | ।। | ୨୪୪ |
| | ନବମ ସ୍କନ୍ଧ ଅନୁସାରେ | ସଜ୍ଜନମାନଙ୍କ ଅର୍ଥରେ | ।। | ୨୪୫ |
| | ସେ ଗୀତ କରିଣ ଗାୟନ | ହରଷ ହୋନ୍ତୁ ସର୍ବଜନ | ।। | ୨୪୬ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀମଦମ୍ବରୀଷଚରିତଂ
ନାମ ଚତୁର୍ଥୋଽଧ୍ୟାୟଃ ।।

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ବିଷ୍ଣୁଚକ୍ରଂ ତୁ ପ୍ରସାଦ୍ୟ ପ୍ରାଣସଂକଟାଦ୍ ।
ଦୁର୍ବାସା ରକ୍ଷିତସ୍ତେନ ଯଥା ତଦ୍‌ବୃତ୍ତମୀର୍ଯ୍ୟତେ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଏମନ୍ତ ପ୍ରକାରେ ବଚନ | ଆଜ୍ଞା ଦିଅନ୍ତେ ଭଗବାନ | ।। | ୧ |
| | ଦୁର୍ବାସା ଚକ୍ରେ ତାପି ହୋଇ | ଅମ୍ବରୀଷର ଠାକୁ ଯାଇ | ।। | ୨ |
| | ଧଇଲେ ତାର ପାଦ ଦୁଇ | ଯେଣୁ ଅଛନ୍ତି ଦୁଃଖୀ ହୋଇ | ।। | ୩ |
| ୨ | ମୁନିଙ୍କ ସେ ଉଦ୍ୟମ ଚାହିଁ | ପାଦସ୍ପରଶେ ଲଜ୍ଜା ପାଇ | ।। | ୪ |
| | ଅତ୍ୟନ୍ତ ପୀଡ଼ାକୁ କୃପାରେ | ଲଭିଲେ ଆପଣା ମନରେ | ।। | ୫ |

୧. ଅଭିଚାର = ହିଂସା ।

| | | | | | |
|---|---|---|---|---|---|
| | ସେ ବିଷ୍ଣୁଚକ୍ରକୁ ନୃପତି | । | କଲେ ଏମନ୍ତରୂପେ ସ୍ତୁତି | ।। | ୬ |

ଶ୍ରୀଅମ୍ବରୀଷ ଉବାଚ

| | | | | | |
|---|---|---|---|---|---|
| ୩ | ତୁମ୍ଭେ ଅନଳ ଦିବାକର | । | ଚନ୍ଦ୍ରମା ତାରାଙ୍କ ଈଶ୍ୱର | ।। | ୭ |
| | ତୁମ୍ଭେ ସଲିଳ ତୁମ୍ଭେ ମହୀ | । | [1]ତୁମ୍ଭେ ଆକାଶ ପବନ ହି | ।। | ୮ |
| | ଇନ୍ଦ୍ରିୟ ରୂପ ରସ ଆଦି | । | ବିଷୟରୂପେ ତୁମ୍ଭେ ସିଦ୍ଧି | ।। | ୯ |
| | ତୁମ୍ଭ ଶକ୍ତିରେ ଅଗ୍ନି ଆଦି | । | କାର୍ଯ୍ୟକୁ ପାରନ୍ତି ସଂପାଦି | ।। | ୧୦ |
| ୪ | ସହସ୍ରସଂଖ୍ୟ ତୁମ୍ଭ ଅର | । | ତୁ ଅଟୁ ପ୍ରିୟ ଅଚ୍ୟୁତର | ।। | ୧୧ |
| | ସକଳ ଅସ୍ତ୍ରଙ୍କ ସଂହାର | । | ତୁ କରୁ ତୋତେ ନମସ୍କାର | ।। | ୧୨ |
| | ତୁ ସେ ଧରଣୀପତି ପୁଣ | । | ବିପ୍ରର ହୁଅ ତୁ ଶରଣ | ।। | ୧୩ |
| ୫ | ତୁ ଧର୍ମ[2] ସତ୍ୟ[3] ତୁହି ଋତ[4] | । | ଯଜ୍ଞ ଯଜ୍ଞଙ୍କ ଭୋକ୍ତା ମତ | ।। | ୧୪ |
| | ତୁ ସର୍ବଆତ୍ମା ଲୋକପାଳ | । | ବିଷ୍ଣୁର ତେଜ ତୁ କେବଳ | ।। | ୧୫ |
| ୬ | ସୁନ୍ଦର ଅଟେ ନାଭି ତୋର | । | ତୁ ସେତୁ ସର୍ବଧର୍ମଙ୍କର | ।। | ୧୬ |
| | ଅଧର୍ମଶୀଳ ଦୈତ୍ୟ ଯେହି | । | ତାହାଙ୍କୁ ଧୂମକେତୁ ତୁହି | ।। | ୧୭ |
| | ତ୍ରୈଲୋକ୍ୟ ପାଳନ ତୁ କରୁ | । | ଅତି ଉଜ୍ଜ୍ୱଳ ତେଜ ଧରୁ | ।। | ୧୮ |
| | ମନରୁ ବେଗ ତୋ' ପ୍ରଚାର | । | ଅଦ୍ଭୁତ କର୍ମମାନେ ତୋର | ।। | ୧୯ |
| | ସ୍ତୁତିକି ନୋହେ ମୁଁ ଭାଜନ | । | କେବଳ କରୁଛି ବନ୍ଦନ | ।। | ୨୦ |
| ୭ | ତୋହର ତେଜ ଧର୍ମମୟ | । | ତେଣେ ତମକୁ କରୁ କ୍ଷୟ | ।। | ୨୧ |
| | ମହାତ୍ମାମାନଙ୍କ ଲୋଚନ | । | ପ୍ରକାଶ ହୁଅଇ ବିଲୀନ | ।। | ୨୨ |
| | ତୋର ମହିମା ଅଗୋଚର | । | ତୁ ସେ ବଚନଙ୍କ ଈଶ୍ୱର | ।। | ୨୩ |
| | ସନ୍ତ ଅସନ୍ତ ପରାବର | । | ଜଗତ ଅଟେ ରୂପ ତୋର | ।। | ୨୪ |
| ୮ | ତୋତେ ଯୁଦ୍ଧରେ ବିସର୍ଜନ | । | କରନ୍ତି ଯେବେ ଭଗବାନ | ।। | ୨୫ |
| | ଦୈତ୍ୟ ଦାନବଙ୍କର ବଳେ | । | ପ୍ରବେଶ ହେଉ ତୁ ସେ କାଳେ | ।। | ୨୬ |
| | ବାହୁ ଉଦର ଉରୁ ଶିର | । | ଚରଣ ଗ୍ରୀବା ତାହାଙ୍କର | ।। | ୨୭ |
| | ଛେଦନ କରନ୍ତେ ସନ୍ତତ | । | ଶୋଭନ ଦିଶୁ ତୁ ଅଜିତ | ।। | ୨୮ |
| ୯ | ତୁ ଅଟୁ ଜଗତରକ୍ଷଣ | । | ସକଳ ସହି ପାରୁ ପୁଣ | ।। | ୨୯ |
| | ଯେ ଖଳମାନେ ଜଗତରେ | । | ତାହାଙ୍କୁ ମାରିବା ଅର୍ଥରେ | ।। | ୩୦ |
| | ତୋତେ ପ୍ରତ୍ୟକ୍ଷେ ନାରାୟଣ | । | କରିଅଛନ୍ତି ନିରୂପଣ | ।। | ୩୧ |
| | ଆମ୍ଭ କୁଳର ଭାଗ୍ୟପାଇଁ | । | ବିପ୍ରମଙ୍ଗଳ କର ତୁହି | ।। | ୩୨ |
| | ସେ କଥା କଲେ ନିଃସନ୍ଦେହ | । | ହେବ ଆମ୍ଭର ଅନୁଗ୍ରହ | ।। | ୩୩ |

୧. ଆକାଶ ବାୟୁ ସର୍ବାତ୍ମା ହି । ୨. ଯଜ୍ଞ । ୩. ସତ୍ୟ = ସମଦର୍ଶନ ।
୪. ଋତ = ସୂନୃତା ବାଣୀ "ଋତଂ ଚ ସୂନୃତାବାଣୀ ସତ୍ୟଂ ଚ ସମଦର୍ଶନମ୍" । (ବିଶ୍ୱନାଥ)

୧୦ ଯେବେ ମୁଁ ଦେଇଅଛି ଦାନ । ଯାଗକୁ କରିଛି ବିଧାନ ।। ୩୪
ଉତ୍ତମ କରି ଆଚରଣ । କରିଛି ନିଜ ଧର୍ମ ପୁଣ ।। ୩୫
ଆମ୍ଭ କୁଳର ବିପ୍ରମାନେ । ଦେବତା ଯେ ବା ଏ ଭୁବନେ ।। ୩୬
ଯେବେ ଏମାନ ସତ୍ୟ ପୁଣ । ବିଜ୍ୱର ହେଉ ଏ ବ୍ରାହ୍ମଣ ।। ୩୭
୧୧ ସମସ୍ତ ଗୁଣମାନଙ୍କର । ଆଶ୍ରୟ ଯେ ଏକ ଈଶ୍ୱର ।। ୩୮
ସମସ୍ତ ଭୂତେ ଆତ୍ମଭାବେ । ଆମ୍ଭଙ୍କୁ ସଂତୋଷ ସେ ଯେବେ ।। ୩୯
ସନ୍ତାପରହିତ ଏ ଦ୍ୱିଜ । ହେଉ ନିଶ୍ଚୟ କରି ଆଜ ।। ୪୦

ଶ୍ରୀଶୁକ ଉବାଚ

୧୨ ସେ ଅମ୍ବରୀଷ ମହୀପତି । କରନ୍ତେ ଏ ରୂପରେ ସ୍ତୁତି ।। ୪୧
ବିପ୍ରକୁ ସକଳ ଦିଗରେ । ଯେ ଦହୁଥିଲା କୋପଭରେ ।। ୪୨
ରାଜାର ଯାଚଞ୍ଚାରେ ଝଟିତି । ବିଷ୍ଣୁର ଚକ୍ର ହେଲା ଶାନ୍ତି ।। ୪୩
୧୩ ଯେ ଅସ୍ତ୍ର-ଅନଳୁଁ ସମ୍ଭୂତ । ସେ ତାପୁଁ ହୋଇଣ ମୁକତ ।। ୪୪
ସେହୁ ଦୁର୍ବାସା ମୁନିବର । ସ୍ୱସ୍ତିକି ଲଭି ତଦନ୍ତର ।। ୪୫
ବାଞ୍ଛନ୍ତେ ଶ୍ରେଷ୍ଠ ଆଶିଷକୁ । ପ୍ରଶଂସା କଲେ ସେ ରାଜାକୁ ।। ୪୬

ଶ୍ରୀଦୁର୍ବାସା ଉବାଚ

୧୪ ବିଷ୍ଣୁର ଦାସ ଯଉଁ ନର । ଅଦ୍ଭୁତ ମାହାତ୍ମ୍ୟ ତାଙ୍କର ।। ୪୭
ଆଜ ମୁଁ କଲି ବିଲୋକନ । ଯେଣୁ କରି ମୁଁ ହେ ରାଜନ ।। ୪୮
କରିଛି ଅପରାଧ ତୋର । ମଙ୍ଗଳ ବାଞ୍ଛୁଛୁ ତୁ ମୋର ।। ୪୯
୧୫ ମହାତ୍ମା ସାଧୁମାନଙ୍କର । ଦୁସ୍ତ୍ୟଜ କେ କେ ବା ଦୁଷ୍କର ।। ୫୦
ଯେହୁ ସାତ୍ୱତବର ହରି । ତାଙ୍କୁ ଯେ ଭାବେ ଛନ୍ତି ଧରି ।। ୫୧
୧୬ ପୁରୁଷ ଯା' ନାମଶ୍ରବଣେ । ନିର୍ମଳ ହୋଏ ତତକ୍ଷଣେ ।। ୫୨
ସେ ଭଗବାନର ଯେ ଦାସ । ତାଙ୍କର କିବା ଅବଶେଷ ।। ୫୩
୧୭ ହେ ନୃପ ! କରୁଣାସଂଯୁତ । ଅଟଇ ତୋର ନିଜ ଚିତ୍ତ ।। ୫୪
ମୋତେ ତୁ କଲୁ ଅନୁଗ୍ରହ । ନାହିଁ ଏ କଥାରେ ସଂଦେହ ।। ୫୫
ମୋ ଦୋଷ ପିଠିକି କରିଣ । ଯେଣୁ ରଖିଲୁ ମୋର ପ୍ରାଣ ।। ୫୬

ଶ୍ରୀଶୁକ ଉବାଚ

୧୮ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ରାଜା ପରୀକ୍ଷିତ ।। ୫୭
ଲେଉଟି ଆସିବେ ସେ ଯତି । ଏମନ୍ତ ବାଞ୍ଛାରେ ନୃପତି ।। ୫୮
ଉପବାସରେ ଥିଲେ ରହି । ଧରି ତାହାଙ୍କ ପାଦ ଦୁଇ ।। ୫୯
ତାହାଙ୍କୁ କରାଇ ପ୍ରସନ୍ନ । ପୁଣ କରାଇଲେ ଭୋଜନ ।। ୬୦
୧୯ ସମସ୍ତ କାମରେ ସଂଯୁତ । ଅତିଥିଅନ୍ନ ଯେ ବିଦିତ ।। ୬୧

| | | | | | |
|---|---|---|---|---|---|
| | ବେଗେ ତା' ଆଣି ସମର୍ପିଲେ | । | ସେ ତାହା ଭୁଞ୍ଜି ତୋଷ ହେଲେ | ॥ | ୬୨ |
| | ସାଦରେ ବୋଇଲେ ରାଜାକୁ | । | ତୁ ଏବେ କର ଭୋଜନକୁ | ॥ | ୬୩ |

ଶ୍ରୀଦୁର୍ବାସା ଉବାଚ

| | | | | | |
|---|---|---|---|---|---|
| ୨୦ | ତୁ ଅଟୁ ଭାଗବତ ଜନ | । | ତୋହର ଯେ ବା ଦରଶନ | ॥ | ୬୪ |
| | ଯେ ପୁଣ ତୋର ସ୍ପରଶନ | । | ତୋ' ସଙ୍ଗେ ସମ୍ଭାଷଣମାନ | ॥ | ୬୫ |
| | ଯେଣେ ଆତ୍ମାରେ ମେଧା ଜାତ | । | ଆତିଥ୍ୟ ଅନ୍ନ ଯେ ବିଦିତ | ॥ | ୬୬ |
| | ତେଣେ ମୁଁ ପ୍ରୀତ ହେଲି ତୋତେ | । | ତୁ ଅନୁଗ୍ରହ କଲୁ ମୋତେ | ॥ | ୬୭ |
| ୨୧ | ଏ ତୋ' ବିଶୁଦ୍ଧ କର୍ମଗୁଣ | । | ଦେବସ୍ତ୍ରୀମାନେ ପୁଣ ପୁଣ | ॥ | ୬୮ |
| | ସ୍ୱର୍ଗରେ କରିବେ ଗାୟନ | । | ଯେ ତୋର ଯଶ ମହାପୁଣ୍ୟ | ॥ | ୬୯ |
| | କୀର୍ତ୍ତନ କରିବ ଏ ମହୀ | । | ଯାବତ କାଳ ଥିବ ରହି | ॥ | ୭୦ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୨ | ଦୁର୍ବାସା ପରିତୋଷ ହୋଇ | । | ରାଜାକୁ ଏ ବଚନ କହି | ॥ | ୭୧ |
| | ତାହାକୁ କରି ଆମନ୍ତ୍ରଣ | । | ହେ ନୃପ ! ଆକାଶମାର୍ଗେଣ | ॥ | ୭୨ |
| | ନିଷ୍କାମ କର୍ମେ ଲଭି ଯାକୁ | । | ଗମିଲେ ସେ ବ୍ରହ୍ମଲୋକକୁ | ॥ | ୭୩ |
| ୨୩ | ସେ ଗଲା[୧] ମୁନି ଯେତେ ଦିନେ | । | ପ୍ରବେଶ ନୋହିଲେ ସେ ସ୍ଥାନେ | ॥ | ୭୪ |
| | ଏ ରୂପେ ଗଲା ସଂବତ୍ସରେ | । | ରାଜା ତା' ଦର୍ଶନ ଇଚ୍ଛାରେ | ॥ | ୭୫ |
| | ବରଷେ ଯାଏ ଜଳପାନ | । | କରନ୍ତେ ତ୍ୟାଗ କଲେ ଅନ୍ନ | ॥ | ୭୬ |
| ୨୪ | ଦୁର୍ବାସା ଯାନ୍ତେ ତଦନ୍ତର | । | ସେ ଅମ୍ବରୀଷ ନରେଶ୍ୱର | ॥ | ୭୭ |
| | ବ୍ରାହ୍ମଣ ଉପଯୋଗେ[୨] ଅତି | । | ପବିତ୍ର ଅଟେ ଯେ ସଂପତ୍ତି | ॥ | ୭୮ |
| | ସେ ତାହା ଉପଯୋଗ କଲେ | । | ଯଉଁ ବ୍ୟସନକୁ ଲଭିଲେ | ॥ | ୭୯ |
| | ଋଷିଙ୍କ ବିମୋକ୍ଷଣ ପୁଣ | । | ସ୍ୱବୀର୍ଯ୍ୟ ଯେ ଧୈର୍ଯ୍ୟଲକ୍ଷଣ | ॥ | ୮୦ |
| | ପ୍ରଭାବ ଅଟେ ସେ ବିଷ୍ଣୁର | । | ଏମନ୍ତ ମଣିଲେ ମନର | ॥ | ୮୧ |
| ୨୫ | ଅନେକ ଗୁଣ ଏ ପ୍ରକାରେ | । | ଅଛି ଯେବଣ ନୃପଠାରେ | ॥ | ୮୨ |
| | କ୍ରିୟାସମୂହେ ବିଷ୍ଣୁଠାରେ | । | ଭକ୍ତିକି କଲା ସେ ନିର୍ଭରେ | ॥ | ୮୩ |
| | ଯେଣେ ବ୍ରହ୍ମାଦି ଭୋଗମାନ | । | ଦେଖିଲା ନିରୟସମାନ | ॥ | ୮୪ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୬ | ଯାହାଙ୍କ ସୁଚରିତମାନ | । | ଅଟେ ଆପଣାର ସମାନ | ॥ | ୮୫ |
| | ସେ ପୁତ୍ରମାନଙ୍କର ଠାରେ | । | ରାଜ୍ୟ ନିବେଶି ତଦନ୍ତରେ | ॥ | ୮୬ |
| | ସେ ଧୀର ନୃପ ଅମ୍ବରୀଷ | । | ବନରେ ହୋଇଲା ପ୍ରବେଶ | ॥ | ୮୭ |

୧. ମୂଳ 'ଗତ' ଶବ୍ଦର ରୂପାନ୍ତର । (ତୁଂ - ''ଗଲା ପୁତ୍ର ବାହୁଡ଼ି ନଇଲା'')

୨. ଉପଯୋଗ = ଭୋଜନ; ଭୋଗ ।

ଯେ ବାସୁଦେବ ଭଗବାନ । ଦେଇଛି ତାଙ୍କ ଠାରେ ମନ ॥ ୮୮
ଗୁଣପ୍ରବାହ ଏ ସଂସାର । ବିନାଶ ହୋଇଲା ତାହାର ॥ ୮୯
୨୭ ଏଂ ଅମ୍ବରୀଷ ନୃପତିର । ପୁଣ୍ୟ ଆଖ୍ୟାନକୁ ଯେ ନର ॥ ୯୦
କରନ୍ତେ ଧ୍ୟାନ ସଂକୀର୍ତ୍ତନ । ସେ ବିଷ୍ଣୁଭକ୍ତ ହୋଏ ଜନ ॥ ୯୧
ଶ୍ରୀକୃଷ୍ଣଚରଣକୁ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୯୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀମଦମ୍ବରୀଷୋପାଖ୍ୟାନଂ
ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠ ଅଧ୍ୟାୟ

ଷଷ୍ଠାରମ୍ଭେଽମ୍ବରୀଷସ୍ୟ ବଂଶମୁକ୍ତ୍ୱା ତତଃ ପରମ୍ ।
ଷଷ୍ଠାଦ୍ୟଷ୍ଟଭିରଧ୍ୟାୟୈରିକ୍ଷ୍ୱାକୋର୍ବଂଶ ଉଚ୍ୟତେ ॥ ୧
ତତ୍ର ଷଷ୍ଠେ ଶଶାଦାଦିର୍ମାନ୍ଧାତ୍ରନ୍ତୋ ନିରୂପ୍ୟତେ ।
ପ୍ରସଙ୍ଗାଦ୍ ସୌଭରେରାଖ୍ୟା ମାନ୍ଧାତୃତନୟାପତେଃ ॥ ୨

ଶ୍ରୀଶୁକ ଉବାଚ

୧ ବିରୂପ ଶମ୍ଭୁ କେତୁମନ୍ତ । ଏ ଅମ୍ବରୀଷତିନିସୁତ ॥ ୧
ବିରୂପଠାରୁ ଯେ ସଂଭୂତ । ସେ ପୃଷଦଶ୍ୱ ନାମେ ଖ୍ୟାତ ॥ ୨
ତାହାର ସଂଭବିଲା ସୁତ । ସେ ରଥୀତର ନାମେ ଖ୍ୟାତ ॥ ୩
୨ ସେ ରଥୀତରର ସନ୍ତତି । ନୋହିଲା ଯେଣୁ ଉତପତି ॥ ୪
ସନ୍ତାନନିମିତ୍ତେ ପ୍ରାର୍ଥନ । କରନ୍ତେ ପୁଣ ସେ ରାଜନ ॥ ୫
ଅଙ୍ଗିରା ଋଷି କଲେ ଜାତ । ତା' ଭାର୍ଯ୍ୟାଠାରେ ଯେତେ ସୁତ ॥ ୬
ବ୍ରହ୍ମବର୍ଚ୍ଚସରେ ସଂଯୁତ । ହୋଇଲେ ସେ ସମସ୍ତ ସୁତ ॥ ୭
୩ ଏ ରଥୀତରକ୍ଷେତ୍ରେ ଜାତ । ଅଙ୍ଗିରାବୀର୍ଯ୍ୟରୁ ସଂଭୂତ ॥ ୮
ଏଣୁ ବୋଲାନ୍ତି ଆଙ୍ଗିରସେ । ଯେତେ ସଂଭବିଲେ ଏ ବଂଶେ ॥ ୯
ତାହାଙ୍କ ପ୍ରବର ଏ ପୁଣ । କ୍ଷତ୍ରମିଶ୍ରିତ ଏ ବ୍ରାହ୍ମଣ ॥ ୧୦
୪ ମନୁ ଛିଙ୍କନ୍ତେ ହେଲା ଜାତ । ଘ୍ରାଣୁଁ ଇକ୍ଷ୍ୱାକୁ ନାମେ ସୁତ ॥ ୧୧
ସେ ଇକ୍ଷ୍ୱାକୁର ସୁତ ଶତେ । ଜ୍ୟେଷ୍ଠ ଅଟନ୍ତି ତିନି ସୁତେ ॥ ୧୨
ବିକୁକ୍ଷି ନିମି ନାମେ ବେନି । ଦଣ୍ଡକ ମିଶିଣ ସେ ତିନି ॥ ୧୩

---

୧. ''ଅମ୍ବରୀଷସ୍ୟ ଚରିତଂ ଯେ ଶୃଣ୍ୱନ୍ତି ମହାତ୍ମନଃ ।
ମୁକ୍ତିଂ ପ୍ରୟାନ୍ତି ତେ ସର୍ବେ ଭକ୍ତ୍ୟା ବିଷ୍ଣୋଃ ପ୍ରସାଦତଃ ॥''
ଇତି ଅଧିକଃ ପାଠଃ କ୍ୱଚିଦ୍ ଦୃଶ୍ୟତେ ।

୫ ଯେ ବିନ୍ଧ୍ୟ ହିମଗିରି ଦୁଇ । ତାଙ୍କ ମଧ୍ୟେ ଯେ ପୁଣ୍ୟ ମହୀ ।।
ଯେ ଆର୍ଯ୍ୟାବର୍ତ୍ତ[1] ନାମେ ଖ୍ୟାତ । ତହିଁରୁ ସମୁଦ୍ର ପର୍ଯ୍ୟନ୍ତ ।।
ମଣ୍ଡଳକ୍ରମେ ଯେତେ ମହୀ । ପଞ୍ଚିଶ ନୃପ ହେଲେ ତହିଁ ।।
ତହିଁ ପଛରେ ଯେତେ କ୍ଷିତି । ତହିଁରେ ପଞ୍ଚିଶ ନୃପତି ।।
ମଧ୍ୟରେ ଥିଲା ଯେତେ ମହୀ । ତହିଁରେ ଜ୍ୟେଷ୍ଠ ତିନି ଭାଇ ।।
ଦକ୍ଷିଣ ଉତ୍ତର ଭୂମିରେ । ନୃପତି ହୋଇଲେ ଇତରେ ।।
୬ ସେ ମନୁ ଏକ ଦିନକରେ । ଅଷ୍ଟକାଶ୍ରାଦ୍ଧବିଷୟରେ ।।
ସୁତକୁ ବୋଇଲା ବଚନ । ବିକୁକ୍ଷି ଯାଅ ତୁ ବହନ ।।
ପବିତ୍ର ଅଟଇ ଯେ ମାଂସ । ତାହା ଏଠାକୁ ଘେନି ଆସ ।।
୭ ସେକଥା କରିଣ ସ୍ୱୀକାର । ବନକୁ ଯାଇ ସେ ସତ୍ୱର ।।
ଶ୍ରାଦ୍ଧକୁ ଯୋଗ୍ୟ ଯେହୁ ପୁଣ । ସେ ମୃଗମାନଙ୍କୁ ମାରିଣ ।।
ବନଭ୍ରମଣେ ହେଲା ଶାନ୍ତ । କ୍ଷୁଧାରେ ହୋଇଲା ପୀଡ଼ିତ ।।
ଶ୍ରାଦ୍ଧବିଷୟ ପାସୋରିଲା । ଶଶାଗୋଟିଏ ଭକ୍ଷ କଲା ।।
୮ ଯେ ଅବଶେଷ ମାଂସ ଥିଲା । ପିତାକୁ ତାହା ନିବେଦିଲା ।।
ସେ ପିତା ଶ୍ରାଦ୍ଧକୁ ଉଚିତ । ସଂସ୍କାର କରିବା ନିମିତ୍ତ ।।
ଗୁରୁଙ୍କୁ କହିଲେ ବଚନ । ବଶିଷ୍ଠ ବୋଇଲେ ଏସନ ।।
ଏ ମାଂସ ଅଟଇ ଦୂଷିତ । କର୍ମକୁ ନୁହଇ ଉଚିତ ।।
ଏଥୁଁ ପ୍ରଥମୁଁ ଏକ ଶଶ । ତୋ ସୁତ କଲା ଯେଣୁ ଗ୍ରାସ ।।
୯ ଗୁରୁ କହିଲେ ଯଉଁ ବାଣୀ । ପୁତ୍ରର ସେ କର୍ମକୁ ଶୁଣି ।।
ପୁତ୍ରକୁ ମହୀପତି ରୋଷେ । ରଖିଲେ ନାହିଁ ନିଜ ଦେଶେ ।।
ଯେ ବିଧି କର୍ମରେ ବିହିତ । ଯେଣୁ ଛାଡ଼ିଲା ତାହା ସୁତ ।।
୧୦ ସେ ମନୁ ବଶିଷ୍ଠସଙ୍ଗରେ । ସଂବାଦ କରନ୍ତେ ଜ୍ଞାନରେ ।।
ରାଜ୍ୟକୁ ଛାଡ଼ି ବଇରାଗେ । ଯୋଗୀ ହୋଇଣ ସେହିଯୋଗେ ।।
ଛାଡ଼ିଣ ନିଜ କଳେବର । ବ୍ରହ୍ମଙ୍କୁ ଲଭିଲେ ସତ୍ୱର ।।
୧୧ ପିତାଏ ଲଭିଲେ ମରଣ । ବିକୁକ୍ଷି ରାଜ୍ୟକୁ ଆସିଣ ।।
ପୃଥିବୀ କରନ୍ତେ ପାଳନ । ଯେ ନାନାବିଧ ଯଜ୍ଞମାନ ।।
ତେଣେ ହରିଙ୍କି ପୂଜା କଲେ । ଶଶାଦ[2] ନାମେ ଖ୍ୟାତ ହେଲେ ।।
୧୨ ଶଶାଦପୁତ୍ର ପୁରଞ୍ଜୟ । ତାକୁ ବୋଲନ୍ତି ଇନ୍ଦ୍ରବାହ ।।
କକୁତ୍‌ସ୍ଥ ହୋଇ ଜଗତରେ । ଖ୍ୟାତ ହୋଇଲା ସେ କାଳରେ ।।
ଯେ ନାମ ଯଉଁ କର୍ମେ ପୁଣ । ସେ କଥା କର ତୁ ଶ୍ରବଣ ।।

---

୧. "ଆର୍ଯ୍ୟାବର୍ତ୍ତଃ ପୁଣ୍ୟଭୂମିର୍ମଧ୍ୟଂ ବିନ୍ଧ୍ୟହିମାଗୟୋଃ ।" (ହିମାଗ = ହିମାଳୟ)
ବିନ୍ଧ୍ୟ ଓ ହିମାଳୟର ମଧ୍ୟ ପୁଣ୍ୟଭୂମି ଆର୍ଯ୍ୟାବର୍ତ୍ତ ।

୨. ଶଶାଦ = ଯେ ଠେକୁଆ ଖାଏ ।

୧୩ ନିଜ ବାନ୍ଧବ ଯେ ଅସୁରେ । ସେମାନଙ୍କର ସଙ୍ଗତରେ ।।
ଦେବତାଙ୍କର ହେଲା ରଣ । ଯେ ବିଶ୍ୱକ୍ଷୟକୁ କାରଣ ।।
ଦୈତ୍ୟଙ୍କ ଠାରୁ ସେ କାଳରେ । ପରାଜୟକୁ ଲଭି ସୁରେ ।।
ଶଶାଦସୁତକୁ ତତ୍‌କ୍ଷଣ । ବରିଲେ ସହାୟ କରିଣ ।।
୧୪ ଇନ୍ଦ୍ର ବାହନ ହେବ ଯେବେ । ଦୈତ୍ୟଙ୍କୁ ମାରିବି ମୁଁ ତେବେ ।।
ସେ ନୃପ ବୋଲନ୍ତେ ଏ ବାଣୀ । ଲଜ୍ଜାରେ ପୁରନ୍ଦର ଶୁଣି ।।
ତାହା ନ କରନ୍ତେ ସ୍ୱୀକାର । ସେ ପୁଣି ବଚନେ ବିଷ୍ଣୁର ।।
ମହାବୃଷଭରୂପ ହୋଇ । ମିଳିଲା ନୃପ ଆଗେ ଯାଇଁ ।।
୧୫ ସେ ନୃପ କବଚକୁ ଭରି । ତୀକ୍ଷ୍ଣ ସାୟକମାନ ଧରି ।।
ଘେନିଣ ଦିବ୍ୟ ଶରାସନେ । ସ୍ତୁତି କରନ୍ତି ଦେବମାନେ ।।
ସେ ବୃକ୍ଷ ଆରୋହଣ କରି । ଯୁଦ୍ଧ କରିବାକୁ ବିଚାରି ।।
ବୃଷର କକୁଦ[୧] ଉପରେ । ରହିଲା ନିଶ୍ଚଳ ଭାବରେ ।।
୧୬ ପରମ ଆତ୍ମା ଯେ ଅଚ୍ୟୁତ । ତା' ତେଜେ ହୋଇ ଆପ୍ୟାୟିତ ।।
ପଶ୍ଚିମ ଦିଗେ ଦୈତ୍ୟଙ୍କର । ବିଖ୍ୟାତ ଅଟଇ ଯେ ପୁର ।।
ରୁନ୍ଧିଲା ସେ ପୁରକୁ ବେଗେ । ଦେବେ ଅଛନ୍ତି ତାର ସଙ୍ଗେ ।।
୧୭ ସେ ଦୈତ୍ୟଙ୍କର ସଙ୍ଗେ ତାର । ହୋଇଲା ତୁମୁଳ ସମର ।।
ଯେବଣ ସମରଶ୍ରବଣେ । ଉଲ୍ଲାସ ହୋନ୍ତି ରୋମଗଣେ ।।
ଯେବଣ ଦୈତ୍ୟମାନେ ତାର । ସଂମୁଖେ ଲଭିଲେ ପ୍ରଚାର ।।
ଭାଲିରେ ନେଲା ତାଙ୍କୁ ସେହି । ଯମକୁ ଦେଖାଇବା ପାଇଁ ।।
୧୮ ତା' ଶରପାତ ଅଭିମୁଖ । ଯୁଗାନ୍ତ ଅଗ୍ନିପ୍ରାୟ ତୀଖ ।।
ତେଣେ ଲଭନ୍ତେ ବିନାଶକୁ । ଥୋକାଏ ଦୈତ୍ୟ ଛାଡ଼ି ତାକୁ ।।
ଯେ ନିଜ ସଦନ ପାତାଳ । ତହିଁକି ଗଲେ ତତକାଳ ।।
୧୯ ପୁରକୁ ଜିଣି ସର୍ବ ଧନ । ଇନ୍ଦ୍ରକୁ ଦେଲା ସେ ରାଜନ ।।
ସେ ଧନ ପ୍ରତି ସମର୍ପଣ । ଇନ୍ଦ୍ର ତାହାକୁ କଲେ ପୁଣ ।।
ଯେଣୁ ପୁରକୁ କଲା ଜୟ । ତେଣୁ ତା' ନାମ ପୁରଞ୍ଜୟ ।।
ଇନ୍ଦ୍ର ବାହନ ତାର ଯେଣୁ । ତା' ନାମ ଇନ୍ଦ୍ରବାହ ତେଣୁ ।।
ବୃଷକକୁଦେ ଯେଣୁ ସ୍ଥିତ । ତେଣୁ କକୁତ୍‌ସ୍ଥ ନାମେ ଖ୍ୟାତ ।।
୨୦ ପୁରଞ୍ଜୟର ଯେହୁ ସୁତ । ଅନେନା[୨] ନାମେ ସେ ବିଦିତ ।।
ତା' ଠାରୁ ପୃଥୁ ହେଲା ଜାତ । ବିଶ୍ୱଗନ୍ଧି[୩] ତାହାର ସୁତ ।।
ବିଶ୍ୱଗନ୍ଧିର ଯେ କୁମର । ଚନ୍ଦ୍ର ଅଟଇ ନାମ ତାର ।।
ଚନ୍ଦ୍ରର ଯୁବନାଶ୍ୱ ନାମ । ତନୁଜ ହୋଇଲା ଜନମ ।।

---

୧. କକୁଦ = ଚୂଳ । ୨. ଅନେନାଃ = ନାସ୍ତି ଏନଃ ଯସ୍ୟ ସ (ନିଷ୍ପାପ) । ଏନଃ = ପାପ
୩. ବିଶ୍ୱଗତି ।

୨୧ ଯେ ଯୁବନାଶ୍ୱସୁତ ହେଲା । ଶ୍ରାବସ୍ତ[1] ନାମ ସେ ବହିଲା ॥ ୭୫
ଶ୍ରାବସ୍ତୀ ନାମରେ ନିର୍ମାଣ । କଲା ସେ ନୃପ ପୁରୀ ପୁଣ ॥ ୭୬
ଯେ ହେଲା ଶ୍ରାବସ୍ତର ସୁତ । ସେ ବୃହଦଶ୍ୱ ନାମେ ଖ୍ୟାତ ॥ ୭୭
ଯେ ବୃହଦଶ୍ୱର କୁମର । କୁବଳୟାଶ୍ୱ ନାମ ତାର ॥ ୭୮
୨୨ ଉତଙ୍କ ନାମେ ଋଷିଙ୍କର । ପ୍ରୀତି ଅର୍ଥେ ଯେ ନୃପବର ॥ ୭୯
ବେଢ଼ି ଅଛନ୍ତି ଏକୋଇଶ । ସହସ୍ର ସୁତ ଚାରିପାଶ ॥ ୮୦
ଯେ ଧୁନ୍ଧୁ ନାମରେ ଅସୁର । ତାହାକୁ କଲା ସେ ସଂହାର ॥ ୮୧
୨୩ ସେହି କାରଣୁଁ ଧୁନ୍ଧୁମାର । ନାମ ପ୍ରସିଦ୍ଧ ହେଲା ତାର ॥ ୮୨
ଯେ ଧୁନ୍ଧୁଦୈତ୍ୟମୁଖାଗ୍ନିରେ । ସେ ରାଜା ସମସ୍ତ କୁମରେ ॥ ୮୩
ତତ୍‌କ୍ଷଣ ହେଲେ ଭସ୍ମୀଭୂତ । ରହିଲେ ଶେଷ ତିନି ସୁତ ॥ ୮୪
୨୪ ଦୃଢ଼ାଶ୍ୱ କପିଳାଶ୍ୱ ବେନି । ଭଦ୍ରାଶ୍ୱ ମିଶିଣ ଏ ତିନି ॥ ୮୫
ହେ ନୃପ ! ଦୃଢ଼ାଶ୍ୱର ସୁତ । ହର୍ଯ୍ୟଶ୍ୱ ନାମେ ସେ ବିଦିତ ॥ ୮୬
ଯେ ପୁଣ ହର୍ଯ୍ୟଶ୍ୱକୁମାର । ନିକୁମ୍ଭ ନାମ ଅଟେ ତାର ॥ ୮୭
୨୫ ନିକୁମ୍ଭଠାରୁ ଯେ ଜନମ । ତାହାର ବର୍ହଣାଶ୍ୱ[2] ନାମ ॥ ୮୮
କୃଶାଶ୍ୱ ନାମେ ଆର ସୁତ । ତାର ତନୁଜ ସେନଜିତ ॥ ୮୯
ଯେ ସେନଜିତଠାରୁ ଜାତ । ସେ ଯୁବନାଶ୍ୱ ନାମେ ଖ୍ୟାତ ॥ ୯୦
ସେ ରାଜା ଅଟେ ପୁତ୍ରହୀନ । ବନକୁ କଲାକ ଗମନ ॥ ୯୧
୨୬ ନିର୍ବେଦ ହୋଇ ନରନାଥ । ସଙ୍ଗରେ ଘେନି ଭାର୍ଯ୍ୟାଶତ ॥ ୯୨
ପ୍ରବେଶ ହୁଅନ୍ତେ କାନନେ । କୃପାଳୁ ମହରଷିମାନେ ॥ ୯୩
ସମସ୍ତେ ସମାହିତ ହୋଇ । ଐନ୍ଦ୍ରୀ ଇଷ୍ଟିକି କଲେ ତହିଁ ॥ ୯୪
୨୭ ନୃପତି ସେ ଯଜ୍ଞଶାଳାରେ । ତୃଷାର୍ତ୍ତେ ମିଳିଲା ନିଶିରେ ॥ ୯୫
ଯେତେ ବ୍ରାହ୍ମଣ ଥିଲେ ତହିଁ । ଦେଖିଲା ଅଛନ୍ତି ସେ ଶୋଇ ॥ ୯୬
ଯେ ମନ୍ତ୍ରଜଳ କୁମ୍ଭେ ଥିଲା । ଆପଣେ ତାହା ପାନ କଲା ॥ ୯୭
୨୮ ଏଥୁ ଅନ୍ତରେ ଋଷିମାନେ । ଉଠିଲେ ନିଦ୍ରା ଅବସାନେ ॥ ୯୮
କୁମ୍ଭ ହୋଇଛି ଜଳଶୂନ୍ୟ । ଏମନ୍ତ ଦେଖି ହେ ରାଜନ ॥ ୯୯
ଏ କର୍ମ ଅଟଇ କାହାର । ପିଇଲା ପୁଂସବନ ନୀର ॥ ୧୦୦
ଯେତେ ସେଠାରେ ଲୋକ ଥିଲେ । ତାଙ୍କୁ ଏ ରୂପରେ ପୁଚ୍ଛିଲେ ॥ ୧୦୧
୨୯ ଈଶ୍ୱରପ୍ରେରିତ ହୋଇଣ । ନୃପତି ପିଇଲା ତା' ପୁଣ ॥ ୧୦୨
ଏମନ୍ତ ଜାଣି ସେ ସକଳ । ଅହୋ ଦଇବବଳ ବଳ ॥ ୧୦୩
ବୋଲନ୍ତେ ଏମନ୍ତ ବାକ୍ୟକୁ । ପ୍ରଣାମ କଲେ ଈଶ୍ୱରଙ୍କୁ ॥ ୧୦୪
୩୦ କାଳ ଯାଆନ୍ତେ ତଦନ୍ତର । ସେ ଯୁବନାଶ୍ୱ ନୃପତିର ॥ ୧୦୫

---

୧. ଶାବସ୍ତ । ୨. ବହୁଳାଶ୍ୱ ।

| | | | | |
|---|---|---|---|---|
| | କୁକ୍ଷିର ଯେ ଭାଗ ଦକ୍ଷିଣ | । ତାହାକୁ ଭେଦି ତତକ୍ଷଣ | ।। | ୧୦୬ |
| | ତନୟ ହେଲା ଉତପତି | । ଯେ ସପ୍ତ[୧] ଦ୍ୱୀପେ ଚକ୍ରବର୍ତ୍ତୀ | ।। | ୧୦୭ |
| ୩୧ | ଏ ବାଳ ଅତିଶୟ ହୋଇ | । କାନ୍ଦୁଛି ସ୍ତନ ପାନ ପାଇଁ | ।। | ୧୦୮ |
| | କି ଅବା କରିବ ଏ ପାନ | । ଏହା ବୋଲନ୍ତେ ବିପ୍ରଜନ | ।। | ୧୦୯ |
| | ହେ ବତ୍ସ ମୁଞ୍ଚ ତୁ ରୋଦନ | । ମୋତେ ତୁ କର ବେଗେ ପାନ | ।। | ୧୧୦ |
| | ଏମନ୍ତ ବାକ୍ୟ ଇନ୍ଦ୍ର କହି | । ତର୍ଜନୀ ଅଙ୍ଗୁଳିକି ନେଇ | ।। | ୧୧୧ |
| | ବାଳକମୁଖେ ନିବେଶିଲେ | । ମାନ୍ଧାତା[୨] ନାମ ସେ ହୋଇଲେ | ।। | ୧୧୨ |
| ୩୨ | ପ୍ରସାଦେ ବିପ୍ର-ଦେବଙ୍କର | । ନ ମଲା ପିତା ସେ ଶିଶୁର | ।। | ୧୧୩ |
| | ଏଥୁ ଅନ୍ତରେ କେତେଦିନେ | । ସେ ଯୁବନାଶ୍ୱ ସେହି ବନେ | ।। | ୧୧୪ |
| | ତପସ୍ୟା କରି ଆଚରଣ | । ତେଣେ ଲଭିଲା ସିଦ୍ଧି ପୁଣ | ।। | ୧୧୫ |
| ୩୩ | ତ୍ରସଦସ୍ୟୁ ନାମ ତାହାର | । ହେ ନୃପ କଲେ ପୁରନ୍ଦର | ।। | ୧୧୬ |
| | ରାବଣ ଆଦି ଦସ୍ୟୁମାନେ | । ଯାହା ସକାଶୁଁ ଏ ଭୁବନେ | ।। | ୧୧୭ |
| | ହୁଅନ୍ତି ଉଦବେଗଚିତ୍ତ | । ତ୍ରାସକୁ ଲଭନ୍ତି ସନ୍ତତ | ।। | ୧୧୮ |
| ୩୪ | ଯେ ଯୁବନାଶ୍ୱନୃପସୁତ | । ମାନ୍ଧାତା ଚକ୍ରବର୍ତ୍ତୀ ଖ୍ୟାତ | ।। | ୧୧୯ |
| | ଅଚ୍ୟୁତତେଜରେ ସଂଯୁତ | । ହୋଇ କରିଣ ଅବିରତ | ।। | ୧୨୦ |
| | ସପତଦ୍ୱୀପବତୀ ମହୀ | । ପାଳନା କଲା ଏକା ହୋଇ | ।। | ୧୨୧ |
| ୩୫ | ଯେ ଦେବ ସର୍ବଦେବ[୩] ମୟ | । ଯେ ସର୍ବ-ଆତ୍ମା ଅତୀନ୍ଦ୍ରିୟ | ।। | ୧୨୨ |
| | ଯାଗମାନଙ୍କରେ ପୂଜନ | । କଲା ସେ ବିଷ୍ଣୁଙ୍କୁ ରାଜନ | ।। | ୧୨୩ |
| | ଯେବଣ ଯାଗମାନଙ୍କର | । ଦକ୍ଷିଣା ଅଟଇ ଅପାର | ।। | ୧୨୪ |
| | ଜାଣିଲେହେଁ ସେ ଆତ୍ମଜ୍ଞାନ | । କଲା ଏ ରୂପେ ଯାଗମାନ | ।। | ୧୨୫ |
| ୩୬ | ଯେ ଦ୍ରବ୍ୟ ଯେ ମନ୍ତ୍ର ବିଧାନ | । ଯଜ୍ଞ ଋତ୍ୱିଜେ ଯଜମାନ | ।। | ୧୨୬ |
| | ଯେ ପୁଣ ଧର୍ମ କାଳ ଦେଶ | । ଏ ଯାହା ଆତ୍ମାପରକାଶ | ।। | ୧୨୭ |
| ୩୭ | [୪]ସବିତା ଯେତେ ଦୂର ଯାଏ | । ଉଦୟ ହୋଇ ଅସ୍ତ ହୋଏ | ।। | ୧୨୮ |
| | ସେ ସର୍ବ ଯୁବନାଶ୍ୱପୁତ୍ର | । ମାନ୍ଧାତା ନୃପତିର କ୍ଷେତ୍ର | ।। | ୧୨୯ |
| ୩୮ | ଶଶବିନ୍ଦୁର ଠାରୁ ଜାତ | । ଯେ ବିନ୍ଦୁମତୀ ନାମେ ଖ୍ୟାତ | ।। | ୧୩୦ |
| | ପୁରୁକୁତ୍ସକୁ ତାହାଠାରେ | । ଅମ୍ବରୀଷକୁ ତଦନ୍ତରେ | ।। | ୧୩୧ |
| | ଯେ ଯୋଗୀ ମୁଚୁକୁନ୍ଦ ନାମ | । ତାହାକୁ କଲା ସେ ଜନମ | ।। | ୧୩୨ |
| | ଯେ ମାନ୍ଧାତାର ପୁତ୍ର ତିନି | । ତାଙ୍କର ପଞ୍ଚାଶ ଭଗିନୀ | ।। | ୧୩୩ |

୧. ସାତ ।　　୨. ମାଂ ଧାତା = ମୋତେ ଧରିବ (କ୍ଷୀର ପିଇବାକୁ) ।　　୩. ବେଦ ।

୪. "ଯାବଦ୍ ସୂର୍ଯ୍ୟ ଉଦେତି ସ୍ମ ଯାବଚ୍ଚ ପ୍ରତିତିଷ୍ଠତି" - ଏହି ପାଠ ଅନୁସାରେ ୧୨୮ତମ ପଦ ରଚିତ ହୋଇଅଛି । କିନ୍ତୁ "ଯାବଚ୍ଚ ପ୍ରତିତିଷ୍ଠତି" ଅଂଶରେ "ଯାବଚ୍ଚନ୍ଦ୍ରଃ ପ୍ରତିଷ୍ଠତି" ପାଠ ଗ୍ରହଣ କରି ଖାଡ଼ଙ୍ଗା ନିମ୍ନଲିଖିତ ଅଧିକ ପଦଟି ରଚନା କରିଅଛନ୍ତି-

ଯଥା :- ଉଦୟ ହୋଇ ନିଶାକର । ପ୍ରସ୍ଥାନ କରେ ଯେତେ ଦୂର ।।

| | | | | |
|---|---|---|---|---|
| | ଯେ ଋଷି ଥିଲେ ସଉଭରି | । ତାଙ୍କୁ ବରିଲେ ପତି କରି | ।। | ୧୩୪ |
| ୩୯ } | ସଲିଳମଧ୍ୟେ ଯମୁନାର | । ବୁଡ଼ି କରନ୍ତେ ତପ ଘୋର | ।। | ୧୩୫ |
| ୪୦ } | ମିଥୁନଧର୍ମବନ୍ତ ହୋଇ | । ଯେ ଥିଲା ମୀନରାଜା ତହିଁ | ।। | ୧୩୬ |
| | ତାହାର ସୁଖ ଦେଖି କରି | । ସ୍ପୃହାକୁ ଲଭିଣ ସୌଭରି | ।। | ୧୩୭ |
| | ମାନ୍ଧାତାନୃପଠାକୁ ଗଲେ | । କନ୍ୟାଗୋଟିଏ ସେ ମାଗିଲେ | ।। | ୧୩୮ |
| | ହେ ବିପ୍ର ଆପଣା ଇଚ୍ଛାରେ | । କନ୍ୟାଏ ଘେନ ସ୍ୱୟମ୍ବରେ | ।। | ୧୩୯ |
| | ଏମନ୍ତ ରୂପେ ବଚନକୁ | । କହିଲେ ମାନ୍ଧାତା ତାହାଙ୍କୁ | ।। | ୧୪୦ |
| ୪୧ } | ମୁଁ ବୃଦ୍ଧ, ବଳୀମାନେ ମୋର | । ପୂରି ଅଛନ୍ତି କଳେବର | ।। | ୧୪୧ |
| ୪୨ } | ଦିଶନ୍ତି କେଶ ଆଦି ଶ୍ୱେତ | । ମସ୍ତକ କମ୍ପୁଛି ସନ୍ତତ | ।। | ୧୪୨ |
| | ମୋତେ ତାପସଭାବୁଁ କରି | । ସଂମତ ନ କରନ୍ତି ନାରୀ | ।। | ୧୪୩ |
| | ଅପ୍ରିୟ ନାରୀଙ୍କର ପୁଣି | । ମୋତେ ଏମନ୍ତ କରି ମଣି | ।। | ୧୪୪ |
| | ଏମନ୍ତ ରୂପରେ ବଚନ | । କହିଲା ମୋତେ ଏ ରାଜନ | ।। | ୧୪୫ |
| | ଆମ୍ଭାକୁ ତେମନ୍ତ ପ୍ରକାରେ | । ସାଧିବି ତପସ୍ୟାବଳରେ | ।। | ୧୪୬ |
| | ସୁରଯୁବତିଙ୍କର ଚିତ୍ତ | । ଯାହା ବାଞ୍ଛିବ ଅବିରତ | ।। | ୧୪୭ |
| | ରାଜଯୁବତିଙ୍କର ଚିତ୍ତ | । ବଳିବା କି ଅବା ଅଦ୍ଭୁତ | ।। | ୧୪୮ |
| | ବ୍ୟବସାୟକୁ ଏ ପ୍ରକାରେ | । ଚିନ୍ତିଲା ସୌଭରି ସେଠାରେ | ।। | ୧୪୯ |
| ୪୩ | ସମ୍ପତ୍ତିଯୁତ ଯେ ଅଟଇ | । ସେ କନ୍ୟା-ଅନ୍ତଃପୁରେ ନେଇ[୧] | ।। | ୧୫୦ |
| | ପ୍ରବେଶ କରାଇଲା ଦ୍ୱାରୀ | । ମୁନିଙ୍କି ରାଜବାକ୍ୟେ କରି | ।। | ୧୫୧ |
| | ପଞ୍ଚାଶ ରାଜକନ୍ୟା ଥିଲେ | । ଏକ ବରକୁ ସେ ବରିଲେ | ।। | ୧୫୨ |
| ୪୪ | ସୁହୃଦଭାବ କରି ଦୂର | । ଋଷିଙ୍କ ନିମିତ୍ତେ ତାଙ୍କର | ।। | ୧୫୩ |
| | ମୋହର ଅନୁରୂପ ଏହି | । ତୁମ୍ଭମାନଙ୍କର ନୁହଇ | ।। | ୧୫୪ |
| | ଏ ରୂପେ ମହା କଳି ହେଲା | । ଚିତ୍ତ ତହିଁରେ ପ୍ରବର୍ତ୍ତିଲା | ।। | ୧୫୫ |
| ୪୫ } | ଯେହୁ ବହୁତ ଋଚମାନ[୨] | । କରିଅଛନ୍ତି ଅଧ୍ୟୟନ | ।। | ୧୫୬ |
| ୪୬ } | ସେ ସଉଭରି ମୁନିଙ୍କର | । ତପସମୃଦ୍ଧି ଯେ ଅପାର | ।। | ୧୫୭ |
| | ତେଣୁ ଅଛନ୍ତି ପୂର୍ଣ୍ଣ ହୋଇ | । ନାନା ସାମଗ୍ରୀମାନେ ଯହିଁ | ।। | ୧୫୮ |
| | ନାନାରୂପରେ ଉପବନ | । ଯହିଁରେ ଦିଶନ୍ତି ଶୋଭନ | ।। | ୧୫୯ |
| | ଯହିଁ ନିର୍ମଳ ଜଳମାନ | । ଅଛନ୍ତି କହ୍ଲାର କାନନ | ।। | ୧୬୦ |
| | ଏମନ୍ତ ସରୋବରମାନେ | । ଅଛନ୍ତି ଯଉଁ ଉପବନେ | ।। | ୧୬୧ |
| | ସ୍ତିରୀପୁରୁଷମାନେ ଯହିଁ | । ଅଛନ୍ତି ବିଭୂଷିତ ହୋଇ | ।। | ୧୬୨ |
| | ବିହଙ୍ଗେ ଭୃଙ୍ଗେ ବନ୍ଦିଜନେ | । ଗାଆନ୍ତି ଯହିଁ ସ୍ଥାନେ ସ୍ଥାନେ | ।। | ୧୬୩ |
| | ଏମନ୍ତ ଅଟେ ଯେ ସଦନ | । ଯେ ନାନାବିଧ ଉପବନ | ।। | ୧୬୪ |

୧. -ଯାଇ । ୨. ଋଚମାନ = ଋଗ୍‌ବେଦ ମନ୍ତ୍ରମାନ ।

| | | | | |
|---|---|---|---|---|
| | ତହିଁ ସେ କନ୍ୟାଙ୍କ ସଙ୍ଗତେ | ମୁନି ରମିଲେ ତୋଷଚିତ୍ତେ | ॥ | ୧୬୫ |
| | ବହୁତ ମୂଲ୍ୟ ଯାହାଙ୍କର | ସେ ଶଯ୍ୟା ବସ୍ତ୍ର ଅଳଂକାର | ॥ | ୧୬୬ |
| | ଆସନ ସ୍ନାନ ମାଲ୍ୟମାନ | ବିବିଧ ଭକ୍ଷ୍ୟ ବିଲେପନ | ॥ | ୧୬୭ |
| | ସେମାନଙ୍କରେ ନିରନ୍ତର | ଲକ୍ଷିତ ଯଉଁ ମୁନିବର | ॥ | ୧୬୮ |
| ୪୭ | ଦେଖି ଯା' ଗୃହସ୍ଥସଂପତ୍ତି | ଯେ ସପ୍ତଦ୍ୱୀପମହୀପତି | ॥ | ୧୬୯ |
| | ଯେ ସାର୍ବଭୌମ ଶ୍ରୀରେ ଯୁତ | ହୋଇ ସେ ମାନ୍ଧାତା ବିସ୍ମିତ | ॥ | ୧୭୦ |
| | ଯେ ଗର୍ବ ଥିଲା ଆପଣାର | ତାହା ଛାଡ଼ିଲା ନୃପବର | ॥ | ୧୭୧ |
| ୪୮ | ଏରୂପେ ରମନ୍ତେ ଗୃହରେ | ବିବିଧ ସୁଖମାନଙ୍କରେ | ॥ | ୧୭୨ |
| | ସେବନ୍ତେ ବିଷୟମାନଙ୍କୁ | ମନେ ନ ଲଭିଲା ତୋଷକୁ | ॥ | ୧୭୩ |
| | ଘୃତବିନ୍ଦୁରେ ହୁତାଶନ | ତୋଷକୁ ନ ଲଭେ ଯେସନ | ॥ | ୧୭୪ |
| ୪୯ | ସେ ମୁନି କେହୁଣି ଦିନରେ | ବସନ୍ତେ ନିଜ ଆଶ୍ରମରେ | ॥ | ୧୭୫ |
| | ମନସକାଶୁଁ ଆପଣାର | ଯେ ହାନି ହେଲା ତପସ୍ୟାର | ॥ | ୧୭୬ |
| | ମୀନସଙ୍ଗରୁ ଯେ ଜନ୍ମିଲା | ସେ କଥା ମନକୁ ଆଣିଲା | ॥ | ୧୭୭ |
| ୫୦ | ମୁଁ ସାଧୁ କରିଥିଲି ବ୍ରତ | ତପସ୍ୱୀ ଅଟଇ ନିୟତ | ॥ | ୧୭୮ |
| | ଦେଖ ବିନାଶକୁ ମୋହର | ସଲିଳମଧ୍ୟରେ ମତ୍ସ୍ୟର | ॥ | ୧୭୯ |
| | ସଙ୍ଗରୁ ଚିରକାଳକୃତ | ତପକୁ କରାଇଲି ଚ୍ୟୁତ | ॥ | ୧୮୦ |
| ୫୧ | ସଂସାରୁ ହେବାକୁ ମୁକତ | ଯେ ବାଞ୍ଛୁଥିବ ନିଜ ଚିତ୍ତ | ॥ | ୧୮୧ |
| | ମିଥୁନବ୍ରତୀମାନଙ୍କର | ସଙ୍ଗକୁ କରିବ ସେ ଦୂର | ॥ | ୧୮୨ |
| | ଇନ୍ଦ୍ରିୟମାନଙ୍କୁ ବାହାରେ | ଛାଡ଼ିବ ନାହିଁ ସର୍ବାତ୍ମାରେ | ॥ | ୧୮୩ |
| | ଏକାନ୍ତ ସ୍ଥାନେ ଏକା ହୋଇ | ଭ୍ରମନ୍ତେ ବିଷ୍ଣୁଠାରେ ନେଇ | ॥ | ୧୮୪ |
| | ଯୁକ୍ତ କରିବ ନିଜ ମନ | ବିଷ୍ଣୁଭଗତ ଯେତେ ଜନ | ॥ | ୧୮୫ |
| | ତାହାଙ୍କ ସଙ୍ଗେ ସଙ୍ଗ ହେବ | ଯେବେ ସଙ୍ଗକୁ ବାଞ୍ଛା ଥିବ | ॥ | ୧୮୬ |
| ୫୨ | ଜଳମଧ୍ୟରେ ଏକା ହୋଇ | ତପସ୍ୟା କରୁଥିଲି ମୁହିଁ | ॥ | ୧୮୭ |
| | ମତ୍ସ୍ୟସଙ୍ଗରୁ ତଦନ୍ତର | ହୋଇଲି ପଞ୍ଚାଶ ପ୍ରକାର | ॥ | ୧୮୮ |
| | ଭାର୍ଯ୍ୟାଜଣକେ ଶତ ଶତ | ତନୟ କରନ୍ତେଣ ଜାତ | ॥ | ୧୮୯ |
| | ପାଞ୍ଚ ସହସ୍ରରୂପ ହୋଇ | ପୁତ୍ରରୂପରେ ଜନ୍ମିଲଇଁ | ॥ | ୧୯୦ |
| | ଯେ ଇହ ପର ଦୁଇ ଲୋକେ | ଜାତ ହୁଅନ୍ତି କର୍ମ ଥୋକେ | ॥ | ୧୯୧ |
| | ସେହି ବିଷୟେ ନିଜ ଚିତ୍ତେ | ଜନ୍ମନ୍ତି ମନୋରଥ ଯେତେ | ॥ | ୧୯୨ |
| | ସେମାନଙ୍କର ଅନ୍ତକୁ ହିଁ | ଆଜଯାଏ ମୁଁ ଜାଣିଂ ନାହିଁ | ॥ | ୧୯୩ |
| | ଗୁଣମାନଙ୍କରେ ମାୟାର | ହତ ହୋଇଲା ମତି ମୋର | ॥ | ୧୯୪ |
| | ବିଷୟେ ପୁରୁଷାର୍ଥ କରି | ବୁଦ୍ଧିକି ଅଛଇ ମୁଁ ଧରି | ॥ | ୧୯୫ |

୧. ଯାଇ।

| | | | | | |
|---|---|---|---|---|---|
| ୫୩ | ଗୃହେ ବସନ୍ତେ ଏ ପ୍ରକାରେ | । | ବିରକ୍ତ ହୋଇ ବିଷୟରେ | ॥ | ୧୯୬ |
| | କାଳରେ ସଙ୍ଗତ୍ୟାଗ କଲା | । | ବନରେ ପ୍ରବେଶ ହୋଇଲା | ॥ | ୧୯୭ |
| | ଯେତେ ତାହାର ପତ୍ନୀ ଥିଲେ | । | ତାହାକୁ ଅନୁଗତ ହେଲେ | ॥ | ୧୯୮ |
| | ସମସ୍ତେ ପତିବ୍ରତା ହୋଇ | । | ଖ୍ୟାତିକି ଥିଲେ ଯେଣୁ ବହି | ॥ | ୧୯୯ |
| ୫୪ | ସେ ଆତ୍ମଜ୍ଞାନୀ ସଉଭରି | । | ତହିଁରେ ଘୋର ତପ କରି | ॥ | ୨୦୦ |
| | ଅଗ୍ନିମାନଙ୍କ ସହିତରେ | । | ଆତ୍ମାକୁ ପରମାତ୍ମାଠାରେ | ॥ | ୨୦୧ |
| | ନିଯୁକ୍ତ କଲା ତପବଳେ | । | ଆତ୍ମଦର୍ଶନ ଯହିଁ କାଳେ | ॥ | ୨୦୨ |
| ୫୫ | ନିଜ ପତିର ବ୍ରହ୍ମଠାରେ | । | ଲୟକୁ ଦେଖି ସେ କାଳରେ | ॥ | ୨୦୩ |
| | ତାହାର ଭାର୍ଯ୍ୟା ଥିଲେ ଯେତେ | । | ସେ ମୁନିପ୍ରଭାବେ ସମସ୍ତେ | ॥ | ୨୦୪ |
| | ଋଷିଙ୍କି ହେଲେ ଅନୁଗତ | । | ଅନଳ ଲିଭିଲେ ଯେମନ୍ତ | ॥ | ୨୦୫ |
| | ହେ ମହାରାଜ ! ଶିଖାମାନେ | । | ତହିଁରେ ପଶନ୍ତି ଯେସନେ | ॥ | ୨୦୬ |
| | କୃଷ୍ଣଚରଣେ କରି ଧ୍ୟାନ | । | ହରଷ ଦୀନବନ୍ଧୁ ମନ | ॥ | ୨୦୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀସୌଭର୍ଯ୍ୟୁପାଖ୍ୟାନଂ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମ ଅଧ୍ୟାୟ

ମାନ୍ଧାତୁରନ୍ୱୟଃ ପ୍ରୋକ୍ତଃ ସପ୍ତମେ ଯତ୍ର ଗୀୟତେ ।
ପୁରୁକୁତ୍ସସ୍ୟ ଚାଖ୍ୟାନଂ ହରିଶ୍ଚନ୍ଦ୍ରସ୍ୟ ଚୋତ୍ତମମ୍ ॥ ୧ ॥

| | | | | | |
|---|---|---|---|---|---|
| ୧ | ମାନ୍ଧାତାଙ୍କର ଶ୍ରେଷ୍ଠ ସୁତ | । | ଯେ ଅମ୍ବରୀଷ ନାମେ ଖ୍ୟାତ | ॥ | ୧ |
| | ତାହାକୁ ପିତାମହ[୧] ପୁଣ | । | ବରିଲା ତନୁଜ କରିଣ | ॥ | ୨ |
| | ତା' ସୁତ ଯୌବନାଶ୍ୱ ନାମ | । | ହାରୀତ ତାଠାରୁ ଜନମ | ॥ | ୩ |
| | ଏ ମହୀପତିମାନଙ୍କର | । | [୨]ମାନ୍ଧାତା ଅଟଇ ପ୍ରବର | ॥ | ୪ |
| ୨ | ଯେ ନିଜ ଭ୍ରାତା ସର୍ପମାନେ | । | ସେ ନର୍ମଦାକୁ ପୂର୍ବଦିନେ | ॥ | ୫ |
| | ପୁରୁକୁତ୍ସକୁ ସମର୍ପିଲେ | । | ସେ ପୁଣି ଭୁଜଗେନ୍ଦ୍ରବୋଲେ | ॥ | ୬ |
| | ସେ ପୁରୁକୁତ୍ସକୁ ତତ୍‌କାଳ | । | ଘେନି ଚଳିଲା ରସାତଳ | ॥ | ୭ |
| ୩ | ଯେ ବିଷ୍ଣୁଶକ୍ତି ଅଛି ଧରି | । | ସେ ପୁରୁକୁତ୍ସ ଦଣ୍ଡଧାରୀ | ॥ | ୮ |
| | ତହିଁ ମାଇଲା ଗନ୍ଧର୍ବଙ୍କୁ | । | ଯୋଗ୍ୟ ଅଟନ୍ତି ସେ ବଧକୁ | ॥ | ୯ |

---

୧. ଯୁବନାଶ୍ୱ ।

୨. "ହରିତ-କୁତ୍ସ-ପିଙ୍ଗଦର୍ଭ-ଭୈମଗବାନାମାଙ୍ଗିରସାମ୍ବରୀଷଯୌବନାଶ୍ୱାଶ୍ଚେତି ମାନ୍ଧାତାରଂ ହ୍ୟେକେ ବ୍ରୁବତେ, ଅବନ୍ତୀତ୍ୟାଙ୍ଗିରସଂ ମାନ୍ଧାତ୍ରମ୍ବରୀଷ-ଯୌବନାଶ୍ୱାଶ୍ଚ" (ଆଶ୍ୱଲାୟନଃ) ।

| | | | | | |
|---|---|---|---|---|---|
| | ଏହା ଯେ ସ୍ମରଣ କରନ୍ତି | । ତାଙ୍କର ନାହିଁ ସର୍ପଭୀତି | ।। | ୧୦ |
| | ନାଗଙ୍କ ଠାରୁ ନୃପବର | । ଲଭିଲା ଏରୂପରେ ବର | ।। | ୧୧ |
| ୪ | ପୁରୁକୁତ୍ସର ଠାରୁ ଜନ୍ମ | । ତନୟ ତ୍ରସଦ୍ଦସ୍ୟୁ ନାମ | ।। | ୧୨ |
| | ସେ ଅଟେ ଅନରଣ୍ୟତାତ | । ହର୍ଯ୍ୟଶ୍ୱ ଅନରଣ୍ୟସୁତ | ।। | ୧୩ |
| | ହର୍ଯ୍ୟଶ୍ୱତନୟ ଅରୁଣ | । ତା' ସୁତ ତ୍ରିବନ୍ଧନ ପୁଣ | ।। | ୧୪ |
| ୫ | ତାହାର ସୁତ ସତ୍ୟବ୍ରତ | । ତ୍ରିଶଙ୍କୁ[1] ନାମେ ସେ ବିଖ୍ୟାତ | ।। | ୧୫ |
| ୬ | ଗୁରୁଶାପୁଁ ସେ ମହୀପାଳ | । ତକ୍ଷଣେ ହୋଇଲା ଚଣ୍ଡାଳ | ।। | ୧୬ |
| | କୌଶିକ ତେଜେ ଦେହ ଧରି | । ଗଲା ସେ ନୃପ ସ୍ୱର୍ଗପୁରୀ | ।। | ୧୭ |
| | ଅଦ୍ୟାପି ରଜନୀକାଳରେ | । ଦିଶଇ ଆକାଶମାର୍ଗରେ | ।। | ୧୮ |
| | ଦେବତାଙ୍କର ବାକ୍ୟେ ସେହି | । ପଡ଼ିଲା ଅଧୋମୁଖ ହୋଇ | ।। | ୧୯ |
| | ସେ ବିଶ୍ୱାମିତ୍ର ମୁନି ବଳେ | । ତାହାକୁ ସ୍ତମ୍ଭିଲେ ସେ କାଳେ | ।। | ୨୦ |
| ୭ | ତ୍ରିଶଙ୍କୁ ନୃପତିର ସୁତ | । ଯେ ହରିଶ୍ଚନ୍ଦ୍ର ନାମେ ଖ୍ୟାତ | ।। | ୨୧ |
| | କୌଶିକ ମାଗିଲେ ତାହାକୁ | । ରାଜସୂୟର ଦକ୍ଷିଣାକୁ | ।। | ୨୨ |
| | ଦକ୍ଷିଣାବ୍ୟାଜେ ନୃପତିର | । କରି ସର୍ବସ୍ୱ ଅପହାର | ।। | ୨୩ |
| | ବହୁତ ଦୁଃଖ ତାକୁ ଦେଲେ | । ସେ କଥା ବଶିଷ୍ଠ ଶୁଣିଲେ | ।। | ୨୪ |
| | ବିଶ୍ୱାମିତ୍ରଙ୍କୁ କ୍ରୋଧ ବହି | । ବୋଇଲେ ଆଡ଼ୀ[2] ହୁଅ ତୁହି | ।। | ୨୫ |
| | ଶୁଣି ତା' ବୋଇଲେ କୌଶିକ | । ତୁ ହୋ ବଶିଷ୍ଠ ! ହୁଅ ବକ | ।। | ୨୬ |
| | ଏମନ୍ତ ରୂପେ ପକ୍ଷୀ ହୋଇ | । ବଶିଷ୍ଠ ବିଶ୍ୱାମିତ୍ର ଦୁଇ | ।। | ୨୭ |
| | ବହୁତ ବରଷ ସମର | । କଲେ ଯା' ଅର୍ଥେ ମୁନିବର | ।। | ୨୮ |
| ୮ | [3]ସେ ରାଜା ଅପୁତ୍ରିକ ହେଲା | । ମନେ ବିଷାଦକୁ ଲଭିଲା | ।। | ୨୯ |
| ୯ | ନାରଦ ଉପଦେଶେ ପୁଣ | । ଗଲା ବରୁଣକୁ ଶରଣ | ।। | ୩୦ |
| | ହେ ପ୍ରଭୁ ଯେବେ ମହାବୀର | । ତନୟ ଜନମିବ ମୋର | ।। | ୩୧ |
| | ପୁରୁଷପଶୁ କରି ତାକୁ | । ହେ ମହାରାଜ ! ମୁଁ ତୁମ୍ଭଙ୍କୁ | ।। | ୩୨ |
| | ଯାଗ କରିବି ଏ ଭାଷାରେ | । ନିର୍ବନ୍ଧ କଲା ତାଙ୍କ ଠାରେ | ।। | ୩୩ |
| | ସେ କଥା ସେହିରୂପେ ପୁଣ | । ସ୍ୱୀକାର କରନ୍ତେ ବରୁଣ | ।। | ୩୪ |
| | ରୋହିତ ନାମେ ନୃପତିର | । ଜନମ ହୋଇଲା କୁମର | ।। | ୩୫ |
| ୧୦ | ହେ ନୃପ ଜନ୍ମିଲା କୁମର | । ଏଣେ ତୁ ମୋତେ ଯାଗ କର | ।। | ୩୬ |

୧. ଶଙ୍କୁପରି ତିନି ଦୋଷ ଯାହାର । ତଦୁକ୍ତଂ ହରିବଂଶେ-
ପିତୁଶ୍ଚାପରିତୋଷେଣ ଗୁରୋର୍ଦୋଗ୍ଧ୍ରୀବଧେନ ଚ ।
ଅପ୍ରୋକ୍ଷିତୋପଯୋଗାଚ୍ଚ ତ୍ରିବିଧସ୍ତେ ବ୍ୟତିକ୍ରମଃ ।।

୨. ଆଟୀ, ଶରାଳିପକ୍ଷୀ (ଶରାରିରାଟିରାଡ଼ିଶ୍ଚ-ଅମର) ।

୩. "ହରିଶ୍ଚନ୍ଦ୍ରୋ ହ ବୈଧସ ଐକ୍ଷ୍ୱାକବୋ ରାଜା ଅପୁତ୍ର ଆସ୍ତେ" (ଶ୍ରୁତିଃ) ।

ବରୁଣ କହନ୍ତେ ଏ ବାଣୀ । ତାଙ୍କୁ କହିଲା ନୃପମଣି ॥ ୩୭
ପଶୁର ଦଶଦିନ ଯେବେ । ଯାଇ ସେ ଶୁଦ୍ଧ ହୋଇ ତେବେ ॥ ୩୮
୧୧ ଏମନ୍ତ କହନ୍ତେ ରାଜନ । ପୂର୍ଣ୍ଣ ହୁଅନ୍ତେ ଦଶ ଦିନ ॥ ୩୯
ବରୁଣ ଆସିଣ ସତ୍ୱର । ବୋଇଲେ ଏବେ ଯାଗ କର ॥ ୪୦
ତାଙ୍କ ବଚନ ନୃପ ଶୁଣି । କହିଲେ ଏ ପ୍ରକାରେ ପୁଣି ॥ ୪୧
ପଶୁର ଦନ୍ତମାନେ ଯେବେ । ଜନ୍ମନ୍ତି, ଶୁଦ୍ଧ ହୋଏ ତେବେ ॥ ୪୨
୧୨ ଦନ୍ତେ ଜନ୍ମିଲେ ଯେ ଏହାର । ଏବେ ତୁ ବେଗେ ଯାଗ କର ॥ ୪୩
ଏ ରୂପେ କହନ୍ତେ ବରୁଣ । ତାଙ୍କୁ ବୋଇଲା ନୃପ ପୁଣ ॥ ୪୪
ଏହାର ଦନ୍ତମାନ ଯେବେ । ପଡ଼ିବ, ଶୁଦ୍ଧ ହେବ ତେବେ ॥ ୪୫
୧୩ ଦନ୍ତେ ତ ପଡ଼ିଲେ ପଶୁର । ଏବେ ତୁ ମୋତେ ଯାଗ କର ॥ ୪୬
ଏ ରୂପେ ବରୁଣ କହିଲେ । ନୃପତି ତାହାଙ୍କୁ ବୋଇଲେ ॥ ୪୭
ପଶୁଦଶନ ପୁଣି ଯେବେ । ଜନ୍ମନ୍ତି, ଶୁଦ୍ଧ ହୋଏ ତେବେ ॥ ୪୮
୧୪ ପୁଣି ତ ଜନମିଲେ ଦନ୍ତେ । ଏବେ ତୁ ଯାଗ କର ମୋତେ ॥ ୪୯
ବରୁଣ କହନ୍ତେ ଏ ରୀତି । ତାଙ୍କୁ କହିଲେ ସେ ନୃପତି ॥ ୫୦
କବଚ ବହିବାକୁ ଯେବେ । ସମର୍ଥ, ରାଜପଶୁ ତେବେ ॥ ୫୧
ହେ ରାଜା[1] ! ଯାଗବିଷୟରେ । ଶୁଦ୍ଧ ହୁଅଇ ଜଗତରେ ॥ ୫୨
୧୫ ଏ ରୂପେ ପୁତ୍ରାନୁରାଗରେ । ସ୍ନେହଯନ୍ତ୍ରିତ ମାନସରେ ॥ ୫୩
ବଞ୍ଚାନ୍ତେ ସେହି ସେହି କାଳ । ସେ ହରିଶ୍ଚନ୍ଦ୍ର ମହୀପାଳ ॥ ୫୪
ବିଚାରି ରାଜାବଚନକୁ । ପ୍ରତୀକ୍ଷା କଲେ ସେ କାଳକୁ ॥ ୫୫
୧୬ ଯା' ବାଞ୍ଛା କରିଅଛି ତାତ । ସେ କଥା ଜାଣିଣ ରୋହିତ ॥ ୫୬
ପ୍ରାଣ ରଖିବା ମନ କରି । ବନକୁ ଗଲା ଧନୁ ଧରି ॥ ୫୭
୧୭ ପିତାକୁ ବରୁଣ ଗ୍ରସ୍ତିଲା । ତାହାର ମହୋଦର[2] ହେଲା ॥ ୫୮
ଏମନ୍ତ ଶୁଣିଣ ରୋହିତ । ଗ୍ରାମକୁ ଚଳିଲା ତୁରିତ ॥ ୫୯
ସେ କଥା ପୁରନ୍ଦର ଜାଣି । ତାହାକୁ ନିଷେଧିଲା ପୁଣି ॥ ୬୦
୧୮ ସେବାରୁ ତୀର୍ଥ-କ୍ଷେତ୍ରଙ୍କର । ଭୂମିଭ୍ରମଣ ପୁଣ୍ୟତର ॥ ୬୧
ଏମନ୍ତ କଥା ରୋହିତର । ଆଗେ କହିଲା ପୁରନ୍ଦର ॥ ୬୨
ସେ କଥା ଶୁଣି ବନଦେଶେ । ରୋହିତ ରହିଲା ବରଷେ ॥ ୬୩
୧୯ ଦ୍ୱିତୀୟେ ତୃତୀୟ ବରଷେ । ଚତୁର୍ଥେ ପଞ୍ଚମ ପ୍ରବେଶେ ॥ ୬୪
ଏହି ରୂପରେ ଶଚୀସାଇଁ । କହିଲା ବୃଦ୍ଧ ବିପ୍ର ହୋଇ ॥ ୬୫
୨୦ ଷଷ୍ଠ ବରଷ ଲଭି କରି । ରୋହିତ ଯାନ୍ତେ ନିଜ ପୁରୀ ॥ ୬୬
ମାର୍ଗରେ ଅଜୀଗର୍ତ୍ତ ନାମ । ବିଖ୍ୟାତ ଅଟେ ଯଉଁ ଗ୍ରାମ ॥ ୬୭

୧. ରାଜା = ବରୁଣ ।   ୨. ମହୋଦର = ଜଳୋଦର ।

ତହିଁରୁ କିଣିଲା ବିପ୍ରର । ମଧ୍ୟମ ସୁତକୁ ସତ୍ୱର ।। ୬୮
କିଣିଲା ଯଉଁ ବିପ୍ରସୁତ । ସେ ଶୁନଃଶେଫ ନାମେ ଖ୍ୟାତ ।। ୬୯
ପଶୁନିମିତ୍ତେ ଦେଇ ତାକୁ । ପ୍ରଣାମ କଲା ସେ ପିତାକୁ ।। ୭୦
୨୧ ନିତ୍ୟେ ମହତ ଜନଙ୍କର । ସଭାରେ ପଢ଼େ କଥା ଯାର ।। ୭୧
ମହତ ଅଟେ ଯାର କୀର୍ତ୍ତି । ସେ ହରିଶ୍ଚନ୍ଦ୍ର ମହୀପତି ।। ୭୨
ତଦନ୍ତେ ପୁରୁଷମେଧରେ । ବରୁଣ ଆଦି ଯେ ଅମରେ ।। ୭୩
ତାହାଙ୍କୁ ଯାଗ ଆରମ୍ଭିଲା । ଉଦରରୋଗୁଁ ମୁକ୍ତ ହେଲା ।। ୭୪
୨୨ ସେ ଯାଗେ ବିଶ୍ୱାମିତ୍ର ମୁନି । ହୋତା, ଅଧ୍ୱର୍ଯ୍ୟୁ ଜମଦଗ୍ନି ।। ୭୫
ବଶିଷ୍ଠ ବ୍ରହ୍ମାପଣ କଲେ । ଅୟାସ୍ୟ ଉଦ୍‌ଗାତା ହୋଇଲେ ।। ୭୬
୨୩ ଇନ୍ଦ୍ର ତାହାଙ୍କୁ ତୋଷ ହେଲେ । ସୁବର୍ଣ୍ଣମୟ ରଥ ଦେଲେ ।। ୭୭
ଶୁନଃଶେଫର ଯେ ଚରିତ । ଆଗେ[1] କରିବା ତା' ବ୍ୟକତ ।। ୭୮
୨୪ ଭାର୍ଯ୍ୟାସହିତେ ଏ ରାଜାର । ଯେବଣ ଧୈର୍ଯ୍ୟ ସତ୍ୟ ସାର ।। ୭୯
ତା' ଦେଖି ବିଶ୍ୱାମିତ୍ର ଯତି । ଲଭିଲେ ଅତିଶୟ ପ୍ରୀତି ।। ୮୦
ଉତ୍ତମ ଅଟଇ ଯେ ଜ୍ଞାନ । ରାଜାକୁ କଲେ ତା' ପ୍ରଦାନ ।। ୮୧
୨୫-୨୬ [2]ଯେ ଅନ୍ନମୟ ଅଟେ ମନ । ପୃଥିବୀ ଅଟଇ ତେସନ ।। ୮୨
ମନକୁ ନେଇ ପୃଥିବୀରେ । ଏକ କରନ୍ତେ ତଦନ୍ତରେ ।। ୮୩
ପୃଥିବୀ[3] ଜଳସହିତରେ । ଜଳକୁ ନେଇଣ ତେଜରେ ।। ୮୪
ତେଜକୁ ଅନିଳରେ ପୁଣ । ଏକ କରନ୍ତେ ତତକ୍ଷଣ ।। ୮୫
ସେ ପବନକୁ ଆକାଶରେ । ଏକ କରନ୍ତେ ସେ କ୍ରମରେ ।। ୮୬
ସେ ଆକାଶକୁ ଅହଂକାରେ । ଅହଂକାରକୁ ତଦନ୍ତରେ ।। ୮୭
ମହତ୍ତତ୍ତ୍ୱରେ ଏକ କରି । ସେ ମହତ୍ତତ୍ତ୍ୱେ ଅନୁସରି ।। ୮୮
ଜ୍ଞାନକଳାକୁ ତହିଁ ଧ୍ୟାନ । କରିଣ ଯେ ପୁଣ ଅଜ୍ଞାନ ।। ୮୯
ଦହନ୍ତେ ସେ ଜ୍ଞାନକଳାରେ । ନିର୍ବାଣସୁଖସଂବିଦରେ ।। ୯୦
ସେ ଜ୍ଞାନକଳାକୁ ଛାଡ଼ିଣ । ବିମୁକ୍ତବନ୍ଧନ ହୋଇଣ ।। ୯୧
ଯାହା ନିର୍ଦ୍ଦେଶ କରି ନୋହି । ଯେ ବା ତର୍କକୁ ନ ଆସଇ ।। ୯୨
ସେ ସ୍ୱରୂପରେ ଅବସ୍ଥିତି । ଲଭିଲେ ପୁଣ ସେ ନୃପତି ।। ୯୩
ଶ୍ରୀକୃଷ୍ଣଚରଣପଙ୍କଜ । ଶରଣ ଦୀନବନ୍ଧୁ ଦ୍ୱିଜ ।। ୯୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀହରିଶ୍ଚନ୍ଦ୍ରୋପାଖ୍ୟାନଂ
ନାମ ସପ୍ତମୋଽଧ୍ୟାୟଃ ।।

---

୧. ଆଗେ = ବିଶ୍ୱାମିତ୍ରସୁତାଖ୍ୟାନପ୍ରସଙ୍ଗେ ।
୨. ଅନ୍ନମୟଂ ହି ସୌମ୍ୟମନଃ (ଶ୍ରୁତିଃ) ।
୩. ପୃଥ୍ୱୀକି ।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ରୋହିତସ୍ୟୋକ୍ତୋ ବଂଶୋ ଯତ୍ରାଭବନ୍ନୃପଃ ।
ସଗରଃ କପିଳାକ୍ଷେପାନ୍ନିର୍ଦଗ୍ଧା ଯସ୍ୟ ସୂନବଃ ।। ୧

ଶ୍ରୀଶୁକ ଉବାଚ

୧ ହରିତ ରୋହିତର ସୁତ । ଚମ୍ପ ତାଠାରୁ ହେଲା ଜାତ ।। ୧
[1]ତାଠାରୁ ହେଲା ଚମ୍ପାପୁରୀ । ସୁଦେବ ତନୁଜ ତାହାରି ।। ୨
ଯଉଁ ସୁଦେବର ତନୟ । ବିଖ୍ୟାତ ଅଟଇ ବିଜୟ ।। ୩
୨ ଭରୁକ[2] ଅଟେ ତାର ସୁତ । ତା' ଠାରୁ ବୃକ ହେଲା ଜାତ ।। ୪
ବୃକର ଜନ୍ମିଲା ଯେ ସୁତ । ବାହୁକ ନାମେ ସେ ବିଦିତ ।। ୫
ତାହାର ଥିଲା ଯଉଁ କ୍ଷିତି । ହରିଲେ ତା' ଶତ୍ରୁନୃପତି ।। ୬
ଭାର୍ଯ୍ୟାସହିତେ ସେ ରାଜନ । ପ୍ରବେଶ ହେଲା ଯାଇଁ ବନ , ।। ୭
୩ ମରନ୍ତେ ସେ ବୃଦ୍ଧ ନୃପତି । ତାହାର ଯେ ଜ୍ୟେଷ୍ଠ ଯୁବତୀ ।। ୮
କରନ୍ତେ ଅନୁମରଣକୁ । ସଗର୍ଭ ବୋଲି ଜାଣି ତାକୁ ।। ୯
ଯେ ଔର୍ବରଷି ବନେ ଥିଲେ । ତକ୍ଷଣେ ସେ ନିବର୍ତ୍ତାଇଲେ ।। ୧୦
୪ ସପତ୍ନୀମାନେ ଜାଣି ତାକୁ । ଅନ୍ନର ସଙ୍ଗତେ ଗରକୁ ।। ୧୧
ଦିଅନ୍ତେ ସେ ଗର ସହିତ । ସଗର ନାମେ ନୃପ ଜାତ ।। ୧୨
ସେ ରାଜା ଅତି କୀର୍ତ୍ତିବନ୍ତ । ସକଳ ଲୋକେ ହେଲା ଖ୍ୟାତ ।। ୧୩
ସଗର ନାମ ମହୀପତି । ହେଲା ଜଗତେ ଚକ୍ରବର୍ତ୍ତୀ ।। ୧୪
ସାଗର ହୋଇ ଯେ ବିଖ୍ୟାତ । ତାହାକୁ କଲେ ଯାହା ସୁତ ।। ୧୫
୫ ଯବନ, ତାଳଜଙ୍ଘ, ଶକ । ହୈହୟ ବର୍ବର ଅନେକ ।। ୧୬
ଏହାଙ୍କୁ ଯେ ଗୁରୁବାକ୍ୟରେ । ବିନାଶ ନ କଲା ପ୍ରାଣରେ ।। ୧୭
ବିକୃତ ବେଶ[3]ବନ୍ତ କରି । କଲା କେବଳ ଦଣ୍ଡଧାରୀ ।। ୧୮
୬ ଦାଢ଼ିମାତ୍ରକ ରଖି ବାଳ । କାହାରି ମୁଣ୍ଡିଲା ସକଳ ।। ୧୯
କାହାଙ୍କୁ କଲା ମୁକ୍ତକେଶ । ଅର୍ଦ୍ଧମୁଣ୍ଡିତ ହୀନବେଶ ।। ୨୦
ହରିଲା ଅନ୍ତର୍ବାସ କା'ର । ବହିର୍ବାସକୁ ଅପରର ।।
୭ ଯେ ସର୍ବଦେବ[4] ରୂପଧାରୀ । ଆତ୍ମା ଈଶ୍ୱର ପ୍ରଭୁ ହରି ।। ୨୧
ଯା' ଔର୍ବ ଦେଲେ ଉପଦେଶ । ସେ ଯୋଗମାର୍ଗେ ସେ ନରେଶ ।। ୨୨
ତାହାଙ୍କୁ ପୂଜିଲେ ନିର୍ଭରେ । ତୁରଗମେଧମାନଙ୍କରେ ।। ୨୩
ଯେ ଯଜ୍ଞେ ପଶୁ ଅଶ୍ୱ ତାର । ତାକୁ ହରିଲା ପୁରନ୍ଦର ।। ୨୪

---

୧. ଚମ୍ପସ୍ତସ୍ମାଦଭୂଦ୍ ଯେନ ଚମ୍ପାପୁରୀ ବିନିର୍ମିତା (ସ୍ୱାମୀ) । ୨. ରଭୁକ ।
୩. କେଶ । ୪. ବେଦ ।

| | | | | | |
|---|---|---|---|---|---|
| ୮ | ¹ତାହାର ସୁମତିନାମରେ | । | ଯେବଣ ଭାର୍ଯ୍ୟା ତା' କୁମରେ | ।। | ୨୫ |
| | ପିତାର ଆଜ୍ଞାକାରୀ ହୋଇ | । | ଖୋଜନ୍ତେ ତୁରଗକୁ ସେହି | ।। | ୨୬ |
| | ପୃଥ୍ୱୀକି ସକଳ ଦିଗରେ | । | ଖୋଳିଲେ ଗର୍ତ୍ତସ୍ୱଭାବରେ | ।। | ୨୭ |
| ୯ | ହୟକୁ କପିଳଙ୍କ ପାଶେ | । | ଦେଖିଲେ ପୂର୍ବୋତ୍ତର ଦିଶେ | ।। | ୨୮ |
| ୧୦ | ତୁରଗହର ଚୋର ଏହି | । | ନୟନ ବୁଜି ଅଛି ରହି | ।। | ୨୯ |
| | ଏ ପାପୀ ଅଟେ ଦୁରାଚାର | । | ଏହାକୁ ବେଗ ମାର ମାର | ।। | ୩୦ |
| | ଏମନ୍ତ ବଚନ ବୋଲିଣ | । | ଷାଠିଏ ସହସ୍ର ସେ ପୁଣ | ।। | ୩୧ |
| | ଟେକନ୍ତେ ଆୟୁଧମାନଙ୍କୁ | । | ଧାଇଁଲେ ଋଷିଙ୍କ ପାଶକୁ | ।। | ୩୨ |
| | ସେହି ସମୟେ ନେତ୍ର ଫେଇ | । | ମୁନି ତାହାଙ୍କୁ ଦେଲେ ଚାହିଁ | ।। | ୩୩ |
| ୧୧ | ହେ ନୃପ ! ତାହାଙ୍କର ମତି | । | ହରିଣ ଥିଲେ ଶଚୀପତି | ।। | ୩୪ |
| | ମହତଜନଠାରେ ଜନ୍ମ | । | କଲେ ଯେବଣ ଅତିକ୍ରମ | ।। | ୩୫ |
| | ତେଣୁ ସ୍ୱଶରୀର-ଅଗ୍ନିରେ | । | ଭସ୍ମ ହୋଇଲେ କ୍ଷଣକରେ | ।। | ୩୬ |
| ୧୨ | ମୁନିଙ୍କ କୋପରେ ସକଳେ | । | ଦଗ୍ଧ ହୋଇଲେ ନୃପବାଳେ | ।। | ୩୭ |
| | ଏମନ୍ତ ହୋଇ ଯଉଁ ବାଣୀ | । | ଉତ୍ତମ ନୁହଇ ସେ ପୁଣି | ।। | ୩୮ |
| | ଯା' ଆତ୍ମା ସର୍ବଶୁଦ୍ଧିକର | । | ଯେ ଅଟେ ସତ୍ତ୍ୱକଳେବର | ।। | ୩୯ |
| | ତାଙ୍କଠାରେ ସେ କାହୁଁ ପୁଣ | । | ଯେ ରୋଷମୟ ତମୋଗୁଣ | ।। | ୪୦ |
| | ଯେହ୍ନେ ଭୂମିର ରଜମାନ | । | ଆକାଶେ ନୋହେ ସଂଭାବନ | ।। | ୪୧ |
| ୧୩ | ପ୍ରବର୍ତ୍ତାଇଲେ ଯଉଁ ଦେବ | । | ସୁଦୃଢ଼ ସାଂଖ୍ୟମୟ ନାବ | ।। | ୪୨ |
| | ଯଉଁ ନାବରେ ସୁଦୁସ୍ତର | । | ଭବସିନ୍ଧୁକୁ ତରେ ନର | ।। | ୪୩ |
| | ଯେ ଭବସିନ୍ଧୁ ମୃତ୍ୟୁପଥ | । | ଜଗତେ ହୋଇଛି ବିଖ୍ୟାତ | ।। | ୪୪ |
| | ଯେହୁ ସର୍ବଜ୍ଞ ମୁନିବର | । | ପରମ ଆତ୍ମା ଯେ ଈଶ୍ୱର | ।। | ୪୫ |
| | ଯେ ଭେଦ ଅରିମିତ୍ରଭାବ | । | ତାଙ୍କର କାହୁଁ ସେ ହୋଇବ | ।। | ୪୬ |
| ୧୪ | ସଗର ନୃପର କେଶିନୀ | । | ନାମରେ ଯେବଣ କାମିନୀ | ।। | ୪୭ |
| | ତା' ଠାରେ ଜନ୍ମିଲା ଯେ ସୁତ | । | ଅସମଞ୍ଜସ ସେ ବିଖ୍ୟାତ | ।। | ୪୮ |
| | ତାହାର ପୁତ୍ର ଅଂଶୁମନ୍ତ | । | ସେ ପିତାମହହିତେ ରତ | ।। | ୪୯ |
| ୧୫ | ଅସମଞ୍ଜସ ନାମ ହୋଇ | । | ସଗରନୃପସୁତ ଯେହି | ।। | ୫୦ |
| ୧୬ | ସେ ଅସମଞ୍ଜସ ଭାବରେ | । | ଆତ୍ମାକୁ ଦେଖାନ୍ତେ ଲୋକରେ | ।। | ୫୧ |
| | ଜନ୍ମିଛି ଜାତିସ୍ମର² ହୋଇ | । | ପୂର୍ବରେ ଯୋଗୀ ସେ ଅଟଇ | ।। | ୫୨ |
| | ସେ କାଳେ ସଙ୍ଗସକାଶରୁ | । | ଭ୍ରଷ୍ଟ ହୋଇଲା ସେ ଯୋଗରୁ | ।। | ୫୩ |

---

୧. ସୁମତି ଓ କେଶିନୀ ନାମରେ ସଗରଙ୍କର ଦୁଇ ଭାର୍ଯ୍ୟା ଥିଲେ । (ଦ୍ୱେ ଭାର୍ଯ୍ୟେ ତସ୍ୟ ସୁମତିଃ କେଶିନୀ କେଶବାଶ୍ରିତା)

୨. ଜାତିସ୍ମର = ପୂର୍ବଜନ୍ମର କଥା ଯାହାର ମନେ ଥାଏ ।

ଜ୍ଞାତିମାନଙ୍କୁ ନ ଯୋଗାଇ । ଲୋକେ ଯେ ନିନ୍ଦିତ ଅଟଇ ॥
ଏମନ୍ତ କର୍ମ ଆଚରଣ । କରନ୍ତେ ନୃପସୁତ ପୁଣ ॥
ଉଦ୍‌ବେଗ କରାନ୍ତେ ଲୋକଙ୍କୁ । ଦାଣ୍ଡେ ଖେଳିଲା ବାଳକଙ୍କୁ ॥
ଆପଣେ ଧରି ଘେନି ଯାଇ । ସରଯୂ ନଦୀରେ ପକାଇ ॥
୧୭ ଏମନ୍ତ ରୂପେ କର୍ମମାନ । ସେ ଆଚରନ୍ତେ ଦିନୁଁଦିନ ॥
ପୁତ୍ରସ୍ନେହକୁ କରି ଦୂର । ତାହାକୁ ଛାଡ଼ିଲେ ସଗର ॥
ଯୋଗ ଐଶ୍ୱର୍ଯ୍ୟେ ଶିଶୁମାନ । ଦେଖାଇ କଲା ସେ ଗମନ ॥
୧୮ ପୁଣି ଅଇଲେ ଶିଶୁମାନେ । ଦେଖି ଅଯୋଧ୍ୟାବାସିଜନେ ॥
ସମସ୍ତେ ବିସ୍ମୟ ହୋଇଲେ । ରାଜା ହିଁ ତାପକୁ ଲଭିଲେ ॥
୧୯ ହେ ନୃପ ! ହୟ ଖୋଜିବାକୁ । ସଗର ଦିଅନ୍ତେ ଆଜ୍ଞାକୁ ॥
ଗମନ କଲା ଅଂଶୁମନ୍ତ । ଯେ ଖୁଡ଼ୁତାଙ୍କ ଖୋଳା ଖାତ ॥
ସେ ଅନୁପଥେ ଭସ୍ମପାଶେ । ହୟକୁ ଦେଖିଲା ପ୍ରବେଶେ ॥
୨୦ କପିଳ ନାମେ ବିଷ୍ଣୁ ତହିଁ । ଯେ ଥିଲେ ତାହାଙ୍କୁ ସେ ଚାହିଁ ॥
ପ୍ରାଞ୍ଜଳି ହୋଇ ପ୍ରଣମିଲା । [1]ନିଶ୍ଚଳ ମନେ ସ୍ତୁତି କଲା ॥

ଶ୍ରୀଅଂଶୁମାନୁବାଚ

୨୧ ବ୍ରହ୍ମା ଆଜ ହିଁ ସମାଧିରେ । ତୁମ୍ଭଙ୍କୁ ପ୍ରତ୍ୟକ୍ଷ ନ କରେ ॥
ସଂପନ୍ନ କରି ଯୁଗୁତିରେ । ନ ଜାଣେ ସେହୁ ପ୍ରତ୍ୟକ୍ଷରେ ॥
ତା' ଠାରୁ ତୁମ୍ଭେ ଅତିଶୟ । ଈଶ୍ୱର ଜଗତେ ବୋଲାଅ ॥
ସେ ବ୍ରହ୍ମା ମନ-ଦେହ-ମତି[2] । ଏ ତିନିଠାରୁ ଯେ ଉତ୍‌ପତ୍ତି ॥
ଦେବ-ତିର୍ଯ୍ୟକ-ନରଙ୍କର । ସର୍ଜନା ବିବିଧ ପ୍ରକାର ॥
ତହିଁରେ ଯେ ଆମ୍ଭେ ସଂଭବ । ସ୍ୱଭାବେ ଅଟୁଁ ଅଜ୍ଞ ଜୀବ ॥
ସେ ଆମ୍ଭେ ଅବା କି ପ୍ରକାରେ । ତୁମ୍ଭଙ୍କୁ ଜାଣିମୁଁ ସଂସାରେ ॥
୨୨ ବୁଦ୍ଧିପ୍ରଧାନ ହୋଇ ଯେତେ । ଶରୀରଧାରୀ ଏ ଜଗତେ ॥
ଥିଲେହେଁ ତୁମ୍ଭେ ତାଙ୍କ ଠାଇଁ । ତୁମ୍ଭଙ୍କୁ ସେ ଦେଖନ୍ତି ନାହିଁ ॥
ଦେଖନ୍ତି ସେ ଗୁଣମାନଙ୍କୁ । ଅଥବା କେବଳ ତମକୁ ॥
ଏ ଘେନି କରି ତାଙ୍କ ଜ୍ଞାନ । ବାହ୍ୟରେ ଅଟେ ବିଦ୍ୟମାନ ॥
ଜାଗ୍ରତ ସ୍ୱପ୍ନକାଳେ ଯେତେ । ବିଷୟ ସଂଭବନ୍ତି ଚିତ୍ତେ ॥
ସୁଷୁପ୍ତିସମୟେ କେବଳ । ଯେ ତମ ସଂଭବେ ପ୍ରବଳ ॥
କେବଳ ଦେଖନ୍ତି ସେମାନ । ଯେ ତୁମ୍ଭେ ଅଟ ଗୁଣହୀନ ॥

---

୧. ଅଜାନନ୍ତୋଽବଜାନନ୍ତୋଽପ୍ୟନୁକମ୍ପ୍ୟା ବୟନ୍ତ୍ୱିତି ।
ତୁଷ୍ଟାବ ଷଡ୍‌ଭିରୀଶାନମଂଶୁମାନେବମାଶୟଃ ॥ (ସ୍ୱାମୀ)
ଜାଣୁ ନ ଥିବା, ଏପରିକି ଅବଜ୍ଞା କରୁଥିବା ଆମେ ତୁମ ଅନୁକମ୍ପାର ପାତ୍ର । ଏ ପ୍ରକାର ଭାବ (ଆଶୟ)ରେ ଅଂଶୁମାନ୍ ଛ'ଟି ଶ୍ଲୋକରେ ଈଶାନଙ୍କୁ ସ୍ତୁତି କଲେ ।

୨. ମତି = ବୁଦ୍ଧି ।

| | | | | | |
|---|---|---|---|---|---|
| | ତୁମ୍ଭଙ୍କୁ ଦେଖି ନ ପାରନ୍ତି | । | ସେମାନଙ୍କର ଯଉଁ ମତି | ।। | ୮୨ |
| | ଯେଣୁ ସେ ତୁମ୍ଭର ମାୟାରେ | । | ମୋହିତ ଅଟେ ନିରନ୍ତରେ | ।। | ୮୩ |
| ୨୩ | ମାୟାର ଅଛନ୍ତି ଯେ ଗୁଣ | । | ସେମାନେ ଯହିଁକି କାରଣ | ।। | ୮୪ |
| | ଏମନ୍ତ ଭେଦମୋହ ଦୁଇ | । | ସ୍ୱଭାବେ ଅଛନ୍ତି ଯେ ବହି | ।। | ୮୫ |
| | ସେ ସନନ୍ଦନ ଆଦି ହୋଇ | । | ମୁନି ଅଛନ୍ତି ଯାକୁ ଧ୍ୟାଇ | ।। | ୮୬ |
| | ସେ ତୁମ୍ଭେ ଅଟ ଜ୍ଞାନମୂର୍ତ୍ତି | । | ମୁଁ ତ ସ୍ୱଭାବେ ମୂଢ଼ମତି | ।। | ୮୭ |
| | ତୁମ୍ଭଙ୍କୁ କେମନ୍ତ ପ୍ରକାରେ | । | ବିଚାର କରିବି ମନରେ | ।। | ୮୮ |
| ୨୪ | ମାୟାର ଯେତେ ଗୁଣମାନ | । | ଯେ କର୍ମସୃଷ୍ଟି ଆଦି ଆନ | ।। | ୮୯ |
| | ବ୍ରହ୍ମାଦି ନାମରେ[1] ବିଖ୍ୟାତ | । | ଯେ ଲିଙ୍ଗମାନେ ନାନାମତ | ।। | ୯୦ |
| | ସେମାନେ ଶାନ୍ତ ହେଲେ ଯହିଁ | । | ଯାହାର ନାମରୂପ ନାହିଁ | ।। | ୯୧ |
| | ଯେ ପାପପୁଣ୍ୟରେ ରହିତ | । | ଯେ ଜ୍ଞାନ-ଉପଦେଶ ଅର୍ଥ | ।। | ୯୨ |
| | ଶରୀର ଧରି ଅଛ ପୁଣ | । | ଯେ ତୁମ୍ଭେ ପୁରୁଷ ପୁରାଣ | ।। | ୯୩ |
| | ଏମନ୍ତ ଯେ ତୁମ୍ଭେ ଈଶ୍ୱର | । | ତୁମ୍ଭଙ୍କୁ ମୋର ନମସ୍କାର | ।। | ୯୪ |
| ୨୫ | ତୁମ୍ଭର ମାୟାରେ ରଚିତ | । | ହୋଇଛି ଏ ଯଉଁ ଜଗତ | ।। | ୯୫ |
| | ଏଥିରେ ଭ୍ରମୁଛନ୍ତି ନରେ | । | ବସ୍ତୁବୁଦ୍ଧିରେ ଗୃହାଦିରେ | ।। | ୯୬ |
| | ଯେ ଲୋଭ ଈର୍ଷା[2] ମୋହ କାମ | । | ତେଣେ ତାଙ୍କର ଚିତ୍ତଭ୍ରମ | ।। | ୯୭ |
| ୨୬ | ସକଳ ଭୂତମାନଙ୍କର | । | ଆତ୍ମସ୍ୱରୂପ ହେ ଈଶ୍ୱର | ।। | ୯୮ |
| | ଆଜ ଆମ୍ଭର ମୋହପାଶ | । | ତୁମ୍ଭ ଦର୍ଶନୁଁ ହେଲା ନାଶ | ।। | ୯୯ |
| | ଯେ ଦୃଢ଼ କାମକର୍ମେନ୍ଦ୍ରିୟ | । | ଏ ତିନିଙ୍କର ଯେ ଆଶ୍ରୟ | ।। | ୧୦୦ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୭ | ଯାହାର ଅନୁଭାବମାନ | । | ଏ ରୂପେ କଲେ ସେ ଗାୟନ | ।। | ୧୦୧ |
| | ସେ ମୁନି କପିଳ ବୁଦ୍ଧିରେ | । | କରିଣ ଅନୁଗ୍ରହ ଧୀରେ | ।। | ୧୦୨ |
| | ଅଂଶୁମନ୍ତକୁ ଏ ବଚନ | । | ପ୍ରକାଶ କଲେ ହେ ରାଜନ | ।। | ୧୦୩ |

[3]ଶ୍ରୀକପିଳ ଉବାଚ

| | | | | | |
|---|---|---|---|---|---|
| ୨୮ | ହେ ବତ୍ସ ! ତୋର ପିତାମହ | । | ତାଙ୍କ[4] ପଶୁ ଏ ଅଶ୍ୱ ନିଅ | ।। | ୧୦୪ |
| | ଅଶ୍ୱ ଲଭିଲା ଅଂଶୁମନ୍ତ | । | କପିଳ ବୋଇଲେ ଏମନ୍ତ | ।। | ୧୦୫ |
| | ଏ ଯେ ତୋହର ପିତୃମାନେ | । | ଦଗଧ ହୋଇଲେ ଏ ସ୍ଥାନେ | ।। | ୧୦୬ |
| | ଏ ଯୋଗ୍ୟ ଗଙ୍ଗାସଲିଳକୁ | । | ଯୋଗ୍ୟ ନୁହନ୍ତି ଏ ଆନକୁ | ।। | ୧୦୭ |
| ୨୯ | [5]ତାହାଙ୍କୁ କରି ପ୍ରଦକ୍ଷିଣ | । | ଶିରେ ପ୍ରସନ୍ନ କରାଇଣ | ।। | ୧୦୮ |
| | ହୟକୁ ଆଣିଲା ସତ୍ୱର | । | ସେହି ପଶୁରେ ସେ ସଗର | ।। | ୧୦୯ |

୧. ରୂପରେ । ୨. କ୍ରୋଧ । ୩. ଶ୍ରୀଭଗବାନୁବାଚ । ୪. ଯଜ୍ଞ । ୫. ଏହା ଶୁକଙ୍କର ଉକ୍ତି ।

ଯାଗର ଶେଷ ଯେତେ ଥିଲା । ତାହା ସମାପ୍ତ କରାଇଲା ॥ ୧୧୦
୩୦ ଅଂଶୁମନ୍ତକୁ ରାଜ୍ୟ ଦେଇ । ନିସ୍ପୃହ ମୁକ୍ତବନ୍ଧ ହୋଇ ॥ ୧୧୧
ଔର୍ବଋଷିଙ୍କ ଉପଦେଶ । ମାର୍ଗେ ସେ ସଗରନରେଶ ॥ ୧୧୨
ଉତ୍ତମ ଅଟଇ ଯେ ଗତି । ତାହାକୁ ଲଭିଲେ ଝଟିତି ॥ ୧୧୩
କୃଷ୍ଣଚରଣପଦ୍ମଧ୍ୟାନେ । ହରଷ ଦୀନବଂଧୁ ମନେ ॥ ୧୧୪
ଶୁଣି ଏ ବଂଶର ଚରିତ । ସୁଜନେ ହୁଅ ତୋଷଚିତ୍ତ ॥ ୧୧୫

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀସଗରୋପାଖ୍ୟାନଂ
ନାମ ଅଷ୍ଟମୋଽଧ୍ୟାୟଃ ॥

## ନବମ ଅଧ୍ୟାୟ

ନବମେଽଂଶୁମତୋ ବଂଶଃ ଖଟ୍ୱାଙ୍ଗାବଧି ବର୍ଣ୍ଣ୍ୟତେ ।
ଗଙ୍ଗାଂ ଭୂତଲମାନିନ୍ୟେ ଯସ୍ୟ ପୌତ୍ରୋ ଭଗୀରଥଃ ॥ ୧

ଶ୍ରୀଶୁକ ଉବାଚ

୧ ଗଙ୍ଗାକୁ ଆଣିମା ଇଚ୍ଛାରେ । ଅଂଶୁମାନ ହିଁ ସେ କାଳରେ ॥ ୧
ବହୁତ କାଳ ତପ କଲା । ଗଙ୍ଗାକୁ ଆଣି ନ ପାରିଲା ॥ ୨
ତଦନ୍ତେ କେତେ କାଳେ ପୁଣ । ନୃପତି ଲଭିଲା ମରଣ ॥ ୩
୨ ସେ ରୂପେ ଦିଲୀପ ତା' ସୁତ । କରିଣ ତପସ୍ୟା ବହୁତ ॥ ୪
ଗଙ୍ଗାକୁ ଆଣି ନ ପାରିଲା । କାଳରେ ମରଣ ଲଭିଲା ॥ ୫
ତାହାର ସୁତ ଭଗୀରଥ । କଲା ସେ ତପସ୍ୟା ବହୁତ ॥ ୬
୩ ମୁଁ ତୋତେ ହୋଇଲି ପ୍ରସନ୍ନ । ବରହିଁ କରିବି ପ୍ରଦାନ ॥ ୭
ଏରୂପେ ଗଙ୍ଗା ଦେବୀ ତାକୁ । ଦେଖାଇଲେ ସେ ଆପଣାକୁ ॥ ୮
ଗଙ୍ଗା କହନ୍ତେ ଏ ବଚନ । ନମ୍ର ହୋଇଣ ସେ ରାଜନ ॥ ୯
ଯେ ନିଜ ଅଭିପ୍ରାୟ ଥିଲା । ସେ କଥା ତାହାଙ୍କୁ କହିଲା ॥ ୧୦
୪ ଗଙ୍ଗା ବୋଇଲେ ଯେବେ ମୁହିଁ । ଧରଣୀତଳେ ପଡ଼ିବଇଁ ॥ ୧୧
ପଡ଼ନ୍ତେ ମୋହର ଯେ ବେଗ । କେ ତାହା ସଂଭାଳିବ ଆଗ ॥ ୧୨
ହେ ନୃପ ! ଅନ୍ୟଥା ଭୂତଳ । ଭେଦି ମୁଁ ଯିବି ରସାତଳ ॥ ୧୩
୫ ଭୂମିକି ନ ଯିବି କି ମୁହିଁ । ମନୁଷ୍ୟମାନେ ଯେ ମୋ ଠାଇଁ ॥ ୧୪
ପାପକୁ କରିବେ କ୍ଷାଳନ । ମୁଁ ସେ ପାପକୁ ହେ ରାଜନ ॥ ୧୫
କ୍ଷାଳନ କରିବି କାହିଁରେ । ଚିନ୍ତ ତୁ ଉପାୟ ତହିଁରେ ॥ ୧୬

## ଶ୍ରୀଭଗୀରଥ ଉବାଚ

୬ ଯେ ସାଧୁ ନ୍ୟାସୀ ଶାନ୍ତ ଜନ । ବ୍ରହ୍ମିଷ୍ଠ ଯେ ଲୋକପାବନ ।। ୧୭
ଅଙ୍ଗସଙ୍ଗରୁ ସେ ତୋହର । ପାପକୁ କରିବେ ସଂହାର ।। ୧୮
ପାପକୁ ବିଦାରଇ ଯେହି । ସେ ହରି ଥାନ୍ତି ତାଙ୍କ ଠାଇଁ ।। ୧୯
୭ ପ୍ରାଣୀମାନଙ୍କ ଆତ୍ମା ହର । ଧରିବେ ବେଗକୁ ତୋହର ।। ୨୦
ଯାଠାରେ ଓତପ୍ରୋତ[1] ହୋଇ । ଏ ବିଶ୍ୱଯାକ ଅଛି ରହି ।। ୨୧
ତନ୍ତୁମାନଙ୍କରେ ଯେସନ । ଗ୍ରଥିତ ହୋଇଛି ବସନ ।। ୨୨
୮ ଏମନ୍ତ ବୋଲି ସେ ନୃପତି । ତପେ ତୋଷିଲେ ଉମାପତି ।। ୨୩
ଅଳ୍ପ କାଳରେ ତାକୁ ତୋଷ । ହୋଇଲେ ସେ ଦେବ ମହେଶ ।। ୨୪
୯ ରାଜା କହିଲା ଯଉଁ ବାଣୀ । ସ୍ୱୀକାର କରି ତାହା ପୁଣି ।। ୨୫
ସକଳ ଲୋକମାନଙ୍କର । ହିତ ଅଟନ୍ତି ଯେ ଶଙ୍କର ।। ୨୬
ବିଷ୍ଣୁର ପାଦସଙ୍ଗୁଁ ଯାର । ପବିତ୍ର ହୋଇଛନ୍ତି ନୀର ।। ୨୭
ଆପଣେ ସାବଧାନ ହୋଇ । ବହିଲେ ସେ ଗଙ୍ଗାଙ୍କୁ ଯାଇ ।। ୨୮
୧୦ ଭୁବନ କରଇ ଯେ ପୂତ । ସେ ଗଙ୍ଗାଙ୍କୁ ସେ ଭଗୀରଥ ।। ୨୯
ନେଲେ ସେ ସ୍ଥାନକୁ ହରଷେ । ଭସ୍ମ ହୋଇଣ ଯଉଁ ଦେଶେ ।। ୩୦
ଆପଣା ପିତୃମାନଙ୍କର । ରହିଅଛନ୍ତି କଳେବର ।। ୩୧
୧୧ ପବନପ୍ରାୟବେଗ ରଥେ । ଗମନ କରୁଛି ଯେ ପଥେ ।। ୩୨
ସେ ନୃପତିକି ଅନୁଗତ । ହୋଇଣ ଧାବନ୍ତେ ସଂତତ ।। ୩୩
ମାର୍ଗରେ ଯେତେ ଦେଶମାନ । ତାହାଙ୍କୁ କରନ୍ତେ ପାବନ ।। ୩୪
ସଗରସୁତଙ୍କୁ ସିଞ୍ଚିଲେ । ଯେ ପୂର୍ବେ ଦଗ୍ଧ ହୋଇଥିଲେ ।। ୩୫
୧୨ ବ୍ରହ୍ମଦଣ୍ଡରେ ହୋଇ ହତ । ଥିଲେହେଁ ସଗରଙ୍କ ସୁତ ।। ୩୬
କେବଳ ଶରୀରଭସ୍ମରେ । ଯା' ଜଳସ୍ପରଶମାତ୍ରରେ ।। ୩୭
ସେ ପାପୁଁ ମୁକ୍ତିକି ଲଭିଲେ । ସମସ୍ତେ ସ୍ୱର୍ଗକୁ ସେ ଗଲେ ।। ୩୮
୧୩ ଭସ୍ମ ହୋଇଲେ ଯଉଁ ଅଙ୍ଗ । ସେମାନଙ୍କର ଯଉଁ ସଙ୍ଗ ।। ୩୯
ତେଣେ ସଗରପୁତ୍ରମାନେ । ମିଳିଲେ ଅମରଭୁବନେ ।। ୪୦
ଶ୍ରଦ୍ଧାରେ ଧୃତବ୍ରତ ହୋଇ । ଗଙ୍ଗାଙ୍କୁ ସେବିଛନ୍ତି ଯେହି ।। ୪୧
ସେମାନେ କି ହୋଇବେ ପୁଣ । କେ ତାହା କରିବ ବଖାଣ ।। ୪୨
୧୪ ଚରଣପଦ୍ମରୁ ବିଷ୍ଣୁର । ଜନମ ହୋଇଛି ଯାହାର ।। ୪୩
ପାରେ ଯେ ସଂସାରକୁ ଛେଦି । ଏମନ୍ତ ଯଉଁ ସୁରନଦୀ ।। ୪୪
ଯାହା କହିଲୁଁ ତା' ଚରିତ । ଏ ନୋହେ ଅତି ଅଦଭୁତ ।। ୪୫

---

୧. ଓତ = ଊର୍ଦ୍ଧ୍ୱତନ୍ତୁରେ ଗ୍ରଥିତ ।
ପ୍ରୋତ = ତିର୍ଯ୍ୟକ୍‌ତନ୍ତୁରେ ଗ୍ରଥିତ ।

୧୫ ଯେଉଁ ବିଷ୍ଣୁର ଠାରେ ମନ । ଦେଇ ଅମଳ ମୁନିଜନ ॥ ୪୬
ଲଭିଲେ ତପ ଆଦି କ୍ଲେଶ । କେବେହେଁ ନୁହଇ ଯେ ନାଶ ॥ ୪୭
ଛାଡ଼ି ସେ ଦେହସମ୍ବନ୍ଧକୁ । ଲଭିଲେ ଯାହା ସ୍ୱରୂପକୁ ॥ ୪୮
ସେ ବିଷ୍ଣୁଚରଣୁଁ ଯେ ଜାତ । କେ ଜାଣିପାରେ ତା' ଚରିତ ॥ ୪୯
୧୬ ଭଗୀରଥର ସୁତ ଶ୍ରୁତ । ନାଭ ତାଠାରୁ ହେଲା ଜାତ ॥ ୫୦
ତାହାର ସିନ୍ଧୁଦ୍ୱୀପ ସୁତ । ତାଠାରୁ ଅୟୁତାୟୁ ଜାତ ॥ ୫୧
୧୭ ସେ ଅୟୁତାୟୁର ନନ୍ଦନ । ନଳର ସଖା ଋତୁପର୍ଣ୍ଣ ॥ ୫୨
ଅକ୍ଷବିଦ୍ୟାର ହୃଦୟକୁ । ପ୍ରଦାନ କରିଣ ନଳକୁ ॥ ୫୩
ଯେ ନଳଠାରୁ ତତକ୍ଷଣ । ଶିଖିଲା ଅଶ୍ୱବିଦ୍ୟା ପୁଣ ॥ ୫୪
ତା'ଠାରୁ ହେଲା ଯେ ଜନମ । ତାହାର ନାମ ସର୍ବକାମ ॥ ୫୫
୧୮ ସେ ସର୍ବକାମଠାରୁ ଜାତ । ସୁଦାସ ନାମ ଏକସୁତ ॥ ୫୬
ହେ ନୃପ ! ତା'ଠାରୁ ଉତ୍ପତ୍ତି । ହୋଇଲା ମଦୟନ୍ତୀପତି ॥ ୫୭
ବୋଲନ୍ତି ମିତ୍ରସହ[୧] ଯାକୁ । କେହୁଣି କାଳେ ପୁଣ ତାକୁ ॥ ୫୮
କଲ୍ମାଷପାଦ ନାମେ ଜନେ । ବିଖ୍ୟାତ କଲେ ଏ ଭୁବନେ ॥ ୫୯
ବଶିଷ୍ଠଶାପୁଁ ସେ ନୃପତି । ରାକ୍ଷସ ହୋଇଲା ଝଟିତି ॥ ୬୦
ନିଜ କର୍ମରେ ପୁତ୍ରହୀନ । ହୋଇଲା ପୁଣ ସେ ରାଜନ ॥ ୬୧

ଶ୍ରୀରାଜୋବାଚ

୧୯ ମହାତ୍ମା ସୌଦାସର ଜାତ । ଗୁରୁର ଶାପ କି ନିମିତ୍ତ ॥ ୬୨
ଏ କଥା ଜାଣିମାକୁ ମନେ । ଇଚ୍ଛା କରୁଛୁଁ ଆମ୍ଭେମାନେ ॥ ୬୩
ଯେବେ ଏ ନୁହଇ ଗୁପତ । କହ ତା' ଆମ୍ଭର ଅଗ୍ରତ ॥ ୬୪

ଶ୍ରୀଶୁକ ଉବାଚ

୨୦ ମୃଗୟା ଭ୍ରମନ୍ତେ ସୌଦାସ । ମାଇଲା କେହୁଣି ରାକ୍ଷସ ॥ ୬୫
ଛାଡ଼ିଲା ଭାଇକି ତାହାର । ଏ କଥାକୁ ଯେ ପ୍ରତିକାର ॥ ୬୬
ସେ କଥା ବିଚାରି ମାନସ । ତଦନ୍ତେ ଗଲା ସେ ରାକ୍ଷସ ॥ ୬୭
୨୧ ଅନିଷ୍ଟ କଥାକୁ ରାଜାର । ବିଚାର କରନ୍ତେ ଅସୁର ॥ ୬୮
ରାଜାର ଗୃହରେ ମିଳିଲା । ସୁଆର-ବେଶକୁ ଧଇଲା ॥ ୬୯
ବଶିଷ୍ଠଋଷି ଯେ ଭୋଜନ । ନିମିତ୍ତେ କରିଥିଲେ ମନ ॥ ୭୦
ପାକ କରିଣ ନରମାଂସ । ଦେଲା ତାହାଙ୍କୁ ସେ ରାକ୍ଷସ ॥ ୭୧
୨୨ ସେ ମାଂସ ପରଷନ୍ତେ ନେଇ । ଅଭକ୍ଷ୍ୟ ବୋଲି ତାହା ଚାହିଁ ॥ ୭୨
ସେ ଭଗବାନ କ୍ରୁଦ୍ଧ ହେଲେ । ତତ୍କାଳ ତାକୁ ଶାପ ଦେଲେ ॥ ୭୩
ତୁ ଏହି ପ୍ରକାରେ ମାଉଁସ । ଭକ୍ଷନ୍ତେ ହୋଇବୁ ରାକ୍ଷସ ॥ ୭୪

---
୧. ମିତ୍ରସହ = ମିତ୍ର ଅର୍ଥାତ୍ କଳତ୍ରର କଥା ଯେ ସହେ ।

୨୩ } ସେ କଥା କରିଛି ଅସୁର । ଏମନ୍ତ କରିଣ ଗୋଚର ॥
୨୪ } ଅବଧି କଲେ ସେ ଶାପକୁ । ମୁନି ଦ୍ୱାଦଶବରଷକୁ ॥
ସଲିଳ ଅଞ୍ଜଳି ଧରିଣ । ଗୁରୁଙ୍କୁ ଶପିବାକୁ ପୁଣ ॥
ସେ ନୃପ କରନ୍ତେ ଉଦ୍ୟମ । ତା' ଭାର୍ଯ୍ୟା ମଦୟନ୍ତୀ ନାମ ॥
ନିବର୍ତ୍ତାନ୍ତେ ସେ ତୀକ୍ଷ୍ଣ ଜଳ । ପାଦେ ଇଡ଼ିଲା ତତକାଳ ॥
ଦିଗ ଆକାଶ ଭୂବଳୟ । ଦେଖନ୍ତେ ସର୍ବ ଜୀବମୟ ॥
ଶାପଜଳକୁ ଧରଣୀରେ । ନ ପକାଇଲା ଏ ହେତୁରେ ॥
ମିତ୍ରସ୍ୱରୂପୀ ଯେ ଗୃହିଣୀ । ତା' ବାକ୍ୟ ସହିବାରୁ ପୁଣି ॥
ତାହାର ମିତ୍ରସହ ନାମ । ଜଗତେ ହୋଇଲା ଜନମ ॥
୨୫ ରାକ୍ଷସଭାବକୁ ପାଇଲା । ପାଦେ କଲ୍ମାଷ[1]ବର୍ଣ୍ଣ ହେଲା ॥
ଯେ ଏକ ବିପ୍ର ବିପ୍ରନାରୀ । ବନରେ ଥିଲେ ଗୃହ କରି ॥
ତାହାଙ୍କୁ ସୁରତକାଳରେ । ସୌଦାସ ଦେଖିଲା ବନରେ ॥
୨୬ କ୍ଷୁଧାରେ ହୋଇଥିଲା ଆର୍ତ୍ତ । ବିପ୍ରକୁ ଧଇଲା ତୁରିତ ॥
ତା' ଭାର୍ଯ୍ୟା ଦୀନପ୍ରାୟ ହେଲା । ରାଜାକୁ ବଚନ ବୋଇଲା ॥
ତୁ ନୋହୁ ରାକ୍ଷସ ସାକ୍ଷାତ । ଇକ୍ଷ୍ୱାକୁବଂଶେ ମହାରଥ ॥
୨୭ ମଦୟନ୍ତୀର ପତି ବୀର । ଅଧର୍ମକଥା ନ ଆଚର ॥
ମୁଁ ଅଛି ପୁତ୍ରକାମ ହୋଇ । ମୋହର ପତି ବିପ୍ର ଏହି ॥
ସୁରତ ନ କରିଛି ପୂର୍ଣ୍ଣ । କର ଏହାକୁ ମତେ ଦାନ ॥
୨୮ ହେ ନୃପ ! ଏ ନରଶରୀର । ଲୋକର ସର୍ବଅର୍ଥକର ॥
ସେହି କାରଣରୁ ହେ ବୀର । ଯେ ବଧ ଏ ନରଦେହର ॥
ସମସ୍ତ ପୁରୁଷାର୍ଥ ଯେହି । ତାହାଙ୍କ ବଧ ତାକୁ କହି ॥
୨୯ ଏ ବିପ୍ର ଅଟଇ ପଣ୍ଡିତ । ତପସ୍ୟା-ଶୀଳ-ଗୁଣଯୁତ ॥
ସମସ୍ତ ଭୂତମାନଙ୍କର । ଆତ୍ମଭାବରେ ଯେ ଈଶ୍ୱର ॥
ଥିଲେ ହେଁ ଗୁଣମାନଙ୍କରେ । ପ୍ରକାଶ ନୁହନ୍ତି ତହିଁରେ ॥
ମହାପୁରୁଷ ନାମେ ଖ୍ୟାତ । ଯେ ବ୍ରହ୍ମ ଅଟନ୍ତି ସାକ୍ଷାତ ॥
ତାଙ୍କର ଯଉଁ ଆରାଧନ । ତହିଁକି କରିଛି ଏ ମନ ॥
୩୦ ଏ ବିପ୍ରଋଷିମଧ୍ୟେ ସାର । ତୁ ରାଜଋଷିରେ ପ୍ରବର ॥
ଧର୍ମଜ୍ଞ ତୁ, ତୋ'ଠାରୁ ଏହି । କେମନ୍ତେ ବଧଯୋଗ୍ୟ ହୋଇ ॥
ପିତାର ଠାରୁ ଯେହ୍ନେ ସୁତ । ନୁହଇ ବଧକୁ ଉଚିତ ॥
୩୧ କର୍ମରେ ମନ-ବଚନରେ । ଯେ ପ୍ରୀତି ସମସ୍ତ ଭୂତରେ ॥
ଶୀଳ ବୋଲନ୍ତି ତାକୁ ଜନ । ଯେ ବିଦ୍ୟାବିବେକସଂପନ୍ନ ॥
୩୨ ସାଧୁ ଅପାପୀ ବ୍ରହ୍ମବାଦୀ । ଶ୍ରୋତ୍ରିୟ ଗର୍ଭରୂପେ ସିଦ୍ଧି ॥
ତାହା ବଧକୁ ନିଜ ଚିତ୍ତେ । ସ୍ୱୀକାର କରୁଛୁ କେମନ୍ତେ ॥

---
୧. କଲ୍ମାଷ = ଧଳା ଓ କଳାମିଶା ବର୍ଣ୍ଣ ।

କପିଳାଧେନୁବଧ ଜନ । ସ୍ୱୀକାର କରଇ ଯେସନ ॥ ୧୦୮
ତୁ ପୁଣି ସାଧୁମାନଙ୍କରେ । ସଂମତ ଅଟୁ ଜଗତରେ ॥ ୧୦୯
୩୩ ଯେବେ ଏ ଭକ୍ଷ୍ୟ ହେବ ତୋର । ପ୍ରଥମେ ମୋତେ ଭକ୍ଷ୍ୟ କର ॥ ୧୧୦
ଶବସମାନ ଅଟେ ମୁହିଁ । ଏ ବିନୁ କ୍ଷଣେ ନ ଜୀବଇଁ ॥ ୧୧୧
୩୪ ଏମନ୍ତ ରୂପରେ କରୁଣ । ବଚନ କହନ୍ତେ ସେ ପୁଣ ॥ ୧୧୨
ଅନାଥ ଲୋକ ପ୍ରାୟ ହୋଇ । ବିଳାପ କରୁଥାନ୍ତେ ତହିଁ ॥ ୧୧୩
ବିପ୍ରକୁ ଭକ୍ଷିଲା ସୌଦାସ । ଶାପେ ମୋହିତ ତା' ମାନସ ॥ ୧୧୪
ଯେସନ ପଶୁକୁ ବନରେ । ବ୍ୟାଘ୍ର ଭକ୍ଷଇ ବଳାତ୍କାରେ ॥ ୧୧୫
୩୫ ରାକ୍ଷସ ଭକ୍ଷିଲା ଭର୍ତ୍ତାକୁ । ବ୍ରାହ୍ମଣୀ ଦେଖି ଏ କଥାକୁ ॥ ୧୧୬
ଶୋଚନା କରନ୍ତେ ଆତ୍ମାକୁ । କ୍ରୋଧରେ ଶପିଲା ରାଜାକୁ ॥ ୧୧୭
୩୬ ମୋ' ନିଜ ପତିକି ତୁ ଯେଣୁ । କାମେ ଭକ୍ଷଣ କଲୁ ତେଣୁ ॥ ୧୧୮
ମୈଥୁନସକାଶୁଁ ମରଣ । ରେ ପାପ ମୂର୍ଖ ! ତୋର ପୁଣ ॥ ୧୧୯
ବିଖ୍ୟାତ କରାଇଲି ମୁହିଁ । ଏକଥା ଅନ୍ୟଥା ନୁହଇ ॥ ୧୨୦
୩୭ ସଉଦାସକୁ ଏ ପ୍ରକାରେ । ଶାପ ଦେଇଣ ତଦନ୍ତରେ ॥ ୧୨୧
ପତିର ଅସ୍ଥିମାନ ନେଇ । ପ୍ରଦୀପ୍ତ ଅଗ୍ନିରେ ପକାଇ ॥ ୧୨୨
ଭର୍ତ୍ତାର ଯଉଁ ଗତି ପୁଣି । ତାହା ଲଭିଲା ସେ ବ୍ରାହ୍ମଣୀ ॥ ୧୨୩
ପତିର ଲୋକ ପରାୟଣ । ତାହାର ଅଟଇ ପ୍ରମାଣ ॥ ୧୨୪
୩୮ ଯାଆନ୍ତେ ଦ୍ୱାଦଶ ବରଷ । ଶାପ ହୁଅନ୍ତେ ତାର ଶେଷ ॥ ୧୨୫
ମୈଥୁନ ନିମିତ୍ତେ ନୃପତି । ଉଦ୍ୟମ କରନ୍ତେ ଝଟିତି ॥ ୧୨୬
ଜାଣନ୍ତେ ବ୍ରାହ୍ମଣୀଶାପକୁ । ଭାର୍ଯ୍ୟା ନିବର୍ତ୍ତାଇଲା ତାକୁ ॥ ୧୨୭
୩୯ ରାଜା ସେଦିନୁଁ ଉପରକୁ । ଛାଡ଼ିଲା ଯୁବତିସୁଖକୁ ॥ ୧୨୮
ଅପୁତ୍ର ହେଲା ସେ କର୍ମରେ । ବଶିଷ୍ଠ ତାହା' ଅନୁଜ୍ଞାରେ ॥ ୧୨୯
ତାର ଭାର୍ଯ୍ୟା ଯେ ମଦୟନ୍ତୀ । ତା'ଠାରେ ବିହିଲେ ସଂତତି ॥ ୧୩୦
୪୦ ସାତ ବରଷଯାଏ ରାଣୀ । ଧଇଲା ସେ ଗର୍ଭକୁ ପୁଣି ॥ ୧୩୧
ବଶିଷ୍ଠ ଗର୍ଭକୁ ତାହାର । ପାଷାଣେ କରନ୍ତେ ପ୍ରହାର ॥ ୧୩୨
ଜନ୍ମ ହୋଇଲା ଯେ ବାଳକ । ତାହାକୁ ବୋଲନ୍ତି ଅଶ୍ମକ ॥ ୧୩୩
୪୧ ଅଶ୍ମକଠାରୁ ଯେ ବାଳକ । ଜନ୍ମିଲା ତା ନାମ ମୂଳକ ॥ ୧୩୪
କ୍ରୋଧରେ ଜମଦଗ୍ନିସୁତ । ନିଃକ୍ଷତ୍ର କରନ୍ତେ ଜଗତ ॥ ୧୩୫
ତାହାକୁ ନାରୀମାନେ ଯେଣୁ । ବେଢ଼ି ରଖିଲେ ସେ କାରଣୁଁ ॥ ୧୩୬
ନାରୀକବଚ ନାମେ ଖ୍ୟାତ । ହୋଇଲା ସେ ଅଶ୍ମକସୁତ ॥ ୧୩୭
କ୍ଷତ୍ରବଂଶର ମୂଳ ଯେଣୁ । ମୂଳକ ନାମ ତାର ତେଣୁ ॥ ୧୩୮
୪୨ ମୂଳକଠାରୁ ଯେ ସଂଭୂତ । ସେ ଦଶରଥ ନାମେ ଖ୍ୟାତ ॥ ୧୩୯
ତା'ଠାରୁ ହେଲା ଯେ ଜନମ । ତାହାର ଐଡ଼ବିଡ଼ ନାମ ॥ ୧୪୦

| | | | | | |
|---|---|---|---|---|---|
| | ତା'ଠାରୁ ଯେ ହେଲା ଉତ୍ପତ୍ତି | । | ସେ ବିଶ୍ୱସହ ନରପତି | ॥ | ୧୪୧ |
| | ଖଟ୍ୱାଙ୍ଗ ନାମେ ନରପତି | । | ତା'ସୁତ ହେଲା ଚକ୍ରବର୍ତ୍ତୀ | ॥ | ୧୪୨ |
| ୪୩ | ଦୁର୍ଜୟ ଅଟେ ଯେ ଯୁଦ୍ଧରେ | । | ପ୍ରାର୍ଥନା କରନ୍ତେ ଅମରେ | ॥ | ୧୪୩ |
| | ଦୈତ୍ୟଙ୍କୁ କଲା ସେ ନିଧନ | । | ଦେବେ ହୋଇଣ ସୁପ୍ରସନ୍ନ | ॥ | ୧୪୪ |
| | ବୋଇଲେ ମାଗ କାମବର | । | ନୃପତି ବୋଇଲା ଉତ୍ତର | ॥ | ୧୪୫ |
| | ମୋର ଆୟୁଷ ଅଛି କେତେ | । | ଅମରେ ବୋଇଲେ ମୁହୂର୍ତ୍ତେ | ॥ | ୧୪୬ |
| | ତା' ଜାଣି ବିମାନରେ ବସି | । | ନିଜ ପୁରକୁ ବେଗେ ଆସି | ॥ | ୧୪୭ |
| | ପରମେଶ୍ୱରଠାରେ ମନ | । | ସଂଧାନ କଲା ସେ ରାଜନ | ॥ | ୧୪୮ |
| ୪୪ | ଯଉଁ ବ୍ରାହ୍ମଣକୁଳ ମୋର | । | ଦେବତା ଅଟଇ କୁଳର | ॥ | ୧୪୯ |
| | ତହିଁରୁ ଅତିପ୍ରିୟ ହୋଇ | । | ପ୍ରାଣ ହିଁ ମୋହର ନୁହଇ | ॥ | ୧୫୦ |
| | ରାଜ୍ୟ, ସଂପତ୍ତି, ମହୀ, ସୁତ | । | ଭାର୍ଯ୍ୟା ହିଁ ନୁହଇ ତେମନ୍ତ | ॥ | ୧୫୧ |
| ୪୫ | ଅଲ୍ପେ[୧] ଅଧର୍ମେହେଁ ମୋ ଚିତ୍ତ | । | ରମଇଁ ନାହିଁ କଦାଚିତ | ॥ | ୧୫୨ |
| | ବିଷ୍ଣୁର ଠାରୁ ଆନ କିଛି | । | ସତ୍ୟ କରି ମୁଁ ନ ଦେଖୁଛି | ॥ | ୧୫୩ |
| ୪୬ | ଯେ ଦେବେ ତ୍ରିଭୁବନେଶ୍ୱର | । | ସେ ମୋତେ ଦେଲେ କାମବର | ॥ | ୧୫୪ |
| | ଭାବନା କରନ୍ତେ ବିଷ୍ଣୁଙ୍କୁ | । | ମୁଁ ନ ବରିଲି ସେ କାମକୁ | ॥ | ୧୫୫ |
| ୪୭ | ଯଉଁ ଦେବତାଙ୍କ ମାନସ | । | ଇନ୍ଦ୍ରିୟ ନୋହେ ନିଜବଶ | ॥ | ୧୫୬ |
| | ଯଉଁ ଆତ୍ମାର ହୃଦେ ସ୍ଥିତି | । | ତାକୁ ସେମାନେ ନ ଜାଣନ୍ତି | ॥ | ୧୫୭ |
| | ସେ ପ୍ରିୟ ଆତ୍ମାକୁ କେ ଆନେ | । | ଜାଣିପାରିବେ ଏ ଭୁବନେ | ॥ | ୧୫୮ |
| ୪୮ | ଗନ୍ଧର୍ବପୁରପ୍ରାୟ ହୋଇ | । | ଅସତ୍ୟ ମାୟାକୃତ ଯେହି | ॥ | ୧୫୯ |
| | ସ୍ୱଭାବେ ସେ ଗୁଣେ ନିରୂଢ଼ | । | ଆତ୍ମାରେ ଯଉଁ ସଙ୍ଗ ଦୃଢ଼ | ॥ | ୧୬୦ |
| | ଜଗତକର୍ତ୍ତା ଯଉଁ ହରି | । | ଅଭାବେ ତାହା ପରିହରି | ॥ | ୧୬୧ |
| | ଏମନ୍ତ ଯଉଁ ଭଗବାନ | । | ନିଶ୍ଚୟ ତାଙ୍କୁ ମୁଁ ପ୍ରପନ୍ନ | ॥ | ୧୬୨ |
| ୪୯ | ଯେବଣ ବୁଦ୍ଧିକି ଗ୍ରହଣ | । | କରିଅଛନ୍ତି ନାରାୟଣ | ॥ | ୧୬୩ |
| | ତେଣେ ଏ ବ୍ୟବସାୟ କଲା | । | ନିଜ ଅଜ୍ଞାନ ଯେ ବା ଥିଲା | ॥ | ୧୬୪ |
| | ତାହାକୁ ଛାଡ଼ିଣ ପାର୍ଥିବ | । | ଭଜିଲା ଆପଣାର ଭାବ | ॥ | ୧୬୫ |
| ୫୦ | ଯେ ସୂକ୍ଷ୍ମ ପରଂବ୍ରହ୍ମ ଯେହି | । | ଅଶୂନ୍ୟ ଶୂନ୍ୟପ୍ରାୟ ହୋଇ | ॥ | ୧୬୬ |
| | ଯାକୁ ବୋଲନ୍ତି ଭଗବାନ | । | ବାସୁଦେବ ବୋଲିଣ ଜନ | ॥ | ୧୬୭ |
| | କୃଷ୍ଣଚରଣପଦ୍ମଧ୍ୟାନେ | । | ହରଷ ଦୀନବନ୍ଧୁ ମନେ | ॥ | ୧୬୮ |
| | ସେ ରସ ଆସ୍ୱାଦି ସନ୍ତତ | । | ହରଷ ସାଧୁଜନଚିତ୍ତ | ॥ | ୧୬୯ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଖଟ୍ୱାଙ୍ଗଚରିତଂ
ନାମ ନବମୋଽଧ୍ୟାୟଃ ॥

---

୧. ବାଲ୍ୟେ (ଖ)।

## ଦଶମ ଅଧ୍ୟାୟ

ଦଶମେ ପ୍ରାହ ଖଟ୍ୱାଙ୍ଗବଂଶେ ଶ୍ରୀରାମସଂଭବମ୍ ।
ତଚ୍ଚରିତ୍ରଂ ଚ ଲଙ୍କେଶଂ ହତ୍ୱାଯୋଧ୍ୟାଗମାବଧି ॥ ୧

ଶ୍ରୀଶୁକ ଉବାଚ

୧ ଖଟ୍ୱାଙ୍ଗଠାରୁ ଜାତ ଯେହୁ । ତାହାର ନାମ ଦୀର୍ଘବାହୁ ॥ ୧
ରଘୁ ନାମରେ ପୃଥୁକୀର୍ତ୍ତି । ନୃପତି ତା'ଠାରୁ ଉତ୍ପତ୍ତି ॥ ୨
ଯେ ରଘୁଠାରୁ ମହାରାଜ । ଜନ୍ମିଲା ତାହା ନାମ ଅଜ ॥ ୩
ସେ ଅଜଠାରୁ ଦଶରଥ । ନାମେ ନୃପତି ହେଲା ଜାତ ॥ ୪
୨ ପ୍ରାର୍ଥନା କରନ୍ତେ ଅମରେ । ଚାରି ରୂପରେ ଅଂଶାଂଶରେ ॥ ୫
୩ ଯେହୁ ସାକ୍ଷାତ ବ୍ରହ୍ମମୟ । ସେ ହରି ହେଲେ ତା' ତନୟ ॥ ୬
ଯେ ରାମ ଲକ୍ଷ୍ମଣ ଭରତ । ଶତ୍ରୁଘ୍ନ ନାମରେ ବିଦିତ ॥ ୭
ହେ ନୃପ ! ଅଛନ୍ତି ଭୁବନେ । ଯେ ତତ୍ତ୍ୱଦର୍ଶୀ ରଷିମାନେ ॥ ୮
ସେ ସୀତାପତିର ଚରିତ । ବର୍ଣ୍ଣିଣ ଅଛନ୍ତି ବହୁତ ॥ ୯
ତୁମ୍ଭେହେଁ ସେ କଥା ଶ୍ରବଣ । କରି ତ ଅଛ ପୁଣ ପୁଣ ॥ ୧୦
୪ [1]ସତ୍ୟପାଳନକୁ ପିତାର । ଯେ ରାଜ୍ୟ ଛାଡ଼ିଲେ ସତ୍ୱର ॥ ୧୧
ପଦ୍ମର ପ୍ରାୟ ଅତିଶୟ । ଯେ ସୁକୁମାର ପଦଦ୍ୱୟ ॥ ୧୨
ପ୍ରିୟାର କରଯୁଗେ ପୁଣ । ହୁଅଇ ଯଉଁ ଘରଷଣ ॥ ୧୩
ତହିଁକି କ୍ଷମ ଯେ ନୁହଇ । କୋମଳ ଭାବୁଁ ପାଦଦୁଇ ॥ ୧୪
ସେ ପାଦଯୁଗଳେ ଭ୍ରମଣ । କଲେ ଯେ ନାନା ବନ ପୁଣ ॥ ୧୫
ମାରୁତି[2], ଲକ୍ଷ୍ମଣ ଯାହାର । ପଥଶ୍ରମକୁ କଲେ ଦୂର ॥ ୧୬
ସୂର୍ପଣଖାର ନାସା କର୍ଣ୍ଣ । ଯେ ବେନି ହୋଇଲା ଛେଦନ ॥ ୧୭
ସେ ରାବଣକୁ କହି କରି । ଭାର୍ଯ୍ୟାକୁ ନିଅନ୍ତେଣ ହରି ॥ ୧୮
ସେ ପ୍ରିୟାବିରହୁଁ ଯେ ରୋଷ । ହୃଦୟେ ହୋଇଲା ପ୍ରକାଶ ॥ ୧୯
ତେଣୁ ଭ୍ରୂଲତାଯୁଗଳରେ । ବିଜୃମ୍ଭ[3] ହେଲା ଯେ ନିର୍ଭରେ ॥ ୨୦
ତେଣେ ସମୁଦ୍ର ଲଭି ତ୍ରାସ । ଦେଲା ଯେବଣ ଉପଦେଶ ॥ ୨୧
ତେଣୁ ଯେ ସାଗରମଧ୍ୟରେ । ବନ୍ଧ ବାନ୍ଧିଲେ ପର୍ବତରେ ॥ ୨୨
ରାବଣ ଆଦି ଖଳବନ । ହେଳାରେ ଯେ କଲେ ଦହନ ॥ ୨୩
ସେ କୋଶଳେନ୍ଦ୍ର ରଘୁନାଥ । ଆମ୍ଭଙ୍କୁ ପାଳନ୍ତୁ ସନ୍ତତ ॥ ୨୪

---

୧. ଗ୍ରନ୍ଥକୋଟିଭିରାକୀର୍ଣ୍ଣମଦ୍ଭୁତଂ ରାମବିକ୍ରମମ୍ ।
ଅଧ୍ୟାୟଦ୍ୱୟତୋ ବକ୍ଷ୍ୟନ୍ନେକଶ୍ଲୋକେ ସମସ୍ୟତି ॥ (ସ୍ୱାମୀ)

ରାମଙ୍କ ଅଦ୍ଭୁତ ବିକ୍ରମ ଗ୍ରନ୍ଥକୋଟି ଦ୍ୱାରା ବର୍ଣ୍ଣିତ ହୋଇଛି । ଏଠି କିନ୍ତୁ ଦୁଇଟି ଅଧାୟରେ କହିବାକୁ ଯାଇ ଗୋଟିଏ ମାତ୍ର ଶ୍ଲୋକରେ ସଂକ୍ଷେପରେ କହିଛନ୍ତି ।

୨. ସୁଗ୍ରୀବ । ୩. ବିସ୍ତାର ।

୫ ବିଶ୍ୱାମିତ୍ରର ଯାଗଠାରେ । ମିଳିଲେ ଆସି ଯେ କୋପରେ ॥ ୨୫
ମାରୀଚ ଆଦି ନିଶାଚରେ । ଶ୍ରେଷ୍ଠ ଯେ ଦୈତ୍ୟମାନଙ୍କରେ ॥ ୨୬
ବିନାଶ କଲେ ଯେ ତାହାଙ୍କୁ । ଆଶା ନ କରି ଲକ୍ଷ୍ମଣଙ୍କୁ ॥ ୨୭
୬ ଯେ ଲୋକବୀରଙ୍କ ସଭାରେ । ସୀତାର ସ୍ୱୟମ୍ବରଘରେ ॥ ୨୮
ଯାହାକୁ ତିନିଶତ ଜନ । ବହନ୍ତି, ଯେ ଅତି କଠିନ ॥ ୨୯
ସେ ଶିବକୋଦଣ୍ଡକୁ ଧରି । ଗୁଣରେ ଆରୋପିତ କରି ॥ ୩୦
ମଧ୍ୟରେ କଲା ବେନିଖଣ୍ଡ । ହେଳାରେ ଯେହ୍ନେ ଇକ୍ଷୁଦଣ୍ଡ ॥ ୩୧
ହେ ନୃପ ! ବାଳଗଜପ୍ରାୟ । ଲୀଳା ଯାହାର ଅତିଶୟ ॥ ୩୨
୭ ଯା' ଶୀଳ, ଗୁଣ ଅଙ୍ଗ ରୂପ । ବୟସ ନିଜ ଅନୁରୂପ ॥ ୩୩
ସଂମାନନାକୁ ବକ୍ଷସ୍ଥଳେ । ଯେ ଲଭିଥିଲା ପୂର୍ବକାଳେ ॥ ୩୪
ସେ ସୀତାନାମ ଅଛି ଧରି । ପ୍ରତ୍ୟକ୍ଷେ ଜଳଧିକୁମାରୀ[1] ॥ ୩୫
ତାହାକୁ ଧନୁଭଙ୍ଗେ ଜିଣି । ମାର୍ଗରେ ଗମନ୍ତେ ଯେ ପୁଣି ॥ ୩୬
ଦୃଢ଼ ଗର୍ବକୁ ଭାର୍ଗବର[2] । ବିନାଶ କଲେକ ସତ୍ୱର ॥ ୩୭
ଏକବିଂଶତି ବାର କରି । ପୂର୍ବ କାଳରେ ବସୁନ୍ଧରୀ ॥ ୩୮
ରାଜବୀଜରେ କଲା ଶୂନ୍ୟ । ଯେ ଜମଦଗ୍ନିର ନନ୍ଦନ ॥ ୩୯
୮ କେହୁଣି ସମୟେ ନୃପତି । କୈକେୟୀଠାରେ ଲଭି ପ୍ରୀତି ॥ ୪୦
ତାହାକୁ ଥିଲେ ବର ଯାଚି । ସମୟେ ମାଗିଲା ସେ ପାଞ୍ଚି ॥ ୪୧
ଭରତ ରାଜ୍ୟେ ରାଜା ହେବ । ଶ୍ରୀରାମ ବିପିନକୁ ଯିବ ॥ ୪୨
ପାଶପ୍ରାୟ ସେ ସତ୍ୟବାଣୀ । ତହିଁରେ ନିବଦ୍ଧ ଯେ ପୁଣି ॥ ୪୩
ଆପଣା ତାତ ସ୍ତିରୀବଶ । ଶିରରେ ଘେନି ତା' ନିଦେଶ ॥ ୪୪
ରାଜ୍ୟ ସଂପତ୍ତି ପ୍ରିୟଜନ । ଯେ ଅବା ସୁହୃଦ ସଦନ ॥ ୪୫
ତା' ଛାଡ଼ି ଭାର୍ଯ୍ୟାକୁ ସଙ୍ଗରେ । ଘେନି ମିଳିଲେ ଯେ ବନରେ ॥ ୪୬
ପ୍ରାଣକୁ ଛାଡ଼ଇ ଯେସନ । ବିମୁକ୍ତସଙ୍ଗ ଯୋଗୀ ଜନ ॥ ୪୭
୯ ଯଉଁ ରାବଣଭଗିନୀର । ମତି ଅଶୁଦ୍ଧ କାମାତୁର ॥ ୪୮
ଛେଦିଣ ନାସା ଶ୍ରବଣକୁ । ବିରୂପ କଲେ ତା' ରୂପକୁ ॥ ୪୯
ଯେ ଖର ଦୂଷଣ ତ୍ରିଶିର । ଏ ଆଦି ବନ୍ଧୁମାନେ ତାର ॥ ୫୦
ଚଉଦ ସହସ୍ର ଅସୁର । ତାଙ୍କୁ ପେଷିଲେ ଯମପୁର ॥ ୫୧
ଅସହ୍ୟ କୋଦଣ୍ଡହସ୍ତରେ । ଭ୍ରମନ୍ତେ ରହିଲେ କଷ୍ଟରେ ॥ ୫୨
୧୦ ସୀତାର କଥାଶ୍ରବଣରେ । ପ୍ରଦୀପ୍ତ କାମ ଯା' ହୃଦରେ ॥ ୫୩
ସେ ଦଶମୁଖ ବିପିନକୁ । ପେଷିଲା ଯଉଁ ମାରୀଚକୁ ॥ ୫୪
ସୁବର୍ଣ୍ଣମୟ ଅଦଭୁତ । ମୃଗଶରୀରେ ସେ ଲକ୍ଷିତ ॥ ୫୫

୧. ଲକ୍ଷ୍ମୀ । ୨. ପରଶୁରାମ ।

ତାହାକୁ ବେଗେ ସାୟକରେ । ମାଇଲେ ଆଶ୍ରମରୁ ଦୂରେ ।। ୫୬
ହେ ନୃପ ! ଦକ୍ଷକୁ ଯେସନ । ପୂର୍ବେ ନାଶିଲେ ପଞ୍ଚାନନ ।। ୫୭
୧୧ ଅଧମ ଦୈତ୍ୟ ବିଜନରେ । ବୃକର ପ୍ରାୟ ପରୋକ୍ଷରେ ।। ୫୮
ସୀତାକୁ ନିଅନ୍ତେ ବନରେ । ତା' ବିନୁ ଭାଇ ସଂଗତରେ ।। ୫୯
ସ୍ତ୍ରୀସଙ୍ଗୀ ଜନଙ୍କର ଗତି । ଦୁଃଖ କରଇ ଉତପତି ।। ୬୦
ବିଖ୍ୟାତ କରନ୍ତେ ଏସନ । ଭ୍ରମିଲେ ଯେହ୍ନେ ଦୀନଜନ ।। ୬୧
୧୨ କାର୍ଯ୍ୟନିମିତ୍ତେ ଆପଣାର । ରାବଣ ହତ କଲା ଯାର ।। ୬୨
ଶାସ୍ତ୍ରଉକତ ଦାହ ଆଦି । ଯେ କର୍ମ ଜଗତେ ପ୍ରସିଦ୍ଧି ।। ୬୩
ସେ ଜଟାୟୁଷକୁ ଦହିଣ[୧] । ମାଇଲେ କବନ୍ଧକୁ[୨] ପୁଣ ।। ୬୪
ମିତ୍ରଭାବକୁ କପିଙ୍କର । ସଙ୍ଗତେ କରି ତଦନ୍ତର ।। ୬୫
ବାଳୀ ମରନ୍ତେ ତଦନ୍ତରେ । କପୀନ୍ଦ୍ର ସୈନ୍ୟମାନଙ୍କରେ ।। ୬୬
ଜାଣିଣ ନିଜ ଭାର୍ଯ୍ୟାଗତି । ଭାଇ ସହିତେ ରଘୁପତି ।। ୬୭
ଗଲେ ସେ ସାଗର କୂଳକୁ । ଯାହାର ଚରଣଯୁଗକୁ ।। ୬୮
ବ୍ରହ୍ମା ଶଙ୍କର ବେନି ଦେବେ । ପୂଜା କରନ୍ତି ଭକ୍ତିଭାବେ ।। ୬୯
୧୩ ସିନ୍ଧୁତଟରେ ଉପବାସେ । ରହନ୍ତେ ତିନିରାତ୍ରଶେଷେ ।। ୭୦
ଯେବେ ନ ମିଳିଲା ସାଗର । ସେହି ସମୟରେ ଯାହାର ।। ୭୧
ଚଳିତ ଯେ କ୍ରୋଧଲୀଳାରେ । ସେ କଟାକ୍ଷର ପତନରେ ।। ୭୨
ମକର ନକ୍ରମାନେ ଯହିଁ । ରହିଲେ ସଂଭ୍ରମକୁ ପାଇ ।। ୭୩
ଯହିଁ ଭୟରେ ଘୋଷମାନ । ହୋଇଲା ତତକାଳ ଶୀର୍ଣ୍ଣ ।। ୭୪
ସେ ସିନ୍ଧୁ ରୂପବନ୍ତ ହୋଇ । ପୂଜାସାମଗ୍ରୀ ଶିରେ ବହି ।। ୭୫
ପାଦପଦ୍ମକୁ ଉପଗତ । ହୋଇଣ ବୋଇଲା ଏମନ୍ତ ।। ୭୬
୧୪ ହେ ପ୍ରଭୁ ତୁମ୍ଭେ କୂଟସ୍ଥିତ । ଆଦିପୁରୁଷ ଅପ୍ରମିତ ।। ୭୭
ଆମ୍ଭର ମତି ଜଡ଼ ଯେଣୁ । ତୁମ୍ଭଙ୍କୁ ନ ଜାଣିଲୁଁ ତେଣୁ ।। ୭୮
ସତ୍ତ୍ୱାଦି ଗୁଣରୁ ଯାହାର । ସୁର ପରେଶ[୩] ଭୂତେଶ୍ୱର ।। ୭୯
ସମ୍ଭବ ହେଲେ ଏ ଅଶେଷ । ସେ ତୁମ୍ଭେ ଗୁଣଙ୍କର ଈଶ ।। ୮୦
୧୫ ହେ ବୀର ଯଥେଚ୍ଛାରେ ଯାଅ । ଯେ ବିଶ୍ରବାର ବିଷ୍ଠାପ୍ରାୟ ।। ୮୧
କନ୍ଦାଏ ଯେ ତିନି ଲୋକକୁ । ନାଶ କର ସେ ରାବଣକୁ ।। ୮୨
ଯେ ପତ୍ନୀ ଅଟେ ଆପଣାର । ତାହାକୁ ଲଭ ତଦନ୍ତର ।। ୮୩
ତୋ' ଯଶବିସ୍ତାରଅର୍ଥରେ । ବନ୍ଧ ବାନ୍ଧ ଏ ଜଳଧିରେ ।। ୮୪
ଦିଗବିଜୟୀ ନୃପଗଣ । ଯେବଣ ବନ୍ଧକୁ ଆସିଣ ।। ୮୫

---

୧. ପୁତ୍ର ପିତାର ଦାହକର୍ମ କରିବା ରୀତିରେ ।
୨. ନିଜକୁ ଧରିବା ପାଇଁ ଯେ ବାହୁ ପ୍ରସାରଣ କରିଥିଲା । ୩. ପ୍ରଜେଶ ।

ଦେଖିଣ ଦୁଷ୍କର କର୍ମକୁ । ଗାୟନ କରିବେ ଯଶକୁ ॥
୧୬ କପୀନ୍ଦ୍ରଙ୍କର କରେ ଥାଇ । ବୃକ୍ଷଙ୍କ ଶାଖା ଆଦି ଯହିଁ ॥
କମ୍ପନ୍ତି ନେମା-ଆଣିମାରେ । ସେ ନାନା ଅଚଳଶୃଙ୍ଗରେ ॥
ସମୁଦ୍ରମଧ୍ୟେ ରଘୁପତି । ବନ୍ଧକୁ ବାନ୍ଧିଲେ ଝଟତି ॥
ଖୋଜନ୍ତେ ଜନକସୁତାକୁ । ଦହିଛି ହନୁମନ୍ତ ଯାକୁ ॥
ପ୍ରବେଶ ହେଲେ ସେ ଲଙ୍କାରେ । ବିଭୀଷଣର ବିଚାରରେ ॥
ସୁଗ୍ରୀବ ହନୁମନ୍ତ ନୀଳ । ଏ ଆଦି ଘେନି ସଙ୍ଗେ ବଳ ॥
୧୭ ବାନର-ଇନ୍ଦ୍ରଙ୍କ ବଳରେ । ନିରୋଧ ହୋଇଲେ ଯହିଁରେ ॥
ବିହାରସ୍ଥାନ ଧାନ୍ୟଘର । ଶ୍ରୀଗୃହ ଗୃହପୁରଦ୍ୱାର ॥
ଯେ ବା ଜଗତୀ[1] ଆଦିମାନ । ତା' ଅଗ୍ରଭାଗ ସଭାସ୍ଥାନ ॥
କପୋତପାଳିକା[2] ଯେ ଆନ । ରୁନ୍ଧିଲେ ସକଳେ ସେମାନ ॥
ଯହିଁ ଭାଜିଲେ ନାନାସ୍ଥାନ । ଧ୍ୱଜ ସୁବର୍ଣ୍ଣକୁମ୍ଭମାନ ॥
ଯହିଁରେ ଚତୁଷ୍ପଥମାନେ । ଭଗ୍ନ ହୋଇଲେ ସ୍ଥାନେ ସ୍ଥାନେ ॥
ସେ ଲଙ୍କା ହୋଇଲା ପ୍ରଚଳ । ମିଳନ୍ତେ ଆସି ଗଜକୁଳ ॥
ନଦୀ ଯେସନେ ବ୍ୟଥା ପାଇ । ଆକୁଳ ଭାବକୁ ଲଭଇ ॥
୧୮ ଭଗ୍ନ ହୋଇଲା ନିଜ ପୁର । ତା' ଦେଖି ଅସୁର ଈଶ୍ୱର ॥
ଧୂମ୍ରାକ୍ଷି ଦୁର୍ମୁଖ ନିକୁମ୍ଭ । ସୁରାନ୍ତ ନରାନ୍ତକ କୁମ୍ଭ ॥
ଏ ଆଦି ଥିଲେ ଯେ ବହୁତ । ଯେ ବା ତନୟ ଇନ୍ଦ୍ରଜିତ ॥
ଯେ ବା ପ୍ରହସ୍ତ ବିକମ୍ପନ । ଯେ ଅତିକାୟ ଆଦି ଆନ ॥
ସେ ସର୍ବ ଅନୁଗତ ଜନ । ତାହାଙ୍କୁ ପେଷିଲା ବହନ ॥
ଯେ କୁମ୍ଭକର୍ଣ୍ଣ ଭ୍ରାତା ତାର । ତାକୁ ପେଷିଲା ତଦନ୍ତର ॥
୧୯ ଯେ ଶୂଳ, ପ୍ରାସ ଧନୁ ଶର । ଖଡ୍‌ଗ ଶକତି ଯେ ତୋମର ॥
ଏମାନଙ୍କରେ ଦୁର୍ଗ[3] ହୋଇ । ଅସୁରଙ୍କର ସୈନ୍ୟ ଯେହି ॥
ତହିଁକି ଗଲେ ରଘୁପତି । ସୁଗ୍ରୀବ ଲକ୍ଷ୍ମଣ ମାରୁତି ॥
ନୀଳ ଅଙ୍ଗଦ ଜାମ୍ବବାନ । ପନସ ଯେ ଗନ୍ଧମାଦନ ॥
ଏ ଆଦି ଯେତେ କପିବଳ । ସଙ୍ଗତେ ଅଛନ୍ତି ସକଳ ॥
୨୦ ହସ୍ତୀ ପଦାତି ଅଶ୍ୱ ରଥ । ଯୋଦ୍ଧାମାନଙ୍କେ ଯେ ସଂଯୁତ ॥
ସୀତାହରଣୁଁ ତତକାଳ । ହତ ହୋଇଲା ଯା' ମଙ୍ଗଳ ॥
ସେ ଦଶଗ୍ରୀବ ଯହିଁ ପତି । ସେ ସୈନ୍ୟେ ପଶିଣ ଝଟତି ॥
ସେ ରଘୁପତିଙ୍କର ସୈନ୍ୟେ । ଅଙ୍ଗଦ ଆଦି ବୀରମାନେ ॥
ଦ୍ରୁମରେ, ଗିରି, ଗଦା, ଶରେ । ମାଇଲେ ସେ ଦ୍ୱନ୍ଦ୍ୱଯୁଦ୍ଧରେ ॥

୧. ଭୂମି (earth)　୨. କପୋତପାଳିକା = ପାରାଭାଡ଼ି, ଚିଡ଼ିଆଖାନା ।　୩. ଦୁର୍ଗ = ଦୁର୍ଗମ ।

୨୧ ଏଥୁ ଅନ୍ତରେ ନିଜସୈନ୍ୟ । ନାଶ ଦେଖିଣ ଦଶାନନ ।। ୧୧୭
ଯାନ ଆରୋହି ରୁଷ୍ଟ ହୋଇ । ମିଳିଲା ରାମଆଗେ ଯାଇ ।। ୧୧୮
ଯେ କାନ୍ତିମନ୍ତ ଦେବରଥ । ମାତଳି ଆଣିଲା ତୁରିତ ।। ୧୧୯
ତହିଁ ବସି ଯେ ରଘୁପତି । ଅତ୍ୟନ୍ତ ଶୋଭା ପାଉଛନ୍ତି ।। ୧୨୦
ନିଶିତ କ୍ଷୁରପ୍ର[୧] ଶରରେ । ତାହାଙ୍କୁ ବିନ୍ଧିଲା ନିର୍ଭରେ ।। ୧୨୧
୨୨ ତାହାଙ୍କୁ ଏ ରୂପରେ ବାଣୀ । କହିଲେ ରଘୁକୁଳମଣି ।। ୧୨୨
ରାକ୍ଷସମାନଙ୍କ ମଧ୍ୟରେ । ତୁ ବିଷ୍ଠାପ୍ରାୟ ଜଗତରେ ।। ୧୨୩
ଯେବଣ ଗୃହ ହୋଏ ଶୂନ୍ୟ । ତହିଁରେ କୁକ୍କୁର ଯେସନ ।। ୧୨୪
ପଶିଣ କିଛି ଦ୍ରବ୍ୟ ଖାଇ । ନିର୍ଲଜ୍ଜ ସେ ରୂପରେ ତୁହି ।। ୧୨୫
ଆମ୍ଭ ଭାର୍ଯ୍ୟାକୁ ଯା' ଆଣିଲୁ । ନିନ୍ଦିତ କର୍ମ ଆଚରିଲୁ ।। ୧୨୬
ଯେ ଫଳ ଯୋଗ୍ୟ ସେ କର୍ମକୁ । ଆଜ ମୁଁ ତୋତେ ଦେବି ତାକୁ ।। ୧୨୭
ଅଲଙ୍ଘ୍ୟ ଅଟେ ବୀର୍ଯ୍ୟ ଯାର । ସେ କାଳ ଅଧର୍ମୀ ଲୋକର ।। ୧୨୮
ଫଳକୁ ଯେସନ ଜଗତେ । ପ୍ରଦାନ କରଇ ତୁରିତେ ।। ୧୨୯
୨୩ ଆକ୍ଷେପ କରନ୍ତେ ଏ ରୂପେ । ଯଉଁ ବାଣକୁ ନିଜ ଚାପେ ।। ୧୩୦
ସନ୍ଧାନ କରି ରଖିଥିଲେ । ସେହି ବାଣକୁ ଛାଡ଼ିଦେଲେ ।। ୧୩୧
ସେ ବାଣ ବଜ୍ରପ୍ରାୟ ହୋଇ । ଭେଦିଲା ତା' ହୃଦକୁ ଯାଇ ।। ୧୩୨
ଦଶ ମୁଖରେ ରକ୍ତ ପୁଣ । ବାନ୍ତି କରନ୍ତେ ସେ ରାବଣ ।। ୧୩୩
ଲୋକେ କରନ୍ତେ ହାହାକାର । ବିମାନୁଁ ପଡ଼ିଲା ସତ୍ୱର ।। ୧୩୪
ଯେହ୍ନେ ସୁକୃତୀ ପୁଣ୍ୟଶେଷେ । ବିମାନୁଁ ପଡ଼ଇ ଅବଶେ ।। ୧୩୫
୨୪ ଲଙ୍କାପୁରରୁ ତଦନ୍ତରେ । ସହସ୍ର ସହସ୍ର ସଂଖ୍ୟାରେ ।। ୧୩୬
ସଙ୍ଗତେ ମନ୍ଦୋଦରୀଙ୍କର । ଅସୁରୀ ହୋଇଣ ବାହାର ।। ୧୩୭
ସମସ୍ତେ କରନ୍ତେ ରୋଦନ । ପ୍ରବେଶ ହୋଇଲେ ସେ ସ୍ଥାନ ।। ୧୩୮
୨୫ ଲକ୍ଷ୍ମଣକାଣ୍ଡମାନଙ୍କରେ । ପୀଡ଼ିତ ହୋଇ ସେ ସ୍ଥାନରେ ।। ୧୩୯
ଯେ ଥିଲେ ନିଜ ବନ୍ଧୁମାନ । ତାହାଙ୍କୁ କରି ଆଲିଙ୍ଗନ ।। ୧୪୦
ସୁସ୍ୱର କରିଣ ରୋଦନ । କଲେ ସମସ୍ତେ ହୋଇ ଦୀନ ।। ୧୪୧
ଆପଣା ଦେହକୁ ଆପଣେ । ପ୍ରହାରୁଛନ୍ତି ଜଣେ ଜଣେ ।। ୧୪୨
୨୬ ହେ ଲୋକରାବଣ[୨] ରାବଣ । ହତ ହୋଇଲୁଁ ଆମ୍ଭେ ପୁଣ ।। ୧୪୩
ଶତ୍ରୁମାନଙ୍କ ସକାଶରେ । ପୀଡ଼ାକୁ ପାଇ ନିରନ୍ତରେ ।। ୧୪୪
ତୋର ବିହୁନେ ଲଙ୍କା ପୁଣ । କାହାକୁ ଯିବ ଏ ଶରଣ ।। ୧୪୫
୨୭ ହେ ମହାଭାଗ ! ତୁ ଅବଶ୍ୟ । ହୋଇଲୁ ମଦନର ବଶ ।। ୧୪୬
ତେଜପ୍ରଭାବକୁ ସୀତାର । କରି ନ ପାରିଲୁ ଗୋଚର ।। ୧୪୭

୧. ଯାହାର ଅଗ୍ର କ୍ଷୁରଭଳି । ୨. ଲୋକରାବଣ = ଯେ ଲୋକଙ୍କୁ କନ୍ଦାଏ ।

ଯଉଁ ସକାଶରୁ ଏମନ୍ତ । ଦଶାକୁ ହେଲୁ ଉପଗତ ।। ୧୪୮
୨୮ ହେ କୁଳନନ୍ଦନ ! ଆମ୍ଭଙ୍କୁ । ବିଧବା କଲୁ ଏ ଲଙ୍କାକୁ ।। ୧୪୯
ଏ ଦେହ ଗୃଧ୍ରଭକ୍ଷ୍ୟ କଲୁ । ଆମ୍ଭାକୁ ନରକକୁ ନେଲୁ ।। ୧୫୦

ଶ୍ରୀଶୁକ ଉବାଚ

୨୯ ଶ୍ରୀରାମ ସଂତୋଷ ହୋଇଣ । ଆଜ୍ଞା ଦିଅନ୍ତେ ବିଭୀଷଣ ।। ୧୫୧
ଯେ ପରଲୋକକୁ ଉଚିତ । ନିଜ ବାନ୍ଧବଙ୍କର କୃତ୍ୟ ।। ୧୫୨
ତା' ପିତୃମେଧ[1] ବିଧାନରେ । କଲା ସକଳ ସେ କାଳରେ ।। ୧୫୩
୩୦} ରାଘବ ତହୁଁ ଅନନ୍ତରେ । ଅଶୋକବନ-ଆଶ୍ରମରେ ।। ୧୫୪
୩୧} ଶିଂଶପାମୂଳେ ଯେ ଅଛନ୍ତି । ଦେଖିଲେ ତାହାଙ୍କୁ ଝଟତି ।। ୧୫୫
ଆପଣା ବିରହ ଯାହାର । ବ୍ୟାଧି, ଯେ ତେଣୁ କୃଶତର ।। ୧୫୬
ଅତ୍ୟନ୍ତ ପ୍ରିୟ ପତ୍ନୀ ଯେହି । ବିଶେଷେ ଛନ୍ତି ଦୀନ ହୋଇ ।। ୧୫୭
ଆପଣା ଦରଶନୁଁ ଜାତ । ଯେ ସୁଖ ହୋଇଲା ତୁରିତ ।। ୧୫୮
ସେ ଘେନି ଦିଶୁଛି ପ୍ରସନ୍ନ । ଯାହାର ବଦନ ନଳିନ ।। ୧୫୯
ତାହାଙ୍କୁ ଦେଖି ରଘୁସୁତ । ଦୟାରେ କଲେ ତୋଷ ଚିତ୍ତ ।। ୧୬୦
୩୨ ପୁଷ୍ପକ ବିମାନେ ତାହାଙ୍କୁ । ବସାଇ ଚଢ଼ିଲେ ଯାନକୁ ।। ୧୬୧
ସୁଗ୍ରୀବ ଲକ୍ଷ୍ମଣ ସହିତ । ସଙ୍ଗେ ଅଛନ୍ତି ହନୁମନ୍ତ ।। ୧୬୨
ରାକ୍ଷସଗଣେ ପ୍ରଭୁତ୍ୱକୁ । କଳ୍ପାନ୍ତଯାଏ ଆୟୁଷକୁ ।। ୧୬୩
ଲଙ୍କାକୁ କରିଣ ପ୍ରଦାନ । ବିଭୀଷଣକୁ ଭଗବାନ ।। ୧୬୪
ବ୍ରତ କରିଣ ସମାପତ । ପୁରକୁ ହେଲେ ଉପଗତ ।। ୧୬୫
୩୩ ଆକାଶେ ଲୋକପାଳେ ଥିଲେ । ଯେବଣ ପୁଷ୍ପ ବରଷିଲେ ।। ୧୬୬
ପଥରେ କରନ୍ତେ ଗମନ । ପଡୁଛନ୍ତି ସେ ପୁଷ୍ପମାନ ।। ୧୬୭
ହରଷେ ବ୍ରହ୍ମା ଆଦି ସୁରେ । ଚରିତ ଗାଆନ୍ତି ନିର୍ଭରେ ।। ୧୬୮
ବିଭୀଷଣକୁ ସଙ୍ଗତର । ଘେନି ଗମିଲେ ନିଜ ପୁର ।। ୧୬୯
୩୪ ଗୋମୂତ୍ରପକ୍ୱ ଯବ ଅନ୍ନ । ଯେ ନିତ୍ୟେ କରଇ ଭୋଜନ ।। ୧୭୦
ଶରୀରେ ବଲ୍‌କଲ ଅମ୍ବର । ପିନ୍ଧଇ ଯେହୁ ନିରନ୍ତର ।।
ଭୂମିରେ ଶୟନ କରଇ । ଶିରରେ ଜଟା ଅଛି ବହି ।। ୧୭୧
ଏମନ୍ତ ରୂପରେ ଶ୍ରବଣ । କରିଣ ଭରତକୁ ପୁଣ ।। ୧୭୨
ତାପ ଲଭିଲେ ରଘୁପତି । ପରମ ଦୟାଳୁ ଅଟନ୍ତି ।। ୧୭୩
୩୫ ରାମ ହୋଇଲେ ଉପଗତ । ଏମନ୍ତ ଶୁଣିଣ ଭରତ ।। ୧୭୪
ନିଜ ଅମାତ୍ୟ ପୁରୋହିତ । ପୁରଜନଙ୍କର ସଙ୍ଗତ ।। ୧୭୫
ପାଦୁକାବେନି ନିଜଶିରେ । ନିବେଶି ଅତି ସଂଭ୍ରମରେ ।। ୧୭୬

---

୧. ପିତୃମେଧ = ପ୍ରେତକର୍ମ ।

| | | | | |
|---|---|---|---|---|
| | ଜ୍ୟେଷ୍ଠଭାଇଙ୍କି ଭେଟିବାକୁ | ପାଛୋଟି ଅଇଲେ ବାଟକୁ | ୧୭୭ |
| ୩୬ | ଶ୍ରୀରାମ-ଅଭାବରେ ମୁହିଁ | ଅଯୋଧ୍ୟାପୁରକୁ ନ ଯାଇ | ୧୭୮ |
| | ଏତେ ବିଚାରି ନିଜ ମନ | ଯହିଁରେ କରିଥିଲା ସ୍ଥାନ | ୧୭୯ |
| | ସେ ନନ୍ଦିଗ୍ରାମରୁ ଭରତ | ବାହାର ହୋଇଣ ତୁରିତ | ୧୮୦ |
| | ଯେ ନାନା ଗୀତ ବାଦ୍ୟମାନ | ସଙ୍ଗତେ ଶୁଭୁଛି ସେ ସ୍ୱନ | ୧୮୧ |
| | ବ୍ରହ୍ମବାଦୀଏ ପୁଣପୁଣି | ପଢ଼ନ୍ତେ ବ୍ରହ୍ମଘୋଷେ[୧] ଜାଣି | ୧୮୨ |
| ୩୭ | ସୁବର୍ଣ୍ଣରସେ ଯୁତ ହୋଇ | ଦିଶନ୍ତି ପ୍ରାନ୍ତଭାଗ ଯହିଁ | ୧୮୩ |
| | ପତାକାମାନେ ଏ ପ୍ରକାରେ | ଅଛନ୍ତି ଯେବଣ ସୈନ୍ୟରେ | ୧୮୪ |
| | ସୁବର୍ଣ୍ଣମୟ ଯେ ଅଟନ୍ତି | ବିଚିତ୍ର ଧ୍ୱଜେ ଯହିଁ ଛନ୍ତି | ୧୮୫ |
| | ସୁବର୍ଣ୍ଣକବଚେ ମଣ୍ଡିତ | ଉତ୍ତମ ଅଶ୍ୱ ଯହିଁ ସ୍ଥିତ | ୧୮୬ |
| | ଏ ରୂପେ ଯଉଁ ରଥମାନ | ତେଣେ ଲକ୍ଷିତ ଯଉଁ ସୈନ୍ୟ | ୧୮୭ |
| | ସୁବର୍ଣ୍ଣକବଚେ ମଣ୍ଡିତ | ଯେ ଯୋଦ୍ଧାମାନେ ଅପ୍ରମିତ | ୧୮୮ |
| ୩୮ | ଯେ ନାନାବିଧ ପ୍ରଜାମାନେ | ଶ୍ରେଣୀ ହୋଇଣ ଥିଲେ ସ୍ଥାନେ | ୧୮୯ |
| | ଉତ୍ତମ ବାରବଧୂ[୨] ମାନେ | ଯେ ପାଦଗତି ଭୃତ୍ୟଜନେ | ୧୯୦ |
| | ସେମାନଙ୍କରେ ହୋଇ ଯୁତ | ପାଛୋଟି ଅଇଲେ ଭରତ | ୧୯୧ |
| | ଛତ୍ର ଚାମର ଆଦି ହୋଇ | ରାଜଉଚିତ ଯେ ଅଟଇ | ୧୯୨ |
| | ସେ ନାନାବିଧ ଦ୍ରବ୍ୟମାନ | କେ ବା ଉତ୍ତମ କେ ବା ନ୍ୟୂନ | ୧୯୩ |
| | ସେମାନ ଘେନାଇଁ ସଙ୍ଗରେ | ପଡ଼ିଲା ଚରଣଯୁଗରେ | ୧୯୪ |
| | ଭରତ ମନ ନେତ୍ର ଦୁଇ | ସ୍ନେହରେ ଅଛି ଆର୍ଦ୍ର ହୋଇ | ୧୯୫ |
| ୩୯-୪୦ | ପାଦୁକାଦୁଇ ଆଗେ ଥୋଇ | ରହିଲା ଯୋଡ଼ି କର ଦୁଇ | ୧୯୬ |
| | ଲୋଚନଯୁଗୁଁ ଅଶ୍ରୁଧାର | ଗଳଇ ସ୍ନେହଭରୁଁ ତାର | ୧୯୭ |
| | ବହୁତ ବେଳ ଅନୁରାଗେ | ଆଶ୍ଳେଷ[୩] କରି ଭୁଜଯୁଗେ | ୧୯୮ |
| | ସେ ଭରତଙ୍କୁ ନେତ୍ରଜଳେ | ସ୍ନାନ କରାଇଣ ସେ କାଳେ | ୧୯୯ |
| | ଯେ ଥିଲେ ତହିଁ ବିପ୍ରଜନେ | ଯେ ଅବା କୁଳବୃଦ୍ଧମାନେ | ୨୦୦ |
| | ଲକ୍ଷ୍ମଣ ସୀତାସଙ୍ଗେ ରାମ | ତାହାଙ୍କୁ ରଚିଲେ ପ୍ରଣାମ | ୨୦୧ |
| | ଯେ ଆନ ପ୍ରଜାମାନେ ଥିଲେ | ରାମଙ୍କୁ ପ୍ରଣାମ ସେ କଲେ | ୨୦୨ |
| ୪୧ | ଚିରକାଳରେ ନିଜ ନାଥ | ବନରୁ ହୋଇଲେ ଆଗତ | ୨୦୩ |
| | ଏମନ୍ତ ଦେଖିଣ ନୟନେ | ଅଯୋଧ୍ୟାବାସୀ ପ୍ରଜାମାନେ | ୨୦୪ |
| | କମ୍ପାନ୍ତେ ଉତ୍ତରୀ ବସ୍ତ୍ରକୁ | ଆନନ୍ଦେ ରଚିଲେ ନୃତ୍ୟକୁ | ୨୦୫ |
| | ବୃଷ୍ଟି କରନ୍ତେ ପୁଷ୍ପମାଳେ | ଆନନ୍ଦେ ନାଚିଲେ ସକଳେ | ୨୦୬ |
| ୪୨ | ପାଦୁକାଯୁଗକୁ ରାମର | ଭରତ ଘେନିଲେ ସତ୍ୱର | ୨୦୭ |

୧. ବେଦପାଠ । ୨. ବାରବଧୂ = ବେଶ୍ୟା । ୩. ଆଲିଙ୍ଗନ ।

୪୩ ସୁଗ୍ରୀବସଙ୍ଗେ ବିଭୀଷଣ । ଚାମର ବ୍ୟଜନକୁ ପୁଣ ।। ୨୦୮
ଶ୍ୱେତଛତ୍ରକୁ ହନୁମାନ । ଧନୁଭାରତିକି[1] ଶତ୍ରୁଘ୍ନ ।। ୨୦୯
ଜାନକୀ ତୀର୍ଥକଳସକୁ । ଅଙ୍ଗଦ ଧଇଲେ ଖଡ୍‌ଗକୁ ।। ୨୧୦
ହେ ନୃପ ! ଜାମ୍ବବ ଯେ ଥିଲେ । [2]ହେମକବଚକୁ ଘେନିଲେ ।। ୨୧୧
୪୪-୪୫ ସ୍ତୁତି କରନ୍ତି ନାରୀମାନେ । ହେ ନୃପ ! ପୁଣି ବନ୍ଦୀ ଜନେ ।। ୨୧୨
ପୁଷ୍ପକେ ଥାଇ ଭଗବାନ । ଦିଶିଲେ ଅତ୍ୟନ୍ତ ଶୋଭନ ।। ୨୧୩
ଗ୍ରହଙ୍କ ସଙ୍ଗେ ଉଦେ ହୋଇ । ଚନ୍ଦ୍ରମା ଯେହ୍ନେ ଶୋଭା ପାଇ ।। ୨୧୪
ଭ୍ରାତାସକାଶୁଁ ତୋଷ ହୋଇ । ମିଳିଲେ ନିଜ ପୁରେ ଯାଇଁ ।। ୨୧୫
ଉତ୍ସବମାନ ଯଉଁ ପୁରେ । ହୋଇଛି ରାମପ୍ରବେଶରେ ।। ୨୧୬
୪୬ ମିଳିଣ ନୃପତି ଭବନେ[3] । ଯେ ଥିଲେ ଗୁରୁ[4] ପତ୍ନୀମାନେ ।। ୨୧୭
ନିଜ ଜନନୀ ଗୁରୁଜନ । ଯେ ମିତ୍ର ଭ୍ରାତାମାନେ ସାନ ।। ୨୧୮
ତାହାଙ୍କୁ ପ୍ରତିପୂଜା କଲେ । ତେଣେ ସେ ପୂଜିତ ହୋଇଲେ ।। ୨୧୯
ସୀତା ଲକ୍ଷ୍ମଣ ଦୁହେଁ ଯାଇଁ । ପ୍ରବେଶ ହୋଇଲେ ସେଠାଇଁ ।। ୨୨୦
୪୭ ପ୍ରାଣକୁ ପାଇ ତନୁମାନେ । ସଚେତ ହୁଅନ୍ତି ଯେସନେ ।। ୨୨୧
ସେରୂପେ ପୁତ୍ରଙ୍କୁ କୋଡ଼ରେ । ନିବେଶି ମାତାଏ ସ୍ନେହରେ ।। ୨୨୨
ସିଞ୍ଚନ୍ତେ ନୟନସଲିଳେ । ଶୋକକୁ ଛାଡ଼ିଲେ ସକଳେ[5] ।। ୨୨୩
୪୮ ଯେ ଥିଲେ କୁଳବୃଦ୍ଧ ନରେ । ଗୁରୁ ତାହାଙ୍କ ସଙ୍ଗତରେ ।। ୨୨୪
ଜଟାମାନଙ୍କୁ ବିଧିମତେ । ଫିଟାଇ କରିଣ ତୁରିତେ ।। ୨୨୫
ଯେ ଚାରିସିନ୍ଧୁଜଳମାନ । ତହିଁକି ଆଦି ଯେବା ଆନ ।। ୨୨୬
ତେଣେ ରଚିଲେ ଅଭିଷେକ । ଇନ୍ଦ୍ରଙ୍କୁ ଯେହ୍ନେ ସୁରଲୋକ ।। ୨୨୭
୪୯ ଏ ରୂପେ କଲେ ଶିରସ୍ନାନ । ପିନ୍ଧିଲେ ଉତ୍ତମ ବସନ ।। ୨୨୮
ଘେନିଲେ ପୁଷ୍ପମାଳାମାନ । ଭୂଷଣେ ହୋଇଲେ ମଣ୍ଡନ ।। ୨୨୯
ଦିବ୍ୟ ବସନ ଦିବ୍ୟ ବାସ । ଯାହାଙ୍କ ଶରୀରେ ପ୍ରକାଶ ।। ୨୩୦
ସେ ଭ୍ରାତାମାନଙ୍କେ ଭାର୍ଯ୍ୟାରେ । ଶୋଭା ପାଇଲେ ସେ କାଳରେ ।। ୨୩୧
୫୦ ପ୍ରଣାମ କରିଣ ଭରତ । ପ୍ରସନ୍ନ କରାନ୍ତେ ତୁରିତ ।। ୨୩୨
ରାଜ-ଆସନକୁ ଘେନିଲେ । ସ୍ୱଧର୍ମେ ନିରତ ଯେ ଥିଲେ ।। ୨୩୩
ଯେ ବର୍ଣ୍ଣାଶ୍ରମଗୁଣେ ଯୁତ । ସେ ପ୍ରଜାମାନଙ୍କୁ ସନ୍ତତ ।। ୨୩୪
ପୁତ୍ରମାନଙ୍କୁ ପିତା ଯେହ୍ନେ । ପାଳନା କଲେ ରାମ ତେହ୍ନେ ।। ୨୩୫
ପ୍ରଜାଏ ସେ ରଘୁନାଥଙ୍କୁ । ମଣିଲେ ଯେସନେ ପିତାକୁ ।। ୨୩୬

---

୧. ଭାରତି = ଶରମୁଣା ।
୨. ହେମଚର୍ମକୁ ସେ ଘେନିଲେ । ('ବର୍ମ' ସ୍ଥାନରେ 'ଚର୍ମ' ପାଠ ଧରାଗଲେ) ।
୩. ଭୁବନେ । ୪. ଗୁରୁ = ପିତା । ୫. ସେକାଳେ ।

୫୧ ସମସ୍ତ ପ୍ରାଣୀମାନଙ୍କର । ସୁଖଦାୟକ ଯେ ଈଶ୍ୱର ।। ୨୩୭
ଜାଣନ୍ତି ସର୍ବ ଧର୍ମମାନ । ସେ ରାମ ହୁଅନ୍ତେ ରାଜନ ।। ୨୩୮
ତ୍ରେତାରେ ଯେ କାଳ ବର୍ତ୍ତିଲା । ସେ ସତ୍ୟଯୁଗସମ ହେଲା ।। ୨୩୯
୫୨ ବନ ପର୍ବତ ଦ୍ୱୀପ ନଦୀ । ବରଷ ସିନ୍ଧୁ ଯେ ପ୍ରସିଦ୍ଧି ।। ୨୪୦
ହେ ନୃପ ! ପ୍ରଜାମାନଙ୍କର । ହେଲେ ସେ କାମଦୁଘ[1] ସାର ।। ୨୪୧
୫୩ ଯେ ଆଧି ବ୍ୟାଧି ଜରା ଶୋକ । ଯେ ଭୟ କ୍ଲମ[2] ଗ୍ଲାନି ଦୁଃଖ ।। ୨୪୨
ଇଚ୍ଛା ନ କଲା ଲୋକଙ୍କର । ମୃତ୍ୟୁ ହିଁ ନୋହିଲା ଆବର ।। ୨୪୩
ଯେ ସ୍ୱୟଂ ବିଷ୍ଣୁ ଭଗବାନ[3] । ସେ ପୁଣ ହୁଅନ୍ତେ ରାଜନ ।। ୨୪୪
୫୪ ଧଇଲେ ଏକପତ୍ନୀବ୍ରତ । ରାଜରଷିଙ୍କର ଚରିତ ।। ୨୪୫
ଗୃହସ୍ଥାଶ୍ରମରେ ପ୍ରଚାର । ଯେ ଧର୍ମ ଅଟେ ଆପଣାର ।। ୨୪୬
ତାହା ଶିଖାନ୍ତେ ଶୁଚି ହୋଇ । ଆପଣେ ଆଚରିଲେ ତାହି ।। ୨୪୭
୫୫ ଯେ ପ୍ରେମ, ଶୀଳ, ଅନୁବୃତ୍ତି । ବିନୟ ହେଲା ଉତପତି ।। ୨୪୮
ତେଣେ ହୋଇଣ ଅବନତ । ବୁଦ୍ଧିରେ[4] ଲଜ୍ଜାରେ ସଂତତ ।। ୨୪୯
ଭର୍ତ୍ତାର ଜାଣନ୍ତେ ଭାବକୁ । ଜାନକୀ ହରିଲେ ମନକୁ ।। ୨୫୦
କୃଷ୍ଣଚରଣପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ।। ୨୫୧
ଶ୍ରୀରାମଚରିତ ସୁରସ । ଶୁଣି ସୁଜନେ ହୁଅ ତୋଷ ।। ୨୫୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମଚରିତଂ ନାମ
ଦଶମୋଽଧ୍ୟାୟଃ ।।

## ଏକାଦଶ ଅଧ୍ୟାୟ

ତତସ୍ତ୍ୱେକାଦଶେଽଯୋଧ୍ୟାମାବସନ୍ନନୁଜୈଃ ସହ ।
ଯଜ୍ଞାଦି ଯଚ୍ଚକାରେଶୋ ରାମସ୍ତଦନୁବର୍ଣ୍ଣ୍ୟତେ ।। ୧

ଶ୍ରୀଶୁକ ଉବାଚ

୧ ଅଯୋଧ୍ୟାପୁରେ ଏଥୁଁ ଅନ୍ତ । ଆଚାର୍ଯ୍ୟେ ହୋଇଣ ସଂଯୁତ ।। ୧
ଯହିଁ ଉତ୍ତମ କଳ୍ପମାନ । ପୂର୍ବହୁଁ ହୋଇଛି ବିଧାନ ।। ୨
ଆତ୍ମାକୁ ରାମ ଭଗବାନ । କଲେ ସେ ଯଜ୍ଞରେ ଯଜନ ।। ୩
ସମସ୍ତ ଦେବମୟ ହୋଇ । ଯେ ଆତ୍ମା ବିଦିତ ଅଟଇ ।। ୪
୨ ହୋତାଙ୍କୁ ଦେଲେ ପୂର୍ବଦିଗ । ବ୍ରହ୍ମାଙ୍କୁ ଦକ୍ଷିଣ ବିଭାଗ ।। ୫

---

୧. କାମଦୁଘ = କାମପ୍ରଦ । ୨. କ୍ଲମ = କ୍ଳାନ୍ତି ।
୩. ରଘୁନାନ । ୪. ଭୟରେ (ତୁଂ ଭିୟା) ।

ପଶ୍ଚିମ ଦିଗ ଅଧ୍ୱର୍ଯ୍ୟୁଙ୍କୁ । ଉତ୍ତର ଦିଗ ସାମଗଙ୍କୁ[୧] ॥ ୬
୩ } ଯେ ମଧ୍ୟେ ଥିଲା ଶେଷ ହୋଇ । ଦେଲେ ଆଚାର୍ଯ୍ୟଙ୍କୁ ସେ ଭୂଇଁ ॥ ୭
୪ } ଏ ସମସ୍ତଙ୍କୁ ଯୋଗ୍ୟ ହୋଇ । ବ୍ରାହ୍ମଣ କେବଳ ଅଟଇ ॥ ୮
ନିଃସ୍ପୃହ ହୋଇଣ ଏମନ୍ତ । ମଣନ୍ତେ ଆପଣାର ଚିତ୍ତ ॥ ୯
ସେକାଳେ ଅଳଙ୍କାର ବାସ । ଏ ବେନି ଯାର ଅବଶେଷ ॥ ୧୦
ଏ ରାମ ହେଲେ ଏ ପ୍ରକାରେ । ବୈଦେହୀ ରାଣୀ ସେ ରୂପରେ ॥ ୧୧
ଯେ ନିଜ ଆଭରଣ ଥିଲା । ତେତେକ ଅବଶେଷ ହେଲା ॥ ୧୨
୫ ବ୍ରାହ୍ମଣେ ଦେବତା ଯାହାର । ବତ୍ସଳ ଭାବ ସେ ରାମର ॥ ୧୩
ଦେଖି ସେ ବିପ୍ରମାନେ ତହିଁ । ପ୍ରୀତିରେ ଆର୍ଦ୍ରମତି ହୋଇ ॥ ୧୪
ସଂତୋଷ ହୋଇଣ ତାହାଙ୍କୁ । ବୋଇଲେ ଏମନ୍ତ ବାକ୍ୟକୁ ॥ ୧୫
୬ ହେ ଭୁବନେଶ ଭଗବାନ । ତୁମ୍ଭେ କି ନ କଲ ପ୍ରଦାନ ॥ ୧୬
ଯେ ଅଟେ ଆମ୍ଭର ମାନସ । ତା' ମଧ୍ୟେ ହୋଇଣ ପ୍ରବେଶ ॥ ୧୭
ନିଜ ତେଜରେ ତମୋଗୁଣ । ନାଶ କରୁଛ ପୁଣ ପୁଣ ॥ ୧୮
୭ ଅକୁଣ୍ଠ ଅଟେ ବୁଦ୍ଧି ଯାର । ବ୍ରହ୍ମଣ୍ୟଦେବ ଯେ ଈଶ୍ୱର ॥ ୧୯
ଉତ୍ତମଶ୍ଳୋକମାନଙ୍କରେ । ମୁଖ୍ୟ ଅଟନ୍ତି ଯେ ସଂସାରେ ॥ ୨୦
ମୁନୀନ୍ଦ୍ରମାନେ ନିଜ ଚିତ୍ତେ । ଯାହାର ପାଦକୁ ସଂତତେ ॥ ୨୧
କରିଅଛନ୍ତି ନିବେଶନ[୨] । ତାହାଙ୍କୁ ଆମ୍ଭର ବନ୍ଦନ ॥ ୨୨
୮ କେହୁଣି ଦିନେ ରଘୁପତି । ଜାଣିମା ଅର୍ଥେ ଲୋକରୀତି ॥ ୨୩
ରାତ୍ରରେ ହୋଇ ଅଲକ୍ଷିତ । ଭ୍ରମନ୍ତେ ଶୁଣିଲେ ଏମନ୍ତ ॥ ୨୪
ଭାର୍ଯ୍ୟାକୁ ଉଦ୍ଦେଶିଣ କେହି । ଯାହା ବୋଇଲା କ୍ରୁଦ୍ଧ ହୋଇ ॥ ୨୫
୯ ତୁ ଦୁଷ୍ଟା ଅଟୁ ତୁ ଅସତୀ । ପରଗୃହରେ ତୋର ସ୍ଥିତି ॥ ୨୬
ମୁଁ ତୋତେ ନ ପୋଷିବି ଆଉ । ସ୍ତିରୀଲମ୍ପଟ ରାମ ଯେହୁ ॥ ୨୭
ସୀତାକୁ କଲେ ସେ ପୋଷଣ । ମୁଁ ତୋତେ ନ ପୋଷିବି ପୁଣ ॥ ୨୮
୧୦ } ଯାହାଙ୍କୁ କଲେ ଆରାଧନ । ବଶ ନୁହନ୍ତି, ଯେ ଅଜ୍ଞାନ ॥ ୨୯
୧୧ } ଏମନ୍ତେ ସେ ବହୁତ ଜନ- । ମୁଖରୁ ଶୁଣି ଏ ବଚନ ॥ ୩୦
ଭୟେ ଛାଡ଼ିଲେ ରାମ ତାଙ୍କୁ । ବାଲ୍ମୀକିଋଷିଆଶ୍ରମକୁ ॥ ୩୧
ପ୍ରବେଶ ହୋଇଲେ ସେ ଯାଇଁ । ଥିଲେ ପୂର୍ବରୁ ଗର୍ଭ ହୋଇ ॥ ୩୨
କାଳରେ ପ୍ରସବିଲେ ତହିଁ । ଯାମଳ ରୂପେ ପୁତ୍ର ଦୁଇ ॥ ୩୩
ସେ ଖ୍ୟାତ କୁଶ ଲବ ଦୁଇ । ଜାତ କର୍ମକୁ ଆଦି ହୋଇ ॥ ୩୪
ତାଙ୍କର ଯେଉଁ କର୍ମମାନ । ବାଲ୍ମୀକି କଲେ ତା' ବିଧାନ ॥ ୩୫

---

୧. ସାମଗ = ଉଦ୍‌ଗାତା (ହୋତା, ଉଦ୍‌ଗାତା, ଅଧ୍ୱର୍ଯ୍ୟୁ ଓ ବ୍ରହ୍ମା - ଏ ଚାରିହେଁ ପୁରୋହିତ ।)
୨. ନିବେଦନ ('ଖ' 'ଗ') ।

୧୨ ଅଙ୍ଗଦ ଚିତ୍ରକେତୁ ହୋଇ । ଜାତ ଲକ୍ଷ୍ମଣପୁତ୍ର ଦୁଇ ।।
୧୩ ହେ ନୃପ ! ଭରତର ଜାତ । ତକ୍ଷ ପୁଷ୍କଳ ବେନି ସୁତ ।।
ସୁବାହୁ ଶ୍ରୁତସେନ ହୋଇ । ଜନ୍ମିଲେ ଶତ୍ରୁଘ୍ନର ଦୁଇ ।।
ଭରତ ଦିଗବିଜୟରେ । ଗନ୍ଧର୍ବମାନଙ୍କୁ ସମରେ ।।
କୋଟିସଂଖ୍ୟାରେ ବଧ କଲା । ତାଙ୍କର ଯେତେ ଧନ ଥିଲା ।।
ଆଣିଣ ସେ ସକଳ ପୁଣ । ରାମଙ୍କୁ କଲା ସମର୍ପଣ ।।
୧୪ ମଧୁରାକ୍ଷସର ଯେ ସୁତ । ଲବଣ ନାମରେ ବିଦିତ ।।
ତାହାକୁ ମଧୁବନେ ମାରି । କଲା ମଥୁରା ନାମେ ପୁରୀ ।।
୧୫ ଜନ-ଅପବାଦେ ସୀତାଙ୍କୁ । ରାମ ପେଷନ୍ତେ ବିପିନକୁ ।।
ମୁନିଙ୍କ ଠାରେ ସୁତ ବେନି । ସମର୍ପି ଜନକନନ୍ଦିନୀ ।।
ସ୍ମରନ୍ତେ ରାମପାଦବେନି । ବିବରେ ପଶିଲେ କାମିନୀ ।।
୧୬ ଶ୍ରୀରାମ ଶୁଣିଣ ତାହାଙ୍କୁ । ରୁନ୍ଧନ୍ତେ ବୁଦ୍ଧିରେ ଶୋକକୁ ।।
ସେ ସେହି ଗୁଣମାନ ତାର । ସ୍ମରଣ କରନ୍ତେ ମନର ।।
ଈଶ୍ୱର ହେଲେହେଁ ଶୋକକୁ । ଶକ୍ତ ନୋହିଲେ ରୁନ୍ଧିବାକୁ ।।
୧୭ ପ୍ରସଙ୍ଗ ସ୍ତିରୀଙ୍କର ଠାରେ । ସକଳଠାରେ ଏ ପ୍ରକାରେ ।।
ଈଶ୍ୱରମାନଙ୍କର ତ୍ରାସ । ଜନମ କରାଏ ଅବଶ୍ୟ ।।
ଗ୍ରାମରେ ସ୍ଥିତ ଯଉଁ ଜନ । ଗୃହେ ସଂତତ ଯାର ମନ ।।
ସେ ଲୋକ ଯାହା ତ୍ରାସ ପାଇ । ଏ କଥା କି ଚିତ୍ର ଅଟଇ ।।
୧୮ ଶ୍ରୀରାମ ତହୁଁ ଉତ୍ତାରେଣ । ଧରନ୍ତେ ବ୍ରହ୍ମଚର୍ଯ୍ୟ ପୁଣ ।।
ତେର ସହସ୍ର ସମ୍ବତ୍ସର । ପର୍ଯ୍ୟନ୍ତେ ହୋଇଣ ତତ୍ପର ।।
ଯେ ଅଗ୍ନିହୋତ୍ର ଅଖଣ୍ଡିତ । ସେ ହୋମ କଲେକ ବିଦିତ ।।
୧୯ ଦଣ୍ଡକବିପିନରେ ଯହିଁ । କଣ୍ଟକମାନ ଛନ୍ତି ବହି ।।
ସ୍ମରଣା କଲା ଲୋକଙ୍କର । ହୃଦୟରେ ସେ ଆପଣାର ।।
ପାଦପଲ୍ଲବ ନିବେଶିଣ । ଶ୍ରୀରାମ ତହୁଁ ଉତ୍ତାରେଣ ।।
ଯେ ଅଟେ ଆପଣାର ସ୍ଥାନ । ତହିଁକି କଲେକ ଗମନ ।।
୨୦ ଯେ ପ୍ରାର୍ଥନାରେ ଦେବଙ୍କର । ଧଇଲେ ଲୀଳାକଳେବର ।।
ଯା' ପ୍ରଭାବକୁ ସମ ନାହିଁ । ଅଧିକ ଅବା ଥିବ କାହିଁ ।।
ଏମନ୍ତ ଯଉଁ ରଘୁପତି । ତାଙ୍କର ଏହୁ ନୋହେ କୀର୍ତ୍ତି ।।
ଜଳଧି କଲେ ଯା ବନ୍ଧନ । ଅସ୍ତ୍ରେ ମାଇଲେ ଦୈତ୍ୟମାନ ।।
ତାଙ୍କର ବଇରିନିଧନେ । ସହାୟ ନିକି କପିମାନେ ।।
କେବଳ ଲୀଳାମାତ୍ର ହୋଇ । ଏକଥା ବିଚିତ୍ର ଅଟଇ ।।
୨୧ ଯେ ଦିଗଦନ୍ତୀଙ୍କର ଠାଇଁ । ଭୂଷଣ ପାଟ ପ୍ରାୟ ହୋଇ ।।
ବ୍ୟାପିଛି ସର୍ବ ଦିଗନ୍ତର । ଏମନ୍ତ ଯଶକୁ ଯାହାର ।।

ଆଜ ହିଁ କରନ୍ତି ଗାୟନ । ରାଜସଭାରେ ମୁନିଜନ ।। ୬୯
ଅମଳ ଅଟେ ଯଉଁ ଯଶ । କରଇ କଳୁଷ ବିନାଶ ।। ୭୦
ଦେବତାଙ୍କର ନୃପଙ୍କର । କିରୀଟେ ସେବିତ ଯାହାର ।। ୭୧
ଚରଣପଙ୍କଜ ଅଟଇ । ସେ ରଘୁନାୟକଙ୍କୁ ମୁହିଁ ।। ୭୨
ପ୍ରପନ୍ନ ହୋଉଅଛି ପୁଣ । ସେ ମୋର ଅଟନ୍ତି ଶରଣ ।। ୭୩
୨୨ ସେ ରାମଙ୍କୁ ଯେ ଥିଲେ ଛୁଇଁ । ଯେ ଅବା ଥିଲେ ତାଙ୍କୁ ଚାହିଁ ।। ୭୪
ଆସନେ ବସାଇ ଯେ ଥିଲେ । ଯେ ତାଙ୍କୁ ଅନୁଗତ ହେଲେ ।। ୭୫
ଅଯୋଧ୍ୟାନିବାସୀ ସେ ନରେ । ପ୍ରବେଶ ହେଲେ ସେ ସ୍ଥାନରେ ।। ୭୬
ଦେହ-ଅନ୍ତରେ ଯୋଗୀଜନ । ଯହିଁ କି କରନ୍ତି ଗମନ ।। ୭୭
୨୩ ପୁରୁଷ ଶାନ୍ତଚିତ୍ତ ହୋଇ । ରାମଚରିତ ଯେ ଶୁଣଇ ।। ୭୮
ହେ ନୃପ ! କର୍ମବନ୍ଧନରେ । ମୁକତ ହୁଅଇ ସତ୍ୱରେ ।। ୭୯

ଶ୍ରୀରାଜୋବାଚ

୨୪ ଆପଣା ଅଂଶଭୂତ ହୋଇ । ଥିଲେ ରାମର ଯେତେ ଭାଇ ।। ୮୦
ତାହାଙ୍କ ଠାରେ କି ପ୍ରକାରେ । ରାମ ବର୍ତ୍ତିଲେ ଅଯୋଧ୍ୟାରେ ।। ୮୧
ଯେ ରାମ ଅଟନ୍ତି ଈଶ୍ୱର । ତାହାଙ୍କ ଠାରେ କି ପ୍ରକାର ।। ୮୨
ବର୍ତ୍ତିଲେ ନିଜ ଭାଇମାନେ । ଯେ ପୁରଲୋକେ ପ୍ରଜାଜନେ ।। ୮୩

ଶ୍ରୀବାଦରାୟଣିରୁବାଚ

୨୫ ଯେ ତିନିଭୁବନେ ଈଶ୍ୱର । ସେ ରାମ ଏଥୁଁ ଅନନ୍ତର ।। ୮୪
ଦିଗବିଜୟ କରିବାକୁ । ପେଷିଲେ ସେ ଭାଇମାନଙ୍କୁ ।। ୮୫
ଯେ ନିଜ ଲୋକମାନେ ତାଙ୍କୁ । ଦେଖାନ୍ତେ ନିଜ ଶରୀରକୁ ।। ୮୬
ସଙ୍ଗେ ଅଛନ୍ତି ନିଜ ଜନ । ପୁରୀକି କଲେ ବିଲୋକନ ।। ୮୭
୨୬ ଯେ ଗନ୍ଧସଲିଳ ଆବର । ସେ ମଦବିନ୍ଦୁ ହସ୍ତିଙ୍କର ।। ୮୮
ତେଣେ ଯହିଁରେ ମାର୍ଗମାନ । ହୋଇଣ ଅଛନ୍ତି ସେଚନ ।। ୮୯
ସ୍ୱାମୀ ମିଳନ୍ତେ ତାଙ୍କୁ ଚାହିଁ । କି ଅବା ଅଛି ମତ୍ତ[1] ହୋଇ ।। ୯୦
୨୭ ସଭା ଜଗତୀ ପୁର ଦ୍ୱାର । ଯେ ଚୈତ୍ୟ ଦେବତାମନ୍ଦିର ।। ୯୧
ଏ ଆଦି ମାନଙ୍କେ ବିନ୍ୟାସ । ବହୁତ ଯେ ହେମକଳସ ।। ୯୨
ଯେ ବା ପତାକାମାନେ ଆନ । ତେଣେ ଯେ ହୋଇଛି ମଣ୍ଡନ ।। ୯୩
୨୮ [2]ଫଳମାନଙ୍କରେ ସହିତ । କ୍ରମୁକବୃକ୍ଷ-ରମ୍ଭାଯୁତ ।। ୯୪

---

୧. ''ମତ୍ତାଂ ବା ସୁତରାମିବ'' ପାଠ ଅନୁସାରେ ଅନୁବାଦ ହୋଇଛି । ''ମତ୍ତାଂ ବାସିତଗାମିବ'' – ଏହି ପାଠ ଅନୁସାରେ ''କାମୋନ୍ମତ୍ତା ଗାଈ ପରି ମତ୍ତ'' ଏମନ୍ତ ଅର୍ଥ ହେବ ।

୨. ଫଳମାନଙ୍କରେ ସେ ତହିଁ । କ୍ରମୁକ ରମ୍ଭାବୃକ୍ଷ ଯହିଁ ।। (କ)

| | | | | | |
|---|---|---|---|---|---|
| | ପଟ୍ଟିକାଦର୍ପଣ-ବସନ | । | ଯେ ପୁଷ୍ପମାଳାମାନେ ଆନ | ॥ | ୯୫ |
| | ତେଣେ ତୋରଣମାନେ ଯହିଁ | । | କୌତୁକେ ଅଛି କୃତ ହୋଇ | ॥ | ୯୬ |
| ୨୯ | ଭେଟସାମଗ୍ରୀ ଅଛି କରେ | । | ପୁରର ଲୋକେ ତଦନ୍ତରେ | ॥ | ୯୭ |
| | ତାହାଙ୍କୁ ହେଲେ ଉପଗତ | । | ଆଶିଷ କଲେ ନିଯୋଜିତ | ॥ | ୯୮ |
| | ପୂର୍ବେ ବରାହରୂପ ହୋଇ | । | ତୁମ୍ଭେ ଉଦ୍ଧରି ଅଛ ମହୀ | ॥ | ୯୯ |
| | ଏହାକୁ କରସି ପାଳନ | । | ବୋଇଲେ ଏମନ୍ତ ବଚନ | ॥ | ୧୦୦ |
| ୩୦ | ଚିର କାଳରେ ଉପଗତ | । | ହୋଇଲେ ଯଉଁ ନିଜନାଥ | ॥ | ୧୦୧ |
| | ତାହାଙ୍କୁ ଦେଖିବା ଇଚ୍ଛାରେ | । | ଗୃହ ଛାଡ଼ିଲେ ନାରୀନରେ | ॥ | ୧୦୨ |
| | ଅଯୋଧ୍ୟାପୁରବାସୀଗଣ | । | ହର୍ମ୍ୟମାନଙ୍କୁ ଆରୋହିଣ | ॥ | |
| | ସେମାନଙ୍କର ନେତ୍ରଦୁଇ | । | ଦେଖନ୍ତେ ନାହିଁ ତୋଷ ହୋଇ | ॥ | ୧୦୩ |
| | ପଦ୍ମନେତ୍ରଙ୍କୁ ପୁଷ୍ପମାନ | । | ବିଞ୍ଚିଲେ ହୋଇ ତୋଷମନ | ॥ | ୧୦୪ |
| ୩୧ | ପୂର୍ବନୃପତିମାନେ ଯହିଁ | । | ଆଶ୍ରମ କରିଥିଲେ ରହି | ॥ | ୧୦୫ |
| | ଅନନ୍ତ ଅଖିଳ ଭଣ୍ଡାରେ | । | ଯୁକ୍ତ ଅଟେ ଯେ ନିରନ୍ତରେ | ॥ | ୧୦୬ |
| | ଅମୂଲ୍ୟ ସାମଗ୍ରୀ ବହୁତ | । | ଯହିଁ ହୋଇଛି ଉପଗତ | ॥ | ୧୦୭ |
| | ଏମନ୍ତ ଅଟେ ଗୃହ ଯେହି | । | ମିଳିଲେ ଏଥୁଁ ଅନ୍ତେ ତହିଁ | ॥ | ୧୦୮ |
| ୩୨ | ବିଦ୍ରୁମମୟ ଏରୁଣ୍ଡି[୧]ରେ | । | ସଂଯୁତ ଯଉଁ ପୁରଦ୍ୱାରେ | ॥ | ୧୦୯ |
| | ଯେ ବଇଦୂର୍ଯ୍ୟସ୍ତମ୍ଭକୁଳେ | । | ଯେ ସ୍ୱଚ୍ଛ ମରକତସ୍ଥଳେ | ॥ | ୧୧୦ |
| | ଅତିଶୟରେ ପ୍ରଦୀପିତ | । | ସ୍ଫଟିକକାନ୍ଥ ଯେ ବହୁତ | ॥ | ୧୧୧ |
| ୩୩ | ଯେ ବା ବିଚିତ୍ର ମାଳାମାନ | । | ପଟ୍ଟିକାମାନେ ଯେ ବା ଆନ[୨] | ॥ | ୧୧୨ |
| | ବସନ ମଣିଗଣଙ୍କର | । | କିରଣମାନେ ଯେ ଆବର | ॥ | ୧୧୩ |
| | ଚୈତନ୍ୟପ୍ରାୟେ ପ୍ରଦୀପିତ | । | ମୁକୁତାଫଳ ଯେ ବହୁତ | ॥ | ୧୧୪ |
| | ଯେ ମନୋରମ ଦ୍ରବ୍ୟମାନ | । | କାମୋପଭୋଗକୁ ସାଧନ | ॥ | ୧୧୫ |
| ୩୪ | ସୁଗନ୍ଧଯୁତ ଶୋଭମାନ | । | ଯେ ଅବା ଧୂପଦୀପ ଆନ | ॥ | ୧୧୬ |
| | ପୁଷ୍ପେ ମଣ୍ଡିତ ହୋଇଛନ୍ତି | । | ଦେବତାପ୍ରାଏକ ଦିଶନ୍ତି | ॥ | ୧୧୭ |
| | ଭୂଷଣମାନଙ୍କେ ଭୂଷଣ | । | ନାରୀପୁରୁଷେ ଯେବା ପୁଣ | ॥ | ୧୧୮ |
| | ଏ ସମସ୍ତରେ ସୁସଂଯୁତ | । | ଯେବଣ ସଦନ ସଂତତ | ॥ | ୧୧୯ |
| ୩୫ } | ଯେ ଆତ୍ମାରାମମାନେ ଧୀର | । | ତାହାଙ୍କ ମଧ୍ୟରେ ଯେ ବର | ॥ | ୧୨୦ |
| ୩୬ } | ସେ ଭଗବାନ ରଘୁପତି | । | ସେ ଗୃହମଧ୍ୟେ କରି ସ୍ଥିତି | ॥ | ୧୨୧ |
| | ଯେ ପ୍ରିୟ ଇଷ୍ଟ ଆପଣାର | । | ରମିଲେ ସେ ସୀତାସଙ୍ଗର | ॥ | ୧୨୨ |
| | ଯେ ଅବା ଜନମାନେ ଆନ | । | ତାଙ୍କୁ ନ କରନ୍ତେ ପୀଡ଼ନ | ॥ | ୧୨୩ |

୧. ଏରୁଣ୍ଡି = ଦ୍ୱାରବନ୍ଧ (ମୂ: ଉଡୁମ୍ବର ଦେହଲୀ)। ୨. ସ୍ଥାନ (କ)।

| | | | | |
|---|---|---|---|---|
| ବହୁତ ବରଷ ଭୂତଳେ | । | ଭୋଗକୁ କଲେ ଯଥାକାଳେ | ।। | ୧୨୪ |
| ଯା' ପାଦପଲ୍ଲବକୁ ମନେ | । | ଧ୍ୟାନ କରନ୍ତି ନରମାନେ | ।। | ୧୨୫ |
| ସେ ରାମଚରଣପଙ୍କଜ | । | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ।। | ୧୨୬ |
| ଭବସାଗରୁ ହେବ ପାର | । | ଏମନ୍ତ କରଇ ବିଚାର | ।। | ୧୨୭ |
| ଗାଇଣ ଶ୍ରୀରାମଚରିତ | । | ସଂତୋଷ ସାଧୁଜନଂ ଚିତ୍ତ | ।। | ୧୨୮ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମଚରିତଂ ନାମ
ଏକାଦଶୋଽଧ୍ୟାୟଃ ।।

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ରାମପୁତ୍ରସ୍ୟ କୁଶସ୍ୟାନ୍ୱୟ ଉଚ୍ୟତେ ।
ଏବମିକ୍ଷ୍ୱାକୁପୁତ୍ରସ୍ୟ ଶଶାଦସ୍ୟେରିତୋଽନ୍ୱୟଃ ।। ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଅତିଥିନାମେ କୁଶସୁତ | । | ନିଷଧ ତା'ଠାରୁ ସଂଭୂତ | ।। | ୧ |
| | ନିଷଧପୁତ୍ର ନଭ ନାମ | । | ତହୁଁ ପୁଣ୍ଡରୀକ ଜନମ | ।। | ୨ |
| | ପୁଣ୍ଡରୀକର ପୁତ୍ର ଯେହି | । | ସେ କ୍ଷେମଧନ୍ୱା ନାମ ବହି | ।। | ୩ |
| ୨ | ଯେ କ୍ଷେମଧନ୍ୱାଠାରୁ ଜାତ | । | ସେ ଦେବାନୀକ ନାମେ ଖ୍ୟାତ | ।। | ୪ |
| | ଅହୀନ[୨] ନାମେ ତାର ପୁତ୍ର | । | ତାର ତନୟ ପାରିଯାତ୍ର[୩] | ।। | ୫ |
| | ତାହାର ପୁତ୍ର ଅଟେ ବଳ | । | ବଳତନୟନାମ ସ୍ଥଳ | ।। | ୬ |
| | ତା'ଠାରୁ ବଜ୍ରନାଭ ଜାତ | । | ସେ ଅର୍କଅଂଶରୁ ସଂଭୂତ | ।। | ୭ |
| ୩} | ସୁଗଣ[୪] ତାହାଠାରୁ ଜାତ | । | ବିଧୃତି[୫] ନାମେ ତାର ସୁତ | ।। | ୮ |
| ୪} | ସେ ବିଧୃତିର ଠାରୁ ଜାତ | । | ହିରଣ୍ୟନାଭ ନାମେ ସୁତ | ।। | ୯ |
| | ସେ ଶିଷ୍ୟ ଜଇମିନିଙ୍କର | । | ଯୋଗ-ଆଚାର୍ଯ୍ୟ ସେ ଆବର | ।। | ୧୦ |
| | କୌଶଲ୍ୟ ଯାଜ୍ଞବଲ୍‌କ୍ୟ ଋଷି | । | ଯଉଁ ରାଜାର ଠାକୁ ଆସି | ।। | ୧୧ |
| | ତାହାର ଠାରୁ ଅଧ୍ୟୟନ | । | କଲେ ଅଧ୍ୟାତ୍ମ ଯୋଗଜ୍ଞାନ | ।। | ୧୨ |
| | ଯେ ଯୋଗ ମହୋଦୟ ଅଟେ | । | ହୃଦୟଗ୍ରନ୍ଥି ଯେଣେ ଫିଟେ | ।। | ୧୩ |
| ୫ | ହିରଣ୍ୟନାଭର ଯେ ସୁତ | । | ସେ ପୁଷ୍ପ ନାମରେ ବିଖ୍ୟାତ | ।। | ୧୪ |
| | ଧ୍ରୁବସନ୍ଧି ତାର ନନ୍ଦନ | । | ତାହାର ସୁତ ସୁଦର୍ଶନ | ।। | ୧୫ |

---

୧. ଜୟରାମ (କ) ।   ୨. ଅନୀହ ।   ୩. ପାରିପାତ୍ର ।   ୪. ଖଗଣ ।   ୫. ବିଧୃତ ।

ସୁଦରଶନଠାରୁ ଜାତ । ସେ ଅଗ୍ନିବର୍ଣ୍ଣ ନାମେ ସୁତ ।। ୧୬
ଶୀଘ୍ର ଜନମ ତାହାଠାରୁ । ତାହାର ସୁତ ଅଟେ ମରୁ ।। ୧୭
୬ ଯେବଣ ମରୁ ଦଣ୍ଡଧାରୀ । କଳାପ ଗ୍ରାମ ଆଶ୍ରେ କରି ।। ୧୮
ସିଦ୍ଧ ହୋଇଣ ଅଛି ରହି । କଳିଯୁଗର ଅନ୍ତେ ସେହି ।। ୧୯
ନାଶ ହୋଇଲା ସୂର୍ଯ୍ୟବଂଶ । ପୁଣି କରିବ ସେ ପ୍ରକାଶ ।। ୨୦
୭ ମରୁର ସୁତ ପ୍ରସୁଶ୍ରୁତ । ସନ୍ଧି ନାମରେ ତାର ସୁତ ।। ୨୧
ସନ୍ଧିତନୟ ଅମର୍ଷଣ । ମହସ୍ୱାନ ତା' ସୁତ ପୁଣ ।। ୨୨
ତାହାର ଠାରୁ ଯେ ସଂଭୂତ । ସେ ବିଶ୍ୱବାହୁ[୧] ନାମେ ଖ୍ୟାତ ।। ୨୩
୮ ତାଠାରୁ ହୋଇଲା ସଂଭୂତ । ପ୍ରସେନଜିତ ନାମେ ସୁତ ।। ୧
ତା'ଠାରୁ ପୁଣ ହେଲା ଜାତ । ତକ୍ଷକ ନାମେ ଯେହୁ ଖ୍ୟାତ ।। ୨
ତା' ଠାରୁ ହେଲା ଉତପତି । ଯେ ବୃହଦ୍‌ବଳ ନରପତି ।। ୨୪
ସମରସମୟରେ ହତ । କଲା ଯାହାକୁ ତୋର ତାତ[୨] ।। ୨୫
୯ ଇକ୍ଷ୍ୱାକୁବଂଶରାଜା ଏତେ । ଅତୀତ ହେଲେ ଏ ଜଗତେ ।। ୨୬
ହୋଇ ନାହାନ୍ତି ଯଉଁମାନେ । ତାହାଙ୍କୁ ଶୁଣ ଏକମନେ ।। ୨୭
ବୃହଦ୍‌ବଳର ସୁତ ପୁଣ । ତା' ନାମ ହେବ ବୃହଦ୍ରଣ ।। ୨୮
୧୦ ତା' ଠାରୁ ହେବ ଉରୁକ୍ରିୟ । ବତ୍ସବୃଦ୍ଧ ତାହା ତନୟ ।। ୨୯
ତାହାର ସୁତ ପ୍ରତିବ୍ୟୋମ । ତାହାର ସୁତ ଭାନୁ ନାମ ।। ୩୦
ଦିବାକ ନୃପ ତହୁଁ ହେବ । ତାହାର ସୁତ ସହଦେବ ।। ୩୧
୧୧ ତାହାର ବୃହଦଶ୍ୱ ସୁତ । ତାର ତନୟ ଭାନୁମନ୍ତ ।। ୩୨
ଯେ ଭାନୁମନ୍ତ ନରନାଥ । ତାଠାରୁ[୩] ପ୍ରତୀକାଶ୍ୱ ଜାତ ।। ୩୩
ତା'ଠାରୁ ହେବ ଯେ ଜନମ । ତାହାର ସୁପ୍ରତୀକ ନାମ ।। ୩୪
୧୨ ତାହାର ଠାରୁ ମରୁଦେବ । ନାମରେ ତନୟ ହୋଇବ ।। ୩୫
ତାହାର ସୁତ ସୁନକ୍ଷତ୍ର । ପୁଷ୍କର ହେବ ତାର ପୁତ୍ର ।। ୩୬
ତାହାର ଅନ୍ତରୀକ୍ଷ ସୁତ । ସୁତପା ତା' ସୁତ ବିଦିତ ।। ୩୭
ଅମିତ୍ରଜିତ ଜାତ ତହୁଁ । ତା' ସୁତ ବୃହଦ୍‌ଭାଜ[୪] ଯେହୁ ।। ୩୮
୧୩ ବରହି ତାହାର ତନୟ । ତାର ତନୟ କୃତଞ୍ଜୟ ।। ୩୯
ତାହାର ସୁତ ରଣଞ୍ଜୟ । ତା' ଠାରୁ ହୋଇବ ସଂଜୟ ।। ୪୦
୧୪ ତା' ଠାରୁ ଶାକ୍ୟ ହେବ ଜାତ । ଶୁଦ୍ଧୋଦ ଶାକ୍ୟନୃପସୁତ ।। ୪୧
ତା'ଠାରୁ ଜାତ ମହୀପାଳ । ତା' ନାମ ଅଟଇ ଲାଙ୍ଗଳ ।। ୪୨
ପ୍ରସେନଜିତ ନାମ ଯାର । ସେ ଅଟେ ଲାଙ୍ଗଳକୁମର ।। ୪୩
କ୍ଷୁଦ୍ରକ ତା'ଠାରୁ ଜନ୍ମିବ । ରଣକ ତାର ପୁତ୍ର ହେବ ।। ୪୪

---

୧. ବିଶ୍ୱସାହ୍ୱ । ୨. ତୋର ତାତ = ଅଭିମନ୍ୟୁ । ୩. ତାହାର । ୪. ବୃହଦ୍‌ରାଜ ।

| | | | | | |
|---|---|---|---|---|---|
| ୧୫ | ସୁରଥ ତା'ଠାରୁ ଜନ୍ମିବ | । | ସୁମିତ୍ର ତାର ପୁତ୍ର ହେବ | ॥ | ୧ |
| | ବଂଶର ସ୍ଥିତି ଯେ ବିଦିତ | । | ସୁମିତ୍ରଠାରୁ ହେବ ହତ | ॥ | ୪୫ |
| | ଏ ଯେତେ ନୃପତି ବିଖ୍ୟାତ | । | ବୃହଦ୍‌ବଳର ବଂଶେ ଜାତ | ॥ | ୪୬ |
| ୧୬ | ଇକ୍ଷ୍ୱାକୁମାନଙ୍କ ଏ ବଂଶ | । | ସୁମିତ୍ରଠାରୁ ହେବ ନାଶ | ॥ | ୪୭ |
| | ଯେଣୁ ସେ ରାଜାକୁ ପାଇଣ | । | ମରିବ[୧] କଳିଯୁଗେ ପୁଣ | ॥ | ୪୮ |
| | କୃଷ୍ଣଚରଣପଦ୍ମ ଚିନ୍ତି | । | ହରଷ ଦୀନବନ୍ଧୁ ମତି | ॥ | ୪୯ |
| | ଆସ୍ୱାଦି ଭାଗବତରସ | । | ସନ୍ତୋଷ ସୁଜନମାନସ | ॥ | ୫୦ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମବଂଶାନୁକୀର୍ତ୍ତନଂ ନାମ
ଦ୍ୱାଦଶୋଽଧ୍ୟାୟଃ ॥

## ତ୍ରୟୋଦଶ ଅଧ୍ୟାୟ

ଇକ୍ଷ୍ୱାକୋରେବ ପୁତ୍ରସ୍ୟ ନିମେର୍ବଂଶସ୍ତ୍ରୟୋଦଶେ ।
ବର୍ଣ୍ଣ୍ୟତେ ଜଜ୍ଞିରେ ଯତ୍ର ବ୍ରହ୍ମଜ୍ଞା ଜନକାଦୟଃ ॥ ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଇକ୍ଷ୍ୱାକୁସୁତ ନିମି ପୁଣ | । | ଯାଗକୁ ଆରମ୍ଭ କରିଣ | ॥ | ୧ |
| | ଋତ୍ୱିଜ କରି ବଶିଷ୍ଠଙ୍କୁ | । | ବରିଲା, ବୋଇଲେ ସେ ତାଙ୍କୁ | ॥ | ୨ |
| | ହେ ନୃପ ! ପୂର୍ବକାଳୁଁ ମୁହିଁ | । | ଶକ୍ରରେ ଅଛି ବୃତ ହୋଇ | ॥ | ୩ |
| ୨ | ମୁଁ ସେ ଯାଗକୁ କରାଇଣ | । | ଆସିବି ଯେତେଦିନେ ପୁଣ | ॥ | ୪ |
| | ତୁ ତେତେକାଳପରିଯନ୍ତେ | । | ପ୍ରତୀକ୍ଷା କରି ଥାଅ ମୋତେ | ॥ | ୫ |
| | ନୃପତି ଶୁଣି ତୁନି ହେଲେ | । | ବଶିଷ୍ଠ ଇନ୍ଦ୍ରଯାଗ କଲେ | ॥ | ୬ |
| ୩ | ସ୍ଥିର ନୁହଇ ଏ ଜୀବନ | । | ଏମନ୍ତ ସେ ନିମି ରାଜନ | ॥ | ୭ |
| | ଜାଣିଣ ଆତ୍ମଜ୍ଞାନୀ ଯେଣୁ | । | ଆନ ଋତ୍ୱିଜଙ୍କରେ ତେଣୁ | ॥ | ୮ |
| | ଯାଗକୁ କଲା ଯେତେଦିନେ | । | ଗୁରୁ ନଇଲେ ତା' ଭୁବନେ | ॥ | ୯ |
| ୪ | ଇନ୍ଦ୍ରର ଯାଗ ବଢ଼ାଇଣ | । | ଗୁରୁ ପ୍ରବେଶ ହେଲେ ପୁଣ | ॥ | ୧୦ |
| | ଶିଷ୍ୟର ଦେଖି ଅନ୍ୟାୟକୁ | । | କ୍ରୋଧରେ ଶାପ ଦେଲେ ତାକୁ | ॥ | ୧୧ |
| | ଆତ୍ମାକୁ ପଣ୍ଡିତରୂପରେ | । | ମଣିଅଛି ଯେ ଅହଂକାରେ | ॥ | ୧୨ |
| | ସେ ନିମିନୃପତିର କାୟ | । | ପତନ ହୋଉ ଏ ନିଶ୍ଚୟ | ॥ | ୧୩ |
| ୫ | ଯେ ନିଜ ଗୁରୁ ଧର୍ମବର୍ତ୍ତୀ[୨] | । | ତାହାଙ୍କୁ ନିମି ନରପତି | ॥ | ୧୪ |

୧. ମରିବ = ଧ୍ୱଂସ ପାଇବ ।　　୨. 'ଅଧର୍ମବର୍ତ୍ତୀ (ଗୁରବେଽଧର୍ମବର୍ତ୍ତିନେ' ଇତି ପାଠେ) ।

କ୍ରୋଧରେ ପ୍ରତିଶାପ ଦେଲେ । ଏମନ୍ତ ବଚନ ବୋଇଲେ ॥ ୧୫
ଲୋଭରେ ଧର୍ମକୁ ନ ଜାଣ । ତୁମ୍ଭ ଶରୀର ପଡୁ ପୁଣ ॥ ୧୬
୬ ଅଧ୍ୟାତ୍ମଜ୍ଞାନ ବିଷୟରେ । ପଣ୍ଡିତ ଅଟନ୍ତି ସଂସାରେ ॥ ୧୭
ଏମନ୍ତ ନିମି ନୃପବର । ଛାଡ଼ିଲେ ନିଜ କଳେବର ॥ ୧୮
ମିତ୍ରାବରୁଣ ନାମ ଦୁଇ । ପଥେ ଗମନ୍ତେ ସଙ୍ଗ ହୋଇ ॥ ୧୯
ଉର୍ବଶୀଦରଶନୁଁ ରେତ । ହୋଇଲା ତାଙ୍କର ସ୍ଖଳିତ ॥ ୨୦
'[1]କୁମ୍ଭରେ ସିଞ୍ଚନ୍ତେ ତା' ନେଇ । ବଶିଷ୍ଠ ଜାତ ହେଲେ ତହିଁ ॥ ୨୧
୭ ଗନ୍ଧଦ୍ରବ୍ୟରେ କରି ଯୁତ । ରାଜାର ଦେହକୁ ତୁରିତ ॥ ୨୨
ରକ୍ଷା କରିଣ ମୁନିବରେ । ଯାଗର ପୂର୍ଣ୍ଣେ ତଦନ୍ତରେ ॥ ୨୩
ଯେ ଦେବମାନେ ଆସିଥିଲେ । ତାହାଙ୍କୁ ଏମନ୍ତ ବୋଇଲେ ॥ ୨୪
୮ ଦେବତାମାନେ ପ୍ରଭୁ ଯେବେ । ପ୍ରସନ୍ନ ହୋଇଛନ୍ତି ତେବେ ॥ ୨୫
ଜୀଉ ଏ ରାଜାକଳେବର । ଏମନ୍ତ ବୋଲନ୍ତେ ସତ୍ୱର ॥ ୨୬
ଦେହବନ୍ଧନ ନୋହୁ ମୋର । ନିମି ବୋଇଲେ ଏ ଉତ୍ତର ॥ ୨୭
୯ ମୁନିଏ ବିୟୋଗଭୟରେ । କାତର ହୋଇଣ ନିର୍ଭରେ ॥ ୨୮
ଯଉଁ ଶରୀରଯୋଗ ଚିତ୍ତେ । ବାଞ୍ଛନ୍ତି ନାହିଁ କଦାଚିତେ ॥ ୨୯
ହରିର ଚରଣକମଳ । ନିର୍ଭୟେ[2] ବାଞ୍ଛନ୍ତି କେବଳ ॥ ୩୦
୧୦ ଯେ ବହେ ଦୁଃଖଶୋକଭୟ । ବାଞ୍ଛଇ ନାହିଁ ମୁଁ ସେ କାୟ ॥ ୩୧
ସକଳଠାରେ ଏ ଦେହର । ଯେଣୁ ମରଣ ଦୁର୍ନିବାର ॥ ୩୨
ମତ୍ସ୍ୟମାନଙ୍କର ଯେସନ । ଉଦକେ ହୁଅଇ ନିଧନ ॥ ୩୩

ଶ୍ରୀଦେବା ଉଚୁଃ

୧୧ ପ୍ରାଣୀମାନଙ୍କ ଲୋଚନରେ । ବିଦେହ ହୋଇ ଯଥେଷ୍ଟରେ ॥ ୩୪
ନିମି ନୃପତି ଥାଉ ରହି । ଉନ୍ମେଷ ନିମେଷ ଯେ ଦୁଇ ॥ ୩୫
ତେଣେ ଏ ହୋଇବ ଲକ୍ଷିତ । ଅଟଇ ଆତ୍ମଜ୍ଞାନବନ୍ତ ॥ ୩୬
୧୨ ରାଜାଅଭାବେ ଅତିଶୟ । ଯେ ହୋଏ ପ୍ରାଣୀଙ୍କର ଭୟ ॥ ୩୭
ମହରଷିଏ ତାହା ଜାଣି । ମନ୍ଥିଲେ ନିମିଦେହ ପୁଣି ॥ ୩୮
ଦେହମନ୍ଥନରୁ ତାହାର । ଜନମ ହୋଇଲା କୁମାର ॥ ୩୯
୧୩ ଜନନୁଁ ଜନକ ସେ ହେଲା । ବିଦେହଠାରୁ ସମ୍ଭବିଲା ॥ ୪୦
ଏଣୁ ବିଦେହ[3] ନାମ ସେହି । ମଥନୁଁ ମିଥିଳ ବୋଲାଇ ॥ ୪୧
ମିଥିଳାପୁରକୁ ନିର୍ମାଣ । କଲା ଯେ ନୃପତି ପୂର୍ବେଣ ॥ ୪୨
୧୪ ତା'ଠାରୁ ଉଦାବସୁ ଜାତ । ନନ୍ଦିବର୍ଧନ ତାହା ସୁତ ॥ ୪୩

୧. "କୁମ୍ଭେ ରେତଃ ସିଷିଚତୁଃ ସମାନମ୍" (ଶ୍ରୁତିଃ)। ୨. ନିର୍ଭରେ। ୩. ବୈଦେହ।

| | | | | | |
|---|---|---|---|---|---|
| | ସୁକେତୁ ତାହାଠାରୁ ଜାତ | । | ହେ ନୃପ ! ତାର ଦେବରାତ | ॥ | ୪୪ |
| ୧୫ | ଦେବରାତର ଯେହୁ ସୁତ | । | ସେ ବୃହଦ୍ରଥନାମେ ଖ୍ୟାତ | ॥ | ୪୫ |
| | ତା'ଠାରୁ ମହାବୀର୍ଯ୍ୟ ଜାତ | । | ସେ ଅଟେ ସୁଧୃତିର ତାତ | ॥ | ୪୬ |
| | ସୁଧୃତିଠାରୁ ଯେ ଜନମ | । | ତାହାର ଧୃଷ୍ଟକେତୁ ନାମ | ॥ | ୪୭ |
| | ହର୍ଯ୍ୟକ୍ଷ[୧] ଜାତ ତାହାଠାରୁ | । | ତାହା ତନୟ ନାମ ମରୁ | ॥ | ୪୮ |
| ୧୬ | ମରୁର ପ୍ରତୀପକ ସୁତ | । | ତା'ଠାରୁ କୃତରଥ ଜାତ | ॥ | ୪୯ |
| | ତାହାର ଦେବମୀଢ଼ ସୁତ | । | ବିଶ୍ରୁତ ତାହାଠାରୁ ଜାତ | ॥ | ୫୦ |
| | ବିଶ୍ରୁତଠାରୁ ଉତପତି | । | ଯେ ହେଲା ସେହୁ ମହାଧୃତି | ॥ | ୫୧ |
| ୧୭ | ତାହାର ସୁତ କୃତିରାତ | । | ତାହାର ମହାରୋମା ସୁତ | ॥ | ୫୨ |
| | ତା' ସୁତ ସ୍ୱର୍ଣ୍ଣରୋମା ନାମ | । | ତାହାର ସୁତ ହ୍ରସ୍ୱରୋମ | ॥ | ୫୩ |
| ୧୮ | ତା'ଠାରୁ ସୀରଧ୍ୱଜ ଜାତ | । | ସେ ରାଜା ଯଜ୍ଞର ନିମିତ୍ତ | ॥ | ୫୪ |
| | ଭୂମି କରନ୍ତେ କରଷଣ | । | ଲାଙ୍ଗଳଅଗ୍ରୁଁ ତତକ୍ଷଣ | ॥ | ୫୫ |
| | ସୀତା ଜନମ ହେଲେ ଯହୁଁ | । | ସେ ସୀରଧ୍ୱଜ ନାମ ତହୁଁ | ॥ | ୫୬ |
| ୧୯ | ହେ ନୃପ ! କୁଶଧ୍ୱଜ ନାମ | । | ତା' ପୁତ୍ର ହୋଇଲା ଜନମ | ॥ | ୫୭ |
| | ତା'ଠାରୁ ଧର୍ମଧ୍ୱଜ ଜାତ | । | ତାହାର ହେଲା ବେନି ସୁତ | ॥ | ୫୮ |
| | ଯେ କୃତଧ୍ୱଜ ସେ ପ୍ରଥମ | । | ଆରକ ମିତଧ୍ୱଜ[୨] ନାମ | ॥ | ୫୯ |
| ୨୦ | କୃତଧ୍ୱଜର ଠାରୁ ଜାତ | । | ସେ କେଶିଧ୍ୱଜ ନାମେ ସୁତ | ॥ | ୬୦ |
| | ଯେ ମିତଧ୍ୱଜ ନରପତି | । | ଖାଣ୍ଡିକ୍ୟ ତା' ଠାରୁ ଉତ୍ପତ୍ତି | ॥ | ୬୧ |
| | ହେ ନୃପ ! କୃତଧ୍ୱଜସୁତ | । | ଆତ୍ମବିଦ୍ୟାରେ ସେ ପଣ୍ଡିତ | ॥ | ୬୨ |
| ୨୧ | କର୍ମର ତତ୍ତ୍ୱ ଯେ ଅଟଇ | । | ଖାଣ୍ଡିକ୍ୟ ସେ କଥା ଜାଣଇଁ | ॥ | ୬୩ |
| | ସେ କେଶିଧ୍ୱଜଠାରୁ ଭୟେ | । | ପଳାଇ ଗଲା ଆନ ଠାଏ | ॥ | ୬୪ |
| | କେଶିଧ୍ୱଜର ଭାନୁମନ୍ତ | । | ତାହାର ଶତଦ୍ୟୁମ୍ନ ସୁତ | ॥ | ୬୫ |
| ୨୨ | ଶୁଚି ନାମରେ ତା' ଆତ୍ମଜ | । | ତାର ତନୟ ସନଦ୍ୱାଜ | ॥ | ୬୬ |
| | ସନଦ୍ୱାଜର ଠାରୁ ଜାତ | । | ହୋଇଲା ଊର୍ଜକେତୁ ସୁତ | ॥ | ୬୭ |
| | ଅଜନାମରେ ତାର ସୁତ | । | ତାହାର ସୁତ ପୁରୁଜିତ | ॥ | ୬୮ |
| ୨୩ | ଅରିଷ୍ଟନେମି ସୁତ ତାର | । | ଶ୍ରୁତାୟୁ ତାହାର କୁମର | ॥ | ୬୯ |
| | ତାର ତନୟ ସୁପାର୍ଶ୍ୱକ | । | ତା' ସୁତ ଚିତ୍ରରଥ ଏକ | ॥ | ୭୦ |
| | କ୍ଷେମାଧି ନାମେ ଉତପତି | । | ତା'ଠାରୁ ମିଥିଳାନୃପତି | ॥ | ୭୧ |
| ୨୪ | ତାଠାରୁ ସମରଥ ଜାତ | । | ତାହାର ସତ୍ୟରଥ ସୁତ | ॥ | ୭୨ |
| | ତାଠାରୁ ଉପଗୁରୁ ନାମ | । | ତନୟ ହୋଇଲା ଜନମ | ॥ | ୭୩ |
| | ତାଠାରୁ ଉପଗୁପ୍ତ ଜାତ | । | ସେ ଅଗ୍ନିଅଂଶରୁ ସଂଭୂତ | ॥ | ୭୪ |
| ୨୫ | ତାର ତନୟ ବସ୍ୱନନ୍ତ | । | ତାହାର ସୁତ ଯୁଯୁବନ୍ତ[୩] | ॥ | ୭୫ |

୧. ହର୍ଯ୍ୟଶ୍ୱ ।　୨. ମିତ୍ରଧ୍ୱଜ ।　୩. ଯୁଯୁଧ ।

ତାହାର ଠାରୁ ସୁଭାଷଣ । ନାମେ ତନୁଜ ହେଲା ପୁଣ ।। ୭୬
ତା' ସୁତ ଶ୍ରୁତ ତହୁଁ ଜୟ । ତାଠାରୁ ଜନ୍ମିଲା ବିଜୟ ।। ୭୭
ଋତ ନାମରେ ବିଜୟର । ଜନମ ହୋଇଲା କୁମର ।। ୭୮
୨୬ ତା'ଠାରୁ ଜନ୍ମିଲା ଶୁନକ । ତା' ସୁତ ବୀତହବ୍ୟ[୧] ଏକ ।। ୭୯
୨୭ ତାହାର ଠାରୁ ଉତପତି । ଧୃତି ନାମରେ ନରପତି ।। ୮୦
ଧୃତିର ବହୁଳାଶ୍ୱ ସୁତ । ତା' ସୁତ କୃତିନାମେ ଖ୍ୟାତ ।। ୮୧
ସେ କୃତି ନୃପ ଅତିଶୟ । ବିଖ୍ୟାତ ଅଟେ ଜିତେନ୍ଦ୍ରିୟ ।। ୮୨
ହେ ନୃପ ! କହିଲାଇଁ ଯେତେ । ମିଥିଳାନୃପ ଏ ସମସ୍ତେ ।। ୮୩
ଆତ୍ମବିଦ୍ୟାରେ ଏ ସକଳେ । ପଣ୍ଡିତ ଅବନିମଣ୍ଡଳେ ।। ୮୪
ଯାଜ୍ଞବଲ୍କ୍ୟଙ୍କୁ ଆଦି ହୋଇ । ଯେ ଯୋଗେଶ୍ୱର ଥିଲେ ମହୀ ।। ୮୫
ତାହାଙ୍କ ପ୍ରସାଦେ ସେମାନେ । ବର୍ତ୍ତିଣ ଥିଲେହେଁ ସଦନେ ।। ୮୬
ଯେ ଦ୍ୱନ୍ଦ୍ୱ ସୁଖ ଦୁଃଖ ଆଦି । ତେଣେ ବିମୁକ୍ତ ସେ ପ୍ରସିଦ୍ଧି ।। ୮୭
ଶ୍ରୀକୃଷ୍ଣଚରଣ ପ୍ରସାଦେ । ନବମ ସ୍କନ୍ଧ[୨] ଅପ୍ରମାଦେ ।। ୮୮
ଗୀତରେ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ତେଣେ ।। ୮୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀସୂର୍ଯ୍ୟବଂଶକୀର୍ତ୍ତନଂ ନାମ
ତ୍ରୟୋଦଶୋଽଧ୍ୟାୟଃ ।।

## ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶାଦିଭିଃ ସୋମବଂଶମାହାସମାପ୍ତିତଃ[୩] ।
ଯସ୍ମିନ୍ନୈଳାଦୟୋ ଭୂପାଃ କୀର୍ତ୍ତ୍ୟନ୍ତେ ପୁଣ୍ୟକୀର୍ତ୍ତୟଃ ।। ୧
ଚତୁର୍ଦ୍ଦଶେ ଗୁରୋଃ ପତ୍ନ୍ୟାଂ ତାରାୟାଂ ସୋମଜାଦ୍ ବୁଧାତ୍ ।
ଜାତସ୍ତୈଳଃ ଷଡୁର୍ବଶ୍ୟାମାୟୁର୍ମୁଖ୍ୟାନଜୀଜନତ୍ ।। ୨

ଶ୍ରୀଶୁକ ଉବାଚ

୧ ଏଥୁ ଅନ୍ତରେ ହେ ରାଜନ । ସୋମବଂଶର ଯେ ପାବନ ।। ୧
ତାହା ଶ୍ରବଣ କର ତୁହି । ପୁରୂରବାକୁ ଆଦି ହୋଇ ।। ୨
କୀର୍ତ୍ତିତ ଯହିଁ ରାଜାମାନେ । ଯେ ପୁଣ୍ୟକୀର୍ତ୍ତି ଏ ଭୁବନେ ।। ୩
୨ ସହସ୍ରଶିରା ପୁରୁଷର । ନାଭିହ୍ରଦରୁ ଯେ ବାହାର ।। ୪
ସେ ପଙ୍କଜରୁ ଧାତା ଜାତ । ଅତ୍ରି ଅଟନ୍ତି ତାର ସୁତ ।। ୫
ସେ ଅତ୍ରି ଗୁଣମାନଙ୍କରେ । ପିତାର ସମ ଜଗତରେ ।। ୬

---
୧. ବୀତିହବ୍ୟ । ୨. ସ୍କନ୍ଧେ । ୩. ....ବଂଶମାହ + ଆସମାପ୍ତିତଃ (ଅସମାପ୍ତିତଃ ନୁହେଁ) ।

୩ ସେ ଅତ୍ରିନେତ୍ରୁଁ ଉତପନ୍ନ । ଯଉଁ ଆନନ୍ଦ-ଅଶ୍ରୁମାନ ।।
ତହିଁରୁ ସୋମ ହେଲେ ଜାତ । ଅମୃତମୟ ଯେ ବିଦିତ ।।
ବିପ୍ର, ଓଷଧି, ଲତାମାନ । ଯେ ପୁଣ ତାରାଗଣ ଆନ ।।
ସେମାନଙ୍କର ପତିଭାବେ । ବ୍ରହ୍ମା କଳ୍ପିଲେ ତାଙ୍କୁ ପୂର୍ବେ ।।
୪ ତିନି ଭୁବନକୁ ସେ ଜିଣି । ରାଜସୂୟକୁ କଲା ପୁଣି ।।
ଯେ ଭାର୍ଯ୍ୟା ବୃହସ୍ପତିଙ୍କର । ତାରା ଅଟଇ ନାମ ଯାର ।।
ସେ ସୋମ ତାହାକୁ ବଳରେ । ହରିଲା ମଦନବିକାରେ ।।
୫ [1]ସେ ଦେବଗୁରୁ ଅନୁକ୍ଷଣ । ମାଗନ୍ତେ ଭାର୍ଯ୍ୟାକୁ ଆପଣ ।।
ଯେବେ ସେ ନ ଦେଲା ଗର୍ବରେ । ସେ ଗୁରୁପତ୍ନୀନିମିତ୍ତରେ ।।
ଦେବ-ଦାନବମାନଙ୍କର । ହେଲା ବିଗ୍ରହ ବଳିୟାର ।।
୬} ଶୁକ୍ରର ବୃହସ୍ପତିଠାରେ । ଯେ ଦ୍ୱେଷ ଜନ୍ମିଲା ପୂର୍ବରେ ।।
୭} ସେ ଘେନି ଅସୁରଙ୍କ ତୁଲେ[2] । ନିଶାକରଙ୍କୁ ସେ ଘେନିଲେ ।।
ମହେଶ ଅଙ୍ଗିରାଙ୍କଠାରୁ । ପଢ଼ିଲେ, ସେ ତାହାଙ୍କ ଗୁରୁ ।।
ଗୁରୁର ସୁତ ବୃହସ୍ପତି । ତାଙ୍କ ସ୍ନେହରେ ପଶୁପତି ।।
ସକଳ ଭୂତଗଣଙ୍କରେ । ଆବୃତ ହୋଇ ସେ କାଳରେ ।।
ବୃହସ୍ପତିଙ୍କ ଅନୁଗତ । ହୋଇଲେ ବିଗ୍ରହନିମିତ୍ତ ।।
ସମସ୍ତ ଦେବଗଣେ ଯୁତ । ଇନ୍ଦ୍ର ହିଁ ହେଲେ ଉପଗତ ।।
ସୁର ଅସୁରମାନଙ୍କର । ବିନାଶ ଯହିଁରେ ଅପାର ।।
ତାରକାମୟ ନାମ ହୋଇ । ସମର ଉପୁଜିଲା ତହିଁ ।।
୮ ଅଙ୍ଗିରାମୁନି ଏ ପ୍ରକାର । ବ୍ରହ୍ମାଙ୍କୁ କରାନ୍ତେ ଗୋଚର ।।
ଭର୍ତ୍ସନା କରିଣ ସୋମଙ୍କୁ । ସେ ବ୍ରହ୍ମା ତକ୍ଷଣେ ତାରାକୁ ।।
ଭର୍ତ୍ତାକୁ ସମର୍ପଣ କଲେ । ଗର୍ଭିଣୀ ବୋଲି ସେ[3] ଜାଣିଲେ ।।
୯ ହେ ଦୁଷ୍ଟମତି ହେ ଅସତି । ପରସକାଶୁଁ ଉତପତି ।।
ଯେ ଗର୍ଭ ହେଲା ମୋ କ୍ଷେତ୍ରରେ । ଛାଡ଼ ଛାଡ଼ ତୁ ତା' ବେଗରେ ।।
ସନ୍ତାନକାମୀ ମୁଁ, ତୁ ନାରୀ । ତୋତେ ମୁଁ ଏହି ହେତୁ କରି ।।
ଭସ୍ମ ନ କରିବି ନିୟତ । ସେ ଗୁରୁ ବୋଲନ୍ତେ ଏମନ୍ତ ।।
୧୦ ସେ ତାରା ଲଭିଣ ଲଜ୍ଜାକୁ । ଗର୍ଭୁଁ ଛାଡ଼ିଲା କୁମାରକୁ ।।
କନକପ୍ରାୟେକ ତନୁର । କାନ୍ତି ଯେବଣ କୁମାରର ।।
ସେ ବେନି ସୋମ ବୃହସ୍ପତି । କୁମାରଠାରେ କଲେ ମତି ।।
୧୧ ଏ ପୁତ୍ର ମୋର, ତୋର ନୋହି । ଏମନ୍ତ ପ୍ରକାରେ ସେ ଦୁଇ ।।
ଅତ୍ୟନ୍ତ ବିବାଦ କରନ୍ତେ । ଋଷିଦେବତାଏ ତଦନ୍ତେ ।।
ପୁଚ୍ଛନ୍ତେ ଲଜ୍ଜାକୁ ଲଭିଲା । ସେ ତାରା କିଛି ନ କହିଲା ।।

୧. ବୃହସ୍ପତି ହିଁ ତାକୁ ପୁଣ । ୨. ତୁଲେ = ସହ । ୩. ସେ = ଭର୍ତ୍ତା ଅର୍ଥାତ୍ ବୃହସ୍ପତି ।

୧୨ ମିଥ୍ୟାରେ ଲଜ୍ଜାରେ କୁପିତ । ହୋଇଣ କୁମାର ତଦନ୍ତ ॥ ୩୯
ମାତାକୁ ବୋଇଲା ଏମନ୍ତ । ଅସନ୍ତ[1] ଅଟେ ତୋର ବୃତ୍ତ ॥ ୪୦
ମୋହର ଆତ୍ମାଶୁଦ୍ଧି ଯେହି । କିଂପାଇଁ ନ କହୁଛୁ ତୁହି ॥ ୪୧
ଏବେ ସେ କଥା ବେଗେ କହ । ଫିଟୁ ଆତ୍ମାର ଯେ ସଂଦେହ ॥ ୪୨
୧୩ ବ୍ରହ୍ମା ଡାକିଣ ଏକାନ୍ତକୁ । ସାନ୍ତ୍ୱନା କରନ୍ତେ ତାହାକୁ ॥ ୪୩
ଏ ସୁତ କାହାର ବୋଲିଣ । ପୁଚ୍ଛନ୍ତେ ସ୍ଥିର କରି ପୁଣ ॥ ୪୪
ସୋମର ବୋଲି ସେ କହିଲା । ତତ୍‌କାଳ ଚନ୍ଦ୍ର ତାକୁ ନେଲା ॥ ୪୫
୧୪ ହେ ନୃପ ! ତା' ବୁଦ୍ଧି ଗମ୍ଭୀର । ସେଘେନି ବୁଧ ବୋଲି ତାର ॥ ୪୬
ନାମକୁ ବ୍ରହ୍ମା ଭିଆଇଲେ । ଯେଣେ ଚନ୍ଦ୍ରମା ତୋଷ ହେଲେ ॥ ୪୭
୧୫ ଯେ ପୁରୂରବାନାମେ ଖ୍ୟାତ । ସେ ହେଲା ତାହାଠାରୁ ଜାତ ॥ ୪୮
ଇଳାକନ୍ୟାରେ ସେ ସମ୍ଭବ । ଏ କଥା କହିଥାଇଁ ପୂର୍ବ ॥ ୪୯
ସେ ପୁରୂରବାରୂପ-ଗୁଣ । ଉଦାରଭାବ ଯେ ଦ୍ରବିଣ ॥ ୫୦
ଯେ ଶୀଳ ବିକ୍ରମ ଯେ ଆନ । ଇନ୍ଦ୍ରର ଭୁବନେ ସେମାନ ॥ ୫୧
୧୬ ନାରଦ କହନ୍ତେ ବିଶେଷି । ଶ୍ରବଣ କରି ତା' ଉର୍ବଶୀ ॥ ୫୨
ମଦନ ଶରେ ପୀଡ଼ା ପାଇ । ମିଳିଲା ତା' ନିକଟେ ଯାଇ ॥ ୫୩
୧୭ ମିତ୍ରାବରୁଣଶାପୁଁ ସେହି[2] । ମନୁଷ୍ୟଭାବ ଥିଲା ପାଇ ॥ ୫୪
ପୁରୁଷଙ୍କର ମଧ୍ୟେ ସାର । କନ୍ଦର୍ପପ୍ରାୟକ ସୁନ୍ଦର ॥ ୫୫
୧୮ ଏମନ୍ତ ଶୁଣି[3]କରି ନାରୀ । ଧୈର୍ଯ୍ୟକୁ ଅବଲମ୍ବ କରି ॥ ୫୬
ସେ ପୁରୂରବା ନୃପତିର । ନିକଟେ ମିଳିଲା ସତ୍ୱର ॥ ୫୭
ହରଷେ ବିକସିତ ହୋଇ । ଅଛନ୍ତି ଯାର ନେତ୍ର ଦୁଇ ॥ ୫୮
ଅଙ୍କୁରିଛନ୍ତି ଲୋମମାନ । ଏମନ୍ତ ରୂପେ ସେ ରାଜନ ॥ ୫୯
ଦେବୀକି କୋମଳ ବାକ୍ୟରେ । କହିଲେ ଏମନ୍ତ ପ୍ରକାରେ ॥ ୬୦

ଶ୍ରୀରାଜୋବାଚ

୧୯ ହେ ନିତମ୍ବିନି ! ସୁଶୋଭନ । ଅଟେ ତୋହର ଆଗମନ ॥ ୬୧
ଏ ଆମ୍ଭ ସନ୍ନିଧିରେ ରହ । ଆମ୍ଭେ କି କରିବୁଁ ତା' କହ ॥ ୬୨
ରମଣ କର ମୋ' ସଙ୍ଗରେ । ତୋର ମୋହର ସଙ୍ଗତରେ ॥ ୬୩
ବ୍ୟାପିଣ ଅନେକ ବରଷ । ସମ୍ଭବ ହୋଉ ରତିରସ ॥ ୬୪

ଶ୍ରୀଉର୍ବଶୀ ଉବାଚ

୨୦ କଉଁ ସ୍ତିରୀର ହେ ସୁନ୍ଦର । ମନ ନୟନ ତୋହଠାର ॥ ୬୫
ନୋହିବ ଆସକତ ପୁଣ । ଯେଣୁ ତୋ ବକ୍ଷକୁ ଲଭିଣ ॥ ୬୬
ରମଣବାଞ୍ଛା କଦାଚିତ । ହୁଅଇ ନାହିଁ ଅପଗତ ॥ ୬୭

---

୧. ଅସନ୍ତ = ଅସାଧୁ । ୨. ସେହି = ଉର୍ବଶୀ । ୩. ଦେଖି ।

୨୧ ଆହେ ମାନବ ନୃପବର । ଏ ମେଷ ଦୁଇଗୋଟି ମୋର ॥ ୬୮
ତୋ'ଠାରେ ସମର୍ପିଲି ମୁହିଁ । ଏହାଙ୍କୁ ରକ୍ଷାକର ତୁହି ॥ ୬୯
ତୋ' ସଙ୍ଗେ କରିବି ବିହାର । ଯେ ଶ୍ରେଷ୍ଠ ସେ ନାରୀଙ୍କ ବର ॥ ୭୦
ଏ ଘେନି ବିଜାତୀୟ ଭାବ । ଥିଲେହେଁ ଦୋଷ ନ ଘଟିବ ॥
୨୨ ହେ ବୀର ମନ୍ଦିରେ ତୋହର । [1]ଘୃତ ହୋଇବ ଭକ୍ଷ୍ୟ ମୋର ॥ ୭୧
ମୈଥୁନସମୟବାହାରେ । ତୁମ୍ଭଙ୍କୁ ଇତର କାଳରେ ॥ ୭୨
ବିବସ୍ତ୍ରରୂପେ କଦାଚିତ । ଦେଖିବି ନାହିଁ ଏ ନିୟତ ॥ ୭୩
ତାର ସେ ବାକ୍ୟ ମହାମତି । ସ୍ୱୀକାର କଲେ ନରପତି ॥ ୭୪
୨୩ ଆଶ୍ଚର୍ଯ୍ୟରୂପ ଭାବ ଦୁଇ । ନରଲୋକକୁ ବିମୋହଇ ॥ ୭୫
ସେ ଦେବୀ ତାହାରି ଇଚ୍ଛାରେ । ପ୍ରବେଶ ହୁଅନ୍ତେ ଆଗରେ ॥ ୭୬
ମନୁଷ୍ୟ ହୋଇକରି ଅବା । ନ କରିବ କେ ତାକୁ[2] ସେବା ॥ ୭୭
୨୪ ଯେ ଯଥା ଅନୁରୂପେ ରତି । ବିଧାନ କରଇ ଯୁବତି ॥ ୭୮
ସେ ଉର୍ବଶୀର ସଙ୍ଗେ ନିତି । ପୁରୁଷଶ୍ରେଷ୍ଠ ସେ ନୃପତି ॥ ୭୯
ଚୈତ୍ରରଥକୁ ଆଦି ଯେତେ । ସୁରବିହାର ସ୍ୱର୍ଗଗତେ ॥ ୮୦
ବିହରିଲା ସେମାନଙ୍କରେ । ସନ୍ତତେ ଆପଣା ଇଚ୍ଛାରେ ॥ ୮୧
୨୫ ପଦ୍ମକେଶରଗନ୍ଧପ୍ରାଏ । ଯାହାର ଶରୀର ଗନ୍ଧାଏ ॥ ୮୨
ସେ ଦେବୀସଙ୍ଗତେ ରମଣ । କରନ୍ତେ ସେ ନୃପତି ପୁଣ ॥ ୮୩
ତାର ବଦନ-ଆମୋଦରେ । ଲୋଭିତ ହୋଇ ନିରନ୍ତରେ ॥ ୮୪
ବହୁତକାଳପରିଯନ୍ତେ । ହରଷ ଲଭିଲାକ ଚିତ୍ତେ ॥ ୮୫
୨୬ କେତେ ଦିନରେ ଇନ୍ଦ୍ର ପୁଣ । ଉର୍ବଶୀକି ନ ଦେଖନ୍ତେଣ ॥ ୮୬
ଉର୍ବଶୀବିନୁ ମୋ ଆସ୍ଥାନ । ନ ଦିଶେ ଅତ୍ୟନ୍ତ ଶୋଭନ ॥ ୮୭
କହି ଏମନ୍ତ ବଚନକୁ । ପେଷିଲେ ଗନ୍ଧର୍ବମାନଙ୍କୁ ॥ ୮୮
୨୭ ଜାତ ହୁଅନ୍ତେ ଅନ୍ଧକାର । ମହାନିଶାରେ[3] ରଜନୀର ॥ ୮୯
ସେମାନେ ହୋଇଣ ପ୍ରବେଶ । ଉର୍ବଶୀର ଯେ ବେନି ମେଷ ॥ ୯୦
ତାଙ୍କୁ ହରିଲେ ଯାହା ନେଇ । ରଖିଥିଲା ସେ ରାଜାଠାଇଁ ॥ ୯୧
୨୮ ପୁତ୍ର ବେନି-ରୋଦନଧ୍ୱନି । ଶୁଣି ବୋଲଇ ସେ ରମଣୀ ॥ ୯୨
୨୯ ଯେ ନପୁଂସକ ତୁଚ୍ଛ ପତି । ଆମ୍ଭାରେ କରେ ବୀରମତି ॥ ୯୩
ତେଣେ କରି ମୁଁ ହତ ହେଲି । ଯାହା ବିଶ୍ୱାସୁଁ ନାଶ ଗଲି ॥ ୯୪
ଚୋରେ ପ୍ରବେଶ ହୋଇ କରି । ପୁତ୍ରଙ୍କୁ ମୋର ନେଲେ ହରି ॥ ୯୫
ନାରୀ ଯେସନେ ତ୍ରସ୍ତ ହୋଇ । ନିଶାସମୟେ ଶୋଇ ଥାଇ ॥ ୯୬

---

୧. "ଅମୃତଂ ବା ଆଜ୍ୟମ୍" (ଶ୍ରୁତିଃ) । ୨. ତୋତେ (ତ୍ୱାମିତି ପାଠେ) ।
୩. ମହାନିଶା – 'ମହାନିଶା ଦ୍ୱେ ଘଟିକେ ରାତ୍ରେର୍ମଧ୍ୟମଯାମୟୋଃ" (ସ୍ମୃତିଃ) ।

ପୁରୁଷ ହୋଇ ସେ ପ୍ରକାରେ । ଶୋଇଛି ଯେହ୍ନୁ ରଜନୀରେ ।। ୯୭
୩୦ ଏମନ୍ତ ରୂପେ ଉର୍ବଶୀର । ଅଟଇ ଯେ ବଚନଶର ।। ୯୮
ଅଙ୍କୁଶେ କୁଞ୍ଜରପରାଏ । ତେଣେ ଆଘାତ ଲଭି ରାଏ ।। ୯୯
ବସନ ନାହିଁ କଳେବରେ । ଖଡ଼ଗ ଧରି  ନିଜ କରେ ।। ୧୦୦
ରୋଷେ ରଜନୀସମୟରେ । ଆପଣେ ଧାଇଁଲେ ସତ୍ୱରେ ।। ୧୦୧
୩୧ ସେ ମେଷଦୁହିଁଙ୍କି ସେମାନେ । ଛାଡ଼ି କରିଣ ସେହିସ୍ଥାନେ ।। ୧୦୨
ହେଲେ ବିଶିଷ୍ଟ ଦ୍ୟୁତିମନ୍ତ । କଲେ ପ୍ରକାଶକୁ ତଦନ୍ତ ।। ୧୦୩
ମେଷଦୁହିଁଙ୍କି ଘେନି ପତି । ଆସନ୍ତେ ତାଙ୍କୁ ସେ ଯୁବତି ।। ୧୦୪
ଯେଣୁ ଦେଖିଲା ଦିଗମ୍ବର । ତତ୍‌କ୍ଷଣେ ହୋଇଲା ଅନ୍ତର ।। ୧୦୫
୩୨ ପୁରୂରବା ହିଁ ତଦନ୍ତରେ । ଭାର୍ଯ୍ୟାକୁ ନ ଦେଖି ଶଯ୍ୟାରେ ।। ୧୦୬
ତାହା ଠାବରେ ଚିତ୍ତ ଦେଲା । ବିମନାପ୍ରାଏକ ହୋଇଲା ।। ୧୦୭
ତାହାକୁ କରନ୍ତେ ଶୋଚନ । ବିକଳ ହେଲା ଦିନୁଁଦିନ ।। ୧୦୮
ଉନ୍ମତ୍ତଲୋକପ୍ରାୟ ହୋଇ । ଭ୍ରମଣ କଲା ପୁଣ ମହୀ ।। ୧୦୯
୩୩ ସେ ରାଜା କୁରୁକ୍ଷେତ୍ରେ ପୁଣ । ସରସ୍ୱତୀର ସନ୍ନିଧେଣ ।। ୧୧୦
ସେ ଉର୍ବଶୀକି ଦେଖି କରି । ତାର ସଖୀ ଯେ ପଞ୍ଚ ନାରୀ ।। ୧୧୧
ହରଷବଦନ ଅଟନ୍ତି । ତାଙ୍କୁ ଦେଖିଣ ସେ ନୃପତି ।। ୧୧୨
ଉତ୍ତମ ଅଟେ ଯେ ବଚନ । ତାହାକୁ କଲେକ ରଟନ ।। ୧୧୩
୩୪ ଆଗୋ ଜାୟା ତୁ ଅଟୁ ଘୋର । ରହ ଗୋ ରହ ଗୋ ଏଠାର ।। ୧୧୪
ମୋତେ ତୁ ସୁଖୀ ନ କରିଣ । ଗମନ କରିବାକୁ ପୁଣ ।। ୧୧୫
ଯୋଗ୍ୟ ନୁହଁ ଗୋ, ଏହିଠାରେ । ଗୋଷ୍ଠୀ କରିବା ହରଷରେ ।। ୧୧୬
୩୫ ହେ ଦେବି ! ମୋ' ଏ ସୁଶରୀର । ପତନ ହୋଉ ଏହିଠାର ।। ୧୧୭
ତୁ ଏହା ହରିଲୁ ଦୂରରେ । ଯେ ବୃକ ଗୃଧ୍ରମାନେ ଆରେ ।। ୧୧୮
କରନ୍ତୁ ଏହାକୁ ଭକ୍ଷଣ । ତୋ ଅନୁଗ୍ରହର ଏ ପୁଣ ।। ୧୧୯
ଯେଣୁ ଆସ୍ୱଦ ହୋଇନାହିଁ । ଏ ଘେନି ନିନ୍ଦିତ ଅଟଇ ।। ୧୨୦

ଶ୍ରୀଉର୍ବଶୀ ଉବାଚ

୩୬ ତୁମ୍ଭେ ପୁରୁଷ, ମରଣକୁ । ନ ଲଭ, ଏ ବୃକେ[୧] ତୁମ୍ଭଙ୍କୁ ।। ୧୨୧
ଭକ୍ଷଣ ନ କରନ୍ତୁ ପୁଣ । ଯେ ସ୍ତିରୀମାନେ ଜଗତେଣ ।। ୧୨୨
ତାହାଙ୍କ ମିତ୍ରଭାବ ହୋଇ । କେହୁଣିଠାରେ ଜାତ ନୋହି ।। ୧୨୩
ବୃକମାନଙ୍କର ହୃଦୟ । ପ୍ରାଏ ସେ ଅଟନ୍ତି ନିର୍ଦ୍ଦୟ ।। ୧୨୪
୩୭ ସ୍ତିରୀଏ ନିର୍ଦ୍ଦୟ ନିଷ୍ଠୁର । ସାହସ ପ୍ରିୟ ତାହାଙ୍କର ।। ୧୨୫
କରି ନିଷ୍ଠୁର ବିଚାରକୁ । ବିଶ୍ୱାସୀ ପତିକି ଭ୍ରାତାକୁ ।। ୧୨୬

୧. ବୃକ = ଇନ୍ଦ୍ରିୟ (ସ୍ୱାମୀ), (ବୃକ = ଗଧିଆ) ।

ଅଳପ କାର୍ଯ୍ୟନିମିତ୍ତରେ । ବିନାଶ କରନ୍ତି ସତ୍ୱରେ ॥
୩୮ ଅଜ୍ଞ ଅଟନ୍ତି ଯେଉଁ ନର । ସେ ଲୋକମାନଙ୍କର ଠାର ॥
ମିଥ୍ୟାରେ ଅଟେ ଯେ ବିଶ୍ୱାସ । ସେ କଥା କରିଣ ବିନ୍ୟାସ[1] ॥
ସୁହୃଦ-ଭାବକୁ ଛାଡ଼ନ୍ତି । ନବୀନ ନବୀନ ଲୋଡ଼ନ୍ତି ॥
ଅସତୀ ଅଟନ୍ତି ଯେ ନାରୀ । ସ୍ୱଇଚ୍ଛାବୃତ୍ତି ତାହାଙ୍କରି ॥
୩୯ ହେ ପ୍ରଭୁ ! ବର୍ଷକ ଅନ୍ତରେ । ଏକ ରଜନୀ ମୋ' ସଙ୍ଗରେ ॥
ରହିବ, ତେଣୁ ହେବେ ଜାତ । ତୁମ୍ଭର ତନୟ ବହୁତ ॥
୪୦ ସେ ଦେବୀ ହୋଇଛି ଗର୍ଭିଣୀ । ଏମନ୍ତ ସେ ନୃପତି ଜାଣି ॥
ପ୍ରବେଶ ହୋଇଲା ପୁରରେ । ପୁଣି ବରଷକ ଅନ୍ତରେ ॥
ଗଲା ସେ ସ୍ଥାନକୁ ଉଦ୍ଦେଶି । ବୀରଜନନୀ ଯେ ଉର୍ବଶୀ ॥
ତାହାକୁ ଲଭି ହୃଷ୍ଟ ହେଲା । ତା' ସଙ୍ଗେ ରାତିଏ ରହିଲା ॥
୪୧ ବିରହଆତୁର କୃପଣ । ହୁଅନ୍ତେ ସେ ନୃପତି ପୁଣ ॥
ଏଥୁ ଅନ୍ତରେ ତାକୁ ବାଣୀ । ଉର୍ବଶୀ କହିଲାକ ପୁଣି ॥
ସ୍ତୁତି କରନ୍ତେ ଗନ୍ଧର୍ବଙ୍କୁ । ମୋତେ ଦେବେଟି ସେ ତୁମ୍ଭଙ୍କୁ ॥
୪୨ ସ୍ତୁତି କରନ୍ତେ ସେ ରାଜନ । ଗନ୍ଧର୍ବେ ହେଲେ ତୋଷମନ ॥
କର୍ମ କରିଣ ଏ ଅଗ୍ନିରେ । ସେ କର୍ମବଶୁଁ ତଦନ୍ତରେ ॥
ଉର୍ବଶୀକି ଏ ନରପତି । ଲଭିବ, ଏହି କଥା ଚିନ୍ତି ॥
ହେ ନୃପ ! ଅଗ୍ନିସ୍ଥାଳୀ ଆଣି । ଦେଲେ ସେ ନୃପତିକି ପୁଣି ॥
ସେ ନୃପ ଚରନ୍ତେ ବିପିନେ । ଅଗ୍ନିସ୍ଥାଳୀକି ନିଜ ମନେ ॥
ଉର୍ବଶୀପ୍ରାୟ ମଣିଥିଲା । [2]ଏ ନୋହେ ବୋଲିଣ ଜାଣିଲା ॥
୪୩ ସ୍ଥାଳୀକି ରଖିଣ ବନରେ । ଗୃହକୁ ଯାଇଣ ନିଶାରେ ॥
କରନ୍ତେ ଉର୍ବଶୀକି ଧ୍ୟାନ । ତ୍ରେତା ପ୍ରବର୍ତ୍ତନ୍ତେ ସେ ଦିନ ॥
ନୃପମନରେ ଅକସ୍ମାତ । ହୋଇଲା ବେଦତ୍ରୟୀ ଜାତ ॥
୪୪ ଯେଉଁ ସ୍ଥାନରେ ସ୍ଥାଳୀ ଥିଲା । ସେହି ସ୍ଥାନକୁ ପୁଣ ଗଲା ॥
[3]ଶମୀର ଗର୍ଭରେ ସଂଭୂତ । ଅଶ୍ୱତ୍ଥ ଜାଣିଣ ଏମନ୍ତ ॥
ଏଥିରେ ଅଛି ଅଗ୍ନି ପୁଣି । ଏମନ୍ତ କଥାକୁ ସେ ଜାଣି ॥
ସେହି ଅଶ୍ୱତ୍ଥରେ ନିର୍ମାଣ । କରି ଅରଣିଦ୍ୱୟ ପୁଣ ॥
ଉର୍ବଶୀଲୋକକାମନାରେ । ଅଗ୍ନି ମନ୍ଥିଲା ତଦନ୍ତରେ ॥
୪୫ ତଳରେ ଥିଲା ଯେ ଅରଣି । ଉର୍ବଶୀମନ୍ତେ ତାକୁ ପୁଣି ॥
ଉର୍ବଶୀରୂପେ କରି ଧ୍ୟାନ । [4]ଉପରେ ଯେ ଅରଣି ଆନ ॥

---

୧. ପ୍ରକାଶ । ୨. "ଏ ଉର୍ବଶୀ ନୁହେ, କିନ୍ତୁ ଅଗ୍ନିସ୍ଥାଳୀ" ବୋଲି ଜାଣିଲା ।
୩. "ଶମୀଗର୍ଭାଦଗ୍ନିଂ ମମନ୍ଥ" ଇତି ଶ୍ରୁତିଃ । ୪. ''ଉର୍ବଶ୍ୟା ଉରସି ପୁରୂରବାଃ'' (ଶ୍ରୁତିଃ) ।

| | | | | |
|---|---|---|---|---|
| | ତାହାକୁ ଆପଣା ରୂପରେ । | ଧ୍ୟାନ କରନ୍ତେ ତା ମଧ୍ୟରେ | ।। | ୧୫୭ |
| | ତାର ମଧରେ କାଷ୍ଠ ଯେହି । | ତାହାକୁ ପୁତ୍ରରୂପେ ଧ୍ୟାୟି | ।। | ୧୫୮ |
| ୪୬ | ଯହିଁରୁ ଜାତ ଭୋଗ୍ୟଧନ । | ଏମନ୍ତ ଅଟେ ଯେ ଦହନ[୧] | ।। | ୧୫୯ |
| | ସେ ହେଲା ମନ୍ଥନରୁ ତାର । | ତ୍ରୟୀବିଦ୍ୟାରେ ତ୍ରିପ୍ରକାର[୨] | ।। | ୧୬୦ |
| | ସେ ଅଗ୍ନି ହୋଇଲା ସଂଭୂତ । | ରାଜା ତାହାକୁ କଲା ସୁତ | ।। | ୧୬୧ |
| ୪୭ | ସମସ୍ତ ଯଜ୍ଞମାନଙ୍କର । | ଯେ ଭଗବାନ ଅଧୀଶ୍ୱର | ।। | ୧୬୨ |
| | ଯେ ସର୍ବଦେବମୟ ହରି । | ଉର୍ବଶୀଲୋକ ଇଚ୍ଛା କରି | ।। | ୧୬୩ |
| | ତାହାଙ୍କୁ ସେହି ଅନଳରେ । | ଯାଗ କଲା ସେ ତଦନ୍ତରେ | ।। | ୧୬୪ |
| ୪୮ | ଯେତେ ବଚନ ଏ ଜଗତ । | ସେମାନଙ୍କର ବୀଜଭୂତ | ।। | ୧୬୫ |
| | ପ୍ରଣବ ଏକ ବେଦ ହୋଇ । | ସତ୍ୟଯୁଗରେ ଥିଲା ରହି | ।। | ୧୬୬ |
| | ଦେବତାରୂପେ ତହିଁ ପୁଣ । | କେବଳ ଏକ ନାରାୟଣ | ।। | ୧୬୭ |
| | ଲୌକିକ ଅଟେ ଯେ ଅନଳ । | ପ୍ରବର୍ତ୍ତିଥିଲା ସେ କେବଳ | ।। | ୧୬୮ |
| | ଯେ ଏକ ବର୍ଣ୍ଣ ଥିଲା ସେହି । | ହଂସ ନାମକୁ ଥିଲା ବହି | ।। | ୧୬୯ |
| ୪୯ | ଜାତ ହୁଅନ୍ତେ ତ୍ରେତାଯୁଗ । | ତାହାର ଯଉଁ ଆଦ୍ୟଭାଗ | ।। | ୧୭୦ |
| | ପୁରୂରବାର ଠାରୁ ତହିଁ । | ତ୍ରିବେଦ ସମ୍ଭବିଲା ମହୀ | ।। | ୧୭୧ |
| | ଅଗ୍ନି ହୋଇଲା ପୁତ୍ରରୂପ । | ତେଣେ ସେ ପୁରୂରବା ନୃପ | ।। | ୧୭୨ |
| | କରିଣ ଯାଗକୁ ବିଧାନ । | ଲଭିଲା ଗନ୍ଧର୍ବଭୁବନ | ।। | ୧୭୩ |
| | ଶ୍ରୀକୃଷ୍ଣପାଦପଦ୍ମଧ୍ୟାନେ । | ହରଷ ଦୀନବନ୍ଧୁ ମନେ | ।। | ୧୭୪ |
| | ନବମସ୍କନ୍ଧଗୀତ ଭଣେ । | ସୁଜନେ ତୋଷ ହୁଅ ତେଣେ | ।। | ୧୭୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀମଦୈଳୋପାଖ୍ୟାନଂ
ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।।

---
୧. ଅଗ୍ନି । ୨. 'ଆହବନୀୟ, ଗାର୍ହପତ୍ୟ ଓ ଦକ୍ଷିଣ' ଅଗ୍ନି ।

## ପଞ୍ଚଦଶ ଅଧ୍ୟାୟ

ତତଃ ପଞ୍ଚଦଶେ ଗାଧିରୈଳପୁତ୍ରାନ୍ୱୟେଽଜନି ।
ଯଦ୍‌ଦୌହିତ୍ରସୁତୋ ରାମଃ କାର୍ତ୍ତବୀର୍ଯ୍ୟମହନ୍ ରୁଷା ॥ ୧ ॥

ଶ୍ରୀବାଦରାୟଣିରୁବାଚ

୧ ହେ ନୃପ ! ପୁରୂରବାଙ୍କର । ଉର୍ବଶୀଗର୍ଭୁଁ ତଦନ୍ତର ॥ ୧
ଷଡ଼ କୁମର ହେଲେ ଜାତ । ଆୟୁ ନାମରେ ଆଦ୍ୟ ସୁତ ॥ ୨
ସତ୍ୟାୟୁ ଶ୍ରୁତାୟୁ ଯେ ବେନି । ରୟ ବିଜୟ ଜୟ ତିନି ॥ ୩
୨ ଯେ ଅଟେ ଶ୍ରୁତାୟୁର ସୁତ । ତାହାର ନାମ ବସୁମନ୍ତ ॥ ୪
ଯେ ପୁଣ ସତ୍ୟାୟୁତନୟ । ତାହାର ନାମ ଶ୍ରୁତଞ୍ଜୟ ॥ ୫
'ଏକ' ନାମରେ ରୟସୁତ । ଜୟର ତନୟ ଅମିତ ॥ ୬
୩ ବିଜୟସୁତ ନାମ ଭୀମ । କାଞ୍ଚନ ତା'ଠାରୁ ଜନମ ॥ ୭
ହୋତ୍ରକ ତାହାଠାରୁ ହେଲା । ଜହ୍ନୁ ତା' ଠାରୁ ସମ୍ଭବିଲା ॥ ୮
ଗଣ୍ଡୂଷ କରି ସେ ରାଜନ । ଗଙ୍ଗାକୁ କଲା ପୂର୍ବେ ପାନ ॥ ୯
ଜହ୍ନୁର ପୁରୁନାମେ ସୁତ । ବଳାକ ତାହାଠାରୁ ଜାତ ॥ ୧୦
୪ ଅଜକ ବଳାକର ସୁତ । କୁଶ ତା'ଠାରୁ ହେଲା ଜାତ ॥ ୧୧
କୁଶର କୁଶାମ୍ବୁ ସୃଞ୍ଜୟ । ବସୁ କୁଶନାଭ ଦ୍ୱିତୀୟ ॥ ୧୨
ଏ ଚାରି ତନୁଜ ପ୍ରସିଦ୍ଧି । କୁଶାମ୍ବୁସୁତ ହେଲା ଗାଧି ॥ ୧୩
୫ ଗାଧିର ସତ୍ୟବତୀନାମ । କନ୍ୟାଏ ହୋଇଲା ଜନମ ॥ ୧୪
ଋଚୀକ ବ୍ରାହ୍ମଣ ତାହାକୁ । ମାଗିଲେ ବିବାହ ହେବାକୁ ॥ ୧୫
କନ୍ୟାକୁ ଯୋଗ୍ୟ ନୋହେ ବର । ଏମନ୍ତ ଜାଣିଣ ମନର ॥ ୧୬
ସେହୁ ଭାର୍ଗବ ବ୍ରାହ୍ମଣକୁ । ଗାଧି କହିଲେ ଏ ବାକ୍ୟକୁ ॥ ୧୭
୬ ଯା'ଙ୍କର ଶ୍ୟାମ ଏକ କର୍ଣ୍ଣ । ଚନ୍ଦ୍ରର ପ୍ରାୟ ଦେହବର୍ଣ୍ଣ ॥ ୧୮
ଏ ରୂପେ ସହସ୍ର ତୁରଗ । କନ୍ୟାର ମୂଲ୍ୟ ଦିଅ ବେଗ ॥ ୧୯
ଆମ୍ଭ କନ୍ୟାକୁ ଏତେକ ହିଁ । ମୂଲ୍ୟପଣକୁ ନ ଯୋଗାଇ ॥ ୨୦
କୁଶବଂଶରେ ଯେଣୁ ଜାତ । ଆମ୍ଭେ କୌଶିକ ସୁବିଦିତ ॥ ୨୧
୭ ଏ ରୂପେ ମତ ତାହାଙ୍କର । ଜାଣି କରି ସେ ମୁନିବର ॥ ୨୨
ଗଲେ ବରୁଣନିକଟକୁ । ଆଣିଣ ସେ ଅଶ୍ୱମାନଙ୍କୁ ॥ ୨୩
ରାଜାଙ୍କୁ ନିବେଦନ କଲେ । କନ୍ୟାକୁ ବିବାହ ହୋଇଲେ ॥ ୨୪
୮ ପୁତ୍ରକୁ କାମନା କରିଣ । ସ୍ୱପତ୍ନୀ ଶାଶୁ ଦୁହେଁ ପୁଣ ॥ ୨୫
ଋଷିଙ୍କି ପ୍ରାର୍ଥନା କରନ୍ତେ । ବ୍ରାହ୍ମ କ୍ଷତ୍ରିୟ ବେନି ମନ୍ତ୍ରେ ॥ ୨୬
ସେ ମୁନି କରିଣ ଚରୁକୁ । ଗଲେକ ସ୍ନାନ କରିବାକୁ ॥ ୨୭
୯ ଭର୍ତ୍ତାର ଭାର୍ଯ୍ୟାଠାରେ ଯେଣୁ । ସ୍ନେହ ଅଧିକ ସେ କାରଣୁଁ ॥ ୨୮

ସତ୍ୟବତୀର ଚରୁ ଯେହି । ସେ ନିଶ୍ଚେ ଥିବ ଶ୍ରେଷ୍ଠ ହୋଇ ।।
ଏମନ୍ତ ମଣି ମାତା ତାକୁ । ମାଗିଲା ତାହାର ଚରୁକୁ ।।
ବ୍ରାହ୍ମଣ ମନ୍ତ୍ରରେ ଯେବଣ । ଚରୁ ମନ୍ତ୍ରିତ ତାହା ପୁଣ ।।
ମାତାକୁ ସତ୍ୟବତୀ ଦେଲା । ଯେ କ୍ଷତ୍ରମନ୍ତ୍ର ଚରୁ ଥିଲା[୧] ।।
ଆପଣେ ତାହା ସତ୍ୟବତୀ । ଭକ୍ଷଣ କଲା ଲଭି ପ୍ରୀତି ।।
୧୦ ମୁନି ଜାଣିଣ ସେ ଚରିତ । ପତ୍ନୀକି ବୋଇଲେ ଏମନ୍ତ ।।
ତୁ କଲୁ କଷ୍ଟ ଆଚରଣ । ଯେ ଘୋର ଦଣ୍ଡଧର ପୁଣ ।।
ଏ ରୂପେ ତୋହର ତନୟ । ଜନମ ହୋଇବ ନିଶ୍ଚୟ ।।
ବ୍ରହ୍ମଜ୍ଞାନୀଙ୍କ ମଧ୍ୟେ ସାର । ଜନମ ହେବ ଭ୍ରାତା ତୋର ।।
୧୧ ଏ ନୋହୁ ବୋଲି ସତ୍ୟବତୀ । ପ୍ରାର୍ଥନା କରନ୍ତେ ଝଟତି ।।
ଭାର୍ଗବ[୨] କହିଲେ ଉତ୍ତର । ତୋହର ନାତି ହେବ ଘୋର ।।
ତଦନନ୍ତରେ ତାର ଜାତ । [୩]ଜମଦଗ୍ନି ନାମରେ ସୁତ ।।
୧୨ ଯେ ଅଟେ ଅତିଶୟ ପୁଣ୍ୟ । ଲୋକଙ୍କୁ କରଇ ପାବନ ।।
ସେ ସତ୍ୟବତୀ ହେଲେ ନଦୀ । କୌଶିକୀ ନାମେ ଯେ ପ୍ରସିଦ୍ଧି ।।
ରେଣୁର ଯେ ଦୁହିତା ଜାତ । ରେଣୁକା ନାମରେ ବିଦିତ ।।
ତାକୁ ବିବାହ ହେଲେ ମୁନି । ଯାହାଙ୍କ ନାମ ଜମଦଗ୍ନି ।।
୧୩ ସେ ଜମଦଗ୍ନି ଋଷିଙ୍କର । ତା'ଠାରେ ଜନ୍ମିଲେ କୁମର ।।
ସେ ପୁତ୍ରେ ବସୁ ମଦ[୪] ଆଦି । ଜଗତେ ଅଟନ୍ତି ପ୍ରସିଦ୍ଧି ।।
ତହିଁରେ କନିଷ୍ଠ ଯେ ସୁତ । ରାମ ନାମରେ ସେ ବିଦିତ ।।
୧୪ ଯାହାକୁ ବାସୁଦେବଙ୍କର । ଅଂଶ ବୋଲନ୍ତି ସର୍ବ ନର ।।
ହୈହୟମାନଙ୍କର ବଂଶ । ଯେ କରିଅଛନ୍ତି ବିନାଶ ।।
ତିନି ସପତ ବାର ଯେହି । କଲେ ନିଃକ୍ଷତ୍ରିୟ ଏ ମହୀ ।।
୧୫ ଯେ ଅବ୍ରହ୍ମଣ୍ୟ ଭୂମିଭାର । ସଗର୍ବ କ୍ଷତ୍ରିୟନିକର ।।
ଯେ ବେନି ରଜତମ ଗୁଣ । ତେଣେ ଆବୃତ ଯେହୁ ପୁଣ ।।
କରନ୍ତେ ଅଳ୍ପ ଅପରାଧ । ସେମାନଙ୍କୁ ଯେ କଲେ ବଧ ।।

ଶ୍ରୀରାଜୋବାଚ

୧୬ ଅଜିତେନ୍ଦ୍ରିୟ ରାଜାମାନେ । ସେ ରାମଙ୍କର ଏ ଭୁବନେ ।।
କି ଦୋଷ କଲେ ଆଚରଣ । ଯେବଣ କାରଣରୁ ପୁଣ ।।
କ୍ଷତ୍ରିୟମାନଙ୍କର ବଂଶ । ଅନବରତେ ହେଲା ନାଶ ।।

ଶ୍ରୀବାଦରାୟଣିରୁବାଚ[୫]

୧୭ ହୈହୟଙ୍କର ଅଧୀଶ୍ୱର । ଅର୍ଜୁନ କ୍ଷତ୍ରିୟଙ୍କ ବର ।।

---

୧. ହେଲା । ୨. ଋଚୀକ । ୩. ହୋଇଲେ ଜମଦଗ୍ନି ସୁତ (ଖ) । ୪. ମନ । ୫. ଶ୍ରୀଶୁକ ଉବାଚ ।

ଯେ ନାରାୟଣଙ୍କର ଅଂଶ । ଦତ୍ତ ନାମରେ ଯେ ପ୍ରକାଶ ॥ ୫୮
ପରିଚର୍ଯ୍ୟାରେ ଅନୁଦିନ । ତାହାଙ୍କୁ କରି ଆରାଧନ ॥ ୫୯
୧୮ ଲଭିଲେ ଦଶ ଶତ ବାହୁ । ଶତ୍ରୁ ତାଙ୍କର ଥିଲେ ଯେହୁ ॥ ୬୦
ଭରସି ନ ପାରନ୍ତେ ସେହି । ଲଭିଲା ଏମନ୍ତ ଭାବ ହିଁ ॥ ୬୧
ଯେ ବା ଇନ୍ଦ୍ରିୟବୀର୍ଯ୍ୟ ତେଜ । ସମ୍ପତ୍ତି ବଳ ଯଶ ଓଜ ॥ ୬୨
ଏମାନେ ନୋହିବେ ନିଧନ । ଏ ରୂପେ ଲଭିଲା ରାଜନ ॥ ୬୩
୧୯ ଯୋଗ-ଈଶ୍ୱରଭାବ ଯେହି । ଲଭିଲା ଅଇଶ୍ୱର୍ଯ୍ୟକୁ ହିଁ ॥ ୬୪
ଯହୁଁ ଐଶ୍ୱର୍ଯ୍ୟେ ଅଣିମାଦି । ଗୁଣମାନଙ୍କର ପ୍ରସିଦ୍ଧି ॥ ୬୫
ହୋଇଣ ଅବିହତଗତି । ସକଳ ଭୁବନେ ନୃପତି ॥ ୬୬
ଭ୍ରମଣ କରଇ ଇଚ୍ଛାରେ । ତପନ[୧] ଯେମନ୍ତ ପ୍ରକାରେ ॥ ୬୭
୨୦ ମଦରେ ଉନମତ୍ତ ହୋଇ । ରେବାଜଳରେ ପୁଣ ସେହି ॥ ୬୮
ଯୁବତିରତ୍ନଙ୍କର ସଙ୍ଗେ । କ୍ରୀଡ଼ା କରନ୍ତେ ନାନାରଙ୍ଗେ ॥ ୬୯
ବଇଜୟନ୍ତୀ ନାମେ ମାଳ । ବହନ୍ତେ ଆପଣାର ଗଳ ॥ ୭୦
ଆପଣା ଭୁଜମାନଙ୍କରେ । ରୁନ୍ଧିଲା ନଦୀକି ବଳରେ ॥ ୭୧
୨୧ ରୁନ୍ଧନ୍ତେ ନଦୀପ୍ରବାହକୁ । ଜଳ ଲେଉଟିଲା ପଛକୁ ॥ ୭୨
ସେ ସ୍ଥାନେ ବସିଣ ରାବଣ । ପୂଜନ୍ତେ ଦେବତାଙ୍କୁ ପୁଣ ॥ ୭୩
ଭାସିଲା ଆପଣାର ସୈନ୍ୟ । ତା' ନ ସହିଲା ଦଶାନନ ॥ ୭୪
୨୨ କ୍ରୀଡ଼ା କରନ୍ତେ ସେ ଭୂପତି । ତା' ପରାଭବେ କରି ମତି ॥ ୭୫
ରାବଣ ମିଳନ୍ତେ ସେଠାରେ । ଯୁବତିମାନଙ୍କ ଆଗରେ ॥ ୭୬
ହେଳାରେ ତାହାକୁ ଧଇଲା । ମାହିଷ୍ମତୀରେ ବନ୍ଦୀ କଲା ॥ ୭୭
ଛାଡ଼ିଲା ପୁଣ ଅବଜ୍ଞାରେ । କପିକି ଯେସନ ପ୍ରକାରେ ॥ ୭୮
୨୩ ସେ ନୃପ ଏକ ହିଁ ଦିନରେ । ନିର୍ଜନ ବିପିନ ମଧ୍ୟରେ ॥ ୭୯
ମୃଗୟା ନିମିତ୍ତେ ଭ୍ରମଣ । କରନ୍ତେ ଅକସ୍ମାତେ ପୁଣ ॥ ୮୦
ଆଶ୍ରମେ ଜମଦଗ୍ନିଙ୍କର । ପ୍ରବେଶ ହେଲା ତଦନ୍ତର ॥ ୮୧
୨୪ ଯେତେକ ସୈନ୍ୟ ଥିଲେ ତାର । ଅମାତ୍ୟ ବାହନ ଆବର ॥ ୮୨
ସେମାନଙ୍କର ସହିତରେ । ସେ ଅର୍ଜୁନଙ୍କୁ ତଦନ୍ତରେ ॥ ୮୩
କାମଧେନୁରେ ତପୋଧନ । କଲେ ସେ ଅତିଥିପୂଜନ ॥ ୮୪
୨୫ ହୈହୟମାନଙ୍କ ସହିତେ । ସେ ବୀର ଅର୍ଜୁନ ତଦନ୍ତେ ॥ ୮୫
ଯେ ଅଇଶ୍ୱର୍ଯ୍ୟ ଆପଣାର । ତହିଁରୁ ଅଟଇ ଯେ ବର ॥ ୮୬
ଜମଦଗ୍ନିଙ୍କ ସତକାର । ତହିଁକି ନ କଲା ଆଦର ॥ ୮୭
ହୋମଧେନୁକୁ ନେମା ଅର୍ଥେ । କରିଛି ଅଭିଳାଷ ଚିତ୍ତେ ॥ ୮୮

୧. ପବନ ।

୨୬ ଗର୍ବରେ ଋଷିଙ୍କ ଧେନୁକୁ । ହରିବା ନିମିତ୍ତେ ଲୋକଙ୍କୁ ॥
ନୃପତି ଆଜ୍ଞା ଦେଲା ଯେଣୁ । ବତ୍ସାସହିତେ ତାକୁ ତେଣୁ ॥
ମାହିଷ୍ମତୀକି ନେଲେ ବଳେ । ସେ ଧେନୁ କାନ୍ଦନ୍ତେ ବିକଳେ ॥
୨୭ ଧେନୁକୁ ଘେନାଇଁ ରାଜନ । ଘରକୁ କରନ୍ତେ ଗମନ ॥
ରାମ ଅଇଲେ ଆଶ୍ରମକୁ । ଶୁଣିଣ ତା' ଦୁଷ୍ଟ ଭାବକୁ ॥
ଲଭିଲେ କ୍ରୋଧ ନିଜ ମନେ । ଉରଗ ଆଘାତେ ଯେସନେ ॥
୨୮ କବଚ ପରଶୁ ଯେ ଘୋର । ତୂଣୀରଯୁତ ଧନୁ ଆର ॥
ଧାଇଁଲେ ସେମାନଙ୍କୁ ଘେନି । ଦୁଃସହ ଅଟନ୍ତି ସେ ମୁନି ॥
ଯୂଥପତିକିଂ[1] ଅନୁସରି । ଯେସନେ ଧାମଇଁ କେଶରୀ ॥
୨୯ ତେଜେ ଯୁତ ସେ ଭୃଗୁବର । ବାଣ-ପରଶୁ-ଧନୁର୍ଧର ॥
ଯେ [2]କୃଷ୍ଣସାରର ଅଜିନ । କରି ଅଛନ୍ତି ତା' ବସନ ॥
ସୂର୍ଯ୍ୟକିରଣସମ କାନ୍ତି । ଯହିଁ ପ୍ରକାଶ ହୋଇଛନ୍ତି ॥
ସେ ଜଟାମାନଙ୍କରେ ଯୁତ । ଧାଇଁ ଆସୁଛନ୍ତି ତ୍ୱରିତ ॥
ପ୍ରବେଶ ହୁଅନ୍ତେ ପୁରକୁ । ଏ ରୂପେ ଦେଖିଲା ତାହାଙ୍କୁ ॥
୩୦ ପଦାତି ତୁରଗ କୁଞ୍ଜର । ଯେ ପୁଣ ରଥମାନେ ଆର ॥
ଗଦା ଖଡ଼୍‌ଗ ଋଷ୍ଟି ବାଣ । ଶକତିମାନେ ଯେବା ପୁଣ ॥
ଏଣେ ଯେ ଅତିଭୟଙ୍କର । ସପତଦଶ ସଂଖ୍ୟା ଯାର ॥
ତେତେକ ଅକ୍ଷୌହିଣୀ ବଳ । ପେଷିଲା ଅର୍ଜୁନ ଭୂପାଳ ॥
ରାମ ତାହାଙ୍କୁ ଏକା ହୋଇ । ବିନାଶ କଲେ କ୍ରୋଧ ବହି ॥
୩୧ ମନ ଅନିଳପ୍ରାୟ ହୋଇ । ଯାହାର ବୀର୍ଯ୍ୟ ପ୍ରକାଶଇ ॥
ଯେ ଶତ୍ରୁମାନଙ୍କର ସୈନ୍ୟ । ସଂଗ୍ରାମେ କରଇ ନିଧନ ॥
ପରଶୁପ୍ରହାର ଯେ କରେ । ସେ ରାମ ଯେ ଯଉଁ ଦିଗରେ ॥
ସମସ୍ତେ ସେହି ସେହି ଦିଗେ । ମରି ପଡ଼ିଲେ ଭୂମିଭାଗେ ॥
ଭୁଜ କନ୍ଧର ଉରୁମାନ । ତାଙ୍କର ହୋଇଅଛି ଛିନ୍ନ ॥
ହତ ହୋଇଲେ ତାହାଙ୍କର । ସାରଥି ବାହନ ଆବର ॥
୩୨ ରୁଧିରସମୂହ ଯହିଁରେ । ରହିଛି କର୍ଦମରୂପରେ ॥
ରାମକୁଠାର ସାୟକରେ । ସ୍ୱସୈନ୍ୟ ସେ ରଣଭୂମିରେ ॥
ସମସ୍ତେ ହୋଇଲେ ନିଧନ । ତାଙ୍କ କବଚ ଧ୍ୱଜମାନ ॥
ଧନୁ ଶରର ମଧ୍ୟ ହୋଇ । ଛିଡ଼ିଣ ପଡ଼ିଅଛି ମହୀ ॥
ଅର୍ଜୁନ ଏମନ୍ତ ଦେଖିଣ । ରୋଷେ ଅଇଲା ବେଗେ ପୁଣ ॥
୩୩ ଅର୍ଜୁନ ଏଥୁ ଅନନ୍ତରେ । ଆପଣା ଭୁଜମାନଙ୍କରେ ॥
ବାଣକୁ ପାଞ୍ଚଶ' ଧନୁରେ । ଯୋଚିଲା ଏକାବେଳକରେ ॥

୧. ହସ୍ତୀ । ୨. କୃଷ୍ଣସାର-ଅଜିନ = ମୃଗଚର୍ମ ।

| | | | | |
|---|---|---|---|---|
| | ରାମକୁ ମାରିବା ନିମିତ୍ତେ | । ଜଗତେ ଶସ୍ତ୍ରଧାରୀ ଯେତେ | ।। | ୧୨୧ |
| | ତାହାଙ୍କ ମଧ୍ୟରେ ଅଗ୍ରଣୀ | । ଅଟନ୍ତି ଯଉଁ ରାମ ପୁଣି | ।। | ୧୨୨ |
| | ଏକ ଧନୁ ଯେ ଧରିଥିଲେ | । ତକ୍ଷଣେ ତା' ସବୁ କାଟିଲେ | ।। | ୧୨୩ |
| ୩୪ | ଯୁଦ୍ଧରେ ଅଟନ୍ତି ସାଧନ | । ଯେ ବା ଅଚଳ ବୃକ୍ଷମାନ | ।। | ୧୨୪ |
| | ତାହାଙ୍କୁ ଆପଣା ହସ୍ତରେ | । ଫିଙ୍ଗିଣ ପୁଣି ସମରରେ | ।। | ୧୨୫ |
| | ଅର୍ଜୁନ ଆସନ୍ତେ ଧାଇଁଣ | । ଭୁଜମାନଙ୍କୁ ତାର ପୁଣ | ।। | ୧୨୬ |
| | କଠୋର ଅଟେ ଦାଢ଼ ଯାର | । ସେ ପରଶୁରେ ରାମ ବୀର | ।। | ୧୨୭ |
| | ବଳରେ କଲେକ ଛେଦନ | । ସର୍ପର ଫଣାକୁ ଯେସନ | ।। | ୧୨୮ |
| ୩୫ | ଖଣ୍ଡିତ ହେଲା ଭୁଜ ଯାର | । ସେ ଅର୍ଜୁନର ପୁଣି ଶିର | ।। | ୧୨୯ |
| | ଛେଦିଲେ ଜମଦଗ୍ନିସୁତ | । ଗିରିରୁ ଶୃଙ୍ଗକୁ ଯେମନ୍ତ | ।। | ୧୩୦ |
| | ପିତାର ମରନ୍ତେ ଅୟୁତେ | । ଭୟେ ପଳାଇଲେ ତା' ସୁତେ | ।। | ୧୩୧ |
| ୩୬ | ସେ ଶତ୍ରୁବୀରନିବାରଣ | । ଧେନୁକୁ ବତ୍ସା ସହିତେଣ | ।। | ୧୩୨ |
| | ତକ୍ଷଣେ ଲେଉଟାଇ ଆଣି | । ନିଜ ଆଶ୍ରମେ ମିଳି ପୁଣି | ।। | ୧୩୩ |
| | ପିତାକୁ ସମର୍ପଣ କଲା | । ଯେ ଧେନୁ କ୍ଲେଶ ଲଭିଥିଲା | ।। | ୧୩୪ |
| ୩୭ | ଆପଣା କଲା ଯଉଁ କର୍ମ | । ପିତାଙ୍କୁ ଭ୍ରାତାଙ୍କୁ ତା' ରାମ | ।। | ୧୩୫ |
| | ବର୍ଣ୍ଣିଲେ, ସେ କଥାକୁ ଶୁଣି | । କହିଲେ ଜମଦଗ୍ନି ପୁଣି | ।। | ୧୩୬ |
| ୩୮ | ହେ ରାମ ରାମ ! ମହାଭୁଜ | । କଲୁ ତୁ କଲୁଷକୁ ଆଜ | ।। | ୧୩୭ |
| | ଯେ ନୃପ ସର୍ବଦେବମୟ | । ବ୍ୟର୍ଥ[1] କଲୁ ଯା' ତାର କ୍ଷୟ | ।। | ୧୩୮ |
| ୩୯ | ଆମ୍ଭେ ବ୍ରାହ୍ମଣ ଆହେ ତାତ | । କ୍ଷମାରେ ହୋଇଲୁଁ ପୂଜିତ | ।। | ୧୩୯ |
| | ବ୍ରାହ୍ମ[2] ପଦକୁ ଯେହ୍ନେ ପୂର୍ବ | । ଲଭିଲେ ଦେବଗୁରୁ ଦେବ | ।। | ୧୪୦ |
| ୪୦ | ବ୍ରାହ୍ମଣଙ୍କର ଲକ୍ଷ୍ମୀ ଯେହି | । ସୂର୍ଯ୍ୟର ପ୍ରଭାପ୍ରାୟ ହୋଇ | ।। | ୧୪୧ |
| | କ୍ଷମାରେ ଦିଶେ ସେ ଶୋଭନ | । ଯେ ପୁଣି କ୍ଷମାବନ୍ତ ଜନ | ।। | ୧୪୨ |
| | ତାହାଙ୍କୁ ହୁଅନ୍ତି ସଂତୋଷ | । ଯେ ହରି ଜଗତର ଈଶ | ।। | ୧୪୩ |
| ୪୧ | ମୂର୍ଦ୍ଧାଭିଷେକୀ ଯେ ରାଜନ | । ବ୍ରହ୍ମବଧରୁ ତା' ନିଧନ | ।। | ୧୪୪ |
| | ଗୁରୁ ଅଟଇ ଜଗତରେ | । ତୁ ପୁଣି ତୀର୍ଥଙ୍କ ସେବାରେ | ।। | ୧୪୫ |
| | ଯମନିୟମେ ପାପ ହର | । ଚିତ୍ତକୁ ଦେଇ କୃଷ୍ଣଠାର | ।। | ୧୪୬ |
| | କୃଷ୍ଣ ଚରଣ ପଦ୍ମଧ୍ୟାନେ | । ହରଷ ଦୀନବନ୍ଧୁ ମନେ | ।। | ୧୪୭ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀପରଶୁରାମଚରିତଂ
ନାମ ପଞ୍ଚଦଶୋଽଧ୍ୟାୟଃ ।।

---

୧. ବୃଥା । ୨. ବ୍ରହ୍ମ ।

# ଷୋଡ଼ଶ ଅଧ୍ୟାୟ

ଷୋଡ଼ଶେଽର୍ଥାର୍ଜୁନସୁତୈର୍ଜମଦଗ୍ନୌ ହତେ ମୁହୁଃ ।
ରାମାଦ୍ କ୍ଷତ୍ରବଧଃ ପ୍ରୋକ୍ତୋ ବିଶ୍ୱାମିତ୍ରସ୍ୟ ଚାନ୍ୱୟଃ ।। ୧

## ଶ୍ରୀଶୁକ ଉବାଚ

୧ ହେ କୁରୁନନ୍ଦନ ପିତାର । ଆଜ୍ଞାକୁ ଲଭି ତଦନ୍ତର ।। ୧
ତୀର୍ଥଭ୍ରମଣ ସେ ପ୍ରକାରେ । କରି ବରଷକ ଅନ୍ତରେ ।। ୨
ଯେ ଅଟେ ଆପଣା ଆଶ୍ରମ । ତହିଁ ପ୍ରବେଶ ହେଲେ ରାମ ।। ୩
୨ ରେଣୁକା କେହୁଣି ଦିନରେ । ପ୍ରବେଶ ହୋଇଲା ଗଙ୍ଗାରେ ।। ୪
ତହିଁ ଅପସରାଙ୍କ ସଙ୍ଗେ । କ୍ରୀଡ଼ା କରୁଛି ନାନାରଙ୍ଗେ ।। ୫
ଦେଖିଲା ଗନ୍ଧର୍ବରାଜାଙ୍କୁ । ବହିଛି ଯେ ହେମ[୧] ମାଳାକୁ ।। ୬
୩ ସଲିଳ ଆଣିମାର ପାଇଁ । ନଦୀକି ଥିଲା ସେହୁ ଯାଇ ।। ୭
କ୍ରୀଡ଼ା କରନ୍ତେ ସେହୁ ଜଳେ । ତାହାକୁ ଦେଖନ୍ତେ ସେ କାଳେ ।। ୮
ଋଷିଙ୍କ ହୋମ ବେଳ ପୁଣ । ମନରେ ନ କଲା ସ୍ମରଣ ।। ୯
ଚିତ୍ରରଥର ଠାରେ କିଛି । ବାଞ୍ଛାକୁ ଯେଣୁ କରିଅଛି[୨] ।। ୧୦
୪ ଦେଖିଣ କାଳବିଳମ୍ବକୁ । ଶଙ୍କିଲା ମୁନିଙ୍କ ଶାପକୁ ।। ୧୧
ଆସି କଳସ ଆଗେ ଥୋଇ । ରହିଲା କୃତାଞ୍ଜଳି ହୋଇ ।। ୧୨
୫ ଭାର୍ଯ୍ୟାର ବ୍ୟଭିଚାର ଜାଣି । କୋପେ ବୋଇଲେ ମୁନି ପୁଣି ।। ୧୩
ହେ ପୁତ୍ରେ ! ଏ ପାପୀକି ମାର । ତାହା ସେ ନ କଲେ ସ୍ୱୀକାର ।। ୧୪
୬ ପିତାବଚନେ ରାମ ପୁଣ । ଭାଇଙ୍କି ମାତାର ସଙ୍ଗେଣ ।। ୧୫
[୩]ବିନାଶ କଲା ତତକାଳ । ତପ ସମାଧିର ଯେ ବଳ୍ ।। ୧୬
ପ୍ରକାଶ ଅଟେ ମୁନିଙ୍କର । ଯେଣୁ ତା' କରିଛି ଗୋଚର ।। ୧୭
୭ ସନ୍ତୋଷ ହୋଇ ମୁନି ତାଙ୍କୁ । ବୋଇଲେ ମାଗ ତୁ ବରକୁ ।। ୧୮
ଯେ ହୋଇଅଛନ୍ତି ନିଧନ । ସେମାନେ ଲଭନ୍ତୁ[୪] ଜୀବନ ।। ୧୯
ଜାଣିମେ ନାହିଁ ମରିବାର । ରାମ ବରିଲେ ଏହି ବର ।। ୨୦
୮ ନିଦ୍ରା ବିନାଶେ ଯେହ୍ନେ ଜନ । ଉଠଇ ତେଜିଣ ଶୟନ ।। ୨୧
କୁଶଳ ଲଭି ସେ ପ୍ରକାରେ । ସେମାନେ ଉଠିଲେ ସତ୍ୱରେ ।। ୨୨

---

୧. ପଦ୍ମ । ୨. ଘେନିଅଛି ।

୩. ''ଯଦି ମୁଁ ହତ ନ କରେ ତେବେ ମୋତେ ମଧ୍ୟ ପିତା ଅଭିଶାପ ଦେବାକୁ ସମର୍ଥ ଏବଂ ଯଦି ହତ କରେ ତେବେ ମୋ'ଠାରେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ମଧ୍ୟ ବଞ୍ଚାଇ ଦେବାକୁ ସମର୍ଥ'' । ଏହା ଜାଣି (ସ୍ୱାମୀ) ।

୪. ଲଭିବେ ।

| | | | | | |
|---|---|---|---|---|---|
| | ପିତାର ତପ ପରାକ୍ରମ | । | ଗୋଚର କରନ୍ତେ ସେ ରାମ | ॥ | ୨୩ |
| | ଯେ ଅଟେ ନିଜ ମିତ୍ର ଜନ | । | କଲେ ସେମାନଙ୍କୁ ନିଧନ | ॥ | ୨୪ |
| ୯ | ଯେ ଥିଲେ ଅର୍ଜୁନନନ୍ଦନେ | । | ନିଜ ପିତାର ବଧ ମନେ | ॥ | ୨୫ |
| | ସ୍ମରଣା କରନ୍ତେ ସେମାନେ | । | ହେ ନୃପ ! କହୁଣିସି ସ୍ଥାନେ | ॥ | ୨୬ |
| | ସୁଖ ନ ଲଭିଲେ ସେ କେହି | । | ରାମ ବୀର୍ଯ୍ୟରେ ତାପି ହୋଇ | ॥ | ୨୭ |
| ୧୦ | ଆଶ୍ରମୁଁ ଏକଦିନକରେ | । | ଭାଇମାନଙ୍କ ସଙ୍ଗତରେ | ॥ | ୨୮ |
| | ରାମ ଯାଆନ୍ତେ ବିପିନକୁ | । | ସେମାନେ ଲଭିଲେ ଛିଦ୍ରକୁ | ॥ | ୨୯ |
| | ବୈର ସାଧିବାର ନିମିତ୍ତ | । | ଆସି ହୋଇଲେ ଉପଗତ | ॥ | ୩୦ |
| ୧୧ | ଅଛନ୍ତି ଅଗ୍ନିହୋତ୍ର ଘରେ | । | ମନକୁ ଭଗବାନଠାରେ | ॥ | ୩୧ |
| | କରିଅଛନ୍ତି ନିବେଶିତ | । | ସେମାନେ ଦେଖିଣ ଏମନ୍ତ | ॥ | ୩୨ |
| | ମୁନିଙ୍କି କଲେ ସେ ନିଧନ | । | ପାପେ ନିଶ୍ଚୟ ତାଙ୍କ ମନ | ॥ | ୩୩ |
| ୧୨ | ରାମଜନନୀ ହୋଇ ଦୀନ | । | କରନ୍ତେ ବହୁତ ପ୍ରାର୍ଥନ | ॥ | ୩୪ |
| | କ୍ଷତ୍ରିୟ ଅଧମ ସେମାନେ | । | ଅତିଦାରୁଣ ଏ ଭୁବନେ | ॥ | ୩୫ |
| | ବଳେ ଛେଦିଣ ମୁନିଶିର | । | ଘେନିଣ ଗଲେ ନିଜ ପୁର | ॥ | ୩୬ |
| ୧୩ | ଯେ ଅଟେ ଦୁଃଖ ଶୋକ ଦୁଇ | । | ତେଣେ ରେଣୁକା ଆର୍ତ୍ତ ହୋଇ | ॥ | ୩୭ |
| | ଆପଣା ଇଚ୍ଛାରେ ଆପଣ | । | ଶରୀରେ ପ୍ରହାରନ୍ତେ ପୁଣ | ॥ | ୩୮ |
| | ହେ ରାମ ରାମ ଆହେ ତାତ | । | ଉଚ୍ଚରେ ଡାକିଲା ଏମନ୍ତ | ॥ | ୩୯ |
| ୧୪ | ହା ରାମ ଏମନ୍ତ ପ୍ରକାରେ | । | ଯେ ଆର୍ତ୍ତଧ୍ୱନି ତା' ଦୂରରେ | ॥ | ୪୦ |
| | ଥାଇ ଶ୍ରବଣ କରି ରାମ | । | ତ୍ୱରାଏ ମିଳିଣ ଆଶ୍ରମ | ॥ | ୪୧ |
| | ପିତାଙ୍କୁ କଲେ ଦରଶନ | । | ଲଭିଅଛନ୍ତି ଯେ ନିଧନ | ॥ | ୪୨ |
| ୧୫ } | ତେଣୁ ଯେ ଜାତ ଦୁଃଖ ରୋଷ | । | ଯେ ଶୋକ ଆର୍ତ୍ତି ଅମରଷ[1] | ॥ | ୪୩ |
| ୧୬ } | ସେ ବେଗେ ହୋଇଲେ ମୋହିତ | । | ହେ ସାଧୁ ଧର୍ମିଷ୍ଠ ହେ ତାତ | ॥ | ୪୪ |
| | ଆମ୍ଭମାନଙ୍କୁ ଛାଡ଼ିକରି | । | ତୁମ୍ଭେ ଗମିଲ ସ୍ୱର୍ଗପୁରୀ | ॥ | ୪୫ |
| | ଏ ରୂପେ ରୋଦନ କରିଣ | । | ପିତାର ଶରୀରକୁ ପୁଣ | ॥ | ୪୬ |
| | ନିବେଶି ଭାଇଙ୍କର ଠାରେ | । | ସ୍ୱୟେଂ ପରଶୁ ଧରି କରେ | ॥ | ୪୭ |
| | କ୍ଷତ୍ରିୟମାନଙ୍କ ନିଧନ | । | ନିମିତ୍ତେ ରାମ କଲେ ମନ | ॥ | ୪୮ |
| ୧୭ | ଯେ ବ୍ରହ୍ମହତ୍ୟା ଛନ୍ତି କରି | । | ତାଙ୍କ ସକାଶୁଁ ହତଶିରୀ | ॥ | ୪୯ |
| | ଯେ ମାହିଷ୍ମତୀ ପୁର ପୁଣ | । | ରାମ ସେ ପୁରକୁ ଯାଇଣ | ॥ | ୫୦ |
| | ସେ ଯେତେ ଅର୍ଜୁନ କୁମରେ | । | ସେମାନଙ୍କର ମସ୍ତକରେ | ॥ | ୫୧ |
| | ହେ ନୃପ ! ନଗର-ମଧ୍ୟର | । | ନିର୍ମାଣ କଲେ ଗିରିବର | ॥ | ୫୨ |
| ୧୮ } | ରକତରେ ସେମାନଙ୍କର | । | ନିର୍ମାଣ ହେଲେ ନଦୀ ଘୋର | ॥ | ୫୩ |
| ୧୯ } | ବ୍ରାହ୍ମଣଠାରେ ଭକ୍ତ ନୋହି | । | ଅଛନ୍ତି ଯେତେ ଜନ ମହୀ | ॥ | ୫୪ |

୧. ଅସହ୍ୟ ।

ସେ ଲୋକମାନଙ୍କର ଭୀତି । ଯେ ନଦୀ କରେ ଉତପତି ।। ୫୫
ଏ ରୂପେ ଯେ ଆନ କ୍ଷତ୍ରିୟ । ସେମାନେ କରନ୍ତେ ଅନ୍ୟାୟ ।। ୫୬
ଯେ ଅଟେ ପିତାର ମରଣ । ସେ କଥା ନିମିତ୍ତ କରିଣ ।। ୫୭
[୧]ଏକବିଂଶତି ବାର ମହୀ । କ୍ଷତ୍ରିୟଶୂନ୍ୟ କରି ତହିଁ ।। ୫୮
ସ୍ୟମନ୍ତପଞ୍ଚକ ନାମରେ । ଯେ ତୀର୍ଥ ବିଦିତ ଭୂମିରେ ।। ୫୯
ନବ ସଂଖ୍ୟାରେ ହ୍ରଦ ତହିଁ । କଲେ ରକତଜଳ ମହୀ ।। ୬୦
୨୦ ପିତାର କଳେବରେ ଶିର । ସନ୍ଧାନ କରି ତଦନ୍ତର ।। ୬୧
ଆଧାନ କରିଣ ବହ୍ନିରେ । ହରିଙ୍କି ଯାଗମାନଙ୍କରେ ।। ୬୨
ପୂଜିଲେ ସର୍ବଦେବମୟ । ଯେ ଆତ୍ମା ଅଟନ୍ତି ନିଶ୍ଚୟ ।। ୬୩
୨୧ ହୋତାଙ୍କୁ ଦେଲେ ପୂର୍ବଦିଗ । ବ୍ରହ୍ମାଙ୍କୁ ଦକ୍ଷିଣ ବିଭାଗ ।। ୬୪
ପ୍ରତୀଚୀ ଦିଗ ଅଧ୍ୱର୍ଯ୍ୟୁଙ୍କୁ । ଉତ୍ତର ଦିଗ ଉଦ୍‌ଗାତାଙ୍କୁ ।। ୬୫
୨୨ ଯେ ଅବାନ୍ତର ଦିଗମାନ । ଆନଙ୍କୁ କଲେ ତା' ପ୍ରଦାନ ।। ୬୬
ମଧ୍ୟରେ ଯେ ବା ଭୂମି ଆନ । [୨]କଲେ ତା' କଶ୍ୟପଙ୍କୁ ଦାନ ।। ୬୭
ଯେ ଆର୍ଯ୍ୟାବର୍ତ୍ତ ନାମେ ମହୀ । ଉପଦ୍ରଷ୍ଟାଙ୍କୁ ଦେଲେ ତାହି ।। ୬୮
ତହିଁରୁ ଭିନ୍ନ ଯେ ଧରଣୀ । ସଦସ୍ୟଙ୍କୁ ତା' ଦେଲେ ପୁଣି ।। ୬୯
୨୩ ଯେ ବ୍ରହ୍ମନଦୀ[୩] ସରସ୍ୱତୀ । ନାମରେ ଲଭିଅଛି ଖ୍ୟାତି ।। ୭୦
ତହିଁରେ ଅବଭୃଥ[୪] ସ୍ନାନ । କରି ଖଣ୍ଡିଲେ ପାପମାନ ।। ୭୧
ମେଘ ଅଭାବେ ରବିପ୍ରାୟ । ଦୀପ୍ତ ଦିଶିଲେ ଅତିଶୟ ।। ୭୨
୨୪ ସ୍ମୃତିଲକ୍ଷଣ ଅଟେ ଯାର । ଲଭି ସେ ଆପଣା ଶରୀର ।। ୭୩
ରାଜପୂଜିତ[୫] ଯେ ଅଟନ୍ତି । ସେ ଜମଦଗ୍ନି ମହାଯତି ।। ୭୪
ଋଷିମାନଙ୍କର ମଣ୍ଡଳେ । ସପ୍ତମ ହୋଇଲେ ସେ କାଳେ ।। ୭୫
୨୫ ଜମଦଗ୍ନିଙ୍କର ନନ୍ଦନ । ଯେ ରାମ କମଳଲୋଚନ ।। ୭୬
ହେ ନୃପ ! ଯଉଁ ମନ୍ୱନ୍ତର । ଆଗରେ ହୋଇବ ପ୍ରଚାର ।। ୭୭
ବେଦମାନଙ୍କୁ ପ୍ରବର୍ତ୍ତାଇ । ଯେ ଋଷିମାନେ ହେବେ ତହିଁ ।। ୭୮
ତାଙ୍କ ମଧ୍ୟରେ ଏକ ଜଣ । ବିଖ୍ୟାତ ହୋଇବେ ସେ ପୁଣ ।। ୭୯
୨୬ ପ୍ରଶାନ୍ତମତି ଯେ ଅଟନ୍ତି । ଯେ ଦଣ୍ଡ-ନ୍ୟାସ କରିଛନ୍ତି ।। ୮୦
ମହେନ୍ଦ୍ର ପର୍ବତେ ଆଜ ହିଁ । ନିବାସ କରିଛନ୍ତି ସେହି ।। ୮୧

---

୧. ଅର୍ଜୁନର ପୁତ୍ରମାନେ ଜମଦଗ୍ନିଙ୍କ ଶିରଚ୍ଛେଦନ କଲାବେଳେ ରେଣୁକା ଏକୋଇଶ ଥର ନିଜ ଛାତିକୁ ତାଡ଼ନ କରିଥିଲେ । ତେଣୁ ରାମ ସେତିକି ଥର ପୃଥିବୀକୁ କ୍ଷତ୍ରିୟଶୂନ୍ୟ କଲେ । (ସ୍ୱାମୀ)

୨. କଲେ କଶ୍ୟପଙ୍କୁ ପ୍ରଦାନ । ୩. ମହାନଦୀ ।

୪. ଅବଭୃଥ = ଯଜ୍ଞାବଶେଷ ସ୍ନାନ । ୫. ରାମପୂଜିତ ।

| | | | | | |
|---|---|---|---|---|---|
| | ଯାହା ଚରିତ ସିଦ୍ଧଗଣେ | । | ଗାଆନ୍ତି ଗନ୍ଧର୍ବ ଚାରଣେ | ।। | ୮୨ |
| ୨୭ | ଆତ୍ମା ସକଳ ପ୍ରାଣୀଙ୍କର | । | ଯେ ସ୍ୱୟେଂ ଅଟନ୍ତି ଈଶ୍ୱର | ।। | ୮୩ |
| | ଏମନ୍ତ ପ୍ରକାରେ ସେ ହରି | । | ଭୃଗୁବଂଶରେ ଅବତରି | ।। | ୮୪ |
| | ବହୁତ ନୃପଙ୍କୁ ମାଇଲେ | । | ଯେ ଭୂମିଭାର ହୋଇଥିଲେ | ।। | ୮୫ |
| ୨୮ | ଗାଧିର ହୋଇଲା ତନୟ | । | ତେଜସ୍ୱୀ ଦୀପ୍ତ ଅଗ୍ନିପ୍ରାୟ | ।। | ୮୬ |
| | ତପସ୍ୟା ପ୍ରଭାବେ ଯେ ପୁଣ | । | କ୍ଷତ୍ରିୟଭାବକୁ ଛାଡ଼ିଣ | ।। | ୮୭ |
| | ଯେ ଅଛି ବ୍ରାହ୍ମଣଙ୍କ ଠାରେ | । | ସେ ତେଜ ଲଭିଲା ନିର୍ଭରେ | ।। | ୮୮ |
| ୨୯ | ହେ ନୃପ ! ଶଏ ଏକ ସୁତ | । | ବିଶ୍ୱାମିତ୍ରଙ୍କ ଠାରୁ ଜାତ | ।। | ୮୯ |
| | ଯେ ଜାତ ତନୁଜ ମଧ୍ୟମ | । | ତାହାର ମଧୁଛନ୍ଦା ନାମ | ।। | ୯୦ |
| | ତେଣୁ ସମସ୍ତେ ଯଥାକ୍ରମେ | । | [1]ବିଖ୍ୟାତ ମଧୁଛନ୍ଦାନାମେ | ।। | ୯୧ |
| ୩୦ | ଯାହାର ଶୁନଃଶେଫ ନାମ | । | ଯେ ଭୃଗୁବଂଶରେ ଜନମ | ।। | ୯୨ |
| | [2]ଯେ ଅଟେ ଅଜୀଗର୍ତ୍ତସୁତ | । | ପଛେ ହୋଇଲା ଦେବରାତ[3] | ।। | ୯୩ |
| | ତାହାକୁ ବିଶ୍ୱାମିତ୍ର ମୁନି | । | ନିଜ ତନୟ କରି ମାନି | ।। | ୯୪ |
| | ପୁତ୍ରଙ୍କୁ ବୋଇଲେ ବଚନ | । | ଏହାକୁ ଜ୍ୟେଷ୍ଠ କରି ମାନ | ।। | ୯୫ |
| ୩୧ | ହରିଶ୍ଚନ୍ଦ୍ରର ଯାଗେ ଯାକୁ | । | ପୁରୁଷ ପଶୁ ହୋଇବାକୁ | ।। | ୯୬ |
| | ତାତ ବିକିଲା ପୂର୍ବକାଳେ | । | ସେ ପୁଣି ପଶୁବନ୍ଧବେଳେ | ।। | ୯୭ |
| | ଯେ ପ୍ରଜାପତି ଆଦି ହୋଇ | । | ଦେବତାମାନେ ପୂଜ୍ୟ ତହିଁ | ।। | ୯୮ |
| | କରିଣ ସେମାନଙ୍କୁ ସ୍ତୁତି | । | ଲଭିଲା ପଶୁବନ୍ଧୁଁ ମୁକ୍ତି | ।। | ୯୯ |
| ୩୨ | ଯାହାକୁ ଯାଗସମୟରେ | । | ସଂତୋଷ ହୋଇଣ ଅମରେ | ।। | ୧୦୦ |
| | ରଖିଲେ ତେଣୁ ଦେବରାତ | । | ନାମେ ସେ ଶୁନଃଶେଫ ଖ୍ୟାତ | ।। | ୧୦୧ |

---

୧. ''ଲିଙ୍ଗସମବାୟନ୍ୟାୟେନ ପ୍ରାଣଭୃତ ଉପଧାବତୀତିବତ୍'' (ସ୍ୱାମୀ) । ତଥା ଚ ଶ୍ରୁତିଃ -''ତସ୍ୟ ହ ବିଶ୍ୱାମିତ୍ରସ୍ୟ ଏକଶତଂ ପୁତ୍ରା ଆସୁଃ । ପଞ୍ଚାଶଦେବ ଜ୍ୟାୟାଂସୋ ମଧୁଛନ୍ଦସଃ ପଞ୍ଚାଶଦ୍ କନୀୟାଂସଃ''– ଅର୍ଥାତ୍ ବିଶ୍ୱାମିତ୍ରଙ୍କର ଶହେ ଏକ ପୁଅ ଥିଲେ । ସେଥିଭିତରୁ ପଚାଶ ଜଣ ମଧୁଛନ୍ଦାଙ୍କଠାରୁ ବଡ଼ ଥିଲେ ଏବଂ ପଚାଶ ଜଣ ସାନ ଥିଲେ ।

ବିଶ୍ୱାମିତ୍ରଙ୍କ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଥିଲେ ଦେବରାତ ଯେ କି ଭୃଗୁବଂଶଜାତ ଏବଂ ଅଜୀଗର୍ତ୍ତଙ୍କ ପୁତ୍ର । ସେଥିପାଇଁ ଆଶ୍ୱଳାୟନ ଏବଂ ବୌଧାୟନ ପ୍ରଭୃତି ସୂତ୍ରକାରଗଣ କୌଶିକଗୋତ୍ରୀମାନଙ୍କର ଦେବରାତପ୍ରବର ବୋଲି କହିଅଛନ୍ତି । ଯେ କୌଣସି ପ୍ରବର ସେହି ବଂଶରେ ଅବାନ୍ତର ଭେଦମାତ୍ର, କିନ୍ତୁ ବଂଶାନ୍ତର ନୁହେଁ ।

ତଥା ଚ ସ୍ମୃତିଃ- ଏକ ଏବ ଋଷିର୍ଯାବତ୍ ପ୍ରବରେଷ୍ୱନୁବର୍ତ୍ତତେ ।

ତାବତ୍ ସମାନଗୋତ୍ରତ୍ୱଂ ବିନା ଭୃଗ୍ୱଙ୍ଗିରୋଗଣାତ୍ ।।

ଅର୍ଥାତ୍ ଭୃଗୁ ଏବଂ ଅଙ୍ଗିରାଗଣକୁ ଛାଡ଼ି ଜଣେ ଋଷି ପ୍ରବରମାନଙ୍କରେ ଥିବା ପର୍ଯ୍ୟନ୍ତ ଗୋତ୍ର ସମାନ ହୋଇଥାଏ ।

୨. ଯେ ଅଜୀଗର୍ତ୍ତ ଦେଶେ ସ୍ଥିତ ।   ୩. ଦେବଙ୍କ ଦ୍ୱାରା ରକ୍ଷିତ ।

| | | | | | |
|---|---|---|---|---|---|
| | ଭୃଗୁବଂଶରେ ଜନ୍ମିଥିଲା | । | ଗାଧିବଂଶରେ ଯେ ମିଶିଲା | ॥ | ୧୦୨ |
| ୩୩ | ଯେ ମଧୁଚ୍ଛନ୍ଦା ଜ୍ୟେଷ୍ଠମାନେ | । | ତା' ଭଲ ନ ମଣିଲେ ମନେ | ॥ | ୧୦୩ |
| | ମୁନି[୧] ତାହାଙ୍କୁ କ୍ରୋଧ କଲେ | । | ଏମନ୍ତ ରୂପେ ଶାପ ଦେଲେ | ॥ | ୧୦୪ |
| | ଦୁର୍ଜନ ଅଟ ତୁମ୍ଭେମାନେ | । | ମ୍ଳେଚ୍ଛ ହୁଅସି ଏ ଭୁବନେ | ॥ | ୧୦୫ |
| ୩୪ | କନିଷ୍ଠ ଯେ ପଞ୍ଚାଶ ଭାଇ | । | ସେମାନଙ୍କର ସଙ୍ଗେ ଥାଇ | ॥ | ୧୦୬ |
| | ବୋଇଲେ ମଧୁଚ୍ଛନ୍ଦା ପୁଣି | । | ତୁମ୍ଭେ ଯା' ଆଜ୍ଞା ଦେବ ଜାଣି | ॥ | ୧୦୭ |
| | ଜ୍ୟେଷ୍ଠ କନିଷ୍ଠ ଭାବ ଦୁଇ | । | ଯହିଁ ରଖିବ ଥିବୁଁ ତହିଁ | ॥ | ୧୦୮ |
| | ପିତାକୁ ତୋଷି ଏ ବଚନେ | । | କନିଷ୍ଠ ମଧୁଚ୍ଛନ୍ଦାମାନେ | ॥ | ୧୦୯ |
| ୩୫ | ଶୁନଃଶେଫଙ୍କୁ ଜ୍ୟେଷ୍ଠ କଲେ | । | ଯେ ମନ୍ତ୍ରମାନ[୨] ଜାଣେ ଭଲେ | ॥ | ୧୧୦ |
| | ଆମ୍ଭେ କନିଷ୍ଠ ହେବୁଁ ତୋର | । | ବୋଇଲେ ଏମନ୍ତ ଉତ୍ତର | ॥ | ୧୧୧ |
| | କନିଷ୍ଠ ଯେ ପଞ୍ଚାଶ ପୁତ୍ର | । | ତାଙ୍କୁ ବୋଇଲେ ବିଶ୍ୱାମିତ୍ର | ॥ | ୧୧୨ |
| | ସମସ୍ତେ ହୁଅ ପୁତ୍ରବନ୍ତ | । | ରଖନ୍ତେ ମୋହର ମହତ | ॥ | ୧୧୩ |
| | ଜଗତେ ପୁତ୍ରବନ୍ତ ଭାବେ | । | ମୋତେ ନିର୍ବାହ କଲ ଏବେ | ॥ | ୧୧୪ |
| ୩୬ | ଆହେ କୁଶିକମାନେ ଶୁଣ | । | ଏ ଦେବରାତ ବୀର ପୁଣ | ॥ | ୧୧୫ |
| | କୌଶିକ ହୋଇଲା ବିଦିତ | । | ଏହାକୁ ହୁଅ ଅନୁଗତ | ॥ | ୧୧୬ |
| | ଯେ ଆନେ ଅଷ୍ଟକ ହାରୀତ | । | ଜୟ ଆବର କ୍ରତୁମନ୍ତ | ॥ | ୧୧୭ |
| | ଏ ଆଦି ଯେତେ ହେଲେ ଜାତ | । | ସମସ୍ତେ ଦେବରାତ ସୁତ | ॥ | ୧୧୮ |
| ୩୭ | ଶାପକୁ ଲଭିଲେ ଥୋକାଏ | । | ଅନୁଗ୍ରହକୁ କେହି ପୋଏ | ॥ | ୧୧୯ |
| | ଆନକୁ ପୁଣ ପୁତ୍ରଭାବେ | । | ସ୍ୱୀକାର କଲେ ମୁନି ତେବେ | ॥ | ୧୨୦ |
| | କୌଶିକ ଗୋତ୍ର ଏ ରୂପରେ[୩] | । | ନାନାପ୍ରକାର ଏ ସଂସାରେ | ॥ | ୧୨୧ |
| | ପ୍ରବରଭେଦକୁ ଲଭିଲା | । | [୪]ଜ୍ୟେଷ୍ଠ କନିଷ୍ଠ ଜ୍ୟେଷ୍ଠ ହେଲା | ॥ | ୧୨୨ |
| | ଶ୍ରୀକୃଷ୍ଣ ଚରଣନଳିନ | । | ଚିନ୍ତା କରିଣ ଅନୁଦିନ | ॥ | ୧୨୩ |
| | ହରଷ ଦୀନବନ୍ଧୁ ମତି | । | ଯେଣେ ନାଶିବ ଭବଭୀତି | ॥ | ୧୨୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀପରଶୁରାମଚରିତଂ ନାମ
ଷୋଡ଼ଶୋଽଧ୍ୟାୟଃ ॥

---

୧. ମୁନି = ବିଶ୍ୱାମିତ୍ର । ୨. ''କସ୍ୟ ନୂନଂ କତମସ୍ୟାମୃତାନାମ୍'' ଇତ୍ୟାଦି ମନ୍ତ୍ର ।
୩. ପ୍ରକାରେ । ୪. ଦେବରାତଜ୍ୟେଷ୍ଠତ୍ୱେନ ତଦ୍ ପ୍ରକଳ୍ପିତମ୍ । (ସ୍ୱାମୀ)

## ସପ୍ତଦଶ ଅଧ୍ୟାୟ

ଆୟୋଃ ସପ୍ତଦଶେ ତ୍ୱୈଳଜ୍ୟେଷ୍ଠପୁତ୍ରସ୍ୟ ପଞ୍ଚସୁ ।
ସୁତେଷୁ କ୍ଷତ୍ରବୃଦ୍ଧାଦିଚତୁର୍ଣ୍ଣାଂ ବଂଶବର୍ଣ୍ଣନମ୍ ।। ୧

ଶ୍ରୀବାଦରାୟଣିରୁବାଚ

୧ [1]ଯେ ଆୟୁ ପୁରୂରବା ସୁତ । ତା' ଠାରୁ ପଞ୍ଚପୁତ୍ର ଜାତ ।। ୧
ନହୁଷ କ୍ଷତ୍ରବୃଦ୍ଧ ହୁଇ[2] । ରଜି ରାଭ[3] ଯେ ବେନି ଭାଇ ।। ୨
୨-୩ ହେ ନୃପବର ! ଆନ ସୁତ । ଅନେନା[4] ନାମରେ ବିଦିତ ।। ୩
ଯେ କ୍ଷତ୍ରବୃଦ୍ଧ ନାମେ ପୁଣ । କହିବା ତାର ବଂଶ ଶୁଣ ।। ୪
କ୍ଷତ୍ରବୃଦ୍ଧର ଯଉଁ ସୁତ । ସୁହୋତ୍ର ନାମରେ ବିଦିତ ।। ୫
ତାହାର ହେଲେ ସୁତ ତିନି । କାଶ୍ୟ କୁଶ ନାମରେ ବେନି ।। ୬
ତୃତୀୟ ଗୃତ୍ସମଦ ନାମ । ତା' ଠାରୁ ଶୁନକ ଜନମ ।। ୭
ଶୌନକ ଶୁନକର ସୁତ । ଋଷିପ୍ରବର ସେ ବିଦିତ ।। ୮
ସେହୁ ବହୁତ ଋଚମାନ । କରି ଅଛନ୍ତି ଅଧ୍ୟୟନ ।। ୯
୪ କାଶ୍ୟର କାଶି ନାମେ ସୁତ । ତା' ପୁତ୍ର ରାଷ୍ଟ୍ର ନାମେ ଖ୍ୟାତ ।। ୧୦
ତା'ଠାରୁ ଦୀର୍ଘତମ ନାମ । ତନୟ ହୋଇଲା ଜନମ ।। ୧୧
ଦୀର୍ଘତମର ଯେ ତନୟ । ସେ ଧନ୍ୱନ୍ତରି ମହାଶୟ ।। ୧୨
ବୈଦ୍ୟବିଷୟ ଶାସ୍ତ୍ର ଯେହି । ତା' ସେ ଅଛନ୍ତି ପ୍ରବର୍ତ୍ତାଇ ।। ୧୩
ଯଜ୍ଞଭୋଗତା[5] ସେ ପ୍ରକାଶ । ବାସୁଦେବଙ୍କର ସେ ଅଂଶ ।। ୧୪
ସ୍ମରଣମାତ୍ର କଲେ ଲୋକ । ନାଶ କରନ୍ତି ରୋଗଦୁଃଖ ।। ୧୫
୫-୬ ତାହାଙ୍କ ପୁତ୍ର କେତୁମନ୍ତ । ତାଠାରୁ ଭୀମରଜ[6] ଜାତ ।। ୧୬
ଭୀମରଜର ଦିବୋଦାସ । ତାଠାରୁ ଦ୍ୟୁମନ୍ତ ପ୍ରକାଶ ।। ୧୭
ସେ ଦ୍ୟୁମନ୍ତକୁ ପ୍ରତର୍ଦ୍ଦନ । ନାମେ ସ୍ମରନ୍ତି ସର୍ବଜନ ।। ୧୮
ସେ ଶତ୍ରୁଜିତ ନାମେ ଖ୍ୟାତ । ଋତଧ୍ୱଜ ହିଁ ସେ ବିଦିତ ।। ୧୯
ସେ କୁବଳୟାଶ୍ୱ ନାମରେ । ବିଖ୍ୟାତ ପୁଣ ଜଗତରେ ।। ୨୦
ଅଳର୍କ ଆଦି ନାମ[7] ସୁତ । ତା' ଠାରୁ ହୋଇଲେ ବିଦିତ ।। ୨୧
୭ ଅଳର୍କନୃପତିରୁ ଆନ । ଯୁବା ହୋଇଣ ହେ ରାଜନ ।। ୨୨

---

୧. ଶ୍ରୀକୃଷ୍ଣାବତାରପ୍ରସ୍ତାବନିମିତ୍ତ ଏଠାରେ ପୁରୂରବାଦିକ୍ରମେ ବଂଶାନୁବର୍ଣ୍ଣନ ପ୍ରକ୍ରାନ୍ତ ହୋଇଅଛି । ଯାହାଙ୍କ ବଂଶରେ ଶ୍ରୀକୃଷ୍ଣ ଅବତରି ଥିଲେ ତାଙ୍କ ବଂଶ ଅତି ବିସ୍ତୃତ ହୋଇଥିବାରୁ ଅନ୍ତେ ନିରୂପିତ ହୋଇଅଛି । ଏଣୁ ପୁରୂରବାର ପଞ୍ଚ କନିଷ୍ଠ ପୁତ୍ରଙ୍କର ବଂଶମାନ କହି ବର୍ତ୍ତମାନ ପ୍ରଥମ ପୁତ୍ରର ବଂଶ କହୁଅଛନ୍ତି ।

୨. ହୋଇ ।   ୩. ରମ୍ଭ ।   ୪. ଅନେନା = ଯାହାର ଏନଃ (ପାପ) ନାହିଁ ।

୫. ଭୋଗତା = 'ଭୋକ୍ତା' ଶବ୍ଦଜ ।   ୬. ଭୀମରଥ ।   ୭. ନାନା ।

ଷାଠିଏ ସହସ୍ର ବଷର । ଷାଠିଏ ଶତ ହିଁ ଆବର ।। ୨୩
ଏତେ ସମୟଯାଏ ମହୀ । କେହୁଣି ନୃପ ଭୁଞ୍ଜି ନାହିଁ ।। ୨୪
୮ ଅଳର୍କଠାରୁ ହେଲା ଜାତ । ସନ୍ତତି ନାମେ ଏକ ସୁତ ।। ୨୫
୯ ସୁନୀତ[1] ତାହାର ନନ୍ଦନ । ସୁନୀତସୁତ ନିକେତନ[2] ।। ୨୬
ତାହାର ଧର୍ମକେତୁ ସୁତ । ତା'ଠାରୁ ସତ୍ୟକେତୁ ଜାତ ।। ୨୭
ସେ ସତ୍ୟକେତୁ ନରନାଥ । ଧୃଷ୍ଟକେତୁର ଅଟେ ତାତ ।। ୨୮
ଧୃଷ୍ଟକେତୁର ସୁକୁମାର । ବୀତିହୋତ୍ର ତାର କୁମର ।। ୨୯
ତା' ସୁତ ଭର୍ଗ ହେ ରାଜନ । ଭାର୍ଗଭୂମି ତାର ନନ୍ଦନ ।। ୩୦
୧୦ ଏ କାଶିବଂଶରେ ସକଳେ । ଜନମ ହେଲେ ମହୀପାଳେ ।। ୩୧
୧୧ କାଶିନୃପର ପଣ ଅଜା । ଯେ କ୍ଷତ୍ରବୃଦ୍ଧ ନାମେ ରାଜା ।। ୩୨
ତାକୁ ଏମାନେ ଅନୁଗତ । ଯେ ରାଭ ଆୟୁନୃପସୁତ ।। ୩୩
ରଭସ ତନୟ ତାହାର । ଗମ୍ଭୀର ତାହାର କୁମର ।। ୩୪
ଅକ୍ରିୟ ଗମ୍ଭୀରର ସୁତ । [3]ତା କ୍ଷେତ୍ରେ ବିପ୍ରେ ହେଲେ ଜାତ ।। ୩୫
ଅନେନା ଯେ ଆୟୁକୁମର । ଶୁଣ କହିବା ବଂଶ ତାର ।। ୩୬
ଅନେନାଠାରୁ ଉତପତି । ଶୁଦ୍ଧନାମରେ ମହୀପତି ।। ୩୭
ତା' ଠାରୁ ଶୁଚି ହେଲା ଜାତ । ଧର୍ମସାରଥି ତାର ସୁତ ।। ୩୮
୧୨ ତା'ଠାରୁ ଶାନ୍ତରୟ ଜାତ । ସେ କୃତକୃତ୍ୟ ଆତ୍ମବନ୍ତ ।। ୩୯
ଏ ଘେନି ତାହାର ସନ୍ତତି । ପୂର୍ବେ ନୋହିଲା ଉତପତି ।। ୪୦
ଆୟୁନୃପତିର କୁମର । ଯେ ରଜିନାମେ ନୃପବର ।। ୪୧
ଅତି ତେଜସ୍ୱୀ ପଞ୍ଚ ଶତ । ପୁତ୍ର ହୋଇଲେ ତାର ଜାତ ।। ୪୨
୧୩ ପ୍ରାର୍ଥନା କରନ୍ତେ ଅମରେ । ଦୈତ୍ୟଙ୍କୁ ମାରିଣ ସମରେ ।। ୪୩
ସେ ରଜି ନୃପତି ଇନ୍ଦ୍ରଙ୍କୁ । ପ୍ରଦାନ କଲା ତ୍ରିଦିବକୁ ।। ୪୪
ପ୍ରହ୍ଲାଦଠାରୁ ଶଙ୍କା କରି । ରଜିଚରଣ ଦୁଇ ଧରି ।। ୪୫
ଇନ୍ଦ୍ର ତାହାକୁ ସ୍ୱର୍ଗ ଦେଇ । ଆତ୍ମାକୁ ସମର୍ପିଲେ ତହିଁ ।। ୪୬
୧୪ ପିତା ମରନ୍ତେ ତଦନ୍ତର । ଇନ୍ଦ୍ର ମାଗିଲେ ସ୍ୱର୍ଗପୁର ।। ୪୭
ରଜିର ପୁତ୍ରେ ତା' ନ ଦେଲେ । ଯାଗର ଭାଗମାନ ନେଲେ ।। ୪୮
୧୫ ରଜିତନୟଙ୍କର ମତି । ନାଶନିମିତ୍ତେ ବୃହସ୍ପତି ।। ୪୯
ହୋମ କରନ୍ତେ ଅନଳରେ । ରଜିର ପୁତ୍ରେ ତଦନ୍ତରେ ।। ୫୦
ନିଜ ମାର୍ଗରୁ ଭ୍ରଷ୍ଟ ହେଲେ । ଇନ୍ଦ୍ର ତାହାଙ୍କୁ ବଧ କଲେ ।। ୫୧
ତା'ଠାରୁ ଅବଶେଷ ହୋଇ । ରହିଲେ ନାହିଁ ଆଉ କେହି ।। ୫୨

୧. ସୁନୀଥ । ୨. ସୁକେତନ ।

୩. 'ତସ୍ୟ କ୍ଷେତ୍ରେ ବ୍ରହ୍ମ ଜଜ୍ଞେ.........' ପାଠର ଅନୁବାଦ । ଏଠାରେ 'ତଦ୍‌ଗୋତ୍ରଂ ବ୍ରହ୍ମବିଦ୍ ଜଜ୍ଞେ' – ପାଠାନ୍ତର ଦୃଷ୍ଟ ହୁଏ । ତଦନୁସାରେ ''ତା ପୁତ୍ର ବ୍ରହ୍ମବିଦ ଜାତ'' ଏପରି ଅନୁବାଦ କରାଯାଇ ପାରେ, ଯେହେତୁ ସ୍ଥଳବିଶେଷରେ 'ଗୋତ୍ର' ଶବ୍ଦ ପୁତ୍ରକୁ ବୁଝାଏ ।

| | | | | | |
|---|---|---|---|---|---|
| ୧୬ | କ୍ଷତ୍ରବୃଦ୍ଧର ଯେହୁ ନାତି | । | କୁଶନାମରେ ମହୀପତି | ॥ | ୫୩ |
| | ତା' ସୁତ ପ୍ରତି ତା' ତନୟ | । | ସଂଜୟ, ସଂଜୟର ଜୟ | ॥ | ୫୪ |
| | ଜୟତନୟ ଅଟେ କୃତ | । | କୃତର ହର୍ଯ୍ୟବଳ[1] ସୁତ | ॥ | ୫୫ |
| ୧୭ | ତା' ସୁତ ସହଦେବ ନାମ | । | ଅହୀନ[2] ତାଠାରୁ ଜନମ | ॥ | ୫୬ |
| | ଅହୀନସୁତ ଜୟସେନ | । | ସଂକୃତି ତାହାର ନନ୍ଦନ | ॥ | ୫୭ |
| | ତାହାର ଜୟ ନାମେ ସୁତ | । | ତା' ଠାରୁ କ୍ଷତ୍ରଧର୍ମା ଜାତ | ॥ | ୫୮ |
| | ସେ ମହାରଥ ନରେଶ୍ୱର | । | ଯେତେ କହିଲୁଁ ତୋ' ଆଗର | ॥ | ୫୯ |
| | କ୍ଷତ୍ରବୃଦ୍ଧର ବଂଶ ଏହି | । | ନହୁଷପୁତ୍ରମାନେ ଯେହି | ॥ | ୬୦ |
| | ତୋର ଅଗ୍ରତେ ଏବେ ପୁଣ | । | କହିବା ସେମାନଙ୍କୁ ଶୁଣ | ॥ | ୬୧ |
| | ସୁଜନମାନଙ୍କର ହିତେ | । | ନବମସ୍କନ୍ଧ ଭାଷାଗୀତେ | ॥ | ୬୨ |
| | ଭଣିଲା ଦ୍ୱିଜ ଦୀନବନ୍ଧୁ | । | ଯେଣେ ତରିବ ଭବସିନ୍ଧୁ | ॥ | ୬୩ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଆୟୁବଂଶବର୍ଣ୍ଣନଂ
ନାମ ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶ ଅଧ୍ୟାୟ

ଅଷ୍ଟାଦଶେ ଯଯାତେସ୍ତୁ ନାହୁଷସ୍ୟ କଥୋଚ୍ୟତେ ।
ଯସ୍ୟ ପଞ୍ଚସୁ ପୁତ୍ରେଷୁ କନୀୟାନଗ୍ରହୀଜ୍ଜରାମ୍ ॥ ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | କହନ୍ତି ଶୁକ ମହାଯତି | । | ଶୁଣ ପରୀକ୍ଷ ମହୀପତି | ॥ | ୧ |
| | ଯେ ଆୟୁନୃପତିର ସୁତ | । | ନହୁଷ ନାମରେ ବିଦିତ | ॥ | ୨ |
| | ତାହାର ହେଲେ ଛ' ନନ୍ଦନ | । | ପ୍ରାଣୀର ଇନ୍ଦ୍ରିୟେ ଯେସନ | ॥ | ୩ |
| | ଯତି ଯଯାତି ନାମେ ବେନି | । | ସର୍ଯ୍ୟାତି[3] ମିଶିଣ ଏ ତିନି | ॥ | ୪ |
| | ଆୟତି ବିୟତି ଆବର | । | ଯେ କ୍ଷଷ ନାମ କୃତି ତାର | ॥ | ୫ |
| ୨ | ପିତା ଦିଅନ୍ତେ ନିଜ ରାଜ୍ୟ | । | ଯତି ନ କଲା ତାହା ଗ୍ରାହ୍ୟ | ॥ | ୬ |
| | ରାଜ୍ୟରୁ ଯେ ଅନର୍ଥ ହୋଇ | । | ସେ କଥା ଯେ ପୁଣି ଜାଣଇଁ | ॥ | ୭ |
| | ଯହିଁ ପ୍ରବେଶ ହେଲେ ନର | । | ଆତ୍ମାକୁ ନ କରେ ଗୋଚର | ॥ | ୮ |
| ୩ | ଶଚୀର ସଙ୍ଗେ ଯେ ବିହାର | । | ସେ କଥା ବାଞ୍ଛନ୍ତେ ମନର | ॥ | ୯ |
| | ପିତାକୁ ସ୍ୱର୍ଗସ୍ଥାନୁଁ ତଳେ | । | ଦ୍ୱିଜେ[4] ପକାନ୍ତେ ଶାପବଳେ | ॥ | ୧୦ |
| | କରନ୍ତେ ତାକୁ ଅଜଗର | । | ଯଯାତି ହେଲା ନରେଶ୍ୱର | ॥ | ୧୧ |

---

୧. ହର୍ଯ୍ୟବନ ।　୨. ହୀନ ।　୩. ସଂଯାତି ।　୪. ଦ୍ୱିଜେ = ଅଗସ୍ତ୍ୟାଦି ବ୍ରାହ୍ମଣମାନେ ।

୪ କନିଷ୍ଠ ଚାରି ଭାଇ ଥିଲେ । ତାହାଙ୍କୁ ଚାରି ଦିଗ ଦେଲେ ॥ ୧୨
ଯେ ଶୁକ୍ର ବୃଷପର୍ବା ବେନି । ତାଙ୍କର ଯେ ଦୁଇ ନନ୍ଦିନୀ ॥ ୧୩
ବିବାହ ହୋଇଲେ ତାହାଙ୍କୁ । ଧର୍ମେ ପାଳିଲେ ବସୁଧାକୁ ॥ ୧୪

ଶ୍ରୀରାଜୋବାଚ

୫ ସେ ମହରଷି ଭୃଗୁସୁତ । ଯଯାତି କ୍ଷତ୍ରିୟ ବିଦିତ ॥ ୧୫
ଯେ ବିପ୍ର କ୍ଷତ୍ରିୟ ଆବର । କଉଁ ହେତୁରୁ ବେନିଙ୍କର ॥ ୧୬
ବିବାହ ହୋଇଲା ପ୍ରଥମ । ଯେ ପୁଣ ଅଟେ ପ୍ରତିଲୋମ ॥ ୧୭

ଶ୍ରୀଶୁକ ଉବାଚ

୬, ୭ ପୁଷ୍ପିତ ତରୁମାନଙ୍କରେ । ଯେ ପୂର୍ଣ୍ଣ ହୋଇଛି ନିର୍ଭରେ ॥ ୧୮
ଯହିଁ ସନ୍ତତ ଭୃଙ୍ଗମାନ । କରନ୍ତି ମଧୁର ଗାୟନ ॥ ୧୯
ଏ ରୂପେ ପୁଷ୍କରିଣୀଙ୍କର । ପୁଳିନ ଅଛନ୍ତି ଯହିଁର ॥ ୨୦
ଏମନ୍ତ ଯେ ପୁରକାନନ । ତହିଁ ମଧ୍ୟରେ ଏକଦିନ ॥ ୨୧
ଦାନବ-ଇନ୍ଦ୍ରର ନନ୍ଦିନୀ । ଶର୍ମିଷ୍ଠା ନାମେ ଯେ କାମିନୀ ॥ ୨୨
ଯେ ଶୁକ୍ରସୁତା ଦେବଯାନୀ । ତାହାକୁ ସଙ୍ଗତରେ ଘେନି ॥ ୨୩
ସଖୀସହସ୍ରଙ୍କର ସଙ୍ଗେ । ଭ୍ରମଣ କଲା ନାନାରଙ୍ଗେ ॥ ୨୪
୮ କମଳପ୍ରାୟ ମନୋହର । ଲୋଚନମାନ ଯାହାଙ୍କର ॥ ୨୫
ସେ କନ୍ୟାମାନେ ସରୋବର । ପାଶେ ମିଳିଣ ତାହା ତୀର ॥ ୨୬
ନିଜ ବସନମାନ ଥୋଇ । ଜଳରେ ବିହରିଲେ ଯାଇଁ ॥ ୨୭
ଏକର ଉପରେ ଆରକ । ହରଷେ ସିଞ୍ଚନ୍ତି ଉଦକ ॥ ୨୮
୯ ଦେବୀ[୧] ସହିତେ ପଶୁପତି । ବୃଷ ଆରୋହି ଯାଉଛନ୍ତି ॥ ୨୯
ଏମନ୍ତ ଦେଖିଣ ବେଗରେ । ଜଳରୁ ଉତୁରି କୂଳରେ ॥ ୩୦
ଲଜ୍ଜିତ ହୋଇ ବସ୍ତ୍ରମାନ । ପିନ୍ଧିଲେ ସର୍ବ ସ୍ତିରୀଜନ ॥ ୩୧
୧୦ ଶର୍ମିଷ୍ଠା ଅସୁରଦୁଲଣୀ । ଆପଣା ବସ୍ତ୍ର ବୋଲି ମଣି ॥ ୩୨
ନ ଜାଣି ଗୁରୁଦୁହିତାର । ବସ୍ତ୍ର ପିନ୍ଧିଲା ତଦନ୍ତର ॥ ୩୩
ଦେବଯାନୀ ତା' ନ ସହିଲା । କୋପରେ ଏମନ୍ତ ବୋଇଲା ॥ ୩୪
୧୧ ଅନ୍ୟାୟ କର୍ମ ଏ ଦାସୀର । ଦେଖ ଆଶ୍ଚର୍ଯ୍ୟ ଏ ପ୍ରକାର ॥ ୩୫
ଆମ୍ଭର ଯେବଣ ବସନ । ଯେ ପୁଣ କଲା ପରିଧାନ ॥ ୩୬
ଯାଗର ହବିର୍ଭାଗ ଯେହି । କୁକ୍କୁରୀ ଯେହ୍ନେ ତାହା ଖାଇ ॥ ୩୭
୧୨ ତପସ୍ୟାବଳେ ଏ ଜଗତ । କରିଅଛନ୍ତି ଯେ ନିର୍ମିତ ॥ ୩୮
ବିଷ୍ଣୁର ମୁଖ ଯେ ଅଟନ୍ତି । ବ୍ରହ୍ମକୁ ଧରି ଯେ ଅଛନ୍ତି ॥ ୩୯
ବେଦମାର୍ଗକୁ ଏ ଜଗତେ । ଦେଖାଇ ଅଛନ୍ତି ଯେ ନିତ୍ୟେ ॥ ୪୦
୧୩ ପ୍ରଭୁ ସକଳ ଲୋକଙ୍କର । ଯେ ଦେବତାଙ୍କ ମଧ୍ୟେ ସାର ॥ ୪୧

୧. ପାର୍ବତୀ ।

ଯେଉଁ ବ୍ରାହ୍ମଣଙ୍କୁ ସେ ନିତି । ପ୍ରଣାମ କରନ୍ତି ପୂଜନ୍ତି ॥ ୪୨
ସକଳ ଆତ୍ମା ଭଗବାନ । ଜଗତ କରେ ଯେ ପାବନ ॥ ୪୩
ସେ ଶ୍ରୀନିକେତନ ଶ୍ରୀହରି । ଯାହାଙ୍କୁ ବନ୍ଦନ୍ତି ଆଦରି ॥ ୪୪
୧୪ ¹ତହିଁରେ ଆମ୍ଭେମାନେ ପୁଣ । ଭୃଗୁଙ୍କ ବଂଶରେ ବ୍ରାହ୍ମଣ ॥ ୪୫
ଏହାର ପିତା ଯେ ଅସୁର । ଶିଷ୍ୟ ଅଟଇ ସେ ଆମ୍ଭର ॥ ୪୬
ଆମ୍ଭ ଧଇଲାର ବସନ । ଏ ଦୁଷ୍ଟା କଲା ପରିଧାନ ॥ ୪୭
ଯେସନେ ଶୂଦ୍ରଜାତି ହୋଇ । ବେଦ ଅଧ୍ୟୟନ କରଇ ॥ ୪୮
୧୫ ଗୁରୁତନୁଜା ଏ ପ୍ରକାରେ । କହନ୍ତେ, ଶର୍ମିଷ୍ଠା କୋପରେ ॥ ୪୯
ଭୁଜଙ୍ଗୀପ୍ରାୟକ ପ୍ରକାଶ । କରନ୍ତେ ଆପଣା ନିଃଶ୍ୱାସ ॥ ୫୦
ଦନ୍ତରେ ଚାପିଲା ଓଷ୍ଠକୁ । ବୋଇଲା ଏମନ୍ତ ବାକ୍ୟକୁ ॥ ୫୧
୧୬ ଆପଣା ବୃତ୍ତକୁ ନ ଜାଣି । ବହୁତ ରୂପେ ଭିଖାରୁଣୀ ॥ ୫୨
କହୁଛୁ ପ୍ରଗଲ୍ଭ ହୋଇଣ । ଆମ୍ଭ ଘରକୁ ପ୍ରତୀକ୍ଷଣ ॥ ୫୩
କାକମାନଙ୍କ ପ୍ରାୟ ହୋଇ । ନ ଥାଉ ଆଶାରେ କି ତୁହି ॥ ୫୪
୧୭ ଶର୍ମିଷ୍ଠା ଏମନ୍ତ ପ୍ରକାରେ । ବହୁତ ନିଷ୍ଠୁର ବାକ୍ୟରେ ॥ ୫୫
ଗୁରୁଦୁହିତାକୁ ବହୁତ । ଆକ୍ଷେପ କରିଣ ତଦନ୍ତ ॥ ୫୬
କ୍ରୋଧରେ ତାହା ବସ୍ତ୍ର ଘେନି । କୂପେ ପକାଇଲା କାମିନୀ ॥ ୫୭
୧୮ ଶର୍ମିଷ୍ଠା ଗୃହକୁ ଗମନ । କରନ୍ତେ ଯଯାତି ରାଜନ ॥ ୫୮
ଭ୍ରମନ୍ତେ ମୃଗୟାବିହାରେ । ଯୋଗରେ ମିଳିଲା ସେଠାରେ ॥ ୫୯
କୂପକୁ ଜଳଅର୍ଥୀ ହୋଇ । ଯାନ୍ତେ ଦେଖିଲା ତାକୁ ତହିଁ ॥ ୬୦
୧୯ ବିବସ୍ତ୍ର ହୋଇଥିଲା ସେହି । ଉତ୍ତରୀ ବସ୍ତ୍ର ତାକୁ ଦେଇ ॥ ୬୧
ହସ୍ତରେ ହସ୍ତକୁ ତାହାର । ଧରି ନୃପତି ଦୟାପର ॥ ୬୨
କୂପର ମଧ୍ୟରୁ ତାହାକୁ । ଘେନି ଅଇଲା ବାହାରକୁ ॥ ୬୩
୨୦} ପ୍ରେମନିର୍ଭର ଯେଉଁ ବାଣୀ । ଶୁକ୍ରଦୁହିତା ତେଣେ ପୁଣି ॥ ୬୪
୨୧} ରାଜାକୁ କହିଲା ଏମନ୍ତ । ହେ ନୃପ ! ପରପୁରଜିତ² ॥ ୬୫
ତୁମ୍ଭେ ଗ୍ରହଣ କଲ ମୋତେ । ମୋ' ହସ୍ତ ଧଇଲ ଏକାନ୍ତେ ॥ ୬୬
ଏ ଘେନି ଯେ ଲୋକ ଇତର । ନ ଧରୁ ସେ ହସ୍ତ ମୋହର ॥ ୬୭
ହେ ବୀର ! ଆମ୍ଭ ଦୁହିଙ୍କର । ଏ ଯେଉଁ ସମ୍ବନ୍ଧ ଏଠାର ॥ ୬୮
ପୁରୁଷକୃତ ଏ ନୁହଇ । ଈଶ୍ୱରକୃତ ଏ ଅଟଇ ॥ ୬୯
୨୨ ମୁଁ ମଗ୍ନ ହୋଇଥିଲି କୂପେ । ତୁମ୍ଭେ ମିଳିଲ ମୋ' ସମୀପେ ॥ ୭୦
ମୋର ଏ ତୁମ୍ଭ ଦରଶନ । ଯେଣୁ ହୋଇଲା ଉତପନ୍ନ ॥ ୭୧

---

୧. ''ବ୍ରାହ୍ମଣୈର୍ଭଗବାନ୍ ବିଷ୍ଣୁରିଷ୍ଟଃ ପୁଷ୍ୟଶ୍ଚ ଯୈର୍ବିଭୁଃ'' - ଏହି ଶ୍ଳୋକାର୍ଦ୍ଧ ଏବଂ ଏହାର ଅନୁବାଦ ପ୍ରକ୍ଷିପ୍ତ ବୋଧ ହୁଏ ।
ଯେ ବିପ୍ରେ ବିଷ୍ଣୁର ଯଜନ ।
ପ୍ରଭୁର କରନ୍ତି ପୋଷଣ ॥

୨. ଶତ୍ରୁର ପୁରକୁ ଯେ ଜିଣନ୍ତି ।

ହେ ମହାଭୁଜ ! ବିପ୍ର ମୋର । ଗ୍ରହଣ ନ କରିବ କର ।।
ତନୁଜ ଯେ ବୃହସ୍ପତିର । କଚ ଅଟଇ ନାମ ଯାର ।।
ମୁଁ ତାକୁ ବିବାହନିମିତ୍ତେ । ବାଞ୍ଛନ୍ତେ ପୁଣ ସେହୁ ମୋତେ ।।
ଗୁରୁତନୁଜା ପୂଜ୍ୟ ମୋର । ଏ ଘେନି ନ କଲା ସ୍ୱୀକାର ।।
ବିଦ୍ୟା ନିଷ୍ଫଳ ହେଉ ବୋଲି । ମୁଁ ଯେ ତାହାକୁ ଶାପ ଦେଲି ।।
ବ୍ରାହ୍ମଣ ନୋହୁ ତୋର କାନ୍ତ । ସେ ମୋତେ ବୋଇଲା ଏମନ୍ତ ।।
୨୩ ଯେଣୁ ନୁହଇ ଶାସ୍ତ୍ରମତ । ଏଣୁ ନୁହଇ ଅଭିପ୍ରେତ ।।
ଦଇବେ ହୋଇଲା ପ୍ରାପତ । ମନ ହୋଇଲା ତଦଗତ ।।
ଅଧର୍ମକଥାରେ ପ୍ରବେଶ । ନୁହଇ ମୋହର ମାନସ ।।
ଏ ଘେନି ଯଯାତି ରାଜନ । ସ୍ୱୀକାର କଲା ସେ ବଚନ ।।
୨୪ ରାଜାର ଗମନ ଅନ୍ତରେ । ସେ ଦେବଯାନୀ ସେହିଠାରେ ।।
ରୋଦନ କରନ୍ତେ ପିତାକୁ । କହିଲା ସକଳ କଥାକୁ ।।
ଶର୍ମିଷ୍ଠା ଯେତେକ[୧] ବୋଇଲା । କୂପରେ ଯାହା ପକାଇଲା ।।
୨୫ ଶୁକ୍ର ସେ କଥାକୁ ଶୁଣିଣ । ନିନ୍ଦିଲେ ପୁରୋହିତପଣ ।।
ଯେ ପୁଣ ଅଟେ ଉଞ୍ଛବୃତ୍ତି[୨] । କରନ୍ତେ ସେ କଥାକୁ ସ୍ତୁତି ।।
ଦୁହିତାସହିତେ ବହନ । ପୁରରୁ କଲେ ସେ ଗମନ ।।
୨୬ ଯେ ନିଜ ଶତ୍ରୁ ଦେବଗଣ । ତାଙ୍କର ବାଞ୍ଛିତ ଯେ ପୁଣ ।।
ସେ କଥା ହେବ ସିଦ୍ଧ ଏବେ । ଶୁକ୍ର ଏଠାରୁ ଯେବେ ଯିବେ ।।
ଜାଣି ଏମନ୍ତ ବିଚାରକୁ । ପ୍ରସନ୍ନ କରାନ୍ତେ ଗୁରୁଙ୍କୁ ।।
ପାଦଯୁଗରେ ଦେଇ ଶିର । ବାଟରେ ପଡ଼ିଲା ଅସୁର ।।
୨୭ ଯା' କ୍ରୋଧ ଅର୍ଦ୍ଧକ୍ଷଣମାତ୍ର । ସମ୍ଭବଇ ସେ ଭୃଗୁପୁତ୍ର ।।
ଶିଷ୍ୟକୁ କହିଲେ ଉତ୍ତର । ହେ ନୃପ ! ଏ ମୋ' ଦୁହିତାର ।।
ଯେ ବାଞ୍ଛା ଅଟଇ ମନର । ତୁମ୍ଭେ ସେ କଥା ସିଦ୍ଧ କର ।।
ଏହାକୁ ଛାଡ଼ିବାକୁ ମୁହିଁ । ଉତ୍ସାହ କରି ନ ପାରଇ ।।
୨୮ ସେହି ପ୍ରକାରେ ସେ ବିଷୟ । ସେଠାରେ ହୁଅନ୍ତେ ନିର୍ଣ୍ଣୟ ।।
ମନରେ ଯଉଁ କଥା ଥିଲା । ତା' ଦେବଯାନୀ ପ୍ରକାଶିଲା ।।
ପିତାର ପ୍ରଦାନରେ ମୁହିଁ । ଯେବଣ ସ୍ଥାନକୁ ଯିବଇଁ ।।
ଶର୍ମିଷ୍ଠା ସଖୀସହିତରେ । ଯିବ ଏ ମୋହର ସଙ୍ଗରେ ।।
୨୯ [୩]ସଖୀସହିତେ ଶର୍ମିଷ୍ଠାକୁ । ପିତା[୪] ଦେଲା ଦେବଯାନୀକୁ ।।

୧. ଯେତେକ = ଭିକ୍ଷୁକି ! ଇତ୍ୟାଦି ।
୨. ଉଞ୍ଛ = ଇତସ୍ତତଃ ବିକ୍ଷିପ୍ତ ଧାନ୍ୟାଦି ଖୁଣ୍ଟି ନେବା ।
୩. "ପିତ୍ରା ଦତ୍ତା ଦେବଯାନ୍ୟୈ ଶର୍ମିଷ୍ଠା ସାନୁଗା ତଦା" ଇତି କ୍ୱଚିଦ୍ ଅଧିକଃ ପାଠଃ ଦୃଶ୍ୟତେ ।
୪. ପିତା = ଶର୍ମିଷ୍ଠାର ପିତା ବୃଷପର୍ବା ।

ଏ ପୁରୁଁ ଯେବେ ଭୃଗୁସୁତ । କ୍ରୋଧରେ ହୋଇବେ ନିର୍ଗତ ॥ ୧୦୦
ଆପଣା ଲୋକମାନଙ୍କର । ସଂକଟ ହୋଇବ ତତ୍‌ପର ॥ ୧୦୧
ଏ ଥିଲେ ଆମ୍ଭର ଭବନ । ଅଛି ବହୁତ ପ୍ରୟୋଜନ ॥ ୧୦୨
ଏମନ୍ତ ଦେଖି ତା' ନନ୍ଦିନୀ । ସ୍ତିରୀସହସ୍ର ସଙ୍ଗେ ଘେନି ॥ ୧୦୩
ଦାସୀର ପ୍ରାୟ ଦିବାନିଶେ । ସେବିଲା ଦେବଯାନୀକି ସେ ॥ ୧୦୪
୩୦ ଶର୍ମିଷ୍ଠାସଙ୍ଗେ ନନ୍ଦିନୀକି । ପ୍ରଦାନ କରି ଯଯାତିଙ୍କି ॥ ୧୦୫
ଭାର୍ଗବ ବୋଇଲେ ରାଜାକୁ । ହେ ନୃପ ! ତୁମ୍ଭେ ଶର୍ମିଷ୍ଠାକୁ ॥ ୧୦୬
ନିଜ ଶଯ୍ୟାରେ କଦାଚିତ । କରିବ ନାହିଁ ଆରୋପିତ ॥ ୧୦୭
୩୧ ଦେବଯାନୀର ହେଲା ସୁତ । ଶର୍ମିଷ୍ଠା ଦେଖିଣ ଏମନ୍ତ ॥ ୧୦୮
ଏକାନ୍ତେ କଉଣସି ଦିନ । ସଖୀର ପତି ଯେ ରାଜନ ॥ ୧୦୯
ତାହାଙ୍କୁ ଋତୁସମୟରେ । ବରିଲା ନାୟକଭାବରେ ॥ ୧୧୦
୩୨ [୧]ରାଜାର ଦୁହିତା ନନ୍ଦନ । ନିମିତ୍ତେ କରନ୍ତେ ପ୍ରାର୍ଥନ ॥ ୧୧୧
ଧର୍ମଜ୍ଞ ଅଟନ୍ତି ଆପଣ । ବିଶେଷେ ଧର୍ମକୁ ଚାହିଁଣ ॥ ୧୧୨
ଶୁକ୍ରଙ୍କ ବଚନ ଯେ ପୁଣ । କାଳେ ତା' କରନ୍ତେ ସ୍ମରଣ ॥ ୧୧୩
ଏଥି ଯେ ହୋଇବ ଅନିଷ୍ଟ । ମଣିଲେ ତା' ନିଜ ଅଦୃଷ୍ଟ ॥ ୧୧୪
୩୩ ଯଦୁ ତୁର୍ବସୁ ବେନି ସୁତ । ଶୁକ୍ରଦୁହିତା କଲା ଜାତ ॥ ୧୧୫
ବୃଷପର୍ବାର ଯେ ନନ୍ଦିନୀ । ସେ ଜାତକଲା ସୁତ ତିନି ॥ ୧୧୬
ଦ୍ରୁହ୍ୟୁ ନାମରେ ଏକ ତହିଁ । ଆବର ଅନୁ ପୁରୁ ଦୁଇ ॥ ୧୧୭
୩୪ ଯେ ଅଟେ ଭର୍ତ୍ତା ଆପଣାର । ତା' ହେତୁ ଅସୁରସୁତାର ॥ ୧୧୮
ଗର୍ଭସମ୍ଭବ ହେଲା ଜାଣି । ମାନିନୀ ଦେବଯାନୀ ପୁଣି ॥ ୧୧୯
କ୍ରୋଧରେ ମୂର୍ଚ୍ଛିତ ହୋଇଲା । ପିତାର ମନ୍ଦିରକୁ ଗଲା ॥ ୧୨୦
୩୫ କାମୀ ଯଯାତି ନରନାଥ । ପ୍ରିୟାକୁ ହେଲେ ଅନୁଗତ ॥ ୧୨୧
ଚାଟୁବଚନ ମାନଙ୍କରେ । ପାଦସଂବାହନ ଆଦିରେ ॥ ୧୨୨
ତାହାକୁ କରାନ୍ତେ ପ୍ରସନ୍ନ । ନୋହିଲେ ସେ ତହିଁ ଭାଜନ ॥ ୧୨୩
୩୬ କୁପିତ ହୋଇ ଶୁକ୍ର ତାକୁ । ବୋଇଲେ ଏମନ୍ତ ବାକ୍ୟକୁ ॥ ୧୨୪
ହେ ମନ୍ଦ ! ତୁ ମିଥ୍ୟାପୁରୁଷ । ସ୍ତିରୀଠାରେ ତୋ' ଅଭିଳାଷ ॥ ୧୨୫
ରୂପକୁ ପ୍ରାଣୀମାନଙ୍କର । ଯେ କରେ ବିକୃତ ପ୍ରକାର ॥ ୧୨୬
ସେ ବୃଦ୍ଧଦଶା ଆଜ ଯାଇଁ । ପ୍ରବେଶ ହୋଉ ତୋହ ଠାଇଁ ॥ ୧୨୭

ଶ୍ରୀଯଯାତିରୁବାଚ

୩୭ ହେ ବିପ୍ର ! କାମମାନଙ୍କରେ । ଆଜ ହିଁ ତୁମ୍ଭ ସୁତାଠାରେ ॥ ୧୨୮

୧. ଅପତ୍ୟନିମିତ୍ତ ଋତୁକାଳରେ ମୈଥୁନପ୍ରାର୍ଥିନୀ ସ୍ତ୍ରୀର କାମ-ବାସନା ପୂରଣ କରିବା ପୁରୁଷର ଧର୍ମ ଅଟେ । ଏଣୁ ଯଯାତି ଶର୍ମିଷ୍ଠାର ପ୍ରାର୍ଥନା ରକ୍ଷା କରିଥିଲେ । କିନ୍ତୁ କାମବଶ ହୋଇ ତାହା କରି ନ ଥିଲେ ।

ତୋଷ ମୁଁ ଲଭିନାହିଁ ପୁଣି । ଶୁକ୍ର ବୋଇଲେ ତାହା ଶୁଣି ॥ ୧୨୯
ଜରାକୁ ସକଳ ଭାବରେ । ଧରି ପାରିବ ଯେ ଦେହରେ ॥ ୧୩୦
ଯଥାକାମରେ ସେ ଲୋକର । ବୟସେ ଯେ ଜରା ତୋହର ॥ ୧୩୧
ତାହାକୁ ପୁଣ ଲେଉଟାଅ । ବିଷୟଭୋଗେ ମନ ଦିଅ ॥ ୧୩୨
୩୮-୩୯ ଏ ରୂପେ ଲଭି ବ୍ୟବସ୍ଥିତି । ଜ୍ୟେଷ୍ଠପୁତ୍ରକୁ ନରପତି ॥ ୧୩୩
ବୋଇଲା ଆରେ ଯଦୁ ତାତ । ତୋ' ମାତାମହରେ ନିର୍ମିତ ॥ ୧୩୪
ଏ ଜରା ଅବସ୍ଥା ମୋହର । ଏହାକୁ ଗ୍ରହଣ ତୁ କର ॥ ୧୩୫
ନିଜ ବୟସ ଯେ ତୋହର । ମୋତେ ପ୍ରଦାନ ତାହା କର ॥ ୧୩୬
ବିଷୟମାନଙ୍କରେ ମୁହିଁ । ମନରେ ତୋଷ ଲଭିନାହିଁ ॥ ୧୩୭
କେତେ ବରଷ ତୋ' ବୟସେ । ବିହାର କରିବି ହରଷେ ॥ ୧୩୮

ଶ୍ରୀଯଦୁରୁବାଚ

୪୦ ପ୍ରବେଶ ହେବ ଯେ ମଧ୍ୟରେ । ତୋର ସେ ଜରା-ଅବସ୍ଥାରେ ॥ ୧୩୯
ରହିବା ନିମିତ୍ତରେ ମୁହିଁ । ମନେ ଉତ୍ସାହ କରୁନାହିଁ ॥ ୧୪୦
ଯେ ସୁଖ ଗ୍ରାମରେ ପ୍ରକାଶ । ତାହାକୁ ନ ଜାଣି ପୁରୁଷ ॥ ୧୪୧
ଯେ ଭାବ ଅଟେ ତୃଷ୍ଣାହୀନ । ତହିଁକି ନ କରେ ଗମନ ॥ ୧୪୨
୪୧ ତୁର୍ବସୁ ଦ୍ରୁହ୍ୟୁ ଅନୁ ହୋଇ । ହେ ନୃପ ! ଯଉଁ ତିନିଭାଇ ॥ ୧୪୩
ପିତା ପ୍ରାର୍ଥନା କଲା ତାଙ୍କୁ । ନିରାଶ କଲେ ସେ ପିତାକୁ ॥ ୧୪୪
ଧର୍ମ ନ ଜାଣନ୍ତି ସେମାନେ । ଯେଣୁ ଅନିତ୍ୟ ଯଉବନେ ॥ ୧୪୫
ସର୍ବଦା ଥିବ ଏହୁ ବର୍ତ୍ତି । ଏରୂପେ କରିଛନ୍ତି ମତି ॥ ୧୪୬
୪୨ ଊଣା ଅଟଇ ବୟସରେ । ଅଧିକ ପୁଣ ସେ ଗୁଣରେ ॥ ୧୪୭
ପୁରୁନାମରେ ଯାର ଖ୍ୟାତି । ତାକୁ ପଚାରିଲେ ନୃପତି ॥ ୧୪୮
ମୋହର ଜରାଦଶା ଯେହି । ତାହାକୁ ଘେନିମୁ କି ତୁହି ॥ ୧୪୯
ହେ ବତ୍ସ ଜ୍ୟେଷ୍ଠଭ୍ରାତାଙ୍କର । ପ୍ରାୟେ ତୁ ବଚନକୁ ମୋର ॥ ୧୫୦
ନିରାଶ କରିବା ନିମିତ୍ତେ । ଶକ୍ୟ ନ ହୁଅ କଦାଚିତେ ॥ ୧୫୧

ଶ୍ରୀପୁରୁରୁବାଚ

୪୩ ଯେ ପିତା ସର୍ଜଇ ଶରୀର । ହେ ନୃପ ! ପ୍ରତିଉପକାର ॥ ୧୫୨
କରିବା ନିମିତ୍ତେ ତାହାର । ସଂସାରେ କ୍ଷମ କଉଁ ନର ॥ ୧୫୩
ଯାହା ପ୍ରସାଦେ ଦିବ୍ୟଗତି । ମନୁଷ୍ୟ ଲଭଇ ଝଟତି ॥ ୧୫୪
୪୪ ଚିନ୍ତିଲା କଥାକୁ ପିତାର । କରେ ଉତ୍ତମ ସେ କୁମର ॥ ୧୫୫
କହିଲା କଥାକୁ ଯେ କରେ । ମଧ୍ୟମ ଅଟେ ସେ ସଂସାରେ ॥ ୧୫୬
ଯେ କରେ ଶ୍ରଦ୍ଧାହୀନ ହୋଇ । ଅଧମ ପୁତ୍ର ସେ ବୋଲାଇ ॥ ୧୫୭

ବଚନ ନ କରଇ ଯେହି । ପିତାର ମନ୍ଦ ଅଟେ ସେହି ।। ୧୫୮
୪୫ ପ୍ରତିବଚନ ଏ ପ୍ରକାରେ । କହିଣ ପୁରୁ ତଦନ୍ତରେ ।। ୧୫୯
ଘେନିଲା ଜରାକୁ ପିତାର । ସେ ନୃପ ବୟସେ ତାହାର ।। ୧୬୦
ବିଷୟମାନଙ୍କୁ ସଂସାରେ । ସେବିଲା ଯଥାର୍ଥପ୍ରକାରେ ।। ୧୬୧
୪୬ ସପତଦ୍ୱୀପ-ଅଧିପତି । ଅଟେ ସେ ଯଯାତି ନୃପତି ।। ୧୬୨
ପିତାର ପ୍ରାୟକ ପାଳନ । କଲା ସକଳ ପ୍ରଜାମାନ ।। ୧୬୩
ଯଥାପ୍ରୀତିରେ ମହାଭାଗ । ବିଷୟମାନ କଲା ଭୋଗ ।। ୧୬୪
ଇନ୍ଦ୍ରିୟମାନେ କଦାଚିତ । ନୋହିଲେ ତାହାର ବ୍ୟାହତ ।। ୧୬୫
୪୭ ଦେବଯାନୀ ହିଁ ଅନୁଦିନେ । ବଚନ ଦେହ ବିତ୍ତ ମନେ ।। ୧୬୬
ପରମ ପ୍ରୀତିକି କାନ୍ତର । ଏକାନ୍ତେ କଲାକ ବିସ୍ତାର ।। ୧୬୭
୪୮ ବହୁତ ଦକ୍ଷିଣା ଯହିଁରେ । ଏମନ୍ତ ଯାଗମାନଙ୍କରେ ।। ୧୬୮
ଯେ ସର୍ବଦେବରୂପଧାରୀ । ଯେ ସର୍ବବେଦମୟ ହରି ।। ୧୬୯
ତାହାଙ୍କୁ ପୂଜିଲା ନୃପତି । ଯେ ଯଜ୍ଞପୁରୁଷ ଅଟନ୍ତି ।। ୧୭୦
୪୯ ଯାହାର ଠାରେ ଏ ଜଗତ । ସକଳ ହୋଇଛି ଯେମନ୍ତ ।। ୧୭୧
ଜଳଦସମୂହ ଯେସନେ । ପ୍ରକାଶ ହୁଅଇ ଗଗନେ ।। ୧୭୨
ଇନ୍ଦ୍ରିୟବୃତ୍ତି ଥିବାଯାଏ । ଏହୁ ସମସ୍ତ ଶୋଭା ପାଏ ।। ୧୭୩
ଇନ୍ଦ୍ରିୟବୃତ୍ତିର ବିନାଶେ । ଏ ପୁଣ ଆଉ ନ ପ୍ରକାଶେ ।। ୧୭୪
ଯେସନେ ସ୍ୱପ୍ନମାୟାଯୁତ । ପ୍ରାଣୀମାନଙ୍କ ମନୋରଥ ।। ୧୭୫
୫୦ ପ୍ରାଣୀଙ୍କ ହୃଦୟେ ଯା ସ୍ଥିତି । ଅଣୁରୁ ସୂକ୍ଷ୍ମ ଯେ ଅଟନ୍ତି ।। ୧୭୬
ସେ ନାରାୟଣଙ୍କୁ ହୃଦରେ । ନିବେଶି ପୂଜିଲା ନିର୍ଭରେ ।। ୧୭୭
ଯେତେ ବିଷୟକାମମାନ । ତହିଁରେ ନାହିଁ ତାର ମନ ।। ୧୭୮
୫୧ ଯେ ସର୍ବଭୂମି-ଅଧିପତି । ଏହି ପ୍ରକାରେ ସେ ଯଯାତି ।। ୧୭୯
[୧]ଯେ ଷଟସଂଖ୍ୟ ମିଶି ମନେ । କୁତ୍ସିତ ଯେ ଇନ୍ଦ୍ରିୟମାନେ ।। ୧୮୦
ମନର ସୁଖକୁ ସେ ଦ୍ୱାରେ । ସହସ୍ର ସହସ୍ର ବସରେ ।। ୧୮୧
ବିଧାନ କଲେହେଁ, ସନ୍ତୋଷ । ମନରେ ନ ଲଭିଲା ଲେଶ ।। ୧୮୨
ପତିତପାବନ ଯେ ହରି । ତାଙ୍କ ଚରଣ ଚିତ୍ତେ ଧରି ।। ୧୮୩
ଭଣି ନବମସ୍କନ୍ଧଗୀତ । ହରଷ ଦୀନବନ୍ଧୁ ଚିତ୍ତ ।। ୧୮୪

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଯଯାତିଚରିତଂ
ନାମ ଅଷ୍ଟାଦଶୋଽଧ୍ୟାୟଃ ।।

---

୧. ମନକୁ ମିଶାଇ ଯେଉଁ ଇନ୍ଦ୍ରିୟମାନେ ଷଟ୍ ସଂଖ୍ୟକ (ମନଃ ଷଷ୍ଠଂ ଯେଷାଂ ତାନି, ତୈଃ ମନଃଷଷ୍ଠୈଃ)।

# ଏକୋନବିଂଶ ଅଧ୍ୟାୟ

ଉନବିଂଶେ ଯଯାତିଃ ସ୍ୱଂ ଚେଷ୍ଟିତଂ ନନ୍ଦ୍ୱୋପମମ୍ ।
ଦେବଯାନୀଂ ସମାଶ୍ରାବ୍ୟ ବିରକ୍ତୋ ମୁକ୍ତିମାପ୍ତବାନ୍ ॥ ୧
ଭୁକ୍ତଭୋଗାମଜାଂ ହାସ୍ୟନ୍ନଜବଦ୍ବୃତ୍ତମାତ୍ମନଃ ।
ବିଡମ୍ବୟନ୍ ପ୍ରିୟାମାହ ନିର୍ବେଦୟିତୁମାତ୍ମବାନ୍ ॥ ୨

ଶ୍ରୀଶୁକ ଉବାଚ

୧ ସ୍ତିରୀଲମ୍ପଟ ସେ ରାଜନ । ଏମନ୍ତରୂପେ କାମମାନ ॥
ଭୋଗ କରନ୍ତେ ଆପଣାର । ନାଶକୁ ମଣିଣ ମନର ॥
ବିରକ୍ତ ହୋଇ ଏ ଗାଥାକୁ । କହିଲା ଆପଣା ପ୍ରିୟାକୁ ॥
୨ ଭାର୍ଗବି ! ଏ କଥାକୁ ଶୁଣ । ମୋହର ପ୍ରାୟେ ଜନ ପୁଣ ॥
ଯଉଁ କଥାକୁ ଆଚରିଛି । ତା' ଯଉଁ କଥାରେ ବର୍ଣ୍ଣିଛି ॥
ଗ୍ରାମନିବାସୀ ଯଉଁ ନର । ମୋହର ପ୍ରାୟ ଯା' ଆଚାର ॥
ଯାହାକୁ କରନ୍ତି ଶୋଚନ । ବନନିବାସୀ ଧୀର ଜନ ॥
ସେ ଲୋକଗାଥାକୁ ତୁ ଶୁଣ । ତୋ' ଆଗେ କରିବି ବଖାଣ ॥
୩ ବୋଦା ଗୋଟିଏ ବନେ କେହି । ଖୋଜନ୍ତେ ନିଜ ପ୍ରିୟ ତହିଁ ॥
ଯେ ନିଜ କର୍ମ ପୂର୍ବକୃତ । ତହିଁକି ହୋଇ ଉପଗତ ॥
ଛେଳି ଗୋଟିଏ ଯେ କୂପରେ । ପଡ଼ିଛି ଦେଖିଲା ତହିଁରେ ॥
୪ ତାହାକୁ ଉଦ୍ଧରିବା ଅର୍ଥେ । ଉପାୟ ବିଚାରନ୍ତେ ଚିତ୍ତେ ॥
ସେ କାମୀ ଶୃଙ୍ଗଅଗ୍ରେ ପୁଣ । ମୃତ୍ତିକା କିଛି ଉଦ୍ଧାରିଣ ॥
ତାହା' ବାହାର ହେବାପାଇଁ । ମାର୍ଗ ନିର୍ମାଣ କଲା ତହିଁ ॥
୫ ସୁନ୍ଦର ଶ୍ରୋଣୀ ଅଟେ ଯାର । କୂପରୁ ହୋଇ ସେ ବାହାର ॥
ସେହି ବୋଦାକୁ ପତିଭାବେ । ସେ ଅଭିଳାଷ କଲା ତେବେ ॥
ସେ ବୋଦା ସ୍ୱଭାବେ ପୃଥୁଳ । ଦାଢ଼ି ତା' ବଦନେ ବହୁଳ ॥
ସୁରତବିଷୟେ ପଣ୍ଡିତ । ବହୁତ ରେତ କରେ ଜାତ ॥
ଏ ଘେନି କରି ଅତିଶୟ । ଯୁବତିମାନଙ୍କର ପ୍ରିୟ ॥
କୂପମଧ୍ୟେ ଯେ ପଡ଼ିଥିଲା । ସେ ଛେଳି ବୋଦାକୁ ବରିଲା ॥
ଏମନ୍ତ ଦେଖିଣ ଯେ ଆନେ । ଥିଲେ ସେ ସ୍ଥାନେ ଛେଳିମାନେ ॥
ଆପଣା କାନ୍ତ କରିବାକୁ । କାମନା କଲେ ସେ ବୋଦାକୁ ॥
୬ ଏକ ହୋଇ ସେ ବୋଦା ବର । ବହୁତ ଛେଳିମାନଙ୍କର ॥
ରତିକି ବଢ଼ାନ୍ତେ ପ୍ରତ୍ୟହେ । ଗ୍ରସ୍ତ ହୋଇଲା କାମଗ୍ରହେ ॥
ରମଣ କରନ୍ତେ ତାହାଙ୍କୁ । ଜାଣି ନ ପାରିଲା ଆତ୍ମାକୁ ॥

| | | | | | |
|---|---|---|---|---|---|
| ୭ | ଇତର ପ୍ରିୟତମା ଛେଳି | । | ସଙ୍ଗରେ କରନ୍ତେ ସେ କେଳି | ॥ | ୨୬ |
| | ଯେ ପୂର୍ବେ କୂପେ ପଡ଼ିଥିଲା | । | ଦେଖିଣ ସେ ତା' ନ ସହିଲା | ॥ | ୨୭ |
| ୮ | ମିତ୍ରରୂପକୁ ଅଛି ଧରି | । | [1]ବାସ୍ତବ ଅଟଇ ବଇରି | ॥ | ୨୮ |
| | କ୍ଷଣିକ ଅଟେ ପ୍ରୀତି ତାର | । | କାମୁକ ଇନ୍ଦ୍ରିୟବିହାର | ॥ | ୨୯ |
| | ଏମନ୍ତ ବୋଦାକୁ ଛାଡ଼ିଣ | । | ସେ ଛେଳି ଦୁଃଖିତ ହୋଇଣ | ॥ | ୩୦ |
| | ଯେ ପୂର୍ବେ ସ୍ୱାମୀ[2] ହୋଇଥିଲା | । | ତାହା ନିକଟକୁ ସେ ଗଲା | ॥ | ୩୧ |
| ୯ | ସ୍ତିରୀରେ ହୋଇଣ କୃପଣ | । | ସେ ଅଜ ମିଳିଲା ଆସିଣ | ॥ | ୩୨ |
| | ପ୍ରସନ୍ନ କରାଇବା ପାଇଁ | । | ଇଡ଼ବିଡ଼ା[3] ଶବ୍ଦ କରଇ | ॥ | ୩୩ |
| | ମାର୍ଗରେ ପ୍ରୀତି କରିବାକୁ | । | ସମର୍ଥ ନୋହିଲା ତାହାକୁ | ॥ | ୩୪ |
| ୧୦ | ଯେ କେହି ତା' ସ୍ୱାମୀ ବ୍ରାହ୍ମଣ | । | ସେ ବୋଦା ଲମ୍ବିଲାବୃଷଣ | ॥ | ୩୫ |
| | ରୋଷେ ଛିନାଇ ପକାଇଲା | । | ସେ ବୋଦା ଯେଣୁ ଦୈନ୍ୟ ହେଲା | ॥ | ୩୬ |
| | ଉପାୟ ଜାଣେ ସେ ବ୍ରାହ୍ମଣ | । | କାର୍ଯ୍ୟସଂଭବଅର୍ଥେ ପୁଣ | ॥ | ୩୭ |
| | ଯଉଁ ବୃଷଣ କାଟିଥିଲା | । | ତାହା ପୁଣି ସେ ଯୋଡ଼ିଦେଲା | ॥ | ୩୮ |
| ୧୧ | ହେ ଭଦ୍ରେ ! ପୂର୍ବପ୍ରାୟ ପୁଣ | । | ଲାଗିଲା ତାହାର ବୃଷଣ | ॥ | ୩୯ |
| | କୂପୁଁ ଲଭିଲା ଛେଳିସଙ୍ଗେ | । | ବହୁତ କାଳ ନାନାରଙ୍ଗେ | ॥ | ୪୦ |
| | କାମରେ କରନ୍ତେ ବିହାର | । | ଆଜ ହିଁ ତୋଷ ନାହିଁ ତାର | ॥ | ୪୧ |
| ୧୨ | ମୁଁ ସେହି ରୂପରେ କୃପଣ | । | ହେ ସୁଭ୍ରୁ ! ତୋର ସଙ୍ଗେ ପୁଣ | ॥ | ୪୨ |
| | କାମରେ ନିୟନ୍ତ୍ରିତ ହୋଇ | । | ଆତ୍ମାକୁ ଜାଣି ପାରୁନାହିଁ | ॥ | ୪୩ |
| | ତୋହ ମାୟାରେ ଅବିରତ | । | ଯେଣୁ ମୁଁ ହୋଇଛି ମୋହିତ | ॥ | ୪୪ |
| ୧୩ | ପୃଥ୍ୱୀରେ ଯେତେ ବ୍ରୀହିଯବ | । | ହିରଣ୍ୟ ପଶୁ ସ୍ତିରୀସର୍ବ | ॥ | ୪୫ |
| | ସେ ମନୁଷ୍ୟର ମନଃପ୍ରୀତି | । | ସେମାନେ ପୂର୍ଣ୍ଣ ନ କରନ୍ତି | ॥ | ୪୬ |
| | ଯେବଣ ମନୁଷ୍ୟ କାମରେ | । | ହତ ହୁଅଇ ଏ ସଂସାରେ | ॥ | ୪୭ |
| ୧୪ | ବିଷୟ-ଉପଭୋଗେ ହତ | । | କାମ ନୁହଇ କଦାଚିତ | ॥ | ୪୮ |
| | ଘୃତରେ ଯେସନେ ଅନଳ | । | ପୁଣି ବଢ଼ଇ ବେଳୁଁ ବେଳ | ॥ | ୪୯ |
| ୧୫ | ଯେ ରାଗଦ୍ୱେଷ ଆଦି ସର୍ବ | । | ଅଟଇ ଅମଙ୍ଗଳ ଭାବ | ॥ | ୫୦ |
| | ସମସ୍ତ ପ୍ରାଣୀଙ୍କର ଠାରେ | । | ତା' ଯଉଁ ଲୋକ ନ ଆଚରେ | ॥ | ୫୧ |
| | ସେ ସମଦୃଷ୍ଟି ଅଟେ ଜନ | । | ଯହିଁକି କରେ ସେ ଗମନ | ॥ | ୫୨ |
| | ସକଳ ଦିଗ ଅତିଶୟ | । | ତାକୁ ହୁଅନ୍ତି ସୁଖମୟ | ॥ | ୫୩ |
| ୧୬ | ଯାକୁ ଦୁର୍ବୁଦ୍ଧି ଜନମାନେ | । | ଛାଡ଼ି ନ ପାରନ୍ତି ଭୁବନେ | ॥ | ୫୪ |

୧. ବାସ୍ତବ ଅଟଇ ସେ ଅରି ।

୨. 'ସ୍ୱାମୀ' ଶବ୍ଦ ଶୁକ୍ରାଚାର୍ଯ୍ୟଙ୍କ ଅଭିପ୍ରାୟରେ କୁହାଯାଇଛି ।

୩. ଇଡ଼ବିଡ଼ା = ଏକ ଜାତିର ଛେଳି ।

ଜୀର୍ଣ୍ଣ ହୁଅନ୍ତେ କଳେବର । ଯେ ଜୀର୍ଣ୍ଣ ନୁହଇ ଲୋକର ॥ ୫୫
ଯେ ଦୁଃଖମାନ ବହିଥାଇ । ଏମନ୍ତ ଯେ ତୃଷ୍ଣା ଅଟଇ ॥ ୫୬
ତାକୁ ଛାଡ଼େ ସେ ବେଗେ ଜନ । ସୁଖକୁ ବାଞ୍ଛେ ଯାର ମନ ॥ ୫୭
୧୭ ମାତା ଭଗିନୀ ସୁତାଙ୍କର । ସଙ୍ଗେ ଏକାନ୍ତ ହୋଇ ନର ॥ ୫୮
ବସିବ ନାହିଁ ଏକ କ୍ଷଣ । ଇନ୍ଦ୍ରିୟସମୂହ ଯେ ପୁଣ ॥ ୫୯
ବଳବତ୍ତର ସେ ଅଟଇ । ପଣ୍ଡିତକୁ ହିଁ ଓଟାରଇ ॥ ୬୦
୧୮ ବିଷୟମାନ ଅନୁକ୍ଷଣ । ସେବା କରନ୍ତେ ମୋର ପୁଣ ॥ ୬୧
ପୂରିଲା ସହସ୍ରେ ବତ୍ସର । ତଥାପି ସେମାନଙ୍କେ ମୋର ॥ ୬୨
ତୃଷ୍ଣା ଜନମୁଅଛି ନିତି । ଉପୁଜୁନାହିଁ ବିରକତି[1] ॥ ୬୩
୧୯ ତେଣୁ ସେ ତୃଷ୍ଣାକୁ ମୁଁ ଛାଡ଼ି । ମନକୁ ବ୍ରହ୍ମରେ ନିବାଡ଼ି[2] ॥ ୬୪
ଦ୍ୱନ୍ଦ୍ୱଅହଂକାର ରହିତ । ଚରିବି ମୃଗଙ୍କ ସହିତ ॥ ୬୫
୨୦ ଲୋଚନ-ଶ୍ରବଣ-ଗୋଚରେ । ଯେତେ ବିଷୟ ଜଗତରେ ॥ ୬୬
ଅନିତ୍ୟବୁଦ୍ଧିରେ ସେମାନ । ମନରେ ନ କରିବ ଧ୍ୟାନ ॥ ୬୭
ସେ ନୋହେ ଉପଯୋଗ[3]କ୍ଷମ । ଏ କଥା ମନରେ ଘେନିମ ॥ ୬୮
ସଂସାର ଆପଣାର ନାଶ । ଯେ ଜାଣେ ସେ ଜ୍ଞାନୀ ପୁରୁଷ ॥ ୬୯
୨୧ ଭାର୍ଯ୍ୟାକୁ କହି ଏ ବଚନ । ନହୁଷ-ନୃପତି ନନ୍ଦନ ॥ ୭୦
ପୁରୁକୁ ବୟସ ଦେଇଣ । ଜରାକୁ ଘେନିଲେ ଆପଣ ॥ ୭୧
ଜଗତେ ଯେ ବିଷୟରସ । ତହିଁ ଛାଡ଼ିଲେ ଅଭିଳାଷ ॥ ୭୨
୨୨ ଦକ୍ଷିଣ ପୂର୍ବ ଦୁଇ ଦିଗ । ମଧ୍ୟରେ ଯଉଁ ଦିଗଭାଗ ॥ ୭୩
ଦ୍ରୁହ୍ୟୁକୁ ତହିଁ ରାଜା କଲେ । ଦକ୍ଷିଣେ ଯଦୁକୁ ସ୍ଥାପିଲେ ॥ ୭୪
ପଶ୍ଚିମ ଦିଗେ ତୁର୍ବସୁକୁ । ଉତ୍ତର ଦିଗରେ ଅନୁକୁ ॥ ୭୫
୨୩ ସକଳ ଦିଗ ସର୍ବ ମହୀ । ପ୍ରଭୁପଣକୁ ଯୋଗ୍ୟ ଯେହି ॥ ୭୬
ଯେ ପୁରୁନାମରେ ନନ୍ଦନ । ତାହାକୁ କରିଣ ରାଜନ ॥ ୭୭
ଜ୍ୟେଷ୍ଠଭାଇଙ୍କି ତାର ବଶେ । ସ୍ଥାପିଣ ଗଲେ ବନଦେଶେ ॥ ୭୮
୨୪ ବିଷୟମାନଙ୍କେ ବହୁତ । ବରଷ ଅଟେ ସେ ବିଦିତ ॥ ୭୯
ଯେ ଷଡ଼ଇନ୍ଦ୍ରିୟରୁ ଜାତ । ସେ ସୁଖ ଛାଡ଼ିଲେ ତୁରିତ ॥ ୮୦
ପକ୍ଷ କଅଁଳନ୍ତେ ଯେସନ । ବସାକୁ ଛାଡ଼ଇ ଶକୁନ ॥ ୮୧
୨୫ ସେ ସର୍ବସଙ୍ଗ କଲେ ଦୂର । ଅନୁଭବରେ ଯେ ଆତ୍ମାର ॥ ୮୨
ତ୍ରିଗୁଣମୟ ଲିଙ୍ଗଦେହ । ଛାଡ଼ିଲେ ହୋଇ ଅସନ୍ଦେହ ॥ ୮୩
ସେ ନରପତି ସେ ବନରେ । ପରମ ଅମଳ ବ୍ରହ୍ମରେ ॥ ୮୪
ଲଭିଲା ବଇଷ୍ଣବୀ ଗତି । ଖ୍ୟାତ ଅଟଇ ସେ ନୃପତି ॥ ୮୫

୧. ବିରକ୍ତି । ୨. ନିବାଡ଼ି (ଦେଶଜ) = ଦୃଢ଼ କରି । ୩. ଭୋଗ ।

| | | | | | |
|---|---|---|---|---|---|
| ୨୬ | ଯେସନ ପରିହାସ ବାଣୀ | । ଗାଥାକୁ ଦେବଯାନୀ ଶୁଣି | ॥ | ୮୬ |
| | ସ୍ତିରୀପୁରୁଷ ବେନିଜନ | । ସ୍ନେହୁଁ ଯେ ଅଟେ ଉତପନ୍ନ | ॥ | ୮୭ |
| | ବିକଳଭାବ ହୃଦୟରେ | । ତାହାକୁ ନିବୃତ୍ତିମାର୍ଗରେ | ॥ | ୮୮ |
| | ଉତ୍ସାହ କରାଇଲା ପ୍ରାୟ | । ସେ କଥା ମଣିଲା ନିଶ୍ଚୟ | ॥ | ୮୯ |
| ୨୭} | ଯେସନେ ପାଣିଛତ୍ର ସ୍ଥାନେ | । ମିଳନ୍ତି ବାଟେ ଯିବା ଜନେ | ॥ | ୯୦ |
| ୨୯ | ତାହାଙ୍କ ରହିବାର ତହିଁ | । କ୍ଷଣମାତ୍ରକ ସମ୍ଭବଇ | ॥ | ୯୧ |
| | ଈଶ୍ୱରବଶ ହୋଇଥାନ୍ତି | । ଯେ ନିଜ ବନ୍ଧୁ ମିତ୍ର ଜ୍ଞାତି | ॥ | ୯୨ |
| | ତାହାଙ୍କ ସ୍ଥିତି ହିଁ ତେମନ୍ତ | । ବିଷ୍ଣୁର ମାୟାରେ ନିର୍ମିତ | ॥ | ୯୩ |
| | ଏମନ୍ତ ଦେବଯାନୀ ଜାଣି | । ସ୍ୱପ୍ନ ସମାନେ ସର୍ବ ମଣି | ॥ | ୯୪ |
| | ସକଳ ସଙ୍ଗ କରି ଦୂର | । ମନ ନିବେଶି କୃଷ୍ଣଠାର | ॥ | ୯୫ |
| | ଯେ ସିଦ୍ଧ ଅଟେ ଆପଣାର | । ନାଶିଲା ସେ ଲିଙ୍ଗଶରୀର | ॥ | ୯୬ |
| | ଯେ ବାସୁଦେବ ଭଗବାନ | । ସମସ୍ତ ଭୂତଙ୍କର ସ୍ଥାନ | ॥ | ୯୭ |
| | ଯେ ସର୍ବକର୍ତ୍ତା ଅତି ଶାନ୍ତ | । ଅଟନ୍ତି ଯେହୁ ଅପ୍ରମିତ | ॥ | ୯୮ |
| | ତାହାଙ୍କୁ ମୋହର ବନ୍ଦନ | । ଏ ରୂପେ ନିବେଶିଲା ମନ | ॥ | ୯୯ |
| | ଶ୍ରୀକୃଷ୍ଣଚରଣପଙ୍କଜ | । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ॥ | ୧୦୦ |
| | ନବମସ୍କନ୍ଧ ଗୀତ ଭଣେ | । ସୁଜନେ ତୋଷ ହୁଅ ତେଣେ | ॥ | ୧୦୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଯାଯାତଂ ନାମ
ଏକୋନବିଂଶୋଽଧ୍ୟାୟଃ ॥

## ବିଂଶ ଅଧ୍ୟାୟ

ବିଂଶେ ପିତୃପ୍ରସାଦାପ୍ତରାଜାସନମହୋନ୍ନତେଃ ।
ପୁରୋର୍ବଂଶେ ତୁ ଦୌଷ୍ମନ୍ତେର୍ଭରତସ୍ୟୋର୍ଯ୍ୟତେ ଯଶଃ ॥

ଶ୍ରୀବାଦରାୟଣିରୁବାଚ

| | | | | |
|---|---|---|---|---|
| ୧ | କହିବି ପୁରୁବଂଶ ମୁହିଁ | । ହେ ନୃପ ! ଯହିଁ ଜାତ ତୁହି | ॥ | ୧ |
| | ଯହିଁରେ ହେଲେ ଉତପନ୍ନ | । ବହୁତ ରାଜରଷିମାନ | ॥ | ୨ |
| | ଯେବଣ ବଂଶରେ ବହୁତ | । ବ୍ରାହ୍ମଣ ବଂଶ ହେଲେ ଜାତ | ॥ | ୩ |
| ୨ | ଯେ ପୁରୁନୃପତି କୁମର | । ଜନମେଜୟ ନାମ ତାର | ॥ | ୪ |
| | ତାହାର ସୁତ ପ୍ରଚିନ୍ୱାନ୍¹ | । ପ୍ରବୀର ତାହାର ନନ୍ଦନ | ॥ | ୫ |

୧. ପ୍ରତିଦ୍ୟାନ ।

ନମସ୍ୟୁ ପ୍ରବୀରର ସୁତ । ତା'ଠାରୁ ଚାରୁପଦ ଜାତ ।।
୩ ସୁଦ୍ୟୁ ନାମରେ ତାର ସୁତ । ତା'ଠାରୁ ବହୁଶିର[1] ଜାତ ।।
ତା' ସୁତ ଅଟଇ ସଂଯାତି । ସଂଯାତିପୁତ୍ର ଅହଂଯାତି ।।
ଅହଂଯାତିର ଠାରୁ ଜାତ । ରୌଦ୍ରାଶ୍ୱ ନାମେ ଏକ ସୁତ ।।
୪ ରତେୟୁ ପ୍ରଥମ କୁମର । କୁକ୍ଷେୟୁ ସ୍ଥଣ୍ଡିଳେୟୁ ଆର ।।
୫ ଯେ ପୁଣ କୃତେୟୁ ଜଳେୟୁ । ଆରକ ନାମ ସନ୍ତତେୟୁ[2] ।।
ଧର୍ମେୟୁ ସତ୍ୟେୟୁ ବ୍ରତେୟୁ । କନିଷ୍ଠ ତନୟ ବନେୟୁ ।।
ଏ ଦଶ ରୌଦ୍ରାଶ୍ୱକୁମରେ । ଘୃତାଚୀ ଅପସରାଠାରେ ।।
ଯେ ମୁଖ୍ୟ ପ୍ରାଣ ଜଗତର । ଦଶ ଇନ୍ଦ୍ରିୟେ ଯେହ୍ନେ ତାର ।।
୬ ରତେୟୁପୁତ୍ର ଅନ୍ତିନାର[3] । ତିନି ତନୟ ହେଲେ ତାର ।।
ସୁମତି ଧ୍ରୁବ ସୁତ ବେନି । ଅପ୍ରତିରଥ ମିଶି ତିନି ।।
ଅପ୍ରତିରଥର ଯେ ସୁତ । କଣ୍ୱନାମରେ ସେ ବିଖ୍ୟାତ ।।
୭ କଣ୍ୱର ମେଧାତିଥି ସୁତ । ପ୍ରସ୍କନ୍ନ[4] ଆଦି ତହୁଁ ଜାତ ।।
ସେମାନେ ବ୍ରାହ୍ମଣରୂପରେ । ବିଖ୍ୟାତ ହେଲେ ଜଗତରେ ।।
ସୁମତିଠାରୁ ରୈଭ[5] ଜାତ । ଦୁଷ୍ମନ୍ତ[6] ସୁତ ତାର ଖ୍ୟାତ ।।
୮ ଦୁଷ୍ମନ୍ତ ମୃଗୟାକୁ ଗଲେ । କଣ୍ୱଙ୍କ ଆଶ୍ରମେ ମିଳିଲେ ।।
୯ ଆପଣା ପ୍ରଭାରେ ମଣ୍ଡନ । କରନ୍ତେ ସେ ଆଶ୍ରମସ୍ଥାନ ।।
ଏକ ଯୁବତି ଅଛି ତହିଁ । ଲକ୍ଷ୍ମୀର ପ୍ରାୟ ସେ ଦିଶଇ ।।
ତାହାକୁ ଦେଖି ମହୀପାଳ । ମୋହିତ ହେଲେ ତତକାଳ ।।
ଦେବମାୟାକୁ ଦେଖି ଜନ । ମୋହକୁ ଲଭଇ ଯେସନ ।।
ସଙ୍ଗେ ଅଛନ୍ତି କିଛି ଗଣ । କଲା ତାହାକୁ ସମ୍ଭାଷଣ ।।
୧୦ ତା' ଦରଶନେ ସୁଖୀ ହେଲା । ପରିଶ୍ରମ ହିଁ ଦୂର ଗଲା ।।
ମଦନସକାଶୁଁ ସଂତାପ । ଲଭିଛି ନିଜମନେ ନୃପ ।।
ହସନ୍ତେ କୋମଳ ବାଣୀରେ । ତାକୁ ପୁଚ୍ଛିଲା ଏ ପ୍ରକାରେ ।।
୧୧ ହେ ପଦ୍ମପଲାଶଲୋଚନି । ପ୍ରାଣୀଙ୍କ ମାନସମୋହିନି ।।
କି ନାମ ଅଟଇ ତୋହର । କହ ତୁ ଦୁହିତା କାହାର ।।
ଏ ବନ ନିର୍ଜନ, ଏଥିରେ । ଅଛୁ କି କରିବା ଅର୍ଥରେ ।।
୧୨ ପୁରୁବଂଶରେ ଯେହୁ ଜାତ । ତାହାଙ୍କ ଚିତ୍ତ କଦାଚିତ ।।
ଅଧର୍ମ କଥାରେ ନ ରମେ । ଏଣୁ କରି ଗୋ ସୁମଧ୍ୟମେ ।।
ନିଶ୍ଚୟେ ରାଜପୁତ୍ରୀ ତୁହି । ଏମନ୍ତ ଜାଣୁଅଛି ମୁହିଁ ।।
ତୋଠାରେ ଯେଣୁ ମୋ ମାନସ । ମଦନେ ହୋଇଛି ଅବଶ ।।

---

୧. ବହୁଗବ । ୨. ସନ୍ନତେୟୁ । ୩. ଅନ୍ତିଭାର ।
୪. ପ୍ରସ୍କଣ୍ୱ । ୫. ରୈଭି, ରେଭି, ରୈଭ୍ୟ । ୬. ଦୁଷ୍ୟନ୍ତ ।

ଶ୍ରୀଶକୁନ୍ତଳା ଉବାଚ

୧୩ ମୁଁ ବିଶ୍ୱାମିତ୍ରଙ୍କର ସୁତା । ମେନକା ଅଟଇ ମୋ ମାତା ॥ ୩୭
ସ୍ୱର୍ଗକୁ ଯିବା ସମୟରେ । ଛାଡ଼ିଗଲା ସେ ବିପିନରେ ॥ ୩୮
କଣ୍ୱ ଜାଣନ୍ତି ଏ ପ୍ରକାର । ହେ ବୀର କି କରିବି ତୋର ॥ ୩୯
୧୪ ବସ ହେ ପଙ୍କଜଲୋଚନ । ଆମ୍ଭ ଅତିଥିପୂଜା ଘେନ ॥ ୪୦
ନୀବାର[୧] ତଣ୍ଡୁଳର ଅନ୍ନ । ଅଛଇ, କର ତା' ଭୋଜନ ॥ ୪୧
ଯେବେ ରୋଚଇ ତୁମ୍ଭ ମନ । ଏଠାରେ ରହ ଆଜ ଦିନ ॥ ୪୨

ଶ୍ରୀଦୁଷ୍ମନ୍ତ ଉବାଚ

୧୫ କୁଶିକବଂଶରେ ତୁ ଜାତ । ଏକଥା ତୋହର ଉଚିତ ॥ ୪୩
ହେ ସୁଭ୍ରୁ ! ରାଜାମାନଙ୍କର । କନ୍ୟାଏ ସଦୃଶ ଯେ ବର ॥ ୪୪
ତାହାକୁ ବରନ୍ତି ଇଚ୍ଛାରେ । ଏ କଥା ଖ୍ୟାତ ଜଗତରେ ॥ ୪୫
୧୬ ସ୍ୱୀକାର କରନ୍ତେ ଯୁବତୀ । ଗାନ୍ଧର୍ବ ବିଧିରେ ନୃପତି ॥ ୪୬
ଶକୁନ୍ତଳାକୁ ଯଥାଧର୍ମେ । ବିବାହ ହେଲେ ବିଧିକ୍ରମେ ॥ ୪୭
ଯେ ଦେଶ-କାଳର ବିଧାନ । ସେ କଥା ଜାଣନ୍ତି ରାଜନ ॥ ୪୮
୧୭ ଅମୋଘ ଅଟେ ବୀର୍ଯ୍ୟ ଯାର । ସେ ରାଜରଷି ପତ୍ନୀଠାର ॥ ୪୯
ବୀର୍ଯ୍ୟକୁ କଲେକ ଆଧାନ । ପୁରକୁ ଗଲେ ଆରଦିନ ॥ ୫୦
ସେ ଶକୁନ୍ତଳା କାଳଅନ୍ତେ । ଜନମ କଲା ଏକସୁତେ ॥ ୫୧
୧୮ କୁମାରଜନମେ ଉଚିତ । ଯେ କର୍ମମାନ ବେଦଗତ ॥ ୫୨
କଣ୍ୱରଷି ତା' ବିପିନରେ । ରଚିଲେ ଯଥାର୍ଥ ପ୍ରକାରେ ॥ ୫୩
ସେ ବାଳସିଂହକୁ ବେଗରେ । ବାନ୍ଧିଣ ଖେଳିଲା ବନରେ ॥ ୫୪
୧୯ ଅଲଙ୍ଘ୍ୟ ପରାକ୍ରମ ଯାର । ଯେ ଅଂଶ ଅଂଶରୁ ବିଷ୍ଣୁର ॥ ୫୫
ଜନମ ହୋଇଛି କୁମାର । ତାହାକୁ ଘେନିଣ ସଙ୍ଗର ॥ ୫୬
ଉତ୍ତମ ସ୍ତିରୀ ଶକୁନ୍ତଳା । ଭର୍ତ୍ତାର ନିକଟକୁ ଗଲା ॥ ୫୭
୨୦ ଜଗତେ ନୁହନ୍ତି ନିନ୍ଦିତ । ଯେ ଆପଣାର ଭାର୍ଯ୍ୟାସୁତ ॥ ୫୮
ତାହାଙ୍କୁ ନରପତି ଯେବେ । ନ କଲେ ପରିଗ୍ରହ ତେବେ ॥ ୫୯
ସେଠାରେ ଥିଲେ ଯେତେ ଜଣ । ସେମାନେ କରନ୍ତେ ଶ୍ରବଣ ॥ ୬୦
ଆକାଶେ ଅଶରୀର ବାଣୀ । ବୋଇଲା ଏ ବଚନ ପୁଣି ॥ ୬୧
୨୧ ଜନନୀ ଚର୍ମପୁଡ଼ା ପ୍ରାଏ । ତନୁଜ ପିତାର ନିଶ୍ଚୟେ ॥ ୬୨
[୨]ଯେଣେ ସେ ହୋଇଅଛି ଜାତ । ସେହି ସେ ଅଟଇ ନିୟତ ॥ ୬୩
ପୁତ୍ରକୁ ପୋଷ ହେ ଦୁଷ୍ମନ୍ତ । ମନରେ ଆଶଙ୍କା ନ ଚିନ୍ତ ॥ ୬୪
ଏ ଶକୁନ୍ତଳା ଭାର୍ଯ୍ୟା ତୋର । ଏହାକୁ ଅବଜ୍ଞା ନ କର ॥ ୬୫

---

୧. ନୀବାର = ବାଳୁଙ୍ଗା ଧାନ । ୨. 'ଆତ୍ମା ବୈ ପୁତ୍ରନାମାସି' (ଶ୍ରୁତିଃ) ।

୨୨ ଯେ ପୁତ୍ର କରଇ ବଂଶକୁ । ଯମଗୃହରୁ ସେ ପିତାକୁ ॥ ୬୬
ଊର୍ଦ୍ଧ୍ୱଲୋକକୁ ଘେନି ଯାଇ । ଏ ଗର୍ଭକର୍ତ୍ତା ଅଟୁ ତୁହି ॥ ୬୭
ଯା' ଶକୁନ୍ତଳା ଅଛି ଭଣି । ସତ୍ୟ ଅଟଇ ସେହୁ ବାଣୀ ॥ ୬୮
୨୨(କ)ତହିଁ ଉତ୍ତାରୁ ସେ ଦୁଷ୍ମନ୍ତ । ଆପଣା ପୁତ୍ର ଯେ ଭରତ ॥ ୬୯
ବାସୁଦେବର ଅଂଶେ ଜାତ । ବ୍ରହ୍ମଣ୍ୟ ଗୁଣକୀର୍ତ୍ତିମନ୍ତ ॥ ୭୦
ବୃଦ୍ଧସେବକ ମହୋତ୍ସାହୀ । ବଦାନ୍ୟ ସତ୍ୟସନ୍ଧ ଯେହି ॥ ୭୧
କୃତଜ୍ଞ ଅଟଇ ସେ ପୁଣି । ଆକାଶବାଣୀ ରାଜା ଶୁଣି ॥ ୭୨
ଆପଣା ପୁତ୍ର ବୋଲି ମଣି । ରାଜ୍ୟରେ ରାଜା କଲେ ଆଣି ॥ ୭୩
ତପରେ ନିବେଶିଣ ମନ । ବନକୁ କଲେକ ଗମନ ॥ ୭୪
୨୩ ପିତାର ଅନ୍ତେ ଚକ୍ରବର୍ତ୍ତୀ । ସେ ମହାଯଶସ୍ୱୀ ନୃପତି ॥ ୭୫
୨୪ ଯାହାର ମହିମା ସୁଜନ । ଭୂମିରେ କରନ୍ତି ଗାୟନ ॥ ୭୬
ଯେ ଜାତ ବିଷ୍ଣୁର ଅଂଶରେ । ଚକ୍ର ଯା ଦକ୍ଷିଣ ହସ୍ତରେ ॥ ୭୭
ପାଦଯୁଗଳେ ପଦ୍ମକୋଷ । ଯାହାର ହୋଇଛି ପ୍ରକାଶ ॥ ୭୮
ସେ ମହା ଅଭିଷେକେ ସ୍ନାନ । ବିଧିକି ଲଭିଲା ରାଜନ ॥ ୭୯
୨୫ ପବିତ୍ର ଯଉଁ ହୟମାନ । ସଂଖ୍ୟାରେ ଅଟନ୍ତି ପଞ୍ଚାନ[୧] ॥ ୮୦
ତେଣେ ସେ ଗଙ୍ଗାତଟେ ଯାଗ । ଆରମ୍ଭ କଲା ମହାଭାଗ ॥ ୮୧
ଯେ ଅଟେ ମମତାର ସୁତ[୨] । ତାହାଙ୍କୁ କରି ପୁରୋହିତ ॥ ୮୨
ଯମୁନାକୂଳେ ମହାଶୟ । ଅଷ୍ଟସପ୍ତତି[୩] ମେଧ୍ୟ ହୟ ॥ ୮୩
ବନ୍ଧନ କଲା ନରପତି । ବିପ୍ରେ ଦିଅନ୍ତେ ଧନ ଅତି ॥ ୮୪
୨୬ ଦୁଷ୍ମନ୍ତତନୟ ଭରତ । ଯେ ଦେଶ ଅତି ଗୁଣେ ଯୁତ ॥ ୮୫
ତହିଁରେ ହୋଇଲା ତାହାର । ଅଗ୍ନିଚୟନ ବାରମ୍ବାର ॥ ୮୬
ସହସ୍ରସଂଖ୍ୟ ବିପ୍ରଜନ । ବଦ୍ଧସଂଖ୍ୟାରେ ଧେନୁମାନ ॥ ୮୭
ଲଭିଲେ ଯହିଁ ଏକୁଁଏକ । ତେର ସହସ୍ରରୁ ଅଧିକ ॥ ୮୮
ଯହିଁରେ ଚଉରାଶୀ ଗାଇ । ବଦ୍ଧସଂଖ୍ୟାକୁ[୪] ସେ ଲଭଇ ॥ ୮୯

---

୨୨(କ) "ତତଃ ସ୍ୱପୁତ୍ରଂ ଭରତଂ ବାସୁଦେବାଂଶସମ୍ଭବମ୍ ।
ବ୍ରହ୍ମଣ୍ୟଂ ସତ୍ୟସନ୍ଧଂ ଚ ଗୁଣକୀର୍ତ୍ତିବିବର୍ଧନମ୍ ॥ ୧
ମହୋତ୍ସାହଂ ବଦାନ୍ୟଂ ଚ କୃତଜ୍ଞଂ ବୃଦ୍ଧସେବିତମ୍ ।
ଅଶୀରରବଚଃ ଶ୍ରୁତ୍ୱା ସ୍ୱୀଚକାର ତଦାତ୍ମଜମ୍
ଦୁଷ୍ମନ୍ତଃ ପୁତ୍ରମାସିଚ୍ୟ ବନମେବ ଜଗାମ ହ ॥"
କେତେକ ପୋଥିରେ ୨୨(କ) ଶ୍ଲୋକ ଓ ତାର ଅନୁବାଦ (୬୯ରୁ ୭୪ ପୟାର) ଦେଖାଯାଏ ।

୧. ପଞ୍ଚାବନ । ୨. ମମତାର ସୁତ = ଭରଦ୍ୱାଜ । ୩. ଅଷ୍ଟସପ୍ତତି = ୭୮ ।
୪. ବଦ୍ଧସଂଖ୍ୟା - ଚତୁର୍ଦ୍ଦଶାନାଂ ଲକ୍ଷାଣାଂ ସପ୍ତାଧିକଶତାଂଶକଃ ।
ବଦ୍ଧଂ ଚତୁରଶୀତ୍ୟଗ୍ର ସହସ୍ରାଣି ତ୍ରୟୋଦଶ ॥ (ସ୍ୱାମୀ)
ଶହେ ସାତ ଅଧିକ ଚଉଦ ଲକ୍ଷ ତେର ହଜାର ଚୌରାଅଶୀ (ବଦ୍ଧ) ।

| | | | | | |
|---|---|---|---|---|---|
| ୨୭ | ତେତିଶ ଶତ ଅଶ୍ୱମାନ | । | ବାନ୍ଧିଣ ଭରତ ରାଜନ | ॥ | ୯୦ |
| | ବିସ୍ମୟ କରନ୍ତେ ରାଜାଙ୍କୁ | । | ଜିଣିଲା ଦେବଙ୍କ ମାୟାକୁ | ॥ | ୯୧ |
| | ବିଷ୍ଣୁର ଅଂଶରୁ ସାକ୍ଷାତ | । | ଯେଣୁ ସେ ହୋଇଛି ସଂଭୂତ | ॥ | ୯୨ |
| ୨୮ | [1]ଶୁକ୍ଳ ଯାହାଙ୍କ ଦନ୍ତମାନ | । | ଶରୀରଯାକ କୃଷ୍ଣବର୍ଣ୍ଣ | ॥ | ୯୩ |
| | ଯେ ଅତିଶ୍ରେଷ୍ଠ ଗଜଜାତି | । | [2]ଲଭିଲେ 'ମୃଗ'ନାମେ ଖ୍ୟାତି | ॥ | ୯୪ |
| | ସେ ମୃଗ ଚଉଦ ନିୟୁତ | । | ସୁବର୍ଣ୍ଣ କରି ପରିବୃତ | ॥ | ୯୫ |
| | କେହୁଣି କର୍ମେ ଦେଲା ଦାନ | । | ବ୍ରାହ୍ମଣମାନଙ୍କୁ ରାଜନ | ॥ | ୯୬ |
| ୨୯ | ଭୂତ ଭବିଷ୍ୟ ବର୍ତ୍ତମାନ | । | ତ୍ରିକାଳେ ଯେତେକ ରାଜନ | ॥ | ୯୭ |
| | ଭରତ ଯା' କରିଛି ପୂର୍ବେ | । | ସେ କର୍ମ କେହି ନ ପାଇବେ | ॥ | ୯୮ |
| | ଭୁଜଯୁଗରେ ଯେହ୍ନେ ଜନ | । | ଯାଇ ନ ଲଭେ ସ୍ୱର୍ଗସ୍ଥାନ | ॥ | ୯୯ |
| ୩୦ | କିରାତ, ହୂଣ, ପୌଣ୍ଡ୍ର, କଙ୍କ | । | ଯବନ, ଖଶ, ଯେବା ଶକ | ॥ | ୧୦୦ |
| | ଯେ ଅବ୍ରହ୍ମଣ୍ୟ ମ୍ଳେଚ୍ଛମାନେ | । | ଥିଲେ ଅଶେଷ ଏ ଭୁବନେ | ॥ | ୧୦୧ |
| | ଦିଗବିଜୟ ସମୟରେ | । | ତାହାଙ୍କୁ ମାଇଲେ ପୂର୍ବରେ | ॥ | ୧୦୨ |
| ୩୧ | ଅମରମାନଙ୍କୁ ଜିଣିଣ | । | ଯେ ଦୈତ୍ୟମାନେ ପୂର୍ବେ ପୁଣ | ॥ | ୧୦୩ |
| | ପାତାଳ ଆଦି ସ୍ଥାନମାନ | । | କଲେ ଆପଣାର ଭୁବନ | ॥ | ୧୦୪ |
| | ଇତର ପ୍ରାଣିଙ୍କ ସଙ୍ଗରେ | । | ଦେବତାସ୍ତିରୀଙ୍କି ତହିଁରେ | ॥ | ୧୦୫ |
| | ନିରୋଧ କରି ରଖିଥିଲେ | । | ଭରତନୃପ ତା' ଆଣିଲେ | ॥ | ୧୦୬ |
| ୩୨ | ତାହାର ପ୍ରଜା ଯେତେ ଜନ | । | ତାଙ୍କର ସର୍ବ କାମମାନ | ॥ | ୧୦୭ |
| | ଦ୍ୟାବାପୃଥିବୀ ଏହୁ ଦୁଇ | । | ଦୋହନ କଲେ ଯେହ୍ନେ ଗାଈ | ॥ | ୧୦୮ |
| | ସପତ ଅଧିକ ବିଂଶତି | । | ସହସ୍ର ବରଷ ନୃପତି | ॥ | ୧୦୯ |
| | ଆଜ୍ଞାକୁ ସକଳ ଦିଗରେ | । | ପ୍ରବର୍ତ୍ତାଇଲେ ପ୍ରତାପରେ | ॥ | ୧୧୦ |
| ୩୩ | ଯେ ଲୋକପାଳ ନାମେ ଖ୍ୟାତି | । | ଐଶ୍ୱର୍ଯ୍ୟ ଅଚିନ୍ତ୍ୟ[3] ସମ୍ପତ୍ତି | ॥ | ୧୧୧ |
| | ଯେ ଆଜ୍ଞା ସ୍ଖଳିତ ନୁହଇ | । | ଆପଣା ପ୍ରାଣମାନେ ଯେହି | ॥ | ୧୧୨ |
| | ଏମାନ ମିଥ୍ୟାରୂପେ ମଣି | । | ନିବର୍ତ୍ତିଲେ ସେ ନୃପମଣି | ॥ | ୧୧୩ |
| ୩୪ | ବିଦର୍ଭ ଦେଶରେ ସମ୍ଭୂତ | । | ହେ ନୃପ ! ଲୋକେ ସୁସମ୍ମତ | ॥ | ୧୧୪ |
| | ତାହାର ତିନି ଭାର୍ଯ୍ୟା ହେଲେ | । | ଯଉଁ ପୁତ୍ରଙ୍କୁ ଜାତ କଲେ | ॥ | ୧୧୫ |
| | ଆତ୍ମ ସଦୃଶ ଏ ନୁହନ୍ତି | । | ଏମନ୍ତ ବୋଲନ୍ତେ ନୃପତି | ॥ | ୧୧୬ |

---

୧. ହିରଣ୍ୟେନ ପରିବୃତାନ୍ କୃଷ୍ଣାନ୍ ଶୁକ୍ଳଦତୋ ମୃଗାନ୍ ।
ମଷ୍ଣାରେ ଭରତୋଽଦଦାଚ୍ଛତଂ ବଦ୍ଧାନି ସପ୍ତ ଚ ॥ (ଶ୍ରୁତିଃ)
ମଷ୍ଣାରେ = ତୀର୍ଥେ ; କସ୍ମିଂଶ୍ଚିଦ୍ କର୍ମଣି ।

୨. "ଭଦ୍ର-ମନ୍ଦ୍ର-ମୃଗାଦୟୋ ଗଜଜାତିଭେଦାଃ" (ସ୍ୱାମୀ) ।

୩. ଅତ୍ୟନ୍ତ ।

କରିଣ ବ୍ୟଭିଚାରୀ ମତି । ଆମ୍ଭଙ୍କୁ ଛାଡ଼େ ଅବା ପତି ।। ୧୧୭
ଏହି ଭୟରୁ ଯେତେ ସୁତ । କଲେ ସେ ସମସ୍ତଙ୍କୁ ହତ ।। ୧୧୮
୩୫ ଏମନ୍ତ ରୂପେ ବଂଶ ତାର । ବ୍ୟର୍ଥ ହୁଅନ୍ତେ ତଦନ୍ତର ।। ୧୧୯
ପୁତ୍ର ହୋଇବ ଉତପତି । ଏମନ୍ତ ବାଞ୍ଛାରେ ନୃପତି ।। ୧୨୦
ମରୁତସୋମ ନାମ ଯାର । କରନ୍ତେ ସେ ଯାଗ ଆଚାର ।। ୧୨୧
ମରୁତ ଦେଲେ ତାକୁ ସୁତ । ଯେ ଭରଦ୍ୱାଜ ନାମେ ଖ୍ୟାତ ।। ୧୨୨
୩୬ ଉତଥ୍ୟ ନାମରେ ବିଖ୍ୟାତ । ବୃହସ୍ପତିଙ୍କ ଜ୍ୟେଷ୍ଠ ଭ୍ରାତ ।। ୧୨୩
ମମତା ତାହାଙ୍କ ଯୁବତି । ସେ ହୋଇଥିଲା ଗର୍ଭବତୀ ।। ୧୨୪
ତାଠାରେ ମୈଥୁନର ପାଇଁ । ମିଳିଲେ ବୃହସ୍ପତି ଯାଇଁ ।। ୧୨୫
ଗର୍ଭରେ ଥିଲା ଯେ ନନ୍ଦନ । ଏଥିରେ ନାହିଁ ଆଉ ସ୍ଥାନ ।। ୧୨୬
ଏ ରୂପେ ଆକ୍ରୋଶ କରିଣ । କରନ୍ତେ ତାହା ନିବାରଣ ।। ୧୨୭
'ଅନ୍ଧ ହୁଅ ତୁ' ବୋଲି ତାକୁ । ବଳରେ ସିଞ୍ଚିଲେ ବୀର୍ଯ୍ୟକୁ ।। ୧୨୮
ଶାପରୁ ବୃହସ୍ପତିଙ୍କର । ଗର୍ଭସ୍ଥ ଦୀର୍ଘତମାଙ୍କର[୧] ।।
ନଷ୍ଟ ହୁଅନ୍ତେ ଚକ୍ଷୁବେନି । ଗୋଇଠିପ୍ରହାରେ ସେ ମୁନି ।।
ବୃହସ୍ପତିଙ୍କର ବୀର୍ଯ୍ୟକୁ । ଠେଲିଲେ ଯୋନିବାହାରକୁ ।।
ସେ ବୀର୍ଯ୍ୟ ଭୂମିରେ ପଡ଼ିଲା । ସଦ୍ୟ କୁମାରରୂପ ହେଲା ।।
୩୭ ଭର୍ତ୍ତା ନ ପୁଣ ଛାଡ଼ିଯାଇ । ମନରେ ଏ ଆଶଙ୍କା ପାଇ ।। ୧୨୯
ସେ ପୁତ୍ର ଛାଡ଼ିବାକୁ ଚିତ୍ତେ । ମମତା ବିଚାର କରନ୍ତେ ।। ୧୩୦
ବୃହସ୍ପତିର ମମତାର । ବିବାଦେ ଯେ ହେଲା ପ୍ରଚାର ।। ୧୩୧
ସେ ଶ୍ଳୋକ ନାମନିର୍ବଚନେ[୨] । ଗାଇଲେ ତାର ସୁରମାନେ ।। ୧୩୨
ପୁତ୍ରକୁ ଛାଡ଼ି ସେହିଠାର । ମମତା ହୁଅନ୍ତେ ବାହାର ।।
୩୮ ସେ ବୃହସ୍ପତି ମମତାକୁ । ବୋଇଲେ ହେ ମୂଢ଼େ ଏହାକୁ ।। ୧୩୩
ଭର ତୁ ପାଳନାକୁ କର । ପତିସକାଶୁଁ ଭୟ ମୋର ।।
ଯଦି ବା ଏମନ୍ତ ବିଚାରୁ । ଶୁଣ ବଚନ ତେବେ ଭୀରୁ ।।
ଏକର କ୍ଷେତ୍ରେ ଅପରର । ବୀଜରୁ ଜାତ ଯେ କୁମର ।।
ତାହାକୁ ଦ୍ୱାଜ ବୋଲି କହି । ଏଣୁ ଏ ତାଙ୍କ ତନୟ ହିଁ ।।
ଏ ଘେନି ତାଙ୍କ ତହୁଁ ତୋର । ଭୟଶଙ୍କାକୁ ଦୂର କର ।।
ଦେଖ ତୁ ଏ ଯେଉଁ କୁମର । ଏକା ତ ନୁହଇ ମୋହର ।। ୧୩୪
ଏ ଦୁହିଁଙ୍କରି ଠାରୁ ଆଜ । ଜନ୍ମିଲା ଏଣୁ ଅଟେ ଦ୍ୱାଜ ।। ୧୩୫
ମମତା ବୋଇଲା ତଦନ୍ତେ । ଭର ଏହାକୁ ବୃହସ୍ପତେ ।। ୧୩୬
ଏ ଆମ୍ଭ ଦୁହିଁଙ୍କରି ଠାରୁ । ଜନମ ହେଲା ଅନ୍ୟାୟରୁ ।। ୧୩୭

୧. ଦୀର୍ଘତମା = ଜଣେ ଋଷିଙ୍କର ନାମ । ୨. ବ୍ୟୁତ୍ପତ୍ତି ।

ଏଣୁ ମୁଁ ଏକାକୀ ହୋଇଣ । ଯାକୁ ନ କରିବି ପୋଷଣ ॥ ୧୩୮
ଏମନ୍ତ ବଚନକୁ କହି । ଗଲେ ସେ ପିତାମାତା ଦୁଇ ॥ ୧୩୯
ତେଣୁ ଏହାର ଭରଦ୍ୱାଜ । ନାମ ହୋଇଲା ସିଦ୍ଧ ଆଜ ॥ ୧୪୦
୩୯ ଦେବେ ବୋଲନ୍ତେ ଏ ବଚନ । ବ୍ୟଭିଚାରୁଁ ଯେ ହେଲା ଜନ୍ମ ॥ ୧୪୧
ତାହାକୁ ବ୍ୟର୍ଥ କରି ମଣି । ଛାଡ଼ିଲା ଉତଥ୍ୟତରୁଣୀ ॥ ୧୪୨
ମରୁତମାନେ ତାକୁ ନେଲେ । ଅତିଯତ୍ନରେ ପୋଷିଥିଲେ ॥ ୧୪୩
ଭରତବଂଶ ନାଶ ଯାନ୍ତେ । ତାହାକୁ ଦେଲେ ଯାଗଅନ୍ତେ ॥ ୧୪୪
ସାଧୁଜନଙ୍କ ପାଦଧୂଳି । ହରଷେ ନିଜ ଅଙ୍ଗେ ବୋଳି ॥ ୧୪୫
ଭଣି ନବମସ୍କନ୍ଧ ଗୀତ । ଆନନ୍ଦ ଦୀନବନ୍ଧୁଚିତ୍ତ ॥ ୧୪୬

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀପୁରୁବଂଶକୀର୍ତ୍ତନଂ
ନାମ ବିଂଶୋଽଧ୍ୟାୟଃ ॥

## ଏକବିଂଶ ଅଧ୍ୟାୟ

ଏକବିଂଶେ ତୁ ଦୌଷ୍ମନ୍ତେଃ ସୁତସ୍ୟାନ୍ୱୟ ଉଚ୍ୟତେ ।
ରନ୍ତିଦେବାଜମୀଢ଼ାଦେର୍ଯତ୍ର କୀର୍ତ୍ତିଃ ପ୍ରତନ୍ୟତେ ॥ ୧

ଶ୍ରୀଶୁକ ଉବାଚ

୧ ମରୁତ ଯାହା କଲେ ଦତ୍ତ । ଭରତ ନୃପର ସେ ସୁତ ॥ ୧
ବିତଥ ଅଟେ ନାମ ତାର । ମନ୍ୟୁ ନାମରେ ତା' କୁମର ॥ ୨
ମନ୍ୟୁର ହେଲେ ପଞ୍ଚ ପୁତ୍ର । ପ୍ରଥମ ନାମ ବୃହଦ୍‌କ୍ଷତ୍ର ॥ ୩
ଯେ ଜୟ ମହାବୀର୍ଯ୍ୟ ନର । ଗର୍ଗ ଯେ ଏ ଚାରି ଆବର ॥ ୪
ନରର ଠାରୁ ଉତପତି । ଯେ ପୁତ୍ର ତା' ନାମ ସଂକୃତି ॥ ୫
୨ ହେ ନୃପ ! ରନ୍ତିଦେବ ଗୁରୁ[୧] । ଜନ୍ମିଲେ ସଂକୃତିର ଠାରୁ ॥ ୬
ରନ୍ତିଦେବର ଯଉଁ କୀର୍ତ୍ତି । ସ୍ୱର୍ଗେ ମର୍ତ୍ତ୍ୟରେ ତା ଗାଆନ୍ତି ॥ ୭
୩ ଉଦ୍ୟମ ନ ଥିଲେହେଁ ବିତ୍ତ । ତାହାକୁ ହୋଇ ଉପସ୍ଥିତ ॥ ୮
ଯେ ଦ୍ରବ୍ୟ ଦଇବେ ମିଳଇ । କ୍ଷୁଧା କଲେହେଁ ତା ଦିଅଇ ॥ ୯
ସେ ଅଟେ ଅକିଂଚନ ଦୀନ । ହୁଅନ୍ତେ ସକୁଟୁମ୍ବ ଶୀର୍ଣ୍ଣ ॥ ୧୦
୪ ଜଳ ହିଁ ନ କରନ୍ତେ ପାନ । ଗଲା ଅଠଚାଳିଶ ଦିନ ॥ ୧୧
୬ ଯେତେକ କୁଟୁମ୍ବ ତାହାର । କଷ୍ଟକୁ ଲଭିଲେ ଅପାର ॥ ୧୨

୧. ପୁରୁ ।

କ୍ଷୁଧାରେ ତୃଷାରେ ଶରୀର । କମ୍ପୁଛି ସେ ରନ୍ତିଦେବର ॥
ପକ୍ୱ ଗୋଧୂମ ଖିରଘୃତ । ପ୍ରଭାତେ ହେଲା ଉପସ୍ଥିତ ॥
କାଳରେ ଭୁଞ୍ଜିବାକୁ ମନ । ବାଞ୍ଛା କରନ୍ତେ ସେ ରାଜନ ॥
ଅଇଲା ଅତିଥି ବ୍ରାହ୍ମଣ । ଶ୍ରଦ୍ଧାରେ ଆଦର କରିଣ ॥
ହରିଙ୍କି ସକଳ ଭୂତରେ । ଦେଖନ୍ତେ ଆତ୍ମସ୍ୱରୂପରେ ॥
ଯେ ଅନ୍ନ ଆପଣାର ଥିଲା । ତହିଁରୁ ଭାଗେ ତାକୁ ଦେଲା ॥
ବ୍ରାହ୍ମଣ ଭୁଞ୍ଜି କରି ଅନ୍ନ । ଗୃହକୁ କଲା ସେ ଗମନ ॥
୭ ଭୁଞ୍ଜିବା ନିମିତ୍ତେ ଆପଣ । ବାଣ୍ଟିଥିଲା[1] ସେ ରାଜା ପୁଣ ॥
ଅନ୍ନ ଭୁଂଜିବାର ନିମିତ୍ତ । ଶୂଦ୍ରେ ହୋଇଲା ଉପସ୍ଥିତ ॥
ସ୍ମରଣା କରନ୍ତେ ବିଷ୍ଣୁଙ୍କୁ । ବାଣ୍ଟିଲା ଭାଗ ଦେଲା ତାକୁ ॥
୮ ସେ ଶୂଦ୍ର ଯାଆନ୍ତେ ତଦନ୍ତ । କୁକ୍କୁରମାନଙ୍କେ ବେଷ୍ଟିତ ॥
ଅତିଥି ପ୍ରବେଶ ହୋଇଲା । ଏମନ୍ତ ବଚନ ବୋଇଲା ॥
ଗଣସହିତେ ହେ ରାଜନ । କ୍ଷୁଧାର୍ତ୍ତ ମୁଁ ଦିଅ ତୁ ଅନ୍ନ ॥
୯ ସେ ରାଜା କରିଣ ଆଦର । ବହୁତ ମାନ୍ୟ ପୁରସ୍କାର ॥
ଯେ ଅବଶେଷ ଥିଲା ଅନ୍ନ । ତାହା କରିଣ ନିବେଦନ ॥
ପ୍ରଣାମ କଲା କୁକ୍କୁରଙ୍କୁ । କୁକ୍କୁରମାନଙ୍କ ନାଥକୁ ॥
୧୦ ଜଳମାତ୍ରକ ଥିଲା ଶେଷ । ଜଣେ ହୋଇବ ତେଣେ ତୋଷ ॥
ସେ ଜଳ ପିଇବ ଭୂପାଳ । ଏହି ସମୟରେ ଚଣ୍ଡାଳ ॥
ନୃପତିଆଗରେ ମିଳିଲା । ଏମନ୍ତ ବଚନ ବୋଇଲା ॥
ଅଶୁଭ ଜାତି ମୁଁ ଚଣ୍ଡାଳ । ପ୍ରଦାନ କର ମୋତେ ଜଳ ॥
୧୧ ତାର ଦୁଃଖିତ ବାକ୍ୟ ଶୁଣି । ବିପୁଳ ଶ୍ରମକୁ ହିଁ ଜାଣି ॥
କୃପାରେ ଅତିତପ୍ତ ହେଲା । ଏମନ୍ତ ବଚନ ବୋଇଲା ॥
ସରସ ଅମୃତସମାନ । ଅଟଇ ଯେବଣ ବଚନ ॥
୧୨ ଅଷ୍ଟ ଐଶ୍ୱର୍ଯ୍ୟଯୁକ୍ତ ହୋଇ । ପରମ ଗତି ଯେ ଅଟଇ ॥
ଈଶ୍ୱରଠାରୁ ତାହା ମୁହିଁ । ଲଭିବି ବୋଲି ନ ବାଞ୍ଛଇଁ ॥
ମୋକ୍ଷ ହିଁ ନ ବାଞ୍ଛଇ ମନେ । ସଂସାରେ ଯେତେ ପ୍ରାଣୀମାନେ ॥
ତାହାଙ୍କ ଅନ୍ତର୍ଗତେ ମୁହିଁ । ଭୋକ୍ତାରୂପରେ ରହିଥାଇ ॥
ଭୁଞ୍ଜିବି ତାହାଙ୍କ ଦୁଃଖକୁ । ବାଞ୍ଛା କରୁଛି ଏ କଥାକୁ ॥
ମୁଁ ଦୁଃଖ ଭୁଞ୍ଜିଲେ ସେମାନେ । ଅଦୁଃଖୀ ହୋଇବେ ଭୁବନେ ॥
୧୩ ଜୀଇବା ନିମିତ୍ତରେ ମନ । ଯେ କରୁଅଛି ଦୁଃଖୀ ଜନ ॥
ତାର ଜୀବନହେତୁ ନୀର । ଅର୍ପଣସକାଶୁଁ ସତ୍ୱର ॥

---

୧. ବାଣ୍ଟୁଥିଲା ।

| | | | | |
|---|---|---|---|---|
| | ଯେ କ୍ଷୁଧା ତୃଷା ଗାତ୍ରଭ୍ରମ | । ଶୋକ ବିଷାଦ ମୋହ କ୍ଲମ | ।। | ୪୪ |
| | ଯେ ଦୈନ୍ୟ ଯେ ଶ୍ରମ ଆବର | । ସେ ସର୍ବ ନିବର୍ତ୍ତିଲେ ମୋର | ।। | ୪୫ |
| ୧୪ } | ତୃଷାରେ ଯାଉଅଛି ପ୍ରାଣ | । ତଥାପି ସ୍ୱଭାବକରୁଣ | ।। | ୪୬ |
| ୧୫ } | ଏମନ୍ତ କହି ନୃପବର | । ଦେଲା ସେ ଚଣ୍ଡାଳକୁ ନୀର | ।। | ୪୭ |
| | ଯେ ତିନି ଭୁବନ ଈଶ୍ୱର | । ଫଳ ବାଞ୍ଛିଲା ଲୋକଙ୍କର | ।। | ୪୮ |
| | ଫଳକୁ କରନ୍ତି ପ୍ରଦାନ | । ବୁଝିବା ଅର୍ଥେ ନୃପମନ | ।। | ୪୯ |
| | ବିଷ୍ଣୁନିର୍ମିତ ମାୟାରୂପେ | । ପ୍ରବେଶ ହେଲେ ତା' ସମୀପେ | ।। | ୫୦ |
| | ସେ ପୁଣ ପ୍ରସନ୍ନ ହୋଇଲେ | । ନିଜ ଶରୀର ଦେଖାଇଲେ | ।। | ୫୧ |
| ୧୬ | ସେ ନୃପ ନିଃସଙ୍ଗ ନିଷ୍କାମ | । କରି ସେମାନଙ୍କୁ ପ୍ରଣାମ | ।। | ୫୨ |
| | କେବଳ ବାସୁଦେବଠାରେ | । ମନକୁ କଲା ଭକ୍ତିଦ୍ୱାରେ | ।। | ୫୩ |
| | ସେମାନେ ହେଲେହେଁ ପ୍ରସନ୍ନ | । କିଛି ହିଁ ନ କଲା ପ୍ରାର୍ଥନ | ।। | ୫୪ |
| ୧୭ | ଈଶ୍ୱରଠାରେ ଆଲମ୍ବନ | । କରନ୍ତେ ଆପଣାର ମନ | ।। | ୫୫ |
| | ଈଶ୍ୱରବ୍ୟତିରେକେ ଯାର | । ଅପେକ୍ଷା ନାହିଁ ଆନଠାର | ।। | ୫୬ |
| | ଯେ ଗୁଣମୟୀ ମାୟା ଥିଲା | । ସେ ରନ୍ତିଦେବର ତୁଟିଲା | ।। | ୫୭ |
| | ହେ ନୃପ ସ୍ୱପନ ଯେସନ | । ହୁଅଇ ପ୍ରାଣୀଙ୍କର ଲୀନ | ।। | ୫୮ |
| ୧୮ | ସେ ରନ୍ତିଦେବପ୍ରସଙ୍ଗର[୧] | । ଅନୁଭାବରୁ ସର୍ବନର | ।। | ୫୯ |
| | ନାରାୟଣରେ ପରାୟଣ | । ହୋଇଲେ ଯୋଗେ ଦେଇ ମନ | ।। | ୬୦ |
| ୧୯ } | 'ମନ୍ୟୁ'ନୃପର ଗର୍ଗ ସୁତ | । ତା'ଠାରୁ ଶନି ହେଲା ଜାତ | ।। | ୬୧ |
| ୨୦ } | ଶନିର ସୁତ ଗାର୍ଗ୍ୟ ପୁଣ | । ତା'ଠାରୁ ହୋଇଲେ ବ୍ରାହ୍ମଣ | ।। | ୬୨ |
| | ମନ୍ୟୁନୃପର ଆର ସୁତ | । ଯେ ମହାବୀର୍ଯ୍ୟ ନାମେ ଖ୍ୟାତ | ।। | ୬୩ |
| | ତାହାର ଯେ ହେଲା କୁମର | । 'ଦୁରିତକ୍ଷୟ' ନାମ ତାର | ।। | ୬୪ |
| | ତାହାର କବି, ତ୍ରୟ୍ୟାରୁଣି | । ପୁଷ୍କରାରୁଣି ନାମେ ପୁଣି | ।। | ୬୫ |
| | ଏରୂପେ ତିନି ପୁତ୍ର ହେଲେ | । ବ୍ରାହ୍ମଣଗତିକି ସେ ଗଲେ | ।। | ୬୬ |
| ୨୧ | ମନ୍ୟୁର ଯେହୁ ପଞ୍ଚପୁତ୍ର | । ତହିଁରେ ଜ୍ୟେଷ୍ଠ ବୃହତ୍‌କ୍ଷତ୍ର | ।। | ୬୭ |
| | 'ହସ୍ତୀ' ନାମରେ ତାର ସୁତ | । ହସ୍ତିନା[୨] ଯେ କଲା ନିର୍ମିତ | ।। | ୬୮ |
| | ହସ୍ତୀନୃପର ତିନି ସୁତ | । ପ୍ରଥମ ଅଜମୀଢ଼ ଖ୍ୟାତ | ।। | ୬୯ |
| | ଦ୍ୱିମୀଢ଼ ପୁରୁମୀଢ଼ ହୋଇ | । ପୁଣି ଜନ୍ମିଲେ ପୁତ୍ର ଦୁଇ | ।। | ୭୦ |
| | ପ୍ରିୟମେଧକୁ ଆଦି ହୋଇ | । ଯେ ବିପ୍ରମାନେ ଥିଲେ ମହୀ | ।। | ୭୧ |
| | ସେ ଅଜମୀଢ଼ ନୃପତିର | । ବଂଶରୁ ହୋଇଲେ ପ୍ରଚାର | ।। | ୭୨ |

୧. ସଙ୍ଗମର ।   ୨. ହସ୍ତିନା = ହସ୍ତିନାପୁର ।

୨୨ ଅଜମୀଢ଼ର ଆର ସୁତ । ସେ ବୃହଦିଷୁ ନାମେ ଖ୍ୟାତ ॥ ୭୩
ତା' ସୁତ ବୃହଦ୍ଧନୁ ନାମ । ତା'ଠାରୁ ବୃହଦ୍‌କାୟ ଜନ୍ମ ॥ ୭୪
ଯେ ବୃହଦ୍‌କାୟଠାରୁ ଜାତ । ତାହାର ନାମ ଜୟଦ୍ରଥ ॥ ୭୫
୨୩ ବିଦଧ[୧] ନାମେ ତାର ସୁତ । ତାର ତନୟ ସେନଜିତ ॥ ୭୬
ସେନଜିତର ରୁଚିରାଶ୍ୱ । ଯେ ବସ୍ତ ଦୃଢ଼ହନୁ[୨] କାଶ୍ୟ ॥ ୭୭
୨୪ ରୁଚିରାଶ୍ୱର ସୁତ ପାର । ପୃଥୁସେନ[୩] ତାର କୁମର ॥ ୭୮
ପାରର ନୀପ ଆର ସୁତ । ତାହାର ହେଲେ ପୁତ୍ର ଶତ ॥ ୭୯
୨୫ ଶୁକଙ୍କ ସୁତା କୃତ୍ୱୀ ନାମ । ତାଠାରେ ନୀପ କଲା ଜନ୍ମ ॥ ୮୦
ସେ ପୁତ୍ରନାମ ବ୍ରହ୍ମଦତ୍ତ । ଜଗତେ ଅଟଇ ବିଦିତ ॥ ୮୧
ଯଦ୍ୟପି ଶୁକ ମହାଯତି । ନାହିଁ ତାଙ୍କର ସ୍ତିରୀରତି ॥ ୮୨
ତଥାପି ବ୍ୟାସଙ୍କର ତୋଷ । ନିମିତ୍ତେ ଯା' କଲେ ପ୍ରକାଶ ॥ ୮୩
[୪]ତାଙ୍କର ଛାୟାଶୁକ ନାମ । ତାଠାରୁ କୃତ୍ୱୀର ଜନମ ॥ ୮୪
୨୬ ସେ ଯୋଗୀ ଅଟେ ବ୍ରହ୍ମଦତ୍ତ । ସରସ୍ୱତୀର ଠାରେ ସୁତ ॥ ୮୫
ଜନମ କଲା ସେ ଉତ୍ତମ । ବିଷ୍ୱକସେନ ତାର ନାମ ॥ ୮୬
ଜୈଗୀଷବ୍ୟର ଉପଦେଶେ । ଯୋଗତନ୍ତ୍ରକୁ ହିଁ କଲା ସେ ॥ ୮୭
ଉଦକସ୍ୱନ ତାର ସୁତ । ଭଲ୍ଲାଦ ତାର ଠାରୁ ଜାତ ॥ ୮୮
ଏ ବୃହଦିଷୁ ନରପତି । ବଂଶେ ସମସ୍ତେ ଉତପତି ॥ ୮୯
୨୭ ହସ୍ତୀ ନୃପତି ଆର ସୁତ । ଦ୍ୱିମୀଢ଼ ନାମରେ ଯେ ଖ୍ୟାତ ॥ ୯୦
ତାର ତନୟ ଯବୀନର । କୃତିମନ୍ତ ତାର କୁମର ॥ ୯୧
ତାହାର ସତ୍ୟଧୃତି ସୁତ । ତା'ଠାରୁ ଦୃଢ଼ନେମି ଜାତ ॥ ୯୨

---

୨୨(କ) { ଅଜମୀଢ଼ର ସୁତ ଯେହି । ତା ନାମ ବୃହଦିଷୁ ହୋଇ ॥ ୧
ବୃହଦିଷୁର ଯେ କୁମର । ବୃହତଧନୁ ନାମ ତାର ॥ ୨
ତାର କୁମର ବୃହଦ୍‌କାୟ । ଜୟଦ୍ରଥ ତାର ତନୟ ॥ ୩ }

୧. ବିଶଦ । ୨. ବୃ୍ୟଢ଼ହନୁ । ୩. ପୃଥୁସେଧ ।

୪. ପରାଶରକୁଳୋଦ୍‌ପନ୍ନଃ ଶୁକୋ ନାମ ମହାଯଶାଃ ।
ବ୍ୟାସାଦରଣ୍ୟାଂ ସମ୍ଭୂତୋ ବିଧୂମୋଽଗ୍ନିରିବ ଜ୍ୱଳନ୍ ॥ ୧
ସ ତସ୍ୟାଂ ପିତୃକନ୍ୟାୟାଂ ବୀରିଣ୍ୟାଂ ଜନୟିଷ୍ୟତି ।
କୃଷ୍ଣଂ ଗୌରଂ ପ୍ରଭୁଂ ଶମ୍ଭୁଂ ତଥା ଭୂରିଶ୍ରୁତଂ ଜୟମ୍ ॥ ୨
କନ୍ୟାଂ କୀର୍ତ୍ତିମତୀଂ ଷଷ୍ଠିଂ ଯୋଗିନୀଂ ଯୋଗମାତରଂ ।
ବ୍ରହ୍ମଦତ୍ତସ୍ୟ ଜନନୀଂ ମହିଷୀମନୁହସ୍ୟ ଚ ॥ ୩
(ହରିବଂଶାଦି)

ଶୁକ ପରାଶରଙ୍କ କୂଳରେ ଉତ୍ପନ୍ନ । ବ୍ୟାସଙ୍କ ଠାରୁ ସେ ଅରଣୀଠାରେ ଜାତ । ସେ ପିତୃକନ୍ୟା 'ବୀରିଣୀ' ଠାରେ କୃଷ୍ଣ, ଗୌର, ପ୍ରଭୁ, ଶମ୍ଭୁ, ଭୂରିଶ୍ରୁତ, ଜୟ, କୀର୍ତ୍ତିମତୀ କନ୍ୟା, ଯୋଗମାତା, ଯୋଗିନୀ, ବ୍ରହ୍ମଦତ୍ତର ଜନନୀ ଓ 'ଅନୁହ'ର ମହିଷୀକୁ ଜନ୍ମାଇବେ ।

ଯଦ୍ୟପି ଶୁକ ଉତ୍‌ପତ୍ତି ସଙ୍ଗେ ସଙ୍ଗେ ବିମୁକ୍ତସଙ୍ଗ ହୋଇ ନିର୍ଗତ ହେଲେ, ତଥାପି ବିରହାତୁର ବ୍ୟାସଙ୍କୁ ଅନୁଗମନ କରୁଥିବାର ଦେଖି ଛାୟାଶୁକ ନିର୍ମାଣ କରି ଯାଇଥିଲେ । ସେହି ଅଭିପ୍ରାୟରେ ହିଁ ଏହି ଗାର୍ହସ୍ଥ୍ୟାଦି ବ୍ୟବହାର ଉକ୍ତ ହୋଇଛି । (ସ୍ୱାମୀ)

ସେ ଦୃଢ଼ନେମି ନୃପତିର । ସୁପାର୍ଶ୍ୱ ନାମରେ କୁମର ।। ୯୩
୨୮ ସୁମତି ସୁପାର୍ଶ୍ୱକୁମର । ସନ୍ନତିମନ୍ତ ସୁତ ତାର ।। ୯୪
୨୯ ତାଠାରୁ ଯେ ସୁତ ଜନମ । ତାହାର ଅଟେ କୃତି ନାମ ।। ୯୫
ହିରଣ୍ୟନାଭଠାରୁ ପୁଣ । ସେ କୃତି ଯୋଗକୁ ଲଭିଣ ।। ୯୬
ଯେ ପ୍ରାଚ୍ୟ ସାମମାନଙ୍କର । ଷଟ ସଂହିତାକୁ ବିସ୍ତାର ।। ୯୭
ତାହାକୁ କଲା ସେ ଗାୟନ । ନୀପ ତାଠାରୁ ଉତପନ୍ନ ।। ୯୮
ନୀପର ଠାରୁ ଯେ ଜନମ । ତାହାର ଉଗ୍ରାୟୁଧ ନାମ ।। ୯୯
ଉଗ୍ରାୟୁଧର ସୁତ କ୍ଷେମ୍ୟ । ସୁବୀର ତାଠାରୁ ଜନମ ।। ୧୦୦
ସୁବୀରସୁତ ରିପୁଞ୍ଜୟ । ବହୁରଥ ତାର ତନୟ ।। ୧୦୧
୩୦ ଦ୍ୱିମୀଢ଼ବଂଶ ଏ ବିଖ୍ୟାତ । ପୁରୁମୀଢ଼ର ନାହିଁ ସୁତ ।। ୧୦୨
ଅଜମୀଢ଼ର ଭାର୍ଯ୍ୟା ଆନ । ନଳିନୀ ନାମେ ବିଦ୍ୟମାନ ।। ୧୦୩
ତାଠାରୁ ନୀଳ ହେଲା ଜାତ । ଶାନ୍ତିନାମରେ ନୀଳସୁତ ।। ୧୦୪
୩୧ ସୁଶାନ୍ତି ଶାନ୍ତିଠାରୁ ଜାତ । ପୁରୁଜ ନାମେ ତାର ସୁତ ।। ୧୦୫
୩୨ ପୁରୁଜନୃପତିକୁମର । ଅର୍କ ଅଟଇ ନାମ ତାର ।। ୧୦୬
ଭର୍ମ୍ୟାଶ୍ୱ ଅର୍କର କୁମର । ମୁଦ୍‌ଗଲ ଆଦି ହୋଇ ତାର ।। ୧୦୭
ଜନମ ହେଲେ ପାଞ୍ଚ ସୁତ । ଯେ ଯବୀନର ନାମେ ଖ୍ୟାତ ।। ୧୦୮
କାମ୍ପିଲ୍ଲ ବୃହଦ୍‌ବିଶ୍ୱ ଦୁଇ । ସୃଞ୍ଜୟ[୧] ମିଶି ପାଞ୍ଚ ଏହି ।। ୧୦୯
୩୩ ଭର୍ମ୍ୟାଶ୍ୱ ବୋଇଲା ହେ ସୁତେ । ମୋହର ରକ୍ଷଣନିମିତ୍ତେ ।। ୧୧୦
ଏ ପଞ୍ଚ ରାଜ୍ୟ ଅଳ୍ପ ଖ୍ୟାତ । ଏଣୁ ସେ ପଞ୍ଚାଳ ବିଦିତ ।। ୧୧୧
ମୁଦ୍‌ଗଲଠାରୁ ଯେତେ ପୁଣ । ଜନ୍ମିଲେ ସେ ସର୍ବେ ବ୍ରାହ୍ମଣ ।। ୧୧୨
ମୁଦ୍‌ଗଲ ନାମେ ଗୋତ୍ରଯେହି । ଜଗତେ ବିଦିତ ଅଟଇ ।। ୧୧୩
୩୪ ଭର୍ମ୍ୟାଶ୍ୱତନୟ ମୁଦ୍‌ଗଲ । ତାହାର ଜନ୍ମିଲେ ଯୁଗଳ ।। ୧୧୪
ତହିଁରେ ଯେ ଅଟେ ପୁରୁଷ । ତାହାର ନାମ ଦିବୋଦାସ ।। ୧୧୫
ଯେ କନ୍ୟା ସେ ଅହଲ୍ୟା ନାମ । ଯାହାର ଠାରେ ସେ ଗୌତମ ।। ୧୧୬
ଜନମ କଲେ ଏକ ସୁତ । ଯେ ଶତାନନ୍ଦ ନାମେ ଖ୍ୟାତ ।। ୧୧୭
୩୫ ଯେ ଶତାନନ୍ଦଠାରୁ ଜାତ । ସେ ସତ୍ୟଧୃତି ନାମେ ଖ୍ୟାତ ।। ୧୧୮
ଧନୁର୍ବେଦରେ ସେ ପଣ୍ଡିତ । ତାହାର ଶରଦ୍‌ବାନ ସୁତ ।। ୧୧୯
ଉର୍ବଶୀଦରଶନୁଁ ଯାର । ତତ୍‌କ୍ଷଣେ ମଦନବିକାର ।। ୧୨୦
ଶରୀରେ ହୋଇଲା ସଂଭୂତ । ପଡ଼ିଲା ଶରସ୍ତମ୍ଭେ ରେତ ।। ୧୨୧
ତହିଁରୁ ହୋଇଲେ ଉତ୍ତମ । କନ୍ୟାଏ ବାଳକେ ଜନମ ।। ୧୨୨
୩୬ ଶାନ୍ତନୁ ନୃପ ମୃଗୟାକୁ । ଚରନ୍ତେ ଦେଖିଣ ତାହାକୁ ।। ୧୨୩

---

୧. ସଞ୍ଜୟ ।

ଘେନିଣ ଗଲେ କରୁଣାରେ । ଯେ ପୁତ୍ର କୃପ ସେ ତହିଁରେ ॥ ୧୨୪
ଯେ କନ୍ୟା କୃପୀ ନାମ ତାର । ପତ୍ନୀ ଅଟଇ ସେ ଦ୍ରୋଣର ॥ ୧୨୫
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୧୨୬

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଭରତବଂଶାନୁବର୍ଣ୍ଣନଂ
ନାମ ଏକବିଂଶୋଽଧ୍ୟାୟଃ ॥

## ଦ୍ୱାବିଂଶ ଅଧ୍ୟାୟ

ଦ୍ୱାବିଂଶେ ତୁ ଦିବୋଦାସବଂଶମୁକ୍ତ୍ୱାଥ ବର୍ଣ୍ଣିତାଃ ।
ଋକ୍ଷବଂଶେ ଜରାସନ୍ଧପାର୍ଥଦୁର୍ଯ୍ୟୋଧନାଦୟଃ ॥ ୧

ଶ୍ରୀଶୁକ ଉବାଚ

୧ ଦିବୋଦାସର ଠାରୁ ଜାତ । ମିତ୍ରେୟୁ ଚ୍ୟବନ ତା' ସୁତ ॥ ୧
ହେ ନୃପ ! ସୁଦାସ ତା' ସୁତ । ତାଠାରୁ ସହଦେବ ଜାତ ॥ ୨
ସୋମକ ତନୟ ତାହାର । ଜନ୍ତୁ ନାମରେ ତା' କୁମର ॥ ୩
୨} ତାହାର ହେଲେ ପୁତ୍ର ଶତ । ତହିଁରେ କନିଷ୍ଠ ପୃଷତ ॥ ୪
୩} ଦ୍ରୁପଦ ପୃଷତକୁମାର । ଦ୍ରୌପଦୀ ତନୟା ତାହାର ॥ ୫
ଧୃଷ୍ଟଦ୍ୟୁମ୍ନକୁ ଆଦି ଯେତେ । ଦ୍ରୁପଦରାଜାର ଏ ସୁତେ ॥ ୬
ଧୃଷ୍ଟଦ୍ୟୁମ୍ନର ଠାରୁ ଜନ୍ମ । ତନୂଜ ଧୃଷ୍ଟକେତୁ ନାମ ॥ ୭
ଭର୍ମ୍ୟାଶ୍ୱବଂଶରେ ସଂଭୂତ । ଏ ସର୍ବେ ପାଞ୍ଚାଳ ବିଦିତ ॥ ୮
୪ ଅଜମୀଢ଼ର ଆନ ସୁତ । ଋକ୍ଷନାମରେ ସେ ବିଦିତ ॥ ୯
ତାଠାରୁ ସମ୍ବରଣ ନାମ । ତନୟ ହୋଇଲା ଜନମ ॥ ୧୦
ତପତି ନାମେ ସୂର୍ଯ୍ୟସୁତା । ସେ ସମ୍ବରଣର ବନିତା ॥ ୧୧
ତାଠାରୁ ହେଲା କୁରୁ ଜାତ । ସେ ଅଟେ କୁରୁକ୍ଷେତ୍ରନାଥ ॥ ୧୨
୫ କୁରୁନୃପର ଚାରି ସୁତ । ପରୀକ୍ଷି[୧] ସୁଧନୁସହିତ ॥ ୧୩
ନିଷଧ ଜହ୍ନୁ ବେନି ପୁତ୍ର । ସୁଧନୁତନୁଜ ସୁହୋତ୍ର ॥ ୧୪
ସୁହୋତ୍ରତନୟ ଚ୍ୟବନ । ତାଠାରୁ କୃତୀ ହେଲା ଜନ୍ମ ॥ ୧୫
୬ କୃତୀର ଠାରୁ ହେଲା ଜାତ । ଉପରିଚର ବସୁସୁତ ॥ ୧୬
ବୃହଦ୍ରଥକୁ ଆଦି ଯେତେ । ଜାତ ହୋଇଲେ ତାର ସୁତେ ॥ ୧୭
କୁଶାମ୍ବ ପ୍ରତ୍ୟଗ୍ର ଯେ ମତ୍ସ୍ୟ । ଚେଦିପ ଚେଦି ଆଦି ବସ ॥ ୧୮
୭ ବୃହଦ୍ରଥର ଯେ କୁମର । କୁଶାଗ୍ର ନାମ ଅଟେ ତାର ॥ ୧୯

୧. ପରୀକ୍ଷିତ୍ ।

ଋଷଭ ନାମେ ତାର ସୁତ । ତାର ତନୟ ପୁଷ୍ପବନ୍ତ ॥ ୨୦
ପୁଷ୍ପବନ୍ତର ସତ୍ୟହିତ । ଜହ୍ନୁ ନାମରେ ତାର ସୁତ ॥ ୨୧
୮ ସେ ବୃହଦ୍ରଥଠାରୁ ଆନ । ଭାର୍ଯ୍ୟାରେ ଜନ୍ମିଲା ନନ୍ଦନ ॥ ୨୨
ପାଦରୁ ଶିରଯାଏ ସେହି । ଜନ୍ମିଲା ଦୁଇ ଖଣ୍ଡ ହୋଇ ॥ ୨୩
ମାତା ତାହାର ଯେ ଅଟଇ । ବାହାରେ ପକାଇଲା ନେଇ ॥ ୨୪
ରାକ୍ଷସୀ ଜରା ନାମେ ଥିଲା । ସେ ଦୁଇଖଣ୍ଡକୁ ଯୋଡ଼ିଲା ॥ ୨୫
ଜୀଅ ତୁ ଜୀଅ ବୋଲି କରି । କ୍ରୀଡ଼ା କରନ୍ତେ ସେ ଅସୁରୀ ॥ ୨୬
ବାଳକ ହୋଇଲା ସଂଭୂତ । ସେ ଜରାସନ୍ଧ ନାମେ ଖ୍ୟାତ ॥ ୨୭
୯ ତାହାର ସୁତ ସହଦେବ । ସୋମାପି ତା'ଠାରୁ ସମ୍ଭବ ॥ ୨୮
ସେ ସୋମାପିର ଯେହୁ ସୁତ । ସେ ଶ୍ରୁତଶ୍ରବା ନାମେ ଖ୍ୟାତ ॥ ୨୯
କୁରୁରାଜାର ଯେହୁ ସୁତ । ପରୀକ୍ଷି ହେଲା ଅନପତ୍ୟ ॥ ୩୦
ଜହ୍ନୁର ଯେ ତନୟ ଜାତ । ସୁରଥ ନାମରେ ସେ ଖ୍ୟାତ ॥ ୩୧
୧୦ ତାଠାରୁ ବିଦୂରଥ ଜାତ । ତାହାର ସାର୍ବଭୌମ ସୁତ ॥ ୩୨
୧୧ ସାର୍ବଭୌମର ଜୟସେନ । ରାଧିକ ତାହାର ନନ୍ଦନ ॥ ୩୩
ଅୟୁ[୧] ତାହାର ହେଲା ସୁତ । ତାଠାରୁ ଅକ୍ରୋଧନ ଜାତ ॥ ୩୪
ଅକ୍ରୋଧନର ଯେହୁ ସୁତ । ସେ ଦେବାତିଥି ନାମେ ଖ୍ୟାତ ॥ ୩୫
ଋକ୍ଷ ସେ ଦେବାତିଥିସୁତ । ଦିଲୀପ ତାହାଠାରୁ ଜାତ ॥ ୩୬
ଦିଲୀପ ନୃପତିର ସୁତ । ପ୍ରତୀପ ନାମରେ ବିଦିତ ॥ ୩୭
୧୨ ପ୍ରତୀପନୃପତିର ଜାତ । ହୋଇଲେ କାଳେ ତିନି ସୁତ ॥ ୩୮
ଦେବାପି ଶାନ୍ତନୁ ଆବର । ବାହ୍ଲୀକ ନାମ ତୃତୀୟର ॥ ୩୯
ଛାଡ଼ିଣ ପିତାର ରାଜ୍ୟକୁ । ଦେବାପି ଗଲା ବିପିନକୁ ॥ ୪୦
୧୩ ପୂର୍ବଜନ୍ମରେ ମହାଭିଷ[୨] । ନାମ ଶାନ୍ତନୁର ପ୍ରକାଶ ॥ ୪୧
କରଯୁଗଳେ ସେ ନୃପତି । ଯାହାକୁ ଯାହାକୁ ଛୁଅଁନ୍ତି ॥ ୪୨
ସେ ଯେବେ ବୃଦ୍ଧ ହୋଇଥାଇ । ତତ୍‌କ୍ଷଣେ ଯୌବନ ଲଭଇ ॥ ୪୩
୧୪ ଶାନ୍ତିକି ଲଭଇ କ୍ରମରେ । ଶାନ୍ତନୁ ନାମ ସେ କର୍ମରେ ॥ ୪୪
ବାର ବରଷ ରାଜ୍ୟେ ତାର । ନ ବରଷିଲା ପୁରନ୍ଦର ॥ ୪୫
୧୫ ବ୍ରାହ୍ମଣମାନେ ଶାନ୍ତନୁକୁ । କହିଲେ ଏମନ୍ତ ବାକ୍ୟକୁ ॥ ୪୬
ଯେ ସାନ ହୋଇ ଆଗ ମହୀ । ଭୁଞ୍ଜଇ ପରିବେତ୍ତା[୩] ଏହି ॥ ୪୭
ଏ ଘେନି ନିଜ ରାଷ୍ଟ୍ରପୁର । ବୃଦ୍ଧିନିମିତ୍ତେ ଆପଣାର ॥ ୪୮

---

୧. ଅୟୁତ, ଅୟୁତାୟୁ ।
୨. ମହାଭିଷ = ଉତ୍ତମ ବୈଦ୍ୟ ।
୩. ଦାରାଗ୍ନିହୋତ୍ରସଂଯୋଗଂ କୁରୁତେ ଯୋଽଗ୍ରଜେ ସ୍ଥିତେ ।
ପରିବେତ୍ତା ସ ବିଜ୍ଞେୟଃ ପରିବିତ୍ତିସ୍ତୁ ପୂର୍ବଜଃ ॥ (ସ୍ମୃତିଃ)

| | | | | |
|---|---|---|---|---|
| | ଯେ ଜ୍ୟେଷ୍ଠ ଭାଇ ତାକୁ ଆଜ | । ସତ୍ୱରେ ଦିଅ ନିଜ ରାଜ୍ୟ | ॥ | ୪୯ |
| ୧୬ | ବିପ୍ରେ ବୋଲନ୍ତେ ଏ ବଚନ | । ଶାନ୍ତନୁ ରାଜା ଗଲେ ବନ | ॥ | ୫୦ |
| | ଜ୍ୟେଷ୍ଠକୁ ବୋଇଲେ ବଚନ | । ପାଳନା କର ପ୍ରଜାମାନ | ॥ | ୫୧ |
| | ଶାନ୍ତନୁ ନୃପତି ଏ ବାଣୀ | । ନ କହୁଁ ତହୁଁ ପୂର୍ବେ ପୁଣି | ॥ | ୫୨ |
| | ତା' ମନ୍ତ୍ରୀ ଦେବାପିଙ୍କ ଠାକୁ | । ପେଷିଲା ବ୍ରାହ୍ମଣମାନଙ୍କୁ | ॥ | ୫୩ |
| | ସେ ବିପ୍ରେ ପାଷଣ୍ଡଙ୍କ ମତ | । ବିଖ୍ୟାତ କରି ତା' ଅଗ୍ରତ | ॥ | ୫୪ |
| | ବେଦରୁ ଭ୍ରଷ୍ଟ କଲେ ତାକୁ | । ବେଦବିରୁଦ୍ଧ ବଚନକୁ | ॥ | ୫୫ |
| | ଯେଣୁ ସେ ଦେବାପି କହିଲା | । ସେ ଘେନି ପତିତ ହୋଇଲା | ॥ | ୫୬ |
| ୧୭ | ଅଯୋଗ୍ୟ ହୁଅନ୍ତେ ରାଜାକୁ | । ଦୋଷ ଛାଡ଼ିଲା ଶାନ୍ତନୁକୁ | ॥ | ୫୭ |
| | ଶାନ୍ତନୁ ହୋଇଲା ନୃପତି | । ବରଷା କଲା ଶଚୀପତି | ॥ | ୫୮ |
| | ଦେବାପି କଳାପଗ୍ରାମରେ | । ରହିଲା ଯୋଗସିଦ୍ଧିଦ୍ୱାରେ | ॥ | ୫୯ |
| ୧୮ | କଳିଯୁଗରେ ସୋମବଂଶ | । କାଳରେ ହୁଅନ୍ତେ ବିନାଶ | ॥ | ୬୦ |
| | ସତ୍ୟଯୁଗରେ ତା' ସ୍ଥାପନ | । କରିବ ପୁଣ ସେ ରାଜନ | ॥ | ୬୧ |
| | ବାହ୍ଲୀକଠାରୁ ସୋମଦତ୍ତ | । ତା'ଠାରୁ ତିନି ପୁତ୍ର ଜାତ | ॥ | ୬୨ |
| | ସେ ଭୂରି ଭୂରିଶ୍ରବା ବେନି | । ଶଳକୁ ମିଶିଣ ଏ ତିନି | ॥ | ୬୩ |
| ୧୯ | ଗଙ୍ଗାର ଠାରେ ଜ୍ଞାନବନ୍ତ | । ଭୀଷ୍ମ ଶାନ୍ତନୁନୃପସୁତ | ॥ | ୬୪ |
| | ସମସ୍ତ ଧର୍ମ ଯେ ଜାଣନ୍ତି | । ତହିଁରେ ଶ୍ରେଷ୍ଠ ସେ ଅଟନ୍ତି | ॥ | ୬୫ |
| | ସେ କବି ମହାଭାଗବତ | । ବୀରଯୂଥରେ ଅଗ୍ରଗତ | ॥ | ୬୬ |
| | ପରଶୁରାମଙ୍କୁ ଯୁଦ୍ଧରେ | । ସନ୍ତୋଷ କଲେ ଯେ ପୂର୍ବରେ | ॥ | ୬୭ |
| ୨୦ | ଉପରିଚର ବସୁଙ୍କର | । ବୀର୍ଯ୍ୟରେ ମତ୍ସ୍ୟର ଉଦର | ॥ | ୬୮ |
| ୨୧ | ଜନମିଥିଲା କନ୍ୟା ଯେହି | । କୈବର୍ତ୍ତେ ପାଳିଲେ ତା' ନେଇ | ॥ | ୬୯ |
| | ସେ କନ୍ୟାନାମ ସତ୍ୟବତୀ | । ତାଠାରେ ଶାନ୍ତନୁ ନୃପତି | ॥ | ୭୦ |
| | ଚିତ୍ରାଙ୍ଗଦକୁ କଲେ ଜନ୍ମ | । ବିଚିତ୍ରବୀର୍ଯ୍ୟ ତାର ସାନ | ॥ | ୭୧ |
| | ଯେ ଚିତ୍ରାଙ୍ଗଦ ନାମେ ସୁତ | । ତାକୁ ଗନ୍ଧର୍ବେ କଲେ ହତ | ॥ | ୭୨ |
| | ଶାନ୍ତନୁବିବାହୁଁ ପୂର୍ବରେ | । ଯେବଣ ସତ୍ୟବତୀଠାରେ | ॥ | ୭୩ |
| | ବିଷ୍ଣୁର କଳା ଯେ ସାକ୍ଷାତ | । ବେଦକୁ କଲେ ଯେ ପାଳିତ | ॥ | ୭୪ |
| | ସେ କୃଷ୍ଣ ମୁନି ବେଦବ୍ୟାସ | । ହୋଇଣ ଅଛନ୍ତି ପ୍ରକାଶ | ॥ | ୭୫ |
| | ଯାହାଙ୍କ ଠାରୁ ଏ ଆଖ୍ୟାନ | । କରିଅଛି ମୁଁ ଅଧ୍ୟୟନ | ॥ | ୭୬ |
| ୨୨ | ଯେ ପୈଳ ଆଦି ନିଜ ଶିଷ୍ୟ | । ତାହାଙ୍କୁ ଛାଡ଼ି ବେଦବ୍ୟାସ | ॥ | ୭୭ |
| | ମୁଁ ଯେ ତାହାଙ୍କ ଶାନ୍ତ ସୁତ | । ମୋତେ ଦେଲେ ଏ ଭାଗବତ | ॥ | ୭୮ |
| ୨୩ | ଯେ ଅମ୍ବା ଅମ୍ବାଳିକା ହୋଇ | । କାଶିରାଜାର ସୁତା ଦୁଇ | ॥ | ୭୯ |
| ୨୪ | ତାହାଙ୍କୁ ସ୍ୱୟମ୍ବରୁଁ ବଳେ | । ବିଚିତ୍ରବୀର୍ଯ୍ୟ ପୂର୍ବକାଳେ | ॥ | ୮୦ |

| | | | | | |
|---|---|---|---|---|---|
| | ବିବାହ ହେଲା ହରି ଆଣି | । | ସେ ଦୁହିଁଙ୍କର ଠାରେ ପୁଣି | ॥ | ୮୧ |
| | ଆସକ୍ତହୃଦୟ ହୋଇଲା | । | ଯକ୍ଷ୍ମାରୋଗରେ ନାଶ ଗଲା | ॥ | ୮୨ |
| ୨୫ | ଅପୁତ୍ର ଅଟଇ ଯେ ଭାଇ | । | ତାହାର ଭାର୍ଯ୍ୟା ଦାସୀଠାଇଁ | ॥ | ୮୩ |
| | [1]ମାତାବଚନେ ବ୍ୟାସମୁନି | । | ଜନମ କଲେ ସୁତ ତିନି | ॥ | ୮୪ |
| | ତହିଁରେ ଧୃତରାଷ୍ଟ୍ର ଜ୍ୟେଷ୍ଠ | । | ପାଣ୍ଡୁ ବିଦୁର ଯେ କନିଷ୍ଠ | ॥ | ୮୫ |
| ୨୬ | ଗାନ୍ଧାରୀଠାରେ ପୁତ୍ର ଶତ | । | ଧୃତରାଷ୍ଟ୍ରର ହେଲା ଜାତ | ॥ | ୮୬ |
| | ତାଙ୍କ ମଧ୍ୟରେ ଦୁର୍ଯ୍ୟୋଧନ | । | ଜ୍ୟେଷ୍ଠ ଅଟଇ ହେ ରାଜନ | ॥ | ୮୭ |
| | ଦୁଃଶଳା[2] ଅଟେ ନାମ ଯାର | । | ସେ କନ୍ୟା ହେଲା ତଦନ୍ତର | ॥ | ୮୮ |
| ୨୭ | ଅରଣ୍ୟେ ମୃଗଶାପୁଁ ହତ | । | ହୁଅନ୍ତେ ପାଣ୍ଡୁର ସୁରତ[3] | ॥ | ୮୯ |
| | ଧର୍ମ ଅନିଳ ପୁରନ୍ଦର | । | ଏ ତିନି ହେତୁ କୁନ୍ତୀଠାର | ॥ | ୯୦ |
| | ଯୁଧିଷ୍ଠିରାଦି ତିନି ସୁତ | । | ଜାତ ହେଲେ ସେ ମହାରଥ | ॥ | ୯୧ |
| ୨୮ | ଯେ ବେନି ଅଶ୍ୱିନିକୁମାର | । | ତାଙ୍କ ସକାଶୁଁ ମାଦ୍ରୀଠାର | ॥ | ୯୨ |
| | ନକୁଳ ସହଦେବ ହୋଇ | । | ଜାତ ହୋଇଲେ ବେନି ଭାଇ | ॥ | ୯୩ |
| | ଦ୍ରୌପଦୀଠାରେ ପାଞ୍ଚସୁତ | । | ଯେ ପାଞ୍ଚଙ୍କର ହେଲେ ଜାତ | ॥ | ୯୪ |
| | ସେ ସର୍ବେ ପଞ୍ଚ ସହୋଦର | । | ଅଟନ୍ତି ପିତୃବର୍ଗ ତୋର | ॥ | ୯୫ |
| ୨୯ | ଯେ ପ୍ରତିବିନ୍ଧ୍ୟ ନାମେ ସୁତ | । | ସେ ଯୁଧିଷ୍ଠିରଠାରୁ ଜାତ | ॥ | ୯୬ |
| | ଯେ ବୃକୋଦରଠାରୁ ଜନ୍ମ | । | ତାହାର ଶ୍ରୁତସେନ ନାମ | ॥ | ୯୭ |
| | ଅର୍ଜୁନଠାରୁ ଶ୍ରୁତକୀର୍ତ୍ତି | । | ତନୁଜ ହେଲା ଉତପତି | ॥ | ୯୮ |
| | ନକୁଳଠାରୁ ଯେ ସଂଭୂତ | । | ସେ ଶତାନୀକ ନାମେ ଖ୍ୟାତ | ॥ | ୯୯ |
| | ସହଦେବର ଠାରୁ ଜାତ | । | ହୋଇଲା ଶ୍ରୁତକର୍ମା ସୁତ | ॥ | ୧୦୦ |
| | ଇତର ଭାର୍ଯ୍ୟାଙ୍କର ଠାରେ | । | ଜନ୍ମିଲେ ଇତର କ୍ରମରେ | ॥ | ୧୦୧ |
| ୩୦ | ପୌରବୀଠାରେ ଧର୍ମସୁତ | । | ହେତୁ ଦେବକ ହେଲା ଜାତ | ॥ | ୧୦୨ |
| | ହିଡ଼ିମ୍ବାଠାରେ ଭୀମସେନ | । | ସକାଶୁଁ ଘଟୋତ୍କଚ ଜନ୍ମ | ॥ | ୧୦୩ |
| | କାଳୀର ଠାରେ ସର୍ବଗତ | । | ନାମେ ଭୀମର ହେଲା ସୁତ | ॥ | ୧୦୪ |
| ୩୧} | ପର୍ବତଦେଶ ନୃପସୁତା | । | ବିଜୟା ନାମରେ ବିଦିତା | ॥ | ୧୦୫ |
| ୩୨} | ସେ ସହଦେବଠାରୁ ଜାତ | । | କଲା ସୁହୋତ୍ର ନାମେ ସୁତ | ॥ | ୧୦୬ |
| | କରେଣୁମତୀଠାରେ ଜାତ | । | କଲା ନକୁଳ ଯଉଁ ସୁତ | ॥ | ୧୦୭ |
| | ନରମିତ୍ର[4] ନାମ ତାହାର | । | ଉଲୂପୀ ନାଗକନ୍ୟାଠାର | ॥ | ୧୦୮ |
| | ହୋଇଲା ଅର୍ଜୁନର ସୁତ | । | ତାହାର ନାମ ଇରାବନ୍ତ | ॥ | ୧୦୯ |
| | ଯେ ମଣିପୁର-ଅଧୀଶ୍ୱର | । | ତା' ସୁତାଠାରେ ଅର୍ଜୁନର | ॥ | ୧୧୦ |

---

୧. ''ଅପତିରପତ୍ୟଲିପ୍ସୁର୍ଦ୍ଦେବରାଦ୍ ଗୁରୁପ୍ରଯୁକ୍ତାଦ୍, ନ ତୁ ଋତୁମତୀ'' ଇତ୍ୟାଦିବଚନାଦ୍ (ସ୍ୱାମିଧୃତ) । ପତିହୀନ ଓ ଅପତ୍ୟ (ସନ୍ତାନ) ପାଇବାକୁ ଇଚ୍ଛୁକ ଗୁରୁଙ୍କ ଦ୍ୱାରା ପ୍ରଯୁକ୍ତ ଦେବରଠାରୁ ଅମ୍ବିକା, ଅମ୍ବାଳିକା ଓ ଦାସୀଠାରେ ଯଥାକ୍ରମେ ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ଜନ୍ମିଲେ । (ସେମାନେ କିନ୍ତୁ ଋତୁମତୀ ନ ଥିଲେ) ।

୨. ଦୁଃଶୀଳା ।　　୩. ମୈଥୁନ ।　　୪. ନିରମିତ୍ର ।

ବଭ୍ରୁବାହନ ନାମେ ଖ୍ୟାତ । ତନୁଜ ହୋଇଲା ସଂଭୂତ ॥ ୧୧୧
ସୁତାପୁତ୍ରକୁ ସେ ନୃପତି । ନିଜ ରାଜ୍ୟରେ କଲା ପତି ॥ ୧୧୨
୩୩ ସୁଭଦ୍ରାଠାରେ ତୋର ତାତ । ହୋଇଲା ଅଭିମନ୍ୟୁ ଜାତ ॥ ୧୧୩
ସେ ବୀର ସମରେ ବହୁତ । ଜିଣିଲା ପୂର୍ବେ ଅତିରଥ ॥ ୧୧୪
ଉତ୍ତରାଠାରେ ପୁଣ ତୁହି । ତାର ସକାଶୁଁ ଅଛୁଁ ହୋଇ ॥ ୧୧୫
୩୪ ଯେ ଅଟେ ଦ୍ରୋଣର କୁମର । ବ୍ରହ୍ମାସ୍ତ୍ର ତେଜରେ ତାହାର ॥ ୧୧୬
ହୁଅନ୍ତେ କୁରୁମାନେ କ୍ଷୀଣ । ତୁ କୃଷ୍ଣ-ଅନୁଭାବେ ପୁଣ ॥ ୧୧୭
ଯମର ନିକଟୁଁ ଜୀବିତ । ସହିତେ ହୋଇଲୁ ମୁକତ ॥ ୧୧୮
୩୫ ହେ ନୃପ ! ଏ ତୋ ଚାରି ସୁତ । ଜନମେଜୟ ପୂର୍ବେ ଜାତ ॥ ୧୧୯
ଯେ ଶୁତ୍ରସେନ ଭୀମସେନ । ଆରକ ଅଟେ ଉଗ୍ରସେନ ॥ ୧୨୦
୩୬-୩୭ ତକ୍ଷକଠାରୁ ତୁ ମରଣ । ଲଭିଲୁ ଏ କଥା ଶୁଣିଣ ॥ ୧୨୧
ଜନମେଜୟ ତୋର ସୁତ । ସର୍ପଯଜ୍ଞରେ ଯେ ସଂଭୂତ ॥ ୧୨୨
ସର୍ପମାନଙ୍କୁ ସେ ଅଗ୍ନିରେ । ହୋମକୁ କରିବ କ୍ରୋଧରେ ॥ ୧୨୩
ତୁର[1] ଅଟଇ ଯାର ନାମ । କରୁଷ[2]-କୁଳରେ ଜନମ ॥ ୧୨୪
ତାକୁ ପୁରୋହିତ କରିଣ । କରିବ ଅଶ୍ୱମେଧ ପୁଣ ॥ ୧୨୫
ସକଳ ଭୂମିମାନ ଜିଣି । ଯାଗ କରିବ ପୁଣପୁଣି ॥ ୧୨୬
୩୮ ତାହାର ଶତାନୀକ ନାମ । ଯେ ପୁତ୍ର ହୋଇବ ଜନମ ॥ ୧୨୭
ଯାଜ୍ଞବଲ୍‌କ୍ୟର ଠାରୁ ଶ୍ରୁତି । ପଢ଼ନ୍ତେ ସେହୁ ମହୀପତି ॥ ୧୨୮
ଯେ ଅସ୍ତ୍ରଜ୍ଞାନ କ୍ରିୟାଜ୍ଞାନ । ଯେ ଆତ୍ମଜ୍ଞାନ ପୁଣ ଭିନ୍ନ ॥ ୧୨୯
[3]ଯେ କୃପ ଯାଜ୍ଞବଲ୍‌କ୍ୟ ବେନି । ଶୌନକ ମିଶିଣ ଏ ତିନି ॥ ୧୩୦
ଯଥାକ୍ରମରେ ତାହାଙ୍କର । ସକାଶୁଁ କରିବ ଗୋଚର ॥ ୧୩୧
୩୯-୪୦ ସହସ୍ରାନୀକ ତା' କୁମର । ଅଶ୍ୱମେଧଜ ସୁତ ତାର ॥ ୧୩୨
ଅସୀମକୃଷ୍ଣ[4] ନାମେ ଖ୍ୟାତ । ନେମିରଥାଙ୍ଗ[5] ତାର ସୁତ ॥ ୧୩୩
ଗଙ୍ଗାରେ ହସ୍ତିନାନଗର । ହୃତ ହୁଅନ୍ତେ ତଦନ୍ତର ॥ ୧୩୪
କୁଶାମ୍ବୁ ନାମେ ଯଉଁ ପୁର । ତହିଁରେ କରିବ ସେ ଘର ॥ ୧୩୫
ଉପ୍ତ[6] ନାମରେ ତାର ସୁତ । ତାଠାରୁ ଜାତ ଚିତ୍ରରଥ ॥ ୧୩୬
ଚିତ୍ରରଥରୁ ଶୁଚିରଥ । ଧୃତିମାନ[7] ଯେ ତାର ସୁତ ॥ ୧୩୭
ସୁଷେଣ ନାମେ ମହୀପତି । ଧୃତିମାନରୁ ସେ ଉତ୍ପତ୍ତି ॥ ୧୩୮
୪୧ ସୁନୀଥ ତାହାଠାରୁ ଜାତ । ନୃଚକ୍ଷୁ ସୁନୀଥର ସୁତ ॥ ୧୩୯

---

୧. ତୁରୁ । ୨. କବଷ । ୩. "ଯାଜ୍ଞବଲ୍‌କ୍ୟାଦ୍ ତ୍ରୟୀମଧୀତ୍ୟ କୃପାଦସ୍ତ୍ରାଣ୍ୟବାପ୍ୟ" (ବିଷ୍ଣୁ. ପୁ.) ।
୪. ଅସୀମକୃଷ୍ଣ । ୫. ନେମିଚକ୍ର । ୬. ଉକ୍ତ । ୭. ବୃଷ୍ଣିମାନ ।

୪୨ ତା' ସୁତ ସୁଖୀନଳ[୧] ହେବ । ତାହାର ସୁତ ପରିପ୍ଲବ ।। ୧୪୦
ତାହାର ତନୟ ସୁନୟ । ମେଧାବୀ ସୁନୟତନୟ ।। ୧୪୧
ତାଠାରୁ ନୃପଞ୍ଜୟ ଜାତ । ଦୂର୍ବ ନାମରେ ତାର ସୁତ ।। ୧୪୨
ଦୂର୍ବର ଠାରୁ ତିମି ଜାତ । ତାହାର ବୃହଦ୍ରଥ ସୁତ ।। ୧୪୩
ସୁଦାସ ତାହାଠାରୁ ଜାତ । ତାହାର ଶତାନୀକ ସୁତ ।। ୧୪୪
୪୩ ଶତାନୀକର ଦୁର୍ଦମନ । ତାଠାରୁ ବହୀନର ଜନ୍ମ ।। ୧୪୫
ତାହାର ସୁତ ଦଣ୍ଡପାଣି । ନିମି ତାଠାରୁ ହେବ ପୁଣି ।। ୧୪୬
ନିମିର ଠାରୁ ହେବ ଜାତ । କ୍ଷେମକ ନାମେ ଯଉଁ ସୁତ ।। ୧୪୭
୪୪ ଯେ ଦେବଋଷିମାନଙ୍କରେ । ସତ୍କାର ଲଭିଛି ପୂର୍ବରେ ।। ୧୪୮
ସେ ବ୍ରହ୍ମକ୍ଷତ୍ର ବଂଶ ପୁଣ । କ୍ଷେମକ ରାଜାକୁ ପାଇଣ ।। ୧୪୯
କଳିଯୁଗରେ ହେବ ନାଶ । ରାଜା ହୋଇବେ ଆନ ବଂଶ ।। ୧୫୦
୪୫ ଏବେ ମାଗଧ ରାଜା ଯେତେ । ହେବେ କହିବା ତାହା ତୋତେ ।। ୧୫୧
ଯେ ସହଦେବ ନାମେ ସୁତ । ଜରାସନ୍ଧର ଠାରୁ ଜାତ ।। ୧୫୨
ମାର୍ଜାରି ନାମେ ତାର ସୁତ । ତାଠାରୁ ଶ୍ରୁତଶ୍ରବା ଜାତ ।। ୧୫୩
୪୬ ଅୟୁତାୟୁ[୨] ତାହାର ପୁତ୍ର । ତାଠାରୁ ଜାତ ନିରମିତ୍ର ।। ୧୫୪
ସେ ନିରମିତ୍ରଠାରୁ ଜନ୍ମ । ତନୟ ସୁନକ୍ଷତ୍ର ନାମ ।। ୧୫୫
ତାଠାରୁ ବୃହତ୍‌ସେନ ଜାତ । ତାର ତନୟ କର୍ମଜିତ ।। ୧୫୬
୪୭ [୩]ତା'ଠାରୁ ହୋଇବ ସୃଞ୍ଜୟ । ବିପ୍ର ନାମରେ ତା' ତନୟ ।। ୧୫୭
ତା' ସୁତ ଶୁଚି ତାର କ୍ଷେମ । ତା'ଠାରୁ ସୁବ୍ରତ ଜନମ ।। ୧୫୮
[୪]ତା' ସୁତ ଧର୍ମ ନାମେ ଜାତ । ତାହାର ପୁତ୍ର ଶମ ଖ୍ୟାତ ।। ୧୫୯
୪୮ ତାର ତନୟ ଦୃଢ଼ସେନ[୫] । ସୁମତି ତାହାର ନନ୍ଦନ ।। ୧୬୦
୪୯ ସୁବଳ ସୁମତିର ସୁତ । ସୁନୀଥ ତାଠାରୁ ସମ୍ଭୂତ ।। ୧୬୧
ତାର ତନୟ ସତ୍ୟଜିତ । ତାହାର ପୁତ୍ର ବିଶ୍ୱଜିତ ।। ୧୬୨
ଯେ ବିଶ୍ୱଜିତର ତନୟ । ତାହାର ନାମ ରିପୁଞ୍ଜୟ ।। ୧୬୩
ବୃହଦ୍ରଥର ବଂଶେ ଯେତେ । ଜନମ ହେଲେ ଏ ଜଗତେ ।। ୧୬୪
ସହସ୍ର ବରଷ ଏ ମହୀ । ଭୁଞ୍ଜିବେ କଳିଯୁଗେ ରହି ।। ୧୬୫
ହେ କୃଷ୍ଣ କମଳଲୋଚନ । ଭଗତଦୁଃଖବିମୋଚନ ।। ୧୬୬
ଦୀନବନ୍ଧୁକୁ ରଖ ବାରେ । ବୁଡ଼ିଛି ଯେ ଭବସାଗରେ ।। ୧୬୭

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଶାନ୍ତନୁବଂଶକୀର୍ତ୍ତନଂ
ନାମ ଦ୍ୱାବିଂଶୋଽଧ୍ୟାୟଃ ।।

---

୧. ସୁଖାନଳ ।　୨. ଯୁତାୟୁ ।　୩. ତାଠାରୁ ହେବ ସୁତଞ୍ଜୟ ।
୪. ତା' ସୁତ ଧର୍ମସୂତ୍ର ଜାତ ।　୫. ଦ୍ୟୁମତ୍‌ସେନ ।

# ତ୍ରୟୋବିଂଶ ଅଧ୍ୟାୟ

ତ୍ରୟୋବିଂଶେ ତ୍ୱନୋର୍ଦ୍ରୁହ୍ୟୋସ୍ତୁର୍ବସୋଶ୍ଚାନ୍ୱୟଃ କ୍ରମାତ୍ ।
ଯଦୋଶ୍ଚ ବଂଶୋଽନୁକ୍ରାନ୍ତୋ ଯାବଜ୍ଜ୍ୟାମଘସଂଭବଃ ॥ ୧

ଶ୍ରୀଶୁକ ଉବାଚ

୧ ଯଯାତିନୃପତିର ସୁତ । 'ଅନୁ' ନାମରେ ଯେ ବିଖ୍ୟାତ ॥ ୧
ତାଠାରୁ ଜାତ ସଭାନର । ଚକ୍ଷୁ ପରୋକ୍ଷ ତ୍ରିକୁମାର ॥ ୨
ସଭାନରର କାଳନର । ସୃଞ୍ଜୟ ତନୟ ତାହାର ॥ ୩
୨ ଜନମେଜୟ ତାର ବାଳ । ତାହାର ସୁତ ମହାଶୀଳ ॥ ୪
ମହାଶୀଳର ମହାମନ । ନାମରେ ବିଖ୍ୟାତ ନନ୍ଦନ ॥ ୫
ମହାମନାର ଉଶୀନର । ତିତିକ୍ଷୁ ନାମେ ଦ୍ୱିକୁମାର ॥ ୬
୩ ଯେ ଶିବି ଦକ୍ଷ ଶମି ନର[1] । ଉଶୀନରର ଏ କୁମର ॥ ୭
ଯେ ଶିବି ଉଶୀନରସୁତ । ତାହାର ଚାରିପୁତ୍ର ଖ୍ୟାତ ॥ ୮
ସେ ବୃଷାଦର୍ଭ ମଦ୍ର ବୀର[2] । ନାମ କେକୟ କନିଷ୍ଠର ॥ ୯
୪ ତିତିକ୍ଷୁ ରାଜାର ଯେ ସୁତ । ସେ ରଶଦ୍ରଥ ନାମେ ଖ୍ୟାତ ॥ ୧୦
୫ ତା' ସୁତ ହେମ ହେମସୁତ । ସୁତପା ନାମେ ହେଲା ଜାତ ॥ ୧୧
ସୁତପା ନୃପତିର ସୁତ । ବଳି ନାମରେ ହେଲା ଜାତ ॥ ୧୨
ବଳିର କ୍ଷେତ୍ରେ ଦୀର୍ଘତମ । ମୁନିସ୍ୱକାଶୁଁ ହେଲେ ଜନ୍ମ ॥ ୧୩
ଯେ ଅଙ୍ଗ ବଙ୍ଗ କଳିଙ୍ଗାଦି । ଯେ ସୁହ୍ମ ପୁଣ୍ଡ୍ର ଆନ୍ଧ୍ର[3] ସିଦ୍ଧି ॥ ୧୪
ନିଜ ନାମରେ ରାଜ୍ୟମାନ । ବସାଇଲେ ଛ' ରାଜନ ॥ ୧୫
୬ ଯେ ଖନପାଳ[4] ନାମେ ସୁତ । ସେ ଅଙ୍ଗନୃପଠାରୁ ଜାତ ॥ ୧୬
ଖନପାଳର ଯେହୁ ସୁତ । ତା' ନାମ ଅଟେ ଦିବିରଥ ॥ ୧୭
ତାହାର ଧର୍ମରଥ ସୁତ । ତାଠାରୁ ଚିତ୍ରରଥ ଜାତ ॥ ୧୮
ଦଇବଯୋଗରେ ସନ୍ତତି । ତାର ନୋହିଲା ଉତପତି ॥ ୧୯
୭ ସେ ଲୋମପାଦ ନାମେ ଖ୍ୟାତ । ତାହାର ସଖା ଦଶରଥ ॥ ୨୦
ଶାନ୍ତା ନାମେ ଯେ ସୁତା ଥିଲା । ଲୋମପାଦକୁ ତାହା ଦେଲା ॥ ୨୧
ତାହାକୁ ଋଷ୍ୟଶୃଙ୍ଗ ଋଷି । ବିଭା ହୋଇଲେ ବନୁଁ ଆସି ॥ ୨୨
୮ ରାଜ୍ୟରେ ସେ ଲୋମପାଦର । ନ ବରଷନ୍ତେ ପୁରନ୍ଦର ॥ ୨୩
ଗୀତ ସଙ୍ଗୀତ ବାଦ୍ୟସ୍ୱନେ । ବିଭ୍ରମାଲିଙ୍ଗନପୂଜନେ ॥ ୨୪
ଯାକୁ ଆଣିଲେ ନାରୀମାନେ । ହରିଣୀସୁତ ଯେ ଭୁବନେ ॥ ୨୫
୯ ଇନ୍ଦ୍ରନିମିତ୍ତେ ଇଷ୍ଟି ପୁଣ । ସେ ଋଷି କରି ନିରୂପଣ ॥ ୨୬

---

୧. ବନ । ୨. ସୁବୀର । ୩. ଔଡ୍ର । ୪. ଖଳପାନ, ଖନପାନ ।

ଅପୁତ୍ର ଅଟେ ସେ ରାଜନ । ତାହାକୁ ଦେଲେ ପୁତ୍ର ଦାନ ॥ ୨୭
ଯେଣେ ଅପୁତ୍ର ଦଶରଥ । ଲଭିଲେ ତନୟ ବହୁତ ॥ ୨୮
୧୦ ଲୋମପାଦର ଠାରୁ ଜନ୍ମ । ନୃପତି ଚତୁରଙ୍ଗ ନାମ ॥ ୨୯
ତାହାର ପୃଥୁଲାକ୍ଷ ସୁତ । ତାହାର ତିନି ପୁତ୍ର ଜାତ ॥ ୩୦
ଯେ ବୃହଦ୍ରଥ ବୃହଦ୍‌କର୍ମ । ତୃତୀୟ ବୃହଭାନୁ[1] ନାମ ॥ ୩୧
୧୧ ଯେ ଆଦ୍ୟସୁତ ବୃହଦ୍ରଥ । ତାଠାରୁ ବୃହନ୍‌ମନା ଜାତ ॥ ୩୨
ତାହାର ଠାରୁ ଜୟଦ୍ରଥ । ବିଜୟ ଜୟଦ୍ରଥସୁତ ॥ ୩୩
ସଂଭୂତି ଭାର୍ଯ୍ୟାଠାରେ ଧୃତି । ତା'ଠାରୁ ହେଲା ଉତପତି ॥ ୩୪
୧୨} ତାର ତନୟ ଧୃତବ୍ରତ । ସତ୍‌କର୍ମା ନାମେ ତାର ସୁତ ॥ ୩୫
୧୩} ତାହାର ଠାରୁ ଅଧିରଥ । ନାମେ ତନୟ ହେଲା ଜାତ ॥ ୩୬
କନ୍ୟାସମୟେ ପୂର୍ବେ ଜାତ । ହୋଇଲା କୁନ୍ତୀର ଯେ ସୁତ ॥ ୩୭
ତାହାକୁ ଭରି ମଞ୍ଜୁଷରେ । ଛାଡ଼ିଦେଲା ସେ ଜାହ୍ନବୀରେ ॥ ୩୮
ଯେ ଅଧିରଥ ସେ ଦିନର । କ୍ରୀଡ଼ା କରନ୍ତେ ଗଙ୍ଗାତୀର ॥ ୩୯
ମଞ୍ଜୁଷମଧ୍ୟରେ ଯେ ସ୍ଥିତ । ସେ ବାଳକକୁ କଲା ସୁତ ॥ ୪୦
ସେ କାଳପରିଯନ୍ତେ ତାର । ଜନମି ନ ଥିଲା କୁମର ॥ ୪୧
ହେ ନୃପ ! ଯେ କର୍ଣ୍ଣନନ୍ଦନ । ନାମ ତାହାର ବୃଷସେନ ॥ ୪୨
୧୪ ଦ୍ରୁହ୍ୟୁ ନାମରେ ଯଯାତିର । ଜନମିଥିଲା ଯେ କୁମର ॥ ୪୩
ତା' ସୁତ ବଭ୍ରୁ ସେତୁ ତାର । ଆରବ୍‌ଧ ତାହାର କୁମର ॥ ୪୪
ଆରବ୍‌ଧର ଯେ ଅଟେ ସୁତ । ତାର ଗାନ୍ଧାର ନାମ ଖ୍ୟାତ ॥ ୪୫
ତାହାର ଧର୍ମ ତାର ଧୃତ । ତନୟ ହୋଇଲା ସଂଭୂତ ॥ ୪୬
୧୫ ଦୁର୍ମଦ ନାମେ ଧୃତସୁତ । ପ୍ରଚେତା ତାର ଠାରୁ ଜାତ ॥ ୪୭
ପ୍ରଚେତା ନୃପତିର ଶତ । ତନୟ ହୋଇଲେ ସଂଭୂତ ॥ ୪୮
ସେ ମ୍ଳେଚ୍ଛ ଅଧିପତି ହେଲେ । ଉତ୍ତରଦେଶରେ ରହିଲେ ॥ ୪୯
୧୬ ତୁର୍ବସୁ ଯଯାତିର ସୁତ । ବହ୍ନି ତାଠାରୁ ହେଲା ଜାତ ॥ ୫୦
ବହ୍ନିର ଯେ ଭର୍ଗ ନନ୍ଦନ । ତାଠାରୁ ଭାନୁମନ୍ତ ଜନ୍ମ ॥ ୫୧
ତ୍ରିଭାନୁ ନାମେ ତାର ସୁତ । ତାଠାରୁ କରନ୍ଧମ ଜାତ ॥ ୫୨
୧୭ ମରୁତ ତାହାର କୁମର । ଜାତ ନୋହିଲା ପୁତ୍ର ତାର ॥ ୫୩
ଯେ ପୁରୁବଂଶରେ ସଂଭୂତ । ସେ ଦୁଷ୍ମନ୍ତକୁ କଲା ସୁତ ॥ ୫୪
ରାଜ୍ୟକାମୁକ ସେ ହୋଇଲା । ଆପଣା ବଂଶରେ ମିଳିଲା ॥ ୫୫
୧୮ ଯଯାତିରାଜାଜ୍ୟେଷ୍ଠସୁତ । ଯେ ଯଦୁନାମରେ ବିଖ୍ୟାତ ॥ ୫୬
ଏବେ କରିବା ତା' ବର୍ଣ୍ଣନ । ସେ ବଂଶ ଅଟେ ମହାପୁଣ୍ୟ ॥ ୫୭

୧. ଭାନୁସୁତ ।

ହେ ନୃପ ! ପ୍ରାଣିମାନଙ୍କର । ସେ ବଂଶ ସର୍ବପାପହର ॥ ୫୮
୧୯ ଯଦୁନୃପତିବଂଶ ଶୁଣି । [1]ସକଳ ପାପ ମୁଞ୍ଚେ ପ୍ରାଣୀ ॥ ୫୯
ପରମ ଆତ୍ମା ଭଗବାନ । ନରଶରୀରେ ଯହିଁ ଜନ୍ମ ॥ ୬୦
୨୦ ସହସ୍ରଜିତ କ୍ରୋଷ୍ଟା ନଳ । ରିପୁ ନାମରେ ଚାରି ବାଳ ॥ ୬୧
ଜନ୍ମିଲେ ଯଦୁନୃପତିର । ସହସ୍ରଜିତ ଯେ କୁମର ॥ ୬୨
ତାହାର ଅଟେ ଆଦ୍ୟ ସୁତ । ତାହାର ନାମ ଶତଜିତ ॥ ୬୩
୨୧ ତାର ଜନ୍ମିଲେ ତିନି ସୁତ । ପ୍ରଥମ ମହାହୟ ଖ୍ୟାତ ॥ ୬୪
ଦ୍ୱିତୀୟ ନାମ ରେଣୁହୟ । ହୈହୟ ତୃତୀୟ ତନୟ ॥ ୬୫
ହୈହୟସୁତ ଧର୍ମନାମ । ତାହାର ଠାରୁ ନେତ୍ର ଜନ୍ମ ॥ ୬୬
ଯେ ନେତ୍ର ନାମେ ନରନାଥ । କୁନ୍ତି[2] ନୃପତିର ସେ ତାତ ॥ ୬୭
୨୨ ସୋହଞ୍ଜି କୁନ୍ତିଠାରୁ ଜାତ । ତାର ତନୟ ମହିଷ୍ମନ୍ତ ॥ ୬୮
୨୩ ମହିଷ୍ମନ୍ତର ଭଦ୍ରସେନ । ତାହାର ଯେ ବେନି ନନ୍ଦନ ॥ ୬୯
ଦୁର୍ମଦ[3] ନାମେ ପୁତ୍ର ଏକ । ଯେ ଆର ପୁତ୍ର ସେ ଧନକ ॥ ୭୦
ସେ ଧନକର ଚାରି ସୁତ । ପ୍ରଥମ କୃତବୀର୍ଯ୍ୟ ଜାତ ॥ ୭୧
କୃତାଗ୍ନି କୃତବର୍ମା ଦୁଇ । କୃତୌଜା ନାମେ ଆର ଭାଇ ॥ ୭୨
୨୪ ଅର୍ଜୁନ କୃତବୀର୍ଯ୍ୟସୁତ । ସେ ହେଲା ସପ୍ତଦ୍ୱୀପେ ନାଥ ॥ ୭୩
ଯେ ଦତ୍ତାତ୍ରେୟ ବିଷ୍ଣୁଅଂଶ । ତାହାଙ୍କ ଠାରୁ ସେ ନରେଶ ॥ ୭୪
ଯେ ଯୋଗମାର୍ଗ ମହାଗୁଣ । ତାହାକୁ ଲଭିଲା ସେ ପୁଣ ॥ ୭୫
୨୫ ଯେ ଯଜ୍ଞ ତପ ଯୋଗ ଦାନ । ଯେ ଶାସ୍ତ୍ର ବୀର୍ଯ୍ୟ ଜୟ[4] ଆନ ॥ ୭୬
ଏ ଆଦି କର୍ମମାନଙ୍କରେ । ନୃପତିମାନେ ଏ ସଂସାରେ ॥ ୭୭
କାର୍ତ୍ତବୀର୍ଯ୍ୟର ଗତି ଯେହି । ତହିଁକି ନ ପାରିବେ ଯାଇ ॥ ୭୮
୨୬ ଯାର ସ୍ମରଣେ ନଷ୍ଟବିତ୍ତ । ଲୋକକୁ ହୁଅଇ ପ୍ରାପତ ॥ ୭୯
ପଞ୍ଚାଶୀ ସହସ୍ର ବରଷ । ପର୍ଯ୍ୟନ୍ତେ ବଳ ନାହିଁ ନାଶ ॥ ୮୦
ଷଡ଼ ଇନ୍ଦ୍ରିୟଙ୍କ ବିଷୟ । ଭୁଞ୍ଜିଲା ଯେ ଅଟେ ଅକ୍ଷୟ ॥ ୮୧
୨୭ ବହୁତ ସହସ୍ର କୁମର । ଜନମିଥିଲେ ଯେ ତାହାର ॥ ୮୨
ଯୁଦ୍ଧେ ତା' ରାମ କଲେ ହତ । ତହୁଁ ବଳିଲେ ପାଞ୍ଚ ସୁତ ॥ ୮୩
ଯେ ଜୟଧ୍ୱଜ ଶୂରସେନ । [5]ଊର୍ଜିତ ମଧୁ ଯେ ବୃଷଣ[6] ॥ ୮୪
୨୮ ଜୟଧ୍ୱଜର ଠାରୁ ଜାତ । ହୋଇଲା ତାଳଜଙ୍ଘ ସୁତ ॥ ୮୫
ତାହାର ହେଲେ ଶତେ ସୁତ । ସେ ତାଳଜଙ୍ଘ[7] ନାମେ ଖ୍ୟାତ ॥ ୮୬
ଔର୍ବଙ୍କ ତେଜରେ ସଗର । କଲେ ସେମାନଙ୍କୁ ସଂହାର ॥ ୮୭

---

୧. ସକଳ ପାପୁଁ ତରେ ପ୍ରାଣୀ । ୨. କୁନ୍ତି = ଭୋଜ । ୩. ଦୁର୍ଦମ । ୪. ଦୟା ।
୫. (ବୃଷଣ ମଧୁ ନାମେ ଆନ) । ୬. ବୃଷଭ । ୭. କାଳଜଙ୍ଘ ।

୨୯ ସେ ତାଳଜଙ୍ଘର ଯେ ପୁତ୍ର । ଜ୍ୟେଷ୍ଠ ତା' ନାମ ବୀତିହୋତ୍ର ॥ ୮୮
ଯେ ମଧୁ ଅର୍ଜୁନର ସୁତ । ତାହାର ହେଲେ ପୁତ୍ର ଶତ ॥ ୮୯
ବୃଷ୍ଣିନାମରେ ପୁତ୍ର ଯେହି । ତାଙ୍କ ମଧ୍ୟରେ ଜ୍ୟେଷ୍ଠ ସେହି ॥ ୯୦
ଯଉଁ ସକାଶରୁ ସେ ବଂଶ । ମାଧବ ନାମରେ ପ୍ରକାଶ ॥ ୯୧
ବୃଷ୍ଣି ଯାଦବ ନାମେ ଖ୍ୟାତି । ହେ ନୃପ ! ହେଲା ଉତପତି ॥ ୯୨
୩୦-୩୧ ଯଦୁର କ୍ରୋଷ୍ଟୁ[1] ନାମେ ସୁତ । ବୃଜିନବନ୍ତ ତହୁଁ ଜାତ ॥ ୯୩
ଶ୍ୱାହି ତ ତାହାର କୁମର । ଅରିଷଡ଼ଗୁ[2] ପୁତ୍ର ତାର ॥ ୯୪
ତାହାର ଚିତ୍ରରଥ ସୁତ । ତାହାର ତହୁଁ ଯେ ସଂଭୂତ ॥ ୯୫
ସେ ଶଶବିନ୍ଦୁ[3] ମହୀପତି । ଅପରାଜିତ ଚକ୍ରବର୍ତ୍ତୀ ॥ ୯୬
ମହତ ମହାଯୋଗୀ ହୋଇ । ଜଗତେ ବିଖ୍ୟାତ ଅଟଇ ॥ ୯୭
ଯେ ମହାରତ୍ନ ଚତୁର୍ଦ୍ଦଶ । ସେ ତାହା ମନ୍ଦିରେ ପ୍ରକାଶ ॥ ୯୮
୩୨ ଦଶ ସହସ୍ର ଭାର୍ଯ୍ୟା ତାର । ସେ ଭାର୍ଯ୍ୟାମାନଙ୍କରଠାର ॥ ୯୯
ଦଶଲକ୍ଷ ସହସ୍ର ସୁତ । ସେ ମହାଯଶା କଲା ଜାତ ॥ ୧୦୦
୩୩ ସେ ପୁତ୍ରମାନଙ୍କେ ପ୍ରଧାନ । ଅଟନ୍ତି ଯେ ଷଟ ନନ୍ଦନ ॥ ୧୦୧
ତହିଁ ଯେ ପୃଥୁଶ୍ରବା ନାମ । ତାର ତନୟନାମ ଧର୍ମ ॥ ୧୦୨
ଉଶନା ନାମେ ତାର ସୁତ । ସେ କଲା ଅଶ୍ୱମେଧ ଶତ ॥ ୧୦୩
୩୪ ତାଠାରୁ ରୁଚକ ସଂଭୂତ । ଶୁଣ ତାହାର ପଞ୍ଚ ସୁତ ॥ ୧୦୪
ରୁକ୍ମ ରୁକ୍ମେଷୁ ପୁରୁଜିତ । ପୃଥୁ ଜ୍ୟାମଘ ବେନି ସୁତ ॥ ୧୦୫
୩୫ ଜ୍ୟାମଘ ନୃପ ଶୈବ୍ୟାପତି । ତାହାର ନ ଥିଲା ସଂତତି ॥ ୧୦୬
ସେ ନୃପ ଭାର୍ଯ୍ୟାଭୟୁଁ କରି । ବିଭା ନୋହିଲା ଆନ ନାରୀ ॥ ୧୦୭
ଭୋଜ୍ୟା ନାମେ ଯେ କନ୍ୟା ଥିଲା । ଶତ୍ରୁଭବନୁଁ ତା' ହରିଲା ॥ ୧୦୮
୩୬ ସେ କନ୍ୟା ରଥମଧ୍ୟେ ଥିଲା । ଶୈବ୍ୟା ତା' ଦେଖି କୋପ କଲା ॥ ୧୦୯
ପତିକି ବୋଇଲା ଏ ବାଣୀ । ଆହେ କପଟୀ ଏ କେ ପୁଣି ॥ ୧୧୦
ରଥରେ ବସାଇ ଯାହାକୁ । ଆଣିଛୁ ମୋହର ସ୍ଥାନକୁ ॥ ୧୧୧
୩୭ ବହୂ ତୋହର ଏ ଯୁବତୀ । ଏମନ୍ତ କହନ୍ତେ ନୃପତି ॥ ୧୧୨
ହସନ୍ତେ ଏ ପ୍ରକାରେ ପୁଣି । ପତିକି କହିଲା ତରୁଣୀ ॥ ୧୧୩
ସ୍ୱଭାବେ ବନ୍ଧ୍ୟା ମୁଁ ଅଟଇ । ମୋର ସପତ୍ନୀ କେହି ନାହିଁ ॥ ୧୧୪
କେମନ୍ତ ପ୍ରକାରେ ମୋହର । ବହୂ ସଂଭବିବ ବିଚାର ॥ ୧୧୫
୩୮ ତାଠାରୁ ଭୟ ପାଇ ପୁଣି । ନୃପତି ବୋଇଲା ଏ ବାଣୀ ॥ ୧୧୬
ହେ ରାଜପତ୍ନି ! ଯଉଁ ସୁତ । କାଳରେ କରିବୁ ତୁ ଜାତ ॥ ୧୧୭
ବଧୂରୂପରେ ଉପଯୋଗ । ତାହାର ହୋଇବ ଏ ଭୋଗ ॥ ୧୧୮

---

୧. କ୍ରୋଷ୍ଟା, କ୍ରୋଷ୍ଟୁ ।  ୨. ବିଶଦ୍‌ଗୁରୁଶେକୁ ।  ୩. ଶତବିନ୍ଦୁ ।

| | | | | |
|---|---|---|---|---|
| | ଏମନ୍ତ କହନ୍ତେ ବଚନ | । ଭୟେ ହୋଉଛି କମ୍ପମାନ | ।। | ୧୧୯ |
| | ପଳାଇ ଯିବାକୁ ନୃପତି | । ବାଞ୍ଛା କରନ୍ତେ ନିଜ ମତି | ।। | ୧୨୦ |
| | ଅନେକ କାଳ ଭକ୍ତିଭାବେ | । ଆରାଧିଥିଲା ଯାଙ୍କୁ ପୂର୍ବେ | ।। | ୧୨୧ |
| | ସେ ବିଶ୍ୱେଦେବା ପିତୃଗଣ | । ତା' ପ୍ରାଣସଂକଟ ଦେଖିଣ | ।। | ୧୨୨ |
| | ପୁତ୍ରଜନମ ଅର୍ଥେ ତାର | । ବଚନ କଲେକ ସ୍ୱୀକାର | ।। | ୧୨୩ |
| ୩୯ | କାଳରେ ଶୈବ୍ୟା ଗର୍ଭ ହେଲା | । ଉତ୍ତମ ପୁତ୍ର ଜାତ କଲା | ।। | ୧୨୪ |
| | ବିଦର୍ଭ ନାମ ସେ କୁମାର | । ବଧୂକୁ ବିଭା ହେଲା ତାର | ।। | ୧୨୫ |
| | ଭକ୍ତବତ୍ସଳ ଯେ ମୁରାରି | । ତାଙ୍କ ଚରଣ ଚିନ୍ତା କରି | ।। | ୧୨୬ |
| | ନବମ ସ୍କନ୍ଧ ଭଣି ଗୀତେ | । ହରଷ ଦୀନବନ୍ଧୁ ଚିତ୍ତେ | ।। | ୧୨୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଯଦୁବଂଶକଥନଂ
ନାମ ତ୍ରୟୋବିଂଶୋଽଧ୍ୟାୟଃ ।।

## ଚତୁର୍ବିଂଶ ଅଧ୍ୟାୟ

ଚତୁର୍ବିଂଶେ ବିଦର୍ଭସ୍ୟ ପୁତ୍ରତ୍ରୟସମୁଦ୍ଭବାଃ ।
ବଂଶା ନାନାମୁଖାଃ ପ୍ରୋକ୍ତା ରାମକୃଷ୍ଣୋଭବାବଧି ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ବିଦର୍ଭ ନୃପ ତିନି ସୁତ | । ସେ କନ୍ୟାଠାରେ କଲା ଜାତ | ।। | ୧ |
| | ସେ କୁଶ କ୍ରଥ ନାମେ ଖ୍ୟାତ | । ତୃତୀୟ ଲୋମପାଦ ଜାତ | ।। | ୨ |
| | ବିଦର୍ଭନୃପତିକୁଳର | । ଆନନ୍ଦଦାତା ସେ କୁମର | ।। | ୩ |
| ୨ | ଲୋମପାଦର ବଭ୍ରୁ ସୁତ | । ବଭ୍ରୁର ଠାରୁ କୃତି ଜାତ | ।। | ୪ |
| | ଉଶିକ ନାମେ ତାର ସୁତ | । ତାହାର ଠାରୁ ଚେଦି ଜାତ | ।। | ୫ |
| | ଯେ ଚୈଦ୍ୟ[୧] ଆଦି ନରପତି | । ସେମାନେ ଚେଦିର ସନ୍ତତି | ।। | ୬ |
| ୩ | ଯେ କ୍ରଥ ବିଦର୍ଭର ସୁତ | । ତାହାର ଠାରୁ କୁନ୍ତି ଜାତ | ।। | ୭ |
| | କୁନ୍ତିର ବୃଷ୍ଣି ନାମେ ସୁତ | । ନିର୍ବୃତି ତାହାଠାରୁ ଜାତ | ।। | ୮ |
| | ଦଶାର୍ହ ତାଠାରୁ ଜନମ | । ତାହାର ପୁତ୍ର ବ୍ୟୋମ ନାମ | ।। | ୯ |
| ୪ | ଜୀମୂତ ତନୟ ତାହାର | । ବିକୃତି ଜୀମୂତ କୁମର | ।। | ୧୦ |
| | ତାହାର ଭୀମରଥ ସୁତ | । ତାଠାରୁ ନବରଥ ଜାତ | ।। | ୧୧ |
| | ତାଠାରୁ ଦଶରଥ ନାମ | । ତନୁଜ ହୋଇଲା ଜନମ | ।। | ୧୨ |

୧. ଚୈଦ୍ୟ = ଦମଘୋଷ ।

୫ ଶକୁନି ଦଶରଥସୁତ । କରମ୍ଭି ତାହାଠାରୁ ଜାତ ॥
ତାହାର ସୁତ ଦେବରାତ । ଦେବରାତର ଦେବକ୍ଷତ୍ର ॥
ଦେବକ୍ଷତ୍ରର ମଧୁ ନାମ । ତାଠାରୁ କୁରୁବଶ ଜନ୍ମ ॥
୬ କୁରୁବଶର ଅନୁ ସୁତ । ତାଠାରୁ ପୁରୁହୋତ୍ର ଜାତ ॥
ତାହାର ସୁତ ଆୟୁ ନାମ । ତାଠାରୁ ସାତ୍ୱତ ଜନମ ॥
ହେ ନୃପ ! ଭଜି ଭଜମାନ । ଅନ୍ଧକ ଦେବାବୃଧ ନାମ ॥
ଯେ ଦିବ୍ୟ ବୃଷ୍ଣି ମହାଭୋଜ । ଏ ସପ୍ତ ସାତ୍ୱତତନୁଜ ॥
୭ ଭଜମାନର ତିନି ସୁତ । ଏକ ଭାର୍ଯ୍ୟାରେ ହେଲେ ଜାତ ॥
୮ ଯେ ଧୃଷ୍ଟି ନିମ୍ଳୋଚି କିଙ୍କିଣ । ଆନ ଭାର୍ଯ୍ୟାରେ ତିନି ପୁଣ ॥
[1]ସହସ୍ରାଜିତ ଶତାଜିତ । ଏରୂପେ ଖ୍ୟାତ ଦୁଇ ସୁତ ॥
ହେ ନୃପ ! ଯେ ଆର କୁମର । ଅୟୁତାଜିତ ନାମ ତାର ॥
ଦେବାବୃଧର ବଭ୍ରୁ ସୁତ । ସେ ଦୁଇ ବିଷୟେ ଏମନ୍ତ ॥
ଶ୍ଳୋକମାନଙ୍କୁ ସାଧୁ ଜନେ । ଗାୟନ କରନ୍ତି ଭୁବନେ ॥
୯ ଯେମନ୍ତ ଶୁଣୁଥିଲୁଁ ଦୂରେ । ପାଶେ ଦେଖିଲୁଁ ସେ ପ୍ରକାରେ ॥
୧୦ ଜଗତେ ଯେତେ ଛନ୍ତି ନର । ବଭ୍ରୁ ତାହାଙ୍କ ମଧ୍ୟେ ବର ॥
ଯେ ଦେବାବୃଧ ନାମେ ଆନ । ସେ ଦେବମାନଙ୍କେ ସମାନ ॥
ଷଟସହସ୍ର ଅଷ୍ଟଶତ । ଆବର ପଞ୍ଚଷଷ୍ଟି ଯୁତ ॥
ବଭ୍ରୁ-ଦେବାବୃଧ ହେତୁରେ । ମୋକ୍ଷକୁ ଲଭିଲେ ସଂସାରେ ॥
୧୧ ଅତିଧର୍ମାତ୍ମା ମହାଭୋଜ । ତା' ବଂଶ ବୋଲାଇଲେ ଭୋଜ ॥
ସୁମିତ୍ର ଯୁଧାଜିତ ହୋଇ । ହେ ନୃପ ! ବୃଷ୍ଣିପୁତ୍ର ଦୁଇ ॥
୧୨ ଯେ ପୁଣ ଶିନି ଅନମିତ୍ର । ସେ ବେନି ଯୁଧାଜିତ ପୁତ୍ର ॥
ଅନମିତ୍ରର ନିମ୍ନ ସୁତ । ତାର ପ୍ରସେନ ସତ୍ରାଜିତ ॥
୧୩ ଅନମିତ୍ରର ଅନ୍ୟ ସୁତ । ଶିନି[2] ନାମରେ ସେ ବିଖ୍ୟାତ ॥
୧୪ ସତ୍ୟକ ନାମରେ ତାହାର । ଜନମ ହୋଇଲା କୁମର ॥
ସତ୍ୟକପୁତ୍ର ଯୁଯୁଧାନ । ଜୟ ନାମରେ ତା' ନନ୍ଦନ ॥
କୁଣି ତା' ସୁତ ସେ କୁଣିର । ତନୟ ନାମ ଯୁଗନ୍ଧର ॥
ଅନମିତ୍ରର ଆନ ସୁତ । ବୃଷ୍ଣି ନାମରେ ସେ ବିଦିତ ॥
୧୫ ଶ୍ୱଫଳ୍କ ଚିତ୍ରରଥ ହୋଇ । ବୃଷ୍ଣିର ଜାତ ପୁତ୍ର ଦୁଇ ॥
ଗାନ୍ଦିନୀଠାରେ ଶ୍ୱଫଳ୍କର । ଜନ୍ମିଲେ ଦ୍ୱାଦଶ କୁମର ॥

---

୧. ସହସ୍ରଜିତ ଶତଜିତ ।　　୨. ଶନି ।

ଅକ୍ରୂର ତହିଁରେ ପ୍ରଧାନ । ଦ୍ୱାଦଶ ଅକ୍ରୂରରୁ ଭିନ୍ନ ॥
୧୬} ଆସଙ୍ଗ[୧] ସାରମେୟ ଗିରି । ଶତ୍ରୁଘ୍ନ ମୃଦୁର ମୃଦୁରି[୨] ॥
୧୭} ଯେ ପ୍ରତିବାହୁ ଗନ୍ଧମାଦ । ସୁକର୍ମା ଆଉ ଧର୍ମବୃଦ୍ଧ ॥
ଅରିମର୍ଦ୍ଦନ କ୍ଷତ୍ରୋପେୟ[୩] । ଏରୂପେ ଦ୍ୱାଦଶ ତନୟ ॥
ସୁସାରା[୪] ତାହାଙ୍କ ଭଗିନୀ । ଅକ୍ରୂରସୁତ ହେଲେ ବେନି ॥
୧୮ ସେ ଉପଦେବ ଦେବବନ୍ତ । ଚିତ୍ରରଥର ପୃଥୁ ସୁତ ॥
ବିଦୂରଥାଦି[୫] ହେଲେ ଜାତ । ବୃଷ୍ଣିର ନନ୍ଦନ ବହୁତ ॥
୧୯ [୬]କୁକୁର ଶୁଚି ଭଜମାନ । କମ୍ବଳବରହିଷ ଆନ ॥
ଅନ୍ଧକସୁତ ଏ ବିଦିତ । ବୃଷ୍ଣି[୭] କୁକୁରଠାରୁ ଜାତ ॥
ବିଲୋମା ତନୟ ତାହାର । କପୋତରୋମା ତା' କୁମର ॥
୨୦} 'ଅନୁ' ନାମରେ ସୁତ ତାର । ତୁମ୍ବୁରୁ ସଖା ଅଟେ ଯାର ॥
୨୧} ଅନ୍ଧକ ଅନୁଠାରୁ ଜାତ । ଦୁନ୍ଦୁଭି ନାମେ ତାର ସୁତ ॥
ତାର ତନୟ ଦିବିଦ୍ୟୋତ[୮] । ତାଠାରୁ ପୁନର୍ବସୁ ଜାତ ॥
ଆହୂକ ତନୟ ତାହାର । ଆହୂକୀ ନାମେ କନ୍ୟା ଆର ॥
ଦେବକ ଉଗ୍ରସେନ ହୋଇ । ସେ ଆହୂକର ପୁତ୍ର ଦୁଇ ॥
ଦେବକ ନାମେ ଯେ ବିଦିତ । ତା'ଠାରୁ ଚାରିପୁତ୍ର ଜାତ ॥
୨୨} ସେ ଦେବବନ୍ତ ଉପଦେବ । ଯେ ଦେବବର୍ଦ୍ଧନ ସୁଦେବ ॥
୨୩} ହେ ନୃପ ! ତାହାଙ୍କର ଜାତ । ହୋଇଲେ ଯେ ଭଗିନୀ ସାତ ॥
ତହିଁରେ ଆଦ୍ୟ ଧୃତଦେବା[୯] । ଆଉ ତନୁଜା ଶାନ୍ତିଦେବା ॥
ଶ୍ରୀଦେବା ଉପଦେବା ଆର । ଦେବରକ୍ଷିତା ତଦନ୍ତର ॥
ଦେବକୀ ସହଦେବା ହୋଇ । ଆବର ସେ ଭଗିନୀ ଦୁଇ ॥
ସେ ସାତ ଭଗିନୀଙ୍କି ପୂର୍ବେ । ବିବାହ ହେଲେ ବସୁଦେବେ ॥
୨୪ କଂସ ସୁନାମା ଶଙ୍କୁ କଙ୍କ । ନ୍ୟଗ୍ରୋଧ ସୁହୂ ଯେ ଆରକ ॥
ଯେ ରାଷ୍ଟ୍ରପାଳ ତୁଷ୍ଟିମନ୍ତ । ଧୃଷ୍ଟି[୧୦] ଏ ଉଗ୍ରସେନସୁତ ॥
୨୫ ଯେ କଂସା କଙ୍କା କଂସବତୀ । ଶୂରଭୂ ନାମେ ଯେହୁ ଖ୍ୟାତି ॥
ରାଷ୍ଟ୍ରପାଳିକା ନାମ ଆର । ତନୁଜା ଏ ଉଗ୍ରସେନର ॥
ଯେ ବସୁଦେବ ସାନଭାଇ[୧୧] । ସେମାନଙ୍କର ଭାର୍ଯ୍ୟା ଏହି ॥

---

୧. ଅସଙ୍ଗ । ୨. ମୃଦୁବିଦ୍ । ୩. କ୍ଷତ୍ରୋପେକ୍ଷ । ୪. ସୁଚାରା, ସୁଚୀରା, ସୁରସା ।
୫. ବିଦୂରଥ ଆଦି । ୬. ''କୁକୁର-ଭଜମାନ-ଶୁଚି-କମ୍ବଳବର୍ହିଷାଖ୍ୟାସ୍ତଥାନ୍ଧକସ୍ୟ ପୁତ୍ରାଃ'' (ପରାଶର) ।
୭. ବହ୍ନି । ୮. ଅବିଦ୍ୟୋତ, ଅରିଦ୍ୟୋତ । ୯. କୃତଦେବା । ୧୦. ସୃଷ୍ଟି ।
୧୧. ଦେବଭାଗ ପ୍ରଭୃତି ବସୁଦେବଙ୍କ ସାନଭାଇ ଅଟନ୍ତି ।

୨୬ [୧]ଶ୍ୱଫଲ୍କଭ୍ରାତା ଚିତ୍ରରଥ । ତାର ତନୟ ବିଦୂରଥ ॥ ୬୯
ତା' ପୁତ୍ର ଶୂର ଭଜମାନ । ତା' ସୁତ ଶିନି ତା' ନନ୍ଦନ ॥ ୭୦
ତାଠାରୁ ଭୋଜ ହେଲା ଜାତ । ହୃଦୀକ ତା' ସୁତ ସମ୍ମତ ॥ ୭୧
୨୭ ହୃଦୀକଠାରୁ ଯେ ଜନମ । ସେ ଦେବବାହୁ[୨] କୃତବର୍ମ ॥ ୭୨
[୩]ତୃତୀୟ ଅଟଇ ଯେ ସୁତ । ସେ ଶତଧନୁ ନାମେ ଖ୍ୟାତ ॥ ୭୩
ଯେ ଦେବମୀଢ଼ସୁତ ଶୂର । ମାରିଷା ନାମ ପତ୍ନୀ ତାର ॥ ୭୪
୨୮ ତାଠାରେ ଜାତ କଲା ଦଶ । ତନୁଜ ସର୍ବେ ଅକଳ୍ମଷ ॥ ୭୫
୨୯ ଜନ୍ମିଲା ବସୁଦେବ ଆଗ । ଦ୍ୱିତୀୟ ପୁତ୍ର ଦେବଭାଗ ॥ ୭୬
ଯେ ଦେବଶ୍ରବସ ଆନକ । ସୃଞ୍ଜୟ ବତ୍ସକ ଶ୍ୟାମକ ॥ ୭୭
କଙ୍କ ଶମୀକ ବୃକ ଆର । ଏ ରୂପେ ଦଶ ତା' କୁମର ॥ ୭୮
ଜନମସମୟେ ଯାହାର । ଆନକଦୁନ୍ଦୁଭି ଆବର ॥ ୭୯
ବାଜିଲେ ଦେବବାଦ୍ୟମାନ । ଯେ ଅଟେ ହରିଜନ୍ମସ୍ଥାନ ॥ ୮୦
ଆନକଦୁନ୍ଦୁଭିନାମେଣ । ବୋଲନ୍ତି ତାକୁ ଏଣୁ ପୁଣ ॥ ୮୧
୩୦ ପୃଥା ଆବର ଶ୍ରୁତଦେବା । ଯେ ଶ୍ରୁତକୀର୍ତ୍ତି ଶ୍ରୁତଶ୍ରବା ॥ ୮୨
୩୧ ରାଜାଧିଦେବୀ ନାମେ ଆର । ପଞ୍ଚ କନ୍ୟକା ଏହାଙ୍କର ॥ ୮୩
ଭଗିନୀ ଅଟନ୍ତି ବିଦିତ । ଏ ରୂପେ ପଞ୍ଚଦଶ ମତ ॥ ୮୪
ପୃଥାର ପିତା ଅଟେ ଶୂର । କୁନ୍ତି ନୃପତି ସଖା ତାର ॥ ୮୫
ସେ ପୁତ୍ରହୀନ ହୋଇଥିଲା । ଶୂର ପୃଥାକୁ ତାକୁ ଦେଲା ॥ ୮୬
୩୨ ସେ ପୃଥା କନ୍ୟାସମୟରେ । ସେ କୁନ୍ତିନୃପତିମନ୍ଦିରେ ॥ ୮୭
ଥାଆନ୍ତେ ଏକଦିନେ ତହିଁ । ଦୁର୍ବାସା ମିଳିଲେକ ଯାଇଁ ॥ ୮୮
ତାହାଙ୍କୁ ପରିଚର୍ଯ୍ୟା କରି । ସନ୍ତୋଷ କରାଇଲା ନାରୀ ॥ ୮୯
ଦେବତାମାନେ ଯାର ଜପେ । ମିଳନ୍ତି ଆସି ତା' ସମୀପେ ॥ ୯୦
ସେ ବିଦ୍ୟା ଲଭିଲା ସେ ପୁଣ । ଦୁର୍ବାସାଠାରୁ ତତକ୍ଷଣ ॥ ୯୧
ଯେ ବୀର୍ଯ୍ୟ ଅଟେ ସେ ବିଦ୍ୟାର । ପରୀକ୍ଷାନିମିତ୍ତେ ତାହାର ॥ ୯୨
ଶୁଚି ହୋଇଣ ସେ ଅବଳା । ରବିଙ୍କି ଆବାହନ କଲା ॥ ୯୩

---

୧. ''ଭଜମାନାଚ୍ଚ ବିଦୂରଥଃ ପୁତ୍ରୋଽଭବତ୍, ବିଦୂରଥାଚ୍ଚ ଶୂରଃ'' (ପରାଶର)
ଭଜମାନ ଠାରୁ ବିଦୂରଥ ଏବଂ ବିଦୂରଥ ଠାରୁ 'ଶୂର' ପୁତ୍ର ହେଲେ ।

୨. ଦେବମୀଢ଼ ।

୩. ''ତସ୍ୟାପି କୃତବର୍ମ-ଶତଧନୁ-ର୍ଦେବମୀଢୁଷାଦ୍ୟାଃ ପୁତ୍ରା ବଭୂବୁଃ,
ଦେବମୀଢୁଷସ୍ୟ ଶୂରଃ, ଶୂରସ୍ୟାପି ମାରିଷା ନାମ ପତ୍ନ୍ୟଭୂତ୍,
ତସ୍ୟାଂ ଚାସୌ ଦଶ ପୁତ୍ରାନଜନୟଦ୍ ବସୁଦେବପୂର୍ବାନିତି ।'' (ପରାଶର)
ତାଙ୍କର ମଧ୍ୟ କୃତବର୍ମା, ଶତଧନ୍ୱା, ଦେବମୀଢୁଷ ଆଦି ପୁତ୍ର ହେଲେ । ଦେବମୀଢୁଷଙ୍କର ପୁତ୍ର ଶୂର, ଶୂରଙ୍କର ମାରିଷା ନାମ ପତ୍ନୀ ହେଲା । ତା'ଠାରେ ସେ ବସୁଦେବପୂର୍ବକ ଦଶ ପୁତ୍ର ଜନ୍ମାଇଲେ ।

୩୩ ତପନ ସେହି ସମୟରେ । ପ୍ରବେଶ ହୋଇଲେ ଆଗରେ ।। ୯୪
ତାହାଙ୍କୁ ଦରଶନ କରି । ବିସ୍ମୟମନା ହେଲା ନାରୀ ।। ୯୫
ବୋଇଲା ହେ ଦେବ ! ପ୍ରତ୍ୟୟ । ନିମିତ୍ତେ କଲି ଏ ବିଷୟ ।। ୯୬
ଯାଅ ଆପଣା ଭବନକୁ । କ୍ଷମା କର ମୋ' ଏ ଦୋଷକୁ ।। ୯୭
୩୪ ରବି ବୋଇଲେ ଏ ବଚନ । ଅମୋଘ ଦେବଦରଶନ ।। ୯୮
ତୋହର ଗର୍ଭରେ ଆଧାନ । କରିବି ମୁଁ ଏକ ନନ୍ଦନ ।। ୯୯
ହେ ସୁମଧ୍ୟମେ ଯୋନି ପୁଣ । ଯେମନ୍ତେ ନୋହିବ ଦୂଷଣ ।। ୧୦୦
ସେ କଥା କରିବଇଁ ମୁହିଁ । ରବି ଏମନ୍ତ କଥା କହି ।। ୧୦୧
୩୫ ତାଠାରେ ଗର୍ଭକୁ ଆଧାନ । କରିଣ ଗଲେ ସ୍ୱର୍ଗସ୍ଥାନ ।। ୧୦୨
୩୬ ତତ୍‌କାଳ ଜନ୍ମିଲା କୁମର । ଅଟେ କି ଦ୍ୱିତୀୟ ଭାସ୍କର ।। ୧୦୩
ଲୋକସ୍ୱକାଶୁଁ ଭୟ ପାଇ । କଷ୍ଟରେ ତାହାକୁ ସେ ନେଇ ।। ୧୦୪
ଛାଡ଼ିଲା ମଧ୍ୟରେ ନଦୀର । ପ୍ରପିତାମହ ଯେ ତୋହର ।। ୧୦୫
ଯାହାର ସତ୍ୟ ପରାକ୍ରମ । ସେ ପାଣ୍ଡୁ ନୃପତି ଉତ୍ତମ ।। ୧୦୬
ସେ ପୃଥା କନ୍ୟାକୁ ପୂର୍ବରେ । ବିବାହ ହେଲା ସମୟରେ ।। ୧୦୭
୩୭ କରୂଷଦେଶ-ନରନାଥ । ଯେ ବୃଦ୍ଧଶର୍ମା ନାମେ ଖ୍ୟାତ ।। ୧୦୮
ଶ୍ରୁତଦେବାକୁ ସେ ଗ୍ରହଣ । କଲା, ଯାହାର ଠାରୁ ପୁଣ ।। ୧୦୯
ହୋଇଲା ଦନ୍ତବକ୍ର ଜାତ । ଯେ ପୂର୍ବଦିନେ ଦିତିସୁତ ।। ୧୧୦
ସନକ ଆଦିଙ୍କ ଶାପରେ । ଜନମି ଥିଲା ମର୍ତ୍ତ୍ୟପୁରେ ।। ୧୧୧
୩୮ ଯେ ଧୃଷ୍ଟକେତୁ ନାମେ ଖ୍ୟାତ । କେକୟଦେଶନରନାଥ ।। ୧୧୨
ଶ୍ରୁତକୀର୍ତ୍ତିକି ଯେ ଲଭିଲେ । ତାଠାରେ ପଞ୍ଚସୁତ ହେଲେ ।। ୧୧୩
ସନ୍ତର୍ଦନକୁ ଆଦି ହୋଇ । କୈକୟ ସେହୁ ପଞ୍ଚ ଭାଇ ।। ୧୧୪
୩୯ ଅବନ୍ତୀଦେଶର ରାଜନ । ନାମ ଯାହାର ଜୟସେନ ।। ୧୧୫
୪୦ ରାଜାଧିଦେବୀଠାରେ ସେହି । ଜନମ କଲା ସୁତ ଦୁଇ ।। ୧୧୬
ସେ ବିନ୍ଦ ଅନୁବିନ୍ଦ ହୋଇ । ଅବନ୍ତୀଦେଶଭବ ଦୁଇ ।। ୧୧୭
ଚେଦିମାନଙ୍କର ରାଜନ । ଯେ ଦମଘୋଷ ବିଦ୍ୟମାନ ।। ୧୧୮
ସେ ଶ୍ରୁତଶ୍ରବାକୁ ଘେନିଲା । ତା' ସୁତ ଶିଶୁପାଳ ହେଲା ।। ୧୧୯
ତାର ଜନମ ତୋ' ଆଗରେ । କହିଛୁଁ ପୂର୍ବେ ପ୍ରସଙ୍ଗରେ ।। ୧୨୦
ଯେ ଦେବଭାଗ ନାମେ ଖ୍ୟାତ । ବସୁଦେବର ଅଟେ ଭ୍ରାତ ।। ୧୨୧
କଂସା ନାମରେ ତା' କାମିନୀ । ସେ ଅଟେ କଂସର ଭଗିନୀ ।। ୧୨୨
ତାଠାରେ ଚିତ୍ରକେତୁ ଜାତ । ଯେ ବୃହଦ୍‌ବଳ ଆର ସୁତ ।। ୧୨୩
୪୧ ଦେବଶ୍ରବର ଯେ ଯୁବତୀ । କଂସଭଗିନୀ କଂସବତୀ ।। ୧୨୪
ସୁବୀର ଇଷୁମନ୍ତ ହୋଇ । ତାଠାରେ ହେଲେ ପୁତ୍ର ଦୁଇ ।। ୧୨୫

ଆନକ ବସୁଦେବଭାଇ । କଙ୍କାର ଠାରେ ପୁତ୍ର ଦୁଇ ॥ ୧୨୬
ତାହାର ହୋଇଲେ ସମ୍ଭୂତ । ସେ ସତ୍ୟଜିତ ପୁରୁଜିତ ॥ ୧୨୭
୪୨ ସୃଞ୍ଜୟ ନାମେ ଯେ ଆବର । ସେ ପୁଣ ରାଷ୍ଟ୍ରପାଳୀଠାର ॥ ୧୨୮
ଜନମ କଲା ନାନା ସୁତ । ବୃଷ ଦୁର୍ମର୍ଷ ଆଦି ଖ୍ୟାତ ॥ ୧୨୯
ଶ୍ୟାମକ ଶୂରଭୂମିଠାର । ଜନମ କଲା ଦ୍ୱି କୁମାର ॥ ୧୩୦
ସେ ହିରଣ୍ୟାକ୍ଷ ହରିକେଶ । ଏ ବେନି ନାମରେ ପ୍ରକାଶ ॥ ୧୩୧
୪୩ ଯେ ଅପସରା ମିଶ୍ରକେଶୀ । ମର୍ତ୍ତ୍ୟଲୋକରେ ଥିଲା ଆସି ॥ ୧୩୨
ତାଠାରେ ବୃକ ଆଦି ସୁତ । ବତ୍ସବାଳକ କଲା ଜାତ ॥ ୧୩୩
ଯେ ତକ୍ଷ ଯେ ପୁଷ୍କରମାଳ[1] । ତାହାଙ୍କୁ ଆଦି ଯେତେ ବାଳ ॥ ୧୩୪
ବୃକ ତାହାଙ୍କୁ ଦୂର୍ବା[2] ଠାରେ । ଆଧାନ କଲା ସମୟରେ ॥ ୧୩୫
୪୪ ସୁମିତ୍ରା ନାମେ ଯେ କାମିନୀ । ସୁନ୍ଦର ମାଳାରେ ମୋହିନୀ ॥ ୧୩୬
ଅର୍ଜୁନପାଳ ଆଦି ସୁତ । ସମୀକ[3] ଠାରୁ କଲା ଜାତ ॥ ୧୩୭
କର୍ଣ୍ଣିକାଠାରେ କଙ୍କ[4] ଜାତ । କଲା ଯେବଣ ବେନି ସୁତ ॥ ୧୩୮
ଏକର ନାମ ରତଧାମ । ଆର ତନୟ ଜୟ ନାମ ॥ ୧୩୯
୪୫ ପୌରବୀ ମଦିରା ରୋହିଣୀ । ରୋଚନା[5] ଇଳା ଭଦ୍ରା ପୁଣି ॥ ୧୪୦
ଦେବକୀ ପ୍ରଭୃତି ଯେ ଆନ । ବସୁଦେବର ଭାର୍ଯ୍ୟାମାନ ॥ ୧୪୧
୪୬ ଯେ ବଳ ଗଦ ଧ୍ରୁବ ପୁଣ । ଦୁର୍ମଦ ବିପୁଳ ସାରଣ ॥ ୧୪୨
କୃତକୁ ଆଦି ହୋଇ ଆନ । ଯେତେ ତନୁଜ ବିଦ୍ୟମାନ ॥ ୧୪୩
ରୋହିଣୀଠାରେ ବସୁଦେବ । କଲା ସେମାନଙ୍କୁ ସମ୍ଭବ ॥ ୧୪୪
୪୭ ସୁଭଦ୍ର ଭଦ୍ରବାହୁ ଧର୍ମ । ଦୁର୍ମଦ ଏକପୁତ୍ରନାମ ॥ ୧୪୫
ଭୂତକୁ ଆଦି ଯେ ଦ୍ୱାଦଶ । ପୌରବୀସୁତ ଏ ପ୍ରକାଶ ॥ ୧୪୬
୪୮ ଯେ ନନ୍ଦ ଉପନନ୍ଦ ଶୂର । କୃତକ ଆଦି ଯେ ଇତର ॥ ୧୪୭
ମଦିରା ନାମ ଯଉଁ ନାରୀ । ଏମାନେ ତନୟ ତାହାରି ॥ ୧୪୮
କୁଳନନ୍ଦନ କେଶୀ ନାମ । କୌଶଲ୍ୟା[6] କଲା ଏକ ଜନ୍ମ ॥ ୧୪୯
୪୯ ହସ୍ତ ହେମାଙ୍ଗଦାଦି ସୁତ । ରୋଚନାଠାରେ ହେଲେ ଜାତ ॥ ୧୫୦
ତନୟ ଯଦୁମୁଖ୍ୟ ହୋଇ । ଉରୁବଳକ ଆଦି ଯେହି ॥ ୧୫୧
ଇଳାର ଗର୍ଭରେ ସେମାନ । କଲେ ସେ ବସୁଦେବ ଜନ୍ମ ॥ ୧୫୨
୫୦ ବସୁଦେବର ଏକ ସୁତ । ଧୃତଦେବା[7]ର ଠାରେ ଜାତ ॥ ୧୫୩
ବିସୃଷ୍ଟ[8] ଅଟେ ନାମ ତାର । ଯେ ଶାନ୍ତିଦେବା ନାମେ ଆର ॥ ୧୫୪
ହେ ନୃପ ! ପ୍ରଶମ ପ୍ରଥିତ[9] । ଏ ଆଦି ତାହାଠାରେ ଜାତ ॥ ୧୫୫

୧. ପୁଷ୍କରଶାଳ । ୨. ଦୁର୍ବାକ୍ଷୀ । ୩. ଶମୀକ । ୪. ଆନକ । ୫. ଲୋଚନା ।
୬. କୌଶଲ୍ୟା = ଭଦ୍ରା । ୭. କୃତଦେବା । ୮. ବିପୃଷ୍ଠ । ୯. ଶ୍ରମ, ପ୍ରତିଶ୍ରୁତ ।

୫୧ ରାଜନ କଳ୍ପବର୍ଷ ଆଦି । ଯେ ଦଶ ତନୟ ପ୍ରସିଦ୍ଧି ॥ ୧୫୬
ସେମାନେ ଉପଦେବାସୁତ । ଶ୍ରୀଦେବା ନାମେ ଯେ ବିଦିତ ॥ ୧୫୭
ବସୁହଂସ ସୁବଂଶ ଆଦି । ଷଟ ତନୟ ତାର ସିଦ୍ଧି ॥ ୧୫୮
୫୨ } ହେ ନୃପ ! ତାର ଗଦ ଆଦି । ଯେ ନବ କୁମାର ପ୍ରସିଦ୍ଧି ॥ ୧୫୯
୫୩ } ଦେବରକ୍ଷିତା ତା' ଲଭିଲା । ଯେ ସହଦେବା ନାମେ ଥିଲା ॥ ୧୬୦
ପ୍ରବର ଶ୍ରୁତ ଆଦି ସୁତ । ଅଷ୍ଟ ତାଠାରେ କଲା ଜାତ ॥ ୧୬୧
ସେ ବସୁମାନଙ୍କୁ ସାକ୍ଷାତ । ଧର୍ମ କରଇ ଯେହ୍ନେ ଜାତ ॥ ୧୬୨
୫୪ } ଦେବକୀଠାରେ ଅଷ୍ଟ ସୁତ । ସେ ବସୁଦେବ କଲା ଜାତ ॥ ୧୬୩
୫୫ } ସେ କୀର୍ତ୍ତିମନ୍ତ ଭଦ୍ରସେନ । ସୁଷେଣ ଋଜୁ ସମ୍ମର୍ଦନ ॥ ୧୬୪
ଭଦ୍ର ନାମରେ ପୁଣ ଆର । ସଂକରଷଣ ଅହୀଶ୍ୱର ॥ ୧୬୫
ସେ ବେନିଠାରେ ସ୍ୱୟେଂ ହରି । ଅଷ୍ଟମ ଗର୍ଭେ ଅବତରି ॥ ୧୬୬
ସୁଭଦ୍ରା ମହାଭାଗା ଯେହି । ହେ ନୃପ ! ତୁମ୍ଭ ପିତାମହୀ ॥ ୧୬୭
୫୬ ଯେବଣ ଯେବଣ ସମୟ । ପାପ ବଢ଼ଇ ପୁଣ୍ୟ କ୍ଷୟ ॥ ୧୬୮
ସେହି କାଳରେ ଭଗବାନ । ଆତ୍ମାକୁ କରନ୍ତି ସର୍ଜନ ॥ ୧୬୯
୫୭ ହେ ନୃପ ! ଯେ ସଙ୍ଗବିହୀନ । ସକଳ ଆତ୍ମା ଭଗବାନ ॥ ୧୭୦
ସାକ୍ଷୀ ସକଳ ବିଷୟର । ଆପଣା ମାୟା ବିନୁ ତାର ॥ ୧୭୧
ଜନ୍ମକୁ କର୍ମକୁ କାରଣ । ସେ କଥା ନ ସମ୍ଭବେ ପୁଣ ॥ ୧୭୨
୫୮ ଯା' ମାୟାଚେଷ୍ଟା ଯେ ଅଟଇ । ଜୀବର ଅନୁଗ୍ରହ ସେହି ॥ ୧୭୩
କର୍ମାଦିପରତନ୍ତ୍ର ଭାବ । ତାହାର କାହୁଁ ସମ୍ଭବିବ ॥ ୧୭୪
ଯେଣୁ ଜନମ ସ୍ଥିତି ନାଶ । ନିମିତ୍ତେ ସେ ଚେଷ୍ଟା ପ୍ରକାଶ ॥ ୧୭୫
ସେ ଚେଷ୍ଟାଶ୍ରବଣେ ସଂସାର । ନିବର୍ତ୍ତେ, ମୋକ୍ଷ ହୋଏ ଆର ॥ ୧୭୬
୫୯ ଯେ ଅକ୍ଷୌହିଣୀଙ୍କର ପତି । ନୃପତିଚିହ୍ନ ଧରିଥାନ୍ତି ॥ ୧୭୭
ତେଣେ[୧] ଆକ୍ରାନ୍ତ ହେଲା ମହୀ । ତା' ଭାରନାଶ ହେବାପାଇଁ ॥ ୧୭୮
ଉଦ୍ୟମ କଲେ ଯେ ଈଶ୍ୱର । ତେଣୁ ସମ୍ଭବ ତାହାଙ୍କର ॥ ୧୭୯
୬୦ ଦେବଙ୍କ ମଧ୍ୟେ ଶ୍ରେଷ୍ଠ ଯେହି । ସେମାନେ ମନରେ ହେଁ ଯାହି ॥ ୧୮୦
କରିବାକୁ ହିଁ ଅଭାଜନ । ରାମ[୨]ସହିତେ ଭଗବାନ ॥ ୧୮୧
ସେ କର୍ମମାନଙ୍କୁ ଜଗତେ । କଲେ ଜଗତଜନ ହିତେ ॥ ୧୮୨
୬୧ ଯଉଁ ଭଗତେ କଳିଯୁଗେ । ଜାତ ହୋଇବେ ଭୂମିଭାଗେ ॥ ୧୮୩
ଅନୁଗ୍ରହାର୍ଥେ ତାହାଙ୍କର । ଯଶକୁ କଲେ ଯେ ବିସ୍ତାର ॥ ୧୮୪
ଯେ ଦୁଃଖ-ଶୋକ-ତମ[୩] ନାଶ । କରେ ସୁପୁଣ୍ୟ ଯଉଁ ଯଶ ॥ ୧୮୫

---

୧. ତେଣେ = ଅସୁରମାନଙ୍କ ଦ୍ୱାରା । ୨. ରାମ = ବଳରାମ (ସଂକର୍ଷଣ) ।
୩. ତମ = ଅଜ୍ଞାନ ଅନ୍ଧକାର ।

| | | | |
|---|---|---|---|
| ୬୨ | ଯେ ସାଧୁଜନମାନଙ୍କର । | କର୍ଣ୍ଣକୁ ପୀୟୂଷ ଆକାର | ॥ ୧୮୬ |
| | ଯେ ଯଶ ଅଟେ ତୀର୍ଥବର । | ତହିଁ ଥରେହେଁ ଯଉଁ ନର | ॥ ୧୮୭ |
| | ଅଞ୍ଜଳି କରି ନିଜ କର୍ଣ୍ଣ । | କରଇ ମାତ୍ର ଆଚମନ | ॥ ୧୮୮ |
| | କର୍ମବାସନା ଯେତେ ଥାଇ । | ତା' ସର୍ବ ବିନାଶ କରଇ | ॥ ୧୮୯ |
| ୬୩ | ଯେ ଭୋଜ ବୃଷ୍ଣି ଶୂରସେନ । | ମଧୁ ଦଶାର୍ହ ଯେ ବା ଆନ | ॥ ୧୯୦ |
| | କୁରୁ ସୃଞ୍ଜୟ ଯେ ଅନ୍ଧକ । | ପାଣ୍ଡୁଙ୍କ ସହିତେ ଯେତେକ | ॥ ୧୯୧ |
| | ତାର ଚରିତକୁ ସେମାନେ । | ସ୍ତୁତି କରନ୍ତେ ଅନୁଦିନେ | ॥ ୧୯୨ |
| ୬୪ | ଯେ ସ୍ନିଗ୍ଧ ସ୍ମିତ ବିଲୋକନ । | ରୁଚିର ନିଜ ବାକ୍ୟମାନ | ॥ ୧୯୩ |
| | ବିଭ୍ରମଲୀଳା ଯେ ଆବର । | ଯେ ମୂର୍ତ୍ତି ସର୍ବାଙ୍ଗସୁନ୍ଦର | ॥ ୧୯୪ |
| | ନରଲୋକକୁ ତେଣେ କରି । | ଆନନ୍ଦ କରାଇଲେ ହରି | ॥ ୧୯୫ |
| ୬୫ | ମକରକୁଣ୍ଡଳେ ଶୋଭନ । | ଦିଶଇ ଯହିଁ ବେନି କର୍ଣ୍ଣ | ॥ ୧୯୬ |
| | ସୁନ୍ଦର କପୋଳ ଶୋଭିତ । | ବିଳାସହାସେ ଯେ ସହିତ | ॥ ୧୯୭ |
| | ଯହିଁ ଉତ୍ସବ ଅନୁଦିନ । | ଏମନ୍ତ ଯାହାର ଆନନ | ॥ ୧୯୮ |
| | ପିବନ୍ତେ ନିଜ ନୟନରେ । | ହରଷ ହୋଇ ନାରୀନରେ | ॥ ୧୯୯ |
| | ନିମିଷେ ନ ପାରନ୍ତେ ସହି । | ନିମେଷ ନେତ୍ରେ କଲା ଯେହି | ॥ ୨୦୦ |
| | ସେ ନିମିନୃପତିକି ମନେ । | କୋପ କରନ୍ତି ଅନୁଦିନେ | ॥ ୨୦୧ |
| ୬୬ | ମଧୁପୁରରେ ଜାତ ହେଲେ । | ବ୍ରଜକୁ ପିତାଗୃହୁଁ ଗଲେ | ॥ ୨୦୨ |
| | ଯେ ବ୍ରଜବାସିମାନେ ଥିଲେ । | ତାଙ୍କ ଅର୍ଥକୁ ବଢ଼ାଇଲେ | ॥ ୨୦୩ |
| | ଯେତେକ ଥିଲେ ରିପୁମାନ । | ତାହାଙ୍କୁ କରିଣ ନିଧନ | ॥ ୨୦୪ |
| | ବହୁତ ଭାର୍ଯ୍ୟା ବିଭା ହେଲେ[୧] । | ଅନେକ ପୁତ୍ର ଜାତ କଲେ | ॥ ୨୦୫ |
| | ଉପ୍ତନ୍ନ[୨] କରିଣ ଲୋକରେ । | ବେଦମାର୍ଗକୁ ତଦନ୍ତରେ | ॥ ୨୦୬ |
| | ଯାଗମାନଙ୍କେ ଆପଣାର । | ଆତ୍ମାକୁ ପୂଜିଲେ ଈଶ୍ୱର | ॥ ୨୦୭ |
| ୬୭ | କୁରୁମାନଙ୍କ ମଧ୍ୟେ ଜାତ । | କଳିକି କରିଣ ନିମିତ୍ତ | ॥ ୨୦୮ |
| | ତେଣେ ଯେ ରାଜସେନାମାନେ । | ମିଳିଲେ ଆସି ରଣସ୍ଥାନେ | ॥ ୨୦୯ |
| | ଦୃଷ୍ଟିରେ ସଂହାରି ତାହାଙ୍କୁ । | ପ୍ରବଳ ଧରଣୀଭାରକୁ | ॥ ୨୧୦ |
| | ନାଶ କରନ୍ତେ ଜୟ ଯେହି । | ଅର୍ଜୁନନାମେ ତାହା କହି | ॥ ୨୧୧ |
| | ଯେ ତତ୍ତ୍ୱ ଅଟେ ଆପଣାର । | କହି ତା' ଉଦ୍ଧବ ଆଗର | ॥ ୨୧୨ |
| | ନିଜ ସ୍ଥାନକୁ ସେ ରୂପରେ । | ବିଜୟ କଲେ ତଦନ୍ତରେ | ॥ ୨୧୩ |
| | ଶ୍ରୀକୃଷ୍ଣଚରଣପଙ୍କଜ । | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ॥ ୨୧୪ |

---

୧. ହୋଇ ।　　୨. ବିସ୍ତାର ।

ନବମସ୍କନ୍ଧ ଭାଷାଗୀତେ । ବର୍ଣ୍ଣିଲା ସାଧୁଜନହିତେ ॥ ୨୧୫
ଶ୍ରବଣ ପଠନେ ଯାହାର । ତରିବେ ଭବସିନ୍ଧୁ ନର ॥ ୨୧୬
ଯେ ପୂର୍ବେ ରାଜରଷିମାନେ । ପବିତ୍ର ଶ୍ରୀକୃଷ୍ଣଭଜନେ ॥ ୨୧୭
ତାହାଙ୍କ ବଂଶାନୁଚରିତ । ଏଥିରେ ହୋଇଛି କଥିତ ॥ ୨୧୮
ଯହିଁରେ ରାମକୃଷ୍ଣ ଦୁଇ । ଜନ୍ମିଲେ ନରରୂପ ହୋଇ ॥ ୨୧୯
ସେ ରବିଶଶୀବେନିବଂଶ । ଏଥିରେ ହୋଇଛି ପ୍ରକାଶ ॥ ୨୨୦
ପ୍ରତି ଆଖ୍ୟାନେ କୃଷ୍ଣଗୁଣ । ଖ୍ୟାତ ହୋଇଛି ପୁଣ ପୁଣ ॥ ୨୨୧
ଏ ଘେନି ଏ ଗ୍ରନ୍ଥପଠନେ । ଶ୍ରବଣେ ତର ପ୍ରାଣୀମାନେ ॥ ୨୨୨
[୧]ପଣ୍ଡିତଲୋକ ହେଲେ ଥୋକେ । ଶୁଣି ସନ୍ତୋଷ ନୋହିବ କେ ॥ ୨୨୩
ନିଜ ଗୁଣରୁ ସାଧୁମାନେ । ଶୁଣିବେ ହୋଇ ସାବଧାନେ ॥ ୨୨୪
ସୁଜନେ ନ ଧର ମୋ ଦୋଷ । ଶୁଣି ଏ ଗୀତ ଲଭ ତୋଷ ॥ ୨୨୫

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀଯଦୁବଂଶାନୁକୀର୍ତ୍ତନଂ
ନାମ ଚତୁର୍ବିଂଶୋଽଧ୍ୟାୟଃ ॥

**ସମାପ୍ତୋଽୟଂ ନବମସ୍କନ୍ଧଃ**

---

୧. କେତେକ ପୋଥିରେ ଏହି ଅନ୍ତିମ ପଦତ୍ରୟ ଦେଖାଯାଏ ।



# ଶ୍ରୀମଦ୍‌ଭାଗବତ

## ତୃତୀୟ ଖଣ୍ଡ

### ଦଶମ, ଏକାଦଶ ଓ ଦ୍ୱାଦଶ ସ୍କନ୍ଧ

ନବାକ୍ଷରୀ ପଦ୍ୟାନୁବାଦ

**ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା**



ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ

# ଶ୍ରୀମଦ୍‌ଭାଗବତ

## ତୃତୀୟ ଖଣ୍ଡ

(ଦଶମ, ଏକାଦଶ ଓ ଦ୍ୱାଦଶ ସ୍କନ୍ଧ)

ଶ୍ରୀଧରସ୍ୱାମୀଙ୍କ ଟୀକାନୁସରଣରେ ନବାକ୍ଷରୀ ଓଡ଼ିଆ ପଦ୍ୟାନୁବାଦ

ଶ୍ରୀଦୀନବନ୍ଧୁ ମିଶ୍ର ଖାଡ଼ଙ୍ଗା

ସଂପାଦନା

ଅଧ୍ୟାପକ ରଙ୍ଗାଧର ଷଡ଼ଙ୍ଗୀ

ପ୍ରକାଶନ

ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ
ଭୁବନେଶ୍ୱର

# Shrimadbhagavata

Trutiya Khanda

(Dashama, Ekadasha O Dwadasha Skandha)

Sri Dinabandhu Mishra Khadanga

Published by

**Sri Puridas Goswami Trust**

Brahmeswarpatna, Bhubaneswar



ପ୍ରଥମ ପ୍ରକାଶ ଫେବୃୟାରୀ ୧୯୯୩

ଦ୍ୱିତୀୟ ପ୍ରକାଶ ଜାନୁୟାରୀ ୨୦୧୬

ପ୍ରକାଶକ

**ଶ୍ରୀପୁରୀଦାସ ଗୋସ୍ୱାମୀ ଟ୍ରଷ୍ଟ**

ବ୍ରହ୍ମେଶ୍ୱରପାଟଣା, ଭୁବନେଶ୍ୱର

ପରିବେଷକ

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ଫୋନ୍ : ୦୬୭୧-୨୩୦୮୨୩୭

ମୁଦ୍ରଣ

ଗୋସ୍ୱାମୀ ପ୍ରେସ୍, ଭୁବନେଶ୍ୱର

ଆନୁକୂଲ୍ୟ ଟ ୮୦.୦୦

# ସୂଚୀପତ୍ର

## ଦଶମ ସ୍କନ୍ଧ

| ଅଧ୍ୟାୟ | ପ୍ରକରଣ | ପୃଷ୍ଠାଙ୍କ |
|---|---|---|

| ଅଧ୍ୟାୟ | ପ୍ରକରଣ | ପୃଷ୍ଠାଙ୍କ |
|---|---|---|
| ୭୫. | ଶ୍ରୀଯୁଧିଷ୍ଠିର-ଦ୍ରୌପଦୀଙ୍କ ଅବଭୃତ-ସ୍ନାନ, ଦୁର୍ଯ୍ୟୋଧନର ମାନଭଙ୍ଗ | ୪୨୮ |
| ୭୬. | ଶାଲ୍ୱ-ଯାଦବ ସଂଗ୍ରାମ | ୪୩୩ |
| ୭୭. | ଶ୍ରୀପ୍ରଦ୍ୟୁମ୍ନଙ୍କର ଦ୍ୟୁମାନ୍ ବଧ, ଶ୍ରୀକୃଷ୍ଣଙ୍କର ସୌଭ-ଭଞ୍ଜନ ଓ ଶାଲ୍ୱ-ନିଧନ | ୪୩୭ |
| ୭୮. | ଶ୍ରୀକୃଷ୍ଣଙ୍କ ଦ୍ୱାରା ଦନ୍ତବକ୍ର-ବଧ, ଶ୍ରୀବଳଦେବଙ୍କ ଦ୍ୱାରା ରୋମହର୍ଷଣ ବଧ | ୪୪୨ |
| ୭୯. | ଶ୍ରୀବଳଦେବଙ୍କ ଦ୍ୱାରା ବଲ୍ୱଳ ବଧ, ଶ୍ରୀବଳଦେବଙ୍କ ତୀର୍ଥଯାତ୍ରା ... | ୪୪୭ |
| ୮୦. | ଶ୍ରୀକୃଷ୍ଣଙ୍କ ଦ୍ୱାରା ଶ୍ରୀଦାମାବିପ୍ରଙ୍କର ସମାଦର ଓ ଗୁରୁକୁଳବାସ-ପ୍ରସଙ୍ଗୋତ୍‌ଥାପନ | ୪୫୧ |
| ୮୧. | ଶ୍ରୀକୃଷ୍ଣଙ୍କର ଶ୍ରୀଦାମାବିପ୍ରଙ୍କ ତଣ୍ଡୁଳକଣା ଭକ୍ଷଣ, ଶ୍ରୀହରିଙ୍କର ନିଷ୍କିଞ୍ଚନ ଶ୍ରୀଦାମାବିପ୍ରଙ୍କୁ ମଣିମୟପୁରୀ ଦାନ | ୪୫୬ |
| ୮୨. | ସୂର୍ଯ୍ୟୋପରାଗକାଳେ କୁରୁକ୍ଷେତ୍ରରେ ଶ୍ରୀକୃଷ୍ଣାଦି-ଯାଦବ ଓ ଶ୍ରୀନନ୍ଦାଦି-ଗୋପ-ଗୋପୀମାନଙ୍କର ମିଳନ | ୪୬୧ |
| ୮୩. | ଶ୍ରୀକୃଷ୍ଣସଂଳାପାବସରରେ ତଦୀୟ ମହିଷୀଗଣଙ୍କ ଦ୍ୱାରା ଶ୍ରୀଦୌପଦୀଙ୍କ ନିକଟରେ ନିଜ ନିଜ ବିବାହ ବୃତ୍ତାନ୍ତ କଥନ | ୪୬୮ |
| ୮୪. | ଶ୍ରୀବ୍ୟାସାଦି ମୁନିମାନଙ୍କର କୁରୁକ୍ଷେତ୍ରାଗମନ, ମୁନିମାନଙ୍କଠାରୁ ଶ୍ରୀବସୁଦେବଙ୍କ ଉପଦେଶ ପ୍ରାର୍ଥନା, ସେମାନଙ୍କ ଉପଦେଶରେ ଯଜ୍ଞାନୁଷ୍ଠାନ, ଶ୍ରୀକୃଷ୍ଣଙ୍କ ଦ୍ୱାରା ବନ୍ଧୁମାନଙ୍କୁ ନିଜ ନିଜ ସ୍ଥାନକୁ ପ୍ରେରଣ | ୪୭୫ |
| ୮୫. | ଶ୍ରୀଶ୍ରୀରାମକୃଷ୍ଣଙ୍କର ଶ୍ରୀବସୁଦେବଙ୍କ ପ୍ରତି ତତ୍ତ୍ୱୋପଦେଶ ଦାନ ଓ ମାତା ଶ୍ରୀଦେବକୀଙ୍କ ପ୍ରାର୍ଥନାରେ ମୃତ ଅଗ୍ରଜାନୟନ | ୪୮୫ |
| ୮୬. | ଶ୍ରୀସୁଭଦ୍ରାହରଣ-ବୃତ୍ତାନ୍ତ, ଶ୍ରୀକୃଷ୍ଣଙ୍କର ମିଥିଳାଗମନ ଓ ସେଠାରେ ଶ୍ରୀଶ୍ରୁତଦେବ-ବହୁଳାଶ୍ୱଙ୍କ ପ୍ରତି କୃପା ବିତରଣ | ୪୯୩ |

**ଏକାଦଶ ସ୍କନ୍ଧ**

## ଦ୍ୱାଦଶ ସ୍କନ୍ଧ

| ଅଧ୍ୟାୟ | ପ୍ରକରଣ | ପୃଷ୍ଠାଙ୍କ |
|---|---|---|
| ୫. | ଶ୍ରୀଶୁକଦେବଙ୍କ ପରତତ୍ତ୍ୱଜ୍ଞାନୋପଦେଶଦ୍ୱାରା ଶ୍ରୀପରୀକ୍ଷିତଙ୍କ ତକ୍ଷକଦଂଶନଜନିତ ମୃତ୍ୟୁଭୟ ନାଶ | ୭୪୫ |
| ୬. | ତକ୍ଷକଦଂଶନ ଛଳରେ ଶ୍ରୀପରୀକ୍ଷିତଙ୍କ ନିର୍ଯାଣ, ଜନ୍ମେଜୟଙ୍କ ସର୍ପଯଜ୍ଞ, ବେଦଶାଖା ପ୍ରଣୟନ ପ୍ରସଙ୍ଗରେ ବେଦ-ବିଭାଗ-କଥନ | ୭୪୬ |
| ୭. | ପୁରାଣ ବିଭାଗ ଓ ପୁରାଣ ଲକ୍ଷଣ କଥନ ଏବଂ ଶ୍ରୀମଦ୍‌ଭାଗବତ ଶ୍ରବଣଫଳ | ୭୫୮ |
| ୮. | ମାର୍କଣ୍ଡେୟମୁନିଙ୍କ ତପସ୍ୟା, ତାଙ୍କ କାମାଦ୍ୟକ୍ଷୁବ୍‌ଧଚିତ୍ତତା ଓ ଶ୍ରୀନାରାୟଣ-ସ୍ତବ | ୭୬୨ |
| ୯. | ଶ୍ରୀମାର୍କଣ୍ଡେୟଙ୍କର ଭଗବନ୍ମାୟା ଦର୍ଶନ, ଶ୍ରୀବଟବୃକ୍ଷଙ୍କ ସାକ୍ଷାତ୍‌କାରଲାଭ ଓ ପ୍ରଳୟ-ପୟୋଧିରେ ଶ୍ରୀମାର୍କଣ୍ଡେୟଙ୍କର ପ୍ରବେଶ ଓ ନିର୍ଗମ | ୭୬୯ |
| ୧୦. | ଶ୍ରୀମହାଦେବଙ୍କଠାରୁ ଶ୍ରୀମାର୍କଣ୍ଡେୟଙ୍କର ବରଲାଭ | ୭୭୩ |
| ୧୧. | ଶ୍ରୀମହାପୁରୁଷଙ୍କର ତାନ୍ତ୍ରିକାର୍ଚ୍ଚନ ଓ ତଦୀୟ ବିଭୂତି ବର୍ଣ୍ଣନ | ୭୭୮ |
| ୧୨. | ସଂକ୍ଷେପରେ ଶ୍ରୀମଭାଗବତର ବିଷୟାନୁକ୍ରମ ବର୍ଣ୍ଣନ ଓ ଶ୍ରୀହରିଲୀଳା-ଶ୍ରବଣମାହାତ୍ମ୍ୟ କଥନ | ୭୮୬ |
| ୧୩. | ଯଥାକ୍ରମେ ପୁରାଣସମୂହର ଶ୍ଳୋକସଂଖ୍ୟା ନିର୍ଦ୍ଦେଶ, ଶ୍ରୀମଭାଗବତ-ଦାନଫଳ ଓ ଶ୍ରୀଭାଗବତମାହାତ୍ମ୍ୟ-ବର୍ଣ୍ଣନ | ୭୯୪ |

---

ଓଁ ଶ୍ରୀକୃଷ୍ଣାୟ ନମଃ

# ଦଶମ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ବିଶ୍ୱସର୍ଗବିସର୍ଗାଦିନବଲକ୍ଷଣଲକ୍ଷିତମ୍ ।
ଶ୍ରୀକୃଷ୍ଣାଖ୍ୟଂ ପରଂ ଧାମ ଜଗଦ୍ଧାମ ନମାମି ତତ୍ ।। ୧
ଦଶମେ ଦଶମଂ ଲକ୍ଷ୍ୟମାଶ୍ରିତାଶ୍ରୟବିଗ୍ରହମ୍ ।
କ୍ରୀଡ଼ଦ୍‌ଯଦୁକୁଳାମ୍ଭୋଧୌ ପରାନନ୍ଦମୁଦୀର୍ଯ୍ୟତେ ।। ୨
ଦଶମେ କୃଷ୍ଣସଂକୀର୍ତ୍ତିବିତାନାୟାନୁବର୍ଣ୍ଣ୍ୟତେ ।
ଧର୍ମଗ୍ଳାନିନିମିତ୍ତସ୍ତୁ ନିରୋଧୋ ଦୁଷ୍ଟଭୂଭୁଜାମ୍ ।। ୩
ପ୍ରାକୃତାଦିଶ୍ଚତୁର୍ଧା[୧] ଯୋ ନିରୋଧଃ ସ ତୁ ବର୍ଣ୍ଣିତଃ ।
ତତ୍ତତ୍‌ପ୍ରସଙ୍ଗତଃ ସୃଷ୍ଟିସଂହାରାଦିନିରୂପଣୈଃ ।। ୪
କୃତା ନବତିରଧ୍ୟାୟାଃ ଦଶମେ କୃଷ୍ଣକୀର୍ତ୍ତୟେ ।
ଆଦୌଶ୍ଚତୁର୍ଭିରଧ୍ୟାୟୈର୍ବ୍ରହ୍ମପ୍ରାର୍ଥନୟାଽବନେଃ ।
ଭାରଂ ହର୍ତ୍ତୁଂ ହରେର୍ଜନ୍ମ ସପ୍ରସଙ୍ଗଂ ନିରୂପ୍ୟତେ ।। ୫
ଗୋକୁଳେ ମଥୁରାୟାଂ ଚ ଦ୍ୱାରବତ୍ୟାଂ ତତଃ କ୍ରମାତ୍ ।
କୃଷ୍ଣଲୀଳା ତ୍ରିଧା ପ୍ରୋକ୍ତା ତତ୍ତଭେଦୈସ୍ତ୍ୱନେକଧା ।। ୬
ସପଞ୍ଚତ୍ରିଂଶତାଧ୍ୟାୟୈର୍ବୃହଦ୍‌ବୃନ୍ଦାବନାଦିଷୁ ।
ଗୋକୁଳେ ବସତୋ ଲୀଳା ବର୍ଣ୍ଣ୍ୟତେ ସୁର-ଦୁଷ୍କରା ।। ୭
ଏକେନ ଯମୁନାବାରିଣ୍ୟକ୍ରୂରେଣ କୃତା ସ୍ତୁତିଃ ।
ଏକାଦଶଭିରାଖ୍ୟାତା ଲୀଳା ମଧୁବନେ[୨] କୃତା ।। ୮
ଶେଷୈର୍ଦ୍ୱାରବତୀଲୀଳା ତନ୍ନିର୍ମାଣାଦି ବର୍ଣ୍ଣ୍ୟତେ ।
ଏବଂ ନବତିରଧ୍ୟାୟା ଦଶମେ ବିଶଦାର୍ଥକାଃ ।। ୯
ତତ୍ର ତୁ ପ୍ରଥମେ କଂସଃ ସ୍ୱମୃତ୍ୟୁଂ ଦେବକୀସୁତାତ୍ ।
ଶ୍ରୁତ୍ୱା ଭୀତୋଽବଧୀତ୍ତସ୍ୟାଃ ଷଡ୍‌ଗର୍ଭାନିତି ବର୍ଣ୍ଣ୍ୟତେ ।। ୧୦
କୃଷ୍ଣାବତାରଚରିତଶ୍ରବଣାମୃତନିର୍ବୃତଃ ।
ଉକ୍ତାନୁବାଦେନୌତ୍‌ସୁକ୍ୟାଦ୍ରାଜା ପୃଚ୍ଛତି ତତ୍ ପୁନଃ ।। ୧୧

ଶ୍ରୀରାଜୋବାଚ[୩]

୧ ଶ୍ରୀକୃଷ୍ଣଚରଣନଳିନ । ଚିନ୍ତା କରିଣ ନିଜ ମନ ।। ୧
ସୁଜନମାନଙ୍କର ହିତେ । ଦଶମସ୍କନ୍ଧ ଭାଷାଗୀତେ ।। ୨

---

୧. ପ୍ରାକୃତ, ନିତ୍ୟ, ନୈମିତ୍ତିକ ଓ ଆତ୍ୟନ୍ତିକ । ୨. ମଧୁପୁରେ । ୩. ଶ୍ରୀପରୀକ୍ଷିଦୁବାଚ ।

ବର୍ଣ୍ଣୁଛି ପୁରାଣକୁ ଚାହିଁ । ମୋହର ତେତେ ବୁଦ୍ଧି ନାହିଁ[1] ॥ ୩
ବିଶ୍ୱନାଟକସୂତ୍ରଧାର । ଯେ ହରି କରୁଣାସାଗର ॥ ୪
ସେ ଯହିଁ କରେ ନିଯୋଜନ । ତହିଁ ପ୍ରବର୍ତ୍ତେ ପ୍ରାଣିମନ ॥ ୫
ଏଣୁ ନ ଧର ମୋର ଦୋଷ । ସୁଜନେ ଶୁଣି ହୁଅ ତୋଷ ॥ ୬
ଯେବଣ କୃଷ୍ଣନାମମାନ । ମନୁଷ୍ୟେ କରନ୍ତି କୀର୍ତ୍ତନ ॥ ୭
ସେ କିଛି ହୋଇ ଅବ୍ୟକତ । ଶୁକତୁଣ୍ଡରେ ହେଲେ ଜାତ ॥ ୮
ସାଦର ହୋଇ ଟେକି କର୍ଣ୍ଣ । ତା' କି ନ ଶୁଣେ ସାଧୁ ଜନ ॥ ୯
ଏ ପ୍ରସଙ୍ଗ ହିଁ ସେ ପ୍ରକାରେ । ସୁଜନେ ଘେନନ୍ତୁ ମନରେ ॥ ୧୦
ଶୁକଙ୍କୁ ବିନୟ ହୋଇଣ । ପୁଚ୍ଛିଲେ ପରୀକ୍ଷିତ ପୁଣ ॥ ୧୧
ସୋମ ତପନ ବେନିଙ୍କରି । ବଂଶକୁ କହିଲ ବିସ୍ତାରି ॥ ୧୨
ସେ ବେନି ବଂଶେ ଉତପତି । ହୋଇଲେ ଯେତେ ନରପତି ॥ ୧୩
ସେମାନଙ୍କର ଯେ ଚରିତ । ସେ ଅଟେ ଅତି ଅଦଭୁତ ॥ ୧୪
ପ୍ରସଙ୍ଗବଶରେ ସେମାନ । ମୋ' ଆଗେ କରିଛ ବର୍ଣ୍ଣନ ॥ ୧୫
୨ ହେ ମୁନିଶ୍ରେଷ୍ଠ ! ଧର୍ମବନ୍ତ । ଯେ ଯଦୁ ତାହାଙ୍କ ଚରିତ ॥ ୧୬
କହିଛ ଉତ୍ତମ ପ୍ରକାରେ । ଯେ ବିଷ୍ଣୁ ସେ ବଂଶେ ଅଂଶରେ[2] ॥ ୧୭
ଜନ୍ମିଲେ ତାଙ୍କ କର୍ମମାନ । ଆମ୍ଭଙ୍କୁ କରସି କଥନ ॥ ୧୮
୩ ଭୂତଭାବନ[3] ଭଗବାନ । ସେ ଯଦୁବଂଶେ ହୋଇ ଜନ୍ମ ॥ ୧୯
ସେ ବିଶ୍ୱ-ଆତ୍ମା କର୍ମ ଯେତେ । କଲେ, ବିସ୍ତାରି କହ ମୋତେ ॥ ୨୦
୪ ଯେ ଛାଡ଼ିଛନ୍ତି କାମନାକୁ । ସେମାନେ ଗାଆନ୍ତି ଯାହାକୁ ॥ ୨୧
ସଂସାରରୋଗକୁ ଯେ ପୁଣ । ଔଷଧ ଅଟଇ ପ୍ରମାଣ ॥ ୨୨
ବିଷୟାସକ୍ତ ଲୋକଙ୍କର । ଯେ ମନ-କର୍ଣ୍ଣରମ୍ୟକର ॥ ୨୩
ଏମନ୍ତ ରୂପେ ଯେ ପ୍ରଚାର । ଗୁଣାନୁବାଦ ଶ୍ରୀକୃଷ୍ଣର ॥ ୨୪
ତହୁଁ କେ ବିରକ୍ତ ହୋଇବ । ଯେ ପଶୁଘାତୀ[4] ନୋହିଥିବ ॥ ୨୫
୫ ଦେବଙ୍କୁ ଜିଣନ୍ତି ଜଗତେ । ଯେ ଭୀଷ୍ମ ଆଦି ମହାରଥେ ॥ ୨୬
ସେମାନେ ତିମିଙ୍ଗିଳ ଯହିଁ । ତେଣେ ଯେ ଦୁସ୍ତର ଅଟଇ ॥ ୨୭
ସେ କୁରୁମାନଙ୍କର ସୈନ୍ୟ । ଅଟଇ ସମୁଦ୍ରସମାନ ॥ ୨୮
ତାହାକୁ ବସ୍ତପଦପ୍ରାଏ । କରିଣ ମୋର ପିତାମହେ ॥ ୨୯
ସମରେ ପୂର୍ବେ ତରିଗଲେ । ଯଉଁ କୃଷ୍ଣଙ୍କୁ ନାବ କଲେ ॥ ୩୦

---

୧. କାହିଁ । ୨. ଅଂଶରେ = ପ୍ରତୀତି ଅଭିପ୍ରାୟରେ କୁହା ହୋଇଅଛି ।

୩. ଭୂତଭାବନ = ଭୂତ ଅର୍ଥାତ୍ ପ୍ରାଣିମାନଙ୍କୁ ଯେ ପାଳନ କରନ୍ତି । (ଭୂତାନି ଭାବୟତି ପାଳୟତୀତି ।)

୪. 'ବିନା ପଶୁଘ୍ନାତ୍' – ଏହି ପାଠ ଅନୁସାରେ ଅନୁବାଦ ହୋଇଅଛି । 'ବିନାଽପଶୁଗ୍ଘ୍ନାତ୍' – ଏହି ପାଠ ଅନୁସାରେ 'ଆତ୍ମଘାତୀ' ଅନୁବାଦ ହେବ ଯେହେତୁ 'ଅପଶୁକ୍' ଶବ୍ଦର ଅର୍ଥ ଆତ୍ମା । (ଅପଗତା ଶୁକ୍ ଯସ୍ମାତ୍)

୬　କୁରୁ-ପାଣ୍ଡବମାନଙ୍କର　।　ବୀଜ ଅଟେ ଯେ ସନ୍ତାନର　।।　୩୧
ଦ୍ରୋଣତନୟଅସ୍ତ୍ରେ ମୋର　।　ଦଗ୍ଧ ହେଲା ଯେ ଏ ଶରୀର　।।　୩୨
ମୋ ମାତା ପଶିଲା ଶରଣ　।　ତା' ଗର୍ଭେ ପ୍ରବେଶ ହୋଇଣ　।।　୩୩
ଚକ୍ରକୁ ଧରି ନିଜ କରେ　।　ଯେ ଏହା ରଖିଲେ ପୂର୍ବରେ　।।　୩୪
୭　ଅଖିଳ ପ୍ରାଣିଙ୍କ ଅନ୍ତରେ　।　ଯେ ସ୍ଥିତ ପୁରୁଷରୂପରେ　।।　୩୫
ମୁକ୍ତିକିଂ ଦିଅନ୍ତି ଯେ ପୁଣ　।　ସେ ବାହ୍ୟେ କାଳସ୍ୱରୂପେଣ　।।　୩୬
ମୃତ୍ୟୁକୁ କରନ୍ତି ପ୍ରଦାନ　।　ମାୟାମନୁଷ୍ୟ ଭଗବାନ　।।　୩୭
ତାଙ୍କର ଯେତେ ବୀର୍ଯ୍ୟମାନ　।　ହେ ବୁଧ[୨] ! କର ତା' କଥନ　।।　୩୮
୮　ସଂକରଷଣ ଯାହା ନାମ　।　ରୋହିଣୀତନୟ ସେ ରାମ　।।　୩୯
ଏମନ୍ତ କହିଛ ପୂର୍ବରେ　।　ଭିନ୍ନ ଶରୀର-ଅଭାବରେ　।।　୪୦
ଗର୍ଭସମ୍ବନ୍ଧ ଦେବକୀର　।　କିରୂପେ ହୋଇଲା ତାଙ୍କର　।।　୪୧
୯　ମୁକୁନ୍ଦ କଉଁ ସ୍ୱକାଶରୁ　।　ବ୍ରଜକୁ ଗଲେ ପିତାଘରୁ　।।　୪୨
ଜ୍ଞାତିମାନଙ୍କ ସହିତରେ　।　ବାସ କଲେ ସେ କଉଁଠାରେ　।।　୪୩
୧୦　କେଶବ ବସନ୍ତେ ବ୍ରଜରେ　।　କି କଲେ କି ବା ମଧୁପୁରେ　।।　୪୪
ମାତାର ଅଟଇ ଯେ ଭାଇ　।　ବଧକୁ ଯୋଗ୍ୟ ଯେ ନୁହଇ　।।　୪୫
ତାହାକୁ ସାକ୍ଷାତ କରିଣ　।　କି ହେତୁ ବଧ କଲେ ପୁଣ　।।　୪୬
୧୧　ଲଭିଣ ମନୁଷ୍ୟଶରୀର　।　ସେ ପୁଣ କେତେକ ବତ୍ସର　।।　୪୭
ଯଦୁମାନଙ୍କ ସହିତରେ　।　ନିବାସ କଲେ ଯଦୁପୁରେ　।।　୪୮
ପ୍ରଭୁର ପତ୍ନୀ ହେଲେ କେତେ　।　ସେ କଥା କହ ମୋ' ଅଗ୍ରତେ　।।　୪୯
୧୨　ଆହେ ସର୍ବଜ୍ଞ ତପୋଧନ　।　ଏ କଥା ଯେ ବା ଏଥୁଁ ଆନ　।।　୫୦
ସେ ସର୍ବ କୃଷ୍ଣର ଚେଷ୍ଟାକୁ　।　ବିସ୍ତାର କରି କହିବାକୁ　।।　୫୧
ସମର୍ଥ ହୋଅ ମୋ' ଅଗ୍ରତ　।　ମୁଁ ହୋଇଅଛି ଶ୍ରଦ୍ଧାବନ୍ତ　।।　୫୨
୧୩　ମୁଁ ଛାଡ଼ିଅଛି ଜଳକୁ ହିଁ　।　ଯେ କ୍ଷୁଧା ଦୁଃସହ ଅଟଇ　।।　୫୩
ତୋ ମୁଖ-ଅମ୍ଭୋଜୁଁ ନିର୍ଗତ　।　ଯେ ଅଟେ ହରିକଥାମୃତ　।।　୫୪
ପାନ କରନ୍ତେ ତାହା ମୁହିଁ　।　ସେ କ୍ଷୁଧା ମୋତେ ବାଧୁ ନାହିଁ　।।　୫୫

ଶ୍ରୀସୂତ ଉବାଚ

୧୪　ଶୌନକ ଆଦିଙ୍କ ଅଗ୍ରତ　।　ଏ କଥା କହୁଛନ୍ତି ସୂତ　।।　୫୬
ନୃପର ଏ ସାଧୁ ବଚନ　।　ଶୁଣିଣ ହେ ଭୃଗୁନନ୍ଦନ[୩]　।।　୫୭
ବୈଷ୍ଣବମାନଙ୍କରେ ବର[୪]　।　ସେ ବ୍ୟାସମୁନିଙ୍କ କୁମର　।।　୫୮
ଯେ ବିଷ୍ଣୁରାତ[୫] ଦଣ୍ଡଧାରୀ　।　ତାହାଙ୍କୁ ପ୍ରତିପୂଜା କରି　।।　୫୯
କଳିକଳୁଷ କରେ ହତ　।　ଯେବଣ ଶ୍ରୀକୃଷ୍ଣଚରିତ　।।　୬୦

---

୧. ମୂଳଶବ୍ଦ "ଅମୃତ" ।　୨. ବୁଦ୍ଧ ।　୩. ଶୌନକ ।　୪. ଶ୍ରେଷ୍ଠ ।　୫. ପରୀକ୍ଷିତ୍ ।

ଏଥୁଁ ଅନ୍ତରେ ତା' ନୃପକୁ । ଆରମ୍ଭ କଲେ କହିବାକୁ ॥ ୬୧

ଶ୍ରୀଶୁକ ଉବାଚ

୧୫ ହେ ରାଜରଷିଙ୍କର ବର । ସୁବ୍ୟବସାୟବୁଦ୍ଧି ତୋର ॥ ୬୨
ଯହିଁରୁ ନଇଷ୍ଠିକୀ ରତି । କୃଷ୍ଣକଥାରେ ଉତପତି ॥ ୬୩
୧୬ ବାସୁଦେବର କଥାପ୍ରଶ୍ନ । ପବିତ୍ର କରେ ତିନି ଜନ ॥ ୬୪
ଯେ କହେ, ଯେ ପୁଚ୍ଛେ ବଚନେ । ଶୁଣନ୍ତି ଯଉଁ ଶ୍ରୋତାମାନେ ॥ ୬୫
ଯେସନେ ତା' ପାଦସଲିଳ । ପବିତ୍ର କରଇ ସକଳ ॥ ୬୬
୧୭ ଗର୍ବିତ ନୃପକପଟ[1]ରେ । ଯେ ଦୈତ୍ୟେ ଜନ୍ମିଲେ ଭୂମିରେ ॥ ୬୭
ସେମାନଙ୍କର ସୈନ୍ୟ ଯେତେ । ଶତ ଅୟୁତ ପରିଯନ୍ତେ ॥ ୬୮
ସେ ଘେନି ଅତିଶୟ ହୋଇ । ଯେ ଭାର ହେଲା ତେଣେ ମହୀ ॥ ୬୯
ଅତି ହିଁ ଆକ୍ରାନ୍ତ ହୋଇଲା । ବ୍ରହ୍ମାଙ୍କୁ ଶରଣ ପଶିଲା ॥ ୭୦
୧୮ ଧରଣୀ ହୋଇଅଛି ଖିନ୍ନ । ଲୋତକେ ପୂରିତ ବଦନ ॥ ୭୧
କାନ୍ଦନ୍ତେ ସକରୁଣ[2] ହୋଇ । ମିଳିଲା ବ୍ରହ୍ମାପାଶେ ଯାଇଁ ॥ ୭୨
ଯେ ଥିଲା ଆପଣା ବେଦନା । ତା' ତାଙ୍କୁ କଲା ନିବେଦନା ॥ ୭୩
୧୯ ସେ କଥା ଶ୍ରବଣ କରିଣ । ଏଥୁଁ ଅନ୍ତରେ ବ୍ରହ୍ମା ପୁଣ ॥ ୭୪
ଶଙ୍କର ଅଛନ୍ତି ସଙ୍ଗତେ । ଆବର ଦେବମାନେ ଯେତେ ॥ ୭୫
ସେହି ଧରଣୀ ସଙ୍ଗତରେ । ମିଳିଲେ କ୍ଷୀରସିନ୍ଧୁତୀରେ ॥ ୭୬
୨୦ ସେଠାରେ ମିଳିଣ ତୁରିତ । ଯେ ବୃଷାକପି[3] ଜଗନ୍ନାଥ ॥ ୭୭
ଯେ ଦେବ ଦେବଙ୍କ ଉପରେ । ତାହାଙ୍କୁ ପୁରୁଷସୂକ୍ତରେ ॥ ୭୮
ବିଧାତା ଆରମ୍ଭିଲେ ସ୍ତୁତି । ହୋଇଣ ସମାହିତମତି ॥ ୭୯
୨୧ ଗଗନେ ଉଚ୍ଚରିଲା ବାଣୀ । ଯୋଗବଳରେ ବ୍ରହ୍ମା ଶୁଣି ॥ ୮୦
ବୋଇଲେ ଦେବତାମାନଙ୍କୁ । ମୋଠାରୁ ଈଶ୍ୱରବାକ୍ୟକୁ ॥ ୮୧
ଶୁଣ ବେଗରେ ତା' ଆଚର । ହେ ଦେବେ ! ବିଳମ୍ବ ନ କର ॥ ୮୨
୨୨ ଆମ୍ଭେ ନ ଜଣାଉଁ, ଈଶ୍ୱର । ଜାଣିଅଛନ୍ତି ମହୀଜ୍ୱର ॥ ୮୩
ତୁମ୍ଭେ ସମସ୍ତେ ଯଦୁବଂଶେ । ଜନମ ହୁଅ ଯାଇ ଅଂଶେ ॥ ୮୪
ଈଶ୍ୱରମାନଙ୍କ ଈଶ୍ୱର । ସେ ଯେତେ କାଳ ଭୂମିଭାର ॥ ୮୫
ହରନ୍ତେ ସ୍ୱକାଳଶକ୍ତିରେ । ଭ୍ରମଣ କରିବେ ଭୂମିରେ ॥ ୮୬
୨୩ ଇତରେ ଅଂଶରେ ସଂଭୂତ । ହୁଅନ୍ତି ଏ ପୁଣି ସାକ୍ଷାତ ॥ ୮୭
ପରମ ପୁରୁଷ ଈଶ୍ୱର । ଜନ୍ମିବେ ବସୁଦେବଘର ॥ ୮୮

---

୧. ନୃପକପଟ = ବାହାନାରେ । ୨. ସେ କରୁଣ ।
୩. ବୃଷାକପି = ବିଷ୍ଣୁ । (କାମାନ୍ ବର୍ଷତୀତି ବୃଷା, କମ୍ପୟତି କ୍ଳେଶାନିତି କପିଃ) ଯେ କାମ ପୂରଣ କରନ୍ତି ଏବଂ କ୍ଳେଶ ଦୂର କରନ୍ତି ।

ତାହାଙ୍କ ପ୍ରିୟ ଅର୍ଥେ କରି । ଜନ୍ମ ହୁଅନ୍ତୁ ସୁରନାରୀ ॥ ୮୯
୨୪ ଯାହାର ସହସ୍ର ବଦନ । ନିଜ ରୂପରେ ଯେ ଶୋଭନ ॥ ୯୦
ବାସୁଦେବର କଳା ହୋଇ । ଯେ ଖ୍ୟାତ ଅନନ୍ତ ଅଟଇ ॥ ୯୧
ସେ ଦେବ ହରିପ୍ରିୟ ଅର୍ଥେ । ଜନମ ହୋଇବ ଅଗ୍ରତେ ॥ ୯୨
୨୫ ବିଷ୍ଣୁର ମାୟା ଯେ ଅଟଇ । ଜଗତ ମୋହିତ କରଇ ॥ ୯୩
ଆଜ୍ଞା ଦିଅନ୍ତେ ନାରାୟଣ । ଦେବକୀଗର୍ଭସଂକର୍ଷଣ[୧] ॥ ୯୪
ଯଶୋଦାମୋହନାଦି ହୋଇ । ଯେ କାର୍ଯ୍ୟ ସେମାନଙ୍କ ପାଇଁ ॥ ୯୫
ସେ ପୁଣ ଯଶୋଦାଗର୍ଭରେ । ଜନମ ହୋଇବ ଅଂଶରେ ॥ ୯୬

ଶ୍ରୀଶୁକ ଉବାଚ

୨୬ ଯେ ପ୍ରଜାପତିମାନଙ୍କର । ଉପରେ ଅଟନ୍ତି ଈଶ୍ୱର ॥ ୯୭
ସେ ବିଭୁ ଅମରଗଣକୁ । ଦେଇଣ ଏମନ୍ତ ଆଜ୍ଞାକୁ ॥ ୯୮
କହିଣ ବିବିଧ ବଚନ । ଭୂମିକି କରି ଆଶ୍ୱାସନ ॥ ୯୯
ଯେ ଅଟେ ଆପଣାର ସ୍ଥାନ । ତହିଁକି କଲେ ସେ ଗମନ ॥ ୧୦୦
୨୭ ଯେ ଯଦୁବଂଶରେ ରାଜନ । ନାମେ ବିଖ୍ୟାତ ଶୂରସେନ ॥ ୧୦୧
ମଥୁରାପୁରରେ ସେ ଥାଇ । ମାଥୁର ଶୂରସେନ ହୋଇ ॥ ୧୦୨
ଯେତେକ ଦେଶମାନ ଛନ୍ତି । ପୂର୍ବେ ତା' ଭୁଞ୍ଜିଲା ନୃପତି ॥ ୧୦୩
୨୮ ସେହିଦିନୁଁ ସେ ମଧୁପୁର । ସର୍ବ ଯାଦବ ନୃପଙ୍କର ॥ ୧୦୪
ପ୍ରଧାନ କଟକ ଅଟଇ । ଯହିଁରେ ସନ୍ନିହିତ ହୋଇ ॥ ୧୦୫
ସର୍ବଦା ରହିଛନ୍ତି ହରି । ଏମନ୍ତ ମହିମା ସେ ପୁରୀ ॥ ୧୦୬
୨୯ ସେ ମଧୁପୁରେ ଶୂରସୁତ । ଯେ ବସୁଦେବ ନାମେ ଖ୍ୟାତ ॥ ୧୦୭
କେହୁଣି ଦିନ ବିଭା ହୋଇ । ଦେବକୀ ନବବଧୂ ଯେହି ॥ ୧୦୮
ତା' ସଙ୍ଗେ କରନ୍ତେ ପ୍ରୟାଣ । ରଥକୁ କଲା ଆରୋହଣ ॥ ୧୦୯
୩୦ ଯେ କଂସ ଉଗ୍ରସେନସୁତ । ଭଗିନୀପ୍ରିୟ[୨] ବାଞ୍ଛି ଚିତ୍ତ ॥ ୧୧୦
ଅଶ୍ୱଙ୍କ ରଜ୍ଜୁକୁ ସେ କରେ । ଘେନିଲା ସାରଥିରୂପରେ ॥ ୧୧୧
ସୁବର୍ଣ୍ଣମୟ ବହୁ ଶତ । ରଥରେ ହୋଇଛି ଆବୃତ ॥ ୧୧୨
୩୧ | ସୁବର୍ଣ୍ଣମାଳାରେ ସଂଯୁତ । ଉତ୍ତମ ଗଜ ଚାରିଶତ ॥ ୧୧୩
୩୨ | ପନ୍ଦର ସହସ୍ର ତୁରଙ୍ଗ । ଅଠର ଶହ ଯେ ଶତାଙ୍ଗ[୩] ॥ ୧୧୪
ଯାନମାନଙ୍କେ ବସାଇଣ । ଯେ ସୁକୁମାରୀ ଦାସୀ ପୁଣ ॥ ୧୧୫
ଅଳଂକାରରେ ବିମଣ୍ଡିତ । ଝିଅକୁ ଦେଲା ଦୁଇଶତ ॥ ୧୧୬
ଦୁହିତାବତ୍ସଳ ଦେବକ । ଏ ରୂପେ ଦେଲା ଯଉତୁକ ॥ ୧୧୭
୩୩ ହେ ତାତ ! ବରବଧୂଙ୍କର । ପ୍ରୟାଣ-ଆରମ୍ଭେ ଅପାର ॥ ୧୧୮

---

୧. ଟାଣିବା ।　୨. ମଙ୍ଗଳ ।　୩. ଶତାଙ୍ଗ = ରଥ । (ଶତାଙ୍ଗଃ ସ୍ୟନ୍ଦନୋ ରଥଃ)

| | | | | |
|---|---|---|---|---|
| | ମଙ୍ଗଳଶଙ୍ଖ ତୂର୍ଯ୍ୟମାନ | । ମୃଦଙ୍ଗ ଦୁନ୍ଦୁଭି ଯେ ଆନ | ।। | ୧୧୯ |
| | ଏ ସର୍ବ ବାଦ୍ୟ ଏକାବେଳେ | । ବାଜିଲେ ଅତି କୁତୂହଳେ | ।। | ୧୨୦ |
| ୩୪ | ଅଶ୍ୱରଜ୍ଜୁକୁ କଂସ ଧରି | । ଚଳନ୍ତେ ତାକୁ ଡାକି କରି | ।। | ୧୨୧ |
| | ମାର୍ଗରେ ଅଶରୀର ବାଣୀ | । ଏମନ୍ତରୂପେ ତାକୁ ଭଣି | ।। | ୧୨୨ |
| | ରେ ମୂଢ଼ ! ରଥରେ ଯାହାକୁ | । ବସାଇ ନେଉଛୁ ଘରକୁ | ।। | ୧୨୩ |
| | ଅଷ୍ଟମ ଗର୍ଭ ଯେ ଏହାର | । ସେ ତୋତେ କରିବ ସଂହାର | ।। | ୧୨୪ |
| ୩୫ | ଏମନ୍ତ କହନ୍ତେ ସତ୍ୱର | । କୁଳପାଂସନ[୧] ଭୋଜଙ୍କର | ।। | ୧୨୫ |
| | ପାପିଷ୍ଠ ସ୍ୱଭାବେ ସେ ଖଳ | । ହସ୍ତେ ଘେନିଛି କରବାଳ | ।। | ୧୨୬ |
| | ଆରମ୍ଭି ଭଗିନୀବଧକୁ | । ଧଇଲା କେଶବନ୍ଧେ ତାକୁ | ।। | ୧୨୭ |
| ୩୬ | ନିନ୍ଦିତ ଯାର କର୍ମମାନ | । ଘାତକ ଯେ ଲଜ୍ଜାବିହୀନ | ।। | ୧୨୮ |
| | ଏମନ୍ତ ଯେ କଂସ ତାହାକୁ | । [୨]କରନ୍ତେ ପୁଣ ସାନ୍ତ୍ୱନାକୁ | ।। | ୧୨୯ |
| | ସେ ମହାଭାଗ ଶୂରସୁତ[୩] | । କହିଲେ ବଚନ ଏମନ୍ତ | ।। | ୧୩୦ |

ଶ୍ରୀବସୁଦେବ ଉବାଚ

| | | | | |
|---|---|---|---|---|
| ୩୭ | [୪]ଯାହା ଗୁଣକୁ ଶୂରମାନେ | । ପ୍ରଶଂସା କରନ୍ତି ଭୁବନେ | ।। | ୧୩୧ |
| | ଯେ ଭୋଜମାନଙ୍କର ଯଶ | । ଜଗତେ କରିଛ ପ୍ରକାଶ | ।। | ୧୩୨ |
| | ସେ ତୁମ୍ଭେ, ଯେ ଅଟେ କାମିନୀ | । ବିଶେଷେ ଅଟଇ ଭଗିନୀ[୫] | ।। | ୧୩୩ |
| | ତାହାକୁ ବିଭାଉତ୍ସବରେ[୬] | । ନାଶ[୭] କରିବ କି ପ୍ରକାରେ | ।। | ୧୩୪ |
| ୩୮ | ହେ ବୀର ! ଜନ୍ମବନ୍ତ ଯେତେ | । ତାହାଙ୍କ ଶରୀରସହିତେ | ।। | ୧୩୫ |
| | ମୃତ୍ୟୁ ଜନମଇଁ ସଂସାରେ | । ଆଜ ବା ବର୍ଷଶତାନ୍ତରେ | ।। | ୧୩୬ |
| | ନିଶ୍ଚୟେ ପ୍ରାଣିମାନଙ୍କର | । ମରଣ ହୁଅଇ ପ୍ରଚାର | ।। | ୧୩୭ |
| ୩୯ | ଦେହ ପଞ୍ଚତ୍ୱ ଯେବେ ପାଇ | । ଅବଶ କର୍ମବଶ ଦେହୀ | ।। | ୧୩୮ |
| | ଲଭିଣ ଆନ କଳେବର | । ତେଜଇ ଯେ ପୂର୍ବ ଶରୀର | ।। | ୧୩୯ |

---

୧. ପାଂଶନ, ପାଂଶୁଳ । (ପାପିଷ୍ଠଃ କୁଳପାଂଶନଃ)

୨. ବସୁଦେବଙ୍କ ଜନ୍ମକାଳରେ ଦେବତାମାନେ ହର୍ଷପୂର୍ବକ ଆନକ ଓ ଦୁନ୍ଦୁଭି ବଜାଇଥିଲେ । ତହିଁରୁ ସୂଚିତ ହୋଇଥିଲା ଯେ ନିକଟ ଭବିଷ୍ୟତରେ ଭଗବାନଙ୍କ ଅବତାର ଦ୍ୱାରା କଂସଦୌରାତ୍ମ୍ୟର ପ୍ରତିକାର ସଂଭବ ହେବ । ସେଥିପାଇଁ ବସୁଦେବ ସାମ ଓ ଭେଦ ମାର୍ଗ ଅବଲମ୍ବନପୂର୍ବକ କଂସକୁ ସଂବୋଧନ କରିଥିଲେ । ସାମ ପାଞ୍ଚପ୍ରକାର ଏବଂ ଭେଦ ଦୁଇପ୍ରକାର : -
ସମ୍ବନ୍ଧଲାଭୋପକୃତିର୍ହ୍ୟଭେଦୋ ଗୁଣକୀର୍ତ୍ତନମ୍ -
ସାମ ପଞ୍ଚବିଧଂ ଭେଦୋ ଦୃଷ୍ଟାଦୃଷ୍ଟଭୟଂ ବଚଃ ।।
ସମ୍ବନ୍ଧ ଯଶଲାଭ ଓ ଉପକାର ହେଉଛି ଅଭେଦ । ସାମ ପାଞ୍ଚ ପ୍ରକାର - ଭେଦ, ଦୃଷ୍ଟ, ଭୟ, ଅଦୃଷ୍ଟ-ଭୟ ଓ ବଚନ ।

୩. ଶୂରସୂତ = ବସୁଦେବ । ୪. ପଦ ୧୩୧ - ଗୁଣକୀର୍ତ୍ତନ । ୫. 'ଭଗିନୀ' ଶବ୍ଦ - ସମ୍ବନ୍ଧ ।

୬. ବିଭାଉତ୍ସବରେ - ସନ୍ତାନବୃଦ୍ଧି ଦ୍ୱାରା ଉପକାର ।

୭. ନାଶ କରିବ - ସ୍ତ୍ରୀବଧନିବୃତ୍ତି ଦ୍ୱାରା ଯଶୋଲାଭ ସୂଚିତ ହୁଏ ।

୪୦ ଚଳନ୍ତେ ଜନ ଧରଣୀରେ । ରହନ୍ତେ ଏକ ଚରଣରେ ।। ୧୪୦
ଏକ ଚରଣରେ ଯେସନ । ତଦନ୍ତେ କରଇ ଗମନ ।। ୧୪୧
ଜୋକ ଯେସନେ ଏକତୃଣ । ଲଭି ଆନକୁ ତେଜେ ପୁଣ ।। ୧୪୨
ଯେବଣ ପ୍ରାଣୀ କର୍ମଗତି । ଲଭିଥାଇ ସେ ଏହିମତି ।। ୧୪୩
୪୧ ଯେବଣ ରାଜାଦି ଶରୀର । ପ୍ରତ୍ୟକ୍ଷେ ଦେଖିଥାଇ ନର ।। ୧୪୪
ଯଉଁ ଇନ୍ଦ୍ରାଦି ଦେହ ପୁଣ । କରିଣଥାଇ ସେ ଶ୍ରବଣ ।। ୧୪୫
ତେଣେ ସଂସ୍କାର ରହେ ଯହିଁ । ସେ ମନେ ଚିନ୍ତନ୍ତେ ସେ ଦୁଇ ।। ୧୪୬
ସେ ବେନି ଶରୀରସମାନେ । ରୂପକୁ ଦେଖଇ ସ୍ୱପନେ ।। ୧୪୭
କ୍ଷଣଅନ୍ତରେ ମୁହିଁ ସେହି । ଏରୂପେ ଆତ୍ମାକୁ ମଣଇଁ ।। ୧୪୮
ଜାଗ୍ରତେ ଦେହବିସ୍ମରଣ । କରେ ସେ ଲୋକ ଯେହ୍ନେ ପୁଣ ।। ୧୪୯
ମନୋରଥରେ ଚିତ୍ତ ଯାର । ଅଭିନିବେଶ ନିରନ୍ତର ।। ୧୫୦
ଦେଖିଲା ଶୁଣିଲା ଶରୀର । ଚିନ୍ତା କରନ୍ତେ ସେହୁ ନର ।। ୧୫୧
ସେହି ମୁଁ ବୋଲି କ୍ଷଣାନ୍ତରେ । ଯେସନେ ମଣଇଁ ମନରେ ।। ୧୫୨
ପୂର୍ବଶରୀର ବିସ୍ମରଣ । ହୁଅଇ ସେ ଲୋକର ପୁଣ ।। ୧୫୩
ସେ ରୂପେ ନବ ଦେହ ପାଇ । ପାସୋରେ ପୂର୍ବ ଦେହ ଦେହୀ ।। ୧୫୪
୪୨ ଦେହ-ପଞ୍ଚତ୍ୱସମୟରେ । ମାୟାରେ ଯେ ପଞ୍ଚଭୂତରେ ।। ୧୫୫
ନିର୍ମିତ ବିବିଧ ଶରୀର । ତାହାଙ୍କ ମଧ୍ୟରେ ସେ ନର ।। ୧୫୬
ଫଳକୁ ଅଭିମୁଖ ହୋଇ । ଯେବଣ କର୍ମ ବର୍ତ୍ତିଥାଇ ।। ୧୫୭
ସେ କର୍ମେ ହୋଇଣ ପ୍ରେରିତ । ନାନାବିକାରରୂପୀ ଚିତ୍ତ ।। ୧୫୮
ଯଉଁ ଶରୀରକୁ ଧାବଇ । ଅଭିନିବେଶେ ତାହା ପାଇ ।। ୧୫୯
ମୁଁ ସେହି ବୋଲିଣ ମଣଇଁ । ସେ ଦେହସଙ୍ଗେ ଜାତ ହୋଇ ।। ୧୬୦
୪୩ ଜଳେ ତଇଳେ ଘୃତାଦିରେ । ଯେସନେ ପ୍ରତିବିମ୍ବଦ୍ୱାରେ ।। ୧୬୧
ଚନ୍ଦ୍ର ତପନ ଆଦିଙ୍କର । ଏ ଜ୍ୟୋତି ହୁଅଇ ପ୍ରଚାର ।। ୧୬୨
ପବନବେଗୁଁ ସେ ଯେମନ୍ତ । ହୁଅଇ କମ୍ପଆଦିଯୁତ ।। ୧୬୩
ସେରୂପେ ଅବିଦ୍ୟାରଚିତ । ଶରୀରମାନେ ଯେ ବିଦିତ ।। ୧୬୪
ଏ ଜୀବ ଅନୁରାଗଦ୍ୱାରେ । ପ୍ରବେଶ ହୁଅଇ ତହିଁରେ ।। ୧୬୫
ଅଭିନିବେଶ ତହିଁ ପାଇ । ମୁଁ ଏ ବୋଲିଣ ନ ଜାଣଇଁ ।। ୧୬୬
କୃଶତ୍ୱ ଆଦି ଧର୍ମ ଯେତେ । ଦେହରେ ପ୍ରସିଦ୍ଧ ଜଗତେ ।। ୧୬୭
ଆତ୍ମାରେ ପ୍ରତୀତ ସେ ହୋଇ । ଆତ୍ମାର ଧର୍ମ ପୁଣ ଯେହି ।। ୧୬୮
ପ୍ରେମ ଆସ୍ୱଦ ଆଦି ଭାବ । ଦେହେ ହୋଇ ସେ ଅନୁଭବ ।। ୧୬୯
ଗଜ[୧] ଶୂକର ଆଦିଙ୍କର । ଯେ ଅଛି ନାନା କଳେବର ।। ୧୭୦
ବିଶେଷ ଅଭାବରୁ ତହିଁ । ମୃତ୍ୟୁକୁ ପ୍ରତିକାର ନାହିଁ ।। ୧୭୧

୧. ରାଜ

୪୪ ସେ ଘେନି ଯେହୁଁ[୧] ଆପଣାର । ମଙ୍ଗଳ ବାଞ୍ଛା କରେ ନର ॥ ୧୭୨
କାହାରି ଦ୍ରୋହ ନ କରଇ । ଦ୍ରୋହକୁ କରେ ଲୋକ ଯେହି ॥ ୧୭୩
ତାହାର ଦ୍ରୋହ କଲା ଜନ । ସ୍ୱକାଶୁଁ ଭୟ ଉତପନ୍ନ ॥ ୧୭୪
ଯମସ୍ୱକାଶୁଁ ଭୟ ହୋଇ । [୨]ଦୁଇ ଲୋକରେ ସୁଖ ନାହିଁ ॥ ୧୭୫
୪୫ ଏ ବାଳା ତୋ' ଭଗିନୀ ସାନ । କାଷ୍ଠ ପିତୁଳିର[୩] ସମାନ ॥ ୧୭୬
କଲ୍ୟାଣବତୀ ଦୁଃଖୀ ଏହି । ଦୀନବତ୍ସଳ ଅଟୁ ତୁହି ॥ ୧୭୭
ଏହାକୁ କରିବାକୁ ହତ । ସମର୍ଥ ନୋହ କଦାଚିତ ॥ ୧୭୮

ଶ୍ରୀଶୁକ ଉବାଚ

୪୬ ହେ କୁରୁସୁତ ! ସେ ଦାରୁଣ । ଏ ରୂପେ ସାମଭେଦେ ପୁଣ ॥ ୧୭୯
ବହୁତ ପ୍ରବର୍ତ୍ତାନ୍ତେ ତହିଁ । କେବେହେଁ ନିବର୍ତ୍ତିଲା ନାହିଁ ॥ ୧୮୦
ରାକ୍ଷସମାନଙ୍କ ସଙ୍ଗତେ । ବଢ଼ିଛି ଯେଣୁ ଅବିରତେ ॥ ୧୮୧
୪୭ ଆନକଦୁନ୍ଦୁଭି ତାହାର । ଜାଣି ସେ ନିର୍ବନ୍ଧପ୍ରକାର ॥ ୧୮୨
ଯେ କାଳ ମିଳିଲା ସେଠାର । ତା' କରିବାକୁ ପ୍ରତିକାର[୪] ॥ ୧୮୩
ନିଜ ମନରେ ବିଚାରିଣ । ଏ କଥା ମୂଳ କଲେ ପୁଣ ॥ ୧୮୪
୪୮ ଯେ ଲୋକ ବୁଦ୍ଧିମନ୍ତ ହୋଇ । ଯେତେ ତା' ବୁଦ୍ଧିବଳ ଥାଇ ॥ ୧୮୫
ତେଣେ ମୃତ୍ୟୁକୁ ପ୍ରତିକାର । ନିଶ୍ଚୟେ କରଇ ସେ ନର ॥ ୧୮୬
ନ ନିବର୍ତ୍ତଇ ଯେବେ ସେହି । ପ୍ରାଣିର ଅପରାଧ ନାହିଁ ॥ ୧୮୭
୪୯ | ମୃତ୍ୟୁସ୍ୱରୂପ କଂସ ଏହି । ଏହାକୁ ପୁତ୍ରମାନ ଦେଇ ॥ ୧୮୮
୫୦ | ଏ ଯେ ଦେବକୀ ଅଟେ ଦୀନ । ଏହାକୁ କରିବି ମୋଚନ ॥ ୧୮୯
ଯେବେ ମୋହର ପୁତ୍ର ହେବେ । ଯେ ହେବ ପୁଣ ହେଉ ତେବେ ॥ ୧୯୦
ଯେବେ ମଧ୍ୟରେ ଏ[୫] ମରଇ । ତେବେ ଅନ୍ୟାୟ କିଛି ନାହିଁ ॥ ୧୯୧
ଯେବେ ମୋହର ହେବେ ସୁତ । ଏ କଂସ ନୋହିଥିବ ହତ ॥ ୧୯୨
ମୋ' ପୁତ୍ରସ୍ୱକାଶୁଁ ଏହାର । ତେବେ ତ ହୋଇବ ସଂହାର ॥ ୧୯୩
ଏମନ୍ତ ରୂପେ ବିପରୀତ । ଚରିତ ନୋହିବ କି ଜାତ ॥ ୧୯୪
ଏହାର ଯେ ଅଷ୍ଟମ ଗର୍ଭ । ସେ ତୋତେ ବିନାଶ କରିବ ॥ ୧୯୫
ଏ ରୂପେ ଧାତାଗତି ଯେହି । ସେ ତ ଅନ୍ୟଥା କେବେ ନୋହି ॥ ୧୯୬
ମୋ' ପୁତ୍ରସ୍ୱକାଶୁଁ ଏହାର । ଯେ ମୃତ୍ୟୁ ହୋଇବ ଉପର[୬] ॥ ୧୯୭
ଯେବେ ଦେବକୀର ମରଣୁଁ । ସେ ନିବର୍ତ୍ତିବ ସେ କାରଣୁ ॥ ୧୯୮
ପୁତ୍ରକୁ ଦେବି ଏ ବିଚାରେ । ଦେବକୀ ଜୀଇଲେ ଏଠାରେ ॥ ୧୯୯

---

୧. ଯହୁଁ, ସେହୁ । ୨. ଏହାଦ୍ୱାରା ଭେଦ ଦର୍ଶିତ ହେଲା ।
୩. ଏହାଦ୍ୱାରା 'ଅଭେଦ' ନାମକ ସାମ ଦର୍ଶିତ ହେଲା (ପୁତ୍ରିକା)
୪. ତାକୁ ବଞ୍ଚାଇବା । ୫. କଂସ । ୬. ଅପାର ।

କାଳ-ଅନ୍ତରେ ସେ ଚରିତ । ନିଶ୍ଚେ ହୋଇବ ଉପସ୍ଥିତ ॥ ୨୦୦
୫୧ ବନରେ ବୃକ୍ଷଙ୍କୁ ଦହନ । କରନ୍ତେ ଯେହ୍ନେ ହୁତାଶନ ॥ ୨୦୧
ନିକଟ ବୃକ୍ଷମାନ ଛାଡ଼ି । ଦୂର ବୃକ୍ଷଙ୍କୁ ଯାଇ ପୋଡ଼ି ॥ ୨୦୨
ପ୍ରାଣୀ-ଅଦୃଷ୍ଟ ବିନୁ ତହିଁ । ଆନ କାରଣ କିଛି ନାହିଁ ॥ ୨୦୩
ସେ ରୂପେ ପ୍ରାଣିମାନଙ୍କର । ଯେ ଯୋଗ-ବିୟୋଗ ଦେହର ॥ ୨୦୪
ତହିଁକି କାରଣ ଯେ ଅଟେ । ସେ କଥା ତର୍କକୁ ନ ଘଟେ ॥ ୨୦୫
୫୨ ଏ ରୂପେ ବୁଦ୍ଧିବଳ ଯେତେ । ବିଚାର କରି ଚିତ୍ତେ ତେତେ ॥ ୨୦୬
ପ୍ରଥମେ ଶୂରର କୁମର । ବହୁତ କରିଣ ସତ୍‌କାର ॥ ୨୦୭
ସେ କଂସ ଅଟେ ପାପମତି । ତାହାକୁ ପୂଜିଲା ଝଟତି ॥ ୨୦୮
୫୩ ବିକଚ ଅଟେ ଯେ ନଳିନ । ତା' ପ୍ରାଏ ଦିଶୁଛି ବଦନ ॥ ୨୦୯
ମାନସ ହେଉଛି ଦୁଃଖିତ । ତେଣେ ହସନ୍ତେ ଶୂରସୁତ ॥ ୨୧୦
ସେ କ୍ରୂର ନିର୍ଲଜ୍ଜ କଂସକୁ । କହିଲେ ପୁଣ ବଚନକୁ ॥ ୨୧୧

ଶ୍ରୀବସୁଦେବ ଉବାଚ

୫୪ ହେ ସୌମ୍ୟ ! ଅଶରୀର ବାଣୀ । ଯାହା ତୁମ୍ଭଙ୍କୁ ଅଛି ଭଣି ॥ ୨୧୨
ଏହା ସ୍ୱକାଶୁଁ ଯଉଁ ଭୟ । ତୋହର ନୋହିବ ନିଶ୍ଚୟ ॥ ୨୧୩
[1]ଏହାର ଯେତେ ହେବେ ସୁତ । ତୋତେ କରିବି ସମର୍ପିତ ॥ ୨୧୪

ଶ୍ରୀଶୁକ ଉବାଚ

୫୫ ଯେ ବସୁଦେବ ବାକ୍ୟସାର । କଂସ ତା' କରିଛି ଗୋଚର ॥ ୨୧୫
ସୁହୃଦ[2] ବଧୁଁ ନିବର୍ତ୍ତିଲା । ବସୁଦେବ ହିଁ ତୋଷ ହେଲା ॥ ୨୧୬
ପ୍ରଶଂସା କରିଣ କଂସକୁ । ଗଲା ଆପଣା ମନ୍ଦିରକୁ ॥ ୨୧୭
୫୬ ଏଥୁଁ ଅନ୍ତରେ କାଳ କେତେ । ଗମନ କରନ୍ତେ ତଦନ୍ତେ ॥ ୨୧୮
ହୁଅନ୍ତେ ପ୍ରସବସମୟ । ଦେବକୀ ସର୍ବଦେବମୟ ॥ ୨୧୯
ଏକ ଦୁହିତା ଅଷ୍ଟସୁତ । ପ୍ରତି ବରଷେ କଲା ଜାତ ॥ ୨୨୦
୫୭ ପ୍ରଥମ ସୁତ କୀର୍ତ୍ତିମନ୍ତ । ତାହାକୁ ଘେନି ଶୂରସୁତ ॥ ୨୨୧
କଷ୍ଟରେ କଲା ସମର୍ପଣ । ମିଥ୍ୟାରେ ବିହ୍ୱଳ ହୋଇଣ ॥ ୨୨୨
୫୮ ସାଧୁ ଅଟନ୍ତି ଯଉଁ ନର । କି ବା ଦୁଃସହ ତାହାଙ୍କର ॥ ୨୨୩
ପଣ୍ଡିତ ଜନମାନେ ଯେହି । ତାଙ୍କର ଅପେକ୍ଷିତ କେହି ॥ ୨୨୪
ଅସାଧୁ ଲୋକ ଯେ ସର୍ବଥା । ତାର ଅକାର୍ଯ୍ୟ କଉଁ କଥା ॥ ୨୨୫

୧. ''ଅଷ୍ଟମୋ ହନ୍ତା'' ଇତ୍ୟୁକ୍ତେ ଅନ୍ୟୋଽନ୍ୟାପେକ୍ଷୟା ସର୍ବେଽପି ଅଷ୍ଟମା ଭବେୟୁଃ ଇତି ଉଦ୍‌ଭୂତମ୍ । ତେନ ଅସ୍ୟାଃ ପୁତ୍ରାନ୍ ସମର୍ପୟିଷ୍ୟେ । (ସ୍ୱାମୀ)

୨. ସୁହୃଦ = ଏଠାରେ ଭଗିନୀ ('ସ୍ୱସୁଃ' ପାଠାନ୍ତରମ୍) ।

ଯାହାଙ୍କ ଚିତ୍ତେ ଛନ୍ତି ହରି । ଦୁସ୍ତ୍ୟଜ କେବା ତାହାଙ୍କରି ॥ ୨୨୬
୫୯ ଯେ ଶୂରସୁତ ବସୁଦେବ । ତାହାର ମମତା-ଅଭାବ ॥ ୨୨୭
ସତ୍ୟରେ ବ୍ୟବସ୍ଥାକୁ ଦେଖି । କଂସ ସନ୍ତୋଷ ହୋଇ ସୁଖୀ ॥ ୨୨୮
ଉଚ୍ଚେ ହସନ୍ତେ ହେ ରାଜନ୍[୧] । ବୋଇଲା ଏମନ୍ତ ବଚନ ॥ ୨୨୯
୬୦ ଲେଉଟି ଯାଉ ଯେ ତନୟ । ଏଥିରୁ ନାହିଁ ମୋର ଭୟ ॥ ୨୩୦
ହୋଇବ ତୁମ୍ଭ ଦୁହିଁଙ୍କର । ଅଷ୍ଟମ ଗର୍ଭ ଯେ କୁମର ॥ ୨୩୧
ତା'ଠାରୁ ମୋର ମୃତ୍ୟୁ ଜାତ । ଏ କଥା ଅଟଇ ନିୟତ ॥ ୨୩୨
୬୧ ସେ କଥା ବସୁଦେବ ଶୁଣି । ପୁତ୍ରକୁ ଘେନିଗଲେ ପୁଣି ॥ ୨୩୩
ଅସନ୍ତ ଅଟଇ ଯେ କଂସ । ମନକୁ କରିନାହିଁ ବଶ ॥ ୨୩୪
ଶୁଣିଣ ତାହାର ବଚନ । ଆନନ୍ଦ ନ ଲଭିଲେ ମନ ॥ ୨୩୫
୬୨ ନନ୍ଦାଦି ବ୍ରଜେ ଯେ ଗୋପାଳ । ଯେତେ ତାହାଙ୍କ ସ୍ତିରୀକୁଳ ॥ ୨୩୬
୬୪ ବସୁଦେବଙ୍କୁ ଆଦି ହୋଇ । ଯେତେକ ବୃଷ୍ଣି ଛନ୍ତି ରହି ॥ ୨୩୭
ଦେବକୀ ଆଦି ହୋଇ କରି । ଯେତେ ଅଛନ୍ତି ଯଦୁନାରୀ ॥ ୨୩୮
ବେନି ବଂଶର ଏ ସମସ୍ତ । ଦେବତାପ୍ରାୟ ହେ ଭାରତ[୨] ॥ ୨୩୯
ଯେ ଜ୍ଞାତି ବନ୍ଧୁ ମିତ୍ର କେହି । କଂସଆଶ୍ରୟେ ଛନ୍ତି ରହି ॥ ୨୪୦
ଭୂମିର ଭାରପ୍ରାୟ ହୋଇ । ଯେତେ ଦାନବେ ଛନ୍ତି ରହି ॥ ୨୪୧
ସେମାନଙ୍କର ଯେ ମରଣ । ତହିଁକି ଉଦ୍ୟମ ଯେ ପୁଣ ॥ ୨୪୨
ନାରଦ ଋଷି ଏ କଥାକୁ । ଆସିଣ କହିଲେ କଂସକୁ ॥ ୨୪୩
୬୫ ଋଷିଙ୍କ ନିର୍ଗମରେ କଂସ । ଯଦୁଙ୍କୁ ମଣିଣ ତ୍ରିଦଶ ॥ ୨୪୪
୬୬ ବିଷ୍ଣୁ ମୋ' ବଧନିମିତ୍ତରେ । ଜନ୍ମିବେ ଦେବକୀ-ଉଦରେ ॥ ୨୪୫
ଚିତ୍ତରେ ଘେନିଣ ଏ ଭାବ । ଯେ ବା ଦେବକୀ ବସୁଦେବ ॥ ୨୪୬
ନିଗ୍ରହ କରି ତାଙ୍କୁ ଘରେ । ରଖିଲା ଶୃଙ୍ଖଳାବନ୍ଧରେ ॥ ୨୪୭
ତାଙ୍କର ଯେତେ ଯେତେ ସୁତ । ଜନ୍ମନ୍ତି ତାହାଙ୍କୁ ତୁରିତ ॥ ୨୪୮
ଏ ବିଷ୍ଣୁ ବୋଲି ଆଶଙ୍କାରେ । ସମସ୍ତ ମାଇଲା କୋପରେ ॥ ୨୪୯
୬୭ ଯେ ମାତା ପିତା ଭ୍ରାତା ପୁତ୍ର । ଯେ ବା ସୁହୃଦ ଜନ ମିତ୍ର ॥ ୨୫୦
ତାହାଙ୍କୁ କରନ୍ତି ନିଧନ । ଭୂମିରେ ଯେ ଲୋଭୀ ରାଜନ ॥ ୨୫୧
ଯେବଣ ନୃପେ ନିଜ ପ୍ରାଣ । କେବଳ କରନ୍ତି ପୋଷଣ ॥ ୨୫୨
୬୮ ମୁଁ କାଳନେମି ମହାସୁର । ପୂର୍ବ କାଳରେ ଚକ୍ରଧର ॥ ୨୫୩
ମାଇଲେ ମୋତେ ହେଲି ଜାତ । ଆମ୍ଭାକୁ ମଣନ୍ତେ ଏମନ୍ତ ॥ ୨୫୪
ଯଦୁମାନଙ୍କ ସହିତରେ । ବିରୋଧ କଲା ନିରନ୍ତରେ ॥ ୨୫୫
୬୯ ଯେ ଉଗ୍ରସେନ ନିଜ ବାପ । ଅନ୍ଧକ-ଯଦୁ-ଭୋଜାଧିପ ॥ ୨୫୬
ତାହାଙ୍କୁ କରିଣ ବନ୍ଧନ । ଯେ ଶୂରସେନ ଦେଶମାନ ॥ ୨୫୭

---

୧. ରାଜନ = ଶୁକଙ୍କର ପରୀକ୍ଷିତଙ୍କୁ 'ହେ ରାଜନ୍' ସଂବୋଧନ ।
୨. ଭାରତ = ଶୁକଙ୍କର ପରୀକ୍ଷିତଙ୍କୁ 'ହେ ଭାରତ' ସଂବୋଧନ ।

ଭୋଗ କଲା ତା' ସେ ସକଳ । ସ୍ୱୟଂ ଅଟଇ ମହାବଳ ।। ୨୫୮
ଯେ ଜନେ ବିଦ୍ୟାରେ ନିପୁଣ । ସେମାନେ ପଢ଼ନ୍ତି ପୁରାଣ ।। ୨୫୯
ଯେ କୃଷ୍ଣଭକ୍ତିରେ ଲାଳସ । ଜାଣନ୍ତି ନାହିଁ ବିଦ୍ୟାରସ ।। ୨୬୦
ତାହାଙ୍କ ବୁଝିବା ନିମିତ୍ତେ । ଦଶମ ସ୍କନ୍ଧ ଭାଷାଗୀତେ ।। ୨୬୧
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ଏଣେ ।। ୨୬୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣାବତାରୋପକ୍ରମୋ
ନାମ ପ୍ରଥମୋଽଧ୍ୟାୟଃ ।।

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ କଂସଘାତାୟ ଦେବକ୍ୟା ଗର୍ଭଗୋ ହରିଃ ।
ବ୍ରହ୍ମାଦିଭିଃ ସ୍ତୁତଃ ସା ଚ ସାନ୍ତ୍ୱିତେତି ନିରୂପ୍ୟତେ ।। ୧

ଶ୍ରୀଶୁକ ଉବାଚ

୧| ପ୍ରଳମ୍ବ ବକ ଯେ ଚାଣୂର । ଯେ ତୃଣାବର୍ତ୍ତ ଅଘାସୁର ।। ୧
୨| ମୁଷ୍ଟିକ ଅରିଷ୍ଟକୁ ମିଶି । ଦ୍ୱିବିଦ ପୂତନା ରାକ୍ଷସୀ ।। ୨
କେଶୀ, ଧେନୁକ ଯେ ଦଇତ । ଏହାଙ୍କ ସଙ୍ଗେ ହୋଇ ଯୁତ ।। ୩
ବାଣ ନରକ ଆଦି ଆନ । ଯେ ଅବା ଅସୁରରାଜନ ।। ୪
ତାହାଙ୍କୁ ଘେନିଣ ସଙ୍ଗତ । ସେ କଂସ ନୃପ ବଳବନ୍ତ ।। ୫
କଦନ କଲା ଯଦୁଙ୍କର । ଆଶ୍ରୟ ଜରାସନ୍ଧ ତାର ।। ୬
୩| ପୀଡ଼ାକୁ ପାଇଣ କଂସରେ । ସେ ଯଦୁମାନେ ଦୁଃଖଭରେ ।। ୭
୪| କେକୟ ଯେ କୁରୁ, ପଞ୍ଚାଳ । ଶାଲ୍ୱ ବିଦର୍ଭ ଯେ କୋଶଳ ।। ୮
ନିଷଧ ବିଦେହ ଯେ ଦେଶ । ତହିଁରେ ହୋଇଲେ ପ୍ରବେଶ ।। ୯
ଥୋକାଏ ଜ୍ଞାତି ଅନୁସରି । [1]ତାକୁ ରହିଲେ ମଧୁପୁରୀ ।। ୧୦
୫ ଛ' ପୁତ୍ର ଦେବକୀର ହତ । କରନ୍ତେ ଉଗ୍ରସେନସୁତ ।। ୧୧
ଗର୍ଭ ହୋଇଲା ଯେ ସପ୍ତମ । ସେ ପୁଣ ଅଟେ ବିଷ୍ଣୁଧାମ[2] ।। ୧୨
ଅନନ୍ତ ନାମେ ବିଜ୍ଞଜନ । ଯାହାକୁ କରନ୍ତି କଥନ ।। ୧୩
ଆନନ୍ଦମୟ ଅବତାର । ଏ ଘେନି କରି ଦେବକୀର ।। ୧୪
ହରଷ ହୋଇଲା ବହୁତ । ଯେ ମରିଥିଲେ ପୂର୍ବ ସୁତ ।। ୧୫
ତାହାଙ୍କ ସମାନ ଦୃଷ୍ଟିରେ । ଶୋକ ଜନମିଲା ନିର୍ଭରେ ।। ୧୬

---

୧. ତାକୁ = କଂସକୁ । ୨. ଧାମ = କଳା ।

୬ ଯେବଣ ଯଦୁମାନଙ୍କର । ଆପଣେ ଅଟନ୍ତି ଈଶ୍ୱର ।। ୧୭
ତାଙ୍କର କଂସଠାରୁ ଭୟ । ଜାଣି ବିଶ୍ୱାତ୍ମା ଅପ୍ରମେୟ ।। ୧୮
ଯୋଗମାୟାକୁ ଏ ପ୍ରକାରେ । ଆଜ୍ଞାକୁ ଦେଲେ ସେ କାଳରେ ।। ୧୯
୭ ହେ ଦେବି ! ଭଦ୍ରେ ! ଗୋପଗାଈ । ମଣ୍ଡିତ ବ୍ରଜ ଯେ ଅଟଇ ।। ୨୦
ତହିଁକି କର ତୁ ଗମନ । ନନ୍ଦଗୋକୁଳେ ବର୍ତ୍ତମାନ ।। ୨୧
ବସୁଦେବର ଭାର୍ଯ୍ୟା ଅଛି । ରୋହିଣୀ ନାମ ଯେ ବହିଛି ।। ୨୨
ସେ ବସୁଦେବର ଯେ ଆନ । ଅଛନ୍ତି ଅବା ଭାର୍ଯ୍ୟାମାନ ।। ୨୩
କଂସସ୍ୱକାଶୁଁ ଭୟ ପାଇ । ଅଲକ୍ଷ୍ୟ ସ୍ଥାନେ ଛନ୍ତି ରହି ।। ୨୪
୮ ଶେଷ ନାମରେ ଧାମ ମୋର । ଯେ ଅଛି ଦେବକୀଜଠର ।। ୨୫
ସେ ଗର୍ଭ ଓଟାରିଣ ନିଅ । ରୋହିଣୀଗର୍ଭରେ ପୁରାଅ ।। ୨୬
୯ ହେ ଭଦ୍ରେ ! ଏଥୁ ଅନନ୍ତରେ । ମୁହିଁ ନିଜ ଅଂଶଭାଗରେ[୧] ।। ୨୭
ପୁତ୍ରଭାବକୁ ଦେବକୀର । ପାଇବି, ତୁ ପୁଣି ନନ୍ଦର ।। ୨୮
ଯଶୋଦା ନାମେ ପତ୍ନୀ ଯେହି । ତା'ଠାରେ ଜନ୍ମ ହେବୁ ଯାଇ ।। ୨୯
୧୦ ପୁତ୍ରାଦି ସର୍ବ କାମମାନ । ବାଞ୍ଛା କରନ୍ତି ଯଉଁ ଜନ ।। ୩୦
ଶ୍ରେଷ୍ଠ ଈଶ୍ୱରୀ ତୁ ତାଙ୍କର । ଦେଉ ସକଳ କାମବର ।। ୩୧
ନାନା[୨] ଉପହାର ବଳିରେ । ପୂଜା କରିବେ ତୋତେ ନରେ ।। ୩୨
୧୧ ତୋହର ସ୍ଥାନମାନ ନରେ । ଖ୍ୟାତ କରିବେ ଧରଣୀରେ ।। ୩୩
୧୨ ଦୁର୍ଗା ଭଦ୍ରକାଳୀ ବିଜୟା । ବୈଷ୍ଣବୀ ନାରାୟଣୀ ମାୟା ।। ୩୪
କୁମୁଦା ଚଣ୍ଡିକା କନ୍ୟକା । ମାଧବୀ ଶାରଦା[୩] ଅମ୍ବିକା ।। ୩୫
କୃଷ୍ଣା ଈଶାନୀ ଏ ପ୍ରକାରେ । ନାମ କରିବେ ତୋର ନରେ ।। ୩୬
୧୩ ଗର୍ଭସଂକରଷଣୁଁ ପୁଣ । ତାଙ୍କୁ ବୋଲିବେ ସଂକର୍ଷଣ ।। ୩୭
ଲୋକର ଉପୁଜାନ୍ତେ ପ୍ରୀତି । କରିବେ ରାମ ବୋଲି ଖ୍ୟାତି ।। ୩୮
ବଳ ଅଧିକ ଅଟେ ଯେଣୁ । ବୋଲିବେ ବଳଭଦ୍ର ତେଣୁ ।। ୩୯
୧୪ ଏମନ୍ତ ରୂପେ ଭଗବାନ । ଆଜ୍ଞା ଦିଅନ୍ତେ ସେ ବଚନ ।। ୪୦

---

୧. ଅଂଶଭାଗରେ - ବ୍ରହ୍ମାଦିସ୍ତମ୍ବପର୍ଯ୍ୟନ୍ତ ସକଳ ଜୀବଙ୍କୁ ଯେ ଅଂଶ କି ଶକ୍ତିମାନଙ୍କ ଦ୍ୱାରା ଭଜେ, ଅର୍ଥାତ୍ ସର୍ବଜୀବଙ୍କୁ ଅଧିଷ୍ଠାନ କରେ ସେ ଅଂଶଭାଗ । କିମ୍ବା ଅଂଶ (ଜ୍ଞାନ-ଐଶ୍ୱର୍ଯ୍ୟ-ବଳ ଆଦି) ଦ୍ୱାରା ଯେ ନିଜ ଜନଙ୍କୁ ଭାଜନ (ଯୋଜନ) କରେ; କିଂବା ଅଂଶ (ପୁରୁଷରୂପ) ଦ୍ୱାରା ଯେ ମାୟାର ଭଜନ (ଈକ୍ଷଣ) କରେ; କିମ୍ବା ଅଂଶ (ମାୟା) ଦ୍ୱାରା ଯାହାର ଗୁଣାବତାର ଆଦି ଭାଗ (ଭେଦ) ବିଦ୍ୟମାନ; କିମ୍ବା ଅଂଶ (ମତ୍ସ୍ୟକୂର୍ମାଦି ରୂପ) ଯାହାର ସାକ୍ଷାଦ୍ ସ୍ୱରୂପ ନ ହେଲେ ମଧ୍ୟ ଭାଗ (ଭଜନୀୟ); କିମ୍ବା ଅଂଶ (ଜ୍ଞାନବଳାଦି) ଦ୍ୱାରା ଭକ୍ତମାନଙ୍କ ଠାରେ ଯାହାର ଭାଗ (ଭଜନ) (ଅନୁବର୍ତ୍ତନ) ପରିଦୃଷ୍ଟ; ସେ ଅଂଶଭାଗ । ଏଣୁ ସର୍ବଥା ଅଂଶଭାଗ = ପରିପୂର୍ଣ୍ଣ ରୂପ (ସ୍ୱାମୀ) ।

୨. ଧୂପ । ୩. ସାରଦା ।

ଅମ୍ବିକା ସ୍ୱୀକାର କରିଣ । ହରିଙ୍କି କରି ପ୍ରଦକ୍ଷିଣ ।।
ତଦ୍‌କ୍ଷଣେ ଧରଣୀକି ଗଲେ । ସେ କଥା ସେହି ରୂପେ କଲେ ।।
୧୫ ଦୁର୍ଗା ଦେବକୀଗର୍ଭ ନେଇ । ରଖନ୍ତେ ରୋହିଣୀର ଠାଇଁ ।।
ଗର୍ଭ ଭାଜିଲା ଏ ପ୍ରକାରେ । ଶବଦ କଲେ ପୁରନରେ ।।
୧୬ ଯେ ବିଶ୍ୱଆତ୍ମା ଭଗବାନ । ଭକ୍ତ-ଅଭୟ କରେ ଦାନ ।।
ସେ ବସୁଦେବର ମାନସ । ଅଂଶଭାଗେ[1] ହେଲେ ପ୍ରବେଶ ।।
୧୭ ବହନ୍ତେ ବିଷ୍ଣୁତେଜ ସେହି । ରବିର ପ୍ରାୟ ଦୀପ୍ତ ହୋଇ ।।
ନ ଭରସନ୍ତି ତାକୁ ନର । ଦୁଃସହ ହେଲା ପ୍ରାଣିଙ୍କର ।।
୧୮ ଜଗତମଙ୍ଗଳ ଯେ ଖ୍ୟାତ । ଯାହାର ଅଂଶ[2] ନୋହେ ଚ୍ୟୁତ ।।
ଯେ ଆତ୍ମା ଅଟେ ସକଳର । ଆପଣାଠାରେ ସ୍ଥିତି ଯାର ।।
ଉତ୍ତମ କରି ଶୂରସୁତ । ତାହା କରନ୍ତେ ସମର୍ପିତ ।।
ଦେବକୀ ତାହା ତଦନ୍ତରେ । ଧଇଲା ଆପଣା ମନରେ ।।
ଚନ୍ଦ୍ରକୁ ସଂଧ୍ୟାସମୟରେ । ଯେସନେ ପୂର୍ବଦିଗ ଧରେ ।।
୧୯ ସକଳଜଗତନିବାସ । ରୂପରେ ଯେ ବିଷ୍ଣୁପ୍ରକାଶ ।।
ତାହାଙ୍କ ନିବାସ ହୋଇଲା । ଦେବକୀ ତେଡ଼େ ନ ଶୋହିଲା ।।
ଯେଣୁ ସେ ଭୋଜରାଜାଘରେ । ରହିଛି ବନ୍ଦୀସ୍ୱରୂପରେ ।।
ଘଟ ଆଦିରେ ରୁଦ୍ଧ ହୋଇ । ଯେସନେ ଦୀପ ନ ଶୋହଇ ।।
ଜ୍ଞାନବଂଚକ ଜନେ ସତୀ । ନ ଶୋହେ ଯେହ୍ନେ ସରସ୍ୱତୀ ।।
୨୦ ବିଷ୍ଣୁ ଅଛନ୍ତି ଯା' ଗର୍ଭରେ । ପ୍ରଭାରେ ଗୃହ ଦୀପ୍ତି କରେ ।।
ବିଶଦ ଅଟେ ଯାର ହାସ । ସେ ଦେବକୀକି ଦେଖି କଂସ ।।
ବୋଇଲା ଏମନ୍ତ ବଚନ । ମୋ' ପ୍ରାଣହର ଭଗବାନ ।।
ନିଶ୍ଚୟେ ରହିଲା ଗର୍ଭରେ । ଯେଣୁ ଏ ପୂର୍ବ ସମୟରେ ।।
ହୋଇଣ ନ ଥିଲା ତେମନ୍ତ । ଏବେ ଏ ଦିଶୁଛି ଯେମନ୍ତ ।।
୨୧ ସେ ବିଷୟରେ ବେଗ ହୋଇ । କି ଉପାୟ ମୁଁ କରିବଇଁ ।।
ଦେବତାମାନଙ୍କ ବିଚାର । ବିକ୍ରମ ନ ନାଶେ କି ମୋର ।।
ଯେ ସ୍ତିରୀ ଭଗିନୀ ଅଟଇ । ପୁଣି ଗର୍ଭିଣୀ ଅଛି ହୋଇ ।।
ତା' ବଧ ଅନୁକାଳେ ନାଶ । କରେ ଆୟୁଷ ଶିରୀ ଯଶ ।।
୨୨ | ଅତ୍ୟନ୍ତ କ୍ରୂର ଭାବ ବହି । ଯେବଣ ଲୋକ ବର୍ତ୍ତିଥାଇ ।।
୨୩ | ଜୀଇଥିଲେହେଁ ସେହୁ[3] ଜନ । ନିଶ୍ଚୟେ ହୋଇଛି ନିଧନ ।।
ନିନ୍ଦା କରନ୍ତି ତାକୁ ଜନେ । ନିଶ୍ଚୟେ ଶରୀରନିଧନେ ।।

---

୧. ଅଂଶଭାଗେ = ପୂର୍ଣ୍ଣରୂପେ । (ସ୍ୱାମୀ)　୨. ଅଂଶ = ଐଶ୍ୱର୍ଯ୍ୟାଦି ।　୩. ସେ ଏ ।

ପାପୀ ଲୋକର ଯେ ନରକ । ତହିଁକି ଗମଇଁ ସେ ଲୋକ ॥ ୭୧
ପ୍ରଭୁ ଅଟଇ ସେହୁ ସ୍ୱୟେଂ । ଏମନ୍ତ ବିଚାରି ହୃଦୟେ ॥ ୭୨
ବାଳକଜନମ ହେବାର । ପ୍ରତୀକ୍ଷା କରିଣ ମନର ॥ ୭୩
ଘୋର ଭାବରୁ ନିବର୍ତ୍ତିଲା । ବିଷ୍ଣୁରେ ବୈରିପଣ କଲା ॥ ୭୪
୨୪ ବସନ୍ତେ କରନ୍ତେ ଶୟନ । ଥାଆନ୍ତେ କରନ୍ତେ ଭୋଜନ ॥ ୭୫
ଭ୍ରମନ୍ତେ ପିବନ୍ତେ[1] ସଂତତ । ବିଷ୍ଣୁଙ୍କୁ ଚିନ୍ତନ୍ତେ ସ୍ୱଚିତ୍ତ ॥ ୭୬
ତନ୍ମୟ କରିଣ ଜଗତ । ଦେଖିଲା ଉଗ୍ରସେନସୁତ ॥ ୭୭
୨୫ ନାରଦ ଆଦି ମୁନିମାନେ । ଯେ ଭୃତ୍ୟଯୁତ ଦେବମାନେ ॥ ୭୮
ତାଙ୍କ ସହିତେ ବ୍ରହ୍ମା ହର । ପ୍ରବେଶ ହୋଇଣ ସେଠାର ॥ ୭୯
ଯେ କାମପ୍ରଦ ରମାପତି । ତାଙ୍କୁ ବଚନେ କଲେ ସ୍ତୁତି ॥ ୮୦
୨୬ ସତ୍ୟସଂକଳ୍ପ ଯେ ଈଶ୍ୱର । ପ୍ରାପ୍ତିସାଧନ ସତ୍ୟ ଯାର ॥ ୮୧
ଭବିଷ୍ୟ ବର୍ତ୍ତମାନ ଭୂତ । ଏ ତିନି କାଳରେ ଯେ ସତ୍ୟ[2] ॥ ୮୨
ଯେ ମହାଭୂତଙ୍କ କାରଣ । ତହିଁରେ ସ୍ଥିତ ଯେ ପ୍ରମାଣ ॥ ୮୩
ସେ ପଞ୍ଚ ମହାଭୂତନାଶେ । ଯେ ସତ୍ୟ ରୂପରେ ପ୍ରକାଶେ ॥ ୮୪
[3]ସୂନୃତ ବାଣୀ ଅଟେ ରତ । ସମଦର୍ଶନ ସତ୍ୟ ଖ୍ୟାତ ॥ ୮୫
ଏହାଙ୍କ ପ୍ରବର୍ତ୍ତକ ହୋଇ । ସତ୍ୟସ୍ୱରୂପ ଯେ ଅଟଇ ॥ ୮୬
ସେ ତୁମ୍ଭେ, ତୁମ୍ଭଙ୍କୁ ଶରଣ । ପ୍ରପନ୍ନ ହେଲୁଁ ଆମ୍ଭେ ପୁଣ ॥ ୮୭
୨୭ ଏକା ପ୍ରକୃତି ଯା' ଆଶ୍ରୟ । ଯା' ଫଳ ସୁଖ ଦୁଃଖ ଦ୍ୱୟ ॥ ୮୮
ଯା' ମୂଳ ତ୍ରିଗୁଣ ବିଦିତ । ଯା' ରସ ଚତୁର୍ବର୍ଗ ଖ୍ୟାତ ॥ ୮୯
ଇନ୍ଦ୍ରିୟପଞ୍ଚକ ଯାହାର । ଅଟନ୍ତି ଜ୍ଞାନକୁ ପ୍ରକାର ॥ ୯୦
କ୍ଷୁଧା ପିପାସା ମୋହ ଶୋକ । ଜରା ମରଣ ଏ ଷଟକ ॥ ୯୧
ଯାହାର ସ୍ୱଭାବ[4] ବିଦିତ । ଯାର ବଲ୍‌କଳ ଧାତୁ ସପ୍ତ[5] ॥ ୯୨
ପୃଥିବୀ ଆଦି ଭୂତ ଆର । ଯେ ମନ ବୁଦ୍ଧି ଅହଂକାର ॥ ୯୩
ଏ ଅଷ୍ଟ ବିଟପ ଯାହାର । ଯା' ଛିଦ୍ର ଅଟେ ନବ ଦ୍ୱାର[6] ॥ ୯୪
ଯେ ପ୍ରାଣ, ଅପାନ, ସମାନ । ଯେ ପୁଣ ଉଦାନ ଯେ ବ୍ୟାନ ॥ ୯୫
କୃକଳ, ନାଗ, ଦେବଦତ୍ତ । ଯେ କୂର୍ମ ଧନଂଜୟ ଖ୍ୟାତ ॥ ୯୬
ଏ ଦଶ ପ୍ରାଣ ଯାହାଠାରେ । ଅଛନ୍ତି ପତ୍ରସ୍ୱରୂପରେ ॥ ୯୭
ଜୀବାତ୍ମା ପରମାତ୍ମା-ଦୁଇ । ପକ୍ଷୀରୂପରେ ଛନ୍ତି ଯହିଁ ॥ ୯୮

---

୧. ଭୂମିରେ । ୨. ତଦ୍ ସତ୍ୟମିତ୍ୟାଚକ୍ଷତେ । (ଶ୍ରୁତିଃ)
୩. ରତଂ ଚ ସୂନୃତା ବାଣୀ ସତ୍ୟଂ ଚ ସମଦର୍ଶନମ୍ । ୪. ସ୍ୱଭାବ = ଆତ୍ମା ।
୫. ସପ୍ତ ଧାତୁ = ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ଶୁକ୍ର = ସପ୍ତତ୍ୱକ୍ ।
୬. ନବ ଦ୍ୱାର = ଦୁଇ ଚକ୍ଷୁ, ଦୁଇ କର୍ଣ୍ଣ, ଦୁଇ ନାସା, ମୁଖ, ପାୟୁ ଓ ଉପସ୍ଥ ।

ଏ ରୂପେ ହୋଇଛି ପ୍ରତ୍ୟକ୍ଷ । ଏହୁ ପ୍ରପଞ୍ଚ ଆଦିବୃକ୍ଷ ।। ୯୯
୨୮ କାର୍ଯ୍ୟ ଅଟେ ଏ ଆଦିତରୁ । ଏହାର ଜନ୍ମ ତୁମ୍ଭ ଠାରୁ ।। ୧୦୦
ପ୍ରଳୟେ ପଶେ ତୁମ୍ଭ ଠାର । ତୁମ୍ଭେ ସେ ପାଳକ ଏହାର ।। ୧୦୧
ତୁମ୍ଭର ମାୟାରେ ଆଚ୍ଛନ୍ନ । ଯେବଣ ଲୋକଙ୍କର ମନ ।। ୧୦୨
ସେମାନେ ନାନା ପରକାରେ । ତୁମ୍ଭଙ୍କୁ ଦେଖନ୍ତି ସଂସାରେ ।। ୧୦୩
ଯେ ପୁଣ ପଣ୍ଡିତ ଅଟନ୍ତି । ସେ ନାନାରୂପେ ନ ଦେଖନ୍ତି ।। ୧୦୪
୨୯ ଜ୍ଞାନସ୍ୱରୂପ ଆତ୍ମା ଯେହି । ନାନାରୂପକୁ ଧର ତହିଁ ।। ୧୦୫
ସତ୍ତ୍ୱଗୁଣରେ ଉତପନ୍ନ । ଅଟନ୍ତି ସେହୁ ରୂପମାନ ।। ୧୦୬
ସାଧୁ ଲୋକଙ୍କୁ ସେ ପାଳନ୍ତି । ଖଳଙ୍କୁ ପୁଣ ବିନାଶନ୍ତି ।। ୧୦୭
୩୦ ଅମଳ[1] ସତ୍ତ୍ୱଧାମ ତୁହି । ହେ ଅମ୍ବୁଜାକ୍ଷ ତୋହ ଠାଇଁ ।। ୧୦୮
ସମାଧି-ଆବେଶ ଚିତ୍ତରେ । ବିବେକବନ୍ତ କେହି ନରେ ।। ୧୦୯
ମହତଜନେ ସଂପାଦିତ । ତୁମ୍ଭର ଚରଣବୋଇତ ।। ୧୧୦
ତେଣେ ଏ ସଂସାରସାଗର । କରନ୍ତି ବତ୍ସପଦାକାର ।। ୧୧୧
୩୧ ହେ ସ୍ୱପ୍ରକାଶ ! ଭୟଙ୍କର । ଦୁସ୍ତର ଯେ ଭବସାଗର ।। ୧୧୨
ତାକୁ ସେମାନେ ସ୍ୱୟେଂ ତରି । ସର୍ବଭୂତରେ ଦୟା କରି ।। ୧୧୩
ଚରଣପଦ୍ମ-ନାବ ତୋର । ରଖି ଏ ସଂସାରମଧ୍ୟର ।। ୧୧୪
ଗଲେ ସେମାନେ, ତୁମ୍ଭେ ପୁଣ । ଭକ୍ତପାଳକ ଏ ପ୍ରମାଣ ।। ୧୧୫
୩୨ ହେ ପଦ୍ମନେତ୍ର ! ଯେହୁ ଆନେ । ଆତ୍ମାକୁ ମୁକ୍ତ ମଣି ମନେ ।। ୧୧୬
ଭାବ ନ ଥାନ୍ତେ ତୁମ୍ଭଠାର । ଅଶୁଦ୍ଧ ବୁଦ୍ଧି ତାହାଙ୍କର ।। ୧୧୭
ବହୁତ ଜନ୍ମେ ତପ ସାଧି । ଲଭି ସଦ୍‌କୁଳଜନ୍ମ ଆଦି ।। ୧୧୮
ବିଘ୍ନସ୍ୱକାଶେ ପରାଭବ । ଲଭନ୍ତି ସେ ପୁଣ ମାନବ ।। ୧୧୯
ଯେଣୁ ସେ ତୁମ୍ଭର ଚରଣ । କରି ନାହାନ୍ତି ଆଦରଣ ।। ୧୨୦
୩୩ ଆହେ ମାଧବ ! ଯେ ତୁମ୍ଭର । ସେବକେ ସେ କେହୁଣିଠାର ।। ୧୨୧
ଅଭକ୍ତ ଲୋକ ପ୍ରାୟ ହୋଇ । ମାର୍ଗରୁ ସ୍ଖଳନ୍ତି ସେ ନାହିଁ ।। ୧୨୨
ତୁମ୍ଭର ଠାରେ ପ୍ରିୟ ଭାବ । ଯେଣୁ ବହନ୍ତି ସେ ମାନବ ।। ୧୨୩
ତୁମ୍ଭେ ତାହାଙ୍କୁ ରଖ ଯେଣୁ । ନିର୍ଭୟ ହୋଇ କରି ତେଣୁ ।। ୧୨୪
ଯେ ବିଘ୍ନସୈନ୍ୟଅଧିପତି । ତାହାଙ୍କ ମୁଣ୍ଡେ ସେ ଚରନ୍ତି ।। ୧୨୫
୩୪ ବିଶୁଦ୍ଧ ସତ୍ତ୍ୱ ଗୁଣମୟ । କରେ ଯେ ପ୍ରାଣିଙ୍କର ଶ୍ରେୟ ।। ୧୨୬
ପାଳନା ଅର୍ଥେ ପ୍ରାଣିଙ୍କର । ଏମନ୍ତ ବପୁ ତୁମ୍ଭେ ଧର ।। ୧୨୭
ବେଦ-ଅଧ୍ୟୟନ କର୍ମରେ । ତପ-ସମାଧି-ଯୋଗଦ୍ୱାରେ ।। ୧୨୮
ଯେବଣ ବପୁରେ ତୁମ୍ଭର । ପୂଜାକୁ ଆଚରଇ ନର ।। ୧୨୯

---

୧. ଅଖିଳ ।

୩୫ ହେ ଧାତ ! ଶୁଦ୍ଧ ସତ୍ତ୍ୱମୟ । ଯେବେ ନୋହିବ ଏହୁ କାୟ ।। ୧୩୦
ବିଶିଷ୍ଟ ଜ୍ଞାନ ତେବେ ନୋହି । [1]ଅଜ୍ଞାନଭେଦ ଯେ ବାରଇ ।। ୧୩୧
ତାହାର ସମ୍ବନ୍ଧୀ ହୋଇଣ । ପ୍ରକାଶେ ବୁଦ୍ଧି ଆଦି ଗୁଣ ।। ୧୩୨
ବୁଦ୍ଧି ଆଦିରେ ଯେହୁ ଥାଇ । ପ୍ରମାଣକର୍ତ୍ତା ଯେ ଅଟଇ ।। ୧୩୩
ତାର ସ୍ୱକାଶେ ବାହ୍ୟ ଗୁଣ । ପ୍ରକାଶ ହୁଅଇ ପ୍ରମାଣ ।। ୧୩୪
ଏମନ୍ତ ରୂପେ ଅନୁମାନ । ମାତ୍ର ତୁମ୍ଭଙ୍କୁ କରେ ଜନ ।। ୧୩୫
ସାକ୍ଷାତକାର କରିବାରେ । ଶକ୍ତ ନୁହଇ ଏ ପ୍ରକାରେ ।। ୧୩୬
୩୬ ମନ ବଚନେ ମାର୍ଗ ଯାର । ହୋଏ ଅନୁମାନଗୋଚର ।। ୧୩୭
ହେ ଦେବ ! ଏ ରୂପରେ ତୁହି । ଥାଉ ତାହାର ସାକ୍ଷୀ ହୋଇ ।। ୧୩୮
ତତ୍ତ୍ୱ ଅଟଇ ଯେ ସାକ୍ଷୀର । ସେ ମନ-ବାକ୍ୟ ଅଗୋଚର ।। ୧୩୯
ଗୁଣ-ଜନମ-କର୍ମେ ତୋର । ନାମ-ରୂପକୁ ବିଜ୍ଞ ନର ।। ୧୪୦
କରି ନ ପାରେ ନିରୂପଣ । ଏମନ୍ତ ହୋଇଲେହେଁ ପୁଣ ।। ୧୪୧
ଉପାସନାଦି ଦ୍ୱାରେ ତୋତେ । ସାକ୍ଷାତ କରନ୍ତି ଭଗତେ ।। ୧୪୨
୩୭ ତୋହର ନାମରୂପମାନେ । ମଙ୍ଗଳ ଅଟନ୍ତି ଭୁବନେ ।। ୧୪୩
ଗୁଣନ୍ତେ ଶୁଣନ୍ତେ ତା' ଜନ । ସ୍ମରନ୍ତେ କରନ୍ତେ ଚିନ୍ତନ ।। ୧୪୪
ଯେ ପୁଣ ଅଟେ ଆନ ଜନ । ତାହାଙ୍କୁ କରାନ୍ତେ ସ୍ମରଣ ।। ୧୪୫
କର୍ମମାନଙ୍କେ ନିରନ୍ତର । ଚରଣପଦ୍ମଯୁଗେ ତୋର ।। ୧୪୬
ଚିତ୍ତକୁ ଆବେଶ କରଇ । ସଂସାରଯୋଗ୍ୟ ସେ ନୁହଇ ।। ୧୪୭
୩୮ ହେ ହରି ତୁମ୍ଭ ପାଦ ପାଇ । ଏ ମହୀ ବିଖ୍ୟାତ ଅଟଇ ।। ୧୪୮
ତୁ ଯେ ଈଶ୍ୱର, ଜନ୍ମେ ତୋର । ନାଶ ହୋଇଲା ଏହା' ଭାର ।। ୧୪୯
ଏକଥା ଅଟଇ ଶୋଭନ । ଯେ ତୋର ଚାରୁ ପଦମାନ ।। ୧୫୦
ତେଣେ ଅଙ୍କିତ ହେବ ମହୀ । ଆମ୍ଭେ ଦେଖିବୁଁ ପୁଣ ତାହି ।। ୧୫୧
ଦୟା କରିବ ଯାକୁ ତୁମ୍ଭେ । ଦେଖିବୁଁ ସେ ସ୍ୱର୍ଗକୁ ଆମ୍ଭେ ।। ୧୫୨
୩୯ ହେ ପ୍ରଭୁ ନିତ୍ୟମୁକ୍ତ ତୁହି । ତୋହର ପୁଣ ଭବ ନାହିଁ ।। ୧୫୩
କ୍ରୀଡ଼ା ବିହୁନେ ଆନ କେହି । ତୋର ଜନ୍ମକୁ ହେତୁ ନାହିଁ ।। ୧୫୪
ଏହା କରୁଛୁଁ ଅନୁମାନ । ଜୀବ-ଆତ୍ମାରେ ଯେ ଉତ୍‌ପନ୍ନ ।। ୧୫୫
ଜନମ ପାଳନ ସଂହାର । ସେମାନେ ନାହାନ୍ତି ତୋହର[2] ।। ୧୫୬
ତୋର ବିଷୟେ ଆତ୍ମଗତ । ଅବିଦ୍ୟା କରଇ ତା' ଜାତ ।। ୧୫୭
୪୦ ମତ୍ସ୍ୟ କଚ୍ଛପ ହୟାନନ[3] । କୋଳ[4] ନୃସିଂହ ହଂସ ଆନ ।। ୧୫୮
ଯେ ବା ରାଜନ୍ୟ ବିପ୍ର ସୁର । ତହିଁରେ ଧରି ଅବତାର ।। ୧୫୯

---

୧. ଅର୍ଥାତ୍ ଅଜ୍ଞାନ ଓ ତତ୍‌କୃତ ଭେଦକୁ ଯେ ନିବାରଣ କରେ ।
୨. ତାହାର । ୩. ଅଶ୍ୱମୁଖ (ହୟଗ୍ରୀବ) । ୪. ବରାହ ।

| | | | |
|---|---|---|---|
| | ତୁମ୍ଭେ ଆମ୍ଭର ତ୍ରିଭୁବନ । | ପାଳନ କର ଅନୁଦିନ | ।। ୧୬୦ |
| | ହେ ପ୍ରଭୁ ଏବେ ସେ ପ୍ରକାର । | ଧରଣୀଭାରକୁ ସଂହର | ।। ୧୬୧ |
| | ହେ ଯଦୁମାନଙ୍କର ବର । | ତୁମ୍ଭଙ୍କୁ ବନ୍ଦନ ଆମ୍ଭର | ।। ୧୬୨ |
| ୪୧ | ଆମ୍ଭର ମଙ୍ଗଳନିମିତ୍ତ । | ପରମ ପୁରୁଷ ସାକ୍ଷାତ | ।। ୧୬୩ |
| | ଅଂଶେ[୧] ମିଳିଲେ ତୋ' ଉଦର । | ହେ ମାତ ! ଭାଗ୍ୟ ଏ ତୋହର[୨] | ।। ୧୬୪ |
| | ନିଜ ମରଣ ବାଞ୍ଛେ ଚିତ୍ତ । | ଯେ ଭୋଜପତି ଅବିରତ | ।। ୧୬୫ |
| | ତା'ଠାରୁ ଭୟ ନୋହୁ ତୋର । | ସମସ୍ତ ଯଦୁମାନଙ୍କର | ।। ୧୬୬ |
| | ପରିପାଳନ ଯେ କରିବ । | ଏ ରୂପେ ତୋର ପୁତ୍ର ହେବ | ।। ୧୬୭ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୪୨ | ଯାହାକୁ ସମ ନାହିଁ ଆର । | ଏମନ୍ତ ରୂପ ଅଟେ ଯାର | ।। ୧୬୮ |
| | ସେ ପୁରୁଷକୁ ଏ ପ୍ରକାରେ । | ସ୍ତୁତି କରିଣ ଯଥାର୍ଥରେ | ।। ୧୬୯ |
| | ବ୍ରହ୍ମାରୁଦ୍ରଙ୍କୁ ଆଗ କରି । | ଦେବେ ଗମିଲେ ନିଜ ପୁରୀ | ।। ୧୭୦ |
| | ପୁରାଣମାନଙ୍କ ମଧ୍ୟର । | ଶ୍ରୀଭାଗବତ ଅଟେ ସାର | ।। ୧୭୧ |
| | ଦଶମ ସ୍କନ୍ଧ ସାର ତହିଁ । | ଗୀତପ୍ରବନ୍ଧେ ତାହା ଗାଇ | ।। ୧୭୨ |
| | ହେଲେ ତରିବ ଭବସିନ୍ଧୁ । | ପତିତ ଦ୍ୱିଜ ଦୀନବନ୍ଧୁ | ।। ୧୭୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଗର୍ଭଗତବିଷ୍ଣୋ-
ର୍ବ୍ରହ୍ମାଦିକୃତସ୍ତୁତିର୍ନାମ ଦ୍ୱିତୀୟୋଽଧ୍ୟାୟଃ ।।

## ତୃତୀୟ ଅଧ୍ୟାୟ

ତୃତୀୟେ ନିଜରୂପେଣ ସଂଭୂତସ୍ତୁ ହରିଃ ସ୍ୱୟମ୍ ।
ପିତୃଭ୍ୟାଂ ସଂସ୍ତୁତୋ ନୀତଃ ପିତ୍ରା ଭୀତେନ ଗୋକୁଳମ୍ ।। ୧

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | ଯେ ସର୍ବଗୁଣେ ଉପଗତ । | ଯେ ଅଟେ ପରମ ଶୋଭିତ | ।। ୧ |
| | ସେ କାଳ ଏଥୁଁ ଅନନ୍ତରେ । | ପ୍ରବେଶ ରୋହିଣୀ ଯହିଁରେ | ।। ୨ |
| | ଅଶ୍ୱିନୀ ଆଦି ତାରାମାନେ । | ଗ୍ରହ ନକ୍ଷତ୍ର ଯେବା ଆନେ | ।। ୩ |
| | ସେମାନେ ଶାନ୍ତରୂପ ହୋଇ । | ପ୍ରକାଶ ହୋଇଛନ୍ତି ଯହିଁ | ।। ୪ |
| ୨ | ଯଉଁ ସମୟରେ ପ୍ରସନ୍ନ । | ହେଲେ ସକଳ ଦିଗମାନ | ।। ୫ |
| | ନିର୍ମଳ ତାରାଗଣମାନେ । | ଉଦୟ ହୋଇଲେ ଗଗନେ | ।। ୬ |
| | ପୁର ଆକର ଗ୍ରାମମାନ । | ବ୍ରଜ ଏ ରୂପେ ଯେତେ ସ୍ଥାନ | ।। ୭ |

୧. ପ୍ରତୀତ୍ୟଭିପ୍ରାୟରେ ଉକ୍ତ ହୋଇଅଛି ।　୨. ଆମ୍ଭର ।

ମଙ୍ଗଳବହୁଳ ଏ ଯହିଁ । ଶୋଭା ଦିଶିଲା ସେହୁ ମହୀ ॥
୩ ନଦୀମାନଙ୍କରେ ପ୍ରସନ୍ନ । ହୋଇଲେ ଯେବେ ଜଳମାନ ॥
ପଦ୍ମମାନଙ୍କେ ଯେ ସମୟେ । ହ୍ରଦେ ସୁନ୍ଦର ଅତିଶୟେ ॥
ପକ୍ଷୀ ଭ୍ରମରମାନଙ୍କର । ଉତ୍ତମ ନିନାଦ ଯହିଁର ॥
ଏମନ୍ତ ସ୍ତବକେ ଶୋଭନ । ଦିଶିଲେ ଯହିଁ ବନମାନ ॥
୪ ଯାର ସ୍ପରଶୁଁ ସୁଖ ହୋଏ । ଯେ ଶୁଚି ପୁଣ୍ୟଗନ୍ଧ ବହେ ॥
ବହିଲା ସେହୁ ସମୀରଣ । ବିପ୍ରଙ୍କ ଅଗ୍ନିମାନେ ପୁଣ ॥
ଯଉଁ ସମୟେ ଶାନ୍ତ ହେଲେ । ଉତ୍ତମ ହୋଇଣ ଜଳିଲେ ॥
୫ ସେ ଜନ୍ମସମୟେ ବିଷ୍ଣୁର । ଅସୁରଦ୍ରୋହୀ ସାଧୁଙ୍କର ॥
ମାନସେ ପ୍ରସନ୍ନ ହୋଇଲେ । ସ୍ୱର୍ଗରେ ଦୁନ୍ଦୁଭି ବାଜିଲେ ॥
୬ କିନ୍ନରେ ଗନ୍ଧର୍ବସହିତ । ଗାୟନ କଲେ ଦିବ୍ୟ ଗୀତ ॥
ସିଦ୍ଧ ଚାରଣେ ସ୍ତୁତି କଲେ । ଅପ୍ସରାମାନଙ୍କର ତୁଲେ ॥
ହରଷ ହୋଇ ବିଦ୍ୟାଧରେ । ନୃତ୍ୟକୁ କଲେ ସେ କାଳରେ ॥
୭ ମୁନି ଦେବତା ହରଷେଣ । କୁସୁମ କଲେ ବରିଷଣ ॥
ଗର୍ଜନ୍ତେ ସିନ୍ଧୁମାନେ ପୁଣ । ତାଙ୍କୁ ଅନୁଗତ ହୋଇଣ ॥
ଅଳପ ଅଳପ ନାଦରେ । ଗର୍ଜନ କଲେ ଜଳଧରେ ॥
୮ ରଜନୀଅର୍ଦ୍ଧସମୟରେ । ଅତି ନିବିଡ଼ ଅନ୍ଧକାରେ ॥
ଜନ୍ମ ହୁଅନ୍ତେ ଜନାର୍ଦ୍ଦନ । ହୋଇଲା ଏ ଉତ୍ସବମାନ ॥
ଜଗତେ ଦେବତାରୂପରେ । ଯେ ଖ୍ୟାତ ସେ ଦେବକୀଠାରେ ॥
ସମସ୍ତ ପ୍ରାଣୀମାନଙ୍କର । ଗୁହା ଆଶ୍ରୟ ଅଟେ ଯାର ॥
ନିଜ ଈଶ୍ୱରରୂପ ଧରି । ପ୍ରକାଶ ହେଲେ ଦେବ ହରି ॥
ଯେସନେ ପୂର୍ବଦିଗେ ଶଶୀ । ସମ୍ପୂର୍ଣ୍ଣ ହୋଇଣ ପ୍ରକାଶି ॥
୯ ଅଦ୍ଭୁତ ଅଟେ ସେ ବାଳକ । ଯା' ଚକ୍ଷୁ ଅମ୍ବୁଜପ୍ରାଏକ ॥
୧୦ ପ୍ରକାଶ ଚାରିଭୁଜ ଯହିଁ । ଶଙ୍ଖ ଗଦାକୁ ଆଦି ହୋଇ ॥
ଆୟୁଧମାନେ ଯେ ଇତର । ଉଦ୍ୟତ ଯହିଁ ନିରନ୍ତର ॥
ଶ୍ରୀବତ୍ସ-ଚିହ୍ନରେ ଲକ୍ଷିତ । ଗଳାରେ କୌସ୍ତୁଭ ଶୋଭିତ ॥
ପୀତ ଅଟଇ ଯା' ବସନ । ଯେ ସାନ୍ଦ୍ର ଜଳଦଶୋଭନ ॥
ଯା' ମୂଲ୍ୟ ଅଟଇ ବହୁତ । ସେ ବଇଦୂର୍ଯ୍ୟମଣିଯୁତ ॥
ଯେ ବେନି କୁଣ୍ଡଳ କିରୀଟ । ତାହାଙ୍କ ପ୍ରଭା ଯେ ପ୍ରକଟ ॥
ତେଣେ ହୋଇଛି ଆଲିଙ୍ଗିତ । ଯାହାର କେଶ ଅପ୍ରମିତ ॥
ଉଦ୍ଦାମ ଅଙ୍ଗଦ କଙ୍କଣ । କାଞ୍ଚୀ ଆଦି ଯେ ବିଭୂଷଣ ॥
ତେଣେ ଯେ ଅଟେ ବିରାଜିତ । ତାଙ୍କୁ ଦେଖିଲେ ଶୂରସୁତ ॥
୧୧ ହରିଙ୍କି ସୁତ କରି ଦେଖି । ବିସ୍ମୟେ ପ୍ରଫୁଲ୍ଲ ଯା' ଆଖି ॥

କୃଷ୍ଣର ଯଉଁ ଅବତାର । ସେ ଉତ୍ସବରୁ ମନେ ଯାର ।। ୪୧
ବିସ୍ମୟ ହୋଇଲା ସମ୍ଭବ । ସେ କାଳରେ ସେ ବସୁଦେବ ।। ୪୨
ତକ୍ଷଣେ ସ୍ନାନ ଆରମ୍ଭିଣ । ଅୟୁତସଂଖ୍ୟ ଧେନୁ ପୁଣ ।। ୪୩
ବ୍ରାହ୍ମଣମାନଙ୍କୁ ମାନସେ । ପ୍ରଦାନ କଲେକ ହରଷେ ।। ୪୪
୧୨ ହେ ନୃପ ! ଏଥୁଁ ଅନନ୍ତର । ଯେ ଅଟେ ସୂତିକାମନ୍ଦିର ।। ୪୫
ନିଜ କିରଣେ ପ୍ରଦୀପିତ । କରୁ ଅଛନ୍ତି ଯଉଁ ସୁତ ।। ୪୬
ପରମ ପୁରୁଷରୂପରେ । ତାହାଙ୍କୁ ବିଚାରି ମନରେ ।। ୪୭
ନିଜ ଅଙ୍ଗକୁ ନମ୍ରକଲେ । କୃତଧୀ[1] କୃତାଞ୍ଜଳି ହେଲେ ।। ୪୮
ପୁତ୍ରର ପ୍ରଭାବ ଜାଣନ୍ତି । ନିର୍ଭୟ ହୋଇ କଲେ ସ୍ତୁତି ।। ୪୯

ଶ୍ରୀବସୁଦେବ ଉବାଚ

୧୩ ଯେ ଅଟେ ପ୍ରକୃତିରୁ ଆନ । ପୁରୁଷରୂପୀ ଭଗବାନ ।। ୫୦
ସେ ତୁମ୍ଭେ ଏମନ୍ତ ରୂପରେ । ବିଦିତ ହେଲ ସାକ୍ଷାତରେ ।। ୫୧
ଯାର କେବଳ ଅନୁଭବ । ଆନନ୍ଦସ୍ୱରୂପ ବିଭବ ।। ୫୨
ଯେ ସର୍ବପ୍ରାଣୀଙ୍କର ବୁଦ୍ଧି । ତା' ସାକ୍ଷୀରୂପେ ତୁମ୍ଭ ସିଦ୍ଧି ।। ୫୩
୧୪ ସେ ତୁମ୍ଭେ ଅଟ ଏ ରୂପରେ । ବିଶ୍ୱସର୍ଜନ ସମୟରେ ।। ୫୪
ତ୍ରିଗୁଣରୂପ ଏ ଜଗତ । କରି ପ୍ରକୃତିରେ ନିର୍ମିତ ।। ୫୫
ସେ ବିଶ୍ୱନିର୍ମାଣଉତ୍ତାରେ । ପ୍ରବେଶ ନୋହିଛ ତହିଁରେ ।। ୫୬
[2]ପ୍ରବେଶ ହେଲା ପ୍ରାୟ ହୋଇ । ଲକ୍ଷିତ ପୁଣ ହୁଅ ତହିଁ ।। ୫୭
ଦେବକୀଗର୍ଭେ ଯେ ପ୍ରବେଶ । କେ ଏହା କରିବ ବିଶ୍ୱାସ ।। ୫୮
୧୫ ଯେହ୍ନେ ମହତ ଆଦି ଭାବେ । ବିକାରରହିତ ସ୍ୱଭାବେ ।। ୫୯
୧୬ ଭିନ୍ନ ଭାବକୁ ଭଜିଥିଲେ । କାର୍ଯ୍ୟକୁ ଅସମର୍ଥ ହେଲେ ।। ୬୦
ଷୋଡ଼ଶ ବିକାର ସହିତ । ହୋଇଣ ସେ ପୁଣି ଯେମନ୍ତ ।। ୬୧
ସମସ୍ତେ ହୋଇ ଏକସ୍ଥାନ । ବ୍ରହ୍ମାଣ୍ଡ କରନ୍ତି ରଚନ ।। ୬୨
ସେହି ବ୍ରହ୍ମାଣ୍ଡକୁ ଭିଆଇ । ପ୍ରବେଶ ହେଲା ପ୍ରାଏ ତହିଁ ।। ୬୩
କେବଳ ପ୍ରତ୍ୟେ ସେ ହୁଅନ୍ତି । ପ୍ରବେଶ ହୋଇ ସେ ନାହାନ୍ତି ।। ୬୪
ଏ ବିଶ୍ୱଜନମ ପୂର୍ବରୁ । କାରଣରୂପରେ ଥିବାରୁ ।। ୬୫
ଏ ଘେନି ମଧ୍ୟରେ କାର୍ଯ୍ୟର । ପ୍ରବେଶ ନ ଘଟେ ତାଙ୍କର ।। ୬୬
୧୭ ତୁମ୍ଭେହେଁ ଅଟ ଏହି ରୂପ । ରୂପାଦି ଜ୍ଞାନରେ ସ୍ୱରୂପ ।। ୬୭
ଜ୍ଞାତ ଯାଙ୍କର ଅନୁମାନେ । ଏମନ୍ତ ଯେ ଇନ୍ଦ୍ରିୟମାନେ ।। ୬୮
ତେଣେ ଯେ ବିଷୟ ବିଜ୍ଞାତ । ତହିଁରେ ହୋଇଲେ ହେଁ ସ୍ଥିତ ।। ୬୯
ସେ ବିଷୟଙ୍କର ସଙ୍ଗତ । ବିଜ୍ଞାତ ନୁହ କଦାଚିତ ।। ୭୦

---

୧. ଶୁଦ୍ଧବୁଦ୍ଧି । ୨. "ତତ୍ ସୃଷ୍ଟ୍ୱା ତଦେବାନୁପ୍ରାବିଶତ୍" (ଶ୍ରୁତିଃ)

ଲୋଚନ ଘେନନ୍ତେ ରୂପକୁ । ଯେସନେ ନ ଜାଣେ ରସକୁ ॥ ୭୧
ଯାହାର ଏତେ ତେତେ ହୋଇ । ଶରୀରପ୍ରମାଣ ଅଟଇ ॥ ୭୨
ବସାରେ ପ୍ରବେଶ ହେବାର । ଘଟେ ସେ ଜନ୍ତୁମାନଙ୍କର ॥ ୭୩
ତୁମ୍ଭର ନାହିଁ ଆବରଣ । ଅପରିଛିନ୍ନ ଭାବୁଁ ପୁଣ ॥ ୭୪
ବାହ୍ୟ ଅନ୍ତରେ ଭେଦ ନାହିଁ । ପ୍ରବେଶ ସମ୍ଭବିବ କାହିଁ[୧] ॥ ୭୫
ସର୍ବସ୍ୱରୂପ ତୁମ୍ଭେ ପୁଣ । ନାହିଁ ତୁମ୍ଭର ଆବରଣ ॥ ୭୬
ଆତ୍ମା ସକଳ ଲୋକଙ୍କର । ଏ ଘେନି ନାହିଁ ସେ ତୁମ୍ଭର ॥ ୭୭
ଏକେ ଯେ ଆବୃତ ଅଟଇ । ଆନର ଆତ୍ମା ସେ ନୁହଇ ॥ ୭୮
ଆତ୍ମସ୍ୱରୂପୀ ଅଟ ଯେଣୁ । ସର୍ବବ୍ୟାପକ ଅଟ ତେଣୁ ॥ ୭୯
ସର୍ବବ୍ୟାପକ ଯେହୁ ଅଟେ । ତାର କି ଆବରଣ ଘଟେ ॥ ୮୦
ଯେ ପୁଣ ପରମାର୍ଥରୂପୀ । ତାକୁ ଅସତ୍ୟ ନିକି ବ୍ୟାପି ॥ ୮୧
ଏଣୁ ଅନ୍ତର୍ଯ୍ୟାମୀ ଭାବରେ । ପ୍ରବେଶ ଘଟେ ତୁମ୍ଭଠାରେ ॥ ୮୨
ଯେ ମୁଖ୍ୟ ପ୍ରବେଶ ସେ ନାହିଁ । ଗର୍ଭପ୍ରବେଶ ହେବ କାହିଁ ॥ ୮୩
୧୮ ଯେ ଦୃଶ୍ୟ ଗୁଣ ଏ ଆତ୍ମାର । ସେ ଦେହ ଆଦିରେ ଯେ ନର ॥ ୮୪
ଆତ୍ମାଭିନ୍ନରେ[୨] ସତ୍ୟଜ୍ଞାନ । କରଇ ଅବୁଧ ସେ ଜନ ॥ ୮୫
ଏ ସବୁ କରନ୍ତେ ବିଚାର । ଆରମ୍ଭ ବିନୁ ବଚନର ॥ ୮୬
ଯେଣୁ ଏ ନୁହଇ ସଙ୍ଗତ । ସେ ଘେନି ହେଲେହେଁ ବାଧିତ ॥ ୮୭
ବସ୍ତୁବୁଦ୍ଧିରେ ଯେ ସ୍ୱୀକାର । କରଇ, ଅବୁଧ ସେ ନର ॥ ୮୮
୧୯ ତୋ'ଠାରୁ ବୋଲନ୍ତି ବିଶ୍ୱର । ଜନମ ପାଳନ ସଂହାର ॥ ୮୯
ପ୍ରଭୁ ତୁ ନୋହୁ କ୍ରିୟାଧାରୀ । ତେଣୁ ନିର୍ଗୁଣ ଅବିକାରୀ ॥ ୯୦
ପରମ ବ୍ରହ୍ମ ତୁ ଈଶ୍ୱର । ଏ ନୋହେ ବିରୁଦ୍ଧ ତୋ'ଠାର ॥ ୯୧
ଗୁଣଆଶ୍ରୟଭାବୁଁ ତୋର । କର୍ତ୍ତୃତ୍ୱ ଆଦି ଜଗତର ॥ ୯୨
ତୋ'ଠାରେ ଉପଚାର କରେ । କର୍ତ୍ତାଦି ଗୁଣମାନଙ୍କରେ ॥ ୯୩
ଯେହ୍ନେ ସେବକ କରିବାର । ନୃପରେ କରି ଉପଚାର ॥ ୯୪
୨୦ ତ୍ରିଲୋକରକ୍ଷାନିମିତ୍ତରେ । ସେ ତୁମ୍ଭେ ଆପଣା ମାୟାରେ ॥ ୯୫
ଶୁକ୍ଳବର୍ଣ୍ଣକୁ ଆପଣାର । ନିଶ୍ଚୟେଁ ସତ୍ତ୍ୱଗୁଣେ ଧର ॥ ୯୬
ଏ ରଜଗୁଣରେ ବର୍ଦ୍ଧିତ । ଅଟଇ ଯଉଁ ବର୍ଣ୍ଣ[୩] ରକ୍ତ ॥ ୯୭
ନିଶ୍ଚୟେଁ ସେ ବର୍ଣ୍ଣକୁ ଘେନ । କରନ୍ତେ ଜଗତସର୍ଜନ ॥ ୯୮
କୃଷ୍ଣବର୍ଣ୍ଣକୁ ପ୍ରଳୟର । ସମୟେ ତମୋଗୁଣେ ଧର ॥ ୯୯
୨୧ ହେ ପ୍ରଭୁ ଜଗତ ଈଶ୍ୱର । ରକ୍ଷାଇଚ୍ଛାରେ ଏ ଲୋକର ॥ ୧୦୦
ସେ ତୁମ୍ଭେ ସଦନେ ମୋହର । କରିଣ ଅଛ ଅବତାର ॥ ୧୦୧

୧. କେହି । ୨. ଆତ୍ମାଭିନ୍ନରେ = ଆତ୍ମା + ଅଭିନ୍ନରେ । ୩. ଗୁଣ ।

| | | | | |
|---|---|---|---|---|
| | ଜଗତେ ରାଜନ୍ୟ ନାମରେ | । ଜନମି ଛନ୍ତି ଯେ ଅସୁରେ | ।। | ୧୦୨ |
| | ତାଙ୍କର କୋଟି କୋଟି ହୋଇ | । ଯେ ଯୂଥପତି ଛନ୍ତି ରହି | ।। | ୧୦୩ |
| | ସେମାନେ ଯାଙ୍କୁ ଅନୁକ୍ଷଣେ | । ଚାଳୁ ଅଛନ୍ତି ଏଣେ ତେଣେ | ।। | ୧୦୪ |
| | ସେ ସେନାଙ୍କର ଯେ ବିନାଶ | । ତୁମ୍ଭେ ତା' କରିବ ଅବଶ୍ୟ | ।। | ୧୦୫ |
| ୨୨ | ଅସଭ୍ୟ ଏ କଂସ ମୋହର | । ଘରେ ଜନମ ଶୁଣି ତୋର | ।। | ୧୦୬ |
| | ଅଗ୍ରଜମାନଙ୍କୁ ତୁମ୍ଭର | । ମାଇଲା ଆହେ ସୁରେଶ୍ୱର | ।। | ୧୦୭ |
| | ତୁମ୍ଭ ଜନମ ଏବେ ପୁଣ | । ଲୋକେ କରନ୍ତେ ସମର୍ପଣ[୧] | ।। | ୧୦୮ |
| | ଶୁଣି ଆୟୁଧ ଟେକି କରେ | । ଆସିବ ଏହି ସମୟରେ | ।। | ୧୦୯ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୩ | ଦେବକୀ ଏଥୁ ଅନନ୍ତର | । ସେ ମହାପୁରୁଷ ଈଶ୍ୱର | ।। | ୧୧୦ |
| | ତାଙ୍କର ଯେତେକ ଲକ୍ଷଣ | । ସୁତକୁ ସେ ରୂପେ ଦେଖିଣ | ।। | ୧୧୧ |
| | ତାହାଙ୍କୁ ଆରମ୍ଭିଲା ସ୍ତୁତି | । କଂସସ୍ୱକାଶୁଁ ତାର ଭୀତି | ।। | ୧୧୨ |
| | ତାହାର ଯହୁଁ ମନ୍ଦହାସ | । ବିଶଦ ଅଟେ ତା' ପ୍ରକାଶ | ।। | ୧୧୩ |

ଶ୍ରୀଦେବକ୍ୟୁବାଚ

| | | | | |
|---|---|---|---|---|
| ୨୪ | ଯେ ରୂପ ଅବ୍ୟକ୍ତ କାରଣ | । ବୃହତ ଚେତନ ନିର୍ଗୁଣ | ।। | ୧୧୪ |
| | ଯେ ଅବିକାର ସତ୍ତାମାତ୍ର | । ଅବିଶେଷ ଅକ୍ରିୟାପାତ୍ର | ।। | ୧୧୫ |
| | ବେଦ କହେ ଯା' ଏ ପ୍ରକାରେ | । ତୁମ୍ଭେ ସେ ବିଷ୍ଣୁ[୨] ସାକ୍ଷାତରେ | ।। | ୧୧୬ |
| | ଏ ବୁଦ୍ଧି ଆଦି ଯେ କରଣ | । ତୁମ୍ଭେ ତା' ପ୍ରକାଶକାରଣ | ।। | ୧୧୭ |
| ୨୫ | ହୁଅନ୍ତେ ବ୍ରହ୍ମାଦିନ ଶେଷ | । ଏ ଲୋକ ହୁଅନ୍ତେ ବିନାଶ | ।। | ୧୧୮ |
| | ଯେ ମହାଭୂତମାନେ ପୁଣ | । ଭୂତସୂକ୍ଷ୍ମେ ସେ ମିଳନ୍ତେଣ | ।। | ୧୧୯ |
| | ଯେ ବ୍ୟକ୍ତ କାଳବେଗେ ସେହି | । ଯେବେ ପ୍ରକୃତିରେ ପଶଇ | ।। | ୧୨୦ |
| | ସେ କାଳେ ଶେଷସଂଜ୍ଞ ହୋଇ | । କେବଳ ତୁମ୍ଭେ ଥାଅ ରହି | ।। | ୧୨୧ |
| ୨୬ | ନିମେଷ ଅଟେ ଆଦ୍ୟ ଯାର | । ଅନ୍ତ ଯାହାର ସଂବତ୍ସର | ।। | ୧୨୨ |
| | ପ୍ରକୃତିବନ୍ଧୁ ହେ ଈଶ୍ୱର | । ଦୁଇ ପରାର୍ଦ୍ଧ ରୂପ ଯାର | ।। | ୧୨୩ |
| | ଏମନ୍ତ ଯେ କାଳ ତାହାକୁ | । ବୋଲନ୍ତି ତୁମ୍ଭର ଚେଷ୍ଟାକୁ | ।। | ୧୨୪ |
| | ଯାହା ହେତୁରୁ ଲୋକମାନେ | । ଚେଷ୍ଟାକୁ ଲଭନ୍ତି ଭୁବନେ | ।। | ୧୨୫ |

---

୧. ସମର୍ପଣ = କଥନ (ସ୍ୱାମୀ)।

୨. ବିଷ୍ଣୁ ଆଦ୍ୟ କାରଣ କିନ୍ତୁ ପରମାଣୁ ନୁହେଁ, ବ୍ରହ୍ମ; ପ୍ରଧାନ ନୁହେଁ, ଚେତନ; ବୈଶେଷିକମାନଙ୍କ ଜ୍ଞାନଗୁଣ ନୁହେଁ, ନିର୍ଗୁଣ; ମୀମାଂସକମାନଙ୍କ ଜ୍ଞାନପରିଣାମି ନୁହେଁ, ନିର୍ବିକାର; ପୁଷ୍କରାକ୍ଷ ପ୍ରଭୃତିଙ୍କ ଶକ୍ତିବିକ୍ଷେପପରିଣାମି ନୁହେଁ, ସତ୍ତାମାତ୍ର; ସାମାନ୍ୟ ନୁହେଁ, ନିର୍ବିଶେଷ; ସକ୍ରିୟ ନୁହେଁ, ନିରୀହ; ବ୍ୟକ୍ତ ନୁହେଁ, ଅବ୍ୟକ୍ତ । ବ୍ରହ୍ମ, ଜ୍ୟୋତି, ନିର୍ଗୁଣ ଓ ନିର୍ବିକାର – ଏହି ଚାରୋଟି ପଦଦ୍ୱାରା ଦେଶ, ପ୍ରକାଶ, ଗୁଣ ଓ ବିକାରର ନିରାକରଣ ହୋଇଅଛି ।

ସେ ତୁମ୍ଭେ ପ୍ରଭୁ କ୍ଷେମସ୍ଥାନ । ତୁମ୍ଭଙ୍କୁ ହୋଉଛି ପ୍ରପନ୍ନ ॥ ୧୨୬
୨୭ ମୃତ୍ୟୁସର୍ପର ଭୟେ ଜନ । ପଳାନ୍ତେ ସକଳ ଭୁବନ ॥ ୧୨୭
ହେ ଆଦ୍ୟ କେହୁଣିସି ଠାଇଁ । ନିର୍ଭୟ ନ ପାଇଲା ସେହି ॥ ୧୨୮
ତୁମ୍ଭର ପାଦପଦ୍ମ ଦୁଇ । କେହୁଣି ଭାଗ୍ୟରେ ସେ ପାଇ ॥ ୧୨୯
ସ୍ୱସ୍ଥ[୧] ହୋଇଣ ଶୋଇଅଛି । ମୃତ୍ୟୁ ତା'ଠାରୁ ନିବର୍ତ୍ତିଛି ॥ ୧୩୦
୨୮ ଯେ ଘୋର ଉଗ୍ରସେନସୁତ । ତା'ଠାରୁ ଆମ୍ଭେ ଭୟବନ୍ତ ॥ ୧୩୧
ଆମ୍ଭଙ୍କୁ ତୁମ୍ଭେ ରକ୍ଷା କର । ତୁମ୍ଭେ ଭୃତ୍ୟର ତ୍ରାସହର ॥ ୧୩୨
ଈଶ୍ୱରରୂପ ଏ ତୁମ୍ଭର । ଅଟଇ ଆସ୍ପଦ ଧ୍ୟାନର ॥ ୧୩୩
ଚର୍ମଲୋଚନ ଯେତେ ନର । ତାହାଙ୍କ ଠାରୁ ଗୁପ୍ତ କର ॥ ୧୩୪
୨୯ ମଧୁସୂଦନ ! ଜନ୍ମ ତୋର । ଏ ପାପ[୨] ନ ଜାଣୁଁ ମୋଠାର ॥ ୧୩୫
ଅଧୀରମତି ମୁହିଁ ଯେଣୁ । ତୁମ୍ଭ ସ୍ୱକାଶୁଁ କରି ତେଣୁ ॥ ୧୩୬
ଯେ ଉଦବେଗ ଅତିଗୁରୁ । ଲଭୁଅଛି ତା' କଂସଠାରୁ ॥ ୧୩୭
୩୦ ହେ ବିଶ୍ୱଆତ୍ମା ! ତୁ ସଂହର । ଏ ଅଲୌକିକ ରୂପ ତୋର ॥ ୧୩୮
ଯେ ଶଙ୍ଖ ଚକ୍ର ଗଦା କଞ୍ଜ । ଶୋଭାରେ ଯୁତ ଚତୁର୍ଭୁଜ ॥ ୧୩୯
୩୧ ପରମ ପୁରୁଷ ଆପଣ । ଅସଂକୋଚିତ କରି ପୁଣ ॥ ୧୪୦
ଏ ବିଶ୍ୱ ନିଜର ତନୁରେ । ଧର ପ୍ରଳୟ ସମୟରେ ॥ ୧୪୧
ଯେ ତୁମ୍ଭେ ଅଟ ହେ ଏମନ୍ତ । ସେ ହେଲ ମୋର ଗର୍ଭେ ଜାତ ॥ ୧୪୨
ନରଲୋକର ବିଡ଼ମ୍ବନ । ଶୁଣିମାକୁ ହିଁ ଏ ବଚନ ॥ ୧୪୩
ଶୁଣିଣ ମାତାର ବଚନ । କହୁଅଛନ୍ତି ଭଗବାନ ॥ ୧୪୪

ଶ୍ରୀଭଗବାନୁବାଚ

୩୨ ତୁ ସ୍ୱାୟମ୍ଭୁବ ମନ୍ୱନ୍ତରେ । ହେ ସତି ! ପ୍ରଥମ ଜନ୍ମରେ ॥ ୧୪୫
ଜନ୍ମିଲୁ ପୃଶ୍ନିନାମ ହୋଇ । ଏ ବସୁଦେବ ପୁଣ ତହିଁ ॥ ୧୪୬
ଅପାପୀ ହୋଇଲା ଜନମ । ପ୍ରଜାପତି ସୁତପା ନାମ ॥ ୧୪୭
୩୩ ପ୍ରଜାସର୍ଜନଅର୍ଥେ ଯେବେ । ବ୍ରହ୍ମା ବୋଇଲେ ପୁଣ ତେବେ ॥ ୧୪୮
ନିରୋଧି ଇନ୍ଦ୍ରିୟଗଣକୁ । କଲ ପରମ ତପସ୍ୟାକୁ ॥ ୧୪୯
୩୪ ଯେ ବର୍ଷା ବାତ ଖରା ପୁଣ । ଶୀତ ଘର୍ମ ସେ କାଳଗୁଣ ॥ ୧୫୦
ସହନ୍ତେ ନିରୋଧୁଁ ଶ୍ୱାସର । ମନରୁ ମଳ କଲ ଦୂର ॥ ୧୫୧
୩୫ ଯେ ଶୀର୍ଣ୍ଣ ପର୍ଣ୍ଣ[୩] ସମୀରଣ । ଆହାର କଲ ତାହା ପୁଣ ॥ ୧୫୨
ମୋଠାରୁ ଉପଶାନ୍ତ ମନେ । ବର ବାଞ୍ଛନ୍ତେ ବେନି ଜନେ ॥ ୧୫୩
ମୋ' ଆରାଧନ ଯେ ଅଟଇ । ତା ଆରାଧିଲ ତୁମ୍ଭେ ଦୁଇ ॥ ୧୫୪
୩୬ ହେ ଭଦ୍ରେ ! ପରମ ଦୁଷ୍କର । ତପ କରନ୍ତେ ଏ ପ୍ରକାର ॥ ୧୫୫

---

୧. ସ୍ୱସ୍ଥ = ସୁସ୍ଥ । ୨. ପାପ = କଂସ । ୩. ଶୀର୍ଣ୍ଣ ପର୍ଣ୍ଣ = ଖସିଲା ପତର ।

ଦ୍ୱାଦଶ ସହସ୍ର ବରଷ । ଦେବବରଷେ ହେଲା ଶେଷ ॥ ୧୫୬
ମୋହର ଠାରେ ନିଜ ମନ । ନିବେଶିଥିଲ ବେନି ଜନ ॥ ୧୫୭
୩୭ ତପରେ ଶ୍ରଦ୍ଧାରେ ଭକ୍ତିରେ । ଭାବନା କରନ୍ତେ ନିତ୍ୟରେ ॥ ୧୫୮
୩୮ ସଂତୁଷ୍ଟ ହୋଇ ସେ କାଳରେ । ଅନଘେ [1]ଏହି ଶରୀରରେ ॥ ୧୫୯
ତୁମ୍ଭ ଦୁହିଁଙ୍କି ମନୋରଥ । ଦେବା ଇଚ୍ଛାରେ କରି ଚିତ୍ତ ॥ ୧୬୦
ବରଦାତାଙ୍କ ରାଜା ମୁହିଁ । ତୁମ୍ଭଙ୍କୁ ପ୍ରକାଶ ହେଲଇଁ ॥ ୧୬୧
ବରକୁ ମାଗ ମୁଁ ବୋଲନ୍ତେ । ବରିଲ ମୋର ସମ ସୁତେ ॥ ୧୬୨
୩୯ ଯେତେ ଗ୍ରାମ୍ୟ ବିଷୟମାନ । ସେବି ନ ଥିଲ ବେନି ଜନ ॥ ୧୬୩
ଏ ଘେନି ପତିପତ୍ନୀ ଦୁଇ । ଥିଲ ବାଳକଶୂନ୍ୟ ହୋଇ ॥ ୧୬୪
ମୋର ମାୟାରେ[2] ମୋହି ହେଲ[3] । [4]ଅପବର୍ଗକୁ ନ ମାଗିଲ ॥ ୧୬୫
୪୦ ମୁଁ ଯାଚନ୍ତେ ତୁମ୍ଭେ ବେନି ଜନ । ଲଭି ମୋ' ସମାନ ନନ୍ଦନ ॥ ୧୬୬
ମୋହର ଠାରୁ ମନୋରଥ । ତୁମ୍ଭର ହୋଇଲା ପ୍ରାପତ ॥ ୧୬୭
ଯେ ପୁଣ ଗ୍ରାମ୍ୟ ଭୋଗମାନ । ତାହା ଭୁଂଜିଲ ଅନୁଦିନ ॥ ୧୬୮
୪୧ ମହତ ଭାବେ ସୁଚରିତେ । ଗୁଣରେ ମୋ' ସମ ଜଗତେ ॥ ୧୬୯
ଆନ କାହାକୁ ନ ଦେଖିଣ । ମୁଁ ତୁମ୍ଭ ସୁତ ହେଲି ପୁଣ ॥ ୧୭୦
ସେଦିନୁଁ ପୃଶ୍ନିଗର୍ଭ ବୋଲି । ନାମରେ ବିଖ୍ୟାତ ହୋଇଲି ॥ ୧୭୧
୪୨ ଅଦିତିକଶ୍ୟପରୂପରେ । ଯେ ତୁମ୍ଭେ ଜନ୍ମିଲ କାଳରେ ॥ ୧୭୨
ତୁମ୍ଭ ଦୁହିଁଙ୍କ ଠାରେ ମୁହିଁ । ପୁଣି ଜନମ ଲଭିଲଇଁ ॥ ୧୭୩
ଉପେନ୍ଦ୍ର ନାମରେ ପ୍ରଧାନ । ହ୍ରସ୍ୱଭାବରୁ ମୁଁ ବାମନ ॥ ୧୭୪
୪୩ ଏଥୁ ଅନ୍ତରେ ତୁମ୍ଭ ଠାରେ । ତୃତୀୟ ଜନ୍ମେ ସେ ବପୁରେ ॥ ୧୭୫
ପୁଣି ମୁଁ ହୋଇଲି ସଂଭୂତ । ହେ ସତି ! ମୋ ବଚନ ସତ ॥ ୧୭୬
୪୪ ମୋ ପୂର୍ବ ଜନମ ସ୍ମରଣ । ନିମିତ୍ତେ ଏ ରୂପକୁ ପୁଣ ॥ ୧୭୭
କଲି ମୁଁ ତୁମ୍ଭଙ୍କୁ ଗୋଚର । ଅନ୍ୟଥା ଯେ ମର୍ତ୍ତ୍ୟଶରୀର ॥ ୧୭୮
ତେଣେ ଯେ ମୋ ବିଷୟେ ଜ୍ଞାନ । ସେ ପୁଣି ନୋହେ ଉତପନ ॥ ୧୭୯
୪୫ ମୋତେ ଯେ ତୁମ୍ଭେ ବେନି ଜନ । ପୁତ୍ରଭାବରେ କରି ଧ୍ୟାନ ॥ ୧୮୦
ବ୍ରହ୍ମ ଭାବରେ ଅବା ଥରେ । କରନ୍ତେ ସ୍ନେହକୁ ମୋ ଠାରେ ॥ ୧୮୧
ଯେ ଅଟେ ମୋ' ପରମ ଗତି । ତାହାକୁ ଲଭିବ ଝଟିତି ॥ ୧୮୨

---

୧. ଏହି = ଅପାପିନୀ !
୨. ମାୟା = ପୁତ୍ରସ୍ନେହମୟୀ ବୈଷ୍ଣବୀ ମାୟା ।
''ବୈଷ୍ଣବୀଂ ବ୍ୟତନୋନ୍ମାୟାଂ ପୁତ୍ରସ୍ନେହମୟୀଂ ବିଭୁଃ'' (ଚକ୍ରବର୍ତ୍ତିପାଦ) ।
୩. ମୋହି ହେଲ = ଆନନ୍ଦିତ ହେଲ ।
୪. ମୋର ବିଷୟସ୍ନେହ ଅପବର୍ଗସୁଖକୁ ଅତିକ୍ରମ କରୁଥିବାରୁ (ଜୀବପାଦ) ।

### ଶ୍ରୀଶୁକ ଉବାଚ

୪୬ ତାତଜନନୀ ବେନି ଜଣେ । ଚାହାଁନ୍ତେ ତକ୍ଷଣେ ସେ ସ୍ଥାନେ ।। ୧୮୩
ସେ ରୂପ ଅନ୍ତର୍ଧାନ କଲେ । ପ୍ରାକୃତ ଶିଶୁରୂପ ହେଲେ ।। ୧୮୪
୪୭ କଂସର ଠାରୁ ଯେବେ ତୋର । ଭୟ ଉପୁଜିଛି ମନର ।। ୧୮୫
ମୋତେ ଘେନି ଯା' ଗୋକୁଳକୁ । ଆଣ ତୁ ଯଶୋଦାସୁତାକୁ ।। ୧୮୬
ହରି କହନ୍ତେ ଏ ବଚନ । ତଦନ୍ତେ ସେ ଶୂରନନ୍ଦନ ।। ୧୮୭
ସୂତିକାଗୃହୁଁ ଘେନି ସୁତ । ଯିବାକୁ ଯେବେ କଲା ଚିତ୍ତ ।। ୧୮୮
ଯେ ଯୋଗମାୟା ସେ କାଳରେ । ଜନ୍ମିଲା ନନ୍ଦପତ୍ନୀଠାରେ ।। ୧୮୯
୪୮| ସେ ଯୋଗମାୟାସ୍ୱକାଶରେ । ଯେ ଦ୍ୱାରୀ ଯେ ବା ପୁରନରେ ।। ୧୯୦
୪୯| ହତ ହୋଇଲା ତାଙ୍କ ଜ୍ଞାନ । ଯେ ବା ଇନ୍ଦ୍ରିୟବୃତ୍ତିମାନ ।। ୧୯୧
ତାହାଙ୍କୁ କରାନ୍ତେ ଶୟନ । ଯେ ଥିଲେ ସର୍ବ ଦ୍ୱାରୀମାନ ।। ୧୯୨
ମହାକପାଟ ଲୋହକୀଳା । ଯେ ପୁଣ ଲୋହର ଶୃଙ୍ଖଳା ।। ୧୯୩
ତେଣେ ସେ ଆଚ୍ଛାଦିତ ହୋଇ । ଥିଲେ ଯେ ଅଲଙ୍ଘିତ ହୋଇ ।। ୧୯୪
କୃଷ୍ଣଙ୍କୁ ଘେନି ଆଗମନ । କରନ୍ତେ ସେ ଶୂରନନ୍ଦନ ।। ୧୯୫
ସେ ଦ୍ୱାରମାନେ ସେ ସମୟେ । ଫିଟିଲେ ତାହାଙ୍କ ଇଚ୍ଛାୟେ ।। ୧୯୬
ଉଦୟ ହେଲେ ଦିବାକର । ଯେହ୍ନେ ତୁଟଇ ଅନ୍ଧକାର ।। ୧୯୭
ବରଷା କଲା ଜଳଧର । ଗର୍ଜିଲା ମନ୍ଦ ମନ୍ଦ ସ୍ୱର ।। ୧୯୮
ଜଳକୁ ଫଣାମାନଙ୍କରେ । ନିବୃତ୍ତ କରନ୍ତେ ଉପରେ ।। ୧୯୯
ଉରଗରାଜା ଯେ ଅନନ୍ତ । ତାଙ୍କୁ ହୋଇଲେ ଅନୁଗତ ।। ୨୦୦
୫୦ ଇନ୍ଦ୍ର ବର୍ଷନ୍ତେ ପୁଣ ପୁଣ । ଗମ୍ଭୀର ଯେ ସଲିଳଗଣ ।। ୨୦୧
ତାହା' ବେଗେ ଯେ ଊର୍ମିକୁଳ । ତେଣେ ଯେ ହୋଇଛି ଫେନିଳ ।। ୨୦୨
ଭୀଷଣ ଯେ ଆବର୍ତ୍ତ[୧] ଶତ । ତେଣେ ଯେ ହୋଇଛି ପୂରିତ ।। ୨୦୩
ସେ ନଦୀ ଅନୁଜା ଯମର । ମାର୍ଗକୁ ଛାଡ଼ିଲା ସତ୍ୱର ।। ୨୦୪
ଯେସନେ ସୀତାପତିଙ୍କର । ମାର୍ଗକୁ ଦେଲା ରତ୍ନାକର ।। ୨୦୫
୫୧ ନନ୍ଦବ୍ରଜକୁ ଉପଗତ । ହୋଇଣ ସେ ଶୂରର ସୁତ ।। ୨୦୬
ଯୋଗମାୟାରେ ମୋହ ହୋଇ । ଗୋପାଳମାନେ ଛନ୍ତି ଶୋଇ ।। ୨୦୭
ଏମନ୍ତ ଦେଖିଣ ସେଠାରେ । ଶିଶୁଙ୍କୁ[୨] ଯଶୋଦାଶଯ୍ୟାରେ ।। ୨୦୮
ରଖି ତା' ସୁତାକୁ ଆଣିଲେ । ବାହୁଡ଼ି ଗୃହରେ ମିଳିଲେ ।। ୨୦୯
୫୨ ସେ ବସୁଦେବ ଏ ଉତ୍ତାରେ । ସୁତାକୁ ଦେବକୀଶଯ୍ୟାରେ ।। ୨୧୦
ରଖିଣ ପୂର୍ବପ୍ରାୟ ହୋଇ । ଶାଙ୍କୋଳି ଚରଣେ ଲଗାଇ ।। ୨୧୧
ରହିଲା ଆବୃତ ହୋଇଣ । ନିଜ କର୍ମକୁ ଆଦରିଣ ।। ୨୧୨

---

୧. ଆବର୍ତ୍ତ = ଭଉଁରୀ । ୨. ସୁତକୁ ।

୫୩ ଯଶୋଦା ନନ୍ଦର ଗୃହିଣୀ । ଜାଣିଲା ଏତେମାତ୍ର ପୁଣି ।। ୨୧୩
କିଛି ଜନମ ହେଲା ମୋର । ଦୁହିତା ଅବା ସେ କୁମର ।। ୨୧୪
ଏମନ୍ତ ନ କଲା ଗୋଚର । ନିଦ୍ରାବଶରୁ ଯେଣୁ ତାର ।। ୨୧୫
ଚେତନା ହୋଇଛି ବିନାଶ । ଶ୍ରମରେ ହୋଇଛି ଅବଶ ।। ୨୧୬
ମଥୁରାପୁରେ ଜାତ ହୋଇ । ରହିଲେ ଯେ ଗୋକୁଳେ ଯାଇଁ ।। ୨୧୭
ସେ କୃଷ୍ଣପାଦପଦ୍ମଧ୍ୟାନେ । ହରଷ ଦୀନବଂଧୁ ମନେ ।। ୨୧୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣଜନ୍ମବର୍ଣ୍ଣନଂ
ନାମ ତୃତୀୟୋଽଧ୍ୟାୟଃ ।।

## ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ଚଣ୍ଡିକାବାକ୍ୟମାକର୍ଣ୍ଣ୍ୟାତିଭୟାକୁଳଃ ।
ଦୁର୍ମନ୍ତ୍ରିଭିର୍ହିତଂ ମେନେ କଂସୋ ବାଳାଦିହିଂସନମ୍ ।। ୧

ଶ୍ରୀଶୁକ ଉବାଚ

୧ ବାହ୍ୟେ ଅନ୍ତରେ ବିଦ୍ୟମାନ । ଯେତେକ ପୁରଦ୍ୱାରମାନ ।। ୧
୨ ସେ ସର୍ବେ ଆବୃତ ହୋଇଲେ । ଯେସନେ ପୂର୍ବେ ହୋଇଥିଲେ ।। ୨
ତଦନ୍ତେ ଶୁଣି ଶିଶୁସ୍ୱନ । ଉଠିଲେ ଗୃହପାଳମାନ ।। ୩
ସେମାନେ ଯାଇଁଣ ବେଗରେ । କହିଲେ କଂସର ଆଗରେ ।। ୪
ଗର୍ଭରୁ ଦେବକୀ ଦେବୀର । ବାଳକ ଜନମ ହେବାର ।। ୫
ଯାହାକୁ ଉଦବେଗଚିତ୍ତେ । ପ୍ରତୀକ୍ଷା କରିଛି ସେ ନିତ୍ୟେ ।। ୬
୩ ବେଗେ ସେ ଶଯ୍ୟାରୁ ଉଠିଣ । କାଳ[1] ଏ ଏମନ୍ତ ବୋଲିଣ ।। ୭
ବିହ୍ୱଳ ହୋଇଲା ଗମନ୍ତେ । ସ୍ଖଳିତ ହୋଉଛି ତ୍ୱରିତେ ।। ୮
ସୂତିକାଗୃହକୁ ଗମନ । କଲା, ଫିଟିଲା କେଶମାନ ।। ୯
୪ ଯେ କଂସ ଅଟେ ନିଜ ଭାଇ । ତାହାକୁ ସକରୁଣ ହୋଇ ।। ୧୦
ଦେବୀ ଦେବକୀ ହୋଇ ଦୀନ । କହିଲେ ଏମନ୍ତ ବଚନ ।। ୧୧
ବଧୂ ଅଟଇ ଏ ତୋହର । କଲ୍ୟାଣୀ[2] ସ୍ତିରୀକି ନ ମାର ।। ୧୨
୫ ପାବକସମାନ ବହୁତ । ସୁତକୁ ମାଇଲୁ ହେ ଭ୍ରାତ ।। ୧୩
ଦଇବବଶେ ସେ ନିଧନ । ଏକ ଦୁହିତା କର ଦାନ ।। ୧୪
୬ ହେ ପ୍ରଭୁ ! ମଲେ ପୁତ୍ରେ ମୋର । କନିଷ୍ଠ ଭଗିନୀ ମୁଁ ତୋର ।। ୧୫
ମୁଁ ଦୁଃଖୀ, ମନ୍ଦ ମୁଁ ଜଗତେ । କନିଷ୍ଠ ସୁତା ଦିଅ ମୋତେ ।। ୧୬

୧. କାଳ = ମୃତ୍ୟୁ । ୨. କଲ୍ୟାଣ । (ଅର୍ଥାତ୍ ହେ କଲ୍ୟାଣ !) ।

## ଶ୍ରୀଶୁକ ଉବାଚ

୭ ସୁତାକୁ କୋଳେ ଘେନି ଥାଇ । ଅତ୍ୟନ୍ତ ଦୀନପ୍ରାଏ ହୋଇ ॥
ଦେବକୀ କରନ୍ତେ ରୋଦନ । ମାଗିଲା ସୁତାର ଜୀବନ ॥
ତାକୁ ଭର୍ତ୍ସନା ଖଳ କଲା । ହସ୍ତୁଁ ଓଟାରି ଘେନି ଗଲା ॥
୮ ଯେ ଜନ୍ମିଅଛି ତତକ୍ଷଣ । ଭଗିନୀସୁତା ଅଟେ ପୁଣ ॥
ତା' ପାଦଯୁଗ ଧରି କରେ । ଛେଚିଲା ପାଷାଣଉପରେ ॥
ନିଜ ପ୍ରାଣକୁ କରି ଆଶ । ବନ୍ଧୁଭାବକୁ କଲା ନାଶ ॥
୯ ସେ ପୁଣ ହସ୍ତରୁ ତାହାର । ଊର୍ଦ୍ଧ୍ୱକୁ ହୋଇଲେ ବାହାର ॥
ତକ୍ଷଣେ ଦେବୀରୂପ ହୋଇ । ଦିଶିଲେ ଆକାଶରେ ଯାଇଁ ॥
ବିଷ୍ଣୁର ଅଟେ ସେ ଅନୁଜା । ଆୟୁଧଯୁତ ଅଷ୍ଟଭୁଜା ॥
୧୦| ଯେ ଦିବ୍ୟଗନ୍ଧ ମାଲ୍ୟ ପୁଣ । ବସନ ରତ୍ନଆଭରଣ ॥
୧୧| ତେଣେ ମଣ୍ଡିତ ଶୋଭା ଦିଶି । ଯେ ଧନୁ ଶୂଳ ଚର୍ମ ଅସି ॥
ଯେ ଶଙ୍ଖ ଚକ୍ର ଗଦା ଶରେ । ସେମାନେ ଅଛନ୍ତି ହସ୍ତରେ ॥
ସିଦ୍ଧ ଚାରଣ ଅପସରେ । ଗନ୍ଧର୍ବ ଉରଗ କିନ୍ନରେ ॥
ବହୁତ ବଳି-ଉପହାର । ଘେନିଣ ଦେବୀର ଆଗର ॥
ସ୍ତୁତି କରନ୍ତେ ତାଙ୍କୁ ପୁଣି । ସେ ଦେବୀ କହିଲେ ଏ ବାଣୀ ॥
୧୨ ରେ ମନ୍ଦ ! ମରଣେ ମୋହର । କି କାର୍ଯ୍ୟ ହୋଇବ ତୋହର ॥
ଯେ ପୂର୍ବଶତ୍ରୁ ଅଟେ ତୋର । ଏବେ କରିବ ଯେ ସଂହାର ॥
ସେ ଯହିଁ ତହିଁ ହେଲା ଜାତ । ବ୍ୟର୍ଥ ନ କର ଶିଶୁ ହତ ॥
୧୩ ତାହାକୁ କହିଣ ଏ ବାଣୀ । ସେ ମାୟା ଭଗବତୀ ପୁଣି ॥
ବହୁତ ଯାର ନାମମାନେ । ସେ ବାରାଣସୀ ଆଦି ସ୍ଥାନେ ॥
ଭୂମିରେ ବହୁତ ନାମରେ । ଖ୍ୟାତ ହୋଇଲେ ତଦନ୍ତରେ ॥
୧୪ କଂସ ସେ ଦେବୀବାକ୍ୟ ଶୁଣି । [1]ଅତି ବିସ୍ମୟ ହେଲା ପୁଣି ॥
ଦେବକୀ ବସୁଦେବ ଦୁଇ । ବନ୍ଧନୁଁ ମୁକ୍ତ କରି ଦେଇ ॥
ହୋଇଣ ବିନୟସଂଯୁତ । ବୋଇଲା ବଚନ ଏମନ୍ତ ॥
୧୫ ଭଗିନି ! ହେ ଭଗିନୀପତି । ମୁଁ ଯେ ଅଟଇ ପାପମତି ॥
ତୁମ୍ଭେ ସୁହୃଦ, ମୁଁ ତୁମ୍ଭର । ମାଇଲି ଅନେକ କୁମର ॥
ଆପଣା ଅପତ୍ୟ ଯେସନ । ରାକ୍ଷସ କରଇ ନିଧନ ॥
୧୬ ସେ ମୁଁ ଜୀବନ୍ତେ ଦୟାହୀନ । ଛାଡ଼ିଲି ଜ୍ଞାତି ମିତ୍ର ଜନ ॥
ଯେ ବ୍ରହ୍ମହତ୍ୟା କରିଥାଇ । ମୁଁ ଖଳ ତାର ପ୍ରାୟ ହୋଇ ॥
କେବଣ ଲୋକଙ୍କୁ ଗମନ । କରିବି ହୁଅନ୍ତେ ନିଧନ ॥

---

୧. ଦୈବ ବାଣୀ କିପରି ଅନ୍ୟଥା ହେଲା – ଏହା ଚିନ୍ତା କରି (ସ୍ୱାମୀ) ।

୧୭ ମିଥ୍ୟାବଚନ କହେ ସୁର । କେବଳ ନ କହନ୍ତି ନର ।। ୪୭
ମୁଁ ପାପୀ ତାହା ସତ୍ୟ କଲି । ଭଗିନୀସୁତଙ୍କୁ ମାଇଲି ।। ୪୮
୧୮ ହେ ମହାଭାଗ ବେନି ଜନ । ସୁତଙ୍କୁ ନ କର ଶୋଚନ ।। ୪୯
ସେ ଯଉଁ କର୍ମ କରିଥିଲେ । ସେହି କର୍ମକୁ ଭୋଗ କଲେ ।। ୫୦
ଦୈବ ଅଧୀନ ଜନ୍ତୁମାନେ । ରହି ନ ଥାନ୍ତି ସବୁ ଦିନେ ।। ୫୧
ଏକ ସ୍ଥାନରେ ସେ ନ ଥାନ୍ତି । ଅବଶ୍ୟ ବିଚ୍ଛେଦ ହୁଅନ୍ତି ।। ୫୨
୧୯ ଜାତ ହୁଅନ୍ତି ଦେହମାନେ । ମରଣ ଲଭନ୍ତି ଭୁବନେ ।। ୫୩
[1]ଜନମ ଆଦି ଷଡ଼ ଭାବ । ବିକାରୁଁ ଦେହର ସ୍ୱଭାବ ।। ୫୪
ଯେ ଆତ୍ମା ଅପରୋକ୍ଷେ ଅଛି । ତେଣେ ତାହାର ନୋହେ କିଛି ।। ୫୫
ଭୂମିରେ ଜନମି ଯେସନ । ଘଟାଦି ଲଭନ୍ତି ନିଧନ ।। ୫୬
ସେ ଘଟ ଆଦି ନାଶ ହୋଇ । ଧରଣୀ ସେହି ରୂପେ ଥାଇ ।। ୫୭
୨୦ ଏ କଥା ଯଥାର୍ଥ ରୂପରେ । ଜାଣନ୍ତି ନାହିଁ ଯଉଁ ନରେ ।। ୫୮
ତାଙ୍କର ଆତ୍ମାରୂପେ ମତି । ଦେହରେ ହୋଏ ଉତପତି ।। ୫୯
ସେ ଘେନି ଭେଦ ହୋଏ ଜାତ । ସେ ଭେଦସ୍ୱକାଶୁଁ ତୁରିତ ।। ୬୦
ସଂଯୋଗ ବିୟୋଗ ଏ ଦୁଇ । ପୁତ୍ରାଦି ଦେହତୁଲେ ହୋଇ ।। ୬୧
ତେଣୁ ନ ତୁଟଇ ସଂସାର । ଯାବତ ଅଜ୍ଞାନ ତାଙ୍କର ।। ୬୨
୨୧ ହେ ଭଦ୍ରେ ! ନିଜ ସୁତମାନ । ତୁମ୍ଭର କଲି ମୁଁ ନିଧନ ।। ୬୩
ସେ ଘେନି ତାହାଙ୍କୁ ଶୋଚନ । ନ କର, ଯେଣୁ ସର୍ବ ଜନ ।। ୬୪
ଯେବଣ କର୍ମ କରିଥାଇ । ଅବଶ୍ୟ ତାହା ସେ ଭୁଞ୍ଜଇ ।। ୬୫
୨୨ ବିନାଶ କଲା ମୋତେ ଆନ । ଆନକୁ କଲି ମୁଁ ନିଧନ ।। ୬୬
ଦେହାଭିମାନୀ ମୂର୍ଖ ନର । ଯାବତ ମଣେ ଏ ପ୍ରକାର ।। ୬୭
ବାଧ୍ୟ ବାଧକ ଭାବ ବେନି । ତାବତ ଭଜେ ସେ ଅଜ୍ଞାନୀ ।। ୬୮
୨୩ ବନ୍ଧୁ[2] ବସ୍ତଳ ସାଧୁ ମୋର । ଦୁଷ୍ଟଭାବକୁ କ୍ଷମା କର ।। ୬୯
ଅଶ୍ରୁପୂରିତ ତା' ବଦନ । ଏମନ୍ତ କହିଣ ବଚନ ।। ୭୦
ଦେବକୀବସୁଦେବଙ୍କର । ଚରଣ ଧଇଲା ସତ୍ୱର ।। ୭୧
୨୪ କନ୍ୟା କହିଲା ଯଉଁ ବାଣୀ । ତେଣେ ବିଶ୍ୱାସ ଲଭି ପୁଣି ।। ୭୨
ଆପଣା ସୁହୃଦଭାବକୁ । ଦେଖାନ୍ତେ ସେ ବେନିଜନଙ୍କୁ ।। ୭୩
ଦେବକୀ-ବସୁଦେବ ଦୁଇ । ଶାଙ୍କୋଳିବନ୍ଧ ଦେଲା ଫେଇ ।। ୭୪
୨୫ ଅନୁତାପକୁ ଏ ପ୍ରକାରେ । ଲଭିଛି ଯେ ଭାଇ ମନରେ ।। ୭୫

---

୧. ଷଡ୍‌ଭାବ ବିକାର – ଜନ୍ମ, ଅସ୍ତିତ୍ୱ, ବିପରିଣାମ (ପ୍ରତିମୁହୂର୍ତ୍ତରେ ସଂଘଟିତ), ବୃଦ୍ଧି, ଅପକ୍ଷୟ ଓ ବିନାଶ । (ଯାସ୍କ, ନିରୁକ୍ତ)

୨. ଦୀନ ।

କ୍ଷମାରେ ତାହାଠାରେ ରୋଷ । ଦେବକୀ କଲାକ ବିନାଶ ॥ ୭୬
ହସିଣ ବସୁଦେବ ପୁଣି । ତାହାକୁ କହିଲେ ଏ ବାଣୀ ॥ ୭୭
୨୬ ହେ ମହାଭାଗ[1] ! ତୁମ୍ଭେ ଯାହି । କହିଲ ଏହିରୂପେ ଏହି ॥ ୭୮
ଅଜ୍ଞାନଜାତ ଅହଂମତି[2] । ସ୍ୱ-ପର ଭେଦ ଯହିଁ ସ୍ଥିତି ॥ ୭୯
୨୭ ଯେ ଶୋକ ଭୟ ମଦ ଦ୍ୱେଷ । ଯେ ଲୋଭ ମୋହ ଯେ ହରଷ ॥ ୮୦
ତେଣେ ସଂଯୁତ ଯେଉଁ ଜନେ । ବିଭିନ୍ନ ଯେ ଦୃଷ୍ଟି ଅଜ୍ଞାନେ ॥ ୮୧
ପ୍ରାଣିଙ୍କି ପ୍ରାଣିଙ୍କର ଦ୍ୱାରେ । ଯେ ନାଶୁଛନ୍ତି ପରସ୍ପରେ ॥ ୮୨
ଏମନ୍ତ ପ୍ରଭୁଙ୍କୁ ସେମାନେ । ଗୋଚର ନ କରି ଅଜ୍ଞାନେ ॥ ୮୩
ମୋତେ ମାଇଲା ଏ ପୁରୁଷ । ଏହାକୁ କଲି ମୁଁ ବିନାଶ ॥ ୮୪
ନିଜ ଆତ୍ମାକୁ ଏ ପ୍ରକାରେ । ମଣୁଛନ୍ତି ଏ ଜଗତରେ ॥ ୮୫

ଶ୍ରୀଶୁକ ଉବାଚ

୨୮ ଦେବକୀ ବସୁଦେବ ଦୁଇ । ଏ ରୂପେ ସୁପ୍ରସନ୍ନ ହୋଇ ॥ ୮୬
କହିଲେ ଯେ ବିଶୁଦ୍ଧ ବାଣୀ । କଂସ ସେ ବଚନକୁ ଶୁଣି ॥ ୮୭
ଅନୁଜ୍ଞା ମାଗିଣ ତାହାଙ୍କୁ । ଗଲା ଆପଣା ମନ୍ଦିରକୁ ॥ ୮୮
୨୯ ହୁଅନ୍ତେ ସେ ରଜନୀ ଶେଷ । ମନ୍ତ୍ରିଙ୍କି ହକାରିଣ ପାଶ ॥ ୮୯
ତାଙ୍କୁ ସେ ସମସ୍ତ କହିଲା । ଯା' ଯୋଗମାୟା କହିଗଲା ॥ ୯୦
୩୦ କଂସର ବଚନ ଶୁଣିଣ । ଦୈତ୍ୟେ କହିଲେ ତାକୁ ପୁଣ ॥ ୯୧
ଦେବଙ୍କ ପ୍ରତି କ୍ରୋଧବନ୍ତ । ଯେ ଦୈତ୍ୟେ ନୁହନ୍ତି ପଣ୍ଡିତ ॥ ୯୨
୩୧ ଭୋଜେନ୍ଦ୍ର ! ଏ ରୂପରେ ଯେବେ । ବ୍ରଜାଦି ପୁର ଗ୍ରାମେ ତେବେ ॥ ୯୩
ଯେ ଦଶ ଦିନର ମଧ୍ୟରେ । ଯେ ଅବା ଜାତ ତଦନ୍ତରେ ॥ ୯୪
ସେ ଶିଶୁମାନଙ୍କୁ ସଂହାର । କରିବୁଁ ନିଶ୍ଚୟେ ଆଜର ॥ ୯୫
୩୨ ସମରଭୀରୁ ଯେଉଁ ଦେବେ । ଉଦ୍ୟମେ କି ବା ସେ କରିବେ ॥ ୯୬
ଘୋଷଣେ ତୋ' ଧନୁଗୁଣର । ଉଦ୍‌ବେଗ ମନେ ଯାହାଙ୍କର ॥ ୯୭
୩୩ ବିନ୍ଧନ୍ତେ ତୁ ଶର ସମରେ । ତୋହର ଶରସମୂହରେ ॥ ୯୮
ହୁଅନ୍ତେ ସବୁଦିଗେ ହତ । ବାଞ୍ଛନ୍ତେ ଆପଣା ଜୀବିତ ॥ ୯୯
ପଳାଇବାର ମୂଳ କଲେ । ଯେ ଯୁଦ୍ଧ ଛାଡ଼ି କରି ଗଲେ ॥ ୧୦୦
୩୪ ଶସ୍ତ୍ର ପକାଇ କେଉଁ ସୁର । ଭୟରେ ଯୋଡ଼ି ବେନି କର ॥ ୧୦୧
କଛା କେଶକୁ କେ ଫିଟାନ୍ତି । କେ 'ଭୟ ଲଭିଲୁଁ' ବୋଲନ୍ତି ॥ ୧୦୨
୩୫ ଯେ ଶସ୍ତ୍ର ଅସ୍ତ୍ର ପାସୋରିଲେ । ଯେ ଅବା ବିମୁଖ ହୋଇଲେ ॥ ୧୦୩
ଯେ ଭୟେ ନମ୍ର ହୋଇଥାନ୍ତି । ଯେ ଆନେ ଆସକତମତି ॥ ୧୦୪
ରଣବିମୁଖ ଯେଉଁ ଜନ । ଯେ ଅବା ଭଗ୍ନଶରାସନ ॥ ୧୦୫

---

୧. ମହାରାଜ ୨. ଭେଦମତି ।

| | | | | |
|---|---|---|---|---|
| | ଯେହୁ ନ କରନ୍ତି ସମର | । ତୁମ୍ଭେ ଏ ଲୋକଙ୍କୁ ନ ମାର | ।। | ୧୦୬ |
| ୩୬ | ନିର୍ଭୟସ୍ଥାନମାନଙ୍କରେ | । ବଳିଷ୍ଠ ଯେବଣ ଅମରେ | ।। | ୧୦୭ |
| | ଯେ ଯୁଦ୍ଧ ବିନୁ ଆନସ୍ଥାନ | । କହନ୍ତି ବଡ଼ାଇବଚନ | ।। | ୧୦୮ |
| | ତେଣେ କି ଅବା ପ୍ରୟୋଜନ | । ଯେ ସର୍ବହୃଦେ ବିଦ୍ୟମାନ | ।। | ୧୦୯ |
| | କି କାର୍ଯ୍ୟ ଅବା ସେ ବିଷ୍ଣୁରେ | । ପୁରୁଷେ ନ ଥାନ୍ତି ଯହିଁରେ | ।। | ୧୧୦ |
| | ସେ ଇଳାବୃତେ[୧] ଯାର ବାସ | । ସେ ଶିବେ ପ୍ରୟୋଜନ କିସ | ।। | ୧୧୧ |
| | ସେ ଅଳ୍ପବୀର୍ଯ୍ୟ ପୁରନ୍ଦର | । କି ଭୟ ତା' ସ୍ୱକାଶୁଁ ତୋର | ।। | ୧୧୨ |
| | ଯେ ନିତ୍ୟେ ମଗ୍ନ ତପସ୍ୟାରେ | । କି କାର୍ଯ୍ୟ ଅବା ସେ ବ୍ରହ୍ମାରେ | ।। | ୧୧୩ |
| ୩୭ | ତଥାପି ଶତ୍ରୁଭାବୁଁ ହେରି | । ଦେବଙ୍କୁ ଉପେକ୍ଷା ନ କରି | ।। | ୧୧୪ |
| | ଏମନ୍ତ ମଣୁଛୁଁ ମନରେ | । ତାହାଙ୍କ ମୂଳ ଖୋଳିବାରେ | ।। | ୧୧୫ |
| | ଆମ୍ଭଙ୍କୁ ନିଯୋଜନା କର | । ଆମ୍ଭେ ତୁମ୍ଭର ପରିଚାର | ।। | ୧୧୬ |
| ୩୮ | ଅଙ୍ଗରେ ରୋଗ ହୋଏ ଜାତ | । ଉପେକ୍ଷା କଲେ ସେ ଯେମନ୍ତ | ।। | ୧୧୭ |
| | କ୍ରମରେ ବଳବନ୍ତ ହୋଇ | । ପଛେ ଚିକିତ୍ସା କରି ନୋହି | ।। | ୧୧୮ |
| | ଇନ୍ଦ୍ରିୟମାନେ ଉପେକ୍ଷାରେ | । ଯେସନେ ଅସାଧ୍ୟ କ୍ରମରେ | ।। | ୧୧୯ |
| | ସେରୂପେ ଯେ ବଳିଷ୍ଠ ଅରି | । ତାକୁ ଉପେକ୍ଷା ଯେବେ କରି | ।। | ୧୨୦ |
| | ଲଭଇ ସେ ବୃଦ୍ଧିଭାବକୁ | । ଚାଳି ନ ପାରି ପଛେ ତାକୁ | ।। | ୧୨୧ |
| ୩୯ | ଯେତେକ ଦେବତାସକଳ | । ବିଷ୍ଣୁ ସେମାନଙ୍କର ମୂଳ | ।। | ୧୨୨ |
| | ଯହିଁରେ ଧର୍ମ ସନାତନ | । ତହିଁ ସେ ବିଷ୍ଣୁ ବିଦ୍ୟମାନ | ।। | ୧୨୩ |
| | ଯେ ପୁଣ ବେଦ, ଗୋ, ବ୍ରାହ୍ମଣ | । ତପସ୍ୟା ଯଜ୍ଞ ସଦକ୍ଷିଣ | ।। | ୧୨୪ |
| | ଧର୍ମର ମୂଳ ଏ ସକଳେ | । ବିଖ୍ୟାତ ଏ ମହୀମଣ୍ଡଳେ | ।। | ୧୨୫ |
| ୪୦ | ସେ ଘେନି କରି ହେ ରାଜନ | । ଯେ ବ୍ରହ୍ମବାଦୀ ବିପ୍ର ଜନ | ।। | ୧୨୬ |
| | ଯେ ବା ତପସ୍ୱୀ ଯଜ୍ଞଶୀଳ | । ଯେ ହବିର୍ଦୁଘା ଧେନୁକୁଳ | ।। | ୧୨୭ |
| | ଏ ଥିବେ ଯଉଁ ଯଉଁ ସ୍ଥାନ | । ଏହାଙ୍କୁ କରିବୁଁ ନିଧନ | ।। | ୧୨୮ |
| ୪୧ | ବିପ୍ରେ ଅମରେ ତପ ଦମ | । ଯେ ଶ୍ରଦ୍ଧା ଦୟା ସତ୍ୟ ଶମ | ।। | ୧୨୯ |
| | ଯେ ବା ତିତିକ୍ଷା କ୍ରତୁ ଧେନୁ | । ବିଷ୍ଣୁର ଏ ସମସ୍ତ ତନୁ | ।। | ୧୩୦ |
| ୪୨ | ସେ ସର୍ବ ଦେବଙ୍କ ଈଶ୍ୱର | । ରିପୁ ଅସୁରମାନଙ୍କର | ।। | ୧୩୧ |
| | ଯେ ବା ହୃଦୟ ପ୍ରାଣିଙ୍କର | । ତହିଁରେ ଶୟନ ତାହାର | ।। | ୧୩୨ |
| | ଯେ ଶିବ-ବିରିଞ୍ଚି ସହିତ | । ଅଦିତିନନ୍ଦନ ସମସ୍ତ | ।। | ୧୩୩ |
| | ସେମାନଙ୍କର ମୂଳ ହୋଇ | । ସେ ବିଷ୍ଣୁ ବିଖ୍ୟାତ ଅଟଇ | ।। | ୧୩୪ |
| | ଯେ ହିଂସା ଋଷିମାନଙ୍କର | । ଏ ବଧ ଉପାୟ ତାହାର | ।। | ୧୩୫ |

୧. ଇଳାବୃତ = ତନ୍ନାମକ ବନ ।

ଶ୍ରୀଶୁକ ଉବାଚ

୪୩ ଏମନ୍ତେ ଦୁଷ୍ଟ ମନ୍ତ୍ରିଙ୍କର । ସହିତେ ସେ କଂସ ଅସୁର ॥ ୧୩୬
ବିଚାର କରି ଦୁଷ୍ଟଚିତ୍ତ । ମଣିଲା ବ୍ରହ୍ମହିଂସା ହିତ ॥ ୧୩୭
ଯେ କାଳପାଶ ଅଲଘିତ । ତେଣେ ସେ ହୋଇଛି ଆବୃତ ॥ ୧୩୮
୪୪ ଯେ ପୀଡ଼ା ପ୍ରାଣିମାନଙ୍କର । ସେ ପ୍ରିୟ ଅଟେ ଯାହାଙ୍କର ॥ ୧୩୯
ଯେ କାମରୂପୀ ଦୈତ୍ୟେ ତାଙ୍କୁ । ସାଧୁଙ୍କୁ ପୀଡ଼ା କରିବାକୁ ॥ ୧୪୦
ଆଜ୍ଞା ଦେଇଣ ତଦନ୍ତରେ । ପ୍ରବେଶ ହେଲା ନିଜ ଘରେ ॥ ୧୪୧
୪୫ ରଜପ୍ରକୃତି ସେ ସମସ୍ତ । ତମୋଗୁଣରେ ମୂଢ଼ଚିତ୍ତ ॥ ୧୪୨
କଲେ ବିଦ୍ୱେଷ ସାଧୁଙ୍କର । ନିକଟେ ଯିବେ ଯମପୁର ॥ ୧୪୩
୪୬ ଆୟୁଷ ଯଶ ଧର୍ମ ଧନ । ଯେ ଅବା ପରଲୋକମାନ ॥ ୧୪୪
ମଙ୍ଗଳକଥାମାନ ଯେତେ । ସମସ୍ତ ଶ୍ରେୟ ଯେ ଜଗତେ ॥ ୧୪୫
ସାଧୁଙ୍କ ଅତିକ୍ରମ ହତ । କରେ ଲୋକର ଏ ସମସ୍ତ ॥ ୧୪୬
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁମତି ॥ ୧୪୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଅସୁରମନ୍ତ୍ରଣଂ
ନାମ ଚତୁର୍ଥୋଽଧ୍ୟାୟଃ ॥

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ଜାତକଂ ନନ୍ଦଃ ସୂନୋଃ କୃତ୍ୱା ମହୋତ୍ସବମ୍ ।
ଗତ୍ୱାଥ ମଥୁରାଂ ପ୍ରାପ ବସୁଦେବାଗମୋତ୍ସବମ୍ ॥ ୧

ଶ୍ରୀଶୁକ ଉବାଚ

୧। ଜନମ ହୁଅନ୍ତେ ଆତ୍ମଜ । ସେ ମହାମନା ବ୍ରଜରାଜ[୧] ॥ ୧
୨। ଅତି ଆନନ୍ଦମନା ହୋଇ । ବେଦଜ୍ଞ ବିପ୍ରଙ୍କୁ ଅଣାଇଁ ॥ ୨
ସ୍ନାନରେ ତନୁ ଶୁଦ୍ଧ କଲେ । ଅଳଂକାରରେ ମଣ୍ଡି ହେଲେ ॥ ୩
ସ୍ୱସ୍ତିବାଚନ କରାଇଣ । ସୁତର ଜାତକର୍ମ ପୁଣ ॥ ୪
ବିଧିମତରେ କରାଇଲେ । ପିତୃଦେବତାଙ୍କୁ ପୂଜିଲେ ॥ ୫
୩ ବିପ୍ରଙ୍କୁ ଅଳଙ୍କାର ତୁଲେ । ଦୁଇ ନିୟୁତ ଧେନୁ ଦେଲେ ॥ ୬
[୨]ରତ୍ନେ ହେମବାସରେ ଯୁତ । ତିଳପର୍ବତ ଦେଲେ ସାତ ॥ ୭
୪ କାଳରେ ଭୂମିଆଦିମାନେ । ଦେହ ଶୁଦ୍ଧିକି ଲଭେ ସ୍ନାନେ ॥ ୮
ଅମେଧ୍ୟ ଲିପ୍ତାଦି ଶୌଚରେ । ଗର୍ଭାଦି ଶୁଦ୍ଧ ସଂସ୍କାରରେ ॥ ୯

---

୧. ବ୍ରଜରାଜ = ନନ୍ଦ । ୨. ରତ୍ନହେମବସ୍ତ୍ରରେ ।

ଇନ୍ଦ୍ରିୟ ଆଦି ତପସ୍ୟାରେ । ବ୍ରାହ୍ମଣ ଆଦି ଅଧ୍ୱରରେ ॥ ୧୦
ଦାନେ ସମସ୍ତ ଦ୍ରବ୍ୟମାନ । ସନ୍ତୋଷେ ଶୁଦ୍ଧ ହୋଏ ମନ ॥ ୧୧
ଆତ୍ମାରୂପରେ ଯେ ପ୍ରସିଦ୍ଧି । ଆତ୍ମବିଦ୍ୟାରେ ସେହୁ ଶୁଦ୍ଧି ॥ ୧୨
୫ ସ୍ୱସ୍ତି ପଢ଼ିଲେ ବିପ୍ରମାନେ । ସୂତ ମାଗଧ ବନ୍ଦୀଜନେ ॥ ୧୩
ଗାୟକମାନେ ଯେ ବା ଥିଲେ । ସେମାନେ ଗୀତକୁ ଗାଇଲେ ॥ ୧୪
ଭେରୀ ଦୁନ୍ଦୁଭିମାନେ ଯେହି । ବାଜିଲେ ପୁଣ ପୁଣ ହୋଇ ॥ ୧୫
୬ ମାର୍ଜିତ ସେଚିତ ଯହିଁରେ । ଦ୍ୱାର-ଅଙ୍ଗଣ-ଗୃହାନ୍ତରେ ॥ ୧୬
ବିଚିତ୍ର ଧ୍ୱଜମାନଙ୍କର । ଅଗ୍ରେ ଯେ ପତାକାନିକର ॥ ୧୭
ଯେ ବସ୍ତ୍ର-ପଲ୍ଲବ-ତୋରଣେ । ବ୍ରଜ ମଣ୍ଡିତ ହେଲା ତେଣେ ॥ ୧୮
୭ ହରିଦ୍ରା ତୈଳରେ ଲେପନ । ହେଲେ ଗୋ-ବତ୍ସ-ବୃଷମାନ ॥ ୧୯
ବିଚିତ୍ର ଧାତୁ ପିଛ[୧]କୁଳ । ଯେ ବା ବସନ ହେମମାଳ ॥ ୨୦
ଏ ଅଳଂକାରରୂପ ହୋଇ । ଅଛନ୍ତି ଯାହାଙ୍କର ତହିଁ ॥ ୨୧
୮ ଅମୂଲ୍ୟ ବସ୍ତ୍ର ଆଭରଣ । କବାଇ[୨] ପାଗେ[୩] ସେ ଭୂଷଣ ॥ ୨୨
ଘେନିଣ ନାନା ଉପାୟନ । ଗୋପେ ଅଇଲେ ହେ ରାଜନ ॥ ୨୩
୯ ଯଶୋଦାପୁତ୍ରଜନ୍ମ ଶୁଣି । ମୁଦିତ ଗୋକୁଳତରୁଣୀ ॥ ୨୪
ବସ୍ତ୍ରଭୂଷଣ ଅଞ୍ଜନରେ । ଆତ୍ମାକୁ ମଣ୍ଡିଲେ ସତ୍ୱରେ ॥ ୨୫
୧୦ ନବୀନ କୁଙ୍କୁମକେଶରେ । ଶୋଭା ଯା' ମୁଖପଙ୍କଜରେ ॥ ୨୬
ବିପୁଳ ଶ୍ରୋଣୀ ଯାହାଙ୍କର । ଗମନ୍ତେ ଉରଜେ ଅସ୍ଥିର ॥ ୨୭
ନାନା ଉପହାର ସହିତେ । ଗମନ କଲେ ସେ ତୁରିତେ ॥ ୨୮
୧୧ ଉଜ୍ଜ୍ୱଳ ମଣିମୟ ହୋଇ । କୁଣ୍ଡଳମାନେ ଯାଙ୍କ ଠାଇଁ ॥ ୨୯
କଣ୍ଠଦେଶରେ ଯାହାଙ୍କର । ପଦକମାନେ ମନୋହର ॥ ୩୦
ବିଚିତ୍ର ବାସ ଯାଙ୍କ ଠାରେ । ତ୍ୱରିତଗମନୁଁ ମାର୍ଗରେ ॥ ୩୧
ଶିଖରୁ ଚ୍ୟୁତ ମାଲ୍ୟଗଣ । ବୃଷ୍ଟି ହୋଉଛି ଅନୁକ୍ଷଣ ॥ ୩୨
ଅମୂଲ୍ୟ କନକନିର୍ମିତ । ବଳୟେ ଅଟନ୍ତି ଯେ ଯୁତ ॥ ୩୩
ଲୋଳ କୁଣ୍ଡଳ ପୟୋଧର । ହାରରେ ଶୋଭା ଯାହାଙ୍କର ॥ ୩୪
ସେ ନନ୍ଦଗୃହକୁ ଗମନ । କରନ୍ତେ ଦିଶିଲେ ଶୋଭନ ॥ ୩୫
୧୨ ତୁ ବତ୍ସ ! ଜୀଅ ଚିରକାଳ । ଏମନ୍ତ ବୋଲିଣ ସକଳ ॥ ୩୬
ବାଳକବିଷୟେ ଶଂସନ । କରନ୍ତେ ନାନା ଶୁଭମାନ ॥ ୩୭
ହରିଦ୍ରା ତୈଳ ଚୂର୍ଣ୍ଣଜଳେ । ସିଞ୍ଚନ୍ତେ ଅତି କୁତୂହଳେ ॥ ୩୮
କୃଷ୍ଣଙ୍କୁ କଲେକ ଗାୟନ । ଯେଣୁ କୃଷ୍ଣରେ ତାଙ୍କ ମନ ॥ ୩୯

---

୧. ପିଛ = ମୟୂର ଲାଞ୍ଜର ଏକ ପକ୍ଷ ।
୨. କବାଇ (ଦେଶଜ) (ମୂଳ-କଞ୍ଚୁକ) = ବୀର ପୋଷାକବିଶେଷ । ଯଥା -''କବଚ କବାଇ ରାଗଜିର ଟୋପି ବକତର ଏହି ପ୍ରକାର'' । (ଲାବଣ୍ୟବତୀ)
୩. ପାଗ = ପଗଡ଼ି (ଉଷ୍ଣୀଷ) ।

୧୩ ଯେ କୃଷ୍ଣ ଜଗତ-ଈଶ୍ୱର । [1]ଅଂଶସହିତେ ସେ ନନ୍ଦର ॥
ବ୍ରଜକୁ ଯାଆନ୍ତେ ତୁରିତ । ମହାଉତ୍ସବ ହେଲା ଜାତ ॥
ବିଚିତ୍ର ନାନା ବାଦ୍ୟମାନ । ଶବଦ କଲେ ଅତି ଘନ ॥
୧୪ ହରଷ ହୋଇଣ ଗୋପାଳେ । ଏକକୁ ଆରକ ସକଳେ ॥
ଦଧି ସଲିଳ କ୍ଷୀର ଘୃତେ । ସେଚନ କରନ୍ତେ, ଲେପନ୍ତେ ॥
ଲବଣୀମାନଙ୍କରେ ପୁଣ । ଫିଙ୍ଗିଲେ ଏକ ଆରକେଣ ॥
୧୫ ଅଦୀନ ଅଟେ ଆତ୍ମା ଯାର । ସେ ମହାମତି ବ୍ରଜେଶ୍ୱର ॥
୧୬ ସୂତ ମାଗଧ ବନ୍ଦୀ ଜନେ । ଯେ ବିଦ୍ୟାଉପଜୀବୀମାନେ ॥
[2]ହୋଇଣ ପ୍ରୀତିଯୁକ୍ତ ଚିତ୍ତ । ପୁତ୍ରଜନ୍ମସୁଖେ ବର୍ଦ୍ଧିତ ॥
ତାହାଙ୍କୁ କଲା ସେ ପ୍ରଦାନ । ବସନ, ଭୂଷଣ, ଗୋଧନ ॥
ବିଷ୍ଣୁର ଆରାଧନାଅର୍ଥେ । ସ୍ୱପୁତ୍ର-ଉଦୟନିମିତ୍ତେ ॥
ଆନମାନଙ୍କୁ ଯଥୋଚିତେ । ପୂଜିଲା ସେ ସେ ମନୋରଥେ ॥
୧୭ ରୋହିଣୀ ମହାଭାଗ୍ୟବତୀ । ନନ୍ଦସ୍ୱକାଶେ ଲଭି ପ୍ରୀତି ॥
ଯେ ଦିବ୍ୟ ବସ୍ତ୍ର ମାଳ ପୁଣ । ଉତ୍ତମ କଣ୍ଠ ଆଭରଣ ॥
ତେଣେ ହୋଇଣ ବିଭୂଷିତ । ଭ୍ରମଣ କଲା ହୋଇ ପ୍ରୀତ ॥
୧୮ ସେଦିନୁଁ ଅବଧି ନନ୍ଦର । ସର୍ବସମୃଦ୍ଧିମନ୍ତ ପୁର ॥
ହରିର ନିବାସୁଁ ଆତ୍ମାରେ । ଯେ ଗୁଣମାନେ ସେ ବ୍ରଜରେ ॥
ସେ ଘେନି ହେଲା ହେ ରାଜନ । ସେ ରମାବିହରଣସ୍ଥାନ ॥
୧୯ ଗୋକୁଳ ରକ୍ଷା କରିବାକୁ । ନିଯୋଗି ଗୋପାଳମାନଙ୍କୁ ॥
ହୁଅଇ କଂସନୃପତିର । ଯେ ପ୍ରତି ବରଷରେ କର ॥
ତାହା ଦେବାକୁ ମଧୁପୁର । ଗଲା ନନ୍ଦ ହେ କୁରୁବୀର ॥
୨୦ ଯେ ମିତ୍ର ଅଟେ ଆପଣାର । ଶୁଣି ସେ ନନ୍ଦ ଆସିବାର ॥
ରାଜାଙ୍କୁ କର ଦେଲେ ପୁଣ । ଏ କଥା ଗୋଚର କରିଣ ॥
ସେ ନନ୍ଦ ଯଉଁ ସ୍ଥାନେ ଥିଲେ । ତହିଁକି ବସୁଦେବ ଗଲେ ॥
୨୧ ସେ ପ୍ରିୟତମକୁ ଦେଖିଣ । ନନ୍ଦ ଉଠିଣ ତତକ୍ଷଣ ॥
ପ୍ରେମେ ବିହ୍ୱଳ ପ୍ରୀତମନ । ଦ୍ୱିଭୁଜେ କଲେ ଆଲିଙ୍ଗନ ॥
ପ୍ରାଣକୁ ପାଇଲେ ଯେସନ । ଶରୀର ହୋଏ ସଚେତନ ॥
୨୨ ନନ୍ଦର ଠାରୁ ପୂଜା ପାଇ । ସୁଖେ ଆସନେ ବସିଥାଇ ॥
ସାଦର ହୋଇଣ ତାହାକୁ । ପଚାରି ଆରୋଗ୍ୟବାର୍ତ୍ତାକୁ ॥

୧. ''କୃଷ୍ଣେ ବିଶ୍ୱେଶ୍ୱରେଽଂଶେନ ନନ୍ଦବ୍ରଜମୁପେୟୁଷି'' ପାଠ ଅନୁସାରେ ଅନୁବାଦ ହୋଇଅଛି । ''କୃଷ୍ଣେ ବିଶ୍ୱେଶ୍ୱରେଽନନ୍ତେ ନନ୍ଦସ୍ୟ ବ୍ରଜମାଗତେ'' - ପାଠାନ୍ତରମ୍ ।

୨. ''ଦଦୌ ପ୍ରୀତମନାସ୍ତତ୍ର ପୁତ୍ରଜନ୍ମସୁଖୈଧିତଃ'' ଇତି ଅଧିକଃ ପାଠଃ ।

| | | | | |
|---|---|---|---|---|
| | ବେନି ପୁତ୍ରଙ୍କ ଠାରେ ଚିତ୍ତ | । ହୋଇଣ ଅଛି ଆସକତ | ।। | ୬୯ |
| | ଏମନ୍ତ ପ୍ରକାରେ ବଚନ | । କହିଲେ ତାଙ୍କୁ ହେ ରାଜନ | ।। | ୭୦ |
| ୨୩ | ହେ ଭ୍ରାତ ! ବୃଦ୍ଧ ତୁମ୍ଭେ, ଜାତ | । ହୋଇ ନ ଥିଲା ତୁମ୍ଭ ସୁତ | ।। | ୭୧ |
| | ପୁତ୍ର ଜନମ ହେବ ମୋର | । ଏ ଆଶା ନ ଥିଲା ତୁମ୍ଭର | ।। | ୭୨ |
| | ଏବେ ଯା' ପୁତ୍ର ଜନମିଲା | । ଏ କଥା ବଡ଼ ଭାଗ୍ୟ ହେଲା | ।। | ୭୩ |
| ୨୪ | ତୁମ୍ଭେ ଏ ସଂସାରଚକ୍ରରେ | । ବର୍ତ୍ତିଥାଆନ୍ତେ ସ୍ୱଭାବରେ | ।। | ୭୪ |
| | ଆଜ ଲଭିଲ ଜନ୍ମ ଆନ | । ଦୁର୍ଲଭ ପୁତ୍ରଦରଶନ | ।। | ୭୫ |
| ୨୫ | ଯେ ଚିତ୍ରକର୍ମା ଏ ଭୁବନେ | । ଅଛନ୍ତି ମିତ୍ର ଲୋକମାନେ | ।। | ୭୬ |
| | ଏକ ସ୍ଥାନରେ ପ୍ରିୟ ବାସ | । ତାଙ୍କର ନୁହଇ ପ୍ରକାଶ | ।। | ୭୭ |
| | ସ୍ରୋତବେଗରେ ଯେ ଗମନ | । କରନ୍ତି ତୃଣଆଦିମାନ | ।। | ୭୮ |
| | ସେମାନଙ୍କର ସ୍ଥିତି ଯେହ୍ନେ | । ନ ସମ୍ଭବଇ ଏକ ସ୍ଥାନେ | ।। | ୭୯ |
| ୨୬ | ଏବେ ପଚାରୁଥାଇଁ ପୁଣ | । ବହୁତ ଜଳଲତାତୃଣ | ।। | ୮୦ |
| | ଯହିଁରେ ଅଛନ୍ତି ସନ୍ତତ | । ଯେ ଧେନୁମାନଙ୍କର ହିତ | ।। | ୮୧ |
| | ବୃହତ ବନ ସେ ତୁମ୍ଭର | । କୁଶଳ ଅଛି ଟିକି ତାର | ।। | ୮୨ |
| | ମିତ୍ରମାନଙ୍କେ ବୃତ ହୋଇ | । ଯହିଁରେ ଅଛ ତୁମ୍ଭେ ରହି | ।। | ୮୩ |
| ୨୭ | ହେ ଭ୍ରାତ ! ବ୍ରଜରେ ତୁମ୍ଭର | । ମାତା ସହିତେ ମୋ' କୁମର | ।। | ୮୪ |
| | ଅଛି ଟିକି ସେ ସୁଖୀ ହୋଇ | । ପାଳିଛ ତାକୁ ତୁମ୍ଭେ ଦୁଇ | ।। | ୮୫ |
| | ତୁମ୍ଭଙ୍କୁ ଏ ମୋହର ତାତ | । ଏ ରୂପେ ମଣିଅଛି ଚିତ୍ତ | ।। | ୮୬ |
| ୨୮ | ବାନ୍ଧବମାନଙ୍କ ନିମିତ୍ତ | । ଯଉଁ ତ୍ରିବର୍ଗ ସଂପାଦିତ | ।। | ୮୭ |
| | ପୁରୁଷମାନଙ୍କର ସେହି | । ଶାସ୍ତ୍ର ଏମନ୍ତ ଅଛି କହି | ।। | ୮୮ |
| | ଆପଣା ଉଦରପୋଷଣ | । ମାତ୍ରକୁ ସେ ଅଟେ ଦୂଷଣ | ।। | ୮୯ |
| | କ୍ଳେଶ ପାଆନ୍ତେ ବନ୍ଧୁଜନ | । ତ୍ରିବର୍ଗେ ନାହିଁ ପ୍ରୟୋଜନ | ।। | ୯୦ |

ଶ୍ରୀନନ୍ଦ ଉବାଚ

| | | | | |
|---|---|---|---|---|
| ୨୯ | ତୁମ୍ଭର ଦେବକୀର ସୁତ | । ବହୁତ କଂସ କଲା ହତ | ।। | ୯୧ |
| | କନିଷ୍ଠ ଏକ ସୁତା ଥିଲା | । ସେ ପୁଣି ଆକାଶକୁ ଗଲା | ।। | ୯୨ |
| ୩୦ | ଅଦୃଷ୍ଟ ସମାପ୍ତି ଯାହାର | । ଏମନ୍ତ ଅଟଇ ଯେ ନର | ।। | ୯୩ |
| | ଯେବେ ପୁତ୍ରାଦିସୁଖଦାୟୀ | । ଅଦୃଷ୍ଟ ବିନାଶ ହୁଅଇ | ।। | ୯୪ |
| | ସେକାଳେ ପୁତ୍ର ଆଦିଙ୍କର | । ଅବଶ୍ୟ ହୁଅଇ ସଂହାର | ।। | ୯୫ |
| | ଅଦୃଷ୍ଟ ପରମ ଯାହାର | । ଏମନ୍ତ ଅଟେ ଯଉଁ ନର | ।। | ୯୬ |
| | ପୁତ୍ରାଦି ନ ଥିଲେହେଁ ତାକୁ | । ଅଦୃଷ୍ଟ ଦିଏ ସେମାନଙ୍କୁ | ।। | ୯୭ |
| | ସ୍ୱଦୁଃଖସୁଖକୁ କାରଣ | । ଅଦୃଷ୍ଟ ଏମନ୍ତ ରୂପେଣ | ।। | ୯୮ |
| | ଯେବଣ ଲୋକ ଜାଣିଥାଇ | । ସେ ଲୋକ ମୋହିତ ନୁହଇ | ।। | ୯୯ |

ଶ୍ରୀବସୁଦେବ ଉବାଚ

୩୧ ରାଜା ବାର୍ଷିକ କର ଦେଲ । ଆମ୍ଭମାନଙ୍କୁ ହିଁ ଦେଖିଲ ॥ ୧୦୦
ବହୁତ ଦିନ ଏ ସ୍ଥାନରେ । ନ ରହ, ଯେଣୁ ଗୋକୁଳରେ ॥ ୧୦୧
ବହୁତ ଉତପାତମାନେ । ଅଛନ୍ତି ଶୁଣ ସାବଧାନେ ॥ ୧୦୨

ଶ୍ରୀଶୁକ ଉବାଚ

୩୨ ଏମନ୍ତ ପ୍ରକାରେ ବଚନ । କହନ୍ତେ ସେ ଶୂରନନ୍ଦନ ॥ ୧୦୩
ନନ୍ଦକୁ ଆଦି ହୋଇ ଯେତେ । ଗୋପାଳେ ଥିଲେ ସେ ସମସ୍ତେ ॥ ୧୦୪
ବସୁଦେବଙ୍କୁ ତଦନ୍ତରେ । ଆଜ୍ଞା ମାଗିଣ ଯେ ଯାହାରେ ॥ ୧୦୫
ବଳୀବର୍ଦ୍ଦରେ ଯୁତ ହୋଇ । ଯେତେ ଶକଟ ଥିଲେ ତହିଁ ॥ ୧୦୬
ସେମାନ ଆରୋହଣ କଲେ । ତକ୍ଷଣେ ଗୋକୁଳକୁ ଗଲେ ॥ ୧୦୭
ଶ୍ରୀକୃଷ୍ଣ ଜନ୍ମ ସମୟରେ । ଯେତେକ ଉତ୍ସବ ବ୍ରଜରେ ॥ ୧୦୮
ସେ କଥା ଦୀନବନ୍ଧୁ ଚିନ୍ତି । ଛାଡ଼ିଲା ଭବସିନ୍ଧୁଭୀତି ॥ ୧୦୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀନନ୍ଦ-ବସୁଦେବସଙ୍ଗମୋ
ନାମ ପଞ୍ଚମୋଽଧ୍ୟାୟଃ ॥

## ଷଷ୍ଠ ଅଧ୍ୟାୟ

ଷଷ୍ଠେ ସଖ୍ୟୁର୍ଗିରା ନନ୍ଦୋ ବ୍ରଜଂ ଗଚ୍ଛନ୍ ମୃତାଂ ପଥି ।
ଦୃଷ୍ଟ୍ୱା ତୁ ରାକ୍ଷସୀଂ ତସ୍ୟା ମୃତ୍ୟୁଂ ଶ୍ରୁତ୍ୱାଥ ବିସ୍ମିତଃ ॥ ୧

ଶ୍ରୀଶୁକ ଉବାଚ

୧ ଯା' କହିଛନ୍ତି ବସୁଦେବ । ସେ ସତ୍ୟ ଅବଶ୍ୟ ହୋଇବ ॥ ୧
ମାର୍ଗେ ଏମନ୍ତ ଚିନ୍ତା କରି । ଉତ୍‌ପାତ ଆଗମକୁ ଡରି ॥ ୨
ନନ୍ଦ ଆଶଙ୍କା ମନେ କଲା । ହରିଙ୍କି ଶରଣ ପଶିଲା ॥ ୩
୨ କଂସର ଆଜ୍ଞା ଶିରେ ଘେନି । ପୂତନା ଯେ ବାଳଘାତିନୀ ॥ ୪
ପୁର, ଆକର[୧] ଗ୍ରାମମାନ । ଏ ଆଦି ଯେତେ ଯେତେ ସ୍ଥାନ ॥ ୫
ନାଶନ୍ତେ ତହିଁ ଶିଶୁମାନ । ଭ୍ରମଣ କଲା ଦିନୁଁ ଦିନ ॥ ୬
୩ ରାକ୍ଷସଙ୍କର ବିନାଶନ । ହରିଶ୍ରବଣ ଆଦିମାନ ॥ ୭
ନିଜ କର୍ମରେ ଯଉଁ ସ୍ଥାନେ । କରନ୍ତି ନାହିଁ ସାଧୁମାନେ ॥ ୮
ରାକ୍ଷସୀମାନେ ଥାନ୍ତି ତହିଁ । ସ୍ୱୟେଂ ଅଛନ୍ତି କୃଷ୍ଣ ଯହିଁ ॥ ୯
ତହିଁ ସେମାନଙ୍କ ପ୍ରଭାବ । କି ରୂପେ ଅବା ସମ୍ଭବିବ ॥ ୧୦
୪ ଭ୍ରମଣ କରନ୍ତେ ଗଗନେ । ଇଚ୍ଛାଏ ମିଳେ ନାନା ସ୍ଥାନେ ॥ ୧୧

---

୧. ଆକର = ଖଣି ।

ଏକ ଦିନକେ ସେ ପୂତନା । ମାୟାରେ ହୋଇ ଦିବ୍ୟାଙ୍ଗନା ।। ୧୨
ଆକାଶୁଁ ତଳକୁ ଅଇଲା । ନନ୍ଦଗୋକୁଳରେ ମିଳିଲା ।। ୧୩
୫ ମଲ୍ଲିକାକୁସୁମେ ଯାହାର । କବର[୧] ଦିଶଇ ସୁନ୍ଦର ।। ୧୪
୬ ପୃଥୁ ନିତମ୍ବ ସ୍ତନ ଦୁଇ । ଆକ୍ରମିବାରୁ ପ୍ରାୟ ହୋଇ ।। ୧୫
କୃଶ ହୋଇଛି ଯା' ଉଦର । ପିନ୍ଧିଛି ଯେ ଦିବ୍ୟ ଅମ୍ବର ।। ୧୬
ଯେ କର୍ଣ୍ଣଭୂଷଣ କଂପିତ । ତାର କାନ୍ତିରେ ଉଲ୍ଲସିତ ।। ୧୭
ଯେ କେଶମାନେ ତେଣେ ଯାର । ମଣ୍ଡିତ ଆନନ ସୁନ୍ଦର ।। ୧୮
ଯହିଁରେ ସ୍ମିତ ମନୋହର । ପ୍ରୟୋଗରେ ସେ କଟାକ୍ଷର ।। ୧୯
ବ୍ରଜନିବାସୀ ଯେତେ ଜନ । ହରୁଅଛି ଯେ ତାଙ୍କ ମନ ।। ୨୦
ସେ ପୂତନାକୁ ଗୋପୀମାନେ । ମଣିଲେ ଏ ରୂପରେ ମନେ ।। ୨୧
ପଙ୍କଜ ଘେନିଣ କରରେ । ପତିଙ୍କି ଦେଖିବା ହେତୁରେ ।। ୨୨
କମଳା ମୂର୍ତ୍ତିମନ୍ତ ହୋଇ । ପ୍ରବେଶ ହୋଇଲା ଏଠାଇଁ ।। ୨୩
୭ ଯେ ବାଳକଙ୍କୁ ଗ୍ରହପ୍ରାୟ । ଅସୁରୀ ଅଟଇ ନିର୍ଦ୍ଦୟ ।। ୨୪
ବାଳକମାନଙ୍କୁ ଇଚ୍ଛାରେ । ଖୋଜନ୍ତେ ନନ୍ଦର ମନ୍ଦିରେ ।। ୨୫
ଶେଯେ ଦେଖିଲା ଏକ ବାଳ । ଯେ ଦୁଷ୍ଟଜନଙ୍କର କାଳ ।। ୨୬
ଆପଣା ଉଗ୍ରତେଜ ଯେହି । ଆଚ୍ଛନ୍ନ କରିଛନ୍ତି ତାହି ।। ୨୭
ଭସ୍ମରେ ହୋଇଣ ଆଚ୍ଛନ୍ନ । ଯେସନେ ଥାଇ ହୁତାଶନ ।। ୨୮
୮ ସଚରାଚର-ଆତ୍ମା ହରି । ବାଳକଗ୍ରହ ଏ ଅସୁରୀ ।। ୨୯
୮କ ଏମନ୍ତ ବିଚାରିଣ ମନ । ବୁଜିଲେ ଆପଣା ନୟନ ।। ୩୦
[୨]ହେଲେ ହେଁ ମହେଶ୍ୱର ଶିଶୁ । ଭାବର ବିଭାବନବଶୁଁ ।। ୩୧
କିଛି ନ କହି ହେଲେ ତୁନି । ଅସୁରୀ ନ ପାରିଲା ଚିହ୍ନି ।। ୩୨
ସ୍ୱଭାବେ ଚେଷ୍ଟା ଜଗତର । ବିଜ୍ଞାତ ଅଟେ ଯେ ହରିର ।। ୩୩
ଅନ୍ତକ ଯେ ଦୁଷ୍ଟଜନର । ତାହାଙ୍କୁ ଧଇଲା କୋଳର ।। ୩୪
ଉରଗ ଯେହ୍ନେ ଶୋଇଥାଇ । ଅବୁଦ୍ଧି ଲୋକ ତାକୁ ଯାଇ ।। ୩୫
ଏ ରଜ୍ଜୁ ବୋଲି ବୁଦ୍ଧି କରେ । ଧରଇ ଆପଣା ହସ୍ତରେ ।। ୩୬
୯ ତୀକ୍ଷ୍ଣ ଅଟଇ ମନ ଯାର । ଯାହାର ଚେଷ୍ଟା କ୍ଷାନ୍ତି[୩] ହର ।। ୩୭
କୋମଳ କୋଷମଧ୍ୟେ ସ୍ଥିତ । ସୁତୀକ୍ଷ୍ଣ ଖଡ଼୍‌ଗ ଯେମନ୍ତ ।। ୩୮
ଉତ୍ତମ ସ୍ତିରୀରୂପ ହୋଇ । ଗୃହମଧ୍ୟରେ ଅଛି ରହି ।। ୩୯

---

୧. କବର = ଜୁଡ଼ା ।
୨. ମହେଶ୍ୱରତ୍ୱେଽପି ଚ ବାଲଭାବଂ ବିଭାବୟନ୍ କିଂଚିଦୁବାଚ ନ ପ୍ରଭୁଃ ।
ଅଜ୍ଞାୟମାନାଥ ନିଶାଚରୀ ହରିଂ ନିସର୍ଗବିଜ୍ଞାତ୍‌ଜଗଦ୍‌ବିଚେଷ୍ଟିତମ୍ ।। ଇତି ଅଧିକଃ ପାଠଃ ।।
(ନିଜ) ମହେଶ୍ୱରତ୍ୱ ଥିଲେ ମଧ୍ୟ ପ୍ରଭୁ ବାଳ (ଶିଶୁ) ଭାବକୁ ବିଚାର କରନ୍ତେ କିଛି କହିଲେ ନାହିଁ ।
ନିଶାଚରୀ ହରିଙ୍କୁ ନ ଜାଣନ୍ତେ ଜଗତର କାମଧନ୍ଦାକୁ ସ୍ୱଭାବତଃ ବିଶେଷରୂପେ ଜାଣୁଥିଲା ।
୩. କ୍ଷାନ୍ତି = କ୍ଷମା, ସହିଷ୍ଣୁତା ।

ଦେଖିଣ ଯଶୋଦାରୋହିଣୀ । ତାର ପ୍ରଭାରେ ଦୁହେଁ ପୁଣି ॥ ୪୦
ମୋହିତ ହୋଇଣ ରହିଲେ । ତାକୁ ନିବାରି ନ ପାରିଲେ ॥ ୪୧
୧୦ ଘୋର ରାକ୍ଷସୀ ସେ ସ୍ଥାନରେ । କୃଷ୍ଣଙ୍କୁ ଘେନିଣ କୋଳରେ ॥ ୪୨
ଦୁର୍ଜର ବିଷ ଅଛି ଯହିଁ । ସେ ସ୍ୱୟଂ ଉତ୍କଟ ଅଟଇ ॥ ୪୩
ଶିଶୁକୁ ଦେଲା ସେହୁ ସ୍ତନ । ଏଥୁ ଅନ୍ତରେ ଭଗବାନ ॥ ୪୪
କରଯୁଗଳେ ତାହା ଧରି । ଅତ୍ୟନ୍ତ ଗାଢ଼େ ପୀଡ଼ା କରି ॥ ୪୫
ସଂଯୁତ ହୋଇଣ ରୋଷରେ । ପିଇଲେ ପ୍ରାଣସହିତରେ ॥ ୪୬
୧୧ ଜୀବର ସକଳ ମର୍ମ୍ମରେ । ପୀଡ଼ା ପାଆନ୍ତେ ସେ ନିର୍ଭରେ ॥ ୪୭
ବୋଲନ୍ତେ ଛାଡ଼ ଛାଡ଼ ବାଣୀ । ବୁଲାଇ ନେତ୍ରଯୁଗ ପୁଣି ॥ ୪୮
ଚରଣ ଭୁଜ ପୁଣ ପୁଣ । ଚାଳନ୍ତେ ଆକୁଳ ହୋଇଣ ॥ ୪୯
ଝାଳେ ପୂରିତ ସର୍ବକାୟ । ରୋଦନ କଲା ଅତିଶୟ ॥ ୫୦
୧୨ ଅତି ଗଭୀର ବେଗ ଯାର । ଏମନ୍ତ ଧ୍ୱନିରେ ତାହାର ॥ ୫୧
ଅଚଳ ସହିତରେ ମହୀ । ଚଳିଲା ଗ୍ରହଯୁତ ଯେହି ॥ ୫୨
ଚଳିତ ହେଲା ସେ ଆକାଶ । ଯେ ରସାତଳ ଦଶ ଦିଶ ॥ ୫୩
ସେମାନେ ପ୍ରତିଧ୍ୱନି କଲେ । ଯେ ଯଉଁ ସ୍ଥାନେ ଲୋକ ଥିଲେ ॥ ୫୪
ବଜ୍ରନିପାତ ଆଶଙ୍କାରେ । ସେମାନେ ପଡ଼ିଲେ ଭୂମିରେ ॥ ୫୫
୧୩ ଅସୁରୀ ଏମନ୍ତ ପ୍ରକାରେ । ବ୍ୟଥାକୁ ଲଭିଲା ସ୍ତନରେ ॥ ୫୬
ନିଜ ମୁଖକୁ ବିସ୍ତାରିଣ । କେଶ ଚରଣ ଭୁଜ ପୁଣ ॥ ୫୭
ପ୍ରସାରି ନିଜ ରୂପ ଧରି । ଗୋଷ୍ଠେ ପଡ଼ିଲା ପ୍ରାଣ ହାରି ॥ ୫୮
ହେ ନୃପ ! ବଜ୍ରେ ହତ ହୋଇ । ବୃତ୍ର ପଡ଼ିଲା ଯେହ୍ନେ ମହୀ ॥ ୫୯
୧୪ ହେ ରାଜଇନ୍ଦ୍ର ତା' ଶରୀର । ପଡ଼ନ୍ତେ ମଧ୍ୟେ ଛ' [୧]କୋଶର ॥ ୬୦
ଯେତେକ ଥିଲେ ବୃକ୍ଷମାନ । ସମସ୍ତ କଲା ତାହା ଚୂର୍ଣ୍ଣ ॥ ୬୧
ସେ କଥା ଅତି ଅଦଭୁତ । ଜଗତେ ହୋଇଲା ବିଖ୍ୟାତ ॥ ୬୨
୧୫| ଈଷଦଣ୍ଡର[୨] ପ୍ରାୟ ହୋଇ । ଅଛନ୍ତି ଦନ୍ତମାନେ ଯହିଁ ॥ ୬୩
୧୬| ଯହିଁରେ ନାସିକାବିବର । ଯେସନେ ପର୍ବତକନ୍ଦର ॥ ୬୪
ଗଣ୍ଡଶଇଳ[୩] ପ୍ରାଏ ହୋଇ । ସ୍ତନଯୁଗଳ ଅଛି ଯହିଁ ॥ ୬୫
ଯେ ପୁଣ ଅଟେ ଭୟଙ୍କର । ଅରୁଣବର୍ଣ୍ଣ କେଶ ଯାର ॥ ୬୬
ଆକୁଳ ହେବା ସମୟରେ । ଫିଟି ପଡ଼ିଛି ଧରଣୀରେ ॥ ୬୭
ଅନ୍ଧକୂପର ପ୍ରାଏ ହୋଇ । ଲୋଚନଯୁଗ ଅଛି ଯହିଁ ॥ ୬୮
ଯହିଁରେ ପୁଲିନ-ଆକାର । ଜାନୁଯୁଗଳ ଭୟଙ୍କର ॥ ୬୯
ବାନ୍ଧିଲା ବନ୍ଧପ୍ରାୟ ହୋଇ । ଭୁଜ ଚରଣ ଉରୁ[୪] ଯହିଁ ॥ ୭୦

୧. କୋଶର = ତ୍ରିଗବ୍ୟୂତି = ଛ'କୋଶ ।
୨. ଈଷ = ଲଙ୍ଗଳକଣ୍ଟି ।
୩. ଗଣ୍ଡଶୈଳ = ପର୍ବତଚ୍ୟୁତ ସ୍ଥୂଳ ପ୍ରସ୍ତରଖଣ୍ଡ ।
୪. ଉରୁ = ଅଛି ।

ଜଳ ନ ଥିଲା ହ୍ରଦପ୍ରାଏ । ଉଦର ଯହିଁ ଶୋଭା ପାଏ ॥ ୭୧
ଏମନ୍ତ ରାକ୍ଷସୀଶରୀର । କରିଣ ନୟନଗୋଚର ॥ ୭୨
ଗୋପୀ ଗୋପାଳ ଯେତେ ଥିଲେ । ସମସ୍ତେ ତ୍ରାସକୁ ଲଭିଲେ ॥ ୭୩
ପୂର୍ବେ ଗର୍ଜନେ ରାକ୍ଷସୀର । ସେ ଗୋପ-ଗୋପୀମାନଙ୍କର ॥ ୭୪
ହୃଦୟ, କର୍ଣ୍ଣ, ଶିର ଯେହି । ଥିଲା ଫାଟିଲାପ୍ରାଏ ହୋଇ ॥ ୭୫
୧୮ ବାଳକ ତାହାର ଉରରେ[୧] । ଖେଳନ୍ତେ ଭୟ-ଅଭାବରେ ॥ ୭୬
ଗୋପୀଏ ସସଂଭ୍ରମ ହୋଇ । ବେଗେ ଘେନିଲେ ତାକୁ ଯାଇ ॥ ୭୭
୧୯ ଯଶୋଦା ରୋହିଣୀ ସହିତେ । ଗୋପାଳନାରୀମାନେ ଯେତେ ॥ ୭୮
ବାଳକସକଳଅଙ୍ଗରେ । ଗୋପୁଚ୍ଛଭ୍ରମଣ ଆଦିରେ ॥ ୭୯
ସେ ବିଧି କଲେ ତତକାଳ । ରକ୍ଷା ପାଇବ ଯେଣେ ବାଳ ॥ ୮୦
୨୦ ଗୋମୂତ୍ରେ ସ୍ନାନ କରାଇଣ । ଗୋରଜେ ଗୋମୟରେ ପୁଣ ॥ ୮୧
[୨]ଯେ ରକ୍ଷା ଦ୍ୱାଦଶ ଅଙ୍ଗରେ । କଲେ ତା' ନାମମାନଙ୍କରେ ॥ ୮୨
୨୧ ସକଳ ଗୋକୁଳକୁମାରୀ । ଜଳରେ ଆଚମନ କରି ॥ ୮୩
ଆପଣା କରଯୁଗଳରେ । ପାଦାଦି ଅଙ୍ଗମାନଙ୍କରେ ॥ ୮୪
ଯେ ଅଜ ଆଦି ଏକାଦଶ । ସେ ବୀଜମାନ କରି ନ୍ୟାସ ॥ ୮୫
ବାଳକଅଙ୍ଗରେ ପ୍ରକାଶ । କଲେ ପୁଣ ସେ ବୀଜନ୍ୟାସ ॥ ୮୬
୨୨ ଚରଣଯୁଗଳକୁ ତୋର । ଅଜ ରଖନ୍ତୁ ନିରନ୍ତର ॥ ୮୭
ଜାନୁଯୁଗଳ ଯେ ବିଦିତ । ତା' ରକ୍ଷା କରୁ ମଣିମନ୍ତ[୩] ॥ ୮୮
ଯଜ୍ଞ ପାଳନାକରୁ ଉରୁ । ଅଚ୍ୟୁତ କଟି ରକ୍ଷାକରୁ ॥ ୮୯
ଜଠର ରଖୁ ହୟଗ୍ରୀବ । ହୃଦୟ ରଖନ୍ତୁ କେଶବ ॥ ୯୦
ଈଶ ରଖନ୍ତୁ ତୋ' ଉଦର । ଇନ[୪] ରଖନ୍ତୁ କଣ୍ଠ ତୋର ॥ ୯୧
ବିଷ୍ଣୁ ତୋ' ଭୁଜକୁ ପାଳନ । କରନ୍ତୁ, ଯେ ତୋର ବଦନ ॥ ୯୨
ତା' ଉରୁକ୍ରମ ରଖୁ, ଶିର । ରଖନ୍ତୁ ଈଶ୍ୱର ତୋହର ॥ ୯୩
୨୩ ଚକ୍ରୀ ଅଗ୍ରତେ ତୋର ହୋଉ । ଗଦାସହିତ ହରି ଯେହୁ ॥ ୯୪

---

୧. ଉରରେ = ଉପରେ ।
୨. ଦ୍ୱାଦଶ ଅଙ୍ଗ ଓ ଦ୍ୱାଦଶ ନାମ :-
ଲଲାଟେ କେଶବଂ ଧ୍ୟାୟେ ନାରାୟଣ ମଥୋଦରେ
ବକ୍ଷଃସ୍ଥଳେ ମାଧବଂ ତୁ ଗୋବିନ୍ଦଂ କଣ୍ଠକୂପକେ ॥୧
ବିଷ୍ଣୁଂ ଚ ଦକ୍ଷିଣେ କୁକ୍ଷୌ ବାହୌ ଚ ମଧୁସୂଦନମ୍ ।
ତ୍ରିବିକ୍ରମଂ କନ୍ଧରେ ତୁ ବାମନଂ ବାମପାର୍ଶ୍ୱକେ ॥ ୨
ଶ୍ରୀଧରଂ ବାମବାହୌ ତୁ ହୃଷୀକେଶଂ ତୁ କନ୍ଧରେ ।
ପୃଷ୍ଠେ ତୁ ପଦ୍ମନାଭଂ ଚ କଟ୍ୟାଂ ଦାମୋଦରଂ ନ୍ୟସେତ୍ ॥ ୩
ତତ୍‌ପ୍ରକ୍ଷାଳନତୋୟଂ ତୁ ବାସୁଦେବେତି ମୂର୍ଧ୍ନି ॥
୩. ମଣିମନ୍ତ = ସୂର୍ଯ୍ୟ । ୪. ଇନ = ପ୍ରଭୁ ।

ସେ ରହୁ ପୃଷ୍ଠଭାଗେ ତୋର । ବେନି ପାର୍ଶ୍ୱରେ ଧନୁର୍ଦ୍ଧର ॥ ୯୫
ମଧୁହା ଅସିଧର ପୁଣ । ଅଜନ ଥାଉ ଅନୁକ୍ଷଣ ॥ ୯୬
ଯେ ଉରୁଗାୟ ଶଙ୍ଖଧର । କୋଣମାନଙ୍କେ ଥାଉ ତୋର ॥ ୯୭
ଉପେନ୍ଦ୍ର ଉପରରେ ଥାଉ । ଅଧୋଭାଗରେ ତାର୍କ୍ଷ୍ୟ ରହୁ ॥ ୯୮
ଯେ ବା ପୁରୁଷ ହଳଧର । ସେ ସବୁଦିଗେ ଥାଉ ତୋର ॥ ୯୯
୨୪ ଇନ୍ଦ୍ରିୟମାନଙ୍କୁ ବିଶେଷ । ରଖନ୍ତୁ ତୋର ହୃଷୀକେଶ ॥ ୧୦୦
ପ୍ରାଣ ରଖନ୍ତୁ ନାରାୟଣ । ଶ୍ୱେତଦ୍ୱୀପର ପତି ପୁଣ ॥ ୧୦୧
ଚିତ୍ତକୁ ରଖନ୍ତୁ ତୋହର । ମନ ରଖନ୍ତୁ ଯୋଗେଶ୍ୱର ॥ ୧୦୨
୨୫ ବୁଦ୍ଧିକି ପୃଶ୍ନିଗର୍ଭ ତୋର । ରଖୁ, ଯେ ପୁଣି ଅହଂକାର ॥ ୧୦୩
ରଖନ୍ତୁ ତାହା ଭଗବାନ । କରନ୍ତେ ନାନା କ୍ରୀଡ଼ାମାନ ॥ ୧୦୪
ଗୋବିନ୍ଦ ରଖନ୍ତୁ ନିଶ୍ଚୟେ । ମାଧବ ଶୟନସମୟେ ॥ ୧୦୫
୨୬ ଗମନ କରନ୍ତେ ତୁ ପୁଣ । ବୈକୁଣ୍ଠ କରନ୍ତୁ ରକ୍ଷଣ ॥ ୧୦୬
ଶ୍ରୀପତି ରଖନ୍ତୁ ବସନ୍ତେ । ଯେ ଯଜ୍ଞଭୋକ୍ତା ସେ ଭୁଂଜନ୍ତେ ॥ ୧୦୭
କରନ୍ତୁ ରକ୍ଷାକୁ ତୋହର । ଯେ ସର୍ବଗ୍ରହଭୟଙ୍କର ॥ ୧୦୮
୨୭| ଡାକିନୀ ଯାତୁଧାନୀମାନେ । କୃଷ୍ମାଣ୍ଡ ବାଳଗ୍ରହେ ଆନେ ॥ ୧୦୯
୨୯| ଯକ୍ଷ ପିଶାଚ ଯେ ବା ପ୍ରେତ । ରାକ୍ଷସ ବିନାୟକ, ଭୂତ ॥ ୧୧୦
କୋଟରା ଜ୍ୟେଷ୍ଠା ଯେ ରେବତୀ । ପୂତନା ମାତୃକାଦି ଭୀତି ॥ ୧୧୧
ଦେହ-ଇନ୍ଦ୍ରିୟ-ପ୍ରାଣହର । ଉନ୍ମାଦ ଯେ ବା ଅପସ୍ମାର ॥ ୧୧୨
ଯେ ମହା ଉତପାତମାନେ । ପ୍ରକାଶ ହୁଅନ୍ତି ସ୍ୱପନେ ॥ ୧୧୩
ଯେ ବୃଦ୍ଧ କ୍ରୁଦ୍ଧ ଗ୍ରହେ ଆନ । ସେ ସର୍ବେ ହୁଅନ୍ତୁ ନିଧନ ॥ ୧୧୪
ନାମଗ୍ରହଣରୁ ବିଷ୍ଣୁର । ଭୟ ସନ୍ତତ ଯାହାଙ୍କର ॥ ୧୧୫

ଶ୍ରୀଶୁକ ଉବାଚ

୩୦ ସ୍ନେହରେ ବଦ୍ଧ ଗୋପୀଗଣ । ଏରୂପେ କଲେ ଯା' ରକ୍ଷଣ ॥ ୧୧୬
ପିଆଇ ସେ ସୁତକୁ ସ୍ତନ । ମାତା କରାଇଲେ ଶୟନ ॥ ୧୧୭
୩୧ ଗୋପାଳେ ନନ୍ଦ ଆଦି ହୋଇ । ଥିଲେ ଯେ ମଥୁରାରେ ଯାଇ ॥ ୧୧୮
ମଥୁରାପୁରୁଁ ସେହିକାଳେ । ବ୍ରଜକୁ ଗଲେ ସେ ସକଳେ ॥ ୧୧୯
ପୂତନାଦେହକୁ ଦେଖିଣ । ଅତିବିସ୍ମୟ ହେଲେ ପୁଣ ॥ ୧୨୦
୩୨ ନିଶ୍ଚୟେ ବସୁଦେବ ଋଷି । ଜାତ ହୋଇଛି ଏଥେ ଆସି ॥ ୧୨୧
ଯୋଗେଶ୍ୱର ବା ଜନମିଲେ । ସେ ଯଉଁ ବଚନ କହିଲେ ॥ ୧୨୨
ସେ ଉତପାତ ଆମ୍ଭେମାନେ । ଦେଖିଲୁଁ ଆଜ ଏହିସ୍ଥାନେ ॥ ୧୨୩
୩୩ ପୂତନାଦେହ ସେ ସ୍ଥାନରେ । କାଟି ପରଶୁମାନଙ୍କରେ ॥ ୧୨୪
ଗୋପାଳେ ଅବୟବମାନ । କରି ତାହାକୁ ଭିନ୍ନ ଭିନ୍ନ ॥ ୧୨୫

| | | | | |
|---|---|---|---|---|
| | ଦୂରରେ ନେଇ ପକାଇଣ | ଦହିଲେ କାଷ୍ଟେ ବେଢ଼ାଇଣ | ॥ ୧୨୬ |
| ୩୪ | ଦାହ ହୁଅନ୍ତେ ସେ ଶରୀର | ଯେ ଧୂମ ହୋଇଲା ବାହାର | ॥ ୧୨୭ |
| | ବାସିଲା ଅଗୁରୁସମାନ | କୃଷ୍ଣ ପିଇଲେ ଯାହା' ସ୍ତନ | ॥ ୧୨୮ |
| | ତେଣେ ତା' ଯେତେ ପାପ ଥିଲା | ସେ ତତକାଳ ନାଶ ଗଲା | ॥ ୧୨୯ |
| ୩୫ | ଯେ ବାଳକଙ୍କୁ ଲୋକଙ୍କର | ମାରେ, ରୁଧିର ଯା' ଆହାର | ॥ ୧୩୦ |
| | ଏମନ୍ତ ପୂତନା ରାକ୍ଷସୀ | ନାଶ କରିବା ଅର୍ଥେ ଆସି | ॥ ୧୩୧ |
| | ସ୍ତନ ସମର୍ପିଣ ହରିଙ୍କି | ଲଭିଲା ଉତ୍ତମ ଗତିକି | ॥ ୧୩୨ |
| ୩୬ | ପରମ ଆତ୍ମା ଯେ ଶ୍ରୀହରି | ଶ୍ରଦ୍ଧାରେ ଭଗତିରେ କରି | ॥ ୧୩୩ |
| | ବସ୍ତ୍ରହରଣ ହେଲା ଦିନେ | ଯେହ୍ନେ ତାହାଙ୍କ ମାତାମାନେ | ॥ ୧୩୪ |
| | ସେ ରୂପେ ସ୍ନେହବନ୍ତ ହୋଇ | ଯେ କିଛି ପ୍ରିୟ ଦ୍ରବ୍ୟ ଦେଇ | ॥ ୧୩୫ |
| | ସେ ଲୋକଗତି ହେବ ଯାହା | ବଚନେ କି କହିବି ତାହା | ॥ ୧୩୬ |
| ୩୭ | ଲୋକବନ୍ଦିତ ଯଉଁ ଜନ | ସେ ଯାକୁ କରନ୍ତି ବନ୍ଦନ | ॥ ୧୩୭ |
| ୩୮ | ଯେ ଭକ୍ତହୃଦୟରେ ସ୍ଥିତ | ସେ ପାଦଯୁଗରେ ଅଚ୍ୟୁତ | ॥ ୧୩୮ |
| | ଯଉଁ ପୂତନାର ଅଙ୍କକୁ | ଆରୋହି ପିଇଲେ ସ୍ତନକୁ | ॥ ୧୩୯ |
| | ଜନନୀଗତି ସ୍ୱର୍ଗ ଯେହି | ଲଭିଲା ସେ ରାକ୍ଷସୀ ହୋଇ | ॥ ୧୪୦ |
| | ଯଉଁ ମାତାଙ୍କ ସ୍ତନକ୍ଷୀର | ଭୋଜନ କଲେ ଦାମୋଦର | ॥ ୧୪୧ |
| | ସେ ଧେନୁ ସେ ମାତାଏ ପୁଣି | କି ହେବେ ସେ କଥା ନ ଜାଣି | ॥ ୧୪୨ |
| ୩୯ | ଯେ ମୋକ୍ଷ ଆଦି କରେ ଦାନ | ଦେବକୀସୁତ ଭଗବାନ | ॥ ୧୪୩ |
| | ଯାହାଙ୍କ କ୍ଷୀର ସେ ପିଇଲେ | ଯେ ପୁତ୍ରସ୍ନେହୁଁ ସ୍ରବିଥିଲେ | ॥ ୧୪୪ |
| ୪୦ | ପୁତ୍ରଦୃଷ୍ଟିକି କୃଷ୍ଣଠାରେ | ଯେ କରୁଛନ୍ତି ନିରନ୍ତରେ | ॥ ୧୪୫ |
| | ସେମାନଙ୍କର ହେ ରାଜନ | ସଂସାର ନୁହଇ କଳ୍ପନ | ॥ ୧୪୬ |
| | ଅଜ୍ଞାନସ୍ୱକାଶୁଁ ପ୍ରଚାର | ହୋଇଛି ଯେବଣ ସଂସାର | ॥ ୧୪୭ |
| ୪୧ | ଧୂମର ଯେ ସୌରଭ ପୁଣ | ଗୋପାଳେ ତା' କରି ଆଘ୍ରାଣ | ॥ ୧୪୮ |
| | ଏ କି ସୁଗନ୍ଧ ଅଦଭୁତ | କାହିଁରୁ ହୋଇଲା ଏ ଜାତ | ॥ ୧୪୯ |
| | ପୁଛନ୍ତେ ଏମନ୍ତ ପ୍ରକାରେ | ପ୍ରବେଶ ହୋଇଲେ ବ୍ରଜରେ | ॥ ୧୫୦ |
| ୪୨ | ପୂତନା ଆସିବା ଅବଧି | ଯେତେକ ହୋଇଲା ପ୍ରସିଦ୍ଧି | ॥ ୧୫୧ |
| | ଗୋପାଳେ ବର୍ଣ୍ଣିଲେ ସେମାନ | ପୂତନା ହୋଇଲା ନିଧନ | ॥ ୧୫୨ |
| | ଶୁଣିଣ ଶିଶୁର ମଙ୍ଗଳ | ବିସ୍ମୟ ଲଭିଲେ ସକଳ | ॥ ୧୫୩ |
| ୪୩ | ଉଦାରମତି ନନ୍ଦ ପୁଣ | ଗୋକୁଳେ ପ୍ରବାସୁଁ ଆସିଣ | ॥ ୧୫୪ |
| | ନିଜ ସୁତକୁ କୋଳେ ଧରି | ସ୍ନେହେ ମସ୍ତକ ଶୁଙ୍ଘି କରି | ॥ ୧୫୫ |
| | ହେ କୁରୁଶ୍ରେଷ୍ଠ ! ଅତିଶୟେ | ଆନନ୍ଦ ଲଭିଲା ହୃଦୟେ | ॥ ୧୫୬ |

୪୪ ଏ କୃଷ୍ଣବାଳକଚରିତ । ପୂତନା-ମୋକ୍ଷ ଅଦଭୁତ ॥ ୧୫୭
ଶ୍ରଦ୍ଧାରେ ଯେ ନର ଶୁଣଇଁ । କୃଷ୍ଣରେ ରତିକି ଲଭଇ ॥ ୧୫୮
କୃଷ୍ଣଚରଣପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୧୫୯

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ପୂତନାମୋକ୍ଷଣଂ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମ ଅଧ୍ୟାୟ

ଉତ୍କ୍ଷିପନ୍ ଶକଟଂ ବ୍ୟୋମ୍ନି ତୃଣାବର୍ତ୍ତମଧଃ କ୍ଷିପନ୍ ।
ଦର୍ଶୟନ୍ ବିଶ୍ୱମାସ୍ୟେ ଚ କୃଷ୍ଣଃ କ୍ରୀଡ଼ତି ସପ୍ତମେ ॥ ୧
କୃଷ୍ଣାର୍ଭକସୁଧାସିନ୍ଧୁସଂପ୍ଲବାନନ୍ଦନିର୍ଭରଃ ।
ଭୂୟସ୍ତଦେବ ସଂପ୍ରଷ୍ଟୁଂ ରାଜାନ୍ୟଦଭିନନ୍ଦତି ॥ ୨

ଶ୍ରୀରାଜୋବାଚ

୧ ଯେ ହରି ପ୍ରଭୁ ଜଗତରେ । ସେ ଯଉଁ ଯଉଁ ଅବତାରେ ॥ ୧
୨ ଯେବଣ କର୍ମ ଆଚରନ୍ତି । କର୍ଣ୍ଣକୁ ରମ୍ୟ ସେ ଅଟନ୍ତି ॥ ୨
ସେ କର୍ମମାନେ ତ ଆମ୍ଭର । ଅଟନ୍ତି ମନପ୍ରୀତିକର ॥ ୩
ଯାହା ଶୁଣନ୍ତେ ପୁରୁଷର । ମନର ଗ୍ଲାନି ହୋଏ ଦୂର ॥ ୪
ବିବିଧ ତୃଷ୍ଣା ନିବର୍ତ୍ତଇ । ସତ୍ତ୍ୱଶୁଦ୍ଧି ହିଁ ଜାତ ହୋଇ ॥ ୫
ଭକ୍ତି ହୁଅଇ ହରିଠାବ । ବୈଷ୍ଣବ ଜନେ ମିତ୍ରଭାବ ॥ ୬
ସେ କଥା ଅଟଇ ଶୋଭନ । ଯେବେ ତା' କହିବାକୁ ମନ ॥ ୭
ଆମ୍ଭର ଠାରେ ଅନୁଗ୍ରହ । ଥିଲେ ତା' ଆମ୍ଭ ଆଗେ କହ ॥ ୮
୩ ମାନୁଷ ଲୋକକୁ ଲଭିଣ । ଯେ ଜାତି ଅନୁରୋଧେ[୧] ପୁଣ ॥ ୯
ଯେ ଆନ ବାଳକଚରିତ । କୃଷ୍ଣର ଅଟେ ଅଦଭୁତ ॥ ୧୦
ଯେବେ ଆମ୍ଭରେ ଅନୁରାଗ । ସେ କଥା କହ ଆମ୍ଭ ଆଗ ॥ ୧୧

ଶ୍ରୀଶୁକ ଉବାଚ

୪ ଶିଶୁର କେହୁଣି ଦିନରେ । ଅଙ୍ଗଲେଉଟା ସମୟରେ ॥ ୧୨
ସେଦିନ ଦଇବବଶରେ । ଜନମ-ନକ୍ଷତ୍ର-ଯୋଗରେ ॥ ୧୩

---

୧. ଅନୁରୋଧ = ଅନୁକରଣ ।

| | | | | | |
|---|---|---|---|---|---|
| | କୌତୁକ ଅଭିଷେକ ପାଇଁ | । | ମିଳିଲେ ଯେତେ ସ୍ତିରୀ ଯାଇଁ | ॥ | ୧୪ |
| | ଯଶୋଦା ତାହାଙ୍କ ମଧ୍ୟରେ | । | ଗୀତରେ ବିବିଧ ବାଦ୍ୟରେ | ॥ | ୧୫ |
| | ମନ୍ତ୍ରବାକ୍ୟରେ ବିପ୍ରଙ୍କର | । | କଲେ ଅଭିଷେକ ସୁତର | ॥ | ୧୬ |
| ୫ | ଅନ୍ନାଦି ବସନେ ମାଳରେ | । | ଅଭୀଷ୍ଟ ଧେନୁମାନଙ୍କରେ | ॥ | ୧୭ |
| | ପୂଜିତ ଯଉଁ ବିପ୍ରେ ହେଲେ | । | ସେମାନେ ସ୍ୱସ୍ତ୍ୟୟନ କଲେ | ॥ | ୧୮ |
| | ପୁତ୍ରର ସ୍ନାନଆଦିମାନ | । | ଯଶୋଦା କଲେ ସେ ବିଧାନ | ॥ | ୧୯ |
| | ନିଦ୍ରା ଜନମନ୍ତେ ନେତ୍ରରେ | । | ପୁତ୍ରକୁ ଶୁଆଇଲେ ସ୍ଥିରେ | ॥ | ୨୦ |
| ୬ | ଯେ ଉଠିଆରି[୧] କର୍ମ ତହିଁ | । | ଅତି ଉତ୍ସୁକମନା ହୋଇ | ॥ | ୨୧ |
| | ଯେତେକ ଲୋକ ବ୍ରଜବାସୀ | । | ନିଜ ଗୃହକୁ ଥିଲେ ଆସି | ॥ | ୨୨ |
| | ତାହାଙ୍କୁ କରନ୍ତେ ପୂଜନ | । | ଯଶୋଦା ପୁତ୍ରର ରୋଦନ | ॥ | ୨୩ |
| | ଶୁଣି ନ ପାରିଲେ ସେ ଯେଣୁ | । | ସ୍ତନବାଞ୍ଛାରେ ସୁତ ତେଣୁ | ॥ | ୨୪ |
| | ନିଜ ଚରଣଯୁଗଳକୁ | । | କାନ୍ଦନ୍ତେ ଚାଳିଲେ ଊର୍ଦ୍ଧ୍ୱକୁ | ॥ | ୨୫ |
| ୭ | ଶକଟତଳେ ଥିଲେ ଶୋଇ | । | ଯେ ଶିଶୁ ତାଙ୍କ ପାଦ ଦୁଇ | ॥ | ୨୬ |
| | ପଲ୍ଲବପ୍ରାଏକ କୋମଳ | । | ସେ ତାର ଆଘାତେ ତତ୍କାଳ | ॥ | ୨୭ |
| | ଶକଟ ଲେଉଟି ପଡ଼ିଲା | । | ତହିଁ ଯେତେକ ଦ୍ରବ୍ୟ ଥିଲା | ॥ | ୨୮ |
| | ନାନାପ୍ରକାରେ ରସବନ୍ତ | । | କଂସାଦି ପାତ୍ର ଯେ ବହୁତ | ॥ | ୨୯ |
| | ସେମାନ ସବୁ ଭଗ୍ନ ହେଲେ | । | ଯେ ଚକଅଖ ତହିଁ ଥିଲେ | ॥ | ୩୦ |
| | ପଡ଼ିଲେ ଅସ୍ତବ୍ୟସ୍ତ ହୋଇ | । | ଜୁଆଳି ଭାଜିଗଲା ତହିଁ | ॥ | ୩୧ |
| ୮ | ଯଶୋଦା ଆଦି ହୋଇ ଯେତେ | । | ସ୍ତିରୀଏ ଥିଲେ ସେ ସମସ୍ତେ | ॥ | ୩୨ |
| | ଯେ ଉଠିଆରି ପର୍ବପାଇଁ | । | ନାରୀଏ ଆସିଥିଲେ ତହିଁ | ॥ | ୩୩ |
| | ଯେ ନନ୍ଦ ଆଦି ଗୋପମାନେ | । | ସେ ଅଦଭୁତ ଦରଶନେ | ॥ | ୩୪ |
| | ସମସ୍ତେ ଆକୁଳ ହୋଇଣ | । | ବିଷାଦେ ମୋହକୁ ଲଭିଣ | ॥ | ୩୫ |
| | ଆର୍ତ୍ତ ଜନର ପ୍ରାଏ ହେଲେ | । | ଏମନ୍ତ ବଚନ ବୋଇଲେ | ॥ | ୩୬ |
| | ଶକଟ ବିପରୀତ ହୋଇ | । | ସ୍ୱୟେଂ ପଡ଼ିଲା ଅବା କାହିଁ | ॥ | ୩୭ |
| ୯ | ଗୋପାଳେ ଗୋପୀମାନେ ପୁଣ | । | ସେ କଥା ନିଶ୍ଚୟ କରିଣ | ॥ | ୩୮ |
| | ସମସ୍ତେ ଜାଣି ନ ପାରିଲେ | । | ବାଳକେ ତାହାଙ୍କୁ କହିଲେ | ॥ | ୩୯ |
| | ଏ ଶିଶୁ କରନ୍ତେ ରୋଦନ | । | ପାଦେ ଶକଟ କଲା ଭଗ୍ନ | ॥ | ୪୦ |
| | ଏ କଥା ନିଶ୍ଚୟ ଅଟଇ | । | ଏଥି ସଂଶୟ କିଛି ନାହିଁ | ॥ | ୪୧ |
| ୧୦ | ଗୋପାଳେ ଶିଶୁବାକ୍ୟ ଶୁଣି | । | ଶ୍ରଦ୍ଧା ନ କଲେ ତାହା ପୁଣି | ॥ | ୪୨ |
| | ଯେ ବାଳ ଅପ୍ରମେୟ ବଳ | । | ତା' ନ ଜାଣନ୍ତି ସେ ସକଳ | ॥ | ୪୩ |
| ୧୧ | ଗ୍ରହସ୍ୱକାଶୁଁ ଏ ହୋଇଲା | । | ଯଶୋଦା ଏ ଆଶଙ୍କା କଲା | ॥ | ୪୪ |

୧. ଉଠିଆରି କର୍ମ = ଶିଶୁଜନ୍ମ ହେବାର ସପ୍ତମ ଦିବସର କର୍ମ ।

ବ୍ରାହ୍ମଣମାନେ ସୂକ୍ତମାନଂ[1] । ପଢ଼ି କଲେ ଯା' ସ୍ୱସ୍ତ୍ୟୟନ ॥ ୪୫
କୋଳରେ ଘେନି ସେ ନନ୍ଦନ । ଯଶୋଦା ପିଆଇଲେ ସ୍ତନ ॥ ୪୬
୧୨ ବଳିଷ୍ଠ ଗୋପାଳେ ମିଳିଣ । ସାମଗ୍ରୀମାନ ସହିତେଣ ॥ ୪୭
ଶକଟ ଯଉଁ ରୂପେ ପୂର୍ବେ । ଥିଲା, ରଖିଲେ ସେହି ଭାବେ ॥ ୪୮
ବ୍ରାହ୍ମଣେ ମିଳି ତଦନ୍ତରେ । ଦଧି ଅକ୍ଷତ କୁଶ ନୀରେ ॥ ୪୯
ହୋମକୁ ବିଧାନ କରିଣ । ପୂଜାକୁ ଆରମ୍ଭିଲେ ପୁଣ ॥ ୫୦
୧୩ ନ ସହି କରି ପରଗୁଣ । ତହିଁ ଯେ ଦୋଷ-ଆରୋପଣ ॥ ୫୧
ଯେ ହିଂସା, ମିଥ୍ୟା, ଦମ୍ଭ, ମାନ । ଅଛନ୍ତି ଏତେ କଥାମାନ ॥ ୫୨
ଯଉଁମାନଙ୍କ ଠାରେ ନାହିଁ । ଯେ ସତ୍ୟଶୀଳ ସର୍ବଦା ହିଁ[2] ॥ ୫୩
ସେ ଯଉଁ କଲ୍ୟାଣ କରନ୍ତି । ସେମାନେ ବିଫଳ ନୁହନ୍ତି ॥ ୫୪
୧୪| ଏ କଥା ମନରେ ବିଚାରି । ଗୃହୁଁ ବାଳକ ଆଣି କରି ॥ ୫୫
୧୫| ଯେ ବେଦ ଋକ ଯଜୁ ସାମ । ତେଣେ ମନ୍ତ୍ରିତ ଯେ ଉତ୍ତମ ॥ ୫୬
ସେ ଜଳମାନଙ୍କରେ ପୁଣ । ପବିତ୍ର ଓଷଧି ସଙ୍ଗେଣ ॥ ୫୭
ଉତ୍ତମ ବିପ୍ରମାନେ ଯେହି । ତେଣେ ଅଭିଷେକ କରାଇ ॥ ୫୮
ପଢ଼ାଇ ସ୍ୱସ୍ତିବାଚନକୁ । ଅଗ୍ନିରେ କରାଇ ହୋମକୁ ॥ ୫୯
ନନ୍ଦ ଗୋପାଳ ନିଜ ମନ । ନିଶ୍ଚଳେ କରି ସମାଧାନ ॥ ୬୦
ଯେବଣ ଅନ୍ନ ମହାଗୁଣ । ବିପ୍ରଙ୍କୁ ଦେଲେ ତାହା ପୁଣ ॥ ୬୧
୧୬ ବସନ ପୁଷ୍ପମାଳାମାନ । ସୁବର୍ଣ୍ଣମାଳା ଯେ ବା ଆନ ॥ ୬୨
ସେମାନଙ୍କରେ ଯେ ସଂଯୁତ । ସମସ୍ତ ଗୁଣେ ଉପଗତ ॥ ୬୩
ବିପ୍ରଙ୍କୁ ଦେଲେ ସେ ଧେନୁଙ୍କୁ । ସେମାନେ କଲେ ଆଶିଷକୁ ॥ ୬୪
୧୭ ଯେ ବିପ୍ରେ ବେଦକୁ ଜାଣନ୍ତି । ସେ ଯଉଁ ଆଶିଷ ବୋଲନ୍ତି ॥ ୬୫
ସେ ବାକ୍ୟମାନ କଦାଚିତେ । ନିଷ୍ଫଳ ନୁହନ୍ତି ଜଗତେ ॥ ୬୬
୧୮ [3]ଯଶୋଦା ଏକ ଦିନକରେ । ବାଳକ ଥିଲେ ଯେ କୋଳରେ ॥ ୬୭
ହରଷେ ଖେଳାନ୍ତେ ତାହାଙ୍କୁ । ଶିଶୁର ସେ ଗୁରୁଭାବକୁ ॥ ୬୮
ପର୍ବତକୂଟପ୍ରାୟ ହୋଇ । ପାରିଲେ ନାହିଁ ତାକୁ ସହି ॥ ୬୯
୧୯ [4]ଗୋପୀ ଭୂମିରେ ତାଙ୍କୁ ଥୋଇ । ଭାରରେ ପୀଡ଼ାକୁ ସେ ପାଇ ॥ ୭୦

---

୧. ସୂକ୍ତ = ରକ୍ଷୋଘ୍ନ ସୂକ୍ତ । ୨. ସର୍ବଦାୟୀ ।

୩. ଉତ୍କ୍ଷିପ୍ୟ ମୃଦୁପାଦେନ ଶକଟଂ ବ୍ୟୋମ୍ନି ଲୀଳୟା ।
ତୃଣାବର୍ତ୍ତଂ ପଦାପୀଡ୍ୟ ଭୁବ୍ୟପାତୟଦର୍ଭକଃ ॥ (ସ୍ୱାମୀ)
ଶଗଡ଼କୁ ଲୀଳାଦ୍ୱାରା ମୃଦୁପାଦରେ ଆକାଶକୁ ଉଠାଇ ତୃଣାବର୍ତ୍ତ (ଅସୁର)କୁ ପଦଦ୍ୱାରା (ପାଦକ୍ଷେପ ଦ୍ୱାରା) ଦାବି ଶିଶୁ (କୃଷ୍ଣ) ଭୂଇଁରେ ପକାଇ ଦେଲେ ।

୪. ଗୋପୀ = ଯଶୋଦା ।

ମନରେ ବିସ୍ମୟ ଲଭିଲା । ବିଷ୍ଣୁଙ୍କୁ ପୁଣ ଧ୍ୟାନ କଲା ॥ ୭୧
ଜଗତମଧ୍ୟେ କର୍ମ ଯେହି । ମନ ନିବେଶ କଲା ତହିଁ ॥ ୭୨
ଜଗତ ଉଦରେ ଯାହାର । ତାହାଙ୍କୁ ନ କଲା ଗୋଚର ॥ ୭୩
୨୦ ଯେ ତୃଣାବର୍ତ୍ତ ନାମେ ଦୈତ୍ୟ । କଂସର ଅଟଇ ସେ ଭୃତ୍ୟ ॥ ୭୪
କଂସର ଆଜ୍ଞାକୁ ଲଭିଣ । ସେ [1]ଚକ୍ରବାତସ୍ୱରୂପେଣ ॥ ୭୫
ଯେ ଶିଶୁ ବସିଥିଲେ ତଳେ । ତାହାଙ୍କୁ ଘେନିଗଲା ବଳେ ॥ ୭୬
୨୧ ଯେତେକ ଗୋକୁଳମଣ୍ଡଳ । ଆବୃତ କରନ୍ତେ ସକଳ ॥ ୭୭
ଧୂଳୀମାନଙ୍କରେ ଲୋକର । ଲୋଚନ କରନ୍ତେ ସଂହାର ॥ ୭୮
ପ୍ରତିଶବଦ ମହାଘୋର । କରାନ୍ତେ ଦିଗ ବିଦିଗର ॥ ୭୯
୨୨ ରଜରେ ତମରେ ମୁହୂର୍ତ୍ତ । ପର୍ଯ୍ୟନ୍ତେ ଗୋଷ୍ଠ ହେଲା ବୃତ ॥ ୮୦
ସୁତକୁ ନ ଦେଖିଲେ ତହିଁ । ଯଶୋଦା ରଖିଥିଲେ ଯହିଁ ॥ ୮୧
୨୩ ଯେବଣ ଝିଙ୍କର[2]ମାନଙ୍କୁ । ଫିଙ୍ଗିଲା ତୃଣାବର୍ତ୍ତ ତାଙ୍କୁ ॥ ୮୨
ତେଣେ ମୋହିତ ହୋଇ କେହି । ଲଭିଣ ଉପଦ୍ରବକୁ ହିଁ ॥ ୮୩
କେ ବା ଆପଣା କେ ବା ପର । ଏ କଥା ନ କଲେ ଗୋଚର ॥ ୮୪
୨୪ ଖରପବନଚକ୍ରଭରେ । ଯେ ଧୂଳିବୃଷ୍ଟି ଏ ରୂପରେ ॥ ୮୫
ଯଶୋଦା ତେଣେ ମୋହ ହୋଇ । ସୁତପଦବୀକି ନ ଚାହିଁ ॥ ୮୬
ଅତିକରୁଣ ହୋଇ ପୁଣ । ସୁତକୁ କରନ୍ତେ ସ୍ମରଣ ॥ ୮୭
ପଡ଼ିଲା ଧରଣୀରେ ତହିଁ । ବତ୍ସା ମରନ୍ତେ ଯେହ୍ନେ ଗାଈ ॥ ୮୮
୨୫ ଧୂଳିବରଷାବେଗଯୁତ । ପବନ ହୁଅନ୍ତେ ନିବୃତ ॥ ୮୯
ଯଶୋଦାରୋଦନକୁ ଶୁଣି । ସେଠାରେ ଗୋପୀମାନେ ପୁଣି ॥ ୯୦
ନନ୍ଦନନ୍ଦନକୁ ନ ପାଇ । ଲୋତକପୂର୍ଣ୍ଣମୁଖୀ ହୋଇ ॥ ୯୧
ରୋଦନ କଲେ, ତାଙ୍କ ମତି । ଲଭିଛି ଅନୁତାପ ଅତି ॥ ୯୨
୨୬ ନିବୃତ୍ତ ହେଲା ବେଗ ଯାର । ସେ ତୃଣାବର୍ତ୍ତ ମହାସୁର ॥ ୯୩
କୃଷ୍ଣଙ୍କୁ ହରନ୍ତେ ବେଗରେ । ପ୍ରବେଶ ହେଲା ଆକାଶରେ ॥ ୯୪
ହୋଇଲା ଅତି ଭାରଯୁତ । ଯିବାକୁ ନୋହିଲା ଶକତ ॥ ୯୫
୨୭ ଆପଣା ଠାରୁ ଅତିଶୟ । ଗୁରୁଭାବରୁ ଗିରିପ୍ରାୟ ॥ ୯୬
ମଣନ୍ତେ ଅଦ୍ଭୁତ ବାଳକୁ । ସେ ଧରିଛନ୍ତି ଗଳେ ତାକୁ ॥ ୯୭
ପକାଇ ଦେବାକୁ ଭୂମିରେ । ଶକ୍ତ ନୋହିଲା ସେ କାଳରେ ॥ ୯୮
୨୮ କଣ୍ଠ ଧରନ୍ତେ କୃଷ୍ଣ ତାର । ଚେଷ୍ଟାମାନ ହିଁ ହେଲା ଦୂର ॥ ୯୯
ଲୋଚନ ହୋଇଲା ନିର୍ଗତ । କଲା ସେ ଧ୍ୱନି ଅବ୍ୟକତ ॥ ୧୦୦
ବ୍ରଜରେ ବାଳସହିତେଣ । ପଡ଼ିଲା, ଗଲା ତାର ପ୍ରାଣ ॥ ୧୦୧

---

୧. ଚକ୍ରବାତ = ଖଣ୍ଡିଆ ଭୂତ । ୨. ଝିଙ୍କର-(ଦେଶଜ) = ଖପରା ।

୨୯ ସମସ୍ତ ଅବୟବମାନ । ଯାହାର ହୋଇଅଛି ଶୀର୍ଣ୍ଣ ।। ୧୦୨
କରାଳ ଅଟେ ମୂର୍ତ୍ତି ତାର । ଆକାଶୁଁ ପଡ଼ିଲା ଶିଳାର ।। ୧୦୩
ଶଙ୍କରଶରେ ହୋଇ ଭିନ୍ନ । ତ୍ରିପୁର ପଡ଼ିଲା[୧] ଯେସନ ।। ୧୦୪
ମିଳି ତାହାକୁ ଗୋପୀମାନେ । କାନ୍ଦନ୍ତେ ଦେଖିଲେ ସେ ସ୍ଥାନେ ।। ୧୦୫
୩୦ ତାହାର ବକ୍ଷସ୍ଥଳେ ହରି । ଲମ୍ବିଅଛନ୍ତି ତାକୁ ଧରି ।। ୧୦୬
ଆଣି ମାତାଙ୍କୁ ଦେଇ ତାଙ୍କୁ । ଲଭିଲେ ପୁଣ ବିସ୍ମୟକୁ ।। ୧୦୭
ଆକାଶ ମାର୍ଗରେ ରାକ୍ଷସ । ନେଲା ତାହାଙ୍କୁ କରି ରୋଷ ।। ୧୦୮
ମଙ୍ଗଳେ ହୋଇଣ ସଂଯୁତ । ଯେ ମୃତ୍ୟୁମୁଖୁଁ ହେଲେ ମୁକ୍ତ ।। ୧୦୯
ଗୋପୀଏ, ନନ୍ଦ ଆଦି ହୋଇ । ଯେତେ ଗୋପାଳେ ଥିଲେ ତହିଁ ।। ୧୧୦
ସମସ୍ତେ ପାଇଲେ କୃଷ୍ଣଙ୍କୁ । ଲଭିଲେ ଅତି ହରଷକୁ ।। ୧୧୧
୩୧ ଏକ ଆରକେ ହରଷରେ । ବୋଇଲେ ଏମନ୍ତ ପ୍ରକାରେ ।। ୧୧୨
ଏକଥା ଅଦ୍ଭୁତ ଅଟଇ । ରାକ୍ଷସଠାରୁ ମୃତ୍ୟୁ ପାଇ ।। ୧୧୩
ବାଳକ ଅଇଲା ଏ ଜିଇ । ଯେ ହିଂସ୍ର ଅଟେ ଖଳ ସେହି ।। ୧୧୪
ନାଶ ଯାଇ ସେ ସ୍ୱପାପରେ । ସମତ୍ୱେ ସାଧୁ ଭୟୁଁ ତରେ ।। ୧୧୫
୩୨ କଉଁ ତପସ୍ୟା ଆମ୍ଭେମାନେ । କରିଣ ଅଛୁଁ ଦିନେ ଦିନେ ।। ୧୧୬
ବିଷ୍ଣୁର ପୂଜା ଯେ ବା ପୁଣ । ତଡ଼ାଗ କୂପାଦି ନିର୍ମାଣ ।। ୧୧୭
ଯେ ଯାଗ ଯେ ବା କର୍ମମାନ । ଯେ ସର୍ବଭୂତେ ପ୍ରୀତି ଆନ ।। ୧୧୮
ଯେବଣ ତପସ୍ୟାଆଦିରୁ । ଏ ବାଳ ଭାଗ୍ୟେ ମରିବାରୁ ।। ୧୧୯
ସ୍ୱବନ୍ଧୁମାନଙ୍କୁ ହରଷ । କରାନ୍ତେ ହୋଇଲେ ପ୍ରବେଶ ।। ୧୨୦
୩୩ ବହୁତ ଅଦଭୁତମାନ । ବୃହତବନେ ଉତପନ୍ନ ।। ୧୨୧
ଦେଖି ବିସ୍ମୟେ ନନ୍ଦ ପୁଣି । ମାନିଲେ ବସୁଦେବବାଣୀ ।। ୧୨୨
୩୪ ଏକଦିନକେ ନନ୍ଦରାଣୀ । ସ୍ନେହରେ ବାଳକକୁ ଆଣି ।। ୧୨୩
ବସାଇ ତାହାକୁ କୋଳର । ସ୍ରବୁଛି ଯଉଁ ସ୍ତନୁଁ କ୍ଷୀର ।। ୧୨୪
ସ୍ନେହରେ ଅତି ମଗ୍ନ ହେଲା । ସେ ସ୍ତନ ତାକୁ ପିଆଇଲା ।। ୧୨୫
୩୫ ପିଇଲା ପ୍ରାଏ ନିଜ ସ୍ତନ । ହୋଇଲେ ଯେବଣ ନନ୍ଦନ ।। ୧୨୬
ଯହିଁରେ ସ୍ମିତ ମନୋହର । ଦେଖନ୍ତେ ସେ ମୁଖ ତାଙ୍କର ।। ୧୨୭
ହାଇ ମାରନ୍ତେ ହେ ରାଜନ । ମୁଖେ ଦେଖିଲେ ଏ ଭୁବନ ।। ୧୨୮
୩୬ ଯେ ଦ୍ୟାବାପୃଥିବୀ ପବନ । ନକ୍ଷତ୍ରଗଣ ଦିଗମାନ ।। ୧୨୯
ତପନ ଇନ୍ଦୁ ହୁତାଶନ । ଯେ ବନ ଜଳନିଧିମାନ ।। ୧୩୦
ଦ୍ୱୀପ, ପର୍ବତ, ନଦୀ, ଜନ । ସ୍ଥାବର ଜଙ୍ଗମ ଯେ ଆନ ।। ୧୩୧
ସୁତଉଦରେ ଏ ଜଗତ । ଯଶୋଦା ଦେଖିଲେ ସାକ୍ଷାତ ।। ୧୩୨

---

୧. ହୋଇଲା ।

୩୭ କରନ୍ତେ ବିଶ୍ୱ ନେତ୍ରଗତ । ବେଗେ ଯା' ଦେହେ କର୍ମ ଜାତ ।। ୧୩୩
ମୃଗଶିଶୁର ପ୍ରାୟ ହୋଇ । ଶୋଭା ଯାହାର ନେତ୍ର ଦୁଇ ।। ୧୩୪
ବୁଝିଣ ସେ ବେନି ନୟନ । ବିସ୍ମୟ ହେଲା ହେ ରାଜନ ।। ୧୩୫
ଯାହା ଉଦରେ ଏ ଜଗତ । ଯଶୋଦା ଦେଖିଲେ ସାକ୍ଷାତ ।। ୧୩୬
ସେ କୃଷ୍ଣପାଦପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ।। ୧୩୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ତୃଣାବର୍ତ୍ତମୋକ୍ଷୋ
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ନାମକର୍ମାସ୍ୟ ବାଲକ୍ରୀଡ଼ାକୁତୂହଳେ ।
ମୃଦ୍‌ଭକ୍ଷଣାଭିଯୋଗେ ଚ ବିଶ୍ୱରୂପଂ ନିରୂପ୍ୟତେ ।। ୧
ବିଶ୍ୱରୂପାଦି ବାଲସ୍ୟ ନିଶମ୍ୟାଶଙ୍କିନଃ ପିତୁଃ ।
ନାମକୃଦ୍‌ଗର୍ଗବାକ୍ୟେନ ନିଜଂ ତତ୍ତ୍ୱମସୂସୁଚତ୍ ।। ୨

ଶ୍ରୀଶୁକ ଉବାଚ

୧ ହେ ନୃପ ! ମହାତପୋବନ୍ତ । ଯେ ଯଦୁଙ୍କର ପୁରୋହିତ ।। ୧
ବସୁଦେବର ଆଜ୍ଞା ପାଇ । ନନ୍ଦବ୍ରଜକୁ ଗଲେ ସେହି ।। ୨
୨ ତାହାଙ୍କୁ ଦେଖି ବ୍ରଜପତି । ମନରେ ଲଭି ଅତିପ୍ରୀତି ।। ୩
ଉଠିଣ କୃତାଞ୍ଜଳି ହେଲେ । ପ୍ରଥମେ ପ୍ରଣାମକୁ କଲେ ।। ୪
ଯେବଣ ବୁଦ୍ଧି ବିଷ୍ଣୁଠାରେ । ଅର୍ଚ୍ଚନ କଲେ ସେ ପ୍ରକାରେ ।। ୫
୩ ବସିଲେ ଆସନେ ଯେ ଯାଇ । ଅତିଥିସତକାର ପାଇ ।। ୬
କୋମଳ ବଚନରେ ପୁଣ । ତାଙ୍କୁ ଆନନ୍ଦ କରାଇଣ ।। ୭
ନନ୍ଦ ବୋଇଲେ ଏ ବଚନ । ଭୋ ବିପ୍ର ! ତୁମ୍ଭେ ଅଟ ପୂର୍ଣ୍ଣ ।। ୮
ତୁମ୍ଭର କି ବା କାର୍ଯ୍ୟ ଆମ୍ଭେ । କରିବୁଁ କହ ତାହା ତୁମ୍ଭେ ।। ୯
୪ ମହତ ଅଟନ୍ତି ଯେ ଜନ । ତାଙ୍କର ଗୃହରୁ ଚଳନ ।। ୧୦
ଯେ ଦୀନଚିତ୍ତ ଗୃହୀ ନର । ମଙ୍ଗଳଅର୍ଥେ ତାହାଙ୍କର ।। ୧୧
କଳ୍ପିତ ଆହେ ଭଗବନ୍ତ । ଅନ୍ୟଥା ନୋହେ କାହିଁ ଏ ତ ।। ୧୨
୫ ଇନ୍ଦ୍ରିୟଗୋଚର ଯେ ନୋହି । ସାଧନ ସେ ଜ୍ଞାନକୁ ଯେହି ।। ୧୩
ସେ ଜ୍ୟୋତିଃଶାସ୍ତ୍ର ତୁମ୍ଭେ ପୁଣ । ସାକ୍ଷାତ କରିଛ ନିର୍ମାଣ ।। ୧୪
ପୂର୍ବ ଅବର ବେନି ଜନ୍ମ । କାର୍ଯ୍ୟକୁ ଜାଣେ ଯେଣେ ଜନ ।। ୧୫
୬ ବ୍ରହ୍ମଜ୍ଞାନିଙ୍କ ମଧ୍ୟେ ବର । ତୁମ୍ଭେ ଏ ବେନି ବାଳଙ୍କର ।। ୧୬

| | | | | |
|---|---|---|---|---|
| | ସଂସ୍କାରମାନ କରିବାରେ | ସମର୍ଥ ହୁଅ ଏ ସ୍ଥାନରେ | ॥ | ୧୭ |
| | ପ୍ରାଣିମାନଙ୍କର ଜନ୍ମରୁ | ବ୍ରାହ୍ମଣ ଅଟେ ଯେଣୁ ଗୁରୁ | ॥ | ୧୮ |

ଶ୍ରୀଗର୍ଗ ଉବାଚ

| | | | | |
|---|---|---|---|---|
| ୭ | ଯଦୁଙ୍କ ଆଚାର୍ଯ୍ୟ ରୂପରେ | ମୁଁ ଖ୍ୟାତ ସର୍ବଦା ଭୂମିରେ | ॥ | ୧୯ |
| | ମୁଁ କଲେ ତୋ ସୁତସଂସ୍କାର | ମଣିମ ଦେବକୀକୁମର | ॥ | ୨୦ |
| ୮ | ହେ ନନ୍ଦ ! ମୋ' ମରଣେ ତୋର | କି କାର୍ଯ୍ୟ, ଶତ୍ରୁ ଯେ ତୋହର | ॥ | ୨୧ |
| ୯ | ସେ ବଢୁଅଛି ଯହିଁ ତହିଁ | ଏମନ୍ତ ବଚନକୁ କହି | ॥ | ୨୨ |
| | ଗଲା ଯେ କନ୍ୟା ଦେବକୀର | ସେ କଥା କରିଣ ଗୋଚର | ॥ | ୨୩ |
| | ଦେବକୀଗର୍ଭ ଯେ ଅଷ୍ଟମ | ସ୍ତିରୀ ହେବାକୁ ନୋହେ କ୍ଷମ | ॥ | ୨୪ |
| | ତୋର ଆନକଦୁନ୍ଦୁଭିର | ଯେ ମିତ୍ରଭାବ ପରସ୍ପର | ॥ | ୨୫ |
| | କଂସ ଅଟଇ ପାପମତି | ଚିନ୍ତନ୍ତେ ଏହି କଥା ନିତି | ॥ | ୨୬ |
| | ଆଶଙ୍କା ମନୁଁ କରି ଦୂର | ଯେବେ ମାରିବ ତୋ' କୁମର | ॥ | ୨୭ |
| | ତେବେ ଅନ୍ୟାୟ ଅତିଶୟ | ଆମ୍ଭର ହୋଇବ ନିଶ୍ଚୟ | ॥ | ୨୮ |

ଶ୍ରୀନନ୍ଦ ଉବାଚ

| | | | | |
|---|---|---|---|---|
| ୧୦ | ଏ ବ୍ରଜେ ଯେତେ ଲୋକ ମୋର | ସେହି ନ କରିବେ ଗୋଚର | ॥ | ୨୯ |
| | ଯେ ବା ଦ୍ୱିଜାତିମାନଙ୍କର | ଅବଶ୍ୟ କର୍ତ୍ତବ୍ୟ ସଂସ୍କାର | ॥ | ୩୦ |
| | ସ୍ୱସ୍ତିବାଚନ କରି ପୂର୍ବେ | ଆଚର ସେ ବିଧିକି ଏବେ | ॥ | ୩୧ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧୧ | ଏମନ୍ତ ରୂପେ ପ୍ରାର୍ଥନାକୁ | ନନ୍ଦ କରନ୍ତେ ସେ ବିପ୍ରଙ୍କୁ | ॥ | ୩୨ |
| | ସେ କଥା କରିବା ବିଚାର | ନିଶ୍ଚୟେ ମନେ ଅଛି ତାର | ॥ | ୩୩ |
| | ଏକାନ୍ତ ସ୍ଥାନରେ ଲୁଚିଣ | ସେ ବେନିବାଳଙ୍କର ପୁଣ | ॥ | ୩୪ |
| | ଉଚିତ ଯେ ନାମକରଣ | ସେ କଥା କଲେ ଆଚରଣ | ॥ | ୩୫ |

ଶ୍ରୀଗର୍ଗ ଉବାଚ

| | | | | |
|---|---|---|---|---|
| ୧୨ | ଏ ଅଟେ ରୋହିଣୀନନ୍ଦନ | ଗୁଣେ ରମନ୍ତେ ମିତ୍ରମାନ | ॥ | ୩୬ |
| | ଏ ଘେନି ରାମ ବୋଲି ଜନେ | ଏହାକୁ ବୋଲିବେ ଭୁବନେ | ॥ | ୩୭ |
| | ଅଧିକ ଭାବରୁ ବଳର | ବୋଲିବେ ବଳ ବୋଲି ନର | ॥ | ୩୮ |
| | ବିବାଦେ ଯଦୁମାନଙ୍କର | ଭିନ୍ନ ଭାବକୁ କରି ଦୂର | ॥ | ୩୯ |
| | ଶିକ୍ଷାରେ କରି ଆକର୍ଷଣ | ଏକ କରନ୍ତେ ତାକୁ ପୁଣ | ॥ | ୪୦ |
| | ସଂକରଷଣ ନାମେ ନରେ | ଇଚ୍ଛା[୧] କରିବେ ଜଗତରେ | ॥ | ୪୧ |
| ୧୩ | ପ୍ରତିଯୁଗରେ ଭିନ୍ନ ଭିନ୍ନ | ତନୁକୁ ଘେନନ୍ତେ ନନ୍ଦନ | ॥ | ୪୨ |

୧. ଇଚ୍ଛା କରିବେ = କହିବାକୁ ଇଚ୍ଛା କରିବେ ।

| | | | | |
|---|---|---|---|---|
| | ଏହାର ଶୁକ୍ଳ ରକ୍ତ ପୀତ | । ତ୍ରିଯୁଗେ ତିନି ବର୍ଣ୍ଣ ଜାତ | ।। | ୪୩ |
| | ଏବେ ଏ ଦ୍ୱାପରରେ[୧] ଯେଣୁ | । କୃଷ୍ଣଭାବକୁ ଗଲା ତେଣୁ | ।। | ୪୪ |
| | ଏ ଘେନି କରି କୃଷ୍ଣ ନାମ | । ଏହାର ହୋଇବ ପ୍ରଥମ | ।। | ୪୫ |
| ୧୪ | ଏ ତୋର ତନୟ ପୂର୍ବରେ | । ଜନ୍ମିଲା ବସୁଦେବଠାରେ | ।। | ୪୬ |
| | ତେଣୁ ଶ୍ରୀମନ୍ତ ବାସୁଦେବ | । ବୋଲନ୍ତି ପଣ୍ଡିତ ମାନବ | ।। | ୪୭ |
| ୧୫ | ଯେ ଗୁଣ କର୍ମ ଅଟେ ଦୁଇ | । ତହିଁକି ଅନୁରୂପ ହୋଇ | ।। | ୪୮ |
| | ତୋ' ସୁତ-ନାମ-ରୂପମାନେ | । ବହୁତ ଅଛନ୍ତି ଭୁବନେ | ।। | ୪୯ |
| | ସେମାନ ନ ଜାଣଇଁ ମୁହିଁ | । ଜାଣନ୍ତି ନାହିଁ ଜନେ କେହି | ।। | ୫୦ |
| ୧୬ | ସର୍ବ ଗୋପାଳ ଗୋକୁଳର | । ଆନନ୍ଦକର୍ତ୍ତା ଏ ତୁମ୍ଭର | ।। | ୫୧ |
| | ମଙ୍ଗଳ କରିବ ବିଧାନ | । ଏଣେ ସମସ୍ତ ଦୁର୍ଗମାନ | ।। | ୫୨ |
| | ତୁମ୍ଭେ ସମସ୍ତେ ଶୀଘ୍ର ହୋଇ | । ତରିବ ସତ୍ୟ ଏ ଅଟଇ | ।। | ୫୩ |
| ୧୭ | ହେ ବ୍ରଜପତି ! ପୂର୍ବଦିନେ | । ଅରାଜକରେ ସାଧୁମାନେ | ।। | ୫୪ |
| | ଦୁଷ୍ଟମାନଙ୍କରେ ପୀଡ଼ାକୁ | । ଲଭିଲେ, ଏ ପୁଣ ତାହାଙ୍କୁ | ।। | ୫୫ |
| | ରଖନ୍ତେ ବୃଦ୍ଧିକି ଲଭିଲେ | । ସେ ଦୁଷ୍ଟମାନଙ୍କୁ ଜିଣିଲେ | ।। | ୫୬ |
| ୧୮ | ଏ ମହାଭାଗ କୃଷ୍ଣଠାରେ | । ପ୍ରୀତି କରନ୍ତି ଯଉଁ ନରେ | ।। | ୫୭ |
| | ତାହାଙ୍କୁ ଅହିତ ମାନବ | । କରନ୍ତି ନାହିଁ ପରାଭବ | ।। | ୫୮ |
| | ଯାହାର ପକ୍ଷ ଜନାର୍ଦ୍ଦନ | । ତାହାଙ୍କୁ ଅସୁରେ ଯେସନ | ।। | ୫୯ |
| ୧୯ | ସେହି କାରଣରୁ ତୋହର | । ହେ ନନ୍ଦ ! ଏ ଯଉଁ କୁମର | ।। | ୬୦ |
| | ଗୁଣମାନଙ୍କରେ କୀର୍ତ୍ତିରେ | । ଅନୁଭାବରେ ସଂପତ୍ତିରେ | ।। | ୬୧ |
| | ଅଟେ ନାରାୟଣସମାନ | । ପାଳନ କର ସମାଧାନ[୨] | ।। | ୬୨ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୦ | [୩]ଏରୂପେ ଉଦ୍ଦେଶି କୃଷ୍ଣଙ୍କୁ | । ଗର୍ଗ ଯାଆନ୍ତେ ସ୍ୱଗୃହକୁ | ।। | ୬୩ |
| | ଅତି ହରଷ ହେଲେ ନନ୍ଦ | । ଯେତେକ ମଙ୍ଗଳ ଆନନ୍ଦ | ।। | ୬୪ |
| | ତେଣେ ଏ ହୋଇଅଛି ପୂର୍ଣ୍ଣ | । ଆମ୍ଭାକୁ ମଣିଲେ ଏସନ | ।। | ୬୫ |
| | [୪]ରାମସହିତେ ବନମାଳୀ | । ବ୍ରଜେ ଅଦ୍ଭୁତ ବାଳକେଳି | ।। | |
| | ମାନଙ୍କେ ତାତ-ଜନନୀର | । ଧଇଲେ ଆନନ୍ଦ ଅପାର | ।। | |
| ୨୧ | ଯାଆନ୍ତେ କେତେ କାଳ ତହିଁ | । ଗୋକୁଳେ ରାମ କୃଷ୍ଣ ଦୁଇ | ।। | ୬୬ |
| | ଜାନୁରେ ପାଣିରେ ଭ୍ରମଣ | । କରନ୍ତେ ବିହରିଲେ ପୁଣ | ।। | ୬୭ |
| ୨୨ | ଘୋସାରି କରି ପାଦଦୁଇ | । ଯାଆନ୍ତେ ଅତିଶୟ ହୋଇ | ।। | ୬୮ |

---

୧. କଳିଯୁଗେ । ୨. ସମାଧାନ = ସମାପନ ।

୩. ବାଲକ୍ରୀଡ଼ାଚମତ୍କାରୈଃ କୃଷ୍ଣୋ ରାମେଣ ସଂଯୁତଃ ।
ପରମାନନ୍ଦମାଧତ୍ତ ବ୍ରଜେ ନନ୍ଦଯଶୋଦୟୋଃ ।। (ସ୍ୱାମୀ)

୪. ଏ ପାଠ କେବଳ 'କ' ପୋଥିରେ ଅଛି ।

ଭୂଷଣ ଯେ କଟୀପାଦରେ । ସେ କିଙ୍କିଣୀଙ୍କ ପ୍ରଘୋଷରେ ।। ୬୯
ଯେମନ୍ତେ ହୋଏ ମନୋହର । ନାଦରେ ସେ କିଙ୍କିଣୀଙ୍କର[1] ।। ୭୦
ହରଷ ମନ ଦୁହିଁଙ୍କରି । ଲୋକଙ୍କୁ କିଛି ଅନୁସରି ।। ୭୧
ଯେ ମୂଢ଼ ଯେ ଭୟାଳୁ ଜନ । କ୍ଷଣକେ ହୋଇଣ ତେସନ ।। ୭୨
ନିକଟେ ଥା'ନ୍ତେ ମାତା ଦୁଇ । ମିଳିଲେ ତାଙ୍କ ପାଶେ ଯାଇ ।। ୭୩
୨୩ ଯେ ପଙ୍କ ଯେ ବା ଅଙ୍ଗରାଗ । ତେଣେ ରୁଚିର ଯାଙ୍କ ଅଙ୍ଗ ।। ୭୪
ସେ ବେନି ସୁତଙ୍କୁ ଭୁଜରେ । ବେନି ଜନନୀ ଘେନି ଧୀରେ ।। ୭୫
କୃପାରେ ସ୍ତନରୁ ତାଙ୍କର । ଇଛାଏ ସ୍ରବୁଅଛି କ୍ଷୀର ।। ୭୬
ଦୁଇ ପୁତ୍ରଙ୍କୁ ସ୍ତନ ଦେଇ । ପିବନ୍ତେ ପୁଣ ସେହୁ ଦୁଇ ।। ୭୭
ସୁନ୍ଦର ଅଟେ ଯହିଁ ସ୍ମିତ । ଅଳପ ଉଠିଅଛି ଦନ୍ତ ।। ୭୮
ଏମନ୍ତ ମୁଖକୁ ଦେଖିଣ । ଲଭିଲେ ହରଷକୁ ପୁଣ ।। ୭୯
୨୪ ସ୍ତିରୀମାନଙ୍କ ଦରଶନ । ଯୋଗ୍ୟ କୁମାରଲୀଳାମାନ ।। ୮୦
ହୋଇଲା ବ୍ରଜର ମଧ୍ୟରେ । ତାଙ୍କର ଯେବେଣ କାଳରେ ।। ୮୧
ସେ ଦୁହେଁ ଯଉଁ ବସ୍ତଙ୍କର । ପୁଚ୍ଛକୁ ଧଇଲେ ସତ୍ୱର ।। ୮୨
ସେ ବସ୍ତମାନେ ଏଣେ ତେଣେ । ଓଟାରି ନିଅନ୍ତେ ତତ୍‌କ୍ଷଣେ ।। ୮୩
ତାହା ଦେଖନ୍ତେ ବ୍ରଜନାରୀ । ଗୃହକୃତ୍ୟକୁ ଛାଡ଼ି କରି ।। ୮୪
ହସନ୍ତେ ପଡ଼ିବା ଭୟରେ । ଧଇଲେ ଅନୁରାଗଭରେ ।। ୮୫
୨୫ ଯେ ଶୃଙ୍ଗ ଦନ୍ତମାନ ବହି । ପଶୁଏ, ଯେ ଦହନ, ଅହି ।। ୮୬
ଯେ ଜଳ ପକ୍ଷୀ କଣ୍ଟାମାନେ । ସେମାନଙ୍କର ଅନୁଦିନେ ।। ୮୭
ଯେ କ୍ରୀଡ଼ାପର ଅବିରତେ । ଅତିଚଞ୍ଚଳ ବେନି ସୁତେ ।। ୮୮
ନିବର୍ତ୍ତାଇବାକୁ ତାହାଙ୍କୁ । ସ୍ୱଗୃହକୃତ୍ୟ କରିବାକୁ ।। ୮୯
ସେ ଦୁହିଁଙ୍କର ମାତା ଯେବେ । ଶକତ ନୋହିଲେ, ସେ ତେବେ ।। ୯୦
ଅସ୍ଥିର ଭାବ ଯେ ଚିତ୍ତରେ । ଲଭିଲେ ତା' ଅତି ନିର୍ଭରେ[2] ।। ୯୧
୨୬ ହେ ରାଜରଷି ! ଅଳ୍ପକାଳେ । ସେ ରାମ ଗୋବିନ୍ଦ ଗୋକୁଳେ ।। ୯୨
ଘୁସୁରୁ[3] ନାହିଁ ଜାନୁ ଯହିଁ । ଏମନ୍ତ ପାଦମାନ ଯେହି ।। ୯୩
ସେ ପାଦମାନଙ୍କେ ଭ୍ରମଣ । କଲେକ ଅନାୟାସେ ପୁଣ ।। ୯୪
୨୭ ତଦନ୍ତେ ବ୍ରଜବାଳ ଯେତେ । ମିତ୍ର ଅଟନ୍ତି ସେ ସଙ୍ଗତେ ।। ୯୫
ରାମସହିତେ ଭଗବାନ । କ୍ରୀଡ଼ାକୁ କଲେ ଅନୁଦିନ ।। ୯୬
ଯେତେକ ଗୋକୁଳଯୁବତି । ଜାତ କରନ୍ତେ ତାଙ୍କ ପ୍ରୀତି ।। ୯୭
୨୮ ଶିଶୁଭାବରୁ ଯେ କୃଷ୍ଣର । ଚଞ୍ଚଳ ଭାବ ମନୋହର ।। ୯୮
ତା' ଦେଖି ଗୋପୀମାନେ ଗଲେ । ନନ୍ଦର ଭବନେ ମିଳିଲେ ।। ୯୯
ଶୁଣନ୍ତେ ସେ କୃଷ୍ଣର ମାତା । କହିଲେ ଏମନ୍ତ ବ୍ୟବସ୍ଥା ।। ୧୦୦

---

୧. ଭୂଷଣଙ୍କର । ୨. ନିର୍ଭରେ = ଭରସାରେ । ୩. ଘୁସୁରୁ = ଘୋସରୁ ।

୨୯ [୧]ଦୋହନକାଳ ନୋହିଥାଇ । ବତ୍ସାଙ୍କୁ ଦିଅନ୍ତେ ଫିଟାଇ ॥ ୧୦୧
ହସଇ ଆକ୍ରୋଶବଚନେ । ଯେ ସ୍ୱାଦୁ ଦଧି ଦୁଗ୍‌ଧମାନେ ॥ ୧୦୨
କଳ୍ପିତ ଚୌର୍ଯ୍ୟଉପାୟରେ । ଚୋରାଇ ତାହା ଭକ୍ଷ୍ୟ କରେ ॥ ୧୦୩
ଭକ୍ଷନ୍ତେ ବିଭାଗ କରଇ । ମର୍କଟମାନଙ୍କୁ ଦିଅଇ ॥ ୧୦୪
କେ[୨] ତୃପ୍ତ ହୋଇ କରି ଯେବେ । ନ ଖାଇ, ଭାଣ୍ଡ ଭାଙ୍ଗେ ତେବେ ॥ ୧୦୫
ଯହିଁରେ ଦ୍ରବ୍ୟକୁ ନ ପାଇ । ଏ ଗୃହ ପୋଡ଼ିବି ବୋଲଇ ॥ ୧୦୬
କୁପିତ ହୋଇ ତହୁଁ ଯାଇ । ବାଳକମାନଙ୍କୁ କନ୍ଦାଇ ॥ ୧୦୭
୩୦ ଗୃହକର୍ମରେ ଗୋପୀ ଯେବେ । ଆସକ୍ତଚିତ୍ତ ଏହୁ ତେବେ ॥ ୧୦୮
ତହିଁକି ଅଟେ ଯେ ବିଧାନ । ସେ କଥା କରଇ ରଚନ ॥ ୧୦୯
ଯେ ଗ୍ରାହ୍ୟ ନୁହଇ ହସ୍ତରେ । ପିଢ଼ା ଉଦୁଖଳ[୩] ଆଦିରେ ॥ ୧୧୦
ଯେ ଭାଣ୍ଡମାନ ଶିକାପରେ । ଥାନ୍ତି ଯେ ଦଧ୍ୟାଦି ତହିଁରେ ॥ ୧୧୧
ସେମାନ ସକଳ ଜାଣଁଇ । ଛିଦ୍ରକୁ ତହିଁରେ ରଚଇ ॥ ୧୧୨
ଯେମନ୍ତେ ଭାଣ୍ଡ ଛିଦ୍ର ହୋଇ । ଆପଣେ ଜାଣେ ସେକଥା ହିଁ ॥ ୧୧୩
ଯେ ଗୃହ ଯୁକ୍ତ ଅନ୍ଧକାରେ । ଆପଣା ଅଙ୍ଗକୁ ତହିଁରେ ॥ ୧୧୪
ଦ୍ରବ୍ୟପ୍ରକାଶ ହେବାପାଇଁ । ତକ୍ଷଣେ ପ୍ରଦୀପ କରଇ ॥ ୧୧୫
ଯେଣୁ ସେ ଅଙ୍ଗ ମଣିଗଣ । ଧରିଣ ଥାଇ ପ୍ରତିକ୍ଷଣ ॥ ୧୧୬
୩୧ ତୁ ଚୋର ଯେବେ ବୋଲୁଁ ଆମ୍ଭେ । ଏ ବୋଲେ ଚୋର ଅଟ ତୁମ୍ଭେ ॥ ୧୧୭
ପ୍ରଗଲ୍‌ଭଭାବ ଏ ପ୍ରକାରେ କରଇ ଦେଖିବା ବେଳରେ ॥ ୧୧୮
ମଳଉତ୍ସର୍ଗ ଆଦି ତହିଁ କରେ ଉତ୍ତମ ବାସ୍ତୁ[୪] ଯେହି ॥ ୧୧୯
ଏ ରୂପେ ଚୋରକର୍ମ ଯେତେ । ଉପାୟ ରଚଇ ଏ ତେତେ ॥ ୧୨୦
ସଭୟ ଅଟେ ନେତ୍ର ଯହିଁ । ଏମନ୍ତ ଶ୍ରୀମୁଖକୁ ଚାହିଁ ॥ ୧୨୧
ଏମନ୍ତ ରୂପେ ପ୍ରୟୋଜନ । ଖ୍ୟାତ କରନ୍ତେ ଗୋପୀଜନ ॥ ୧୨୨
ମାତା ସହାସମୁଖୀ ହେଲେ । ଗାଳି ଦେବାକୁ ନ ବାଞ୍ଛିଲେ ॥ ୧୨୩
୩୧କ [୫]ଏକ ସମୟେ ଗୋପନାରୀ । କୃଷ୍ଣଙ୍କୁ ଏକେ ଏକେ ଧରି ॥

---

୧. କୃଷ୍ଣଚାପଳଚୌର୍ଯ୍ୟାଣି ସହୈବାଖିଳସଦ୍ମତଃ ।
ପ୍ରଜଳ୍ପନ୍ତ୍ୟଃ ସମାଗତ୍ୟ ଗୋପ୍ୟୋ ଗୋପ୍ୟୈ ମୁଦଂ ଦଦୁଃ । (ସ୍ୱାମୀ)
କୃଷ୍ଣଙ୍କ ଚପଳତା ଓ ଚୋରିକୁ ଏକସଙ୍ଗେ ପରିହାସ କରି କରି ଘରମାନଙ୍କରୁ ବାହାରିପଡ଼ି ଗୋପୀମାନେ ଯଶୋଦାଙ୍କୁ ଆନନ୍ଦ ଦେଲେ ।

୨. କେ = ମର୍କଟମାନଙ୍କ ମଧ୍ୟରୁ କେହି । ସେ (ପାଠାନ୍ତର) । ୩. ଉଦୁଖଳ = ଢିଙ୍କି । ୪. ବାସ୍ତୁ = ଗୃହ ।

୫. ଗୋପ୍ୟଃ କଦାଚନ ପୃଥକ୍ ପୃଥଗୃହ୍ୟ କୃଷ୍ଣମେତ୍ୟୈକଦୈବ ଗଦିତୁଂ ପ୍ରସୃତାସ୍ତଦାଗଃ ।
ଦୃଷ୍ଟ୍ୱା ତଦନ୍ତ୍ୟଥ ତମେବ ନିଜାଂଶ୍ଚ ତୋକାନ୍ ସର୍ବାଶ୍ଚ ତା ନିବବୃତୁଃ ସ୍ୱଗୃହାନ୍ ସଲଜ୍ଜାଃ ॥ ଇତି ଅଧିକଃ ପାଠଃ
'ଗ' ପୋଥିରେ ଏହି ଶ୍ଳୋକ ଓ ତାହାର ଅନୁବାଦ ଦୃଷ୍ଟ ହୁଏ ନାହିଁ ।
ଗୋପୀମାନେ କେବେ କେବେ ପୃଥକ୍ ପୃଥକ୍ କୃଷ୍ଣଙ୍କ ପାଖକୁ ଆସି ତାଙ୍କ ଅପରାଧ କହିବାକୁ ଆଗୁସାର ହେଲେ । ତାହାପରେ ତାଙ୍କ ନିକଟରେ ତାଙ୍କୁ ଓ ତାଙ୍କ ନିଜ ପିଲାଙ୍କୁ ଦେଖି ସେମାନେ ସଲଜ୍ଜ ହୋଇ ନିଜ ନିଜ ଘରକୁ ଫେରିଲେ ।

| | | | | |
|---|---|---|---|---|
| | ଆସିଲେ ତା' ଅପରାଧକୁ | । ଏକା କାଳରେ କହିବାକୁ | ।। | |
| | ମିଳି ଯଶୋଦାନିକଟରେ | । ଶିଶୁମାନଙ୍କ ସଙ୍ଗତରେ | ।। | |
| | କୃଷ୍ଣଙ୍କୁ ଦେଖି ଲଜ୍ଜା ପାଇ | । ନିବୃତ୍ତ ହେଲେ ତୁନି ହୋଇ | ।। | |
| ୩୨ | ରାମାଦି ଗୋପସୁତମାନେ | । କ୍ରୀଡ଼ା କରନ୍ତେ ଏକଦିନେ | ।। | ୧୨୪ |
| | ଶ୍ରୀକୃଷ୍ଣ ମୃତ୍ତିକା ଖାଇଲେ | । ଏମନ୍ତ ମାତାଙ୍କୁ କହିଲେ | ।। | ୧୨୫ |
| ୩୩ | ଭୟେ ଚ଼ପଳନିରୀକ୍ଷଣ | । ଲୋଚନଯୁଗ ଯାର ପୁଣ | ।। | ୧୨୬ |
| | କରେ ଧରିଣ ସେ ପୁତ୍ରକୁ | । ଭର୍ତ୍ସନା କରିଣ ତାହାକୁ | ।। | ୧୨୭ |
| | ଯଶୋଦା ବୋଇଲେ ଏମନ୍ତ | । ଯେଣୁ ବାଞ୍ଛନ୍ତି ସୁତହିତ | ।। | ୧୨୮ |
| ୩୪ | ଆରେ ଚପଳଗାତ୍ର ! ତୁହି | । କି ହେତୁ ଏକାନ୍ତରେ ରହି | ।। | ୧୨୯ |
| | ମାଟି ଖାଇଲୁ, ଏ ସକଳେ | । କହୁଛନ୍ତି ତୋ'ସଙ୍ଗୀ ବାଳେ | ।। | ୧୩୦ |
| | ଏ ଯେ ତୋହର ଜ୍ୟେଷ୍ଠ ଭାଇ | । ଏହି ତ କହୁଅଛି ତାହି | ।। | ୧୩୧ |
| ୩୫ | ମୁଁ ମାଟି ଖାଇ ନାହିଁ ମାତ | । ମିଥ୍ୟା କହନ୍ତି, ଏ ସମସ୍ତ | ।। | ୧୩୨ |
| | ଯେବେ ଏମାନଙ୍କର ବାଣୀ | । ସତ୍ୟ, ଏମନ୍ତ ଅଛୁ ମଣି | ।। | ୧୩୩ |
| | ତେବେ ତୁ ମୋହର ବଦନ | । ପ୍ରତ୍ୟକ୍ଷେ କର ବିଲୋକନ | ।। | ୧୩୪ |
| ୩୬ | ଏମନ୍ତ ଯେବେ, ମୁଖ ତୋର | । ମୋ' ଆଗେ କର ତୁ ବିସ୍ତାର | ।। | ୧୩୫ |
| | ଅହତ[୧] ଯା' ଈଶ୍ୱରଭାବ | । କ୍ରୀଡ଼ାଏଁ ଯେ ଶିଶୁମାନବ | ।। | ୧୩୬ |
| | ମାତା କହନ୍ତେ ଏ ବଚନ | । ବିସ୍ତାର କଲେ ସେ ବଦନ | ।। | ୧୩୭ |
| ୩୭ | ବିଶ୍ୱକୁ ଦେଖିଲେ ସେ ତହିଁ | । ସ୍ଥାବର ଜଙ୍ଗମ ଯେ ଦୁଇ | ।। | ୧୩୮ |
| ୩୮ | ଯେ ଅନ୍ତରିକ୍ଷ ଲୋକ ଆନ | । ପୂର୍ବାଦି ଯେ ବା ଦିଗମାନ | ।। | ୧୩୯ |
| | ଯେ ଦ୍ୱୀପ ସାଗର ଅଚଳ[୨] | । ତେଣେ ସହିତ ଯେ ଭୂଗୋଳ | ।। | ୧୪୦ |
| | ପ୍ରବହ[୩] ବୈଦ୍ୟୁତ ଅନଳ | । ଚନ୍ଦ୍ରମା ତାରକା ସକଳ | ।। | ୧୪୧ |
| | ଏମାନଙ୍କରେ ଯୁତ ହୋଇ | । ସ୍ୱର୍ଲୋକ, ଜଳ ତେଜ ଦୁଇ | ।। | ୧୪୨ |
| | ପବନ ଆକାଶ ଉଭୟେ | । ଯେ ବଇକାରିକ[୪] ଇନ୍ଦ୍ରିୟେ | ।। | ୧୪୩ |
| | ମନ ଶବଦ ରୂପ ରସ | । ଯେ ଗନ୍ଧ ସ୍ପରଶ ତାମସ | ।। | ୧୪୪ |
| | ଯେ ସତ୍ତ୍ୱ ରଜ ତମ ପୁଣ | । ଏ ରୂପେ ଖ୍ୟାତ ତିନି ଗୁଣ | ।। | ୧୪୫ |
| ୩୯ | ଗୁଣକ୍ଷୋଭକ ଜୀବ ଯେହି | । ଯେ ପରିଣାମହେତୁ ହୋଇ | ।। | ୧୪୬ |
| | ସେ କାଳ, [୫]ଯେ ହେତୁ ଜନ୍ମର | । ଯେ କର୍ମ ତାହାର[୬] ସଂସ୍କାର | ।। | ୧୪୭ |
| | ଯେବା ଆଶୟ ଏଣେ, ଯହିଁ | । ଶରୀରଙ୍କର ଭେଦ ହୋଇ | ।। | ୧୪୮ |
| | ପବିତ୍ର ଅଟେ ସେ ଜଗତ | । ଯେ ପୁଣ ଅଟେ ନିଜ ସୁତ | ।। | ୧୪୯ |

୧. ଅହତ = ଅବ୍ୟାହତ । ୨. ଅଚଳ = ପର୍ବତ । ୩. ପ୍ରବହ = ବାୟୁ ।
୪. ବଇକାରିକ = ଦେବମାନେ । ମନ - ବୈକାରିକ ହେଲେ ମଧ୍ୟ 'ଦେବ' ଠାରୁ ବିଲକ୍ଷଣ । ଏଣୁ ସ୍ୱତନ୍ତ୍ର । ୫. ଯେ ଜନ୍ମର ହେତୁ, ସେ ସ୍ୱଭାବ । ୬. ତାହାର = ଜନ୍ମର ।

| | | | | | |
|---|---|---|---|---|---|
| | ମୁଖ ବିସ୍ତାରିଛି ସେ ଯହିଁ | । | ସେ ଦେହେ ଏକବେଳେ ଚାହିଁ | ।। | ୧୫୦ |
| | ଆପଣା ସହିତେ ବ୍ରଜକୁ | । | ଦେଖିଣ ଲଭିଲା ଶଙ୍କାକୁ | ।। | ୧୫୧ |
| ୪୦ | କି ଅବା ସ୍ୱପ୍ନ ଏ ଅଟଇ | । | ପୁଣି ସକଳକୁ ସେ ଚାହିଁ | ।। | ୧୫୨ |
| | ବୋଇଲା ନୋହେ ଏ ସ୍ୱପନ | । | ବିଷ୍ଣୁର ଏ ମାୟାବିଧାନ | ।। | ୧୫୩ |
| | ବିଷ୍ଣୁର ମାୟା ଅଟେ ଯେବେ | । | ନ ଦେଖେ ଆନ କିମ୍ପା ତେବେ | ।। | ୧୫୪ |
| | ଅଥବା ମୋର ବୁଦ୍ଧିମୋହ | । | ତହିଁରେ ହୋଉଛି ସଂଦେହ | ।। | ୧୫୫ |
| | ଦର୍ପଣେ ଦିଶିଲେ ବଦନ | । | ବାମେ ଦକ୍ଷିଣେ ହୋଇ ଭିନ୍ନ | ।। | ୧୫୬ |
| | ଶ୍ରୀକୃଷ୍ଣ ବାହାରେ ଯେମନ୍ତ | । | ଅନ୍ତରେ ଦିଶୁଛି ତେମନ୍ତ | ।। | ୧୫୭ |
| | ଅଥବା ଏ ମୋର ସୁତର | । | ସ୍ୱଭାବୁଁ ସମ୍ଭବ ଯାହାର | ।। | ୧୫୮ |
| | ଏମନ୍ତ ଅଇଶ୍ୱର୍ଯ୍ୟ ଯେହି | । | ପ୍ରକାଶ ହୋଇଅଛି ସେହି | ।। | ୧୫୯ |
| ୪୧ | ମନ-ବଚନ-କର୍ମ-ଚିତ୍ତେ | । | ଯଥାର୍ଥ କରିଣ ତୁରିତେ | ।। | ୧୬୦ |
| | ତର୍କଗୋଚର ଯେ ନୁହଇ | । | ସେ ବିଶ୍ୱଅଧିଷ୍ଠାନ ଯେହି | ।। | ୧୬୧ |
| | ସେ ବିଶ୍ୱ ଯେଣେ ଯାହାଠାରୁ | । | ପ୍ରତୀତ ହୋଇଛି ପୂର୍ବରୁ | ।। | ୧୬୨ |
| ୪୨ | ଯଶୋଦାନାମ ମୁଁ, ମୋହର | । | ପତି ଏ, ଏ ମୋର କୁମର | ।। | ୧୬୩ |
| | ଏ ବ୍ରଜପତିର ମୁଁ ନାରୀ | । | ସକଳବିତ୍ତରକ୍ଷାକରୀ | ।। | ୧୬୪ |
| | ଗୋଧନ ସହିତେ ଗୋପାଳେ | । | ଗୋପୀଏ ମୋର ଏ ସକଳେ | ।। | ୧୬୫ |
| | ଏରୂପେ ଏ କୁତ୍ସିତ ମତି | । | ଯାର ମାୟାରେ ସେ ମୋ' ଗତି | ।। | ୧୬୬ |
| ୪୩ | ଗୋପିକା ଏମନ୍ତ ପ୍ରକାରେ | । | ତତ୍ତ୍ୱକୁ ଜାଣନ୍ତେ ସତ୍ୱରେ | ।। | ୧୬୭ |
| | ଜଗତବ୍ୟାପୀ ଯେ ଈଶ୍ୱର | । | ଯେ ବିଷ୍ଣୁମାୟା ଆପଣାର | ।। | ୧୬୮ |
| | ବିସ୍ତାର କଲେ ତାହା ତହିଁ | । | ତନୟସ୍ନେହମୟୀ ଯେହି | ।। | ୧୬୯ |
| ୪୪ | ତକ୍ଷଣେ ଜ୍ଞାନ ହେଲା ହତ | । | କୋଳେ ବସାଇ ନିଜ ସୁତ | ।। | ୧୭୦ |
| | ପୂର୍ବପ୍ରାୟକ ଅତି ସ୍ନେହ | । | ବ୍ୟାପ୍ତ ହୋଇଲା ତା' ହୃଦୟ | ।। | ୧୭୧ |
| ୪୫ | ରକ-ଯଜୁ-ସାମ ବେଦରେ | । | ଇନ୍ଦ୍ରାଦି ଦେବତା ରୂପରେ | ।। | ୧୭୨ |
| | ଉପନିଷଦେ ବ୍ରହ୍ମରୂପେ | । | ସାଂଖ୍ୟରେ ପୁରୁଷସ୍ୱରୂପେ | ।। | ୧୭୩ |
| | ଯେ ଯୋଗଶାସ୍ତ୍ରେ ଛନ୍ତି ତହିଁ | । | ପରମ ଆତ୍ମାରୂପ ହୋଇ | ।। | ୧୭୪ |
| | ଯେ ବା ସାତ୍ୱତ ଭକ୍ତଜନ | । | ସେମାନଙ୍କରେ ଭଗବାନ | ।। | ୧୭୫ |
| | ଏରୂପେ ମହିମା ଯାହାର | । | ଗାୟନ ହୋଏ ନିରନ୍ତର | ।। | ୧୭୬ |
| | ସେ ପ୍ରଭୁଙ୍କୁ ସେ ନନ୍ଦନାରୀ | । | ମଣିଲା ସୁତ ଏ ମୋହରି | ।। | ୧୭୭ |

ଶ୍ରୀରାଜୋବାଚ

| | | | | | |
|---|---|---|---|---|---|
| ୪୬ | ହେ ବିପ୍ର ! ଯେ ନନ୍ଦ ଗୋପାଳ | । | ପୂର୍ବେ କି କଲା ସେ ମଙ୍ଗଳ | ।। | ୧୭୮ |
| | ଯେ ଅଟେ ମହାଭାଗ୍ୟବତୀ | । | ଯଶୋଦା ନନ୍ଦର ଯୁବତୀ | ।। | ୧୭୯ |

| | | | |
|---|---|---|---|
| | ସେ କି ବା ଶ୍ରେୟ ଆଚରିଲେ । | ହରି ଯା' ସ୍ତନକୁ ପିଇଲେ | ॥ ୧୮୦ |
| | ଯଉଁ ମଙ୍ଗଳର ମହତ । | ଉଦୟ ଅଟଇ ଏମନ୍ତ | ॥ ୧୮୧ |
| ୪୭ | କୃଷ୍ଣର ଉଦାର ଚରିତ । | ଯେ ଅଟେ ବାଳକ ଈହିତ[୧] | ॥ ୧୮୨ |
| | ଦେବକୀ ବସୁଦେବ ଯେହି । | ଯା' ନ ପାଇଲେ ସେହୁ ଦୁଇ | ॥ ୧୮୩ |
| | ଅଦ୍ୟାପି ଯାହା କବିମାନେ । | ଗାୟନ କରନ୍ତି ଭୁବନେ | ॥ ୧୮୪ |
| | ଲୋକମାନଙ୍କର ଦୁରିତ । | ଯେ ଲୀଳା କରଇ ନିହତ | ॥ ୧୮୫ |

ଶ୍ରୀଶୁକ ଉବଚ

| | | | |
|---|---|---|---|
| ୪୮ | ବସୁମାନଙ୍କରେ ଉତ୍ତମ । | ଦ୍ରୋଣ ଅଟଇ ଯାର ନାମ | ॥ ୧୮୬ |
| | ସ୍ୱଭାର୍ଯ୍ୟା ଧରାସଙ୍ଗତରେ । | ବ୍ରହ୍ମାଙ୍କ ଆଜ୍ଞା କରିବାରେ | ॥ ୧୮୭ |
| | ଏମନ୍ତ ରୂପେ ବଚନକୁ । | କହିଲା ପୁଣ ସେ ବ୍ରହ୍ମାଙ୍କୁ | ॥ ୧୮୮ |
| ୪୯ | ଧରଣୀମଧ୍ୟେ ଆମ୍ଭେ ଦୁଇ । | ଜନମ ହେବୁଁ ଯେବେ ଯାଇ | ॥ ୧୮୯ |
| | ମହାଦେବତା ଜଗତର । | ଯେ ହରି ଅଟନ୍ତି ଈଶ୍ୱର | ॥ ୧୯୦ |
| | ପରମ ଭକତି ଆମ୍ଭର । | ଜାତ ହୋଇବ ତାଙ୍କ ଠାର | ॥ ୧୯୧ |
| | ଯେବଣ ଭକତିରେ ଜନ । | ତରେ ଦୁର୍ଗତିକି ବହନ | ॥ ୧୯୨ |
| ୫୦ | ବ୍ରହ୍ମା ବୋଲନ୍ତେ ଅସ୍ତୁ ବାଣୀ । | ସେ ମହାଯଶା ଦ୍ରୋଣ ଶୁଣି | ॥ ୧୯୩ |
| | ବ୍ରଜମଧ୍ୟରେ ହେଲା ଜାତ । | ଯେ ନନ୍ଦନାମରେ ବିଖ୍ୟାତ | ॥ ୧୯୪ |
| | ଯେ ଧରା ତା' ଭାର୍ଯ୍ୟା ବିଦିତ । | ଯଶୋଦା ନାମେ ହେଲା ଜାତ | ॥ ୧୯୫ |
| ୫୧ | ଯେ ଜନାର୍ଦ୍ଦନ ପୁତ୍ରରୂପେ । | ରହିଲେ ତାହାଙ୍କ ସମୀପେ | ॥ ୧୯୬ |
| | ସେ ଦୁହିଁଙ୍କର ତାଙ୍କ ଠାରେ । | ଭକ୍ତି ହୋଇଲା ଯଥେଷ୍ଟରେ | ॥ ୧୯୭ |
| | ହେ ନୃପ ! ଗୋପଗୋପୀଠାରେ । | ସେ ଭକ୍ତି ଅଛି ସ୍ୱଭାବରେ | ॥ ୧୯୮ |
| ୫୨ | ବ୍ରହ୍ମାଙ୍କ ଆଦେଶକୁ ହରି । | ସତ୍ୟ କରିବାକୁ ବିଚାରି | ॥ ୧୯୯ |
| | ବ୍ରଜରେ ରାମସହିତରେ । | ବସନ୍ତେ ଆପଣା ଲୀଳାରେ | ॥ ୨୦୦ |
| | ସେମାନଙ୍କର ଯଉଁ ପ୍ରୀତି । | ସେକଥା କଲେ ଉତପତି | ॥ ୨୦୧ |
| | ହରିବା ଅର୍ଥେ ଭୂମିଭାର । | ଜନ୍ମିଲେ ଯେ ମଥୁରାପୁର | ॥ ୨୦୨ |
| | ବ୍ରଜେ ଯେ ଗୋପାଳଙ୍କ ସଙ୍ଗେ । | ବିହାର କଲେ ନାନା ରଙ୍ଗେ | ॥ ୨୦୩ |
| | ସେ କୃଷ୍ଣଚରଣପଙ୍କଜ । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ॥ ୨୦୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବିଶ୍ୱରୂପଦର୍ଶନଂ
ନାମାଷ୍ଟମୋଽଧ୍ୟାୟଃ ॥

---

୧. ଈହିତ = ଚେଷ୍ଟିତ ।

# ନବମ ଅଧ୍ୟାୟ

ନବମେ ପୟଉଦ୍‌ସିକ୍ତେ ଗତ୍ୱା ଗୋପ୍ୟଥ ତତ୍‌କୃତମ୍ ।
ବିଲୋକ୍ୟ ଭାଣ୍ଡଭଙ୍ଗାଦି କୃଷ୍ଣଂ ଦାମ୍ନା ବବନ୍ଧ ତମ୍ ।। ୧
ତନୂଦରାଶ୍ରିତଂ ବିଶ୍ୱଂ ଦୃଷ୍ଟ୍ୱା ବିସ୍ମିତଚେତସଃ ।
ବନ୍ଧନଦ୍ୱ୍ୟଙ୍ଗୁଳାପୂର୍ତ୍ତ୍ୟା ପୂର୍ଣ୍ଣତାମନ୍ୱଦର୍ଶୟତ୍ ।। ୨

ଶ୍ରୀଶୁକ ଉବାଚ

୧ ଏକଦିନକେ ନନ୍ଦନାରୀ । ଯେତେ ତାହାଙ୍କ ପରିଚାରୀ ।।
ସେମାନେ ଯଉଁ କାର୍ଯ୍ୟ ଆନ । ତହିଁ ହୁଅନ୍ତେ ନିଯୋଜନ ।।
ତାହାଙ୍କୁ ଅପେକ୍ଷା ନ କଲେ । ଆପଣେ ଦଧିକି ମନ୍ଥିଲେ ।।
୨ ସେ କୃଷ୍ଣବାଳକଚରିତ । ଅଟଇ ଯଉଁ ଯଉଁ ଗୀତ ।।
ଦଧିମନ୍ଥନକାଳେ ଯେହି । ସ୍ମରନ୍ତେ ଗାଇଲେ ତା' ତହିଁ ।।
୩ କାଞ୍ଚୀ[1]ନିବଦ୍ଧ ସୂକ୍ଷ୍ମପଟେ[2] । ଧରିଛି ପୃଥୁକଟିତଟେ ।।
ପୁତ୍ରସ୍ନେହରୁ କ୍ଷୀର ଯହିଁ । ସ୍ରବେ, କମ୍ପୁଛି ପୁଣ ଯେହି ।।
ବହିଅଛି ସେ କୁଚବେନି । ରଜ୍ଜୁକୁ ଓଟାରନ୍ତେ ଘେନି ।।
ଯେବଣ ଭୁଜେ ଶ୍ରମ ଜାତ । ତହିଁ ଚଞ୍ଚଳ ଭାବେ ସ୍ଥିତ ।।
ଯେବଣ କଙ୍କଣଯୁଗଳ । କର୍ଣ୍ଣରେ ଯେ ବେନି କୁଣ୍ଡଳ ।।
ସ୍ୱେଦସଂଯୁତ ଯେ ବଦନ । ବହିଣ ଅଛି ଯେ ସେମାନ ।।
କବରୁଁ ଗଳିତ ମାଳତୀ । କୁସୁମେ ପଡୁଛନ୍ତି କ୍ଷିତି[3] ।।
ଭ୍ରୂଲତା ଯାହାର ଶୋଭନ । ଦଧିକି କଲେ ସେ ମନ୍ଥନ ।।
୪ ଜନନୀ ମନ୍ଥନ୍ତେ ଶ୍ରୀହରି । ସ୍ତନ ପିଇବା ବାଞ୍ଛା କରି ।।
ତା' ପାଶେ ହୋଇଣ ପ୍ରବେଶ । ପ୍ରୀତିକି କରନ୍ତେ ପ୍ରକାଶ ।।
ଧରିଣ ମନ୍ଥନଦଣ୍ଡକୁ । ନିଷେଧ କଲେ ମନ୍ଥିବାକୁ ।।
୫ ସେ କାଳେ କୋଡ଼େ ଆରୋହିଣ । ତାଙ୍କ ସସ୍ମିତମୁଖ ପୁଣ ।।
ଚାହାଁନ୍ତେ ସ୍ନେହବଶୁଁ ଯେହି । ସ୍ରବୁଛି, ସେ ସ୍ତନକୁ ସେହି ।।
ତାହାଙ୍କୁ କରାଇଲା ପାନ । ତୃପ୍ତ ନୋହିଛି କୃଷ୍ଣମନ ।।
ଚୁଲିରେ ଦୁଧ ବସିଥିଲା । ସେ ଯେତେବେଳେ ଉତୁରିଲା ।।
କୃଷ୍ଣଙ୍କୁ ତଳରେ ବସାଇ । ଯଶୋଦା ଗଲେ ବେଗ ହୋଇ ।।
୬ କୋପ ଜନ୍ମିଲା ତାହାଙ୍କର । କମ୍ପେ ଯେ ଅରୁଣ ଅଧର ।।
ଦନ୍ତରେ ତାହାକୁ ଚାପିଣ । ଶିଳାପୁତ୍ର[4]ରେ କରି ପୁଣ ।।
ଭାଙ୍ଗିଣ ଦଧିର ଭାଜନ । ମିଥ୍ୟାରେ କରନ୍ତି ରୋଦନ ।।

---

୧. କାଞ୍ଚୀ = ଅଣ୍ଟାସୂତା । ୨. ପଟ = ବସ୍ତ୍ର । ୩. କ୍ଷିତି = ଭୂଇଁରେ ।
୪. ଶିଳାପୁତ୍ର = ଶିଳିପତା, ଶିଳପୁଆ ।

ଗୃହମଧ୍ୟକୁ କୃଷ୍ଣ ଗଲେ । ଏକାନ୍ତେ ଲବଣୀ ଖାଇଲେ ॥ ୨୫
୭ ସୁତପ୍ତ ଦୁଧ ଓହ୍ଲାଇଣ । ପୁଣି ସେ ସ୍ଥାନରେ ମିଳିଣ ॥ ୨୬
ଭାଜିଛି ଦଧିର ଭାଜନ[1] । ଗୋପୀ ତା' କରି ବିଲୋକନ ॥ ୨୭
କୃଷ୍ଣଙ୍କୁ ନ ଦେଖନ୍ତେ ତହିଁ । ନିଜ ସୁତର କର୍ମ ଯେହି ॥ ୨୮
ସେ କଥା କରିଣ ଗୋଚର । ହସିଲେ ହୋଇଣ ସୁଧୀର ॥ ୨୯
୮ ଉଦୂଖଳକୁ ଲେଉଟାଇ । ତାର ମୂଳରେ ଛନ୍ତି ରହି ॥ ୩୦
ଶିକାରେ ସ୍ଥିତ ଯେ ଲବଣୀ । ତା' ଯେତେ ଇଚ୍ଛା ତେତେ ପୁଣି ॥ ୩୧
କପିକି କରନ୍ତେ ପ୍ରଦାନ । ଚଉର୍ଯ୍ୟଭାବରୁ ନୟନ ॥ ୩୨
ଚଞ୍ଚଳ ହୋଉଛି ଯାହାର । ଏମନ୍ତ ସେ ଯଉଁ କୁମର ॥ ୩୩
ପଛ ଆଡ଼ରେ ସ୍ଥିତ ହୋଇ । ତାଙ୍କ ପାଖକୁ ଗଲେ ସେହି ॥ ୩୪
୯ ଛାଟ ଅଛନ୍ତି କରେ ଧରି । ସେ ଜନନୀକି ଦେଖି ହରି ॥ ୩୫
ସତ୍ୱରେ ତହିଁରୁ ଓହ୍ଲାଇ । ଭୟ ପାଇଲା ପ୍ରାୟେ ହୋଇ ॥ ୩୬
ସେଠାରୁ କଲେକ ଗମନ । ଯାହାଙ୍କୁ ଯୋଗିଙ୍କର ମନ ॥ ୩୭
ଏକାଗ୍ର ଭାବୁଁ ଆପଣାର । ହୋଇଥିଲେହେଁ ତଦାକାର ॥ ୩୮
କ୍ଷମ ହେଲେହେଁ ପୁଣ ସେହି । ପ୍ରବେଶ ହେବାକୁ ନ ପାଇ ॥ ୩୯
ଏମନ୍ତ ଯେହୁ ବ୍ରହ୍ମରୂପୀ । ତାହାଙ୍କୁ ଗୋଡ଼ାଇଲା ଗୋପୀ ॥ ୪୦
୧୦ ପୃଥୁଳ ଚଞ୍ଚଳ ଶ୍ରୋଣୀର । ଭାରେ ଆକ୍ରାନ୍ତ ଗତି ଯାର ॥ ୪୧
ଯା' ମଧ୍ୟଦେଶ ମନୋହର । ଗମନ ଅଟେ ଯେ ସତ୍ୱର ॥ ୪୨
ସେ ଘେନି ଯେ କେଶବନ୍ଧନ । ଫିଟିଲା, ତହୁଁ ପୁଷ୍ପମାନ ॥ ୪୩
ପଡ଼ିଲେ, ତାଙ୍କୁ ଅନୁଗତ । ଗମନ ଯାହାର ବିଦିତ ॥ ୪୪
ସେ ମାତା ଗୋଡ଼ାନ୍ତେ ପଛରେ । କୃଷ୍ଣଙ୍କୁ ଧଇଲେ ସତ୍ୱରେ ॥ ୪୫
୧୧ ଅପରାଧକୁ ଆଚରିଣ । ରୋଦନ କରୁଛନ୍ତି ପୁଣ ॥ ୪୬
କଜ୍ଜଳବ୍ୟାପିତ ଲୋଚନ । ହସ୍ତରେ କରନ୍ତେ ମର୍ଦ୍ଦନ ॥ ୪୭
ଭୟରେ ଆଶଙ୍କିତ ହୋଇ । ଅଛି ଯାହାଙ୍କ ନେତ୍ର ଦୁଇ ॥ ୪୮
ମାତା ଦେଖନ୍ତେ ସେ କୃଷ୍ଣଙ୍କୁ । ହସ୍ତରେ ଧରିଣ ତାହାଙ୍କୁ ॥ ୪୯
ଭୟ କରାନ୍ତେ ଉତପନ୍ନ । ବଚନେ କଲେକ ଭର୍ତ୍ସନ ॥ ୫୦
୧୨ ବାଳକବତ୍ସଳ ସେ ମାତ । ଭୟ ପାଇଲା ନିଜ ସୁତ ॥ ୫୧
ଏମନ୍ତ ଜାଣି ତତକାଳ । ଛାଟକୁ ପକାଇଣ ତଳ ॥ ୫୨
ବାନ୍ଧିବା ପାଇଁ ଦଉଡ଼ିରେ । ବିଚାର କଲେକ ମନରେ ॥ ୫୩
ଯେଣୁ ତାହାଙ୍କ ବୀର୍ଯ୍ୟ ଯେହି । ତାହା ନ ଜାଣିଛନ୍ତି ସେହି ॥ ୫୪
୧୩ ଅନ୍ତର ବାହ୍ୟ ନାହିଁ ଯାର । ନ ପୁଣ ଯେ ପୂର୍ବ ଅପର ॥ ୫୫

୧. ମୂଳ ଶବ୍ଦ 'ଅମତ୍ରକ'।

ଯେ ଜଗତର ପୂର୍ବାପର । ବିଭାଗ ଯେ ବାହ୍ୟ ଅନ୍ତର ॥ ୫୬
ଜଗତସ୍ୱରୂପ ହୋଇଣ । ବିଖ୍ୟାତ ଯେ ଅଟନ୍ତି ପୁଣ ॥ ୫୭
୧୪ ସେ ମର୍ତ୍ତ୍ୟଲିଙ୍ଗ ଅବ୍ୟକତ । ଅଧୋକ୍ଷଜଙ୍କୁ ନିଜ ସୁତ ॥ ୫୮
ବୋଲି ମଣିଣ ସେ ସତ୍ୱରେ । ଉଦୂଖଳରେ ଦଉଡ଼ିରେ ॥ ୫୯
ଗୋପିକା କଲାକ ବନ୍ଧନ । ପ୍ରାକୃତ ଶିଶୁଙ୍କୁ ଯେସନ ॥ ୬୦
୧୫ ନିଜ ବାଳକ ଯେ ଅଟନ୍ତି । ଯେ ଅପରାଧ କରିଛନ୍ତି ॥ ୬୧
ତାଙ୍କୁ ବାନ୍ଧନ୍ତେ ରଜ୍ଜୁ ଦୁଇ । ଆଙ୍ଗୁଳ ଊଣା ହେଲା ତହିଁ ॥ ୬୨
ଗୋପିକା ଆନ ରଜ୍ଜୁ ଆଣି । ସନ୍ଧାନ କଲା ତହିଁ ପୁଣି ॥ ୬୩
୧୬ ପୁଣି ଯା' କଲାକ ସନ୍ଧାନ । ସେ ଦୁଇ ଆଙ୍ଗୁଳ ନିଉନ ॥ ୬୪
ପୁଣି ସନ୍ଧାନ ଆନ କଲା । ସେହି ତେତିକି ଊଣା ହେଲା ॥ ୬୫
ଯେତେ ବନ୍ଧନ ନିଯୋଜିଲେ । ସେତେ ତେତିକି[୧] ନ ଅଣ୍ଟିଲେ ॥ ୬୬
୧୭ ନିଜ ଗୃହର ଦାମମାନ । ଏମନ୍ତେ କରନ୍ତେ ସଂଧାନ ॥ ୬୭
ହସନ୍ତେ ଗୋପୀମାନେ, ମାତା । ହସନ୍ତେ ହୋଇଲେ ବିସ୍ମିତା ॥ ୬୮
୧୮ ସ୍ୱେଦରେ ସଂଯୁତ ଯାହାର । ହୋଇଲା ନିଜ କଳେବର ॥ ୬୯
କବରୀ ଫିଟି ଫୁଲମାଳ । ପଡ଼ିଲା ଯାଇଁ ଭୂମିତଳ ॥ ୭୦
ସେ ନିଜ ମାତାଶ୍ରମ ଚାହିଁ । କୃପାରେ ବନ୍ଧା ହେଲେ ଯାଇଁ ॥ ୭୧
୧୯ ଯେ କୃଷ୍ଣ ବଶ ଆପଣାର । ଅଧୀନ ନୁହନ୍ତି ପରର ॥ ୭୨
ହେ ନୃପ ! ଈଶ୍ୱର ସହିତ । ବଶେ ଯାହାର ଏ ଜଗତ ॥ ୭୩
ଭଗତବଶ ଭାବ ଯେହି । ଏ ରୂପେ ଦେଖାଇଲେ ତାହି ॥ ୭୪
୨୦ ଯେ କୃଷ୍ଣ ଅଟେ ମୋକ୍ଷପ୍ରଦ । ତାଠାରୁ ଯେବଣ ପ୍ରସାଦ ॥ ୭୫
ଲଭିଲା ନନ୍ଦର ଗୃହିଣୀ । [୨]ଚତୁରାନନ ଶୂଳପାଣି ॥ ୭୬
ଯେ ଲକ୍ଷ୍ମୀ ନିଜ ଅଙ୍ଗେ ଥାଇ । ଲଭି ନାହାନ୍ତି ଏହା କେହି ॥ ୭୭
୨୧ ଦେହାଭିମାନୀ ଯେ ବା ଜନେ । ଯେ ଆତ୍ମଭୂତ ଜ୍ଞାନୀ ଜନେ ॥ ୭୮
ତାଙ୍କର ଏ ଗୋପିକାସୁତ । ସୁଖରେ ନୁହନ୍ତି ପ୍ରାପତ ॥ ୭୯
ଯେ ଭକ୍ତିମନ୍ତ ଏ ସଂସାରେ । ତାଙ୍କର ଯେମନ୍ତ ପ୍ରକାରେ ॥ ୮୦
୨୨ ଗୃହକୃତ୍ୟରେ ଆପଣାର । ହୁଅନ୍ତେ ମାତାଏ ତତ୍‌ପର ॥ ୮୧
ଯେହୁ ଅର୍ଜୁନ ବୃକ୍ଷ ଦୁଇ । କୃଷ୍ଣ ଦେଖିଲେ ତାଙ୍କୁ ତହିଁ ॥ ୮୨
ଯେ ପୂର୍ବେ ଧନଦ[୩]ର ସୁତ । [୪]ଗୁହ୍ୟକ ଅଟନ୍ତି ବିଖ୍ୟାତ ॥ ୮୩

---

୧. ତେତେକେ ।　୨. ବ୍ରହ୍ମା ପୁତ୍ର ହୋଇ ମଧ୍ୟ, ଶିବ ଆତ୍ମା ହୋଇ ମଧ୍ୟ ଏବଂ ଲକ୍ଷ୍ମୀ ଜାୟା ହୋଇ ମଧ୍ୟ ତାହା ଲଭି ନାହାନ୍ତି । (ସ୍ୱାମୀ)　୩. ଧନଦ = କୁବେର ।　୪. ଗୁହ୍ୟକ = ଯକ୍ଷ ।

| | | | | | |
|---|---|---|---|---|---|
| ୨୩ | ନଳକୂବର ମଣିଗ୍ରୀବ | । | ବିଖ୍ୟାତ ଏରୂପେ ସେ ପୂର୍ବ | ।। | ୮୪ |
| | ସଂପତ୍ତିଯୁକ୍ତ ସେ ପୂର୍ବରେ | । | ନାରଦ ଋଷିଙ୍କ ଶାପରେ | ।। | ୮୫ |
| | ବୃକ୍ଷଭାବକୁ ପାଇ ଦୁଇ | । | ଜନ୍ମିଲେ ଗୋକୁଳରେ ଯାଇ | ।। | ୮୬ |
| | ଯା' ନାମକୀର୍ତ୍ତନୁଁ ଲୋକର | । | ଭବବନ୍ଧନ ହୋଏ ଦୂର | ।। | ୮୭ |
| | ସେ ଭକ୍ତବଶ ଭଗବାନ | । | ଗୋକୁଳେ ହୋଇଲେ ବନ୍ଧନ | ।। | ୮୮ |
| | ତାହାଙ୍କୁ ଚିନ୍ତି ଦୀନବନ୍ଧୁ | । | ମୁକ୍ତ ହୋଇବ ଭବସିନ୍ଧୁ | ।। | ୮୯ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଉଦୂଖଳବନ୍ଧନଂ
ନାମ ନବମୋଽଧ୍ୟାୟଃ ।।

## ଦଶମ ଅଧ୍ୟାୟ

ଦଶମେଽପାତୟଦ୍ରିଙ୍ଗନ୍ନନ୍ତରା ଯମଳାର୍ଜ୍ଜୁନୌ ।
ତତ୍ର ତାଭ୍ୟାଞ୍ଚ ଦେବାଭ୍ୟାଂ କୃଷ୍ଣଃ ସ୍ତୁତ ଇତୀର୍ଯ୍ୟତେ ।। ୧

ଶ୍ରୀରାଜୋବାଚ

| | | | | | |
|---|---|---|---|---|---|
| ୧ | ହେ ମୁନି କହ ମୋ' ଆଗେଣ | । | ସେ ବେନିଶାପକୁ କାରଣ | ।। | ୧ |
| | ତାଙ୍କର ଯେ ଅବା କୁକର୍ମ | । | ଯେଣେ ନାରଦ କଲେ ତମ[1] | ।। | ୨ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨ | ରୁଦ୍ରଙ୍କ ଅନୁଚର ହୋଇ | । | ଗର୍ବୀ କୁବେରପୁତ୍ର ଦୁଇ | ।। | ୩ |
| ୩ | ରମ୍ୟ କୈଳାସ ଉପବନେ | । | ମନ୍ଦାକିନୀରେ ଏକ ଦିନେ | ।। | ୪ |
| | ବାରୁଣୀ ମଦିରା ପିଇଣ | । | ମଦେ ଉତ୍କଟ ହୋଇ ପୁଣ | ।। | ୫ |
| | ମଦରେ ଆଘୂର୍ଣ୍ଣିତ ହୋଇ | । | ଅଛି ଯାହାଙ୍କ ନେତ୍ର ଦୁଇ | ।। | ୬ |
| | ଯେ ଗାଉ ଅଛନ୍ତି ସୁସ୍ୱରେ | । | ସେ ସ୍ତିରୀଜନଙ୍କ ସଙ୍ଗରେ | ।। | ୭ |
| | ପୁଷ୍ପିତ ଅଟେ ବନ ଯେହି | । | ଭ୍ରମଣ କଲେ ଦୁହେଁ ତହିଁ | ।। | ୮ |
| ୪ | ପଙ୍କଜବନଶ୍ରେଣୀ ଯହିଁ | । | ଅଛି ସେ ଗଙ୍ଗାମଧ୍ୟେ ଯାଇଁ | ।। | ୯ |
| | ଯୁବତିମାନଙ୍କର ସଙ୍ଗେ | । | କ୍ରୀଡ଼ା ରଚିଲେ ନାନାରଙ୍ଗେ | ।। | ୧୦ |
| | ହସ୍ତିନୀଙ୍କର ସଙ୍ଗେ ଥାଇ | । | ଯେହ୍ନେ ଖେଳନ୍ତି ହସ୍ତୀ ଦୁଇ | ।। | ୧୧ |
| ୫ | ଏଥୁ ଅନ୍ତରେ ଦେବରଷି | । | ନାରଦ ଇଚ୍ଛାବଶେ ଆସି | ।। | ୧୨ |
| | ହେ ନୃପ ! ତାହାଙ୍କୁ ଦେଖିଲେ | । | ମତ୍ତ ଏ ଏମନ୍ତ ଜାଣିଲେ | ।। | ୧୩ |
| ୬ | ତାହାଙ୍କୁ ଦେଖିଣ ବହନ | । | ବିବସ୍ତ୍ର ଦେବବଧୂମାନ | ।। | ୧୪ |
| | ଲଜ୍ଜାରେ ଶାପଶଙ୍କା ପାଇ | । | ପିନ୍ଧିଲେ ବସ୍ତ୍ରମାନ ଯାଇ | ।। | ୧୫ |

୧. ତମ = କ୍ରୋଧ ।

ବିବସ୍ତ୍ର କୁବେରନନ୍ଦନ । ବସ୍ତ୍ର ନ କଲେ ପରିଧାନ ।। ୧୬
୭ ସେ ଦୁହେଁ ଦେବତାର ସୁତ । ହୋଇଲେ ମଦିରାରେ ମତ୍ତ ।। ୧୭
ଅନ୍ଧ ଅଟନ୍ତି ଶ୍ରୀମଦରେ । ତାହାଙ୍କୁ ଦେଖି ଏ ପ୍ରକାରେ ।। ୧୮
ସେ ଦୁହିଁଙ୍କର ଅନୁଗ୍ରହ । ନିମିତ୍ତେ କରନ୍ତେ ଆଗ୍ରହ ।। ୧୯
କରନ୍ତେ ଶାପକୁ ପ୍ରଦାନ । କଲେ ସେ ଏମନ୍ତ ଗାୟନ ।। ୨୦

ଶ୍ରୀନାରଦ ଉବାଚ

୮ ପ୍ରିୟ ଅଟନ୍ତି ଯେ ବିଷୟ । ତାହାଙ୍କୁ ଯେ କରେ ଆଶ୍ରୟ ।। ୨୧
ତାର ଶ୍ରୀମଦୁଁ ଆନ ହୋଇ । ସଦ୍‌କୁଳ ବିଦ୍ୟା ଜାତ ଯେହି ।। ୨୨
ସେ ମଦ ରଜୋଗୁଣୁଁ ଜାତ । ହାସ୍ୟାଦି ନ କରେ ଉଦିତ ।। ୨୩
ସେରୂପେ ପୁଣି ବୁଦ୍ଧିନାଶ । କରଇ ନାହିଁ ସେ ପ୍ରକାଶ ।। ୨୪
ଯଉଁ ଶ୍ରୀମଦେ ସ୍ତିରୀ ଦ୍ୟୁତ । ମଦିରା ହୁଅନ୍ତି କଳ୍ପିତ ।। ୨୫
୯ ଯଉଁ ଶ୍ରୀମଦେ ଦୟାହୀନେ । ଅଜିତ-ଆତ୍ମା ପ୍ରାଣିମାନେ ।। ୨୬
ବିନାଶସ୍ୱଭାବ ଯେ କାୟ । ତାହାକୁ ଅଜର ଅକ୍ଷୟ ।। ୨୭
ଏମନ୍ତ କରି ମଣିଥାନ୍ତି । ପଶୁମାନଙ୍କୁ ବିନାଶନ୍ତି ।। ୨୮
୧୦ ନୃଦେବ[1] ଭୂଦେବ[2] ରୂପେଣ । ଯେ ଦେହ ସଂଜ୍ଞା ଲଭେ ପୁଣ ।। ୨୯
ତା' ବ୍ୟାଘ୍ର ଆଦି ଯେବେ ଖାଇ । ବିଷ୍ଠା ସଂଜ୍ଞାକୁ ସେ ଲଭଇ ।। ୩୦
ଅଗ୍ନିରେ ହୋଇଲେ ଦହନ । ଭସ୍ମ ବୋଲନ୍ତି ତାକୁ ଜନ ।। ୩୧
ଏ ବେନି କଥା ଯେବେ ନୋହେ । କୃମିସଂଜ୍ଞାକୁ ପୁଣ ବହେ ।। ୩୨
ଏମନ୍ତ ଅଟେ ଯେ ଶରୀର । ତାର ନିମିତ୍ତେ ଯଉଁ ନର ।। ୩୩
ପ୍ରାଣିଙ୍କ ଦ୍ରୋହ ଆଚରଇ । ନିଜ କାର୍ଯ୍ୟ କି ସେ ଜାଣଇଁ ।। ୩୪
ଯେବଣ ଭୂତଦ୍ରୋହୁଁ ଜାତ । ହୁଅଇ ନରକ ନିୟତ ।। ୩୫
୧୧ କି ଅନ୍ନପ୍ରଦାତା ଲୋକର । କି ଅବା ପିତାର ମାତାର ।। ୩୬
ଯେ ମାତାମହ କିବା ତାର । କି ବା ସେ କିଣିଲା ଲୋକର ।। ୩୭
ନୋହିଲେ କିବା ଅନଳର । ଯେ ବଳବନ୍ତ କି ବା ତାର ।। ୩୮
କି ଅବା ଅଟେ କୁକୁରର । ଦ୍ରବ୍ୟ ଏମନ୍ତ ଏ ଶରୀର ।। ୩୯
୧୨ ଏ ରୂପେ ସାଧାରଣ ଯେହି । ଅବ୍ୟକ୍ତଠାରୁ ସମ୍ଭବଇ ।। ୪୦
ଲୟ ହିଁ ଅବ୍ୟକ୍ତରେ ଯାର । ଏମନ୍ତ ଯେବଣ ଶରୀର ।। ୪୧
ତାହାକୁ ଆତ୍ମା ବୋଲି ମଣି । କେବଣ ସୁପଣ୍ଡିତ ପ୍ରାଣୀ ।। ୪୨
ଅସନ୍ତ ଲୋକ ବିନୁ ଆନ । ଜନ୍ତୁଙ୍କୁ କରିବ ନିଧନ ।। ୪୩
୧୩ ଯେ ଲୋକ ଅସନ୍ତ ଅଟଇ । ଧନମଦରେ ଅନ୍ଧ ହୋଇ ।। ୪୪
ଦରିଦ୍ରଭାବ ଯେ ତାହାର । କେବଳ ଅଞ୍ଜନପ୍ରକାର ।। ୪୫
ଆପଣା ଉପମାରେ ଆନ । ଲୋକଙ୍କୁ ଦେଖଇ ସେ ଜନ ।। ୪୬

୧. ନୃଦେବ = ରାଜା ।   ୨. ଭୂଦେବ = ବ୍ରାହ୍ମଣ ।

| | | | | | |
|---|---|---|---|---|---|
| ୧୪ | କଣ୍ଟକ ଲାଗି କଳେବର | । | [1]ବେଦନା ହୋଇ ଥାଇ ଯାର | ।। | ୪୭ |
| | ବଦନମ୍ଳାନି[2] ଆଦି ହୋଇ | । | ଯେ ଚିହ୍ନ ତେଣେ କରି ସେହି | ।। | ୪୮ |
| | ସମସ୍ତ ପ୍ରାଣିମାନଙ୍କର | । | ଯେ ସୁଖ ଯେ ବା ଦୁଃଖ ଆର | ।। | ୪୯ |
| | ସେ ଦୁଇ ସମାନ ଅଟଇ | । | ଏମନ୍ତ ଭାବ ଜାଣିଥାଇ | ।। | ୫୦ |
| | ସେ ଯେହ୍ନେ ଆନ ଜନ୍ତୁଠାର | । | ସେ ବ୍ୟଥା ନ ବାଞ୍ଛେ ମନର | ।। | ୫୧ |
| | ଯେ[3] ଦେହେ କଣ୍ଟା ବହି ନାହିଁ | । | ସେ ରୂପେ ସେହୁ ନ ବାଞ୍ଛଇ | ।। | ୫୨ |
| ୧୫ | ଦରିଦ୍ର ଅଟଇ ଯେ ନର | । | ଯେ ଅଂହକାର ସ୍ତମ୍ଭ ତାର | ।। | ୫୩ |
| | ମନରୁ ହୁଅଇ ନିର୍ଗତ | । | ସମସ୍ତ ମଦୁଁ ହୋଏ ମୁକ୍ତ | ।। | ୫୪ |
| | ଯେ କଷ୍ଟ ଅନାୟାସେ ପାଇ | । | ପରମ ତପ ତାର ସେହି | ।। | ୫୫ |
| ୧୬ | କ୍ଷୁଧାରେ ପ୍ରତିଦିନ ଯାର | । | କୃଶ ଅଟଇ କଳେବର | ।। | ୫୬ |
| | ଅନ୍ନକୁ ବାଞ୍ଛା କରି ଥାଇ | । | ଦରିଦ୍ର ଏ ରୂପରେ ଯେହି | ।। | ୫୭ |
| | ଶୁଖନ୍ତି ତା' ଇନ୍ଦ୍ରିୟମାନେ | । | ହିଂସା ହିଁ ନିବର୍ତ୍ତଇ ମନେ | ।। | ୫୮ |
| ୧୭ | ସମଦରଶୀ ସାଧୁ ନରେ | । | ଦରିଦ୍ର ଲୋକ ସଙ୍ଗତରେ | ।। | ୫୯ |
| | ମିଳନ୍ତି ଆପଣା ଇଚ୍ଛାରେ | । | ଧନତୃଷ୍ଣାକୁ ତାହାଙ୍କରେ | ।। | ୬୦ |
| | ଦରିଦ୍ର ଲୋକ ନିବାରଇ | । | ତେଣୁ ସେ ବେଗେ ଶୁଦ୍ଧ ହୋଇ | ।। | ୬୧ |
| ୧୮ | ଯେ ସମଚିତ୍ତ ସାଧୁଜନେ | । | ବାଞ୍ଛନ୍ତି କୃଷ୍ଣପାଦ ମନେ | ।। | ୬୨ |
| | ଧନଗର୍ବିତ ଯେତେ ନର | । | ତେଣେ କି କାର୍ଯ୍ୟ ତାହାଙ୍କର | ।। | ୬୩ |
| | ଯେ ଧନଗର୍ବୀ ଦୁଷ୍ଟ ନରେ | । | ଉପେକ୍ଷାଯୋଗ୍ୟ ଏ ସଂସାରେ | ।। | ୬୪ |
| | ଦୁଷ୍ଟ ଅଟନ୍ତି ଯେତେ ଜନେ | । | ତାଙ୍କର ଆଶ୍ରୟ ସେମାନେ | ।। | ୬୫ |
| ୧୯ | ଯେ ମତ୍ତ ବାରୁଣୀ ମଧୁରେ | । | ଯେ ଅନ୍ଧ ଧନଗର୍ବଭରେ | ।। | ୬୬ |
| | ସ୍ତିରୀଲମ୍ପଟ ପୁଣ ଯେହି | । | ଅଜିତେନ୍ଦ୍ରିୟ ଯେହୁ ଦୁଇ | ।। | ୬୭ |
| | ସେ ଘେନି ତାଙ୍କର ଅଜ୍ଞାନ | । | ଗର୍ବ ମୁଁ କରିବି ନିଧନ | ।। | ୬୮ |
| ୨୦ | ଲୋକପାଳର ସୁତ ହୋଇ | । | ଯେଣୁ ଏ ତମୋବ୍ୟାପ୍ତ ଦୁଇ | ।। | ୬୯ |
| | ବିବସ୍ତ୍ର ବୋଲି ନ ଜାଣିଲେ | । | ଆମ୍ଭାକୁ ଦୁର୍ମଦ ହୋଇଲେ | ।। | ୭୦ |
| ୨୧ | ସ୍ଥାବର ଭାବକୁ ସେ ଘେନି | । | ଯୋଗ୍ୟ ହୁଅନ୍ତୁ ଏହି ବେନି | ।। | ୭୧ |
| | ଯେମନ୍ତେ ପୁଣ ଏ ପ୍ରକାରେ | । | ହୋଇବେ ନାହିଁ ଆଉ ଥରେ | ।। | ୭୨ |
| | ମୋହର ପ୍ରସାଦରୁ ପୁଣ | । | ତହିଁରେ ହୋଇବ ସ୍ମରଣ | ।। | ୭୩ |
| | ସ୍ଥାବର ଜନ୍ମ ହୋଇଲେହେଁ | । | ତହିଁରେ ମୋର ଅନୁଗ୍ରହେ | ।। | ୭୪ |
| ୨୨ | ପୂର୍ଣ୍ଣ ହୁଅନ୍ତେ ଦେବଙ୍କର | । | ବରଷ ଶତ ସମ୍ବତ୍ସର | ।। | ୭୫ |
| | ବାସୁଦେବଙ୍କ ନିକଟକୁ | । | ଲଭିଣ ପାଇ ଦେବତ୍ୱକୁ | ।। | ୭୬ |
| | ବିଷ୍ଣୁର ଠାରେ ଭକ୍ତି ଯେହି | । | ତାହା ଲଭିବେ ପୁଣ ଦୁଇ | ।। | ୭୭ |

୧. ବେଦନା ଲଭିଥାଇ ନର । ୨. ଗ୍ଲାନି । ୩. ଯା ।

### ଶ୍ରୀଶୁକ ଉବାଚ

୨୩ ସେ ଦେବରଷି ଏ ପ୍ରକାରେ । ବଚନ କହି ତଦନ୍ତରେ ।।
ଯେ ନାରାୟଣଙ୍କର ସ୍ଥାନ । ତହିଁକି କଲେକ ଗମନ ।।
ସେ ବେନି କୁବେରନନ୍ଦନ । ହୋଇଲେ ଯାମଳ ଅର୍ଜୁନ ।।
୨୪ ସେ ଋଷିଙ୍କର ଯଉଁ ବାଣୀ । ତା' ସତ୍ୟ କରିବାକୁ ପୁଣି ।।
ଯାମଳାର୍ଜୁନ ଯଉଁଠାରେ । କୃଷ୍ଣ ସେଠାକୁ ଗଲେ ସ୍ଥିରେ ।।
୨୫ ନାରଦ ମୋର ଅତିପ୍ରିୟ । ଯେଣୁ ଏ କୁବେରତନୟ ।।
ତେଣୁ ସେ କଥା ସେ ପ୍ରକାରେ । ସିଦ୍ଧ କରିବି ଏହିଠାରେ ।।
ସେହୁ ମହାତ୍ମା ଦେବରଷି । ଅଛନ୍ତି ଯଉଁ ବାକ୍ୟ ଭାଷି ।।
୨୬ ବେନି ଅର୍ଜୁନମଧ୍ୟେ ହରି । ଗଲେ ସେ ଏ ହେତୁରୁ କରି ।।
ମିଳନ୍ତେ ତହିଁ ନନ୍ଦବାଳ । ତେରଛା ହେଲା ଉଦୂଖଳ ।।
୨୭ ଯେ ବକ୍ର ହେଲା ଉଦୂଖଳ । ତାକୁ ସେ ଦାମୋଦର ବାଳ ।।
ଓଟାରି ଆଣନ୍ତେ ସତ୍ୱର । ଉପୁଡ଼ି ଗଲା ମୂଳ ତାର ।।
କୃଷ୍ଣର ବିକ୍ରମୁଁ ବହୁତ । କମ୍ପ ହୋଇଲା ଯହିଁ ଜାତ ।।
ଏମନ୍ତ ବିଟପ ପଲ୍ଲବ । ସ୍କନ୍ଧ ହିଁ ଅଛି ଯାହା ଠାବ ।।
କଲେ ପ୍ରଚଣ୍ଡ ଶବ୍ଦ ଯେହି । ଉପୁଡ଼ିଲେ ସେ ବୃକ୍ଷଦୁଇ ।।
୨୮ ପରମ ଶୋଭାରେ ସକଳ । ଦିଗକୁ କରନ୍ତେ ନିର୍ମଳ ।।
ଯେହ୍ନେ ସେ ବେନିବୃକ୍ଷୁଁ ଜାତ । ଅନଳ ଅଟେ ମୂର୍ତ୍ତିମନ୍ତ ।।
ସେ ରୂପେ ବେନି ସିଦ୍ଧେ ତହିଁ । ନିକଟେ ଉପଗତ ହୋଇ ।।
ଯେ ସର୍ବଲୋକନାଥ ହରି । ଶିରେ ପ୍ରଣାମ ତାଙ୍କୁ କରି ।।
ଯେ ପୂର୍ବ ରଜୋଗୁଣ ସ୍ଥିତ । ସେ ଯାହାଙ୍କର ଦୂରଗତ ।।
ଅଞ୍ଜଳିଯୁଗ ବନ୍ଧ କଲେ । ଏମନ୍ତ ବଚନ ବୋଇଲେ ।।
୨୯ ହେ କୃଷ୍ଣ ହେ କୃଷ୍ଣ ମହତ । ଯେ ଯୋଗ[1] ତୁମ୍ଭେ ତଦବନ୍ତ ।।
ପରମ ପୁରୁଷ ଈଶ୍ୱର । ଆଦ୍ୟ ସକଳ ଜଗତର ।।
ଯେ ସ୍ଥୂଳ ସୂକ୍ଷ୍ମ ରୂପ ହୋଇ । ଜଗତ ବିଦିତ ଅଟଇ ।।
ଯେ ତୁମ୍ଭେ ବ୍ରହ୍ମ ସେ ତୁମ୍ଭର । ରୂପ ବୋଲନ୍ତି ବିଜ୍ଞ ନର ।।
୩୦। ଯେହୁ ସମସ୍ତ ଭୂତଙ୍କର । ଦେହ ଇନ୍ଦ୍ରିୟ ଅହଂକାର ।।
୩୧। ଯେ ପୁଣ ପ୍ରାଣ ତାହାଙ୍କର । ତୁମ୍ଭେ ସେମାନଙ୍କ ଈଶ୍ୱର ।।
ତୁମ୍ଭେ ଈଶ୍ୱର ଭଗବନ୍ତ । କାଳରୂପରେ ଅଟ ଖ୍ୟାତ ।।
ଯେ ରଜ-ସତ୍ତ୍ୱ-ତମ ମୂର୍ତ୍ତି । ଯେ ସୂକ୍ଷ୍ମ ତୁମ୍ଭେ ସେ ପ୍ରକୃତି ।।
ତୁମ୍ଭେ ପୁରୁଷ ଅବ୍ୟକତ । ତୁମ୍ଭେ ଯେ ଅଟ ମହତ୍ତତ୍ତ୍ୱ ।।
ସମସ୍ତ କ୍ଷେତ୍ରଙ୍କର ପୁଣ । ବିକାର ଯେ ତା' ତୁମ୍ଭେ ଜାଣ ।।

---

୧. ଯୋଗୀ।

୩୨ ଦୃଶ୍ୟରୂପରେ ଯେ ବିଦିତ । ଅଟନ୍ତି ପ୍ରବୃତ୍ତିସଂଭୂତ ॥ ୧୦୯
ତୁମ୍ଭଙ୍କୁ ସେ ଇନ୍ଦ୍ରିୟମାନେ । ଜାଣି ନ ପାରନ୍ତି ଭୁବନେ ॥ ୧୧୦
ଜୀବାଦି-ଉତ୍ପତ୍ତିରୁ ପୂର୍ବେ । ଯେ ସିଦ୍ଧ ସ୍ୱପ୍ରକାଶଭାବେ ॥ ୧୧୧
ଦେହ ଆଦିରେ ବୃତ ହୋଇ । ଜାଣି ପାରିବ ତାଙ୍କୁ କେହି ॥ ୧୧୨
୩୩ ଯେହୁ ବିଧାତା ଭଗବାନ । ଯେ ବସୁଦେବର ନନ୍ଦନ ॥ ୧୧୩
ଆପଣା ଠାରୁ ନିରନ୍ତର । ପ୍ରକାଶ ଅଟେ ଯାହାଙ୍କର ॥ ୧୧୪
ଯେ ଗୁଣଙ୍କରେ ଅପ୍ରକାଶ । ଯାହାର ମହିମା ଅଶେଷ ॥ ୧୧୫
ସୂର୍ଯ୍ୟସକାଶୁଁ ଜାତ ଘନ । ସୂର୍ଯ୍ୟକୁ ଆଚ୍ଛାଦେ ଯେସନ ॥ ୧୧୬
ଯେ ତୁମ୍ଭେ ବ୍ରହ୍ମରୂପ ଧର । ତୁମ୍ଭଙ୍କୁ ପ୍ରଣାମ ଆମ୍ଭର ॥ ୧୧୭
୩୪ | ଯାର ସମାନ ନାହିଁ କେହି । ଯା' ଠାରୁ ଅଧିକ ହିଁ ନାହିଁ ॥ ୧୧୮
୩୫ | ନାହିଁ ଯେ ଆନ ପ୍ରାଣିଠାରେ । ସେ ସେହି ବୀର୍ଯ୍ୟମାନଙ୍କରେ ॥ ୧୧୯
ଯାହାର ଅବତାରମାନ । ଦେହମାନଙ୍କେ ଜାଣେ ଜନ ॥ ୧୨୦
ଏମନ୍ତ ହେଲେହେଁ ଯାହାର । ବାସ୍ତବ ନାହିଁ କଳେବର ॥ ୧୨୧
ସେ ତୁମ୍ଭେ ସମସ୍ତ ଲୋକର । ଯେ ଜନ୍ମ ଯେ ମୋକ୍ଷ ଆବର ॥ ୧୨୨
ତହିଁ ନିମିତ୍ତେ ବର୍ତ୍ତମାନ । ଅଂଶ ଭାବରେ ଉତପନ୍ନ ॥ ୧୨୩
ଯେତେକ ମଙ୍ଗଳ ଅଛନ୍ତି । ତୁମ୍ଭେ ସେମାନଙ୍କର ପତି ॥ ୧୨୪
୩୬ ଯେ ତୁମ୍ଭେ ପରମ କଲ୍ୟାଣ । ବିଶ୍ୱମଙ୍ଗଳ ଅଟ ପୁଣ ॥ ୧୨୫
ଯେ ଶାନ୍ତ ବସୁଦେବସୁତ । ସମସ୍ତ ଯଦୁଙ୍କର ନାଥ ॥ ୧୨୬
ସେ ତୁମ୍ଭେ ତୁମ୍ଭଙ୍କୁ ଆମ୍ଭର । ବହୁତ ବାର ନମସ୍କାର ॥ ୧୨୭
୩୭ ହେ ବିଶ୍ୱବ୍ୟାପକ ଈଶ୍ୱର । ଆମ୍ଭ ଦୁହିଁକି ଆଜ୍ଞା କର ॥ ୧୨୮
ଯେ ଅଟେ ତୁମ୍ଭ ଅନୁଚର[୧] । କିଂକର ଆମ୍ଭେ ତାହାଙ୍କର ॥ ୧୨୯
ଯେ ଅନୁଗ୍ରହ ନାରଦର । ତହିଁରୁ ଆମ୍ଭ ଦୁହିଁଙ୍କର ॥ ୧୩୦
ତୁମ୍ଭେ ଯେ ଅଟ ଭଗବାନ । ହୋଇଲା ତୁମ୍ଭ ଦରଶନ ॥ ୧୩୧
୩୮ ବାଣୀ ତୋ' ଗୁଣକଥନରେ । ଶ୍ରବଣ କଥା ଶ୍ରବଣରେ ॥ ୧୩୨
ହସ୍ତ ତୋ' କର୍ମମାନଙ୍କରେ । ମନ ତୋ' ପାଦସ୍ମରଣରେ ॥ ୧୩୩
ତୁମ୍ଭ ନିବାସ ଜଗତର । ପ୍ରଣାମେ ହୋଉ ଆମ୍ଭ ଶିର ॥ ୧୩୪
ଯେ ତୁମ୍ଭ ତନୁ ସାଧୁଜନ । ତାଙ୍କ ଦର୍ଶନରେ ନୟନ ॥ ୧୩୫

## ଶ୍ରୀଶୁକ ଉବାଚ

୩୯ ସେ ଦୁହେଁ ଏମନ୍ତ ରୂପରେ । ସ୍ତୁତି କରନ୍ତେ ତଦନ୍ତରେ ॥ ୧୩୬
ଯେ ଉଦୂଖଳେ ଭଗବାନ । ଦାମେ[୨] ହୋଇଛନ୍ତି ବନ୍ଧନ ॥ ୧୩୭
ହସନ୍ତେ ବେନି ଗୁହ୍ୟକଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୧୩୮

୧. ଅନୁଚର = କୁବେର ବା ନାରଦ (ସ୍ୱାମୀ) । ୨. ଦାମେ = ଦଉଡ଼ିରେ ।

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୪୦ | ସମ୍ପତ୍ତିମଦେ ଅନ୍ଧ ହୋଇ | । ଥିଲ ଯେ ତୁମ୍ଭେ ଦୁଇ ଭାଇ | ।। | ୧୩୯ |
| | କରୁଣା ଅଛି ଯା' ଆମ୍ଭରେ | । ସେ ଋଷି ନାନା ବଚନରେ | ।। | ୧୪୦ |
| | ପୂର୍ବେ ସମ୍ପତ୍ତିନାଶ ହୋଇ | । ଯେ ଅନୁଗ୍ରହ କଲେ ତାହି | ।। | ୧୪୧ |
| | ସେ ଶାପବିଧାନ ଯେ ପୁଣି | । ସମସ୍ତ ଅଛଇ ମୁଁ ଜାଣି | ।। | ୧୪୨ |
| ୪୧ | ଯେ ସମଚିତ୍ତ ସାଧୁଜନ | । ଭଲେ ମୋ'ଠାରେ ଦେଲେ ମନ | ।। | ୧୪୩ |
| | ଦରଶନରେ ତାହାଙ୍କର | । ବନ୍ଧ ନୁହଇ ମନୁଷ୍ୟର | ।। | ୧୪୪ |
| | ସୂର୍ଯ୍ୟମଣ୍ଡଳ ଦରଶନେ | । ନୟନବନ୍ଧ ନୋହେ ଯେହ୍ନେ | ।। | ୧୪୫ |
| ୪୨ | ସେ ଘେନି ହେ ନଳକୂବର | । [1]ଶ୍ରେଷ୍ଠ ମୁଁ ଯଉଁ ଦୁହିଁଙ୍କର | ।। | ୧୪୬ |
| | ଗମନ କର ସଦନକୁ | । ବାଞ୍ଛିଲ ମୋ' ଯଉଁ ଭାବକୁ | ।। | ୧୪୭ |
| | ତୁମ୍ଭର ହୋଇଲା ସେ ଜାତ | । ଯେଣେ ହୁଅଇ ଭବ ହତ | ।। | ୧୪୮ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୩ | ଏମନ୍ତ କହନ୍ତେ ଶ୍ରୀହରି | । ତାହାଙ୍କୁ ପ୍ରଦକ୍ଷିଣ କରି | ।। | ୧୪୯ |
| | ପ୍ରଣାମ କରି ପୁଣ ପୁଣ | । ନିବଦ୍ଧ ଯେ ଉଦୂଖଳେଣ | ।। | ୧୫୦ |
| | କରିଣ ଆମନ୍ତ୍ରଣ ତାଙ୍କୁ | । ଗଲେ ସେ ଉତ୍ତର ଦିଗକୁ | ।। | ୧୫୧ |
| | ଯଶୋଦା ଯାଙ୍କୁ ଉଡୁଖଳେ | । ବନ୍ଧନ କଲେ ପୂର୍ବକାଳେ | ।। | ୧୫୨ |
| | ତାଙ୍କ ପ୍ରସାଦେ ଭବବନ୍ଧୁଁ | । ପାର ହୋଇବ ଦୀନବନ୍ଧୁ | ।। | ୧୫୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଯାମଳାର୍ଜୁନଭଞ୍ଜନଂ
ନାମ ଦଶମୋଽଧ୍ୟାୟଃ ।।

## ଏକାଦଶ ଅଧ୍ୟାୟ

ଏକାଦଶେ ସମାଗତ୍ୟ ବୃନ୍ଦାବନମଥାର୍ଭକୈଃ ।
ବତ୍ସାନ୍ ପାଳୟତାନେନ ହତୌ ବତ୍ସ-ବକାସୁରୌ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ପତ୍ରନ୍ତା ବେନିଦ୍ରୁମସ୍ୱନ | । ଶୁଣି ନନ୍ଦାଦି ଗୋପଜନ | ।। | ୧ |
| | ନିର୍ଘାତ[2]ଭୟ ଶଙ୍କା କଲେ | । ହେ ନୃପ ! ସେଠାକୁ ଅଇଲେ | ।। | ୨ |
| ୨ | ଯାମଳାର୍ଜୁନ ଦୁହେଁ ତହିଁ | । ଦେଖିଲେ ପଡ଼ିଛନ୍ତି ମହୀ | ।। | ୩ |
| | ନ ଜାଣି ପତନକାରଣ | । ଭ୍ରମ ଲଭିଲେ ପ୍ରତ୍ୟକ୍ଷେଣ[3] | ।। | ୪ |
| ୩ | ଦେଖିଲେ ରଜ୍ଜୁବଦ୍ଧ ବାଳ | । ଓଟାରୁଅଛି ଉଦୂଖଳ | ।। | ୫ |

---

୧. ଶ୍ରେଷ୍ଠ = ମତ୍ ପରମୌ - ଅହଂ ପରମଃ ଯୟୋଃ ତୌ । ୨. ନିର୍ଘାତ = ବଜ୍ରପାତ ।
୩. ପ୍ରତ୍ୟକ୍ଷେଣ = ପ୍ରତ୍ୟକ୍ଷ ଭାବେ ଆଗରେ ଦେଖି ମଧ୍ୟ ପତନକାରଣ ନ ଜାଣି ଭ୍ରମିଲେ ।

କାହାର ଅଟଇ ଏ କର୍ମ । କଉଁ ସ୍ୱକାଶୁଁ ହେଲା ଜନ୍ମ ॥ ୬
ଆଶ୍ଚର୍ଯ୍ୟ ଉତ୍‌ପାତ ଆବର । ଏ ଘେନି ହୋଇଲେ କାତର ॥ ୭
୪ ବାଳେ କହିଲେ ଉଦୂଖଳ । ବକ୍ରେ ଯାଆନ୍ତେ ତତକାଳ ॥ ୮
ଏ ବେନିବୃକ୍ଷ ମଧ୍ୟେ ଥିଲା । ଓଟାରନ୍ତେ ସେ ଭଗ୍ନ ହେଲା ॥ ୯
ବୃକ୍ଷୁଁ ନିର୍ଗତ ବେନି ଜନ । ଆମ୍ଭେ କଲୁଁ ତା' ବିଲୋକନ ॥ ୧୦
୫ ବାଳକମାନଙ୍କର ବାଣୀ । ଗ୍ରହଣ ନ କଲେ ସେ ପୁଣି ॥ ୧୧
ବାଳକ ହୋଇ ବୃକ୍ଷ ଦୁଇ । ଉପାଡ଼ିବାର ନ ଘଟଇ ॥ ୧୨
ପୁଣି କେବଣ ଗୋପମାନେ । ସନ୍ଦେହ କଲେ ନିଜ ମନେ ॥ ୧୩
୬ ରଜ୍ଜୁରେ ବନ୍ଧା ନିଜ ବାଳ । ଓଟାରୁଛନ୍ତି ଉଦୂଖଳ ॥ ୧୪
ହସନ୍ତେ ନନ୍ଦ ଦେଖି ତାଙ୍କୁ । ଫିଟାଇ ଦେଲା ବନ୍ଧନକୁ ॥ ୧୫
୭ କେବଣଠାରେ ଗୋପୀଙ୍କର । କରତାଳିରେ ଦାମୋଦର ॥ ୧୬
ବାଳକପ୍ରାଏକ ହୁଅନ୍ତି । ନାଚନ୍ତି ଉଚ୍ଚରେ ଗାଆନ୍ତି ॥ ୧୭
ଦାରୁଯନ୍ତ୍ରର ପ୍ରାୟେ ହୋଇ । ସେମାନଙ୍କର ବଶେ ସେହି ॥ ୧୮
୮ କେବଣ ଠାରେ ପୁଣ ସେହି । ଗୋପୀମାନଙ୍କ ଆଜ୍ଞା ପାଇ ॥ ୧୯
ଯେ ପିଢ଼ା, ମାଣ[୧], ଯେ ପାଦୁକ । ବହନ୍ତି ତା' ଯେହ୍ନେ ବାଳକ ॥ ୨୦
ବହନ୍ତେ ନିଜଜନପ୍ରୀତି । ବାହୁକ୍ଷେପକୁ ସେ କରନ୍ତି ॥ ୨୧
୯ ଜଗତେ ଐଶ୍ୱର୍ଯ୍ୟ ତାଙ୍କର । ଜାଣି ଅଛନ୍ତି ଯଉଁ ନର ॥ ୨୨
ଆପଣା ଭକ୍ତବଶ ଭାବ । ତାହାଙ୍କୁ ଦେଖାନ୍ତେ ମାଧବ ॥ ୨୩
ବ୍ରଜର ଯେ ଅଟେ ହରଷ । କଲେ ସେ କଥାକୁ ପ୍ରକାଶ ॥ ୨୪
୧୦ ଆସ ହେ ପୋଏ[୨] କୋଳି କିଣ । ଏମନ୍ତ ବଚନ ଶୁଣିଣ ॥ ୨୫
ଯେ ସର୍ବଫଳପ୍ରଦ ହରି । ସେ କରେ ଧାନ୍ୟ ଘେନି କରି ॥ ୨୬
ଫଳନିମିତ୍ତେ ଅର୍ଥୀ ହେଲେ । ତା'ଠାକୁ ଗମନ ସେ କଲେ ॥ ୨୭
୧୧ ଧାନ୍ୟ ଯହିଁରୁ ଚ୍ୟୁତ ହୋଇ । ଭୂମିରେ ପଡୁଅଛି ଯାଇଁ ॥ ୨୮
କୃଷ୍ଣର ସେ କରଯୁଗଳ । ଫଳବିକ୍ରୟିଣୀ ତତ୍‌କାଳ ॥ ୨୯
ଫଳମାନଙ୍କେ ପୂର୍ଣ୍ଣ କଲା । ତା' ଭାଣ୍ଡ ରତ୍ନେ ପୂର୍ଣ୍ଣ ହେଲା ॥ ୩୦
୧୨| ଯେ ଭାଙ୍ଗି ଅଛନ୍ତି ଅର୍ଜୁନ । ନଦୀତୀରରେ ଏକଦିନ ॥ ୩୧
୧୪| ସେ କୃଷ୍ଣ ଥାଆନ୍ତେ ରୋହିଣୀ । ଡାକିଲେ ଯାଇଁ ତାଙ୍କୁ ପୁଣି ॥ ୩୨
କ୍ରୀଡ଼ାବଶରେ ବେନି ସୁତ । ଯେବେ ନୋହିଲେ ଉପଗତ ॥ ୩୩
ପୁତ୍ରବତ୍ସଳା ସେ ରୋହିଣୀ । ପେଷିଲେ ଯଶୋଦାଙ୍କୁ ପୁଣି ॥ ୩୪
ବାଳକମାନଙ୍କର ସଙ୍ଗେ । ରାମସହିତେ ନାନାରଙ୍ଗେ ॥ ୩୫

---

୧. ମାଣ = ଚାଉଳ ଆଦି ମାପିବାର ପାତ୍ରବିଶେଷ (ଗଡ଼ଜାତରେ ବ୍ୟବହୃତ) ।
୨. ପୋଏ = ପିଲେ ।

| | | | | |
|---|---|---|---|---|
| | ବହୁତ ବେଳୁଁ କ୍ରୀଡ଼ାରତ । | ଦେଖି ଏମନ୍ତ ନିଜ ସୁତ | ।। | ୩୬ |
| | ଯଶୋଦା କଲେକ ଆହ୍ୱାନ । | ପୁତ୍ରସ୍ନେହୁଁ ତା' ସ୍ରବେ ସ୍ତନ | ।। | ୩୭ |
| ୧୫ | ହେ କୃଷ୍ଣ ପଙ୍କଜଲୋଚନ । | ହେ ତାତ ! ଆସି ପିଅ ସ୍ତନ | ।। | ୩୮ |
| | କ୍ରୀଡ଼ାରେ ପ୍ରୟୋଜନ ନାହିଁ । | କ୍ଷୁଧାରେ କୃଶ ଅଛୁ ହୋଇ | ।। | ୩୯ |
| | ତେଣୁ କରିବାକୁ ଭୋଜନ । | ଶକତ ହୁଅ ତୁ ବହନ | ।। | ୪୦ |
| ୧୬ | ହେ ରାମ ହେ କୁଳନନ୍ଦନ । | ଅନୁଜସହିତେ ବହନ | ।। | ୪୧ |
| | ହେ ତାତ ! ଆଗମନ କର । | ପ୍ରଭାତେ କରିଛୁ ଆହାର | ।। | ୪୨ |
| | ହେ ପୁତ୍ର ! କ୍ରୀଡ଼ାରୁ ତୋ' କାୟେ । | ଶ୍ରମ ହୋଇଛି ଅତିଶୟେ | ।। | ୪୩ |
| ୧୭ | ହେ ଦାଶାରହ ! ବ୍ରଜପତି । | ତୋତେ ପ୍ରତୀକ୍ଷା କରିଛନ୍ତି | ।। | ୪୪ |
| | ଭୁଞ୍ଜି ନାହାନ୍ତି ଆସ ଘର । | ଆମ୍ଭ ଦୁହିଁଙ୍କି ପ୍ରୀତ କର | ।। | ୪୫ |
| | ହେ ଗୋପବାଳେ ! ତୁମ୍ଭେମାନେ । | ଯାଅ ଯେ ଯାହାର ଭୁବନେ | ।। | ୪୬ |
| ୧୮ | ଧୂଳିମାନଙ୍କରେ ଧୂସର । | ହୋଇଛି ତୋର କଳେବର | ।। | ୪୭ |
| | ହେ ତାତ ! ଜଳେ ସ୍ନାନ କର । | ଜନ୍ମନକ୍ଷତ୍ର ଆଜ ତୋର | ।। | ୪୮ |
| | ଶୁଚି ହୋଇଣ ଗାଇମାନ । | ବିପ୍ରଙ୍କୁ କର ତୁ ପ୍ରଦାନ | ।। | ୪୯ |
| ୧୯ | ଦେଖ ଦେଖ ତୋ' ସଖାଗଣ । | ମାତାରେ ମାର୍ଜିତ ହୋଇଣ | ।। | ୫୦ |
| | ଅଳଙ୍କାରରେ ମଣ୍ଡି ହୋଇ । | ଅଛନ୍ତି ତାଙ୍କ ପ୍ରିୟ[୧] ହୋଇ | ।। | ୫୧ |
| | ସ୍ନାନ କରି ଭୋଜନ କର । | ଭୂଷିତ ହୋଇଣ ବିହର | ।। | ୫୨ |
| ୨୦ | ସ୍ନେହେ ନିବଦ୍ଧ ଯାର ମତି । | ଏ ରୂପେ ସେ ନନ୍ଦଯୁବତି | ।। | ୫୩ |
| | ଯେ କୃଷ୍ଣ ସର୍ବଶିଖାମଣି । | ତାହାଙ୍କୁ ସୁତ କରି ମଣି | ।। | ୫୪ |
| | ରାମ ସହିତେ ଯେ ଅଚ୍ୟୁତ । | ଧରି ତାହାଙ୍କୁ ନିଜ ହସ୍ତ | ।। | ୫୫ |
| | ଆପଣା ମନ୍ଦିରକୁ ନେଇ । | ମର୍ଦ୍ଦନ ସ୍ନାନ ଆଦି ହୋଇ | ।। | ୫୬ |
| | ଯେ ଆବଶ୍ୟକ କୃତ୍ୟ ପୁଣ । | କଲା ତାଙ୍କର ଆଚରଣ | ।। | ୫୭ |
| ୨୧ | ବୃହତ ବନରେ ବହୁତ । | ଯେ ହେଲେ ମହାଉତପାତ | ।। | ୫୮ |
| | ନନ୍ଦାଦି ଗୋପବୃଦ୍ଧ ଯେତେ । | ତା' ଅନୁଭବରୁ ସମସ୍ତେ | ।। | ୫୯ |
| | ଏକ ସ୍ଥାନରେ ମେଳ ହୋଇ । | ଚିନ୍ତିଲେ ବ୍ରଜକାର୍ଯ୍ୟ ଯେହି | ।। | ୬୦ |
| | [୨]ଇଚ୍ଛନ୍ତେ କ୍ରୀଡ଼ା କରିବାକୁ । | ଯିବାକୁ ଶ୍ରୀବୃନ୍ଦାବନକୁ | ।। | |
| | କୃଷ୍ଣରେ ହୋଇଲା ପ୍ରେରିତ । | ସେ ଯଉଁମାନଙ୍କର ଚିତ୍ତ | ।। | |
| | ସ୍ୱତନ୍ତ୍ରପ୍ରାୟେ ସେ ଗୋପାଳେ । | ନନ୍ଦାଦି ଏ ବିଚାର କଲେ | ।। | |

୧. ପ୍ରାୟ ।

୨. ରନ୍ତୁଂ ବୃନ୍ଦାବନଂ ଗନ୍ତୁକାମାଃ କୃଷ୍ଣେନ ଯନ୍ତ୍ରିତାଃ ।
ସ୍ୱତନ୍ତ୍ରା ଇବ ନନ୍ଦାଦ୍ୟା ମନ୍ତ୍ରମେତମମନ୍ତ୍ରୟନ୍ ।। (ସ୍ୱାମୀ)
କୃଷ୍ଣଙ୍କ ଦ୍ୱାରା ଯନ୍ତ୍ରିତ ନନ୍ଦ ଆଦି ଗୋପମାନେ ସ୍ୱତନ୍ତ୍ର ଭଳି ବୃନ୍ଦାବନକୁ ଖେଳିବା ପାଇଁ ଯିବାକୁ ଇଚ୍ଛୁକ ହୋଇ ଏଇ ମନ୍ତ୍ରକୁ ମନ୍ତ୍ରଣା କଲେ ।

୨୨ ଉପନନ୍ଦ ନାମରେ ତହିଁ । ଜ୍ଞାନେ ବୟସେ ବୃଦ୍ଧ ଯେହି ॥
ଦେଶ କାଳାର୍ଥେ ତତ୍ତ୍ୱମାନ । ଜାଣଇଁ ସକଳ ବିଧାନ ॥
ରାମକୃଷ୍ଣର ପ୍ରିୟକାରୀ । ସେ ଗୋପ କହିଲା ବିଚାରି ॥
୨୩ ବ୍ରଜର ହିତ ନିଜ ମନେ । ଯେ ବାଞ୍ଛା କରି ଆମ୍ଭେମାନେ ॥
ଏଠାରୁ ଯିବା ଆନ ସ୍ଥାନ । ମହତ ଉତପାତମାନ ॥
ଏଠାକୁ ଆସୁଛନ୍ତି ସେହି । ପ୍ରଜାଙ୍କ[1] ନାଶହେତୁ ଯେହି ॥
୨୪ ବାଳକମାନଙ୍କ ମରଣ । ଯଉଁ ରାକ୍ଷସୀ କରେ[2] ପୁଣ ॥
ତା'ଠାରୁ କଷ୍ଟରେ ଏ ବାଳ । ମୁକ୍ତ ହୋଇଲା ତତକାଳ ॥
ଶକଟ ହରିଅନୁଗ୍ରହେ । ପଡ଼ିଲା ନାହିଁ ଏହା' ଦେହେ ॥
୨୫ ଯେ ପକ୍ଷିମାନଙ୍କର ସ୍ଥାନ । ସେ ଆକାଶକୁ ଏକଦିନ ॥
ଚକ୍ରବାତ ଦାନବ ନେଲା । ତହିଁ ଏ ଶିଳାରେ ପଡ଼ିଲା ॥
ଯେ ଦେବମାନଙ୍କ ଈଶ୍ୱର । ସେ ରକ୍ଷା କଲେ ସେ ଦିନର ॥
୨୬ ବେନି ଦ୍ରୁମଙ୍କ ମଧ୍ୟ ପାଇ । ଏ ଅବା ଆନ ବାଳ କେହି ॥
ଯାହା ନ ଲଭିଲା ମରଣ । ସେ ଅଟେ ଅଚ୍ୟୁତରକ୍ଷଣ ॥
୨୭ ଉତ୍‌ପାତୁଁ ଅନର୍ଥ ଯେ ହୋଏ । ସେ ପୁଣ ଯେତେକାଳଯାଏ ॥
ପରାଭବକୁ ଏ ବ୍ରଜରେ । କରିବ ନାହିଁ ଆଉ ବାରେ ॥
ସେହି ସମୟେ ଆନ ସ୍ଥାନେ । ବାଳଙ୍କୁ ଘେନି ଆମ୍ଭେମାନେ ॥
ଏଠାରୁ କରିବା ଗମନ । ସଙ୍ଗତେ ଥିବେ ଦାସଜନ ॥
୨୮ ଯେ ବନ ବୃନ୍ଦାବନ ନାମ । ପଶୁଙ୍କୁ ହିତ ସେ ଉତ୍ତମ ॥
ନବ କାନନ ମଧ୍ୟେ[3] ଯହିଁ । ଅଛନ୍ତି ଅବାନ୍ତର ହୋଇ ॥
ଯେ ଗୋପ-ଗୋପୀ-ଧେନୁମାନ । ତାଙ୍କର ସେବ୍ୟ ସେହୁ ବନ ॥
ପୁଣ୍ୟ ଅଚଳ ତୃଣ ଯେହି । ଲତାମାନେ ହେଁ ଛନ୍ତି ଯହିଁ ॥
୨୯ ଆମ୍ଭେ ସକଳେ ସେହୁ ସ୍ଥାନ । ଆଜ ହିଁ କରିବା ଗମନ ॥
ଶକଟମାନ ଯୋଚ ବେଗେ । ଗୋଧନମାନେ ଯାନ୍ତୁ ଆଗେ ॥
ମନକୁ ତୁମ୍ଭମାନଙ୍କର । ଯେବେ ରୁଚଇ ଏ ବିଚାର ॥
୩୦ ସେ କଥା ଶୁଣି ଗୋପଜନ । ସମସ୍ତେ ହୋଇ ଏକମନ ॥
ବୋଲନ୍ତେ ସାଧୁ ସାଧୁ ବାଣୀ । ଯେ ଯାହା ଗୋଷ୍ଠ ଯୋଚି ପୁଣି ॥
ଶକଟେ ଗୃହଦ୍ରବ୍ୟମାନ । ଆରୋପି କଲେକ ଗମନ ॥
୩୧| ବାଳକ ବୃଦ୍ଧ ସ୍ତିରୀଜନ । ଗୃହସାମଗ୍ରୀ ଯେ ବା ଆନ ॥
୩୨| ହେ ନୃପ ! ଶକଟେ ତା' ଭରି । ଗୋପାଳେ ଯତ୍ନେ ଧନୁ ଧରି ॥
ଗୋଧନମାନ କରି ଆଗେ । ଶିଙ୍ଗା ବଜାଇ ସବୁଦିଗେ ॥

୧. ପିଲାଙ୍କ ୨. କଲେ, କଲା ୩. ମାନେ ।

ମହତ ତୂର୍ଯ୍ୟଘୋଷ ଦେଲେ । ସଙ୍ଗତେ ପୁରୋହିତେ ଥିଲେ ।। ୯୨
୩୩ ନବୀନ କୁଚକୁଙ୍କୁମରେ । କାନ୍ତି ଦିଶିଲା ତାଙ୍କ ଠାରେ ।। ୯୩
ପଦକ କଣ୍ଠରେ ଶୋଭନ । ପିନ୍ଧିଅଛନ୍ତି ସୁବସନ ।। ୯୪
ରଥରେ ଚଢ଼ି କୃଷ୍ଣଲୀଳା । ତୋଷେ ଗାଇଲେ ଗୋପବାଳା ।। ୯୫
୩୪ ସେରୂପେ ଯଶୋଦାରୋହିଣୀ । ଏକ ଶକଟ ଚଢ଼ି ପୁଣି ।। ୯୬
ରାମକୃଷ୍ଣଙ୍କ ସଙ୍ଗତରେ । ଶୋଭା ପାଇଲେ ସେ କାଳରେ ।। ୯୭
ସେ ବେନିଙ୍କର କଥାମାନ । ଶ୍ରବଣେ ଉତ୍ସୁକ ଯା' ମନ ।। ୯୮
୩୫ ସମସ୍ତ କାଳେ ସୁଖମାନ । ଦିଅଇ ଯଉଁ ବୃନ୍ଦାବନ ।। ୯୯
ତହିଁରେ ପ୍ରବେଶ ହୋଇଣ । ଶକଟମାନଙ୍କରେ ପୁଣ ।। ୧୦୦
ଅର୍ଦ୍ଧଚନ୍ଦ୍ରର ପ୍ରାୟେ ହୋଇ । ବ୍ରଜ ଆବାସ କଲେ ତହିଁ ।। ୧୦୧
୩୬ ବୃନ୍ଦାକାନନ ଗୋବର୍ଦ୍ଧନ । ଯେ ନାନା ଯମୁନାପୁଲିନ ।। ୧୦୨
ହେ ନୃପ ! ଦେଖିଣ ସେମାନ । ଯେ ବେନି ରାମ ଜନାର୍ଦ୍ଦନ ।। ୧୦୩
ତାହାଙ୍କ ମନରେ ଉତ୍ତମ । ସଂତୋଷ ହୋଇଲା ଜନମ ।। ୧୦୪
୩୭ ଏ ରୂପେ ବାଳକଚେଷ୍ଟାରେ । ସେ ବେନି ମଧୁର ବାକ୍ୟରେ ।। ୧୦୫
ଯେତେକ ବ୍ରଜପୁରେ ସ୍ଥିତ । କରନ୍ତେ ତାଙ୍କ ପ୍ରୀତି ଜାତ ।। ୧୦୬
ଯେ ଅଟେ ଯଥାଯୋଗ୍ୟ କାଳ । ତହିଁରେ ହେଲେ ବତ୍ସପାଳ ।। ୧୦୭
୩୮ ବ୍ରଜଭୂମିର ନିକଟରେ । ଗୋପାଳଶିଶୁଙ୍କ ସଙ୍ଗରେ ।। ୧୦୮
ବତ୍ସାମାନଙ୍କୁ ଚରାଇଲେ । ବିବିଧ କ୍ରୀଡ଼ାମାନ କଲେ ।। ୧୦୯
୩୯ ବେଣୁ ବଜାନ୍ତି କଉଁଠାରେ । ବିଲ୍ୱ ଆମଳକ[୧] ଆଦିରେ ।। ୧୧୦
ବିକ୍ଷେପ କଲେ କଉଁସ୍ଥାନେ । କିଙ୍କିଣୀଯୁତ ପାଦମାନେ ।। ୧୧୧
ତହିଁ ତାଡ଼ନ୍ତି କଉଁଠାରେ । କାହିଁ କୃତ୍ରିମ ଗୋବୃଷ[୨]ରେ ।। ୧୧୨
୪୦ କମ୍ବଳ ଆଦି ପରିଧାନେ । ଯେ ବୃଷପ୍ରାୟ ଶିଶୁମାନେ ।। ୧୧୩
ଗର୍ଜନ୍ତେ ବୃଷପ୍ରାୟ ହୋଇ । ଯୁଦ୍ଧ କରନ୍ତେ ଦୁହେଁ ତହିଁ ।। ୧୧୪
ହଂସ ମୟୂର ଆଦି ହୋଇ । ଯେ ଜନ୍ତୁମାନେ ଛନ୍ତି ତହିଁ ।। ୧୧୫
କରନ୍ତେ ସେମାନଙ୍କ ଧ୍ୱନି । ଭ୍ରମଣ କଲେ ଭାଇ ବେନି ।। ୧୧୬
ପ୍ରାକୃତ ବାଳକ ଯେସନ । କରଇ ନାନା ଚେଷ୍ଟାମାନ ।। ୧୧୭
୪୧ ଏକଦିନକେ ଯମୁନାର । ତଟରେ କୃଷ୍ଣ ହଳଧର ।। ୧୧୮
ନିଜ ମିତ୍ରଙ୍କ ସଙ୍ଗତରେ । ବତ୍ସାଙ୍କୁ ଚରାନ୍ତେ ସେଠାରେ ।। ୧୧୯
ତାହାଙ୍କୁ ମାରିବା ନିମିତ୍ତ । ମିଳିଲା ଆସି ଏକ ଦୈତ୍ୟ ।। ୧୨୦
୪୨ ବାଛୁରିରୂପକୁ ସେ ବହି । ବତ୍ସଯୂଥରେ ଅଛି ରହି ।। ୧୨୧
ଶ୍ରୀହରି ତାହାଙ୍କୁ ଦେଖିଣ । ବଳଭଦ୍ରଙ୍କୁ ଦେଖାଇଣ ।। ୧୨୨

୧. ଆମଳକ = ଅଁଏଳା ।    ୨. ଗୋବୃଷ = ବୃଷଭ ।

ନ ଜାଣିଲାର ପ୍ରାୟ ହେଲେ । ତାହା ପାଶକୁ ସ୍ଥିରେ ଗଲେ ।। ୧୨୩
୪୩ ଲାଙ୍ଗୁଳ ସହିତରେ ହରି । ପଛଚରଣଦୁଇ ଧରି ।। ୧୨୪
ବୁଲାଇ କପିତ୍‌ଥ ବୃକ୍ଷର । ଅଗ୍ରକୁ ଫିଙ୍ଗିଲେ ସତ୍ୱର ।। ୧୨୫
ଭ୍ରମଣ କରାନ୍ତେ ଦଇତ୍ୟ । ତତ୍‌କ୍ଷଣେ ଛାଡ଼ିଲା ଜୀବିତ ।। ୧୨୬
୪୪ କପିତ୍‌ଥ ମାନଙ୍କ ସଙ୍ଗର । ପଡ଼ିଲା ସେ ମହାଶରୀର ।। ୧୨୭
ଗୋପାଳମାନେ ଦେଖି ତାକୁ । ମନେ ଲଭିଲେ ବିସ୍ମୟକୁ ।। ୧୨୮
ଭଣନ୍ତେ ସାଧୁ ସାଧୁ ବାଣୀ । କୃଷ୍ଣଙ୍କୁ ପ୍ରଶଂସିଲେ ପୁଣି ।। ୧୨୯
ଦେବତାମାନେ ତୋଷ ହେଲେ । ପୁଷ୍ପସମୂହ ବରଷିଲେ ।। ୧୩୦
୪୫ ସମସ୍ତ ଲୋକଙ୍କର ଏକ । ହୋଇ ଯେ ଅଟନ୍ତି ପାଳକ ।। ୧୩୧
ସେ ବେନି ଭାଇ ରାମ ହରି । ବତ୍ସପାଳକ ହୋଇ କରି ।। ୧୩୨
ପ୍ରଭାତକାଳରେ ଭୋଜନ । ସାରି ସେ ଗୋବାଛୁରି[୧]ମାନ ।। ୧୩୩
ଚରାନ୍ତେ ସକଳ ଦିଗରେ । ଭ୍ରମଣ କରନ୍ତି ସୁଖରେ ।। ୧୩୪
୪୬ ଏକଦିନକେ ଗୋପବାଳ । ଯେ ଯାହାଙ୍କର ବତ୍ସକୁଳ ।। ୧୩୫
ତାହାଙ୍କୁ ପିଆଇବା ପାଇଁ । ଜଳର ନିକଟକୁ ଯାଇ ।। ୧୩୬
ବତ୍ସାମାନଙ୍କୁ ପିଆଇଣ । ସେ ଜଳ ପାନ କଲେ ପୁଣ ।। ୧୩୭
୪୭ ସେଠାରେ ସେ ଗୋପବାଳକ । ଦେଖିଲେ ମହାସତ୍ତ୍ୱ ଏକ ।। ୧୩୮
ରହିଛି, ଦେଖିଣ ତାହାକୁ । ସମସ୍ତେ ଲଭିଲେ ତ୍ରାସକୁ ।। ୧୩୯
ଗିରିରୁ ବଜ୍ରଭେଦ ହୋଇ । ଶୃଙ୍ଗ ଯେସନେ ପଡ଼ିଥାଇ ।। ୧୪୦
୪୮ ବକନାମେ ସେ ମହାସୁର । ଧରିଛି ବକକଳେବର ।। ୧୪୧
ତୀକ୍ଷ୍ଣ ଅଟଇ ତୁଣ୍ଡ ଯାର । ସ୍ୱଭାବେ ଅଟେ ବଳିୟାର ।। ୧୪୨
ବଡ଼ ବେଗରେ ସେ ଆସିଣ । କୃଷ୍ଣଙ୍କୁ ଗ୍ରାସ କଲା ପୁଣ ।। ୧୪୩
୪୯ ଯେ ଗ୍ରସ୍ତ ମହାବକାସୁରେ । ଦେଖି ସେ କୃଷ୍ଣଙ୍କୁ ସେଠାରେ ।। ୧୪୪
ଯେ ରାମ ଆଦି ଗୋପସୁତେ । ରାମଙ୍କୁ ଛାଡ଼ି ସେ ସମସ୍ତେ ।। ୧୪୫
ଅଚେତ ହେଲେ, ବିନୁ ପ୍ରାଣ । ଯେସନେ ଇନ୍ଦ୍ରିୟଙ୍କ ଗଣ ।। ୧୪୬
୫୦ ଯେହୁ [୨]ଜଗତଗୁରୁ ତାତ । ନୋହି ଅଛନ୍ତି ଯେହୁ କ୍ଷତ ।। ୧୪୭
ଅଗ୍ନିପରାଏ ତାଳୁମୂଳ । ଦହନ୍ତେ ସେ ଗୋପାଳବାଳ ।। ୧୪୮
ତାହାଙ୍କୁ ବାନ୍ତି ତତକ୍ଷଣ । କଲା, ରୋଷରେ ବକ ପୁଣ ।। ୧୪୯
ଉଦ୍ୟତ ହୋଇଲା ତାହାଙ୍କୁ । ତୁଣ୍ଡରେ ପୁଣ ମାରିବାକୁ ।। ୧୫୦
୫୧ ଯେ ଆସୁଅଛି ବକାସୁର । ମିତ୍ର ଅଟଇ ଯେ କଂସର ।। ୧୫୧
ତାହାକୁ ସତ୍ୱରେ ସେ ହରି । ବେନି ଭୁଜରେ ଥଣ୍ଟ ଧରି ।। ୧୫୨
ତିରଣ[୩] ଖଣ୍ଡପ୍ରାଏ କରି । ଲୀଳାରେ ପକାଇଲେ ଚିରି ।। ୧୫୩

---

୧. ଗୋବାଛୁରି = ଗାଈର ବାଛୁରି । ୨. ଜଗତଗୁରୁ = ବ୍ରହ୍ମା । ସତ୍ତ୍ୱ = ପ୍ରାଣୀ ।
୩. ତିରଣ - ମୂଳଶବ୍ଦ 'ବୀରଣ' । (ବୀରଣ = ଅଗ୍ରଛି ତୃଣବିଶେଷ) ।

ଦେଖନ୍ତେ ବାଳକନିକର । ଯେ ଗତି ସାଧୁ ଲୋକଙ୍କର ।। ୧୫୪
ଦେବତାମାନଙ୍କର ପ୍ରୀତି । ଯେ କୃଷ୍ଣ ବିଧାନ କରନ୍ତି ।। ୧୫୫
୫୨ [୧]ନନ୍ଦନମଲ୍ଲିକା ଆଦିରେ । ବକ ଅରିଙ୍କି ସେ କାଳରେ ।। ୧୫୬
ସ୍ୱର୍ଗନିବାସୀ ଲୋକମାନେ । ବିକ୍ଷେପ କଲେକ ଗମନେ ।। ୧୫୭
ଆନକ-ଶଙ୍ଖ-ସ୍ତବତୁଲେ । କୃଷ୍ଣଙ୍କୁ ପୁଣ ସ୍ତୁତି କଲେ ।। ୧୫୮
ଦେଖିଣ ତାହା ଗୋପସୁତ । ସମସ୍ତେ ହୋଇଲେ ବିସ୍ମିତ ।। ୧୫୯
୫୩ ରାମଙ୍କୁ ଆଦି ହୋଇ ଯେତେ । ବାଳକେ ଥିଲେ ସେ ସମସ୍ତେ ।। ୧୬୦
ବକମୁଖୁଁ ଯେ ମୁକ୍ତ ହରି । ତାହାଙ୍କୁ ପୁଣ ଲଭି କରି ।। ୧୬୧
ସ୍ନେହରେ କରି ଆଲିଙ୍ଗନ । ସଂତୋଷ ହୋଇଲେ, ଯେସନ ।। ୧୬୨
ଦେହରୁ ପ୍ରାଣ ଯାଇଥାଇ । ସେ ନିଜ ସ୍ଥାନକୁ ଆସଇ ।। ୧୬୩
ଇନ୍ଦ୍ରିୟଗଣ ଲଭି ତାକୁ । ଲଭନ୍ତି ପୁଣ ହରଷକୁ ।। ୧୬୪
ବାଛୁରିମାନ ଏକଠୁଳ । କରିଣ ଆସିଣ ଗୋକୁଳ ।। ୧୬୫
ଯେ ବକାସୁରର ବିନାଶ । କଲେ ସେ କଥାକୁ ପ୍ରକାଶ ।। ୧୬୬
୫୪ ଗୋପାଳେ ଶୁଣି ସେ ବୃତ୍ତାନ୍ତ । ହୋଇଲେ ଅତ୍ୟନ୍ତ ବିସ୍ମିତ ।। ୧୬୭
ଅତିପ୍ରିୟରେ ଗୋପୀମାନେ । ସାଦର ହେଲେ ନିଜମନେ ।। ୧୬୮
ଉତ୍ସୁକେ କଲେ ବିଲୋକନ । ଅତୃପ୍ତ ତାଙ୍କର ନୟନ ।। ୧୬୯
ପ୍ରାଣ ଲଭିଲେ ମଲା ଜନ । ତାହାକୁ ଦେଖନ୍ତି ଯେସନ ।। ୧୭୦
୫୫ ପଡ଼ଇ ଅଦ୍ଭୁତ ଏ ବାଳ । ମୃତ୍ୟୁ ମୁଖରେ ବାରବାର ।। ୧୭୧
ତଥାପି ତାଙ୍କର ଅପ୍ରିୟ । ସମ୍ଭବ ହୋଇଲା ନିଶ୍ଚୟ ।। ୧୭୨
ଯେଣୁ ସେମାନେ ଆନ ଜନ । ଭୟକୁ କଲେ ଉତପନ ।। ୧୭୩
୫୬ ଯାହାଙ୍କ ଦରଶନ ଘୋର । ସେମାନେ ତଥାପି ଏହାର ।। ୧୭୪
କରିବା ଅର୍ଥେ ପରାଭବ । ଶକ୍ୟ ନୁହନ୍ତି ସେ ଦାନବ ।। ୧୭୫
ଏହାକୁ ମାରିବା ନିମିତ୍ତେ । ପ୍ରବେଶ ହୋଇ ସେ ଦଇତେ ।। ୧୭୬
ପତଙ୍ଗ ଯେସନ ଅଗ୍ନିରେ । ନାଶ ହୁଅନ୍ତି ସେ ପ୍ରକାରେ ।। ୧୭୭
୫୭ ଯେ ବ୍ରହ୍ମବିଦ ବିପ୍ରଜନ । ସେମାନଙ୍କର ଯେ ବଚନ ।। ୧୭୮
ସେମାନ କଉଣସି ଦିନେ । ଅସତ୍ୟ ନୁହନ୍ତି ଭୁବନେ ।। ୧୭୯
ହେ ନନ୍ଦ ନାରାୟଣସମ । ତୋ'ପୁତ୍ର ଅଟଇ ଉତ୍ତମ ।। ୧୮୦
ଏରୂପେ ଗର୍ଗ ଭଗବାନ । କହିଲେ ଯେବଣ ବଚନ ।। ୧୮୧
ସେ ବଚନକୁ ସେ ପ୍ରକାରେ । ଜାଣିଲୁଁ ଅନୁଭବଦ୍ୱାରେ ।। ୧୮୨
୫୮ ନନ୍ଦକୁ ଆଦି ହୋଇ ଯେତେ । ଗୋପାଳମାନେ ସେ ସମସ୍ତେ ।। ୧୮୩
ରାମକୃଷ୍ଣର ଏ ପ୍ରକାରେ । କଥା କହନ୍ତେ ହରଷରେ ।। ୧୮୪
ଖେଳନ୍ତେ ତାହାଙ୍କର ତୁଲେ । ଭବବେଦନା ନ ଜାଣିଲେ ।। ୧୮୫

୧. ନନ୍ଦନମଲ୍ଲିକା = ନନ୍ଦନକାନନର ମଲ୍ଲୀ ।

| | | | | | |
|---|---|---|---|---|---|
| ୫୯ | ମାଙ୍କଡ଼ଡିଆଁ ଲୁଚକାଳି | । ବାଲିବନ୍ଧାଦି ଖେଳଖେଳି | ।। | |
| | ବ୍ରଜେ ଶ୍ରୀରାମ ଦାମୋଦର | । ଏ ରୂପେ କାଟିଲେ କୌମାର | ।। | |
| | ଯେ ପ୍ରଭୁ ଚରାନ୍ତେ ଗୋବତ୍ସ | । ବିନାଶ କଲେ ଦୈତ୍ୟ ବତ୍ସ | ।। | ୧୮୬ |
| | ସେ ବକରିପୁପଦାମ୍ବୁଜ | । ସେବକ ଦୀନବନ୍ଧୁ ଦ୍ୱିଜ | ।। | ୧୮୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ବତ୍ସ-ବକବଧୋ
ନାମ ଏକାଦଶୋଽଧ୍ୟାୟଃ ।।

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ତୁ ମହାସର୍ପବପୁର୍ଧରମଘାସୁରମ୍ ।
ବତ୍ସପାଳଗିଳଂ କ୍ରୁଦ୍ଧୋ ଗଳେଽହନ୍ନିତି ବର୍ଣ୍ଣ୍ୟତେ ।। ୧
ମହାବକଗଳକ୍ରୀଡ଼ା କେଶବସ୍ୟ[1] ନ କୌତୁକମ୍ ।
ଇତୀବାଘାସୁରମୁଖେ ସସଖଃ ପ୍ରାବିଶଦ୍ଧରିଃ ।। ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ବନଭୋଜନ ଅର୍ଥେ ମନ | । ଧରନ୍ତେ କହୁଣିସି ଦିନ | ।। | ୧ |
| | ପ୍ରଭାତ ସମୟେ ଉଠିଣ | । ଯେ ମିତ୍ର ବତ୍ସପାଳଗଣ | ।। | ୨ |
| | ମନୋଜ୍ଞ ଶୃଙ୍ଗରବ କରି | । ତାହାଙ୍କୁ ପ୍ରବୋଧନ୍ତେ ହରି | ।। | ୩ |
| | ବତ୍ସଙ୍କୁ କରି ଅଗ୍ରସର | । ମନ୍ଦିରୁଁ ହୋଇଲେ ବାହାର | ।। | ୪ |
| ୨ | ଯେ ଯୁକ୍ତ ଅଟନ୍ତି ସ୍ନେହରେ | । ସହସ୍ର ସହସ୍ର କ୍ରମରେ | ।। | ୫ |
| | ବେଣୁ ବିଷାଣ ମନୋହର | । ଶିକା ବେତ୍ର ହିଁ ଯାହାଙ୍କର[2] | ।। | ୬ |
| | ସଂଖ୍ୟା ଯେ ସହସ୍ରଉପରେ | । ଅନ୍ୱିତ ଅଟନ୍ତି ତହିଁରେ | ।। | ୭ |
| | ଏମନ୍ତ ଯେ ନିଜ ବାଛୁରି | । ତାହାଙ୍କୁ ଅଗ୍ରତରେ କରି | ।। | ୮ |
| | କୃଷ୍ଣଙ୍କ ସଙ୍ଗେ ସଙ୍ଗ ହେଲେ | । ହରଷ ହୋଇଣ ସେ ଗଲେ | ।। | ୯ |
| ୩ | କୃଷ୍ଣବତ୍ସଙ୍କ ସଂଖ୍ୟା ନାହିଁ | । ଯେ ଯାହା ବତ୍ସମାନ ନେଇ | ।। | ୧୦ |
| | ଯୂଥ କରି ତାହାଙ୍କ ତୁଲେ | । ଗୋପବାଳକେ ମିଶାଇଲେ | ।। | ୧୧ |
| | ଚରାନ୍ତେ ବାଳକଳୀଳାରେ | । ଖେଳିଲେ ସେ ସେହି ସ୍ଥାନରେ | ।। | ୧୨ |
| ୪ | କାଚ ସୁବର୍ଣ୍ଣ ମୁକ୍ତାମଣି | । ଭୂଷିତ ହେଲେହେଁ ସେ ପୁଣି | ।। | ୧୩ |
| | ଫଳ ପ୍ରବାଳ ପୁଷ୍ପଗୁଚ୍ଛ | । ସୁମନ[3] ଧାତୁ କେକିପିଚ୍ଛ[4] | ।। | ୧୪ |
| | ଏମାନଙ୍କରେ ବୃନ୍ଦାବନେ | । ଆତ୍ମାକୁ ମଣ୍ଡିଲେ ସେମାନେ | ।। | ୧୫ |
| ୫ | ଏକ ଶିକାକୁ ଆର ଜଣ | । ଚୋରାଇ ନିଅନ୍ତେ ସେ ପୁଣ | ।। | ୧୬ |
| | ଜାଣନ୍ତେ ଦୂରକୁ ଫିଙ୍ଗିଲେ | । ସେଠାରେ ଯେଉଁମାନେ ଥିଲେ | ।। | ୧୭ |
| | ହସନ୍ତେ ଦୂରକୁ ସେମାନେ | । ଫିଙ୍ଗିଲେ, ଘେନିଲେ ତା' ଆନେ | ।। | ୧୮ |

୧. କେବଳସ୍ୟ । ୨. ଯା' କନ୍ଧର । ୩. ସୁବର୍ଣ୍ଣ । ୪. ପୁଚ୍ଛ ।

୬ ବନଶୋଭାକୁ ଦେଖିବାରେ । କୃଷ୍ଣ ଯାଆନ୍ତି ଯେବେ ଦୂରେ ॥ ୧୯
ତେବେ ସେ ଗୋପବାଳେ ପୁଣ । 'ମୁଁ ଆଗ ମୁଁ ଆଗ' ବୋଲିଣ ॥ ୨୦
ସ୍ପରଶ କରିଣ କୃଷ୍ଣଙ୍କୁ । ଆରମ୍ଭ କଲେ ବିହାରକୁ ॥ ୨୧
୭ କେ ବେଣୁମାନଙ୍କୁ ବଜାନ୍ତି । ଶୃଙ୍ଗେ ନିସ୍ୱନ କେ କରନ୍ତି ॥ ୨୨
ଗାଆନ୍ତେ କେ ଭୃଙ୍ଗସଙ୍ଗରେ । କୋକିଳସଙ୍ଗେ ଧ୍ୱନି କରେ ॥ ୨୩
୮ ପକ୍ଷିଙ୍କ ଛାୟାଙ୍କ ସଙ୍ଗରେ । ଧାବନ୍ତେ ଅତ୍ୟନ୍ତ ବେଗରେ ॥ ୨୪
ଉତ୍ତମହଂସପ୍ରାୟ ହୋଇ । ଚାଲନ୍ତେ ତାଙ୍କ ମଧ୍ୟେ ଥାଇ ॥ ୨୫
ବକଙ୍କ ସଙ୍ଗରେ ବସନ୍ତେ । ମୟୂରସଙ୍ଗତେ ନୃତ୍ୟନ୍ତେ ॥ ୨୬
୯ କପିବାଳଙ୍କୁ ଓଟାରନ୍ତେ । ସେ ସଙ୍ଗେ ବୃକ୍ଷ ଆରୋହନ୍ତେ ॥ ୨୭
ଦନ୍ତଦର୍ଶନ ଭ୍ରୂଲତାର । କମ୍ପରେ କରନ୍ତେ ବିକାର ॥ ୨୮
ସେ କପିଶିଶୁଙ୍କ ସଙ୍ଗତେ । ଶାଖାରୁ ଶାଖାକୁ ଡିଅଁନ୍ତେ ॥ ୨୯
୧୦ ଡିଅଁନ୍ତେ ଭେକସଙ୍ଗତର । ଲଘନ୍ତେ ସ୍ରୋତକୁ ନଦୀର ॥ ୩୦
ଯେ ଅଟେ ଆପଣାର ଛାଇ । ହସନ୍ତେ ପୁଣ ତାକୁ ଚାହିଁ ॥ ୩୧
ଯେ ବା ଶୁଭନ୍ତି ପ୍ରତିସ୍ୱନ । ଦିଅନ୍ତେ ତାଙ୍କୁ ଶାପମାନ ॥ ୩୨
୧୧ ଯେ ଜ୍ଞାନିଲୋକମାନଙ୍କର । ବ୍ରହ୍ମ ସେ ବ୍ରହ୍ମସୁଖାକାର ॥ ୩୩
ସେ ସୁଖଅନୁଭବ ଆର । ଭକ୍ତ ଅଟନ୍ତି ଯେହୁ ନର ॥ ୩୪
ପରମ ଦେବତା ରୂପରେ । ପ୍ରକାଶ ସେମାନଙ୍କ ଠାରେ ॥ ୩୫
ମାୟା ଆଶ୍ରିତ ଏ ଜଗତେ । ଯେ ପୁଣ ସେମାନଙ୍କ ଚିତ୍ତେ ॥ ୩୬
ମନୁଷ୍ୟଶିଶୁରୂପେ ଖ୍ୟାତ । ଯେ ପ୍ରଭୁ ଅଟନ୍ତି ଏମନ୍ତ ॥ ୩୭
ଏରୂପେ ସଙ୍ଗରେ ତାଙ୍କର । କଲେ ସେ ବାଳକେ ବିହାର ॥ ୩୮
ବହୁତ ସୁକୃତ ସେମାନେ । ଆଚରି ଥିଲେ ପୂର୍ବଦିନେ ॥ ୩୯
୧୨ ଯେ ଧୃତ ଆତ୍ମା ଯୋଗୀ ନରେ । ବହୁତ ଜନମେ କଷ୍ଟରେ ॥ ୪୦
ଅଲଭ୍ୟ ଅଟଇ ତାଙ୍କର । ଧୂଳି ଯା' ପାଦପଙ୍କଜର ॥ ୪୧
ସେ କୃଷ୍ଣ ଯଉଁମାନଙ୍କର । ହୋଇଲେ ନୟନଗୋଚର ॥ ୪୨
ସେ ବ୍ରଜବାସିଙ୍କର ଭାଗ୍ୟ । କେ ବର୍ଣ୍ଣିବାକୁ ହେବ ଯୋଗ୍ୟ ॥ ୪୩
୧୩ ଅଘ ନାମରେ ତଦନ୍ତର । ଅଇଲା ଏକ ମହାସୁର ॥ ୪୪
[1]ତାଙ୍କର ସୁଖକ୍ରୀଡ଼ାମାନ । ଦେଖିବାକୁ ସେ ଅଭାଜନ ॥ ୪୫
ପିଇ ଅଛନ୍ତି ଯେ ଅମୃତ । ସେ ସୁରମାନେ ହେଁ ସନ୍ତତ ॥ ୪୬
ଯେ ଅଟେ ଆପଣା ଜୀବନ । ତା'ପ୍ରାପ୍ତି ବାଞ୍ଛି ନିଜ ମନ ॥ ୪୭
ଅସୁର ଏ କଉଁ କାଳରେ । ମରିବ କଉଁ ଉପାୟରେ ॥ ୪୮
ଏମନ୍ତ ରୂପେ ଛିଦ୍ର ଯାର । [2]ପ୍ରତୀକ୍ଷା କରନ୍ତି ମନର ॥ ୪୯

---

୧. ତାଙ୍କର = ତେଷାଂ (ସେମାନଙ୍କର) ।
୨. କେବଳ ଅମୃତପାନଦ୍ୱାରା ଜୀବନ ସଫଳ ହୁଏ ନାହିଁ, କିନ୍ତୁ ଭଗବାନଙ୍କ ଲୀଳାନୁସ୍ମରଣ ଦ୍ୱାରା ହୁଏ ।

୧୪ ଆସିଛି କଂସ ଆଜ୍ଞା ପାଇ । ପୂତନା-ବକ-ସାନ ଭାଇ ॥ ୫୦
ଅଘ ନାମରେ ସେ ବିଦିତ । ଦେଖି କୃଷ୍ଣାଦି ଗୋପସୁତ ॥ ୫୧
ନାଶିଛି ଏ ମୋର ସୋଦର । ନିମିତ୍ତେ ସେହି ଦୁହିଁଙ୍କର ॥ ୫୨
ଏହାକୁ ସୈନ୍ୟ ସହିତରେ । ବିନାଶ କରିବି ଏଠାରେ ॥ ୫୩
୧୫ ଯେବେ ଏ ସମସ୍ତ ବାଳକ । ହେବେ ମୋ' ମିତ୍ର[୧] ତିଳୋଦକ ॥ ୫୪
ସକଳ ବ୍ରଜବାସୀ ତେବେ । ମଲା ଲୋକର ପ୍ରାଏ ହେବେ ॥ ୫୫
ଯେବେ ନିର୍ଗତ ହୋଏ ପ୍ରାଣ । କି ଚିନ୍ତା ଦେହଅର୍ଥେ ପୁଣ ॥ ୫୬
ଜଗତେ ଯେତେ ପ୍ରାଣବନ୍ତ । ପ୍ରାଣ ସେମାନଙ୍କର ସୁତ ॥ ୫୭
୧୬ ଏ ରୂପେ କରିଣ ବିଚାର । ଯୋଜନେ ଦୀର୍ଘଭାଗ ଯାର ॥ ୫୮
ମହାପର୍ବତ ପ୍ରାୟ ହୋଇ । ଯେ ପୁଣ ପୃଥୁଳ ଅଟଇ ॥ ୫୯
ଯେ ମୁଖ ଗୁହାପ୍ରାୟ ହୋଇ । ବିସ୍ତାର ହୋଇଛି ସେ ଯହିଁ ॥ ୬୦
ଏରୂପେ ଅଜଗର ପ୍ରାୟ । କରିଣ ନିଜ ମହାକାୟ ॥ ୬୧
ସେ ଖଳ ଗିଳିବା ଆଶାରେ । ଶୟନ କଲାକ ମାର୍ଗରେ ॥ ୬୨
୧୭ ଯା ତଳ ଓଷ୍ଠ ଭୂମିଭାଗେ । ଲାଗିଛି ଆଉ ଓଷ୍ଠ ମେଘେ ॥ ୬୩
ଗିରିକନ୍ଦର ବେନି ପ୍ରାଏ । ବଦନପ୍ରାନ୍ତ ବେନି ଶୋହେ ॥ ୬୪
ଯେସନ ଗିରିଶୃଙ୍ଗମାନ । ସେ ରୂପେ ଯାହାର ଦଶନ ॥ ୬୫
ଅନ୍ଧକାରର ପ୍ରାୟ ହୋଇ । ବଦନମଧ୍ୟ ଅଛି ଯହିଁ ॥ ୬୬
ନିଷ୍ଠୁର ପବନ ସଦୃଶ । ଯହିଁରେ ବହୁଅଛି ଶ୍ୱାସ ॥ ୬୭
ବନ ଅନଳପ୍ରାୟ ହୋଇ । ଲୋଚନଯୁଗ ତପ୍ତ ଯହିଁ ॥ ୬୮
୧୮ ବଦନ କରିଣ ବିସ୍ତାର । ମାର୍ଗେ ଶୋଇଛି ଅଜଗର ॥ ୬୯
ତାହାକୁ ଦେଖିଣ ସେଠାଇଁ । ବୃନ୍ଦାବନର ଶୋଭା ଏହି ॥ ୭୦
ଏମନ୍ତ ମଣିଣ ବିସ୍ତାର । ବଦନ ଯେ ଅଜଗରର ॥ ୭୧
ତା' ତୁଲ୍ୟଭାବରେ ଲୀଳାରେ । ଉତ୍ପ୍ରେକ୍ଷା କଲେକ କୁମରେ ॥ ୭୨
୧୯ ହେ ମିତ୍ରେ ! ଦେଖ ଏଥି ଆଇଁ । ଜନ୍ତୁର ପ୍ରାୟ ଅଛି ରହି ॥ ୭୩
ଆମ୍ଭଙ୍କୁ ଗିଳିବା ନିମିତ୍ତ । ମୁଖକୁ କରିଣ ବିସ୍ତୃତ ॥ ୭୪
ସର୍ପ ଯେମନ୍ତ ଥାଇ ରହି । ସେରୂପେ ହୋଇଛି କି ନାହିଁ ॥ ୭୫
୨୦ ସୂର୍ଯ୍ୟକିରଣେ ଆରକତ । ମେଘକୁ ଦେଖ ଏହୁ ସତ୍ୟ ॥ ୭୬
ଉପର ପାଟିପ୍ରାଏ ପୁଣ । ତା' ପ୍ରତିଚ୍ଛାୟାରେ ଅରୁଣ ॥ ୭୭
ଦିଶଇ ତଳଭାଗ ଯେହି । ସେ ତଳପାଟି ପ୍ରାୟ ହୋଇ ॥ ୭୮
୨୧ ଯେ ବାମ ଦକ୍ଷିଣ ଭାଗର । ଦିଶଇ ପର୍ବତକନ୍ଦର ॥ ୭୯
ଓଷ୍ଠପ୍ରାନ୍ତକୁ ସେହୁ ଦୁଇ । ସାମ୍ୟରେ ବିବାଦ କରଇ ॥ ୮୦

---

୧. ମିତ୍ର = ଭାଇ ଓ ଭଉଣୀ ।

| | | | | |
|---|---|---|---|---|
| | ଦେଖ ଏ ତୁଙ୍ଗ ଶୃଙ୍ଗମାନ | । ତା' ଦଂଷ୍ଟ୍ରାମାନଙ୍କ ସମାନ | ।। | ୮୧ |
| ୨୨ | ବିସ୍ତୃତ ଦୀର୍ଘ ମାର୍ଗ ଏହି | । ଜିହ୍ୱାକୁ ବିବାଦ କରଇ | ।। | ୮୨ |
| | ଏ ଶୃଙ୍ଗମାନଙ୍କ ମଧ୍ୟର | । ଯେ ଦିଶୁଅଛି ଅନ୍ଧକାର | ।। | ୮୩ |
| | ଏହାର ପୁଣ ଯେ ବଦନ | । ତାର ମଧ୍ୟକୁ ସେ ସମାନ | ।। | ୮୪ |
| ୨୩ | ଦେଖ ଏ ଦାବାଗ୍ନିତପତ | । ବହଇ ଏହୁ ଖରବାତ | ।। | ୮୫ |
| | ଦେଖ ତା' ନିଶ୍ୱାସପବନ | । ପ୍ରାୟକ ହୋଇଛି ଶୋଭନ | ।। | ୮୬ |
| | ସେ ଯଉଁ ଅରଣ୍ୟଅନଳ | । ତେଣେ ଯେ ଦଗ୍ଧ ଜନ୍ତୁକୁଳ | ।। | ୮୭ |
| | ଏ ତାଙ୍କ ଦୁର୍ଗନ୍ଧ ଅନ୍ତର | । ଆମିଷଗନ୍ଧର ଆକାର | ।। | ୮୮ |
| ୨୪ | ଏଠାରେ ହୁଅନ୍ତେ ପ୍ରବେଶ | । ଆମ୍ଭଙ୍କୁ କରିବ କି ଗ୍ରାସ | ।। | ୮୯ |
| | ଯେବେ ଏ ଆମ୍ଭଙ୍କୁ ଗିଳିବ | । ବକର ପ୍ରାଏ ନାଶ ଯିବ | ।। | ୯୦ |
| | କ୍ଷଣକେ ଏ କୃଷ୍ଣରେ ସ୍ମରି | । ଏମନ୍ତ ମନରେ ବିଚାରି | ।। | ୯୧ |
| | ବକବଇରିମନୋହର | । ମୁଖ ଚାହିଁଣ କରେ କର | ।। | ୯୨ |
| | ବଜାନ୍ତେ ହସନ୍ତେ କ୍ରମରେ | । ପ୍ରବେଶ ହେଲେ ନିର୍ଭୟରେ | ।। | ୯୩ |
| ୨୫ | ତାକୁ ନ ଜାଣି ପରସ୍ପରେ | । କହିଲେ ଯେ ବାଣୀ ମିଥ୍ୟାରେ | ।। | ୯୪ |
| ୨୬ | ଶୁଣି ତାଙ୍କର ସେ ଭାଷିତ | । ଯେ କୃଷ୍ଣ ସର୍ବହୃଦସ୍ଥିତ | ।। | ୯୫ |
| | ସତ୍ୟ ହେଲେହେଁ ମିଥ୍ୟାପ୍ରାଏ | । ମୋର ଲୋକଙ୍କୁ ପ୍ରତ୍ୟେ ହୋଏ | ।। | ୯୬ |
| | ଏମନ୍ତ ମନେ ବିଚାରିଣ | । ରାକ୍ଷସ ଏ ବୋଲି ଜାଣିଣ | ।। | ୯୭ |
| | ନିବାରିବାକୁ ତାଙ୍କୁ ମନ | । କଲେ ସେ ଯେବେ ଭଗବାନ | ।। | ୯୮ |
| | ଅସୁରଉଦର ମଧ୍ୟରେ | । ସେକାଳେ ବାଛୁରିସଙ୍ଗରେ | ।। | ୯୯ |
| | ପ୍ରବେଶ ହେଲେ ଶିଶୁଗଣ | । ଗିଳିଲା ନାହିଁ ତତକ୍ଷଣ | ।। | ୧୦୦ |
| | ସେହୁ ରାକ୍ଷସ ବକ-ଅରି | । ପ୍ରବେଶକୁ ପ୍ରତୀକ୍ଷା କରି | ।। | ୧୦୧ |
| | ଭ୍ରାତାଭଗିନୀଙ୍କ ମରଣ | । ମନେ କରିଛି ଯେ ସ୍ମରଣ | ।। | ୧୦୨ |
| ୨୭ | ଯାଙ୍କ ରକ୍ଷକ ଆନ ନାହିଁ | । ସ୍ୱହସ୍ତୁଁ ଗଲେ ଚ୍ୟୁତ ହୋଇ | ।। | ୧୦୩ |
| | ଯେ ଦୁଃଖୀ ଅଟନ୍ତି ମୃତ୍ୟୁର | । ଉଦରଅଗ୍ନିକି ଆହାର | ।। | ୧୦୪ |
| | ସକଳଭୟନିବାରଣ | । ଶ୍ରୀକୃଷ୍ଣ ତାହାଙ୍କୁ ଦେଖିଣ | ।। | ୧୦୫ |
| | ଦଇବକୃତ୍ୟରେ ବିସ୍ମୟ | । ହୋଇଲେ ଅଟନ୍ତି ସଦୟ | ।। | ୧୦୬ |
| ୨୮ | ଜୀବନ ଏ ଖଳ ଦୈତ୍ୟର | । ହିଂସା ଏ ସାଧୁମାନଙ୍କର | ।। | ୧୦୭ |
| | ଦୁହେଁ ନୋହିବେ କି ରୂପରେ | । କି ଅବା କରିବା ଏଠାରେ | ।। | ୧୦୮ |
| | ଏମନ୍ତ ମନରେ ବିଚାରି | । ତହିଁ ଉପାୟ ଜାଣି କରି | ।। | ୧୦୯ |
| | ଅଶେଷ ବିଷୟ ଯାହାର | । ଅଟଇ ପ୍ରତ୍ୟକ୍ଷଗୋଚର | ।। | ୧୧୦ |
| | ସେ ହରି ଅସୁରତୁଣ୍ଡରେ | । ପ୍ରବେଶ ହୋଇଲେ ସତ୍ୱରେ | ।। | ୧୧୧ |
| ୨୯ | ଆଚ୍ଛନ୍ନ ହୋଇଣ ମେଘରେ | । ସେ କାଳେ ଥିଲେ ଯେ ଅମରେ | ।। | ୧୧୨ |
| | ଭୟରେ କଲେ ହାହା ରାବ | । ଅଘଅସୁରର ବାନ୍ଧବ | ।। | ୧୧୩ |

| | | | | |
|---|---|---|---|---|
| | କଂସକୁ ଆଦି ହୋଇ ଯେତେ | ହରଷ ହେଲେ ସେ ସମସ୍ତେ | ॥ | ୧୧୪ |
| ୩୦ | ଦେବତାଙ୍କର ସେ ବଚନ | ଶୁଣି ଶ୍ରୀକୃଷ୍ଣ ଭଗବାନ | ॥ | ୧୧୫ |
| | ବତ୍ସବାଳକମାନଙ୍କର | ସହିତେ ଯେ ଅଘ-ଅସୁର | ॥ | ୧୧୬ |
| | ଚୂର୍ଣ୍ଣ କରିବ ଆପଣାକୁ | କରିଛି ଏମନ୍ତ ବାଞ୍ଛାକୁ | ॥ | ୧୧୭ |
| | ତାହାର କଣ୍ଠଦେଶ ଯେହି | ବୃଦ୍ଧିକି ଲଭିଲେ ସେ ତହିଁ | ॥ | ୧୧୮ |
| ୩୧ | ଅତିପୃଥୁଳକାୟ ଯାର | ତଦନ୍ତରେ ସେ ରାକ୍ଷସର | ॥ | ୧୧୯ |
| | ଯେ ମାର୍ଗ ମୁଖ ଆଦିଙ୍କର | ନିରୁଦ୍ଧ ସେ କଣ୍ଠ ତାହାର | ॥ | ୧୨୦ |
| | ବାହାର ହେଲା ନେତ୍ରଦୁଇ | ଭ୍ରମୁଛି ଏଣେ ତେଣେ ଯେହି | ॥ | ୧୨୧ |
| | ଦେହ ଭିତରେ ସମୀରଣ | ନିରୁଦ୍ଧ ହେଲା ତାର ପୁଣ | ॥ | ୧୨୨ |
| | ମୂର୍ଧାକୁ ତାର ଭେଦି କରି | ବାହାର ହେଲେ ପ୍ରଭୁ ହରି | ॥ | ୧୨୩ |
| ୩୨ | ସେହି ମାର୍ଗରେ ପ୍ରାଣ ତାର | ସମସ୍ତେ ହୁଅନ୍ତେ ବାହାର | ॥ | ୧୨୪ |
| | ଯେ ହାରିଥିଲେ ନିଜ ପ୍ରାଣ | ଗୋବତ୍ସେ ନିଜ ମିତ୍ରଗଣ | ॥ | ୧୨୫ |
| | ତାହାଙ୍କୁ ଅମୃତ ଦୃଷ୍ଟିରେ | ଉଠାଇ ତାହାଙ୍କ ସଙ୍ଗରେ | ॥ | ୧୨୬ |
| | ମୁଖରୁ ପୁଣ ସେ ଅଘର | ମୁକୁନ୍ଦ ହୋଇଲେ ବାହାର | ॥ | ୧୨୭ |
| ୩୩ | ମହା ଅହିର ଦେହେ ସ୍ଥିତ | ଯେହୁ ମହତ ଅଦଭୁତ | ॥ | ୧୨୮ |
| | ନିଜ କାନ୍ତିରେ ରହି ଯେହି | ଦଶ ଦିଗକୁ ପ୍ରକାଶଇ | ॥ | ୧୨୯ |
| | କୃଷ୍ଣନିର୍ଗମପ୍ରତୀକ୍ଷାରେ | ରହି ଯେ ଥିଲା ଆକାଶରେ | ॥ | ୧୩୦ |
| | ସେ ତେଜ ଚାହାଁନ୍ତେ ଅମରେ | ପ୍ରବେଶ ହେଲା କୃଷ୍ଣଠାରେ | ॥ | ୧୩୧ |
| ୩୪ | ଦେବତାମାନେ କୁସୁମରେ | ଅପସରାଏ ନର୍ତ୍ତନରେ | ॥ | ୧୩୨ |
| | ଗନ୍ଧର୍ବଆଦି ସୁଗୀତରେ | ବାଦ୍ୟରେ ପୁଣି ବାଦ୍ୟଧରେ | ॥ | ୧୩୩ |
| | ବ୍ରାହ୍ମଣେ ସ୍ତୁତିର ପଠନେ | ଜୟଶବଦେ ଗଣମାନେ | ॥ | ୧୩୪ |
| | ଅତି ହରଷେ ଏ ପ୍ରକାରେ | କୃଷ୍ଣଙ୍କୁ ପୂଜିଲେ ସେଠାରେ | ॥ | ୧୩୫ |
| | ଯେଣୁ ତାଙ୍କର କାର୍ଯ୍ୟମାନ | ଏକୃଷ୍ଣ କରିବେ ବିଧାନ | ॥ | ୧୩୬ |
| ୩୫ | ଅଦ୍ଭୁତ ସ୍ତୋତ୍ର ତାହାଙ୍କର | ଉତ୍ତମ ବାଦ୍ୟ ଗୀତ ସ୍ୱର | ॥ | ୧୩୭ |
| | ଜୟାଦି ଅନେକ ଉତ୍ସବ | ମଙ୍ଗଳ ସ୍ୱନ ଏହୁ ସର୍ବ | ॥ | ୧୩୮ |
| | ଶୁଣିଣ ଆପଣା ସଦନ | ନିକଟେ 'ଚତୁର-ଆନନ'[୧] | ॥ | ୧୩୯ |
| | ପ୍ରବେଶ ହୋଇଣ ସତ୍ୱର | ଯେ ବା ମହିମା ଶ୍ରୀକୃଷ୍ଣର | ॥ | ୧୪୦ |
| | ତାହା ଦେଖିଣ ନିଜ ମନେ | ବିସ୍ମୟ ଲଭିଲା ସେ ସ୍ଥାନେ | ॥ | ୧୪୧ |
| ୩୬ | ଅଜଗରର ଚର୍ମ ଯେହି | ବୃନ୍ଦାବନରେ ଶୁଖି ରହି | ॥ | ୧୪୨ |
| | ବହୁତ କାଳ ପରିଯନ୍ତେ | ହେ ନୃପ ! ବ୍ରଜବାସୀ ଯେତେ | ॥ | ୧୪୩ |
| | ତାଙ୍କର ଖେଳିବା ନିମିତ୍ତ | ଚତ୍ୱର ହେଲା ଏ ଅଦ୍ଭୁତ | ॥ | ୧୪୪ |
| ୩୭ | ମୃତ୍ୟୁର ଠାରୁ ଆପଣାର | ସଂସାରବନ୍ଧରୁ ଅହିର | ॥ | ୧୪୫ |

୧. ଚତୁର-ଆନନ = ବ୍ରହ୍ମା ।

| | | | | |
|---|---|---|---|---|
| | ଯେ ବା ମୋକ୍ଷଣ ଏ ଚରିତ | । | [୧]ପଞ୍ଚମ ବରଷରେ କୃତ | ।। ୧୪୬ |
| | ତା' ଦେଖି ଷଷ୍ଠ ବରଷରେ | । | ଗୋପାଳେ ବିସ୍ମୟ ମନରେ | ।। ୧୪୭ |
| | ଅଜଗରକୁ ଆଜ ମାରି | । | ଆମ୍ଭଙ୍କୁ ରକ୍ଷା କଲେ ହରି | ।। ୧୪୮ |
| | ପ୍ରବେଶ ହୋଇଣ ବ୍ରଜରେ | । | କହିଲେ ଏମନ୍ତ ରୂପରେ | ।। ୧୪୯ |
| ୩୮ | ଯେ ପରାବର ଲୋକଙ୍କର | । | ପରମ ବିଧାତା ଈଶ୍ୱର | ।। ୧୫୦ |
| | ମନୁଜ-ବାଳରୂପ ହୋଇ | । | ମାୟା ଯେ ଅଛନ୍ତି ଭିଆଇ | ।। ୧୫୧ |
| | ବିଚିତ୍ର ନୋହେ ଏ ତାଙ୍କର | । | ଅହି ସ୍ୱରଶରୁ ଯାହାର | ।। ୧୫୨ |
| | ନିହତପାତକ ହୋଇଲା | । | ଆପଣା ରୂପକୁ ପାଇଲା | ।। ୧୫୩ |
| | ଅସନ୍ତ ଲୋକଙ୍କର ଯେହି | । | ପରମ ଦୁର୍ଲଭ ଅଟଇ | ।। ୧୫୪ |
| ୩୯ | କେବଳ ମନୋମୟ ଯାର | । | ଅଙ୍ଗ ପ୍ରତିମା ଏକ ବାର | ।। ୧୫୫ |
| | ପ୍ରବେଶ ହୋଇଣ ଅନ୍ତରେ | । | ପ୍ରହ୍ଲାଦାଦିଙ୍କି ଏ ସଂସାରେ | ।। ୧୫୬ |
| | ଦେଇଛି ଭାଗବତୀ ଗତି | । | ସାକ୍ଷାତ ହୋଇ ସେ ଶ୍ରୀପତି | ।। ୧୫୭ |
| | ପ୍ରବେଶ ହେଲେ ଯା' ଅନ୍ତର | । | କି ଚିତ୍ର ତାର ତରିବାର | ।। ୧୫୮ |
| | ହେ ନୃପ ! ଆମ୍ଭାରେ ସମ୍ଭବ | । | ଯେ ନିତ୍ୟ ସୁଖ ଅନୁଭବ | ।। ୧୫୯ |
| | ତେଣେ ମାୟାକୁ ନିବାରଣ | । | କଲେ ପରମ ଯେହୁ ପୁଣ | ।। ୧୬୦ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୪୦ | ହେ ବିପ୍ରମାନେ ! ସେ ଏମନ୍ତ | । | ରୂପରେ ନୃପ ପରୀକ୍ଷିତ | ।। ୧୬୧ |
| | ଯେହୁ ରକ୍ଷକ ଆପଣାର | । | ବିଚିତ୍ର ଚରିତ ତାଙ୍କର | ।। ୧୬୨ |
| | ଶ୍ରବଣ କରିଣ ଶୁକଙ୍କୁ | । | ପୁଛିଲେ ସେ ପୁଣ୍ୟ କଥାକୁ | ।। ୧୬୩ |
| | ଯଉଁ ଶ୍ରବଣେ ବଶୀକୃତ | । | ହୋଇଛି ସେ ନୃପର ଚିତ୍ତ | ।। ୧୬୪ |

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୪୧ | ହେ ଶୁକମୁନି ! ଯେହୁ ଆନ | । | କାଳରେ ହୋଇଛି ବିଧାନ | ।। ୧୬୫ |
| | ସେ ପୁଣ ସେ କାଳେ ସମ୍ଭବ | । | କେମନ୍ତ ପ୍ରକାରେ ହୋଇବ | ।। ୧୬୬ |
| | ପଞ୍ଚମ ବରଷେ ବିଧାନ | । | କଲେ ଯା' ପ୍ରଭୁ ଭଗବାନ | ।। ୧୬୭ |
| | ଷଷ୍ଠ ବରଷେ ଗୋପବାଳେ | । | କହିଲେ ତାହା ଯା' ଗୋକୁଳେ | ।। ୧୬୮ |
| ୪୨ | ହେ ଗୁରୁ ମହାଯୋଗିବର | । | ପରମ କୁତୂହଳ ମୋର | ।। ୧୬୯ |
| | କହ ତ ମୋତେ ସେ ଚରିତ | । | ମନେ ମୁଁ ମଣୁଛି ଏମନ୍ତ | ।। ୧୭୦ |
| | ହରିର ମାୟା ଏ ଅଟଇ | । | ଆନ ରୂପରେ ନ ଘଟଇ | ।। ୧୭୧ |

---

୧. କୌମାରଂ ପଞ୍ଚମାବ୍ଦାନ୍ତଂ ପୌଗଣ୍ଡଂ ଦଶମାବଧି ।
କୈଶୋରମାପଞ୍ଚଦଶାଦ୍ ଯୌବନଂ ତୁ ତତଃ ପରମ୍ ।।
ପଞ୍ଚମ ବର୍ଷ ଯାଏ କୌମାର, ଦଶମ ବର୍ଷ ଯାଏ ପୌଗଣ୍ଡ, ପଞ୍ଚଦଶ ବର୍ଷ ଯାଏ କୈଶୋର ଏବଂ ତା' ପରେ ଯୌବନ ।

| | | | | |
|---|---|---|---|---|
| ୪୩ | ଯେ ଆମ୍ଭେ କ୍ଷତ୍ରବନ୍ଧୁମାନେ | । ଅତ୍ୟନ୍ତ ଧନ୍ୟ ଏ ଭୁବନେ | ।। | ୧୭୨ |
| | ଯେ ପୁଣ୍ୟ କୃଷ୍ଣକଥାମୃତ | । ତା' ତୁମ୍ଭଠାରୁ ଅବିରତ | ।। | ୧୭୩ |
| | ହେ ଗୁରୁ କରୁଛୁଁ ଯା' ପାନ | । ଯେ ଲୋକେ ଅଟେ ଅତି ପୁଣ୍ୟ | ।। | ୧୭୪ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୪୪ | ନୃପ ପଚାରନ୍ତେ ଏମନ୍ତ | । ସେ ବେଦବ୍ୟାସଙ୍କର ସୁତ | ।। | ୧୭୫ |
| | ସେ ପରୀକ୍ଷିତ ଯାହା ପୁଣ | । ତାଙ୍କୁ କରାଇଲେ ସ୍ମରଣ | ।। | ୧୭୬ |
| | ସେ କୃଷ୍ଣ ହରିଲେ ସତ୍ୱର | । ଇନ୍ଦ୍ରିୟମାନଙ୍କୁ ଯାହାର | ।। | ୧୭୭ |
| | କଷ୍ଟରେ ଲଭି ବାହ୍ୟଜ୍ଞାନ | । ହେ[1] ଭାଗବତଙ୍କ ପ୍ରଧାନ | ।। | ୧୭୮ |
| | କହିଲେ ସ୍ଥିର ହୋଇକରି | । ସେହି ଚରିତ ଅନୁସରି | ।। | ୧୭୯ |
| | ବତ୍ସଙ୍କୁ ବାଳକଙ୍କ ତୁଲେ[2] | । ଯେ ଅଘବଦନୁଁ ରଖିଲେ | ।। | ୧୮୦ |
| | ଦୀନବନ୍ଧୁର ଅଘଭୟ | । ସେ କୃଷ୍ଣ ହରିବେ ନିଶ୍ଚୟ | ।। | ୧୮୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଅଘାସୁରବଧୋ
ନାମ ଦ୍ୱାଦଶୋଽଧ୍ୟାୟଃ ।।

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେଽହରଦ୍ ବ୍ରହ୍ମା ବତ୍ସାନ୍ ପାଳାଂଶ୍ଚ ମାୟୟା ।
ତଦା ତତ୍ସର୍ବରୂପୋଽହଂ କୃଷ୍ଣଃ ପୂର୍ବବଦାଚରତ୍ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ହେ ନୃପ ଭାଗବତବର | । ଉତ୍ତମ ପ୍ରଶ୍ନ ଏ ତୋହର | ।। | ୧ |
| | ଯେଣୁ ଈଶ୍ୱରକଥା ଶୁଣି | । ନବୀନ କରୁ ପୁଣପୁଣି | ।। | ୨ |
| ୨ | ଯେ ସାରଗ୍ରାହୀ ସାଧୁ ନର | । ତାଙ୍କ ସ୍ୱଭାବ ଏ ପ୍ରକାର | ।। | ୩ |
| | ସ୍ତିରୀବାର୍ତ୍ତାରେ ବିଟଜନ | । ଯେସନେ ନେଉଥାନ୍ତି ଦିନ | ।। | ୪ |
| | ଅଚ୍ୟୁତବାର୍ତ୍ତା ପ୍ରତିକ୍ଷଣ | । ଯେଣୁ କରନ୍ତି ନବ ପୁଣ | ।। | ୫ |
| | ଯେବଣ ବାର୍ତ୍ତା ଅଚ୍ୟୁତର | । ଅର୍ଥ ଅଟଇ ଯାହାଙ୍କର | ।। | ୬ |
| | ସେରୂପ ବାଣୀ କର୍ଣ୍ଣ ଚିତ୍ତ | । ଯଉଁମାନଙ୍କର ସନ୍ତତ | ।। | ୭ |
| ୩ | ହେ ନୃପ ! ଶୁଣ ସାବଧାନେ | । କହୁଛି ଗୁପ୍ତ ଏ ବଚନେ | ।। | ୮ |
| | ଗୁହ୍ୟକଥା ହିଁ ଗୁରୁମାନେ | । କହନ୍ତି ସ୍ନିଗ୍ଧ ଶିଷ୍ୟଜନେ | ।। | ୯ |
| ୪ | ମୃତ୍ୟୁଦେବତାପ୍ରାୟ ହୋଇ | । ଯେ ଅଘବଦନ ଅଟଇ | ।। | ୧୦ |

୧. ସେ ।  ୨. ତୁଲେ = ସହ ।

ତହିଁରୁ ବତ୍ସବାଳ[1]ମାନ । ରଖି ସେରୂପେ ଭଗବାନ ।। ୧୧
ସରପୁଲିନକୁଁ[2] ଆଣିଲେ । ଏମନ୍ତ ବଚନ ବୋଇଲେ ।। ୧୨
୫ ହେ ମିତ୍ରମାନେ ! ଏ ପୁଲିନ । ହୋଇଛି ଅତ୍ୟନ୍ତ ଶୋଭନ ।। ୧୩
ଆମ୍ଭମାନଙ୍କ କ୍ରୀଡ଼ାରସ । ଯହିଁରେ ହୋଇଛି ପ୍ରକାଶ ।। ୧୪
ସେରୂପେ ମୃଦୁଳ ନିର୍ମଳ । ବାଲୁକାମାନେ ଯହିଁ ଠୁଳ ।। ୧୫
ପଙ୍କଜ ଆଦି ମାନଙ୍କର । ବହୁତ ଥିବାରୁ ସେ ସର ।। ୧୬
ବିକଚ[3] ପ୍ରାୟ ଅଛି ହୋଇ । ତାର ଗନ୍ଧରେ ବଶ ହୋଇ ।। ୧୭
ଆସିଅଛନ୍ତି ଯେ ଭ୍ରମରେ । ପକ୍ଷିମାନେ ହେଁ ସେ ସଙ୍ଗରେ ।। ୧୮
ଜଳେ ଯେ ଧ୍ୱନି ତାହାଙ୍କର । ତା' ପ୍ରତିଧ୍ୱନି ଯେ ରୁଚିର ।। ୧୯
ତେଣେ ଶୋଭିତ ଦ୍ରୁମକୁଳ । ତେଣେ ହୋଇଅଛି ସଂକୁଳ ।। ୨୦
୬ ବେଳହିଁ ହେଲାଣି ଉଚ୍ଛୁର । କ୍ଷୁଧାରେ ପୀଡ଼ିତ ଶରୀର ।। ୨୧
ଏ ଘେନି କରି ଆମ୍ଭେମାନେ । ଭୋଜନ କରିବା ଏ ସ୍ଥାନେ ।। ୨୨
ବତ୍ସାଏ କରି ଜଳପାନ । ପାଶେ ଚରନ୍ତୁ ତୃଣମାନ ।। ୨୩
୭ ବାଳକମାନେ ଶ୍ରୀକୃଷ୍ଣର । ବଚନ କରିଣ ସ୍ୱୀକାର ।। ୨୪
ବତ୍ସାଙ୍କୁ ପିଆଇଣ ବାରି । ସତୃଣ ଦେଶେ ରୁନ୍ଧି କରି ।। ୨୫
କୃଷ୍ଣସଙ୍ଗତେ ତୋଷ ହୋଇ । ଭୁଞ୍ଜିଲେ ଶିକାମାନ ଫେଇ ।। ୨୬
୮ କୃଷ୍ଣର ସକଳ ଦିଗରେ । ବହୁତ ମଣ୍ଡଳ ଆକାରେ ।। ୨୭
କୃଷ୍ଣଙ୍କୁ ଅଭିମୁଖ ହେଲେ । କୃଷ୍ଣର ସଙ୍ଗତେ ବସିଲେ ।। ୨୮
ବିକାସି ଅଛନ୍ତି ନୟନେ । ବିପିନେ ବ୍ରଜବାଳମାନେ ।। ୨୯
ସମସ୍ତେ ଦିଶିଲେ ଶୋଭନ । ପଦ୍ମକର୍ଣ୍ଣିକାକୁ ଯେସନ ।। ୩୦
ସକଳ ଦିଗରେ ବେଢ଼ିଣ । ଶୋଭା ଦିଶନ୍ତି ପତ୍ରଗଣ ।। ୩୧
୯ କେ ପୁଷ୍ପେ କେ ପଲ୍ଲବେ ଦଳେ । ଅଙ୍କୁରେ ଶିକାରେ କେ ଫଳେ ।। ୩୨
ବକଳେ ପାଷାଣରେ କେହି । ଭୁଞ୍ଜିଲେ ଭାଜନ ଭିଆଇ ।। ୩୩
୧୦ ଯେ ସ୍ୱାଦୁ ଆପଣା ଦ୍ରବ୍ୟରେ । ଦେଖାନ୍ତେ ତାହା ପରସ୍ପରେ ।। ୩୪
ହସି ହସାନ୍ତେ ନାନା ରଙ୍ଗେ । ଭୁଞ୍ଜିଲେ ଗୋବିନ୍ଦର ସଙ୍ଗେ ।। ୩୫
୧୧ ଜଠର-ବସ୍ତ୍ର ସଂଧି ଯେହି । ବେଣୁକୁ ଧରିଥାନ୍ତେ ତହିଁ ।। ୩୬
ଆବର ଶିଙ୍ଗା ବେତ୍ର ବେନି । ବାମ କକ୍ଷରେ ତାହା ଘେନି ।। ୩୭
ସୁସ୍ୱାଦୁ ମସୃଣ କବଳ । ନିବେଶି ବାମ କରତଳ ।। ୩୮
ତହିଁକି ଯୋଗ୍ୟ ଫଳମାନ । ଜାକି ଅଙ୍ଗୁଳିସଂଧିମାନ ।। ୩୯
ସର୍ବ ମିତ୍ରଙ୍କ ମଧ୍ୟେ ଥାଇ । ସବୁଙ୍କୁ ଅଭିମୁଖ ହୋଇ ।। ୪୦
ହସାନ୍ତେ ନର୍ମବାକ୍ୟ କହି । ବାଳକପ୍ରାୟ ଲୀଳା ବହି ।। ୪୧

---

୧. ବତ୍ସପାଳ ।  ୨. ସରିତ୍‌ପୁଲିନକୁ ।  ୩. ବିବଶ, ଦିବସ, ବିକସ ।

ଜନମଧ୍ୟରେ ଭଗବାନ । ଭୁଞ୍ଜିଲେ ଯେ ଯଜ୍ଞଭୋଜନ ॥ ୪୨
ସକଳ ସ୍ୱର୍ଗବାସିଜନେ । ଅଦ୍ଭୁତେ ଦେଖନ୍ତେ ଗଗନେ ॥ ୪୩
୧୨ କୃଷ୍ଣର ଠାରେ ଯାଙ୍କ ମନ । ଏମନ୍ତ ରୂପେ ହେ ରାଜନ ॥ ୪୪
ବାଳକେ କରନ୍ତେ ଭୋଜନ । ତୃଣଲୋଭରେ ଦେଇ ମନ ॥ ୪୫
ଅତି ଦୂରରେ ବତ୍ସମାନେ । ପଶିଲେ ଯାଇଣ ବିପିନେ ॥ ୪୬
୧୩ ବାଳକେ ଭୟ କରି ପୁଣ । ତ୍ରସ୍ତ ହୋଇଲେ ତା' ଦେଖିଣ ॥ ୪୭
ସଂସାରଭୟବିମୋଚନ । ଶ୍ରୀକୃଷ୍ଣ କହିଲେ ବଚନ ॥ ୪୮
ହେ ମିତ୍ରମାନେ ତୁମ୍ଭେ ଥାଅ । ଭୋଜନ ଛାଡ଼ିଣ ନ ଯାଅ ॥ ୪୯
ବତ୍ସମାନଙ୍କୁ ଏକା ହୋଇ । ଏଠାକୁ ଆଣଇଁ[1] ମୁଁ ଯାଇଁ ॥ ୫୦
୧୪ ଏମନ୍ତ କହି ଭଗବାନ । ଯେ ପୁଣ ନିଜ ବତ୍ସମାନ ॥ ୫୧
ତାହାଙ୍କୁ ପର୍ବତକନ୍ଦରେ । କୁଞ୍ଜେ, ଗହ୍ୱରମାନଙ୍କରେ ॥ ୫୨
ଖୋଜନ୍ତେ ଗଲେକ ସତ୍ୱର । ଅନ୍ନକବଳ ଅଛି କର ॥ ୫୩
୧୫ ମାୟାରେ ବାଳକଶରୀର । ଧରି ଅଛନ୍ତି ଯେ ଈଶ୍ୱର ॥ ୫୪
ତାଙ୍କର ମଞ୍ଜୁଳ ମହିମା । ଯେ ଅବା ଆନଗୁଣସୀମା ॥ ୫୫
ଦେଖିବା ଅର୍ଥରେ ସେମାନ । ଆପଣେ କମଳ-ଆସନ[2] ॥ ୫୬
ଏହି ସମୟେ ଛିଦ୍ର ପାଇ । ବତ୍ସମାନଙ୍କୁ ତେଣେ ନେଇ ॥ ୫୭
ଘେନିଣ ଏଣୁ ଶିଶୁମାନ । ହେ ନୃପ ! ହେଲେ ଅନ୍ତର୍ଧାନ ॥ ୫୮
ପୂର୍ବେ ଆକାଶମଧ୍ୟେ ଥାଇ । ଅଘାସୁରର ମୋକ୍ଷ ଚାହିଁ ॥ ୫୯
କୃଷ୍ଣର ଠାରୁ ଅତିଶୟ । ପାଇଣ ଥିଲେ ଯେ ବିସ୍ମୟ ॥ ୬୦
୧୬ ତଦନନ୍ତରେ ଭଗବାନ । ଖୋଜି ନ ଦେଖି ବତ୍ସମାନ ॥ ୬୧
ଲେଉଟି ପୁଳିନେ ମିଳିଣ । ବତ୍ସପମାନ[3] ନ ଦେଖିଣ ॥ ୬୨
ସେ ବେନି ସକଳ ଦିଗରେ । ବୁଲିଣ ଖୋଜିଲେ ବନରେ ॥ ୬୩
୧୭ କାହିଁ ନ ଦେଖି ବିପିନରେ । ବତ୍ସ ବାଳକଙ୍କୁ ସତ୍ୱରେ ॥ ୬୪
ଏ ସର୍ବ ବିଧାତାନିର୍ମିତ । ଜାଣିଲେ ବିଶ୍ୱସାକ୍ଷୀଭୂତ ॥ ୬୫
୧୮ ବତ୍ସବାଳକମାତାଙ୍କର । ହରଷ ହେବାକୁ ମନର ॥ ୬୬
ବ୍ରହ୍ମା ହିଁ ହରଷ ହୋଇବ । ଏମନ୍ତ ଅର୍ଥେ ଦେବଦେବ ॥ ୬୭
ଆତ୍ମାକୁ କଲେ ଦ୍ୱିପ୍ରକାର । ଜଗତକର୍ତ୍ତା ସେ ଈଶ୍ୱର ॥ ୬୮
୧୯ ବତ୍ସ ବାଳକମାନଙ୍କର । ଯେତେକ ଅଳ୍ପ କଳେବର ॥ ୬୯
ସେମାନଙ୍କର ଯେତେ ସ୍ଥାନ । କର ଚରଣ ଆଦିମାନ ॥ ୭୦
ଯଷ୍ଟି ବିଷାଣ ବେଣୁ ଦଳ । ଯେତେକ ଶିକା ଭୂଷା ଚେଳ ॥ ୭୧
ନାମ ଆକୃତି ଶୀଳ ଗୁଣ । ବୟସ ଯେତେକ ପ୍ରମାଣ ॥ ୭୨

---

୧. ଆଣଇଁ = ଆଣିବି (ଭବିଷ୍ୟଦର୍ଥେ ବର୍ତ୍ତମାନ) । ୨. କମଳ-ଆସନ = ବ୍ରହ୍ମା ।
୩. ବତ୍ସପମାନ = ବାଛୁରିପାଳକମାନେ ।

| | | | | | |
|---|---|---|---|---|---|
| | ବିହାର ଆଦି ତାହାଙ୍କର | । ଅଟଇ ଯେମନ୍ତ ପ୍ରକାର | ।। | ୭୩ |
| | ସର୍ବସ୍ୱରୂପ ଦାମୋଦର | । ହୋଇଲେ ତେତେକ ପ୍ରକାର | ।। | ୭୪ |
| | ସକଳ ବିଷ୍ଣୁମୟ ହୋଇ | । ଯେବଣ ବଚନ ଅଛଇ | ।। | ୭୫ |
| | ସେ ବଚନର ଅଙ୍ଗପ୍ରାଏ | । ଶୋଭା ପାଇଲେ ଦେବରାଏ | ।। | ୭୬ |
| ୨୦ | ଆପଣେ ଶିଶୁମୂର୍ତ୍ତି ଧରି | । ଅଡ଼ାଇ ସ୍ୱମୂର୍ତ୍ତି ବାଛୁରି | ।। | ୭୭ |
| | ଖେଳନ୍ତେ ଆପଣା ବିହାରେ | । ସର୍ବାତ୍ମା ମିଳିଲେ ବ୍ରଜରେ | ।। | ୭୮ |
| ୨୧ | ତଦନନ୍ତରେ ଭିନ୍ନ ଭିନ୍ନ | । କରିଣ ନେଇ ବତ୍ସମାନ | ।। | ୭୯ |
| | ହେ ନୃପ ! ସେ ସେହି ଗୋଷ୍ଠରେ | । ରଖାଇ ସେ ସେହି ଗୃହରେ | ।। | ୮୦ |
| | ସେ ସେହି ବାଳରୂପ ଧରି | । ପ୍ରବେଶ ହୋଇଲେ ଶ୍ରୀହରି | ।। | ୮୧ |
| ୨୨ | ସେମାନଙ୍କର ମାତାମାନେ | । ତ୍ୱରାରେ ଆସି ବେଣୁସ୍ୱନେ | ।। | ୮୨ |
| | ନିର୍ଭରେ ପୁତ୍ରଙ୍କୁ ଉଠାଇ | । ପୁତ୍ରଙ୍କୁ ଆଲିଙ୍ଗନ ଦେଇ | ।। | ୮୩ |
| | ସ୍ନେହେ ସ୍ରବିତ ସ୍ତନୁଁ କ୍ଷୀର | । ଅମୃତ ପ୍ରାୟ ଯେ ମଧୁର | ।। | ୮୪ |
| | ଆସବ ପ୍ରାୟକ ଯେ ପୁଣ | । ମାଦକ ଅଟଇ ପ୍ରମାଣ | ।। | ୮୫ |
| | ପରମ ବ୍ରହ୍ମକୁ ନନ୍ଦନ | । ମଣିଣ କରାଇଲେ ପାନ | ।। | ୮୬ |
| ୨୩ | ହେ ନୃପ ! ତଦନ୍ତେ ମର୍ଦ୍ଦନ | । ସ୍ନାନ ଚନ୍ଦନବିଲେପନ | ।। | ୮୭ |
| | ଭୂଷଣ ପାଳନ ତିଳକ | । ଅଶନ ଆଦି ଯେ ଅନେକ | ।। | ୮୮ |
| | ମାତାଏ କରନ୍ତେ ଏମାନ | । ନିଜ ଚରିତେ ତାଙ୍କ ମନ | ।। | ୮୯ |
| | ତୋଷ କରାନ୍ତେ ଭଗବାନ | । ସେ କାଳେ ଯେ କ୍ରୀଡ଼ାବିଧାନ | ।। | ୯୦ |
| | ସେ କଥା ନିଶ୍ଚେ କରିବାରେ | । ପ୍ରବେଶ ହୋଇଲେ ସଂଧ୍ୟାରେ | ।। | ୯୧ |
| ୨୪ | ଧେନୁମାନେହେଁ ତଦନ୍ତରେ | । ଗୋଷ୍ଠକୁ ଆସିଣ ସତ୍ୱରେ | ।। | ୯୨ |
| | ଡାକନ୍ତେ ହୁଁକାରନାଦରେ | । ଯେ ଆସି ମିଳିଲେ ସଙ୍ଗରେ | ।। | ୯୩ |
| | ସେ ନିଜ ନିଜ ବତ୍ସାମାନେ | । ତାଙ୍କୁ ଲିହନ୍ତେ ତୋଷମନେ | ।। | ୯୪ |
| | ତାଙ୍କୁ ସେ କ୍ଷୀର ପିଆଇଲେ | । ଯେ ପହ୍ନାମଧୁଁ ଗଳୁଥିଲେ | ।। | ୯୫ |
| ୨୫ | ପୂର୍ବେ ଗୋ-ଗୋପୀମାନଙ୍କର | । ଲାଳନାଭାବୁଁ କୃଷ୍ଣଠାର | ।। | ୯୬ |
| | ଜନନୀଭାବ ଥିଲା ତହିଁ | । କେବଳ ଏତେ ସ୍ନେହ ନାହିଁ | ।। | ୯୭ |
| | କୃଷ୍ଣ ହିଁ ପୂର୍ବେ ତାଙ୍କଠାରେ | । ବର୍ତ୍ତିଲେ ବାଳକଭାବରେ | ।। | ୯୮ |
| | ଏ କାଳପ୍ରାୟ ହୋଇ ତେବେ | । ବର୍ତ୍ତି ନ ଥିଲେ ମାୟାଭାବେ | ।। | ୯୯ |
| ୨୬ | ସେ ବ୍ରଜବାସୀମାନଙ୍କର | । ପୂର୍ବେ ଯେମନ୍ତେ କୃଷ୍ଣଠାର | ।। | ୧୦୦ |
| | ନିଃସୀମ ସ୍ନେହ ଥିଲା ହୋଇ | । ଏବେ ସ୍ୱପୁତ୍ରଙ୍କର ଠାଇଁ | ।। | ୧୦୧ |
| | ବରଷେ ଯାଏ ଅନୁଦିନ | । ବଢ଼ିଲା ସେହି ସ୍ନେହମାନ | ।। | ୧୦୨ |
| ୨୭ | ଏ ରୂପେ କପଟରେ ହରି | । ବତ୍ସବାଳକଂ[1] ରୂପ ଧରି | ।। | ୧୦୩ |
| | ଆପଣାରୂପୀ ବତ୍ସମାନ | । ଆପଣେ କରନ୍ତେ ପାଳନ | ।। | ୧୦୪ |

୧. ପାଳକ ।

| | | | | |
|---|---|---|---|---|
| | ବନରେ ଗୋଷ୍ଠରେ ବରଷେ | । ପର୍ଯ୍ୟନ୍ତେ ଖେଳିଲେ ହରଷେ | ॥ | ୧୦୫ |
| ୨୮ | ବରଷ ପୂରିବାକୁ ତହିଁ | । ପାଞ୍ଚ ଛ' ଦିନ ଯାଇ ନାହିଁ | ॥ | ୧୦୬ |
| | ଏହି ସମୟେ ଏକ ଦିନ | । ରାମ ସହିତେ ଭଗବାନ | ॥ | ୧୦୭ |
| | ଚରାନ୍ତେ ନିଜ ବତ୍ସମାନ | । ପ୍ରବେଶ ହୋଇଲେ ବିପିନ | ॥ | ୧୦୮ |
| ୨୯ | ତଦନନ୍ତରେ ଅତିଦୂରେ | । ଗୋରୁଏ ଗୋବର୍ଧନଶିରେ | ॥ | ୧୦୯ |
| | ତୃଣ ଚରନ୍ତେ ବତ୍ସମାନ | । ଦେଖିଲେ ବ୍ରଜସନ୍ନିଧାନ | ॥ | ୧୧୦ |
| ୩୦ | ବତ୍ସାଙ୍କୁ ଦେଖି ସ୍ନେହ ବହି | । ଆତ୍ମାକୁ ପାସୋରିଲେ ତହିଁ | ॥ | ୧୧୧ |
| | ଗୋପାଳେ ନିରୋଧନ୍ତେ ଆଗେ | । ତାହାଙ୍କୁ ଅତିକ୍ରମି ବେଗେ | ॥ | ୧୧୨ |
| | ଯେ ପୁଣ ଅଟେ ଦୁର୍ଗ ମାର୍ଗ | । ତାହା ଲଙ୍ଘିଣ ଅତି ବେଗ | ॥ | ୧୧୩ |
| | ଯୋଡ଼ି ଧାବନ୍ତେ ପାଦ ଦୁଇ | । ଦ୍ୱିପାଦ ଜନ୍ତୁ ପ୍ରାୟ ହୋଇ | ॥ | ୧୧୪ |
| | ଗ୍ରୀବାକୁ କରି ଆକୁଞ୍ଚନ | । ଟେକିଣ ଲାଙ୍ଗୁଳ ବଦନ | ॥ | ୧୧୫ |
| | ଗଳନ୍ତେ ସ୍ତନୁଁ କ୍ଷୀରମାନେ | । ବେଗେ ଧାଇଁଲେ ହେମା[1]ସ୍ୱନେ | ॥ | ୧୧୬ |
| ୩୧ | ସେ ଧେନୁମାନେ ଗିରିତଳେ | । ମିଳିଣ ବତ୍ସାଙ୍କର ମେଳେ | ॥ | ୧୧୭ |
| | ଯଦ୍ୟପି ନବୀନ କରିଣ | । ପ୍ରସବିଛନ୍ତି ବତ୍ସାଗଣ | ॥ | ୧୧୮ |
| | ତଥାପି ପୂର୍ବ ବତ୍ସାଙ୍କୁ ହିଁ | । କ୍ଷୀରକୁ ଦେଲେ ତୋଷ ହୋଇ | ॥ | ୧୧୯ |
| | ଗିଳିଲା ପ୍ରାଏ ଅଙ୍ଗମାନ | । ସ୍ନେହରେ କରନ୍ତେ ଲେହନ | ॥ | ୧୨୦ |
| ୩୨ | ସେ ଧେନୁମାନଙ୍କୁ ଗୋପାଳେ | । ନିରୋଧି ନ ପାରିଣ ବଳେ | ॥ | ୧୨୧ |
| | ଲଜ୍ଜାରେ ଅତି କ୍ରୋଧ ପାଇ | । କଷ୍ଟରେ ଦୁର୍ଗ ମାର୍ଗ ଯାଇ | ॥ | ୧୨୨ |
| | ନିଜ ପୁତ୍ରଙ୍କୁ ଗିରିତଳେ | । ଦେଖିଲେ ଗୋବତ୍ସଙ୍କ ମେଳେ | ॥ | ୧୨୩ |
| ୩୩ | ପୁତ୍ରେ ହୁଅନ୍ତେ ଦୃଷ୍ଟିଗତ | । ଯେ ପ୍ରେମରସ ହେଲା ଜାତ | ॥ | ୧୨୪ |
| | ତେଣେ ସେ ଗୋପାଳଙ୍କ ମନ | । ତକ୍ଷଣେ ହୋଇଲା ନିମଗ୍ନ | ॥ | ୧୨୫ |
| | [2]ହୋଇଲା ଅନୁରାଗ ଜାତ | । ପୂର୍ବ କ୍ରୋଧହିଁ ହେଲା ହତ | ॥ | ୧୨୬ |
| | ଭୁଜରେ ଭୂମିରୁ ଟେକିଣ | । କରିଣ ଆଲିଙ୍ଗନ ପୁଣ | ॥ | ୧୨୭ |
| | ଆଘ୍ରାଣ କରନ୍ତେ ଶିରକୁ | । ଲଭିଲେ ଅତି ହରଷକୁ | ॥ | ୧୨୮ |
| ୩୪ | ଏ ରୂପେ ବୃଦ୍ଧ ଗୋପମାନେ | । ନିଜ ପୁତ୍ରଙ୍କ ଆଲିଙ୍ଗନେ | ॥ | ୧୨୯ |
| | କ୍ଷଣେ ମାତ୍ରକ ସୁଖୀ ହେଲେ | । କଷ୍ଟେ ସେଠାରୁ ଚଳିଗଲେ | ॥ | ୧୩୦ |
| | ପୁତ୍ରଙ୍କ ସ୍ମରଣୁଁ ତାଙ୍କର | । ନେତ୍ରୁଁ ଗଳଇ ଅଶ୍ରୁନୀର | ॥ | ୧୩୧ |
| ୩୫ | ମାତାଙ୍କ ଠାରୁ ସ୍ତନ ପାନ | । ଛାଡ଼ି ଅଛନ୍ତି ଯେ ନନ୍ଦନ | ॥ | ୧୩୨ |
| | ଉତ୍କଣ୍ଠାଭାବ ତାହାଙ୍କର | । ପ୍ରେମକୁ ଦେଖିଣ ବ୍ରଜର | ॥ | ୧୩୩ |
| | ସ୍ନେହହେତୁକୁ ହଳଧର | । ଚିନ୍ତିଲେ ଆପଣା ମନର | ॥ | ୧୩୪ |
| ୩୬ | ଏ କିସ ଅଦ୍ଭୁତ ପ୍ରକାର | । ମୋହ ସହିତେ ଏ ବ୍ରଜର | ॥ | ୧୩୫ |

୧. ହେମା = ହମ୍ବା ।

୨. ଲଜ୍ଜା-କ୍ରୋଧବଶତଃ ସେମାନଙ୍କୁ ତାଡ଼ନ କରିବାକୁ ଆସିଥିଲେ ମଧ୍ୟ । (ସ୍ୱାମୀ)

| | | | | | |
|---|---|---|---|---|---|
| | ଅପୂର୍ବ ପ୍ରେମ ସନ୍ତତରେ | । | ବଢୁଛି ବାଳକଙ୍କ ଠାରେ | ॥ | ୧୩୬ |
| | ଅଖିଳଆତ୍ମା ବାସୁଦେବେ | । | ଯେରୂପେ ପ୍ରେମ ଥିଲା ପୂର୍ବେ | ॥ | |
| ୩୭ | କେବଣ ମାୟା ଏ ଅଟଇ | । | କାହିଁରୁ ମିଳିଲା ଏଠାଇ | ॥ | ୧୩୭ |
| | ଏମାୟା ଅଟେ ଦେବତାର | । | ନରର କିବା ଅସୁରର | ॥ | ୧୩୮ |
| | ମୋହ' ସ୍ୱାମୀର ମାୟା ଏହି | । | ଆନ ନ ପାରେ ମୋତେ ମୋହି | ॥ | ୧୩୯ |
| ୩୮ | ଏମନ୍ତ ଚିନ୍ତା କରି ଚିତ୍ତେ | । | ମିତ୍ର ସହିତେ ବତ୍ସ ଯେତେ | ॥ | ୧୪୦ |
| | ସେ ସର୍ବ ଜ୍ଞାନ-ଲୋଚନରେ | । | ଦେଖିଲେ ବିଷ୍ଣୁସ୍ୱରୂପରେ | ॥ | ୧୪୧ |
| ୩୯ | ଋଷିଙ୍କ ଦେବତାଙ୍କ ଅଂଶ | । | ଯେ ବତ୍ସେ ବାଳକେ ପ୍ରକାଶ | ॥ | ୧୪୨ |
| | ଭେଦଆଶ୍ରୟ ଥିଲେ ଏହି | । | ଏ ରୂପେ ତୁମ୍ଭେ ଅଛ ଶୋହି | ॥ | ୧୪୩ |
| | ହେ ପ୍ରଭୁ ସର୍ବରୂପ ହୋଇ | । | ଭିନ୍ନ ହୋଇଛ କାହିଁପାଇଁ | ॥ | ୧୪୪ |
| | କହ ଏ କେମନ୍ତ ପ୍ରକାର | । | ପୁଛନ୍ତେ ଏହା ହଳଧର | ॥ | ୧୪୫ |
| | ଭ୍ରୂଲତାବିକ୍ଷେପେ ମାଧବ | । | କହନ୍ତେ ସେ ବିଷୟ ସର୍ବ | ॥ | ୧୪୬ |
| | ତତକ୍ଷଣରେ ବଳଦେବ | । | ଜାଣିଲେ ସେ ବିଷୟ ସର୍ବ | ॥ | ୧୪୭ |
| ୪୦ | ନିଜ ଆୟୁଷଗଣନାରେ | । | ତ୍ରୁଟିଏ ମାତ୍ରକ କାଳରେ | ॥ | ୧୪୮ |
| | ବିଧାତା ଆସିଣ ସେ ଦିନେ | । | ପ୍ରବେଶ ହୋଇ ବୃନ୍ଦାବନେ | ॥ | ୧୪୯ |
| | ଦେଖିଲେ ପୂର୍ବପ୍ରାୟ ହୋଇ | । | ବରଷେ ପରିଯନ୍ତେ ତହିଁ | ॥ | ୧୫୦ |
| | ରାମସହିତେ ଭଗବାନ | । | କରୁଅଛନ୍ତି କ୍ରୀଡ଼ାମାନ | ॥ | ୧୫୧ |
| ୪୧ | ବତ୍ସସହିତେ ବ୍ରଜବାଳ | । | ଗୋକୁଳେ ଯେତେକ ସକଳ | ॥ | ୧୫୨ |
| ୪୨ | ମାୟାଶୟନେ ଶୋଇଛନ୍ତି | । | ଆଜହିଁ ଉଠି ସେ ନାହାନ୍ତି | ॥ | ୧୫୩ |
| | ସେମାନଙ୍କରୁଁ ହୋଇ ଆନ | । | କାହିଁରୁ ଜନ୍ମିଲେ ଏମାନ | ॥ | ୧୫୪ |
| | ସେ ଯେତେ ତେତିକି ଅଟନ୍ତି | । | ବିଷ୍ଣୁସଙ୍ଗତେ ବିହରନ୍ତି | ॥ | ୧୫୫ |
| ୪୩ | ଏ ରୂପେ ଭେଦକୁ ବିଚାରି | । | ବହୁତ ବେଳ ଧ୍ୟାନ କରି | ॥ | ୧୫୬ |
| | କେ ସତ୍ୟ କେ ମିଥ୍ୟା ଅଟନ୍ତି | । | ଜାଣି ନ ପାରିଲେ ତା' ଚିନ୍ତି | ॥ | ୧୫୭ |
| ୪୪ | ବିଶ୍ୱଯାକକୁ ଯେ ମୋହନ | । | କରନ୍ତି ସ୍ୱୟେଂ ମୋହହୀନ | ॥ | ୧୫୮ |
| | ତାଙ୍କୁ ମୋହନ୍ତେ ଏ ପ୍ରକାରେ | । | ବ୍ରହ୍ମା ହିଁ ଆପଣା ମାୟାରେ | ॥ | ୧୫୯ |
| | ମୋହିତ ହୋଇଲେ ଆପଣ | । | ସେହି ସମୟେ ତତକ୍ଷଣ | ॥ | ୧୬୦ |
| ୪୫ | ଅସିତ[୧] ପକ୍ଷ ରଜନୀର | । | ହିମ[୨] ସମ୍ଭବ ଅନ୍ଧକାର | ॥ | ୧୬୧ |
| | ଯେସନେ ଆଚ୍ଛାଦକ ନୋହି | । | ଲୀନ ହୁଅଇ ମାତ୍ର ତହିଁ | ॥ | ୧୬୨ |
| | ଖଦ୍ୟୋତକିରଣ ଯେସନ | । | ଦିବସେ ହୁଅଇ ବିଲୀନ | ॥ | ୧୬୩ |
| | ଇତର ମାୟା ସେ ପ୍ରକାରେ | । | ନୁହଇ ବଡ଼ଲୋକଠାରେ | ॥ | ୧୬୪ |
| | ଯେ ତାହା ନିଯୁକ୍ତ କରଇ | । | ତାହା ମହତ୍ତ୍ୱକୁ ନାଶଇ | ॥ | ୧୬୫ |

୧. ଅସିତ = କୃଷ୍ଣ । ୨. ହିମ = କୁହୁଡ଼ି ।

୪୬ ବ୍ରହ୍ମା କରନ୍ତେ ବିଲୋକନ । ସେ ସର୍ବ ବତ୍ସପାଳମାନ ॥ ୧୬୬
ଦିଶିଲେ ନବଘନନୀଳ । ପୀତ କୌଶେୟ ଚାରୁଚେଳ ॥ ୧୬୭
୪୭ ସମସ୍ତଙ୍କର ଚାରିଭୁଜ । ଯେ ଶଙ୍ଖ-ଚକ୍ର-ଗଦାମ୍ବୁଜ ॥ ୧୬୮
ସେମାନ ଧରିଛନ୍ତି କରେ । ମୁକୁଟମାନେ ଛନ୍ତି ଶିରେ ॥ ୧୬୯
କୁଣ୍ଡଳ ବନମାଳା ହାର । ଅଛନ୍ତି ସମସ୍ତଙ୍କ ଠାର ॥ ୧୭୦
୪୮ ଶ୍ରୀବତ୍ସପ୍ରଭାରେ ସଂଯୁତ । ଅଙ୍ଗଦ ଭୁଜେ ବିରାଜିତ ॥ ୧୭୧
ରତ୍ନଘଟିତ ମନୋହର । ଶଙ୍ଖର ପ୍ରାୟେ ତିନିଧାର ॥ ୧୭୨
ଏମନ୍ତ କଙ୍କଣେ ସୁନ୍ଦର । ହସ୍ତ ଦିଶଇ ଯାହାଙ୍କର ॥ ୧୭୩
ନୂପୁର କଟିସୂତ୍ରମାନ । କଟକ ମୁଦ୍ରିକା ଶୋଭନ ॥ ୧୭୪
୪୯ ବହୁତ ଜନ୍ମେ ପୁଣ୍ୟମାନ । ଅର୍ଜିଣ ଅଛନ୍ତି ଯେ ଜନ ॥ ୧୭୫
ପାଦୁଁ ମସ୍ତକପର୍ଯ୍ୟନ୍ତରେ । ସେମାନେ ସକଳ ଅଙ୍ଗରେ ॥ ୧୭୬
ମୃଦୁ ତୁଳସୀମାଳାଗଣ । କରି ଅଛନ୍ତି ସମର୍ପଣ ॥ ୧୭୭
୫୦ ଅରୁଣ ଅପାଙ୍ଗ ବୀକ୍ଷିତ । ଚନ୍ଦ୍ରିକାବିଶଦ ଯେ ସ୍ମିତ ॥ ୧୭୮
ସେ ବେନି ରଜ ସତ୍ତ୍ୱଗୁଣ । ଯେଣେ ଭକ୍ତର ବାଞ୍ଛା ପୁଣ ॥ ୧୭୯
କରନ୍ତି ସର୍ଜନ ପାଳନ । ସୃଷ୍ଟିପାଳକେ ସେ ଯେସନ ॥ ୧୮୦
୫୧ ଆପଣାଠାରୁ ଆଦି ଯେତେ । ତୃଣପର୍ଯ୍ୟନ୍ତେ ଏ ଜଗତେ ॥ ୧୮୧
ଚର ଅଚର ଯେ ସକଳେ । ଜଣ ଜଣକେ ପାଦତଳେ ॥ ୧୮୨
ନୃତ୍ୟଗୀତାଦି ନାନାରସେ । ଖଟୁ ଅଛନ୍ତି ଚାରିପାଶେ ॥ ୧୮୩
୫୨ ଯେ ମୂର୍ତ୍ତିମନ୍ତ ଅଣିମାଦି । ମହିମାରୂପରେ ପ୍ରସିଦ୍ଧି ॥ ୧୮୪
୫୪ ଯେ ମାୟା୍ ବିଦ୍ୟାଦି ଶକତି । ତଦ୍‌ଭିନ୍ନ ମହତ୍ତତ୍ତ୍ୱ ଖ୍ୟାତି ॥ ୧୮୫
ଚତୁର୍ବିଂଶତି ତତ୍ତ୍ୱଗୁଣ । ଅଟନ୍ତି ଜଗତ-କାରଣ ॥ ୧୮୬
କାଳାଦି ସହାୟ ତାଙ୍କର । ଆବର ସ୍ୱଭାବ ସଂସ୍କାର ॥ ୧୮୭
ସ୍ୱମହିମାରେ ମହିମାର । ନାଶ ହୋଇଛି ଯାହାଙ୍କର ॥ ୧୮୮
ସେମାନଙ୍କରେ ଉପାସିତ । ଅଟନ୍ତି ସତ୍ୟଜ୍ଞାନାନନ୍ତ ॥ ୧୮୯
ଆନନ୍ଦମାତ୍ର ଏକରସ । ଯେ ମୂର୍ତ୍ତିମାନେ ସ୍ୱପ୍ରକାଶ ॥ ୧୯୦
ଆତ୍ମଜ୍ଞାନୀଏ ଯାହାଙ୍କର । ମହିମାସ୍ପରଶରୁ ଦୂର ॥ ୧୯୧
୫୫ ଏ ରୂପେ ପରଂବ୍ରହ୍ମାକାରେ । ଧାତା ଦେଖିଲା ଏକବାରେ ॥ ୧୯୨
ସଚରାଚର ଏ ଜଗତ । ଯେବଣ ବ୍ରହ୍ମତେଜେ ଦୀପ୍ତ ॥ ୧୯୩
୫୬ ଦେଖିଣ ଅତି ଅଦଭୁତ । ବିଧାତା ହୋଇଣ କ୍ଷୁଭିତ ॥ ୧୯୪
ଗ୍ରାମଦେବତା ସନ୍ନିଧାନେ । ପ୍ରତିମା ଦିଶଇ ଯେସନେ ॥ ୧୯୫
ତାଙ୍କ ତେଜରେ ସେ ପ୍ରକାରେ । ରହିଲା ନିଶ୍ଚଳଶରୀରେ ॥ ୧୯୬
୫୭ ତର୍କ-ଅଗୋଚର ଯା' ସୀମା । ଅସାଧାରଣ ଯା' ମହିମା ॥ ୧୯୭

---

୧. ନିଜକୁ = ବ୍ରହ୍ମାଙ୍କୁ ।

| | | | | |
|---|---|---|---|---|
| | ଯେ ସ୍ୱପ୍ରକାଶ ସୁଖମୟ | । ନୁହଇ ପ୍ରକୃତିବିଷୟ | ।। | ୧୯୮ |
| | ସେ ନୁହେ ସେ ନୁହେ ବୋଲିଣ | । ସକଳ କରି ନିବାରଣ | ।। | ୧୯୯ |
| | ପ୍ରାନ୍ତରେ ଅତନ୍ନିରସନ[୧] | । ପ୍ରତିପାଦିତ ବ୍ରହ୍ମଜ୍ଞାନ | ।। | ୨୦୦ |
| | ଏମନ୍ତ ସ୍ୱରୂପ ଯାହାର | । ତାହାର ବିଷୟେ ବ୍ରହ୍ମାର | ।। | ୨୦୧ |
| | ମୋହ ହୁଅନ୍ତେ ଏ ପ୍ରକାରେ | । ତାର ବିଭବ ଲୋଚନରେ | ।। | ୨୦୨ |
| | ଦେଖି ତ ନୁହନ୍ତେ ଭାଜନ | । ଜାଣି ତା' ଦେବ ଭଗବାନ | ।। | ୨୦୩ |
| | ମାୟାପଟଳ ଆପଣାର | । ତତ୍‌କ୍ଷଣେ କଲେକ ଅନ୍ତର | ।। | ୨୦୪ |
| ୫୮ | ତଦନ୍ତେ ସେ ଚତୁରାନନ | । ବାହାର ଦୃଷ୍ଟିକି ଲଭିଣ | ।। | ୨୦୫ |
| | ମୃତପ୍ରାଏକ କଷ୍ଟେ ଉଠି | । ପ୍ରକାଶ କରି ନିଜ ଦୃଷ୍ଟି | ।। | ୨୦୬ |
| | ଆପଣା ସହିତେ ବିଶ୍ୱକୁ | । କଲା ସେ ସାକ୍ଷାତକାରକୁ | ।। | ୨୦୭ |
| ୫୯ | ତତ୍‌କାଳେ ସମସ୍ତ ଦିଗକୁ | । ଦେଖନ୍ତେ ଦେଖିଲା ସେ ତାଙ୍କୁ | ।। | ୨୦୮ |
| | ନିଜ ପୁରତେ ବର୍ତ୍ତମାନ | । ନାମ ଯାହାର ବୃନ୍ଦାବନ | ।। | ୨୦୯ |
| | ଯହିଁରେ ଜନମାନଙ୍କର | । ଜୀବିକା ପାଦପନିକର | ।। | ୨୧୦ |
| | ଯହିଁ ସନ୍ତତ ସବୁ ସ୍ଥାନେ | । ପୂରିତ ପ୍ରିୟ ବସ୍ତୁମାନେ | ।। | ୨୧୧ |
| ୬୦ | ଯହିଁରେ ସ୍ୱଭାବଦୁର୍ବୈର | । ଅଛନ୍ତି ସିଂହଆଦି, ନର | ।। | ୨୧୨ |
| | ମିତ୍ରମାନଙ୍କ ପ୍ରାୟ ହୋଇ | । ଅଜିତବାସ ଯେ ଅଟଇ | ।। | ୨୧୩ |
| | ସେ ହେତୁ ଲୋଭଆଦି ମନ୍ୟୁ | । ବିଗତ ଯେବଣ କାନନୁଁ | ।। | ୨୧୪ |
| ୬୧ | ତହିଁ ବହିଣ ଗୋପଶିଶୁ | । ନାଟ୍ୟକୁ କଉତୁକବଶୁଁ | ।। | ୨୧୫ |
| | ଯେ ବ୍ରହ୍ମ ଅଦ୍ୱୟ ପରମ | । ଅନନ୍ତ ଯେ ଅଗାଧ ଜ୍ଞାନ | ।। | ୨୧୬ |
| | ଯେ ନିଜ ବତ୍ସ ଶିଶୁଗଣ | । ତାଙ୍କୁ କରନ୍ତେ ଅନ୍ୱେଷଣ | ।। | ୨୧୭ |
| | ଅନ୍ନକବଳରେ ସଂଯୁତ | । ଯା' କର ଯେ ଦୁଇ-ରହିତ | ।। | ୨୧୮ |
| | ଏ ରୂପେ ପୂର୍ବପ୍ରାୟେ କରି | । ତାଙ୍କୁ ଦେଖିଲା କୁଶଧାରୀ | ।। | ୨୧୯ |
| ୬୨ | ଏ ରୂପେ ତାହାଙ୍କୁ ଅନାଇଁ | । ତ୍ୱରାରେ ବାହାନୁଁ ଓହ୍ଲାଇ | ।। | ୨୨୦ |
| | କନକଦଣ୍ଡପ୍ରାୟେ ହୋଇ | । ଭୂମିରେ ପାଏ ପଡ଼ି ଶୋଇ | ।। | ୨୨୧ |
| | ଚାରି ମୁକୁଟ-ଅଗ୍ରଭାଗ | । ତେଣେ ଛୁଇଁଣ ପାଦଯୁଗ | ।। | ୨୨୨ |
| | ଗଳିତ ଆନନ୍ଦଲୋତକ | । ସେ ଜଳେ କଲା ଅଭିଷେକ | ।। | ୨୨୩ |
| ୬୩ | ଚରଣଯୁଗରେ କୃଷ୍ଣର | । ପଡ଼ି ଉଠନ୍ତେ ବହୁବାର | ।। | ୨୨୪ |
| | ଯଉଁ ମହିତ୍ୱକୁ[୨] କୃଷ୍ଣର | । କରିଛି ଲୋଚନଗୋଚର | ।। | ୨୨୫ |
| | ସୁମରି ସୁମରି ସେମାନ | । ରହିଛି କମଳ-ଆସନ | ।। | ୨୨୬ |

୧. ଅତନ୍ନିରସନ = ନ+ତତ୍+ନିରସନ । (ଏ ଶବ୍ଦ ସ୍ୱାମିଟୀକାରୁ ଗୃହୀତ) ଅର୍ଥାତ୍ 'ତତ୍' ର ନିରାସ ବା ନିରାକରଣ ନ ହେବା ।

୨. ମହତ୍ତ୍ୱକୁ ।

| | | | | |
|---|---|---|---|---|
| ୬୪ | ପୁଣି ସେ ଭୂମିରୁ ଉଠିଣ | । ଲୋଚନ କରି କରଷଣ[୧] | ।। | ୨୨୭ |
| | କୃଷ୍ଣଙ୍କୁ ନିକଟେ ଅନାଇଁ | । ଆପଣା କନ୍ଧର ଲୁଆଇଁ | ।। | ୨୨୮ |
| | ବିନୟେ ଯୋଡ଼ି କର ଦୁଇ | । ଭୟେ କଂପିତତନୁ ହୋଇ | ।। | ୨୨୯ |
| | ହୋଇଣ ସମାହିତମତି | । ଗଦ୍‌ଗଦ ବାକ୍ୟେ କଲା ସ୍ତୁତି | ।। | ୨୩୦ |
| | ଶ୍ରୀକୃଷ୍ଣଚରଣନଳିନ | । ସ୍ମରଣ କରି ଅନୁଦିନ | ।। | ୨୩୧ |
| | ହରଷ ଦୀନବନ୍ଧୁ ମତି | । ଯେଣେ ତରିବ ଭବଭୀତି | ।। | ୨୩୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବ୍ରହ୍ମମୋହାପନୋଦନଂ[୨] ନାମ
ତ୍ରୟୋଦଶୋଽଧ୍ୟାୟଃ ।।

## ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶେଽଭୁତଂ ଦୃଷ୍ଟ୍ୱା ପୂର୍ବାଗନ୍ତୁକନିଶ୍ଚୟମ୍ ।
ଅନୀଶଃ କର୍ତ୍ତୁମସ୍ତୌଷୀଦ୍ କୃଷ୍ଣଂ ବ୍ରହ୍ମା ବିମୋହିତଃ ।।

ଶ୍ରୀବ୍ରହ୍ମୋବାଚ

| | | | | |
|---|---|---|---|---|
| ୧ | ମେଘର ପ୍ରାୟ ତନୁ ଯାର | । ତଡ଼ିତପ୍ରାୟ ଯା' ଅମ୍ବର[୩] | ।। | ୧ |
| | [୪]ଗୁଞ୍ଜାରେ ଯେ କର୍ଣ୍ଣଭୂଷଣ | । ମୟୂର ପିଚ୍ଛ ଶିଖା ପୁଣ | ।। | ୨ |
| | ତେଣେ ଶୋଭିତ ଯା ବଦନ | । ବନପୁଷ୍ପେ ଯା' ମାଳାମାନ | ।। | ୩ |
| | ଅନ୍ନକବଳ ବେଣୁ ବେତ | । ଶିଙ୍ଗାଚିହ୍ନରେ ଯେ ଶୋଭିତ | ।। | ୪ |
| | ମୃଦୁଳ ଯା' ଚରଣ ଖ୍ୟାତ | । ଯେ ନନ୍ଦ ଗୋପଅଙ୍ଗୁଁ ଜାତ | ।। | ୫ |
| | ହେ ସ୍ତୁତିଯୋଗ୍ୟ ! ଏ ପ୍ରକାର | । ତୁମ୍ଭେ, ତୁମ୍ଭଙ୍କୁ ନମସ୍କାର | ।। | ୬ |
| ୨ | ହେ ଦେବ ! ଏ ତୁମ୍ଭ ଶରୀର | । ଅନୁଗ୍ରହନିମିତ୍ତେ ମୋର | ।। | ୭ |
| | ଜଗତେ ବିଖ୍ୟାତ ଅଟଇ | । ନିଜ ଭକତଇଚ୍ଛା ଯେହି | ।। | ୮ |
| | ପ୍ରକାଶ ହୋଏ ସେ ରୂପେଣ | । ବିଶୁଦ୍ଧ ସତ୍ତ୍ୱମୟ ପୁଣ | ।। | ୯ |
| | ଏ ବପୁ ମହିମାକୁ ମୁହିଁ | । ବ୍ରହ୍ମା ହେଲେହେଁ ନ ଜାଣଇଁ | ।। | ୧୦ |
| | ଆପଣା ସୁଖ-ଅନୁଭବ | । ଯହିଁ ପ୍ରକାଶ ଅଟେ ସର୍ବ | ।। | ୧୧ |
| | ଯେ ପୁଣ ଅବତାରବନ୍ତ | । ଆପଣ ଅଟ ଗୁଣାତୀତ | ।। | ୧୨ |
| | ପ୍ରତ୍ୟକ୍ଷ ନୁହ ଏ ପ୍ରକାରେ | । ତୁମ୍ଭ ମହିମାକୁ ସଂସାରେ | ।। | ୧୩ |
| | ନିରୁଦ୍ଧ ମନେ କଉଁ ପ୍ରାଣୀ | । ବିଶେଷି ପାରିବ ସେ ଜାଣି | ।। | ୧୪ |
| ୩ | ଜ୍ଞାନବିଷୟେ ଅଳପହିଁ | । ପ୍ରୟାସ ନ କରିଣ ଯେହି | ।। | ୧୫ |
| | ଛାଡ଼ିଣ ତୀର୍ଥାଦି ଭ୍ରମଣ | । ନିଜ ସ୍ଥାନରେ ଥାନ୍ତି ପୁଣ | ।। | ୧୬ |

୧. କରଷଣ = ଘରଷଣ (ମୂଂ-ବିମୃଜ୍ୟ) । ୨. ଶ୍ରୀବ୍ରହ୍ମମୋହାପନୋଦନଂ = ଶ୍ରୀବ୍ରହ୍ମବିମୋହନଂ ।
୩. ଅମ୍ବର = ବସ୍ତ୍ର । ୪. ଗୁଞ୍ଜାରେ = କାଇଞ୍ଚ ।

ମୁଖରୁ ସାଧୁମାନଙ୍କର । ଯେହୁ ପ୍ରକାଶ ନିରନ୍ତର ।। ୧୭
ଏମନ୍ତ ବାର୍ତ୍ତାକୁ ତୁମ୍ଭର । କରନ୍ତି ଶ୍ରବଣଗୋଚର ।। ୧୮
ତନୁ ବଚନ ମନେ ନିତି । ତାହାକୁ[1] ମାନି ଜୀଇଥାନ୍ତି ।। ୧୯
ଏ ତିନି ଜଗତରେ କେହି । ତୁମ୍ଭଙ୍କୁ ଜିଣିପାରି ନାହିଁ ।। ୨୦
ଏମନ୍ତ ହେଲେହେଁ ସେ ନରେ । ତୁମ୍ଭଙ୍କୁ ଜିଣିଲେ ଭାବରେ ।। ୨୧
୪ ଯେସନେ ସରସୀରୁ ଝର । ପ୍ରକାଶ ହୋଏ ନିରନ୍ତର ।। ୨୨
ସେହି ରୂପରେ ସର୍ବଶ୍ରେୟ । ଯହିଁରୁ ହୁଅଇ ଉଦୟ ।। ୨୩
ଏମନ୍ତ ଭକ୍ତିକି ତୁମ୍ଭର । ତ୍ୟାଗ କରିଣ ଯଉଁ ନର ।। ୨୪
କେବଳ ଜ୍ଞାନଲାଭ ଅର୍ଥେ । କ୍ଳେଶ ଲଭନ୍ତି ଏ ଜଗତେ ।। ୨୫
ସେମାନଙ୍କର ଶେଷ ହୋଇ । କେବଳ ମାତ୍ର କ୍ଳେଶ ରହି ।। ୨୬
ଅଳ୍ପ ବୋଲିଣ ଯଉଁ ଜନ । ଧାନ ଛାଡ଼ିଣ ତୁଷମାନ[2] ।। ୨୭
କୁଟନ୍ତେ ପ୍ରୟାସ ପାଆନ୍ତି । ଫଳ କିଛିହିଁ ନ ଲଭନ୍ତି ।। ୨୮
୫ ହେ ପ୍ରଭୁ ! ପୂର୍ବେ ଏ ଭୁବନେ । ବହୁତ ଯୋଗିଜନମାନେ ।। ୨୯
ଯୋଗରେ ଜ୍ଞାନକୁ ନ ପାଇ । ଲୌକିକ ଚେଷ୍ଟାମାନ ଯେହି ।। ୩୦
ସମର୍ପି ତାହା ତୁମ୍ଭଠାରେ । ଯେ ଲବ୍‌ଧ ଆପଣା କର୍ମରେ ।। ୩୧
ତୁମ୍ଭର କଥାଶ୍ରବଣରେ । ଯେ ପ୍ରାପ୍ତ ତୁମ୍ଭ ନିକଟରେ ।। ୩୨
ଆତ୍ମାକୁ ଏମନ୍ତ ଭକ୍ତିରେ । ଗୋଚର କରିଣ ସୁଖରେ ।। ୩୩
ଉତ୍ତମ ଅଟଇ ଯେ ଗତି । ତାହା ଲଭିଲେ ସେ ଝଟିତି ।। ୩୪
୬ ତଥାପି ହେ ଅପରିଚ୍ଛିନ୍ନ । ଯେ ତୁମ୍ଭେ ଅଟ ଗୁଣହୀନ ।। ୩୫
ତୁମ୍ଭ ମହିମା ଜଗତରେ । ଅମଳ ଅନ୍ତର-ଆତ୍ମାରେ ।। ୩୬
ଗୋଚର କରିବାକୁ କେହି । ମନୁଷ୍ୟ ଅବା ଶକ୍ତ ହୋଇ ।। ୩୭
ଆତ୍ମା-ଆକାରରୂପ ହୋଇ । ଯେ ଅନ୍ତଃକରଣ ଅଛଇ ।। ୩୮
ସାକ୍ଷାତକାରରୁ ତାହାର । ସେ ପୁଣ ହୁଅଇ ଗୋଚର ।। ୩୯
ବିଶେଷ ପରିତ୍ୟାଗ[3] ଯେହି । ଆତ୍ମା-ଆକାର ଅଟେ ସେହି ।। ୪୦
ଯେ ପୁଣ ଆତ୍ମସାକ୍ଷାତ୍‌କାର । ନୁହେ ସେ ବିଷୟ ଗୋଚର ।। ୪୧
ଖ୍ୟାତ ସେ ସ୍ୱପ୍ରକାଶ ହୋଇ । ଏ ସେ ବୋଲିଣ କହି ନୋହି ।। ୪୨
୭ ଗୁଣଙ୍କ ଅଧିଷ୍ଠାନ ପୁଣ । ଯେ ତୁମ୍ଭେ ତୁମ୍ଭର ଯେ ଗୁଣ ।। ୪୩
ଗଣିବା[4] ଅର୍ଥେ ତାହା ପୁଣି । ସମର୍ଥ ହେବ କଉଁ ପ୍ରାଣୀ ।। ୪୪
ହିତ ଅର୍ଥେ ଏ ଜଗତର । ଯେ ତୁମ୍ଭେ ହେଲ ଅବତାର ।। ୪୫
ନିପୁଣ ଅଟନ୍ତି ଯେ ନରେ । ସେମାନେ ବହୁତ ଜନ୍ମରେ ।। ୪୬
ଭୂମିର ପରମାଣୁମାନ । ଆକାଶହିମକଣା ଆନ ।। ୪୭

୧. ତାହାକୁ । ୨. ତଣ୍ଡୁମାନ । ୩. କରି ତ୍ୟାଗ । ୪. ଜାଣିମା ।

ନକ୍ଷତ୍ରମାନଙ୍କ କିରଣ । ପରମାଣୁମାନେ ଯେ ପୁଣ ॥
ଗଣି ପାରିବେ ଅବା ତାହି । ତୁମ୍ଭର ଗୁଣ ଗଣା ନୋହି ॥
୮ କୃପା କରିବେ କେବେ ହରି । ଏକଥା ମନେ ଥାଇ କରି ॥
ଆପଣା କର୍ମର ବିପାକ । ଭୋଗ କରନ୍ତେ ଯଉଁ ଲୋକ ॥
ତନୁରେ ବଚନରେ ଚିତ୍ତେ । ତୁମ୍ଭଙ୍କୁ ପ୍ରଣାମ କରନ୍ତେ ॥
କେବଳମାତ୍ର ଜୀଇଥାଇ । ମୁକ୍ତିପଦରେ ଭାଗୀ ସେହି ॥
୯ ଦୁର୍ଜନଭାବକୁ ମୋହର । ହେ ପ୍ରଭୁ ! ଅବଧାନ କର ॥
ସକଳଆତ୍ମା ଯେ ଅନନ୍ତ । ପରମ-ଆତ୍ମା ରୂପେ ଖ୍ୟାତ ॥
ମାୟାବୀ ଜନମାନଙ୍କର । ମୋହକୁ ଯେ ତୁମ୍ଭେ ବିସ୍ତାର ॥
ନିଜ ମାୟାକୁ ତୁମ୍ଭଠାର । ବିସ୍ତାରି ଐଶ୍ୱର୍ଯ୍ୟକୁ ମୋର ॥
ଦେଖିବାପାଇଁ କଲି ମନ । ମୁଁ ଯେ ଅନଳରୁ ଯେସନ ॥
ଯେ ଅର୍ଚ୍ଚି ସମ୍ଭବ ହୁଅଇ । ଅନଳକୁ ସେ କି ଜିଣଇଁ ॥
୧୦ ରଜୋଗୁଣରୁ ମୁଁ ସମ୍ଭୂତ । ଜ୍ଞାନବିହୀନ ହେ ଅଚ୍ୟୁତ ॥
ତୁମ୍ଭର ଠାରୁ ଭିନ୍ନ ହୋଇ । ପ୍ରଭୁତ୍ୱ ଗର୍ବ ଅଛି ବହି ॥
ଜଗତକର୍ତ୍ତା ମୁଁ ଅଟଇ । ଏମନ୍ତ ରୂପେ ଗର୍ବ ଯେହି ॥
ତେଣେ ଲୋଚନ ଅନ୍ଧ ମୋର । ହେଲେହେଁ ଆନର ଈଶ୍ୱର ॥
ମୁଁ ଥାନ୍ତେ ମୋହର ଏ ଭୃତ୍ୟ । ଦୟାକୁ ଅଟଇ ଉଚିତ ॥
ଏମନ୍ତ ବିଚାରି ମନର । ମୋ ଅପରାଧ କ୍ଷମା କର ॥
୧୧ ପ୍ରକୃତି ପ୍ରକୃତିସଂଭୂତ । ଯେ ପୁଣ ଅଟେ ମହତତ୍ତ୍ୱ ॥
ଅହଂକାର ଆକାଶ ଦୁଇ । ପବନ ଅଗ୍ନି ଜଳ ମହୀ ॥
ଏମାନଙ୍କରେ ଯେ ବେଷ୍ଟିତ । ବ୍ରହ୍ମାଣ୍ଡ ଘଟରୂପେ ଖ୍ୟାତ ॥
ସେ ଅଣ୍ଡଘଟମଧ୍ୟେ ମୋର । ସାତ ବିତସ୍ତି[1] କଳେବର ॥
ଏ ରୂପେ ଅସଂଖ୍ୟ ହୋଇଣ । ଯେତେକ ବ୍ରହ୍ମାଣ୍ଡ ସେ ପୁଣ ॥
ପରମାଣୁର ପ୍ରାୟେ ହୋଇ । ତୁମ୍ଭ ରୋମବିବରେ ଯେହି ॥
ଗବାକ୍ଷପ୍ରାଏ ସେ ଅଟନ୍ତି । ତହିଁ ସେ ଭ୍ରମଣ କରନ୍ତି ॥
ହେ ପ୍ରଭୁ ! ମୁଁ କାହିଁ, ତୁମ୍ଭର । ମହିମା କାହିଁ ଏ ପ୍ରକାର ॥
୧୨ ହେ ଅଧୋକ୍ଷଜ ! ଯଉଁ ସୁତ । ଅଟେ ଜନନୀଗର୍ଭଗତ ॥
ସେ ଯାହା ଚରଣ ଚାଳଇ । ମାତାରେ ଅପରାଧ ହୋଇ ॥
ସେ ନିକି ହୁଅଇ ବିଦିତ । ଭାବ ଅଭାବ ରୂପେ ଖ୍ୟାତ ॥
ହୋଇଛି ଏ ଯଉଁ ଜଗତ । ଏ ସର୍ବ ତୁମ୍ଭ ଗର୍ଭଗତ ॥
ତୁମ୍ଭ ଉଦରସ୍ଥିତ ମୁହିଁ । ତୁମ୍ଭେ ମାତାର ପ୍ରାୟେ ହୋଇ ॥

୧. ବିତସ୍ତି = ଚାଖଣ୍ଡେ ।

| | | | |
|---|---|---|---|
| | ଯେ ଅପରାଧ ହେଲା ମୋର । | ତା' କ୍ଷମା କର ହେ ଈଶ୍ୱର ॥ | ୭୯ |
| ୧୩ | ଜଗତପ୍ରଳୟସମୟେ । | ସକଳ ସିନ୍ଧୁ ମେଳ ହୋଏ ॥ | ୮୦ |
| | ସେ ଜଳେ ନାରାୟଣଙ୍କର । | ଉଦରନାଭିରୁ ବାହାର ॥ | ୮୧ |
| | ଯେ ନାଳ ତହୁଁ ବ୍ରହ୍ମା ଜାତ । | ଏ ବାକ୍ୟ ନୁହଇ ଅସତ୍ୟ ॥ | ୮୨ |
| | ତୁମ୍ଭ ଗର୍ଭରୁ ମୁଁ ବାହାର । | ହୋଇ ନାହିଁ କି ହେ ଈଶ୍ୱର ॥ | ୮୩ |
| ୧୪ | [1]ହେ ପ୍ରଭୁ ତୁମ୍ଭେ ନାରାୟଣ । | ନୁହ କି ଯେତେ ପ୍ରାଣୀ ପୁଣ ॥ | ୮୪ |
| | ଆତ୍ମା ଅଟ ସେ ସକଳର । | କର ସମସ୍ତଙ୍କୁ ଗୋଚର ॥ | ୮୫ |
| | ନରସମୂହ ଅଟେ ନାର । | ନରସମ୍ଭୂତ ନାର ନୀର ॥ | ୮୬ |
| | ତୁମ୍ଭର ଅୟନ ସେ ଯେଣୁ । | ବିଖ୍ୟାତ ନାରାୟଣ ତେଣୁ ॥ | ୮୭ |
| | ନର, ଭୂ ସଲିଳ ଯାହାର । | ଅୟନରୂପରେ ପ୍ରଚାର ॥ | ୮୮ |
| | ତୁମ୍ଭ ଅଙ୍ଗ ସେ ନାରାୟଣ । | ଏ କଥା [2]ନୁହଇ ପ୍ରମାଣ ॥ | ୮୯ |
| | ତୁମ୍ଭର ମାୟା ସେ ଅଟଇ । | ଯାହାର ପରିଚ୍ଛିନ୍ନ[3] ନାହିଁ ॥ | ୯୦ |
| | ସେ ପରିଚ୍ଛିନ୍ନ ଜଳେ ସ୍ଥିତ । | ଏ କଥା କରିବ କେ ସତ୍ୟ ॥ | ୯୧ |
| ୧୫ | ସକଳଜଗତଆଶ୍ରୟ । | ଅଟଇ ଯେ ତୁମ୍ଭର କାୟ ॥ | ୯୨ |
| | ସେ ଅଟେ ଜଳମଧ୍ୟେ ସ୍ଥିତ । | ଏ କଥା ଯେବେ ଅଟେ ସତ୍ୟ ॥ | ୯୩ |
| | ଜଳମଧ୍ୟରେ ସେହିକାଳେ । | ପ୍ରବେଶ ହୋଇ ପଦ୍ମନାଳେ ॥ | ୯୪ |
| | ଖୋଜନ୍ତେ ଶତେ ସମ୍ବତ୍ସର । | କିମ୍ପା ତା ନ କଲି ଗୋଚର ॥ | ୯୫ |
| | ହୃଦରେ କିମ୍ପା ନ ଦେଖିଲି । | ପୁଣି ଗୋଚର କିମ୍ପା କଲି ॥ | ୯୬ |
| ୧୬ | ହେ ପ୍ରଭୁ ମାୟାନିବାରଣ । | ଏହି ଅବତାରେ ଯେ ପୁଣ ॥ | ୯୭ |
| | ପ୍ରକାଶ ହୋଇଛି ବାହ୍ୟରେ । | ସେ ପ୍ରପଞ୍ଚକୁ ଜଠରରେ ॥ | ୯୮ |
| | ସମଗ୍ର କରିଣ ମାତାଙ୍କୁ । | ଯାହା ଦେଖାଇଲ ତାହାକୁ ॥ | ୯୯ |
| | ଏତେକେ ଯେ ମାୟା ତୁମ୍ଭର । | ସେ ସର୍ବ ହୋଇଲା ଗୋଚର ॥ | ୧୦୦ |
| ୧୭ | ଏ ବିଶ୍ୱ ଯାହାର ଉଦରେ । | ଦିଶୁଛି ନିଜ ସହିତରେ ॥ | ୧୦୧ |
| | ବାହାରେ ସେହି ରୂପ ହୋଇ । | ଆପଣା ସହିତେ ଦିଶଇ ॥ | ୧୦୨ |

---

୧. ନାରାୟଣ — (୧) ନାର = ଜୀବସମୂହ; ଅୟନ = ଆଶ୍ରୟ ।
(୨) ନାର = ଜୀବସମୂହ; ଅୟନ = ପ୍ରବୃତ୍ତି ।
(୧. ନାରଂ ଅୟନଂ ଯସ୍ୟ ସଃ । ୨. ନାରସ୍ୟ ଅୟନଂ ଯସ୍ମାତ୍ ସଃ ।)
(୩) ନାରଂ ଅୟତେ (ଜାନାତି) ଇତି ବା । ତଥାହି :
''ନରାଜ୍ଜାତାନି ତତ୍ତ୍ୱାନି ନାରାଣୀତି ବିଦୁର୍ବୁଧାଃ ।
ତସ୍ୟ ତାନ୍ୟୟନଂ ପୂର୍ବଂ ତେନ ନାରାୟଣଃ ସ୍ମୃତଃ ॥''
ଅପି ଚ — ''ଆପୋ ନାରା ଇତି ପ୍ରୋକ୍ତା ଆପୋ ବୈ ନରସୂନବଃ ।
ଅୟନଂ ତସ୍ୟ ତାଃ ପୂର୍ବଂ ତେନ ନାରାୟଣଃ ସ୍ମୃତଃ ॥'' (ସ୍ମୃତିଃ)

୨. ନୁହେ କି ।　　୩. ପରିଚ୍ଛିନ୍ନ = ପରିଚ୍ଛେଦ ।

ଏ କଥା ମାୟାର ବିହୀନେ । ସଂଭବେ କି କି ଏ ଭୁବନେ ॥ ୧୦୩
ଯେ ପୁଣି ପ୍ରତିବିମ୍ବ ହୋଇ । ବିଲୋମଭାବେ ସେ ଦିଶଇ ॥ ୧୦୪
୧୮ ତୁମ୍ଭର ବିନୁ ଏ ବିଶ୍ୱର । ମାୟାକୁ ଆଜ ହେ ଶ୍ରୀଧର ॥ ୧୦୫
ମୋତେ କି ଦେଖାଇଲ ନାହିଁ । ପ୍ରଥମୁଁ ଥିଲ ଏକା ହୋଇ ॥ ୧୦୬
ବ୍ରଜସୁହୃଦ ବତ୍ସ ଯେତେ । ସମସ୍ତ ହୋଇଲ ତଦନ୍ତେ ॥ ୧୦୭
ମୋହ ସହିତେ ତତ୍ତ୍ୱ ଆଦି । ଯେତେକ ଜଗତେ ପ୍ରସିଦ୍ଧି ॥ ୧୦୮
ସମସ୍ତେ ଚତୁର୍ଭୁଜରୂପେ । ସେବିଥିଲେ ତୁମ୍ଭ ସମୀପେ ॥ ୧୦୯
ତେତିକି ବ୍ରହ୍ମାରୂପେ-ପୁଣ । ପ୍ରକାଶ ହେଲ ତଦନ୍ତେଣ ॥ ୧୧୦
ଯେ ବ୍ରହ୍ମ ଅବ୍ୟୟ ଅମିତ । ସେ ରୂପେ ପ୍ରାନ୍ତେ ହେଲ ସ୍ଥିତ ॥ ୧୧୧
୧୯ ତୁମ୍ଭ ସ୍ୱରୂପ[୧] ଯଉଁ ଜନେ । ଜାଣନ୍ତି ନାହିଁ ଏ ଭୁବନେ ॥ ୧୧୨
ଆତ୍ମାରୂପରେ ପ୍ରକୃତିରେ । ଥାଇ ତାହାଙ୍କୁ ସ୍ୱତନ୍ତ୍ରରେ ॥ ୧୧୩
ମାୟାକୁ ବିସ୍ତାର କରିଣ । ମୋହିତ କର ତୁମ୍ଭେ ପୁଣ ॥ ୧୧୪
ମୁଁ ଯେହ୍ନେ ସର୍ଜନାକାଳରେ । ତୁମ୍ଭେ ପାଳନସମୟରେ ॥ ୧୧୫
ପ୍ରଳୟସମୟେ ଯେସନ । ସଂହାରକର୍ତ୍ତା ତ୍ରିଲୋଚନ ॥ ୧୧୬
୨୦ ଦୁଷ୍ଟଙ୍କ ବିନାଶନିମିତ୍ତେ । ସାଧୁଙ୍କ ଅନୁଗ୍ରହଅର୍ଥେ ॥ ୧୧୭
ହେ ପ୍ରଭୁ ! ସୁର ଋଷି ନର । ତିର୍ଯ୍ୟକ ଯେ ବା ଜଳଚର ॥ ୧୧୮
ତହିଁରେ ହୁଅ ଅବତାର । ଜନ୍ମ ନ ଥିଲେହେଁ ତୁମ୍ଭର ॥ ୧୧୯
୨୧ ହେ ଯୋଗେଶ୍ୱର ଭଗବାନ । ପରାତ୍ମା ହେ ଅପରିଚ୍ଛିନ୍ନ ॥ ୧୨୦
କଉଁ ସ୍ଥାନରେ କି ନିମିତ୍ତେ । କଉଁ କାଳରେ ଅବା କେତେ ॥ ୧୨୧
ତୁମ୍ଭ ଲୀଳା[୨]କୁ ଏ ପ୍ରକାରେ । କେ ଜାଣି ପାରେ ଏ ସଂସାରେ ॥ ୧୨୨
ଯୋଗମାୟାକୁ ବିସ୍ତାରନ୍ତେ । କ୍ରୀଡ଼ା କରୁଛ ଅବିରତେ ॥ ୧୨୩
୨୨ ତେଣୁ ଏ ଅଶେଷ ଜଗତ । ସ୍ୱପ୍ନର ସମାନ ଅସତ ॥ ୧୨୪
ପ୍ରତିଭା ବିନଷ୍ଟ ଏହାର । ବହୁତ ଦୁଃଖେ ଦୁଃଖ ଯାର ॥ ୧୨୫
ଯେ ନିତ୍ୟ ସୁଖ ଜ୍ଞାନମୟ । ଏମନ୍ତ ଅଟେ ତୁମ୍ଭ କାୟ ॥ ୧୨୬
ଜନମ ନାଶ ତୁମ୍ଭ ଠାର । ହୁଅନ୍ତେ ଦିଶେ ସତ୍ୟାକାର ॥ ୧୨୭
୨୩ ତୁମ୍ଭେ ତ ଏକ ଆତ୍ମା ପୁଣ । [୩]ପୁରାଣ ପୁରୁଷ ପ୍ରମାଣ ॥ ୧୨୮
ସତ୍ୟସ୍ୱରୂପ ସ୍ୱୟଂ ଜ୍ୟୋତି । ଅନନ୍ତ ଆଦ୍ୟ ନିତ୍ୟ ମୂର୍ତ୍ତି ॥ ୧୨୯
ସତତସୁଖ, ନିରଞ୍ଜନ । ଅକ୍ଷର, ଦ୍ୱୟହୀନ, ପୂର୍ଣ୍ଣ ॥ ୧୩୦
ଏ ଘେନି ଉପାଧିରୁ ମୁକ୍ତ । ଅମୃତସ୍ୱରୂପ ବିଦିତ ॥ ୧୩୧
ଜନ୍ମାଦି ଯେ ଷଡ଼[୪] ବିକାର । ସେ ପୁଣି ନାହିଁ ତୁମ୍ଭ ଠାର ॥ ୧୩୨

---

୧. ସ୍ୱରୂପ = ପଦବୀ । ୨. ଲୀଳା = ରତି ।
୩. ''ପୂର୍ବମେବାହମିହାସମ୍'' ଇତି ''ତତ୍ ପୁରୁଷସ୍ୟ ପୁରୁଷତ୍ୱମ୍'' (ଶ୍ରୁତିଃ) ।
୪. ଷଡ଼ ବିକାର = ଜନ୍ମ, ଅସ୍ତିତ୍ୱ, ବୃଦ୍ଧି, ବିପରିଣାମ, ଅପକ୍ଷୟ ଓ ବିନାଶ ।

୨୪ ତୁମ୍ଭେ ସକଳ ଆତ୍ମାଙ୍କରେ । ଆତ୍ମାସ୍ୱରୂପ ଏ ପ୍ରକାରେ ॥ ୧୩୩
ଗୁରୁସୂର୍ଯ୍ୟରୁ ଲବ୍ଧ ଜ୍ଞାନ । ଚକ୍ଷୁରେ ଦେଖନ୍ତି ଯେ ଜନ ॥ ୧୩୪
ଯେ ମିଥ୍ୟା ସଂସାରସାଗର । ତାକୁ ତରନ୍ତି ସେହୁ ନର ॥ ୧୩୫
୨୫ ଆତ୍ମାକୁ ଆତ୍ମାସ୍ୱରୂପରେ । ଜାଣନ୍ତି ନାହିଁ ଯଉଁ ନରେ ॥ ୧୩୬
ସେ ଲୋକମାନଙ୍କ ଅଜ୍ଞାନ । ସର୍ବପ୍ରପଞ୍ଚ କରେ ଜନ୍ମ ॥ ୧୩୭
ଜ୍ଞାନେ ସେ ପୁଣ ନାଶ ଯାଇ । ରଜ୍ଜୁରେ ସର୍ପବୁଦ୍ଧି ଥାଇ ॥ ୧୩୮
ସେ ଯେହ୍ନେ ବିଶେଷ ଜ୍ଞାନରେ । ବିନାଶ ହୁଅଇ କାଳରେ ॥ ୧୩୯
୨୬ ଅଜ୍ଞାନୁଁ ସଂଜ୍ଞାକୁ ଯେ ପାଇ । ସେ ଭବବନ୍ଧ ମୋକ୍ଷ ଦୁଇ ॥ ୧୪୦
ଋତଜ୍ଞଭାବୁଁ ନୋହେ ଆନ । ଅଖଣ୍ଡାନୁଭବ ଯେ ପୂର୍ଣ୍ଣ ॥ ୧୪୧
ସଂସାରବନ୍ଧ ମୋକ୍ଷ ଦୁଇ । ସେ ଆତ୍ମାଠାରେ ସେ ନ ଥାଇ ॥ ୧୪୨
ରାତ୍ର ଦିବସ ଏହୁ ଦୁଇ । ସୂର୍ଯ୍ୟରେ ଯେସନ ହୁଅଇ ॥ ୧୪୩
୨୭ ଯେ ତୁମ୍ଭେ ଆତ୍ମା ଅଟ ପୁଣି । ତୁମ୍ଭଙ୍କୁ ଦେହ କରି ମଣି ॥ ୧୪୪
ଦେହକୁ ପୁଣ ଆତ୍ମା କରେ । ଆତ୍ମାକୁ ଖୋଜଇ ବାହାରେ ॥ ୧୪୫
ଅଜ୍ଞଜନର ଅଜ୍ଞଭାବ । ଆଶ୍ଚର୍ଯ୍ୟ ଅଟେ ଏ ସ୍ୱଭାବ ॥ ୧୪୬
୨୮ ଆହେ ଅନନ୍ତ ଏ ଶରୀରେ । ଦେହାଦି ଅପବାଦଦ୍ୱାରେ ॥ ୧୪୭
ତୁମ୍ଭଙ୍କୁ ପୁଣ ସାଧୁଜନେ । ଖୋଜନ୍ତି ଶୁଦ୍ଧ ସତ୍ତ୍ୱ ମନେ ॥ ୧୪୮
ଯେ ଅହି ନିକଟେ ନ ଥାଇ । ତାର ନିଷେଧ ବିନୁ କେହି ॥ ୧୪୯
ରଜ୍ଜୁରେ ସର୍ପଭ୍ରମ ଥାଇ । ତା' ଆନ କରି ନ ପାରଇ ॥ ୧୫୦
ସେ ଭ୍ରମ ହୋଇଲେ ବିନାଶ । ସେ ରଜ୍ଜୁ ହୁଅଇ ପ୍ରକାଶ ॥ ୧୫୧
୨୯ ହେ ନାଥ ! ତଥାପି ତୁମ୍ଭର । ପାଦପଙ୍କଜବେନିଙ୍କର ॥ ୧୫୨
ପ୍ରସାଦଲେଶୁଁ ଯେ ସମ୍ଭବ । ସେ ଅନୁଗ୍ରହରୁ ମାନବ ॥ ୧୫୩
ମହିମାତତ୍ତ୍ୱକୁ ତୁମ୍ଭର । ନିଶ୍ଚୟେ କରଇ ଗୋଚର ॥ ୧୫୪
ବହୁତ କାଳ ଆନ କେହି । ଖୋଜନ୍ତେ ଜାଣଇ ତା' ନାହିଁ ॥ ୧୫୫
୩୦ ହେ ନାଥ ! ଏହି ଜନମରେ । ଅଥବା ତିର୍ଯ୍ୟକ ଜନ୍ମରେ ॥ ୧୫୬
ସେ କଥା ସମ୍ଭବୁଂ[1] ମୋହର । ସେ ଅଟେ ଭାଗ୍ୟ ବଳିୟାର ॥ ୧୫୭
ତୁମ୍ଭର ଦାସମାନେ ଯେହି । ତାଙ୍କ ମଧ୍ୟରେ ଏକ ହୋଇ ॥ ୧୫୮
ପାଦପଲ୍ଲବକୁ ତୁମ୍ଭର । ସେବା କରିବି ନିରନ୍ତର ॥ ୧୫୯
୩୧ ବ୍ରଜରେ ଯେତେ ଧେନୁମାନ । ଯେତେକ ଅବା ବଧୂଜନ ॥ ୧୬୦
ଅତ୍ୟନ୍ତ ଭାଗ୍ୟବନ୍ତ ସେହି । ତାଙ୍କ ସ୍ତନରୁ ସୁଧା ଯେହି ॥ ୧୬୧
ବତ୍ସ-ବାଳକ ରୂପେ ତୋଷେ । ହେ ପ୍ରଭୁ ପିଇଲ ବିଶେଷେ ॥ ୧୬୨
ଆଜ ହିଁ ପ୍ରୀତିଅର୍ଥେ ଯାର । ଅଶକ୍ତ ସକଳ ଅଧ୍ୱର ॥ ୧୬୩

୧. ସମ୍ଭବ ।

୩୨ ନନ୍ଦଗୋପାଳବ୍ରଜେ ବାସ । କରିଅଛନ୍ତି ଯେ ଅଶେଷ ॥ ୧୬୪
ତାହାଙ୍କ ଭାଗ୍ୟ ଅତିଶୟ । ଯେ ଅଟେ ମହାନନ୍ଦମୟ ॥ ୧୬୫
ପରମ ବ୍ରହ୍ମ ସନାତନ । ତାଙ୍କର ମିତ୍ର ଯେ ବିଧାନ ॥ ୧୬୬
୩୩ ଆହେ ଅଚ୍ୟୁତ ଏହାଙ୍କର । ଭାଗ୍ୟମହିମା ଥାଉ ଦୂର ॥ ୧୬୭
ଆମ୍ଭେ ଶିବଙ୍କୁ[1] ଆଦି ହୋଇ । ଯେ ଏକାଦଶ[2] ଅଛୁଁ ରହି ॥ ୧୬୮
ଏମାନଙ୍କର ଯେ ଇନ୍ଦ୍ରିୟ । ସେ ଅଟେ ପାନପାତ୍ରମୟ ॥ ୧୬୯
ସେ ଦ୍ୱାରେ ପାଦପଦ୍ମେ ତୋର । ମଧୁ ଅମୃତ ନିରନ୍ତର ॥ ୧୭୦
ପାନ କରୁଛୁଁ ଆମ୍ଭେମାନେ । ଏ ଘେନି ଧନ୍ୟ ଏ ଭୁବନେ ॥ ୧୭୧
୩୪ ଏ ନରଲୋକେ ଅରଣ୍ୟରେ । ଯଉଁ ଜନମ ଗୋକୁଳରେ ॥ ୧୭୨
ସେ ବଡ଼ ଭାଗ୍ୟ ଏ ସଂସାରେ । ଯେଣୁ ଗୋକୁଳବାସିଙ୍କରେ ॥ ୧୭୩
ଯାହା' କାହାରି ପାଦଧୂଳି । ଯଉଁ ଜନମେ ହୋଏ ବୋଲି ॥ ୧୭୪
ଯଉଁ ଗୋକୁଳବାସୀ ଜନ । ସର୍ବ ଜୀବିତ ଭଗବାନ ॥ ୧୭୫
ଯଉଁ ମୁକୁନ୍ଦପାଦରେଣୁ । ଆଜ ହିଁ ବେଦ ଖୋଜେ ଯେଣୁ ॥ ୧୭୬
୩୫ ସକଳ ଫଳମାନଙ୍କର । ସ୍ୱରୂପ ତୁମ୍ଭେ ହେ ଈଶ୍ୱର ॥ ୧୭୭
ଏ ଯେତେ ବ୍ରଜବାସୀ ଜନ । ଏହାଙ୍କୁ ତୁମ୍ଭଠାରୁ ଆନ ॥ ୧୭୮
ଅଧିକ ଫଳକୁ ପ୍ରଦାନ । କରିବ ବୋଲି ମୋର ମନ ॥ ୧୭୯
ଭ୍ରମନ୍ତେ ସକଳ ଦିଗରେ । ମୋହିତ ହେଉଛି ନିର୍ଭରେ ॥ ୧୮୦
ଯେ ତୁମ୍ଭ ଭକ୍ତ ସାଧୁଗଣ । ତାହାଙ୍କ ବେଷମାତ୍ରେ ପୁଣ ॥ ୧୮୧
ପୂତନା କୁଳସହିତରେ । ତୁମ୍ଭଙ୍କୁ ଲଭିଲା ସଂସାରେ ॥ ୧୮୨
ସଦନ ଅର୍ଥ ମିତ୍ର ପ୍ରିୟ । ସୁତ ପ୍ରାଣ ଆତ୍ମା ଆଶୟ ॥ ୧୮୩
ଏ ସର୍ବ ଯଉଁ ବ୍ରଜଜନ । ତୁମ୍ଭରେ କଲେ ନିବେଦନ ॥ ୧୮୪
ଏଣୁ ଏମାନଙ୍କର ଋଣୀ । ହୋଇ ରହିଲ ତୁମ୍ଭେ ପୁଣି ॥ ୧୮୫
୩୬ ତୁମ୍ଭର ଦାସ ନୋହି ଜନ । ଥାନ୍ତି ହେ କୃଷ୍ଣ ଯେତେ ଦିନ ॥ ୧୮୬
ରାଗାଦି ତେତେ କାଳଯାଏ । ଥାନ୍ତି ତାଙ୍କର ଚୌରପ୍ରାଏ ॥ ୧୮୭
ଗୃହ ହିଁ ବନ୍ଧନମନ୍ଦିର । ମୋହ ହିଁ ଶାଙ୍କୁଳିଆକାର ॥ ୧୮୮
୩୭ ତୁମ୍ଭେ ଏ ପ୍ରପଞ୍ଚରୁ ଆନ । ହେଲେହେଁ ପ୍ରପନ୍ନ ଯେ ଜନ ॥ ୧୮୯
ତାହାଙ୍କ ଆନନ୍ଦ ବିସ୍ତାର । କରିବା ଅର୍ଥେ ହେ ଈଶ୍ୱର ॥ ୧୯୦
କପଟପୁତ୍ର ଆଦି ଭାବେ । ପ୍ରକାଶ ହୋଇଅଛ ଏବେ ॥ ୧୯୧
୩୮ ହେ ପ୍ରଭୁ ବହୁତ ବଚନ । କହିବାରେ କି ପ୍ରୟୋଜନ ॥ ୧୯୨

---

୧. ଶିବ = ଅହଂକାରାଧିଷ୍ଠାତା । ୨. ଏକାଦଶ = ଚନ୍ଦ୍ରାଦି ।

| | | | |
|---|---|---|---|
| | ତୁମ୍ଭ ମହିମା ଯେଉଁ ଜନେ | ଜାଣନ୍ତି ଜାଣନ୍ତୁ ସେମାନେ | ॥ ୧୯୩ |
| | ମୋ ମନ-ବପୁ-ବଚନର | ତୁମ୍ଭ ମହିମା ଅଗୋଚର | ॥ ୧୯୪ |
| ୩୯ | ହେ କୃଷ୍ଣ ତୁମ୍ଭେ ସବୁ ଜାଣ | ସକଳଦ୍ରଷ୍ଟା[୧] ଯେଣୁ ପୁଣ | ॥ ୧୯୫ |
| | ତୁମ୍ଭେ ଏ ଜଗତର ନାଥ | ତୁମ୍ଭଙ୍କୁ କଲି ସମର୍ପିତ | ॥ ୧୯୬ |
| | ଗୃହକୁ ଯିବାର ନିମିତ୍ତେ | ଅନୁଜ୍ଞା ଦିଅ ଏବେ ମୋତେ | ॥ ୧୯୭ |
| ୪୦ | ଆହେ ଶ୍ରୀକୃଷ୍ଣ ଯଦୁବଂଶ | ପଦ୍ମଙ୍କୁ କର ତୁମ୍ଭେ ତୋଷ | ॥ ୧୯୮ |
| | ଧରଣୀ-ଦେବ-ମହୀସୁର | ପଶୁସିନ୍ଧୁଙ୍କୁ ବୃଦ୍ଧି କର | ॥ ୧୯୯ |
| | ପାଷଣ୍ଡଧର୍ମ ଅନ୍ଧକାର | ବିନାଶ, ଯେ ପୁଣ ଅସୁର | ॥ ୨୦୦ |
| | କ୍ଷିତିରେ କଂସ ଆଦି ଜାତ | କର ସେମାନଙ୍କୁ ନିପାତ | ॥ ୨୦୧ |
| | ଅର୍କକୁ ଆଦି ଯେତେ ସୁର | ଯେ ପୂଜ୍ୟ ସେ ସମସ୍ତଙ୍କର | ॥ ୨୦୨ |
| | ଏ ରୂପେ ତୁମ୍ଭେ ଯେ ଉତ୍ତମ | [୨]ତୁମ୍ଭଙ୍କୁ ମୋହର ପ୍ରଣାମ | ॥ ୨୦୩ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୪୧ | କୃଷ୍ଣଙ୍କୁ ଏମନ୍ତ ପ୍ରକାରେ | ସ୍ତୁତି କରିଣ ତଦନ୍ତରେ | ॥ ୨୦୪ |
| | ତ୍ରିବାର କରି ପ୍ରଦକ୍ଷିଣ | ପାଦରେ ପ୍ରଣାମ କରିଣ | ॥ ୨୦୫ |
| | ବିଧାତା ଗଲେ ନିଜ ସ୍ଥାନ | ଯେ ଅଟେ ସକଳବନ୍ଦନ | ॥ ୨୦୬ |
| ୪୨ | ତଦନନ୍ତରେ ନାରାୟଣ | ବ୍ରହ୍ମାଙ୍କୁ ଅନୁଜ୍ଞା ଦେଇଣ | ॥ ୨୦୭ |
| | ପୂର୍ବ କାଳର ପ୍ରାୟ ହୋଇ | ସଖା ଯେତେକ ଥିଲେ ତହିଁ | ॥ ୨୦୮ |
| | ପୁଣି ସେ ନିଜ ପୁଲିନକୁ | ଆଣିଲେ ସେ ବତ୍ସମାନଙ୍କୁ | ॥ ୨୦୯ |
| ୪୩ | ହେ ନୃପ ! ଯେ ପ୍ରାଣ-ଈଶ୍ୱର | ତାହାଙ୍କ ବିହୁନେ ବତ୍ସର | ॥ ୨୧୦ |
| | ଶେଷ ହୁଅନ୍ତେ ଶିଶୁମାନେ | ମଣିଲେ କ୍ଷଣାର୍ଦ୍ଧ ଯେସନେ | ॥ ୨୧୧ |
| | କୃଷ୍ଣର ମାୟାରେ ସେ ଯେଣୁ | ଆହତ ହୋଇଛନ୍ତି ତେଣୁ | ॥ ୨୧୨ |
| ୪୪ | ମାୟାରେ ଅଟଇ ମୋହିତ | ଯେବଣ ପ୍ରାଣିଙ୍କର ଚିତ୍ତ | ॥ ୨୧୩ |
| | ନ ପାସୋରନ୍ତି ସେ କେବଣ | କେବଣ ଚରିତକୁ ପୁଣ | ॥ ୨୧୪ |
| | ଯାହାର ମାୟାରେ ମୋହିତ | ହୋଇଣ ସକଳ ଜଗତ | ॥ ୨୧୫ |
| | ନିଜ ଆତ୍ମାକୁ ବିସ୍ମରଣ | କରିଛି ଅନୁକ୍ଷଣେ ପୁଣ | ॥ ୨୧୬ |
| ୪୫ | [୩]ଯେ ମିତ୍ର କୃଷ୍ଣ, ଏ ବଚନ | ତାଙ୍କୁ କହିଲେ ଶିଶୁମାନ | ॥ ୨୧୭ |
| | ଉତ୍ତମ ହୋଇଣ ଏଠାରେ | ମିଳିଲ ଅତ୍ୟନ୍ତ ବେଗରେ | ॥ ୨୧୮ |

---

୧. ଦୃଷ୍ଟି ।

୨. ସସଖିବତ୍ସକମୋକ୍ଷଣକୌତୁକ ଦ୍ରୁତବିଲମ୍ବିତପୁତ୍ରମୁଦେଽଦ୍ଭୁତମ୍ ।
ନିଖିଳରୂପମତୋ ଦଧଦଚ୍ୟୁତୋଽବତୁ ସ ବଃ କଲୟନ୍ ବ୍ରଜମଙ୍ଗଳମ୍ ॥ (ସ୍ୱାମୀ)

୩. ''ଉଚୁଶ୍ଚ ସୁହୃଦଂ କୃଷ୍ଣଂ...'' ପାଠ ଅନୁସାରେ ଅନୁବାଦ ହୋଇଛି ।
''ଉଚୁଶ୍ଚ ସୁହୃଦଃ କୃଷ୍ଣଂ...'' ପାଠାନ୍ତର ଅଛି ।

ଅନ୍ନରୁ ଏକ କବଳ ହିଁ । ଆମ୍ଭେ ତ ଭୁଞ୍ଜିନାହୁଁ କେହି ।। ୨୧୯
ପ୍ରବେଶ ହୋଇଣ ଏ ସ୍ଥାନ । ଉତ୍ତମ କରି ଭୁଞ୍ଜ ଅନ୍ନ ।। ୨୨୦
୪୬ ହସନ୍ତେ ତଦନ୍ତରେ ହରି । ଶିଶୁଙ୍କ ସଙ୍ଗେ ଭୁଞ୍ଜି କରି ।। ୨୨୧
ଦେଖାନ୍ତେ ସର୍ପଚର୍ମ ତାଙ୍କୁ । ବନରୁ ଅଇଲେ ବ୍ରଜକୁ ।। ୨୨୨
୪୭ ମୟୂରପିଚ୍ଛ ପୁଷ୍ପମାନ । ଯେ ନବ[1] ଧାତୁମାନେ ଆନ ।। ୨୨୩
ତାହାଙ୍କ ସଙ୍ଗରୁ ବିଚିତ୍ର । ଦିଶୁଛି ଯାହାଙ୍କର ଗାତ୍ର ।। ୨୨୪
ଉଦ୍ଦାମ ବେଣୁ-ଶୃଙ୍ଗଦଳ । ଧ୍ୱନି-ଉତ୍ସବ ଯେ ବିପୁଳ ।। ୨୨୫
ତେଣେ ଯେ ଅଟନ୍ତି ସମ୍ପନ୍ନ । ଧୀରେ ଡାକନ୍ତେ ବତ୍ସମାନ ।। ୨୨୬
ଯାର ପବିତ୍ର କୀର୍ତ୍ତିମାନ । ଗାଉଅଛନ୍ତି ମିତ୍ରଜନ ।। ୨୨୭
ଗୋପୀମାନଙ୍କର ଲୋଚନ । ଉତ୍ସବ ଅଟେ ଯା' ଦର୍ଶନ ।। ୨୨୮
ସେ ପ୍ରଭୁ ଶିଶୁଙ୍କ ସଙ୍ଗରେ । ପ୍ରବେଶ ହୋଇଲେ ଗୋଷ୍ଠରେ ।। ୨୨୯
୪୮ ଆଜ ଯଶୋଦାନନ୍ଦସୁତ । ମହାସର୍ପକୁ କଲେ ହତ ।। ୨୩୦
ତା'ଠାରୁ ରଖିଲେ ଆମ୍ଭଙ୍କୁ । ବାଳକେ ଏମନ୍ତ ବାକ୍ୟକୁ ।। ୨୩୧
କହିଲେ ଯାଇଣ ବ୍ରଜରେ । ବନ୍ଧୁମାନଙ୍କର ଆଗରେ ।। ୨୩୨

ଶ୍ରୀପରୀକ୍ଷିଦୁବାଚ[2]

୪୯ ପରସ୍ୱକାଶୁଁ ଯେ ଜନମ । ସେ କୃଷ୍ଣଠାରେ ଏଡ଼େ ପ୍ରେମ ।। ୨୩୩
ହେ ବିପ୍ର ! ହୋଇଲା କିମ୍ପାଇଁ । ଯେ ନିଜ ପୁତ୍ରଙ୍କର ଠାଇଁ ।। ୨୩୪
ପୂର୍ବରେ ନୋହିଥିଲା ଜାତ । ଏକଥା ଆମ୍ଭଙ୍କୁ କହ ତ ।। ୨୩୫

ଶ୍ରୀଶୁକ ଉବାଚ

୫୦ ହେ ନୃପ ! ଆତ୍ମା ଆପଣାର । ବଲ୍ଲଭ ସର୍ବ ଜନ୍ତୁଙ୍କର ।। ୨୩୬
ଯେ ଆନ ପୁତ୍ର, ବିତ୍ତ ଆଦି । ଆତ୍ମବଲ୍ଲଭ ରୂପେ ସିଦ୍ଧି ।। ୨୩୭
୫୧ ହେ ରାଜ ଇନ୍ଦ୍ର ! ସେ ହେତୁରେ । ଯେ ନିଜ ନିଜ ଆତ୍ମାଠାରେ ।। ୨୩୮
ସ୍ନେହ ସମ୍ଭବେ ପ୍ରାଣୀଙ୍କର । ମମତାଲମ୍ବୀ ଯେ ଈଶ୍ୱର ।। ୨୩୯
ତନୟ ଗୃହ ବିତ୍ତ ଆଦି । ତହିଁରେ ତେଡ଼େ ନୋହେ ସିଦ୍ଧି ।। ୨୪୦
୫୨ ହେ ରାଜଶ୍ରେଷ୍ଠ ଆତ୍ମଭାବେ । ଦେହ ମଣନ୍ତି ଯେ ମାନବେ ।। ୨୪୧
୫୩ ତାଙ୍କର ପ୍ରିୟତମ ହୋଇ । ଦେହ ଯେମନ୍ତ ହୋଇଥାଇ ।। ୨୪୨
ଯେ ବା ଦେହକୁ ଅନୁରତ । ସେମାନେ ନୁହନ୍ତି ତେମନ୍ତ ।। ୨୪୩
ମମତା-ଆସ୍ପଦ ହୋଇଣ । ଦେହାଦି[3] ହୋଏ ଯେବେ ପୁଣ ।। ୨୪୪
ତେବେ ଆତ୍ମାର ପ୍ରାୟ ହୋଇ । ସେ ଦେହ ପ୍ରିୟ ପୁଣ ନୋହି ।। ୨୪୫

୧. ବନ  ୨. ଶ୍ରୀରାଜୋବାଚ  ୩. ଦେହର ।

| | | | | |
|---|---|---|---|---|
| | ଜୀର୍ଣ୍ଣ ହୁଅନ୍ତେ ଯେଣୁ କାୟ | । ଜୀବିତ-ଆଶା ଅତିଶୟ | ।। | ୨୪୬ |
| ୫୪ | ସେ ଘେନି ଆତ୍ମା ଆପଣାର | । ଅତ୍ୟନ୍ତ ପ୍ରିୟ ସର୍ବଙ୍କର | ।। | ୨୪୭ |
| | ଚର ଅଚରରୂପ ହୋଇ | । ଏ ସର୍ବ ଜଗତଟି ଯେହି | ।। | ୨୪୮ |
| | ସେ ଆତ୍ମା ପ୍ରିୟହେତୁ ପୁଣ | । ଏ ସର୍ବ ପ୍ରିୟ ବୋଲି ଜାଣ | ।। | ୨୪୯ |
| ୫୫ | ଆତ୍ମା ସକଳ ଆତ୍ମାଙ୍କର | । ଏ କୃଷ୍ଣ, କର ତୁ ଗୋଚର | ।। | ୨୫୦ |
| | ଜଗତହିତେ ଦେହବନ୍ତ | । ପ୍ରାୟେ ସେ ମାୟାରେ ମୋହିତ | ।। | ୨୫୧ |
| ୫୬ | କୃଷ୍ଣଙ୍କୁ ଜଗତକାରଣ | । ରୂପରେ ଜାଣନ୍ତି ଯେ ପୁଣ | ।। | ୨୫୨ |
| | ତାହାଙ୍କ ମତରେ ସ୍ଥାବର | । ଜଙ୍ଗମ ରୂପ ଯେ ଇତର | ।। | ୨୫୩ |
| | ଭଗବାନର ରୂପ ସେହି | । ତହିଁରୁ ଆନ କେହି ନାହିଁ | ।। | ୨୫୪ |
| ୫୭ | ସଂସାରେ ଯେତେ ବସ୍ତୁମାନ | । ଯେ ତାଙ୍କ ପରମାର୍ଥ ଆନ | ।। | ୨୫୫ |
| | ପରିଣାମକୁ ସେ ପାଆନ୍ତେ | । କାରଣରୂପ ଏ ଜଗତେ | ।। | ୨୫୬ |
| | କୃଷ୍ଣ ସେ କାରଣରୁ ପୁଣ | । କାରଣ ଏକଥା ପ୍ରମାଣ | ।। | ୨୫୭ |
| | କୃଷ୍ଣର ବିନୁ ଆନ ହୋଇ | । କି ବସ୍ତୁ ନିରୂପି ହୁଅଇ | ।। | ୨୫୮ |
| ୫୮ | ପୁଣ୍ୟ ଅଟଇ ଯଶ ଯାର | । ପଦପଲ୍ଲବ ସେ କୃଷ୍ଣର | ।। | ୨୫୯ |
| | ମହତଆଶ୍ରୟ ସେ ନାବ | । ତାକୁ ସେବିଲେ ଯେ ମାନବ | ।। | ୨୬୦ |
| | ତାଙ୍କର ବସ୍ସପାଦପ୍ରାୟ | । ସଂସାରସାଗର ନିଶ୍ଚୟ | ।। | ୨୬୧ |
| | ପରମ ପଦ ତାଙ୍କ ସ୍ଥାନ | । ବିପତ୍ତିସ୍ଥାନ ଯେ ବା ଆନ | ।। | ୨୬୨ |
| | ସେମାନଙ୍କର କଦାଚିତେ | । ସମ୍ଭବ ନୁହଇ ଜଗତେ | ।। | ୨୬୩ |
| ୫୯ | ଯାହା ପଚାରିଲ ଆମ୍ଭଙ୍କୁ | । ଏ ସର୍ବ କହିଲୁଁ ତୁମ୍ଭଙ୍କୁ | ।। | ୨୬୪ |
| | କୌମାରକାଳେ ହରିକୃତ | । ପୌଗଣ୍ଡେ ହୋଇଲା ଯେ ଖ୍ୟାତ | ।। | ୨୬୫ |
| ୬୦ | ମିତ୍ରମାନଙ୍କ ସଙ୍ଗତରେ | । ଯେବଣ ଲୀଳା କାନନରେ | ।। | ୨୬୬ |
| | ଅଘ-ଅସୁରର ନିଧନ | । ସତୃଣ ଦେଶେ ଯେ ଭୋଜନ | ।। | ୨୬୭ |
| | ଯେ ରୂପ ପ୍ରପଞ୍ଚୁଁ ଇତର | । ଯେ ସ୍ତୁତି କମଳାସନର[୧] | ।। | ୨୬୮ |
| | ଶୁଣନ୍ତେ ଗୁଣନ୍ତେ ଏମାନ | । ପୁରୁଷାର୍ଥକୁ ଲଭେ ଜନ | ।। | ୨୬୯ |
| | ଗୋପାଳ-ବାଳକଙ୍କ ସଙ୍ଗେ | । ବୃନ୍ଦାବନରେ ନାନାରଙ୍ଗେ | ।। | ୨୭୦ |
| | ବିହାର କଲେ ଯଉଁ ହରି | । ତାଙ୍କ ଚରଣ ଚିତ୍ତେ ଧରି | ।। | ୨୭୧ |
| | ହରଷ ଦୀନବନ୍ଧୁ ମତି | । ଏଣେ ତରିବ ଭବଭୀତି | ।। | ୨୭୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବ୍ରହ୍ମସ୍ତୁତିର୍ନାମ
ଚତୁର୍ଦ୍ଦଶୋଽଧ୍ୟାୟଃ ।।

---

୧. କମଳାସନର= ବ୍ରହ୍ମାଙ୍କର ।

# ପଞ୍ଚଦଶ ଅଧ୍ୟାୟ

ତତଃ ପଞ୍ଚଦଶେ ଧେନୁପାଳନଂ ଧେନୁକାର୍ଦ୍ଦନଂ ।
କାଳିୟକ୍ଷ୍ୱେଡ଼ତୋ ଗୋପରକ୍ଷଣଂ ଚ ନିରୂପ୍ୟତେ ।। ୧
ଅହିବକ୍ତ୍ରପ୍ରବେଶେନ ବୃଥା ଖିନ୍ନାନ୍ ସଖୀନତଃ ।
କୃଷ୍ଣଃ ପ୍ରାବେଶୟଦ୍ ପକ୍ୱଫଳଂ ତାଳାଳିକାନନମ୍ ।। ୨

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ।। ୧
ତଦନ୍ତେ ପଉଗଣ୍ଡ ବୟ । ଆଶ୍ରୟେ ରାମକୃଷ୍ଣଦ୍ୱୟ ।। ୨
ପଶୁପାଳଙ୍କ ସଙ୍ଗତରେ । ସଂମତ ହୋଇଲେ ବ୍ରଜରେ ।। ୩
ମିତ୍ରମାନଙ୍କର ସଙ୍ଗତେ । ସୁରଭିମାନଙ୍କୁ ଚରାନ୍ତେ ।। ୪
ନିଜ ପଦରେ ବୃନ୍ଦାରଣ୍ୟ । କଲେକ ଅତିଶୟ ପୁଣ୍ୟ ।। ୫
୨ ଗୋପାଳମାନେ ନିଜ ଯଶ । ଗୁଣନ୍ତେ ବେଢ଼ିଛନ୍ତି ପାଶ ।। ୬
ଅଗ୍ରତେ କରି ପଶୁମାନ । କରନ୍ତେ ବିହାରକୁ ମନ ।। ୭
ବେଣୁକୁ ବଜାନ୍ତେ ମାଧବ । ସଙ୍ଗେ ଅଛନ୍ତି ବଳଦେବ ।। ୮
ସେ ବନେ ମିଳିଲେ ତୁରିତ । ଯେ ବନ ପଶୁଙ୍କର ହିତ ।। ୯
ନାନାପ୍ରକାରେ ପୁଷ୍ପମାନ । ଯହିଁ ବନରେ ଉତପନ୍ନ ।। ୧୦
୩ ଯେ ମୃଗ ବିହଙ୍ଗ ଭ୍ରମର । କରନ୍ତି ନାଦ ମନୋହର ।। ୧୧
ତେଣେ ଯେ ହୋଇଛି ପୂରିତ । ମହତ ଲୋକର ଯେ ଚିତ୍ତ ।। ୧୨
ତା' ସମ ସ୍ୱଚ୍ଛ ଜଳ ଯହିଁ । ସେ ସରୋବରେ ମିଶିଥାଇ ।। ୧୩
କମଳଗନ୍ଧେ ପୁଣ ଯୁତ । ଏରୂପେ ଅଛି ଯହିଁ ବାତ ।। ୧୪
ସେ ବନ ଦେଖି ଭଗବାନ । ବିହରିବାକୁ କଲେ ମନ ।। ୧୫
୪ ସେ ସେହି ସ୍ଥାନମାନଙ୍କରେ । ଅରୁଣ ପଲ୍ଲବଶୋଭାରେ ।। ୧୬
ଫଳ କୁସୁମମାନଙ୍କର । ଯେ ଅଟେ ଅତିଶୟ ଭର ।। ୧୭
ସେ ଘେନି ଶିଖା ଯାହାଙ୍କର । ଲାଗୁଛି ପାଦେ ଆପଣାର ।। ୧୮
ସେ ବୃକ୍ଷମାନ ଦେଖି ତହିଁ । ଅର୍ଦ୍ଧ ହସିଲା ପ୍ରାୟ ହୋଇ ।। ୧୯
ଜ୍ୟେଷ୍ଠଭ୍ରାତଙ୍କୁ ଏ ବଚନ । କହିଲେ ପ୍ରଭୁ ଭଗବାନ ।। ୨୦

ଶ୍ରୀଭଗବାନୁବାଚ

୫ ଏ ବୃକ୍ଷମାନେ ପୁଷ୍ପଫଳ । ପୂଜାସାମଗ୍ରୀ କରି ଠୁଳ ।। ୨୧
ଯେ ତରୁଜନ୍ମ କରିଅଛି । ସେ ପାପବିନାଶକୁ ବାଞ୍ଛି ।। ୨୨
ହେ ଦେବଶ୍ରେଷ୍ଠ ସୁରପୂଜ୍ୟ । ତୁମ୍ଭର ଯେ ଚରଣାମ୍ବୁଜ ।। ୨୩
ନିଜ ଶିଖାରେ ତା' ନମନ୍ତି । ଏ ଘେନି ଧନ୍ୟ ଏ ଅଟନ୍ତି ।। ୨୪

| | | | | | |
|---|---|---|---|---|---|
| ୬ | ହେ ଆଦିପୁରୁଷ ତୁମ୍ଭର | । | ଯେ ଯଶ ଅଖିଳ ଲୋକର | ।। | ୨୫ |
| | ତାରକ ଅଟେ ଜଗତରେ | । | ତାହା ଗାଆନ୍ତେ ଏ ଭ୍ରମରେ | ।। | ୨୬ |
| | ତୁମ୍ଭଙ୍କୁ ଅନୁସରି ଆଗେ | । | ଭଜୁଅଛନ୍ତି ପ୍ରତିମାର୍ଗେ | ।। | ୨୭ |
| | ନିଶ୍ଚେ ଏମାନେ ମୁନିଗଣ | । | ତୁମ୍ଭ ଭକତମୁଖ୍ୟ ପୁଣ | ।। | ୨୮ |
| | ଆହେ ଅନଘ ! ଗୁପ୍ତ ହୋଇ | । | ତୁମ୍ଭେ ଯେ ଅଛ ବନେ ରହି | ।। | ୨୯ |
| | ନିଜ ଦେବତା ବୋଲି ଜାଣି | । | ଛାଡୁ ନାହାନ୍ତି ତେଣୁ ପୁଣି | ।। | ୩୦ |
| ୭ | ତୁମ୍ଭେ ଗୃହରେ ଆସି ଯେଣୁ | । | ପ୍ରବେଶ ହେଲ ସେ କାରଣୁ | ।। | ୩୧ |
| | ହେ ସ୍ତୁତିଯୋଗ୍ୟ ଏ ମୟୂରେ | । | ନୃତ୍ୟ କରନ୍ତି ହରଷରେ | ।। | ୩୨ |
| | ଗୋପୀଙ୍କ ପ୍ରାୟେ ମୃଗୀମାନେ | । | ତୁମ୍ଭର ପ୍ରୀତିକି ନୟନେ | ।। | ୩୩ |
| | ବିସ୍ତାର କରୁଛନ୍ତି ପୁଣ | । | ମଧୁର ନାଦେ ପିକଗଣ | ।। | ୩୪ |
| | ଧନ୍ୟ ଏ ବନବାସିଗଣ | । | ସାଧୁସ୍ୱଭାବ ଏତେ ପୁଣ | ।। | ୩୫ |
| ୮ | ଆଜ ଏ ମହୀ ଅଟେ ଧନ୍ୟ | । | ଆବର ତୃଣଲତାମାନ | ।। | ୩୬ |
| | ଚରଣସ୍ପରଶ ତୁମ୍ଭର | । | ଯେଣୁ ହୋଇଲା ତାହାଙ୍କର | ।। | ୩୭ |
| | ଲାଗନ୍ତେ ତୁମ୍ଭ ନଖମାନ | । | ଦ୍ରୁମଲତାଏ ଅତି ଧନ୍ୟ | ।। | ୩୮ |
| | ତୁମ୍ଭ ସଦୟ ଦୃଷ୍ଟିପାତେ | । | ଖଗ ମୃଗ ନଦୀ ପର୍ବତେ | ।। | ୩୯ |
| | ତୁମ୍ଭର ଭୁଜ ବେନିଙ୍କର | । | ଯେ ମଧ୍ୟଭାଗ ମନୋହର | ।। | ୪୦ |
| | ଗୋପୀମାନେ ହେଁ ଧନ୍ୟ ତେଣେ | । | ଲକ୍ଷ୍ମୀର ସ୍ପୃହା ଅଛି ଯେଣେ | ।। | ୪୧ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୯ | ଶ୍ରୀମନ୍ତ ଯଉଁ ବୃନ୍ଦାବନ | । | ତାହାକୁ ହୋଇ ପ୍ରୀତମନ | ।। | ୪୨ |
| | ଅନୁଗଙ୍କର ସହିତରେ | । | ନଦୀପର୍ବତଙ୍କ ତଟରେ | ।। | ୪୩ |
| | ଚରାନ୍ତେ ନିଜ ପଶୁମାନ | । | ବିହାର କଲେ ଭଗବାନ | ।। | ୪୪ |
| ୧୦ | ଯେ ମଦେ ଅନ୍ଧ ଭୃଙ୍ଗମାନେ | । | ସେ ପୁଣି କେହୁଣିସି ସ୍ଥାନେ | ।। | ୪୫ |
| | ଗାୟନ କରନ୍ତେ ଗାୟନ | । | କରନ୍ତି ପୁଣ ଭଗବାନ | ।। | ୪୬ |
| | ଯେ ଅନୁଗତମାନେ ଛନ୍ତି | । | ସେମାନେ ଯଶକୁ ଗାଆନ୍ତି | ।। | ୪୭ |
| | ମିତ୍ରମାନଙ୍କ ସଙ୍ଗ ହୋଇ | । | ଅଛନ୍ତି ସଂକରଷଣ ହିଁ | ।। | ୪୮ |
| ୧୦କ | [1]ଶୁକ ସୁମଧୁର ବାକ୍ୟରେ | । | ଭାଷନ୍ତେ କେହୁଣି ସ୍ଥାନରେ | ।। | ୪୯ |
| | ତାହାକୁ ହୋଇ ଅନୁଗତ | । | ସେ ଧ୍ୱନି କରନ୍ତି ଅଚ୍ୟୁତ | ।। | ୫୦ |
| | ପିକଧ୍ୱନିକି ଅନୁସରି | । | ଧ୍ୱନି କରନ୍ତି ପୁଣ ହରି | ।। | ୫୧ |
| ୧୧ | କଳହଂସଙ୍କ ନାଦ ଏହି | । | ତହିଁକି ଅନୁଗତ ହୋଇ | ।। | ୫୨ |

୧. ''ଅନୁଜଳ୍ପତି ଜଳ୍ପନ୍ତଂ କଳବାକ୍ୟୈଃ ଶୁକଂ କ୍ୱଚିତ୍ ।
କ୍ୱଚିତ୍ ସୁବଲ୍‌ଗୁ କୂଜନ୍ତମନୁକୂଜତି କୋକିଳମ୍ ।।''
ଇତି ଅଧିକଃ ପାଠଃ ।

ଶବ୍ଦ କରନ୍ତି କାହିଁ ପୁଣ । ମୟୂର କାହିଁ ନାଚନ୍ତେଣ ।। ୫୩
ହସାନ୍ତେ ଗୋପବାଳକଙ୍କୁ । ଆପଣେ କରନ୍ତି ନୃତ୍ୟକୁ ।। ୫୪
୧୨ ଯେ ପଶୁମାନେ ଗଲେ ଦୂରେ । ତାହାଙ୍କୁ କେହୁଣି ସ୍ଥାନରେ ।। ୫୫
ଯେ ମେଘଗମ୍ଭୀର ବଚନ । ହରେ ଗୋ-ଗୋପାଳଙ୍କ ମନ ।। ୫୬
ସେ ବଚନରେ ନାମ ଧରି । ଡାକନ୍ତେ ଆପଣେ ଶ୍ରୀହରି ।। ୫୭
୧୩ ମୟୂର ଭରଦ୍ୱାଜ[୧] ପିକ । କ୍ରୌଞ୍ଚ ଚକୋର ଯେ ଅନେକ ।। ୫୮
ଅନୁସରିଣ ତାଙ୍କ ନାଦ । କରନ୍ତି ପୁଣ ସେ ଶବଦ ।। ୫୯
ଯେ ଶ୍ରେଷ୍ଠ ଅଟନ୍ତି ବଳରେ । ସେ ଜନ୍ତୁମାନଙ୍କ ମଧ୍ୟରେ ।। ୬୦
ଭୟ ପାଇଲା ପ୍ରାୟ ହୋଇ । ପଳାନ୍ତି ବ୍ୟାଘ୍ର ସିଂହ ଚାହିଁ ।। ୬୧
୧୪ କେହୁଣି ସ୍ଥାନେ ଜ୍ୟେଷ୍ଠ ଭାଇ । କ୍ରୀଡ଼ାରେ ପରିଶ୍ରମ ପାଇ ।। ୬୨
ଗୋପାଳକୋଡ଼େ ଦେଇ ଶିର । ଶୟନ କରନ୍ତେ ତାଙ୍କର ।। ୬୩
ଶ୍ରମ ନିବାରନ୍ତି ସତ୍ୱରେ । ଚରଣସଂବାହନାଦିରେ ।। ୬୪
୧୫ ଗୋପାଳେ କେହୁଣିସି ସ୍ଥାନେ । ଏକ ଆରକେ ତୋଷମନେ ।। ୬୫
କରନ୍ତି ଯୁଦ୍ଧ, ନୃତ୍ୟ, ଗୀତ । ଦୁହେଁ ଧରିଣ ଦୁଇ[୨] ହସ୍ତ ।। ୬୬
ହସାନ୍ତେ ଗୋପାଳମାନଙ୍କୁ । କରନ୍ତି ପୁଣ ପ୍ରଶଂସାକୁ ।। ୬୭
୧୬ ଯେ ଶ୍ରମ ବାହୁଯୁଦ୍ଧେ ଜାତ । ତେଣେ ହୋଇଣ ନିପୀଡ଼ିତ ।। ୬୮
ଗୋପାଳଙ୍କର କ୍ରୋଡ଼େ ଶିର । ନିବେଶି ଦେବ ଦାମୋଦର ।। ୬୯
ପଲ୍ଲବଶେଯେ କେଉଁଠାଏ । ଶୁଅନ୍ତି ବୃକ୍ଷମୂଳାଶ୍ରୟେ ।। ୭୦
୧୭ ସେ ମହାତ୍ମାଙ୍କର ଚରଣ । ଘଷିଲେ ତହିଁ କେହି ପୁଣ ।। ୭୧
ଅପାପୀ କେହି ଗୋପମାନେ । ବିଞ୍ଚିଲେ ପଲ୍ଲବବ୍ୟଜନେ ।। ୭୨
୧୮ ହେ ମହାରାଜ ! ସେ କୃଷ୍ଣର । ଯେ କର୍ମମାନ ମନୋହର ।। ୭୩
ତାହାକୁ ଅନୁରୂପ ହୋଇ । ଜଗତେ ବିଖ୍ୟାତ ଅଟଇ ।। ୭୪
ସେମାନେ ମନ୍ଦେ ମନ୍ଦେ କେହି । ଗାୟନ କଲେ ପୁଣ ତହିଁ ।। ୭୫
ସ୍ନେହରେ ସେମାନଙ୍କ ଚିତ୍ତ । ଆର୍ଦ୍ର ଅଟଇ ଅବିରତ ।। ୭୬
୧୯ ପାଦପଲ୍ଲବକୁ ଯାହାର । ଲକ୍ଷ୍ମୀ ସେବଇ ନିରନ୍ତର ।। ୭୭
ନିଜ ମାୟାରେ ନିଜ ଗତି । ଯେ ପୁଣି ଗୁପ୍ତ କରିଛନ୍ତି ।। ୭୮
ଏରୂପେ ବାଳଚେଷ୍ଟା କରି । ଗୋପାଳଶିଶୁଭାବ ଧରି ।। ୭୯
ଥାଆନ୍ତେ ଗ୍ରାମଶିଶୁସଙ୍ଗେ । କରନ୍ତି ଗ୍ରାମଚେଷ୍ଟା ରଙ୍ଗେ ।। ୮୦
ମଧ୍ୟେ ମଧ୍ୟରେ କିଛି ତହିଁ । ଈଶ୍ୱରଚେଷ୍ଟା ଖ୍ୟାତ ହୋଇ ।। ୮୧
୨୦ ଶ୍ରୀଦାମନାମେ ଗୋପ ଯେହୁ । ରାମକୃଷ୍ଣଙ୍କ ସଖା ସେହୁ ।। ୮୨
ସୁବଳ ସ୍ତୋକକୃଷ୍ଣ ଆଦି । ଯେ ଆନ ଗୋପାଳେ ପ୍ରସିଦ୍ଧି ।। ୮୩
ସମସ୍ତେ ମିଶି ଏ ପ୍ରକାରେ । ବଚନ ବୋଇଲେ ପ୍ରେମରେ ।। ୮୪

---

୧. ଭରଦ୍ୱାଜ = ଭଦଳିଆ । ୨. ଦୁଇ = ଦୁହେଁ ।

୨୧ ହେ ମହାବାହୁ[1] ରାମ ରାମ । ହେ କୃଷ୍ଣ ଦୁଷ୍ଟନାଶକ୍ଷମ ॥ ୮୫
ଏହି ନିକଟେ ମହାବନ । ତାଳସମୂହରେ ଯେ ପୂର୍ଣ୍ଣ ॥ ୮୬
୨୨ ବହୁତ ଫଳ ସେ ବନରେ । ପଡ଼ିଅଛନ୍ତି ଧରଣୀରେ ॥ ୮୭
ପଡ଼ୁଅଛନ୍ତି ହିଁ ଅନେକ । କେବଳ ଦୁରାତ୍ମା ଧେନୁକ ॥ ୮୮
ସେ ବନ ନିରୋଧ କରିଛି । ଏଣୁ ଅଗମ୍ୟ ହୋଇଅଛି ॥ ୮୯
୨୩ ହେ ରାମ କୃଷ୍ଣ ସେ ଅସୁର । ଧରିଛି ଗର୍ଦ୍ଦଭ ଆକାର ॥ ୯୦
ବଳ ତାହାର ଅପ୍ରମିତ । ବହୁତ ଜ୍ଞାତିରେ ବେଷ୍ଟିତ ॥ ୯୧
ଯେତେ ଅଛନ୍ତି ଜ୍ଞାତିମାନ । ବଳରେ ତାହାରି ସମାନ ॥ ୯୨
୨୪ ମନୁଷ୍ୟମାନଙ୍କୁ ଆହାର । କରଇ ଯେଣୁ ସେ ଅସୁର ॥ ୯୩
ତେଣୁ ହେ ରିପୁବିନାଶନ । ଭୟେ ନ ଖାନ୍ତି କେହି ଜନ ॥ ୯୪
କିବା ମନୁଷ୍ୟ ପଶୁଗଣ । କି ଅବା ପକ୍ଷିସଂଘ ପୁଣ ॥
୨୫ | ଏଣୁ ସୁଗନ୍ଧି ଫଳମାନେ । ବହୁତ ଅଛନ୍ତି ସେ ବନେ ॥ ୯୫
୨୬ | ଏ ଯେ ସୁଗନ୍ଧ ପ୍ରସରଇ । ଆମ୍ଭେ ତ ତାହା ଘେନୁଥାଇ ॥ ୯୬
ହେ କୃଷ୍ଣ ! ଗନ୍ଧରେ ଲୋଭିତ । ହୋଇଛି ଯେଣୁ ଆମ୍ଭ ଚିତ୍ତ ॥ ୯୭
ଏ ଘେନି ସେ ଫଳମାନଙ୍କୁ । ପ୍ରଦାନ କର ତୁ ଆମ୍ଭଙ୍କୁ ॥ ୯୮
ହେ ରାମ ! ଅତିଶୟ ହୋଇ । ଆମ୍ଭର ବାଞ୍ଛା ଅଛି ତହିଁ ॥ ୯୯
ଯେବେ ଯୋଗାଇ ତୁମ୍ଭ ମନ । କର ସେ ସ୍ଥାନକୁ ଗମନ ॥ ୧୦୦
୨୭ ଏ ରୂପେ ମିତ୍ରମାନଙ୍କର । ବଚନ କରିଣ ଗୋଚର ॥ ୧୦୧
ମିତ୍ରଙ୍କର ଯେ ପ୍ରିୟକଥା । କରିବା ଅର୍ଥେ ତା' ସର୍ବଥା ॥ ୧୦୨
ତାଳବନକୁ ହସି କରି । ଗଲେ ସଂକରଷଣ ହରି ॥ ୧୦୩
ଗୋପବାଳକ[2] ସଙ୍ଗତରେ । ବେଢ଼ିଛନ୍ତି ସେ ସମୟରେ ॥ ୧୦୪
୨୮ ବନେ ପ୍ରବେଶ ହୋଇ ବଳ । ବେନି ବାହୁରେ ତତକାଳ ॥ ୧୦୫
କମ୍ପାନ୍ତେ ତାଳତରୁମାନ । ବଳେ ମତ୍ତଗଜ ଯେସନ ॥ ୧୦୬
ଫଳମାନଙ୍କୁ ଧରଣୀରେ । ନିପାତ କଲେ ସେ ସତ୍ୱରେ ॥ ୧୦୭
୨୯ ପଡ଼ିଲା ଫଳମାନଙ୍କର । ଶବଦ ଶୁଣିଣ ସତ୍ୱର ॥ ୧୦୮
ସେ ଖରଦୈତ୍ୟ ମହାବଳ । ବୃକ୍ଷସହିତେ ମହୀତଳ ॥ ୧୦୯
କମ୍ପାନ୍ତେ ଅତିବେଗ ହୋଇ । ଧାଇଁଲା ରାମକୃଷ୍ଣ ଯହିଁ ॥ ୧୧୦
୩୦ ଖର ଦାନବ ଅତିବେଗେ । ଆସିଣ ପଛପାଦଯୁଗେ ॥ ୧୧୧
ବଳଭଦ୍ରଙ୍କ ବକ୍ଷଦେଶେ । ପ୍ରହାର କରି ଅତିରୋଷେ ॥ ୧୧୨
କୁତ୍ସିତ ଧ୍ୱନି କରନ୍ତେଣ । ଧାଇଁଲା ସକଳ ଦିଗେଣ ॥ ୧୧୩
୩୧ ହେ ନୃପ ! ଖରଦୈତ୍ୟ ପୁଣ । ସକ୍ରୋଧ ହୋଇଣ ମିଳିଣ ॥ ୧୧୪

୧. ମହାସତ୍ତ୍ୱ, ମହାସତ୍ତ୍ୱ ।　　୨. ଗୋପାଳବାଳ । (ପାଠାନ୍ତର) ।

ରହିଲା ପ୍ରତିମୁଖ ହୋଇ । ପଶ୍ଚିମ ଚରଣ ଯେ ଦୁଇ ॥ ୧୧୫
ରାମଙ୍କୁ ମାରିବା ନିମିତ୍ତେ । ପ୍ରହାର କଲା ରୋଷଚିତ୍ତେ ॥ ୧୧୬
୩୨ ସେ ରାମ ଏକହସ୍ତେ କରି । ତାର ଚରଣଯୁଗ ଧରି ॥ ୧୧୭
ବୁଲାଇ ତାଳର ଶିଖରେ । ଫିଙ୍ଗିଲେ ପୁଣ ରୋଷଭରେ ॥ ୧୧୮
ଭ୍ରମଣ କରାନ୍ତେ ତାହାର । ଜୀବନ ହୋଇଲା ବାହାର ॥ ୧୧୯
୩୩ ବିସ୍ତାର ଅଟେ ଯାର ଶିର । ସେ ମହାତାଳ ରାକ୍ଷସର ॥ ୧୨୦
ଦେହରେ ଆଘାତକୁ ପାଇ । କମ୍ପନ୍ତେ ପାଶେ ଥିଲା ଯେହି ॥ ୧୨୧
କମ୍ପାନ୍ତେ ସେ ବୃକ୍ଷକୁ ପୁଣ । ଭଗ୍ନ ହୋଇଲା ତତକ୍ଷଣ ॥ ୧୨୨
ତା' ଲାଗି ଆନ ଭଗ୍ନ ହେଲା । ସେ ଆନ ଦ୍ରୁମକୁ ଭାଙ୍ଗିଲା ॥ ୧୨୩
୩୪ ଯେବଣ ଖରଶରୀରକୁ । ରାମ ଫିଙ୍ଗିଲେ ଉପରକୁ ॥ ୧୨୪
ତେଣେ ଯେ ତାଳ ଭଗ୍ନ ହେଲା । ତା' ଲାଗି ଆରକ ଭାଜିଲା ॥ ୧୨୫
କମ୍ପିଲେ ସବୁ ତାଳମାନେ । ପ୍ରଚଣ୍ଡ ପବନେ ଯେସନେ ॥ ୧୨୬
୩୫ ସକଳଜଗତ-ଈଶ୍ୱର । ଯଉଁ ଅନନ୍ତ ଯାହାଠାର ॥ ୧୨୭
ଜଗତ ଓତପ୍ରୋତ ହୋଇ । ତନ୍ତୁରେ ପଟପ୍ରାୟ ରହି ॥ ୧୨୮
ତାହାଙ୍କଠାରେ ଏ ଚରିତ । ହେ ନୃପ ! ନୁହଇ ବିଚିତ୍ର ॥ ୧୨୯
୩୬ ତଦନ୍ତେ ଧେନୁକର ଯେତେ । ଜ୍ଞାତିଏ ଥିଲେ ସେ ସମସ୍ତେ ॥ ୧୩୦
ହତ ହୁଅନ୍ତେ ଆପଣାର । ବନ୍ଧୁ ଧେନୁକ ସେ ଅସୁର ॥ ୧୩୧
ରାମକୃଷ୍ଣଙ୍କୁ ଉଦ୍ଦେଶିଣ । କ୍ରୋଧେ ଧାଇଁଲେ ତତକ୍ଷଣ ॥ ୧୩୨
୩୭ ହେ ନୃପ ! ସେ ସେହି ଅସୁରେ । ଆସନ୍ତେ ତାହାଙ୍କୁ ଲୀଳାରେ ॥ ୧୩୩
ଧରିଣ ପଛପାଦ ଦୁଇ । ରାମକେଶବ ବେନି ଭାଇ ॥ ୧୩୪
ଯେ ତାଳଦ୍ରୁମଙ୍କ ଶିଖର । ତହିଁକି ଫିଙ୍ଗିଲେ ସତ୍ୱର ॥ ୧୩୫
୩୮ ତାଳଙ୍କ ଅଗ୍ରରେ ସହିତ । ଯେ ଦୈତ୍ୟଙ୍କର ଦେହ ହତ ॥ ୧୩୬
ଶୋଭା ଦିଶିଲା ତେଣେ ମହୀ । ତାଳସମୂହେ ପୂର୍ଣ୍ଣ ହୋଇ ॥ ୧୩୭
ମେଘମାନଙ୍କରେ ଯେସନ । ଆକାଶ ଦିଶଇ ଶୋଭନ ॥ ୧୩୮
୩୯ ସେ ରାମକୃଷ୍ଣ ବେନିଙ୍କର । ଯେ କର୍ମ ଅଟେ ବଳିୟାର ॥ ୧୩୯
ତା' ଦେଖି ଦେବ ଆଦି ଯେତେ । ପୁଷ୍ପ ବରଷିଲେ ସମସ୍ତେ ॥ ୧୪୦
ବିବିଧ ବାଦ୍ୟ ବଜାଇଲେ । ଭକ୍ତିରେ ସ୍ତୁତିମାନ କଲେ ॥ ୧୪୧
୪୦ ଧେନୁକ ବିନାଶ ଯହିଁରେ । ସେ ବନେ ଏଥୁଁ ଅନନ୍ତରେ ॥ ୧୪୨
ମନୁଷ୍ୟେ ନିର୍ଭୟ ହୋଇଣ । ଭକ୍ଷିଲେ ତାଳମାନ ପୁଣ ॥ ୧୪୩
ଯେ ପଶୁମାନେ ପୁଣ ଥିଲେ । ସେ ତୃଣମାନଙ୍କୁ ଚରିଲେ ॥ ୧୪୪
୪୧ ଯେ ଗୋପମାନେ ଅନୁଗତ । ସ୍ତୁତି କରନ୍ତେ ସେ ସମସ୍ତ ॥ ୧୪୫
ଯେ ପୁଣ୍ୟଶ୍ରବଣକୀର୍ତ୍ତନ । କମଳଦଳବିଲୋଚନ ॥ ୧୪୬
ସେ କୃଷ୍ଣ ମିଳିଲେ ବ୍ରଜରେ । ଜ୍ୟେଷ୍ଠ ଭାଇଙ୍କ ସଙ୍ଗତରେ ॥ ୧୪୭

୪୨ ଗୋରଜଯୁତ କେଶ ଯାର । ଶିଖଣ୍ଡବଦ୍ଧ ମନୋହର ॥ ୧୪୮
ବନକୁସୁମେ ଯହିଁ ପୁଣ । ରୁଚିର ଯାହାର ଈକ୍ଷଣ ॥ ୧୪୯
ମନୋଜ୍ଞ ଅଟେ ଯାହା ହାସ । ଗୋପାଳେ ବେଢ଼ି ଚାରିପାଶ ॥ ୧୫୦
ଯା' କୀର୍ତ୍ତି କରନ୍ତି ଗାୟନ । ଯେ କରୁଛନ୍ତି ବେଣୁସ୍ୱନ ॥ ୧୫୧
ଦରଶନକୁ ସେ କୃଷ୍ଣର । ଉତ୍କଣ୍ଠାନେତ୍ର ଯାହାଙ୍କର ॥ ୧୫୨
ସେ ଗୋପୀମାନେ ମେଳ ହୋଇ । ପ୍ରବେଶ ହେଲେ ମାର୍ଗେ ଯାଇଁ ॥ ୧୫୩
୪୩ ମୁକୁନ୍ଦବଦନପଦ୍ମରେ । ଯେ ମଧୁ ତା' ନେତ୍ରଭୃଙ୍ଗରେ ॥ ୧୫୪
ପାନ କରିଣ ବ୍ରଜନାରୀ । ଦିବସେ ବିରହରୁଁ କରି ॥ ୧୫୫
ଯେ ତାପ ହୋଇଥିଲା ଜାତ । ତକ୍ଷଣେ କଲେ ତାହା ହତ ॥ ୧୫୬
ଲଜ୍ଜା ସହିତେ ଯଉଁ ହାସ । ତେଣେ ଯେ ବିନୟ ପ୍ରକାଶ ॥ ୧୫୭
ତେଣେ କଟାକ୍ଷମୋକ୍ଷ ଯେହି । ତାହାଙ୍କ ସତକାର ସେହି ॥ ୧୫୮
ତାହା ପାଇଣ ହୃଷୀକେଶ । ଗୋଷ୍ଠରେ ହୋଇଲେ ପ୍ରବେଶ ॥ ୧୫୯
୪୪ ପୁତ୍ରବତ୍ସଳା ଯେଣୁ ପୁଣି । ଯଶୋଦା ଆବର ରୋହିଣୀ ॥ ୧୬୦
ସେ ଦୁହେଁ ବେନି ସୁତଙ୍କର । ଯଉଁ କାଳରେ ଯେ ବେଭାର ॥ ୧୬୧
ଯେ ଯାହା ବାଞ୍ଛା ଅନୁସାରେ । ବିଧାନ କଲେ ସେ କାଳରେ ॥ ୧୬୨
୪୫ ମର୍ଦ୍ଦନ ସ୍ନାନ ଆଦି ହୋଇ । ଯେ ବିଧି ତେଣେ ସେହୁ ଦୁଇ ॥ ୧୬୩
ମାର୍ଗଶ୍ରମକୁ କଲେ ଦୂର । ପିନ୍ଧିଣ ରୁଚିର ଅମ୍ବର ॥ ୧୬୪
ଉତ୍ତମ କୁସୁମମାଳାରେ । ମଣ୍ଡିତ ହେଲେ ଚନ୍ଦନରେ ॥ ୧୬୫
୪୬ ଯେବଣ ସ୍ୱାଦୁ ଅନ୍ନ ପୁଣ । ଜନନୀ ଦେଲେ ତା' ଭୁଞ୍ଜିଣ ॥ ୧୬୬
ପାଳନା ଲଭି ମାତାଙ୍କରେ । ମିଳିଲେ ଉତ୍ତମ ଶଯ୍ୟାରେ ॥ ୧୬୭
ବ୍ରଜରେ ସୁଖରେ ଶୟନ । କଲେ ସେ ରାମ ଭଗବାନ ॥ ୧୬୮
୪୭ ହେ ନୃପ ! ଏହି ରୂପେ ନିତି । ବୃନ୍ଦାବନରେ ଯେ ଭ୍ରମନ୍ତି ॥ ୧୬୯
ସେ କୃଷ୍ଣ କେହୁଣି ଦିନରେ । ବଳଭଦ୍ରଙ୍କ ବିହୁନରେ ॥ ୧୭୦
ବେଢ଼ି ଅଛନ୍ତି ମିତ୍ରଜନ । କଲେ କାଳିନ୍ଦୀକି ଗମନ ॥ ୧୭୧
୪୮ ଏଥୁ ଅନ୍ତରେ ଗ୍ରୀଷ୍ମଜାତ । ଆତପେ ହୋଇଣ ପୀଡ଼ିତ ॥ ୧୭୨
ଧେନୁଏ ଗୋପାଳେ ସକଳ । ତୃଷାରେ ହୋଇଣ ବିକଳ ॥ ୧୭୩
ବିଷଦୂଷିତ ଦୁଷ୍ଟ ନୀର । ପିଇଲେ କାଳିନ୍ଦୀନଦୀର ॥ ୧୭୪
୪୯ ସେ ବିଷଜଳ କରି ପାନ । ଦଇବେ ହୋଇ ଅଚେତନ ॥ ୧୭୫
ହେ ନୃପ ! ସମସ୍ତେ ହେଁ ମଲେ । ସଲିଳନିକଟେ ପଡ଼ିଲେ ॥ ୧୭୬
୫୦ ଯେ ଯୋଗେଶ୍ୱରମାନଙ୍କର । ଉପରେ ଅଟନ୍ତି ଈଶ୍ୱର ॥ ୧୭୭
ସେ କୃଷ୍ଣ ତାଙ୍କୁ ସେ ପ୍ରକାରେ । ଦେଖି ଅମୃତକଟାକ୍ଷରେ ॥ ୧୭୮
ଦେଲେ ତାହାଙ୍କର ଜୀବିତ । ଯେଣୁ ଆପଣେ ତାଙ୍କ ନାଥ ॥ ୧୭୯

୫୧ ସେ ଧେନୁ ଗୋପାଳ ସକଳ । ସ୍ମୃତିକି ଲଭି ତତକାଳ ॥ ୧୮୦
ସଲିଳନିକଟୁଁ ଉଠିଣ । ଏକ ଆରକେ ଚାହାଁନ୍ତେଣ ॥ ୧୮୧
କି ରୂପେ ଲଭିଲୁଁ ଜୀବିତ । ବୋଲି ହୋଇଲେ ସୁବିସ୍ମିତ ॥ ୧୮୨
୫୨ ହେ ନୃପ ! ବିଷ ପିଇ ପ୍ରାଣ । ଯେ ଛାଡ଼ିଥିଲେ ତତକ୍ଷଣ ॥ ୧୮୩
ପୁଣ ଆପଣାର ଜୀବିତ । କୃଷ୍ଣାନୁଗ୍ରହଦୃଷ୍ଟିପାତ ॥ ୧୮୪
ଏମନ୍ତ ରୂପେ ଅନୁମାନ । କଲେ ସମସ୍ତ ଗୋପଜନ ॥ ୧୮୫
କାଳିନ୍ଦୀଜଳେ ବିଷପାନେ । ଯେ ମଲେ ଧେନୁଶିଶୁମାନେ ॥ ୧୮୬
ତାଙ୍କୁ ସେ ଜିଆଇଲେ ହରି । ତାଙ୍କ ଚରଣ ଚିତ୍ତେ ଧରି ॥ ୧୮୭
ହରଷ ଦୀନବନ୍ଧୁମତି । ଯେଣେ ଖଣ୍ଡିବ ଭବଭୀତି ॥ ୧୮୮

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଧେନୁକବଧୋ
ନାମ ପଞ୍ଚଦଶୋଽଧ୍ୟାୟଃ ॥

## ଷୋଡ଼ଶ ଅଧ୍ୟାୟ

ଷୋଡ଼ଶେ କାଳିୟସ୍ୟୋକ୍ତୋ ନିଗ୍ରହୋ ଯମୁନାହ୍ରଦେ ।
ତତ୍ପତ୍ନୀଭିଃ ସ୍ତୁତେନାଥ କୃଷ୍ଣେନାନୁଗ୍ରହଃ କୃତଃ ॥ ୧
ହତ୍ୱା ରାସଭଦୈତେୟାନ୍ ଜଗ୍ଧ୍ୱା ତାଳଫଳାନ୍ୟଲମ୍ ।
ପ୍ରୀତୋଽନୃତ୍ୟଦ୍ ଫଣାରଙ୍ଗେ କାଳିୟସ୍ୟ କଳାନିଧିଃ ॥ ୨

ଶ୍ରୀଶୁକ ଉବାଚ

୧ ଯମୁନା କାଳିୟେ ଦୂଷିତ । ହୋଇଲା ଦେଖିଣ ଏମନ୍ତ ॥ ୧
ତାର ବିଶୁଦ୍ଧି ନିଜ ମନ । ବାଞ୍ଛା କରନ୍ତେ ଭଗବାନ ॥ ୨
ସର୍ପକୁ ଜଳମଧ୍ୟୁଁ ପୁଣ । ବାହାର କଲେ ତତକ୍ଷଣ ॥ ୩

ଶ୍ରୀରାଜୋବାଚ

୨ ଅଗାଧସଲିଳମଧ୍ୟର । ରହି ଯେ ଥିଲା ବିଷଧର ॥ ୪
ବହୁତ ଯୁଗ ସେ ଜଳରେ । ରହିଥିଲା ସେ କି ହେତୁରେ ॥ ୫
କିରୂପେ ତାହାକୁ ନିଗ୍ରହ । କଲେ ଶ୍ରୀକୃଷ୍ଣ ବିପ୍ର ! କହ ॥ ୬
୩ ହେ ବିପ୍ର ! ଯେ ଅପରିଚ୍ଛିନ୍ନ । ସ୍ୱଚ୍ଛନ୍ଦବୃତ୍ତି ଭଗବାନ ॥ ୭
ଧେନୁପାଳନେ ତାହାଙ୍କର । ଯଉଁ ଚରିତ ଅଟେ ସାର ॥ ୮
ସେ ଅଟେ ପ୍ରତ୍ୟକ୍ଷେ ଅମୃତ । କେ ହେବ ଶୁଣି ତା' ତୃପତ ॥ ୯

ଶ୍ରୀଶୁକ ଉବାଚ

୪ କାଳିନ୍ଦୀସଲିଳମଧ୍ୟର । ହ୍ରଦ ହୋଇଲା କାଳିୟର ॥ ୧୦

ବିଷ-ଅଗ୍ନିରେ ଯାର ନୀର । ତପତ ହୋଏ ନିରନ୍ତର ॥ ୧୧
ପକ୍ଷିଏ ଉଡ଼ନ୍ତେ ଉପରେ । ପଡ଼ନ୍ତି ଯେବଣ ହ୍ରଦରେ ॥ ୧୨
୫ ବିଷଉଦକଉର୍ମିଗତ । ଯେ ବାତ ଜଳବିନ୍ଦୁଯୁତ ॥ ୧୩
ତାର ସ୍ପରଶେ ପ୍ରାଣୀ ଯେତେ । ସ୍ଥାବର ଜଙ୍ଗମ ସହିତେ ॥ ୧୪
ତୀରରେ ହୋଇଥାନ୍ତି ସ୍ଥିତ । ସେମାନେ ଛାଡ଼ନ୍ତି ଜୀବିତ ॥ ୧୫
୬ ଯାହାର ବେଗ ଅତି ଖର । ବିଷ ଅଟଇ ବୀର୍ଯ୍ୟ ଯାର ॥ ୧୬
ଏ ରୂପେ ସର୍ପକୁ ଦେଖିଣ । ତା' ଯୁକ୍ତ ନଦୀକି ସେ ପୁଣ ॥ ୧୭
ଖଳମାନଙ୍କର ସଂହାର । ନିମିତ୍ତେ ଯାହା ଅବତାର ॥ ୧୮
ସେ କୃଷ୍ଣ ଅତି ଉଚ୍ଚ ହୋଇ । କଦମ୍ବ ବୃକ୍ଷ[୧] ଯେ ଅଟଇ ॥ ୧୯
ତହିଁକି କରି ଆରୋହଣ । ବସ୍ତ୍ରକୁ ନିବିଡ଼େ ଭିଡ଼ିଣ ॥ ୨୦
ନିଜ ବାହୁକୁ କରତଳେ । ମାରିଣ ବିଷଯୁକ୍ତ ଜଳେ ॥ ୨୧
ପଡ଼ିଲେ କଦମ୍ବବୃକ୍ଷର । ଉପରୁ ହୋଇଣ ସତ୍ୱର ॥ ୨୨
୭ ପୁରୁଷଶ୍ରେଷ୍ଠ ଭଗବାନ । ତାଙ୍କର ଯଉଁ ନିପତନ ॥ ୨୩
ସେ ବେଗବଶୁଁ ଜଳଗତ । ଉରଗଙ୍କର କ୍ଷୋଭ ଜାତ ॥ ୨୪
ସେ ସର୍ପଙ୍କର ବିଷେ ଯହିଁ । ସଲିଳ ଅଛି ଯୁତ ହୋଇ ॥ ୨୫
ବିଷକଷାୟେ ଭୟଙ୍କର । ଲହରୀ ହୋଇଛି ଯାହାର ॥ ୨୬
ସେ ସର୍ପହ୍ରଦ ସବୁଦିଗେ । ବ୍ୟାପିଲା ଧନୁଶତବେଗେ ॥ ୨୭
ହେ ନୃପ ! ଯା' ବଳ ଅନନ୍ତ । ତାକୁ ଏକଥା କି ଅଦ୍‌ଭୁତ ॥ ୨୮
୮ ଶ୍ରେଷ୍ଠମାତଙ୍ଗପ୍ରାୟ ଯାର । ବିକ୍ରମ ଅଟେ ବଳିୟାର ॥ ୨୯
ସେ ହରି ସେ ହ୍ରଦଭିତରେ । ଲୀଳାଏ କରନ୍ତେ ବିହାର ॥ ୩୦
ଭୁଜଦଣ୍ଡରୁ ତାହାଙ୍କର । ଯେ ଧ୍ୱନି ହେଲା ସଲିଳର ॥ ୩୧
ହେ ନୃପ ! କରିଣ ଶ୍ରବଣ । ସ୍ୱଗୃହପରାଭବ ପୁଣ ॥ ୩୨
ଦେଖିଣ ସେ କଥା ନ ସହି । ବାହାର ହେଲା ଜଳୁଁ ଅହି ॥ ୩୩
୯ ଯେହୁ ସୁନ୍ଦର ସୁକୁମାର । ଘନନିର୍ମଳ-କଳେବର ॥ ୩୪
ଶ୍ରୀବତ୍ସସଂଯୁତ ଚଞ୍ଚଳ । ଯାହାର ପୀତବର୍ଣ୍ଣ ଚେଳ ॥ ୩୫
ମନ୍ଦ ହାସରେ ମନୋହର । ବଦନ ଦିଶଇ ଯାହାର ॥ ୩୬
କମଳ-ଉଦର ସମାନ । ଯାହାର ଚରଣ ଶୋଭନ ॥ ୩୭
ନିର୍ଭୟ ହୋଇ ଜଳେ ଯେହି । ବିହରୁଛନ୍ତି ତାଙ୍କୁ ଅହି ॥ ୩୮
ଦଂଶିଣ ମର୍ମମାନଙ୍କରେ । ବେଢ଼ିଲା ନିଜ ଶରୀରରେ ॥ ୩୯

---

୧. ଶ୍ରୀକୃଷ୍ଣଙ୍କ ଭାବୀ ଚରଣସ୍ପର୍ଶଭାଗ୍ୟରୁ ତାହା' ତୀରରେ ସେହି ବୃକ୍ଷଟି କେବଳ ଶୁଷ୍କ ହୋଇ ନ ଥିଲା । ଅମୃତ ଆହରଣକାରୀ ଗରୁଡ଼ଙ୍କ ସମ୍ପର୍କରୁ ଶୁଷ୍କ ହୋଇ ନ ଥିଲା ବୋଲି ମଧ୍ୟ ଅନ୍ୟ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି ।

୧୦ ସର୍ପଶରୀରେ ଯେ ବେଷ୍ଟିତ । ଚେଷ୍ଟା ହିଁ ହୋଇଅଛି ହତ ।। ୪୦
କୃଷ୍ଣଙ୍କୁ ଏ ରୂପେ ଦେଖିଣ । ସେ କୃଷ୍ଣ ଯାଙ୍କ ପ୍ରିୟ ପୁଣ ।। ୪୧
ସେ ସଖା ପଶୁପାଳମାନେ । ଅତ୍ୟନ୍ତ ଆର୍ତ୍ତଖେଦ ମନେ ।। ୪୨
ସେ କୃଷ୍ଣଠାରେ ଆତ୍ମା ମିତ୍ର । ଯେ ଅର୍ଥ କାମ ଯେ କଳତ୍ର ।। ୪୩
ଏହା ଯେ କଲେ ସମର୍ପଣ । ସେ ଦୁଃଖ ଶୋକ ଭୟେ ପୁଣ ।। ୪୪
ନିଜ ବୁଦ୍ଧିକି ହରାଇଲେ । ସମସ୍ତେ ଭୂମିରେ ପଡ଼ିଲେ ।। ୪୫
୧୧ ଧେନୁ ବୃଷଭ ବତ୍ସାମାନେ । ଦୁଃଖିତ ହୋଇଣ ସେ ସ୍ଥାନେ ।। ୪୬
ନିଜ ଚକ୍ଷୁକୁ କୃଷ୍ଣଠାରେ । ଅର୍ପିତ କରି ଶୋକଭରେ ।। ୪୭
ରୋଦନ କଲା ପ୍ରାୟ ହୋଇ । ସମସ୍ତେ ରହିଲେ ସେଠାଇଁ ।। ୪୮
୧୨ ଭୂକମ୍ପ ଉଲ୍‌କାପାତ ପୁଣ । ବାମଲୋଚନର ସ୍ଫୁରଣ ।। ୪୯
ଏ ରୂପେ ମହା ଉତପାତ । ଭୂମି-ଆକାଶ-ଦେହେ ଜାତ ।। ୫୦
ବ୍ରଜରେ ସଂଭୂତ ହୋଇଲେ । ନିକଟେ ଭୟ ଯେ କହିଲେ ।। ୫୧
୧୩ ନନ୍ଦକୁ ଆଦି ହୋଇ ଯେତେ । ଗୋପାଳେ ଥିଲେ ସେ ସମସ୍ତେ ।। ୫୨
ଚରାଇବାକୁ ନିଜ ଧେନୁ । ଶ୍ରୀକୃଷ୍ଣ ଗଲେ ରାମବିନୁ ।। ୫୩
ଏ କଥା ଗୋଚର କରିଣ । ଉତପାତକୁ ଦେଖି ପୁଣ ।। ୫୪
ଭୟସ୍ୱକାଶୁଁ ଉଦବେଗ । ଲଭିଲେ ଅତିଶୟ ବେଗ ।। ୫୫
୧୪ କୃଷ୍ଣର ଠାରେ ପ୍ରାଣ ମନ । କରିଛନ୍ତି ଯେ ନିବେଦନ ।। ୫୬
ଯେ ପୁଣ ଦୁଃଖ-ଶୋକ-ଭୟ । ତେଣେ ଆତୁର ଅତିଶୟ ।। ୫୭
କୃଷ୍ଣର ମହିମାକୁ ଯେଣୁ । ଜାଣି ନାହାନ୍ତି ସେ କାରଣୁଁ ।। ୫୮
ସେ ଉତପାତୁଁ ଗୋବିନ୍ଦର । ନିଧନ ମଣିଣ ମନର ।। ୫୯
୧୫ ବାଳକ ବୃଦ୍ଧ ସ୍ତିରୀ ଯେତେ । ଅତିବତ୍ସଳ ସେ ସମସ୍ତେ ।। ୬୦
କୃଷ୍ଣଦରଶନେ ଲାଳସ । ଅଟେ ସେମାନଙ୍କ ମାନସ ।। ୬୧
ଗୋକୁଳୁଁ ହୋଇଲେ ନିର୍ଗତ । ହୋଇଅଛନ୍ତି ସେ ଦୁଃଖିତ ।। ୬୨
୧୬ ସେରୂପେ କାତର କରିଣ । ସେ ସମସ୍ତଙ୍କୁ ଦେଖି ପୁଣ ।। ୬୩
ହସିଣ ଦେବ ନୀଳାମ୍ବର[୧] । କିଛି ନ କହିଲେ ଉତ୍ତର ।। ୬୪
ଯଉଁ ପ୍ରଭାବ ଅନୁଜର । ତା' କରିଛନ୍ତି ସେ ଗୋଚର ।। ୬୫
୧୭ ଯେ କୃଷ୍ଣ ପ୍ରିୟ ଆପଣାର । ତାଙ୍କୁ ଖୋଜନ୍ତେ ସେ ସତ୍ୱର ।। ୬୬
ଯେଣେ ଲକ୍ଷିତ ଭଗବାନ । ଏମନ୍ତ ଯଉଁ ପାଦଚିହ୍ନ ।। ୬୭
ତେଣେ ସୂଚିତ ସୁମାର୍ଗରେ । ମିଳିଲେ ଯମୁନାତଟରେ ।। ୬୮
୧୮ ହେ ନୃପ ! ସେ ସେହିସ୍ଥାନରେ । କମଳ-ଯବ-ଅଙ୍କୁଶରେ ।। ୬୯
ଧ୍ୱଜ-ବଜ୍ରରେ ଉପପନ୍ନ । କୃଷ୍ଣର ଯଉଁ ପାଦଚିହ୍ନ ।। ୭୦

---

୧. ବଳରାମ ।

[1]ତାହାକୁ ଧେନୁମାନଙ୍କର । ଯେ ଚିହ୍ନ ଯେ ବା ଇତରର ॥
ତହିଁ ମଧ୍ୟରେ ନିରୀକ୍ଷନ୍ତେ । ଗମନ କଲେ ସେ ତୁରିତେ ॥
୧୯ ଦୂରୁହୁଁ ଦେଖିଲେ ସର୍ପର । ଦେହେ ବେଷ୍ଟିତ ଯା' ଶରୀର ॥
ଦେହରେ ଚେଷ୍ଟା କିଛି ନାହିଁ । ଏରୂପେ ସେ କୃଷ୍ଣଙ୍କୁ ଚାହିଁ ॥
ଗୋପାଳେ ଜ୍ଞାନହୀନ ହୋଇ । ଜଳର ନିକଟରେ ଥାଇ ॥
ପଶୁମାନଙ୍କର ସହିତେ । କାନ୍ଦୁ ଅଛନ୍ତି ଶୋକଚିତ୍ତେ ॥
ଏମନ୍ତ ଦେଖି ଆର୍ତ୍ତ ହେଲେ । ଅତ୍ୟନ୍ତ ମୋହକୁ ଲଭିଲେ ॥
୨୦ କୃଷ୍ଣର ଠାରେ ଅନୁଦିନ । ସରାଗ ଯାହାଙ୍କର ମନ ॥
ସେ ଗୋପୀମାନେ ଗୋବିନ୍ଦର । ଯେ ମିତ୍ରଭାବ ଯେ ଇତର ॥
ସମନ୍ଦହାସ[2] ବିଲୋକନ । ଯେ ପୁଣ ମଧୁର ବଚନ ॥
ସେମାନ କରନ୍ତେ ସ୍ମରଣ । ସେ ପ୍ରିୟତମ କୃଷ୍ଣ ପୁଣ ॥
ଗ୍ରସ୍ତ ହୁଅନ୍ତେ ଭୁଜଙ୍ଗରେ । ତାପିତ ହେଲେ ଦୁଃଖଭରେ ॥
ପ୍ରିୟ ବିହୁନେ ତ୍ରିଭୁବନ । ଦେଖିଲେ ଏ[3] ସମସ୍ତ ଶୂନ୍ୟ ॥
୨୧ ପୁତ୍ରବିଷୟେ ତାପଚିନ୍ତା । କରୁଛନ୍ତି ଯେ କୃଷ୍ଣମାତା ॥
ବ୍ୟଥାକୁ ତାହାଙ୍କ ସମାନ । ଘେନି ଅଛନ୍ତି ନିଜ ମନ ॥
ଯେତେକ ଯେତେକ ବ୍ରଜର । ପ୍ରିୟ କଥା ସେ ଶ୍ରୀକୃଷ୍ଣର ॥
ସେମାନ କରନ୍ତେ ଗାୟନ । ସ୍ରବୁଛି ଅଶ୍ରୁଜଳମାନ ॥
ନେତ୍ରକୁ କୃଷ୍ଣର ଆନନେ । ଅର୍ପିତ କରି ଗୋପୀମାନେ ॥
ମଲା ଲୋକର ପ୍ରାୟ ହୋଇ । ପ୍ରତୀତ ହେଲେ ପୁଣ ତହିଁ ॥
୨୨ କୃଷ୍ଣ ଅଟନ୍ତି ଯାଙ୍କ ପ୍ରାଣ । ସେ ନନ୍ଦ ଆଦିମାନେ ପୁଣ ॥
ପ୍ରବେଶ ହୁଅନ୍ତେ ହ୍ରଦକୁ । ସେ ରାମ ନିବାରିଲେ ତାଙ୍କୁ ॥
ଯେ ଅନୁଭାବ ଶ୍ରୀକୃଷ୍ଣର । ତା' ସେ କରିଛନ୍ତି ଗୋଚର ॥
୨୩ ମୋହ ବିହୁନେ ଆନ ହୋଇ । ଯଉଁମାନଙ୍କ ଗତି ନାହିଁ ॥
ଏରୂପେ ଗୋକୁଳକୁ ଚାହିଁ । ସ୍ତିରୀବାଳକଯୁତ ହୋଇ ॥
ମୋର ହେତୁରୁ ଏ ଦୁଃଖିତ । ଏମନ୍ତ ଜାଣି ନିଜ ଚିତ୍ତ ॥
ମନୁଷ୍ୟମାର୍ଗକୁ ମୁହୂର୍ତ୍ତ । ମାତ୍ରକ ହୋଇ ଅନୁଗତ ॥
ସର୍ପସକାଶୁଁ ଯେ ବନ୍ଧନ । ତହୁଁ ଉଠିଲେ ଭଗବାନ ॥
୨୪ ବଢ଼ନ୍ତେ ଗୋବିନ୍ଦର ଦେହ । ବ୍ୟଥା ପାଇଲା ସର୍ପକାୟ ॥

---

୧. ''ମୂଳ ଶବ୍ଦ ଗବାଂ'' । ''ଗୌଃ'' ଶବ୍ଦର ଅର୍ଥ ଶ୍ରୁତି ବା ବେଦ । ବେଦମାର୍ଗରେ ଅପ୍ରମତ୍ତ ଯୋଗିମାନେ ସ୍ୱ ସ୍ୱ ଉପାଧିପୂର୍ବକ ଅପବାଦଦ୍ୱାରା ଯେପରି ପରମ ତତ୍ତ୍ୱକୁ ଅନ୍ୱେଷଣ କରନ୍ତି ତଦ୍‌ବତ୍ (ସ୍ୱାମୀ) ।

୨. ସମନ୍ଦହାସ = ମନ୍ଦହାସ ସହିତ ।　୩. ସେ ।

ଛାଡ଼ିଣ କୁଣ୍ଡଳିଭାବକୁ । ଟେକିଣ ସ୍ୱଫଣାମାନଙ୍କୁ ।। ୯୯
କ୍ରୋଧେ କରନ୍ତେ ନିଃଶ୍ୱାସକୁ । ରହିଲା ଚାହାଁନ୍ତେ କୃଷ୍ଣଙ୍କୁ ।। ୧୦୦
ନାସିକାରନ୍ଧ୍ରମାନଙ୍କରେ । ବିଷ ଜନ୍ମିଛି ଯାହାଠାରେ ।। ୧୦୧
ଅନଳଭାଣ୍ଡର ସମାନ । ଦିଶଇ ଯାହାର ନୟନ ।। ୧୦୨
ବଦନମାନଙ୍କେ ପ୍ରକାଶ । ହୋଇଛି [1]ଉଲ୍ମୁକହୁତାଶ ।। ୧୦୩
୨୫ ଯଉଁ ଜିହ୍ୱାରେ ଶିଖାଯୁଗ । ଓଷ୍ଠର ବେନି ପ୍ରାନ୍ତଭାଗ ।। ୧୦୪
ତେଣେ[2] ଲିହନ୍ତେ[3] ଭୟଙ୍କର । ବିଷଅଗ୍ନିରେ ଦୃଷ୍ଟି ଯାର ।। ୧୦୫
ତା' ଚାରିଦିଗେ ଭଗବାନ । କ୍ରୀଡ଼ା କରନ୍ତେ ସ୍ଥାନୁଁ ସ୍ଥାନ ।। ୧୦୬
ଭ୍ରମିଲେ ଯେହ୍ନେ ଖଗେଶ୍ୱର । ସର୍ପ ହିଁ କୃଷ୍ଣ ଅବସର ।। ୧୦୭
ଦେଖନ୍ତେ ଯହିଁ ଦିଗେ ହରି । ଭ୍ରମିଲା ତାଙ୍କୁ ଅନୁସରି ।। ୧୦୮
୨୬ ଏରୂପେ କରନ୍ତେ ଭ୍ରମଣ । ହତ ହେଲା ତା' ବଳ ପୁଣ ।। ୧୦୯
ଉନ୍ନତ ଅଂସକୁ ତାହାର । ଲୁଆଇଁ କରି ଦାମୋଦର ।। ୧୧୦
ପୃଥୁଳ ଶିରମାନଙ୍କରେ । କଲେ ଆରୋହଣ ସତ୍ୱରେ ।। ୧୧୧
ତା' ଶିରରତ୍ନସମୂହର । ସ୍ପର୍ଶୁଁ ପାଦପଦ୍ମ ଯାର ।। ୧୧୨
ହୋଇଲା ଅତ୍ୟନ୍ତ ଅରୁଣ । ସେ ଶିରେ କଲେ ନୃତ୍ୟ ପୁଣ ।। ୧୧୩
ସକଳ କଳାଙ୍କର ଆଦି । ଗୁରୁରୂପରେ ଯେ ପ୍ରସିଦ୍ଧି ।। ୧୧୪
୨୭ ସେକାଳେ କରିବାକୁ ନୃତ୍ୟ । ଉଦ୍ୟମ କଲେ ନନ୍ଦସୁତ ।। ୧୧୫
ଏମନ୍ତ ଦେଖି ତାହାଙ୍କର । ଯେହୁ ଅଟନ୍ତି ପରିଚାର ।। ୧୧୬
ଗନ୍ଧର୍ବ ସିଦ୍ଧ ମୁନିଜନ । ଚାରଣ ସୁରବଧୂ ମାନ ।। ୧୧୭
ପ୍ରୀତିରେ ମୃଦଙ୍ଗ ପଣବ । ଆନକ ବାଦ୍ୟ ଯେ ସୁରାବ ।। ୧୧୮
ଗୀତ କୁସୁମ-ଉପହାର । ସ୍ତୁତିରେ ମିଳିଲେ ସତ୍ୱର ।। ୧୧୯
୨୮ ସହସ୍ର ଶିରରେ ଯାହାର । ମୁଖ୍ୟ ଅଟଇ ଶତେ ଶିର ।। ୧୨୦
ଯେବଣ ଶିର ପୁଣ ତହିଁ । ନମ୍ର ଭାବକୁ ନ ଭଜଇ ।। ୧୨୧
ଖଳମାନଙ୍କ ଦଣ୍ଡଧର । ଚରଣାଘାତରେ ସେ ଶିର ।। ୧୨୨
ମର୍ଦ୍ଦିଲେ, ଭ୍ରମନ୍ତେ ସେ ପୁଣ । ଆୟୁଷ ହେଲା ତାର କ୍ଷୀଣ ।। ୧୨୩
ମୁଖରୁ ନାସାରୁ ବହୁତ । ସେ ବାନ୍ତି କରନ୍ତେ ରକତ ।। ୧୨୪
ଯେ ମୋହ ଅଟେ ଅତିଶୟ । ତାହାକୁ ଲଭିଲା କାଳିୟ ।। ୧୨୫
୨୯ ରୋଷରେ ଅତିଶୟ ହୋଇ । ନିଃଶ୍ୱାସ କରନ୍ତେ ସେ ଅହି ।। ୧୨୬
ଶିରମାନଙ୍କ ମଧ୍ୟେ ତାର । ନମ୍ର ନୁହଇ ଯଉଁ ଶିର ।। ୧୨୭
ନୃତ୍ୟ କରନ୍ତେଣ ଚରଣେ । ଲୁଆଁନ୍ତେ ଦଣ୍ଡ ଦେଲେ ତେଣେ ।। ୧୨୮
ଗନ୍ଧର୍ବ ଆଦି ସେ ସ୍ଥାନରେ । ପୂଜା କରନ୍ତେ କୁସୁମରେ ।। ୧୨୯

୧. ଉଲ୍ମୁକ = ଜ୍ୱଳନ୍ତ ଅଙ୍ଗାର । ୨. ତେଣେ = ଜିହ୍ୱାଦ୍ୱାରା । ୩. ଲିହନ୍ତେ = ଚାଟନ୍ତେ ।

ଯେସନେ ପୁରାଣପୁରୁଷ । ଶେଷଆସନରେ ପ୍ରବେଶ ॥ ୧୩୦
ଏମନ୍ତ ରୂପରେ ସେ କାଳେ । ମଣିଲେ ତାହାଙ୍କୁ ଗୋପାଳେ ॥ ୧୩୧
୩୦ ଚିତ୍ରନୃତ୍ୟରେ ସେ କୃଷ୍ଣର । ଫଣାସହସ୍ର ଭଗ୍ନ ତାର ॥ ୧୩୨
ମୁଖମାନଙ୍କରେ ବହୁତ । ବାନ୍ତି କରନ୍ତେ ସେ ରକତ ॥ ୧୩୩
ଭଗ୍ନ ହୋଇଲା ଗାତ୍ର ପୁଣ । ଯେ ଅଟେ ପୁରୁଷପୁରାଣ ॥ ୧୩୪
ସଚରାଚର ଗୁରୁ ହୋଇ । ହେ ନୃପ ! ନାରାୟଣ ଯେହି ॥ ୧୩୫
ମନରେ ତାହାଙ୍କୁ ସ୍ମରଣ । କରିଣ ପଶିଲା ଶରଣ ॥ ୧୩୬
୩୧ ଜଗତ ଅଛି ଯା' ଗର୍ଭରେ । ସେ ଗୋବିନ୍ଦର ଅତିଭରେ ॥ ୧୩୭
ଆକ୍ରାନ୍ତ ହେଲା ଚରଣର । ପ୍ରହାରୁଁ ପୁଣ ଶ୍ରୀକୃଷ୍ଣର ॥ ୧୩୮
ଯେ ଫଣାମାନେ ଛତ୍ରପ୍ରାୟ । ସେ ଭଗ୍ନ ହେଲେ ଅତିଶୟ ॥ ୧୩୯
ସର୍ପକୁ ଏ ରୂପେ ଦେଖିଣ । ଯେ ଯାହା ପତ୍ନୀମାନେ ପୁଣ ॥ ୧୪୦
ଫିଟିଛି ଯଉଁମାନଙ୍କର । ବସନ ଭୂଷଣ ଚିକୁର ॥ ୧୪୧
ସେମାନେ ହୋଇଲେ ଆରତ । କୃଷ୍ଣଙ୍କୁ ହେଲେ ଉପଗତ ॥ ୧୪୨
୩୨ ମନ ତାଙ୍କର ଉଦବେଗ । ଶିଶୁଙ୍କୁ କରିଛନ୍ତି ଆଗ ॥ ୧୪୩
ସମସ୍ତେ ଅଟନ୍ତି ସେ ସତୀ । କରଅଞ୍ଜଳି କରିଛନ୍ତି ॥ ୧୪୪
ଯେ ବା ଅପରାଧ ଭର୍ତ୍ତାର । ତା' ନାଶେ ମନ ତାହାଙ୍କର ॥ ୧୪୫
ନିଜ ଶରୀରକୁ ଭୂମିରେ । ପକାଇ ସାଷ୍ଟାଙ୍ଗ ପ୍ରକାରେ ॥ ୧୪୬
ପ୍ରାଣିମାତ୍ରର ଯେ ଈଶ୍ୱର । ଶରଣପ୍ରଦାନେ ତତ୍‌ପର ॥ ୧୪୭
ତାଙ୍କୁ ପ୍ରଣାମ କଲେ ପୁଣ । ସଭୟେ ପଶିଲେ ଶରଣ ॥ ୧୪୮

ଶ୍ରୀନାଗପତ୍ନ୍ୟ ଉଚୁଃ

୩୩ [1]ଏ ଅପରାଧ ତୁମ୍ଭଠାର । କରିଛି ଏ ଘେନି ଏହାର ॥ ୧୪୯
ଦଣ୍ଡ ହିଁ ଅଟଇ ଉଚିତ । ଖଳଙ୍କ ନିଗ୍ରହନିମିତ୍ତ ॥ ୧୫୦
ଜଗତେ ତୁମ୍ଭ ଅବତାର । ଯେ ରିପୁ ଯେ ନିଜ କୁମର ॥ ୧୫୧
ସେ ବେନିଠାରେ ସମ ହୋଇ । ଦୃଷ୍ଟି ତୁମ୍ଭର ପ୍ରବର୍ତ୍ତଇ ॥ ୧୫୨
ଫଳକୁ ଆଶଂସା[2] କରିଣ । ଦଣ୍ଡବିଧାନ କର ପୁଣ ॥ ୧୫୩
୩୪ ଏହାକୁ ଯାହା ଦଣ୍ଡ ଦେଲ । ଆମ୍ଭଙ୍କୁ ଅନୁଗ୍ରହ କଲ ॥ ୧୫୪
ଯେହୁ ଏହାର ସର୍ପଭାବ । ସେ ଅଟେ କଳୁଷସମ୍ଭବ ॥ ୧୫୫
ଅସନ୍ତ ଲୋକମାନଙ୍କର । ଯେବଣ ଦଣ୍ଡ ତୁମ୍ଭେ କର ॥ ୧୫୬

---

୧. ଦଣ୍ଡାନୁମୋଦନଂ ଷଡ୍‌ଭିର୍ଦଶଭିଶ୍ଚ ହରେର୍ନତିଃ ।
ପ୍ରାର୍ଥନଂ ପଞ୍ଚଭିଃ ଶ୍ଳୋକୈସ୍ତତଃ ପନ୍ନଗଯୋଷିତାମ୍ ॥ (ସ୍ୱାମୀ)
ଛ' ଶ୍ଳୋକରେ ଦଣ୍ଡର ଅନୁମୋଦନ, ଦଶ ଶ୍ଳୋକରେ ହରିଙ୍କୁ ନମସ୍କାର, ତହୁଁ ପାଞ୍ଚ ଶ୍ଳୋକରେ ହରିଙ୍କୁ ପ୍ରାର୍ଥନା ସର୍ପର ପତ୍ନୀମାନଙ୍କ ଦ୍ୱାରା ।
୨. ଆଶଂସା = ଆଲୋଚନା ।

ସେ ଲୋକମାନଙ୍କ କଲ୍ମଷ । ସେ ଦଣ୍ଡ କରଇ ବିନାଶ ।। ୧୫୭
ତୁମ୍ଭର କ୍ରୋଧ ଅଟେ ଯେହି । ସେ ଅନୁଗ୍ରହରୂପ ହୋଇ ।। ୧୫୮
୩୫ ଆପଣେ ଗର୍ବବନ୍ତ ନୋହି । ପରକୁ ମାନନା କରଇ ।। ୧୫୯
କି ତପ ଏମନ୍ତ ପ୍ରକାରେ । ଆଚରିଅଛି ଏ ପୂର୍ବରେ ।। ୧୬୦
ସକଳ ଜନେ ଦୟା କରି । ଧର୍ମକୁ ଅଛି ବା ଆଚରି ।। ୧୬୧
ସମସ୍ତ-ଜୀବଦାତା ଈଶ । ଯେହେତୁ ତୁମ୍ଭେ ହେଲ ତୋଷ ।। ୧୬୨
୩୬ ସକଳ ନାରୀମାନଙ୍କର । ମଧ୍ୟରେ ଅଟଇ ଯେ ସାର ।। ୧୬୩
ସେ ଲକ୍ଷ୍ମୀ ସର୍ବକାମମାନ । ତ୍ୟାଗ କରିଣ ବହୁ ଦିନ ।। ୧୬୪
ଯାହାକୁ ଲଭିବା ନିମିତ୍ତ । ତପସ୍ୟା କଲା ଧରି ବ୍ରତ ।। ୧୬୫
ତୁମ୍ଭର ସେ ଚରଣରେଣୁ । ଲଭିଲା ଏ ଉରଗ ଯେଣୁ ।। ୧୬୬
ହେ ଦେବ କଉଁ ତପସ୍ୟାର । ଅନୁଭାବ ଅଟେ ଏହାର ।। ୧୬୭
୩୭ ଯେ ତୁମ୍ଭେ ତୁମ୍ଭର ଚରଣ । ରେଣୁକୁ ପ୍ରପନ୍ନ ଯେ ପୁଣ ।। ୧୬୮
ସ୍ୱର୍ଗସୁଖକୁ ସେହୁ ନରେ । ବାଞ୍ଛା ନ କରନ୍ତି ମନରେ ।। ୧୬୯
ବ୍ରହ୍ମାପଦବୀ ଯେ ଆବର । ପ୍ରଭୁତ୍ୱ ସକଳ ଭୂମିର ।। ୧୭୦
ଯେ ପୁଣ ଯୋଗସିଦ୍ଧିମାନ । ରସାଧିପତ୍ୟ[୧] ଯେ ବା ଆନ ।। ୧୭୧
ଯହିଁରୁ ପୁନର୍ଜନ୍ମ ନାହିଁ । ବାଞ୍ଛା ନ କରନ୍ତି ସେ ତାହି ।। ୧୭୨
୩୮ ତମୋଗୁଣରୁ ଜନ୍ମ ଯାର । ଏ କ୍ରୋଧବଶ ଅହୀଶ୍ୱର ।। ୧୭୩
ଏମନ୍ତ ହେଲେହେଁ ଯା' ଆନେ । ଲଭି ନାହାନ୍ତି ଏ ଭୁବନେ ।। ୧୭୪
[୨]ଯେବଣ ପାଦରଜକୁ ହି । ସଂସାରଚକ୍ରେ ଭ୍ରମି ଥାଇ ।। ୧୭୫
ଇଚ୍ଛା କରନ୍ତି ଯଉଁ ନର । ମନବାଞ୍ଛିତ ଯେ ତାହାର ।। ୧୭୬
ପ୍ରାପତ ହୋଏ ସେ ଝଟତି । ପ୍ରତ୍ୟକ୍ଷେ ଉତ୍ତମ ସଂପତ୍ତି ।। ୧୭୭
୩୯ ଅଚିନ୍ତ୍ୟ ଅଇଶ୍ୱର୍ଯ୍ୟ ଆଦି । ଗୁଣ ଯାହାର ସୁପ୍ରସିଦ୍ଧି ।। ୧୭୮
ଯେ ଅନ୍ତର୍ଯ୍ୟାମୀ ସ୍ୱରୂପରେ । ବର୍ତ୍ତିଛ ସକଳ ଶରୀରେ ।। ୧୭୯
ମହତ ଅଟେ ଆତ୍ମା ଯାର । ବାସ ଆକାଶ ଆଦିଙ୍କର ।। ୧୮୦
ଆକାଶଆଦିରୁ ପୂର୍ବରେ । ବର୍ତ୍ତିଛ କାରଣରୂପରେ ।। ୧୮୧
ଯେ ପୁଣ ସକଳ କାରଣୁଁ । ଅତୀତ, ପରମାତ୍ମା[୩] ତେଣୁ ।। ୧୮୨
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ତୁମ୍ଭଙ୍କୁ ଆମ୍ଭ ନମସ୍କାର ।। ୧୮୩
୪୦| ଜ୍ଞାନ ଚିଦ୍‌ଶକ୍ତି ଯେ ବା ଆନ । ସେ ବେନି କରେ ଯେହୁ ପୂର୍ଣ୍ଣ ।। ୧୮୪
୪୧| ଅନନ୍ତ ଅଟେ ଶକ୍ତି ଯାର । ବ୍ରହ୍ମ ଅଗୁଣ ଅବିକାର ।। ୧୮୫
ଯେ ପ୍ରବର୍ତ୍ତକ ପ୍ରକୃତିର । ଆଶ୍ରୟ କାଳଶକତିର ।। ୧୮୬

---

୧. ରସାତଳର ରାଜତ୍ୱ ।
୨. ଯେବଣ ପାଦଧୂଳି ପାଇଁ । ('ଗ' ପୁସ୍ତକେ) ୩. ତପ ଆତ୍ମା ।

କାଳର ଅବୟବ ହୋଇ । [୧]ସୃଷ୍ଟ୍ୟାଦି ସମବାୟ ଯେହି ॥ ୧୮୭
ତାହାର ସାକ୍ଷୀ ଯେ ପ୍ରମାଣ । ଯେ ବିଶ୍ୱ ବିଶ୍ୱଦ୍ରଷ୍ଟା ପୁଣ ॥ ୧୮୮
ଯେ କର୍ତ୍ତା ଅଟେ ଏ ବିଶ୍ୱର । କାରଣରୂପୀ ଯେ ଈଶ୍ୱର ॥ ୧୮୯
ତୁମ୍ଭେ ଏମନ୍ତ ହେ ଈଶ୍ୱର । ତୁମ୍ଭଙ୍କୁ କରୁଁ ନମସ୍କାର ॥ ୧୯୦
୪୨ ଯେ ଭୂତମାତ୍ରା ଯେ ଇନ୍ଦ୍ରିୟ । ପ୍ରାଣ ମନ ବୁଦ୍ଧି ଆଶୟ ॥ ୧୯୧
ତାହାଙ୍କ ରୂପ ଯେ ପ୍ରମାଣ । ତ୍ରିଗୁଣ ଅଭିମାନେ ପୁଣ ॥ ୧୯୨
ଆପଣା ଅଂଶ ଆତ୍ମାଙ୍କର[୨] । ଯେ ଅନୁଭବ ଅଟେ ତାର ॥ ୧୯୩
୪୩ ଅପରିଚ୍ଛିନ୍ନ ଅହଂକାରେ । ଯେ ସୂକ୍ଷ୍ମ ଅଦୃଶ୍ୟ ପ୍ରକାରେ ॥ ୧୯୪
ଉପାଧିକୃତ ଭେଦହୀନ । ସର୍ବବିଷୟେ ଯାର ଜ୍ଞାନ ॥ ୧୯୫
ଯେ ଅସ୍ତି ନାସ୍ତି ସର୍ବଜାଣ[୩] । କିଛି ଜାଣଇଁ ଏକ ପୁଣ ॥ ୧୯୬
ଅନେକ ବନ୍ଧ ମୁକ୍ତ ହୋଇ । ନାନାପ୍ରକାରେ ବାଦ ଯେହି ॥ ୧୯୭
ତହିଁକି ଅନୁଗତ ହୋଇ । ଜଗତେ ବିଖ୍ୟାତ ଅଟଇ ॥ ୧୯୮
ବାଚ୍ୟ ବାଚକ ରୂପ ଯାର । ତାଙ୍କୁ ଆମ୍ଭର ନମସ୍କାର ॥ ୧୯୯
୪୪ ଯେ ନେତ୍ର ନେତ୍ରଆଦିଙ୍କର । ସେ ଅପେକ୍ଷା ହିଁ ନାହିଁ ଯାର ॥ ୨୦୦
ଯାର ନିଃଶ୍ୱାସୁଁ ବେଦ ଜାତ । ଯେ ଅଟେ ପ୍ରବୃତ୍ତ ନିବୃତ୍ତ ॥ ୨୦୧
ସେ ବେଦ ସ୍ୱରୂପ ଯାହାର । ତାଙ୍କୁ ଆମ୍ଭର ନମସ୍କାର ॥ ୨୦୨
୪୫ ଯେ କୃଷ୍ଣରାମ ନାମେ ଖ୍ୟାତ । ଯେ ଅଟେ ବସୁଦେବସୁତ ॥ ୨୦୩
ପ୍ରଦ୍ୟୁମ୍ନ ଅନିରୁଦ୍ଧ ନାମ । ସାତ୍ୱତପତିଙ୍କି ପ୍ରଣାମ ॥ ୨୦୪
୪୬ ଅନ୍ତଃକରଣମାନଙ୍କର । ପ୍ରକାଶକର୍ତ୍ତା ଯେ ଈଶ୍ୱର ॥ ୨୦୫
ଯେତେକ ଉପାସକ ନର । ଫଳବିଚିତ୍ରାର୍ଥେ ତାଙ୍କର ॥ ୨୦୬
ଆତ୍ମାକୁ କରି ଆଚ୍ଛାଦନ । ନାନାରୂପେ ଯେ ବିଦ୍ୟମାନ ॥ ୨୦୭
ଚିତ୍ତାଦି ବ୍ୟବସାୟବୃତ୍ତି । ତେଣେ ଲକ୍ଷିତ ଯାଙ୍କ କୃତି ॥ ୨୦୮
ଯେ ଗୁଣସାକ୍ଷୀ ଅଗୋଚର । ତାଙ୍କୁ ଆମ୍ଭର ନମସ୍କାର ॥ ୨୦୯
୪୭ ଅତର୍କ୍ୟ ମହିମା ଯାହାର । ସମସ୍ତ କାର୍ଯ୍ୟମାନଙ୍କର ॥ ୨୧୦
ଉତ୍ପତ୍ତି ପ୍ରକାଶହେତୁରେ । ଉପଲକ୍ଷିତ ଯେ ସଂସାରେ ॥ ୨୧୧
ସର୍ବ ଇନ୍ଦ୍ରିୟମାନଙ୍କର । ଯେହୁ ପ୍ରବର୍ତ୍ତକ ଈଶ୍ୱର ॥ ୨୧୨
ଯେ ତୁମ୍ଭେ ଆତ୍ମାରାମ ପୁଣ । ଆତ୍ମାରାମତ୍ୱ ଯା' ଲକ୍ଷଣ ॥ ୨୧୩
ଯେ ତୁମ୍ଭେ ଏମନ୍ତ ଈଶ୍ୱର । ତୁମ୍ଭଙ୍କୁ ଆମ୍ଭ ନମସ୍କାର ॥ ୨୧୪
୪୮ ଯେ ପୁଣ ସ୍ଥୂଳ ସୂକ୍ଷ୍ମମାନ । ତାଙ୍କ ଗତିରେ ଯାର ଜ୍ଞାନ ॥ ୨୧୫
ଯେ ଅଟେ ସର୍ବଅଧିପତି । ବିଶ୍ୱନିଷେଧେ ଯାର ଖ୍ୟାତି ॥ ୨୧୬
ଯେ ବିଶ୍ୱସ୍ୱରୂପୀ ଈଶ୍ୱର । ଯେ କରେ ବିଶ୍ୱକୁ'ଗୋଚର ॥ ୨୧୭

---

୧. ସୃଷ୍ଟି ଆଦି ସମୟ ଯେହି । ('କ' ପୁସ୍ତକେ) ।　　୨. ଆତ୍ମାଙ୍କର = ଜୀବମାନଙ୍କର ।
୩. ସର୍ବଜ୍ଞଃ (ମୂଳଶବ୍ଦ) ।

| | | | | |
|---|---|---|---|---|
| | ଯେ ବିଶ୍ୱହେତୁ ଭଗବାନ | । [୧]ସେ ତୁମ୍ଭେ ତୁମ୍ଭଙ୍କୁ ବନ୍ଦନ | ।। | ୨୧୮ |
| ୪୯ | ହେ ପ୍ରଭୁ ଯେ ବା ଏ ବିଶ୍ୱର | । ଜନମ ପାଳନ ସଂହାର | ।। | ୨୧୯ |
| | କରିଛ ତାହା ଗୁଣଦ୍ୱାରେ | । ଯେ ପୁଣ ସଂସ୍କାରରୂପରେ | ।। | ୨୨୦ |
| | ଘୋର ସତ୍ତ୍ୱାଦିରୂପ ଯେହି | । ପ୍ରକାଶିଛନ୍ତି ପୁଣ ତାହି | ।। | ୨୨୧ |
| | ପ୍ରବୋଧ କରନ୍ତେ ସଂସାରେ | । କ୍ରୀଡ଼ା କରୁଛ ନିରନ୍ତରେ | ।। | ୨୨୨ |
| | ସେ ତୁମ୍ଭେ କାଳଶକ୍ତିଧର | । ଅମୋଘ ବିହାର ତୁମ୍ଭର | ।। | ୨୨୩ |
| ୫୦ | ଶାନ୍ତ ଅଶାନ୍ତ ମୂଢ଼ ଯୋନି | । ଏମନ୍ତ ରୂପେ ଯେଉଁ ତିନି | ।। | ୨୨୪ |
| | ସେ ତୁମ୍ଭେ ତୁମ୍ଭର ଏମାନେ | । କ୍ରୀଡ଼ାର ଦ୍ରବ୍ୟ ଏ ଭୁବନେ | ।। | ୨୨୫ |
| | ତଥାପି ସାଧୁମାନଙ୍କର | । ଯେ ଧର୍ମପାଳନ ବିଚାର | ।। | ୨୨୬ |
| | ପ୍ରବର୍ତ୍ତିଅଛ ତୁମ୍ଭେ ତହିଁ | । ପାଳନାଅର୍ଥେ ଅଛ ରହି | ।। | ୨୨୭ |
| | ଏଣୁ ଏ ସମୟେ ଯେ ଶାନ୍ତ | । ସେ ତୁମ୍ଭ ପ୍ରିୟ ହେ ଅନନ୍ତ | ।। | ୨୨୮ |
| ୫୧ | ଭର୍ତ୍ତାର ଅପରାଧ ଯେହି | । ସହିବ ଥରେ ମାତ୍ର ତାହି | ।। | ୨୨୯ |
| | ସେ ଯାହା କଲା ଆଚରିତ | । ସେହି ତୁମ୍ଭର ପ୍ରଜାକୃତ | ।। | ୨୩୦ |
| | ହେ ଶାନ୍ତଆତ୍ମା ମୂଢ଼ ଏହି | । ତୁମ୍ଭଙ୍କୁ ତେଣୁ ନ ଜାଣଇଁ | ।। | ୨୩୧ |
| ୫୨ | ହେ ଭଗବାନ ଦାମୋଦର | । ବାରେକ ଅନୁଗ୍ରହ କର | ।। | ୨୩୨ |
| | ପନ୍ନଗ ଛାଡ଼ିବ ଜୀବନ | । ଆମ୍ଭେ ଯେ ଅଟୁଁ ସ୍ତିରୀଜନ | ।। | ୨୩୩ |
| | ଆମ୍ଭମାନଙ୍କୁ ସାଧୁଜନେ | । ଶୋଚନା କରନ୍ତି ଭୁବନେ | ।। | ୨୩୪ |
| | ପତି ଆମ୍ଭର ନିଜ ପ୍ରାଣ | । ପ୍ରଦାନ କର ତାକୁ ପୁଣ | ।। | ୨୩୫ |
| ୫୩ | ତୁମ୍ଭ କିଙ୍କରୀ ଆମ୍ଭେମାନେ | । ହେ ପ୍ରଭୁ ! ତୁମ୍ଭର ବଚନେ | ।। | ୨୩୬ |
| | ଯାହା କରିବୁଁ ଆଚରଣ | । ସେ କଥା ଆଜ୍ଞା ଦିଅ ପୁଣ | ।। | ୨୩୭ |
| | ଯଉଁ ଆଜ୍ଞାକୁ ଶ୍ରଦ୍ଧା ହୋଇ | । ମନୁଷ୍ୟ ଯେବେ ଆଚରଇ | ।। | ୨୩୮ |
| | ଅଶେଷ ଭୟରୁ ମୁକତ | । ସେ ଜନ ହୁଅଇ ତୁରିତ | ।। | ୨୩୯ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୫୪ | ନାଗପତ୍ନୀଏ ଏ ପ୍ରକାରେ | । ସ୍ତୁତି କରନ୍ତେ ତଦନ୍ତରେ | ।। | ୨୪୦ |
| | ଚରଣଆଘାତେ ଯାହାର | । ଭଙ୍ଗକୁ ଲଭିଥିଲା ଶିର | ।। | ୨୪୧ |
| | ଯେ ମୂର୍ଚ୍ଛା ଲଭିଥିଲା ଅହି | । ତାକୁ ଛାଡ଼ିଲେ ଭାବଗ୍ରାହୀ | ।। | ୨୪୨ |
| ୫୫ | ନିଜ ଇନ୍ଦ୍ରିୟମାନ[୨] ପ୍ରାଣ | । କାଳିୟ କ୍ରମରେ ଲଭିଣ | ।। | ୨୪୩ |
| | ନିଃଶ୍ୱାସ ପକାନ୍ତେ କଷ୍ଟରେ | । ଦୀନ ହୋଇଣ ତଦନ୍ତରେ | ।। | ୨୪୪ |

---

୧. ବିଶେଷଣୈରସଂକୀର୍ଣ୍ଣୈଃ ପଞ୍ଚପଞ୍ଚାଶତା ନୁତଃ ।
ଅହିସ୍ତ୍ରୀଭିଃ ପ୍ରସନ୍ନୋ ବସ୍ତାସାମିବ ଭବେଦ୍ଧରିଃ ।। (ସ୍ୱାମୀ)
ସାପର ସ୍ତ୍ରୀମାନଙ୍କ କର୍ତ୍ତୃକ ଅସଂକୀର୍ଣ ପଞ୍ଚାବନ ବିଶେଷଣ ଦ୍ୱାରା ସ୍ତୁତ ହରି ସେମାନଙ୍କ ଉପରେ ପ୍ରସନ୍ନ ହୋଇଥିବା ଭଳି ତୁମ୍ଭମାନଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ ।

୨. ମନ ।

| | | | |
|---|---|---|---|
| | କୃଷ୍ଣଙ୍କୁ ପ୍ରାଞ୍ଜଳି ହୋଇଣ | କହିଲା ଏ ବଚନ ପୁଣ | ॥ ୨୪୫ |
| ୫୬ | ଜନମକାଳହୁଁ ଅବଧି | ଖଳ ତାମସ ଅତିକ୍ରୋଧୀ | ॥ ୨୪୬ |
| | ଆମ୍ଭେ ଏମନ୍ତ ହେ ଈଶ୍ୱର | ସ୍ୱଭାବ ଯେ ଅଟେ ଯାହାର | ॥ ୨୪୭ |
| | ଛାଡ଼ି ନ ପାରେ ତାକୁ ସେହି | ଅସତ୍ୟ ଦେହେ ସତ୍ୟ ହୋଇ | ॥ ୨୪୮ |
| | ଆଗ୍ରହ ହୋଇଥାଇ ଜାତ | ଅସତ୍ୟ ମଣିଥାଇ ସତ୍ୟ | ॥ ୨୪୯ |
| ୫୭ | ହେ ଧାତା ! ବିବିଧ ପ୍ରକାରେ | ଏ ଜଗତକୁ ଗୁଣଦ୍ୱାରେ | ॥ ୨୫୦ |
| | ସର୍ଜନା କରିଛ ଏହାର | ସ୍ୱଭାବ ନାନା ପରକାର | ॥ ୨୫୧ |
| | ବିଭିନ୍ନ ଅଟେ ବୀର୍ଯ୍ୟ ଓଜ[୧] | ଆଶୟ[୨] ମୂର୍ତ୍ତି ଯୋନି ବୀଜ | ॥ ୨୫୨ |
| ୫୮ | ହେ ଭଗବାନ ! ତହିଁ ପୁଣ | ଉରଗଜାତି ସ୍ୱକାଶେଣ | ॥ ୨୫୩ |
| | ଅତ୍ୟନ୍ତ କ୍ରୋଧୀ ଆମ୍ଭେମାନେ | ଦୁସ୍ତ୍ୟଜ ଅଟେ ଯେ ଭୁବନେ | ॥ ୨୫୪ |
| | କେମନ୍ତେ ସେ ତୁମ୍ଭ ମାୟାକୁ | ଛାଡ଼ିବୁଁ ଲଭିଛୁଁ ମୋହକୁ | ॥ ୨୫୫ |
| ୫୯ | ସର୍ବଜ୍ଞ ଜଗତ-ଈଶ୍ୱର | ତୁମ୍ଭେ ସେ କାରଣ ତହିଁର | ॥ ୨୫୬ |
| | ଅନୁଗ୍ରହକୁ ଅବା ପୁଣ | ନିଗ୍ରହ କର ଆଚରଣ | ॥ ୨୫୭ |
| | ଯହିଁ ପ୍ରବର୍ତ୍ତେ ତୁମ୍ଭ ମନ | ଆମ୍ଭଙ୍କୁ କରସି ବିଧାନ | ॥ ୨୫୮ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୬୦ | ଜଗତପାଳନାନିମିତ୍ତେ | ନୃଦେହଧାରୀ ଯେ ଜଗତେ | ॥ ୨୫୯ |
| ୬୧ | ସେ ହରି କାଳିୟର ବାଣୀ | ଶୁଣି ବୋଇଲେ ତାକୁ ପୁଣି | ॥ ୨୬୦ |
| | ହେ ସର୍ପ ! ଏଥିରେ ନ ଥାଅ | ସମୁଦ୍ରକୁ ତୁ ବେଗେ ଯାଅ | ॥ ୨୬୧ |
| | ଜ୍ଞାତି-ତନୟ-ଭାର୍ଯ୍ୟା ଆଦି | ସହିତେ ଚଳ ତୁ ଅବଧି | ॥ ୨୬୨ |
| | ଯେତେକ ଧେନୁ ଯେତେ ନର | ଭୋଗ କରିବେ ନଦୀନୀର | ॥ ୨୬୩ |
| ୬୨ | ତୋତେ କହିଲି ଯାହା ମୁହିଁ | ଯେ ଏହା ସ୍ମରଣ କରଇ | ॥ ୨୬୪ |
| | ବେନି ସଂଧ୍ୟାରେ ଯଉଁ ଜନ | ଏ କଥା କରନ୍ତେ କୀର୍ତ୍ତନ | ॥ ୨୬୫ |
| | ତୁମ୍ଭ ସ୍ୱକାଶୁଁ ଯଉଁ ଭୀତି | ତାର ନୋହିବ ଉତପତ୍ତି | ॥ ୨୬୬ |
| ୬୩ | ଏ କ୍ରୀଡ଼ାସ୍ଥାନରେ ମୋହର | ସ୍ନାନ କରିଣ ଯଉଁ ନର | ॥ ୨୬୭ |
| | ଦେବତା ଆଦିଙ୍କି ଜଳରେ | ତର୍ପଣ କରଇ ବିଧିରେ | ॥ ୨୬୮ |
| | କରିଣ ଉପବାସ ମୋତେ | ସ୍ମରଣା କରେ ଶୁଦ୍ଧ ଚିତ୍ତେ | ॥ ୨୬୯ |
| | ସକଳ ପାପରୁ ମୁକତ | ସେ ଲୋକ ହୁଅଇ ତୁରିତ | ॥ ୨୭୦ |
| ୬୪ | ଛାଡ଼ି ରମଣକ ଦ୍ୱୀପକୁ | ଯାହାର ଭୟେ ଏ ହ୍ରଦକୁ | ॥ ୨୭୧ |
| | ଅଇଲୁ, ସେ ଗରୁଡ଼ ତୋତେ | ଭକ୍ଷିବ ନାହିଁ କୋପଚିତ୍ତେ | ॥ ୨୭୨ |
| | ଚରଣଚିହ୍ନରେ ମୋହର | ଯେଣୁ ଅଙ୍କିତ ତୋ' ଶରୀର | ॥ ୨୭୩ |

୧. ତେଜ । ୨. ଆଶ୍ରୟ ।

ଶ୍ରୀଶୁକ ଉବାଚ

୬୫ ହେ ନୃପ ! ଯାହା କର୍ମମାନ । ଅକ୍ଲିଷ୍ଟ[1] ସେହୁ ଭଗବାନ ।। ୨୭୪
ସର୍ପକୁ କରନ୍ତେ ମୁକତ । ତାଙ୍କୁ ପୂଜିଲା ସେ ତୋଷିତ ।। ୨୭୫
ସାଦରେ ନାଗପତ୍ନୀମାନେ । କୃଷ୍ଣଙ୍କୁ ପୂଜିଲେ ସେ ସ୍ଥାନେ ।। ୨୭୬
୬୬ ଦିବ୍ୟ ବସନ ମାଳାମଣି । ଅମୂଲ୍ୟ ଭୂଷଣ ଯେ ପୁଣି ।। ୨୭୭
ଦିବ୍ୟଗନ୍ଧ-ଅନୁଲେପରେ । ମହତ ଉତ୍ପଳମାଳାରେ ।। ୨୭୮
୬୭ ଯେ ଅଟେ ଜଗତଈଶ୍ୱର । ଗରୁଡ଼ ଧ୍ୱଜ ଯାହାଙ୍କର ।। ୨୭୯
ତାଙ୍କୁ ପୂଜିଣ ତଦନ୍ତରେ । ଅନୁଜ୍ଞା ମାଗିଣ ପ୍ରୀତିରେ ।। ୨୮୦
ପୁଣ କରିଣ ପ୍ରଦକ୍ଷିଣ । ଭକ୍ତିରେ ପ୍ରଣାମ କରିଣ ।। ୨୮୧
ସକଳପୁତ୍ରମିତ୍ରଙ୍କର । ସହିତ ହୋଇ ତଦନ୍ତର ।। ୨୮୨
ଯେ ଦ୍ୱୀପ ଅଛି ସମୁଦ୍ରର । ତହିଁକି ଗଲା ବିଷଧର ।। ୨୮୩
୬୮ କ୍ରୀଡ଼ାରେ ମାନୁଷ-ଶରୀର । ଯେ ଭଗବାନ ତାହାଙ୍କର ।। ୨୮୪
ଅନୁଗ୍ରହରୁ ସୁଧାପ୍ରାୟ । ହୋଇଲା ଯମୁନାର ତୋୟ ।। ୨୮୫
ଯେ ବିଷମୟ ହୋଇଥିଲା । ଏବେ ସେ ନିର୍ବିଷ ହୋଇଲା ।। ୨୮୬
କାଳିୟଭୁଜଗଶିରରେ । ଯେ ନୃତ୍ୟ କଲେ କୋପଭରେ ।। ୨୮୭
ସେ କୃଷ୍ଣ ପାଦପଦ୍ମ ଧ୍ୟାନେ । [2]ହରଷ ଦୀନବନ୍ଧୁ ମନେ ।। ୨୮୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ କାଳିୟନିର୍ଯ୍ୟାପଣଂ
ନାମ ଷୋଡ଼ଶୋଽଧ୍ୟାୟଃ ।।

## ସପ୍ତଦଶ ଅଧ୍ୟାୟ

ନାଗଂ ସପ୍ତଦଶେ ନାଗାଳୟଂ ତଂ ନିରଯାପୟତ୍ ।
ବନ୍ଧୂନ୍ ସ୍ୱଦୁଃଖତଃ ଶ୍ରାନ୍ତାନ୍ ସୁପ୍ତାଂସ୍ତତ୍ର ଦବାଦପାତ୍ ।।

ଶ୍ରୀରାଜୋବାଚ

୧ ନାଗଆଳୟ ରମଣକ । ଦ୍ୱୀପ ଯେ ଖ୍ୟାତ ତିନି ଲୋକ ।। ୧
କେବଣ ହେତୁ ବିଷଧର । ତାହା ଛାଡ଼ିଲା ମୁନିବର ।। ୨

---

୧. ଅଦ୍ଭୁତ ।

୨. ''ସୁଜନେ ନ ଘେନ ମୋ ଦୋଷ ।
ଏ କଥା ଶୁଣି ହୁଅ ତୋଷ ।।
ଭବଭୁଜଙ୍ଗଙ୍କୁ ନ ଡର ।
ଏ ଚରିତକୁ କଣ୍ଠ କର ।।'' ଇତି ଅଧିକ ପାଠ 'ଗ' ପୁସ୍ତକେ ।

ଏକା ହୋଇ ସେ ଆଶୀବିଷ[୧] । କଲା ଗରୁଡ଼ର କି ଦୋଷ ॥ ୩

ଶ୍ରୀଶୁକ ଉବାଚ

୨ ହେ ନୃପ ! ଭକ୍ଷ ସର୍ପଜନେ । ନାଗମାନଙ୍କୁ ସଯତନେ ॥ ୪
ଯେବଣ ବଳି ମାସେ ମାସେ । ଦିଅନ୍ତି ତରୁମୂଳ ଦେଶେ ॥ ୫
୩ ତହିଁରୁ ଯେ ଯାହା ବିଭାଗ । ସୁଖେ ଘେନିଣ ସର୍ବ ନାଗ ॥ ୬
ଗରୁଡ଼ଭୟ ମନେ ଭାଳି । ପର୍ବକୁ ପର୍ବ ସେହି ବଳି ॥ ୭
ଗରୁଡ଼େ କରନ୍ତି ପ୍ରଦାନ । ରଖିବା ଅର୍ଥେ ସ୍ୱଜୀବନ ॥ ୮
୪ ବିଷବୀର୍ଯ୍ୟରେ ମଦ ଯେହି । ତେଣେ ଆବିଷ୍ଟଚିତ୍ତ ହୋଇ ॥ ୯
କାଳିୟ ବିଷଧର ପୁଣ । ସେ ବଳିଭାଗକୁ ଆପଣ ॥ ୧୦
ଭୁଞ୍ଜିଲା, ଗରୁଡ଼କୁ ମନେ । ଭୟ ନ କଲା ତୁଚ୍ଛଜ୍ଞାନେ ॥ ୧୧
୫ ହେ ନୃପ ! ଶୁଣି ସେ ଚରିତ । ସେ ବିଷ୍ଣୁପ୍ରିୟ ଭଗବନ୍ତ ॥ ୧୨
କାଳିୟବିନାଶନପାଇଁ । ଧାଇଁଲେ ମହାବେଗ ହୋଇ ॥ ୧୩
୬ ଗରୁଡ଼ ଆସନ୍ତେ ତା' ଜାଣି । ବେଗେ ଧାଇଁଲା ସେହୁ ଫଣୀ ॥ ୧୪
ବିଷ ଆୟୁଧ ଅଟେ ଯାର । ଉଚ୍ଚେ ଟେକିଛି ନାନାଶିର ॥ ୧୫
ଜିହ୍ୱା ଅତ୍ୟନ୍ତ ବିକରାଳ । ସକ୍ରୋଧ ନୟନ ଉଜ୍ଜ୍ୱଳ ॥ ୧୬
ଗରୁଡ଼ସଙ୍ଗେ କରି ଯୁଦ୍ଧ । ଦନ୍ତେ ଦଂଶିଲା ଦନ୍ତାୟୁଧ ॥ ୧୭
୭ ଆସନ ଅଟେ ଯେ ବିଷ୍ଣୁର । ଅତି ପ୍ରଚଣ୍ଡ ବେଗ ଯାର ॥ ୧୮
କୋପେ ସେ ବିନତାର ସୁତ । ନିରାସ କରିଣ ତ୍ୱରିତ ॥ ୧୯
ସୁବର୍ଣ୍ଣବର୍ଣ୍ଣ ବାମପକ୍ଷେ[୨] । ନାଗକୁ ମାଇଲେ ସମକ୍ଷେ ॥ ୨୦
୮ ଗରୁଡ଼ପକ୍ଷଘାତ ପାଇ । ଅତିବିହ୍ୱଳଚିତ୍ତ ହୋଇ ॥ ୨୧
କାଳିୟ କାଳିନ୍ଦୀହ୍ରଦରେ । ପଳାଇ ପଶିଲା ସତ୍ୱରେ ॥ ୨୨
ସେ ହ୍ରଦ ଗରୁଡ଼ର ଯେଣୁ । ଅଗମ୍ୟ ଅଟେ ସେ କାରଣୁଁ ॥ ୨୩
୯ ସେ ହ୍ରଦମଧ୍ୟେ ଏକଦିନ । ଭ୍ରମୁଥିଲା ଯେ ଏକ ମୀନ ॥ ୨୪
ବାଞ୍ଛିତ ଭକ୍ଷ ବୋଲି ତାକୁ । କ୍ଷୁଧିତ ହୋଇ ଖାଇବାକୁ ॥ ୨୫
ଗରୁଡ଼ ଯାନ୍ତେ ଜଳେ ପଶି । ବାରିଲେ ସଉଭରି ଋଷି ॥ ୨୬
ଗରୁଡ଼ ତାହା ନ ମାନିଲେ । ବଳେ[୩] ସେ ମତ୍ସ୍ୟକୁ ହରିଲେ ॥ ୨୭
୧୦ ହୁଅନ୍ତେ ମୀନପତି ହତ । ଯେତେକ ମୀନ ତହିଁ ସ୍ଥିତ ॥ ୨୮
ଦୀନ ଦୁଃଖିତ ସେ ହୁଅନ୍ତେ । ଦେଖି ସୌଭରି କୃପାଚିତ୍ତେ ॥ ୨୯
ତହିଁରେ ସ୍ଥିତ ଜନ୍ତୁଙ୍କର । ମଙ୍ଗଳ କରନ୍ତେ ବିଚାର ॥ ୩୦
ଏମନ୍ତ ବଚନକୁ ପୁଣ । ଋଷି ବୋଇଲେ ତତକ୍ଷଣ ॥ ୩୧

---

୧. ଆଶୀବିଷ = ସର୍ପ (ଆଶୀ = ବିଷଦାନ୍ତ) (ଆଶ୍ୟାଂ ବିଷଂ ଯସ୍ୟ ସ) ।
୨. ବାମପକ୍ଷେ = ଡେଣାରେ । ୩. ଜଳେ ।

୧୧ ଗରୁଡ଼ ଏଥି ପଶି ଯେବେ । ଖାଇବ ମତ୍ସ୍ୟମାନ ତେବେ ।। ୩୨
ତକ୍ଷଣେ ତେଜିବ ଜୀବନ । ବୋଲୁଛି ସତ୍ୟ ଏ ବଚନ ।। ୩୩
୧୨ ଋଷିଙ୍କର ସେ ଶାପଦାନ । ନ ଜାଣି କେହି ସର୍ପ ଆନ ।। ୩୪
କେବଳ କାଳିୟ ଜାଣଇଁ । ଗରୁଡ଼ଠାରୁ ଭୟ ପାଇ ।। ୩୫
ସେ ହ୍ରଦେ କରିଥିଲା ଘର । କୃଷ୍ଣ ତାହାକୁ କଲେ ଦୂର ।। ୩୬
୧୩ ଦିବ୍ୟ ଅଟଇ ଯା' ବସନ । ଗନ୍ଧକୁସୁମମାଳାମାନ ।। ୩୭
ଉତ୍ତମ ମଣି ଯା' ଭୂଷଣ । ସୁବର୍ଣ୍ଣଅଳଂକୃତ ପୁଣ ।। ୩୮
ଏ ରୂପେ ହ୍ରଦରୁ ବାହାର । ହେଲେ ଯେ ଦେବ ଦାମୋଦର ।। ୩୯
୧୪ ସମସ୍ତେ ତାହାଙ୍କୁ ପାଇଣ । ଆସନୁଁ ଉଠିଲେ ତକ୍ଷଣ ।। ୪୦
ପ୍ରବେଶ ହୁଅନ୍ତେ ଜୀବନ । ଇନ୍ଦ୍ରିୟେ ହୁଅନ୍ତି ଯେସନ ।। ୪୧
ପ୍ରୀତିରେ ଆନନ୍ଦ ହୋଇଲେ । ଗୋପାଳେ ଆଲିଙ୍ଗନ କଲେ ।। ୪୨
୧୫ ହେ ନୃପ ! ଯଶୋଦା ରୋହିଣୀ । ନନ୍ଦ ଗୋପୀଏ ଧେନୁ ପୁଣି ।। ୪୩
କୃଷ୍ଣଙ୍କୁ ଲଭିଣ ସେ କାଳେ । ସଚେଷ୍ଟ ହୋଇଲେ ସକଳେ ।। ୪୪
[୧]ଯେ ଅଟେ ନିଜ ମନୋରଥ । ସେ ତାଙ୍କୁ ହୋଇଲା ପ୍ରାପତ ।। ୪୫
୧୬ ଯେ ଜାଣେ ଶ୍ରୀକୃଷ୍ଣ ପ୍ରଭାବ । କୃଷ୍ଣଙ୍କୁ ସେହୁ ବଳଦେବ ।। ୪୬
ଆଶ୍ଳେଷ କରିଣ ସଧୀରେ । ହସିଲେ ନିଜ ପ୍ରେମଭରେ ।। ୪୭
କ୍ରୋଡ଼ରେ କରି ଆରୋପଣ । ଚାହିଁଲେ ତାଙ୍କୁ ପୁଣ ପୁଣ ।। ୪୮
ଗୋବତ୍ସ ବୃଷସ୍ତିରୀବୃନ୍ଦ । ଲଭିଲେ ପରମ ଆନନ୍ଦ ।। ୪୯
୧୭ ତଦନ୍ତେ ଗୁରୁ ବିପ୍ରଗଣ । ଆପଣା ପତ୍ନୀସହିତେଣ ।। ୫୦
ଆସିଣ ସେ ସ୍ଥାନେ ମିଳିଲେ । ନନ୍ଦକୁ ଏମନ୍ତ କହିଲେ ।। ୫୧
କାଳିୟ ଗ୍ରାସରୁ ତୋହର । ଭାଗ୍ୟରେ ବଞ୍ଚିଲା କୁମର ।। ୫୨
୧୮ କୃଷ୍ଣନିର୍ମୁକ୍ତି ହେତୁପାଇଁ । ବ୍ରାହ୍ମଣେ ଦାନ ଦିଅ ତୁହି ।।
ନନ୍ଦ ହୋଇଣ ପ୍ରୀତମନ । କଲେ ସୁବର୍ଣ୍ଣ ଧେନୁ ଦାନ ।।
୧୯ ସେ ଭାଗ୍ୟବତୀ ନନ୍ଦରାଣୀ । ଗଲା ପୁତ୍ରକୁ ଲଭି ପୁଣି ।। ୫୩
ଭୁଜେ ଭିଡ଼ିଣ କ୍ରୋଡ଼େ ଧରି । ତେଜିଲେ ନୟନରୁ ବାରି ।। ୫୪
୨୦ ହେ ନୃପଶ୍ରେଷ୍ଠ ! ସେ ରାତ୍ରିରେ । କାଳିନ୍ଦୀକୂଳ ନିକଟରେ ।। ୫୫
କ୍ଷୁଧାତୃଷାରେ ହୋଇ ଯୁତ । ଶ୍ରମରେ ହୋଇଣ ପୀଡ଼ିତ ।। ୫୬
ସେ ବ୍ରଜବାସୀ ଧେନୁମାନେ । ସମସ୍ତେ ରହିଲେ ସେ ସ୍ଥାନେ ।। ୫୭

---

୧. ''.........ଆସନ୍ ପୂର୍ଣ୍ଣମନୋରଥାଃ'' - ପାଠ ଅନୁସାରେ ୪୫ ପଦଟି ଅନୁବାଦିତ ହୋଇଛି । ''....... ଆସନ୍ ଶୁଷ୍କା ନଗା ଅପି'' ଏହାର ପାଠାନ୍ତର ଅଟେ । ତଦୁପରି ସ୍ୱାମିପାଦଙ୍କ ଟୀକା ଅନୁସାରେ ନିମ୍ନ ଅନୁବାଦ ରଚିତ ହେଲା ।

''ପୂର୍ବେ ଯେ ବୃକ୍ଷ ଶୁଖିଥିଲେ ।
ସେମାନେ ସଦ୍ୟ କଅଁଳିଲେ ।।''

୨୧ ଶୋଇଥିଲେ ସେ ବ୍ରଜବାସୀ । ଏମନ୍ତେ ଅର୍ଦ୍ଧରାତ୍ରେ ଆସି ॥ ୫୮
ଯେ ଘୋର ଗ୍ରୀଷ୍ମସମୟରେ । ଜାତ ଅଟଇ ବିପିନରେ ॥ ୫୯
ଚାରି ଦିଗରୁ ସେ ଅନଳ । ବେଢ଼ିଲା ହୋଇ ବିକରାଳ ॥ ୬୦
ସକଳ ଗୋକୁଳଲୋକଙ୍କୁ । ଆରମ୍ଭ କଲା ଦହିବାକୁ ॥ ୬୧
୨୨ ଦେହେ ଲାଗନ୍ତେ ତାପ ଆସି । ସଂଭ୍ରମେ ଉଠି ବ୍ରଜବାସୀ ॥ ୬୨
ମାୟାମନୁଷ୍ୟରୂପ ଧରି । ଯେ ଅବତାର ଦେବ ହରି ॥ ୬୩
ତାହାଙ୍କୁ ଗଲେ ସେ ଶରଣ । ସକଳ ଗୋପ ଗୋପୀଗଣ ॥ ୬୪
୨୩ ହେ କୃଷ୍ଣ କୃଷ୍ଣ ହେ ମହାତ୍ମ । ହେ ରାମ ଅମିତ ବିକ୍ରମ ॥ ୬୫
ଏ ଘୋରତମ ଦାବାନଳ । ଆମ୍ଭଙ୍କୁ କରୁଛି କବଳ ॥ ୬୬
ଆମ୍ଭେ ତୁମ୍ଭର ପରିଜନ । ଆଉ ଆଶ୍ରୟ ନାହିଁ ଆନ ॥ ୬୭
୨୪ ସୁହୃଦ ଅଟୁଁ ଆମ୍ଭେ ତୋର । ଏ କାଳ-ଅଗ୍ନି ସୁଦୁସ୍ତର ॥ ୬୮
ଏଥୁଁ ଆମ୍ଭଙ୍କୁ ରକ୍ଷା କର । ଯହିଁରୁ ଭୟ ହୋଏ ଦୂର ॥ ୬୯
ହେ ପ୍ରଭୁ ! ସେ ତୋର ଚରଣ । ଛାଡ଼ି ନ ପାରୁଁ ଆମ୍ଭେ ପୁଣ ॥ ୭୦
୨୫ ଦେଖି ସ୍ୱଜନମାନଙ୍କର । ବିକଳଭାବ ଏ ପ୍ରକାର ॥ ୭୧
ଯେହୁ ଅନନ୍ତଶକ୍ତିମନ୍ତ । ଜଗତ-ଈଶ୍ୱର ଅନନ୍ତ ॥ ୭୨
ପ୍ରଚଣ୍ଡ ବିପିନଦହନ । ସେ ପ୍ରଭୁ କଲେ ତାହା ପାନ ॥ ୭୩
ବନଦହନ କରି ପାନ । ଯେ ରକ୍ଷାକଲେ ବ୍ରଜଜନ ॥ ୭୪
ଚିନ୍ତି ସେ କୃଷ୍ଣପଦାମ୍ବୁଜ । ହରଷ ଦୀନବନ୍ଧୁ ଦ୍ୱିଜ ॥ ୭୫

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ଶ୍ରୀବୃନ୍ଦାବନକ୍ରୀଡ଼ାୟାଂ ଦାବାଗ୍ନିମୋଚନଂ
ନାମ ସପ୍ତଦଶୋଽଧ୍ୟାୟଃ ॥

## ଅଷ୍ଟାଦଶ ଅଧ୍ୟାୟ

ଅଷ୍ଟାଦଶେ ତତୋ ଗ୍ରୀଷ୍ମେ ବସନ୍ତଗୁଣଲକ୍ଷିତେ ।
ଅଘାତୟଦ୍ ବଳେନାଳଂ ପ୍ରଲମ୍ବଂ ଲୀଳୟା ହରିଃ ॥ ୧
କୃତ୍ୱା ନୃତ୍ୟଂ ଫଣାଗ୍ରେଷୁ କାଳିୟସ୍ୟ ସକୌତୁକମ୍ ।
ବଳଂ ପ୍ରଲମ୍ବତୁଙ୍ଗାଂସମାରୋହୟଦରାତିହା ॥ ୨

ଶ୍ରୀଶୁକ ଉବାଚ

୧ ଚାରି ପାରୁଶେ ଜ୍ଞାତିମାନେ । ବେଢ଼ି ଅଛନ୍ତି ତୋଷମନେ ॥ ୧
ଯଶ କରୁଛନ୍ତି ଗାୟନ । ଏଥି ଉତ୍ତାରେ ଭଗବାନ ॥ ୨
ଯେ ବ୍ରଜ ଗୋକୁଳମଣ୍ଡିତ । ତହିଁରେ ମିଳିଲେ ତୁରିତ ॥ ୩

୨ ମାୟାଗୋପାଳରୂପ ଧରି । ଏରୂପେ ବଳରାମ ହରି ।।
ବିହାର କରନ୍ତେ ବ୍ରଜରେ । ବିଖ୍ୟାତ ଯେ ଗ୍ରୀଷ୍ମନାମରେ ।।
ସେ ଋତୁ ହେଲା ପ୍ରାଣିଙ୍କର । ଯେ ନୋହେ ଅତି ପ୍ରୀତିକର ।।
୩ ବୃନ୍ଦାବନର ଯଉଁ ଗୁଣ । ତେଣୁ ସେ ଗ୍ରୀଷ୍ମଋତୁ ପୁଣ ।।
ବସନ୍ତଋତୁପ୍ରାଏ ହୋଇ । ଲୋକେ ଲକ୍ଷିତ ହେଲା ତହିଁ ।।
ରାମର ସହିତେ ଅଚ୍ୟୁତ । ଯହିଁରେ ଅଛନ୍ତି ସାକ୍ଷାତ ।।
୪ ନିର୍ଝର ନିର୍ଘୋଷରେ ଯହିଁ । ଝିଙ୍କାରିମାନେ ମୌନେ ରହି ।।
ସେ ନିର୍ଝରଙ୍କ ଜଳକଣେ । ସ୍ନିଗ୍ଧ ଯେ ପୁଣ ଅନୁକ୍ଷଣେ ।।
ସେ ଦ୍ରୁମମଣ୍ଡପେ[1] ମଣ୍ଡନ । ହୋଇଛି ଯଉଁ ବୃନ୍ଦାବନ ।।
୫ ଯେ ନଦୀ-ସରମାନଙ୍କର । ପ୍ରବାହଲହରୀସମୀର ।।
ରକ୍ତଉତ୍ପଳ ପଦ୍ମରେଣୁ । ଘେନି ବହଇ ନିତ୍ୟେ ଯେଣୁ ।।
ନିଦାଘବହ୍ନି ଦିବାକର । ସମ୍ଭବ ଯେ ତାପ ଦୁର୍ବାର ।।
ସେ ବନବାସୀଙ୍କର ଯହିଁ । କେବେହେଁ ସମ୍ଭବଇ ନାହିଁ ।।
ହରିତ ନବ ତୃଣମାନେ । ଶୋଭିତ ଯଉଁ ବୃନ୍ଦାବନେ ।।
୬ ଅଗାଧ ସଲିଳ ଯହିଁରେ । ସେ ନଦୀତଟଲହରୀରେ ।।
ଯହିଁରେ ଦ୍ରବପଙ୍କମାନେ । ପୁଲିନମାନେ ସ୍ଥାନେ ସ୍ଥାନେ ।।
ବିଷର ପ୍ରାଏ ଯେ ଉଲ୍ବଣ[2] । ସେ ଦିବାକରର କିରଣ ।।
ସତୃଣ ଭୂମିରସ ଯହିଁ । ଘେନିମା ଅର୍ଥେ ଶକ୍ୟ ନୋହି ।।
୭ ବିଚିତ୍ର ମୃଗପକ୍ଷିମାନ । ଯହିଁରେ କରୁଛନ୍ତି ସ୍ୱନ ।।
ଫୁଟି ଅଛନ୍ତି ପୁଷ୍ପେ ଯହିଁ । ଯେ ପୁଣ ଶ୍ରୀମନ୍ତ ଅଟଇ ।।
ଯହିଁରେ କରନ୍ତି ଗାୟନ । ମୟୂର ଭୃଙ୍ଗେ ସ୍ଥାନେ ସ୍ଥାନ ।।
ପିକ ସାରସ ପକ୍ଷିମାନ । କରନ୍ତି ମଧୁର ନିଃସ୍ୱନ ।।
୮ କ୍ରୀଡ଼ା କରିବାକୁ ତହିଁରେ । ବିଚାର କରିଣ ମନରେ ।।
ସଙ୍ଗେ ଅଛନ୍ତି ହଳଧର । ଗୋଧନ ଗୋପାଳନିକର ।।
ବେଣୁ ବଜାନ୍ତେ ଭଗବାନ । ପ୍ରବେଶ ହୋଇଲେ ସେ ବନ ।।
୯ କୁସୁମସ୍ତବକ ପ୍ରବାଳ । ବରହ ଧାତୁ ପୁଷ୍ପମାଳ ।।
ତେଣେ ହୋଇଛନ୍ତି ଭୂଷଣ । ରାମକୃଷ୍ଣାଦି ଗୋପେ ପୁଣ ।।
ନାନା ରଙ୍ଗରେ ଯୁଦ୍ଧ କଲେ । ହରଷେ ନାଚିଲେ ଗାଇଲେ ।।
୧୦ ନୃତ୍ୟ କରନ୍ତେ ନନ୍ଦସୁତ । କେହି ଗାଇଲେ ତହିଁ ଗୀତ ।।
ପତ୍ରକାହାଳୀରେ ବେଣୁରେ । [3]କରତାଳିକାରେ ଶୃଙ୍ଗରେ ।।
କେହି ବାଦ୍ୟକୁ ଆରମ୍ଭିଲେ । କେହି ପ୍ରଶଂସା ପୁଣ କଲେ ।।

---

୧. ମଣ୍ଡଳେ । ୨. ଉଲ୍ବଣ = ଉତ୍‌କଟ । ୩. କରତାଳିଙ୍କର ।

| | | | |
|---|---|---|---|
| ୧୧ | ହେ ନୃପ ! ଗୋପାଳଜାତିରେ । | ଆଚ୍ଛନ୍ନ ହୋଇଣ ଅମରେ ॥ | ୩୫ |
| | ଗୋପାଳରୂପକୁ ଧଇଲେ । | ରାମକୃଷ୍ଣଙ୍କୁ ସ୍ତୁତି କଲେ ॥ | ୩୬ |
| | ନଟବରକୁ ରଙ୍ଗସ୍ଥାନେ । | ସ୍ତୁତି କରନ୍ତି ନଟ ଯେହ୍ନେ ॥ | ୩୭ |
| ୧୨ | ଯେ କ୍ଷେପ ଭ୍ରମଣ[୧] ଲଙ୍ଘନ । | ଯେ ବିକର୍ଷଣ[୨] ଆସ୍ଫୋଟନ[୩] ॥ | ୩୮ |
| | ବାହୁଯୁଦ୍ଧରେ ଏ ପ୍ରକାରେ । | ଖେଳିଲେ କେହୁଣିସିଠାରେ ॥ | ୩୯ |
| | [୪]ଚୂଡ଼ାକରଣୁଁ ପୂର୍ବ ଯେହି । | ସେ କେଶ ଦୁହେଁ ଛନ୍ତି ବହି ॥ | ୪୦ |
| ୧୩ | ହେ ନୃପ ! କହୁଣିସିସ୍ଥାନେ । | ନୃତ୍ୟ କରନ୍ତେ ଆନମାନେ ॥ | ୪୧ |
| | ଦୁହେଁ ଗାଆନ୍ତି ଗୀତ ପୁଣ । | ବାଦ୍ୟକୁ ବଜାନ୍ତି ଆପଣ ॥ | ୪୨ |
| | ବୋଲନ୍ତି ସାଧୁ ସାଧୁ ବାଣୀ । | ପ୍ରଶଂସା କରନ୍ତି ସେ ପୁଣି ॥ | ୪୩ |
| ୧୪ | ଘେନିଣ ବିଲ୍ୱଫଳମାନ । | ଖେଳନ୍ତି କେହୁଣିସି ସ୍ଥାନ ॥ | ୪୪ |
| | କୁମ୍ଭ[୫] ଫଳରେ ଅଏଁଳାରେ । | ଖେଳନ୍ତି କେବଣ ସ୍ଥାନରେ ॥ | ୪୫ |
| | ନୟନ ବୁଜିଥାଇ ଏକ । | ନ ଛୁଇଁ ପଳାଇ ଆରକ ॥ | ୪୬ |
| | ଖେଳନ୍ତି ଏମନ୍ତ ଲୀଳାରେ । | ଖଗଙ୍କ ମୃଗଙ୍କ ଚେଷ୍ଟାରେ ॥ | ୪୭ |
| ୧୫ | ମଣ୍ଡୂକପ୍ରାଏ କରି ଗତି । | କେବଣ ସ୍ଥାନରେ ଖେଳନ୍ତି ॥ | ୪୮ |
| | କ୍ରୀଡ଼ା କରନ୍ତି ହାନ୍ଦୋଳାରେ । | କାହିଁରେ ନୃପତିଚେଷ୍ଟାରେ ॥ | ୪୯ |
| ୧୬ | ନଦୀ ପର୍ବତ ଗୁହାମାନ । | ଯେ ସର ଯେ କୁଞ୍ଜକାନନ ॥ | ୫୦ |
| | ସେମାନଙ୍କରେ ଏ ପ୍ରକାରେ । | ଜଗତପ୍ରସିଦ୍ଧ କ୍ରୀଡ଼ାରେ ॥ | ୫୧ |
| | ଖେଳନ୍ତେ କୃଷ୍ଣ ହଳଧର । | ଭ୍ରମିଲେ କାନନମଧ୍ୟର ॥ | ୫୨ |
| ୧୭ | ରାମ କେଶବ ସେ ବନରେ । | ଗୋପାଳମାନଙ୍କ ସଙ୍ଗରେ ॥ | ୫୩ |
| | ପଶୁଙ୍କୁ ଚରାନ୍ତେ ତାହାଙ୍କୁ । | ହରିବା ବିଚାରି ମନକୁ ॥ | ୫୪ |
| | ଗୋପାଳରୂପକୁ ଧଇଲା । | ପ୍ରଲମ୍ବ ଅସୁର ମିଳିଲା ॥ | ୫୫ |
| ୧୮ | ସକଳ ଗୋଚର ଯାହାରି । | ଜାଣନ୍ତେ ତାହା ସେ ଶ୍ରୀହରି ॥ | ୫୬ |
| | ସେ ଅସୁରର ଯେ ମରଣ । | ବିଚାର କରନ୍ତେ ତା' ପୁଣ ॥ | ୫୭ |
| | ସଖାଭାବକୁ ତା' ସଙ୍ଗତେ । | ସ୍ୱୀକାର କଲେ ତୋଷଚିତ୍ତେ ॥ | ୫୮ |
| ୧୯ | ଯେ କୃଷ୍ଣ ଜାଣେ ବିହାରକୁ । | ସେ ସ୍ଥାନେ ଗୋପାଳମାନଙ୍କୁ ॥ | ୫୯ |
| | ଡାକି ବୋଇଲେ ହେ ଗୋପାଳେ । | ଖେଳିବା ଦୁଇ ଦୁଇ ମେଳେ ॥ | ୬୦ |
| ୨୦ | ରାମକୃଷ୍ଣଙ୍କୁ ଅଧୀଶ୍ୱର । | ଗୋପାଳେ କଲେ ସେ ସ୍ଥାନର ॥ | ୬୧ |
| | କେହି ହୋଇଲେ ରାମଦିଗେ । | ଅପରେ ହେଲେ କୃଷ୍ଣଭାଗେ ॥ | ୬୨ |
| ୨୧ | କଲେ ବିବିଧ କ୍ରୀଡ଼ାମାନ । | ଜଣକୁ ବହେ ଆର ଜଣ ॥ | ୬୩ |
| | ଜିଣିଲା ଗୋପାଳଙ୍କୁ ତହିଁ । | ଯେ ହାରେ ନିଅଇ ସେ ବହି ॥ | ୬୪ |
| ୨୨ | ବହନଯୋଗ୍ୟ ଯେଉଁମାନେ । | ତାଙ୍କୁ ବହନ୍ତେ ପୁଣ ଆନେ ॥ | ୬୫ |

୧. ଭ୍ରମଣ=ଭ୍ରାମଣ । ୨. ବିକର୍ଷଣ=ଧନୁଗୁଣକୁ ଟାଣିବା । ୩. ଆସ୍ଫୋଟନ=ଏଣେତେଣେ ବୁଲିବା ।
୪. ଚୂଡ଼ାକରଣୁଁ=ଶିଖା ନିର୍ମାଣ । ୫. କୁମ୍ଭ=କୁମ୍ଭୀ ।

ଚରାନ୍ତେ ହରଷେ ଧେନୁକୁ । ଆଗ କରିଣ ଶ୍ରୀକୃଷ୍ଣଙ୍କୁ ॥ ୬୬
ଭାଣ୍ଡୀର ନାମ ଯଉଁ ବନ । ତହିଁକି କଲେ ସେ ଗମନ ॥ ୬୭
୨୩ ହେ ନୃପ ! ରାମଦିଗ ହୋଇ । ଶ୍ରୀଦାମ ବୃଷଭାଦି ଯେହି ॥ ୬୮
ସେମାନେ ଜିଣନ୍ତେ କ୍ରୀଡ଼ାରେ । କୃଷ୍ଣାଦି ଗୋପେ ତଦନ୍ତରେ ॥ ୬୯
ନିଜ କାନ୍ଧରେ ସେମାନଙ୍କୁ । ବହିଲେ ଅବଧିସ୍ଥାନକୁ ॥ ୭୦
୨୪ କ୍ରୀଡ଼ାରେ ନ ଲଭି ଜୟକୁ । କୃଷ୍ଣ ବହିଲେ ଶ୍ରୀଦାମକୁ ॥ ୭୧
ବୃଷଭ ନାମରେ ଯେ ଆନ । ତାକୁ ବହିଲା ଭଦ୍ରସେନ ॥ ୭୨
ରୋହିଣୀସୁତକୁ କାନ୍ଧର । ବହିଲା ପ୍ରଳମ୍ବ ଅସୁର ॥ ୭୩
୨୫ କୃଷ୍ଣଙ୍କୁ ଅସହ୍ୟ ମଣିଣ । ସେହୁ ଦାନବଶ୍ରେଷ୍ଠ ପୁଣ ॥ ୭୪
କୃଷ୍ଣର ଦୃଷ୍ଟିରୁ ଅନ୍ତର । ହେବା ବିଚାରି ଅତିଖର ॥ ୭୫
ଓହ୍ଲାଇବାର ସ୍ଥାନ ଯେହି । ବହନ୍ତେ ବଳିଗଲା ତାହି ॥ ୭୬
୨୬ ଧରଣୀଧରେନ୍ଦ୍ରର ସମ । ଗରୁ ଅଟନ୍ତି ଯଉଁ ରାମ ॥ ୭୭
ତାଙ୍କୁ ବହନ୍ତେ ମହାସୁର । ଭଙ୍ଗ ହୋଇଲା ବେଗ ଯାର ॥ ୭୮
ଧଇଲା ନିଜ ବପୁ ପୁଣ । ବହିଛି ହେମ ଆଭରଣ ॥ ୭୯
ତଡ଼ିତକାନ୍ତିରେ ସଂଯୁତ । ଚନ୍ଦ୍ରକୁ ବହନ୍ତେ ଯେମନ୍ତ ॥ ୮୦
ଜଳଦ ଦିଶେ, ସେ ପ୍ରକାର । ଶୋଭାକୁ ଲଭିଲା ଅସୁର ॥ ୮୧
୨୭ ଯହିଁରେ ନେତ୍ର ପ୍ରଦୀପିତ । ଭ୍ରୁକୁଟିତଟ ଉଗ୍ର ଦନ୍ତ ॥ ୮୨
ଶିଖା ହିଁ ଦିଶୁଛି ଉଜ୍ଜ୍ୱଳ । ବଳୟ ମୁକୁଟ କୁଣ୍ଡଳ ॥ ୮୩
ଏହାଙ୍କ ତେଜେ ଅଦଭୁତ । ଆକାଶେ ଯାଉଛି ତୁରିତ ॥ ୮୪
ତା' ବପୁ ଦେଖି ଅଳ୍ପ ଭୟ । ଲଭିଲେ ରୋହିଣୀତନୟ ॥ ୮୫
୨୮ ଏଥୁ ଉତ୍ତାରେ ହଳଧର । ଲଭିଲେ ସ୍ମୃତିକି ସତ୍ୱର ॥ ୮୬
ମନରେ¹ ଯଉଁ ଭୟ ଥିଲା । ସେହି ତାଙ୍କର ଦୂର ଗଲା ॥ ୮୭
ସଙ୍ଗ ଛଡ଼ାଇ ଆପଣାର । ବହି ଯେ ନେଉଛି ଅସୁର ॥ ୮୮
ରୋଷେ ତା' ଶିରେ ଦୃଢ଼ତର । ମୁଷ୍ଟିକି କଲେକ ପ୍ରହାର ॥ ୮୯
ବଜ୍ରବେଗରେ ପୁରୁହୂତ² । ଗିରିକି ନାଶଇ ଯେମନ୍ତ ॥ ୯୦
୨୯ ସେ ମୁଷ୍ଟିଘାତରେ ଆହତ । ହୋଇଲା ତତ୍‌କ୍ଷଣେ ଦଇତ ॥ ୯୧
ଭାଜିଲା ଶିର ମୁଖୁଁ ପୁଣ । ରକତ ବାନ୍ତି କରନ୍ତେଣ ॥ ୯୨
ଗର୍ଜନ କରନ୍ତେ ଉଚ୍ଚରେ । ମରି ପଡ଼ିଲା ଧରଣୀରେ ॥ ୯୩
ଇନ୍ଦ୍ର ଆୟୁଧେ ହତ ହୋଇ । ପର୍ବତ ଯେସନେ ପଡ଼ଇ ॥ ୯୪
୩୦ ଯେ ବଳବନ୍ତ ହଳଧର । ମାଇଲେ ସେ ପ୍ରଳମ୍ବାସୁର ॥ ୯୫

---

୧. ସମରେ । ୨. ଇନ୍ଦ୍ର ।

| | | | | |
|---|---|---|---|---|
| | ଏମନ୍ତ ଦେଖିଣ ଗୋପାଳେ | । ବିସ୍ମୟ ଲଭିଲେ ସକଳେ | ॥ | ୯୬ |
| | ଅତି ହରଷ ହୋଇ ପୁଣି | । ବୋଇଲେ ସାଧୁ ସାଧୁ ବାଣୀ | ॥ | ୯୭ |
| ୩୧ | ଗୋପାଳେ ତୋଷକୁ ଲଭିଲେ | । ରାମକୁ ଆଶିଷ ଗୁଣିଲେ | ॥ | ୯୮ |
| | ପ୍ରଶଂସାଯୋଗ୍ୟ କାମପାଳ[୧] | । ତାଙ୍କୁ ପ୍ରଶଂସିଲେ ସକଳ | ॥ | ୯୯ |
| | ମରଣ ଲଭିଥିଲା ଜନ | । ପ୍ରବେଶ ହୋଇଲେ ଯେସନ | ॥ | ୧୦୦ |
| | ସେ ରୂପେ କରି ଆଲିଙ୍ଗନ | । ପ୍ରେମବିହ୍ୱଳ ତାଙ୍କ ମନ | ॥ | ୧୦୧ |
| ୩୨ | ପାପିଷ୍ଠ ପ୍ରଳମ୍ବ ଅସୁର | । ମରନ୍ତେ ସକଳ ଅମର | ॥ | ୧୦୨ |
| | ପରମ ସୁଖିତ ହୋଇଣ | । କୁସୁମମାଳାମାନ ପୁଣ | ॥ | ୧୦୩ |
| | ରାମଉପରେ ବରଷିଲେ | । ସାଧୁବାକ୍ୟରେ ପ୍ରଶଂସିଲେ | ॥ | ୧୦୪ |
| | ପ୍ରଳମ୍ବ ଅସୁର ନିଧନ | । କଲେ ଯେ ରୋହିଣୀନନ୍ଦନ | ॥ | ୧୦୫ |
| | ତାହାଙ୍କ ପାଦପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁମତି | ॥ | ୧୦୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ପ୍ରଳମ୍ବବଧୋ ନାମ
ଅଷ୍ଟାଦଶୋଽଧ୍ୟାୟଃ ॥

## ଊନବିଂଶ ଅଧ୍ୟାୟ

ଊନବିଂଶେ ନିବିଷ୍ଟଂ ତୁ ଗୋପଗୋକୁଳମଚ୍ୟୁତଃ ।
ମୁଞ୍ଜାରଣ୍ୟମରଣ୍ୟାଗ୍ନେ ରରକ୍ଷ ତନ୍ନିପାନତଃ ॥ ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଗୋପାଳମାନେ କ୍ରୀଡ଼ାରସେ | । ଆସକ୍ତ ହୁଅନ୍ତେ ବିଶେଷେ | ॥ | ୧ |
| | ଯେଝା ଇଚ୍ଛାରେ ଧେନୁମାନେ | । ଚରନ୍ତେ ତୃଣ ଦୂରସ୍ଥାନେ | ॥ | ୨ |
| | ତୃଣଲୋଭରେ ପୁଣ ଗଲେ | । ଗହନ[୨] ଭିତରେ ମିଳିଲେ | ॥ | ୩ |
| ୨ | ମହିଷୀ ଛେଳି ଧେନୁମାନେ | । ମିଳନ୍ତେ ବନୁଁ ଆନବନେ | ॥ | ୪ |
| | କାନ୍ଦନ୍ତେ ଦାବେ ତୃଷା ପାଇ | । ମୁଞ୍ଜବନରେ[୩] ହେଲେ ଯାଇଁ | ॥ | ୫ |
| ୩ | ରାମକୃଷ୍ଣଙ୍କୁ ଆଦି ହୋଇ | । ଯେତେ ଗୋପାଳେ ଥିଲେ ତହିଁ | ॥ | ୬ |
| | ସେ କୃଷ୍ଣ ବିନୁ ରାମ ଆନେ | । ପଶୁଙ୍କୁ ନ ଦେଖି ସେ ସ୍ଥାନେ | ॥ | ୭ |
| | ଲଭିଲେ ଅନୁତାପ ମନେ | । ପଶୁଙ୍କୁ ଖୋଜନ୍ତେ ଯତନେ | ॥ | ୮ |

୧. ବଳରାମ । ୨. ଗହ୍ୱର ।
୩. 'ମୁଞ୍ଜାଟବୀଂ' ଇତି ପାଠେ । 'ଈଷୀକାଟବୀଂ' ଇତି ପାଠେ 'ଅତ୍ୟୁଚ୍ଛ୍ରିତଘନ-ତୃଣବିଶେଷାରଣ୍ୟଂ' ଅତି ଡେଙ୍ଗା ଓ ଘଞ୍ଚ ଏକପ୍ରକାର ଘାସ ଥିବା ଜଙ୍ଗଲ ଇତି ଅର୍ଥ ।

ଯେ ଗତି ପଶୁମାନଙ୍କର । ତାହା ନ କଲେ ସେ ଗୋଚର ।।
୪ ଧେନୁଙ୍କ ଖୁରେ ଦନ୍ତେ ଛିନ୍ନ । ହୋଇଥିଲେ ଯେ ତୃଣମାନ ।।
ଭୂମିତଳରେ ଚିହ୍ନ ହୋଇ । ଗୋଷ୍ପଦ[1]ମାନେ ଯେ ବା ତହିଁ ।।
ତେଣୁ ମାର୍ଗକୁ ଅନୁଗତ । ହେଲେ ଜୀବିକା ଯେଣୁ ହତ ।।
ସେ ଘେନି କରି ନିଜ ଚିତ୍ତ । ତାଙ୍କର ହୋଇଅଛି ହତ ।।
୫ ସମସ୍ତେ ତୃଷାରେ ପୀଡ଼ିତ । ବିଶେଷେ ହୋଇଛନ୍ତି ଶ୍ରାନ୍ତ ।।
ନିଜ ଗୋଧନ ମୁଞ୍ଜବନେ । କାନ୍ଦନ୍ତି ମାର୍ଗର ବିହୁନେ ।।
ସେ ସ୍ଥାନେ ସେମାନଙ୍କୁ ପାଇ । ତହୁଁ ଆଣିଲେ ଲେଉଟାଇ ।।
୫(କ) ମେଘର ପ୍ରାୟ ଛବି ଯାର । ସେ ତୁଙ୍ଗ ବୃକ୍ଷର ଉପର ।।
ଆରୋହି କରି ଆପଣାକୁ । ଦେଖାନ୍ତେ ସୁରଭିମାନଙ୍କୁ ।।
ଧରି ଯେ ଯାହା ନାମମାନ । ଡାକିଲେ ପ୍ରଭୁ ଭଗବାନ ।।
୬ ମେଘଗମ୍ଭୀର ବାକ୍ୟେ ହରି । ଡାକିଲେ ତାଙ୍କୁ ଉଚ୍ଚ କରି ।।
ତୋଷେ ସ୍ୱନାମଧ୍ୱନି ଶୁଣି । ପ୍ରତିନାଦକୁ କଲେ ପୁଣି ।।
୭ ବନଦହନ ତଦନ୍ତରେ । ମିଳିଲା ସକଳ ଦିଗରେ ।।
ବନବାସୀଙ୍କ କ୍ଷୟଙ୍କର । ଅଟେ ସେ ଯେ ସାରଥି[2] କର ।।
ସେ ବାତ ବଢ଼ାଇଲା ତାଙ୍କୁ । ସ୍ଥାବର-ଜଙ୍ଗମମାନଙ୍କୁ ।।
ପ୍ରଚଣ୍ଡ ଯେ ଉଲ୍ମୁକ[3] ତେଣେ । ଲିହନ୍ତେ ବଢ଼ିଲା[4] ଆପଣେ ।।
୮ ସେ ବନଅଗ୍ନି ସବୁଦିଗେ । ମାଡ଼ି ଆସୁଛି ଅତି ବେଗେ ।।
ଧେନୁସହିତେ ଗୋପମାନେ । ଦେଖିଣ ଭୟ କଲେ ମନେ ।।
ରାମ କେଶବଙ୍କୁ ପ୍ରପନ୍ନ । ହୋଇଣ ବୋଇଲେ ବଚନ ।।
ମୃତ୍ୟୁମୁଖ[5] ପୀଡ଼ିତ ଜନ । ହରିଙ୍କି ବୋଲନ୍ତି ଯେସନ ।।
୯ ହେ କୃଷ୍ଣ କୃଷ୍ଣ ମହାବଳ । ସତ୍ୟବିକ୍ରମ[6] କାମପାଳ ।।
ଆମ୍ଭେ ଯେ ପ୍ରପନ୍ନ ତୁମ୍ଭଙ୍କୁ । ବିପିନଅନଳ ଆମ୍ଭଙ୍କୁ ।।
ଦହନ କରୁଅଛି ଏଥ । ତୁଅ ରଖିବାକୁ ସମର୍ଥ ।।
୧୦ ହେ କୃଷ୍ଣ ତୁମ୍ଭ ବନ୍ଧୁଜନ । ଦୁଃଖ ପାଇବାକୁ ଭାଜନ ।।
ନୁହନ୍ତି, ନିଶ୍ଚୟ ଏ କଥା । ଆମ୍ଭମାନଙ୍କର ସର୍ବଥା ।।
ତୁମ୍ଭେ ଈଶ୍ୱର ଅଟ ପୁଣ । ତୁମ୍ଭେ କେବଳ ପରାୟଣ ।।

---

୧. ଗୋଷ୍ପଦ = ଭୂଇଁରେ ଗାଈ ଖୁରାର ଚିହ୍ନ ।

୫(କ). କୃଷ୍ଣସଙ୍ଗଂ ସମାରୁହ୍ୟ ବୃକ୍ଷଂ ମେଘନିଭଚ୍ଛବିମ୍ ।
ଆମ୍ବାନମାହ୍ୱୟାମାସ ଦର୍ଶୟନ୍ ଗାଃ ସ୍ୱନାମତଃ ।।

୨. ସାରଥି = ବାୟୁ । ୩. ଉଲ୍ମୁକ = ଜଳନ୍ତା କାଠ । ୪. ବଢ଼ିଲା = ବେଢ଼ିଲା ।

୫. ମୃତ୍ୟୁମୁଖ = ଭୟ । ୬. 'ଅମୋଘବିକ୍ରମ' ଇତି ପାଠେ 'ଅମିତବିକ୍ରମ' ଇତି ପାଠାନ୍ତରମ୍ ।

### ଶ୍ରୀଶୁକ ଉବାଚ

୧୧ ବନ୍ଧୁମାନଙ୍କର କୃପଣ । ବଚନ ଶ୍ରୀହରି ଶୁଣିଣ ॥ ୩୬
ଭୟ ନ ପାଅ ନିଜ ମନ । ବୁଜ ଆପଣାର ନୟନ ॥ ୩୭
ଏମନ୍ତ ରୂପେ ସେମାନଙ୍କୁ । କହିଲେ ପୁଣ ବଚନକୁ ॥ ୩୮
୧୨ ଶୁଣି ସେ ଶ୍ରୀକୃଷ୍ଣ ବଚନ । ବୁଜନ୍ତେ ସେମାନେ ନୟନ ॥ ୩୯
ସେ ଭଗବାନ ଯୋଗେଶ୍ୱର । ଉଲ୍ଲଣ ଯେଉଁ ବୈଶ୍ୱାନର ॥ ୪୦
ମୁଖରେ ତାହାକୁ ପିଇଲେ । ତାଙ୍କୁ ସଂକଟୁଁ ମୁକ୍ତ କଲେ ॥ ୪୧
୧୩ ତଦନନ୍ତରେ ଭାଣ୍ଡୀରକୁ । କୃଷ୍ଣ ପୁଆଇଲେ ତାହାଙ୍କୁ ॥ ୪୨
ନୟନ ଫିଟାଇଣ ପୁଣ । ଗାଈଙ୍କି ଆତ୍ମାସହିତେଣ ॥ ୪୩
ବିମୁକ୍ତ ଦେଖି ଅତିଶୟ । ମନରେ ଲଭିଲେ ବିସ୍ମୟ ॥ ୪୪
୧୪ ଅନୁଭାବେ ଯୋଗମାୟାର । ଯେ ଯୋଗବୀର୍ଯ୍ୟ ଶ୍ରୀକୃଷ୍ଣର ॥ ୪୫
ବନଅନଳୁଁ ଆପଣାର । ଯେ ମୋକ୍ଷ[୧] କରିଣ ଗୋଚର ॥ ୪୬
ମନୁଷ୍ୟ ନୁହନ୍ତି ଏ ସୁର । ଏମନ୍ତ ମଣିଲେ ମନର ॥ ୪୭
୧୪(କ) ଆପଣା ଅଙ୍ଗକୁ ଆରୋହି । ଶ୍ରୀଦାମ ଆଦି ଗୋପେ ଯେହି ॥ ୪୮
ହରଷ ଲଭୁଥିଲେ ମନ । ବନଅନଳ କରି ପାନ ॥ ୪୯
ଯେ ବା ଐଶ୍ୱର୍ଯ୍ୟ ଆପଣାର । ପ୍ରକାଶିଲେ ତା' ଦାମୋଦର ॥ ୫୦
୧୫ ରାମସହିତେ ଜନାର୍ଦ୍ଦନ । ଲେଉଟାଇଣ ଧେନୁମାନ ॥ ୫୧
ବେଣୁ ବଜାନ୍ତେ ସଂଧ୍ୟାକାଳେ । ସଙ୍ଗତେ ଥିଲେ ଯେତେ ବାଳେ ॥ ୫୨
ସ୍ତୁତିକି କରନ୍ତେ ସେମାନେ । ପ୍ରବେଶ ହେଲେ ଗୋଷ୍ଠସ୍ଥାନେ ॥ ୫୩
୧୬ ପରମାନନ୍ଦ ଗୋପୀଙ୍କର । ହେଲା ଦରଶନୁଁ କୃଷ୍ଣର ॥ ୫୪
କ୍ଷଣମାତ୍ର ହିଁ ଯୁଗଶତ । ଯା' ବିନୁ ମଣିଲେ ସେ ଚିତ୍ତ ॥ ୫୫
ବନ ଅନଳ କରି ପାନ । ଯେ ନିଜ ସଖା ଧେନୁମାନ ॥ ୫୬
ରଖିଲେ ସେ କୃଷ୍ଣଙ୍କୁ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୫୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଦାବାଗ୍ନିପାନଂ
ନାମ ଊନବିଂଶୋଽଧ୍ୟାୟଃ ॥

---

୧. କ୍ଷେମ ।

୧୪(କ). ଶ୍ରୀଦାମାଦିସ୍ୱଗୋପାନାଂ ସ୍ୱାଙ୍ଗମାରୁହ୍ୟ ହୃଷ୍ୟତାମ୍ ।
ସ୍ୱୈଶ୍ୱର୍ଯ୍ୟମାବିରକରୋଦ୍ ବନବହ୍ନିନିପାନତଃ ।

ଏହି ୧୪(କ) ଶ୍ଲୋକଟି ଅଧୁନା ପ୍ରଚଳିତ ଶ୍ରୀମଭାଗବତର ସଂସ୍କରଣମାନଙ୍କରେ ଦେଖା ନ ଗଲେ ମଧ୍ୟ ଶ୍ରୀଖାଡ଼ଙ୍ଗା ମହାଶୟ ତାଙ୍କ ସଂଗୃହୀତ ପୋଥିମାନଙ୍କରୁ ଏହି ପାଠ ଉଦ୍ଧାର କରି ଉପରେ ଏହାର ଅନୁବାଦ କରିଛନ୍ତି ।

# ବିଂଶ ଅଧ୍ୟାୟ

ବିଂଶେ ପ୍ରାବୃଟ୍‌ଶରଚ୍ଛୋଭାବର୍ଣ୍ଣନେନ ବନୋଚିତାଃ ।
ପ୍ରାବୃଟକ୍ରୀଡ଼ା ନିରୂପ୍ୟନ୍ତେ ଗୋପରାମଯୁଜୋ ହରେଃ ।। ୧
ହେୟାଦେୟୋପମାନେନ ପ୍ରାବୃଟ୍‌ଶରଦୃତୁଶ୍ରିୟୋଃ ।
ବର୍ଣ୍ଣନନ୍ତ୍ୱଭୁତୈଶ୍ୱର୍ଯ୍ୟକୃଷ୍ଣଲୀଳାବିବକ୍ଷୟା ।। ୨

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | କୃଷ୍ଣ ରାମର ଅଦଭୁତ | । | ଅଟଇ ଯେବଣ ଚରିତ | ।। | ୧ |
| | ବନ ଅନଳରୁ ମୋକ୍ଷଣ | । | ପ୍ରଳମ୍ବବଧ ଯେ ବା ପୁଣ | ।। | ୨ |
| | ଗୋପାଳେ ସ୍ତିରୀଙ୍କ ଆଗରେ | । | କହିଲେ ସେ କଥା ଗୋଷ୍ଠରେ | ।। | ୩ |
| ୨ | ଗୋପୀଏ ବୃଦ୍ଧ ଗୋପେ ପୁଣି | । | ବିସ୍ମୟ ହେଲେ ତାହା ଶୁଣି | ।। | ୪ |
| | ଏ ହଳଧର ଦାମୋଦର | । | ଦେବତାଙ୍କର ମଧ୍ୟେ ବର | ।। | ୫ |
| | ବ୍ରଜରେ ଜନମ ହୋଇଲେ | । | ମନରେ ଏମନ୍ତ ମଣିଲେ | ।। | ୬ |
| ୩ | ବରଷା ସମୟ ବ୍ରଜରେ | । | ପ୍ରବେଶ ହେଲା ତଦନ୍ତରେ | ।। | ୭ |
| | ଯହିଁରେ ଚନ୍ଦ୍ର ସୂର୍ଯ୍ୟଙ୍କର | । | ମଣ୍ଡଳ ଦିଶିଲା ସୁନ୍ଦର | ।। | ୮ |
| | ଯେବଣ ସମୟେ ଆକାଶ | । | କ୍ଷୋଭିତ ହୋଇଲା ବିଶେଷ | ।। | ୯ |
| ୪ | ବିଜୁଳି ଗର୍ଜିତସହିତ | । | ନିବିଡ଼ ନୀଳ ଯେ ଜୀମୂତ | ।। | ୧୦ |
| | ତେଣେ ଯା' ଜ୍ୟୋତି ଅପ୍ରକାଶ | । | ଏମନ୍ତ ହୋଇଲା ଆକାଶ | ।। | ୧୧ |
| | ଗୁଣମାନଙ୍କର ଆଚ୍ଛନ୍ନେ | । | ପ୍ରକାଶ ନୋହେ ଜୀବ ଯେହ୍ନେ | ।। | ୧୨ |
| ୫ | ଭୂମିର ଜଳମୟ ଧନ | । | ଅଷ୍ଟମାସରେ ଯା' ତପନ | ।। | ୧୩ |
| | କିରଣେ କରିଥିଲା ଗ୍ରାସ | । | ସମୟ ହୁଅନ୍ତେ ପ୍ରକାଶ | ।। | ୧୪ |
| | ସେ ଧନ ଦେବାଅର୍ଥେ ପୁଣି | । | ଆରମ୍ଭ କଲା ଦିନମଣି | ।। | ୧୫ |
| ୬ | ବିଜୁଳିବନ୍ତ ମହାଘନେ | । | କମ୍ପିତ ପ୍ରଚଣ୍ଡ ପବନେ | ।। | ୧୬ |
| ୭ | ଏ ଜଗତକୁ ଆପ୍ୟାୟନ | । | କରଇ ଯେବଣ ଜୀବନ[୧] | ।। | ୧୭ |
| | [୨]କରୁଣାବନ୍ତ ପ୍ରାଏ ହୋଇ | । | [୩]ପୂର୍ବେ ଯେ ରହିଥିଲା ମହୀ | ।। | ୧୮ |
| | ଇନ୍ଦ୍ର କରନ୍ତେ ବରଷଣ | । | ପୁଷ୍ଟିକି ଲଭିଲା ସେ ପୁଣ | ।। | ୧୯ |
| | ଯେହ୍ନେ ସକାମ ତପସ୍ୱୀର | । | ସେ ଫଳ ଲଭନ୍ତେ ଶରୀର | ।। | ୨୦ |

---

୧. ଜୀବନ = ଜଳ ।

୨. କୃପାଳୁ ବ୍ୟକ୍ତିମାନେ ଯେପରି ଶୋକତପ୍ତ ଲୋକକୁ ଦେଖି ତାହାକୁ ଅନୁକଂପାପୂର୍ବକ ଆପ୍ୟାୟିତ କରିବା ପାଇଁ ନିଜ ଜୀବନ ମଧ୍ୟ ତ୍ୟାଗ କରନ୍ତି, ସେହିପରି ମହାନ୍ ମେଘମାନେ ତଡ଼ିଦ୍‌ରୂପକ ନେତ୍ରରେ ବିଶ୍ୱକୁ ସଂତପ୍ତ ଦେଖି ବାୟୁଦ୍ୱାରା କଂପିତ ହୋଇ ଜଳ ତ୍ୟାଗ କଲେ ।

୩. ପୂର୍ବେ ମହୀ ଗ୍ରୀଷ୍ମ ହେତୁ କୃଶା ହୋଇଥିଲା, କିନ୍ତୁ ଏବେ ବର୍ଷାସିକ୍ତା ହେବାରୁ କୃଶତା ତ୍ୟାଗ କରି ପୁଷ୍ଟା ହେଲା ।

କୃଶଭାବକୁ ତ୍ୟାଗ କରେ । ପୁଷ୍ଟିକି ଲଭଇ କ୍ରମରେ ॥ ୨୧
୮ ଖଦ୍ୟୋତେ[୧] ରଜନୀମୁଖରେ । ପ୍ରକାଶ ହେଲେ ଅନ୍ଧକାରେ ॥ ୨୨
ଯେ ପୁଣି ଥିଲେ ଗ୍ରହମାନେ । ଅଦୃଶ୍ୟ ହେଲେ ସେ ଗଗନେ ॥ ୨୩
ପାପରେ ପାଷଣ୍ଡେ ଯେସନ । କଳିଯୁଗରେ ଶୋଭମାନ ॥ ୨୪
ଧର୍ମମାର୍ଗରେ ବେଦମାନେ । ପ୍ରକାଶ ନୋହନ୍ତି ସେ ତେହ୍ନେ ॥ ୨୫
୯ ମେଘର ନିନଦକୁ ଶୁଣି । ମଣ୍ଡୂକେ ନାଦ କଲେ ପୁଣି ॥ ୨୬
ଶିଷ୍ୟେ ଯେସନେ ତୁନି ହୋଇ । ପୂର୍ବସମୟେ ଥାନ୍ତି ଶୋଇ ॥ ୨୭
ସାରିଣ ନିତ୍ୟକର୍ମମାନ । ଗୁରୁ କରନ୍ତେ ବେଦସ୍ୱନ ॥ ୨୮
ସେମାନେ ସେ ଶବଦ ଶୁଣି । ବେଦ ପଢ଼ନ୍ତି ଯେହ୍ନେ ପୁଣି ॥ ୨୯
୧୦ ଶୁଖିଲା ନଦୀମାନେ ପୁଣ । ବରଷାଜଳ ପ୍ରବେଶେଣ ॥ ୩୦
କଲେ ଉତ୍‌ପଥରେ ଗମନ । ଯେ ବା ଇନ୍ଦ୍ରିୟବଶ ଜନ ॥ ୩୧
ତା' ଦେହ ଦ୍ରବିଣ ସଂପତ୍ତି । ଅମାର୍ଗେ ଯେସନେ ହୁଅନ୍ତି ॥ ୩୨
୧୧ ଯେ ନୀଳବର୍ଣ୍ଣ ତୃଣମାନ । ତେଣେ ଦିଶିଲା ନୀଳବର୍ଣ୍ଣ ॥ ୩୩
ଯେ ଇନ୍ଦ୍ରଗୋପ[୨]କୀଟ ଜାତ । ତେଣେ ସେ ଦିଶିଲା ଲୋହିତ ॥ ୩୪
ଉତ୍‌ଥିତ ଶିଳୀନ୍ଧ୍ର[୩]ରେ ଯହିଁ । ପ୍ରକାଶ ହୋଇଅଛି ଛାଇ ॥ ୩୫
ରାଜାଙ୍କ ସେନାଶିରୀସମ । ଧରଣୀ ଦିଶିଲା ସୁଷମ ॥ ୩୬
୧୨ ଶସ୍ୟସଂପଦେ କ୍ଷେତ୍ରମାନେ । କର୍ଷକମାନଙ୍କର ମନେ ॥ ୩୭
କଲେ ହରଷକୁ ବିଧାନ[୪] । ଜଳ ହୁଅନ୍ତେ ପୁଣ ଖିନ୍ନ ॥ ୩୮
ଅନୁତାପକୁ ଲଭେ ଜନ । ଜଗତ ଦଇବ ଅଧୀନ ॥ ୩୯
ଏ କଥା ନ ଜାଣିଲା ଜନେ । ତାପକୁ ଲଭନ୍ତି ଯେସନେ ॥ ୪୦
୧୩ ଯେ ଜଳସ୍ଥଳବାସୀମାନେ । ସେ ନବ ସଲିଳସେବନେ ॥ ୪୧
ଧଇଲେ ଦିବ୍ୟରୂପ ପୁଣି । ହରିସେବାରେ ଯେହ୍ନେ ପ୍ରାଣୀ ॥ ୪୨
୧୪ ସଙ୍ଗମୁଁ ନଦୀମାନଙ୍କର । କ୍ଷୋଭିତ ହୋଇଲା ସାଗର ॥ ୪୩
ହେଲା ପବନଊର୍ମିଯୁତ । ଯେହ୍ନେ ଅପକ୍ୱଯୋଗୀଚିତ୍ତ ॥ ୪୪
କାମବାସନାଯୁତ ହୋଇ । ବିଷୟଯୁଗକୁ[୫] ଲଭଇ ॥ ୪୫
୧୫ ବରଷାଧାରାମାନଙ୍କରେ । ଆହତ ହେଲେହେଁ ଭୂଧରେ ॥ ୪୬
ବ୍ୟଥା ନ ଲଭିଲେ, ଯେସନ । କୃଷ୍ଣର ଠାରେ ଯାଙ୍କ ମନ ॥ ୪୭
ବ୍ୟସନେ ହେଲେହେଁ ପୀଡ଼ିତ । ସେ ତାହା ନ ଧରନ୍ତି ଚିତ୍ତ ॥ ୪୮
୧୬ ତୃଣମାନଙ୍କରେ ଆଛନ୍ନ । ହେଲେ ସକଳ ମାର୍ଗମାନ ॥ ୪୯
ଚରଣକ୍ଷୁଣ୍ଣ[୬] ନୋହିବାରେ । ସଂଦେହ ପ୍ରାଣିଙ୍କ ମନରେ ॥ ୫୦

---

୧. ଖଦ୍ୟୋତ = ଜୁଳୁଜୁଳିଆ ପୋକ । ୨. ଇନ୍ଦ୍ରଗୋପ = ସାଧବବୋହୂ ପୋକ । ୩. ଶିଳୀନ୍ଧ୍ର = ଛତୁ ।
୪. ବିଧାନ = ପ୍ରଦାନ । ୫. ଯୋଗକୁ (ଗୁଣଯୁକ୍-ମୂଂ) । ୬. ଚରଣକ୍ଷୁଣ୍ଣ = କ୍ଷୀଣ ।

କାଳବଶରେ ବିପ୍ରଜନ । ବେଦ ନ ପଢ଼ନ୍ତେ ଯେସନ ।। ୫୧
ସେ ବେଦେ ଆହତ ହୁଅନ୍ତି । ମନେ ସଂଦେହ ଉପୁଜାନ୍ତି ।। ୫୨
୧୭ ଲୋକମାନଙ୍କ ଉପକାର । କରନ୍ତି ଯଉଁ ଜଳଧର ।। ୫୩
ଚଞ୍ଚଳ ବିଜୁଳିଏ ତହିଁ । ରହିଲେ ନାହିଁ ସ୍ଥିର ହୋଇ ।। ୫୪
ଯେସନେ ଅସନ୍ତ ଯୁବତି । ଗୁଣୀରେ ନ ରଖନ୍ତି ପ୍ରୀତି ।। ୫୫
୧୮ ଗର୍ଜିତଶବ୍ଦଗୁଣଯୁତ । ଯେବଣ ଆକାଶ ବିଦିତ ।। ୫୬
ନିର୍ଗୁଣ ଇନ୍ଦ୍ରଧନୁ ଯେହି । ଶୋଭାକୁ ଲଭିଲା ସେ ତହିଁ ।। ୫୭
ସଗୁଣ ପ୍ରପଞ୍ଚେ ଯେସନ । ନିର୍ଗୁଣ ପୁରୁଷ ଶୋଭନ ।। ୫୮
୧୯ ନିଜ ଜ୍ୟୋତ୍ସ୍ନାରେ ବିରାଜିତ । ଜଳରେ ହୋଇ ଆଚ୍ଛାଦିତ ।। ୫୯
ଶୋଭାକୁ ନ ଲଭିଲା ଶଶୀ । ଯେ ନିଜ ଚୈତନ୍ୟ ପ୍ରକାଶି ।। ୬୦
ସେ ଅହଂକାରେ ଯୁତ ହୋଇ । ଜୀବ ଯେସନେ ନ ଶୋହଇ ।। ୬୧
୨୦ ମେଘ ଆଗମେ ଯାହାଙ୍କର । ଉତ୍ସବ, ଆନନ୍ଦ ମନର ।। ୬୨
ଆନନ୍ଦ ହେଲେ ସେ ମୟୂରେ । ଯେବଣ ମାନବେ ଗୃହରେ ।। ୬୩
ସଂତପ୍ତ, ବଇରାଗମନେ । ବୈଷ୍ଣବଜନ ଆଗମନେ ।। ୬୪
ସେ ଲୋକମାନଙ୍କର ଚିତ୍ତ । ହରଷ ହୁଅଇ ଯେମନ୍ତ ।। ୬୫
୨୧ ପାଦରେ ପିଇ ଜଳମାନ । ବୃକ୍ଷେ ଦିଶିଲେ ନାନାବର୍ଣ୍ଣ ।। ୬୬
ପୂର୍ବେ ତପସ୍ୟାବଶୁଁ କୃଶ । ଶ୍ରାନ୍ତ ହୁଅନ୍ତି ଯେ ପୁରୁଷ ।। ୬୭
ସେ କାମଭୋଗରୁ ଯେସନ । ପଛେ ଦିଶନ୍ତି ଶୋଭମାନ ।। ୬୮
୨୨ ପଙ୍କରେ ମଣ୍ଡୂକରେ[1] ଛନ୍ନ । ଅଟେ ଯାହାଙ୍କ ତଟମାନ ।। ୬୯
ସେ ସରମାନଙ୍କ ମଧ୍ୟରେ । ସାରସେ[2] ରହିଲେ ନିର୍ଭରେ ।। ୭୦
ଯହିଁରେ ଘୋର କୃତ୍ୟମାନ । ସେ ଗୃହମାନଙ୍କେ ଯେସନ ।। ୭୧
ଦୁଷ୍ଟ ଆଶୟ ଯାହାଙ୍କର । ଥାନ୍ତି ସେ ଗ୍ରାମବାସୀ ନର ।। ୭୨
୨୩ ଇନ୍ଦ୍ର ବରଷନ୍ତେ ନିର୍ଭରେ । ଜଳସମୂହମାନଙ୍କରେ ।। ୭୩
ଭାଜିଲା ନାନା ବନ୍ଧମାନ । ପାଷଣ୍ଡୀ ଲୋକର ଯେସନ ।। ୭୪
ଅସନ୍ତ ବାକ୍ୟେ ବେଦମାର୍ଗେ । ଭଙ୍ଗ ହୁଅନ୍ତି କଳିଯୁଗେ ।। ୭୫
୨୪ ପ୍ରେରିତ ହୋଇଣ ପବନେ । ପ୍ରାଣିମାନଙ୍କୁ ମେଘମାନେ ।। ୭୬
କଲେ ସଲିଳକୁ ପ୍ରଦାନ । କାଳକାଳକରେ ଯେସନ ।। ୭୭
ବିପ୍ର କାମନା-ବିତ୍ତମାନ । ରାଜାଏ କରନ୍ତି ପ୍ରଦାନ ।। ୭୮
୨୫ ଏ ରୂପେ ସମୃଦ୍ଧ ସେ ବନ । ପକ୍ୱ ଖର୍ଜୂର ଜମ୍ବୁମାନ ।। ୭୯
ଯହିଁରେ ଅଛନ୍ତି ବହୁତ । ଗୋ-ଗୋପାଳରେ ହୋଇ ବୃତ ।। ୮୦
ରାମସହିତେ କ୍ରୀଡ଼ାପାଇଁ । କୃଷ୍ଣ ପ୍ରବେଶ ହେଲେ ତହିଁ ।। ୮୧
୨୬ ପୟୋଭାରରେ ବେଗ ହୋଇ । ଧେନୁଏ ନ ପାରନ୍ତି ଯାଇ ।। ୮୨

୧. ମଣ୍ଡୂକରେ = କଣ୍ଟକରେ । ୨. ସାରସେ = ପଦ୍ମ ।

ଶ୍ରୀକୃଷ୍ଣ ଡାକନ୍ତେ ପ୍ରୀତିରେ । ଗମନ କଲେ ସେ ସତ୍ୱରେ ॥ ୮୩
ସ୍ତନମାନଙ୍କରୁ ତାଙ୍କର । ଯାଆନ୍ତେ ସ୍ରବୁଅଛି କ୍ଷୀର ॥ ୮୪
୨୭ ଯେ ବନବାସୀମାନେ ଥିଲେ । ସେମାନେ ହରଷ ହୋଇଲେ ॥ ୮୫
ମଧୁ ସ୍ରବିଲେ ବନକୁଳ । ଗିରିରୁ ସ୍ରବିଲା ସଲିଳ ॥ ୮୬
ନିକଟେ ଗିରିଗୁହାମାନ । ସବୁ ଦେଖିଲେ ଭଗବାନ ॥ ୮୭
୨୮ କେହୁଣିସ୍ଥାନେ ବନସ୍ପତି । କ୍ରୋଡ଼ରେ କରିଥାନ୍ତି ସ୍ଥିତି ॥ ୮୮
ସେ ପୁଣି ଅତି ବରଷାରେ । ପ୍ରବେଶ ହୁଅନ୍ତେ ଗୁହାରେ ॥ ୮୯
ଭକ୍ଷନ୍ତେ କନ୍ଦମୂଳ ଫଳ । ବିହାର କଲେ ନନ୍ଦବାଳ ॥ ୯୦
୨୯ ଯେ ଦଧି ଅନ୍ନ ଥିଲେ ଆଣି । ଜଳନିକଟେ ତାହା ପୁଣି ॥ ୯୧
ଶିଳାରେ ବସିଣ ଅଚ୍ୟୁତ । ଅନ୍ନସଂଗକୁ ଯେ ଉଚିତ ॥ ୯୨
ଭୁଞ୍ଜିଲେ ବ୍ୟଞ୍ଜନ ଘେନିଣ । ରାମଗୋପାଳଙ୍କ ସଙ୍ଗେଣ ॥ ୯୩
୩୦ ସତୃଣ ଦେଶରେ ବସିଣ । ଚୋବାନ୍ତି ନୟନ ବୁଜିଣ ॥ ୯୪
ଯେ ବୃଷ ବତ୍ସେ ତୋଷେ ତହିଁ । ପହ୍ନାଭାରରେ ଶ୍ରମ ପାଇ ॥ ୯୫
ଧେନୁମାନେହେଁ ସେ ସ୍ଥାନରେ । ଅଛନ୍ତି ତହିଁ ନିକଟରେ ॥ ୯୬
୩୧ ବଢିଛି ଯେ ନିଜ ଶକ୍ତିରେ । ସକଳ ପ୍ରାଣୀ ସୁଖ କରେ ॥ ୯୭
ଦେଖି ସେ ବୃଷ୍ଟିକାଳଶିରୀ । ମାନନା କଲେ ତାକୁ ହରି ॥ ୯୮
୩୨ ରାମକେଶବ ଏ ପ୍ରକାରେ । ରହିଥାଆନ୍ତେ ସେ ବ୍ରଜରେ ॥ ୯୯
ମିଳିଲା ଶରଦ ସମୟ । ଗଲେ ତହିଁରେ ମେଘଚୟ ॥ ୧୦୦
ନିର୍ମଳ ହେଲେ ସର୍ବନୀର । ପବନ ବହିଲା ମନ୍ଥର ॥ ୧୦୧
୩୩ ପଦ୍ମଙ୍କ ସଂଭବ ଯହିଁରେ । ସେ ଶରଦର ପ୍ରବେଶରେ ॥ ୧୦୨
ଯେ ବା ସ୍ୱଭାବ ଆପଣାର । ତାଙ୍କୁ ଭଜିଲେ ସର୍ବନୀର ॥ ୧୦୩
ଯୋଗିଜନଙ୍କର ଯେସନ । ଭ୍ରଷ୍ଟ ଯେ ହୋଇଥାଇ ମନ ॥ ୧୦୪
ସେ ପୁଣ ଯୋଗବିଧାନରେ । ଲଭେ ସ୍ୱଭାବକୁ କାଳରେ ॥ ୧୦୫
୩୪ ମେଘମାନଙ୍କୁ ଆକାଶର । ବୃଷ୍ଟିସ୍ୱକାଶୁଁ ପ୍ରାଣିଙ୍କର ॥ ୧୦୬
ଏକସ୍ଥାନରେ ଯଉଁ ମେଳ । ଭୂମିର ପଙ୍କ ଜଳମଳ ॥ ୧୦୭
ଶରଦ ହରିଲା ଏମାନ । ଆଶ୍ରମବନ୍ତ ଯେତେ ଜନ ॥ ୧୦୮
[୧]କେଶବଭକ୍ତି ତାହାଙ୍କର । ଯେହ୍ନେ ଅଶୁଭ କରେ ଦୂର ॥ ୧୦୯

---

୧. ଭକ୍ତି ଯେପରି ବ୍ରହ୍ମଚାରୀର ଗୁରୁଙ୍କ ପାଇଁ ଉଦକ-ଆହରଣ ଆଦି କଷ୍ଟ ହରଣ କରେ, ସେହିପରି ଶରତ୍‌କାଳ ଆକାଶରୁ ମେଘ ହରଣ କଲା । ଭକ୍ତି ଯେପରି ଗୃହସ୍ଥର ପୁତ୍ରକନ୍ୟାଦିଙ୍କ ଏକତ୍ର ମେଳ ପ୍ରତି ଆସକ୍ତି ହରଣ କରେ, ଶରତ୍‌କାଳ ସେହିପରି ବର୍ଷାକାଳୀନ ବୃଷ୍ଟିଭୟରୁ ପ୍ରାଣିମାନଙ୍କର ଏକତ୍ର ମେଳ ହରଣ କଲା । ଭକ୍ତି ଯେପରି ବାନପ୍ରସ୍ଥର ମଳଧାରଣ କ୍ଲେଶ ହରଣ କରେ, ଶରତ୍‌କାଳ ସେହିପରି ଭୂମିରୁ ପଙ୍କ ହରଣ କଲା । ଭକ୍ତି ଯେପରି ଯତିମାନଙ୍କର କାମାଦି ବାସନାମଳ ହରଣ କରେ, ଶରତ୍‌କାଳ ସେହିପରି ଜଳରୁ ମଳ ହରଣ କଲା ।

| | | | | | |
|---|---|---|---|---|---|
| ୩୫ | ସର୍ବସ୍ୱ ତ୍ୟାଗ କରି ଘନେ | । | ଶୋଭା ପାଇଲେ ଶୁକ୍ଳବର୍ଣ୍ଣେ | ।। | ୧୧୦ |
| | ବିତ୍ତ ତନୟ ଆଦିଙ୍କର[୧] | । | ଆସକ୍ତି କରି ଅତିଦୂର | ।। | ୧୧୧ |
| | ବିମୁକ୍ତପାପ ମୁନିଜନ | । | ଶୋଭାକୁ ଲଭନ୍ତି ଯେସନ | ।। | ୧୧୨ |
| ୩୬ | ନିର୍ମଳ ଜଳ ଗିରିମାନେ | । | ଛାଡ଼ିଲେ କହୁଣିସି ସ୍ଥାନେ | ।। | ୧୧୩ |
| | ସେ ସଲିଳକୁ ତ୍ୟାଗ ପୁଣ | । | ନ କଲେ କେବଣ ସ୍ଥାନେଣ | ।। | ୧୧୪ |
| | ଜ୍ଞାନ ଅମୃତକୁ ଯେସନ | । | କୃପା କରିଣ ଜ୍ଞାନୀ ଜନ | ।। | ୧୧୫ |
| | କାହାକୁ ଦିଅନ୍ତି କାଳରେ | । | ପୁଣ ନ ଦିଅନ୍ତି ଇତରେ | ।। | ୧୧୬ |
| ୩୭ | ଯେ ଜନ୍ତୁମାନେ ଅଳ୍ପଜଳେ | । | ରହିଣ ଥିଲେ ସେ ସକଳେ | ।। | ୧୧୭ |
| | ସଲିଳ କ୍ଷୟ ହୋଇବାର | । | କରି ନ ପାରିଲେ ଗୋଚର | ।। | ୧୧୮ |
| | ନିଜ ଆୟୁଷ ଦିନୁଁଦିନ | । | କ୍ଷୟ ହେଉଛି ତା' ଯେସନ | ।। | ୧୧୯ |
| | ମୂଢ଼ କୁଟୁମ୍ବିଜନ ଯେତେ | । | ଜାଣି ନ ପାରନ୍ତି ଜଗତେ | ।। | ୧୨୦ |
| ୩୮ | ଶରଦସୂର୍ଯ୍ୟସ୍ୱକାଶରେ | । | ଯେ ତାପ ହୋଇଲା ଶରୀରେ | ।। | ୧୨୧ |
| | ତା' ଅଳ୍ପ ସଲିଳରେ ସ୍ଥିତ | । | ଜନ୍ତୁଏ ଲଭିଲେ ବହୁତ | ।। | ୧୨୨ |
| | ଦରିଦ୍ର କୁଟୁମ୍ବୀ କୃପଣ | । | ଅଜିତେନ୍ଦ୍ରିୟ ଯେ ବା ପୁଣ | ।। | ୧୨୩ |
| | ସେ ଲୋକ ଲଭଇ ଯେସନେ | । | ମନେ ତାପକୁ ଦିନେ ଦିନେ | ।। | ୧୨୪ |
| ୩୯ | ଅଳ୍ପ ଅଳ୍ପକେ ଦିନୁଁ ଦିନ | । | ପଙ୍କ ଛାଡ଼ିଲେ ସ୍ଥଳମାନ | ।। | ୧୨୫ |
| | ଅପକ୍ୱ ଭାବ ଆପଣାର | । | ଲତାମାନେହେଁ କଲେ ଦୂର | ।। | ୧୨୬ |
| | ଧୀର ଅଟନ୍ତି ଯଉଁ ନରେ | । | ଆତ୍ମାରୁ ଭିନ୍ନ ଦେହାଦିରେ | ।। | ୧୨୭ |
| | ଅହଂତା ମମତାକୁ ଯେହ୍ନେ | । | ତ୍ୟାଗ କରନ୍ତି ସେ ତେସନେ | ।। | ୧୨୮ |
| ୪୦ | ନିଶ୍ଚଳ ହେଲା ଜଳ ଯାର | । | ମଉନ ହେଲା ସେ ସାଗର | ।। | ୧୨୯ |
| | ଯେତେ ଆପଣା କ୍ରିୟାମାନ | । | ତାହା ଛାଡ଼ନ୍ତେ ମୁନି ଜନ | ।। | ୧୩୦ |
| | ବେଦଘୋଷକୁ କରି ଦୂର | । | ରହଇ କରି ମନ ସ୍ଥିର | ।। | ୧୩୧ |
| ୪୧ | ଯେ ଶସ୍ୟବନ୍ତ କ୍ଷେତ୍ରମାନ | । | ତଦର୍ଥେ କୃଷିକାରୀ ଜନ | ।। | ୧୩୨ |
| | ଦୃଢ଼ ବନ୍ଧରେ ଜଳ ପୁଣ | । | କଲେ ସେ ସମୟେ ଗ୍ରହଣ | ।। | ୧୩୩ |
| | ଇନ୍ଦ୍ରିୟସଙ୍ଗେ ଯେହ୍ନେ ଜ୍ଞାନ | । | ସ୍ରବନ୍ତେ ତାହା ଯୋଗିଜନ | ।। | ୧୩୪ |
| | ନିରୋଧ କରନ୍ତି ତାହାକୁ | । | ରଖନ୍ତି ପୁଣ ସେ ଜ୍ଞାନକୁ | ।। | ୧୩୫ |
| ୪୨ | ଶରଦ ରବିକରୁଁ ଜାତ | । | ତାପକୁ ଚନ୍ଦ୍ର କଲା ହତ | ।। | ୧୩୬ |
| | ଯେ ଜାତ ଦେହ ଅଭିମାନେ | । | ସେ ତାପ ହରେ ଜ୍ଞାନ ଯେହ୍ନେ | ।। | ୧୩୭ |
| | ଯେସନେ ବ୍ରଜନାରୀଙ୍କର | । | ତାପକୁ ହରେ ଦାମୋଦର | ।। | ୧୩୮ |
| ୪୩ | ଜଳଦ ହୁଅନ୍ତେ ନିର୍ଗତ | । | ଆକାଶ ଦିଶିଳା ଶୋଭିତ | ।। | ୧୩୯ |

୧. 'ଆଦି' ଶବ୍ଦରୁ ଲୋକୈଷଣା ବୁଝିବାକୁ ହେବ । ଲୋକୈଷଣା = ଲୋକରେ ପ୍ରତିଷ୍ଠା ପାଇଁ ଆସକ୍ତି ।

ଶରଦସ୍ୱକାଶେ ବିମଳ । ଦିଶିଲା ତହିଁ ତାରାକୁଳ ॥ ୧୪୦
ଜାଣନ୍ତେ ବେଦଅର୍ଥମାନ । ସତ୍ତ୍ୱସଂଯୁତେ ଯେହ୍ନେ ମନ ॥ ୧୪୧
୪୪ ଅଖଣ୍ଡ ମଣ୍ଡଳ ଯାହାର । ଆକାଶେ ସେ ରଜନୀକର ॥ ୧୪୨
ନକ୍ଷତ୍ରଗଣେ ପରିବୃତ । ହୋଇଣ ଦିଶିଲା ଶୋଭିତ ॥ ୧୪୩
ଯଦୁମାନଙ୍କ ଅଧୀଶ୍ୱର । ଯେସନେ ପ୍ରଭୁ ଦାମୋଦର ॥ ୧୪୪
ବୃଷ୍ଣିସମୂହେ ବୃତ ହୋଇ । ମହୀମଣ୍ଡଳେ ଶୋଭା ପାଇ ॥ ୧୪୫
୪୫ ସମାନ ଶୀତ ଉଷ୍ଣ ଯାର । ସେ ପୁଷ୍ପବନ ପବନର ॥ ୧୪୬
ଆଲିଙ୍ଗନରୁ ତାପମାନ । ତ୍ୟାଗ କଲେକ ସର୍ବଜନ ॥ ୧୪୭
ଯେବଣ ଗୋପୀଙ୍କର ମନ । ହରି ଅଛନ୍ତି ଭଗବାନ ॥ ୧୪୮
କେବଳ ମନରେ ତାଙ୍କର । ତାପ ରହିଲା ନିରନ୍ତର ॥ ୧୪୯
୪୬ ଇଚ୍ଛା ନ କଲେ ହେଁ ଚିତ୍ତରେ । ପତିଏ ମିଳନ୍ତେ ବଳରେ ॥ ୧୫୦
ଖଗ-ଗୋ-ମୃଗନାରୀମାନେ । ଗର୍ଭିଣୀ ହେଲେ[1] ସେହିଦିନେ ॥ ୧୫୧
ଈଶ୍ୱର ଆରାଧନୁଁ ଜାତ । ଯେ କ୍ରିୟା ସେ ପୁଣ ଯେମନ୍ତ ॥ ୧୫୨
ବାଞ୍ଛା ନ କଲେହେଁ ଏ ଜନ । ଫଳକୁ ଦିଅଇ ଯେସନ ॥ ୧୫୩
୪୭ ହେ ନୃପ ! ସୂର୍ଯ୍ୟଦରଶନେ । କୁମୁଦମାନଙ୍କ ବିହୁନେ ॥ ୧୫୪
ପଦ୍ମେ ହୋଇଲେ ହରଷିତ । ରାଜାର ପ୍ରଭାବୁଁ ଯେମନ୍ତ ॥ ୧୫୫
ଖଣ୍ଡ ଲୋକଙ୍କ ଅଭାବରେ । ଭୟ ତେଜନ୍ତି ସାଧୁ ନରେ ॥ ୧୫୬
୪୮ ବୈଦିକ ଲୌକିକ ବିଧିରେ । ଅନ୍ନ-ପ୍ରାଶନ ଉତ୍ସବରେ ॥ ୧୫୭
ପୁରରେ ଗ୍ରାମରେ ଧରଣୀ । ଲଭିଲା ଶୋଭାକୁ ସେ ପୁଣି ॥ ୧୫୮
ରାମକେଶବ ବେନିଙ୍କର । ସଙ୍ଗମୁଁ ଅତ୍ୟନ୍ତ ସୁନ୍ଦର ॥ ୧୫୯
୪୯ ବର୍ଷାସ୍ୱକାଶେ ଯଉଁମାନେ । ନିରୋଧେ ଥିଲେ ନିଜ ସ୍ଥାନେ ॥ ୧୬୦
ବଣିଜ ନୃପ ମୁନିଜନ । ଯେ ପୁଣ ବ୍ରହ୍ମଚାରିମାନ ॥ ୧୬୧
ସେମାନେ ବାହାର ହୋଇଣ । ଲଭିଲେ ଯେଝା କାର୍ଯ୍ୟ ପୁଣ ॥ ୧୬୨
ସିଦ୍ଧେ ଯେସନେ ନିଜ[2] କାଳେ । ଦେହକୁ ଛାଡ଼ି ଯୋଗବଳେ ॥ ୧୬୩
ଯେ ପୁଣ ଦେବାଦିଶରୀର । ସେମାନ ଲଭନ୍ତି ସତ୍ୱର ॥ ୧୬୪
ବରଷା ଶରଦ ଆଗତେ । ଯେ କ୍ରୀଡ଼ା କଲେ ନାନା ମତେ ॥ ୧୬୫
ସେ କୃଷ୍ଣପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୧୬୬

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶରଦ୍‌ବର୍ଣ୍ଣନଂ
ନାମ ବିଂଶୋଽଧ୍ୟାୟଃ ॥

---

୧. ହୋଇ ।    ୨. ନିଦ ।

## ଏକବିଂଶ ଅଧ୍ୟାୟ

ଏକବିଂଶେ ଶରଦ୍ରମ୍ୟବୃନ୍ଦାବନଗତେ ହରୌ ।
ତଦ୍‌ବେଣୁସ୍ୱନମାକର୍ଣ୍ଣ୍ୟ ଗୋପୀଭିର୍ଗୀତମୀର୍ଯ୍ୟତେ ।। ୧

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ।।
ଯେବଣ ବିପିନରେ ଜଳ । ଶରଦଯୋଗେ ସୁନିର୍ମଳ ।।
ପଦ୍ମାକରର ଗନ୍ଧଯୁତ । ପବନ ଯହିଁ ଅନୁଗତ ।।
ଗୋରୁ ଗୋପାଳ ସଙ୍ଗ କରି । ଏମନ୍ତ ବନେ ବିଜେ ହରି ।।
୨ କୁସୁମଯୁତ ବନସଙ୍ଗେ । ଯେ ମତ୍ତ ଖଗକୁଳଭୃଙ୍ଗେ ।।
ତେଣେ ଶବ୍ଦିତ ଯହିଁ ସର । ସରିତକୁଳ ମହୀଧର[1] ।।
ରାମ-ଗୋପାଳ ସଙ୍ଗତରେ । ପଶି ସେ ବିପିନଭିତରେ ।।
ଧେନୁ ଚରାନ୍ତେ ଧୀର ଧୀର । ବେଣୁ ବଜାଇଲେ ଶ୍ରୀଧର ।।
୩ ଯହିଁରେ ମଦନ ଉଦିତ । ସେ ନନ୍ଦସୁତବେଣୁଗୀତ ।।
ଶ୍ରବଣ କରି ଲୋକମାନେ । ହରଷ ଲଭି ନିଜମନେ ।।
ପଛେ ଆପଣା ସଖୀଆଗେ । କଲେ ନିବେଦନ ସରାଗେ ।।
୪ ବର୍ଣ୍ଣିମାକୁ ସେ ବେଣୁଗୀତ । ଆରମ୍ଭ କଲେକ ସମସ୍ତ ।।
ହେ ନୃପ ! କୃଷ୍ଣର ଚରିତ । ସ୍ମରନ୍ତେ କାମେ କ୍ଷୋଭଚିତ୍ତ ।।
ହୁଅନ୍ତେ ସେ ଗୀତବର୍ଣ୍ଣନ । ନିମିତ୍ତେ ନୋହିଲେ ଭାଜନ ।।
୫ ନଟବରର ପ୍ରାୟ ହୋଇ । ଯେବଣ ବପୁ ଶୋଭା ପାଇ ।।
ଧରି ଅଛନ୍ତି ଯେ ଶରୀର । ଶିଖିଚନ୍ଦ୍ରକ[2] ନିଜ ଶିର ।।
ବହି[3] ଅଛନ୍ତି କର୍ଣ୍ଣିକାର । କୁସୁମ ଶ୍ରବଣଯୁଗର ।।
କନକପ୍ରାୟ ଯାହା ବର୍ଣ୍ଣ । ପିନ୍ଧିଅଛନ୍ତି ସେ ବସନ ।।
ବଇଜୟନ୍ତୀ ନାମେ ମାଳେ । ବହି ଅଛନ୍ତି ନିଜ ଗଳେ ।।
ଅଧର ଅମୃତରେ ପୂର୍ଣ୍ଣ । କରନ୍ତେ ବେଣୁରନ୍ଧ୍ରମାନ ।।
ପାରୁଶେ ବେଢ଼ି ଗୋପଜନ । ଗାଆନ୍ତି ନିଜ କୀର୍ତ୍ତିମାନ ।।
ଆପଣା ପାଦଚିହ୍ନେ କରି । ଯେ ଅଟେ ଅତି ମନୋହାରୀ ।।
ସେ ବୃନ୍ଦାବନରେ ପ୍ରବେଶ । ହୋଇଲେ ପ୍ରଭୁ ପୀତବାସ ।।
୬ ହେ ନୃପ ! ଧ୍ୱନି ସେ ବେଣୁର । ସକଳପ୍ରାଣିମନୋହର ।।
ଶୁଣି ସମସ୍ତ ଗୋପୀଜନ । କରନ୍ତେ ସେ ଗୀତ ବର୍ଣ୍ଣନ ।।
ଧ୍ୟାନେ ଯେ ଦୃଶ୍ୟ ଭଗବାନ । ତାହାଙ୍କୁ କଲେ ଆଲିଙ୍ଗନ ।।

---

୧. ମହୀଧର = ବୃକ୍ଷ, ପର୍ବତ ।
୨. ଶିଖିଚନ୍ଦ୍ରକ = ମୟୂରର ପୁଛରେ ଥିବା ଆଖି ।
୩. ବହି = ଯହିଁ ।

ଶ୍ରୀଗୋପ୍ୟ ଊଚୁଃ

୭ ଯେ ନର ବହିଛନ୍ତି ନେତ୍ର । ତାହାଙ୍କ ଫଳ ଏହିମାତ୍ର ।। ୨୭
ହେ ସଖୀ ! ଆମ୍ଭେମାନେ ପୁଣି । ଏଥିରୁ ଆନ ତ ନ ଜାଣି ।। ୨୮
ସଖାମାନଙ୍କ ସହିତରେ । ପଶୁମାନଙ୍କୁ ବିପିନରେ ।। ୨୯
ପ୍ରବେଶ କରାନ୍ତେ ଯେ ଆଣି । ସେ ବଳଦେବ-ବେଣୁପାଣି ।। ୩୦
ତାଙ୍କର ବେଣୁରେ ସଂଯୁତ । ଯେବଣ ବଦନ ଶୋଭିତ ।। ୩୧
ସରାଗ କଟାକ୍ଷମୋକ୍ଷଣ । ତହିଁରେ ହୋଏ ପୁଣ ପୁଣ ।। ୩୨
ସେ ବଦନକୁ ତାହାଙ୍କର । ଦେଖି ଅଛନ୍ତି ଯଉଁ ନର ।। ୩୩
ସେ ଫଳ ଲଭିଛନ୍ତି ସେହି । ଆନ ତା' ନ ଜାଣନ୍ତି କେହି ।। ୩୪
୮ ଏମନ୍ତ ସଖୀର ବଚନେ । ବୋଲୁ ଅଛନ୍ତି ଆନମାନେ ।। ୩୫
ଚୂତପଲ୍ଲବ[୧] ଶିଖିପୁଚ୍ଛ । ଉତ୍‌ପଳ ପଦ୍ମପୁଷ୍ପ ଗୁଚ୍ଛ ।। ୩୬
ନିର୍ମିତ ମାଳାମାନଙ୍କରେ । ସଂଯୁତ ମଧ୍ୟରେ ମଧ୍ୟରେ ।। ୩୭
ଯେବଣ ନୀଳ ପୀତ ବାସ । ତେଣେ ବିଚିତ୍ର ଯାଙ୍କ ବେଶ ।। ୩୮
ଅତି ସୁସ୍ୱରେ ଗା'ନ୍ତେ ଗୀତ । ସେ ରାମକୃଷ୍ଣ ବେନି ଭ୍ରାତ ।। ୩୯
ଏକସମୟେ ଗୋପସଭା । ମଧ୍ୟେ ଦିଶିଲେ ଅତିଶୋଭା ।। ୪୦
ରଙ୍ଗଭୂମିକାରେ ସଂଘଟ[୨] । ଯେହ୍ନେ ଉତ୍ତମ ବେନି ନଟ ।। ୪୧
୯ ସଖୀଙ୍କ ବଚନକୁ ଶୁଣି । କହନ୍ତି ଆନମାନେ ପୁଣି ।। ୪୨
ହେ ଗୋପନାରୀମାନେ ବାଛି[୩] । ଏ ବେଣୁ କି ପୁଣ୍ୟ କରିଛି ।। ୪୩
ଯେ କୃଷ୍ଣଅଧର-ଅମୃତ । ଗୋପୀଙ୍କ ଉପଭୋଗ-ଯୁକ୍ତ ।। ୪୪
ସ୍ୱତନ୍ତ୍ର ଭାବେ ତା' ନିର୍ଭରେ । ଆପଣା ଇଚ୍ଛା ଅନୁସାରେ ।। ୪୫
ଯେଣୁ ଏ ରସଅବଶେଷ । କରିଣ ତାହା କରେ ଗ୍ରାସ ।। ୪୬
ଯାହାଙ୍କ ଜଳେ ପୁଷ୍ଟ ବନ । ମାତାପ୍ରାଏ ସେ ନଦୀମାନ ।। ୪୭
ବିକଚ କମଳକୋରକ । ବ୍ୟାଜରେ ଉଦ୍‌ଗତପୁଲକ ।। ୪୮
ଜନ୍ମ ଏ ଯାହାଙ୍କର କୁଳେ । ସେ ତରୁମାନେ ଭାବବଳେ ।। ୪୯
ମଧୁଧାରାକୁ କରି ଛଳ । ମୁଞ୍ଚନ୍ତି ଆନନ୍ଦାଶ୍ରୁ ଜଳ ।। ୫୦
ସ୍ୱବଂଶେ ବଇଷ୍ଣବଜନ । ଭାଗ୍ୟେ ହୁଅନ୍ତେ ଉତପନ୍ନ ।। ୫୧
[୪]ଯେସନେ କୁଳବୃଦ୍ଧଜନେ । ତେସନ ପ୍ରାଏକ ଏମାନେ ।। ୫୨
୧୦ ଏମନ୍ତ ସଖୀର ବଚନେ । କହୁଅଛନ୍ତି ଆନମାନେ ।। ୫୩
ଏ ବୃନ୍ଦାବିପିନପ୍ରଦେଶ । ସଖି ! ବିସ୍ତାରେ ମହୀଯଶ ।। ୫୪
ଯେ ବନ ଦେବକୀର ସୁତ । ପାଦପଦ୍ମରେ ସୁଶୋଭିତ ।। ୫୫
ଗୋବିନ୍ଦବେଣୁଧ୍ୱନି ଶୁଣି । ମତ୍ତ ଯେବଣ ଶିଖିଶ୍ରେଣୀ ।। ୫୬

୧. ଚୂତପଲ୍ଲବ = କଅଁଳିଆ ଆମ୍ବପତ୍ର । ୨. ସଂଘଟ = ଏକତ୍ର ମିଳନ, ଆଲିଙ୍ଗନ ।
୩. ବାଛି = ବାଛି । ୪. କୁଳବୃଦ୍ଧମାନେ ଯେପରି ରୋମାଞ୍ଚିତ ହୋଇ ଆନନ୍ଦାଶ୍ରୁ ବିସର୍ଜନ କରନ୍ତି ।

ତାହାଙ୍କ ନୃତ୍ୟଦରଶନେ । ଅଦ୍ରି[1]ମାନଙ୍କ ସାନୁ[2] ସ୍ଥାନେ ॥ ୫୭
ନିବୃତ୍ତ ହୋଇଲା ବ୍ୟାପାର । ଯହିଁ ସମସ୍ତ ପ୍ରାଣିଙ୍କର ॥ ୫୮
୧୧ ସଖୀବଚନେ ଆନନାରୀ । କହୁଣ ଅଛନ୍ତି ବିଚାରି ॥ ୫୯
ହେ ସଖୀ ! ହେଲେ ମୂଢ଼ମତି । ଧନ୍ୟ ଏ ହରିଣଯୁବତି ॥ ୬୦
ଯେ ବେଣୁଧ୍ୱନି ଶୁଣି ସ୍ଥିରେ । ପତିମାନଙ୍କ ସହିତରେ ॥ ୬୧
ବିଚିତ୍ରବେଶଧାରୀ ହରି । ତାହାଙ୍କୁ ଅନୁଲକ୍ଷ୍ୟ କରି ॥ ୬୨
ସପ୍ରେମ ଅବଲୋକକୃତ । ପୂଜାକୁ କଲେକ ବିହିତ ॥ ୬୩
ଆମ୍ଭ ପତିଏ ମୂଢ଼ମତି । ସେ କଥା ପୁଣ ନ ସହନ୍ତି ॥ ୬୪
୧୨ ଅଦ୍ଭୁତ ଚରିତକୁ ଦେଖି । କହୁଅଛନ୍ତି ଆନ ସଖୀ ॥ ୬୫
ଆଗୋ ସମସ୍ତ ଗୋପୀମାନେ । ଆଶ୍ଚର୍ଯ୍ୟ ଶୁଣ ସାବଧାନେ ॥ ୬୬
ନାରୀଉତ୍ସବରୂପଶୀଳ । କୃଷ୍ଣଙ୍କୁ ଦେଖି ନିଜ ଡୋଳ[3] ॥ ୬୭
ତାର କ୍ୱଣିତ ବେଣୁଜାତ । ଅତ୍ୟନ୍ତ ଅମିଶ୍ରିତ ଗୀତ ॥ ୬୮
ଶୁଣିଣ ବିମାନସଂଚାରୀ । ସେ ଯେ ଅନେକ ଦେବନାରୀ ॥ ୬୯
ମଦନେ ହୋଇ ହତଧୃତି । ମୋହିତ ହୋଇଲେ ତଡ଼ିତି[4] ॥ ୭୦
ନିବିଡ଼ ନୀବିର ବନ୍ଧନ । ନିର୍ଗତ ହୋଇଲା ବହନ ॥ ୭୧
କୁସୁମସହିତେ କବର[5] । ଖସିଲା ଶୀଘ୍ରରେ ତାଙ୍କର ॥ ୭୨
୧୩ ଶ୍ରୀକୃଷ୍ଣମୁଖରୁ ଗଳିତ । ସୁସ୍ୱର ବେଣୁଗୀତାମୃତ ॥ ୭୩
ତୋଳି ତା' ଶ୍ରବଣପୁଟରେ । ପିବନ୍ତେ ଅତ୍ୟନ୍ତ ନିର୍ଭରେ ॥ ୭୪
ସ୍ତନୁଁ କ୍ଷରିତ କ୍ଷୀରଗ୍ରାସ । ମୁଖେ ପଡ଼ନ୍ତେ ନାହିଁ ଆସ[6] ॥ ୭୫
ଏମନ୍ତ ଭାବେ ବତ୍ସାକୁଳେ । ଗୋରୁ ହିଁ ରହିଲେ ନିଶ୍ଚଳେ ॥ ୭୬
ନନ୍ଦସୁତକୁ ନେତ୍ରଦ୍ୱାରେ । ଆଶ୍ଳେଷ କରନ୍ତି ମନରେ ॥ ୭୭
ଏଣୁ ଲୋତକଜଳଲେଶ । ନୟନେ ହୁଅଇ ପ୍ରକାଶ ॥ ୭୮
୧୪ ଏ ବନେ ଯେତେକ ଶକୁନି । ଭୋ ମାତ ! ହୋଇବେ ଏ ମୁନି ॥ ୭୯
ଯହିଁରେ ରୁଚିର ପ୍ରବାଳ । ଚଢ଼ି ସେ ତରୁଶାଖାକୁଳ ॥ ୮୦
ପରିହରି ଯେ ଅନ୍ୟ ବାଣୀ । ସୁଖେ ମୀଳିତନେତ୍ରେ ପୁଣି ॥ ୮୧
ସୁଷ୍ଠେ ଦେଖନ୍ତି ଗୋବିନ୍ଦଙ୍କୁ । ଶୁଣନ୍ତି ତା' ବେଣୁଗୀତକୁ ॥ ୮୨
୧୫ ସରିତମାନେ ଆବର୍ତ୍ତରେ । ଲକ୍ଷିତ କନ୍ଦର୍ପବିକାରେ ॥ ୮୩
ହୋଇଣ ଭଗ୍ନବେଗଗତି । ଶୁଣି ମୁକୁନ୍ଦଗୀତରୀତି ॥ ୮୪
ଯେମନ୍ତେ ହୋଏ ଆଲିଙ୍ଗନେ । ସ୍ଥଗିତ ତେମନ୍ତ ବିଧାନେ ॥ ୮୫
ନିଜ ତରଙ୍ଗଭୁଜେ ନେଇ । କମଳ ଉପହାର ଦେଇ ॥ ୮୬
ସେ କାଳେ ଶ୍ରୀକୃଷ୍ଣଚରଣ । ସରାଗେ କରନ୍ତି ଗ୍ରହଣ ॥ ୮୭
୧୬ ରାମଗୋପାଳଙ୍କ ସଙ୍ଗରେ । ଅତିପ୍ରଚଣ୍ଡ ଆତପରେ ॥ ୮୮

---

୧. ଅଦ୍ରି = ପର୍ବତ । ୨. ସାନୁ = ଶୃଙ୍ଗ । ୩. ଡୋଳ = ଆଖି ।
୪. ତଡ଼ିତ = ଅତିଶିଘ୍ର । ୫. କବର = ଜୁଡ଼ା । ୬. ଆସ = ଆଶ ।

| | | | | |
|---|---|---|---|---|
| | ଚରାନ୍ତି ବ୍ରଜପଶୁଗଣ | ବେଣୁ ବଜାନ୍ତି ଅନୁକ୍ଷଣ | ॥ | ୮୯ |
| | ଏ ରୂପେ ତାଙ୍କୁ ଜଳଧର | ଦେଖି ଉଦିତ ଶିରପର | ॥ | ୯୦ |
| | ପୁଣ ସେବନ୍ତି ପ୍ରେମଭରେ | କୁସୁମଶ୍ରେଣୀସହିତରେ | ॥ | ୯୧ |
| | ସେ କୃଷ୍ଣ ସଖା, ତାଙ୍କ[୧] ଛତ୍ର | କରି ବିହିଲା[୨] ନିଜ ଗାତ୍ର | ॥ | ୯୨ |
| ୧୭ | ପ୍ରଥମେ ଦୟିତାସ୍ତନରେ | ମଣ୍ଡିତ, ପୁଣ ତଦନ୍ତରେ | ॥ | ୯୩ |
| | ସୁରତସମୟରେ ହରି | ପାଦପଙ୍କଜସଙ୍ଗେ କରି | ॥ | ୯୪ |
| | ଯେ ଅଟେ ଅତ୍ୟନ୍ତ ସୁନ୍ଦର | ବିପିନଭ୍ରମଣେ କୃଷ୍ଣର | ॥ | ୯୫ |
| | ଚରଣତଳୁ ତୃଣେ ଯାଇ | ଯେ ପୁନରପି ଲଗ୍ନ ହୋଇ | ॥ | ୯୬ |
| | ଏମନ୍ତ କୁଙ୍କୁମ ନିରେଖି | ମଦନତାପେ ହୋଇ ଦୁଃଖୀ | ॥ | ୯୭ |
| | ଆନନ କୁଚ ସେ କୁଙ୍କୁମେ | ଲେପନ କରନ୍ତେ ସପ୍ରେମେ | ॥ | ୯୮ |
| | ମଦନକୃତ ମନବ୍ୟଥା | ଛାଡ଼ିଲେ ଏଣୁ ଏ ସର୍ବଥା | ॥ | ୯୯ |
| | ଶବରନାରୀମାନେ ଯେତେ | କୃତାର୍ଥ ଅଟନ୍ତି ସମସ୍ତେ | ॥ | ୧୦୦ |
| ୧୮ | ଏ ଗୋବର୍ଧନ ମହୀଧର | ହରିଦାସଙ୍କ ମଧ୍ୟେ ବର | ॥ | ୧୦୧ |
| | ରାମକୃଷ୍ଣଙ୍କ ଶ୍ରୀଚରଣ | ସ୍ପରଶେ ସାନନ୍ଦ ହୋଇଣ | ॥ | ୧୦୨ |
| | ଗୋରୁ ଗୋପାଳ ସହିତରେ | ସେ ବଳରାମ-ହରିଠାରେ | ॥ | ୧୦୩ |
| | କୋମଳ ତୃଣ କନ୍ଦମୂଳ | ନିଜ କନ୍ଦରା ଦିବ୍ୟଜଳ | ॥ | ୧୦୪ |
| | ଏଣେ କରିଣ ସଂମାନନା | ଯେଣୁ ଏ କଲା ଗୋ ଅଙ୍ଗନା | ॥ | ୧୦୫ |
| ୧୯ | ଯେ ଗୋପସଙ୍ଗେ ସଯତନେ | ଗାଈ ଚରାନ୍ତି ପ୍ରତିବନେ | ॥ | ୧୦୬ |
| | ଗୋପାଦବନ୍ଧରଜ୍ଜୁପାଶ | ଚିହ୍ନ ଯାଙ୍କର ସୁପ୍ରକାଶ | ॥ | ୧୦୭ |
| | ସେ ରାମକୃଷ୍ଣଙ୍କ ଚରିତ୍ର | ଭୋ ସଖୀମାନେ ! ଅତିଚିତ୍ର | ॥ | ୧୦୮ |
| | ମଧୁର ଯହିଁ ପଦମାନେ | ଉତ୍ତମ ସେ ବେଣୁନିଃସ୍ୱନେ | ॥ | ୧୦୯ |
| | ଶରୀର୍‌ବନ୍ତମାନଙ୍କରେ | ଯେ ଗତିମନ୍ତ ତାଙ୍କଠାରେ | ॥ | ୧୧୦ |
| | ଜନ୍ମେ ନିଶ୍ଚଳ ଭାବ ଆର | ପୁଲକ ହୋଏ ତରୁଙ୍କର | ॥ | ୧୧୧ |
| ୨୦ | ଶ୍ରୀବୃନ୍ଦାବନଚାରୀ ହରି | ଏମନ୍ତେ ଯେତେ ଛନ୍ତି କରି | ॥ | ୧୧୨ |
| | ବିବିଧରୂପ କ୍ରୀଡ଼ାମାନ | ପରସ୍ପରେ ତା' ଗୋପୀଜନ | ॥ | ୧୧୩ |
| | ବର୍ଣ୍ଣନା କରନ୍ତେ ସକଳେ | ତନ୍ମୟ ହୋଇଲେ ସେକାଳେ | ॥ | ୧୧୪ |
| | [୩]କାମରେ ଗୋପୀମାନଙ୍କର | ଶ୍ରୀକୃଷ୍ଣେ ଅତି ପ୍ରେମଭର | ॥ | ୧୧୫ |

୧. ତାଙ୍କ = ତାଙ୍କୁ ।　　　୨. ବିହିଲା = ବହିଲା ।

୩. ଗୋପୀନାଂ କାମତଃ କୃଷ୍ଣେ ନିଃସୀମପ୍ରେମସଙ୍ଗମଃ ।
କାତ୍ୟାୟନ୍ୟର୍ଚ୍ଚନୋଦ୍‌ଭୂତ-ତତ୍‌ପ୍ରସାଦମହୋଦୟଃ ।
ଗୋପୀମାନଙ୍କ କାମଭାବହେତୁ କୃଷ୍ଣଙ୍କଠାରେ ସୀମାତୀତ ପ୍ରେମସଙ୍ଗମ ଥିଲା ଯହିଁରେ କାତ୍ୟାୟନୀଙ୍କ ଅର୍ଚ୍ଚନରୁ ଉଦ୍‌ଭୂତ ତାଙ୍କ ପ୍ରସାଦର ମହୋଦୟ ରହିଥିଲା ।
ଏହି ଶ୍ଳୋକ ସ୍ୱାମିପାଦଙ୍କ ରଚିତ ହେଲେ ମଧ୍ୟ ଶ୍ରୀଖାଡ଼ଙ୍ଗା ମହାଶୟ ଏହାକୁ ଶ୍ରୀମଦ୍‌ଭାଗବତର ଶ୍ଳୋକରୂପେ ଗ୍ରହଣ କରିଅଛନ୍ତି ।

| | | | | |
|---|---|---|---|---|
| ପ୍ରସାଦମହୋଦୟ ତାର | । | ଗିରିଜାପୂଜାରୁ ପ୍ରସାର | ॥ | ୧୧୬ |
| ଯା ବେଣୁଗୀତ ତୋଷମନେ | । | ବର୍ଣ୍ଣନା କଲେ ଗୋପୀମାନେ | ॥ | ୧୧୭ |
| ସେ କୃଷ୍ଣ ଚରଣ ଅମ୍ବୁଜ | । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ॥ | ୧୧୮ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଗୋପିକାଗୀତଂ
ନାମ ଏକବିଂଶୋଽଧ୍ୟାୟଃ ॥

## ଦ୍ୱାବିଂଶ ଅଧ୍ୟାୟ

ଦ୍ୱାବିଂଶେ ଗୋପକନ୍ୟାନାଂ ବସ୍ତ୍ରାହରଣଲୀଳୟା ।
ବରଂ ଦତ୍ତ୍ୱା ଗତଃ କୃଷ୍ଣୋ ଯଜ୍ଞଶାଳାମିତୀର୍ଯ୍ୟତେ ॥ ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଯେ ଋତୁ ହେମନ୍ତ ନାମରେ | । | ତାହାର ପ୍ରଥମ ମାସରେ | ॥ | ୧ |
| | ନନ୍ଦବ୍ରଜରେ ଥିଲେ ଯେତେ | । | କୁମାରୀମାନେ ସେ ସମସ୍ତେ | ॥ | ୨ |
| | ଦୁର୍ଗାର ଅର୍ଚ୍ଚନ ବ୍ରତକୁ | । | କଲେ ଭୁଞ୍ଜନ୍ତେ ହବିଷ୍ୟକୁ | ॥ | ୩ |
| ୨ | ଅରୁଣ ଉଦୟ କାଳରେ | । | କାଳିନ୍ଦୀ ନଦୀର ଜଳରେ | ॥ | ୪ |
| | ସ୍ନାନ କରିଣ ବାଲୁକାରେ | । | ପ୍ରତିମା କରିଣ ତଟରେ | ॥ | ୫ |
| | ସମସ୍ତେ ବସି ହେ ରାଜନ | । | କଲେ ସେ ଦେବୀଙ୍କ ପୂଜନ | ॥ | ୬ |
| ୩ | ଚନ୍ଦନେ ସୁଗନ୍ଧି ମାଳାରେ | । | ବଳିରେ ଧୂପ ପ୍ରଦୀପରେ | ॥ | ୭ |
| | ପୂଜିଲେ ନାନା ଉପହାରେ | । | ପଲ୍ଲବ-ଫଳ-ତଣ୍ଡୁଳରେ | ॥ | ୮ |
| ୪ | ହେ ମହାମାୟେ କାତ୍ୟାୟନି | । | ଈଶ୍ୱରି ! ହେ ମହାଯୋଗିନି | ॥ | ୯ |
| | ନନ୍ଦସୁତକୁ ମୋର ପତି | । | କର, ତୁମ୍ଭଙ୍କୁ ସୁପ୍ରଣତି | ॥ | ୧୦ |
| | ଜପ କରନ୍ତେ ଏ ମନ୍ତ୍ରକୁ | । | କୁମାରୀ ରଚିଲେ ପୂଜାକୁ | ॥ | ୧୧ |
| ୫ | କୃଷ୍ଣର ଠାରେ ଯାଙ୍କ ଚିତ୍ତ | । | ଏମନ୍ତ ରୂପେ ମାସେ ବ୍ରତ | ॥ | ୧୨ |
| | କୁମାରୀମାନେ ଆଚରିଲେ | । | ଭଦ୍ରକାଳୀଙ୍କି ପୂଜା କଲେ | ॥ | ୧୩ |
| | ମୋ ପତି ହୋଉ[୧] ନନ୍ଦସୁତ | । | ଏହି ଆଶାରେ ଅବିରତ | ॥ | ୧୪ |
| ୬ | ପ୍ରଭାତେ ଉଠି ପ୍ରତିଦିନ | । | ଧରନ୍ତେ ନିଜ ନାମମାନ | ॥ | ୧୫ |
| | ଭୁଜକୁ ଧରି ପରସ୍ପରେ | । | ସ୍ନାନନିମିତ୍ତେ କାଳିନ୍ଦୀରେ | ॥ | ୧୬ |
| | ଯାନ୍ତେ କୃଷ୍ଣଙ୍କୁ ଉଚ୍ଚ କରି | । | ଗାୟନ କଲେ ସେ କୁମାରୀ | ॥ | ୧୭ |
| ୭ | ଯେସନେ ପୂର୍ବଦିନମାନ | । | ସେହି ପ୍ରକାରେ ଏକ ଦିନ | ॥ | ୧୮ |
| | ବସନମାନ ନଦୀତୀରେ | । | ଥୋଇ କାଳିନ୍ଦୀ ସଲିଳରେ | ॥ | ୧୯ |

୧. ହୋନ୍ତୁ ।

ସମସ୍ତେ କଲେ ବିହାରକୁ । ହରଷେ ଗାଆନ୍ତେ କୃଷ୍ଣଙ୍କୁ ॥ ୨୦
୮ ଯୋଗେଶ୍ୱରଙ୍କ ଅଧୀଶ୍ୱର । ଶ୍ରୀକୃଷ୍ଣ କରି ତା' ଗୋଚର ॥ ୨୧
ଯେ କର୍ମ ଅଟେ ତାହାଙ୍କର । ସଂସିଦ୍ଧିନିମିତ୍ତେ ତାହାର ॥ ୨୨
ମିତ୍ରମାନଙ୍କେ ହୋଇ ବୃତ । ସେଠାରେ ହୋଇଲେ ଆଗତ ॥ ୨୩
୯ ବସ୍ତ୍ରମାନଙ୍କୁ ତାହାଙ୍କର । ଆପଣେ ଘେନିଣ ସତ୍ୱର ॥ ୨୪
ନୀପରେ କରି ଆରୋହଣ । ହସନ୍ତେ ଶିଶୁମାନେ ପୁଣ ॥ ୨୫
ସ୍ୱୟେଂ ହସନ୍ତେ ପରିହାସ । ବଚନ କଲେକ ପ୍ରକାଶ ॥ ୨୬
୧୦ ହେ ନାରୀମାନେ ! ଏ ସ୍ଥାନରେ । ପ୍ରବେଶ ହୋଇ ଯେ ଯାହାରେ ॥ ୨୭
ବୁଝିଣ ନିଅ ବସ୍ତ୍ରମାନ । କହୁଛି ଏ ସତ୍ୟ ବଚନ ॥ ୨୮
ଏ ବାକ୍ୟ ନୋହେ ପରିହାସ । ଯେଣୁ ବ୍ରତରେ ତୁମ୍ଭେ କୃଶ ॥ ୨୯
୧୧ ନ କହଇ ମୁଁ ମିଥ୍ୟାବାଣୀ । ଜାଣନ୍ତି ଏ ବାଳକେ ପୁଣି ॥ ୩୦
ହେ ସୁମଧ୍ୟମାମାନେ ! ଆସ । ଜଣ ଜଣକେ ନିଅ ବାସ ॥ ୩୧
ଅଥବା ଏକମେଳ ହୁଅ । ସମସ୍ତେ ବସ୍ତ୍ରମାନ ନିଅ ॥ ୩୨
୧୨ ସେ ପରିହାସକୁ କୃଷ୍ଣର । ଗୋପୀଏ କରିଣ ଗୋଚର ॥ ୩୩
ପ୍ରେମରସରେ ପରିପ୍ଲୁତ । ସମସ୍ତେ ହୋଇଲେ ଲଜ୍ଜିତ ॥ ୩୪
ଏକ ଚାହିଁଣ ଆରକକୁ । ହସିଲେ, ନ ଗଲେ କୂଳକୁ ॥ ୩୫
୧୩ ଗୋବିନ୍ଦ ବୋଲନ୍ତେ ଏମନ୍ତ । କ୍ରୀଡ଼ାରେ ବଶ ତାଙ୍କ ଚିତ୍ତ ॥ ୩୬
ଶୀତଳଜଳେ କଣ୍ଠଯାଏ । ମଗ୍ନ ଅଟନ୍ତି[1] ସମସ୍ତେ ହେଁ ॥ ୩୭
ଶୀତେ ହୋଇଣ କମ୍ପମାନ । ବୋଇଲେ ଏମନ୍ତ ବଚନ ॥ ୩୮
୧୪ ମୁଗ୍ଧା କୁମାରୀମାନେ ପୁଣି । କହୁଅଛନ୍ତି ଏହୁ ବାଣୀ ॥ ୩୯
ତୁମ୍ଭେ ନନ୍ଦର ପ୍ରିୟ ସୁତ । ଏ ବ୍ରଜମଧ୍ୟରେ ପୂଜିତ ॥ ୪୦
ହେ କୃଷ୍ଣ ଆମ୍ଭେ ଏହା ଜାଣୁଁ । ନ କର ଅନ୍ୟାୟକୁ ତେଣୁ ॥ ୪୧
ଶୀତରେ କମ୍ପୁଅଛି ଦେହ । ଆମ୍ଭମାନଙ୍କୁ ବସ୍ତ୍ର ଦିଅ ॥ ୪୨
୧୫ ଯେ ପୁଣି ତହିଁ ପ୍ରୌଢ଼ାମାନେ । କହୁଅଛନ୍ତି ଏ ବଚନେ ॥ ୪୩
କହୁଛୁଁ ହେ ଶ୍ୟାମସୁନ୍ଦର । ଆମ୍ଭେ ସମସ୍ତେ ଦାସୀ ତୋର ॥ ୪୪
କରିବୁଁ ତୋହର ବଚନ । ଧର୍ମଜ୍ଞ ! ଦିଅ ବସ୍ତ୍ରମାନ ॥ ୪୫
ନ ଦେଲେ ନୃପର[2] ଅଗ୍ରତେ । ଏ କଥା କହିବୁଁ ସମସ୍ତେ ॥ ୪୬

ଶ୍ରୀଭଗବାନୁବାଚ

୧୬ ତୁମ୍ଭେ ମୋହର ଦାସୀ ଯେବେ । କରିବ ମୋ ବଚନ ତେବେ ॥ ୪୭
ହେ ଶୁଚିସ୍ମିତା ! ଏ ସ୍ଥାନରେ । ପ୍ରବେଶ ହୋଇ ଯେ ଯାହାରେ ॥ ୪୮
ବସନମାନ ନିଅ ଜାଣି । ନ ଦେବି ନ ଆସିଲେ ପୁଣି ॥ ୪୯

---

୧. ଅଟନ୍ତି = ହୁଅନ୍ତେ । ୨. ନୃପ = ନନ୍ଦ ବା କଂସ ।

କ୍ରୋଧିତ ହୋଇ ରାଜା ମୋତେ । କି ବା କରିବ ଏ ଜଗତେ ॥
୧୭ ଶୀତରେ ହୋଇ କମ୍ପମାନ । ତଦନ୍ତେ ସର୍ବ ବାଳାଜନ ॥
ଯୋନିକି କରଯୁଗଳରେ । ଆଚ୍ଛନ୍ନ କରିଣ ଲଜ୍ଜାରେ ॥
ଜଳାଶୟରୁ ବିନିର୍ଗତ । ହୋଇଲେ ଶୀତରେ କୃଶିତ ॥
୧୮ ଅଳ୍ପ ଅକ୍ଷତ ଯୋନିମାନ । ଦେଖି ତାଙ୍କର ଭଗବାନ ॥
ଶୁଦ୍ଧ ଭାବରେ ଗୋପୀ ଯେଣୁ । ପ୍ରସନ୍ନ କରାଇଲେ ତେଣୁ ॥
ସ୍କନ୍ଧେ ନିବେଶି ବସ୍ତ୍ରମାନ । ସସ୍ମିତେ ବୋଇଲେ ବଚନ ॥
୧୯ ବ୍ରତ କରି ଯା' ତୁମ୍ଭେମାନେ । ଜଳେ ପଶିଲ ବିବସନେ ॥
ଦେବତାଠାରେ ଏ ବିଷୟ । ଅଟେ ଅପରାଧ ନିଶ୍ଚୟ ॥
ସେ ପାପବିନାଶହେତୁରେ । କରଯୁଗଳ ଯୋଡ଼ି ଶିରେ ॥
ତଳରେ କରି ନମସ୍କାର । ବସନ ନିଅ ଯେ ଯାହାର ॥
୨୦ କୃଷ୍ଣ କହିଲେ ଏ ପ୍ରକାରେ । ବିବସ୍ତ୍ର ହୋଇ ଯା' ଜଳରେ ॥
ସ୍ନାନ ଆଚରିଲେ ସେମନ୍ତ । ମଣିଣ ନିଜ ବ୍ରତ ହତ ॥
ପୂର୍ଣ୍ଣନିମିତ୍ତେ ସେ ବ୍ରତର । ଯେ ଫଳରୂପୀ ଅଟେ ତାର ॥
ଅଶେଷ କର୍ମମାନଙ୍କରି । ଫଳରୂପୀ ଯେ ଅଟେ ହରି ॥
ତାହାଙ୍କୁ କଲେ ନମସ୍କାର । ଯେଣୁ ସେ ସର୍ବପାପହର ॥
୨୧ ସେରୂପେ ସେ ଗୋପୀ ସମସ୍ତ । ହୋଇଲେ ଯେଣୁ ଅବନତ ॥
ଦେବକୀସୁତ ଭଗବାନ । ତେଣୁ ହୋଇଲେ ତୁଷ୍ଟମନ ॥
କରୁଣା କଲେ ସେମାନଙ୍କୁ । ଦେଲେ ବସନମାନ ତାଙ୍କୁ ॥
୨୨ ଦୃଢ଼େ ବଞ୍ଚନା ତାଙ୍କୁ କଲେ । ମନରୁ ଲଜ୍ଜା ଛଡ଼ାଇଲେ ॥
କହିଲେ ଉପହାସ ବାଣୀ । କ୍ରୀଡ଼ନପ୍ରାୟ କଲେ ପୁଣି ॥
ହରିଲେ ତାଙ୍କ ବସ୍ତ୍ରମାନ । ତଥାପି ହିଁ ସେ ଗୋପୀଜନ ॥
ଦୋଷଦୃଷ୍ଟିରେ ନ ଚାହିଁଲେ । ପ୍ରିୟସଙ୍ଗକୁ ସଜ[୧] ହେଲେ ॥
୨୩ ପିନ୍ଧିଣ ନିଜ ବସ୍ତ୍ରମାନ । ପ୍ରିୟସଙ୍ଗମେ ବଶମନ ॥
କୃଷ୍ଣ ହରିଲେ ଚିତ୍ତ ଯେଣୁ । ସେଠାରୁ ନ ଚଳିଲେ ତେଣୁ ॥
ନିଜ ନେତ୍ରକୁ କୃଷ୍ଣଠାରେ । ଅର୍ପଣ କଲେକ ଲଜ୍ଜାରେ ॥
୨୪ ସ୍ୱପାଦସ୍ପର୍ଶନିମିତ୍ତ । ଧରିଣ ଅଛନ୍ତି ଯେ ବ୍ରତ ॥
ଏମନ୍ତ ସଂକଳ୍ପ ତାଙ୍କର । ଜାଣିଣ ପ୍ରଭୁ ଦାମୋଦର ॥
ଏରୂପେ ଅବଳାମାନଙ୍କୁ । କହିଲେ ପୁଣ ବଚନକୁ ॥
୨୫ ହେ ସାଧ୍ୱୀମାନେ ! ଯେ ତୁମ୍ଭର । ସଂକଳ୍ପ ସେ ପୂଜନ ମୋର ॥
ମୁଁ ତାହା ଜାଣିଛି ମୋହର । ସେ କଥା ଅଟଇ ସ୍ୱୀକାର ॥
ଯେ ତୁମ୍ଭ ମନୋରଥ ସେହି । ସତ୍ୟ ହେବାକୁ ଯୋଗ୍ୟ ହୋଇ ॥

୧. ''ସଜ୍ଜିତା''-ଶବ୍ଦର ଅନୁବାଦ । ଅତ୍ର ''ନିର୍ବୃତାଃ'' -ପାଠାନ୍ତର ।

୨୬ ନିଜ ବୁଦ୍ଧିକି ମୋହଠାରେ । ଆବେଶ କରନ୍ତି ଯେ ନରେ ॥ ୮୨
ସେମାନଙ୍କର କାମ ଯେହି । କାମଭୋଗାର୍ଥେ ନୋହେ ସେହି ॥ ୮୩
ଯେହ୍ନେ ଯବାଦି ବୀଜମାନ । ତାହାଙ୍କୁ କରନ୍ତେ ଦହନ ॥ ୮୪
[1]କ୍ୱାଥ କରନ୍ତେ ସେ ଅଙ୍କୁର । ନିମିତ୍ତେ ନୋହେ ଆନ ଥର ॥ ୮୫
୨୭ ହେ ସ୍ତିରୀମାନେ ! ମନୋରଥ । ତୁମ୍ଭର ହୋଇଲା ପୂରିତ ॥ ୮୬
ଯାହା ଉଦ୍ଦେଶି ଏ ବ୍ରତକୁ । ବିହିଲ ଦୁର୍ଗାର ପୂଜାକୁ ॥ ୮୭
ଆସନ୍ତା ରାତ୍ରିମାନଙ୍କରେ । ରମିବ ମୋହର ସଙ୍ଗରେ ॥ ୮୮
ତୁମ୍ଭେ ସମସ୍ତେ ସତୀଜନ । କର ଗୋ ବ୍ରଜକୁ ଗମନ ॥ ୮୯

ଶ୍ରୀଶୁକ ଉବାଚ

୨୮ ଏମନ୍ତ ପ୍ରକାର ବଚନ । କହିଲେ ତାଙ୍କୁ ଭଗବାନ ॥ ୯୦
ବାଞ୍ଛାକୁ ଲଭି ଆପଣାର । କୁମାରୀମାନେ ତଦନ୍ତର ॥ ୯୧
ଚରଣପଦ୍ମକୁ କୃଷ୍ଣର । ଧ୍ୟାନ କରନ୍ତେ ସ୍ୱମନର[2] ॥ ୯୨
କଷ୍ଟେ ସେ ସ୍ଥାନୁଁ ଚଳିଗଲେ । ବ୍ରଜରେ ପ୍ରବେଶ ହୋଇଲେ ॥ ୯୩
୨୯ ଏଥୁ ଅନ୍ତରେ ଭଗବାନ । ସେ ପ୍ରଭୁ ଦେବକୀନନ୍ଦନ ॥ ୯୪
ଗୋପାଳେ ହୋଇ ପରିବୃତ । ସଙ୍ଗେ ଅଛନ୍ତି ଜ୍ୟେଷ୍ଠଭ୍ରାତ ॥ ୯୫
ଚରାନ୍ତେ ପୁଣ ନିଜ ଧେନୁ । ଦୂରକୁ ଗଲେ ବୃନ୍ଦାବନୁଁ ॥ ୯୬
୩୦ ନିଦାଘକାଳ-ତପନ[3]ର । ତୀକ୍ଷ୍ଣ କିରଣେ ଆପଣାର ॥ ୯୭
ଛାୟାମାନଙ୍କେ ଛତ୍ରପ୍ରାୟ । କରିଛନ୍ତି ଯେ ନିଜକାୟ ॥ ୯୮
ଦେଖି ସେ ବୃକ୍ଷମାନ ପୁଣି । କହିଲେ ଗୋପାଳଙ୍କୁ ବାଣୀ[4] ॥ ୯୯
୩୧ ହେ ସ୍ତୋକକୃଷ୍ଣ ହେ ସୁବଳ । ହେ ଅଂଶୁ ଶ୍ରୀଦାମ ବିଶାଳ ॥ ୧୦୦
ଦେବପ୍ରସ୍ଥ ଋଷଭାର୍ଜୁନ । ହେ ବରୂଥପ ଓଜସ୍ୱିନ[5] ॥ ୧୦୧
୩୨ [6]ହେ ମହାଭାଗ ! ବୃକ୍ଷମାନେ । ଦେଖ ଏ ରହିଛନ୍ତି ବନେ ॥ ୧୦୨
ପରର ନିମିତ୍ତେ ଏକାନ୍ତ । ଅଟେ ଏମାନଙ୍କ ଜୀବିତ ॥ ୧୦୩
ବାତ ବରଷା ଖରା ପୁଣ । ହିମକୁ ସହନ୍ତେ ଆପଣ ॥ ୧୦୪
ଆମ୍ଭମାନଙ୍କ ତାପ ପୁଣ । କରୁଅଛନ୍ତି ନିବାରଣ ॥ ୧୦୫
୩୩ ସମସ୍ତ ପ୍ରାଣିମାନଙ୍କର । ଏ ଉପଜୀବ୍ୟ[7] ନିରନ୍ତର ॥ ୧୦୬
ଏମାନଙ୍କର ଜନ୍ମ ଯେହି । ସେ ଶ୍ରେଷ୍ଠ ଅଦଭୁତ ଏହି ॥ ୧୦୭
ଯେ ଅର୍ଥୀ ସୁଜନ ଲୋକର । ତାହାର ପ୍ରାଏ ଏହାଙ୍କର ॥ ୧୦୮

---

୧. କ୍ୱାଥ = ଅଗ୍ନିଦ୍ୱାରା ଆଉଟା ରସ । ୨. ସ୍ୱମନର = ସୁମନର । ୩. ତପନ = ସୂର୍ଯ୍ୟ ।
୪. ବାଣୀ = ଜାଣି । ୫. ଓଜସ୍ୱିନ = ତେଜସ୍ୱିନ ।
୬. ଭକ୍ତ୍ୟାନୁକମ୍ପ୍ୟ କନ୍ୟାସ୍ତାସ୍ତଦ୍ବିବର୍ଜିତଯଜ୍ଞନାମ୍ ।
ପତ୍ନ୍ୟନୁଗ୍ରହତସ୍ତେଷାମହନ୍ କର୍ମମହାମଦମ୍ । (ସ୍ୱାମୀ)
୭. ଉପଜୀବୀ, ଉପଜୀବ ।

| | | | | |
|---|---|---|---|---|
| | ଯେ ଜନ ଅର୍ଥୀ ହୋଇଥାନ୍ତି | । ବିମୁଖ ହୋଇ ସେ ନ ଯାନ୍ତି | ॥ | ୧୦୯ |
| ୩୪ | ପତ୍ର କୁସୁମ ଛାୟା ଫଳ | । ବଲ୍‌କଳ ଗନ୍ଧ ଦାରୁ ମୂଳ | ॥ | ୧୧୦ |
| | ରସ ଭସ୍ମାସ୍ଥି ଅଙ୍କୁରେଣ | । କରନ୍ତି ବାଞ୍ଛାକୁ ପୂରଣ | ॥ | ୧୧୧ |
| ୩୫ | ଯେ ଦେହବନ୍ତ ପ୍ରାଣିମାନେ | । ଦେହିଙ୍କ ମଧ୍ୟେ ଏ ଭୁବନେ | ॥ | ୧୧୨ |
| | ଏତେ ମାତ୍ରକ ତାହାଙ୍କର | । ସଫଳ ଭାବ ଜନମର | ॥ | ୧୧୩ |
| | ପ୍ରାଣରେ ଧନେ ବଚନରେ | । ଶ୍ରେୟ ଆଚରନ୍ତି ବୁଦ୍ଧିରେ | ॥ | ୧୧୪ |
| ୩୬ | ବୃକ୍ଷମାନଙ୍କୁ ଏ ପ୍ରକାରେ | । ପ୍ରଶଂସା କରନ୍ତେ ନିର୍ଭରେ | ॥ | ୧୧୫ |
| | ପଲ୍ଲବ ସ୍ତବକ[୧] ସୁମନ[୨] | । ଯେ ଫଳ ଦଳବୃନ୍ଦ ମାନ | ॥ | ୧୧୬ |
| | ତେଣେ ବିନମ୍ରଶାଖା ହୋଇ | । ଯେ ଦ୍ରୁମମାନେ ଛନ୍ତି ତହିଁ | ॥ | ୧୧୭ |
| | ସେ ଦ୍ରୁମମାନଙ୍କ ମଧ୍ୟରେ | । ମିଳିଲେ ଯାଇଁ ଯମୁନାରେ | ॥ | ୧୧୮ |
| ୩୭ | ତହିଁରେ ସୁମୃଷ୍ଟ[୩] ଶୀତଳ | । ମଙ୍ଗଳ ଅଟଇ ଯେ ଜଳ | ॥ | ୧୧୯ |
| | ଧେନୁଙ୍କୁ ତାହା ପିଆଇଣ | । ହେ ନୃପ ! ଗୋପମାନେ ପୁଣ | ॥ | ୧୨୦ |
| | ସ୍ୱାଦୁ ଜଳକୁ ଯେଝା ମନ | । ଇଚ୍ଛାରେ କଲେ ତହିଁ ପାନ | ॥ | ୧୨୧ |
| ୩୮ | ସମସ୍ତେ ସେ ଉପବନରେ | । ପଶୁଙ୍କୁ ଚରାନ୍ତେ ଇଚ୍ଛାରେ | ॥ | ୧୨୨ |
| | କୃଷ୍ଣରାମଙ୍କୁ ଉପଗତ | । [୪]ହୋଇଣ ଗୋପାଳେ କ୍ଷୁଧାର୍ତ୍ତ | ॥ | ୧୨୩ |
| | ଏମନ୍ତ ପ୍ରକାରେ ବଚନ | । ପ୍ରକାଶ କଲେ ହେ ରାଜନ | ॥ | ୧୨୪ |
| | କୁମାରୀଙ୍କର ବ୍ରତେ ପୁଣ | । ଯେ ଆତ୍ମା କଲେ ସମର୍ପଣ | ॥ | ୧୨୫ |
| | ସେ କୃଷ୍ଣ ଚରଣ ଅମ୍ବୁଜ | । ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ॥ | ୧୨୬ |
| | ଦଶମ ସ୍କନ୍ଧ ଭାଷାଗୀତେ | । କହିଲା ସାଧୁଜନହିତେ | ॥ | ୧୨୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଯମୁନାଗମନଂ
ନାମ ଦ୍ୱାବିଂଶୋଽଧ୍ୟାୟଃ ॥

## ତ୍ରୟୋବିଂଶ ଅଧ୍ୟାୟ

ତ୍ରୟୋବିଂଶେ ତତୋ ଗୋପୈରନ୍ନଯାଚ୍‌ଞାପଦେଶତଃ ।
ତତ୍‌ପତ୍ନ୍ୟନୁଗ୍ରହାଦ୍ କୃଷ୍ଣୋ ଦୀକ୍ଷିତାନନ୍ୱତାପୟତ୍ ॥ ୧

ଶ୍ରୀଗୋପା ଊଚୁଃ

| | | | | |
|---|---|---|---|---|
| ୧ | ହେ ମହାବାହୁ ରାମ ଶୁଣ | । ହେ କୃଷ୍ଣ ଦୁଷ୍ଟନିବାରଣ | ॥ | ୧ |

୧. ସ୍ତବକ = ଫୁଲପେଣ୍ଡା । ୨. ସୁମନ = ଫୁଲ । ୩. ସୁମୃଷ୍ଟ = ଅତି ନିର୍ମଳ ।
୪. ପୂର୍ବରୁ କୁମାରୀମାନଙ୍କ ସହ ନର୍ମକ୍ରୀଡ଼ା ପାଇଁ ଆକୁଳତା ହେତୁ ଭୋଜ୍ୟ ପଦାର୍ଥ ଗ୍ରହଣ ନ କରି ନିର୍ଗତ ହୋଇଥିବାରୁ ''କ୍ଷୁଧାର୍ତ୍ତ'' ବୋଲି ଉକ୍ତ ହୋଇଅଛି । (ସ୍ୱାମୀ)

ଏ କ୍ଷୁଧା ବାଧୁଛି ଆମ୍ଭଙ୍କୁ । ଏହାର ଶାନ୍ତି କରିବାକୁ ॥
ସମର୍ଥ ହୁଅ ତୁମ୍ଭେ ଦୁହେଁ । ଏମନ୍ତ କହୁଛୁଁ ସଭିଏଁ ॥

ଶ୍ରୀଶୁକ ଉବାଚ

୨ ଗୋପେ ଜଣାନ୍ତେ ଏ ବଚନ । ଜଗଦୀଶ୍ୱର ଭଗବାନ ॥
ଆପଣାଠାରେ ଅବିରତ । ଯେ ବିପ୍ରଭାର୍ଯ୍ୟା ଅଟେ ଭକ୍ତ ॥
ତାହାଙ୍କୁ ହୁଅନ୍ତେ ପ୍ରସନ୍ନ । ବୋଇଲେ ଏମନ୍ତ ବଚନ ॥
୩ ଯେ ବ୍ରହ୍ମବାଦୀ ବିପ୍ରଜନ । ସେ ସ୍ୱର୍ଗ ବାଞ୍ଛା କରି ମନ ॥
ଯେ ଆଙ୍ଗିରସ ନାମେ ଖ୍ୟାତ । ସେ ଯଜ୍ଞ [1]କରିଛନ୍ତି ବ୍ୟକ୍ତ ॥
ଯଜ୍ଞଶାଳାକୁ ଯାଅ ତୁମ୍ଭେ । ଏମନ୍ତ କହୁଅଛୁଁ ଆମ୍ଭେ ॥
୪ ପଠିଆଇଲୁଁ ଆମ୍ଭେ ଦୁହେଁ । ସେଠାକୁ ଯାଇଣ ସବିହେଁ ॥
ମୋ ଜ୍ୟେଷ୍ଠ ଭ୍ରାତା ସଂକର୍ଷଣ । ତାଙ୍କର ମୋର ନାମ ପୁଣ ॥
କୀର୍ତ୍ତନ କରନ୍ତେ ଅନ୍ନକୁ । ପ୍ରାର୍ଥନା କର ଯା'[2] ତାହାଙ୍କୁ ॥
୫ ଏମନ୍ତ ପ୍ରକାରେ ବଚନ । ଆଜ୍ଞା ଦିଅନ୍ତେ ଭଗବାନ ॥
ଅଞ୍ଜଳି କରି କର ଦୁଇ । ଭୂମିରେ ଦଣ୍ଡପ୍ରାୟ ହୋଇ ॥
ପଡ଼ିଲେ ସେହିରୂପେ ଅନ୍ନ । ତାହାଙ୍କୁ କଲେକ ପ୍ରାର୍ଥନ ॥
୬ ହେ ବିପ୍ରମାନେ ! ଶୁଣ ତୁମ୍ଭେ । କୃଷ୍ଣର ଆଜ୍ଞାକାରୀ ଆମ୍ଭେ ॥
ରାମଆଜ୍ଞାରେ ଅଛୁଁ ଆସି । ଆମ୍ଭେ ଗୋପାଳେ ବ୍ରଜବାସୀ ॥
ଏମନ୍ତ ରୂପେ ତୁମ୍ଭେ ଜାଣ । ତୁମ୍ଭ ମଙ୍ଗଳ ହୋଉ ପୁଣ ॥
୭ ହେ ବିପ୍ରେ ! ଧର୍ମବନ୍ତ ନର । ଯେ ତାଙ୍କ ମଧ୍ୟେ ତୁମ୍ଭେ ସାର[3] ॥
ରାମ ଅଚ୍ୟୁତ ବେନି ଭାଇ । ଚରାନ୍ତେ ନିକଟରେ ଗାଈ ॥
ଦୁହେଁ କ୍ଷୁଧାର୍ତ୍ତ ହୋଇଛନ୍ତି । ତୁମ୍ଭର ଅନ୍ନକୁ ବାଞ୍ଛନ୍ତି ॥
ସେ ବେନି ଅର୍ଥୀ ଶ୍ରଦ୍ଧା ଯେବେ । ତାହାଙ୍କୁ ଅନ୍ନ ଦିଅ ତେବେ ॥
୮ [4]ଆଗ୍ନୀଷୋମୀୟ ପଶୁନାଶ । ପୂର୍ବେ ଦୀକ୍ଷିତ ଅନ୍ନ ଦୋଷ ॥
ସୌତ୍ରାମଣୀରୁ[5] ଆନ ଦିନ । ଭୁଞ୍ଜନ୍ତେ ଦୀକ୍ଷିତର ଅନ୍ନ ॥
ହେ ବିପ୍ରମାନେ ! ଦୋଷ ନାହିଁ । ଏମନ୍ତ ଶାସ୍ତ୍ରେ ଅଛି କହି ॥
୯ କୃଷ୍ଣପ୍ରାର୍ଥନାକୁ ଏମନ୍ତେ । ଶୁଣିଲେ ନାହିଁ ସେ ଶୁଣନ୍ତେ ॥
ଯେ କ୍ଷୁଦ୍ର ସ୍ୱର୍ଗଆଦି ତହିଁ । ବାଞ୍ଛା ତାଙ୍କର ଅଛି ରହି ॥
ବହୁତ କ୍ଲେଶକର୍ମମାନ । କରନ୍ତି ଯେ ନିତ୍ୟେ ବିଧାନ ॥
ମୂର୍ଖ ଅଟନ୍ତି ବୃଦ୍ଧ କରି । ଆତ୍ମାକୁ ମଣନ୍ତି ବିଚାରି ॥

---

୧. କରନ୍ତି ବିଦିତ ।　୨. ଯାଅ ତାଙ୍କୁ ।　୩. ବର ।
୪. ଅଗ୍ନି ଓ ସୋମଙ୍କୁ ଉଦ୍ଦେଶି ଯେଉଁ ପଶୁ ଆଲମ୍ଭନ କରାହୁଏ ।
୫. ସୌତ୍ରାମଣୀ - 'ସୁତ୍ରାମନ୍' ଅର୍ଥାତ୍ ଇନ୍ଦ୍ରଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ୬ଷ୍ଠ ବା ୭ମ ହବିର୍ଯଜ୍ଞସଂସ୍ଥା ।

୧୦ ଯେ ଦେଶ କାଳ ଭିନ୍ନ ଭିନ୍ନ । [1]ପୁରୋଡାଶାଦି ଦ୍ରବ୍ୟମାନ ॥ ୩୦
ଯେ ମନ୍ତ୍ର ତନ୍ତ୍ର[2] ଯଜମାନ । କ୍ରତୁ ଦେବତା ହୁତାଶନ ॥ ୩୧
ଋତ୍ୱିଜ ଧର୍ମ[3] ଏ ସମସ୍ତ । ଯାହାର ସ୍ୱରୂପ ବିଦିତ ॥ ୩୨
୧୧ ପରମ ବ୍ରହ୍ମ[4] ଯେ ସାକ୍ଷାତ । ସେ ଅଧୋକ୍ଷଜ ଭଗବନ୍ତ ॥ ୩୩
ତାହାଙ୍କୁ ନରଦୃଷ୍ଟି କଲେ । ଦୁର୍ବୁଦ୍ଧିମାନେ ନ ମଣିଲେ ॥ ୩୪
ଆମ୍ଭେ ବ୍ରାହ୍ମଣେ ଶ୍ରେଷ୍ଠ ଜାତି । ଏ ରୂପେ ତାହାଙ୍କର ମତି ॥ ୩୫
୧୨ ସେ ଯେବେ ଦେବା ନ ବୋଇଲେ । ନ ଦେବା ବୋଲି ନ କହିଲେ ॥ ୩୬
ହେ ନୃପ ! ନିରାଶ ହୋଇଣ । ଗୋପାଳମାନେ ଲେଉଟିଣ ॥ ୩୭
ରାମକେଶବଙ୍କ ଆଗରେ । କହିଲେ ତା' ସେହି ପ୍ରକାରେ ॥ ୩୮
୧୩ ଜଗଦୀଶ୍ୱର କୃଷ୍ଣ ପୁଣ । ସେ କଥା ଶ୍ରବଣ କରିଣ ॥ ୩୯
ଯେ ଜନ କାର୍ଯ୍ୟାର୍ଥୀ ଅଟଇ । ସେ କେବେ ନିର୍ବେଦ ନୁହଇ ॥ ୪୦
କେ ଅବା ପ୍ରାର୍ଥନା କରିଣ । ନ ଲଭେ ପରାଭବ ପୁଣ ॥ ୪୧
ଏ ରୂପେ ଲୋକବ୍ୟବହାର । ଦେଖାନ୍ତେ ଦେବ ଦାମୋଦର ॥ ୪୨
ହସିଣ ଗୋପାଳମାନଙ୍କୁ । କହିଲେ ପୁଣ ବଚନକୁ ॥ ୪୩
୧୪ ସଂକରଷଣସଙ୍ଗେ ମୁହିଁ । ପ୍ରବେଶ ହୋଇଛି ଏଠାଇଁ ॥ ୪୪
ପତ୍ନୀଙ୍କି କହ ସେ ଗୃହରେ । ଥିଲେହେଁ ମୋଠାରେ ବୁଦ୍ଧିରେ ॥ ୪୫
ସେ ସ୍ନେହବନ୍ତ, ପୂର୍ଣ୍ଣ ଅନ୍ନ । ତୁମ୍ଭଙ୍କୁ କରିବେ ପ୍ରଦାନ ॥ ୪୬
୧୫ ଗୋପାଳେ ଶ୍ରୀକୃଷ୍ଣବାକ୍ୟରେ । ଯାଇଣ ପତ୍ନୀଙ୍କ ଶାଳାରେ ॥ ୪୭
ଦେଖିଲେ ବିଭୂଷିତ ହୋଇ । ଅଛନ୍ତି ପତ୍ନୀମାନେ ତହିଁ ॥ ୪୮
ପ୍ରଣାମ କରି ବିନୟରେ । ବୋଇଲେ ଏମନ୍ତ ପ୍ରକାରେ ॥ ୪୯
୧୬ ହେ ପତ୍ନୀମାନେ ଦ୍ୱିଜଙ୍କର । କରୁଛୁଁ ଆମ୍ଭେ ନମସ୍କାର ॥ ୫୦
ଆମ୍ଭମାନଙ୍କ ବାକ୍ୟ ଶୁଣ । ନିକଟେ କରନ୍ତେ ଭ୍ରମଣ ॥ ୫୧
କୃଷ୍ଣ ପେଷିଲେ ତୁମ୍ଭ ଠାକୁ । ଆମ୍ଭ ସମସ୍ତ ଗୋପାଳଙ୍କୁ ॥ ୫୨
୧୭ ରାମଗୋପାଳଙ୍କ ସଙ୍ଗରେ । ସେ ଧେନୁ ଚରାନ୍ତେ ବନରେ ॥ ୫୩
ଅଇଲେ ଦୂରକୁ ସେ ଯେଣୁ । ସଙ୍ଗିମାନଙ୍କ ସଙ୍ଗେ ତେଣୁ ॥ ୫୪
କ୍ଷୁଧାର୍ତ୍ତ ହୋଇଛନ୍ତି, ଅନ୍ନ । ତାହାଙ୍କୁ କର ଗୋ ପ୍ରଦାନ ॥ ୫୫
୧୮ କୃଷ୍ଣ ହୋଇଲେ ଉପଗତ । ଏକଥା କରି ଶ୍ରୁତିଗତ ॥ ୫୬
ନିତ୍ୟେ ସେ କୃଷ୍ଣଦରଶନେ । ଉତ୍ସୁକ ଯଜ୍ଞପତ୍ନୀମାନେ ॥ ୫୭
ଶ୍ରୀକୃଷ୍ଣକଥାରେ ଆବେଶ । ଅଟେ ସେମାନଙ୍କ ମାନସ ॥ ୫୮
ନିକଟେ ପ୍ରବେଶ ଶୁଣିଲେ । ସମସ୍ତେ ସସଂଭ୍ରମ ହେଲେ ॥ ୫୯

---

୧. ଚରୁ ଓ ପୁରୋଡାଶ 'ଇଷ୍ଟି' ଯଜ୍ଞରେ ଅର୍ପଣ କରାଯାଏ ।
୨. ଶାସ୍ତ୍ର । ୩. ଅପୂର୍ବ । ୪. ଧର୍ମ ।

୧୯ ଭକ୍ଷ୍ୟ ଭୋଜ୍ୟକୁ ଆଦି ହୋଇ । ଚାରି[୧] ପ୍ରକାର ଯେ ଅଟଇ ॥ ୬୦
ସଂସ୍କାରବଶୁଁ ଯହିଁ ପୁଣ । ପ୍ରକାଶ ଅଟେ ନାନା[୨] ଗୁଣ ॥ ୬୧
ପାତ୍ରରେ ସେ ଅନ୍ନମାନଙ୍କୁ । ଘେନିଣ ପ୍ରିୟନିକଟକୁ ॥ ୬୨
ସମସ୍ତେ କଲେକ ଗମନ । ନଦୀଏ ସିନ୍ଧୁକୁ ଯେସନ ॥ ୬୩
୨୦ ଯେ ପତି ଭ୍ରାତା ବନ୍ଧୁ ସୁତେ । ନିଷେଧିଲେ ହେଁ ସେ ସମସ୍ତେ ॥ ୬୪
ଶ୍ରବଣବଶରୁ ବହୁତ । କାଳହୁଁ ଆପଣାର ଚିତ୍ତ ॥ ୬୫
ନିବେଶି ଛନ୍ତି କୃଷ୍ଣଠାର । ସେ ଘେନି ହୋଇଲେ ବାହାର ॥ ୬୬
୨୧ ଅଶୋକ ନବପଲ୍ଲବରେ । ମଣ୍ଡିତ ଅଟେ ଯେ ନିର୍ଭରେ ॥ ୬୭
ସେ ଯମୁନା-ଉପବନରେ । ରାମ-ଗୋପାଳଙ୍କ ସଙ୍ଗରେ ॥ ୬୮
ଭ୍ରମଣ କରୁଛନ୍ତି ହରି । ତାଙ୍କୁ ଦେଖିଲେ ଦ୍ୱିଜନାରୀ ॥ ୬୯
୨୨ ଶ୍ୟାମଳ ଶରୀର ପ୍ରକାଶ । ସୁବର୍ଣ୍ଣପ୍ରାୟ ପୀତବାସ ॥ ୭୦
ବରହିପୁଚ୍ଛ ବନମାଳ । ଆବର ଗୈରିକ, ପ୍ରବାଳ ॥ ୭୧
ଏମାନଙ୍କରେ ନଟଙ୍କର । ସମାନ ବେଷ ଯାହାଙ୍କର ॥ ୭୨
ଯେ ସଖାଜନ ଅନୁଗତ । ତା' କାନ୍ଧେ ନିବେଶିଣ ହସ୍ତ ॥ ୭୩
ଆର ହସ୍ତରେ ପଦ୍ମ ପୁଣ । କରାଉ ଅଛନ୍ତି ଭ୍ରମଣ ॥ ୭୪
କର୍ଣ୍ଣେ ଉତ୍ପଳ, କପୋଳରେ । ଅଳକା, ହାସ ମୁଖାବ୍ଜରେ ॥ ୭୫
୨୩ ଯେ ପ୍ରିୟତମ ଭଗବାନ । ତାଙ୍କର ଯେ ଉଦୟମାନ[୩] ॥ ୭୬
ବହୁତ କରି ତା' ଶ୍ରବଣ । କଲେ ତା' କର୍ଣ୍ଣଆଭରଣ ॥ ୭୭
ତେଣେ କୃଷ୍ଣର ଠାରେ ମନ । ତାଙ୍କର ଅଟଇ ନିମଗ୍ନ ॥ ୭୮
ହେ ନୃପ ! ଏଥୁ ଅନନ୍ତରେ । ତାହାଙ୍କୁ ପୁଣ ନେତ୍ରଦ୍ୱାରେ ॥ ୭୯
ଆପଣା ହୃଦୟମଧ୍ୟରେ । ପ୍ରବେଶ କରାଇ[୪] ସ୍ନେହରେ ॥ ୮୦
ବହୁତ କରି ଆଲିଙ୍ଗନ । ତାପକୁ କଲେ ବିସର୍ଜନ ॥ ୮୧
ଯେ ଅହଂବୃତ୍ତିଏ[୫] ଆତ୍ମାର । ସୁଷୁପ୍ତି ସାକ୍ଷୀ ଯେ ଈଶ୍ୱର ॥ ୮୨
ତାହାଙ୍କୁ କରି ଆଲିଙ୍ଗନ । ଲୟକୁ ଲଭିଣ ସେ ଜନ ॥ ୮୩
ଯେ ଥାଇ ନିଜ ତାପମାନ । ତାହାଙ୍କୁ ଛାଡ଼ନ୍ତି ଯେସନ ॥ ୮୪
୨୪ ଛାଡ଼ିଲେ ସକଳ ଆଶାକୁ । ଦେଖିବା ଅର୍ଥେ ଆପଣାକୁ ॥ ୮୫
ଆସିଅଛନ୍ତି ଦ୍ୱିଜନାରୀ । ସକଳବୁଦ୍ଧିସାକ୍ଷୀ ହରି ॥ ୮୬
ଜାଣିଣ ହସିତବଦନ । ହୋଇଣ କହିଲେ ବଚନ ॥ ୮୭

---

୧. ଚାରି = ଭକ୍ଷ୍ୟ, ଭୋଜ୍ୟ, ଲେହ୍ୟ ଓ ପେୟ । ୨. ନାନା = ରସ, ସୌରଭ୍ୟ ଆଦି ।
୩. ଉଦୟ = ଉତ୍କର୍ଷ । ୪. କରାଇ = କରିଣ ।
୫. ଅହଂବୃତ୍ତିଏ = ଅହଂବୃତ୍ତିସଂପନ୍ନ ବ୍ୟକ୍ତିମାନେ ।

୨୫ ହେ ମହାଭାଗ୍ୟବନ୍ତୀମାନ । ତୁମ୍ଭର ଶୁଭ ଆଗମନ ॥ ୮୮
ବସ ସମସ୍ତେ ଏ ସ୍ଥାନର । ଆମ୍ଭେ କି କରିବୁଁ ତୁମ୍ଭର ॥ ୮୯
ଆମ୍ଭଙ୍କୁ ଦେଖିବା ନିମିତ୍ତ । ପ୍ରବେଶ ହୋଇଲ ଯା' ଏଥ ॥ ୯୦
ତୁମ୍ଭ ମାନଙ୍କର ଏ କଥା । ଯୁକ୍ତ ଅଟଇ ଗୋ ସର୍ବଥା ॥ ୯୧
୨୬ ବିବେକୀ ଅଟନ୍ତି ଯେ ଜନ । ଦେଖନ୍ତି ନିଜ ପ୍ରୟୋଜନ ॥ ୯୨
ମୁଁ ପ୍ରିୟ ଆତ୍ମା ପ୍ରାଣିଙ୍କର । ଯଥାର୍ଥେ ସାକ୍ଷାତେ ମୋ' ଠାର ॥ ୯୩
ନିଷ୍କାମ ଯଉଁ ଭକ୍ତି ପୁଣ । ଭକ୍ତେ କରନ୍ତି ଆଚରଣ ॥ ୯୪
ଯେ ଭକ୍ତି ଥାଇ ନିରନ୍ତର । କେବେହେଁ ଛିଦ୍ର ନାହିଁ ଯାର ॥ ୯୫
୨୭ ଯେ ପ୍ରାଣ ଦେହ ମନ ବୁଦ୍ଧି । ଦାରା ଅପତ୍ୟ ଧନ ଆଦି ॥ ୯୬
ଯାହା ସମ୍ପର୍କେଁ ପ୍ରିୟ ଏହି । ତହିଁରୁ ଆନ ପ୍ରିୟ କେହି ॥ ୯୭
୨୮ ଯଜ୍ଞଶାଳାକୁ ଯାଅ ତେଣୁ । ତୁମ୍ଭର ପତି ବିପ୍ରେ ଯେଣୁ ॥ ୯୮
ଗୃହସ୍ଥାଶ୍ରମୀ ସେ ତୁମ୍ଭରେ । ପୂର୍ଣ୍ଣ କରିବେ ଯଜ୍ଞ ବାରେ ॥ ୯୯

### ଶ୍ରୀଦ୍ୱିଜପତ୍ନ୍ୟ ଊଚୁଃ

୨୯ କୃଷ୍ଣର ଏମନ୍ତ ବଚନେ । ବୋଇଲେ ଯଜ୍ଞପତ୍ନୀମାନେ ॥ ୧୦୦
ହେ ପ୍ରଭୁ ! ଏମନ୍ତ ପ୍ରକାର । ବଚନ ଅଟେ ଯେ ନିଷ୍ଠୁର ॥ ୧୦୧
କହିବା ନିମିତ୍ତେ ସେ ବାଣୀ । ସମର୍ଥ ନୁହ ତୁମ୍ଭେ ପୁଣି ॥ ୧୦୨
[1]ମୋ ଭକ୍ତ ବିନାଶ ନୁହଇ । ଏ ରୂପେ ଯାହା ଅଛ କହି ॥ ୧୦୩
ସେ ପ୍ରତିଜ୍ଞାକୁ ସତ୍ୟ କର । ସକଳ ବନ୍ଧୁ କରି ଦୂର ॥ ୧୦୪
ତୁମ୍ଭର ଚରଣମୂଳକୁ । ଅଇଲୁଁ ଦାସୀ ହୋଇବାକୁ ॥ ୧୦୫
ଯଉଁ ତୁଳସୀ ଚରଣରେ । ଥିବ ତା' ବହିବୁଁ କେଶରେ ॥ ୧୦୬
୩୦ ପତି ତନୟ ବନ୍ଧୁ ଭାଇ । ପିତା ସୁହୃଦ ଅବା ଯେହି ॥ ୧୦୭
ଆମ୍ଭଙ୍କୁ ନ ଘେନିମେ ସେହୁ । ଆନେ ଘେନିମେ ଅବା କାହୁଁ ॥ ୧୦୮
ସେହି କାରଣରୁ ତୁମ୍ଭର । ଚରଣଅଗ୍ରରେ ଆମ୍ଭର ॥ ୧୦୯
ଶରୀର ହୋଇଲା ପତନ । ଆମ୍ଭର ଗତି ନାହିଁ ଆନ ॥ ୧୧୦
ହେ ଅରିଦମନ[2] ! ତୁମ୍ଭର । ଆମ୍ଭମାନଙ୍କୁ ଦାସୀ କର ॥ ୧୧୧

### ଶ୍ରୀଭଗବାନୁବାଚ

୩୧ ଯଜ୍ଞପତ୍ନୀଙ୍କ ବାକ୍ୟ ଶୁଣି । କହୁଅଛନ୍ତି ପ୍ରଭୁ ପୁଣି ॥ ୧୧୨
ଯେ ପତି ପିତା ଭ୍ରାତା ସୁତ । ଏ ଆଦି ଅଛନ୍ତି ବହୁତ ॥ ୧୧୩
ଲୋକେ ମୋର ଆଜ୍ଞାକୁ ପାଇ । କ୍ରୋଧକୁ ନ କରିବେ କେହି ॥ ୧୧୪

---

୧. ''ନ ମେ ଭକ୍ତଃ ପ୍ରଣଶ୍ୟତି'' ''ନ ସ ପୁନରାବର୍ତ୍ତତେ'' ଇତି ପ୍ରତିଜ୍ଞା ।
୨. ଅରିମର୍ଦ୍ଦନ ।

| | | | | |
|---|---|---|---|---|
| | ଦେବତାମାନେହେଁ ତୁମ୍ଭର | । ବିଷୟେ କରିବେ ଆଦର | ॥ ୧୧୫ |
| ୩୨ | ପ୍ରାଣିଙ୍କ ଅଙ୍ଗସଙ୍ଗ ଯେହି | । ସୁଖନିମିତ୍ତେ ନୋହେ ସେହି | ॥ ୧୧୬ |
| | ନୁହଇ ସେ ସ୍ନେହନିମିତ୍ତ | । ସେ ଘେନି ମୋହଠାରେ ଚିତ୍ତ | ॥ ୧୧୭ |
| | ନିଯୁକ୍ତ କରି ମୋହଠାରେ | । ମୋତେ ଲଭିବ ସ୍ନେହଭରେ | ॥ ୧୧୮ |
| | [1](ଶ୍ରବଣ-ଦର୍ଶନ-ଧ୍ୟାନରୁ | । ଆବର ଅନୁକୀର୍ତ୍ତନରୁ | ॥ |
| | ମୋଠାରେ ଭାବ ହୋଏ ଯେହ୍ନେ | । ସନ୍ନିକର୍ଷରୁ ନୋହେ ତେହ୍ନେ | ॥ |
| | ସେ ଘେନି ଆଗୋ ଦ୍ୱିଜନାରୀ | । ଗୃହକୁ ଏବେ ଯାଅ ଫେରି | ॥ ) |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୩ | କୃଷ୍ଣ କହନ୍ତେ ଏ ବଚନ | । ସେ ସର୍ବଦ୍ୱିଜପତ୍ନୀମାନ | ॥ ୧୧୯ |
| | ଯଜ୍ଞଶାଳାକୁ ପୁଣ ଗଲେ | । ଯେ ତାଙ୍କ ପତିମାନେ ଥିଲେ | ॥ ୧୨୦ |
| | ସେ କ୍ରୋଧ ନ କରି ଚିତ୍ତରେ | । ନିଜ ପତ୍ନୀଙ୍କ ସହିତରେ | ॥ ୧୨୧ |
| | ଯେ ଥିଲା ଯଜ୍ଞ-ଅବଶେଷ | । ତାହାକୁ ପୁଣ କଲେ ଶେଷ | ॥ ୧୨୨ |
| ୩୪ | ତହିଁ ଯେ ଥିଲା ଏକନାରୀ | । ତାହାକୁ ନେଲା ଭର୍ତ୍ତା ଧରି | ॥ ୧୨୩ |
| | କୃଷ୍ଣଙ୍କୁ ଯେମନ୍ତ ପ୍ରକାରେ | । ଶୁଣିଥିଲା ସେ ଶ୍ରବଣରେ | ॥ ୧୨୪ |
| | ସେହି ପ୍ରକାରେ କରି ଧ୍ୟାନ | । ମନରେ କରି ଆଲିଙ୍ଗନ | ॥ ୧୨୫ |
| | କର୍ମକୁ ଅନୁବନ୍ଧ ହୋଇ | । ଯେ ଦେହ ତ୍ୟାଗ କଲା ତାହି | ॥ ୧୨୬ |
| ୩୫ | ଯେବଣ ଚତୁର୍ବିଧ ଅନ୍ନ | । କଲେ ବ୍ରାହ୍ମଣୀଏ ପ୍ରଦାନ | ॥ ୧୨୭ |
| | ଗୋପମାନଙ୍କୁ ସେ ଅନ୍ନରେ | । ଭୁଞ୍ଜାଇ କରି ସ୍ନେହଭରେ | ॥ ୧୨୮ |
| | ତଦନନ୍ତରେ ପୁଣ ଅନ୍ନ | । ସ୍ୱୟେଂ ଭୁଞ୍ଜିଲେ ଭଗବାନ | ॥ ୧୨୯ |
| ୩୬ | ଲୀଳାମାନୁଷ କଳେବର | । ଏ ରୂପେ ପ୍ରଭୁ ଦାମୋଦର | ॥ ୧୩୦ |
| | ନରଲୋକର ଯଉଁ ରୀତି | । ସେ କଥା ଆଚରନ୍ତେ ନିତି | ॥ ୧୩୧ |
| | ଯେ ରୂପ-ବାକ୍ୟ-କର୍ମମାନ | । ତେଣେ ଗୋ-ଗୋପ-ଗୋପୀଜନ | ॥ ୧୩୨ |
| | ଆନନ୍ଦ କରାନ୍ତେ ତାଙ୍କର | । ଆପଣେ କଲେକ ବିହାର | ॥ ୧୩୩ |
| ୩୭ | ଧରିଛନ୍ତି ଯେ ନୃଶରୀର | । ଅଟନ୍ତି ଜଗତ-ଈଶ୍ୱର | ॥ ୧୩୪ |
| | ତାଙ୍କ ପ୍ରାର୍ଥନା ନାଶ କଲୁଁ | । ଏ ଘେନି ଅପରାଧୀ ହେଲୁଁ | ॥ ୧୩୫ |
| | ସେ ବିପ୍ରେ ଏଥୁ ଅନନ୍ତରେ | । ସ୍ମରଣ କରି ଏ ପ୍ରକାରେ | ॥ ୧୩୬ |

---

୧. ''ଶ୍ରବଣାଦ୍ଦର୍ଶନାଦ୍ଧ୍ୟାନାନ୍ମୟି ଭାବୋଽନୁକୀର୍ତ୍ତନାତ୍ ।
ନ ତଥା ସନ୍ନିକର୍ଷେଣ ପ୍ରତିଯାତ ତତୋ ଗୃହାନ୍ ॥''
ମୋର ଶ୍ରବଣରୁ, ଦର୍ଶନରୁ, ଧ୍ୟାନରୁ ଏବଂ ଅନୁକୀର୍ତ୍ତନରୁ ମୋ'ଠି ଯେଉଁ ଭାବ ହେବ, ମୋର ସନ୍ନିକର୍ଷ ଦ୍ୱାରା ମୋ'ଠି ସେ ଭାବ ହେବ ନାହିଁ । ଏଣୁ ଘରକୁ ଫେରିଯାଅ ।
ଏ ଶ୍ଳୋକ ପୋଥିରେ ନାହିଁ, କିନ୍ତୁ ପ୍ରାମାଣିକ ସଂସ୍କରଣମାନଙ୍କରେ ଥିବା ହେତୁ ଏହାର ଅନୁବାଦ ରଚିତ ହେଲା ।

| | | | | | |
|---|---|---|---|---|---|
| | ଅନୁତାପକୁ ନାନାମତେ | । | ଲଭିଲେ ଆପଣାର ଚିତ୍ତେ | ॥ | ୧୩୭ |
| ୩୮ | କୃଷ୍ଣର ଠାରେ ନାରୀଙ୍କର | । | ଯେ ଭକ୍ତି ଲୋକେ ଅଗୋଚର | ॥ | ୧୩୮ |
| | ତା' ଦେଖି ସେ ଭକ୍ତିବର୍ଜିତ | । | ଆମ୍ଭେ, ଏମନ୍ତ ମଣି ଚିତ୍ତ | ॥ | ୧୩୯ |
| | ଅନୁତାପକୁ ସେ ଲଭିଲେ | । | ନିଜ ଆତ୍ମାକୁ ନିନ୍ଦା କଲେ | ॥ | ୧୪୦ |
| ୩୯ | ପ୍ରଥମେ ଶୁକ୍ରରୁ ସଂଭୂତ | । | ବ୍ରତ[୧] ସମୟେ ଆନ ଜାତ | ॥ | ୧୪୧ |
| | ସମ୍ଭବ ଯେ ଦୀକ୍ଷାକାଳରେ | । | ଯେ ଜନ୍ମ ଏ ତିନି ପ୍ରକାରେ | ॥ | ୧୪୨ |
| | ସେ ତିନି ଜନ୍ମ ହୋଉ ଧିକ | । | [୨]ସେ ଧିକ ଯେ ବ୍ରତ[୩] ଏ ଧିକ | ॥ | ୧୪୩ |
| | ବହୁତ ଆମ୍ଭେମାନେ ଜାଣି | । | ଏ ଭାବ ଧିକ ହୋଉ ପୁଣି | ॥ | ୧୪୪ |
| | ଯେ କୁଳ କର୍ମକୁଶଳତା | । | ଧିକ ହୋଉ ସେ ବେନି କଥା | ॥ | ୧୪୫ |
| | ଯେ ଆମ୍ଭେ ଅଧୋକ୍ଷଜଠାରେ | । | ବିମୁଖ ହେଲୁଁ ସ୍ୱଭାବରେ | ॥ | ୧୪୬ |
| ୪୦ | ନିଶ୍ଚୟେ କୃଷ୍ଣମାୟା ଯେହି | । | ଯୋଗିମାନଙ୍କୁ ହିଁ ସେ ମୋହି | ॥ | ୧୪୭ |
| | ଆମ୍ଭେ ଇତର ଲୋକଙ୍କର | । | ଗୁରୁ, ବ୍ରାହ୍ମଣ ଜାତିସାର | ॥ | ୧୪୮ |
| | ଏମନ୍ତ ହେଲେହେଁ ଆପଣ | । | ବିଷୟେ ମୋହ ହେଲୁଁ ପୁଣ | ॥ | ୧୪୯ |
| ୪୧ | ଯେ କୃଷ୍ଣ ଗୁରୁ ଜଗତର | । | ତାହାଙ୍କ ଠାରେ ନାରୀଙ୍କର | ॥ | ୧୫୦ |
| | [୪]ଦୁରନ୍ତ ଭାବ ଅଦଭୁତ | । | ଦେଖ ଏ ହୋଇଲା ସଂଭୂତ | ॥ | ୧୫୧ |
| | ଯେ ଗୃହନାମ ମୃତ୍ୟୁପାଶ | । | ତାହାକୁ କଲେ ଯେ ବିନାଶ | ॥ | ୧୫୨ |
| ୪୨ | ବିପ୍ରସଂସ୍କାର ଯେଣେ ହୋଇ | । | ସେ ବ୍ରତ[୫] ଏହାଙ୍କର ନାହିଁ | ॥ | ୧୫୩ |
| | ଯେ ତପ, ଗୁରୁଗୃହେ ବାସ | । | ଆତ୍ମବିଦ୍ୟାରେ ଯେ ପ୍ରକାଶ | ॥ | ୧୫୪ |
| | ଶଉଚ ଶୁଭ କର୍ମ ଯେହି | । | ସେମାନ ଏହାଙ୍କର ନାହିଁ | ॥ | ୧୫୫ |
| ୪୩ | ଏ ରୂପେ ହେଲେ ଏହାଙ୍କର | । | ଯେ କୃଷ୍ଣ ଯୋଗେଶ୍ୱରେଶ୍ୱର | ॥ | ୧୫୬ |
| | ଉତ୍ତମ ଅଟେ ଯାର କୀର୍ତ୍ତି | । | ତା'ଠାରେ ଜାତ ହେଲା ଭକ୍ତି | ॥ | ୧୫୭ |
| | ଆମ୍ଭେ ସଂସ୍କାର ଆଦିବନ୍ତ | । | ଆମ୍ଭର ନୋହିଲା ସେ ଜାତ | ॥ | ୧୫୮ |
| ୪୪ | ଗୃହଚେଷ୍ଟାରେ ଆମ୍ଭେମାନେ | । | ପ୍ରମତ୍ତ ଯେଣୁ ଅନୁଦିନେ | ॥ | ୧୫୯ |
| | ନିଜ କାର୍ଯ୍ୟରେ ମୂଢ଼ ଯେଣୁ | । | ସାଧୁଙ୍କ ଗତି କୃଷ୍ଣ ତେଣୁ | ॥ | ୧୬୦ |
| | ଆମ୍ଭଙ୍କୁ ଗୋପଙ୍କ ବାକ୍ୟରେ | । | ସ୍ମରଣ କରାଇଲେ ବାରେ | ॥ | ୧୬୧ |
| ୪୫ | ଏ କଥା ଯେବେ ଅଟେ ଆନ | । | ଯେ ପୂର୍ଣ୍ଣକାମ ଭଗବାନ | ॥ | ୧୬୨ |
| | କୈବଲ୍ୟ ଆଦି ଆଶିଷର | । | ଯେ ପତି ଆମ୍ଭଙ୍କୁ ତାଙ୍କର | ॥ | ୧୬୩ |
| | ଈଶ୍ୱରଭାବେ ଯେ ପ୍ରାର୍ଥନ | । | ପ୍ରଭୁର ଏହୁ ବିଡ଼ମ୍ବନ | ॥ | ୧୬୪ |
| ୪୬ | ଆନମାନଙ୍କୁ କରି ଦୂର | । | ଆଶୟେ[୬] ପାଦସ୍ୱରଶର | ॥ | ୧୬୫ |

୧. ବ୍ରତ = ଉପନୟନ
୨. ଅଧିକ ଯହୁଁ ବ୍ରତ ଧିକ। ('ଗ' ପୁସ୍ତକେ)।
୩. ବ୍ରତ = ବ୍ରହ୍ମଚର୍ଯ୍ୟ
୪. ଦୁରନ୍ତ ଭାବ = ଭକ୍ତି (ସ୍ୱାମୀ)।
୫. ବ୍ରତ = ଉପନୟନ
୬. ଆଶ୍ରୟେ।

| | | | | |
|---|---|---|---|---|
| | ଯାହାକୁ ପୁଣ ପୁଣ କରି | ଲକ୍ଷ୍ମୀ ଭଜଇ ଅନୁସରି | ॥ | ୧୬୬ |
| | ଚଞ୍ଚଳଭାବ ଗର୍ବାଦିର | ତ୍ୟାଗଭାବରୁ ତାହାଙ୍କର | ॥ | ୧୬୭ |
| | ଯେ ପୁଣ ଅଟଇ ପ୍ରାର୍ଥନ | ସେ କଥା ଜନବିମୋହନ | ॥ | ୧୬୮ |
| ୪୭ | ଯେ ଦେଶ, କାଳ ଭିନ୍ନ ଭିନ୍ନ | ପୁରୋଡାଶାଦି ଦ୍ରବ୍ୟମାନ | ॥ | ୧୬୯ |
| | ଯେ ମନ୍ତ୍ର ତନ୍ତ୍ର ଯଜମାନ | କ୍ରତୁ ଦେବତା ହୁତାଶନ | ॥ | ୧୭୦ |
| | ଋତ୍ୱିକ ଧର୍ମ ଏ ସମସ୍ତ | ଯାହାର ସ୍ୱରୂପ ବିଦିତ | ॥ | ୧୭୧ |
| ୪୮ | ଯେ ଯୋଗେଶ୍ୱରଙ୍କର ନାଥ | ସେ ବିଷ୍ଣୁ ଏ ଅଟେ ସାକ୍ଷାତ | ॥ | ୧୭୨ |
| | ଯଦୁବଂଶରେ ହେଲେ ଜାତ | ପୂର୍ବହୁଁ ଶୁଣିଛୁଁ ଏମନ୍ତ | ॥ | ୧୭୩ |
| | ତଥାପି ମୂଢ଼ ଆମ୍ଭେମାନେ | ସେ କଥା ନ ଜାଣିଲୁଁ ମନେ | ॥ | ୧୭୪ |
| ୪୯ | [1]'ଅହୋ ଆମ୍ଭେ ହେଁ ଧନ୍ୟତମ | ଯାହାଙ୍କ ସ୍ତିରୀଏ ଉତ୍ତମ | ॥ | |
| | ଯଉଁ ସ୍ତିରୀଙ୍କ ଭକତିରେ | ନିଶ୍ଚଳ ମତି ହରିଠାରେ | ॥ | |
| | ଆମ୍ଭର ହୋଇଲାକ ଜାତ | ସେ ଘେନି ଆମ୍ଭେ ଭାଗ୍ୟବନ୍ତ | ॥ | |
| ୫୦ | ଅକୁଣ୍ଠ ମତି ଭଗବାନ | ଯେ କୃଷ୍ଣ ତାହାଙ୍କୁ ବନ୍ଦନ | ॥ | ୧୭୫ |
| | ମୋହିତମତି ଯା' ମାୟାରେ | ଭ୍ରମୁଛୁଁ କର୍ମର ମାର୍ଗରେ | ॥ | ୧୭୬ |
| ୫୧ | ଆଦ୍ୟ ପୁରୁଷ ସେ ଈଶ୍ୱର | ନିଜ ମାୟାରେ ତାହାଙ୍କର | ॥ | ୧୭୭ |
| | ମୋହିତମତି ଆମ୍ଭେ ଯେଣୁ | ତାହାଙ୍କ ଅନୁଭାବ ତେଣୁ | ॥ | ୧୭୮ |
| | କରି ନ ପାରୁଛୁଁ ଗୋଚର | ଯେ ବା ଅତିକ୍ରମ ଆମ୍ଭର | ॥ | ୧୭୯ |
| | କ୍ଷମା କରିବାକୁ ସେ କଥା | ସମର୍ଥ ହୋଇନ୍ତୁ ସର୍ବଥା | ॥ | ୧୮୦ |
| ୫୨ | ହେଳା କଲେ ଯେ କୃଷ୍ଣଠାରେ | ଏ ଦୋଷ ସୁମରି ମନରେ | ॥ | ୧୮୧ |
| | ରାମକୃଷ୍ଣଙ୍କୁ ଦେଖିବାର | ବିଚାର କଲେହେଁ ମନର | ॥ | ୧୮୨ |
| | କଂସର ଠାରୁ ଭୟ କଲେ | ନିଜ ସ୍ଥାନରୁ ନ ଚଳିଲେ | ॥ | ୧୮୩ |
| | ବ୍ରାହ୍ମଣୀମାନଙ୍କର ଅନ୍ନ | ବିପିନେ କଲେ ଯେ ଭୋଜନ | ॥ | ୧୮୪ |
| | ସେ କୃଷ୍ଣ ପାଦପଦ୍ମଧ୍ୟାନେ | ହରଷ ଦୀନବନ୍ଧୁ ମନେ | ॥ | ୧୮୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଯଜ୍ଞପତ୍ନ୍ୟୁଦ୍ଧରଣଂ
ନାମ ତ୍ରୟୋବିଂଶୋଽଧ୍ୟାୟଃ ॥

---

୧. ଅହୋ ବୟଂ ଧନ୍ୟତମା ଯେଷାଂ ନସ୍ତାଦୃଶୀଃ ସ୍ତ୍ରିୟଃ ।
ଭକ୍ତ୍ୟା ଯାସାଂ ମତିର୍ଜାତା ଅସ୍ମାକଂ ନିଶ୍ଚଳା ହରୌ ॥

ଆମେ 'ଅହୋ ଭାଗ୍ୟ' ଧନ୍ୟତମ, ଆମର ସେଭଳି ସ୍ତ୍ରୀ ଅଛନ୍ତି ଯାହାଙ୍କ ଭକ୍ତିଦ୍ୱାରା ଆମର ହରିଙ୍କଠାରେ ନିଶ୍ଚଳା ମତି ଜାତ ହୋଇଛି ।

ଏ ଶ୍ଳୋକ ପୋଥିରେ ନାହିଁ, କିନ୍ତୁ ପ୍ରାମାଣିକ ସଂସ୍କରଣରେ ଥିବା ହେତୁ ଏହାର ଅନୁବାଦ ରଚିତ ହେଲା ।

# ଚତୁର୍ବିଂଶ ଅଧ୍ୟାୟ

ଚତୁର୍ବିଂଶେ ମହେନ୍ଦ୍ରସ୍ୟ ମଖଂ ବ୍ୟାବର୍ତ୍ତ୍ୟ ହେତୁଭିଃ ।
କୃଷ୍ଣଃ ପ୍ରବର୍ତ୍ତୟାମାସ ଗୋବର୍ଧନମଖୋତ୍ସବମ୍ ।। ୧
ଭୂସୁରାଣାଂ କ୍ରିୟାଗର୍ବଂ ନିରସ୍ୟ ସ୍ୱଃସୁରେଷୁ ଚ ।
ମଘବନ୍ମଦଭଙ୍ଗାୟ ତନ୍ମଖଂ ସମବାରୟତ୍ ।। ୨

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ବଳଦେବଙ୍କ ସଙ୍ଗେ ହରି | । | ଗୋକୁଳେ ଥାନ୍ତେ ବିଜେ କରି | ।। | ୧ |
| | ଦେଖିଲେ ଗୋପେ[1] ଇନ୍ଦ୍ରଯାଗ | । | ନିମିତ୍ତେ କଲେ ଉଦଯୋଗ | ।। | ୨ |
| ୨ | ଆତ୍ମା ସକଳ ଲୋକଙ୍କର | । | ଯାହାଙ୍କୁ ସମସ୍ତ ଗୋଚର | ।। | ୩ |
| ୩ | ସେ ପ୍ରଭୁ ଜାଣିଲେହେଁ ତାହି | । | ବିନୟେ ଅବନମ୍ର[2] ହୋଇ | ।। | ୪ |
| | ନନ୍ଦ ଆଦି ଯେ ବୃଦ୍ଧେ ଥିଲେ | । | ତାହାଙ୍କୁ ଏମନ୍ତ ପୁଛିଲେ | ।। | ୫ |
| | କଉଁ ସଂଭ୍ରମ ଉପଗତ | । | ତୁମ୍ଭର କହ ମୋତେ ତାତ | ।। | ୬ |
| ୪ | ଏଥିରେ ଲଭି କି ଫଳକୁ | । | ପୂଜନ୍ତି କଉଁ ଦେବତାକୁ | ।। | ୭ |
| | କେ ଅବା ଅଟେ ଅଧିକାରୀ | । | କଉଁ ବିଧାନେ ଯଜ୍ଞ କରି | ।। | ୮ |
| | ଶୁଣିମା ଅର୍ଥେ ଏ ବିଷୟ | । | ମୋହର ଶ୍ରଦ୍ଧା ଅତିଶୟ | ।। | ୯ |
| | ପଚାରୁଅଛି ମୁଁ ଭୋ ତାତ | । | ଏ କଥା ମୋ ଆଗେ କହ ତ | ।। | ୧୦ |
| ୫ | ଏ ମୋର, ଏ ଅଟଇ ପର | । | ଏ ଦୃଷ୍ଟି ନାହିଁ ଯାହାଙ୍କର | ।। | ୧୧ |
| | ମିତ୍ର-ଉଦାସୀ-ରିପୁ ହୋଇ | । | ଏ ବୁଦ୍ଧି ଯାହାଙ୍କର ନାହିଁ | ।। | ୧୨ |
| | ଆତ୍ମା ସକଳ ଲୋକଙ୍କର | । | ସଂସାରେ ସାଧୁ ଯଉଁ ନର | ।। | ୧୩ |
| | ତାଙ୍କର ଗୋପନୀୟ ହୋଇ | । | ପରସ୍ୱ[3] କିଛି କଥା ନାହିଁ | ।। | ୧୪ |
| | ଯେ ନର ଉଦାସୀନ ହୋଏ | । | ତାକୁ ବର୍ଜନ୍ତି ରିପୁପ୍ରାଏ | ।। | ୧୫ |
| | ସୁହୃଦ ଲୋକ[4] ଯେ ଆତ୍ମାର | । | ସମାନ ଅଟେ ଯାହାଙ୍କର | ।। | ୧୬ |
| ୬ | ଜାଣି ନ ଜାଣି କର୍ମମାନ | । | ମନୁଷ୍ୟ କରଇ ବିଧାନ | ।। | ୧୭ |
| | ତହିଁରେ ବିଜ୍ଞ ଯଉଁ ନର | । | କର୍ମର ସିଦ୍ଧି ହୋଏ ତାର | ।। | ୧୮ |
| | ଅଜ୍ଞ ଲୋକର କର୍ମ ଯେହି | । | ସେରୂପେ ଫଳଦ ନୁହଇ | ।। | ୧୯ |
| ୭ | ଯେ କ୍ରିୟାଯୋଗ ଏ ତୁମ୍ଭର | । | ଏ ଅଟେ ଶାସ୍ତ୍ରର ବିଚାର | ।। | ୨୦ |
| | ଅଥବା ପ୍ରସିଦ୍ଧ ଲୋକରେ | । | ଏ କଥା ଉତ୍ତମ ପ୍ରକାରେ | ।। | ୨୧ |
| | ମୋହ ଆଗରେ ଖ୍ୟାତ କର | । | ପୁଛୁଛି ଶ୍ରଦ୍ଧା ଅଛି ମୋର | ।। | ୨୨ |

ଶ୍ରୀନନ୍ଦ ଉବାଚ

| | | | | | |
|---|---|---|---|---|---|
| ୮ | ପର୍ଜନ୍ୟ ଇନ୍ଦ୍ର ଭଗବାନ | । | ତା' ଆତ୍ମମୂର୍ତ୍ତି[5] ମେଘମାନ | ।। | ୨୩ |

---

୧. ଗୋପେ = ଗୋପାଳମାନେ । ୨. ଅବନମ୍ର = ଅବନତ । ୩. ପରସ୍ୱ = ପରତ୍ୱ ।
୪. ଲୋକ = ଏକ । ୫. ଆତ୍ମମୂର୍ତ୍ତି = ପ୍ରିୟମୂର୍ତ୍ତି ।

ଯେ ତୃପ୍ତି କରେ ପ୍ରାଣିଙ୍କର । ଜୀବନସ୍ୱରୂପ ଆବର ।।
ଏମନ୍ତ ଜଳକୁ ସେମାନେ । ବୃଷ୍ଟି କରନ୍ତି ଏ ଭୁବନେ ।।
୯ ହେ ତାତ ! ମେଘମାନଙ୍କର । ଯେ ପତି ଅଟଇ ଈଶ୍ୱର ।।
ସେ ବାସବକୁ ଆମ୍ଭେମାନେ । ସଂସାରେ ଯେ ବା ଆନଜନେ ।।
ତା' ବୃଷ୍ଟିଜଳେ ଏ ଜଗତେ । ପ୍ରସିଦ୍ଧ ହୋଇ ଦ୍ରବ୍ୟ ଯେତେ ।।
ସେ ଦ୍ରବ୍ୟମାନଙ୍କେ ତାଙ୍କର । ଯାଗକୁ ଆଚରନ୍ତି ନର ।।
୧୦ ତହିଁ ଅବଶେଷ ଦ୍ରବ୍ୟରେ । ତ୍ରିବର୍ଗଫଳନିମିତ୍ତରେ ।।
ନିଜ ଜୀବିକାକୁ କଳ୍ପନ । କରନ୍ତି ପୁଣ ସାଧୁଜନ ।।
ଲୋକ ପୁରୁଷକୃତ୍ୟ ଯେହି । ଫଳସାଧକ ଇନ୍ଦ୍ର ତହିଁ ।।
୧୧ ଏ ଧର୍ମ ପରଂପରା ହୋଇ । ଜଗତେ ପ୍ରବର୍ତ୍ତି ଅଛଇ ।।
ଯେ ନର କାମେ ଭୟେ ଦ୍ୱେଷେ । ଲୋଭେ ବା ଏ ଧର୍ମ ବିନାଶେ ।।
ଯେ ପୁଣ ଶୁଭ ଆପଣାର । ସେ କଥା ନ ଲଭେ ସେ ନର ।।

ଶ୍ରୀଶୁକ ଉବାଚ

୧୨ ନନ୍ଦର ଶୁଣିଣ ବଚନ । ଯେ ଆନ ବ୍ରଜବାସୀ ଜନ ।।
ସେମାନଙ୍କର ଯେ ବା ବାଣୀ । କେଶବ ସେ କଥାକୁ ଶୁଣି ।।
ଜନ୍ମାନ୍ତେ ଇନ୍ଦ୍ରର କୋପକୁ । ବଚନ ବୋଇଲେ ପିତାଙ୍କୁ ।।

ଶ୍ରୀଭଗବାନୁବାଚ

୧୩ କର୍ମରେ ଜନ୍ତୁ ଜାତ ହୋଇ । କର୍ମରେ ନାଶକୁ ଲଭଇ ।।
ଯେ ସୁଖଦୁଃଖ କ୍ଷେମ ଭୟ । କର୍ମରେ ହୋଏ ସେ ଉଦୟ ।।
୧୪ [1]କର୍ମର ଫଳଦାତା ହୋଇ । ଈଶ୍ୱର ଯେବେ ଅଛି କେହି ।।
କର୍ମକର୍ତ୍ତାକୁ ସେ ଭଜଇ । ଅକର୍ତ୍ତାପ୍ରଭୁ ସେ ନୁହଇ ।।
କର୍ମରୁ ଫଳସିଦ୍ଧି ଯେଣୁ । କି କାର୍ଯ୍ୟ ଦେବତାରୁ ତେଣୁ ।।
୧୫ ଯେ ନିଜ ନିଜ ଆପଣାରି । କର୍ମକୁ ଅନୁବର୍ତ୍ତି କରି ।।
ଜଗତେ ଅଛନ୍ତି ମାନବେ । ତାଙ୍କର କି କାର୍ଯ୍ୟ ବାସବେ ।।
ପ୍ରାଣିମାନଙ୍କର ସ୍ୱଭାବ । ବିହିତ ଅଟଇ ଯେ ଭାବ ।।
ଅନ୍ୟଥା କରିବାକୁ ତାହି । ଇନ୍ଦ୍ର ତ ସମର୍ଥ ନୁହଇ ।।
୧୬ ସ୍ୱଭାବବଶ ଜନ ଯେହି । ସ୍ୱଭାବକୁ ଅନୁବର୍ତ୍ତଇ ।।
ଦେବ-ଅସୁର-ନରଯୁତ । ସ୍ୱଭାବସ୍ଥିତ ଏ ଜଗତ ।।
୧୭ | ଯେ ଉଚ୍ଚ ନୀଚ ଦେହମାନ । କର୍ମରେ ଲଭିଣ ତା' ଜନ ।।
୧୮ | କର୍ମରେ କରେ ତା' ବର୍ଜନ । ଯେ ଶତ୍ରୁ ମିତ୍ର ଉଦାସୀନ ।।

---

୧. ସ୍ୱୟଂ କର୍ମରେ ଲିପ୍ତ ନ ଥାଇ ଅନ୍ୟ ଜୀବମାନଙ୍କ କର୍ମର ଫଳଦାତା ।

| | | | | |
|---|---|---|---|---|
| | କର୍ମ ହିଁ ଗୁରୁ ଆପଣାର | । କର୍ମ ହିଁ ଅଟଇ ଈଶ୍ୱର | ।। | ୫୨ |
| | ସ୍ୱଭାବସ୍ଥିତ ଯହୁଁ ନର | । କରେ କର୍ମକୁ ଆପଣାର | ।। | ୫୩ |
| | କର୍ମକୁ ସେହି ସ୍ୱକାଶରେ | । ପୂଜା କରଇ ନିରନ୍ତରେ | ।। | ୫୪ |
| | ତତ୍‌କାଳ ଯେଣେ ଯେ ଜୀଅଇ | । ତାର ଦେବତା ସେ ଅଟଇ | ।। | ୫୫ |
| ୧୯ | ଏକ ଭାବକୁ ଆଜୀବନ[୧] | । କରିଣ ଆନକୁ ଯେ ଜନ | ।। | ୫୬ |
| | କରଇ ଉପଜୀବନକୁ[୨] | । ତା' ଠାରୁ ନ ଲଭେ କ୍ଷେମକୁ | ।। | ୫୭ |
| | ଜାରସ୍ୱକାଶରୁ ଅସତୀ | । ଯେହ୍ନେ ନୁହଇ ଶୁଭବନ୍ତୀ | ।। | ୫୮ |
| ୨୦ | ବିପ୍ର ବେଦ ପଢ଼ାଇବାରେ | । ରାଜା ଧରଣୀ ରଖିବାରେ | ।। | ୫୯ |
| | ବୈଶ୍ୟ ଜୀଅଇ ବାଣିଜ୍ୟରେ | । ଶୂଦ୍ର ହିଁ ଦ୍ୱିଜଙ୍କ ସେବାରେ | ।। | ୬୦ |
| ୨୧ | କୃଷି ବାଣିଜ୍ୟ ଗୋରକ୍ଷଣ | । ବୃଦ୍ଧି ଜୀବିକା ଯେ ବା ପୁଣ | ।। | ୬୧ |
| | ଚାରି ପ୍ରକାରେ ବାର୍ତ୍ତା ଏହି | । ଆମ୍ଭେ ଗୋବୃତ୍ତି ଅଟୁ ତହିଁ | ।। | ୬୨ |
| ୨୨ | ଯେ ସତ୍ତ୍ୱ ରଜ ତମ ଗୁଣ | । ଜନ୍ମ ପାଳନ ସଂହାରଣ | ।। | ୬୩ |
| | ଏମାନଙ୍କର ହେତୁ ଏହି | । ଅନ୍ୟୋଽନ୍ୟ ନାନାବିଧ ହୋଇ | ।। | ୬୪ |
| | ପ୍ରକାଶ ଅଟେ ଯେ ଜଗତ | । ସେ ରଜଗୁଣରୁ ସଂଭୂତ | ।। | ୬୫ |
| ୨୩ | ରଜରେ ପ୍ରେରିତ ହୋଇଣ | । ମେଘେ ବର୍ଷନ୍ତି ଜଳ ପୁଣ | ।। | ୬୬ |
| | ତେଣେ ଲଭନ୍ତି ସିଦ୍ଧି ନରେ | । କି କାର୍ଯ୍ୟ ଅଛି ମହେନ୍ଦ୍ରରେ | ।। | ୬୭ |
| ୨୪ | ଦେଶ, ପାଟଣା, ଗ୍ରାମମାନ | । ଆମ୍ଭର ନୋହେ ଗୃହସ୍ଥାନ | ।। | ୬୮ |
| | ହେ ତାତ ! ବିପିନ ଆମ୍ଭର | । ସଦନ ଅଚଳ ଆବର | ।। | ୬୯ |
| ୨୫ | ତେଣୁ ଗୋ-ବିପ୍ରମାନଙ୍କର | । ଯେ ଯାଗ ଅଟେ ଅଚଳର | ।। | ୭୦ |
| | ଆରମ୍ଭ କର ସେ ଯାଗକୁ | । ଯା' ଇନ୍ଦ୍ରଯାଗ କରିବାକୁ | ।। | ୭୧ |
| | ସମ୍ଭାର କରିଛ ଭିଆଣ | । ତେଣେ ଏ ଯାଗ କର ପୁଣ | ।। | ୭୨ |
| ୨୬ | ନାନା ପ୍ରକାର ପାକମାନ | । ପାକ ହୁଅନ୍ତୁ ଅବିଚ୍ଛିନ୍ନ | ।। | ୭୩ |
| | ପାୟସ ଆଦି ଯେ ଇତର | । ମୁଦ୍‌ଗନିର୍ମିତ ସ୍ୱାଦୁତର[୩] | ।। | ୭୪ |
| | ଯେ ପୂପ[୪] ଗହମେ ନିର୍ମିତ | । ଚକୁଳିମାନ ଅପ୍ରମିତ | ।। | ୭୫ |
| | ସମସ୍ତ ଧେନୁଙ୍କ ଦୋହନ | । ବିଧାନ କର ଏକଦିନ | ।। | ୭୬ |
| ୨୭ | ଯେ ବ୍ରହ୍ମବାଦୀ ବିପ୍ରଜନ | । କରନ୍ତୁ ସେ ହୋମ ବିଧାନ | ।। | ୭୭ |
| | ବହୁତଗୁଣ ଅନ୍ନ ତାଙ୍କୁ | । ଦେବ ଦକ୍ଷିଣାକୁ ଧେନୁଙ୍କୁ | ।। | ୭୮ |
| ୨୮ | ଚଣ୍ଡାଳ ପତିତ କୁକୁର | । ଏ ଆଦି ଯେ ଅବା ଇତର | ।। | ୭୯ |
| | ଯଥାଯୋଗ୍ୟରେ ସେମାନଙ୍କୁ | । ପ୍ରଦାନ କରିବ ଅନ୍ନକୁ | ।। | ୮୦ |
| | ଧେନୁମାନଙ୍କୁ ଦେଇ ତୃଣ | । ଗିରିକି ଦେବ ବଳି ପୁଣ | ।। | ୮୧ |

୧. ଆଜୀବନ = ଜୀବିକା । ୨. ଉପଜୀବନ = ସେବା, ଅଧୀନତା । ୩. ସ୍ୱାଦୁ ସର ।
୪. ପୂପ = ରୋଟି, ପିଠା ।

| | | | | |
|---|---|---|---|---|
| ୨୯ | ମଣ୍ଡିତ ହୋଇ ଅଳଂକାରେ | । ଚନ୍ଦନଲେପିତ ଶରୀରେ | ॥ | ୮୨ |
| | ପିନ୍ଧିଣ ଉତ୍ତମ ବସନ | । ଭୋଜନ କରି ଦିବ୍ୟ ଅନ୍ନ | ॥ | ୮୩ |
| | ଗୋ ବିପ୍ର ଅଗ୍ନି ମହୀଧର | । ଏହାଙ୍କୁ ପ୍ରଦକ୍ଷିଣ କର | ॥ | ୮୪ |
| ୩୦ | ଭୋ ତାତ ! ମୋର ମତ ଏହି | । ତୁମ୍ଭଙ୍କୁ ଯେବେ ଏ ରୁଚଇ | ॥ | ୮୫ |
| | ଆରମ୍ଭ କର ଏ ପ୍ରକାର | । ଧେନୁ ବ୍ରାହ୍ମଣ ପର୍ବତର | ॥ | ୮୬ |
| | ଯେ ଯାଗ ହୋଇବ ବିହିତ | । ମୋର ବଲ୍ଲଭ ସେହୁ ମତ | ॥ | ୮୭ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୩୧ | କାଳସ୍ୱରୂପୀ ଭଗବନ୍ତ | । ବାସବ ଗର୍ବନାଶ ଅର୍ଥ | ॥ | ୮୮ |
| | କହିଲେ ଯଉଁ ବାକ୍ୟ ପୁଣି | । ସେ ବାକ୍ୟ ନନ୍ଦ ଆଦି ଶୁଣି | ॥ | ୮୯ |
| | ଉତ୍ତମ କରିଣ ଘେନିଲେ | । ବହୁତ ପ୍ରଶଂସା ହିଁ କଲେ | ॥ | ୯୦ |
| ୩୨ | ଯାହା କହିଲେ ଭଗବାନ | । କଲେ ସେ ସକଳ ବିଧାନ | ॥ | ୯୧ |
| | ପଢ଼ାଇ ସ୍ୱସ୍ତିବାଚନକୁ | । ପୂଜିଲେ ଗିରି-ଗୋ-ଦ୍ୱିଜଙ୍କୁ | ॥ | ୯୨ |
| ୩୩ | ସମସ୍ତେ ହୋଇଣ ସାଦର | । ଯେ ଧେନୁ ଦ୍ୱିଜ ମହୀଧର | ॥ | ୯୩ |
| | ତାହାଙ୍କୁ ବଳି ଦେଇ ପୁଣ | । ଧେନୁମାନଙ୍କୁ ଦେଇ ତୃଣ | ॥ | ୯୪ |
| | ଧେନୁଙ୍କୁ ଆଗରେ କରିଣ | । ଗିରିକି କଲେ ପ୍ରଦକ୍ଷିଣ | ॥ | ୯୫ |
| ୩୪ | ଉତ୍ତମ ବଳୀବର୍ଦ୍ଦଯୁତ | । ଶକଟମାନ ଯେ ବହୁତ | ॥ | ୯୬ |
| | ସେମାନ କଲେ ଆରୋହଣ | । ଭୂଷଣେ ମଣ୍ଡିତ ହୋଇଣ | ॥ | ୯୭ |
| | କୃଷ୍ଣର ଯେ ଚରିତମାନ | । ଗୋପୀ ତା'କରନ୍ତେ ଗାୟନ | ॥ | ୯୮ |
| | କଲେ ଆରୋହଣ ତହିଁରେ | । ଦ୍ୱିଜ ଆଶିଷସହିତରେ | ॥ | ୯୯ |
| ୩୫ | ଗୋପାଳମାନଙ୍କ ବିଶ୍ୱାସ | । ଯେଣେ ହୋଇବ ସୁପ୍ରକାଶ | ॥ | ୧୦୦ |
| | ସେ ରୂପେ ଆନରୂପ ଧରି | । 'ମୁଁ ଶୈଳ' ବୋଲନ୍ତେ ଶ୍ରୀହରି | ॥ | ୧୦୧ |
| | ବିପୁଳ ଶରୀର ଧରିଣ | । କଲେ ସେ ବଳିକି ଭକ୍ଷଣ | ॥ | ୧୦୨ |
| ୩୬ | ଯେ ଅଟେ ଆତ୍ମା ଆପଣାର | । ଆପଣେ ତାକୁ ଦାମୋଦର | ॥ | ୧୦୩ |
| | ସହିତେ ବ୍ରଜଜନଙ୍କର | । ତାହାଙ୍କୁ କଲେ ନମସ୍କାର | ॥ | ୧୦୪ |
| ୩୭ | ଦେଖ ଏ କଥା, ଅଦଭୁତ | । ରୂପକୁ ଧରିଣ ପର୍ବତ | ॥ | ୧୦୫ |
| | ଆମ୍ଭଙ୍କୁ ଅନୁଗ୍ରହ ଯେହି | । ବିଧାନ ଆସି କଲା ତାହି | ॥ | ୧୦୬ |
| | [1]ଏ କାମରୂପୀ ମହୀଧର | । ଅବଜ୍ଞା ଅଟେ ଯେ ଏହାର | ॥ | ୧୦୭ |
| | ସେ କଥା କରନ୍ତେ ବିଧାନ | । ଯେ ବ୍ରଜବାସୀ ଗୋପଜନ | ॥ | ୧୦୮ |
| | ତାଙ୍କୁ ମାରିବ, ଆପଣାର | । ମଙ୍ଗଳ ଅର୍ଥେ ଧେନୁଙ୍କର | ॥ | ୧୦୯ |

---

୧. କର୍ମୈବାଳଂ ପ୍ରାକ୍ ସ୍ୱଭାବୋ ଗୁଣୋ ବା କର୍ମାଙ୍ଗଂ ବା ତଦ୍ୱଶୋ ବା ମହେଶଃ ।
ବାର୍ତ୍ତାକର୍ତ୍ରୀ ଦେବତେତୀୟମୁକ୍ତା ଦେବକ୍ଷୋଭେ ଷଣ୍ମତୀ ନ ତ୍ୱଭୀଷ୍ଟା ॥ (ସ୍ୱାମୀ)

କର୍ମ ହେଉଛି ଯଥେଷ୍ଟ ପୂର୍ବସ୍ୱଭାବ ବା ଗୁଣ । କର୍ମାଙ୍ଗ କର୍ମର ବଶେ ଥାଏ । କର୍ମାଙ୍ଗ ହିଁ ମହେଶ । ଦେବତା ବାର୍ତ୍ତାର କର୍ତ୍ରୀରୂପେ କଥିତା । ଦେବକ୍ଷୋଭରେ ଛ'ଟି ମତର ସମାହାର ଅଭୀଷ୍ଟ ନ ଥାଏ ।

| | | | | |
|---|---|---|---|---|
| | ସମସ୍ତେ କରିବା ବନ୍ଦନ | । ଏହା ବୋଇଲେ ଭଗବାନ | ।। | ୧୧୦ |
| ୩୮ | ବଚନେ ବାସୁଦେବଙ୍କର | । ଏ ରୂପେ ଶୈଳ-ଗୋ-ଦ୍ୱିଜର | ।। | ୧୧୧ |
| | ମଖକୁ ବିଧାନ କରିଣ | । ଶ୍ରୀକୃଷ୍ଣସହିତରେ ପୁଣ | ।। | ୧୧୨ |
| | ଗୋପାଳମାନେ ଯେତେ ଥିଲେ | । ସମସ୍ତେ ଗୋକୁଳକୁ ଗଲେ | ।। | ୧୧୩ |
| | ବାସବଠାରେ କୋପ କରି | । ଯେ ପୂଜା କଲେ ମହାଗିରି | ।। | ୧୧୪ |
| | ସେ କୃଷ୍ଣଚରଣପଙ୍କଜ | । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୧୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଇନ୍ଦ୍ରମଖଭଙ୍ଗୋ
ନାମ ଚତୁର୍ବିଂଶୋଽଧ୍ୟାୟଃ ।।

## ପଞ୍ଚବିଂଶ ଅଧ୍ୟାୟ

ପଞ୍ଚବିଂଶେ ରୁଷା ଶକ୍ରେ ବ୍ରଜନାଶାୟ ବର୍ଷତି ।
ଉଦ୍ଧୃତ୍ୟ ଗିରିମାସାରାଦରକ୍ଷଦ୍ ଗୋକୁଳଂ ପ୍ରଭୁଃ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଆପଣା ପୂଜା ହେଲା ହତ | । ଏମନ୍ତ ଜାଣି ପୁରୁହୂତ[୧] | ।। | ୧ |
| | ଯେବଣ ନନ୍ଦ ଆଦିଙ୍କର | । ନାଥ ଅଟନ୍ତି ଦାମୋଦର | ।। | ୨ |
| | ସେ ଗୋପମାନଙ୍କୁ ହେ ନୃପ | । କଲା ସେ ଘେନି ମନେ କୋପ | ।। | ୩ |
| ୨ | ଯେ ଅନ୍ତକାରୀ ଜଳଧରେ | । ବିଖ୍ୟାତ ତାହାଙ୍କ ମଧ୍ୟରେ | ।। | ୪ |
| | ଯେ ସଂବର୍ତ୍ତକ ନାମେ ଗଣ | । ତାକୁ ପେଷିଲା ତତକ୍ଷଣ | ।। | ୫ |
| | ମୁଁ ଏକା ଅଟଇ ଈଶ୍ୱର | । ଏମନ୍ତ ରୂପେ ଗର୍ବ ତାର | ।। | ୬ |
| | କ୍ରୋଧ କରିଣ ଏ ବଚନ | । ବୋଇଲା ପୁଣି ମଘବାନ[୨] | ।। | ୭ |
| ୩ | ବିପିନବାସୀ ଗୋପଙ୍କର | । ମାହାତ୍ମ୍ୟ ସଂପତ୍ତିଗର୍ବର | ।। | ୮ |
| | ଅଦ୍ଭୁତ ଅଟଇ ଯେ, ହରି | । ମନୁଷ୍ୟ, ତାକୁ ଆଶ୍ରେ କରି | ।। | ୯ |
| | ମୁଁ ଦେବ, ମୋତେ ଯଉଁମାନେ | । ଅବଜ୍ଞା କଲେ ଏ ଭୁବନେ | ।। | ୧୦ |
| ୪ | ଅଦୃଢ଼ ଅଟେ କର୍ମମୟ | । ଯେ କ୍ରତୁ ନାମେ ନାବପ୍ରାୟ | ।। | ୧୧ |
| | ଯେହ୍ନେ ଛାଡ଼ି ଆତ୍ମଜ୍ଞାନକୁ | । ସଂସାରସିନ୍ଧୁ ତରିବାକୁ | ।। | ୧୨ |
| | ତେଣେ କରନ୍ତି ଲୋକେ ମନ | । ଏକଥା ଅଟଇ ତେସନ | ।। | ୧୩ |
| ୫ | [୩]ବାଚାଳ ମୂର୍ଖ ଅଜ୍ଞ ଯେହି | । ବିନୟ ନୋହେ କାହାକୁ ହି | ।। | ୧୪ |

୧. ପୁରୁହୂତ = ଇନ୍ଦ୍ର । ୨. ମଘବାନ = ଇନ୍ଦ୍ର ।

୩. ନିନ୍ଦାରେ ଯୋଜିତ ଇନ୍ଦ୍ରଙ୍କର ଭାରତୀ ପରମାର୍ଥତଃ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରୁଅଛି । ତଥା, ବାଚାଳ = ଶାସ୍ତ୍ରଯୋନି; ବାଳିଶ = ଶିଶୁବତ୍ ନିରଭିମାନୀ; ସ୍ତବ୍ଧ = ଅନ୍ୟ ବନ୍ଦ୍ୟର ଅଭାବରୁ ଅନମ୍ର; ଅଜ୍ଞ = ଯାହାଠାରୁ ଜ୍ଞ (ଜ୍ଞାନୀ) ନାହିଁ ଅର୍ଥାତ୍ ସର୍ବଜ୍ଞ; ପଣ୍ଡିତମାନୀ = ବ୍ରହ୍ମଜ୍ଞାନୀଙ୍କ ଦ୍ୱାରା ମାନନୀୟ; କୃଷ୍ଣ = ସଦାନନ୍ଦରୂପ ପରଂବ୍ରହ୍ମ; ମର୍ତ୍ତ୍ୟ = ଭକ୍ତବାତ୍ସଲ୍ୟ ହେତୁ ମନୁଷ୍ୟରୂପେ ପ୍ରତୀୟମାନ ।

ଆମ୍ଭାକୁ ମଣଇଁ ପଣ୍ଡିତ । ଆପଣେ ଅଟେ ପୁଣ ମର୍ତ୍ତ୍ୟ ॥ ୧୫
କରି ସେ କୃଷ୍ଣକୁ ଆଶ୍ରୟ । ଗୋପାଳେ କଲେ ମୋ ଅପ୍ରିୟ ॥ ୧୬
୬ ମତ୍ତ ଅଟନ୍ତି ସଂପତ୍ତିରେ । ଯେ ପୁଷ୍ଟଶରୀର କୃଷ୍ଣରେ ॥ ୧୭
ସଂପତ୍ତିମଦେ ଏହାଙ୍କର । ଯେ ଗର୍ବ ତାହା ନାଶ କର ॥ ୧୮
ଯେ ବା ଅଛନ୍ତି ପଶୁମାନ । କର ସେମାନଙ୍କୁ ନିଧନ ॥ ୧୯
୭ ଅଇରାବତ ଯେ କୁଞ୍ଜର । ମୁଁ ଚଢ଼ି ତାହାର ଉପର ॥ ୨୦
ମରୁତଗଣ ମହାବେଗ[୧] । ଥିବେ ସେମାନେ ମୋର ସଙ୍ଗ ॥ ୨୧
ନନ୍ଦଗୋକୁଳର ନିଧନ । ବାଞ୍ଛା କରିଣ ନିଜ ମନ ॥ ୨୨
ତୁମ୍ଭଙ୍କୁ ଅନୁଗତ ହୋଇ । ଗମନ କରିବଇଁ ମୁହିଁ ॥ ୨୩

ଶ୍ରୀଶୁକ ଉବାଚ

୮ ମଘବା ଏମନ୍ତ ପ୍ରକାରେ । ଆଜ୍ଞା ଦିଅନ୍ତେ ଜଳଧରେ ॥ ୨୪
ପ୍ରଳୟହେତୁରୁ ବନ୍ଧନେ । ରହିଥିଲେ ଯେ ପୂର୍ବଦିନେ ॥ ୨୫
ଫିଟିଣ ତହୁଁ ତଦନ୍ତରେ । ଧାରାସଂପାତ[୨]ମାନଙ୍କରେ ॥ ୨୬
ନନ୍ଦଗୋକୁଳକୁ ସେକାଳେ । ପୀଡ଼ା କଲେ ସେ ନିଜ ବଳେ ॥ ୨୭
୯ ବଜ୍ରେ ବିଜୁଳିମାନଙ୍କରେ । ପ୍ରଦୀପ୍ତ ଗର୍ଜନ୍ତେ ନିର୍ଭରେ ॥ ୨୮
ଯେ ତୀବ୍ର ଅଟେ ବାତଗଣ । ତେଣେ ପ୍ରେରିତ ହୋଇ ପୁଣ ॥ ୨୯
ପାଷାଣମୟ ଜଳମାନ । ବରଷା କଲେ ଅବିଚ୍ଛିନ୍ନ ॥ ୩୦
୧୦ ସ୍ତମ୍ଭର ପ୍ରାୟ ସ୍ଥୂଳ ହୋଇ । ବରଷାଧାରାମାନ ଯେହି ॥ ୩୧
ତାହା ସନ୍ତତ ଜଳଧରେ । ବର୍ଷନ୍ତେ ଜଳପ୍ରବାହରେ ॥ ୩୨
ଧରଣୀ ପୂରିତ[୩] ହୋଇଲା । ଗହୀର ଢିପ ନ ଦିଶିଲା ॥ ୩୩
୧୧ ଯେ ଅତିଶୟ ଜଳଧାର । ଯେ ଅତିପ୍ରବଳ ସମୀର ॥ ୩୪
ତେଣେ ହୋଇଣ କମ୍ପମାନ । ପଶୁ ଗୋପାଳ ଗୋପୀଜନ ॥ ୩୫
ଶୀତରେ ଲଭିଣ ପୀଡ଼ାକୁ । ଶରଣ ଗଲେ ଗୋବିନ୍ଦଙ୍କୁ ॥ ୩୬
୧୨ ନିଜ ମସ୍ତକ ସୁତମାନ । ଦେହରେ କରିଣ ଆଚ୍ଛନ୍ନ ॥ ୩୭
ପୀଡ଼ା ଲଭିଲେ ଜଳଧାରେ । କଂପିତ ହୋଇ ତଦନ୍ତରେ ॥ ୩୮
ମିଳିଲେ କୃଷ୍ଣପାଦମୂଳେ । ଏମନ୍ତ ବୋଇଲେ ବିକଳେ ॥ ୩୯
୧୩ ହେ କୃଷ୍ଣ କୃଷ୍ଣ ମହାଭାଗ । ଭକ୍ତଜନେ ତୋ ଅନୁରାଗ ॥ ୪୦
ହେ ପ୍ରଭୁ ଯଉଁ ଗୋକୁଳର । ସ୍ୱଭାବେ ଅଟୁ ତୁ ଈଶ୍ୱର ॥ ୪୧
କୁପିତ ଇନ୍ଦ୍ରଠାରୁ ତାକୁ । ରକ୍ଷା କରସି ତୁ ଆମ୍ଭଙ୍କୁ ॥ ୪୨
୧୪ ଯେ ଶୀତ ବରଷା ପବନ । ତେଣେ ବିହତ ଅଚେତନ ॥ ୪୩
ଦେଖି ସେମାନଙ୍କୁ ଏମନ୍ତ । କୁପିତ ହୋଇ ମଘବନ୍ତ[୪] ॥ ୪୪

---
୧. ମହାବେଗ = ମହାବୀର୍ଯ୍ୟ । ୨. ଧାରାସଂପାତ = ବର୍ଷଣ । ୩. ପୂରିତ = ପ୍ଲାବିତ ।
୪. ମଘବନ୍ତ = ଇନ୍ଦ୍ର ।

ଅଛି ଏ କଥାକୁ ଆଚରି । ଏମନ୍ତ ମଣିଲେ ଶ୍ରୀହରି ॥ ୪୫
୧୫ ଯାହାର ଋତୁ ଅପଗତ । ତାହା ବରଷା ଅପ୍ରମିତ ॥ ୪୬
ଅତିପବନ ଶିଳାମୟ । ଆମ୍ଭେ କରନ୍ତେ ଯାଗକ୍ଷୟ ॥ ୪୭
ବିନାଶନିମିତ୍ତେ ଆମ୍ଭର । ବରଷୁଅଛି ପୁରନ୍ଦର ॥ ୪୮
୧୬ ତହିଁର ପ୍ରତିକାର ଯେହି । ସାଧିବି ନିଜ ଯୋଗେ ତାହି ॥ ୪୯
ଲୋକମାନଙ୍କର ଈଶ୍ୱର । ଆମ୍ଭେ ଏ ରୂପେ ଯାହାଙ୍କର ॥ ୫୦
ଶ୍ରୀଗର୍ବ ମୂଢ଼ଭାବୁଁ ଜାତ । ସେ କଥା କରିବି ମୁଁ ହତ ॥ ୫୧
୧୭ ସତ୍ତ୍ୱାସଂଯୁତ ଯେଉଁ ସୁରେ । ଈଶ୍ୱରଗର୍ବ ତାଙ୍କ ଠାରେ ॥ ୫୨
ଘଟଇ ନାହିଁ, ଯେ ଅସନ୍ତ । ମୋଠାରୁ ତାଙ୍କ ମାନ ହତ ॥ ୫୩
ପ୍ରଶାନ୍ତିନିମିତ୍ତରେ ହୋଇ । ତାହାଙ୍କୁ ଅନୁଗ୍ରହ ସେହି ॥ ୫୪
୧୮ ସେ ଘେନି ମୁଁ ଶରଣ ଯାର । ମୁଁ ପରିଗ୍ରହଂ[୧] ମୁଁ ଈଶ୍ୱର ॥ ୫୫
ସେ ଗୋଷ୍ଠ କରିବି ରକ୍ଷଣ । ସେ ବ୍ରତ କରିଛି[୨] ମୁଁ ପୁଣ ॥ ୫୬
୧୯ କହିଣ ଏମନ୍ତ ବଚନ । ଏକ ହସ୍ତରେ ଭଗବାନ ॥ ୫୭
ଲୀଳାରେ ଗୋବର୍ଦ୍ଧନାଚଳ[୩] । ଧଇଲେ ଛତ୍ରୁ ଯେହ୍ନେ ବାଳ ॥ ୫୮
୨୦ ଏଥୁ ଅନ୍ତରେ ଗୋପାଳଙ୍କୁ । ବୋଇଲେ ଏମନ୍ତ ବାକ୍ୟକୁ ॥ ୫୯
ହେ ତାତ ! ମାତ ! ବ୍ରଜବାସୀ । ସମସ୍ତେ ଯଥାସୁଖେ ଆସି ॥ ୬୦
ଗୋଧନମାନଙ୍କ ସହିତେ । ପ୍ରବେଶ ହୁଅ ଗିରିଗର୍ତ୍ତେ ॥ ୬୧
୨୧ ମୋ ହସ୍ତୁଁ ପଡ଼ିବ ଭୂଧର । ଭୟ ଏ ବିଷୟେ ନ କର ॥ ୬୨
ବାତବରଷାଭୟ ଯେହି । ସେ କଥା ବିଅର୍ଥ ଅଟଇ ॥ ୬୩
ତହିଁକି ତୁମ୍ଭର ଯେ ତ୍ରାଣ । ସେ କଥା କଲି ମୁଁ ଭିଆଣ ॥ ୬୪
୨୨ କୃଷ୍ଣସ୍ୱକାଶୁଁ ଆଶ୍ୱାସିତ । ହୋଇଲା ସେମାନଙ୍କ ଚିତ୍ତ ॥ ୬୫
ଗୋଧନ ଶକଟନିକର । ଯେ ଭୃତ୍ୟ ପୁରୋହିତ ଆର ॥ ୬୬
ସେ ଲୋକମାନଙ୍କ ସହିତେ । ଯାହାକୁ ଅବକାଶ ଯେତେ ॥ ୬୭
ସମସ୍ତେ ସେହି ପରକାରେ । ପ୍ରବେଶ ହୋଇଲେ ଗର୍ତ୍ତରେ ॥ ୬୮
୨୩ ଯେ କ୍ଷୁଧା ତୃଷା ବ୍ୟଥା ହୋଇ । ସୁଖଅପେକ୍ଷା ପୁଣ ଯେହି ॥ ୬୯
ଦୂର କରି ସେ କଥାମାନ । ଚାହାଁନ୍ତେ ବ୍ରଜବାସିଜନ ॥ ୭୦
ଗିରି ଧଇଲେ ଦିନ ସାତ । ସ୍ଥାନରୁ ନୋହିଲେ ଚଳିତ ॥ ୭୧
୨୪ ଯେ କୃଷ୍ଣଯୋଗଅନୁଭାବ । ସେ କଥା ଦେଖିଣ ବାସବ ॥ ୭୨
ଅତ୍ୟନ୍ତ ବିସ୍ମୟ ହୋଇଲା । ଯେ ଗର୍ବ ସେହି ଦୂର ଗଲା ॥ ୭୩
ନିଜ ସଂକଳ୍ପ ହତ ହେଲା । ମେଘମାନଙ୍କୁ ନିବାରିଲା ॥ ୭୪
୨୫ ଆକାଶୁଁ ଗଲେ ମେଘମାନ । ଉଦୟ ହୋଇଲା ତପନ ॥ ୭୫
ଯେ ବାତବରଷା ଦାରୁଣ । ସେ ଗଲା, ଏମନ୍ତ ଦେଖିଣ ॥ ୭୬

---

୧. ପରିଗ୍ରହ = ମୂଳ । ୨. କରିଛି = ଘେନିଛି । ୩. ଗୋବର୍ଦ୍ଧନାଚଳ = ଗୋବର୍ଧନ + ଅଚଳ (ଭୂଧର)

ସେ ଗୋବର୍ଦ୍ଧନଧର ପୁଣି । ବୋଇଲେ ଗୋପାଳଙ୍କୁ ବାଣୀ ।। ୭୭
୨୬ ଯେ ସ୍ତିରୀ-ବାଳକ-ଗୋଧନେ । ସହିତ ହେ ଗୋପାଳମାନେ ।। ୭୮
ନିର୍ଗତ ହୁଅ ଛାଡ଼ ତ୍ରାସ । ବାତବରଷା ହେଲା ଶେଷ ।। ୭୯
ନଦୀମାନେହେଁ ଅଳ୍ପଜଳ । ପ୍ରାଏକ ହେଲେଣି ସକଳ ।। ୮୦
୨୭ ତଦନ୍ତେ ସେ ଗୋପାଳମାନ । ଘେନି ଯେ ଯାହାର ଗୋଧନ ।। ୮୧
ଉପକରଣ ଥିଲା ଯେହି । ଶକଟେ ଆରୋପିଣ ତାହି ।। ୮୨
ମନ୍ଦଗମନେ ସ୍ତିରୀ ବାଳ । ବୃଦ୍ଧ ଯେ ଗଲେ ସେ ସକଳ ।। ୮୩
୨୮ ଦେଖନ୍ତେ ସର୍ବଭୂତମାନେ । ଭଗବାନ ହିଁ ସେହିସ୍ଥାନେ ।। ୮୪
ଲୀଳାରେ ପୂର୍ବପ୍ରାୟ କରି । ସ୍ଥାପିଲେ ନେଇଣ ସେ ଗିରି ।। ୮୫
୨୯ ଅତି ପ୍ରେମରେ ହୋଇ ପୂର୍ଣ୍ଣ । ଯଥା ଉଚିତେ ଗୋପମାନ ।। ୮୬
ପରିରମ୍ଭଣ[୧]ର ଆଦିରେ । ମିଳିଲେ ସେ କୃଷ୍ଣଙ୍କ ଛାମୁରେ ।। ୮୭
ସସ୍ନେହେ ଗୋପୀମାନେ ପୁଣ । ଦଧି-ଅକ୍ଷତ-ସଲିଳେଣ ।। ୮୮
ହରଷେ ତାହାଙ୍କୁ ପୂଜିଲେ । ଉତ୍ତମ ଆଶୀର୍ବାଦ କଲେ ।। ୮୯
୩୦ ଯେ ନନ୍ଦ ଯଶୋଦା ରୋହିଣୀ । ବଳିଷ୍ଠ ବଳରାମ ପୁଣି ।। ୯୦
କୃଷ୍ଣଙ୍କୁ କଲେ ଆଲିଙ୍ଗନ । ବିହିଲେ ଆଶୀର୍ବାଦମାନ ।। ୯୧
ସ୍ନେହସକାଶେ ଯଦୁଁମାନେ । କାତର ହୋଇଥିଲେ ମନେ ।। ୯୨
୩୧ ଯେ ସ୍ୱର୍ଗେ ସାଧ୍ୟ ଦେବଗଣ । ଯେ ସିଦ୍ଧ ଗନ୍ଧର୍ବ ଚାରଣ ।। ୯୩
ହେ ନୃପ ! ତୋଷେ ସ୍ତୁତି କଲେ । କୁସୁମମାନ ବରଷିଲେ ।। ୯୪
୩୨ ଶଙ୍ଖ ଦୁନ୍ଦୁଭିଙ୍କ ନିଃସ୍ୱନ । ସ୍ୱର୍ଗରେ ହେଲା ହେ ରାଜନ ।। ୯୫
ଯେ ବା ତୁମ୍ବୁରୁ ଆଦି ହୋଇ । ଗନ୍ଧର୍ବପତି ଥିଲେ ତହିଁ ।। ୯୬
ଲଭି ଦେବତାଙ୍କ ବଚନ । କଲେ ସେ କାଳରେ ଗାୟନ ।। ୯୭
୩୩ ହେ ନୃପ ! ଗୋବର୍ଧନଗିରି । ସ୍ଥାପନାଅନ୍ତରେ ଶ୍ରୀହରି ।। ୯୮
ଯେ ଗୋପେ ଅନୁରାଗବନ୍ତ । ତେଣେ ହୋଇଣ ପରିବୃତ ।। ୯୯
ବଳରାମଙ୍କ ସହିତରେ । ମିଳିତ ହୋଇଲେ ବ୍ରଜରେ ।। ୧୦୦
ଯେ ଗୋବର୍ଧନ-ଉଦ୍ଧରଣ । ଏ ଆଦି କୃଷ୍ଣକୃତ୍ୟମାନ ।। ୧୦୧
ହୃଦୟେ କରିଣ ସ୍ପର୍ଶନ । ଗୋପୀଏ କରନ୍ତେ ଗାୟନ ।। ୧୦୨
ସକଳେ ମୁଦିତ ହୋଇଲେ । ବ୍ରଜକୁ ଲେଉଟି ଅଇଲେ ।। ୧୦୩
ଧରିଣ ଗୋବର୍ଧନଗିରି । ରଖିଲେ ଯେ ଗୋକୁଳଶିରୀ ।। ୧୦୪
ସେ କୃଷ୍ଣ ପାଦପଦ୍ମ ଧ୍ୟାନେ । ହରଷ ଦୀନବନ୍ଧୁ ମନେ ।। ୧୦୫

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଗୋବର୍ଧନଧାରଣଂ
ନାମ ପଞ୍ଚବିଂଶୋଽଧ୍ୟାୟଃ ।।

---

୧. ପରିରମ୍ଭଣ = ଆଲିଙ୍ଗନ ।

# ଷଡ୍‌ବିଂଶ ଅଧ୍ୟାୟ

ଷଡ୍‌ବିଂଶେ ବିସ୍ମିତାନ୍ ଗୋପାନ୍ କୃଷ୍ଣସ୍ୟାଦ୍ଭୁତକର୍ମଭିଃ ।
ନନ୍ଦୋ ଗର୍ଗୋକ୍ତିମାଶ୍ରାବ୍ୟ ତଦୈଶ୍ୱର୍ଯ୍ୟମବର୍ଣ୍ଣୟତ୍ ॥ ୧

ଶ୍ରୀଶୁକ ଉବାଚ

୧ କୃଷ୍ଣର ଏମନ୍ତ ପ୍ରକାର । କର୍ମଙ୍କୁ କରିଣ ଗୋଚର ॥
ସେ କୃଷ୍ଣବୀର୍ଯ୍ୟ ଅବା କେତେ । ତା' ନ ଜାଣନ୍ତି ସେ ସମସ୍ତେ ॥
ବିସ୍ମୟେ ମିଳି ନନ୍ଦଠାରେ । ବୋଇଲେ ଏମନ୍ତ ପ୍ରକାରେ ॥
୨ ଯହୁଁ ବାଳକର ଏମନ୍ତ । ଅତି ଅଦ୍‌ଭୁତ କର୍ମଜାତ ॥
ଯେ ଜନ୍ମ ଗୋପାଳଗୃହରେ । ନିନ୍ଦିତ ଅଟେ ଜଗତରେ ॥
ସେ ଜନ୍ମ ଲଭିବାର ପାଇଁ । କିମ୍ପା ଭାଜନ ହେଲା ଏହି ॥
୩ ଯାହାର ସପ୍ତମ ବରଷ । ବୟସ ହୋଇଛି ପ୍ରବେଶ ॥
ଗିରିବରକୁ ଏକ କରେ । କେମନ୍ତେ ଧଇଲା ଲୀଳାରେ ॥
ଯେହ୍ନେ ଲୀଳାରେ ଗଜରାଜ । ହସ୍ତରେ ଧରଇ ପଙ୍କଜ ॥
୪ ବାଳକସମୟେ ନୟନ । ବୁଜିଣ କରନ୍ତେ ଶୟନ ॥
ବଳିଷ୍ଠ ପୂତନାର ସ୍ତନ । ପ୍ରାଣସହିତେ କଲା ପାନ ॥
ମନୁଷ୍ୟଶରୀରୁଁ ଯେସନ । ଆୟୁଷ କାଳ କରେ ପାନ ॥
୫ ଯେ ତିନିମାସ ବୟସରେ । ଶୁଅନ୍ତେ ଶକଟତଳରେ ॥
ରୋଦନ କରନ୍ତେ, ଉର୍ଦ୍ଧ୍ୱକୁ । ଚାଳନ୍ତେ ଚରଣଯୁଗକୁ ॥
ଚରଣଅଗ୍ରେ ହତ ହେଲା । ଶକଟ ଭାଜିଣ ପଡ଼ିଲା ॥
୬ ଏକ ବରଷ ସମୟରେ । ବସନ୍ତେ ଆସି ଆକାଶରେ ॥
ଯେ ଦୈତ୍ୟ ନାମେ ତୃଣାବର୍ତ୍ତ । ସେ ହରି ନିଅନ୍ତେ ତ୍ୱରିତ ॥
କଣ୍ଠ ଧରନ୍ତେ ସେ ଆତୁର । ତାହାକୁ କଲା ଯେ ସଂହାର ॥
୭ ଯେ ପୁଣି କହୁଣିସି ଦିନ । ଚୋରାନ୍ତେ ନବନୀତମାନ ॥
ଜନନୀ ଉଡୁଖଳେ ନେଇ । [1]ବନ୍ଧନ କଲା କୋପୀ ହୋଇ ॥
ବେନି ଅର୍ଜୁନଙ୍କ ମଧ୍ୟରେ । ଯାଆନ୍ତେ ବାହୁଯୁଗଳରେ ॥
ସେ ବେନି ବୃକ୍ଷ ନିଜ ବଳେ । ଉପାଡ଼ି ପକାଇଲା ତଳେ ॥
୮ ବେଢ଼ି ଅଛନ୍ତି ଶିଶୁମାନେ । ରାମର ସହିତେ ବିପିନେ ॥
ଚରାନ୍ତେ ନିଜ ପଶୁମାନ । ମାରିବା ଅର୍ଥେ କରି ମନ ॥
ମିଳିଲା ଅରି ବକାସୁର । ଭୁଜଯୁଗଳରେ ତାହାର ॥
ମୁଖକୁ ଦୁଇ ଖଣ୍ଡ କରି । କେମନ୍ତେ ପକାଇଲା ଚିରି ॥
୯ ବସଙ୍କ ମଧ୍ୟେ ବସରୂପେ । ମିଳନ୍ତେ ମାରିବାକୁ କୋପେ ॥

---

୧. ବନ୍ଧନ = ବାନ୍ଧନ୍ତେ ଗଲା ।

ମାରି ବତ୍ସକୁ ତା' ଦେହରେ । କପିତ୍ଥ ପାତିଲା[1] ଲୀଳାରେ ॥ ୨୮

୧୦ ରାମସଙ୍ଗତେ ହୋଇ ଯୁତ । ମାରିଣ ରାସଭ ଦଇତ ॥ ୨୯

ତାହାର ଯେତେ ବନ୍ଧୁମାନ । କରି ସେମାନଙ୍କୁ ନିଧନ ॥ ୩୦

ଯହିଁରେ ପକ୍ୱଫଳମାନ । କ୍ଷେମ କଲା ସେ ତାଳବନ ॥ ୩୧

୧୧ ପ୍ରଲମ୍ବ ହୋଇ ନାମ ଯାର । ଉଗ୍ର ଅଟଇ ସେ ଅସୁର ॥ ୩୨

ଯେ ବଳଭଦ୍ର ବଳଯୁତ । ତା' ହସ୍ତେ ତାକୁ କରି ହତ ॥ ୩୩

ବନବହ୍ନିରୁ ଗୋପାଳଙ୍କୁ । ରଖିଲା ବ୍ରଜର ପଶୁଙ୍କୁ ॥ ୩୪

୧୨ ଅତି ବିଷମ ବିଷ ଯାର । ଯେ ଅହିମାନଙ୍କ ଈଶ୍ୱର ॥ ୩୫

ତାହାକୁ କରିଣ ଦମନ । ତା' ଗର୍ବ କରିଣ ଖଣ୍ଡନ ॥ ୩୬

ହ୍ରଦୁଁ ବାହାର କରି ଦେଇ । ବିଷ-ଉଦକ ଯହିଁ ନାହିଁ ॥ ୩୭

ଯମୁନା ନଦୀକି ଏମନ୍ତ । ପ୍ରକାରେ କଲା ଯେ ବିହିତ ॥ ୩୮

୧୩ ହେ ନନ୍ଦ ! ତୋ' ତନୟଠାର । ସମସ୍ତ ବ୍ରଜବାସୀଙ୍କର ॥ ୩୯

ଯେ ଅନୁରାଗ ଅଛି ହୋଇ । କେବେହେଁ ତ୍ୟାଜ୍ୟ ସେ ନୁହଇ ॥ ୪୦

ସ୍ୱଭାବ ଅନୁରାଗ ତାର । ଆମ୍ଭର ଠାରେ କି ପ୍ରକାର ॥ ୪୧

୧୪ ହେ ବ୍ରଜନାଥ ! ଯା' ବୟସ । ସଂଖ୍ୟାରେ ସପତ ବରଷ ॥ ୪୨

ସେ କାହିଁ କାହିଁ ଅବା ପୁଣ । ମହା ଅଚଳର ଧାରଣ ॥ ୪୩

ଏ ଘେନି ତୋର ସୁତଠାର । ଶଙ୍କା ସମ୍ଭୁଛି ଆମ୍ଭର ॥ ୪୪

ଶ୍ରୀନନ୍ଦ ଉବାଚ

୧୫ ଗୋପାଳଙ୍କର ବାକ୍ୟ ଶୁଣି । କହୁ ଅଛନ୍ତି ନନ୍ଦ ପୁଣି ॥ ୪୫

ଆହେ ଗୋପାଳମାନେ ଶୁଣ । ମୋହର ବଚନକୁ ପୁଣ ॥ ୪୬

ବାଳକଠାରେ ଯେ ତୁମ୍ଭର । ଆଶଙ୍କା ସେହୁ ଯାଉ ଦୂର ॥ ୪୭

ଏହି କୁମାରକୁ ଉଦ୍ଦେଶି । ଗର୍ଗ ଯା' କହିଲେ ବିଶେଷି ॥ ୪୮

୧୬ ପ୍ରତିଯୁଗରେ ଭିନ୍ନ ଭିନ୍ନ । ତନୁ ଘେନନ୍ତେ ତୋ' ନନ୍ଦନ ॥ ୪୯

ଏହାର ଶୁକ୍ଳ ରକ୍ତ ପୀତ । ତ୍ରିଯୁଗେ ତିନି ବର୍ଣ୍ଣ ଜାତ ॥ ୫୦

ଏବେ ଏ ଦ୍ୱାପରରେ ଯେଣୁ । କୃଷ୍ଣଭାବକୁ ଗଲା ତେଣୁ ॥ ୫୧

ଏ ଘେନି କରି କୃଷ୍ଣନାମ । ଏହାର ହୋଇବ ପ୍ରଥମ ॥ ୫୨

୧୭ ଏ ତୋର ତନୟ ପୂର୍ବରେ । ଜନ୍ମିଲା ବସୁଦେବଠାରେ ॥ ୫୩

ତେଣୁ ଶ୍ରୀମନ୍ତ ବାସୁଦେବ । ବୋଲନ୍ତି ପଣ୍ଡିତ ମାନବ ॥ ୫୪

୧୮ ଯେ ଗୁଣ କର୍ମ ଅଟେ ଦୁଇ । ତହିଁକି ଅନୁରୂପ ହୋଇ ॥ ୫୫

ତୋ' ସୁତ ନାମ-ରୂପମାନେ । ବହୁତ ଅଛନ୍ତି ଭୁବନେ ॥ ୫୬

ସେମାନ ନ ଜାଣଇଁ ମୁହିଁ । ଜାଣନ୍ତି ନାହିଁ ଜନେ କେହି ॥ ୫୭

୧୯ ସର୍ବଗୋପାଳ ଗୋକୁଳର । ଆନନ୍ଦକର୍ତ୍ତା ଏ ତୁମ୍ଭର ॥ ୫୮

---

୧. ପାତିଲା = ପକାଇଲା (ତୁଂ ନ୍ୟପାତୟତ୍) ।

| | | | | | |
|---|---|---|---|---|---|
| | ମଙ୍ଗଳ କରିବ ବିଧାନ | । | ଏଣେ ସମସ୍ତ ଦୁର୍ଗମାନ | ।। | ୫୯ |
| | ତୁମ୍ଭେ ସମସ୍ତେ ଶୀଘ୍ର ହୋଇ | । | ତରିବ ସତ୍ୟ ଏ ଅଟଇ | ।। | ୬୦ |
| ୨୦ | ହେ ବ୍ରଜପତି ! ପୂର୍ବଦିନେ | । | ଅରାଜକରେ ସାଧୁମାନେ | ।। | ୬୧ |
| | ଦୁଷ୍ଟମାନଙ୍କରେ ପୀଡ଼ାକୁ | । | ଲଭିଲେ, ଏ ପୁଣି ତାହାଙ୍କୁ | ।। | ୬୨ |
| | ରଖନ୍ତେ ବୃଦ୍ଧିକି ଲଭିଲେ | । | ସେ ଦୁଷ୍ଟମାନଙ୍କୁ ଜିଣିଲେ | ।। | ୬୩ |
| ୨୧ | ଏ ମହାଭାଗ କୃଷ୍ଣଠାରେ | । | ପ୍ରୀତି କରନ୍ତି ଯଉଁ ନରେ | ।। | ୬୪ |
| | ତାହାଙ୍କୁ ଅହିତ ମାନବ | । | କରନ୍ତି ନାହିଁ ପରାଭବ | ।। | ୬୫ |
| | ଯାହାଙ୍କ ପକ୍ଷ ଭଗବାନ | । | ତାହାଙ୍କୁ ଅସୁରେ ଯେସନ | ।। | ୬୬ |
| ୨୨ | ସେହି କାରଣରୁ ତୋହର | । | ହେ ନନ୍ଦ ! ଏ ଯଉଁ କୁମର | ।। | ୬୭ |
| | ଗୁଣମାନଙ୍କରେ କୀର୍ତ୍ତିରେ | । | ଅନୁଭାବରେ ସଂପତ୍ତିରେ | ।। | ୬୮ |
| | ଅଟେ ନାରାୟଣସମାନ | । | ଗର୍ଗ କହିଲେ ଏ ବଚନ | ।। | ୬୯ |
| | ତାର ଯେ କର୍ମ ଅତିଶୟ | । | ତହିଁରେ ନ ଧର ବିସ୍ମୟ | ।। | ୭୦ |
| ୨୩ | ମତେ ସାକ୍ଷାତ ଏ ପ୍ରକାରେ | । | କହିଣ ଗର୍ଗ ତଦନ୍ତରେ | ।। | ୭୧ |
| | ଗଲେ ସେ ଆପଣା ଗୃହକୁ | । | ସେଦିନୁଁ ମଣଇଁ କୃଷ୍ଣକୁ | ।। | ୭୨ |
| | ନାରାୟଣର ଏହୁ ଅଂଶ | । | ଅକ୍ଳେଶ ଯା' କର୍ମ ପ୍ରକାଶ | ।। | ୭୩ |
| ୨୪ | ଏ ରୂପେ ଗର୍ଗମୁନିବାଣୀ | । | ନନ୍ଦ କହନ୍ତେ ତାହା ଶୁଣି | ।। | ୭୪ |
| | ହରଷେ ବ୍ରଜବାସିଜନ | । | ନନ୍ଦଙ୍କୁ କଲେକ ପୂଜନ | ।। | ୭୫ |
| | ସେ କୃଷ୍ଣଙ୍କୁ ହିଁ ପୂଜା କଲେ | । | ସମସ୍ତେ ବିସ୍ମୟ ଛାଡ଼ିଲେ | ।। | ୭୬ |
| ୨୫ | ଯଜ୍ଞବିନାଶରୁ ଯେ ରୋଷ | । | ଚିତ୍ତରେ ହୋଇଲା ପ୍ରକାଶ | ।। | ୭୭ |
| | ତେଣେ ଅଶନି ତୀବ୍ର ବାତ | । | ଜଳଶର୍କରା[୧] ଯେ ବହୁତ | ।। | ୭୮ |
| | ତାହା ବର୍ଷନ୍ତେ ପୁରନ୍ଦର | । | ଗୋପାଳେ ପଶୁ ସ୍ତ୍ରୀ ଆବର | ।। | ୭୯ |
| | ଯହିଁରେ ଲଭିଲେ କଷଣ | । | ଯାହାର ଆପଣେ ଶରଣ | ।। | ୮୦ |
| | ଏ ରୂପେ ଦେଖି ସେ ଗୋଷ୍ଠକୁ | । | ହସନ୍ତେ ଲଭିଣ ଦୟାକୁ | ।। | ୮୧ |
| | ଦୁର୍ବଳ ବାଳକ ଯେସନ | । | ଛତୁକୁ ଟେକଇ ବହନ | ।। | ୮୨ |
| | ସେହି ପ୍ରକାରେ ଏକ କରେ | । | ପର୍ବତ ଉପାଡ଼ି ସତ୍ୱରେ | ।। | ୮୩ |
| | ଗୋଷ୍ଠକୁ ପାଳନା ଯେ କଲେ | । | ଇନ୍ଦ୍ରର ଯଜ୍ଞକୁ[୨] ଭାଙ୍ଗିଲେ | ।। | ୮୪ |
| | ସେ ଇନ୍ଦ୍ର ଧେନୁମାନଙ୍କର | । | ପ୍ରୀତ ହୋଉନ୍ତୁ ଆମ୍ଭଠାର | ।। | ୮୫ |
| | ଗୋପାଳେ ଯାହା ଚେଷ୍ଟାମାନ | । | ଦେଖି ଆଶଙ୍କା କଲେ ମନ | ।। | ୮୬ |
| | ନନ୍ଦର ଠାରୁ ଗର୍ଗବାଣୀ | । | ଶୁଣି ସନ୍ତୋଷ ହେଲେ ପୁଣି | ।। | ୮୭ |
| | ସେ କୃଷ୍ଣଚରଣପଙ୍କଜ | । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୮୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀନନ୍ଦଗୋପସଂବାଦୋ ନାମ
ଷଡ୍‌ବିଂଶୋଽଧ୍ୟାୟଃ ।।

୧. ଜଳଶର୍କରା = କୁଆପଥର । ୨. ଯଜ୍ଞକୁ = ଗର୍ବକୁ ।

## ସପ୍ତବିଂଶ ଅଧ୍ୟାୟ

ସପ୍ତବିଂଶେ ତଦାଲକ୍ଷ୍ୟ କୃଷ୍ଣସ୍ୟ ପ୍ରାଭବଂ ପରମ୍ ।
ବର୍ଣ୍ଣ୍ୟତେ ସୁରଭୀନ୍ଦ୍ରାଭ୍ୟାମଭିଷେକମହୋତ୍ସବଃ ।। ୧

ଶ୍ରୀଶୁକ ଉାବଚ

୧ ଧରିଣ ଗିରି ଗୋବର୍ଧନ । ଜଳବୃଷ୍ଟିରୁ ବ୍ରଜସ୍ଥାନ ।। ୧
କୃଷ୍ଣ ରଖିଲେ ତାହା ଜାଣି । ସୁରଭି ଗୋଲୋକରୁ ପୁଣି ।। ୨
ମିଳିଲା କୃଷ୍ଣସନ୍ନିଧିରେ । ଇନ୍ଦ୍ର ହିଁ ଅଛି ତା' ସଙ୍ଗରେ ।। ୩
୨ କୃଷ୍ଣଙ୍କୁ ହେଳା କଲା ଯେଣୁ । ଲଜ୍ଜିତ ହୋଇଅଛି ତେଣୁ ।। ୪
ମିଳିଣ ଏକାନ୍ତ ସ୍ଥାନରେ । ସୂର୍ଯ୍ୟର ସମ ଯାହାଠାରେ ।। ୫
କିରଣ ହୋଇଛି ପ୍ରକଟ । ଏମନ୍ତ ଯେବଣ ମୁକୁଟ ।। ୬
ତେଣେ କୃଷ୍ଣର ପାଦଦୁଇ । ସ୍ପରଶ କଲା ନମ୍ର ହୋଇ ।। ୭
୩ ଅମିତ ଅଟେ ତେଜ ଯାର । ଯେ ଅନୁଭାବ ସେ କୃଷ୍ଣର ।। ୮
ତାହା ପୂର୍ବରେ ଥିଲା ଶୁଣି । ପ୍ରତ୍ୟକ୍ଷେ ଦେଖିଲା ତା' ପୁଣି ।। ୯
ମୁଁ ତିନି ଲୋକର ଈଶ୍ୱର । ଏ ରୂପେ ଗର୍ବ ଗଲା ତାର ।। ୧୦
ଯୋଡ଼ିଣ କରଯୁଗଳକୁ । ବୋଇଲା ଏମନ୍ତ ବାକ୍ୟକୁ ।। ୧୧

ଶ୍ରୀଇନ୍ଦ୍ର ଉବାଚ

୪ ଯହିଁ ବିଶୁଦ୍ଧସତ୍ତ୍ୱଗୁଣ । ଯେ ଶାନ୍ତ ଜ୍ଞାନମୟ ପୁଣ ।। ୧୨
ଯହିଁରୁ ରଜ ତମ ଦୂର । ଏମନ୍ତ ସ୍ୱରୂପ ତୁମ୍ଭର ।। ୧୩
ମାୟାଜନିତ ଯେ ସଂସାର । ଅଜ୍ଞାନେ ଅନୁବନ୍ଧ ଯାର ।। ୧୪
ତୁମ୍ଭେ ସର୍ବଜ୍ଞ ତୁମ୍ଭ ଠାର । ଅବିଦ୍ୟମାନ ସେ ସଂସାର ।। ୧୫
୫ ହେ ପ୍ରଭୁ ! ଦେହସମ୍ବନ୍ଧରେ । ଯେ କୃତ ଯେ ହେତୁ ଦେହରେ ।। ୧୬

× × × ×

ସେ ଲୋଭ ଆଦି ତୁମ୍ଭଠାର । କେମନ୍ତ ହୋଇବ ପ୍ରଚାର ।। ୧୭
ତଥାପି ଆହେ ଭଗବାନ । ଧର୍ମର ଅଟେ ଯେ ପାଳନ ।। ୧୮
ନିଗ୍ରହ ଅଟେ ଯେ ଖଳର । ତଦର୍ଥେ ତୁମ୍ଭେ ଦଣ୍ଡ ଧର ।। ୧୯
୬ ତୁମ୍ଭେ ସକଳ ଜଗତର । ଜନକ ଗୁରୁ ଅଧୀଶ୍ୱର ।। ୨୦
ଅଲଂଘ୍ୟ କାଳରୂପୀ ଯେଣୁ । ଲୀଳାବତାରେ ଦଣ୍ଡ ତେଣୁ ।। ୨୧
ହିତନିମିତ୍ତରେ ଆଚର । ଆମ୍ଭେ ଜଗତ-ଅଧୀଶ୍ୱର ।। ୨୨
ଏ ରୂପେ ଯେ ବା ଗର୍ବବନ୍ତ । କରନ୍ତେ ତାଙ୍କ ମାନ ହତ ।। ୨୩
୭ ମୋହ ସମାନ ଅଜ୍ଞ ଯେହି । ଈଶ୍ୱର ଜଗତର ମୁହିଁ ।। ୨୪
ଏ ଗର୍ବ ବହିଥାନ୍ତି ପୁଣ । କାଳରେ ଅଭୟ କରିଣ ।। ୨୫

ତୁମ୍ଭଙ୍କୁ ଦେଖି ସେ ମଦକୁ । ଛାଡ଼ିଣ ପୁଣ ସେ ଗର୍ବକୁ ॥ ୨୬
ସାଧୁଜନର ମାର୍ଗ ଯେହି । ଅନୁସରନ୍ତି ପୁଣ ତାହି ॥ ୨୭
ଯେ ଚେଷ୍ଟା ଅଟଇ ତୁମ୍ଭର । ସେ ଦଣ୍ଡ ଅଟେ ଖଳଙ୍କର ॥ ୨୮
୮ ଐଶ୍ୱର୍ଯ୍ୟମଦେ ବ୍ୟାପ୍ତ ହୋଇ । ତୁମ୍ଭ ପ୍ରଭାବ ନ ଜାଣଇଁ ॥ ୨୯
ଏ ଘେନି କରି ତୁମ୍ଭ ଠାର । ଯେ ହେଲା ଅପରାଧ ମୋର ॥ ୩୦
ହେ ପ୍ରଭୁ ! ତାହା କ୍ଷମା କର । ମୂଢ଼ ଅଟଇ ଚିତ୍ତ ମୋର ॥ ୩୧
ଏ ରୂପେ ଦୁଷ୍ଟ ମତି ମୋର । ଆଉ ନ ଜନ୍ମୁ ପ୍ରଭୁଠାର ॥ ୩୨
୯ ହେ ଅଧୋକ୍ଷଜ ଯେ ଭୂମିର । ଭାର ଅଟନ୍ତି, ମହାଭାର ॥ ୩୩
ଯାହାଙ୍କ ଠାରୁ ହୋଏ ଜାତ । ନୃପରୂପରେ ଯେ ବିଦିତ ॥ ୩୪
ତାହାଙ୍କ ନାଶକୁ ତୁମ୍ଭର । ଏ ନରଲୋକେ ଅବତାର ॥ ୩୫
ତୁମ୍ଭର ଚରଣକୁ ପୁଣ । ଅଛନ୍ତି ଯେ ଅନୁବର୍ତ୍ତିଣ ॥ ୩୬
ତାହାଙ୍କ ମଙ୍ଗଳନିମିତ୍ତ । ସେ ପୁଣ ଅଟଇ ନିୟତ ॥ ୩୭
୧୦ ଯେ ତୁମ୍ଭେ ଅଟ ଭଗବନ୍ତ । ସକଳଅନ୍ତର୍ଯ୍ୟାମୀ ମତ ॥ ୩୮
ଅନ୍ତରେ କରିଥିଲେ[୧] ସ୍ଥାନ । କେବେହେଁ ନୁହ ପରିଚ୍ଛିନ୍ନ ॥ ୩୯
ନିବାସ ସର୍ବ ଲୋକଙ୍କର । ଯଦୁମାନଙ୍କ ଅଧୀଶ୍ୱର ॥ ୪୦
ଏ ରୂପେ କୃଷ୍ଣ ଅବତାର । ତୁମ୍ଭଙ୍କୁ ମୋର ନମସ୍କାର ॥ ୪୧
୧୧ ଇଚ୍ଛାଏ ଭକ୍ତମାନଙ୍କର । ଯେ ଧରିଅଛ କଳେବର ॥ ୪୨
ବିଶୁଦ୍ଧ ଜ୍ଞାନମୂର୍ତ୍ତି ପୁଣ । ଯେ ସର୍ବ, ସମସ୍ତ କାରଣ ॥ ୪୩
ଯେ ଆତ୍ମା ସର୍ବଭୂତଙ୍କର । ତୁମ୍ଭଙ୍କୁ ମୋର ନମସ୍କାର ॥ ୪୪
୧୨ ହେ ଭଗବାନ ଯାଗ ହତ । ହୁଅନ୍ତେ ଗୋଷ୍ଠନାଶ ଅର୍ଥ ॥ ୪୫
ଜଳବୃଷ୍ଟିରେ ପବନରେ । ଚେଷ୍ଟା ମୁଁ କଲି ଏ ପ୍ରକାରେ ॥ ୪୬
ମୁଁ ମାନବନ୍ତ ଅତିଶୟେ । କ୍ରୋଧ ଜନ୍ମିଲା ମୋ' ହୃଦୟେ ॥ ୪୭
୧୩ ଯେ ଗର୍ବ ଯେ ଉଦ୍ୟମ ମୋର । ସେ ସର୍ବ ହୋଇଲା ସଂହାର ॥ ୪୮
ରଚିଲ ଅନୁଗ୍ରହ ମୋର । ଯେ ତୁମ୍ଭେ ଗୁରୁ ଅଧୀଶ୍ୱର ॥ ୪୯
ଆତ୍ମାସ୍ୱରୂପ ଅଟ ପୁଣ । ତୁମ୍ଭଙ୍କୁ ପଶିଲି ଶରଣ ॥ ୫୦

ଶ୍ରୀଶୁକ ଉବାଚ

୧୪ ଇନ୍ଦ୍ର ଏମନ୍ତ ରୂପେ ବାଣୀ । କହନ୍ତେ ଭଗବାନ ପୁଣି ॥ ୫୧
ମେଘର ପ୍ରାୟ ଯେ ଗମ୍ଭୀର । ବଚନ ଅଟେ ଆପଣାର ॥ ୫୨
ତେଣେ କହିଲେ ବାସବକୁ । ହସନ୍ତେ ଦେଖିଣ ତାହାକୁ ॥ ୫୩

ଶ୍ରୀଭଗବାନୁବାଚ

୧୫ ହେ ଇନ୍ଦ୍ର ! ଅନୁଗ୍ରହେ ତୋର । ମୁଁ କଲି ଯାଗକୁ ସଂହାର ॥ ୫୪

୧. କରିଥିଲେ = କରିଲେ ହେଁ (ଅନ୍ତଃସ୍ଥତ୍ୱେଽପି) ।

ଇନ୍ଦ୍ରସଂପତ୍ତିରେ ତୁ ଯେଣୁ । ମତ୍ତ ହୋଇଲୁ ସେ କାରଣୁଁ ।। ୫୫

ମୋର ସ୍ମରଣ ଅର୍ଥେ ନିତ୍ୟ । ସେ କଥା କଲି ମୁଁ ବିହିତ ।। ୫୬

୧୬ ଐଶ୍ୱର୍ଯ୍ୟମଦେ ଅନ୍ଧ ନର । ମୋତେ ନ କରଇ ଗୋଚର ।। ୫୭

ଲୋକର ଦଣ୍ଡଦାତା ମୁହିଁ । ଯା' ଅନୁଗ୍ରହକୁ ବାଞ୍ଛଇଁ ।। ୫୮

ସକଳ ସଂପତ୍ତିରୁ ଧ୍ୱଂସ । ତାହାକୁ କରଇ ଅବଶ୍ୟ ।। ୫୯

୧୭ ହେ ଶକ୍ର ! ଗମନ ତୁ କର । ମଙ୍ଗଳ ସମ୍ଭବୁ ତୋହର ।। ୬୦

ଗର୍ବକୁ ଛାଡ଼ ମତ୍ତ ନୋହ । ଯେ ଯାହା ଅଧିକାରେ ଥାଅ ।। ୬୧

ଆଜ୍ଞା ଯେ ଅଟଇ ମୋହର । ପ୍ରତିପାଳନା ତାହା କର ।। ୬୨

୧୮ ନିଜ ସନ୍ତାନମାନଙ୍କରେ । ସହିତ ହୋଇ ତଦନ୍ତରେ ।। ୬୩

ଗୋପାଳସ୍ୱରୂପୀ ଯେ ହରି । ତାହାଙ୍କୁ ସମ୍ବୋଧନ କରି ।। ୬୪

ଯେ ମନସ୍ୱିନୀ ଅଟେ ପୁଣି । କହିଲା ସେ ସୁରଭି ବାଣୀ ।। ୬୫

ଶ୍ରୀସୁରଭିରୁବାଚ

୧୯ ହେ କୃଷ୍ଣ କୃଷ୍ଣ ଜଗତର । ଆତ୍ମାସ୍ୱରୂପ ! ଅଧୀଶ୍ୱର ।। ୬୬

ହେ ମହାଯୋଗି ! ଏ ଜଗତ । ତୋ'ଠାରୁ ଅଟଇ ସଂଭୂତ ।। ୬୭

ହେଲେହେଁ ଇନ୍ଦ୍ରଠାରୁ ହତ । ତୁମ୍ଭେ ସକଳଲୋକନାଥ ।। ୬୮

ତୁମ୍ଭରେ ହୋଇ ନାଥବନ୍ତ । ଆମ୍ଭେ ବର୍ତ୍ତିଲୁଁ ହେ ଅଚ୍ୟୁତ ।। ୬୯

୨୦ ପରମ ଦେବତା ଆମ୍ଭର । ତୁମ୍ଭେ ଯେ ଜଗତ-ଈଶ୍ୱର ।। ୭୦

ଯେ ଧେନୁ-ବିପ୍ର ଯେ ଅମର[୧] । ମଙ୍ଗଳନିମିତ୍ତେ ତାଙ୍କର ।। ୭୧

ଆମ୍ଭର ଇନ୍ଦ୍ର ହୁଅ ତୁମ୍ଭେ । ପ୍ରାର୍ଥନା କରୁଅଛୁଁ ଆମ୍ଭେ ।। ୭୨

୨୧ ହେ ବିଶ୍ୱଆତ୍ମା ଭୂମିଭାର । ନାଶନେ ତୁମ୍ଭ ଅବତାର ।। ୭୩

ବ୍ରହ୍ମାବଚନେ ଆମ୍ଭେମାନେ । ତୁମ୍ଭଙ୍କୁ ଆଜ ଏ ଭୁବନେ ।। ୭୪

ଇନ୍ଦ୍ରରୂପରେ ଅଭିଷେକ । କରିବୁଁ ତୋଷ ହେବେ ଲୋକ ।। ୭୫

ଶ୍ରୀଶୁକ ଉବାଚ

୨୨ | କୃଷ୍ଣଙ୍କୁ ଏମନ୍ତ ପ୍ରକାରେ । କହି ସୁରଭି ନିଜ କ୍ଷୀରେ ।। ୭୬

୨୩ | ରଚିଲା ଅଭିଷେକ ପୁଣ । ଅଇରାବତର କରେଣ ।। ୭୭

ଆକାଶଗଙ୍ଗାର ଯେ ନୀର । ଉଦ୍ଧୃତ, ତେଣେ ପୁରନ୍ଦର ।। ୭୮

ଦେବମାତାଙ୍କ[୨] ବଚନରେ । ସୁରଋଷିଙ୍କ ସହିତରେ ।। ୭୯

କୃଷ୍ଣଙ୍କୁ ଅଭିଷେକ କଲା । ଗୋବିନ୍ଦ ବୋଲି ନାମ ଦେଲା ।। ୮୦

୨୪ ସେଠାରେ ତୁମ୍ବୁରୁ ନାରଦ । ଏ ଆଦି ବିଦ୍ୟାଧର ସିଦ୍ଧ ।। ୮୧

---

୧. ଅମର = ଦେବତା ।

୨. ଦେବମାତା = ଅଦିତି ପ୍ରଭୃତି; ଅଥବା ଦେବତା ଓ ମାତୃ ।

ଗନ୍ଧର୍ବେ ଚାରଣେ ମିଳିଲେ । କୃଷ୍ଣର ଯଶକୁ ଗାଇଲେ ।। ୮୨
ସକଳ ଲୋକର କଲ୍ମଷ । ବିନାଶ କରେ ଯଉଁ ଯଶ ।। ୮୩
ହରଷେ ହୋଇଣ ସଂଯୁତ । ଦେବକାମିନୀ କଲେ ନୃତ୍ୟ ।। ୮୪
୨୫ ଦେବତାଙ୍କର ସମୂହରେ । ମୁଖ୍ୟ ଅଟନ୍ତି ଯଉଁ ସୁରେ ।। ୮୫
କୃଷ୍ଣଙ୍କୁ ସ୍ତୁତି ସେ ବିହିଲେ । ଅଦ୍ଭୁତ ପୁଷ୍ପବୃଷ୍ଟି କଲେ ।। ୮୬
ତିନି ଭୁବନେ ଯେତେ ଲୋକ । ଲଭିଲେ ସେ ପରମ ସୁଖ ।। ୮୭
ଯେ ପୁଣ ଧେନୁମାନେ ଥିଲେ । କ୍ଷୀରେ ପୃଥ୍ୱୀକି ଆର୍ଦ୍ର କଲେ ।। ୮୮
୨୬ ଯେ କ୍ଷୀର ଆଦି ନାନା ରସ । ନଦୀଏ କଲେ ତା' ପ୍ରକାଶ ।। ୮୯
ମଧୁ ସ୍ରବିଲେ ବୃକ୍ଷମାନେ । ଯେ ପକ୍ୱ କର୍ଷଣ ବିହୀନେ ।। ୯୦
ଯହିଁରେ ସେ ଓଷଧିମାନ । ହୋଇଅଛନ୍ତି ବିଦ୍ୟମାନ ।। ୯୧
ସେ ଗିରିମାନେ ଗର୍ଭଗତ । ମଣିକି କଲେ ପ୍ରକାଶିତ ।। ୯୨
୨୭ ହେ କୁରୁସୁତ ! ସ୍ୱଭାବରେ । ଯେ ହିଂସ୍ରମାନେ ଜଗତରେ ।। ୯୩
ଅଭିଷେକରେ ଶ୍ରୀକୃଷ୍ଣର । ସେ ବୈରଭାବ କଲେ ଦୂର ।। ୯୪
୨୮ ଯେ ଗୋ-ଗୋକୁଳ ଅଧୀଶ୍ୱର । ସେ ଗୋବିନ୍ଦର ପୁରନ୍ଦର ।। ୯୫
ଅଭିଷେକକୁ ଏ ପ୍ରକାରେ । କରିଣ ତାହାଙ୍କ ଆଜ୍ଞାରେ ।। ୯୬
ଦେବଆଦିରେ ହୋଇ ବୃତ । ତ୍ରିଦିବେ ହୋଇଲା ମିଳିତ ।। ୯୭
ଗୋବିନ୍ଦ ବୋଲିଣ ଯାହାର । ନାମକୁ ଦେଲା ପୁରନ୍ଦର ।। ୯୮
ସେ କୃଷ୍ଣପାଦେ ଅବିରତ । ନିବିଷ୍ଟ ଦୀନବନ୍ଧୁ ଚିତ୍ତ ।। ୯୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣାଭିଷେକୋ ନାମ
ସପ୍ତବିଂଶୋଽଧ୍ୟାୟଃ ।।

## ଅଷ୍ଟାବିଂଶ ଅଧ୍ୟାୟ

ଅଷ୍ଟାବିଂଶେ ତତୋ ନନ୍ଦାନୟନଂ ବରୁଣାଳୟାତ୍ ।
ବୈକୁଣ୍ଠଦର୍ଶନଂ ଚାଥ ଗୋପାନାମନୁବର୍ଣ୍ଣ୍ୟତେ ।। ୧
ଗୋବର୍ଧନଂ ସମୁଦ୍ଧୃତ୍ୟ ବଶେ କୃତ୍ୱାମରେଶ୍ୱରମ୍ ।
ନନ୍ଦାନୟନତଃ କୃଷ୍ଣୋ ବରୁଣଂ ଚ ବଶେଽନୟତ୍ ।। ୨

ଶ୍ରୀଶୁକ ଉବାଚ

୧ ଏକାଦଶୀରେ ଆହାରକୁ । ଛାଡ଼ିଣ ପୂଜିଣ ବିଷ୍ଣୁଙ୍କୁ ।। ୧
ସ୍ନାନନିମିତ୍ତେ ଦ୍ୱାଦଶୀରେ । ନନ୍ଦ ମିଳିଲେ କାଳିନ୍ଦୀରେ ।। ୨

୨ ନ ଜାଣି ଆସୁରୀ ବେଳାକୁ । [1]ରାତ୍ରେ ପଶିଲା ସଲିଳକୁ ॥ ୩
ବରୁଣଭୃତ୍ୟ ଯେ ଅସୁର । ଘେନି ସେ ନନ୍ଦକୁ ସତ୍ୱର ॥ ୪
ବରୁଣ ରହିଛନ୍ତି ଯହିଁ । ମିଳିଲା ତାଙ୍କ ପାଶେ ଯାଇଁ ॥ ୫
୩| ନନ୍ଦକୁ ନ ଦେଖନ୍ତେ ପୁଣ । ହେ କୃଷ୍ଣ ହେ ରାମ ବୋଲିଣ ॥ ୬
୪| ଗୋପାଳେ କଲେ ରୋଦନକୁ । ବରୁଣ ନେଲା ତୋ' ପିତାକୁ ॥ ୭
ଏମନ୍ତ ଶୁଣି ଭଗବାନ । ମିଳିଲେ ତାର ସନ୍ନିଧାନ ॥ ୮
ହେ ନୃପ ! ନିଜ ଜନଙ୍କର । ଅଭୟଦାତା ଯେ ଈଶ୍ୱର ॥ ୯
୫ ପ୍ରବେଶ ହେଲେ ଭଗବାନ । କରି ତାହାଙ୍କୁ ବିଲୋକନ ॥ ୧୦
ତାହାଙ୍କ ଦରଶନୁଁ ଜାତ । ଉତ୍ସବ ହୋଇଛି ମହତ ॥ ୧୧
ତାହାଙ୍କୁ ବିଶେଷ ପୂଜନ । କରିଣ ବୋଇଲା ବଚନ ॥ ୧୨

ଶ୍ରୀବରୁଣ ଉବାଚ

୬ ଆଜ ମୁଁ ଧଇଲି ଶରୀର । ସଫଳଭାବ ଏ ଦେହର ॥ ୧୩
ସକଳ ରତ୍ନମାନଙ୍କର । ହୋଇଲେ ହେଁ ମୁଁ ଅଧୀଶ୍ୱର ॥ ୧୪
ହେ ଭଗବାନ ଏ ପ୍ରକାରେ । ଅର୍ଥ ନ ଲଭିଛି ପୂର୍ବରେ ॥ ୧୫
୭ ଯହିଁରୁ ଅତିଶୟ ନାହିଁ । ସେ ଅଇଶ୍ୱର୍ଯ୍ୟ ଯାର ଠାଇଁ ॥ ୧୬
ଯେ ପୂର୍ଣ୍ଣ, ସର୍ବଜୀବଙ୍କର । ଯେ ନିୟାମକ ଅଧୀଶ୍ୱର ॥ ୧୭
ଯେ ଲୋକସୃଷ୍ଟି ବିକଳ୍ପନ । ଯେ ମାୟା କରଇ ବିଧାନ ॥ ୧୮
ସେ ମାୟା ନାହିଁ ଯାହା ଠାରେ । ଏମନ୍ତ ଶୁଣିଛୁଁ କର୍ଣ୍ଣରେ ॥ ୧୯
୮| କାର୍ଯ୍ୟ ନ ଜାଣେ, ମୂଢ଼ ପୁଣ । ମୋର ସେବକ ନ ଜାଣିଣ ॥ ୨୦
୯| ଆଣିଲା ପିତାକୁ ତୁମ୍ଭର । ହେ ପ୍ରଭୁ ! ତାହା କ୍ଷମା କର ॥ ୨୧
[2]ତୋ' ପାଦଦର୍ଶନ ନ ପାଇ । ଆଣିଲି ତୋ' ପିତାକୁ ମୁହିଁ ॥ ୨୨
ହେ ପିତାବତ୍ସଳ ଗୋବିନ୍ଦ । ନିଅ ଏ ତୁମ୍ଭ ପିତା ନନ୍ଦ ॥ ୨୩

ଶ୍ରୀଶୁକ ଉବାଚ

୧୦ ଏ ରୂପେ କରାନ୍ତେ ପ୍ରସନ୍ନ । ଅଖିଳେଶ୍ୱର ଭଗବାନ ॥ ୨୪
କରନ୍ତେ ବନ୍ଧୁଙ୍କ ହର୍ଷକୁ । ଘେନିଣ ଅଇଲେ ପିତାଙ୍କୁ ॥ ୨୫
୧୧ ଯେ ମହୋଦୟ ବରୁଣର । ପୂର୍ବେ ନୟନ-ଅଗୋଚର ॥ ୨୬
ନନ୍ଦ ସେ କଥାକୁ ଦେଖିଣ । ତାଙ୍କର କୃଷ୍ଣଠାରେ ପୁଣ ॥ ୨୭
ଦେଖି ମହତ ପ୍ରଣତିକି । ବିସ୍ମୟେ କହିଣ[3] ଜ୍ଞାତିଙ୍କି ॥ ୨୮

---

୧. କଳାର୍ଦ୍ଧାଂ ଦ୍ୱାଦଶୀଂ ଦୃଷ୍ଟ୍ୱା ନିଶୀଥାଦୂର୍ଦ୍ଧ୍ୱମେବ ହି ।
ଆମଧ୍ୟାହ୍ନାଃ କ୍ରିୟାଃ ସର୍ବାଃ କର୍ତ୍ତବ୍ୟାଃ ଶମ୍ଭୁଶାସନାତ୍ ॥ (ସ୍ୱାମୀ)
ଉପର୍ଯ୍ୟୁକ୍ତ ଶାସ୍ତ୍ରବଳରେ ନନ୍ଦ ନିଶିରେ ଜଳରେ ପ୍ରବେଶ କରିଥିଲେ । କିନ୍ତୁ ବରୁଣଭୃତ୍ୟ ଏହା ନ ଜାଣି ତାଙ୍କୁ ନେଇଗଲା ।

୨. ତୋ' ପାଦଦରଶନ ପାଇଁ ।    ୩. କହିଣ = କହିଲା ।

୧୨ ଉତ୍ସୁକ ଭାବରେ ସଂଯୁତ । ହେ ନୃପ ! ଯାହାଙ୍କର ଚିତ୍ତ ॥ ୨୯
କୃଷ୍ଣଙ୍କୁ ସେ ଗୋପାଳମାନେ । ଈଶ୍ୱର ବୋଲି ଜାଣି ମନେ ॥ ୩୦
ଯେ ବ୍ରହ୍ମ ନାମେ ସୂକ୍ଷ୍ମ ଗତି । ଆମ୍ଭଙ୍କୁ ତାହା ଅଧିପତି ॥ ୩୧
ଦେଖାଇବ କି ଏ ପ୍ରକାରେ । ସଂକଳ୍ପ କଲେ ମାନସରେ ॥ ୩୨
୧୩ ଏ ରୂପେ ନିଜ ଜନଙ୍କର । ମନରେ ଜାତ ଯେ ବିଚାର ॥ ୩୩
ସର୍ବଜ୍ଞ ସ୍ୱୟେଂ ତାହା ଜାଣି । ତାଙ୍କ ସଂକଳ୍ପସିଦ୍ଧି ପୁଣି ॥ ୩୪
ନିର୍ବାହ ଅର୍ଥେ କରୁଣାରେ । ବିଚାର କଲେ ଏ ପ୍ରକାରେ ॥ ୩୫
୧୪ ଦେହରେ ଯଉଁ ଅହଂମତି । ତେଣେ ଯେ କାମ ଉତପତି ॥ ୩୬
ସେ କାମେ ଯେ କର୍ମ ଉଦୟ । ତେଣେ ଯେ ଉଚ୍ଚ ନୀଚକାୟ ॥ ୩୭
ତେଣେ ଭ୍ରମନ୍ତେ ଏ ସଂସାର । ନ ଜାଣେ ସ୍ୱଗତିକି ନର ॥ ୩୮
୧୫ ଯେ ମହାକାରୁଣିକ ହରି । ସେ ଏହା ମନେ ଚିନ୍ତା କରି ॥ ୩୯
ତମରୁଁ[1] ପର ସ୍ୱଲୋକ[2]କୁ । ଦେଖାଇଲେ ସେ ଗୋପାଳଙ୍କୁ ॥ ୪୦
୧୬ ଯେ ସତ୍ୟ[3] ଜଡ଼ ଯେ ନୁହଇ । ଯା' ସଂଖ୍ୟା ଏତେ ହୋଇ ନାହିଁ ॥ ୪୧
ସ୍ୱପ୍ରକାଶକ ସନାତନ[4] । ଗୁଣ ବିନାଶେ ମୁନିଜନ ॥ ୪୨
ଯାହାକୁ ହୋଇ ସମାହିତ । ଦର୍ଶନ କରନ୍ତି ନିୟତ ॥ ୪୩
୧୭ ବ୍ରହ୍ମହ୍ରଦକୁ ତାଙ୍କୁ ନେଲେ । ବୁଡ଼ାଇ କୃଷ୍ଣ ଉଦ୍ଧରିଲେ ॥ ୪୪
ଯହିଁରେ କୃଷ୍ଣନିମିତ୍ତରେ । ଅକ୍ରୂର ବୁଡ଼ିଣ ପୂର୍ବରେ ॥ ୪୫
ସେ ଲୋକ କଲେ ଦରଶନ । କାଳିନ୍ଦୀର ସେ ଏକସ୍ଥାନ ॥ ୪୬
ତା' ନାମ ବ୍ରହ୍ମହ୍ରଦ ହୋଇ । ଜଗତେ ବିଖ୍ୟାତ ଅଟଇ ॥ ୪୭
୧୮ ନନ୍ଦ ଆଦି ଯେ ଗୋପଜନ । ସେ ଲୋକ କରି ଦରଶନ ॥ ୪୮
ପରମାନନ୍ଦେ ହେଲେ ସୁଖୀ । କୃଷ୍ଣଙ୍କୁ ପୁଣ ତହିଁ ଦେଖି ॥ ୪୯
ବିସ୍ମୟ ହେଲେ, ଦେବେ ସ୍ତୁତି । ଯଉଁ କୃଷ୍ଣଙ୍କୁ କରୁଛନ୍ତି ॥ ୫୦
ପିତାଙ୍କୁ ହରନ୍ତେ ବରୁଣ । ତାଙ୍କୁ ଆଣିଲେ ଯେ ବା ପୁଣ ॥ ୫୧
ସେ କୃଷ୍ଣପାଦପଦ୍ମ ଚିନ୍ତି । ହରଷ ଦୀନବନ୍ଧୁ ମତି ॥ ୫୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀନନ୍ଦମୋକ୍ଷଣଂ ନାମ
ଅଷ୍ଟାବିଂଶୋଽଧ୍ୟାୟଃ ॥

---

୧. ତମ = ପ୍ରକୃତି
୨. ସ୍ୱଲୋକ = ବ୍ରହ୍ମସ୍ୱରୂପ ବୈକୁଣ୍ଠ ।
୩. ସତ୍ୟ = ଅବାଧ୍ୟ
୪. ସନାତନ = ଶଶ୍ୱତ୍ ସିଦ୍ଧ ।

# ଏକୋନତ୍ରିଂଶ ଅଧ୍ୟାୟ

ଊନତ୍ରିଂଶେ ତୁ ରାସାର୍ଥମୁକ୍ତିପ୍ରତ୍ୟୁକ୍ତଯୋ ହରେଃ ।
ଗୋପୀଭୀ ରାସସଂରମ୍ଭେ ତସ୍ୟ ଚାନ୍ତର୍ଦ୍ଧିକୌତୁକମ୍ ॥ ୧
ବ୍ରହ୍ମାଦିଜୟସଂରୂଢ଼ଦର୍ପକନ୍ଦର୍ପଦର୍ପହା ।
ଜୟତି ଶ୍ରୀପତିର୍ଗୋପୀରାସମଣ୍ଡଳମଣ୍ଡନଃ ॥ ୨

ଶ୍ରୀଶୁକ ଉବାଚ

୧ ଯହିଁ ଶରଦ ଆଗମନେ । ଫୁଟି ଅଛନ୍ତି ମଲ୍ଲୀମାନେ ॥ ୧
ସେ ରାତ୍ରୀମାନ ଦେଖି ହରି । ଯୋଗମାୟାଙ୍କୁ ଆଶ୍ରେ କରି ॥ ୨
ରମଣ କରିବା ନିମିତ୍ତେ । ବିଚାର କଲେ ନିଜ ଚିତ୍ତେ ॥ ୩
୨ ପ୍ରିୟ ଯେସନେ ଦୂରେ ଥାଇ । ଅନେକ କାଳେ ଦେଖା ଦେଇ ॥ ୪
ନିଜ ବନିତାର ବଦନ । କୁଙ୍କୁମେ କରଇ ଲେପନ ॥ ୫
ସେକାଳେ ସେହି ପରକାରେ । ସୁଖଦାୟକ ନିଜ କରେ ॥ ୬
ଅରୁଣ ବର୍ଣ୍ଣରେ ଲେପନ । କରନ୍ତେ 'ପ୍ରାଚୀ'ର ବଦନ ॥ ୭
ସକଳ ପ୍ରାଣିମାନଙ୍କର । କରନ୍ତେ ତାପକୁ ସଂହାର ॥ ୮
ତାରାମାନଙ୍କ ଅଧିପତି । ଅମ୍ବର ତଳେ କଲା ସ୍ଥିତି ॥ ୯
୩ ଯେ ରମାବଦନସମାନ । ନବୀନ କୁଙ୍କୁମବରଣ ॥ ୧୦
ଅଖଣ୍ଡ ଅଟେ ବିମ୍ବ ଯାର । ଦେଖି ଏମନ୍ତ ସୁଧାକର ॥ ୧୧
ତା' ନବକିରଣ ପ୍ରକାଶେ । ଶୋଭାକୁ ଦେଖି ବନଦେଶେ ॥ ୧୨
ମୁରଲୀ ନିବେଶି ଅଧରେ । ଗାୟନ କଲେ କଳସ୍ୱରେ ॥ ୧୩
ଯେବଣ ବେଣୁଗୀତସ୍ୱନ । ହରଇ ବନିତାଙ୍କ ମନ ॥ ୧୪
୪ ଅନଙ୍ଗ[୧]ବର୍ଦ୍ଧନ ସେ ଗୀତ । ହୁଅନ୍ତେ ଶ୍ରୁତିପଥଗତ ॥ ୧୫
କୃଷ୍ଣେ ନିବିଷ୍ଟ ଯାଙ୍କ ମନ । ସେ ସର୍ବ ବ୍ରଜବଧୂଜନ ॥ ୧୬
ଏକକୁ ଆରକ ଲୁଚାଇ । ଅଇଲେ ସସଂଭ୍ରମ ହୋଇ ॥ ୧୭
ସେ ନିଜ କାନ୍ତ ଯଉଁଠାରେ । ଗାଉ ଅଛନ୍ତି କଳସ୍ୱରେ ॥ ୧୮
ସତ୍ୱରଗମନେ କୁଣ୍ଡଳ । କର୍ଣ୍ଣରେ ହୁଅନ୍ତି ଚଞ୍ଚଳ ॥ ୧୯
୫ ଦୁହୁଁଣ ଥିଲେ କେହୁ ଗାଈ । ଛାଡ଼ି ଉତ୍ସୁକେ ଗଲେ ଧାଇଁ ॥ ୨୦
ଗୋଧୂମପକ୍ୱଅନ୍ନ କ୍ଷୀର । ବସାଇଥିଲେ କେ ଚୁଲ୍ଲୀର ॥ ୨୧
ଚୁଲ୍ଲୀରୁ ତାହା ନ ଓହ୍ଲାଇ । ଗଲେ ସେମାନେ ତ୍ୱରା ହୋଇ ॥ ୨୨
୬ ପରଷୁ ଥିଲେ ଯେହୁ ଅନ୍ନ । ତା' ଛାଡ଼ି କଲେ ସେ ଗମନ ॥ ୨୩
କେ କ୍ଷୀର ପିଆନ୍ତେ ଶିଶୁଙ୍କୁ । ସେବା କରନ୍ତେ କେ ଭର୍ତ୍ତାଙ୍କୁ ॥ ୨୪
ଭୁଞ୍ଜନ୍ତେ କହୁଣିସି ମାନେ । ଛାଡ଼ି ତା' ଚଳିଲେ ବିପିନେ ॥ ୨୫

---

୧. ଅନଙ୍ଗ = କାମଦେବ ।

୭ ବୋଲନ୍ତେ କୁଙ୍କୁମାଦିମାନ । କେ ଦେହ କରନ୍ତେ ମାର୍ଜନ ॥ ୨୬
ଲୋଚନଯୁଗକୁ ଅଞ୍ଜନେ । ରଞ୍ଜନ୍ତେ କହୁଣିସିମାନେ ॥ ୨୭
କେ ବସ୍ତ୍ର ଆଭରଣମାନ । ତ୍ୱରାଏ ଆନ ଆନ ସ୍ଥାନ ॥ ୨୮
ସଂଭ୍ରମେ ନିବେଶିତ କଲେ । କୃଷ୍ଣର ନିକଟକୁ ଗଲେ ॥ ୨୯
୮ ପତି, ଜନକ, ବନ୍ଧୁ, ଭାଇ । ତାହାଙ୍କୁ ନିବାରନ୍ତେ ଯାଇଁ ॥ ୩୦
ମାୟାରେ ମୋହିତ ହୋଇଣ । କେହୁ ନ ଲେଉଟିଲେ ପୁଣ ॥ ୩୧
ଯେଣୁ ସେମାନଙ୍କର ଚିତ୍ତ । ହରିଅଛନ୍ତି ନନ୍ଦସୁତ ॥ ୩୨
୯ କେବଣ ଗୋପୀମାନେ ତହିଁ । ଗୃହମଧ୍ୟରେ ଥିଲେ ରହି ॥ ୩୩
ରୁନ୍ଧନ୍ତେ ପତିମାନେ ଦ୍ୱାର । ହୋଇ ନ ପାରିଣ ବାହାର ॥ ୩୪
ଭାବନାବଳରେ ଲୋଚନ । ବୁଜି କୃଷ୍ଣଙ୍କୁ କଲେ ଧ୍ୟାନ ॥ ୩୫
୧୦ କୃଷ୍ଣସଙ୍ଗତେ ଯେ ବିରହ । ସ୍ୱଭାବେ ଅଟଇ ଦୁଃସହ ॥ ୩୬
ତେଣୁ ଯେ ଜାତ ତୀବ୍ରତାପ । ତେଣେ ଖଣ୍ଡିଲା ସର୍ବପାପ ॥ ୩୭
ମିଳନ୍ତେ ଧ୍ୟାନପଥେ ହରି । ତାହାଙ୍କୁ ଆଲିଙ୍ଗନ କରି ॥ ୩୮
ସେ ସୁଖେ କଲେକ ଖଣ୍ଡନ । ସ୍ୱର୍ଗାଦି ଭୋଗ ପୁଣ୍ୟମାନ ॥ ୩୯
୧୧ ସକଳ ପ୍ରାଣିମାନଙ୍କର । ପରମ ଆତ୍ମା ଦାମୋଦର ॥ ୪୦
ଜାର ବୁଦ୍ଧିରେହେଁ ତା'ଠାରେ । ସଙ୍ଗମ ଲଭିଣ ସଂସାରେ ॥ ୪୧
ଛାଡ଼ିଲେ ଗୁଣମୟ ତନୁ । ମୁକ୍ତିକି ଲଭିଣ ବନ୍ଧନୁଁ ॥ ୪୨

ଶ୍ରୀପରୀକ୍ଷିଦୁବାଚ

୧୨ କୃଷ୍ଣଙ୍କୁ କେବଳ ସୁନ୍ଦର । ମଣିଲେ ସେ ଗୋପୀନିକର ॥ ୪୩
ଭୋ ମୁନି ! ତାଙ୍କୁ ବ୍ରହ୍ମଭାବେ । ଜାଣି ନ ପାରିଲେ ସେ ଯେବେ ॥ ୪୪
ଗୁଣରେ ନିବେଶିତମତି[୧] । ଅଟନ୍ତି ସେ ବ୍ରଜଯୁବତୀ ॥ ୪୫
ସଂସାରପ୍ରବାହ ତାଙ୍କର । କେମନ୍ତେ ହୋଇଲା ସଂହାର ॥ ୪୬

ଶ୍ରୀଶୁକ ଉବାଚ

୧୩ କହି ଯେ ଥାଇ ତୋ' ଆଗରେ । ବିରୋଧ କରି କୃଷ୍ଣଠାରେ ॥ ୪୭
ଯେମନ୍ତେ ଦମଘୋଷସୁତ । ମୋକ୍ଷକୁ ଲଭିଲା ତୁରିତ ॥ ୪୮
କୃଷ୍ଣରେ ଯାହାଙ୍କର ପ୍ରୀତି । ସେ କିମ୍ପା ନ ଲଭିବେ ମୁକ୍ତି ॥ ୪୯
୧୪ ଯେ ହରି ନିର୍ଗୁଣ ଅବ୍ୟୟ । ଗୁଣସ୍ୱରୂପୀ ଅପ୍ରମେୟ ॥ ୫୦
ପ୍ରାଣିଙ୍କ ମୋକ୍ଷ ଅର୍ଥେ ତାର । ହେ ନୃପ ! ଅଟେ ଅବତାର ॥ ୫୧
୧୫ ଯେ କାମ କ୍ରୋଧ ଭୟ ପ୍ରୀତି । ମିତ୍ରଭାବନା ଐକ୍ୟମତି ॥ ୫୨
ନିତ୍ୟେ କରନ୍ତି ବିଷ୍ଣୁଠାରେ । ପଶନ୍ତି ସେ ବିଷ୍ଣୁଶରୀରେ ॥ ୫୩

୧. ନିଷେବିତମତି ।

୧୬ ଯେ ଯୋଗେଶ୍ୱରମାନଙ୍କର । ଉପରେ ଅଟନ୍ତି ଈଶ୍ୱର ॥
ସ୍ଥାବର ଆଦି ଏ ଜଗତ । ଯା'ଠାରୁ ହୁଅନ୍ତି ମୁକତ ॥
ସେ ବିଷ୍ଣୁଠାରେ ଏ ପ୍ରକାର । ବିସ୍ମୟବୁଦ୍ଧି ତୁ ନ କର ॥
୧୭ ଗୋପୀ ଆପଣା ନିକଟକୁ । ଆସିବା ଦେଖିଣ ତାହାଙ୍କୁ ॥
ବଚନବିଳାସରେ ମୋହି । କହିଲେ ତାଙ୍କୁ ଭାବଗ୍ରାହୀ ॥
ନର୍ମବକତାମାନଙ୍କର । ମଧ୍ୟେ ଅଟନ୍ତି ଯେଣୁ ବର ॥

ଶ୍ରୀଭଗବାନୁବାଚ

୧୮ ହେ ମହାଭାଗ୍ୟବତୀମାନେ । ସୁଖେ ଅଇଲ ଟିକି ବନେ ॥
କି ପ୍ରିୟ କଥା ମୁଁ ତୁମ୍ଭର । କରିବି କହ ମୋ' ଆଗର ॥
ପ୍ରଥମ ପ୍ରଶ୍ନ ଏ ମୋହର । କୁଶଳ କହ ଗୋ ବ୍ରଜର ॥
ତୁମ୍ଭ ଆସିବାର କାରଣ । କି ଅଛି ସେ କଥା ହିଁ ଭଣ ॥
୧୯ ସ୍ୱଭାବେ ଏହୁ ରଜନୀର । ରୂପ ଅଟଇ ଭୟଙ୍କର ॥
ଏଥିରେ ଘୋର ଜନ୍ତୁମାନେ । ଭ୍ରମୁଣଥାନ୍ତି ସ୍ଥାନେ ସ୍ଥାନେ ॥
ତୁମ୍ଭେ ପୁରୁଷ ନୋହ, ବାମା । ସମସ୍ତେ ଅଟ ସୁମଧ୍ୟମା ॥
ବ୍ରଜକୁ ଯାଅ ସେ କାରଣେ । ଏଠାରେ ନ ଥାଅ ଗୋ କ୍ଷଣେ ॥
୨୦ ତୁମ୍ଭଙ୍କୁ ନ ଦେଖି ସଦନେ । ଜନକ ଜନନୀ ନନ୍ଦନେ ॥
ନିଜ ବଲ୍ଲଭ ସହୋଦରେ । ଖୋଜୁଅଛନ୍ତି ଗୋକୁଳରେ ॥
ସେ ବନ୍ଧୁମାନଙ୍କର ଚିତ୍ତ । ଭୟକୁ ନ କରାଅ ଜାତ ॥
୨୧ ବିପିନ ଶୋଭା ଦେଖିବାକୁ । ଯେବେ ଗୋ ଅଇଲ ଏଠାକୁ ॥
ତେବେ[୧]ତ ଦେଖିଲ ବିପିନ । ଫୁଟି ଅଛନ୍ତି ପୁଷ୍ପମାନ ॥
ପଡ଼ିଣ ପୂର୍ଣ୍ଣଚନ୍ଦ୍ର କର[୨] । ଦିଶୁଅଛି ଏ ମନୋହର ॥
ମିଶିଣ ଯମୁନାସଲିଳେ । ବହୁଅଛନ୍ତି ଯେ ଅନିଳେ ॥
ତାହାଙ୍କ ଲୀଳାରେ କଂପିତ । ତରୁପଲ୍ଲବରେ ମଣ୍ଡିତ[୩] ॥
୨୨ ସେ ଘେନି ବିଳମ୍ୱ ନ କର । ଗୋଷ୍ଠକୁ ଚଳ ଗୋ ସତ୍ୱର ॥
ତୁମ୍ଭେ ସମସ୍ତେ ସତୀଜନ । ପତିଙ୍କି କର ଗୋ ସେବନ ॥
କାନ୍ଦୁଅଛନ୍ତି ବାଳମାନେ । ବତ୍ସାଏ ଗୋଦୋହନ ସ୍ଥାନେ ॥
ତାଙ୍କୁ କରାଅ କ୍ଷୀରପାନ । ଧେନୁଙ୍କୁ କର ଗୋ ଦୋହନ ॥
୨୩ ଅଥବା ଅଇଲ ବିପିନେ । ମୋ'ଠାରେ ସ୍ନେହବଶ ମନେ ॥
ଉଚିତ ଅଟଇ ଏ ରୀତି । ମୋଠାରେ ଜନ୍ତୁଙ୍କର ପ୍ରୀତି ॥
୨୪ ଆଗୋ କଲ୍ୟାଣବତୀମାନେ । ଯେ ପତିସେବା ଶୁଦ୍ଧମନେ ॥
ତାହାର ଯେତେ ବନ୍ଧୁ ଜନ । ସେମାନଙ୍କର ଯେ ପାଳନ ॥

---

୧. ତେବେ = ଏବେ । ୨. କର = କିରଣ । ୩. ମଣ୍ଡିତ = ଶୋଭିତ ।

| | | | |
|---|---|---|---|
| | ପୁତ୍ର ଦୁହିତା ଯେ ବା ପୁଣ | ତାଙ୍କର ଯେ ଅନୁପୋଷଣ | ॥ ୮୪ |
| | ସ୍ତିରୀମାନଙ୍କର ସର୍ବଥା | ପରମ ଧର୍ମ ଏତେ କଥା | ॥ ୮୫ |
| ୨୫ | ଦୁଃଶୀଳ ବୃଦ୍ଧ ଅଶୋଭନ | ଜଡ଼ ରୋଗାର୍ତ୍ତ ଅକିଂଚନ | ॥ ୮୬ |
| | ଏମନ୍ତ ହୋଇଲେହେଁ ଧବ | ଯେବେ ପାତକୀ ନୋହିଥିବ | ॥ ୮୭ |
| | ତାଙ୍କୁ ସ୍ତିରୀଏ ନ ଛାଡ଼ିବେ | ଯେବେ ସ୍ୱର୍ଗକୁ ବାଞ୍ଛିଥିବେ | ॥ ୮୮ |
| ୨୬ | ଜାର ପୁରୁଷେ ଯେବେ ପ୍ରୀତି | କରଇ କୁଳର ଯୁବତୀ | ॥ ୮୯ |
| | ତାହାର ସ୍ୱର୍ଗଗତି ଯେହି | ତକ୍ଷଣେ ବିନାଶ ହୁଅଇ | ॥ ୯୦ |
| | ଯଶ ହିଁ ନାଶେ ତୁଚ୍ଛ ଅଟେ | ବହୁତ କଷ୍ଟ ତହିଁ ଘଟେ | ॥ ୯୧ |
| | ଭୟକୁ ଜନମ ସେ କରେ | ନିନ୍ଦିତ ଅଟେ ସବୁଠାରେ | ॥ ୯୨ |
| ୨୭ | ଦୂରରେ ଥାଇ ଯଉଁ ଜନ | ଶୁଣଇଁ ମୋର ଗୁଣମାନ | ॥ ୯୩ |
| | ମୋ ରୂପ କରେ ଦରଶନ | କରଇ ସ୍ମରଣ କୀର୍ତ୍ତନ | ॥ ୯୪ |
| | ମୋ ଠାରେ ଯେ ଭାବ ଲଭଇ | ନିକଟେ ସେରୂପେ ନ ପାଇ | ॥ ୯୫ |
| | ସେ ଘେନି କରି ତୁମ୍ଭେମାନେ | ଚଳ ଗୋ ଯେ ଯାହା ଭୁବନେ | ॥ ୯୬ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୨୮ | ଏ ରୂପେ [1]ବିପ୍ରିୟ ବଚନ | ଶୁଣି କୃଷ୍ଣର ଗୋପୀଜନ | ॥ ୯୭ |
| | ଚିନ୍ତା ଲଭିଲେ ଅପ୍ରମିତ | ହୋଇଲା ମନୋରଥ ହତ | ॥ ୯୮ |
| ୨୯ | ଶୋକଜନିତ ନିଃଶ୍ୱାସରେ | ଶୁଖୁ ଅଛନ୍ତି ବିମ୍ବାଧରେ | ॥ ୯୯ |
| | ବଦନମାନଙ୍କୁ ଲୁଆଁଇ | ଚରଣେ ଲେଖୁଥାନ୍ତେ ମହୀ | ॥ ୧୦୦ |
| | କଜ୍ଜଳ ମିଶି ଅଶ୍ରୁଧାର | ପଡ଼ନ୍ତେ କୁଚର ଉପର | ॥ ୧୦୧ |
| | କୁଚକୁଙ୍କୁମମାନ[2] ତେଣେ | ଧୋଉ ଅଛନ୍ତି ଅନୁକ୍ଷଣେ | ॥ ୧୦୨ |
| | ଏ ରୂପେ ଅତି ଦୁଃଖଭରେ | ରହିଲେ ମଉନ ଭାବରେ | ॥ ୧୦୩ |
| ୩୦ | ଛାଡ଼ି ସକଳ କାମମାନ | ଅଇଲେ ଯାହା ପାଇଁ ବନ | ॥ ୧୦୪ |
| | ସେ କୃଷ୍ଣ ନିଷ୍ଠୁର ବଚନ | କହନ୍ତେ ଅପ୍ରିୟ ଯେସନ | ॥ ୧୦୫ |
| | ନେତ୍ରୁଁ ଲୋତକ ପୋଛି କରେ | କିଂଚିତ ମାତ୍ରକ କୋପରେ | ॥ ୧୦୬ |
| | ଶୁଭଇ ଗଦଗଦ ବାଣୀ | ସରାଗେ କହିଲେ ତରୁଣୀ | ॥ ୧୦୭ |

ଶ୍ରୀଗୋପ୍ୟ ଉଚୁଃ

| | | | |
|---|---|---|---|
| ୩୧ | ହେ ପ୍ରଭୁ ! ନିରାଶ ବଚନ | ଏ ରୂପେ ନ କର ରଚନ | ॥ ୧୦୮ |
| | ସର୍ବ ବିଷୟ ଦୂର କରି | ତୋ' ପାଦମୂଳ ଅନୁସରି | ॥ ୧୦୯ |
| | ପ୍ରବେଶ ହେଲୁଁ ଆମ୍ଭେମାନେ | ଆମ୍ଭଙ୍କୁ ନ ଛାଡ଼ ଏ ସ୍ଥାନେ | ॥ ୧୧୦ |
| | ମୋକ୍ଷକୁ ବାଞ୍ଛନ୍ତି ଯେ ଜନ | ତାହାଙ୍କୁ ଭଜନ୍ତି ଯେସନ | ॥ ୧୧୧ |
| | ସକଳ ଜଗତ କାରଣ | ଆଦି ପୁରୁଷ ନାରାୟଣ | ॥ ୧୧୨ |

୧. ବିପ୍ରିୟ = ଅପ୍ରିୟ । ୨. ମାନ = ମାନଙ୍କୁ ।

୩୨ ପତି ତନୟ ବନ୍ଧୁଜନ । ଏହାଙ୍କୁ କରିବ ସେବନ ।। ୧୧୩
ନାରୀମାନଙ୍କ ଧର୍ମ ଏହି । ତୁମ୍ଭେ ଧର୍ମଜ୍ଞ ଅଛ କହି ।। ୧୧୪
ଏ ଉପଦେଶେ ଗୁରୁ ତୁମ୍ଭେ । ତୁମ୍ଭଙ୍କୁ ସେବା କରୁଁ ଆମ୍ଭେ ।। ୧୧୫
ପ୍ରାଣିଙ୍କ ଆତ୍ମା ବନ୍ଧୁଜନ । ବଲ୍ଲଭ ତୁମ୍ଭେ ଭଗବାନ ।। ୧୧୬
୩୩ ତୁମ୍ଭେ ନିତ୍ୟରେ ପ୍ରିୟ ଯେଣୁ । ନିପୁଣ ଜନମାନେ ତେଣୁ ।। ୧୧୭
ପ୍ରୀତି କରନ୍ତି ତୁମ୍ଭଠାରେ । [1]କି କାର୍ଯ୍ୟ ପତି ପୁତ୍ରାଦିରେ ।। ୧୧୮
ଯେ ବା ସଂସାରେ ବନ୍ଧୁଜନ । ଦିଅନ୍ତି ନାନା ଦୁଃଖମାନ ।। ୧୧୯
ତେଣୁ ହେ ବରଦ-ଈଶ୍ୱର । ପ୍ରସନ୍ନ ହୁଅ ଆମ୍ଭ ଠାର ।। ୧୨୦
ଅନେକ କାଳୁଁ ତୋହଠାରେ । ଆଶାକୁ କରିଛୁଁ ନିର୍ଭରେ ।। ୧୨୧
ସେ ଆଶା ନ କର ଛେଦନ । ଭୋ ନାଥ ପଙ୍କଜଲୋଚନ ।। ୧୨୨
୩୪ ଯେ ସୁଖେ ମିଳେ ଗୃହାରମ୍ଭେ । ସେ ମନ ହରିନେଲ ତୁମ୍ଭେ ।। ୧୨୩
ଗୃହକୃତ୍ୟରେ ଯେ ପଶଇ । ହରିଲ ସେହୁ କର ଦୁଇ ।। ୧୨୪
ଚରଣତଳରୁ ତୁମ୍ଭର । ଏ ପାଦଯୁଗଳ ଆମ୍ଭର ।। ୧୨୫
ପହଣ୍ଡେ ହେଁ ତ ଚଳୁନାହିଁ । ବ୍ରଜକୁ ଯିବୁଁ ଆମ୍ଭେ କେହି[2] ।। ୧୨୬
ବ୍ରଜରେ ହୋଇଣ ପ୍ରବେଶ । ଆମ୍ଭେ କରିବୁଁ ଅବା କିସ ।। ୧୨୭
୩୫ ତୋହର ହାସାବଲୋକନେ । ମଧୁର କଳ ଗୀତସ୍ୱନେ ।। ୧୨୮
ଭୋ ନାଥ ହୃଦୟେ ଆମ୍ଭର । ଜଳିଲା କାମବୈଶ୍ୱାନର ।। ୧୨୯
ସିଞ୍ଚିଣ ଅଧର-ଅମୃତ । ସେ କାମ-ଅଗ୍ନି କର ହତ ।। ୧୩୦
ନୋହିଲେ ସେ କାମ-ଅନଳେ । ଦହନ ହୋଇଣ ସକଳେ ।। ୧୩୧
ତୋ’ ପାଦପଦବୀକି ଧ୍ୟାନେ । ଲଭିବୁଁ ନିଶ୍ଚେ ଆମ୍ଭେମାନେ ।। ୧୩୨
୩୬ ହେ ପଦ୍ମନେତ୍ର ! କିଛୁବେଳେ । ଥାଅ ଅରଣ୍ୟଜନମେଳେ ।। ୧୩୩
ତୁମ୍ଭର ଚରଣଯୁଗଳ । କରଇ ଲକ୍ଷ୍ମୀର ମଙ୍ଗଳ ।। ୧୩୪
ଯଉଁ ଦିନରୁ ଆମ୍ଭେମାନେ । ଛୁଇଁଲୁ ତାହା ଶୁଦ୍ଧମନେ ।। ୧୩୫
ଆନନ୍ଦ ଲଭିଣ ତୋହରେ । ସେଦିନୁଁ ଆନର ଆଗରେ ।। ୧୩୬
ଠିଆ ହେବାକୁ ଆମ୍ଭେମାନେ । ସମର୍ଥ ନୋହୁଁ ଏ ଭୁବନେ ।। ୧୩୭
୩୭ କଟାକ୍ଷପାତକୁ ଯାହାର । ପ୍ରୟାସ ଆନ ସୁରଙ୍କର ।। ୧୩୮
ସେ ଲକ୍ଷ୍ମୀ ବକ୍ଷସ୍ଥଳେ ତୋର । କରିଣ ଥିଲେହେଁ ମନ୍ଦିର ।। ୧୩୯
ତୋହର ପାଦପଦ୍ମଧୂଳି । ଭୃତ୍ୟେ ହୁଅନ୍ତି ଯାହା ବୋଲି ।। ୧୪୦
ସପତ୍ନୀ ତୁଳସୀସହିତେ । ବାଞ୍ଛିଲା ତାହା ଅବିରତେ ।। ୧୪୧
ଆମ୍ଭେ ହେଁ ତାର ପ୍ରାୟେ ଜାଣ । ସେ ପାଦରଜରେ ଶରଣ ।। ୧୪୨

---

୧. “କିଂ ପ୍ରଜୟା କରିଷ୍ୟାମୋ ଯେଷାଂ ନୋଽୟମାତ୍ମା ଲୋକଃ” (ସ୍ୱାମୀ) ।
୨. କେହି = କିପରି ।

୩୮ ଏଣୁ ହେ ଦୁଃଖବିନାଶନ । ଆମ୍ଭଙ୍କୁ ହୁଅସି ପ୍ରସନ୍ନ ॥ ୧୪୩
ଛାଡ଼ିଣ ନିଜ ଗୃହମାନ । ତୋର ସେବାରେ ଦେଇ ମନ ॥ ୧୪୪
ଚରଣତଳକୁ ତୋହର । ଅଇଲୁଁ ହୋଇଣ ସତ୍ୱର ॥ ୧୪୫
ମଧୁର ମନ୍ଦହାସ ତୋର । କଟାକ୍ଷଭଙ୍ଗୀ ମନୋହର ॥ ୧୪୬
ତେଣେ ମଦନ ଅତିଶୟ । ତାପିଛି ଆମ୍ଭର ହୃଦୟ ॥ ୧୪୭
ତୋ' ପାଦପଦ୍ମେ ଦାସୀପଣ । ଦିଅ ହେ ପୁରୁଷଭୂଷଣ ॥ ୧୪୮
୩୯ ଅଳକେ ଆବୃତ ଆନନ । କୁଣ୍ଡଳେ ଗଣ୍ଡ ଶୋଭମାନ ॥ ୧୪୯
ଅଧରେ ଅମୃତ ପ୍ରକାଶେ । ହସି ଚାହିଁମା ରମ୍ୟ ଦିଶେ ॥ ୧୫୦
ଅଭୟ ଦାନ ଯେ କରଇ । ସେ ଚାରୁ ଭୁଜଦଣ୍ଡ ଦୁଇ ॥ ୧୫୧
ଲକ୍ଷ୍ମୀବିଳାସପ୍ରଦ ଉର । ଏମାନ ଦେଖିଣ ତୁମ୍ଭର ॥ ୧୫୨
ଆମ୍ଭେ ସକଳେ ଦାସୀ ତୋର । ହୋଇବୁଁ ଆହେ ଦାମୋଦର ॥ ୧୫୩
୪୦ ତୋର ମଧୁର ସ୍ୱରଗୀତ । ସ୍ୱଭାବେ ଅଟଇ ବିଦିତ ॥ ୧୫୪
ତେଣେ ମୋହିତଚିତ୍ତ ହେବ । ସତୀବ୍ରତରୁ ନ ଚଳିବ ॥ ୧୫୫
ତିନି ଭୁବନରେ ସୁନ୍ଦର । ଏ ରୂପ ଦେଖି ପୁଣ ତୋର ॥ ୧୫୬
ତ୍ରୈଲୋକ୍ୟେ ଅଛି କଉଁ ନାରୀ । ରହିବ ଧୈର୍ଯ୍ୟକୁ ସେ ଧରି ॥ ୧୫୭
ଯେବଣ ରୂପକୁ ଦେଖିଣ । ଖଗ-ଗୋ-ମୃଗ-ଦ୍ରୁମଗଣ ॥ ୧୫୮
ପୁଲକମାନଙ୍କୁ ଶରୀରେ । ଧଇଲେ ବିପିନ ମଧ୍ୟରେ ॥ ୧୫୯
୪୧ ଆଦି ପୁରୁଷ ଭଗବାନ । ଦେବଙ୍କୁ ପାଳଇ ଯେସନ ॥ ୧୬୦
ସେ ରୂପେ ବ୍ରଜଜନଙ୍କର । ତୁ ଜାତ ଭୟ-ଶୋକହର ॥ ୧୬୧
ତେଣୁ ହେ ଆରତସୋଦର । ଆମ୍ଭେ ଯେ କିଂକରୀ ତୋହର ॥ ୧୬୨
ଆମ୍ଭର ମଦନେ ତାପିତ । କୁଚଯୁଗଳ ଅବିରତ ॥ ୧୬୩
ସେ କୁଚଯୁଗେ, ମସ୍ତକରେ । କରପଙ୍କଜ ଦିଅ ଧୀରେ ॥ ୧୬୪

ଶ୍ରୀଶୁକ ଉବାଚ

୪୨ ଏମନ୍ତରୂପେ ଦୈନ୍ୟବାଣୀ । ସେ ଗୋପୀମାନଙ୍କର ଶୁଣି ॥ ୧୬୫
ସେ ଯୋଗେଶ୍ୱରଙ୍କ ଈଶ୍ୱର । ସଦୟେ ହସି ବେଣୁଧର ॥ ୧୬୬
ଆତ୍ମାରାମ ହିଁ ହୋଇଲେଣ । ଗୋପୀଙ୍କି କଲେ ସେ ରମଣ ॥ ୧୬୭
୪୩ ତାଙ୍କର ପ୍ରିୟ ଦରଶନେ । ବିକଶିଛନ୍ତି ମୁଖମାନେ ॥ ୧୬୮
ଘେନି ସେ ସକଳଙ୍କୁ ସଙ୍ଗେ । ନାନାପ୍ରକାର ଚେଷ୍ଟାରଙ୍ଗେ ॥ ୧୬୯
ହାସସମୟେ ପ୍ରକାଶନ୍ତି । ତାଙ୍କ ଦଶନକୁନ୍ଦକାନ୍ତି ॥ ୧୭୦
ତାରାଙ୍କ ମଧ୍ୟେ ଚନ୍ଦ୍ର ଜାଣି । ଶୋଭା ପାଇଲେ ବେଣୁପାଣି ॥ ୧୭୧
୪୪ ଗୋପୀଏ କରି ନାନା ତାନ । କୃଷ୍ଣଙ୍କୁ କରନ୍ତି ଗାୟନ ॥ ୧୭୨
କୃଷ୍ଣ ହିଁ କରି ଉଚ୍ଚ ସ୍ୱର । ଗାୟନ କରନ୍ତି ମଧୁର ॥ ୧୭୩

| | | | | | |
|---|---|---|---|---|---|
| | ବନିତାଶତଯୂଥ ପାଳେ | । | ବଇଜୟନ୍ତୀ ମାଳା ଗଳେ | ।। | ୧୭୪ |
| | ଧରିଣ ଭ୍ରମିଲେ ବନରେ | । | ବନ ହିଁ ଶୋଭା ଦିଶେ ତାରେ | ।। | ୧୭୫ |
| ୪୫ | ଯହିଁରେ କର୍ପୂରସମାନ | । | ବାଲୁକା ଦିଶନ୍ତି ଶୋଭନ | ।। | ୧୭୬ |
| | ଯହିଁ ତରଙ୍ଗସଙ୍ଗୁଁ ଶୀତ | । | ବହେ କୁମୁଦଗନ୍ଧବାତ | ।। | ୧୭୭ |
| | ଗୋପୀଙ୍କି ଘେନି ସଙ୍ଗତରେ | । | ବସି ସେ ନଦୀପୁଳିନରେ | ।। | ୧୭୮ |
| ୪୬ | ବାହୁଯୁଗଳକୁ ପ୍ରସାରି | । | ନିବିଡ଼ ଆଲିଙ୍ଗନ କରି | ।। | ୧୭୯ |
| | କର ଅଳକ ଉରୁ ସ୍ତନ | । | ନୀବୀ କରିଣ ସ୍ୱରଶନ | ।। | ୧୮୦ |
| | ନଖାଗ୍ର ମାରି ପରିହାସେ | । | ଲୀଳାଚାହାଣି ମନ୍ଦହାସେ | ।। | ୧୮୧ |
| | ଗୋପୀଙ୍କ କାମ କରି ଜାତ | । | ରମିଲେ ତାଙ୍କୁ ନନ୍ଦସୁତ | ।। | ୧୮୨ |
| ୪୭ | ଏ ରୂପେ କଲେହେଁ ସୁରତ | । | ଯା' ଚିତ୍ତ ନୋହେ ଆସକତ | ।। | ୧୮୩ |
| | ସେ କୃଷ୍ଣଠାରୁ ଏ ପ୍ରକାରେ | । | ମାନନା ଲଭିଣ ଭାଗ୍ୟରେ | ।। | ୧୮୪ |
| | ଭୂମିରେ ଛନ୍ତି ଯେତେ ନାରୀ | । | ତାହାଙ୍କ ଠାରୁ ଶ୍ରେଷ୍ଠ କରି | ।। | ୧୮୫ |
| | ଆତ୍ମାକୁ ମଣିଲେ କାମିନୀ | । | ଅଟନ୍ତି ସକଳେ ମାନିନୀ | ।। | ୧୮୬ |
| ୪୮ | ସୁନ୍ଦରପଣେ ତାହାଙ୍କର | । | ଯେ ଗର୍ବ ଯେ ବା ମାନ ଆର | ।। | ୧୮୭ |
| | ସେ କଥା ଦେଖିଣ ମୁରାରି | । | ତା' ଶାନ୍ତି ମନରେ ବିଚାରି | ।। | ୧୮୮ |
| | ତାହାଙ୍କ ଅନୁଗ୍ରହେ ମନ | । | ଦେଇଣ ହେଲେ ଅନ୍ତର୍ଧାନ | ।। | ୧୮୯ |
| | କୃଷ୍ଣଚରଣେ ଦେଇ ଚିତ୍ତ | । | ରାସକ୍ରୀଡ଼ାକୁ ଭାଷାଗୀତ | ।। | ୧୯୦ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ।। | ୧୯୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ଶ୍ରୀଭଗବତୋ ରାସକ୍ରୀଡ଼ାବର୍ଣ୍ଣନଂ ନାମ
ଏକୋନତ୍ରିଂଶୋଽଧ୍ୟାୟଃ ।।

## ତ୍ରିଂଶ ଅଧ୍ୟାୟ

ତ୍ରିଂଶେ ବିରହସଂତପ୍ତଗୋପୀଭିଃ କୃଷ୍ଣମାର୍ଗଣମ୍ ।
ଉନ୍ମତ୍ତବଦ୍ ଦୀର୍ଘରାତ୍ର୍ୟାଂ ଭ୍ରମନ୍ତୀଭିର୍ବନେ ବନେ ।। ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ହରି ଯାଆନ୍ତେ ଅନ୍ତର୍ଧାନେ | । | ସକଳ ବ୍ରଜବଧୂମାନେ | ।। | ୧ |
| | ସନ୍ନିଧେ ନ ଦେଖନ୍ତେ ତାଙ୍କୁ | । | ତତ୍‌କ୍ଷଣେ ଲଭିଲେ ତାପକୁ | ।। | ୨ |
| | ଯୂଥପତିକି ନ ଦେଖିଣ | । | ହସ୍ତିନୀମାନେ ଯେହ୍ନେ ପୁଣ | ।। | ୩ |
| ୨ | କୃଷ୍ଣର ଯେ ଅଟେ ବିଦିତ | । | ଗମନ ଅନୁରାଗ ସ୍ମିତ | ।। | ୪ |
| | ବିଳାସ ସହିତେ ଚାହାଣି | । | ମନୋଜ୍ଞ ଆଳାପ ଯେ ପୁଣି | ।। | ୫ |

ବିହାର ଯେ ଆନ ବିଳାସ । ତେଣେ ତାଙ୍କର ମନ ବଶ ॥
କୃଷ୍ଣର ଠାରେ ଯାଙ୍କ ମନ । ସେ ବ୍ରଜନିତମ୍ବିନୀଜନ ॥
ସେ ସେହି ଚେଷ୍ଟାକୁ କୃଷ୍ଣର । ଗ୍ରହଣ କଲେକ ସତ୍ୱର ॥
୩ କୃଷ୍ଣର ଗତି ମନ୍ଦହାସ । ଚାହାଣି ବଚନପ୍ରକାଶ ॥
ଏ ଆଦି କଥାରେ ଯାଙ୍କର । ଆବେଶ ମୂର୍ତ୍ତି ନିରନ୍ତର ॥
କୃଷ୍ଣର ପ୍ରାୟେକ ବିହାର । ବିଭ୍ରମ ଯଉଁମାନଙ୍କର ॥
ସେ ଗୋପୀମାନେଅନ୍ୟୋନ୍ୟରେ । "ମୁଁ କୃଷ୍ଣ" ବୋଲି ବଚନରେ ॥
ଏକ ଆରକେ ନିବେଦନ । କଲେ କୃଷ୍ଣରେ ଦେଇ ମନ ॥
୪ ଏ ବନୁଁ ଯାନ୍ତେ ସେ ବନକୁ । ଉଚ୍ଚେ ଗାଆନ୍ତେ ଏ କୃଷ୍ଣଙ୍କୁ ॥
ସମସ୍ତେ ଏକମେଳ ହୋଇ । ଖୋଜିଲେ ଶ୍ରୀକୃଷ୍ଣଙ୍କୁ ତହିଁ ॥
ଆକାଶ ଯେହ୍ନେ ସବୁଠାରେ । ବ୍ୟାପିଛି ସେହି ପରକାରେ ॥
ସକଳ ଭୂତଙ୍କର ଠାରେ । ଅଛନ୍ତି ଯେ ବାହ୍ୟ ଅନ୍ତରେ ॥
ଉନ୍ମତ୍ତପ୍ରାୟେ ସେ କୃଷ୍ଣଙ୍କୁ । ପୁଚ୍ଛିଲେ ପାଦପମାନଙ୍କୁ ॥
୫ ହେ ବଟ ହେ ଜଡ଼ି[1] ଅଶ୍ୱତ୍ଥ । ଆମ୍ଭେ ପଚାରୁଛୁଁ ଏମନ୍ତ ॥
ଯେ ପ୍ରେମ-ହାସ-ବିଲୋକନ । ତେଣେ ହରିଣ ଆମ୍ଭ ମନ ॥
ନନ୍ଦନନ୍ଦନ ଗଲେ କାହିଁ । ଦେଖିଅଛ କି ଦିଅ କହି ॥
୬ ହେ କୁରୁବକ ହେ ଅଶୋକ । ହେ ନାଗ ପୁନ୍ନାଗ ଚମ୍ପକ ॥
ମାନିନୀଜନମାନଙ୍କର । ଗର୍ବ ହରଇ ସ୍ମିତ ଯାର ॥
ସେ ହଳଧରସାନଭାଇ । କହ ଏଠାରୁ ଗଲେ କାହିଁ ॥
୭ ତୁ ଗୋ ତୁଳସି ! ଶୁଭମୟ । ଗୋବିନ୍ଦଚରଣ ତୋ' ପ୍ରିୟ ॥
ଭ୍ରମରକୁଳସହିତରେ । ତୋତେ ଧରନ୍ତେ ହୃଦୟରେ ॥
ତୋହର ପ୍ରିୟ ଯେ ଅଚ୍ୟୁତ । ତାଙ୍କୁ ଦେଖିଲୁ କି କହ ତ ॥
୮ ମଲ୍ଲି ! ମାଳତି ! ଜାଇ ! ଯୂଇ । ଦେଖିଲ କି ଗୋ ବନେ ଥାଇ ॥
କରସ୍ପରଶେ ତୁମ୍ଭ ପ୍ରୀତି । କରନ୍ତେ ଗଲେ ରମାପତି ॥
୯ ହେ ଚୂତ ପନସ ପିଆଳ । ଅସନ ଅରଖ ବକୁଳ ॥
ହେ ବିଲ୍ୱ କୋବିଦାର ଲିମ୍ବ । [2]ହେ ଆମ୍ର ହେ ନୀପ କଦମ୍ବ ॥
ଯେ ପରଅର୍ଥେ ଜନ୍ମିଥାଇ । ଯମୁନାକୂଳେ ଅଛ ରହି ॥
ସେ ଆନ ପାଦପେ ଆମ୍ଭଙ୍କୁ । କହନ୍ତୁ କୃଷ୍ଣର ମାର୍ଗକୁ ॥
ଆମ୍ଭେ ସମସ୍ତେ ଗୋପୀଜନ । ଶୂନ୍ୟ ହୋଇଛି ଆମ୍ଭ ମନ ॥

---

୧. ଜଡ଼ି = ଡିମିରି (ମୂ°-ପ୍ଲକ୍ଷ)।
୨. ଚୂତ-ଆମ୍ର ଏବଂ ନୀପ-କଦମ୍ବ ମଧ୍ୟରେ ଅବାନ୍ତର ଜାତିଭେଦ ବିଦ୍ୟମାନ। (ସ୍ୱାମୀ)

| | | | |
|---|---|---|---|
| ୧୦ | ଆଗୋ ଧରଣି ! ତୁ କେବଣ | ତପ କରିଛୁ ଆଚରଣ ॥ | ୩୫ |
| | ଚରଣସ୍ପର୍ଶରୁଁ କୃଷ୍ଣର | ଉତ୍ସବ ହେଉଛି ତୋହର ॥ | ୩୬ |
| | ରୋମମାନଙ୍କେ ପୁଲକିତ | ହୋଇ ତୁ ଦିଶୁଛୁ ଶୋଭିତ ॥ | ୩୭ |
| | କୃଷ୍ଣର ଚରଣୁଁ ସମ୍ଭବ | ହୋଇଛି ଏ ତୋର ଉତ୍ସବ ॥ | ୩୮ |
| | ଅଥବା ପୂର୍ବେ ତ୍ରିବିକ୍ରମ | ପାଦଆକ୍ରମୁଁ ଏ ଜନମ ॥ | ୩୯ |
| | କି ଅବା ବରାହମୂରତି | ଆଲିଙ୍ଗନରୁ ଏ ଉତ୍ପତ୍ତି ॥ | ୪୦ |
| ୧୧ | ହେ ସଖି ! ହରିଣଗୃହିଣି | ପ୍ରିୟା ସହିତେ ବେଣୁପାଣି ॥ | ୪୧ |
| | ମୁଖ, ନୟନ, ଭୁଜ, କର | ଚରଣ ଆଦି ଯେ ଇତର ॥ | ୪୨ |
| | ସୁନ୍ଦର ଅବୟବଗଣ | ତେଣେ ତୁମ୍ଭର ତତକ୍ଷଣ ॥ | ୪୩ |
| | କରନ୍ତେ ନେତ୍ରସୁଖ ଜାତ | ଏଥି ହେଲେ କି ଉପଗତ ॥ | ୪୪ |
| | ଯେ କାନ୍ତା-ଅଙ୍ଗ-ସଙ୍ଗମରେ | କୁଙ୍କୁମ[୧] ଲାଗିଲା ନିର୍ଭରେ ॥ | ୪୫ |
| | ତେଣେ ରଞ୍ଜିତ କୁନ୍ଦମାଳ | ଅଛି ଯେ ଗୋବିନ୍ଦର ଗଳ ॥ | ୪୬ |
| | ତହୁଁ ଯେ ଅଛି ଜାତ ହୋଇ | ସେ ଗନ୍ଧ ଏଠାରେ ବହଇ ॥ | ୪୭ |
| ୧୨ | ପ୍ରିୟାର କାନ୍ଧେ ଦେଇ ଭୁଜ | ଧରି ଯେ ଅଛନ୍ତି ଅମ୍ବୁଜ ॥ | ୪୮ |
| | ତୁଳସୀମାଳିକା ସମ୍ବନ୍ଧ | ଯେ ଭୃଙ୍ଗନିଚୟ ମଦାନ୍ଧ ॥ | ୪୯ |
| | ଗୋଡ଼ାଇ ଅଛନ୍ତି ସେମାନେ | ହେ ବୃକ୍ଷମାନେ ! ଏହୁ ସ୍ଥାନେ ॥ | ୫୦ |
| | ସେ କୃଷ୍ଣ କରନ୍ତେ ଭ୍ରମଣ | ତୁମ୍ଭର ପ୍ରଣାମକୁ ପୁଣ ॥ | ୫୧ |
| | ପ୍ରଣୟଦୃଷ୍ଟିରେ ଅନାଇଁ | ଅଛନ୍ତି କି ଆନନ୍ଦ ହୋଇ ॥ | ୫୨ |
| ୧୩ | ପୁଛ ଏ ଲତାଙ୍କୁ ଗୋ ସଖି | କୃଷ୍ଣଙ୍କୁ ଅଛନ୍ତି ଏ ଦେଖି ॥ | ୫୩ |
| | ସ୍ୱପତି ଦ୍ରୁମବାହୁମାନ | କରିଥିଲେହେଁ ଆଲିଙ୍ଗନ ॥ | ୫୪ |
| | ସେ କୃଷ୍ଣନଖର ସ୍ପରଶ | ଲଭି ଅଛନ୍ତି ଏ ଅବଶ୍ୟ ॥ | ୫୫ |
| | ଯେଣୁ ପୁଲକଙ୍କୁ ଶରୀରେ | ଧରି ଅଛନ୍ତି ନିରନ୍ତରେ ॥ | ୫୬ |
| ୧୪ | ଏ ରୂପେ ଉନ୍ମତ୍ତ ଲୋକର | ପ୍ରାଏ ବଚନ ଯାହାଙ୍କର ॥ | ୫୭ |
| | କୃଷ୍ଣଙ୍କୁ ଖୋଜିବାରେ ତହିଁ | କାତର ହୋଇଛନ୍ତି ଯେହି ॥ | ୫୮ |
| | ସେ ଗୋପୀ କୃଷ୍ଣେ ମନ ଦେଇ | କୃଷ୍ଣର ଲୀଳାମାନ ଯେହି ॥ | ୫୯ |
| | ସେ ଲୀଳାମାନ ତତକ୍ଷଣ | ସମସ୍ତେ କଲେ ଆଚରଣ ॥ | ୬୦ |
| ୧୫ | ପୂତନାପ୍ରାଏ ଆଚରଣ | କରନ୍ତେ କେହୁ ଗୋପୀ ପୁଣ ॥ | ୬୧ |
| | କୃଷ୍ଣର ପ୍ରାଏ କେହୁ ହେଲା | ତାହାର ସ୍ତନକୁ ପିଇଲା ॥ | ୬୨ |
| | ବାଳକପ୍ରାଏକ ରୋଦନ | କରନ୍ତେ କେହି[୨] ପୁଣ ଆନ ॥ | ୬୩ |
| | ଶକଟପ୍ରାୟେ ଯେ ହୋଇଲା | ପାଦେ ପ୍ରହାର ତାକୁ କଲା ॥ | ୬୪ |
| ୧୬ | କୃଷ୍ଣବାଳକ ଭାବ କେହି | ଭାବନା କରୁଥିଲା ତହିଁ ॥ | ୬୫ |

୧. କୁଙ୍କୁମ = କୁଚକୁଙ୍କୁମ ।    ୨. ତହୁଁ । ତହିଁ ।

ଦଇତପ୍ରାଏ[1] ହୋଇ ଆନ । ତାହାକୁ ହରିଲା ବହନ ॥ ୬୬
ନୂପୁରଆଦି ନିଃସ୍ୱନରେ । ପାଦ ଘୋସାରନ୍ତେ[2] ଭୂମିରେ ॥ ୬୭
ବାଳକପ୍ରାୟ ହୋଇ କେହି । ଗମନ କଲା ଘୋଡ଼ି ବାହି[3] ॥ ୬୮
୧୭ କୃଷ୍ଣ ରାମର ପ୍ରାଏ ବେନି । ହୋଇଲେ ଗୋକୁଳକାମିନୀ ॥ ୬୯
ବତ୍ସ ଗୋପାଳ ପ୍ରାଏ ପୁଣି । ହୋଇଲେ କେହୁଣି ତରୁଣୀ ॥ ୭୦
ଯେ ବତ୍ସପ୍ରାଏ ଆଚରିଲା । ତାହାକୁ ଆରକ ମାଇଲା ॥ ୭୧
ବକର ପ୍ରାୟ ହେଲା ଏକ । ତାହାକୁ ମାଇଲା ଆରକ ॥ ୭୨
୧୮ ଯେ ଦୂରସ୍ଥାନେ ଥାନ୍ତି ଗାଈ । ତାହାଙ୍କୁ କୃଷ୍ଣ ଯେହ୍ନେ ରାଇ ॥ ୭୩
ସେହି କୃଷ୍ଣର ପ୍ରାଏ ହୋଇ । ଯେ ବେଣୁ ବଜାନ୍ତେ ଖେଳଇ ॥ ୭୪
ତାକୁ ଉତ୍ତମ ବୋଲି କରି । ପ୍ରଶଂସା କରେ ଆନ ନାରୀ ॥ ୭୫
୧୯ କେହୁଣି ଗୋପୀଠାରେ ନେଇ । ନିଜ ଭୁଜକୁ କେହି ଦେଇ ॥ ୭୬
ଭ୍ରମଣ କରନ୍ତେ ଏସନ । ବୋଇଲା ତାହାକୁ ବଚନ ॥ ୭୭
'ମୁଁ କୃଷ୍ଣ' ଦେଖ ଗୋ ମୋହର । ଗମନ ଅଟେ ମନୋହର ॥ ୭୮
୨୦ ବାତ-ବରଷାକୁ ନ ଡର । ସେ ବେନି କଥାରୁ ତୁମ୍ଭର ॥ ୭୯
ରକ୍ଷାକୁ କଲି ମୁଁ ବିଧାନ । ଏମନ୍ତ ବୋଲି କେହି ଆନ ॥ ୮୦
ଯତ୍ନ କରନ୍ତେ ଏକକରେ । ବସ୍ତ୍ରକୁ[4] ଧଇଲା ଉଚ୍ଚରେ ॥ ୮୧
୨୧ କେ ଗୋପୀ ପାଦରେ ଶିରକୁ । ଆକ୍ରମି ଆରୋହି ଆନକୁ ॥ ୮୨
ବୋଇଲା ଆରେ ଦୁଷ୍ଟ ଅହି । ଏଠାରୁ ଯାଅ ବେଗେ ତୁହି ॥ ୮୩
ଖଳଲୋକଙ୍କ ଦଣ୍ଡଧର । ମୁଁ ଜାତ ଗୋକୁଳ ମଧ୍ୟର ॥ ୮୪
୨୨ ଏକ ଗୋପୀଏ ବୋଲେ ତହିଁ । ଆରେ ଗୋପାଳେ ଦେଖ ରହି ॥ ୮୫
ଉତ୍କଟ ବିପିନ ଦହନ । ବୁଜ[5] ନୟନକୁ ବହନ ॥ ୮୬
ତୁମ୍ଭମାନଙ୍କର ମଙ୍ଗଳ । ବିଧାନ କରିବି ତତ୍କାଳ ॥ ୮୭
୨୩ ମୋ ଦଧିଭାଣ୍ଡକୁ ଭାଙ୍ଗିଲୁ । ଲବଣୀ ତହୁଁ[6] ଚୋରାଇଲୁ ॥ ୮୮
ବାନ୍ଧିବି ତୋତେ ଉଦୁଖଳେ । ଏମନ୍ତ ବୋଲି ପୁଷ୍ପମାଳେ ॥ ୮୯
ବାନ୍ଧିଲା ତାକୁ ଗୋପୀ ଆନ । ସେ ଗୋପୀ ବୁଜିଣ ନୟନ[7] ॥ ୯୦
ଭୟ-ପାଇଲା ଲୋକ-ରୀତି । ବିଧାନ କଲାକ ତଡ଼ତି[8] ॥ ୯୧
୨୪ ଏମନ୍ତ ରୂପରେ ବନିତା । ଯେ ବୃନ୍ଦାବନତରୁଲତା ॥ ୯୨
ତାହାଙ୍କୁ କୃଷ୍ଣଙ୍କୁ ପୁଚ୍ଛନ୍ତେ । ବନପ୍ରଦେଶରେ ତଦନ୍ତେ ॥ ୯୩
କୃଷ୍ଣର ପାଦଚିହ୍ନମାନ । କଲେ ସେମାନେ ବିଲୋକନ ॥ ୯୪

---

୧. ପ୍ରାଏ = ତୃଣାବର୍ତ୍ତ ପ୍ରାୟ । ୨. ଘୋସାରନ୍ତେ = ଘୋସରାନ୍ତେ ।
୩. ଘୋଡ଼ି ବାହିବା = ଶିଶୁମାନଙ୍କର ଖେଳବିଶେଷ । (ଜଣକ ଉପରେ ଜଣେ ଘୋଡ଼ା ଚଢିବା)
୪. ବସ୍ତ୍ର = ଉତ୍ତରୀୟ ୫. ବୁଜ = ବନ୍ଦ କର । ୬. ତହୁଁ = ନବନୀତ ହିଁ ।
୭. ନୟନ = ବଦନ । ୮. ତଡ଼ତି = ଝଟତି ।

୨୫ ବୋଇଲେ ନିଶ୍ଚୟେ ଏମାନ । ନନ୍ଦସୁତର ପାଦଚିହ୍ନ ॥ ୯୫
ଯେ ଧ୍ୱଜ ଅଙ୍କୁଶ ନଳିନ । କୁଳିଶ ଯବ ଆଦି ଚିହ୍ନ ॥ ୯୬
ସେ ଚିହ୍ନମାନଙ୍କେ ଲକ୍ଷିତ । ଯେଣୁ ଅଟନ୍ତି ଏ ସମସ୍ତ ॥ ୯୭
୨୬ କୃଷ୍ଣଙ୍କୁ ସେ ସେହି ଚିହ୍ନରେ । ଖୋଜନ୍ତେ ଆଗ ଧରଣୀରେ ॥ ୯୮
ଯୁବତିଚରଣର ଚିହ୍ନେ । ମିଶିଣ ଅଛନ୍ତି ସେମାନେ ॥ ୯୯
ତାହା ଦେଖିଣ ଆର୍ତ୍ତ ହେଲେ । ଏମନ୍ତ ବଚନ ବୋଇଲେ ॥ ୧୦୦
୨୭ କରିଣୀକାନ୍ଧେ ଯେହ୍ନେ କରୀ । ସେ ରୂପେ ଯାହା କାନ୍ଧେ ହରି ॥ ୧୦୧
ଅର୍ପିଣ ଅଛନ୍ତି ଭୁଜକୁ । ସେ କୃଷ୍ଣ ଘେନି ଗଲେ ଯାକୁ ॥ ୧୦୨
ଏ ପାଦଚିହ୍ନମାନ ତାର । ଦେଖ ଗୋ ଦିଶନ୍ତି ଏଠାର ॥ ୧୦୩
୨୮ ହରିଙ୍କି ଏ ପୂର୍ବ ସମୟେ । ଆରାଧି ଥିଲା[1] ଗୋ ନିଶ୍ଚୟେ ॥ ୧୦୪
ଯେଣୁ ଆମ୍ଭଙ୍କୁ ଛାଡ଼ି ହରି । ତାହାକୁ ତୋଷ ହୋଇ କରି ॥ ୧୦୫
ଏକାନ୍ତ ଅଟେ ଯଉଁ ସ୍ଥାନ । ତହିଁକି କଲେକ ଗମନ ॥ ୧୦୬
୨୯ ଗୋବିନ୍ଦଚରଣନଳିନ । ଧୂଳିମାନେ ଏ ସଖି ! ଧନ୍ୟ ॥ ୧୦୭
ବ୍ରହ୍ମା ଶଙ୍କର ରମା ଦେବୀ । ଅଘନାଶନ ମନେ ଭାବି ॥ ୧୦୮
ଯଉଁ ରେଣୁକୁ ନିଜ ଶିରେ । ଘେନିଲେ ଭଗତିଭାବରେ ॥ ୧୦୯
୩୦ ଏହାର ଏ ଚରଣଚିହ୍ନ । କ୍ଷୋଭ କରାନ୍ତି ଆମ୍ଭ ମନ ॥ ୧୧୦
ସକଳ ଗୋପୀମାନଙ୍କର । ଯେ ଧନ ଶ୍ରୀକୃଷ୍ଣ ଅଧର ॥ ୧୧୧
ତାହାକୁ ଏକା ହୋଇ ହରି[2] । ପିଉଅଛି ଯେ ଗୋପନାରୀ ॥ ୧୧୨
୩୧ ତା' ପାଦଚିହ୍ନ ଗୋ' ଏଠାରେ । ଦିଶୁନାହାନ୍ତି, ତୃଣାଙ୍କୁରେ ॥ ୧୧୩
କୋମଳ ଚରଣ ଯାହାର । ଖେଦ ଲଭିଲା ନିରନ୍ତର ॥ ୧୧୪
ସେ ନିଜ ପ୍ରିୟାକୁ ଗୋ ପ୍ରିୟ । ଟେକିଣ ନେଲେ ଏ ନିଶ୍ଚୟ ॥ ୧୧୫
୩୨ କାମୀ ଅଟେ ଯେ ଦାମୋଦର । ଗୋପୀକି ବହନ୍ତେ ତାହାର ॥ ୧୧୬
ଭାର ଆକ୍ରାନ୍ତ ହୋଇବାରେ । ଏପାଦମାନେ ଧରଣୀରେ ॥ ୧୧୭
ଅଧିକ ମଗ୍ନ ହୋଇଛନ୍ତି । ଦେଖ ଗୋ ସକଳ ଯୁବତି ॥ ୧୧୮
୩୩ ପୁଷ୍ପ ତୋଳିବା ନିମିତ୍ତରେ । ମହାତ୍ମା କୃଷ୍ଣ ଗୋ ଏଠାରେ ॥ ୧୧୯
କାନ୍ତାକୁ କାନ୍ଧୁଁ ଆପଣାର । ରଖିଲେ ଧରଣୀତଳର ॥ ୧୨୦
ପ୍ରିୟାନିମିତ୍ତେ ପୁଷ୍ପଚୟ । ଏଠାରେ ତୋଳିଲେ ଗୋ ପ୍ରିୟ ॥ ୧୨୧
ଆକ୍ରମି ଚରଣ-ଅଗ୍ରରେ । କୁସୁମ ତୋଳନ୍ତେ ସତ୍ୱରେ ॥ ୧୨୨
ଦେଖ ଏ ଅସମ୍ପୂର୍ଣ୍ଣ ହୋଇ । ବେନିଚରଣଚିହ୍ନ ଶୋହି ॥ ୧୨୩
୩୪ ଏଠାରେ କାମୀ କାମିନୀର । ବାନ୍ଧି ଅଛନ୍ତି ଗୋ ଚିକୁର ॥ ୧୨୪
ସେ ପୁଷ୍ପମାନଙ୍କୁ ଚୂଡ଼ାରେ । ବାନ୍ଧନ୍ତେ କାନ୍ତାମସ୍ତକରେ ॥ ୧୨୫

---

୧. ଅଛି । ୨. ହରି = ହରଣ କରି । (ମୂ: ଅପହୃତ୍ୟ) । 'କରି' ପାଠାନ୍ତର ମଧ୍ୟ ଦେଖାଯାଏ ।

ନିଶ୍ଚୟେ ଶ୍ରୀହରି ଏଠାରେ । ବସିଥିଲେ ଗୋ ବସୁଧାରେ ॥ ୧୨୬
୩୫ କହନ୍ତି ବ୍ୟାସଙ୍କର ସୁତ । ଯେ କୃଷ୍ଣ ଅଟେ ଆତ୍ମାରତ ॥ ୧୨୭
ଆତ୍ମାରେ କ୍ରୀଡ଼ା ଯେ କରଇ । ସ୍ତିରୀବିଭ୍ରମେ ବଶ ନୋହି ॥ ୧୨୮
ସେ କୃଷ୍ଣେ କାମିଜନଙ୍କର । ଦୈନ୍ୟକୁ ଦେଖାନ୍ତେ ଆବର ॥ ୧୨୯
ସ୍ତିରୀମାନଙ୍କ ଦୁଷ୍ଟପଣ । ଲୋକଙ୍କୁ ଦେଖାନ୍ତେ ଆପଣ ॥ ୧୩୦
ସେ ଗୋପନାରୀର ସଙ୍ଗତେ । ବିହାର କଲେକ ଏକାନ୍ତେ ॥ ୧୩୧
୩୬ ଏମନ୍ତ ରୂପେ ଗୋପୀମାନେ । ଦେଖାନ୍ତେ[1] ଭ୍ରମିଲେ ବିମନେ[2] ॥ ୧୩୨
୩୭ ଆନ ସ୍ତିରୀଙ୍କି ତ୍ୟାଗ କରି । ଯାହାକୁ ବନେ ନେଲେ ହରି ॥ ୧୩୩
ମଧ୍ୟେ ସକଳବଧୂଙ୍କର । ଆତ୍ମାକୁ ମଣିଲା ସେ ସାର ॥ ୧୩୪
ଯେଣୁ ଗୋପୀଙ୍କି ଛାଡ଼ି ମୋତେ । ଏ ପ୍ରିୟ ଭଜିଲେ ଏକାନ୍ତେ ॥ ୧୩୫
୩୮ ବନଦେଶକୁ ତଦନ୍ତରେ । ଗମନ କରିଣ ଗର୍ବରେ ॥ ୧୩୬
କୃଷ୍ଣଙ୍କୁ ବୋଇଲା ବଚନ । ତୋହର ଯଉଁଠାକୁ ମନ ॥ ୧୩୭
ସେଠାକୁ ମୋତେ ନିଅ ତୁହି । ମୁଁ ଆଉ ଚଳି ନ ପାରଇ ॥ ୧୩୮
୩୯ ଗୋପିକା କହନ୍ତେ ଏ ବାଣୀ । କୃଷ୍ଣ ବୋଇଲେ ତାକୁ ପୁଣି ॥ ୧୩୯
ମୋ କାନ୍ଧେ ଆରୋହଣ କର । ଏମନ୍ତ ବୋଲି ଦାମୋଦର ॥ ୧୪୦
ତଦନ୍ତେ[3] ହେଲେ ଅନ୍ତର୍ଧାନ । ସେ ଗୋପୀ ହୋଇଲା ବିମନ ॥ ୧୪୧
୪୦ ହେ ନାଥ ହେ ରମଣବର[4] । ହେ ମହାଭୁଜ ବେଣୁଧର ॥ ୧୪୨
ହେ ପ୍ରଭୁ ଅଛ କାହିଁ କାହିଁ । ତୁମ୍ଭର ଦାସୀ ଦୀନ ମୁହିଁ ॥ ୧୪୩
ମୋତେ ତୁମ୍ଭର ସନ୍ନିଧାନ । ହେ ସଖା ! କରାଅ ଦର୍ଶନ ॥ ୧୪୪
୪୧ କହନ୍ତି ବ୍ୟାସଙ୍କ ନନ୍ଦନ । କୃଷ୍ଣମାର୍ଗକୁ ଗୋପୀଜନ ॥ ୧୪୫
ଖୋଜନ୍ତେ ଦେଖିଲେ ବନରେ । ନିଜ ସଖୀକି ନିକଟରେ ॥ ୧୪୬
ପ୍ରିୟବିଚ୍ଛେଦୁଁ ସେ ଦୁଃଖିତ । ବିଶେଷେ ହୋଇଛି ମୋହିତ ॥ ୧୪୭
୪୨ ବହୁତ ସଂମାନନା ମୁହିଁ । କୃଷ୍ଣର ଠାରୁ ଥିଲି ପାଇ ॥ ୧୪୮
ଯେଣୁ ମୁଁ ଗର୍ବକୁ ବହିଲି । ଅବମାନନାକୁ ଲଭିଲି ॥ ୧୪୯
ସେ ଗୋପୀ କହନ୍ତେ ଏମନ୍ତ । ଶ୍ରବଣ କରି ସେ ବୃତ୍ତାନ୍ତ ॥ ୧୫୦
ନିଜ ମନରେ ଅତିଶୟ । ସମସ୍ତେ ଲଭିଲେ ବିସ୍ମୟ ॥ ୧୫୧
୪୩ ଚନ୍ଦ୍ରକିରଣ ଯେତେ ଦୂର । ପ୍ରକାଶି ଥିଲା ସେ ବନର ॥ ୧୫୨
ବନେ ତେତିକି ଦୂରଯାଏ । ପ୍ରବେଶ ହୋଇଲେ ନିର୍ଭୟେ ॥ ୧୫୩
ତିମିରପ୍ରବେଶ ଦେଖିଣ । ଗୋପୀଏ ନିବର୍ତ୍ତିଲେ ପୁଣ ॥ ୧୫୪

---

୧. ଦେଖନ୍ତେ (ଦର୍ଶୟନ୍ତ୍ୟଃ)   ୨. ବିପିନେ (ବିଚେତସଃ) ।
୩. ତଦନ୍ତେ = ସେ ଗୋପୀ ସ୍କନ୍ଧାରୋହଣପାଇଁ ଉଦ୍ୟତ ହୁଅନ୍ତେ । (ସ୍ୱାମୀ)
୪. ବର (ମୂ: ଶ୍ରେଷ୍ଠ । ପାଠାନ୍ତର-ପ୍ରେଷ୍ଠ) ।

| | | | | | |
|---|---|---|---|---|---|
| ୪୪ | ସେ କୃଷ୍ଣଠାରେ ଯାଙ୍କ ମନ | । | ତାଙ୍କୁ କରନ୍ତେ ଆଳାପନ | ॥ | ୧୫୫ |
| | ସେ କୃଷ୍ଣଚେଷ୍ଟାପ୍ରାଏ ପୁଣ | । | ଚେଷ୍ଟା କରନ୍ତେ ଆଚରଣ | ॥ | ୧୫୬ |
| | ସେ କୃଷ୍ଣ ଆତ୍ମା ଯାହାଙ୍କର | । | ଗାଆନ୍ତେ ଗୁଣ ସେ କୃଷ୍ଣର | ॥ | ୧୫୭ |
| | ଯେ ନିଜ ଦେହ ଯେ ସଦନ | । | ତାକୁ ହିଁ ନ କଲେ ଚିନ୍ତନ | ॥ | ୧୫୮ |
| ୪୫ | କାଳିନ୍ଦୀପୁଳିନକୁ ପୁଣ | । | ସମସ୍ତେ ଲେଉଟି ଆସିଣ | ॥ | ୧୫୯ |
| | ଭାବନା କରନ୍ତେ କୃଷ୍ଣଙ୍କୁ | । | ବାଞ୍ଛନ୍ତେ କୃଷ୍ଣ ଆସିବାକୁ | ॥ | ୧୬୦ |
| | ସମସ୍ତେ ବସି ଏକସ୍ଥାନ | । | କଲେ ସେ କୃଷ୍ଣଙ୍କୁ ଗାୟନ | ॥ | ୧୬୧ |
| | କୃଷ୍ଣଚରଣେ ଦେଇ ଚିତ୍ତ | । | ରାସକ୍ରୀଡ଼ାର ଯେ ଚରିତ | ॥ | ୧୬୨ |
| | ସୁଜନମାନଙ୍କର ହିତେ | । | ଭଣିଲା ଦୀନବନ୍ଧୁ ଗୀତେ | ॥ | ୧୬୩ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣାନ୍ୱେଷଣଂ
ନାମ ତ୍ରିଂଶୋଽଧ୍ୟାୟଃ ॥

## ଏକତ୍ରିଂଶ ଅଧ୍ୟାୟ

ଏକତ୍ରିଂଶେ ନିରାଶାସ୍ତାଃ ପୁନଃ ପୁଳିନମାଗତାଃ ।
କୃଷ୍ଣମେବାନୁଗାୟନ୍ତ୍ୟଃ ପ୍ରାର୍ଥୟନ୍ତେ ତଦାଗମମ୍ ॥ ୧

ଶ୍ରୀଗୋପ୍ୟ ଊଚୁଃ

| | | | | | |
|---|---|---|---|---|---|
| ୧ | ଭୋ ନାଥ ! ଜନମୁଁ ତୋହର | । | ଅଧିକ ହେଲା ବ୍ରଜପୁର | ॥ | ୧ |
| | ସିନ୍ଧୁତନୂଜା ଅବିରତ | । | ଏଥିରେ କରିଛି ଆଶ୍ରିତ | ॥ | ୨ |
| | ତୁମ୍ଭ ନିମିତ୍ତେ ଧରି ପ୍ରାଣ | । | ଖୋଜୁଛୁଁ ସକଳ ଦିଗେଣ | ॥ | ୩ |
| | ଆମ୍ଭେ ତୁମ୍ଭର ଅଟୁଁ ଯେଣୁ | । | ପ୍ରକାଶ ହୁଅ ବେଗେ ତେଣୁ | ॥ | ୪ |
| ୨ | ଶରଦ ସରୋବରେ ଜାତ | । | ଯେ ପଦ୍ମ ଅଟଇ ଶୋଭିତ | ॥ | ୫ |
| | ତାର ଉଦରଶୋଭା ନାଶ | । | କରଇ ଯେ ତୁମ୍ଭର ଦୃଶ | ॥ | ୬ |
| | ସେ ନେତ୍ରେ କରୁଛ ସଂହାର | । | ଅମୂଲ୍ୟ[1] ଦାସୀଙ୍କି ତୁମ୍ଭର | ॥ | ୭ |
| | ସୁରତନାଥ ! ହେ ବରଦ | । | ଶସ୍ତ୍ରରେ କରି ଯାକୁ ବଧ | ॥ | ୮ |
| | ସଂସାରେ ବଧ ସେ ବୋଲାଇ | । | ନେତ୍ରେ ମାଇଲେ କି ନୁହଇ | ॥ | ୯ |
| ୩ | ବିଷସଂଯୁତ ଜଳପାନୁଁ | । | ଅଘଅସୁରର ଆନନୁଁ | ॥ | ୧୦ |
| | ଘୋର ବରଷା ସମୀରଣ | । | ବିଜୁଳି-ଅନଳରୁ ପୁଣ | ॥ | ୧୧ |
| | ବୃଷ[2] ଅସୁର ମୟସୁତ[3] | । | ଏ ଆଦି ଭୟ ଯେ ବିଦିତ | ॥ | ୧୨ |

୧. ଅମୂଲ୍ୟ = ଯେଉଁମାନେ ମୂଲ୍ୟ ନିଅନ୍ତି ନାହିଁ; ମାଗଣାରେ ଖଟନ୍ତି ।

୨. ବୃଷ = ଅରିଷ୍ଟ ।		୩. ମୟସୁତ = ବ୍ୟୋମାସୁର ।

ଭୋ ନାଥ ଏଥୁଁ ପୁଣ ପୁଣ । ଆମ୍ଭଙ୍କୁ କରିଛ ରକ୍ଷଣ ॥
୪ ତୁ ନୋହୁ ଗୋପିକାନନ୍ଦନ । ଅଖିଳ ପ୍ରାଣିଙ୍କ ଜୀବନ ॥
ସଂସାର ପାଳିବା ନିମିତ୍ତେ । ବ୍ରହ୍ମା ପ୍ରାର୍ଥନା କଲେ ତୋତେ ॥
ଭୋ ମିତ୍ର ! ତେଣୁ ଯଦୁକୁଳେ । ଜନମ ହେଲ ମହୀତଳେ ॥
୫ ହେ ଯଦୁବର ! ଯେ ସଂସାର । ଭୟେ ଶରଣ ଯାନ୍ତି ନର ॥
ତାଙ୍କ ଅଭୟ ଯେ ବିସ୍ତାରେ । ସେ ପଦ୍ମକର ଆମ୍ଭ ଶିରେ ॥
ହେ କାନ୍ତ ! କରସି ନିଧାନ । ଯେ ବାଞ୍ଛା କରଇ ପ୍ରଦାନ ॥
ହସ୍ତକୁ ଜଳଧିସୁତାର । ଧରିଅଛି ତୋ' ଯେଉଁ କର ॥
୬ ହେ ବ୍ରଜଜନଆର୍ତ୍ତିହର । ଭଜିଲା ଲୋକମାନଙ୍କର ॥
ଗର୍ବକୁ ଯେ କରେ ବିନାଶ । ଏମନ୍ତ ତୁମ୍ଭ ମନ୍ଦ ହାସ ॥
ଆମ୍ଭେ ଯେ କିଂକରୀ ତୁମ୍ଭର । ଆମ୍ଭଙ୍କୁ କରସି ସ୍ୱୀକାର ॥
ଯେ ପଦ୍ମପ୍ରାୟ ମନୋହର । ଆନନ ଅଟଇ ତୁମ୍ଭର ॥
ଆମ୍ଭମାନଙ୍କୁ ଆହେ ପ୍ରିୟ । ସେ ଚାରୁମୁଖକୁ ଦେଖାଅ ॥
୭ ପ୍ରଣତ ଜନମାନଙ୍କର । ପାତକ କରେ ଯେ ସଂହାର ॥
ଧେନୁମାନଙ୍କୁ ଅନୁଗତ । ଯେ ଅଟେ ଲକ୍ଷ୍ମୀର ନିକେତ ॥
ଅର୍ପିତ ଫଣିଫଣାଠାର । ଯେ ପାଦପଙ୍କଜ ତୁମ୍ଭର ॥
ଆମ୍ଭର କୁଚେ ତା' ନିବେଶ । କୁସୁମଶରକୁ ବିନାଶ ॥
୮ ହେ ପଦ୍ମଲୋଚନ ତୁମ୍ଭର । ଯେ ବାଣୀ ଅଟେ ମନୋହର ॥
ମଧୁର ବାକ୍ୟମାନେ ଯହିଁ । ବୁଧଙ୍କ ମନୋଜ୍ଞ ଅଟଇ ॥
ମୋହିତ ହୋଇଅଛୁଁ ତେଣେ । ଆମ୍ଭେ ତୋହର ଦାସୀଗଣେ ॥
ଆମ୍ଭଙ୍କୁ ତୋ' ଅଧରାମୃତ । ଦେଇଣ କରାଅ ସଚେତ ॥
୯ ଯେ କଥାଅମୃତ ତୁମ୍ଭର । ଜୀବନ ତାପି[1] ଲୋକଙ୍କର ॥
ସ୍ତୁତି କରନ୍ତି କବି[2] ଯାକୁ । ନାଶ କରେ ଯେ କଲ୍ମଷକୁ[3] ॥
ଶ୍ରବଣେ ମଙ୍ଗଳ ଦିଅଇ । ଯେ ପୁଣ ଶ୍ରୀମନ୍ତ ଅଟଇ ॥
ବିସ୍ତାର କରିଣ ଗାୟନ । କରନ୍ତି ତାହା ଯେଉଁ ଜନ ॥
ସେ ବଡ଼ ଦାତାରୂପେ ନରେ[4] । ବିଖ୍ୟାତ ଅଟନ୍ତି ଭୂମିରେ ॥
୧୦ ହେ ପ୍ରିୟ ! ଯେ ହାସ ତୁମ୍ଭର । ପ୍ରେମଚାହାଣି ଯେ ବା ଆର ॥
ଧ୍ୟାନମଙ୍ଗଳ ବିହରଣ । ଏକାନ୍ତ[5] ନର୍ମବାଣୀ ପୁଣ ॥
ଆହେ କପଟି ! ସେହୁମାନ । କ୍ଷୋଭ କରାନ୍ତି ଆମ୍ଭ ମନ ॥
୧୧ ଚରାନ୍ତେ ନିଜ ପଶୁକୁଳ । ଭୋ ନାଥ ! ଯେବେ ବ୍ରଜୁଁ ଚଳ ॥
ନଳିନପ୍ରାୟେ ମନୋହର । ଚରଣ ଅଟେ ଯେ ତୁମ୍ଭର ॥

---

୧. ତାପି = ତପ୍ତ । ୨. କବି = ବ୍ରହ୍ମବିତ୍ । ୩. କଲ୍ମଷ = କଲୁଷକୁ ।
୪. ନରେ = ନରଙ୍କ ମଧ୍ୟରେ । ଗୃଣନ୍ତି = ନିରୂପୟନ୍ତି (ସ୍ୱାମୀ) ୫. ଏକାନ୍ତ = ସଙ୍କେତ ।

| | | | | | |
|---|---|---|---|---|---|
| | ପାଷାଣ ତୃଣାଙ୍କୁର ଲାଗି | । | ନ ପୁଣ ହୋଏ ଦୁଃଖଭାଗୀ | ।। | ୪୪ |
| | ଏ ଘେନି ଆମ୍ଭର ମାନସ | । | ହେ କାନ୍ତ ଲଭୁଥାଇ ତ୍ରାସ | ।। | ୪୫ |
| ୧୨ | ଯେ ନୀଳ କୁନ୍ତଳେ ଆବୃତ | । | ପଙ୍କଜପ୍ରାୟେକ ଶୋଭିତ | ।। | ୪୬ |
| | ଗୋରୁଙ୍କ ଧୂଳୀରେ ଶୋଭନ | । | ଧରନ୍ତେ ଏମନ୍ତ ଆନନ | ।। | ୪୭ |
| | ଆସନ୍ତେ ଦିନ ଅବସାନେ | । | ଦେଖାନ୍ତେ ତାହା, ଆମ୍ଭମନେ | ।। | ୪୮ |
| | ପଞ୍ଚଶରକୁ[୧] ପୁଣ ପୁଣ | । | ଭୋ ନାଥ ! କର ସମର୍ପଣ | ।। | ୪୯ |
| ୧୩ | ଯେହୁ ପ୍ରଣତକାମଦାୟୀ | । | ପଦ୍ମଜା[୨] ଯାହାକୁ ପୂଜଇ | ।। | ୫୦ |
| | ଯେ ଅଟେ ଧରଣୀମଣ୍ଡନ | । | ଚିନ୍ତେ ଯା' ବିପତ୍ତିରେ ଜନ | ।। | ୫୧ |
| | ସେବାସମୟେ ସୁଖଦାୟୀ | । | ଯେ ତୁମ୍ଭ ଚରଣ ଅଟଇ | ।। | ୫୨ |
| | ହେ ମନବେଦନାବିନାଶ | । | ଆମ୍ଭ ସ୍ତନରେ ତା' ନିବେଶ | ।। | ୫୩ |
| ୧୪ | ଯେ ଅଟେ ସୁରତବର୍ଦ୍ଧନ | । | ପ୍ରାଣିଙ୍କ ଶୋକବିନାଶନ | ।। | ୫୪ |
| | ନାଦିତ ବେଣୁ ଯାକୁ ପୁଣ | । | ଚୁମ୍ବିଛି ଉତ୍ତମ କରିଣ | ।। | ୫୫ |
| | ଇତରଠାରେ ପ୍ରାଣିଙ୍କର | । | ବାଞ୍ଛାକୁ ଯେ କରେ ସଂହାର | ।। | ୫୬ |
| | ତୁମ୍ଭର ସେ ଅଧରାମୃତ | । | ହେ ବୀର ! ଆମ୍ଭଙ୍କୁ ଦିଅ ତ | ।। | ୫୭ |
| ୧୫ | ତୁମ୍ଭେ ଯେବଣ ଦିନେ ପୁଣ | । | କର ବିପିନକୁ ଭ୍ରମଣ | ।। | ୫୮ |
| | କ୍ଷଣଅର୍ଦ୍ଧକୁ ପ୍ରାଣିମାନେ | । | ମଣନ୍ତି [୩]ଯୁଗର ସମାନେ | ।। | ୫୯ |
| | ଦିବସଶେଷେ ଧେନୁମାନ | । | ଘେନି କରନ୍ତେ ଆଗମନ | ।। | ୬୦ |
| | କୁଟିଳ କେଶମାନ ଯହିଁ | । | ତୁମ୍ଭ ସେ ଶ୍ରୀମୁଖକୁ ଚାହିଁ | ।। | ୬୧ |
| | କଲା ଯେ ନେତ୍ରପିଛଡ଼ାକୁ | । | ଜଡ଼ ବୋଲନ୍ତି[୪] ସେ ଧାତାକୁ | ।। | ୬୨ |
| ୧୬ | ପତି ତନୟ ବନ୍ଧୁ ଭ୍ରାତ | । | ବଂଶକୁ ଲଘି ହେ ଅଚ୍ୟୁତ | ।। | ୬୩ |
| | ତୁମ୍ଭ ନିକଟକୁ ଅଇଲୁଁ | । | ତୁମ୍ଭ ଗୀତରେ ମୋହି ହେଲୁଁ | ।। | ୬୪ |
| | [୫]ଗୀତର ଗତିମାନ ଯେତେ | । | ତା' ତୁମ୍ଭେ ଜାଣ ଏ ଜଗତେ | ।। | ୬୫ |
| | ଆହେ କିତବ ! କଉଁ ଜନ | । | ନିଶାରେ ଛାଡ଼େ ସ୍ତିରୀମାନ | ।। | ୬୬ |
| ୧୭ | ଯେଣେ ଉଦୟ ହୋଏ ମାର[୬] | । | ଏକାନ୍ତ ଆଳାପ ତୁମ୍ଭର | ।। | ୬୭ |
| | ଯହିଁରେ ପ୍ରେମବିଲୋକନ | । | ଏମନ୍ତ ଯେ ହସିତାନନ | ।। | ୬୮ |
| | ଲକ୍ଷ୍ମୀର ଯେ ଅଟେ ମନ୍ଦିର | । | ବିଶାଳ ବକ୍ଷସ୍ଥଳ ଆର | ।। | ୬୯ |
| | ତା ଦେଖି ଅତିସ୍ପୃହା ହୋଇ | । | ମନ ହିଁ ମୋହକୁ ଲଭଇ | ।। | ୭୦ |
| ୧୮ | ହେ ନାଥ ! ବ୍ୟକତି ତୁମ୍ଭର | । | ବ୍ରଜବନରେ ଯେତେ ନର | ।। | ୭୧ |
| | ତାହାଙ୍କ ଦୁଃଖ ଯେ ନାଶଇ | । | ସକଳ ମଙ୍ଗଳ ଅଟଇ | ।। | ୭୨ |
| | ନିଜ ଜନଙ୍କ ହୃଦୟର | । | ଶୋକ ଯେ କରେ ଅପହାର | ।। | ୭୩ |

---

୧. ପଞ୍ଚଶରକୁ = ମଦନକୁ ।　　୨. ପଦ୍ମଜା = ଲକ୍ଷ୍ମୀ ।　　୩. ଯୁଗକୁ ଯେସନେ ।

୪. ବୋଲନ୍ତି = ବୋଲିବା ।

୫. ଗତିବିଦଃ – ଅସ୍ମଦାଗମନଂ ଜାନତଃ, ଗୀତଗତୀର୍ବା ଜାନତଃ; ଗତିବିଦୋ ବୟଂ ବା (ସ୍ୱାମୀ) ।

୬. ମାର = କନ୍ଦର୍ପ ।

| | | | | | |
|---|---|---|---|---|---|
| | ତୁମ୍ଭର ସ୍ପୃହାରେ ଖଣ୍ଡିତ | । ହୋଇଣ ଅଛି ଆମ୍ଭ ଚିତ୍ତ | ॥ | ୭୪ |
| | ଅଳପମାତ୍ରକ ଆମ୍ଭଙ୍କୁ | । ପ୍ରଦାନ କରସି ତାହାକୁ | ॥ | ୭୫ |
| ୧୯ | ଭୋ ନାଥ ! ତୁମ୍ଭର କୋମଳ | । ଅଟେ ଯେ ଚରଣ କମଳ | ॥ | ୭୬ |
| | ଆମ୍ଭର କଠିନ ସ୍ତନରେ | । ଅର୍ପଣ କରୁଁ ଯା ଭୟରେ | ॥ | ୭୭ |
| | ସେ ପାଦପଦ୍ମେ ତୁମ୍ଭେ ପୁଣ | । ବନରେ କରୁଛ ଭ୍ରମଣ | ॥ | ୭୮ |
| | ସୂକ୍ଷ୍ମ ପାଷାଣମାନ ଲାଗି | । ସେ ଅବା ହୋଏ ଦୁଃଖଭାଗୀ | ॥ | ୭୯ |
| | ଭ୍ରମୁଛି ଆମ୍ଭ ଚିତ୍ତ ତେଣୁ | । ଆମ୍ଭ ଜୀବନ ତୁମ୍ଭେ ଯେଣୁ | ॥ | ୮୦ |
| | କୃଷ୍ଣଚରଣପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁ ମତି | ॥ | ୮୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଗୋପିକାଗୀତକଥନଂ
ନାମ ଏକତ୍ରିଂଶୋଽଧ୍ୟାୟଃ ॥

## ଦ୍ୱାତ୍ରିଂଶ ଅଧ୍ୟାୟ

ଦ୍ୱାତ୍ରିଂଶେ ବିରହାଳାପବିକ୍ଳିନ୍ନହୃଦୟୋ ହରିଃ ।
ତତ୍ରାବିର୍ଭୂୟ ଗୋପୀସ୍ତାଃ ସାନ୍ତ୍ୱୟାମାସ ମାନୟନ୍ ॥ ୧
ସ୍ୱପ୍ରେମାମୃତକଲ୍ଲୋଳବିହ୍ୱଳୀକୃତଚେତସଃ ।
ସଦୟଂ ନନ୍ଦୟନ୍ ଗୋପୀରୁଦ୍‌ଗତୋ ନନ୍ଦନନ୍ଦନଃ ॥ ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ହେ ନୃପ ! ଏମନ୍ତ ରୂପରେ | । ଗୋପୀଏ ବିବିଧ ପ୍ରକାରେ | ॥ | ୧ |
| | ଗାଆନ୍ତେ କହନ୍ତେ ବଚନ | । ସୁସ୍ୱରେ କଲେ ସେ ରୋଦନ | ॥ | ୨ |
| | ତାଙ୍କର କୃଷ୍ଣ ଦରଶନେ | । ଲାଳସା ଅଛି ନିଜ ମନେ | ॥ | ୩ |
| ୨ | ଯା' ମୁଖେ ଶୋହେ ମନ୍ଦ ହାସ | । ଧରିଛନ୍ତି ଯେ ପୀତବାସ | ॥ | ୪ |
| | କୁସୁମମାଳା ଉରେ ଶୋହେ | । ରୂପେ ଯେ କାମକୁ ହିଁ ଦହେ | ॥ | ୫ |
| | ଏମନ୍ତରୂପେ ନନ୍ଦସୁତ | । ଗୋପୀଙ୍କି ହେଲେ ସେ ବିଦିତ | ॥ | ୬ |
| ୩ | ସେ ଅତିପ୍ରିୟ ନନ୍ଦସୁତ | । ହୁଅନ୍ତେ ଆସି ଉପଗତ | ॥ | ୭ |
| | ପ୍ରୀତିରେ ବିକସିତ ହୋଇ | । ଶୋହେ ଯାଙ୍କର ନେତ୍ରଦୁଇ | ॥ | ୮ |
| | ସେ ଗୋପୀମାନେ ତତକ୍ଷଣ | । ଉଠିଲେ ତାହାଙ୍କୁ ଦେଖିଣ | ॥ | ୯ |
| | କର ଚରଣ ଆଦିମାନ | । ହୋଇ ଥାଆନ୍ତି ଅଚେତନ | ॥ | ୧୦ |
| | ପ୍ରାଣପ୍ରବେଶେ ତତକାଳ | । ସେ ଯେହ୍ନେ ହୁଅନ୍ତି ଚଞ୍ଚଳ | ॥ | ୧୧ |

୪ କେବଣ ଗୋପିକା ତହିଁରେ । କରଅଞ୍ଜଳି କରି ଧୀରେ ।। ୧୨
ହରଷେ ଧଇଲା କୃଷ୍ଣର । କରକମଳକୁ ସତ୍ୱର ।। ୧୩
ସେ କୃଷ୍ଣ ବାହୁକୁ କେ ପୁଣି । ଧଇଲା ନିଜ କନ୍ଧେ ଆଣି ।। ୧୪
ଯେବଣ ବାହୁ ଚନ୍ଦନରେ । ଭୂଷିତ ହୋଇଛି ନିର୍ଭରେ ।। ୧୫
୫ ତାମ୍ବୂଳ ଚର୍ବିତ ସତ୍ୱରେ । ଧଇଲା କେହୁ ଅଞ୍ଜଳିରେ ।। ୧୬
ଏକ ଗୋପୀଏ ତାପି ହୋଇ । ସେ କୃଷ୍ଣ ପାଦପଦ୍ମ ନେଇ ।। ୧୭
ଆପଣା ସ୍ତନଯୁଗଳରେ । ଧଇଲା ଅତି ପ୍ରେମଭରେ ।। ୧୮
୬ ଏକ ଗୋପୀଏ ପ୍ରେମକୋପେ । ବିବଶ ହୋଇଣ ସମୀପେ ।। ୧୯
ଚାପିଛି ଆପଣା ଓଷ୍ଠକୁ । କୁଟିଳ କରି ଭ୍ରୂଲତାକୁ ।। ୨୦
ଆଘାତ କଲା ପ୍ରାୟେ ହୋଇ । କଟାକ୍ଷପାତେ ଦେଲା ଚାହିଁ ।। ୨୧
୭ ଯହିଁ ନିମେଷପାତ ନାହିଁ । ସେ ବେନି ନେତ୍ରେ ଆନ କେହି ।। ୨୨
ତା' ମୁଖପଦ୍ମକୁ ପିବନ୍ତେ । ତୋଷ ନୋହିଲା ନିଜ ଚିତ୍ତେ ।। ୨୩
ତା' ପାଦ ଦେଖି ସାଧୁ ଯେହ୍ନେ । ତୋଷ ନୁହନ୍ତି ନିଜ ମନେ ।। ୨୪
୮ ନେତ୍ରରନ୍ଧ୍ରରେ ତାଙ୍କୁ କେହି । ରଖିଣ ହୃଦମଧ୍ୟେ ନେଇ ।। ୨୫
ନୟନଯୁଗ ବୁଜି କରି । ଅଙ୍ଗେ ପୁଲକ ଅଛି ଧରି ।। ୨୬
ରହିଲା ଆଲିଙ୍ଗନ କରି । ଆନନ୍ଦେ ବୁଡ଼ିଅଛି ନାରୀ ।। ୨୭
ସମାଧିକାଳେ ଯୋଗିଜନ । ନିଶ୍ଚଳେ ରହଇ ଯେସନ ।। ୨୮
୯ କୃଷ୍ଣଦରଶନୁଁ ସମ୍ଭବ । ଯେ ହେଲା ପରମ ଉତ୍ସବ ।। ୨୯
ତେଣେ ସମସ୍ତେ ସୁଖୀ ହେଲେ । ବିରହତାପକୁ ଛାଡ଼ିଲେ ।। ୩୦
ପ୍ରାଜ୍ଞଙ୍କୁ[1] ପାଇଣ ଯେସନେ । ସୁଖୀ ହୁଅନ୍ତି ଜନମାନେ[2] ।। ୩୧
୧୦ ଯେ ଦରଶନରେ କୃଷ୍ଣର । ଛାଡ଼ିଲେ ଶୋକ ଆପଣାର ।। ୩୨
ସେ ଗୋପୀମାନଙ୍କେ ବେଷ୍ଟିତ । ହୋଇଣ ପ୍ରଭୁ ନନ୍ଦସୁତ ।। ୩୩
ହେ ତାତ ! ଅତିଶୟ ହୋଇ । ଶୋଭା ପାଇଲେ ପୁଣ ତହିଁ ।। ୩୪
ଶକତି[3] ମାନଙ୍କେ ଯେସନ । ପୁରୁଷ[4] ଦିଶଇ ଶୋଭନ ।। ୩୫
୧୧ | କୁନ୍ଦ ମନ୍ଦାର ପୁଷ୍ପମାନେ । ଫୁଟି ଅଛନ୍ତି ଯେ ବିପିନେ[5] ।। ୩୬
୧୨ | ସେ ହେତୁ ସୁଗନ୍ଧି ମାରୁତ । ବହୁଅଛି ଯେ ଅବିରତ ।। ୩୭
ତେଣୁ ଭ୍ରମରମାନେ ଯହିଁ । ଅଛନ୍ତି ଆସକତ ହୋଇ ।। ୩୮
ଶରଦକାଳଚନ୍ଦ୍ରମାର । ଯେ ପୁଣ କିରଣନିକର ।। ୩୯
ତେଣୁ ରଜନୀଅନ୍ଧକାର । ଯହିଁରେ ହୋଇଛି ସଂହାର ।। ୪୦

---

୧. ପ୍ରାଜ୍ଞ = ଈଶ୍ୱର ଅଥବା ବ୍ରହ୍ମଜ୍ଞ । ୨. ଜନ = ମୁମୁକ୍ଷୁ ଅଥବା ସଂସାରୀ ।
୩. ଶକତି = ସତ୍ତ୍ୱାଦି ଅଥବା ଜ୍ଞାନ-ବଳବୀର୍ଯ୍ୟାଦି ଅଥବା ପ୍ରକୃତ୍ୟାଦି ଉପାଧି ।
୪. ପୁରୁଷ = ପରମାତ୍ମା କିମ୍ବା ଉପାସକ । ୫. ବିପିନେ = ସ୍ଥାନେ ସ୍ଥାନେ ।

ଯେ ଯମୁନାର ହସ୍ତପ୍ରାୟ । ଦିଶନ୍ତି ତରଙ୍ଗନିଚୟ ।। ୪୧
ତେଣେ କୋମଳ ବାଲିମାନେ । ପୂରି ଅଛନ୍ତି ଯଉଁ ସ୍ଥାନେ ।। ୪୨
ସେ ରବିସୁତାପୁଲିନରେ । ଘେନି ସେ ଗୋପୀଙ୍କି ସଙ୍ଗରେ ।। ୪୩
ପ୍ରବେଶ ହୋଇ ଭଗବାନ । ଅଧିକେ ଦିଶିଲେ ଶୋଭନ ।। ୪୪
୧୩ ସେ କୃଷ୍ଣ ଦରଶନୁଁ ଜାତ । ହେଲା ଯେ ଆହ୍ଲାଦ ତୁରିତ ।। ୪୫
ହୃଦୟବେଦନା ଯେ ଥିଲା । ତେଣେ ତାଙ୍କର ନାଶ ଗଲା ।। ୪୬
ସକଳ ମନୋରଥମାନ । ତାଙ୍କର ହୋଇଲା ସଂପୂର୍ଣ୍ଣ ।। ୪୭
କର୍ମକାଣ୍ଡରେ ଶ୍ରୁତିମାନେ । ନ ଦେଖି ଈଶ୍ୱରଙ୍କୁ ଯେହ୍ନେ ।। ୪୮
କାମ୍ୟ କର୍ମଙ୍କ ଫଳ ଚିନ୍ତି । ଅପୂର୍ଣ୍ଣ ପ୍ରାୟେ ହୋଇଥାନ୍ତି ।। ୪୯
ଜ୍ଞାନକାଣ୍ଡରେ ସେହିମାନେ । ପରମେଶ୍ୱର ଦରଶନେ ।। ୫୦
ତାର ଆହ୍ଲାଦେ ହୋଇ ପୂର୍ଣ୍ଣ । ଛାଡ଼ନ୍ତି କାମ୍ୟ କର୍ମମାନ ।। ୫୧
ସେହିରୂପରେ ଗୋପୀମାନେ । ହୋଇଲେ କୃଷ୍ଣ ଦରଶନେ ।। ୫୨
କୁଚକୁଙ୍କୁମମାନେ ଯହିଁ । ଅଛନ୍ତି ଚିହ୍ନପ୍ରାଏ ହୋଇ ।। ୫୩
ସେ ନିଜ ଉତ୍ତରୀୟମାନ । ଭୂମିରେ କରି ନିବେଶନ ।। ୫୪
ଯେ ନିଜ ବନ୍ଧୁ ଭଗବାନ । କଳ୍ପିଲେ ତାହାଙ୍କୁ ଆସନ ।। ୫୫
୧୪ ହୃଦୟେ ଯୋଗେଶ୍ୱରଙ୍କର । କଳ୍ପିତ ଆସନ ଯାହାର ।। ୫୬
[1]ତ୍ରୈଲୋକ୍ୟେ ଯେତେ ଲକ୍ଷ୍ମୀମାନ । ତାଙ୍କର ଅଟେ ଏକସ୍ଥାନ ।। ୫୭
ଏମନ୍ତ ଯଉଁ ନିଜ ଦେହ । କରନ୍ତେ ତାହା ପରିଗ୍ରହ ।। ୫୮
ସେ ଗୋପୀମାନଙ୍କ ସଭାରେ । ମାନନା ଲଭି ତାହାଙ୍କରେ ।। ୫୯
ସେ ଆସନରେ ବସିଥାଇ । ଶୋଭା ପାଇଲେ ଭାବଗ୍ରାହୀ ।। ୬୦
୧୫ ତାହାଁନ୍ତେ ହସିଣ ଲୀଳାରେ । ବିଳାସ ସଂଭବେ ଯହିଁରେ ।। ୬୧
ଏମନ୍ତ ଭ୍ରୂଲତାରେ ପୁଣି । ଲକ୍ଷିତ ଯେ ଗୋପତରୁଣୀ ।। ୬୨
ଅନଙ୍ଗବର୍ଦ୍ଧନ ଯେ ହରି । ତାହାଙ୍କୁ ସଂମାନନା କରି ।। ୬୩
ଚରଣ ଯୁଗଳ ତାଙ୍କର । ନିବେଶି ଆପଣା ଅଙ୍କର ।। ୬୪
ମର୍ଦ୍ଦନ୍ତେ ତା' ହସ୍ତଯୁଗଳେ । ସ୍ତୁତି କରିଣ ଏକମେଳେ ।। ୬୫
ଅଳପ କୁପିତ ହୋଇଲେ । ଏମନ୍ତ ବଚନ ବୋଇଲେ ।। ୬୬

ଶ୍ରୀଗୋପ୍ୟ ଉଚୁଃ

୧୬ ଭଜନ୍ତି ଯେହୁ ଆପଣାକୁ । ଭଜନ୍ତି କେହି ପୁଣ ତାଙ୍କୁ ।। ୬୭
ପରଭଜନକୁ ନ ଚାହିଁ । ଅଭକ୍ତକୁ ହିଁ ଭଜେ କେହି ।। ୬୮
ଯେ ପୁଣ କରନ୍ତି ଭଜନ । ଯେ ଅବା ନ ଭଜନ୍ତି ଜନ ।। ୬୯

୧. ଏଠାରେ ଶ୍ରୀଖାଡ଼ଙ୍ଗା 'ଲକ୍ଷ୍ମୀ' ଶବ୍ଦର ଏକବଚନ ସ୍ଥଳେ ବହୁବଚନର ଅନୁବାଦ କରିଅଛନ୍ତି – ''ତ୍ରୈଲୋକ୍ୟେ ଯା ଲକ୍ଷ୍ମୀଃ ଶୋଭା ତସ୍ୟା ଏକମେବ ପଦଂ ସ୍ଥାନମ୍'' (ସ୍ୱାମୀ) ।

| | | | | |
|---|---|---|---|---|
| | ସେ ବେନିଠାରେ ସମ ମତି | । କେ ପୁଣି ତାଙ୍କୁ ନ ଭଜନ୍ତି | ।। | ୭୦ |
| | ଏ କଥା ନିଃସଂଶୟ କରି | । ଆମ୍ଭଙ୍କୁ ଆଜ୍ଞା ଦିଅ ହରି | ।। | ୭୧ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧୭ | ହେ ସଖୀମାନେ ! ପରସ୍ପରେ | । ଭଜୁଥାଆନ୍ତି ଯଉଁ ନରେ | ।। | ୭୨ |
| | ଆପଣା ଅର୍ଥେ ନିରନ୍ତର | । ଉଦ୍ୟମ ଅଟେ ତାହାଙ୍କର | ।। | ୭୩ |
| | ଯେ ମିତ୍ରଭାବ ଧର୍ମ ଦୁଇ | । ଏ ବେନି କଥା ତହିଁ ନାହିଁ | ।। | ୭୪ |
| | ଆପଣା ନିମିତ୍ତ ସେ କଥା | । କେବେହେଁ ନୋହେ ଏ ଅନ୍ୟଥା | ।। | ୭୫ |
| ୧୮ | କରୁଣାବନ୍ତ ଜନେ କେହି | । ପିତାମାତାର ପ୍ରାୟ ହୋଇ | ।। | ୭୬ |
| | ଅଭକ୍ତିମନ୍ତ ଯଉଁ ଜନ | । ତାଙ୍କୁ ହିଁ କରନ୍ତି ଭଜନ | ।। | ୭୭ |
| | ଏଥିରେ ଅପବାଦଶୂନ୍ୟ | । ଧର୍ମ ହୋଇଛି ବିଦ୍ୟମାନ | ।। | ୭୮ |
| | ଆଗୋ ସୁମଧ୍ୟମାଏ ! ପୁଣ | । ଏଥିରେ ଅଛି ମିତ୍ରପଣ | ।। | ୭୯ |
| ୧୯ | ଭଜିଲା ଲୋକମାନଙ୍କୁ ହି | । ଭଜନ୍ତି ନାହିଁ ପୁଣ କେହି | ।। | ୮୦ |
| | ଯେ ପୁଣ ନ କରନ୍ତି ସେବା | । ତାଙ୍କୁ ଭଜିବେ କାହୁଁ ଅବା | ।। | ୮୧ |
| | ଯେ ଆତ୍ମାରାମ ଏ ଭୁବନେ | । ଯେ ପୂର୍ଣ୍ଣକାମ ପୁଣି ଜନେ | ।। | ୮୨ |
| | ପର-ରଚିତ ଉପକାର | । ଜାଣନ୍ତି ନାହିଁ ଯେ ବା ନର | ।। | ୮୩ |
| | ପରିପୋଷଣ ଯେ କରଇ | । ସେ ପିତା ଗୁରୁ ଅଟେ ସେହି | ।। | ୮୪ |
| | ତାହାଙ୍କୁ ଦ୍ରୋହ ଯେ କରନ୍ତି | । ଭଜିଲାକୁ ଏ ନ ଭଜନ୍ତି | ।। | ୮୫ |
| ୨୦ | ହେ ସଖୀମାନେ ! ଯଉଁ ଜନେ | । ମୋତେ ଭଜନ୍ତି ତୋଷମନେ | ।। | ୮୬ |
| | ସେମାନଙ୍କର ଅନୁବୃତ୍ତି | । ଯେମନ୍ତେ ଥିବ ଅନୁବର୍ତ୍ତି | ।। | ୮୭ |
| | ସେ ଅର୍ଥେ ସେ ଲୋକଙ୍କୁ ମୁହିଁ | । କଦାଚିତରେ ନ ଭଜଇ | ।। | ୮୮ |
| | ଲଭିଲା ଧନ ହେଲେ ନାଶ | । ଯେସନେ ଅଧନ ପୁରୁଷ | ।। | ୮୯ |
| | ସେହି ଚିନ୍ତାରେ ପୂର୍ଣ୍ଣ ହୋଇ | । ଆନ କଥାକୁ ନ ଜାଣଇଁ | ।। | ୯୦ |
| ୨୧ | ଯେ ଯୁକ୍ତ ଅଯୁକ୍ତ ପ୍ରକାର | । ଯେ ଧର୍ମ ଅଧର୍ମ ବିଚାର | ।। | ୯୧ |
| | ଯେ ସ୍ନେହ ନିଜ ଜ୍ଞାତିଜନେ | । ମୋର ନିମିତ୍ତେ ତୁମ୍ଭେମାନେ | ।। | ୯୨ |
| | ଏମାନ ଛାଡ଼ିଛ ପୂର୍ବରେ | । ଯେ ଅନୁବୃତ୍ତି ମୋହଠାରେ | ।। | ୯୩ |
| | ସେ କଥା ସିଦ୍ଧ ହେବା ପାଇଁ | । ତୁମ୍ଭରି ନିକଟରେ ଥାଇ | ।। | ୯୪ |
| | ଶୁଣନ୍ତେ ତୁମ୍ଭ ପ୍ରେମବାଣୀ | । ହୋଇଲି ଅନ୍ତର୍ଧାନ ପୁଣି | ।। | ୯୫ |
| | ହେ ପ୍ରିୟାମାନେ ! ମୁଁ ତୁମ୍ଭର | । ପ୍ରିୟ ଅଟଇ ନିରନ୍ତର | ।। | ୯୬ |
| | ମୋ'ଠାରେ ଦୋଷ ଆରୋପଣ | । ନ କର ତୁମ୍ଭେ ଅକାରଣ | ।। | ୯୭ |
| ୨୨ | ନିର୍ଦ୍ଦୋଷ ସଂଯୋଗ ମୋ'ଠାରେ | । ଯେ ତୁମ୍ଭେ କରିଛ ସ୍ନେହରେ | ।। | ୯୮ |
| | ତୁମ୍ଭର ପ୍ରତି-ଉପକାର | । ନିମିତ୍ତେ ନାହିଁ ଶକ୍ତି ମୋର | ।। | ୯୯ |
| | ଦେବଙ୍କ ଆୟୁଷ ପାଇଲେ | । ଶୁଝି ନ ପାରିବି ତା' ଭଲେ | ।। | ୧୦୦ |

କାଳରେ ଜୀର୍ଣ୍ଣ ଯେ ନୁହଇ । ସେ ଗୃହଶାଙ୍କୋଳି ଅଟଇ ।। ୧୦୧
ତାହା ଛିନାଇ କରି ମୋତେ । ଯେ ତୁମ୍ଭେ ଭଜିଲ ସଂତତେ ।। ୧୦୨
ତୁମ୍ଭର ସାଧୁକୃତ୍ୟେ ମୋର । ଶୁଝା ଯାଉ ସେ ଉପକାର ।। ୧୦୩
ତୁମ୍ଭ ସଂତୋଷ ହେଲେ ପୁଣ । ମୁଁ ଶୁଝି ପାରିବି ସେ ଋଣ ।। ୧୦୪
ଶ୍ରୀବୃନ୍ଦାବନେ ନାନା ରଙ୍ଗେ । ଗୋପିକାମାନଙ୍କର ସଙ୍ଗେ ।। ୧୦୫
ବିହାର କଲେ ଯେ ଗୋବିନ୍ଦ । ତାହାଙ୍କ ଚରଣାରବିନ୍ଦ ।। ୧୦୬
ଚିତ୍ତରେ ଚିନ୍ତି ଭବବନ୍ଧୁଁ । ତରିବ ଦ୍ୱିଜ ଦୀନବନ୍ଧୁ ।। ୧୦୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଗୋପୀସାନ୍ତ୍ୱନଂ
ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।।

## ତ୍ରୟସ୍ତ୍ରିଂଶ ଅଧ୍ୟାୟ

ତ୍ରୟସ୍ତ୍ରିଂଶେ ତତୋ ଗୋପୀମଣ୍ଡଳୀମଧ୍ୟଗୋ ହରିଃ ।
ପ୍ରିୟାସ୍ତା ରମୟାମାସ ହ୍ରଦିନୀବନକେଳିଭିଃ ।। ୧

ଶ୍ରୀଶୁକ ଉବାଚ

୧ ଶୁକ କହନ୍ତି ତୋଷମନେ । ରାଜନ ଶୁଣ ସାବଧାନେ ।। ୧
ଏ ରୂପେ ସୁକୋମଳ ବାଣୀ । କୃଷ୍ଣର ଗୋପୀମାନେ ଶୁଣି ।। ୨
ଯେ ତାପ ବିରହରୁ ଜାତ । ତାହାକୁ ଛାଡ଼ିଲେ ତୁରିତ ।। ୩
ତା' ଅଙ୍ଗ କରିଣ ସ୍ପରଶ । ଲଭିଲେ ମଙ୍ଗଳ ଅଶେଷ ।। ୪
୨ । ଭୁଜକୁ ଭୁଜ ପରସ୍ପରେ । ନିବନ୍ଧ କରିଣ ପ୍ରୀତିରେ ।। ୫
୩ । ଯେ ନାରୀରତ୍ନେ ଅପ୍ରମିତ । କୃଷ୍ଣଙ୍କୁ ହେଲେ ଅନୁଗତ ।। ୬
ତାଙ୍କ ସଙ୍ଗତେ ବନମାଳୀ । ରଚିଲେ ତହିଁ ରାସକେଳି ।। ୭
ଗୋପୀମଣ୍ଡଳରେ ମଣ୍ଡିତ । ରାସଉତ୍ସବ ହେଲା ଜାତ ।। ୮
ମଣ୍ଡଳୀରୂପେ ଗୋପୀମାନେ । ରହନ୍ତେ କ୍ରୀଡ଼ାର ବିଧାନେ ।। ୯
ବେନି ବେନିଙ୍କ ମଧ୍ୟେ ସ୍ଥିତ । ସେ ଯୋଗେଶ୍ୱର ନନ୍ଦସୁତ ।। ୧୦
ତାହାଙ୍କୁ ବେନି ପାରୁଶରେ । ଆଶ୍ଳେଷ କରନ୍ତେ ନିର୍ଭରେ ।। ୧୧
ମତେ କେବଳ ଭଗବାନ । କରିଅଛନ୍ତି ଆଲିଙ୍ଗନ ।। ୧୨
ଏ ରୂପେ ତାହାଙ୍କୁ ସକଳ । ମଣିଲେ ବ୍ରଜବଧୂକୁଳ ।। ୧୩
ଦାରାସହିତେ ଦେବମାନେ । ଆସନ୍ତେ ସମୁତ୍ସୁକ ମନେ ।। ୧୪
ବିମାନଶତରେ ସଂକୁଳ । ହେଲା ସେକାଳେ ନଭସ୍ଥଳ ।। ୧୫
୪ ଦୁନ୍ଦୁଭିମାନେ କଲେ ସ୍ୱନ । ପଡ଼ିଲେ ପୁଷ୍ପବୃଷ୍ଟିମାନ ।। ୧୬

ଯୁବତିମାନଙ୍କର ସଙ୍ଗେ । ଗନ୍ଧର୍ବପତିମାନେ ରଙ୍ଗେ ॥ ୧୭
ତାର ନିର୍ମଳ ଯଶମାନ । ହରଷେ କଲେକ ଗାୟନ ॥ ୧୮
୫ ରାସମଣ୍ଡଳେ ପ୍ରିୟସଙ୍ଗେ । ଗୋପୀ ଭ୍ରମନ୍ତେ ନୃତ୍ୟରଙ୍ଗେ ॥ ୧୯
କିଙ୍କିଣୀ ବଳୟ ନୂପୁର । ଶବଦ ଶୁଭିଲା ଅପାର ॥ ୨୦
୬ ସେ ବ୍ରଜବାଳାମାନଙ୍କରେ । ସହିତ ହୋଇ ତଦନ୍ତରେ ॥ ୨୧
ଦେବକୀସୁତ ଭଗବାନ । ଅଧିକେ ଦିଶିଲେ ଶୋଭନ ॥ ୨୨
ହେମକଣ୍ଠୀଙ୍କ ମଧ୍ୟଗତ । ଯେସନେ ମହାମରକତ ॥ ୨୩
୭ ଭୁଜଚାଳନେ ପାଦନ୍ୟାସେ । ସୁସ୍ମିତା ଭ୍ରୂଲତାବିଳାସେ ॥ ୨୪
ଭାଜିଲା ପ୍ରାୟ ଅତି କୃଶେ । ଦିଶନ୍ତି ଯେ ସେ ମଧ୍ୟଦେଶେ ॥ ୨୫
ଚଞ୍ଚଳ ଉରୋଜନିଚୋଳେ । ଗଣ୍ଡରେ ଲୋଳନ୍ତି[1] କୁଣ୍ଡଳେ ॥ ୨୬
ଶୋଭିତ କୃଷ୍ଣବଧୂଜନ । କୃଷ୍ଣଙ୍କୁ କରନ୍ତି ଗାୟନ ॥ ୨୭
ମୁଖରୁ ସ୍ରବେ ସ୍ୱେଦମାନ । ଫିଟିଲା କବର ରଶନ[2] ॥ ୨୮
ବିଜୁଳି ମେଘଚକ୍ରେ ଯେହ୍ନେ । ଶୋଭିତ ଦିଶିଲେ ସେ ତେହ୍ନେ ॥ ୨୯
୮ ବିବିଧ ରାଗେ ତାହାଙ୍କର । କଣ୍ଠ ହୋଇଛି ମନୋହର ॥ ୩୦
ଅଟନ୍ତି ସୁରତଲାଳସ । କୃଷ୍ଣରେ ଲଭିଣ ହରଷ ॥ ୩୧
ନୃତ୍ୟ କରନ୍ତେ ଗୋପୀଜନ । ଉଚ୍ଚରେ କଲେ ସେ ଗାୟନ ॥ ୩୨
ତାହାଙ୍କ ଗୀତରେ ପୂରିତ । ହୋଇଲା ସକଳ ଜଗତ ॥ ୩୩
୯ କେବଣ ଗୋପବଧୂଜନ । ସ୍ୱରଆଳାପ[3] ଗତିମାନ ॥ ୩୪
କୃଷ୍ଣଗୀତରେ ନ ମିଶାଇ । ଗାଇଲା କୃଷ୍ଣସଙ୍ଗେ ଥାଇ ॥ ୩୫
ତାହାକୁ ସାଧୁ ସାଧୁ କରି । ପ୍ରଶଂସା କଲେ ବେଣୁଧାରୀ ॥ ୩୬
ସେହିମାନଙ୍କୁ[4] ଧ୍ରୁବତାଳ[5] । କରି ଟେକିଲା ଯେତେବେଳ ॥ ୩୭
ପୁଣି ସେକାଳେ ସଂମାନନ । କଲେ ତାହାକୁ ଭଗବାନ ॥ ୩୮
୧୦ କେବଣ ଗୋପବଧୂ ରାସେ । ଶ୍ରମକୁ ଲଭିଣ ଅବଶେ ॥ ୩୯
ପାଶେ ଯେ ଥିଲେ ଗଦାଧର । ତା' ସ୍କନ୍ଧେ ଦେଲା ଭୁଜଭର ॥ ୪୦
କରବଳୟ[6] ମଲ୍ଲୀମାଳ । ଶିଥିଳ ହୋଇଲେ ସେକାଳ ॥ ୪୧
୧୧ ଉତ୍ପଳପ୍ରାୟ ସୁବାସିତ । ଚନ୍ଦନେ ହୋଇଛି ଲେପିତ ॥ ୪୨
ଏମନ୍ତ ଭୁଜ ଶ୍ରୀକୃଷ୍ଣର । ଥିଲା ଯେ ନିଜ ଅଂସପର ॥ ୪୩
ଆଘ୍ରାଣ କରି ତାହା କେହି । ଚୁମ୍ବିଲା ପୁଲକିତ ହୋଇ ॥ ୪୪
୧୨ ନୃତ୍ୟବଶରୁ ଯେ ଚଞ୍ଚଳ । ହୋଇଛି ଶ୍ରବଣକୁଣ୍ଡଳ ॥ ୪୫

---

୧. ଲୋଳନ୍ତି = ଲୁଳନ୍ତି । ୨. ରଶନ = ଅଣ୍ଟାସୂତା । ୩. ସ୍ୱରଆଳାପ = ମୂର୍ଚ୍ଛନା ବିଶେଷ ।
୪. ସେହିମାନଙ୍କୁ = ଷଡ୍‌ଜ ଆଦି ସ୍ୱର-ଆଳାପଗତିମାନଙ୍କୁ ।
୫. ଧ୍ରୁବତାଳ = 'ଧ୍ରୁବ' ନାମକ ତାଳ ବିଶେଷ । ୬. କରବଳୟ = କଙ୍କଣ ବଳୟ ।

ତାର କାନ୍ତିରେ ମନୋହର । ଗଣ୍ଡ ଦିଶଇ ଶ୍ରୀକୃଷ୍ଣର ।। ୪୬
ନିଜ ଗଣ୍ଡକୁ ସେ ଗଣ୍ଡରେ । ସଂଯୋଗ କରନ୍ତେ ତହିଁରେ ।। ୪୭
ତା' ମୁଖେ ତାମ୍ବୂଳଚର୍ବିତ । ଅର୍ପଣ କଲେ ନନ୍ଦସୁତ ।। ୪୮
୧୩ କେ ଗୋପୀ କୃଷ୍ଣପାଶେ ଥାଇ । ନୃତ୍ୟ କରନ୍ତେ ଗୀତ ଗାଇ ।। ୪୯
କନକମେଖଳା ନୂପୁର । ଶବଦ କରେ ମନୋହର ।। ୫୦
ଯେ କରପଦ୍ମ ଅଚ୍ୟୁତର । ଅଟଇ ସର୍ବତାପହର[୧] ।। ୫୧
ନିବେଶିଲା ତା' ସ୍ତନପରେ । ଶ୍ରମକୁ ଲଭନ୍ତେ ନୃତ୍ୟରେ ।। ୫୨
୧୪ ଏକାନ୍ତ ବଲ୍ଲଭ ଲକ୍ଷ୍ମୀର । ଅଟନ୍ତି ଯଉଁ ଦାମୋଦର ।। ୫୩
ତାହାଙ୍କୁ କାନ୍ତ କରି ପାଇ । ତା' ଭୁଜେ ଆଲିଙ୍ଗିତ ହୋଇ ।। ୫୪
ତାହାଙ୍କୁ କରନ୍ତେ ଗାୟନ । ବିହାର କଲେ ଗୋପୀଜନ ।। ୫୫
୧୫ ଯେବଣ ରାସଗୋଷ୍ଠୀଠାରେ । ଗାୟନ କରନ୍ତି ଭ୍ରମରେ ।। ୫୬
କୃଷ୍ଣ ସଙ୍ଗତେ ନୃତ୍ୟଲୀଳା । ରଚିଲେ ତହିଁ ଗୋପବାଳା ।। ୫୭
କର୍ଣ୍ଣରେ ଖଞ୍ଜିତ ଉତ୍ପଳ । ଅଳକଶୋଭିତ କପୋଳ ।। ୫୮
ସ୍ୱେଦବିନ୍ଦୁରେ ମନୋହର । ଦିଶଇ ମୁଖ ତାହାଙ୍କର ।। ୫୯
କିଙ୍କିଣୀ ବଳୟ ନୂପୁର । ବାଦ୍ୟ ବାଜଇ ଗୁରୁତର ।। ୬୦
କେଶରୁ ଫିଟି ପୁଷ୍ପମାଳେ । ପଡ଼ନ୍ତି ଅବନିର ତଳେ ।। ୬୧
୧୬ ଆଶ୍ଳେଷ କରସଂସ୍ପର୍ଶେ । ସୁସ୍ନିଗ୍ଧ କଟାକ୍ଷପ୍ରକାଶେ ।। ୬୨
ଉଦ୍ଦାମ ବିଳାସହାସରେ । ବ୍ରଜସୁନ୍ଦରୀଙ୍କ ସଙ୍ଗରେ ।। ୬୩
ଏ ରୂପେ କଲେ ସେ ବିହାର । ରମାବଲ୍ଲଭ ବେଣୁଧର ।। ୬୪
ଆପଣା ଛାଇକି ଅନାଇଁ । ବାଳକ ଯେସନେ ଖେଳଇ ।। ୬୫
୧୭ ସେ କୃଷ୍ଣ ଅଙ୍ଗସଙ୍ଗ ପାଇ । ଯଉଁ ହରଷ ଅଛି ହୋଇ ।। ୬୬
ତେଣେ ସେ ଗୋପୀମାନଙ୍କର । ଅବଶ ଇନ୍ଦ୍ରିୟନିକର ।। ୬୭
ଶ୍ଳଥ ହୁଅନ୍ତେ କେଶପାଶ । ଦୁକୂଳ କୁଚପର ବାସ ।। ୬୮
ଏମାନ ପୂର୍ବପ୍ରାୟ କରି । ଗୋପୀଏ ନ ପାରିଲେ ଧରି ।। ୬୯
ବିବିଧ ପୁଷ୍ପମାଳାମାନ । ଯେ ଆଭରଣ ଥିଲେ ଆନ ।। ୭୦
ହେ କୁରୁଶ୍ରେଷ୍ଠ ! ଏ ସକଳ । ଛିଡ଼ି ପଡ଼ିଲେ ଭୂମିତଳ ।। ୭୧
୧୮ କୃଷ୍ଣର କ୍ରୀଡ଼ାବିଲୋକନେ । ଗଗନଚର ବଧୂମାନେ ।। ୭୨
ମଦନଶରେ ଅଶକତ[୨] । ସକଳେ ହୋଇଲେ ମୋହିତ ।। ୭୩
କାମରେ ହୋଇଣ ପୀଡ଼ିତ । ଗଣସହିତେ ନିଶାନାଥ ।। ୭୪
କୃଷ୍ଣର ଲୀଳାକୁ ଦେଖିଣ । ଲଭିଲା ବିସ୍ମୟକୁ ପୁଣ ।। ୭୫
୧୯ ଆତ୍ମାରେ ବିହାର ଯାହାର । ହେଲେ ହେଁ ଏମନ୍ତ ଈଶ୍ୱର ।। ୭୬

୧. ସର୍ବତାପହର = ସର୍ବପାପହର । ୨. ଅଶକତ = କ୍ଳାନ୍ତ ।

ଗୋପଯୁବତି ଛନ୍ତି ଯେତେ । ନିଜ ଶରୀର କରି ତେତେ ॥ ୭୭
ଲୀଳାରେ ଗୋପୀଙ୍କର ସଙ୍ଗେ । ବିହାର[1] କଲେ ନାନାରଙ୍ଗେ ॥ ୭୮
୨୦ ସୁରତବିହାରରୁ କରି । ଶ୍ରମ ଲଭନ୍ତେ ଗୋପନାରୀ ॥ ୭୯
ସ୍ନେହରେ କରିଣ କୃପାକୁ । ତାହାଙ୍କ ବଦନମାନଙ୍କୁ ॥ ୮୦
ମଙ୍ଗଳପ୍ରଦ ଯଉଁ କର । ତେଣେ ପୋଛିଲେ ଦାମୋଦର ॥ ୮୧
୨୧ କର୍ଣ୍ଣରେ ସୁବର୍ଣ୍ଣକୁଣ୍ଡଳ । ଶୋଭଇ ଶିରରେ କୁନ୍ତଳ ॥ ୮୨
ସେ ବେନି କାନ୍ତିରୁ ପ୍ରକାଶେ । ଯେବଣ ଶୋଭା ଗଣ୍ଡଦେଶେ ॥ ୮୩
ଅମୃତସମ ହାସେ ମିଶି । ଯେବଣ କଟାକ୍ଷ ପ୍ରକାଶି ॥ ୮୪
ତେଣେ କୃଷ୍ଣଙ୍କୁ ସଂମାନନା । କରନ୍ତେ ସେ ବ୍ରଜ-ଅଙ୍ଗନା ॥ ୮୫
କୃଷ୍ଣର-ପୁଣ୍ୟକର୍ମମାନ । ଯେ ଅଛି କଲେ ତା' ଗାୟନ ॥ ୮୬
ଲାଗନ୍ତେ କୃଷ୍ଣନଖମାନେ । ହରଷ ଲଭିଛନ୍ତି ମନେ ॥ ୮୭
୨୨ ଗୋପୀଙ୍କ ଅଙ୍ଗସଙ୍ଗ ପାଇ । ଯେ ଅଛି ସଂମର୍ଦ୍ଦିତ ହୋଇ ॥ ୮୮
ତାହାଙ୍କ କୁଚକୁଙ୍କୁମରେ । ରଞ୍ଜିତ ହୋଇଛି ଯେ ଉରେ ॥ ୮୯
ସେ ପୁଷ୍ପମାଳାସଙ୍ଗ ପାଇ । ଗନ୍ଧର୍ବପତିପ୍ରାୟ ହୋଇ ॥ ୯୦
କରୁଅଛନ୍ତି ଯେ ଗାୟନ । ସଙ୍ଗେ ଛନ୍ତି ସେ ଭୃଙ୍ଗମାନ ॥ ୯୧
ଗୋପୀଙ୍କ ସଙ୍ଗେ ଶ୍ରମ ପାଇ । ଜଳେ ପ୍ରବେଶ ହେଲେ ଯାଇଁ ॥ ୯୨
ଯେ କରିବର ମତ୍ତ ହୋଇ । ଲୋକମର୍ଯ୍ୟାଦାକୁ ଲଂଘଇ ॥ ୯୩
ହସ୍ତିନୀମାନଙ୍କ ସଙ୍ଗରେ । ସେ ଯେହ୍ନେ ମିଳଇ ଜଳରେ ॥ ୯୪
୨୩ ଜଳମଧ୍ୟରେ ବଧୂମାନେ । ଚାହାଁନ୍ତେ ପ୍ରେମବିଲୋକନେ ॥ ୯୫
ହସିଣ ଅଙ୍ଗେ ଏଣେ ତେଣେ । ସିଞ୍ଚୁଅଛନ୍ତି ଜଣେ ଜଣେ ॥ ୯୬
ଦେବେ ବିମାନପରେ ବସି । ବିବିଧ କୁସୁମ ବରଷି ॥ ୯୭
କରନ୍ତେ ନାନା ସ୍ତୁତିମାନ । ସେ ଆତ୍ମାରାମ ଭଗବାନ ॥ ୯୮
କଲେ ସଲିଳରେ ବିହାର । ଗଜେନ୍ଦ୍ର ପ୍ରାଏ ଲୀଳା ଯାର ॥ ୯୯
୨୪ ଜଳସ୍ଥଳରେ ଫୁଲମାନେ । ଫୁଟିଅଛନ୍ତି ନାନା ସ୍ଥାନେ ॥ ୧୦୦
ତାହାଙ୍କ ଗନ୍ଧରେ ମଣ୍ଡିତ । ବହଇ ଯେବଣ ମାରୁତ ॥ ୧୦୧
ଯୁକ୍ତ ଅଟନ୍ତି ସେ ପବନେ । ଯହିଁରେ ଦିଗତଟମାନେ ॥ ୧୦୨
ଏ ରୂପେ ଅଟେ ଯେ ଶୋଭନ । ରବିତନୂଜାଉପବନ ॥ ୧୦୩
ଭୃଙ୍ଗପ୍ରମଦାଗଣମେଳେ । ଭ୍ରମିଲେ ତହିଁ କୁତୂହଳେ ॥ ୧୦୪
ଯେହ୍ନେ ସମଦ[2] କରିବର । ରମେ ହସ୍ତିନୀଙ୍କ ସଙ୍ଗର ॥ ୧୦୫
୨୫ ଏ ରୂପେ ଶଶାଙ୍କକିରଣେ । ଶୋଭିତ ଯଉଁ ନିଶାଗଣେ ॥ ୧୦୬
ଶରଦକାଳରେ ବର୍ଣ୍ଣନ । କାବ୍ୟେ ଯେତେକ ରସମାନ ॥ ୧୦୭

---

୧. ବିହାର = ରମଣ । ୨. ସମଦ = ମଦଯୁକ୍ତ ।

| | | | | |
|---|---|---|---|---|
| | ସେ ରସଙ୍କର ଯେହୁ ସ୍ଥାନ | । ସେବିଲେ ସେ ରଜନୀମାନ | ॥ | ୧୦୮ |
| | ସେ ସତ୍ୟକାମ ଭଗବାନ | । ସଙ୍ଗତେ ଘେନି ନାରୀଜନ | ॥ | ୧୦୯ |
| | ତଥାପି ନୋହିଲା ସ୍ଖଳିତ | । ସୁରତରସୁଁ ଯାହା' ରେତ | ॥ | ୧୧୦ |
| | ଏଣୁ ସେ ଜିଣିଲେ ମଦନ | । ଅନନ୍ତଶକ୍ତି ଭଗବାନ | ॥ | ୧୧୧ |

ଶ୍ରୀପରୀକ୍ଷିଦୁବାଚ

| | | | | |
|---|---|---|---|---|
| ୨୬ | ଶୁକଚରଣେ ହୋଇ ନତ | । ପୁଛିଲେ ରାଜା ପରୀକ୍ଷିତ | ॥ | ୧୧୨ |
| | ଧର୍ମକୁ କରିବେ ପାଳନ | । ଅଧର୍ମ କରିବେ ନାଶନ | ॥ | ୧୧୩ |
| | ଏ ଅର୍ଥେ ଜଗତ-ଈଶ୍ୱର | । ଅଂଶରେ ହେଲେ ଅବତାର | ॥ | ୧୧୪ |
| ୨୭ | ଧର୍ମମର୍ଯ୍ୟାଦାମାନଙ୍କର | । ସେ ବକ୍ତା କର୍ତ୍ତା ରକ୍ଷାକର | ॥ | ୧୧୫ |
| | ହେ ବିପ୍ର ! ପରସ୍ତ୍ରୀହରଣ | । ଅଧର୍ମ[୧] କଲେ କି କାରଣ | ॥ | ୧୧୬ |
| ୨୮ | ପୂର୍ଣ୍ଣ ସକଳ କାମ ଯାର | । ଯେ ଯଦୁମାନଙ୍କ ଈଶ୍ୱର | ॥ | ୧୧୭ |
| | କଲେ ଅଧର୍ମ ଆଚରଣ | । କି ଅଭିପ୍ରାୟ ଏଥେଁ ପୁଣ | ॥ | ୧୧୮ |
| | ଭୋ ମୁନି ! ଏରୂପେ ଆମ୍ଭର | । ସଂଶୟ ତୁମ୍ଭେ ନାଶ କର | ॥ | ୧୧୯ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୯ | ଶୁଣି ରାଜାର ଏ ବଚନ | । କହନ୍ତି ବ୍ୟାସଙ୍କ ନନ୍ଦନ | ॥ | ୧୨୦ |
| | ଈଶ୍ୱରଭାବ ଜଗତରେ | । ଅଛଇ ଯାହାଙ୍କର ଠାରେ | ॥ | ୧୨୧ |
| | ଅଧର୍ମ ସାହସ ଆଚାର | । ଦେଖିଲା ଅଛି ତାହାଙ୍କର | ॥ | ୧୨୨ |
| | [୨]ସେମାନେ ତେଜସ୍ୱୀ ପୁରୁଷ | । ତାଙ୍କୁ ନ ଲାଗେ ଏଥି ଦୋଷ | ॥ | ୧୨୩ |
| | ବହ୍ନି ଯେସନେ ସର୍ବ ଖାଇ | । ତାହାକୁ ଦୋଷ ନ ଲାଗଇ | ॥ | ୧୨୪ |
| ୩୦ | ଦେହ ଆଦିରେ ପରାଧୀନ | । ହୋଇଣ ଥାଇ ଯଉଁ ଜନ | ॥ | ୧୨୫ |
| | ଏ ଆଚରଣ ସେ ମାନବ | । ମନେହେଁ ଚିନ୍ତା ନ କରିବ | ॥ | ୧୨୬ |
| | ଯେବେହେଁ କରେ ମୂଢ଼ପଣେ | । ନାଶ ହୁଅଇ ତତକ୍ଷଣେ | ॥ | ୧୨୭ |
| | ରୁଦ୍ରର ଇତର ପୁରୁଷ | । ଖାଇଲେ କାଳକୂଟ ବିଷ | ॥ | ୧୨୮ |
| | ଯେମନ୍ତ ଦଶାକୁ ଲଭଇ | । ସେ ଲୋକ ସେହିମତ ହୋଇ | ॥ | ୧୨୯ |
| ୩୧ | ଈଶ୍ୱରମାନଙ୍କର ବାଣୀ | । ସତ୍ୟ ବୋଲିଣ ପରିମାଣି | ॥ | ୧୩୦ |
| | ସେମାନଙ୍କର ଆଚରଣ | । କେହୁଣି ସ୍ଥାନେ ସତ୍ୟ ପୁଣ | ॥ | ୧୩୧ |
| | ତାଙ୍କର ଯେବଣ[୩] ବଚନ | । ଯୁକ୍ତିକି ନ କରେ ଲଙ୍ଘନ | ॥ | ୧୩୨ |
| | ସେ ବାକ୍ୟ ବୁଦ୍ଧିମନ୍ତ ପ୍ରାଣୀ | । କରିବ ସତ୍ୟ ବୋଲି ଜାଣି | ॥ | ୧୩୩ |
| ୩୨ | ହେ ନୃପ ! ଅହଂକାରହୀନ | । ଅଟନ୍ତି ଯଉଁ ଜ୍ଞାନୀ ଜନ | ॥ | ୧୩୪ |
| | କରି କୁଶଳ କର୍ମମାନ | । ନାହିଁ ତାଙ୍କର ପ୍ରୟୋଜନ | ॥ | ୧୩୫ |

---

୧. ନ ଚ ଅଧର୍ମମାତ୍ରଂ କଳଞ୍ଜଭକ୍ଷଣାଦିବଦ୍ କିନ୍ତୁ ମହାସାହସମ୍ (ସ୍ୱାମୀ) ।

୨. ସେମାନେ = ପ୍ରଜାପତି, ଇନ୍ଦ୍ର, ସୋମ, ବିଶ୍ୱାମିତ୍ର ପ୍ରଭୃତି । ୩. ଯେବଣ = ଯେ ପୁଣ ।

| | | | | |
|---|---|---|---|---|
| | କରିଣ ଦୁରିତ ବିଶେଷ | । [1]ନାହିଁ ତାଙ୍କର ଭୟଲେଶ | ।। | ୧୩୬ |
| ୩୩ | ତିର୍ଯ୍ୟକ ସୁର ନରମାନେ | । ଯେତେକ ପ୍ରାଣୀ ଏ ଭୁବନେ | ।। | ୧୩୭ |
| | ଈଶ୍ୱରଭାବେ ଯେ ବା ଆନ | । ତାଙ୍କର ପ୍ରଭୁ ଭଗବାନ | ।। | ୧୩୮ |
| | ସୁକୃତ ଦୁରିତ ସଂଭବ | । ତାହାଙ୍କ ଠାରେ କାହୁଁ ହେବ | ।। | ୧୩୯ |
| ୩୪ | ଯା' ପାଦପଦ୍ମଧୂଳିମାନ | । ସେବିଣ ହୋଇ ତୋଷମନ | ।। | ୧୪୦ |
| | ଯୋଗପ୍ରଭାବେ କରି ନାଶ | । ଅଖିଳ କର୍ମବନ୍ଧ ଦୋଷ | ।। | ୧୪୧ |
| | ବଦ୍ଧ ନୁହନ୍ତି ମୁନିମାନେ | । ଇଚ୍ଛାଏ ଚରନ୍ତି ଭୁବନେ | ।। | ୧୪୨ |
| | ନିଜ ଇଚ୍ଛାଏ କଳେବର | । ଧରିଅଛନ୍ତି ଯେ ଈଶ୍ୱର | ।। | ୧୪୩ |
| | ତାଙ୍କର କାହୁଁ ସମ୍ଭବିବ | । କର୍ମସ୍ୱକାଶୁଁ ପରାଭବ | ।। | ୧୪୪ |
| ୩୫ | ଯେତେ ଅଛନ୍ତି ଗୋପୀଜନ | । ତାଙ୍କର ଯେ ବା ପତିମାନ | ।। | ୧୪୫ |
| | ଯେ ଆନମାନେ ଦେହଧାରୀ | । ଅଛନ୍ତି ସଂସାରେ ବିହରି | ।। | ୧୪୬ |
| | ସେ ସମସ୍ତଙ୍କର ଅନ୍ତରେ | । ଯେ ଅଛି ସାକ୍ଷୀସ୍ୱରୂପରେ | ।। | ୧୪୭ |
| | ଏ କୃଷ୍ଣ ଅଟନ୍ତିଟି ସେହି | । ଲୀଳାମାନୁଷ ଦେହ ବହି | ।। | ୧୪୮ |
| ୩୬ | ଭକ୍ତମାନଙ୍କ[2] ଅନୁଗ୍ରହ | । ନିମିତ୍ତେ ଧରେ ନିଜଦେହ | ।। | ୧୪୯ |
| | ଭଜେ ତେମନ୍ତ କ୍ରୀଡ଼ାମାନ | । ଶ୍ରବଣେ ଶୁଣି ଯାହା ଜନ | ।। | ୧୫୦ |
| | ଶୃଙ୍ଗାରରସେ ବଶ ହୋଇ | । ହରିର ଠାରେ ମନ ଦେଇ | ।। | ୧୫୧ |
| ୩୭ | ସେ କୃଷ୍ଣମାୟାରେ ଗୋପାଳେ | । ମୋହିତ ହୋଇଣ ସେକାଳେ | ।। | ୧୫୨ |
| | ଆପଣା ଆପଣା ଯୁବତୀ | । ନିଜ ପାରୁଶେ ରହିଛନ୍ତି | ।। | ୧୫୩ |
| | ଏମନ୍ତ ରୂପରେ ମଣିଲେ | । କୃଷ୍ଣଙ୍କୁ ଅସୂୟା ନ କଲେ | ।। | ୧୫୪ |
| ୩୮ | ବ୍ରାହ୍ମ ମୁହୂର୍ତ୍ତ ପ୍ରବେଶରେ | । ଆନନ୍ଦ ଲଭିଣ କୃଷ୍ଣରେ | ।। | ୧୫୫ |
| | କୃଷ୍ଣବଲ୍ଲଭା ଗୋପୀମାନେ | । ଗମନ କଲେ ଯେଝା ସ୍ଥାନେ | ।। | ୧୫୬ |
| | କୃଷ୍ଣସଙ୍ଗମ ଛାଡ଼ିବାର | । ବାଞ୍ଛିତ ନୁହଇ ତାଙ୍କର | ।। | ୧୫୭ |
| ୩୯ | ବ୍ରଜକାମିନୀମାନଙ୍କର | । ସଂଗେ ବିଷ୍ଣୁର ଏ ବିହାର | ।। | ୧୫୮ |
| | ଯେ ଲୋକ ଶ୍ରଦ୍ଧାବନ୍ତ ହୋଇ | । ଶୁଣଇଁ ଯେ ଅବା ବର୍ଣ୍ଣଇ | ।। | ୧୫୯ |
| | ଦୃଢ଼ ଭକ୍ତିକି ହରିଠାରେ | । ସେ ଲୋକ ଲଭିଣ ବେଗରେ | ।। | ୧୬୦ |
| | ଯେ କାମ ହୃଦୟର ରୋଗ | । ତାକୁ କରଇ ପରିତ୍ୟାଗ | ।। | ୧୬୧ |
| | କୃଷ୍ଣଚରଣ ଚିନ୍ତି ଚିତ୍ତେ | । ରାସକ୍ରୀଡ଼ାକୁ ଭାଷାଗୀତେ | ।। | ୧୬୨ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । ସୁଜନେ ତୋଷ ହୁଅ ଏଣେ | ।। | ୧୬୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀରାସକ୍ରୀଡ଼ାବର୍ଣ୍ଣନଂ
ନାମ ତ୍ରୟସ୍ତ୍ରିଂଶୋଽଧ୍ୟାୟଃ ।।

---

୧. ପ୍ରାରବ୍ଧକର୍ମକ୍ଷପଣମାତ୍ରମେବ ତେଷାଂ କୃତ୍ୟମ୍; ନାନ୍ୟତ୍ (ସ୍ୱାମୀ) ।
୨. (ଭୂତାନାଂ ଇତି ପାଠେ) ପ୍ରାଣିମାନଙ୍କ ।

## ଚତୁସ୍ତ୍ରିଂଶ ଅଧ୍ୟାୟ

ଚତୁସ୍ତ୍ରିଂଶେଽହିନା ଗ୍ରସ୍ତଂ ନନ୍ଦଂ ହରିରମୂମୁଚତ୍ ।
ବିଦ୍ୟାଧ୍ରଆଙ୍ଗିରଃଶାପାଚ୍ଛଂଖଚୂଡ଼ଂ ତଥାଽବଧୀତ୍ ॥ ୧
ରାସାପଦେଶତଃ କାମଂ କିଙ୍କରୀକୃତ୍ୟ କାମତଃ ।
ଅନୁଗୃହ୍ଣନ୍ ବଶଂ ନିନ୍ୟେ ତଥା ବିଦ୍ୟାଧରାଧିପମ୍ ॥ ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଗୋପାଳମାନେ ଏକଦିନ | ଦେବଯାତ୍ରାରେ ଦେଇ ମନ | ॥ | ୧ |
| | ସମସ୍ତେ କୌତୁକ ଲଭିଲେ | ଶକଟେ ବଳଦ ଯୋଚିଲେ | ॥ | ୨ |
| | ସେହି ଶକଟମାନଙ୍କରେ | ମିଳିଲେ ଅମ୍ବିକାବନରେ | ॥ | ୩ |
| ୨ | ସେ ବନେ ମିଳି ହେ ରାଜନ | ସରସ୍ୱତୀରେ କରି ସ୍ନାନ | ॥ | ୪ |
| | ପୂଜାସାମଗ୍ରୀମାନଙ୍କରେ | ଶିବଙ୍କୁ ପୂଜିଲେ ଭକ୍ତିରେ | ॥ | ୫ |
| | ଅମ୍ବିକା ନାମେ ଦେବୀ ଯେହି | ପୂଜିଲେ ପୁଣ ତାହାଙ୍କୁ ହି | ॥ | ୬ |
| ୩ | ଧେନୁ ହିରଣ୍ୟ ବସ୍ତ୍ରମାନ | ମଧୁର ମଧୁଯୁକ୍ତ ଅନ୍ନ | ॥ | ୭ |
| | ପ୍ରୀତିରେ ଦେଲେ ବ୍ରାହ୍ମଣଙ୍କୁ | ଦେବତା ସଂତୋଷ ଆମ୍ଭଙ୍କୁ | ॥ | ୮ |
| | ହୁଅନ୍ତୁ ଏମନ୍ତ ପ୍ରକାରେ | କାମନା କଲେ ସେ ମନରେ | ॥ | ୯ |
| ୪ | ଯେ ନନ୍ଦ ସୁନନ୍ଦକ ଆଦି | ଗୋପାଳେ ଅଟନ୍ତି ପ୍ରସିଦ୍ଧି | ॥ | ୧୦ |
| | ସମସ୍ତେ ଧୃତବ୍ରତ ହୋଇ | କେବଳ ଜଳମାତ୍ର ପିଇ | ॥ | ୧୧ |
| | ସେ ରାତ୍ରି ସରସ୍ୱତୀତୀରେ | ରହିଲେ ପୁଣ ଯେ ଯାହାରେ | ॥ | ୧୨ |
| ୫ | ସେ ବନେ ଅଜଗର କେହି | ମିଳିଲା କ୍ଷୁଧାତୁର ହୋଇ | ॥ | ୧୩ |
| | ଶୟନ କରିଥିଲେ ନନ୍ଦ | ତାହାଙ୍କୁ ଗ୍ରାସିଲା ସେ ମନ୍ଦ | ॥ | ୧୪ |
| ୬ | ଗ୍ରସ୍ତ ହୋଇଣ ସେ ସର୍ପରେ | ଡାକିଲେ ଏମନ୍ତ ପ୍ରକାରେ | ॥ | ୧୫ |
| | ହେ କୃଷ୍ଣ କୃଷ୍ଣ ! ଅଜଗର | ଗ୍ରାସୁଛି ଏ ମୋତେ ସତ୍ୱର | ॥ | ୧୬ |
| | ପ୍ରପନ୍ନ ହୋଇଅଛି ମୁହିଁ | ହେ ତାତ ! ମୁକ୍ତ କର ତୁହି | ॥ | ୧୭ |
| ୭ | ରୋଦନ ଶୁଣି ସେ ନନ୍ଦର | ଗୋପାଳେ ଉଠିଲେ ସତ୍ୱର | ॥ | ୧୮ |
| | ନନ୍ଦ ହୋଇଛି ସର୍ପଗ୍ରସ୍ତ | ଦେଖିଣ ହୋଇଲେ ସଂଭ୍ରାନ୍ତ | ॥ | ୧୯ |
| | ଜ୍ୱଳିତ କାଷ୍ଠମାନଙ୍କରେ | ସର୍ପକୁ ପିଟିଲେ ନିର୍ଭରେ | ॥ | ୨୦ |
| ୮ | ଅନଳେ ଲଭିଲେ ପୀଡ଼ାକୁ | ଛାଡ଼ିଲା ନାହିଁ ସେ ନନ୍ଦଙ୍କୁ | ॥ | ୨୧ |
| | ସାତ୍ୱତପତି ଭଗବାନ | ପ୍ରବେଶ ହୋଇଣ ସେ ସ୍ଥାନ | ॥ | ୨୨ |
| | ସେ ଭୁଜଙ୍ଗଙ୍କୁ ଚରଣରେ | ସ୍ପରଶ କଲେକ ସତ୍ୱରେ | ॥ | ୨୩ |
| ୯ | କୃଷ୍ଣର ଶ୍ରୀମନ୍ତ ଚରଣ | ସ୍ପରଶମାତ୍ରକେ ସେ ପୁଣ | ॥ | ୨୪ |
| | ଲଭିଲା ଅଶୁଭକ୍ଷୟକୁ | ଛାଡ଼ିଣ ସର୍ପଶରୀରକୁ | ॥ | ୨୫ |
| | ଯେ ବିଦ୍ୟାଧରରେ ପୂଜିତ | ସେ ରୂପ ଧଇଲା ତୁରିତ | ॥ | ୨୬ |

୧୦ ଶରୀର ତାର ପ୍ରଦୀପିତ । ସୁବର୍ଣ୍ଣମାଳରେ ସଂଯୁତ ।। ୨୭
ରହିଛି ପ୍ରଣତ ହୋଇଣ । କୃଷ୍ଣ ପୁଛିଲେ ତାକୁ ପୁଣ ।। ୨୮
୧୧ ପରମ ଶୋଭାରେ ରୋଚନ[୧] । ଶୁଭ ଅଟେ ତୋ ଦରଶନ ।। ୨୯
କେମନ୍ତେ ନିନ୍ଦ୍ୟ ଗତି ପୁଣ । ଲଭିଲୁ ଅବଶ ହୋଇଣ ।। ୩୦

ସର୍ପ ଉବାଚ

୧୨ ମୁଁ ଅଟେ କେହି ବିଦ୍ୟାଧର । ସୁଦରଶନ ନାମ ମୋର ।। ୩୧
ଶ୍ରୀରେ ସ୍ୱରୂପସଂପତ୍ତିରେ । ଦିଗ ଭ୍ରମିଲି ବିମାନରେ ।। ୩୨
୧୩ ଯେ ପୁତ୍ରେ ଅଙ୍ଗିରସଙ୍କର । ତାଙ୍କ ଶରୀର ଅସୁନ୍ଦର ।। ୩୩
ରୂପରେ ଗର୍ବିତ ମୁଁ ହୋଇ । ହସିଲି ସେମାନଙ୍କୁ ଚାହିଁ ।। ୩୪
ସେ ଉପହସିତ ହୁଅନ୍ତେ । ଏ ସର୍ପଜନମକୁ ମୋତେ ।। ୩୫
ପ୍ରାପିତ କଲେ ବଚନରେ । ଲଭିଲି ମୁହିଁ କୁକର୍ମରେ ।। ୩୬
୧୪ ସେ ଋଷିମାନେ କୃପାଚିତ୍ତେ । ଯେବଣ ଶାପ ଦେଲେ ମୋତେ ।। ୩୭
ସେ ଅନୁଗ୍ରହାର୍ଥେ ମୋହର । ଯେ ତୁମ୍ଭେ ଗୁରୁ ତ୍ରିଲୋକର[୨] ।। ୩୮
ତୁମ୍ଭର ଚରଣସ୍ପରଶ । ସ୍ୱକାଶୁଁ ପାପ ହେଲା ନାଶ ।। ୩୯
୧୫ ସଂସାରୁ ଭୟ ଲଭି ମନେ । ପ୍ରପନ୍ନ ହୁଅନ୍ତି ଯେ ଜନେ ।। ୪୦
ତୁମ୍ଭେ ତାଙ୍କର ପରାୟଣ । ହେ ଦୁଃଖନାଶନ ! ମୁଁ ପୁଣ ।। ୪୧
ଚରଣସ୍ପରଶୁଁ ତୁମ୍ଭର । ଅପାପୀ ହୋଇଲି ସତ୍ୱର ।। ୪୨
ଏବେ ସ୍ୱର୍ଗକୁ ଯିବାପାଇଁ । ତୁମ୍ଭଙ୍କୁ ପଚାରୁଛି ମୁହିଁ ।। ୪୩
୧୬ | ହେ ମହାଯୋଗୀ ! ସାଧୁଙ୍କର । ପ୍ରଭୁ ହେ ସର୍ବେଶ୍ୱରେଶ୍ୱର ।। ୪୪
୧୭ | ହେ ମହାପୁରୁଷ ! ମୁଁ ପୁଣ । ପ୍ରପନ୍ନ, ଆଜ୍ଞା ମୋତେ ଭଣ ।। ୪୫
ତୁମ୍ଭ ଦର୍ଶନୁଁ ହେ ଅଚ୍ୟୁତ । ବ୍ରହ୍ମଦଣ୍ଡରୁ ହେଲି ମୁକ୍ତ ।। ୪୬
୧୮ ଘେନନ୍ତେ ଯାହାର ନାମକୁ । ଶୁଣିଲା ଲୋକଙ୍କୁ ଆତ୍ମାକୁ ।। ୪୭
ପବିତ୍ର କରେ ତତକ୍ଷଣ । ସେ ତୁମ୍ଭେ ତୁମ୍ଭର ଚରଣ ।। ୪୮
ସ୍ପରଶ ଯଉଁ ଲୋକଠାର । କି ଭାଗ୍ୟ କହିବା ତାହାର ।। ୪୯
୧୯ କୃଷ୍ଣଙ୍କୁ ଏମନ୍ତ ରୂପେଣ । ଅନୁଜ୍ଞା ମାଗି କରି ପୁଣ ।। ୫୦
ଯେ ପ୍ରଦକ୍ଷିଣ ଯେ ବନ୍ଦନ । କରି ସେ ବିଧି ସୁଦର୍ଶନ ।। ୫୧
ସ୍ୱର୍ଗକୁ ଗମନ ସେ କଲା । କଷ୍ଟରୁ ନନ୍ଦ ମୁକ୍ତ ହେଲା ।। ୫୨
୨୦ କୃଷ୍ଣର ଯେ ଆତ୍ମବୈଭବ । ଦେଖି[୩] ତା' ବ୍ରଜବାସୀ ସର୍ବ ।। ୫୩
ହୋଇଲେ ବିସ୍ମୟମାନସ । ତଦନ୍ତେ କରି ବ୍ରତ ଶେଷ ।। ୫୪
ହେ ନୃପ ! ଆଦର ହୋଇଣ । କହନ୍ତେ ସେ କଥାକୁ ପୁଣ ।। ୫୫
ଯେତେକ ସେ ସ୍ଥାନରେ ଥିଲେ । ସମସ୍ତେ ବ୍ରଜକୁ ଅଇଲେ ।। ୫୬

---

୧. ରୋଚନ = ଦୀପ୍ତିମାନ୍ (ଶୋଭନ, ପାଠାନ୍ତର)　　୨. ତ୍ରୈଲୋକ୍ୟର ।　　୩. ଶୁଣି ।

୨୧ [1]ଏଥୁ ଅନ୍ତରେ କେତେ ଦିନ । ଶେଷେ ବିପିନେ ଭଗବାନ ॥
ଅଦ୍ଭୁତ ଅଟେ ଯା' ବିକ୍ରମ । ସଙ୍ଗତେ ଅଛନ୍ତି ସେ ରାମ ॥
ବ୍ରଜଯୁବତିଙ୍କ ମଧ୍ୟରେ । ବିହାର କଲେ ରଜନୀରେ ॥
୨୨ ଯେ ରତ୍ନ ନାରୀମାନଙ୍କରେ । ଗାଆନ୍ତେ ସେ ଲଳିତ ସ୍ୱରେ ॥
ଉତ୍ତମ ଅଳଂକାରେ ଯୁତ । ଚନ୍ଦନେ ଯେ ତନୁ ଲିପିତ ॥
କଣ୍ଠେ ଲମ୍ବିଛି ମାଳାମାନ । ନିର୍ମଳ ବସ୍ତ୍ର ପରିଧାନ ॥
[2]ନିବଦ୍ଧ ପ୍ରୀତି ଯାହାଙ୍କର । ଏ ରୂପେ ରାମ ଦାମୋଦର ॥
୨୩ ଯହିଁରେ ଚନ୍ଦ୍ର ତାରାମାନେ । ଉଦିତ ହୋଇଲେ ଗଗନେ ॥
ମଲ୍ଲିକାଗନ୍ଧେ ମତ୍ତ ହୋଇ । ଭୃଙ୍ଗେ ଅଛନ୍ତି ପୁଣ ଯହିଁ ॥
କମଳବନରୁ ସଂଭୂତ । ବହୁଛି ଯହିଁ ମନ୍ଦ ବାତ ॥
ଦେଖି ସେ ରଜନୀମୁଖକୁ । ମାନନା କରନ୍ତେ ତାହାକୁ ॥
୨୪ ଅଶକ୍ତ ଅନିବଦ୍ଧ ତାଳେ । ଯା' କଳ୍ପିବାକୁ ଏକକାଳେ ॥
ସେ ସ୍ୱରମଣ୍ଡଳମୂର୍ଚ୍ଛନ । ଏକା ଥରକରେ କଳ୍ପନ ॥
କରନ୍ତେ ସର୍ବ ପ୍ରାଣୀଙ୍କର । ମଙ୍ଗଳ ମନ ଶ୍ରବଣର ॥
ଯେବଣ ଗୀତ ତା' ଗାୟନ । କଲେ ସେ ରାମ ଭଗବାନ ॥
୨୫ ସେ ଗୀତ ଶୁଣି ଗୋପୀମାନେ । ଯହୁଁ ଖସୁଛନ୍ତି ବସନେ ॥
ହେ ନୃପ ! ଯହୁଁ କେଶମାଳେ । ଖସି ପଡ଼ିଲେ ମହୀତଳେ ॥
ମୂର୍ଚ୍ଛିତ ହୋଇ ସେ ଶରୀର । କରି ନ ପାରିଲେ ଗୋଚର ॥
୨୬ ଏ ରୂପେ ମତ୍ତପ୍ରାୟ ହୋଇ । ଖେଳନ୍ତେ ଗାଆନ୍ତେ ସେ ଦୁଇ ॥
କୁବେରସେବକ ଆଗତ । ଯେ ଶଙ୍ଖଚୂଡ଼ ନାମେ ଖ୍ୟାତ ॥
୨୭ ହେ ନୃପ ! ରାମ ଜନାର୍ଦ୍ଦନ । ଦୁହେଁ କରନ୍ତେ ବିଲୋକନ ॥
ପ୍ରଭୁ ଯାହାଙ୍କର [3]ସେ ବେନି । ଏମନ୍ତ ଯେ ବ୍ରଜକାମିନୀ ॥
ଡାକନ୍ତେ ସେ ଭୟକୁ ପାଇ । ମନରେ [4]ଅଶଙ୍କିତ ହୋଇ ॥
ସେ ଶଙ୍ଖଚୂଡ଼ ସେମାନଙ୍କୁ । କାଳିଲା ଉତ୍ତର ଦିଗକୁ ॥
୨୮ ହେ ରାମ ହେ କୃଷ୍ଣ ବୋଲିଣ । ରୋଦନ କରନ୍ତେ ସେ ପୁଣ ॥
ଯେ ପରିଗ୍ରହ[5] ଆପଣାର । ତାହାଙ୍କୁ ରାମ ଦାମୋଦର ॥
ଧାଇଁଲେ ଧେନୁକୁ ଯେସନ । ବ୍ୟାଘ୍ର ଗ୍ରାସନ୍ତେ ଧାଏଁ ଜନ ॥
୨୯ ଭୟ ନ ପାଅ କେହି ମନ । କରନ୍ତେ ଏ ଅଭୟ ସ୍ୱନ ॥

୧. ଅହିଦେହଂ ନିହତ୍ୟୈବଂ ପ୍ରାଗୁକ୍ତଂ ସୁଦର୍ଶନମ୍ ।
ତଦ୍ୱଦ୍ବନ୍ଧୁହ୍ୱାଦିନଂ କୃଷ୍ଣଃ ଶଙ୍ଖଚୂଡ଼ମତାଡ଼ୟଦ୍ ॥ (ସ୍ୱାମୀ)

୨. "ବଦ୍ଧସୌହୃଦୌ" ଇତି ପାଠେ    ୩. ସେ ବେନି = ରାମ କୃଷ୍ଣ ।

୪. ଅଶଙ୍କିତ ହୋଇ = ଶଙ୍କିତ ନ ହୋଇ ।    ୫. ପରିଗ୍ରହ = ପତ୍ନୀ ।

ଦୁହିଁଙ୍କ ହସ୍ତେ ଅଛି ଦ୍ରୁମ । ଗୁହ୍ୟକମଧ୍ୟେ ଯେ ଅଧମ ।। ୮୫
ସେ[୧] ଶଙ୍ଖଚୂଡ଼ ଦ୍ରାବନ୍ତ । ତା' ପାଶେ ମିଳିଲେ ତୁରିତ ।। ୮୬
୩୦ କାଳମୃତ୍ୟୁର ପ୍ରାୟ ହୋଇ । ନିକଟେ ମିଳିଲେ ସେ ଦୁଇ ।। ୮୭
ସେ ମୂଢ଼ ଏମନ୍ତ ଦେଖିଣ । ଉଦ୍‌ବେଗେ ସ୍ତିରୀଙ୍କି ଛାଡ଼ିଣ ।। ୮୮
ପାଇବା ଅର୍ଥେ ନିଜ ପ୍ରାଣ । ପଳାଇ ଗଲା ତତକ୍ଷଣ ।। ୮୯
୩୧ ଯହିଁକି ଯହିଁକି ସେ ଧାଇଁ । ତା' ଶିରରତ୍ନ ନେମାପାଇଁ ।। ୯୦
ଗୋବିନ୍ଦ ତହିଁକି ଧାବନ୍ତି । ଯେତେକ ଯୁବତି ଅଛନ୍ତି ।। ୯୧
ତାହାଙ୍କୁ କରନ୍ତେ ରକ୍ଷଣ । ରହିଲେ ବଳରାମ ପୁଣ ।। ୯୨
୩୨ ଅବିଦୂରର ପ୍ରାୟ ଦୂରେ । ମିଳିଣ ଆପଣା ମୁଷ୍ଟିରେ ।। ୯୩
ହରିଲେ ସେହୁ ଦୁରାତ୍ମାର । ଯେ ଚୂଡ଼ାମଣିଯୁତ ଶିର ।। ୯୪
୩୩ ଯେତେକ ଥିଲେ ସ୍ତିରୀଜନ । କରନ୍ତେ ସେ ଅବଲୋକନ ।। ୯୫
ଶଙ୍ଖଚୂଡ଼କୁ ଏ ପ୍ରକାରେ । ମାରିଣ, ଯେ ଥିଲା ତା' ଶିରେ ।। ୯୬
ସେ ଦୀପ୍ତ ମଣିକି ଆଣିଣ । ଜ୍ୟେଷ୍ଠ ଭ୍ରାତାଙ୍କୁ ଦେଲେ ପୁଣ ।। ୯୭
ଶଙ୍ଖଚୂଡ଼କୁ ବଧ କରି । ଯେ ଉଦ୍ଧରିଲେ ବ୍ରଜନାରୀ ।। ୯୮
ସେ କୃଷ୍ଣଚରଣପଙ୍କଜ । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ ।। ୯୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶଙ୍ଖଚୂଡ଼ବଧୋ
ନାମ ଚତୁସ୍ତ୍ରିଂଶୋଽଧ୍ୟାୟଃ ।।

## ପଞ୍ଚତ୍ରିଂଶ ଅଧ୍ୟାୟ

ପଞ୍ଚତ୍ରିଂଶେ ବନଂ ଯାତେ କୃଷ୍ଣେ ଗୋକୁଳଯୋଷିତଃ ।
ଯୁଗ୍ମଶ୍ଳୋକାନୁଗୀତେନ ନିନ୍ୟୁର୍ଦୁଃଖେନ ବାସରାନ୍ ।। ୧

ଶ୍ରୀଶୁକ ଉବାଚ

୧ ଯେବଣ ଦିନେ ଭଗବାନ । କଲେ କାନନକୁ ଗମନ ।। ୧
ତାହାଙ୍କୁ ଅଟେ ଅନୁଗତ । ଯେବଣ ଗୋପୀଙ୍କର ଚିତ୍ତ ।। ୨
କୃଷ୍ଣର ଲୀଳାକୁ ଗାୟନ । କରନ୍ତେ ନେଲେ ଦୁଃଖେ ଦିନ ।। ୩

ଶ୍ରୀଗୋପ୍ୟ ଉଚୁଃ

୨ | ଯେ ଅଟେ ବାମବାହୁମୂଳ । ତହିଁରେ କଲେକ କପୋଳ ।। ୪
୩ | ଭ୍ରୂଲତା କରୁଅଛି ନୃତ୍ୟ । ଅଧରେ ଯେ ବେଣୁ ଅର୍ପିତ ।। ୫
ମୃଦୁ ଅଙ୍ଗୁଳିମାନଙ୍କରେ । ତା' ଛିଦ୍ରମାନଙ୍କୁ ନିର୍ଭରେ ।। ୬

---
୧. ସେ = ଯେ ।

ଆଶ୍ରିତ କରିଣ ବାଦନ । ଯେବେ କଲେ ଗୋ ଗୋପୀଜନ ।। ୭
ସେକାଳେ ସିଦ୍ଧଙ୍କ ସହିତେ । ସିଦ୍ଧକାମିନୀମାନେ ଯେତେ ।। ୮
ଶ୍ରବଣ କରିଣ ସେ ଗୀତ । ମଦନଶରେ ଅର୍ପି ଚିତ୍ତ ।। ୯
ନୀବିବନ୍ଧକୁ ପାଶୋରିଲେ । ଲଜ୍ଜିତ ହୋଇ ମୋହ ଗଲେ ।। ୧୦
୪ | ଆଗୋ ଅବଳାମାନେ ଶୁଣ । ଏକଥା ଚିତ୍ର ଅଟେ ପୁଣ ।। ୧୧
୫ | 'ଯା' ହାସ ହାରପ୍ରାୟ ସିତ । ସ୍ଥିରେ ଯା' ବକ୍ଷେ ଲକ୍ଷ୍ମୀ ସ୍ଥିତ ।। ୧୨
ଆର୍ତ୍ତ ମନୁଷ୍ୟମାନଙ୍କର । ସୁଖଦ ଏ ନନ୍ଦକୁମର ।। ୧୩
ବେଣୁ ବଜାଇ ଯେତେବେଳେ । ସମୂହ ହୋଇଣ ସେ କାଳେ ।। ୧୪
ଦୂରେ ଯେ ବ୍ରଜବୃଷମାନ । ଯେ ଧେନୁମାନେ ମୃଗେ ଆନ ।। ୧୫
ବେଣୁବାଦ୍ୟରେ ତାଙ୍କ ଚିତ୍ତ । ହୁଅଇ ଯେଣୁ ଅପହୃତ ।। ୧୬
ଦନ୍ତେ କବଳ ଲାଗିଥାଇ । ଟେକନ୍ତି ନିଜ କର୍ଣ୍ଣ ଦୁଇ ।। ୧୭
ପଟେ ଲେଖିଲା ଚିତ୍ର ଯେହ୍ନେ । ନିଦ୍ରାକୁ ଲଭି ହେଲେ ତେହ୍ନେ ।। ୧୮
୬ | ହେ ସଖି ! ମୟୂର ପିଚ୍ଛରେ । ଗେରୁ ଆଦିରେ ପଲ୍ଲବରେ ।। ୧୯
୭ | ଯେ ବେଶ ମଲ୍ଲମାନଙ୍କର । ତାର ସଦୃଶ ବେଶ ଯାର ।। ୨୦
ସେ କୃଷ୍ଣ କେହୁଣି କାଳରେ । ରାମ ଗୋପାଳଙ୍କ ସଙ୍ଗରେ ।। ୨୧
ଧେନୁଙ୍କୁ ବେଣୁସ୍ୱନେ ଯେବେ । ଡାକଇ ଗତିମାନ ତେବେ ।। ୨୨
ଭଗ୍ନ ହୁଅଇ ନଦୀଙ୍କର । ଯେ ରଜ ତା' ପାଦପଦ୍ମର ।। ୨୩
ପବନ ଆଣିଣ ଦିଅଇ । ଆମ୍ଭମାନଙ୍କ ପ୍ରାୟ ହୋଇ ।। ୨୪
ସ୍ପୃହା କରନ୍ତେ ସେ ରଜକୁ । ପ୍ରେମରେ ତରଙ୍ଗଭୁଜକୁ ।। ୨୫
କଂପିତ କରନ୍ତି, ନିଶ୍ଚଳ । ହୁଅଇ ତାହାଙ୍କ ସଲିଳ ।। ୨୬
ବହୁତ ନାହିଁ ପୁଣ୍ୟ ଯେଣୁ । ଲଭନ୍ତି ନାହିଁ ତାକୁ ତେଣୁ ।। ୨୭
୮ | ଯାହାର ବୀର୍ଯ୍ୟକୁ ଗାୟନ । କରନ୍ତି ଅନୁଚରମାନ[୨] ।। ୨୮
୯ | ଆଦିପୁରୁଷପ୍ରାୟ ଯାର । ବିଭୂତି ଅଟେ ଅତି ସ୍ଥିର ।। ୨୯
ବନରେ ଭ୍ରମଣ ଯେ କରେ । ଚରନ୍ତି ଯେ ଗିରିତଟରେ ।। ୩୦
ବେଣୁରେ ସେ ଧେନୁଙ୍କୁ ଯେବେ । ଆହ୍ୱାନ କରଇ ସେ ତେବେ ।। ୩୧
ଯେ ଲତା ତରୁଏ ବନରେ । ସେମାନେ ବିଷ୍ଣୁଙ୍କୁ ଆତ୍ମାରେ ।। ୩୨
ସୂଚିଲା ପ୍ରାୟେକ ହୋଇଲେ । ମଧୁଧାରାକୁ ବରଷିଲେ ।। ୩୩
ସେ ଆଢ୍ୟ କୁସୁମେ ଫଳରେ । ଶାଖାଏ ପ୍ରଣତ ଭାବରେ ।। ୩୪
ପ୍ରେମରେ ତାହାଙ୍କ ଶରୀର । ହୃଷ୍ଟ ଅଟଇ ନିରନ୍ତର ।। ୩୫

---

୧. ହାରହାସ :- ହାରଭଳି ବିଶଦ ହାସ ଯାହାର; କିମ୍ବା ବେଣୁବାଦନଦ୍ୱାରା ଅଧୋବଦନରେ ହସିବାବେଳେ ହାରରେ ସ୍ଫୁରିତ ହୁଏ ହାସ ଯାହାର; କିମ୍ବା ବକ୍ଷସ୍ଥଳରେ ହାରତୁଲ୍ୟ ଶୋଭମାନ ହାସ ଯାହାର; କିମ୍ବା ହାରମାନଙ୍କର ହାସଭଳି ବିଶଦ ସ୍ଫୂର୍ତ୍ତି ଯହିଁରେ ।

୨. ଅନୁଚରମାନ = ଗୋପମାନେ ବା ଦେବତାମାନେ ।

୧୦ ସୁନ୍ଦରଜନମାନଙ୍କର । ମଧ୍ୟରେ ଅଟଇ ଯେ ସାର ॥ ୩୬
୧୧ ଉତ୍ତମ ଗନ୍ଧ ଯାହାଠାରେ । ରହିଛି ଯେ ବନମାଳାରେ ॥ ୩୭
ସେ ଦିବ୍ୟ ତୁଳସୀମଧୁରେ । ମତ୍ତ ଯେ ଭ୍ରମରନିକରେ ॥ ୩୮
ଯେ ଉଚ୍ଚ ଗୀତ ତାହାଙ୍କର । ଅଭୀଷ୍ଟ ଅଟେ ଆପଣାର ॥ ୩୯
ଆଦର କରନ୍ତେ ତା' ଯେବେ । ସନ୍ଧାନ କଲେ ବେଣୁ ତେବେ ॥ ୪୦
ସାରସ ହଂସ ପକ୍ଷୀ ଯେତେ । ସରରେ ଥିଲେ ସେ ସମସ୍ତେ ॥ ୪୧
ଚାରୁ ଗୀତରେ ହୃତଚିତ୍ତ । ହୋଇ ସେ ଆସିଣ ତୁରିତ ॥ ୪୨
ହରିଙ୍କି କଲେ ଉପାସନ । ସଂଯତ ଅଟେ ତାଙ୍କ ମନ ॥ ୪୩
ବୁଜିଲେ ନୟନଯୁଗଳ । ମଉନେ ରହିଲେ ସକଳ ॥ ୪୪
୧୨ କୁସୁମମାଳା ଅବତଂସ[1] । ଯୁଗରେ ଯାହାର ବିଳାସ ॥ ୪୫
୧୩ ପର୍ବତସାନୁମାନଙ୍କରେ । ବଳଭଦ୍ରର ସହିତରେ ॥ ୪୬
ହରଷେ ବେଣୁସ୍ୱନେ ଯେବେ । ବିଶ୍ୱକୁ ପୂର୍ଣ୍ଣ କରେ ତେବେ ॥ ୪୭
ହେ ବ୍ରଜଦେବୀମାନେ ! ଘନ । ମହତ[2] ଅତିକ୍ରମେ ମନ ॥ ୪୮
ଆଶଙ୍କା କରି ମନ୍ଦ ମନ୍ଦ । ଗର୍ଜଇ ହୋଇଣ ଆନନ୍ଦ ॥ ୪୯
ଆର୍ତ୍ତିହରଣୁଁ ଜଗତର । ଯେ କୃଷ୍ଣ ମିତ୍ର ଅଟେ ତାର ॥ ୫୦
[3]ତାହାଙ୍କୁ ପୁଷ୍ପବୃଷ୍ଟି କରେ । ଛାୟାରେ ଆତପତ୍ର ଧରେ ॥ ୫୧
୧୪ ନାନାପ୍ରକାର ଗୋପରସେ[4] । ବିଦଗ୍ଧ ଅଟେ ଯେ ବିଶେଷେ ॥ ୫୨
୧୫ ଆଗୋ ଯଶୋଦା ! ତୋର ସୁତ । ଅଧରବିମ୍ବରେ ଅର୍ପିତ ॥ ୫୩
ବଂଶୀକି କରିଛି ଆପଣ । ଯେ ନାନା ନିଜଶିକ୍ଷା ପୁଣ ॥ ୫୪
ଯେ ନାନାବିଧ ଅଟେ ସ୍ୱର । ନିଷାଦ ରଷଭ ଗାନ୍ଧାର ॥ ୫୫
ଉଚ୍ଚରେ କଲା ତା' ଗାୟନ । ସେମାନ ଶୁଣି ନିଜ କର୍ଣ୍ଣ ॥ ୫୬
ଶକ୍ର ଶଙ୍କର ବ୍ରହ୍ମା ଆଦି । ଜ୍ଞାନୀ ଅଟନ୍ତି ଯେ ପ୍ରସିଦ୍ଧି ॥ ୫୭
କନ୍ଧର ଚିତ୍ତ ନମ୍ର କଲେ । ନିଶ୍ଚେ ନ ଜାଣି ମୋହ ହେଲେ ॥ ୫୮
୧୬ ବିଚିତ୍ରଚିହ୍ନ ରୂପେ ଧ୍ୱଜ । କୁଳିଶ ଅଙ୍କୁଶ ନୀରଜ ॥ ୫୯
୧୭ ଏ ଆଦି ଅଛନ୍ତି ଯହିଁରେ । ସେ ନିଜ ପଦାବ୍ଜ ଦଳରେ ॥ ୬୦
ଧେନୁଙ୍କ ଖୁରାରେ ବ୍ରଜର । ପୀଡ଼ାକୁ କରନ୍ତେ ସଂହାର ॥ ୬୧
ଗଜର ପ୍ରାଏ ଯା' ଗମନ । କରୁଥାଇ ଯେ ବେଣୁସ୍ୱନ ॥ ୬୨
ଗମନ କରଇ ସେ ପୁଣ । ତାର ସବିଳାସ ବୀକ୍ଷଣ ॥ ୬୩

---

୧. ଅବତଂସ = କର୍ଣ୍ଣଭୂଷଣ ।    ୨. ମହତ = ଶ୍ରୀକୃଷ୍ଣ ।

୩. ଅଦୃଶ୍ୟ ଦେବମାନଙ୍କ କୃତ କୁସୁମବର୍ଷଣ ମେଘଠାରେ କଳ୍ପିତ ହୋଇଅଛି । ଅଥବା ତୁଷାର ପୁଷ୍ପଭାବରେ କଳ୍ପିତ ହୋଇଅଛି ।

୪. ''ଗୋପରସେଷ୍ଟୁ'' ଇତି ପାଠେ । ''ଗୋପଚରଣେଷ୍ଟୁ'' ପାଠାନ୍ତର ।

ତେଣେ ଆମ୍ଭର ବେଗ ହୋଇ । କନ୍ଦର୍ପବିକାର ବଢ଼ଇ ॥ ୬୪
ବୃକ୍ଷର ଅଟେ ଯଉଁ ରୀତି[1] । ଆମ୍ଭେ ହେଁ ଲଭୁଁ ତା ଝଟିତି ॥ ୬୫
ମୋହରେ ବସନ କବର । ଖସିବା ନ କରୁଁ ଗୋଚର ॥ ୬୬
୧୮ | ଗଣନା ଅର୍ଥେ ଧେନୁଙ୍କର । ଯେ ଅଟେ ମଣିମାଳାଧର ॥ ୬୭
୧୯ | ସେ ମଣିମାଳେ ଧେନୁମାନ । କରନ୍ତେ ଯେ ପୁଣ ଗଣନ ॥ ୬୮
ପ୍ରିୟ ସୁଗନ୍ଧ ଯାହାଠାରେ । ଯୁକ୍ତ ସେ ତୁଳସୀମାଳାରେ ॥ ୬୯
ଯେ ପ୍ରିୟ ନିଜ ଅନୁଚର । ଅର୍ପନ୍ତେ ଭୁଜ କାନ୍ଧେ ତାର ॥ ୭୦
ଯେବେ ସେ କହୁଣିସି ଦିନ । ବେଣୁରେ କଲାକ ଗାୟନ ॥ ୭୧
କ୍ୱଣିତ ବେଣୁରବେ ଚିତ୍ତ । ହେଲା ଯାହାଙ୍କର ବଞ୍ଚିତ ॥ ୭୨
ଯେ କୃଷ୍ଣସାରଙ୍କ ଗୃହିଣୀ । ଆସି ସେ ସକଳ ହରିଣୀ ॥ ୭୩
ଗୁଣସାଗର ଯେ ଅଚ୍ୟୁତ । ତାହାଙ୍କୁ ହେଲେ ଅନୁଗତ ॥ ୭୪
ଗୋପୀମାନଙ୍କ ପ୍ରାୟ ହୋଇ । ଛାଡ଼ିଲେ ଗୃହ ଆଶା ସେହି ॥ ୭୫
୨୦ | ଅପାପି ଯଶୋଦେ ! ତୋହର । ଯେ ବତ୍ସ ଯେ ସୁତ ନନ୍ଦର ॥ ୭୬
୨୧ | କୁନ୍ଦମାଳାରେ କୌତୁକରେ । କଳ୍ପିତ ବେଷ ଯାହାଠାରେ ॥ ୭୭
ପ୍ରଣୟବନ୍ତ ଯଉଁ ଜନ । ତା' ସୁଖ କରେ ଯେ ବର୍ଧନ ॥ ୭୮
ଯେ ବୃତ ଗୋପ ଗୋଧନରେ । ବିହାର କଲେ ଯମୁନାରେ ॥ ୭୯
ଚନ୍ଦନପ୍ରାୟ ଗନ୍ଧଯୁତ । ଶୀତଳ ଅଟଇ ଯେ ବାତ ॥ ୮୦
ବହୁଛି ଅନୁକୂଳ ହୋଇ । ମାନନା କରନ୍ତେଣ ସେହି ॥ ୮୧
ଗନ୍ଧର୍ବଗଣମାନ ଯେହି । ସ୍ତୁତିପାଠକପ୍ରାୟ ସେହି ॥ ୮୨
କୃଷ୍ଣଙ୍କୁ ବାଦ୍ୟରେ ଗୀତରେ । ବେଢ଼ିଲେ କୁସୁମବୃଷ୍ଟିରେ ॥ ୮୩
୨୨ | ବତ୍ସଳ ଧେନୁ ବ୍ରଜଙ୍କର । ଯଉଁ ସ୍ୱକାଶୁଁ ଗିରିଧର ॥ ୮୪
୨୩ | ପଥରେ ବୃଦ୍ଧଜନେ[2] ପୁଣ । ବନ୍ଦନ୍ତି ଯାହାର ଚରଣ ॥ ୮୫
ଦିବସଶେଷରେ ସକଳ । ଗୋଧନ କରି ଏକମେଳ ॥ ୮୬
ଗୀତସଂଯୁତ ବେଣୁ ଯାର । କୀର୍ତ୍ତି ଗାଆନ୍ତି ଅନୁଚର ॥ ୮୭
ଶ୍ରମକାନ୍ତିରେ ହେଁ ନୟନ । ଉତ୍ସବ କରନ୍ତେ ବିଧାନ ॥ ୮୮
ଖୁରରଜରେ ଧେନୁଙ୍କର । ବ୍ୟାପ୍ତ ଅଟଇ ମାଳା ଯାର ॥ ୮୯
ଆମ୍ଭେ ଯେ ଅଟୁଁ ମିତ୍ରଜନ । ଆମ୍ଭର ଯେ ମଙ୍ଗଳମାନ ॥ ୯୦
ତା' ଦେବା ଅର୍ଥେ କରି ମନ । କରୁଅଛି ଏ ଆଗମନ ॥ ୯୧
ଦେବକୀଜଠରଜନିତ । ଚନ୍ଦ୍ରମା ଅଟଇ ସାକ୍ଷାତ ॥ ୯୨
୨୪ | ଅଳପ ମଦରେ ସଂଯୁତ । ନୟନଯୁଗଳ ଘୂର୍ଣ୍ଣିତ ॥ ୯୩
୨୫ | ସୁହୃଦ ଲୋକଙ୍କର ମାନ । କରଇ ସନ୍ତତେ ପ୍ରଦାନ ॥ ୯୪

---

୧. ଗତି ୨. ବୃଦ୍ଧଜନେ = ବ୍ରହ୍ମା ଆଦି ।

| | | | | |
|---|---|---|---|---|
| ଅଳପ ପକ୍ୱ ବଦର¹ର | । | ପ୍ରାୟେକ ପାଣ୍ଡୁ ମୁଖ ଯାର | ॥ | ୯୫ |
| ଶୋଭାରେ ହେମକୁଣ୍ଡଳର | । | ମଣ୍ଡନ୍ତେ ଗଣ୍ଡ ଆପଣାର | ॥ | ୯୬ |
| ଯଦୁଙ୍କ ନାୟକ, ବିହାର | । | କରିବରର ପ୍ରାୟେ ଯାର | ॥ | ୯୭ |
| ପ୍ରସନ୍ନ ଅଟେ ଯା' ବଦନ | । | ଦିନାନ୍ତେ ଚନ୍ଦ୍ରମା ଯେସନ | ॥ | ୯୮ |
| ଆସୁଅଛି, ବ୍ରଜରେ ସ୍ଥିତ | । | ଧେନୁମାନଙ୍କର ଯେ ଜାତ | ॥ | ୯୯ |
| ତାପ ଦିବସ ସମୟରେ | । | ତା' ନାଶ କରନ୍ତେ ନିର୍ଭରେ | ॥ | ୧୦୦ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୨୬ | ଶୁକ କହନ୍ତି ହେ ନୃପତି | । | ଏ ରୂପେ ବ୍ରଜର ଯୁବତି | ॥ | ୧୦୧ |
| | ବିହାର କଲେ ଦିବସରେ | । | ଗାଆନ୍ତେ କୃଷ୍ଣଲୀଳା ଧୀରେ | ॥ | ୧୦୨ |
| | ସେ କୃଷ୍ଣେ ଯାହାଙ୍କର ଚିତ୍ତ | । | ଯାହାଙ୍କ ସଂକଳ୍ପ ସଂତତ | ॥ | ୧୦୩ |
| | ଏ ଘେନିକରି ଅତିଶୟ | । | ଅଟେ ସେମାନଙ୍କ ଉଦୟ | ॥ | ୧୦୪ |
| | କୃଷ୍ଣଙ୍କୁ ନ ଦେଖି ଦିବସେ | । | ଲୀଳା ଗାଇଲେ ଯେ ହରଷେ | ॥ | ୧୦୫ |
| | ସେ ଗୋପୀଙ୍କର ପାଦାମ୍ବୁଜ | । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ॥ | ୧୦୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବୃନ୍ଦାବନକ୍ରୀଡ଼ାୟାଂ
ଶ୍ରୀଯୁଗଳଗୀତବର୍ଣ୍ଣନଂ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ॥

## ଷଟ୍‌ତ୍ରିଂଶ ଅଧ୍ୟାୟ

ଷଟ୍‌ତ୍ରିଂଶେ ତୁ ହତେଽରିଷ୍ଟେ ନାରଦୋକ୍ତ୍ୟା ବଳାଚ୍ୟୁତୌ ।
ବସୁଦେବସୁତୌ ଜ୍ଞାତ୍ୱା କଂସୋଽକ୍ରୂରଂ ସମାଦିଶତ୍ ॥ ୧
ଗୋପୀରାସାନ୍ତରାୟାନ୍ତଂ ଶଙ୍ଖଚୂଡ଼ଂ ନିହତ୍ୟ ସଃ ।
ଅହନ୍ ଗୋପୀମହାନନ୍ଦାସହଂ ଦୁଷ୍ଟମରିଷ୍ଟକମ୍ ॥ ୨

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଏଥୁ ଅନ୍ତରେ ସେ କାଳରେ | । | ଯେ ଖ୍ୟାତ ଅରିଷ୍ଟ ନାମରେ | ॥ | ୧ |
| | ବୃଷଭ ଆକୃତି ଯାହାର | । | ଗୋଷ୍ଠେ ମିଳିଲା ସେ ଅସୁର | ॥ | ୨ |
| | ଯାହାର ଅତିଶୟ ହୋଇ | । | ଉଚ୍ଚ କକୁଦ² କାୟ ଦୁଇ | ॥ | ୩ |
| | ଖୁରେ ବିକ୍ଷତ ଯେ ଧରଣୀ | । | କଂପାନ୍ତେ ତାହାକୁ ସେ ପୁଣି | ॥ | ୪ |
| ୨ | ଯେ ନାଦ ବୃଷଭଜାତିର | । | କରନ୍ତେ ତାହା ଖରତର | ॥ | ୫ |
| ୩ | ପାଦେ ବିଦାରନ୍ତେ ଧରଣୀ | । | ନିଜ ଲାଙ୍ଗୁଳ ଟେକି ପୁଣି | ॥ | ୬ |
| | ତଟକୁ ଶୃଙ୍ଗର ଅଗ୍ରରେ | । | ଫିଙ୍ଗିଣ ଦିଅନ୍ତେ ନିର୍ଭରେ | ॥ | ୭ |
| | ମୁଞ୍ଚନ୍ତେ କିଛି କିଛି ମଳ | । | ମୂତ୍ରନ୍ତେ, ଯା' ନେତ୍ରଯୁଗଳ | ॥ | ୮ |

---

୧. ବଦର = ବରକୋଳି ।　　୨. କକୁଦ = ଚୂଳ ।

ସ୍ତବ୍ଧ[1] ଅଟଇ, ଯା' ନିଷ୍ଠୁର । ଶବଦେ ଧେନୁମାନଙ୍କର ॥
ମନୁଷ୍ୟଙ୍କର ଗର୍ଭମାନ । ଅକାଳେ ହୁଅନ୍ତି ପତନ ॥
ସ୍ରବନ୍ତି ଭୟେ ଗର୍ଭମାନେ । ଯାହାର କକୁଦ[2]ରେ ଘନେ[3] ॥
[4]ଅଚଳ ଆଶଙ୍କା କରିଣ । ପ୍ରବେଶ ହୁଅନ୍ତି ତତ୍‌କ୍ଷଣ ॥
୪ ତୀକ୍ଷ୍ଣ ଅଟଇ ଶୃଙ୍ଗ ତାର । ତାହାକୁ କରିଣ ଗୋଚର ॥
୫ ହେନୃପ ! ଗୋପେ ଗୋପୀମାନେ । ତ୍ରାସ ପାଇଲେ ନିଜ ମନେ ॥
ନିଜ ଗୋକୁଳ କରି ତ୍ୟାଗ । ପଶୁଏ ପଳାଇଲେ ବେଗ ॥
ସର୍ବେ କୃଷ୍ଣ କୃଷ୍ଣ ବୋଲିଣ । ଗଲେ ଗୋବିନ୍ଦଙ୍କୁ ଶରଣ ॥
୬ ଏଥୁ ଅନନ୍ତରେ ଗୋକୁଳ । ଭୟରେ ହୋଇଛି ବିହ୍ୱଳ ॥
ଏମନ୍ତ ଦେଖି କରି ହରି । ଭୟ ନ ପାଅ ବୋଲି କରି ॥
କରିଣ ଆଶ୍ୱାସନା ତାଙ୍କୁ । ଡାକିଲେ ବୃଷଭାସୁରକୁ ॥
୭ ହେ ମନ୍ଦ ! ହେ ଦୁଷ୍ଟପ୍ରଧାନ । ପାଳକ[5] ଯୁତ ପଶୁମାନ ॥
ତ୍ରାସ କରାଇ କି କାରଣ । ତୋହର ସମାନ ଯେ ପୁଣ ॥
ଦୁଷ୍ଟ ଦୁରାତ୍ମା ତାହାଙ୍କର । ମୁଁ ଶାସ୍ତା ଥାଆନ୍ତେ ଏଠାର ॥
୮ ଏମନ୍ତ ବୋଲି କରତଳେ । ବାହୁକୁ ମାରି ନିଜ ବଳେ ॥
କରନ୍ତେ ତାଳିଶବଦକୁ । କୋପ କରାନ୍ତେ ଅରିଷ୍ଟକୁ ॥
ସର୍ପଶରୀରପ୍ରାୟ ହୋଇ । ଯେବଣ ଭୁଜ ଶୋଭା ପାଇ ॥
ଅର୍ପିଣ ତା' ସଖାସ୍କନ୍ଧର । ସ୍ୱୟେଂ ରହିଲେ ଦାମୋଦର ॥
୯ ଏମନ୍ତ ପ୍ରକାରେ କୁପିତ । ହୁଅନ୍ତେ ସେ ଅରିଷ୍ଟ ଦୈତ୍ୟ ॥
କ୍ଷିତି ବିଦାରନ୍ତେ ଖୁରାରେ । ଯାର ଟେକିଲା ଲାଙ୍ଗୁଳରେ ॥
ଭ୍ରମନ୍ତି[6] ମେଘେ ଆକାଶରେ । ଧାଇଁଲା କୃଷ୍ଣଙ୍କୁ କ୍ରୋଧରେ ॥
୧୦ ଯେ ନିଜ ଶୃଙ୍ଗ-ଅଗ୍ରଭାଗ । ତାହାକୁ କରିଅଛି ଆଗ ॥
ସ୍ତବଧ ରକ୍ତବର୍ଣ୍ଣ ହୋଇ । ଦିଶୁଛି ଯା' ଲୋଚନ ଦୁଇ ॥
ବକ୍ରେ ଚାହିଁଣ[7] କଟାକ୍ଷରେ । କୃଷ୍ଣଙ୍କୁ ଧାଇଁଲା ସତ୍ୱରେ ॥
ବାସବହସ୍ତରୁ ମୁକତ । ଅଶନି ଧାବଇ ଯେମନ୍ତ ॥
୧୧ ତାହାର ଶୃଙ୍ଗ ଦୁଇ ଧରି । ଅଠର ପାହୁଣ୍ଡ[8] ଶ୍ରୀହରି ॥
ପୃଷ୍ଠଦେଶକୁ ଘୁଞ୍ଚାଇଣ । ପେଲିଣ ନେଲେ ତତକ୍ଷଣ ॥
ଗଜକୁ ପ୍ରତିଗଜ ଧରି । ଯେହ୍ନେ ଘୁଞ୍ଚାଇ ବଳ କରି ॥
୧୨ ପକାନ୍ତେ ତାକୁ ଦାମୋଦର । ପୁଣି ସେ ଉଠିଣ ସତ୍ୱର ॥
ସକଳ ଅଙ୍ଗେ ସ୍ୱେଦ ଜାତ । ନିଶ୍ୱାସ ପକାନ୍ତେ ବହୁତ ॥

---

୧. ସ୍ତବ୍ଧ = ଅପଲକ । ୨. କକୁଦ = ଷଣ୍ଢର ଚୂଳ । ୩. ଘନେ = ମେଘମାନେ ।
୪. ଅଚଳ = ପର୍ବତ । ୫. ପାଳକ = ପାଳନ । ୬. ଭ୍ରମନ୍ତି = ଭ୍ରମନ୍ତେ ।
୭. ଚାହିଁଣ = ଚାହାଣୀ । ୮. ପାହୁଣ୍ଡ = ପାହୁଣ୍ଡ(ପାଦହୁଣ୍ଡନ) ।

କ୍ରୋଧରେ ପୂରିତ ହୋଇଲା । ପୁଣି ଗୋବିନ୍ଦଙ୍କୁ ଧାଇଁଲା ॥ ୩୯
୧୩ ପାଦରେ କରି ଆକ୍ରମଣ । ପକାଇ ମହୀତଳେ ପୁଣ ॥ ୪୦
ଆର୍ଦ୍ର ବସନ ପ୍ରାଏ କରି । ମୋଡ଼ିଲେ ତାକୁ ଦେବ ହରି ॥ ୪୧
ଶୃଙ୍ଗ ଉପାଡ଼ି ସେ ଶୃଙ୍ଗରେ । ମାଇଲେ ପଡ଼ିଲା ଭୂମିରେ ॥ ୪୨
୧୪ ବାନ୍ତି କରନ୍ତେ ରକତକୁ । ମୁଞ୍ଚନ୍ତେ ମଳକୁ ମୂତ୍ରକୁ ॥ ୪୩
କ୍ଷିପନ୍ତେ[୧] ନିଜ ପାଦମାନ । ଚଞ୍ଚଳ ଅଟେ ଯା' ଲୋଚନ ॥ ୪୪
ଯମର ଗୃହକୁ କଷ୍ଟରେ । ଗଲା ସେ ଏଥୁ ଅନନ୍ତରେ ॥ ୪୫
ପୁଷ୍ପ ବରଷନ୍ତେ ଝଟିତି । ହରିଙ୍କି ଦେବେ କଲେ ସ୍ତୁତି ॥ ୪୬
୧୫ ଗୋପୀମାନଙ୍କର ନୟନ । ଉତ୍ସବରୂପ ଭଗବାନ ॥ ୪୭
ଆପଣା ଜାତି ଯେ ଗୋପାଳେ । ସ୍ତୁତି କରନ୍ତି ସେ ସକଳେ ॥ ୪୮
ବୃଷଭାସୁରକୁ ଏମନ୍ତ । ପ୍ରକାରେ କରିଣ ନିହତ ॥ ୪୯
ବଳଭଦ୍ରଙ୍କ ସହିତରେ । ପ୍ରବେଶ ହୋଇଲେ ଗୋଷ୍ଠରେ ॥ ୫୦
୧୬ [୨]ଅଦ୍ଭୁତ କର୍ମମାନେ ଯାର । ଗୋଷ୍ଠେ ଥାଇ ସେ ଦାମୋଦର ॥ ୫୧
ବୃଷକୁ କରନ୍ତେ ନିଧନ । ଦେବତାପ୍ରାଏ ଯା' ଦର୍ଶନ ॥ ୫୨
ଆସି ସେ ନାରଦ କଂସକୁ । କହିଲେ ଏମନ୍ତ ବାକ୍ୟକୁ ॥ ୫୩
୧୭ ଯଉଁ କନ୍ୟାକୁ କଲୁ ହତ । ଯଶୋଦାଗର୍ଭରୁ ସେ ଜାତ ॥ ୫୪
କୃଷ୍ଣ ଦେବକୀର ତନୟ । ରାମ ରୋହିଣୀର ନିଶ୍ଚୟ ॥ ୫୫
ଭୟରେ ବସୁଦେବ ନେଇ । ରଖିଲା ତାଙ୍କୁ ନନ୍ଦଠାଇଁ ॥ ୫୬
ନନ୍ଦ ଅଟଇ ମିତ୍ର ତାର । ଏଣୁ ରଖିଲା ତା' ମନ୍ଦିର ॥ ୫୭
ଯେ ରାମ କୃଷ୍ଣ ଦୁହେଁ ତୋର । କଲେ ପୁରୁଷଙ୍କୁ ସଂହାର ॥ ୫୮
୧୮ କଂସ ଶୁଣିଣ ସେ ବିଷୟ । କୋପରେ ପ୍ରଚଳିତେନ୍ଦ୍ରିୟ ॥ ୫୯
ବସୁଦେବକୁ ମାରିବାକୁ । ଧଇଲା ତୀକ୍ଷ୍ଣ ଖଡ଼ଗକୁ ॥ ୬୦
୧୯ ବସୁଦେବର ବଧ ଶୁଣି । ସେ ଦୁହେଁ ପଳାଇବେ ପୁଣି ॥ ୬୧
ନାରଦ କହି ଏ ବିଚାର । ବଧ ନିବାରିଲେ ତାହାର ॥ ୬୨
ତା' ବେନି ସୁତେ ଆପଣାର । ମୃତ୍ୟୁ ଶୁଣିଣ ଏ ପ୍ରକାର ॥ ୬୩
ଭାର୍ଯ୍ୟାସହିତେ ଲୋହପାଶେ । ବାନ୍ଧିଲା ତାକୁ କ୍ରୋଧବଶେ ॥ ୬୪
୨୦ ନାରଦ ଯାନ୍ତେ ସୁରପୁରୀ । କଂସ କେଶୀକି ଡାକି କରି ॥ ୬୫
ରାମକୃଷ୍ଣଙ୍କୁ କର ହତ । ବୋଲିଣ ପେଷିଲା ତୁରିତ ॥ ୬୬
୨୧ ତଦନ୍ତେ ମୁଷ୍ଟିକ ଚାଣୂର । ଶଳ ତୋଶଳ ଆଦି ବୀର ॥ ୬୭

---

୧. କ୍ଷିପନ୍ତେ = ଇତସ୍ତତଃ ଚାଳନ କରନ୍ତେ ।

୨. କାମଂ ବ୍ରଜେ ବସନ୍ତଂ ତଂ କୃଷ୍ଣଂ ତେନ ତୁ ବିସ୍ମୃତମ୍ ।
ନାରଦଃ ସ୍ମାରୟାମାସ କଂସଂ ଦୂତଗିରୈବ ତୁ ॥ (ସ୍ୱାମୀ)

ବ୍ରଜରେ ମନ-ଇଚ୍ଛାରେ ରହୁଥିବା କୃଷ୍ଣଙ୍କୁ ଏବଂ ତାଙ୍କ ଦ୍ୱାରା ବିସ୍ମିତ କଂସକୁ ଦୂତର ବାଣୀଦ୍ୱାରା ହିଁ ନାରଦ ସ୍ମରଣ କରାଇଲେ । (ସ୍ୱାମୀ)

ଅମାତ୍ୟମାନେ ଥିଲେ ଯେତେ । ହସ୍ତିପାଳଙ୍କର ସହିତେ ।। ୬୮
ଡାକିଣ ସେମାନଙ୍କୁ ପୁଣି । କହିଲା ଭୋଜରାଜ ବାଣୀ ।। ୬୯
୨୨ ହେ ବୀର ମୁଷ୍ଟିକ ଚାଣୂର । ଶୁଣ ଏ ବଚନ ମୋହର ।। ୭୦
ବସୁଦେବ ବେନି ତନୁଜେ । ରହି ଅଛନ୍ତି ନନ୍ଦବ୍ରଜେ ।। ୭୧
୨୩ ସେ ରାମକୃଷ୍ଣ ବେନି ଭାଇ । ମୋ ମୃତ୍ୟୁ ଦେଖାଇଛି ବିହି ।। ୭୨
ଏଠାରେ ହେଲେ ସେ ପ୍ରବେଶ । ମଲ୍ଲଲୀଳାରେ କର ନାଶ ।। ୭୩
୨୪ ବିବିଧ ମଞ୍ଚମାନ କର । ଯେ ଯୁତ ରଙ୍ଗେ ମଲ୍ଲଙ୍କର ।। ୭୪
ଯେ ପୁର-ଜନପଦ-ନର । ଦେଖନ୍ତୁ ସେ ଆସି ସଙ୍ଗର[1] ।। ୭୫
୨୫ ହେ ମହାମାତ୍ର[2] ! ଭଦ୍ର ତୁହି । ରଙ୍ଗଦ୍ୱାରରେ ରଖ ନେଇ ।। ୭୬
କୁବଳୟାପୀଡ଼ କୁଞ୍ଜର । ମୋ ବେନି ଶତ୍ରୁ ତେଣେ ମାର ।। ୭୭
୨୬ ଚତୁର୍ଦ୍ଦଶୀରେ ଧନୁଯାଗ । ଯଥାବିଧିରେ କର ଆଗ ।। ୭୮
ବରଦ ଭୈରବ ନିମିତ୍ତ । ମେଧ୍ୟ ପଶୁଙ୍କୁ କର ହତ ।। ୭୯
୨୭ ଅର୍ଥତତ୍ତ୍ୱକୁ ଯେ ଜାଣଇଁ । ସେ ଏ ରୂପରେ ଆଜ୍ଞା ଦେଇ ।। ୮୦
ଯଦୁଙ୍କ ଶ୍ରେଷ୍ଠ ଯେ ଅକ୍ରୁର । ତାହାଙ୍କୁ ଡାକିଣ ସତ୍ୱର[3] ।। ୮୧
ହସ୍ତରେ ଧରିଣ ତା' ପାଣି । ବୋଇଲା ଏ ବଚନ ପୁଣି ।। ୮୨
୨୮ ଭୋ ଦାନପତି ! ତୁ ମୋହର । ଆଦରେ ମିତ୍ରଭାବ କର ।। ୮୩
ତୋ ତହୁଁ ଅତିହିତ ହୋଇ । ଭୋଜବୃଷ୍ଣିରେ ଆନ ନାହିଁ ।। ୮୪
୨୯ ଏ ଘେନି ହେ ସୌମ୍ୟ ! କାର୍ଯ୍ୟର । ଗୌରବସାଧନେ ମୋହର ।। ୮୫
ତୋତେ ଆଶ୍ରୟ କଲି ପୁଣ । ବିଷ୍ଣୁକୁ ଆଶ୍ରୟ କରିଣ ।। ୮୬
ଯେହ୍ନେ ଅର୍ଥକୁ ଆପଣାର । ଲଭିଲା ବିଭୁ ପୁରନ୍ଦର ।। ୮୭
୩୦ ନନ୍ଦବ୍ରଜକୁ ଯାଅ ତୁହି । ବସୁଦେବର ସୁତ ଦୁଇ ।। ୮୮
ଅଛନ୍ତି ତାଙ୍କୁ ଏ ରଥରେ । ଆଣ ଏ ସ୍ଥାନକୁ ସତ୍ୱରେ ।। ୮୯
୩୧ ବିଷ୍ଣୁ ଆଶ୍ରୟ ଯାହାଙ୍କର । ସେ ସର୍ବେ ଅମରେ ମୋହର ।। ୯୦
ମୃତ୍ୟୁରୂପରେ ସେହୁ ଦୁଇ । ଭାଇଙ୍କି ଅଛନ୍ତି ଭିଆଇ ।। ୯୧
ନନ୍ଦାଦି ଗୋପମାନେ ଯେତେ । ଭେଟ[4] ଘେନିଣ ସେ ସମସ୍ତେ ।। ୯୨
ଆସିବେ ସେମାନଙ୍କ ସଙ୍ଗେ । ଆଣ ସେ ଦୁହିଁକି ତୁ ବେଗେ ।। ୯୩
୩୨ ଆଣି ସେ ଦୁହିଁକି ଏଠାର । କାଳସମାନ ଯେ କୁଞ୍ଜର ।। ୯୪
ତେଣେ କରାଇବି ମରଣ । ତହୁଁ ବଞ୍ଚିବେ ଯେବେ ପୁଣ ।। ୯୫
ବଜ୍ରସମାନ ମଲ୍ଲଙ୍କର । ହାଥେ[5] କରାଇବି ସଂହାର ।। ୯୬
୩୩ ସେ ଦୁହେଁ ଲଭନ୍ତେ ମରଣ । ଯେ ବସୁଦେବ ଆଦି ପୁଣ ।। ୯୭
ସଂତାପ ଲଭିଥିବେ ଚିତ୍ତେ । ତାହାର ବନ୍ଧୁମାନେ ଯେତେ ।। ୯୮

---

୧. ସଙ୍ଗର = ଯୁଦ୍ଧ ୨. ମହାମାତ୍ର = ମାହୁନ୍ତ ୩. ସତ୍ୱର = ସେଠାର ।
୪. ଭେଟ = ଭେଟି । ୫. ହାଥେ = ହାତେ ।

| | | | | |
|---|---|---|---|---|
| | ଦଶାର୍ହ ବୃଷ୍ଣି ଭୋଜ ଆନ | । କରିବି ତାହାଙ୍କୁ ନିଧନ | ॥ | ୯୯ |
| ୩୪ | ରାଜ୍ୟ-ଅଭିଳାଷୀ ସ୍ଥବିର | । ଯେ ଉଗ୍ରସେନ ପିତା ମୋର | ॥ | ୧୦୦ |
| | ତା' ଭ୍ରାତା ଦେବକ ଯେ ଆନ | । ଶତ୍ରୁଏ ମୋର ବିଦ୍ୟମାନ | ॥ | ୧୦୧ |
| ୩୫ | ମାରିବି ସେମାନଙ୍କୁ ପୁଣି | । ହେ ମିତ୍ର ! ତଦନ୍ତେ ଧରଣୀ | ॥ | ୧୦୨ |
| | ନାଶ ହୁଅନ୍ତେ ରିପୁଗଣ | । ନିଶ୍ଚିନ୍ତ ହେବ ମୋର ପୁଣ | ॥ | ୧୦୩ |
| ୩୬ | ଜରାସନ୍ଧ ଗୁରୁ ମୋହର | । ସୁହୃଦ ଦ୍ୱିବିଦ ବାନର | ॥ | ୧୦୪ |
| | ଶମ୍ବର ନରକ ଯେ ବାଣ | । ମୋ' ଠାରେ ପ୍ରୀତିଯୁତ ପୁଣ | ॥ | ୧୦୫ |
| ୩୭ | ସେମାନଙ୍କର ସଙ୍ଗେ ଥାଇ | । ଦେବତାଙ୍କର ପକ୍ଷ ହୋଇ | ॥ | ୧୦୬ |
| | ଯେତେକ ନୃପ ତାଙ୍କୁ ଜିଣି | । ଭୋଗ କରିବି ମୁଁ ଧରଣୀ | ॥ | ୧୦୭ |
| | ଏହି ବିଷୟ ମନେ ଘେନି | । ଯେ ରାମ କୃଷ୍ଣ ଶିଶୁ ବେନି | ॥ | ୧୦୮ |
| | ତାହାଙ୍କୁ ବେଗ ଆଣ ଯାଇଁ | । ଧନୁଯାଗ ଦେଖିବା ପାଇଁ | ॥ | ୧୦୯ |
| | ଯେ ଶୋଭା ଯଦୁନଗରର | । ତାହା କରିବାକୁ ଗୋଚର | ॥ | ୧୧୦ |

ଶ୍ରୀଅକ୍ରୂର ଉବାଚ

| | | | | |
|---|---|---|---|---|
| ୩୮ | ହେ ନୃପ ! ତୁମ୍ଭର ବିଚାର | । ଉତ୍ତମ ଯେ ବା ଆପଣାର | ॥ | ୧୧୧ |
| | ମରଣ ସେ କଥାର ନାଶ | । ଅଟେ ଏ ବିଚାରେ ପ୍ରକାଶ | ॥ | ୧୧୨ |
| | ସିଦ୍ଧି ଅସିଦ୍ଧି ବେନିଠାରେ | । ସମ ଭାବକୁ[1] ଲୋକ କରେ | ॥ | ୧୧୩ |
| | କେବଳ ଫଳକୁ ଭାଜନ[2] | । ଦଇବବିନୁଁ ନାହିଁ ଆନ | ॥ | ୧୧୪ |
| ୩୯ | ଯେ ଉଚ୍ଚ ମନୋରଥମାନ | । ବିଚାରୁଥାଇ ତାହା ଜନ | ॥ | ୧୧୫ |
| | ସେ ଦଇବରେ ହୋଏ ହତ | । ହର୍ଷ-ଶୋକେ ଏ[3] ହୋଏ ଯୁତ | ॥ | ୧୧୬ |
| | ତଥାପି କରିବି ତୁମ୍ଭର | । ଆଜ୍ଞା, ନିଶ୍ଚୟ ଏ ମୋହର | ॥ | ୧୧୭ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୦ | ଯେ ମନ୍ତ୍ରୀ[4] ଅଟଇ ଅକ୍ରୂର | । ତା ସଙ୍ଗେ କରି ଏ ବିଚାର | ॥ | ୧୧୮ |
| | ତାହାକୁ ଛାଡ଼ି କରି କଂସ | । ଗୃହରେ ହୋଇଲା ପ୍ରବେଶ | ॥ | ୧୧୯ |
| | ଯେ ଅଟେ ଆପଣା ମନ୍ଦିର | । ତହିଁରେ ମିଳିଲା ଅକ୍ରୂର | ॥ | ୧୨୦ |
| | ଆଣିମା ନିମିତ୍ତେ ଯାହାଙ୍କୁ | । କଂସ ପେଷିଲା ଅକ୍ରୂରକୁ | ॥ | ୧୨୧ |
| | ସେ କୃଷ୍ଣ ପାଦପଦ୍ମଧ୍ୟାନେ | । ହରଷ ଦୀନବନ୍ଧୁ ମନେ | ॥ | ୧୨୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦକ୍ରୂରସଂପ୍ରେଷଣଂ
ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ॥

---

୧. ଭାଗକୁ ।　　୨. ସାଧନ ।　　୩. ଏ = ଜନ ।

୪. 'ମନ୍ତ୍ରିଣଂ ଚ' ଇତି ପାଠେ । 'ମନ୍ତ୍ରିଣଶ୍ଚ' ପାଠାନ୍ତର ।

# ସପ୍ତତ୍ରିଂଶ ଅଧ୍ୟାୟ

ସପ୍ତତ୍ରିଂଶେ ହତେ କେଶିନ୍ୟଚ୍ୟୁତୋ ଭାବିକର୍ମଭିଃ ।
ନାରଦେନ ସ୍ତୁତଃ କ୍ରୀଡ଼ନ୍ ବ୍ୟୋମାସୁରମଥାବଧୀତ୍ ।। ୧
ବୃଷବେଷାସୁରଂ ଯଦ୍ୱତ୍ କେଶିନଂ ହୟବେଷିଣମ୍ ।
କଂସପ୍ରାଣସଖଂ ହତ୍ୱା କଂସଂ ବ୍ୟସୁମିବାକରୋତ୍ ।। ୨

ଶ୍ରୀଶୁକ ଉବାଚ

୧ କଂସ ଯା' ଅଛି ପଠିଆଇ । ସେ କେଶୀ ମହାହୟ ହୋଇ ।। ୧
କ୍ଷିତିକି ଖୁରମାନଙ୍କରେ । ଖୋଳନ୍ତେ ଗମନ କାଳରେ ।। ୨
ମନର ପ୍ରାୟ ବେଗ ଯାର । ସଟା[1]ମାନଙ୍କେ ଆପଣାର ।। ୩
ମେଘ ବିମାନମାନ ପୁଣ । ଚାଳିଛି[2], ଏମନ୍ତ ରୂପେଣ ।। ୪
କରାନ୍ତେ ଆକାଶକୁ ତହିଁ । ନିଜ ହ୍ରେଷିତ[3] ନାଦ ଯେହି ।। ୫
ତେଣେ ସକଳ ଲୋକଭୟ । ବିଶେଷେ କରାନ୍ତେ ଉଦୟ ।। ୬
୧ (କ) ବିଶାଳ ଅଟେ ନେତ୍ର ଯାର । ବିକଟ ବଦନ କୋଟର[4] ।। ୭
ବିସ୍ତାରକଣ୍ଠ ଅତିଶୟ । ନୀଳ ମେଘର ସମ କାୟ ।। ୮
ଯେ ଦୁଷ୍ଟାଶୟ, କଂସ ହିତ । କରିବା ଅର୍ଥେ ଯାର ଚିତ୍ତ ।। ୯
ନନ୍ଦର ବ୍ରଜକୁ ବିଶେଷ । କଂପାନ୍ତେ ହୋଇଲା ପ୍ରବେଶ ।। ୧୦
୨ ଆପଣା ଗୋକୁଳକୁ ତ୍ରାସ । କରାଉଛି ଯେ ନିଜଘୋଷ ।। ୧୧
ପୁଚ୍ଛଲୋମରେ ମେଘମାନ । କଲା ଯେ ପୁଣ ଭିନ୍ନ ଭିନ୍ନ ।। ୧୨
ଯୁଦ୍ଧନିମିତ୍ତେ ଆପଣାକୁ । ଖୋଜୁଛି ଯେ, ଗୋବିନ୍ଦ ତାକୁ ।। ୧୩
ଡାକିଲେ, ସିଂହପ୍ରାଏ ହୋଇ । ଗର୍ଜନ କଲା ପୁଣ ସେହି ।। ୧୪
୩ ସେ କେଶୀ ଅଭିମୁଖ ହୋଇ । କୃଷ୍ଣଙ୍କୁ ଦେଖିକରି ତହିଁ ।। ୧୫
ମୁଖରେ ଗଗନକୁ ପୁଣ । ପିଇଲା ପ୍ରାୟକ ହୋଇଣ ।। ୧୬
ଧାଇଁଲା ଅତିକ୍ରୋଧ ହୋଇ । ଯେ ଅଟେ ନିଜ ପାଦ ଦୁଇ ।। ୧୭
ତେଣେ କୃଷ୍ଣଙ୍କୁ କଲା ଘାତ । ଦୁଷ୍ଟ ଅଟଇ ତାର ଚିତ୍ତ ।। ୧୮
ପ୍ରଚଣ୍ଡ ଅଟେ ବେଗ ତାର । ସେ ଅତି ଅଲଂଘ୍ୟ ଅସୁର ।। ୧୯
୪ ସେ ଆଘାତକୁ ବଞ୍ଚାଇଣ । ତା' ପାଦଯୁଗ ଭୁଜେ ପୁଣ ।। ୨୦
ଧରି ବୁଲାଇ ଧନୁଶତ । ଅନ୍ତରେ ତାହାକୁ ଅଚ୍ୟୁତ ।। ୨୧

---

୧. ସଟା = କେସର । ୨. ଚାଳିଛି = ଚଳିଛି । ୩. ହ୍ରେଷିତ = ଗର୍ଜନ ।

୧(କ). ବିଶାଳନେତ୍ରୋ ବିକଟାସ୍ୟକୋଟରୋ
ବୃହଦ୍‌ଗଳୋ ନୀଳମହାଘନୋପମଃ ।
ଦୁରାଶୟଃ କଂସହିତଂ ଚିକୀର୍ଷୁ-
ର୍ବ୍ରଜଂ ସ ନନ୍ଦସ୍ୟ ଜଗାମ କଂପୟନ୍ ।।

୪. କୋଟର = ଗହ୍ୱର ।

ପକାଇ ରହିଲେ ଯେସନ । ସର୍ପକୁ ବିନତାନନ୍ଦନ[୧] ।। ୨୨
୫ ସେ କେଶୀ ଚେତନାକୁ ପାଇ । ପୁଣି ଉଠିଲା କ୍ରୋଧ ହୋଇ ।। ୨୩
ବିସ୍ତାର କରିଣ ବଦନ । ହରିଙ୍କି ଧାଇଁଲା ବହନ ।। ୨୪
ସେ କୃଷ୍ଣ ହସନ୍ତେ ଦକ୍ଷିଣ[୨] । ଭୁଜକୁ ତା' ମୁଖରେ ପୁଣ ।। ୨୫
ପ୍ରବେଶ କରାଇଲେ ଖରେ । ସର୍ପକୁ ଯେସନେ ଗର୍ତ୍ତରେ ।। ୨୬
୬ ଛୁଅଁନ୍ତେ ଭୁଜକୁ କୃଷ୍ଣର । ପଡ଼ିଲେ ଦନ୍ତମାନେ ତାର ।। ୨୭
ତାତିଲା ଲୁହାର ସ୍ପରଶ । ହେଲେ ଯେସନେ ଅନ୍ୟ[୩] ନାଶ ।। ୨୮
ଉଦରଦେଶରେ ତାହାର । ବଢ଼ିଲା ଭୁଜ ଗୋବିନ୍ଦର ।। ୨୯
ବ୍ୟାଧି[୪] କରନ୍ତେ ଉପେକ୍ଷିତ । ଯେସନେ ହୁଅଇ ବର୍ଦ୍ଧିତ ।। ୩୦
୭ ବଢ଼ନ୍ତେ ଭୁଜ ଶ୍ରୀକୃଷ୍ଣର । ନିରୁଦ୍ଧ ହେଲା ତା' ସମୀର ।। ୩୧
କ୍ଷିପନ୍ତେ ନିଜ ପାଦ ଚାରି । ଦେହୁଁ ଗଳିଲା ସ୍ୱେଦବାରି ।। ୩୨
ଲେଉଟି ପଡ଼ନ୍ତେ ନୟନ । ମଳ କରନ୍ତେ ବିସର୍ଜନ ।। ୩୩
ନିର୍ଗତ ହେଲା ପ୍ରାଣ ତାର । କ୍ଷିତିରେ ପଡ଼ିଲା ଅସୁର ।। ୩୪
୮ ପାଚିଲେ ଅତିଶୟ ହୋଇ । କାକୁଡ଼ି ଯେହ୍ନେ ଫାଟି ଯାଇ ।। ୩୫
ସେ ରୂପେ ମଲା ଅସୁରର । ଦେହରୁ ଭୁଜ ଆପଣାର ।। ୩୬
ବାହାର କରି ସେ କ୍ରମରେ । ଗର୍ବ ନ ଧରନ୍ତେ ମନରେ ।। ୩୭
ଅଯତ୍ନେ କଲେ ରିପୁ ହତ । ଅମରମାନେ ଯେ ତଦନ୍ତ ।। ୩୮
କୁସୁମବୃଷ୍ଟିମାନଙ୍କରେ । ସ୍ତୁତିକି କଲେ ଗଗନରେ ।। ୩୯
୯ ହେ ନୃପ ! ଭାଗବତଙ୍କର । ମଧ୍ୟେ ଅଟନ୍ତି ଯେ ପ୍ରବର ।। ୪୦
ସେ ଦେବ ଋଷି ଏକାନ୍ତରେ । କୃଷ୍ଣଙ୍କୁ ଏମନ୍ତ ପ୍ରକାରେ ।। ୪୧
କହିଲେ, ଯେବଣ କୃଷ୍ଣର । ଅକ୍ଳେଶ କର୍ମ ମନୋହର ।। ୪୨
୧୦ ହେ କୃଷ୍ଣ କୃଷ୍ଣ ! ଯୋଗେଶ୍ୱର । ଅପରିଚ୍ଛିନ୍ନ ରୂପ ଯାର ।। ୪୩
ବାସ ସକଳ ଲୋକଙ୍କର । ସାତ୍ୱତମାନଙ୍କ ପ୍ରବର ।। ୪୪
ହେ ବାସୁଦେବ ! ଜଗତର । ହେ ପ୍ରଭୁ ! ତୁମ୍ଭେ ଅଧୀଶ୍ୱର ।। ୪୫
୧୧ ସକଳ ଭୂତମାନଙ୍କର । ତୁମ୍ଭେ ଏକ ଆତ୍ମା ଆକାର ।। ୪୬
କାଷ୍ଠମାନଙ୍କ ମଧ୍ୟଗତ । ଜ୍ୟୋତି ଯେମନ୍ତ ପ୍ରକାଶିତ ।। ୪୭
ତଥାପି ଅଟ ଅଲକ୍ଷିତ । ଗୁହାମଧ୍ୟରେ ଯେଣୁ ସ୍ଥିତ ।। ୪୮
ତୁ ମହାପୁରୁଷ ଈଶ୍ୱର । ଅଜ୍ଞାତ ଇତର ଲୋକର ।। ୪୯
୧୨ ଆତ୍ମା ଆଶ୍ରୟ ଅଟେ ଯେଣୁ । ସାଧନାନ୍ତର[୫] ନାହିଁ ତେଣୁ ।। ୫୦
ପୂର୍ବେ ମାୟାରେ ତିନି ଗୁଣ । ସର୍ଜନା କଲ ତେଣେ ପୁଣ ।। ୫୧

୧. ବିନତାନନ୍ଦନ = ଗରୁଡ଼ । ୨. ଦକ୍ଷିଣ = ଦେଖିଣ ୩. ଅନ୍ୟ = ଆନ ।
୪. ବ୍ୟାଧି = ଜଳୋଦର (ସ୍ୱାମୀ) । ୫. ସାଧନାନ୍ତର = ଅନ୍ୟ ସାଧନ ।

ସର୍ଜନା କର ଏ ଜଗତ । ପାଳନ କର, କର ହତ ।।
ତୁମ୍ଭ ସଂକଳ୍ପ ଅଟେ ସତ୍ୟ । ଜଗତଈଶ୍ୱର ବିଦିତ ।।
୧୩ ଯେ ରାଜରୂପରେ ପ୍ରକାଶ । ଦଇତ୍ୟ ପ୍ରମଥ ରାକ୍ଷସ ।।
ତାହାଙ୍କ ନାଶେ ସାଧୁଙ୍କର । ରକ୍ଷାର୍ଥେ ହେଲ ଅବତାର ।।
୧୪ ହୟଆକୃତି ଏ ଦଇତ୍ୟ । ଲୀଳାରେ କଲ ଏହା ହତ ।।
ମଙ୍ଗଳ ଅଟେ ଏ ପ୍ରକାର । ହ୍ରେଷିତମାତ୍ରକେ ଯାହାର ।।
ତ୍ରସ୍ତ ହୋଇଣ ସ୍ୱର୍ଗସ୍ଥାନ । ତ୍ୟାଗ କରନ୍ତି ସୁରମାନ ।।
୧୫ ଚାଣୂର ମୁଷ୍ଟିକ ଯେ ଆନ । ମଲ୍ଲେ[୧] ହସ୍ତିମାହୁନ୍ତମାନ ।।
କଂସକୁ କରିବ ନିଧନ । ଦେଖିବି ପ୍ରଭୋ ! ପ'ର ଦିନ ।।
୧୬ ତଦନ୍ତେ ଶଙ୍ଖ ଯବନର । ମୁର ନରକର ସଂହାର ।।
ପାରିଜାତର ଯେ ହରଣ । ଇନ୍ଦ୍ରର ପରାଜୟ ପୁଣ ।।
ଏ ଯେତେ ବିଷୟ ଏମାନ । କରିବି ପୁଣ ବିଲୋକନ ।।
୧୭ ବଳ ଶୁଳ୍କାଦି ଯା' ଲକ୍ଷଣ । ବୀର କନ୍ୟାଙ୍କ ବିଭା ପୁଣ ।।
ଶାପରୁ ମୋକ୍ଷ ଯେ ନୃଗର । ଦ୍ୱାରକାରେ ଜଗଦୀଶ୍ୱର ।।
୧୮ ଯେ ସ୍ୟମନ୍ତକ ନାମେ ମଣି । ଜାମ୍ବବତୀର[୨] ସଙ୍ଗେ ପୁଣି ।।
ଦେଖିବି ଗ୍ରହଣ ତାହାର । ଯେ ମୃତ ପୁତ୍ର ବ୍ରାହ୍ମଣର ।।
ତାହାକୁ ମହାକାଳପୁର । ସ୍ଥାନରୁ ଆଣିଣ ଦେବାର ।।
୧୯ ପୌଣ୍ଡ୍ରକବଧ ତଦନ୍ତର । ଦହନ ଯେ କାଶୀପୁରର ।।
ଦନ୍ତବକ୍ରର ଯେ ମରଣ । ଚୈଦ୍ୟର[୩] ମହାଯାଗେ ପୁଣ ।।
୨୦ ଦ୍ୱାରକାପୁରେ ହୋଇ ସ୍ଥିତ । ଯେବଣ ଯେବଣ ଚରିତ ।।
କରିବ, ଦେଖିବି ସେମାନ । ଗାଇବେ ଯାହା କବିଜନ ।।
୨୧ ଏଥୁ ଅନ୍ତରେ ଭୂମିଭାର । କାଳସ୍ୱରୂପରେ ସଂହାର ।।
କରନ୍ତେ ଅର୍ଜୁନରଥରେ । ଥାଇ ସାରଥିସ୍ୱରୂପରେ ।।
ଅକ୍ଷୌହିଣୀଙ୍କର ନିଧନ । ପୁଣି କରିବି ବିଲୋକନ ।।
୨୨ କେବଳ ଜ୍ଞାନେ ଏକ ହୋଇ । ଯାହାର ମୂର୍ତ୍ତି ପ୍ରକାଶଇ ।।
ସ୍ୱରୂପସମ୍ପତ୍ତିରେ ଆନ । ଲଭିଲେ ସର୍ବ ଅର୍ଥମାନ ।।
ଅମୋଘ ଅଟେ ଯା ବାଞ୍ଛିତ । ନିଜ ତେଜରେ ଯେହୁ ନିତ୍ୟ ।।
ନିବୃତ୍ତ କଲେ ମାୟାଜାତ । ଗୁଣପ୍ରବାହକୁ ନିୟତ ।।
ଯେ ଭଗବାନ ଏ ପ୍ରକାର । ତାହାଙ୍କୁ ଶରଣ ଆମ୍ଭର ।।
୨୩ ତୁମ୍ଭେ ସକଳର ଈଶ୍ୱର । ଆମ୍ଭ ଅଧୀନ ଅଟେ ଯାର ।।
ସେ ମାୟାରେ ଯେ ମହଦାଦି । ଅଶେଷ ବିଶେଷ ପ୍ରସିଦ୍ଧି ।।

୧. ମାଲେ । ୨. ସତ୍ୟଭାମାର । ୩. ଚୈଦ୍ୟ = ଶିଶୁପାଳ ।

| | | | | |
|---|---|---|---|---|
| | କରିଛ ସେ ସର୍ବ କଳ୍ପନ | । କ୍ରୀଡ଼ା କରିବାକୁ ବିଧାନ | ।। | ୮୩ |
| | ଧରିଛ ମନୁଷ୍ୟ ଆକାର | । ଯଦୁ ବୃଷ୍ଣି ସାତ୍ୱତଙ୍କର | ।। | ୮୪ |
| | ମଧ୍ୟରେ ଯେ ତୁମ୍ଭେ ପ୍ରବର | । ତୁମ୍ଭଙ୍କୁ ମୋର ନମସ୍କାର | ।। | ୮୫ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୪ | ଯେ କୃଷ୍ଣ ଯଦୁଙ୍କ ଈଶ୍ୱର | । ତାଙ୍କୁ ଭାଗବତପ୍ରବର | ।। | ୮୬ |
| | ନାରଦ ପ୍ରଣାମ କରିଣ | । ଅନୁଜ୍ଞା ମାଗି ଗଲେ ପୁଣ | ।। | ୮୭ |
| | କୃଷ୍ଣଦରଶନୁଁ ସମ୍ଭବ | । ହୋଇଛି ତାହାଙ୍କ ଉତ୍ସବ | ।। | ୮୮ |
| ୨୫ | କେଶୀକି ଯୁଦ୍ଧରେ ନିଧନ | । କରି ଗୋବିନ୍ଦ ଭଗବାନ | ।। | ୮୯ |
| | ଯେ ପ୍ରୀତ[୧] ପଶୁପାଳମାନ | । ସଙ୍ଗତେ ଘେନିଣ ସେମାନ | ।। | ୯୦ |
| | ପଶୁଙ୍କୁ ପାଳିଲେ ବ୍ରଜର | । ସୁଖଦାୟକ ସେ ଈଶ୍ୱର | ।। | ୯୧ |
| ୨୬ | ସେ ବାଳେ[୨] ଏକ ଦିବସରେ | । ପର୍ବତସାନୁମାନଙ୍କରେ | ।। | ୯୨ |
| | ଚରାନ୍ତେ ପଶୁମାନ ଯାଇଁ | । ଚୋରପାଳକ ବ୍ୟାଜେ[୩] ତହିଁ | ।। | ୯୩ |
| | ଲୀଳାପ୍ରକାରେ ଯେ ଖେଳନ | । କଲେକ ସେ କଥା ବିଧାନ | ।। | ୯୪ |
| ୨୭ | ହେ ନୃପ ! କେହି ଚୋର ତହିଁ | । ପାଳକ ହେଲେ ପୁଣ କେହି | ।। | ୯୫ |
| | କେହି ହୋଇଲେ ମେଷପ୍ରାୟ | । ଖେଳିଲେ, ନାହିଁ କାହୁଁ ଭୟ | ।। | ୯୬ |
| ୨୮ | ଅତି ମାୟାବୀ ମୟସୁତ | । ବ୍ୟୋମ ନାମରେ ଯେ ବିଖ୍ୟାତ | ।। | ୯୭ |
| | ଧରିଲା ଗୋପାଳ-ଆକାର | । ଚୋର ରୂପରେ ସେ ଅପାର | ।। | ୯୮ |
| | ମେଷପ୍ରାୟକ ଶିଶୁମାନ | । ଘେନିଣ କଲାକ ଗମନ | ।। | ୯୯ |
| ୨୯ | ସେ ମହାସୁର ଯେତେ ଯେତେ | । ଶିଶୁଙ୍କୁ ନେଲାକ ଏକାନ୍ତେ | ।। | ୧୦୦ |
| | ରଖିଣ ପର୍ବତକନ୍ଦରେ | । ଦ୍ୱାରକୁ ରୁନ୍ଧିଲା ଶିଳାରେ | ।। | ୧୦୧ |
| | ଏରୂପେ ନିଅନ୍ତେ ବିଶେଷ | । ରହିଲେ[୪] ଚାରି ପାଞ୍ଚ ଶେଷ | ।। | ୧୦୨ |
| ୩୦ | ଯେ କୃଷ୍ଣ ସାଧୁଲୋକଙ୍କର | । ଶରଣଦାୟକ ଈଶ୍ୱର | ।। | ୧୦୩ |
| | ତାହାର ସେ କର୍ମକୁ ଜାଣି | । ନିଅନ୍ତେ ଗୋପଙ୍କୁ ସେ ପୁଣି | ।। | ୧୦୪ |
| | ବୃକକୁ[୫] ସିଂହପ୍ରାଏ ହୋଇ | । ବଳେ ଧଇଲେ ତାକୁ ଯାଇ | ।। | ୧୦୫ |
| ୩୧ | ସେ ବଳୀ ଗିରୀନ୍ଦ୍ରଆକାର | । ଧରିଣ ରୂପ ଆପଣାର | ।। | ୧୦୬ |
| | ଶକ୍ତ ନୋହିଲା ଆପଣାକୁ | । କୃଷ୍ଣଠାରୁ ଛଡ଼ାଇବାକୁ | ।। | ୧୦୭ |
| | ହସ୍ତଗ୍ରହଣରୁ କୃଷ୍ଣର | । ଆତୁର ହୋଇଛି ଅସୁର | ।। | ୧୦୮ |
| ୩୨ | ଭୁଜଯୁଗଳେ ତାକୁ ଧରି | । ଭୂମିରେ ପକାଇଣ ହରି | ।। | ୧୦୯ |
| | ସ୍ୱର୍ଗେ ଦେଖନ୍ତେ ଦେବମାନେ | । [୬]ମାଇଲେ ପଶୁକୁ ଯେସନେ | ।। | ୧୧୦ |
| ୩୩ | ଯଉଁ ଆଚ୍ଛାଦନ ଗୁହାର | । କରିଣ ଥିଲା ସେ ଅସୁର | ।। | ୧୧୧ |

୧. ପ୍ରୀତ = ପ୍ରିୟ । ୨. ବାଳେ = ପାଳେ । ୩. ବ୍ୟାଜେ = ବାହାନାରେ ।
୪. ରହିଲେ = ହୋଇଲେ । ୫. ବୃକ = ହେଟାବାଘ ।
୬. ଅନିଃଶ୍ୱାସମିତ୍ୟର୍ଥଃ (ସ୍ୱାମୀ) ଅର୍ଥାତ୍ ଅଣନିଶ୍ୱାସୀ କରି ।

| | | | |
|---|---|---|---|
| ତାହା ଭେଦିଣ ଗୋପାଳଙ୍କୁ | । କଷ୍ଟେ ଆଣିଣ ବାହାରକୁ | ।। | ୧୧୨ |
| ଭୂମିରେ ଗୋପାଳେ, ବିମାନେ | । ସ୍ତୁତି କରନ୍ତେ ସୁରମାନେ | ।। | ୧୧୩ |
| ଯଉଁ ଗୋକୁଳ ଆପଣାର | । ତହିଁ ମିଳିଲେ ଦାମୋଦର | ।। | ୧୧୪ |
| ବିନାଶ କରିଣ ବ୍ୟୋମକୁ | । ଯେ ମୁକ୍ତ କଲେ ଗୋପାଳଙ୍କୁ | ।। | ୧୧୫ |
| ଦୀନବନ୍ଧୁକୁ ଭବବନ୍ଧୁଁ | । ଉଦ୍ଧରିବେ ସେ କୃପାସିନ୍ଧୁ | ।। | ୧୧୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ବ୍ୟୋମାସୁରବଧୋ
ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।।

## ଅଷ୍ଟାତ୍ରିଂଶ ଅଧ୍ୟାୟ

ଅଷ୍ଟାତ୍ରିଂଶେ ଯଥା ଧ୍ୟାୟନ୍ ଅକ୍ରୂରୋ ଗୋକୁଳଂ ଗତଃ ।
ତଥୈବ ରାମକୃଷ୍ଣାଭ୍ୟାଂ ଗୃହଂ ନୀତ୍ୱା ସୁସତ୍‌କୃତଃ ।।
ପ୍ରାତଃ କେଶିବଧେ ବୃତ୍ତେ ଦ୍ୱାଦଶ୍ୟାଂ ନିର୍ଗତେ ମୁନୌ ।
ତତୋ ବ୍ୟୋମେ ହତେଽକ୍ରୂରଃ ସାୟଂ ଗୋକୁଳମାଗମତ୍ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ସେ ରାତ୍ରି ମଥୁରାପୁରରେ | । ଅକ୍ରୂର ରହି ପ୍ରଭାତରେ | ।। | ୧ |
| | ରଥକୁ କରି ଆରୋହଣ | । ନନ୍ଦଗୋଷ୍ଠକୁ ଗଲା ପୁଣ | ।। | ୨ |
| ୨ | ସେ ମହାଭାଗ ତଦନ୍ତରେ | । ଗମନ କରନ୍ତେ ପଥରେ | ।। | ୩ |
| | ପଦ୍ମଲୋଚନ ଯେ ଶ୍ରୀପତି | । ତାହାଙ୍କ ଠାରେ ଦୃଢ଼ଭକ୍ତି | ।। | ୪ |
| | ଲଭିଣ ଏମନ୍ତ ପ୍ରକାରେ | । ବିଚାର କଲା ମାନସରେ | ।। | ୫ |
| ୩ | କଉଁ ମଙ୍ଗଳ ଆଚରଣ | । କଲି ମୁଁ ପୂର୍ବରେ ଯେ ପୁଣ | ।। | ୬ |
| | ମହତ ଅଟେ ତପ ତାହିଁ[୧] | । କଲି, ଦାନକୁ ଯୋଗ୍ୟ ଯେହି | ।। | ୭ |
| | ତାହାକୁ ଦେଲି କଉଁ ଦାନ | । ଯେଣୁ ଦେଖିବି ଭଗବାନ | ।। | ୮ |
| ୪ | ମଣୁଛି ଉତ୍ତମଶ୍ଳୋକର | । ଦର୍ଶନ ଦୁର୍ଲଭ ମୋହର | ।। | ୯ |
| | ବିଷୟେ ଥାଇ ଯାର ମନ | । ଶୂଦ୍ରର ଠାରୁ ଯାହା ଜନ୍ମ | ।। | ୧୦ |
| | ବେଦକୀର୍ତ୍ତନ ସେ ଲୋକର | । ଦୁର୍ଲଭ ଯେମନ୍ତ ପ୍ରକାର | ।। | ୧୧ |
| ୫ | ଯାହା ବିଚାରିଲି ଏ ନୋହି | । ଅଧମ ହୋଇଲେହେଁ ମୁହିଁ | ।। | ୧୨ |
| | ଅଚ୍ୟୁତଦରଶନ ମୋର | । ହେବ ନିୟତ ଏ ପ୍ରକାର | ।। | ୧୩ |
| | ଯାହାକୁ କାଳନଦୀ ହରେ | । [୨]ତହିଁରେ କେହି ଅବା ତରେ | ।। | ୧୪ |

---

୧. ଯାହି ।

୨. ନଦୀଜଳରେ ଭାସି ଯାଉଥିବା କାଠିକୁଟା ମଧ୍ୟରୁ ଯେପରି କେବେ କେଉଁଟା କୂଳରେ ଲାଗିଥାଏ, ସେହିପରି କର୍ମବଶରୁ କାଳସ୍ରୋତରେ ଭାସମାନ ଜୀବମାନଙ୍କ ମଧ୍ୟରୁ କେବେ କେହି କୂଳ ପାଇଥାଏ । (ସ୍ୱାମୀ)

୬ ଯେ ଥିଲା ଅମଙ୍ଗଳ ମୋର । ସେ ଆଜ ହୋଇଲା ସଂହାର ॥ ୧୫
ସଫଳ ଜନମ ମୋହର । ଯାହା ଚିନ୍ତନ୍ତି ଯୋଗୀ ନର ॥ ୧୬
କୃଷ୍ଣର ସେ ପାଦନଳିନ । ଯେଣୁ ମୁଁ କରିବି ବନ୍ଦନ ॥ ୧୭
୭ ଆଶ୍ଚର୍ଯ୍ୟ ଅଟେ ଏ ବିଷୟ । ଯେ ଅନୁଗ୍ରହ ଅତିଶୟ ॥ ୧୮
ବିଧାନ କଲା କଂସ ତାହି । ତାହାର ପେଷିଲାକୁ ମୁହିଁ ॥ ୧୯
ଚରଣପଦ୍ମକୁ ହରିର । କରିବି ନୟନଗୋଚର ॥ ୨୦
ଯେ କରିଛନ୍ତି ଅବତାର । ନଖମଣ୍ଡଳତେଜେ ଯାର ॥ ୨୧
ଦୁସ୍ତର ଅଟେ ଯେ ସଂସାର । ତାହା ତରିଲେ ପୂର୍ବ ନର[୧] ॥ ୨୨
୮ ବ୍ରହ୍ମାଶିବାଦିଦେବଗଣ । ପୂଜିତ ଯେବଣ ଚରଣ ॥ ୨୩
ଲକ୍ଷ୍ମୀ କରନ୍ତି ଯା' ପୂଜନ । ସାତ୍ୱତଯୁତ ମୁନିଜନ ॥ ୨୪
ଧେନୁଚାରଣନିମିତ୍ତରେ । ଭ୍ରମଣ କରେ ଯେ ବନରେ ॥ ୨୫
ଗୋପୀଙ୍କ କୁଚରେ ଲେପିତ । କୁଙ୍କୁମେ ଯେ ପୁଣ ଅଙ୍କିତ ॥ ୨୬
୮(କ) ଯେବଣ ଚରଣନଳିନ । ସମସ୍ତ ତୀର୍ଥଜନ୍ମସ୍ଥାନ ॥ ୨୭
ଆଶ୍ରିତ ଜନର ବାଞ୍ଛିତ । ପୂରଣେ କଳ୍ପଦ୍ରୁମମତ ॥ ୨୮
ଉତ୍ତମ ଅଟେ ଯେ ସୁସେବ୍ୟ । ପ୍ରାଣୀ ପରମ ଅବଲମ୍ବ ॥ ୨୯
ସଂସାରତାପନିବାରଣ । ଯେ ଶ୍ୱେତଛତ୍ର ଅଟେ ପୁଣ ॥ ୩୦
୯ କପୋଳଯୁଗ ନାସିକାର । ସହିତେ ଯହିଁରେ ସୁନ୍ଦର ॥ ୩୧
ଯହିଁରେ ମନ୍ଦହାସଯୁତ । ଅବଲୋକନ ସୁଶୋଭିତ ॥ ୩୨
ଯହିଁ ଅରୁଣ ପଦ୍ମପ୍ରାୟ । ଶୋଭା ଦିଶଇ ନେତ୍ରଦ୍ୱୟ ॥ ୩୩
ଯେ ଚାରୁ ବକ୍ରାଳକାକୁଳ । ତେଣେ ଯେ ଅତ୍ୟନ୍ତ ମଞ୍ଜୁଳ ॥ ୩୪
କୃଷ୍ଣର ସେ ମୁଖନଳିନ । ନିଶ୍ଚେ କରିବି ଦରଶନ ॥ ୩୫
ଯେଣୁ ଏ ମୋତେ ପ୍ରଦକ୍ଷିଣ । ହୋଇ ଚରନ୍ତି ମୃଗେ ପୁଣ ॥ ୩୬
୧୦ ଅବନିଭାରନିବାରଣ । କରିବା ନିମିତ୍ତରେ ପୁଣ ॥ ୩୭
ନିଜ ଇଚ୍ଛାରେ ଯେ ଅଚ୍ୟୁତ । ନରଦେହକୁ ଉପଗତ ॥ ୩୮
ତାହାଙ୍କ ଲାବଣ୍ୟ ତନୁର । ଦର୍ଶନ ହେବ ଆଜ ମୋର ॥ ୩୯
ମୋହର ନୟନଯୁଗଳ । ଫଳ ଅଟେ ଏ ତତକାଳ ॥ ୪୦
୧୧ କାର୍ଯ୍ୟ କାରଣ ବେନିଙ୍କର । ଈକ୍ଷଣକର୍ତ୍ତା ଯେ ଈଶ୍ୱର ॥ ୪୧
ଯାହାର[୨] ଅହଂକାର ନାହିଁ । ଅଜ୍ଞାନୁଁ ଭେଦବୁଦ୍ଧି[୩] ଯେହି ॥ ୪୨

---

୧. ପୂର୍ବ ନର = ଅମ୍ବରୀଷ ପ୍ରଭୃତି (ସ୍ୱାମୀ)

୮(କ) ଯତ୍‌ସର୍ବତୀର୍ଥପ୍ରଭବଂ ସୁବାଞ୍ଛିତଂ ସଂସେବତାଂ ପୂରୟିତୁଂ ସୁରଦ୍ରୁମମ୍ ।
ସାରଂ ସୁସେବ୍ୟଂ ପରମାବଲମ୍ବନଂ ଶ୍ୱେତାତପତ୍ରଂ ଭବତାପନୋଦନମ୍ ॥

୨. ଯାହାର = ତାହାର । ୩. ଭେଦବୁଦ୍ଧି = ବୁଦ୍ଧିଭେଦ ।

ଅଭିନିବେଶ ତହୁଁ ଜାତ । ଯେ ତ୍ୟାଗ କଲେ ଏ ସମସ୍ତ ॥ ୪୩
ନିଜ[1]ସ୍ୱରୂପ[2] ସାକ୍ଷାତ୍‌କାରେ । ଆପଣା ଅଧୀନ ମାୟାରେ ॥ ୪୪
ପ୍ରାଣାକ୍ଷିବୁଦ୍ଧିଙ୍କ ସହିତେ । ଆତ୍ମାରେ ବିରଚିତ ଯେତେ[3] ॥ ୪୫
ବୃନ୍ଦାବନର ତରୁମାନ । ଗୋପାଳମାନଙ୍କ ସଦନ ॥ ୪୬
ତହିଁରେ ଅଭିମୁଖ ହୋଇ । ଥିଲା ପ୍ରାୟେ ଯେ ପ୍ରତେ ହୋଇ ॥ ୪୭
୧୨ ଯେ ସର୍ବ ପାପବିନାଶନ । ଯହିଁରୁ ମଙ୍ଗଳ ଶୋଭନ ॥ ୪୮
ଏମନ୍ତ ସ୍ୱରୂପ ଯାହାର । ଗୁଣ ଜନମ କର୍ମ ଆର ॥ ୪୯
ତେଣେ ମିଶ୍ରିତ ଯେ ବଚନ । ଜିଆନ୍ତି ସେ ସର୍ବଭୁବନ ॥ ୫୦
ଶୋଭା କରନ୍ତି ସେ ଜଗତ । ପବିତ୍ର କରନ୍ତି ନିୟତ ॥ ୫୧
ଯେ ଅଟେ ତହିଁରେ ବର୍ଜିତ । ସେ ଶବ-ଅଳଂକାର ମତ ॥ ୫୨
୧୩ ସାତ୍ୱତ ବଂଶେ ଅବତାର । ସେ ହେଲେ, ଯେ ବା ଆପଣାର ॥ ୫୩
ବର୍ଣ୍ଣ-ଆଶ୍ରମ ଧର୍ମମାନ । ତାହା କରନ୍ତି ଯେ ପାଳନ ॥ ୫୪
ସେ ସୁରବରମାନଙ୍କର । ସୁଖଦାୟକ ଯେ ଈଶ୍ୱର ॥ ୫୫
ବିସ୍ତାର କରନ୍ତେ ଯେ ଯଶ । ବ୍ରଜରେ କରିଛନ୍ତି ବାସ ॥ ୫୬
ଯେ ଯଶ ଅଶେଷ ମଙ୍ଗଳ । ଗାଆନ୍ତି ଅମର ସକଳ ॥ ୫୭
୧୪ ମହତଜନମାନଙ୍କର । ଯେ ଗୁରୁ ଗତି ଯେ ଈଶ୍ୱର ॥ ୫୮
ତ୍ରିଲୋକମଧ୍ୟେ ଯେ ସୁନ୍ଦର । ନୟନବନ୍ତ ଲୋକଙ୍କର ॥ ୫୯
ମହା ଉତ୍ସବ ଯହୁଁ ଜାତ । ଲକ୍ଷ୍ମୀବାଞ୍ଛିତ ସ୍ଥାନମତ ॥ ୬୦
ଧରିଛନ୍ତି ଯେ ସେ ରୂପକୁ । ଆଜ ଦେଖିବି ମୁଁ ତାହାଙ୍କୁ ॥ ୬୧
ମୋହର ପ୍ରଭାତସମୟେ । ସୁଖକୁ ସୂଚିଲେ ନିଶ୍ଚୟେ ॥ ୬୨
୧୫ ଦରଶନର ଅନନ୍ତର । ରଥରୁ ଓହ୍ଲାଇ ସତ୍ୱର ॥ ୬୩
ପ୍ରଧାନପୁରୁଷ ଈଶ୍ୱର । ଯେ ବେନି କୃଷ୍ଣ ହଳଧର ॥ ୬୪
ଆତ୍ମଲାଭକୁ ଯୋଗିମାନେ । ଧରିଅଛନ୍ତି ଯାହା ମନେ ॥ ୬୫
ତାଙ୍କର ଯେ ଅଟେ ଚରଣ । ପ୍ରଣାମ କରିବି ତା' ପୁଣ ॥ ୬୬
ସଖାମାନଙ୍କୁ ତାହାଙ୍କର । ସଙ୍ଗେ କରିବି ନମସ୍କାର ॥ ୬୭
୧୬ ପଡ଼ନ୍ତେ ଚରଣମୂଳରେ । ସେ ପ୍ରଭୁ ମୋହ' ମସ୍ତକରେ ॥ ୬୮
କରକମଳ ଆପଣାର । ନିବେଶ କରିବେ ସତ୍ୱର ॥ ୬୯
କାଳଭୁଜଙ୍ଗବେଗେ ଭୀତି । ଯେବଣ ଲୋକେ ଭଜିଥାନ୍ତି ॥ ୭୦
ଶରଣବାଞ୍ଛା-ଲୋକଙ୍କର । ଅଭୟଦାତା ଯଉଁ କର ॥ ୭୧
୧୭ ଯେବଣ କରକମଳରେ । ଅର୍ହଣ[4] ନିବେଶି ପୂର୍ବରେ ॥ ୭୨

---

୧. ନିଜ = ନିତ୍ୟ । ୨. ସ୍ୱରୂପ = ଶରୀର । ୩. ଯେତେ = ଯେତେ ଜୀବ ।
୪. ଅର୍ଚ୍ଚନ । ତେନାପି କଦାଚିତ୍ କିଂଚିତ୍ ନିହିତମ୍ । (ସ୍ୱାମୀ)

| | | | | |
|---|---|---|---|---|
| | ଜଗତ୍ତ୍ରୟରେ ଇନ୍ଦ୍ରଭାବ | । ଲଭିଲେ ପୁରନ୍ଦର ପୂର୍ବଂ[1] | ।। | ୭୩ |
| | ଭୂମିପ୍ରଦାନସମୟରେ | । ଉଦକ ଦେଇଣ ଯହିଁରେ | ।। | ୭୪ |
| | ଇନ୍ଦ୍ରଭାବକୁ ତ୍ରିଜଗତେ | । ବଳି ହିଁ ଲଭିଲେ ସୁଚିତ୍ତେ | ।। | ୭୫ |
| | ରାସସମୟେ ଗୋପୀଙ୍କର | । ଯେ ଶ୍ରମ ହେଲା ଶରୀରର | ।। | ୭୬ |
| | ସ୍ୱରଣେ ତା' କଲେ ଯେ ନାଶ | । [2]କହ୍ଲାରପ୍ରାୟେ ଯାର ବାସ | ।। | ୭୭ |
| ୧୮ | ମୁଁ କଂସଦୂତ କଂସ ମୋତେ | । ପେଷିଛି ଏଣୁ ନିଜ ଚିତ୍ତେ | ।। | ୭୮ |
| | ଶତ୍ରୁବୁଦ୍ଧିକି ମୋହଠାର | । କରିବେ ନାହିଁ ସେ ଈଶ୍ୱର | ।। | ୭୯ |
| | ସକଳ ତାହାଙ୍କୁ ଗୋଚର | । ମୋ ଚିତ୍ତ ବାହାର ଭିତର | ।। | ୮୦ |
| | ଚେଷ୍ଟାକୁ ନିର୍ମଳ ଚକ୍ଷୁରେ | । ଜାଣନ୍ତି କ୍ଷେତ୍ରଜ୍ଞ[3] ରୂପରେ | ।। | ୮୧ |
| ୧୯ | ସଂଯତ ହୋଇ ଯୋଡ଼ି କର | । ପଡ଼ନ୍ତେ ମୁଁ ପାଦମୂଳର | ।। | ୮୨ |
| | ସସ୍ମିତ ଆର୍ଦ୍ର ନୟନରେ | । ମୋତେ ଚାହିଁବେ ସେ କାଳରେ | ।। | ୮୩ |
| | ସମସ୍ତ ପାପମାନେ ମୋର | । ତତ୍କାଳ ହୋଇବେ ସଂହାର | ।। | ୮୪ |
| | ଆଶଙ୍କା ହେବ ମୋର କ୍ଷୟ | । ହର୍ଷ ଲଭିବି ଅତିଶୟ | ।। | ୮୫ |
| ୨୦ | ମୁଁ ଜ୍ଞାତି ମିତ୍ରମଧ୍ୟେ ସାର | । ତାହାଙ୍କ ବିହୁନେ ମୋହର | ।। | ୮୬ |
| | ଆନ ଦେବତା କେହି ନାହିଁ | । ଯେ ବଡ଼ ନିଜ ଭୁଜ ଦୁଇ | ।। | ୮୭ |
| | ତେଣେ ସେ ମୋତେ ଆଲିଙ୍ଗନ | । କରିବେ ପ୍ରଭୁ ଭଗବାନ | ।। | ୮୮ |
| | ମୋହର ଆତ୍ମା[4] ସେ କାଳରେ | । ପବିତ୍ର ହୋଇବ ନିର୍ଭରେ | ।। | ୮୯ |
| | ଯେ କର୍ମମୟ ବନ୍ଧ ଥିବ | । ଶ୍ଳଥଭାବକୁ ସେ ଭଜିବ | ।। | ୯୦ |
| ୨୧ | ଲଭି ଅଙ୍ଗସଙ୍ଗ ତାଙ୍କର | । ମୁଁ ଥିବି ଯୋଡ଼ି ବେନି କର | ।। | ୯୧ |
| | ଚରଣେ ହୋଇବି ପ୍ରଣତ | । କୃଷ୍ଣ ବୋଲିବେ ମୋତେ ତାତ | ।। | ୯୨ |
| | ଆତ୍ମା ମୋହର ସେ କାଳରେ | । ସଫଳ ହୋଇବ ସଂସାରେ | ।। | ୯୩ |
| | ମହତ ଅଟଇ ଯେ ନର | । ନ କରେ ସେ ଯାକୁ ଆଦର | ।। | ୯୪ |
| | ସେ ମନୁଷ୍ୟର ଜନ୍ମ ଯେହୁ | । ସେ ନିନ୍ଦ୍ୟ ତାକୁ ଧିକ ହେଉ | ।। | ୯୫ |
| ୨୨ | ପ୍ରିୟ ଅପ୍ରିୟ ମିତ୍ରବର[5] | । ଦ୍ୱେଷ୍ୟ ଉପେକ୍ଷ୍ୟ ନାହିଁ ତାର | ।। | ୯୬ |
| | ତଥାପି ଭକ୍ତ ଯଉଁ ଜନ | । ତାକୁ ସେ କରନ୍ତି ଭଜନ | ।। | ୯୭ |
| | ମିତ୍ର ଅମିତ୍ର ପ୍ରିୟ ହୋଇ | । କଳ୍ପବୃକ୍ଷର ଯେହ୍ନେ ନାହିଁ | ।। | ୯୮ |
| | ତଥାପି ଆଶ୍ରିତ ଲୋକକୁ | । ପ୍ରଦାନ କରେ ସେ ଅର୍ଥକୁ | ।। | ୯୯ |
| ୨୩ | ଯଦୁମାନଙ୍କ ମଧ୍ୟେ ସାର | । ଯେ ଜ୍ୟେଷ୍ଠଭ୍ରାତା ଗୋବିନ୍ଦର | ।। | ୧୦୦ |
| | ନମ୍ର ହୋଇଣ ଯୋଡ଼ି କର | । ଥା'ନ୍ତେ ମୁଁ ସନ୍ନିଧେ ତାଙ୍କର | ।। | ୧୦୧ |

---

୧. ପୂର୍ବ = ସାର୍ବଭୌମାବତାରରେ (ଚକ୍ରବର୍ତ୍ତୀ) । ୨. କହ୍ଲାର = ଏହା କରକମଳର ବିଶେଷଣ । ୩. କ୍ଷେତ୍ରଜ୍ଞ = ଅନ୍ତର୍ଯ୍ୟାମୀ । ୪. ଆତ୍ମା = ଦେହ । ୫. ମିତ୍ରପର । (ସୁହୃତ୍ତମୋ) ।

ଅଂଜଳିଯୁଗ ମୋର ଧରି । ମୋତେ ସେ ଆଲିଙ୍ଗନ କରି ।। ୧୦୨
ହସନ୍ତେ ମନ୍ଦ ହୋଇ ପୁଣ । ଗୃହରେ ପ୍ରବେଶ କରିଣ ।। ୧୦୩
ମୋର ସମସ୍ତ ସତକାର । ବିଧାନ କରି ତଦନ୍ତର ।। ୧୦୪
ଯେ ବନ୍ଧୁଜନେ କଂସକୃତ । ପୁଛିବେ ପୁଣ ସେ ବୃତ୍ତାନ୍ତ ।। ୧୦୫

ଶ୍ରୀଶୁକ ଉବାଚ

୨୪ ହେ ନୃପ ! ପଥେ ଏ ପ୍ରକାରେ । କୃଷ୍ଣଙ୍କୁ ଚିନ୍ତନ୍ତେ ମନରେ ।। ୧୦୬
ଅକ୍ରୂର ମିଳିଲା ଗୋକୁଳେ । ଦିବାକର ହିଁ ସେହିକାଳେ ।। ୧୦୭
ଯେ ଅସ୍ତ ନାମେ ମହୀଧର । ପ୍ରବେଶ ହୋଇଲେ ତହିଁର ।। ୧୦୮
୨୫ ନିର୍ମଳ ପାଦରେଣୁ ଯାର । ଅଖିଳ ଲୋକପାଳଙ୍କର ।। ୧୦୯
ମୁକୁଟଉପରରେ ଲୀନ । ସେ କୃଷ୍ଣ ପାଦଚିହ୍ନମାନ ।। ୧୧୦
ଗୋଷ୍ଠରେ ଦେଖିଲା ଅକ୍ରୂର । ଯେ ଅଟେ କ୍ଷିତି ଅଳଂକାର ।। ୧୧୧
ପଦ୍ମ ଅଙ୍କୁଶ ଯବ ଆଦି । ଚିହ୍ନରୂପରେ ଯହିଁ ସିଦ୍ଧି ।। ୧୧୨
୨୬ ସେ ଚିହ୍ନଦରଶନେ ଜାତ । ଯଉଁ ଆହ୍ଲାଦ ଅନ୍ତର୍ଗତ ।। ୧୧୩
ସେ ଘେନି ବଢ଼ିଲା ସଂଭ୍ରମ । ପ୍ରେମରେ ଊର୍ଦ୍ଧ୍ୱ ହେଲା ରୋମ ।। ୧୧୪
ଲୋତକକଳା[1]ରେ ଆକୁଳ । ହେଲା ଯା' ନୟନଯୁଗଳ ।। ୧୧୫
ଏମାନେ ପ୍ରଭୁଙ୍କ ଚରଣ । ରେଣୁ ବୋଲିଣ ତତକ୍ଷଣ ।। ୧୧୬
ରଥରୁ ଓହ୍ଲାଇ ଅକ୍ରୂର । ଗଡ଼ିଲା[2] ସେ ରଜ ଉପର ।। ୧୧୭
୨୭ ଯେ ଦମ୍ଭ ଭୟ ମଦ[3] ଆନ । ତା' ତ୍ୟାଗ କରିଣ ବହନ ।। ୧୧୮
ସଂଦେଶ[4]ଠାରୁ ଆଦି ହୋଇ । ହୋଇଲା ଅକ୍ରୂରର ଯେହି ।। ୧୧୯
ହରିର ଚିହ୍ନ ଦରଶନ । ଶ୍ରବଣ ଯେ ବା ଆଦିମାନ ।। ୧୨୦
ଦେହ ଧରିବା ଲୋକଙ୍କର । ଏତିକି[5] କାର୍ଯ୍ୟ ନାହିଁ ଆର ।। ୧୨୧
୨୮ ଧେନୁମାନଙ୍କର ଦୋହନ । ନିର୍ବାହ ହୋଏ ଯଉଁ ସ୍ଥାନ ।। ୧୨୨
ରାମ-କୃଷ୍ଣଙ୍କୁ ସେ ସ୍ଥାନରେ । ଅକ୍ରୂର ଦେଖିଲା ବ୍ରଜରେ ।। ୧୨୩
ଯେ ପୀତ ଯେ ଅଟଇ ନୀଳ । ପିନ୍ଧିଛନ୍ତି ସେ ବେନି ଚେଲ ।। ୧୨୪
ଶରଦସମୟ ନଳିନ । ସମାନ ବେନିଙ୍କ ନୟନ ।। ୧୨୫
୨୯ କିଶୋର ବୟସ ବିଦିତ । ଜଣେ ଶ୍ୟାମଳ ଜଣେ ଶ୍ୱେତ ।। ୧୨୬
ଯେ ସ୍ଥାନ ଅଟନ୍ତି ଶୋଭାର । ବିଶାଳ ଭୁଜ ଦୁହିଁଙ୍କର ।। ୧୨୭
ଶୋଭିତ ଦୁହିଁଙ୍କ ବଦନ । ସୁନ୍ଦରମାନଙ୍କେ ପ୍ରଧାନ ।। ୧୨୮
ବାଳକୁଞ୍ଜର[6]ର ସମାନ । ବିକ୍ରମବନ୍ତ ବେନି ଜନ ।। ୧୨୯

---

୧. କଳା = ଲେଶ । ୨. ପଡ଼ିଲା । ୩. ଶୋକ ।
୪. ସଂଦେହ । (କଂସସ୍ୟ ସଂଦେଶାଦାରଭ୍ୟ; ସ୍ୱାମୀ) ।
୫. ଏ ତିନି । (ତୁଂ - ଇୟାନ୍) । ୬. କୁଞ୍ଜର = ହାତୀ ।

୩୦ ଧ୍ୱଜ ବଜ୍ର ପଦ୍ମ ଅଙ୍କୁଶ । ଯହିଁରେ ଚିହ୍ନରୂପେ ଦୃଶ୍ୟ ।। ୧୩୦
ସେ ପାଦମାନଙ୍କେ ସନ୍ତତ । ବ୍ରଜକୁ କରନ୍ତେ ଶୋଭିତ ।। ୧୩୧
ଦୁହେଁ-ମହାତ୍ମା-ମନ୍ଦହାସ । ବିଳାସେ ଅଟେ ଯେ ପ୍ରକାଶ ।। ୧୩୨
ଦୟାସଂଯୁତ ମନୋହର । ଈକ୍ଷଣ ଅଟେ ଯାହାଙ୍କର ।। ୧୩୩
୩୧ କ୍ରୀଡ଼ା ଯେବଣ ବେନିଙ୍କର । ମହତ ଅଟଇ ରୁଚିର ।। ୧୩୪
ରତ୍ନହାରରେ ଯେ ସଂଯୁତ । ବନମାଳିକାରେ ଶୋଭିତ ।। ୧୩୫
ପୁଣ୍ୟଗନ୍ଧରେ ବେନିଙ୍କର । ଲେପିତ ଅଟଇ ଶରୀର ।। ୧୩୬
କରିଅଛନ୍ତି ଦୁହେଁ ସ୍ନାନ । ନିର୍ମଳ ଦୁହିଁଙ୍କ ବସନ ।। ୧୩୭
୩୨ ଯେ ବେନି ପ୍ରକୃତି ପୁରୁଷ । ଯେ ଆଦ୍ୟ ଜଗତର ଈଶ ।। ୧୩୮
ଯେ ପୁଣ ଜଗତକାରଣ । ବିଶ୍ୱପାଳନଅର୍ଥେ ପୁଣ ।। ୧୩୯
ମୂର୍ତ୍ତିଭେଦରେ ଅବତାର । ଯେ ହେଲେ ରାମ ଦାମୋଦର ।। ୧୪୦
୩୩ ହେ ନୃପ ! ଦିଗମାନଙ୍କର । ସଂଭୂତ ଯଉଁ ଅନ୍ଧକାର ।। ୧୪୧
ଆପଣା ପ୍ରଭାରେ ସେମାନ । କରୁଅଛନ୍ତି ଯେ ନିଧନ ।। ୧୪୨
ଯେହ୍ନେ ମରକତ ରଜତ । ଅଚଳ କନକେ ବ୍ୟାପିତ ।। ୧୪୩
୩୪ ରଥଉପରୁ ଓହ୍ଲାଇଣ । ପ୍ରେମରେ ବିହ୍ୱଳ ହୋଇଣ ।। ୧୪୪
ରାମ-ଗୋବିନ୍ଦ-ବେନିଙ୍କର । ଚରଣନିକଟେ ସତ୍ୱର ।। ୧୪୫
ଅକ୍ରୂର ଦଣ୍ଡପ୍ରାୟ ହୋଇ । ଭୂମିରେ ପଡ଼ିଲାକ ଯାଇଁ ।। ୧୪୬
୩୫ କୃଷ୍ଣଦର୍ଶନ ଆନନ୍ଦରେ । ଯେ ଜାତ ହେଲା ସେ ଅଶ୍ରୁରେ ।। ୧୪୭
ପୂର୍ଣ୍ଣ ହୋଇଛି ନେତ୍ର ଯାର । ପୁଲକେ ପୂର୍ଣ୍ଣ ଯା' ଶରୀର ।। ୧୪୮
ଉତ୍କଣ୍ଠାଭାବୁଁ ନିଜ ନାମ । କଥନେ ନୋହିଲା ସେ କ୍ଷମ ।। ୧୪୯
୩୬ ଏହୁ ଅକ୍ରୂର ଏ କାର୍ଯ୍ୟରେ । ଆସିଛି ଏମନ୍ତ ରୂପରେ ।। ୧୫୦
ଜାଣି ତାହାକୁ ଭଗବନ୍ତ । ଚକ୍ରରେ ଅଟେ ଯେ ଅଙ୍କିତ ।। ୧୫୧
ସେ ହସ୍ତେ ତୋଳି ଆଲିଙ୍ଗନ । କଲେ ସଂତୁଷ୍ଟ ତାଙ୍କ ମନ ।। ୧୫୨
ଭଗତଜନମାନଙ୍କର । ବତ୍ସଳ ଯେବଣ ଈଶ୍ୱର ।। ୧୫୩
୩୭ ଅକ୍ରୂର ହୋଇଛି ପ୍ରଣତ । ତାହାର ଯଉଁ ବେନି ହସ୍ତ ।। ୧୫୪
ନିଜ ହସ୍ତରେ ତାହା ଧରି । ମହାତ୍ମା ଆଲିଙ୍ଗନ କରି ।। ୧୫୫
କୃଷ୍ଣ ସହିତେ ସଂକର୍ଷଣ । ଗୃହକୁ ଘେନିଗଲେ ପୁଣ ।। ୧୫୬
୩୮ ପଚାରି ସ୍ୱାଗତ ପ୍ରଶ୍ନକୁ । ଦେଇଣ ଶ୍ରେଷ୍ଠ ଆସନକୁ ।। ୧୫୭
ଚରଣଯୁଗ ବିଧିମତେ । କ୍ଷାଳନ କରିଣ ତଦନ୍ତେ ।। ୧୫୮
ଯେ ମଧୁପର୍କ ତାହା ପୁଣ । ତଦନ୍ତେ କଲେକ ଅର୍ପଣ ।। ୧୫୯
୩୯ ଧେନୁକୁ ଅତିଥି ରୂପରେ । ନିବେଦ କରିଣ ଆଦରେ ।। ୧୬୦
ସେ ଲଭିଥିଲେ ଶ୍ରମ ଯେଣୁ । ପାଦ ଘର୍ଷଣ କରି ତେଣୁ ।। ୧୬୧
ବହୁତଗୁଣ ମେଧ୍ୟ ଅନ୍ନ । ଶ୍ରଦ୍ଧାରେ ଦେଲେ ଭଗବାନ ।। ୧୬୨

| | | | | | |
|---|---|---|---|---|---|
| ୪୦ | ଭୋଜନ ସାରନ୍ତେ ଅକ୍ରୂର | । | ମହାଧର୍ମଜ୍ଞ ହଳଧର | ।। | ୧୬୩ |
| | ଯେ ଗନ୍ଧମାଲ୍ୟ ମୁଖବାସ | । | ତେଣେ ସେ କଲେ ତା' ସଂତୋଷ | ।। | ୧୬୪ |
| ୪୧ | ଅତିଥିଜନ ସତକାର | । | ଲଭିଣ ବସନ୍ତେ ଅକ୍ରୂର | ।। | ୧୬୫ |
| | ନନ୍ଦ ବୋଇଲେ ହେ ଦାଶାର୍ହ | । | ଯାହାର ନାହିଁ ଅନୁଗ୍ରହ | ।। | ୧୬୬ |
| | ସେ କଂସ ଲଭନ୍ତେ ଜୀବିତ | । | କି ରୂପେ ହୋଇଅଛ ସ୍ଥିତ | ।। | ୧୬୭ |
| | ପଶୁମାନଙ୍କୁ ଯେ ମାରଇ | । | ସେ ଯହିଁ ପାଳକ ହୁଅଇ | ।। | ୧୬୮ |
| | ସେ ପଶୁମାନଙ୍କ ନିଧନ | । | ପ୍ରକାଶ ହୁଅଇ ଯେସନ | ।। | ୧୬୯ |
| ୪୨ | ଯେ ଖଳ, ଆପଣା ପ୍ରାଣର | । | ପୋଷଣେ ତୃପତି ଯାହାର | ।। | ୧୭୦ |
| | ଭଗିନୀ କରନ୍ତେ ରୋଦନ | । | ତାହାର ଯେତେକ ନନ୍ଦନ | ।। | ୧୭୧ |
| | ତାଙ୍କୁ ମାଇଲା, ତୁମ୍ଭେ ତାର | । | ପ୍ରଜା, କି ମଙ୍ଗଳ ତୁମ୍ଭର | ।। | ୧୭୨ |
| | ବିଚାର କରିବୁଁ ମନରେ | । | ଆମ୍ଭେମାନେ ଏ ଗୋକୁଳରେ | ।। | ୧୭୩ |
| ୪୩ | ଏ ରୂପେ ମଧୁର ବାକ୍ୟକୁ | । | ନନ୍ଦ କରନ୍ତେ ପ୍ରଶ୍ନ ତାଙ୍କୁ | ।। | ୧୭୪ |
| | ଅକ୍ରୂର ପୂଜିତ ହୋଇଲେ | । | ପଥଶ୍ରମକୁ ତ୍ୟାଗ କଲେ | ।। | ୧୭୫ |
| | ଅକ୍ରୂର ଅଇଲା ଯାହାଙ୍କୁ | । | ମଥୁରାପୁରକୁ ନେମାକୁ | ।। | ୧୭୬ |
| | ସେ କୃଷ୍ଣଚରଣ-ଅମ୍ବୁଜ | । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୭୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦକ୍ରୂରାଗମନଂ
ନାମ ଅଷ୍ଟାତ୍ରିଂଶୋଽଧ୍ୟାୟଃ ।।

## ଏକୋନଚତ୍ୱାରିଂଶ ଅଧ୍ୟାୟ

ନବତ୍ରିଂଶେ ପୁରୀଂ ଗଚ୍ଛତ୍ୟଚ୍ୟୁତେ ଗୋପିକୋକ୍ତୟଃ ।
ଅକ୍ରୂରେଣାଥ କାଳିନ୍ଦ୍ୟାଂ ବିଷ୍ଣୁଲୋକସ୍ୟ ଦର୍ଶନମ୍ ।।

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ଅକ୍ରୂର ରାମଗୋବିନ୍ଦରେ | । | ମାନନା ଲଭିଲା ନିର୍ଭରେ | ।। | ୧ |
| | ସୁଖେ ବସିଲା ପଲଙ୍କରେ | । | ଆସିବା ସମୟେ ପଥରେ | ।। | ୨ |
| | କଲା ଯେତେକ ମନୋରଥ | । | ଲଭିଲା ସେମାନ ସମସ୍ତ | ।। | ୩ |
| ୨ | ଶ୍ରୀନିକେତନ ଭଗବାନ | । | ହେ ନୃପ ! ହୁଅନ୍ତେ ପ୍ରସନ୍ନ | ।। | ୪ |
| | ଅଲଭ୍ୟ ଅଟେ ଅବା କେହି | । | ତଥାପି ତାଙ୍କ ଭକ୍ତ ଯେହି | ।। | ୫ |
| | ସେମାନେ କିଛି ମାନସରେ | । | ବାଞ୍ଛନ୍ତି ନାହିଁ ହରଷରେ | ।। | ୬ |
| ୩ | ସଂଧ୍ୟାସମୟର ଭୋଜନ | । | କରିଣ ଦେବକୀନନ୍ଦନ | ।। | ୭ |
| | କଂସର ସୁହୃଦଙ୍କ ଠାରେ | । | ଚରିତ ଯେମନ୍ତ ପ୍ରକାରେ | ।। | ୮ |

| | | | | |
|---|---|---|---|---|
| | ଯେ ବା କର୍ତ୍ତବ୍ୟକଥାମାନ | । କଲେ ସେମାନେ ସବୁ ପ୍ରଶ୍ନ | ।। | ୯ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୪ | ହେ ତାତ ! ପଚାରୁଛୁଁ ଆମ୍ଭେ | । ସ୍ୱାଗତେ ଅଇଲ ତ ତୁମ୍ଭେ | ।। | ୧୦ |
| | ମଙ୍ଗଳ ସମ୍ଭବୁ ତୁମ୍ଭର | । ସ୍ୱଜ୍ଞାତିବନ୍ଧୁମାନଙ୍କର | ।। | ୧୧ |
| | ଯେ ସୁଖ ଯେ ଆରୋଗ୍ୟ ଆନ | । ହୋଇଛିଟିକି ସେ ଉତ୍ପନ୍ନ | ।। | ୧୨ |
| ୫ | କୁଳର ଯେହୁ ରୋଗସମ | । ମାତୁଳ ହୋଇ ଯାର ନାମ | ।। | ୧୩ |
| | ସେ କଂସ ଜୀଇଥାନ୍ତେ ମୁହିଁ | । ନିଜ ଲୋକଙ୍କ କ୍ଷେମ ଯେହି | ।। | ୧୪ |
| | କି ପଚାରିବି ହେ ଅକ୍ରୂର | । କି କ୍ଷେମ ତା' ପ୍ରଜାଙ୍କ ଠାର | ।। | ୧୫ |
| ୬ | ନାହିଁ ଅପରାଧ ଯା'ଙ୍କର | । ସେ ପୂଜ୍ୟ ପିତାମାତାଙ୍କର | ।। | ୧୬ |
| | ମୋହର ନିମିତ୍ତରେ କ୍ଲେଶ | । ସମ୍ଭବ ହୋଇଲା ବିଶେଷ | ।। | ୧୭ |
| | ମୋ ହେତୁ ପୁତ୍ରଙ୍କ ନିଧନ | । ସେ ଦୁଇ ଲୋକଙ୍କ ବନ୍ଧନ | ।। | ୧୮ |
| ୭ | ତୁମ୍ଭେ ଆମ୍ଭର ନିଜ ଜନ | । ହେ ଆର୍ଯ୍ୟ ତୁମ୍ଭ ଦରଶନ | ।। | ୧୯ |
| | ଭାଗ୍ୟରେ ହେଲା ଆଜ ଜାତ | । ଏ କଥା ଆମ୍ଭର ବାଞ୍ଛିତ | ।। | ୨୦ |
| | ଆଗମନକୁ ଯେ କାରଣ | । ସମଗ୍ର କରି ତାହା ଭଣ | ।। | ୨୧ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୮ | ଏମନ୍ତ ରୂପରେ ବଚନ | । କହନ୍ତେ ପ୍ରଭୁ ଭଗବାନ | ।। | ୨୨ |
| | ଯେ ଯଦୁମାନଙ୍କର ଠାର | । ବୈରାନୁବନ୍ଧ ସେ କଂସର | ।। | ୨୩ |
| | ବସୁଦେବର ବିନାଶନ | । ନିମିତ୍ତେ ଯେ ଉଦ୍ୟମ ଆନ | ।। | ୨୪ |
| | ସେମାନ କୃଷ୍ଣର ଅଗ୍ରତ | । ଅକ୍ରୂର କହିଲା ସମସ୍ତ | ।। | ୨୫ |
| ୯ | ଧନୁ-ଉତ୍ସବ-ଦରଶନ | । କପଟେ ଯେ ସଂଦେଶ ଆନ | ।। | ୨୬ |
| | ଚାଣୂର ଆଦିରେ କୃଷ୍ଣର | । ଯେ ପୁଣ ବିନାଶ-ବିଚାର | ।। | ୨୭ |
| | କୃଷ୍ଣ ବସୁଦେବର ସୁତ | । ନାରଦ କଲେ ଯା' ବିଦିତ | ।। | ୨୮ |
| ୧୦ | ଅକ୍ରୂରବଚନକୁ ଶୁଣି | । ରାମଗୋବିନ୍ଦ ଦୁହେଁ ପୁଣି | ।। | ୨୯ |
| | ଯେ ନନ୍ଦ ପିତା ଆପଣାର | । ହସିଣ ତାହାଙ୍କ ଆଗର | ।। | ୩୦ |
| | ଯେ ଆଜ୍ଞା କଂସନୃପତିର | । ବିଶେଷି କଲେ ତା' ଗୋଚର | ।। | ୩୧ |
| ୧୧ | ସେ ନନ୍ଦ ଗୋପାଳଙ୍କୁ ପୁଣି | । କହିଲେ ଏ ପ୍ରକାରେ ବାଣୀ | ।। | ୩୨ |
| | ଘେନ ହୋ ସକଳ ଗୋରସ | । ଉତ୍ତମ ଦ୍ରବ୍ୟ ଯେ ବିଶେଷ | ।। | ୩୩ |
| | ଶକଟମାନ ଯେ ତୁମ୍ଭର | । ସେମାନ ଯୋଚି ଆଗ କର | ।। | ୩୪ |
| ୧୨ | କାଲି ମଥୁରାପୁର ଯିବା | । [1]ରାଜାକୁ ଘୃତମାନ ଦେବା | ।। | ୩୫ |
| | ଯେ ମହାପର୍ବ ଉତପନ୍ନ | । ତାହା କରିବା ଦରଶନ | ।। | ୩୬ |

---

୧. ଶବ୍ଦଚ୍ଛଳେନ ଇଦଂ ସୂଚୟତି – ଅଚିକିତ୍ସ୍ୟସ୍ୟ ରୋଗସ୍ୟ ଚିକିତ୍ସାର୍ଥଂ ରସାନ୍ ଦାସ୍ୟାମ ଇତି (ସ୍ୱାମୀ) ।

| | | | | | |
|---|---|---|---|---|---|
| | ଯେ ବା ଅଛନ୍ତି ଦେଶେ ଜନ | । | କରୁଅଛନ୍ତି ସେ ଗମନ | ।। | ୩୭ |
| | ରକ୍ଷାନିମିତ୍ତରେ ବ୍ରଜର | । | ଯେ ଲଭିଅଛି ଅଧିକାର | ।। | ୩୮ |
| | ନନ୍ଦ ଗୋପାଳ ଏ ପ୍ରକାରେ | । | ଘୋଷଣା ଦେଲେ ତା' ହସ୍ତରେ | ।। | ୩୯ |
| ୧୩ | ରାମକୃଷ୍ଣଙ୍କୁ ମଧୁପୁର | । | ନେମାକୁ ଅଇଲା ଅକ୍ରୂର | ।। | ୪୦ |
| | ଗୋପୀଏ[୧] ଶୁଣି ସେ ବଚନ | । | ବ୍ୟଥିତ ହେଲେ ହେ ରାଜନ | ।। | ୪୧ |
| ୧୪ | ସେ ବାର୍ତ୍ତା ଶ୍ରବଣୁଁ ହୃଦରେ | । | ଯେ ତାପ ତହୁଁ ନିଃଶ୍ୱାସରେ | ।। | ୪୨ |
| | ବଦନଶୋଭା ହେଲା ମ୍ଳାନ | । | ଏରୂପେ କେହି ଗୋପୀଜନ | ।। | ୪୩ |
| | ଫିଟିଲା ବଳୟ ବସନ | । | କେଶ ଏ ରୂପେ କେହି ଆନ | ।। | ୪୪ |
| ୧୫ | ଯେ ପୁଣ ଆନ ଗୋପୀମାନେ | । | ତାଙ୍କର ଶ୍ରୀକୃଷ୍ଣର ଧ୍ୟାନେ | ।। | ୪୫ |
| | ନୟନ ଆଦିଙ୍କର ବୃତ୍ତି | । | ତତ୍‌କ୍ଷଣେ ହୋଇଲା ନିବୃତ୍ତି | ।। | ୪୬ |
| | ଯେ ଅଟେ ଆପଣା ଶରୀର | । | ତାକୁ ହିଁ ନ କଲେ ଗୋଚର | ।। | ୪୭ |
| | ମୁକ୍ତ ହୁଅନ୍ତି ଯଉଁ ଜନେ | । | ସେମାନେ ହୁଅନ୍ତି ଯେସନେ | ।। | ୪୮ |
| ୧୬ | ଯେ ଅନୁରାଗେ ମନ୍ଦହାସ | । | ତେଣେ ଯେ ହୁଅଇ ପ୍ରକାଶ | ।। | ୪୯ |
| | ମନୋଜ୍ଞ ଚିତ୍ରପଦ ବାଣୀ | । | ନିଜ ହୃଦୟେ ତାହା ପୁଣି | ।। | ୫୦ |
| | ସ୍ମରନ୍ତେ କେବଣ ଯୁବତୀ | । | ମୋହକୁ ଲଭିଲେ ଝଟିତି | ।। | ୫୧ |
| ୧୭ | ଲଳିତ ଗତି ଚେଷ୍ଟା ଆନ | । | ଯେ ସ୍ନିଗ୍ଧ ହାସ ବିଲୋକନ | ।। | ୫୨ |
| ୧୮ | ଯେ ନର୍ମ ଶୋକବିନାଶନ | । | ଉଦ୍ଦାମ ଯେ ଚରିତମାନ | ।। | ୫୩ |
| | ସେମାନ ସ୍ମରନ୍ତେ କୃଷ୍ଣର | । | ବିରହେ ହୋଇଣ କାତର | ।। | ୫୪ |
| | ଲୋତକେ ସଂଯୁତବଦନ | । | କୃଷ୍ଣର ଠାରେ ଯାଙ୍କ ମନ | ।। | ୫୫ |
| | ସମସ୍ତେ ଏକମେଳ ହେଲେ | । | ଏମନ୍ତ ବଚନ ବୋଇଲେ | ।। | ୫୬ |

### ଶ୍ରୀଗୋପ୍ୟ ଉଚୁଃ

| | | | | | |
|---|---|---|---|---|---|
| ୧୯ | ହେ ଧାତା ! କାହାରିହିଁ ଠାଇଁ | । | କରୁଣା ତୋର କିଛି ନାହିଁ | ।। | ୫୭ |
| | ଯେ ସ୍ନେହ ହିତ ଆଚରଣ | । | ପ୍ରାଣିମାନଙ୍କୁ ତେଣେ ପୁଣ | ।। | ୫୮ |
| | ସଂଯୋଗ କରି ତାଙ୍କ ମନ | । | ବାଞ୍ଛିତ ନୋହିଥାଇ ପୂର୍ଣ୍ଣ | ।। | ୫୯ |
| | ବିଚ୍ଛେଦ କରୁ ନିଷ୍କାରଣ | । | ଏଣୁ ତୋହର ଚେଷ୍ଟା ପୁଣ | ।। | ୬୦ |
| | ବାଳକ ଅଟଇ ଯେ ଜନ | । | ତା' ଚେଷ୍ଟାପ୍ରାୟେ ବିଦ୍ୟମାନ | ।। | ୬୧ |
| ୨୦ | ନୀଳ କୁନ୍ତଳେ ବୃତ ଯେହି | । | ସୁନାସା ସୁକପୋଳ ଯହିଁ | ।। | ୬୨ |
| | ଯେ କରେ ଶୋକ ବିନାଶନ | । | ସେ ସ୍ମିତଲେଶେ ଯେ ଶୋଭନ | ।। | ୬୩ |
| | ଏମନ୍ତ ମୁକୁନ୍ଦମୁଖକୁ | । | ଦେଖାଇ କରି ଏବେ ତାକୁ | ।। | ୬୪ |
| | ପରୋକ୍ଷ କରୁଅଛୁ ପୁଣ | । | ଅସାଧୁ ତୋର ଆଚରଣ | ।। | ୬୫ |
| ୨୧ | ତୁ କ୍ରୂର ଅକ୍ରୂର ନାମରେ | । | ପ୍ରବେଶ ହୋଇଣ ବ୍ରଜରେ | ।। | ୬୬ |

୧. ସେ ଗୋପୀ (କୃଷ୍ଣୈକଜୀବନା ଗୋପ୍ୟଃ)।

| | | | | | |
|---|---|---|---|---|---|
| | ପୂର୍ବରେ ଯାହା ଥିଲୁ ଦେଇ | । ଅନ୍ଧ ଲୋକର ପ୍ରାୟ ହୋଇ | ॥ | ୬୭ |
| | ସେ ନେତ୍ର ହରୁଅଛୁ ଏବେ | । କୃଷ୍ଣର ଏକ ଅବୟବେ | ॥ | ୬୮ |
| | ସକଳସୃଷ୍ଟିଶୋଭା ତୋର | । କରୁଣ ଥିଲୁ ଯେ ଗୋଚର | ॥ | ୬୯ |
| ୨୨ | ଛାଡ଼ିଣ ନିଜ ଗୃହ ଜନ | । ପତି ତନୟ ଯେ ବା ଆନ | ॥ | ୭୦ |
| | ଦାସୀଭାବକୁ ଆପଣାର | । ପ୍ରବେଶ ହୋଇଲୁଁ ସତ୍ୱର | ॥ | ୭୧ |
| | ଯେ ଆମ୍ଭେ ଆପଣା ନିମିତ୍ତେ | । ବିରହକାତର ସମସ୍ତେ | ॥ | ୭୨ |
| | ଆମ୍ଭଙ୍କୁ ସେ ନନ୍ଦକୁମର | । ଏବେ ନ କରିବ ଗୋଚର | ॥ | ୭୩ |
| | କ୍ଷଣକମାତ୍ରକେ ବିନାଶ | । ଯା' ପ୍ରୀତି ହୁଅଇ ଅବଶ୍ୟ[୧] | ॥ | ୭୪ |
| | ନବୀନ ନବୀନ ଯେ ଜନ | । ସେ ଯାହା ପ୍ରୀତିକି ଭାଜନ | ॥ | ୭୫ |
| ୨୩ | ପୁଣି କୋପରେ ଯୁତ ହୋଇ | । ବଚନ ବୋଲୁଛନ୍ତି ତହିଁ | ॥ | ୭୬ |
| | ରଜନୀ ପାହିଲା ସୁଖରେ | । ଆଶିଷ ଏମନ୍ତ ପ୍ରକାରେ | ॥ | ୭୭ |
| | ପୁରବନିତାଙ୍କର ଯେହି | । ସତ୍ୟ ହୋଇଲା ଆଜ ସେହି | ॥ | ୭୮ |
| | ଯେ ଆଜ ସକଳ ଯୁବତି | । ପ୍ରବେଶ ହେଲେ ବ୍ରଜପତି | ॥ | ୭୯ |
| | ଅପାଙ୍ଗେ ପ୍ରକାଶିତ ସ୍ମିତ | । ଯହିଁରେ ଆସବ ବିଦିତ | ॥ | ୮୦ |
| | ଏମନ୍ତ ତାହାଙ୍କ ବଦନ | । କରିବେ ନୟନରେ ପାନ | ॥ | ୮୧ |
| ୨୪ | ମଧୁପ୍ରାଏକ ମନୋହର | । ବଚନମାନଙ୍କେ ତାଙ୍କର | ॥ | ୮୨ |
| | ବଶ ହୋଇବ ତାଙ୍କ ଚିତ୍ତ | । ଯେ ଲଜ୍ଜାଯୁତ ଅଟେ ସ୍ମିତ | ॥ | ୮୩ |
| | ଭ୍ରମନ୍ତେ ବିଳାସେ ତାହାର | । ଯଦ୍ୟପି ଅଟନ୍ତି ସେ ଧୀର | ॥ | ୮୪ |
| | ପିତାମାତାଙ୍କର ଆୟତ୍ତ | । ହେଲେ ହେଁ ତେଣେ ବଶଚିତ୍ତ | ॥ | ୮୫ |
| | ଗ୍ରାମ୍ୟ ଯୁବତି ଆମ୍ଭେ ଯେଣୁ | । ଆମ୍ଭ ଠାକୁ ସେ କି କାରଣୁଁ | ॥ | ୮୬ |
| | ପୁଣ କରିବେ ଆଗମନ | । ଶୁଣ ଗୋ ସର୍ବ ବଧୂଜନ | ॥ | ୮୭ |
| ୨୫ | ସେ ପୁରେ ଅନ୍ଧକ ସାତ୍ୱତ | । ଯେ ଭୋଜ ବୃଷ୍ଣିମାନେ ଖ୍ୟାତ | ॥ | ୮୮ |
| | ଆଜ ହୋଇବ ତାହାଙ୍କର | । ମହା ଉତ୍ସବ ନୟନର | ॥ | ୮୯ |
| | ଗୁଣମାନଙ୍କର ଯେ ସ୍ଥାନ | । ଶ୍ରୀକାନ୍ତ ଦେବକୀନନ୍ଦନ | ॥ | ୯୦ |
| | ତାହାଙ୍କୁ ଯିବା ସମୟରେ | । ଦେଖିବେ ଯେ ପୁଣ ମାର୍ଗରେ | ॥ | ୯୧ |
| ୨୬ | ଏ ରୂପେ ଅଟେ କର୍ମ ଯାର | । କରୁଣା ନାହିଁ ଯାହାଠାର | ॥ | ୯୨ |
| | ଅକ୍ରୂର ହୋଇ ନାମ ଯେହି | । ସମ୍ଭବ ନୋହୁ ତାର ଠାଇଁ | ॥ | ୯୩ |
| | ଦୁଃଖିତ ଅଟନ୍ତି ଯେ ଜନ | । ତାଙ୍କୁ ନ କରି ଆଶ୍ୱାସନ | ॥ | ୯୪ |
| | ଯେ ଅତିପ୍ରିୟ ସେ କୃଷ୍ଣଙ୍କୁ | । ନେମ ଅତି ଦୂର ଦେଶକୁ | ॥ | ୯୫ |
| ୨୭ | ରଥରେ ଏ କଠିନମତି | । କଲା ଆରୋହଣ ଝଟିତି | ॥ | ୯୬ |
| | ଦୁର୍ମଦ ଯଉଁ ଗୋପଜନେ | । ଶକଟମାନଙ୍କେ ସେମାନେ | ॥ | ୯୭ |

୧. ଅବଶ ।

ତ୍ୱରା କରାଉଛନ୍ତି ପୁଣି । ବୃଦ୍ଧେ ଉପେକ୍ଷା କଲେ ଜାଣି ।। ୯୮
ଆମ୍ଭର ପ୍ରତିକୂଳ ଯେହି । ଧାତା କରୁଛି ଆଜ ତାହି ।। ୯୯
୨୮ ସମସ୍ତେ ଉପଗତ ହୋଇ । କୃଷ୍ଣଙ୍କୁ ନିବାରିବା ପାଇଁ ।। ୧୦୦
କୁଳର ବୃଦ୍ଧ ବନ୍ଧୁ ଯେହି । ଆମ୍ଭର କି କରିବେ ସେହି ।। ୧୦୧
ଅର୍ଦ୍ଧନିମିଷେ ମୁକୁନ୍ଦର । ଯେ ସଙ୍ଗ ଦୁସ୍ତ୍ୟଜ ଆମ୍ଭର ।। ୧୦୨
ସେ ହେତୁ ଦଇବଧ୍ୱଂସିତ । ଦୁଃଖିତ ଅଟେ ଆମ୍ଭ ଚିତ୍ତ ।। ୧୦୩
୨୯ ହେ ଗୋପୀମାନେ ଯେ ଲଳିତ । ମନ୍ଦହସିତ ଯେ ଶୋଭିତ ।। ୧୦୪
ବିଚାର, ଲୀଳାବଲୋକନ । ଯେ ପରିରମ୍ଭଣ ଏମାନ ।। ୧୦୫
ସମ୍ଭବେ ଯା' ଅନୁରାଗରେ । ରାସସମୟର ଗୋଷ୍ଠୀରେ ।। ୧୦୬
କ୍ଷଣକପ୍ରାୟେ ରାତ୍ରିମାନେ । ଯାନ୍ତି ଆମ୍ଭର ପୂର୍ବଦିନେ ।। ୧୦୭
ଦୁଃସହ ଦୁଃଖ ତା' ବିହୁନେ । କେହ୍ନେ ତରିବୁଁ ଆମ୍ଭେମାନେ ।। ୧୦୮
୩୦ ଯେ ପୁଣ ଦିନଅବସାନେ । ବେଢ଼ି ଥାଆନ୍ତେ ଗୋପମାନେ ।। ୧୦୯
ଅନନ୍ତ ଅଟେ ସଖା ଯାର । ଖୁରରଜରେ ଧେନୁଙ୍କର ।। ୧୧୦
ଅଳକମାଳିକା ଧୂସର । ବେଣୁକୁ ବଜାନ୍ତେ ସୁସ୍ୱର ।। ୧୧୧
ବ୍ରଜକୁ ହୁଅନ୍ତେ ପ୍ରବେଶ । ସ୍ମିତ କଟାକ୍ଷେ ଯେ ପ୍ରକାଶ ।। ୧୧୨
ସେ ନିରୀକ୍ଷଣରେ ଆମ୍ଭର । ଚିତ୍ତକୁ ହରଇ ସତ୍ୱର ।। ୧୧୩
କେମନ୍ତେ ସେ କୃଷ୍ଣବିହୁନେ । ଜୀଇବୁଁ ଅବା ଆମ୍ଭେମାନେ ।। ୧୧୪

ଶ୍ରୀଶୁକ ଉବାଚ

୩୧ ଆତୁର ହୋଇ ବିରହରେ । ବୋଲନ୍ତେ ଏମନ୍ତ ପ୍ରକାରେ ।। ୧୧୫
କୃଷ୍ଣେ ଆସକ୍ତ ଯା'ଙ୍କ ମନ । ସେ ସର୍ବ ବ୍ରଜବଧୂଜନ ।। ୧୧୬
ନିଜ ଲଜ୍ଜାକୁ କରି ଦୂର । ଆହେ ଗୋବିନ୍ଦ ଦାମୋଦର ।। ୧୧୭
ମାଧବ ବୋଲିଣ ସୁସ୍ୱରେ । ରୋଦନ କଲେ ଶୋକଭରେ ।। ୧୧୮
୩୨ [୧]ଏମନ୍ତ ପ୍ରକାରେ ରୋଦନ । କରନ୍ତେ ସର୍ବ ନାରୀଜନ ।। ୧୧୯
ଆଦର ନ କରି ସେମାନ । କରିଣ ସନ୍ଧ୍ୟା ଉପାସନ ।। ୧୨୦
ଆପଣା ରଥକୁ ଅକ୍ରୂର । ବାହିଲା ହୋଇ ତତପର ।। ୧୨୧
୩୩ ଶକଟମାନଙ୍କରେ ସ୍ଥିତ । କରି ଉପାୟନ ବହୁତ ।। ୧୨୨
ଗୋରସମାନଙ୍କରେ ପୂର୍ଣ୍ଣ । ଘେନିଣ ନାନା କୁମ୍ଭମାନ ।। ୧୨୩
ଯେ ନନ୍ଦ ଆଦି ଗୋପେ ଥିଲେ । ଅକ୍ରୂର ଯାଆନ୍ତେ ସେ ଗଲେ ।। ୧୨୪
୩୪ ଯେ ପ୍ରିୟ ଅଟନ୍ତି ଶ୍ରୀହରି । ଅନୁଗମନ ତାଙ୍କୁ କରି ।। ୧୨୫
ଲେଉଟି ତାହାଁନ୍ତେ ଗୋବିନ୍ଦ । ଲଭିଲେ ଯେ କିଛି ଆନନ୍ଦ ।। ୧୨୬
ପାଇବା ଅର୍ଥେ ପ୍ରତିବାଣୀ । ରହିଲେ ଗୋକୁଳତରୁଣୀ ।। ୧୨୭

୧. କ୍ରୂରମକ୍ରୂରତଃ ଶ୍ରୁତ୍ୱା କଂସଂ କଂସନିଷୂଦନଃ ।
ଗୋପୀମନୋରଥାରାମଃ ସରାମଃ ସ୍ୱଂ ପୁରଂ ଯଯୌ ।।

୩୫ ସେମାନେ ନିଜ ପ୍ରସ୍ଥାନରେ । ତାପ ଲଭିଲେ ସେ ପ୍ରକାରେ ॥ ୧୨୮
ଏମନ୍ତ ଦେଖି ଯଦୁବର । ଆସିବି କହି ଏ ପ୍ରକାର ॥ ୧୨୯
ଯେ ନିଜ ଦୂତର ବଚନ । ତେଣେ କଲେ ସେ ଆଶ୍ୱାସନ ॥ ୧୩୦
୩୬ କୃଷ୍ଣଙ୍କୁ କରି ଅନୁଗତ । ପେଷିଲେ ଆପଣାର ଚିତ୍ତ ॥ ୧୩୧
ଯେତେକ ବେଳଯାଏ ରଥ । ପତାକା, ରେଣୁ ଦୃଷ୍ଟିଗତ ॥ ୧୩୨
ଲେଖିଲା ପିତୁଳା ପରାଏ । ରହିଲେ ତେତେବେଳଯାଏ ॥ ୧୩୩
୩୭ ଲେଉଟି ଅବା କଦାଚିତ । ବ୍ରଜକୁ ଆସିବେ ଅଚ୍ୟୁତ ॥ ୧୩୪
ଏ ଆଶା ନିବର୍ତ୍ତିଲା ଯେଣୁ । ସେମାନେ ଲେଉଟିଲେ ତେଣୁ ॥ ୧୩୫
ଗାଆନ୍ତେ ପ୍ରିୟ ଚେଷ୍ଟାମାନ । ବିଶୋକେ ନେଲେ ରାତ୍ରଦିନ ॥ ୧୩୬
୩୮ ରାମ-ଅକ୍ରୁର ବେନିଯୁତ । ହୋଇଣ ହେ ନୃପ ! ତ୍ୱରିତ ॥ ୧୩୭
ଯା' ବେଗ ପବନସମାନ । ସେ ରଥେ ପ୍ରଭୁ ଭଗବାନ ॥ ୧୩୮
ମିଳିଲେ କାଳିନ୍ଦୀରେ ଯାଇଁ । ଯେ ପାପ ବିନାଶ କରଇ ॥ ୧୩୯
୩୯ ବୃକ୍ଷସମୂହ ଯଉଁ ସ୍ଥାନ । ତହିଁକି କରି ଆଗମନ ॥ ୧୪୦
ଯେ [1]ମୃଷ୍ଟ ମଣିର ସମାନ । ସେ ଜଳ କରି ଆଚମନ ॥ ୧୪୧
ପିଇଣ ରାମର ସହିତେ । ପୁଣି ମିଳିଲେ ଆସି ରଥେ ॥ ୧୪୨
୪୦ ତାହାଙ୍କୁ ପଚାରି ଅକ୍ରୁର । ବସାଇ ରଥର ଉପର ॥ ୧୪୩
ଆସିଣ କାଳିନ୍ଦୀ ହ୍ରଦକୁ । କଲା ବିଧିମତେ ସ୍ନାନକୁ ॥ ୧୪୪
୪୧ [2]ସେ ଜଳେ କରି ନିମଜ୍ଜନ । ଜପନ୍ତେ ବେଦ ସନାତନ ॥ ୧୪୫
ଯେ ବେନି ରାମ ଦାମୋଦର । ତାହାଙ୍କୁ ଦେଖିଲା ଅକ୍ରୁର ॥ ୧୪୬
୪୨ ସେ ବସୁଦେବ ବେନିସୁତେ । ଏହିକ୍ଷଣି ଯେ ଥିଲେ ରଥେ ॥ ୧୪୭
ଏଠାରେ ଅଛନ୍ତି କେମନ୍ତେ । ତେବେ ନାହାନ୍ତି ନିଜ ରଥେ ॥ ୧୪୮
ଏମନ୍ତ ବୋଲି ଜଳୁଁ ଉଠି । ରଥକୁ ଦେଲା ପୁଣ ଦୃଷ୍ଟି ॥ ୧୪୯
୪୩ ତହିଁରେ ପୂର୍ବପ୍ରାୟ ହୋଇ । ଦେଖିଲା ବସିଛନ୍ତି ଦୁଇ ॥ ୧୫୦
ଦର୍ଶନ ଏହି ଦୁହିଁଙ୍କର । ଜଳରେ ଯେ ହେଲା ମୋହର ॥ ୧୫୧
ସେ ଅବା ମିଥ୍ୟା ଏ ପ୍ରକାରେ । ବୋଲିଣ ବୁଡ଼ିଲା ଜଳରେ ॥ ୧୫୨
୪୪ ପୁଣି ସେ ଜଳରେ ଅକ୍ରୁର । ଦେଖିଲା ଭୁଜଙ୍ଗ-ଈଶ୍ୱର ॥ ୧୫୩
ସିଦ୍ଧ ଭୁଜଙ୍ଗପତିମାନେ । ଅମର ପ୍ରଭୁ ଯେବା ଆନେ ॥ ୧୫୪
[3]ନମ୍ରକନ୍ଧର ହୋଇ ସ୍ତୁତି । ସେମାନେ ଯାକୁ କରୁଛନ୍ତି ॥ ୧୫୫

---

୧. ମୃଷ୍ଟ = ଶୋଧିତ ।
୨. କ୍ୱେମୌ ବାଳୌ କ୍ୱ ତୌ ମଲ୍ଲାବିତି ଶଙ୍କିତଚେତସେ ।
ଅକ୍ରୂରାୟ ଜଳେ ରୂପମତ୍ୟାଶ୍ଚର୍ଯ୍ୟଂ ବ୍ୟଦର୍ଶୟତ୍ ॥
୩. ନମ୍ରକନ୍ଧର = ନତଗ୍ରୀବ ।

| | | | | |
|---|---|---|---|---|
| ୪୫ | ସହସ୍ରସଂଖ୍ୟ ଯାହା ଶିର | । ମୁକୁଟ ସହସ୍ର ଫଣାର | ।। | ୧୫୬ |
| | ନୀଳ ଅଟଇ ଯା' ବସନ | । ମୃଣାଳପ୍ରାୟେ ଶ୍ୱେତବର୍ଣ୍ଣ | ।। | ୧୫୭ |
| | ଶୃଙ୍ଗମାନଙ୍କରେ ଯେସନ | । କୈଳାସ ପର୍ବତ ଶୋଭନ | ।। | ୧୫୮ |
| ୪୬ | ତା' କ୍ରୋଡ଼େ ଘନଶ୍ୟାମବର୍ଣ୍ଣ | । ପୀତ କୌଶେୟ ଯା' ବସନ | ।। | ୧୫୯ |
| | ଯେ ଶାନ୍ତ ପୁରୁଷ ଶରୀର | । ଶୋଭିତ ଚାରି ଭୁଜ ଯାର | ।। | ୧୬୦ |
| | କମଳଦଳର ସମାନ | । ଅରୁଣ ଯା' ବେନି ନୟନ | ।। | ୧୬୧ |
| ୪୭ | ଚାରୁ ପ୍ରସନ୍ନ ଯା' ବଦନ | । ଯା' ଚାରୁ ହାସ ବିଲୋକନ | ।। | ୧୬୨ |
| | ସୁନ୍ଦର ଭ୍ରୂଲତା ଉନ୍ନତ | । ଯା' ନାସା ଯା' କର୍ଣ୍ଣ ଶୋଭିତ | ।। | ୧୬୩ |
| | ସୁନ୍ଦର କପୋଳ ଯାହାର | । ଅରୁଣ ଅଟେ ଯା' ଅଧର | ।। | ୧୬୪ |
| ୪୮ | ଯା' ଭୁଜ ପ୍ରଲମ୍ବ ପୀବର | । ଉନ୍ନତ ଅଂସ[୧] ବେନି ଯାର | ।। | ୧୬୫ |
| | ଯା' ଉରସ୍ଥଳେ ଲକ୍ଷ୍ମୀ ସ୍ଥିତ | । ଯା କଣ୍ଠ କମ୍ବୁ[୨]ସମ ମତ | ।। | ୧୬୬ |
| | ଗଭୀର ନାଭି ଅଟେ ଯାର | । ବଳିସଂଯୁତ ଯେ ଉଦର | ।। | ୧୬୭ |
| | ଅଶ୍ୱତ୍ଥ ଦଳର ସମାନ | । ଯାର ଉଦର ଶୋଭମାନ | ।। | ୧୬୮ |
| ୪୯ | ବିଶାଳ କଟିତଟ ଶ୍ରୋଣି | । କରଭସଦୃଶ ଯେ ପୁଣି | ।। | ୧୬୯ |
| | ସେ ଉରୁଯୁଗେ ଯେ ଅନ୍ୱିତ | । ଯା' ଜାନୁଯୁଗଳ ଶୋଭିତ | ।। | ୧୭୦ |
| | ଯେ ଚାରୁ ଅଟେ ଜଙ୍ଘ ଦୁଇ | । ତେଣେ ଯେ ସଂଯୁତ ଅଟଇ | ।। | ୧୭୧ |
| ୫୦ | ଅଳ୍ପ ଉନ୍ନତ ଗୁଲ୍‌ଫ[୩] ଯାର | । ଅରୁଣ ଯେ ନଖନିକର | ।। | ୧୭୨ |
| | ହେ ନୃପ ! ତାହା କିରଣରେ | । ଅଙ୍ଗୁଳି ଅଙ୍ଗୁଷ୍ଠଦଳରେ | ।। | ୧୭୩ |
| | ଚରଣପଙ୍କଜ ଯାହାର | । ଦିଶଇ ଅତ୍ୟନ୍ତ ସୁନ୍ଦର | ।। | ୧୭୪ |
| ୫୧ | ବହୁତ ଅଟେ ମୂଲ୍ୟ ଯାର | । ଏମନ୍ତ ଯେ ମଣିନିକର | ।। | ୧୭୫ |
| ୫୨ | ସେ ଯହିଁ ହୋଇଛି ପ୍ରକଟ | । ସେ ହାର କଟକ ମୁକୁଟ | ।। | ୧୭୬ |
| | ଅଙ୍ଗଦ କୁଣ୍ଡଳ ନୂପୁର | । ଯେ କଟିସୂତ୍ର ପୁଣ ଆର | ।। | ୧୭୭ |
| | ଯେ ବ୍ରହ୍ମସୂତ୍ର ବିଦ୍ୟମାନ | । ତେଣେ ଯେ ଅତି ଶୋଭମାନ | ।। | ୧୭୮ |
| | ପଦ୍ମେ ଶୋଭିତ ଯାଙ୍କ କର | । ଯେ ଶଙ୍ଖଚକ୍ରଗଦାଧର | ।। | ୧୭୯ |
| | ଶ୍ରୀବତ୍ସ ବକ୍ଷରେ ଶୋଭିତ | । କୌସ୍ତୁଭ ବନମାଳାବନ୍ତ | ।। | ୧୮୦ |
| ୫୩ | [୪]ସୁନନ୍ଦ ନନ୍ଦ ଆଦି ହୋଇ | । ପାର୍ଷଦେ ସନକାଦି ଯେହି | ।। | ୧୮୧ |
| ୫୪ | ବ୍ରହ୍ମରୁଦ୍ରାଦି ସୁରେଶ୍ୱର | । ଯେ ପୁଣ ନବ ଦ୍ୱିଜବର | ।। | ୧୮୨ |
| | ପ୍ରହ୍ଲାଦ ନାରଦ ଯେ ଦୁଇ | । ଉପରିଚର ବସୁ ଯେହି | ।। | ୧୮୩ |

୧. ଅଂସ = ସ୍କନ୍ଧ । ୨. କମ୍ବୁ = ଶଙ୍ଖ । ୩. ଗୁଲ୍‌ଫ = ଗୋଇଠିର ଉପରିଭାଗ ।

୪. ସୁନନ୍ଦ ନନ୍ଦ ଆଦି ପାର୍ଷଦମାନେ ସ୍ୱାମୀ ଭାବରେ, ସନକ ଆଦି ବ୍ରହ୍ମ ଭାବରେ, ବ୍ରହ୍ମା ଆଦି ମହେଶ୍ୱର ଭାବରେ, ମରୀଚି ଆଦି ବ୍ରାହ୍ମଣମାନେ ପରମ ପ୍ରଜାପତି ଭାବରେ ଏବଂ ପ୍ରହ୍ଲାଦ-ନାରଦ-ବସୁ ଆଦି ଭକ୍ତମାନେ ପରମ ଦୈବତ ଭାବରେ ଶ୍ରୀକୃଷ୍ଣଙ୍କୁ ସ୍ତୁତି କଲେ ।

| | | | | |
|---|---|---|---|---|
| | ଯେ ଭାଗବତମଧ୍ୟେ ସାର | । ଭିନ୍ନ ଆଶୟ ଯାହାଙ୍କର | ।। | ୧୮୪ |
| | ନିର୍ମଳ ଆତ୍ମା ସେ ଅଟନ୍ତି | । ବଚନେ କରୁଛନ୍ତି ସ୍ତୁତି | ।। | ୧୮୫ |
| ୫୫ | ଶ୍ରୀ କାନ୍ତି କୀର୍ତ୍ତି ବାଣୀ ତୁଷ୍ଟି | । ବିଦ୍ୟା ଅବିଦ୍ୟା ଇଳା ପୁଷ୍ଟି | ।। | ୧୮୬ |
| | ଯେ ଶକ୍ତି ମାୟା ଯେ ବିଦିତ | । ଏମାନଙ୍କେ ଯେ ନିଷେବିତ | ।। | ୧୮୭ |
| ୫୬ | ଦେଖି ହୋଇଲା ଅତି ପ୍ରୀତ | । ପରମ ଭକ୍ତିରେ ସଂଯୁତ | ।। | ୧୮୮ |
| | ଅଙ୍କୁରି ଅଛି ରୋମମାନ | । ଭାବରେ ଆର୍ଦ୍ର ଯା' ଲୋଚନ | ।। | ୧୮୯ |
| ୫୭ | ସତ୍ତ୍ୱକୁ କରି ଅବଲମ୍ବ | । ମୂର୍ଦ୍ଧାରେ କରିଣ ପ୍ରଣାମ | ।। | ୧୯୦ |
| | ଅଞ୍ଜଳି କରି କର ଦୁଇ | । ଆପଣେ ସାବଧାନ ହୋଇ | ।। | ୧୯୧ |
| | ଅକ୍ରୁର ଗଦ୍‌ଗଦ ବାଣୀରେ | । ସ୍ତୁତିକି ଆରମ୍ଭିଲା ଧିରେ | ।। | ୧୯୨ |
| | ଜଳରେ ଗାନ୍ଦିନୀନନ୍ଦନ | । କଲା ଯାହାଙ୍କୁ ଦରଶନ | ।। | ୧୯୩ |
| | ତାହାଙ୍କ ପାଦପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁ ମତି | ।। | ୧୯୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦକ୍ରୁରପ୍ରତିଯାନଂ
ନାମ ଏକୋନଚତ୍ୱାରିଂଶୋଽଧ୍ୟାୟଃ ।।

## ଚତ୍ୱାରିଂଶ ଅଧ୍ୟାୟ

ଚତ୍ୱାରିଂଶେ ତତୋଽକ୍ରୂରଃ କୃଷ୍ଣଂ ମତ୍ୱେଶ୍ୱରେଶ୍ୱରମ୍ ।
ପ୍ରଣମ୍ୟ ଭକ୍ତ୍ୟା ତୁଷ୍ଟାବ ସଗୁଣାଗୁଣଭେଦତଃ ।।

ଶ୍ରୀଅକ୍ରୁର ଉବାଚ

| | | | | |
|---|---|---|---|---|
| ୧ | ସର୍ବ କାରଣର କାରଣ | । ଆଦିପୁରୁଷ ନାରାୟଣ | ।। | ୧ |
| | ଯେ ତୁମ୍ଭେ ଅନାଦିନିଧନ | । ତୁମ୍ଭଙ୍କୁ କରୁଛି ବନ୍ଦନ | ।। | ୨ |
| | ଯାହାର ନାଭିରୁ ସଂଭୂତ | । କମଳକୋଷୁଁ ବ୍ରହ୍ମା ଜାତ | ।। | ୩ |
| | ଯଉଁ ବ୍ରହ୍ମାରୁ ହେଲା ଜାତ | । ସଚରାଚର ଏ ଜଗତ | ।। | ୪ |
| ୨ | କ୍ଷିତି ସଲିଳ ବୈଶ୍ୱାନର | । ବାତ ଆକାଶ ଅହଂକାର | ।। | ୫ |
| | ଯେ ମହତ୍ତତ୍ତ୍ୱ ଯେ ପୁରୁଷ | । ଯେ ମନ ଇନ୍ଦ୍ରିୟେ ପ୍ରକାଶ | ।। | ୬ |
| | ଶବ୍ଦ ସ୍ପରଶ ଆଦି ହୋଇ | । ଇନ୍ଦ୍ରିୟ ଅର୍ଥ ପୁଣ ଯେହି | ।। | ୭ |
| | ଜଗତହେତୁ ଯେ ବିଦିତ | । ସେମାନେ ତୁମ୍ଭ ଅଙ୍ଗୁଁ ଜାତ | ।। | ୮ |
| ୩ | ଯେ ପୁଣ ସ୍ୱରୂପ ତୁମ୍ଭର | । ସେ ବ୍ରହ୍ମାଦିଙ୍କି ଅଗୋଚର | ।। | ୯ |
| | ଜଡ଼ତ୍ୱ କାରଣ ବିଦିତ | । ପ୍ରତ୍ୟକ୍ଷାଦିରେ ସେ ଗୃହୀତ | ।। | ୧୦ |
| | ଯେ ପୁଣ ଅଜଡ଼ ଅଟଇ | । ନୟନଗୋଚର ସେ ନୋହି | ।। | ୧୧ |
| | ବ୍ରହ୍ମାଦି ଗୁଣରେ ମାୟାର | । ବଦ୍ଧ ଯେ ପୁଣ ରୂପ ତୋର | ।। | ୧୨ |

ଯେଣୁ ସେ ନିର୍ଗୁଣ ଅଟଇ । [1]ବ୍ରହ୍ମାଦି ତାହା ନ ଜାଣଇଁ ॥ ୧୩
୪ ଇନ୍ଦ୍ରିୟ ଇନ୍ଦ୍ରିୟବିଷୟ । ଇନ୍ଦ୍ରିୟପତି ଦେବମୟ ॥ ୧୪
ଯେ ମହାପୁରୁଷ ଈଶ୍ୱର । ସେ ତୁମ୍ଭେ ସାଧୁ ଯୋଗୀ ନର ॥ ୧୫
ତୁମ୍ଭଙ୍କୁ ସେ ତତ୍ତ୍ୱ ରୂପରେ । ପୂଜା କରନ୍ତି ଏ ସଂସାରେ ॥ ୧୬
୫ ଯାଜ୍ଞିକ ବିପ୍ରମାନେ କେହି । ଯେ ବିଦ୍ୟାରୂପ ଅଟେ ତ୍ରୟୀ ॥ ୧୭
ତେଣେ ବିଦିତ ଯଜ୍ଞଙ୍କରେ । ନାନାସ୍ୱରୂପ ଯେ ଅମରେ ॥ ୧୮
ଧରି ତାହାଙ୍କ ନାମମାନ । ତୁମ୍ଭଙ୍କୁ କରନ୍ତି ପୂଜନ ॥ ୧୯
୬ ଅଖିଳ କର୍ମମାନ ଯେହି । ତ୍ୟାଗ କରିଣ ତାହା କେହି ॥ ୨୦
ଶାନ୍ତିକି ଲଭି ଜ୍ଞାନୀ ନର । ଯେ ତୁମ୍ଭେ ଜ୍ଞାନକଳେବର ॥ ୨୧
ତୁମ୍ଭଙ୍କୁ ସେ ଜ୍ଞାନଯଜ୍ଞରେ । ପୂଜା କରନ୍ତି ସୁଚିତ୍ତରେ ॥ ୨୨
୭ ଶୈବ ବୈଷ୍ଣବ ଦୀକ୍ଷାଦିରେ । ଦୀକ୍ଷିତ ଆନ ଯେଉଁ ନରେ ॥ ୨୩
ଆତ୍ମାକୁ ତୁମ୍ଭର କରିଣ । ଜାଣି ଥାଆନ୍ତି ଯେହୁ ପୁଣ ॥ ୨୪
ତୁମ୍ଭେ ଯା' କହିଛ ପୂର୍ବରେ । ସେ ଲୋକମାନେ ସେ ବିଧିରେ ॥ ୨୫
ବାସୁଦେବାଦି ବ୍ୟୂହ ଚାରି । ଯେ ନାରାୟଣ-ରୂପ-ଧାରୀ ॥ ୨୬
ଯେ ବହୁମୂର୍ତ୍ତି ଏକମୂର୍ତ୍ତି । ତୁମ୍ଭଙ୍କୁ ସେମାନେ ପୂଜନ୍ତି ॥ ୨୭
୮ ବହୁତ ଯେ ଆଚାର୍ଯ୍ୟମାନେ । ତାଙ୍କ ଭେଦରେ ଆନ ଜନେ ॥ ୨୮
ଶିବକଥିତ ମାର୍ଗେ କରି । ଯେ ତୁମ୍ଭେ ଶିବରୂପଧାରୀ ॥ ୨୯
ତୁମ୍ଭଙ୍କୁ କରନ୍ତି ପୂଜନ । ଯେ ତୁମ୍ଭେ ଅଟ ଭଗବାନ ॥ ୩୦
୯ ଯେ ନାନା[2] ଦେବତାଙ୍କ ଭକ୍ତ । ଯଦ୍ୟପି ଆନେ ତାଙ୍କ ଚିତ୍ତ ॥ ୩୧
ତୁମ୍ଭଙ୍କୁ ପୂଜନ୍ତି ସେ ଜନେ । ଯେତେ ଜଗତେ ଦେବମାନେ ॥ ୩୨
ତୁମ୍ଭେ ସେ ସର୍ବଦେବମୟ । ଈଶ୍ୱର ଅଟ ଏ ନିଶ୍ଚୟ ॥ ୩୩
୧୦ ଅଦ୍ରିସମ୍ଭବ ନଦୀମାନ । ମେଘସକାଶେ ହୋଇ ପୂର୍ଣ୍ଣ ॥ ୩୪
ସକଳ ଦିଗରୁ ସିନ୍ଧୁରେ । ମିଳନ୍ତି ଯେହ୍ନେ ସେ ପ୍ରକାରେ ॥ ୩୫
ନାନାପ୍ରକାର ମାର୍ଗେ ଯେହି । ଅନ୍ତେ ମିଳନ୍ତି ତୁମ୍ଭ ତହିଁ ॥ ୩୬
୧୧ ତୁମ୍ଭର ଶକ୍ତି ଯେ ପ୍ରକୃତି । ତାହା ସକାଶୁଁ ଉତପତି ॥ ୩୭
ଯେ ସତ୍ତ୍ୱ ରଜ ତମ ଗୁଣ । ବ୍ରହ୍ମାଦି କୀଟଯାଏ ପୁଣ ॥ ୩୮
ପ୍ରାକୃତ ଅଟନ୍ତି ସେ ସର୍ବ । ଯେଣୁ ସେ ପ୍ରକୃତିସମ୍ଭବ ॥ ୩୯
ସେ ଗୁଣେ ଲୀନ ପ୍ରକୃତିରେ । ପ୍ରକୃତି ଲୀନ ତୁମ୍ଭଠାରେ ॥ ୪୦

---

୧. ଦେହୋଽସବୋଽକ୍ଷା ମନବୋ ଭୂତମାତ୍ରା
ନାତ୍ମାନମନ୍ୟଂ ଚ ବିଦୁଃ ପରଂ ଯତ୍ ।
ସର୍ବଂ ପୁମାନ୍ ବେଦ ଗୁଣାଂଶ୍ଚ ତଜ୍‌ଜ୍ଞୋ
ନ ବେଦ ସର୍ବଜ୍ଞମନନ୍ତମୀଡ଼େ ॥ (ହଂସଗୁହ୍ୟେ)

୨. ଅନ୍ୟ ।

୧୨ ଲିପ୍ତ[୧] ନୁହଇ ଦୃଷ୍ଟି ଯାର । ଯେ ଆତ୍ମା ଅଟେ ସମସ୍ତର ।। ୪୧

ଯେ ସାକ୍ଷୀ ସକଳ ବୁଦ୍ଧିର । ସେ ତୁମ୍ଭେ ଏମନ୍ତ ଈଶ୍ୱର ।। ୪୨

ଦେବତା ନର ତିର୍ଯ୍ୟଗାଦି । ଆତ୍ମାରୂପରେ ଯାଙ୍କ ସିଦ୍ଧି ।। ୪୩

ଅବିଦ୍ୟାସମ୍ଭବ ସଂସାର । ପ୍ରବର୍ତ୍ତେ ସେମାନଙ୍କଠାର ।। ୪୪

୧୩ ଅନଳ ତୁମ୍ଭ ମୁଖ ପୁଣ । ଅବନି ଅଟଇ ଚରଣ ।। ୪୫

ତପନ ନୟନ, ଆକାଶ । ନାଭି, ଶ୍ରବଣ ଦିଗ ଦଶ ।। ୪୬

ସ୍ୱର୍ଗ ମସ୍ତକ ସର୍ବସୁର । ତୋ ଭୁଜେ ସିନ୍ଧୁ ତୋ' ଉଦର ।। ୪୭

ଯେ ପୁଣ ଅଟେ ସମୀରଣ । ସେ ପ୍ରାଣ ବଳ ବେନି ପୁଣ ।। ୪୮

୧୪ ବୃକ୍ଷ ଓଷଧି ଲତାମାନ । ରୋମ ଅଟନ୍ତି କେଶ ଘନ ।। ୪୯

ପର୍ବତେ ଅସ୍ଥି ନଖ ଦୁଇ । ନିମେଷ ରାତ୍ରିଦିନ ହୋଇ ।। ୫୦

ଶିଶ୍ନ ଅଟଇ ପ୍ରଜାପତି । ତୋ ବୀର୍ଯ୍ୟ ବୃଷ୍ଟିରୂପେ ଖ୍ୟାତି ।। ୫୧

୧୫ ଅବ୍ୟୟ ଅଟେ ଆତ୍ମା ଯାର । ସେ ତୁମ୍ଭେ ପୁରୁଷ ଶରୀର[୨] ।। ୫୨

ମନବୃତ୍ତିରେ ପ୍ରକାଶିତ । ଯାହାର ସ୍ୱରୂପ ନିଶ୍ଚିତ ।। ୫୩

ସଂକୁଳ ବହୁତ ଜୀବରେ । ଲୋକପାଳଙ୍କ ସହିତରେ ।। ୫୪

ତୁମ୍ଭର ଶରୀରେ କଳ୍ପନ । ହୋଇଛି ସକଳ ଭୁବନ ।। ୫୫

କ୍ଷୁଦ୍ରଜୀବଙ୍କ ଡିମ୍ବମାନ । ଚଳନ୍ତି ଜଳରେ ଯେସନ ।। ୫୬

ଡିମ୍ବିରିଫଳେ ମଶାମାନେ । ଯଥାବକାଶେ ଥାନ୍ତି ଯେହ୍ନେ ।। ୫୭

୧୬ ଯେବଣ ଯେବଣ ଶରୀର । କ୍ରୀଡ଼ାନିମିତ୍ତେ ତୁମ୍ଭେ ଧର ।। ୫୮

ସେ ରୂପମାନଙ୍କେ ନାଶନ । ହୋଏ ଯାହାଙ୍କ ଶୋକମାନ ।। ୫୯

ହରଷେ ଯଶକୁ ତୁମ୍ଭର । ଗାୟନ କରନ୍ତି ସେ ନର ।। ୬୦

୧୭| ବେଦ-ଉଦ୍ଧାରଣ ହେତୁରେ । ପ୍ରଳୟସାଗରମଧ୍ୟରେ ।। ୬୧

୧୮| ଯେ ତୁମ୍ଭେ ମତ୍ସ୍ୟରୂପ ଧର । ତୁମ୍ଭଙ୍କୁ ମୋର ନମସ୍କାର ।। ୬୨

ମଧୁକୈଟଭ ବିନାଶନ । ହୟଶୀର୍ଷଙ୍କୁ ମୋ' ବନ୍ଦନ ।। ୬୩

ବୃହତ କୂର୍ମରୂପେ ପୁଣ । କର ଯେ ମନ୍ଦର ଧାରଣ ।।

ତୁମ୍ଭଙ୍କୁ ମୋର ନମସ୍କାର । କ୍ଷିତି-ଉଦ୍ଧାର ଯା' ବିହାର ।।

ଏମନ୍ତ ଯେ ସୂକରମୂର୍ତ୍ତି । ତାହାଙ୍କୁ ମୋହର ପ୍ରଣତି ।। ୬୪

୧୯ [୩]ସାଧୁଲୋକଙ୍କ ନିମିତ୍ତରେ । ଯାହା ସଂଭବ ଜଗତରେ ।। ୬୫

ଅଦ୍ଭୁତ ଯେ ନୃସିଂହାକାର । ତାହାଙ୍କୁ ମୋର ନମସ୍କାର ।। ୬୬

ଯେ ଆକ୍ରମିଲେ ତ୍ରିଭୁବନ । ସେ ବାମନଙ୍କୁ ମୋ' ବନ୍ଦନ ।। ୬୭

୨୦ ଦର୍ପିଷ୍ଠ କ୍ଷତ୍ରବନକ୍ଷତି । ଯେ କଲେ ଭୃଗୁ-ଅଧିପତି ।। ୬୮

---

୧. ଲୁପ୍ତ । ୨. ଈଶ୍ୱର । ୩. ''ସାଧୁଲୋକଭବାୟ'' ଇତି ପାଠେ । ''ସାଧୁଲୋକଭୟାପହ'' ଇତି ପାଠାନ୍ତରମ୍ ।

| | | | | | |
|---|---|---|---|---|---|
| | ପରଶୁରାମ ନାମ ଯାର | । | ତୁମ୍ଭଙ୍କୁ ମୋର ନମସ୍କାର | ।। | ୬୯ |
| | ରଘୁବରଙ୍କୁ ନମସ୍କାର | । | ଯେ ରାବଣର ଅନ୍ତକର | ।। | ୭୦ |
| ୨୧ | ଯେ ବାସୁଦେବ ସଂକର୍ଷଣ | । | ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ | ।। | ୭୧ |
| | ସାତ୍ୱତମାନଙ୍କର ପତି | । | ସେ ତୁମ୍ଭେ, ତୁମ୍ଭଙ୍କୁ ପ୍ରଣତି | ।। | ୭୨ |
| ୨୨ | ଦୈତ୍ୟଦାନବମୋହକର | । | ଶୁଦ୍ଧ ବୁଦ୍ଧଙ୍କୁ ନମସ୍କାର | ।। | ୭୩ |
| | ଯଉଁ କ୍ଷତ୍ରିୟେ ମ୍ଲେଚ୍ଛପ୍ରାୟ | । | ଯେ ତୁମ୍ଭେ କର ତାଙ୍କ କ୍ଷୟ | ।। | ୭୪ |
| | ସେ ତୁମ୍ଭେ କଲ୍‌କି ଅବତାର | । | ତୁମ୍ଭଙ୍କୁ ମୋର ନମସ୍କାର | ।। | ୭୫ |
| ୨୩ | ତୁମ୍ଭ ମାୟାରେ ଭଗବନ୍ତ | । | ଏ ସର୍ବ ଲୋକ ବିମୋହିତ | ।। | ୭୬ |
| | ଏ ମୁଁ ଏ ମୋର ଏ ପ୍ରକାରେ | । | ଯାର ଅନିତ୍ୟ ଦେହାଦିରେ | ।। | ୭୭ |
| | ଆଗ୍ରହ, ସେ ଘେନି ଭ୍ରମଣ | । | କରେ ସେ କର୍ମମାର୍ଗେ ପୁଣ | ।। | ୭୮ |
| ୨୪ | ଆତ୍ମା ତନୟ ନିକେତନ | । | ଯେ ଦାର ଅର୍ଥ ନିଜ ଜନ | ।। | ୭୯ |
| | ଏ ଆଦି ସ୍ୱପ୍ନତୁଲ୍ୟ ଯେହି | । | ତହିଁରେ ମୂଢ଼ବୁଦ୍ଧି[୧] ମୁହିଁ | ।। | ୮୦ |
| | ହେ ପ୍ରଭୁ ! ଯଥାର୍ଥ ବୁଦ୍ଧିରେ | । | ଭ୍ରମଣ କରୁଛି ନିତ୍ୟରେ | ।। | ୮୧ |
| ୨୫ | ଅନିତ୍ୟ କର୍ମଫଳ ଯେହି | । | ତହିଁରେ ନିତ୍ୟମତି[୨] ମୁହିଁ | ।। | ୮୨ |
| | ଆତ୍ମାରୁ ଭିନ୍ନ ଯେ ଶରୀର | । | ତହିଁରେ ଆତ୍ମାମତି ମୋର | ।। | ୮୩ |
| | ଦୁଃଖରୂପରେ ଯାହା' ଖ୍ୟାତି | । | ସେ ଗୃହେ ମୋର ସୁଖମତି | ।। | ୮୪ |
| | ମୁଁ ତମେ[୩] ଆବିଷ୍ଟ, ମୋହର | । | ସୁଖଦୁଃଖାଦି[୪] ରେ ବିହାର | ।। | ୮୫ |
| | ଯେ ପୁଣ ଅଟେ ନିଜ ପ୍ରିୟ | । | ତାହା ନ କରିଛି ନିଶ୍ଚୟ | ।। | ୮୬ |
| ୨୬ | ଜଳୁଁ ଯେ ତୃଣ ଆଦି ଜାତ | । | ତେଣେ ଯେ ଜଳ ଆଚ୍ଛାଦିତ | ।। | ୮୭ |
| | ଅବୁଧ ସେ ଜଳ ଛାଡ଼ଇ | । | ମୃଗତୃଷ୍ଣାକୁ ଯେହ୍ନେ ଯାଇ | ।। | ୮୮ |
| | ସେ ତୁମ୍ଭେ ଆଚ୍ଛନ୍ନ ମାୟାରେ | । | ତୁମ୍ଭଙ୍କୁ ସେହି ପରକାରେ | ।। | ୮୯ |
| | ଛାଡ଼ି ମୁଁ ପରାଙ୍ମୁଖ ହୋଇ | । | ଶରୀରସୁଖେ ଅଛି ରହି | ।। | ୯୦ |
| ୨୭ | ବିଷୟବାସନାସଂଯୁତ | । | ମୋ ମତି ଅଟଇ ସଂତତ | ।। | ୯୧ |
| | କାମରେ କର୍ମରେ କ୍ଷୋଭିତ | । | ହୋଇଛି ଯେ ମୋହର ଚିତ୍ତ | ।। | ୯୨ |
| | ବଳିଷ୍ଠ ଇନ୍ଦ୍ରିୟ ଯାହାକୁ | । | ନିଅନ୍ତି ଏଠାକୁ ସେଠାକୁ | ।। | ୯୩ |
| | ସେ ମନ ରୁନ୍ଧିବାକୁ ମୁହିଁ | । | ଉତ୍ସାହ କରି ନ ପାରଇ | ।। | ୯୪ |
| ୨୮ | ହେ ପଦ୍ମନାଭ ! ସେ ମୁଁ ପୁଣ | । | ଲଭିଲି ତୁମ୍ଭଙ୍କୁ ଶରଣ | ।। | ୯୫ |
| | ଅସନ୍ତ ଲୋକମାନଙ୍କର | । | ଦୁରାପ ଶରଣ ତୁମ୍ଭର | ।। | ୯୬ |
| | ତୁମ୍ଭର ଅନୁଗ୍ରହେ ସେହି | । | ହୋଏ ମୁଁ ଏମନ୍ତ ମଣଇଁ | ।। | ୯୭ |
| | ଯେବେ ସଂସାରର ନିବୃତ୍ତି | । | ଲୋକର ହୋଏ ଉତପତି | ।। | ୯୮ |
| | ଉପାସନାରେ ସାଧୁଙ୍କର | । | ମତି ସଂଭବେ ତୁମ୍ଭ ଠାର | ।। | ୯୯ |

୧. ମୂଢ଼ ବୁଦ୍ଧି ଯାହାର ସେ । ୨. ନିତ୍ୟ ମତି ଯାହାର ସେ । ୩. ତମେ = ତମୋଗୁଣରେ ।
୪. ଦୁଃଖାର୍ତ୍ତିରେ ।

୨୯ ବିଜ୍ଞାନ ଅଟେ ମୂର୍ତ୍ତି ଯାର । କାରଣ ସକଳ ଜ୍ଞାନର ॥ ୧୦୦
ପୁରୁଷ ପ୍ରକୃତି ଯେ ବେନି । କାଳକୁ ମିଶି ପୁଣ ତିନି ॥ ୧୦୧
ଏ ତିନି ସ୍ୱରୂପ ଯାହାର । ଅନନ୍ତ ଅଟେ ଶକ୍ତି ଯାର ॥ ୧୦୨
ଯେ ବ୍ରହ୍ମସ୍ୱରୂପ ଈଶ୍ୱର । ତୁମ୍ଭଙ୍କୁ ମୋର ନମସ୍କାର ॥ ୧୦୩
୩୦ ଯେ ବାସୁଦେବ ସଂକର୍ଷଣ । ସ୍ୱରୂପ ତୁମ୍ଭେ ଅଟ ପୁଣ ॥ ୧୦୪
ବୁଦ୍ଧି-ମନର ଈଶ ଯେହି । ପ୍ରଦ୍ୟୁମ୍ନ ଅନିରୁଦ୍ଧ ଦୁଇ ॥ ୧୦୫
ତୁମ୍ଭଙ୍କୁ କରୁଛି ବନ୍ଦନ । ହେ ପ୍ରଭୁ ! ତୁମ୍ଭଙ୍କୁ ପ୍ରପନ୍ନ ॥ ୧୦୬
ହୋଇଲି ଏ ସକାଶୁଁ ପୁଣ । ବିଧାନ କର' ମୋ ରକ୍ଷଣ ॥ ୧୦୭
ଜଳରେ ଯାହାଙ୍କର ମୂର୍ତ୍ତି । ଦେଖି ଅକ୍ରୂର କଲେ ସ୍ତୁତି ॥ ୧୦୮
ସେ ପ୍ରଭୁଚରଣ ପଙ୍କଜ । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ ॥ ୧୦୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦକ୍ରୂରସ୍ତୁତିର୍ନାମ
ଚତ୍ୱାରିଂଶୋଽଧ୍ୟାୟଃ ॥

## ଏକଚତ୍ୱାରିଂଶ ଅଧ୍ୟାୟ

ଏକଚତ୍ୱାରିଂଶକେଽହନ୍ ରଜକଂ ପ୍ରବିଶନ୍ ପୁରୀମ୍ ।
ତତୋ ବରାନଦାତ୍ତୁଷ୍ଟଃ ସୁଦାମ୍ନୋ ବାୟକସ୍ୟ ଚ ॥ ୧
ସଶଙ୍କମକ୍ରୂରମନଃ ପ୍ରବୋଧ୍ୟ ସ୍ୱଧାମସନ୍ଦର୍ଶନସତ୍‌କୃପାତଃ ।
ସ୍ୱରାଜଧାନୀଂ ମଥୁରାମପଶ୍ୟ-ଦଲଂକୃତାନନ୍ତମହୋତ୍ସବାଢ୍ୟାମ୍ ॥ ୨

ଶ୍ରୀଶୁକ ଉବାଚ

୧ ସ୍ତୁତି କରନ୍ତେ ସେ ଅକ୍ରୂର । ଜଳରେ ଦେଖାଇ ଶରୀର ॥ ୧
ପୁଣି ସେ ତନୁ ଅନ୍ତର୍ଧାନ । କଲେ ତତ୍‌କ୍ଷଣେ ଭଗବାନ ॥ ୨
ଦେଖାଇ ନିଜ ନାଟ୍ୟ ନଟ । କରେ ଯେସନେ ଅପ୍ରକଟ ॥ ୩
୨ ସେ ରୂପ ହୋଇଲା ଅନ୍ତର । ଏମନ୍ତ ଦେଖି ସେ ଅକ୍ରୂର ॥ ୪
ଜଳରୁ ତତ୍‌କାଳ ଉଠିଣ । ଯେ ନିତ୍ୟ ନିଜ କର୍ମ ପୁଣ ॥ ୫
ତା' ସାରି ଅଇଲା ରଥକୁ । ମନେ ଲଭିଛି ବିସ୍ମୟକୁ ॥ ୬
୩ ତାଙ୍କୁ ପଚାରିଲେ ଅଚ୍ୟୁତ । ଦେଖିଲୁ କି କିଛି ଅଦ୍ଭୁତ ॥ ୭
ଭୂମିରେ ଅବା ଆକାଶରେ । କି ଅବା ସଲିଳ ମଧ୍ୟରେ ॥ ୮
ଯେ ଦେଖିଥାଇ ଅଦ୍ଭୁତକୁ । ସେ ରୂପେ ଲକ୍ଷୁଛୁଁ ତୁମ୍ଭଙ୍କୁ ॥ ୯
ଏ ବାକ୍ୟ ଶୁଣି ଗୋବିନ୍ଦର । ବଚନ କହିଲେ ଅକ୍ରୂର ॥ ୧୦

### ଶ୍ରୀଅକ୍ରୂର ଉବାଚ

୪ ଭୂମି-ଆକାଶ-ଜଳଗତ । ଯେତେ ଅଛନ୍ତି ଅଦଭୁତ ॥
ଯେ ତୁମ୍ଭେ ଆତ୍ମା ସକଳର । ତୁମ୍ଭଙ୍କୁ କରନ୍ତେ ଗୋଚର ॥
କେବଣ ଅଦଭୁତ ମୁହିଁ । ନେତ୍ରଗୋଚର କରି ନାହିଁ ॥
୫ ସକଳ ଅଦଭୁତମାନ । ଯା'ଠାରେ ଲଭିଛନ୍ତି ଜନ ॥
[1]ସେ ତୁମ୍ଭେ, ତୁମ୍ଭଙ୍କୁ ଦେଖନ୍ତେ । ଭୂମି-ଆକାଶ-ଜଳଗତେ ॥
ହେ ବ୍ରହ୍ମ ! ଯେତେ ଅଦଭୁତ । କାହା[2] ନ କଲି ନେତ୍ରଗତ ॥
୬ ଏମନ୍ତ କହିଣ ଅକ୍ରୂର । ରଥକୁ ବାହିଲା ସତ୍ୱର ॥
ଦିନଶେଷେ ରାମକୃଷ୍ଣଙ୍କୁ । ନେଲା ମଥୁରାନଗରକୁ ॥
୭ ହେ ନୃପ ! ଯେତେ ଗ୍ରାମନରେ । ସଙ୍ଗତ ହୋଇଣ ମାର୍ଗରେ ॥
ସେ ସେହି ସ୍ଥାନେ ଥିଲେ ରହି । ଯେ ବସୁଦେବସୁତ ଦୁଇ ॥
ତାହାଙ୍କୁ ଦେଖି ତୋଷ ହେଲେ । ଦୃଷ୍ଟିକି ନ ଲେଉଟାଇଲେ ॥
୮ ନନ୍ଦ ଆଦି ଗୋପାଳ ଯେତେ । ସେ କାଳେ ଆଗେ ସେ ସମସ୍ତେ ॥
ପୁର-ଉପବନେ ଥାଇଣ । ରହିଲେ ପ୍ରତୀକ୍ଷା କରିଣ ॥
୯ ଯେ କୃଷ୍ଣ ଜଗତ-ଈଶ୍ୱର । ମିଳି ସଙ୍ଗେ ସେମାନଙ୍କର ॥
ବିନୟବନ୍ତ ଯେ ଅକ୍ରୂର । ହସ୍ତରେ ଧରି ତାହା' କର ॥
ହସିଲା ପ୍ରାୟକ ହୋଇଲେ । ଏମନ୍ତ ବଚନ ବୋଇଲେ ॥
୧୦ ଯାନସହିତେ ଆଗ ହୋଇ । ମିଳ ପୁରରେ ଗୃହେ ଯାଇଁ ॥
ହେ ତାତ ! ରହିଣ ଏଠାର । ଦେଖିବୁଁ ଆମ୍ଭେ ମଧୁପୁର ॥
କୃଷ୍ଣର ଏ ବଚନ ଶୁଣି । ଅକ୍ରୂର ବୋଲୁଛନ୍ତି ପୁଣି ॥

### ଶ୍ରୀଅକ୍ରୂର ଉବାଚ

୧୧ ତୁମ୍ଭ ଦୁହିଁଙ୍କ ଅଭାବରେ । ହେ ପ୍ରଭୋ ! ମଥୁରାନଗରେ ॥
ପ୍ରବେଶ ନୋହିବି ହେ ନାଥ । ହେ ଭକ୍ତବତ୍ସଳ ମୁଁ ଭକ୍ତ ॥
ଛାଡ଼ିବା ଅର୍ଥେ ତୁମ୍ଭେ ମୋତେ । ଶକତ ନୁହ ଆଜ ଏଥେ ॥
୧୨ ହେ ଅଧୋକ୍ଷଜ ! ଜ୍ୟେଷ୍ଠଭାଇ । ସହିତ ମିତ୍ର ଗୋପେ ଯେହି ॥
ତାଙ୍କ ସହିତେ ଯିବା ଆସ । ସନାଥ କର ଆମ୍ଭ ବାସ ॥
୧୩ ଆମ୍ଭେ ଯେ ଗୃହାଶ୍ରମୀ ନର । ଚରଣରଜରେ ତୁମ୍ଭର ॥
ଯେ ପୁଣ ଆମ୍ଭର ଭବନ । ପବିତ୍ର କର ତା' ବହନ ॥

---

୧. ''ତଂ ତ୍ୱାନୁପଶ୍ୟତୋ ବ୍ରହ୍ମନ୍ କିଂ ମେଽଦୃଷ୍ଟମିହାଦ୍ଭୁତଂ'' ଇତି ପାଠେ । ''ତଂ ତ୍ୱାମପଶ୍ୟତୋ ବ୍ରହ୍ମନ୍ କିଂ ମେ ଦୃଷ୍ଟମିହାଦ୍ଭୁତମ୍'' ଇତି ପାଠାନ୍ତରମ୍ ।

୨. ତାହା ।

[1]ଯଉଁ ଚରଣଶଉଚରେ । ଅନଳ ଆଦି ସର୍ବସୁରେ ॥ ୩୭
ପିତୃଗଣ ହିଁ ନିଜ ଚିତ୍ତେ । ତୋଷକୁ ଲଭନ୍ତି ସମସ୍ତେ ॥ ୩୮
୧୪ ଚରଣଯୁଗଳ ଧୋଇଣ । ମହତ ଯଶସ୍ୱୀ ରୂପେଣ ॥ ୩୯
ବଳି ଜଗତେ ହେଲା ଖ୍ୟାତ । ଲଭିଲା ଐଶ୍ୱର୍ଯ୍ୟ ଅମିତ ॥ ୪୦
ଏକାନ୍ତ ଅଟଇ ଯେ ଗତି । ତାହା ଲଭିଲା ସେ ଝଟିତି ॥ ୪୧
୧୫ ତୁମ୍ଭ ଚରଣଧୌତ ନୀର । ପବିତ୍ର କଲେ ତିନିପୁର ॥ ୪୨
ଶଙ୍କର ଧଇଲେ ଯା' ଶିରେ । ସଗରନୃପତିକୁମରେ ॥ ୪୩
ସେ ଶୁଚିଜଳର ସ୍ପରଶେ । ମିଳିଲେ ଯାଇଁ ସ୍ୱର୍ଗଦେଶେ ॥ ୪୪
୧୬ ତୁମ୍ଭେ ଦେବତାମାନଙ୍କର । ଦେବତା, ଜଗତ-ଈଶ୍ୱର ॥ ୪୫
ଶ୍ରବଣ-କୀର୍ତ୍ତନ ତୁମ୍ଭର । ପବିତ୍ର, ତୁମ୍ଭେ ଯଦୁବର ॥ ୪୬
ଉତ୍ତମଶ୍ଳୋକ ନାରାୟଣ । ତୁମ୍ଭଙ୍କୁ ମୋ' ବନ୍ଦନ ପୁଣ ॥ ୪୭
ଶୁଣିଣ ଅକ୍ରୂର ବଚନ । କହୁଅଛନ୍ତି ଭଗବାନ ॥ ୪୮

ଶ୍ରୀଭଗବାନୁବାଚ

୧୭ ଯେ ଯଦୁବୃନ୍ଦଦ୍ରୋହକାରୀ । ସେ କଂସନୃପକୁ ସଂହାରି ॥ ୪୯
ଯେତେ ଅଛନ୍ତି ମିତ୍ରଜନ । କରିବି ତାଙ୍କୁ ପ୍ରୀତି ଦାନ ॥ ୫୦
ଜ୍ୟେଷ୍ଠଭ୍ରାତାଙ୍କ ସଙ୍ଗେ ମୁହିଁ । ତୁମ୍ଭ ଗୃହକୁ ଆସିବଇଁ ॥ ୫୧

ଶ୍ରୀଶୁକ ଉବାଚ

୧୮ ଏମନ୍ତ କହନ୍ତେ ଶ୍ରୀହରି । ବିମନପ୍ରାୟେ ହୋଇ କରି ॥ ୫୨
ପୁରରେ ମିଳିଲେ ଅକ୍ରୂର । କୃଷ୍ଣପ୍ରବେଶ ହୋଇବାର ॥ ୫୩
କଂସକୁ କରି ନିବେଦନ । ମିଳିଲେ ଆପଣା ଭୁବନ ॥ ୫୪
୧୯ ଏଥୁ ଅନ୍ତରେ ଅପରାହ୍ଣ । ସମୟେ ଦେବ ଭଗବାନ ॥ ୫୫
ସଂକରଷଣଙ୍କ ସହିତ । ଗୋପାଳେ ହୋଇଣ ବେଷ୍ଟିତ ॥ ୫୬
ପ୍ରବେଶ ହେଲେ ମଥୁରାରେ । ସେ ପୁର ଦେଖିବା ମନରେ ॥ ୫୭
୨୦ ପୁର ଦେଖିଲେ ଦାମୋଦର । ଯଉଁ ପୁରରେ ପୁରଦ୍ୱାର ॥ ୫୮
ସ୍ଫଟିକନିର୍ମିତ ଉନ୍ନତ । ଇତରଦ୍ୱାର ସେହିମତ ॥ ୫୯
ଯହିଁରେ କବାଟ ତୋରଣ । ବିଶାଳ ହେମରେ ନିର୍ମାଣ ॥ ୬୦
ତାମ୍ର-ପିତ୍ତଳମୟ ହୋଇ । ଧାନ୍ୟର କୋଠିମାନେ ଯହିଁ ॥ ୬୧
ଜଳିସକାଶୁଁ ଯେ ଦୁର୍ଗମ । [2]ଉଦ୍ୟାନ-ଉପବନେ ରମ୍ୟ ॥ ୬୨
୨୧ ଯେ ଚତୁଷ୍ପଥ ହେମମୟ । ଧନୀ ଲୋକର ଯେ ନିଳୟ ॥ ୬୩

---

୧. ଯତ୍‌ଶୌଚେନ ଯସ୍ୟ ପାଦରଜସଃ କ୍ଷାଳନୋଦକେନ ଗୃହାଙ୍ଗନସ୍ଥିତେନ । (ସ୍ୱାମୀ)
୨. ଉଦ୍ୟାନ ଦୂରସ୍ଥ, ଉପବନ ନିକଟସ୍ଥ ।

୨୨ ଯେ ତୋଟା ଗୃହନିକଟରେ । ଯେ ଏକରୂପ ଶିଳ୍ପୀ ନରେ ॥ ୬୪
ଯେ ସଭା ଇତର ମନ୍ଦିର । ତେଣେ ମଣ୍ଡିତ ଯଉଁ ପୁର ॥ ୬୫
ବୈଦୁର୍ଯ୍ୟ ହିରା ମରକତ । ବିଦ୍ରୁମ ଆଦିରେ ନିର୍ମିତ ॥ ୬୬
[୧]ବଡ଼ଭୀ-ବେଦିମାନଙ୍କରେ । ଗବାକ୍ଷଛିଦ୍ର କୁଟ୍ଟିମ[୨]ରେ ॥ ୬୭
ବସି ପାରାବତ-ମୟୂରେ । ଧ୍ୱନି କରନ୍ତି ଯଉଁ ପୁରେ ॥ ୬୮
ଯେ ଦାଣ୍ଡ ହାଟ ମାର୍ଗମାନ । ଅଙ୍ଗଣା ଜଳେ ସେ ସେଚନ ॥ ୬୯
ତଣ୍ଡୁଳ-ଲାଜା-ମାଲ୍ୟାଙ୍କୁରେ । ବିଞ୍ଚା ହୋଇଛି ଯଉଁ ପୁରେ ॥ ୭୦
୨୩ ଦଧି-ଚନ୍ଦନରେ ସେଚିତ । ପଲ୍ଲବମାନଙ୍କେ ସହିତ ॥ ୭୧
ସଂପୂର୍ଣ୍ଣ ଜଳକୁମ୍ଭମାନ । ଯେ ପୁଷ୍ପ ଦୀପାବଳି ଆନ ॥ ୭୨
ରମ୍ଭା[୩]-କ୍ରମୁକ[୪]ଫଳଯୁତ । ପତାକା, ବିତସ୍ତି[୫]ପ୍ରମିତ ॥ ୭୩
ବସ୍ତ୍ରମାନଙ୍କରେ ଶୋଭନ । ଯହିଁରେ ଦ୍ୱାର ଗୃହମାନ ॥ ୭୪
୨୪ ମିତ୍ରମାନଙ୍କରେ ବେଷ୍ଟିତ । ବସୁଦେବଙ୍କ ବେନିସୁତ ॥ ୭୫
ସେ ପୁରେ ରାଜମାର୍ଗେ ଗତ । ତାହାଙ୍କୁ ଦେଖିବା ନିମିତ୍ତ ॥ ୭୬
ତ୍ୱରାରେ ପୁରନାରୀମାନ । ମିଳିଲେ ଆସି ହେ ରାଜନ ॥ ୭୭
ଜଗତୀମାନ ଆରୋହଣ । କଲେ ସେ ଉତ୍‌ସୁକ ହୋଇଣ ॥ ୭୮
୨୫ ବସ୍ତ୍ର ଭୂଷଣ କେହି ନାରୀ । ଧଇଲେ ବିପରୀତ କରି ॥ ୭୯
କୁଣ୍ଡଳ କଙ୍କଣ ଯେ ଦୁଇ । ତହୁଁ ପାସୋରି ଏକ କେହି ॥ ୮୦
ଏକ କର୍ଣ୍ଣେ କେ ପତ୍ର ଘେନି । ଏକ ନୂପୁରେ କେ କାମିନୀ ॥ ୮୧
ଏକ ଲୋଚନକୁ ଅଞ୍ଜନ । ରଞ୍ଜିତ କରି କେହି ଆନ ॥ ୮୨
୨୬ ଭୁଞ୍ଜନ୍ତେ ଅନ୍ନ ଛାଡ଼ି କେହି । ଗଲେ ଉତ୍ସବଯୁତ ହୋଇ ॥ ୮୩
କେହି ନାରୀଙ୍କି ସଖୀଜନ । ତୈଳରେ କରନ୍ତେ ମର୍ଦ୍ଦନ ॥ ୮୪
ସେ ଗଲେ ନ କରିଣ ସ୍ନାନ । କେ ପୁଣି କରନ୍ତେ ଶୟନ ॥ ୮୫
ଶବଦ ଶୁଣି ଉଠି ଗଲେ । କ୍ଷୀରକୁ ଯେ ପିଆଉଥିଲେ ॥ ୮୬
ସେ ମାତାମାନେ ବାଳକଙ୍କୁ । ଛାଡ଼ିଣ ଗଲେ ଦେଖିବାକୁ ॥ ୮୭
୨୭ ମତ୍ତକୁଞ୍ଜରବରସମ । ଯାହାର ଅଟଇ ବିକ୍ରମ ॥ ୮୮
ସେ କୃଷ୍ଣ ପଙ୍କଜଲୋଚନ । ପ୍ରଗଲ୍‌ଭ ଯଉଁ ଲୀଳାମାନ ॥ ୮୯
ସହାସ ଯେ ବା ବିଲୋକନ । ତେଣେ ହରିଲେ ତାଙ୍କ ମନ ॥ ୯୦
ଲକ୍ଷ୍ମୀରମଣ ଶରୀରରେ । ଉତ୍ସବ ଦିଅନ୍ତେ ନେତ୍ରରେ ॥ ୯୧
୨୮ ସେ ନାରୀମାନେ ପୁଣ ପୁଣ । ଯାଙ୍କୁ କରିଥିଲେ ଶ୍ରବଣ ॥ ୯୨
ତାହାଙ୍କୁ ହୋଇ ଅନୁଗତ । ଯାଇଥିଲା ତାହାଙ୍କ ଚିତ୍ତ ॥ ୯୩
ତାଙ୍କ ଚାହାଁଣି ଯେ ବା ସ୍ମିତ । ସେ ବେନି ଅଟଇ ଅମୃତ ॥ ୯୪

---

୧. ବଡ଼ଭୀ = ଗୃହଚୂଡ଼ା ୨. କୁଟ୍ଟିମ = ମଣିବଦ୍ଧ ଭୂମି ୩. ରମ୍ଭା = କଦଳୀ ।
୪. କ୍ରମୁକ = ଗୁଆ । ୫. ବିତସ୍ତି = ଚାଖଣ୍ଡ ।

ତେଣେ ଯେ ହୋଇଲା ସେଚନ । ଲଭିଲେ ଯଉଁ ସଂମାନନ ॥ ୯୫
ଆନନ୍ଦମୂର୍ତ୍ତି ସେ ଶ୍ରୀହରି । ତାହାଙ୍କୁ ନେତ୍ରଦ୍ୱାରେ କରି ॥ ୯୬
ଆମ୍ଭାରେ ଲଭି ଆଲିଙ୍ଗନ । କରି ହେ ଅରିବିମର୍ଦ୍ଦନ ॥ ୯୭
ହୋଇଲେ ପୁଲକିତତନୁ । ଛାଡ଼ିଲେ ସର୍ବବାଧା ମନୁଁ ॥ ୯୮
୨୯ ପ୍ରୀତିରେ ଉତ୍‌ଫୁଲ୍ଲିତ ହୋଇ । ଯାହାଙ୍କ ମୁଖପଦ୍ମ ଶୋହି ॥ ୯୯
ସେ ନାରୀମାନେ ଜଗତୀର । ଶିଖରେ ଆରୋହି ସତ୍ୱର ॥ ୧୦୦
ରାମକୃଷ୍ଣଙ୍କୁ ହରଷରେ । ବର୍ଷିଲେ ପୁଷ୍ପସମୂହରେ ॥ ୧୦୧
୩୦ ହରଷେ ଦଧି ଅକ୍ଷତରେ । ଉଦକପାତ୍ରସହିତରେ ॥ ୧୦୨
କୁସୁମମାଳା ଗନ୍ଧମାନ । ଏ ରୂପେ ଘେନି ଉପାୟନ[1] ॥ ୧୦୩
ରାମକୃଷ୍ଣଙ୍କୁ ବିପ୍ରମାନେ । ପୂଜିଲେ ସେହି ସେହି ସ୍ଥାନେ ॥ ୧୦୪
୩୧ କି ମହାତପ ପୂର୍ବଦିନେ । ଆଚରିଥିଲେ ଗୋପୀମାନେ ॥ ୧୦୫
ଯେ ନରଲୋକମହୋତ୍ସବ । ଅଟନ୍ତି କୃଷ୍ଣବଳଦେବ ॥ ୧୦୬
ଏହାଙ୍କୁ ନିତ୍ୟେ ଦରଶନ । କରନ୍ତି ଯଉଁ ଗୋପୀଜନ ॥ ୧୦୭
୩୨ ବସ୍ତ୍ରକୁ ରଙ୍ଗ ଯେ କରଇ । ଆସନ୍ତେ ସେ ରଜକ ତହିଁ ॥ ୧୦୮
ଧୌତ ଉତ୍ତମ ବସ୍ତ୍ରମାନ । ତାକୁ ମାଗିଲେ ଭଗବାନ ॥ ୧୦୯
୩୩ ଆମ୍ଭ ଦୁହିଁଙ୍କି ବସ୍ତ୍ରମାନ । ରଜକ ! କର ତୁ ପ୍ରଦାନ ॥ ୧୧୦
ଆମ୍ଭେ ଏ ବସ୍ତ୍ରକୁ ଭାଜନ । ତୁ ଯେବେ କରିବୁ ପ୍ରଦାନ ॥ ୧୧୧
ହେବ ତୋହର ବଡ଼ ଶ୍ରେୟ । ନାହିଁ ଏ କଥାରେ ସଂଶୟ ॥ ୧୧୨
୩୪ ସର୍ବବିଷୟେ ପରିପୂର୍ଣ୍ଣ । ଅଟନ୍ତି ଯଉଁ ଭଗବାନ ॥ ୧୧୩
ସେ ବସ୍ତ୍ର ମାଗନ୍ତେ କୁପିତ । ହୋଇ ଦୁର୍ମୁଖ[2] ରାଜାଭୃତ୍ୟ ॥ ୧୧୪
ଆକ୍ଷେପ ସହିତରେ ପୁଣି । କହିଲା ତାହାଙ୍କୁ ସେ ବାଣୀ ॥ ୧୧୫
୩୫ ତୁମ୍ଭେ ଦୁର୍ବୃତ୍ତ ଗିରିବନେ । ଭ୍ରମଣ କର ପ୍ରତିଦିନେ ॥ ୧୧୬
ଏମନ୍ତ ପ୍ରକାରେ ବସନ । କରିଅଛ କି ପରିଧାନ ॥ ୧୧୭
ଯେ ଅଟେ ରାଜଦ୍ରବ୍ୟମାନ । ତହିଁକି କରିଅଛ ମନ ॥ ୧୧୮
୩୬ ଜୀବନ-ଇଚ୍ଛା ଅଛି ଯେବେ । ହେ ମୂର୍ଖେ ! ବେଗେ ଯାଅ ତେବେ ॥ ୧୧୯
ପ୍ରାର୍ଥନା ଏମନ୍ତ ରୂପରେ । କରିବ ନାହିଁ ଆଉ ଥରେ ॥ ୧୨୦
ଦୁଷ୍ଟ ଅଟଇ ଯଉଁ ନର । ତାହାକୁ ଭୃତ୍ୟେ ନୃପତିର ॥ ୧୨୧
ମାରନ୍ତି କରନ୍ତି ବନ୍ଧନ । ହରନ୍ତି ତାହା' ଦ୍ରବ୍ୟମାନ ॥ ୧୨୨
୩୭ ଏମନ୍ତରୂପେ ଗର୍ବବାଣୀ । କହିଲା ଯେ ରଜକ ପୁଣି ॥ ୧୨୩
ତା' ଦେହୁଁ କର-ଅଗ୍ରେ ଶିର । କୋପେ ଛେଦିଲେ ଦାମୋଦର ॥ ୧୨୪
୩୮ ତା' ଅନୁଜୀବୀ ସର୍ବଜନ । ଛାଡ଼ିଣ ବସ୍ତ୍ରପେଡ଼ାମାନ ॥ ୧୨୫

---

୧. ଉପାୟନ = ଉପହାର । ୨. ଦୁର୍ମୁଖ = ଦୁର୍ମଦ (ପାଠାନ୍ତର) ।

ସକଳ ଦିଗେ ପଳାଇଲେ । ବସ୍ତ୍ରକୁ ଶ୍ରୀକୃଷ୍ଣ ଘେନିଲେ ।। ୧୨୬
୩୯ ଆପଣା ଯୋଗ୍ୟ ବେନି ବାସ । ପିନ୍ଧିଣ ରାମ-ହୃଷୀକେଶ ।। ୧୨୭
ଭୂମିରେ କିଛିହି ଛାଡ଼ିଣ । ଶେଷ ଗୋପଙ୍କୁ ଦେଲେ ପୁଣ ।। ୧୨୮
୪୦ ଯେ ବେଷ କରଇ କଳ୍ପିତ । ତଦନ୍ତେ ସେ ହୋଇଣ ପ୍ରୀତ ।। ୧୨୯
ବିଚିତ୍ର ବର୍ଣ୍ଣ ଅଛି ଯହିଁ । ବସନମୟ ଯେ ଅଟଇ ।। ୧୩୦
ରାମକୃଷ୍ଣର ସେ ଭୂଷଣେ । ବେଷକୁ କଲା ତତକ୍ଷଣେ ।। ୧୩୧
୪୧ ଲକ୍ଷଣ ନାନାରୂପ ଯହିଁ । ସେ ବେଷେ ରାମକୃଷ୍ଣ ଦୁଇ ।। ୧୩୨
ସେରୂପେ ଦିଶିଲେ ଶୋଭିତ । ପର୍ବସମୟରେ ଯେମନ୍ତ ।। ୧୩୩
ସିତ ଅସିତରୂପ ହୋଇ । ମଣ୍ଡିତ ବାଳଗଜ ଦୁଇ ।। ୧୩୪
୪୨ ପ୍ରସନ୍ନ ହୋଇ କୃଷ୍ଣ ତାକୁ । ଦେଲେ ଆପଣା ସାରୂପ୍ୟକୁ ।। ୧୩୫
ଏ ଲୋକେ ପରମ ସଂପତ୍ତି । ଯେ ବଳ, ଐଶ୍ୱର୍ଯ୍ୟ, ଯେ ସ୍ମୃତି ।। ୧୩୬
ଯେ ବା ଇନ୍ଦ୍ରିୟଙ୍କ ପାଟବ । ପ୍ରଦାନ କଲେ ତା' ମାଧବ ।। ୧୩୭
୪୩ ସୁଦାମା ନାମେ ମାଳାକାର । ଗୃହକୁ ଗଲେ ତଦନ୍ତର ।। ୧୩୮
ରାମ-ଗୋବିନ୍ଦଙ୍କୁ ଦେଖିଣ । ସେ ମାଳୀ ତତ୍‌କାଳ ଉଠିଣ ।। ୧୩୯
ଭୂମିରେ ସାଷ୍ଟାଙ୍ଗ ପ୍ରକାରେ । ପ୍ରଣାମ କଲା ନିଜ ଶିରେ ।। ୧୪୦
୪୪ ଆସନ ସେ ଦୁହିଁକି ଆଣି । ପାଦ୍ୟ ଅର୍ଘ୍ୟ ଆଦିରେ ପୁଣି ।। ୧୪୧
ମାଳା ତାମ୍ବୂଳାନୁଲେପନେ । ଯେ ଥିଲେ ଅନୁଗତମାନେ ।। ୧୪୨
ସେମାନଙ୍କର ସହିତରେ । ପୂଜାକୁ କଲା ହରଷରେ ।। ୧୪୩
୪୫ ବୋଇଲା ଏମନ୍ତ ବଚନ । ହେ ପ୍ରଭୋ ! ସାର୍ଥ ଆମ୍ଭ ଜନ୍ମ ।। ୧୪୪
ଆଗମୁ ତୁମ୍ଭ ଦୁହିଁଙ୍କର । ପବିତ୍ର ହେଲା କୁଳ ମୋର ।। ୧୪୫
ପିତୃ-ଦେବତା-ଋଷିମାନେ । ମତେ ସଂତୋଷ ହେଲେ ମନେ ।। ୧୪୬
୪୬ ତୁମ୍ଭେ ସକଳ ଜଗତର । ପରମ କାରଣ ଈଶ୍ୱର ।। ୧୪୭
ଜଗତକ୍ଷେମ-ଉଭବର । ନିମିତ୍ତେ ଅଂଶେ[୧] ଅବତାର ।। ୧୪୮
୪୭ ବିଷମ ଦୃଷ୍ଟି ଯେ ଅଟଇ । ସେ ତୁମ୍ଭ ଦୁହିଁଙ୍କର ନାହିଁ ।। ୧୪୯
ସୁହୃଦ, ଆତ୍ମା ଜଗତର । ସମାନ ସର୍ବଭୂତଠାର ।। ୧୫୦
ତୁମ୍ଭଙ୍କୁ ଭଜଇ ଯେ ପ୍ରାଣୀ । ତୁମ୍ଭେ ତାହାକୁ ଭଜ ପୁଣି ।। ୧୫୧
୪୮ କି କାର୍ଯ୍ୟ ତୁମ୍ଭ ଦୁହିଁଙ୍କର । କରିବି ଭୃତ୍ୟ ମୁଁ ତୁମ୍ଭର ।। ୧୫୨
ଉତ୍ତମ କରି ଆଜ୍ଞା ଦିଅ । ସେ ଅଟେ ଲୋକ-ଅନୁଗ୍ରହ ।। ୧୫୩
ଯାହାକୁ ଯଉଁ ବିଷୟରେ । ନିଯୋଗ କରି ଜଗତରେ ।। ୧୫୪
୪୯ ସୁଦାମା ଏ ରୂପେ ଜଣାନ୍ତେ । ତାହାଙ୍କ ମତ ଜାଣି ଚିତ୍ତେ ।। ୧୫୫
ସୁଗନ୍ଧ ପୁଷ୍ପ ଯେ ପ୍ରଶସ୍ତ । ତେଣେ ଯେ ହୋଇଛି ରଚିତ ।। ୧୫୬

---

୧. ଅଂଶେ = ପୁରୁଷରୂପରେ ।

| | | | | |
|---|---|---|---|---|
| | ସେ ମାଳା ସଂତୋଷ ହୋଇଣ | ପ୍ରଦାନ କଲା ତାଙ୍କୁ ପୁଣ | ।। | ୧୫୭ |
| ୫୦ | ଅନୁଗଙ୍କର ସହିତରେ | ରାମ-କେଶବ ସେ ମାଳାରେ | ।। | ୧୫୮ |
| | ମଣ୍ଡିତ ହୋଇ ହେଲେ ପ୍ରୀତ | ପ୍ରପନ୍ନ ଯେ ଅଟେ ପ୍ରଣତ | ।। | ୧୫୯ |
| | ତାହାକୁ ଦେଲେ ବରମାନ | ବରଦ ସେହୁ ବେନିଜନ | ।। | ୧୬୦ |
| ୫୧ | ଯେ ଆତ୍ମା ସର୍ବଜଗତର | ନିଶ୍ଚଳ ଭକ୍ତି ତାଙ୍କ ଠାର | ।। | ୧୬୧ |
| | ତାହାଙ୍କ ଭକ୍ତ ଯେତେ ନର | ସୁହୃଦଭାବ ତାଙ୍କ ଠାର | ।। | ୧୬୨ |
| | ପରମ ଦୟା ପ୍ରାଣିଠାରେ | ବରିଲା ବର ଏ ପ୍ରକାରେ | ।। | ୧୬୩ |
| ୫୨ | କୁଳବର୍ଦ୍ଧିନୀ ଯେ ସଂପତ୍ତି | ବଳ ଆୟୁଷ ଯଶ କାନ୍ତି[୧] | ।। | ୧୬୪ |
| | ଏ ବର ତାହାକୁ ଦେଇଣ | ଗଲେ ଅଗ୍ରଜ ସହିତେଣ | ।। | ୧୬୫ |
| | ବାୟକ ସୁଦାମାକୁ ବର | ଦେଲେ ଯେ ପ୍ରଭୁ ଦାମୋଦର | ।। | ୧୬୬ |
| | ତାହାଙ୍କ ପାଦପଦ୍ମ ଚିନ୍ତି | ହରଷ ଦୀନବନ୍ଧୁମତି | ।। | ୧୬୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଥୁରାପୁରପ୍ରବେଶୋ
ନାମ ଏକଚତ୍ୱାରିଂଶୋଽଧ୍ୟାୟଃ ।।

## ଦ୍ୱିଚତ୍ୱାରିଂଶ ଅଧ୍ୟାୟ

ଦ୍ୱିଚତ୍ୱାରିଂଶକେ କୁବ୍‌ଜୋନ୍ନମନଂ ଧନୁଷୋ ଭିଦା ।
ବଧସ୍ତଦ୍ରକ୍ଷିଣାଂ କଂସାରିଷ୍ଟଂ ରଙ୍ଗୋତ୍‌ସବାଦି ଚ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଏଥୁ ଅନ୍ତରେ ଭଗବାନ | ସେ ରାଜମାର୍ଗରେ ଗମନ | ।। | ୧ |
| | କରନ୍ତେ ଏକ ନିତମ୍ବିନୀ | କୁବୁଜା ଅଟେ ବରାନନୀ | ।। | ୨ |
| | ଯହିଁରେ ଅଙ୍ଗ-ବିଲେପନ[୨] | ଘେନିଛି ଏମନ୍ତ ଭାଜନ | ।। | ୩ |
| | ହସନ୍ତେ ତାହାକୁ ଦେଖିଣ | ପୁଚ୍ଛିଲେ ରସଦ ସେ ପୁଣ | ।। | ୪ |
| ୨ | ହେ ନାରି ! ତୁ କେ ଏ କାହାର | ଅନୁଲେପନ ଯେ ତୋ'ଠାର | ।। | ୫ |
| | ଏ କଥା ଉତ୍ତମ କରିଣ | ଆମ୍ଭଙ୍କୁ କର ତୁ ବଖାଣ | ।। | ୬ |
| | ଆମ୍ଭ ଦୁହିଁଙ୍କି ତୁ ପ୍ରଦାନ | କର ଗୋ ଏ ଅନୁଲେପନ | ।। | ୭ |
| | ସେହି ସକାଶୁଁ ତୋର ଶୁଭ | ନିକଟେ ଅବଶ୍ୟ ହୋଇବ | ।। | ୮ |

---

ସ୍ୱୈରଂ ଚରନ୍ ମଧୁପୁରେ ରଜକଂ ନିକୃତ୍ୟ କୃଷ୍ଣଃ ପ୍ରଦାୟ ଚ ବରାନଥ ବାୟକାୟ ।
ମାଳାକୃତଂ ସମନୁକଂପ୍ୟ ଚକାର କୁବ୍‌ଜା-ମୁକ୍ତିଂ ଧନୁଶ୍ଚ ସହସା ନମୟନ୍ ବଭଞ୍ଜ ।।

୧. ଶାନ୍ତି ।　　୨. ଅଙ୍ଗ-ବିଲେପନ = ଚନ୍ଦନ ଆଦି ।

## ସୈରିନ୍ଧ୍ରୀ ଉବାଚ

୩ ଶ୍ରୀକୃଷ୍ଣବଚନକୁ ଶୁଣି । କୁବୁଜା କହୁଅଛି ବାଣୀ ।।
କଂସଦାସୀ ମୁଁ ହେ ସୁନ୍ଦର । ତ୍ରିବକ୍ରା[୧] ନାମ ଅଟେ ମୋର ।।
ଅନୁଲେପନ କର୍ମେ ମୁହିଁ । ବିଖ୍ୟାତ, ମୁଁ ଯାହା କରଇ ।।
ଅତ୍ୟନ୍ତ ପ୍ରିୟ ସେ କଂସର । ତୁମ୍ଭଦୁହିଁଙ୍କରୁ ଇତର ।।
ତହିଁକି କେ ଅବା ଭାଜନ । ଦେବି ମୁଁ ସେ ଅନୁଲେପନ ।।
୪ ଯେ ରୂପ ସୁକୁମାର ପଣ । ମାଧୁର୍ଯ୍ୟ ହାସ ବାକ୍ୟ ପୁଣ ।।
ଚାହିଁବା ଭଙ୍ଗୀ ଶ୍ରୀକୃଷ୍ଣର । ତେଣେ ମୋହିତ ଚିତ୍ତ ତାର ।।
ଉତ୍ତମ ଯେ ଅନୁଲେପନ । ଦୁହିଁକି କଲା ତା' ପ୍ରଦାନ ।।
୫ ଯେ ବର୍ଣ୍ଣ ରାମ-ଗୋବିନ୍ଦର । ତହୁଁ ଇତର ବର୍ଣ୍ଣ ଯାର ।।
ନାଭି-ଉପରୁ ଯେ ବା କାୟ । ତହିଁ ଯା' ଶୋଭା ଅତିଶୟ ।।
ସେ ଅଙ୍ଗରାଗରେ ରଞ୍ଜିତ । ହୋଇ ସେ ଦିଶିଲେ ଶୋଭିତ ।।
୬ ପ୍ରସନ୍ନ ହୋଇ ଭଗବାନ । ରୁଚିର ଅଟେ ଯା' ଆନନ ।।
ସେହୁ କୁବୁଜା ତ୍ରିବକ୍ରାକୁ । ଦେଖାନ୍ତେ ଦର୍ଶନଫଳକୁ ।।
ସଳଖ କରିବା ନିମିତ୍ତ । ବିଚାର କଲେ ନିଜ ଚିତ୍ତ ।।
୭ ଆପଣା ବେନି ଚରଣରେ । ତା' ପାଦ-ଅଗ୍ରବେନି ଧୀରେ ।।
ଆକ୍ରମି, ଉନ୍ନତ ଯହିଁରେ । ଅଙ୍ଗୁଳୀଯୁଗ ସେ ହସ୍ତରେ ।।
ଧରିଣ ଚିବୁକ ତାହାର । ସଳଖି ଦେଲେ ଦାମୋଦର ।।
୮ ମୁକୁନ୍ଦସ୍ପର୍ଶୁଁ ତତ୍‌କ୍ଷଣ । ସଳଖ ସମାନ ଯେ ପୁଣ ।।
ସେ ରୂପେ ହେଲା ଅଙ୍ଗ ତାର । ବିଶାଳ ଶ୍ରୋଣୀ ପୟୋଧର ।।
ହେଲା ପ୍ରମଦାମାନଙ୍କର । ମଧ୍ୟରେ ଉତ୍ତମ ସୁନ୍ଦର ।।
୯ ତଦନ୍ତେ ରୂପରେ ଗୁଣରେ । ଆପଣା ଉତ୍ତମ ଭାବରେ ।।
ସମ୍ପନ୍ନ ହେଲା, ଚିତ୍ତେ ତାର । ସଂଜାତ ହେଲା ପଞ୍ଚଶର ।।
ମନ୍ଦହାସରେ ହୋଇ ଯୁତ । ଧରି ଉତ୍ତରୀବସ୍ତ୍ର-ଅନ୍ତ ।।
କୃଷ୍ଣଙ୍କୁ ଏମନ୍ତ ରୂପରେ । ବଚନ କହିଲା ସେଠାରେ ।।
୧୦ ହେ ବୀର ! ଆସ ମନ୍ଦିରକୁ । ଯିବା, ତୁମ୍ଭଙ୍କୁ ଛାଡ଼ିବାକୁ ।।
ଉତ୍ସାହ କରୁନାହିଁ ମୁହିଁ । ତୋରେ ମଥିତଚିତ୍ତ ହୋଇ ।।
ପୁରୁଷଶ୍ରେଷ୍ଠ ତୁମ୍ଭେ ମୋତେ । ପ୍ରସନ୍ନ ହୁଅ ଶୁଦ୍ଧଚିତ୍ତେ ।।
୧୧ ଏମନ୍ତ ପ୍ରକାରରେ ନାରୀ । ପ୍ରାର୍ଥନା କରନ୍ତେ ଶ୍ରୀହରି ।।
ଯେ ଚାହୁଁଛନ୍ତି ହଳଧର । ମୁଖକୁ ଚାହିଁ ତାହାଙ୍କର ।।

---

୧. ତ୍ରିବକ୍ରା = ଗ୍ରୀବା, ବକ୍ଷ ଓ କଟି - ଏହି ତିନିସ୍ଥାନ ଯାହାର ବକ୍ର ।

[୧]ତାହିଁ ଅନୁଗଙ୍କ ମୁଖକୁ । ହସନ୍ତେ ବୋଇଲେ ତାହାକୁ ।। ୩୮
୧୨ ହେ ସୁଭ୍ରୁ ! ଯେ ବା ମିତ୍ରଜନ । ସାଧିଣ[୨] ତାଙ୍କ ପ୍ରୟୋଜନ ।। ୩୯
ମନପୀଡ଼ାକୁ ଲୋକଙ୍କର । ଯେ ନାଶ କରେ ତୋ' ମନ୍ଦିର ।। ୪୦
ତହିଁକି କରିବି ଗମନ । ଦାରାରହିତ ଯେତେ ଜନ ।। ୪୧
ସେ ପାନ୍ଥ ଲୋକଙ୍କର ପୁଣ । ତୁ ଯେଣୁ ଅଟୁ ପରାୟଣ ।। ୪୨
୧୩ ତାହାକୁ ମଧୁରବାଣୀରେ । ଛାଡ଼ିଣ ଯାଆନ୍ତେ ମାର୍ଗରେ ।। ୪୩
ଯେ ଅଟେ ନାନା ଉପାୟନ । ତାମ୍ବୂଳ ମାଳା ଗନ୍ଧମାନ ।। ୪୪
ତେଣେ ବଣିଜେ ତାଙ୍କୁ ପୁଣ । ପୂଜିଲେ ରାମସହିତେଣ ।। ୪୫
୧୪ ସେ କୃଷ୍ଣ ଦର୍ଶନୁଁ ତୁରିତ । ଯେ କାମକ୍ଷୋଭ ହେଲା ଜାତ ।। ୪୬
ତେଣୁ ଆତ୍ମାକୁ ଆପଣାର । ସେ ସ୍ତ୍ରୀଏ ନ କଲେ ଗୋଚର ।। ୪୭
ବସନ ବଳୟ କବର । ଗଳିତ ହେଲା ତାହାଙ୍କର ।। ୪୮
ଯେ ଅଟେ ଚିତ୍ରରେ ଲେଖିତ । ମୂର୍ତ୍ତି ଦିଶିଲା ସେହିମତ ।। ୪୯
୧୫ ପୁରଲୋକଙ୍କୁ ତଦନ୍ତର । ପୁଛନ୍ତେ ସ୍ଥାନକୁ ଧନୁର ।। ୫୦
ସେ ସ୍ଥାନେ ମିଳି ଭଗବାନ । ଧନୁକୁ କଲେ ବିଲୋକନ ।। ୫୧
ଇନ୍ଦ୍ରଧନୁର ପ୍ରାଏ ହୋଇ । ସେ ଧନୁ ଅଦ୍ଭୁତ ଅଟଇ ।। ୫୨
୧୬ ବହୁତ ପୁରୁଷେ ରକ୍ଷଣ । କରିଅଛନ୍ତି ଯାକୁ ପୁଣ ।। ୫୩
ଯେ ନିତ୍ୟେ ହୋଇଛି ପୂଜିତ । ପରମସମୃଦ୍ଧିସଂଯୁତ ।। ୫୪
ଲୋକେ ନିବାରନ୍ତେ ସେ ସ୍ଥାନୁଁ । କୃଷ୍ଣ ଧଇଲେ ବଳେ ଧନୁ ।। ୫୫
୧୭ ଲୀଳାସହିତେ ବାମକରେ । ଟେକିଣ ଗୁଣ ଦେଇ ତାରେ ।। ୫୬
ଲୋକେ ଚାହାଁନ୍ତେ ନିମେଷରେ । ଓଟାରି ଭାଙ୍ଗିଲେ ମଧ୍ୟରେ ।। ୫୭
ଇକ୍ଷୁଦଣ୍ଡକୁ ମତ୍ତକରୀ । ଭାଙ୍ଗି ପକାଏ ଯେହ୍ନେ ଧରି ।। ୫୮
୧୮ ଭାଙ୍ଗିଲା ଧନୁର ଯେ ଘୋଷ । ଦ୍ୟାବାପୃଥିବୀ ଦଶ ଦିଶ ।। ୫୯
ଆକାଶକୁ ହିଁ ପୂରାଇଲା । ଯା' ଶୁଣି କଂସ ତ୍ରସ୍ତ ହେଲା ।। ୬୦
୧୯ ସେ ଧନୁରକ୍ଷାକାରୀ ଯେତେ । ସେ ଅନୁଚରଙ୍କ ସହିତେ ।। ୬୧
ଧରିଅଛନ୍ତି ଶସ୍ତ୍ରମାନ । ସେ ସର୍ବେ ଆତତାୟୀ ଜନ ।। ୬୨
'ବାନ୍ଧ, ମାର'-ଏ ଶବଦରେ । ବେଢ଼ିଲେ ତାହାଙ୍କୁ ସେଠାରେ ।। ୬୩
୨୦ ଦୁଷ୍ଟ ଅଭିପ୍ରାୟ ତାଙ୍କର । ଦେଖିଣ ଏଥୁଁ ଅନନ୍ତର ।। ୬୪
ରାମ-କେଶବ କ୍ରୁଦ୍ଧ ହୋଇ । ଘେନି ଧନୁର ଖଣ୍ଡ ଦୁଇ ।। ୬୫
ଧନୁରକ୍ଷକ ଯେତେ ଜନ । ତାହାଙ୍କୁ କଲେ ସେ ନିଧନ ।। ୬୬
୨୧ କଂସପ୍ରେରିତ ଯଉଁ ସୈନ୍ୟ । ତାହାଙ୍କୁ କରିଣ ନିଧନ ।। ୬୭

---

୧. ''ମୁଖଂ ବୀକ୍ଷ୍ୟାନୁଗାନାଂ ଚ'' ଇତି ପାଠେ ।
''ମୁଖଂ ବୀକ୍ଷ୍ୟାନୁ ଗୋପାନାଂ'' ଇତି ପାଠାନ୍ତରମ୍ ।

୨. କଂସବଧଦ୍ୱାରା ।

| | | | | | |
|---|---|---|---|---|---|
| | ସେ ଶାଳାମୁଖରୁ ବାହାର | । | ହୋଇ ସମ୍ପତ୍ତି ଯେ ପୁରର | ।। | ୬୮ |
| | ତାହା ଦେଖନ୍ତେ ହୃଷ୍ଟ ହୋଇ | । | ଭ୍ରମଣ କଲେ ବେନି ଭାଇ | ।। | ୬୯ |
| ୨୨ | ସେ ଦୁହିଁଙ୍କର ଅଦଭୁତ | । | ତେଜ ପ୍ରଗଲ୍‌ଭତ୍ୱ ଚରିତ | ।। | ୭୦ |
| | ରୂପକୁ ଦେଖି ପୁରଜନ | । | ମଣିଲେ ବିବୁଧପ୍ରଧାନ | ।। | ୭୧ |
| ୨୩ | ସେ ଦୁହେଁ ଆପଣା ଇଚ୍ଛାରେ | । | ଭ୍ରମଣ କରନ୍ତେ ପୁରରେ | ।। | ୭୨ |
| | ଅସ୍ତକୁ ଗଲେ ଦିବାକର | । | ପୁରରୁ କୃଷ୍ଣ-ହଳଧର | ।। | ୭୩ |
| | ଗୋପାଳେ ହୋଇ ପରିବୃତ | । | ଶକଟମାନେ ଯହିଁ ସ୍ଥିତ | ।। | ୭୪ |
| | ଯେ ଅଟେ ଆପଣାର ସ୍ଥାନ | । | ତହିଁକି କଲେ ସେ ଗମନ | ।। | ୭୫ |
| ୨୪ | ନିର୍ଗମସମୟେ କୃଷ୍ଣର | । | ବିରହେ ହୋଇଣ ଆତୁର | ।। | ୭୬ |
| | ମଥୁରାନାରୀଙ୍କ ପ୍ରଭାତ | । | ସୁଖେ ହୋଇଲା ଆଜ ଜାତ | ।। | ୭୭ |
| | ଏରୂପେ ଯାହା ଗୋପୀମାନେ | । | କଳ୍ପନା କରୁଥିଲେ ମନେ | ।। | ୭୮ |
| | ହୋଇଲା ସେ ବଚନ ସତ | । | ପୁରୁଷଶ୍ରେଷ୍ଠ ଯେ ଅଚ୍ୟୁତ | ।। | ୭୯ |
| | ଗାତ୍ରଶୋଭାକୁ ତାହାଙ୍କର | । | ଦେଖିଲେ ଯେ ମଥୁରାନର | ।। | ୮୦ |
| | ବ୍ରହ୍ମାଦି ଭଜିଲେ ହେଁ, ତାଙ୍କୁ | । | ଛାଡ଼ିଣ ଯେବଣ ଗାତ୍ରକୁ | ।। | ୮୧ |
| | ମନେ ବିଚାରି ନିଜ ହିତ | । | କମଳା କରିଛି ଆଶ୍ରିତ | ।। | ୮୨ |
| ୨୫ | ଚରଣଯୁଗଳକୁ ଧୋଇ | । | କ୍ଷୀରମିଶ୍ରିତ ଅଟେ ଯେହି | ।। | ୮୩ |
| | ସେ ଅନ୍ନ ଭୋଜନ କରିଣ | । | କଂସବିଚାରକୁ ଜାଣିଣ | ।। | ୮୪ |
| | ରାମଗୋବିନ୍ଦ ଭାଇ ବେନି | । | ସୁଖେ ରହିଲେ ସେ ରଜନୀ | ।। | ୮୫ |
| ୨୬ | ଧନୁର ଭଙ୍ଗ ଯେ ଧନୁର | । | ରକ୍ଷକ, ବଧ ତାହାଙ୍କର | ।। | ୮୬ |
| ୨୭ | ବିନାଶ ଯେ ନିଜ ସୈନ୍ୟର | । | ଯେ ଲୀଳା ରାମଗୋବିନ୍ଦର | ।। | ୮୭ |
| | ଶ୍ରବଣ କରିଣ ସେ ରୀତି | । | କଂସ ଲଭିଲା ମନେ ଭୀତି | ।। | ୮୮ |
| | ବହୁତ ବେଳଯାଏ ତାର | । | ସମ୍ଭବ ହେଲା ପ୍ରଜାଗର | ।। | ୮୯ |
| | [1]ସ୍ୱପ୍ନେ ଜାଗରେ ଦୁର୍ନିମିତ୍ତ | । | ଦୁର୍ମତି ଦେଖିଲା ବହୁତ | ।। | ୯୦ |
| | ଯଉଁ ଦୁର୍ନିମିତ୍ତେ ମୃତ୍ୟୁର | । | ଜଗତେ ଦୂତଭାବକର | ।। | ୯୧ |
| ୨୮ | ଥାଆନ୍ତେ ଜଳଆଦିମାନ | । | ନିଜ ଶିରର ଅଦର୍ଶନ | ।। | ୯୨ |
| | ଅଙ୍ଗୁଳୀ ଆଦିରେ ନେତ୍ରର | । | ଯେ ଅନ୍ତର୍ଧାନ ସେ ପ୍ରକାର | ।। | ୯୩ |
| | ନ ଥିଲେହେଁ ଯେ [2]ଚନ୍ଦ୍ର ଆଦି | । | ଜ୍ୟୋତିଙ୍କ ଦ୍ୱିରୂପତା ସିଦ୍ଧି | ।। | ୯୪ |
| ୨୯ | ଯେ ଅଟେ ଆପଣାର ଛାଇ | । | ଛିଦ୍ରପ୍ରତ୍ୟୟ ଯେ ବା ତହିଁ | ।। | ୯୫ |
| | ଆଚ୍ଛନ୍ନ କଲେ ବେନି କର୍ଣ୍ଣ | । | ଯେ ଶୁଭୁଥାଇ ତହିଁ ସ୍ୱନ | ।। | ୯୬ |

୧. ଇତ୍‌ଥାହୁଲୂକଷ୍ଣାପଘ୍ନନ୍ ହିରଣ୍ୟାକ୍ଷୋ ଅୟୋମୁଖଃ ।
ରକ୍ଷସାଂ ଦୂତ ଆଗତଃ ।। (ଶ୍ରୁତି)
''ଯଦେତଦଭୁତାନ୍ୟନ୍ୱାବିଶ୍ୟ ଦୈବୀଂ ବାଚଂ ବଦସି'' ଇତି ଚ ।

୨. ଚନ୍ଦ୍ରମାଦି ।

| | | | | |
|---|---|---|---|---|
| | ସେ ପ୍ରାଣଘୋଷ ନାମ ପୁଣ | ତାହାର ଯେ ବା ଅଶ୍ରବଣ | ॥ | ୯୭ |
| | ବୃକ୍ଷମାନଙ୍କେ ହେମଭ୍ରମ | ଯେ ରଜ ସ୍ଥଳ ଯେ କର୍ଦ୍ଦମ | ॥ | ୯୮ |
| | ତହିଁରେ ଚରଣର ଚିହ୍ନ | ଯେବେ ନୁହଇ ଦରଶନ | ॥ | ୯୯ |
| ୩୦ | ସ୍ୱପ୍ନସମୟେ ମୃତ ଜନ | ସଙ୍ଗତେ ଯେ ବା ଆଲିଙ୍ଗନ | ॥ | ୧୦୦ |
| | ଗର୍ଦ୍ଦଭ ଚଢ଼ି ଯେ ଗମନ | ଯେ ପୁଣ ବିଷର ଭୋଜନ | ॥ | ୧୦୧ |
| | ମନ୍ଦାରମାଳା ବହି ଥାଇ | ତୈଳପୂରିତଗାତ୍ର ହୋଇ | ॥ | ୧୦୨ |
| | ଏକାକୀ ହୋଇ ଦିଗମ୍ବର | ଗମନ ଯେ ବା ଆପଣାର | ॥ | ୧୦୩ |
| ୩୧ | ସ୍ୱପ୍ନ-ଜାଗରେ ଏ ପ୍ରକାର | ଅନିଷ୍ଟ ଯେ ଅବା ଇତର | ॥ | ୧୦୪ |
| | ଦେଖନ୍ତେ ମରଣବିଷୟେ | ତ୍ରସ୍ତ ହୋଇଣ ଅତିଶୟେ | ॥ | ୧୦୫ |
| | ଯେ ଚିନ୍ତା ମନେ ସମ୍ଭବିଲା | ତେଣେ ନିଦ୍ରାକୁ ନ ଲଭିଲା | ॥ | ୧୦୬ |
| ୩୨ | କଷ୍ଟେ କଷ୍ଟେ ହେ କୁରୁସୁତ | ରଜନୀ ହୁଅନ୍ତେ ପ୍ରଭାତ | ॥ | ୧୦୭ |
| | [1]ସଲିଳମଧ୍ୟରୁ ବାହାର | ହୁଅନ୍ତେ ପୁଣ ଦିବାକର | ॥ | ୧୦୮ |
| | ଯେ ମଲ୍ଲକେଳିର ଉତ୍ସବ | କଂସ ତା’ କରାଇଲା ସର୍ବ | ॥ | ୧୦୯ |
| ୩୩ | ପୁରୁଷେ କଲେକ ନର୍ତ୍ତନ | ବାଜିଲେ ତୂର୍ଯ୍ୟଭେରୀମାନ | ॥ | ୧୧୦ |
| | ପୁଷ୍ପମାଳାରେ ପତାକାରେ | ବସ୍ତ୍ରନିର୍ମିତ ତୋରଣାରେ | ॥ | ୧୧୧ |
| | ସେ ମଞ୍ଚାମାନଙ୍କୁ ମଣ୍ଡନ | କଲେ କଂସର ପରିଜନ | ॥ | ୧୧୨ |
| ୩୪ | ପୁରଗ୍ରାମର ଜନେ ଯେହି | ବ୍ରହ୍ମ-କ୍ଷତ୍ରିୟ ଆଦି ହୋଇ | ॥ | ୧୧୩ |
| | ସର୍ବେ ସେ ମଞ୍ଚାମାନଙ୍କରେ | ବସିଲେ ଯେ ଯାହା ସୁଖରେ | ॥ | ୧୧୪ |
| | ନୃପତିମାନେ ଆସନରେ | ବସିଲେ ମଞ୍ଚାମାନଙ୍କରେ | ॥ | ୧୧୫ |
| ୩୫ | ଅମାତ୍ୟଜନମାନଙ୍କରେ | ଆବୃତ ହୋଇ ସେ କାଳରେ | ॥ | ୧୧୬ |
| | ମଣ୍ଡଳେଶ୍ୱରମଧ୍ୟେ ସ୍ଥିତ | ହୃଦୟ ହୋଇଛି ଦୁଃଖିତ | ॥ | ୧୧୭ |
| | ରାଜାନିମିତ୍ତ ମଞ୍ଚା ଯେହି | କଂସ ବସିଲା ତହିଁ ଯାଇ | ॥ | ୧୧୮ |
| ୩୬ | ବୀଣା ମୃଦଙ୍ଗ[2] ତାଳ ବଂଶୀ | ଯେ ତୂର୍ଯ୍ୟ ଏ ଚାରିହେଁ ମିଶି | ॥ | ୧୧୯ |
| | ସେ ମଲ୍ଲତାଳଙ୍କ ଉପରେ | ଶବଦ କରନ୍ତେ ଉଚ୍ଚରେ | ॥ | ୧୨୦ |
| | ଭୂଷିତ ହୋଇ ହରଷରେ | ଗୁରୁମାନଙ୍କ ସହିତରେ | ॥ | ୧୨୧ |
| | ଏହି ସମୟେ ମଲ୍ଲମାନେ | ପ୍ରବେଶ ହୋଇଲେ ସେ ସ୍ଥାନେ | ॥ | ୧୨୨ |
| ୩୭ | ଚାଣୂର ମୁଷ୍ଟିକ ତୋଶଳ | ଯେ କୂଟ ନାମ ଯେବା ଶଳ | ॥ | ୧୨୩ |
| | ମନୋଜ୍ଞ ବାଦ୍ୟେ ପ୍ରମୁଦିତ | ହେଲେ ସଭାରେ ଉପସ୍ଥିତ | ॥ | ୧୨୪ |
| ୩୮ | ନନ୍ଦଗୋପକୁ ଆଦି ହୋଇ | ଯେତେ ଗୋପାଳେ ଥିଲେ ଯାଇ | ॥ | ୧୨୫ |

---

୧. ‘ଅଦ୍‌ଭ୍ୟୋ ବା ଏଷ ପ୍ରାତରୁଦେତି’ (ଶ୍ରୁତିଃ)
“ଯ ଉଦଗାନ୍ ମହତୋଽର୍ଣ୍ଣବାଦ୍ ବିଭ୍ରାଜମାନଃ ସଲିଳସ୍ୟ ମଧ୍ୟାଦ୍ ।
ସ ମା ବୃଷଭୋ ଲୋହିତାକ୍ଷଃ ସୂର୍ଯ୍ୟୋ ବିପଶ୍ଚିନ୍ମନସା ପୁନାତୁ” ॥ (ଶ୍ରୁତିଃ)

୨. ମର୍ଦ୍ଦଳ ।

ଡକାନ୍ତେ ଭୋଜରାଜା ତାଙ୍କୁ । ଦେଇ ଉପାୟନମାନଙ୍କୁ ॥ ୧୨୬
ଏକମଞ୍ଚାରେ ସର୍ବେ ଯାଇଁ । ବସିଲେ ଏକମେଳ ହୋଇ ॥ ୧୨୭
ଧନୁ-ଉତ୍ସବ ଦେଖିବାକୁ । କଂସ ନିଆଇଲା ଯାହାଙ୍କୁ ॥ ୧୨୮
ସେ ରାମକୃଷ୍ଣବେନିଙ୍କର । ମୁଁ ଦୀନବନ୍ଧୁ ପରିଚାର ॥ ୧୨୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ମଲ୍ଲରଙ୍ଗୋପବର୍ଣ୍ଣନଂ
ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ॥

## ତ୍ରିଚତ୍ୱାରିଂଶ ଅଧ୍ୟାୟ

ତ୍ରିଚତ୍ୱାରିଂଶକେ ହତ୍ୱା ଗଜେନ୍ଦ୍ରଂ ରାମକୃଷ୍ଣୟୋଃ ।
ରଙ୍ଗପ୍ରବେଶସୌଭାଗ୍ୟଂ ଚାଣୂରେଣ ଚ ଭାଷଣମ୍ ॥

ଶ୍ରୀଶୁକ ଉବାଚ

୧ ହେ ନୃପ ! ଗତ ଦିବସରେ । ନିର୍ଦ୍ଦୋଷଭାବକୁ ମନରେ ॥ ୧
ବିଚାରି ଧନୁଭଙ୍ଗ ଆଦି । କଥାକୁ ଯେ ଥିଲେ ସଂପାଦି ॥ ୨
ଆମ୍ଭର ବଳ ଦେଖି ଯେବେ । ପିତାଙ୍କୁ ନ ଛାଡ଼ିବ ତେବେ ॥ ୩
ବିଚାରିବ ଏ ଆମ୍ଭ ନାଶ । ମାତୁଳ ହେଲେ ହେଁ ଏ କଂସ ॥ ୪
ନିର୍ଦ୍ଦୋଷଭାବ ଆମ୍ଭଠାରେ । ହୋଇବ ଏହାର ବଧରେ ॥ ୫
ଶୁଦ୍ଧଭାବକୁ ଏ ପ୍ରକାରେ । ବିଚାରିଥିଲେ ଯେ ମନରେ ॥ ୬
ଏଥୁଅନ୍ତେ ସେ ରାମ ହରି । ମଲ୍ଲଦୁନ୍ଦୁଭି ଶୁଣିକରି ॥ ୭
ଦେଖିବା ନିମିତ୍ତେ ତୁରିତ । ହୋଇଲେ ତହିଁ ଉପଗତ ॥ ୮
୨ ମିଳିଣ ରଙ୍ଗଦ୍ୱାରେ ଯାଇଁ । ଦେଖିଲେ ହସ୍ତୀ ଅଛି ତହିଁ ॥ ୯
ସେ କୁବଳୟାପୀଡ଼ ଗଜ । ମାହୁନ୍ତ କରାଇଛି ତେଜ ॥ ୧୦
୩ ଯୁଦ୍ଧକୁ ଉଚିତ ଯେ ପୁଣ । ସେ ପରିଧାନକୁ ବାନ୍ଧିଣ ॥ ୧୧
କୁଟିଳ ଯେ ଅଳକମାନ । ତାହାକୁ କରିଣ ବନ୍ଧନ ॥ ୧୨
ମେଘନିନାଦର ସମାନ । ଗଭୀର ଅଟେ ଯେ ବଚନ ॥ ୧୩
ହସ୍ତିପାଳକୁ ତେଣେ କରି । ବଚନ କହିଲେ ଶ୍ରୀହରି ॥ ୧୪
୪ ଅମ୍ବଷ୍ଠ[୧] ଅମ୍ବଷ୍ଠ ! ମାର୍ଗକୁ । ଦିଅ ଆମ୍ଭ ଦୁଇଜଣଙ୍କୁ ॥ ୧୫
ଏଠାରୁ ଯାଅ ତୁ ବେଗରେ । ନ ଗଲେ ହସ୍ତିସହିତରେ ॥ ୧୬
ଯମଗୃହକୁ ଆଜ ତୋତେ । ପେଷିବି ଶୁଣିଥାଅ ଏତେ ॥ ୧୭
୫ ଏ ରୂପେ ହୁଅନ୍ତେ ଭର୍ତ୍ସିତ । ଅମ୍ବଷ୍ଠ ହୋଇଲା କୁପିତ ॥ ୧୮
ଯେ କାଳ-ଅନ୍ତକ ଯମର । ସମାନ, କୋପିତ କୁଞ୍ଜର ॥ ୧୯

୧. ଅମ୍ବଷ୍ଠ = ମାହୁନ୍ତ ।

ବଧନିମିତ୍ତରେ କୃଷ୍ଣର । ତାହାକୁ ପେଷିଲା ସତ୍ୱର ॥
୬ କରୀନ୍ଦ୍ର ଧାଇଁଣ ବେଗରେ । କୃଷ୍ଣଙ୍କୁ ଧଇଲା କରରେ ॥
କରୁଁ ବିଗଳିତ ହୋଇଣ । ମୁଷ୍ଟିରେ ତାହାକୁ ମାରିଣ ॥
ପାଦମାନଙ୍କରେ ହସ୍ତିର । ଅନ୍ତର[1] ହେଲେ ଦାମୋଦର ॥
୭ ଅଦୃଶ୍ୟ ହେଲେ ଦାମୋଦର । ତାହାଙ୍କୁ ନ କରି ଗୋଚର ॥
ଆଘ୍ରାଣ ଅଟେ ଦୃଷ୍ଟି ଯାର । କୁପିତ ହୋଇ ସେ କୁଞ୍ଜର ॥
କୃଷ୍ଣଙ୍କୁ କରର ଅଗ୍ରରେ । ଧଇଲା, ଗଲେ ସେ ବଳରେ ॥
୮ ଅତିବଳିଷ୍ଠ ସେ କୁଞ୍ଜର । ଧରି ଲାଙ୍ଗୁଳକୁ ତାହାର ॥
ପଚିଶ ଧନୁ[2] ଯେତେ ଦୂର । ଓଟାରି ନେଲେ ଦାମୋଦର ॥
ସେ ନାଗ[3] ସର୍ପର ସମାନ । ଏ କୃଷ୍ଣ ଲୀଳାରେ ସୁପର୍ଣ୍ଣ ॥
୯ ସେ ଦକ୍ଷିଣକୁ ଭ୍ରମେ ଯେବେ । ସବ୍ୟକୁ ନିଅନ୍ତି ଏ ତେବେ ॥
ଭ୍ରମନ୍ତେ ସେ ସବ୍ୟଭାଗକୁ । ବୁଲାନ୍ତି ତାକୁ ଦକ୍ଷିଣକୁ ॥
ଗୋବତ୍ସେ ବାଳକ ଯେସନ । ସେ କୃଷ୍ଣ ଯେ ବା ଅନ୍ୟଜନ ॥
୧୦ ଅଭିମୁଖକୁ ତଦନ୍ତରେ । ଆସିଣ ହସ୍ତିକି ହସ୍ତରେ ॥
ମାରିଣ ବେଗେ ଗଲେ ଧାଇଁ । ଯେମନ୍ତ ରୂପେ ସେ ପଡ଼ଇ ॥
ତେମନ୍ତ ପ୍ରକାରେ ଆପଣ । ଧାଇଁଲେ ତାକୁ ବଞ୍ଚାନ୍ତେଣ[4] ॥
୧୧ ଧାବନ୍ତେ କ୍ରୀଡ଼ାରେ ଭୂମିରେ । ପଡ଼ି ଉଠିଲେ ସେ ସତ୍ୱରେ ॥
ପଡ଼ିଲେ ଏମନ୍ତ ଜାଣିଣ । କ୍ରୁଦ୍ଧ ହୋଇଣ ହସ୍ତୀ ପୁଣ ॥
ଭୂମିକି ଦନ୍ତ ଯୁଗଳରେ । ଆହତ କଲା ସେ ବେଗରେ ॥
୧୨ ନିଜ ବିକ୍ରମ ଯାନ୍ତେ ନାଶ । ହସ୍ତୀ ଅତ୍ୟନ୍ତ କୋପବଶ ॥
ମାହୁନ୍ତ ପେଷନ୍ତେ ତାହାକୁ । ରୋଷରେ ଧାଇଁଲା କୃଷ୍ଣଙ୍କୁ ॥
୧୩ ଆସନ୍ତେ ସେ କୁଞ୍ଜର ଧାଇଁ । ମଧୁସୂଦନ ତାକୁ ପାଇ ॥
ହସ୍ତେ ତା' ହସ୍ତ ଧରି ବଳେ । ପକାଇ ଦେଲେ ଭୂମିତଳେ ॥
୧୪ ମୃଗେନ୍ଦ୍ରପ୍ରାଏକ ଲୀଳାରେ । ପଡ଼ିଲା ହସ୍ତିକି ପାଦରେ ॥
ଆକ୍ରମି[5] ଉପାଡ଼ି ତା' ଦନ୍ତ । ଯେତେକ ଥିଲେ ତା' ମାହୁନ୍ତ ॥
ତାହାଙ୍କୁ ସେହି ଦନ୍ତ ଧରି । ବିନାଶ କଲେ ଦେବ ହରି ॥
୧୫ ମଲା ହସ୍ତିକି ଛାଡ଼ି କରି । ପ୍ରବେଶ ହେଲେ ଦନ୍ତ ଧରି ॥
[6]ରଙ୍ଗସଭାକୁ ହୃଷୀକେଶ । ସେଦିନ ହୁଅନ୍ତେ ପ୍ରବେଶ ॥
ଯେ ଶୋଭା ଧରେ ବୀର ଜନ । ତେଣେ ଦିଶିଲେ ଶୋଭମାନ ॥
ନିଜ କାନ୍ଧରେ ହସ୍ତିଦନ୍ତ । କରିଅଛନ୍ତି ଯେ ଅର୍ପିତ ॥

---

୧. ଅନ୍ତର = ଅଦୃଶ୍ୟ । ୨. ଧନୁ = ଚାରିହାତ । ୩. ନାଗ = ହସ୍ତୀ ।
୪. ବଞ୍ଚାନ୍ତେଣ = ବଞ୍ଚନା କରନ୍ତେଣ । ୫. ଆକ୍ରମି = ଆକର୍ଷି ।
୬. ''ରଙ୍ଗମ୍ ସମାବିଶନ୍ କୃଷ୍ଣସ୍ତଦା ବୀରଶ୍ରିୟା ବଭୌ'' ଇତି ଅଧିକଃ ପାଠଃ ।

ଯେ ରକ୍ତ-ମଦ-ବିନ୍ଦୁ ଆର । ତେଣେ ଅଙ୍କିତ କଳେବର ॥ ୫୦
ମୁଖପଙ୍କଜେ ସ୍ୱେଦ ଜାତ । ସୁନ୍ଦର ଦିଶିଲେ ଅଚ୍ୟୁତ ॥ ୫୧
୧୬ କେତେହେଁ ଗୋପାଳ ସଙ୍ଗରେ । ବେଢ଼ି ଅଛନ୍ତି ହରଷରେ ॥ ୫୨
ଯେବଣ ଦନ୍ତ ମାତଙ୍ଗର । ସେ ଶ୍ରେଷ୍ଠ ଆୟୁଧ ଯାଙ୍କର ॥ ୫୩
ହେ ନୃପ ! ରାମ ହୃଷୀକେଶ । ରଙ୍ଗରେ ହୋଇଲେ ପ୍ରବେଶ ॥ ୫୪
୧୭ [୧]ମାଲଙ୍କୁ କୁଳିଶ-ଆକାର । ନରମାନଙ୍କୁ ନରବର ॥ ୫୫
ନାରୀଙ୍କି ସୁମୂର୍ତ୍ତି ମଦନ । ଗୋପାଳମାନଙ୍କୁ ସ୍ୱଜନ ॥ ୫୬
ଅସନ୍ତ ଯେତେ ନରନାଥ । ତାହାଙ୍କୁ ଦଣ୍ଡଦାତାମତ ॥ ୫୭
ବାଳକ ପିତାମାତାଙ୍କର । କଂସନୃପକୁ ଦଣ୍ଡଧର ॥ ୫୮
ଅଜ୍ଞାନୀ[୨] ଯେତେ ଥିଲେ ନର । ତାହାଙ୍କୁ ବିରାଟ ଆକାର ॥ ୫୯
ପରମତତ୍ତ୍ୱ ଯୋଗିଙ୍କର । କୁଳଦେବତା ଯଦୁଙ୍କର ॥ ୬୦
ଏ ରୂପେ ବିଦିତ ରଙ୍ଗରେ । ମିଳିଲେ ରାମସହିତରେ ॥ ୬୧
୧୮ ଯେ କୁବଳୟାପୀଡ଼ ଦନ୍ତୀ । ତାହାର ସଂଭବିଲା କ୍ଷତି ॥ ୬୨
ଦୁର୍ଜୟ ରାମ-ଦାମୋଦର । ଏକଥା କରିଣ ଗୋଚର ॥ ୬୩
ଯଦ୍ୟପି ଦୃଢ଼ ଅତିଶୟ । ଅଟଇ ତାହାର ଆଶୟ ॥ ୬୪
ହେ ନୃପ ! ତଥାପି ହି କଂସ । ଉଦ୍‌ବେଗ ଲଭିଲା ବିଶେଷ ॥ ୬୫
୧୯ ବିଚିତ୍ର ଯାହାଙ୍କର ବେଷ । ଭୂଷଣ ପୁଷ୍ପ-ମାଳା ବାସ ॥ ୬୬
ବିଶାଳ ଅଟେ ଭୁଜଦୁଇ । ସେ ରାମ କୃଷ୍ଣ ବେନି ଭାଇ ॥ ୬୭
ହୋଇଲେ ରଙ୍ଗସଭାଗତ । ଦିଶିଲେ ଅତ୍ୟନ୍ତ ଶୋଭିତ ॥ ୬୮
ଉତ୍ତମ ବେଷ ଧରିଥାଇଁ । ଦିଶନ୍ତି ଯେହ୍ନେ ନଟ ଦୁଇ ॥ ୬୯
ଦେଖୁଅଛନ୍ତି ଯେତେ ଜନ । ତେଜେ ହରନ୍ତେ ତାଙ୍କ ମନ ॥ ୭୦
୨୦ ଯେ ମଞ୍ଚେ ଥିଲେ ପୁରଜନ । ଯେ ଦେଶଜନେ ଯେ ରାଜନ ॥ ୭୧
ଯେ ହଳଧର-ପୀତବାସ । ଅଟନ୍ତି ଉତ୍ତମ ପୁରୁଷ ॥ ୭୨
ଦେଖି ତାହାଙ୍କୁ ଯେ ହରଷ । ବେଗ ହୋଇଲା ପରକାଶ ॥ ୭୩
ତେଣେ ସେମାନଙ୍କ ନୟନ । ବିକାଶ ହୋଇଲା ଆନନ ॥ ୭୪
ସେ ରାମକୃଷ୍ଣ ବେନିଙ୍କର । ମୁଖକୁ ନେତ୍ରେ ଆପଣାର ॥ ୭୫
ପାନ କରନ୍ତେ ହେଁ ସେମାନେ । ତୃପ୍ତିକି ନ ଲଭିଲେ ମନେ ॥ ୭୬
୨୧ ପିଇଲା ପ୍ରାଏ ଦ୍ୱିନେତ୍ରରେ । ଲେହିଲା ପ୍ରାଏକ ଜିହ୍ୱାରେ ॥ ୭୭
ନାସିକାବେନିପୁଟେ ପୁଣ । କରିବା ପ୍ରାଏକ ଆଘ୍ରାଣ ॥ ୭୮

---

୧. ରୌଦ୍ରୋଽଦ୍ଭୁତଶ୍ଚ ଶୃଙ୍ଗାରୋ ହାସ୍ୟଂ ବୀରୋ ଦୟା ତଥା ।
ଭୟାନକଶ୍ଚ ବୀଭତ୍ସଃ ଶାନ୍ତଃ ସପ୍ରେମଭକ୍ତିକଃ ॥ ଇତି
ମଲ୍ଲାଦିଷୁ କ୍ରମେଣାଭିବ୍ୟକ୍ତାଃ ରସାଃ

୨. ବିଜ୍ଞାନୀ ।

ବାହୁମାନଙ୍କେ ଆଲିଙ୍ଗନ । କରିବା ପ୍ରାଏ ସେହୁ ଜନ ॥ ୭୯
୨୨ ଯେମନ୍ତରୂପେ ଗୋବର୍ଦ୍ଧନ । ଉଦ୍ଧାର ଆଦି କର୍ମମାନ ॥ ୮୦
ଶ୍ରବଣ କରିଥିଲେ ପୂର୍ବେ । ଧନୁଭଙ୍ଗାଦି କର୍ମ ଏବେ ॥ ୮୧
ଦେଖିଲେ, ତେଣୁ ପରସ୍ପରେ । ବଚନ କହିଲେ ସେ ନରେ ॥ ୮୨
ସେ ବେନିଙ୍କର ରୂପ, ଗୁଣ । ମାଧୁର୍ଯ୍ୟ ପ୍ରଗଲ୍‌ଭତା ପୁଣ ॥ ୮୩
ତେଣୁ ସ୍ମରଣକୁ ସେମାନେ । ଲଭିଲାପ୍ରାୟ ନିଜ ମନେ ॥ ୮୪
୨୩ ଯେ ନାରାୟଣ ଭଗବନ୍ତ । ତାହାଙ୍କ ଅଂଶେ[1] ଏ ସାକ୍ଷାତ ॥ ୮୫
ଏପୁରେ ବସୁଦେବଘରେ । ଜନମ ହୋଇଲେ ପୂର୍ବରେ ॥ ୮୬
୨୪ ଦେବକୀ-ଉଦରେ ଏ ଜାତ । ନେଲାଟି ଗୋକୁଳକୁ ତାତ ॥ ୮୭
ଗୁପତ ହୋଇ ଏତେ ଦିନ । ରହନ୍ତେ ନନ୍ଦର ଭବନ ॥ ୮୮
୨୫ ପୂତନାକୁ ଏ କଲା ହତ । ଯଉଁ ଦାନବ ଚକ୍ରବାତ ॥ ୮୯
ଧେନୁକ, ଯେ ବେନି ଅର୍ଜୁନ । ଯେ କେଶୀ ଶଙ୍ଖଚୂଡ଼ ଆନ ॥ ୯୦
ଏ ରୂପେ ଯେତେ ଦୁଷ୍ଟ ଆନ । ତାହାଙ୍କୁ କଲା ଏ ନିଧନ ॥ ୯୧
୨୬ ପାଳକମାନଙ୍କ ସହିତେ । ଯେ ଧେନୁ ଥିଲେ ବନଗତେ ॥ ୯୨
ତାହାଙ୍କୁ ବନହୁତାଶନ । ମଧ୍ୟରୁ କଲା ଏ ମୋଚନ ॥ ୯୩
କାଳିୟସର୍ପକୁ ଦଳିଲା[2] । ଇନ୍ଦ୍ରକୁ ହତଗର୍ବ କଲା ॥ ୯୪
୨୭ ଏକହସ୍ତରେ ଦିନ ସାତ । ଧଇଲା ଏ ଶ୍ରେଷ୍ଠ ପର୍ବତ ॥ ୯୫
ବରଷା-ବାତ-ବଜ୍ରୁଁ ପୁଣ । ଏ କଲା ଗୋକୁଳ ରକ୍ଷଣ ॥ ୯୬
୨୮ ଯହିଁରେ ନିତ୍ୟ ସହରଷ । ହସିତ ପ୍ରେକ୍ଷଣ ପ୍ରକାଶ ॥ ୯୭
[3]ଦେଖନ୍ତେ ଏହାର ବଦନ । ଯେ ବା ବିବିଧ ତାପମାନ ॥ ୯୮
ଶ୍ରମ ନ ଲଭି ହରଷରେ । ଗୋପୀ ତରନ୍ତି ତା' ନିର୍ଭରେ ॥ ୯୯
୨୯ ଏ ରକ୍ଷା କରନ୍ତେ ଯଦୁର । ଏ ବଂଶ ଅତ୍ୟନ୍ତ-ବିସ୍ତାର ॥ ୧୦୦
ଲଭିବ ଶ୍ରୀ ଯଶ ମହତ୍ତ୍ୱ । ସୁଜନେ ବୋଲନ୍ତି ଏମନ୍ତ ॥ ୧୦୧
୩୦ ଶ୍ରୀମନ୍ତ ଏ ଜ୍ୟେଷ୍ଠ ଏହାର । କମଳପ୍ରାୟ ନେତ୍ର ଯାର ॥ ୧୦୨
କଲା ଏ ପ୍ରଳମ୍ବକୁ ହତ । [4]ଯେ ବତ୍ସ ଧେନୁକାଦି[5] ଦୈତ୍ୟ ॥ ୧୦୩
୩୧ ଏମନ୍ତ ପ୍ରକାର ବଚନ । କହନ୍ତେ ନାନାବିଧ ଜନ ॥ ୧୦୪
ବାଜନ୍ତେ ତୂର୍ଯ୍ୟବାଦ୍ୟମାନ । ଚାଣୂର କରି ସମ୍ବୋଧନ ॥ ୧୦୫
କୃଷ୍ଣରାମଙ୍କୁ ଏ ପ୍ରକାରେ । ବଚନ କହିଲା ସେଠାରେ ॥ ୧୦୬
୩୨ ହେ ରାମ ! ହେ ନନ୍ଦତନୟ ! । ବୀର୍ଯ୍ୟ[6] ସମ୍ମତ ତୁମ୍ଭେ ଦ୍ୱୟ ॥ ୧୦୭

---

୧. ଅଂଶେ - ଏଠାରେ ପ୍ରତୀତି-ଅଭିପ୍ରାୟରେ କୁହାଯାଇଛି । ବସ୍ତୁତଃ କୃଷ୍ଣ ସ୍ୱୟଂ ଭଗବାନ୍ ।
୨. ଦଂଶିଲା ।    ୩. ଦେଖନ୍ତେ ଏ-ହାସବଦନ (ଗୋପ୍ୟୋଽସ୍ୟ......ମୁଖଂ) ।
୪. ଧେନୁକ-ବକ-ବତ୍ସାସୁରେଷୁ ବିପର୍ଯ୍ୟୟୋକ୍ତିର୍ଜନବାଦେଷୁ ଅନିଶ୍ଚୟାତ୍ (ସ୍ୱାମୀ) ।
୫. ବକ ଆଦି ।    ୬. ବୀର ।

| | | | | |
|---|---|---|---|---|
| | ଯୁଦ୍ଧେ କୁଶଳ ତୁମ୍ଭେ ପୁଣି | । ଏମନ୍ତ ଲୋକଠାରୁ ଶୁଣି | ।। | ୧୦୮ |
| | ଦେଖିବା ନିମିତ୍ତେ ତୁମ୍ଭଙ୍କୁ | । ରାଜା ଅଣାଇଲେ ଏଠାକୁ | ।। | ୧୦୯ |
| ୩୩ | ମନରେ କର୍ମରେ ବଚନେ | । ରାଜାର ପ୍ରୀତି ପ୍ରଜାମାନେ | ।। | ୧୧୦ |
| | କରନ୍ତେ ଲଭନ୍ତି ଶ୍ରେୟକୁ | । ଅନ୍ୟଥା ହେଲେ ଅଭଦ୍ରକୁ | ।। | ୧୧୧ |
| ୩୪ | ଗୋପାଳେ ବସ୍ତପାଳମାନେ | । ନିତ୍ୟେ ହରଷ ହୋଇ ବନେ | ।। | ୧୧୨ |
| | ଖେଳନ୍ତେ ମଲ୍ଲଯୁଦ୍ଧେ, ଗାଈ | । ଚରାନ୍ତି ଏ ସ୍ଫୁଟ ଅଟଇ | ।। | ୧୧୩ |
| ୩୫ | ସେ ଘେନି ତୁମ୍ଭେ ଆମ୍ଭେ ଦ୍ୱୟ | । କରିବା ନୃପତିର ପ୍ରିୟ | ।। | ୧୧୪ |
| | ଯେତେ ଅଛନ୍ତି ଭୂତମାନ | । ଆମ୍ଭଙ୍କୁ ହୁଅନ୍ତୁ[୧] ପ୍ରସନ୍ନ | ।। | ୧୧୫ |
| | ସକଳଭୂତମୟ ହୋଇ | । ନୃପତି ବିଦିତ ଅଟଇ | ।। | ୧୧୬ |
| ୩୬ | ନିଯୁଦ୍ଧ[୨] ଇଷ୍ଟ ଆପଣାର | । ଜାଣନ୍ତେ ଏହା ଦାମୋଦର | ।। | ୧୧୭ |
| | ଚାଣୂର-ସେ-ବଚନ ଶୁଣି | । ଯେ ଦେଶ-କାଳୋଚିତ ବାଣୀ | ।। | ୧୧୮ |
| | ସେ ବାକ୍ୟ କହିଲେ ତାହାକୁ | । ଲଭିଣ ମନେ ଆନନ୍ଦକୁ | ।। | ୧୧୯ |
| ୩୭ | ଯେ ଆମ୍ଭେମାନେ ବନଚର | । ପ୍ରଜାଏ ଭୋଜନୃପତିର | ।। | ୧୨୦ |
| | ନିତ୍ୟେ କରୁଁ ଏହାଙ୍କ ପ୍ରିୟ | । ସେ ଆମ୍ଭ ବଡ଼ ଅନୁଗ୍ରହ | ।। | ୧୨୧ |
| ୩୮ | ଆମ୍ଭେ ବାଳକ ଯେ ଆମ୍ଭର | । ସମାନବଳ ତାହାଙ୍କର | ।। | ୧୨୨ |
| | ସଙ୍ଗେ ଖେଳିବୁଁ ଯଥୋଚିତେ | । ବାହୁଯୁଦ୍ଧରେ ନାନାମତେ | ।। | ୧୨୩ |
| | ହେ ମଲ୍ଲ ! ସଭାସଦ ଯେହୁ | । ତାହାଙ୍କୁ ଅଧର୍ମ ନ ଛୁଉଁ | ।। | ୧୨୪ |

ଚାଣୂର ଉବାଚ

| | | | | |
|---|---|---|---|---|
| ୩୯ | କୃଷ୍ଣର ଏ ବଚନ ଶୁଣି | । ଚାଣୂର କହୁଅଛି ପୁଣି | ।। | ୧୨୫ |
| | ବାଳକ କିଶୋର ହୋଇଣ | । ଯେ ବେନି ତୁମ୍ଭେ ନୁହ ପୁଣ | ।। | ୧୨୬ |
| | ବଳିଷ୍ଠ ଲୋକମାନଙ୍କର | । ମଧ୍ୟେ ଏ ବଳଭଦ୍ର ବର | ।। | ୧୨୭ |
| | ସହସ୍ରସଂଖ୍ୟ ହସ୍ତିଙ୍କର | । ବଳକୁ ଧରେ ଯେ କୁଞ୍ଜର | ।। | ୧୨୮ |
| | ଯେ ତୁମ୍ଭେ ତାହାକୁ ଲୀଳାରେ | । ବିନାଶ କଲ ଏ ସ୍ଥାନରେ | ।। | ୧୨୯ |
| ୪୦ | ସେ ଘେନି ତୁମ୍ଭ ଦୁହିଁଙ୍କର | । ସଙ୍ଗତେ ବଳିଷ୍ଠ ଯେ ନର | ।। | ୧୩୦ |
| | ସେମାନେ କରିବେ ସମର | । ଅଧର୍ମ ନାହିଁ ତ ଏଥିର | ।। | ୧୩୧ |
| | ସେ ଘେନି କରି ବୃଷ୍ଣିସୁତ | । ତୁ ଯୁଦ୍ଧ କର ମୋ ସଙ୍ଗତ | ।। | ୧୩୨ |
| | ମୁଷ୍ଟିକ ବଳଭଦ୍ରତୁଲେ | । ଯୁଦ୍ଧ ଆରମ୍ଭ କରୁ ଭଲେ | ।। | ୧୩୩ |
| | ଗଜକୁ ମାରି ବାହୁବଳେ | । ମିଳିଲେ ଯେହୁ ସଭାତଳେ | ।। | ୧୩୪ |
| | ସେ କୃଷ୍ଣ ପାଦପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁ ମତି | ।। | ୧୩୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ କୁବଳୟାପୀଡ଼ବଧୋ ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।।

---

୧. ହୁଅନ୍ତି । (ପ୍ରସୀଦନ୍ତି ଇତି ପାଠେ) ୨. ନିଯୁଦ୍ଧ = ବାହୁଯୁଦ୍ଧ ।

# ଚତୁଶ୍ଚତ୍ୱାରିଂଶ ଅଧ୍ୟାୟ

ଚତୁଶ୍ଚତ୍ୱାରିଂଶକେ ତୁ ମଲ୍ଲକଂସାଦିମର୍ଦ୍ଦନମ୍ ।
କଂସଯୋଷିଦ୍‌ସମାଶ୍ୱାସସ୍ତାଭ୍ୟାଂ ପିତ୍ରୋଶ୍ଚ ଦର୍ଶନମ୍ ।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ବୋଲନ୍ତି ବେଦବ୍ୟାସସୁତ | । ଶୁଣ ହେ ନୃପ ପରୀକ୍ଷିତ | ।। | ୧ |
| | ଯାର ସଂକଳ୍ପ ନୋହେ ଆନ | । ସେ ମଧୁରିପୁ ଭଗବାନ | ।। | ୨ |
| | ମିଳିଲେ ଆସି ଚାଣୂରକୁ | । ମାଲବିନ୍ଧାଣେ[୧] ଯୁଝିବାକୁ | ।। | ୩ |
| | ମୁଷ୍ଟିକମାଲ-ଅଗ୍ରଗତ | । ହୋଇଲେ ରୋହିଣୀର ସୁତ | ।। | ୪ |
| ୨ | ହସ୍ତଯୁଗଳ ହସ୍ତେ ବାନ୍ଧି | । ବେନିପାଦକୁ ପାଦେ ଛନ୍ଦି | ।। | ୫ |
| | ବଳେ ଜିଣିମା ମନ କଲେ | । ଏକ ଆରକେ ଓଟାରିଲେ | ।। | ୬ |
| ୩ | ଛାଡ଼ିଣ କନିଷ୍ଠ ଅଙ୍ଗୁଷ୍ଠି | । ବେନି ହସ୍ତରେ କରି ମୁଷ୍ଟି | ।। | ୭ |
| | ସେ ନନ୍ଦନନ୍ଦନ ଚାଣୂର | । କରରେ କର ଉରେ ଉର | ।। | ୮ |
| | ଜାନୁରେ ଜାନୁ ଶିରେ ଶିର | । ପ୍ରହାର କଲେ ପରସ୍ପର | ।। | ୯ |
| ୪ | ହସ୍ତ ଧରିଣ ବୁଲାଇବା | । ଏକ ଆରେକ ପେଲି ଦେବା | ।। | ୧୦ |
| | ବେନିଭୁଜରେ ଭିଡ଼ାଭିଡ଼ି | । କେ କେତେବେଳେ ତଳେ ପଡ଼ି | ।। | ୧୧ |
| | ଉଠି କେ ଟଳଇ ଆଗକୁ | । କେ ଯାଇ କାହାର ପଛକୁ | ।। | ୧୨ |
| | ଏମନ୍ତ ଚେଷ୍ଟା ପ୍ରକାଶିଲେ | । ଦୁହେଁ ଦୁହିଁଙ୍କି ନିରୋଧିଲେ | ।। | ୧୩ |
| ୫ | ଏକକୁ ଆରକ ଜିଣିମା | । ଅର୍ଥରେ କରିଣ ଗାରିମା | ।। | ୧୪ |
| | ପାଦଯୁଗଳ ଆଣ୍ଠୁ ବେନି | । ଲୋଚା କରିଣ କେ ଅବନି | ।। | ୧୫ |
| | ତଳରେ ପଡ଼ନ୍ତେ ସତ୍ୱର | । ଫିଟାଇ ତହିଁ କେ କାହାର | ।। | ୧୬ |
| | ଦୁଇ ହସ୍ତରେ କେ କାହାକୁ | । ଧରି ଟେକନ୍ତେ ଉପରକୁ | ।। | ୧୭ |
| | କେ କାହା କଟି କଣ୍ଠସ୍ଥାନ | । ଭିଡ଼ନ୍ତେ ଛଡ଼ାଇ[୨] ବହନ | ।। | ୧୮ |
| | କେ କାହା ପାଣି ପାଦ ଧରି | । ବଳେ ରଖଇ ଲୋଚା କରି | ।। | ୧୯ |
| | ଏମନ୍ତ ପ୍ରକାରେ ସେ ଦୁହେଁ | । ଅପଘାତକୁ କଲେ ଦେହେ | ।। | ୨୦ |
| ୬ | ଶୁଣ ରାଜନ ଏକମନେ | । ଯେତେ ମଥୁରା ନାରୀମାନେ | ।। | ୨୧ |
| | ସେ ସର୍ବେ ଯୂଥ ଯୂଥ ହୋଇ | । ଏକ ଆରେକ ଦୟା ବହି | ।। | ୨୨ |
| | ବୋଇଲେ ବାଳ-ବଳବନ୍ତ | । ଯୁଦ୍ଧ ଏ ବିଷମ ଅତ୍ୟନ୍ତ | ।। | ୨୩ |
| ୭ | ଏ ରାଜସଭାଲୋକଙ୍କର | । ଅତ୍ୟନ୍ତ ଅଧର୍ମ ଆଚାର | ।। | ୨୪ |

---

୧. ମାଲବିନ୍ଧାଣ (ସଂ-ମଲ୍ଲବିଧାନ) ।
ପାଦ-ଅଗ୍ରେ ଯେ ଚାଳଇ କ୍ଷେପିଣ ।
ତାକୁ ସେ ଜାଣିବୁ ମାଲବିନ୍ଧାଣ ।। ପ୍ରାଚୀ ପରଚେ ଗୀତା ।

୨. ଛିଡ଼ାଇ ।

ଯେ ବାଳ-ବଳବନ୍ତ ବେନି । ଜନଙ୍କ ଯୁଦ୍ଧ ମନେ ଘେନି ॥
ଦେଖନ୍ତେ ଏ କଂସ ନୃପତି । କରୁଅଛନ୍ତି ଅନୁମତି ॥
୮ ବଜ୍ରରୁ ଅତ୍ୟନ୍ତ କଠିନ । ଯାହାଙ୍କ ସର୍ବ ଅଙ୍ଗମାନ ॥
ଯେ ମହାଗିରିବରତୁଲ । କାହିଁ ଅବା ସେ ବେନିମାଲ ॥
ହୋଇଛି କିଶୋର ବୟସ । ନାହିଁ ଯୌବନର ପ୍ରବେଶ ॥
କାହିଁ ବା ଅତିସୁକୁମାରେ । ଏ ବେନି ନନ୍ଦର କୁମରେ ॥
୯ ଏ ସଭାରେ ଏ ଯେତେ ଜନ । କଲେ ଏ ଧର୍ମକୁ ଲଙ୍ଘନ ॥
ଅଧର୍ମ ପ୍ରବର୍ତ୍ତଇ ଯହିଁ । କେବେ ହେଁ ସେଠାରେ ନ ରହି ॥
୧୦ ଏମନ୍ତ ପୁଣ ପୁଣ କେହି । ନାରୀଏ ବୋଇଲେକ ତହିଁ ॥
ସଭାରେ ଥିବା ଲୋକଙ୍କର । ଦୋଷ କରିଣ ସୁବିଚାର ॥
ଯେ ଜନ ପଣ୍ଡିତ ଅଟଇ । ସଭାରେ ସେ ଜନ ବସଇ ॥
ଜାଣି ନ କହି ତୁନି ହୋଇ । ଅନ୍ୟଥା କରି ଯେ କହଇ ॥
ଏକଥା ମୁଁ ତ ଜାଣିନାହିଁ । ବୋଲି ଯେ ବଞ୍ଚାଇଣ[1] କହି ॥
ଏମନ୍ତ ଲୋକ ଯେ ଦୁରିତ । ସଭାରୁ ଅର୍ଜନ୍ତି ବହୁତ ॥
୧୧ ଚାଣୂର-ଚାରି-ପାରୁଶରେ । ବେଗେ ଧାଆଁନ୍ତେ ଶ୍ରମଭରେ ॥
ଜାତ ଯେ ଝାଳବିନ୍ଦୁମାନ । ତେଣୁ ଏ ଶ୍ରୀକୃଷ୍ଣବଦନ ॥
ଦେଖି ଯେସନେ ଜଳଲେଶ । ସଂଯୋଗେ ଶୋହେ ପଦ୍ମକୋଷ ॥
୧୨ ବୋଲନ୍ତି କଉଁ ନାରୀଜନେ । ଦେଖୁନାହଁ କି ତୁମ୍ଭେମାନେ ॥
ରୋହିଣୀନନ୍ଦନ-ବଦନ । ଅତ୍ୟନ୍ତ ଆରକ୍ତଲୋଚନ ॥
ମୁଷ୍ଟିକପରେ କ୍ରୋଧ ଜାତ । ହାସ-ଆବେଶେ ଯେ ଶୋଭିତ ॥
୧୩ ବୋଲନ୍ତି ନାରୀମାନେ କେହି । ଧନ୍ୟ ଅଟେ ସେ ବ୍ରଜମହୀ ॥
ରମା ଶଙ୍କର ମନେ ଘେନି । ପୂଜନ୍ତି ଯାହା ପାଦବେନି ॥
ଗୁପତେ ନରଦେହ ଧରି । ପରମପୁରୁଷ ସେ ହରି ॥
ବହି ବିଚିତ୍ର ବନମାଳ । ଚରାନ୍ତେ ସୁରଭିପଟଳ ॥
ବଳଦେବଙ୍କୁ ଘେନି ସଙ୍ଗେ । ବଜାନ୍ତେ ବେଣୁ ନାନାରଙ୍ଗେ ॥
କରି ବିବିଧ କ୍ରୀଡ଼ାମାନ । ଯହିଁରେ କରନ୍ତି ଗମନ ॥
୧୪ ଗୋପପୁରେ ସେ ଗୋପୀଗଣ । କି ତପ କଲେ ଆଚରଣ ॥
ଯେବଣ ରୂପ ଶ୍ରୀକୃଷ୍ଣର । ସର୍ବଲାବଣ୍ୟ ଘେନି ସାର ॥
ଯାହାର ନାହିଁ ନା ସମାନ । କାହିଁ ବା ଅଧିକ ବିଧାନ ॥
ନ ଥିଲେ ହେଁ ଯେ ଅଳଂକାର । ଅଟଇ ସ୍ୱୟେଂ ଶୋଭାକର ॥
ଯେ ଅଇଶ୍ୱର୍ଯ୍ୟ ଶିରୀ ଯଶ । ଏହାଙ୍କ ନିଶ୍ଚଳ ନିବାସ ॥

---
୧. ବଞ୍ଚାଇ ନ ।

ଯେ ନବ ନବ ଦିନୁଁଦିନ । ଲଭି ନ ପାରେ ଯାହା ଆନ ॥ ୫୬
ଯଉଁ ଭାଗ୍ୟରେ ପ୍ରତିକ୍ଷଣେ । ଏରୂପ ଦେଖନ୍ତି ଇକ୍ଷଣେ ॥ ୫୭
୧୫ ରଖି ଯେ ନନ୍ଦସୁତେ ଚିତ୍ତ । ସର୍ବବିଷୟେ ଅନୁଗତ ॥ ୫୮
ଗାଈଙ୍କି ଦୁହିଁବାର କାଳେ । କାନ୍ଦନ୍ତେ ଆପଣାର ବାଳେ ॥ ୫୯
କରନ୍ତେ ଦୋଳିଆନ୍ଦୋଳନ । ଲେପନ-ମାର୍ଜନ-ସେଚନ ॥ ୬୦
ଧାନ୍ୟକୁଟ୍ଟନସମୟରେ । ଦଧିମନ୍ଥନବ୍ୟାପାରରେ ॥ ୬୧
ଏମନ୍ତେ ଯାହା ଯେ କରନ୍ତି । ଶ୍ରୀକୃଷ୍ଣଯଶ 'ତହିଁ ଗା'ନ୍ତି ॥ ୬୨
ଅତି ହିଁ ଅନୁରାଗ-ମନେ । ସଗଦଗଦ କଣ୍ଠସ୍ଥାନେ ॥ ୬୩
ସେ ବ୍ରଜପୁରନାରୀମାନେ । ଧନ୍ୟ ଅଟନ୍ତି ତ୍ରିଭୁବନେ ॥ ୬୪
୧୬ ପ୍ରାତଃକାଳରେ ବ୍ରଜପୁରୁଁ । ବନକୁ ଯା'ନ୍ତେ ଘେନି ଗୋରୁ ॥ ୬୫
ବେଣୁ ବଜାଇ ନାନାରଙ୍ଗେ । ଆସନ୍ତେ ଦିନପ୍ରାନ୍ତଭାଗେ ॥ ୬୬
ଶୁଣି ସେ ବେଣୁର ନିଃସ୍ୱନ । ଘରରୁ ଆସି ଯେ ବହନ ॥ ୬୭
ନନ୍ଦନନ୍ଦନ-ଆଗମନ । ମାର୍ଗରେ ରହି ପ୍ରତିଦିନ ॥ ୬୮
ସଦୟ ଦୃଷ୍ଟିର ସଂଚାର । ମନ୍ଦହାସରେ ମନୋହର ॥ ୬୯
କୃଷ୍ଣର ବଦନ-ନଳିନ । ଦେଖନ୍ତି ହୋଇ ଏକମନ ॥ ୭୦
ସେ ବ୍ରଜପୁରର ଯୁବତୀ । ଅଟନ୍ତି ଅତିପୁଣ୍ୟବତୀ ॥ ୭୧
୧୭ ସେ ଯେ ମଥୁରାନାରୀମାନେ । ଏମନ୍ତ ବୋଲନ୍ତେ ବଚନେ ॥ ୭୨
ହେ ପରୀକ୍ଷିତ ଦଣ୍ଡଧର । ସେ ଭଗବାନ ଯୋଗେଶ୍ୱର ॥ ୭୩
ମାଲଙ୍କୁ ମାରିବା ଅର୍ଥରେ । ବିଚାର କଲେକ ମନରେ ॥ ୭୪
୧୮ ସେ ପୁରନାରୀଙ୍କର ବାଣୀ । ଦେବକୀ-ବସୁଦେବ ଶୁଣି ॥ ୭୫
ପୁତ୍ରସ୍ନେହରେ ଶୋକ ବହି । ଅତି ଆକୁଳଭାବେ ତହିଁ ॥ ୭୬
ଅତ୍ୟନ୍ତ ଅନୁତାପ ମନେ । ଲଭିଲେ ସେ ଭୟ ଉଚ୍ଛନ୍ନେ ॥ ୭୭
ଯେଣୁ ସେ ରାମକୃଷ୍ଣଙ୍କର । ବଳ ତାହାଙ୍କୁ ଅଗୋଚର ॥ ୭୮
୧୯ ଶ୍ରୀକୃଷ୍ଣ ଚାଣୂର ଏ ବେନି । ମାଲବିନ୍ଧାଣ ମନେ ଘେନି ॥ ୭୯
ଏକ ଆରକରେ ସେଠାରେ । ଯୁଝିଲେ ଯେ ଯେତେ ପ୍ରକାରେ ॥ ୮୦
ସେହି ରୂପରେ ହଳଧର । ଯୁଝିଲେ ମୁଷ୍ଟିକ ସଙ୍ଗର ॥ ୮୧
୨୦ ମହାପ୍ରଚଣ୍ଡ ବଜ୍ରପାତ । ପରାଏ ନିଷ୍ଠୁର ଅତ୍ୟନ୍ତ ॥ ୮୨
ଯେ ଅଙ୍ଗ-ଆଘାତ କୃଷ୍ଣର । ତେଣେ ସେ ଚାଣୂରମଲ୍ଲର ॥ ୮୩
ଭାଜିଲା ଅବୟବମାନ । ବେଳକୁ ବେଳ ହେଲା ଗ୍ଳାନ ॥ ୮୪
୨୧ ସଂଚାଣପ୍ରାଏ ବେଗେ ଧାଇଁ । କୃଷ୍ଣଉପରକୁ ଉଗୁଇଁ² ॥ ୮୫
ମୁଷ୍ଟି କରିଣ ବେନି କରେ । ସେ ଭଗବାନ-ଉରପରେ ॥ ୮୬

୧. ସେ ଗାଆନ୍ତି ।　　୨. ଡିଅଇଁ ।

ତକ୍ଷଣେ କଳାକ ପ୍ରହାର । ଭଜି ଅତ୍ୟନ୍ତ କ୍ରୋଧଭର ॥ ୮୭
୨୨ ମତ୍ତହସ୍ତୀକି ଫୁଲମାଳେ । ମାଇଲେ ସେ ଯେହ୍ନେ ନ ଟଳେ ॥ ୮୮
ତେହ୍ନେ ଚାଣୂରମାଲମୁଥ । ଘାତେ ନ ଟଳି ଗୋପୀନାଥ ॥ ୮୯
ବଳେ ତା ବେନି ବାହା ଧରି । ବହୁତ ବୁଲାଇଲେ ହରି ॥ ୯୦
୨୩ ଏମନ୍ତେ ଯାନ୍ତେ ତାର ପ୍ରାଣ । ଭୂମିରେ କଚାଡ଼ିଲେ ପୁଣ ॥ ୯୧
ଫିଟିଣ ଗଲା ତାର ବାଳ । ଖସିଲେ ଅଙ୍ଗୁଁ ଫୁଲମାଳ ॥ ୯୨
ଯେ ତାର ଦେହର ଭୂଷଣେ । ସେହୁ ପଡ଼ିଲେ ଏଣେ ତେଣେ ॥ ୯୩
ସେ ଇନ୍ଦ୍ରଧ୍ୱଜର[1] ଆକାରେ । ଚାଣୂର ପଡ଼ିଲା ମହୀରେ ॥ ୯୪
୨୪ ମୁଷ୍ଟିକ ହିଁ ଯେ ସେହିରୂପେ । ହସ୍ତରେ ମୁଷ୍ଟି କରି ଆପେ ॥ ୯୫
ମାଇଲେ ରୋହିଣୀନନ୍ଦନ । ହୃଦୟେ ନେଇଣ ବହନ ॥ ୯୬
ସେ ମହାବଳୀ ହଳଧର । ନ ଗଣି ତାହାର ପ୍ରହାର ॥ ୯୭
କରି ଅତ୍ୟନ୍ତ କୋପ ତାରେ । ଚାପୋଡ଼େ ମାଇଲେ ମୁଖରେ ॥ ୯୮
୨୫ ମୁଷ୍ଟିକ ମୁଖେ ପୀଡ଼ା ପାଇ । ଅତ୍ୟନ୍ତ କୋପମାନ ହୋଇ ॥ ୯୯
ଉଦ୍‌ଗାରି ବହୁତ ରୁଧିର । ପରାଣ ଛାଡ଼ିଲା ତାହାର ॥ ୧୦୦
ବେଗେ ପଡ଼ିଲା ମହୀତଳେ । ବୃକ୍ଷ ଯେସନ ବାତବଳେ ॥ ୧୦୧
୨୬ ତଦନ୍ତେ କୂଟ ନାମେ ଏକ । ଯୁଝି ଯେ ଅଇଲା ମାଲେକ ॥ ୧୦୨
ହେ ନୃପ ! ମହାବଳୀ ବଳ । ତା ଠାରେ କରି ଅବହେଳ ॥ ୧୦୩
ଲୀଳାରେ ବାମମୁଷ୍ଟିଘାତେ । ମାଇଲେ ତାକୁ ସେ ତୁରିତେ ॥ ୧୦୪
୨୭ କୃଷ୍ଣର ପାଦଘାତେ ମୁଣ୍ଡ । ଶଳର ହେଲା ଖଣ୍ଡ ଖଣ୍ଡ ॥ ୧୦୫
ତୋଶଳବୁକୁ ବେନିଭାଗେ । ଫାଟିଣ ଯାଆନ୍ତେ ସେ ବେଗେ ॥ ୧୦୬
ଜୀବନ ଗଲା ତାହାଙ୍କର । ଦୁହେଁ ପଡ଼ିଲେ ମହୀପର ॥ ୧୦୭
୨୮ ଚାଣୂର କୂଟ ଯେ ମୁଷ୍ଟିକ । ଆବର ଶଳ ତୋଶଳକ ॥ ୧୦୮
ଏ ହତ ହୁଅନ୍ତେ ସେ ସ୍ଥାନେ । ଆଉ ସମସ୍ତ ମାଲମାନେ ॥ ୧୦୯
ପ୍ରାଣ ରଖିବା ବିଚାରିଣ । ସେ ପଳାଇଲେ ତତକ୍ଷଣ ॥ ୧୧୦
୨୯ ଖଞ୍ଜି ଯେ ଛନ୍ତି କୁତୂହଳେ । ମଞ୍ଜୁ ମଞ୍ଜୀର ପାଦମୂଳେ ॥ ୧୧୧
ସେ ରାମକୃଷ୍ଣ ବେନି ଭ୍ରାତ । ସଖାଙ୍କୁ କରି ଅନୁଗତ ॥ ୧୧୨
ବାଜନ୍ତେ ବାଦ୍ୟ ନୃତ୍ୟ[2] ରଙ୍ଗେ । ବିହାର କଲେ ତାଙ୍କ ସଙ୍ଗେ ॥ ୧୧୩
୩୦ ସେ ରାମକୃଷ୍ଣର ତହିଁରେ । ଏମନ୍ତ କର୍ମମାନଙ୍କରେ ॥ ୧୧୪
କେବଳ କଂସର ବିହୁନେ । ହରଷ ହେଲେ ସର୍ବଜନେ ॥ ୧୧୫

---

୧. ଇନ୍ଦ୍ରଧ୍ୱଜ = ବଜ୍ର କିମ୍ବା ଗୌଡ଼ଦେଶରେ ପ୍ରସିଦ୍ଧ ଇନ୍ଦ୍ରଧ୍ୱଜ । କୌଣସି ଉତ୍ସବରେ ଧ୍ୱଜପତାକାଦିଦ୍ୱାରା ଅଳଂକୃତ ଏକ ପୁରୁଷାକୃତି ମହାନ୍ ସ୍ତମ୍ଭ ଉଚ୍ଛିତ ହୋଇଥାଏ । ତାହାକୁ ଇନ୍ଦ୍ରଧ୍ୱଜ କହନ୍ତି । (ସ୍ୱାମୀ)

୨. ତୂର୍ଯ୍ୟ ।

ଯେ ବିପ୍ରଶ୍ରେଷ୍ଠ ସାଧୁ ଥିଲେ । ସେମାନେ ସାଧୁ ସାଧୁ କଲେ ॥ ୧୧୬
୩୧ ମରନ୍ତେ ମଲ୍ଲଶ୍ରେଷ୍ଠମାନେ । ଥୋକେ ପଳାନ୍ତେ ଆନସ୍ଥାନେ ॥ ୧୧୭
ସେ ଭୋଜରାଜା କଂସାସୁର । ବାଦ୍ୟେ ବାଜନ୍ତେ ଆପଣାର ॥ ୧୧୮
ସେମାନ ସବୁ ନିବାରିଲା । ଏମନ୍ତ ବାକ୍ୟକୁ କହିଲା ॥ ୧୧୯
୩୨ ଦୁଷ୍ଟ ଅଟଇ ଯାଙ୍କ ବୃତ୍ତ । ସେ ବସୁଦେବ ବେନିସୁତ ॥ ୧୨୦
ମଥୁରାପୁରୁଁ ବେଗ ହୋଇ । ବାହାର କରିଦିଅ ନେଇ ॥ ୧୨୧
ନିଅ ଗୋପାଳଙ୍କ ଧନକୁ । ବାନ୍ଧ ସେ ଦୁର୍ମତି ନନ୍ଦକୁ ॥ ୧୨୨
୩୩ ଅସାଧୁ ଦୁଷ୍ଟବୁଦ୍ଧି ଯାର । ସେ ବସୁଦେବକୁ ହିଁ ମାର ॥ ୧୨୩
ଶତ୍ରୁଙ୍କ ପକ୍ଷରେ ଗମନ । କରଇ ଯେଉଁ ଉଗ୍ରସେନ ॥ ୧୨୪
ପିତା ହେଲେହେଁ ତାକୁ ବେଗେ । ମାର ତା' ଲୋକଙ୍କର ସଙ୍ଗେ ॥ ୧୨୫
୩୪ କଂସ ଏମନ୍ତ ପରକାରେ । ଆଜ୍ଞା ଦିଅନ୍ତେ ସେ କାଳରେ ॥ ୧୨୬
ସେ କୃଷ୍ଣ କୁପିତ ହୋଇଣ । ଅତି କୁଶଳଭାବୁଁ ପୁଣ ॥ ୧୨୭
ବେଗେ ଉପରକୁ ଡେଇଁଲେ । ଉଚ୍ଚ ମଞ୍ଚାକୁ ଆରୋହିଲେ ॥ ୧୨୮
୩୫ ମନସ୍ୱୀ ସେ କଂସ ଅସୁର । ଯେ ମୃତ୍ୟୁ ଅଟେ ଆପଣାର ॥ ୧୨୯
ପ୍ରବେଶ ହୁଅନ୍ତେ ସେ ହରି । ତାହାଙ୍କୁ ବିଲୋକନ କରି ॥ ୧୩୦
ଆସନୁଁ ସତ୍ୱରେ ଉଠିଣ । ଧଇଲା ଢାଲ ଖଣ୍ଡା ପୁଣ ॥ ୧୩୧
୩୬ ଖଡ଼ଗ ହସ୍ତରେ ଧରିଣ । କଂସ ଗମନ୍ତେ ତାକୁ ପୁଣ ॥ ୧୩୨
ଅସହ୍ୟ ତେଜ ଯାହାଙ୍କର । ସେ କୃଷ୍ଣ ଧଇଲେ ସତ୍ୱର ॥ ୧୩୩
ଦକ୍ଷିଣ ସବ୍ୟ ହୋଇ ପୁଣ । ଆକାଶେ ଯେସନେ ସଂଚାଣ ॥ ୧୩୪
ସର୍ପକୁ ଯେସନ ପ୍ରକାରେ । ଗରୁଡ଼ ଧରେ ବଳାତ୍‌କାରେ ॥ ୧୩୫
୩୭ ମୁକୁଟେ ଶୋଭିତ ଯେ କଂସ । ବଳେ ଧରିଣ ତାର କେଶ ॥ ୧୩୬
ଉଚ୍ଚ ମଞ୍ଚାରୁ ପୁଣ ତାକୁ । ପକାଇ ରଙ୍ଗ-ଉପରକୁ ॥ ୧୩୭
ଯେ ଅଟେ ଆପଣା ଅଧୀନ । ସଂସାର-ଆଶ୍ରୟ ଯେ ପୁଣ ॥ ୧୩୮
ସେ ପଦ୍ମନାଭ ଆପଣ ହିଁ । ପଡ଼ିଲେ ତା' ଉପରେ ଡେଇଁ ॥ ୧୩୯
୩୮ କେଶରୀ ଗଜକୁ ଯେସନେ । କଂସ ମରନ୍ତେ ତାକୁ ତେହ୍ନେ ॥ ୧୪୦
ସେ ହରି ଭୂମିରେ ଝିଙ୍କିଲେ । ଜଗତଯାକ ଦେଖୁଥିଲେ ॥ ୧୪୧
ଜନମାନଙ୍କେ ଉଦୀରିତ । ହୁଅନ୍ତେ ଆହେ ପରୀକ୍ଷିତ ॥ ୧୪୨
ସେ କାଳେ ଅତି ହାହାକାର । ଶବଦ ହୋଇଲା ଅପାର ॥ ୧୪୩
୩୯ ପାନ କରନ୍ତେ ସେ ଅସୁର । ବଚନ କହନ୍ତେ ଆବର ॥ ୧୪୪
ଗମନ କରନ୍ତେ ଶୁଅନ୍ତେ । ନିଃଶ୍ୱାସମାନଙ୍କୁ ପକାନ୍ତେ ॥ ୧୪୫
ଚକ୍ରକୁ ଧରି ନିରନ୍ତର । ଆଗେ ଅଛନ୍ତି ସେ ଈଶ୍ୱର ॥ ୧୪୬
ନିତ୍ୟରେ ଉଦ୍‌ବିଗ୍ନ ବୁଦ୍ଧିରେ । ଯେଣୁ ଦେଖିଲା ଏ ପ୍ରକାରେ ॥ ୧୪୭
ସେହେତୁ ନ ପାଇ ଯାହାକୁ । ପାଇଲା ସେ କୃଷ୍ଣରୂପକୁ ॥ ୧୪୮

୪୦ କଙ୍କ ନ୍ୟଗ୍ରୋଧ ଆଦି ହୋଇ । କଂସର ସାନ ଅଷ୍ଟ ଭାଇ ॥ ୧୪୯
ଶୁଝିବା ଅର୍ଥେ ଭାଇ ରଣ । ଅଇଲେ ସକ୍ରୋଧ ହୋଇଣ ॥ ୧୫୦
୪୧ ତେମନ୍ତ ରୂପେ ଅତି ଖରେ । ଆସି ହୁଅନ୍ତେ ସେ ଅସୁରେ ॥ ୧୫୧
ପରିଘ ଟେକି ହଳଧର । ତାହାଙ୍କୁ ମାଇଲେ ସତ୍ୱର ॥ ୧୫୨
କେସରୀ ଯେସନ ପ୍ରକାରେ । ପଶୁଙ୍କୁ ମାରଇ ହେଳାରେ ॥ ୧୫୩
୪୨ ଦୁନ୍ଦୁଭିମାନେ ସେ କାଳରେ । ବାଜିଲେ ଆକାଶମାର୍ଗରେ ॥ ୧୫୪
ବ୍ରହ୍ମା-ମହେଶ ଆଦି ହୋଇ । ଯେତେ ବିଭୂତି[୧] ଥିଲେ ତହିଁ ॥ ୧୫୫
କୃଷ୍ଣଙ୍କୁ ପୁଷ୍ପବୃଷ୍ଟି କଲେ । ପ୍ରୀତ ହୋଇଣ ପ୍ରଶଂସିଲେ ॥ ୧୫୬
ଯେତେ ବନିତାମାନେ ଥିଲେ । ସେମାନେ ନୃତ୍ୟମାନ କଲେ ॥ ୧୫୭
୪୩ ହେ ନୃପ ! ତାଙ୍କ ସ୍ତିରୀମାନେ । ମିତ୍ରଲୋକଙ୍କର ମରଣେ ॥ ୧୫୮
ଅତିହିଁ ଦୁଃଖିତ ହୁଅନ୍ତେ । ନୟନୁଁ ଲୋତକ ଛାଡ଼ନ୍ତେ ॥ ୧୫୯
ହସ୍ତେ ତାଡ଼ନ୍ତେ ମସ୍ତକକୁ । ଗମନ କଲେ ସେ ସ୍ଥାନକୁ ॥ ୧୬୦
୪୪ ବୀରଶଯ୍ୟାରେ ଶୋଇଛନ୍ତି । ଆପଣା ପତି ଯେ ଅଟନ୍ତି ॥ ୧୬୧
ତାହାଙ୍କୁ କରି ଆଲିଙ୍ଗନ । ଅତ୍ୟନ୍ତ ଶୋଚନା କରିଣ ॥ ୧୬୨
ଲୋତକମାନ ପୁଣପୁଣି । ଛାଡ଼ନ୍ତେ ତାଙ୍କର ତରୁଣୀ ॥ ୧୬୩
ବହୁତ କରି ହେ ରାଜନ । ସୁସ୍ୱରେ କଲେ ସେ ରୋଦନ ॥ ୧୬୪
୪୫ ହେ ନାଥ ! ପ୍ରିୟ ଅଟୁ ତୁହି । ଆହେ ଧର୍ମଜ୍ଞ ଗଲ କାହିଁ ॥ ୧୬୫
ଦୟାରେ ଅନାଥ ଲୋକର । ବତ୍ସଳ ଅଟୁ ତୁ ଆବର ॥ ୧୬୬
ତୋର ସ୍ୱଗୃହପ୍ରଜା ଆମ୍ଭେ । ହତ ହେଲୁଁ ମରନ୍ତେ ତୁମ୍ଭେ ॥ ୧୬୭
୪୬ ଉତ୍ସବମଙ୍ଗଳ ଯେ ଥିଲା । ଏବେ ସେ ଯହିଁ ନିବର୍ତ୍ତିଲା ॥ ୧୬୮
ତୁ ଯାର ଥିଲୁ ପତି ହୋଇ । ତୋହରେ ବିରହିତ ହୋଇ ॥ ୧୬୯
ହେ ନରଶ୍ରେଷ୍ଠ ! ଆମ୍ଭ ପ୍ରାଏ । ସେ ପୁରୀ ଶୋଭାକୁ ନ ପାଏ ॥ ୧୭୦
୪୭ ନିରପରାଧ ଲୋକଙ୍କର । କଲୁ ତୁ ଅତି ଅପକାର ॥ ୧୭୧
ସେହି କାରଣରୁ ହେ ବୀର । ଏ ଦଶା ହୋଇଲା ତୋହର ॥ ୧୭୨
କରନ୍ତେ ପ୍ରାଣିଙ୍କ ଦ୍ରୋହକୁ । କେ ଅବା ଲଭେ ମଙ୍ଗଳକୁ ॥ ୧୭୩
୪୮ ସମସ୍ତ ପ୍ରାଣିମାନଙ୍କର । ସର୍ଜନାକର୍ତ୍ତା ଯେ[୨] ଆବର ॥ ୧୭୪
ଯେ ନାଶ କରଇ ପୋଷଇ । ଏ କୃଷ୍ଣ ଅଟଇଟି ସେହି ॥ ୧୭୫
ତାକୁ ଯେ ଅବଜ୍ଞା କରଇ । ସୁଖକୁ କାହିଁ ସେ ନ ପାଇ ॥ ୧୭୬

ଶ୍ରୀଶୁକ ଉବାଚ

୪୯ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ନୃପ ପରୀକ୍ଷିତ ॥ ୧୭୭
ଲୋକଭାବନ ଭଗବାନ । ରାଜସ୍ତିରୀଙ୍କୁ ଆଶ୍ୱାସିଣ ॥ ୧୭୮

---

୧. ବିଭୂତି = ଦେବତା । ୨. ଏ ।

ଯଉଁ ଲୌକିକ ବ୍ୟବସ୍ଥାକୁ । କହିଲେ ରାଜବନିତାଙ୍କୁ ॥ ୧୭୯
ତେଣେ ସେ ମଲା ଲୋକଙ୍କର । କର୍ମ କରାଇଲେ ପ୍ରଚାର ॥ ୧୮୦
୫୦ ଏଥୁ ଅନ୍ତରେ ଏବେ ଶୁଣ[1] । ସେ ରାମକୃଷ୍ଣ ବେନି ପୁଣ[2] ॥ ୧୮୧
ମାତାପିତାଙ୍କୁ ବେଗ ହୋଇ । ବନ୍ଧନସ୍ଥାନରୁ ଫିଟାଇ ॥ ୧୮୨
ତାହାଙ୍କ ପାଦ ଶିରେ ଛୁଇଁ । ପ୍ରଣାମ କଲେକ ସେଠାଇଁ ॥ ୧୮୩
୫୧ ଏ ରାମକୃଷ୍ଣ ବେନି ବୀର । ଅଟନ୍ତି ଜଗତ-ଈଶ୍ୱର ॥ ୧୮୪
ଦେବକୀ-ବସୁଦେବ ଦୁଇ । ଏମନ୍ତ ଜାଣି ଭୟ ପାଇ ॥ ୧୮୫
ସେ ପୁତ୍ରେ କରନ୍ତେ ବନ୍ଦନ । ତାଙ୍କୁ ନ କଲେ ଆଲିଙ୍ଗନ ॥ ୧୮୬
[3]ବଳରେ ସେ ଗଜଇନ୍ଦ୍ରକୁ । ପୁଣି ହିଁ ସେ ମଲ୍ଲଶ୍ରେଷ୍ଠଙ୍କୁ ॥ ୧୮୭
ମଲ୍ଲଲୀଳାରେ ମାରି ହରି । ବୀଭତ୍ସ ଚରିତ ଯାହାରି ॥ ୧୮୮
ବୀଭତ୍ସ ସହିତ ଯେ କଂସ । ତାହାକୁ କଲେ ପ୍ରାଣନାଶ ॥ ୧୮୯
ଯେ କଂସାସୁରକୁ ମାଇଲେ । ଭୂମିର ଭାରା ଉଶ୍ୱାସିଲେ ॥ ୧୯୦
ମାତାପିତାଙ୍କୁ ବନ୍ଧନରୁ । ଯେ ଫେଇଦେଲେ ବନ୍ଦିଘରୁ ॥ ୧୯୧
ସେ କୃଷ୍ଣ ବିପ୍ର ଦୀନବନ୍ଧୁ । ସଂସାରବନ୍ଧନକୁ ଛେଦୁ ॥ ୧୯୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ କଂସବଧୋ ନାମ
ଚତୁଶ୍ଚତ୍ୱାରିଂଶୋଽଧ୍ୟାୟଃ ॥

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

ପଞ୍ଚଚତ୍ୱାରିଂଶକେଽଥ ପିତୃନନ୍ଦାଦିସାନ୍ତ୍ୱନମ୍ ।
ଉଗ୍ରସେନାଭିଷେକଶ୍ଚ ଗୁରୌ ବାସାଦ୍ ପୁରାଗମଃ ॥

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କ ନନ୍ଦନ । ହେ ନୃପ ! ତୁମ୍ଭେ ଏବେ ଶୁଣ ॥ ୧
ଏ ପିତାମାତା ଏ ପୂର୍ବରେ । ଆମ୍ଭଙ୍କୁ ଈଶ୍ୱରଭାବରେ ॥ ୨
ଜାଣି ଅଛନ୍ତି ନିଶ୍ଚେ କରି । ଏମନ୍ତ ଜାଣି ନରହରି ॥ ୩
ଏ ଦୁହିଁଙ୍କର ପୂର୍ବଜ୍ଞାନ । ଏକାଳେ ନୋହିବ ବୋଲିଣ ॥ ୪
ଲୋକଙ୍କୁ ମୋହିତ କରଇ । ଆପଣା ମାୟା ଯେ ଅଟଇ ॥ ୫
ତାକୁ ସେ ବେନିଜନଠାରେ । ବିସ୍ତାର କଲେ ସେ କାଳରେ ॥ ୬

---

୧. ପୁଣ । ୨. ଜଣ ।
୩. ପ୍ରସହ୍ୟ ହତ୍ୱା ହସ୍ତୀନ୍ଦ୍ରଂ ମଲ୍ଲେନ୍ଦ୍ରାନ୍ ମଲ୍ଲଲୀଳୟା ।
ବୀଭତ୍ସଚରିତଂ କଂସଂ ସବୀଭତ୍ସମମାରୟତ୍ ॥ (ସ୍ୱାମୀ)

ଯେ ମାୟା ପୁତ୍ରସ୍ନେହ ହୋଇ । ସେ ମାୟା ବିସ୍ତାରିଲେ ତହିଁ ॥
୨ ସେ ଯଦୁଶ୍ରେଷ୍ଠ ଭଗବାନ । ବଳଦେବଙ୍କ ସହିତେଣ ॥
ପିତାମାତାଙ୍କ ଠାକୁ ଯାଇ । ପଚାରିବାରେ ନମ୍ର ହୋଇ ॥
ତାହାଙ୍କୁ ପ୍ରୀତ କରାନ୍ତେଣ । ନମସ୍କାରକୁ ହିଁ କରିଣ ॥
ହେ ତାତ ! ଏମନ୍ତ ବୋଲିଣ । କହିଲେ ସାଦରେ ବଚନ ॥
୩ ଆମ୍ଭର ଠାରୁ ତୁମ୍ଭେ ଦୁହେଁ । ହେ ତାତ ! ଉତ୍ସୁକ ହେଲେ ହେଁ ॥
ବାଲ୍ୟ-ପୌଗଣ୍ଡ-କୈଶୋରରେ । ଯେ ସୁଖମାନ ଏ ଦଶାରେ ॥
ପୁତ୍ରରେ ତୁମ୍ଭର ସେମାନେ । ନୋହିଲେ କଉଣିସି ସ୍ଥାନେ ॥
୪ ଦଇବେ ହତ ଆମ୍ଭେ ଦୁହେଁ । ଆମ୍ଭର ତୁମ୍ଭ ନିକଟେହେଁ ॥
ନିବାସ ନୋହିଲା ଏଠାରେ । ବାଳକେ ଥାନ୍ତେ ପିତାଘରେ ॥
ଲାଳିତ ହୁଅନ୍ତେ ସେ ଅତି । ଯେବଣ ଆନନ୍ଦ ଲଭନ୍ତି ॥
ହେ ତାତ ! ଆମ୍ଭେ ଦୁହେଁ ପୁଣ । ଲଭି ନ ପାରିଲୁଁ ସେମାନ ॥
୫ ଧର୍ମାଦି ଅର୍ଥ କରେ ଜାତ । ଯେବଣ ଶରୀର ସେ ଜାତ ॥
ଯଉଁ ଦୁହିଁଙ୍କ ଠାରୁ ହୋଇ । ଯହିଁରୁ ପୋଷଣ ହୁଅଇ ॥
ସେ ମାତାପିତାଠାରେ ପୁଣ । ଶଏ ବରଷ ଆୟୁଷେଣ ॥
ଉତ୍ତମ ନିଷ୍କୃତିକି ପୁଣ । କରିଣ[1] ନ ପାରଇ ଜନ ॥
୬ ସମର୍ଥ ଯେବଣ କୁମର । ସେ ପିତାମାତାବେନିଙ୍କର ॥
ଆପଣା ଦେହେ ଧନେ ସେହି । ବୃତ୍ତିକି ଯେବେ ନ ଦିଅଇ ॥
ଯମର ଦୂତମାନେ ତାକୁ । ଖୁଆନ୍ତି ତାହାର ମାଂସକୁ ॥
୭ ମାତାକୁ ବୃଦ୍ଧ ଜନକକୁ । ଯେ ଭାର୍ଯ୍ୟା ପତିବ୍ରତା ତାକୁ ॥
ବାଳକ ପୁତ୍ରକୁ ଗୁରୁକୁ । ବିପ୍ରକୁ ପ୍ରପନ୍ନ ଲୋକକୁ ॥
ସମର୍ଥ ହୋଇ ଯଉଁ ଜନ । ଏମାନ ନ କରେ ପୋଷଣ ॥
ନିଃଶ୍ୱାସ ବହନ୍ତେ ସେ ଜନ । ଅଟଇ ମଲାର ସମାନ ॥
୮ କଂସର ଠାରୁ ଏହି ଘେନି । ସମର୍ଥ ନୋହୁଁ ଆମ୍ଭେ ବେନି ॥
ନିତ୍ୟେ ଉଦ୍‌ବିଗ୍ନମନା ହେଲୁଁ । ତୁମ୍ଭର ପୂଜାକୁ ନ କଲୁଁ ॥
ଆମ୍ଭର ବ୍ୟର୍ଥ ହୋଇ ପୁଣ । ଗଲା ଏତେକ ଦିନମାନ ॥
୯ ଦୁର୍ହୃଦ କଂସେ ଅତିଶୟେ । କ୍ଲେଶ ପାଆନ୍ତେ ଆମ୍ଭେ ଦୁହେଁ ॥
ତୁମ୍ଭର ସେବାକୁ ନ କଲୁଁ । ପରର ଅଧୀନ ହୋଇଲୁଁ ॥
ହେ ତାତ ! ହେ ମାତ ! ଆମ୍ଭର । ଏ ଦୋଷମାନ କ୍ଷମା କର ॥

ଶ୍ରୀଶୁକ ଉବାଚ

୧୦ ମାୟାରେ ମନୁଷ୍ୟଶରୀର । ବିଶ୍ୱାତ୍ମା ସେ ନରହରିର ॥

---

୧. ଲଭିଣ ।

ଏମନ୍ତ ପ୍ରକାର ବଚନେ । ମୋହିତ ହୋଇ ବେନିଜନେ ॥ ୩୭
କ୍ରୋଡ଼େ ବସାଇ ଭିଡ଼ି ତାଙ୍କୁ । ଲଭିଲେ ଅତି ହରଷକୁ ॥ ୩୮
୧୧ ଲୋତକଧାରାମାନଙ୍କରେ । ପୁତ୍ରଙ୍କୁ ସିଞ୍ଚନ୍ତେ ନିର୍ଭରେ ॥ ୩୯
ସ୍ନେହପାଶରେ ବନ୍ଧା ହୋଇ । ହେ ନୃପ ! ଗଦ୍‌ଗଦ ସେ ଦୁଇ ॥ ୪୦
ବିଶେଷେ ମୋହିତ ହୋଇଲେ । କିଛି ବଚନ ନ କହିଲେ ॥ ୪୧
୧୨ ଦେବକୀସୁତ ଭଗବାନ । ପିତାମାତାଙ୍କୁ ଏ ରୂପେଣ ॥ ୪୨
ବହୁତ କରି ଆଶ୍ୱାସନ । ଯେ ମାତାମହ ଉଗ୍ରସେନ ॥ ୪୩
ତାହାଙ୍କୁ ଯଦୁମାନଙ୍କର । ଉପରେ କଲେ ନୃପବର ॥ ୪୪
୧୩ ବୋଇଲେ ସେ ଉଗ୍ରସେନକୁ । ହେ ମହାରାଜ ! ତୁ ଆମ୍ଭଙ୍କୁ ॥ ୪୫
ଆବର ପରଜାମାନଙ୍କୁ । ଯୋଗ୍ୟ ହୁଅ ଆଜ୍ଞା ଦେବାକୁ ॥ ୪୬
[1]ଯଯାତିଶାପୁଁ ଯଦୁମାନେ । ବସିବେ ନାହିଁ ନୃପାସନେ ॥ ୪୭
୧୪ ତୋ ପାଖେ ଭୃତ୍ୟ ମୁଁ ହୋଇଣ । ଥାଆନ୍ତେ ବିବୁଧାଦିଗଣ ॥ ୪୮
କର ଆଣିମେ ନମ୍ର ହୋଇ । କେ ଆନ ନୃପାଦିଏ ତହିଁ ॥ ୪୯
୧୫ | କଂସର ଭୟୁଁ ପୀଡ଼ା ପାଇ । ଯେ ଜ୍ଞାତିମାନେ ଥିଲେ ଯାଇଁ ॥ ୫୦
୧୬ | ଯେ ଯଦୁ ବୃଷ୍ଣି ଯେ ଅନ୍ଧକ । ଯେ ମଧୁ ଦାଶାର୍ହ ଅନେକ ॥ ୫୧
କୁକୁର ଆଦି ଏମାନଙ୍କୁ । ଆଣିଣ ସେ ଦିଗମାନଙ୍କୁ ॥ ୫୨
ବିଦେଶସ୍ଥାନେ ଥିବା ଘେନି । ଯେ କୃଶ ହୋଇଛନ୍ତି ପୁଣି ॥ ୫୩
ପୂଜିତ ଅଟନ୍ତି ସେ ପୁଣ । ତାଙ୍କୁ ଆଶ୍ୱାସି ଭଗବାନ ॥ ୫୪
ଦ୍ରବ୍ୟମାନଙ୍କେ ତୋଷ କଲେ । ତାଙ୍କରି ଗୃହରେ ରଖିଲେ ॥ ୫୫
୧୭ ସେ କୃଷ୍ଣରାମର ଭୁଜରେ । ପାଳିତ ହୋଇଣ ନିତ୍ୟରେ ॥ ୫୬
କୃଷ୍ଣରାମରେ ଯାହାଙ୍କର । ବିନାଶ ହେଲା ମନଜ୍ୱର ॥ ୫୭
ମନୋରଥକୁ ହିଁ ଲଭିଲେ । ସେ ସୁଖେ ଗୃହେ କ୍ରୀଡ଼ା କଲେ ॥ ୫୮
୧୮ ଶ୍ରୀମନ୍ତ ସଦୟ ସୁସ୍ମିତ । ଈକ୍ଷଣ ଅଟେ ଯହିଁ ସ୍ଥିତ ॥ ୫୯
ଯେ ନିତ୍ୟ ଅଟଇ ଆନନ୍ଦ । ମୁକୁନ୍ଦବଦନାରବିନ୍ଦ ॥ ୬୦
ତାହା ଦେଖନ୍ତେ ଦିନେ ଦିନେ । ପ୍ରୀତିକି ଲଭିଲେ ସେମାନେ ॥ ୬୧
୧୯ ମୁକୁନ୍ଦବଦନାରବିନ୍ଦ । ସୁଧାକୁ ହୋଇଣ ଆନନ୍ଦ ॥ ୬୨
ପିଅନ୍ତେ ନେତ୍ରମାନଙ୍କରେ । ବୃଦ୍ଧମାନେହେଁ ସେ ପୁରରେ ॥ ୬୩
ଅତ୍ୟନ୍ତ ବଳବନ୍ତ ହୋଇ । ହୋଇଲେ ଯୁବାଙ୍କ ପରାଇ[2] ॥ ୬୪
୨୦ ଏଥୁ ଅନ୍ତରେ ସଂକର୍ଷଣ । ଦେବକୀସୁତ ଭଗବାନ ॥ ୬୫

---

୧. ହେ ଉଗ୍ରସେନ ! ତୁମ୍ଭେ ଯଦୁବଂଶୀ ହେଲେ ମଧ୍ୟ ମୋର ଆଜ୍ଞାରେ ତୁମ୍ଭର ସିଂହାସନରେ ବସିବା ଦୋଷାବହ ହେବ ନାହିଁ । (ସ୍ୱାମୀ)

୨. ପରାଇ = ପରି ।

ନନ୍ଦଙ୍କ ପାଖକୁ ଯାଇଣ । ତାଙ୍କୁ ଆଲିଙ୍ଗନ କରିଣ ॥
ହେ ରାଜଶ୍ରେଷ୍ଠ ! ଏ ରୂପେଣ । ତାହାଙ୍କୁ କହିଲେ ବଚନ ॥
୨୧ ହେ ତାତ ! ସ୍ନେହବନ୍ତ ତୁମ୍ଭେ । ତୁମ୍ଭ ବେନିଜଣରେ ଆମ୍ଭେ ॥
ଅତ୍ୟନ୍ତେ ପୋଷିତ ହୋଇଲୁଁ । ଆବର ଲାଳିତ ହିଁ ହେଲୁ ॥
ଯେବଣ ହେତୁରୁ ହେ ପୁଣ । ଯେ ପିତାମାତା ବେନି ଜଣ ॥
ତାର ଆପଣା ଠାରୁ ଅତି[1] । ପୁତ୍ରଙ୍କ ଠାରେ ଅଟେ ପ୍ରୀତି ॥
୨୨ ଅଶକ୍ତ[2] ପୋଷଣ-ରକ୍ଷଣେ । ଅଟନ୍ତି ଯଉଁ ବନ୍ଧୁମାନେ ॥
ସେମାନେ ଛାଡ଼ନ୍ତି ଯାହାଙ୍କୁ । ଏମନ୍ତ ବାଳକମାନଙ୍କୁ ॥
ଆପଣା ପୁତ୍ରର ପରାଏ । ପାଳନ୍ତି ଯଉଁ ଜନଦୁହେଁ ॥
ଜନକ ଅଟଇଟି ସେହି । ସେ ପୁଣ ଜନନୀ ଅଟଇ ॥
୨୩ ବ୍ରଜକୁ ଯାଅ ତୁମ୍ଭେମାନେ । ହେ ତାତ ! ଆମ୍ଭେ ଏହିସ୍ଥାନେ ॥
ଯେ ସ୍ନେହେ ଦୁଃଖୀ ଜ୍ଞାତିଜନ । ତାହାଙ୍କୁ କରି ବିଲୋକନ ॥
ମିତ୍ରମାନଙ୍କ ସୁଖମାନ । ବିଧାନ କରି ଯିବୁଁ ପୁଣ ॥
୨୪ ଏମନ୍ତ ରୂପେ ଭଗବାନ । ବ୍ରଜବାସୀଙ୍କ ସହିତେଣ ॥
ନନ୍ଦଙ୍କୁ ସାନ୍ତ୍ୱନା କରିଣ । ବସନ-ଅଳଂକାରମାନ ॥
କାଂସ୍ୟପାତ୍ରାଦି ସହିତରେ । ଶ୍ରୀହରି ପୂଜିଲେ ସାଦରେ ॥
୨୫ ଏମନ୍ତ କହନ୍ତେ ଗୋବିନ୍ଦ । ସ୍ନେହେ ବିହ୍ୱଳ ହୋଇ ନନ୍ଦ ॥
ପୁତ୍ରଙ୍କୁ କରି ଆଲିଙ୍ଗନ । ଲୋତକେ ନେତ୍ରେ କରି ପୂର୍ଣ୍ଣ ॥
ଗୋପାଳଙ୍କର ସହିତରେ । ଗମନ କଲେ ବ୍ରଜପୁରେ ॥
୨୬ ହେ ନୃପ ! ଏଥୁଁ ଅନନ୍ତର । ସେ ବସୁଦେବ ପୁତ୍ରଙ୍କର ॥
ଯେ ଗର୍ଗ ଅଟେ ପୁରୋହିତ । ତେଣେ ବ୍ରାହ୍ମଣଙ୍କ ସହିତ ॥
ବ୍ରତକୁ ଉତ୍ତମ କରିଣ । ସେ କାଳେ କରାଇଲେ ପୁଣ ॥
୨୭ ଯେ ବିପ୍ରେ ଅଳଂକାରବନ୍ତ । ତାହାଙ୍କୁ ପୂଜିଣ ବହୁତ ॥
ସୁବର୍ଣ୍ଣମାଳାରେ ସଂଯୁତ । ଯେ ହୋଇଅଛି ଅଳଂକୃତ ॥
ବାଛୁରୀସହିତ ଅଟନ୍ତି । ଉତ୍ତମ ବସ୍ତ୍ର ମାଳାବନ୍ତି ॥
ଏମନ୍ତ ଗୋଧନମାନଙ୍କୁ । ଦକ୍ଷିଣା କରି ଦେଲେ ତାଙ୍କୁ ॥
୨୮ କୃଷ୍ଣରାମର ଜନ୍ମଦିନେ । ଯା କଳ୍ପିଥିଲା ନିଜମନେ ॥
ସେ କଂସ ଅଧର୍ମରୁ କରି । ଯଉଁ ଧେନୁଙ୍କୁ ଥିଲା ହରି ॥
ସେ ମହାମତି ବସୁଦେବ । [3]ବିପ୍ରଙ୍କୁ ଦେଲା ସେହି ଗାବ ॥

---

୧. ରତି (ମୂ-ଅଭ୍ୟଧିକା) ।
୨. ସମର୍ଥ । (........ରୁତ୍‌ସୃଷ୍ଟାନ୍ କଚ୍ଛୈଃ ପୋଷଣରକ୍ଷଣେ) 'ଉତ୍‌ସୃଷ୍ଟାନକଚ୍ଛୈଃ-ପୋଷରକ୍ଷଣେ' ଇତି ବା ପାଠଃ ।
୩. ରାଜଗୋଷ୍ଠରୁ ଛଡ଼ାଇ ଆଣି ଦେଲା (ସ୍ୱାମୀ) ।

୨୯ ତଦନନ୍ତରେ ବେନି ଭାଇ । ଉତ୍ତମ ସଂସ୍କାରକୁ ପାଇ ॥ ୯୫
ଉତ୍ତମ ବ୍ରତ ଯାହାଙ୍କର । ସେ ଲଭି ଦ୍ୱିଜତ୍ୱକୁ ଆର ॥ ୯୬
ଯଦୁକୁଳର ପୁରୋହିତ । ଯେ ଗର୍ଗ ତା'ଠାରୁ ସାକ୍ଷାତ ॥ ୯୭
ଯେ ବ୍ରହ୍ମଚର୍ଯ୍ୟ ଦୀକ୍ଷାମାନ । ତାହାକୁ କଲେ ଅନୁଷ୍ଠାନ ॥ ୯୮
୩୦ ସମସ୍ତ ବିଦ୍ୟାଙ୍କର ପୁଣ । ଯେ ଦୁହେଁ ଉତ୍ପତ୍ତିକାରଣ ॥ ୯୯
ସର୍ବଜ୍ଞ ଅଟନ୍ତି ଆବର । ଯେ ପୁଣ ଜଗତ-ଈଶ୍ୱର ॥ ୧୦୦
[1]ସର୍ବଥା ସ୍ୱତଃସିଦ୍ଧ ହୋଇ । ନିର୍ମଳ ଜ୍ଞାନ ଯେ ଅଛଇ ॥ ୧୦୧
ମନୁଷ୍ୟଚେଷ୍ଟାରେ ସେ ଜ୍ଞାନ । ଯେ କରିଅଛନ୍ତି ଆଚ୍ଛନ୍ନ ॥ ୧୦୨
୩୧ ସେ ରାମକୃଷ୍ଣ ଏ ହେତୁରେ । ବାସକୁ ଗୁରୁଙ୍କ କୁଳରେ ॥ ୧୦୩
ଇଚ୍ଛା କରନ୍ତେ ମନେ ପୁଣ । ଅବନ୍ତୀପୁରେ ଯାର ସ୍ଥାନ ॥ ୧୦୪
ଯେ କାଶ୍ୟ ସାନ୍ଦୀପନି ନାମ । ତା'ଠାକୁ କଲେ ସେ ଗମନ ॥ ୧୦୫
୩୨ ଯେ ଅନିନ୍ଦିତ ଲୋକଙ୍କର । ବୃତ୍ତିମାନଙ୍କୁ ଗୁରୁଠାର ॥ ୧୦୬
ଗ୍ରହଣ କରାଇ ଅଛନ୍ତି । ତପସ୍ୟାକ୍ଲେଶ ଯେ ସହନ୍ତି ॥ ୧୦୭
ସମ୍ଭାବନାକୁ ଯୋଗ୍ୟ ଯେହି । ସେ ରାମକୃଷ୍ଣ ବେନି ଭାଇ ॥ ୧୦୮
ଗୁରୁଙ୍କୁ ଯଥା ଉଚିତରେ । ଲଭିଣ ଅତ୍ୟନ୍ତ ଭକ୍ତିରେ ॥ ୧୦୯
ଦେବତାପ୍ରାୟେକ କରିଣ । ଗୁରୁଙ୍କୁ କଲେ ସେ ପୂଜନ ॥ ୧୧୦
୩୩ ସେ ସାନ୍ଦୀପନି ବିପ୍ରବର । ଶ୍ରୀରାମକୃଷ୍ଣ ବେନିଙ୍କର ॥ ୧୧୧
ବିଶୁଦ୍ଧ ଭାବ ଅଛି ଯହିଁ । ଏମନ୍ତ ଅନୁବୃତ୍ତି ଯେହି ॥ ୧୧୨
ତେଣେ ସେ ସନ୍ତୋଷ ହୋଇଣ । ଯେ ସାଙ୍ଗ[2] ବେଦଭାଗମାନ ॥ ୧୧୩
ତାହା ସହିତେ ବେଦମାନ । ସମସ୍ତ କଲେକ ବଖାଣ ॥ ୧୧୪
୩୪ ମନ୍ତ୍ର ଦେବତା ଜ୍ଞାନଯୁତ । ଯେ ଧନୁର୍ବେଦ ଅଟେ ଖ୍ୟାତ ॥ ୧୧୫
ମନ୍ୱାଦି ଧର୍ମଶାସ୍ତ୍ରମାନ । ମୀମାଂସା ଆଦି ସେ ରୂପେଣ ॥ ୧୧୬
ସନ୍ଧି ବିଗ୍ରହ ଯାନାସନ । ଦ୍ୱୈଧ ଆଶ୍ରୟ ହୋଇ ପୁଣ ॥ ୧୧୭
ଏମନ୍ତ ରୂପେ ଛ' ପ୍ରକାର । ଯେ ରାଜନୀତି ଏ ଆବର ॥ ୧୧୮
ଏ ରୂପେ ତର୍କବିଦ୍ୟାମାନ । ସମସ୍ତ କଲେ ସେ ବଖାଣ ॥ ୧୧୯
୩୫ ଯେ ସର୍ବବିଦ୍ୟାପ୍ରବର୍ତ୍ତକ । ଅଟନ୍ତି ଦେବତା-ଅଧିକ[3] ॥ ୧୨୦
ସେ ରାମକୃଷ୍ଣ ବେନି ଜନ । ଏହୁ ସମସ୍ତ ବିଦ୍ୟାମାନ ॥ ୧୨୧
ଥରେ କହିଲା ମାତ୍ରକେଣ । ଗ୍ରହଣ କଲେ ହେ ରାଜନ ॥ ୧୨୨

---

୧. ନାନ୍ୟସିଦ୍ଧ......ଇତି ପାଠେ । ନାନାସିଦ୍ଧ...... ଇତି ପାଠେ ତୁ ''ନାନାପ୍ରକାରେ ସିଦ୍ଧ ହୋଇ'' । ନାନ୍ୟସିଦ୍ଧଂ ସ୍ୱତଃସିଦ୍ଧଂ (ସ୍ୱାମୀ) ।

୨. ସାଙ୍ଗ = ଶିକ୍ଷା ଆଦି ଷଡ଼ଙ୍ଗ ସହିତ । ଷଡ୍‌ବିଧ ରାଜନୀତି = ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ ଓ ସମାଶ୍ରୟ ।

୩. ଅମରଶ୍ରେଷ୍ଠୌ ଇତି ପାଠେ । 'ନରବରଶ୍ରେଷ୍ଠୌ' ଇତି ପାଠାନ୍ତରମ୍ ।

୩୬ ଚୌଷଠି ଅହୋରାତ୍ରଙ୍କରେ । ତେତେକ କଳାମାନଙ୍କରେ ॥ ୧୨୩
ସଂଯୁତ ହୋଇ ଭାଇ ବେନି । ଗୁରୁଦକ୍ଷିଣା ଅର୍ଥେ ପୁଣି ॥ ୧୨୪
ସେ ସାନ୍ଦୀପନି ବ୍ରାହ୍ମଣଙ୍କୁ । ହେ ନୃପ ! କଲେ କପଟକୁ ॥ ୧୨୫
୩୭ ସେ ସାନ୍ଦୀପନି ବିପ୍ରବର । ଶ୍ରୀକୃଷ୍ଣ ରାମ ବେନିଙ୍କର ॥ ୧୨୬
ବିଦ୍ୟାପଠନରୂପେ ଜାତ । ମହିମା ଦେଖି ଅଦଭୁତ ॥ ୧୨୭
ଅତିମାନୁଷ ମତିମାନ । ଲକ୍ଷିତ କରି ହେ ରାଜନ ॥ ୧୨୮
ବିଚାରି ଭାର୍ଯ୍ୟାସହିତରେ । ପ୍ରଭାସତୀର୍ଥସମୁଦ୍ରରେ ॥ ୧୨୯
ଯେବଣ କୁମର ମରିଛି । ତାକୁ ବରିଲା ମନେ ବାଞ୍ଛି ॥ ୧୩୦
୩୮ ସେ ବର ସ୍ୱୀକାର କରିଣ । ଏଥୁ ଅନ୍ତରେ ହେ ରାଜନ ॥ ୧୩୧
ଦୁରନ୍ତ ଯାହାଙ୍କ ବିକ୍ରମ । ସେ ମହାରଥୀ ବେନି ଜଣ ॥ ୧୩୨
ରଥକୁ କରି ଆରୋହଣ । ପ୍ରଭାସକ୍ଷେତ୍ରରେ ମିଳିଣ ॥ ୧୩୩
ସିନ୍ଧୁତଟକୁ ବୋଲି ଯାଇ । କ୍ଷଣେକ ରହିଲେ ସେଠାଇଁ ॥ ୧୩୪
ତାହାଙ୍କୁ ଈଶ୍ୱରଭାବରେ । ସମୁଦ୍ର ଜାଣି ସେ କାଳରେ ॥ ୧୩୫
ସେ ଦୁହିଁଙ୍କର ଯେ ପୂଜନ । କଲା ତା' ସତ୍ୱର ହୋଇଣ ॥ ୧୩୬
୩୯ ସିନ୍ଧୁକୁ ବୋଇଲେ ଅଚ୍ୟୁତ । ବେଗେ ତୁ ଦିଅ ଗୁରୁସୁତ ॥ ୧୩୭
ଯଉଁ ବାଳକକୁ ଅତ୍ୟନ୍ତ । ଊର୍ମିରେ କରିଛୁ ତୁ ଗ୍ରସ୍ତ ॥ ୧୩୮

ଶ୍ରୀସମୁଦ୍ର ଉବାଚ

୪୦ ସମୁଦ୍ର କହନ୍ତି ବଚନ । ଶୁଣ ହେ ଦେବ ଭଗବାନ ॥ ୧୩୯
୪୧ ହେ କୃଷ୍ଣ ହରି ନାହିଁ ମୁହିଁ । ଜଳମଧ୍ୟରେ ବିହରଇ ॥ ୧୪୦
ଶଙ୍ଖରୂପକୁ ଧରି କରି । ଅସୁରେ ଅଛି ମହାବଳୀ ॥ ୧୪୧
ସେ ନିଶ୍ଚେ ହରିଛି କୁମର । ଶୁଣନ୍ତେ ଏମନ୍ତ ପ୍ରକାର ॥ ୧୪୨
ସେ ପ୍ରଭୁ ସତ୍ୱର ହୋଇଣ । ଜଳେ ପ୍ରବେଶ ହୋଇ ପୁଣ ॥ ୧୪୩
ମାରିଣ ଶଙ୍ଖ-ଅସୁରକୁ । ତା' ଗର୍ଭେ ନ ଦେଖି ପୁତ୍ରକୁ ॥ ୧୪୪
ତାହାର ଅଙ୍ଗରୁ ସାକ୍ଷାତ । ଯେବଣ ଶଙ୍ଖ ଅଟେ ଜାତ ॥ ୧୪୫
ତାହାକୁ ଗ୍ରହଣ କରିଣ । ରଥକୁ କଲେ ସେ ଗମନ ॥ ୧୪୬
୪୨ ତଦନନ୍ତରେ ଜନାର୍ଦ୍ଦନ । ଯମର ସଂଯମନୀ ନାମ ॥ ୧୪୭
ଦୟିତା ପ୍ରାୟେ ଯଉଁ ପୁରୀ । ତହିଁକି ବୋଲି ଯାଇଁ ହରି ॥ ୧୪୮
ବଳଦେବଙ୍କ ସହିତେଣ । ଶଙ୍ଖକୁ ବଜାଇଲେ ପୁଣ ॥ ୧୪୯
୪୩ ପ୍ରଜାଙ୍କୁ କରଇ ସଂଯମ । ଏମନ୍ତ ଅଟେ ଯଉଁ ଯମ ॥ ୧୫୦
ସେ ଶୁଣି ଶବ୍ଦକୁ ଶଙ୍ଖର । ସେ ରାମକୃଷ୍ଣ ବେନିଙ୍କର ॥ ୧୫୧
ଯେ ଭକ୍ତିସଂଯୁତ ମହତ । ସେ ପୂଜା କଲା ସେ ତୁରିତ ॥ ୧୫୨
୪୪ ଯେ କୃଷ୍ଣ ସର୍ବପ୍ରାଣିଙ୍କର । ଅନ୍ତଃକରଣର ମନ୍ଦିର ॥ ୧୫୩

ତାହାଙ୍କୁ ହୋଇ ଅବନତ । ସେ ଯମ କହିଲେ ଏମନ୍ତ ।। ୧୫୪
ଲୀଳାରେ ମନୁଷ୍ୟଶରୀର । ସାକ୍ଷାତେ ବିଷ୍ଣୁ ଯେ ଆବର ।। ୧୫୫
ସେ ତୁମ୍ଭେ, ବେନିଙ୍କର ମୁହିଁ । କି ବା କରିବି କହ ତାହି ।। ୧୫୬

ଶ୍ରୀଭଗବାନୁବାଚ

୪୫ କହନ୍ତି ପ୍ରଭୁ ଭଗବାନ । ଶୁଣ ହେ ସୂର୍ଯ୍ୟଙ୍କ ନନ୍ଦନ ।। ୧୫୭
ନିଜ ପ୍ରାରବ୍ଧ କର୍ମମାନ । ଅଟଇ ଯାହାର ବନ୍ଧନ ।। ୧୫୮
ସେ ଗୁରୁଙ୍କର ତନୟକୁ । ତୁମ୍ଭେ ଆଣିଛ ଏ ସ୍ଥାନକୁ ।। ୧୫୯
ହେ ମହାରାଜ ! ଆଣ ତାକୁ । ଘେନିଣ ଆମ୍ଭର ଆଜ୍ଞାକୁ ।। ୧୬୦
୪୬ ସେ ରୂପେ ସ୍ୱୀକାର କରିଣ । ଯମ ଆଣିଲେ ସେ ନନ୍ଦନ ।। ୧୬୧
ସେ ଯଦୁଶ୍ରେଷ୍ଠ ବେନିଜନ । ଘେନିଣ ଗୁରୁଙ୍କ ନନ୍ଦନ ।। ୧୬୨
ଦେଇଣ ଗୁରୁଙ୍କ ଠାବରେ । ବରକୁ ମାଗ ଆଉଥରେ ।। ୧୬୩
ଏମନ୍ତ ପ୍ରକାରେ ସେ ପୁଣ । ଗୁରୁଙ୍କୁ କହିଲେ ବଚନ ।। ୧୬୪

ଶ୍ରୀଗୁରୁରୁବାଚ

୪୭ ଗୁରୁଏ କହନ୍ତି ବଚନ । ହେ ବତ୍ସ ! ଉତ୍ତମ କରିଣ ।। ୧୬୫
ଗୁରୁଦକ୍ଷିଣା ତୁମ୍ଭେ ଦୁହେଁ । ନିଶ୍ଚେ ସଂପାଦିଲ ଏଠାଏଁ ।। ୧୬୬
ତୁମ୍ଭର ପ୍ରାୟେ ଶିଷ୍ୟ ଯାର । ଏମନ୍ତ ଅଟଇ ମୁଁ, ମୋର ।। ୧୬୭
କାମନାଙ୍କର ମଧ୍ୟେ କେହି । କାମନା ହୋଇ ଆଉ ନାହିଁ ।। ୧୬୮
୪୮ ହେ ରାମ କୃଷ୍ଣ ! ବେନି ବୀରେ । ଗମନ କର ନିଜ ପୁରେ ।। ୧୬୯
୪୯ ପବିତ୍ରବନ୍ତ କୀର୍ତ୍ତି ଯେହୁ । ତୁମ୍ଭ ବେନିଙ୍କର ସେ ହେଉ ।। ୧୭୦
ଗୁରୁ ଏମନ୍ତ ପରକାରେ । ଆଜ୍ଞା ଦିଅନ୍ତେ ସେ କାଳରେ ।। ୧୭୧
ଯା ବେଗ ପବନସମାନ । ମେଘର ପ୍ରାୟେ ଯା' ନିଃସ୍ୱନ ।। ୧୭୨
ଏମନ୍ତ ରଥେ ହେ ରାଜନ । ଗୃହକୁ କଲେ ସେ ଗମନ ।। ୧୭୩
୫୦ ଯେହୁ ବହୁତ ଦିନମାନ । କରି ନ ଥିଲେ ବିଲୋକନ ।। ୧୭୪
ସେ ସବୁ ପ୍ରଜାମାନେ ପୁଣ । ସେ ରାମକୃଷ୍ଣଙ୍କୁ ଦେଖିଣ ।। ୧୭୫
ନ ଦେଖିଥାଇ ଯଉଁ ଧନ । ତାହାକୁ ଲଭିଲେ ଯେସନ ।। ୧୭୬
ତେମନ୍ତ ରୂପରେ ସେ କାଳେ । ଉତ୍ତମ ଆନନ୍ଦ ହୋଇଲେ ।। ୧୭୭
ସମସ୍ତ ବିଦ୍ୟା ପଢ଼ି କରି । ଗୁରୁଦକ୍ଷିଣା ଅନୁସରି ।। ୧୭୮
ଗୁରୁଙ୍କ ପୁତ୍ରଙ୍କୁ ଜିଆଇ । ଦକ୍ଷିଣା କରି ଦେଲେ ଯେହି ।। ୧୭୯
ସେ କୃଷ୍ଣଚରଣ ପଙ୍କଜ । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ ।। ୧୮୦

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଗୁରୁପୁତ୍ରାନୟନଂ
ନାମ ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।।

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

ଷଟ୍‌ଚତ୍ୱାରିଂଶକେ ଘୋଷମୁଦ୍ଧବଂ ପ୍ରେଷ୍ୟ ତଦ୍‌ଗିରା ।
ଯଶୋଦାନନ୍ଦୟୋଶ୍ଚକ୍ରେ କୃଷ୍ଣଃ ଶୋକାପନୋଦନମ୍ ॥
କାମଚାରଂ ଦ୍ୱିଜାତିଃ ସନ୍ ପରିତ୍ୟଜ୍ୟାତିସଂଯତଃ ।
ଗୁରୋର୍ଜ୍ଞାନମନୁପ୍ରାପ୍ୟ ସଖ୍ୟା ଗୋପୀରୁପାଦିଶତ୍ ॥

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କର ସୁତ | । ଶୁଣ ହେ ନୃପ ! ପରୀକ୍ଷିତ | ॥ | ୧ |
| | ଯେ ବୃଷ୍ଣିମାନଙ୍କେ ପ୍ରବର | । ଯେ ପ୍ରିୟ ସଖା ଶ୍ରୀକୃଷ୍ଣର | ॥ | ୨ |
| | ଯେ ପୁଣ ଅଟଇ ସଚିବ | । ବୁଦ୍ଧିରେ ଶ୍ରେଷ୍ଠ ଯେ ଉଦ୍ଧବ | ॥ | ୩ |
| | ସାକ୍ଷାତ ବୃହସ୍ପତିଙ୍କର | । ଶିଷ୍ୟ ଯେ ଅଟଇ ଆବର | ॥ | ୪ |
| ୨ | ସେ ପ୍ରିୟ ଭକ୍ତକୁ ଏକାନ୍ତେ | । ତା' ହସ୍ତ ଧରି କରି ହସ୍ତେ | ॥ | ୫ |
| | ପ୍ରପନ୍ନ-ଆର୍ତ୍ତି-ବିନାଶନ | । ଯେ ନରହରି ଭଗବାନ | ॥ | ୬ |
| | ସେ କହୁଣିସି ସମୟରେ | । ତାଙ୍କୁ କହିଲେ ଏ ପ୍ରକାରେ | ॥ | ୭ |
| ୩ | ହେ ସୌମ୍ୟ ଉଦ୍ଧବ ଆମ୍ଭର | । ପିତାମାତାଙ୍କ ପ୍ରୀତି କର | ॥ | ୮ |
| | ଗୋପକୁ ଗମନ ତୁ କର | । ମୋର ସଂଦେଶେ ଗୋପୀଙ୍କର | ॥ | ୯ |
| | ଯେ ମୋର ବିରହରୁ ଜାତ | । ସେ ମନବ୍ୟଥା କର ହତ | ॥ | ୧୦ |
| ୪ | ମୋଠାରେ ମନ ଯାହାଙ୍କର | । ପ୍ରାଣ ହିଁ ରହିଛି ଆବର | ॥ | ୧୧ |
| | ମୋର ନିମିତ୍ତେ ତ୍ୟକ୍ତ କଲେ | । ଯେ ପତିପୁତ୍ରାଦିଙ୍କି ଭଲେ | ॥ | ୧୨ |
| | ପ୍ରିୟ ନାୟକ ଆତ୍ମା ମୁହିଁ | । ମତେ ଭଜିଲେ ମନେ ସେହି | ॥ | ୧୩ |
| | ଛାଡ଼ିଲେ ଯେ ଲୋକଧର୍ମକୁ | । ସୁଖୀ ମୁଁ କରିବି ତାହାଙ୍କୁ | ॥ | ୧୪ |
| ୫ | ବିରହୋତ୍‌କଣ୍ଠାରେ ବିହ୍ୱଳା | । ଅଟନ୍ତି ଯେ ବ୍ରଜ-ଅବଳା | ॥ | ୧୫ |
| | ହେ ପ୍ରିୟ ! ସେ ପ୍ରେୟସୀମାନେ | । ମୁଁ ପୁଣି ଥାନ୍ତେ ଦୂରସ୍ଥାନେ | ॥ | ୧୬ |
| | ମତେ ସ୍ମରଣା କରନ୍ତେଣ | । ମୋହକୁ ଲଭୁଛନ୍ତି ପୁଣ | ॥ | ୧୭ |
| ୬ | ଆସିବି ବୋଲି କରି ମୁହିଁ | । ଯଉଁ ସନ୍ଦେଶ ଅଛି କହି | ॥ | ୧୮ |
| | ସେ ହେତୁ ବଲ୍ଲବୀନିକର | । ମୋଠାରେ ଆତ୍ମା ଯାହାଙ୍କର | ॥ | ୧୯ |
| | ପ୍ରାୟଶଃ ସେ ଅତିକଷ୍ଟେଣ | । [୧]କି ରୂପେ ଧରିଛନ୍ତି ପ୍ରାଣ | ॥ | ୨୦ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୭ | ଶୁକ କହନ୍ତି ହେ ରାଜନ | । କୃଷ୍ଣ କହନ୍ତେ ଏ ବଚନ | ॥ | ୨୧ |

୧. ସେମାନଙ୍କର (ଗୋପୀମାନଙ୍କର) ଆତ୍ମା ଯଦି ନିଜ ଦେହରେ ଥାନ୍ତା, ତେବେ ବିରହତାପରେ ପୋଡ଼ି ହୋଇ ଯାଆନ୍ତା, କିନ୍ତୁ ତାହା ମୋଠାରେ ବର୍ତ୍ତମାନ ଥିବା ହେତୁ ସେମାନେ କୌଣସି ପ୍ରକାରେ ବଂଚି ରହିଛନ୍ତି । (ସ୍ୱାମୀ)

ଉଦ୍ଧବ ଲଭନ୍ତେ ଆଦର । ଆଜ୍ଞାକୁ ଲଭିଣ ଭର୍ତ୍ତାର ॥ ୨୨
ରଥକୁ ଆରୋହଣ କଲା । ନନ୍ଦଗୋକୁଳକୁ ଚଳିଲା ॥ ୨୩
୮ ଲେଉଟି ଆସିଣ ସେ ସ୍ଥାନେ । ପ୍ରବେଶ ହୁଅନ୍ତେ ଗୋଧନେ ॥ ୨୪
ଯେ ତାଙ୍କ ଖୁରରେଣୁମାନ । ତେଣେ ଆଚ୍ଛନ୍ନ ଯାହା ଯାନ ॥ ୨୫
ସେ ଅସ୍ତ ହୁଅନ୍ତେ ଭାସ୍କର । ଶୀଘ୍ରେ ଲଭିଲେ ଗୋପପୁର ॥ ୨୬
୯ ଯେ ଧେନୁମାନେ ପୁଷ୍ପବନ୍ତୀ । ତାଙ୍କ ନିମିତ୍ତେ ଯୁଝୁଛନ୍ତି ॥ ୨୭
୧୦ ଯେ ବୃଷେ ଅଟନ୍ତି ଉନ୍ମତ୍ତ । ତେଣେ ଯେ ହୋଇଛି ନାଦିତ ॥ ୨୮
ବତ୍ସାମାନଙ୍କୁ ପହ୍ନାଭାରେ । ଧେନୁଏ ଧାବନ୍ତି ଯହିଁରେ ॥ ୨୯
ଲଙ୍ଘନ୍ତି ଏ ସ୍ଥାନେ ସେ ସ୍ଥାନେ । ଯେ ଶୁକ୍ଳ ଧେନୁବତ୍ସାମାନେ ॥ ୩୦
ତେଣେ ଯେ ଅଟଇ ମଣ୍ଡିତ । ପୁଣି ଗୋଦୋହନୁଁ ସଂଭୂତ ॥ ୩୧
ଯେ ଶବ୍ଦ ତା' ଧ୍ୱନି ଯହିଁରେ । ବେଣୁନିଃସ୍ୱନ ସହିତରେ ॥ ୩୨
୧୧ ଯେ ରାମକୃଷ୍ଣର ଗାୟନ । କରନ୍ତି ଶୁଭ କର୍ମମାନ ॥ ୩୩
ଦିବ୍ୟ ଅଳଂକାରେ ଭୂଷିତ । ଅଟନ୍ତି ଯେ ଗୋପଯୋଷିତ ॥ ୩୪
ତେଣେ ଗୋପାଳମାନଙ୍କରେ । ଯେ ବିରାଜିତ ଅତ୍ୟନ୍ତରେ ॥ ୩୫
୧୨ ବହ୍ନି ତପନ ଅତିଥିରେ । ଗୋ ବିପ୍ର ପିତୃଦେବଙ୍କରେ ॥ ୩୬
ଏହାଙ୍କ ଅର୍ଚ୍ଚନ ଆଦିରେ । ଧୂପରେ ଦୀପରେ ମାଲ୍ୟରେ ॥ ୩୭
ଗୋପାଳମାନଙ୍କ ଆବାସେ । ଯେ ଅତି ମନୋରମ ଦିଶେ ॥ ୩୮
୧୩ ଯେ ହଂସ-କାରଣ୍ଡବେ ବ୍ୟାପ୍ତ । ଯେ ପଦ୍ମଷଣ୍ଡରେ ମଣ୍ଡିତ ॥ ୩୯
ଯେ ଦ୍ୱିଜ ଅଳିକୁଳଙ୍କର । ଶବ୍ଦରେ ଅଟଇ ସୁସ୍ୱର ॥ ୪୦
ଏମନ୍ତ ପୁଷ୍ପିତ କାନନେ । ଯହିଁ ଅଛନ୍ତି ସବୁସ୍ଥାନେ ॥ ୪୧
ଏମନ୍ତ ଗୋପଭୁବନରେ । ଉଦ୍ଧବ ମିଳିଲେ ସତ୍ୱରେ ॥ ୪୨
୧୪ କୃଷ୍ଣର ପ୍ରିୟ ଅନୁଚର । ନନ୍ଦ ଜାଣିଣ ଆସିବାର ॥ ୪୩
ପ୍ରୀତିରେ ଆଲିଙ୍ଗନ କଲେ । ଈଶ୍ୱରବୁଦ୍ଧିରେ ପୂଜିଲେ ॥ ୪୪
୧୫ ଉତ୍ତମ ଅନ୍ନକୁ ଭୁଞ୍ଜନ୍ତେ । ସୁଖେ ଆସନରେ ବସନ୍ତେ ॥ ୪୫
ଯେ ତାର ପାଦସଂବାହନ । ସେ ଆଦିମାନଙ୍କରେ ପୁଣ ॥ ୪୬
ଶ୍ରମକୁ କରି ତାର ହତ । ତାଙ୍କୁ ପଚାରିଲେ ଏମନ୍ତ ॥ ୪୭
୧୬ ହେ ମହାଭାଗ ହେ ଉଦ୍ଧବ । ଆମ୍ଭର ସଖା ବସୁଦେବ ॥ ୪୮
ସୁହୃଦଲୋକରେ ବେଷ୍ଟିତ । ହୋଇ ଅପତ୍ୟାଦିରେ ଯୁକ୍ତ ॥ ୪୯
ସେ ଦୁଃଖୁଁ ନିତ୍ୟେ ମୁକ୍ତ ହୋଇ । ସୁଖେ ଅଛନ୍ତିଟିକି ରହି ॥ ୫୦
୧୭ ଯେ ଧର୍ମବନ୍ତ ଲୋକଙ୍କର । ସାଧୁ ସୁଜନ ଯଦୁଂ[୧]ଙ୍କର ॥ ୫୧
ଦ୍ୱେଷକୁ କଲା ନିରନ୍ତର । ପାପିଷ୍ଠ ସେ କଂସ ଅସୁର ॥ ୫୨

୧. ଜନ।

ଅନୁଗମାନଙ୍କ ସହିତ । ଆପଣା ପାପେ ହେଲା ହତ ॥ ୫୩
୧୮ ଆପଣ ନାଥ ଅଟେ ଯାର । ଏମନ୍ତ ଯଉଁ ଗୋପପୁର ॥ ୫୪
ତାହାକୁ ମାତାଙ୍କୁ ପିତାଙ୍କୁ । ଆପଣା ସଖା ଗୋପାଳଙ୍କୁ ॥ ୫୫
ଧେନୁଙ୍କୁ ଏ ବୃନ୍ଦାବନକୁ । ଏ ଗୋବର୍ଦ୍ଧନ ପର୍ବତକୁ ॥ ୫୬
ନିଶ୍ଚେ ଏହାଙ୍କୁ ନାରାୟଣ । କରନ୍ତିଟିକି ସୁମରଣ ॥ ୫୭
୧୯ ସ୍ୱଜନ ଦେଖିବା ଅର୍ଥରେ । ଗୋବିନ୍ଦ ଆସିବେ କି ଥରେ ॥ ୫୮
ଶୋଭିତ ଉତ୍ତମ ନାସାରେ । ସୁସ୍ମିତ ଈକ୍ଷଣ ଯହିଁରେ ॥ ୫୯
ଏମନ୍ତ ତାଙ୍କର ବଦନ । କେବେ[1] କରିବି ଦରଶନ ॥ ୬୦
୨୦ ବନାଗ୍ନି-ବାତ-ବରଷାରୁ । ବୃଷଭାସୁର ସର୍ପଠାରୁ ॥ ୬୧
ଯେ ଅନ୍ୟ ମୃତ୍ୟୁମାନ ପୁଣ । ଅଟନ୍ତି ଦୁରତିକ୍ରମଣ ॥ ୬୨
ରଖିଲା ଏକଥାମାନଙ୍କୁ । ମହାତ୍ମା ଶ୍ରୀକୃଷ୍ଣ ଆମ୍ଭଙ୍କୁ ॥ ୬୩
୨୧ ଯେ କୃଷ୍ଣ-ପରାକ୍ରମମାନ । ଲୀଳା-ଅପାଙ୍ଗବିଲୋକନ ॥ ୬୪
ହାସ ଭାଷିତ ହେ ଉଦ୍ଧବ । ସ୍ମରଣ କରନ୍ତେ ତା' ସର୍ବ ॥ ୬୫
ଯେ କ୍ରିୟା ଆମ୍ଭମାନଙ୍କର । ସକଳ ହୋଇଲା ଶିଥିଳ ॥ ୬୬
୨୨ ବନଦେଶ ନଦୀ ପର୍ବତ । ମୁକୁନ୍ଦପଦରେ ଭୂଷିତ ॥ ୬୭
ଯେ କ୍ରୀଡ଼ାସ୍ଥାନମାନ ତାର । ସେମାନ ଦେଖନ୍ତେ ଆମ୍ଭର ॥ ୬୮
ତଦାତ୍ମଭାବକୁ ମାନସ । ତତ୍‌କ୍ଷଣେ ହୁଅଇ ପ୍ରବେଶ ॥ ୬୯
୨୩ ସେ ରାମ-ଗୋବିନ୍ଦଙ୍କୁ ମୁହିଁ । ଏମନ୍ତ ରୂପରେ ମଣଇଁ ॥ ୭୦
ଶ୍ରେଷ୍ଠ ସେ ଦେବମାନଙ୍କରେ । ମିଳିଣ ଥିଲେ ଏ ସ୍ଥାନରେ ॥ ୭୧
ଦେବତାଙ୍କର ପ୍ରୟୋଜନେ । ଗର୍ଗଙ୍କ ବଚନ ଯେସନେ ॥ ୭୨
୨୪ ଦଶସହସ୍ର ହସ୍ତୀଙ୍କର । ବଳକୁ ବହେ କଂସାସୁର ॥ ୭୩
ଯେବଣ ମାଲଦୁହେଁ ତାର । ଆବର ଯଉଁ କରିବର[2] ॥ ୭୪
ଲୀଳାରେ ମାଇଲେ ଯେ ତାଙ୍କୁ । କେସରୀ ଯେସନେ ପଶୁଙ୍କୁ ॥ ୭୫
୨୫ କରୀନ୍ଦ୍ର ଯଷ୍ଟିକି ଯେସନେ । ବିନାଶ କରଇ ତେସନେ ॥ ୭୬
ଭାଙ୍ଗିଲେ ତ୍ରିତାଳପ୍ରମାଣ । ଯେ ମହାବଳ ଶରାସନ ॥ ୭୭
ଏକା ହସ୍ତକେ ଗୋବର୍ଦ୍ଧନ । ଧଇଲେ ଯେ ସପତ ଦିନ ॥ ୭୮
୨୬ ପ୍ରଳମ୍ବ ଧେନୁକ ଅରିଷ୍ଟ । ଯେ ତୃଣାବର୍ତ୍ତ ବକ ଦୁଷ୍ଟ ॥ ୭୯
ଏ ଆଦି ଯେ ରଜନୀଚର । ଜିଣନ୍ତି ଯେ ସୁର-ଅସୁର ॥ ୮୦
ଲୀଳାମାତ୍ରକରେ ନିଧନ । କଲେ ତାହାଙ୍କୁ ଭଗବାନ ॥ ୮୧

ଶ୍ରୀଶୁକ ଉବାଚ

୨୭ କହନ୍ତି ବ୍ୟାସଙ୍କର ସୁତ । ଯା' ବୁଦ୍ଧି କୃଷ୍ଣେ ଅନୁରକ୍ତ ॥ ୮୨

୧. 'ତହିଁ' ଇତି ପାଠେ 'ତେବେ' ହେବ । ୨. କୁବଳୟାପୀଡ଼ ।

ସେ ନନ୍ଦ ଗଦଗଦ ହୋଇ । ପ୍ରେମପ୍ରସରେ ବିହ୍ୱଳଇ ॥ ୮୩
ବହୁତ ସ୍ମରଣା କରିଣ । ଏରୂପେ ହୋଇଲେ ମଉନ ॥ ୮୪
୨୮ ପୁତ୍ରର ବର୍ଣ୍ଣିତ ଚରିତ । ଯଶୋଦା ଶୁଣନ୍ତେ ବହୁତ ॥ ୮୫
ଲୋତକ ଛାଡ଼ିଲା ସ୍ନେହରୁ । କ୍ଷୀର ସ୍ରବିଲା ପୟୋଧରୁ ॥ ୮୬
୨୯ ସେ ଭଗବାନ କୃଷ୍ଣଠାରେ । ପରମ ପ୍ରୀତି ଏ ପ୍ରକାରେ ॥ ୮୭
ନନ୍ଦ-ଯଶୋଦାର ଦେଖିଲେ । ଉଦ୍ଧବ ନନ୍ଦଙ୍କୁ କହିଲେ ॥ ୮୮

ଶ୍ରୀଉଦ୍ଧବ ଉବାଚ

୩୦ ପ୍ରାଣିମାନଙ୍କ ମଧ୍ୟେ ପୁଣ । ହେ ନନ୍ଦ ! ତୁମ୍ଭେ ଦୁହେଁ ଶୁଣ ॥ ୮୯
ଉତ୍ତମ ଶ୍ଳାଘ୍ୟ ତୁମ୍ଭେ ଦୁଇ । ଅଖିଳଗୁରୁ ବିଷ୍ଣୁଠାଇଁ ॥ ୯୦
ଯାହା ଏମନ୍ତ ପରକାରେ । ବୁଦ୍ଧିକି କଲ ଅତ୍ୟନ୍ତରେ ॥ ୯୧
୩୧ ଏ ବଳରାମ କୃଷ୍ଣ ବେନି । ସଂସାରର ଏ ବୀଜ-ଯୋନି ॥ ୯୨
ପ୍ରଧାନ[1] ପୁରୁଷ[2] ଏ ଦୁଇ । ଭୂତମାନଙ୍କେ ଯୁକ୍ତ ହୋଇ ॥ ୯୩
ଯେ ନାନାଭେଦ[3]ଜୀବମାନ । ତାଙ୍କ ଈଶ୍ୱର ପୁରାତନ ॥ ୯୪
୩୨ ପ୍ରାଣବିୟୋଗ ସମୟରେ । କ୍ଷଣେହେଁ ଜନ ଯାହାଠାରେ ॥ ୯୫
ନିବେଶି ବିଶୁଦ୍ଧ ମନକୁ । ବିନାଶି କର୍ମବାସନାକୁ ॥ ୯୬
ସେ ବ୍ରହ୍ମମୟ ସୂର୍ଯ୍ୟବର୍ଣ୍ଣ । ଧରି ଗମଇଁ ବିଷ୍ଣୁସ୍ଥାନ ॥ ୯୭
୩୩ ହେତୁ ଯେ ଅଖିଳ ଆତ୍ମାର । କାରଣେ ମନୁଷ୍ୟଶରୀର ॥ ୯୮
ହୋଇଛି ଯଉଁ ନାରାୟଣ । ତା' ଠାରେ ତୁମ୍ଭେ ଦୁହେଁ ପୁଣ ॥ ୯୯
ହେ ମହାମତି[4] ! ଅତିଶୟେ । ଭକ୍ତିକି କଲ ଯେ ନିଶ୍ଚୟେ ॥ ୧୦୦
ବିଶିଷ୍ଟ[5] କାର୍ଯ୍ୟ ବା ଆବର । କି ଅଛି ତୁମ୍ଭ ଦୁହିଁଙ୍କର ॥ ୧୦୧
୩୪ ଅଦୀର୍ଘ କାଳରେ ବ୍ରଜକୁ । ଅଚ୍ୟୁତ ଆସିବେ, ପ୍ରିୟକୁ ॥ ୧୦୨
କରିବେ ତୁମ୍ଭ ଦୁହିଁଙ୍କର । ସେ ଭଗବାନ ଯଦୁବୀର ॥ ୧୦୩
୩୫ ସମସ୍ତ ଯଦୁମାନଙ୍କର । ଶତ୍ରୁ ଅଟଇ କଂସାସୁର ॥ ୧୦୪
ରଙ୍ଗମଧ୍ୟରେ ମାରି ତାକୁ । ସୁହୃଦମାନଙ୍କ ସୁଖକୁ ॥ ୧୦୫
ବିଧାନ କରିଣ ମୁଁ ପୁଣ । ଯେ ସ୍ନେହେ ଦୁଃଖୀ ଜ୍ଞାତିଜନ ॥ ୧୦୬
ଆସିବି ତାଙ୍କୁ ଦେଖିବାକୁ । ଭୋ ତାତ ! ଯାଅ ଗୋକୁଳକୁ ॥ ୧୦୭
ଏରୂପେ ପୂର୍ବ ସମୟରେ । କହିଲେ ଯା' ତୁମ୍ଭ ଆଗରେ ॥ ୧୦୮
ସେ କଥା ନିଶ୍ଚେ ଆସି କରି । ସତ୍ୟ କରିବେ ନରହରି ॥ ୧୦୯

---

୧. ପ୍ରଧାନ = ଶକ୍ତି ୨. ପୁରୁଷ = ଅଂଶ ୩. ନାନାଭେଦ = ନାମାଭେଦ ।
୪. ମୂଳ 'ମହାମୃନ୍' ଶବ୍ଦକୁ ଶ୍ରୀଯୁକ୍ତ ଖାଡ଼ଙ୍କା ସମ୍ବୋଧନ ପଦରୂପେ ଗ୍ରହଣ କରିଛନ୍ତି ମାତ୍ର ସ୍ୱାମିପାଦ ତାହାକୁ ସପ୍ତମୀ ଏକବଚନ ରୂପେ ଗ୍ରହଣ କରିଛନ୍ତି ।
୫. ଅବଶିଷ୍ଟ ।

୩୬ ହେ ମହାଭାଗେ ! ତୁମ୍ଭେ ଏବେ । ଖେଦ ନ ପାଅ ଏହି ଠାବେ ॥ ୧୧୦
କୃଷ୍ଣଙ୍କୁ ଦେଖ ପ୍ରାଣିଙ୍କର । ଯେ ଅଛି ହୃଦୟମଧ୍ୟର ॥ ୧୧୧
[1]କାଷ୍ଠମାନଙ୍କରେ ଯେସନ । ରହିଣ ଥାଇ ହୁତାଶନ ॥ ୧୧୨
୩୭ ଏହାର ଅତିପ୍ରିୟ ହୋଇ । ଅପ୍ରିୟ ହୋଇ କେହି ନାହିଁ ॥ ୧୧୩
ଯେଣୁ ଏ ଅଟଇ ଅମାନୀ । ସମାନ ଅଟଇ ଏ ପୁଣି ॥ ୧୧୪
ଏହାର ସମ ଅବା କାହିଁ । ଉତ୍ତମ ଅଧମ ହିଁ ନାହିଁ ॥ ୧୧୫
୩୮ ତାହାର ମାତା ପିତା ନାହିଁ । ପତ୍ନୀ ପୁତ୍ରାଦି ଅବା କାହିଁ ॥ ୧୧୬
ଶତ୍ରୁ ମିତ୍ରାଦି[2] ନାହିଁ ତାର । ନାହିଁ ତା' ଜନମ ଶରୀର ॥ ୧୧୭
୩୯ ଲୋକେ ଏହାର କର୍ମ ନାହିଁ । କ୍ରୀଡ଼ା ଅର୍ଥରେ ପୁଣ ଏହି ॥ ୧୧୮
ଉତ୍ତମ ସାଧୁମାନଙ୍କର । ପରିପାଳନାନିମିତ୍ତର ॥ ୧୧୯
ଦେବମନୁଷ୍ୟାଦି ଯୋନିଙ୍କରେ । ଆତ୍ମାକୁ କଳ୍ପନା ଏ କରେ ॥ ୧୨୦
୪୦ ଅଟଇ ଏ ମହାନିର୍ଗୁଣ । କ୍ରୀଡ଼ାରୁ ଭିନ୍ନ ହୋଇଲେଣ ॥ ୧୨୧
ସତ୍ତ୍ୱ, ରଜ, ତମ ଗୁଣକୁ । ଭଜଇ କରନ୍ତେ କ୍ରୀଡ଼ାକୁ ॥ ୧୨୨
କରଇ ଗୁଣେ ଏ ବିଶ୍ୱର । ସର୍ଜନ ପାଳନ ସଂହାର ॥ ୧୨୩
୪୧ ଭ୍ରମଣଦୃଷ୍ଟିରେ ଯେସନ । ଭ୍ରମିଲାପ୍ରାୟ ପୃଥ୍ୱୀ ପୁଣ ॥ ୧୨୪
ପ୍ରତ୍ୟେ ହୁଅଇ ସେହିରୂପେ । ଚିତ୍ତ ଥାଆନ୍ତେ କର୍ତ୍ତାରୂପେ ॥ ୧୨୫
ଅହଂବୁଦ୍ଧିରେ ଆତ୍ମା ତହିଁ । କର୍ତ୍ତାପ୍ରାୟେକ ଖ୍ୟାତ ହୋଇ ॥ ୧୨୬
୪୨ ଏ ହରି ତୁମ୍ଭ ବେନିଙ୍କର । ଏକା ନୁହଇ ଏ କୁମର ॥ ୧୨୭
ଏ ପୁତ୍ର ଆତ୍ମା ସବୁଙ୍କର । ପିତାମାତା ହିଁ ସେ ଈଶ୍ୱର ॥ ୧୨୮
୪୩ ଭୂତ, ଭବିଷ୍ୟ, ବର୍ତ୍ତମାନ । ଯେ ଦୃଷ୍ଟ ଶ୍ରୁତ ଅବା ଆନ ॥ ୧୨୯
ସ୍ଥାବର ଜଙ୍ଗମ ଯେ ଦୁଇ । ଅଳ୍ପ ବହୁତ ଅବା ଯେହି ॥ ୧୩୦
ଅଚ୍ୟୁତଠାରୁ ଆନ ହୋଇ । ବଚନଯୋଗ୍ୟ ଦ୍ରବ୍ୟ ନାହିଁ ॥ ୧୩୧
ଯେ ପରମାତ୍ମାରୂପ ହରି । ସର୍ବ ହିଁ ସେ ସମସ୍ତଙ୍କରି ॥ ୧୩୨
୪୪ ଏରୂପେ କହନ୍ତେ ବଚନ । ନନ୍ଦ ଉଦ୍ଧବ ବେନିଜନ ॥ ୧୩୩
ସେ ରାତ୍ରି ଶେଷ ହୁଅନ୍ତେଣ । ହେ ନୃପ ! ଗୋପୀଏ ଉଠିଣ ॥ ୧୩୪
ପ୍ରଦୀପମାନଙ୍କୁ ଜାଳିଣ । ଦେହଳୀ ଆଦି ଯେବା ସ୍ଥାନ ॥ ୧୩୫
କରି ସେମାନ ସଂମାର୍ଜନ । ମନ୍ଥନ କଲେ ଦଧିମାନ ॥ ୧୩୬
୪୫ ରଜ୍ଜୁ କରନ୍ତେ ବିକର୍ଷଣ । ଯେ ଭୁଜମାନଙ୍କ କଙ୍କଣ ॥ ୧୩୭
ତାଙ୍କର ମାଳାମାନ ଯେହି । ସେ ଅଛି ଯାହାଙ୍କର ଠାଇଁ ॥ ୧୩୮

---

୧. କାଠମାନଙ୍କରେ ଅଗ୍ନି ଥାଏ; କିନ୍ତୁ ସେହି ଅଗ୍ନି ଯେପରି ମନ୍ଥନ ବିନା ଦେଖାଯାଏ ନାହିଁ, ସେହିପରି ଶ୍ରୀକୃଷ୍ଣ ପ୍ରାଣିମାନଙ୍କ ଅନ୍ତରରେ ଥାଇ ମଧ୍ୟ ଭକ୍ତି ବିନା ଦେଖାଯାଆନ୍ତି ନାହିଁ ।

୨. ମିତ୍ରହିଁ ।

| | | | | |
|---|---|---|---|---|
| | ନିତମ୍ବମାନ ସ୍ତନହାର | । ଚଳୁଛି ଯଉଁମାନଙ୍କର | ।। | ୧୩୯ |
| | କୁଣ୍ଡଳମାନଙ୍କ କାନ୍ତିରେ | । କପୋଳ ଯାହାଙ୍କର ସ୍ଫୁରେ | ।। | ୧୪୦ |
| | ଅରୁଣକୁଙ୍କୁମେ ଶୋଭନ | । ଦିଶୁଛି ଯାହାଙ୍କ ବଦନ | ।। | ୧୪୧ |
| | ଦୀପଦୀପିତ ମଣିଙ୍କରେ | । ଶୋଭା ପାଇଲେ ସେ କାଳରେ | ।। | ୧୪୨ |
| ୪୬ | ଯେ ହରି ନଳିନନୟନ | । ତାଙ୍କୁ କରନ୍ତେ ଉଦ୍‌ଗାୟନ | ।। | ୧୪୩ |
| | ଯେ ଧ୍ୱନି ବ୍ରଜନାରୀଙ୍କର | । ଯେ ଶବ୍ଦ ଦଧିମନ୍ଥନର | ।। | ୧୪୪ |
| | ତେଣେ ସେ ମିଶ୍ରିତ ହୋଇଣ | । ଛୁଇଁଲା ଆକାଶକୁ ପୁଣ | ।। | ୧୪୫ |
| | ଅମଙ୍ଗଳକୁ ଦିଗଙ୍କର | । ବିନାଶ କଲା ଯଉଁ ସ୍ୱର | ।। | ୧୪୬ |
| ୪୭ | ଉଦୟ ହୁଅନ୍ତେ ତପନ | । ନନ୍ଦ[୧] -ଦୁଆରେ ଗୋପୀଜନ | ।। | ୧୪୭ |
| | ସୁବର୍ଣ୍ଣରଥେକ ଦେଖିଲେ | । ଏ ରଥ କାହାର ବୋଇଲେ | ।। | ୧୪୮ |
| ୪୮ | କି ବା ଅଇଲା ସେ ଅକ୍ରୂର | । ଅର୍ଥସାଧକ ଯେ କଂସର | ।। | ୧୪୯ |
| | କମଳଲୋଚନ ହରିଙ୍କି | । ଯେ ନେଲା ମଥୁରାପୁରୀକି | ।। | ୧୫୦ |
| ୪୯ | ପ୍ରେତ[୨] ଭର୍ତ୍ତାର ନିଷ୍କୃତିକି | । ଆମ୍ଭମାନଙ୍କେ[୩] ସାଧିବ କି | ।। | ୧୫୧ |
| | ଗୋପୀଏ ଏମନ୍ତ ପ୍ରକାରେ | । ବୋଲନ୍ତେ ସେହି ସମୟରେ | ।। | ୧୫୨ |
| | ସ୍ନାନାଦି କର୍ମ କରି ଶେଷ | । ଉଦ୍ଧବ ହୋଇଲେ ପ୍ରବେଶ | ।। | ୧୫୩ |
| | ଦୂତ କରିଣ ଉଦ୍ଧବଙ୍କୁ | । ଯେ ପେଷିଥିଲେ ଗୋକୁଳକୁ | ।। | ୧୫୪ |
| | ସେ କୃଷ୍ଣଚରଣପଙ୍କଜ | । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୫୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀନନ୍ଦଶୋକାପନୟନଂ
ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ।।

## ସପ୍ତଚତ୍ୱାରିଂଶ ଅଧ୍ୟାୟ

ସପ୍ତଚତ୍ୱାରିଂଶକେଽଥ କୃଷ୍ଣାଦେଶେନ ଗୋପିକାଃ ।
ବୋଧୟିତ୍ୱୋଦ୍ଧବସ୍ତତ୍ତ୍ୱମନୁଜ୍ଞାପ୍ୟାଗମଦ୍ ପୁରୀମ୍ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ ଆତ୍ମଜ | । ହେ ପରୀକ୍ଷିତ ନୃପରାଜ | ।। | ୧ |
| ୨ | ଯେ ଶ୍ରୀକୃଷ୍ଣର ଅନୁଚର | । ପ୍ରଳମ୍ବ ବାହୁଯୁଗ ଯାର | ।। | ୨ |
| | ନବୀନ ନଳିନ ପରାଏ | । ଯାହା ଲୋଚନବେନି ଶୋହେ | ।। | ୩ |
| | ପୀତ ଅଟଇ ଯା' ଅମ୍ବର | । ପୁଷ୍କରମାଳା ଅଛି ଯାର | ।। | ୪ |

---

୧. ବ୍ରଜ ।　　　　୨. ପ୍ରୀତ । ପ୍ରେତ = ମୃତ ।

୩. ଆମ୍ଭମାନଙ୍କ ମାଂସରେ ପିଣ୍ଡ ତିଆରି କରି ଦେବ କି ।

| | | | | |
|---|---|---|---|---|
| | ସୁନ୍ଦର ଯା' ମୁଖନଳିନ | ଯେ ଦିବ୍ୟ କୁଣ୍ଡଳେ ଶୋଭନ | ॥ | ୫ |
| | ଅଚ୍ୟୁତବେଷପ୍ରାଏ ଯାର | ଭୂଷଣ ଅଟେ ମନୋହର | ॥ | ୬ |
| | ଯେ ପାଦପଦ୍ମ ଗୋବିନ୍ଦର | ତାହା ସକାଶୁଁ ଶୋଭା ଯାର | ॥ | ୭ |
| | ସେ ଉଦ୍ଧବଙ୍କୁ ଏ ରୂପରେ | ଦେଖି କରିଣ ସେ ସ୍ଥାନରେ | ॥ | ୮ |
| | ସେ ଶୁଚିସ୍ମିତା[୧] ଗୋପୀମାନେ | ଏମନ୍ତ ବିଚାରିଲେ ମନେ | ॥ | ୯ |
| | ଏ କେ ସେ ଅଟଇ କାହାର | କାହୁଁ ଅଇଲା ଏ ପ୍ରକାର | ॥ | ୧୦ |
| | ବୋଲନ୍ତେ ଉତ୍ସୁକ ହୁଅନ୍ତେ | ତାହାଙ୍କୁ ବେଢ଼ିଲେ ସମସ୍ତେ | ॥ | ୧୧ |
| ୩ | ଉଦ୍ଧବ ସତ୍‌କାରକୁ ପାଇ | ବସନ୍ତେ ଆସନରେ ଯାଇ | ॥ | ୧୨ |
| | ଏ ରମାପତି-ଦୂତପଣ | କରିଛି ଏମନ୍ତ ଜାଣିଣ | ॥ | ୧୩ |
| | ପଚାରିବାରେ ନମ୍ର ହୋଇ | ଯେ ଛନ୍ତି ତାଙ୍କୁ ଗୋପଗୋଇ | ॥ | ୧୪ |
| | ଲଜ୍ଜାସହିତ ଯେ ଈକ୍ଷଣ | [୨]ଯେ ପରିହାସମାନେ ଆନ | ॥ | ୧୫ |
| | ତେଣେ ସେମାନେ ଏକାନ୍ତେଣ | ତାଙ୍କୁ ପୁଛିଲେ ଏ ରୂପେଣ | ॥ | ୧୬ |
| ୪ | କୃଷ୍ଣର ପାରିଷଦ ତୁମ୍ଭେ | ତୁମ୍ଭୁଁ ଜାଣିଲୁଁ ନିଶ୍ଚେ ଆମ୍ଭେ | ॥ | ୧୭ |
| | ଆସିଛ ଉତ୍ତମ ହୋଇଣ | ଯେ ପିତାମାତା ବେନିଜଣ | ॥ | ୧୮ |
| | ତାଙ୍କରି ପ୍ରିୟ କରିବାକୁ | ସେ ଭର୍ତ୍ତା ପେଷିଲେ ତୁମ୍ଭଙ୍କୁ | ॥ | ୧୯ |
| ୫ | ଅନ୍ୟଥା ଏ ବ୍ରଜେ ତାହାର | ନ ଦେଖୁଁ ସ୍ମରଣୀୟ ନର | ॥ | ୨୦ |
| | ସ୍ନେହାନୁବନ୍ଧ ବନ୍ଧୁଙ୍କର | ଦୁସ୍ତ୍ୟଜ ଅଟଇ ମୁନିର | ॥ | ୨୧ |
| ୬ | ଆନଲୋକରେ ମିତ୍ରପଣ | ଅଟଇ କାର୍ଯ୍ୟନିମିତ୍ତେଣ | ॥ | ୨୨ |
| | ଅର୍ଥକୁ ଅନୁଗତ ହୋଇ | ଅନୁକରଣମାନ ସେହି | ॥ | ୨୩ |
| | ପୁରୁଷେ ଯେସନ ପ୍ରକାରେ | ପ୍ରୀତି କରନ୍ତି ସ୍ତିରୀଠାରେ | ॥ | ୨୪ |
| | ଯେସନେ ପୁଷ୍ପମାନଙ୍କରେ | ପ୍ରୀତିକି କରନ୍ତି ଭ୍ରମରେ | ॥ | ୨୫ |
| ୭ | ନିର୍ଧନ ଲୋକକୁ ହିଁ ପୁଣ | ତ୍ୟକ୍ତ କରନ୍ତି ବେଶ୍ୟାଗଣ | ॥ | ୨୬ |
| | ଯେ ବା ଅସମର୍ଥ ନୃପତି | ତାହାକୁ ପ୍ରଜାଏ ଛାଡ଼ନ୍ତି | ॥ | ୨୭ |
| | ଅଧୀତ କରନ୍ତେ ବିଦ୍ୟାକୁ | ଶିଷ୍ୟେ ଛାଡ଼ନ୍ତି ଆଚାର୍ଯ୍ୟକୁ | ॥ | ୨୮ |
| | ଋତ୍ୱିଜେ ଲଭି ଦକ୍ଷିଣାକୁ | ଛାଡ଼ନ୍ତି ସେ ଯଜମାନକୁ | ॥ | ୨୯ |
| ୮ | କ୍ଷୀଣ ହୁଅନ୍ତେ ଫଳମାନେ | ବୃକ୍ଷ ଛାଡ଼ନ୍ତି ପକ୍ଷିମାନେ | ॥ | ୩୦ |
| | ଅତିଥିମାନେ ସଦନକୁ | ଛାଡ଼ନ୍ତି ଭୁଞ୍ଜିଣ ଅନ୍ନକୁ | ॥ | ୩୧ |
| | ଦଗ୍‌ଧ ବିପିନକୁ ତେସନେ | ଛାଡ଼ି ଯାଆନ୍ତି ମୃଗମାନେ | ॥ | ୩୨ |
| | ଅତୃପ୍ତ ନାରୀକି ଭୁଞ୍ଜିଣ | ଛାଡ଼ନ୍ତି ଜାରମାନେ ପୁଣ | ॥ | ୩୩ |
| ୯ | ଗୋବିନ୍ଦଠାରେ ଯାହାଙ୍କର | ମନ-ବଚନ-କଳେବର | ॥ | ୩୪ |
| | ଛାଡ଼ିଲେ ଲୋକବ୍ୟବହାର | ସେ ଗୋପୀମାନେ ଏ ପ୍ରକାରେ | ॥ | ୩୫ |

୧. ସୁବିସ୍ମିତା । ୨. ଯେ ହାସ ମଧୁର ବଚନ ।

କୃଷ୍ଣର ଦୂତ ସେ ଏମନ୍ତେ । ଉଦ୍ଧବ ଗୋପକୁ ଆସନ୍ତେ ॥ ୩୬
୧୦ ବାଳକ ସମୟେ କୃଷ୍ଣର । କିଶୋରକାଳେ ଯେ ବିହାର ॥ ୩୭
ସେ କ୍ରୀଡ଼ାମାନ ଏ ପ୍ରକାର । ସୁମରି ପୁଣ ପୁଣ ତାର ॥ ୩୮
ଯେବଣ ପ୍ରିୟକର୍ମମାନ । ସେମାନ କରନ୍ତି ଗାୟନ ॥ ୩୯
ଲଜ୍ଜାକୁ ଛାଡ଼ିଣ ରୋଦନ । କଲେ ସେ କହନ୍ତେ ଏମାନ ॥ ୪୦
୧୧ ଯେ ଆପଣାର ପ୍ରିୟ ହରି । ତାର ସଙ୍ଗମ ଧ୍ୟାନ କରି ॥ ୪୧
କେବଣ ଗୋପୀ ଭ୍ରମରକୁ । ଦେଖି କରିଣ ପୁଣ ତାକୁ ॥ ୪୨
ଦୂତ କରିଣ ମୋହଠାକୁ । ସେ ପ୍ରିୟ ପେଷିଛି ଏହାକୁ ॥ ୪୩
କଲା ଏମନ୍ତ କଳ୍ପନାକୁ । ଭ୍ରମରବ୍ୟାଜେ ଉଦ୍ଧବକୁ ॥ ୪୪
ଚାହାଁନ୍ତେ ଆକ୍ଷେପ କରିଣ । ବୋଇଲା ଏମନ୍ତ ବଚନ ॥ ୪୫

ଶ୍ରୀଗୋପ୍ୟୁବାଚ

୧୨ ହେ ଧୂର୍ତ୍ତବନ୍ଧୁ ହେ ଭ୍ରମର । ନ ଛୁଅଁ ପାଦକୁ ଆମ୍ଭର ॥ ୪୬
ସପତ୍ନୀକୁଚେ ବିଲୁଳିତ[1] । ଯେ କୃଷ୍ଣମାଳା ଅବିରତ ॥ ୪୭
ତାର କୁଙ୍କୁମରେ ସଂଯୁତ । ଯେ[2] ଶ୍ମଶ୍ରୁ ତେଣେ ତୁ ଲକ୍ଷିତ ॥ ୪୮
ସେହି ମାନିନୀଙ୍କର ଅତି । ପ୍ରସନ୍ନ ବହୁ[3] ମଧୁପତି ॥ ୪୯
ତାହାର ଆମ୍ଭଙ୍କୁ ପ୍ରସନ୍ନ । ଯଦୁସଭାରେ ବିଡ଼ମ୍ବନ[4] ॥ ୫୦
ପୁଣି ଏମନ୍ତ ପରକାର । ତୁ ଅଟୁ ଦୂତଟି ଯାହାର ॥ ୫୧
୧୩ ନିଜ ଅଧରସୁଧା ଯେହି । ଲୋକଙ୍କୁ ମୋହିତ କରଇ ॥ ୫୨
ତା' ଥରେ ଆମ୍ଭଙ୍କୁ ପିଆଇ । ଛାଡ଼ିଲା ତୋହରି ପରାଇ ॥ ୫୩
କୁସୁମମାନଙ୍କୁ ଯେସନ । ଛାଡୁ ତୁ ଚୁମ୍ବିତ କରିଣ ॥ ୫୪
ତାହାର ଚରଣପଦ୍ମରେ । ପଦ୍ମା ଭଜିଛି କି ରୂପରେ ॥ ୫୫
ଯେଣୁ କଥାରେ ସେ କୃଷ୍ଣର । ହୃତ ହୋଇଛି ଚିତ୍ତ ତାର ॥ ୫୬
୧୪ ଘେନି ନ ପାରୁଁ କଥା ତାର । ଆମ୍ଭ ଆଗରେ ହେ ଭ୍ରମର ॥ ୫୭
ସେ ଯଦୁପତିକି କିଂପାଇଁ । ବହୁତ ଗାଉଛୁ ଏଠାଇ ॥ ୫୮
ଯା'ଙ୍କର କୃଷ୍ଣ-ଆଲିଙ୍ଗନେ । ଗଲେ କୁଚର ପୀଡ଼ାମାନେ ॥ ୫୯
ସେ କୃଷ୍ଣ ସଖୀଙ୍କର ଆଗ । ଗାଅ ତୁ ତାହାର ପ୍ରସଙ୍ଗ ॥ ୬୦
ସେ ଇଷ୍ଟ ନାରୀଏ କଳ୍ପିତ । କରିବେ ତୋର ଅପେକ୍ଷିତ ॥ ୬୧
୧୫ ସ୍ୱର୍ଗମର୍ତ୍ତ୍ୟରେ ପାତାଳରେ । ଯେ ସ୍ତିରୀ ଅଛନ୍ତି ନିର୍ଭରେ ॥ ୬୨
କପଟହାସରେ ରୁଚିର । ଭ୍ରୂଲତା-ବିଳାସ ଯାହାର ॥ ୬୩

---

୧. ବିଲୁଳିତ = ସଂମର୍ଦ୍ଦିତ ।
୨. କୃଷ୍ଣବର୍ଣ୍ଣ ଭ୍ରମରର ଶ୍ମଶ୍ରୁ ଲୋହିତ ହୋଇଥିବାର କାରଣ ଉତ୍ପ୍ରେକ୍ଷା କରୁଅଛି ।
୩. ବହୁ = ବହନ କରୁ ।
୪. ବିଡ଼ମ୍ବନ = ଉପହାସାସ୍ପଦ ।

ତାହାର ନ ପାଇଲା ହୋଇ । କେ ଅବା ଅଛି ତହିଁ ରହି ।। ୬୪
ଚରଣରଜକୁ ଯାହାର । ଲକ୍ଷ୍ମୀ ଭଜଇ ନିରନ୍ତର ।। ୬୫
କେ ଆମ୍ଭେମାନେ ଅବା ତାର । ତଥାପି କୃପଣ ଲୋକର ।। ୬୬
ପକ୍ଷ ଅଟଇ ସେ ତା' ଠାଏଁ । 'ଉତ୍ତମଶ୍ଳୋକ' ଶବ୍ଦ ରହେ ।। ୬୭
୧୬ ଛାଡ଼ ମସ୍ତକ ମୋ ପାଦରୁ । ଆସିଛୁ ମୁକୁନ୍ଦଠାବରୁ ।। ୬୮
ଯେ ଦୂତକର୍ମ ଚାଟୁକାର[1] । ତେଣେ ତୁ ପ୍ରାର୍ଥନାଚତୁର ।। ୬୯
[2]ତୋହର ଜାଣିଲୁଁ ସମସ୍ତ । ସଂସାରେ ତାହାରି ନିମିତ୍ତ ।। ୭୦
ଯେ ପତି-ପୁତ୍ର-ଧର୍ମମାନେ । ତାହା ଛାଡ଼ିଲୁଁ ଆମ୍ଭେମାନେ ।। ୭୧
ହୁଅନ୍ତେ ଅସଂଯତଚିତ୍ତ । ଆମ୍ଭମାନଙ୍କୁ କଲା ତ୍ୟକ୍ତ ।। ୭୨
ଏଠାରେ ତୁହି ଆଉ ପୁଣ । କି ଅବା କରୁଛୁ ସଂଧାନ ।। ୭୩
୧୭ କରନ୍ତେ ସେ କ୍ରୂର କର୍ମକୁ । ଲୁବ୍ଧକ ପ୍ରାଏ କପୀନ୍ଦ୍ରକୁ[3] ।। ୭୪
ବିନ୍ଧିଲା ରାମରୂପେ ଏହି । ପୁଣି ସୀତାରେ ଜିତ ହୋଇ ।। ୭୫
ଯେ କାମବତୀ ସୂର୍ପଣଖା । ଛେଦିଲା ତା' କର୍ଣ୍ଣନାସିକା ।। ୭୬
ପୂଜାକୁ ଲଭି ବଳିଠାରୁ । [4]ତଳକୁ ଫିଙ୍ଗିଲା ସ୍ୱର୍ଗରୁ ।। ୭୭
ବ୍ୟର୍ଥ ଅଟଇ ଏ ନ୍ୟାୟରୁ । ସେ କୃଷ୍ଣସଖାଭାବ କରୁଁ ।। ୭୮
ତଥାପି ଦୁସ୍ତ୍ୟଜ ଆମ୍ଭର । କଥାରୂପକ[5] ଅର୍ଥ ତାର ।। ୭୯
୧୮ ଯା' ଅନୁଚରିତ-ଲୀଳା ହି । କର୍ଣ୍ଣେ ଅମୃତପ୍ରାଏ ହୋଇ ।। ୮୦
ତାର କଣିକାମାତ୍ର ପୁଣ । ଯେ ଥରେ କରନ୍ତି ସେବନ ।। ୮୧
ଛାଡ଼ନ୍ତି ବ୍ୟର୍ଥ ଧର୍ମମାନ । ଏଣୁ ଅଟନ୍ତି ଅସତ୍ତମ ।। ୮୨
ଯେ ଦୀନ କୁଟୁମ୍ବ ସଦନ । ସେମାନ ଛାଡ଼ିଣ ବହନ ।। ୮୩
ବିହଙ୍ଗପ୍ରାଏକ ହୁଅନ୍ତି । ଭିକ୍ଷୁଚର୍ଯ୍ୟାକୁ ଆଚରନ୍ତି ।। ୮୪
୧୯ କୃଷ୍ଣହରିଣର ଯେସନେ । ବନିତା ଯେ ହରିଣୀମାନେ ।। ୮୫
ସେ ଅଜ୍ଞେ[6] ବ୍ୟାଧଗୀତ ଶୁଣି । ଶ୍ରଦ୍ଧାରେ ସତ୍ୟ କରି ମଣି ।। ୮୬
ସେ ବ୍ୟାଧଶରେ ହୋଇ କ୍ଷତ । ପୀଡ଼ାକୁ ଦେଖନ୍ତି ବହୁତ ।। ୮୭
ସେରୂପେ କୁଟିଳ କୃଷ୍ଣର । ବଚନ ସତ୍ୟ ମଣି ଆର ।। ୮୮
ସ୍ପୃହା କରନ୍ତେ ବହୁଥର । ପୀଡ଼ାକୁ ଲଭିଲୁଁ ଆବର ।। ୮୯
ତା' ନଖସ୍ମରଶରୁ ଜାତ । ଯେ ତୀବ୍ର କାମ ଉପଗତ ।। ୯୦

---

୧. ଚାଟୁକାର = ପ୍ରିୟୋକ୍ତିରଚନା । ୨. ମୁକୁନ୍ଦଭଳି ତୁ ମଧ୍ୟ ଅବିଶ୍ୱସନୀୟ ।
୩. କପୀନ୍ଦ୍ର = ବାଳୀ ।
୪. '.........ଧୋଽକ୍ଷିପଦ୍ ବିଷ୍ଟପାଦ୍ ଯଃ' ଇତି ପାଠେ ।
'.........ବେଷ୍ଟୟଦ୍ ଧ୍ୱାଂକ୍ଷବଦ୍ ଯଃ' ଇତି ପାଠେ ।
'ବେଢ଼ିଲା କାକଭଳି ତାକୁ । ଧରିଣ ବାମନ ରୂପକୁ ।।' ଅନୁବାଦ ।
୫. କଥାମାନଙ୍କ । ୬. ଅଜ୍ଞେ = ଅଜ୍ଞାମାନେ ।

ସେ ହେତୁ ପୀଡ଼ା ଯାହାଙ୍କର । ସେ ଆମ୍ଭେମାନେ ଏ ପ୍ରକାର ॥ ୯୧
ହେ ଉପମନ୍ତ୍ରି ![1] ଏଣୁ ଆନ । ବାର୍ତ୍ତାକୁ ଆମ୍ଭ ଆଗେ ଭଣ ॥ ୯୨
୨୦ ହେ ପ୍ରିୟସଖ ସେ ଅଚ୍ୟୁତ । ପ୍ରେଷନ୍ତେ ହେଲୁ କି ଆଗତ ॥ ୯୩
ହେ ଦୂତ ! ତୁ ମୋ ପୂଜାଯୋଗ୍ୟ । କି ଇଚ୍ଛା କରୁଛୁ ତୁ ମାଗ ॥ ୯୪
ଦୁସ୍ତ୍ୟଜ ଅଟଇ ଯାହାର । ଯୁଗଳଭାବ, ତୁ ତାହାର ॥ ୯୫
ନେମୁ କେମନ୍ତେ ନିକଟକୁ । ହେ ସୌମ୍ୟ ! ଏଠାରୁ ଆମ୍ଭଙ୍କୁ ॥ ୯୬
ଯେ ଲକ୍ଷ୍ମୀ ସ୍ଥିତ ଉରଭାଗେ । ସେ ନିତ୍ୟେ ଅଛି ତାହା ସଙ୍ଗେ ॥ ୯୭
୨୧ ଏବେ ସେ ଆର୍ଯ୍ୟପୁତ୍ର ହରି । ଅଛନ୍ତିଟିକି ମଧୁପୁରୀ ॥ ୯୮
ପିତାମାତାଙ୍କୁ ତା' ଗୃହକୁ । ବନ୍ଧୁମାନଙ୍କୁ ଗୋପାଳଙ୍କୁ ॥ ୯୯
ହେ ସୌମ୍ୟ ! ନିଶ୍ଚେ ବର୍ତ୍ତମାନ । କରନ୍ତିଟିକି ସୁମରଣ ॥ ୧୦୦
ଆମ୍ଭେ କିଂକରୀ ଅଟୁଁ ତାର । ବାର୍ତ୍ତାମାନଙ୍କୁ ସେ ଆମ୍ଭର ॥ ୧୦୧
ପଚାରନ୍ତି କି କଦାଚିତ । ଅଗୁରୁପ୍ରାଏ ଗନ୍ଧବନ୍ତ ॥ ୧୦୨
ଭୁଜକୁ ତାର କେବେ ନେଇ । ଆମ୍ଭ ମସ୍ତକେ ଧରିବଇଁ[2] ॥ ୧୦୩

ଶ୍ରୀଶୁକ ଉବାଚ

୨୨ ଉଦ୍ଧବ ଏଥୁ ଅନନ୍ତରେ । ଶୁଣିଣ ଏମନ୍ତ ପ୍ରକାରେ ॥ ୧୦୪
ଲାଳସ କୃଷ୍ଣଦରଶନେ । ହୋଇ ଯେ ଛନ୍ତି ଗୋପୀମାନେ ॥ ୧୦୫
ସେ ପ୍ରିୟସଂଦେଶରେ ପୁଣ । ତାହାଙ୍କୁ ସାନ୍ତ୍ୱନା କରିଣ ॥ ୧୦୬
ଏମନ୍ତ ରୂପେ ବଚନକୁ । କହିଲେ ଗୋପିକାମାନଙ୍କୁ ॥ ୧୦୭

ଶ୍ରୀଉଦ୍ଧବ ଉବାଚ

୨୩ କୃତାର୍ଥ ଅଟ ତୁମ୍ଭେମାନେ । ପୂଜିତ ତୁମ୍ଭେ ଏ ଭୁବନେ ॥ ୧୦୮
ଯେ ତୁମ୍ଭମାନଙ୍କର ମନ । ଏମନ୍ତରୂପେ ତାହା ପୁଣ ॥ ୧୦୯
ଯେ ବାସୁଦେବ ଭଗବାନ । ତା'ଠାରେ କଲ ନିବେଦନ ॥ ୧୧୦
୨୪ ଯେ ଦାନ ବ୍ରତ ତପ ହୋମ । ଜପ ସ୍ୱାଧ୍ୟାୟ ସଂଯମନ ॥ ୧୧୧
ଏମାନଙ୍କରେ ପୁଣ ଆନ । ଯେ ନାନାବିଧ ଶ୍ରେୟମାନ ॥ ୧୧୨
ସେମାନଙ୍କରେ କୃଷ୍ଣଠାଏ । ଯେଣୁ ଭଗତି ସାଧ୍ୟ ହୋଏ ॥ ୧୧୩
୨୫ ଉତ୍ତମଶ୍ଲୋକ ଭଗବାନ । ତା'ଠାରେ ତୁମ୍ଭେମାନେ ପୁଣ ॥ ୧୧୪
ସାକ୍ଷାତ ମୁନିମାନଙ୍କର । ଯେ ଅଟେ ଦୁର୍ଲଭ ପ୍ରକାର ॥ ୧୧୫
ଅତ୍ୟନ୍ତ ଶ୍ରେଷ୍ଠ ଯେ ଭଗତି । ଭାଗ୍ୟରୁ ବଢ଼ାଇଲ ଅତି ॥ ୧୧୬
୨୬ ପୁତ୍ରମାନଙ୍କୁ ନାୟକଙ୍କୁ । ଦେହମାନଙ୍କୁ ସ୍ୱଜନଙ୍କୁ ॥ ୧୧୭
ସଦନମାନଙ୍କୁ ସାକ୍ଷାତ । ଯା' ତୁମ୍ଭେମାନେ କଲ ତ୍ୟକ୍ତ ॥ ୧୧୮
'କୃଷ୍ଣ'ନାମରେ ଯେ ପ୍ରକାଶ । ବରିଲ ସେ ଶ୍ରେଷ୍ଠ ପୁରୁଷ ॥ ୧୧୯

୧. ଉପମନ୍ତ୍ରୀ = ଦୂତ । ୨. ଧରିବଇଁ = ରଖିବଇଁ । ମସ୍ତକେ ଧରିବଇଁ ମୁହିଁ । -ପାଠାନ୍ତର

୨୭ ଏକାନ୍ତ ଭକ୍ତି କୃଷ୍ଣଠାର । ପ୍ରାପତ ହୋଇଲା ତୁମ୍ଭର ।। ୧୨୦
ହେ ମହାଭାଗ୍ୟବତୀମାନେ । ବିରହେ ତୁମ୍ଭେ ଏହି ସ୍ଥାନେ ।। ୧୨୧
[1]ଯେ ବଡ଼ ଅନୁଗ୍ରହ ଆର । ତାହାକୁ କଲ ଗୋ ମୋହର ।। ୧୨୨
୨୮ ଯଉଁ ସନ୍ଦେଶ ଘେନି ମୁହିଁ । ହେ ଭଦ୍ରାମାନେ ! ଅଇଲଇଁ ।। ୧୨୩
ଯେଣୁ ଶ୍ରୀକୃଷ୍ଣର ଗୋ ମୁହିଁ । ଏକାନ୍ତ କାର୍ଯ୍ୟକୁ କରଇ ।। ୧୨୪
ଯାହା କହିଲେ ଭଗବାନ । ସେ କଥା କହିବଇଁ ଶୁଣ ।। ୧୨୫

ଶ୍ରୀଭଗବାନୁବାଚ

୨୯ ଗୋପିକାମାନଙ୍କୁ ବଚନ । କହୁଅଛନ୍ତି ଭଗବାନ ।। ୧୨୬
ତୁମ୍ଭର କଉଣିସିଠାରେ । ବିୟୋଗ ନାହିଁ ମୋ' ସଙ୍ଗରେ ।। ୧୨୭
ସବୁରି ଆତ୍ମାସ୍ୱରୂପରେ । ଯେଣୁ ବ୍ୟାପିଛି ସବୁଠାରେ ।। ୧୨୮
ପୃଥିବୀ ଜଳ ହୁତାଶନ । ଯେ ଅବା ପବନ ଗଗନ ।। ୧୨୯
ଏ ଆଦି ପଞ୍ଚମହାଭୂତେ । ଯେହ୍ନେ ଅଛନ୍ତି ସବୁଭୂତେ ।। ୧୩୦
ତେହ୍ନେ ମୁଁ ମନବୁଦ୍ଧିନ୍ଦ୍ରିୟ । ପ୍ରାଣ-କାରଣଙ୍କ ଆଶ୍ରୟ ।। ୧୩୧
୩୦ ଭୂତ-ଇନ୍ଦ୍ରିୟ-ଗୁଣ ହୋଇ । ଯାହାର ଆତ୍ମା ପ୍ରକାଶଇ ।। ୧୩୨
ସେ ଆତ୍ମମାୟାନୁଭାବରେ । ମୁଁ ପୁଣି ଆତ୍ମାକୁ ଆତ୍ମାରେ ।। ୧୩୩
[2]ଆତ୍ମାରେ କରିଣ ସର୍ଜଇ । ନାଶଇ, ପାଳନା କରଇ ।। ୧୩୪
୩୧ ଆତ୍ମା ଅଟଇ ଜ୍ଞାନମୟ । ବିଶୁଦ୍ଧ ପୁଣି ଅନାଶ୍ରୟ[3] ।। ୧୩୫
ଜାଗ୍ରତ ସ୍ୱପ୍ନ ସୁଷୁପ୍ତି । ଏ ତିନି ବସ୍ଥା[4] ମନୋବୃତ୍ତି ।। ୧୩୬
ଏଥିରେ ହୁଅଇ ପ୍ରତୀତ । ଗୁଣରୁ ଅଟଇ ଅତୀତ ।। ୧୩୭
୩୨ ଯେସନେ ପୁରୁଷ ଉଠଇ । ସ୍ୱପ୍ନକୁ ମିଥ୍ୟା ବୋଲି ଧ୍ୟାୟି ।। ୧୩୮
ଏ ରୂପେ ଇନ୍ଦ୍ରିୟ-ଅର୍ଥକୁ । ଯେ ମନ ଧ୍ୟାନ କରେ ତାକୁ ।। ୧୩୯
ଧ୍ୟାନ କରନ୍ତେ ଯଉଁ ମନ । ଲଭଇ ଯେ ଇନ୍ଦ୍ରିୟମାନ ।। ୧୪୦
ବିନିଦ୍ର ହୁଅନ୍ତେ ସେ ମନ । କୃତାର୍ଥ ହୁଅଇ ତତ୍‌କ୍ଷଣ ।। ୧୪୧
୩୩ ଏ ମନନିରୋଧ ପ୍ରକାର । ସମାପ୍ତି ଫଳ ଅଟେ ଯାର ।। ୧୪୨
[5]ପଣ୍ଡିତମାନଙ୍କର ଯେହି । ସେ ବେଦ ଅଷ୍ଟାଙ୍ଗଯୋଗ ହି ।। ୧୪୩
ସାଂଖ୍ୟ ସନ୍ନ୍ୟାସ ତପ ଏହି । ସତ୍ୟ ଇନ୍ଦ୍ରିୟଦମନ ହି ।। ୧୪୪
ମାର୍ଗଭେଦରେ ହେଁ ଏମାନେ । ରହନ୍ତି ପୁଣ ଏକସ୍ଥାନେ ।। ୧୪୫
ସବୁ ଦିଗରୁ ନଦୀ ଯାନ୍ତି । ଯେସନେ ସମୁଦ୍ରେ ରହନ୍ତି ।। ୧୪୬

---

୧. ଭଗବଦ୍ ପ୍ରେମସୁଖପ୍ରଦର୍ଶନଦ୍ୱାରା ମୋ ପ୍ରତି ତୁମ୍ଭେମାନେ ବଡ଼ ଅନୁଗ୍ରହ କଲ ।
୨. ଆତ୍ମାରେ = ଆତ୍ମଦ୍ୱାରା । ୩. ''ଅଗୁଣାନ୍ୱୟ'' ଇତି ମୂଳପାଠ । ୪. ବସ୍ଥା = ଅବସ୍ଥା ।
୫. ପଣ୍ଡିତଙ୍କର ଟି ସେ ଏହି ।

| | | | |
|---|---|---|---|
| ୩୪ | ମୁଁ ପ୍ରିୟ ତୁମ୍ଭମାନଙ୍କର । | ତୁମ୍ଭ ଚକ୍ଷୁଙ୍କ ଅଗୋଚର | ॥ ୧୪୭ |
| | ହୋଇ ଯା ରହିଲି ଏଠାରେ । | ସେ ମୋର ଧ୍ୟାନକାମନାରେ | ॥ ୧୪୮ |
| | ସେ ଧ୍ୟାନ ପୁଣି ମୋ ମନର । | ନିକଟ-ଅର୍ଥ ହିଁ ଆବର | ॥ ୧୪୯ |
| ୩୫ | ସ୍ତିରୀମାନଙ୍କର ଯେମନ୍ତେ । | ନାୟକ ଦୂରରେ ଥାଆନ୍ତେ | ॥ ୧୫୦ |
| | ତାହାଙ୍କ ଠାରେ ମନ ଯାଇ । | ପ୍ରବେଶ ହୋଇଣ ରହଇ | ॥ ୧୫୧ |
| | ନିକଟେ ଚକ୍ଷୁପାଖେ ଥାନ୍ତେ । | ଚିତ୍ତ ନୁହଇଟି ତେମନ୍ତେ | ॥ ୧୫୨ |
| ୩୬ | ବିଶେଷେ ଛାଡ଼ିଲା ଅଶେଷ । | ବୃତ୍ତିକି ଯେବଣ ମାନସ | ॥ ୧୫୩ |
| | ସେ ମନ ସମଗ୍ର[୧] ମୋ ଠାରେ । | ନିବେଶ କରିଣ ନିତ୍ୟରେ | ॥ ୧୫୪ |
| | ମତେ କରନ୍ତେ ସୁମିରଣ । | ମତେ ଲଭିବ ନିକଟେଣ | ॥ ୧୫୫ |
| ୩୭ | ଆଗୋ କଲ୍ୟାଣବତୀମାନେ । | ବ୍ରଜେ ଥାଆନ୍ତେ ଯଉଁମାନେ | ॥ ୧୫୬ |
| | ମୋହର ସଙ୍ଗରେ ରାତ୍ରିରେ । | କ୍ରୀଡ଼ାକୁ ନ କଲେ ବନରେ | ॥ ୧୫୭ |
| | ଆପଣା ପତିଏ ରୁନ୍ଧନ୍ତେ । | ରାସକୁ ଲଭି ନ ପାରନ୍ତେ | ॥ ୧୫୮ |
| | ମୋ' ପରାକ୍ରମର ଚିନ୍ତାରେ । | ମତେ ଲଭିଲେ ସେ କାଳରେ | ॥ ୧୫୯ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୮ | କହନ୍ତି ଶୁକ ମୁନିବର । | ଶୁଣ ହେ ଉତ୍ତରାକୁମର | ॥ ୧୬୦ |
| | କୃଷ୍ଣସନ୍ଦେଶେ ଯାହାଙ୍କର । | ସ୍ମରଣା ହୋଇଲା ଅପାର | ॥ ୧୬୧ |
| | ଏ ରୂପେ ସେ ବ୍ରଜକୁମାରୀ । | ଶ୍ରୀକୃଷ୍ଣ-ଆଜ୍ଞା ଶୁଣି କରି | ॥ ୧୬୨ |
| | ପ୍ରୀତି ଲଭନ୍ତେ ଉଦ୍ଧବଙ୍କୁ । | ପୁଣି କହିଲେ ଏ ବାକ୍ୟକୁ | ॥ ୧୬୩ |

ଶ୍ରୀଗୋପ୍ୟ ଉଚୁଃ

| | | | |
|---|---|---|---|
| ୩୯ | ଯେ ଶତ୍ରୁ ଯଦୁମାନଙ୍କର । | ପାପୀ ଅଟଇ କଂସାସୁର | ॥ ୧୬୪ |
| | ଅନୁଗମାନଙ୍କ ସହିତ । | ଭାଗ୍ୟରେ କରି ତାକୁ ହତ | ॥ ୧୬୫ |
| | ଯେ ସବୁ ଅର୍ଥକୁ ଲଭିଲେ । | ସେ ଆପ୍ତ ଲୋକଙ୍କର ତୁଲେ | ॥ ୧୬୬ |
| | କୁଶଳୀ ହୋଇ ଭଗବାନ । | ଅଛନ୍ତିଟିକି ବର୍ତ୍ତମାନ | ॥ ୧୬୭ |
| ୪୦ | କେବଣ ଗୋପୀଏ ତାହାକୁ । | କହନ୍ତି ଏମନ୍ତ ବାକ୍ୟକୁ | ॥ ୧୬୮ |
| | ସ୍ନିଗ୍ଧ ସଲଜ୍ଜ ଯେ ହସିତ । | ତେଣେ ଯେ ଉଦାରଚରିତ | ॥ ୧୬୯ |
| | ତେଣେ ପୂଜିତ ହୋଇ ହରି । | ଆମ୍ଭର ପ୍ରୀତିପ୍ରାଏ କରି | ॥ ୧୭୦ |
| | ପୁରନାରୀଙ୍କର ପ୍ରୀତିକି । | ପଚାରୁଅଛୁଁ କରନ୍ତି କି | ॥ ୧୭୧ |
| ୪୧ | ଆନ ଗୋପୀଏ କହୁଛନ୍ତି । | ବିଶେଷେ ଜାଣନ୍ତି ସେ ରତି | ॥ ୧୭୨ |
| | ସେ ପ୍ରିୟ ଶ୍ରେଷ୍ଠନାରୀଙ୍କର । | ଯେ ବାକ୍ୟବିଭ୍ରମ ତାଙ୍କର | ॥ ୧୭୩ |
| | ତେଣେ ସେ ପୂଜିତ ହୁଅନ୍ତେ । | ବଦ୍ଧ ନୋହିବେଟି କେମନ୍ତେ | ॥ ୧୭୪ |
| ୪୨ | କହନ୍ତି ଆନ ଗୋପିକାଏ । | ହେ ସାଧୁ ! ଗୋବିନ୍ଦ ନିଶ୍ଚୟେ | ॥ ୧୭୫ |

୧. 'କୃଷ୍ଣଂ' ଇତି ପାଠେ । 'କୃଷ୍ଣେ' ଇତି ପାଠେ ''ସେ ମନ ମୁଁ କୃଷ୍ଣ ମୋ ଠାରେ'' ଗୀତ ହେବ ।

ସେ ପୁରନାରୀଙ୍କ ଆଗରେ । ଆପଣା କଥାର ଅନ୍ତରେ ।। ୧୭୬
କିଛି ପ୍ରସ୍ତାବମାନଙ୍କରେ । ଏ ବ୍ରଜପୁରର ମଧ୍ୟରେ ।। ୧୭୭
ଗ୍ରାମ୍ୟ ବନିତା ଆମ୍ଭେମାନେ । ଆମ୍ଭୁଁ ସ୍ମରନ୍ତି କି ସେ ଷ୍ଠାନେ ।। ୧୭୮
୪୩ ଆନମାନେ ହେଁ ତଦନ୍ତରେ । କହୁଅଛନ୍ତି ଏ ପ୍ରକାରେ ।। ୧୭୯
କୁମୁଦ କୁନ୍ଦ ଚନ୍ଦ୍ରମାରେ । ଯେ ରମ୍ୟ ସେ ବୃନ୍ଦାବନରେ ।। ୧୮୦
ବାଜନ୍ତି ଚରଣନୂପୁରେ । ଯେବଣ ରାସର ଗୋଷ୍ଠୀରେ ।।
ତହିଁ ଅଚ୍ୟୁତ ଭଗବାନ । ଯାର ମନୋଜ୍ଞକଥାମାନ ।।
ଆମ୍ଭେ ଯେ ତାର ପ୍ରିୟାଗଣ । ନିତ୍ୟେ କରୁଥାଉଁ ସ୍ତବନ ।।
ଯେ ରାତ୍ରିମାନଙ୍କରେ ପୁଣ । ସେକାଳେ କଲେ ସେ ରମଣ ।।
ସେ ରାତ୍ରିମାନ କଦାଚିତେ । ସ୍ମରଣା କରନ୍ତି କି ଚିତ୍ତେ ।। ୧୮୧
୪୪ ଯେ ତା' ନିମିତ୍ତେ ଶୋକମାନେ । ତେଣେ ସଂତପ୍ତ ଆମ୍ଭେମାନେ ।। ୧୮୨
ଆମ୍ଭଙ୍କୁ କରସ୍ପରଶରେ । ଜୀଆଇ ଦିଅନ୍ତେଣ ବାରେ ।। ୧୮୩
ସେ ଯଦୁପତି ଭଗବାନ । ନିଶ୍ଚେ କରିବେ କି ଗମନ ।। ୧୮୪
ଜଳମାନଙ୍କେ ଶଚୀସାଇଁ । ଯେସନେ ବନକୁ ଜୀଆଇ ।। ୧୮୫
୪୫ କହନ୍ତି ଆନମାନେ ହରି । କିଂପା ଆସିବେ ଗୋପପୁରୀ ।। ୧୮୬
ସମସ୍ତ ଶତ୍ରୁଙ୍କୁ ମାଇଲେ । ଉତ୍ତମ ଐଶ୍ୱର୍ଯ୍ୟ ଲଭିଲେ ।। ୧୮୭
ନୃପତିମାନଙ୍କର ପୁଣ । କନ୍ୟାଙ୍କୁ ବିବାହ ହୋଇଣ ।। ୧୮୮
ସର୍ବସୁହୃଦେ ବୃତ ହୋଇ । ପ୍ରୀତିରେ ରହିଲେ ସେଠାଇଁ ।। ୧୮୯
୪୬ କହନ୍ତି ଆନଗୋପୀମାନେ । ପରମାର୍ଥକୁ କରି ମନେ ।। ୧୯୦
ଯେ ବନଚରୀ ଆମ୍ଭେମାନେ । ଯେ ଆନ ରାଜକନ୍ୟାମାନେ ।। ୧୯୧
ତେଣେ ସେ ମହାତ୍ମା ପୂର୍ଣ୍ଣର । ସେ ଆପ୍ତକାମ ଶ୍ରୀପତିର ।। ୧୯୨
କେବଣ କାର୍ଯ୍ୟକୁ ତାହାର । କରିବ ଅବା କଉଁ ନର ।। ୧୯୩
୪୭ ଯେ କାମଚାରିଣୀ ପିଙ୍ଗଳା । ଏମନ୍ତ ରୂପେ ସେ ବୋଇଲା ।। ୧୯୪
ନିରାଶଭାବ ସୁଖ ଅତି । ଏହା ଜାଣଇଁ ଆମ୍ଭ ମତି ।। ୧୯୫
ତଥାପି ଆମ୍ଭମାନଙ୍କର । ଅତ୍ୟନ୍ତ ଆଶା କୃଷ୍ଣଠାର ।। ୧୯୬
୪୮ ଉତ୍ତମଶ୍ଲୋକର ବାର୍ତ୍ତାକୁ । କେ ଇଚ୍ଛା କରେ ଛାଡ଼ିବାକୁ ।। ୧୯୭
ଇଚ୍ଛା ନ ଥିଲେହେଁ ଯାହାର । ଅଙ୍ଗରୁ ଲକ୍ଷ୍ମୀ ନିରନ୍ତର ।। ୧୯୮
ଆନ ଠାବକୁ ପୁଣ ଯାଇ । ବ୍ୟବସାୟକୁ ନ କରଇ ।। ୧୯୯
୪୯ ନଦୀ ପର୍ବତ ବନୋଦ୍ୟାନ । ଯେ ଧେନୁମାନ ବେଣୁସ୍ୱନ ।। ୨୦୦
ସଂକରଷଣ ସଙ୍ଗେ ହରି । ଏମାନ ଅଛନ୍ତି ଆଚରି[1] ।। ୨୦୧
୫୦ ଲକ୍ଷ୍ମୀର ଅଟେ ନିକେତନ । ଯେ ତାର ପାଦଚିହ୍ନମାନ ।। ୨୦୨

---

୧. ଆବୋରି । ଆଚରି = ସେବି ।

ସେ ପୁଣ ପୁଣ ହିଁ ଆତ୍ମଙ୍କୁ । ନନ୍ଦଗୋପର ନନ୍ଦନକୁ ॥ ୨୦୩
ସ୍ମରଣା କରନ୍ତି ନିୟତ । ପାସୋରିବାକୁ ନୋହୁ ଶକ୍ତ ॥ ୨୦୪
୫୧ ଲଳିତ ଗତିମାନଙ୍କରେ । ଉଦାର ହସିତ ଲୀଳାରେ ॥ ୨୦୫
ଯେ ବିଲୋକନମାନ ତେଣେ । ଅତ୍ୟନ୍ତ ମଧୁର ବଚନେ ॥ ୨୦୬
ହୃତମାନସ ଆମ୍ଭେମାନେ । ତାଙ୍କୁ ପାସୋରିବୁଁ କେସନେ ॥ ୨୦୭
୫୨ ହେ ରମାନାଥ ବ୍ରଜନାଥ । ହେ ଆର୍ତ୍ତିବିନାଶନ ନାଥ ॥ ୨୦୮
ଗୋବିନ୍ଦ ! ଗୋପକୁ ଉଦ୍ଧର । ବୁଡୁଛି ପାପସମୁଦ୍ରର ॥ ୨୦୯

ଶ୍ରୀଶୁକ ଉବାଚ

୫୩ କହନ୍ତି ବ୍ୟାସଙ୍କ ନନ୍ଦନ । ହେ ନୃପ ! ଏଥୁ ଅନ୍ତେ ପୁଣ ॥ ୨୧୦
କୃଷ୍ଣସନ୍ଦେଶେ ଯାହାଙ୍କର । ତୁଟିଲା ସେ ବିରହଜ୍ୱର ॥ ୨୧୧
ସେ ଗୋପୀମାନେ ଉଦ୍ଧବଙ୍କୁ । କଲେ ଉତ୍ତମ ପୂଜନକୁ ॥ ୨୧୨
ତାହାଙ୍କୁ ଜାଣି ଆତ୍ମା କରି । କୃଷ୍ଣଙ୍କୁ ଅଧୋକ୍ଷଜ କରି ॥ ୨୧୩
୫୪ ଗୋପୀଙ୍କ ଶୋକକୁ ନାଶନ୍ତେ । କୃଷ୍ଣର ଲୀଳାକୁ ଗାଆନ୍ତେ ॥ ୨୧୪
ଉଦ୍ଧବ ରହି କେତେମାସ । ଗୋପକୁ କଲେକ ହରଷ ॥ ୨୧୫
୫୫ ଉଦ୍ଧବ କୃଷ୍ଣର ବାର୍ତ୍ତାରେ । ଯେତେକ ଦିନ ନନ୍ଦପୁରେ ॥ ୨୧୬
ରହିଲେ ବ୍ରଜବାସୀଙ୍କର । ହେଲା ସେ କ୍ଷଣକପ୍ରକାର ॥ ୨୧୭
୫୬ ନଦୀ ପର୍ବତ ଗିରି ଦ୍ରୋଣୀ[1] । ଯେ କୁସୁମିତ ବୃକ୍ଷ ପୁଣି ॥ ୨୧୮
ତା' ଦେଖି ଗୋପିକାମାନଙ୍କୁ । ସ୍ମରଣା କରାନ୍ତେ କୃଷ୍ଣକୁ ॥ ୨୧୯
ସେ ହରିଦାସ ତହିଁ ପୁଣ । କଲା ଉତ୍ତମ କ୍ରୀଡ଼ାମାନ ॥ ୨୨୦
୫୭ କୃଷ୍ଣେ ଆବେଶ ଯାହାଙ୍କର । ଏ ରୂପେ ସେ ଗୋପିକାଙ୍କର ॥ ୨୨୧
ଆତ୍ମାର[2] ବିକଳ ଦେଖିଣ । ଉଦ୍ଧବ ପ୍ରୀତିକି ଲଭିଣ ॥ ୨୨୨
ଗୋପୀଙ୍କି ନମସ୍କାର କଲେ । ଏମନ୍ତ ବଚନ ବୋଇଲେ ॥ ୨୨୩
୫୮ କେବଳ ଏ ଗୋପିକାମାନେ । ସଫଳଜନ୍ମା ଏ ଭୁବନେ ॥ ୨୨୪
ଅଖିଳ-ଆତ୍ମା ବାସୁଦେବ । ତହିଁ [3]ନିରୂଢ଼ ଯାଙ୍କ ଭାବ ॥ ୨୨୫
[4]ଭବକୁ ଭୟ ଯେ କରନ୍ତି । ଯେ ଆନ ମୁନିମାନେ ଛନ୍ତି ॥ ୨୨୬
ଯଉଁ ଭାବକୁ ଆମ୍ଭେମାନେ । ବାଞ୍ଛା କରୁଛୁଁ ନିଜ ମନେ ॥ ୨୨୭
ଅନନ୍ତକଥାରେ ଯାହାର । ଅଛଇ ଅନୁରାଗ ତାର ॥ ୨୨୮
କି କାର୍ଯ୍ୟ [5]ବ୍ରହ୍ମାଜନମରେ । ହୋଇବ ପୁଣ ଏ ସଂସାରେ ॥ ୨୨୯
୫୯ ଦୂଷିତ ଯେ ବ୍ୟଭିଚାରରେ । ଯେ ପୁଣ ଚରନ୍ତି ବନରେ ॥ ୨୩୦

---

୧. ଦ୍ରୋଣୀ = ଦରୀ, ଘାଟି । ୨. ଆତ୍ମାର = ମନର । ୩. ନିରୂଢ଼ = ଦୃଢ଼ ।
୪. ଭବଭିୟଃ = ମୁମୁକ୍ଷୁ, ମୁନି = ମୁକ୍ତ, ଉଦ୍ଧବ = ଭକ୍ତ ।
୫. ବ୍ରହ୍ମଜନ୍ମଭିଃ = ବ୍ରହ୍ମାଜନମରେ କିମ୍ବା ବ୍ରାହ୍ମଣର ଶୌକ୍ର, ସାବିତ୍ର ଏବଂ ଯାଜ୍ଞିକ ନାମକ ତ୍ରିବିଧ ଜନ୍ମରେ ।

ସେ ଏ ନାରୀଏ ଅବା କାହିଁ । ଯେ ପରମାତ୍ମା କୃଷ୍ଣ ତହିଁ ।। ୨୩୧
ଯେ ଭାବ ନିରୂଢ଼[୧] ଅଟଇ । ସେ ଅବା ଅଛି କଉଁଠାଇଁ ।। ୨୩୨
ଅପଣ୍ଡିତ ହେଲେ ଈଶ୍ୱର । ତଥାପି ଭଜିଲା ଲୋକର ।। ୨୩୩
ମଙ୍ଗଳମାନଙ୍କୁ ସାକ୍ଷାତ । ବିସ୍ତାର କରନ୍ତି ନିୟତ ।। ୨୩୪
ଅମୃତ ଭକ୍ଷିଲା[୨] ଲୋକକୁ । ଯେହ୍ନେ ଦିଅଇ ମଙ୍ଗଳକୁ ।। ୨୩୫
୬୦ ଯେ ଲକ୍ଷ୍ମୀ ଶ୍ରୀକୃଷ୍ଣର ଉରେ । ପ୍ରୀତି କରିଛି ନିରନ୍ତରେ ।। ୨୩୬
ନାହିଁ ଏ ପ୍ରସାଦ ତା ଠାଏ । ଯାହାଙ୍କ କାନ୍ତି ପଦ୍ମପ୍ରାଏ ।। ୨୩୭
ସେ ସ୍ୱର୍ଗନାରୀମାନଙ୍କର । ନାହିଁ ଏ ପ୍ରସାଦ ଆବର ।। ୨୩୮
ନାହିଁଟି ଆନ ସ୍ତିରୀଙ୍କର । ରାସ ଉତ୍ସବେ ଶ୍ରୀକୃଷ୍ଣର ।। ୨୩୯
ବେନି ବାହୁରେ ଆଲିଙ୍ଗିତ । ହୋଇଲା ଯଉଁ କଣ୍ଠତଟ ।। ୨୪୦
ତେଣେ ଯେ ଲଭିଲେ ଆଶିଷ । ଏମନ୍ତ ଯେ ଗୋପଯୋଷିତ ।। ୨୪୧
ସେହିମାନଙ୍କର ଠାବେଣ । ଯେ ଅନୁଗ୍ରହ ହେଲା ପୁଣ ।। ୨୪୨
୬୧ ଏ ଗୋପୀମାନଙ୍କ ଚରଣ । ରେଣୁ ଯେ ଅଛନ୍ତି ଭଜିଣ ।। ୨୪୩
ଏମନ୍ତ ଗୁଳ୍ମଲତାମାନେ । ଯେ ଅଉଷଧି ବୃନ୍ଦାବନେ ।। ୨୪୪
ସେମାନଙ୍କର ମଧ୍ୟେ କିଛି । ଜନ୍ମ ହେବାକୁ ମୁଁ ବାଞ୍ଛୁଛି ।। ୨୪୫
ଦୁସ୍ତ୍ୟଜ ଅଟେ ଯେ ସ୍ୱଜନ । ଯେ ଆର୍ଯ୍ୟପଥମାନେ ଆନ ।। ୨୪୬
ଯେ ଛାଡ଼ି କରି ଏମାନଙ୍କୁ । ଭଜିଲେ ମୁକୁନ୍ଦପାଦକୁ ।। ୨୪୭
ଯଉଁ ମାର୍ଗକୁ ବେଦମାନେ । ଖୋଜୁ ଅଛନ୍ତି ପ୍ରତିଦିନେ ।। ୨୪୮
୬୨ ବ୍ରହ୍ମାଙ୍କୁ ଆଦି ହୋଇ ପୁଣ । ଯେ ଲଭିଛନ୍ତି କାମମାନ ।। ୨୪୯
ସେ ଯୋଗେଶ୍ୱରମାନଙ୍କରେ । ଯେ ପୂଜା ଲଭିଛି ଲକ୍ଷ୍ମୀରେ ।। ୨୫୦
ସେ ଭଗବାନ ଶ୍ରୀକୃଷ୍ଣର । ଚରଣପଦ୍ମକୁ ଆବର ।। ୨୫୧
ଆପଣା ରାସଗୋଷ୍ଠୀସ୍ଥାନେ । ଯେବଣ ଗୋପିକାଏ ସ୍ତନେ ।। ୨୫୨
ନିବେଶି କଲେ ଆଲିଙ୍ଗନ । ଛାଡ଼ିଲେ ନିଜ ତାପମାନ ।। ୨୫୩
୬୩ ଏ ନନ୍ଦବ୍ରଜନାରୀଙ୍କର । ପାଦଧୂଳିକି ନିରନ୍ତର ।। ୨୫୪
ମୁଁ ପୁଣି କରୁଛି ବନ୍ଦନ । ଶ୍ରୀହରିକଥାପ୍ରାଏ ପୁଣ ।। ୨୫୫
ଯଉଁମାନଙ୍କ ଉଦ୍‌ଗାୟନ । ପବିତ୍ର କରେ ତ୍ରିଭୁବନ ।। ୨୫୬

ଶ୍ରୀଶୁକ ଉବାଚ

୬୪ ଏଥୁ ଅନ୍ତରେ ସେ ଗୋପୀଙ୍କି । ସେ ନନ୍ଦ-ଯଶୋଦା-ବେନିଙ୍କି ।। ୨୫୭
ଉଦ୍ଧବ ଅନୁଜ୍ଞା ମାଗିଣ । ଗୋପାଳମାନଙ୍କୁ କହିଣ ।। ୨୫୮
ସେଠାରୁ କରନ୍ତେ ଗମନ । ରଥକୁ କଲେ ଆରୋହଣ ।। ୨୫୯
୬୫ ନାନାପ୍ରକାର ଦ୍ରବ୍ୟମାନ । ଯେ ହସ୍ତେ ଘେନିଛନ୍ତି ପୁଣ ।। ୨୬୦

୧. ନିରୂଢ଼ = ବର୍ଦ୍ଧିତ । ୨. ଭକ୍ଷିଲା = ଭଜିଲା ।

| | | | | |
|---|---|---|---|---|
| | ଲୋଚନୁଁ ବହୁଛି ଲୋତକ | । ସେ ନନ୍ଦ ଆଦି ଯେତେ ଲୋକ | ।। | ୨୬୧ |
| | ଉଦ୍ଧବ କରନ୍ତେ ଗମନ | । ତାହାଙ୍କ ପାଖକୁ ଆସିଣ | ।। | ୨୬୨ |
| | ଅନୁରାଗରେ ହୋଇ ଯୁତ | । ତାହାଙ୍କୁ କହିଲେ ଏମନ୍ତ | ।। | ୨୬୩ |
| ୬୬ | ଆମ୍ଭମାନଙ୍କ ମନୋବୃତ୍ତି | । କୃଷ୍ଣର ପାଦପଦ୍ମେ ଛନ୍ତି | ।। | ୨୬୪ |
| | ଯେ ଆମ୍ଭମାନଙ୍କ ବଚନ | । ତା' ନାମ କରନ୍ତୁ କଥନ | ।। | ୨୬୫ |
| | ଯେ ତାର [1]ପ୍ରହ୍ୱଣାଦିମାନ | । ତହିଁରେ ଆମ୍ଭ ଦେହ ପୁଣ | ।। | ୨୬୬ |
| ୬୭ | ଯହୁଁଣି କହୁଁଣିସିଠାରେ | । ନିଶ୍ଚୟେ ଈଶ୍ୱର-ଇଚ୍ଛାରେ | ।। | ୨୬୭ |
| | କର୍ମମାନଙ୍କରେ ଭ୍ରମଣ | । କରୁଛୁଁ ଆମ୍ଭେମାନେ ପୁଣ | ।। | ୨୬୮ |
| | ମଙ୍ଗଳଙ୍କରେ ଆଚରିତ | । ଯେ ଦାନମାନେ ଅବିରତ | ।। | ୨୬୯ |
| | ତେଣେ ଈଶ୍ୱର କୃଷ୍ଣଠାରେ | । ଆମ୍ଭର ପ୍ରୀତି ନିରନ୍ତରେ | ।। | ୨୭୦ |
| ୬୮ | ହେ ନରାଧିପ ! ଏ ରୂପରେ | । ସେ କୃଷ୍ଣଭକ୍ତ ଗୋପଙ୍କରେ | ।। | ୨୭୧ |
| | ଉଦ୍ଧବ ହୋଇଣ ପୂଜିତ | । କୃଷ୍ଣରେ ଅଟେ ଯେ ପାଳିତ | ।। | ୨୭୨ |
| | ସେହି ମଥୁରାପୁରେ ପୁଣ | । ପ୍ରବେଶ ହୋଇଲେ ଯାଇଣ | ।। | ୨୭୩ |
| ୬୯ | କୃଷ୍ଣଙ୍କୁ ହୋଇଣ ପ୍ରପନ୍ନ | । ଯେ ବ୍ରଜବାସିଙ୍କର ପୁଣ | ।। | ୨୭୪ |
| | କହିଲେ ଭକ୍ତି-ଆଧିକ୍ୟକୁ | । ପୁଣି ବାସୁଦେବ ରାମଙ୍କୁ | ।। | ୨୭୫ |
| | ରାଜାଙ୍କୁ ମଧ୍ୟ ଉପାୟନ | । ଦ୍ରବ୍ୟକୁ କଲେ ନିବେଦନ | ।। | ୨୭୬ |
| | ଦଶମସ୍କନ୍ଧ ଭାଗବତ | । ଭାଷାପ୍ରବନ୍ଧେ କରି ଗୀତ | ।। | ୨୭୭ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । ସୁଜନେ ତୋଷ ହୁଅ ଏଣେ | ।। | ୨୭୮ |
| | ମୁଁ ଯେଣୁ ତୁମ୍ଭର କିଙ୍କର | । ମୋ ଠାରେ ଅନୁଗ୍ରହ କର | ।। | ୨୭୯ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦୁଦ୍ଧବପ୍ରତିଯାନଂ
ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।।

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

ଅଷ୍ଟଚତ୍ୱାରିଂଶକେଽଥ କୃଷ୍ଣଃ କୁବ୍‌ଜାମରୀରମତ୍ ।
ଅକ୍ରୂରସ୍ୟ ଗୃହଂ ଗତ୍ୱା ତଂ ଗଜାହ୍ୱୟମାଦିଶତ୍ ।। ୧
ସୈରିନ୍ଧ୍ରୀକାମମାପୂର୍ଯ୍ୟ ପୂରୟିତ୍ୱା ମନୋରଥାନ୍ ।
ଅକ୍ରୂରସ୍ୟ ତତଃ କୃଷ୍ଣସ୍ତେନ ପାର୍ଥାନସାନ୍ତ୍ୱୟତ୍ ।। ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଶୁକ କହନ୍ତି ହେ ରାଜନ | । କର ଏ ଚରିତ ଶ୍ରବଣ | ।। | ୧ |
| | ଏଥୁଅନ୍ତରେ ଭଗବାନ | । ସର୍ବାତ୍ମା ସର୍ବଦରଶନ | ।। | ୨ |

୧. ପ୍ରହ୍ୱଣ = ଦଣ୍ଡବଦ୍ ପ୍ରଣାମ ।

କାମେ ସଂତପ୍ତ ଯା' ଶରୀର । ସେ ସୁଚରିତ୍ରା କୁବୁଜାର ॥ ୩
ବାଞ୍ଛନ୍ତେ ତା' ପ୍ରିୟକଥାକୁ । ଗଲେ ତାହାର ମନ୍ଦିରକୁ ॥ ୪
୨ ବହୁତ ମୂଲ୍ୟ ଯାହାଙ୍କର । ଯେ ଉପକରଣ ଗୃହର ॥ ୫
ତେଣେ ଯେ ହୋଇଛି ପୂରିତ । ସୁରତବନ୍ଧେ ଯେ ଚିତ୍ରିତ ॥ ୬
ମୁକ୍ତାମାଳା ପତାକାରେ । ବିତାନ ଶଯ୍ୟା ଆସନରେ ॥ ୭
ଯେ ରମ୍ୟ ଧୂପଦୀପଙ୍କରେ । ମଣ୍ଡିତ ହୋଇଛି ଗନ୍ଧରେ ॥ ୮
୩ ଏମନ୍ତ ଗୃହକୁ ଶ୍ରୀହରି । ଆସନ୍ତେ ତାଙ୍କୁ ଦେଖିକରି ॥ ୯
ସେ କୁବ୍‌ଜା ସସଂଭ୍ରମ ହେଲା । ତତ୍‌କାଳ ଆସନୁଁ ଉଠିଲା ॥ ୧୦
ସଖୀମାନଙ୍କର ସଙ୍ଗତେ । ପାଛୋଟି ଯାଇ ଯଥୋଚିତେ ॥ ୧୧
ଆସନ ଆଦିରେ କୃଷ୍ଣଙ୍କୁ । କଲା ଉତ୍ତମ ପୂଜନକୁ ॥ ୧୨
୪ କୁବ୍‌ଜାରେ ସେହି ପ୍ରକାରେଣ । ଉଦ୍ଧବ ପୂଜିତ ହୋଇଣ ॥ ୧୩
ଆସନ ସ୍ପରଶ କରିଣ । ଭୂମିରେ ବସିଲେ ସେ ପୁଣ ॥ ୧୪
ଯେ ଲୋକମାନଙ୍କ ଚରିତ । ତାକୁ ହୁଅନ୍ତେ ଉପଗତ ॥ ୧୫
ବହୁତ ମୂଲ୍ୟ ଶୟନରେ । କୃଷ୍ଣ ହିଁ ମିଳିଲେ ସତ୍ୱରେ ॥ ୧୬
୫ ସ୍ନାନ ଆଲେପନ ବସନ । ଏଥି ଯେ ହୋଇଛି ଭୂଷଣ ॥ ୧୭
ଯେ ମାଳା-ଗନ୍ଧ-ଚନ୍ଦନରେ । ତାମ୍ବୂଳ [୧]ସୁଧାସବାଦିରେ ॥ ୧୮
ଏଣେ ଯେ ପ୍ରସନ୍ନ କରିଣ । ଅଛି ଦେହକୁ ସଂପାଦିଣ ॥ ୧୯
ସଲଜ୍ଜ ଲୀଳାରେ ଉଦ୍‌ଗତ । ହୋଇଛି ଯେବଣ ସୁସ୍ମିତ ॥ ୨୦
ସେ ଅଛି ଯଉଁ ବିଳାସରେ । ତାହା ସହିତ ଈକ୍ଷଣରେ ॥ ୨୧
ସେ କୁବ୍‌ଜା କୃଷ୍ଣଙ୍କୁ ତୁରିତ । ଯାଇଁ ହୋଇଲା ଉପଗତ ॥ ୨୨
୬ ଯେ ନବସଙ୍ଗେ ଲଜ୍ଜାବତୀ । ଶଙ୍କିତ ହୋଇଛି ଯେ ଅତି ॥ ୨୩
ସେ ସ୍ତ୍ରୀକି ଆହ୍ୱାନ କରିଣ । କଙ୍କଣେ ଅଟେ ଯେ ଭୂଷଣ ॥ ୨୪
ସେ ବେନିହସ୍ତେ ତାକୁ ଧରି । ଶଯ୍ୟାରେ ନିବେଶିତ କରି ॥ ୨୫
ଲେପନ-ଅର୍ପଣୁଁ ପ୍ରକାଶ । ହୋଇଛି ଯାର ପୁଣ୍ୟଲେଶ[୨] ॥ ୨୬
ସେ ରାମାସଙ୍ଗରେ ବହୁତ । କ୍ରୀଡ଼ାକୁ କଲେ ସେ ଅଚ୍ୟୁତ ॥ ୨୭
୭ ସେ କାମସଂତପ୍ତ କୁଚର । ବକ୍ଷସ୍ଥଳର ନେତ୍ରଙ୍କର ॥ ୨୮
[୩]ଅନନ୍ତଚରଣେ ରୁଜଙ୍କୁ । ମାର୍ଜନା କଲା ଶୁଙ୍ଘି ତାଙ୍କୁ ॥ ୨୯

---

୧. ସୁଧାସବ = ଅମୃତ ତୁଲ୍ୟ ମଧୁ । ସୁଧା + ଆସବ = ସୁଧାସବ ।

୨. ପୁଣ୍ୟଲେଶ = ଲେପନ-ଅର୍ପଣ ବ୍ୟତୀତ କୁବ୍‌ଜାର ଅନ୍ୟ କିଛି ପୁଣ୍ୟ ନାହିଁ । ଏହା ଦେଖାଇବା ପାଇଁ ''ପୁଣ୍ୟଲେଶ'' ବୋଲି କୁହାଗଲା । କିନ୍ତୁ ପୁଣ୍ୟର ଅଳ୍ପତ୍ୱ ଏଠାରେ କୁହାଯାଉ ନାହିଁ । (ସ୍ୱାମୀ)

୩. ଅନନ୍ତଚରଣେନ (ମୂଳପାଠ) । ରୁଜ = ପୀଡ଼ା ।

ଆନନ୍ଦ ଅଟେ ଯାର ମୂର୍ତ୍ତି । ଯେ ସ୍ତନମଧ୍ୟେ ରହିଛନ୍ତି ।। ୩୦
ଭୁଜରେ ଭିଡ଼ି ସେ କାନ୍ତଙ୍କୁ । ଛାଡ଼ିଲା ସୁଦୀର୍ଘ ତାପକୁ ।। ୩୧
୮ ଯେ ଅଙ୍ଗରାଗସମର୍ପଣ । ସେ ହେତୁ କୁବ୍‌ଜା ଏ ରୂପେଣ ।। ୩୨
ଦୁଷ୍ପ୍ରାପ ଅଟେ ଯେ ଈଶ୍ୱର । ଯେ ନାଥ କୈବଲ୍ୟ ମୁକ୍ତିର ।। ୩୩
ଦୁର୍ଭଗା ତାହାଙ୍କୁ ପାଇଣ । ଏମନ୍ତ ମାଗିଲା ସେ ପୁଣ ।। ୩୪
୯ ହେ ପ୍ରିୟ ! ଥାଅ ଏହିଠାରେ । କେତେକ ଦିନ ମୋ ସଙ୍ଗରେ ।। ୩୫
ରମଣ କର ତୁମ୍ଭେ ପୁଣ । କହିଲା ଏମନ୍ତ ରୂପେଣ ।। ୩୬
ହେ ପଦ୍ମନେତ୍ର ! ତୋ' ସଙ୍ଗକୁ । ଉତ୍ସାହ ନାହିଁ ଛାଡ଼ିବାକୁ ।। ୩୭
୧୦ କୁବ୍‌ଜାକୁ ଦେଇ କାମ ବର । ମାନନା କରାଇ ଅପାର ।। ୩୮
ମାନଦ ସେ ସର୍ବ-ଈଶ୍ୱର । ଉଦ୍ଧବ ସଙ୍ଗେ ଆପଣାର ।। ୩୯
ସମୃଦ୍ଧିମନ୍ତ ଯେ ସଦନ । ତହିଁକି କଲେ ସେ ଗମନ ।। ୪୦
୧୧ ଯେ ସର୍ବେଶ୍ୱରଙ୍କ ଈଶ୍ୱର । ଯେ ବିଷ୍ଣୁ ଦୁରାରାଧ୍ୟ ଆର ।। ୪୧
ଉତ୍ତମ ଆରାଧି ତାହାଙ୍କୁ । ଯେ ପୁଣ ବିଷୟସୁଖକୁ ।। ୪୨
ବରିଲା ଅସତ୍ତ୍ୱରୁ ପୁଣ । କୁମତି ଅଟଇ ସେ ଜନ ।। ୪୩
୧୨ ଉଦ୍ଧବ-ରାମ ସହିତରେ । ସେ ପ୍ରଭୁ କୃଷ୍ଣ ଏଥୁଉତ୍ତାରେ ।। ୪୪
ଅକ୍ରୂର ପ୍ରିୟ କାମନାରେ । ୟାକୁ ପେଷିବା ହସ୍ତିନାରେ ।। ୪୫
ଇଚ୍ଛା କରନ୍ତେ ଏ କାର୍ଯ୍ୟକୁ । ଗଲେ ଅକ୍ରୂରଭବନକୁ ।। ୪୬
୧୩ ଯେ ନରବରଶ୍ରେଷ୍ଠ ଅତି । ଯେ ନିଜ ବାନ୍ଧବ ଅଟନ୍ତି ।। ୪୭
ତାହାଙ୍କୁ ଦୂରରୁ ଦେଖିଣ । ଅକ୍ରୂର କରି ପ୍ରତ୍ୟୁତ୍‌ଥାନ ।। ୪୮
ଆନନ୍ଦେ କରି ଆଲିଙ୍ଗନ । ହରଷ ହୋଇଲେ ସେ ପୁଣ ।। ୪୯
୧୪ ରାମକୃଷ୍ଣଙ୍କୁ ନମସ୍କାର । ସେଠାରେ କରିଣ ଅକ୍ରୂର ।। ୫୦
ସେମାନଙ୍କରେ ପୁଣ ଏହି । ଉତ୍ତମ ନମସ୍କାର ପାଇ ।। ୫୧
ସେମାନେ ଆସନେ ବସନ୍ତେ । ତାଙ୍କୁ ପୂଜିଲେ ବିଧିମତେ ।। ୫୨
୧୫ ହେ ନୃପ ! ପାଦଧୌତପାଣି । ଶିରରେ ଧରନ୍ତେ ସେ ପୁଣି ।। ୫୩
ପୂଜାରେ ଦିବ୍ୟ ବସନରେ । ସୁଗନ୍ଧ-ମାଳା-ଭୂଷଣରେ ।। ୫୪
୧୬ ତାହାଙ୍କୁ ପୂଜାକୁ କରିଣ । ଶିରରେ ବିନମ୍ର ହୋଇଣ ।। ୫୫
ଅକ୍ରୂର ନେଇ ଅଙ୍କଗତେ । ବେନି ଚରଣକୁ ଘଷନ୍ତେ ।। ୫୬
ବିନୟେ ଅବନତ ହେଲା । କୃଷ୍ଣରାମଙ୍କୁ ସେ କହିଲା ।। ୫୭
୧୭ ଅନୁଗମାନଙ୍କ ସହିତ । ପାପିଷ୍ଠ କଂସ କରି ହତ ।। ୫୮
ଆନନ୍ଦେ ତୁମ୍ଭେ ବେନିଜଣ । ଏ ଯଦୁକୁଳକୁ ହିଁ ପୁଣ ।। ୫୯
ଦୁରନ୍ତ କଷ୍ଟୁଁ ଉଦ୍ଧରିଲ । ଉତ୍ତମ କରି ବୃଦ୍ଧି କଲ ।। ୬୦
୧୮ ଜଗତମୟ ତୁମ୍ଭେ ବେନି । ଜଗତହେତୁ ଅଟ ପୁଣି ।। ୬୧
ପ୍ରଧାନପୁରୁଷ ହୋଇଣ । ଯେଣୁ ବର୍ତ୍ତିଛ ବେନି ଜଣ ।। ୬୨

ତୁମ୍ଭ ଦୁହିଁଙ୍କ ବିନୁ କେହି । କାର୍ଯ୍ୟ-କାରଣ ହୋଇ ନାହିଁ ॥ ୬୩
୧୯ ରଜ ଆଦି ଯେ ନିଜଶକ୍ତି । ସେମାନଙ୍କରେ ଏହି ସୃଷ୍ଟି ॥ ୬୪
ଆତ୍ମାରେ ସର୍ଜନା କରିଣ । ଏଥିରେ ପ୍ରବେଶ ହୋଇଣ ॥ ୬୫
ପ୍ରତ୍ୟକ୍ଷଗୋଚର ହୋଇଣ । ବେଦେ ରହିଛି ଯଉଁ ବ୍ରହ୍ମ ॥ ୬୬
ସେ ତୁମ୍ଭେ ଏବେ କୃଷ୍ଣରୂପେ । ପ୍ରତ୍ୟେ ହେଉଛ ନାନାରୂପେ ॥ ୬୭
୨୦ ଯେସନେ ମହୀ ଆଦି ହୋଇ । ଯେତେ କାରଣେ ଛନ୍ତି ରହି ॥ ୬୮
ଯୋନିସ୍ୱରୂପ ଚରାଚରେ । ସମସ୍ତ ଭୂତମାନଙ୍କରେ ॥ ୬୯
ଶୋଭା ପାଆନ୍ତି ନାନା ରୂପେ । ତୁ ଏକ ହୋଇଲେ ସେ ରୂପେ ॥ ୭୦
ଆତ୍ମ[୧] କାରଣମାନଙ୍କରେ । ପୁଣି ବହୁତ ପରକାରେ ॥ ୭୧
ଆତ୍ମସ୍ୱତନ୍ତ୍ର ହୋଇଲେଣ । ଶୋଭା ପାଉଛ ତୁମ୍ଭେ ପୁଣ ॥ ୭୨
୨୧ ଯେ ରଜ ସତ୍ତ୍ୱ ତମ ଗୁଣ । ଏ ନିଜ ଶକ୍ତି ଏଥି ପୁଣ ॥ ୭୩
ବିଶ୍ୱକୁ ସର୍ଜନ ପାଳନ । ପୁଣି ତୁ କରୁ ସଂହାରଣ ॥ ୭୪
ତାହାର ଗୁଣକର୍ମେ ଧରି । ବନ୍ଧ ତୁ ନୋହୁ ଜାଣିକରି ॥ ୭୫
ଆତ୍ମସ୍ୱରୂପ ଅଟୁ ତୁହି । ତୋର ଅବିଦ୍ୟା ଅବା କାହିଁ ॥ ୭୬
୨୨ ଜୀବର ଜନ୍ମଭେଦ ଦୁଇ । ସାକ୍ଷାତସ୍ୱରୂପରୁ ନାହିଁ ॥ ୭୭
ଏଣୁ ଏ ବନ୍ଧ ମୋକ୍ଷ ଦୁଇ । ତୁ ଆତ୍ମାରୂପୀ, ତୋର ନାହିଁ ॥ ୭୮
ଆପଣା ଅଭିପ୍ରାୟ ହୋଇ । ଯେ ଅଟେ ସେ ଅଛି ତୋ' ଠାଇଁ ॥ ୭୯
ଆମ୍ଭରି ମାନଙ୍କ ଠାବେଣ । ଅବିବେକ ହିଁ ଅଛି ପୁଣ ॥ ୮୦
୨୩ ଜଗତହିତନିମିତ୍ତରେ । ଉଦିତ ହୋଇଣ ତୋହରେ ॥ ୮୧
ଏ ବେଦପଥ ପୁରାତନ । ଏହାକୁ ଅସାଧୁ ଯେ ପୁଣ ॥ ୮୨
ପାଷଣ୍ଡଙ୍କର ମାର୍ଗମାନେ । ବାଧନ୍ତି ଯଉଁ ଯଉଁ ଦିନେ ॥ ୮୩
ସତ୍ତ୍ୱଗୁଣକୁ ତୁମ୍ଭେ ପୁଣ । କର ସେ କାଳରେ ଗ୍ରହଣ ॥ ୮୪
୨୪ ଦାନବଅଂଶ ରାଜାଙ୍କର । ଶତ ଅକ୍ଷୌହିଣୀ ସୈନ୍ୟର ॥ ୮୫
ବଧରେ ଏ ଯଦୁକୁଳର । ଯଶକୁ କରନ୍ତେ ବିସ୍ତାର ॥ ୮୬
ହେ ପ୍ରଭୁ ! ଅବନିର ଭାର । ବିନାଶ ଅର୍ଥରେ ଆବର ॥ ୮୭
ସେ ତୁମ୍ଭେ ବସୁଦେବ ଘରେ । ଜନ୍ମିଲ ରାମସହିତରେ ॥ ୮୮
୨୫ ସର୍ବଦେବତା-ପିତୃ-ଭୂତ । ନୃଦେବ ମୂର୍ତ୍ତି ଯାର ଖ୍ୟାତ ॥ ୮୯
ଯା ପାଦଶଉଚ-ଉଦକ । ପବିତ୍ର କରେ ତିନିଲୋକ ॥ ୯୦
ସେ ତୁମ୍ଭେ ଗୁରୁ ଜଗତର । ହେ ଅଧୋକ୍ଷଜ ! ଆସି ମୋର ॥ ୯୧
ଯେବଣ ଗୃହମାନଙ୍କରେ । ପ୍ରବେଶ ହୋଇଲ ଏଠାରେ ॥ ୯୨
ନିଶ୍ଚେଂ ସେ ଗୃହମାନ ଆଜ । ହେ ଈଶ ! ହେଲେ ଭାଗ୍ୟଭାଜ ॥ ୯୩

---
୧. ଆତ୍ମ = ନିଜ ।

୨୬ ତୁ ଭକ୍ତପ୍ରିୟ ସତ୍ୟଗିର । ସୁହୃଦ କୃତଜ୍ଞ ଆବର ॥ ୯୪
କଉଁ ପଣ୍ଡିତ ଶରଣକୁ । ଯିବ ତୋ ବିନୁ ଆନ ଠା'କୁ ॥ ୯୫
ଉତ୍ତମହୃଦୟ ଯେ ନର । ଭଜନ କରନ୍ତେ ତାହାର ॥ ୯୬
ସମସ୍ତ କାମନାମାନଙ୍କୁ । ଦେଉ ତୁ ପୁଣି ହିଁ ଆତ୍ମାକୁ[1] ॥ ୯୭
ଯେ ହାନି-ଉପଚୟ ଦୁଇ । ସେ ବେନି ତୋହଠାରେ ନାହିଁ ॥ ୯୮
୨୭ ଯେ ଯୋଗେଶ୍ୱରମାନଙ୍କରେ । ପ୍ରତୀତ ନୁହନ୍ତି ଭାଗ୍ୟରେ ॥ ୯୯
ଦେବତାଶ୍ରେଷ୍ଠେ ହେଁ ଆବର । ନ ପାନ୍ତି ଗତିକି ଯାହାର ॥ ୧୦୦
ହେ ଜନାର୍ଦ୍ଦନ ! ଏ ରୂପରେ । ତୁମ୍ଭେଟି ଅଟ ଏ ସଂସାରେ ॥ ୧୦୧
ସୁତ-କଳତ୍ର-ଧନ-ଆପ୍ତ । ଗୃହ-ଦେହାଦି ମୋହେ ଯୁତ ॥ ୧୦୨
ଯେ ମାୟାଦଉଡ଼ି ତୁମ୍ଭର । ତା' ବେଗେ ଛିଣ୍ଡାଅ ଆମ୍ଭର ॥ ୧୦୩
୨୮ ସେ ଭଗବାନ ହରି ପୁଣ । ଭକ୍ତରେ ଏମନ୍ତ ରୂପେଣ ॥ ୧୦୪
ସ୍ତୁତିକି ପୂଜାକୁ ଲଭନ୍ତେ । ସୁସ୍ମିତ[2] ହୋଇଣ ତଦନ୍ତେ ॥ ୧୦୫
ବଚନେ ମୋହିଲା ପରାଇ । କହିଲେ ଅକ୍ରୂରକୁ ତହିଁ ॥ ୧୦୬

ଶ୍ରୀଭଗବାନୁବାଚ

୨୯ ତୁ ଗୁରୁ ପିତୃବ୍ୟ ଆମ୍ଭର । ତୁ ଶ୍ଲାଘ୍ୟ ବନ୍ଧୁ ହିଁ ଆବର ॥ ୧୦୭
ତୁମ୍ଭର ଆମ୍ଭେମାନେ ପୁଣ । ନିତ୍ୟରେ ରକ୍ଷାଯୋଗ୍ୟ ଜାଣ ॥ ୧୦୮
ତୁମ୍ଭର ଅଟୁଁ ଦୟାପାତ୍ର । ଆବର ଅଟୁଁ ପୋଷ୍ୟପୁତ୍ର ॥ ୧୦୯
୩୦ ତୁମ୍ଭର ପ୍ରାଏ ମହାଭାଗ୍ୟ[3] । ଅଟନ୍ତି ପୂଜାକୁ ଯେ ଯୋଗ୍ୟ ॥ ୧୧୦
ଯେ ଶ୍ରେୟସ୍କାମ ଲୋକମାନେ । ତପେ ଯେ ସେବ୍ୟ ପ୍ରତିଦିନେ ॥ ୧୧୧
ସେ ଦେବେ ସ୍ୱକାର୍ଯ୍ୟେ ଉଦ୍ୟତ । ସାଧିବେ ନୁହନ୍ତି ତେମନ୍ତ ॥ ୧୧୨
୩୧ ମୃତ୍ତିକା-ଶିଳାମୟ ହୋଇ । ଯେତେ ଦେବତା ଛନ୍ତି ରହି ॥ ୧୧୩
ଯେ ଜଳମୟ ତୀର୍ଥମାନେ । ବହୁତ କାଳରେ ଏମାନେ ॥ ୧୧୪
ପବିତ୍ର କରି ସେ ପାରନ୍ତି । ଯେ ପୁଣ ସାଧୁମାନେ ଛନ୍ତି ॥ ୧୧୫
ଦର୍ଶନମାତ୍ରକେ ସେମାନେ । ପବିତ୍ର କରନ୍ତି ଭୁବନେ ॥ ୧୧୬
୩୨ ସୁହୃଦଲୋକମାନଙ୍କର । ମଧ୍ୟରେ ଶ୍ରେଷ୍ଠ ତୁ ଆବର ॥ ୧୧୭
ପାଣ୍ଡବମାନଙ୍କର ଶ୍ରେୟ । କରିବା ଅର୍ଥେ ହେ ଆତ୍ମୀୟ ॥ ୧୧୮
[4]ତାଙ୍କର ବାର୍ତ୍ତା ଜାଣିମାକୁ । ଯାଅ ତୁ ହସ୍ତିନାପୁରକୁ ॥ ୧୧୯
୩୩ ସେ ବାଳେ ପିତାର ମରନ୍ତେ । ଦୁଃଖିତ ମାତାର ସହିତେ ॥ ୧୨୦
ସେ ଧୃତରାଷ୍ଟ୍ର ନୃପ ତାଙ୍କୁ । ଆଣନ୍ତେ ଆପଣା ପୁରକୁ ॥ ୧୨୧
ପାଣ୍ଡବେ ଛନ୍ତି ତାଙ୍କ ପୁରେ । ଆମ୍ଭେ ଶୁଣିଲୁଁ ଏ ପ୍ରକାରେ ॥ ୧୨୨
୩୪ ଅମ୍ବିକାପୁତ୍ର ସେ ନୃପତି । ସେ ଭ୍ରାତାପୁତ୍ରଙ୍କରେ ନିତି ॥ ୧୨୩

---
୧. ତା' ନିଜକୁ । ୨. ସସ୍ମିତ । ୩. ମହାଭାଗ । ୪. ତାଙ୍କର ଅର୍ଥ ଶୁଣିମାକୁ ।

ନ କଲା ସମ ଆଚରଣ । ସେ ମନ୍ଦବୁଦ୍ଧି ନିଶ୍ଚେଂ ପୁଣ ।। ୧୨୪
ଦୁଷ୍ଟ ପୁତ୍ରଙ୍କ ବଶ ହେଲା । ଯେଣୁ ତାହାର ଚକ୍ଷୁ ଗଲା ।। ୧୨୫
୩୫ ଭଲମନ୍ଦ ବା ବର୍ତ୍ତମାନ । ଯାଇ ତାଙ୍କର ବାର୍ତ୍ତା ଜାଣ ।। ୧୨୬
ଜାଣି ତା ବିଧାନ କରିବା । ଯେମନ୍ତ ପ୍ରକାରରେ ଅବା ।। ୧୨୭
ସେହି ସୁହୃଦମାନଙ୍କର । ମଙ୍ଗଳ ହୋଇବ ଆବର ।। ୧୨୮
୩୬ ଯେ ଭଗବାନ ହରୀଶ୍ୱର । ସେ ଅକ୍ରୂରଙ୍କୁ ଏ ପ୍ରକାର ।। ୧୨୯
ଉତ୍ତମ ଆଜ୍ଞାକୁ ଦେଇଣ । ଉଦ୍ଧବ ଯେ ବା ସଂକର୍ଷଣ ।। ୧୩୦
ତାଙ୍କ ସହିତେ ତଦନ୍ତରେ । ଗମନ କଲେ ନିଜ ପୁରେ ।। ୧୩୧
ଅକ୍ରୂର ପେଷି ହସ୍ତିନାକୁ । ଯେ ଗଲେ ନିଜ ମନ୍ଦିରକୁ ।। ୧୩୨
ସେ କୃଷ୍ଣଚରଣପଙ୍କଜ । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ ।। ୧୩୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ଶ୍ରୀମଦକ୍ରୂରଗୃହଗମନଂ ନାମ
ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।।

## ଏକୋନପଞ୍ଚାଶ ଅଧ୍ୟାୟ

ଉନପଞ୍ଚାଶତ୍ତମେ ତୁ ଗତ୍ୱାକ୍ରୂରୋ ଗଜାହ୍ୱୟମ୍ ।
ରାଜ୍ଞଃ ସ୍ୱଭ୍ରାତୃପୁତ୍ରେଷୁ ବୁଦ୍ଧ୍ୱା ବୈଷମ୍ୟମାଗମତ୍ ।।

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ନୃପ ପରୀକ୍ଷିତ ।। ୧
ଯଶରେ[୧] ପୁରୁଶ୍ରେଷ୍ଠଙ୍କର । ଚିହ୍ନିତ ଯେ ହସ୍ତିନାପୁର ।। ୨
ଅକ୍ରୂର ସେ ପୁରକୁ ଗଲେ । ସେଠାରେ ଭୀଷ୍ମଙ୍କର ତୁଲେ ।। ୩
ଦେଖିଲେ ସେ ଧୃତରାଷ୍ଟ୍ରଙ୍କୁ । କୁନ୍ତୀଙ୍କି ପୁଣି ବିଦୁରଙ୍କୁ ।। ୪
୨ ପୁତ୍ରସହିତେ ବାହ୍ଲୀକଙ୍କୁ[୨] । ଭାରଦ୍ୱାଜଙ୍କୁ[୩] ଗୌତମଙ୍କୁ[୪] ।। ୫
ଯେ କର୍ଣ୍ଣ ଦୁର୍ଯ୍ୟୋଧନ ଦୁଇ । ତାହାଙ୍କୁ ଅଶ୍ୱତ୍ଥାମାକୁ ହିଁ ।। ୬
ଯେ ଆନ ସୁହୃଦ ପାଣ୍ଡବେ । ତାହାଙ୍କୁ ଦେଖିଲେ ସେ ଠାବେ ।। ୭
୩ ବନ୍ଧୁମାନଙ୍କେ ଯଥୋଚିତେ । ଅକ୍ରୂର ସଙ୍ଗମ ହୁଅନ୍ତେ ।। ୮
ଧୃତରାଷ୍ଟ୍ରାଦି ଅକ୍ରୂରଙ୍କୁ । ପୁଛିଲେ ସୁହୃଦବାର୍ତ୍ତାକୁ ।। ୯
ଅକ୍ରୂର ଶୁଣି ସେମାନଙ୍କୁ । ପୁଛିଲେ କୁଶଳକଥାକୁ ।। ୧୦
୪ ଦୁଷ୍ଟ ଅଟନ୍ତି ପୁତ୍ରେ ଯାର । ଯା ବଳ ଅଳପପ୍ରକାର ।। ୧୧
ଖଳଲୋକଙ୍କ ଇଚ୍ଛା ଯେହି । ତହିଁ ଯେ ଅନୁବର୍ତ୍ତି ଥାଇ ।। ୧୨

୧. ଯଶ = ଦେବବ୍ରାହ୍ମଣାୟତନାଦି । ୨. ସୋମଦତ୍ତଙ୍କୁ । ୩. ଦ୍ରୋଣଙ୍କୁ । ୪. କୃପଙ୍କୁ ।

ସେ ଧୃତରାଷ୍ଟ୍ର ନୃପତିର । ବୃତ୍ତିକି ଜାଣିମାକୁ ଆର ।।
ଅକ୍ରୂର କେତେମାସ ଯାଏ । ସୁଖେ ରହିଲେ ହସ୍ତିନାୟେ ।।
୫ ପାଣ୍ଡବଙ୍କର ଠାରେ ତେଜ । [1]ଶସ୍ତ୍ରନୈପୁଣ୍ୟ ବଳ ଶୌର୍ଯ୍ୟ ।।
ପଚାରିବାକୁ ଆଦି ହୋଇ । ଉତ୍ତମଗୁଣେ ଛନ୍ତି ଯେହି ।।
ଯେ ଅନୁରାଗ ପ୍ରଜାଙ୍କର । ଯା ଅବା କରିବେ ଉପର ।।
ଏ ଗୁଣମାନ ଅବା ଯେହି । ତାହା ଯେ ନ ପାରନ୍ତି ସହି ।।
୬ ସେ ଦୁର୍ଯ୍ୟୋଧନ ଆଦି ତହିଁ । ବିଷଦାନକୁ ଆଦି ହୋଇ ।।
କଲେ ଯଉଁ ଅନ୍ୟାୟମାନ । କୁନ୍ତୀ ବିଦୁର ବେନି ଜଣ ।।
ଉତ୍ତମ କରି ଅକ୍ରୂରଙ୍କୁ । କହିଲେ ସବୁ ସେ ବାର୍ତ୍ତାକୁ ।।
୭ ଅକ୍ରୂର ଅଟେ ନିଜ ଭାଇ । ପ୍ରବେଶ ହେଲେ ପୁଣ[2] ତହିଁ ।।
ନେତ୍ରରେ ଲୋତକକଳାକୁ । ଧରି ସେ କୁନ୍ତୀ ଅକ୍ରୂରଙ୍କୁ ।।
ଆପଣା ଜନ୍ମନିକେତନ । ସ୍ମରନ୍ତେ କହିଲେ ବଚନ ।।
୮ ହେ ସୌମ୍ୟ ! ପିତାମାତା ବେନି । ଯେ ଭ୍ରାତାମାନେ ଅବା ପୁଣି ।।
ଭଉଣୀମାନେ ଭାଇପୋଏ । ଯେ ଯାଆମାନେ ଯେ ସଖୀଏ ।।
ନିଶ୍ଚେ ଆମ୍ଭଙ୍କୁ ଏହିମାନେ । ସ୍ମରନ୍ତିଟିକି ସେହି ସ୍ଥାନେ ।।
୯ ଭାଇର ପୁଅ ଭଗବାନ । ଯେ ଭକ୍ତବତ୍ସଳ ଶରଣ୍ୟ ।।
ସେ କୃଷ୍ଣ ପୁଣି ବଳରାମ । ନଳିନପ୍ରାଏ ଯା' ନୟନ ।।
ପିଉସୀପୁଅ ମୋ ନନ୍ଦନେ । ୟାଙ୍କୁ ସ୍ମରନ୍ତି କି ସେ ସ୍ଥାନେ ।।
୧୦ ବୃକମାନଙ୍କର ମଧ୍ୟରେ । ହରିଣୀପ୍ରାଏକ ଏଠାରେ ।।
ଶୋଚନା କରୁଅଛି ମୁହିଁ । [3]ସପତନଙ୍କ ମଧ୍ୟେ ରହି ।।
ବଚନମାନଙ୍କରେ ମୋତେ । ଯେ ପିତୃହୀନ ମୋର ସୁତେ ।।
ଏମାନଙ୍କୁ ସେ ଭାଇ ବେନି । ସାନ୍ତ୍ୱନା କରିବେ କି ପୁଣି ।।
୧୧ ହେ କୃଷ୍ଣ କୃଷ୍ଣ ବିଶ୍ୱାତ୍ମନ[4] । ହେ ଯୋଗୀ[5] ହେ ବିଶ୍ୱଭାବନ[6] ।।
ଶିଶୁମାନଙ୍କ ସହିତରେ । ଖିନ୍ନ[7] ହେଉଛି ମୁଁ ଏଠାରେ ।।
ପ୍ରପନ୍ନ ହେଉଅଛି ମୁହିଁ । ଗୋବିନ୍ଦ ! ରକ୍ଷାକର ତୁହି ।।
୧୨ ମୃତ୍ୟୁସଂସାରୁ ଯଉଁ ଜନେ । ଭୟ କରନ୍ତି ପ୍ରତିଦିନେ ।।
ତୁ ଯେ ଈଶ୍ୱର ତୋର ପୁଣ । ମୋକ୍ଷଦ ଯେ ପାଦନଳିନ ।।
ତା' ବିନୁ ତାହାଙ୍କର ମୁହିଁ । ଆନ ଶରଣ ଦେଖୁନାହିଁ ।।
୧୩ ଯେ କୃଷ୍ଣ ବିଶୁଦ୍ଧ[8] ଅଟଇ । ଅପରିଚ୍ଛିନ୍ନ ଅଟେ ଯେହି ।।

---

୧. ଅସ୍ତ୍ର ୨. ଶୁଣି । ୩. ଶତ୍ରୁଙ୍କ । (ସାବତନ, ପାଠାନ୍ତର)
୪. ସର୍ବାନ୍ତର୍ଯାମୀ ୫. ମାୟାଖ୍ୟ ଯୋଗ (ଉପାୟ) ଅଛି ଯାହାର ସେ ।
୬. ବିଶ୍ୱପାଳକ ୭. ଶୀର୍ଣ୍ଣ । ୮. ଧର୍ମାତ୍ମା ।

| | | | | |
|---|---|---|---|---|
| | ପରମ-ଆତ୍ମା[୧] ଯେ ଆବର | । ତାଙ୍କୁ ମୋହର ନମସ୍କାର | ।। | ୪୨ |
| | ଯେ ଯୋଗେଶ୍ୱର ଯୋଗମୂର୍ତ୍ତି[୨] | । ତାଙ୍କୁ ମୁଁ ଶରଣ ପଶୁଛି | ।। | ୪୩ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧୪ | କହନ୍ତି ବ୍ୟାସଙ୍କ ନନ୍ଦନ | । ଶୁଣ ହେ ଉତ୍ତରାନନ୍ଦନ | ।। | ୪୪ |
| | ଯେ କୃଷ୍ଣ ଜଗତ-ଈଶ୍ୱର | । ସ୍ୱଜନ ଅଟନ୍ତି ଆବର | ।। | ୪୫ |
| | ତାହାଙ୍କୁ ଏମନ୍ତ ରୂପରେ | । ସ୍ମରଣା କରନ୍ତେ ଦୁଃଖରେ | ।। | ୪୬ |
| | ତୋର ପ୍ରପିତାମହୀ କୁନ୍ତୀ | । ରୋଦନ କଲା ପୁଣ ଅତି | ।। | ୪୭ |
| ୧୫ | ସମାନ ସୁଖ ଦୁଃଖ ଯାର | । ଏମନ୍ତ ଅଟେ ଯେ ଅକ୍ରୂର | ।। | ୪୮ |
| | ଯେ ମହାଯଶା ବିଦୁର ହିଁ | । ଏ ବେନି ଜଣେ ଜଣେ ତହିଁ | ।। | ୪୯ |
| | ତାହାର ପୁତ୍ର-ଉତ୍‌ପତ୍ତିରେ | । ହେତୁ ଅଟନ୍ତି ଯଉଁ ସୁରେ | ।। | ୫୦ |
| | ତାହାଙ୍କ କଥାରେ ଏ ପୁଣ | । କୁନ୍ତୀକି କଲେକ ସାନ୍ତ୍ୱନ | ।। | ୫୧ |
| ୧୬ | ପୁତ୍ରଲାଳସ ଦୁଷ୍ଟମତି | । ଯେ ଧୃତରାଷ୍ଟ୍ର ନରପତି | ।। | ୫୨ |
| | ଅକ୍ରୂର ସେଠାରୁ ଯାଇଣ | । ତା' ଠାରେ ପ୍ରବେଶ ହୋଇଣ | ।। | ୫୩ |
| | ମିତ୍ରଭାବକୁ ଯୋଗ୍ୟ ହୋଇ | । ବନ୍ଧୁଏ ଛନ୍ତି ଯାହା କହି | ।। | ୫୪ |
| | ସୁହୃଦ ଲୋକଙ୍କ ମଧ୍ୟରେ | । ସମସ୍ତ କହିଲେ ସେଠାରେ | ।। | ୫୫ |

ଶ୍ରୀଅକ୍ରୂର ଉବାଚ

| | | | | |
|---|---|---|---|---|
| ୧୭ | ଅକ୍ରୂର କହନ୍ତି ବଚନ | । ଭୋ ଧୃତରାଷ୍ଟ୍ର ନୃପ ଶୁଣ | ।। | ୫୬ |
| | କୁରୁମାନଙ୍କ କୀର୍ତ୍ତିମାନ | । ବଢ଼ାଇ ଯଉଁ ସିଂହାସନ | ।। | ୫୭ |
| | ପାଣ୍ଡୁ ମରନ୍ତେ ତୋର ଭାଇ | । [୩]ତହିଁ ବସିଲୁ ଏବେ ତୁହି | ।। | ୫୮ |
| ୧୮ | ଧର୍ମରେ ପୃଥିବୀ ପାଳନ୍ତେ | । ସ୍ୱଭାବେ ପ୍ରଜାଙ୍କୁ ରଞ୍ଜାନ୍ତେ | ।। | ୫୯ |
| | ଆପଣା ଲୋକଙ୍କରେ[୪] ତୁହି | । ବର୍ତ୍ତିଥାଆନ୍ତେ ସମ ହୋଇ | ।। | ୬୦ |
| | ଶ୍ରେୟକୁ କୀର୍ତ୍ତିକି ତୁ ପୁଣ | । ଲଭିବୁ ଉତ୍ତମ କରିଣ | ।। | ୬୧ |
| ୧୯ | ଲୋକରେ ଗରହିତ କଥା | । ଯେବେ ଆଚରିବୁ[୫] ଅନ୍ୟଥା | ।। | ୬୨ |
| | ତେବେ ପଡ଼ିବୁ ନରକରେ | । ସେହି କାରଣୁଁ ସମତ୍ୱରେ | ।। | ୬୩ |
| | [୬]ବର୍ତ୍ତ ତୁ ପାଣ୍ଡବଙ୍କ ଠାରେ | । ପୁଣି ଆପଣା ପୁତ୍ରଙ୍କରେ | ।। | ୬୪ |
| ୨୦ | କାହାର କାହାରି ସଙ୍ଗରେ | । ସଂସ୍ଥିତି ନାହିଁଟି ନିତ୍ୟରେ | ।। | ୬୫ |
| | ହେ ନୃପ ! ଆପଣା ଦେହରେ | । ସଂବାସ ନାହିଁ ଏ ସଂସାରେ | ।। | ୬୬ |
| | ଯେ ଆନ ପୁତ୍ରାଦି ଏମାନ | । ତହିଁ କିମ୍ପାଇଁ ହେବ ପୁଣ | ।। | ୬୭ |

---

୧. ଜୀବସଖ । ୨. ଜ୍ଞାନାତ୍ମା ।
୩. ପାଣ୍ଡୁଙ୍କର ପୁଅମାନେ ଥାଉ ଥାଉ ତୁମେ ରାଜସିଂହାସନରେ ବସିଲ - ଏହା କଟାକ୍ଷ ।
୪. ଲୋକଙ୍କର । ୫. ଆଚରିବ । ୬. ବର୍ତ୍ତ = ରୁହ ।

| | | | | |
|---|---|---|---|---|
| ୨୧ | ଜନ୍ତୁ ଜନ୍ମଇଁ ଏକା ହୋଇ | । ଏକା ହୋଇ ସେ ନାଶ ଯାଇ | ।। | ୬୮ |
| | ସୁକୃତ ଭୁଞ୍ଜେ ଏକା ହୋଇ | । ସେ ଏକା ଦୁଷ୍କୃତ ଭୁଞ୍ଜଇ | ।। | ୬୯ |
| ୨୨ | ଅଳପବୁଦ୍ଧି ଯଉଁ ନର | । ଅଧର୍ମାର୍ଜିତ ବିତ୍ତ ତାର | ।। | ୭୦ |
| | ହେ ନୃପ ! ପୁତ୍ରାଦି ବ୍ୟାଜରେ | । ହରି ନିଅନ୍ତି ଆନ ନରେ | ।। | ୭୧ |
| | [1]ମତ୍ସ୍ୟର ପ୍ରାଣ ଜଳମାନେ | । ତା' ଜନେ[2] ହରନ୍ତି ଯେସନେ | ।। | ୭୨ |
| ୨୩ | ଏ ମୋର ବୋଲିଣ ବୁଦ୍ଧିରେ | । ଯଉଁମାନଙ୍କୁ ଅଧର୍ମରେ | ।। | ୭୩ |
| | ପୁଷ୍ଟ କରୁଛି ଅତିସ୍ନେହେ | । ସେ ପ୍ରାଣ-ଧନ-ପୁତ୍ରାଦିଏ | ।। | ୭୪ |
| | ସେ ଅପଣ୍ଡିତ ବୃଦ୍ଧ ହୋନ୍ତେ | । ତାକୁ ଛାଡ଼ନ୍ତି ସେ ସମସ୍ତେ | ।। | ୭୫ |
| ୨୪ | ସେ ପ୍ରାଣ-ଧନ-ପୁତ୍ରାଦିଏ | । ତାହାକୁ ଛାଡ଼ନ୍ତେ ନିଶ୍ଚୟେ | ।। | ୭୬ |
| | ସେ ଅପଣ୍ଡିତ ଲୋକ ପୁଣ | । ଆପଣା ପାପକୁ ଘେନିଣ | ।। | ୭୭ |
| | ସ୍ୱଧର୍ମବିମୁଖ ହୋଇଣ | । ଅପୂର୍ଣ୍ଣକାମ ହୋଇ ପୁଣ | ।। | ୭୮ |
| | ଯେ ନର୍କ ଅତ୍ୟନ୍ତ ବିଶେଷ | । ତହିଁରେ ହୁଅଇ ପ୍ରବେଶ | ।। | ୭୯ |
| ୨୫ | ଏ ସକାଶୁଁ ହେ ନରନାଥ | । ଯେ ସ୍ୱପ୍ନ-ମାୟା-ମନୋରଥ | ।। | ୮୦ |
| | ଏ ତିନି-ସମାନ ଜଗତ | । ଅଟଇ, ଦେଖିଣ ଏମନ୍ତ | ।। | ୮୧ |
| | ଆତ୍ମାକୁ ଆତ୍ମା ଦ୍ୱାରେ ପୁଣ | । ଉତ୍ତମ ଆୟତ୍ତ କରିଣ | ।। | ୮୨ |
| | ହେ ପ୍ରଭୁ ! ଶାନ୍ତ ହୋଇ ଏବେ | । ସମ ତୁ ହୁଅ ସବୁଠାବେ | ।। | ୮୩ |

ଶ୍ରୀଧୃତରାଷ୍ଟ୍ର ଉବାଚ

| | | | | |
|---|---|---|---|---|
| ୨୬ | ଏରୂପେ ଶୁଣି ତାଙ୍କ ବାଣୀ | । କହନ୍ତି ଧୃତରାଷ୍ଟ୍ର ପୁଣି | ।। | ୮୪ |
| | ଯଉଁ ରୂପରେ ହେ ଅକ୍ରୂର | । ତୁମ୍ଭେ ମଙ୍ଗଳ-ପରକାର | ।। | ୮୫ |
| | ବଚନ କହିଲ ମୁଁ ତହିଁ | । ସେ ରୂପେ ତୃପ୍ତ ହେଉ ନାହିଁ | ।। | ୮୬ |
| | ମନୁଷ୍ୟ ପାଇଲେ ଅମୃତ | । ଯେସନେ ନୁହଇ ତୃପତ | ।। | ୮୭ |
| ୨୭ | ବିଷମ ଅଟେ ପୁତ୍ରସ୍ନେହ | । ଚଞ୍ଚଳ ଏ ମୋର ହୃଦୟ | ।। | ୮୮ |
| | ହେ ସୌମ୍ୟ ଏ ପ୍ରିୟ ବଚନ | । ତଥାପି ରହୁନାହିଁ ପୁଣ | ।। | ୮୯ |
| | ସୁଦାମାପର୍ବତେ ତଡ଼ିତ[3] | । ଯେସନେ ଲିଭଇ ତୁରିତ | ।। | ୯୦ |
| ୨୮ | ଈଶ୍ୱରମାୟାକୁ କେ ଜନ | । ଅନ୍ୟଥା କରେ ବର୍ତ୍ତମାନ | ।। | ୯୧ |
| | ଯେ ଭୂମିଭାରର ବିନାଶେ | । ଅବତରିଲେ ଯଦୁବଂଶେ | ।। | ୯୨ |
| ୨୯ | ଜାଣି ନ ପାରି ମାର୍ଗ ଯାର | । ସେ ନିଜ ମାୟାରେ ସଂସାର | ।। | ୯୩ |
| | ସର୍ଜନା କରି ପଶି ତହିଁ | । କର୍ମକୁ ବାଣ୍ଟି ଯେ ଦିଅଇ | ।। | ୯୪ |
| | ନ ଜାଣି ଯେବଣ ବିହାର | । ସେ ମୁଖ୍ୟ ଯଉଁ ସଂସାରର | ।। | ୯୫ |
| | ସେ ସୃଷ୍ଟି ପ୍ରବର୍ତ୍ତେ ଯା' ଠାର | । ସେ ଈଶ୍ୱରଙ୍କୁ ନମସ୍କାର | ।। | ୯୬ |

---

୧. ମତ୍ସ୍ୟର ଜୀବନଭୂତ ଜଳକୁ ତାର ପୁତ୍ରାଦି ସଂବନ୍ଧୀ ଜନ ଯେପରି ହରଣ କରନ୍ତି ।

୨. ଜନେ = ପୁତ୍ରେ ।　　୩. ତଡ଼ିତ = ବିଜୁଳି ।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୩୦ | କହନ୍ତି ବ୍ୟାସଙ୍କ କୁମର । | ଏମନ୍ତରୂପେ ନୃପତିର | ॥ | ୯୭ |
| | ଅକ୍ରୂର ଅଭିପ୍ରାୟ ଜାଣି । | ସୁହୃଦଙ୍କର ଠାରୁ ପୁଣି | ॥ | ୯୮ |
| | ଉତ୍ତମ ଆଜ୍ଞା ମାଗି କରି । | ତହୁଁ ଅଇଲେ ଯଦୁପୁରୀ | ॥ | ୯୯ |
| ୩୧ | ହେ ପରୀକ୍ଷିତ ! ଅକ୍ରୂରକୁ । | ପାଣ୍ଡବମାନଙ୍କ ଠାବକୁ | ॥ | ୧୦୦ |
| | ଯଉଁ ନିମିତ୍ତେ ସେ ଆପଣ । | ପ୍ରେଷିତ କରିଥିଲେ ପୁଣ | ॥ | ୧୦୧ |
| | ସେ ଧୃତରାଷ୍ଟ୍ରର ଚେଷ୍ଟାକୁ । | କହିଲା ସେ ରାମକୃଷ୍ଣଙ୍କୁ | ॥ | ୧୦୨ |
| | ଦଶମସ୍କନ୍ଧ ଭାଷାଗୀତେ । | ସୁଜନମାନଙ୍କର ହିତେ | ॥ | ୧୦୩ |
| | ଚିନ୍ତି ଶ୍ରୀକୃଷ୍ଣ କୃପାସିନ୍ଧୁ । | ଭଣଇ ବିପ୍ର ଦୀନବନ୍ଧୁ | ॥ | ୧୦୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦକ୍ରୂରଗୃହଗମନଂ
ନାମ ଏକୋନପଞ୍ଚାଶୋଽଧ୍ୟାୟଃ ॥

## ପଞ୍ଚାଶ ଅଧ୍ୟାୟ

ଓଁ ନମଃ ଶ୍ରୀକୃଷ୍ଣାୟ

ତତଃ ପଞ୍ଚାଶତ୍ତମେ ତୁ ଜରାସନ୍ଧଭୟାଦିବ ।
କାରୟିତ୍ୱାମ୍ବୁଧୌ ଦୁର୍ଗଂ ତନ୍ନିନାୟ ନିଜଂ ଜନମ୍ ॥ ୧
କପଟାନ୍ କପଟୈରେବ ହତ୍ୱା ଦୈତ୍ୟାନଯନ୍ତତଃ ।
ଅଜୟଚ୍ଚ ଜରାସନ୍ଧଂ ଧର୍ମେଣୈବ ତୁ ଧାର୍ମିକମ୍ ॥ ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ କୁମର । | ହେ ପରୀକ୍ଷିତ ଦଣ୍ଡଧର | ॥ | ୧ |
| | କଂସର ଅସ୍ତି ପ୍ରାପ୍ତି ହୋଇ । | ଥିଲେ ଯେ ଶ୍ରେଷ୍ଠ ଭାର୍ଯ୍ୟା ଦୁଇ | ॥ | ୨ |
| | ଭର୍ତ୍ତା ମରନ୍ତେ ହେ ରାଜନ । | ଦୁଃଖରେ ଆରତ ହୋଇଣ | ॥ | ୩ |
| | ଯେ ନିଜ ପିତାର ସଦନ । | ତହିଁକି କଲେ ସେ ଗମନ | ॥ | ୪ |
| ୨ | ଯେ ଅଟେ ଆପଣା ପିଅର । | ମଗଧଦେଶର ଈଶ୍ୱର | ॥ | ୫ |
| | ସେ ଜରାସନ୍ଧକୁ ସେ ବେନି । | ଅତି ଦୁଃଖିତ ହୋଇ ପୁଣି | ॥ | ୬ |
| | ଯେ ନିଜ ବୈଧବ୍ୟକାରଣ । | ତା' ସର୍ବ କଲେ ନିବେଦନ | ॥ | ୭ |
| ୩ | ସେ ସର୍ବ ଅପ୍ରିୟ ବଚନ । | ଶ୍ରବଣ କରି ସେ ରାଜନ | ॥ | ୮ |
| | ଯାଦବଶୂନ୍ୟ କରି କ୍ଷିତି । | କରିବାକୁ ସେ ନରପତି | ॥ | ୯ |
| | [୧]ଶୋକ-କ୍ରୋଧରେ ହୋଇ ଯୁତ । | ଉଦ୍ୟମ କଲା ସେ ଅତ୍ୟନ୍ତ | ॥ | ୧୦ |

୧. କଂସଠାରେ ଶୋକ ଏବଂ କୃଷ୍ଣଙ୍କଠାରେ କ୍ରୋଧ ।

୪ ତେଇଶି ଅକ୍ଷୌହିଣୀବଳେ । ବେଷ୍ଟିତ ହୋଇଣ ସେ କାଳେ ॥ ୧୧
କଟକ ଯଦୁମାନଙ୍କର । ଅଟଇ ଯଉଁ ମଧୁପୁର ॥ ୧୨
ସେ ଜରାସନ୍ଧ ତାକୁ ବେଗେ । ରୁନ୍ଧିଲା ଯାଇଁ ସବୁଦିଗେ ॥ ୧୩
୫ କୂଳକୁ ଲଙ୍ଘନ କରଇ । ଏମନ୍ତ ସମୁଦ୍ର ପରାଇ ॥ ୧୪
୬ ବଳକୁ ଦେଖିଣ ତାହାର । ଯେ ଅଟେ ଆପଣାର ପୁର ॥ ୧୫
୭ ସେ ସୈନ୍ୟେ ହୋଇଛି ରୁନ୍ଧିତ । ପୁଣି ହିଁ ଦେଖିଣ ଏମନ୍ତ ॥ ୧୬
ଭୟେ ଆକୁଳ ନିଜ ଜନ । ସେ କୃଷ୍ଣ ଏମନ୍ତ ଦେଖିଣ ॥ ୧୭
ସେ ଭଗବାନ ନରହରି । ଭୂଭାରନାଶେ ଦେହ ଧରି[1] ॥ ୧୮
ନିଜ ଅବତାରକାରଣ । ସେ ଦେଶ-କାଳ-ଅନୁଗୁଣ[2] ॥ ୧୯
ଏମାନ ବିଚାରିଣ ପୁଣି । ଯେ ଜରାସନ୍ଧ ଅଛି ଆଣି ॥ ୨୦
ପୃଥିବୀଭାରପ୍ରାୟେ ହୋଇ । ଯେବଣ ସଇନ୍ୟ ଅଟଇ ॥ ୨୧
ଦେଖନ୍ତେ ସମସ୍ତ ରାଜନ । ଏହାକୁ ହୋଇ ସାବଧାନ ॥ ୨୨
ନିଶ୍ଚୟେ କରିବି ନିଧନ । ଏମନ୍ତ ବିଚାରିଲେ ମନ ॥ ୨୩
୮ ଯେ ଭଟ[3]-ଅଶ୍ୱ-ରଥମାନ । ଯେ ବା କୁଞ୍ଜରମାନେ ଆନ ॥ ୨୪
ଏ ଅକ୍ଷୌହିଣୀମାନେ ଯେହି । ଏଣେ ଯେ ସଂଖ୍ୟାତ ଅଟଇ ॥ ୨୫
ଏମନ୍ତ ବଳର ଉଦ୍ୟମ । ପୁଣି କରିବ ଏ ରାଜନ ॥ ୨୬
ଏହେତୁ ଏ ଯେ ଜରାସନ୍ଧ । ଏହାକୁ ନ କରିବି ବଧ ॥ ୨୭
୯ ଏହିଟି ଅର୍ଥ ଅଟେ ଯାର । ଏମନ୍ତ ଯଉଁ ଅବତାର ॥ ୨୮
ପୃଥ୍ୱୀର ଭାରହରଣରେ । ସାଧୁମାନଙ୍କ ରକ୍ଷଣରେ ॥ ୨୯
ଅସାଧୁମାନଙ୍କ ନାଶରେ । ଏହା ମୁଁ କଲି ଏ ଯୁଗରେ ॥ ୩୦
୧୦ କେବଣ ସମୟରେ ପୁଣ । ଅଧର୍ମ ହୁଅନ୍ତେ ଉତ୍ପନ ॥ ୩୧
ତାହାର ନିବର୍ତ୍ତିବା ଅର୍ଥେ । ଧର୍ମରକ୍ଷଣର ନିମିତ୍ତେ ॥ ୩୨
ଅନ୍ୟ ଶରୀରକୁ ହି ମୁହିଁ । ନିଶ୍ଚୟେ ଗ୍ରହଣ କରଇଁ ॥ ୩୩
୧୧ ଗୋବିନ୍ଦ ଏମନ୍ତ ରୂପରେ । ଧ୍ୟାନ କରନ୍ତେ ସେ କାଳରେ ॥ ୩୪
ସୂର୍ଯ୍ୟର ପ୍ରାଏ ତେଜବନ୍ତ । ହୋଇଛି ସାରଥିସହିତ ॥ ୩୫
ସପରିକର[4] ହୋଇ ପୁଣ । ତତ୍‌କାଳ ଆକାଶୁଁ ଆସିଣ ॥ ୩୬
ଏମନ୍ତ ଯଉଁ ବେନି ରଥ । ସେ ଆସି ହେଲା ଉପସ୍ଥିତ ॥ ୩୭
୧୨ ସେ ହୃଷୀକେଶ ଭଗବାନ । ଯେ ଦିବ୍ୟ ଅଟେ ପୁରାତନ ॥ ୩୮
ସେ ଶସ୍ତ୍ରମାନ ଯଦୃଚ୍ଛାରେ । ଦେଖିଣ ଏଥୁ ଅନନ୍ତରେ ॥ ୩୯
ସଙ୍କରଷଣଙ୍କୁ ସେଠାରେ । କହିଲେ ଏମନ୍ତ ରୂପରେ ॥ ୪୦
୧୩ ତୁମ୍ଭେ ଟି ନାଥ ଯାହାଙ୍କର । ହେ ପ୍ରଭୁ ସେ ଯାଦବଙ୍କର ॥ ୪୧

---

୧. ଧରି = ଦେହଧାରୀ । ୨. ଅନୁଗୁଣ = ଗୁଣ ଅନୁସାରେ । ୩. ଭଟ = ସୈନ୍ୟ ।
୪. ସପରିକର-ପରିକର = ଧ୍ୱଜପତାକା ଆଦି, ତତ୍ ସହିତ ।

୧୪ ପ୍ରାପତ ହୋଇଲା ବ୍ୟସନ । ହେ ଆର୍ଯ୍ୟ ! କର ବିଲୋକନ ॥ ୪୨
ହେ ପ୍ରିୟ ! ତୁମ୍ଭର ଏ ରଥ । ହୋଇଲା ଆସି ଉପସ୍ଥିତ ॥ ୪୩
ଅଇଲେ ଆନ ଶସ୍ତ୍ରମାନ । ଆରୋହି କରି ନିଜ ଯାନ ॥ ୪୪
ଏ ବଳ ମାର, ନିଜ ଜନ । ବ୍ୟସନୁଁ କର ବିମୋଚନ ॥ ୪୫
ସାଧୁଙ୍କ ସୁଖକୁ କରଇ । ଏମନ୍ତ ଜନ୍ମ ଯେ ଅଟଇ ॥ ୪୬
ହେ ଈଶ ! ଆମ୍ଭ ଦୁହିଁଙ୍କର । ଏହି ନିମିତ୍ତେ ସେ ଆବର ॥ ୪୭
ତେଇଶି ଅକ୍ଷୌହିଣୀ ହୋଇ । ଯେ ସୈନ୍ୟ ବିଖ୍ୟାତ ଅଟଇ ॥ ୪୮
ଏମନ୍ତ ଯେଉଁ ଭୂମିଭାର । ତାକୁ ଉଶ୍ୱାସ ତୁମ୍ଭେ କର ॥ ୪୯
୧୫ ସେ ଯଦୁଶ୍ରେଷ୍ଠ ବେନି ଜଣ । ଏ ରୂପେ ବିଚାର କରିଣ ॥ ୫୦
କବଚେ ନିବଦ୍ଧ ହୋଇଣ । ରଥକୁ କରି ଆରୋହଣ ॥ ୫୧
ଯେ ଅଟେ ନିଜ ଶସ୍ତ୍ରମାନ । ତହିଁରେ ହୋଇଣ ସଂପନ୍ନ ॥ ୫୨
ଅଳ୍ପବଳରେ ଯୁତ ହେଲେ । ପୁରରୁ ଗମନ ସେ କଲେ ॥ ୫୩
୧୬ ଦାରୁକ ସାରଥି ଯାହାର । ସେ ହରି ହୋଇଣ ବାହାର ॥ ୫୪
ଶଙ୍ଖକୁ କଲେ ଶବ୍ଦବନ୍ତ । ସେ ହେତୁ ଆହେ ପରୀକ୍ଷିତ ॥ ୫୫
ଶତ୍ରୁସୈନ୍ୟର ସେ ଭୟରେ । କମ୍ପ ହୋଇଲା ହୃଦୟରେ ॥ ୫୬
୧୭ ରାମକୃଷ୍ଣଙ୍କୁ ଜରାସନ୍ଧ । ଦେଖିଣ ବୋଇଲା ହେ ମନ୍ଦ ॥ ୫୭
ପଳାଅ, ଗୁପ୍ତ ଅଟୁ ତୁହି । ତୋ ସଙ୍ଗେ ନ ଯୁଝିବି ମୁହିଁ ॥ ୫୮
{ ହେ କୃଷ୍ଣ ପୁରୁଷ-ଅଧମ । ତୁ ଯେ ବାଳକ ହେ ବନ୍ଧୁଘ୍ନ ॥ }
{ ଲଜ୍ଜାସ୍ୱକାଶୁଁ ସଙ୍ଗେ ତୋର । ଯୁଝିବା ଇଚ୍ଛା ନାହିଁ ମୋର ॥ }
୧୮ ହେ ରାମ ! ଯେବେ ଶ୍ରଦ୍ଧା ତୋର । ଯୁଝ ତୁ ତେବେ ହୋଇ ସ୍ଥିର ॥ ୫୯
ଶରମାନଙ୍କରେ ମୋହର । ଛିନ୍ନ ହୁଅନ୍ତେ ତୋ ଶରୀର ॥ ୬୦
ତା' ଛାଡ଼ି ଯାଅ ସ୍ୱର୍ଗଦେଶ । ଅଥବା ତୁ ମୋତେ ବିନାଶ ॥ ୬୧

ଶ୍ରୀଭଗବାନୁବାଚ

୧୯ କହନ୍ତି ପ୍ରଭୁ ଭଗବାନ । ଶୁଣ ଜରାସନ୍ଧ ରାଜନ ॥ ୬୨
ଶୂର ଅଟନ୍ତି ଯେଉଁ ଜନେ । କହି ନୁହନ୍ତି ଯେ ସେମାନେ ॥ ୬୩
ଯେ ଅଟେ ନିଜ ପଉରୁଷ । ନିଶ୍ଚେ ତା' କରନ୍ତି ପ୍ରକାଶ ॥ ୬୪
ମରଣ ଇଚ୍ଛା ଅଟେ ତୋର । ଆବର ହୋଇଛୁ ଆତୁର ॥ ୬୫
ଯେ ଅବା ତୋହର ବଚନ । ଆମ୍ଭେ ତା' ନ ଘେନିବୁଁ ମନ ॥ ୬୬

ଶ୍ରୀଶୁକ ଉବାଚ

୨୦ କହନ୍ତି ଶୁକ ମହାମତି । ଶୁଣ ହେ ପାଣ୍ଡୁପଣନାତି ॥ ୬୭
ଯେ ସୈନ୍ୟ ଯାନ ଧ୍ୱଜମାନ । ଯେ ଅଶ୍ୱ ସାରଥି ଏ ଆନ ॥ ୬୮
ଏମାନ ଅଟନ୍ତି[1] ଯାହାର । ସେ ଜରାରାକ୍ଷସୀକୁମର ॥ ୬୯

---

୧. ଅଟନ୍ତି = ଅଛନ୍ତି ।

| | | | | |
|---|---|---|---|---|
| | ମଧୁବଂଶରେ ଉତପନ୍ନ | । ଯେ ରାମ କୃଷ୍ଣ ବେନିଜନ | ॥ | ୭୦ |
| | ତାହାଙ୍କୁ ହୋଇ ଅନୁଗତ | । ଯେ ପୁଣ ଅଟେ ବଳବନ୍ତ | ॥ | ୭୧ |
| | ସେ ମହାସୈନ୍ୟ ସମୂହରେ | । ତାଙ୍କୁ ବେଢ଼ିଲା ସେ ସ୍ଥାନରେ | ॥ | ୭୨ |
| | ସୂର୍ଯ୍ୟ-ଅଗ୍ନିକି ଯେହ୍ନେ ବାତ | । ମେଘଧୂଳିରେ କରେ ବୃତ | ॥ | ୭୩ |
| ୨୧ | ସେ ପୁର ଅଟ୍ଟାଳୀମାନଙ୍କୁ | । ଜଗତୀ, ପୁରର ଦ୍ୱାରକୁ | ॥ | ୭୪ |
| | ନାରୀଏ କରି ଆରୋହଣ | । ସେ ରାମକୃଷ୍ଣଙ୍କର ପୁଣ | ॥ | ୭୫ |
| | ଗରୁଡ଼ ତାଳଧ୍ୱଜ ଦୁଇ | । ଯହିଁରେ ଅଛି ଚିହ୍ନ ହୋଇ | ॥ | ୭୬ |
| | ସେ ବେନି ରଥକୁ ଯୁଦ୍ଧରେ | । ଜାଣି ନ ପାରି ସେ କାଳରେ | ॥ | ୭୭ |
| | ଶୋକରେ ହୁଅନ୍ତେ ସଂଯୁତ | । ମୋହକୁ ଲଭିଲେ ତ୍ୱରିତ | ॥ | ୭୮ |
| ୨୨ | ସେ ଶତ୍ରୁସୈନ୍ୟ-ମେଘଙ୍କର | । ଯେ ଶରବୃଷ୍ଟି ବାରମ୍ବାର | ॥ | ୭୯ |
| | ତେଣେ ଲଭିଲେ ପୀଡ଼ାମାନ | । ଏରୂପେ ଦେଖି ନିଜ ସୈନ୍ୟ | ॥ | ୮୦ |
| | ଯେ ସୁରାସୁରରେ ବରିଷ୍ଠ | । ଅଟଇ ଶାର୍ଙ୍ଗଧନୁ ଶ୍ରେଷ୍ଠ | ॥ | ୮୧ |
| | ହରି ତାହାକୁ ଆମଞ୍ଚିଣ | । ଟଙ୍କାର କଲେ ଦେଇ ଗୁଣ | ॥ | ୮୨ |
| ୨୩ | ତୂଣୀରୁଁ ଘେନନ୍ତେ ଶରଙ୍କୁ | । ଏଥୁ ଅନ୍ତରେ ପୁଣ ତାଙ୍କୁ | ॥ | ୮୩ |
| | ଗୁଣରେ ସନ୍ଧାନ କରିଣ | । ଗୁଣକୁ ପୁଣ ଓଟାରିଣ | ॥ | ୮୪ |
| | ଯେ ଅତି ତୀକ୍ଷ୍ଣ ଶରଗଣ | । ତାହାଙ୍କୁ କରନ୍ତେ ମୋକ୍ଷଣ | ॥ | ୮୫ |
| | ଯେ ଦିବ୍ୟରଥ ହସ୍ତୀମାନ | । ଯେ ଅଶ୍ୱେ ପଦାତିଏ ଆନ | ॥ | ୮୬ |
| | ଏମାନ କରନ୍ତେ ସଂହାର | । ଜୃମ୍ଭିତ କଲେ ନିରନ୍ତର | ॥ | ୮୭ |
| | ଜ୍ୱଳନ୍ତାକାଷ୍ଠ ଭ୍ରମଣରେ | । ଦିଶଇ ଯେହ୍ନେ ଚକ୍ରାକାରେ | ॥ | ୮୮ |
| ୨୪ | ଭିନ୍ନ ହୁଅନ୍ତେ କୁମ୍ଭସ୍ଥଳେ | । ପଡ଼ିଲେ ହସ୍ତିମାନେ ତଳେ | ॥ | ୮୯ |
| | ଶରେ ଛିଡ଼ନ୍ତେ କନ୍ଧଦେଶ | । ପଡ଼ିଲେ ଅସଂଖ୍ୟକ ଅଶ୍ୱ | ॥ | ୯୦ |
| | ଯହିଁରେ ଅଶ୍ୱ-ଧ୍ୱଜ-ସୁତ | । ରଥୀଏ ହୋଇଛନ୍ତି ହତ | ॥ | ୯୧ |
| | ଏମନ୍ତ ଯେଉଁ ରଥମାନେ | । ଭାଜି ପଡ଼ିଲେ ସ୍ଥାନେ ସ୍ଥାନେ | ॥ | ୯୨ |
| | ଛିଡ଼ି ଯାଆନ୍ତେ ଭୁଜ-ଉରୁ | । [1]କନ୍ଧରମାନେ ଶରୀରରୁ | ॥ | ୯୩ |
| | ଯେବଣ [2]ପତ୍ତିଏ ଏମନ୍ତ | । ସେମାନେ ପଡ଼ିଲେ ବହୁତ | ॥ | ୯୪ |
| ୨୫ | ଯେ ପତ୍ତି-ହସ୍ତୀ-ବାଜୀମାନ | । ଏମାନେ ହୁଅନ୍ତେ ସଂଛିନ୍ନ | ॥ | ୯୫ |
| | ଏହାଙ୍କ ଅଙ୍ଗୁଁ ଜାତ ହୋଇ | । ଶତସଂଖ୍ୟକ ରକ୍ତନଈ | ॥ | ୯୬ |
| | ବହିଲେ, ଯହିଁ ଭୁଜମାନ | । ଦିଶିଲେ ସର୍ପଙ୍କ ସମାନ | ॥ | ୯୭ |
| | ଯହିଁରେ ପୁରୁଷଙ୍କ ଶିର | । ଦିଶିଲେ କଚ୍ଛପ-ଆକାର | ॥ | ୯୮ |
| | ଯହିଁରେ ମରନ୍ତେ ହସ୍ତିଏ | । ଦିଶିଲେ ବାଲିକୁଦପ୍ରାଏ | ॥ | ୯୯ |
| | ଯେ ଅଶ୍ୱେ କୁମ୍ଭୀରପରାଇ | । ତେଣେ ଯେ ଆକୁଳ ଅଟଇ | ॥ | ୧୦୦ |
| ୨୬ | କର-ଉରୁଏ ପୁଣ ଯହିଁ | । ଦିଶନ୍ତି ମତ୍ସ୍ୟଙ୍କ ପରାଇ | ॥ | ୧୦୧ |

୧. କନ୍ଧର = ଗ୍ରୀବା ।　　୨. ପତ୍ତିଏ = ପଦାତିକମାନେ ।

ଯହିଁ ମନୁଷ୍ୟକେଶମାନ । ଦିଶନ୍ତି ଶୈବାଳ ସମାନ ॥ ୧୦୨
ଧନୁଏ ତରଙ୍ଗ ପରାଇ । ପୁଣି ଯହିଁରେ ଛନ୍ତି ରହି ॥ ୧୦୩
ଆୟୁଧେ ଲତା[1] ପ୍ରାଏ ହୋଇ । ତେଣେ ଯେ ସଂକୁଳ ଅଟଇ ॥ ୧୦୪
ଯେ [2]ଚର୍ମେ ଆବର୍ତ୍ତ ପରାଇ । ତେଣେ ଯେ ଭୟକୁ କରଇ ॥ ୧୦୫
ଅତି ଉତ୍ତମ ମଣିଗଣ । ତେଣେ ଯେବଣ ଆଭରଣ ॥ ୧୦୬
ଏମାନେ ରହିଛନ୍ତି ଯହିଁ । ପାଷାଣକଣପ୍ରାଏ ହୋଇ ॥ ୧୦୭
୨୭ | ଭୟାଳୁ ଲୋକମାନଙ୍କର । ଯେ ଭୟ କରଇ ଆବର ॥ ୧୦୮
୨୮ | ମନସ୍ୱୀ ଜନଙ୍କ ହରଷ । ଯେ ପୁଣି କରଇ ପ୍ରକାଶ ॥ ୧୦୯
ରକ୍ତନଦୀଏ ଏପ୍ରକାରେ । ଯୁଦ୍ଧେ ହୋଇଲେ ପରସ୍ପରେ ॥ ୧୧୦
ଯା' ତେଜ ଅଟେ ଅପ୍ରମାଣ । ସେ ରାମ ମୁଷଳ ଘେନିଣ ॥ ୧୧୧
ଯେ ଦୁଷ୍ଟ ଗର୍ବୀ ରିପୁମାନ । ତାହାଙ୍କୁ କରନ୍ତେ ନିଧନ ॥ ୧୧୨
ଦୁର୍ଗମ ଭୟଙ୍କର ଯେହି । ଅଟଇ ସମୁଦ୍ର ପରାଇ ॥ ୧୧୩
ଦୁସ୍ତର ଅଟଇ ଯା' ପାର । ଯା' ପାଳିଅଛି ମଗଧେଶ୍ୱର[3] ॥ ୧୧୪
ଏମନ୍ତ ଅଟଇ ଯେ ସୈନ୍ୟ । ସେ କ୍ଷୟ ହେଲା ହେ ରାଜନ ॥ ୧୧୫
ଯେ ବସୁଦେବ-ବେନିସୁତ । ଜଗତ-ଈଶ୍ୱର ସାକ୍ଷାତ[4] ॥ ୧୧୬
କେବଳ ତାଙ୍କ କ୍ରୀଡ଼ା ଏହି । ଏ ପୁଣି ପରାକ୍ରମ ନୋହି ॥ ୧୧୭
୨୯ ଅନନ୍ତ ଗୁଣ ଅଟେ ଯାର । ଯେ ପୁଣି ତିନି ଭୁବନର ॥ ୧୧୮
ସ୍ଥିତି-ଉତ୍ପତ୍ତି-ସଂହାରରେ । ଚେଷ୍ଟା କରଇ ସ୍ୱଲୀଳାରେ ॥ ୧୧୯
ଶତ୍ରୁପକ୍ଷର ନାଶ ଯେହି । ସେ ତାର ବିଚିତ୍ର ନୁହଇ ॥ ୧୨୦
ମନୁଷ୍ୟଙ୍କର ପ୍ରାଏ ପୁଣ । ଚେଷ୍ଟା ଯେ କଲେ ଆଚରଣ ॥ ୧୨୧
ତଥାପି ସେ କୃଷ୍ଣଚରିତ । ଏ ରୂପେ କଲାଇଁ ବର୍ଣ୍ଣିତ ॥ ୧୨୨
୩୦ ଅତ୍ୟନ୍ତ ବଳ ଅଟେ ଯାର । ବିରଥ ହୋଇଛି ଆବର ॥ ୧୨୩
ହତ ହୋଇଲା ଯାର ସୈନ୍ୟ । କେବଳ ରହିଛି ଜୀବନ ॥ ୧୨୪
ସେ ଜରାସନ୍ଧକୁ ସେକାଳେ । ରାମ ଧଇଲେ ଯାଇଁ ବଳେ ॥ ୧୨୫
ସିଂହକୁ ଯେସନ ପ୍ରକାରେ । ସିଂହ ଧରଇ ସ୍ୱ-ବଳରେ ॥ ୧୨୬
୩୧ ବାରୁଣ-ମାନୁଷ ପାଶରେ । ସେ ମହାଶତ୍ରୁ ସେ କାଳରେ ॥ ୧୨୭
ବନ୍ଧ ହୁଅନ୍ତେ ତାକୁ ପୁଣ । ଗୋବିନ୍ଦ କଲେ ନିବାରଣ ॥ ୧୨୮
ତା'ପରେ[5] ସେ ଜରାସନ୍ଧରେ । କାର୍ଯ୍ୟକୁ କରିବା ଇଚ୍ଛାରେ ॥ ୧୨୯
୩୨ ବୀରମାନଙ୍କର ସମ୍ମତ । ଅଟଇ ଯଉଁ ଜରାସୁତ ॥ ୧୩୦
ଯେ ରାମକୃଷ୍ଣ ବେନିଭ୍ରାତ । ଅଟନ୍ତି ଲୋକଙ୍କର ନାଥ ॥ ୧୩୧

୧. ଗୁଳ୍ମ । ୨. ଚର୍ମେ । ୩. ମଗଧ ଦେଶର ରାଜା । ୪. ସେ ଖ୍ୟାତ । ୫. ଉପରେ ।

| | | | | |
|---|---|---|---|---|
| | ତେଣେ ସେ ହୁଅନ୍ତେ ମୋକ୍ଷଣ | । ତତ୍‌କାଳ ଲଜ୍ଜିତ ହୋଇଣ | ।। | ୧୩୨ |
| | ତପସ୍ୟା କରିବା ନିମିତ୍ତ | । ସଂକଳ୍ପ କଲା ସେ ତୁରିତ | ।। | ୧୩୩ |
| | ମାର୍ଗରେ ରାଜାମାନେ ପୁଣ | । ତାହାକୁ କଲେ ନିବାରଣ | ।। | ୧୩୪ |
| ୩୩ | ପବିତ୍ର ଅର୍ଥପଦେ ଯହିଁ | । ଯେ ପୁଣ ଲୌକିକ ଅଟଇ | ।। | ୧୩୫ |
| | ଏମନ୍ତ ନୀତିବଚନରେ | । ନୃପେ କହିଲେ ଏ ରୂପରେ | ।। | ୧୩୬ |
| | ଅଳ୍ପ ଅଟନ୍ତି ଏ ଯଦୁଏ | । ଏଣେ ତୋ ପରାଭବ ନୋହେ | ।। | ୧୩୭ |
| | ପାଇଲୁ ଏ ଯଉଁ ବନ୍ଧନ | । ଏ ତୋର ପ୍ରାକ୍ତନ କରମ | ।। | ୧୩୮ |
| ୩୪ | ଯେତେକ ଥିଲେ ସୈନ୍ୟମାନ | । ସମସ୍ତେ ହୁଅନ୍ତେ ନିଧନ | ।। | ୧୩୯ |
| | ଯେ ଜରାସନ୍ଧ ନୃପ ପୁଣ | । ତାକୁ ଛାଡ଼ନ୍ତେ ଭଗବାନ | ।। | ୧୪୦ |
| | ମଗଧଦେଶକୁ ଗମନ | । କଲା ସେ ଦୁର୍ମନା ହୋଇଣ | ।। | ୧୪୧ |
| ୩୫ | କ୍ଷତ ନୋହିଲା ବଳ ଯାର | । ତରିଲେ ଯେ ଶତ୍ରୁସାଗର | ।। | ୧୪୨ |
| | ନାନାପ୍ରକାର ପୁଷ୍ପମାନ | । ବୃଷ୍ଟି କରନ୍ତେ ଦେବଗଣ | ।। | ୧୪୩ |
| | ଗମନ କଲେ ସେ ମୁକୁନ୍ଦ | । ସେଠାରୁ ହୋଇଣ ଆନନ୍ଦ | ।। | ୧୪୪ |
| ୩୬ | ଗତ ହୋଇଲା ଜ୍ୱର ଯାର | । ମୁଦିତ ଆତ୍ମା ଯାହାଙ୍କର | ।। | ୧୪୫ |
| | ଏମନ୍ତ ଯେ ମଥୁରାନରେ | । ସଂଗତ ହୋଇଣ ତହିଁରେ | ।। | ୧୪୬ |
| | ସୂତ-ମାଗଧ-ବନ୍ଦିଜନ | । ବିଜୟ କରନ୍ତେ ଗାୟନ | ।। | ୧୪୭ |
| ୩୭ | ସେ ପ୍ରଭୁ ନିଜ ପୁରେ ପୁଣ | । ପ୍ରବେଶ ହୁଅନ୍ତେ ଯାଇଣ | ।। | ୧୪୮ |
| | ଯେ ଶଙ୍ଖଦୁନ୍ଦୁଭି ଏ ଆନ | । ଯେ ଅବା ଭେରୀତୂରୀମାନ | ।। | ୧୪୯ |
| | ବୀଣା ମର୍ଦ୍ଦଳ ବେଣୁମାନ | । ବାଜିଲେ ଅସଂଖ୍ୟ ହୋଇଣ | ।। | ୧୫୦ |
| ୩୮ | ଯେବଣ ପୁରେ ମାର୍ଗମାନ | । ହୋଇଣ ଅଛନ୍ତି ସେଚନ | ।। | ୧୫୧ |
| | ଯହିଁରେ ହୃଷ୍ଟ ସର୍ବନରେ | । ଯେ ଅଳଂକୃତ ପତାକାରେ | ।। | ୧୫୨ |
| | ବେଦଧ୍ୱନିରେ ନିନାଦିତ | । ଯେ ହୋଇଅଛି ଅବିରତ | ।। | ୧୫୩ |
| | କୌତୁକେଂ[୧] ସବୁ ଦିଗେ ଯହିଁ | । ତୋରଣ ଅଛି ବନ୍ଧା ହୋଇ | ।। | ୧୫୪ |
| ୩୯ | ମାଲ୍ୟ ଅକ୍ଷତ ଦଧିମାନ | । ଯେ ବା ପଲ୍ଲବମାନେ ଆନ | ।। | ୧୫୫ |
| | ଏମାନଙ୍କରେ ନାରୀଜନ | । ତାହାଙ୍କୁ କରନ୍ତେ ବିକୀର୍ଣ୍ଣ | ।। | ୧୫୬ |
| | ପ୍ରୀତିରେ ଅଟେ ଉଚ୍ଛ୍ୱସିତ[୨] | । ଯେବଣ ନୟନେ ଏମନ୍ତ | ।। | ୧୫୭ |
| | ତେଣେ ସ୍ନେହରେ ନାରୀଗଣ | । ପୁଣି କରନ୍ତେ ବିଲୋକନ | ।। | ୧୫୮ |
| | ଏମନ୍ତ ରୂପେ ଭଗବାନ | । ପୁରରେ ମିଳିଲେ ଯାଇଣ | ।। | ୧୫୯ |
| ୪୦ | ଯୁଦ୍ଧଭୂମିରେ ଅସଂଖ୍ୟାତ | । ହୋଇଣ ଥିଲା ଯଉଁ ବିତ୍ତ | ।। | ୧୬୦ |
| | ଯେ ବୀରମାନଙ୍କ ଭୂଷଣ | । ତା' ସର୍ବ ଆଣି ଭଗବାନ | ।। | ୧୬୧ |
| | ଯେ ଯଦୁରାଜା ଉଗ୍ରସେନ | । ତାହାଙ୍କୁ କଲେ ନିବେଦନ | ।। | ୧୬୨ |
| ୪୧ | ଯା' ବଳ ଅକ୍ଷୌହିଣୀମାନ | । ସେ ମଗଧଦେଶର ରାଜନ | ।। | ୧୬୩ |

୧. ଉତ୍ସବେ ।　　୨. ଉଦ୍‌କଳିତ ।

| | | | | |
|---|---|---|---|---|
| | ତେତେକ ପରାଜୟମାନ | ଡାହାର ହୁଅନ୍ତେ ଉତ୍ପନ୍ନ | ॥ | ୧୬୪ |
| | କୃଷ୍ଣରେ ଅଟନ୍ତି ପାଳିତ | ଯେ ଯଦୁମାନେ ଅବିରତ[୧] | ॥ | ୧୬୫ |
| | ଏରୂପେ ସଙ୍ଗେ ତାହାଙ୍କର | ଯୁଝିଲା ସପ୍ତଦଶ ବାର | ॥ | ୧୬୬ |
| ୪୨ | ଯାଦବେ ତେଜରେ କୃଷ୍ଣର | ସମସ୍ତ ବଳକୁ ତାହାର | ॥ | ୧୬୭ |
| | କ୍ଷୟ କରନ୍ତେ ହେ ରାଜନ | ହତ ହୁଅନ୍ତେ ନିଜ ସୈନ୍ୟ | ॥ | ୧୬୮ |
| | ଶତ୍ରୁଏ ଛାଡ଼ନ୍ତେ ଗମନ | କଲା ସେ ମଗଧରାଜନ | ॥ | ୧୬୯ |
| ୪୩ | ଯେ ଅଷ୍ଟାଦଶ ଥର ରଣ | ସେ ଆସି ହୁଅନ୍ତେ ଉତ୍ପନ୍ନ | ॥ | ୧୭୦ |
| | ତହିଁ ମଧ୍ୟରେ ଅକସ୍ମାତ | [୨]ନାରଦ କରନ୍ତେ ପ୍ରେଷିତ | ॥ | ୧୭୧ |
| | କାଳଯବନ ନାମେ ଦୈତ୍ୟ | ଆସି ହୋଇଲା ଉପଗତ | ॥ | ୧୭୨ |
| ୪୪ | ନୃଲୋକେ ପ୍ରତିଦ୍ୱନ୍ଦ୍ୱୀ କେହି[୩] | ସେ କାଳଯବନର ନାହିଁ | ॥ | ୧୭୩ |
| | ନିଜ ସମାନ କରି ପୁଣ | ଯଦୁଙ୍କୁ ଶୁଣି ସେ ଯବନ | ॥ | ୧୭୪ |
| | ଘେନିଣ ତ୍ରିକୋଟି ମ୍ଳେଚ୍ଛଙ୍କୁ | ଆସି ବେଢ଼ିଲା ମଥୁରାକୁ | ॥ | ୧୭୫ |
| ୪୫ | ଯାହା ସହାୟ ସଂକର୍ଷଣ | ସେ କୃଷ୍ଣ ଏମନ୍ତରୂପେଣ | ॥ | ୧୭୬ |
| | କାଳଯବନକୁ ସେଠାରେ | ଦେଖିଣ ଚିନ୍ତିଲେ ମନରେ | ॥ | ୧୭୭ |
| | ଏ ମଗଧନାଥ ମ୍ଳେଚ୍ଛପତି | ଏ ବେନିଜଣଠାରୁ ଅତି | ॥ | ୧୭୮ |
| | ଯାଦବମାନଙ୍କର ଦୁଃଖ | ହେଲା ଏ ଅତିକଷ୍ଟ ଦେଖ | ॥ | ୧୭୯ |
| ୪୬ | ଅପରିମିତ ବଳ ଯାର | ଏ କାଳଯବନ-ଈଶ୍ୱର | ॥ | ୧୮୦ |
| | ଆମ୍ଭଙ୍କୁ ସମଗ୍ର ହୋଇଣ | ଆଜ ଏ କଲା ନିରୁନ୍ଧନ | ॥ | ୧୮୧ |
| | ଆଜି ବା କାଲି ଅବା ପୁଣ | ନୋହିଲେ ଅବା ପରଦିନ | ॥ | ୧୮୨ |
| | ନିଶ୍ଚୟେ ମଗଧଦେଶନାଥ | ଆସି ହୋଇବ ଉପଗତ | ॥ | ୧୮୩ |
| ୪୭ | ତା' ସଙ୍ଗେ ଆମ୍ଭ ବେନିଙ୍କର | ଯୁଦ୍ଧ ହୁଅନ୍ତେ ପରସ୍ପର | ॥ | ୧୮୪ |
| | ସେ ମହାବଳୀ ଜରାସୁତ | ଯେବେ ହୋଇବ ଉପଗତ | ॥ | ୧୮୫ |

---

୧. ଅପ୍ରମିତ।

୨. ଏ ପ୍ରସଙ୍ଗରେ ବିଷ୍ଣୁପୁରାଣର କଥା ପ୍ରସିଦ୍ଧ । ଥରେ ମହର୍ଷି ଗାର୍ଗ୍ୟଙ୍କୁ ତାଙ୍କ ଶଳା ପରିହାସରେ ''ଷଣ୍ଢ'' ବୋଲି କହିଥିଲେ । ତାହା ଶୁଣି ଯଦୁମାନେ ଖୁବ୍ ଜୋରରେ ହସିଲେ । ସେମାନେ ହସିବାରୁ ଗାର୍ଗ୍ୟ ଖୁବ୍ ରାଗିଗଲେ ଏବଂ ଦାକ୍ଷିଣାତ୍ୟକୁ ଯାଇ ଲୌହଚୂର୍ଣ୍ଣଭକ୍ଷଣପୂର୍ବକ ଯାଦବଭୟଙ୍କର ଏକ ପୁତ୍ରପ୍ରାପ୍ତିର ସଂକଳ୍ପ କରି ମହାଦେବଙ୍କୁ ଆରାଧନା କଲେ । ବାରବର୍ଷପରେ ମହାଦେବଙ୍କ ଠାରୁ ଅଭୀଷ୍ଟ ବର ଲାଭକରି ଆନନ୍ଦର ସହିତ ନିଜ ଘରକୁ ଫେରିବା ବାଟରେ ଏକ ଅପୁତ୍ରକ ଯବନେଶ୍ୱର ତାଙ୍କୁ ପୁତ୍ରପ୍ରାପ୍ତିନିମିତ୍ତ ବରଣ କଲା । ଗାର୍ଗ୍ୟ ସେହି ଯବନେଶ୍ୱରର ଭାର୍ଯ୍ୟାଠାରେ କାଳଯବନ ନାମକ ପୁତ୍ର ଉତ୍ପାଦନ କଲେ । ସେହି କାଳଯବନ ମହାବଳରେ ଉନ୍ମତ୍ତ ହୋଇ ନାରଦଙ୍କୁ ଯାଇ ପଚାରିଲା - ''ଆପଣ କହିପାରିବେ କି ବର୍ତ୍ତମାନ ପୃଥିବୀରେ କେଉଁମାନେ ବଳଶାଳୀ ରାଜା ?'' ତାହା ଶୁଣି ନାରଦ ତା ଆଗରେ ଯଦୁମାନଙ୍କର ବଳ ଓ ବୀରତ୍ୱ ବିଷୟ ବଖାଣିଥିଲେ ।

୩. ନୃଲୋକେ ପ୍ରତିଦ୍ୱନ୍ଦ୍ୱୀ ହୋଇ । ଯାଦବଙ୍କର କେହି ନାହିଁ ॥

| | | | | |
|---|---|---|---|---|
| | ବନ୍ଧୁଙ୍କୁ କରିବ ନିଧନ | । ଅଥବା ସ୍ୱପୁରକୁ ନେମ | ।। | ୧୮୬ |
| ୪୮ | ମନୁଷ୍ୟମାନଙ୍କ ସଙ୍ଗର | । ଯହିଁରେ ନୋହିବ ପ୍ରଚାର | ।। | ୧୮୭ |
| | ସେ ଦୁର୍ଗ ଏ ସକାଶୁଁ ପୁଣ | । ଆଜ ମୁଁ କରିବି ବିଧାନ | ।। | ୧୮୮ |
| | ତହିଁ ନିବେଶି ଜ୍ଞାତି ଜନ | । ଯବନ କରିବି ନିଧନ | ।। | ୧୮୯ |
| ୪୯ | ଏମନ୍ତ ରୂପେ ଭଗବାନ | । ସେକାଳେ ବିଚାର କରିଣ | ।। | ୧୯୦ |
| | ଦ୍ୱାଦଶଯୋଜନବିସ୍ତାରେ | । ଦୁର୍ଗେକ ସମୁଦ୍ରମଧ୍ୟରେ | ।। | ୧୯୧ |
| | ସର୍ବ ଆଶ୍ଚର୍ଯ୍ୟମୟ କରି | । ସେ ଦୁର୍ଗମଧ୍ୟେ କଲେ ପୁରୀ | ।। | ୧୯୨ |
| ୫୦ | ବିଶ୍ୱକର୍ମାସଂବନ୍ଧି ପୁଣ | । ଯେ ଶିଳ୍ପଶାସ୍ତ୍ରର ନୈପୁଣ | ।। | ୧୯୩ |
| ୫୧ | ଯଉଁ ପୁରରେ ହେ ରାଜନ | । ଦୃଶ୍ୟ ହୋଇଛି ଏ ବିଜ୍ଞାନ | ।। | ୧୯୪ |
| | ଯେ ରାଜପନ୍ଥାଏ ଅଗ୍ରରେ | । ଯେ ଉପମାର୍ଗେ ପଶ୍ଚିମରେ | ।। | ୧୯୫ |
| | ବେନି ପାରୁଶରେ ଅଙ୍ଗଣ | । ତେଣେ ଯେ ହୋଇଛି ନିର୍ମାଣ | ।। | ୧୯୬ |
| | ଗୃହାଦିନିର୍ମାଣ ଯେ ସ୍ଥାନ | । ତାକୁ ନ କରି ଅତିକ୍ରମ | ।। | ୧୯୭ |
| | ଦେବଙ୍କ ଦ୍ରୁମଲତାମାନ | । ଯହିଁ ଅଟନ୍ତି ବିଦ୍ୟମାନ | ।। | ୧୯୮ |
| | ଏମନ୍ତ ଯେ ଉଦ୍ୟାନମାନ | । ଯେ ବା ବିଚିତ୍ର ଉପବନ | ।। | ୧୯୯ |
| | ଏମାନଙ୍କରେ ଯଉଁ ପୁର | । ସଂଯୁତ ହୋଇଛି ଆବର | ।। | ୨୦୦ |
| | ଯେ ହେମମୟ ଶୃଙ୍ଗମାନ | । ତେଣେ ଯେ ଛୁଇଁଛି ଗଗନ | ।। | ୨୦୧ |
| | ସ୍ଫଟିକସ୍ଥଳୀମାନେ ଯହିଁ | । ଏମନ୍ତ ପୁରଦ୍ୱାରେ ଯେହି | ।। | ୨୦୨ |
| | ଏମାନଙ୍କରେ ଯଉଁ ପୁର | । ଶୋଭିତ ଅଟେ ନିରନ୍ତର | ।। | ୨୦୩ |
| ୫୨ | ରଜତ ଆରକୂଟମାନ[୧] | । ତେଣେ ଯେ ହୋଇଛି ନିର୍ମାଣ | ।। | ୨୦୪ |
| | ସୁବର୍ଣ୍ଣ କୁମ୍ଭରେ ସଂତତ | । ଯେ ହୋଇଛନ୍ତି ଅଳଂକୃତ | ।। | ୨୦୫ |
| | ଏମନ୍ତ ଶାଳାମାନଙ୍କରେ | । ଯେ ଯୁକ୍ତ ଅଟେ ନିରନ୍ତରେ | ।। | ୨୦୬ |
| | ମହାମର୍କତ ସ୍ଥଳୀମାନ | । ଯେ ରତ୍ନଶୃଙ୍ଗମାନେ ଆନ | ।। | ୨୦୭ |
| | ଏମାନ ଅଛନ୍ତି ଯହିଁରେ | । ଏମନ୍ତ ଗୃହମାନଙ୍କରେ | ।। | ୨୦୮ |
| ୫୩ | ଚନ୍ଦ୍ରଶାଳାଦି ରୂପେ ପୁଣ | । ଯେ ଦେବତାଙ୍କ ଗୃହମାନ | ।। | ୨୦୯ |
| | ତେଣେ ଯେ ଅଟଇ ନିର୍ମିତ | । ଯେ ଚାରିବର୍ଣ୍ଣ ଲୋକେ ବ୍ୟାପ୍ତ | ।। | ୨୧୦ |
| | ଯେ ଯଦୁରାଜାଙ୍କ ସଦନ | । ତେଣେ ଯେ ଅଟଇ ଶୋଭନ | ।। | ୨୧୧ |
| ୫୪ | ମହେନ୍ଦ୍ର ଯେବଣ ପୁରକୁ | । ସୁଧର୍ମା ପାରିଜାତକକୁ | ।। | ୨୧୨ |
| | ସେ ଶ୍ରୀହରିର ନିମିତ୍ତରେ | । ପ୍ରେଷିତ କଲା ସେ କାଳରେ | ।। | ୨୧୩ |
| | ଯେବଣ ପୁରେ ଜନମାନେ | । ରହିଥାଆନ୍ତେ ପ୍ରତିଦିନେ | ।। | ୨୧୪ |
| | ଯେ କ୍ଷୁଧା ପିପାସାଦିମାନ | । ତାଙ୍କୁ ନ ଲାଗନ୍ତି ଏ ପୁଣ | ।। | ୨୧୫ |
| ୫୫ | ଶ୍ୟାମ ଯାଙ୍କର ଏକ କର୍ଣ୍ଣ | । ଯେହୁ ଅଟନ୍ତି ଶୁକ୍ଳବର୍ଣ୍ଣ | ।। | ୨୧୬ |

୧. ପିତ୍ତଳ ।

| | | | |
|---|---|---|---|
| | ମନର ପ୍ରାୟ ଯାହାଙ୍କର | ଗମନ ଅଟଇ ସତ୍ୱର | ।। ୨୧୭ |
| | ଏମନ୍ତ ତୁରଗମାନଙ୍କୁ | ବରୁଣ ଦେଲା ସେ ପୁରକୁ | ।। ୨୧୮ |
| | ଅଷ୍ଟନିଧିଙ୍କିଂ ନିଧିପତି | ତହିଁକି ପେଷିଲା ଝଟିତି | ।। ୨୧୯ |
| | ଯେ ଲୋକପାଳମାନେ ଛନ୍ତି | ସେ ଦେଲେ ଆପଣା ବିଭୂତି | ।। ୨୨୦ |
| ୫୬ | ସ୍ୱସିଦ୍ଧିଅର୍ଥେ ଭଗବାନ | ହେ ନୃପ ! ଯେବଣ ଯେବଣ | ।। ୨୨୧ |
| | ଆଧିପତ୍ୟକୁ ଥିଲେ ଦେଇ | ଅନ୍ୟ ସିଦ୍ଧାଦିମାନେ ତହିଁ | ।। ୨୨୨ |
| | ହରି ହୁଅନ୍ତେ ଭୂମିଗତ | ତା' ସର୍ବ କଲେ ସମର୍ପିତ | ।। ୨୨୩ |
| ୫୭ | ସେ ହରି ସମସ୍ତ ଲୋକଙ୍କୁ | ଯୋଗପ୍ରଭାବେ ସେ ପୁରକୁ | ।। ୨୨୪ |
| | ନେଇଣ ରାମସଙ୍ଗତେଣ | ଉତ୍ତମ ବିଚାର କରିଣ | ।। ୨୨୫ |
| | ମଥୁରାପୁରକୁ ସେ ପୁଣ | ସେଠାରୁ ଗମନ କରିଣ | ।। ୨୨୬ |
| | ଧରିଅଛନ୍ତି ପଦ୍ମମାଳ | ଶସ୍ତ୍ରେ ନାହାନ୍ତି କରତଳ | ।। ୨୨୭ |
| | ସେ ପୁରଦ୍ୱାରୁଁ ଏ ରୂପରେ | ଗମନ କଲେ ସେ କାଳରେ | ।। ୨୨୮ |
| | ମଥୁରାବାସୀ ମନୁଷ୍ୟଙ୍କୁ | ଯେ ନେଲେ ଦ୍ୱାରକାପୁରକୁ | ।। ୨୨୯ |
| | ସେ କୃଷ୍ଣପାଦପଦ୍ମ ଚିନ୍ତି | ହରଷ ଦୀନବନ୍ଧୁ ମତି | ।। ୨୩୦ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଦ୍ୱାରକାଦୁର୍ଗନିର୍ମାଣଂ
ନାମ ପଞ୍ଚାଶୋଽଧ୍ୟାୟଃ ।।

## ଏକପଞ୍ଚାଶ ଅଧ୍ୟାୟ

ଏକପଞ୍ଚାଶତ୍ତମେଽହନ୍ ମୁଚୁକୁନ୍ଦଦୃଶା ହରିଃ ।
ଯବନଂ ମୁଚୁକୁନ୍ଦେନ ସ୍ତୁତଃ ସନ୍ନନ୍ୱକମ୍ପତ ।। ୧
ଯବନେନ୍ଦ୍ରସୁତାଦ୍ କାଳଯବନାଦ୍ ଯଦୁଭୀଷଣାଦ୍ ।
ହରିର୍ହରଗିରଃ ସ୍ୱୈରଂ ପାଳନାୟାପଳାୟତ ।। ୨

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | କହନ୍ତି ଶୁକ ମୁନିବର | ହେ ନୃପ ଏଥୁ ଅନନ୍ତର | ।। ୧ |
| ୨ | ଯେହ୍ନେ ଉଦିତ ନିଶାକର | ତେସନେ ହୁଅନ୍ତେ ବାହାର | ।। ୨ |
| ୩ | ଅତିଶୟରେ ମନୋହର | ଅଟଇ ଦରଶନ ଯାର | ।। ୩ |
| | ପୀତକୌଶେୟ ଯା ବସନ | ଶ୍ୟାମ ଅଟଇ ଯା ବରଣ | ।। ୪ |
| | ଶ୍ରୀବତ୍ସ ବକ୍ଷସ୍ଥଳେ ଯାର | ଯେ ଦୀପ୍ତ ଅଟଇ ଆବର | ।। ୫ |

୧. ପଦ୍ମଶ୍ଚୈବ ମହାପଦ୍ମୋ ମତ୍ସ୍ୟକୂର୍ମୌ ତଥୈାଦକଃ ।
ନୀଳୋ ମୁକୁନ୍ଦଃ ଶଂଖଶ୍ଚ ନିଧୟୋଽଷ୍ଟୌ ପ୍ରକୀର୍ତ୍ତିତାଃ ।।

ସେ କଉସ୍ତୁଭେ ଯାହାଙ୍କର । ଶୋଭିତ ହୋଇଛି କନ୍ଧର ।। ୬
ପୃଥୁଳ ଦୀର୍ଘ ହୋଇ କରି । ଅଟଇ ଯାର ଭୁଜ ଚାରି ।। ୭
ନବୀନ ନଳିନ ପରାଏ । ଅରୁଣ ଯାର ନେତ୍ରଦ୍ୱୟେ ।। ୮
ଯେ ନିତ୍ୟେ ଅଟେ ପ୍ରମୁଦିତ । ଶ୍ରୀମନ୍ତ କପୋଳେ ସଂଯୁତ ।। ୯
ଯେ ଶୁଚିସ୍ମିତବନ୍ତ ଯହିଁ । ମକରକୁଣ୍ଡଳ ସ୍ଫୁରଇ ।। ୧୦
ଏମନ୍ତ ଯେ ମୁଖନଳିନ । ତାକୁ ଯେ ଧରିଛନ୍ତି ପୁଣ ।। ୧୧
ଏ ରୂପେ ହରିଙ୍କି ଦେଖିଣ । ଚିନ୍ତଇ ସେ କାଳଯବନ ।। ୧୨
୪ | ଶ୍ରୀବକ୍ଷେ ହୋଇଛି ଚିହ୍ନିତ । ଏ ଚତୁର୍ଭୁଜରେ ସଂଯୁତ ।। ୧୩
୫ | ଏ ପଦ୍ମନେତ୍ର ହିଁ ସୁନ୍ଦର । ବନମାଳା ଅଛି ଏହାର ।। ୧୪
ନାରଦ କଲେ ଯାହା ଉକ୍ତ । ସେ ଚିହ୍ନମାନଙ୍କେ ନିୟତ ।। ୧୫
ଏହି ପୁରୁଷ ବାସୁଦେବ । ଆନ ଏ ରୂପରେ ନୋହିବ ।। ୧୬
ଆୟୁଧ ନ ଧରିବି ମୁହିଁ । ଆୟୁଧ ଧରି ନାହିଁ ଏହି ।। ୧୭
ବେନି ଚରଣରେ ଚଳିଣ । ଏହା ସଙ୍ଗେ କରିବି ରଣ ।। ୧୮
୬ ଏରୂପେ ସେ କାଳଯବନ । ସେ କାଳେ ନିଶ୍ଚୟ କରିଣ ।। ୧୯
ଯେ ଯୋଗିଜନମାନଙ୍କର । ଦୁରାପ ଅଟନ୍ତି ଈଶ୍ୱର ।। ୨୦
ସେ ହରି ପରାଙ୍‌ମୁଖ ହୋଇ । ପଳାନ୍ତେ ଅତିତ୍ୱରା ହୋଇ ।। ୨୧
ତାହାଙ୍କୁ ଧରିବା ଇଚ୍ଛାରେ । ଧାଇଁଲା ତାହାଙ୍କ ପଛରେ ।। ୨୨
୭ ପଦପଦକେ ନରହରି । ହସ୍ତ ପାଇଲା ପ୍ରାୟ କରି ।। ୨୩
ଦେଖାନ୍ତେ ଆପଣାକୁ ପୁଣ । ଗିରିକନ୍ଦରାକୁ ବୋଲିଣ ।। ୨୪
ଯବନମାନଙ୍କ ରାଜାକୁ । ନେଲେ ସେ ଅତ୍ୟନ୍ତ ଦୂରକୁ ।। ୨୫
୮ ତୁ ଅଟୁ ଯଦୁକୁଳେ ଜାତ । ପଳାଇବାର ଅନୁଚିତ ।। ୨୬
ତୋହର ଅଟଇ, ଏମନ୍ତେ । ବହୁତ ଆକ୍ଷେପ କରନ୍ତେ ।। ୨୭
ଯାହାର ଅମଙ୍ଗଳମାନ । ହତ ନୋହିଛି ସେ ଯବନ ।। ୨୮
ତାଙ୍କୁ ହେଲେହେଁ ଅନୁଗତ । ନ ପାଇଲା ସେ କଦାଚିତ ।। ୨୯
୯ ଏମନ୍ତରୂପେ ଭଗବାନ । ଆକ୍ଷେପ ଲଭିଲେହେଁ ପୁଣ ।। ୩୦
ପର୍ବତକନ୍ଦରାରେ ଯାଇଁ । ପ୍ରବେଶ ହେଲେ ତ୍ୱରା ହୋଇ ।। ୩୧
ସେ କାଳଯବନ ହିଁ ପୁଣ । ସେଠାରେ ପ୍ରବେଶ ହୋଇଣ ।। ୩୨
ଆନ ମନୁଷ୍ୟ ଜଣେ କେହି । ଶୋଇଛି ଦେଖିଲା ସେଠାଇଁ ।। ୩୩
୧୦ ଦୂରକୁ ମୋତେ ଆଣି ଏହି । ଶୋଇଛି ସାଧୁଙ୍କ ପରାଇ ।। ୩୪
ନିଶ୍ଚୟେ ନିଦ୍ରା ଅଛି ଯାଇ । ସେ ମୂଢ଼ ଏ ରୂପରେ ହୋଇ ।। ୩୫
ଅଚ୍ୟୁତପ୍ରାୟେ ମଣି ତାଙ୍କୁ । ପାଦରେ କଲା ପ୍ରହାରକୁ ।। ୩୬
୧୧ ଯେ ଚିରକାଳୁଁ ଥିଲେ ଶୋଇ । ସେ ଉଠି କରି ନେତ୍ର ଦୁଇ ।। ୩୭
ଅଳପ କରି ଉନ୍ମୀଳନ । ଦିଗମାନଙ୍କୁ ଚାହାନ୍ତେଣ ।। ୩୮

| | | | | | |
|---|---|---|---|---|---|
| | ପାରୁଶେ ଥିଲା ଯେ ଯବନ | । | ତାହାକୁ କଲେ ବିଲୋକନ | ।। | ୩୯ |
| ୧୨ | କ୍ରୁଦ୍ଧ ହୁଅନ୍ତେ ସେ ତାଙ୍କର | । | ଦୃଷ୍ଟିପତନରେ ଅସୁର | ।। | ୪୦ |
| | ତତ୍‌କାଳ ଆହେ ପରୀକ୍ଷିତ | । | ଯେ ଅଗ୍ନି ଦେହୁଁ ହେଲା ଜାତ | ।। | ୪୧ |
| | ଦଗଧ ହୁଅନ୍ତେ ସେ ତେଣେ | । | ଭସ୍ମ ହୋଇଲା ତତକ୍ଷଣେ | ।। | ୪୨ |

ଶ୍ରୀପରୀକ୍ଷିତ୍ ଉବାଚ

| | | | | | |
|---|---|---|---|---|---|
| ୧୩ | ଏକଥା ଶୁଣି ପରୀକ୍ଷିତ | । | ଶୁକଙ୍କୁ ପୁଛିଲେ ଏମନ୍ତ | ।। | ୪୩ |
| | କାଲଯବନକୁ ବିନାଶ | । | ଯେ କଲେ ସେ କଉଁ ପୁରୁଷ | ।। | ୪୪ |
| | ସେ କାହା ସୁତ ହେ [୧]ବ୍ରହ୍ମିଷ୍ଠ | । | କାହା ବଂଶରେ ଅବା ଜାତ | ।। | ୪୫ |
| | କେମନ୍ତ ପ୍ରତାପ ତାଙ୍କର | । | କଉଁ ହେତୁରୁ ସେ ଆବର | ।। | ୪୬ |
| | ପର୍ବତକନ୍ଦରାକୁ ଯାଇ | । | ସେଠାରେ ଶୋଇଲେ କିମ୍ପାଇଁ | ।। | ୪୭ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୪ | ଶୁକ କହନ୍ତି ହେ ରାଜନ | । | ଯାହା ପଚାରିଲ ତା' ଶୁଣ | ।। | ୪୮ |
| | ଇକ୍ଷ୍ୱାକୁ କୁଳରେ ସେ ଜାତ | । | ଅଟଇ ମାନ୍ଧାତାର ସୁତ | ।। | ୪୯ |
| | ଅତ୍ୟନ୍ତ ଶ୍ରେଷ୍ଠ ସେ ଆବର | । | ସତ୍ୟ ପ୍ରତିଜ୍ଞା ଅଟେ ତାର | ।। | ୫୦ |
| | ସେ ମୁଚୁକୁନ୍ଦ ନାମେ ଖ୍ୟାତ | । | ବ୍ରହ୍ମଣ୍ୟ ଅଟଇ ସାକ୍ଷାତ | ।। | ୫୧ |
| ୧୫ | ବାସବ ଆଦି ଦେବଗଣେ | । | ଆପଣା ରକ୍ଷଣକାରଣେ | ।। | ୫୨ |
| | ଦୈତ୍ୟଙ୍କ ଠାରୁ ହୋଇ ତ୍ରସ୍ତ | । | ତାହାଙ୍କୁ କରନ୍ତେ ପ୍ରାର୍ଥିତ | ।। | ୫୩ |
| | ତାଙ୍କ ରକ୍ଷାକୁ ସେ ରାଜନ | । | ବହୁତ କାଳ କଲେ ପୁଣ | ।। | ୫୪ |
| ୧୬ | କାର୍ତ୍ତିକେୟଙ୍କୁ ଦେବଗଣ | । | ସ୍ୱର୍ଗ ପାଳିବାକୁ ଲଭିଣ | ।। | ୫୫ |
| | ମୁଚୁକୁନ୍ଦଙ୍କୁ ଏଥୁ ଅନ୍ତେ | । | ବଚନ କହିଲେ ଏମନ୍ତେ | ।। | ୫୬ |
| | ଆମ୍ଭର ଯେ ପରିପାଳନ | । | ଅଟଇ ଅତୀବ କଠିନ | ।। | ୫୭ |
| | ତହିଁରୁ ତୁମ୍ଭେ ଏବେ ପୁଣ | । | ନିବର୍ତ୍ତି ରହ ହେ ରାଜନ | ।। | ୫୮ |
| ୧୭ | ହତ ହୋଇଲେ ଶତ୍ରୁ ଯହିଁ | । | ଏମନ୍ତ ରାଜ୍ୟ ଯେ ଅଟଇ | ।। | ୫୯ |
| | ମନୁଷ୍ୟଲୋକରେ ତାହାକୁ | । | ଛାଡ଼ି କରିଣ ତୁ ଆମ୍ଭଙ୍କୁ | ।। | ୬୦ |
| | ହେ ବୀର କରନ୍ତେ ପାଳନ | । | ଗଲେ ତୋ' ସର୍ବ କାମମାନ | ।। | ୬୧ |
| ୧୮ | ପୁତ୍ର ବନିତା ଜ୍ଞାତିଜନ | । | ଯେ ବା ଅମାତ୍ୟ ମନ୍ତ୍ରିମାନ | ।। | ୬୨ |
| | ତୋ' ତୁଲ୍ୟ କାଳ ଯାହାଙ୍କର | । | ଏମନ୍ତ ପ୍ରଜାଏ ଆବର | ।। | ୬୩ |
| | ତୁମ୍ଭର ଏବେ ଏ ସମସ୍ତ | । | ହୋଇ ଅଛନ୍ତି ବିଚାଳିତ | ।। | ୬୪ |
| ୧୯ | ଯେ ବଳବନ୍ତ ମାନଙ୍କର | । | ମଧ୍ୟେ ଅଟଇ ବଳିୟାର | ।। | ୬୫ |
| | ଈଶ୍ୱର ଅବ୍ୟୟ ଯେ ପୁଣ | । | ସେ କାଳ ଅଟେ ଭଗବାନ | ।। | ୬୬ |

୧. ବ୍ରହ୍ମିଷ୍ଠ = ବେଦାର୍ଥନିଷ୍ଠ ।

କ୍ରୀଡ଼ା କରନ୍ତେ ସେ ପ୍ରଜାଙ୍କୁ । ଚାଳଇ ଏଠାକୁ ସେଠାକୁ ॥ ୬୭
ପଶୁପାଳକ ପଶୁମାନ । ଯେସନେ କରଇ ଚାଳନ ॥ ୬୮
୨୦ ମଙ୍ଗଳ ହୋଉ ତୋର ଆଜ । ଆମ୍ଭଠାରୁ ହେ ମହାରାଜ ॥ ୬୯
କୈବଲ୍ୟମୁକ୍ତିକି ଛାଡ଼ିଣ । ବରକୁ କର ତୁ ବରଣ ॥ ୭୦
ଯାହାର ନାହିଁ ବିନାଶନ । ଯେ ଅଟେ ବିଷ୍ଣୁ ଭଗବାନ ॥ ୭୧
ସେ ଏକା ହୋଇ ସେ ମୁକ୍ତିର । କେବଳ ଅଟଇ ଈଶ୍ୱର ॥ ୭୨
୨୧ ଦେବତାମାନେ ଏରୂପରେ । ତାଙ୍କୁ କହନ୍ତେ ସେ କାଳରେ ॥ ୭୩
ଅତିଯଶସ୍ୱୀ ସେ ରାଜନ । ଦେବଙ୍କୁ କରିଣ ବନ୍ଦନ ॥ ୭୪
ଶ୍ରମକର୍ଷିତ ହୋଇଥିଲା । ତେଣୁ ସେ ନିଦ୍ରାକୁ ବରିଲା ॥
ହେ ସୁରୋତ୍ତମେ ! ଯେହି କେହି । ମୋର ନିଦ୍ରାକୁ ଭାଙ୍ଗିବଇଁ ॥
ସେ ନିଶ୍ଚେଁ ଶୀଘ୍ର ଭସ୍ମ ହେବ । 'ତଥା' କହିଲେ ସର୍ବ ଦେବ ॥
ଶୁଅନ୍ତେ ଅଚେତନ ହୋଇ । ତୁମ୍ଭଙ୍କୁ ଯଉଁ ନର ଯାଇଁ ॥ ୭୫
ନିଦ୍ରାମଧ୍ୟରେ ହେ ରାଜନ । ଚେତନା କରାଇବ ପୁଣ ॥ ୭୬
ସେ ତୋ ଚାହିଁମା ମାତ୍ରକରେ । ଭସ୍ମ ହୋଇବ ତତ୍‌କ୍ଷଣରେ ॥ ୭୭
ଦେବତାମାନେ ଛନ୍ତି ଦେଇ । ଏମନ୍ତ ନିଦ୍ରା ଯେ ଅଟଇ ॥ ୭୮
ତେଣେ ସେ କନ୍ଦରାମଧ୍ୟେଣ । ଶୋଇଲେ ପ୍ରବେଶ ହୋଇଣ ॥ ୭୯
୨୨ ଭସ୍ମ ହୁଅନ୍ତେ ସେ ଯବନ । ସେ ଯଦୁପତି ଭଗବାନ ॥ ୮୦
ଅଟଇ ବୁଦ୍ଧିମନ୍ତ ଅତି । ଯେ ମୁଚୁକୁନ୍ଦ ମହୀପତି ॥ ୮୧
ଶ୍ରୀକୃଷ୍ଣ ସେଠାରେ ତାହାଙ୍କୁ । ଦେଖାଇଲେ ସେ ଆପଣାକୁ ॥ ୮୨
୨୩ ଯେ ଘନପ୍ରାଏ ଶ୍ୟାମବର୍ଣ୍ଣ । ପୀତ କୌଶେୟ ଯା' ବସନ ॥ ୮୩
୨୪ ଶ୍ରୀବତ୍ସ ଚିହ୍ନ ଉରେ ଯାର । ପ୍ରଦୀପ୍ତ କୌସ୍ତୁଭ ଆବର ॥ ୮୪
୨୫ ଯେ ହୋଇଛନ୍ତି ଶୋଭମାନ । ତାହାଙ୍କୁ ଏରୂପେ ଦେଖିଣ ॥ ୮୫
ଯେ ହୋଇଛନ୍ତି ଚତୁର୍ଭୁଜ । ଚାରୁ ପ୍ରସନ୍ନ ମୁଖାମ୍ବୁଜ ॥ ୮୬
ଯେ ବୈଜୟନ୍ତୀ ମାଳା ଆନ । ତେଣେ ଯେ ଅଟେ ଶୋଭମାନ ॥ ୮୭
ପୁଣି ଯାହାଙ୍କ ଗଣ୍ଡସ୍ଥଳେ । ସ୍ଫୁରନ୍ତି ମକରକୁଣ୍ଡଳେ ॥ ୮୮
ତିନିଭୁବନ ଲୋକଙ୍କର । ମଧ୍ୟେ ଯେ ଅଟନ୍ତି ସୁନ୍ଦର ॥ ୮୯
ଅନୁରାଗରେ ଯୁତ ହୋଇ । ଯା' ସ୍ମିତ-ଈକ୍ଷଣ ଅଟଇ ॥ ୯୦
ବନିତାଙ୍କର ପ୍ରିୟ ହୋଇ । ବୟସ ଯାହାର ଅଟଇ ॥ ୯୧
ମତ୍ତସିଂହର ପ୍ରାଏ ଯାର । ବିକ୍ରମ ଅଟଇ ଉଦାର ॥ ୯୨
ଏମନ୍ତରୂପେ ଯେ ରାଜନ । କୃଷ୍ଣଙ୍କୁ କରି ବିଲୋକନ ॥ ୯୩
୨୬ ଅତ୍ୟନ୍ତ ଅଟେ ଯାର ମତି । ସେ ମୁଚୁକୁନ୍ଦ ମହୀପତି ॥ ୯୪
ତା' ତେଜେ ହୋଇ ଧରଷିତ । ଅଳପ ହୋଇଣ ଶଙ୍କିତ ॥ ୯୫
ତେଜେ ଅଧୃଷ୍ଟ ଯେ ଅଚ୍ୟୁତ । ତାଙ୍କୁ ପଚାରିଲେ ଏମନ୍ତ ॥ ୯୬

### ଶ୍ରୀମୁଚୁକୁନ୍ଦ ଉବାଚ

୨୭ ସେ ମୁଚୁକୁନ୍ଦ ମହୀପତି । କୃଷ୍ଣଙ୍କୁ ପଚାରୁଅଛନ୍ତି ॥ ୯୭
ଏ ଗିରିଗହ୍ୱର ବିପିନେ । କେ ତୁମ୍ଭେ ମିଳିଲ ଏ ସ୍ଥାନେ ॥ ୯୮
ପଦ୍ମପଲାଶପ୍ରାଏ ପୁଣ । କୋମଳ ଯେ ବେନି ଚରଣ ॥ ୯୯
ବହୁତ କଣ୍ଟା ଅଛି ଯହିଁ । ତେଣେ ବିହରୁଅଛ ତହିଁ ॥ ୧୦୦
୨୮ ଏମନ୍ତ ପଚାରୁଛି ମୁହିଁ । ତେଜସ୍ୱିଙ୍କର ମୂର୍ତ୍ତି ତୁହି ॥ ୧୦୧
ନୋହିଲେ ଅବା ଭଗବାନ । ଅଥବା ଅଟୁ ହୁତାଶନ ॥ ୧୦୨
କି ଅବା ଅଟୁ ତୁ ତପନ । ମୃଗଲାଞ୍ଛନ ଅବା ପୁଣ ॥ ୧୦୩
ଅଥବା ଅଟୁ ଆଖଣ୍ଡଳ । କି ଅବା ଅନ୍ୟ ଲୋକପାଳ ॥ ୧୦୪
୨୯ ଯେ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର । ମଧ୍ୟେ ଏ ତିନି ଦେବଙ୍କର ॥ ୧୦୫
ପୁରୁଷଶ୍ରେଷ୍ଠ କୃଷ୍ଣ ତୁହି । ଏମନ୍ତ ମଣୁଅଛି ମୁହିଁ ॥ ୧୦୬
ଯଉଁ ସକାଶୁଁ ଏ ଗୁହାର । ନାଶ କରୁଛ ଅନ୍ଧକାର ॥ ୧୦୭
ପ୍ରଦୀପ ଯେସନ ପ୍ରକାରେ । ତମକୁ ନାଶଇ ପ୍ରଭାରେ ॥ ୧୦୮
୩୦ ଶୁଣିମା ଅର୍ଥେ ଇଚ୍ଛା ମୋର । ହେ ନରଶ୍ରେଷ୍ଠ ମୋ ଆଗର ॥ ୧୦୯
ଯେ ନିଜ ଜନ୍ମ କର୍ମ ନାମ । କପଟ ନ କରି ଏମାନ ॥ ୧୧୦
ଯେବେ ଯୋଗାଉଛି ମନକୁ । ବହନ କହ ଏ କଥାକୁ ॥ ୧୧୧
୩୧ ଇକ୍ଷ୍ୱାକୁ କ୍ଷତ୍ରବନ୍ଧୁମାନେ । ଯେ ବା ଅଛନ୍ତି ଏ ଭୁବନେ ॥ ୧୧୨
ହେ ନରଶ୍ରେଷ୍ଠ ତହିଁ ଆନ । ମୋହର ମୁଚୁକୁନ୍ଦ ନାମ ॥ ୧୧୩
ଯେ ବା ଯୌବନାଶ୍ୱ[୧] ମାନ୍ଧାତ । ହେ ପ୍ରଭୁ ! ମୁଁ ତାଙ୍କର ସୁତ ॥ ୧୧୪
୩୨ ବହୁତ କାଳ ଉଜାଗରେ । ଶ୍ରାନ୍ତ ମୁଁ ଅଟଇ ବେଭାରେ ॥ ୧୧୫
ନିଦ୍ରାରେ ଅପହତ ମୋର । ହୁଅନ୍ତେ ଇନ୍ଦ୍ରିୟନିକର ॥ ୧୧୬
ଏହି ନିର୍ଜନ କାନନରେ । ଶୟନ କଲି ଯଥେଷ୍ଟରେ ॥ ୧୧୭
ମୋତେ ଆସିଣ ବର୍ତ୍ତମାନ । ଉଠାଇଲା ଏ କଉଁ ଜନ ॥ ୧୧୮
୩୩ ଆପଣା ପାପେ ସେ ପାପିଷ୍ଠ । ନିମେଷେ ହୋଇଲା ଭସ୍ମୀଭୂତ ॥ ୧୧୯
ଶତ୍ରୁମାନଙ୍କୁ ଦିଅ ଶାସ୍ତି । ଶ୍ରୀମନ୍ତ ଅଟ ତୁମ୍ଭେ ଅତି ॥ ୧୨୦
ତଦନ୍ତେ ହୋଇଲ ଲକ୍ଷିତ । କେ ତୁମ୍ଭେ କହ ତାହା ସତ ॥ ୧୨୧
୩୪ ଅସହ୍ୟ ତେଜରେ ତୁମ୍ଭର । ହତ ଅଟଇ ତେଜ ମୋର ॥ ୧୨୨
ବହୁତ ପଚାରିବାକୁ[୨] ହିଁ । ତୁମ୍ଭଙ୍କୁ ଶକ୍ତ ମୁଁ ନୁହଇ ॥ ୧୨୩
ହେ ମହାଭାଗ ! ପ୍ରାଣିଙ୍କର । ମଧ୍ୟେ ତୁ ପୂଜାଯୋଗ୍ୟ ନର ॥ ୧୨୪
୩୫ ରାଜା ଏମନ୍ତ ପରକାରେ । ବଚନ କହନ୍ତେ ସେଠାରେ ॥ ୧୨୫
ଭୂତଭାବନ ଭଗବାନ । ସେ ମୁଚୁକୁନ୍ଦକୁ ହସିଣ ॥ ୧୨୬

---

୧. ଯୁବନାଶ୍ୱର ପୁତ୍ର ୨. ପ୍ରଷ୍ଟୁମ୍ ଇତି ପାଠେ । 'ଦ୍ରଷ୍ଟୁମ୍' ଇତି ପାଠାନ୍ତର ।

| | | | |
|---|---|---|---|
| | ମେଘନିଃସ୍ୱନରୁ ଗଭୀର | । ବଚନେ କହିଲେ ଉତ୍ତର | ॥ ୧୨୭ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୩୬ | କହନ୍ତି ପ୍ରଭୁ ଭଗବାନ | । ହେ ମୁଚୁକୁନ୍ଦ ନୃପ ! ଶୁଣ | ॥ ୧୨୮ |
| | ଜନ୍ମ କରମ ନାମମାନ | । ସହସ୍ରସଂଖ୍ୟକ ହୋଇଣ | ॥ ୧୨୯ |
| | ମୋର ଅଛନ୍ତି ହେ ରାଜନ | । ଅସଂଖ୍ୟ ସକାଶରୁ ପୁଣ | ॥ ୧୩୦ |
| | ତା' ସଂଖ୍ୟା କରିବାକୁ ମୁହିଁ | । କେବେହେଁ ସମର୍ଥ ନୁହଇ | ॥ ୧୩୧ |
| ୩୭ | ଯେବେହେଁ କଉଣିସି ଜନ | । ଶ୍ରେଷ୍ଠ ଜନମମାନଙ୍କେଣ | ॥ ୧୩୨ |
| | ଗଣିମ ଭୂମିରେଣୁମାନ | । ତେବେ ମୋ ଗୁଣ-କର୍ମ-ନାମ | ॥ ୧୩୩ |
| | ଜନ୍ମମାନଙ୍କୁ ସେ ମାନବ | । କେବେହେଁ ଗଣି ନ ପାରିବ | ॥ ୧୩୪ |
| ୩୮ | ଯେ ତିନିକାଳେ ଉପପନ୍ନ | । ମୋହର ଜନ୍ମ-କର୍ମମାନ | ॥ ୧୩୫ |
| | ସେମାନଙ୍କୁ ହିଁ ହେ ରାଜନ | । ପରମ ଋଷିମାନେ ପୁଣ | ॥ ୧୩୬ |
| | ଅନୁକ୍ରମ କରି ଆଜ ହିଁ | । ପାରକୁ ନ ପାରନ୍ତି ଯାଇଁ | ॥ ୧୩୭ |
| ୩୯ \| | ତଥାପି ଆଜ ହେ ରାଜନ | । କହୁଛି ମୋ ଠାରୁ ତୁ ଶୁଣ | ॥ ୧୩୮ |
| ୪୧ \| | ପୂର୍ବରେ ଧର୍ମରକ୍ଷା ପାଇଁ | । ବ୍ରହ୍ମା ଜଣାନ୍ତେ ମୋତେ ଯାଇଁ | ॥ ୧୩୯ |
| | ଭୂଭାରପ୍ରାୟେ ଯେ ଅସୁରେ | । ତାଙ୍କର କ୍ଷୟନିମିତ୍ତରେ | ॥ ୧୪୦ |
| | ଯଦୁକୁଳରେ ବସୁଦେବ | । ଗୃହରେ ହୋଇଲୁଁ ସମ୍ଭବ | ॥ ୧୪୧ |
| | ମୁଁ ବସୁଦେବର ନନ୍ଦନ | । ମୋତେ ବାସୁଦେବ ବୋଲିଣ | ॥ ୧୪୨ |
| | ବୋଲନ୍ତି ଲୋକେ ହେ ରାଜନ | । ଯେ କାଳନେମି କଂସ ପୁଣ | ॥ ୧୪୩ |
| | ପ୍ରଲମ୍ବ ଆଦି ଯେ ଅସୁର | । ତାହାଙ୍କୁ କଲି ମୁଁ ସଂହାର | ॥ ୧୪୪ |
| | ତୋ ତିଗ୍ମନେତ୍ରେ ହେ ରାଜନ | । ଦଗ୍ଧ ହୋଇଲା ଏ ଯବନ | ॥ ୧୪୫ |
| ୪୨ | ସେ କୃଷ୍ଣ ଅଟଇଟି ମୁହିଁ | । ତୋହର ଅନୁଗ୍ରହ ପାଇଁ | ॥ ୧୪୬ |
| | ପୂର୍ବକାଳରୁ ମୁଁ ବହୁତ | । ତୋହରେ ହୁଅନ୍ତେ ପ୍ରାର୍ଥିତ | ॥ ୧୪୭ |
| | ଭକ୍ତବତ୍ସଳ ମୁଁ ଅଟଇ | । ଏ କନ୍ଦରାକୁ ଅଇଲଇଁ | ॥ ୧୪୮ |
| ୪୩ | ହେ ରାଜରଷି ! ଏ ହେତୁରୁ | । ବରକୁ ବର ତୁ ମୋଠାରୁ | ॥ ୧୪୯ |
| | ସମସ୍ତ କାମନାମାନଙ୍କୁ | । ନିଶ୍ଚୟେ ଦେବି ମୁଁ ତୁମ୍ଭଙ୍କୁ | ॥ ୧୫୦ |
| | କୌଣସି[୧] ଜନମାନେ ମୋତେ | । ନିତ୍ୟରେ ପ୍ରପନ୍ନ ହୁଅନ୍ତେ | ॥ ୧୫୧ |
| | ଶୋଚନା କରିବାକୁ ସେହି | । ଆଉ ବାରେକ ଯୋଗ୍ୟ ନୋହି | ॥ ୧୫୨ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୪୪ | ଶୁକ କହନ୍ତି ହେ ରାଜନ | । କୃଷ୍ଣ କହନ୍ତେ ଏ ବଚନ | ॥ ୧୫୩ |
| | [୨]ସ୍ମରନ୍ତେ ଗର୍ଗଙ୍କର ବାଣୀ | । ଏ ନାରାୟଣ ବୋଲି ଜାଣି | ॥ ୧୫୪ |
| | ପ୍ରଣାମ କରି ମୁଚୁକୁନ୍ଦ | । କହିଲେ ହୋଇଣ ଆନନ୍ଦ | ॥ ୧୫୫ |

୧. କହୁଣି । ୨. ''ଅଷ୍ଟାବିଂଶତି(ତ)ମେ ଯୁଗେ ଭଗବାନବତରିଷ୍ୟତି'' । ଇତି ବୃଦ୍ଧଗର୍ଗବଚନମ୍ ।

### ଶ୍ରୀମୁଚୁକୁନ୍ଦ ଉବାଚ

୪୫ ସେ ମୁଚୁକୁନ୍ଦ ମହୀପତି । କୃଷ୍ଣଙ୍କୁ କରୁଛନ୍ତି ସ୍ତୁତି ॥ ୧୫୬
ବନିତା ପୁରୁଷ ହୋଇଣ । ଦ୍ୱିବିଧ ଅଟଇ ଏ ଜନ ॥ ୧୫୭
ହେ ଈଶ ! ତୋ ମାୟାରେ ପୁଣ । ବିଶେଷେ ମୋହିତ ହୋଇଣ ॥ ୧୫୮
ଯେ ପରମାର୍ଥରୂପ[1] ତୁହି । ନ ଦେଖି ତୋତେ ନ ଭଜଇ ॥ ୧୫୯
ବଞ୍ଚିତ ହୋଇ ପରସ୍ପରେ । ଆବର ସୁଖନିମିତ୍ତରେ ॥ ୧୬୦
ଦୁଃଖପ୍ରଭବ ଯେ ଅଟଇ । ସେ ଗୃହେ ଆସକ୍ତ ହୁଅଇ ॥ ୧୬୧
୪୬ ବିଷୟସୁଖେ ବୁଦ୍ଧି ଯାର । ଏମନ୍ତ ଅଟଇ ଯେ ନର ॥ ୧୬୨
କୌଣସି ଅଯତ୍ନେ ସେ ପୁଣ । ଉତ୍ତମ ଯହିଁ ଅଙ୍ଗମାନ ॥ ୧୬୩
ଦୁର୍ଲଭ ସେ ମନୁଷ୍ୟଜନ୍ମ । ଏ କର୍ମଭୂମିରେ ଲଭିଣ ॥ ୧୬୪
ଗୃହାନ୍ଧକୂପରେ ପଡ଼ିଲା । ତୋ' ପାଦପଦ୍ମ ନ ଭଜିଲା ॥ ୧୬୫
ହେ କୃଷ୍ଣ ! ପଶୁ ଯଉଁ ରୂପେ । ତୃଣଲୋଭରେ ପଡ଼େ କୂପେ ॥ ୧୬୬
୪୭ ପୁତ୍ର-ବନିତା-କୋଷମାନ । ଯେ ଅବା ଭୂମିମାନେ ଆନ ॥ ୧୬୭
ଦୁରନ୍ତ ଚିନ୍ତନରେ ମୁହିଁ । ଏଥିରେ ଆସକ୍ତ ଅଟଇ ॥ ୧୬୮
ଦେହରେ ଆତ୍ମବୁଦ୍ଧି ମୋର । ପତି ଅଟଇ ପୃଥିବୀର ॥ ୧୬୯
ରାଜ୍ୟସଂପତ୍ତିରେ ଆବର । ବୃଦ୍ଧ[2] ହୋଇଛି ଗର୍ବ ମୋର ॥ ୧୭୦
ଏ କାଳ ନିଷ୍ଫଳ ହୋଇଣ । ଆହେ ଅଜିତ ! ଗଲା ପୁଣ ॥ ୧୭୧
୪୮ [3]ଘଟକୁଡ୍ୟାଦିଙ୍କ ସମାନ । ଏ କଳେବର ଅଟେ ପୁଣ ॥ ୧୭୨
ସଂରୂଢ଼ ହୋଇଣ ଏଥିରେ । ମୁଁ ରାଜା ବୋଲି ଏ ପ୍ରକାରେ ॥ ୧୭୩
ଯେ ରଥ-ଗଜ-ଅଶ୍ୱମାନ । ପଦାତି ଆଦି ଯଉଁ ସୈନ୍ୟ ॥ ୧୭୪
ତେଣେ ମୁଁ ହୁଅନ୍ତେ ବେଷ୍ଟିତ । ଦୁର୍ମଦ ହୋଇ ଅବିରତ ॥ ୧୭୫
ତୁମ୍ଭଙ୍କୁ ନ କଲି ଗଣନ । ପୃଥିବୀ କଲି ପର୍ଯ୍ୟଟନ ॥ ୧୭୬
୪୯ ଏକଥା କରିବି ବୋଲିଣ । ଅଟଇ ଯେବେଣ ଚିନ୍ତନ ॥ ୧୭୭
ତେଣେ ଯେ ଅତିହିଁ ପ୍ରମତ୍ତ । ପୁଣିହିଁ ଅତି ଲୋଭବନ୍ତ ॥ ୧୭୮
ବିଷୟମାନଙ୍କର ପ୍ରତି । ଲାଳସ ଅଟଇ ଯା' ମତି ॥ ୧୭୯
ଅନ୍ତକରୂପରେ ବିଖ୍ୟାତ । ଆବର ଅଟୁ ଅପ୍ରମତ୍ତ ॥ ୧୮୦
ଏମନ୍ତ ଲୋକକୁ ତୁ ପୁଣ । ତତ୍‌କାଳ କରୁ ବିନାଶନ ॥ ୧୮୧
ସୃକ୍‌କଣୀ[4] କରନ୍ତେ ଲେହନ । ଭୁଜଗ ମୂଷାକୁ ଯେସନ ॥ ୧୮୨
୫୦ ଯେ ପରିଷ୍କୃତ ସୁବର୍ଣ୍ଣରେ । ଏମନ୍ତ ରଥମାନଙ୍କରେ ॥ ୧୮୩
ଦୁର୍ଲଙ୍ଘ୍ୟ କାଳରେ ତୋହର । ପୁଣି ହିଁ ସେହି କଳେବର ॥ ୧୮୪

---

୧. ପରମାର୍ଥସୁଖ । ୨. ବଦ୍ଧ । ୩. କୁଡ୍ୟ = କାନ୍ଥ । ୪. ପାଟିର ଦୁଇକଣ ।

| | | | |
|---|---|---|---|
| | [1]ପୁରୀଷ-କୃମି-ଭସ୍ମ ହୋଇ । | ସଂଜ୍ଞାମାନଙ୍କୁ ସେ ଲଭଇ ॥ | ୧୮୫ |
| | ଅଥବା ମତଙ୍ଗଜ[2]ଦ୍ୱାରେ । | ଭ୍ରମଣ କରନ୍ତେ ପୂର୍ବରେ ॥ | |
| | ସଂଜ୍ଞାକୁ ଯେହୁ ନୃପତିର । | ଲଭିଣ ଥିଲା କଳେବର ॥ | |
| ୫୧ | ସଂଗ୍ରାମମାନ ନ କରିଣ । | ଦିଗସମୂହକୁ ଜିଣିଣ ॥ | ୧୮୬ |
| | ବସଇ ଶ୍ରେଷ୍ଠ ଆସନରେ । | ପୁଣି ସେ ପୂର୍ବ ସମୟରେ ॥ | ୧୮୭ |
| | ଯେ ନୃପେ ଅଟନ୍ତି ବିଦିତ । | ତେଣେ ସେ ଅଟଇ ବନ୍ଦିତ ॥ | ୧୮୮ |
| | ମିଥୁନଭାବ ସୁଖ[3] ହୋଇ । | ଯଉଁ ଗୃହରେ ଅଛି ରହି ॥ | ୧୮୯ |
| | ସେ ଗୃହେ ନାରୀମାନଙ୍କର । | କ୍ରୀଡ଼ାମୃଗପ୍ରାଏ ସେ ନର ॥ | ୧୯୦ |
| | ହେ ଈଶ ! ଏ ସ୍ଥାନେ ସେ ସ୍ଥାନେ । | ତାକୁ ନିଅନ୍ତି ନାରୀମାନେ ॥ | ୧୯୧ |
| ୫୨ | ତପରେ ହୋଇଣ ନିଷ୍ଠିତ । | ଭୋଗରୁ ଅଟଇ ନିବୃତ୍ତ ॥ | ୧୯୨ |
| | କର୍ମମାନଙ୍କୁ କରୁଥାଇ । | ସେ ଭୋଗଇଚ୍ଛାରେ ପୁଣିହିଁ ॥ | ୧୯୩ |
| | ଦିଅନ୍ତେ ଦାନାଦିରେ ଧନ । | ମୁଁ ରାଜା ହୋଇବି ବୋଲିଣ ॥ | ୧୯୪ |
| | ବଢ଼ନ୍ତେ ପୁଣ ତୃଷ୍ଣାମାନ । | ଏମନ୍ତ ଅଟଇ ଯେ ଜନ ॥ | ୧୯୫ |
| | ସେ ଲୋକ ସୁଖର ନିମିତ୍ତେ । | କଳ୍ପିତ ନୋହେ କଦାଚିତେ ॥ | ୧୯୬ |
| ୫୩ | ଯେବେ ଭ୍ରମନ୍ତେ ମନୁଷ୍ୟର । | ସଂସାରବନ୍ଧ ହୋଏ ଦୂର ॥ | ୧୯୭ |
| | ଆହେ ଅଚ୍ୟୁତ ତେବେ ପୁଣ । | ହୁଅଇ ସାଧୁଙ୍କ ସଙ୍ଗମ ॥ | ୧୯୮ |
| | ସାଧୁଙ୍କ ସଙ୍ଗମ ହୁଅନ୍ତେ । | ସେ କାଳେ ସଙ୍ଗତି ନିବୃତ୍ତେ ॥ | ୧୯୯ |
| | କାର୍ଯ୍ୟକାରଣକର୍ତ୍ତା ତୁହି । | ତୋ'ଠାରେ ଭକ୍ତି ଜାତ ହୋଇ ॥ | ୨୦୦ |
| ୫୪ | ଯଦୃଚ୍ଛା ହୋଇ ଯାହା ମୋର । | ରାଜ୍ୟାନୁବନ୍ଧ ହେଲା ଦୂର ॥ | ୨୦୧ |
| | ହେ ଈଶ ! ତାହା ମୁଁ ମଣଇଁ । | ମୋ' ଅନୁଗ୍ରହ କଲୁ ତୁହି ॥ | ୨୦୨ |
| | ଏକଚର୍ଯ୍ୟାରେ କରି ମତି । | ଯେ ବନେ ଯିବାକୁ ଇଚ୍ଛନ୍ତି ॥ | ୨୦୩ |
| | ସମଗ୍ର କରିଣ ଏ କ୍ଷିତି । | ଯେ ପରିପାଳନ କରନ୍ତି ॥ | ୨୦୪ |
| | ସାଧୁଏ କରନ୍ତି ପ୍ରାର୍ଥନ । | ଯେ ରାଜ୍ୟବନ୍ଧବିନାଶନ ॥ | ୨୦୫ |
| ୫୫ | ଯେ ଅକିଂଚନ ଲୋକଙ୍କର । | ପ୍ରାର୍ଥିତ ଅଟେ ନିରନ୍ତର ॥ | ୨୦୬ |
| | ସେ ପାଦସେବନରୁ ତୋର । | ହେ ପ୍ରଭୁ ଆଉ ଆନ ବର ॥ | ୨୦୭ |
| | କାମନା କରୁନାହିଁ ମୁହିଁ । | ହେ ହରି ମୋକ୍ଷଦାତା ତୁହି ॥ | ୨୦୮ |
| | ତୁମ୍ଭଙ୍କୁ କରି ଆରାଧନ । | ପଣ୍ଡିତ ହୋଇ କଉଁ ଜନ ॥ | ୨୦୯ |
| | ଯେ ନିଜ ବନ୍ଧନ ଅଟଇ । | ସେ ବର ବରିବ କିମ୍ପାଇଁ ॥ | ୨୧୦ |
| ୫୬ | ଯେ ରଜ-ସତ୍ତ୍ୱ-ତମ ଗୁଣ । | ଏଥି ଯେ ଅଟନ୍ତି ବନ୍ଧନ ॥ | ୨୧୧ |
| | ଐଶ୍ୱର୍ଯ୍ୟ ଶତ୍ରୁମାରଣାଦି । | ଧର୍ମାଦିରୂପେ ଯେ ପ୍ରସିଦ୍ଧି ॥ | ୨୧୨ |

୧. ଶ୍ୱଶୃଗାଳମାନଙ୍କ ଦ୍ୱାରା ଭକ୍ଷିତ ହେଲେ 'ପୁରୀଷ', ଅଭକ୍ଷିତ ହେଲେ 'କୃମି' ଏବଂ ଦଗ୍ଧ ହେଲେ 'ଭସ୍ମ' ହୁଏ ।

୨. ମତଙ୍ଗଜ = ହାତୀ ।　　୩. ଏକ ।

| | | | |
|---|---|---|---|
| | ହେ ଈଶ ! ସେ ଆଶିଷମାନ | ଏହି ହେତୁରୁ ମୁଁ ଛାଡ଼ିଣ | ॥ ୨୧୩ |
| | ଈଶ୍ୱର ଅଟୁ ତୁ ନିର୍ଗୁଣ | ତୁ ନିରଞ୍ଜନ ବ୍ରହ୍ମ ପୁଣ | ॥ ୨୧୪ |
| | ପୁରୁଷ ଜ୍ଞାନଘନ ତୁହି | ତୋତେ ଶରଣ ଗଲି ମୁହିଁ | ॥ ୨୧୫ |
| ୫୭ | ବହୁତ କାଳୁ ଏ ସଂସାରେ | ଆର୍ତ୍ତ ମୁଁ କର୍ମଫଳଙ୍କରେ | ॥ ୨୧୬ |
| | ସେ କର୍ମବାସନାରେ ମୁହିଁ | ପୁଣିହିଁ ସଂତପ୍ତ ଅଟଇ | ॥ ୨୧୭ |
| | ଅତୃପ୍ତ ଷଡ଼ ଶତ୍ରୁଗଣ | ଏମାନେ ଛନ୍ତି ମୋର ପୁଣ | ॥ ୨୧୮ |
| | କଷ୍ଟାକଷ୍ଟରେ[1] ଏଣୁ ମୁହିଁ | ଶାନ୍ତି ଭାବକୁ ଭଜି ନାହିଁ | ॥ ୨୧୯ |
| | ହେ ପରମାତ୍ମା ସତ୍ୟ ଯେହି | ଯହିଁରେ କିଛି ଭୟ ନାହିଁ | ॥ ୨୨୦ |
| | ଯହିଁରୁ ଶୋକ ହେଲା ଦୂର | ସେ ପାଦପଦ୍ମକୁ ତୁମ୍ଭର | ॥ ୨୨୧ |
| | ହେ ଜ୍ଞାନଦାତା ଅବିରତ | ମୁଁ ହୋଉଅଛି ଉପଗତ | ॥ ୨୨୨ |
| | ବିପତ୍ତିଗ୍ରସ୍ତ ମୁଁ ଆବର | ହେ ଈଶ ! ମୋତେ ରକ୍ଷା କର | ॥ ୨୨୩ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୫୮ | ସେ ମୁଚୁକୁନ୍ଦ ରାଜନକୁ | କୃଷ୍ଣ କହିଲେ ଏ ବାକ୍ୟକୁ | ॥ ୨୨୪ |
| | ବିମଳ ହୋଇ କରି ଅତି | ମାର୍ଜିତ ହେଲା ତୋର ମତି | ॥ ୨୨୫ |
| | ହେ ସାର୍ବଭୌମ ମହାରାଜ | ବରମାନଙ୍କେ ଯେଣୁ ଆଜ | ॥ ୨୨୬ |
| | ଲୋଭିତ ହେଲେହେଁ ଅତ୍ୟନ୍ତ | କାମେ ସେ[2] ନୋହିଲା ବିହତ | ॥ ୨୨୭ |
| ୫୯ | ବରମାନଙ୍କେ ତୁ ଲୋଭିତ | ଯେବେ ହୁଅନ୍ତୁ କଦାଚିତ | ॥ ୨୨୮ |
| | ତେବେ ପ୍ରମାଦନିମିତ୍ତରେ | ଜାଣ ସେ ନୁହନ୍ତା ତୋଠାରେ | ॥ ୨୨୯ |
| | ଏକାନ୍ତ ଭକ୍ତ ଯେ ମୋ'ଠାରେ | ତାଙ୍କ ବୁଦ୍ଧିକି କଉଁଠାରେ | ॥ ୨୩୦ |
| | ମଙ୍ଗଳମାନେ ଉପସ୍ଥିତ | ହୋଇ ନ କରନ୍ତି ଆସକ୍ତ | ॥ ୨୩୧ |
| ୬୦ | ମନକୁ ପ୍ରାଣାୟାମାଦିରେ | ଯୁକ୍ତ କରନ୍ତି ଯେ ନିର୍ଭରେ | ॥ ୨୩୨ |
| | ସେ ଭକ୍ତିହୀନଙ୍କର ପୁଣ | କୌଣସି କାଳେ ହେ ରାଜନ | ॥ ୨୩୩ |
| | ବିଷୟ-ଅଭିମୁଖ ହୋଇ | ଅକ୍ଷୀଣ ବାସନା ଦିଶଇ | ॥ ୨୩୪ |
| ୬୧ | ଯଥେଷ୍ଟ ମନକୁ ମୋ'ଠାରେ | ନିବେଶି ବିହର ପୃଥ୍ୱୀରେ | ॥ ୨୩୫ |
| | ଅବିନାଶିନୀ ଭକ୍ତି ତୋର | ମୋ'ଠାରେ ହୋଉ ନିରନ୍ତର | ॥ ୨୩୬ |
| ୬୨ | ତୁ କ୍ଷାତ୍ରଧର୍ମେ ଥାଇ ରହି | ମୃଗୟାଦିରେ ଜନ୍ତୁଙ୍କୁ ହିଁ | ॥ ୨୩୭ |
| | ନିଃଶେଷେ ବଧ କଲୁ ଯାଇ | ତପରେ ସମାହିତ ହୋଇ | ॥ ୨୩୮ |
| | ପାପକୁ ଏଣୁ ନାଶ କର | ହୋଇଣ ଆଶ୍ରିତ ମୋହର | ॥ ୨୩୯ |
| ୬୩ | ଆର ଜନ୍ମରେ ହେ ରାଜନ | ବ୍ରାହ୍ମଣଶ୍ରେଷ୍ଠ ତୁ ହୋଇଣ | ॥ ୨୪୦ |
| | ସମସ୍ତ ପ୍ରାଣିଠାରେ ତୁହି | ଅତିସୁହୃଦ ଭାବ ବହି | ॥ ୨୪୧ |
| | କେବଳ ମୋତେ ଉପଗତ | ହେବୁ ତୁ ଏ ଅଟଇ ସତ୍ୟ | ॥ ୨୪୨ |

୧. କଥଂଚିଦ୍ (ମୂଳ ଶବ୍ଦ) । ୨. ମତି ।

| | | | | | |
|---|---|---|---|---|---|
| ୬୪ | [1]ପୂର୍ବରେ ତପ ଯଜ୍ଞ କରି | । | ପୂଜା କରିଛୁ ମୋତେ ବରି | ।। | ୨୪୩ |
| | ମୁଁ ତୋତେ ମୋ ଅନୁଗ୍ରହରୁ | । | ପାଳିବି ନିଶ୍ଚେ ସବୁଠାରୁ | ।। | ୨୪୪ |
| | ଭୟ ନ କର ହେ ରାଜନ | । | ଏମନ୍ତ କହି ଭଗବାନ | ।। | ୨୪୫ |
| | ମୁଚୁକୁନ୍ଦଙ୍କୁ ନରହରି | । | ଚଳିଲେ ବର ଦେଇ କରି | ।। | ୨୪୬ |
| | ତାଙ୍କ ଚରଣ ଚିନ୍ତି ଧ୍ୟାନେ | । | ହରଷ ଦୀନବନ୍ଧୁ ମନେ | ।। | ୨୪୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମୁଚୁକୁନ୍ଦସ୍ତୁତି[2]ର୍ନାମ
ଏକପଞ୍ଚାଶୋଽଧ୍ୟାୟଃ ।।

## ଦ୍ୱିପଞ୍ଚାଶ ଅଧ୍ୟାୟ

ଦ୍ୱିପଞ୍ଚାଶତ୍ତମେ ଧାବନ୍ ଭୟାଦିବ ଗତଃ ପୁରୀମ୍ ।
ଅନ୍ୱମୋଦତ ସଂଦେଶଂ ରୁକ୍ମିଣ୍ୟା ଦ୍ୱିଜବର୍ଣ୍ଣିତମ୍ ।। ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | କହନ୍ତି ଶୁକ ମୁନିବର | । | ହେ ପରୀକ୍ଷିତ ଦଣ୍ଡଧର | ।। | ୧ |
| | ସେ ମୁଚୁକୁନ୍ଦ ନରସାଇଁ | । | କୃଷ୍ଣରେ ଅନୁଗ୍ରହ ପାଇ | ।। | ୨ |
| | ଏଥୁ ଅନ୍ତରେ ତାଙ୍କୁ ପୁଣ | । | ବହୁତ କରି ପ୍ରଦକ୍ଷିଣ | ।। | ୩ |
| | କରି ଉତ୍ତମ ନମସ୍କାର | । | ଗୁହାରୁ ହୋଇଲେ ବାହାର | ।। | ୪ |
| ୨ | ମନୁଷ୍ୟମାନଙ୍କୁ ପଶୁଙ୍କୁ | । | ଲତାମାନଙ୍କୁ ପାଦପଙ୍କୁ | ।। | ୫ |
| | ଏମାନଙ୍କୁ ସେ ଦଣ୍ଡଧାରୀ | । | ଦେଖିଣ ଅଳ୍ପସତ୍ତ୍ୱ କରି | ।। | ୬ |
| | ପ୍ରାପ୍ତ ହେଲାଣି କଳିଯୁଗ | । | ଏମନ୍ତ ମଣିଣ ସେ ବେଗ | ।। | ୭ |
| | ଉତ୍ତର ଦିଗକୁ ସତ୍ୱରେ | । | ଗମନ କଲେ ସେ କାଳରେ | ।। | ୮ |
| ୩ | ଧୀର ଅଟନ୍ତି ସେ ଅତ୍ୟନ୍ତ | । | ତପଃଶ୍ରଦ୍ଧାରେ ହୋଇ ଯୁତ | ।। | ୯ |
| | ସଂଶୟମାନ ଦୂର କରି | । | ସମସ୍ତ ସଙ୍ଗ ପରିହରି | ।। | ୧୦ |
| | ମନ ନିବେଶି କୃଷ୍ଣଠାରେ | । | ମିଳିଲେ ଗନ୍ଧମାଦନରେ | ।। | ୧୧ |
| ୪ | ଯେ ନରନାରାୟଣଙ୍କର | । | ସର୍ବଦା ଅଟଇ ମନ୍ଦିର | ।। | ୧୨ |
| | ସେ ବଦରିକାଶ୍ରମେ ଯାଇ | । | ସେ ନୃପ ଶାନ୍ତ ହୋଇ ରହି | ।। | ୧୩ |
| | ସମସ୍ତ ଦ୍ୱନ୍ଦ୍ୱକୁ ସହିଲା | । | ତପେ କୃଷ୍ଣଙ୍କୁ ଆରାଧିଲା | ।। | ୧୪ |
| ୫ | ସେ କାଳଯବନ ନିଧନ | । | ହୁଅନ୍ତେ ପ୍ରଭୁ ଭଗବାନ | ।। | ୧୫ |

---

୧. ''ପୂଜିତୋଽହଂ ତ୍ୱୟା ରାଜନ୍ ପୁରା ଯଜ୍ଞାଦିକର୍ମଭିଃ ।
ପାଳୟିଷ୍ୟେ ମହାରାଜ ! ମା ଭୈଷ୍ଟ ମଦନୁଗ୍ରହାତ୍ ।'' ଇତି ଅଧିକଃ ପାଠଃ ।

୨. କାଳଯବନବଧୋ ନାମ ।

ପୁଣି ମଥୁରାକୁ ଆସିଣ । ସେ ମ୍ଳେଚ୍ଛବଳକୁ ମାରିଣ ।। ୧୬

ତାଙ୍କର ସମସ୍ତ ଧନକୁ । ନେଲେ ଦ୍ୱାରକା ଭୁବନକୁ ।। ୧୭

ଆଜ୍ଞା ଦିଅନ୍ତେ ସେ ଅଚ୍ୟୁତ । ମନୁଷ୍ୟଙ୍କରେ ଅବିରତ ।। ୧୮

ବଳଦମାନଙ୍କେ ଧନକୁ । ନିଅନ୍ତେ ଦ୍ୱାରକାପୁରକୁ ।। ୧୯

୬ ତେଇଶି ଅକ୍ଷୌହିଣୀ ସୈନ୍ୟ । କରଇ ଯେ ପରିପାଳନ ।। ୨୦

ସେ ଜରାସନ୍ଧ ନରନାଥ । ଆସି ହୋଇଲା ଉପଗତ ।। ୨୧

୭ ସେ ରାମକୃଷ୍ଣ ବେନି ବୀର । ସେ ଶତ୍ରୁସୈନ୍ୟମାନଙ୍କର ।। ୨୨

ଅତ୍ୟନ୍ତ ବେଗକୁ ଦେଖିଣ । ମନୁଷ୍ୟଚେଷ୍ଟାକୁ ଲଭିଣ ।। ୨୩

ଅତି ସତ୍ୱରରେ ଗମନ । କଲେ ସେଠାରୁ ହେ ରାଜନ ।। ୨୪

୮ ନିର୍ଭୟ ଅଟନ୍ତି ସେ ଦୁହେଁ । ଅତ୍ୟନ୍ତ ଭୀତ ହେଲା ପ୍ରାଏ ।। ୨୫

ବହୁତ ଦ୍ରବ୍ୟକୁ ଛାଡ଼ିଣ । ଯେ ପଦ୍ମପଲାଶସମାନ ।। ୨୬

ସେ ବେନି ଚରଣେ ଗମନ । କଲେ ସେ ବହୁତ ଯୋଜନ ।। ୨୭

୯ ସେ ରାମକୃଷ୍ଣଙ୍କର ପୁଣ । ଏତିକି ଅଟଇ ପ୍ରମାଣ ।। ୨୮

ଯେହୁ ଏମନ୍ତ ନ ଜାଣଇଁ । ସେ ବଳୀ ମଗଧଦେଶସାଇଁ ।। ୨୯

ପଳାନ୍ତେ ରାମ-ନରହରି । ତାହାଙ୍କୁ ଦେଖି ହସି କରି ।। ୩୦

ରଥସୈନ୍ୟର ସହିତରେ । ଧାଇଁଲା ତାହାଙ୍କ ପଛରେ ।। ୩୧

୧୦ ଯେ ପ୍ରବର୍ଷଣ ନାମେ ଖ୍ୟାତ । ପୁଣି ଯହିଁରେ ପୁରୁହୂତ ।। ୩୨

ବରଷା କରଇ ନିତ୍ୟରେ । [1]ବହୁତ ଉଚ୍ଚ ସେ ଗିରିରେ ।। ୩୩

ଦୂରକୁ ଯାଇ ବେନି ଭାଇ । ବେଗେ ଉଠିଲେ ଶ୍ରାନ୍ତ ହୋଇ ।। ୩୪

୧୧ | ପର୍ବତେ ଲୁଚନ୍ତେ ସେ ବେନି । ହେ ନୃପ ! ତାଙ୍କୁ ସେ ନ ଜାଣି ।। ୩୫

୧୨ | ସେ ଦୁହିଁଙ୍କର ପାଦଚିହ୍ନ । ଜାଣି ନ ପାରି ସେ ରାଜନ ।। ୩୬

[2]ଅତ୍ୟନ୍ତ ଦୁଷ୍ଟ ଜରାସନ୍ଧ । ନ ଦେଖି ତାଙ୍କ ପଦବନ୍ଧ[3] ।। ୩୭

ବହୁତ ଉଦବେଗ ହୋଇ । ରୁନ୍ଧିଲା ଗୋମନ୍ତକୁ ଯାଇ ।। ୩୮

ବହୁତ ସଇନ୍ୟରେ ବୃତ । ବେଢ଼ିଲା ଯାଇଁ ସେ ପର୍ବତ ।। ୩୯

ସବୁ ଦିଗରେ କାଷ୍ଠ ଦେଇ । ତହିଁରେ ଅଗ୍ନିକି ଲଗାଇ ।। ୪୦

କଲା ସେ ଗିରିକି ଦହନ । ଯେ ଉଚ୍ଚ ଏଗାର ଯୋଜନ ।। ୪୧

ସେ ପର୍ବତରୁ ବେନି ଜନ । ଅତି ବେଗରେ ହେ ରାଜନ ।। ୪୨

ମାଗଧେ ଛନ୍ତି ଯାହା ବେଢ଼ି । ସେ ଦିଗମାନ ସବୁ ଛାଡ଼ି ।। ୪୩

ଉଗୁଇ[4] କରି ଉପରକୁ । ଡେଇଁ ପଡ଼ିଲେ ସେ ତଳକୁ ।। ୪୪

---

୧. ସେ ଗିରିର ଉଚ୍ଚତା ୧୧ ଯୋଜନ ।

୨. ଜରାସନ୍ଧସ୍ତୁ ଦୁଷ୍ଟାତ୍ମା ତାବନୁଦ୍ରୁତ୍ୟ ମାଧବୌ ।
ରୁରୋଧ ଶୈଳଂ ଗୋମନ୍ତଂ ମହତ୍ୟା ସେନୟା ବୃତଃ ।। ଇତି ଅଧିକଃ ପାଠଃ ।

୩. ପଦବନ୍ଧ = ପାଦଚିହ୍ନ । ୪. ଉଗୁଇବା = ଉପରକୁ ଯୋରରେ ଉଠିବା ।

୧୩ ଅନୁଗ ସହ ବର୍ତ୍ତମାନ । ଶତ୍ରୁରେ ଅଲକ୍ଷ୍ୟ ହୋଇଣ ।। ୪୫
ସେ ଯଦୁଶ୍ରେଷ୍ଠ ବେନି ଜଣ । ଅଇଲେ ସ୍ୱପୁରକୁ ପୁଣ ।। ୪୬
ସମୁଦ୍ରଜଳୀ୧ ପରା ହୋଇ । ହେ ନୃପ ! ବେଢ଼ିଅଛି ଯହିଁ ।। ୪୭
୧୪ ଏ ରାମକୃଷ୍ଣ ବେନି ଜଣ । ଏଠାରେ ହୋଇଲେ ଦହନ ।। ୪୮
ସେ ଜରାସନ୍ଧ ନୃପମଣି । ମିଥ୍ୟା କଥାକୁ ସତ୍ୟ ମଣି ।। ୪୯
ଘେନିଣ ସେ ଶ୍ରେଷ୍ଠ ସେନାକୁ । ଅଇଲା ସେ ନିଜ ପୁରକୁ ।। ୫୦
୧୫ ଆନର୍ତ୍ତଦେଶନରନାଥ । ଶ୍ରୀମନ୍ତ ଅଟେ ସେ ରୈବତ ।। ୫୧
ଆଜ୍ଞାକୁ ଦିଅନ୍ତେ ବିଧାତା । ରେବତୀ ନାମେ ନିଜ ସୁତା ।। ୫୨
ରାମଙ୍କୁ ଦେଲା ତାକୁ ନେଇ । ପୂର୍ବେ ଏ କଥା କହିଥାଇଁ ।। ୫୩
୧୬ ସେ ଭଗବାନ ଗୋବିନ୍ଦହିଁ । ଭୀଷ୍ମକସୁତା ଯେ ଅଟଇ ।। ୫୪
ଯେ କଳା ଅଟଇ ଲକ୍ଷ୍ମୀର । ସେ ବଇଦର୍ଭୀକି ଆବର ।। ୫୫
ହେ କୁରୁଶ୍ରେଷ୍ଠ ! ସେ କାଳରେ । ବିଭା ହୋଇଲେ ସ୍ୱୟମ୍ବରେ ।। ୫୬
୧୭ ଶାଲ୍ୱକୁ ଆଦି ହୋଇ ପୁଣ । ଯେ ଚୈଦ୍ୟପକ୍ଷରାଜାମାନ ।। ୫୭
ଦେଖୁଥାଆନ୍ତେ ସର୍ବ ନରେ । ଏହାଙ୍କୁ ମନ୍ଥିଣ ବେଗରେ ।। ୫୮
ଗରୁଡ଼ ମନ୍ଥି ଦେବତାଙ୍କୁ । ଯେମନ୍ତେ ହରିଲେ ଅମୃତକୁ ।। ୫୯

ଶ୍ରୀପରୀକ୍ଷିଦୁବାଚ

୧୮ କହନ୍ତି ପାଣ୍ଡୁପଣନାତି । ଶୁଣ ହେ ଶୁକ ମହାଯତି ।। ୬୦
ରୁଚିର ଆନନ ଯାହାର । ଯେ ସୁତା ଅଟେ ଭୀଷ୍ମକର ।। ୬୧
ସେ ରୁକ୍ମିଣୀକି ଭଗବାନ । ରାକ୍ଷସ ବିଧାନରେ ପୁଣ ।। ୬୨
ବିଭା ହୋଇଲେ ପୂର୍ବେ ଯାଇ । ଏମନ୍ତ ଶୁଣିଲା ଅଛଇ ।। ୬୩
୧୯ ଅପରିମିତ ତେଜ ଯାର । ଚରିତ ଯଉଁ ଶ୍ରୀକୃଷ୍ଣର ।। ୬୪
ହେ ଭଗବାନ ! ପୂର୍ବକାଳେ । ଯେମନ୍ତ ରୂପେ କୁତୂହଳେ ।। ୬୫
ମାଗଧ ଶାଲ୍ୱାଦି ରାଜାଙ୍କୁ । ଜିଣିଣ ହରିଲେ କନ୍ୟାକୁ ।। ୬୬
ବିଶେଷ କରି ସେ କଥାକୁ । ଇଚ୍ଛା ହେଉଛି ଶୁଣିମାକୁ ।। ୬୭
୨୦ ଯେ ନିତ୍ୟେ ନୂତନ ଅଟନ୍ତି । ଲୋକଙ୍କ ପାପକୁ ନାଶନ୍ତି ।। ୬୮
ପୁଣି ଅଟନ୍ତି ପୁଣ୍ୟବନ୍ତ । ମଧୁର ଅଟନ୍ତି ଅତ୍ୟନ୍ତ ।। ୬୯
ସେ କୃଷ୍ଣକଥାମାନ ଶୁଣି । ଶ୍ରୁତଜ୍ଞ ହୋଇ କଉଁ ପ୍ରାଣୀ ।। ୭୦
ଆହେ ବ୍ରହ୍ମଣ୍ୟ ଏ ସଂସାରେ । ସନ୍ତୋଷ ହୋଇବ ମନରେ ।। ୭୧

---

୧. ଜଳୀ = ପରିଖା, ଗଡ଼ଖାଇ ।
ତୁଂ-ହିରଣ୍ୟବତୀ ନଦୀବେଳାସ୍ଥଳ ଖୋଳି ।
ସେନାର ଚାରିପଟଯାକ କଲେ ଜଳୀ ।। କୃ:ମ:

## ଶ୍ରୀବାଦରାୟଣିରୁବାଚ

୨୧ ରାଜାଙ୍କୁ କହୁଛନ୍ତି ଶୁକ । ଯା ନାମ ଅଟଇ ଭୀଷ୍ମକ ।। ୭୨
ବିଦର୍ଭଦେଶ-ଅଧିପତି । ପୂର୍ବେ ସେ ହେଲା ନରପତି ।। ୭୩
ସେ ଭୀଷ୍ମକର ପାଞ୍ଚ ସୁତ । ସେହି କାଳରେ ହେଲେ ଜାତ ।। ୭୪
ଏକ କନ୍ୟାଏ ହେଲା ପୁଣ । ରୁଚିର ଅଟେ ତା' ଆନନ ।। ୭୫
୨୨ ପ୍ରଥମ ରୁକ୍ମୀ ନାମେ ଖ୍ୟାତ । ଆରକ ନାମ ରୁକ୍ମରଥ ।। ୭୬
ତୃତୀୟ ରୁକ୍ମବାହୁ ନାମ । ଆରକ ରୁକ୍ମକେଶ ପୁଣ ।। ୭୭
ଆବର ରୁକ୍ମମାଳୀ ଆନ । ଏରୂପେ ସେ ପାଞ୍ଚ ନନ୍ଦନ ।। ୭୮
ଯେ ସତୀ ଏହାଙ୍କ ଭଉଣୀ । ତା' ନାମ ଅଟଇ ରୁକ୍ମିଣୀ ।। ୭୯
୨୩ ସେହି ସୁନ୍ଦର ରୂପ ଗୁଣ । ଯେ ପରାକ୍ରମ ଶୋଭାମାନ ।। ୮୦
ଗୃହକୁ ଆସିକରି ଜନେ । ଗାୟନ କରନ୍ତେ ସେମାନେ ।। ୮୧
ରୁକ୍ମିଣୀ କରି ତା' ଶ୍ରବଣ । ହେ ନୃପ ! ଶ୍ରୀକୃଷ୍ଣଙ୍କୁ ପୁଣ ।। ୮୨
ମଣିଲା ଏ ମୋହର ପତି । ହେବାକୁ ଯୋଗ୍ୟ ହିଁ ଅଟନ୍ତି ।। ୮୩
୨୪ ଯେ ବୁଦ୍ଧି ଔଦାର୍ଯ୍ୟ ଲକ୍ଷଣ । ଯେ ରୂପ ସୁଚରିତ ଗୁଣ ।। ୮୪
ଯେ ଏହାଙ୍କର ଅଟେ ସ୍ଥାନ । ସେ ରୁକ୍ମିଣୀକି ଭଗବାନ ।। ୮୫
ବିଭା ହେବାକୁ ଏ ସମାନ । ଭାର୍ଯ୍ୟା ବୋଲିଣ ଦେଲେ ମନ ।। ୮୬
୨୫ କୃଷ୍ଣଙ୍କୁ ଦ୍ୱେଷ ଯେ କରଇ । ସେ ରୁକ୍ମୀ ନାମେ ଜ୍ୟେଷ୍ଠ ଭାଇ ।। ୮୭
ସେ ଭଗିନୀକି ଶ୍ରୀକୃଷ୍ଣଙ୍କୁ । ବନ୍ଧୁଏ ଇଛନ୍ତେ ଦେବାକୁ ।। ୮୮
ହେ ନୃପ ! ତାଙ୍କୁ ନିବାରିଲା । ଶିଶୁପାଳକୁ ବର କଲା ।। ୮୯
୨୬ କଟାକ୍ଷ ଅଟେ ଯାର ନୀଳ । ସେ ବଇଦର୍ଭୀ ତତକାଳ ।। ୯୦
ସେ କଥା ଜାଣିଣ ସେଠାଏ । ଦୁର୍ମନା ହୋଇ ଅତିଶୟେ ।। ୯୧
ବିଚାର କରିଣ ତଦନ୍ତେ । କୃଷ୍ଣଙ୍କୁ ଆଣିମା ନିମନ୍ତେ ।। ୯୨
ଆତ୍ମୀୟ ଏକ ବ୍ରାହ୍ମଣକୁ । ପେଷିଲେ ଶୀଘ୍ରେ ଦ୍ୱାରକାକୁ ।। ୯୩
୨୭ ଦ୍ୱାରକାପୁରେ ସେ ବ୍ରାହ୍ମଣ । ପ୍ରବେଶ ହୁଅନ୍ତେ ଯାଇଣ ।। ୯୪
ପୁଣି ସେ ଦ୍ୱାରପାଳଙ୍କରେ । ପ୍ରବେଶ ହୁଅନ୍ତେ ଭିତରେ ।। ୯୫
ସୁବର୍ଣ୍ଣଆସନେ ଯେ ଛନ୍ତି । ଯେ ଆଦ୍ୟ ପୁରୁଷ ଅଟନ୍ତି ।। ୯୬
ସେ ଶ୍ରୀକୃଷ୍ଣଙ୍କୁ ତହିଁ ପୁଣ । ସେ ଦ୍ୱିଜ କଲା ବିଲୋକନ ।। ୯୭
୨୮ ବ୍ରହ୍ମଣ୍ୟଦେବ ଭଗବାନ । ବିପ୍ରଙ୍କୁ କରି ବିଲୋକନ ।। ୯୮
ତତ୍କାଳ ସେଠାରୁ ଉଠିଲେ । ଆସନେ ବସାଇ ପୂଜିଲେ ।। ୯୯
ଦେବତାମାନେ ଆପଣାକୁ । ଯେସନେ କରନ୍ତି ପୂଜାକୁ ।। ୧୦୦
୨୯ ସେ ବିପ୍ର ଭୋଜନ ସାରନ୍ତେ । ସୁଖେ ଆସନରେ ବସନ୍ତେ ।। ୧୦୧
ସାଧୁଙ୍କ ଗତି ଭଗବାନ । ସେ ଦ୍ୱିଜପାଖକୁ ଯାଇଣ ।। ୧୦୨

| | | | |
|---|---|---|---|
| | ନିଜ ହସ୍ତରେ ତା' ଚରଣ | । ଅଙ୍କ କରିଣ ସଂବାହନ | ।। ୧୦୩ |
| | ବ୍ୟଗ୍ର ନୋହିଣ ସେ ଅଚ୍ୟୁତ | । ତାଙ୍କୁ ପଚାରିଲେ ଏମନ୍ତ | ।। ୧୦୪ |
| ୩୦ | ହେ ଦ୍ୱିଜବରଶ୍ରେଷ୍ଠ ! ତୋତେ | । ପ୍ରଶ୍ନ ମୁଁ କରୁଛି ଏମନ୍ତେ | ।। ୧୦୫ |
| | ସନ୍ତୁଷ୍ଟମନ ଅଟେ ତୋର | । ଯେ ଧର୍ମ ସମ୍ମତ ବୃଦ୍ଧର | ।। ୧୦୬ |
| | ସର୍ବଦା ସେ ଅତିକଷ୍ଟରେ | । ବର୍ତ୍ତିନାହିଁଟି କି ତୋ'ଠାରେ | ।। ୧୦୭ |
| ୩୧ | ଯେବଣ କେବଣ ରୂପେଣ | । ସଂତୁଷ୍ଟ ହୋଇଣ ବ୍ରାହ୍ମଣ | ।। ୧୦୮ |
| | ଯେବେ ନିତ୍ୟରେ ବର୍ତ୍ତିଥାଇ | । ତେବେ ସ୍ୱଧର୍ମଚ୍ୟୁତ ନୋହି | ।। ୧୦୯ |
| | ସେ ଧର୍ମ ଏ ବିପ୍ରର ପୁଣ | । କାମନା କରଇ ଦୋହନ | ।। ୧୧୦ |
| ୩୨ | ହେଲେହେଁ ଦେବଙ୍କର ପତି | । ସେ ଅସନ୍ତୁଷ୍ଟ ଯେବେ ଅତି | ।। ୧୧୧ |
| | ଏ ଲୋକୁଁ ସେ ଲୋକକୁ ଯାଇ | । କେବେହେଁ ସୁଖୀ ସେ ନୁହଇ | ।। ୧୧୨ |
| | ପୁଣି ଅକିଂଚନ ଲୋକ ହିଁ | । ସନ୍ତୁଷ୍ଟ ହୋଇ ଯେବେ ଥାଇ | ।। ୧୧୩ |
| | ସେ ସର୍ବ-ଅଙ୍ଗତାପମାନ | । ନ ଲଭି କରଇ ଶୟନ | ।। ୧୧୪ |
| ୩୩ | ଯେବଣ ବିପ୍ରେ ସ୍ୱଲାଭରେ | । ସନ୍ତୁଷ୍ଟ ଅଟନ୍ତି ନିତ୍ୟରେ | ।। ୧୧୫ |
| | ସମସ୍ତ ପ୍ରାଣିଙ୍କର ଠାଏ | । ମିତ୍ର ଅଟନ୍ତି ଯେ ସାଧୁଏ | ।। ୧୧୬ |
| | ଅହଂକାରକୁ ଛାଡ଼ି ପୁଣି | । ଶାନ୍ତ ଅଟନ୍ତି ଯଉଁ ପ୍ରାଣୀ | ।। ୧୧୭ |
| | ମୁଁ ପୁଣ ପୁଣ ଏମାନଙ୍କୁ | । ଶିରେ କରୁଛି ପ୍ରଣାମକୁ | ।। ୧୧୮ |
| ୩୪ | ପଚାରୁଅଛି ହେ ଭୂସୁର | । ସର୍ବ କୁଶଳଟି କି ତୋର | ।। ୧୧୯ |
| | ଯଉଁ ରାଜାର ଦେଶେ ପୁଣ | । ପ୍ରଜାଏ ପାଳିତ ହୋଇଣ | ।। ୧୨୦ |
| | ଉତ୍ତମ ସୁଖେ ରହିଥାନ୍ତି | । ସେ ନୃପ ପ୍ରିୟ ମୋର ଅତି | ।। ୧୨୧ |
| ୩୫ | ଯେବଣ ସ୍ଥାନରୁ ଆସିଣ | । ଦୁସ୍ତର ସାଗର ତରିଣ | ।। ୧୨୨ |
| | ଯେବଣ କାର୍ଯ୍ୟର ଇଚ୍ଛାରେ | । ଆସି ମିଳିଲ ଏ ସ୍ଥାନରେ | ।। ୧୨୩ |
| | ଯେବେ ସେ ଗୁପତ ନୁହଇ | । ତା' ସର୍ବ କହ ମୋତେ ତୁହି | ।। ୧୨୪ |
| | କି କାର୍ଯ୍ୟ କରିବି ମୁଁ ତୋର | । ସେ କଥା କହ ତୁ ଆବର | ।। ୧୨୫ |
| ୩୬ | ଲୀଳାରେ ମନୁଷ୍ୟଶରୀର | । ଯେ ଧରିଅଛନ୍ତି ଈଶ୍ୱର | ।। ୧୨୬ |
| | ଏ ରୂପେ ଉତ୍ତମ କରିଣ | । ପୁଛନ୍ତେ ପ୍ରଶ୍ନ ସେ ବ୍ରାହ୍ମଣ | ।। ୧୨୭ |
| | ସେଠାରେ ସମସ୍ତ ବାର୍ତ୍ତାକୁ | । ବର୍ଣ୍ଣିତ କଲା ସେ କୃଷ୍ଣଙ୍କୁ | ।। ୧୨୮ |
| ୩୬(କ) | ଏକାନ୍ତେ ସ୍ୱୟେଂ ସେ ରୁକ୍ମିଣୀ | । ଯା' ଲେଖି ଦେଇଛନ୍ତି ପୁଣି | ।। ୧୨୯ |
| | ଯହିଁରେ କୃଷ୍ଣପ୍ରେମ ଚିହ୍ନ | । ସେ ପତ୍ରିକାକୁ ସେ ବ୍ରାହ୍ମଣ | ।। ୧୩୦ |
| | ମୁଦ୍ରାକୁ ସତ୍ୱରେ ଫିଟାଇ | । କୃଷ୍ଣଙ୍କୁ ଦେଖାଇଲା ନେଇ | ।। ୧୩୧ |
| | ଶ୍ରୀକୃଷ୍ଣ ଆଜ୍ଞାରେ ବ୍ରାହ୍ମଣ | । ସେ ଲେଖ କଲାକ ବଖାଣ | ।। ୧୩୨ |

---

୩୬(କ) ରୁକ୍ମିଣ୍ୟାଃ ସ୍ୱୟମେକାନ୍ତେ ଲିଖିତ୍ୱା ଦତ୍ତପତ୍ରିକାମ୍ ।
ମୁଦ୍ରାମୁନ୍ମୁଚ୍ୟ କୃଷ୍ଣାୟ ପ୍ରେମଚିହ୍ନମଦର୍ଶୟତ୍ ।

### ଶ୍ରୀରୁକ୍ମିଣୀ ଉବାଚ

୩୭ ଏ ରୂପେ ଶ୍ରୀକୃଷ୍ଣଙ୍କୁ ବାଣୀ । କହୁଅଛନ୍ତି ସେ ରୁକ୍ମିଣୀ ।। ୧୩୩
ହେ କୃଷ୍ଣ ଭୁବନସୁନ୍ଦର । ଶ୍ରବଣ କଲା ଲୋକଙ୍କର ।। ୧୩୪
ଯେ କର୍ଣ୍ଣବିବରେ ପଶିଣ । ହରନ୍ତି ଅଙ୍ଗୁଁ ତାପମାନ ।। ୧୩୫
ଶୁଣି ସେ ଗୁଣକୁ ତୁମ୍ଭର । ଲୋଚନବନ୍ତ ଲୋକଙ୍କର ।। ୧୩୬
ନୟନମାନଙ୍କର ଯେହି । ସର୍ବାର୍ଥଲାଭକୁ କରଇ ।। ୧୩୭
ଏମନ୍ତ ରୂପକୁ ତୁମ୍ଭର । ଶ୍ରବଣ କରିଣ ସତ୍ୱର ।। ୧୩୮
ଲଜ୍ଜାବିହୀନେ ହେ ଅଚ୍ୟୁତ । ତୁମ୍ଭର ଠାରେ ଦେଲି ଚିତ୍ତ ।। ୧୩୯
୩୮ ଯେ ଗୁଣବତୀ ବୁଦ୍ଧିମତୀ । ପୁଣି ଯେ ଅଟେ କୁଳବତୀ ।। ୧୪୦
ଯେ କନ୍ୟା ଏମନ୍ତରୂପରେ । ଯଥାର୍ଥ ବିବାହ କାଳରେ ।। ୧୪୧
ଆହେ ମୁକୁନ୍ଦ ! କୁଳ-ଶୀଳ । ଯେ ରୂପ-ବିଦ୍ୟା-ବୟ-ବଳ ।। ୧୪୨
ଯେ ଦ୍ରବ୍ୟ-ପ୍ରଭାବ ଏମାନେ । ନିଜ ସମାନ ତୁମ୍ଭେ ଏଣେ ।। ୧୪୩
ଆହେ ନୃସିଂହ ! ଲୋକଙ୍କର । ତୁମ୍ଭେ ଯେ ଅଟ ମନୋହର ।। ୧୪୪
ତୁମ୍ଭଙ୍କୁ ପତି କରି ପୁଣ । ସେ କି ନ କରିବ ବରଣ ।। ୧୪୫
୩୯ ତେଣୁ ତୁମ୍ଭଙ୍କୁ ନିଶ୍ଚେ ମୁହିଁ । ପତି କରିଣ ବରିଲଇଁ ।। ୧୪୬
ହେ ପ୍ରଭୋ ! ଆତ୍ମାକୁ ହିଁ ପୁଣ । ତୋଠାରେ କଲି ସମର୍ପଣ ।। ୧୪୭
ତୁମ୍ଭର ଭାର୍ଯ୍ୟା କରି ମୋତେ । ବିଧାନ କର ଆସି ଏଥେ ।। ୧୪୮
ଆହେ ପଦ୍ମାକ୍ଷ ! ତୁମ୍ଭେ ବୀର । ମୁଁ ଭାଗ ଅଟଇ ତୁମ୍ଭର ।। ୧୪୯
ଏଠାରେ ଆସି ତତକାଳ । ମୋତେ ନ ଛୁଉଁ ଶିଶୁପାଳ ।। ୧୫୦
ସିଂହଭାଗକୁ ଯେହ୍ନେ ଯାଇ । ଶୃଗାଳ ଛୁଇଁ ନ ପାରଇ ।। ୧୫୧
୪୦ କୂପାଦି ଅଗ୍ନିହୋତ୍ର-ଆଦି । ଯେ ଅବା ଦାନ ହିରଣ୍ୟାଦି ।। ୧୫୨
ଯେ ତୀର୍ଥାଟନାଦି ନିୟମ । ଯେ ବା କୃଚ୍ଛ୍ରାଦି ବ୍ରତ ପୁଣ ।। ୧୫୩
ଯେ ଦେବ ଗୁରୁ ଯେ ବ୍ରାହ୍ମଣ । ଏମାନଙ୍କର ଯେ ଅର୍ଚ୍ଚନ ।। ୧୫୪
ଏ ଆଦି ଯେତେକ ସାଧନ । ଯେବେ ମୁଁ ସେମାନଙ୍କେ ପୁଣ ।। ୧୫୫
ପରମେଶ୍ୱର ଭଗବାନ । କରିଣ ଥିବି ଆରାଧନ ।। ୧୫୬
ତେବେ ସେ ଶ୍ରୀକୃଷ୍ଣ ଆସିଣ । ମୋ ପାଣି କରନ୍ତୁ ଗ୍ରହଣ ।। ୧୫୭
ଚୈଦ୍ୟାଦି ଅନ୍ୟ ନୃପେ ପୁଣି । ଆସି ନ ଧରନ୍ତୁ ମୋ ପାଣି ।। ୧୫୮
୪୧ ଆହେ ଅଜିତ ! କାଲି ମୋର । ବିବାହ ହୁଅନ୍ତେ ସତ୍ୱର ।। ୧୫୯
ପ୍ରଥମୁଁ ଗୁପତ ହୋଇଣ । ବିଦର୍ଭଦେଶକୁ ଆସିଣ ।। ୧୬୦
ପଛେ ପୃତନାପତିଙ୍କରେ[୧] । ବେଷ୍ଟିତ ହୋଇ ବଳାତ୍‌କାରେ ।। ୧୬୧
ଏ ଚୈଦ୍ୟ-ଜରାସନ୍ଧବଳ । ମନ୍ଥନ କରି ତତକାଳ ।। ୧୬୨

୧. ସେନାପତି; ପୃତନା = ସେନା ।

| | | | | |
|---|---|---|---|---|
| | ତୁମ୍ଭ ପ୍ରଭାବ ଦରଶନ | । ମୋହର ଯଉତୁକ ଧନ | ।। | ୧୬୩ |
| | ମୋତେ ରାକ୍ଷସ ବିଧାନରେ | । ବିବାହ ହୁଅ ଏ ସ୍ଥାନରେ | ।। | ୧୬୪ |
| ୪୨ | ଅନ୍ତଃପୁରର ମଧ୍ୟେ ତୁହି | । ଥାଆନ୍ତେ କି ରୂପରେ ମୁହିଁ | ।। | ୧୬୫ |
| | ବନ୍ଧୁଙ୍କୁ ନ କରି ନିଧନ | । ବିବାହ ହେବି ତୋତେ ପୁଣ | ।। | ୧୬୬ |
| | ଏମନ୍ତ ବିଚାରିବ ଯେବେ | । ଉପାୟ କହୁଛି ମୁଁ ତେବେ | ।। | ୧୬୭ |
| | ପୂର୍ବଦିନରେ ଶ୍ରେଷ୍ଠ ହୋଇ | । କୁଳଦେବତା ଯାତ୍ରା ଯେହି | ।। | ୧୬୮ |
| | ଯହିଁରେ ନବବଧୂ ପୁଣ | । ଯେ ଛନ୍ତି ପୁରବାହାରେଣ | ।। | ୧୬୯ |
| | ସେ ଗିରିଜାଙ୍କୁ ଉପଗତ | । ଯାଇ ହୁଅଇ ହେ ଅଚ୍ୟୁତ | ।। | ୧୭୦ |
| ୪୩ | ପାର୍ବତୀପତିପ୍ରାୟ ହୋଇ | । ଆପଣା ପାପନାଶପାଇଁ | ।। | ୧୭୧ |
| | ତୋ' ପାଦପଦ୍ମରଜସ୍ନାନ | । ବାଞ୍ଛା କରନ୍ତି ଶ୍ରେଷ୍ଠଜନ | ।। | ୧୭୨ |
| | ହେ ପଦ୍ମନେତ୍ର ! ତୋର ଯେବେ | । ପ୍ରସାଦ ନ ଲଭିବି ତେବେ | ।। | ୧୭୩ |
| | ଶଏ ଜନମ ମୁଁ ଏମନ୍ତେ | । ତୋ' ଅନୁଗ୍ରହ ପରିଯନ୍ତେ | ।। | ୧୭୪ |
| | ଯେ ବ୍ରତେ ହୋଇଥାଇ କୃଶ | । ସେ ପ୍ରାଣ ଛାଡ଼ିବି ଅବଶ୍ୟ | ।। | ୧୭୫ |

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୪୪ | ବ୍ରାହ୍ମଣ କୃଷ୍ଣଙ୍କୁ କହଇ | । ଏମନ୍ତ ପରକାରେ ମୁହିଁ | ।। | ୧୭୬ |
| | ହେ ଯଦୁଦେବ ! ତୁମ୍ଭ ଠାକୁ | । ଆଣିଲି ଏ ଗୁପ୍ତ ବାର୍ତ୍ତାକୁ | ।। | ୧୭୭ |
| | ଏଠାରେ କର୍ତ୍ତବ୍ୟ ଯେ ପୁଣ | । ସେ କାର୍ଯ୍ୟ ଉତ୍ତମ କରିଣ | ।। | ୧୭୮ |
| | ବିଚାର କରି ଏ ଉତ୍ତାରେ | । ଶ୍ରୀକୃଷ୍ଣ ! କର ହେ ସତ୍ୱରେ | ।। | ୧୭୯ |
| | ଦଶମସ୍କନ୍ଧ ଭାଷାଗୀତେ | । ବୈଷ୍ଣବମାନଙ୍କର ହିତେ | ।। | ୧୮୦ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । ସୁଜନେ ତୋଷ ହୁଅ ତେଣେ | ।। | ୧୮୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ରୁକ୍ମିଣ୍ୟାଃ ଶ୍ରୀକୃଷ୍ଣାୟ ସନ୍ଦେଶୋ
ନାମ ଦ୍ୱିପଞ୍ଚାଶୋଽଧ୍ୟାୟଃ ।।

## ତ୍ରିପଞ୍ଚାଶ ଅଧ୍ୟାୟ

ତ୍ରିପଞ୍ଚାଶତ୍ତମେ ଗତ୍ୱା ବିଦର୍ଭାନଭୁତେହିତଃ ।
ରୁକ୍ମିଣୀମହରଦ୍ କୃଷ୍ଣୋ ମିଷତାଂ ଦ୍ୱିଷତାଂ ବଳାତ୍ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ପରୀକ୍ଷିତଙ୍କୁ ଶୁକ ମୁନି | । କହୁଅଛନ୍ତି ଏବେ ପୁଣି | ।। | ୧ |
| | ଏ ରୂପେ ସେ ଯଦୁନନ୍ଦନ | । ରୁକ୍ମିଣୀସନ୍ଦେଶ ଶୁଣିଣ | ।। | ୨ |
| | ହସ୍ତରେ ଧରିଣ ହସ୍ତକୁ | । ହସି କହିଲେ ସେ ବିପ୍ରକୁ | ।। | ୩ |

### ଶ୍ରୀଭଗବାନୁବାଚ

୨ | [1]କମଳପରା ନେତ୍ର ଯାର । ରାତ୍ରିରେ ନିଦ୍ରା ନାହିଁ ତାର ॥ ୪
୩ | ମୋତେ ନ ପାଇ ନିରନ୍ତର । ଅନେକ ଚିନ୍ତା ମନେ ତାର ॥ ୫
ମୋର ମନହିଁ ତାହାଠାରେ । ପ୍ରବେଶ ହେଲା ସେ ପ୍ରକାରେ ॥ ୬
ନିଦ୍ରା ନ ଯାଇ ରାତ୍ରକାଳେ । ମନ ବିକଳ ମୋର ଭୋଳେ ॥ ୭
ସେ ରୁକ୍ମୀ ଦ୍ୱେଷଭାବୁଁ ପୁଣ । ମୋ ବିଭା କଲା ନିବାରଣ ॥ ୮
ଏମନ୍ତ ଜାଣିଛଇଁ ମୁହିଁ । ସେ ହୀନ ନୃପତିଙ୍କି ତହିଁ ॥ ୯
ଯୁଦ୍ଧରେ କରିଣ ମନ୍ଥନ । ନିର୍ଦ୍ଦୋଷ ଯାହା' ଅଙ୍ଗମାନ ॥ ୧୦
ମୋଠାରେ ଅଟେ ଯେ ତତ୍‌ପର । ସେ ରୁକ୍ମିଣୀକି ମୁଁ ଆବର ॥ ୧୧
ସେଠାରୁ ଆଣିମି ନିଶ୍ଚୟେ । କାଷ୍ଠରୁ ଅଗ୍ନିଶିଖାପ୍ରାଏ ॥ ୧୨

### ଶ୍ରୀଶୁକ ଉବାଚ

୪ ସେ ରୁକ୍ମିଣୀର ଭଗବାନ । ବିବାହନକ୍ଷତ୍ର ଜାଣିଣ ॥ ୧୩
ଆହେ ଦାରୁକ ! ତୁ ସତ୍ୱର । ରଥକୁ ଯାଇଁ ସଜ କର ॥ ୧୪
ଏରୂପେ ସାରଥିକି ପୁଣ । ଆଜ୍ଞାକୁ ଦେଲେ ସେ ବହନ ॥ ୧୫
୫ ହେ ନୃପ ! ଶୈବ୍ୟ ସୁଗ୍ରୀବକ । ଯେ ମେଘପୁଷ୍ପ ବଳାହକ ॥ ୧୬
ଏ ଚାରି ଅଶ୍ୱଙ୍କୁ ଯୋଚିଣ । ରଥକୁ ସତ୍ୱର ଆଣିଣ ॥ ୧୭
ଆଗରେ ପ୍ରାଞ୍ଜଳି ହୋଇଣ । ରହିଲା ସେ ଦାରୁକ ପୁଣ ॥ ୧୮
୬ ସେ ବ୍ରାହ୍ମଣକୁ ବସାଇଣ । ରଥକୁ କରି ଆରୋହଣ ॥ ୧୯
ଯେ ଶୀଘ୍ରେ ଗମନ କରନ୍ତି । ସେ ଅଶ୍ୱମାନଙ୍କରେ ଅତି ॥ ୨୦
ଆନର୍ତ୍ତଦେଶରୁ ବହନ । ସେ ଏକରାତ୍ରିକରେ ପୁଣ ॥ ୨୧
ବିଦର୍ଭଦେଶକୁ ବୋଲିଣ । ଗମନ କଲେ ଭଗବାନ ॥ ୨୨
୭ କୁଣ୍ଡିନପତି ନରସାଇଁ । ପୁତ୍ରସ୍ନେହରେ ବଶ ହୋଇ ॥ ୨୩
ଶିଶୁପାଳକୁ ଆପଣାର । କନ୍ୟାକୁ ଦିଅନ୍ତେ ଆବର ॥ ୨୪
ଯେ କର୍ମମାନ ତଦୁଚିତ । ତା' କରାଇଲା ସେ ସମସ୍ତ ॥ ୨୫
୮ ଯେ ମାର୍ଗ [2]ରଥ୍ୟା ଚତୁଷ୍ପଥ । ଏମାନେ ଯହିଁରେ ସଂତତ ॥ ୨୬
ଉତ୍ତମ ମାର୍ଜନା ହୋଇଣ । ସଂସିକ୍ତ ହୋଇଛନ୍ତି ପୁଣ ॥ ୨୭
ବିଚିତ୍ର ଧ୍ୱଜପତାକାରେ । ପୁଣି ତୋରଣମାନଙ୍କରେ ॥ ୨୮
ଉତ୍ତମ କରି ଅଳଂକୃତ । କଲା ସେ ପୁରକୁ ଅତ୍ୟନ୍ତ ॥ ୨୯
୯ ମାଳା ଚନ୍ଦନ ଆଭରଣ । ଯେ ପଟ୍ଟବସ୍ତ୍ରମାନେ ଆନ ॥ ୩୦
ଏଣେ ଯେ ଅଟଇ ଭୂଷିତ । ସ୍ତିରୀପୁରୁଷେ ଯେ ସେବିତ ॥ ୩୧

---

୧. ଯଥା ବିନିଦ୍ରା ମଚ୍ଚିନ୍ତା ରୁକ୍ମିଣୀ କମଳେକ୍ଷଣା । ଇତି ଅଧିକଃ ପାଠଃ ।
୨. ରଥ୍ୟା = ଗଳିରାସ୍ତା ।

ଅଗୁରୁଧୂପରେ ଧୂପିତ । ଯେ ହୋଇଛନ୍ତି ଅବିରତ ॥ ୩୨
ସେ ଗୃହମାନଙ୍କରେ ପୁଣ । ଯେ ପୁର ହୋଇଛି ଶୋଭନ ॥ ୩୩
୧୦ ପିତୃଗଣଙ୍କୁ ଦେବତାଙ୍କୁ । ଆବର ବ୍ରାହ୍ମଣମାନଙ୍କୁ ॥ ୩୪
ଯଥାବିଧିରେ ହେ ରାଜନ । ଉତ୍ତମ ପୂଜାକୁ କରିଣ ॥ ୩୫
ଆନ ଲୋକଙ୍କୁ ପୁଣ ତହିଁ । ଉତ୍ତମ ଭୋଜନ କରାଇ ॥ ୩୬
୧୧ ଉତ୍ତମ ଯାର ଦନ୍ତମାନ । ଯେ କରିଅଛି ଦିବ୍ୟସ୍ନାନ ॥ ୩୭
ନବୀନ ବେନି ବସନରେ । ଶ୍ରେଷ୍ଠ ଭୂଷଣମାନଙ୍କରେ ॥ ୩୮
ଭୂଷିତ ହୋଇଛି ଯେ ଅତି । ସେ କନ୍ୟାନିମିତ୍ତେ ନୃପତି ॥ ୩୯
ମଙ୍ଗଳବଚନମାନଙ୍କୁ । ପଢ଼ାଇଲା ସେ ବ୍ରାହ୍ମଣଙ୍କୁ ॥ ୪୦
୧୨ ବ୍ରାହ୍ମଣଶ୍ରେଷ୍ଠମାନେ ପୁଣ । ଯେ ସାମ-ଋକ-ଯଜୁ ନାମ ॥ ୪୧
ସେ ବେଦମନ୍ତ୍ରରେ ଆବର । ରକ୍ଷାକୁ କଲେ ସେ ବଧୂର ॥ ୪୨
ଅଥର୍ବମନ୍ତ୍ର ଯେ ଜାଣଇଁ । ସେ ପୁରୋହିତ ହିଁ ସେଠାଇଁ ॥ ୪୩
ଗ୍ରହମାନଙ୍କ ଶାନ୍ତି ଅର୍ଥେ । ହୋମକୁ କଲେ ସେ ଯଥାର୍ଥେ ॥ ୪୪
୧୩ ବିଧି ଜାଣନ୍ତି ଯଉଁ ଜନ । ତହିଁରେ ଶ୍ରେଷ୍ଠ ସେ ରାଜନ ॥ ୪୫
ହିରଣ୍ୟ ରୂପ୍ୟ ଯେ ବସନ । ଗୁଡ଼ମିଶ୍ରିତ ତିଳମାନ ॥ ୪୬
ପୁଣି ହିଁ ଉତ୍ତମ ଧେନୁଙ୍କୁ । ଦେଲା ସେ ବ୍ରାହ୍ମଣମାନଙ୍କୁ ॥ ୪୭
୧୪ ଯେ ଚେଦିମାନଙ୍କର ପତି । ସେ ଦମଘୋଷ ନରପତି ॥ ୪୮
ଏରୂପେ ପୁତ୍ରନିମିତ୍ତରେ । ମନ୍ତ୍ରଜ୍ଞ ବିପ୍ରମାନଙ୍କରେ ॥ ୪୯
ଯେ ଅଭ୍ୟୁଦୟକୁ ଉଚିତ । କର୍ମ କରାଇଲା ସମସ୍ତ ॥ ୫୦
୧୫ ମଦଜଳକୁ ସ୍ରବୁଛନ୍ତି । ଏମନ୍ତ ଗଜ ଯେ ଅଟନ୍ତି ॥ ୫୧
ମଣ୍ଡିତ ସୁବର୍ଣ୍ଣମାଳାରେ । ଉତ୍ତମ ରଥମାନଙ୍କରେ ॥ ୫୨
ପଦାତି-ଅଶ୍ୱମାନଙ୍କରେ । ଯେ ସୈନ୍ୟ ସଂକୁଳ ନିର୍ଭରେ ॥ ୫୩
ବେଷ୍ଟିତ ହୋଇ ରାଜା ତେଣେ । ଚଳିଲା କୁଣ୍ଡିନ ଭୁବନେ ॥ ୫୪
୧୬ ବିଦର୍ଭଦେଶ-ଅଧିପତି । ସେ ଶିଶୁପାଳକୁ ଝଟିତି ॥ ୫୫
ପାଛୋଟି ଯାଇ କରି ପୁଣ । ଉତ୍ତମ ପୂଜାକୁ କରିଣ ॥ ୫୬
ନିର୍ମିତ ହୋଇ କରି ଆନ । ଅଛି ଯେ [1]ନିବେଶନସ୍ଥାନ ॥ ୫୭
ତହିଁରେ ହରଷ ହୋଇଣ । ତାହାକୁ କଲା [2]ନିବେଶନ ॥ ୫୮
୧୭ ଯେ ଶାଲ୍ୱ ମଗଧଦେଶନାଥ । ଯେ ଦନ୍ତବକ୍ର ବିଦୂରଥ ॥ ୫୯
୧୯ ପୌଣ୍ଡ୍ରକ ଆଦି ନୃପେ ପୁଣ । ସହସ୍ର ସହସ୍ର ହୋଇଣ ॥ ୬୦
ଶିଶୁପାଳର ପକ୍ଷ ଯେତେ । ସେଠାକୁ ଅଇଲେ ସମସ୍ତେ ॥ ୬୧
ଶତ୍ରୁ ସେ ରାମକୃଷ୍ଣଙ୍କର । ସେ ଶିଶୁପାଳକୁ ଆବର ॥ ୬୨

---

୧. ରହିବା ସ୍ଥାନ । ୨. ପ୍ରବେଶ ।

| | | | | | |
|---|---|---|---|---|---|
| | କନ୍ୟାକୁ ସାଧିବା ନିମିତ୍ତେ | । | ସଯତ୍ନ ହୋଇ ସେ ସମସ୍ତେ | ॥ | ୬୩ |
| | ରାମାଦି ଯଦୁମାନଙ୍କରେ | । | ବେଷ୍ଟିତ ହୋଇଣ ନିର୍ଭରେ | ॥ | ୬୪ |
| | ଯେବେ ସେ ଶ୍ରୀକୃଷ୍ଣ ଆସିଣ | । | କନ୍ୟାକୁ କରିବ ହରଣ | ॥ | ୬୫ |
| | ତେବେ ତା' ତୁଲେ ଆମ୍ଭେମାନେ | । | ଯୁଦ୍ଧ କରିବା ସେହି ସ୍ଥାନେ | ॥ | ୬୬ |
| | ଏ କଥା ମନରେ ନିଶ୍ଚୟେ | । | କରି ଅଇଲେ ସେ ସଭିଏଁ | ॥ | ୬୭ |
| | ସମଗ୍ର ବଳ ବାହନରେ | । | ଯୁକ୍ତ ହୋଇ ସେ ମହୀପାଳେ | ॥ | |
| ୨୦। | ସେ ଭଗବାନ ବଳରାମ | । | ବିପକ୍ଷ ରାଜାଙ୍କ ଉଦ୍ୟମ | ॥ | ୬୮ |
| ୨୧। | ସେ କାଳେ ଶ୍ରବଣ କରିଣ | । | କନ୍ୟା ହରିବା ନିମିତ୍ତେଣ | ॥ | ୬୯ |
| | କୃଷ୍ଣ ଚଳିଲେ ଏକା ହୋଇ | । | ପୁଣି ଏମନ୍ତ ଶୁଣି ତହିଁ | ॥ | ୭୦ |
| | କଳହ ହୋଇବା ନିମିତ୍ତେ | । | ସେ ରାମ ଶଙ୍କାକୁ ଲଭନ୍ତେ | ॥ | ୭୧ |
| | ଭ୍ରାତାସ୍ନେହରେ ଯୁକ୍ତ ହେଇ | । | ବହୁତ ବଳ ସଙ୍ଗେ ତହିଁ | ॥ | ୭୨ |
| | ଯେ ଗଜ-ଅଶ୍ୱ-ରଥ-ପତ୍ତି[୧] | । | ଏଣେ ସଂଯୁତ ହୋଇ ଅତି | ॥ | ୭୩ |
| | କୁଣ୍ଡିନପୁରକୁ ଗମନ | । | କଲେ ସେ ତ୍ୱରିତ ହୋଇଣ | ॥ | ୭୪ |
| ୨୨ | ଭୀଷ୍ମକସୁତା ସେ ରୁକ୍ମିଣୀ | । | କୃଷ୍ଣ-ଆଗମନକୁ ପୁଣି | ॥ | ୭୫ |
| | ଆକାଂକ୍ଷା କରନ୍ତେ ସତ୍ୱର | । | ପ୍ରତ୍ୟାଗମନକୁ ବିପ୍ରର | ॥ | ୭୬ |
| | ନ ଦେଖି କରି ସେ କାଳରେ | । | ଏମନ୍ତ ଚିନ୍ତିଲେ ମନରେ | ॥ | ୭୭ |
| ୨୩ | ମନ୍ଦ ଅଟଇ ଭାଗ୍ୟ ମୋର | । | ଦେଖ ଏ କଷ୍ଟକୁ ଆବର | ॥ | ୭୮ |
| | ରଜନୀମାତ୍ରକେ ଅନ୍ତର | । | ବିବାହ ହୋଇବା ମୋହର | ॥ | ୭୯ |
| | ପଦ୍ମଲୋଚନ ଭଗବାନ | । | ଏଠାକୁ ନ କଲେ ଗମନ | ॥ | ୮୦ |
| | ଏଠାରେ ଯେ ଅଟେ କାରଣ | । | ମୁଁ ତାହା ନ ଜାଣୁଛି ପୁଣ | ॥ | ୮୧ |
| ୨୪ | ଯେ ମୋର ସନ୍ଦେଶ ହରିଲା | । | ସେ ବିପ୍ର ଆଜ ହିଁ ନଇଲା | ॥ | ୮୨ |
| | ନିର୍ଦ୍ଦୋଷ ଆତ୍ମା ଅଟେ ଯାର | । | ସେ ହରି ମୋ ଠାରେ ଆବର | ॥ | ୮୩ |
| | ନିନ୍ଦିତ କର୍ମ ଦେଖି କିଛି | । | ଏମନ୍ତ ଶଙ୍କା ମୁଁ କରୁଛି | ॥ | ୮୪ |
| | ମୋ ପାଣିଗ୍ରହଣରେ ପୁଣ | । | ଉତ୍ତମ ଉଦ୍ୟମ କରିଣ | ॥ | ୮୫ |
| | ତେଣୁ ସେ ଏତେବେଳଯାଏ | । | ଏଠାକୁ ନଇଲେ ନିଶ୍ଚୟେ | ॥ | ୮୬ |
| ୨୫ | ଦୁର୍ଭଗା ଅଟଇ ଯେ ମୁହିଁ | । | ମୋ ଠାରେ ଧାତା ଶିବ ଦୁଇ | ॥ | ୮୭ |
| | ଏ ଅନୁକୂଳ ନୋହିଛନ୍ତି | । | ଯେ ଦେବୀ ଗଉରୀ ଅଟନ୍ତି | ॥ | ୮୮ |
| | ସେ ସତୀ ଗିରିଜା ରୁଦ୍ରାଣୀ | । | ବିମୁଖ ହୋଇଛନ୍ତି ପୁଣି | ॥ | ୮୯ |
| ୨୬ | ଗୋବିନ୍ଦଠାରେ ଯାର ଚିତ୍ତ | । | ସେ ବାଳା ଚିନ୍ତନ୍ତେ ଏମନ୍ତ | ॥ | ୯୦ |
| | ଲୋତକକଳାରେ ଆକୁଳ | । | ଅଟନ୍ତି ଯେ ନେତ୍ରଯୁଗଳ | ॥ | ୯୧ |
| | କାଳଜ୍ଞା[୨] ଅଟଇ ସେ ପୁଣ | । | ସେ ନେତ୍ର କଲା ନିମୀଳନ | ॥ | ୯୨ |

୧. ପତ୍ତି = ପଦାତିକ ସୈନ୍ୟ ।

୨. ଏବେ ମଧ୍ୟ ଶ୍ରୀଗୋବିନ୍ଦଙ୍କ ଆଗମନକାଳ ହୋଇନାହିଁ ବୋଲି ଜାଣୁଥିବା ।

| | | | | | |
|---|---|---|---|---|---|
| ୨୭ | ଏମନ୍ତ ରୂପେ ହେ ରାଜନ | । | ସେ ବଧୂ କୃଷ୍ଣ-ଆଗମନ | ॥ | ୯୩ |
| | ପ୍ରତୀକ୍ଷା କରନ୍ତେ ନିର୍ଭରେ | । | ତାହାର ବାମ ପାରୁଶରେ | ॥ | ୯୪ |
| | ଯେ ଉରୁ ଭୁଜ ନେତ୍ର ଛନ୍ତି | । | ପ୍ରିୟ କଥାକୁ ସେ ସୂଚନ୍ତି | ॥ | ୯୫ |
| | ସେମାନେ ଉତ୍ତମ ହୋଇଣ | । | ସେକାଳେ ହୋଇଲେ ସ୍ଫୁରଣ | ॥ | ୯୬ |
| ୨୮ | ସେ କୃଷ୍ଣ ଏଥୁ ଅନନ୍ତରେ | । | [1]ଆଜ୍ଞା ଦିଅନ୍ତେ ସେ କାଳରେ | ॥ | ୯୭ |
| | ଯାଇ ସେ ବ୍ରାହ୍ମଣ ଝଟିତି | । | ଯେ ଦେବୀ ଅନ୍ତଃପୁରେ ଛନ୍ତି | ॥ | ୯୮ |
| | ସେ ରାଜନନ୍ଦିନୀଙ୍କି ପୁଣ | । | ସେଠାରେ କଲା ବିଲୋକନ | ॥ | ୯୯ |
| ୨୯ | ଲକ୍ଷଣମାନଙ୍କୁ ଦୂତର | । | ଯେ କରିପାରଇ ଗୋଚର | ॥ | ୧୦୦ |
| | ଯେ ଶୁଚିସ୍ମିତା ଅଟେ ପୁଣି | । | ସତୀ ଅଟଇ ସେ ରୁକ୍ମିଣୀ | ॥ | ୧୦୧ |
| | ବ୍ୟଗ୍ର ନୋହିଛି ଯାର ଗତି | । | ହୃଷ୍ଟ ବଦନ କରି ଅତି | ॥ | ୧୦୨ |
| | ବିପ୍ରକୁ ଲକ୍ଷିତ କରିଣ | । | ପୁଛିଲେ ଉତ୍ତମ ଜାଣିଣ | ॥ | ୧୦୩ |
| ୩୦ | ଏଠାରେ ଯାଦବନନ୍ଦନ | । | ପ୍ରବେଶ ହୋଇଲେ ଆସିଣ | ॥ | ୧୦୪ |
| | ରୁକ୍ମିଣୀଙ୍କି ସେ ବିପ୍ର ପୁଣ | । | ଏମନ୍ତ କଲା ନିବେଦନ | ॥ | ୧୦୫ |
| | ମୁଁ ଘେନି ଅଇଲି କୃଷ୍ଣଙ୍କୁ | । | ପୁଣି କହିଲା ଏ ବାର୍ତ୍ତାକୁ | ॥ | ୧୦୬ |
| | ଏ ରୂପେ ସତ୍ୟବାକ୍ୟମାନ | । | ସମସ୍ତ କହିଲା ବ୍ରାହ୍ମଣ | ॥ | ୧୦୭ |
| ୩୧ | ଶ୍ରୀକୃଷ୍ଣ ହୋଇଲେ ଆଗତ | । | ରୁକ୍ମିଣୀ ଜାଣିଣ ଏମନ୍ତ | ॥ | ୧୦୮ |
| | ଅତି ଆନନ୍ଦଚିତ୍ତ ହୋଇ | । | ବିପ୍ରକୁ ଦେବାକୁ ବଧାଇ | ॥ | ୧୦୯ |
| | ପ୍ରିୟ କରିଣ କିଛି ଆନ | । | ଦ୍ରବ୍ୟ ନ କରି ବିଲୋକନ | ॥ | ୧୧୦ |
| | କେବଳ କଲେ ସେ ପ୍ରଣାମ | । | ପଛେ ବହୁତ ଦେଲେ ଧନ | ॥ | ୧୧୧ |
| ୩୨ | ବିବାହ ନିଜ ଦୁହିତାର | । | ଦେଖିବା ନିମିତ୍ତେ ସତ୍ୱର | ॥ | ୧୧୨ |
| | ଅଇଲେ ଉତ୍ସୁକ ହୋଇଣ | । | ଶ୍ରୀରାମକୃଷ୍ଣ ବେନି ଜଣ | ॥ | ୧୧୩ |
| | ଏମନ୍ତ ଶ୍ରବଣ କରିଣ | । | ବିଭାବିଧାନକୁ ଘେନିଣ | ॥ | ୧୧୪ |
| | ବାଦ୍ୟଘୋଷରେ ସେ ନୃପତି | । | ଚଳିଲା ସେଠାକୁ ଝଟିତି | ॥ | ୧୧୫ |
| ୩୩ | ଅମଳ ଯେ ବସନମାନ | । | ଯେ ପୁଣ ମଧୁପର୍କ[2] ଆନ | ॥ | ୧୧୬ |
| | ଯେ ବା ଅଭୀଷ୍ଟ ଉପାୟନ | । | ସେମାନ ସମସ୍ତ ଘେନିଣ | ॥ | ୧୧୭ |
| | ରାମକୃଷ୍ଣଙ୍କୁ ସେ ନୃପତି | । | ପୂଜିଲା ବିଧିମତେ ଅତି | ॥ | ୧୧୮ |
| ୩୪ | ସେ ମହାମତି ନୃପବର | । | ସେ ରାମକୃଷ୍ଣ ବେନିଙ୍କର | ॥ | ୧୧୯ |
| | ସୈନ୍ୟମାନଙ୍କ ସହିତରେ | । | ଅନୁଗମାନଙ୍କ ତୁଲରେ | ॥ | ୧୨୦ |
| | ଶ୍ରୀମନ୍ତ ଯଉଁ ନିବେଶନ | । | ତାହାକୁ କଳ୍ପନା କରିଣ | ॥ | ୧୨୧ |

୧. ଉପବନରେ ଥାଇ ଶ୍ରୀକୃଷ୍ଣ ଆଜ୍ଞା ଦେଇଥିଲେ ।

୨. ମଧୁପର୍କ = କନ୍ୟାପିତାର ଗୃହଦ୍ୱାରରେ ନବାଗତ ବରର ସମ୍ମାନ ଉଦ୍ଦେଶ୍ୟରେ ତାହାକୁ ଅର୍ପିତ ମଧୁ ଓ କ୍ଷୀର ।

| | | | | |
|---|---|---|---|---|
| | ଅତିଥିବିଧି ଯଥୋଚିତେ | । ବିଧାନ କଲେ ସେ ତୁରିତେ | ।। | ୧୨୨ |
| ୩୫ | ତହିଁକି ଯେତେକ ରାଜନ | । ଅଇଲେ ଉତ୍ତମ ହୋଇଣ | ।। | ୧୨୩ |
| | ଏହି ରୂପରେ ତାହାଙ୍କର | । ଯେମନ୍ତ ବୟସ ଯାହାର | ।। | ୧୨୪ |
| | ଯେମନ୍ତ ଯାର ପରାକ୍ରମ | । ଯେତେକ ଯାହାର ସଇନ୍ୟ | ।। | ୧୨୫ |
| | ଯେତେ ଯାହାର ଦ୍ରବ୍ୟମାନ | । ଏମାନ ନ କରି ଲଙ୍ଘନ | ।। | ୧୨୬ |
| | ସବୁ କାମନାମାନଙ୍କରେ | । ତାଙ୍କୁ ପୂଜିଲେ ଯଥାର୍ଥରେ | ।। | ୧୨୭ |
| ୩୬ | ବିଦର୍ଭପୁରବାସୀ ଜନେ | । କୃଷ୍ଣ ଅଇଲେ ଏ ଭୁବନେ | ।। | ୧୨୮ |
| | ଏମନ୍ତ କରିଣ ଶ୍ରବଣ | । ସେଠାକୁ ଗମନ କରିଣ | ।। | ୧୨୯ |
| | ସେ କୃଷ୍ଣ ବଦନ-ନଳିନ | । ନେତ୍ରାଞ୍ଜଳିରେ କଲେ ପାନ | ।। | ୧୩୦ |
| ୩୭ | ଏ ଶ୍ରୀକୃଷ୍ଣର ଏ ରୁକ୍ମିଣୀ | । ଭାର୍ଯ୍ୟା ହେବାକୁ ଯୋଗ୍ୟ ପୁଣି | ।। | ୧୩୧ |
| | ଯୋଗ୍ୟ ନୁହଇ ଆନ ନାରୀ | । ଏମନ୍ତ ମଣୁଁ ନିଷ୍ଠେ କରି | ।। | ୧୩୨ |
| | ନିର୍ଦ୍ଦୋଷ ଅଟେ ଆତ୍ମା ଯାର | । ଏମନ୍ତ କୃଷ୍ଣ ହିଁ ଆବର | ।। | ୧୩୩ |
| | ଭୀଷ୍ମକସୁତାର ଏ ପତି | । ହେବାକୁ ଯୋଗ୍ୟ ଅଟେ ଅତି | ।। | ୧୩୪ |
| ୩୮ | ଆମ୍ଭର କିଛି ସୁଚରିତ | । ପୂର୍ବେ ଯେ ହୋଇଥିଲା କୃତ | ।। | ୧୩୫ |
| | ତ୍ରିଲୋକକର୍ତ୍ତା ଏ ଅଚ୍ୟୁତ | । ସେ ହେତୁ ହୋଇଣ ସଂତୁଷ୍ଟ | ।। | ୧୩୬ |
| | ଏହି ଅନୁଗ୍ରହ କରନ୍ତୁ | । ରୁକ୍ମିଣୀହସ୍ତ ଏ ଧରନ୍ତୁ | ।। | ୧୩୭ |
| ୩୯ | ପ୍ରେମକଳା[୧] ରେ ବଦ୍ଧ ହୋଇ | । ସେ ପୁରବାସୀ ଜନେ ତହିଁ | ।। | ୧୩୮ |
| | ବୋଲନ୍ତେ ଏମନ୍ତ ପ୍ରକାରେ | । ଅନ୍ତଃପୁରରୁ ଯୋଦ୍ଧାଙ୍କରେ | ।। | ୧୩୯ |
| | ସେ କନ୍ୟା ରକ୍ଷିତ ହୋଇଲା | । ଅମ୍ବିକାଭବନେ ଚଳିଲା | ।। | ୧୪୦ |
| ୪୦ | ଭବାନୀପାଦପଲ୍ଲବକୁ | । ପାଦେ ଚଳିଲା ଦେଖିବାକୁ | ।। | ୧୪୧ |
| | ମୁକୁନ୍ଦଚରଣନଳିନ | । କରନ୍ତେ ସେ ଉତ୍ତମେ ଧ୍ୟାନ | ।। | ୧୪୨ |
| ୪୧ | ବଚନମାତ୍ରକୁ ସଂଯତ | । ଯେ କରିଅଛନ୍ତି ସଂତତ | ।। | ୧୪୩ |
| | ସେ ସଖୀମାନଙ୍କ ସଙ୍ଗେଣ | । ରୁକ୍ମିଣୀ ବେଷ୍ଟିତ ହୋଇଣ | ।। | ୧୪୪ |
| | ଯେ ରାଜଭଟ ଶୂରମାନେ | । ସନ୍ନଦ୍ଧ ଅଟନ୍ତି ଯତନେ | ।। | ୧୪୫ |
| | ଯେ ଶସ୍ତ୍ରମାନ ଟେକିଥିଲେ | । ତେଣେ ରକ୍ଷିତ ହୋଇ ଗଲେ | ।। | ୧୪୬ |
| | ଯେ ବା ମର୍ଦ୍ଦଳ ଶଙ୍ଖମାନ | । ଯେ ବା ପଣବମାନେ ଆନ | ।। | ୧୪୭ |
| | ଯେ ଭେରୀ ତୂରୀମାନେ ପୁଣ | । ଏମାନେ ବାଜିଲେ ବହନ | ।। | ୧୪୮ |
| ୪୨ | ନାନାପ୍ରକାର ଉପହାର | । ଯେ ଅବା ବଳିମାନେ ଆର | ।। | ୧୪୯ |
| | ତେଣେ ସଂଯୁତ ହୋଇ କରି | । ସହସ୍ରସଂଖ୍ୟ ବାରନାରୀ | ।। | ୧୫୦ |
| | ମାଳା-ଚନ୍ଦନ-ବସ୍ତ୍ରମାନ | । ଯେ ଆଭରଣମାନେ ଆନ | ।। | ୧୫୧ |
| | ଏଣେ ଅଳଂକୃତ ହୋଇଣ | । ବ୍ରାହ୍ମଣପତ୍ନୀମାନେ ପୁଣ | ।। | ୧୫୨ |

୧. କଳା = ଲେଶ ।

୪୩ ଗାୟକେ କରନ୍ତେ ଗାୟନ । ସ୍ତୁତି କରନ୍ତେ ଆନ ଜନ ।। ୧୫୩
ବାଦ୍ୟ ବଜାନ୍ତି ଯଉଁ ଜନ । ସୂତ-ମାଗଧ-ବନ୍ଦୀମାନ[୧] ।। ୧୫୪
ଏମାନେ କନ୍ୟାକୁ ବେଢ଼ିଣ । ଗମନ କଲେ ହେ ରାଜନ ।। ୧୫୫
୪୪ ଦେବୀଙ୍କ ଗୃହରେ ରୁକ୍ମିଣୀ । ଆସନ୍ନ ହୋଇକରି ପୁଣି ।। ୧୫୬
ଯେ କର-ଚରଣ-ନଳିନ । ଧଉତ କରିଣ ଏମାନ ।। ୧୫୭
ଆଚମନକୁ କରି ତହିଁ । ଶୁଦ୍ଧ ହୋଇଣ ଶାନ୍ତ ହୋଇ ।। ୧୫୮
ଅମ୍ବିକାଙ୍କର ନିକଟରେ । ପ୍ରବେଶ ହେଲେ ସେ କାଳରେ ।। ୧୫୯
୪୫ ବିଧିଜ୍ଞ ଅଟନ୍ତି ଯେ ପୁଣ । ସେ ବୃଦ୍ଧ ବିପ୍ରନାରୀଗଣ ।। ୧୬୦
ଭବଙ୍କ ପତ୍ନୀ ଯେ ଅଟନ୍ତି । ଭବେ ଅନ୍ୱିତ ହୋଇଛନ୍ତି ।। ୧୬୧
ସେ ଗିରିଜାଙ୍କୁ ସେ କନ୍ୟାକୁ । କରାଇଲେ ସେ ବନ୍ଦନକୁ ।। ୧୬୨
୪୬ ଆଗୋ ଅମ୍ବିକା ମୁଁ ତୁମ୍ଭଙ୍କୁ । ବହୁତ କଲି ପ୍ରଣାମକୁ ।। ୧୬୩
ଯେ ଅଟେ ଆପଣା ସନ୍ତାନ[୨] । ତେଣେ ତୁ ଯୁକ୍ତ ଅଟୁ ପୁଣ ।। ୧୬୪
ମଙ୍ଗଳବତୀ ତୁ ଆପଣ । ଯେ କୃଷ୍ଣ ଅଟେ ଭଗବାନ ।। ୧୬୫
ପତି ସେ ହୁଅନ୍ତୁ ମୋହର । ଏ କଥା କର ତୁ ସ୍ୱୀକାର ।। ୧୬୬
୪୭| ସେ ଗନ୍ଧ-ଅକ୍ଷତ-ଧୂପରେ । ବସନ-ମାଳା-ଭୂଷଣରେ ।। ୧୬୭
୪୮| ଯେ ନାନାରୂପ ଉପହାର । ସେ ବଳିମାନଙ୍କେ ଆବର ।। ୧୬୮
ପ୍ରଦୀପାବଳୀରେ ରୁକ୍ମିଣୀ । ପୂଜିଲେ ଭିନ୍ନେ ଭିନ୍ନେ ପୁଣି ।। ୧୬୯
ଯେ ପତିସହିତ ଅଟନ୍ତି । ସେ ବିପ୍ରନାରୀମାନେ ଅତି ।। ୧୭୦
ସେହି ରୂପରେ ସେ ଦ୍ରବ୍ୟରେ । ତାଙ୍କୁ ପୂଜିଲେ ସେ କାଳରେ ।। ୧୭୧
୪୯ ଲବଣ ଅପୂପ[୩] ତାମ୍ବୂଳ । ଯେ କଣ୍ଠସୂତ୍ର ଇକ୍ଷୁ ଫଳ ।। ୧୭୨
ସେ ନାରୀମାନେ ଏମାନଙ୍କୁ । ପ୍ରଦାନ କଲେ ଅମ୍ବିକାଙ୍କୁ ।। ୧୭୩
ଯେ ଆନ ନାରୀମାନେ ଥିଲେ । ସେ ଆଶୀର୍ବାଦମାନ ଦେଲେ ।। ୧୭୪
ବଧୂ ଅଟଇ ସେ ରୁକ୍ମିଣୀ । ସେ ସର୍ବ ବନିତାଙ୍କୁ ପୁଣି ।। ୧୭୫
କରି ଉତ୍ତମ ପ୍ରଣାମକୁ । ଗ୍ରହଣ କଲେ ନିର୍ମାଲ୍ୟକୁ ।। ୧୭୬
୫୦ ରତ୍ନମୁଦିରେ ଅବିରତ । ଶୋଭା ପାଉଛି ଯଉଁ ହସ୍ତ ।। ୧୭୭
ସେ କରେ ସଖୀକି ଧରିଣ । ମଉନବ୍ରତକୁ ଛାଡ଼ିଣ ।। ୧୭୮
ଏଥୁ ଅନ୍ତରେ ଅମ୍ବିକାର । ଗୃହରୁ ହୋଇଲେ ବାହାର ।। ୧୭୯
୫୧ ଦେବତାମାୟାପ୍ରାୟେ ହୋଇ । ଧୀରଙ୍କୁ ମୋହିତ କରଇ ।। ୧୮୦
ସୁଷ୍ଠୁ ଅଟଇ ଯା' ମଧ୍ୟମ[୪] । କୁଣ୍ଡଳେ ମଣ୍ଡିତ ଆନନ ।। ୧୮୧
ନିତମ୍ବେ ଅର୍ପିତ ଯାହାର । ରତ୍ନମେଖଳା ମନୋହର ।। ୧୮୨
ଅଜାତରଜସ୍କ[୫] ଯେ ପୁଣ । ବ୍ୟକ୍ତ ଅଟଇ ଯାର ସ୍ତନ ।। ୧୮୩

---

୧. ସୂତ = ପୌରାଣିକ, ମାଗଧ = ବଂଶଗାୟକ, ବନ୍ଦୀ = ଆଶୁକବି । ୨. ସନ୍ତାନ = ଗଣେଶାଦି ।
୩. ପିଠା । ୪. କଟି । ୫. ଅଜାତରଜସ୍କ = ଯାହାଙ୍କ ରଜ ଜାତ ହୋଇ ନାହିଁ । (ଶ୍ୟାମା) ।

| | | | | |
|---|---|---|---|---|
| | କୁନ୍ତଳୁଁ ଶଙ୍କିତ ପରାଏ | । ଚଞ୍ଚଳ ଯାର ନେତ୍ର ଦୁହେଁ | ।। | ୧୮୪ |
| ୫୨ | ଯା' ସ୍ମିତ[୧] ବିଶୁଦ୍ଧ ଅଟଇ | । ବିମ୍ବଫଳର ପ୍ରାୟେ ହୋଇ | ।। | ୧୮୫ |
| ୫୩ | ଅଧରଦ୍ୟୁତି ଯେ ଅଟଇ | । ତେଣେ ଆରକ୍ତ ଯେ ଦିଶଇ | ।। | ୧୮୬ |
| | ଏମନ୍ତ ଦନ୍ତମାନେ ଯାର | । କୁନ୍ଦକୁଡ୍ମଳ[୨] ପରକାର | ।। | ୧୮୭ |
| | କଳହଂସର ପ୍ରାଏ ହୋଇ | । ଯେ ପୁଣ ଗମନ କରଇ | ।। | ୧୮୮ |
| | ଚଳନ୍ତେ ଯେ ଶୋଭାନୂପୁର | । ଯେ ତାର କାନ୍ତିରେ ସୁନ୍ଦର | ।। | ୧୮୯ |
| | ସେ ପାଦେ କରେ ଯେ ଗମନ | । ସେ ବଇଦର୍ଭୀକି ଦେଖିଣ | ।। | ୧୯୦ |
| | ତାର ନିମିତ୍ତେ ଯଉଁ ସ୍ମର[୩] | । ତେଣେ ଯେ ଅର୍ଦ୍ଦିତ ଆବର | ।। | ୧୯୧ |
| | ଯଶସ୍ୱୀ ହୋଇ ଆସିଛନ୍ତି | । ସେ ବୀରେ ମୋହ ହେଲେ ଅତି | ।। | ୧୯୨ |
| | ଯେ ତାର ଶ୍ରେଷ୍ଠ ହାସମାନ | । [୪]ବ୍ରୀଡ଼ା ସହିତ ବିଲୋକନ | ।। | ୧୯୩ |
| | ତେଣେ ଉତ୍ତମ ହୋଇ ହୃତ | । ହୋଇଛି ଯାହାଙ୍କର ଚିତ୍ତ | ।। | ୧୯୪ |
| | ଯେ ରଥ-ଗଜ-ଅଶ୍ୱମାନ | । ଯେ ଚଢ଼ି ଅଛନ୍ତି ଏମାନ | ।। | ୧୯୫ |
| | ଯେ ତ୍ୟକ୍ତ କଲେ ଅସ୍ତ୍ରମାନ | । ମୂଢ଼ ଅଟନ୍ତି ସେ ରାଜନ | ।। | ୧୯୬ |
| | ଯାତ୍ରାବ୍ୟାଜରେ ହରିଠାଇଁ | । ସ୍ୱଶୋଭା ଅର୍ପିଛି ଯେ ନେଇ | ।। | ୧୯୭ |
| | ଯଉଁ ରୁକ୍ମିଣୀକି ଦେଖିଣ | । ପଡ଼ିଲେ ପୃଥ୍ୱୀରେ ଏ ପୁଣ | ।। | ୧୯୮ |
| ୫୪ | ଭଗବାନର ସେ କାଳରେ | । ପ୍ରାପ୍ତି ଦେଖିବା ଅପେକ୍ଷାରେ | ।। | ୧୯୯ |
| | ଚରଣପଦ୍ମକୋଷ ବେନି | । ମନ୍ଦମନ୍ଦରେ ସେ ରୁକ୍ମିଣୀ | ।। | ୨୦୦ |
| | ଏ ରୂପେ କରନ୍ତେ ଚାଳନ | । ବାମକରଜ[୫] ମାନଙ୍କେଣ | ।। | ୨୦୧ |
| | ଅଳକମାନଙ୍କୁ ଟେକିଣ | । ଯେ ଉପସ୍ଥିତ ରାଜାମାନ | ।। | ୨୦୨ |
| | ଲଜ୍ଜାରେ ଦେଖନ୍ତେ ତାହାଙ୍କୁ | । ସେକାଳେ ଦେଖିଲେ କୃଷ୍ଣଙ୍କୁ | ।। | ୨୦୩ |
| ୫୫ | ଯା' ଇଚ୍ଛା ରଥ ଚଢ଼ିବାକୁ | । ଶ୍ରୀକୃଷ୍ଣ ସେ ରାଜକନ୍ୟାକୁ | ।। | ୨୦୪ |
| | ଦେଖନ୍ତେ ଶତ୍ରୁମାନେ ତହିଁ | । ଗରୁଡ଼ଚିହ୍ନ ଅଟେ ଯହିଁ | ।। | ୨୦୫ |
| | ସେ ରଥେ କରି ଆରୋହଣ | । ରାଜନ୍ୟସମୂହକୁ ପୁଣ | ।। | ୨୦୬ |
| | ବହୁତ କରି ପରାଭବ | । କନ୍ୟାକୁ ହରିଲେ ମାଧବ | ।। | ୨୦୭ |
| ୫୬ | ତଦନନ୍ତରେ ଭଗବାନ | । ରାମ ଯହିଁରେ ଅଗ୍ରଗଣ୍ୟ | ।। | ୨୦୮ |
| ୫୭ | ସେ ସୈନ୍ୟ ସହିତରେ ତହିଁ | । ଚଳିଲେ ମନ୍ଦ ମନ୍ଦ ହୋଇ | ।। | ୨୦୯ |
| | ଶୃଗାଳମଧ୍ୟୁଁ ଭାଗ ହରି | । ଯେସନେ ଗମଇଁ କେଶରୀ | ।। | ୨୧୦ |
| | ଜରାସନ୍ଧକୁ ଆଦି ହୋଇ | । ଯେ ଅଭିମାନୀ ଥିଲେ ତହିଁ | ।। | ୨୧୧ |
| | ନିଜ ପରାଭବ ଯା'ଠାରୁ | । ଯଶର କ୍ଷୟ ହିଁ ଯହିଁରୁ | ।। | ୨୧୨ |
| | ସେ ଶ୍ରୀକୃଷ୍ଣଙ୍କୁ ନ ସହିଲେ | । ଅନ୍ୟ ନୃପତିଙ୍କର ତୁଲେ | ।। | ୨୧୩ |
| | କେଶରୀଙ୍କର ଯଶମାନ | । ମୃଗେ ହରିଲା ପ୍ରାଏ ପୁଣ | ।। | ୨୧୪ |

୧. ଦରହାସ । ୨. କଢ଼ି । ୩. ସ୍ମର = କନ୍ଦର୍ପ । ୪. ଲଜ୍ଜା । ୫. କରଜ = ନଖ ।

| | | | |
|---|---|---|---|
| ଯେ ଧରିଥାଇ ଶରାସନ | । ସେ ଆମ୍ଭମାନଙ୍କର ପୁଣ | ।। ୨୧୫ |
| ଗୋପାଳେ ହରିଲେ ଯଶକୁ | । ଧିକ ହଉ ଆମ୍ଭମାନଙ୍କୁ | ।। ୨୧୬ |
| ଭୀଷ୍ମକସୁତାକୁ ହରଣ | । କଲେ ଯେ ପ୍ରଭୁ ନାରାୟଣ | ।। ୨୧୭ |
| ତାଙ୍କ ଚରଣସରସିଜେ | । ବ୍ରାହ୍ମଣ ଦୀନବନ୍ଧୁ ଭଜେ | ।। ୨୧୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ରୁକ୍ମିଣୀହରଣଂ
ନାମ ତ୍ରିପଞ୍ଚାଶୋଽଧ୍ୟାୟଃ ।।

## ଚତୁଃପଞ୍ଚାଶ ଅଧ୍ୟାୟ

ଚତୁଃପଞ୍ଚାଶତମେ ତୁ ଜିତ୍ୱା ରାଜ୍ଞୋଽରିପକ୍ଷଗାନ୍ ।
ରୁକ୍ମିଣଂ ଚ ବିରୂପ୍ୟାଥ ଭୈଷ୍ମ୍ୟାଃ ପାଣିଂ ପୁରେଽଗ୍ରହୀତ୍ ।। ୧

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | କହନ୍ତି ବ୍ୟାସଙ୍କ ନନ୍ଦନ | । ଏମନ୍ତ ରୂପେ ହେ ରାଜନ | ।। ୧ |
| | ସେ ସର୍ବେ ଅତି କ୍ରୁଦ୍ଧ ହୋଇ | । ତୁରଗମାନଙ୍କୁ ଆରୋହି | ।। ୨ |
| | କବଚେ ଆବୃତ ହୋଇଣ | । କାର୍ମୁକମାନଙ୍କୁ ଧରିଣ | ।। ୩ |
| | ଯେ ନିଜ ନିଜ ସୈନ୍ୟମାନେ | । ଗଲେ ବେଷ୍ଟିତ ହୋଇ ତେଣେ | ।। ୪ |
| ୨ | ସେମାନେ ଆସି ପଡ଼ନ୍ତେଣ | । ତାହାଙ୍କୁ କରି ବିଲୋକନ | ।। ୫ |
| | ଯାଦବସୈନ୍ୟଙ୍କର ତୁଲେ | । ଯେ ଯୂଥପତିମାନେ ଥିଲେ | ।। ୬ |
| | ସେମାନେ ସମ୍ମୁଖ ହୋଇଣ | । ଯେ ନିଜ ଶରାସନମାନ | ।। ୭ |
| | ତାହାଙ୍କୁ ଟଙ୍କାର କରିଣ | । ରହିଲେ ତହିଁ ହେ ରାଜନ | ।। ୮ |
| ୩ | ଅଶ୍ୱେ ପଣ୍ଡିତ ଶତ୍ରୁବୀରେ | । ତୁରଗମାନଙ୍କ ଉପରେ | ।। ୯ |
| | ଗଜମାନଙ୍କର ସ୍କନ୍ଧରେ | । [1]ରଥମାନଙ୍କର ଉପରେ | ।। ୧୦ |
| | ଶରବରଷାମାନଙ୍କୁ ହି | । ମୋକ୍ଷଣ କଲେକ ସେଠାଇଁ | ।। ୧୧ |
| | ଅଚଳ[2] ମାନଙ୍କରେ ଘନେ | । ଜଳକୁ ବରଷନ୍ତି ଯେହ୍ନେ | ।। ୧୨ |
| ୪ | ଭୟରେ ଅଟଇ ବିହ୍ୱଳ | । ଯାହାର ଲୋଚନଯୁଗଳ | ।। ୧୩ |
| | ଶୋଭନମଧ୍ୟା[3] ସେ ରୁକ୍ମିଣୀ | । [4]ସାୟକ-ଆସାରରେ ପୁଣି | ।। ୧୪ |
| | ଛନ୍ନ ହୁଅନ୍ତେ ପତିସୈନ୍ୟ | । ଲଜ୍ଜାରେ ସଂଯୁତ ହୋଇଣ | ।। ୧୫ |
| | ଯେ ନିଜ ପତିର ବଦନ | । ତାହାକୁ କଲେ ବିଲୋକନ | ।। ୧୬ |
| ୫ | ହସି କରିଣ ଭଗବାନ | । କହିଲେ ଏମନ୍ତ ବଚନ | ।। ୧୭ |

୧. ରଥମାନଙ୍କ ଉପସ୍ଥରେ ।　୨. ଅଚଳ = ପର୍ବତ ।　୩. ଯାହାଙ୍କ କଟି ସୁନ୍ଦର ।
୪. ବାଣବୃଷ୍ଟିରେ ।

ଭୟକୁ ହେ ବାମଲୋଚନି । ତୁମ୍ଭେ ନ କର ଏହିକ୍ଷଣି ॥ ୧୮
ତୋ' ଲୋକମାନଙ୍କରେ ମୁହିଁ । ଏ ଶତ୍ରୁସୈନ୍ୟ ନାଶିବଇଁ ॥ ୧୯
୬ ଗଦ ସଂକରଷଣ ହୋଇ । ଏ ଆଦି ଯେତେ ଥିଲେ ତହିଁ ॥ ୨୦
ସେମାନେ ଶତ୍ରୁଙ୍କର ତହିଁ । ସେ ପରାକ୍ରମମାନଙ୍କୁ ହିଁ ॥ ୨୧
ସେଠାରେ ସହି ନ ପାରିଣ । ନାରାଚମାନଙ୍କରେ ପୁଣ ॥ ୨୨
ଯେ ହୟ-ଗଜ-ରଥମାନ । ତାହାଙ୍କୁ କଲେ ସେ ନିଧନ ॥ ୨୩
୭ ଯେ ଅଶ୍ୱବନ୍ତ ରଥବନ୍ତ । ଆବର ଯେ ଗଜମାହୁନ୍ତ ॥ ୨୪
କୁଣ୍ଡଳ-କିରୀଟତୁଲରେ । ପାଗମାନଙ୍କ ସହିତରେ ॥ ୨୫
କୋଟିସଂଖ୍ୟକ ତାଙ୍କ ଶିରେ । ଛିଡ଼ିଣ ପଡ଼ିଲେ ଭୂମିରେ ॥ ୨୬
୮ ଖଡ଼ଗ-ଗଦା-ଧନୁଙ୍କରେ । ସଂଯୁତ ଅଟନ୍ତି ସେ କରେ ॥ ୨୭
ପ୍ରକୋଷ୍ଠ-ଉରୁ-ଅଙ୍ଘ୍ରିମାନେ । ଯେ ଅଶ୍ୱ ଅଶ୍ୱତର[୧] ଆନେ ॥ ୨୮
କୁଞ୍ଜର-ଉଷ୍ଟ୍ର-ଖରମାନେ । ପଡ଼ିଲେ ନରଶିର ଆନେ ॥ ୨୯
୯ ଜୟ ଯେ ଇଚ୍ଛନ୍ତି ନିର୍ଭରେ । ଏମନ୍ତ ଯଦୁମାନଙ୍କରେ ॥ ୩୦
ହତ ହୋଇଲା ବଳସୈନ୍ୟ । ଏମନ୍ତ ଯେବଣ ରାଜନ ॥ ୩୧
ଜରାସନ୍ଧକୁ ଆଦି ହୋଇ । ଗଲେ ବିମୁଖଭାବ ପାଇ ॥ ୩୨
୧୦ ହୃତ ହୋଇଛି ଭାର୍ଯ୍ୟା ଯାର । ତତ୍‌ପ୍ରାୟେ ଅଟେ ଯେ ଆତୁର ॥ ୩୩
ଯା' ତେଜ ନଷ୍ଟ ହୋଇଅଛି । ଉତ୍ସାହ ଯାର ନାହିଁ କିଛି ॥ ୩୪
ଶୁଖିଛି ଯାହାର ବଦନ । ସେ ଶିଶୁପାଳଠାକୁ ପୁଣ ॥ ୩୫
ଗମନ କରିଣ ସମସ୍ତେ । ତାହାକୁ କହିଲେ ଏମନ୍ତେ ॥ ୩୬
୧୧ ଭୋ ଭୋ ପୁରୁଷବ୍ୟାଘ୍ର ତୁହି । ଛାଡ଼ ଦୁର୍ମନାଭାବକୁ ହିଁ ॥ ୩୭
ଯେ ପ୍ରିୟାପ୍ରିୟ ବେନିଜଣ । ତାଙ୍କର ଦେହିଠାରେ ପୁଣ ॥ ୩୮
ସ୍ଥିର ଭାବକୁ ହେ ରାଜନ । କରି ନଥାଇଁ ବିଲୋକନ ॥ ୩୯
୧୨ ଯେସନେ କାଷ୍ଠବନିତା ହିଁ । ନର୍ତ୍ତକ-ଇଚ୍ଛାରେ ନାଚଇ ॥ ୪୦
ଈଶ୍ୱରତନ୍ତ୍ର ଏ ରୂପରେ । ସୁଖଦୁଃଖରେ ଚେଷ୍ଟା କରେ ॥ ୪୧
୧୩ କୃଷ୍ଣର ସପ୍ତଦଶ ଥର । ଯୁଦ୍ଧେ ହାରିଲି ମୁଁ ଆବର ॥ ୪୨
ତେଇଶି ଅକ୍ଷୌହିଣୀ ବଳେ । ତାକୁ ଜିଣିଲି ଏକ ବେଳେ ॥ ୪୩
୧୪ ଯେ କାଳ ଦଇବରେ[୨] ଯୁକ୍ତ । ତେଣେ ଜଗତ ବିଦ୍ରାବିତ[୩] ॥ ୪୪
ଏମନ୍ତେ ଜାଣନ୍ତେ ନିଶ୍ଚିତେ । ତଥାପି କଉଣସି ମତେ ॥ ୪୫
ମୁଁ ପୁଣି ଶୋକ ନ କରଇ । ଆବର ହରଷ ନୁହଇ ॥ ୪୬
୧୫ ବୀର ଯୂଥପ-ଯୂଥପତି । ଆମ୍ଭେ ସମସ୍ତେ ଅଟୁଁ ଅତି ॥ ୪୭
ଅଳପ ଅଟେ ଯାଙ୍କ ସୈନ୍ୟ । କୃଷ୍ଣରେ ଅଟନ୍ତି ପାଳନ ॥ ୪୮

---

୧. ଖଚର । ୨. ଅଦୃଷ୍ଟରେ । ୩. ଇତସ୍ତତ ଧାବିତ ।

ସେ ଯଦୁମାନଙ୍କେ ଆଜ ହିଁ । ପରାଭବକୁ ଲଭିଲାଇଁ ॥ ୪୯
୧୬ ଆମ୍ଭକୁ ଅଟେ ଅନୁସାର । ଏମନ୍ତ କାଳରେ ଆବର ॥ ୫୦
ଆମ୍ଭଙ୍କୁ ଶତ୍ରୁମାନେ ଏବେ । ଜିଣିଲେ, ଆମ୍ଭେ ପୁଣି ତେବେ ॥ ୫୧
ତାଙ୍କୁ ଜିଣିବା ଯେବେ, କାଳ । ଆମ୍ଭଙ୍କୁ ହେବ ଅନୁକୂଳ ॥ ୫୨
୧୭ ସେ ଶିଶୁପାଳ ଏ ରୂପରେ । ବୋଧିତ ହୁଅନ୍ତେ ମିତ୍ରରେ ॥ ୫୩
ଅନୁଗଙ୍କର ସହିତରେ । ଗମନ କଲା ନିଜ ପୁରେ ॥ ୫୪
ବହୁତ ମଲେ ଯାହାଙ୍କର । ସେ ରାଜାମାନେ ହେଁ ଆବର ॥ ୫୫
ଯେ ନିଜ ନିଜ ପୁରମାନ । ତହିଁକି କଲେ ସେ ଗମନ ॥ ୫୬
୧୮ କୃଷ୍ଣଙ୍କୁ ଦ୍ୱେଷ ଯେ କରଇ । ସେ ରୁକ୍ମୀ ଭଗିନୀର ତହିଁ ॥ ୫୭
ରାକ୍ଷସବିବାହ ନ ସହି । ଅକ୍ଷୌହିଣୀରେ ବୃତ ହୋଇ ॥ ୫୮
କୃଷ୍ଣଙ୍କୁ ଅନୁଗତ[୧] ହେଲା । ସେ ବଳୀ ପୃଷ୍ଠରେ ଗମିଲା ॥ ୫୯
୧୯ ସେ ମହାବାହୁ ଧନୁ ଘେନି । କବଚେ ବୃତ ହୋଇ ପୁଣି ॥ ୬୦
ଶୁଣନ୍ତେ ସମସ୍ତ ରାଜନ । ଅତ୍ୟନ୍ତ ସଂରବ୍ଧ ହୋଇଣ ॥ ୬୧
ସେ ରୁକ୍ମୀ କ୍ରୋଧୀ ଅଟେ ଅତି । ପ୍ରତିଜ୍ଞା କଲା ସେ ଝଟିତି ॥ ୬୨
୨୦ କୃଷ୍ଣକୁ ଯୁଦ୍ଧେ ନ ମାରିଣ । ରୁକ୍ମିଣୀକି ମୁଁ ନ ଘେନିଣ ॥ ୬୩
ଆସିବି ନାହିଁ କୁଣ୍ଡିନକୁ । ସତ୍ୟ କହୁଛି ମୁଁ ତୁମ୍ଭଙ୍କୁ ॥ ୬୪
୨୧ ସେ ରୁକ୍ମୀ କହି ଏ ପ୍ରକାରେ । ରଥକୁ ଆରୋହି ସତ୍ୱରେ ॥ ୬୫
କହିଲା ସାରଥିକି ପୁଣ । ଅଶ୍ୱଙ୍କୁ କର ତୁ ପ୍ରେରଣ ॥ ୬୬
ଯହିଁରେ ଅଛି କୃଷ୍ଣ, ତାର । ସଙ୍ଗରେ ଯୁଦ୍ଧ ହେବ ମୋର ॥ ୬୭
୨୨ [୨]'ଯା' ବୁଦ୍ଧି କୁତ୍ସିତ ଅଟଇ । ସେ ଗୋପାଳ[୩]ର ଆଜ ଯାଇଁ ॥ ୬୮
ତୀକ୍ଷ୍ଣଶରମାନଙ୍କେ ମୁହିଁ । ବଳଗର୍ବକୁ ହରିବଇଁ ॥ ୬୯
ମୋ ଭଗିନୀକି ବଳାତ୍କାରେ । ହରିଲା ଯେବଣ ଗର୍ବରେ ॥ ୭୦
୨୩ ଯେ ରୁକ୍ମୀ ଅଟଇ କୁମତି । ଏ ରୂପେ କହିଣ ସେ ଅତି ॥ ୭୧
ଈଶ୍ୱରଙ୍କର ଯେ ପ୍ରମାଣ । ତାହା ସେ ନ ଜାଣଇଁ ପୁଣ ॥ ୭୨
ହେ ନୃପ ! ଏଥୁ ଅନନ୍ତରେ । ସେ କାଳେ ଏକା ରଥକରେ ॥ ୭୩
କୃଷ୍ଣଙ୍କୁ ରହ ରହ କ୍ଷଣେ । ବୋଲି ବୋଇଲା ଅନୁକ୍ଷଣେ ॥ ୭୪
୨୪ ସୁଦୃଢ଼ ଯଉଁ ଶରାସନ[୪] । ତାହାକୁ କରି ଆକର୍ଷଣ ॥ ୭୫
କୃଷ୍ଣଙ୍କୁ ତିନି ସାୟକରେ । ପ୍ରହାର କଲା ସେ ସତ୍ୱରେ ॥ ୭୬
ଯଦୁମାନଙ୍କର ଯେ କୁଳ । ତହିଁରେ ଅଟୁ ତୁ ପାଂସୁଳ ॥ ୭୭
କ୍ଷଣେକ ରହ ରେ ଏଠାରେ । ପୁଣି ବୋଇଲା ଏ ପ୍ରକାରେ ॥ ୭୮

୧. ଅନୁଗମନ କଲା; ୨. ଦୁଷ୍ଟମାନଙ୍କ ଠାରେ ମଧ୍ୟ ଯେ ଅନୁଗ୍ରହଶୀଳ ।
୩. ଗୋପାଳ = ବେଦପାଳକ ଇତି ବାସ୍ତବ ଅର୍ଥ । ୪. ଶରାସନ = ଧନୁ ।

୨୫ ହବିକି ହରିଣ ଗମଇଁ । ଏମନ୍ତ କାକପ୍ରାଏ ହୋଇ ॥ ୭୯
ହରିଣ ମୋର ଭଗିନୀକି । ଗମନ କରୁଛୁ କେଣିକି ॥ ୮୦
କୂଟରେ କରୁ ତୁ ସମର । ମାୟାବୀ ଅଟୁ ତୁ ଆବର ॥ ୮୧
ରେ ମନ୍ଦ ! ତୋ ଗର୍ବକୁ ମୁହିଁ । ଆଜ ନିଶ୍ଚୟେ ହରିବଇଁ ॥ ୮୨
୨୬ ମୋ ବାଣମାନଙ୍କରେ ହତ । ହୋଇ ନ ଶୋଇବୁ ଯାବତ ॥ ୮୩
ତାବତ ଛାଡ଼ ଏ କନ୍ୟାକୁ । ସେ ରୁକ୍ମୀ ବୋଲନ୍ତେ ତାହାଙ୍କୁ ॥ ୮୪
ଧନୁକୁ ଛେଦି ଭଗବାନ । ହସି ବିନ୍ଧିଲେ ଷଡ଼ ବାଣ ॥ ୮୫
୨୭ ଚାରି ଅଶ୍ୱଙ୍କୁ ଅଷ୍ଟ ପୁଣି । ବିନ୍ଧିଲେ ସାରଥିକି ବେନି ॥ ୮୬
ଧ୍ୱଜକୁ ତିନି ସାୟକରେ । ସେ ରୁକ୍ମୀ ଏଥୁ ଅନନ୍ତରେ ॥ ୮୭
କୃଷ୍ଣଙ୍କୁ ଅନ୍ୟ ଶରାସନ । ଘେନି ବିନ୍ଧିଲା ପଞ୍ଚବାଣ ॥ ୮୮
୨୮ ସେ ଶରମାନଙ୍କେ ତାଡ଼ିତ । ହୁଅନ୍ତେ ପୁଣି ସେ ଅଚ୍ୟୁତ ॥ ୮୯
ସେ ଧନୁ କରନ୍ତେ ଛେଦନ । ଘେନିଲା ଆନ ଶରାସନ ॥ ୯୦
ସେ ଶରାସନକୁ ହିଁ ପୁଣ । ଛେଦନ କଲେ ଭଗବାନ ॥ ୯୧
୨୯ ପରିଘ ପଟ୍ଟିଶ ଯେ ଆନ । ଯେ ଶୂଳ ଢାଲ ଖଡ଼୍‌ଗମାନ ॥ ୯୨
ଯେ ବା ତୋମରମାନେ ପୁଣ । ଏ ଶସ୍ତ୍ର ଯେବଣ ଯେବଣ ॥ ୯୩
ଗ୍ରହଣ କରଇ ତା' ସବୁ । ଛେଦି ପକାଇଲେ ସେ ପ୍ରଭୁ ॥ ୯୪
୩୦ ଭୀଷ୍ମକସୁତ ସେ ହେତୁରୁ । ସତ୍ୱରେ ଡେଇଁଣ ରଥରୁ ॥ ୯୫
ଖଡ଼୍‌ଗ ଧରି କରି କରେ । କୃଷ୍ଣଙ୍କୁ ମାରିବା ଇଚ୍ଛାରେ ॥ ୯୬
ଧାଇଁଲା ଅତି କ୍ରୋଧ ହୋଇ । ଅଗ୍ନିକି ପତଙ୍ଗପରାଇ ॥ ୯୭
୩୧ ସେ ଆସି ପଡ଼ନ୍ତେ ସତ୍ୱର । ଖଡ଼୍‌ଗଚାପକୁ ତାହାର ॥ ୯୮
ଶରମାନଙ୍କେ ନରହରି । ତିଳପ୍ରମାଣେ ଛେଦି କରି ॥ ୯୯
ମାରିବା ଅର୍ଥେ ସେ ରୁକ୍ମୀକି । ଘେନିଲେ ତୀକ୍ଷଣ ଅସିକି ॥ ୧୦୦
୩୨ ଭ୍ରାତାର ଯେ ବଧ-ଉଦ୍‌ଯୋଗ । ରୁକ୍ମିଣୀ ଦେଖି ତାହା ବେଗ ॥ ୧୦୧
ଭୟରେ ବିହ୍ୱଳ ହୋଇଣ । ପତିର ଚରଣେ ପଡ଼ିଣ ॥ ୧୦୨
ସେ ସତୀ କରୁଣ ହୋଇଣ । କହିଲେ ଏମନ୍ତ ବଚନ ॥ ୧୦୩

ଶ୍ରୀରୁକ୍ମିଣୀ ଉବାଚ

୩୩ ହେ ଦେବଦେବ ଯୋଗେଶ୍ୱର । ହେ ଅପ୍ରମେୟ-ଆତ୍ମା ଆର ॥ ୧୦୪
ହେ ଜଗତ୍‌ପତି ହେ କଲ୍ୟାଣ । ହେ ମହାଭୁଜ ତୁମ୍ଭେ ପୁଣ ॥ ୧୦୫
ହେ କୃଷ୍ଣ ଏ ମୋର ଭ୍ରାତାକୁ । ସମର୍ଥ ନୁହ ମାରିବାକୁ ॥ ୧୦୬

ଶ୍ରୀଶୁକ ଉବାଚ

୩୪ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ନୃପ ପରୀକ୍ଷିତ ॥ ୧୦୭
ପରିତ୍ରାସ[୧]ରେ କମ୍ପମାନ । ହଉଛି ଯାର ଅଙ୍ଗମାନ ॥ ୧୦୮

୧. ପରିତ୍ରାସ = ଭୟ ।

ଶୋକେ ଶୁଖୁଛି ଯା' ବଦନ । ରୁଦ୍ଧ ଅଟଇ କଣ୍ଠ ପୁଣ ॥ ୧୦୯
କାତରେ ଖସିଲା ଆବର । ସୁବର୍ଣ୍ଣମେଖଳା ଯାହାର ॥ ୧୧୦
ଏମନ୍ତ ଅଟେ ଯେ ରୁକ୍ମିଣୀ । ଚରଣ ଧରନ୍ତେ ସେ ପୁଣି ॥ ୧୧୧
କରୁଣାବନ୍ତ ସେ ଅଚ୍ୟୁତ । ତା' ବଧୁଁ ହେଲେ ନିବର୍ତ୍ତିତ ॥ ୧୧୨
୩୫ ଅସାଧୁ କୃତ୍ୟ ଯେ କରଇ । ବସନେ ସେ ରୁକ୍ମୀକି ତହିଁ ॥ ୧୧୩
ବାନ୍ଧି କରିଣ ଭଗବାନ । ଯେ ତାର ଶ୍ମଶ୍ରୁ-କେଶମାନ ॥ ୧୧୪
ସ୍ଥାନେ ସ୍ଥାନେକେ ତା' ବପନ[୧] । କରିଣ କଲେ ବିରୂପନ[୨] ॥ ୧୧୫
ଉଦ୍ୟତ ଯଉଁ ଶତ୍ରୁସୈନ୍ୟ । ସେ ଯଦୁବୀରେ ତତକ୍ଷଣ ॥ ୧୧୬
ମର୍ଦ୍ଦିପକାଇଲେ ସେଠାଏ । ପଦ୍ମକୁ ଯେସନେ ହସ୍ତୀଏ ॥ ୧୧୭
୩୬ ଶ୍ରୀକୃଷ୍ଣ ନିକଟକୁ ଯାଇ । ଯଦୁପ୍ରବୀରମାନେ ତହିଁ ॥ ୧୧୮
ରୁକ୍ମୀକି କଲେ ବିଲୋକନ । ସେ ମହାପ୍ରଭୁ ସଂକର୍ଷଣ ॥ ୧୧୯
ତେମନ୍ତରୂପେ ହତପ୍ରାଏ । ତାହାକୁ ଦେଖିଣ ସେଠାଏ ॥ ୧୨୦
ସେ ଭଗବାନ ବଳରାମ । ଅଟନ୍ତି କରୁଣାନିଧାନ ॥ ୧୨୧
ତା' ବନ୍ଧ ଫିଟାଇ କୃଷ୍ଣଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୧୨୨
୩୭ ଶ୍ମଶ୍ରୁ କୁନ୍ତଳମାନଙ୍କର । ଯେ ଅଟେ ବପନ ଆବର ॥ ୧୨୩
ସୁହୃଦଙ୍କର ବଧ ସେହି । ଯେ ତାଙ୍କ ବିରୂପଣ ତୁହି ॥ ୧୨୪
କଲୁ ସେ ଅସାଧୁ କରମ । ହେ କୃଷ୍ଣ ସେ ଆତ୍ମ ନିନ୍ଦନ ॥ ୧୨୫
୩୮ ସେ ରୁକ୍ମିଣୀକି ସଂକର୍ଷଣ । କହନ୍ତି ସାନ୍ତ୍ୱନା କରିଣ ॥ ୧୨୬
ଭ୍ରାତାର ବିରୂପଚିନ୍ତାରେ । ଆତ୍ମମାନଙ୍କୁ ହିଁ ଏଠାରେ ॥ ୧୨୭
ହେ ସାଧ୍ୱି ! କ୍ରୋଧ ତୁ ନ କର । ସୁଖଦୁଃଖଦ ହୋଇ ନର ॥ ୧୨୮
ନାହିଁଟି ଆନ ଜଣେ କେହି । ଯାହା ଆପଣା କରିଥାଇ ॥ ୧୨୯
ଯେଣୁ ସେ କର୍ମମାନଙ୍କୁ ହିଁ । ପୁରୁଷ ନିଶ୍ଚୟେ ଭୁଞ୍ଜଇ ॥ ୧୩୦
୩୯ କୃଷ୍ଣଙ୍କୁ ଆକ୍ଷେପ କରିଣ । କହୁଅଛନ୍ତି ସଂକର୍ଷଣ ॥ ୧୩୧
ବଧକୁ ଯା' ଦୋଷ ଉଚିତ । ସେ ବନ୍ଧୁ ହେଲେ ହେଁ ଏମନ୍ତ ॥ ୧୩୨
ବନ୍ଧୁର ବଧେ ଯୋଗ୍ୟ ନୋହି । ସ୍ୱଦୋଷେ ହତପ୍ରାଏ ସେହି ॥ ୧୩୩
ତ୍ୟାଜ୍ୟ ସେ ଅଟଇ ଆବର । ତାହାକୁ କରି କି ସଂହାର ॥ ୧୩୪
୪୦ ସେ ରୁକ୍ମିଣୀକି ହଳଧର । ପୁଣି କହନ୍ତି ଏପ୍ରକାର ॥ ୧୩୫
କ୍ଷତ୍ରିୟଙ୍କର ଧର୍ମ ଏହି । ବିଧାତା ପୂର୍ବେ ସର୍ଜିଛଇଁ ॥ ୧୩୬
ଯଉଁ ଧର୍ମରେ ଏ ସଂସାରେ । ଭ୍ରାତାହିଁ ଭ୍ରାତାକୁ ସଂହାରେ ॥ ୧୩୭
ଏ ଧର୍ମ ଏହିହେତୁ ଆର । ଅତ୍ୟନ୍ତ ଅଟେ ଘୋରତର ॥ ୧୩୮
୪୧ ଯେ ରାଜ୍ୟ ଯେ ଭୂମି ଯେ ଧନ । ଯେ ଭାର୍ଯ୍ୟା ଯେ ବା ତେଜମାନ ॥ ୧୩୯

୧. ମୁଣ୍ଡନ । ୨. ବିରୂପ କରିବା ।

ମାନୀ ଅଟନ୍ତି ଯେଉଁ ନର । ସମ୍ପତ୍ତି-ମଦେ ଅନ୍ଧ ଆର ।। ୧୪୦
ଏହା ସେ ଛାଡ଼ନ୍ତି ତତ୍‌କ୍ଷଣ । ଆନ ହେତୁରୁ ଅବା ପୁଣ ।। ୧୪୧
୪୨ ଭୀଷ୍ମକନନ୍ଦନାଙ୍କୁ ପୁଣି । କହୁଅଛନ୍ତି ହଳପାଣି ।। ୧୪୨
ସମସ୍ତ ପ୍ରାଣିଠାରେ ଅତି । ଦୁଷ୍ଟହୃଦୟ ଯେ ଅଟନ୍ତି ।। ୧୪୩
ସେ ଭ୍ରାତାମାନଙ୍କର ପାଇଁ[1] । ଅଜ୍ଞାନ ଲୋକପ୍ରାଏ ହୋଇ ।। ୧୪୪
ମଙ୍ଗଳ କରୁଛ ଚିନ୍ତନ । ଏ ବୁଦ୍ଧି ତୁମ୍ଭର ବିଷମ ।। ୧୪୫
ସର୍ବଦା ମିତ୍ରଙ୍କର ଠାଇଁ । ଯେଣୁ ସେ ବୁଦ୍ଧି ଭଦ୍ର ନୋହି ।। ୧୪୬
୪୩ ମିତ୍ର-ଅମିତ୍ର-ଉଦାସୀନେ । ଏ ରୂପେ ଦେହୀକି ଯେ ଜାଣେ ।। ୧୪୭
ଦେହକୁ ଆତ୍ମା ମଣିଥାନ୍ତି । ସେ ନରମାନଙ୍କ ଏ ମତି ।। ୧୪୮
ଏ ଆତ୍ମମୋହ ଅଟେ ସତ୍ୟ । ଦେବମାୟାରେ ଏ କଳ୍ପିତ ।। ୧୪୯
୪୪ ସମସ୍ତ ପ୍ରାଣୀଙ୍କର ଘଟେ । ବିଶୁଦ୍ଧ ଆତ୍ମା ଏକ ଅଟେ ।। ୧୫୦
ସେ ଆତ୍ମାକୁ ହିଁ ମୂଢ଼ ନରେ । ଘେନନ୍ତି ନାନା ପରକାରେ ।। ୧୫୧
ଚନ୍ଦ୍ରସୂର୍ଯ୍ୟାଦିଙ୍କି ଯେରୂପେ । ଜଳମାନଙ୍କେ ନାନାରୂପେ ।। ୧୫୨
ନଭକୁ ଘଟାଦିରେ ଯେହ୍ନେ । ପୁଣି ଘେନନ୍ତି ଭିନ୍ନେ ଭିନ୍ନେ ।। ୧୫୩
୪୫ ଦ୍ରବ୍ୟ-ଇନ୍ଦ୍ରିୟ-ଗୁଣାତ୍ମକ । [2]ଆଦ୍ୟନ୍ତବନ୍ତ ଏ ପ୍ରତୀକ ।। ୧୫୪
ଆତ୍ମାରେ ଅବିଦ୍ୟାରେ ପୁଣ । ଏ ଦେହ କଳ୍ପିତ ହୋଇଣ ।। ୧୫୫
ସଂସାରବନ୍ତ କରି ସେହି । ପ୍ରାଣୀମାନଙ୍କୁଟି କରଇ ।। ୧୫୬
୪୬ କହୁଅଛନ୍ତି ହଳପାଣି । ଶୁଣ ଗୋ ହେ ସତି ରୁକ୍ମିଣୀ ।। ୧୫୭
ଆତ୍ମାର ଅସନ୍ତ ଦେହରେ । ସଂଯୋଗ ନାହିଁ କାଳାନ୍ତରେ ।। ୧୫୮
ଆତ୍ମାର ବିୟୋଗ ସେ ରୂପେ । ନାହିଁ ଅସନ୍ତ ଦେହରୂପେ ।। ୧୫୯
ଚକ୍ଷୁରୂପଙ୍କ ପ୍ରକାଶନ । ସୂର୍ଯ୍ୟଙ୍କ ସକାଶୁଁ ଯେସନ ।। ୧୬୦
୪୭ ଦେହର ବିକ୍ରିୟାରୂପେଣ । ଯେ ଜନ୍ମାଦିଏ ଛନ୍ତି ପୁଣ ।। ୧୬୧
ସେମାନେ ଆତ୍ମାଠାରୁ ଜାତ । କେବେ ନୁହନ୍ତି କଦାଚିତ ।। ୧୬୨
ଚନ୍ଦ୍ରର ଠାରୁ କଳାଙ୍କର । ଜନ୍ମାଦି ନୋହେ ଯେ ପ୍ରକାର ।। ୧୬୩
ଯେହ୍ନେ ସେ କଳାମାନଙ୍କର । ବିନାଶେ କ୍ଷୟ ଚନ୍ଦ୍ରମାର ।। ୧୬୪
ଦେହନାଶରେ ଏ ଆତ୍ମାର । ସେ ରୂପେ ମୃତିବ୍ୟବହାର ।। ୧୬୫
୪୮ ଶୟନ କରିଥାନ୍ତେ ଜନ । ଅସତ୍ୟ ଅର୍ଥରେ ଯେସନ ।। ୧୬୬
ଆତ୍ମାକୁ ବିଷୟମାନଙ୍କୁ । ପୁଣି ହିଁ ଭୁଞ୍ଜାଇ ଫଳକୁ ।। ୧୬୭
ସେ ରୂପେ ଅବୁଧ ଜନ ହିଁ । ଏସଂସାରକୁ ପୁଣ ପାଇ ।। ୧୬୮
୪୯ ହେ ଶୁଚିସ୍ମିତେ ! ସେ ହେତୁରୁ । ଯେ ଜାତ ଅଟେ ଅଜ୍ଞାନରୁ ।। ୧୬୯
ଯେ ପୁଣି ଆତ୍ମାକୁ ଶୋଷଇ । ଆବର ମୋହିତ କରଇ ।। ୧୭୦

୧. ଠାଇଁ ୨. ଆଦି ଓ ଅନ୍ତ ଥିବା ।

| | | | |
|---|---|---|---|
| | ସେ ଶୋକ ଛାଡ଼ି ତତ୍ତ୍ୱଜ୍ଞାନେ | ସ୍ୱସ୍ଥ ତୁ ହୁଅ ଏ ଭୁବନେ | ॥ ୧୭୧ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୫୦ | କହନ୍ତି ବ୍ୟାସଙ୍କ ନନ୍ଦନ | ଏମନ୍ତ ରୂପେ ହେ ରାଜନ | ॥ ୧୭୨ |
| | ସେ ଭଗବାନ ରାମେ ପୁଣ | ରୁକ୍ମିଣୀ ପ୍ରବୋଧ ହୋଇଣ | ॥ ୧୭୩ |
| | ବିମନ ଭାବ ଛାଡ଼ି ଚିତ୍ତ | ବୁଦ୍ଧିରେ କଲା ସମାହିତ | ॥ ୧୭୪ |
| ୫୧ | ପ୍ରାଣମାତ୍ରକେ ଅବଶିଷ୍ଟ | ହୋଇ ଯେ ଅଟଇ ଉତ୍‌ସୃଷ୍ଟ | ॥ ୧୭୫ |
| | ଶତ୍ରୁମାନଙ୍କେ ହତ ଯାର | ହୋଇଛି ବଳ ପ୍ରଭା ଆର | ॥ ୧୭୬ |
| | ଯେ ଅଟେ ନିଜ ମନୋରଥ | ସେ ଯାର ହୋଇଲା ବିତଥ | ॥ ୧୭୭ |
| | ଯେ ନିଜ ବିରୂପକରଣ | ରୁକ୍ମୀ ତା' କରନ୍ତେ ସ୍ମରଣ | ॥ ୧୭୮ |
| ୫୨ | ନ ମାରି ଦୁର୍ମତି କୃଷ୍ଣକୁ | ନ ଲେଉଟାଇ ସେ [1]ସ୍ୱସାକୁ | ॥ ୧୭୯ |
| | କୁଣ୍ଡିନେ ପ୍ରବେଶ ମୁଁ ଯାଇ | ନୋହିବି ବୋଲି ଏହା କହି | ॥ ୧୮୦ |
| | ସେ ରୁକ୍ମୀ ନିବାସନିମିତ୍ତ | ଯେ ଭୋଜକଟ ନାମେ ଖ୍ୟାତ | ॥ ୧୮୧ |
| | ସେ ଶ୍ରେଷ୍ଠ ପୁରକୁ ରଚିଲା | କ୍ରୋଧରେ ତହିଁରେ ରହିଲା | ॥ ୧୮୨ |
| ୫୩ | ଏମନ୍ତ ରୂପେ ଭଗବାନ | ସେ ରାଜାମାନଙ୍କୁ ଜିଣିଣ | ॥ ୧୮୩ |
| | ଭୀଷ୍ମକସୁତା ଯେ ରୁକ୍ମିଣୀ | ନିଜ ପୁରକୁ ତାଙ୍କୁ ଆଣି | ॥ ୧୮୪ |
| | ଉତ୍ତମବିଧିମତେ ପୁଣ | ବିବାହ ହେଲେ ହେ ରାଜନ | ॥ ୧୮୫ |
| ୫୪ | ଯଦୁମାନଙ୍କର ଯେ ପତି | ସେ ଶ୍ରୀକୃଷ୍ଣର ଠାରେ ଅତି | ॥ ୧୮୬ |
| | ଅନନ୍ୟଭାବ ଯାହାଙ୍କର | ହେ ନୃପ ! ସେ ମନୁଷ୍ୟଙ୍କର | ॥ ୧୮୭ |
| | ମହା ଉତ୍ସବ ଯଦୁପୁରେ | ସେ କାଳେ ହେଲା ପ୍ରତିଘରେ | ॥ ୧୮୮ |
| ୫୫ | ଚିତ୍ର ବସନ ଯାହାଙ୍କର | ସେ ବରକନ୍ୟା ବେନିଙ୍କର | ॥ ୧୮୯ |
| | ପ୍ରମୃଷ୍ଟ[2] ହୋଇ ଯାର ଅତି | ମଣିକୁଣ୍ଡଳମାନେ ଛନ୍ତି | ॥ ୧୯୦ |
| | ସେ ନରନାରୀ ହୃଷ୍ଟ ହେଲେ | ସେ ଯଉତୁକମାନ ଦେଲେ | ॥ ୧୯୧ |
| ୫୬ | ଯେ ଉପକଳ୍ପିତ ମଙ୍ଗଳେ | ଏ ସର୍ବମାନଙ୍କେ ସେ କାଳେ | ॥ ୧୯୨ |
| | ଅଟନ୍ତି ଯେହୁ ଉତ୍ତମ୍ଭିତ[3] | ଯେ ଇନ୍ଦ୍ରଧ୍ୱଜ ନାମେ ଖ୍ୟାତ | ॥ ୧୯୩ |
| | ଯେ ଚିତ୍ର ମାଲ୍ୟ ବସ୍ତ୍ରମାନ | ଯେ ରତ୍ନ ତୋରଣା ଏ ଆନ | ॥ ୧୯୪ |
| | ଯେ ପୂର୍ଣ୍ଣକୁମ୍ଭମାନେ ପୁଣ | ଅଗୁରୁ ଧୂପ ଦୀପମାନ | ॥ ୧୯୫ |
| | ସେ ଯଦୁପୁରୀ-ପ୍ରତିଦ୍ୱାରେ | ଶୋଭା ପାଇଲା ସେ କାଳରେ | ॥ ୧୯୬ |
| ୫୭ | ଯଉଁ ପୁରରେ ମାର୍ଗମାନ | ହୋଇଣଅଛନ୍ତି ସେଚନ | ॥ ୧୯୭ |
| | ଆହୂତ ହୋଇ କରି ଅତି | ଯେ ପ୍ରିୟ ନୃପେ ଆସିଛନ୍ତି | ॥ ୧୯୮ |
| | ତାଙ୍କର ଯେ ହସ୍ତୀଏ ଛନ୍ତି | ଦାନଜଳକୁ ଛାଡୁଛନ୍ତି | ॥ ୧୯୯ |
| | ତହିଁରେ [4]ସଂମୃଷ୍ଟ ହୋଇଣ | ଯେ ରମ୍ଭା-ପୂଗ[5] ବୃକ୍ଷମାନ | ॥ ୨୦୦ |

୧. ଭଉଣୀ । ୨. ଉତ୍ତମରୂପେ ମାର୍ଜିତ । ୩. ଉଡୁଥିବା । ୪. ଉଠିଥିବା । ୫. ଗୁଆ ।

ତେଣେ ଯେ ପୁରୀ ପ୍ରତିଦ୍ୱାରେ । ଶୋଭା ପାଉଛି ନିରନ୍ତରେ ॥ ୨୦୧
୫୮ ଯେ କୁରୁ ବିଦର୍ଭ ସୃଞ୍ଜୟ । ଯେ ଯଦୁ କୁନ୍ତି କଇକେୟ ॥ ୨୦୨
ସେ ଯଦୁପୁରରେ ଏମାନେ । ଶୀଘ୍ରେ ଧାବନ୍ତେ ବନ୍ଧୁମାନେ ॥ ୨୦୩
ଆସିଣ ତାହାଙ୍କ ମଧ୍ୟରେ । ହରଷ ହେଲେ ଅନ୍ୟୋଽନ୍ୟରେ ॥ ୨୦୪
୫୯ ସେ ସେହି ଠାବରେ ଗାୟନ । ହୁଅନ୍ତେ ରୁକ୍ମିଣୀହରଣ ॥ ୨୦୫
ରାଜାଏ ରାଜକନ୍ୟାମାନେ । ତାହା ଶୁଣିଣ ପ୍ରତିଦିନେ ॥ ୨୦୬
ଅତିଶୟରେ ସେ ବିସ୍ମିତ । ହୋଇଲେ ଆହେ ପରୀକ୍ଷିତ ॥ ୨୦୭
୬୦ ଯେ ରମା ରୁକ୍ମିଣୀ ବିଖ୍ୟାତ । ତେଣେ ହୁଅନ୍ତେ ଉପଗତ ॥ ୨୦୮
ଲକ୍ଷ୍ମୀର ପତି କରି ପୁଣ । କୃଷ୍ଣଙ୍କୁ କରି ବିଲୋକନ ॥ ୨୦୯
ହେଲା ସେ ପୁରବାସୀଙ୍କର । ମହା ଉନ୍ମାଦ ଆହେ ବୀର ॥ ୨୧୦
ସେ ଲକ୍ଷ୍ମୀନାରାୟଣଙ୍କର । ଚରଣଯୁଗେ ନିରନ୍ତର ॥ ୨୧୧
ବ୍ରାହ୍ମଣ ଦୀନବନ୍ଧୁ ନିତ୍ୟେ । ଶରଣ ପଶିଲା ସୁଚିତ୍ତେ ॥ ୨୧୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ରୁକ୍ମିଣ୍ୟୁଦ୍‌ବାହୋତ୍ସବୋ
ନାମ ଚତୁଃପଞ୍ଚାଶୋଽଧ୍ୟାୟଃ ॥

## ପଞ୍ଚପଞ୍ଚାଶ ଅଧ୍ୟାୟ

ପଞ୍ଚପଞ୍ଚାଶତ୍ତମେ ତୁ ପ୍ରଦ୍ୟୁମ୍ନୋଽଜନି କୃଷ୍ଣତଃ ।
ଶମ୍ବରେଣ ହୃତଃ ସୋଽଥ ହତ୍ୱା ତଂ କାନ୍ତୟାଗମତ୍ ॥ ୧
ପ୍ରଦ୍ୟୁମ୍ନହାନିଲାଭାଦ୍ୟୈଃ ଶମ୍ବରାହରଣାଦିନା ।
କୁଟୁମ୍ବିନାମପତ୍ୟାଦିସୁଖଦୁଃଖମସୂସୁଚତ୍ ॥ ୨

ଶ୍ରୀଶୁକ ଉବାଚ

୧ ଶୁକ କହନ୍ତି ହେ ରାଜନ । ଏଥୁ ଅନ୍ତରେ ଏବେ ଶୁଣ ॥ ୧
ବାସୁଦେବର ଅଂଶ ହୋଇ । ଯେ କାମ ବିଖ୍ୟାତ ଅଟଇ ॥ ୨
ସେ ମହାଦେବର କ୍ରୋଧରେ । ଦଗଧ ହୋଇଲା ପୂର୍ବରେ ॥ ୩
ପାଇଲା ସେହି ଶ୍ରୀକୃଷ୍ଣଙ୍କୁ । ପୁଣି ଶରୀର ଲଭିବାକୁ ॥ ୪
୨ କୃଷ୍ଣବୀର୍ଯ୍ୟରୁ ଜାତ ହୋଇ । ସେ କାମ ରୁକ୍ମିଣୀର ଠାଇଁ ॥ ୫
ପ୍ରଦ୍ୟୁମ୍ନନାମରେ ବିଖ୍ୟାତ । ହୋଇଣ ହୋଇଲା ସେ ଜାତ ॥ ୬
ସମସ୍ତ ଅଙ୍ଗମାନଙ୍କରୁ । ଊଣା ନୁହଇ ପିତାଠାରୁ ॥ ୭
୩ ପ୍ରସିଦ୍ଧ ଶତ୍ରୁ କନ୍ଦର୍ପର । ଅଟଇ ଯେ ଶମ୍ବରାସୁର ॥ ୮

ସେ ଅନିର୍ଦ୍ଦଶ[1] ବାଳକକୁ । ଆପଣା ଶତ୍ରୁ ମଣି ତାକୁ ॥ ୯
ସେ କାମରୂପୀ ନିଶାଚର । ହରଣ କରିଣ ସତ୍ୱର ॥ ୧୦
ସମୁଦ୍ରେ ନେଇ ପକାଇଣ । କଲା ସେ ଗୃହକୁ ଗମନ ॥ ୧୧
୪ ତହିଁରେ ବଳବନ୍ତ ମୀନ । ଶିଶୁକୁ ଗିଳିଲା ବହନ ॥ ୧୨
ସେ ଆନ ମତ୍ସ୍ୟଙ୍କର ତୁଲେ । ବୃତ ହୁଅନ୍ତେ ମହାଜାଲେ ॥ ୧୩
ଯାଙ୍କ ଜୀବିକା ମୀନ ଅଟେ । ତାଙ୍କୁ ଧରିଲେ ସେ କେଉଟେ ॥ ୧୪
୫ ଭେଟି କରିଣ ସେ ମୀନକୁ । କୈବର୍ତ୍ତେ ଦେଲେ ଶମ୍ବରକୁ ॥ ୧୫
ସୁଆରେ[2] ରନ୍ଧନଗୃହକୁ । ନେଇ କରିଣ ସେ ମୀନକୁ ॥ ୧୬
ଶସ୍ତ୍ରରେ କାଟିଲେ ସେ ତହିଁ । ଏ କଥା ଅଦ୍ଭୁତ ଅଟଇ ॥ ୧୭
୬ ସୁଆରମାନେ ସେ କାଳରେ । ବାଳକୁ ଦେଖିଣ ଉଦରେ ॥ ୧୮
ମାୟାବତୀର ଠାରେ ପୁଣ । ତାହାକୁ କଲେ ନିବେଦନ ॥ ୧୯
ଶଙ୍କିତ ଅଟେ ଚିତ୍ତ ଯାର । ସେ ମାୟାବତୀର ଆଗର ॥ ୨୦
ରୁକ୍ମିଣୀ-କୃଷ୍ଣଠାରୁ ପୁଣ । ସେ ବାଳକର ଯେ ଉତ୍ପନ୍ନ ॥ ୨୧
ଏ କାମ ଅଟେ ଭର୍ତ୍ତା ତୋର । ଏମନ୍ତ ତତ୍ତ୍ୱକୁ ଆବର ॥ ୨୨
ମତ୍ସ୍ୟଉଦରନିବେଶିତ । ନାରଦ କହିଲେ ସମସ୍ତ ॥ ୨୩
୭ ଯେ ପତିବ୍ରତା ନାମ ରତି । ସେ କାମପତ୍ନୀ ମାୟାବତୀ ॥ ୨୪
ଦଗଧ ହେଲା ଯା' ଶରୀର । ପୁଣି ହିଁ ସେ ନିଜ ପତିର ॥ ୨୫
ଦେହ ଉତ୍ପନ୍ନ ହେବା ପାଇଁ । ପ୍ରତୀକ୍ଷା କରିଥିଲା ରହି ॥ ୨୬
୮ ତାକୁ ଶମ୍ବର ସେ କାଳରେ । ସୂପ-ଓଦନ[3] ସାଧନରେ ॥ ୨୭
କରି ଯେ ଥିଲା ନିରୂପଣ । ଶିଶୁକୁ ସେ କାମ କରିଣ ॥ ୨୮
ଜାଣିଣ ସେ ବାଳକଠାରେ । ସ୍ନେହକୁ କଲା ସେ ନିର୍ଭରେ ॥ ୨୯
୯ ଅଳପ କାଳେ ତହିଁ ପୁଣ । ପ୍ରବେଶ ହୁଅନ୍ତେ ଯୌବନ ॥ ୩୦
ହେ ନୃପ ! ସେ କୃଷ୍ଣନନ୍ଦନ । ଦେଖନ୍ତି ଯଉଁ ନାରୀଜନ ॥ ୩୧
ସେମାନଙ୍କର ଯେ ବିଭ୍ରମ । ତାହାକୁ କଲେ ସେ ଜନମ ॥ ୩୨
୧୦ ଯା' ନେତ୍ର ପଦ୍ମଦଳପ୍ରାଏ । ପ୍ରଲମ୍ବ ଯାର ଭୁଜ ଦୁହେଁ ॥ ୩୩
ଯେ ନରଲୋକରେ ସୁନ୍ଦର । ସେ ନିଜ ପତିକି ହେ ବୀର ॥ ୩୪
ବ୍ରୀଡ଼ା ସହିତ ଯେ ହସିତ । ତେଣେ ଅଟେ ଯେ ଉତ୍ତମ୍ଭିତ[4] ॥ ୩୫
ଏମନ୍ତ ଭ୍ରୂଲତାଯୁଗରେ । ସେ କାଳେ ଅତ୍ୟନ୍ତ ପ୍ରୀତିରେ ॥ ୩୬
ସୁରତ ଭାବର ନିମିତ୍ତ । ସେ ରତି ହେଲେ ଉପସ୍ଥିତ ॥ ୩୭
୧୧ ସେ ଭଗବାନ କୃଷ୍ଣସୁତ । ତାଙ୍କୁ ବୋଇଲେ ଆଗୋ ମାତ ॥ ୩୮

---

୧. ଯାହାକୁ ଦଶ ଦିନ ହୋଇନାହିଁ; ବିଷ୍ଣୁପୁରାଣର ବଚନାନୁସାରେ ଷଷ୍ଠଦିବସରେ ।
୨. ସୁଆରେ = ସୁଆରମାନେ ।   ୩. ଡାଲି ଭାତ ।   ୪. ନାଚୁଥିବା ।

ତୁମ୍ଭର ମତି ହେଲା ଆନ । ମାତାର ଭାବକୁ ଛାଡ଼ିଣ ।। ୩୯
ପତ୍ନୀ ଯେସନେ ଉପଗତ । ହୁଅଇ ହେଉଛ ତେମନ୍ତ ।। ୪୦

ଶ୍ରୀରତିରୁବାଚ

୧୨ ସେ ପ୍ରଦ୍ୟୁମ୍ନକୁ ରତି ପୁଣ । କହିଲେ ଏମନ୍ତ ବଚନ ।। ୪୧
ତୁମ୍ଭେ ଶ୍ରୀକୃଷ୍ଣର କୁମର । ଗୃହରୁ ହରିଲା ଶମ୍ବର ।। ୪୨
ମୁଁ ତୋ ସୁଭଗା ପତ୍ନୀ ରତି । ହେ ପ୍ରଭୁ ! ତୁମ୍ଭେ ରତିପତି ।। ୪୩
୧୩ ଏହି ଶମ୍ବର ଯାତୁଧାନ[1] । ତୁମ୍ଭଙ୍କୁ ନୋହୁଁ ଦଶଦିନ ।। ୪୪
ସମୁଦ୍ରେ ପକାଇଲା ନେଇ । ମତ୍ସ୍ୟ ଗିଳିଲା ପୁଣ ତହିଁ ।। ୪୫
ତା' ଗର୍ଭୁଁ ତୁମ୍ଭଙ୍କୁ ଏଠାରେ । ହେ ପ୍ରଭୁ ! ପାଇଲି ଭାଗ୍ୟରେ ।। ୪୬
୧୪ ଯେ ପୁଣ ଦୁର୍ଦ୍ଧର୍ଷ ଅଟଇ । ଯାକୁ କେ ଜିଣି ନ ପାରଇ ।। ୪୭
ଆପଣା ଶତ୍ରୁ ଯେ ଅଟଇ । ଶତମାୟାକୁ ଯେ ଜାଣଇ ।। ୪୮
ତୁମ୍ଭେ ମୋହନାଦି ମାୟାରେ । ଏହାକୁ ସଂହାର[2] ଏଠାରେ ।। ୪୯
୧୫ ବତ୍ସାବିହୀନ ଧେନୁପ୍ରାଏ । ଆକୁଳ ହୋଇ ଅତିଶୟେ ।। ୫୦
ବିଗତସୁତ ଯେ ଅଟଇ । ଆକୁଳ ପୁତ୍ରସ୍ନେହେ ହୋଇ ।। ୫୧
ଦୀନ ହୋଇଣ ତୁମ୍ଭ ମାଏ । କାନ୍ଦନ୍ତି କୁରରୀପରାଏ ।। ୫୨
୧୬ ଏରୂପେ ମାୟାବତୀ କହି । ମହାତ୍ମା ପ୍ରଦ୍ୟୁମ୍ନଙ୍କୁ ତହିଁ ।। ୫୩
ନାଶଇ ଯେ ସର୍ବମାୟାକୁ । ସେ ଦେଲା ସେ ମହାମାୟାକୁ ।। ୫୪
୧୭ ଶମ୍ବରାସୁରଠାକୁ ଯାଇ । ପ୍ରଦ୍ୟୁମ୍ନ ଉପସ୍ଥିତ ହୋଇ ।। ୫୫
ଅସହ୍ୟ ଆକ୍ଷେପରେ ପୁଣ । ଆକ୍ଷେପମାନଙ୍କୁ କରିଣ ।। ୫୬
କଳହ ଜନ୍ମାନ୍ତେ ତାହାକୁ । ଡାକିଲେ ଯୁଦ୍ଧ କରିବାକୁ ।। ୫୭
୧୮ ପାଦରେ ହୁଅନ୍ତେ ଆହତ । ଉରଗ ହୁଅଇ ଯେମନ୍ତ ।। ୫୮
ଦୁଷ୍ଟ ବଚନେ ଦୈତ୍ୟ ତହିଁ । ସେ ରୂପେ ଅଧିକ୍ଷିପ୍ତ ହୋଇ ।। ୫୯
କ୍ରୋଧସକାଶୁଁ ତାମ୍ରବର୍ଣ୍ଣ । ଦିଶଇ ତା' ବେନି ନୟନ ।। ୬୦
ଗଦାକୁ ଧରିଣ କରରେ । ବାହାର ହୋଇଲା ସତ୍ୱରେ ।। ୬୧
୧୯ ମହାତ୍ମା ପ୍ରଦ୍ୟୁମ୍ନଙ୍କୁ ଦୈତ୍ୟ । ଗଦାରେ ପ୍ରହାରି ତୁରିତ ।। ୬୨
ବଜ୍ରଆଘାତରେ ନିଷ୍ଠୁର । ନାଦ ଅଟଇ ଯେ ପ୍ରକାର ।। ୬୩
କଲା ତେମନ୍ତ ଧ୍ୱନିମାନ । ତାହାକୁ ପ୍ରକ୍ଷିପ୍ତ କରିଣ ।। ୬୪
୨୦ ସେ ଭଗବାନ ପରଦ୍ୟୁମ୍ନ । ସେ ଗଦା ପଡ଼ନ୍ତେ ଆସିଣ ।। ୬୫
ଗଦାକୁ ଗଦାରେ ନିବାରି । ଶତ୍ରୁକୁ ଅତି କ୍ରୋଧ କରି ।। ୬୬
ନିଜ ଗଦାକୁ ପ୍ରହାରଣ । [3]କଲେ ସେ କରନ୍ତେ ଗର୍ଜନ ।। ୬୭
୨୧ ମୟ ଦେଖାଇଛି ଯାହାକୁ । ଦୈତ୍ୟ ସେ ରାକ୍ଷସମାୟାକୁ ।। ୬୮

---

୧. ଅସୁର । ୨. ସଂହାର = ବଧ କର ।
୩. ......ସ୍ୱଗଦାଂ ନଦନ୍ ଇତି ପାଠେ/ସ୍ୱଗଦାଂ ନୃପ ଇତି ପାଠାନ୍ତରମ୍ ।

ଆଶ୍ରୟ କରି ଆକାଶରେ । ରହିଣ କାର୍ଷ୍ଣିର[୧] ଉପରେ ।।
ପାଷାଣମୟ ବୃଷ୍ଟିମାନ । ସେଠାରେ କଲା ସେ ମୋକ୍ଷଣ ।।
୨୨ ଯେ ଅଟେ ରୁକ୍ମିଣୀର ସୁତ । ସେ ପରଦ୍ୟୁମ୍ନ ମହାରଥ ।।
ପାଷାଣ ବୃଷ୍ଟିମାନଙ୍କରେ । ବିଦ୍ଧ ହୁଅନ୍ତେ ସେ କାଳରେ ।।
ଯେ ଅଟେ ସତ୍ତ୍ୱଗୁଣମୟ । ସର୍ବମାୟାକୁ କରେ କ୍ଷୟ ।।
ସେ ମହାବିଦ୍ୟାକୁ ତତ୍‌କ୍ଷଣ । ପ୍ରୟୋଗ କଲେ ହେ ରାଜନ ।।
୨୩ ତଦନନ୍ତରେ ସେ ଅସୁର । ଗୁହ୍ୟକ ଗନ୍ଧର୍ବ ଆବର ।।
ପିଶାଚ ଉରଗ ରାକ୍ଷସ । ଏମାନଙ୍କର ଯେ ଶତଶଃ[୨] ।।
ପ୍ରୟୋଗ କରିଥିଲା ଯାଙ୍କୁ । ସେ ସର୍ବ ରାକ୍ଷସମାୟାକୁ ।।
କୃଷ୍ଣନନ୍ଦନ ସେ କାଳରେ । ବିନାଶ କଲେକ ସତ୍ୱରେ ।।
୨୪ କୃଷ୍ଣନନ୍ଦନ ତହିଁ ପୁଣ । ତୀକ୍ଷଣ ଖଡ଼ଗ ଘେନିଣ ।।
କିରୀଟକୁଣ୍ଡଳସହିତ । ତାମ୍ରଶ୍ମଶ୍ରୁଏ ଯହିଁ ସ୍ଥିତ ।।
ବଳରେ ସେ ଶମ୍ବରଶିର । ଦେହରୁ ହରିଲେ ସତ୍ୱର ।।
୨୫ ଯେ ସ୍ତୁତିମାନ କରୁଛନ୍ତି । ସେ ଦେବମାନଙ୍କରେ ଅତି ।।
ପୁଷ୍ପସମୂହମାନଙ୍କେଣ । ପ୍ରଦ୍ୟୁମ୍ନ ଆକ୍ଷିପ୍ତ ହୋଇଣ ।।
ଅମ୍ବରଗାମିନୀ ଭାର୍ଯ୍ୟାରେ । ପୁରକୁ ଗଲେ ଆକାଶରେ ।।
୨୬ ଶତସଂଖ୍ୟକ ଲଳନାରେ । ସଂକୁଳ ଅଟେ ଯେ ନିର୍ଭରେ ।।
ସେ ଅନ୍ତଃପୁରେ ହେ ରାଜନ । ଆକାଶୁଁ ପତ୍ନୀସହିତେଣ ।।
ପ୍ରବେଶ ହୋଇଲେ ଯେସନ । ବିଜୁଳିସହିତରେ ଘନ ।।
୨୭ ଯେ ଅଟେ ଘନପ୍ରାଏ ଶ୍ୟାମ । ପୀତକୌଶେୟ ଯା' ବସନ ।।
୨୮ ପ୍ରଲମ୍ବ ବାହୁଯୁଗ ପୁଣ । ଆରକ୍ତବର୍ଣ୍ଣ ଯା' ଲୋଚନ ।।
ରୁଚିର ମୁଖ ଅଟେ ଯାର । ସୁସ୍ମିତବନ୍ତ ଯେ ଆବର ।।
ଯେ ନୀଳ ବକ୍ର ଅଳକାଏ । ଅଟନ୍ତି ଭ୍ରମରପରାଏ ।।
ତେଣେ ଯା' ବଦନନଳିନ । ହୋଇଛି ଅଳଂକୃତ ପୁଣ ।।
ସେ ପ୍ରଦ୍ୟୁମ୍ନକୁ ବନିତାଏ । ମଣିଣ ଶ୍ରୀକୃଷ୍ଣପରାଏ ।।
ଲଜ୍ଜିତ ହୋଇଣ ସତ୍ୱରେ । ଲୁଚିଲେ ସେହି ସେହିଠାରେ ।।
୨୯ ଅଳପ ବିଲକ୍ଷଣେ ତହିଁ । ନାରୀଏ ମନ୍ଦମନ୍ଦ ହୋଇ ।।
ଏ କୃଷ୍ଣ ନୁହନ୍ତି ବୋଲିଣ । ତାହାଙ୍କୁ ଗୋଚର କରିଣ ।।
ନାରୀରତ୍ନରେ ଯୁତ ହୋଇ । ପ୍ରଦ୍ୟୁମ୍ନ ଛନ୍ତି ଯଉଁଠାଇଁ ।।
ହୋଇଣ ହରଷବିସ୍ମିତ । ସେଠାରେ ହେଲେ ଉପଗତ ।।
୩୦ ଏଥୁ ଅନ୍ତରେ ହେ ରାଜନ । ଅସିତ ଯା' ଅପାଙ୍ଗମାନ ।।

୧. ପ୍ରଦ୍ୟୁମ୍ନର । ୨. ଶତ ଶତ ମାୟା ।

| | | | |
|---|---|---|---|
| | ପୟୋଧରରୁ ଯାହାଙ୍କର । | ସ୍ନେହରେ ସ୍ରବୁଅଛି କ୍ଷୀର | ॥ ୧୦୦ |
| | ଯେ କହେ ମନୋହର ବାଣୀ । | ସେହି ସ୍ଥାନରେ ସେ ରୁକ୍ମିଣୀ | ॥ ୧୦୧ |
| | ଯେ ନଷ୍ଟ ଅଟେ ନିଜ ସୁତ । | ତାକୁ ସୁମରିଲେ ତୁରିତ | ॥ ୧୦୨ |
| ୩୧ | ଏ ନର ଶ୍ରେଷ୍ଠ ପଦ୍ମନେତ୍ର । | କେ ଅବା ଅଟେ କାର ପୁତ୍ର | ॥ ୧୦୩ |
| | କେବଣ ନାରୀ ଜଠରରେ । | ଏହାକୁ ଧଇଲା ନିର୍ଭରେ | ॥ ୧୦୪ |
| | ଏ ନର ଯାକୁ ଲଭିଛଇଁ । | ଏ ନାରୀ କେ ଅବା ଅଟଇ | ॥ ୧୦୫ |
| ୩୨ | ମୋହର ଯେବଣ ନନ୍ଦନ । | ବିନଷ୍ଟ ହୋଇଛି ପୂର୍ବେଣ | ॥ ୧୦୬ |
| | ସୂତିକା-ଆଳୟରୁ ପୁଣ । | ଯାହାକୁ କଲା କେ ହରଣ | ॥ ୧୦୭ |
| | କେହୁଣି ସ୍ଥାନରେ ସେ ଯେବେ । | ଜୀବନ ଲଭିଥିବ ତେବେ | ॥ ୧୦୮ |
| | ରୂପରେ ବୟସରେ ସେହି । | ଏହା ସମାନ ଥିବ ହୋଇ | ॥ ୧୦୯ |
| ୩୩ | ଶାରଙ୍ଗ ଧନୁ ଅଟେ ଯାର । | କେମନ୍ତେ ଏ ସେ ଶ୍ରୀକୃଷ୍ଣର | ॥ ୧୧୦ |
| | ଅଙ୍ଗମାନଙ୍କେ ଆକୃତିରେ । | ଗମନ-ବଚନ-ହାସରେ | ॥ ୧୧୧ |
| | ଅବଲୋକନମାନଙ୍କରେ । | ସାରୂପ୍ୟ ଲଭିଛି ନିର୍ଭରେ | ॥ ୧୧୨ |
| ୩୪ | ଯେବଣ ବାଳକକୁ ମୁହିଁ । | ନିଶ୍ଚେ ଗର୍ଭରେ ଧରିଲଇଁ | ॥ ୧୧୩ |
| | ସେ ଏ ବା ହେବ, ଏହାଠାର । | ଅଧିକ ହୋଇ ପ୍ରୀତି ମୋର | ॥ ୧୧୪ |
| | ହୋଇଲା, ବାମ ଭୁଜ ପୁଣ । | ଅଧିକେ ହୋଉଛି ସ୍ଫୁରଣ | ॥ ୧୧୫ |
| ୩୫ | ରୁକ୍ମିଣୀ ଏମନ୍ତ ରୂପରେ । | ନିଶ୍ଚୟ କରନ୍ତେ ସେଠାରେ | ॥ ୧୧୬ |
| | ଦେବକୀ-ବସୁଦେବଙ୍କର । | ସଙ୍ଗତେ ଦେବକୀକୁମର | ॥ ୧୧୭ |
| | ଉତ୍ତମଶ୍ଳୋକ ସେ ଅଚ୍ୟୁତ । | ଆସି ହୋଇଲେ ଉପଗତ | ॥ ୧୧୮ |
| ୩୬ | ଜାଣିଥିଲେହେଁ ଜନାର୍ଦ୍ଦନ । | ସକଳ ଅର୍ଥ ଭଗବାନ | ॥ ୧୧୯ |
| | ସେଠାରେ ମଉନ ହୋଇଲେ । | ଏମନ୍ତେ ନାରଦ ଅଇଲେ | ॥ ୧୨୦ |
| | ଶମ୍ବରାହରଣାଦି ବୃତ୍ତ । | ତାହାଙ୍କୁ କହିଲେ ସମସ୍ତ | ॥ ୧୨୧ |
| ୩୭ | କୃଷ୍ଣର ଅନ୍ତଃପୁରେ ରହି । | ଯେତେ ବନିତା ଥିଲେ ତହିଁ | ॥ ୧୨୨ |
| | ଯେ ଅଟେ ଆଶ୍ଚର୍ଯ୍ୟ ଅତ୍ୟନ୍ତ । | ଶ୍ରବଣ କରି ସେ ଚରିତ | ॥ ୧୨୩ |
| | ବହୁତ ବରଷମାନଙ୍କୁ । | ଯେ ନଷ୍ଟ ହୋଇଥିଲେ ତାଙ୍କୁ | ॥ ୧୨୪ |
| | ମଲାର[୧] ଅଇଲାପରାଏ । | ଆନନ୍ଦ ହୋଇଲେ ସଭିଏଁ | ॥ ୧୨୫ |
| ୩୮ | ଦେବକୀ ବସୁଦେବ ଦୁଇ । | ଶ୍ରୀରାମକୃଷ୍ଣ ବେନି ଭାଇ | ॥ ୧୨୬ |
| | ସେରୂପେ ନାରୀଏ ରୁକ୍ମିଣୀ । | ସେ ରତି-ପ୍ରଦ୍ୟୁମ୍ନକୁ ପୁଣି | ॥ ୧୨୭ |
| | କରିଣ ଆଲିଙ୍ଗନମାନ । | ହରଷ ହେଲେ ହେ ରାଜନ | ॥ ୧୨୮ |
| ୩୯ | ଯେ ନଷ୍ଟ ହୋଇଥିଲେ ପୁଣ । | ଆସନ୍ତେ ସେ କୃଷ୍ଣନନ୍ଦନ | ॥ ୧୨୯ |
| | ଦ୍ୱାରକାପୁରବାସୀ ଜନେ । | ତାହାଙ୍କୁ ଦେଖିଣ ସେ ସ୍ଥାନେ | ॥ ୧୩୦ |

୧. ମୃତ ବ୍ୟକ୍ତିର ।

ଯେ ଅଟେ ମଲାର ପ୍ରାଏକ । ଭାଗ୍ୟେ ଅଇଲା ସେ ବାଳକ ॥ ୧୩୧
ଏ ଅଟେ ଆଶ୍ଚର୍ଯ୍ୟ ଅତ୍ୟନ୍ତ । ହରଷେ ବୋଇଲେ ଏମନ୍ତ ॥ ୧୩୨
ପିତାର ଯେ ଅଟେ ସଦୃଶ । ତେଣେ ଯେ ଅଟେ ନିଜ ଈଶ ॥ ୧୩୩
ଏମନ୍ତ ରୂପେ ଯାହାଙ୍କର । ଭାବନା ହେଲା ନିରନ୍ତର ॥ ୧୩୪
ଏକାନ୍ତ ସ୍ଥାନେ ଭାବମାନ । ବଢ଼ିଲା ଯାହାଙ୍କର ପୁଣ ॥ ୧୩୫
ସେ ପ୍ରଦ୍ୟୁମ୍ନର ମାତାଗଣ । ଭଜିଲେ ଯାକୁ ପୁଣ ପୁଣ ॥ ୧୩୬
ସେ କଥା ବିଚିତ୍ର ନୁହଇ । ଲକ୍ଷ୍ମୀରମଣ ମୂର୍ତ୍ତି ଯେହି ॥ ୧୩୭
ତଦ୍‌ପ୍ରତିବିମ୍ବ ଯେଉଁ ସ୍ମର । ହୋଇଛି ନୟନଗୋଚର ॥ ୧୩୮
ସେ କନ୍ଦର୍ପକୁ ନାରୀ ଯାହା । ଭଜିଲେ କି କହିବା ତାହା ॥ ୧୩୯
ଦଶମସ୍କନ୍ଧ ଭାଗବତ । ପ୍ରାକୃତବନ୍ଧେ କରି ଗୀତ ॥ ୧୪୦
ବ୍ରାହ୍ମଣ ଦୀନବନ୍ଧୁ ମନ । ହରଷ ହେଲା ଅନୁଦିନ ॥ ୧୪୧

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ନଷ୍ଟପ୍ରଦ୍ୟୁମ୍ନସ୍ୟ ଦ୍ୱାରକାଗମନଂ
ନାମ ପଞ୍ଚପଞ୍ଚାଶୋଽଧ୍ୟାୟଃ ॥

## ଷଟ୍‌ପଞ୍ଚାଶ ଅଧ୍ୟାୟ

ଷଟ୍‌ପଞ୍ଚାଶତ୍ତମେ ମିଥ୍ୟାଭିଯୋଗେ ମଣିମାହରତ୍ ।
କନ୍ୟାଂ ଜାମ୍ବବତଃ ପ୍ରାପ କୃଷ୍ଣଃ ସତ୍ରାଜିତସ୍ତତଃ ॥ ୧
ଈଶୋଽନୀଶବିହାରେଣ ବିହର୍ତ୍ତୁଂ ଭୁବନଂ ଗତଃ ।
ଦାରେଷ୍ୱେକେଷୁ ନ ପ୍ରୀତିରିତ୍ୟନ୍ୟାନ୍ ଜଗୃହେ ମୁଦା ॥ ୨
ପୁତ୍ରାଦିକାମସୌଖ୍ୟସ୍ୟ ନିଷ୍ଠାମୁକ୍ତ୍ୱାତିଚଞ୍ଚଳାମ୍ ।
ଅର୍ଥସ୍ୟାନର୍ଥତାମାହ ସ୍ୟମନ୍ତହରଣାଦିନା ॥ ୩

ଶ୍ରୀଶୁକ ଉବାଚ

୧ ଶୁକ କହନ୍ତି ହେ ରାଜନ । ଯେ କଲା ଅପରାଧମାନ ॥ ୧
ସେ ସତ୍ରାଜିତ ଶ୍ରୀକୃଷ୍ଣଙ୍କୁ । ସେକାଳେ ନିଜ ଦୁହିତାକୁ ॥ ୨
ଯେ ସ୍ୟମନ୍ତକ ନାମେ ଖ୍ୟାତ । ଅଟଇ ସେ ମଣିସହିତ ॥ ୩
ବହୁତ ଉଦ୍ୟମ କରିଣ । ଆପଣେ କଲେ ସେ ପ୍ରଦାନ ॥ ୪

ଶ୍ରୀପରୀକ୍ଷିଦୁବାଚ

୨ ସେ ଶୁକମୁନିଙ୍କି ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ॥ ୫
ସେ ଶ୍ରୀକୃଷ୍ଣର ସତ୍ରାଜିତ । କି ଅପରାଧ କଲା ଜାତ ॥ ୬
ତାହାର ସ୍ୟମନ୍ତକ ମଣି । କା'ଠାରୁ ହୋଇଲା ହେ ମୁନି ॥ ୭
କି ହେତୁ ନିଜ ଦୁହିତାକୁ । ପ୍ରଦାନ କଲା ଶ୍ରୀକୃଷ୍ଣଙ୍କୁ ॥ ୮

ଶ୍ରୀଶୁକ ଉବାଚ

୩ ଶୁକ କହନ୍ତି ହେ ରାଜନ । ଯାହା ପୁଛିଲ ତାହା ଶୁଣ ॥ ୯
ଭକ୍ତ ଅଟଇ ସତ୍ରାଜିତ । ତା' ସ୍ୱାମୀ ହେଲେହେଁ ଆଦିତ୍ୟ ॥ ୧୦
ପରମ ସଖାପ୍ରାଏ ହୋଇ । ତାହାର ହେଲେ ପ୍ରୀତି ବହି ॥ ୧୧
ସନ୍ତୋଷେ ସ୍ୟମନ୍ତକମଣି । ସତ୍ରାଜିତକୁ ଦେଲେ ଆଣି ॥ ୧୨
୪ ସେ ମଣି କଣ୍ଠେ ସତ୍ରାଜିତ । ଧରନ୍ତେ ଆଦିତ୍ୟ ଯେମନ୍ତ ॥ ୧୩
ସେରୂପେ ତେଜସ୍ୱନ୍ତ ହୋଇ । ମିଳନ୍ତେ ଦ୍ୱାରକାରେ ଯାଇଁ ॥ ୧୪
ସେ କାଳେ ଆହେ ପରୀକ୍ଷିତ । ତେଜରେ ନୋହିଲା ଲକ୍ଷିତ ॥ ୧୫
୫ ତା' ତେଜେ ହୋଇଲା ଖଣ୍ଡନ । ଯଦୁମାନଙ୍କ ଦୃଷ୍ଟିମାନ ॥ ୧୬
ସେ ଜନମାନେ ଦୂରୁଁ ପୁଣ । ସେ ସତ୍ରାଜିତକୁ ଦେଖିଣ ॥ ୧୭
ଏ ସୂର୍ଯ୍ୟ ବୋଲି ଅତିଶୟେ । ଶଙ୍କାକୁ ଲଭନ୍ତେ ସଭିଏଁ ॥ ୧୮
ପଶା ଖେଳନ୍ତେ ଭଗବାନ । ସମସ୍ତେ କଲେ ନିବେଦନ ॥ ୧୯
୬ ହେ ଶଙ୍ଖ-ଚକ୍ର-ଗଦାଧର । ହେ ନାରାୟଣ ଦାମୋଦର ॥ ୨୦
ହେ ପଦ୍ମପଲାଶଲୋଚନ । ଗୋବିନ୍ଦ ହେ ଯଦୁନନ୍ଦନ ॥ ୨୧
ଆମ୍ଭ ସମସ୍ତ ଜନଙ୍କର । ତୁମ୍ଭଙ୍କୁ ହେଉ ନମସ୍କାର ॥ ୨୨

୭ ତୀକ୍ଷ୍ଣ କିରଣ ଯାହାଙ୍କର । ହେ ଜଗତ୍‌ପତି ଏ ଭାସ୍କର ॥ ୨୩
କିରଣଚକ୍ରେ ଜନଙ୍କର । ନେତ୍ରକୁ ଖଣ୍ଡନ୍ତେ ଆବର ॥ ୨୪
ତୁମ୍ଭଙ୍କୁ ଦେଖିବା ନିମିତ୍ତ । ଏଠାରେ ହେଲେ ଉପସ୍ଥିତ ॥ ୨୫
୮ ଯେଣୁ ଦେବତାଶ୍ରେଷ୍ଠମାନେ । ତୁମ୍ଭ ଦର୍ଶନ ତ୍ରିଭୁବନେ ॥ ୨୬
ଇଚ୍ଛା କରନ୍ତି ନିଷ୍ଠେ ପୁଣ । ହେ ପ୍ରଭୁ ଆଜ ଏ ତପନ ॥ ୨୭
ଯଦୁମାନଙ୍କେ ଗୁପ୍ତ ହୋଇ । ଯେ ତୁମ୍ଭେ ଅଛ ଏଥି ରହି ॥ ୨୮
ତୁମ୍ଭଙ୍କୁ ଜାଣିଣ ଆଗତ । ହୋଇଲେ ଦେଖିବା ନିମିତ୍ତ ॥ ୨୯

ଶ୍ରୀଶୁକ ଉବାଚ

୯ ଶୁକ କହନ୍ତି ହେ ରାଜନ । ପଦ୍ମନୟନ ଭଗବାନ ॥ ୩୦
ସେ ଅଜ୍ଞାନୀଙ୍କର ବଚନ । ଏ ରୂପେ ଶ୍ରବଣ କରିଣ ॥ ୩୧
ହସିଣ ଆଜ୍ଞା ଦେଲେ ତହିଁ । ସୂର୍ଯ୍ୟଦେବତା ଏ ନୁହଇଁ ॥ ୩୨
ମଣିରେ ହୋଇ ତେଜସ୍ୱନ୍ତ । ଆସିଅଛି ସେ ସତ୍ରାଜିତ ॥ ୩୩
୧୦ ମଙ୍ଗଳମାନ କୌତୁକରେ । ରଚିତ ଅଟନ୍ତି ଯହିଁରେ ॥ ୩୪
୧୧ ଯେ ପୁଣ ଅଟଇ ଶ୍ରୀମନ୍ତ । ସେ ନିଜଗୃହେ ସତ୍ରାଜିତ ॥ ୩୫
ପ୍ରବେଶ ହୋଇ ସେ କାଳରେ । ମଣିକି ବିପ୍ରମାନଙ୍କରେ ॥ ୩୬
ଦେବତାସଦନରେ ଯାଇ । ପ୍ରବେଶ କରାଇଲା ନେଇ ॥ ୩୭
ନିତ୍ୟେ ସୁବର୍ଣ୍ଣ ଆଠ ଭାର[1] । ସେ ମଣି ସର୍ଜଇ ହେ ବୀର ॥ ୩୮
ଦୁର୍ଭିକ୍ଷ ଅପମୃତ୍ୟୁମାନ । ଯେ ବା ଅରିଷ୍ଟ ସର୍ପ ଆନ ॥ ୩୯
ଯେ ଆଧିବ୍ୟାଧିମାନ ପୁଣ । ଯେ ଅବା ଅମଙ୍ଗଳମାନ ॥ ୪୦
ମାୟାବୀ ଲୋକର ଏମାନେ । ହେ ନୃପ ! ନୁହନ୍ତି ସେ ସ୍ଥାନେ ॥ ୪୧
ଯଉଁ ସ୍ଥାନରେ ପୂଜା ହୋଇ । ସେ ସ୍ୟମନ୍ତକ ମଣି ଥାଇ ॥ ୪୨
୧୨ ଯଦୁରାଜାର ନିମିତ୍ତରେ । ସେ ମଣି କେହୁଣି ଦିନରେ ॥ ୪୩
ଯାଚଞ୍ଚା କରନ୍ତେ ଅଚ୍ୟୁତ । ତଦନନ୍ତରେ ସତ୍ରାଜିତ ॥ ୪୪
ଯାଚଞ୍ଚାଭଙ୍ଗ ଶ୍ରୀକୃଷ୍ଣର । ବିଚାର ନ କରି ଆବର ॥ ୪୫
ଅର୍ଥରେ ଲୋଭିତ ହୋଇଣ । ସେ ମଣି ନ କଲା ପ୍ରଦାନ ॥ ୪୬
୧୩ ସେ ସତ୍ରାଜିତର ଯେ ଭାଇ । ତା' ନାମ ପ୍ରସେନ ଅଟଇ ॥ ୪୭
ଏକଦିନକେ ସେ ପ୍ରସେନ । ଅତ୍ୟନ୍ତ ଅଟେ ଯା' କିରଣ ॥ ୪୮
ସେ ମଣି କଣ୍ଠରେ ବାନ୍ଧିଣ । ହୟକୁ କରି ଆରୋହଣ ॥ ୪୯

---

୧. ଭାର – ''ଚତୁର୍ଭିର୍ବ୍ରୀହିଭିର୍ଗୁଞ୍ଜଂ ଗୁଞ୍ଜାନ୍ ପଞ୍ଚ ପଣଂ ପଣାନ୍ ।
ଅଷ୍ଟୌ ଧରଣମଷ୍ଟୌ ଚ କର୍ଷଂ ତାଂଶ୍ଚତୁରଃ ପଳମ୍ ॥
ତୁଳାଂ ପଳଶତଂ ପ୍ରାହୁର୍ଭାରଃ ସ୍ୟାଦ୍ ବିଂଶତିସ୍ତୁଳାଃ ॥''
୪ ବ୍ରୀହି = ୧ ଗୁଞ୍ଜ, ୫ ଗୁଞ୍ଜ = ୧ ପଣ, ୮ ପଣ = ୧ ଧରଣ, ୮ ଧରଣ = ୧ କର୍ଷ,
୪ କର୍ଷ = ୧ ପଳ, ୧୦୦ ପଳ = ୧ ତୁଳା, ୨୦ ତୁଳା = ୧ ଭାର ।

ମୃଗୟା କରିବା ମନରେ । ଗମନ କଲା ସେ ବନରେ ॥
୧୪ ସେ ପ୍ରସେନକୁ ସିଂହ ପୁଣ । ସେ ଅଶ୍ୱସହିତେ ମାରିଣ ॥
ମଣିକି ଘେନି ପର୍ବତରେ । ପ୍ରବେଶ ହୁଅନ୍ତେ ସତ୍ୱରେ ॥
ମଣି ଇଛନ୍ତେ ଜାମ୍ବବାନ । ସିଂହକୁ କଲେ ସେ ନିଧନ ॥
୧୫ ଜାମ୍ବବାନ ହିଁ ବାଳକର । ଖେଳିବା ନିମିତ୍ତେ ଆବର ॥
ସେ ମଣି ଆପଣା ଗର୍ତ୍ତରେ । ନିଯୁକ୍ତ କଲେ ସେ କାଳରେ ॥
ଭ୍ରାତା ଯେ ଅଟଇ ପ୍ରସେନ । ତାକୁ ନ କରି ବିଲୋକନ ॥
ଭାଇ ଅଟଇ ସତ୍ରାଜିତ । ବହୁତ ହେଲା ସେ ସଂତପ୍ତ ॥
୧୬ ମଣିକି ବାନ୍ଧିଣ କଣ୍ଠରେ । ମୋ ଭ୍ରାତା ଚଳିଲା ବନରେ ॥
ପ୍ରାୟଶଃ ତହିଁରେ ଅଚ୍ୟୁତ । ସେ ପ୍ରସେନକୁ କଲେ ହତ ॥
ସେ ସତ୍ରାଜିତ ସେ କାଳରେ । ବୋଲନ୍ତେ ଏମନ୍ତ ପ୍ରକାରେ ॥
ତାହା ଶ୍ରବଣ କରି ଜନେ । କହିଲେ ଏକେ ଏକେ କର୍ଣ୍ଣେ ॥
୧୭ ଶ୍ରବଣ କରି ତା' ଅଚ୍ୟୁତ । ଯେ ନିଜଠାରେ ଅଟେ ଲିପ୍ତ ॥
ଏମନ୍ତ ଦୁର୍ଯଶକୁ ଆର । ମାର୍ଜନା ଅର୍ଥେ ପ୍ରସେନର ॥
ମାର୍ଗକୁ ହେଲେ ଅନୁଗତ । ନଗର ଲୋକଙ୍କ ସହିତ ॥
୧୮ ଅଶ୍ୱକୁ ପ୍ରସେନକୁ ପୁଣ । କେସରୀ କରିଛି ନିଧନ ॥
ଏମନ୍ତ ଦେଖିଣ ବନରେ । ସିଂହକୁ ପର୍ବତପୃଷ୍ଠରେ ॥
ସେ ଜାମ୍ବବାନ କଲେ ହତ । ସେ ଜନେ ଦେଖିଲେ ଏମନ୍ତ ॥
୧୯ ଏକା ହୋଇଣ ଭଗବାନ । ପ୍ରଜାଙ୍କୁ ବାହାରେ ରଖିଣ ॥
ଯେ ଅଟେ ଅତି ଅନ୍ଧକାର । ଆବର ଅଟେ ଭୟଙ୍କର ॥
ସେ ଋକ୍ଷରାଜାର ବିଳରେ । ପ୍ରବେଶ ହୋଇଲେ ସତ୍ୱରେ ॥
୨୦ ବାଳକକ୍ରୀଡ଼ାନିମିତ୍ତରେ । ଯେ ଯୁକ୍ତ ହୋଇଛି ସେଠାରେ ॥
ସେ ମଣି କରି ବିଲୋକନ । ହରିବା ଅର୍ଥେ ତାହା ପୁଣ ॥
ବୁଦ୍ଧିକି କରନ୍ତେ ଅଚ୍ୟୁତ । ତାହା ନିକଟେ ହେଲେ ସ୍ଥିତ ॥
୨୧ ଅପୂର୍ବ ମନୁଷ୍ୟ ସେ ହରି । ତାହାଙ୍କୁ ଆଲୋକନ କରି ॥
ଭୟ ପାଇଲା ପ୍ରାଏ ହୋଇ । ଧାତ୍ରୀ କହନ୍ତେ ତାଙ୍କୁ ଯାଇଁ ॥
ଯେ ବଳବନ୍ତ ଲୋକଙ୍କର । ମଧ୍ୟେ ଅଟଇ ବଳୀଆର ॥
ସେ ଜାମ୍ବବାନ ତାହା ଶୁଣି । ଧାଇଁଲେ କ୍ରୁଦ୍ଧ ହୋଇ ପୁଣି ॥
୨୨ ଯେ ଅନୁଭାବ ନ ଜାଣଇଁ । ସେ ଜାମ୍ବବାନ କ୍ରୁଦ୍ଧ ହୋଇ ॥
ପ୍ରାକୃତ ପୁରୁଷ ମଣିଣ । ଯେ ନିଜ ସ୍ୱାମୀ ଭଗବାନ ॥
ତାହାଙ୍କ ତୁଲେ ସେ କାଳରେ । ଯୁଦ୍ଧ ରଚିଲେ ପରସ୍ପରେ ॥
୨୩ ଜିଣିମା ଅର୍ଥେ ପରସ୍ପର । ଅଟଇ ଇଛା ଯାହାଙ୍କର ॥

| | | | | | |
|---|---|---|---|---|---|
| | ଆୟୁଧ ଅଶ୍ମ ଦ୍ରୁମମାନ | । ଭୁଜମାନଙ୍କରେ ଘେନିଣ | ।। | ୮୨ |
| | ଅତ୍ୟନ୍ତ ତୁମୁଳ ହୋଇଣ | । ଦ୍ୱନ୍ଦ୍ୱସମର କଲେ ପୁଣ | ।। | ୮୩ |
| | ଯେସନେ ବେନି ସଞ୍ଚାଣର | । ଆମିଷଅର୍ଥରେ ସମର | ।। | ୮୪ |
| ୨୪ | ବଜ୍ରନିର୍ଘାତପ୍ରାଏ ହୋଇ | । ଯେ ଅତିନିଷ୍ଠୁର ଅଟଇ | ।। | ୮୫ |
| | ଏମନ୍ତ ମୁଷ୍ଟିରେ ସଂଚାର | । ରାତ୍ରଦିବସେ ପରସ୍ପର | ।। | ୮୬ |
| | ଅଷ୍ଟାବିଂଶତିଦିନ ତହିଁ | । ହୋଇଲା ଅବିଶ୍ରାମ ହୋଇ | ।। | ୮୭ |
| ୨୫ | ଶ୍ରୀକୃଷ୍ଣମୁଷ୍ଟିମାନଙ୍କରେ | । ଯେବଣ ଆଘାତ ତହିଁରେ | ।। | ୮୮ |
| | ବିଶ୍ଳଥ[୧] ଅଙ୍ଗସନ୍ଧିସ୍ଥାନ | । ଯାହାର ହୋଇଛନ୍ତି ପୁଣ | ।। | ୮୯ |
| | କ୍ଷୀଣ ଅଟଇ ଯାର ସତ୍ତ୍ୱ | । ସ୍ୱିନ୍ନ[୨] ହୋଇଲା ଯାହା ଗାତ୍ର | ।। | ୯୦ |
| | ଗୋବିନ୍ଦଙ୍କୁ ସେ ଜାମ୍ବବାନ | । କହିଲେ ବିସ୍ମିତ ହୋଇଣ | ।। | ୯୧ |
| ୨୬ | ତୁ ପ୍ରଭବିଷ୍ଣୁ[୩] ଅଧୀଶ୍ୱର | । ପୁରାଣ ପୁରୁଷ ଆବର | ।। | ୯୨ |
| | ସମସ୍ତ ପ୍ରାଣିଙ୍କର ପ୍ରାଣ | । ଯେ ଓଜ ସହ ବଳ ଆନ | ।। | ୯୩ |
| | ସେହି ତୁ ଅଟୁ ବିଷ୍ଣୁ ତୁହି | । ତୋତେ ନିଶ୍ଚୟ କଲି ମୁହିଁ | ।। | ୯୪ |
| ୨୭ | ଯେ ବିଶ୍ୱ କରନ୍ତି ସର୍ଜନ | । ତହିଁରେ ସ୍ରଷ୍ଟା ତୁମ୍ଭେ ପୁଣ | ।। | ୯୫ |
| | ସର୍ଜନ ଦ୍ରବ୍ୟ ଯେବା ଆନ | । ତହିଁରେ ତୁମ୍ଭେ ଉପାଦାନ | ।। | ୯୬ |
| | ଯେ କାଳ କଳନା କରନ୍ତି | । ତାଙ୍କର ଅଟ ତୁମ୍ଭେ ପତି | ।। | ୯୭ |
| | ପୁଣି ସେରୂପେ ଆତ୍ମାଙ୍କର | । ପରମ ଆତ୍ମା ତୁ ଆବର | ।। | ୯୮ |
| ୨୮ | ଯାହାର ଅଳ୍ପ ଉଦ୍ଦୀପନ | । ରୋଷେ ଯେ କଟାକ୍ଷମୋକ୍ଷଣ | ।। | ୯୯ |
| | କ୍ଷୋଭ ପାଇଲେ ଯହିଁ ତେଣେ | । କୁମ୍ଭୀର ତିମିଙ୍ଗିଳମାନେ | ।। | ୧୦୦ |
| | ଏମନ୍ତ ଯେବଣ ସାଗର | । ସେ ଦେଲା ମାର୍ଗକୁ ଯାହାର | ।। | ୧୦୧ |
| | ନିଜ ଯଶକୁ କରି ବନ୍ଧ | । ଯେ ଲଙ୍କାପୁର କଲେ ଦଗ୍‌ଧ | ।। | ୧୦୨ |
| | ଯାହାର ଶରେ ଦୈତ୍ୟ[୪] ଶିରେ | । ଛିଡ଼ିଣ ପଡ଼ିଲେ ଭୂମିରେ | ।। | ୧୦୩ |
| | ସେ ରଘୁନାଥ ଅଟ ତୁମ୍ଭେ | । ତୁମ୍ଭଙ୍କୁ ଜାଣିଲି ମୁଁ ଏବେ | ।। | ୧୦୪ |
| ୨୯ \| | ଏମନ୍ତରୂପେ ଶିଷ୍ଟ ଜ୍ଞାନ | । ଜାଣିଲେ ଯେ ଋକ୍ଷରାଜନ | ।। | ୧୦୫ |
| ୩୦ \| | ସେ ନିଜ ଭକ୍ତକୁ ସେଠାଇଁ | । ଅତିଦୟାରେ ଯୁକ୍ତ ହୋଇ | ।। | ୧୦୬ |
| | ମଙ୍ଗଳବନ୍ତ ହସ୍ତେ ପୁଣ | । ହେ ନୃପ ସ୍ପରଶ କରିଣ | ।। | ୧୦୭ |
| | ଅଚ୍ୟୁତ ଦେବକୀନନ୍ଦନ | । ପଦ୍ମନୟନ ଭଗବାନ | ।। | ୧୦୮ |
| | ମେଘଗମ୍ଭୀର ବଚନରେ | । କହିଲେ ଏମନ୍ତ ପ୍ରକାରେ | ।। | ୧୦୯ |
| ୩୧ | ହେ ଋକ୍ଷପତି ଏ ବିଳରେ | । ମିଳିଲୁଁ ମଣିନିମିତ୍ତରେ | ।। | ୧୧୦ |
| | ଯେ ମିଥ୍ୟା ଅକୀର୍ତ୍ତି ଅଟଇ | । ବର୍ତ୍ତିଛି ଆପଣାର ଠାଇଁ | ।। | ୧୧୧ |
| | ଏହି ସ୍ୟମନ୍ତକ ମଣିରେ | । ତାହା ମାର୍ଜନାନିମିତ୍ତରେ | ।। | ୧୧୨ |

୧. ବିଶେଷଭାବେ ଶିଥିଳ । ୨. ସ୍ୱେଦଯୁକ୍ତ । ୩. ପ୍ରଭବିଷ୍ଣୁ = ପ୍ରଭାବଶାଳୀ ।
୪. ଦୈତ୍ୟ = ରାବଣ, ଦଶଗ୍ରୀବ ।

୩୨ କୃଷ୍ଣ କହନ୍ତେ ଏ ବଚନ । ସେ ରକ୍ଷପତି ଜାମ୍ବବାନ ॥ ୧୧୩
ଯେ ନିଜ ସୁତା ଜାମ୍ବବତୀ । ଆଣି ସେ କନ୍ୟାକୁ ଝଟିତି ॥ ୧୧୪
ହରଷେ ସେ ମଣି ସହିତେ । କୃଷ୍ଣଙ୍କୁ ଦେଲେ ପୂଜାଅର୍ଥେ ॥ ୧୧୫
୩୩ ପ୍ରବେଶ ହୋଇଣ ଗର୍ତ୍ତରେ । ଯେ ରହିଅଛନ୍ତି ନିର୍ଭରେ ॥ ୧୧୬
ସେ ଶ୍ରୀକୃଷ୍ଣର ନିର୍ଗମନ । ସେ ଜନମାନେ ନ ଦେଖିଣ ॥ ୧୧୭
ଦ୍ୱାଦଶ ଦିନ ତହିଁ ପୁଣ । ପ୍ରତୀକ୍ଷା କରି ହେ ରାଜନ ॥ ୧୧୮
ଦୁଃଖିତ ହୋଇ ତଦନ୍ତରେ । ଗମନ କଲେ ନିଜ ପୁରେ ॥ ୧୧୯
୩୪ ଦେବକୀ ବସୁଦେବ ଦୁଇ । ଜ୍ଞାତିଏ ମିତ୍ରମାନେ ତହିଁ ॥ ୧୨୦
ରୁକ୍ମିଣୀ ଆଦି ଅତିଶୟେ । ଶ୍ରବଣ କରିଣ ସେଠାଏ ॥ ୧୨୧
ଶ୍ରୀକୃଷ୍ଣ ଗର୍ତ୍ତୁଂ ନ ଆସନ୍ତେ । ରୋଦନ କଲେ ସେ ସମସ୍ତେ ॥ ୧୨୨
୩୫ ଦ୍ୱାରକାବାସୀ ସେ ସମସ୍ତେ । ସତ୍ରାଜିତକୁ ଧିକ୍‌କାରନ୍ତେ ॥ ୧୨୩
ଦୁଃଖିତ ହୋଇ ସେ ସତ୍ୱର । ପ୍ରାପ୍ତିନିମିତ୍ତେ ଶ୍ରୀକୃଷ୍ଣର ॥ ୧୨୪
ଯେ ମହାମାୟା[୧] ଦୁର୍ଗା ତାଙ୍କୁ । ଯାଇଣ କଲେ ଭଜନକୁ ॥ ୧୨୫
୩୬ ପୁଣି ସେ ଦେବୀର ଛାମୁରେ[୨] । ସେ ଲୋକମାନଙ୍କ ମଧ୍ୟରେ ॥ ୧୨୬
ଦେବୀ ତାହାଙ୍କୁ ଦେଲେ ପୁଣ । ଯେବଣ ଆଶୀର୍ବାଦମାନ ॥ ୧୨୭
ତାହା ସହିତେ ସେ ଶ୍ରୀହରି । ପତ୍ନୀକି ସଙ୍ଗେ ଘେନି କରି ॥ ୧୨୮
ସିଦ୍ଧ ହୁଅନ୍ତେ ସବୁ ଅର୍ଥ । ହରଷେ ହେଲେ ପ୍ରାଦୁର୍ଭୂତ ॥ ୧୨୯
୩୭ ମଣି କଣ୍ଠରେ ଅଛି ଯାର । ପତ୍ନୀର ସହିତେ ଆବର ॥ ୧୩୦
ମଲାର ଅଇଲା ପରାଏ । କୃଷ୍ଣଙ୍କୁ ଲଭିଲେ ସଭିଏଁ ॥ ୧୩୧
ସେମାନଙ୍କର ମହୋତ୍ସବ । ସେ କାଳେ ହୋଇଲା ସମ୍ଭବ ॥ ୧୩୨
୩୮ ରାଜାନିକଟେ ନରହରି । ସତ୍ରାଜିତକୁ ଡାକି କରି ॥ ୧୩୩
ମଣିକି ଯଉଁରୂପେ ଯାଇ । ଲଭିଲେ, ତା'ସମସ୍ତ କହି ॥ ୧୩୪
ସେ ମଣି ସଭାମଧ୍ୟେ ତହିଁ । ସତ୍ରାଜିତକୁ ଦେଲେ ନେଇ ॥ ୧୩୫
୩୯ ସେ ତଦନ୍ତରେ ଲଜ୍ଜା ପାଇ । ବଦନ ତଳକୁ ଲୁଆଇଁ ॥ ୧୩୬
ସେ ମଣିରତ୍ନକୁ ଘେନିଣ । ଯେ ନିଜ ଅପରାଧମାନ ॥ ୧୩୭
ତହିଁରେ ସଂତପ୍ତ ହୋଇଣ । ଗୃହକୁ କଲା ସେ ଗମନ ॥ ୧୩୮
୪୦ ଯେ ବଳବନ୍ତ ଲୋକଙ୍କର । ସଙ୍ଗତେ ବିଗ୍ରହବେଭାର ॥ ୧୩୯
ତହୁଁ ସେ ସତ୍ରାଜିତ ପୁଣ । ସେକାଳେ ଆକୁଳ ହୋଇଣ ॥ ୧୪୦
ସେ ଅଟେ ନିଜ ଦୋଷମାନ । ତାହା କରନ୍ତେ ଅନୁଧ୍ୟାନ ॥ ୧୪୧
କି ରୂପେ ନିଜ ମଳ[୩] ମୁହିଁ । ଏବେ ମାର୍ଜନା କରିବଇଁ ॥ ୧୪୨
କିରୂପେ ଅବା ଭଗବାନ । ମୋତେ ହୋଇବେ ସୁପ୍ରସନ୍ନ ॥ ୧୪୩

---

୧. ଚନ୍ଦ୍ରଭାଗା (ଚନ୍ଦ୍ରଭାଗା ନାମକ ଦୁର୍ଗା) (ସ୍ୱାମୀ) ୨. ସ୍ଥାନରେ । ୩. ଅପରାଧ ।

| | | | | |
|---|---|---|---|---|
| ୪୧ | କି କଥା କଲେ ବା ମୋହର | । ମଙ୍ଗଳ ହୋଇବ ଆବର | ।। | ୧୪୪ |
| | ବିଚାରମାନ ନ ଜାଣଇଁ | । କୃପଣ ମନ୍ଦବୁଦ୍ଧି ମୁହିଁ | ।। | ୧୪୫ |
| | ମୁଁ ଦ୍ରବ୍ୟଲୋଭୀ କୃଷ୍ଣ ମୋତେ | । ଶାପ ନ ଦେବେ ବା କେମନ୍ତେ | ।। | ୧୪୬ |
| | ଯେମନ୍ତ ରୂପେ ଜନେ ମୋତେ | । କ୍ରୁଦ୍ଧ ନୋହିବେ କଦାଚିତେ | ।। | ୧୪୭ |
| ୪୨ | ନାରୀରତନ ଏ ସୁତାକୁ | । ରତ୍ନସହିତେ ଶ୍ରୀକୃଷ୍ଣଙ୍କୁ | ।। | ୧୪୮ |
| | ପ୍ରଦାନ କରିବଇଁ ମୁହିଁ | । ଉତ୍ତମ ଉପାୟଟି ଏହି | ।। | ୧୪୯ |
| | ଅନ୍ୟଥା ଶାନ୍ତି ସେ କୃଷ୍ଣର | । ନୋହିବ ଆନ ପରକାର | ।। | ୧୫୦ |
| ୪୩ | ସେ ସତ୍ରାଜିତ ଏ ରୂପରେ | । ବିଚାର କରିଣ ବୁଦ୍ଧିରେ | ।। | ୧୫୧ |
| | ସେ ଶୁଭବତୀ ସ୍ୱ ସୁତାକୁ | । ମଣିସହିତେ ଶ୍ରୀକୃଷ୍ଣଙ୍କୁ | ।। | ୧୫୨ |
| | ବହୁତ ଉଦ୍ୟମ କରିଣ | । ଆପଣେ କଲା ସେ ପ୍ରଦାନ | ।। | ୧୫୩ |
| ୪୪ | ଯେ ଶୀଳ ସ୍ୱରୂପେ ଅତ୍ୟନ୍ତ | । ଉତ୍‌କୃଷ୍ଟଗୁଣେ ଅଟେ ଯୁକ୍ତ | ।। | ୧୫୪ |
| | କୃତବର୍ମାଦିରେ ବହୁତ | । ଯେ ପୁଣି ଅଟନ୍ତି ଯାଚିତ | ।। | ୧୫୫ |
| | ସେ ସତ୍ୟଭାମାଙ୍କୁ ଅଚ୍ୟୁତ | । ବିବାହ ହେଲେ ବିଧିମତ | ।। | ୧୫୬ |
| ୪୫ | ସେ ସତ୍ରାଜିତକୁ ଅଚ୍ୟୁତ | । ହେ ନୃପ ! କହିଲେ ଏମନ୍ତ | ।। | ୧୫୭ |
| | ଫଳକୁ ଭୋଗ କରୁଁ ଆମ୍ଭେ | । [1]ସୂର୍ଯ୍ୟର ଭକ୍ତ ଅଟ ତୁମ୍ଭେ | ।। | ୧୫୮ |
| | ଆମ୍ଭେ ଏମଣି ଚିନ୍ତୁ ନାହୁଁ | । ନିଶ୍ଚୟେ ତୋହର ଏ ହେଉ | ।। | ୧୫୯ |
| | ନିଜ ଅକୀର୍ତ୍ତି ଏ ରୂପରେ | । ଯେ ନାଶ କଲେ ସ୍ୱଯଶରେ | ।। | ୧୬୦ |
| | ସେ କୃଷ୍ଣ ପାଦାମ୍ବୁଜ ନିତ୍ୟେ | । ଚିନ୍ତଇ ଦୀନବନ୍ଧୁ ଚିତ୍ତେ | ।। | ୧୬୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ସ୍ୟମନ୍ତକୋପାଖ୍ୟାନଂ
ନାମ ଷଟ୍‌ପଞ୍ଚାଶୋଽଧ୍ୟାୟଃ ।।

## ସପ୍ତପଞ୍ଚାଶ ଅଧ୍ୟାୟ

ସପ୍ତପଞ୍ଚାଶତ୍ତମେ ତୁ ପୁନଃ ଶତଧନୋର୍ବଧେ ।
ପ୍ରାପ୍ତଂ ସ୍ମ ଦୁର୍ଯଶୋ ମାର୍ଷ୍ଟି କୃଷ୍ଣୋଽକ୍ରୂରାହୃତାନ୍ମଣେଃ ।। ୧
ଅକ୍ରୂରମୁରରୀକୃତ୍ୟ ମଣେଃ ପାତ୍ରମଥାଚ୍ୟୁତଃ ।
ଉପାମନ୍ତ୍ର୍ୟ ତମେକାନ୍ତେ ସରାମୋଽଗାଦ୍ ଗଜାହ୍ୱୟମ୍ ।। ୨

ଶ୍ରୀବାଦରାୟଣିରୁବାଚ

| | | | | |
|---|---|---|---|---|
| ୧ | କହନ୍ତି ଶୁକ ମହାମୁନି | । ଶୁଣ ହେ ନୃପଚୂଡ଼ାମଣି | ।। | ୧ |
| | ଜତୁଗୃହରୁ ବିଳଦ୍ୱାରେ[2] | । ପାଣ୍ଡବେ ଗଲେ ଏ ପ୍ରକାରେ | ।। | ୨ |
| | ଯେ ଅର୍ଥ ତାହା ଭଗବାନ | । ବିଶେଷେ ଜାଣିଲେହେଁ ପୁଣ | ।। | ୩ |

୧. ଏହା କଟାକ୍ଷ ଉକ୍ତି ।　　୨. ସୁଡ଼ଙ୍ଗେ ।

ପାଣ୍ଡବେ ହୋଇଲେ ଦହନ । ଏମନ୍ତ ଶ୍ରବଣ କରିଣ ॥ ୪
କୁନ୍ତୀଙ୍କି ଶୁଣିଣ ଆବର । ଯେ କୁଳୋଚିତ ବ୍ୟବହାର ॥ ୫
ତନ୍ନିମିତ୍ତରେ ରାମତୁଲେ । କୁରୁମାନଙ୍କଠାକୁ ଗଲେ ॥ ୬
୨ ବିଦୁରସହିତେ କୃପଙ୍କୁ । ଗାନ୍ଧାରୀ ଦ୍ରୋଣଙ୍କୁ ଭୀଷ୍ମଙ୍କୁ ॥ ୭
ସମାନ ଦୁଃଖୀପ୍ରାୟ ହୋଇ । ସେ ରାମକୃଷ୍ଣ ବେନିଭାଇ ॥ ୮
ହା କଷ୍ଟ ହୋଇଲା ବୋଲିଣ । ସେଠାରେ କହିଲେ ବଚନ ॥ ୯
୩ ଅକ୍ରୂରକୃତବର୍ମା ଦୁଇ । ସେ ଅବକାଶ ଲଭି ତହିଁ ॥ ୧୦
ଶତଧନ୍ୱାକୁ ହେ ରାଜନ । କହିଲେ ଏମନ୍ତ ବଚନ ॥ ୧୧
କି ହେତୁ ସେ ମଣିକି ଯାଇ । ଗ୍ରହଣ କରୁନାହୁଁ ତୁହି ॥ ୧୨
୪ ଆମ୍ଭଙ୍କୁ ଅଙ୍ଗୀକାର କଲା । କନ୍ୟାକୁ ଦେବି ଯେ ବୋଇଲା ॥ ୧୩
ପୁଣି ଆମ୍ଭଙ୍କୁ ନିନ୍ଦା କରି । କୃଷ୍ଣଙ୍କୁ ଦେଲା ଯାଚି କରି ॥ ୧୪
ଭ୍ରାତାକୁ ଅନୁଗତ ହୋଇ । ମରିବ ନାହିଁ କାହିଁ ପାଇଁ ॥ ୧୫
୫ ସେ କୃତବର୍ମା-ଅକ୍ରୂରରେ । ଯା ବୁଦ୍ଧି ଏମନ୍ତ ରୂପରେ ॥ ୧୬
ଭିନ୍ନ ହୋଇଲା ହେ ରାଜନ । କ୍ଷୀଣ ହୋଇଲା ଯା' ଜୀବନ ॥ ୧୭
ଆବର ଅଟଇ ପାପିଷ୍ଠ । ସେ ଶତଧ୍ୱନା ଅତିଦୁଷ୍ଟ ॥ ୧୮
ସେ ସତ୍ରାଜିତ ଥାନ୍ତେ ଶୋଇ । ଲୋଭୁଁ ମାଇଲା ତାଙ୍କୁ ଯାଇ ॥ ୧୯
୬ ଅନାଥଲୋକପ୍ରାଏ ଅତି । ଯେ କାନ୍ଦି ଆହ୍ୱାନ କରନ୍ତି ॥ ୨୦
ସେ ନାରୀଙ୍କର ମଧ୍ୟେ ତହିଁ । ପଶୁଙ୍କୁ ସୌନିକ[୧] ପରାଇ ॥ ୨୧
ମାରିଣ ମଣିକି ଘେନିଣ । ସେଠାରୁ କଲା ସେ ଗମନ ॥ ୨୨
୭ | ସେ ସତ୍ୟଭାମା ଯାଇଁ ପୁଣ । ପିତା ମରିଛି ତା' ଦେଖିଣ ॥ ୨୩
୮ | ଶୋକରେ ଅର୍ପିତ ହୋଇଣ । ହେ ତାତ ହେ ତାତ ବୋଲିଣ ॥ ୨୪
ହା ହତ ହେଲି ମୁଁ ଏମନ୍ତେ । କାନ୍ଦିଲେ ମୋହକୁ ଲଭନ୍ତେ ॥ ୨୫
ତଇଳଦ୍ରୋଣୀରେ ଶବକୁ । ରଖିଣ ଗଲେ ହସ୍ତିନାକୁ ॥ ୨୬
୯ ଯେ କୃଷ୍ଣ ଜାଣନ୍ତି ସମସ୍ତ । ତାହାଙ୍କୁ ହୋଇଣ ସଂତପ୍ତ ॥ ୨୭
କହିଲେ ପିତାର ବଧକୁ । ହେ ନୃପ ! ଶୁଣି ସେ ବାକ୍ୟକୁ ॥ ୨୮
ଈଶ୍ୱର ରାମ ନରହରି । ନରଲୋକକୁ ଅନୁସରି ॥ ୨୯
ପରମ କଷ୍ଟକୁ ଆମ୍ଭର । ଦେଖ ଏ ଦୁଃଖକୁ ଆବର ॥ ୩୦
ନୟନେ ଲୋତକ ଧରନ୍ତେ । ରୋଦନ କଲେ ସେ ଏମନ୍ତେ ॥ ୩୧
୧୦ ଭାର୍ଯ୍ୟାସହିତେ ଭଗବାନ । ସେ ଜ୍ୟେଷ୍ଠଭ୍ରାତାଙ୍କୁ ଘେନିଣ ॥ ୩୨
ସେଠାରୁ ଆସି ଦ୍ୱାରକାକୁ । ଶତଧ୍ୱନାକୁ ମାରିବାକୁ ॥ ୩୩
ମଣିକି ଆଣିମାକୁ ପୁଣ । ଆରମ୍ଭ କଲେ ତତକ୍ଷଣ ॥ ୩୪

---

୧. ଘାତକ।

୧୧ ଶତଧନ୍ୱା ହିଁ ଭୟ ପାଇ । କୃଷ୍ଣ-ଉଦ୍ୟମ ଜାଣି ତହିଁ ॥
ପ୍ରାଣକୁ ପାଇବା ଇଚ୍ଛାରେ । ଆବର ସହାୟ ଅର୍ଥରେ ॥
ସେ କୃତବର୍ମାକୁ ମାଗନ୍ତେ । ସେ ପୁଣି କହିଲା ଏମନ୍ତେ ॥
୧୨ ଯେ ପ୍ରଭୁ ଅଟନ୍ତି ଈଶ୍ୱର । ସେ ରାମକୃଷ୍ଣ ବେନିଙ୍କର ॥
ଯେ ପ୍ରତିକୂଳ ଆଚରଣ । ମୁଁ ତାହା ନ କରିବି ପୁଣ ॥
ଅପରାଧକୁ ତାଙ୍କ ଠାରେ । କରନ୍ତା ଅବା କଉଁ ନରେ ॥
ମଙ୍ଗଳ ଲଭିବା ନିମିତ୍ତେ । କଳ୍ପିତ ହେବ ଏ ଜଗତେ ॥
୧୩ ଅନୁଗସହିତରେ କଂସ । ଯାହା ଦ୍ୱେଷରେ ଗଲା ନାଶ ॥
ସେ ସମ୍ପତ୍ତିରୁ ହୋଇ ଚ୍ୟୁତ । ବିରଥ ହୋଇ ଜରାସୁତ ॥
ଯେ ସପ୍ତଦଶଥର ରଣ । ତହିଁରୁ କଲା ସେ ଗମନ ॥
୧୪ ସେ ଶତଧନ୍ୱା ଅକ୍ରୂରକୁ । ସେ କୃତବର୍ମାଚରିତକୁ ॥
କହି ମାଗିଲା ଶରଣକୁ । ଅକ୍ରୂର କହିଲେ ତାହାକୁ ॥
ଯେ ଅଟେ ଜଗତ-ଈଶ୍ୱର । ସେ ରାମକୃଷ୍ଣ ବେନିଙ୍କର ॥
ବଳକୁ କରନ୍ତେ ଗୋଚର । ବିରୁଦ୍ଧ ହେବ କଉଁ ନର ॥
୧୫ ଲୀଳାମାତ୍ରକେ ଏ ବିଶ୍ୱକୁ । ଯେ ପୁଣ କରେ ସର୍ଜନାକୁ ॥
ପାଳଇ କରଇ ସଂହାର । ଯାହାର ଚେଷ୍ଟାକୁ ଆବର ॥
ମାୟାରେ ମୋହିତ ହୋଇଣ । ବ୍ରହ୍ମାଦି ନ ଜାଣନ୍ତି ପୁଣ ॥
୧୬ ସପ୍ତବରଷେ ଯଉଁ ବାଳ । ଉପାଡ଼ି କରିଣ ଅଚଳ ॥
ସେ କାଳେ ଏକହସ୍ତକରେ । ଧଇଲେ ଲୀଳାମାତ୍ରକରେ ॥
ବାଳକ ଯେସନ ପ୍ରକାରେ । ଉଚ୍ଛିଳୀନ୍ଧ୍ର[1] କୁ ଧରେ କରେ ॥
୧୭ ଯା' କର୍ମ ଅଟଇ ଅଦ୍ଭୁତ । ଯେ ଆଦିଭୂତ, ଯେ ଅନନ୍ତ ॥
ସେ ଭଗବାନ ଶ୍ରୀକୃଷ୍ଣଙ୍କୁ । ମୁଁ କରୁଅଛି ପ୍ରଣାମକୁ ॥
କୂଟସ୍ଥ ଆତ୍ମା ଯେ ଅଟଇ । ତାକୁ ମୁଁ ପ୍ରଣାମ କରଇ ॥
୧୮ ଅକ୍ରୂର କହନ୍ତେ ତାହାକୁ । ସେ ଶତଧନ୍ୱା ସେ ରତ୍ନକୁ ॥
ସେ ଅକ୍ରୂରଙ୍କଠାରେ ଦେଇ । ଯେ ଶତଯୋଜନ ଗମଇଁ ॥
ସେ ଅଶ୍ୱ କରି ଆରୋହଣ । ସେଠାରୁ କଲା ସେ ଗମନ ॥
୧୯ ଯେ ଅଶ୍ୱେ ମହାବେଗବନ୍ତ । ତହିଁରେ ଅଟେ ଯେ ସଂଯୁତ ॥
ଗରୁଡ଼ଧ୍ୱଜ ଯଉଁ ରଥ । ତାହାକୁ ସେ ରାମ-ଅଚ୍ୟୁତ ॥
ହେ ନୃପ ! ଆରୋହଣ କଲେ । ଗୁରୁଦ୍ରୋହୀକି ଗୋଡ଼ାଇଲେ ॥
୨୦ ମିଥିଳାଉପବନେ ପୁଣ । ସେ ଅଶ୍ୱ ହୁଅନ୍ତେ ପତନ ॥
ତାହାକୁ ଛାଡ଼ିଣ ତ୍ରସ୍ତରେ । ଧାଇଁଲା ବେନି ଚରଣରେ ॥

୧. ଛତ୍ର।

କୃଷ୍ଣ ହିଁ ଧାଇଁଲେ କ୍ରୋଧରେ । ସେ ଶତଧନ୍ୱାର ପଛରେ ॥
୨୧ ଧାବନ୍ତେ ସେ ପାଦଚାରୀର । ପଦାତି ହୋଇ ଚକ୍ରଧର ॥
ଯା' ନେମି[୧] ଅଟଇ ତୀକ୍ଷଣ । ସେ ଚକ୍ରେ ଶିରକୁ କାଟିଣ ॥
ତା' ବସ୍ତ୍ରଯୁଗ୍ମରୁ ସେ ପୁଣ । ମଣିକି କଲେ ଅନ୍ୱେଷଣ ॥
୨୨ ମଣି ନ ପାଇ ଭାବଗ୍ରାହୀ । ଜ୍ୟେଷ୍ଠଭ୍ରାତାଙ୍କ ଠାକୁ ଯାଇ ॥
ଏମନ୍ତ କହିଲେ ବିଅର୍ଥ । ଶତଧନୁକୁ କଲି ହତ ॥
ସେ ମଣି ଶତଧନୁଠାଇଁ । ଖୋଜିଣ ନ ପାଇଲି ମୁହିଁ ॥
୨୩ ତଦନନ୍ତରେ ହଳପାଣି । କୃଷ୍ଣଙ୍କୁ ବୋଇଲେ ଏ ବାଣୀ ॥
ସେ ମଣି ଶତଧନୁ ନେଇ । ରଖିଛି ଯଉଁ ନରଠାଇଁ ॥
ତାହାକୁ କର ଅନ୍ୱେଷଣ । ପୁରକୁ କର ହେ ଗମନ ॥
୨୪ ମୁଁ ପୁଣି ବିଦେହରାଜକୁ । ଇଚ୍ଛା କରୁଛି ଦେଖିବାକୁ ॥
ସେ ମୋର ଅଟେ ପ୍ରିୟତମ । ଏମନ୍ତ କହି ବଳରାମ ॥
ମିଥିଳାପୁରେ ହେ ରାଜନ । ପ୍ରବେଶ ହୋଇଲେ ଯାଇଣ ॥
୨୫ ଯେ ପୂଜାଯୋଗ୍ୟ ସଂକର୍ଷଣ । ତାହାଙ୍କୁ ମୈଥିଳ ଦେଖିଣ ॥
ଆସନୁଁ ଉଠିଣ ସତ୍ୱରେ । ପୂଜାସାମଗ୍ରୀମାନଙ୍କରେ ॥
ପୁଣି ଅତ୍ୟନ୍ତ ପ୍ରୀତଚିତ୍ତେ । ତାଙ୍କୁ ପୂଜିଲା ବିଧିମତେ ॥
୨୬ ସେ ମିଥିଳାରେ ହଳଧର । ରହିଲେ କେତେ ସଂବତ୍ସର ॥
ଅତ୍ୟନ୍ତ ପ୍ରୀତିଯୁକ୍ତ ହୋଇ । ମହାତ୍ମା ସେ ଜନକ ତହିଁ ॥
କରନ୍ତେ ଅତିସମ୍ମାନନ । ସେ ଧାର୍ତ୍ତରାଷ୍ଟ୍ର ଦୁର୍ଯ୍ୟୋଧନ ॥
ଗଦାବିଦ୍ୟାକୁ ସେ କାଳେଣ । ଶିଖିଲା ରାମଠାରୁ ପୁଣ ॥
୨୭ ଯେ ପ୍ରିୟା ଅଟେ ଆପଣାର । ପ୍ରିୟକୁ କରନ୍ତେ ତାହାର ॥
କେଶବ ଯାଇ ଦ୍ୱାରକାକୁ । ଶତଧନ୍ୱାର ନିଧନକୁ ॥
ମଣିର ଅପ୍ରାପ୍ତି ଯେ ପୁଣ । ସମସ୍ତ କଲେ ତା' ବଖାଣ ॥
୨୮ ସେ ଭଗବାନ ହିଁ ତଦନ୍ତେ । ସୁହୃଦଲୋକଙ୍କ ସହିତେ ॥
ଯେ ବନ୍ଧୁ ଅଟେ ଆପଣାର । ମରନ୍ତେ ସେ ସତ୍ରାଜିତର ॥
ଯେ ପରଲୋକକର୍ମମାନ । ତା' କରାଇଲେ ହେ ରାଜନ ॥
୨୯ ଅକ୍ରୂର କୃତବର୍ମା ବେନି । ଶତଧନୁର ବଧ ଶୁଣି ॥
ଭୟରେ ତ୍ରସ୍ତ ସେ ହୋଇଲେ । ଦ୍ୱାରକାପୁରୁଁ ପଳାଇଲେ[୨] ॥
ଶତଧନୁର ସେହୁଲୋକ । ମଣିହରଣେ ପ୍ରବର୍ତ୍ତକ ॥

୧. ନେମି = ଚକ୍ରର ପ୍ରାନ୍ତଭାଗ ।
୨. ଅକ୍ରୂର କୃଷ୍ଣଙ୍କ ଅନୁମତି ମାଗି ଗଲେ । କିନ୍ତୁ କୃତବର୍ମା ଶ୍ରୀକୃଷ୍ଣଙ୍କ ଭକ୍ତ ପକ୍ଷପାତ-ପ୍ରକଟ ହେବା ଭୟରୁ ସତେ ଯେପରି ଉପେକ୍ଷିତ ହୋଇ ପଳାଇଲେ ।

୩୦ ପ୍ରବାସ କରନ୍ତେ ଅକ୍ରୂର । ଦ୍ୱାରକାବାସୀଜନଙ୍କର ॥ ୯୫
ଦୈବିକ ଭୌତିକ ମାନସ । ଶାରୀର ରୂପେ ଯେ ପ୍ରକାଶ ॥ ୯୬
ସେ ତାପେ ଯେ ଅରିଷ୍ଟମାନ । ସେମାନେ ହେଲେ ପୁନଃପୁନ ॥ ୯୭
[୧]ଆସି ଦ୍ୱାରକାସ୍ଥିତ ଜନ । କୃଷ୍ଣଙ୍କୁ କହିଲେ ବଚନ ॥ ୯୮
ହେ କୃଷ୍ଣ ପ୍ରଭୁ ବୁଦ୍ଧିମନ୍ତ । ଶୁଣ ହେ ଦ୍ୱାରକାଚରିତ ॥ ୯୯
ଅକ୍ରୂର ପ୍ରବାସ କରନ୍ତେ । ପଡ଼ିଲା ଉପଦ୍ରବ ଯେତେ ॥ ୧୦୦
୩୧ ହେ ନୃପ ! ପୂର୍ବେ ଉଦାହୃତ । ହୋଇଛି ଯେ କୃଷ୍ଣଚରିତ ॥ ୧୦୧
ତାହା ପାସୋରି କେହି ଜନେ । ଏମନ୍ତ କହନ୍ତି ଭୁବନେ ॥ ୧୦୨
ଯେ କୃଷ୍ଣ ମୁନିଙ୍କ ନିବାସ । ସେ କରିଥାନ୍ତେ ତହିଁ ବାସ ॥ ୧୦୩
ଯେ ବା ଅରିଷ୍ଟଦରଶନ । ସେ କି ଘଟଇ ତହିଁ ପୁଣ ॥ ୧୦୪
୩୨ ବରଷା ନ କରନ୍ତେ ଇନ୍ଦ୍ର । ସେ କାଶୀଦେଶର ନରେନ୍ଦ୍ର ॥ ୧୦୫
ଶ୍ୱଫଲ୍କ ଯେ ଅକ୍ରୂରତାତ । ସେ ଆସି ହୁଅନ୍ତେ ଆଗତ ॥ ୧୦୬
ନିଜ ଦୁହିତା ଯେ ଗାନ୍ଦିନୀ । ତାହାକୁ ଦେଲା ତାକୁ ଆଣି ॥ ୧୦୭
ସେହିହେତୁରୁ ଶଚୀପତି । କାଶୀଦେଶରେ କଲା ବୃଷ୍ଟି ॥ ୧୦୮
୩୩ ତାହାରି ପ୍ରଭାବ ଏହାର । ତା' ସୁତ ଅଟେ ଏ ଅକ୍ରୂର ॥ ୧୦୯
ଏ ଯଉଁ ଯଉଁ ସ୍ଥାନେ ଥାଇ । ସେଠାରେ ଇନ୍ଦ୍ର ବରଷଇ ॥ ୧୧୦
ମାରିକା[୨] ଉପତାପମାନ । ସେଠାରେ ନୁହନ୍ତି ଉତ୍ପନ୍ନ ॥ ୧୧୧
୩୪ ଏରୂପେ ବୃଦ୍ଧଙ୍କ ବଚନ । ଶ୍ରବଣ କରି ଜନାର୍ଦ୍ଦନ ॥ ୧୧୨
ଏଠାରେ ନୋହେ ଏ କାରଣ । ଏମନ୍ତ ଜାଣିଲେ ହେଁ ପୁଣ ॥ ୧୧୩
ଦୂତମାନଙ୍କରେ ଡକାଇ । କହିଲେ ଅକ୍ରୂରକୁ ତହିଁ ॥ ୧୧୪
୩୫ ଅଖିଳଜ୍ଞାତା ଯେ ଅଟନ୍ତି । ପ୍ରାଣୀଙ୍କ ଚିତ୍ତକୁ ଜାଣନ୍ତି ॥ ୧୧୫
ଅକ୍ରୂରଙ୍କୁ ସେ ଭଗବାନ । ବହୁତ କରି ସଂଭାଷଣ ॥ ୧୧୬
କହିଣ ପ୍ରିୟକଥାମାନ । ଉତ୍ତମ ପୂଜାକୁ କରିଣ ॥ ୧୧୭
ହସନ୍ତେ ଅଳପ ହୋଇଣ । କହିଲେ ଏମନ୍ତ ବଚନ ॥ ୧୧୮
୩୬ ହେ ଦାନପତି ତୁମ୍ଭ ଠାଇଁ । ନିଶ୍ଚୟେ ଶତଧନୁ ନେଇ ॥ ୧୧୯
ଶ୍ରୀମନ୍ତ ସ୍ୟମନ୍ତକମଣି । ଆମ୍ଭର ରଖିଅଛି ଆଣି ॥ ୧୨୦
ପୂର୍ବହୁଁ ଆମ୍ଭେମାନେ ପୁଣ । ଜାଣୁ ଏମନ୍ତ ଆଚରଣ ॥ ୧୨୧
୩୭ ସେ ସତ୍ରାଜିତର କୁମର । ନ ଥିବା ହେତୁ ଦୁହିତାର ॥ ୧୨୨
ତନୟେ ଜଳ ପିଣ୍ଡମାନ । ଦେଇଣ ଶୁଝି ପିତୃରଣ ॥ ୧୨୩

---

୧. କୃଷ୍ଣମୂଚୁସ୍ତଦାଗତ୍ୟ ଦ୍ୱାରକାସ୍ଥା ମହାମତେ ।
ଅକ୍ରୂରେ ପ୍ରୋଷିତେ ଜାତ ଉପଦ୍ରବ ଇହ ପ୍ରଭୋ ॥ ଇତି ଅଧିକଃ ପାଠଃ ।
ଦ୍ୱାରକାସ୍ଥିତ ଲୋକେ ଆସି କୃଷ୍ଣଙ୍କୁ କହିଲେ - ପ୍ରଭୋ ! ଅକ୍ରୂର ଏଠୁ ବାହାରି ଗଲେ ଏଠି ଉପଦ୍ରବ ହେଉଛି ।
୨. ମାରିକା = ରୋଗାଦିଜନିତ ମୃତ୍ୟୁ ।

| | | | |
|---|---|---|---|
| | ଯେ ଅବଶିଷ୍ଟଭାଗ ଧନ । | ତାହାକୁ କରିବେ ଗ୍ରହଣ | ॥ ୧୨୪ |
| ୩୮ | ତଥାପି ଆନଲୋକେ ପୁଣି । | ଦୁର୍ଦ୍ଧର[1] ଅଟଇ ସେ ମଣି | ॥ ୧୨୫ |
| | ତୋ'ଠାରେ ଥାଉ, ତୁ ସୁବ୍ରତ । | ଏକା କେବଳ ଜ୍ୟେଷ୍ଠଭ୍ରାତ | ॥ ୧୨୬ |
| | ମଣିର ପ୍ରତି କଦାଚିତେ । | ବିଶ୍ୱାସ ନ କରନ୍ତି ମୋତେ | ॥ ୧୨୭ |
| ୩୯ | ହେ ମହାଭାଗ ! ତା' ଦେଖାଅ । | ବନ୍ଧୁମାନଙ୍କ ପ୍ରୀତି ବହ | ॥ ୧୨୮ |
| | ମୋ'ଠାରେ ନାହିଁ ସେ ଏମନ୍ତ । | ନ ବୋଲ ହେ ଗାନ୍ଦିନୀସୁତ | ॥ ୧୨୯ |
| | ଯେଣୁ ସଂତତ ଯାଗମାନ । | ତୁମ୍ଭର ବର୍ତ୍ତିଛନ୍ତି ପୁଣ | ॥ ୧୩୦ |
| | ଯହିଁ ସୁବର୍ଣ୍ଣବେଦିମାନେ । | ବର୍ତ୍ତିଅଛନ୍ତି ସ୍ଥାନେ ସ୍ଥାନେ | ॥ ୧୩୧ |
| ୪୦ | ଶାନ୍ତିବଚନେ ଏପ୍ରକାର । | ଆଲବ୍ଧ[2] ହୁଅନ୍ତେ ଅକ୍ରୂର | ॥ ୧୩୨ |
| | ବସ୍ତ୍ରେ ଯେ ହୋଇଛି ଆଚ୍ଛନ୍ନ । | ସୂର୍ଯ୍ୟର ପ୍ରାଏ ଯା' କିରଣ | ॥ ୧୩୩ |
| | ସେ ମଣି ହସ୍ତରେ ଘେନିଣ । | କୃଷ୍ଣଙ୍କୁ କଲେ ସେ ପ୍ରଦାନ | ॥ ୧୩୪ |
| ୪୧ | ଦେଖାଇ ସ୍ୟମନ୍ତକ ମଣି । | ଜ୍ଞାତିମାନଙ୍କଠାରୁ ପୁଣି | ॥ ୧୩୫ |
| | ଆପଣା ଅପକୀର୍ତ୍ତିମାନ । | ମଣିରେ ମାର୍ଜନା କରିଣ | ॥ ୧୩୬ |
| | ସେ ମଣି ଅକ୍ରୂରଙ୍କୁ ପୁଣ । | ସେ ପ୍ରଭୁ କଲେ ସମର୍ପଣ | ॥ ୧୩୭ |
| | [3]ତଦର୍ଥେ ପ୍ରବାସ କରିଣ । | ଯେ କରିଛନ୍ତି ଆଗମନ | ॥ ୧୩୮ |
| | ସେ ହଳଧର ଦେଖି ମଣି । | ଏଥି ମୁଁ ଯୋଗ୍ୟ ବୋଲି ମଣି | ॥ ୧୩୯ |
| | ହେ କୁରୁଶ୍ରେଷ୍ଠ ! ଏ ରୂପରେ । | କାମନା କଲେ ସେ କାଳରେ | ॥ ୧୪୦ |
| | ସତ୍ୟଭାମା ହିଁ ହେ ରାଜନ । | କୃଷ୍ଣର ଚିତ୍ତ ନ ଜାଣିଣ | ॥ ୧୪୧ |
| | ଏ ଧନ ଅଟେ ମୋ'[4] ପିତାର । | ଉଚିତ ଅଟଇ ମୋହର | ॥ ୧୪୨ |
| | ଗ୍ରହଣ କରିବାକୁ ମଣି । | ଏମନ୍ତ ବାଞ୍ଛିଲେ ସେ ପୁଣି | ॥ ୧୪୩ |
| | ଜାମ୍ବବତୀ ହିଁ ଯୌତୁକାର୍ଥେ । | ମୋ' ପିତା ଦେଇଛି ଏମନ୍ତେ | ॥ ୧୪୪ |
| | ସ୍ପୃହାକୁ ସେ ମହାମଣିରେ । | ବହୁତ କଲେ ସେ କାଳରେ | ॥ ୧୪୫ |
| | ଲକ୍ଷ୍ମୀର ପତି ସେ ଶ୍ରୀହରି । | ସର୍ବ ଚରିତ ଜାଣି କରି | ॥ ୧୪୬ |
| | ଅକ୍ରୂରଙ୍କର କରେ ପୁଣ । | ସେ ମଣି କଲେ ସମର୍ପଣ | ॥ ୧୪୭ |

୧. ଦୁର୍ଦ୍ଧର = ଯାହାକୁ ଉଠାଇବା କଷ୍ଟକର । ୨. ଉକ୍ତ ଅଥବା ହୃଦୟରେ ସ୍ପଷ୍ଟ ।

୩. ଦୃଷ୍ଟ୍ୱା ମଣିଂ ହଳଧରସ୍ତଦର୍ଥଂ ପ୍ରୋଷ୍ୟ ଆଗତଃ ।
ଯୋଗ୍ୟୋଽହମିତି ମନ୍ୱାନଶ୍ଚକମେ କୁରୁପୁଙ୍ଗବଃ ॥ ଇତି ଅଧିକଃ ପାଠଃ ।

୪. ସତ୍ୟଭାମା ପିତୃଧନଂ ମନ୍ୱାନା ସ୍ୱାମ୍ନୋଚିତମ୍ ।
ଗ୍ରହୀତୁଂ ମଣିମୈଚ୍ଛଦ୍ଧି ହରେଶ୍ଚିତ୍ତମଜାନତୀ ॥ ୧
ଜାମ୍ବବତ୍ୟପି ଶୁଳ୍କାର୍ଥେ ପିତ୍ରା ଦତ୍ତ ଇତି ସ୍ପୃହା ।
ଚକ୍ରେ ମହାମଣୌ ତସ୍ମିନ୍ ସର୍ବଂ ବିଜ୍ଞାୟ ମାଧବଃ ॥
ଅକ୍ରୂରସ୍ୟ କରେ ଭୂୟୋ ମଣିଂ ପ୍ରତ୍ୟର୍ପୟଦ୍ଧରିଃ ॥ ୨ ଇତି ଅଧିକଃ ପାଠଃ ।

| | | | | |
|---|---|---|---|---|
| ୪୨ | ଯେ ବିଷ୍ଣୁ ଅଟେ ଭଗବାନ | ସେ ଈଶ୍ୱରର ଯେ ବିକ୍ରମ | ।। | ୧୪୮ |
| | ତେଣେ ପୂରିତ ପାପହର | ମଙ୍ଗଳ ଅଟଇ ଆବର | ।। | ୧୪୯ |
| | ଏ ଆଖ୍ୟାନକୁ ଯଉଁ ଜନ | ପଢ଼ଇ, କରଇ ଶ୍ରବଣ | ।। | ୧୫୦ |
| | ଅନୁସ୍ମରଣା ବା କରଇ | ଦୁଷ୍କୀର୍ତ୍ତିବୃଜିନକୁଁ[1] ସେହି | ।। | ୧୫୧ |
| | ତ୍ୟକ୍ତ କରିଣ ହେ ରାଜନ | ଶାନ୍ତିକି ଯାଇ[2] ତତକ୍ଷଣ | ।। | ୧୫୨ |
| | କୃଷ୍ଣଚରଣ ଚିନ୍ତି ଚିତ୍ତେ | ଦଶମସ୍କନ୍ଧ ଭାଷାଗୀତେ | ।। | ୧୫୩ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | ସୁଜନେ ତୋଷ ହୁଅ ତେଣେ | ।। | ୧୫୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ସ୍ୟମନ୍ତକମଣିହରଣଂ
ନାମ ସପ୍ତପଞ୍ଚାଶୋଽଧ୍ୟାୟଃ ।।

## ଅଷ୍ଟପଞ୍ଚାଶ ଅଧ୍ୟାୟ

ଅଷ୍ଟପଞ୍ଚାଶତମେ ତୁ କୃଷ୍ଣଃ ପଞ୍ଚ କରେଽଗ୍ରହୀତ୍ ।
କାଳିନ୍ଦୀଂ ମିତ୍ରବିନ୍ଦାଂ ଚ ସତ୍ୟାଂ ଭଦ୍ରାଂ ଚ ଲକ୍ଷ୍ମଣାମ୍ ।। ୧
କାଳିନ୍ଦୀଂ ନିଜଲାଭାୟ ତପଃ ପରମୁପେୟୁଷୀମ୍ ।
ପରିଣେଷ୍ୟନ୍ ପ୍ରିୟାବାସମିନ୍ଦ୍ରପ୍ରସ୍ଥମଥାଗମତ୍ ।। ୨

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କର ସୁତ | ଶୁଣ ହେ ନୃପ ! ପରୀକ୍ଷିତ | ।। | ୧ |
| | ଶ୍ରୀମନ୍ତ ଯେ ପୁରୁଷୋତ୍ତମ | ଏକଦିନକରେ ସେ ପୁଣ | ।। | ୨ |
| | ପାଣ୍ଡବେ ହୁଅନ୍ତେ ପ୍ରତୀତ[3] | ତାହାଙ୍କୁ ଦେଖିବା ନିମିତ୍ତ | ।। | ୩ |
| | ସାତ୍ୟକି ଆଦିରେ ବେଷ୍ଟିତ | ହୋଇଣ ଗଲେ ଇନ୍ଦ୍ରପ୍ରସ୍ଥ | ।। | ୪ |
| ୨ | ଅଖିଳେଶ୍ୱର ସେ ଅଚ୍ୟୁତ | ଆସି ହୁଅନ୍ତେ ଉପଗତ | ।। | ୫ |
| | ତାହାଙ୍କୁ ଦେଖିଣ ସେ ସ୍ଥାନେ | ସେ ପୃଥାସୁତ[4] ବୀରମାନେ | ।। | ୬ |
| | ଆସନ୍ତେ ପ୍ରାଣ ପଞ୍ଚବୃତ୍ତି[5] | ଇନ୍ଦ୍ରିୟେ ଯେସନେ ଉଠନ୍ତି | ।। | ୭ |
| | ଏକାବେଳକେ ସେ ରୂପରେ | ଆସନୁଁ ଉଠିଲେ ସତ୍ୱରେ | ।। | ୮ |
| ୩ | ଅଙ୍ଗସଙ୍ଗରୁ ସେ କୃଷ୍ଣର | ତୁଟିଲା ପାପ ଯାହାଙ୍କର | ।। | ୯ |
| | ସେ ବୀରମାନେ ହେ ରାଜନ | କୃଷ୍ଣଙ୍କୁ କରି ଆଲିଙ୍ଗନ | ।। | ୧୦ |
| | ଅତ୍ୟନ୍ତ ଅନୁରାଗବନ୍ତ | ଯହିଁରେ ଅଟଇ ସୁସ୍ମିତ | ।। | ୧୧ |

୧. ଦୁଷ୍କୀର୍ତ୍ତିବୃଜିନ = ଅପବାଦ ଓ ଦୁଃଖ । ୨. ଯାଇ = ପାଏ ।
୩. ନଷ୍ଟ (ସ୍ୱାମୀ) । ୪. ପୃଥା = କୁନ୍ତୀ । ୫. ପଞ୍ଚ ବୃତ୍ତି ଯାହାର ସେ ।

କୃଷ୍ଣର ଦେଖି ସେ ବଦନ । ହରଷ ହୋଇଲେ ସେ ପୁଣ ॥ ୧୨
୪ ଯୁଧିଷ୍ଠିରଙ୍କର ଭୀମର । ଚରଣେ କରି ନମସ୍କାର ॥ ୧୩
ସେ ହରି ଅର୍ଜୁନଙ୍କୁ ପୁଣ । କଲେ ବହୁତ ଆଲିଙ୍ଗନ ॥ ୧୪
ନକୁଳ ସହଦେବ ଦୁଇ । କୃଷ୍ଣଙ୍କୁ ଓଳଗିଲେ ତହିଁ ॥ ୧୫
୫ ଉତ୍ତମ ଆସନରେ ଯାଇଁ । ଶ୍ରୀକୃଷ୍ଣ ବସନ୍ତେ ସେଠାଇଁ ॥ ୧୬
ଯାହାର ନିନ୍ଦା ନାହିଁ କିଛି । ନିକଟେ ବିଭା ଯେ ହୋଇଛି ॥ ୧୭
ଦ୍ରୁପଦରାଜସୁତା ପୁଣ । ଅଳପ ଲଜ୍ଜିତ ହୋଇଣ ॥ ୧୮
କୃଷ୍ଣଙ୍କୁ ମନ୍ଦ ମନ୍ଦ ହୋଇ । ଯାଇଁ ପ୍ରଣାମ କଲେ ତହିଁ ॥ ୧୯
୬ ସାତ୍ୟକି ସେହି ପରକାରେ । ପୃଥାନନ୍ଦନମାନଙ୍କରେ ॥ ୨୦
ପୂଜିତ ବନ୍ଦିତ ହୋଇଣ । ଆସନେ ବସିଲେ ଯାଇଣ ॥ ୨୧
ଆନମାନଙ୍କୁ ହିଁ ସେ ପୁଣ । ପୂଜିଣ କଲେ ଉପାସନ ॥ ୨୨
୭ କୁନ୍ତୀଙ୍କ ଠାକୁ ଯାଇଁ ହରି । ତାହାଙ୍କୁ ନମସ୍କାର କରି ॥ ୨୩
ଅତିସ୍ନେହରେ ଆର୍ଦ୍ର ହୋଇ । ଯେ ନେତ୍ରଯୁଗଳ ଅଟଇ ॥ ୨୪
ସେ କୁନ୍ତୀ କରି ଆଲିଙ୍ଗନ । ପୃଚ୍ଛନ୍ତେ ବନ୍ଧୁଜନମାନ ॥ ୨୫
ସେ ପିଉସୀଙ୍କି ବଧୂତୁଲେ । କୃଷ୍ଣ କୁଶଳ ପଚାରିଲେ ॥ ୨୬
୮ ପ୍ରେମବୈକ୍ଲବ୍ୟରୁ ସେ କୁନ୍ତୀ । ରୁଦ୍ଧ ଅଟଇ କଣ୍ଠ ଅତି ॥ ୨୭
ନେତ୍ରୁଁ ଛାଡ଼ନ୍ତେ ଲୋତକକୁ । ସ୍ମରନ୍ତେ ବହୁତ କ୍ଲେଶକୁ ॥ ୨୮
କ୍ଲେଶନାଶନେ ଆପଣାର । ଦର୍ଶନ ଅଟଇ ଯାହାର ॥ ୨୯
ସେ ଗୋବିନ୍ଦଙ୍କୁ ହେ ରାଜନ । କହିଲେ ଏମନ୍ତ ବଚନ ॥ ୩୦
୯ ତୁମ୍ଭର ବନ୍ଧୁ ଅଟୁଁ ଆମ୍ଭେ । ଆମ୍ଭଙ୍କୁ ସୁମରନ୍ତେ ତୁମ୍ଭେ ॥ ୩୧
ହେ କୃଷ୍ଣ ! ମୋହର ଭ୍ରାତାକୁ । ଯେବେ ପେଷିଲ ଆମ୍ଭଠାକୁ ॥ ୩୨
ସେଦିନୁଁ ଆମ୍ଭମାନଙ୍କର । କୁଶଳ ହେଲାଣି ଆବର ॥ ୩୩
ତୁମ୍ଭ ସ୍ୱକାଶୁଁ ଆମ୍ଭେମାନେ । ସନାଥ ହେଲୁଁ ଏ ଭୁବନେ ॥ ୩୪
[୧]ସମସ୍ତେ ଆମ୍ଭେ ଯଉଁ କାଳେ । ରହିଣ ଥିଲୁଁ ଯେ ପାଞ୍ଚାଳେ ॥ ୩୫
ଦ୍ରୌପଦୀସ୍ୱୟଂବର ଅର୍ଥେ । ଆମ୍ଭଙ୍କୁ ସେକାଳେ ସ୍ମରନ୍ତେ ॥ ୩୬
ସେହି ସ୍ମରଣରୁ ସମସ୍ତେ । ସୁଖେଣ ରହିଛୁଁ ନିଶ୍ଚିନ୍ତେ ॥ ୩୭
୧୦ ସଂସାର ରୂପ ଅଟେ ତୋର । ସୁହୃଦ ଆତ୍ମା ତୁ ଆବର ॥ ୩୮
ଏ ପର ଏ ଅଟେ ମୋହର । ଏ ଭ୍ରାନ୍ତି ନାହିଁ ତୋହଠାର ॥ ୩୯
ସ୍ମରଣା କଲା ଲୋକଙ୍କର । ତଥାପି ପୁଣି ବାରମ୍ବାର ॥ ୪୦
କ୍ଲେଶମାନଙ୍କୁ କରୁ ନାଶ । ତା' ହୃଦେ କରିଥାନ୍ତେ ବାସ ॥ ୪୧

---

୧. ପାଞ୍ଚାଳେଷ୍ୱ ସ୍ଥିତାନସ୍ମାନ୍ ସ୍ୱୟମ୍ବରକୃତେ ଯଦା ।
ଅନୁସ୍ମୃତ୍ୟ ଗତୋ ଯସ୍ତ୍ୱଂ ତେନାସ୍ମାଭିଃ ସୁଖୋଷିତମ୍ ॥ ଇତି ଅଧିକଃ ପାଠଃ ।

### ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୧୧ | ସେ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ । | କହିଲେ ଏମନ୍ତ ବାକ୍ୟକୁ ॥ | ୪୨ |
| | କି ଶ୍ରେୟ କଲୁଁ ଆଚରିତ । | ତା' ନ ଜାଣୁଛି ହେ ଅଚ୍ୟୁତ ॥ | ୪୩ |
| | ତୁମ୍ଭଙ୍କୁ ଯୋଗେଶ୍ୱରମାନେ । | ଦେଖି ନ ପାରନ୍ତି ଭୁବନେ ॥ | ୪୪ |
| | କୁତ୍ସିତ ବୁଦ୍ଧି ଯେ ଆମ୍ଭର । | ଆମ୍ଭଙ୍କୁ ହେଲ ସାକ୍ଷାତ୍‌କାର ॥ | ୪୫ |
| ୧୨ | ସେ ପ୍ରଭୁ ଏମନ୍ତ ପ୍ରକାରେ । | ବରଷାମାସମାନଙ୍କରେ ॥ | ୪୬ |
| | ପୂଜା କରନ୍ତେ ଯୁଧିଷ୍ଠିର । | ସେ ଇନ୍ଦ୍ରପ୍ରସ୍ଥଲୋକଙ୍କର ॥ | ୪୭ |
| | ନେତ୍ର-ଆନନ୍ଦକୁ ଜନମ । | କରନ୍ତେ ରହିଲେ ସୁଖେଣ ॥ | ୪୮ |
| ୧୩ | ଅର୍ଜୁନ ଏକ ଦିନକରେ । | ବାନରଧ୍ୱଜଟି ଯହିଁରେ ॥ | ୪୯ |
| | ସେ ରଥ କରି ଆରୋହଣ । | ଗାଣ୍ଡୀବ ଧନୁକୁ ଧରିଣ ॥ | ୫୦ |
| | କ୍ଷୟ ନୁହନ୍ତି ଶର ଯହିଁ । | ଧରିଣ ସେ ତୂଣୀର ଦୁଇ ॥ | ୫୧ |
| ୧୪ | ଯେ ଶତ୍ରୁ କରନ୍ତି ନିଧନ । | ସଂନଦ୍ଧ[1] ହୋଇ ସେ ଅର୍ଜୁନ ॥ | ୫୨ |
| | କୃଷ୍ଣଙ୍କୁ ଘେନିଣ ସଙ୍ଗରେ । | ବିହାର କରିବା ଅର୍ଥରେ ॥ | ୫୩ |
| | ବହୁତ ବ୍ୟାଳ-ମୃଗମାନେ । | ଯହିଁ ଅଛନ୍ତି ସବୁସ୍ଥାନେ ॥ | ୫୪ |
| | ସେ ଶ୍ରେଷ୍ଠ ବନରେ ତତ୍‌କ୍ଷଣ । | ପ୍ରବେଶ ହେଲେ ହେ ରାଜନ ॥ | ୫୫ |
| ୧୫ | ସେ ବନେ ଶରମାନଙ୍କରେ । | ବ୍ୟାଘ୍ରମାନଙ୍କୁ ସେ କାଳରେ ॥ | ୫୬ |
| | ଶୂକର-ମହିଷମାନଙ୍କୁ । | ଆବର ରୁରୁ-ଶରଭ[2]ଙ୍କୁ ॥ | ୫୭ |
| | ଗବୟ-ଗଣ୍ଡାମାନଙ୍କୁ ହିଁ । | ହରିଣମାନଙ୍କୁ ସେଠାଇଁ ॥ | ୫୮ |
| | ଶଶ-ଶଲ୍ଲକ ଯେ ବା ଥିଲେ । | ଏ ସମସ୍ତଙ୍କୁ ସେ ବିନ୍ଧିଲେ ॥ | ୫୯ |
| ୧୬ | କର୍ମକୁ ଯୋଗ୍ୟ ଯେ ଅଟନ୍ତି । | ସେ ମୃଗମାନଙ୍କୁ ଝଟିତି ॥ | ୬୦ |
| | ପର୍ବ ହୁଅନ୍ତେ ଭୃତ୍ୟେ ନେଲେ । | ଯୁଧିଷ୍ଠିରଙ୍କୁ ନେଇ ଦେଲେ ॥ | ୬୧ |
| | ଅର୍ଜୁନ ତୃଷାଶାନ୍ତ ହେଲେ । | ଯମୁନାନିକଟକୁ ଗଲେ ॥ | ୬୨ |
| ୧୭ | ସେ ମହାରଥ ପାର୍ଥ ହରି । | ତହିଁରେ ଆଚମନ କରି ॥ | ୬୩ |
| | ନିର୍ମଳ ଜଳ କରି ପାନ । | ଚାରୁ ଅଟଇ ଯା' ଦର୍ଶନ ॥ | ୬୪ |
| | ଗମନ କରୁଥିଲା ଯେହି । | ସେ କନ୍ୟା ଦେଖିଲେ ସେ ତହିଁ ॥ | ୬୫ |
| ୧୮ | ଉତ୍ତମ ଯାର ଦନ୍ତମାନ । | ଚାରୁ ଅଟଇ ଯା' ବଦନ ॥ | ୬୬ |
| | ପ୍ରମଦାଶ୍ରେଷ୍ଠ ଯେ ଅଟଇ । | ସେ ବରାରୋହାକୁ ସେଠାଇଁ ॥ | ୬୭ |
| | ଶ୍ରୀକୃଷ୍ଣ ପ୍ରେକ୍ଷନ୍ତେ ଅର୍ଜୁନ । | ପୁଚ୍ଛିଲେ ଏମନ୍ତ ବଚନ ॥ | ୬୮ |
| ୧୯ | ଆଗୋ ସୁଶ୍ରୋଣି ! କେ ବା ତୁହି । | କାହାର ଅଟୁ ତୁ ଏଠାଇଁ ॥ | ୬୯ |
| | କାହୁଁ ଅଇଲୁ କି ହେତୁରୁ । | କି କାର୍ଯ୍ୟ ଅବା ଇଚ୍ଛା କରୁ ॥ | ୭୦ |
| | ପତିକି ଇଚ୍ଛା କରୁ ତୁହି । | ତୁ କନ୍ୟା ଅଟୁ ମୁଁ ମଣଇ ॥ | ୭୧ |
| | ଆଗୋ ଶୋଭନେ ମୋ ଆଗରେ । | ଏ କଥା କହ ତୁ ନିର୍ଭରେ ॥ | ୭୨ |

---

୧. ସଂନଦ୍ଧ = ଅସ୍ତ୍ରସଜ୍ଜିତ ।
୨. ଅଷ୍ଟପାଦୀ ମୃଗ, ରୁରୁ = କୃଷ୍ଣସାର ମୃଗ, ଗବୟ = ଗୋସଦୃଶ, ଶଲ୍ଲକ = ଝିଙ୍କ ।

## ଶ୍ରୀକାଳିନ୍ଦୀ ଉବାଚ

୨୦ କାଳିନ୍ଦୀ ଅର୍ଜୁନଙ୍କୁ ପୁଣ । କହୁ ଅଛନ୍ତି ଏ ବଚନ ॥ ୭୩
ସୂର୍ଯ୍ୟଦେବତାଙ୍କର ମୁହିଁ । ହେ ପାର୍ଥ ! ଦୁହିତା ଅଟଇ ॥ ୭୪
ବରେଣ୍ୟ ବରଦ ଯେ ହରି । ତାଙ୍କୁ ଇଚ୍ଛନ୍ତେ ପତି କରି ॥ ୭୫
ପରମ ତପସ୍ୟାକୁ ମୁହିଁ । ଆଶ୍ରୟ କରିଅଛି ରହି ॥ ୭୬
୨୧ ସେ ଶ୍ରୀନିବାସ ବିନୁ ମୁହିଁ । ଅନ୍ୟ ପତିକି ବରୁ ନାହିଁ ॥ ୭୭
ଅନାଥ ଲୋକର ଆଶ୍ରୟ । ଯେ ମୁକ୍ତି ଦିଅନ୍ତି ନିଶ୍ଚୟ ॥ ୭୮
ସେ ଭଗବାନ ମୋର ଠାର । ସନ୍ତୋଷ ହୁଅନ୍ତୁ ହେ ବୀର ॥ ୭୯
୨୨ ମୁଁ ଖ୍ୟାତ କାଳିନ୍ଦୀନାମରେ । ବସଇ ଯମୁନାଜଳରେ ॥ ୮୦
ପିତା ଯା' କରିଛି ନିର୍ମାଣ । ସେ ଗୃହେ ରହିଛି ମୁଁ ପୁଣ ॥ ୮୧
ଯେତେକ କାଳେ ଅଚ୍ୟୁତର । ଦର୍ଶନ ହୋଇବ ମୋହର ॥ ୮୨
୨୩ ଅର୍ଜୁନ ସେହିରୂପେ ତାଙ୍କୁ । କହିଲେ ଯାଇଁ ଶ୍ରୀକୃଷ୍ଣଙ୍କୁ ॥ ୮୩
ତାହା ଜାଣନ୍ତି ଭଗବାନ । ସେ କନ୍ୟା ରଥେ ବସାଇଣ ॥ ୮୪
ଯୁଧିଷ୍ଠିରଙ୍କଠାକୁ ପୁଣ । ସେଠାରୁ କଲେ ସେ ଗମନ ॥ ୮୫
୨୪ କୃଷ୍ଣଙ୍କୁ ଯେବଣ କାଳରେ । କହିଲେ ପୃଥାଙ୍କ କ୍ରମରେ ॥ ୮୬
ସେ ହରି ପାଣ୍ଡବଙ୍କ ପାଇଁ । ଯେ ଅତି ଅଦ୍ଭୁତ ଅଟଇ ॥ ୮୭
ସେ ଚିତ୍ର ନଗରକୁ ଭଲେ । ବିଶ୍ୱକର୍ମାରେ କରାଇଲେ ॥ ୮୮
୨୫ ପାଣ୍ଡବମାନଙ୍କର ପ୍ରିୟ । କରିବା ଅର୍ଥେ ଅତିଶୟ ॥ ୮୯
ସେ ପୁରେ ରହି ଭଗବାନ । ଖାଣ୍ଡବ ବନକୁ ସେ ପୁଣ ॥ ୯୦
ଅଗ୍ନିକି ଦେବାକୁ ହେ ବୀର । ସାରଥି ହେଲେ ଅର୍ଜୁନର ॥ ୯୧
୨୬ ସେ ଅଗ୍ନି ସଂତୁଷ୍ଟ ହୋଇଣ । ଯେ ଶ୍ୱେତବର୍ଣ୍ଣ ହୟମାନ ॥ ୯୨
ତାହାଙ୍କୁ ଧନୁକୁ ରଥକୁ । ହେ ନୃପ ! ଦେଲେ ଅର୍ଜୁନଙ୍କୁ ॥ ୯୩
ଅସ୍ତ୍ରପ୍ରୟୋଗ ସହିତେଣ । ଅଭେଦ୍ୟ କବଚକୁ ପୁଣ ॥ ୯୪
କ୍ଷୟ ନୁହନ୍ତି ଶର ଯହିଁ । ଦେଲେ ସେ ସେ ତୂଣୀର ଦୁଇ ॥ ୯୫
୨୭ ଖାଣ୍ଡବ ଅଗ୍ନିରୁ ମୋଚିତ । ହୋଇଲା ଯେ ମୟ ଦଇତ ॥ ୯୬
ଯେ ସଖା ଅଟନ୍ତି ଅର୍ଜୁନ । ସେ ସଭା ଦେଲା ତାଙ୍କୁ ପୁଣ ॥ ୯୭
ଜଳରେ ସ୍ଥଳପ୍ରାୟ ହୋଇ । ଯହିଁ ସଭାରେ ଦୃଷ୍ଟି ହୋଇ ॥ ୯୮
ଦୁର୍ଯ୍ୟୋଧନର ଯହିଁ ପୁଣ । ଭ୍ରମ ହୋଇଲା ହେ ରାଜନ ॥ ୯୯
୨୮ ଆଜ୍ଞା ଦିଅନ୍ତେ ଯୁଧିଷ୍ଠିର । ସୁହୃଦମାନଙ୍କେ ଆବର ॥ ୧୦୦
ଅନୁମୋଦିତ ସେ ହୋଇଣ । ସାତ୍ୟକି ଆଦି ଯଦୁଗଣ ॥ ୧୦୧
ବେଷ୍ଟିତ ହୋଇ ଭଗବାନ । ଅଇଲେ ଦ୍ୱାରକାକୁ ପୁଣ ॥ ୧୦୨
୨୯ ଏଥୁ ଅନ୍ତରେ ପୁଣ୍ୟ ହୋଇ । ଋତୁ-ନକ୍ଷତ୍ର ଅଟେ ଯହିଁ ॥ ୧୦୩

| | | | | |
|---|---|---|---|---|
| | ସେ ଦିନ ହୁଅନ୍ତେ ଉର୍ଜିତ | । | ପରମମଙ୍ଗଳ ଅଚ୍ୟୁତ | ॥ ୧୦୪ |
| | ପରମାନନ୍ଦକୁ ବିସ୍ତାର | । | କରନ୍ତେ ନିଜ ଲୋକଙ୍କର | ॥ ୧୦୫ |
| | ସେ କାଳିନ୍ଦୀକି ହେ ରାଜନ | । | ବିବାହ ହୋଇଲେ ସେ ପୁଣ | ॥ ୧୦୬ |
| ୩୦ | ବିନ୍ଦ ଅନୁବିନ୍ଦ ନାମରେ | । | ବେନି ରାଜାଏ ଅବନ୍ତୀରେ | ॥ ୧୦୭ |
| | ଦୁର୍ଯୋଧନର ବଶ ହୋଇ | । | ଅନୁଗ ଅଟନ୍ତି ସେ ଦୁଇ | ॥ ୧୦୮ |
| | ସ୍ୱୟଂବରରେ କୃଷ୍ଣଠାଇଁ | । | ଯେ ଅତି ଆସକ୍ତ ଅଟଇ | ॥ ୧୦୯ |
| | ସେ ଭଗିନୀଙ୍କି ବେନି ଜନ | । | ନିଷେଧ କଲେ ହେ ରାଜନ | ॥ ୧୧୦ |
| ୩୧ | ରାଜାଧିଦେବୀ ଯେ ଅଟଇ | । | ସେ ପିଉସୀର ଝିଅ ଯେହି | ॥ ୧୧୧ |
| | ସେ ମିତ୍ରବିନ୍ଦାକୁ ସେସ୍ଥାନେ | । | ହେ ନୃପ ! ଦେଖନ୍ତେ ରାଜନେ | ॥ ୧୧୨ |
| | ତାହାଙ୍କ ମଧ୍ୟୁଁ ବଳାତ୍‌କାରେ | । | କୃଷ୍ଣ ହରିଲେ ସେ କାଳରେ | ॥ ୧୧୩ |
| ୩୨ | ଅଯୋଧ୍ୟା-ଅଧିପତି ଯେହି | । | ଯେ ଅତି ଧାର୍ମିକ ଅଟଇ | ॥ ୧୧୪ |
| | ଯେ ଖ୍ୟାତ ନଗ୍ନଜିତ ନାଏଁ | । | ଏମନ୍ତେ ହୋଇଲା ରାଜାଏ | ॥ ୧୧୫ |
| | ହେ ନୃପ ! କାନ୍ତିମତୀ ଯେହି | । | [1]ପିତୃନାମରେ ସିଦ୍ଧ ହୋଇ | ॥ ୧୧୬ |
| | ନାମ ଅଟଇ ସତ୍ୟା ଯାର | । | ସେ କନ୍ୟା ହୋଇଲା ତାହାର | ॥ ୧୧୭ |
| ୩୩ | ତୀକ୍ଷଣ ଶୃଙ୍ଗ ଯାହାଙ୍କର | । | ଦୁର୍ଦ୍ଧର୍ଷ ଅଟନ୍ତି ଆବର | ॥ ୧୧୮ |
| | ଯେ ଅତି ଦୁର୍ବୃତ୍ତ ଅଟନ୍ତି | । | ବୀରଙ୍କ ଗନ୍ଧ ନ ସହନ୍ତି | ॥ ୧୧୯ |
| | ଏମନ୍ତ ସପ୍ତ ଗୋବୃଷଙ୍କୁ[2] | । | ନ ଜିଣି କରି ସେ କନ୍ୟାକୁ | ॥ ୧୨୦ |
| | ରାଜାଏ ବିଭା ହେବାକୁ ହିଁ | । | ସମର୍ଥ ନୋହିଲେ ସେ କେହି | ॥ ୧୨୧ |
| ୩୪ | ଜିଣିମ ଯେ ସେ ବୃଷଭଙ୍କୁ | । | ସେ ବିଭା ହେବ ସେ କନ୍ୟାକୁ | ॥ ୧୨୨ |
| | ସାତ୍ୱତପତି ଭଗବାନ | । | ଏମନ୍ତ ଶ୍ରବଣ କରିଣ | ॥ ୧୨୩ |
| | ବହୁତ ସୈନ୍ୟେ ବୃତ ହେଲେ | । | ଅଯୋଧ୍ୟାନଗରକୁ ଗଲେ | ॥ ୧୨୪ |
| ୩୫ | ସେ ଅଯୋଧ୍ୟାର ଅଧିପତି | । | ପ୍ରୀତିରେ ଉଠିଣ ଝଟିତି | ॥ ୧୨୫ |
| | ଆସନ ଆଦିରେ ସେ ତହିଁ | । | ଅତ୍ୟନ୍ତ ପ୍ରୀତିମନ୍ତ ହୋଇ | ॥ ୧୨୬ |
| | ପୂଜାବିଧାନରେ ବହୁତ | । | ପୂଜନ୍ତେ ହୋଇ ଆନନ୍ଦିତ | ॥ ୧୨୭ |
| ୩୬ | ସେ ନୃପକନ୍ୟା ଆପଣାର | । | ବାଞ୍ଛିତ ଅଟେ ଯଉଁ ବର[3] | ॥ ୧୨୮ |
| | ସେ ରମାପତି ଆଗମନ | । | କରନ୍ତେ ତାହାଙ୍କୁ ଦେଖିଣ | ॥ ୧୨୯ |
| | କାମନା କଲା ସେ ଏମନ୍ତ | । | ମୋହର ହୁଅନ୍ତୁ ଏ କାନ୍ତ | ॥ ୧୩୦ |
| | ଅନଳ କରୁ ଆଶିଷକୁ | । | ଯେବେ ମୁଁ ଧରିଛି ବ୍ରତକୁ | ॥ ୧୩୧ |
| ୩୭ | ପୂଜା କରନ୍ତେ ଶ୍ରୀକୃଷ୍ଣଙ୍କୁ | । | ପୁଣି କହିଲେ ଏ ବାକ୍ୟଙ୍କୁ | ॥ ୧୩୨ |
| | ହେ ନାରାୟଣ ଜଗତ୍‌ପତି | । | ଅଳ୍ପକ[4] ଅଟଇ ମୁଁ ଅତି | ॥ ୧୩୩ |

୧. ପିତୃନାମ ଅନୁସାରେ ତାଙ୍କ ନାମ ଥିଲା ନାଗ୍ନଜିତୀ ।　　୨. ଗୋବୃଷ = ବୃଷଭ ।
୩. ନର ।　　୪. କ୍ଷୁଦ୍ର ।

| | | | |
|---|---|---|---|
| | ଆତ୍ମାନନ୍ଦରେ ପୂର୍ଣ୍ଣ ତୁହି | । ତୁମ୍ଭର କି କରିବି ମୁହିଁ | ॥ ୧୩୪ |
| ୩୮ | ଯା ପାଦପଦ୍ମରେଣୁମାନ | । ଲକ୍ଷ୍ମୀ ବିରିଞ୍ଚି ବେନି ଜନ | ॥ ୧୩୫ |
| | ମହାଦେବର ସଙ୍ଗତରେ | । ଲୋକପାଳଙ୍କ ସହିତରେ | ॥ ୧୩୬ |
| | ଗ୍ରହଣ କରନ୍ତି ଶିରରେ | । ସ୍ୱକୃତସେତୁର ଇଚ୍ଛାରେ | ॥ ୧୩୭ |
| | ଯେ ଲୀଳାମାନଙ୍କେ ଶରୀର | । ଗ୍ରହଣ କରନ୍ତି ଆବର | ॥ ୧୩୮ |
| | ସେ ଭଗବାନ ମୋହଠାରେ | । ସନ୍ତୋଷ ହେବେ କି ହେତୁରେ | ॥ ୧୩୯ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୯ | କହନ୍ତି ବ୍ୟାସଙ୍କ ନନ୍ଦନ | । ଯେ କୃଷ୍ଣ ପ୍ରଭୁ ଭଗବାନ | ॥ ୧୪୦ |
| | ଆସନ କରିଣ ସ୍ୱୀକାର | । ଯେ ମେଘପ୍ରାୟେକ ଗମ୍ଭୀର | ॥ ୧୪୧ |
| | ରାଜାକୁ ହସି ସେ ବଚନ | । କହିଲେ ହେ କୁରୁନନ୍ଦନ | ॥ ୧୪୨ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୪୦ | ଯେ ଧର୍ମେ ଥାନ୍ତି ଆପଣାର | । ସେହି କ୍ଷତ୍ରିୟମାନଙ୍କର | ॥ ୧୪୩ |
| | ହେ ନୃପ ! ଯଉଁ ଯାଚଞ୍ଚାଏ | । ତାହାକୁ ନିନ୍ଦନ୍ତି କବିଏ | ॥ ୧୪୪ |
| | ତଥାପି ସୌହୃଦ ଇଚ୍ଛାରେ | । ତୁମ୍ଭର କନ୍ୟାକୁ ଏଠାରେ | ॥ ୧୪୫ |
| | ଯାଚଞ୍ଚା କରୁଅଛି ମୁହିଁ | । ଦ୍ରବ୍ୟାଦିପ୍ରଦ[୧] ମୁଁ ନୁହଇଁ | ॥ ୧୪୬ |

ଶ୍ରୀରାଜା ଉବାଚ

| | | | |
|---|---|---|---|
| ୪୧ | ସେ ନଗ୍ନଜିତ ମହୀପତି | । କୃଷ୍ଣଙ୍କୁ ଏମନ୍ତ କହନ୍ତି | ॥ ୧୪୭ |
| | ହେ ନାଥ ! ବାଞ୍ଛିତ ହୋଇଣ | । କନ୍ୟାର ବର ହୋଇ ପୁଣ | ॥ ୧୪୮ |
| | ତୋ' ଠାରୁ ହୋଇଣ ଅଧିକ | । କେ ଅବା ଅଛି ଆନ ଲୋକ | ॥ ୧୪୯ |
| | ସମସ୍ତ ଗୁଣଙ୍କର ପୁଣ | । ଯେ ତୁମ୍ଭେ ଅଟ ଏକ ସ୍ଥାନ | ॥ ୧୫୦ |
| | ଅବିନାଶିନୀ ଲକ୍ଷ୍ମୀ ଯେହି | । ସେ ତୁମ୍ଭ ଅଙ୍ଗେ ଅଛି ରହି | ॥ ୧୫୧ |
| ୪୨ | ଯେ ଏ ବୃଷଭଙ୍କୁ ବାନ୍ଧିବ | । ତାହାର ଏ କନ୍ୟା ହୋଇବ | ॥ ୧୫୨ |
| | ହେ କୃଷ୍ଣ ! ଏ ରୂପରେ ମୁହିଁ | । ପୂର୍ବେ ନିର୍ବନ୍ଧ କରିଛଇଁ | ॥ ୧୫୩ |
| | ପୁରୁଷଙ୍କର ପରାକ୍ରମ | । ପରୀକ୍ଷା କରିବାକୁ ପୁଣ | ॥ ୧୫୪ |
| | ପୁଣି ସେ କନ୍ୟାର ଯେ ବର | । ପାଇବା ଇଚ୍ଛାରେ ତାହାର | ॥ ୧୫୫ |
| ୪୩ | ହେ ବୀର ! ଏ ବୃଷଭ ସପ୍ତ | । ପରର ନୁହନ୍ତି ଆୟତ୍ତ | ॥ ୧୫୬ |
| | ଦୁର୍ଦ୍ଦାନ୍ତ ଅଟନ୍ତି ଏ ଯେଣେ | । ବହୁତ ନୃପପୁତ୍ରମାନେ | ॥ ୧୫୭ |
| | ଭିନ୍ନ ହୁଅନ୍ତେ ଗାତ୍ରମାନ | । ଭଙ୍ଗକୁ ପାଇଲେ ସେ ପୁଣ | ॥ ୧୫୮ |
| ୪୪ | ହେ ଯଦୁସୁତ ! ଏ ବୃଷଭେ | । ତୁମ୍ଭରେ ଯେବେ ବନ୍ଧା ହେବେ | ॥ ୧୫୯ |
| | ହେ ଲକ୍ଷ୍ମୀପତି ମୋ ସୁତାର | । ତୁମ୍ଭେ ସ୍ୱୀକୃତ ହେବ ବର | ॥ ୧୬୦ |

୧. କନ୍ୟାଗ୍ରହଣୋଚିତ ଶୁଳ୍କଦାତା ।

୪୫ ଏମନ୍ତରୂପେ ଭଗବାନ । ସମୟ[୧] ଶ୍ରବଣ କରିଣ ॥ ୧୬୧
[୨]ଆତ୍ମାକୁ ସାତ ଭାଗ କରି । ପରିକରକୁ ବାନ୍ଧି ହରି ॥ ୧୬୨
ବୃଷଭମାନଙ୍କୁ ଲୀଳାରେ । ଗ୍ରହଣ କଲେ ସେ କାଳରେ ॥ ୧୬୩
୪୬ ଭାଜିଲା ଗର୍ବ ଯାହାଙ୍କର । ନିସ୍ତେଜ ଅଟନ୍ତି ଆବର ॥ ୧୬୪
ସେ ବୃଷମାନଙ୍କୁ ସେ ହରି । ରଜ୍ଜୁମାନଙ୍କେ ବାନ୍ଧି କରି ॥ ୧୬୫
ସେ ବନ୍ଧା ବୃଷଙ୍କୁ ସେଠାରେ । ଝିଙ୍କିଲେ ଲୀଳାମାତ୍ରକରେ ॥ ୧୬୬
ଯେ ଦାରୁମୟ ବୃଷମାନେ । ତାହାଙ୍କୁ ବାଳକେ ଯେସନେ ॥ ୧୬୭
୪୭ ତଦନନ୍ତରେ ସେ ରାଜନ । ବହୁତ ବିସ୍ମୟ ହୋଇଣ ॥ ୧୬୮
ପ୍ରୀତ ହୋଇଣ ଶ୍ରୀକୃଷ୍ଣଙ୍କୁ । ପ୍ରଦାନ କଲା ସେ କନ୍ୟାକୁ ॥ ୧୬୯
ସେ ମହାପ୍ରଭୁ ଭଗବାନ । ଯେ ଅଟେ ଆପଣା ସମାନ ॥ ୧୭୦
ସେ କନ୍ୟା ବିଧିମତ ହୋଇ । ଗ୍ରହଣ କଲେକ ସେଠାଇଁ ॥ ୧୭୧
୪୮ ରାଜପତ୍ନୀଏ ଦୁହିତାର । ଯେ କୃଷ୍ଣ ହେଲେ ପ୍ରିୟ ବର ॥ ୧୭୨
ଲଭିଣ ସମସ୍ତେ ତାହାଙ୍କୁ । ଲଭିଲେ ଅତି ହରଷକୁ ॥ ୧୭୩
ଯେ ଅଟେ ପରମ ଉତ୍ସବ । ସେ ପୁଣି ହୋଇଲା ସଂଭବ ॥ ୧୭୪
୪୯ ଯେ ଶଙ୍ଖ ଭେରୀମାନେ ଆନ । ଯେ ବା ଆନକ ଗୀତମାନ ॥ ୧୭୫
ଯେ ବାଦ୍ୟ ଦ୍ୱିଜ-ଆଶୀର୍ବାଦ । ଏମାନେ କଲେକ ଶବଦ ॥ ୧୭୬
ମାଳାମାନଙ୍କେ ଅଳଂକୃତ । ଯେ ପୁଣ ଦିବ୍ୟ ବସ୍ତ୍ରବନ୍ତ ॥ ୧୭୭
ଏମନ୍ତ ନରନାରୀମାନେ । ହରଷ ହୋଇଲେ ସେ ସ୍ଥାନେ ॥ ୧୭୮
୫୦ ଯୌତୁକ କରି ସେ ରାଜନ । ଦଶସହସ୍ର ଧେନୁମାନ ॥ ୧୭୯
ଯେ ନିଷ୍କକଣ୍ଠୀ ସୁବସନ । ଏମନ୍ତ ଯଉଁ ଦାସୀମାନ ॥ ୧୮୦
ତାଙ୍କର ତିନି ସହସ୍ରକୁ । ପ୍ରଦାନ କଲା ଶ୍ରୀକୃଷ୍ଣଙ୍କୁ ॥ ୧୮୧
୫୧ ନବସହସ୍ର ହସ୍ତୀମାନ । ଆବର କଲା ସେ ପ୍ରଦାନ ॥ ୧୮୨
ହସ୍ତୀମାନଙ୍କୁଁ ଶଏ ଗୁଣ । ଦେଲା ସେ ଦିବ୍ୟରଥମାନ ॥ ୧୮୩
ରଥୁଁ ଅଧିକ ଶଏ ଗୁଣ । ଅଶ୍ୱମାନଙ୍କୁ ଦେଲା ପୁଣ ॥ ୧୮୪
ଅଶ୍ୱର ଶଏ ଗୁଣ ପୁଣି । ପଦାତିମାନ ଦେଲା ଆଣି ॥ ୧୮୫
୫୨ ଅତ୍ୟନ୍ତ ଶ୍ରେଷ୍ଠ ଯଉଁ ସୈନ୍ୟ । ତହିଁରେ ଆବୃତ କରିଣ ॥ ୧୮୬
ସେ ପତିପତ୍ନୀ ବେନିଜନ । ରଥରେ କରି ଆରୋପଣ[୩] ॥ ୧୮୭
ସ୍ନେହେ ବିକ୍ଳିନ୍ନଚିତ୍ତ[୪] ହୋଇ । ସେ ନୃପ ଦେଲେ ପଠିଆଇ ॥ ୧୮୮

---

୧. ସମୟ = ନିୟମ।
୨. "ମୁଁ ବହୁ ସ୍ତ୍ରୀମାନଙ୍କର ସଂପୂର୍ଣ୍ଣସଂଭୋଗଯୋଗ୍ୟ" ବୋଲି ସତ୍ୟାଙ୍କ ପ୍ରତି ଅସାପତ୍ନ୍ୟପ୍ରଦର୍ଶନାର୍ଥେ ଭଗବାନ୍ ନିଜକୁ ସାତ ଭାଗ କଲେ ।
୩. ଆରୋହଣ ।  ୪. ଆର୍ଦ୍ରଚିତ୍ତ ।

୫୩ ଯାଦବମାନଙ୍କେ ବୃଷଭେ । ଯେ ଭଗ୍ନବୀର୍ଯ୍ୟ ହେଲେ ପୂର୍ବେ ॥ ୧୮୯
ସେ ରାଜାମାନେ ଏହା ଶୁଣି । ଅତ୍ୟନ୍ତ କ୍ରୁଦ୍ଧ ହୋଇ ପୁଣି ॥ ୧୯୦
ଶ୍ରୀକୃଷ୍ଣ ନିଅନ୍ତେ କନ୍ୟାକୁ । ରୁନ୍ଧିଲେ ଯାଇ ମାର୍ଗେ ତାଙ୍କୁ ॥ ୧୯୧
୫୪ ପକାନ୍ତେ ଶରସମୂହକୁ । ସେ ସର୍ବନୃପତିମାନଙ୍କୁ ॥ ୧୯୨
କରନ୍ତେ ବନ୍ଧୁଙ୍କର ପ୍ରିୟ । ଗାଣ୍ଡୀବ ଧରି ଧନଞ୍ଜୟ ॥ ୧୯୩
କାଳିଲେ[୧] ସିଂହ ଯେହ୍ନେ ଯାଇ । କ୍ଷୁଦ୍ରମୃଗଙ୍କୁ ଘଉଡ଼ଇ ॥ ୧୯୪
୫୫ ଯୌତୁକ ଘେନି ଦ୍ୱାରକାରେ । ମିଳନ୍ତେ ସତ୍ୟାସହିତରେ ॥ ୧୯୫
ଯେ ଶ୍ରେଷ୍ଠ ଯଦୁମାନଙ୍କର । ଯେ ପୁଣ ଦେବକୀକୁମର ॥ ୧୯୬
ସେ ଭଗବାନ ହେ ରାଜନ । କଲେ ବହୁତ କ୍ରୀଡ଼ାମାନ ॥ ୧୯୭
୫୬ ଯାହାର ଶ୍ରୁତକୀର୍ତ୍ତି ନାମ । ପିଉସୀ ଅଟନ୍ତି ଯେ ପୁଣ ॥ ୧୯୮
ଯେ ତାର ସୁତା ଭଦ୍ରା ନାମ । କେକୟଦେଶରେ ଜନମ ॥ ୧୯୯
ସଂତର୍ଦନକୁ ଆଦି ହୋଇ । ଯେ ଭ୍ରାତାମାନେ ଥିଲେ ତହିଁ ॥ ୨୦୦
ସେ କନ୍ୟା କରନ୍ତେ ପ୍ରଦାନ । ବିବାହ ହେଲେ ଭଗବାନ ॥ ୨୦୧
୫୭ ଯେ ମଦ୍ରଦେଶରାଜା ପୁଣି । ଲକ୍ଷ୍ମଣା ନାମେ ତା' ନନ୍ଦିନୀ ॥ ୨୦୨
ସେ ଯୁତ ସବୁଲକ୍ଷଣରେ । ଯେ କନ୍ୟାକୁ ହିଁ ସ୍ୱୟମ୍ବରେ ॥ ୨୦୩
ଏକା ହୋଇଣ ଭଗବାନ । ହରି ଆଣିଲେ ହେ ରାଜନ ॥ ୨୦୪
ଗରୁଡ଼ ଯେସନ ପ୍ରକାରେ । ଅମୃତ ହରିଲେ ପୂର୍ବରେ ॥ ୨୦୫
୫୮ ସୁନ୍ଦର ଯା'ଙ୍କ ଦରଶନ । ଏମନ୍ତ ଯେ ବନିତାମାନ ॥ ୨୦୬
ଭୌମକୁ ମାରି ତାଙ୍କୁ ହରି । ତା' ଅନ୍ତଃପୁରୁଁ ନେଲେ ହରି ॥ ୨୦୭
ଏ ରୂପେ ବିବିଧ ରୂପେଣ । ସହସ୍ରସଂଖ୍ୟକ ହୋଇଣ ॥ ୨୦୮
ଅନ୍ୟଭାର୍ଯ୍ୟାଏ ଶ୍ରୀକୃଷ୍ଣର । ହେ ନୃପ ! ହୋଇଲେ ଆବର ॥ ୨୦୯
[୨]ରୁକ୍ମିଣୀ ଜାମ୍ବବତୀ ବେନି । ଯେ ସତ୍ୟଭାମା ସତ୍ୟା ପୁଣି ॥ ୨୧୦
ଭଦ୍ରା ଲକ୍ଷ୍ମଣା ବେନି ଜଣ । କାଳିନ୍ଦୀ ମିତ୍ରବିନ୍ଦା ପୁଣ ॥ ୨୧୧
ଏ ଅଷ୍ଟ ପାଟମହିଷୀଏ । କୃଷ୍ଣର ହେଲେ ଦ୍ୱାରିକାଏ ॥ ୨୧୨
ହେ କୃଷ୍ଣ କମଳଲୋଚନ । ତୁମ୍ଭେ ଯେ ପତିତପାବନ ॥ ୨୧୩
ମୁଁ ଯେ ପତିତ ଦୀନବନ୍ଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥ ୨୧୪

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ମହିଷ୍ୟୁଦ୍‌ବାହୋ
ନାମ ଅଷ୍ଟପଞ୍ଚାଶୋଽଧ୍ୟାୟଃ ॥

---

୧. ଘଉଡ଼ାଇଲେ ।
୨. ଭୈଷ୍ମୀ ଜାମ୍ବବତୀ ଭାମା ସତ୍ୟା ଭଦ୍ରା ଚ ଲକ୍ଷ୍ମଣା ।
କାଳିନ୍ଦୀ ମିତ୍ରବିନ୍ଦା ଚେତ୍ୟଷ୍ଟପଟ୍ଟହରିପ୍ରିୟାଃ ॥ ଇତି ଅଧିକଃ ପାଠଃ

# ଊନଷଷ୍ଟିତମ ଅଧ୍ୟାୟ

ଊନଷଷ୍ଟିତମେ ଭୌମଂ ହତ୍ୱା ତେନାହୃତା ହରିଃ ।
କନ୍ୟାଃ ସହସ୍ରଶଃ ପ୍ରାପ ପାରିଜାତଂ ଦିବୋଽହରତ୍ ।।
ପରିଣୀୟ ତତସ୍ତାଭିସ୍ତନ୍ମନୋରଥପୂରଣୈଃ ।
ଆତ୍ମାରାମୋଽପ୍ୟସୌ ରେମେ ତଦ୍‌ଗୃହେଷୁ ଗୃହସ୍ଥବତ୍ ।।

ଶ୍ରୀରାଜୋବାଚ

୧ ବ୍ୟାସଙ୍କ ସୁତଙ୍କୁ ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ।।
ନରକାସୁରକୁ ଅଚ୍ୟୁତ । ଯେମନ୍ତରୂପେ କଲେ ହତ ।।
ଯଉଁ ହେତୁ ସେ ନାରୀମାନ । ସେ ଦୈତ୍ୟ କଲା ନିରୁନ୍ଧନ ।।
କହ ଏ ସମସ୍ତ କଥାକୁ । ଶାର୍ଙ୍ଗଧନ୍ୱାର ବିକ୍ରମକୁ ।।

ଶ୍ରୀଶୁକ ଉବାଚ

୨ କହନ୍ତି ଶୁକ ମହାଯତି । ହେ ପରୀକ୍ଷିତ ମହୀପତି ।।
କୁଣ୍ଡଳ ହୃତ ହେଲା ଯାର । ସେ ଅଦିତି ମାତା ଯାହାର ।।
ଅମର ପର୍ବତରୁ ପୁଣ । ହୃତ ହୋଇଲା ଯାର ସ୍ଥାନ ।।
ହୃତ ହୋଇଲା ଛତ୍ର ଯାର । ଏମନ୍ତ ଯଉଁ ପୁରନ୍ଦର ।।
ଭୌମଚେଷ୍ଟାକୁ ସେ କହନ୍ତେ । [1]ସେ ହରି ଭାର୍ଯ୍ୟାର ସହିତେ ।।
ଆରୋହି କରି ଗରୁଡ଼କୁ । ଚଳିଲେ ଭୌମନଗରକୁ ।।
୩ ପର୍ବତଦୁର୍ଗମାନଙ୍କରେ । ଆବର ଶସ୍ତ୍ରଦୁର୍ଗଙ୍କରେ ।।
ଯେ ଜଳ-ବାତ-ହୁତାଶନ । ଏଣେ ଯେ ଅଟଇ ଦୁର୍ଗମ ।।
ଯେ ଦୃଢ଼ ଅଟେ ଭୟଙ୍କର । ଅଯୁତେ ପାଶ ଯେ ମୁରର ।।
ତେଣେ ସମସ୍ତ ଦିଗେ ପୁଣ । ସେ ହୋଇଅଛି ଆବରଣ ।।
୪ ପର୍ବତମାନଙ୍କୁ ଗଦାରେ । ଶସ୍ତ୍ରଦୁର୍ଗଙ୍କୁ ସାୟକରେ ।।
ଯେ ଜଳ, ବାତ, ହୁତାଶନ । ଏହାଙ୍କୁ ଭେଦିଲେ ଚକ୍ରେଣ ।।
ସେରୂପେ ମୁରପାଶମାନ । ଖଡ଼ଗେ କଲେ ବିଦାରଣ ।।
୫ ମନସ୍ୱୀମାନଙ୍କର ପୁଣ । ଯେ ବା ହୃଦୟ ଯନ୍ତ୍ରମାନ ।।
ଭେଦିଲେ ଶଙ୍ଖଶବ୍ଦେ ତାଙ୍କୁ । ଆବର ପ୍ରାକାରମାନଙ୍କୁ ।।

---

୧. ସତ୍ୟଭାମାଙ୍କ ସହିତ । ସତ୍ୟଭାମାଙ୍କ ଗୃହରେ ଇନ୍ଦ୍ର ଆସି ଭଗବାନ୍‌ଙ୍କୁ କହିଥିଲେ । ତେଣୁ ସତ୍ୟାଭାମାଙ୍କ କୌତୁକ ପାଇଁ ତାଙ୍କ ସହିତ ଭଗବାନ୍ ଯାଇଥିଲେ । କିମ୍ବା ''ତୋହରି ଅନୁଜ୍ଞାରେ ତୋହରି ପୁତ୍ରକୁ ମାରିବି'' ଭୂମିକୁ ଦେଇଥିବା ଏହି ବରକୁ ସତ୍ୟ କରିବା ପାଇଁ ଭୂମି-ଅଂଶରୂପା ସତ୍ୟଭାମାଙ୍କ ସହ ସେ ଯାଇଥିଲେ । କିମ୍ବା ହରିବଂଶର ବର୍ଣ୍ଣନାନୁସାରେ ନାରଦାନୀତ ପାରିଜାତ ଫୁଲଟିକୁ ରୁକ୍ମିଣୀଙ୍କୁ ଦିଅନ୍ତେ ସତ୍ୟଭାମା କୁପିତା ହେବାରୁ ଶ୍ରୀକୃଷ୍ଣ ତାଙ୍କୁ ସାନ୍ତ୍ୱନା ଦେଇ ପ୍ରତିଶ୍ରୁତି ଦେଇଥିଲେ – ''ତୁମକୁ ହିଁ ପାରିଜାତ ପ୍ରଦାନ କରିବି'' । ତେଣୁ ସତ୍ୟଭାମାଙ୍କୁ ନେଇଥିଲେ ।

ଶ୍ରେଷ୍ଠ ଗଦାରେ ଗଦାଧର । ଭେଦନ କଲେକ ସତ୍ୱର ॥
୬ ଯୁଗାନ୍ତବଜ୍ରଧ୍ୱନିପ୍ରାଏ । ଭୀଷଣ ଅଟେ ଅତିଶୟେ ॥
ଯେ ପାଞ୍ଚଜନ୍ୟଧ୍ୱନିମାନ । ତାହାକୁ ଶ୍ରବଣ କରିଣ ॥
ଯାହାର ଅଟେ ପାଞ୍ଚ ଶିର । ଏମନ୍ତ ଯେ ମୁର ଅସୁର ॥
ସେ କରିଥିଲାକ ଶୟନ । ଜଳରୁ ଉଠିଲା ବହନ ॥
୭ ଯୁଗାନ୍ତ ସୂର୍ଯ୍ୟ ହୁତାଶନ । ପ୍ରାଏକ ଯାହାର କିରଣ ॥
ଯେ ଦୁର୍ନିରୀକ୍ଷଣ ଉଲ୍ବଣ । ଏମନ୍ତ ଶୂଳକୁ ଟେକିଣ ॥
ପଞ୍ଚବଦନେ ସେ ଅସୁର । ଗ୍ରାସିଲାପ୍ରାଏ ତିନି ପୁର ॥
ଧାଇଁଲା ଯେସନେ ଉରଗ । ଗରୁଡ଼ଠାକୁ ଧାଏଁ ବେଗ ॥
୮ ସେ ମହାଅସୁର ଶୂଳକୁ । ତୋଳି ଫିଙ୍ଗିଣ ଗରୁଡ଼କୁ ॥
ପଞ୍ଚବଦନେ କଲା ଧ୍ୱନି । ଆକାଶ ତ୍ରିଦିବ ଧରଣୀ ॥
ପୂରାନ୍ତେ ସର୍ବଦିଗମାନ । ଅଣ୍ଡକଟାହ କଲା ପୂର୍ଣ୍ଣ ॥
୯ ତ୍ରିଶିଖ ଶୂଳ ସେ କାଳରେ । ପଡ଼ନ୍ତେ ଗରୁଡ଼ଉପରେ ॥
ବଳରେ ବେନିଶରେ ହରି । କାଟିଲେ ତିନିଖଣ୍ଡ କରି ॥
ଦୈତ୍ୟକୁ ମୁଖମାନଙ୍କରେ । ପୁଣି ବିନ୍ଧିଲେ ସାୟକରେ ॥
ସେ ଅସୁର ହିଁ ଶ୍ରୀକୃଷ୍ଣଙ୍କୁ । ରୋଷରେ ଫିଙ୍ଗିଲା ଗଦାକୁ ॥
୧୦ | ସେ ଗଦା ପଡ଼ନ୍ତେ ଯୁଦ୍ଧରେ । ସେ ଗଦାଗ୍ରଜ ସ୍ୱ ଗଦାରେ ॥
୧୧ | ସହସ୍ର ଖଣ୍ଡ କରି ପୁଣ । ଛେଦନ କଲେ ହେ ରାଜନ ॥
ଭୁଜକୁ ଟେକିଣ ଆବର । ଧାବନ୍ତେ ପୁଣ ସେ ଦୈତ୍ୟର ॥
ମସ୍ତକମାନଙ୍କୁ ଚକ୍ରରେ । ଶ୍ରୀକୃଷ୍ଣ ହରିଲେ ଲୀଳାରେ ॥
ଛିଡ଼ନ୍ତେ ଶିରମାନେ ପୁଣ । ପଡ଼ିଲା ଜଳେ ଛାଡ଼ି ପ୍ରାଣ ॥
ବାସବବଜ୍ରେ ଶୃଙ୍ଗମାନ । ଛିଡ଼ନ୍ତେ ପର୍ବତ ଯେସନ ॥
୧୨ ଯେ ତାମ୍ର ଅନ୍ତରିକ୍ଷ ଆନ । ପ୍ରବଣ[1] ବିଭାବସୁ ପୁଣ ॥
ଯେ ବସୁ ଯେ ବା ନଭସ୍ୱାନ । ସପ୍ତମ ଅଟଇ ଅରୁଣ[2] ॥
ଏରୂପେ ସେ ମୁରାସୁରର । ଅଟନ୍ତି ସପତ କୁମର ॥
ପ୍ରତିକ୍ରିୟାକୁ ଯେ ଉଚିତ । ସେ କ୍ରୋଧେ ଅଟନ୍ତି ସଂଯୁତ ॥
ଆତୁର ପିତୃବଧେ ହେଲେ । ଉଦ୍ୟତ ହୋଇ ସେ ଚଳିଲେ ॥
୧୩ ସେ ଭୌମେ ପ୍ରେଷିତ ଅଟନ୍ତି । ଆୟୁଧମାନ ଧରିଛନ୍ତି ॥
କ୍ରୋଧରେ ଉଲ୍ବଣ ହୋଇଣ । ଯେ ଚମୂପତି[3] ପୀଠନାମ ॥
ଯୁଦ୍ଧେ ଆଗରେ କରି ତାକୁ । ଚଳିଲେ ଲଭିଣ କୃଷ୍ଣଙ୍କୁ ॥
ଯେ ଶର ଖଡ୍‌ଗ ଗଦାମାନ । ଯେ ଶକ୍ତି ଋଷ୍ଟି ଶୂଳ ଆନ ॥

---

୧. ଶ୍ରବଣ । ୨. ବରୁଣ । ୩. ସେନାପତି ।

| | | | | |
|---|---|---|---|---|
| | ଏ ସବୁ ଆୟୁଧମାନଙ୍କୁ । | ପ୍ରୟୋଗ କଲେ ଅଜିତଙ୍କୁ | ।। | ୫୧ |
| ୧୪ | ଅମୋଘବୀର୍ଯ୍ୟ ଭଗବାନ । | ଦୈତ୍ୟଙ୍କ ଶସ୍ତ୍ରକୂଟମାନ | ।। | ୫୨ |
| | ନିଜ ସାୟକମାନଙ୍କରେ । | କାଟିଲେ ତିଳପ୍ରମାଣରେ | ।। | ୫୩ |
| | ଛିଡ଼ିଲେ ଯଉଁମାନଙ୍କର । | ମସ୍ତକ ଉରୁଏ ଆବର | ।। | ୫୪ |
| | ଭୁଜଚରଣବର୍ମମାନ । | ଯହିଁରେ ପୀଠ ମୁଖ୍ୟ ପୁଣ | ।। | ୫୫ |
| | ଏମନ୍ତ ଦାନବମାନଙ୍କୁ । | ନେଲେ ଯମର ସଦନକୁ | ।। | ୫୬ |
| ୧୫ | ଅଚ୍ୟୁତଚକ୍ରସାୟକରେ । | ଯେ ଅସ୍ତ ହେଲେ ଏ ରୂପରେ | ।। | ୫୭ |
| | ଏମନ୍ତ ନିଜ ସୈନ୍ୟମାନ । | ସେ ଭୌମ ଧରଣୀନନ୍ଦନ | ।। | ୫୮ |
| | ଦେଖି ତା' କ୍ରୋଧ ହୋଇ ଅତି । | ଯେ ଦାନଜଳ ସ୍ରବୁଛନ୍ତି | ।। | ୫୯ |
| | ସେ ସିନ୍ଧୁଜାତ ଗଜଙ୍କରେ । | ତାଙ୍କୁ ଆକ୍ରମିଲା ସେଠାରେ | ।। | ୬୦ |
| | ସୂର୍ଯ୍ୟଙ୍କ ଉପରେ ଯେସନ । | ବିଜୁଳିତୁଲେ[1] ଥାଇ ଘନ | ।। | ୬୧ |
| | ତେସନ ଗରୁଡ଼-ଉପରେ । | ଯେ ଛନ୍ତି ଭାର୍ଯ୍ୟାସହିତରେ | ।। | ୬୨ |
| | ଏମନ୍ତ ରୂପେ ସେ କୃଷ୍ଣଙ୍କୁ । | ସେ ଦୈତ୍ୟ ପୁଣ ଦେଖି ତାଙ୍କୁ | ।। | ୬୩ |
| | ଶତଘ୍ନୀ ନାମ ଅଟେ ଯାର । | ସେ ଶକ୍ତି ଫିଙ୍ଗିଲା ଆବର | ।। | ୬୪ |
| | ଯେ ସର୍ବଯୋଦ୍ଧାମାନେ ଥିଲେ । | ସେ ଏକାବେଳକେ ବିନ୍ଧିଲେ | ।। | ୬୫ |
| ୧୬ | ସେ ଗଦାଗ୍ରଜ ଭଗବାନ । | ସେହି କ୍ଷଣରେ ହେ ରାଜନ | ।। | ୬୬ |
| | ଯହିଁ ବିଚିତ୍ର ପକ୍ଷମାନ । | ସେ ତୀକ୍ଷ୍ଣ ଶରମାନଙ୍କେଣ | ।। | ୬୭ |
| | ଛିଡ଼ିଲେ ଯହିଁ ବାହୁମାନ । | ଉରୁ କନ୍ଧର ଦେହ ଆନ | ।। | ୬୮ |
| | ଅଶ୍ୱ କୁଞ୍ଜରମାନେ ପୁଣ । | ଯହିଁରେ ହୋଇଲେ ନିଧନ | ।। | ୬୯ |
| | ଏମନ୍ତରୂପେ ହେ ରାଜନ । | [2]କଲେ ନରକାସୁରସୈନ୍ୟ | ।। | ୭୦ |
| ୧୭ | ଯେବଣ ଶସ୍ତ୍ର-ଅସ୍ତ୍ରମାନ । | ଯୋଦ୍ଧାଏ କଲେ ନିୟୋଜନ | ।। | ୭୧ |
| | ହେ କୁରୂଦ୍‌ବହ ! ଭଗବାନ । | ଗୋଟିଏ ଗୋଟିକେ ତା' ପୁଣ | ।। | ୭୨ |
| | ତୀକ୍ଷଣ ତିନି ତିନି ଶରେ । | ଛେଦନ କଲେ ସେ କାଳରେ | ।। | ୭୩ |
| ୧୮ | ବେନିପକ୍ଷରେ ଗଜମାନ । | ପ୍ରହାରକଲେ ସେ ସୁପର୍ଣ୍ଣ[3] | ।। | ୭୪ |
| | ବଦନ-ପକ୍ଷ-ନଖଙ୍କରେ । | ଗରୁଡ଼ ମାରନ୍ତେ ଯୁଦ୍ଧରେ | ।। | ୭୫ |
| ୧୯ | ଆର୍ତ୍ତ ହୋଇଣ ସେ କୁଞ୍ଜରେ । | ପ୍ରବେଶ ହୋଇଲେ ପୁରରେ | ।। | ୭୬ |
| ୨୦ | ଏମନ୍ତ ଦେଖିଣ ସମର । | କଲା ସେ ନରକ ଅସୁର | ।। | ୭୭ |
| | ସେ ଗରୁଡ଼ରେ ନିଜ ସୈନ୍ୟ । | ପଳାନ୍ତେ ପୁଣ ତା' ଦେଖିଣ | ।। | ୭୮ |
| | ଗରୁଡ଼ଙ୍କୁ ସେ ଭୌମାସୁର । | ଶକ୍ତିରେ କଲାକ ପ୍ରହାର | ।। | ୭୯ |
| | ଯେବଣ ଶକ୍ତିରେ ସାକ୍ଷାତ । | ବଜ୍ର ହୁଅଇ ପ୍ରତିହତ | ।। | ୮୦ |
| | ଶକ୍ତିରେ ବିଦ୍ଧ ହୋଇ ପୁଣ । | କଂପିଲେ ନାହିଁ ସେ ସୁପର୍ଣ୍ଣ | ।। | ୮୧ |
| | ମାଳାରେ ହସ୍ତୀ ହତ ହୋଇ । | ଯେସନେ କଂପିତ ନୁହଇ | ।। | ୮୨ |

---
୧. ସହିତ ।	୨. ନରକାସୁରର ସୈନ୍ୟଙ୍କୁ ଏପରି କଲେ ।	୩. ଗରୁଡ଼ ।

| | | | | |
|---|---|---|---|---|
| ୨୧ | ବିତଥ[୧] ଉଦ୍ୟମ ହୁଅନ୍ତେ | କୃଷ୍ଣଙ୍କୁ ମାରିବା ନିମନ୍ତେ | ‖ | ୮୩ |
| | ଶୂଳକୁ ନରକ ଅସୁର | ଆଦାନ କଲା ସେ ସତ୍ୱର | ‖ | ୮୪ |
| | ସେ ଶୂଳ ନ ଫିଙ୍ଗୁ ପୂର୍ବରେ | ଚଢ଼ିଛି ଯେ ଗଜଉପରେ | ‖ | ୮୫ |
| | ସେ ନରକର ଶିର ହରି | ହରିଲେ ତୀକ୍ଷ୍ଣ ଚକ୍ରେ କରି | ‖ | ୮୬ |
| ୨୨ | ଯେ ଅଟେ କୁଣ୍ଡଳସହିତ | ଯେ ଚାରୁ କିରୀଟେ ଭୂଷିତ | ‖ | ୮୭ |
| | ଯେ ଅତି ଉଜ୍ଜ୍ୱଳ ଆବର | ଏମନ୍ତ ଅଟେ ଯଉଁ ଶିର | ‖ | ୮୮ |
| | ସେ ପୁଣି ପଡ଼ନ୍ତେ ପୃଥ୍ୱୀରେ | ଶୋଭା ପାଇଲା ସେ କାଳରେ | ‖ | ୮୯ |
| | ହା ହା ଶବଦ ସାଧୁବାଣୀ | ହୋଇଲା ଶ୍ରୀକୃଷ୍ଣଙ୍କୁ ପୁଣି | ‖ | ୯୦ |
| | ଯେ ଋଷି ସୁରେଶ୍ୱର ଥିଲେ | ପୁଷ୍ପ ବରଷି ସ୍ତୁତି କଲେ | ‖ | ୯୧ |
| ୨୩ | ତଦନ୍ତେ ଶ୍ରୀକୃଷ୍ଣଙ୍କୁ ଯାଇଁ | ଧରଣୀ ଉପଗତ ହୋଇ | ‖ | ୯୨ |
| | ଯେ ତପ୍ତ ସ୍ୱର୍ଣ୍ଣେ ରତ୍ନମାନ | ତେଣେ ଯେ ଅଟେ ଦୀପ୍ୟମାନ | ‖ | ୯୩ |
| | ବଇଜୟନ୍ତୀ ବନମାଳ | ସହିତେ ଦେଲେ ସେ କୁଣ୍ଡଳ | ‖ | ୯୪ |
| | ବରୁଣଛତ୍ର ମହାମଣି | ଏଥୁ ଅନ୍ତରେ ଦେଲେ ଆଣି | ‖ | ୯୫ |
| ୨୪ | ସେ ଦେବୀ ଏଥୁଁ ଅନନ୍ତରେ | ଅର୍ଚ୍ଚିତ ଯେ ଦେବଶ୍ରେଷ୍ଠରେ | ‖ | ୯୬ |
| | ସେ ବିଶ୍ୱେଶଙ୍କୁ ହେ ରାଜନ | ଯେ ବୁଦ୍ଧି ଭକ୍ତିରେ ପ୍ରବଣ | ‖ | ୯୭ |
| | ତେଣେ ପ୍ରାଞ୍ଜଳି[୨] ହୋଇ ଅତି | ପ୍ରଣତ ହୋଇ କଲେ ସ୍ତୁତି | ‖ | ୯୮ |

ଶ୍ରୀଭୂମିରୁବାଚ

| | | | | |
|---|---|---|---|---|
| ୨୫ | ହେ ଦେବଦେବଙ୍କ ଈଶ୍ୱର | ତୁମ୍ଭଙ୍କୁ ମୋର ନମସ୍କାର | ‖ | ୯୯ |
| | ଇଚ୍ଛାଏ ଭକ୍ତଲୋକଙ୍କର | ଗ୍ରହଣ କରୁ ତୁ ଶରୀର | ‖ | ୧୦୦ |
| | ହେ ଶଙ୍ଖଚକ୍ରଗଦାଧର | ହେ ପରମାତ୍ମା ନମସ୍କାର | ‖ | ୧୦୧ |
| ୨୬ | ପଙ୍କଜ ନାଭିରେ ଯାହାର | ତାଙ୍କୁ ମୋହର ନମସ୍କାର | ‖ | ୧୦୨ |
| | ଯା' ମାଳା ଅଟଇ ନଳିନ | ତାଙ୍କୁ ମୁଁ କରୁଛି ପ୍ରଣାମ | ‖ | ୧୦୩ |
| | ପଙ୍କଜପ୍ରାଏ ନେତ୍ର ଯାର | ତାଙ୍କୁ ମୋହର ନମସ୍କାର | ‖ | ୧୦୪ |
| | ପଙ୍କଜପ୍ରାଏ ଯା' ଚରଣ | ତାଙ୍କୁ ମୁଁ କରୁଛି ପ୍ରଣାମ | ‖ | ୧୦୫ |
| ୨୭ | ତୁମ୍ଭେ ଯେ ଅଟ ଭଗବାନ | ତୁମ୍ଭଙ୍କୁ କରୁଛି ପ୍ରଣାମ | ‖ | ୧୦୬ |
| | ଆଶ୍ରୟ ସର୍ବଭୂତଙ୍କର | ଯେ ବ୍ୟାପିଛନ୍ତି ସର୍ବଠାର | ‖ | ୧୦୭ |
| | ଯେ ସର୍ବକାର୍ଯ୍ୟୁଁ ପୂର୍ବେ ଛନ୍ତି | ଯେ ଆଦିବୀଜ ହିଁ ଅଟନ୍ତି | ‖ | ୧୦୮ |
| | ଯେ ତୁମ୍ଭେ ଅଟ ପୂର୍ଣ୍ଣ ଜ୍ଞାନ | ତୁମ୍ଭଙ୍କୁ କରୁଛି ପ୍ରଣାମ | ‖ | ୧୦୯ |
| ୨୮ | ତୁ ଅଜ ବିଶ୍ୱ କରୁ ଜାତ | ତୁ ବ୍ରହ୍ମ ତୋ' ଶକ୍ତି ଅନନ୍ତ | ‖ | ୧୧୦ |
| | ସମସ୍ତ ଭୂତଙ୍କର ଆତ୍ମା | ତୁ ପୁଣି ଅଟୁ ପରମାତ୍ମା | ‖ | ୧୧୧ |
| | ହେ ପରାବରାତ୍ମନ ମୋର | ତୁମ୍ଭଙ୍କୁ ହଉ ନମସ୍କାର | ‖ | ୧୧୨ |

୧. ବ୍ୟର୍ଥ। ୨. ବଦ୍ଧାଞ୍ଜଳି।

| | | | | |
|---|---|---|---|---|
| ୨୯ | ତମର ଧାରଣେହେଁ ପୁଣ | । ହେ ପ୍ରଭୁ ସଂବୃତ ନୋହିଣ | ॥ ୧୧୩ |
| | ହେ ଜଗତ୍‌ପତି ଜଗତର | । ପାଳନନିମିତ୍ତେ ଆବର | ॥ ୧୧୪ |
| | ପୁଣି ସର୍ଜନା କରିବାକୁ | । ସର୍କୁଏ ଉତ୍‌କଟ ରଜକୁ | ॥ ୧୧୫ |
| | ଯେ ଅବା କାଳ ଯେ ପ୍ରଧାନ | । ଯେ ବା ପୁରୁଷ ଅଟେ ଆନ | ॥ ୧୧୬ |
| | ଏ ଭିନ୍ନ ନୋହେ ତୁମ୍ଭଠାରୁ | । ତୁମ୍ଭେ ଅଲଗା ସର୍ବଠାରୁ | ॥ ୧୧୭ |
| ୩୦ | ମୁଁ ଜଳ ଜ୍ୟୋତି ଯେ ପବନ | । ଆକାଶ ମାତ୍ରା ଦେବମାନ | ॥ ୧୧୮ |
| | ଯେ ମନ ଇନ୍ଦ୍ରିୟେ ଆବର | । ଯେ ଅବା ମହା ଅହଂକାର | ॥ ୧୧୯ |
| | ହେ ଭଗବାନ ! ଏ ପ୍ରକାର | । ଏ ଯେ ଅଖିଳ ଚରାଚର | ॥ ୧୨୦ |
| | ତୁ ଯେ ଅଦ୍ୱିତୀୟ ତୋ’ ଠାଇଁ | । ଏ ନାହିଁ, ଭ୍ରମ ଏ ଅଟଇ | ॥ ୧୨୧ |
| ୩୧ | ଆହେ ପ୍ରପନ୍ନ-ଆର୍ତ୍ତିହର | । ଏ ପୁତ୍ର ଅଟେ ‘ନରକ’ର | ॥ ୧୨୨ |
| | ଏହାର ନାମ ଭଗଦତ୍ତ | । ଏ ହୋଇଅଛି ଭୟବନ୍ତ | ॥ ୧୨୩ |
| | ତୁମ୍ଭର ପାଦପଦ୍ମେ ପୁଣ | । ଏହାକୁ କଲି ମୁଁ ପ୍ରପନ୍ନ | ॥ ୧୨୪ |
| | ଯେ ନାଶେ ଅଖିଳ ପାପକୁ | । ସେ ତୁମ୍ଭ କରକମଳକୁ | ॥ ୧୨୫ |
| | ଦିଅ ଏହାର ମସ୍ତକରେ | । ଏହାକୁ ରଖ ସେ ହେତୁରେ | ॥ ୧୨୬ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୨ | କହନ୍ତି ଶୁକ ମହାମୁନି | । ଭକ୍ତିରେ ନମ୍ର ଯେ ଧରଣୀ | ॥ ୧୨୭ |
| | ତା’ ବଚନରେ ଏମନ୍ତେଣ | । ଅର୍ଚ୍ଚିତ[୧] ହୋଇ ଭଗବାନ | ॥ ୧୨୮ |
| | ଦେଇଣ ଅଭୟକୁ ତହିଁ | । ସର୍ବସମୃଦ୍ଧି ଅଛି ଯହିଁ | ॥ ୧୨୯ |
| | ସେ ଭୌମ ଅସୁର ଗୃହରେ | । ପ୍ରବେଶ ହେଲେ ସେ କାଳରେ | ॥ ୧୩୦ |
| ୩୩ | ସେ ଭୌମାସୁର ବିକ୍ରମରୁ | । ନୃପତିମାନଙ୍କର ଠାରୁ | ॥ ୧୩୧ |
| | ହରିଛି ଯେ ବିଖ୍ୟାତ ପୁଣ | । [୨]ଯେ ଷୋଳ ସହସ୍ର ହୋଇଣ | ॥ ୧୩୨ |
| | ତହିଁ ସେ [୩]ରାଜକନ୍ୟାମାନ | । ଶ୍ରୀହରି କଲେ ବିଲୋକନ | ॥ ୧୩୩ |
| ୩୪ | ସେ ନରଶ୍ରେଷ୍ଠ ହରି ତହିଁ | । ପ୍ରବେଶ ହୁଅନ୍ତେଣ ଯାଇଁ | ॥ ୧୩୪ |
| | ତାଙ୍କୁ ସେ ନାରୀଏ ଦେଖିଣ | । ବିଶେଷେ ମୋହିତ ହୋଇଣ | ॥ ୧୩୫ |
| | ଆମ୍ଭର ଏ ଅଭୀଷ୍ଟ କାନ୍ତ | । ଦଇବେ ହେଲେ ସଂପାଦିତ | ॥ ୧୩୬ |
| | ଏମନ୍ତ କରି ସେ କାଳରେ | । କୃଷ୍ଣଙ୍କୁ ବରିଲେ ମନରେ | ॥ ୧୩୭ |
| ୩୫ | ଏ ପତି ହୁଅନ୍ତୁ ଆମ୍ଭର | । ବିଧାତା କରୁ ତା’ ସ୍ୱୀକାର | ॥ ୧୩୮ |
| | ସମସ୍ତେ ଏମନ୍ତ ରୂପରେ | । ଜଣ ଜଣକେ କୃଷ୍ଣଠାରେ | ॥ ୧୩୯ |
| | ଅତ୍ୟନ୍ତ ଭାବେ ହେ ରାଜନ | । ଧଇଲେ ହୃଦୟକୁ ପୁଣ | ॥ ୧୪୦ |

୧. ଅର୍ଯିତ ।

୨. କନ୍ୟାପୁରେ ସ କନ୍ୟାନାଂ ଷୋଡ଼ଶାତୁଲବିକ୍ରମଃ ।
ଶତାଧିକାନି ଦଦୃଶେ ସହସ୍ରାଣି ମହାମତେ ॥ ଇତି ପରାଶରଃ ।

୩. ଦେବସିଦ୍ଧାସୁରାଦୀନାଂ ନୃପାଣାଂ ଚ ଜନାର୍ଦ୍ଦନ ।
ହୃତ୍ୱା ହି ସୋଽସୁରଃକନ୍ୟା ରୁରୋଧ ନିଜମନ୍ଦିରେ ॥

୩୬ ଅଟନ୍ତି ଯେ ଅତି ସୁନ୍ଦର । ବିରଜ ବସ୍ତ୍ର ଯାହାଙ୍କର ।। ୧୪୧
ନରଯାନରେ ସେ କନ୍ୟାଙ୍କୁ । ପଠିଆଇଲେ ଦ୍ୱାରକାକୁ ।। ୧୪୨
ଯେ [୧]ମହାକୋଷ ରଥମାନ । ଯେ ଅଶ୍ୱେ, ଯେ ବହୁତ ଧନ ।। ୧୪୩
ପୁଣି ଶ୍ରୀହରି ଏମାନଙ୍କୁ । ପେଷିଲେ ଦ୍ୱାରକାପୁରକୁ ।। ୧୪୪
୩୭ ଯେ ଐରାବତକୁଳେ ଜାତ । ଯା'ଙ୍କର ଅଟେ ଚାରି ଦନ୍ତ ।। ୧୪୫
ଶୀଘ୍ର ଯାହାଙ୍କ ଗତିମାନ । ପାଣ୍ଡୁର ଯାହାଙ୍କ ବରଣ ।। ୧୪୬
ଏମନ୍ତ ଚୌଷଠି ଗଜଙ୍କୁ । କୃଷ୍ଣ ପେଷିଲେ ଦ୍ୱାରକାକୁ ।। ୧୪୭
୩୮ ଶ୍ରୀକୃଷ୍ଣ ଅମରାବତୀକି । ଗମନ କରି ଅଦିତିଙ୍କି ।। ୧୪୮
ଦେଲେ ସେ ବେନି କୁଣ୍ଡଳକୁ । [୨]ପ୍ରିୟା ସହିତେ ସେ କୃଷ୍ଣଙ୍କୁ ।। ୧୪୯
ମହେନ୍ଦ୍ର-ଶଚୀ ବେନି ଜନ । କଲେ ଉତ୍ତମ ପୂଜାମାନ ।। ୧୫୦
୩୯ | ୪୦ ଭାର୍ଯ୍ୟା ବୋଲନ୍ତେ ଭଗବାନ । ପାରିଜାତକୁ ଉପାଡ଼ିଣ ।। ୧୫୧
ଆରୋହି ଗରୁଡ଼ଉପରେ । ଦେବଙ୍କୁ ଇନ୍ଦ୍ର ସହିତରେ ।। ୧୫୨
ଜିଣି କରିଣ ସେ ବୃକ୍ଷକୁ । ଆଣିଲେ ନିଜ ସଦନକୁ ।। ୧୫୩
ସତ୍ୟଭାମାର ଗୃହୋଦ୍ୟାନ । ଯେ ପୁଣି କରଇ ଶୋଭନ ।। ୧୫୪
ଯାହାର ଗନ୍ଧ ଆସବରେ । ଲମ୍ପଟ ହୋଇଣ ଭ୍ରମରେ ।। ୧୫୫
ସ୍ୱର୍ଗରୁ ଆଗମନ କଲେ । ସେ ବୃକ୍ଷ ତା' ପୁରେ ସ୍ଥାପିଲେ ।। ୧୫୬
୪୧ ଅର୍ଥକୁ କରନ୍ତି ସାଧନ । ଯେ ମହାପ୍ରଭୁ ଭଗବାନ ।। ୧୫୭
ତାହାଙ୍କୁ କିରୀଟକୋଟି[୩]ରେ । ନମ୍ର ହୋଇଣ ଚରଣରେ ।। ୧୫୮
ଯାଚଞ୍ଚା କଲା ପୁରନ୍ଦର । ଅର୍ଥ ହୁଅନ୍ତେ ସିଦ୍ଧ ତାର ।। ୧୫୯
ପୁଣି ଏ କୃଷ୍ଣ ସଂଗତେଣ । ବିଗ୍ରହ କଲା ଆଚରଣ ।। ୧୬୦
କ୍ରୋଧ ଧନିକଭାବ ଆର । ଅତ୍ୟନ୍ତ ଦେଖ ଦେବଙ୍କର ।। ୧୬୧

ଶ୍ରୀଶୁକ ଉବାଚ

୪୨ ଶୁକ କହନ୍ତି ହେ ରାଜନ । ଏଥୁ ଅନ୍ତରେ ଏବେ ଶୁଣ ।। ୧୬୨
ଦେଖ ଏ ଆଶ୍ଚର୍ଯ୍ୟକୁ ପୁଣ । ଏକା ମୁହୂର୍ତ୍ତେ ଭଗବାନ ।। ୧୬୩
ସେ ବନିତାଙ୍କୁ ନାନାପୁରେ । ବିଭା ହୋଇଲେ ଯେ ରୂପରେ ।। ୧୬୪
[୪]ତେତିକି ରୂପ ଧରି ତହିଁ । ସଂପୂର୍ଣ୍ଣ ହେଲେ ସର୍ବ ଠାଇଁ ।। ୧୬୫
୪୩ ସାମ୍ୟ ଅତିଶୟ ଅନ୍ୟର[୫] । ନିରସ୍ତ କଲେ ଯେ ମନ୍ଦିର[୬] ।। ୧୬୬
ସେ ଗୃହେ ସେ ବନିତାଙ୍କର । ଅତର୍କ୍ୟ ଅଟେ କର୍ମ ଯାର ।। ୧୬୭

---

୧. ମହାକୋଷ = ଧନଭଣ୍ଡାର । ୨. ସତ୍ୟଭାମା । ୩. ଅଗ୍ରଭାଗ ।
୪. ଏଥିରୁ ସୂଚିତ ହେଉଛି ଯେ ପ୍ରତିଗୃହରେ ଏକାବେଳକେ ଦେବକୀ ଆଦି ବନ୍ଧୁଜନମାନଙ୍କର ସମାଗମ ହୋଇଥିଲା । (ସ୍ୱାମୀ)
୫. ଅନ୍ୟମାନଙ୍କର । ୬. ମନ୍ଦିରଗୁଡ଼ିକ ।

| | | | |
|---|---|---|---|
| | ସେ ହରି ¹ଅପାୟବିହୀନ । | ହୋଇ ବସନ୍ତେ ପ୍ରତିଦିନ | ॥ ୧୬୮ |
| | ଯେ ଅଟେ ନିଜ କାମମାନ । | ତହିଁରେ ସଂପ୍ଳୁତ² ହୋଇଣ | ॥ ୧୬୯ |
| | ଯେ ସ୍ତ୍ରୀଏ ଅଂଶ କମଳାର । | ରମିଲେ ସଙ୍ଗେ ତାହାଙ୍କର | ॥ ୧୭୦ |
| | ଇତର ଜନ ଯେ ରୂପରେ । | ଗୃହସ୍ଥଧର୍ମକୁ ଆଚରେ | ॥ ୧୭୧ |
| ୪୪ | ବ୍ରହ୍ମାଦିମାନେହେଁ ଯାହାର । | ମାର୍ଗକୁ ନ କଲେ ଗୋଚର | ॥ ୧୭୨ |
| | ସେ ରମାପତିଙ୍କି ଏମନ୍ତେ । | ପତି କରିଣ ସେ ଯୋଷିତେ | ॥ ୧୭୩ |
| | ଲଭିଣ ବୃଦ୍ଧିଭାବେ ପୁଣ । | ଯେ ଅନୁରାଗ ହାସମାନ | ॥ ୧୭୪ |
| | ଯେ ତା' ସହିତ ବିଲୋକନ । | ତତ୍‌ପୂର୍ବ ଯେ ନବସଙ୍ଗମ | ॥ ୧୭୫ |
| | ତଦ୍‌ଗତ ଯେବଣ ଜଳ୍ପନ । | ତହିଁ ଯେ ଅଟନ୍ତି ଜନମ | ॥ ୧୭୬ |
| | ସେ ଲଜ୍ଜାମାନଙ୍କୁ ନିତ୍ୟରେ । | ଭଜିଲେ ଅତି ହରଷରେ | ॥ ୧୭୭ |
| ୪୫ | ଯେ ପ୍ରତ୍ୟୁଦ୍‌ଗମନ³ ଆସନ । | ପୂଜନ ପାଦପ୍ରକ୍ଷାଳନ | ॥ ୧୭୮ |
| | ତାମ୍ବୂଳ ପାଦସଂବାହନ । | ବୀଜନ⁴ ଗନ୍ଧମାଲ୍ୟେ ଆନ | ॥ ୧୭୯ |
| | କେଶପ୍ରସାଧନ ଶୟନ । | ଯେ ସ୍ନାନ ଉପହାରମାନ | ॥ ୧୮୦ |
| | ଏମାନଙ୍କରେ ସେ ସ୍ତ୍ରୀମାନେ । | ଶହେ ଥିଲେହେଁ ଦାସୀଜନେ | ॥ ୧୮୧ |
| | ସେ ମହାପ୍ରଭୁର ଆପଣ । | ବିଧାନ କଲେ ଦାସୀପଣ | ॥ ୧୮୨ |
| | ଷୋଳ ସହସ୍ର ରାଜନାରୀ । | ବିଭା ହେଲେ ଯେ ନରହରି | ॥ ୧୮୩ |
| | ତାଙ୍କର ଦାସ ଦାସପଣ । | ଚିନ୍ତି ଦୀନବନ୍ଧୁ ବ୍ରାହ୍ମଣ | ॥ ୧୮୪ |
| | ଦଶମସ୍କନ୍ଧ ଭାଷାଗୀତେ । | ଭଣିଲା ସାଧୁଜନହିତେ | ॥ ୧୮୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ପାରିଜାତହରଣ-ନରକବଧୋ
ନାମ ଊନଷଷ୍ଟିତମୋଽଧ୍ୟାୟଃ ॥

## ଷଷ୍ଟିତମ ଅଧ୍ୟାୟ

ଅଥ ଷଷ୍ଟିତମେ କୃଷ୍ଣଃ ପରିହାସେନ ରୁକ୍ମିଣୀମ୍ ।
କୋପୟିତ୍ୱା ତତଃ ପ୍ରେମକଳହେ ତାମସାନ୍ତ୍ୱୟତ୍ ॥ ୧
ରାମାରାମଜନାନନ୍ଦମହୋଦୟବିଡ଼ମ୍ବନୈଃ ।
ରୁକ୍ମିଣ୍ୟା ପ୍ରେମକଳହଚ୍ଛଦ୍ମନୈଶ୍ୱର୍ଯ୍ୟମୀର୍ଯ୍ୟତେ ॥ ୨

ଶ୍ରୀବାଦରାୟଣିରୁବାଚ

| | | | |
|---|---|---|---|
| ୧ | କହନ୍ତି ଶୁକ ମହାମୁନି । | କେହୁଣି ଦିନରେ ରୁକ୍ମିଣୀ | ॥ ୧ |
| | ଜଗତଗୁରୁ ଯେ ଅଟନ୍ତି । | ନିଜ ପଲଙ୍କେ ସୁଖେ ଛନ୍ତି | ॥ ୨ |

୧. ବିଘ୍ନ । ୨. ପରିପୂର୍ଣ୍ଣ । ୩. ପାଛୋଟି ଆଣିବା । ୪. ବିଞ୍ଚଣା, ପଙ୍ଖା ।

ଏମନ୍ତ ପତିଙ୍କି ସେଠାରେ । ସଖୀଜନଙ୍କ ସଙ୍ଗତରେ ॥ ୩
ବ୍ୟଜନ ଘେନି ହେ ରାଜନ । କଲେ ସେ ଉତ୍ତମ ସେବନ ॥ ୪
୨ ଯଉଁ ଈଶ୍ୱର ଏ ବିଶ୍ୱକୁ । ଲୀଳାରେ କରେ ସର୍ଜନାକୁ ॥ ୫
ପାଳଇ, କରଇ ସଂହାର । ସେ ରକ୍ଷାଅର୍ଥେ ସ୍ୱଧର୍ମର ॥ ୬
ଜନମଶୂନ୍ୟ ସେ ଅଚ୍ୟୁତ । ଯଦୁକୁଳରେ ହେଲେ ଜାତ ॥ ୭
୩ ଶୋଭିତ ମୁକ୍ତାମାଳାମାନ । ଯହିଁ ଅଟନ୍ତି ଲମ୍ୱମାନ ॥ ୮
ଏମନ୍ତ ବିତାନରେ ପୁଣ । ଅଟନ୍ତି ଯେ ମଣିଭୂଷଣ ॥ ୯
ସେ ମହାଦୀପମାନଙ୍କରେ । ଶୋଭିତ ସେ ଅନ୍ତର୍ଗୃହରେ ॥ ୧୦
୪| ମଲ୍ଲିକାମାଳମାନଙ୍କରେ । ଶୋଭିତ ପୁଣି ଯେ ପୁଷ୍ପରେ[1] ॥ ୧୧
୫| ସୁଗନ୍ଧି ହେବାରୁ ସଂତତ । ଭ୍ରମର କୁଳରେ ନାଦିତ ॥
ଗବାକ୍ଷରନ୍ଧ୍ରେ ପଶୁଛନ୍ତି । [2]ଅରୁଣବର୍ଣ୍ଣ ଯେ ଅଟନ୍ତି ॥ ୧୨
ସେ କିରଣରେ ଚନ୍ଦ୍ରମାର । ଯେ ଗୃହ ଅଟଇ ସୁନ୍ଦର ॥ ୧୩
ଯେ ପାରିଜାତବନମାନ । ତେଣେ ଆମୋଦ ଯେ ପବନ ॥ ୧୪
ଉଦ୍ୟାନ କରଇ ଶୋଭିତ । ତେଣେ ଯେ ଗୃହ ବିରାଜିତ ॥ ୧୫
ଗବାକ୍ଷରନ୍ଧ୍ରୁଁ ବିନିର୍ଗତ । ଯେ ହେଉଛନ୍ତି ଅବିରତ ॥ ୧୬
ଅଗୁରୁଜାତ ସେ ଧୂପରେ । ହେ ନୃପ ! ଶୋଭିତ ସେ ପୁରେ ॥ ୧୭
୬ ଯେ ଦୁଗ୍ଧଫେନର ସମାନ । ଉତ୍ତମ ବସନେ ଶୋଭନ ॥ ୧୮
ଏମନ୍ତ ଶୁଭ୍ର ପଲଙ୍କରେ । ଯେ ବସିଅଛନ୍ତି ସୁଖରେ ॥ ୧୯
ଜଗତ-ଈଶ୍ୱର ଯେ ପତି । ତାହାଙ୍କୁ ସେବିଲେ ସେ ସତୀ ॥ ୨୦
୭ ରତ୍ନନିର୍ମିତ ଦଣ୍ଡ ଯାର । ଏମନ୍ତ ଯେବଣ ଚାମର ॥ ୨୧
ତାହାକୁ ସଖୀକରୁ ଆଣି । ସେ ବାଳବ୍ୟଜନେ ରୁକ୍ମିଣୀ ॥ ୨୨
ବିଞ୍ଚନ୍ତେ ତହିଁ ଈଶ୍ୱରଙ୍କୁ । କଲେ ସେ ଉତ୍ତମ ସେବାକୁ ॥ ୨୩
୮ ମୁଦ୍ରିକା ବଳୟ ବ୍ୟଜନ । ଯା' ଅଗ୍ରହସ୍ତେ ଶୋଭମାନ ॥ ୨୪
କୃଷ୍ଣସମୀପେ ସେ ରୁକ୍ମିଣୀ । ମଣିନୂପୁରେ କରି ଧ୍ୱନି ॥ ୨୫
ସେ ବେନି ମଣିନୂପୁରରେ । ଶୋଭା ପାଇଲେ ଅତ୍ୟନ୍ତରେ ॥ ୨୬
ବସ୍ତ୍ରାନ୍ତେ ଗୂଢ଼ ଯଉଁ ସ୍ତନ । ଯେ ତା' କୁଙ୍କୁମେ ଶୋଣବର୍ଣ୍ଣ[3] ॥ ୨୭
ସେ ହାରକାନ୍ତିମାନଙ୍କରେ । ଯା ଧରିଛନ୍ତି ନିତମ୍ୱରେ ॥ ୨୮
ପୁଣି ସେ ଅମୂଲ୍ୟ କାଞ୍ଚୀ[4]ରେ । ଶୋଭା ପାଇଲେ ସେ କାଳରେ ॥ ୨୯
୯ ଯାହାର ନାହିଁ ଅନ୍ୟ ଗତି । ଯେ ପୁଣି ଅତି ରୂପବତୀ ॥ ୩୦
ଧରନ୍ତେ ନରଦେହ ହରି । ତାଙ୍କ ରୂପକୁ ଅନୁସରି ॥ ୩୧

୧. ଧୂପରେ । ୨. ଅମଳବର୍ଣ୍ଣ । ୩. ଶୋଣବର୍ଣ୍ଣ = ରକ୍ତବର୍ଣ୍ଣ । ୪. ଅଣ୍ଟାସୂତା ।

| | | | | |
|---|---|---|---|---|
| | [1]ଲୀଳାରେ ରୂପ ଅଟେ ଯାର | । ଅଳକେ କୁଣ୍ଡଳେ ଆବର | ।। | ୩୨ |
| | ପଦକେ ଅଳଂକୃତ ପୁଣ | । ହୋଇଛି ଯେ କଣ୍ଠ ବଦନ | ।। | ୩୩ |
| | ତେଣେ ହେଉଛି ଉଲ୍ଲସିତ | । ଯାହାର ସୁସ୍ମିତ-ଅମୃତ | ।। | ୩୪ |
| | ସେ ରୁକ୍ମିଣୀଙ୍କି ଭଗବାନ | । କହିଲେ ଏମନ୍ତ ବଚନ | ।। | ୩୫ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧୦ | ଲୋକପାଳଙ୍କ ପ୍ରାଏ ଅତି | । ଯଉଁମାନଙ୍କର ସଂପତ୍ତି | ।। | ୩୬ |
| | ମହାପ୍ରଭାବ ଯାହାଙ୍କର | । ଶ୍ରୀମନ୍ତ ଅଟନ୍ତି ଆବର | ।। | ୩୭ |
| | ରୂପ-ଔଦାର୍ଯ୍ୟ-ବଳେ ନିତି | । ଯେ ପୁଣ ଉର୍ଜିତ ଅଟନ୍ତି | ।। | ୩୮ |
| | ହେ ରାଜପୁତ୍ରି ! ଏ ରାଜନେ | । ତୋତେ ବାଞ୍ଛିଲେ ପୂର୍ବଦିନେ | ।। | ୩୯ |
| ୧୧ | କନ୍ଦର୍ପେ ଦୁର୍ମଦ ଅଟନ୍ତି | । ଶିଶୁପାଳାଦି ନରପତି | ।। | ୪୦ |
| | ସେ ଅର୍ଥୀ ହୋଇ ମିଳିଥିଲେ | । ପିତା ଭ୍ରାତାଏ ତୋତେ ଦେଲେ | ।। | ୪୧ |
| | ତାହାଙ୍କୁ ଛାଡ଼ି କରି ପୁଣି | । କଉଁ କାରଣୁଁ ହେ ରୁକ୍ମିଣୀ | ।। | ୪୨ |
| | ତୋର ସମାନ ମୁଁ ନୁହଇ | । ଆମ୍ଭଙ୍କୁ ବରିଲ କିମ୍ପାଇଁ | ।। | ୪୩ |
| ୧୨ | ସେ ରାଜାମାନଙ୍କର ଠାରୁ | । ଅତ୍ୟନ୍ତ ଭୟ ଆମ୍ଭେ କରୁ | ।। | ୪୪ |
| | ଏ ସମୁଦ୍ରକୁ ଆମ୍ଭେ ପୁଣ | । ହେ ସୁଭ୍ରୁ ! ପଶିଛୁ ଶରଣ | ।। | ୪୫ |
| | ସେ ବଳବନ୍ତଙ୍କ ସଙ୍ଗତେ | । ଆମ୍ଭେ କରିଛୁଁ ଦ୍ୱେଷ ନିତ୍ୟେ | ।। | ୪୬ |
| | ଯେ ରାଜାମାନଙ୍କ ଆସନ | । ପ୍ରାୟଶଃ ଛାଡ଼ିଛୁଁ ସେମାନ | ।। | ୪୭ |
| ୧୩ | ଅବ୍ୟକ୍ତ ମାର୍ଗ ଯାହାଙ୍କର | । ବଶ ନୁହନ୍ତି ନାରୀଙ୍କର | ।। | ୪୮ |
| | ଏମନ୍ତ ଯେ ପୁରୁଷମାନେ | । ତାଙ୍କ ମାର୍ଗକୁ ନାରୀଜନେ | ।। | ୪୯ |
| | ହେ ସୁଭ୍ରୁ ! ଯେ ଅନୁସରନ୍ତି | । ପ୍ରାୟଶଃ ଶୀର୍ଣ୍ଣ ସେ ହୁଅନ୍ତି | ।। | ୫୦ |
| ୧୪ | ଆମ୍ଭେ ଯେ ଅଟୁଁ ଅକିଂଚନ | । ଯେ ପୁଣ ଅକିଂଚନ-ଜନ | ।। | ୫୧ |
| | ମୁଁ ପୁଣ ପୁଣ ତାହାଙ୍କର | । ଅତ୍ୟନ୍ତ ପ୍ରିୟ ନିରନ୍ତର | ।। | ୫୨ |
| | ହେ ସୁମଧ୍ୟମା ! ଏଣୁ ପୁଣ | । ଯେ ବା ଉତ୍ତମ ଧନୀ ଜନ | ।। | ୫୩ |
| | ପ୍ରାୟଶଃ ସେମାନେ ହିଁ ମୋତେ | । ଭଜନ୍ତି ନାହିଁ କଦାଚିତେ | ।। | ୫୪ |
| ୧୫ | ଯେ ଦ୍ରବ୍ୟମାନେ ଯେ ବା ଜନ୍ମ | । ସଂପତ୍ତି ଜାତି ରୂପ ମାନ | ।। | ୫୫ |
| | ଏ ଯଉଁ ବେନି ଜନଙ୍କର | । ସମାନ ଅଟେ ପରସ୍ପର | ।। | ୫୬ |
| | ସେ ଦୁହିଁଙ୍କର ମିତ୍ରପଣ | । ବିବାହଯୋଗ୍ୟ ଅଟେ ଜାଣ | ।। | ୫୭ |
| | ଉତ୍ତମ ଅଧମ ଯେ ଦୁଇ | । ତାଙ୍କର କାହିଁ ଏ ନୁହଇ | ।। | ୫୮ |

---

୧. ଦେବତ୍ୱେ ଦେବଦେହେୟଂ ମନୁଷ୍ୟତ୍ୱେ ଚ ମାନୁଷୀ ।
ବିଷ୍ଣୋର୍ଦେହାନୁରୂପାଂ ବୈ କରୋତ୍ୟେଷାତ୍ମନସ୍ତନୁମ୍ ।। ଇତି ପରାଶରଃ
ଅର୍ଥାତ୍ ଶ୍ରୀକୃଷ୍ଣ ଦେବଦେହ ଧରିଲେ ରୁକ୍ମିଣୀ ଦେବୀଦେହ ଧରନ୍ତି, ମନୁଷ୍ୟଦେହ ଧରିଲେ ମନୁଷ୍ୟଦେହ ଧରନ୍ତି ଏବଂ ବିଷ୍ଣୁଦେହ ଧରିଲେ ଲକ୍ଷ୍ମୀଦେହ ଧରନ୍ତି ।

୧୬ ହେ ବଇଦର୍ଭି ! ଏ ତୁମ୍ଭର । ଅଳପ ଅଟଇ ବିଚାର ॥ ୫୯
ଏମନ୍ତ ନ ଜାଣିଲ ତୁମ୍ଭେ । ଗୁଣମାନଙ୍କେ ହୀନ ଆମ୍ଭେ ॥ ୬୦
ଆମ୍ଭଙ୍କୁ ଯାହା ତୁ ନିର୍ଭରେ । ବରଣ କଲୁ ସେ କାଳରେ ॥ ୬୧
ମୂଢ଼ ଭାବରୁ ଏ ସଂସାରେ । ଶ୍ଳାଘିତ ହେଲୁଁ ଭିକ୍ଷୁଙ୍କରେ ॥ ୬୨
୧୭ ଏଥୁ ଅନ୍ତରେ ଏବେ ତୁହି । ଆପଣା ଅନୁରୂପ ହୋଇ ॥ ୬୩
କ୍ଷତ୍ରିୟଶ୍ରେଷ୍ଠ ଜଣକୁ ହିଁ । ବରଣ କର ବେଗେ ଯାଇଁ ॥ ୬୪
ଯେବଣ ବରରେ ତୁ ପୁଣ । ଏ ଲୋକେ ସେ ଲୋକେ ଯାଇଣ ॥ ୬୫
ଉତ୍ତମ ସତ୍ୟ ଯେ ଆଶିଷ । ତାହାକୁ ଲଭିବୁ ଅବଶ୍ୟ ॥ ୬୬
୧୮ ଯେ ଶିଶୁପାଳ ଶାଲ୍ୱ ଆନ । ଯେ ଜରାସନ୍ଧ ରାଜା ପୁଣ ॥ ୬୭
ଦନ୍ତବକ୍ରାଦି ନୃପେ ଯେତେ । ଏ ଦ୍ୱେଷ କରନ୍ତି ଗୋ ମୋତେ ॥ ୬୮
ଯେ ରୁକ୍ମୀ ତୋର ଜ୍ୟେଷ୍ଠ ଭାଇ । ଆଗୋ ରୁକ୍ମିଣୀ ପୁଣ ସେହି ॥ ୬୯
୧୯ ଅସାଧୁ ଲୋକମାନଙ୍କର । ତେଜ ମୁଁ କରଇ ସଂହାର ॥ ୭୦
ଯେ ନିଜ ପରାକ୍ରମେ ଛନ୍ତି । ତହିଁରେ ଅନ୍ଧ ଯେ ଅଟନ୍ତି ॥ ୭୧
ଅତ୍ୟନ୍ତ ଗର୍ବୀ ଯେ ଆବର । ସେହି ନୃପତିମାନଙ୍କର ॥ ୭୨
ଗର୍ବ ନାଶିବା ଅର୍ଥେ ମୁହିଁ । ହେ ତନ୍ୱି ! ତୋତେ ଆଣିଲଇଁ ॥ ୭୩
୨୦ ସ୍ତିରୀ-ଅପତ୍ୟ-ଅର୍ଥ ଯେହି । ଆମ୍ଭେ କାମୁକ ନୋହୁଁ ତହିଁ ॥ ୭୪
ନିଶ୍ଚୟେ ଅଟୁ ଉଦାସୀନ । ଆପଣା ପ୍ରାପ୍ତିନିମିତ୍ତେଣ ॥ ୭୫
ପ୍ରଦୀପାଦିଙ୍କ ପ୍ରାୟେ ହୋଇ । କ୍ରିୟାରହିତ ମୁଁ ଅଟଇ ॥ ୭୬
ଗୃହରେ ଦେହରେ ମୁଁ ପୂର୍ଣ୍ଣ । ହୋଇ ରହିଛି ବର୍ତ୍ତମାନ ॥ ୭୭

ଶ୍ରୀଶୁକ ଉବାଚ

୨୧ କହନ୍ତି ବ୍ୟାସଙ୍କ ନନ୍ଦନ । ଐକ୍ୟଭାବରୁ ହେ ରାଜନ ॥ ୭୮
କୃଷ୍ଣର ଅତି ପ୍ରିୟ ମୁହିଁ । ଏମନ୍ତ ମଣିଛନ୍ତି ଯେହି ॥ ୭୯
ସେ ରୁକ୍ମିଣୀକି ନରହରି । ଏତେକ ମାତ୍ର କହି କରି ॥ ୮୦
ତାଙ୍କ ଦର୍ପକୁ ବିନାଶନ । କରନ୍ତେ ହୋଇଲେ ମଉନ ॥ ୮୧
୨୨ ତ୍ରିଲୋକପ୍ରଭୁଙ୍କର ପତି । ଆପଣା ପ୍ରିୟ ଯେ ଅଟନ୍ତି ॥ ୮୨
ସେ ଶ୍ରୀକୃଷ୍ଣର ଏ ରୂପରେ । ଯା' ଶୁଣି ନ ଥିଲେ ପୂର୍ବରେ ॥ ୮୩
ଶୁଣି ସେ ଅପ୍ରିୟ ବଚନ । ଭୟ ହୁଅନ୍ତେ ଉତପନ୍ନ ॥ ୮୪
କଂପ ହୁଅନ୍ତେ ହୃଦେ ଜାତ । ଯେ ଚିନ୍ତା ଅଟଇ ଦୁରନ୍ତ ॥ ୮୫
ତହିଁକି କଲେ ସେ ଗମନ । ସେ କାଳେ କରନ୍ତେ ରୋଦନ ॥ ୮୬
୨୩ ନଖମାନଙ୍କେ ଯାର ଅତି । ଅରୁଣବର୍ଣ୍ଣ ଦିଶେ କାନ୍ତି ॥ ୮୭
ଏମନ୍ତ କୋମଳ ପଦରେ । ଭୂମିକି ଲେଖନ୍ତେ ନିର୍ଭରେ ॥ ୮୮
କୁଙ୍କୁମେ ସୁସଂଯୁତ ହୋଇ । ଯେ ବେନି ସ୍ତନେ ଛନ୍ତି ରହି ॥ ୮୯
ତାହାଙ୍କୁ ଅଞ୍ଜନମିଶ୍ରିତ । ଲୋତକେ କରନ୍ତେ ସିଞ୍ଚିତ ॥ ୯୦

| | | | | |
|---|---|---|---|---|
| | ତଳକୁ ନୁଆଁଇ ବଦନ | ଅତି ଦୁଃଖରୁ ହେ ରାଜନ | ।। | ୯୧ |
| | କିଛି ହିଁ ବଚନ ନ କହି | ରୁକ୍ମିଣୀ ରହିଲେ ସେଠାଇ | ।। | ୯୨ |
| ୨୪ | ଯେ ଦୁଃଖ ଭୟ ଶୋକ ଅତି | ତେଣେ ବିନଷ୍ଟ ଯାହା' ମତି | ।। | ୯୩ |
| | ସେ ରୁକ୍ମିଣୀର ଯେ କଙ୍କଣ | ଶ୍ଳଥ ହୋଇଲେ ଯହୁଁ ପୁଣ | ।। | ୯୪ |
| | ସେ ହସ୍ତୁଁ ପଡ଼ିଲା ଚାମର | ଅବଶ ବୁଦ୍ଧି ଅଟେ ଯାର | ।। | ୯୫ |
| | ସେ ଦେହ ପଡ଼ିଲା ତତ୍‌କାଳ | ଆବର ଯେତେକ କୁନ୍ତଳ | ।। | ୯୬ |
| | ବିକ୍ଷିପ୍ତ କରିଣ ତାହାଙ୍କୁ | ରୁକ୍ମିଣୀ ଲଭିଲେ ମୋହକୁ | ।। | ୯୭ |
| | ଆହତ ହୋଇଣ ପବନେ | କଦଳୀ ବୃକ୍ଷ ପଡ଼େ ଯେହ୍ନେ | ।। | ୯୮ |
| ୨୫ | ଅତ୍ୟନ୍ତ ପରିହାସବାଣୀ | ଯେ ଜାଣି ନ ପାରିଲେ ପୁଣି | ।। | ୯୯ |
| | ପ୍ରେମବନ୍ଧକୁ ସେ ପ୍ରିୟାର | ସେ ରୂପେ ଦେଖି ଦାମୋଦର | ।। | ୧୦୦ |
| | କରୁଣାବନ୍ତ ହୋଇ ଅତି | କରୁଣା କଲେ ସେ ଝଟିତି | ।। | ୧୦୧ |
| ୨୬ | ସେ ପ୍ରଭୁ ଚତୁର୍ଭୁଜ ହୋଇ | ପଲଙ୍କୁଁ ଶୀଘ୍ରରେ ଓହ୍ଲାଇ | ।। | ୧୦୨ |
| | ସେ ରୁକ୍ମିଣୀଙ୍କି ଉଠାଇଲେ | କେଶମାନଙ୍କୁ ବାନ୍ଧି ଦେଲେ | ।। | ୧୦୩ |
| | ପଦ୍ମର ପ୍ରାଏ ମନୋହର | ଯେବଣ ହସ୍ତ ଶ୍ରୀକୃଷ୍ଣର | ।। | ୧୦୪ |
| | ସେ କରେ କଲେ ସଂମାର୍ଜନ | ସେ ରୁକ୍ମିଣୀର ଯେ ବଦନ | ।। | ୧୦୫ |
| ୨୭ | ଲୋତକକଳାରେ ସଂକୁଳ | ହୋଇଛି ଯା' ନେତ୍ରଯୁଗଳ | ।। | ୧୦୬ |
| | ଶୋକଜଳରେ ହତ ହୋଇ | ଅଛି ଯେବଣ କୁଚ ଦୁଇ | ।। | ୧୦୭ |
| | ତାହାଙ୍କୁ କରି ସଂମାର୍ଜନ | ହେ ନୃପ ! ପ୍ରଭୁ ଭଗବାନ | ।। | ୧୦୮ |
| | ଅନ୍ୟଲୋକରେ ଯାହାଙ୍କର | ବିଷୟ ନାହିଁଟି ଆବର | ।। | ୧୦୯ |
| | ସେ ସତୀ ରୁକ୍ମିଣୀଙ୍କି ତହିଁ | ଭୁଜେ ଭିଡ଼ିଲେ ତୋଷ ହୋଇ | ।। | ୧୧୦ |
| ୨୮ | ହାସ୍ୟପ୍ରୌଢ଼ିରେ ହିଁ ଅତ୍ୟନ୍ତ | ଭ୍ରମ ହୋଇଲା ଯାଙ୍କ ଚିତ୍ତ | ।। | ୧୧୧ |
| | ତହିଁକି ଅଯୋଗ୍ୟ ଅଟନ୍ତି | ଆବର ଦୀନ ହୋଇଛନ୍ତି | ।। | ୧୧୨ |
| | ସେ ରୁକ୍ମିଣୀଙ୍କି ହେ ରାଜନ | ସାଧୁଙ୍କ ଗତି ଭଗବାନ | ।। | ୧୧୩ |
| | ସାନ୍ତ୍ୱନା କରି ସେ ଜାଣନ୍ତି | କୃପାରେ କଲେ ତାଙ୍କୁ ଶାନ୍ତି | ।। | ୧୧୪ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୨୯ | ସେ ରୁକ୍ମିଣୀଙ୍କି ଭଗବାନ | କହୁଅଛନ୍ତି ଏ ବଚନ | ।। | ୧୧୫ |
| | ଆଗୋ ବୈଦର୍ଭି ! ତୁମ୍ଭେ ମୋତେ | କ୍ରୋଧକୁ ନ କର ଗୋ ଚିତ୍ତେ | ।। | ୧୧୬ |
| | ମୋ'ଠାରେ ପରାୟଣ ତୁହି | ତୁମ୍ଭଙ୍କୁ ଜାଣିଅଛି ମୁହିଁ | ।। | ୧୧୭ |
| | ଆଗୋ ସୁନ୍ଦରି ! ତୁମ୍ଭ ବାଣୀ | ଶୁଣିମା ଅର୍ଥରେ ମୁଁ ପୁଣି | ।। | ୧୧୮ |
| | ପରିହାସରେ ଏ ବଚନ | ଏ ରୂପେ କଲି ମୁଁ ରଚନ | ।। | ୧୧୯ |
| ୩୦ | ପ୍ରଣୟକୋପରେ ଅଧର | ସ୍ଫୁରୁଛି ଯହିଁ ନିରନ୍ତର | ।। | ୧୨୦ |
| | କଟାକ୍ଷଙ୍କର ଆକ୍ଷେପରେ | ଅରୁଣ ଅପାଙ୍ଗ ଯହିଁରେ | ।। | ୧୨୧ |

| | | | |
|---|---|---|---|
| | ଅତି ସୁନ୍ଦର ହୋଇ ଯହିଁ | ଭ୍ରୂକୁଟୀତଟ ଶୋଭା ପାଇ | ॥ ୧୨୨ |
| | ଏମନ୍ତ ଯେ ତୁମ୍ଭ ବଦନ | ତା' କରିବାକୁ ବିଲୋକନ | ॥ ୧୨୩ |
| ୩୧ | ହେ ଭୀରୁ ! ନର୍ମମାନଙ୍କରେ[୧] | ରାତ୍ରିକି ପ୍ରିୟାସଙ୍ଗତରେ | ॥ ୧୨୪ |
| | ଆଗୋ ଭାମିନି ! ଯା' ନିଅନ୍ତି | ସେ ଗୃହୀ ଲୋକଙ୍କର ଅତି | ॥ ୧୨୫ |
| | ପରମ ଲାଭଟି ଗୋ ଏହି | ଗୃହମାନଙ୍କରେ ଅଟଇ | ॥ ୧୨୬ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୨ | ଶୁକ କହନ୍ତି ହେ ରାଜନ | ସେ ପରିହାସବାଣୀମାନ | ॥ ୧୨୭ |
| | ରୁକ୍ମିଣୀ ଜାଣି ଏ ରୂପରେ | ସାନ୍ତ୍ୱନା ଲଭିଲେ କୃଷ୍ଣରେ | ॥ ୧୨୮ |
| | ସେ ପ୍ରିୟତ୍ୟାଗରୁ ଯେ ଜାତ | ସେ ଭୟ ବେଗେ କଲେ ତ୍ୟକ୍ତ | ॥ ୧୨୯ |
| ୩୩ | ସଲଜ୍ଜ ହାସ ହେ ରାଜନ ! | ଯେ ଅଟେ ଅତ୍ୟନ୍ତ ଶୋଭନ | ॥ ୧୩୦ |
| | ସେ ସ୍ନିଗ୍ଧ କଟାକ୍ଷେ ରୁକ୍ମିଣୀ | କୃଷ୍ଣମୁଖକୁ ଚାହିଁ ପୁଣି | ॥ ୧୩୧ |
| | ପୁରୁଷଶ୍ରେଷ୍ଠ ଯେ ଅଚ୍ୟୁତ | ତାହାଙ୍କୁ କହିଲେ ଏମନ୍ତ | ॥ ୧୩୨ |

[୨]ଶ୍ରୀରୁକ୍ମିଣୀ ଉବାଚ

| | | | |
|---|---|---|---|
| ୩୪ | କୃଷ୍ଣଙ୍କୁ ଏ ରୂପରେ ବାଣୀ | କହୁଅଛନ୍ତି ସେ ରୁକ୍ମିଣୀ | ॥ ୧୩୩ |
| | ହେ ଅରବିନ୍ଦବିଲୋଚନ | କହିଲ ଯେବଣ ବଚନ | ॥ ୧୩୪ |
| | ସେହି ରୂପରେ ସେ ଅଟଇ | ନିଶ୍ଚୟେ ଅନ୍ୟଥା ନୁହଇ | ॥ ୧୩୫ |
| | ଅପରିଚ୍ଛିନ୍ନ ଅଟୁ ତୁହି | ତୁମ୍ଭ ସମାନ ମୁଁ ନୁହଇ | ॥ ୧୩୬ |
| | ତୁମ୍ଭେ ଯେ ଅଟ ଭଗବାନ | ବ୍ରହ୍ମାଦିଙ୍କର ଈଶ ପୁଣ | ॥ ୧୩୭ |
| | ସ୍ୱମହିମାରେ ରତ ତୁହି | ତୁମ୍ଭେ ବା ଅଛ କଉଁ ଠାଇଁ | ॥ ୧୩୮ |
| | ସକାମ ଲୋକମାନେ ପୁଣ | ଘେନନ୍ତି ମୋହର ଚରଣ | ॥ ୧୩୯ |
| | ଗୁଣପ୍ରକୃତି ମୁଁ ଅଟଇ | ମୁଁ ଅବା ଅଛି କଉଁ ଠାଇଁ | ॥ ୧୪୦ |
| | ଏ ଘେନି ତୁମ୍ଭର ମୋହର | ଭୋ ନାଥ ! ଅପାର ଅନ୍ତର | ॥ ୧୪୧ |
| ୩୫ | ଗୁଣମାନଙ୍କ ଠାରୁ ତୁହି | ଭୟ ପାଇଲା ପ୍ରାଏ ହୋଇ | ॥ ୧୪୨ |
| | ସମୁଦ୍ରପ୍ରାୟେକ ଅଗାଧ | ଅଟଇ ଯେ ହୃଦୟମଧ୍ୟ | ॥ ୧୪୩ |
| | ଶୟନ କର ତୁମ୍ଭେ ତହିଁ | ହେ ଉରୁକ୍ରମ ସତ୍ୟ ଏହି | ॥ ୧୪୪ |
| | ଚୈତନ୍ୟଘନ ଆତ୍ମା ତୁମ୍ଭେ | ହେ ପ୍ରଭୁ ଜାଣୁଁ ଏହା ଆମ୍ଭେ | ॥ ୧୪୫ |

---

୧. ନର୍ମବଚନରେ ।

୨. ଅସମତ୍ୱଂ ଭୟଂ ଦୁର୍ଗାଶ୍ରୟଣଂ ପ୍ରବଳୈଃ କଳିଃ ।
ଅରାଜତ୍ୱମବିଜ୍ଞାତା ଲୌକିକେହାବସାଦନମ୍ ॥ ୧
ନିଷ୍କିଞ୍ଚନତ୍ୱଂ ତତ୍‌ପ୍ରୀତିରାଢ୍ୟାନାଦରଣୀୟତା ।
ଅନୌଚିତ୍ୟଂ ନିର୍ଗୁଣତ୍ୱଂ ବୃଥାଶ୍ଲାଘା ଚ ଭିକ୍ଷୁଭିଃ ॥ ୨
ଔଦାସୀନ୍ୟମକାମତ୍ୱଂ ସ୍ୱଦୋଷାନ୍ ଷୋଡଶାସତଃ ।
ଅଜ୍ଞତ୍ୱାଦୀର୍ଘଦର୍ଶିତ୍ୱେ ଭୈମ୍ୟା ରାଜ୍ଞାଂ ବହୂନ୍ ଗୁଣାନ୍ ।
କୃଷ୍ଣନର୍ମୋଦିତାନ୍ ଭୈଷ୍ମୀ ନ୍ୟଷେଧଉଦ୍‌ଗୁଣସ୍ତବୈଃ ॥ ୩

| | | | |
|---|---|---|---|
| | କୁତ୍ସିତ ଇନ୍ଦ୍ରିୟନିକର | । ଅଟଇ ଯଉଁମାନଙ୍କର | ।। ୧୪୬ |
| | ସେ ଲୋକଙ୍କର ଠାରେ ପୁଣ | । ବିଗ୍ରହ[୧] କର ଆଚରଣ | ।। ୧୪୭ |
| | ଯେ ରାଜାମାନଙ୍କ ଆସନ | । ଅତ୍ୟନ୍ତ ତମରେ ସଂପୂର୍ଣ୍ଣ | ।। ୧୪୮ |
| | ତୁମ୍ଭ ସେବକ ଯଉଁମାନେ | । ସେ ତା' ଛାଡ଼ନ୍ତି ଏ ଭୁବନେ | ।। ୧୪୯ |
| ୩୬ | ଯେ ତୁମ୍ଭ ଚରଣାରବିନ୍ଦ | । ତାହାର ଯଉଁ ମକରନ୍ଦ | ।। ୧୫୦ |
| | ତାହାକୁ ଯଉଁ ମୁନିମାନେ | । ସେବା କରନ୍ତି ଏ ଭୁବନେ | ।। ୧୫୧ |
| | ତାଙ୍କର ଅସ୍ଫୁଟ ଅଟଇ | । ଯେବଣ ମାର୍ଗ ପୁଣ ତାହି | ।। ୧୫୨ |
| | ମନୁଷ୍ୟ-ଆକାର ପଶୁଏ | । ଜାଣି ନ ପାରନ୍ତି ନିଶ୍ଚୟେ | ।। ୧୫୩ |
| | ଯେଣୁ ତୁମ୍ଭଙ୍କୁ ଯେ ଭଜନ୍ତି | । ଯେ ତାଙ୍କ ଚେଷ୍ଟାମାନେ ଛନ୍ତି | ।। ୧୫୪ |
| | ଲୌକିକ ପ୍ରାଏ ସେ ନୁହନ୍ତି | । ଆହେ ଅପରିଚ୍ଛିନ୍ନମୂର୍ତ୍ତି | ।। ୧୫୫ |
| | ତୁ ଯେ ଈଶ୍ୱର ଚେଷ୍ଟା ତୋର | । ଜାଣିମ ଅବା କଉଁ ନର | ।। ୧୫୬ |
| ୩୭ | ଅନ୍ୟଠାବରୁ ବଳିମାନ | । ଯେ ପୁଣ କରନ୍ତି ଭୋଜନ | ।। ୧୫୭ |
| | ସେ ବ୍ରହ୍ମାଦିଏ ଯେଣୁ ତୋତେ | । [୨]ଅର୍ହଣ କରନ୍ତି ନିରତେ | ।। ୧୫୮ |
| | ଏଣୁ ନିଶ୍ଚୟେ ଅକିଂଚନ | । କେବେହେଁ ନୁହ ତୁମ୍ଭେ ପୁଣ | ।। ୧୫୯ |
| | ଯଉଁ ବ୍ରହ୍ମାଦି ଦେବେ ନିତି | । ବଳିକି ଭୋଜନ କରନ୍ତି | ।। ୧୬୦ |
| | ତୁମ୍ଭେ ସେମାନଙ୍କ ଈଶ୍ୱର | । ସେମାନେ ଅଟନ୍ତି ତୁମ୍ଭର | ।। ୧୬୧ |
| | ଯେ ସଂପତ୍ତିରେ ଅନ୍ଧ ଅତି | । ପ୍ରାଣକୁ ତର୍ପଣ କରନ୍ତି | ।। ୧୬୨ |
| | ତାଙ୍କ ଅନ୍ତକ ତୁମ୍ଭେ ଅତି | । ତୁମ୍ଭଙ୍କୁ ସେ ଯେ ନ ଜାଣନ୍ତି | ।। ୧୬୩ |
| ୩୮ | ଯେ ବରକନ୍ୟାଙ୍କର ପୁଣ | । ସମାନ କୁଳ ଶୀଳ ଧନ | ।। ୧୬୪ |
| | ତାଙ୍କର ବିବାହ ଉଚିତ | । ଯା' କହିଲ ସେ ଅନୁଚିତ | ।। ୧୬୫ |
| | ସମସ୍ତ ପୁରୁଷାର୍ଥମୟ | । ହେ ପ୍ରଭୁ ! ତୁମ୍ଭେ ଟି ନିଶ୍ଚୟ | ।। ୧୬୬ |
| | ପରମାନନ୍ଦରୂପ ପୁଣ | । ଯା' ଠାରୁ ବାଞ୍ଛାକୁ ଲଭିଣ | ।। ୧୬୭ |
| | ଅତି ସୁବୁଦ୍ଧି ଜନମାନେ | । ସବୁ ଛାଡ଼ନ୍ତି ଏ ଭୁବନେ | ।। ୧୬୮ |
| | ତାହାଙ୍କ ଠାବରେ ଅତ୍ୟନ୍ତ | । ତୁମ୍ଭର ସମାଜ[୩] ଉଚିତ | ।। ୧୬୯ |
| | ଅନ୍ୟୋଽନ୍ୟେ ରତ ହୋଇ ନିତି | । ସେ ସ୍ତିରୀ-ପୁରୁଷେ ଅଛନ୍ତି | ।। ୧୭୦ |
| | ସେ ସୁଖଦୁଃଖୀ ନିରନ୍ତର | । ଏ ଯେଣୁ ନାହିଁ ତାଙ୍କ ଠାର | ।। ୧୭୧ |
| ୩୯ | ଭିକ୍ଷୁରେ ହୋଇଲୁଁ ଶ୍ଳାଘିତ | । କୃଷ୍ଣ ଯା' ବୋଇଲେ ଏମନ୍ତ | ।। ୧୭୨ |
| | ସେ ବାଣୀ କରି ପରିହାର | । ରୁକ୍ମିଣୀ କହନ୍ତି ଉତ୍ତର | ।। ୧୭୩ |
| | ନ୍ୟସ୍ତ କରନ୍ତି ଦଣ୍ଡମାନ | । ଏମନ୍ତ ଯଉଁ ମୁନିଜନ | ।। ୧୭୪ |
| | ତୋ' ଅନୁଭାବକୁ ସେମାନେ | । କହିଅଛନ୍ତି ଏ ଭୁବନେ | ।। ୧୭୫ |
| | ଜଗତ-ଆତ୍ମା ତୁମ୍ଭେ ପୁଣ | । ଆତ୍ମାକୁ କରସି ପ୍ରଦାନ | ।। ୧୭୬ |
| | ଏହି ହେତୁରୁ ପୁଣ ମୁହିଁ | । ତୁମ୍ଭଙ୍କୁ ବରିଲଇଁ ଯାଇଁ | ।। ୧୭୭ |

୧. ନିଗ୍ରହ । ୨. ବଳି ଦିଅନ୍ତି ଅବିରତେ । ୩. ସେବ୍ୟସେବକଲକ୍ଷଣ ସଂବନ୍ଧ ।

ତୋ’ ଭ୍ରୂଲତାରୁ ଉଦୀରିତ । ଯେ କାଳବେଗ ଅଟେ ଖ୍ୟାତ ॥ ୧୭୮
ତହିଁରେ ଯେଉଁମାନଙ୍କର । ମଙ୍ଗଳ ହୋଇଲା ସଂହାର ॥ ୧୭୯
ସେ ବ୍ରହ୍ମା-ରୁଦ୍ର-ଇନ୍ଦ୍ରଙ୍କୁ ହିଁ । ଜାଣି କରି ମୁଁ ଛାଡ଼ିଲଇଁ ॥ ୧୮୦
ଯେ ଅବା ଅନ୍ୟ ନୃପମାନେ । ସେ କେତେମାତ୍ର ଏ ଭୁବନେ ॥ ୧୮୧
୪୦ ଅନ୍ୟ ପୁରୁଷଙ୍କର ଗୁଣ । ଯାହା ବର୍ଣ୍ଣିଲେ ନାରାୟଣ ॥ ୧୮୨
ସେହି କଥାକୁ ପରିହରି । କହନ୍ତି ଭୀଷ୍ମକକୁମାରୀ ॥ ୧୮୩
ପଶୁଙ୍କୁ ଯେହ୍ନେ ସିଂହ ଯାଇ । ଘଉଡ଼ି ସ୍ୱଭାଗ ହରଇ ॥ ୧୮୪
ଶାରଙ୍ଗଧନୁ ନିନାଦରେ । ରାଜାମାନଙ୍କୁ ସେ ରୂପରେ ॥ ୧୮୫
ଘଉଡ଼ି ଦେଇ ସେ କାଳରେ । ମୋତେ ଯେ ହରିଲ ନିର୍ଭରେ ॥ ୧୮୬
ରାଜାଙ୍କ ଠାରୁ ଲଭି ଭୟ । ସିନ୍ଧୁକୁ କଲି ମୁଁ ଆଶ୍ରୟ ॥ ୧୮୭
ହେ ଗଦାଗ୍ରଜ ! ଏ ରୂପରେ । ଯା’ ତୁମ୍ଭେ କହିଲ ଏଠାରେ ॥ ୧୮୮
ଜାଡ୍ୟ ବଚନ ସେ ଅଟଇ । ତୁମ୍ଭର ମଣୁଅଛି ମୁହିଁ ॥ ୧୮୯
୪୧ ଅସ୍ପଷ୍ଟ ମୋର ମାର୍ଗମାନ । ମୋତେ ଭଜିଲେ ହୋନ୍ତି ଶୀର୍ଣ୍ଣ ॥ ୧୯୦
ଏ କୃଷ୍ଣବାଣୀ ପରିହରି । କହନ୍ତି ରୁକ୍ମିଣୀ ବିସ୍ତାରି ॥ ୧୯୧
ଭଜନବାଞ୍ଛାରେ ତୁମ୍ଭର । ଅଙ୍ଗ ନୃପତି ପୃଥୁ ବୀର ॥ ୧୯୨
ଭରତ ଯଯାତି ଏ ଦୁଇ । ଗୟ ରାଜାକୁ ଆଦି ହୋଇ ॥ ୧୯୩
ରାଜାମାନଙ୍କେ ଶିଖାମଣି । ପ୍ରାଏକ ଅଟନ୍ତି ସେ ପୁଣି ॥ ୧୯୪
ଯହିଁରେ ଏକା ପତି ହୋଇ । ଥିଲେ ସେ ରାଜ୍ୟ ଛାଡ଼ିଯାଇ ॥ ୧୯୫
ବନରେ ଯାଇଣ ମିଳିଲେ । ସେମାନେ ଶୀର୍ଣ୍ଣ କି ହୋଇଲେ ॥ ୧୯୬
ତୁମ୍ଭର ମାର୍ଗକୁ ସେ ନିତ୍ୟେ । ଆଶ୍ରୟ କଲେ ଏ ଜଗତେ ॥ ୧୯୭
୪୨ ଆପଣା ଅନୁରୂପେ ଯାଇ । ବରକୁ ବର ଏବେ ତୁହି ॥ ୧୯୮
କୃଷ୍ଣ କହିଲେ ଯା’ ଏ ବାଣୀ । ତହିଁକି କହନ୍ତି ରୁକ୍ମିଣୀ ॥ ୧୯୯
ସମସ୍ତ ଗୁଣମାନଙ୍କର । ଯେ ତୁମ୍ଭେ ମନ୍ଦିର ତୁମ୍ଭର ॥ ୨୦୦
ଲକ୍ଷ୍ମୀର ସ୍ଥାନ ଯେ ଅଟଇ । ଜନସମୂହମୋକ୍ଷଦାୟୀ ॥ ୨୦୧
ସାଧୁଏ ବର୍ଣ୍ଣନ୍ତି ଯାହାକୁ । ସେ ପାଦପଙ୍କଜଗନ୍ଧକୁ ॥ ୨୦୨
ଆଘ୍ରାଣ କରି ଯଉଁ ନାରୀ । ସେ ଗନ୍ଧ ଗଣନା ନ କରି ॥ ୨୦୩
ଅର୍ଥକୁ ସାଧିବାରେ ନେଇ । ଦୃଷ୍ଟିକି ଥାଆନ୍ତେ ସେ ଦେଇ ॥ ୨୦୪
ମରଣଧର୍ମା ଯଉଁ ନର । ସର୍ବଦା ଅତି ଭୟ ଯାର ॥ ୨୦୫
ଏମନ୍ତ ଅନ୍ୟଜନକୁ ହି । ସେ ନାରୀ ଭଜିବ କିମ୍ପାଇଁ ॥ ୨୦୬
୪୩ ତୁ ନାଥ ଜଗତ-ଈଶ୍ୱର । ଆତ୍ମା ସମସ୍ତପ୍ରାଣିଙ୍କର ॥ ୨୦୭
ଏ ଲୋକେ ପରଲୋକେ ପୁଣ । କାମନାମାନ କରୁ ପୂର୍ଣ୍ଣ ॥ ୨୦୮
ଭଜନଯୋଗ୍ୟ ତୁମ୍ଭେ ସେହି । ତୁମ୍ଭଙ୍କୁ ଭଜିଲଇଁ ମୁହିଁ ॥ ୨୦୯
ଦେବ-ତିର୍ଯ୍ୟଗାଦି ଯୋନିରେ । ଭ୍ରମଣ କରନ୍ତେ ସଂସାରେ ॥ ୨୧୦

ମୋହର ଯେ ତୁମ୍ଭ ଚରଣ । ହେ ପ୍ରଭୁ ! ହେଉ ସେ ଶରଣ ॥ ୨୧୧
ଯେବଣ ଚରଣୁଁ ତୁମ୍ଭର । ବିନାଶ ହୁଅଇ ସଂସାର ॥ ୨୧୨
ଭଜିଲା ଲୋକକୁ ସାକ୍ଷାତ । ଯେ ପୁଣ କରେ ଆତ୍ମସାତ ॥ ୨୧୩
୪୪ ଐଶ୍ୱର୍ଯ୍ୟବନ୍ତ ରାଜାମାନେ । ତୋତେ ବାଞ୍ଛିଲେ ପୂର୍ବଦିନେ ॥ ୨୧୪
ଯାହା ଶ୍ରୀହରି ବୋଲିଥିଲେ । ତହିଁକି ରୁକ୍ମିଣୀ କହିଲେ ॥ ୨୧୫
ଗର୍ଦ୍ଦଭପ୍ରାୟେ ଯଉଁମାନେ । ଭାର ବହନ୍ତି ଏ ଭୁବନେ ॥ ୨୧୬
ବଳିବର୍ଦ୍ଦଙ୍କ ପ୍ରାଏ ଅତି । ବ୍ୟାପାରେ କ୍ଲେଶ ଯେ ଲଭନ୍ତି ॥ ୨୧୭
କୁକୁରଙ୍କର ପ୍ରାଏ ପୁଣ । ଯେହୁ ସହନ୍ତି ଅବମାନ ॥ ୨୧୮
ବିଡାଳଙ୍କର ପ୍ରାଏ ନିତି । କୃପଣ ହିଂସ୍ର ଯେ ଅଟନ୍ତି ॥ ୨୧୯
କିଂକର ଭୃତ୍ୟଙ୍କ ପରାଏ । ଏମନ୍ତ ଯେବଣ ରାଜାଏ ॥ ୨୨୦
ସ୍ତିରୀଙ୍କ ଗୃହେ ହେ ଅଚ୍ୟୁତ । ତାହାଙ୍କୁ କରିଛ ସ୍ଥାପିତ ॥ ୨୨୧
ସେହି ନାରୀର ସେ ରାଜନେ । ପତି ହୁଅନ୍ତି ଏ ଭୁବନେ ॥ ୨୨୨
ଶିବବିରିଞ୍ଚିର ସଭାରେ । ଗାୟନ କରନ୍ତି ଯା' ନରେ ॥ ୨୨୩
ସେ ତୁମ୍ଭ କଥା ଏକାବେଳେ । ଯଉଁ ନାରୀର କର୍ଣ୍ଣମୂଳେ ॥ ୨୨୪
ହେ ଶତ୍ରୁଗଣବିନାଶନ । ପ୍ରବେଶ ନୋହିଲା ଯାଇଣ ॥ ୨୨୫
୪୫ ଯେ ଚର୍ମ ଶ୍ମଶ୍ରୁ ରୋମମାନ । ଯେ ନଖ କେଶମାନେ ଆନ ॥ ୨୨୬
ଏଣେ ଯେ ଅଟେ ଆଚ୍ଛାଦିତ । ଯେ ପୁଣ ମାଂସ ଅସ୍ଥି ରକ୍ତ ॥ ୨୨୭
ଯେ କୃମି ବିଷ୍ଠା କଫମାନ । ଯେ ବାତ ପିତ୍ତମାନେ ଆନ ॥ ୨୨୮
ଏଣେ ଯେ ଅନ୍ତର୍ମଧ୍ୟେ ପୂର୍ଣ୍ଣ । ଜିଅନ୍ତା ମଡ଼ାର ସମାନ ॥ ୨୨୯
ଏମନ୍ତ ନାୟକକୁ ପୁଣ । କାନ୍ତକୁ ବାଞ୍ଛା କରନ୍ତେଣ ॥ ୨୩୦
ବିଶେଷେ ମୂଢ଼ ସେ ଅଟଇ । ଯେ ନାରୀ ବରଣ କରଇ ॥ ୨୩୧
ଯେ ତୁମ୍ଭ ଚରଣାରବିନ୍ଦ । ତାହାର ଯଉଁ ମକରନ୍ଦ ॥ ୨୩୨
ସେ ମକରନ୍ଦମାନଙ୍କୁ ହି । ଆଘ୍ରାଣ କରି ଯେ ନ ଥାଇ ॥ ୨୩୩
୪୬ ହେ ସାଧ୍ୱି ! ଉଦାସୀନ ମୁହିଁ । ବୋଲି ଯା' କୃଷ୍ଣ ଥିଲେ କହି ॥ ୨୩୪
ସେକଥା ପରିହାର କରି । କହନ୍ତି ଭୀଷ୍ମକକୁମାରୀ ॥ ୨୩୫
ଯାହାର ଅତିଶୟ ହୋଇ । ମୋହର ଠାରେ ଦୃଷ୍ଟି ନାହିଁ ॥ ୨୩୬
ଆତ୍ମାରେ ରତି ଅଟେ ଯାର । ଯେ ତୁମ୍ଭେ ଏମନ୍ତପ୍ରକାର ॥ ୨୩୭
ଚରଣାନୁରାଗ ତୁମ୍ଭର । ହେ ପଦ୍ମନେତ୍ର ! ହେଉ ମୋର ॥ ୨୩୮
ଏ ବିଶ୍ୱବୃଦ୍ଧି କରିବାକୁ । ଘେନିଣ ରଜ-ଆଧିକ୍ୟକୁ ॥ ୨୩୯
ଯା' ମୋତେ ଚାହଁ ସେ କାଳରେ । ପରମ ଦୟା ସେ ମୋ' ଠାରେ ॥ ୨୪୦
୪୭ ହେ କୃଷ୍ଣ ! ତୁମ୍ଭ ବାଣୀ ମୁହିଁ । ମିଥ୍ୟାପ୍ରାଏକ ନ ମଣଇଁ ॥ ୨୪୧
କନ୍ୟାର କେହୁଣିସିଠାଇ । ପ୍ରାୟଶ ଯେଣୁ ପ୍ରୀତି ହୋଇ ॥ ୨୪୨

| | | | |
|---|---|---|---|
| | ଅମ୍ବା କନ୍ୟାର ଯେ ରୂପରେ । | ପ୍ରୀତି ହୋଇଲା ଶାଲ୍ୱଠାରେ | ।। ୨୪୩ |
| ୪୮ | ଯେ ନାରୀ ପୁଂଶ୍ଚଳୀ ଅଟଇ । | ବିବାହ ହୋଇଲେହେଁ ସେହି | ।। ୨୪୪ |
| | ଯେ ନବ ନବୀନ ପୁରୁଷ । | ତା' ଠାକୁ ଯାଇଣ ମାନସ | ।। ୨୪୫ |
| | ଯେ ଜନ ପଣ୍ଡିତ ହୋଇବ । | ଅସତୀ ନାରୀକି ଛାଡ଼ିବ | ।। ୨୪୬ |
| | ତାକୁ ଗ୍ରହଣ କଲେ ସେହି । | ଉଭୟ ଲୋକୁଁ ଚ୍ୟୁତ ହୋଇ | ।। ୨୪୭ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୪୯ | ସେ ରୁକ୍ମିଣୀଙ୍କି ଭଗବାନ । | କହୁଅଛନ୍ତି ଏ ବଚନ | ।। ୨୪୮ |
| | ହେ ରାଜପୁତ୍ରି ! ଆଗୋ ସତି । | ଶୁଣିମାକାମରେ ମୁଁ ଅତି | ।। ୨୪୯ |
| | ତୁମ୍ଭଙ୍କୁ ଉପହାସ କଲି । | ଯେତେକ ବଚନ ବୋଇଲି | ।। ୨୫୦ |
| | ତହିଁକି କହିଲ ଯା' ତୁମ୍ଭେ । | ସେ ସତ୍ୟ ଜାଣିଲୁଁ ଗୋ ଆମ୍ଭେ | ।। ୨୫୧ |
| ୫୦ | ଏକାନ୍ତ ଭକ୍ତି ନିରନ୍ତର । | ମୋ' ଠାରେ ଅଟଇ ତୁମ୍ଭର | ।। ୨୫୨ |
| | ହେ ତନ୍ୱି ଯେବଣ ଯେବଣ । | କାମନା ବାଞ୍ଛିଲୁ ତୁ ପୁଣ | ।। ୨୫୩ |
| | ସେମାନେ ହେ କଲ୍ୟାଣି ! ନିତ୍ୟେ । | ହୁଅନ୍ତୁ ଅକାମ[୧] ନିମିତ୍ତେ | ।। ୨୫୪ |
| ୫୧ | ପତିର ଠାରେ ଯଉଁ ପ୍ରେମ । | ଯେ ପୁଣ ପତିବ୍ରତାଧର୍ମ | ।। ୨୫୫ |
| | ଆଗୋ ଅନଘେ ! ଏହା ମୁହିଁ । | ତୁମ୍ଭର ଠାରୁ ଲଭିଲଇଁ | ।। ୨୫୬ |
| | ଯେଣୁ ବଚନରେ ମୋହର । | ଚାଳିତ ହେଲେହେଁ ତୁମ୍ଭର | ।। ୨୫୭ |
| | ମୋ' ଠାରେ ବୁଦ୍ଧି କଦାଚିତ । | ତିଳେହେଁ ନୋହିଲା ସ୍ଖଳିତ | ।। ୨୫୮ |
| ୫୨ | ମୁକ୍ତିର ପ୍ରଭୁ ମୁଁ ଅଟଇ । | ମୋତେ ସକାମବନ୍ତ ହୋଇ | ।। ୨୫୯ |
| | ବ୍ରତଚର୍ଯ୍ୟରେ ତପସ୍ୟାରେ । | ଦମ୍ପତିଭାବ ନିମିତ୍ତରେ | ।। ୨୬୦ |
| | ଭଜନ କରନ୍ତି ଯେ ନରେ । | ମୋହିତ ସେ ମୋର ମାୟାରେ | ।। ୨୬୧ |
| ୫୩ | ମୋକ୍ଷ, ସମ୍ପତ୍ତିମାନଙ୍କୁ ହିଁ । | ଆଗୋ ମାନିନି ! ମୁଁ ଦିଅଇ | ।। ୨୬୨ |
| | ଯେବଣ ବିଷୟସଂପତ୍ତି । | ନିକୃଷ୍ଟ ଯୋନିରେ ହେଁ ଛନ୍ତି | ।। ୨୬୩ |
| | ସେ ସଂପତ୍ତିର ମୁହିଁ ପତି । | ମୋତେ ସେ ବାଞ୍ଛା ନ କରନ୍ତି | ।। ୨୬୪ |
| | ବିଷୟମାନଙ୍କରେ ଛନ୍ନ । | ଯେଣୁ ତାଙ୍କର ଆତ୍ମାମାନ | ।। ୨୬୫ |
| | ଏଣୁ ସେ ନରେ ମନ୍ଦଭାଗ୍ୟ । | ନରକ ଅଟେ ତାଙ୍କ ସଙ୍ଗ | ।। ୨୬୬ |
| ୫୪ | ଭବକୁ କରଇ ଖଣ୍ଡନ । | ଯେବଣ ଅନୁବୃତ୍ତିମାନ | ।। ୨୬୭ |
| | ହେ ଗୃହେଶ୍ୱରି ! ତାହା ତୁହି । | ବହୁତ କଲୁ ମୋହ ଠାଇଁ | ।। ୨୬୮ |
| | ଖଳେ ଯେବଣ ଅନୁବୃତ୍ତି । | କେବେ ହେଁ କରି ନ ପାରନ୍ତି | ।। ୨୬୯ |
| | ଯା' ଅଭିପ୍ରାୟ ଜାଣି ନୋହି । | ପ୍ରାଣ ଯେ ତର୍ପଣ କରଇ | ।। ୨୭୦ |
| | ବଞ୍ଚନେ ଅଟଇ ତତ୍ପର । | ଏମନ୍ତ ଯେ ନାରୀ ଆବର | ।। ୨୭୧ |
| | ଏ ଅନୁବୃତ୍ତି ହିଁ ତାହାର । | ଅତିଶୟରେ ସୁଦୁଷ୍କର | ।। ୨୭୨ |

୧. ଅକାମ = କାମନିବୃତ୍ତି । ମୋକ୍ଷପର୍ଯ୍ୟବସାୟୀ ।

| | | | |
|---|---|---|---|
| ୫୫ ତୋ' ପରା ପ୍ରିୟବତୀ ହୋଇ | । ଗୃହମାନଙ୍କେ ଭାର୍ଯ୍ୟା ନାହିଁ | ॥ | ୨୭୩ |
| ମୁଁ ଦେଖୁନାହିଁ ହେ ମାନିନି | । ନିଜ ବିବାହକାଳେ ପୁଣି | ॥ | ୨୭୪ |
| ଆସିଣ ଥିଲେହେଁ ରାଜନ | । ତାହାଙ୍କୁ ନ କରି ଗଣନ | ॥ | ୨୭୫ |
| ଯେ ତୁମ୍ଭେ ଶ୍ରବଣ କରିଣ | । ମୋହର ସତ୍ୟ କଥା ପୁଣ | ॥ | ୨୭୬ |
| ଯେ ବହେ ଏକାନ୍ତ ବାର୍ତ୍ତାକୁ | । ପେଷିଲ ସେ ଦ୍ୱିଜ ମୋ' ଠାକୁ | ॥ | ୨୭୭ |
| ୫୬ ଯୁଦ୍ଧରେ ହୋଇଲା ନିର୍ଜିତ | । ଏମନ୍ତ ଯେ ତୁମ୍ଭର ଭ୍ରାତ | ॥ | ୨୭୮ |
| ବିରୂପକରଣ ଆବର | । ଯାହା ହୋଇଲା ସେ ରୁକ୍ମୀର | ॥ | ୨୭୯ |
| ଅନିରୁଦ୍ଧର ବିଭାପୂର୍ବେ | । ପଶାସଭାର ମଧ୍ୟେ ଯେବେ | ॥ | ୨୮୦ |
| ସେ ଭ୍ରାତା ହୋଇଲାକ ହତ | । ତେଣେ ଯେବଣ ଦୁଃଖ ଜାତ | ॥ | ୨୮୧ |
| ଆମ୍ଭ ବିଚ୍ଛେଦଭୟୁଁ ଜାତ | । ସହିଲ ଯା' ଦୁଃଖ ବହୁତ | ॥ | ୨୮୨ |
| କିଛି ବଚନ ନ ବୋଇଲ | । ତେଣେ ଗୋ ଆମ୍ଭଙ୍କୁ ଜିଣିଲ | ॥ | ୨୮୩ |
| ୫୭ ଦୂରେ ଥାଆନ୍ତେ ରହି ମୁହିଁ | । ମୋତେ ଲଭିବା ଅର୍ଥେ ତୁହି | ॥ | ୨୮୪ |
| ମୋତେ ନ ଲଭି କରି ପୁଣି | । ଏ ବିଶ୍ୱ ଶୂନ୍ୟ କରି ମଣି | ॥ | ୨୮୫ |
| ଏ ଦେହ ଆନେ ଯୋଗ୍ୟ ନୋହି | । ଏହାକୁ ଛାଡ଼ିବଇଁ ମୁହିଁ | ॥ | ୨୮୬ |
| ହୃଦେ ବିଚାରି ଏ ବାକ୍ୟକୁ | । ଲେଖିଣ ପେଷିଲ ଦୂତକୁ | ॥ | ୨୮୭ |
| ଏମନ୍ତ କର୍ମମାନେ ଯେହି | । ସେ ତୁମ୍ଭଠାରେ ଅଛି ରହି | ॥ | ୨୮୮ |
| ଆମ୍ଭେ ଗୋ କେବଳ ତୁମ୍ଭଙ୍କୁ | । କରାଉଅଛୁଁ ହରଷକୁ | ॥ | ୨୮୯ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୫୮ ଶୁକ କହନ୍ତି ହେ ରାଜନ | । ଦେବକୀସୁତ ଭଗବାନ | ॥ | ୨୯୦ |
| ଏମନ୍ତ ରୂପେ ସେ କାଳରେ | । ସୁରତଭାଷାମାନଙ୍କରେ | ॥ | ୨୯୧ |
| ନରଲୋକକୁ ବିଡ଼ମ୍ବନ | । ଏ ରୂପେ କରାନ୍ତେ ଉତ୍‌ପନ୍ନ | ॥ | ୨୯୨ |
| ଯାହାର ରତି ନିଜ ଠାରେ | । ରମିଲେ ସେ ରମାସାଙ୍ଗରେ | ॥ | ୨୯୩ |
| ୫୯ ସମସ୍ତ ଲୋକମାନଙ୍କର | । ଗୁରୁ ଅଟନ୍ତି ଦାମୋଦର | ॥ | ୨୯୪ |
| ସେ ପ୍ରଭୁ ଏଥୁ ଅନନ୍ତରେ | । ଅନ୍ୟ ଭାର୍ଯ୍ୟାଙ୍କର ଗୃହରେ | ॥ | ୨୯୫ |
| ଗୃହୀ ଲୋକଙ୍କ ପ୍ରାଏ ହୋଇ | । ଗୃହସ୍ଥାଶ୍ରମଧର୍ମ ଯେହି | ॥ | ୨୯୬ |
| ସେ ଧର୍ମମାନ ଆଶ୍ରେ କରି | । ରମଣ କଲେ ନରହରି | ॥ | ୨୯୭ |
| ଯେ ରୁକ୍ମିଣୀଙ୍କି ଏ ରୂପରେ | । କହିଲେ ପ୍ରତିବଚନରେ | ॥ | ୨୯୮ |
| ସେ ନାରାୟଣପାଦ ନିତି | । ବ୍ରାହ୍ମଣ ଦୀନବନ୍ଧୁ ଚିନ୍ତି | ॥ | ୨୯୯ |
| ଦଶମସ୍କନ୍ଧ ଭାଷାଗୀତେ | । ବର୍ଣ୍ଣିଲା ସାଧୁଜନ ହିତେ | ॥ | ୩୦୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣ-ରୁକ୍ମିଣୀସଂବାଦୋ
ନାମ ଷଷ୍ଟିତମୋଽଧ୍ୟାୟଃ ॥

# ଏକଷଷ୍ଟିତମ ଅଧ୍ୟାୟ

ଏକଷଷ୍ଟିତମେ ଶୌରେଃ ପୁତ୍ରପୌତ୍ରାଦିସଂତତିଃ
ଅନିରୁଦ୍ଧବିବାହେ ଚ ରୁକ୍ମିଣୋ ରାମତୋ ବଧଃ ॥ ୧
ଅଷ୍ଟାଧିକଶତଦ୍ୱ୍ୟଷ୍ଟସହସ୍ରସ୍ତ୍ରୀସମୁଦ୍ଭବାନ୍ ।
କୋଟିଶଃ ପୁତ୍ରପୌତ୍ରାଦୀନ୍ ହରିର୍ଦାରୈରଯୋଜୟତ୍ ॥ ୨

ଶ୍ରୀଶୁକ ଉବାଚ

୧ ଶୁକ କହନ୍ତି ଶୁଣ ରାଏ । ସେ ସର୍ବ ଶ୍ରୀକୃଷ୍ଣଭାର୍ଯ୍ୟାଏ ॥
ଜଣ ଜଣକେ ଦଶ ସୁତ । ଶ୍ରୀକୃଷ୍ଣଠାରୁ ହେଲେ ଜାତ ॥
ସେ ସର୍ବେ ଆତ୍ମସମ୍ପତ୍ତିରୁ । ଊଣା ନୁହନ୍ତି ପିତାଠାରୁ ॥
୨ ଗୃହରୁ ନ ଯାନ୍ତି ଅଚ୍ୟୁତ । ଥାଆନ୍ତେ ଦେଖିଣ ଏମନ୍ତ ॥
କୃଷ୍ଣଙ୍କୁ ସେ ରାଜକୁମାରୀ । ଜଣ ଜଣକେ ପ୍ରିୟ କରି ॥
ସମସ୍ତେ କେବଳ ମଣିଲେ । ଆତ୍ମାରୂପରେ ନ ଜାଣିଲେ ॥
ଯେଣୁ ସେ ତତ୍ତ୍ୱ ଶ୍ରୀକୃଷ୍ଣର । ତାଙ୍କୁ ଅଟଇ ଅଗୋଚର ॥
୩ ଚାରୁ ପଙ୍କଜକୋଷ ପ୍ରାଏ । ଯେବଣ ମୁଖ ଶୋଭା ପାଏ ॥
ଆୟତ ଯଉଁ ଭୁଜମାନ । ବିଶାଳ ଯେ ବେନି ନୟନ ॥
ଯେ ପ୍ରେମହାସରସେ ଆନ । ଯଉଁ ଚାହିଁମା ଭଙ୍ଗୀମାନ ॥
ଯେ ବାଣୀମାନେ ମନୋହର । ଏମାନଙ୍କେ ସେ ଶ୍ରୀକୃଷ୍ଣର ॥
ମୋହିତ ହୋଇ ସେ ନାରୀଏ । ନିଜ ବିଭ୍ରମମାନଙ୍କେ ହେଁ ॥
ହରିବାକୁ ସେ କୃଷ୍ଣଚିତ୍ତ । ସେମାନେ ନୋହିଲେ ଶକତ ॥
୪ ଯେ ଗୂଢ଼ ହସିତରେ ଯୁକ୍ତ । ସେ କଟାକ୍ଷରେ ଯେ ସୂଚିତ ॥
ସେଭାବେ ଅଟେ ମନୋହର । ଯଉଁ ଭ୍ରୂମଣ୍ଡଳ ଆବର ॥
ତହିଁରେ ଅଟଇ ସ୍ଥାପିତ । ଯେ ବା ସୁରତଭାବ ମନ୍ତ୍ର ॥
ପ୍ରଗଲ୍‌ଭ ଅଟନ୍ତି ଯେ ଏଣେ । ଏମନ୍ତ ଯେ ଅନଙ୍ଗବାଣେ ॥
ଯେ ଅନ୍ୟ କାମଶାସ୍ତ୍ରମାନେ । ପ୍ରସିଦ୍ଧ ଅଟନ୍ତି ଭୁବନେ ॥
ଏମାନଙ୍କରେ ହେଁ ଯେ ପୁଣ । ଷୋଳସହସ୍ର ପତ୍ନୀଗଣ ॥
ସେ ଶ୍ରୀକୃଷ୍ଣର ଇନ୍ଦ୍ରିୟକୁ[୧] । ଶକ୍ତ ନୋହିଲେ ମୋହିବାକୁ ॥
୫ ବ୍ରହ୍ମାଦିମାନେ ହେଁ ଯାହାର । ମାର୍ଗକୁ ନ କଲେ ଗୋଚର ॥
ସେ ରମାପତିଙ୍କି ଏମନ୍ତେ । ପତି କରିଣ ସେ ଯୋଷିତେ ॥
ଲଭିଣ ବୃଦ୍ଧିଭାବେ ଆନ । ଯେ ଅନୁରାଗ ହାସମାନ ॥
ଯେ ତା' ସହିତ ବିଲୋକନ । ତତ୍‌ପୂର୍ବ ଯେ ସଙ୍ଗ ନବୀନ ॥
ସେ ଲାଳସାଦିଙ୍କି ନିତ୍ୟରେ । ଭଜିଲେ ଅତି ହରଷରେ ॥

୧. ଇନ୍ଦ୍ରିୟକୁ = ମନକୁ ।

୬ ପ୍ରବେଶ ହୁଅନ୍ତେ ସେ ପତି । ତାହାଙ୍କୁ ପାଛୋଟି ଯାଆନ୍ତି ।। ୨୬
ତତ୍‌କାଳ ଦିଅନ୍ତି ଆସନ । କରନ୍ତି ଉତ୍ତମ ପୂଜନ ।। ୨୭
ଚରଣଯୁଗଳ ଧୁଅନ୍ତି । ତାମ୍ବୂଳ ଦେଇଣ ବିଞ୍ଚନ୍ତି ।। ୨୮
କରନ୍ତି ପାଦସଂବାହନ । ଦିଅନ୍ତି ଗନ୍ଧମାଲ୍ୟମାନ ।। ୨୯
କେଶପ୍ରସାଧନ କରନ୍ତି । ଶୟନସ୍ଥାନକୁ ରଚନ୍ତି ।। ୩୦
ଆବର କରାନ୍ତି ସ୍ନାହାନ । ଦିଅନ୍ତି ଉପହାରମାନ ।। ୩୧
ଶଏ ଥିଲେହେଁ ଦାସୀମାନେ । ଏମାନଙ୍କେ ସେ ପତ୍ନୀଜନେ ।। ୩୨
ସେ ମହାପ୍ରଭୁର ଆପଣ[1] । ବିଧାନ କଲେ ଦାସୀପଣ ।। ୩୩
୭ ଯା'ଙ୍କର ଦଶ ଦଶ ସୁତ । ସେ କୃଷ୍ଣନାରୀଙ୍କରେ ଖ୍ୟାତ ।। ୩୪
ଯେ ଅଷ୍ଟ ପାଟମହାଦେଈ । ପୂର୍ବେ ଥିଲାଇଁ ଯାହା କହି ।। ୩୫
ଯେ ପ୍ରଦ୍ୟୁମ୍ନାଦି ତାଙ୍କ ସୁତେ । ତାଙ୍କୁ କହୁଛି ଏବେ ତୋତେ ।। ୩୬
୮| ସୁଦେଷ୍ଣ ଚାରୁଦେଷ୍ଣ ବେନି । ଚାରୁଦେହକୁ ମିଶି ତିନି ।। ୩୭
୯| ସୁଚାରୁ ଚାରୁଗୁପ୍ତ ପୁଣ । ସେ ରୂପେ ଭଦ୍ରଚାରୁ ଆନ ।। ୩୮
ବିଚାରୁ ଚାରୁଚନ୍ଦ୍ର ନାମ । ଚାରୁ ଯେ ଅଟଇ ଦଶମ ।। ୩୯
କୃଷ୍ଣର ରୁକ୍ମିଣୀଙ୍କ ଠାଇଁ । ସେ ପ୍ରଦ୍ୟୁମ୍ନକୁ ଆଦି ହୋଇ ।। ୪୦
ଏ ଦଶ ପୁତ୍ରେ ହେଲେ ଜନ୍ମ । ଅଟନ୍ତି ପିତାର ସମାନ ।। ୪୧
୧୦ ଭାନୁ ସୁଭାନୁ ହୋଇ ବେନି । ସ୍ୱର୍ଭାନୁ ପ୍ରଭାନୁ ଯେ ପୁଣି ।। ୪୨
ସେ ରୂପେ ଅଟେ ଭାନୁମାନ । ଆରକ ଚନ୍ଦ୍ରଭାନୁ ନାମ ।। ୪୩
ଆବର ଅଟେ ବୃହଭାନୁ । ଅଷ୍ଟମ ନାମ ଅତିଭାନୁ[2] ।। ୪୪
ବିଭାନୁ ପ୍ରତିଭାନୁ ଖ୍ୟାତ । ଏ ଦଶ ସତ୍ୟଭାମାସୁତ ।। ୪୫
୧୧| ସାମ୍ବ ସୁମିତ୍ର[3] ପୁରୁଜିତ[4] । ସହସ୍ରଜିତ ଶତଜିତ ।। ୪୬
୧୨| ବିଜୟ ଚିତ୍ରକେତୁ ଆନ । କ୍ରତୁ ଦ୍ରବିଣ[5] ବସୁମାନ ।। ୪୭
ସାମ୍ବ ଅଟନ୍ତି ଜ୍ୟେଷ୍ଠ ଯହିଁ । ଏମନ୍ତ ଏ ଯେ ଦଶ ଭାଇ ।। ୪୮
ଜାମ୍ବବତୀଙ୍କର ଏ ସୁତ । ପିତାର ଅଟନ୍ତି ସମ୍ମତ ।। ୪୯
୧୩ ଭାନୁ[6] ଚନ୍ଦ୍ରମା ଅଶ୍ୱସେନ । ଚିତ୍ରଗୁ ବେଗବାନ ଆନ ।। ୫୦
ଯେ ବୃଷ ଆମ ଶଙ୍କୁ ଆନ । ଶ୍ରୀମନ୍ତ ବସୁ କୁନ୍ତି ପୁଣ ।। ୫୧
କୃଷ୍ଣର ନାଗ୍ନଜିତୀଠାରେ । ଜନ୍ମିଲେ ଏ ଦଶ କ୍ରମରେ ।। ୫୨
୧୪ ଯେ ଶ୍ରୁତ କବି ବୃଷ ଧୀର । ସୁବାହୁ ଭଦ୍ର ସେ ଆବର ।। ୫୩
ଶାନ୍ତି ଦରଶ ପୂର୍ଣ୍ଣମାସ । ସୋମକ ମିଶିଣ ଏ ଦଶ ।। ୫୪
ଶ୍ରୀକୃଷ୍ଣର ଏ ସୁତମାନ । କାଳିନ୍ଦୀଠାରେ ହେଲେ ଜନ୍ମ ।। ୫୫
୧୫ ପ୍ରଘୋଷ ଗାତ୍ରବାନ ବେନି । ସିଂହ ପ୍ରବଳ ବଳ ତିନି ।। ୫୬

---

୧. ନିଜେ । ୨. ଅଭିଭାନୁ । ୩. ସୁରମ୍ୟ । ୪. ସୁରଜିତ । ୫. ଦ୍ରବିଡ଼ । ୬. ବୀର ।

ଊର୍ଦ୍ଧ୍ୱଗ ମହାଶକ୍ତି ପୁଣି । ଆବର ସହ ଓଜ ବେନି ॥
ଅପରାଜିତ ମିଶି ପୁଣ । ଏ ଦଶ ଲକ୍ଷ୍ମଣାନନ୍ଦନ ॥
୧୬ ବୃକ ହର୍ଷ[1] ଅନିଳ ତିନି । ଗୃଧ୍ର ବହ୍ୱନ୍ନାନ୍ନାଦ[2] ଘେନି ॥
ମହାଂସ[3] ପାବନ ଏ ପୁଣି । ଆବର ବହ୍ନି କ୍ଷୁଧି[4] ବେନି ॥
ଏମନ୍ତ ରୂପେ ଦଶ ସୁତ । ମିତ୍ରବିନ୍ଦାର ହେଲେ ଜାତ ॥
୧୭ ସଂଗ୍ରାମଜିତ ବୃହତ୍‌ସେନ । ଆବର ଶୂର ପ୍ରହରଣ ॥
ଯେ ଅରିଜିତ ଜୟ ବେନି । ସୁଭଦ୍ର ବାମ ଆୟୁ ତିନି ॥
ସତ୍ୟକ ମିଶି ଦଶ ସୁତ । ଭଦ୍ରାର ଠାରୁ ହେଲେ ଜାତ ॥
୧୮ ଯେ ଦୀପ୍ତିମାନ ତାମ୍ରତପ୍ତ । ଏ ଆଦି ରୋହିଣୀର ସୁତ ॥
ରୁକ୍ମୀର ସୁତା ରୁକ୍ମବତୀ । ତା' ଠାରେ ପ୍ରଦ୍ୟୁମ୍ନର ଅତି ॥
ବଳିଷ୍ଠ ଅନିରୁଦ୍ଧ ହେଲେ । ହେ ନୃପ ! ଭୋଜକଟେ ଭଲେ ॥
୧୯ ଏ କୃଷ୍ଣପୁତ୍ରମାନଙ୍କର । ପୁତ୍ର-ପୌତ୍ରାଦିଏ ଆବର ॥
ହେ ନୃପ ! କୋଟି କୋଟି ହୋଇ । ଜନ୍ମ ହୋଇଲେ ତାଙ୍କ ଠାଇଁ ॥
କୃଷ୍ଣର ଠାରୁ ଯେହୁ ଜାତ । ତାଙ୍କର ଆହେ ପରୀକ୍ଷିତ ॥
ଅଷ୍ଟ ଅଧିକ ଶତ ପୁଣ । ଷୋଳ ସହସ୍ର ମାତାଗଣ ॥

ଶ୍ରୀପରୀକ୍ଷିତ୍ ଉବାଚ

୨୦ ବ୍ୟାସଙ୍କ ସୁତଙ୍କୁ ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ॥
ସେ ରୁକ୍ମୀ ଶତ୍ରୁର ପୁତ୍ରକୁ । କିମ୍ପାଇଁ ଦେଲା ଦୁହିତାକୁ ॥
ଯୁଦ୍ଧେ ସେ ରୁକ୍ମୀକି ମାଧବ । ପୂର୍ବରେ କଲେ ପରାଭବ ॥
କୃଷ୍ଣଙ୍କୁ ମାରିବାକୁ ସେହି । ଛିଦ୍ର କାଳକୁ ଥାଇ ଚାହିଁ ॥
ଦୁହେଁ ସେ ପରସ୍ପର ଅରି । ଅଟନ୍ତି ଯେ ରୁକ୍ମୀ ମୁରାରି ॥
ଏହାଙ୍କ ଯେ ଦୁହିତା ସୁତ । ବିବାହ ହେଲା କି ନିମିତ୍ତ ॥
ଏ କଥା ମୋତେ କହ ପୁଣ । ସମସ୍ତ ହେ ବ୍ୟାସନନ୍ଦନ ॥
୨୧ ପ୍ରବେଶ ହୋଇ ଯେ ନ ଥାଇ । ଯେ ଅବା ବଳି ଯାଇଥାଇ ॥
ବର୍ତ୍ତମାନରେ ଯେ ଆବର । ଇନ୍ଦ୍ରିୟଙ୍କୁ ଯେ ଅଗୋଚର ॥
ଦୂରରେ ଥାଇ ଅବା ଯେହି । ଯେ ଅନ୍ତରିତ ହୋଇଥାଇ ॥
ଏ କଥା ଯୋଗିମାନେ ପୁଣ । ଜାଣନ୍ତି ଉତ୍ତମ କରିଣ ॥

ଶ୍ରୀଶୁକ ଉବାଚ

୨୨ ରାଜା ପଚାରନ୍ତେ ଏମନ୍ତ । କହୁଅଛନ୍ତି ବ୍ୟାସସୁତ ॥
କୃଷ୍ଣସକାଶୁଁ ଅବମାନ । ସେ ରୁକ୍ମୀ ଲଭିଲେ ହେଁ ପୁଣ ॥

---

୧. ଅର୍କ । ୨ = ବହ୍ୱନ୍ନ + ଅନ୍ନାଦ ('ବହ୍ୱନ୍ନ' ସ୍ଥାନେ 'ବର୍ଦ୍ଧନ') ପାଠାନ୍ତର ।
୩. ମହାସ । ୪. ଯୁଧି ।

ତଥାପି ବଇରଭାବକୁ । ସ୍ମରନ୍ତେ ଭଉଣୀ ପୁଅକୁ ॥ ୮୫
ପ୍ରଦାନ କଲା ଦୁହିତାକୁ । କରନ୍ତେ ଭଗିନୀପ୍ରିୟକୁ ॥ ୮୬
୨୩ ସ୍ୱୟଂ ଅନଙ୍ଗ ଯେ ସାକ୍ଷାତ । ସେ ହୋଇଛନ୍ତି ଅଙ୍ଗବନ୍ତ ॥ ୮୭
ସେ ପରଦ୍ୟୁମ୍ନ ସେ କାଳରେ । ବୃତ ହୁଅନ୍ତେ ସେ କନ୍ୟାରେ ॥ ୮୮
ମିଳିଣ ଥିଲେ ଯେ ରାଜନେ । ତାହାଙ୍କୁ ଜିଣିଣ ସେ ସ୍ଥାନେ ॥ ୮୯
ହେ ନୃପ ! ଏକା ରଥକରେ । ହରିଲେ କନ୍ୟାକୁ ଯୁଦ୍ଧରେ ॥ ୯୦
୨୪ ରୁକ୍ମିଣୀଙ୍କର ସୁତା ଯେହି । ବିଶାଳ ଯାର ନେତ୍ର ଦୁଇ ॥ ୯୧
ଯା' ନାମ ଅଟେ ଚାରୁମତୀ । ସେ କନ୍ୟାକୁ ହେ ନରପତି ॥ ୯୨
କୃତବର୍ମାଙ୍କର କୁମର । ବିବାହ ହୋଇଲେ ଆବର ॥ ୯୩
୨୫ କୃଷ୍ଣସଙ୍ଗରେ ସେ ରୁକ୍ମୀର । ବଦ୍ଧ ହୋଇଲେହେଁ ବଇର ॥ ୯୪
ଆପଣା ଭଗିନୀର ପ୍ରିୟ । କରିବା ଅର୍ଥେ ଅତିଶୟ ॥ ୯୫
ସ୍ନେହପାଶରେ ପୁଣ ସେହି । ହେ ନୃପ ! ଅନୁବଦ୍ଧ ହୋଇ ॥ ୯୬
ବିବାହ ଅଧର୍ମ ତାଙ୍କର । ଏମନ୍ତ କଲେହେଁ ଗୋଚର ॥ ୯୭
ସେ ରୁକ୍ମୀ ଦୁହିତାର ସୁତ । ଯେ ଅନିରୁଦ୍ଧ ନାମେ ଖ୍ୟାତ ॥ ୯୮
ଆପଣା ନାତୁଣୀକି ତାଙ୍କୁ । ପ୍ରଦାନ କଲା ରୋଚନାକୁ ॥ ୯୯
୨୬ ହେ ନୃପ ! ସେହି ଉତ୍ସବରେ । ରୁକ୍ମିଣୀଙ୍କର ସଙ୍ଗତରେ ॥ ୧୦୦
ଶାମ୍ବ ପ୍ରଦ୍ୟୁମ୍ନ ଆଦି ହୋଇ । ରାମ କେଶବ ବେନି ଭାଇ ॥ ୧୦୧
ଯାହାର ଭୋଜକଟ ନାମ । କଲେ ସେ ପୁରକୁ ଗମନ ॥ ୧୦୨
୨୭ ସେ ବିଭା ନିବୃତ୍ତ ହୁଅନ୍ତେ । ଦନ୍ତବକ୍ରାଦି ନୃପେ ଯେତେ ॥ ୧୦୩
ଗର୍ବୀ ଅଟନ୍ତି ସେ ସମସ୍ତେ । ରୁକ୍ମୀକି କହିଲେ ଏମନ୍ତେ ॥ ୧୦୪
ବଳଦେବଙ୍କୁ ପଶାଖେଳେ । ବିଶେଷେ ଜିଣ ତୁ ଏକାଳେ ॥ ୧୦୫
୨୮ ଯେଉଁ ହେତୁରୁ ହେ ନୃପତି । ପଶାଖେଳ ସେ ନ ଜାଣନ୍ତି ॥ ୧୦୬
ଏଣୁ ନିଶ୍ଚୟେ ଏହାଙ୍କର । ବିପତ୍ତି ହେବ ବଳୀୟାର ॥ ୧୦୭
ଏହା କହନ୍ତେ ରୁକ୍ମୀ ତହିଁ । ସେ ବଳଦେବଙ୍କୁ ଡକାଇ ॥ ୧୦୮
ପଶାମାନଙ୍କେ ସେ କାଳରେ । ଖେଳିଲା ରାମସଙ୍ଗତରେ ॥ ୧୦୯
୨୯ ପ୍ରଥମୁଁ ରେବତୀର ସାଇଁ । ଘେନିଲେ ଶଏ ହୋଡ଼[1] ତହିଁ ॥ ୧୧୦
ତାହା ଜିଣନ୍ତେ ସେହୁ ରୁକ୍ମୀ । ସହସ୍ରେ ହୋଡ଼ ହଳପାଣି ॥ ୧୧୧
ପୁଣି ହିଁ କରନ୍ତେ ଆଦାନ । ରୁକ୍ମୀ ତା' ଜିଣିଲା ବହନ ॥ ୧୧୨
ଦଶ ସହସ୍ର ତହିଁ ପଣ । ରାମ ଘେନନ୍ତେ ରୁକ୍ମୀ ପୁଣ ॥ ୧୧୩
ଜିଣନ୍ତେ ସେ ରାମଙ୍କୁ ଅତି । ହସିଲା କଳିଙ୍ଗନୃପତି ॥ ୧୧୪
ଉଚ୍ଚରେ ଦନ୍ତକୁ ଦେଖାଇ । ହସନ୍ତେ ଦନ୍ତବକ୍ର ତହିଁ ॥ ୧୧୫

୧. ହୋଡ଼ = ବାଜି ରଖି ଖେଳାଯିବା ଖେଳ; ପଣ ।

| | | | | |
|---|---|---|---|---|
| | ସେ କଥା ଦେଖନ୍ତେ ହେଁ ପୁଣି | । କ୍ରୋଧ ନ କଲେ ହଳପାଣି | ॥ | ୧୧୬ |
| ୩୦ | ସେ ରୁକ୍ମୀ ତଦନ୍ତରେ ପୁଣ | । ଗ୍ରହଣ କଲା ଲକ୍ଷେ ପଣ | ॥ | ୧୧୭ |
| | ସେହି ହୋଡ଼କୁ ନୀଳାମ୍ବର | । ସେଠାରେ ଜିଣିଲେ ସେ ଥର | ॥ | ୧୧୮ |
| | କପଟ କରି ରୁକ୍ମୀ ତହିଁ | । ବୋଇଲା ଜିଣିଲଇଁ ମୁହିଁ | ॥ | ୧୧୯ |
| ୩୧ | ସେ ରାମ ଅଟନ୍ତି ଶ୍ରୀମନ୍ତ | । କ୍ରୋଧରେ ହୋଇଣ କ୍ଷୋଭିତ | ॥ | ୧୨୦ |
| | ପର୍ବସମୟରେ ଯେମନ୍ତ | । ସାଗର ହୁଅଇ କ୍ଷୋଭିତ | ॥ | ୧୨୧ |
| | ଅରୁଣ ବର୍ଣ୍ଣ ନୟନରେ | । ଜାତ ହୁଅନ୍ତେ କ୍ରୋଧଭରେ | ॥ | ୧୨୨ |
| | ହେ ନୃପ ! ଦଶକୋଟି ପଣ | । ପୁଣି ହିଁ କଲେ ସେ ଗ୍ରହଣ | ॥ | ୧୨୩ |
| ୩୨ | ଛଳକୁ ତହିଁ ଆଶ୍ରେ କରି | । ସେ ହୋଡ଼କୁ ହିଁ ହଳଧାରୀ | ॥ | ୧୨୪ |
| | ଜିଣନ୍ତେ ରୁକ୍ମୀ ପୁଣ ତହିଁ | । ବୋଇଲା ଜିଣିଲଇଁ ମୁହିଁ | ॥ | ୧୨୫ |
| | ଯଉଁ ମଧ୍ୟସ୍ଥେ ଦେଖୁଥିଲେ | । ରୁକ୍ମୀ ଜିଣିଲା ସେ ବୋଇଲେ | ॥ | ୧୨୬ |
| ୩୨(କ) | ଉତ୍ତମ କରି ଦନ୍ତମାନ | । ତହିଁ ଦେଖାନ୍ତେ ହେ ରାଜନ | ॥ | ୧୨୭ |
| | ଦନ୍ତବକ୍ର ହିଁ ସେ ରୂପରେ | । ବଚନ ବୋଇଲା ସଭାରେ | ॥ | ୧୨୮ |
| | ତେଣୁ କ୍ରୋଧରେ ପୂର୍ଣ୍ଣ ହୋଇ | । ତୁନି ହୋଇଲେ ରାମ ତହିଁ | ॥ | ୧୨୯ |
| ୩୩ | ଆକାଶବାଣୀ ସେ କାଳରେ | । ବୋଇଲା ଏମନ୍ତ ରୂପରେ | ॥ | ୧୩୦ |
| | ଧର୍ମରେ ରେବତୀରମଣ | । ଜିଣିଅଛନ୍ତି ଏହି ପଣ | ॥ | ୧୩୧ |
| | ବଚନେ ରୁକ୍ମୀ ଯା କହଇ | । ନିଶ୍ଚୟେ ମିଥ୍ୟା ସେ ଅଟଇ | ॥ | ୧୩୨ |
| ୩୪ | ଦୁଷ୍ଟ ରାଜନ୍ୟମାନଙ୍କରେ | । ପ୍ରେରିତ ହୋଇ ତଦନ୍ତରେ | ॥ | ୧୩୩ |
| | ବିଦର୍ଭଦେଶଦଣ୍ଡଧାରୀ | । ସେ ବାଣୀ ଅନାଦର କରି | ॥ | ୧୩୪ |
| | କାଳରେ ହୁଅନ୍ତେ ପ୍ରେରିତ | । ଆବର ହସନ୍ତେ ବହୁତ | ॥ | ୧୩୫ |
| | ଆକ୍ଷେପ କରି ବଚନକୁ | । ବୋଇଲା ସଂକରଷଣଙ୍କୁ | ॥ | ୧୩୬ |
| ୩୫ | ଗୋପାଳ ଅଟ ତୁମ୍ଭେମାନେ | । ତୁମ୍ଭେ ବିଚରୁ ଥାଅ ବନେ | ॥ | ୧୩୭ |
| | ପଶାଖେଳରେ ଅବିରତ | । ତୁମ୍ଭେ ଯେ ଅଟ ଅପଣ୍ଡିତ | ॥ | ୧୩୮ |
| | ନୃପତିମାନେ ଏ ସଂସାରେ | । ଖେଳନ୍ତି ପଶାମାନଙ୍କରେ | ॥ | ୧୩୯ |
| | ବାଣମାନ ହିଁ ସେ ଜାଣନ୍ତି | । ତୁମ୍ଭର ପରାଏ ନୁହନ୍ତି | ॥ | ୧୪୦ |
| ୩୬ | ସେ ରୁକ୍ମୀ ଏମନ୍ତ ପ୍ରକାରେ | । ଆକ୍ଷେପ କରନ୍ତେ ସେଠାରେ | ॥ | ୧୪୧ |
| | ନୃପତିମାନଙ୍କରେ ପୁଣ | । ଉପହାସିତ ହୁଅନ୍ତେଣ | ॥ | ୧୪୨ |
| | କ୍ରୁଦ୍ଧ ହୋଇ ସେ ହଳଧର | । ପରିଘ ଟେକିଣ ସତ୍ୱର | ॥ | ୧୪୩ |
| | ରୁକ୍ମୀକି ମଙ୍ଗଳସଭାରେ | । ବିନାଶ କଲେ ସେ କାଳରେ | ॥ | ୧୪୪ |
| ୩୭ | କଳିଙ୍ଗରାଜାକୁ ସତ୍ୱରେ | । ଧରିଣ ଦଶ ପାହୁଣ୍ଡରେ | ॥ | ୧୪୫ |

୩୨(କ) ତଥେତ୍ୟାଦି କଳିଙ୍ଗୋଽପି ଦନ୍ତାନ୍ ସନ୍ଦର୍ଶୟନ୍ ନୃପ ।
ତତଃ କୋପପରୀତାତ୍ମା ତୂଷ୍ଣୀମାସୀଦ୍ଧଳାୟୁଧଃ ॥

| | | | | |
|---|---|---|---|---|
| | କ୍ରୁଦ୍ଧ ହୋଇଣ ଦନ୍ତମାନ | । ତାହାର କଲେ ନିପାତନ | ।। | ୧୪୬ |
| | ବିବୃତ[1] ଦନ୍ତମାନଙ୍କରେ | । ଯେ ହସିଥିଲା ସେ ସଭାରେ | ।। | ୧୪୭ |
| ୩୮ | ବିଶେଷେ ଭିନ୍ନ ଯାହାଙ୍କର | । ହୋଇଲା ବାହୁ ଉରୁ ଶିର | ।। | ୧୪୮ |
| | ରୁଧିରେ ବ୍ୟାପତ ହୋଇଲେ | । ଯେ ଅନ୍ୟ ନୃପମାନେ ଥିଲେ | ।। | ୧୪୯ |
| | ରାମ-ପରିଘେ ପୀଡ଼ା ପାଇ | । ଭୟରେ ଗଲେ ସେ ପଳାଇ | ।। | ୧୫୦ |
| ୩୯ | ଯେ ନିଜ ଶଳା ହେ ରାଜନ | । ସେ ରୁକ୍ମୀ ହୁଅନ୍ତେ ନିଧନ | ।। | ୧୫୧ |
| | ରୁକ୍ମିଣୀ-ରାମଠାରେ ତହିଁ | । ସ୍ନେହଭଙ୍ଗରୁ ଭୟ ପାଇ | ।। | ୧୫୨ |
| | ସାଧୁ ଅସାଧୁ ବାଣୀ କିଛି | । ବୋଇଲେ ନାହିଁ ଶିରିବଚ୍ଛି | ।। | ୧୫୩ |
| ୪୦ | ଯେ ସର୍ବ ଅର୍ଥ[2] ମାନେ ଥିଲେ | । ସେ ଯାହାଙ୍କର ସିଦ୍ଧ ହେଲେ | ।। | ୧୫୪ |
| | ମଧୁସୂଦନ ଯାହାଙ୍କର | । ଆଶ୍ରୟ ଅଟନ୍ତି ଆବର | ।। | ୧୫୫ |
| | ରାମଙ୍କୁ ଆଦି ସେ ଯଦୁଏ | । ସେ ଭୋଜକଟରୁ ସଭିଏଁ | ।। | ୧୫୬ |
| | ଅନିରୁଦ୍ଧଙ୍କୁ ତଦନ୍ତରେ | । ନବୋଢ଼ା କନ୍ୟା ସହିତରେ | ।। | ୧୫୭ |
| | ବସାଇ କରିଣ ରଥରେ | । ଚଳିଲେ କୁଶସ୍ଥଳୀପୁରେ | ।। | ୧୫୮ |
| | ହେ କୃଷ୍ଣ କମଳଲୋଚନ | । ତୁମ୍ଭେ ଯେ ପତିତପାବନ | ।। | ୧୫୯ |
| | ମୁଁ ଯେ ପତିତ ଦୀନବନ୍ଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ।। | ୧୬୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ଶ୍ରୀମଦନିରୁଦ୍ଧବିବାହେ ରୁକ୍ମିବଧୋ
ନାମ ଏକଷଷ୍ଟିତମୋଽଧ୍ୟାୟଃ ।।

## ଦ୍ୱିଷଷ୍ଟିତମ ଅଧ୍ୟାୟ

ଦ୍ୱିଯୁକ୍‌ଷଷ୍ଟିତମେ ପ୍ରୋକ୍ତମନିରୁଦ୍ଧସ୍ୟ ରୋଧନମ୍ ।
କନ୍ୟୟା ରମମାଣସ୍ୟ ବାଣେନ ବହୁବାହୁନା ।। ୧
ଅନିରୁଦ୍ଧୋଦ୍‌ବହେଽନ୍ୟସ୍ମିନ୍ ବାଣଯାଦବସଂଯୁଗେ ।
ଶ୍ରୀକୃଷ୍ଣଃ ଶ୍ରୀହରଂ ଜିତ୍ୱା ବାଣବାହୂନଥାଚ୍ଛିନତ୍ ।। ୨

ଶ୍ରୀରାଜା ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ରାଜା ପରୀକ୍ଷିତ | । ଶୁଣ ହେ ବ୍ୟାସଙ୍କର ସୁତ | ।। | ୧ |
| | ଯେ ଅନିରୁଦ୍ଧ ଯଦୂତ୍ତମ | । ବାଣକନ୍ୟା ଯେ ଉଷା ନାମ | ।। | ୨ |
| | ତାହାକୁ ବିବାହ ସେ କଲା | । ତହିଁରେ ଘୋର ଯୁଦ୍ଧ ହେଲା | ।। | ୩ |
| | ଶଙ୍କର-ହରିଙ୍କ ମଧ୍ୟରେ | । ସେ ସବୁ ତୁମ୍ଭେ କହିବାରେ | ।। | ୪ |
| | ଯୋଗ୍ୟ ଅଟ ହେ ମହାଯୋଗୀ | । ଶୁଣିମାକୁ ମୁଁ ଅନୁରାଗୀ | ।। | ୫ |

୧. ବିକୃତ ।   ୨. ଅର୍ଥ = ଅଭ୍ୟୁଦୟଶତ୍ରୁବଧାଦି ।

ଶ୍ରୀଶୁକ ଉବାଚ

୨ କହନ୍ତି ବ୍ୟାସଙ୍କ କୁମର । ମହାତ୍ମା ବଳିନୃପତିର ॥ ୬
ଶଏ ପୁତ୍ରଙ୍କ ମଧ୍ୟେ ତହିଁ । ବାଣ ହିଁ ଜ୍ୟେଷ୍ଠ ଯେ ଅଟଇ ॥ ୭
ବାମନରୂପୀ ଶ୍ରୀହରିଙ୍କୁ । ଯେ ଦେଇଥିଲା ମେଦିନୀକୁ ॥ ୮
ବାଣ ତା' ଅଉରସ ସୁତ । ସର୍ବଦା ଶିବଭକ୍ତିରତ ॥ ୯
ମାନ୍ୟ ବଦାନ୍ୟ ବୁଦ୍ଧିମନ୍ତ । ସେ ସତ୍ୟସନ୍ଧ ଦୃଢ଼ବ୍ରତ ॥ ୧୦
ଶୋଣିତ ନାମରେ ତାହାର । ପୂର୍ବେ ଯେ ଥିଲା ରମ୍ୟ ପୁର ॥ ୧୧
ତହିଁ ସେ ରାଜ୍ୟ କରୁଥିଲା । ଶମ୍ଭୁଙ୍କ ପ୍ରସାଦ ଲଭିଲା ॥ ୧୨
ତେଣେ ସେ ସକଳ ତ୍ରିଦଶ । ହେଲେ ତା' କିଂକର ସଦୃଶ ॥ ୧୩
ସହସ୍ର ବାହୁମାନ ତାର । ବାଦ୍ୟମାନଙ୍କେ ସେ ଅସୁର ॥ ୧୪
ତାଣ୍ଡବନୃତ୍ୟେ ପଶୁପତି । ହରଷ କରାଇଲା ଅତି ॥ ୧୫
୩ ଯେ ସର୍ବପ୍ରାଣିଙ୍କ ଈଶ୍ୱର । ଯେ ଭକ୍ତବତ୍ସଳ ଆବର ॥ ୧୬
ଶରଣ୍ୟ ଅଟନ୍ତି ଯେ ପୁଣ । ସେ ମହାଦେବ ଭଗବାନ ॥ ୧୭
ବାଣକୁ ବରମାନଙ୍କରେ । ଲୋଭ କରାନ୍ତେ ସେ କାଳରେ ॥ ୧୮
ପୁରପାଳକ କରିବାକୁ । ବାଣ ବରିଲା ସେ ରୁଦ୍ରଙ୍କୁ ॥ ୧୯
୪ ସେ ବାଣ ଏକଦିନକରେ । ଦୁର୍ମଦ ହୋଇଣ ଯୁଦ୍ଧରେ[୧] ॥ ୨୦
ଶିବ ଯେ ଥିଲେ ପାରୁଶରେ । ତାଙ୍କୁ କହିଲା ଏ ରୂପରେ ॥ ୨୧
ସୂର୍ଯ୍ୟର ପ୍ରାୟେ ଯା' କିରଣ । ଏମନ୍ତ କିରୀଟରେ ପୁଣ ॥ ୨୨
ସେ ମହାଦେବଙ୍କ ଚରଣ । ପୁଣି ସ୍ପରଶ କରନ୍ତେଣ ॥ ୨୩
୫ ସମସ୍ତ ଲୋକମାନଙ୍କର । ତୁ ଗୁରୁ ଅଟୁ ତୁ ଈଶ୍ୱର ॥ ୨୪
ହେ ମହାଦେବ ମୁଁ ତୁମ୍ଭଙ୍କୁ । କରୁଅଛି ଯେ ପ୍ରଣାମକୁ ॥ ୨୫
ଅପୂର୍ଣ୍ଣ କାମ ଯାହାଙ୍କର । ସେହି ପୁରୁଷମାନଙ୍କର ॥ ୨୬
ଯେ କାମ ସଂପୂର୍ଣ୍ଣ କରଇ । ସେ କଳ୍ପବୃକ୍ଷ ଅଟୁ ତୁହି ॥ ୨୭
୬ ତୁମ୍ଭେ ଯା' କରିଛ ପ୍ରଦାନ । ସେ ଏ ସହସ୍ର ଭୁଜମାନ ॥ ୨୮
କେବଳ ଭାର ଏ ମୋହର । ହୋଇଲା ତ୍ରିଲୋକେ ଆବର ॥ ୨୯
ତୋ' ବିନୁ ମୋ' ସମାନ ହୋଇ । ପ୍ରତିଯୋଦ୍ଧା ମୁଁ ଦେଖୁନାହିଁ ॥ ୩୦
୭ ଇଚ୍ଛା କରନ୍ତେ ଯୁଝିବାକୁ । ମୁଁ ପୁଣି ଦିଗ୍‌ଦନ୍ତୀମାନଙ୍କୁ ॥ ୩୧
କଣ୍ଡୁରେ ହୁଅନ୍ତେ ପୂରିତ । ଏ ମୋର ସହସ୍ରେକ ହସ୍ତ ॥ ୩୨
ଏଣେ ପର୍ବତମାନଙ୍କୁ ହିଁ । ଚୂର୍ଣ୍ଣ କରନ୍ତେ ଗମିଲଇଁ ॥ ୩୩
ହେ ଆଦ୍ୟ ସେ ଦିଗକୁଞ୍ଜରେ । ପଳାଇଗଲେ ମୋ' ଭୟରେ ॥ ୩୪
୮ ସେ ଭଗବାନ ଶୂଳପାଣି । ସେ ବାଣାସୁରବାଣୀ ଶୁଣି ॥ ୩୫

୧. ବୀର୍ଯ୍ୟରେ ।

ବୋଇଲେ କ୍ରୁଦ୍ଧ ହୋଇ ଯେବେ । କେତୁ ଭାଜିବ ତୋର ତେବେ ॥ ୩୬
ଯେ ତୋର ଗର୍ବ ବିନାଶିବ । ମୋହ' ସମାନ ହୋଇଥିବ ॥ ୩୭
ସେ ଲୋକସଙ୍ଗତେ ସମର । ହେ ମୂଢ଼ ହୋଇବ ତୋହର ॥ ୩୮
୯ ଏମନ୍ତ କହନ୍ତେ ଈଶ୍ୱର । କୁମତି ସେ ବାଣ ଅସୁର ॥ ୩୯
ହେ ନୃପ ! ଶିବ-ଆଜ୍ଞାକୁ ହି । ପ୍ରତୀକ୍ଷା କରି ଥାନ୍ତେ ରହି ॥ ୪୦
କୁତ୍ସିତବୁଦ୍ଧି ସେ ଅଟଇ । ସ୍ୱବୀର୍ଯ୍ୟ ନାଶ ଯିବା ପାଇଁ ॥ ୪୧
ହୃଷ୍ଟ ହୋଇଣ ସେ କାଳରେ । ପ୍ରବେଶ ହେଲା ସ୍ୱପୁରରେ ॥ ୪୨
୧୦ ବାଣାସୁରର ଅନୁପମ । ଯେବଣ କନ୍ୟା ଉଷା ନାମ ॥ ୪୩
ସେ ଏକଦିନେ ସ୍ୱପନରେ । ଯାହାକୁ ପୂର୍ବ ସମୟରେ ॥ ୪୪
ଦେଖି ନ ଥିଲା କେବେ ପୁଣି । କେବଳମାତ୍ର ଥିଲା ଶୁଣି ॥ ୪୫
ସେ ଅନିରୁଦ୍ଧକାନ୍ତସଙ୍ଗେ । ସୁରତ ଆରମ୍ଭିଲା ରଙ୍ଗେ ॥ ୪୬
୧୧ ସେହି ସ୍ୱପ୍ନରେ ଉଷା ପୁଣ । ଅନିରୁଦ୍ଧଙ୍କୁ ନ ଦେଖିଣ ॥ ୪୭
ହେ କାନ୍ତ ଅଛ କଉଁଠାରେ । ଏମନ୍ତ ବୋଲି ବିହ୍ୱଳରେ ॥ ୪୮
ସଖୀଙ୍କ ମଧ୍ୟରେ ଉଠିଲା । ଅତ୍ୟନ୍ତ ଲଜ୍ଜିତ ହୋଇଲା ॥ ୪୯
୧୨ ଯେ ମନ୍ତ୍ରୀ ସେ ବାଣାସୁରର । କୁମ୍ଭାଣ୍ଡ ନାମ ଅଟେ ତାର ॥ ୫୦
ତା' ସୁତାନାମ ଚିତ୍ରଲେଖା । ଉଷାର ଅତି ପ୍ରିୟସଖା[୧] ॥ ୫୧
ଯେ ନିଜ ସଖୀ ସେ ଉଷାକୁ । କୌତୁକେ ପୁଛିଲା ବାକ୍ୟକୁ ॥ ୫୨
୧୩ ହେ ସୁଭ୍ରୁ ! କାହାକୁ ଗୋ ପୁଣ । କହ କରୁଛୁ ଅନ୍ୱେଷଣ ॥ ୫୩
ତୋ' ମନୋରଥ କି ପ୍ରକାର । ଭର୍ତ୍ତାକୁ ଆଜହିଁ ତୋହର ॥ ୫୪
ହେ ରାଜପୁତ୍ରି ! ଯେଣୁ ମୁହିଁ । ଲକ୍ଷିତ କରି ପାରୁନାହିଁ ॥ ୫୫

ଶ୍ରୀଉଷା ଉବାଚ

୧୪ ଉଷା ଏମନ୍ତ ବଚନକୁ । କହନ୍ତି ସେ ଚିତ୍ରଲେଖାକୁ ॥ ୫୬
କେହୁଣି ପୁରୁଷକୁ ମୁହିଁ । ସ୍ୱପ୍ନ ମଧ୍ୟରେ ଦେଖିଲଇଁ ॥ ୫୭
ଶ୍ୟାମ ଅଟଇ ତା' ବରଣ । କମଳପ୍ରାୟେକ ଲୋଚନ ॥ ୫୮
ସେ ପିନ୍ଧିଛନ୍ତି ପୀତାମ୍ବର । ପ୍ରଲମ୍ବ ବାହୁଯୁଗ ତାର ॥ ୫୯
ବନିତାମାନଙ୍କର ଅତି । ହୃଦୟଙ୍ଗମ ସେ ଅଟନ୍ତି ॥ ୬୦
୧୫ ଖୋଜୁଅଛି ମୁଁ ସେ କାନ୍ତକୁ । ପିଆଇ ଅଧରମଧୁକୁ ॥ ୬୧
ବହୁତ ସ୍ପୃହା ମୁଁ କରନ୍ତେ । ବୃଜିନସମୁଦ୍ରରେ ମୋତେ ॥ ୬୨
ପକାଇ କରିଣ ସେ କାହିଁ । ନିଶ୍ଚୟେ ଗଲା ନ ଜାଣଇଁ ॥ ୬୩

ଶ୍ରୀଚିତ୍ରଲେଖା ଉବାଚ

୧୬ ଉଷାକୁ ଏ ରୂପରେ ବାଣୀ । କହନ୍ତି ଚିତ୍ରଲେଖା ପୁଣି ॥ ୬୪
ତୋହର ବ୍ୟସନକୁ ମୁହିଁ । ହେ ସଖି ! ନିଶ୍ଚେ ନାଶିବଇଁ ॥ ୬୫

---
୧. ପ୍ରିୟସଖା = ସଖୀ ।

| | | | | | |
|---|---|---|---|---|---|
| | ଏ ତିନି ଲୋକରେ ଯାହାକୁ | । | କରି ତୁ ଥିବୁ ଭାବନାକୁ | ॥ | ୬୬ |
| | ଯେ ତୋର ମନହର୍ତ୍ତା ତାକୁ | । | କହ ଆଣିମି ସେ ଲୋକକୁ | ॥ | ୬୭ |
| ୧୭ | ସେ ଚିତ୍ରଲେଖା ଏହା କହି | । | ଦେବ-ଗନ୍ଧର୍ବ-ସିଦ୍ଧଙ୍କୁ ହିଁ | ॥ | ୬୮ |
| | ଚାରଣ-ପନ୍ନଗମାନଙ୍କୁ | । | ଦୈତ୍ୟଙ୍କୁ ସେ ବିଦ୍ୟାଧରଙ୍କୁ | ॥ | ୬୯ |
| | ଯକ୍ଷଙ୍କୁ ମନୁଷ୍ୟଙ୍କୁ ପୁଣ | । | ଲେଖିଲା ଯେ ଯାହା ରୂପେଣ | ॥ | ୭୦ |
| ୧୮ | ମନୁଷ୍ୟଙ୍କର ମଧ୍ୟେ ତହିଁ | । | ଲେଖିଲା ବୃଷ୍ଣିମାନଙ୍କୁ ହିଁ | ॥ | ୭୧ |
| | ଯେ ଶୂର ବସୁଦେବ ଦୁଇ | । | ଯେ ରାମ-କୃଷ୍ଣ ବେନି ଭାଇ | ॥ | ୭୨ |
| | ତାହାଙ୍କୁ ଚିତ୍ରଲେଖା ପୁଣ | । | ଲେଖିଲା ଉତ୍ତମ କରିଣ | ॥ | ୭୩ |
| | ଉଷା ପ୍ରଦ୍ୟୁମ୍ନଙ୍କୁ ଦେଖିଲା | । | [୧]ତତ୍‌କାଳ ଲଜ୍ଜିତ ହୋଇଲା | ॥ | ୭୪ |
| ୧୯ | ଯେ ଚିତ୍ରେ ଲେଖା ହୋଇଛନ୍ତି | । | ସେ ଅନିରୁଦ୍ଧଙ୍କୁ ଝଟିତି | ॥ | ୭୫ |
| | ସେ ଉଷା ଦେଖି ଲାଜ ପାଇ | । | ତଳକୁ ବଦନ ନୁଆଇଁ | ॥ | ୭୬ |
| | ସେ ଏହି ଏହି ବୋଲି ପୁଣ | । | ହେ ! ନୃପ କହିଲା ହସିଣ | ॥ | ୭୭ |
| ୨୦ | ସେ ଚିତ୍ରଲେଖା ହେ ରାଜନ | । | ଯୋଗିନୀ ଅଟଇ ସେ ପୁଣ | ॥ | ୭୮ |
| | ସେ ଅନିରୁଦ୍ଧ କୃଷ୍ଣନାତି | । | ଏମନ୍ତ ଜାଣି ତାକୁ ଅତି | ॥ | ୭୯ |
| | କୃଷ୍ଣପାଳିତ ଦ୍ୱାରକାରେ | । | ଚଳିଲା ଆକାଶମାର୍ଗରେ | ॥ | ୮୦ |
| ୨୧ | ସେ ପୁରେ ଅନିରୁଦ୍ଧ ଶୋଇ | । | ଥାଆନ୍ତେ ଚିତ୍ରଲେଖା ଯାଇଁ | ॥ | ୮୧ |
| | ଯୋଗକୁ ଆଶ୍ରୟ କରିଣ | । | ସେ ଅନିରୁଦ୍ଧକୁ ଘେନିଣ | ॥ | ୮୨ |
| | ଶୋଣିତପୁରରେ ଚଳିଲା | । | ତାକୁ ସଖୀକି ଦେଖାଇଲା | ॥ | ୮୩ |
| ୨୨ | ସୁନ୍ଦର ବର ଯେ ଅଟନ୍ତି | । | ସେ ଅନିରୁଦ୍ଧଙ୍କୁ ଝଟିତି | ॥ | ୮୪ |
| | ସେ ଉଷା କଲା ବିଲୋକନ | । | ହରଷ ହେଲା ତା' ବଦନ | ॥ | ୮୫ |
| | ଦେଖି ନ ପାରନ୍ତି ଯା' ନରେ | । | ଏମନ୍ତ ଆପଣା ପୁରରେ | ॥ | ୮୬ |
| | ସେ ଅନିରୁଦ୍ଧସଙ୍ଗତେଣ | । | ହେ ନୃପ ! କଲା ସେ ରମଣ | ॥ | ୮୭ |
| ୨୩ | ଅମୂଲ୍ୟ ବସ୍ତ୍ରମାନଙ୍କରେ | । | ମାଳାଚନ୍ଦନରେ ଧୂପରେ | ॥ | ୮୮ |
| | ପ୍ରଦୀପ ଆସନ ଆଦିରେ | । | ପାନ ଭୋଜନ-ଭକ୍ଷଙ୍କରେ | ॥ | ୮୯ |
| | ବାକ୍ୟମାନଙ୍କେ ଏ ସେବାରେ | । | ପୂଜିତ ହୁଅନ୍ତେ ନିର୍ଭରେ | ॥ | ୯୦ |
| ୨୪ | ସେ କନ୍ୟାପୁରମଧ୍ୟେ ତହିଁ | । | ସେ ଅନିରୁଦ୍ଧ ଗୁପ୍ତ ହୋଇ | ॥ | ୯୧ |
| | ରହନ୍ତେ ଉଷାସଙ୍ଗତରେ | । | ପ୍ରବୃଦ୍ଧ ସ୍ନେହରେ ନିର୍ଭରେ | ॥ | ୯୨ |
| | ଉଷାସକାଶୁଁ ଅତିଶୟ | । | ହୃତ ହୁଅନ୍ତେ ତା' ଇନ୍ଦ୍ରିୟ | ॥ | ୯୩ |
| | ଦିନସମୂହମାନେ ଗଲେ | । | ତା' ଅନିରୁଦ୍ଧ ନ ଜାଣିଲେ | ॥ | ୯୪ |
| ୨୫ | ତ୍ୟକତ କଲା ଯେ ଲଜ୍ଜାକୁ | । | ଯେ ଅତିହୃଷ୍ଟ ସେ ଉଷାକୁ | ॥ | ୯୫ |
| | ସେ ଯଦୁବୀର ସେ ରୂପରେ | । | ଭୋଗ କରନ୍ତେ ସେ କାଳରେ | ॥ | ୯୬ |
| | ଲୁଚା ନ ଯାନ୍ତି ଯଉଁ ଚିହ୍ନେ | । | ତେଣେ ଲକ୍ଷିଲେ ତାକୁ ଜନେ | ॥ | ୯୭ |

୧. ପ୍ରଦ୍ୟୁମ୍ନଙ୍କୁ ଶ୍ୱଶୁର ଜାଣି ଲଜ୍ଜିତ ହେଲା ।

୨୬ ଯୋଦ୍ଧାଏ କଲେ ନିବେଦନ । ହେ ନୃପ ! ହୁଅ ସାବଧାନ ॥ ୯୮
କନ୍ୟାର କୁଳକୁ ଦୂଷିତ । ଅଟଇ ଯଉଁ ବିଚେଷ୍ଟିତ ॥ ୯୯
ତୁମ୍ଭ ଦୁହିତାର ଏ ସ୍ଥାନେ । ତାହା ଲକ୍ଷିଲୁଁ ଆମ୍ଭେମାନେ ॥ ୧୦୦
୨୭ ନିରପରାଧ ଆମ୍ଭେମାନେ । ଆମ୍ଭମାନଙ୍କେ ସ୍ୱଭୁବନେ ॥ ୧୦୧
ଯେ ନିତ୍ୟେ ରକ୍ଷିତ ଅଟନ୍ତି । ଯାକୁ ପୁରୁଷେ ନ ଦେଖନ୍ତି ॥ ୧୦୨
ଏମନ୍ତ କନ୍ୟାର ଦୂଷଣ । ଆମ୍ଭେ ନ ଜାଣୁଁ ନୃପ ! ଶୁଣ ॥ ୧୦୩
୨୮ ଦୂଷଣ ଶୁଣି ଦୁହିତାର । ବ୍ୟଥିତ ହୋଇ ବାଣାସୁର ॥ ୧୦୪
ସେଠାରୁ ଅତ୍ୟନ୍ତ ତ୍ୱରାରେ । ମିଳିଲା କନ୍ୟାର ପୁରରେ ॥ ୧୦୫
ଅନିରୁଦ୍ଧକୁ ବିଲୋକନ । ସେଠାରେ କଲା ହେ ରାଜନ ॥ ୧୦୬
୨୯ କନ୍ଦର୍ପ-ଅଙ୍ଗୁଁ ଜନ୍ମ ଯାର । ଭୁବନେ ଏକ ଯେ ସୁନ୍ଦର ॥ ୧୦୭
ଯେ ଶ୍ୟାମ 'ପିଶଙ୍ଗ[1]ବସନ । ପଙ୍କଜପ୍ରାୟେ ଯା' ଲୋଚନ ॥ ୧୦୮
ପ୍ରଲମ୍ବ ଯାର ଭୁଜମାନେ । କୁନ୍ତଳ[2]କୁଣ୍ଡଳକିରଣେ ॥ ୧୦୯
ସସ୍ମିତ ଯେ ଅବଲୋକନ । ତେଣେ ମଣ୍ଡିତ ଯା ଆନନ ॥ ୧୧୦
୩୦ ସର୍ବମଙ୍ଗଳା ପ୍ରିୟାସଙ୍ଗେ । ପଶା ଖେଳନ୍ତେ ନାନାରଙ୍ଗେ ॥ ୧୧୧
ସେ ଉଷା ଅଙ୍ଗସଙ୍ଗେ ଯହିଁ । ସ୍ତନକୁଙ୍କୁମ ଅଛି ରହି ॥ ୧୧୨
ବସନ୍ତ ମଲ୍ଲୀରେ ଆଶ୍ରିତ । ଯେ ମାଳା ହୋଇଛି ସଂତତ ॥ ୧୧୩
ତାହାକୁ ବାହୁଯୁଗଳରେ । ଯେ ଧରିଛନ୍ତି ଏ ରୂପରେ ॥ ୧୧୪
ସେ ଉଷାକନ୍ୟାର ଅଗ୍ରତେ । ଯେ ବସିଅଛନ୍ତି ନିଶ୍ଚିନ୍ତେ ॥ ୧୧୫
ସେ ଅନିରୁଦ୍ଧଙ୍କୁ ଦେଖିଣ । ବିସ୍ମିତ ହୋଇଲା ସେ ବାଣ ॥ ୧୧୬
୩୧ ଯେ ଶସ୍ତ୍ର ଟେକିଛନ୍ତି କରେ । ଏମନ୍ତ ଅନେକ ଯୋଦ୍ଧାରେ ॥ ୧୧୭
ବେଷ୍ଟିତ ହୋଇ ବାଣାସୁର । ପ୍ରବେଶ ହୁଅନ୍ତେ ସତ୍ୱର ॥ ୧୧୮
ତାହାକୁ ପ୍ରଦ୍ୟୁମ୍ନନନ୍ଦନ । ହେ ନୃପ ! କରି ବିଲୋକନ ॥ ୧୧୯
ଲୋହପରିଘ ଘେନି ତହିଁ । ରହିଲେ ବ୍ୟବସ୍ଥିତ ହୋଇ ॥ ୧୨୦
ମାରିବା ଅର୍ଥେ ଦଣ୍ଡଧାରୀ । ଯେସନେ ରହଇ ଭାସ୍କରି[3] ॥ ୧୨୧
୩୨ ଯୋଦ୍ଧାଏ ଚାରି ପାରୁଶରେ । ଧାବନ୍ତେ ଧରିବା ଇଚ୍ଛାରେ ॥ ୧୨୨
ତାହାଙ୍କୁ ପ୍ରଦ୍ୟୁମ୍ନନନ୍ଦନ । ମାଇଲେ ମୁଷଳ ଘେନିଣ ॥ ୧୨୩
ଶୂକରଯୂଥପ ଯେସନ । କରେ କୁକ୍କୁରଙ୍କୁ ନିଧନ ॥ ୧୨୪
ତାଙ୍କର ହୋଇଲା ନିର୍ଭିନ୍ନ । ମସ୍ତକ-ଉରୁ ଭୁଜମାନ ॥ ୧୨୫
ଏମନ୍ତେ ପ୍ରଦ୍ୟୁମ୍ନନନ୍ଦନ । ଯୋଦ୍ଧାଙ୍କୁ କରନ୍ତେ ନିଧନ ॥ ୧୨୬
ସେ ପୁରୁଁ ବାହାର ହୋଇଲେ । ଅତି ସତ୍ୱରେ ପଳାଇଲେ ॥ ୧୨୭
୩୩ ଆପଣା ସୈନ୍ୟକୁ ଏମନ୍ତେ । ସେ ଅନିରୁଦ୍ଧ ବିନାଶନ୍ତେ ॥ ୧୨୮

---

୧. ପିଶଙ୍ଗ = ପୀତ । ୨. କୁନ୍ତଳ = କେଶଗୁଚ୍ଛ । ୩. ଭାସ୍କରଙ୍କ ପୁତ୍ର ଅର୍ଥାତ୍ ଯମ ।

| | | | |
|---|---|---|---|
| ବଳିନନ୍ଦନ ବାଣାସୁର | । ଅଟଇ ଅତି ବଳୀୟାର | ।। | ୧୨୯ |
| କୁପିତ ହୋଇଣ ବିଶେଷେ | । [1]ତାଙ୍କୁ ବାନ୍ଧିଲା ନାଗପାଶେ | ।। | ୧୩୦ |
| ଯେ ଅନିରୁଦ୍ଧର ବନ୍ଧନ | । ଊଷା ତା' କରିଣ ଶ୍ରବଣ | ।। | ୧୩୧ |
| ଲୋତକକଳାରେ ଆକୁଳ | । ହୁଅନ୍ତେ ନୟନଯୁଗଳ | ।। | ୧୩୨ |
| ବିହ୍ୱଳ ଶୋକବିଷାଦରେ | । ହୋଇ କାନ୍ଦିଲା ସେ କାଳରେ | ।। | ୧୩୩ |
| ଦଶମସ୍କନ୍ଧ କରି ଗୀତ | । ବ୍ରାହ୍ମଣ ଦୀନବନ୍ଧୁ ଚିତ୍ତ | ।। | ୧୩୪ |
| ନିତ୍ୟରେ ହୋଇଲା ହରଷ | । ସୁଜନେ ଶୁଣି ହୁଅ ତୋଷ | ।। | ୧୩୫ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମଦନିରୁଦ୍ଧବନ୍ଧୋ
ନାମ ଦ୍ୱିଷଷ୍ଟିତମୋଽଧ୍ୟାୟଃ ।।

## ତ୍ରିଷଷ୍ଟିତମ ଅଧ୍ୟାୟ

ତ୍ରିଯୁକ୍‌ଷଷ୍ଟିତମେ ଚାଥ ବାଣଯାଦବସଙ୍ଗରେ ।
ସ୍ତୁତିର୍ଜ୍ୱରେଣ ରୁଦ୍ରେଣ ବାଣବାହୁଭିଦୋ ହରେଃ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ଶୁକ ମହାଯତି | । ଶୁଣ ପରୀକ୍ଷ ନରପତି | ।। | ୧ |
| | ଅନିରୁଦ୍ଧଙ୍କୁ ନ ଦେଖନ୍ତେ | । ସେ ଅନିରୁଦ୍ଧ ବନ୍ଧୁ ଯେତେ | ।। | ୨ |
| | ଶୋଚନା କରନ୍ତେ ତାଙ୍କରି | । ଗଲା ବରଷାମାସ ଚାରି | ।। | ୩ |
| ୨ | ତାଙ୍କର ବନ୍ଧନବାର୍ତ୍ତାକୁ | । ଆବର ଯୁଦ୍ଧାଦି କର୍ମକୁ | ।। | ୪ |
| | ନାରଦଙ୍କର ଠାରୁ ପୁଣ | । ସମସ୍ତେ ଶ୍ରବଣ କରିଣ | ।। | ୫ |
| | ଯାଙ୍କ ଦେବତା ଭଗବାନ | । ଏମନ୍ତ ସର୍ବ ଯଦୁଜନ | ।। | ୬ |
| | ସମସ୍ତେ ଶୋଣିତପୁରରେ | । ଗମନ କଲେ ସେ କାଳରେ | ।। | ୭ |
| ୩ | ପ୍ରଦ୍ୟୁମ୍ନ ଯୁଯୁଧାନ ବେନି | । ଗଦ ସାରଣ ସାମ୍ବ ତିନି | ।। | ୮ |
| | ଏଥୁ ଅନ୍ତରେ ପୁଣ ନନ୍ଦ | । ଆବର ଭଦ୍ର ଉପନନ୍ଦ | ।। | ୯ |
| | ଏ ଆଦି ଗଲେ ବାଣପୁରୀ | । ରାମକୃଷ୍ଣଙ୍କୁ ଆଗେ କରି | ।। | ୧୦ |
| ୪ | ଦ୍ୱାଦଶ ଅକ୍ଷୌହିଣୀ ସୈନ୍ୟେ | । ସଂଯୁତ ହୋଇ ଯଦୁମାନେ | ।। | ୧୧ |
| | ସେ ବାଣାସୁରପୁର ବେଗେ | । ରୁନ୍ଧିଲେ ଯାଇଁ ସର୍ବଦିଗେ | ।। | ୧୨ |
| ୫ | ସେ ପୁରେ ପୁର ତୋଟାମାନ | । ପ୍ରାକାର ଅଟ୍ଟାଳିକା ଆନ | ।। | ୧୩ |
| | ଆବର ପୁରଦ୍ୱାରମାନ | । ସମସ୍ତଦିଗେ କଲେ ଭଗ୍ନ | ।। | ୧୪ |

୧. କାମାସକ୍ତମତେର୍ଦୁଃଖଂ ସ୍ତ୍ରୀସଙ୍ଗେନ ଭବେଦ୍ ବହୁ ।
ଇତି ଖ୍ୟାପୟିତୁଂ ଲୋକେ ପୌତ୍ରାହରଣମୁଚ୍ୟତେ ।।

ଏମନ୍ତ ଦେଖିଣ ସେ ବାଣ । କ୍ରୋଧରେ ଆବିଷ୍ଟ ହୋଇଣ ॥ ୧୫
ତେତିକି ସୈନ୍ୟଙ୍କୁ ଘେନିଲା । ସେ ପୁରୁଁ ବାହାର ହୋଇଲା ॥ ୧୬
୬ ବାଣାସୁରର ନିମିତ୍ତରେ । ଆରୋହି ନନ୍ଦିବୃଷଭରେ ॥ ୧୭
ସେ ଭଗବାନ ଉମାକାନ୍ତ । ପ୍ରମଥଗଣେ ହୋଇ ବୃତ ॥ ୧୮
ଯୁଝିଲେ ସୁତ[୧] ସହିତରେ । ସେ ରାମକୃଷ୍ଣଙ୍କ ସଙ୍ଗରେ ॥ ୧୯
୭ କୃଷ୍ଣ-ଶଙ୍କର ବେନିଙ୍କର । ଅତ୍ୟନ୍ତ ତୁମୁଳ ସମର ॥ ୨୦
ହୋଇଲା ବ୍ୟବସ୍ଥିତ ହୋଇ । ଯା' ଶୁଣି ରୋମ ପୁଲକଇ ॥ ୨୧
ପ୍ରଦ୍ୟୁମ୍ନ-କାର୍ତ୍ତିକେୟଙ୍କର । ହେ ନୃପ ! ହୋଇଲା ସମର ॥ ୨୨
୮ କୁମ୍ଭାଣ୍ଡ-କୂପକର୍ଣ୍ଣତୁଲେ । ରେବତୀରମଣ ଯୁଝିଲେ ॥ ୨୩
ବାଣାସୁରର ପୁତ୍ରସଙ୍ଗେ । ସାମ୍ବର ଯୁଦ୍ଧ ହେଲା ରଙ୍ଗେ ॥ ୨୪
ବାଣାସୁରର ସଙ୍ଗତେଣ । ସାତ୍ୟକିଙ୍କର ହେଲା ରଣ ॥ ୨୫
୯ ବ୍ରହ୍ମାଦି ଶ୍ରେଷ୍ଠ ଦେବଗଣେ । ସିଦ୍ଧ-ଚାରଣ-ମୁନିଜନେ ॥ ୨୬
ଗନ୍ଧର୍ବାପ୍‌ସର ଯକ୍ଷମାନ । ଏ ସର୍ବେ ଚଢ଼ିଣ ବିମାନ ॥ ୨୭
ଦେଖିବା ନିମିତ୍ତେ ତୁରିତ । ସେଠାକୁ ହେଲେ ଉପଗତ ॥ ୨୮
୧୦| ଯେ ଭୂତ-ପ୍ରମଥ-ଗୁହ୍ୟକ । ଯେ ବା ବେତାଳ-ବିନାୟକ ॥ ୨୯
୧୧| ଡାକିନୀ-ଯାତୁଧାନମାନ । ଯେ ପ୍ରେତମାତୃଗଣେ ଆନ ॥ ୩୦
କୃଷ୍ମାଣ୍ଡ ଯେ ପିଶାଚମାନ । ବ୍ରହ୍ମରାକ୍ଷସମାନେ ଆନ ॥ ୩୧
ଏମାନେ ମହାଦେବଙ୍କର । ନିତ୍ୟେ ଅଟନ୍ତି ଅନୁଚର ॥ ୩୨
ଏ ସମସ୍ତଙ୍କୁ ସେ ଅଚ୍ୟୁତ । ଶାରଙ୍ଗଧନୁରୁ ଯେ ଚ୍ୟୁତ ॥ ୩୩
ସେ ତୀକ୍ଷ୍ଣ ଶରମାନଙ୍କରେ । ଘଉଡ଼ିଦେଲେ ସେ କାଳରେ ॥ ୩୪
୧୨ ନାନାପ୍ରକାର ଯା' ବିଧାନ । ସେ ଅସ୍ତ୍ରମାନ ତ୍ରିଲୋଚନ ॥ ୩୫
ପିନାକ-ଧନୁ ଧରି କରେ । ପେଷିଲେ ଶ୍ରୀକୃଷ୍ଣ ଉପରେ ॥ ୩୬
ବିସ୍ମିତ ନୋହି ନରହରି । ଶାରଙ୍ଗଧନୁ କରେ ଧରି ॥ ୩୭
ପ୍ରତ୍ୟସ୍ତ୍ରମାନଙ୍କୁ କରିଣ । ତା' ନିବାରିଲେ ତତକ୍ଷଣ ॥ ୩୮
୧୩ ବ୍ରହ୍ମ-ଅସ୍ତ୍ରକୁ ବ୍ରହ୍ମାସ୍ତ୍ରରେ । ବାୟବ୍ୟାସ୍ତ୍ରକୁ ପାର୍ବତରେ ॥ ୩୯
ଆଗ୍ନେୟ ଅସ୍ତ୍ରକୁ ଆବର । ପାର୍ଜନ୍ୟ ଅସ୍ତ୍ରେ କଲେ ଦୂର ॥ ୪୦
ଯେ ପାଶୁପତ ଅସ୍ତ୍ରଗତି । ତା' ନିଜ ଚକ୍ରେ କଲେ ଶାନ୍ତି ॥ ୪୧
୧୪ ଜୃମ୍ଭଣ-ଅସ୍ତ୍ରରେ ଶଙ୍କର । ଜୃମ୍ଭିତ ହୁଅନ୍ତେ ସତ୍ୱର ॥ ୪୨
ମୋହିତ କରାନ୍ତେ ତାହାଙ୍କୁ । ସେ ହରି ବାଣର ସୈନ୍ୟଙ୍କୁ ॥ ୪୩
ଖଡ଼ଗ-ଗଦା-ସାୟକରେ । ବିନାଶ କଲେ ତତ୍‌କ୍ଷଣରେ ॥ ୪୪
୧୫ ପ୍ରଦ୍ୟୁମ୍ନବାଣସମୂହରେ । ସ୍କନ୍ଦ ହିଁ ସମସ୍ତ ଶରୀରେ ॥ ୪୫
ପୀଡ଼ିତ ହୋଇ ରକ୍ତମାନ । ଦେହରୁ କରନ୍ତେ ମୋଚନ ॥ ୪୬

---

୧. କାର୍ତ୍ତିକେୟ ।

ଯୁଦ୍ଧରୁ ମୟୂରର ତୁଲେ । ହେ ନୃପ ! ଶୀଘ୍ର ପଳାଇଲେ ।। ୪୭
୧୬ କୁମ୍ଭାଣ୍ଡ କୂପକର୍ଣ୍ଣ ଦୁଇ । ମୁଷଳେ ସଂପୀଡ଼ିତ ହୋଇ ।। ୪୮
ଯୁଦ୍ଧେ ପଡ଼ନ୍ତେ ସେ ସତ୍ୱର । ଯେ ସୈନ୍ୟମାନେ ତାହାଙ୍କର ।। ୪୯
ନାଥ ମରନ୍ତେ ସର୍ବଦିଗେ । ପଳାଇଗଲେ ଅତିବେଗେ ।। ୫୦
୧୭ ଭାଜନ୍ତେ ସୈନ୍ୟ ଆପଣାର । ତା' ଦେଖିକରି ବାଣାସୁର ।। ୫୧
ଅତ୍ୟନ୍ତ କ୍ରୁଦ୍ଧ ସେ ହୋଇଣ । ସେ ସାତ୍ୟକିଙ୍କି ସେ ଛାଡ଼ିଣ ।। ୫୨
ଶ୍ରୀକୃଷ୍ଣଠାକୁ ସେ କାଳରେ । ସେଠାରୁ ଧାଇଁଲା ଶୀଘ୍ରରେ ।। ୫୩
୧୮ ପାଞ୍ଚଶ' ଧନୁ ଆକର୍ଷଣ । କରିଣ ଏକାବେଳକେଣ ।। ୫୪
ସେ ଏକ ଏକ ଧନୁଙ୍କରେ । ସେକାଳେ ବେନି ବେନି ଶରେ ।। ୫୫
ରଣଦୁର୍ମଦ ବାଣାସୁର । ସଂଧାନ କଲାକ ସତ୍ୱର ।। ୫୬
୧୯ ସେ ନରହରି ଭଗବାନ । ସେ ବାଣାସୁରଧନୁମାନ ।। ୫୭
ଛେଦିଲେ ଏକାବେଳକେଣ । ଆବର ସାରଥିକି ପୁଣ ।। ୫୮
ରଥକୁ ଅଶ୍ୱଙ୍କୁ ମାଇଲେ । ଜୟଶଙ୍ଖକୁ ପୂର୍ଣ୍ଣ କଲେ[1] ।। ୫୯
୨୦ କୋଟରା ନାମେ ତାର ମାତ । କେଶମାନଙ୍କୁ କରି ମୁକ୍ତ ।। ୬୦
ପ୍ରାଣମାନଙ୍କୁ ତନୟର । ରଖିବା ଅର୍ଥରେ ସତ୍ୱର ।। ୬୧
ଉଲଗ୍ନ ହୋଇଣ ସେ ବେଗେ । ରହିଲା ଶ୍ରୀକୃଷ୍ଣର ଆଗେ ।। ୬୨
୨୧ ତଦନ୍ତେ ଉଲଗନ କରି । ତାହାକୁ ନ ଦେଖନ୍ତେ ହରି ।। ୬୩
ଅନ୍ୟ ଦିଗକୁ ମୁଖ ଦେଇ । କ୍ଷଣେକ ରହିଲେ ସେଠାଇ ।। ୬୪
ସେହି କ୍ଷଣରେ ବାଣାସୁର । ରଥ ଯେ ଭାଜିଥିଲା ତାର ।। ୬୫
ଧନୁ ହିଁ ତାର ଛିଡ଼ିଥିଲା । ପୁରେ ସେ ପ୍ରବେଶ ହୋଇଲା ।। ୬୬
୨୨ ରଣେ ଆପଣା ଭୂତଗଣେ । ପଳାଇ ଯାନ୍ତେ ଏଣେ ତେଣେ ।। ୬୭
ତିନି ଚରଣ ଅଟେ ଯାର । ତ୍ରିଶିର ଅଟଇ ଯେ ଜ୍ୱର ।। ୬୮
କୃଷ୍ଣଙ୍କୁ ଧାଇଁଲା ସେ ବେଗ । ଦହିଲା ପ୍ରାଏ ଦଶ ଦିଗ ।। ୬୯
୨୩ ଏଥୁ ଅନ୍ତରେ ହେ ରାଜନ । ସେ ପ୍ରଭୁ ଦେବ ଭଗବାନ ।। ୭୦
ସେ ଶିବଜ୍ୱରକୁ ଦେଖିଲେ । ଜ୍ୱରେକ ଦେହୁଁ ଜାତ କଲେ ।। ୭୧
ସେ ରୁଦ୍ରଜ୍ୱର ବିଷ୍ଣୁଜ୍ୱର । ଦୁହେଁ ଯୁଝିଲେ ପରସ୍ପର ।। ୭୨
୨୪ ବିଷ୍ଣୁଜ୍ୱରର ବଳେ ତହିଁ । ସେ ଶିବଜ୍ୱର ପୀଡ଼ା ପାଇ ।। ୭୩
ଅନ୍ୟ ଠାବରୁ ଅଭୟକୁ । ନ ଲଭି କଲା ରୋଦନକୁ ।। ୭୪
ସେ ରୁଦ୍ରଜ୍ୱର ଭୟ ପାଇ । ଶରଣ ପଶିବାକୁ ଯାଇ ।। ୭୫
ପ୍ରଣତାଞ୍ଜଳି ହୋଇ ଅତି । ହୃଷୀକେଶଙ୍କୁ କଲା ସ୍ତୁତି ।। ୭୬

ଶ୍ରୀଜ୍ୱର ଉବାଚ

୨୫ ବିଷ୍ଣୁଙ୍କୁ ଏରୂପରେ ସ୍ତୁତି । ସେ ଶିବଜ୍ୱର କରୁଛନ୍ତି ।। ୭୭

---

୧. ବଜାଇଲେ ।

| | | | | |
|---|---|---|---|---|
| | ଅପରିମିତ ଶକ୍ତି ତୋର | । ତୋତେ ମୋହର ନମସ୍କାର | ।। | ୭୮ |
| | ତୁ ବ୍ରହ୍ମାଦିଙ୍କର ଈଶ୍ୱର | । ଆମ୍ଭ[୧] ସମସ୍ତ ପ୍ରାଣିଙ୍କର | ।। | ୭୯ |
| | ତୁମ୍ଭେ ବିଶୁଦ୍ଧ ଜ୍ଞାନଘନ | । ବିଶ୍ୱର ଯେ ଉତ୍ପତ୍ତି-ସ୍ଥାନ | ।। | ୮୦ |
| | ଆବର ଯେ ଅବା ସଂହାର | । କାରଣ ତୁମ୍ଭେ ଏହାଙ୍କର | ।। | ୮୧ |
| | ବ୍ରହ୍ମ ବୋଲିଣ ଯାକୁ କହି | । ହେ ପ୍ରଭୁ ତୁମ୍ଭେ ଅଟ ସେହି | ।। | ୮୨ |
| | ବେଦମାନଙ୍କେ ତୁହି ଜ୍ଞାତ | । ଆବର ଅଟୁ ତୁ ପ୍ରଶାନ୍ତ | ।। | ୮୩ |
| ୨୬ | କାଳ ଦଇବ କର୍ମ ଜୀବ | । ଯେ ଦ୍ରବ୍ୟ ପ୍ରକୃତି[୨] ସ୍ୱଭାବ | ।। | ୮୪ |
| | ଯେ ପ୍ରାଣ ଯେ ବା ଅହଂକାର | । ଯେ ଏକାଦଶେନ୍ଦ୍ରିୟ ଆର | ।। | ୮୫ |
| | ଏହାଙ୍କ ସମୂହ ଶରୀର | । ଯେ ବୀଜପ୍ରାୟେ କର୍ମ ତାର | ।। | ୮୬ |
| | ତହୁଁ ଅଙ୍କୁରରୂପ ଦେହ | । ପୁଣି ତହିଁରୁ ଯେ ପ୍ରବାହ | ।। | ୮୭ |
| | ଏ ମାୟା ତୋହର ଅଟଇ | । ଏ ପୁଣି ତୋତେ ନ ଲାଗଇ | ।। | ୮୮ |
| | ତୁମ୍ଭେ ଏମନ୍ତ, ମୁଁ ତୁମ୍ଭଙ୍କୁ | । ହେ ପ୍ରଭୁ ଗଲି ଶରଣକୁ | ।। | ୮୯ |
| ୨୭ | ଗ୍ରହଣ କର ଯା' ଲୀଳାରେ | । ସେ ନାନାରୂପ ଅବତାରେ | ।। | ୯୦ |
| | ଦେବତାମାନଙ୍କୁ ସାଧୁଙ୍କୁ | । ପାଳୁ ତୁ ବର୍ଣ୍ଣ-ଆଶ୍ରମକୁ | ।। | ୯୧ |
| | ହିଂସାରେ ବର୍ତ୍ତମାନ ଯେହି | । ମାରୁ ସେ ଦୈତ୍ୟମାନଙ୍କୁ ହିଁ | ।। | ୯୨ |
| | ଏମନ୍ତେ ଏ ଜନ୍ମ ତୁମ୍ଭର | । ଭାରହରଣେ ଧରଣୀର | ।। | ୯୩ |
| ୨୮ | ଦୁଃସହ ଯଉଁ ଶୀତଜ୍ୱର | । ଉତ୍କଟ ଅଟଇ ଆବର | ।। | ୯୪ |
| | ଏମନ୍ତ ତୁମ୍ଭ ତେଜେ ମୁହିଁ | । ଅତ୍ୟନ୍ତ ସଂତପ୍ତ ହେଲଇଁ | ।। | ୯୫ |
| | ଆଶାରେ ଅନୁବନ୍ଧ ହୋଇ | । ତୋହର ପାଦମୂଳକୁ ହିଁ | ।। | ୯୬ |
| | ଯାବତ ପ୍ରାଣୀ ନ ସେବଇ | । ତାବତ ତାର ତାପ ଥାଇ | ।। | ୯୭ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୨୯ | ବୋଲନ୍ତି ପ୍ରଭୁ ଭଗବାନ | । ମୁଁ ତୋତେ ହୋଇଲି ପ୍ରସନ୍ନ | ।। | ୯୮ |
| | ମୋ ଜ୍ୱରଠାରୁ ହେ ତ୍ରିଶିର | । ତୋହର ଭୟ ହୋଉ ଦୂର | ।। | ୯୯ |
| | ଏ ସଂବାଦକୁ ତୋର ମୋର | । ସ୍ମରଣ କରିବ ଯେ ନର | ।। | ୧୦୦ |
| | ତୋହରଠାରୁ ତାର ନିତ୍ୟେ | । ଭୟ ନୋହିବ କଦାଚିତେ | ।। | ୧୦୧ |
| ୩୦ | କୃଷ୍ଣ କହନ୍ତେ ଏ ବାକ୍ୟକୁ | । ସେ ରୁଦ୍ରଜ୍ୱର ଶ୍ରୀକୃଷ୍ଣଙ୍କୁ | ।। | ୧୦୨ |
| | ପ୍ରଣାମ କରି ଚଳିଗଲା | । ବାଣ ଯେ ନିଜପୁରେ ଥିଲା | ।। | ୧୦୩ |
| | ରଥ ଆରୋହି କୃଷ୍ଣଠାକୁ | । ଅଇଲା ଯୁଦ୍ଧ କରିବାକୁ | ।। | ୧୦୪ |
| ୩୧ | ସେ ବାଣାସୁର ତଦନ୍ତରେ | । ସହସ୍ରେ ବାହୁମାନଙ୍କରେ | ।। | ୧୦୫ |
| | ଧରିଣ ନାନା ଶସ୍ତ୍ରମାନ | । ଅତ୍ୟନ୍ତ କ୍ରୋଧରେ ବହନ | ।। | ୧୦୬ |
| | ଚକ୍ରାୟୁଧଙ୍କୁ ବାଣମାନ | । ମୋକ୍ଷଣ କଲା ହେ ରାଜନ | ।। | ୧୦୭ |

୧. ଚେତୟିତା ।     ୨. ଶରୀର ।

୩୨ ତୀକ୍ଷଣ ଦାଢ଼ମାନ ଯାର । ସେ ଚକ୍ର ଘେନି ଚକ୍ରଧର ॥ ୧୦୮
ଆସନ୍ତେ ଅସ୍ତ୍ରମାନ ତାର । ଛେଦନ କଲେ ବାରମ୍ବାର ॥ ୧୦୯
କାଟିଲେ ଭୁଜଙ୍କୁ ତାହାରି । ବୃକ୍ଷରୁ ଶାଖାପ୍ରାୟେ କରି ॥ ୧୧୦
୩୩ ସେ ବାଣାସୁରବାହୁମାନ । ସେ କାଳେ ହୁଅନ୍ତେ ଛେଦନ ॥ ୧୧୧
ସେ ଭଗବାନ ପଶୁପତି । ଭକ୍ତକୁ ଦୟା କରି ଅତି ॥ ୧୧୨
ସେଠାକୁ ହୋଇ ଉପଗତ । କୃଷ୍ଣଙ୍କୁ କହିଲେ ଏମନ୍ତ ॥ ୧୧୩

ଶ୍ରୀରୁଦ୍ର ଉବାଚ

୩୪ ସେ ଶ୍ରୀକୃଷ୍ଣଙ୍କୁ ଉମାପତି । ଏରୂପେ କରୁଛନ୍ତି ସ୍ତୁତି ॥ ୧୧୪
ବଚନମୟ ବ୍ରହ୍ମେ[୧] ଯେଣୁ । ତୁ ବ୍ରହ୍ମ ଗୂଢ଼ ଅଟୁ ତେଣୁ ॥ ୧୧୫
ତୁ ପୁଣ ଅଟୁ ପରଂ ଜ୍ୟୋତି । ନିର୍ମଳ-ଆତ୍ମା ଯେ ଅଟନ୍ତି ॥ ୧୧୬
ଆକାଶପ୍ରାଏକ ସେ ନିତି । କେବଳ ତୁମ୍ଭଙ୍କୁ ଦେଖନ୍ତି ॥ ୧୧୭
୩୫ ନଭ ଅଟଇ ନାଭି ଯାର । ମୁଖ ଯାହାର ବୈଶ୍ୱାନର ॥ ୧୧୮
ସ୍ୱର୍ଗ ହିଁ ଶିର ଦିଗ କର୍ଣ୍ଣ । ଧରଣୀ ଯାହାର ଚରଣ ॥ ୧୧୯
ଯାହାର ମନ ନିଶାକର । ଯାର ଲୋଚନ ଦିବାକର ॥ ୧୨୦
ମୁଁ ରୁଦ୍ର ଯାହା' ଅହଙ୍କାର । ସମୁଦ୍ର ଅଟେ ଯା' ଜଠର ॥ ୧୨୧
ଇନ୍ଦ୍ରାଦି ଲୋକପାଳେ ଆନ । ଯାର ଅଟନ୍ତି ଭୁଜମାନ ॥ ୧୨୨
୩୬ ଓଷଧି ଯାହା ରୋମମାନ । ଯାହାର କେଶମାନେ ଘନ[୨] ॥ ୧୨୩
ବିରିଞ୍ଚି ଅଟେ ଯାର ମତି । ମେଢ୍ର[୩] ଯାହାର ପ୍ରଜାପତି ॥ ୧୨୪
ଧର୍ମଦେବତା ଯା' ହୃଦୟ । ସେହି ପୁରୁଷ ତୁ ନିଶ୍ଚୟ ॥ ୧୨୫
ସମସ୍ତ ଜନମାନେ ପୁଣ । ତୋତେ କଳ୍ପନ୍ତି ଏ ରୂପେଣ ॥ ୧୨୬
୩୭ ଆହେ ଅକୁଣ୍ଠଧାମ ତୋର । ହେଲା ଏ ଯଉଁ ଅବତାର ॥ ୧୨୭
ଧର୍ମର ପାଳନା ଅର୍ଥରେ । ଜଗତରକ୍ଷାନିମିତ୍ତରେ ॥ ୧୨୮
ସମସ୍ତ ଲୋକପାଳ ଆମ୍ଭେ । ଆମ୍ଭଙ୍କୁ ପାଳନ୍ତେଣ ତୁମ୍ଭେ ॥ ୧୨୯
ଏ ତୋର ସପ୍ତଭୁବନକୁ । କରୁଛୁଁ ପରିପାଳନାକୁ ॥ ୧୩୦
୩୮ ସଜାତିଭେଦ ତୋର ନାହିଁ । ଆଦ୍ୟ ପୁରୁଷ ଅଟୁ ତୁହି ॥ ୧୩୧
ତୁ ପୁଣି ଅଟୁ ଅଦ୍ୱିତୀୟ । ବିଶୁଦ୍ଧ ଅଟୁ ଜ୍ଞାନମୟ ॥ ୧୩୨
ତୁ ସର୍ବଲୋକଙ୍କର ହେତୁ । ତୁ ପ୍ରଭୁ ଅଟୁଟି ଅହେତୁ ॥ ୧୩୩
ସର୍ବବିଷୟମାନଙ୍କର । ପ୍ରକାଶନିମିତ୍ତେ ଆବର ॥ ୧୩୪
ଏଥୁ ଅନ୍ତରେ ସ୍ୱମାୟାରେ । ସମସ୍ତ ଭୂତମାନଙ୍କରେ ॥ ୧୩୫
ଯଥାପ୍ରକାଶରେ ବହୁତ । ସେ ତୁମ୍ଭେ ହୁଅଟି ପ୍ରତୀତ ॥ ୧୩୬

୧. ବେଦ। ୨. ମେଘ। ୩. ଉପସ୍ଥ।

| | | | |
|---|---|---|---|
| ୩୯ | ଆହେ ଅପରିଚ୍ଛିନ୍ନ ଯେହ୍ନେ । | ଆପଣା ଛାୟାରୂପ ଘନେ | ॥ ୧୩୭ |
| | ଆଚ୍ଛନ୍ନ ହୋଇ ଦିବାକର । | ସେ ଛାୟା ଘନକୁ ଆବର | ॥ ୧୩୮ |
| | ସେ ମେଘେ ଅନ୍ତରିତ ହୋଇ । | ଘଟାଦି ଦ୍ରବ୍ୟ ଥାନ୍ତି ରହି | ॥ ୧୩୯ |
| | ତାହାଙ୍କୁ ପ୍ରକାଶ କରଇ । | ସେହି ରୂପରେ ପୁଣ ତୁହି | ॥ ୧୪୦ |
| | ଜୀବାବରକ ଯେଉଁ ଗୁଣ । | ତେଣେ ହେଲେହେଁ ଆବରଣ | ॥ ୧୪୧ |
| | ଆତ୍ମପ୍ରକାଶ ତୁ ଜୀବଙ୍କୁ । | ପ୍ରକାଶୁ ସତ୍ତ୍ୱାଦି ଗୁଣଙ୍କୁ | ॥ ୧୪୨ |
| ୪୦ | ପୁତ୍ର-ବନିତା-ଗୃହାଦିରେ । | ଆସକ୍ତ ହୋଇ କରି ନରେ | ॥ ୧୪୩ |
| | ମୋହିତମତି ତୋ' ମାୟାରେ । | ହୋଇଣ ଦୁଃଖସମୁଦ୍ରରେ | ॥ ୧୪୪ |
| | ଉଠନ୍ତି ତହିଁ ଉପରକୁ । | ମଜ୍ଜନ ହୁଅନ୍ତି ତଳକୁ | ॥ ୧୪୫ |
| ୪୧ | ତୁ ଦେବ ଦେଇଛୁ ଯାହାକୁ । | ଲଭି ସେ ମନୁଷ୍ୟଦେହକୁ | ॥ ୧୪୬ |
| | ତୁମ୍ଭ ଚରଣପଦ୍ମବେନି । | ଇନ୍ଦ୍ରିୟମାନଙ୍କୁ ନ ଜିଣି | ॥ ୧୪୭ |
| | ସେବା ନ କରେ ଯେଉଁ ଲୋକ । | ସେ ଶୋଚ୍ୟ ସେ ଆତ୍ମବଞ୍ଚକ | ॥ ୧୪୮ |
| ୪୨ | ଅନାତ୍ମ ଅନୀଶ୍ୱର ଯେହି । | ଆବର ଅପ୍ରିୟ ଅଟଇ | ॥ ୧୪୯ |
| | ଏମନ୍ତ ଇନ୍ଦ୍ରିୟାର୍ଥ ହୋଇ । | ଯେ ପୁତ୍ର ଆଦି, ତାଙ୍କ ପାଇଁ | ॥ ୧୫୦ |
| | ତୁ ଆତ୍ମା ତୁ ପ୍ରିୟ ଈଶ୍ୱର । | ତୋତେ ଛାଡ଼ଇ ଯେଉଁ ନର | ॥ ୧୫୧ |
| | ଅମୃତ ଛାଡ଼ି ତତକାଳ । | ନିଶ୍ଚେ ଭୁଞ୍ଜଇ ସେ ଗରଳ | ॥ ୧୫୨ |
| ୪୩ | ମୁଁ ଶିବ ବ୍ରହ୍ମା ଦେବତାଏ । | ନିର୍ମଳଚିତ୍ତ ଯେ ମୁନିଏ | ॥ ୧୫୩ |
| | ତୁ ଆତ୍ମା ଅଟୁ ତୁ ଈଶ୍ୱର । | ପ୍ରିୟ ହିଁ ଅଟୁ ତୁ ଆବର | ॥ ୧୫୪ |
| | ତୁମ୍ଭଙ୍କୁ ସର୍ବାତ୍ମଭାବରେ । | ପ୍ରପନ୍ନ ହୋଇଛୁଁ ନିତ୍ୟରେ | ॥ ୧୫୫ |
| ୪୪ | ଜଗତସର୍ଜନପାଳନ । | ଆବର ଯେ ବା ବିନାଶନ | ॥ ୧୫୬ |
| | ତୁମ୍ଭେ ଏମାନଙ୍କ କାରଣ । | ସମ ପ୍ରଶାନ୍ତ ଅଟ ପୁଣ | ॥ ୧୫୭ |
| | ସୁହୃଦ ଆତ୍ମା ତୁ ଈଶ୍ୱର । | ତୋ' ବିନୁ ନାହିଁ ଅନ୍ୟ ନର | ॥ ୧୫୮ |
| | ତୁ ଏକ, ଆତ୍ମାଙ୍କର ପୁଣ । | ହେ ଦେବ ! ଅଟୁ ଅଧିଷ୍ଠାନ | ॥ ୧୫୯ |
| | ସଂସାରୁ ମୋକ୍ଷ ହୋଇବାକୁ । | ଭଜନ କରୁଛୁଁ ତୁମ୍ଭଙ୍କୁ | ॥ ୧୬୦ |
| ୪୫ | ଏ ବାଣ ମୋର ପ୍ରିୟ ଅତି । | ମୋତେ ଏ ଅଛି ଅନୁବର୍ତ୍ତି | ॥ ୧୬୧ |
| | ହେ ଦେବ ! ଏ ବାଣାସୁରକୁ । | ମୁଁ ଦେଇଅଛି ଅଭୟକୁ | ॥ ୧୬୨ |
| | ସେ ଅନୁଗ୍ରହ ଏହାଠାରେ । | ତୁମ୍ଭେ ସଂପାଦ ସେ ରୂପରେ | ॥ ୧୬୩ |
| | ଯେସନେ ପ୍ରହରାଦଠାଇଁ । | ଅନୁଗ୍ରହକୁ କଲୁ ତୁହି | ॥ ୧୬୪ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୪୬ | ପାର୍ବତୀପତିଙ୍କି ଏମନ୍ତ । | କହୁ ଅଛନ୍ତି ଲକ୍ଷ୍ମୀକାନ୍ତ | ॥ ୧୬୫ |
| | ଯାହା କହିଲ ହେ ଶଙ୍କର । | ସେ ପ୍ରିୟ କରିବି ତୁମ୍ଭର | ॥ ୧୬୬ |
| | ଯେ ବ୍ୟବସାୟ ବା ତୁମ୍ଭର । | ସେ କଥା ସ୍ୱୀକାର ଆମ୍ଭର | ॥ ୧୬୭ |

୪୭ ବଳିତନୟ ବାଣାସୁର । ଏ ଅଟେ ଅବଧ୍ୟ ମୋହର ॥ ୧୬୮
ଭକତ ପ୍ରହରାଦ ମୋର । ତାକୁ ମୁଁ ଦେଇଅଛି ବର ॥ ୧୬୯
ତୋହର ବଂଶମାତ୍ରକୁ ହିଁ । ତାହାକୁ ନ ମାରିବି ମୁହିଁ ॥ ୧୭୦
୪୮ ଏହାର ଗର୍ବ ନାଶିବାକୁ । କାଟି ପକାଇଲି ଭୁଜକୁ ॥ ୧୭୧
ଭୂମିର ଭାରପ୍ରାଏ ହୋଇ । ଯେବଣ ସୈନ୍ୟେ ଥିଲେ ରହି ॥ ୧୭୨
ସେ ସୈନ୍ୟମାନଙ୍କୁ ବହୁତ । ଆବର କଲୁଁ ଆମ୍ଭେ ହତ ॥ ୧୭୩
୪୯ ଏହାର ଶିଷ୍ଟ ହୋଇକରି । ନିତ୍ୟେ ରହିବ ଭୁଜ ଚାରି ॥ ୧୭୪
ଅଜର ଅମର ହୋଇବ । କା' ଠାରୁ ଭୟ ନ ଲଭିବ ॥ ୧୭୫
ଏ ବାଣ ଅସୁର ତୁମ୍ଭର । ପାର୍ଷଦମଧ୍ୟେ ହେବ ବର ॥ ୧୭୬
୫୦ ଏ ରୂପେ ଲଭି ଅଭୟକୁ । ସେ ବାଣାସୁର ଶ୍ରୀକୃଷ୍ଣଙ୍କୁ ॥ ୧୭୭
ପ୍ରଣାମ କରି ମସ୍ତକରେ । ସେ ଅନିରୁଦ୍ଧଙ୍କୁ ରଥରେ ॥ ୧୭୮
ବସାଇ ଉଷାସଙ୍ଗତେଣ । ଆଣିଲା ଉତ୍ତମ କରିଣ ॥ ୧୭୯
୫୧ ଯେ ଦିବ୍ୟ-ବସ୍ତ୍ର-ଅଳଂକୃତ । ଅକ୍ଷୌହିଣୀରେ ହୋଇ ବୃତ ॥ ୧୮୦
ସେ ପତି-ପତ୍ନୀ ବେନି ଜଣ । କୃଷ୍ଣ ତା' ଅଗ୍ରତେ କରିଣ ॥ ୧୮୧
[1]ହରଷ ହୁଅନ୍ତେ ରୁଦ୍ରରେ । ଗମନ କଲେ ନିଜପୁରେ ॥ ୧୮୨
୫୨ ତୋରଣା ସହିତ ଧ୍ୱଜରେ । ଯେ ଅଳଂକୃତ ନିରନ୍ତରେ ॥ ୧୮୩
ମାର୍ଗ-ଅଙ୍ଗଣାମାନେ ଯହିଁ । ରହିଅଛନ୍ତି ସିଞ୍ଚା ହୋଇ ॥ ୧୮୪
ଗୋବିନ୍ଦ ସେ ରାଜଧାନୀରେ । ପ୍ରବେଶ ହେଲେ ସେ କାଳରେ ॥ ୧୮୫
ଶଙ୍ଖ-ଦୁନ୍ଦୁଭି ଯେ ଆନକ । ଏମାନେ ବାଜିଲେ ଅନେକ ॥ ୧୮୬
ବିପ୍ର ସୁହୃଦ ପୁରଜନ । ସତ୍‌କାର କଲେ ସେ ବହନ ॥ ୧୮୭
୫୩ ଶଙ୍କରସଙ୍ଗେ ଯେ ସମର । ସେ ଏ ବିଜୟ ଶ୍ରୀକୃଷ୍ଣର ॥ ୧୮୮
ଏହା ସ୍ମରଇ ଯେଉଁ ଜନ । ପ୍ରାତଃ ସମୟରୁ ଉଠିଣ ॥ ୧୮୯
କାହାର ଠାରୁ ପରାଜୟ । ତାହାର ନୁହଇ ନିଶ୍ଚୟ ॥ ୧୯୦
ଆଗମ ନିଗମରୁ ଆଣି । କହିଅଛନ୍ତି ବ୍ୟାସମୁନି ॥ ୧୯୧
ଦଶମସ୍କନ୍ଧ ଭାଗବତ । ଭାଷାପ୍ରବନ୍ଧେ କରି ଗୀତ ॥ ୧୯୨
ତରିବ ବୋଲି ଭବସିନ୍ଧୁ । ଭଣଇଁ ବିପ୍ର ଦୀନବନ୍ଧୁ ॥ ୧୯୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ବାଣାସୁରସଂଗ୍ରାମେ
ଶ୍ରୀକୃଷ୍ଣବିଜୟୋ ନାମ ତ୍ରିଷଷ୍ଟିତମୋଽଧ୍ୟାୟଃ ॥

---

୧. 'ଅନୁମୋଦିତଃ' — ଏହି ପାଠର ଅନୁବାଦ ।

# ଚତୁଃଷଷ୍ଟିତମ ଅଧ୍ୟାୟ

ଚତୁଃଷଷ୍ଟିତମେ କୃଷ୍ଣୋ ନୃଗଂ ପାପାଦମୋଚୟତ୍ ।
ବ୍ରହ୍ମସ୍ୱହାରିଦୋଷୋକ୍ତ୍ୟା ରାଜ୍ଞୋ ଦୃଷ୍ଟାନଶିକ୍ଷୟତ୍ ॥ ୧
ବିଭୂତିଭାଗ୍ୟଭୋଗାଦି-ମଦୋନ୍ନଦ୍ଧମନୋରଥାନ୍ ।
ଅନ୍ୱଶାସଦ୍ ଯଦୂନ୍ କୃଷ୍ଣୋ ନୃଗୋଦ୍ଧାରପ୍ରସଙ୍ଗତଃ ॥ ୨

ଶ୍ରୀବାଦରାୟଣିରୁବାଚ

୧ କହନ୍ତି ଶୁକ ମହାଯତି । ଶୁଣ ହେ ପାଣ୍ଡୁପଣନାତି ॥
ହେ ନୃପ ! ଏକ ଦିନକରେ । କ୍ରୀଡ଼ା କରିବା ନିମିତ୍ତରେ ॥
ସାମ୍ବ-ପ୍ରଦ୍ୟୁମ୍ନ-ଚାରୁ ଯେହି । ଭାନୁ-ଗଦକୁ ଆଦି ହୋଇ ॥
ଯେତେକ ଯଦୁସୁତେ ଥିଲେ । ଉପବନକୁ ସେ ଚଳିଲେ ॥
୨ ସେ ବନ ଅଟଇ ନିର୍ଜଳ । କ୍ରୀଡ଼ା କରନ୍ତେ ତତକାଳ ॥
ତୃଷାର୍ତ୍ତ ହୋଇ ଯଦୁସୁତେ । ସେ ବନେ ଜଳକୁ ଖୋଜନ୍ତେ ॥
ଅଦ୍ଭୁତ କରି ସେ କାଳରେ । ଜୀବେକ ଦେଖିଲେ କୂପରେ ॥
୩ ଯେ ଅଟେ ପର୍ବତସମାନ । ସେ କୃକଳାସ[୧] କୁ ଦେଖିଣ ॥
ସେ ଯଦୁସୁତେ ଦୟା ବହି । ଅତି ବିସ୍ମିତ-ଚିତ୍ତ ହୋଇ ॥
ସେ କୃକଳାସ-ଉଦ୍ଧାରଣେ । ଯତନ କଲେ ତତକ୍ଷଣେ ॥
୪ ଚର୍ମଦଣ୍ଡଡ଼ିମାନଙ୍କରେ । ସୂତ୍ରସନ୍ଧିତ ରଜ୍ଜୁଙ୍କରେ ॥
ସେ କୃକଳାସ ପଡ଼ିଥାନ୍ତେ । ତାକୁ ବାନ୍ଧିଣ ଯଦୁସୁତେ ॥
ଉଦ୍ଧାର କରିବାକୁ ତହିଁ । ସମର୍ଥ ନୋହିଲେ ସେ କେହି ॥
ଉତ୍ସୁକ ହୋଇଣ ସେ ଗଲେ । କୃଷ୍ଣଙ୍କୁ ନିବେଦନ କଲେ ॥
୫ ବିଶ୍ୱଭାବନ ଭଗବାନ । ନଳିନପ୍ରାଏ ଯା' ନୟନ ॥
ସେ କୃଷ୍ଣ ସେ ଉପବନରେ । ମିଳିଣ ଲୀଳାମାତ୍ରକରେ ॥
ସେ କୃକଳାସକୁ ଦେଖିଲେ । ବାମ କରରେ ଉଦ୍ଧାରିଲେ ॥
୬ ଉତ୍ତମଃଶ୍ଳୋକ ପୀତବାସ । କରରେ କରନ୍ତେ ସ୍ପରଶ ॥
ସେ କୃକଳାସରୂପ ପୁଣ । ହେ ନୃପ ! ତତ୍କାଳ ଛାଡ଼ିଣ ॥
ବସନ ମାଳା ଅଳଂକାର । ଅଦ୍ଭୁତ ହୋଇଛି ତାହାର ॥
ତପ୍ତକାଞ୍ଚନପ୍ରାଏ ବର୍ଣ୍ଣ । ହୋଇଲା ଦେବତାସମାନ ॥
୭ ସେ କଥା ଜାଣିଲେ ସମସ୍ତ । ଲୋକରେ କରିବାକୁ ଖ୍ୟାତ ॥
ତାହାକୁ ଯେ ତହିଁ କାରଣ । ତା' ପଚାରିଲେ ନାରାୟଣ ॥
ତୋ' ରୂପ ବରେଣ୍ୟ ଅଟଇ । ହେ ମହାଭାଗ ! କେ ବା ତୁହି ॥
ତୁ ଶ୍ରେଷ୍ଠ ଦେବତାମଧ୍ୟରେ । ଏମନ୍ତ ମଣୁଛି ମନରେ ॥

---

୧. ଏଣ୍ଠୁଅ।

| | | | | | |
|---|---|---|---|---|---|
| ୮ | ଏ ଦଶା କେବଣ କର୍ମରେ | । | ତୁମ୍ଭେ ଲଭିଲ ଏ ପ୍ରକାରେ | ।। | ୨୬ |
| | ଏଥିକି ଯୋଗ୍ୟ ତୁମ୍ଭେ ନୁହ | । | ମଙ୍ଗଳବନ୍ତ ତୁମ୍ଭ ଦେହ | ।। | ୨୭ |
| | ଆମ୍ଭଙ୍କୁ କହିବାକୁ ଯେବେ | । | ମଣୁଛ ଯୋଗ୍ୟ କରି ତେବେ | ।। | ୨୮ |
| | ଆମ୍ଭର ଇଚ୍ଛା ଶୁଣିମାକୁ | । | ଆମ୍ଭଙ୍କୁ କହ ଆପଣାକୁ | ।। | ୨୯ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୯ | କହନ୍ତି ବ୍ୟାସଙ୍କ କୁମର | । | ଆନନ୍ଦ[୧] ମୂର୍ତ୍ତି ଅଟେ ଯାର | ।। | ୩୦ |
| | ସେ କୃଷ୍ଣ ଏମନ୍ତ ରୂପରେ | । | ରାଜାକୁ ପୁଛନ୍ତେ ସେଠାରେ | ।। | ୩୧ |
| | ସୂର୍ଯ୍ୟର ପ୍ରାଏ ତେଜ ଯାର | । | ଏମନ୍ତ କିରୀଟେ ସତ୍ୱର | ।। | ୩୨ |
| | ପ୍ରଣାମ କରି ଶ୍ରୀକୃଷ୍ଣଙ୍କୁ | । | କହିଲା ଏମନ୍ତ ବାକ୍ୟକୁ | ।। | ୩୩ |

ଶ୍ରୀନୃଗ ଉବାଚ

| | | | | | |
|---|---|---|---|---|---|
| ୧୦ | କହନ୍ତି ନୃଗ ମହାରାଜା | । | କୃଷ୍ଣଙ୍କୁ କରି ଦିବ୍ୟ ପୂଜା | ।। | ୩୪ |
| | ମୁଁ ନୃଗନାମେ ମହାରାଜ | । | ଇକ୍ଷ୍ୱାକୁ ରାଜାର ଆତ୍ମଜ | ।। | ୩୫ |
| | ଦାନୀ ଯେବଣ ଜନମାନେ | । | ସେ ଖ୍ୟାତ ହୁଅନ୍ତେ ଭୁବନେ | ।। | ୩୬ |
| | ହେ ପ୍ରଭୁ ! ତୋ କର୍ଣ୍ଣକୁ ଯାଇ | । | ଯେବେ ମୁଁ ଛୁଇଁଣ ଥିବଇଁ | ।। | ୩୭ |
| ୧୧ | ସମସ୍ତ ପ୍ରାଣିମାନଙ୍କର | । | ଆତ୍ମା[୨] ସାକ୍ଷୀ ତୁ ଈଶ୍ୱର | ।। | ୩୮ |
| | ତୁ ନାଥ ତା' କି ଜାଣିନାହୁଁ | । | କାଳରେ ନାଶ ନୋହେ ଯେହୁ | ।। | ୩୯ |
| | ସେ ଦୃଷ୍ଟି ଅଛି ତୋର ତହିଁ | । | କହୁଛି ତୋ' ଆଜ୍ଞାରେ ମୁହିଁ | ।। | ୪୦ |
| ୧୨ | ଯେତେକ ରେଣୁ ଧରଣୀରେ | । | ଯେତେ ତାରକା ଆକାଶରେ | ।। | ୪୧ |
| | ବରଷାଧାରାମାନ ଯେତେ | । | ଗାଈ ମୁଁ ଦାନ ଦେଲି ତେତେ | ।। | ୪୨ |
| ୧୩ | ଯୁବାବୟସୀ ଯେ ଅଟନ୍ତି | । | ଯେ ହୋଇଥାନ୍ତି କ୍ଷୀରବତୀ | ।। | ୪୩ |
| | ଯେ ପୁଣ ଶୀଳରୂପବତୀ | । | ଯେ ଗୁଣେ ଯୁକ୍ତ ହୋଇଥାନ୍ତି | ।। | ୪୪ |
| | ସୁବର୍ଣ୍ଣମୟ ଶୃଙ୍ଗମାନ | । | ଯା'ଙ୍କର କପିଳ ବରଣ | ।। | ୪୫ |
| | ଯେ ବସ୍ତ୍ର-ମାଳା-ଆଭରଣ | । | ତେଣେ ଯେ ଅତ୍ୟନ୍ତ ଭୂଷଣ | ।। | ୪୬ |
| | ଅଟନ୍ତି ଯେ ବତ୍ସାସହିତ | । | ଯାହାଙ୍କ ଖୁରାରେ ରଜତ | ।। | ୪୭ |
| | ନ୍ୟାୟ-ଅର୍ଜିତ ଏ ଧେନୁଙ୍କୁ | । | ଦେଲି ମୁଁ ବ୍ରାହ୍ମଣମାନଙ୍କୁ | ।। | ୪୮ |
| ୧୪ | ଯେ ହୋଇଥାନ୍ତି ଅଳଂକୃତ | । | ଯେ ଅତି ଶୀଳଗୁଣବନ୍ତ | ।। | ୪୯ |
| | କୁଟୁମ୍ବମାନେ ପୁଣ ଅତି | । | ଯାହାର ଶୀର୍ଣ୍ଣ ହୋଇଥାନ୍ତି | ।। | ୫୦ |
| | ସତ୍ୟ ଅଟଇ ଯାଙ୍କ ବ୍ରତ | । | ତପେ ଯେ ଅଟନ୍ତି ବିଖ୍ୟାତ | ।। | ୫୧ |
| | [୩]ବ୍ରହ୍ମରେ ଯେ ଅତି ଉଦାର | । | ସନ୍ତ ଅଟନ୍ତି ଯେ ଆବର | ।। | ୫୨ |
| | ଯୁବା ବୟସ ଯାହାଙ୍କର | । | ବିପ୍ରଙ୍କ ମଧ୍ୟରେ ଯେ ସାର | ।। | ୫୩ |
| | ଏମନ୍ତ ବିପ୍ରଙ୍କୁ ମୁଁ ଦାନ | । | ଦେଲି ବହୁତ ଧେନୁମାନ | ।। | ୫୪ |

୧. ଅନନ୍ତ। ୨. ବୁଦ୍ଧିର। ୩. ବେଦ-ଅଧ୍ୟାପନରେ ଯେଉଁମାନେ ଅଭ୍ୟସ୍ତ।

୧୫ ଭୂମି ହିରଣ୍ୟ ଗାଈମାନ । ଦେଲି ମୁଁ ଦିବ୍ୟ ଗୃହ ଆନ ॥
ଅଶ୍ୱ କୁଞ୍ଜର କନ୍ୟାଗଣ । ଦେଲି ମୁଁ ଦାସୀସହିତେଣ ॥
ତିଳ-ରଜତ-ଶଯ୍ୟାମାନ । ଉତ୍ତମ ବସ୍ତ୍ର ରତ୍ନ ଆନ ॥
ଯେ ପରିଚ୍ଛଦ ରଥମାନ । ଦେଲି ମୁଁ ବହୁତ ଏମାନ ॥
ଯାଗେ କୃଷ୍ଣଙ୍କୁ ଆରାଧିଲି । କୂପପୋଖରୀ ଖୋଳାଇଲି ॥
୧୬ ମୋଠାରୁ ଏକଇ ବ୍ରାହ୍ମଣ । ପୂର୍ବେ ଯେ ଘେନିଥିଲା ଦାନ ॥
ତାହାର ଗାଈ ପଳାଇଲା । ଆସି ମୋ ଗୋଧନେ ମିଳିଲା ॥
ଏ ବିପ୍ରଗାଈ ବୋଲି ମୁହିଁ । ତାହାକୁ ଜାଣି ନ ଥିଲଇଁ ॥
ଅନ୍ୟ ବିପ୍ରକୁ ଆହେ ହରି । ସେ ଗାଈ ଦେଲି ଦାନ କରି ॥
୧୭ ସେ ଗାଈ ନିଅନ୍ତେ ବ୍ରାହ୍ମଣ । ତା' ସ୍ୱାମୀ ମାର୍ଗରେ ଦେଖିଣ ॥
ଏ ଧେନୁ ମୋହର ବୋଲିଣ । ବିପ୍ରକୁ ବୋଇଲା ବଚନ ॥
ସେ ପ୍ରତିଗ୍ରାହୀ ଏଥୁ ଅନ୍ତେ । ସ୍ୱାମୀକୁ ବୋଇଲା ଏମନ୍ତେ ॥
ଏ ଗାଈ ମୋହର ନିଶ୍ଚୟେ । ମୋତେ ଦେଇଛି ନୃଗ ରାଏ ॥
୧୮ ସେ ବିପ୍ରଦୁହେଁ ଏ ରୂପରେ । କଳି କରନ୍ତେ ପରସ୍ପରେ ॥
ଆପଣା କାର୍ଯ୍ୟ ସାଧିବାକୁ । ମୋତେ କହିଲେ ଏ ବାକ୍ୟକୁ ॥
କହିଲା ପ୍ରତିଗ୍ରାହୀ ତହିଁ । ଦାନ ଦେଇଛୁ ମୋତେ ତୁହି ॥
ସ୍ୱାମୀ ବୋଇଲା ହେ ରାଜନ । ମୋ ଦାନ କଲୁ ତୁ ହରଣ ॥
ଏ ବାକ୍ୟ ଶୁଣି ତାହାଙ୍କର । ସଂଭ୍ରମ ହୋଇଲା ମୋହର ॥
୧୯ ଧର୍ମକଷ୍ଟରେ ସେ କାଳରେ । ପଡ଼ି ମୁଁ ଏମନ୍ତ ରୂପରେ ॥
ଆଣି ମୁଁ ଦେଲି ଲକ୍ଷେ ଗାଈ । ଏ ଗାଈ ଦିଅ ମୋତେ ତୁହି ॥
ଏ ରୂପେ ବେନି ବ୍ରାହ୍ମଣଙ୍କୁ । ବହୁତ କଲି ପ୍ରାର୍ଥନାକୁ ॥
୨୦ ତୁମ୍ଭର କିଂକର ଅଟଇ । ଏ କଥା ଜାଣି ନ ଥିଲଇଁ ॥
ଅନୁଗ୍ରହକୁ ମୋହ' ଠାର । ହେ ବିପ୍ରେ ! ତୁମ୍ଭେ ଦୁହେଁ କର ॥
ଅଶୁଚି ନରକରେ ଯାଇଁ । କଷ୍ଟରେ ପଡୁଅଛି ମୁହିଁ ॥
ଉତ୍ତମ କରିଣ ସତ୍ୱର । ମୋତେ ଉଦ୍ଧରି ତୁମ୍ଭେ ଧର ॥
୨୧ ହେ ରାଜା[୧] ନ ନେମଇଁ ମୁହିଁ । ସ୍ୱାମୀ ଏମନ୍ତ କହି ତହିଁ ॥
ସେଠାରୁ କଲା ସେ ଗମନ । ଆରକ ପ୍ରତିଗ୍ରାହୀ ପୁଣ ॥
ଏ ଗାଈ ବିନୁ ଆନ ଗାଈ । ଅୟୁତସଂଖ୍ୟା ନ ଇଚ୍ଛଇଁ ॥
ଏମନ୍ତ କହି ଛାଡ଼ି ଗାଈ । ଗମନ କଲା ବେଗ ହୋଇ ॥
୨୨ ଏଥୁ ଅନ୍ତରେ ଯମଦୂତେ । ଯମନିକଟେ ନେଲେ ମୋତେ ॥
ହେ ଦେବଦେବ ଜଗନ୍ନାଥ । ମୋତେ ପୁଛିଲେ ସୂର୍ଯ୍ୟସୁତ ॥

---

୧. ''ରାଜନ୍'' ଇତି ପାଠେ । ''ରାଜସ୍ୱମ୍'' ଇତି ପାଠେ 'ରାଜସ୍ୱ' ଗୀତରେ ହେବ ।

୨୩ ପ୍ରଥମୁଁ ଆହେ ମହାରାଜ । ଅଶୁଭ କର୍ମକୁ ତୁ ଭୁଞ୍ଜ ॥ ୮୬
ଅଥବା ଶୁଭକୁ ତୁ ଭୁଞ୍ଜ । ମୋତେ ବୋଇଲେ ସୂର୍ଯ୍ୟାତ୍ମଜ[1] ॥ ୮୭
ଯେ ଅଟେ ଅତ୍ୟନ୍ତ ଭାସ୍ୱର । ଏମନ୍ତ ତୋ' ଦାନଧର୍ମର ॥ ୮୮
ଏ ବେନି ଲୋକଅନ୍ତକୁ ହିଁ । ଯେଣୁ ମୁଁ ଦେଖି ପାରୁନାହିଁ ॥ ୮୯
୨୪ ପ୍ରଥମୁଁ ଅଶୁଭକୁ ମୁହିଁ । ହେ ବୈବସ୍ୱତ ! ଭୁଞ୍ଜିବଇଁ ॥ ୯୦
ଏମନ୍ତ ବୋଲନ୍ତେଣ ମୁହିଁ । ଯମ ବୋଇଲେ ପଡ଼ ତୁହି ॥ ୯୧
ପଡ଼ନ୍ତେ ତହିଁ ଆହେ ହରି । ଆତ୍ମାକୁ କୃକଳାସ କରି ॥ ୯୨
ସେହି କ୍ଷଣରେ ମୁଁ ବହନ । ହେ ପ୍ରଭୁ ! କଲି ବିଲୋକନ ॥ ୯୩
୨୫ ବ୍ରହ୍ମଣ୍ୟଦେବ ଦାତା ତୁହି । ତୋହର ଦାସ ମୁଁ ଅଟଇ ॥ ୯୪
ତୁମ୍ଭ ଦରଶନେ ମୋହର । ପ୍ରାର୍ଥନା ଅଟେ ନିରନ୍ତର ॥ ୯୫
ମୋର ହେ କେଶବ ଆଜ ହିଁ । ସେ ଜ୍ଞାନ ଧ୍ୱସ୍ତ ହୋଇନାହିଁ ॥ ୯୬
୨୬ ସେ ତୁମ୍ଭେ ନେତ୍ରପଥେ ମୋର । କେମନ୍ତେ ହେଲ ସାକ୍ଷାତ୍‌କାର ॥ ୯୭
ଯାହାକୁ ନିତ୍ୟେ ଯୋଗେଶ୍ୱରେ । ଉପନିଷଦ-ନୟନରେ ॥ ୯୮
ନିର୍ମଳ ହୃଦୟେ ଚିନ୍ତନ୍ତି । ଯେ ପରମାତ୍ମା ରୂପେ ସ୍ଥିତି ॥ ୯୯
ସଂସାରୁ ମୋକ୍ଷ ହୋଏ ଯାର । ତୁମ୍ଭେ ସାକ୍ଷାତ[2] ତାଙ୍କ ଠାର ॥ ୧୦୦
[3]ଅତ୍ୟନ୍ତ ବ୍ୟସନରେ ନିତି । ଅନ୍ଧ ହୋଇଛି ମୋର ମତି ॥ ୧୦୧
ମୋ' ଅଗ୍ରେ ଯା' ହେଲ ସାକ୍ଷାତ । ଏ କଥା ଅଟଇ ଅଦ୍ଭୁତ ॥ ୧୦୨
୨୭| ହେ ଦେବଦେବ ଜଗନ୍ନାଥ । ହେ ପୁଣ୍ୟଶ୍ଳୋକ ହେ ଅଚ୍ୟୁତ ॥ ୧୦୩
୨୮| ଗୋବିନ୍ଦ ହେ ପୁରୁଷୋତ୍ତମ । ହେ ହୃଷୀକେଶ ନାରାୟଣ ॥ ୧୦୪
ହେ କୃଷ୍ଣ ହେ ଅବ୍ୟୟ ମୁହିଁ । ଦେବଗତିକି ଥାନ୍ତେ ଯାଇଁ ॥ ୧୦୫
ହେ ପ୍ରଭୁ ! ମୋତେ ତୁମ୍ଭେ ଜାଣ । ଯେହୁଣି କେହୁଣି ସ୍ଥାନେଣ ॥ ୧୦୬
ମୁଁ ରହିଥାନ୍ତେ ମୋ ଚିତ୍ତର । ଆସ୍ପଦ ହେଉ ପାଦ ତୋର ॥ ୧୦୭
୨୯ ସମସ୍ତ ପ୍ରାଣିଙ୍କ ଜନମ । ତୋଠାରୁ ତୁମ୍ଭଙ୍କୁ ପ୍ରଣାମ ॥ ୧୦୮
ଅପରିମିତ ମାୟା ତୋର । ତୁମ୍ଭଙ୍କୁ ମୋର ନମସ୍କାର ॥ ୧୦୯
ଆଶ୍ରୟ ସର୍ବପ୍ରାଣିଙ୍କର । ସଚ୍ଚିଦାନନ୍ଦ ରୂପ ତୋର ॥ ୧୧୦
ତୁ ଯୋଗମାନଙ୍କର ପତି । ତୁମ୍ଭଙ୍କୁ କରୁଛି ପ୍ରଣତି ॥ ୧୧୧
୩୦ ସେ ରାଜା କହି ଏ ରୂପରେ । ହରିଚରଣ ନିଜ ଶିରେ ॥ ୧୧୨
ସ୍ପରଶ କରିଣ ସେ ପୁଣ । କୃଷ୍ଣଙ୍କୁ ପ୍ରଣାମ କରିଣ ॥ ୧୧୩
ଆଜ୍ଞା ଦିଅନ୍ତେ ହରି ତହିଁ । ବିମାନଶ୍ରେଷ୍ଠକୁ ଆରୋହି ॥ ୧୧୪
ଦେଖୁଥାଆନ୍ତେ ସର୍ବ ନରେ । ଗମନ କଲା ସ୍ୱର୍ଗପୁରେ ॥ ୧୧୫
୩୧ ବ୍ରହ୍ମଣ୍ୟଦେବ ଭଗବାନ । ସେ କୃଷ୍ଣ ଦେବକୀନନ୍ଦନ ॥ ୧୧୬

---

୧. ସୂର୍ଯ୍ୟାତ୍ମଜ = ଯମ । ୨. ପ୍ରତ୍ୟକ୍ଷ । ୩. କୃକଳାସ ଜନ୍ମ ହେତୁକ ଦୁଃଖରେ ।

| | | | | |
|---|---|---|---|---|
| | ଧର୍ମାତ୍ମା ଅଟନ୍ତି ଅଚ୍ୟୁତ | । ଲୋକଙ୍କୁ କହିଲେ ଏମନ୍ତ | ॥ | ୧୧୭ |
| | ରାଜନ୍ୟମାନଙ୍କୁ ଆବର | । ଶିକ୍ଷା ଦିଅନ୍ତେ ଏ ପ୍ରକାର | ॥ | ୧୧୮ |
| ୩୨ | ଅଗ୍ନିର ପ୍ରାୟକ ଅତ୍ୟନ୍ତ | । ଯେ ହୋଇଥାଇ ତେଜୋବନ୍ତ | ॥ | ୧୧୯ |
| | ଅଳ୍ପ ହିଁ ଭୁଞ୍ଜନ୍ତେ ସେ ତାର | । ବ୍ରହ୍ମସ୍ୱ ଅଟଇ ଦୁର୍ଜର | ॥ | ୧୨୦ |
| | ଈଶ୍ୱର ବୋଲିଣ ଆପଣେ | । ଯେ ମଣିଥାନ୍ତି ରାଜାଗଣେ | ॥ | ୧୨୧ |
| | ବ୍ରହ୍ମସ୍ୱ କିମ୍ପାଇଁ ତାଙ୍କର | । ଜୀର୍ଣ୍ଣ ହୋଇବଟି ଆବର | ॥ | ୧୨୨ |
| ୩୩ | ହଳାହଳକୁ ନିଶ୍ଚେ ମୁହିଁ | । ବିଷ କରିଣ ମଣୁ ନାହିଁ | ॥ | ୧୨୩ |
| | ବିଷକୁ ପ୍ରତିକାରମାନ | । କରନ୍ତେ ହୁଅଇ ସାନ୍ତ୍ୱନ | ॥ | ୧୨୪ |
| | ବ୍ରହ୍ମସ୍ୱ ବିଷନାମେ ଖ୍ୟାତି | । ସଂସାରେ ନାହିଁ ତାର ଶାନ୍ତି | ॥ | ୧୨୫ |
| ୩୪ | ଖାଇବା ଲୋକକୁ ଗରଳ | । ନାଶ କରଇ ତତକାଳ | ॥ | ୧୨୬ |
| | ଜଳମାନଙ୍କେ ହୁତାଶନ | । ତତ୍‌କ୍ଷଣେ ହୁଅଇ ସାନ୍ତ୍ୱନ | ॥ | ୧୨୭ |
| | ବ୍ରହ୍ମସ୍ୱ-ଅରଣିରୁ ଜନ୍ମ | । ହୁଅଇ ଯେଉଁ ହୁତାଶନ | ॥ | ୧୨୮ |
| | ସେ ଅଗ୍ନି ସମୂଳ କରିଣ | । କୁଳକୁ ଦହଇ ତତ୍‌କ୍ଷଣ | ॥ | ୧୨୯ |
| ୩୫ | ନ ଜାଣି ଭୁଞ୍ଜନ୍ତେ ବ୍ରହ୍ମସ୍ୱ | । ତିନି ପୁରୁଷ କରେ ନାଶ | ॥ | ୧୩୦ |
| | ରାଜା-ଆଶ୍ରୟୁଁ ଯେ ହରଇ | । ଯେ ବଳାତ୍‌କାରେ ବା ଭୁଞ୍ଜଇ | ॥ | ୧୩୧ |
| | ତଳୁ ଉପରୁ ଦଶ ଦଶ | । ତା' କୁଳ କରଇ ବିନାଶ | ॥ | ୧୩୨ |
| ୩୬ | ରାଜଲକ୍ଷ୍ମୀରେ ଅନ୍ଧ ହୋଇ | । ଯେ ରାଜାମାନେ ଥାନ୍ତି ରହି | ॥ | ୧୩୩ |
| | ବ୍ରହ୍ମସ୍ୱ ଇଚ୍ଛନ୍ତି ଯେମାନେ | । ନରକ ବାଞ୍ଛନ୍ତି ସେମାନେ | ॥ | ୧୩୪ |
| | ଏଣୁ ସେ ଅଜ୍ଞାନୀ ଅଟନ୍ତି | । ଆପଣା ନାଶ ନ ଜାଣନ୍ତି | ॥ | ୧୩୫ |
| | ଏ ହେତୁ ଉତ୍ତମ କରିଣ | । ବ୍ରହ୍ମସ୍ୱ କରନ୍ତି ଗ୍ରହଣ | ॥ | ୧୩୬ |
| ୩୭ \| | ହୃତ ଅଟଇ ଯାଙ୍କ ବୃତ୍ତି | । କୁଟୁମ୍ବବନ୍ତ ଯେ ଅଟନ୍ତି | ॥ | ୧୩୭ |
| ୩୮ \| | ଦରିଦ୍ର[୧] ଅଟନ୍ତି ଆବର | । ଏମନ୍ତ ବିପ୍ରମାନଙ୍କର | ॥ | ୧୩୮ |
| | କାନ୍ଦନ୍ତେ ଅଶ୍ରୁବିନ୍ଦୁମାନ | । ଯେତେ ତିନ୍ତାନ୍ତି ଧୂଳିମାନ | ॥ | ୧୩୯ |
| | ରାଜକୁଳରେ ଯେ ଜନମ | । ଯେ ରାଜାମାନେ ଅବା ଆନ | ॥ | ୧୪୦ |
| | ବ୍ରାହ୍ମଣଦ୍ରବ୍ୟ ଯେ ହରନ୍ତି | । ଯେ ନିରଙ୍କୁଶ ହୋଇଥାନ୍ତି | ॥ | ୧୪୧ |
| | ସେମାନେ ବରଷ ତେତେକ | । ହୁଅନ୍ତି କୁମ୍ଭୀପାକେ ପାକ | ॥ | ୧୪୨ |
| ୩୯ | ଆପଣେ ଯାହା ଥାଇ ଦେଇ | । ଯା' ଅବା ପର ଦେଇଥାଇ | ॥ | ୧୪୩ |
| | ଏମନ୍ତ ବୃତ୍ତି ବ୍ରାହ୍ମଣର | । ହରଣ କରେ ଯେଉଁ ନର | ॥ | ୧୪୪ |
| | ଷାଠିଏ ସହସ୍ର ବରଷ | । ବିଷ୍ଠାମଧ୍ୟରେ ସେ ପୁରୁଷ | ॥ | ୧୪୫ |
| | କୃମି ହୋଇଣ ଜାତ ହୋଇ | । ଏ କଥା ନିଶ୍ଚୟ ଅଟଇ | ॥ | ୧୪୬ |
| ୪୦ | ଯା'କୁ କରନ୍ତେ ଅଭିଳାଷ | । ନୃପେ ହୁଅନ୍ତି ଅଳ୍ପାୟୁଷ | ॥ | ୧୪୭ |

୧. ବଦାନ୍ୟ ।

| | | | |
|---|---|---|---|
| | ଶତ୍ରୁଏ ତାହାଙ୍କୁ ଜିଣନ୍ତି । | ରାଜ୍ୟରୁ ଚ୍ୟୁତ ସେ ହୁଅନ୍ତି | ।। ୧୪୮ |
| | ସର୍ପ ହୋଇଣ ଜାତ ହୋନ୍ତି । | ଲୋକଙ୍କୁ ଉଦ୍‌ବେଗ କରାନ୍ତି | ।। ୧୪୯ |
| | ଏମନ୍ତ ବ୍ରାହ୍ମଣର ଧନ । | ନ କରିବଇଁ ମୁଁ ଗ୍ରହଣ | ।। ୧୫୦ |
| ୪୧ | ହେ ମୋର ଜନମାନେ ଶୁଣ । | ଦ୍ୱେଷକୁ କଲେହେଁ ବ୍ରାହ୍ମଣ | ।। ୧୫୧ |
| | ବହୁତ ଦ୍ୟନ୍ତେ ଶାପମାନ । | ପ୍ରହାର କରନ୍ତେ ବା ପୁଣ | ।। ୧୫୨ |
| | ଦ୍ରୋହ ନ କରିବ ବିପ୍ରକୁ । | ନିତ୍ୟେ କରିବ ପ୍ରଣାମକୁ | ।। ୧୫୩ |
| ୪୨ | ମୁଁ ସମାହିତଚିତ୍ତ ହୋଇ । | ସମସ୍ତ କାଳେ ଯେହ୍ନେ ଯାଇ | ।। ୧୫୪ |
| | ବିପ୍ରଙ୍କୁ ପ୍ରଣାମ କରଇ । | ସେରୂପେ ତୁମ୍ଭେ ନମ୍ରହୋଇ | ।। ୧୫୫ |
| | ବିପ୍ରଙ୍କୁ କର ନମସ୍କାର । | ଏହା ନ କରେ ଯଉଁ ନର | ।। ୧୫୬ |
| | ମୋହର ଠାରୁ ସେ ମାନବ । | ଦଣ୍ଡକୁ ଗ୍ରହଣ କରିବ | ।। ୧୫୭ |
| ୪୩ | ହରନ୍ତେ ବ୍ରାହ୍ମଣଧନକୁ । | ସେ ଧନ ହରିଲା ଲୋକକୁ | ।। ୧୫୮ |
| | ନରକେ ନେଇଣ ପକାଇ । | ଯେସନେ ବ୍ରାହ୍ମଣର ଗାଈ | ।। ୧୫୯ |
| | ଜାଣି ନ ଥିଲେହେଁ ନୃଗକୁ । | ଦେଲାଟି ଏମନ୍ତ ଦଶାକୁ | ।। ୧୬୦ |
| ୪୪ | ସମସ୍ତ ଦ୍ୱାରକାବାସୀଙ୍କୁ । | ଶୁଣାଇଁ ଏମନ୍ତ ବାକ୍ୟକୁ | ।। ୧୬୧ |
| | ସମସ୍ତ ଲୋକଙ୍କ ପାବନ । | ସେ ମୁକ୍ତିଦାତା ଭଗବାନ | ।। ୧୬୨ |
| | ହେ ନୃପ ! ନିଜ ମନ୍ଦିରରେ । | ପ୍ରବେଶ ହେଲେ ସେ କାଳରେ | ।। ୧୬୩ |
| | ଦଶମସ୍କନ୍ଧ ଭାଗବତ । | ଭାଷାପ୍ରବନ୍ଧେ କରି ଗୀତ | ।। ୧୬୪ |
| | ଚିତ୍ତରେ ଚିନ୍ତି କୃପାସିନ୍ଧୁ । | ଭଣଇଁ ବିପ୍ର ଦୀନବନ୍ଧୁ | ।। ୧୬୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀନୃଗୋପାଖ୍ୟାନଂ
ନାମ ଚତୁଃଷଷ୍ଟିତମୋଽଧ୍ୟାୟଃ ।।

## ପଞ୍ଚଷଷ୍ଟିତମ ଅଧ୍ୟାୟ

ପଞ୍ଚଷଷ୍ଟିତମେ ରାମସ୍ତ୍ୱକ୍ରେ ଗୋକୁଳମାଗତଃ ।
ରମମାଣସ୍ତୁ ଗୋପୀଭିଃ କାଳିନ୍ଦ୍ୟାଃ କର୍ଷଣଂ ମଦାତ୍ ।। ୧
ରାମସ୍ୟ ଚରିତଂ ଚିତ୍ରଂ କାଳିନ୍ଦ୍ୟାକର୍ଷଣାଦି ଯତ୍ ।
ପୌଣ୍ଡ୍ରକାନ୍ତାଦି କୃଷ୍ଣସ୍ୟ ପୃଥଗୁକ୍ତମତଃ ପରମ୍ ।। ୨

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | କହନ୍ତି ବ୍ୟାସଙ୍କ ନନ୍ଦନ । | ହେ କୁରୁଶ୍ରେଷ୍ଠ ! ଏବେ ଶୁଣ | ।। ୧ |
| | ସେ ବଳରାମ ଭଗବାନ । | ରଥକୁ ଆରୋହି ବହନ | ।। ୨ |
| | ମିତ୍ରଙ୍କୁ ଦେଖିବାର ପାଇଁ । | ଅତି ଉତ୍‌କଣ୍ଠଚିତ୍ତ ହୋଇ | ।। ୩ |

ନନ୍ଦଗୋକୁଳକୁ ବୋଲିଣ । ଗମନ କଲେ ତତକ୍ଷଣ ॥ ୪
୨ ଉତ୍‌କଣ୍ଠ ଚିରକାଳୁଁ ହୋଇ । ଗୋପାଳମାନେ ଥିଲେ ରହି ॥ ୫
ସେମାନେ ଗୋପୀମାନେ ଆନ । ରାମଙ୍କୁ କଲେ ଆଲିଙ୍ଗନ ॥ ୬
ସେଠାରେ ନନ୍ଦ-ଯଶୋଦାଙ୍କୁ । ସେ ରାମ କଲେ ପ୍ରଣାମକୁ ॥ ୭
ଆଶୀର୍ବାଦରେ ଆନନ୍ଦିତ । ହୋଇଲେ ରୋହିଣୀର ସୁତ ॥ ୮
୩| ତୁ ଅଟୁ ଜଗତ-ଈଶ୍ୱର । ଅନୁଜ ସହିତ ତୋହର ॥ ୯
୪| ବହୁତ କାଳ ତୁ ଆମ୍ଭଙ୍କୁ । ହେ ରାମ ! କର ପାଳନକୁ ॥ ୧୦
ଏମନ୍ତ କହିଣ ନିର୍ଭରେ । ରାମଙ୍କୁ ବସାଇ କୋଳରେ ॥ ୧୧
ବହୁତ ଆଲିଙ୍ଗନ କଲେ । ନୟନଜଳରେ ସିଞ୍ଚିଲେ ॥ ୧୨
ବୃଦ୍ଧଗୋପାଳଙ୍କୁ ସେ ରାମ । ବିଧିରେ କଲେକ ପ୍ରଣାମ ॥ ୧୩
କନିଷ୍ଠ ଗୋପାଳେ ରାମଙ୍କୁ । କଲେ ଉତ୍ତମ ପ୍ରଣାମକୁ ॥ ୧୪
ଯେମନ୍ତ ବୟସ ଯାହାର । ଯେମନ୍ତ ମିତ୍ରଭାବ ଯାର ॥ ୧୫
ଆପଣା ସଙ୍ଗତେ ଆବର । ଯେମନ୍ତ ସଂବନ୍ଧ ଯାହାର ॥ ୧୬
୫| ଏମନ୍ତରୂପେ ଗୋପାଳଙ୍କୁ । ଧରିଣ ତାଙ୍କର ହସ୍ତକୁ ॥ ୧୭
୬| ହସି ସେ ରୋହିଣୀର ସୁତ । ସେଠାରେ ହୋଇ ଉପଗତ ॥ ୧୮
ସେ ରାମ ବିଶ୍ରାନ୍ତ ହୋଇଣ । ସୁଖେ ଆସନେ ବସନ୍ତେଣ ॥ ୧୯
ଗୋପାଳେ ଆସି ସେ ସ୍ଥାନରେ । ପ୍ରେମଗଦ୍‌ଗଦ ବଚନରେ ॥ ୨୦
ଯଦୁଙ୍କ ମଧ୍ୟେ ସେ ରାମଙ୍କୁ । ପୁଛିଲେ କୁଶଳବାର୍ତ୍ତାକୁ ॥ ୨୧
ଗୋପାଳମାନଙ୍କୁ ସେ ରାମ । ପୁଛିଲେ ଶୁଭ ବାର୍ତ୍ତାମାନ ॥ ୨୨
କମଳପ୍ରାୟ ଯା' ନୟନ । ସେ କୃଷ୍ଣପ୍ରାପ୍ତିନିମିତ୍ତେଣ ॥ ୨୩
ବିଷୟମାନଙ୍କୁ ଅଖିଳ । ତ୍ୟକତ କଲେ ଯେ ଗୋପାଳ ॥ ୨୪
୭ ଆମ୍ଭର ସର୍ବ ବନ୍ଧୁଜନ । କୁଶଳ ହୋଇ ବର୍ତ୍ତମାନ ॥ ୨୫
ହେ ରାମ ! ଛନ୍ତିଟିକି ରହି । ଏମନ୍ତ ପୁଛା କରୁଁ ତହିଁ ॥ ୨୬
ଦାରାସୁତରେ ଯୁକ୍ତ ହୋଇ । ଯେ ତୁମ୍ଭେମାନେ ଅଛ ରହି ॥ ୨୭
ହେ ରାମ ! ସେ ତୁମ୍ଭେ ଆମ୍ଭଙ୍କୁ । କର କି କେବେ ସ୍ମରଣାକୁ ॥ ୨୮
୮ ପାପିଷ୍ଠ ଅଟଇ ଯେ କଂସ । ଭାଗ୍ୟରେ ତାକୁ କଲ ନାଶ ॥ ୨୯
ସୁହୃଦ ଅଟନ୍ତି ଯେ ନରେ । ସେ ମୁକ୍ତ ହୋଇଲେ ଭାଗ୍ୟରେ ॥ ୩୦
ଶତ୍ରୁଙ୍କୁ ମାରିଲ ଜିଣିଲ । ଭାଗ୍ୟେ ଦୁର୍ଗକୁ ଆଶ୍ରେ କଲ ॥ ୩୧
ସେ ହଳଧରଦରଶନେ । ସାଦର ହୋଇ ଗୋପୀମାନେ ॥ ୩୨
ହସି କରିଣ ସେ ରାମଙ୍କୁ । ପୁଛିଲେ ଏମନ୍ତ ବାକ୍ୟକୁ ॥ ୩୩
୯ ପୁରସ୍ତ୍ରୀଜନମାନଙ୍କର । ବଲ୍ଲଭ ଅଟେ ଦାମୋଦର ॥ ୩୪
ସୁଖେ ଛନ୍ତିଟିକି ସେ ସ୍ଥାନେ । ପଚାରୁଅଛୁଁ ଆମ୍ଭେମାନେ ॥ ୩୫
କରୁଛୁଁ ଏମନ୍ତ ପ୍ରଶ୍ନକୁ । ସେ କୃଷ୍ଣ ମାତାଙ୍କୁ ପିତାଙ୍କୁ ॥ ୩୬

| | | | | |
|---|---|---|---|---|
| | ବନ୍ଧୁମାନଙ୍କୁ ଅବା ପୁଣ | କରନ୍ତିଟି କି ସୁମରଣ | ॥ | ୩୭ |
| ୧୦ | ମାତାଙ୍କୁ ଥରେ ଦେଖିବାକୁ | ଆସିବେଟି କି ସେ ଏଠାକୁ | ॥ | ୩୮ |
| | ସେ ମହାଭୁଜ କି ଆମ୍ଭର | ସେବାକୁ ସ୍ମରନ୍ତି ଆବର | ॥ | ୩୯ |
| ୧୧ | ହେ ଯଦୁଶ୍ରେଷ୍ଠ ! ଯାହା' ପାଇଁ | ଯେ ମାତା ପିତା ଯେ ବା ଭାଇ | ॥ | ୪୦ |
| ୧୨ | ଭଉଣୀ ପତି ପୁତ୍ର ଆନ | ଦୁସ୍ତ୍ୟଜ ଯେ ବା ବନ୍ଧୁଜନ | ॥ | ୪୧ |
| | ହେ ପ୍ରଭୁ ! ଛାଡ଼ିଲୁଁ ଏହାଙ୍କୁ | ଏମନ୍ତ ଯେ ଆମ୍ଭେ ଆମ୍ଭଙ୍କୁ | ॥ | ୪୨ |
| | ତେଜିଣ ସୌହୃଦ ଛିଣ୍ଡାଇ | ସେ କୃଷ୍ଣ ଗଲେ ବେଗ ହୋଇ | ॥ | ୪୩ |
| | ତାଦୃଶ ଶ୍ରୀକୃଷ୍ଣବଚନ | ସଂସାରେ ଯେତେ ସ୍ତିରୀଜନ | ॥ | ୪୪ |
| | ନିଶ୍ଚୟେ କେମନ୍ତ ରୂପେଣ | ଶ୍ରଦ୍ଧା ବା ନ କରିବେ ପୁଣ | ॥ | ୪୫ |
| ୧୩ | କହୁଅଛନ୍ତି ଆନ ନାରୀ | କୃତଘ୍ନ ଅଟନ୍ତି ସେ ହରି | ॥ | ୪୬ |
| | [1]ଅନବସ୍ଥିତ ଆତ୍ମା ଯାର | ବଚନମାନଙ୍କୁ ତାହାର | ॥ | ୪୭ |
| | ପଣ୍ଡିତ ପୁରନାରୀଜନ | କରିବେ କିରୂପେ ଗ୍ରହଣ | ॥ | ୪୮ |
| | କହନ୍ତି ଆନମାନେ ତହିଁ | ତା' କଥା ବିଚିତ୍ର ଅଟଇ | ॥ | ୪୯ |
| | ତାର ସୁନ୍ଦର ସ୍ମିତମାନେ | ଅଛନ୍ତି ଯଉଁ ବିଲୋକନେ | ॥ | ୫୦ |
| | ତେଣେ କ୍ଷୋଭିତ ଯଉଁ ସ୍ମର | ତହିଁରେ ହୋଇଣ ଆତୁର | ॥ | ୫୧ |
| | ସେ ମଧୁପୁରୀର ତରୁଣୀ | ନିଶ୍ଚେଁ ଘେନିମେ ତାଙ୍କ ବାଣୀ | ॥ | ୫୨ |
| ୧୪ | କହନ୍ତି ଆନ ଗୋପୀ ପୁଣ | ଆଗୋ ଗୋପୀଏ ତୁମ୍ଭେ ଶୁଣ | ॥ | ୫୩ |
| | କଥାମାନଙ୍କେ ସେ କୃଷ୍ଣର | କି କାର୍ଯ୍ୟ ହେବ ଗୋ ଆମ୍ଭର | ॥ | ୫୪ |
| | କହ ଗୋ ଆନ କଥାମାନ | ଆମ୍ଭ ବିହୁନେ ତାର ପୁଣ | ॥ | ୫୫ |
| | କାଳ ଯାଉଛି ଯେ ରୂପରେ | ଆମ୍ଭର ଯାଉ ସେ ରୂପରେ | ॥ | ୫୬ |
| ୧୫ | ଏମନ୍ତ ରୂପେ ସେ କୃଷ୍ଣର | ଯେ ମନୋହର ଚାହିଁମାର | ॥ | ୫୭ |
| | ହସିବା କହିବା ଯେ ଆନ | ଯେ ପ୍ରେମ-ଆଲିଙ୍ଗନମାନ | ॥ | ୫୮ |
| | ଯେ ଅବା ଗମନ ଆବର | ସ୍ମରଣ କରୁଁ ବାରମ୍ବାର | ॥ | ୫୯ |
| | ସେ ଗୋପୀମାନେ ସେ କାଳରେ | ରୋଦନ କଲେ ପରସ୍ପରେ | ॥ | ୬୦ |
| ୧୬ | ଯେ ନାନା ଅନୁନୟ ଅତି | ତେଣେ ଯେ ପଣ୍ଡିତ ଅଟନ୍ତି | ॥ | ୬୧ |
| | ସେ ଭଗବାନ ହଳଧର | ଗୋପୀମାନଙ୍କୁ ଶ୍ରୀକୃଷ୍ଣର | ॥ | ୬୨ |
| | ହୃଦୟଙ୍ଗମ ସନ୍ଦେଶରେ | ସାନ୍ତ୍ୱନା କଲେ ସେ କାଳରେ | ॥ | ୬୩ |
| ୧୭ | ସେ ଭଗବାନ ନୀଳବାସ | ଚୈତ୍ର ବୈଶାଖ ବେନି ମାସ | ॥ | ୬୪ |
| | ସେଠାରେ ରହି ନିରନ୍ତର | ପ୍ରୀତି ବହନ୍ତେ ଗୋପୀଙ୍କର | ॥ | ୬୫ |
| | ସେ ମଧୁରାତ୍ରିମାନଙ୍କରେ | ରହିଲେ ସେ ବ୍ରଜପୁରରେ | ॥ | ୬୬ |
| ୧୮ | ପୂର୍ଣ୍ଣଚନ୍ଦ୍ରର କିରଣରେ | ଯେ ଅତି ଉଜ୍ଜ୍ୱଳ ନିର୍ଭରେ | ॥ | ୬୭ |

୧. ଅସ୍ଥିର ।

| | | | | |
|---|---|---|---|---|
| | କୁମୁଦବନପବନରେ | । ପୂରିଛି ଯେ ସର୍ବଦିଗରେ | ।। | ୬୮ |
| | ଏମନ୍ତ ରୂପେ ଯମୁନାର | । ଯେ ଉପବନ ମନୋହର | ।। | ୬୯ |
| | ତହିଁ ରମିଲେ ହଳହସ୍ତ | । ନାରୀଗଣରେ ହୋଇ ବୃତ | ।। | ୭୦ |
| ୧୯ | ବରୁଣ କରନ୍ତେ ପ୍ରେଷିତ | । ବାରୁଣୀ ଦେବୀ ଅବିରତ | ।। | ୭୧ |
| | ବୃକ୍ଷକୋଟରୁଁ ସେ କାଳରେ | । ପଡ଼ନ୍ତେ ଉତ୍ତମ ଗନ୍ଧରେ | ।। | ୭୨ |
| | ସେ ଉପବନ ସର୍ବଦିଗେ | । ବାସିତ କରାଇଲେ ବେଗେ | ।। | ୭୩ |
| ୨୦ | ପବନ କରନ୍ତେ ହରଣ | । ସେ ମଧୁଧାରାଗନ୍ଧମାନ | ।। | ୭୪ |
| | ରାମ ଆଘ୍ରାଣ କରି ତାକୁ | । ବହନ ଚଳିଣ ସେଠାକୁ | ।। | ୭୫ |
| | ବନିତାମାନଙ୍କର ତୁଲେ | । ସେ ମଦିରାକୁ ପାନ କଲେ | ।। | ୭୬ |
| ୨୧ | ବନିତାମାନଙ୍କେ ଅତ୍ୟନ୍ତ | । ଯେବଣ ମଣ୍ଡଳ ଶୋଭିତ | ।। | ୭୭ |
| ୨୩ | ତହିଁ ରମିଲେ ହଳପାଣି | । ଗନ୍ଧର୍ବଗଣେ ସ୍ତୁତି ଭଣି | ।। | ୭୮ |
| | ହସ୍ତିନୀଗଣରେ ଯେମନ୍ତ | । ରମଇଁ ଇନ୍ଦ୍ର ଐରାବତ | ।। | ୭୯ |
| | ଦୁନ୍ଦୁଭିମାନେ ସେ କାଳରେ | । ଶବଦ କଲେ ଆକାଶରେ | ।। | ୮୦ |
| | ଗନ୍ଧର୍ବ ମୁନି ଯେତେ ଥିଲେ | । ହରଷେ ପୁଷ୍ପ ବୃଷ୍ଟି କଲେ | ।। | ୮୧ |
| | ସେ ରାମପରାକ୍ରମେ ଅତି | । କଲେ ସେ ରାମଙ୍କୁ ହିଁ ସ୍ତୁତି | ।। | ୮୨ |
| | ବନିତାମାନଙ୍କେ ଚରିତ | । ଗାୟନ ହୁଅନ୍ତେ ବହୁତ | ।। | ୮୩ |
| | ମଦରେ ହୋଇଛି ବିହ୍ୱଳ | । ଯାହାର ଲୋଚନଯୁଗଳ | ।। | ୮୪ |
| | ମତ୍ତ ହୋଇ ସେ ହଳଧର | । ବନରେ କଲେକ ବିହାର | ।। | ୮୫ |
| ୨୪ | ଯେ ଧରିଛନ୍ତି ପୁଷ୍ପମାଳ | । କର୍ଣ୍ଣରେ ଯା' ଏକ କୁଣ୍ଡଳ | ।। | ୮୬ |
| | ବଇଜୟନ୍ତୀ ନାମେ ମାଳେ | । ଯେ ପୁଣ ଧରିଛନ୍ତି ଗଳେ | ।। | ୮୭ |
| | ସ୍ୱେଦହିମରେ ଯେ ମଣ୍ଡନ | । ସସ୍ମିତ ସେ ମୁଖନଳିନ | ।। | ୮୮ |
| | ଯେ ଧରିଅଛନ୍ତି ଆବର | । ମତ୍ତ ହୋଇ ସେ ହଳଧର | ।। | ୮୯ |
| ୨୫ | ସେ ପ୍ରଭୁ ଜଳକ୍ରୀଡ଼ାପାଇଁ | । ଡାକିଲେ ଯମୁନାକୁ ତହିଁ | ।। | ୯୦ |
| | ମତ୍ତ ଅଟନ୍ତି ହଳଧର | । ଏମନ୍ତ ବୋଲି ଆପଣାର | ।। | ୯୧ |
| | ଆଦର ନକରି ବଚନ | । ସେ ନ କରନ୍ତେ ଆଗମନ | ।। | ୯୨ |
| | ସେ ନଦୀ କ୍ରୋଧେ ହଳଧାରୀ | । ହଳାଗ୍ରେ ଆଣିଲେ ଓଟାରି | ।। | ୯୩ |
| ୨୬ | ହେ ପାପି ! ମୁଁ ତୋତେ ଡାକନ୍ତେ | । ଅବଜ୍ଞା କରିଣ ତୁ ମୋତେ | ।। | ୯୪ |
| | ଯାହା ନଇଲୁ ଏ ସ୍ଥାନରେ | । ଏଣୁ ମୁଁ ଲଙ୍ଗଳ-ଅଗ୍ରରେ | ।। | ୯୫ |
| | ତୁ କାମଚାରୀ ତୋତେ ମୁହିଁ | । ଶଏକ ଖଣ୍ଡ କରିବଇଁ | ।। | ୯୬ |
| ୨୭ | ଏ ରୂପେ ଭର୍ତ୍ସିତ ହୋଇଣ | । ଯମୁନା ଭୟକୁ ଲଭିଣ | ।। | ୯୭ |
| | ରାମର ବେନି ଚରଣରେ | । ହେ ନୃପ ! ପଡ଼ି ସେ କାଳରେ | ।। | ୯୮ |
| | କମ୍ପିତ ହୋଇ ସେ ରାମଙ୍କୁ | । କହିଲେ ଏମନ୍ତ ବାକ୍ୟକୁ | ।। | ୯୯ |
| ୨୮ | ହେ ରାମ ରାମ ମହାବାହୁ | । ଜାଣିମି ତୋ' ମହିମା କାହୁଁ | ।। | ୧୦୦ |

| | | | |
|---|---|---|---|
| | ହେ ଜଗତ୍‌ପତି ଏ ଜଗତ | ତୋ' ଏକ ଅଂଶେ ଅଟେ ଧୃତ | ।। ୧୦୧ |
| ୨୯ | ହେ ବଳରାମ ଭଗବାନ | ଭକ୍ତବତ୍ସଳ ବିଶ୍ୱାତ୍ମନ | ।। ୧୦୨ |
| | ତୁ ଯେ ଈଶ୍ୱର ତୋର ମୁହିଁ | କେବଳ ଭାବ ନ ଜାଣଇଁ | ।। ୧୦୩ |
| | ପ୍ରପନ୍ନ ହୋଇଅଛି ପୁଣ | ମୋତେ ତୁ କରସି ମୋକ୍ଷଣ | ।। ୧୦୪ |
| ୩୦ | ସେ ବଳରାମ ଭଗବାନ | ଯମୁନା କରନ୍ତେ ପ୍ରାର୍ଥନ | ।। ୧୦୫ |
| | ତଦନ୍ତେ ତାହାକୁ ଛାଡ଼ିଣ | ନାରୀମାନଙ୍କ ସଙ୍ଗତେଣ | ।। ୧୦୬ |
| | ସେ ଜଳେ କଲେକ ସେ ସ୍ନାନ | ଯେସନେ କରିରାଜ ପୁଣ | ।। ୧୦୭ |
| | କରିଣୀମାନଙ୍କ ସଙ୍ଗରେ | ସ୍ନାନକୁ କରଇ ଜଳରେ | ।। ୧୦୮ |
| ୩୧ | ଯଥେଷ୍ଟ କରିଣ ବିହାର | ଜଳରୁ ହୁଅନ୍ତେ ବାହାର | ।। ୧୦୯ |
| | [୧]ରାମଙ୍କୁ ଦେବୀ କମଳିନୀ | ନୀଳ ବସନ ଦେଲେ ଆଣି | ।। ୧୧୦ |
| | ବହୁତମୂଲ୍ୟ ଆଭରଣ | ଦେଲେ ମଙ୍ଗଳମାଳା ପୁଣ | ।। ୧୧୧ |
| ୩୨ | ନୀଳବସନ ପରିଧାନ | କଲେ ସେ ରୋହିଣୀନନ୍ଦନ | ।। ୧୧୨ |
| | ନେଇ ସେ ହେମମୟ ମାଳ | କଣ୍ଠରେ ଦେଲେ ତତକାଳ | ।। ୧୧୩ |
| | ପୂରାଇ ଦିବ୍ୟ ଅଳଂକାର | ଚନ୍ଦନେ ଲେପି କଳେବର | ।। ୧୧୪ |
| | ଅଇରାବତ ହସ୍ତୀ ପ୍ରାୟେ | ଶୋଭା ପାଇଲେ ଅତିଶୟେ | ।। ୧୧୫ |
| ୩୩ | ଓଟାରି ଆଣିମା ମାର୍ଗରେ | ସେ ସୂର୍ଯ୍ୟନନ୍ଦିନୀ ସେଠାରେ | ।। ୧୧୬ |
| | ଅପରିମିତ ବଳ ଯାର | ସେ ପ୍ରଭୁ ରୋହିଣୀସୁତର | ।। ୧୧୭ |
| | ବୀର୍ଯ୍ୟକୁ ସୂଚିଲା ପରାଇ | ହେ ନୃପ ! ଆଜ ହିଁ ଦିଶଇ | ।। ୧୧୮ |
| ୩୪ | ଯେ ବ୍ରଜନାରୀଙ୍କ ବିଳାସ | ତେଣେ ଆକ୍ଷିପ୍ତ ଯା' ମାନସ | ।। ୧୧୯ |
| | ସେ ରାମ ରମନ୍ତେ ବ୍ରଜରେ | ହେ ନୃପ ! ଏମନ୍ତ ରୂପରେ | ।। ୧୨୦ |
| | ଏକା ରାତ୍ରିକ ପ୍ରାଏ ହୋଇ | ସମସ୍ତ ରାତ୍ରି ଗଲେ ତହିଁ | ।। ୧୨୧ |
| | ସୁଜନମାନଙ୍କର ହିତେ | ଦଶମସ୍କନ୍ଧ ଭାଗବତେ | ।। ୧୨୨ |
| | ଭାଷାପ୍ରବନ୍ଧେ କରି ଗୀତ | ହରଷ ଦୀନବନ୍ଧୁଚିତ୍ତ | ।। ୧୨୩ |
| | ବୈଷ୍ଣବ ଜୟରାମ ଦାସ | ଯେଣେ ଲଭିଲେ ଅତି ତୋଷ | ।। ୧୨୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ଶ୍ରୀବଳଦେବବିଜୟେ ଯମୁନାକର୍ଷଣଂ
ନାମ ପଞ୍ଚଷଷ୍ଟିତମୋଽଧ୍ୟାୟଃ ।।

---

୧. ବରୁଣପ୍ରହିତା ଚାସ୍ମୈ ମାଳାମମ୍ଳାନପଙ୍କଜାମ୍ ।
ସମୁଦ୍ରାଭେ ତଥା ବସ୍ତ୍ରେ ନୀଳେ ଲକ୍ଷ୍ମୀରଯଚ୍ଛତ ।। (ବିଷ୍ଣୁପୁରାଣ)

ଜାତରୂପମୟଂ ଚୈକଂ କୁଣ୍ଡଳଂ ବଜ୍ରଭୂଷଣମ୍ ।
ଆଦିପଦ୍ମଂ ଚ ପଦ୍ମାଖ୍ୟଂ ଦିବ୍ୟଂ ଶ୍ରବଣଭୂଷଣମ୍ ।
ଦେବେମାଂ ପ୍ରତିଗୃହ୍ଣୀଷ୍ୱ ପୌରାଣୀଂ ଭୂଷଣକ୍ରିୟାମ୍ ।। (ହରିବଂଶ)

# ଷଟ୍‌ଷଷ୍ଟିତମ ଅଧ୍ୟାୟ

ଷଡ୍‌ଯୁକ୍‌ଷଷ୍ଟିତମେ କାଶୀଂ ଗତ୍ୱାହନ୍ ପୌଣ୍ଡ୍ରକଂ ହରିଃ ।
ତନ୍ମିତ୍ରଂ ଚ ତତୋ ବୃତ୍ତଂ ସୁଦକ୍ଷିଣବଧାଦିକମ୍ ॥ ୧

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କ କୁମର । ବ୍ରଜକୁ ଯା'ନ୍ତେ ହଳଧର ॥
କରୂଷଦେଶନୃପମଣି । ମୁଁ ବାସୁଦେବ ବୋଲି ମଣି ॥
ସେ ଅଜ୍ଞ ଶ୍ରୀକୃଷ୍ଣଠାବକୁ । ହେ ନୃପ ! ପେଷିଲା ଦୂତକୁ ॥
୨ ତୁ ବାସୁଦେବ ଭଗବାନ । ଭୂମିରେ ହେଲୁ ଅବତୀର୍ଣ୍ଣ ॥
ଜଗତପତି ଅଟୁ ତୁହି । ଅଜ୍ଞାନୀମାନେ ତାକୁ ତହିଁ ॥
ବହୁତ ଏମନ୍ତ ରୂପରେ । ସ୍ତୁତି କରନ୍ତେ ସେ କାଳରେ ॥
ଆତ୍ମାକୁ ଅଚ୍ୟୁତ କରିଣ । ମଣିଲା ସେ କାଶୀରାଜନ ॥
୩ ଅବ୍ୟକ୍ତ ମାର୍ଗ ଅଟେ ଯାର । ସେ କୃଷ୍ଣଠାବକୁ ସତ୍ୱର ॥
ସେ ମନ୍ଦ ଅଟେ ଅପଣ୍ଡିତ । ପେଷିଲା ଦ୍ୱାରକାକୁ ଦୂତ ॥
ବାଳକମାନେ ଯେ ରୂପରେ । ଏକ ବାଳକକୁ କ୍ରୀଡ଼ାରେ ॥
ରାଜା କରନ୍ତେ ସେ ଯେସନେ । ଆତ୍ମାକୁ ରାଜା କରି ମଣେ ॥
୪ ସେ ଦୂତ ଦ୍ୱାରକାକୁ ଯାଇ । ଯେ ଛନ୍ତି ସଭାମଧ୍ୟେ ରହି ॥
ସେ ପଦ୍ମଲୋଚନ କୃଷ୍ଣଙ୍କୁ । କହିଲା ରାଜାସନ୍ଦେଶକୁ ॥
୫ ଦୟାନିମିତ୍ତେ ପ୍ରାଣିଙ୍କର । ମୁଁ ହୋଇଅଛି ଅବତାର ॥
ମୁହିଁଟି ବାସୁଦେବ ଏକ । ମୋ ବିନୁ ନାହିଁ ଆନ ଲୋକ ॥
ତୁ ଯାହା ବୋଲାଉ ଈଶ୍ୱର । ସେ ମିଥ୍ୟାବାଣୀ ତ୍ୟାଗ କର ॥
୬ ଯେ ଚିହ୍ନମାନ ମୋର ପୁଣି । ତୁ ମୂଢ଼ଭାବୁଁ ଅଛୁ ଘେନି ॥
ତା' ଛାଡ଼ି ଆସି ତୁ ଆମ୍ଭଙ୍କୁ । ହେ ଯଦୁ ! ପଶ ଶରଣକୁ ॥
ନୋହିଲେ ଆଜ ଆସି ମୋର । ସଙ୍ଗତେ ସମର ତୁ କର ॥

ଶ୍ରୀଶୁକ ଉବାଚ

୭ ଅଳପ ବୁଦ୍ଧି ଅଟେ ଯାର । ସେ ପଉଣ୍ଡ୍ରକ ନୃପତିର ॥
ଶ୍ରବଣ କରି ସେ ବଚନ । ସଭାରେ ଯେତେ ସଭ୍ୟଜନ ॥
ଉଗ୍ରସେନକୁ ଆଦି ଥିଲେ । ସେ କାଳେ ଉଚ୍ଚେ ସେ ହସିଲେ ॥
୮ ସେ ପରିହାସବଚନକୁ । ଲକ୍ଷ୍ୟ କରିଣ ସେ ଦୂତକୁ ॥
କହିଲେ ପ୍ରଭୁ ଭଗବାନ । ଯଉଁ ଚିହ୍ନେ ତୁ ଏ ବଚନ ॥
କହିଲୁ ସେ ଚିହ୍ନକୁ ମୁହିଁ । ହେ ମୂଢ଼ ଛଡ଼ାଇବି[୧] ଯାଇଁ ॥

---

୧. ଉଦ୍‌ସ୍ରକ୍ଷ୍ୟେ = ତ୍ୟାଜୟିଷ୍ୟାମି (ଛଡ଼ାଇବି); 'ଦେଖିବଇଁ' ପାଠାନ୍ତର ।

୯ ଯେ କଙ୍କ ଗୃଧ୍ର ବଟମାନେ[1] । ବେଷ୍ଟିତ ହୋଇ କରି ତେଣେ ॥ ୨୬
ମୁଖ ବୁଜିଣ ହାରି ଜ୍ଞାନ । ତୁ ନିଶ୍ଚେ କରିବୁ ଶୟନ ॥ ୨୭
ସେଠାରେ ଶ୍ୱାନମାନଙ୍କର । ଶରଣ ହେବୁ ତୁ ଆବର ॥ ୨୮
୧୦ ସେ କୃଷ୍ଣ-ଆକ୍ଷେପବଚନ । ସେ ଦୂତ ଏ ରୂପେ ଶୁଣିଣ ॥ ୨୯
ଯାଇଣ ଆପଣା ପ୍ରଭୁଙ୍କୁ । କହିଲା ସମସ୍ତ ବାର୍ତ୍ତାକୁ ॥ ୩୦
କୃଷ୍ଣ ହିଁ ରଥ ଆରୋହିଣ । [2]କାଶୀପୁରକୁ ଗଲେ ପୁଣ ॥ ୩୧
୧୧ ପୌଣ୍ଡ୍ରକ ସେ କୃଷ୍ଣ-ଉଦ୍ୟୋଗ । ସେଠାରେ ଲକ୍ଷିଣ ସେ ବେଗ ॥ ୩୨
ଯେ ସୈନ୍ୟ ବେନି ଅକ୍ଷୌହିଣୀ । ତେଣେ ସଂଯୁକ୍ତ ହୋଇ ପୁଣି ॥ ୩୩
ଆପଣା ପୁରରୁ ସତ୍ୱରେ । ବାହାର ହେଲା ସେ କାଳରେ ॥ ୩୪
୧୨ | କାଶୀଦେଶର ଅଧୀଶ୍ୱର । ମିତ୍ର ଅଟଇ ପୌଣ୍ଡ୍ରକର ॥ ୩୫
୧୩ | ପୃଷ୍ଠସହାୟ ହୋଇ ତାର । ଚଳିଲା ଆହେ ନୃପବର ॥ ୩୬
ଯେ ଶଙ୍ଖ ଚକ୍ର ଖଡ୍ଗମାନ । ଗଦା ଶାରଙ୍ଗ ଧନୁ ଆନ ॥ ୩୭
ଶ୍ରୀବତ୍ସ ଆଦିରେ ରଚିତ । ତେଣେ ସେ ହୋଇଛି ଲକ୍ଷିତ ॥ ୩୮
ତ୍ରିଅକ୍ଷୌହିଣୀ ସୈନ୍ୟତୁଲେ । ହରି ପୌଣ୍ଡ୍ରକକୁ ଦେଖିଲେ ॥ ୩୯
୧୪ କୌସ୍ତୁଭମଣି ଧରି ଗଳେ । ମଣ୍ଡିତ ହୋଇ ବନମାଳେ ॥ ୪୦
ପୀତ କୌଶେୟ ବେନି ଚେଳ । ପିନ୍ଧି ପୌଣ୍ଡ୍ରକ ମହୀପାଳ ॥ ୪୧
କୃତ୍ରିମ ଗରୁଡ଼ ତାହାର । ଧ୍ୱଜ ହିଁ ହୋଇଛି ଆବର ॥ ୪୨
ଅମୂଲ୍ୟ ଦିବ୍ୟ ଆଭରଣ । ଧରିଛି ମସ୍ତକରେ ପୁଣ ॥ ୪୩
ମକରକୁଣ୍ଡଳ ଯାହାର । କର୍ଣ୍ଣେ ସ୍ଫୁରିଛି ମନୋହର ॥ ୪୪
୧୫ ନାଟୁଆ ଆସିଣ ଯେସନେ । ମିଳଇ ସଭାରେ ତେସନେ ॥ ୪୫
କୃତ୍ରିମ ବେଷରେ ଆଚ୍ଛନ୍ନ । ହୋଇଛି ସେ କାଶୀରାଜନ ॥ ୪୬
ଆପଣା ତୁଲ୍ୟ ବେଷ କରି । ତାହାକୁ ଦେଖି ନରହରି ॥ ୪୭
ହସିଲେ ଅତ୍ୟନ୍ତ ଉଚ୍ଚରେ । ହେ ମହାରାଜ ! ସେ କାଳରେ ॥ ୪୮
୧୬ ଶୂଳମାନଙ୍କରେ ଗଦାରେ । ପରିଘେ ଋଷ୍ଟିରେ ଶକ୍ତିରେ ॥ ୪୯
ପ୍ରାସେ ତୋମରେ ଖଡ୍ଗେ ପୁଣ । ପଟ୍ଟିଶେ ବାଣମାନଙ୍କେଣ ॥ ୫୦
ସେ ଶତ୍ରୁମାନେ ଶ୍ରୀକୃଷ୍ଣଙ୍କୁ । ସେ କାଳେ କଲେ ପ୍ରହାରକୁ ॥ ୫୧
୧୭ ଯେ ଗଜ-ରଥ-ବାଜୀ-ପତ୍ତି । ଏ ଚତୁରଙ୍ଗ ବଳ ଅତି ॥ ୫୨
ପୌଣ୍ଡ୍ରକ-କାଶୀରାଜାଙ୍କର । ଶ୍ରୀକୃଷ୍ଣ ସେ କାଳେ ସତ୍ୱର ॥ ୫୩
ଗଦା-ଖଡ୍ଗ-ଚକ୍ର-ଶରେ । ବିନାଶ କଲେ ଅତ୍ୟନ୍ତରେ ॥ ୫୪
ଯୁଗାନ୍ତେ ଯେହ୍ନେ ହୁତାଶନ । ନାଶଇ ନାନା ପ୍ରଜାମାନ ॥ ୫୫

୧. ବଟ = କଙ୍କାଦିବତ୍ ପକ୍ଷିବିଶେଷ; 'ବକ' ପାଠାନ୍ତର ।
୨. ପୌଣ୍ଡ୍ରକ ସେତେବେଳେ ତାର ମିତ୍ରପୁର 'କାଶୀ'ରେ ରହୁଥିଲା ।

୧୮ ଯେ ତାର ରଥ-ଅଶ୍ୱମାନେ । କୁଞ୍ଜର ପଦାତିଏ ଆନେ ॥ ୫୬
ଯେ ପୁଣ ଖର ଉଷ୍ଟ୍ରମାନ । ଚକ୍ରରେ ଅଟନ୍ତି ଖଣ୍ଡନ ॥ ୫୭
ତେଣେ ଯେ ଅତିବ୍ୟାପ୍ତ ହୋଇ । ମନସ୍ୱିମାନଙ୍କର ଯେହି ॥ ୫୮
ହରଷମାନଙ୍କୁ କରଇ । ସେ ରଣସ୍ଥାନ ଶୋଭା ପାଇ ॥ ୫୯
କଳ୍ପାନ୍ତେ ରୁଦ୍ରର ଯେସନ । ଉତ୍କଟ ଦିଶେ କ୍ରୀଡ଼ାସ୍ଥାନ ॥ ୬୦
୧୯ ଏଥୁ ଅନ୍ତରେ ପୌଣ୍ଡ୍ରକକୁ । ହରି କହିଲେ ଏ ବାକ୍ୟକୁ ॥ ୬୧
ଭୋ ପଉଣ୍ଡ୍ରକ ମୋତେ ତୁହି । ଯା' ଦୂତବାକ୍ୟେ ଥିଲୁ କହି ॥ ୬୨
ସେ ଅସ୍ତ୍ରମାନଙ୍କୁ ତୋ' ଠାଇଁ । ନିଶ୍ଚୟେ ଛାଡ଼ିବଇଁ ମୁହିଁ ॥ ୬୩
୨୦ ରେ ଅଜ୍ଞ ! ମୋ ସଂଜ୍ଞାକୁ ତୁହି । ମିଥ୍ୟାରେ ଧଇଲୁ କିଂପାଇଁ ॥ ୬୪
ସେ ସଂଜ୍ଞା ଛାଡ଼ ତେବେ ତୁହି । ଏମନ୍ତ ଥିଲୁ ଯାହା କହି ॥ ୬୫
ଯୁଦ୍ଧକୁ ଯେବେ ନ ବାଞ୍ଛିବି । ତୋତେ ଶରଣ ଆଉଜିବି ॥ ୬୬
୨୧ ଏମନ୍ତ ରୂପେ ନାରାୟଣ । ବହୁତ ଆକ୍ଷେପ କରିଣ ॥ ୬୭
ତୀକ୍ଷଣ ଶରେ ପୌଣ୍ଡ୍ରକକୁ । ବିରଥ କରି ତା' ଶିରକୁ ॥ ୬୮
ଛେଦନ କଲେ ସେ କାଳରେ । ଚକ୍ରକୁ ଘେନିଣ ସତ୍ୱରେ ॥ ୬୯
ପର୍ବତଶୃଙ୍ଗକୁ ଯେସନ । ବଜ୍ରେ କାଟଇ ମଘବାନ ॥ ୭୦
୨୨ ସେରୂପେ କାଶୀପତିଶିର । ଶରମାନଙ୍କରେ ସତ୍ୱର ॥ ୭୧
ଦେହରୁ କାଟି କାଶୀପୁରେ । କୃଷ୍ଣ ପକାଇଲେ କ୍ରୋଧରେ ॥ ୭୨
ପଦ୍ମକୋଷକୁ ଯେହ୍ନେ ଯାଇ । ପବନ ହରିଣ ପକାଇ ॥ ୭୩
୨୩ ମତ୍ସରବନ୍ତ ଯେ ଅଟଇ । ସେ ପୌଣ୍ଡ୍ରକକୁ କୃଷ୍ଣ ତହିଁ ॥ ୭୪
ଯୁଦ୍ଧରେ ସଖାସହିତେଣ । ଏରୂପେ ବିନାଶ କରିଣ ॥ ୭୫
ସିଦ୍ଧମାନଙ୍କରେ ଗାୟନ । ହୁଅନ୍ତେ କଥାମୃତମାନ ॥ ୭୬
ସେ ପ୍ରଭୁ ଦ୍ୱାରକାପୁରରେ । ପ୍ରବେଶ ହେଲେ ସେ କାଳରେ ॥ ୭୭
୨୪ ସେ ପଉଣ୍ଡ୍ରକ ହେ ରାଜନ । ନିତ୍ୟେ କରନ୍ତେ କୃଷ୍ଣଧ୍ୟାନ ॥ ୭୮
ତେଣେ ହୋଇଲା ବିନାଶନ । ଅଖିଳ କର୍ମବନ୍ଧମାନ ॥ ୭୯
ଧରନ୍ତେ କୃଷ୍ଣର ସ୍ୱରୂପ । ତନ୍ମୟ ହୋଇଲା ସେ ନୃପ ॥ ୮୦
୨୫ ବେନି କୁଣ୍ଡଳ ସହିତରେ । ଶିର ପଡ଼ନ୍ତେ ରାଜଦ୍ୱାରେ ॥ ୮୧
ତା' ଦେଖି ଏ କିସ ଅଟଇ । ପଛେ ଜାଣିଲେ ମୁଣ୍ଡ ଏହି ॥ ୮୨
ଏ ବା କାହାର ଏ ରୂପରେ । ସଂଶୟ କଲେ ତହିଁ ନରେ ॥ ୮୩
୨୬ କାଶୀପତିର ଶିର ଏହି । ଏମନ୍ତ ଜାଣିକରି ତହିଁ ॥ ୮୪
ମହିଷୀମାନେ ପୁତ୍ରମାନେ । ଯେ ବନ୍ଧୁ ଯେ ବା ପୁରଜନେ ॥ ୮୫
ହେ ନୃପ ! ହେ ନାଥ ହେ ନାଥ । ଆମ୍ଭେ ସମସ୍ତେ ହେଲୁଁ ହତ ॥ ୮୬
ସେ କାଳେ ବୋଲନ୍ତେ ଏମନ୍ତ । କଲେ ସେ ରୋଦନ ବହୁତ ॥ ୮୭

| | | | | |
|---|---|---|---|---|
| ୨୭ | ତା' ସୁତ ସୁଦକ୍ଷିଣ ନାମ | । ଯେ ପିତାପରଲୋକକର୍ମ | ।। | ୮୮ |
| | ବିଧାନ କରି ସେ କର୍ମକୁ | । ଯେ ମାରି ଅଛଇ ପିତାକୁ | ।। | ୮୯ |
| | ତାହାକୁ ମାରି ମୁଁ ପିତାର | । ନିଷ୍କୃତି କରିବି ସତ୍ୱର | ।। | ୯୦ |
| ୨୮ | ଏମନ୍ତ ବିଚାରି ବୁଦ୍ଧିରେ | । ଉପାଧ୍ୟାୟଙ୍କ ସହିତରେ | ।। | ୯୧ |
| | ସେ ସୁଦକ୍ଷିଣ ସମାଧିରେ | । ଶିବଙ୍କୁ ପୂଜିଲା ନିର୍ଭରେ | ।। | ୯୨ |
| ୨୯ | ସେ ଭଗବାନ ମହେଶ୍ୱର | । କାଶୀପୁରରେ[୧] ତାକୁ ବର | ।। | ୯୩ |
| | ଯାଚନ୍ତେ ହୋଇ ଅତି ପ୍ରୀତ | । ସେ କାଶୀନୃପତିର ସୁତ | ।। | ୯୪ |
| | ଆପଣା ବାଞ୍ଛିତ ଅଟଇ | । ପିତୃଶତ୍ରୁର ବଧ ଯେହି | ।। | ୯୫ |
| | ତହିଁକି ଯେ ଅଟେ ଉପାୟ | । ବରିଲା ସେ ବର ନିଶ୍ଚୟ | ।। | ୯୬ |
| ୩୦ | ବ୍ରାହ୍ମଣମାନଙ୍କ ସହିତେ | । ଦକ୍ଷିଣାଗ୍ନିକି ଯଥୋଚିତେ | ।। | ୯୭ |
| ୩୧ | ଋତ୍ୱିଜଙ୍କୁ ହିଁ ତୁ ଆବର | । ଉତ୍ତମ କରି ସେବା କର | ।। | ୯୮ |
| | ଅଭିଚାରବିଧିରେ ତହିଁ | । ପ୍ରମଥଗଣେ ବୃତ ହୋଇ | ।। | ୯୯ |
| | ସେ ଅଗ୍ନି ଅବ୍ରହ୍ମଣ୍ୟ ଜନେ | । ଯୋଜିତ ହୁଅନ୍ତେ ବହନେ | ।। | ୧୦୦ |
| | ଯେ ତୋର ସଂକଳ୍ପ ତା' ପୁଣ | । ସାଧିବ ଉତ୍ତମ କରିଣ | ।। | ୧୦୧ |
| | ଈଶ୍ୱର ଏମନ୍ତ ଆଜ୍ଞାକୁ | । ଦିଅନ୍ତେ ସେ ସୁଦକ୍ଷିଣକୁ | ।। | ୧୦୨ |
| | ଅଭିଚାରକୁ କୃଷ୍ଣଠାରେ | । ସେ ବ୍ରତୀ କଲା ସେ ରୂପରେ | ।। | ୧୦୩ |
| ୩୨ | ତଦନ୍ତେ କୁଣ୍ଡରୁ ସତ୍ୱର | । ଯେ ଅଟେ ଅତି ଭୟଙ୍କର | ।। | ୧୦୪ |
| | ତପ୍ତ ତମ୍ବାର ପ୍ରାୟେ ହୋଇ | । ଯାହାର ଶିଖା ଶ୍ମଶ୍ରୁ ଦୁଇ | ।। | ୧୦୫ |
| | ଅଙ୍ଗାର ଉଦ୍‌ଗାରିଲା ପ୍ରାଏ | । ଯାହା' ଲୋଚନମାନ ଶୋହେ | ।। | ୧୦୬ |
| | ଏମନ୍ତ ଅଗ୍ନି ମୂର୍ତ୍ତିମନ୍ତ | । ହୋଇ ସେ ହୋଇଲା ଉତ୍‌ଥିତ | ।। | ୧୦୭ |
| ୩୩ | ଦନ୍ତମାନଙ୍କେ ଉଗ୍ର ଅତି | । ଯଉଁ ଭ୍ରୂକୁଟୀ ଦଣ୍ଡଗତି | ।। | ୧୦୮ |
| | ତହିଁରେ ଅତ୍ୟନ୍ତ କଠୋର | । ବଦନ ଦିଶଇ ଯାହାର | ।। | ୧୦୯ |
| | ନିଜ ଜିହ୍ୱାରେ ଆଲେହନ | । କରୁଛି ଓଷ୍ଠପ୍ରାନ୍ତମାନ | ।। | ୧୧୦ |
| | ଜ୍ୱଳନ୍ତେ ଉଲଗ୍ନ ସେ ହୋଇ | । ତିନି-ଶିଖରକୁ କଂପାଇ | ।। | ୧୧୧ |
| ୩୪ | ତାଳବୃକ୍ଷର ପରମାଣେ | । ଯେ ବେନି ଚରଣ ସେ ତେଣେ | ।। | ୧୧୨ |
| | ଅବନୀତଳକୁ କଂପାନ୍ତେ | । ଦଶ ଦିଗକୁ ହିଁ ଦହନ୍ତେ | ।। | ୧୧୩ |
| | ବେଷ୍ଟିତ ହୋଇ ଭୂତଜନେ | । ଧାଇଁଲା ଦ୍ୱାରକାଭୁବନେ | ।। | ୧୧୪ |
| ୩୫ | ସେ ଅଭିଚାର ହୁତାଶନ | । ଆସନ୍ତେ କରି ବିଲୋକନ | ।। | ୧୧୫ |
| | ଦ୍ୱାରକାବାସୀ ସର୍ବନରେ | । ତ୍ରସ୍ତ ହୋଇଲେ ଅତ୍ୟନ୍ତରେ | ।। | ୧୧୬ |
| | ବିପିନ ପୋଡ଼ନ୍ତେ ଯେସନେ | । ତ୍ରସ୍ତ ହୁଅନ୍ତି ମୃଗମାନେ | ।। | ୧୧୭ |
| ୩୬ | ସଭାରେ ପ୍ରଭୁ ନାରାୟଣ | । ଖେଳନ୍ତେ ପଶାମାନଙ୍କେଣ | ।। | ୧୧୮ |

୧. ''ଅବିମୁକ୍ତ'' ଶବ୍ଦର ଅର୍ଥ କାଶୀକ୍ଷେତ୍ର ଏବଂ ଶିବ ।

| | | | |
|---|---|---|---|
| | ତାହାଙ୍କୁ ଭୟେ ଆର୍ତ୍ତ ହୋଇ | । ସେ ଜନେ ଜଣାଇଲେ ଯାଇଁ | ॥ ୧୧୯ |
| | ଯେ ଅଗ୍ନି ଦହୁଅଛି ପୁର | । ତହିଁରୁ ତ୍ରାହି ତ୍ରାହି କର | ॥ ୧୨୦ |
| ୩୭ | ସେ ଜନଙ୍କର ବିକଳକୁ | । ଶୁଣିଣ ପୁଣି ସାଧ୍ୱସଂ[୧]କୁ | ॥ ୧୨୧ |
| | ନିଜ ଜନଙ୍କର ଦେଖିଣ | । ସେ ହରି ଅଟନ୍ତି ଶରଣ | ॥ ୧୨୨ |
| | ହସି ବୋଇଲେ ଭୟ କେହି | । ନ ପାଅ ରଖିବଇଁ ମୁହିଁ | ॥ ୧୨୩ |
| ୩୮ | ସମସ୍ତ ପ୍ରାଣିଙ୍କ ଅନ୍ତରେ | । ଯେ ସାକ୍ଷୀ ଅଟନ୍ତି ବାହାରେ | ॥ ୧୨୪ |
| | ଶିବସଂବନ୍ଧୀ ସେ କୃତ୍ୟାକୁ | । ସେ ହରି ଜାଣି ତା' ନାଶକୁ | ॥ ୧୨୫ |
| | ଚକ୍ର ଯେ ପାଖେ ରଖିଥିଲେ | । ତାହାଙ୍କୁ ହରି ଆଜ୍ଞା ଦେଲେ | ॥ ୧୨୬ |
| ୩୯ | କୋଟିଏ ସୂର୍ଯ୍ୟସମ ଯେହି | । ଜାଜ୍ୱଲ୍ୟମାନ ଯେ ଅଟଇ | ॥ ୧୨୭ |
| | ପ୍ରଳୟାନଳ ପ୍ରାୟେ ହୋଇ | । ଯାହାର ପ୍ରଭା ପ୍ରକାଶଇ | ॥ ୧୨୮ |
| | ନିଜ ତେଜରେ ଯେ ଗଗନ | । ଦ୍ୟାବାପୃଥିବୀ ଦିଗମାନ | ॥ ୧୨୯ |
| | ପ୍ରକାଶ କରୁଛି, କୃଷ୍ଣର | । ଯେ ଅସ୍ତ୍ର ଆହେ ନୃପବର | ॥ ୧୩୦ |
| | ସେ ସୁଦର୍ଶନ ଚକ୍ର ଗଲା | । କୃତ୍ୟା ଅଗ୍ନିକି ପୀଡ଼ା ଦେଲା | ॥ ୧୩୧ |
| ୪୦ | ସେ ଚକ୍ର ଥାଇ ଯା' ହସ୍ତରେ | । ସେ କୃଷ୍ଣ-ଅସ୍ତ୍ରର ତେଜରେ | ॥ ୧୩୨ |
| | ସେ କୃତ୍ୟାନଳ ପ୍ରତିହତ | । ହୁଅନ୍ତେ ଆହେ ପରୀକ୍ଷିତ | ॥ ୧୩୩ |
| | ସେ କୃତ୍ୟା ଭଗ୍ନମୁଖ ହୋଇ | । ସେ ପୁରୁଁ ନିବର୍ତ୍ତିଣ ଯାଇଁ | ॥ ୧୩୪ |
| | ସେ ବାରାଣସୀପୁରେ ପୁଣ | । ତତ୍‌କ୍ଷଣେ ପ୍ରବେଶ ହୋଇଣ | ॥ ୧୩୫ |
| | ଋତ୍ୱିଜଙ୍କର ସହିତରେ | । ସୁଦକ୍ଷିଣକୁ ସେ ସ୍ଥାନରେ | ॥ ୧୩୬ |
| | ସ୍ୱକୃତ ସେ କୃତ୍ୟା-ଅନଳ | । ଦହନ କଲା ତତକାଳ | ॥ ୧୩୭ |
| ୪୧ | [୧]ବିଷ୍ଣୁର ଚକ୍ର ହିଁ ସେପୁରେ | । ପ୍ରବେଶ ହୋଇ ତା' ପଛରେ | ॥ ୧୩୮ |
| | ଯେ ଅଟ୍ଟାଳିକା ସ୍ଥାନମାନ | । ଯେ ଗୃହ ଯେ ବା ହଟ୍ଟସ୍ଥାନ | ॥ ୧୩୯ |
| | ଏମାନଙ୍କର ସହିତରେ | । ଯେ ମଞ୍ଚା ଯେ ବା ପୁରଦ୍ୱାରେ | ॥ ୧୪୦ |
| | ଯେ କୋଷ୍ଠୀମାନ ବା ଆବର | । ତେଣେ ସଂକୁଳ ଯଉଁ ପୁର | ॥ ୧୪୧ |
| | କୋଷ ସହିତ ଅଶ୍ୱ ହସ୍ତୀ | । ରଥାନ୍ନଶାଳା ଯହିଁ ଛନ୍ତି | ॥ ୧୪୨ |
| ୪୨ | ସେ ବାରାଣସୀସର୍ବସ୍ଥାନ | । ସେ ବିଷ୍ଣୁଚକ୍ର ସୁଦର୍ଶନ | ॥ ୧୪୩ |
| | ଦହନ କରିଣ ସତ୍ୱର | । ଅକ୍ଲିଷ୍ଟ କର୍ମ ଅଟେ ଯାର | ॥ ୧୪୪ |
| | ସେ କୃଷ୍ଣ ପାଖେ ପୁଣ ଯାଇଁ | । ରହିଲେ ପୂର୍ବପ୍ରାୟେ ହୋଇ | ॥ ୧୪୫ |
| ୪୩ | ଉତ୍ତମଃଶ୍ଳୋକ ଯେ ଅଚ୍ୟୁତ | । ତାଙ୍କ ବିକ୍ରମ ଏ ଚରିତ | ॥ ୧୪୬ |
| | ଯେ ଜନ ମନୁଷ୍ୟମାନଙ୍କୁ | । ଶ୍ରବଣ କରାଇ ଏହାକୁ | ॥ ୧୪୭ |
| | ସଂଯତଚିତ୍ତ ହୋଇ ପୁଣ | । ଯେ ଅବା କରଇ ଶ୍ରବଣ | ॥ ୧୪୮ |

୧. ସାଧ୍ୱସ = ସଂଭ୍ରମକୁ ।

୧. ଲୀଳୟା ବ୍ୟଧମଦ୍ କୃତ୍ୟାନଳଂ ଚକ୍ରେଣ କେଶବଃ ।
ରକ୍ଷୟିତ୍ୱା ଜନଂ ତସ୍ମାଦ୍ ସୁଦକ୍ଷିଣମଥାଦହଦ୍ ॥ (ସ୍ୱାମୀ)

| | | | |
|---|---|---|---|
| ସେ ନରେ ସମସ୍ତ ପାପରୁ | । ମୁକ୍ତ ହୁଅନ୍ତି ଏ ସଂସାରୁ | ॥ | ୧୪୯ |
| ସମସ୍ତଜନଙ୍କର ହିତେ | । ଦଶମସ୍କନ୍ଧ ଭାଷାଗୀତେ | ॥ | ୧୫୦ |
| ଭଣଇଁ ବିପ୍ର ଦୀନବନ୍ଧୁ | । ତରିବ ବୋଲି ଭବସିନ୍ଧୁ | ॥ | ୧୫୧ |
| ବୈଷ୍ଣବ ଜୟରାମ ଦାସ | । ଯେଣେ ଲଭିଲେ ଅତିତୋଷ | ॥ | ୧୫୨ |
| ଯାହାଙ୍କ ଅନୁଗ୍ରହୁଁ ମୁହିଁ | । ଏ ପ୍ରସଙ୍ଗକୁ ବର୍ଣ୍ଣିଲଇଁ | ॥ | ୧୫୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ପୌଣ୍ଡ୍ରକାଦିବଧୋ
ନାମ ଷଟ୍‌ଷଷ୍ଟିତମୋଽଧ୍ୟାୟଃ ॥

## ସପ୍ତଷଷ୍ଟିତମ ଅଧ୍ୟାୟ

ସପ୍ତଷଷ୍ଟିତମେ ରାମୋ ଗିରୌ ରୈବତକେ ମଦାତ୍ ।
ସ୍ୱୈରଂ ଯୁବତିଭିଃ କ୍ରୀଡ଼ନ୍‌ବଧୀଦ୍ ଦ୍ୱିବିଦଂ ଖଳମ୍ ॥

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | ବ୍ୟାସଙ୍କ ସୁତଙ୍କୁ ଏମନ୍ତ | । ପଚାରୁଛନ୍ତି ପରୀକ୍ଷିତ | ॥ | ୧ |
| | ଅଦ୍ଭୁତ କର୍ମ ଅଟେ ଯାର | । ଅନନ୍ତ ଅଟେ ଯେ ଆବର | ॥ | ୨ |
| | ପ୍ରମାଣ ନାହିଁ ଯାହାଠାର | । ଚରିତମାନ ସେ ରାମର | ॥ | ୩ |
| | ସେ ପ୍ରଭୁ ଅନ୍ୟ କର୍ମମାନ | । ଯା' ଅବା କଲେକ ବିଧାନ | ॥ | ୪ |
| | ସେ କର୍ମମାନଙ୍କୁ ହିଁ ମୁହିଁ | । ପୁଣି ଶୁଣିମାକୁ ଇଚ୍ଛଇ | ॥ | ୫ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨ | ଏମନ୍ତ ରାଜା ପଚାରନ୍ତେ | । ଶୁକ କହନ୍ତି ଏଥୁ ଅନ୍ତେ | ॥ | ୬ |
| | ନରକାସୁରମିତ୍ର ହୋଇ | । ଏକ ବାନର ଥିଲା ରହି | ॥ | ୭ |
| | ଦ୍ୱିବିଦ ଅଟେ ନାମ ତାର | । ମନ୍ତ୍ରୀ ଅଟଇ ସୁଗ୍ରୀବର | ॥ | ୮ |
| | ମୈନ୍ଦ-ବାନରର ସେ ଭ୍ରାତ | । ଅଟଇ ଅତି ବୀର୍ଯବନ୍ତ | ॥ | ୯ |
| ୩ | ଯେ ରଣ ଆପଣା ମିତ୍ରର | । ତାହା ଶୁଣନ୍ତେ ସେ ବାନର | ॥ | ୧୦ |
| | ରାଜ୍ୟବିନାଶ ଯେ ରୂପରେ | । ହେବ ତା' କରନ୍ତେ ନିର୍ଭରେ | ॥ | ୧୧ |
| | ପୁର ଆକର ଗ୍ରାମମାନ | । ଯେ ବା ଆଭୀରପଲ୍ଲୀ ଆନ | ॥ | ୧୨ |
| | ଏମାନ ଦହିଲା ସେ ବେଗ | । ବହ୍ନିକି କରନ୍ତେ ଉତ୍ସର୍ଗ | ॥ | ୧୩ |
| ୪ | ସେ କଦାଚିତ ଗିରିମାନ | । ଭୁଜରେ ଉପାଡ଼ି ବହନ | ॥ | ୧୪ |
| | ମିତ୍ରର ଶତ୍ରୁ ନାରାୟଣ | । ଯହିଁରେ ଅଛନ୍ତି ବସିଣ | ॥ | ୧୫ |
| | ସେହି ଆନର୍ତ୍ତ ଦେଶମାନ | । ସେ ପର୍ବତରେ କଲା ଚୂର୍ଣ୍ଣ | ॥ | ୧୬ |

| | | | | | |
|---|---|---|---|---|---|
| ୫ | ଦଶସହସ୍ର ହସ୍ତୀଙ୍କର | । | ବଳ ବହଇ ସେ ବାନର | ॥ | ୧୭ |
| | ସେ କହୁଣିସି ସମୟରେ | । | ରହିଣ ସମୁଦ୍ରମଧ୍ୟରେ | ॥ | ୧୮ |
| | ବେନି ବାହୁରେ ସିନ୍ଧୁଜଳ | । | ଉଦ୍ଧରି ଆଣି ତତକାଳ | ॥ | ୧୯ |
| | ବେଳାକୂଳେ ଯେ ଦେଶମାନ | । | ତାଙ୍କୁ କରାଇଲା ମଜ୍ଜନ | ॥ | ୨୦ |
| ୬ | ସେ ଖଳ ଋଷିଶ୍ରେଷ୍ଠଙ୍କର | । | ଆଶ୍ରମମାନଙ୍କୁ ଆବର | ॥ | ୨୧ |
| | ବୃକ୍ଷଙ୍କୁ ଭାଙ୍ଗିଣ ବହନ | । | ଯେ ବୈତାନିକ[୧] ଅଗ୍ନିମାନ | ॥ | ୨୨ |
| | ତାହାଙ୍କୁ ମୂତ୍ର-ପୁରୀଷରେ | । | ଦୂଷିତ କଲା ସେ କାଳରେ | ॥ | ୨୩ |
| ୭ | ସେ କପି ଗର୍ବିତ ଅଟଇ | । | ନାରୀ ପୁରୁଷମାନ ନେଇ | ॥ | ୨୪ |
| | ପର୍ବତଦ୍ରୋଣୀକନ୍ଦରାରେ | । | ପିଧାନ[୨] କରି ବଳାତ୍କାରେ | ॥ | ୨୫ |
| | ବଡ଼ ପାଷାଣମାନ ନେଇ | । | ଦୁଆରେ ଦିଅଇ ଘୋଡ଼ାଇ | ॥ | ୨୬ |
| | ଯେସନେ ଗର୍ତ୍ତରେ ପୂରାଇ | । | ଭ୍ରମର କୀଟକୁ ରୁନ୍ଧଇ | ॥ | ୨୭ |
| ୮ | ଏମନ୍ତ ରୂପେ ଦେଶଗଣ | । | ଅତି ବିପ୍ରିୟ କରନ୍ତେଣ | ॥ | ୨୮ |
| | କୁଳନାରୀଙ୍କି ସେ ବାନର | । | ଦୂଷିତ କରନ୍ତେ ଆବର | ॥ | ୨୯ |
| | ଶୁଣି ସୁଲଳିତ ଗୀତକୁ | । | ଗଲା ରୈବତ ପର୍ବତକୁ | ॥ | ୩୦ |
| ୯ | ପୁଷ୍କରମାଳା ମନୋହର | । | ଲମ୍ବିଛି ଉରସ୍ଥଳେ ଯାର | ॥ | ୩୧ |
| ୧୦ | ଦେଖିବା ଲୋକର ସୁନ୍ଦର | । | ସମସ୍ତ ଅଙ୍ଗମାନ ଯାର | ॥ | ୩୨ |
| | ଲଳନାଯୂଥଙ୍କ ମଧ୍ୟରେ | । | ଯେ ରହିଅଛନ୍ତି ନିର୍ଭରେ | ॥ | ୩୩ |
| | ବାରୁଣୀମଦ୍ୟ କରି ପାନ | । | ଯେ କରୁଅଛନ୍ତି ଗାୟନ | ॥ | ୩୪ |
| | ମଦ୍ୟରେ ହୋଇଛି ବିହ୍ୱଳ | । | ଯାହାର ଲୋଚନଯୁଗଳ | ॥ | ୩୫ |
| | ମତ୍ତହସ୍ତୀର ପ୍ରାଏ ଅତି | । | ଯେ ଦେହେ ଶୋଭା ପାଉଛନ୍ତି | ॥ | ୩୬ |
| | ଏମନ୍ତ ଯଉଁ ହଳଧର | । | ଅଟନ୍ତି ଯଦୁଙ୍କ ଈଶ୍ୱର | ॥ | ୩୭ |
| | ତାଙ୍କୁ ସେ ପର୍ବତେ ସତ୍ୱର | । | ଦେଖିଲା ଦ୍ୱିବିଦ ବାନର | ॥ | ୩୮ |
| ୧୧ | ଅତ୍ୟନ୍ତ ଗର୍ବୀ ସେ ବାନର | । | ଶାଖାକୁ ଆରୋହି ସତ୍ୱର | ॥ | ୩୯ |
| | ବୃକ୍ଷମାନଙ୍କୁ ବାରମ୍ବାର | । | ସେ କପି କଂପାନ୍ତେ ଆବର | ॥ | ୪୦ |
| | ସେ କିଳିକିଳା[୩] ଶବ୍ଦ କଲା | । | ଆପଣାକୁ ହିଁ ଦେଖାଇଲା | ॥ | ୪୧ |
| ୧୨ | ସେ କପି ଧୃଷ୍ଟଭାବମାନ | । | ନାରୀଏ କରି ବିଲୋକନ | ॥ | ୪୨ |
| | ସ୍ୱଭାବେ ଅଟନ୍ତି ଚଞ୍ଚଳ | । | ଯାହାଙ୍କୁ ଘେନିଛନ୍ତି ବଳ | ॥ | ୪୩ |
| | ହାସ୍ୟରେ ପ୍ରିୟ ସେ ଯୁବତି | । | ହସିଲେ ବାନରକୁ ଅତି | ॥ | ୪୪ |
| ୧୩ | ସମ୍ମୁଖଆଦି ହୋଇ କରି | । | ଭ୍ରୂକ୍ଷେପମାନଙ୍କେ ସେ ହରି | ॥ | ୪୫ |
| | ଚାହାଁନ୍ତେ ପ୍ରଭୁ ହଳଧର | । | ତାହାଙ୍କୁ କରି ଅନାଦର | ॥ | ୪୬ |
| | ଗୋପୀମାନଙ୍କୁ ସ୍ୱଗୁଦକୁ | । | ଦେଖାଇ କଲା ଅବଜ୍ଞାକୁ | ॥ | ୪୭ |

୧. ଆହବନୀୟ ଆଦି ବୈଦିକ ଅଗ୍ନି ।　　୨. ଗୁହ୍ୟ ଦ୍ୱାର ।　　୩. ବାନରଙ୍କ ଶବ୍ଦ ।

୧୪ ପ୍ରହାର କରନ୍ତି ଯେ ନରେ । ସେ ଲୋକମାନଙ୍କ ମଧ୍ୟରେ ।। ୪୮
ଶ୍ରେଷ୍ଠ ଅଟନ୍ତି ସଂକର୍ଷଣ । ଅତ୍ୟନ୍ତ କ୍ରୁଦ୍ଧ ସେ ହୋଇଣ ।। ୪୯
ପାଷାଣ ଘେନି ମର୍କଟକୁ । ସେଠାରେ କଲେ ପ୍ରହାରକୁ ।। ୫୦
ସେ କପି ବଞ୍ଚାଇ[୧] ପାଷାଣ । ମଦିରାକଳଶ ଘେନିଣ ।। ୫୧
କୋପ କରନ୍ତେ ହସି ତାଙ୍କୁ । ସେ ଧୂର୍ତ୍ତ କଲା ଅବଜ୍ଞାକୁ ।। ୫୨
୧୫ ସେ ଦୁଷ୍ଟ ମଦ୍ୟକଳଶକୁ । ଭାଙ୍ଗିଣ ନାରୀଙ୍କ ବସ୍ତ୍ରକୁ ।। ୫୩
ସେକାଳେ ଚିରି ପକାଇଲା । ରାମଙ୍କୁ ଉଚ୍ଚାଟନ କଲା ।। ୫୪
ମଦେ ଉଦ୍ଧତ ସେ ବାନର । ରାମଙ୍କୁ କଲା ଅପକାର ।। ୫୫
୧୬ ସେ ମର୍କଟର ଅବିନୟ । ସେ ରାମ ଦେଖି ଅତିଶୟ ।। ୫୬
ଭାଙ୍ଗି ସେ ଅଛି ଦେଶମାନ । ଏମନ୍ତ କରି ବିଲୋକନ ।। ୫୭
ଶତ୍ରୁକୁ ମାରିବା ଇଚ୍ଛାରେ । କ୍ରୁଦ୍ଧ ହୋଇଣ ଅତ୍ୟନ୍ତରେ ।। ୫୮
ରୋହିଣୀସୁତ ସେହିକାଳେ । ହଳମୁଷଳକୁ ଘେନିଲେ ।। ୫୯
୧୭ ପୁଣି ସେ ଦ୍ୱିବିଦ ବାନର । ଅଟଇ ମହା ବଳୀୟାର ।। ୬୦
ଶାଳକୁ[୨] ହସ୍ତେ ଉପାଡ଼ିଣ । ସତ୍ୱରେ ପାଖକୁ ଧାଇଁଣ ।। ୬୧
ସେ ଶାଳବୃକ୍ଷରେ ରାମର । ମସ୍ତକେ କଲା ସେ ପ୍ରହାର ।। ୬୨
୧୮ ପର୍ବତପରାଏ ହୋଇଣ । ପଡ଼ନ୍ତେ ମୁଣ୍ଡରେ ଆସିଣ ।। ୬୩
ସେ ଭଗବାନ ସଂକର୍ଷଣ । କଲେ ସେ ବୃକ୍ଷକୁ ଗ୍ରହଣ ।। ୬୪
ମୁଷଳରେ ସେ ବାନରକୁ । ତକ୍ଷଣେ କଲେ ପ୍ରହାରକୁ ।। ୬୫
୧୯ ସେ ମୁଷଳରେ ତାହା' ଶିର । ଆହତ ହୁଅନ୍ତେ ବାନର ।। ୬୬
ରକତଧାରାମାନଙ୍କରେ । ଶୋଭା ପାଇଲା ସେ କାଳରେ ।। ୬୭
ଗୈରିକମାନଙ୍କେ ଯେମନ୍ତ । ଶୋଭାକୁ ଲଭଇ ପର୍ବତ ।। ୬୮
ସେ ପ୍ରହାରକୁ ସେ ବାନର । ଗଣନା ନ କରି ଆବର ।। ୬୯
୨୦ ସେ କପି ନିଷ୍ପତ୍ର କରିଣ । ଅନ୍ୟ ବୃକ୍ଷକୁ[୩] ବୁଲାଇଣ ।। ୭୦
ଅତ୍ୟନ୍ତ କ୍ରୁଦ୍ଧ ସେ ହୋଇଲା । ତେଜେ ବୃକ୍ଷକୁ ପ୍ରହାରିଲା ।। ୭୧
ସେ ବୃକ୍ଷକୁ ହିଁ ହଳଧାରୀ । କାଟିଲେ ଶଏଖଣ୍ଡ କରି ।। ୭୨
୨୧ ତଦନ୍ତେ ସେ ଅନ୍ୟ ବୃକ୍ଷରେ । ରାମଙ୍କୁ ମାଇଲା କ୍ରୋଧରେ ।। ୭୩
ସେ ବୃକ୍ଷକୁ ହିଁ ହଳଧାରୀ । କାଟିଲେ ଶଏ ଖଣ୍ଡ କରି ।। ୭୪
୨୨ ସେ ଭଗବାନ ହଳଧର । ତାଙ୍କ ସଙ୍ଗତେ ସେ ବାନର ।। ୭୫
ଏମନ୍ତେ ଯୁଦ୍ଧ କରନ୍ତେଣ । ବୃକ୍ଷେ ଭାଜନ୍ତେ ପୁଣ ପୁଣ ।। ୭୬
ସମସ୍ତ ଦିଗୁଁ ବୃକ୍ଷମାନ । ସେ କପି ଉପାଡ଼ି ବହନ ।। ୭୭
ସେ ଅରଣ୍ୟକୁ ଏ ପ୍ରକାରେ । ନିବୃକ୍ଷ କଲା ସେ କାଳରେ ।। ୭୮

---

୧. ଲୁଚାଇ । ୨. ବୃକ୍ଷକୁ । ୩. ବୃକ୍ଷେକ ।

୨୩ ତଦନନ୍ତରେ ସେ ବାନର । ରାମଙ୍କ ଉପରେ ସତ୍ୱର ॥ ୭୯
ପାଷାଣବୃଷ୍ଟିମାନ ନେଇ । ମୋକ୍ଷଣ କଲା କ୍ରୋଧ ବହି ॥ ୮୦
ସେ ରାମ ଲୀଳାରେ ମୁଷଳେ । ସେ ବୃଷ୍ଟି ଚୂର୍ଣ୍ଣ କଲେ ହେଳେ ॥ ୮୧
୨୪ ତାଳ ବୃକ୍ଷର ପ୍ରାଏ ହୋଇ । ଅଟଇ ଯଉଁ ଭୁଜ ଦୁଇ ॥ ୮୨
ମୁଷ୍ଟି କରିଣ ସେ ଭୁଜକୁ । ସେ କପି-ଈଶ୍ୱର ରାମଙ୍କୁ ॥ ୮୩
ଧରିଣ ସେ ବେନି ମୁଷ୍ଟିରେ । ପ୍ରହାର କଲା ନେଇ ଉରେ ॥ ୮୪
୨୫ ଯାଦବଶ୍ରେଷ୍ଠ ସଂକର୍ଷଣ । ମୁଷଳ-ଲାଙ୍ଗଳ ଛାଡ଼ିଣ ॥ ୮୫
କପିକଣ୍ଠକୁ କ୍ରୁଦ୍ଧ ହୋଇ । ଭିଡ଼ିଲେ ବେନିଭୁଜେ ଯାଇ ॥ ୮୬
ବମନ କରନ୍ତେ ରୁଧିର । ତଳେ ପଡ଼ିଲା ସେ ବାନର ॥ ୮୭
୨୬ ପ୍ରାଣ ଛାଡ଼ିଣ ସେ ବାନର । ପଡ଼ନ୍ତେ ଆହେ କୁରୁବୀର ॥ ୮୮
ସଜଳ ବିବର ସହିତେ । ବୃକ୍ଷମାନଙ୍କର ସଙ୍ଗତେ ॥ ୮୯
ସମସ୍ତ ଦିଗରେ ତ୍ୱରିତ । ପର୍ବତ ହୋଇଲା କଂପିତ ॥ ୯୦
ଜଳରେ ନଉକା ଯେସନ । ପବନେ ହୁଅଇ କଂପନ ॥ ୯୧
୨୭ ଆକାଶେ ସୁରସିଦ୍ଧମାନେ । ଯେ ଅବା ମୁନିଶ୍ରେଷ୍ଠ ଜନେ ॥ ୯୨
କଲେ ସେ ପୁଷ୍ପବୃଷ୍ଟିମାନ । ଏମାନଙ୍କରେ ହେ ରାଜନ ॥ ୯୩
ଯେ ଜୟ ଜୟ ଶବ୍ଦମାନ । ଯେ ନମଃଶବ୍ଦମାନେ ଆନ ॥ ୯୪
ଯେ ସାଧୁ ସାଧୁ ବାଣୀ ଆର । ଏମାନେ ହୋଇଲେ ଅପାର ॥ ୯୫
୨୮ ସଂସାରନାଶ ଯେ ବାଞ୍ଛଇ । ସେ ଦ୍ୱିବିଦକୁ ରାମ ତହିଁ ॥ ୯୬
ଏରୂପେ କରିଣ ନିଧନ । ସ୍ତୁତି ଲଭି ସେ ଭଗବାନ ॥ ୯୭
ଜନମାନଙ୍କ ସଙ୍ଗତରେ । ପ୍ରବେଶ ହେଲେ ନିଜ ପୁରେ ॥ ୯୮
ଆହେ ଶ୍ରୀକୃଷ୍ଣ କୃପାସିନ୍ଧୁ । ମୁଁ ଯେ ପତିତ ଦୀନବନ୍ଧୁ ॥ ୯୯
ତଥାପି ସାଧୁଜନହିତେ । ମୋହର ଶକ୍ୟ ଅନୁମତେ ॥ ୧୦୦
ଦଶମସ୍କନ୍ଧଶ୍ଳୋକ-ଅର୍ଥ । ପ୍ରାକୃତ ବନ୍ଧେ କଲି ଗୀତ ॥ ୧୦୧
ସୁଜନେ ନ ଧର ମୋ ଦୋଷ । ଶୁଣି ଏ ଗୀତ ଲଭ ତୋଷ ॥ ୧୦୨
ବୈଷ୍ଣବ ଜୟରାମ ଦାସ । ଯେ ରସେ କଲା ପ୍ରତିଆଶ ॥ ୧୦୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଦ୍ୱିବିଦବଧୋ
ନାମ ସପ୍ତଷଷ୍ଟିତମୋଽଧ୍ୟାୟଃ ॥

## ଅଷ୍ଟଷଷ୍ଟିତମ ଅଧ୍ୟାୟ

ଅଷ୍ଟଷଷ୍ଟିତମେ ସାମ୍ବେ ନିରୁଦ୍ଧେ କୌରବୈର୍ଯୁଧି ।
ତଦ୍‌ବିମୋକ୍ଷାୟ ରାମେଣ ଗଜାହ୍ୱୟବିକର୍ଷଣମ୍ ॥ ୧

ଶ୍ରୀଶୁକ ଉବାଚ

୧ କହନ୍ତି ଶୁକ ମହାଯତି । ଶୁଣ ହେ ପାଣ୍ଡୁପଣନାତି ॥ ୧
ଦୁର୍ଯ୍ୟୋଧନର ଏକ ସୁତା । ଲକ୍ଷ୍ମଣା ନାମରେ ବିଦିତା ॥ ୨
ସେ ସ୍ୱୟମ୍ବରେ ଥାନ୍ତେ ରହି । ହେ ନୃପ ଯୁଦ୍ଧେ ଯେ ଜିଣଇ ॥ ୩
ସେ ଶାମ୍ବ ଜାମ୍ବବତୀସୁତ । କନ୍ୟାକୁ ହରିଲା ତୁରିତ ॥ ୪
୨ କୌରବେ ସକ୍ରୋଧ ହୋଇଲେ । ଏମନ୍ତ ବଚନ ବୋଇଲେ ॥ ୫
ଦୁଷ୍ଟ ଅଟଇ ଏ ନନ୍ଦନ । ଆମ୍ଭଙ୍କୁ କରି କଦର୍ଥନ ॥ ୬
କାମନା କରି ଯେ ନ ଥିଲା । ସେ କନ୍ୟା ବଳେ ଏ ହରିଲା ॥ ୭
୩ ଏ ଅବିନୀତ ବାଳକକୁ । ଏଠାରେ କର ବନ୍ଧନକୁ ॥ ୮
ଏଠାକୁ ଆସିଣ ଯାଦବେ । ଆମ୍ଭଙ୍କୁ ଅବା କି କରିବେ ॥ ୯
ଆମ୍ଭର ପ୍ରସାଦେ ପ୍ରାପତ । ଯା' ଆମ୍ଭେ କରିଥାଇଁ ଦତ୍ତ ॥ ୧୦
ଯଉଁ ଯାଦବମାନେ ନିତି । ସେ ଭୂମି ଭୋଗ କରୁଛନ୍ତି ॥ ୧୧
୪ ପୁତ୍ରର ବନ୍ଧନ ଶୁଣିଣ । ଯେବେ ଆସିବେ ଯଦୁଗଣ ॥ ୧୨
ଭାଜନ୍ତେ ତାଙ୍କ ଗର୍ବମାନ । ଶାନ୍ତିକି ଲଭିବେ ବହନ ॥ ୧୩
ଯେସନେ ହୁଅନ୍ତେ ସଂଯତ । ଇନ୍ଦ୍ରିୟମାନେ ହୋନ୍ତି ଶାନ୍ତ ॥ ୧୪
୫ ଏରୂପେ ଭୂରି କର୍ଣ୍ଣ କୃପ । ଯେ ଶଲ୍ୟ ଦୁର୍ଯ୍ୟୋଧନ ନୃପ ॥ ୧୫
ଭୀଷ୍ମଙ୍କ ତୁଲେ[1] ଏ ଶାମ୍ବକୁ । ଆରମ୍ଭ କଲେ ବାନ୍ଧିବାକୁ ॥ ୧୬
୬ ଧାଆଁନ୍ତେ ଧାର୍ତ୍ତରାଷ୍ଟ୍ରମାନେ । ତାହାଙ୍କୁ ଦେଖିଣ ସେ ସ୍ଥାନେ ॥ ୧୭
ସେ ମହାରଥ ଶାମ୍ବ ପୁଣ । ରୁଚିର ଧନୁକୁ ଧରିଣ ॥ ୧୮
ଏକାକୀ ହୋଇକରି ତହିଁ । ରହିଲେ ସିଂହପ୍ରାଏ ହୋଇ ॥ ୧୯
୭ ଶାମ୍ବକୁ ଧରିବାକୁ ତହିଁ । ଇଚ୍ଛା କରନ୍ତେ କ୍ରୋଧ ବହି ॥ ୨୦
କର୍ଣ୍ଣକୁ ଅଗ୍ରରେ କରିଣ । ରହ ରେ ରହ ବୋଲନ୍ତେଣ ॥ ୨୧
ସେମାନେ ଧରିଣ ଧନୁକୁ । ଲଭିଣ ଶାମ୍ବ କୁମାରକୁ ॥ ୨୨
ନାରାଚମାନଙ୍କେ ସତ୍ୱରେ । ପ୍ରହାର କଲେ ନିରନ୍ତରେ ॥ ୨୩
୮ ଅଚିନ୍ତ୍ୟ ଅଟେ ଯେ ଅର୍ଭକ । ସେ ଶାମ୍ବ ଯାଦବବାଳକ ॥ ୨୪
କୁରୁମାନଙ୍କେ ହେ ରାଜନ । ଲଭନ୍ତେ ନିବିଡ଼ ବନ୍ଧନ ॥ ୨୫
ତା' ନ ସହିଲେ ଅତିଶୟେ । କ୍ଷୁଦ୍ର ମୃଗରେ ସିଂହପ୍ରାୟେ ॥ ୨୬
୯ ରୁଚିର ଧନୁକୁ ସେ ବୀର । ଟଂକାର କରିଣ ସତ୍ୱର ॥ ୨୭

---

୧. ତୁଲେ = ଭୀଷ୍ମଙ୍କ ଦ୍ୱାରା ଅନୁମୋଦିତ ହୋଇ ।

କର୍ଣ୍ଣକୁ ଆଦି ହୋଇ ପୁଣ । ଯେ ସର୍ବ ରଥୀ ଷଡ଼ ଜଣ ॥
ତାଙ୍କୁ ବିନ୍ଧିଲା ତେତେ ବାଣେ । ଏକାବେଳକେ ଜଣେ ଜଣେ ॥
୧୦ ଚାରି ଚାରି ଅଶ୍ୱଙ୍କୁ ପୁଣ । ବିନ୍ଧିଲା ଚାରି ଚାରି ବାଣ ॥
ସାରଥିଙ୍କି ସେ ସେକାଳରେ । ବିନ୍ଧିଲା ଏକ ଏକ ଶରେ ॥
ସେ ଧନୁର୍ଦ୍ଧାରୀ ରଥିମାନେ । ଶାମ୍ବ-କୁମାରର ସେ ସ୍ଥାନେ ॥
ସେ କର୍ମ ଦେଖିଣ ବହନ । ସମସ୍ତେ କଲେ ସମ୍ମାନନ ॥
୧୧ ସେ ଷଡ଼ଜଣଁ ଚାରିଜଣ । ଚାରିଅଶ୍ୱଙ୍କୁ ବିନାଶିଣ ॥
ଶାମ୍ବକୁ କଲେକ ବିରଥି । ଆରକ ମାଇଲା ସାରଥି ॥
ଆରଜଣକ ଶରାସନ । ଛେଦନ କଲାକ ବହନ ॥
୧୨ କଷ୍ଟକଷ୍ଟରେ ତାକୁ ବୀରେ । ବିରଥ କରିଣ ଯୁଦ୍ଧରେ ॥
ଶାମ୍ବକୁ ବନ୍ଧନ କରିଣ । ଆପଣା[1] କନ୍ୟାକୁ ଘେନିଣ ॥
ଜୟକୁ ଲଭିଣ ସତ୍ୱରେ । ପ୍ରବେଶ ହେଲେ ନିଜ ପୁରେ ॥
୧୩ ଶାମ୍ବ କୁମାର ବଦ୍ଧ ପୁଣ । ନାରଦ କହନ୍ତେ ଶୁଣିଣ ॥
ପେଷନ୍ତେ ଉଗ୍ରସେନ ନୃପ । ଯାଦବେ ଜାତ କରି କୋପ ॥
ହେ ନୃପ ! କୁରୁଙ୍କ ସ୍ଥାନକୁ । ଉଦ୍ୟମ କଲେ ଚଳିବାକୁ ॥
୧୪ କଳିକଳୁଷ ନାଶକାରୀ । ଅଟନ୍ତି ଯଉଁ ହଳଧାରୀ ॥
ସେ ଯଦୁଶ୍ରେଷ୍ଠମାନେ ଅତି । ସନ୍ନଦ୍ଧ ହୋଇ ଯେ ଅଛନ୍ତି ॥
ତାହାଙ୍କୁ ସାନ୍ତ୍ୱନା କରିଣ । ଯେ କୁରୁ ଯଦୁମାନେ ପୁଣ ॥
ସେ ବେନି ଲୋକଙ୍କର ତହିଁ । କଳହ ଇଚ୍ଛା କଲେ ନାହିଁ ॥
୧୫ ଆଦିତ୍ୟପ୍ରାୟେ ଯା' କିରଣ । ସେ ରଥ କରି ଆରୋହଣ ॥
କୁଳର ବୃଦ୍ଧ ଯେ ବ୍ରାହ୍ମଣେ । ବେଷ୍ଟିତ ହୋଇ କରି ତେଣେ ॥
ହସ୍ତିନାପୁରକୁ ବୋଲିଣ । ଗମନ କଲେ ସଂକର୍ଷଣ ॥
ଗ୍ରହଙ୍କ ମଧ୍ୟେ ହୋଇ ବୃତ । ଯେସନେ ଯାଇ ନିଶାନାଥ ॥
୧୬ ସେ ରାମ ହସ୍ତିନାକୁ ଯାଇ । ବାହାରଉପବନେ ରହି ॥
ଯେ ଧୃତରାଷ୍ଟ୍ର ନରପତି । ତାଙ୍କ ନିକଟକୁ ଝଟିତି ॥
ତା' ଅଭିପ୍ରାୟ ଜାଣିମାକୁ । ପଠିଆଇଲେ ଉଦ୍ଧବଙ୍କୁ ॥
୧୭ ସେ ଧୃତରାଷ୍ଟ୍ରଙ୍କୁ ଭୀଷ୍ମଙ୍କୁ । ଦ୍ରୋଣଙ୍କ ତୁଲେ ବାହ୍ଲିକଙ୍କୁ ॥
ଦୁର୍ଯୋଧନଙ୍କୁ ହିଁ ସେଠାରେ । ପ୍ରଣାମ କରିଣ ବିଧିରେ ॥
ରାମ ହୋଇଲେ ଉପସ୍ଥିତ । ତାହାଙ୍କୁ କହିଲେ ଏମନ୍ତ ॥
୧୮ ଯେ ଅତିଶୟେ ଅଟେ ମିତ୍ର । ସେ ରାମ ହେଲେ ଉପଗତ ॥
କୁରୁଏ ଶୁଣିଣ ଏମନ୍ତ । ହୋଇଣ ଅତି ପ୍ରୀତିବନ୍ତ ॥

---

୧. ଦୁର୍ଯୋଧନର ।

ପୂଜା କରିଣ ଉଦ୍ଧବଙ୍କୁ । ଉତ୍ତମ ମଙ୍ଗଳଦ୍ରବ୍ୟକୁ ।। ୫୯
ହସ୍ତରେ ଘେନିଣ ବହନ । ସମସ୍ତେ କଲେକ ଗମନ ।। ୬୦
୧୯ ରାମଙ୍କୁ ଲଭିଣ ସେ ସ୍ଥାନେ । ଯଥାନ୍ୟାୟରେ କୁରୁଜନେ ।। ୬୧
ଉତ୍ତମଧେନୁ-ଅର୍ଘ୍ୟତୁଲେ । ସମସ୍ତେ ନିବେଦନ କଲେ ।। ୬୨
ରାମପ୍ରଭାବ ଯେଉଁ ନରେ । ଜାଣନ୍ତି ତାହାଙ୍କ ମଧ୍ୟରେ ।। ୬୩
ଶିରରେ ରୋହିଣୀସୁତଙ୍କୁ । କଲେ ସେ ଦିବ୍ୟ ପ୍ରଣାମକୁ ।। ୬୪
୨୦ ବନ୍ଧୁଙ୍କ କୁଶଳ ଭାବରେ । ଶ୍ରବଣ କରି ପରସ୍ପରେ ।। ୬୫
ଯେ ବା ମଙ୍ଗଳ ଅନାମୟ । ତାହା ପଚାରି ଅତିଶୟ ।। ୬୬
ଏଥୁ ଅନ୍ତରେ ରାମ ତାଙ୍କୁ । ପୁଛିଲେ ପ୍ରସ୍ତୁତ ବାକ୍ୟକୁ ।। ୬୭
୨୧ ରାଜାଙ୍କ ଉପରେ ରାଜନ । ଅଟନ୍ତି ଯେଉଁ ଉଗ୍ରସେନ ।। ୬୮
ସେ ପ୍ରଭୁ ତୁମ୍ଭ ସମସ୍ତଙ୍କୁ । ଦେଲେକ ଯେବଣ ଆଜ୍ଞାକୁ ।। ୬୯
ସ୍ଥିର ଚିତ୍ତରେ ଶୁଣି କରି । ତା' କର ବିଳମ୍ବ ନ କରି ।। ୭୦
୨୨ ଧାର୍ମିକ ଅଟଇ ଯେ ଏକ । ଅଧର୍ମେ ଜିଣି ସେ ବାଳକ ।। ୭୧
ବହୁତ ଲୋକ ଯାହା ତୁମ୍ଭେ । ବନ୍ଧନ କଲ ତାହା ଆମ୍ଭେ ।। ୭୨
ସହିଲୁଁ ବନ୍ଧୁଙ୍କର ପୁଣ । ଏକତ୍ୱ କାମନା କରିଣ ।। ୭୩
ଏବେ ସେ ପୁତ୍ରକୁ ସତ୍ୱରେ । ସମର୍ପ ଆଣି ଆମ୍ଭଠାରେ ।। ୭୪
୨୩ ଯେ ବୀର୍ଯ୍ୟ ଶୌର୍ଯ୍ୟ ବଳ ତହିଁ । ଯେ ଅତି ଉନ୍ନଦ୍ଧ ଅଟଇ ।। ୭୫
ଯେ ନିଜ ସାମର୍ଥ୍ୟସମାନ । ସେ ବଳଦେବର ବଚନ ।। ୭୬
କୁରୁଏ ଶୁଣି କ୍ରୁଦ୍ଧ ହେଲେ । ଏମନ୍ତ ବଚନ ବୋଇଲେ ।। ୭୭
୨୪ ଦେଖ ଏ ଆଶ୍ଚର୍ଯ୍ୟ ଅଟଇ । ଅତି ବିଚିତ୍ର ଅଟେ ଏହି ।। ୭୮
ଦୁର୍ଲଙ୍ଘ୍ୟ କାଳର ଗତିରେ । ପାଣ୍ଝୋଇ[1] ଥାଇ ଯେ ପାଦରେ ।। ୭୯
ମୁକୁଟେ ମଣ୍ଡିତ ଯେ ଶିର । ତା' ଆରୋହଣେ ଇଚ୍ଛା ତାର ।। ୮୦
୨୫ ଯାଦବେ କୁନ୍ତୀଙ୍କ ବିଭାରେ । ସଂବନ୍ଧ କଲେ ଆମ୍ଭଠାରେ ।। ୮୧
ଆମ୍ଭ ଶଯ୍ୟାରେ ସେ ଶୁଅନ୍ତେ । ଆମ୍ଭର ସଙ୍ଗତେ ଭୁଞ୍ଜନ୍ତେ ।। ୮୨
ଆମ୍ଭେ କୁରୁଏ ସେ ଯଦୁଙ୍କୁ । ନେଲୁଁ ଆପଣା ସମାନକୁ ।। ୮୩
ଆମ୍ଭେ ଦିଅନ୍ତେ ନୃପାସନ । ସେ କରିଅଛନ୍ତି ଆଦାନ ।। ୮୪
୨୬ ବ୍ୟଜନ ଚାମର ଯେ ବେନି । ଶ୍ୱେତ ଛତ୍ରକୁ ମିଶି ତିନି ।। ୮୫
ଶଙ୍ଖ ମୁକୁଟ ସିଂହାସନ । ଯେ ଦିବ୍ୟ ଶଯ୍ୟାମାନେ ଆନ ।। ୮୬
ଆମ୍ଭେ ଆଗ୍ରହ ନ କରନ୍ତେ । ଏମାନ ଭୁଞ୍ଜନ୍ତି ନିଶ୍ଚିନ୍ତେ ।। ୮୭
୨୭ ଦେଲା ଲୋକକୁ ପ୍ରତିକୂଳ । ଯେ ହୋଇଛନ୍ତି ତତକାଳ ।। ୮୮
ସେ ଯଦୁଙ୍କର ରାଜଚିହ୍ନେ । ବ୍ୟର୍ଥ ଅଟନ୍ତି ଏ ଭୁବନେ ।। ୮୯

---

୧. ଚର୍ମପାଦୁକା ।

ଯେସନେ ସର୍ପଙ୍କୁ ଅମୃତ । ଦେଲା ଲୋକକୁ ବିଷମତ ।। ୯୦
ଆମ୍ଭ ପ୍ରସାଦେ ଅବିରତ । ଯେ ହୋଇଛନ୍ତି ଭାଗ୍ୟବନ୍ତ ।। ୯୧
ସେ ଯଦୁମାନେହେଁ ଆମ୍ଭଙ୍କୁ । ଆଜ ଦିଅନ୍ତି ଏ ଆଜ୍ଞାକୁ ।। ୯୨
ତାଙ୍କର ଲାଜ ନାହିଁ କିଛି । ଏ କଥା ଖେଦ ଦେଉଅଛି ।। ୯୩
୨୮ ଯେ ଭୀଷ୍ମ ଦ୍ରୋଣ ଅରଜୁନ । ଏ ଆଦି ଯେତେ କୁରୁଜନ ।। ୯୪
ପୁତ୍ର ନ ଦିଅନ୍ତେ ଏମାନେ । ଇନ୍ଦ୍ର ହିଁ ଲଭିବେ କେସନେ ।। ୯୫
ସିଂହଗ୍ରସ୍ତ ହିଁ ଯଉଁ ବଳି । ତା ନେଇ ପାରଇ କି ଛେଳି ।। ୯୬

ଶ୍ରୀବାଦରାୟଣିରୁବାଚ

୨୯ କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ।। ୯୭
ଜନ୍ମରେ ବନ୍ଧୁମାନଙ୍କରେ । ଯେବଣ ସଂପତ୍ତିନିର୍ଭରେ ।। ୯୮
ସେ ସଂପତ୍ତିରେ ଯାହାଙ୍କର । ଗର୍ବ ହୋଇଛି ବଳୀୟାର ।। ୯୯
ସେ କୁରୁମାନେ ଦୁର୍ଭାଷାକୁ । ଶ୍ରବଣ କରାଇ ରାମଙ୍କୁ ।। ୧୦୦
ଅସଭ୍ୟ ଅଟନ୍ତି ସେ ନରେ । ପ୍ରବେଶ ହେଲେ ନିଜ ପୁରେ ।। ୧୦୧
୩୦ ସେ କୁରୁଙ୍କର ହଳଧାରୀ । ଦୁଷ୍ଟପଣକୁ ଦେଖି କରି ।। ୧୦୨
ଦୁର୍ବାକ୍ୟ ଶ୍ରବଣ କରିଣ । କୋପରେ ପୂରିତ ହୋଇଣ ।। ୧୦୩
ଯାଙ୍କୁ କେ ଚାହିଁ ନ ପାରିଲେ । ସେ ରାମ ଏମନ୍ତ କହିଲେ ।। ୧୦୪
୩୧ ନାନାପ୍ରକାର ସଂପତ୍ତିରେ । ଉତ୍କଟ ଯେ ଅସାଧୁ ନରେ ।। ୧୦୫
ଶାନ୍ତି ସେ ନିଶ୍ଚେ ନ ବାଞ୍ଛନ୍ତି । ତାଙ୍କର ଦଣ୍ଡେ ହୋଏ ଶାନ୍ତି ।। ୧୦୬
ପଶୁମାନଙ୍କର ଯେମନ୍ତେ । ଶାନ୍ତି ହୁଅଇ ଦଣ୍ଡଘାତେ ।। ୧୦୭
୩୨ ସକ୍ରୋଧ ହୋଇ ଏ ଭୁବନେ । ଆସୁ ଯେ ଥିଲେ ଯଦୁମାନେ ।। ୧୦୮
କୃଷ୍ଣ ଯେ ଥିଲେ କ୍ରୋଧ ଭରି । ତାହାଙ୍କୁ ମନ୍ଦ ମନ୍ଦ କରି ।। ୧୦୯
ସାନ୍ତ୍ୱନା କରିଣ ଆବର । ଏ ସର୍ବ କୁରୁମାନଙ୍କର ।। ୧୧୦
ମଙ୍ଗଳ କରନ୍ତେ ବାଞ୍ଛିତ । ଏଠାକୁ ହେଲି ଉପଗତ ।। ୧୧୧
୩୩ ସେ ଏ କୁରୁଏ ମନ୍ଦମତି । କଳହେ ଏହାଙ୍କର ପ୍ରୀତି ।। ୧୧୨
ଖଳ ଅଟନ୍ତି ଏହୁ ପୁଣ । ମୋତେ ଯେ ଅବଜ୍ଞା କରିଣ ।। ୧୧୩
ଏ ମାନୀମାନେ ଦୁଷ୍ଟବାଣୀ । ମୋତେ ବୋଇଲେ ପୁଣ ପୁଣି ।। ୧୧୪
୩୪ ଇନ୍ଦ୍ରାଦି ଲୋକପାଳେ ନିତି । ଯାହା ଆଜ୍ଞାରେ ବର୍ତ୍ତିଥାନ୍ତି ।। ୧୧୫
ଅନ୍ଧକ-ବୃଷ୍ଣି-ଭୋଜଙ୍କର । ଉପରେ ଅଟେ ଯେ ଈଶ୍ୱର ।। ୧୧୬
ସେ ଉଗ୍ରସେନ ରାଜା ନୋହେ । ଏମନ୍ତ ବୋଇଲେ ନିଶ୍ଚୟେ ।। ୧୧୭
୩୫ ଦେବଙ୍କ ବୃକ୍ଷ ପାରିଜାତ । ଯେ ଆଣି ଭୁଞ୍ଜିଲେ ସନ୍ତତ ।। ୧୧୮
ସୁଧର୍ମା ସଭା ଆକ୍ରମଣ । କରନ୍ତି ଯଉଁ ନାରାୟଣ ।। ୧୧୯
ସେ ରାଜାଙ୍କର ଆସନକୁ । ଯୋଗ୍ୟ ନୁହନ୍ତି ବସିବାକୁ ।। ୧୨୦

୩୬ ଯେ ଲକ୍ଷ୍ମୀ ଅଖିଳ-ଈଶ୍ୱରୀ । ସେ ଯା' ପାଦକୁ ଆଶ୍ରେ କରି ।। ୧୨୧
ନିତ୍ୟରେ କରନ୍ତି ଭଜନ । ସେ ଲକ୍ଷ୍ମୀପତି ଭଗବାନ ।। ୧୨୨
ଯେ ରାଜଚିହ୍ନମାନେ ଛନ୍ତି । ତହିଁକି ଅଯୋଗ୍ୟ ଅଟନ୍ତି ।। ୧୨୩
୩୭ ତୀର୍ଥମାନଙ୍କୁ ଉପାସନ । କରନ୍ତି ଯଉଁ ଯୋଗିଜନ ।। ୧୨୪
ତାଙ୍କର ତୀର୍ଥ ଯେ ଅଟଇ । ସେ ପାଦପଦ୍ମରଜକୁ ହିଁ ।। ୧୨୫
ଯାର ଅଖିଳଲୋକପାଳେ । ଧରନ୍ତି ମସ୍ତକରେ ବଳେ ।। ୧୨୬
ଧଇଲେ ବ୍ରହ୍ମା ଶିବ ଦୁଇ । ଲକ୍ଷ୍ମୀଦେବୀର ତୁଲେ ମୁହିଁ ।। ୧୨୭
ଯାର ଅଂଶର ଅଂଶ ହୋଉଁ । ସେ ଧୂଳି ଚିରକାଳ ବହୁଁ ।। ୧୨୮
ଏମନ୍ତ ଯଉଁ ଭଗବାନ । ତାଙ୍କର କାହିଁ ନୃପାସନ ।। ୧୨୯
୩୮ ଯା' କୁରୁମାନେ ଦେଇଛନ୍ତି । ସେ ଭୂମିଖଣ୍ଡକୁ ହିଁ ନିତି ।। ୧୩୦
ନିଶ୍ଚେ ଭୁଞ୍ଜନ୍ତି ଯଦୁଗଣ । ପାଣ୍ଡୋଇ ପ୍ରାୟେ ଆମ୍ଭେ ପୁଣ ।। ୧୩୧
ମସ୍ତକ ଅଟନ୍ତି କୁରୁଏ । ନିଶ୍ଚୟେ ଆପଣା ଇଚ୍ଛାଏ ।। ୧୩୨
୩୯ ମଦ୍ୟପଙ୍କର ପ୍ରାଏ ଅତି । ଐଶ୍ୱର୍ଯ୍ୟମତ୍ତ ଏ ଅଟନ୍ତି ।। ୧୩୩
ଏ ଅଭିମାନିଙ୍କର ପୁଣି । ନିଷ୍ଠୁର ଅସଂବଦ୍ଧ ବାଣୀ ।। ୧୩୪
ଦେଖି କେ ପାରିବ ବା ସହି । ଆପଣେ ଦଣ୍ଡଦାତା ହୋଇ ।। ୧୩୫
୪୦ କୁରୁମାନଙ୍କୁ ଆଜ ମୁହିଁ । ପୃଥ୍ୱୀରେ ରଖିବଇଁ ନାହିଁ ।। ୧୩୬
ଏମନ୍ତ ବୋଲି ନୀଳାମ୍ବର । ଦହିଲାପ୍ରାଏ ତିନିପୁର ।। ୧୩୭
ବହୁତ କ୍ରୁଦ୍ଧ ସେ ହୋଇଣ । ଉଠିଲେ ହଳକୁ ଧରିଣ ।। ୧୩୮
୪୧ ହସ୍ତିନାପୁରକୁ ତତ୍‌କ୍ଷଣ । ଲାଙ୍ଗଳ-ଅଗ୍ରେ ଉପାଡ଼ିଣ ।। ୧୩୯
ଗଙ୍ଗାରେ ପକାଇବା ପାଇଁ । ଝିଙ୍କିଲେ ଅତି କ୍ରୋଧ ବହି ।। ୧୪୦
୪୨ ନଉକାପ୍ରାୟେ ଆଘୂର୍ଣ୍ଣିତ । ପୁର ହେଉଛି ଅବିରତ ।। ୧୪୧
ଗଙ୍ଗାରେ ପକାନ୍ତେ ନେଇଣ । ଧରିଅଛନ୍ତି ଓଟାରିଣ ।। ୧୪୨
ଏ ରୂପେ ରାମଙ୍କୁ ଦେଖିଲେ । କୁରୁଏ ସସଂଭ୍ରମ ହେଲେ ।। ୧୪୩
୪୩ କୁରୁଏ ଘେନି କୁଟୁମ୍ବଙ୍କୁ । ଲକ୍ଷ୍ମଣାସଙ୍ଗତେ ଶାମ୍ବକୁ ।। ୧୪୪
ଆଗରେ କରି ବେନି କର । ଅଞ୍ଜଳି କରିଣ ସତ୍ୱର ।। ୧୪୫
ଇଚ୍ଛା କରନ୍ତେ ଜୀଇବାକୁ । ଶରଣ ଗଲେ ସେ ରାମଙ୍କୁ ।। ୧୪୬
୪୪ ହେ ରାମ ରାମାଖିଳାଧାର । ନ ଜାଣୁଁ ପ୍ରଭାବ ତୋହର ।। ୧୪୭
କୁତ୍ସିତ-ବୁଦ୍ଧି ମୂଢ଼ମତି । ଆମ୍ଭେ କୁରୁଏ ଅଟୁଁ ନିତି ।। ୧୪୮
ଆମ୍ଭର ଆହେ ଅଧୀଶ୍ୱର । ଏ ଦୋଷମ୍ୟାନ କ୍ଷମା କର ।। ୧୪୯
୪୫ ସ୍ଥିତି-ଉତ୍‌ପତ୍ତି-ବିନାଶର । ତୁ ଏକ ହେତୁଟି ଆବର ।। ୧୫୦
ଆଶ୍ରୟ ତୋର ନିଜ ଠାରେ । କ୍ରୀଡ଼ା କରନ୍ତେ ତୁ ସଂସାରେ ।। ୧୫୧
ଏ ଲୋକେ କ୍ରୀଡ଼ନକପ୍ରାଏ । ତୁମ୍ଭର ବୋଲନ୍ତି ନିଶ୍ଚୟେ ।। ୧୫୨

୪୬ ହେ ସର୍ବଶ୍ରେଷ୍ଠ ହେ ଅନନ୍ତ । ଏ ଭୂମଣ୍ଡଳ ଅବିରତ ।। ୧୫୩
ତୁମ୍ଭେ ଏ ଲୀଳାମାତ୍ରକରେ । ଧରିଛ ନିଜ ମସ୍ତକରେ ।। ୧୫୪
ଯେ ତୁମ୍ଭେ ପ୍ରଳୟକାଳରେ । ବିଶ୍ୱକୁ ରଖି ସ୍ୱ-ଆତ୍ମାରେ ।। ୧୫୫
ଶେଷ ଶଯ୍ୟାରେ ତୁମ୍ଭେ ଶୁଅ । ତୁମ୍ଭେଟି ଏକା ହୋଇଥାଅ ।। ୧୫୬
୪୭ ପାଳନା ଅର୍ଥେ ମର୍ଯ୍ୟାଦାର । ତୁମ୍ଭେ ହୁଅନ୍ତେ ତତପର ।। ୧୫୭
ହେ ଭଗବାନ ! ତୁମ୍ଭେ ପୁଣ । ସତ୍ତ୍ୱଗୁଣକୁ ଧରନ୍ତେଣ ।। ୧୫୮
ତୋ' କୋପ ନିଶ୍ଚେ ଶିକ୍ଷାପାଇଁ । ଦ୍ୱେଷରୁ ମତ୍ସରରୁ ନୋହି ।। ୧୫୯
୪୮ ଆହେ ସମସ୍ତ ଶକ୍ତିଧର । ତୁ ଆତ୍ମା ସର୍ବପ୍ରାଣିଙ୍କର ।। ୧୬୦
କରୁଛୁଁ ପ୍ରଣାମ ତୁମ୍ଭଙ୍କୁ । ଆମ୍ଭେ ଯାଉଛୁଁ ଶରଣକୁ ।। ୧୬୧
ହେ ବିଶ୍ୱକର୍ମା ହେ ଅବ୍ୟୟ । ପ୍ରଣାମ କରୁଛୁଁ ନିଶ୍ଚୟ ।। ୧୬୨

ଶ୍ରୀଶୁକ ଉବାଚ

୪୯ କହନ୍ତି ଶୁକ ମହାଯତି । କୌରବେ ଏ ରୂପେ ଝଟିତି ।। ୧୬୩
ଭୟରେ ହୋଇଣ ପ୍ରପନ୍ନ । କମ୍ପନ୍ତେ ତାଙ୍କ ନିଜ ସ୍ଥାନ ।। ୧୬୪
ପ୍ରସନ୍ନ ହେଲେ ସଂକର୍ଷଣ । ଭୟକୁ ନ ଲଭ ବୋଲିଣ ।। ୧୬୫
କୁରୁଙ୍କ କହି ଏ ବାକ୍ୟକୁ । ପ୍ରଦାନ କଲେ ଅଭୟକୁ ।। ୧୬୬
୫୦| ଯୌତୁକ କରି ଦୁର୍ଯ୍ୟୋଧନ । ବାର ଅୟୁତ ଅଶ୍ୱମାନ ।। ୧୬୭
୫୧| ଯାହାଙ୍କୁ ଷାଠିଏ ବତ୍ସର । ବାରଶ' ଦେଲା ସେ କୁଞ୍ଜର ।। ୧୬୮
ଆଦିତ୍ୟପ୍ରାଏ ତେଜସ୍ୱନ୍ତ । ଷଡ଼ ସହସ୍ର ସ୍ୱର୍ଣ୍ଣରଥ ।। ୧୬୯
ଯାହାଙ୍କ କଣ୍ଠରେ ପଦକ । ଏମନ୍ତ ଦାସୀ ସହସ୍ରେକ ।। ୧୭୦
ଦୁହିତାବତ୍ସଳ ହୋଇଣ । ରାମଙ୍କୁ କଲା ବିତରଣ ।। ୧୭୧
୫୨ ସେ ଯଦୁଶ୍ରେଷ୍ଠ ସଂକର୍ଷଣ । ତା' ସର୍ବ ଗ୍ରହଣ କରିଣ ।। ୧୭୨
ପୁତ୍ରର ସହିତେ ଆବର । ବଧୂକୁ ଘେନି ସଙ୍ଗତର ।। ୧୭୩
ବନ୍ଦିତ ହୋଇ ମିତ୍ରଙ୍କରେ । ପ୍ରୟାଣ କଲେ ନିଜ ପୁରେ ।। ୧୭୪
୫୩ ସେ ହଳଧର ତଦନ୍ତରେ । ପ୍ରବେଶ ହୋଇ ନିଜ ପୁରେ ।। ୧୭୫
ଯାହାଙ୍କ ଚିତ୍ତ ଅନୁରକ୍ତ । ସେ ବନ୍ଧୁମାନଙ୍କୁ ଲକ୍ଷିତ ।। ୧୭୬
କରିଣ ଯଦୁଶ୍ରେଷ୍ଠଙ୍କର । ସଭାର ମଧ୍ୟରେ ସତ୍ୱର ।। ୧୭୭
କୁରୁଙ୍କ ପ୍ରତି ସ୍ୱଚେଷ୍ଟିତ । ସମସ୍ତ କଲେ ନିବେଦିତ ।। ୧୭୮
୫୪ ତୁମ୍ଭର ଏ ହସ୍ତିନାପୁର । ପରାକ୍ରମକୁ ସେ ରାମର ।। ୧୭୯
ଆଜ ହିଁ କରୁଛି ସୂଚିତ । ଦକ୍ଷିଣ ପାଖେ ସମୁନ୍ନତ ।। ୧୮୦
ଦେଖ ଏ ଗଙ୍ଗାରେ ନିଶ୍ଚୟେ । ହେ ମହାରାଜ ! ଦୃଶ୍ୟ ହୋଏ ।। ୧୮୧
ଲାଙ୍ଗଳ-ଅଗ୍ରେ ଯେ ସତ୍ୱର । ଟାଳିଲେ ହସ୍ତିନାନଗର ।। ୧୮୨
ସେ ରାମଚରଣପଙ୍କଜ । ଭଜଇ ଦୀନବନ୍ଧୁ ଦ୍ୱିଜ ।। ୧୮୩

ବୈଷ୍ଣବ ଜୟରାମ ଦାସ । ଯହିଁରେ ଅତ୍ୟନ୍ତ ଉଲ୍ଲାସ ।। ୧୮୪
ତାଙ୍କ ପ୍ରୀତିରେ ବଶ ହେଲି । ଏ ଗୀତରସେ ଚିତ୍ତ ଦେଲି ।। ୧୮୫
ସୁଜନେ ନ ଧର ମୋ' ଦୋଷ । ଶ୍ରବଣ କରି ଲଭ ତୋଷ ।। ୧୮୬

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଦଶମସ୍କନ୍ଧେ ବଳରାମେଣ ହସ୍ତିନାପୁରକର୍ଷଣଂ
ନାମ ଅଷ୍ଟଷଷ୍ଟିତମୋଽଧ୍ୟାୟଃ ।।

## ଏକୋନସପ୍ତତିତମ ଅଧ୍ୟାୟ

ଏକୋନସପ୍ତତିତମେ ଗାର୍ହସ୍ଥ୍ୟଂ ପ୍ରତିମନ୍ଦିରମ୍ ।
କୃଷ୍ଣସ୍ୟ ନାରଦୋ ଦୃଷ୍ଟ୍ୱା ବିସ୍ମିତୋଽଗାଦ୍ ତତଃ ସ୍ତୁବନ୍ ।। ୧

ଶ୍ରୀଶୁକ ଉବାଚ

୧ ନରକାସୁର ହେଲା ହତ । ନାରଦ ଶୁଣିଣ ଏମନ୍ତ ।। ୧
ବହୁତ ନାରୀମାନଙ୍କର । ବିବାହ ଏକା ଶ୍ରୀକୃଷ୍ଣର ।। ୨
ଶ୍ରବଣ କରି ସେ ରୂପରେ । ତାହା ଦେଖିବା ନିମିତ୍ତରେ ।। ୩
୨ ଏକାବେଳକେ ଏକା ଦେହେ । ଭିନ୍ନ ଭିନ୍ନକେ ଗୃହେ ଗୃହେ ।। ୪
ଷୋଳସହସ୍ର ନାରୀଗଣେ । ବିବାହ ହେଲେ ଏକା ଜଣେ ।। ୫
୩ ଏ କଥା ବିଚିତ୍ର ବେଭାରେ । ଏମନ୍ତ ବୋଲି ଉତ୍ସୁକରେ ।। ୬
ଦେଖିବା ଅର୍ଥେ ଦେବରଷି । ମିଳିଲେ ଦ୍ୱାରକାରେ ଆସି ।। ୭
ପୁଷ୍ପିତ ଯଉଁ ଉପବନ । ଯେ ବା ଆରାମମାନେ ଆନ ।। ୮
ତହିଁରେ ଯେ ପକ୍ଷୀ ଭ୍ରମର । ସଂକୁଳେ ଶବ୍ଦିତ ଯେ ପୁର ।। ୯
୪ ଉତ୍‌ଫୁଲ୍ଲ ଯଉଁ ଇନ୍ଦୀବରେ । ଯେ ପଦ୍ମମାନେ ଯେ କହ୍ଲାରେ ।। ୧୦
କୁମୁଦ ଯେ ଉତ୍‌ପଳଗଣେ । ଯେ ବାପୀମାନେ ବ୍ୟାପ୍ତ ଏଣେ ।। ୧୧
ଯେ ହଂସ ସାରସ ତହିଁରେ । ତେଣେ କୂଜିତ ଯଉଁ ପୁରେ ।। ୧୨
୫ ସୁବର୍ଣ୍ଣରତ୍ନମୟ ହୋଇ । ଅଛନ୍ତି ପରିଚ୍ଛଦ[1] ଯହିଁ ।। ୧୩
ମହାମର୍କତମାନଙ୍କରେ । ପ୍ରକାଶ ଅଟେ ଯେ ନିର୍ଭରେ ।। ୧୪
ସ୍ଫଟିକ-ରଜତରେ ପୁଣ । ହୋଇ ଅଛନ୍ତି ଯେ ନିର୍ମାଣ ।। ୧୫
ଯେ ନବଲକ୍ଷ ଜଗତୀରେ । ଯେ ପୁର ପୂରିତ ନିତ୍ୟରେ ।। ୧୬
୬ ଯେ ରଥ୍ୟାପଥ[2] ଯେ ଚତ୍ୱର[3] । ଯେ ପଣ୍ୟସ୍ଥାନମାନେ ଆର ।। ୧୭
ଏମାନେ ବିଭକ୍ତ ହୋଇଣ । ଯହିଁରେ ଅଛନ୍ତି ରହିଣ ।। ୧୮
ଯେ ଶାଳାସଭାମାନଙ୍କରେ । ଦେବତାମାନଙ୍କ ମନ୍ଦିରେ ।। ୧୯
ଆହେ ରାଜନ ନିରନ୍ତର । ଯେବଣ ପୁର ମନୋହର ।। ୨୦

୧. ପରିଚ୍ଛଦ = ଉପକରଣ । ୨. ରଥ୍ୟାପଥ = ରାଜପଥ । ୩. ଚତ୍ୱର = ଅଗଣା ।

ମାର୍ଗ ଅଙ୍ଗଣ ବୀଥି[୧] ଯହିଁ । [୨]ଦେହଳୀ ଅଛି ସିକ୍ତ ହୋଇ ॥
ଚଳନ୍ତି ପତାକା ଯହିଁରେ । ଏମନ୍ତ ଧ୍ୱଜମାନଙ୍କରେ ॥
ଯେବଣ ପୁରେ ଅବିରତ । ଆତପ ହୋଏ ନିବାରିତ ॥
୭ | ଏମନ୍ତ ଦ୍ୱାରାବତୀପୁରେ । ଯେ ଷୋଳସହସ୍ର ମନ୍ଦିରେ ॥
୮ | ହୋଇଣ ଅଛି ଅଳଂକୃତ । ଆବର ଅଟଇ ଶ୍ରୀମନ୍ତ ॥
ସମସ୍ତ ଲୋକପାଳଙ୍କରେ । ପୂଜିତ ଅଟେ ଯେ ନିତ୍ୟରେ ॥
ଏମନ୍ତ କୃଷ୍ଣଅନ୍ତଃପୁରେ । ନାରଦ ମିଳି ସେ କାଳରେ ॥
ଯହିଁରେ ବିଶ୍ୱକର୍ମା ବାଞ୍ଛି । ନିଜ କୌଶଳ ଦେଖାଇଛି ॥
ସେ କୃଷ୍ଣପତ୍ନୀଙ୍କର ତହିଁ । ମିଳିଲେ ଏକପୁରେ ଯାଇଁ ॥
୯ ବୈଦୂର୍ଯ୍ୟମାନେ ଯହିଁ ଅତି । ଖଚିତ ହୋଇ ରହିଛନ୍ତି ॥
ସେ ଦିବ୍ୟ ବିଦ୍ରୁମସ୍ତମ୍ଭରେ । ବିଧୃତ ଯେବଣ ମନ୍ଦିରେ ॥
ଯହିଁରେ ଇନ୍ଦ୍ରନୀଳମୟ । ହୋଇ ଅଛନ୍ତି ବାଡ଼ଚୟ ॥
ଅତ୍ୟନ୍ତ[୩] ତେଜସ୍ୱନ୍ତ ହୋଇ । ସେ ଇନ୍ଦ୍ରନୀଳମୟୀ ଭୂଇଁ ॥
୧୦ ମୁକ୍ତାଦାମ ଅବିରତ । ଅଟନ୍ତି ଯହିଁରେ ଲମ୍ବିତ ॥
ତ୍ୱଷ୍ଟା ଯା' କରିଛି ନିର୍ମିତ । ସେ ବିତାନ[୪]ରେ ଯେ ଶୋଭିତ ॥
ପଲଙ୍କ ଆସନ ଯହିଁରେ । ନିର୍ମିତ ହସ୍ତୀଙ୍କ ଦନ୍ତରେ ॥
ଉତ୍ତମ ମଣିରେ ଆବର । ଭୂଷିତ ଅଟେ ଯେଉଁ ପୁର ॥
୧୧ ଯେ ଦିବ୍ୟ ବସ୍ତ୍ର ପିନ୍ଧିଛନ୍ତି । ପଦକ ଯାଙ୍କ କଣ୍ଠେ ଛନ୍ତି ॥
ସେ ଦାସୀମାନଙ୍କେ ସନ୍ତତ । ଯେବଣ ପୁର ଅଳଂକୃତ ॥
ଦିବ୍ୟ କବଚମାନଙ୍କରେ । ଉତ୍ତମ ପାଟ-ବସନରେ ॥
ମଣିକୁଣ୍ଡଳରେ ଆବର । ଯେ ଶୋଭାବନ୍ତ ନିରନ୍ତର ॥
ସେ ଦିବ୍ୟ ପୁରୁଷେ ଶୋଭନ । ଦିଶଇ ଯେବଣ ଭୁବନ ॥
୧୨ ଯେ ରତ୍ନଦୀପଗଣମାନ । କିରଣମାନଙ୍କେ ରାଜନ ॥
ନିରସ୍ତ ହେଲେ ଯେଉଁ ପୁରେ । ଅତି ନିବିଡ଼ ଅନ୍ଧକାରେ ॥
ଚିତ୍ର ଜଗତୀ[୫]ମାନଙ୍କରେ । ଗବାକ୍ଷମାନଙ୍କେ ଯହିଁରେ ॥
ଅଗୁରୁଧୂପ ଯେ ନିର୍ମିତ । ତା' ଧୂମ ହୁଅନ୍ତେ ନିର୍ଗତ ॥
ତା' ଦେଖି ଜଳଦବୁଦ୍ଧିରେ । ବୋବାନ୍ତି ନାଚନ୍ତି ମୟୂରେ ॥
୧୩ ନିଜସମାନ ଯାଙ୍କ ଗୁଣ । ରୂପ ବୟସ ବେଷ ପୁଣ ॥
ସେ ଦାସୀସହସ୍ରେକ ମେଳେ । ଯେ ଯୁକ୍ତ ହୋଇ ସର୍ବକାଳେ ॥
ସୁବର୍ଣ୍ଣଦଣ୍ଡେ ଯେ ନିର୍ମାଣ । ଘେନି ସେ ଚାମରବ୍ୟଜନ ॥
ବିଞ୍ଚୁଅଛନ୍ତି ଯେ ରୁକ୍ମିଣୀ । ସେ ପୁରେ ତାଙ୍କ ତୁଲେ ପୁଣି ॥
ବସିଥିଲେ ଯେ ଭଗବାନ । ନାରଦ କଲେ ବିଲୋକନ ॥

---

୧. ବୀଥି = ତରୁଶ୍ରେଣୀବିଶିଷ୍ଟ ପଥ । ୨. ଦେହଳୀ = ଦ୍ୱାରବନ୍ଧ । ୩. ଅତ୍ୟନ୍ତ = ଅହତ ।
୪. ବିତାନ = ଚାନ୍ଦୁଆ । ୫. ଜଗତୀ = ଚନ୍ଦ୍ରଶାଳା ।

୧୪ ସର୍ବଧାର୍ମିକଲୋକଙ୍କର । ମଧ୍ୟରେ ଅଟନ୍ତି ଯେ ବର ॥ ୫୩
ସେ ହରି ତାହାଙ୍କୁ ଦେଖିଣ । [1]ଲକ୍ଷ୍ମୀର ପଲଙ୍କୁ ଉଠିଣ ॥ ୫୪
ତତ୍‌କାଳ ତା’ ପାଦଯୁଗରେ । କିରୀଟଯୁତ ନିଜ ଶିରେ ॥ ୫୫
ଅଞ୍ଜଳିସହିତେ ନମିଲେ । ନିଜ ଆସନେ ବସାଇଲେ ॥ ୫୬
୧୫ ଜଗତଗୁରୁ ହିଁ ଯେ ଅତି । ସାଧୁମାନଙ୍କର ଯେ ପତି ॥ ୫୭
ଯା’ ପାଦଶୌଚ ଗଙ୍ଗା ହୋଏ । ଅଟେ ଅଶେଷତୀର୍ଥମୟେ ॥ ୫୮
ସେ କୃଷ୍ଣ ନାରଦପାଦକୁ । ଧୌତ କରିଣ ସେ ଜଳକୁ ॥ ୫୯
ଘେନିଲେ ନିଜ ମସ୍ତକେଣ । ବ୍ରହ୍ମଣ୍ୟଦେବ ବୋଲି ପୁଣ ॥ ୬୦
ଯେବଣ ନାମ ଗୁଣକୃତ । ଯେଣୁ ସେ ତାଙ୍କ ଠାରେ ଯୁକ୍ତ ॥ ୬୧
୧୬ ସେ ନରସଖା ନାରାୟଣ । ଯେ ଅଟେ ଋଷି ପୁରାତନ ॥ ୬୨
ଯେ ଦେବଋଷିମଧ୍ୟେ ସାର । ସେ ନାରଦଙ୍କୁ ତତପର ॥ ୬୩
ଯଥୋକ୍ତ ବିଧିମତ କରି । ଦିବ୍ୟ ପୂଜନ କରି ସାରି ॥ ୬୪
ସୁଧାପୂରିତ ଯେ ବଚନ । ତେଣେ କରିଣ ସମ୍ଭାଷଣ ॥ ୬୫
ତାଙ୍କୁ କହିଲେ ଆହେ ପ୍ରଭୁ । କହ ତୁମ୍ଭଙ୍କୁ କି କରିବୁଁ ॥ ୬୬

ଶ୍ରୀନାରଦ ଉବାଚ

୧୭ ସେ ଲକ୍ଷ୍ମୀପତିଙ୍କି ଏମନ୍ତ । କହୁଅଛନ୍ତି ବ୍ରହ୍ମାସୁତ ॥ ୬୭
ହେ ବିଭୋ ହେ ଉରୁଗାୟନ । ସର୍ବପ୍ରାଣିରେ ପ୍ରତିଦିନ ॥ ୬୮
ଆହେ ଅଖିଳଲୋକନାଥ । ତୋ’ ମୈତ୍ରୀ ନୁହଇ ଅଦ୍ଭୁତ ॥ ୬୯
କଂସାଦି ଖଳଙ୍କର ଠାରେ । ଦଣ୍ଡ ହିଁ ଅଟେ ସେ ପ୍ରକାରେ ॥ ୭୦
ଜଗତ-ଧାରଣ-ରକ୍ଷଣ । ମଙ୍ଗଳନିମିତ୍ତରେ ପୁଣ ॥ ୭୧
ସ୍ୱେଚ୍ଛାବତାର କର ତୁମ୍ଭେ । ଉତ୍ତମ କରି ଜାଣୁଁ ଆମ୍ଭେ ॥ ୭୨
୧୮ ଅତ୍ୟନ୍ତ ଜ୍ଞାନୀ ବ୍ରହ୍ମାଦିଏ । ଯାହାକୁ ଚିନ୍ତନ୍ତି ହୃଦୟେ ॥ ୭୩
ସମସ୍ତ ଭକ୍ତଜନଙ୍କର । ମୋକ୍ଷ ଦିଅଇ ଯେ ଆବର ॥ ୭୪
ଯେବଣ ଜନମାନେ ନିତି । ସଂସାରକୂପେ ପଡିଥାନ୍ତି ॥ ୭୫
ତାଙ୍କ ଉଦ୍ଧାରନିମିତ୍ତରେ । ଆଶ୍ରୟ ଅଟେ ଯେ ନିର୍ଭରେ ॥ ୭୬
ଏମନ୍ତ ସେ ଚରଣଦୁଇ । ତୁମ୍ଭର ଦେଖିଲଇଁ ମୁହିଁ ॥ ୭୭
ଯେମନ୍ତେ ହେବ ତା’ ସ୍ମରଣ । ତାହାକୁ ଧ୍ୟାନ କରନ୍ତେଣ ॥ ୭୮
ଭ୍ରମଣ କରୁଥିବୁଁ ଆମ୍ଭେ । ଏ ଅନୁଗ୍ରହ କର ତୁମ୍ଭେ ॥ ୭୯
୧୯ ଯେ ଯୋଗେଶ୍ୱରମାନଙ୍କର । ଉପରେ ଅଟନ୍ତି ଈଶ୍ୱର ॥ ୮୦
ତାଙ୍କର ଅଂଶପ୍ରାଏ ହୋଇ । ଯେ ଯୋଗମାୟା ଅଛି ରହି ॥ ୮୧
ତାହାକୁ ଜାଣିମା ଇଚ୍ଛାରେ । ସେଠାରୁ ଯାଇ ତଦନ୍ତରେ ॥ ୮୨

୧. ରୁକ୍ମିଣୀର ।

କୃଷ୍ଣର ଅନ୍ୟ ପତ୍ନୀପୁରେ । ନାରଦ ମିଳିଲେ ସତ୍ୱରେ ॥ ୮୩
୨୦ ପ୍ରିୟା ଉଦ୍ଧବ ବେନି ଜଣ । ସଙ୍ଗତେ ପ୍ରଭୁ ନାରାୟଣ ॥ ୮୪
ଖେଳନ୍ତେ ପଶାମାନଙ୍କରେ । ନାରଦ ଦେଖିଲେ ସେ ପୁରେ ॥ ୮୫
ଯେ ପ୍ରତ୍ୟୁତ୍‌ଥାନ ଯେ ଆସନ । ଇତ୍ୟାଦିମାନଙ୍କେ ବହନ ॥ ୮୬
ଅତିଭକ୍ତିରେ ନାରଦଙ୍କୁ । କଲେ ଉତ୍ତମ ପୂଜନକୁ ॥ ୮୭
୨୧ ଆସିବା ହେଲେ କେତେବେଳେ । ଏମନ୍ତ ବୋଲିଣ ସେ କାଳେ ॥ ୮୮
ଜାଣି ନ ଥିଲା ପ୍ରାଏ ହୋଇ । ପୁଛିଲେ ନାରଦଙ୍କୁ ତହିଁ ॥ ୮୯
ତୁମ୍ଭେ ଯେ ପୂର୍ଣ୍ଣକାମମାନେ । ଅପୂର୍ଣ୍ଣକାମ ଆମ୍ଭେମାନେ ॥ ୯୦
ତୁମ୍ଭର କି କରିବୁଁ ଆମ୍ଭେ । ନିଶ୍ଚୟ କହ ତାହା ତୁମ୍ଭେ ॥ ୯୧
୨୨ ତଥାପି କହ ହେ ବ୍ରହ୍ମନ । କର ମୋ' ଏ ଜନ୍ମ ଶୋଭନ ॥ ୯୨
୨୩ ନାରଦ ବିସ୍ମୟକୁ ପାଇ । ସେଠାରୁ ଉଠି ତୁନି ହୋଇ ॥ ୯୩
ଚଳିଲେ ଅନ୍ୟପତ୍ନୀପୁରେ । ନିଜ ବାଳକଙ୍କୁ ସେଠାରେ ॥ ୯୪
ପାଳନା କରନ୍ତେ ଗୋବିନ୍ଦ । ଦେଖିଣ କହିଲେ ନାରଦ ॥ ୯୫
ତହୁଁ ମିଳିଲେ ଅନ୍ୟପୁରେ । ତହିଁ ସ୍ନାହାନନିମିତ୍ତରେ ॥ ୯୬
କୃଷ୍ଣ କରନ୍ତେ ଉଦ୍ୟମକୁ । ନାରଦ ଦେଖିଲେ କୃଷ୍ଣଙ୍କୁ ॥ ୯୭
୨୪ [୧]ବିତାନାଗ୍ନିକି କାହିଁ ପୁଣ । ଦେଖିଲେ ହୋମ କରନ୍ତେଣ ॥ ୯୮
ପଞ୍ଚଯଜ୍ଞରେ କାହିଁ ଭଲେ । ଦେଖିଲେ ଇଷ୍ଟି କରୁଥିଲେ ॥ ୯୯
କେବଣ ପୁରେ ବ୍ରାହ୍ମଣଙ୍କୁ । କରାଉଛନ୍ତି ଭୋଜନକୁ ॥ ୧୦୦
ଯେ ଅବା ଅବଶିଷ୍ଟ ଅନ୍ନ । ତା' କରୁଅଛନ୍ତି ଭୋଜନ ॥ ୧୦୧
୨୫ କେବଣ ପୁରେ ସଂଧ୍ୟା ପୁଣ । କରୁଅଛନ୍ତି ଉପାସନ ॥ ୧୦୨
କାହିଁରେ ହୋଇଣ ମଉନ । ବ୍ରହ୍ମକୁ କରନ୍ତି ଜପନ ॥ ୧୦୩
କେବଣ ପୁରେ ନରହରି । ଢାଲ ଖଡ଼ଗ ଧରି କରି ॥ ୧୦୪
ଖଡ଼ଗମାର୍ଗରେ ସାଧନ୍ତେ । ନାରଦ ଦେଖିଲେ ତଦନ୍ତେ ॥ ୧୦୫
୨୬ ଅଶ୍ୱରେ ଗଜରେ ରଥରେ । ବିହାର କରନ୍ତେ କାହିଁରେ ॥ ୧୦୬
ସେ ଗଦାଗ୍ରଜଙ୍କୁ ଆବର । ଦେଖିଲେ ବ୍ରହ୍ମାଙ୍କ କୁମର ॥ ୧୦୭
ଶୟନ କେବଣ ପୁରରେ । କରିଅଛନ୍ତି ପଲଙ୍କରେ ॥ ୧୦୮
ସ୍ତୁତି କରନ୍ତି ବନ୍ଦିଜନ । ନାରଦ କଲେ ବିଲୋକନ ॥ ୧୦୯
୨୭ ଉଦ୍ଧବ ଆଦି ମନ୍ତ୍ରିଗଣ । କେବଣ ପୁରରେ ଘେନିଣ ॥ ୧୧୦
ମନ୍ତ୍ରଣା କରନ୍ତେ ଗୋବିନ୍ଦ । ଦେଖିଲେ ଯାଇଣ ନାରଦ ॥ ୧୧୧
ଜଳକ୍ରୀଡ଼ାରେ ରତ ହୋଇ । କଉଁ ପୁରରେ ଛନ୍ତି ରହି ॥ ୧୧୨
ଯେ ଅବା ବାରନାରୀଗଣେ । ବେଷ୍ଟିତ ହୋଇ କରି ତେଣେ ॥ ୧୧୩

୧. ଆହବନୀୟ ଅଗ୍ନି ।

| | | | |
|---|---|---|---|
| ୨୮ | ଯେ ଅଳଂକୃତ ଧେନୁଗଣ | ତାହାଙ୍କୁ କେବଣ ପୁରେଣ | ॥ ୧୧୪ |
| | ଶ୍ରେଷ୍ଠ ବ୍ରାହ୍ମଣଙ୍କୁ ସେ ହରି | ଦେଉଅଛନ୍ତି ଦାନ କରି | ॥ ୧୧୫ |
| | ଇତିହାସ-ପୁରାଣମାନ | ଯେ ବା ମଙ୍ଗଳବାକ୍ୟେ ଆନ | ॥ ୧୧୬ |
| | ହରି ଶ୍ରବଣ କରୁଥିଲେ | କେବଣ ପୁରରେ ଦେଖିଲେ | ॥ ୧୧୭ |
| ୨୯ | କେବଣ ପ୍ରିୟାର ସଙ୍ଗରେ | ହାସ୍ୟବଚନମାନଙ୍କରେ | ॥ ୧୧୮ |
| | କେବଣ ପୁରେ ହସୁଥିଲେ | ନାରଦ କୃଷ୍ଣଙ୍କୁ ଦେଖିଲେ | ॥ ୧୧୯ |
| | କେବଣ ପୁରେ ଭଗବାନ | ଧର୍ମକୁ କରନ୍ତେ ସେବନ | ॥ ୧୨୦ |
| | ଯେ ଅବା ଅର୍ଥକାମ ଦୁଇ | ତା' କଉଁପୁରେ ଭାବଗ୍ରାହୀ | ॥ ୧୨୧ |
| | କରନ୍ତେ ଆଚରଣ ତହିଁ | ନାରଦ ଦେଖିଲେକ ଯାଇ | ॥ ୧୨୨ |
| ୩୦ | ଯେ ଅଟେ ପ୍ରକୃତିରୁ ପର | ସେ ଆତ୍ମାପୁରୁଷକୁ ଆର | ॥ ୧୨୩ |
| | ଧ୍ୟାନ କରନ୍ତେ ଏକା ହୋଇ | ନାରଦ ଦେଖିଲେକ ଯାଇ | ॥ ୧୨୪ |
| | ଗୁରୁମାନଙ୍କୁ କଉଁ ପୁରେ | ଭୋଗମାନଙ୍କେ କାମନାରେ | ॥ ୧୨୫ |
| | ସେବା କରନ୍ତେ ଭଗବାନ | ନାରଦ କଲେ ବିଲୋକନ | ॥ ୧୨୬ |
| ୩୧ | ବିଗ୍ରହ କେବଣ ପୁରରେ | କରନ୍ତି କାହାର ସଙ୍ଗରେ | ॥ ୧୨୭ |
| | ଅନ୍ୟସଙ୍ଗରେ ସନ୍ଧିଭାବ | କାହିଁରେ କରନ୍ତି କେଶବ | ॥ ୧୨୮ |
| | କେବଣ ପତ୍ନୀର ପୁରରେ | ବଳରାମଙ୍କ ସଙ୍ଗତରେ | ॥ ୧୨୯ |
| | ମଙ୍ଗଳ ସାଧୁମାନଙ୍କର | ବିଚାରୁଛନ୍ତି ଦାମୋଦର | ॥ ୧୩୦ |
| ୩୨ | ପୁତ୍ର-ଦୁହିତାମାନଙ୍କର | କେବଣ ପୁରରେ ଆବର | ॥ ୧୩୧ |
| | ସେ ସେହି କାଳରେ ଅଚ୍ୟୁତ | ବିଭା କରାନ୍ତି ବିଧିମତ | ॥ ୧୩୨ |
| | ସେ ସୁତସୁତାମାନଙ୍କର | ତାଙ୍କ ସମାନ ଭାର୍ଯ୍ୟା ବର | ॥ ୧୩୩ |
| | ସର୍ବସଂପତ୍ତିମାନଙ୍କରେ | କେବଣ ବନିତାର ପୁରେ | ॥ ୧୩୪ |
| | କଳ୍ପନା କରନ୍ତେ ଗୋବିନ୍ଦ | ଯାଇଣ ଦେଖିଲେ ନାରଦ | ॥ ୧୩୫ |
| ୩୩ | କେବଣ ପୁରେ ଦୁହିତାଙ୍କୁ | ପେଷନ୍ତି ଶ୍ୱଶୁରଗୃହକୁ | ॥ ୧୩୬ |
| | ସେ ଦୁହିତାଙ୍କୁ କଉଁ ପୁରେ | ତହୁଁ ଆଣନ୍ତି ନିଜପୁରେ | ॥ ୧୩୭ |
| | ସେ ଯୋଗେଶ୍ୱରେଶ୍ୱରଙ୍କର | ଯେବଣ ଅପତ୍ୟାଦିଙ୍କର | ॥ ୧୩୮ |
| | ଦେଖିଣ ସେ ଉତ୍ସବମାନ | ବିସ୍ମିତ ହେଲେ ସର୍ବଜନ | ॥ ୧୩୯ |
| ୩୪ | ସେ କୃଷ୍ଣ କେବଣ ପୁରରେ | ଉତ୍ତମ ଯଜ୍ଞମାନଙ୍କରେ | ॥ ୧୪୦ |
| | ସମସ୍ତ ଦେବତାମାନଙ୍କୁ | କରୁଅଛନ୍ତି ଯଜନକୁ | ॥ ୧୪୧ |
| | କୂପ ଆରାମ ମଠ[୧] ଆଦି | କାହିଁ କରାନ୍ତି ଦୟାନିଧି | ॥ ୧୪୨ |
| | ସଂପୂର୍ଣ୍ଣ କରନ୍ତେ ଧର୍ମକୁ | ନାରଦ ଦେଖିଲେ କୃଷ୍ଣଙ୍କୁ | ॥ ୧୪୩ |
| ୩୫ | ଯେ ସିନ୍ଧୁଦେଶେ ଅଟେ ଜାତ | ସେ ଅଶ୍ୱ ଚଢ଼ିଣ ଅଚ୍ୟୁତ | ॥ ୧୪୪ |

୧. ଗୃହ।

| | | | | |
|---|---|---|---|---|
| | କେବଣ ପୁରେ ମୃଗୟାରେ | । ବିହାର କରନ୍ତେ ବନରେ | ।। | ୧୪୫ |
| | ତହିଁରେ ମେଧ୍ୟ ପଶୁଗଣ | । ଯାଦବେ ବେଷ୍ଟିତ ହୋଇଣ | ।। | ୧୪୬ |
| | ମାରନ୍ତେ ବ୍ରହ୍ମାଙ୍କ ନନ୍ଦନ | । ସେଠାରେ କଲେ ବିଲୋକନ | ।। | ୧୪୭ |
| ୩୬ | ପ୍ରକୃତିମାନଙ୍କେ ଯାହାର | । ଅବ୍ୟକ୍ତ[୧] ଅଟଇ ଶରୀର | ।। | ୧୪୮ |
| | ସେ ଯୋଗେଶ୍ୱର ସେ କାଳରେ | । ସେ ଅନ୍ତଃପୁରଗୃହାଦିରେ | ।। | ୧୪୯ |
| | ସେ ସେହି ଭାବମାନଙ୍କୁ ହିଁ | । ଜାଣିମା ଇଚ୍ଛାରେ ସେଠାଇଁ | ।। | ୧୫୦ |
| | କାହିଁରେ କରନ୍ତି ବିହାର | । ଦେଖିଲେ ବ୍ରହ୍ମାଙ୍କ କୁମର | ।। | ୧୫୧ |
| ୩୭ | ମାନୁଷୀ ଗତିକି ପ୍ରପନ୍ନ | । ହୋଇ ଯେ ଛନ୍ତି ଭଗବାନ | ।। | ୧୫୨ |
| | ତା' ଯୋଗମାୟାର ଉଦୟ | । ନାରଦ ଦେଖି ଅତିଶୟ | ।। | ୧୫୩ |
| | ହସିଲା ପ୍ରାୟ ଏଥୁ ଅନ୍ତେ | । କୃଷ୍ଣଙ୍କୁ କହିଲେ ଏମନ୍ତେ | ।। | ୧୫୪ |
| ୩୮ | ହେ ଯୋଗେଶ୍ୱର ! ଯୋଗିଗଣ | । ଯାହା ନ ପାରନ୍ତି ଦେଖିଣ | ।। | ୧୫୫ |
| | ପ୍ରତୀତ କଲି ମୋ' ଆତ୍ମାର | । ସେ ଯୋଗମାୟାକୁ ତୁମ୍ଭର | ।। | ୧୫୬ |
| | ତୋ' ପାଦସେବନରୁ ମୁହିଁ | । କେବଳ ଜାଣି ପାରିଲଇଁ | ।। | ୧୫୭ |
| ୩୯ | ଭୁବନ କରେ ଯେ ପାବନ | । ସେ ଦିବ୍ୟ ତୁମ୍ଭ ଲୀଳାମାନ | ।। | ୧୫୮ |
| | ଗାୟନ କରି ନିରନ୍ତର | । ଯଶମାନଙ୍କରେ ତୁମ୍ଭର | ।। | ୧୫୯ |
| | ଆପ୍ଳୁତ ହୋଇ ଯେ ଅଛନ୍ତି | । ସେ ଲୋକମାନଙ୍କୁ ମୁଁ ନିତି | ।। | ୧୬୦ |
| | ହେ ନାଥ କରିବି ଭ୍ରମଣ | । ହେ ଦେବ ! ତୁମ୍ଭେ ମୋତେ ଜାଣ | ।। | ୧୬୧ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୪୦ | ସେ ନାରଦଙ୍କୁ ଭଗବାନ | । କହନ୍ତି ଏମନ୍ତ ବଚନ | ।। | ୧୬୨ |
| | ଧର୍ମର କର୍ତ୍ତା ବକ୍ତା ମୁହିଁ | । ଅନୁମୋଦିତା ମୁଁ ଅଟଇ | ।। | ୧୬୩ |
| | ଏ ଧର୍ମ ସେ ନ୍ୟାୟରୁ ମୁହିଁ | । ଶିକ୍ଷା ଦିଅନ୍ତେ ଲୋକଙ୍କୁ ହିଁ | ।। | ୧୬୪ |
| | ଆଶ୍ରୟ କଲି ହେ ନାରଦ | । ହେ ପୁତ୍ର ନ ପାଅ ତୁ ଖେଦ | ।। | ୧୬୫ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୧ | କହନ୍ତି ବେଦବ୍ୟାସସୁତ | । ଶୁଣ ହେ ନୃପ ! ପରୀକ୍ଷିତ | ।। | ୧୬୬ |
| | ଗୃହସ୍ଥାଶ୍ରମୀ ଲୋକଙ୍କର | । ପବିତ୍ରଧର୍ମକୁ ଆଚର | ।। | ୧୬୭ |
| | ଏମନ୍ତ ରୂପେ ଆଚରନ୍ତେ | । ସେ ହରି ସର୍ବଗୃହେ ଥାନ୍ତେ | ।। | ୧୬୮ |
| | ସେ ଏକ ତାଙ୍କୁ ହେ ରାଜନ | । ନାରଦ କଲେ ବିଲୋକନ | ।। | ୧୬୯ |
| ୪୨ | ଯା' ପରାକ୍ରମ ଅପ୍ରମିତ | । ସେ ଶ୍ରୀକୃଷ୍ଣର ବ୍ରହ୍ମାସୁତ | ।। | ୧୭୦ |
| | ଯେ ଯୋଗମାୟାର ଉଦୟ | । ତା' ଦେଖି ଦେଖି ଅତିଶୟ | ।। | ୧୭୧ |
| | କୌତୁକ ହୁଅନ୍ତେ ସଂଜାତ | । ସେ ଋଷି ହୋଇଲେ ବିସ୍ମିତ | ।। | ୧୭୨ |

---

୧. ବେଷାନ୍ତରରେ ଛନ୍ନ ।

୪୩ ଧର୍ମାର୍ଥକାମେ ନିରନ୍ତର । ଶ୍ରଦ୍ଧିତ ଆତ୍ମା ଅଟେ ଯାର ।। ୧୭୩
ସେ କୃଷ୍ଣେ ଏମନ୍ତ ପ୍ରକାରେ । ନାରଦ ଉତ୍ତମ ରୂପରେ ।। ୧୭୪
ପୂଜାକୁ ଲଭି ପ୍ରୀତଚିତ୍ତେ । ଚଳିଲେ କୃଷ୍ଣଙ୍କୁ ସ୍ମରନ୍ତେ ।। ୧୭୫
୪୪ ସଂସାର-ଉତପତ୍ତି ପାଇଁ । ନାନା ମୂରତି ଯେ ଧରଇ ।। ୧୭୬
ସେ ନାରାୟଣ ଏ ରୂପରେ । ବର୍ତ୍ତନ୍ତେ ମନୁଷ୍ୟମାର୍ଗରେ ।। ୧୭୭
ସଲଜ୍ଜ ଯେ ସୁହୃଦପଣ । ତେଣେ ଯେ ହାସ ନିରୀକ୍ଷଣ ।। ୧୭୮
ତେଣେ ସଂଯୁତ ହୋଇ କରି । ହେ ମହାରାଜ ! ସେ ଶ୍ରୀହରି ।। ୧୭୯
ଷୋଳସହସ୍ର ନାରୀସଙ୍ଗେ । ରମଣ କଲେ ନାନାରଙ୍ଗେ ।। ୧୮୦
୪୫ ବିଶ୍ୱର ଉଭବ-ନାଶନ । ଆବର ଯେ ପରିପାଳନ ।। ୧୮୧
ଏହାଙ୍କ କାରଣ ଯେ ହରି । ଅତି ଅସାଧାରଣ କରି ।। ୧୮୨
କଲେ ଯେବଣ କର୍ମମାନ । ସେ କର୍ମମାନ ଯଉଁ ଜନ ।। ୧୮୩
ଶ୍ରବଣ କରଇ ଗାଅଇ । ଅନୁମୋଦନ ବା କରଇ ।। ୧୮୪
ଯେ ଭଗବାନ ମୋକ୍ଷଦାୟୀ । ତା' ଠାରେ ଭକ୍ତି ସେ ଲଭଇ ।। ୧୮୫
ଦଶମସ୍କନ୍ଧ ଭାଗବତ । ଭାଷାପ୍ରବନ୍ଧେ କରି ଗୀତ ।। ୧୮୬
ବ୍ରାହ୍ମଣ ଦୀନବନ୍ଧୁମନ । ହରଷ ହେଲା ଅନୁଦିନ ।। ୧୮୭
ବୈଷ୍ଣବ ଜୟରାମ ଦାସ । ସେ ରସେ ଅତ୍ୟନ୍ତ ଲାଳସ ।। ୧୮୮
ସୁଜନ ଜନଙ୍କର ପାଦେ । ମତି ମୋ' ରହୁ ଅପ୍ରମାଦେ ।। ୧୮୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣଗାର୍ହସ୍ଥ୍ୟଦର୍ଶନଂ
ନାମ ଏକୋନସପ୍ତତିତମୋଽଧ୍ୟାୟଃ ।।

## ସପ୍ତତିତମ ଅଧ୍ୟାୟ

ତତସ୍ତୁ ସପ୍ତତିତମେ କୃଷ୍ଣସ୍ୟାହ୍ନିକକର୍ମଣି ।
ଦୂତନାରଦୟୋଃ କାର୍ଯ୍ୟେ କାର୍ଯ୍ୟମନ୍ତ୍ରବିଚାରଣମ୍ ।। ୧
ଜଗନ୍ମଙ୍ଗଳଚାରିତ୍ରମାହ୍ନିକଂ ଜଗଦୀଶିତୁଃ ।
ନାରଦେନ କ୍ୱଚିଦ୍ କିଂଚିଦ୍ ଦୃଷ୍ଟମାହ ଯଥାକ୍ରମମ୍ ।। ୨

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କ ଆତ୍ମଜ । ଏଥୁ ଅନ୍ତେ ହେ ମହାରାଜ ।। ୧
ପ୍ରଭାତ ହୁଅନ୍ତେ ନିକଟେ । ଧ୍ୱନିକି କରନ୍ତେ କୁକ୍କୁଟେ ।। ୨
ଯାହାଙ୍କ କଣ୍ଠତଟମାନ । କୃଷ୍ଣେ ହୋଇଛି ଆଲିଙ୍ଗନ ।। ୩
ଆତୁର ହୋଇ ବିରହରେ । ସେ କୃଷ୍ଣପତ୍ନୀ ସେ କାଳରେ ।। ୪

ସେ କୁକ୍କୁଟଙ୍କୁ ଆହେ ନୃପ । ସେମାନେ ଦେଲେ ତହିଁ ଶାପ ॥ ୫
୨ ମନ୍ଦାରବନପବନରେ । ଗାୟନ କରନ୍ତେ ଭ୍ରମରେ ॥ ୬
ବିନିଦ୍ର ହୋଇ ଅତିଶୟେ । ଧ୍ୱନିକି କଲେ ସେ ପକ୍ଷୀଏ ॥ ୭
ବନ୍ଦିମାନଙ୍କ ପ୍ରାୟେ ଅତି । କୃଷ୍ଣଙ୍କୁ ବୋଧ ସେ କରାନ୍ତି ॥ ୮
୩ ଯେ ଅଟେ ଅତ୍ୟନ୍ତ ଶୋଭନ । ସେ ମୁହୂର୍ତ୍ତକୁ ହେ ରାଜନ ॥ ୯
ରୁକ୍ମିଣୀ ଆଦି ଥିଲେ ଯେତେ । ପ୍ରିୟର ଭୁଜ-ଅନ୍ତର୍ଗତେ ॥ ୧୦
ସେମାନେ ନ ପାରିଲେ ସହି । ଆଲିଙ୍ଗନର ବିହୁନେ ହିଁ ॥ ୧୧
୪ ବ୍ରାହ୍ମ ମୁହୂର୍ତ୍ତେ ଉଠି ହରି । ଜଳକୁ ଆଚମନ କରି ॥ ୧୨
୫ ଏକ ଉପାଧିଶୂନ୍ୟ ଯେହି । ସ୍ୱୟଂପ୍ରକାଶ ଯେ ହୁଅଇ ॥ ୧୩
ନିଜ ସଂସ୍ଥାରେ ନିତ୍ୟ ଯେହି । କଳ୍ମଷ[1] ନିତ୍ୟେ ଯହିଁ ନାହିଁ ॥ ୧୪
ବ୍ରହ୍ମ ହୋଇଣ ଆଖ୍ୟା ଯାର । ଉଭବାଦିରେ ଏ ବିଶ୍ୱର ॥ ୧୫
ହେତୁ ଅଟନ୍ତି ଯେ ନିତ୍ୟରେ । ସେ ନିଜଶକ୍ତିମାନଙ୍କରେ ॥ ୧୬
ଲକ୍ଷିତ ହୋଇଛି ଆବର । ଭାବ[2] ନିର୍ବୃତି[3] ପୁଣ ଯାର ॥ ୧୭
ତମରୁ ଅଟଇ ଯେ ପର । [4]ପ୍ରସନ୍ନ ଇନ୍ଦ୍ରିୟ ଯାହାର ॥ ୧୮
ଏମନ୍ତ ଆତ୍ମାକୁ ହୃଦରେ । ଧ୍ୟାନକୁ କଲେ ସେ କାଳରେ ॥ ୧୯
୬ ଏଥୁ ଅନ୍ତରେ ହେ ରାଜନ । ସେ ସାଧୁଶ୍ରେଷ୍ଠ ଭଗବାନ ॥ ୨୦
ଉତ୍ତମ ବିଧିମତ କରି । ନିର୍ମଳ ଜଳେ ସ୍ନାନ ସାରି ॥ ୨୧
ପିନ୍ଧିଣ ବେନି ବସନକୁ । ସଂଧ୍ୟାଦି କ୍ରିୟାକଳାପକୁ ॥ ୨୨
ସମାପ୍ତ କରି ସେ କାଳରେ । ହୋମକୁ ଦେଇ ଅନଳରେ ॥ ୨୩
ମଉନ କରି ବଚନକୁ । ଜପିଲେ ଗାୟତ୍ରୀମନ୍ତ୍ରକୁ ॥ ୨୪
୭ ଉଦୟ ହୁଅନ୍ତେ ତପନ । ତାହାଙ୍କୁ କରି ଉପସ୍ଥାନ ॥ ୨୫
ଆପଣା ଅଂଶରୁ ଉତ୍ପନ୍ନ । ଯେ ଦେବ-ଋଷି-ପିତୃଜନ ॥ ୨୬
ତାହାଙ୍କୁ ତର୍ପଣ କରିଣ । ସେ ଆତ୍ମଜ୍ଞାନୀ ନାରାୟଣ ॥ ୨୭
ବୃଦ୍ଧଙ୍କୁ ବ୍ରାହ୍ମଣମାନଙ୍କୁ । କରି ଉତ୍ତମ ପୂଜନକୁ ॥ ୨୮
୮ ଯାହାଙ୍କ ଶୃଙ୍ଗରେ କାଞ୍ଚନ । ଯେ ମୁକ୍ତାମାଳାରେ ମଣ୍ଡନ ॥ ୨୯
୯ ଆବର ସାଧ୍ୱୀ ଯେ ଅଟନ୍ତି । ଆଦ୍ୟପ୍ରସୂତା ଦୁଗ୍ଧବତୀ ॥ ୩୦
ସୁବସ୍ତ୍ରା ବାଛୁରୀସହିତ । ଯାହାଙ୍କ ଖୁରାରେ ରଜତ ॥ ୩୧
କ୍ଷୌମ-ଅଜିନ-ତିଳେ ଯୁକ୍ତ । ଏମନ୍ତ ଧେନୁଙ୍କୁ ଅଚ୍ୟୁତ ॥ ୩୨
ମଣ୍ଡିତ ଯେ ଅଳଂକାରରେ । ସେ ବ୍ରାହ୍ମଣଙ୍କୁ ପ୍ରତି ପୁରେ ॥ ୩୩

---

୧. ଅବିଦ୍ୟା । ୨. ସତ୍ତା । ୩. ଆନନ୍ଦ ।
୪. ଶ୍ରୀକୃଷ୍ଣଙ୍କ ବିଶେଷଣ;
''ବିଜ୍ଞାନମାନନ୍ଦମ୍ ଇତି ଶ୍ରୁତିଃ'' । ''ସଦେବ ସୌମ୍ୟେଦମଗ୍ର ଆସୀତ୍'' ଇତି ଶ୍ରୁତିଃ ॥

ବନ୍ଧ[1] -ବନ୍ଧକେ ପ୍ରତିଦିନେ । ପ୍ରଦାନ କଲେ ତୋଷମନେ ॥ ୩୪
ଚଉଦ ଲକ୍ଷ ତ୍ରୟୋଦଶ । ସହସ୍ର ଅଧିକ ସାତ ଶ' ॥ ୩୫
ଆବର ଚୌରାଶୀ ମିଶାଇ । ଏଥକୁ 'ବନ୍ଧ' ବୋଲି କହି ॥ ୩୬
୧୦ ଗୋ-ବିପ୍ର-ଦେବତା-ବୃଦ୍ଧଙ୍କୁ । ଗୁରୁଙ୍କୁ ସମସ୍ତ ଭୂତଙ୍କୁ ॥ ୩୭
ସେ ହରି କରିଣ ବନ୍ଦନ । ଆପଣା ଠାରୁ ଯେ ଉତ୍ପନ୍ନ ॥ ୩୮
ସେହୁ ମଙ୍ଗଳଦ୍ରବ୍ୟଗଣ । ଘେନିଲେ ଉତ୍ତମ କରିଣ ॥ ୩୯
୧୧ ନରଲୋକର ବିଭୂଷଣ । ସ୍ୱରୂପ ଅଟନ୍ତି ସେ ପୁଣ ॥ ୪୦
ନିଜ ବସନ-ଭୂଷଣରେ । ଉତ୍ତମ ମାଳାମାନଙ୍କରେ ॥ ୪୧
ଗନ୍ଧ ଚନ୍ଦନକୁ ଘେନିଣ । କଲେ ଆପଣାକୁ ଭୂଷଣ ॥ ୪୨
୧୨ ଘୃତକୁ କରି ବିଲୋକନ । ସେହି ରୂପରେ ଭଗବାନ ॥ ୪୩
ଦର୍ପଣ ଗୋବୃଷ-ବ୍ରାହ୍ମଣ । ଦେବତାମାନଙ୍କୁ ଦେଖିଣ ॥ ୪୪
ପୁର-ଅନ୍ତଃପୁରଲୋକଙ୍କୁ । ଆବର ସମସ୍ତ ବର୍ଣ୍ଣଙ୍କୁ ॥ ୪୫
ବାଞ୍ଛିତ ଦ୍ରବ୍ୟମାନ ଦେଇ । ପ୍ରଜାମାନଙ୍କୁ ପୁଣ ତହିଁ ॥ ୪୬
କାମନାମାନଙ୍କେ ତୋଷିଣ । ଆନନ୍ଦ ହେଲେ ନାରାୟଣ ॥ ୪୭
୧୩ ଯେ ମାଳା-ତାମ୍ବୂଳ-ଚନ୍ଦନ । ବିଭାଗ କରିଣ ଏମାନ ॥ ୪୮
ପ୍ରଥମୁଁ ଦେଇ ବ୍ରାହ୍ମଣଙ୍କୁ । ତଦନ୍ତେ ଦେଲେ ସମସ୍ତଙ୍କୁ ॥ ୪୯
କହନ୍ତେ ସୁହୃଦମାନଙ୍କୁ । ପ୍ରକୃତି[2]ମାନଙ୍କୁ ଦାରାଙ୍କୁ ॥ ୫୦
ଭୁଞ୍ଜିବା ନିମିତ୍ତେ ଆପଣ । କଲେ ସେ କାଳରେ ଗ୍ରହଣ ॥ ୫୧
୧୪ ଯେ ଅଟେ ପରମ ଅଦ୍ଭୁତ । ସୁଗ୍ରୀବ ଆଦି ଅଶ୍ୱେ ଯୁତ ॥ ୫୨
ଏମନ୍ତ ରଥ ସେ କ୍ଷଣରେ । ସାରଥି ଆଣିଣ ସତ୍ୱରେ ॥ ୫୩
ବହୁତ ପ୍ରଣାମ ସେ କରି । ଅଗ୍ରେ ରହିଲା ଅନୁସରି ॥ ୫୪
୧୫ ରଥେ ବିଜୟେ କଲେ ହରି । ସାରଥିହସ୍ତ ହସ୍ତେ ଧରି ॥ ୫୫
ସାତ୍ୟକି ଉଦ୍ଧବ ଯେ ବେନି । ଏହାଙ୍କୁ ସଙ୍ଗତରେ ଘେନି ॥ ୫୬
ଉଦୟଗିରିକି ଯେସନ । ସବିତା କରେ ଆରୋହଣ ॥ ୫୭
୧୬ ଅନ୍ତଃପୁରର ଯେତେ ନାରୀ । ସେମାନଙ୍କରେ ନରହରି ॥ ୫୮
ସବ୍ରୀଡ଼ ଯେ ପ୍ରେମବୀକ୍ଷିତ । ତେଣେ ହୁଅନ୍ତେ ବିଲୋକିତ ॥ ୫୯

---

୧. ବଦ୍ଧ - ''ହିରଣ୍ୟେନ ପରୀବୃତାନ୍ କୃଷ୍ଣାନ୍ ଶୁକ୍ଳଦତୋ ମୃଗାନ୍ ।
ମଷ୍ଣାରେ ଭରତୋଽଦଦାଚ୍ଛତଂ ବଦ୍ଧାନି ସପ୍ତ ଚ ॥'' (ଶ୍ରୁତିଃ)
ଚତୁର୍ଦ୍ଦଶାନାଂ ଲକ୍ଷାଣାଂ ସପ୍ତାଧିକଶତାଂଶକଃ ।
ବଦ୍ଧଂ ଚତୁରଶୀତ୍ୟଗ୍ରସହସ୍ରାଣି ତ୍ରୟୋଦଶ ॥
ବଦ୍ଧ = ୧୪୧୩୭୮୪ ।
ମଷ୍ଣାର = ଏକ ଦେଶଖଣ୍ଡର ନାମ ।

୨. ମନ୍ତ୍ରୀ ।

| | | | | |
|---|---|---|---|---|
| | ସେ ସ୍ତ୍ରୀଏ ସେ ବିଲୋକନରେ । | କୃଷ୍ଣଙ୍କୁ ଛାଡ଼ନ୍ତେ କଷ୍ଟରେ | ॥ | ୬୦ |
| | ହରନ୍ତେ ମନ ନାରୀଙ୍କର । | ହସନ୍ତେ ହୋଇଲେ ବାହାର | ॥ | ୬୧ |
| ୧୭ | ସମସ୍ତ ବୃଷ୍ଣିମାନଙ୍କରେ । | ବେଷ୍ଟିତ ହୋଇ ସେ କାଳରେ | ॥ | ୬୨ |
| | ସୁଧର୍ମା ସଭାରେ ଶ୍ରୀହରି । | ପ୍ରବେଶ ହେଲେ ଯାଇ କରି | ॥ | ୬୩ |
| | ଯେବଣ ସଭାରେ ଆବର । | ପ୍ରବେଶ ହୁଅନ୍ତି ଯେ ନର | ॥ | ୬୪ |
| | ତାଙ୍କର ଷଡ଼ ଊର୍ମିଗଣ[୧] । | ବିନାଶ ହୁଅଇ ତତ୍‌କ୍ଷଣ | ॥ | ୬୫ |
| ୧୮ | କୃଷ୍ଣ ସେ ସୁଧର୍ମାସଭାରେ । | ବସିଲେ ଶ୍ରେଷ୍ଠ ଆସନରେ | ॥ | ୬୬ |
| | ନିଜ ତେଜରେ ଜଗଦୀଶ । | କରନ୍ତେ ଦିଗଙ୍କୁ ପ୍ରକାଶ | ॥ | ୬୭ |
| | ଯେ ନରଶ୍ରେଷ୍ଠ ଯଦୁଗଣେ । | ବେଷ୍ଟିତ ହୋଇ କରି ତେଣେ | ॥ | ୬୮ |
| | ସେ ପ୍ରଭୁ ଦିଶିଲେ ଶୋଭନ । | ଆକାଶେ ଚନ୍ଦ୍ରମା ଯେସନ | ॥ | ୬୯ |
| | ତାରକାଗଣରେ ବେଷ୍ଟିତ । | ହୋଇଣ ଦିଶଇ ଶୋଭିତ | ॥ | ୭୦ |
| ୧୯ | ହେ ନୃପ ! ଶୁଣ ମନତୋଷେ । | କୃଷ୍ଣଙ୍କୁ ନାନା ହାସରସେ | ॥ | ୭୧ |
| | ପରିହାସକମାନେ ତହିଁ । | ଆବର ନଟାଚାର୍ଯ୍ୟ ଯେହି | ॥ | ୭୨ |
| | ତୋଷିଲେ ନାନା ଅଭିନୟେ । | ନିଜ ନିଜର ସମୁଦାୟେ | ॥ | ୭୩ |
| | ନର୍ତ୍ତକୀମାନେ ହିଁ ଆବର । | ତାଣ୍ଡବମାନଙ୍କେ ନିଜର | ॥ | ୭୪ |
| ୨୦ | ବୀଣା ମୁରଜ ବେଣୁମାନ । | ମୃଦଙ୍ଗ ତାଳ ଶଙ୍ଖସ୍ୱନ | ॥ | ୭୫ |
| | ଏମାନଙ୍କରେ ହେ ରାଜନ । | କଲେ ସେମାନେ ନୃତ୍ୟମାନ | ॥ | ୭୬ |
| | ସୂତ-ମାଗଧ-ବନ୍ଦିତୁଲେ । | ଗାୟନ କରି ସ୍ତୁତି କଲେ | ॥ | ୭୭ |
| ୨୧ | ବସି ଯେ ଥିଲେ ସେ ସଭାରେ । | ଏମନ୍ତ କେହି ବିପ୍ରବରେ | ॥ | ୭୮ |
| | ବେଦକୁ କଲେ ସେ ପଠନ । | କହି ପାରନ୍ତି ଯେ ବା ଆନ | ॥ | ୭୯ |
| | ସେ ଲୋକମାନେ ହେଁ ଆବର । | ପୁଣ୍ୟ କୀରତି ଯାହାଙ୍କର | ॥ | ୮୦ |
| | ଯେ ପୂର୍ବକାଳ ରାଜାମାନ । | କହିଲେ ତାଙ୍କ କଥାମାନ | ॥ | ୮୧ |
| ୨୨ | ଯା'କୁ ନ ଦେଖିଥିଲେ ପୂର୍ବେ । | ସେ ଏକ ପୁରୁଷ ସେ ଠାବେ | ॥ | ୮୨ |
| | ହେ ନୃପ ! ହେଲା ଉପସ୍ଥିତ । | ସମସ୍ତ ଦ୍ୱାରୀଏ ତୁରିତ | ॥ | ୮୩ |
| | ଶ୍ରୀକୃଷ୍ଣ ଛାମୁରେ ଜଣାଇ । | ପ୍ରବେଶ କରାଇଲେ ନେଇ | ॥ | ୮୪ |
| ୨୩ | ଅଞ୍ଜଳି କରିଣ ସେ ଜନ । | କୃଷ୍ଣଙ୍କୁ କରଇ ବନ୍ଦନ | ॥ | ୮୫ |
| ୨୪ | ଜରାସନ୍ଧର ଦିଗ୍‌ବିଜୟେ । | ନମ୍ର ନୋହିଲେ ଯେ ରାଜାଏ | ॥ | ୮୬ |
| | ଗିରିବ୍ରଜ ନାମ ଦୁର୍ଗରେ । | ସେ ଜରାସନ୍ଧ ବଳାତ୍‌କାରେ | ॥ | ୮୭ |
| | ବେନି ନିୟୁତ[୨] ରାଜାମାନ । | ଯେ ହୋଇଛନ୍ତି ନିରୁନ୍ଧନ | ॥ | ୮୮ |

୧. ଊର୍ମି = { ଶୀତ ଓ ଉଷ୍ଣଭାବ (ଶରୀରର)
ଲୋଭ ଓ ମୋହ (ମନର)
କ୍ଷୁଧା ଓ ତୃଷା (ପ୍ରାଣର) }
''ଶୋକମୋହୌ ଜରାମୃତ୍ୟୂ କ୍ଷୁତ୍‌ପିପାସେ ଷଡୂର୍ମୟଃ'' ।

୨. ଅୟୁତ ।

ସେ ରାଜାମାନଙ୍କ ଦୁଃଖକୁ । କଲା ନିବେଦନ କୃଷ୍ଣଙ୍କୁ ॥ ୮୯

ରାଜାନ ଊଚୁଃ

୨୫ କୃଷ୍ଣଙ୍କୁ ଏମନ୍ତ ବଚନେ । କହୁଅଛନ୍ତି ରାଜାମାନେ ॥ ୯୦
ହେ କୃଷ୍ଣ କୃଷ୍ଣ ହେ ଈଶ୍ୱର । ଅପରିମିତ ଆତ୍ମା ତୋର ॥ ୯୧
ପ୍ରପନ୍ନ ଜନଙ୍କର ଭୟ । ତୁମ୍ଭେ ବିନାଶ ଅତିଶୟ ॥ ୯୨
ନ ଜାଣୁଁ ଆମ୍ଭେ ତୋ' ରୂପକୁ । ସଂସାରୁ ଲଭିଛୁଁ ଭୟକୁ ॥ ୯୩
ଆମ୍ଭେ ସମସ୍ତ ନୃପଗଣ । ତୁମ୍ଭଙ୍କୁ ପଶୁଛୁଁ ଶରଣ ॥ ୯୪
୨୬ ନିଷିଦ୍ଧ କାମ୍ୟ କର୍ମେ ନିତ୍ୟ । ଏ ଜନ ଅଟଇ ନିରତ ॥ ୯୫
ନିଜ କୁଶଳ ଯେ ଅଟଇ । 'ତୁମ୍ଭେ ଯା' ଅଛ ପୂର୍ବେ କହି ॥ ୯୬
ସେ ପୂଜାକର୍ମରେ ତୁମ୍ଭର । ପ୍ରମତ୍ତ ଯାବତ ଏ ନର ॥ ୯୭
ତାବତ ଏ ସଂସାରେ ତା'ର । ତୁମ୍ଭେ ଯେ ଅଟ ବଳୀୟାର ॥ ୯୮
ଜୀବିତ-ଆଶାକୁ ବହନ । ତୁମ୍ଭେ ଯେ କର ବିନାଶନ ॥ ୯୯
କାଳସ୍ୱରୂପୀ ସେ ତୁମ୍ଭଙ୍କୁ । ଆମ୍ଭେ କରୁଛୁଁ ପ୍ରଣାମକୁ ॥ ୧୦୦
୨୭ ହେ ଈଶ ତୁମ୍ଭେ ଏ ସଂସାରେ । ସାଧୁମାନଙ୍କ ରକ୍ଷଣରେ ॥ ୧୦୧
ଦଣ୍ଡନିମିତ୍ତେ ଖଳଙ୍କର । କଳାରେ ହେଲ ଅବତାର ॥ ୧୦୨
ଜଗତ-ଈଶ୍ୱର ତୁ ଥାନ୍ତେ । ଜରାସନ୍ଧାଦି ନୃପ ଯେତେ ॥ ୧୦୩
ସେମାନେ ତୁମ୍ଭ ଆଜ୍ଞାମାନ । କିମ୍ପାଇଁ କରନ୍ତି ଲଙ୍ଘନ ॥ ୧୦୪
ନିଜ ଅର୍ଜିତ ଦୁଃଖମାନ । କିମ୍ପା ଲଭଇ ସାଧୁଜନ ॥ ୧୦୫
ଏ ବେନି କଥାକୁ ହିଁ ପୁଣି । ଆମ୍ଭେ ନ ପାରିଅଛୁଁ ଜାଣି ॥ ୧୦୬
୨୮ କର୍ମଅଧୀନ ସ୍ୱପ୍ନପ୍ରାଏ । ରାଜାଙ୍କ ସମ୍ପତ୍ତି ନିଶ୍ଚୟେ ॥ ୧୦୭
ହେ ଈଶ ! ଯେ ମୃତସମାନ । ଯହିଁରେ ଭୟ ପୁନଃପୁନ ॥ ୧୦୮
ଏମନ୍ତ ଶରୀରେ ରାଜ୍ୟର । ବହିଛୁଁ ଆମ୍ଭେମାନେ ଭାର ॥ ୧୦୯
ନିଷ୍କାମ ମୁନି ଯା' ଲଭଇ । ଆତ୍ମାରେ ସ୍ୱତଃସିଦ୍ଧ ଯେହି ॥ ୧୧୦
ଏମନ୍ତ ସୁଖ ତୁମ୍ଭଠାରେ । ଆମ୍ଭେ ଛାଡ଼ିଣ ଏ ସଂସାରେ ॥ ୧୧୧
କ୍ଳେଶ ଲଭୁଛୁଁ ତୋ' ମାୟାରେ । କୃପଣ ଅଟୁଁ ଅତ୍ୟନ୍ତରେ ॥ ୧୧୨
୨୯ ପ୍ରଣତଜନଶୋକଗଣ । ହରଇ ତୋ' ବେନି ଚରଣ ॥ ୧୧୩
ମଗଧପତିନାମ ବହି । ଯେ କର୍ମପାଶ ଅଛି ରହି ॥ ୧୧୪
ତେଣୁଁ ଆମ୍ଭଙ୍କୁ ଏ ହେତୁରୁ । ଫିଟାଅ ତୁମ୍ଭେ ଏ ବନ୍ଧରୁ ॥ ୧୧୫
ଅୟୁତେ ମତ୍ତ ହସ୍ତୀଙ୍କର । ଅଟଇ ବିକ୍ରମ ଯାହାର ॥ ୧୧୬
ସେ ଜରାସନ୍ଧ ଏକା ହୋଇ । ଆମ୍ଭଙ୍କୁ ଗୃହେ ରୁନ୍ଧିଛଇ ॥ ୧୧୭
ସିଂହ ଯେସନେ ଛେଳିମାନ । ବଳେ କରଇ ନିରୁନ୍ଧନ ॥ ୧୧୮

୧. ପଞ୍ଚରାତ୍ରରେ ।

୩୦ ଯାହାକୁ ଆହେ ଚକ୍ରଧର । ଯେ ଯୁଦ୍ଧ ଅଷ୍ଟାଦଶ ଥର ॥ ୧୧୯
ତହିଁରେ ସପ୍ତଦଶ ବାର । ଯେ ତୁମ୍ଭେ ଜିଣିଛ ଆବର ॥ ୧୨୦
ତୋ' ପରାକ୍ରମ ଅପ୍ରମିତ । ନରଶରୀରେ ଅଟେ ରତ ॥ ୧୨୧
ଥରକ ମାତ୍ର ହେ ଅଜିତ । ତୁମ୍ଭଙ୍କୁ ଜିଣି ଜରାସୁତ ॥ ୧୨୨
ଲଭିଛି ବହୁତ ଗର୍ବକୁ । ତୋ' ପ୍ରଜା ଆମ୍ଭେ, ସେ ଆମ୍ଭଙ୍କୁ ॥ ୧୨୩
ଅଧିକ କରୁଛି ପୀଡ଼ନ । ତହିଁକି କର ତୁ ବିଧାନ ॥ ୧୨୪

ଦୂତ ଉବାଚ

୩୧ ଦୂତ କହୁଛି ହେ ଅଚ୍ୟୁତ । ଏମନ୍ତ ରୂପେ ଜରାସୁତ ॥ ୧୨୫
ଯାହାଙ୍କୁ କରିଛି ରୁନ୍ଧନ । ସେ ନୃପେ ତୁମ୍ଭ ଦରଶନ ॥ ୧୨୬
ନିତ୍ୟେ କରନ୍ତେ ଆକାଂକ୍ଷାକୁ । ଭଜିଲେ ତୋ' ପାଦମୂଳକୁ ॥ ୧୨୭
ଦୀନ ଅଟନ୍ତି ସେ ଆବର । ତାଙ୍କ ମଙ୍ଗଳ ତୁମ୍ଭେ କର ॥ ୧୨୮

ଶ୍ରୀଶୁକ ଉବାଚ

୩୨ ସେ ରାଜଦୂତ ସେ କାଳରେ । କହନ୍ତେ ଏମନ୍ତ ରୂପରେ ॥ ୧୨୯
ଯେ ପିଙ୍ଗଜଟାଭାରେ ଯୁତ । ଅଟନ୍ତି ଅତି ତେଜବନ୍ତ ॥ ୧୩୦
ସେ ଦେବ-ଋଷି ବ୍ରହ୍ମାସୁତ । ମିଳିଲେ ଆଦିତ୍ୟ ଯେମନ୍ତ ॥ ୧୩୧
୩୩ ସମସ୍ତ ଲୋକେଶ୍ୱରଙ୍କର । ଉପରେ ଅଟେ ଯେ ଈଶ୍ୱର ॥ ୧୩୨
ସେ ଭଗବାନ ନରହରି । ସେ ନାରଦଙ୍କୁ ଦେଖି କରି ॥ ୧୩୩
ସଭାଲୋକଙ୍କ ସହିତରେ । ଅନୁଗମାନଙ୍କ ସଙ୍ଗରେ ॥ ୧୩୪
ହରଷ ହୋଇଣ ଉଠିଲେ । ମସ୍ତକେ ନମସ୍କାର କଲେ ॥ ୧୩୫
୩୪ ନାରଦ ଆସନେ ବସନ୍ତେ । ତାଙ୍କୁ ପୂଜିଣ ବିଧିମତେ ॥ ୧୩୬
ସେ ନାରାୟଣ ହିଁ ଶ୍ରଦ୍ଧାରେ । ସୂନୃତଂ[୧] ବାକ୍ୟମାନଙ୍କରେ ॥ ୧୩୭
ତୃପ୍ତ କରାନ୍ତେ ନାରଦଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୧୩୮
୩୫ ଏମନ୍ତ ପଚାରୁଛି ମୁହିଁ । ଯେମନ୍ତେ କିଛି ଭୟ ନାହିଁ ॥ ୧୩୯
ତେମନ୍ତେ ତ୍ରିଲୋକେ ଗମନ । କରନ୍ତେ ତୁ ଯେ ଭଗବାନ ॥ ୧୪୦
ତୋ' ହେତୁ ଆଜ ତ୍ରିଲୋକର । ବହୁତ ଲାଭ ହିଁ ଆମ୍ଭର ॥ ୧୪୧
୩୬ ଈଶ୍ୱର କର୍ତ୍ତାଟି ଯହିଁରେ । ସେ ଚତୁର୍ଦ୍ଦଶ ଭୁବନରେ ॥ ୧୪୨
ତୁମ୍ଭର ନ ଜାଣିଲା ହୋଇ । କିଛି ହିଁ କଥା ଯେଣୁ ନାହିଁ ॥ ୧୪୩
ଏବେ ପାଣ୍ଡବଙ୍କ ଚେଷ୍ଟାକୁ । ଆମ୍ଭେ ପଚାରୁଛୁ ତୁମ୍ଭଙ୍କୁ ॥ ୧୪୪

ଶ୍ରୀନାରଦ ଉବାଚ

୩୭ ଭସ୍ମ ଆଦିରେ କାନ୍ତିମାନ । ଯେସନେ ବହ୍ନିର ଆଚ୍ଛନ୍ନ ॥ ୧୪୫

୧. ସତ୍ୟ ଓ ପ୍ରିୟ ବଚନ ।

| | | | |
|---|---|---|---|
| | ଆପଣା ଶକ୍ତିମାନଙ୍କରେ | ସମସ୍ତ ପ୍ରାଣିଙ୍କର ଠାରେ | ॥ ୧୪୬ |
| | ତୁ ବର୍ତ୍ତିଥାଉ ବାରମ୍ବାର | ମୋହକୁ କରାଉ ବ୍ରହ୍ମାର | ॥ ୧୪୭ |
| | ଯେ ମାୟା ଅଟଇ ଦୁରନ୍ତ | ତା' ତୋର ଦେଖିଛି ବହୁତ | ॥ ୧୪୮ |
| | ହେ ବିଭୁ ଏକଥା ତୁମ୍ଭର | [1]ଅଦ୍ଭୁତ ନୁହଇ ଏଠାର | ॥ ୧୪୯ |
| ୩୮ | ଉତ୍ତମ କରି ତୋ' ଚେଷ୍ଟାକୁ | କେ ଯୋଗ୍ୟ ହେବ ଜାଣିମାକୁ | ॥ ୧୫୦ |
| | ଯେ ନିଜ ମାୟା ବିଦ୍ୟମାନ | ତେଣେ ଯେ ବିଶ୍ୱ ଭାସମାନ | ॥ ୧୫୧ |
| | ସର୍ଜନା କରି ସେ ବିଶ୍ୱକୁ | ଯେ ତୁମ୍ଭେ କର ସଂହାରକୁ | ॥ ୧୫୨ |
| | ଯେ ନିଜ ରୂପେ ଅଚିନ୍ତନ | କରୁଁ ସେ ତୁମ୍ଭଙ୍କୁ ନମନ | ॥ ୧୫୩ |
| ୩୯ | ଅନର୍ଥସ୍ଥାନ ଯେ ଶରୀର | ତହିଁରେ କରେ ଯେ ବିହାର | ॥ ୧୫୪ |
| | ଯେ ନିଜ ମୋକ୍ଷ ନ ଜାଣଇଁ | ଏମନ୍ତ ଜୀବ ଯେ ଅଟଇ | ॥ ୧୫୫ |
| | ତା' ଅର୍ଥେ ଲୀଳା-ଅବତାରେ | ସ୍ୱଯଶଦୀପକୁ ନିର୍ଭରେ | ॥ ୧୫୬ |
| | ଯେ ତୁମ୍ଭେ ପ୍ରକାଶକୁ କର | ପ୍ରପତ୍ତି[2] ସେ ତୁମ୍ଭଙ୍କୁ ମୋର | ॥ ୧୫୭ |
| ୪୦ | ଭଜିଛ ଯେ ନରଲୋକକୁ | ତୁମ୍ଭେ ସେ ବ୍ରହ୍ମଟି ତୁମ୍ଭଙ୍କୁ | ॥ ୧୫୮ |
| | ତଥାପି ଶୁଣାଇବି ମୁହିଁ | ତୁମ୍ଭ ପିଉଷୀପୁଅ ଭାଇ | ॥ ୧୫୯ |
| | ଯେ ଯୁଧିଷ୍ଠିର ନୃପବର | ଚେଷ୍ଟାକୁ ଶୁଣ ସେ ଭକ୍ତର | ॥ ୧୬୦ |
| ୪୧ | ଯେ ରାଜସୂୟ ଯାଗବର | ତେଣେ ସେ ନୃପ ଯୁଧିଷ୍ଠିର | ॥ ୧୬୧ |
| | ତୁମ୍ଭଙ୍କୁ କରିବ ଯଜନ | ପରଲୋକରେ[3] ଦେଇ ମନ | ॥ ୧୬୨ |
| | ସେ କଥା ତୁମ୍ଭେ ତାହାଙ୍କର | ନିଶ୍ଚୟେ କର ହେ ସ୍ୱୀକାର | ॥ ୧୬୩ |
| ୪୨ | ସେ ରାଜସୂୟ ଯାଗବରେ | ଦେବତା ଆଦି ଆକାଶରେ | ॥ ୧୬୪ |
| | ତୁମ୍ଭଙ୍କୁ ଦେଖିବା ନିମିତ୍ତେ | ସେଠାକୁ ଆସିବେ ସମସ୍ତେ | ॥ ୧୬୫ |
| | ଯଶସ୍ୱୀ ଯେବଣ ରାଜନେ | ଆବର ଆସିବେ ସେମାନେ | ॥ ୧୬୬ |
| ୪୩ | ତୁ ବ୍ରହ୍ମମୟ ହେ ଈଶ୍ୱର | ଶ୍ରବଣୁଁ କୀର୍ତ୍ତନୁଁ ତୋହର | ॥ ୧୬୭ |
| | ଧ୍ୟାନରୁ ଚାଣ୍ଡାଳ ହିଁ ଅତି | ଉତ୍ତମ ପବିତ୍ର ହୁଅନ୍ତି | ॥ ୧୬୮ |
| | ତୋ' ଦରଶନ ସ୍ପରଶନ | ଲଭିଥାଆନ୍ତି ଯଉଁ ଜନ | ॥ ୧୬୯ |
| | ଉତ୍ତମ ପବିତ୍ର ସେମାନେ | କିମ୍ପା ନୋହିବେ ଏ ଭୁବନେ | ॥ ୧୭୦ |
| ୪୪ | ଆହେ ଭୁବନଙ୍କ ମଙ୍ଗଳ | ଯେ ଅଟେ ଅତ୍ୟନ୍ତ ନିର୍ମଳ | ॥ ୧୭୧ |
| | ସ୍ୱର୍ଗ-ମର୍ତ୍ତ୍ୟରେ ପାତାଳରେ | ଯେ ଅତି ବିଖ୍ୟାତ ନିର୍ଭରେ | ॥ ୧୭୨ |
| | ଦିଗନ୍ତବ୍ୟାପୀ ଲୋକଙ୍କର | ଯେ ପୁଣ ଅଟେ ଅଳଙ୍କାର | ॥ ୧୭୩ |
| | ଏମନ୍ତ ଯଶ ଯେ ତୁମ୍ଭର | ପବିତ୍ର କରଇ ସଂସାର | ॥ ୧୭୪ |

୧. ସର୍ବଜ୍ଞ ଭଗବାନ୍ ଏହିପ୍ରକାରେ ଅବିଦ୍ୱାନ୍ ଭଳି ଜରାସନ୍ଧବଧନିମିତ୍ତ ପାଣ୍ଡବମାନଙ୍କ ଚେଷ୍ଟା ବିଷୟ ନାରଦଙ୍କୁ ପଚାରନ୍ତେ ନାରଦ ଏହାକୁ ମାୟା ବୋଲି ଜାଣି ଅଦ୍ଭୁତ ମନେ କଲେ ନାହିଁ ।

୨. ପ୍ରପତ୍ତି = ଶରଣାଗତି ।

୩. ପାରମେଷ୍ଠ୍ୟକାମଃ ଇତି ମୂଳପାଠ ।

ତୁମ୍ଭ ଚରଣଜଳ ଯେହି । ଭୂମିରେ ଗଙ୍ଗା ସେ ବୋଲାଇ ॥ ୧୭୫
ସ୍ୱର୍ଗେ ବୋଲାଇ ମନ୍ଦାକିନୀ । ପାତାଳେ ଭୋଗବତୀ ଘେନି ॥ ୧୭୬
ସେ ଗଙ୍ଗା ଏମନ୍ତ ରୂପରେ । ପବିତ୍ର ତ୍ରିଭୁବନ କରେ ॥ ୧୭୭

ଶ୍ରୀଶୁକ ଉବାଚ

୪୫ କହନ୍ତି ବ୍ୟାସଙ୍କର ସୁତ । ନାରଦ କହନ୍ତେ ଏମନ୍ତ ॥ ୧୭୮
ଯେ ଜାତ ଆତ୍ମୀୟ ପକ୍ଷରେ । ସେ ଯଦୁବୀରେ ସେ କାଳରେ ॥ ୧୭୯
ଜିଣିମା ଅର୍ଥେ ଜରାସୁତ । ନ ଘେନନ୍ତେ ତାଙ୍କ କଥିତ ॥ ୧୮୦
ପେଶଳ[୧] ବାକ୍ୟମାନଙ୍କରେ । ମୋହିତ କରିଣ ସେଠାରେ ॥ ୧୮୧
କେଶବ ଏମନ୍ତ ବାକ୍ୟକୁ । କହିଲେ ଭୃତ୍ୟ ଉଦ୍ଧବଙ୍କୁ ॥ ୧୮୨

ଶ୍ରୀଭଗବାନୁବାଚ

୪୬ ପରମ ଚକ୍ଷୁ ତୁ ଆମ୍ଭର । ସୁହୃଦ ଅଟୁ ତୁ ଆବର ॥ ୧୮୩
ମନ୍ତ୍ରାର୍ଥତତ୍ତ୍ୱ ଜାଣୁ ଯେଣୁ । ଏଠାରେ କୃତ୍ୟ ଯାହା ତେଣୁ ॥ ୧୮୪
ସଶ୍ରଦ୍ଧ ହୋଇ କରି ଆମ୍ଭେ । କରିବୁଁ କହ ତାହା ତୁମ୍ଭେ ॥ ୧୮୫
୪୭ ଯେ କୃଷ୍ଣ ସର୍ବଜ୍ଞ ଅଟନ୍ତି । ସେ ନ ଜାଣିଲା ପ୍ରାଏ ଅତି ॥ ୧୮୬
ଆଜ୍ଞା ଦିଅନ୍ତେ ଏ ରୂପରେ । ସେ କାଳେ ସେ ଆଜ୍ଞାକୁ ଶିରେ ॥ ୧୮୭
ଉଦ୍ଧବ ଘେନି କରି ଧୀରେ । କହିଲେ ଏମନ୍ତ ରୂପରେ ॥ ୧୮୮
କୃଷ୍ଣଚରଣ ଚିନ୍ତି ଚିତ୍ତେ । ଦଶମସ୍କନ୍ଧ ଭାଷାଗୀତେ ॥ ୧୮୯
ଭଣଇଁ ଦୀନବନ୍ଧୁ ଦ୍ୱିଜ । ସୁଜନେ କୃଷ୍ଣପାଦେ ଭଜ ॥ ୧୯୦

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଭଗବଦ୍‌ପ୍ରଶ୍ନୋ
ନାମ ସପ୍ତତିତମୋଽଧ୍ୟାୟଃ ॥

## ଏକସପ୍ତତିତମ ଅଧ୍ୟାୟ

ଅଥୈକସପ୍ତତିତମ ଉଦ୍ଧବସ୍ୟ ତୁ ମନ୍ତ୍ରତଃ ।
ଇନ୍ଦ୍ରପ୍ରସ୍ଥଂ ଗତେ କୃଷ୍ଣେ ପାର୍ଥାନାଂ ପରମୋତ୍ସବଃ ॥ ୧
ରାଜସୂୟମିଷଂ କୃତ୍ୱା ଭୀମଦୁର୍ଯୋଧନାଦିଷୁ ।
କଳିମୁତ୍ପାଦ୍ୟ ତଦ୍‌ଦ୍ୱାରା ଭୂଭାରମହରତ୍ ପ୍ରଭୁଃ ॥ ୨

ଶ୍ରୀଶୁକ ଉବାଚ

୧ କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ॥ ୧
ନାରଦଙ୍କର ଏ ରୂପରେ । ବଚନ ଶୁଣି ସେ କାଳରେ ॥ ୨

---

୧. ପେଶଳ = ମନୋହର ।

କୃଷ୍ଣର ଅଭିମତ ଜାଣି । ସଭାଲୋକଙ୍କର ହିଁ ପୁଣି ।। ୩
ଉଦ୍ଧବ ଅତି ବୁଦ୍ଧିମନ୍ତ । ବଚନ କହିଲେ ଏମନ୍ତ ।। ୪

ଶ୍ରୀଉଦ୍ଧବ ଉବାଚ

୨ ହେ ଦେବ ! କରିବେ ଯଜନ । ଯେ ତୁମ୍ଭ ପିଉଷୀନନ୍ଦନ ।। ୫
ତାହାଙ୍କୁ ସେ ଯଜ୍ଞକର୍ମରେ । ସାହାଯ୍ୟ କରିବା ନିର୍ଭରେ ।। ୬
କାର୍ଯ୍ୟ ଅଟଇ ଏ ତୁମ୍ଭର । କହିଲେ ଯା' ବ୍ରହ୍ମାକୁମର ।। ୭
ଶରଣପ୍ରାର୍ଥୀ ରାଜାଙ୍କର । ରକ୍ଷା କାର୍ଯ୍ୟ ହିଁ ଏ ତୁମ୍ଭର ।। ୮
୩ ଜିଣଇଁ ଯେ ଦିଗଚକ୍ରକୁ । ରାଜସୂୟରେ ଯଜନକୁ ।। ୯
ସେ ଯୁଧିଷ୍ଠିରାଦି କରନ୍ତୁ । ହେ ପ୍ରଭୁ ପୁଣ ଏହି ହେତୁ ।। ୧୦
ଜିଣିମା ଜରାର କୁମର । ଏ ବେନି[୧] ଅର୍ଥ ମତ ମୋର ।। ୧୧
୪ ଏ ହେତୁ ଆମ୍ଭମାନଙ୍କର । ଲାଭ ହୋଇବ ବଳିଯାର ।। ୧୨
ବନ୍ଧନୁଁ ନୃପତିମାନଙ୍କୁ । ତୁମ୍ଭେ କରନ୍ତେ ମୋକ୍ଷଣକୁ ।। ୧୩
ଆହେ ଗୋବିନ୍ଦ ଏ ତୁମ୍ଭର । ଯଶ ହିଁ ହୋଇବ ଆବର ।। ୧୪
୫ ଯେ ଆନ ବଳବନ୍ତମାନେ । ସେମାନଙ୍କରେ ଏ ଭୁବନେ ।। ୧୫
ଭୀମ ତାହାର ସମବଳ । ଛାଡ଼ି ସେ ଭୀମକୁ କେବଳ ।। ୧୬
ସେ ଜରାସନ୍ଧ ନରପତି । ଅଟଇ ଦୁର୍ଦ୍ଧର୍ଷ ହିଁ ଅତି ।। ୧୭
୬ ବଳରେ ଅୟୁତେ ହସ୍ତୀର । ସମାନ ବଳ ଅଟେ ତାର ।। ୧୮
ସେ ଜରାସନ୍ଧକୁ ହିଁ ପୁଣି । ଦ୍ୱନ୍ଦ୍ୱଯୁଦ୍ଧରେ ପାରି ଜିଣି ।। ୧୯
ଯେ ସୈନ୍ୟ ଶତ ଅକ୍ଷୌହିଣୀ । ତା' ତୁମ୍ଭେ ନ ପାରିବ ଜିଣି ।। ୨୦
ଅତି ବ୍ରହ୍ମଣ୍ୟ ସେ ବେଭାରେ । ତାକୁ ମାଗନ୍ତେ ବିପ୍ରବରେ ।। ୨୧
ସେ ଜରାସନ୍ଧ କାହାକୁ ହିଁ । ନ ଦେବ ବୋଲି ନ ବୋଲଇ ।। ୨୨
୭ ବ୍ରାହ୍ମଣବେଷ ଭୀମ ହୋଇ । ତାହାକୁ ମାଲଯୁଦ୍ଧ ଯାଇ ।। ୨୩
ମାଗିଣ ତୁମ୍ଭ ନିକଟରେ । ମାରିବ ଦ୍ୱନ୍ଦ୍ୱସମରରେ ।। ୨୪
ଏଥି ସନ୍ଦେହ କିଛି ନାହିଁ । ଏ କଥା ନିଶ୍ଚୟ ଅଟଇ ।। ୨୫
୮ କାଳ ସ୍ୱରୂପ ଅଟେ ଯାର । ତୁମ୍ଭେ ସେ ଈଶ୍ୱର, ତୁମ୍ଭର ।। ୨୬
ବିଶ୍ୱସର୍ଜନାସଂହାରରେ । ବ୍ରହ୍ମାଶଙ୍କର ବେନି ସୁରେ ।। ୨୭
ନିମିତ୍ତମାତ୍ର ଥାନ୍ତି ହୋଇ । ସେ ରୂପେ ତୁମ୍ଭେ ସେହି ଠାଇଁ ।। ୨୮
ଜରାସନ୍ଧର ପ୍ରାଣ ନେମ । ନିମିତ୍ତମାତ୍ର ହେବ ଭୀମ ।। ୨୯
୯ ଜରାସନ୍ଧର ଧୃତ ହୋଇ । ସେ ରାଜାମାନେ ଛନ୍ତି ରହି ।। ୩୦
ଯେ ତାହାଙ୍କର ପତ୍ନୀମାନେ । ସେମାନେ ଆପଣା ଭୁବନେ ।। ୩୧

୧. ବେନି ଅର୍ଥ = (୧) ଶରଣାଗତରକ୍ଷାର୍ଥ,
(୨) ରାଜସୂୟାର୍ଥ ।

| | | | | |
|---|---|---|---|---|
| | ଯେ ନିଜ ଶତ୍ରୁ ଜରାସନ୍ଧ | ସେ ତୁମ୍ଭ ହେତୁ ହେବ ବଧ | ॥ | ୩୨ |
| | ମୋକ୍ଷଣ ପତିମାନଙ୍କର | ନିକଟେ ହୋଇବ ଆବର | ॥ | ୩୩ |
| | ଏ ତୋ' ନିର୍ମଳ କର୍ମମାନ | ନିତ୍ୟରେ କରିବେ ଗାୟନ | ॥ | ୩୪ |
| | ଶଙ୍ଖଚୂଡ଼ର ବଧୁଁ ଯେହ୍ନେ | ମୋକ୍ଷ ଗାଆନ୍ତି ଗୋପୀମାନେ | ॥ | ୩୫ |
| | କୁମ୍ଭୀରଠାରୁ ଗଜେନ୍ଦ୍ରର | ମୋକ୍ଷ ଗାଆନ୍ତି ଯେହ୍ନେ ସୁର | ॥ | ୩୬ |
| | ସୀତାର ରାବଣଠାବରୁ | ପିତାମାତାର ବନ୍ଦିଘରୁ | ॥ | ୩୭ |
| | ମୋକ୍ଷକୁ ଗାଉଁ ଆମ୍ଭେମାନେ | ଶରଣାପନ୍ନ ମୁନିମାନେ | ॥ | ୩୮ |
| ୧୦ | ଜରାସନ୍ଧର ବଧୁଁ କରି | ବହୁତ କାର୍ଯ୍ୟ ହେବ ହରି | ॥ | ୩୯ |
| | ଶିଶୁପାଳାଦି ନୃପଙ୍କର | ପ୍ରାୟଶଃ ହୋଇବ ସଂହାର | ॥ | ୪୦ |
| | କର୍ମଫଳରୁ ରାଜାଙ୍କର | ଏ ଯାଗ ଅଭିମତ ତୋର | ॥ | ୪୧ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧୧ | କହନ୍ତି ଶୁକ ମୁନିବର | ଶୁଣ ହେ ଉତ୍ତରାକୁମର | ॥ | ୪୨ |
| | ଯେ ସର୍ବମଙ୍ଗଳ ଅଟଇ | [1]ଉପପତ୍ତିରେ ବୃଦ୍ଧ ଯେହି | ॥ | ୪୩ |
| | ଏମନ୍ତ ଉଦ୍ଧବବାକ୍ୟକୁ | ନାରଦ କଲେ ପୂଜନକୁ | ॥ | ୪୪ |
| | ଯାଦବବୃଦ୍ଧଙ୍କର ତୁଲେ | କୃଷ୍ଣ ହିଁ ପ୍ରତିପୂଜା କଲେ | ॥ | ୪୫ |
| ୧୨ | ଏଥୁ ଅନ୍ତରେ ହେ ରାଜନ | ଦେବକୀସୁତ ଭଗବାନ | ॥ | ୪୬ |
| | ପ୍ରୟାଣ କରିବା ନିମିତ୍ତେ | ଦାରୁକ ଜୈତ୍ର ଆଦି ଯେତେ | ॥ | ୪୭ |
| | ଆଜ୍ଞାକୁ ଦେଲେ ସେ ଭୃତ୍ୟଙ୍କୁ | ଅନୁଜ୍ଞା ମାଗିଲେ ଗୁରୁଙ୍କୁ[2] | ॥ | ୪୮ |
| ୧୩ | ହେ ପରୀକ୍ଷିତ ସେ ଶ୍ରୀହରି | ରାମଙ୍କୁ ଆଜ୍ଞା ମାଗି କରି | ॥ | ୪୯ |
| | ଯେ ଉଗ୍ରସେନ ଯଦୁସାଇଁ | ତାହାଙ୍କୁ ଆଜ୍ଞା ମାଗି ତହିଁ | ॥ | ୫୦ |
| | ସୁତମାନଙ୍କ ସହିତରେ | ସମସ୍ତ ଲୋକଙ୍କ ସଙ୍ଗରେ | ॥ | ୫୧ |
| | ଯେ ଅନ୍ତଃପୁରନାରୀଗଣ | ତାହାଙ୍କୁ କରାଇ ପ୍ରୟାଣ | ॥ | ୫୨ |
| | ଗରୁଡ଼ଧ୍ୱଜ ଅଛି ଯହିଁ | ସାରଥି ଯାହା ଆଣିଛଇଁ | ॥ | ୫୩ |
| | ସେ ନିଜ ରଥେ ନାରାୟଣ | ତତ୍‌କ୍ଷଣେ କଲେ ଆରୋହଣ | ॥ | ୫୪ |
| ୧୪ | ଯେ ରଥ-ହସ୍ତୀ ଯୋଦ୍ଧାମାନେ | ଯେ ବା ରାଉତଶ୍ରେଷ୍ଠମାନେ | ॥ | ୫୫ |
| | ଏଣେ ଯେ କରାଳ ଅତ୍ୟନ୍ତ | ସେ ନିଜ ସୈନ୍ୟେ ହୋଇ ବୃତ | ॥ | ୫୬ |
| | ତଦନ୍ତେ ପ୍ରଭୁ ଭଗବାନ | ପୁରରୁ କଲେ ସେ ଗମନ | ॥ | ୫୭ |
| | ମୃଦଙ୍ଗ ଭେରୀ ଯେ ଆନକ | ଯେ ଶଙ୍ଖ ଗୋମୁଖ ଅନେକ | ॥ | ୫୮ |
| | ଏମାନଙ୍କର ଯଉଁ ସ୍ୱନ | ତେଣେ ପୂରିଲେ ଦିଗମାନ | ॥ | ୫୯ |
| ୧୫ | ଦିବ୍ୟ ଆଭରଣ ବସନ | ଯା'ଙ୍କର ଗନ୍ଧମାଲ୍ୟମାନ | ॥ | ୬୦ |
| | ସେ ପତିବ୍ରତା ପତ୍ନୀଗଣ | ପୁତ୍ରମାନଙ୍କ ସହିତେଣ | ॥ | ୬୧ |

୧. ଯୁକ୍ତିମତ୍ତା ।　　୨. ବସୁଦେବ ପ୍ରଭୃତିଙ୍କୁ ।

ନରଯାନରେ ଅଶ୍ୱପରେ । ସ୍ୱର୍ଣ୍ଣ[1] ଶିବିକାମାନଙ୍କରେ ॥ ୬୨
ପତି ଯେ ଅଟନ୍ତି ଅଚ୍ୟୁତ । ତାହାଙ୍କୁ ହୋଇ ଅନୁଗତ ॥ ୬୩
ଚଳନ୍ତେ ଢାଲ ଖଣ୍ଡା ଧରି । ବେଢ଼ିଅଛନ୍ତି ପ୍ରିୟକାରୀ ॥ ୬୪
୧୬ ଯେ ପରିଜନନାରୀମାନେ । ଯେ ବାରନାରୀମାନେ ଆନେ ॥ ୬୫
ସେ ଅତି ଅଳଂକୃତ ହୋଇ । ଉଶୀର[2] ଆଦି ଗୃହ ଯେହି ॥ ୬୬
କମ୍ବଳ ଅମ୍ବର-ସଦନ । ଇତ୍ୟାଦି ଦ୍ରବ୍ୟକୁ ବହନ ॥ ୬୭
ଘେନିଣ ନରରେ ଉଷ୍ଟ୍ରରେ । ବଳଦ-ମହିଷ-ଗଧରେ ॥ ୬୮
ଶକଟେ ହସ୍ତିନୀରେ ଆନ । ଅଶ୍ୱତରୀରେ ଘେନି ପୁଣ ॥ ୬୯
ଯୋଚିଣ ଏ ଆଦି ଯାନରେ । ସମସ୍ତେ ଚଳିଲେ ନିର୍ଭରେ ॥ ୭୦
୧୭ ଯେ ଶ୍ରେଷ୍ଠ ଧ୍ୱଜପଟମାନ । ଛତ୍ର-ଚାମରମାନେ ଆନ ॥ ୭୧
ଶ୍ରେଷ୍ଠ ଆୟୁଧ ଆଭରଣ । କିରୀଟ-ବର୍ମମାନଙ୍କେଣ ॥ ୭୨
ଆକୁଳ ଧ୍ୱନି କରେ ଯେହି । ଏମନ୍ତ ସୈନ୍ୟ ଯେ ଅଟଇ ॥ ୭୩
ସେ ସୈନ୍ୟ ସୂର୍ଯ୍ୟକିରଣରେ । ଶୋଭା ପାଇଲା ଦିବସରେ ॥ ୭୪
କ୍ଷୁଭିତ ହୋଇଥାନ୍ତି ପୁଣ । ଯେ ତିମିଙ୍ଗିଳ-ଉର୍ମିଗଣ ॥ ୭୫
ତେଣେ ଯେସନ ପରକାର । ଶୋଭିତ ଦିଶଇ ସାଗର ॥ ୭୬
୧୮ ମୁକୁନ୍ଦଦରଶନେ ଯାର । ପ୍ରଶାନ୍ତ ଇନ୍ଦ୍ରିୟନିକର ॥ ୭୭
ସେ ବ୍ରହ୍ମାସୁତ ଏଥୁ ଅନ୍ତେ । କୃଷ୍ଣରେ ପୂଜାକୁ ଲଭନ୍ତେ ॥ ୭୮
କୃଷ୍ଣଙ୍କୁ ପ୍ରଣାମ କରିଣ । ହୃଦୟମଧ୍ୟରେ ଧରିଣ ॥ ୭୯
ବ୍ୟବସାୟକୁ ସେ କୃଷ୍ଣର । ଶ୍ରବଣ କରିଣ ଆଦର ॥ ୮୦
ସତ୍‌କାର ଲଭି ସେ କାଳରେ । ଗମନ କଲେ ଆକାଶରେ ॥ ୮୧
୧୯ ରାଜଦୂତକୁ ନରହରି । ବଚନେ ଅତି ପ୍ରୀତି କରି ॥ ୮୨
ଏମନ୍ତ କହିଲେକ ତହିଁ । ଭୟ ନ ପାଅ ତୁମ୍ଭେ କେହି ॥ ୮୩
ମଙ୍ଗଳ ତୁମ୍ଭମାନଙ୍କର । ହେ ଦୂତ କରିବି ସତ୍ୱର ॥ ୮୪
ଜରାସନ୍ଧକୁ ମୁହିଁ ଯିବି । ଭୀମହସ୍ତରେ ମରାଇବି ॥ ୮୫
୨୦ ଶ୍ରୀକୃଷ୍ଣ କହନ୍ତେ ଏମନ୍ତ । ପ୍ରସ୍ଥାନ କରିଣ ସେ ଦୂତ ॥ ୮୬
ଯଥାର୍ଥ କରି ସେ ରାଜାଙ୍କୁ । କହିଲା ସମସ୍ତ ବାର୍ତ୍ତାକୁ ॥ ୮୭
ମୋକ୍ଷ ହେବାକୁ ବନ୍ଧନରୁ । ଇଚ୍ଛନ୍ତି ଯାହା ସକାଶରୁ ॥ ୮୮
ସେ ଶ୍ରୀକୃଷ୍ଣର ଦରଶନେ । ପ୍ରତୀକ୍ଷା କଲେ ସେ ରାଜନେ ॥ ୮୯
୨୧| ସୌବୀର, ମରୁ, ବିନଶନ[3] । ଆନର୍ତ୍ତ ଦେଶକୁ ଲଙ୍ଘିଣ ॥ ୯୦
୨୨| ପର୍ବତ ନଦୀ ପୁରମାନ । ଗ୍ରାମ ଆକାର ବ୍ରଜସ୍ଥାନ ॥ ୯୧
ଏମାନ ସବୁ ଲଙ୍ଘି କରି । ଗମନ କଲେ ନରହରି ॥ ୯୨

---

୧. ଶିବିକା = ପାଲିଙ୍କି । ୨. ଉଶୀର = ବେଣାଚେର ଆଦି ନିର୍ମିତ । ୩. କୁରୁକ୍ଷେତ୍ର ।

ଦୃଷଦ୍‌ବତୀକି ତଦନ୍ତରେ । ମୁକୁନ୍ଦ ତରି ସେ କାଳରେ ॥ ୯୩
ସରସ୍ୱତୀକି ଏଥୁ ଅନ୍ତେ । ତରି ଯାଇଣ ସେହି ମତେ ॥ ୯୪
ପଞ୍ଚାଳ ମତ୍ସ୍ୟ ଦେଶ ଦୁଇ । ଏଥୁ ଅନ୍ତରେ ତରି ଯାଇ ॥ ୯୫
ସେ ଭଗବାନ ଏଥୁ ଅନ୍ତେ । ପ୍ରବେଶ ହେଲେ ଇନ୍ଦ୍ରପ୍ରସ୍ଥେ ॥ ୯୬
୨୩ ମନୁଷ୍ୟମାନଙ୍କେ ଯାହାର । ଦର୍ଶନ ଅଟେ ଅଗୋଚର ॥ ୯୭
ସେ କୃଷ୍ଣ ମିଳିଲେ ସତ୍ୱର । ଏମନ୍ତ ଶୁଣି ଯୁଧିଷ୍ଠିର ॥ ୯୮
ଅତ୍ୟନ୍ତ ପ୍ରୀତି ମନେ ବହି । ମିତ୍ରଗଣରେ ବୃତ ହୋଇ ॥ ୯୯
ଉପାଧ୍ୟାୟଙ୍କ ସହିତରେ । ବାହାର ହେଲେ ସେ କାଳରେ ॥ ୧୦୦
୨୪ ବାଜନ୍ତେ ନାନାବିଧ ବାଦ୍ୟ । ଶୁଭନ୍ତେ ଗୀତଙ୍କର ନାଦ ॥ ୧୦୧
ବହୁତ ବେଦଧ୍ୱନି ପୁଣ । ବ୍ରାହ୍ମଣମାନେ କରନ୍ତେଣ ॥ ୧୦୨
ଗୋବିନ୍ଦଠାକୁ ଯୁଧିଷ୍ଠିର । ଗମନ କଲେକ ସତ୍ୱର ॥ ୧୦୩
ପ୍ରାଣକୁ ଯେସନ ପ୍ରକାର । ଇନ୍ଦ୍ରିୟେ କରନ୍ତି ଆଦର ॥ ୧୦୪
୨୫ କୃଷ୍ଣଙ୍କୁ ପାଣ୍ଡୁର ନନ୍ଦନ । ସ୍ନେହରେ କରି ବିଲୋକନ ॥ ୧୦୫
ଆକୁଳ ହୋଇଲା ହୃଦୟ । ଯେଣୁ ସେ କୃଷ୍ଣ ଅତିପ୍ରିୟ ॥ ୧୦୬
ବହୁତ କାଳରେ ଦେଖନ୍ତେ । ସେ ଶ୍ରୀକୃଷ୍ଣଙ୍କୁ ଏଥୁ ଅନ୍ତେ ॥ ୧୦୭
ପାଣ୍ଡୁତନୟ ପୁନଃପୁନ । ବହୁତ କଲେ ଆଲିଙ୍ଗନ ॥ ୧୦୮
୨୬ ଯେ ଲକ୍ଷ୍ମୀନିର୍ଦ୍ଦୋଷମନ୍ଦିର । ଏମନ୍ତ ମୁକୁନ୍ଦଶରୀର ॥ ୧୦୯
ବେନି ଭୁଜରେ ଦଣ୍ଡଧାରୀ । ବହୁତ ଆଲିଙ୍ଗନ କରି ॥ ୧୧୦
ଅଶୁଭମାନଙ୍କୁ ଖଣ୍ଡିଲେ । ଉତ୍ତମ ସୁଖକୁ ଲଭିଲେ ॥ ୧୧୧
ଲୋତକ ବେନି ଲୋଚନରେ । ପୁଲକ ହେଲା ଶରୀରରେ ॥ ୧୧୨
ଯେ ଅବା ଲୋକବ୍ୟବହାର । ତାହା ପାସୋରିଲେ ଆବର ॥ ୧୧୩
୨୭ ମାତୁଳନନ୍ଦନ ଯେ ହରି । ତାହାଙ୍କୁ ଆଲିଙ୍ଗନ କରି ॥ ୧୧୪
ଭୀମ ହିଁ ହୋଇଲେ ସୁଖିତ । ହୁଅନ୍ତେ ଅତି ହରଷିତ ॥ ୧୧୫
ପ୍ରେମର ବେଗୁଁ ଅତିଶୟ । ଆକୁଳ ତାହାଙ୍କ ଇନ୍ଦ୍ରିୟ ॥ ୧୧୬
ନକୁଳ ସହଦେବ ଦୁଇ । ଅର୍ଜୁନ ମିଶି ତିନି ଭାଇ ॥ ୧୧୭
ଲୋତକମାନ ପ୍ରକର୍ଷରେ । ବଢ଼ନ୍ତେ ଅତି ହରଷରେ ॥ ୧୧୮
ଅତ୍ୟନ୍ତ ପ୍ରିୟ ଯେ ଅଚ୍ୟୁତ । ତାହାଙ୍କୁ କଲେ ଆଲିଙ୍ଗିତ ॥ ୧୧୯
୨୮। ଅର୍ଜୁନେ କରି ଆଲିଙ୍ଗନ । ନକୁଳ ସହଦେବେ ପୁଣ ॥ ୧୨୦
୨୯। ନମସ୍କାରକୁ ଲଭି କରି । ବିପ୍ରଙ୍କୁ ନମିଣ ସେ ହରି ॥ ୧୨୧
ଯେ ବୃଦ୍ଧଜନମାନେ ଥିଲେ । ଯଥାଯୋଗ୍ୟେ ତାଙ୍କୁ ପୂଜିଲେ ॥ ୧୨୨
ଯେ ମାନୀ ଯେ କୁରୁସୃଞ୍ଜୟ । ଯେ ଜନମାନେ କଇକୟ[୧] ॥ ୧୨୩
ଏମାନଙ୍କୁ ସେ ଭଗବାନ । କଲେ ଉତ୍ତମ ସଂମାନନ ॥ ୧୨୪

୧. କଇକୟ = କୈକୟ ।

| | | | | |
|---|---|---|---|---|
| ୩୦ | ସୂତ-ମାଗଧ-ବନ୍ଦୀ-ଜନ | । ଗନ୍ଧର୍ବ ଉପମନ୍ତ୍ରୀମାନ | ॥ | ୧୨୫ |
| | ମୃଦଙ୍ଗ-ଶଙ୍ଖ-ପଟହରେ | । ବୀଣା-ପଣବ-ବେଣୁସ୍ୱରେ[୧] | ॥ | ୧୨୬ |
| | ସେ ପଦ୍ମନେତ୍ର ଶ୍ରୀକୃଷ୍ଣଙ୍କୁ | । କଲେ ଉତ୍ତମ ଗାୟନକୁ | ॥ | ୧୨୭ |
| | ବ୍ରାହ୍ମଣେ କଲେ ସ୍ତୁତିମାନ | । ନୃତ୍ୟକୁ କଲେ ଆନ ଜନ | ॥ | ୧୨୮ |
| ୩୧ | ଏମନ୍ତରୂପେ ସେ କାଳରେ | । ବେଷ୍ଟିତ ହୋଇ ସୁହୃଦରେ | ॥ | ୧୨୯ |
| | ସେ ପୁଣ୍ୟଶ୍ଳୋକଶିଖାମଣି | । ସଂସ୍ତୁତ ହୁଅନ୍ତେଣ ପୁଣି | ॥ | ୧୩୦ |
| | ଅଳଂକୃତ ପୁରେ ବହନ | । ପ୍ରବେଶ ହେଲେ ଭଗବାନ | ॥ | ୧୩୧ |
| ୩୨ | ହସ୍ତୀଙ୍କ ମଦଗନ୍ଧନୀରେ | । ସଂସିକ୍ତ ମାର୍ଗ ଯଉଁ ପୁରେ | ॥ | ୧୩୨ |
| | କନକମୟ ଯେ ତୋରଣ | । ଯେ ସ୍ୱର୍ଣ୍ଣପୂର୍ଣ୍ଣକୁମ୍ଭଗଣ | ॥ | ୧୩୩ |
| | ଯେ ଚିତ୍ର ଦିବାଧ୍ୱଜମାନ | । ତେଣେ ଯେ ପୁର ଶୋଭମାନ | ॥ | ୧୩୪ |
| | ନବୀନ ଭୂଷଣ ବସନ | । ଯା'ଙ୍କର ଗନ୍ଧ-ମାଲ୍ୟମାନ | ॥ | ୧୩୫ |
| | ମାର୍ଜିତ ସେ ନରନାରୀରେ | । ଯେବଣ ପୁର ଶୋଭା ଧରେ | ॥ | ୧୩୬ |
| ୩୩ | ପ୍ରଦୀପ୍ତ ପ୍ରଦୀପ ବଳି[୨]ରେ | । ଯେ ଯୁକ୍ତ ଅଟେ ନିରନ୍ତରେ | ॥ | ୧୩୭ |
| | ଯେବଣ ପୁରେ ପ୍ରତିଘରେ | । ଗବାକ୍ଷରନ୍ଧ୍ରମାନଙ୍କରେ | ॥ | ୧୩୮ |
| | ନିର୍ଗତ ଯଉଁ ଧୂପମାନ | । ତେଣେ ଯେ ଦିଶଇ ଶୋଭନ | ॥ | ୧୩୯ |
| | ପତାକାମାନେ ପୁଣ ନିତି | । ଯହିଁରେ ଶୋଭା ପାଉଛନ୍ତି | ॥ | ୧୪୦ |
| | ସୁବର୍ଣ୍ଣମୟ କୁମ୍ଭ ଯହିଁ | । ଉପରିଭାଗେ ଛନ୍ତି ରହି | ॥ | ୧୪୧ |
| | ରଜତ-ସ୍ଥୂଳଶୃଙ୍ଗମାନେ | । ଅଛନ୍ତି ଯେବଣ ଭବନେ | ॥ | ୧୪୨ |
| | ଏମନ୍ତ ଗୃହେ ଯଉଁ ପୁର | । ପୂରିତ ଅଟେ ନିରନ୍ତର | ॥ | ୧୪୩ |
| | ସେ ଯୁଧିଷ୍ଠିରନିକେତନ | । ଶ୍ରୀହରି କଲେ ବିଲୋକନ | ॥ | ୧୪୪ |
| ୩୪ | ନରଲୋଚନଙ୍କର ନିତି | । ଦେଖିବା ପାତ୍ର ଯେ ଅଟନ୍ତି | ॥ | ୧୪୫ |
| | ସେ ହରି ମିଳିଲେ ଆସିଣ | । ଏମନ୍ତ ଶ୍ରବଣ କରିଣ | ॥ | ୧୪୬ |
| | ପତିଙ୍କି ଶଯ୍ୟାରେ ପାସୋରି | । ଗୃହକର୍ମକୁ ଛାଡ଼ି କରି | ॥ | ୧୪୭ |
| | କୃଷ୍ଣଙ୍କୁ ଦେଖିବାକୁ ବେଗେ | । ନାରୀଏ ଗଲେ ରାଜମାର୍ଗେ | ॥ | ୧୪୮ |
| | ଯଉଁ ବନିତାମାନଙ୍କର | । ଉତ୍ସୁକଭାବରୁ ଆବର | ॥ | ୧୪୯ |
| | କେଶ ଦୁକୂଳ ବନ୍ଧମାନ | । ବିଶ୍ଳଥ ହୋଇଲେ ବହନ | ॥ | ୧୫୦ |
| ୩୫ | ଯେ ହସ୍ତୀ ରଥ ଅଶ୍ୱ ପତ୍ତି[୩] | । ତେଣେ ସଂକୁଳ ଯେ ହୁଅନ୍ତି | ॥ | ୧୫୧ |
| | ସେ ମାର୍ଗେ ଭାର୍ଯ୍ୟାସହିତେଣ | । ନାରୀଏ କୃଷ୍ଣଙ୍କୁ ଦେଖିଣ | ॥ | ୧୫୨ |
| | ଗୃହରେ କରି ଆରୋହଣ | । ପୁଷ୍ପମାନଙ୍କୁ ବରଷିଣ | ॥ | ୧୫୩ |
| | ମନରେ ଘେନିଣ କୃଷ୍ଣଙ୍କୁ | । ସ୍ୱାଗତ ଆଦି ସୁପ୍ରଶ୍ନକୁ | ॥ | ୧୫୪ |
| | ହାସ ସହିତ ଚାହାଣୀରେ | । ବିଧାନ କଲେ ସେ କାଳରେ | ॥ | ୧୫୫ |

୧. ଗୋମୁଖରେ । ୨. ପୁଷ୍ପାଦି ଉପଚାର । ୩. ପତ୍ତି = ପଦାତି । (Pedestrian)

| | | | | | |
|---|---|---|---|---|---|
| ୩୬ | ମାର୍ଗେ ମୁକୁନ୍ଦପତ୍ନୀମାନ | । | ଦେଖି ବୋଲନ୍ତି ନାରୀଜନ | ॥ | ୧୫୬ |
| | ଚନ୍ଦ୍ରମାସଙ୍ଗେ ବିହରନ୍ତି | । | ଆକାଶେ ଯେହ୍ନେ ତାରାପନ୍ତି | ॥ | ୧୫୭ |
| | ଏ କୃଷ୍ଣନାରୀଏ ତେସନେ | । | କି ପୁଣ୍ୟ କଲେ ପୂର୍ବଦିନେ | ॥ | ୧୫୮ |
| | ପୁରୁଷଶ୍ରେଷ୍ଠ ଏ ଅଚ୍ୟୁତ | । | ଉତ୍ତମ ଯେ ପୁଣ ହସିତ | ॥ | ୧୫୯ |
| | ତାହାର ଲୀଳାବିଲୋକନ | । | କଳାମାନଙ୍କେ ପ୍ରତିଦିନ | ॥ | ୧୬୦ |
| | ଯେଉଁ ବନିତାଙ୍କ ନେତ୍ରର | । | ଉତ୍ସବ କରନ୍ତି ବିସ୍ତାର | ॥ | ୧୬୧ |
| ୩୭ | ନିଷ୍ପାପ ପୁରବାସୀ ଜନ | । | ଘେନି ମଙ୍ଗଳଦ୍ରବ୍ୟମାନ | ॥ | ୧୬୨ |
| | ଆସିଣ ସେ ସେହି ସ୍ଥାନରେ | । | କୃଷ୍ଣଙ୍କୁ ମିଳିଲେ ସତ୍ୱରେ | ॥ | ୧୬୩ |
| | ସମସ୍ତେ ଯୂଥ ଯୂଥ ହୋଇ | । | କୃଷ୍ଣଙ୍କୁ ପୂଜିଲେକ ତହିଁ | ॥ | ୧୬୪ |
| ୩୮ | ଉତ୍ଫୁଲ୍ଲ ଯାହାଙ୍କ ଲୋଚନେ | । | ସେ ଅନ୍ତଃପୁରନାରୀଜନେ | ॥ | ୧୬୫ |
| | କୃଷ୍ଣଙ୍କୁ ସସଂଭ୍ରମ ହୋଇ | । | ପ୍ରୀତିରେ ନିଅନ୍ତି ମଣାଇଁ | ॥ | ୧୬୬ |
| | ରାଜମନ୍ଦିରେ ଭଗବାନ | । | ପ୍ରବେଶ ହୋଇଲେ ବହନ | ॥ | ୧୬୭ |
| ୩୯ | ଯେ କୃଷ୍ଣ ଭ୍ରାତାର କୁମର | । | ତିନିଭୁବନର ଈଶ୍ୱର | ॥ | ୧୬୮ |
| | ତାହାଙ୍କୁ ଦେଖି କରି କୁନ୍ତୀ | । | ପଲଙ୍କୁଁ ଉଠିଣ ଝଟିତି | ॥ | ୧୬୯ |
| | ପ୍ରୀତିରେ ଦ୍ରୌପଦୀର ତୁଲେ | । | କୃଷ୍ଣଙ୍କୁ ଆଲିଙ୍ଗନ କଲେ | ॥ | ୧୭୦ |
| ୪୦ | ଯେ ଦେବଦେବଙ୍କ ଈଶ୍ୱର | । | ସେ ଗୋବିନ୍ଦଙ୍କୁ ଯୁଧିଷ୍ଠିର | ॥ | ୧୭୧ |
| | ବହୁତ ଆଦର କରିଣ | । | ନିଜ ମନ୍ଦିରକୁ ଆଣିଣ | ॥ | ୧୭୨ |
| | ଆନନ୍ଦେ ଦ୍ରବୀଭୂତ ହେଲେ | । | ପୂଜାରେ କୃତ୍ୟ ନ ଜାଣିଲେ | ॥ | ୧୭୩ |
| ୪୧ | ଯେ ବା ପିଉଷୀ ଗୁରୁନାରୀ | । | ତାଙ୍କୁ ପ୍ରଣାମ କଲେ ହରି | ॥ | ୧୭୪ |
| | ସୁଭଦ୍ରା-ଦ୍ରୌପଦୀରେ ପୁଣ | । | ବନ୍ଦନ ଲଭିଲେ ଆପଣ | ॥ | ୧୭୫ |
| ୪୨ | ଯେ ସତ୍ୟଭାମା ଯେ ରୁକ୍ମିଣୀ | । | ଯେ ଭଦ୍ରା ଜାମ୍ବବତୀ ପୁଣି | ॥ | ୧୭୬ |
| ୪୩ | କାଳିନ୍ଦୀ ମିତ୍ରବିନ୍ଦା ଦୁଇ | । | ଯେ ଶୈବ୍ୟା ନାଗ୍ନଜିତୀ ତହିଁ | ॥ | ୧୭୭ |
| | ଏ ସର୍ବ ଶ୍ରୀକୃଷ୍ଣଭାର୍ଯ୍ୟାଙ୍କୁ | । | ଘେନିଣ ଶାଶୁଙ୍କ ଆଜ୍ଞାକୁ | ॥ | ୧୭୮ |
| | ପୂଜିଲେ ଦ୍ରୁପଦନନ୍ଦିନୀ | । | ଯେ ଅନ୍ୟ ଶ୍ରୀକୃଷ୍ଣକାମିନୀ | ॥ | ୧୭୯ |
| | ଆସିଣ ଥିଲେ ସେ କାଳରେ | । | ତାହାଙ୍କୁ ବସନମାଳାରେ | ॥ | ୧୮୦ |
| | ଘେନିଣ ଅଳଂକାର ଆଦି | । | କଲେ ଉତ୍ତମ ପୂଜାବିଧି | ॥ | ୧୮୧ |
| ୪୪ | ଅନୁଗ-ଅମାତ୍ୟ ସହିତେ | । | ସୈନ୍ୟମାନଙ୍କର ସଙ୍ଗତେ | ॥ | ୧୮୨ |
| | ଭାର୍ଯ୍ୟାଙ୍କ ସହିତେ ଆବର | । | ଜନାର୍ଦ୍ଦନଙ୍କୁ ଯୁଧିଷ୍ଠିର | ॥ | ୧୮୩ |
| | ପ୍ରତିଦିନରେ ନବ ନବ | । | ଯେମନ୍ତ ରୂପରେ ହୋଇବ | ॥ | ୧୮୪ |
| | ବହୁତ ସୁଖେ ସେ ରୂପରେ | । | ନିବାସ କରାଇଲେ ପୁରେ | ॥ | ୧୮୫ |
| ୪୫ | ଅର୍ଜୁନସଙ୍ଗତେ ପ୍ରେମରେ | । | ବହ୍ନିକି ଖାଣ୍ଡବବନରେ | ॥ | ୧୮୬ |
| ୪୬ | ଯେ କଲେ ସନ୍ତୋଷ ଅତ୍ୟନ୍ତ | । | ଯେ [1]ଫେଡ଼ି ଦେଲେ ମୟ ଦୈତ୍ୟ | ॥ | ୧୮୭ |

୧. ଫେଡ଼ି ଦେଲେ = ମୋଚନ କଲେ ।

| | | | |
|---|---|---|---|
| ହରି ଉତ୍ତମ ସଭା ନେଇ | । ଯୁଧିଷ୍ଠିରଙ୍କୁ ଦେଲେ ଯହିଁ | ।। | ୧୮୮ |
| ସେ ନରହରି କେତେ ମାସ | । ସେ ପୁରେ କରିଣ ନିବାସ | ।। | ୧୮୯ |
| ରାଜାର ପ୍ରିୟ କରିବାକୁ | । ସେ କାଳେ ଆରୋହି ରଥକୁ | ।। | ୧୯୦ |
| ଭଟମାନଙ୍କେ ବୃତ ହେଲେ | । ଅର୍ଜୁନସଂଗେ ବିହରିଲେ | ।। | ୧୯୧ |
| ଅର୍ଜୁନସଂଗେ ଇନ୍ଦ୍ରପ୍ରସ୍ଥେ | । ଯେ ହରି ବିହରିଲେ ନିତ୍ୟେ | ।। | ୧୯୨ |
| ତାଙ୍କ ଚରଣସରସିଜ | । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୯୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣସ୍ୟ ଇନ୍ଦ୍ରପ୍ରସ୍ଥଗମନଂ
ନାମ ଏକସପ୍ତତିତମୋଽଧ୍ୟାୟଃ ।।

## ଦ୍ୱିସପ୍ତତିତମ ଅଧ୍ୟାୟ

ତତୋ ଦ୍ୱିସପ୍ତତିତମେ ରାଜ୍ଞା କାର୍ଯ୍ୟେ ନିବେଦିତେ ।
ଦୁର୍ଜୟଂ ମାଗଧଂ ବୁଦ୍ଧ୍ୱା ଭୀମେନାଘାତୟଦ୍‌ହରିଃ ।। ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ ଆତ୍ମଜ | । ଏବେ ହୋ ଶୁଣ ମହାରାଜ | ।। | ୧ |
| ୨ | ଏକ ଦିନକେ ଆସନରେ | । ବସିଣ ସଭାର ମଧ୍ୟରେ | ।। | ୨ |
| | ବ୍ରାହ୍ମଣ-କ୍ଷତ୍ରିୟ-ବୈଶ୍ୟରେ | । ମୁନିମାନଙ୍କେ ଭ୍ରାତାଙ୍କରେ | ।। | ୩ |
| | ଆଚାର୍ଯ୍ୟ-କୁଳବୃଦ୍ଧଙ୍କରେ | । ଜ୍ଞାତି-ସମ୍ବନ୍ଧୀ-ବାନ୍ଧବରେ | ।। | ୪ |
| | ବେଷ୍ଟିତ ହୋଇ ଯୁଧିଷ୍ଠିର | । [1]ଶୁଣନ୍ତେ ଏହୁ ସର୍ବ ନର | ।। | ୫ |
| | କୃଷ୍ଣଙ୍କୁ କରି ସଂବୋଧନ | । କହିଲେ ଏମନ୍ତ ବଚନ | ।। | ୬ |

ଶ୍ରୀଯୁଧିଷ୍ଠିର ଉବାଚ

| | | | | |
|---|---|---|---|---|
| ୩ | ଆହେ ଗୋବିନ୍ଦ ଅତିଶୟେ | । ଏ ଯାଗରାଜ ରାଜସୂୟେ | ।। | ୭ |
| | ପବିତ୍ର ତୁମ୍ଭ ଅଂଶ[2]ମାନ | । ଏବେ ମୁଁ କରିବି ଯଜନ | ।। | ୮ |
| | ଏକଥା ଆମ୍ଭମାନଙ୍କର | । ହେ ପ୍ରଭୋ ! ସଂପାଦ ସତ୍ୱର | ।। | ୯ |
| ୪ | ବେନିପାଦୁକାକୁ ତୁମ୍ଭର | । ଯେହୁ ସେବନ୍ତି ନିରନ୍ତର | ।। | ୧୦ |
| | ଅଭଦ୍ରବିନାଶହେତୁରେ | । ଧ୍ୟାନ କରନ୍ତି ମାନସରେ | ।। | ୧୧ |
| | ଯେ ଅତି ଶୁଦ୍ଧିମନ୍ତ ନରେ | । ଗୃଣନ୍ତି ଅବା ବଚନରେ | ।। | ୧୨ |
| | ହେ ପଦ୍ମନାଭ ! ସେହି ଜନେ | । ମୋକ୍ଷ ଲଭନ୍ତି ଏ ଭୁବନେ | ।। | ୧୩ |

---

୧. ''ଶ୍ରୀକୃଷ୍ଣ ପ୍ରସନ୍ନ ହୋଇ ଯାହା କରନ୍ତି ତାହା ଅନ୍ୟ କେହି କରିବାକୁ ସମର୍ଥ ନୁହେଁ'' ଏହା ନିଶ୍ଚୟ କରି ସେ ସମସ୍ତଙ୍କୁ ଅନାଦର କରି କୃଷ୍ଣଙ୍କୁ କହିଲେ ।

୨. ବିଭୂତି = ଅଂଶ (ସ୍ୱାମୀ) ।

ଯେବେ ସେ ଆଶାକୁ କରନ୍ତି । ତେବେ ସେ ଆଶିଷ ଲଭନ୍ତି ॥ ୧୪
ଯେ ଅନ୍ୟରାଜାଏ ହେ ଈଶ । ସେ ନ ଲଭନ୍ତି ଏ ଆଶିଷ ॥ ୧୫
୫ ଯେଣୁ ହେ ଦେବଦେବ ! ପୁଣ । ତୁମ୍ଭର ନଳିନଚରଣ ॥ ୧୬
ସେବାନୁଭାବକୁ ଏ ଜନ । ସଂସାରେ କରୁ ବିଲୋକନ ॥ ୧୭
କୁରୁସୃଞ୍ଜୟମାନେ ନିତି । ଯେ ବା ତୁମ୍ଭଙ୍କୁ ନ ଭଜନ୍ତି ॥ ୧୮
ଯେ ଅବା ଭଜନ୍ତି ଆବର । ସେ ବେନି ପକ୍ଷମାନଙ୍କର ॥ ୧୯
ହେ ବିଭୋ ! ସ୍ଥିତି ଅଟେ ଯେହି । ତୁମ୍ଭେ ଦେଖାଅ ନିଶ୍ଚେ ତାହି ॥ ୨୦
୬ ସ୍ୱ-ପରଭେଦବୁଦ୍ଧି ଯେହି । ତୁ ବ୍ରହ୍ମ ସେ ତୋ'ଠାରେ ନାହିଁ ॥ ୨୧
ତୁ ଆତ୍ମା ସମସ୍ତ ଭୂତର । ସମାନଦୃଷ୍ଟି ସବୁଠାର ॥ ୨୨
ଆପଣା ସୁଖରେ ତୁମ୍ଭର । ସଂପତ୍ତି ଅଟଇ ଆବର ॥ ୨୩
ତୋତେ ସେବନ୍ତି ଯଉଁ ନରେ । ତୋ' ଅନୁଗ୍ରହ ତାଙ୍କ ଠାରେ ॥ ୨୪
ସେବାକୁ ଅନୁରୂପ ହୋଇ । ଫଳ ସେମାନଙ୍କର ହୋଇ ॥ ୨୫
ଅନ୍ୟଥାଭାବ ଏ ବିଷୟେ । ହେ ପ୍ରଭୁ ! ନୁହଇ କେବେହେଁ ॥ ୨୬
କଳ୍ପଦ୍ରୁମ ହିଁ ଯେହ୍ନେ ପୁଣ । ସେବା କରଇ ଯଉଁ ଜନ ॥ ୨୭
ତାହାଙ୍କ ଠାରେ ଫଳଦାୟୀ । ଇତରଲୋକେ ନ ଦିଅଇ ॥ ୨୮

ଶ୍ରୀଭଗବାନୁବାଚ

୭ କହନ୍ତି ପ୍ରଭୁ ଭଗବାନ । ହେ ନୃପ ଶତ୍ରୁବିନାଶନ ॥ ୨୯
ଯା' ତୁମ୍ଭେ କହିଲ ଏଠାଇଁ । ଉତ୍ତମ ବ୍ୟବସାୟ ଏହି ॥ ୩୦
କଲ୍ୟାଣବନ୍ତ ତୋର କୀର୍ତ୍ତି । ଯଉଁ ଯାଗରେ ହେବ ଅତି ॥ ୩୧
ଯେବଣ କୀର୍ତ୍ତି ସବୁଠାରେ । ବ୍ୟାପିବ ସର୍ବଭୁବନରେ ॥ ୩୨
୮ ଦେବତା-ଋଷି-ପିତୃଙ୍କର । ହେ ପ୍ରଭୋ ! ଆମ୍ଭ ସୁହୃଦର ॥ ୩୩
ବାଞ୍ଛିତ ସର୍ବ ପ୍ରାଣିଙ୍କର । ଏ ରାଜସୂୟ ଯାଗବର ॥ ୩୪
୯ ବଶ କରିଣ ସର୍ବକ୍ଷିତି । ଜିଣିଣ ସକଳ ନୃପତି ॥ ୩୫
ସଂପାଦି ସର୍ବ ସମ୍ଭାରକୁ । ଆହର[୧] ଏ ମହା ଯାଗକୁ ॥ ୩୬
୧୦ ଏ ତୋ' ଭ୍ରାତାଏ ହେ ରାଜନ । ଲୋକପାଳଙ୍କ ଅଂଶେ ଜନ୍ମ ॥ ୩୭
ଅଜିତେନ୍ଦ୍ରିୟ ଯେତେ ପ୍ରାଣୀ । ସେ ମୋତେ ନ ପାରନ୍ତି ଜିଣି ॥ ୩୮
ତୁମ୍ଭେ ଯେ ଜିତେନ୍ଦ୍ରିୟ ଅତି । ମୋତେ ଜିଣିଛ ତୁମ୍ଭେ ନିତି ॥ ୩୯
୧୧ ତେଜରେ ଯଶରେ ଲକ୍ଷ୍ମୀରେ । [୨]ସେନାଦି ସର୍ବସଂପତ୍ତିରେ ॥ ୪୦
ହେଲେହେଁ ଅତି ଅକିଂଚନ । ଯେ ଅଟେ ମୋର ଭକ୍ତ ଜନ ॥ ୪୧
ତାହାକୁ କେହି ଅଭିଭୂତ । କରିବା ପାଇଁ ନୋହେ ଶକ୍ତ ॥ ୪୨
ଦେବତା ହୋଇ କେହି ନାହିଁ । ନୃପତି ଅବା ହେବ କାହିଁ ॥ ୪୩

---

୧. ଅନୁଷ୍ଠିତ କର ।　　୨. ସୈନ୍ୟାଦି ସର୍ବ ସାମଗ୍ରୀରେ ।

### ଶ୍ରୀଶୁକ ଉବାଚ

୧୨ କହନ୍ତି ଶୁକମୁନି ପୁଣି । ଶୁଣ ହେ ନୃପଚୂଡ଼ାମଣି ॥ ୪୪
ପ୍ରୀତିରେ ଉତ୍‌ଫୁଲ୍ଲିତ ହୋଇ । ଯା' ମୁଖପଦ୍ମ ଶୋଭା ପାଇ ॥ ୪୫
ସେ ଯୁଧିଷ୍ଠିର ଦଣ୍ଡଧାରୀ । ଶ୍ରୀକୃଷ୍ଣବାକ୍ୟ ଶୁଣି କରି ॥ ୪୬
ଯେବଣ ଭ୍ରାତାମାନେ ତାର । ବିଷ୍ଣୁତେଜରେ ବଳିୟାର ॥ ୪୭
ତାହାଙ୍କୁ ଦିଗବିଜୟରେ । ନିଯୁକ୍ତ କଲେ ସେ କାଳରେ ॥ ୪୮
୧୩ ସହଦେବଙ୍କୁ ଦକ୍ଷିଣରେ । ସୃଞ୍ଜୟମାନଙ୍କ ସଙ୍ଗରେ ॥ ୪୯
ମତ୍ସ୍ୟଙ୍କ ସଙ୍ଗେ ନକୁଳଙ୍କୁ । ପେଷିଲେ ପଶ୍ଚିମ ଦିଗକୁ ॥ ୫୦
କେକୟମାନଙ୍କ ସଙ୍ଗରେ । ଅର୍ଜୁନେ ପେଷିଲେ ଉତ୍ତରେ ॥ ୫୧
ଭୀମସେନକୁ ପୂର୍ବଦିଗେ । ପେଷିଲେ ମଦ୍ରଙ୍କର ସଙ୍ଗେ ॥ ୫୨
ଏମନ୍ତ ରୂପେ ଚାରି ଦିଗେ । ଭ୍ରାତାଙ୍କୁ ଆଜ୍ଞା ଦେଲେ ବେଗେ ॥ ୫୩
୧୪ ନୃପତିମାନଙ୍କୁ ସେ ବୀରେ । ଜିଣିଣ ନିଜ ପ୍ରତାପରେ ॥ ୫୪
ଦିଗମାନଙ୍କୁ ଦ୍ରବ୍ୟମାନ । ବହୁତ ଆଣି ହେ ରାଜନ ॥ ୫୫
ଯେ ଯୁଧିଷ୍ଠିର ମହାଯାଗ । କରିବେ ତାଙ୍କୁ ଦେଲେ ବେଗ ॥ ୫୬
୧୫ ଜରାସନ୍ଧକୁ ନୋହେ ଜିଣି । ଏମନ୍ତ ଯୁଧିଷ୍ଠିର ଶୁଣି ॥ ୫୭
ଧ୍ୟାନ କରନ୍ତେ ସେ ରାଜନ । ତାହା ଜାଣିଣ ଭଗବାନ ॥ ୫୮
ଉଦ୍ଧବ ଯାହା କହିଥିଲେ । ତାଙ୍କୁ ସେ ଉପାୟ କହିଲେ ॥ ୫୯
୧୬ ଅର୍ଜୁନ ଭୀମସେନ ହରି । ଏ ତିନି ବିପ୍ରବେଷ ଧରି ॥ ୬୦
୧୭ ହେ ନୃପ ! ଜରାସନ୍ଧ ଯହିଁ । ସେ ଗିରିବ୍ରଜେ ହେଲେ ଯାଇ ॥ ୬୧
ସ୍ୱଭାବେ ରାଜନ୍ୟ ସେ ତିନି । ବ୍ରାହ୍ମଣଚିହ୍ନ ଛନ୍ତି ଘେନି ॥ ୬୨
ବ୍ରହ୍ମଣ୍ୟ ଗୃହୀ ଯେ ଅଟଇ । ସେ ଜରାସନ୍ଧଠାକୁ ଯାଇ ॥ ୬୩
ଗୃହରେ ଅତିଥିବେଳାରେ । ଯାଚଞ୍ଚା କଲେ ଏ ରୂପରେ ॥ ୬୪
୧୮ ଅତଥି ଅଟୁଁ ଅର୍ଥୀ ହୋଇ । ଦୂରୁଁ ଆସିଛୁଁ ଜାଣ ତୁହି ॥ ୬୫
ଆମ୍ଭେ ସମସ୍ତେ ମନେ ଯାହା । କାମନା କରିଅଛୁଁ ତାହା ॥ ୬୬
ହେ ନୃପ ! କର ବିତରଣ । ମଙ୍ଗଳ ହେଉ ତୋର ପୁଣ ॥ ୬୭
୧୯ ତିତିକ୍ଷୁ ଜନଙ୍କର କେହି । ଦୁଃସହ ହୋଇ ଆଉ ନାହିଁ ॥ ୬୮
ଅସାଧୁ ଲୋକମାନଙ୍କର । କି ଅବା ଅକାର୍ଯ୍ୟ ଆବର ॥ ୬୯
ଦାତାମାନଙ୍କର ପୁଣ ହିଁ । ନ ଦେଲା ହୋଇ କିଛି ନାହିଁ ॥ ୭୦
ସମଦରଶୀ ଯଉଁ ନର । ତାହାର କେହି ନୋହେ ପର ॥ ୭୧
୨୦ ଯଉଁ ନିର୍ମଳ ଯଶମାନ । ସାଧୁଏ କରନ୍ତି ଗାୟନ ॥ ୭୨
ତାହା ଅନିତ୍ୟ ଶରୀରରେ । ସମର୍ଥ ହୋଇ ଯଉଁ ନରେ ॥ ୭୩
ସ୍ୱୟେଂ ସଂପାଦି ନ ପାରନ୍ତି । ନିନ୍ଦିତ ଶୋଚ୍ୟ ସେ ଅଟନ୍ତି ॥ ୭୪

୨୧ ଯେ ବିଶ୍ୱାମିତ୍ରଙ୍କର ଋଣ । ତାହା ଶୁଝିବା ନିମିତ୍ତେଣ ॥ ୭୫
ସମସ୍ତ ପତ୍ନୀ ପୁତ୍ରାଦିଙ୍କି । ସେ ହରିଶ୍ଚନ୍ଦ୍ର ରାଜା ବିକି ॥ ୭୬
ସ୍ୱୟେଂ ଚଣ୍ଡାଳଭାବ ପାଇ । ଚିନ୍ତା ନ ଲଭି କିଛି ତହିଁ ॥ ୭୭
ଅଯୋଧ୍ୟାବାସୀଙ୍କ ସଙ୍ଗରେ । ଗମନ କଲା ସ୍ୱର୍ଗପୁରେ ॥ ୭୮
ପୂର୍ବେ ଯେ ରନ୍ତିଦେବ ରାଏ । ଅଠଚାଳିଶ ଦିନ ଯାଏ ॥ ୭୯
କୁଟୁମ୍ବସହିତରେ ତହିଁ । ନିର୍ଜଳ ହୋଇ ଥିଲା ରହି ॥ ୮୦
ବଡ଼କଷ୍ଟରେ ସେ ଭୂପାଳ । ଲଭି ଯେ ଥିଲା ଅନ୍ନ ଜଳ ॥ ୮୧
ଅତିଥି ମିଳନ୍ତେ ତା' ଦେଇ । ବ୍ରହ୍ମଲୋକକୁ ଗଲା ସେହି ॥ ୮୨
ମୁଦ୍‌ଗଳ ନାମେ ବିପ୍ର ଥିଲା । ଉଞ୍ଛବୃତ୍ତି[1]ରେ ସେ ବର୍ତ୍ତିଲା ॥ ୮୩
କୁଟୁମ୍ବସଙ୍ଗେ ଷଡ଼ମାସ । ଶୀର୍ଣ୍ଣ ସେ ହୁଅନ୍ତେ ବିଶେଷ ॥ ୮୪
ଅତିଥିଜନେ ଅନ୍ନ ଦେଲା । ବ୍ରହ୍ମଲୋକକୁ ସେହୁ ଗଲା ॥ ୮୫
କପୋତ ଶରଣାର୍ଥୀ ହୋଇ । ମିଳନ୍ତେ ଶିବି ନରସାଇଁ ॥ ୮୬
ଆପଣା ଶରୀରରୁ ମାଂସ । ଶସ୍ତ୍ରରେ କାଟିଣ ବିଶେଷ ॥ ୮୭
ସଂଚାଣକୁ ସେ ନେଇ ଦେଲା । ସ୍ୱର୍ଗପୁରକୁ ଚଳିଗଲା ॥ ୮୮
ବ୍ରାହ୍ମଣବେଷ ଧରିକରି । ଦାନ ମାଗନ୍ତେ ନରହରି ॥ ୮୯
ସର୍ବସ୍ୱ ବଳି ସମର୍ପିଲା । ବିଷ୍ଣୁଙ୍କୁ ଆତ୍ମସାତ କଲା ॥ ୯୦
ଅତିଥି ହୋଇ ବ୍ୟାଧ ପୁଣ । ମିଳନ୍ତେ କପୋତ ଦେଖିଣ ॥ ୯୧
କପୋତୀତୁଲେ ଆପଣାର । ମାଂସକୁ ଦେଇଣ ସତ୍ୱର ॥ ୯୨
ଆରୋହି ବିମାନ ଉପରେ । ଗମନ କଲା ସ୍ୱର୍ଗପୁରେ ॥ ୯୩
ବ୍ୟାଧ ହିଁ ବେନି କପୋତର । ସାତ୍ତ୍ୱିକ ଭାବକୁ ଆବର ॥ ୯୪
ଦେଖିଣ ବିଷଣ୍ଣ ହୋଇଣ । ମହାପ୍ରସ୍ଥାନକୁ କରିଣ ॥ ୯୫
ବନ-ଅଗ୍ନିରେ ଦଗ୍‌ଧ ହେଲା । ନିଷ୍ପାପ ହୋଇ ସ୍ୱର୍ଗେ ଗଲା ॥ ୯୬
ଆନମାନେହେଁ ଏ ରୂପରେ । ବହୁତ ଅନିତ୍ୟ ଶରୀରେ ॥ ୯୭
ଯେ ନିତ୍ୟ ବ୍ରହ୍ମଲୋକ ସ୍ଥାନ । ତହିଁକି କଲେ ସେ ଗମନ ॥ ୯୮

ଶ୍ରୀଶୁକ ଉବାଚ

୨୨ କହନ୍ତି ଶୁକ ବ୍ରହ୍ମଚାରୀ । ହେ ପରୀକ୍ଷିତ ଦଣ୍ଡଧାରୀ ॥ ୯୯
ଚିହ୍ନିତ ଯେ ଧନୁର୍ଗୁଣରେ । ସେହି ପ୍ରକୋଷ୍ଠ[2] ମାନଙ୍କରେ ॥ ୧୦୦
ସ୍ୱରରେ ଆକୃତିରେ ପୁଣି । କ୍ଷତ୍ରିୟ କରି ତାଙ୍କୁ ଜାଣି ॥ ୧୦୧
ଦ୍ରୌପଦୀସ୍ୱୟମ୍ବରାଦିରେ । ଏହାଙ୍କୁ ଦେଖିଛି ପୂର୍ବରେ ॥ ୧୦୨
ସେ ଜରାସନ୍ଧ ଏ ରୂପରେ । ଚିନ୍ତା ଲଭିଲା ମାନସରେ ॥ ୧୦୩
୨୩ ଏ ତିନି କ୍ଷତ୍ରିୟ ଅଟନ୍ତି । ବ୍ରାହ୍ମଣଚିହ୍ନ ଧରିଛନ୍ତି ॥ ୧୦୪

---

୧. ଉଞ୍ଛବୃତ୍ତି = ତଳେ ପଡ଼ିଥିବା ଧାନ ଆଦି ଶସ୍ୟ ଖୁଣ୍ଟି ବଂଚିବା । ୨. ମଣିବନ୍ଧ ।

| | | | | |
|---|---|---|---|---|
| | ଏହାଙ୍କୁ ଭିକ୍ଷା ଦେବି ମୁହିଁ | ଦୁସ୍ତ୍ୟଜ ନିଜ ଆତ୍ମାକୁ ହିଁ | ॥ | ୧୦୫ |
| ୨୪ | ଇନ୍ଦ୍ରର ନିମିତ୍ତେ ସଂପତ୍ତି | ହରିବା ଅର୍ଥରେ ଶ୍ରୀପତି | ॥ | ୧୦୬ |
| ୨୫ | ବ୍ରାହ୍ମଣବ୍ୟାଜରେ ଯାହାର | ସଂପତ୍ତି ହରିଲେ ସତ୍ୱର | ॥ | ୧୦୭ |
| | ଦିଗଙ୍କୁ ପବିତ୍ର କରଇ | ଅତି ବିସ୍ତୃତ ଯେ ଅଟଇ | ॥ | ୧୦୮ |
| | ସେ ବଳିରାଜାକୀର୍ତ୍ତି ଯେହି | ତା' କି ମୁଁ କର୍ଣ୍ଣେ ଶୁଣିନାହିଁ | ॥ | ୧୦୯ |
| | ଶୁକ୍ର କରନ୍ତେ ନିବାରଣ | ସେ ରାଜା ବିଷ୍ଣୁଙ୍କୁ ଜାଣିଣ | ॥ | ୧୧୦ |
| | ବିପ୍ରସ୍ୱରୂପୀ ସେ ବିଷ୍ଣୁଙ୍କୁ | ପ୍ରଦାନ କଲା ବସୁଧାକୁ | ॥ | ୧୧୧ |
| ୨୬ | ଅବଶ୍ୟ ପତନ ଯେ ହେବ | ଯେ କ୍ଷତ୍ରବନ୍ଧୁ ହୋଇଥିବ | ॥ | ୧୧୨ |
| | ସେ ଜୀଇଥାନ୍ତେ ଶରୀରରେ | ବ୍ରାହ୍ମଣକାର୍ଯ୍ୟନିମିତ୍ତରେ | ॥ | ୧୧୩ |
| | ବିପୁଳଯଶମାନ ଯେହି | ତା' ନ ସଂପାଦିବ ବା କେହି | ॥ | ୧୧୪ |
| ୨୭ | ସେ ଜରାସନ୍ଧ ବୁଦ୍ଧିମନ୍ତ | ନିଶ୍ଚୟ କରିଣ ଏମନ୍ତ | ॥ | ୧୧୫ |
| | କୃଷ୍ଣଙ୍କୁ ଭୀମ-ଅର୍ଜୁନଙ୍କୁ | କହିଲା ଏମନ୍ତ ବାକ୍ୟକୁ | ॥ | ୧୧୬ |
| | ହେ ବିପ୍ରେ ! କାମନାକୁ ବର | ଦେବି ମୁଁ ହେଲେ ନିଜ ଶିର | ॥ | ୧୧୭ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୨୮ | ଏ ରୂପେ ଶୁଣି ତା' ବଚନ | କହୁଅଛନ୍ତି ଭଗବାନ | ॥ | ୧୧୮ |
| | ହେ ରାଜଶ୍ରେଷ୍ଠ ଜରାସନ୍ଧ | ଆମ୍ଭଙ୍କୁ ଦିଅ ଦ୍ୱନ୍ଦ୍ୱଯୁଦ୍ଧ | ॥ | ୧୧୯ |
| | ତୁମ୍ଭଙ୍କୁ ଯେବେ ଏ ଯୋଗାଇ | ଆମ୍ଭେ ଆସିଛୁଁ ଯୁଦ୍ଧପାଇଁ | ॥ | ୧୨୦ |
| | ରାଜନ୍ୟ ଅଟୁଁ ଆମ୍ଭେମାନେ | ସମର ବାଞ୍ଛିଅଛୁଁ ମନେ | ॥ | ୧୨୧ |
| ୨୯ | ଏ ଭୀମ କୁନ୍ତୀର ନନ୍ଦନ | ତାହାଙ୍କ ଭାଇ ଯେ ଅର୍ଜୁନ | ॥ | ୧୨୨ |
| | ଯାଙ୍କ ମଉଳାପୁଅ ଭାଇ | ଜାଣ ତୋ' ଶତ୍ରୁ କୃଷ୍ଣ ମୁହିଁ | ॥ | ୧୨୩ |
| ୩୦ | ଶ୍ରୀକୃଷ୍ଣ କହନ୍ତେ ଏମନ୍ତ | ଉଚ୍ଚେ ହସିଲା ମଗଧନାଥ | ॥ | ୧୨୪ |
| | ଅତ୍ୟନ୍ତ କ୍ରୁଦ୍ଧ ସେ ହୋଇଲା | ଏମନ୍ତ ବଚନ କହିଲା | ॥ | ୧୨୫ |
| | ହେ ମନ୍ଦମାନେ ! ମୁଁ ତୁମ୍ଭଙ୍କୁ | ତେବେ ଦେବଇଁ ସମରକୁ | ॥ | ୧୨୬ |
| ୩୧ | ହେ କୃଷ୍ଣ ଭୟବନ୍ତ ତୁହି | ତୋ' ସଙ୍ଗେ ନ ଯୁଝିବି ମୁହିଁ | ॥ | ୧୨୭ |
| | ଯୁଦ୍ଧେ ବିକଳ ଚିତ୍ତ ତୋର | ମଥୁରା ନାମେ ଯଉଁ ପୁର | ॥ | ୧୨୮ |
| | ସେ ନିଜ ପୁରକୁ ଛାଡ଼ିଣ | ସମୁଦ୍ରେ ପଶିଲୁ ଶରଣ | ॥ | ୧୨୯ |
| ୩୨ | ଏ ଅଳ୍ପସତ୍ତ୍ୱ ମୋ' ସମାନ | ନୁହଇ, ବୟସରେ ସାନ | ॥ | ୧୩୦ |
| | ଏଣୁ ଏ ଅର୍ଜୁନ ଯୁଦ୍ଧରେ | ସମାନ ନୋହେ ମୋ' ସଙ୍ଗରେ | ॥ | ୧୩୧ |
| | ମୋର ସମାନ ଭୀମବଳ | ମୋ ସଙ୍ଗେ ଯୁଝୁ ଏ କେବଳ | ॥ | ୧୩୨ |
| ୩୩ | ଏମନ୍ତ କହି ଜରାସୁତ | ସେ ଭୀମସେନକୁ ତୁରିତ | ॥ | ୧୩୩ |
| | ଶ୍ରେଷ୍ଠ ଗଦାଏ ଦେଲା ନେଇ | ଆଉ ଗଦାକୁ ଆପଣେ ହିଁ | ॥ | ୧୩୪ |
| | ସେ କାଳେ ହସ୍ତରେ ଘେନିଲା | ପୁରବାହାରକୁ ଚଳିଲା | ॥ | ୧୩୫ |

| | | | | |
|---|---|---|---|---|
| ୩୪ | ରଣଦୁର୍ମଦ ବେନି ବୀରେ | । ଯୁଦ୍ଧଭୂମିରେ ତଦନ୍ତରେ | ।। | ୧୩୬ |
| | ଯୁଦ୍ଧେ ଅଭିନିବିଷ୍ଟ ହୋଇ | । ବଜ୍ରସମାନ ଯେ ଅଟଇ | ।। | ୧୩୭ |
| | ସେ ବେନି ଗଦାରେ ସତ୍ୱର | । ପ୍ରହାର କଲେ ପରସ୍ପର | ।। | ୧୩୮ |
| ୩୫ | ଭ୍ରମନ୍ତେ ବାମ-ଦକ୍ଷିଣରେ | । ବିଚିତ୍ର ମଣ୍ଡଳାକାରରେ | ।। | ୧୩୯ |
| | ସଭାରେ ବେନି ନଟପ୍ରାୟେ | । ଶୋଭା ପାଇଲେ ଯୁଦ୍ଧେ ଦୁହେଁ | ।। | ୧୪୦ |
| ୩୬ | ସେ ବେନି ବୀରେ ପରସ୍ପର | । ଗଦାରେ କରନ୍ତେ ପ୍ରହାର | ।। | ୧୪୧ |
| | ତଦନ୍ତେ ଚଟ-ଚଟା ହୋଇ | । ଶବଦ ଶୁଭିଲା ସେଠାଇଁ | ।। | ୧୪୨ |
| | ବଜ୍ର ହୁଅନ୍ତେ ନିପତନ | । ଶବଦ ଶୁଭଇ ଯେସନ | ।। | ୧୪୩ |
| | ଯୁଝନ୍ତେ ବେନି ଦନ୍ତୀ ଦନ୍ତେ | । ଶବଦ ଶୁଭଇ ଯେମନ୍ତେ | ।। | ୧୪୪ |
| ୩୭ | ପରସ୍ପରରେ ଭୁଜବଳେ | । ସେ ବେନି ଗଦା ଏକାବେଳେ | ।। | ୧୪୫ |
| | ପିଟନ୍ତେ ଦେହେ ପୁଣ ପୁଣ | । ଯେ କଟି-କର-ପାଦ ପୁଣ | ।। | ୧୪୬ |
| | ଯେ ଉରୁ ଅଂସ ସନ୍ଧିସ୍ଥାନ | । ଆବର ଲଭିଣ ଏମାନ | ।। | ୧୪୭ |
| | ଚୂର୍ଣ୍ଣ ହୋଇଲା ଗଦା ବେନି | । ଯେସନେ ଅର୍କଶାଖା ଘେନି | ।। | ୧୪୮ |
| | ଅତ୍ୟନ୍ତ କ୍ରୁଦ୍ଧ ହସ୍ତୀ ଦୁହେଁ | । ଯୁଝନ୍ତେ ଶାଖା ଚୂର୍ଣ୍ଣ ହୋଏ | ।। | ୧୪୯ |
| ୩୮ | ସେ ବେନି ଗଦା ଏ ରୂପରେ | । ଚୂର୍ଣ୍ଣ ହୁଅନ୍ତେ ସେ କାଳରେ | ।। | ୧୫୦ |
| | ସେ ବେନି ବୀରେ କ୍ରୁଦ୍ଧ ହୋଇ | । [1]ଲୌହସ୍ପରଶତୁଲ୍ୟ ଯେହି | ।। | ୧୫୧ |
| | ସେ ବେନି ମୁଷ୍ଟିମାନଙ୍କରେ | । ଚୂର୍ଣ୍ଣିତ କଲେ ଶରୀରରେ | ।। | ୧୫୨ |
| | ବେନି ହସ୍ତୀଙ୍କ ପ୍ରାୟ ହୋଇ | । ପ୍ରହାର କରନ୍ତେ ସେ ଦୁଇ | ।। | ୧୫୩ |
| | ନିର୍ଘାତ ବଜ୍ରରୁ କଠିନ | । ଯେ ମୁଷ୍ଟିତାଡ଼ନୁଁ ଜନନ | ।। | ୧୫୪ |
| | ଏମନ୍ତ ଶବଦ ଅପାର | । ଶୁଭିଲା ବେନି ଲୋକଙ୍କର | ।। | ୧୫୫ |
| ୩୯ | ଅଭ୍ୟାସ ଉପଦେଶ ଆର | । ବଳ ପ୍ରଭାବ ଯାହାଙ୍କର | ।। | ୧୫୬ |
| | ସମାନ ଅଟଇ ସେ ବୀରେ | । ଯୁଝନ୍ତେ ଏମନ୍ତ ରୂପରେ | ।। | ୧୫୭ |
| | ଯାହାଙ୍କ ବେଗ ନୋହେ କ୍ଷୀଣ | । ସେ ବେନି ବୀରଙ୍କର ପୁଣ | ।। | ୧୫୮ |
| | ବିଶେଷେ ନୋହିଲା ସମର | । କାହାରି ଆହେ ନୃପବର | ।। | ୧୫୯ |
| | ହେ ମହାରାଜ ! ଏ ରୂପରେ | । ଯୁଝନ୍ତେ ଦୁହେଁ ପରସ୍ପରେ | ।। | ୧୬୦ |
| | ସପତବିଂଶତି ଦିବସ | । ହେଲା ନିର୍ଗତ ହେ ନରେଶ | ।। | ୧୬୧ |
| | ଯେ ବେନି ବୀରେ ରାତ୍ରିକାଳେ | । ସୁହୃଦତୁଲ୍ୟ ରହୁଥିଲେ | ।। | ୧୬୨ |
| | ଏକଦା ମଉଳାପୁଅ[2]ଙ୍କୁ | । ଭୀମ କହିଲେ ଏ ବାକ୍ୟକୁ | ।। | ୧୬୩ |
| | ଜରାସନ୍ଧକୁ ଯୁଦ୍ଧେ ମୁହିଁ | । ଜିଣିମା ପାଇଁ କ୍ଷମ ନୋହି | ।। | ୧୬୪ |
| | ଆହେ ମାଧବ ଏ ନିଶ୍ଚିତ | । ଜିଣା ନ ଯିବ ସେ ତୁରିତ | ।। | ୧୬୫ |
| ୪୦ | ଜନ୍ମମରଣ ବେନି କଥା | । ଶତ୍ରୁର ଜାଣନ୍ତି ସର୍ବଥା | ।। | ୧୬୬ |

୧. ଆପଣା ବେଗତୁଲ୍ୟ ଯେହି । ୨. କୃଷ୍ଣଙ୍କୁ ।

| | | | |
|---|---|---|---|
| | ବେନି ଖଣ୍ଡକୁ ଏକ କରି | ଯୋଡ଼ିଅଛି ଜରା ଅସୁରୀ | ॥ ୧୬୭ |
| | ଏହି ରୂପରେ ଏହା ପ୍ରାଣ | ଏ କଥା କରି ସୁମରଣ | ॥ ୧୬୮ |
| | ଭୀମକୁ ନିଜ ତେଜେ ହରି | ଚିନ୍ତିଲେ ଆପ୍ୟାୟିତ କରି | ॥ ୧୬୯ |
| ୪୧ | ଶତ୍ରୁର ଯେ ବଧ-ଉପାୟ | କୃଷ୍ଣ ତା' ଚିନ୍ତି ଅତିଶୟ | ॥ ୧୭୦ |
| | ଅମୋଘ ଦରଶନ ଯାର | ଅଗ୍ରରେ ସେ ଭୀମସେନର | ॥ ୧୭୧ |
| | ଶାଖା ଗୋଟିଏ ଧରି କରେ | ତାହାକୁ ଚିରି ସଂକେତରେ | ॥ ୧୭୨ |
| | ଶାଖା ଚିରିଲି ମୁଁ ଯେସନେ | ଶତ୍ରୁକୁ ଚିର ତୁ ତେସନେ | ॥ ୧୭୩ |
| | ଏମନ୍ତ ରୂପେ ସେ ଭୀମକୁ | ଦେଖାଇଦେଲେ ସଂକେତକୁ | ॥ ୧୭୪ |
| ୪୨ | ପ୍ରହାର କରନ୍ତି ଯେ ନର | ତାହାଙ୍କ ମଧ୍ୟେ ଯେହୁ ବର | ॥ ୧୭୫ |
| | ସେ ମହାସତ୍ତ୍ୱ ବୃକୋଦର | ସେ କଥା କରିଣ ଗୋଚର | ॥ ୧୭୬ |
| | ଶତ୍ରୁକୁ ବେନି ଚରଣରେ | ଧରି ପକାଇଲେ ଭୂମିରେ | ॥ ୧୭୭ |
| ୪୩ | ଏକପାଦକୁ ପାଦେ ମାଡ଼ି | ଆର ପାଦକୁ ଭୁଜେ ଭିଡ଼ି | ॥ ୧୭୮ |
| | ଗୁଦଦ୍ୱାରକୁ ଭୀମ ଧରି | ଜରାସନ୍ଧକୁ ଦେଲେ ଚିରି | ॥ ୧୭୯ |
| | ମହାକୁଞ୍ଜର ଯେ ରୂପରେ | ଶାଖାକୁ ଚିରଇ ନିର୍ଭରେ | ॥ ୧୮୦ |
| ୪୪ | ଏକ-ପାଦ-ଉରୁ-ବୃଷଣ[୧] | ସ୍କନ୍ଧ-ଭ୍ରୂଲତା-କର୍ଣ୍ଣ ପୁଣ | ॥ ୧୮୧ |
| | ଏକ ହିଁ କଟି-ପୃଷ୍ଠ-ସ୍ତନ | ଏକ ବାହୁ ଏକ ଲୋଚନ | ॥ ୧୮୨ |
| | ବେନି ଖଣ୍ଡକୁ ସର୍ବନରେ | ଦେଖିଲେ ଏମନ୍ତ ରୂପରେ | ॥ ୧୮୩ |
| ୪୫ | ସେ ମଗଧନାଥ ଏ ରୂପରେ | ହତ ହୁଅନ୍ତେ ସେ କାଳରେ | ॥ ୧୮୪ |
| | ହୋଇଲା ଅତି ହାହାକାର | କୃଷ୍ଣ-ଅର୍ଜୁନ ବେନି ବୀର | ॥ ୧୮୫ |
| | ଭୀମଙ୍କୁ କରି ଆଲିଙ୍ଗନ | କଲେ ଉତ୍ତମ ପୂଜାମାନ | ॥ ୧୮୬ |
| ୪୬ | ଅପରିମିତ ଆତ୍ମା ଯାର | ସେ ଭୂତଭାବନ ଈଶ୍ୱର | ॥ ୧୮୭ |
| | ଜରାସଂଧର ଯେହୁ ସୁତ | ଯେ ସହଦେବ ନାମେ ଖ୍ୟାତ | ॥ ୧୮୮ |
| | ତାକୁ ମଗଧମାନଙ୍କର | ଉପରେ କଲେକ ଈଶ୍ୱର | ॥ ୧୮୯ |
| | ସେ ପ୍ରଭୁ ନୃପତିମାନଙ୍କୁ | ବନ୍ଦିରୁ କଲେ ମୋକ୍ଷଣକୁ | ॥ ୧୯୦ |
| | ବନ୍ଧନୁଁ ସେ ନୃପମାନଙ୍କୁ | ଯେ ଶୀଘ୍ରେ କଲେ ମୋକ୍ଷଣକୁ | ॥ ୧୯୧ |
| | ଦୀନବନ୍ଧୁର ଭବପାଶ | ସେ କୃଷ୍ଣ କରନ୍ତୁ ବିନାଶ | ॥ ୧୯୨ |
| | ସୁଜନଜନଙ୍କ ସଙ୍ଗରେ | ଚିତ୍ତ ରହୁ ଏ ପ୍ରସଙ୍ଗରେ | ॥ ୧୯୩ |
| | ବୈଷ୍ଣବ ଜୟରାମଚିତ୍ତ | ଯେଣେ ହୋଇଲା ପ୍ରମୋଦିତ | ॥ ୧୯୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଜରାସନ୍ଧବଧୋ ନାମ
ଦ୍ୱିସପ୍ତତିତମୋଽଧ୍ୟାୟଃ ॥

୧. କୋଷ ।

# ତ୍ରିସପ୍ତତିତମ ଅଧ୍ୟାୟ

ତତଃ ତ୍ରିସପ୍ତତିତମେ ମୋଚୟିତ୍ୱା ନୃପାନ୍ ହରିଃ ।
ରାଜାର୍ହଭୋଗୈଃ ସ୍ୱାନ୍ ଦେଶାନ୍ ପ୍ରସ୍ଥାପ୍ୟ ପୁନରାଗମତ୍ ।। ୧
ଅତ୍ର୍ୟୁନ୍ନଦ୍ଧଜରାସନ୍ଧବଧାଓଦ୍ଧୃଦ୍ଧଭୂପତୀନ୍ ।
ବିମୋକ୍ଷ୍ୟ କୃପୟା କୃଷ୍ଣୋ ନିଜରୂପମଦର୍ଶୟତ୍ ।। ୨

ଶ୍ରୀଶୁକ ଉବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ନୃପ ପରୀକ୍ଷିତ ।। ୧
ଲୀଳାମାତ୍ରକେ ସମରରେ । ସେ ଜରାସନ୍ଧ-ନୃପତିରେ ।। ୨
ବେନି ଅୟୁତ ଅଷ୍ଟ ଶତ । ଯେ ନୃପେ ହୋଇଣ ନିର୍ଜିତ ।। ୩
ଆବର ନିରୁଦ୍ଧ ହୋଇଣ । ଗିରିଦ୍ରୋଣୀରେ ଥିଲେ ପୁଣ ।। ୪
ଅତ୍ୟନ୍ତ ମଳିନ ଶରୀର । ମଳିନ ବାସ ଯାହାଙ୍କର ।। ୫
ଗିରିଦ୍ରୋଣୀ[1]ରୁ ସେ ରାଜନେ । ବାହାର ହୋଇଲେ ବହନେ ।। ୬
୨ ବଦନ ଥିଲା ଶୁଖି ଯାଇ । କ୍ଷୁଧାରେ ଥିଲେ କୃଶ ହୋଇ ।। ୭
ନିରୁଦ୍ଧ ହୋଇଥାନ୍ତେ ତହିଁ । ବହୁତ କ୍ଳେଶ ଥିଲେ ପାଇ ।। ୮
ସେ ନୃପମାନେ ଯେତେ ଥିଲେ । କୃଷ୍ଣଙ୍କୁ ବିଲୋକନ କଲେ ।। ୯
ଜଳଦପ୍ରାୟ ଯାଙ୍କ କାନ୍ତି । ପୀତ କୌଶେୟ ପିନ୍ଧିଛନ୍ତି ।। ୧୦
୩ ଶ୍ରୀବତ୍ସଚିହ୍ନେ ଯେ ଚିହ୍ନିତ । ଯେ ଚତୁର୍ଭୁଜରେ ସଂଯୁତ ।। ୧୧
ପଙ୍କଜମଧ୍ୟପ୍ରାୟ ପୁଣ । ଯା' ଚକ୍ଷୁ ଦିଶଇ ଅରୁଣ ।। ୧୨
ଯା' ମୁଖ ଅତି ମନୋହର । ପ୍ରସନ୍ନ ଦିଶଇ ଆବର ।। ୧୩
ଯା' କର୍ଣ୍ଣ ମକରକୁଣ୍ଡଳେ । ସ୍ଫୁରୁଅଛନ୍ତି ଗଣ୍ଡସ୍ଥଳେ ।। ୧୪
୪ ନଳିନ ଶଙ୍ଖ ଗଦା ଅରି । ଅଙ୍ଗଦ ଭୁଜେ ଛନ୍ତି ଧରି ।। ୧୫
ଅଞ୍ଚିତ[2] ଯେ କଟିସୂତ୍ରରେ । କିରୀଟ ହାର କଟକରେ ।। ୧୬
୫ କୌସ୍ତୁଭମଣି ତେଜସ୍ୱନ୍ତ । ଯା' କଣ୍ଠତଟରେ ଲମ୍ବିତ ।। ୧୭
ବନମାଳାରେ ଯେ ସଂଯୁତ । ହୋଇଅଛନ୍ତି ଅବିରତ ।। ୧୮
ସେ ଶ୍ରୀକୃଷ୍ଣଙ୍କୁ ନୃପତିଏ । ସେକାଳେ ଦେଖିଲେ ନିର୍ଭୟେ ।। ୧୯
ପିଇଲା ପରାଏ ଚକ୍ଷୁରେ । ଲେହିଲା ପରାଏ ଜିହ୍ୱାରେ ।। ୨୦
୬ ଶୁଙ୍ଘିଲା ପ୍ରାୟେ ନାସିକାରେ । ଭିଡ଼ିଲା ପରାଏ ଭୁଜରେ ।। ୨୧
ଶ୍ରୀକୃଷ୍ଣବେନିଚରଣରେ । ପ୍ରଣାମ କଲେ ମସ୍ତକରେ ।। ୨୨
ଯେତେ ପାତକମାନ ଥିଲା । ସେ ତାହାଙ୍କର ନାଶ ଗଲା ।। ୨୩
୭ ଶ୍ରୀକୃଷ୍ଣଦରଶନୁଁ ଜାତ । ଯେବଣ ଆହ୍ଲାଦ ତୁରିତ ।। ୨୪
ତେଣେ [3]ରୁନ୍ଧନଗ୍ଳାନିମାନ । ଯା'ଙ୍କର ହେଲା ବିନାଶନ ।। ୨୫

---

୧. ଗିରିଦରୀ (ଉପତ୍ୟକା) । ୨. ଶୋଭିତ । ୩. କାରାରୁଦ୍ଧ ହୋଇଥିବା ।

ସେ ରାଜାମାନେ ସେ କାଳରେ । ସ୍ତୁତି ବଚନମାନଙ୍କରେ ॥ ୨୬
ଅଞ୍ଜଳି କରିଣ ହସ୍ତକୁ । ପ୍ରଶଂସା କଲେ ଶ୍ରୀକୃଷ୍ଣଙ୍କୁ ॥ ୨୭

ଶ୍ରୀରାଜାନ ଊଚୁଃ

୮ ହେ ଦେବଦେବଙ୍କ ଈଶ୍ୱର । ଆହେ ପ୍ରପନ୍ନ-ଆର୍ତ୍ତିହର ॥ ୨୮
ତୁମ୍ଭଙ୍କୁ ଆମ୍ଭମାନଙ୍କର । ଆହେ ଅବ୍ୟୟ ! ନମସ୍କାର ॥ ୨୯
ଘୋର ସଂସାରସମୁଦ୍ରରେ । ବିଶୀର୍ଣ୍ଣ[୧] ହୋଇଛୁଁ ନିର୍ଭରେ ॥ ୩୦
ଆମ୍ଭେ ପ୍ରପନ୍ନ ଆମ୍ଭଙ୍କୁ ହିଁ । ହେ କୃଷ୍ଣ କର ପରିତ୍ରାହି ॥ ୩୧
୯ ହେ ନାଥ ହେ ମଧୁସୂଦନ । ଜରାସଂଧକୁ ପ୍ରତିଦିନ ॥ ୩୨
ଦୋଷଦୃଷ୍ଟିରେ ଆମ୍ଭେମାନେ । ଦେଖୁନଥିଲୁଁ ପୂର୍ବଦିନେ ॥ ୩୩
ଯେ ରାଜ୍ୟନାଶ ରାଜାଙ୍କର । ସେ ଅନୁଗ୍ରହଟି ତୁମ୍ଭର ॥ ୩୪
୧୦ ରାଜ୍ୟ-ଐଶ୍ୱର୍ଯ୍ୟରେ ବହୁତ । ଯେବଣ ଗର୍ବ ହୋଏ ଜାତ ॥ ୩୫
୧୧ ତେଣେ ଉତ୍କଟ ଯେ ଭୂପାଳ । ସେ ଲଭି ନ ପାରେ ମଙ୍ଗଳ ॥ ୩୬
ମୋହିତ ହୋଇ ତୋ' ମାୟାରେ । ଅନିତ୍ୟ ସଂପତ୍ତି-ବିତ୍ତରେ ॥ ୩୭
ନିତ୍ୟ କରିଣ ଥାଇ ମଣି । ବାଳକମାନେ ଯେହ୍ନେ ପୁଣି ॥ ୩୮
ମୃଗତୃଷ୍ଣାକୁ ଅତିଶୟେ । ମଣନ୍ତି ଜଳାଶୟପ୍ରାଏ ॥ ୩୯
ସୃଷ୍ଟ୍ୟାଦି-ବିକାରରୁ ଜାତ । ଯେ ମାୟା ଅଟଇ ଏମନ୍ତ ॥ ୪୦
ତାହାକୁ ଅବିବେକୀ ଜନେ । ବସ୍ତୁ ବୋଲନ୍ତି ଏ ଭୁବନେ ॥ ୪୧
୧୨ ସଂପତ୍ତିମଦରେ ଆମ୍ଭର । ବୁଦ୍ଧି ଯେ ହୋଇଲା ସଂହାର ॥ ୪୨
୧୩ ଧରଣୀ ଜିଣିମା ଇଚ୍ଛାରେ । ବିବାଦ କଲୁଁ ପରସ୍ପରେ ॥ ୪୩
ଅତ୍ୟନ୍ତ ନିର୍ଦ୍ଦୟ ହୋଇଣ । ମାରନ୍ତେ ନିଜ ପ୍ରଜାଗଣ ॥ ୪୪
ହେ ପ୍ରଭୋ ! ମୃତ୍ୟୁସ୍ୱରୂପରେ । ଯେ ତୁମ୍ଭେ ରହିଛ ଅଗ୍ରରେ ॥ ୪୫
ତୁମ୍ଭଙ୍କୁ ନ ଜାଣିଲୁଁ ପୂର୍ବେ । ଯେ ଆମ୍ଭେମାନେ ଅତିଗର୍ବେ ॥ ୪୬
ହେ କୃଷ୍ଣ ! ଆମ୍ଭେମାନେ ସେହି । ତୋ' ଅନୁକମ୍ପାରେ ଆଜ ହିଁ ॥ ୪୭
ବିନଷ୍ଟ ହେଲା ଗର୍ବ ଯେଣୁ । ତୋ' ପାଦ ସୁମରିଲୁଁ ତେଣୁ ॥ ୪୮
ଯା' ବେଗ ଅଟଇ ଗଭୀର । ଦୁରନ୍ତ ଅଟେ ବୀର୍ଯ୍ୟ ଯାର ॥ ୪୯
ଏମନ୍ତ କାଳ ଯେ ତୁମ୍ଭର । ହେ ପ୍ରଭୋ ! ଅଟଇ ଶରୀର ॥ ୫୦
ଆମ୍ଭେ ସମସ୍ତେ ତା' ହେତୁରୁ । ଭ୍ରଷ୍ଟ ହୋଇଲୁଁ ସଂପତ୍ତିରୁ ॥ ୫୧
ଏ ହେତୁ ରାଜ୍ୟନାଶ ଯେହି । ତୋ' ଅନୁଗ୍ରହ ଅଟେ ସେହି ॥ ୫୨
୧୪ ଯେ କ୍ଷୀଣ ହୋଏ ବାରମ୍ବାର । ଯେ ସ୍ଥାନ ଅଟେ ରୋଗଙ୍କର ॥ ୫୩
ଏମନ୍ତ ଦେହରେ ସେବାକୁ । ହେ ପ୍ରଭୁ ! କରିଥାଉଁ ଯାକୁ ॥ ୫୪
ମୃଗତୃଷ୍ଣାର ସମ ସେହି । ଏବେ ସେ ରାଜ୍ୟେ ସ୍ପୃହା ନାହିଁ ॥ ୫୫
ପରଲୋକରେ ପୁଣ ଯେହି । ସ୍ୱର୍ଗାଦି ସୁଖଭୋଗ ଥାଇ ॥ ୫୬

୧. ନିର୍ବିଣ୍ଣ (ବିକ୍ଷିପ୍ତ) ।

କର୍ଣ୍ଣରୋଚକମାତ୍ର ସେହି । ଯେଣୁ ସ୍ୱର୍ଗତ ପ୍ରାଣୀଙ୍କୁ ହିଁ ॥ ୫୭
ସ୍ପର୍ଧାବିନାଶ-ଅଭାବରୁ । ସୁଖ ନ ମିଳଇ ସ୍ୱର୍ଗରୁ ॥ ୫୮
ହେ ପ୍ରଭୁ ! ତାହା ଆମ୍ଭେମାନେ । ସ୍ପୃହା ନ କରୁଅଛୁଁ ମନେ ॥ ୫୯
୧୫ ଏବେ ଏ କାରଣୁଁ ଆମ୍ଭଙ୍କୁ । ହେ ପ୍ରଭୁ କହ ଉପାୟକୁ ॥ ୬୦
ଯହୁଁ ଉପାୟରେ ତୁମ୍ଭର । ଯେମନ୍ତେ ପାଦଯୁଗୁଁ ତୋର ॥ ୬୧
ସ୍ମରଣା ନିବର୍ତ୍ତିବ ନାହିଁ । ହେଲେ ଏ ଜନ୍ମମରଣ ହିଁ ॥ ୬୨
୧୬ ତୁ କୃଷ୍ଣ ବସୁଦେବସୁତ । ପରମ ଆତ୍ମା ତୁ ବିଦିତ ॥ ୬୩
ପ୍ରଣତଜନମାନଙ୍କର । କ୍ଳେଶକୁ କରୁ ତୁ ସଂହାର ॥ ୬୪
ତୁ ହରି ଗୋବିନ୍ଦ ତୋ' ନାମ । ତୋତେ ଆମ୍ଭର ନମୋନମ ॥ ୬୫

ଶ୍ରୀଶୁକ ଉବାଚ

୧୭ କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ॥ ୬୬
ବନ୍ଧନୁଁ ହୋଇଲେ ଯେ ମୁକ୍ତ । ସେ ରାଜାମାନଙ୍କେ ହେ ତାତ ॥ ୬୭
ଉତ୍ତମ ସ୍ତୁତିକି ଲଭିଣ । ଶରଣ୍ୟ ପ୍ରଭୁ ନାରାୟଣ ॥ ୬୮
ମଞ୍ଜୁଳ ବଚନେ ବାକ୍ୟକୁ । କହିଲେ ଦୟା କରି ତାଙ୍କୁ ॥ ୬୯

ଶ୍ରୀଭଗବାନୁବାଚ

୧୮ କହନ୍ତି ପ୍ରଭୁ ଭଗବାନ । ହେ ନୃପେ ! ଶୁଣ ମୋ ବଚନ ॥ ୭୦
ମୁଁ ସର୍ବଜନଙ୍କ ଈଶ୍ୱର । ଆତ୍ମା ସମସ୍ତ ଲୋକଙ୍କର ॥ ୭୧
ମୋ'ଠାରେ ତୁମ୍ଭର ଆଜହୁଁ । ସୁଦୃଢ଼ ଭକ୍ତି ଜାତ ହୋଉ ॥ ୭୨
ଯେମନ୍ତ ରୂପେ ତୁମ୍ଭେମାନେ । ବାଞ୍ଛାକୁ କଲ ନିଜ ମନେ ॥ ୭୩
ସେହି ରୂପରେ ସେ ତୁମ୍ଭର । ନିଶ୍ଚୟେ ହୋଉ ନିରନ୍ତର ॥ ୭୪
୧୯ ତୁମ୍ଭେ ସମସ୍ତେ ସତ୍ୟଭାଷୀ । ହେ ରାଜାମାନେ ! ମୋତେ ଆସି ॥ ୭୫
ଯାହା ଭଜିଲ ଅତିଶୟ । ସେ ତୁମ୍ଭ ଶୁଭ ବ୍ୟବସାୟ ॥ ୭୬
ସଂପତ୍ତି-ଐଶ୍ୱର୍ଯ୍ୟରୁ ଜାତ । ଯେବଣ ଗର୍ବ ଅବିରତ ॥ ୭୭
ତେଣୁ ଯେବଣ ଉଦ୍‌ବନ୍ଧନ । ସେ ସର୍ବ ପ୍ରାଣିଙ୍କ ବନ୍ଧନ ॥ ୭୮
ଅତି ଉନ୍ମାଦକ ଅଟଇ । ଏମନ୍ତ ଦେଖୁଅଛି ମୁହିଁ ॥ ୭୯
୨୦ ଯେ କାର୍ତ୍ତବୀର୍ଯ୍ୟ ନରପତି । ଉନ୍ମତ୍ତ ହୋଇଣ ସେ ଅତି ॥ ୮୦
ଯେ କାମଧେନୁ ଋଷିଙ୍କର । ତାହାକୁ ହରନ୍ତେ ସତ୍ୱର ॥ ୮୧
ପୁତ୍ରମାନଙ୍କର ସହିତ । ପରଶୁରାମେ ହେଲା ହତ ॥ ୮୨
ନହୁଷ ରାଜା ଇନ୍ଦ୍ର ହୋଇ । ଉନ୍ମତ୍ତ ଶଚୀସଙ୍ଗପାଇଁ ॥ ୮୩
ସେ ରାଜା ବ୍ରାହ୍ମଣମାନଙ୍କୁ । ବୁହାନ୍ତେ ନେଇ ଶିବିକାକୁ ॥ ୮୪
ସେ ବିପ୍ରେ ଅତି କ୍ରୋଧ ବହି । ଶାପନ୍ତେ ତହୁଁ ଭ୍ରଷ୍ଟ ହୋଇ ॥ ୮୫
ଯେ ଅଜଗରଜନ୍ମ ପୁଣ । ତାହାକୁ ଲଭିଲା ତତ୍‌କ୍ଷଣ ॥ ୮୬

ଉନ୍ମତ୍ତ ହୋଇ ବେଣ ନୃପ । ବିପ୍ରଙ୍କୁ କରନ୍ତେ ଆକ୍ଷେପ ॥ ୮୭
ସେ ବିପ୍ରେ କରନ୍ତେ ହୁଂକୃତ । ସେ ହୁଂକାରରେ ହେଲା ହତ ॥ ୮୮
ରାକ୍ଷସମାନଙ୍କ ଈଶ୍ୱର । ରାବଣ ନାମେ ନୃପବର ॥ ୮୯
ସୀତାଙ୍କୁ କରି ଅଭିଳାଷ । ରଘୁନାଥରେ ହେଲା ନାଶ ॥ ୯୦
ବେନି କୁଣ୍ଡଳ ଅଦିତିର । ହରନ୍ତେ ନରକ ଅସୁର ॥ ୯୧
ସେହି ସ୍ୱକାଶୁଁ ଏବେ ଯାଇ । ତାହାକୁ ନାଶ କଲି ମୁହିଁ ॥ ୯୨
ଆନମାନେହେଁ ଏ ଜଗତେ । ସୁରାସୁର-ନରେଶ ଯେତେ ॥ ୯୩
ସେମାନେ ସଂପତ୍ତିମଦରୁ । ଭ୍ରଷ୍ଟ ହୋଇଲେ ସ୍ୱସ୍ଥାନରୁ ॥ ୯୪
୨୧ ଦେହାଦି ଯେତେ ଜାତ ହୋଏ । ତାଙ୍କୁ ଜାଣିଣ ହତ ପ୍ରାୟେ ॥ ୯୫
ତୁମ୍ଭେ ସମସ୍ତେ ଏ ଭୁବନେ । ପ୍ରମତ୍ତ ନୋହି ପ୍ରତିଦିନେ ॥ ୯୬
ଯାଗରେ କର ମୋତେ ପୂଜା । ଧର୍ମରେ ରକ୍ଷାକର ପ୍ରଜା ॥ ୯୭
୨୨ ସଂପତ୍ତି-ବିପତ୍ତି ହୋଇଣ । ଯେ ସୁଖ-ଦୁଃଖ ବେନି ପୁଣ ॥ ୯୮
ପୁତ୍ରାଦି ସଂତତିମାନଙ୍କୁ । ତହିଁରେ କରି ବିସ୍ତାରକୁ ॥ ୯୯
ଚିତ୍ତକୁ ଦେଇ ମୋହଠାରେ । ବିହାର କର ଏ ସଂସାରେ ॥ ୧୦୦
୨୩ ତୁମ୍ଭେ ଯେ ଅଟ ଧୃତବ୍ରତ । ଆମ୍ଭରେ ବିହର ସଂତତ ॥ ୧୦୧
ଉଦାସୀ ହୋଇ ଦେହାଦିରେ । ମନ ନିବେଶି ମୋହ ଠାରେ ॥ ୧୦୨
ମୁଁ ବ୍ରହ୍ମ, ତୁମ୍ଭେ ମୋ' ଶରୀରେ । ପଶିବ ପ୍ରାନ୍ତସମୟରେ ॥ ୧୦୩

ଶ୍ରୀଶୁକ ଉବାଚ

୨୪ କହନ୍ତି ଶୁକ ମହାଯତି । ଶୁଣ ହେ ପାଣ୍ଡୁପଣନାତି ॥ ୧୦୪
ଯେ କୃଷ୍ଣ ତ୍ରିଭୁବନେଶ୍ୱର । ସେ ଭଗବାନ ଏ ପ୍ରକାର ॥ ୧୦୫
ରାଜାଙ୍କୁ ଏ ଆଜ୍ଞା ଦେଇଣ । ଯେ ତାଙ୍କ ସ୍ନାନକର୍ମ ପୁଣ ॥ ୧୦୬
ତହିଁରେ ନର-ନାରୀଗଣ । ନିଯୁକ୍ତ କଲେକ ନେଇଣ ॥ ୧୦୭
୨୫ ଯେ ରାଜାମାନଙ୍କୁ ଉଚିତ । ସେ ବସ୍ତ୍ରଭୂଷଣେ ତୁରିତ ॥ ୧୦୮
ମାଳାଚନ୍ଦନମାନଙ୍କରେ । ସହଦେବରେ ସେ କାଳରେ ॥ ୧୦୯
ଶ୍ରୀହରି କରାଇଲେ ପୂଜା । ହେ ପରୀକ୍ଷିତ ମହାରାଜା ॥ ୧୧୦
୨୬ କଲେ ସେ ଉତ୍ତମରେ ସ୍ନାନ । ଘେନିଲେ ଅଳଂକାରମାନ ॥ ୧୧୧
ଉତ୍ତମ ଅନ୍ନରେ ତାହାଙ୍କୁ । ହରି କରାଇ ଭୋଜନକୁ ॥ ୧୧୨
ରାଜାଙ୍କୁ ଅଟଇ ଉଚିତ । ତାମ୍ବୂଳ ଆଦି ଯେ ବହୁତ ॥ ୧୧୩
ଏ ଆଦି ଭୋଗମାନଙ୍କରେ । ନିଯୁକ୍ତ ହେଲେ ସେ କାଳରେ ॥ ୧୧୪
୨୭ କୁଣ୍ଡଳମାନ ମନୋହର । କର୍ଣ୍ଣମାନଙ୍କେ ଯାହାଙ୍କର ॥ ୧୧୫
ସେ ରାଜାମାନେ ଏରୂପରେ । ପୂଜାକୁ ଲଭି ମୁକୁନ୍ଦରେ ॥ ୧୧୬
କ୍ଳେଶରୁ ମୁକ୍ତ ସେ ହୋଇଲେ । ଉତ୍ତମ ଶୋଭାକୁ ପାଇଲେ ॥ ୧୧୭
ଚନ୍ଦ୍ରାଦି ଗ୍ରହେ ଯେହ୍ନେ ଅତି । ବରଷାଅନ୍ତେ ବିରାଜନ୍ତି ॥ ୧୧୮

୨୮ ଯେ ମଣିକାଞ୍ଚନେ ମଣ୍ଡନ । ଯହିଁ ଉତ୍ତମ ଅଶ୍ୱମାନ ॥ ୧୧୯
ତାଙ୍କୁ ବସାଇ ସେ ରଥରେ । ସୁନୃତ ବାକ୍ୟମାନଙ୍କରେ ॥ ୧୨୦
ପ୍ରୀତି କରାଇ ସେ ରାଜାଙ୍କୁ । ପଠିଆଇଲେ ସ୍ୱରାଜ୍ୟକୁ ॥ ୧୨୧
୨୯ ମହାତ୍ମା କୃଷ୍ଣରେ ଏମନ୍ତେ । କଷ୍ଟରୁ ମୁକତ ହୁଅନ୍ତେ ॥ ୧୨୨
ଧ୍ୟାନ କରନ୍ତେ ସେ କୃଷ୍ଣଙ୍କୁ । ସେ ନୃପେ ଚଳିଲେ ରାଜ୍ୟକୁ ॥ ୧୨୩
ସେ ଜଗଦ୍‌ପତି ଭଗବାନ । କଲେ ଯେବଣ କର୍ମମାନ ॥ ୧୨୪
ସେ କର୍ମମାନଙ୍କୁ ଆବର । ଧ୍ୟାନ କରନ୍ତେ ନିରନ୍ତର ॥ ୧୨୫
୩୦ ମହାପୁରୁଷଚେଷ୍ଟା ଯେହି । ତାହା ପ୍ରକୃତିମାନଙ୍କୁ ହିଁ ॥ ୧୨୬
ସମସ୍ତେ କଲେ ସେ କଥନ । ଯା' କହିଥିଲେ ଭଗବାନ ॥ ୧୨୭
ସେ କଥା ପ୍ରମତ୍ତ ନୋହିଣ । କଲେ ସେରୂପେ ଆଚରଣ ॥ ୧୨୮
୩୧ ଭୀମସେନର ଦ୍ୱାରେ[୧] ତହିଁ । ମରାଇ ଜରାସନ୍ଧକୁ ହିଁ ॥ ୧୨୯
ପୃଥାର ଯେ ବେନି ନନ୍ଦନ । ଅର୍ଜୁନ ଆଉ ଭୀମସେନ ॥ ୧୩୦
ତାଙ୍କ ସଙ୍ଗତେ ଭଗବାନ । କେଶବ କଲେକ ଗମନ ॥ ୧୩୧
ଜରାସନ୍ଧର ସୁତ ଯେହି । ସେ ସହଦେବ ପୂଜା ପାଇ ॥ ୧୩୨
୩୨ ଦୁଃଖକୁ ଶତ୍ରୁମାନଙ୍କର । ଯେ କରୁଅଛନ୍ତି ଆବର ॥ ୧୩୩
ଆପଣା ସୁହୃଦମାନଙ୍କୁ । କରାଉଛନ୍ତି ହରଷକୁ ॥ ୧୩୪
ଯେ ଜିଣିଛନ୍ତି ଶତ୍ରୁମାନ । ସେ କୃଷ୍ଣ-ଭୀମ-ଅରଜୁନ ॥ ୧୩୫
ଇନ୍ଦ୍ରପ୍ରସ୍ଥକୁ ବୋଲି ଗଲେ । ଶଙ୍ଖମାନଙ୍କୁ ବଜାଇଲେ ॥ ୧୩୬
୩୩ ସେ ଇନ୍ଦ୍ରପ୍ରସ୍ଥବାସୀ ଜନେ । ସେ ଶଙ୍ଖଧ୍ୱନି ଶୁଣି ମନେ ॥ ୧୩୭
ପ୍ରୀତିରେ ମଣିଲେ ଏମନ୍ତ । ହତ ହୋଇଲା ଜରାସୁତ ॥ ୧୩୮
ଯେ ମନୋରଥ ଆପଣାର । ତାହା ଲଭିଲେ ଯୁଧିଷ୍ଠିର ॥ ୧୩୯
୩୪ ଭୀମ-ଅର୍ଜୁନ-ଜନାର୍ଦ୍ଦନ । ରାଜାଙ୍କୁ କରିଣ ବନ୍ଦନ ॥ ୧୪୦
ଆପଣେ ଯାହା ଆଚରିଲେ । ସେ ସବୁ କହି ଶୁଣାଇଲେ ॥ ୧୪୧
୩୫ କୃଷ୍ଣରେ ଯେ ଅନୁକମ୍ପିତ । ଶୁଣି ସେ ବଚନ ତ୍ୱରିତ ॥ ୧୪୨
ଆନନ୍ଦ ଅଶ୍ରୁବିନ୍ଦୁମାନ । ପ୍ରେମେ କରନ୍ତେ ବିମୋଚନ ॥ ୧୪୩
ସେ ଧର୍ମରାଜ ଯୁଧିଷ୍ଠିର । କିଛି ହିଁ ନ କହିଲେ ଗିର ॥ ୧୪୪
କମଳଲୋଚନ ଯେ ହରି । ତାଙ୍କ ଚରଣ ଚିତ୍ତେ ଧରି ॥ ୧୪୫
ବ୍ରାହ୍ମଣ ଦୀନବନ୍ଧୁ ଗୀତେ । ଭଣିଲା ସାଧୁଜନ ହିତେ ॥ ୧୪୬
ଶୁଣି ଏ ଭାଗବତ-ରସ । ସୁଜନେ ହୁଅ ମନେ ତୋଷ ॥ ୧୪୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ରାଜମୋକ୍ଷଣଂ ନାମ
ତ୍ରିସପ୍ତତିତମୋଽଧ୍ୟାୟଃ ॥

୧. ଦ୍ୱାରେ = ଦ୍ୱାରା ।

## ଚତୁଃସପ୍ତତିତମ ଅଧ୍ୟାୟ

ଚତୁର୍ଯୁକ୍‌ସପ୍ତତିତମେ ରାଜସୂୟକ୍ରିୟା ଦ୍ୱିଜୈଃ ।
ଅଗ୍ରପୂଜାପ୍ରସଙ୍ଗେନ ଚୈଦ୍ୟଘାତାଦି ବର୍ଣ୍ଣ୍ୟତେ ।। ୧
ରାଜସୂୟମୁଖେ ହତ୍ୱା ଜରାସନ୍ଧଂ ତଦନ୍ତରେ ।
ଚୈଦ୍ୟଂ ତଦନ୍ତଂ କୁର୍ବନ୍ତଂ[1] ବୀଜଂ କଳିମିବାବପତ୍ ।। ୨

ଶ୍ରୀଶୁକ ଉବାଚ

୧ କହନ୍ତି ଶୁକ ମୁନିବର । ଏବେ ହୋ ଶୁଣ ନୃପବର ।। ୧
ସେ ଯୁଧିଷ୍ଠିର ନରବର । ବଧକୁ ସେ ଜରାସନ୍ଧର ।। ୨
ଏ ରୂପେ ଶ୍ରବଣ କରିଣ । କୃଷ୍ଣର ଅନୁଭାବ ପୁଣ ।। ୩
ପ୍ରୀତ ହୋଇଣ ସେ ଅତ୍ୟନ୍ତ । କୃଷ୍ଣଙ୍କୁ କହିଲେ ଏମନ୍ତ ।। ୪

ଶ୍ରୀଯୁଧିଷ୍ଠିର ଉବାଚ

୨ ଯେ ଗୁରୁ ତିନିଭୁବନର । ସେ ସନକାଦି ମୁନିବର ।। ୫
ଈଶ୍ୱରତୁଲେ ଏ ଭୁବନେ । ସମସ୍ତ ଲୋକପାଳମାନେ ।। ୬
ଦୁର୍ଲଭ ଯା' ଆଜ୍ଞା ଶିରରେ । ବହନ୍ତି ଲଭିଣ ଭାଗ୍ୟରେ ।। ୭
୩ ଆହେ ଅପରିଚ୍ଛିନ୍ନଦେହୀ । ହେ ପଦ୍ମନେତ୍ର ! ତୁମ୍ଭେ ସେହି ।। ୮
ଆମ୍ଭେ ଯେ ଦୀନ ରାଜା କରି । ଅଭିମାନକୁ ଅଛୁଁ ଧରି ।। ୯
ଆମ୍ଭ ଆଜ୍ଞାକୁ ଯାହା ଘେନ । ସେ କଥା ଅତି ବିଡ଼ମ୍ବନ[2] ।। ୧୦
୪ ସମାନ ଅସମାନ ହୋଇ । ଯେ ଭେଦ ଜଗତେ ଅଛଇ ।। ୧୧
ତେଣେ ରହିତ ବ୍ରହ୍ମ ତୁହି । ଉଭୟ ତୋ' ମାୟା ଅଟଇ ।। ୧୨
ନିୟନ୍ତା ତୁ ସର୍ବଜୀବର । ନିୟମ୍ୟ ଭାବ ତେଣୁ ତୋର ।। ୧୩
ନୁହଇ ବାସ୍ତବ, ଏକ ହିଁ । ଆବର ଅଦ୍ୱିତୀୟ ତୁହି ।। ୧୪
ପରାନୁଗ୍ରହ-ଅର୍ଥେ ଏହି । କର୍ମମାନଙ୍କୁ କରୁ ତୁହି ।। ୧୫
ଏଣେ ତୋ ତେଜ ବୃଦ୍ଧି ହ୍ରାସ । ନ ଘଟେ ଆହେ ପୀତବାସ ।। ୧୬
ଉଦୟ-ଅସ୍ତମୟ ହୋଇ । ରବିର ଯେ କର୍ମ ଅଟଇ ।। ୧୭
ତେଣେ ନ ଘଟେ ତା' ତେଜର । [3]ହ୍ରାସ ବୃଦ୍ଧିହିଁ ଯେ ପ୍ରକାର ।। ୧୮
୫ ଆହେ ଅଜିତ ଲକ୍ଷ୍ମୀପତି । ତୁମ୍ଭ ଭକତଙ୍କର ଅତି ।। ୧୯
ଏ ମୋର ଏ ତୋହର ହୋଇ । ଏ ନାନାଭେଦବୁଦ୍ଧି ନାହିଁ ।। ୨୦
ପଶୁମାନଙ୍କର ଯେସନ । ନାହିଁ ଦେହବିଷୟ ଜ୍ଞାନ ।। ୨୧

ଶ୍ରୀଶୁକ ଉବାଚ

୬ ଏମନ୍ତ କହି କୁନ୍ତୀସୁତ । [4]ହୋଇଣ କୃଷ୍ଣାନୁମୋଦିତ ।। ୨୨

---

୧. କୁର୍ବନ୍ତଂ = କୁରୂଣାମନ୍ତମ୍ । ୨. ବିଡ଼ମ୍ବନ = ଅନନୁରୂପ ଅନୁକରଣ ।
୩. 'ନ କର୍ମଣା ବର୍ଧତେ ନୋ କନୀୟାନ୍' । (ଶ୍ରୁତିଃ) ୪. କୃଷ୍ଣରେ ହୋଇ ହରଷିତ । (ପାଠାନ୍ତର) ।

ସେ ଯଜ୍ଞକାଳେ ନିୟୋଜିତ[1] । ଯେ ବ୍ରହ୍ମବାଦୀ ବିପ୍ରେ ଖ୍ୟାତ ।। ୨୩
ତାହାଙ୍କୁ ଋତ୍ୱିଜଭାବରେ । ବରଣ କଲେ ସେ କାଳରେ ।। ୨୪
୭ | ଯେ ବ୍ୟାସ ଭରଦ୍ୱାଜ ତ୍ରିତ । ସୁମତି ଗୌତମ ଅସିତ ।। ୨୫
୯ | ବସିଷ୍ଠ କଣ୍ୱ ଯେ ଚ୍ୟବନ । ମୈତ୍ରେୟ କବଷ ଯେ ଆନ ।। ୨୬
ଯେ ବିଶ୍ୱାମିତ୍ର ବାମଦେବ । ସୁମନ୍ତୁ ଜୈମିନି ଭାର୍ଗବ ।। ୨୭
ଯେ କ୍ରତୁ ପୈଳ ପରାଶର । ବଇଶମ୍ପାୟନ ଆବର ।। ୨୮
ଯେ ଗର୍ଗ ଯେ ଅଥର୍ବା ଧୌମ୍ୟ । କଶ୍ୟପ ଆସୁରି ଯେ ରାମ ।। ୨୯
ଯେ ବୀତିହୋତ୍ର ବୀରସେନ । ଯେ ମଧୁଚ୍ଛନ୍ଦା ଋଷି ଆନ ।। ୩୦
ଅକୃତବ୍ରଣ ଆଦି କରି । ବରଣ କଲେ ଦଣ୍ଡଧାରୀ ।। ୩୧
୧୦ ଯେ କୃପାଚାର୍ଯ୍ୟ ଭୀଷ୍ମ ଦ୍ରୋଣ । ପୁତ୍ରମାନଙ୍କ ସହିତେଣ ।। ୩୨
ସେ ଧୃତରାଷ୍ଟ୍ର ହିଁ ଆବର । ଯେ ମହାମତି ସେ ବିଦୁର ।। ୩୩
୧୧ ବ୍ରାହ୍ମଣ-କ୍ଷତ୍ରିୟ ପର୍ଯ୍ୟନ୍ତେ । ବୈଶ୍ୟ-ଶୂଦ୍ରଙ୍କୁ ଆଦି ଯେତେ ।। ୩୪
ହେ ନୃପ ! ସମସ୍ତ ରାଜନ । ତାଙ୍କର ଯେ ବା ସୈନ୍ୟମାନ ।। ୩୫
ମନ୍ତ୍ରିତ ହୋଇ ସେ ରୂପରେ । ଯେ ଅର୍ବା ପୁଣ ଆନ ନରେ ।। ୩୬
ସେ ମହାଯଜ୍ଞ ଦେଖିବାକୁ । ସମସ୍ତେ ଅଇଲେ ସେଠାକୁ ।। ୩୭
୧୨ ସେ ବିପ୍ରମାନେ ତଦନ୍ତରେ । ସ୍ୱର୍ଣ୍ଣଲାଙ୍ଗଳମାନଙ୍କରେ ।। ୩୮
ସେ ମହାଯଜ୍ଞଭୂମି ପୁଣ । କର୍ଷଣ ଆଦିରେ ଶୋଧିଣ ।। ୩୯
ଦୀକ୍ଷାକୁ ଯଥାନ୍ୟାୟେ[2] ଭଲେ । ଯୁଧିଷ୍ଠିରଙ୍କୁ କରାଇଲେ ।। ୪୦
୧୩ | ରାଜସୂୟରେ ବରୁଣର । ପୂର୍ବେ ହୋଇଲା ଯେ ପ୍ରକାର ।। ୪୧
୧୫ | ଉପକରଣ ସେ ରୂପରେ । ନିଷ୍ପେ ହୋଇଲେ ସୁବର୍ଣ୍ଣରେ ।। ୪୨
ବିରିଞ୍ଚି ଶିବର ସହିତେ । ଇନ୍ଦ୍ରାଦି ଲୋକପାଳ ଯେତେ ।। ୪୩
ସିଦ୍ଧ-ଗନ୍ଧର୍ବ-ବିଦ୍ୟାଧର । ଯେ ମହା ଉରଗେ ଆବର ।। ୪୪
ଏମାନେ ଗଣ ସହିତରେ । ଯକ୍ଷ-ରାକ୍ଷସେ ମୁନିବରେ ।। ୪୫
ଖଗ-କିନ୍ନର ଯେ ଚାରଣେ । ରାଜାଏ ରାଜପତ୍ନୀଗଣେ ।। ୪୬
ଏମାନେ ନିମନ୍ତ୍ରିତ ହେଲେ । ସେ ରାଜସୂୟକୁ ଅଇଲେ ।। ୪୭
ଯେ ଅତି ଭକ୍ତ ଶ୍ରୀକୃଷ୍ଣର । ସେ ପାଣ୍ଡୁସୁତ ନୃପତିର ।। ୪୮
ଯାଗକୁ ବିସ୍ମୟ ହୋଇଣ । ମଣିଲେ ସଂପୂର୍ଣ୍ଣ[3] କରିଣ ।। ୪୯
୧୬ ଦେବତାପ୍ରାୟେ ଯାଙ୍କ ତେଜ । ଏମନ୍ତ ଯେବଣ ଋତ୍ୱିଜ ।। ୫୦
ସେ ମହାରାଜଙ୍କୁ ତୁରିତେ । ରାଜସୂୟରେ ବିଧିମତେ ।। ୫୧
ଯଜନ କରାଇଲେ ତହିଁ । ଦେବତାମାନେ ଯେହ୍ନେ ଯାଇ ।। ୫୨
ପୂର୍ବେ ସେ ବରୁଣ ରାଜାଙ୍କୁ । କରାଇଲେ ସେ ଏ ଯାଗକୁ ।। ୫୩

---

୧. ଅଭିଯୁକ୍ତ । ୨. ଯଥାମ୍ନାୟେ (ଯଥାମ୍ନାୟଂ) । ୩. ସଂପନ୍ନ ।

୧୭ ସୁତ୍ୟ[୧] ଦିବସେ ତତକାଳ । ସେ ଯୁଧିଷ୍ଠିର ମହୀପାଳ ॥ ୫୪
ଯେ ମହାଭାଗ ସେମାନଙ୍କୁ । ସଦସ୍ୟ ଆଦି ଋତ୍ୱିଜଙ୍କୁ ॥ ୫୫
ସେ ଅତି ସୁସଂଯତ ଚିତ୍ତେ । ପୂଜାକୁ କଲେ ବିଧିମତେ ॥ ୫୬
୧୮ ସଦସ୍ୟମାନଙ୍କ ମଧ୍ୟରେ । ପୂଜାକୁ ଯୋଗ୍ୟ କେ ଅଗ୍ରରେ ॥ ୫୭
ଯୋଗ୍ୟବ୍ୟକ୍ତିଙ୍କ ବହୁତ୍ୱରୁ । ଏକ-ନିଶ୍ଚୟ ନ ହେଲାରୁ ॥ ୫୮
ସଭାର ସଦସ୍ୟେ ଏମନ୍ତେ । ବିଚାର କରି ନ ପାରନ୍ତେ ॥ ୫୯
ସହଦେବ ହିଁ ସେ କାଳରେ । ତାଙ୍କୁ କହିଲେ ଏ ରୂପରେ ॥ ୬୦
୧୯ ସାତ୍ୱତପତି ଭଗବାନ । ଶ୍ରେଷ୍ଠଭାବକୁ ହେ ରାଜନ ॥ ୬୧
ଅତ୍ୟନ୍ତ ଯୋଗ୍ୟ ଅଟେ ଏହି । ଏ ସର୍ବଦେବ ସ୍ୱରୂପ ହିଁ ॥ ୬୨
ଯେ ଦେଶ-କାଳ-ଧନ ଆଦି । ସେ ସର୍ବ ଯାଠାରୁ ପ୍ରସିଦ୍ଧି ॥ ୬୩
୨୦ ଯେ ଆତ୍ମା ଅଟେ ଏ ବିଶ୍ୱର । ସମସ୍ତ ଯଜ୍ଞ ଯା' ଶରୀର ॥ ୬୪
ଯେ ଅଗ୍ନି, ଯେ ଆହୁତିମାନ । ଯେ ମନ୍ତ୍ର, ସାଂଖ୍ୟ[୨] ଯୋଗ[୩] ଆନ ॥ ୬୫
ଏମାନେ ଯା'ଠାରୁ ସଂଭୂତ । ଅର୍ଘ୍ୟକୁ ଯୋଗ୍ୟ ସେ ଅଚ୍ୟୁତ ॥ ୬୬
୨୧ ଏ ଏକ ଅଦ୍ୱିତୀୟ ଏହି । [୪]ଏ କୃଷ୍ଣ ଯା' ଆତ୍ମା ଅଟଇ ॥ ୬୭
ସେ ଏହି ବିଶ୍ୱପ୍ରପଞ୍ଚ ହିଁ । ତେଣୁ ଏ କୃଷ୍ଣମୟ ହୋଇ ॥ ୬୮
ଆତ୍ମାକୁ ସ୍ୱୟେଂ ଆଶ୍ରେ କରି । ହେ ସଭ୍ୟମାନେ ଏ ଶ୍ରୀହରି ॥ ୬୯
ଏ ଅଜ ସୃଷ୍ଟିକି ସର୍ଜଇ । ପାଳଇ ପୁଣ ସଂହରଇ ॥ ୭୦
୨୨ ଯା' ଅନୁଗ୍ରହେ ସର୍ବଜନ । କରି ବିବିଧ କର୍ମମାନ ॥ ୭୧
ଧର୍ମାଦିଲକ୍ଷଣ ଯେ ଶ୍ରେୟ । ତା' ଯେଣୁ ସାଧେ ଅତିଶୟ ॥ ୭୨
୨୩ ସେ ହେତୁ ଏ କୃଷ୍ଣ ମହାନ୍ତ । ଏ ପୂଜା-ଅର୍ଘ୍ୟକୁ ତୁରିତ ॥ ୭୩
କୃଷ୍ଣଙ୍କୁ ଦିଅ ହେ ରାଜନ । କରନ୍ତେ ଏମନ୍ତ ବିଧାନ ॥ ୭୪
ସମସ୍ତ ପ୍ରାଣିମାନଙ୍କର । ପୂଜା ହିଁ ହେବ ଆପଣାର ॥ ୭୫
୨୪ ସମସ୍ତ ପ୍ରାଣିଙ୍କର ଏ ହିଁ । ଆତ୍ମାସ୍ୱରୂପେ ଅଛି ରହି ॥ ୭୬
ଏହାର ଭେଦବୁଦ୍ଧି ନାହିଁ । ଏ କୃଷ୍ଣ ଶାନ୍ତ ପୂର୍ଣ୍ଣ ହୋଇ ॥ ୭୭
ଅନନ୍ତ ଭାବକୁ ଦାନର । ଏଣୁ ଇଚ୍ଛଇ ଯେହୁ ନର ॥ ୭୮
ସେ ଏହି କୃଷ୍ଣଙ୍କୁ ଉଚିତେ । ଅର୍ଘ୍ୟକୁ ଦେବ ସୁନିଶ୍ଚିତେ ॥ ୭୯
ତେଣୁ ଏ ଅଗ୍ରପୂଜା-ଅର୍ଘ୍ୟ । କୃଷ୍ଣଙ୍କୁ ଦିଅ ନେଇ ବେଗ ॥ ୮୦
୨୫ ସେ କାଳେ ଏମନ୍ତ ରୂପରେ । ବଚନ କହିଣ ସଭାରେ ॥ ୮୧
ତୁନି ହୋଇଲେ ସହଦେବ । ଜାଣନ୍ତି କୃଷ୍ଣ-ଅନୁଭାବ ॥ ୮୨
ଶ୍ରବଣ କରି ସେ ବଚନ । ସେ ସର୍ବ ସଭାସଦଜନ ॥ ୮୩
ଉତ୍ତମ ସାଧୁ ସାଧୁ ବାଣୀ । କଲେ ତାହାଙ୍କୁ ସ୍ତୁତି ଭଣି ॥ ୮୪

---

୧. ସୁତ୍ୟ = ସୋମ-ଅଭିଷବ ଦିବସ, ସୁତ୍ୟା = ସୋମସବନ । ୨. ଜ୍ଞାନ ।
୩. ଉପାସନା । ୪. ଐତଦାତ୍ମ୍ୟମିଦଂ ସର୍ବମ୍ । (ଶ୍ରୁତିଃ)

୨୬ ବ୍ରାହ୍ମଣଙ୍କର ସାଧୁ ବାଣୀ । ସେ ଯୁଧିଷ୍ଠିର ରାଜା ଶୁଣି ।। ୮୫
ସମସ୍ତ ସଭାଲୋକଙ୍କର । ଅଭିପ୍ରାୟକୁ ଜାଣି ଆର ।। ୮୬
ସ୍ନେହରେ ହୋଇଣ ବିହ୍ୱଳ । ଅତି ପ୍ରୀତିରେ ତତକାଳ ।। ୮୭
ହୃଷୀକେଶଙ୍କୁ ସେ ଅର୍ଘ୍ୟରେ । ପୂଜିଲେ ଯଥାର୍ଥ ଭାବରେ ।। ୮୮
୨୭ ଯେ ଲୋକ ପବିତ୍ର କରଇ । ସେ କୃଷ୍ଣପାଦୋଦକ ନେଇ ।। ୮୯
ଅନୁଜ-ଅମାତ୍ୟସହିତେ । ସେ ଯୁଧିଷ୍ଠିର ତୋଷଚିତ୍ତେ ।। ୯୦
ଭାର୍ଯ୍ୟା-କୁଟୁମ୍ବ ସହିତରେ । ହରଷେ ଘେନିଣ ଶିରରେ ।। ୯୧
୨୮ ପୀତକୌଶେୟ ବସନରେ । ବହୁତମୂଲ୍ୟ ଭୂଷଣରେ ।। ୯୨
ପୂଜା କରିଣ ସେ ରାଜନ । ଲୋତକେ ପୂରନ୍ତେ ନୟନ ।। ୯୩
ଉତ୍ତମ କରି ଦେଖିବାକୁ । ସମର୍ଥ ନୋହିଲେ କୃଷ୍ଣଙ୍କୁ ।। ୯୪
୨୯ ସେ କୃଷ୍ଣ ଏମନ୍ତ ରୂପରେ । ପୂଜାକୁ ଲଭନ୍ତେ ସଭାରେ ।। ୯୫
ସମସ୍ତ ଜନେ ଦେଖି ତାଙ୍କୁ । ଅଞ୍ଜଳି କରିଣ ହସ୍ତକୁ ।। ୯୬
'ଜୟ' ଶବଦ 'ନମୋ' ବାଣୀ । ଅତି ଆଦରେ ତାଙ୍କୁ ଭଣି ।। ୯୭
ପ୍ରଣାମ କଲେ ତୋଷମନେ । ପଡ଼ିଲେ ପୁଷ୍ପ ବୃଷ୍ଟିମାନେ ।। ୯୮
୩୦ ଗୁଣବର୍ଣ୍ଣନେ ଶ୍ରୀକୃଷ୍ଣର । ଜାତ ହୋଇଲା କ୍ରୋଧ ଯାର ।। ୯୯
ସେ ଦମଘୋଷନୃପସୁତ । ଶ୍ରବଣ କରିଣ ଏମନ୍ତ ।। ୧୦୦
ନିଜ ଆସନୁଁ ତ୍ୱରା ହୋଇ । ଉଠିଲା ଅତି କ୍ରୋଧ ବହି ।। ୧୦୧
ନିର୍ଭୟ ହୋଇ ଶ୍ରୀକୃଷ୍ଣଙ୍କୁ । ଶୁଣାନ୍ତେ ନିଷ୍ଠୁର ବାକ୍ୟକୁ ।। ୧୦୨
ଟେକିଣ ଉପରକୁ ହସ୍ତ । ସଭାରେ ବୋଇଲା ଏମନ୍ତ ।। ୧୦୩
୩୧ ଦୁର୍ଲଙ୍ଘ୍ୟ ବଳ ଅଟେ ଯାର । ସେ କାଳ ଅଟଇ ଈଶ୍ୱର ।। ୧୦୪
ଏମନ୍ତ ଶ୍ରୁତିବାକ୍ୟ ଯେହି । ତା' ସତ୍ୟ କରି ମୁଁ ମଣଇଁ ।। ୧୦୫
ଯେଣୁ ବୃଦ୍ଧଙ୍କ ବୁଦ୍ଧିମାନ । ବାଳବାକ୍ୟରେ ହେଲା ଭିନ୍ନ ।। ୧୦୬
୩୨ ପାତ୍ର ଜାଣନ୍ତି ଯଉଁ ଜନେ । ତହିଁରେ ଶ୍ରେଷ୍ଠ ତୁମ୍ଭେମାନେ ।। ୧୦୭
ଏ ବାଳକର ଭାଷାମାନ । ହେ ସଭାପତିଏ ! ନ ଘେନ ।। ୧୦୮
ପୂଜାକୁ ଯୋଗ୍ୟ ଏ ଅଚ୍ୟୁତ । ଏହା ଯା' କରିଛ ସ୍ୱୀକୃତ ।। ୧୦୯
୩୩ ଯେ ତପ-ବିଦ୍ୟା-ବ୍ରତମାନ । ଧରିଅଛନ୍ତି ପ୍ରତିଦିନ ।। ୧୧୦
୩୪ ଜ୍ଞାନରେ ହୋଇଲା ବିନାଶ । ଯଉଁମାନଙ୍କର କଳ୍ମଷ ।। ୧୧୧
ଲୋକପାଳରେ ଯେ ପୂଜିତ । ଯେ ବ୍ରହ୍ମନିଷ୍ଠ ହିଁ ଅତ୍ୟନ୍ତ ।। ୧୧୨
ଏମନ୍ତ ପରମ ଋଷିଏ । ପଡି ଅଟନ୍ତି ଏ ସଭାଏ ।। ୧୧୩
ଏହାଙ୍କୁ ଛାଡ଼ି ଏ ଗୋପାଳ । କୁଳକୁ ଅଟେ ଯେ ପାଂସଳ ।। ୧୧୪
ଅଗ୍ରପୂଜାର ଅର୍ଘ୍ୟକୁ ହିଁ । ଏ ଯୋଗ୍ୟ ହୋଇବ କିମ୍ପାଇଁ ।। ୧୧୫
ଯେ ପୁରୋଡାଶଭାଗକୁ ହିଁ । କାକ ଯେସନେ ଯୋଗ୍ୟ ନୋହି ।। ୧୧୬

| | | | | |
|---|---|---|---|---|
| ୩୫ | ଯେ ବା ଆଶ୍ରମ କୁଳ ଜାତି | । ତହିଁରୁ ବାହାର ଏ ଅତି | ।। | ୧୧୭ |
| | ଏ ସର୍ବଧର୍ମରୁ ବାହାର | । ସ୍ୱଗୁଣେ[୧] ବର୍ତ୍ତେ ନିରନ୍ତର | ।। | ୧୧୮ |
| | ଗୁଣମାନଙ୍କେ ହୀନ ଏହି | । ପୂଜାକୁ ଯୋଗ୍ୟ ଏ କିଂପାଇଁ | ।। | ୧୧୯ |
| ୩୬ | ଏ ଯଦୁକୁଳେ ନାହିଁ ନୃପ | । ଯଯାତି ଦେଇଛନ୍ତି ଶାପ | ।। | ୧୨୦ |
| | ଏଣୁ ଏ କୁଳକୁ ସତତ | । ସାଧୁଏ କଲେ ବହିଷ୍କୃତ | ।। | ୧୨୧ |
| | ବୃଥାପାନରେ ବାରମ୍ବାର | । ଏ ବଂଶ ରତ ନିରନ୍ତର | ।। | ୧୨୨ |
| | ଏଣୁ ଏ ଶ୍ରୀହରି କିଂପାଇଁ | । ଅଗ୍ରପୂଜାକୁ ଯୋଗ୍ୟ ହୋଇ | ।। | ୧୨୩ |
| ୩୭ | ବ୍ରହ୍ମର୍ଷିମାନେ ଛନ୍ତି ଯହିଁ | । ସେ ଦେଶମାନ ଛାଡ଼ି ଯାଇ | ।। | ୧୨୪ |
| | ଛାଡ଼ିଣ [୨]ବ୍ରହ୍ମବର୍ଚ୍ଚସକୁ | । ଗଡ଼ କରିଣ ସମୁଦ୍ରକୁ | ।। | ୧୨୫ |
| | ଯଦୁଏ ତହିଁ ଥାନ୍ତି ରହି | । ପ୍ରଜା ବାଧନ୍ତି ଖଣ୍ଡ ହୋଇ | ।। | ୧୨୬ |
| ୩୮ | ନଷ୍ଟ ହେଲାଣି ଯା' ମଙ୍ଗଳ | । ଏ ରୂପରେ ସେ ଶିଶୁପାଳ | ।। | ୧୨୭ |
| | କହିଲା ଅଭଦ୍ର ବଚନ | । ତାହା ଶୁଣନ୍ତେ ଭଗବାନ | ।। | ୧୨୮ |
| | କିଛି ବଚନ ନ କହିଲେ | । ମଉନ ହୋଇଣ ରହିଲେ | ।। | ୧୨୯ |
| | ଯେସନେ ଶିବାଶବ୍ଦ ଶୁଣି | । ସିଂହ ନ କହେ କିଛି ବାଣୀ | ।। | ୧୩୦ |
| ୩୯ | ଭଗବାନର ନିନ୍ଦା ଯେହି | । ସେ ଅତି ଦୁଃସହ ଅଟଇ | ।। | ୧୩୧ |
| | ତାହା ଶୁଣି ସେ ସଭାନରେ | । ଶିଶୁପାଳକୁ କ୍ରୋଧଭରେ | ।। | ୧୩୨ |
| | ଶପନ୍ତେ କର୍ଣ୍ଣକୁ ବୁଜିଣ | । ଗମନ କଲେ ତତକ୍ଷଣ | ।। | ୧୩୩ |
| ୪୦ | ଯେବଣ ନିନ୍ଦା ଗୋବିନ୍ଦର | । ଅଥବା ତା' ଭକ୍ତଲୋକର | ।। | ୧୩୪ |
| | ସେ ନିନ୍ଦା ଶୁଣି ଯଉଁ ଜନ | । ସେଠାରୁ ନ କରେ ଗମନ | ।। | ୧୩୫ |
| | ସେ ସୁକୃତରୁ ଚ୍ୟୁତ ହୋଇ | । ନରକେ ଯାଇଣ ପଡ଼ଇ | ।। | ୧୩୬ |
| ୪୧ | ତଦନ୍ତେ ସେ ପାଣ୍ଡୁତନୟେ | । ଯେ ମତ୍ସ୍ୟ-କେକୟ-ସୃଞ୍ଜୟେ | ।। | ୧୩୭ |
| | ସେମାନେ ସକ୍ରୋଧ ହୋଇଣ | । ଆୟୁଧମାନଙ୍କୁ ଟେକିଣ | ।। | ୧୩୮ |
| | ମାରିବା ଅର୍ଥେ ଶିଶୁପାଳ | । ସମସ୍ତେ ଉଠିଲେ ତତ୍‌କାଳ | ।। | ୧୩୯ |
| ୪୨ | ତଦନ୍ତେ ଦମଘୋଷସୁତ | । ସମ୍ଭ୍ରାନ୍ତ ନୋହିଣ ତୁରିତ | ।। | ୧୪୦ |
| | ଖଡ଼ଗ-ଚର୍ମ ଧରି କରେ | । ଶ୍ରୀକୃଷ୍ଣପକ୍ଷ ଯେତେ ନରେ | ।। | ୧୪୧ |
| | ତାହାଙ୍କୁ କଲା ସେ ଭର୍ତ୍ସନ | । ରାଜସଭାରେ ହେ ରାଜନ | ।। | ୧୪୨ |
| ୪୩ | ତତ୍‌କାଳ ଉଠି ଭଗବାନ | । [୩]ନିବର୍ତ୍ତାଇଣ ନିଜ ଜନ | ।। | ୧୪୩ |
| | ଶତ୍ରୁ ଧାବନ୍ତେ ଉପରକୁ | । ଆପଣା କ୍ରୋଧେ ତା' ଶିରକୁ | ।। | ୧୪୪ |
| | ଯେ ତୀକ୍ଷ୍ଣ ଖୁରଦାଢ଼ପ୍ରାୟେ | । ସେ ଚକ୍ରେ କାଟିଲେ ତ୍ୱରାଏ | ।। | ୧୪୫ |

---

୧. ସ୍ୱରୂପେ। ୨. ବ୍ରହ୍ମବର୍ଚ୍ଚସ = ବେଦାଭ୍ୟାସଜନିତ ଜ୍ୟୋତି ।

୩. ''ଏ ମୋର ପାର୍ଷଦ, ସମବଳ । ଏଣୁ ଏ ସମସ୍ତଙ୍କୁ ମାରିପକାଇବ । ଅତଏବ ମୁଁ ଯାକୁ ଶୀଘ୍ର ମାରିବି'' ଏହି ଭାବନାରେ ।

୪୪ ଏଥୁ ଅନ୍ତରେ ଶିଶୁପାଳ । ମରନ୍ତେ ମହା କୋଳାହଳ ॥ ୧୪୬
ଶବଦ ହୋଇଲା ଅପାର । ଯେ ରାଜାମାନେ ପକ୍ଷ ତାର ॥ ୧୪୭
ପ୍ରାଣ ରଖିବା ବିଚାରିଲେ । ସେମାନେ ଶୀଘ୍ରେ ପଳାଇଲେ ॥ ୧୪୮
୪୫ ସେ ଚୈଦ୍ୟଦେହରୁ ତୁରିତ । ଯେବଣ ତେଜ ହେଲା ଜାତ ॥ ୧୪୯
ପଶିଲା ସେ କୃଷ୍ଣଦେହରେ । ଦେଖୁଥାଆନ୍ତେ ସର୍ବନରେ ॥ ୧୫୦
ଯେହ୍ନେ ଆକାଶୁଁ ଚ୍ୟୁତ ହୋଇ । ଉଲୁକା[1] ଭୂମିରେ ପଶଇ ॥ ୧୫୧
୪୬ ଯେ ତିନି ଜନ୍ମରେ ବର୍ଦ୍ଧିତ । ବଇର ଭାବ ଯେ ବହୁତ ॥ ୧୫୨
ତେଣେ ଆବିଷ୍ଟ ଯଉଁ ମତି । ଧ୍ୟାନ କରନ୍ତେ ତେଣେ ନିତି ॥ ୧୫୩
ତନ୍ମୟ ଭାବକୁ ତତ୍‌କାଳ । ଶୀଘ୍ରେ ଲଭିଲା ଶିଶୁପାଳ ॥ ୧୫୪
ଭାବନା ଯଉଁ ହେତୁ ପୁଣ । ଜନ୍ମକୁ ଅଟଇ କାରଣ ॥ ୧୫୫
ଯେସନେ ପ୍ରାଣ ଯିବା କାଳେ । ଭ୍ରମରରୂପ ଦେଖି ଡୋଳେ ॥ ୧୫୬
କୀଟ ତାହାକୁ ଭାବୁଥାଇ । ସେହି ସ୍ୱରୂପକୁ ଧରଇ ॥ ୧୫୭
୪୭ ସେ ଏକରାଟ ଯୁଧିଷ୍ଠିର । ପୂଜା କରିଣ ସର୍ବ ନର ॥ ୧୫୮
ସେ ସଦସ୍ୟଙ୍କୁ ଋତ୍ୱିଜଙ୍କୁ । ଦେଇ ବହୁତ ଦକ୍ଷିଣାକୁ ॥ ୧୫୯
ଯଥାବିଧିରେ ହେ ରାଜନ । କଲେ ସେ [2]ଅବଭୃଥ ସ୍ନାନ ॥ ୧୬୦
୪୮ ଯେ ଯୋଗେଶ୍ୱରଙ୍କ ଈଶ୍ୱର । ସେ କୃଷ୍ଣ ଯୁଧିଷ୍ଠିରଙ୍କର ॥ ୧୬୧
ଯାଗକୁ ସାଧି କେତେ ମାସ । ସେ ପୁରେ କଲେକ ନିବାସ ॥ ୧୬୨
ସୁହୃଦମାନେ ଯାଚଞ୍ଜାକୁ । ବହୁତ କରନ୍ତେ ତାହାଙ୍କୁ ॥ ୧୬୩
୪୯ ସେ ଯୁଧିଷ୍ଠିରଙ୍କୁ ତଦନ୍ତେ । ଇଚ୍ଛା ସେ ନ କରନ୍ତେ ଚିତ୍ତେ ॥ ୧୬୪
ଅନୁଜ୍ଞା ମାଗିଣ ସତ୍ୱର । ଦେବକୀସୁତ ସେ ଈଶ୍ୱର ॥ ୧୬୫
ଭାର୍ଯ୍ୟା-ଅମାତ୍ୟସହିତରେ । ଗମନ କଲେ ନିଜ ପୁରେ ॥ ୧୬୬
୫୦ ବୈକୁଣ୍ଠବାସ ଯାହାଙ୍କର । ସେ ଜୟ-ବିଜୟ ବେନିର ॥ ୧୬୭
କହିଛି ଚରିତମାନଙ୍କୁ । ବିସ୍ତାର କରି ମୁଁ ତୁମ୍ଭଙ୍କୁ ॥ ୧୬୮
ଶାପରୁ ବିପ୍ରମାନଙ୍କର । ଜନ୍ମ ହୋଇଲେ ବାରମ୍ବାର ॥ ୧୬୯
୫୧ ସେ ମହାରାଜ ଯୁଧିଷ୍ଠିର । ଯେ ରାଜସୂୟ ଯାଗବର ॥ ୧୭୦
ତା' ଅବଭୃଥଜଳେ ପୁଣ । ଉତ୍ତମ ସ୍ନାହାନ କରିଣ ॥ ୧୭୧
ବିପ୍ରେ କ୍ଷତ୍ରିୟେ ଛନ୍ତି ଯହିଁ । ଏମନ୍ତ ସଭାମଧ୍ୟେ ଯାଇ ॥ ୧୭୨
ଯେ ସୁରରାଜା ପୁରନ୍ଦର । ତା' ପ୍ରାୟେ ଦିଶିଲେ ସୁନ୍ଦର ॥ ୧୭୩
୫୨ ଯେ ସୁର-ମାନବ-ଖେଚରେ । ଏ ପୂଜା ଲଭି ସେ ରାଜାରେ ॥ ୧୭୪
କୃଷ୍ଣଙ୍କୁ ସେ ମହାଯାଗକୁ । ବହୁତ କରି ପ୍ରଶଂସାକୁ ॥ ୧୭୫
ସେ ସର୍ବେ ହରଷ ହୋଇଲେ । ନିଜ ସ୍ଥାନକୁ ଚଳିଗଲେ ॥ ୧୭୬

---

୧. ଉଲୁକା = ଅଲାତ, ନିଆଁଲୁଣ୍ଡା ।　　୨. ଅବଭୃଥ = ଯଜ୍ଞାନ୍ତ ଅଭିଷେକ ।

୫୩ ସେ ପାଣ୍ଡୁସୁତନୃପତିର । ସଂପତ୍ତି ଦେଖି ବଳିୟାର ॥ ୧୭୭
ଯେ ପୁଣ ଅତି କ୍ରୋଧ ବହି । ମନରେ ନ ପାରିଲା ସହି ॥ ୧୭୮
ଧର୍ମକୁ ଦ୍ୱେଷ ଯେ କରଇ । କଳିର ଅଂଶ ଯେ ଅଟଇ ॥ ୧୭୯
ନାଶିବ ଯେ କୁରୁକୁଳକୁ । ଛାଡ଼ିଣ ସେ ଦୁର୍ଯ୍ୟୋଧନକୁ ॥ ୧୮୦
ପୂଜାକୁ ଲଭି ତୋଷମନେ । ହରଷ ହେଲେ ସର୍ବଜନେ ॥ ୧୮୧
୫୪ ବିଷ୍ଣୁର ଚୈଦ୍ୟବିନାଶନ । ଏ ଆଦି ଯେତେ କର୍ମମାନ ॥ ୧୮୨
ସମସ୍ତ ରାଜାମାନଙ୍କର । ବନ୍ଧନୁଁ ମୁକ୍ତ ହୋଇବାର ॥ ୧୮୩
ଆବର ଯୁଧିଷ୍ଠିରଙ୍କର । ଯେ ରାଜସୂୟ ଯଜ୍ଞବର ॥ ୧୮୪
ଯେ ଜନ କୀର୍ତ୍ତନ କରଇ । ସେ ସର୍ବ ପାପୁଁ ମୁକ୍ତ ହୋଇ ॥ ୧୮୫
ଗୋବିନ୍ଦଚରଣନଳିନ । ଚିତ୍ତେ ନିତ୍ୟରେ କରି ଧ୍ୟାନ ॥ ୧୮୬
ପତିତ ଦ୍ୱିଜ ଦୀନବନ୍ଧୁ । ତରିବ ବୋଲି ଭବସିନ୍ଧୁ ॥ ୧୮୭
ଦଶମସ୍କନ୍ଧ ଭାଗବତ । ଭାଷାପ୍ରବନ୍ଧେ କଲା ଗୀତ ॥ ୧୮୮
ସୁଜନେ ଏଣେ କର ଲୟେ । ହେଲେ ବିନାଶ ଭବଭୟେ ॥ ୧୮୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶିଶୁପାଳବଧୋ ନାମ
ଚତୁଃସପ୍ତତିତମୋଽଧ୍ୟାୟଃ ॥

## ପଞ୍ଚସପ୍ତତିତମ ଅଧ୍ୟାୟ

ପଞ୍ଚଯୁକ୍‌ସପ୍ତତିତମେ ଯଜ୍ଞାବଭୃଥସଂଭ୍ରମଃ ।
ସୁୟୋଧନସ୍ୟ ଚାକ୍ଷାନ୍ତ୍ୟା ମାନଭଙ୍ଗୋ ଦୃଶିଭ୍ରମାତ୍ ॥

ଶ୍ରୀରାଜା ଉବାଚ

୧| ସେ ମହାରାଜ ପରୀକ୍ଷିତ । ଆନନ୍ଦ ଲଭିଣ ବହୁତ ॥ ୧
୨| ମସ୍ତକେ ଦେଇଣ ହସ୍ତକୁ । ଏମନ୍ତେ ପୁଛିଲେ ଶୁକଙ୍କୁ ॥ ୨
ହେ ବ୍ରହ୍ମ ! ଶୁକ ମୁନିବର । ସେ ଯୁଧିଷ୍ଠିର ନୃପତିର ॥ ୩
ଯେ ରାଜସୂୟ-ମହୋଦୟ । ତା' ସର୍ବେ ଦେଖି ଅତିଶୟ ॥ ୪
ସେ ମହାଯାଗେ ଯେ ଋଷିଏ । ଯେ ଦେବମାନେ ଯେ ରାଜାଏ ॥ ୫
ଆସି ହୋଇଲେ ଉପଗତ । ସେ ସର୍ବେ ହେଲେ ଆନନ୍ଦିତ ॥ ୬
ଯେ ଦୁର୍ଯ୍ୟୋଧନ ମହୀପାଳ । ତାହାକୁ ଛାଡ଼ିଣ କେବଳ ॥ ୭
ଆମ୍ଭେ ଶୁଣିଲୁଁ ଏ ରୂପରେ । କହ କି କାରଣ ଏଥିରେ ॥ ୮

ଶ୍ରୀବାଦରାୟଣିରୁବାଚ

୩ ରାଜା ପଚାରନ୍ତେ ଏମନ୍ତ । କହୁଅଛନ୍ତି ବ୍ୟାସସୁତ ॥ ୯

ହେ ପରୀକ୍ଷିତ ଦଣ୍ଡଧର । ମହାତ୍ମା ତୋ' ପିତାମହର ॥ ୧୦

ସେ ମହାଯାଗ ରାଜସୂୟେ । ବାନ୍ଧବମାନେ ଅତିଶୟେ ॥ ୧୧

ସ୍ନେହବନ୍ଧରେ ଯୁକ୍ତ ହେଲେ । ଯେ ପରିଚର୍ଯ୍ୟା ତାହା କଲେ ॥ ୧୨

୪ ପାକଶାଳାରେ ଅଧିପତି । ହୋଇଲେ ଭୀମ ମହାମତି ॥ ୧୩

ଧନ ଦେବାରେ ଅଧୀଶ୍ୱର । ହୋଇଲା ଦୁର୍ଯ୍ୟୋଧନ ବୀର ॥ ୧୪

ପୂଜାରେ[୧] ସହଦେବ ହେଲେ । ନକୁଳ ଦ୍ରବ୍ୟ ସଂପାଦିଲେ ॥ ୧୫

୫ ସାଧୁ[୨]ସେବାରେ ଧନଂଜୟ । ନିଯୁକ୍ତ ହେଲେ ଅତିଶୟ ॥ ୧୬

ଶ୍ରୀକୃଷ୍ଣ ପାଦପ୍ରକ୍ଷାଳନ । କର୍ମେ ହୋଇଲେ ନିୟୋଜନ ॥ ୧୭

ପରଷିବାରେ ଅବିରତ । ଦ୍ରୌପଦୀ ହେଲେ ନିୟୋଜିତ ॥ ୧୮

ଦାନ ଦେବାରେ ଅଧିକାରୀ । କର୍ଣ୍ଣ ହୋଇଲେ ତାହାଙ୍କରି ॥ ୧୯

୬ | ବିକର୍ଣ୍ଣ ଯୁଯୁଧାନ ଦୁଇ । ହାର୍ଦ୍ଦିକ୍ୟ ବିଦୁରାଦି ହୋଇ ॥ ୨୦

୭ | ବାହ୍ଲୀକପୁତ୍ର ଭୂରି ଆଦି । ଯେ ସଂତର୍ଦନାଦି ପ୍ରସିଦ୍ଧି ॥ ୨୧

ଏମାନେ ସେ ମହାଯଜ୍ଞରେ । ନିଯୁକ୍ତ ହୋଇ ସେ କାଳରେ ॥ ୨୨

ନାନା କର୍ମରେ ପ୍ରବର୍ତ୍ତିଲେ । ରାଜାର ପ୍ରିୟକୁ ବାଞ୍ଛିଲେ ॥ ୨୩

୮ ଋତ୍ୱିକେ ସଭାସଦଜନେ । ପଣ୍ଡିତ ମିତ୍ରଜନମାନେ ॥ ୨୪

ଉତ୍ତମ ବାକ୍ୟ ଅଳଂକାରେ । ବସନ ଆଦି ଦକ୍ଷିଣାରେ ॥ ୨୫

ପୂଜାକୁ ଲଭନ୍ତେ ଏମାନେ । ଶ୍ରୀକୃଷ୍ଣଚରଣ-ନଳିନେ ॥ ୨୬

ପଶନ୍ତେ ଦମଘୋଷସୁତ । ଶୁଣ ହେ ନୃପ ପରୀକ୍ଷିତ ॥ ୨୭

ଗଙ୍ଗାରେ ଅବଭୃଥସ୍ନାନ । କଲେ ସେ କୁନ୍ତୀର ନନ୍ଦନ ॥ ୨୮

୯ ମୃଦଙ୍ଗ ପଣବ ଯେ ଶଙ୍ଖ । ଦୁନ୍ଦୁଭି[୩] ଆନକ ଗୋମୁଖ ॥ ୨୯

ଯେ ଚିତ୍ର ବାଦିତ୍ର ଏ ସର୍ବେ । ବାଜିଲେ ଅବଭୃଥୋତ୍ସବେ ॥ ୩୦

୧୦ ନର୍ତ୍ତକୀମାନେ ହୃଷ୍ଟ ହୋଇ । ନୃତ୍ୟମାନଙ୍କୁ କଲେ ତହିଁ ॥ ୩୧

ଗାୟକେ ଯୂଥଯୂଥ ହେଲେ । ଉତ୍ତମ କରିଣ ଗାଇଲେ ॥ ୩୨

ଯେ ବୀଣା-ବେଣୁତଳସ୍ୱନ । ତାଙ୍କର ଛୁଇଁଲା ଗଗନ ॥ ୩୩

୧୧ ଧ୍ୱଜପତାକା-ଅଗ୍ର ଯହିଁ । ରହିଅଛନ୍ତି ଚିତ୍ର ହୋଇ ॥ ୩୪

ସେ ହସ୍ତୀ-ରଥ-ଅଶ୍ୱଙ୍କରେ । ଭୂଷିତ ଯୋଦ୍ଧାଙ୍କ ସଙ୍ଗରେ ॥ ୩୫

ସୁବର୍ଣ୍ଣମାଳା ଯା'ଙ୍କ ଗଳେ । ଗମନ କଲେ ସେ ଭୂପାଳେ ॥ ୩୬

୧୨ ଯଦୁକାମ୍ବୋଜ ଯେ ସୃଞ୍ଜୟ । ଯେ କୁରୁ-କୋଶଳ-କେକୟ ॥ ୩୭

ଏମନ୍ତେ ଯେତେ ଦଣ୍ଡଧାରୀ । ଯୁଧିଷ୍ଠିରଙ୍କୁ ଅଗ୍ରେ କରି ॥ ୩୮

କଂପାନ୍ତେ ଭୂମିକି ସୈନ୍ୟରେ । ଗମନ କଲେ ସେ କାଳରେ ॥ ୩୯

୧୩ ଋତ୍ୱିଜେ ସଭାସଦଜନେ । ଯେ ଅବା ବିପ୍ରଶ୍ରେଷ୍ଠମାନେ ॥ ୪୦

ଏମାନେ ଅତି ତୀବ୍ର[୪]-ଘୋଷେ । ଚଳିଲେ ଯୁଧିଷ୍ଠିର ପାଶେ ॥ ୪୧

---

୧. ସଂମାନନରେ । ୨. ଗୁରୁ ସେବାରେ । ୩. ଧୁନ୍ଧୁରୀ । ୪. ବ୍ରହ୍ମ ।

ଗନ୍ଧର୍ବ-ପିତୃ-ଦେବ-ଋଷି । ସ୍ତୁତି କଲେ ପୁଷ୍ପ ବରଷି ॥
୧୪ ଭୂଷଣ-ମାଳା-ଚନ୍ଦନରେ । ଦିବ୍ୟ ବସନମାନଙ୍କରେ ॥
ଉତ୍ତମ ଅଳଂକୃତ ହୋଇ । ସ୍ତିରୀ-ପୁରୁଷମାନେ ତହିଁ ॥
ବିବିଧ ରସମାନଙ୍କରେ । ବୋଳି ହୋଇଲେ ପରସ୍ପରେ ॥
୧୫ ତୈଳ-ଗୋରସ-ଗନ୍ଧ-ନୀରେ । ହରିଦ୍ରା-ସାନ୍ଦ୍ରକୁଙ୍କୁମରେ ॥
ବୋଳିଲେ ପୁରୁଷଙ୍କୁ ତହିଁ । ସ୍ୱୟେଂ ପୁରୁଷେ ଲିପ୍ତ ହୋଇ ॥
ଏମନ୍ତେ ବାରନାରୀମାନେ । ବିହାର କଲେ ତୋଷମନେ ॥
୧୬ ରଥାଦି ଯାନମାନଙ୍କରେ । ରକ୍ଷିତ ହୋଇ ନରବରେ ॥
ସଲଜ୍ଜ ହାସରେ ସଂଯୁତ । ଯାଙ୍କ ବଦନ ବିକସିତ ॥
ସେ ସର୍ବ ରାଜପତ୍ନୀମାନେ । ଗମନ କଲେ ତୋଷମନେ ॥
[୧]ମାତୁଳପୁତ୍ର-ସଖାଗଣେ । ଜଳ ସିଞ୍ଚନ୍ତେ ଏଣେ ତେଣେ ॥
ଶୋଭା ପାଇଲେ ସେ ଭାବରେ । ଆକାଶେ ଯେମନ୍ତ ରୂପରେ ॥
ଏହା ଲଭିବାକୁ ବିମାନେ । ଚଳନ୍ତି ଦେବନାରୀମାନେ ॥
୧୭ ଅତି ଉତ୍‌ସୁକଭାବୁଁ କରି । ଫିଟିଲେ ଯେବଣ କବରୀ ॥
ତହିଁରୁ ପୁଷ୍ପମାଳାମାନ । ଯାଙ୍କର ହୁଅଇ ପତନ ॥
କ୍ଲିନ୍ନ ହୋଇଛି ଯାହାଙ୍କର । ବସନମାନ ହିଁ ଆବର ॥
ବିବୃତ ହୋଇଛି ଶରୀର । ବକ୍ଷୋଜ-ଊରୁ-ମଧ୍ୟ[୨] ଆର ॥
ସେ ରାଜପତ୍ନୀମାନେ ତହିଁ । ସଖାଙ୍କୁ ଦେବରଙ୍କୁ ଯାଇ ॥
ଜଳକ୍ଷେପଣ-ଚର୍ମଯନ୍ତ୍ରେ । ନାନାପ୍ରକାର ଜଳପାତ୍ରେ ॥
ସେଚନ କଲେ ସେ ଉଦକେ । ମନୋଜ୍ଞ ବିହାରମାନଙ୍କେ ॥
ଯେ କାମିଜନମାନେ ଥିଲେ । ତାହାଙ୍କୁ କ୍ଷୋଭ କରାଇଲେ ॥
୧୮ ଯେ ସ୍ୱର୍ଣ୍ଣମାଳାରେ ଭୂଷିତ । ଯେ ଦିବ୍ୟ ଅଶ୍ୱରେ ଯୋଚିତ ॥
ଏମନ୍ତ ରଥକୁ ଆରୋହି । ସେ ଯୁଧିଷ୍ଠିର ନରସାଇଁ ॥
ପତ୍ନୀମାନଙ୍କ ସଙ୍ଗତରେ । ଶୋଭା ପାଇଲେ ସେ କାଳରେ ॥
କ୍ରିୟାରେ ଯେହ୍ନେ ରାଜସୂୟ । ଶୋଭା ପାଇଲା ଅତିଶୟ ॥
[୩]ପତ୍ନୀସଂଯାଜ ନାମ ହୋଇ । ଯେ ଅବଭୃଥ-ଯାଗ ତହିଁ ॥
୧୯ ସେ ଅବଭୃଥ-ମହାଯାଗେ । ସେହି ଋତ୍ୱିଜମାନେ ବେଗେ ॥
ତାଙ୍କୁ କରାଇ ଅନୁଷ୍ଠାନ । ପୁଣ କରାଇ ଆଚମନ ॥
ଗଙ୍ଗାରେ ଦ୍ରୌପଦୀର ତୁଲେ । ରାଜାଙ୍କୁ ସ୍ନାନ କରାଇଲେ ॥
୨୦| ନରଦୁନ୍ଦୁଭିଙ୍କର ତୁଲେ । ଦେବଦୁନ୍ଦୁଭିଏ ବାଜିଲେ ॥
୨୧| ଦେବତା-ଋଷି-ପିତୃଜନ । କଲେ କୁସୁମବୃଷ୍ଟିମାନ ॥
ସମସ୍ତ ବର୍ଣ୍ଣାଶ୍ରମୀ ନରେ । ଯେ ଅବଭୃଥ ସେ ସ୍ନାନରେ ॥

---

୧. ମାତୁଳପୁତ୍ର-ସଖୀଗଣେ । ୨. ମଧ୍ୟ = କଟି । ୩. ପତ୍ନୀସହ ଅନୁଷ୍ଠେୟ ଯଜ୍ଞବିଶେଷ ।

| | | | | | |
|---|---|---|---|---|---|
| | ସମସ୍ତେ ଶୀଘ୍ରେ କଲେ ସ୍ନାନ | । | ମହାପାତକୀ ଯଉଁ ଜନ | ॥ | ୭୪ |
| | ସେ ଯହିଁ ହୁଅନ୍ତେ ସୁସ୍ନାତ | । | ତତ୍‌କାଳ ପାପୁଁ ହୋଏ ମୁକ୍ତ | ॥ | ୭୫ |
| ୨୨ | ଏଥୁ ଅନ୍ତରେ ନୃପବର | । | ନବୀନ ଯେ ବେନି ଅମ୍ବର | ॥ | ୭୬ |
| | ତା' ପରିଧାନ କରି ତହିଁ | । | ଉତ୍ତମ ଅଳଂକୃତ ହୋଇ | ॥ | ୭୭ |
| | ଋତ୍ୱିଜେ ଯେ ସଦସ୍ୟେ ଆନେ | । | ଯେ ଅବା ବିପ୍ର ଆଦି ଜନେ | ॥ | ୭୮ |
| | ତାଙ୍କୁ ପୂଜିଲେ ତତକ୍ଷଣେ | । | ଉତ୍ତମ ବସନ-ଭୂଷଣେ | ॥ | ୭୯ |
| ୨୩ | ଜ୍ଞାତିଙ୍କି ବନ୍ଧୁଙ୍କୁ ନୃପଙ୍କୁ | । | ମିତ୍ରମାନଙ୍କୁ ସୁହୃଦଙ୍କୁ | ॥ | ୮୦ |
| | ଆବର ଯେ ବା ଆନ ନରେ | । | ସେ ସମସ୍ତଙ୍କୁ ପ୍ରତ୍ୟେକରେ | ॥ | ୮୧ |
| | ସେ ନାରାୟଣଭକ୍ତ ରାଜା | । | ପ୍ରତିକ୍ଷଣରେ କଲେ ପୂଜା | ॥ | ୮୨ |
| ୨୪ | ଦେବତାଙ୍କର ପ୍ରାୟ ହୋଇ | । | ଯାହାଙ୍କ ଶୋଭା ବିକସଇ | ॥ | ୮୩ |
| | ମଣିକୁଣ୍ଡଳରେ ଶୋଭନ | । | ଯାହାଙ୍କ ମାଳା-ପାଗ[1]ମାନ | ॥ | ୮୪ |
| | କଞ୍ଚୁକ ଉତ୍ତମ ଅମ୍ବର | । | ଅମୂଲ୍ୟ ହାର ଯାହାଙ୍କର | ॥ | ୮୫ |
| | ଏମନ୍ତ ସର୍ବଜନମାନେ | । | ଶୋଭିତ ଦିଶିଲେ ସେ ସ୍ଥାନେ | ॥ | ୮୬ |
| | ଦିବ୍ୟ କୁଣ୍ଡଳଯୁଗଳରେ | । | ଉତ୍ତମ ଅଳକ[2]ବୃନ୍ଦରେ | ॥ | ୮୭ |
| | ସେବିତ ଅଟେ ଯାହାଙ୍କର | । | ବଦନଶୋଭା ନିରନ୍ତର | ॥ | ୮୮ |
| | ସେ ସ୍ତ୍ରୀଏ ସ୍ୱର୍ଣ୍ଣମେଖଳାରେ | । | ଶୋଭା ପାଇଲେ ସେ କାଳରେ | ॥ | ୮୯ |
| ୨୫ | ଋତ୍ୱିଜେ ଏଥୁ ଅନନ୍ତରେ | । | ଯେ ଅତି କୁଶଳ କର୍ମରେ | ॥ | ୯୦ |
| | ବ୍ରହ୍ମବକତା ଯେ ସଦସ୍ୟେ | । | ଯେ ବ୍ରହ୍ମ କ୍ଷତ୍ରିୟ ଯେ ବୈଶ୍ୟେ | ॥ | ୯୧ |
| | ଯେ ଶୂଦ୍ରେ ଯେ ବା ରାଜାମାନେ | । | ଯେ ଆସିଥିଲେ ଯଜ୍ଞସ୍ଥାନେ | ॥ | ୯୨ |
| ୨୬ | ଦେବର୍ଷି-ପିତୃ-ଭୂତମାନେ | । | ଯେ ଲୋକପାଳମାନେ ଆନେ | ॥ | ୯୩ |
| | ଏମାନେ ଅନୁଗସହିତେ | । | ପୂଜିତ ହୋଇଣ ତଦନ୍ତେ | ॥ | ୯୪ |
| | ଅନୁଜ୍ଞା ମାଗିଣ ରାଜାଙ୍କୁ | । | ହରଷେ ଗଲେ ସ୍ୱସ୍ଥାନକୁ | ॥ | ୯୫ |
| ୨୭ | ଦାସ ଅଟନ୍ତି ଯେ କୃଷ୍ଣର | । | ରାଜର୍ଷି ସେ ଯୁଧିଷ୍ଠିରର | ॥ | ୯୬ |
| | ସେ ରାଜସୂୟ-ମହୋଦୟ | । | ପ୍ରଶଂସା କରି ଅତିଶୟ | ॥ | ୯୭ |
| | ସଂତୋଷ ନ ଲଭିଲେ ମନେ | । | ଅମୃତ ପିଅନ୍ତେ ଯେସନେ | ॥ | ୯୮ |
| | ତୋଷକୁ ନ ଲଭନ୍ତି ଚିତ୍ତେ | । | ମରଣଶୀଳ ଜନ ଯେତେ | ॥ | ୯୯ |
| ୨୮ | ତଦନ୍ତେ ଶୁଣ କୁରୁବୀର | । | ସେ ମହାରାଜ ଯୁଧିଷ୍ଠିର | ॥ | ୧୦୦ |
| | ମିତ୍ର-ସଂବନ୍ଧୀ-ବାନ୍ଧବଙ୍କୁ | । | ସ୍ନେହେ କରାଇ ନିବାସକୁ | ॥ | ୧୦୧ |
| | କାତର ହେଲେ କୃଷ୍ଣ ଯାନ୍ତେ | । | ତାଙ୍କୁ ରଖିଲେ ଦିନାକେତେ | ॥ | ୧୦୨ |
| ୨୯ | ଭଗବାନ ହିଁ ହେ ରାଜନ | । | କରନ୍ତେ ତାଙ୍କ ପ୍ରିୟମାନ | ॥ | ୧୦୩ |
| | ସାମ୍ବକୁ ଆଦି ଯେ ସେ ପୁରେ | । | ଯେତେକ ଥିଲେ ଯଦୁବୀରେ | ॥ | ୧୦୪ |
| | ତାହାଙ୍କୁ ପେଷି ଦ୍ୱାରକାରେ | । | ରହିଲେ ଯୁଧିଷ୍ଠିରପୁରେ | ॥ | ୧୦୫ |

୧. ପାଗ = ପଗଡ଼ି । ୨. ଅଳକ = କେଶ ।

୩୦ ଏମନ୍ତେ ଧର୍ମଙ୍କ କୁମର । ସେ ଯୁଧିଷ୍ଠିର ନୃପବର ॥ ୧୦୬
ଦୁଃଖେ ନ ପାରି ତରି ଯାକୁ । ସେ ମନୋରଥ-ସମୁଦ୍ରକୁ ॥ ୧୦୭
ଶ୍ରୀକୃଷ୍ଣ ସକାଶୁଁ ତରିଲେ । ନିଶ୍ଚିନ୍ତ ହୋଇଣ ରହିଲେ ॥ ୧୦୮
୩୧ ହେ ନୃପ ! ଏକଦିନକରେ । ଯୁଧିଷ୍ଠିରଙ୍କ ଅନ୍ତଃପୁରେ ॥ ୧୦୯
ସଂପତ୍ତି ଦୁର୍ଯ୍ୟୋଧନ ଦେଖି । ମନେ ହୋଇଲା ଅତି ଦୁଃଖୀ ॥ ୧୧୦
ଅଚ୍ୟୁତ ଆତ୍ମା ଅଟେ ଯାର । ସେ ଯୁଧିଷ୍ଠିର ନୃପତିର ॥ ୧୧୧
ରାଜସୂୟର ମହିମାକୁ । ଦେଖିଣ ଲଭିଲା ତାପକୁ ॥ ୧୧୨
୩୨ ଯେ ସୁର-ଇନ୍ଦ୍ରମାନଙ୍କର । ନରେନ୍ଦ୍ର-ଅସୁରେନ୍ଦ୍ରଙ୍କର ॥ ୧୧୩
ସଂପତ୍ତି ଯେ ନାନାପ୍ରକାର । ଯା' ରଚିଅଛି ମୟାସୁର ॥ ୧୧୪
ଯେବଣ ପୁରେ ସେ ସଂପତ୍ତି । ନିଶ୍ଚୟେ ଶୋଭା ପାଉଛନ୍ତି ॥ ୧୧୫
ସେହି ସଂପତ୍ତି ସଙ୍ଗେ ଘେନି । ଦ୍ରୁପଦରାଜାର ନନ୍ଦିନୀ ॥ ୧୧୬
ପତିଙ୍କି ହେଲେ ଅନୁଗତ । ସେ ଦ୍ରଉପଦୀଠାରେ ଚିତ୍ତ ॥ ୧୧୭
ଆସକ୍ତ କରି ଦୁର୍ଯ୍ୟୋଧନ । ବହୁତ ହୋଇଲା ବିମନ ॥ ୧୧୮
୩୩ ଶ୍ରୋଣୀମାନଙ୍କର ଭରରେ । ଯେ ମନ୍ଦମନ୍ଦ ଗମନରେ ॥ ୧୧୯
ଧ୍ୱନିତ ଯଉଁ ପାଦମାନ । ତେଣେ ଯେ ଦିଶନ୍ତି ଶୋଭନ ॥ ୧୨୦
କୁଚକୁଙ୍କୁମରେ ଆବର । ଶୋଣିତ ହାର ଯାହାଙ୍କର ॥ ୧୨୧
ଯା' କଟିତଟ ମନୋହର । ଶ୍ରୀମନ୍ତ ମୁଖ ଯାହାଙ୍କର ॥ ୧୨୨
ଚଳ କୁଣ୍ଡଳ କୁନ୍ତଳରେ । ଯେ ଯୁକ୍ତ ଅଟନ୍ତି ନିର୍ଭରେ ॥ ୧୨୩
ଏମନ୍ତ ଶ୍ରୀକୃଷ୍ଣର ପୁଣ । ସହସ୍ରସଂଖ୍ୟ ନାରୀଗଣ ॥ ୧୨୪
ସେ ଅନ୍ତଃପୁରର ସଭାରେ । ଶୋଭା ପାଇଲେ ସେ କାଳରେ ॥ ୧୨୫
୩୪ ସେ ଧର୍ମସୁତ ମହାରାଏ । ହେ ନୃପ ! କେବଣ ସମୟେ ॥ ୧୨୬
୩୫ କଳ୍ପିତ ଯେ ମୟ-ଅସୁରେ । ସେ ଦିବ୍ୟ ସଭାର ମଧ୍ୟରେ ॥ ୧୨୭
ସ୍ୱଚକ୍ଷୁସମ ଶ୍ରୀକୃଷ୍ଣରେ । ବନ୍ଧୁମାନଙ୍କେ ଭ୍ରାତାଙ୍କରେ ॥ ୧୨୮
ବେଷ୍ଟିତ ହୋଇ ଅତିଶୟେ । ସ୍ୱର୍ଗରେ ଦେବ-ଇନ୍ଦ୍ରପ୍ରାଏ ॥ ୧୨୯
ବସିଲେ ସ୍ୱର୍ଣ୍ଣ-ଆସନରେ । ସେବିତ ବ୍ରହ୍ମସଂପତ୍ତିରେ ॥ ୧୩୦
ସ୍ତୁତି କରନ୍ତେ ବନ୍ଦିଜନେ । ଶୋଭିତ ଦିଶିଲେ ସେ ସ୍ଥାନେ ॥ ୧୩୧
୩୬ କିରୀଟ ମାଳା ଅଛି ଯାର । ସେ ମାନୀ ଦୁର୍ଯୋଧନ ବୀର ॥ ୧୩୨
ଭ୍ରାତାମାନଙ୍କ ସଙ୍ଗତରେ । ଖଡ଼ଗ ଧରି ନିଜ କରେ ॥ ୧୩୩
ଦ୍ୱାରୀଙ୍କି ଶୋଧନ୍ତେ କ୍ରୋଧରେ । ପ୍ରବେଶ ହେଲେ ସେ ସଭାରେ ॥ ୧୩୪
୩୭ ସ୍ଥଳରେ ଟେକିଲା ଅଞ୍ଚଳ । ଜଳପ୍ରାୟେକ ମଣି ସ୍ଥଳ ॥ ୧୩୫
ସଭାରେ ହୋଇ ମୋହମନ । ମୟମାୟାରେ ଦୁର୍ଯୋଧନ ॥ ୧୩୬
ଜଳଭ୍ରାନ୍ତିରେ ପଡ଼ି ସ୍ଥଳେ । ପଡ଼ିଲା ସ୍ଥଳ ମଣି ଜଳେ ॥ ୧୩୭

୩୮ ସେ ଦୁର୍ଯୋଧନକୁ ଦେଖିଣ । ହସିଲେ ଭୀମସେନ ପୁଣ ।। ୧୩୮
ଯେତେକ ଥିଲେ ନାରୀଜନେ । ରାଜାଏ ଅନ୍ୟଜନମାନେ ।। ୧୩୯
ସେମାନେ ହସିଲେ ବହୁତ । ନିବର୍ତ୍ତାନ୍ତେ ହେଁ ଧର୍ମସୁତ ।। ୧୪୦
ହେ ପ୍ରିୟ ନୃପ ପରୀକ୍ଷିତ । ହୁଅନ୍ତେ କୃଷ୍ଣାନୁମୋଦିତ ।। ୧୪୧
୩୯ ତଳକୁ ଲୁଆଇଁ ବଦନ । ଲଜ୍ଜାକୁ ଲଭି ଦୁର୍ଯୋଧନ ।। ୧୪୨
ଜ୍ୱଳନ୍ତେ ସେ ଅତିକ୍ରୋଧରୁ । ବେଗେ ଲେଉଟି ସେ ସଭାରୁ ।। ୧୪୩
କିଛିହିଁ ନ କହି କାହାକୁ । ଚଳିଲା ହସ୍ତିନାପୁରକୁ ।। ୧୪୪
ସେ କାଳେ ଅତି ହାହାକାର । ଶବଦ ହେଲା ସାଧୁଙ୍କର ।। ୧୪୫
ଯୁଧିଷ୍ଠିର ଯେ ବସିଥିଲେ । ବିମନାପ୍ରାୟେ ସେ ହୋଇଲେ ।। ୧୪୬
ଭୂମିଭାରକୁ ବିନାଶନ । କରିବା ଅର୍ଥେ ଭଗବାନ ।। ୧୪୭
ମଉନ ହେଲେ ସେ କାଳରେ । ଯହୁଁ ଶ୍ରୀକୃଷ୍ଣର ଦୃଷ୍ଟିରେ ।। ୧୪୮
ଭ୍ରମେ ଭ୍ରମିଲା ଦୁର୍ଯୋଧନ । ନିମିତ୍ତ ମୟମାୟାମାନ ।। ୧୪୯
୪୦ ଯେ ମହାଯାଗ ରାଜସୂୟ । ସେ ସଂପତ୍ତିରେ ଅତିଶୟ ।। ୧୫୦
ଦୁର୍ଯୋଧନର ଦୁଷ୍ଟପଣ । ଯା' ପଚାରିଲ ମୋତେ ପୁଣ ।। ୧୫୧
ହେ ନୃପ ! ସେ ଚରିତ ମୁହିଁ । ତୁମ୍ଭ ଆଗରେ ବର୍ଣ୍ଣିଲଇଁ ।। ୧୫୨
କୃଷ୍ଣଚରଣ ଚିନ୍ତି ଚିତ୍ତେ । ଦଶମସ୍କନ୍ଧ ଭାଗବତେ ।। ୧୫୩
ଭଣଇ ବିପ୍ର ଦୀନବନ୍ଧୁ । ଯେଣେ ତରିବ ଭବସିନ୍ଧୁ ।। ୧୫୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଦୁର୍ଯୋଧନମାନଭଙ୍ଗୋ ନାମ
ପଞ୍ଚସପ୍ତତିତମୋଽଧ୍ୟାୟଃ ।।

## ଷଟ୍‌ସପ୍ତତିତମ ଅଧ୍ୟାୟ

ତତଃ ଷଟ୍‌ସପ୍ତତିତମେ ବୃଷ୍ଣିଶାଲ୍ୱମହାମୃଧେ ।
ଦ୍ୟୁମଦ୍‌ଗଦାପ୍ରହାରେଣ ରଣାଦ୍ ପ୍ରଦ୍ୟୁମ୍ନନିର୍ଗମଃ ।। ୧
ସଂପାଦ୍ୟ ଧର୍ମରାଜସ୍ୟ ରାଜସୂୟମହୋଦୟମ୍ ।
ନିହତ୍ୟ ସୌଭରାଜାଦୀନଥୋପାରମଦଚ୍ୟୁତଃ ।। ୨

ଶ୍ରୀଶୁକ ଉବାଚ

୧ ସେ ପରୀକ୍ଷିତକୁ ଏମନ୍ତ । କହୁଅଛନ୍ତି ବ୍ୟାସସୁତ ।। ୧
କ୍ରୀଡ଼ାରେ ଯେ ନରଶରୀର । ଗ୍ରହଣ କଲେ ସେ କୃଷ୍ଣର ।। ୨
ଅଦ୍ଭୁତ ଅନ୍ୟ କର୍ମମାନ । ଏଥୁ ଅନ୍ତରେ ହେ ରାଜନ ।। ୩
ଶ୍ରବଣ କର ସୌଭନାଥ । ଯେମନ୍ତ ରୂପେ ହେଲା ହତ ।। ୪

୨ ରୁକ୍ମିଣୀ ବିଭା-ଉତ୍ସବରେ । ଆସି ଯେ ଥିଲେ ଯଦୁବୀରେ ॥
ଶିଶୁପାଳର ସଖା ହୋଇ । ଥିଲା ଯେ ଶାଲ୍ୱ ନରସାଇଁ ॥
ଯଦୁଏ ସେ ଶାଲ୍ୱକୁ କୋପେ । ଯୁଦ୍ଧରେ ଜିଣିଲେ ସେରୂପେ ॥
ଜରାସନ୍ଧକୁ ଆଦି ହୋଇ । ଯେ ଥିଲେ ଜିଣିଲେ ତାଙ୍କୁ ହିଁ ॥
୩ ଶୁଣନ୍ତେ ସମସ୍ତ ରାଜାଏ । ପ୍ରତିଜ୍ଞା କଲା ଶାଲ୍ୱରାଏ ॥
ସମର୍ଥପଣକୁ ମୋହର । ଦେଖ ହେ ସର୍ବ ନୃପବର ॥
ପୃଥ୍ୱୀରେ ଯଦୁବଂଶେ ମୁହିଁ । ଜଣେ ହେଁ ଥୋଇବଇଁ ନାହିଁ ॥
୪ ସେ ମୂଢ଼ ଶାଲ୍ୱରାଜା ପୁଣ । ଏରୂପେ ପ୍ରତିଜ୍ଞା କରିଣ ॥
ଭସ୍ମମୁଠାଏ ପ୍ରତିଦିନ । ଗ୍ରାସ କରନ୍ତେ ହେ ରାଜନ ॥
ଯେ ଦେବ ପ୍ରଭୁ ତ୍ରିଲୋଚନ । ତାହାଙ୍କୁ କଲା ଆରାଧନ ॥
୫ ଯେ ଶାଲ୍ୱ ପଶିଛି ଶରଣ । ତାଙ୍କୁ ସେ ଉମାପତି ପୁଣ ॥
ତତ୍‌କାଳ ସଂତୋଷ ନ ହୋଇ । ବରଷକର ଅନ୍ତେ ଯାଇ ॥
ହେ ନୃପ ! ସେ ଶାଲ୍ୱ ରାଜାକୁ । ଯାଚିଲେ ମାଗ ତୁ ବରକୁ ॥
୬ ଦେବ-ଅସୁର-ନରମାନେ । ଗନ୍ଧର୍ବ-ସର୍ପ-ଯାତୁଧାନେ ॥
ଭେଦି ନ ପାରନ୍ତି ଯାହାକୁ । ଯେ ଭୟ କରାଇ ଯଦୁଙ୍କୁ ॥
ଚଳଇ ଯେ ମନୋରଥକୁ । ଶାଲ୍ୱ ବରିଲା ସେ ଯାନକୁ ॥
୭ ଏହି ରୂପରେ ଲଭ ବର । ଏମନ୍ତ ବୋଲନ୍ତେ ଶଙ୍କର ॥
ପରପୁରକୁ ଯେ ଜିଣଇଁ । ସେ ମୟାସୁର ଆସି ତହିଁ ॥
ଲୌହରେ କରିଣ ନିର୍ମାଣ । 'ସୌଭ' ନାମରେ ଏକ ଯାନ ॥
ବେଗେ ଆଣିଣ ସେ ଯାନକୁ । ଦେଲା ସେ ଶାଲ୍ୱ ରାଜନକୁ ॥
୮ ଯେ ସର୍ବ ଅନ୍ଧକାରସ୍ଥାନ । ଯା' ଭେଦି ନ ପାରଇ ଜନ ॥
ଶାଲ୍ୱ ସେ କାମଗ ଯାନକୁ । ଲଭିଣ ଗଲା ଦ୍ୱାରକାକୁ ॥
ଶ୍ରୀକୃଷ୍ଣ[1] କଲେ ଯଉଁ ବୈର । ତା' ସୁମରନ୍ତେ ବାରମ୍ବାର ॥
୯ ବହୁତ ସୈନ୍ୟଙ୍କୁ ଘେନିଣ । ହେ ନୃପ ! ପୁରକୁ ରୁନ୍ଧିଣ ॥
ଉଦ୍ୟାନ ଉପବନ ବେଗେ । ଶାଲ୍ୱ ଭାଙ୍ଗିଲା ସର୍ବଦିଗେ ॥
୧୦ ଯେ ପୁର ପୁରଦ୍ୱାରମାନ । ଯେ ଗୃହ ଅଟ୍ଟାଳିକାମାନ ॥
ଆବର ତୋଳିକା[2] ମାନଙ୍କୁ । ଭାଙ୍ଗିଲା ବିହାରସ୍ଥାନକୁ ॥
ସେ ଲୋହବିମାନରୁ ପୁଣ । ପଡ଼ିଲା ଶସ୍ତ୍ରବୃଷ୍ଟିମାନ ॥
୧୧ ପାଷାଣ ଦ୍ରୁମ ବଜ୍ରମାନ । ସର୍ପ ବରଷୋପଳ[3] ଆନ ॥
ବହିଲା ଚଣ୍ଡ ଚକ୍ରବାତ । ଧୂଳିରେ ଦିଗ ଆଚ୍ଛାଦିତ ॥
୧୨ ହେ ନୃପ ! ସେ ପୁରୀ ଏମନ୍ତେ । ସେ ଯାନେ ପୀଡ଼ାକୁ ଲଭନ୍ତେ ॥
ମଙ୍ଗଳ ନ ଲଭିଲା ତହିଁ । ତ୍ରିପୁରାସୁରେ ଯେହ୍ନେ ମହୀ ॥

---

୧. ବୃଷ୍ଣି । ୨. ଅଟ୍ଟାଳିକାପର୍ଯ୍ୟନ୍ତ ଭିତ୍ତି । ୩. କୁଆପଥର ।

୧୩ ପ୍ରଦ୍ୟୁମ୍ନ ଅଟେ କୃଷ୍ଣସୁତ । ସେ ମହାରଥ ଚଢ଼ି ରଥ ॥ ୩୭
ପ୍ରଜା ମରନ୍ତେ ଆପଣାର । ତାହାଙ୍କୁ ଦେଖିଣ ସେ ବୀର ॥ ୩୮
ଭୟ ନ ପାଅ ତୁମ୍ଭେ କେହି । ବୋଲି ଧାଇଁଲେ ବେଗ ହୋଇ ॥ ୩୯
୧୪ ସାତ୍ୟକି ଚାରୁଦେଷ୍ଣ ଆର । ଶାମ୍ବ ଅକ୍ରୂର ବେନି ବୀର ॥ ୪୦
ସେ କୃତବର୍ମା ଭାନୁବିନ୍ଦ । ଶୁକସାରଣ ବେନି ଗଦ ॥ ୪୧
ଅନୁଜମାନଙ୍କ ସହିତେ । ପ୍ରସ୍ଥାନେ ଚଳିଲେ ସମସ୍ତେ ॥ ୪୨
୧୫ ଯେ ରଥଯୂଥଙ୍କର ପତି । ତାହାଙ୍କୁ ଯେ ପରିପାଳନ୍ତି ॥ ୪୩
ସେ ଅନ୍ୟ ମହାଧନୁର୍ଦ୍ଧରେ । କବଚ ପୂରାଇ ଶରୀରେ ॥ ୪୪
ଯେ ରଥ ଯେ ବା ଗଜ ବାଜୀ । ପଦାତି ଆଦି ସୈନ୍ୟ ସାଜି ॥ ୪୫
ରକ୍ଷିତ ହୋଇଣ ଏଥିରେ । ଗମନ କଲେ ସର୍ବବୀରେ ॥ ୪୬
୧୬ ତଦନ୍ତେ ଶାଲ୍ୱମାନଙ୍କର । ଯଦୁଙ୍କ ସଙ୍ଗରେ ସମର ॥ ୪୭
ହୋଇଲା ସେକାଳେ ବହୁତ । ଦେବଙ୍କ ତୁଲେ ଯେହ୍ନେ ଦୈତ୍ୟ ॥ ୪୮
ଯେବଣ ଯୁଦ୍ଧ ଶୁଣିଲେ ହେଁ । ରୋମ-ଉଦ୍‌ଗମ ହୋଏ ଦେହେ ॥ ୪୯
୧୭ ସେ ମାୟାମାନଙ୍କୁ ଶାଲ୍ୱର । କ୍ଷଣକେ ରୁକ୍ମିଣୀ କୁମର ॥ ୫୦
ସେ ଦିବ୍ୟ ଅସ୍ତ୍ରମାନଙ୍କରେ । ବିନାଶ କଲେ ସେ କାଳରେ ॥ ୫୧
ଯେସନେ ରାତ୍ର-ଅନ୍ଧକାର । ତପନ କରଇ ସଂହାର ॥ ୫୨
୧୮ ଯେ ସ୍ୱର୍ଣ୍ଣପୁଙ୍ଖ[1]ରେ ଶୋଭନ । ଯା’ ଅଗ୍ରଭାଗ ଲୋହମାନ ॥ ୫୩
ସନ୍ନତ ଗ୍ରନ୍ଥିଏ ଯହିଁରେ । ଏମନ୍ତ ପଞ୍ଚବିଂଶ ଶରେ ॥ ୫୪
ସେନାପତିକି ସେ ଶାଲ୍ୱର । ବିନ୍ଧିଲେ ରୁକ୍ମିଣୀ କୁମର ॥ ୫୫
୧୯ ଶତ ଶରରେ ସେ ଶାଲ୍ୱକୁ । ବିନ୍ଧିଲେ ପୁଣ ତା’ ସୈନ୍ୟକୁ ॥ ୫୬
ଜଣେ ଜଣେକେ ଶରେ ଶରେ । ସାରଥିମାନଙ୍କୁ ସେଠାରେ ॥ ୫୭
ବିନ୍ଧିଲେ ଦଶ ଦଶ ପୁଣ । ଅଶ୍ୱଙ୍କୁ ତିନି ତିନି ବାଣ ॥ ୫୮
୨୦ ପର-ଆପଣାର ସେନାରେ । ଯେତେକ ଥିଲେ ସର୍ବବୀରେ ॥ ୫୯
ମହାତ୍ମା ପ୍ରଦ୍ୟୁମ୍ନର ତହିଁ । ସେ ଶ୍ରେଷ୍ଠ ଅଦ୍ଭୁତ କର୍ମ ହିଁ ॥ ୬୦
ଦେଖି କରିଣ ପ୍ରଦ୍ୟୁମ୍ନଙ୍କୁ । କଲେ ଉତ୍ତମ ପୂଜନକୁ ॥ ୬୧
୨୧ ସେ ‘ସୌଭ’ ଲୋହଯାନ ତହିଁ । ବହୁତରୂପ ହୋଏ କାହିଁ ॥ ୬୨
କାହିଁ ସେ ଏକରୂପ ହୋଇ । ଅଦୃଶ୍ୟ ହୋଏ ଦୃଶ୍ୟ କାହିଁ ॥ ୬୩
ମୟ-ଅସୁରେ ସେ ନିର୍ମାଣ । ବହୁତ ମାୟାମୟ ପୁଣ ॥ ୬୪
ସେ ଯାନ ଆନମାନଙ୍କରେ । ତର୍କିତ ନୋହିଲା ସେଠାରେ ॥ ୬୫
୨୨ ସେ ଯାନ କେବଣ ସମୟେ । ଭୂମିପୃଷ୍ଠରେ ଆସି ହୋଏ ॥ ୬୬
କେବେ ହୁଅଇ ଆକାଶରେ । କେବେ ସେ ପର୍ବତଶିଖରେ ॥ ୬୭

---

୧. ଶରର ମୂଳଭାଗ ।

କେବେ ସେ ଜଳରେ ପଶଇ । ଅଲାତଚକ୍ର[1] ପ୍ରାୟେ ହୋଇ ॥ ୬୮
ଭ୍ରମଣ କରନ୍ତେ ସେ ଯାନ । ରହିଲା ନାହିଁ ଏକସ୍ଥାନ ॥ ୬୯
୨୩ ସେ ଯାନେ ସୈନ୍ୟସହିତରେ । ଯେବଣ ଯେବଣ ସ୍ଥାନରେ ॥ ୭୦
ଦୃଶ୍ୟ ହୁଅଇ ଶାଲ୍ୱରାଏ । ଯାଦବେ ସେହି ସେହି ଠାଏ ॥ ୭୧
ବହୁତ ନାରାଚମାନଙ୍କୁ । ବିନ୍ଧିଲେ ସେ ଶାଲ୍ୱ-ଅଙ୍ଗକୁ ॥ ୭୨
୨୪ ପୁର-ସୈନ୍ୟଙ୍କୁ ବିନାଶନ । କରନ୍ତେ ସେ ଶାଲ୍ୱ ରାଜନ ॥ ୭୩
ଅଗ୍ନି-ସୂର୍ଯ୍ୟର ପ୍ରାୟେ ହୋଇ । ଯେ ଅତି ଦୁଃସହ ଅଟଇ ॥ ୭୪
ଅସହ୍ୟ ଯେ ସର୍ପର ପ୍ରାୟେ । ଯା' ବିନ୍ଧୁଅଛନ୍ତି ଯଦୁଏ ॥ ୭୫
ସେ ଶରମାନଙ୍କେ ତୁରିତ । ସେ ଶାଲ୍ୱ ହୋଇଲା ମୋହିତ ॥ ୭୬
୨୫ ସେ ଶାଲ୍ୱ ସେନାପତିଙ୍କର । ଶସ୍ତ୍ରସମୂହରେ ସତ୍ୱର ॥ ୭୭
ଯାଦବମାନେ ଅତିଶୟେ । ବହୁତ ପୀଡ଼ା ଲଭିଲେ ହେଁ ॥ ୭୮
ଯେ ବେନି ଲୋକ ସେକାଳରେ । ତାହାକୁ ଜିଣିମା ଇଚ୍ଛାରେ ॥ ୭୯
ସେ ନିଜ ନିଜ ରଣଭୂଇଁ । ତା' ନ ଛାଡ଼ିଲେ ତହିଁ କେହି ॥ ୮୦
୨୬ ସେ ଶାଲ୍ୱରାଜାର ଅମାତ୍ୟ । ଦ୍ୟୁମାନ ନାମରେ ଯେ ଖ୍ୟାତ ॥ ୮୧
ପ୍ରଦ୍ୟୁମ୍ନଠାରୁ ପୂର୍ବେ ସେହି । ଥିଲା ଯେ ଅତି ପୀଡ଼ା ପାଇ ॥ ୮୨
ଲୋହଗଦାରେ ପ୍ରଦ୍ୟୁମ୍ନଙ୍କୁ । ଲଭିଣ କରି ପ୍ରହାରକୁ ॥ ୮୩
ମହାବଳିଷ୍ଠ ସେ ଦ୍ୟୁମାନ । ତତ୍‌କ୍ଷଣେ କଲା ମହାସ୍ୱନ ॥ ୮୪
୨୭ ଦ୍ୟୁମାନଗଦାରେ ତତ୍‌କାଳ । ଶୀର୍ଣ୍ଣ ହେଲା ଯା' ବକ୍ଷସ୍ଥଳ ॥ ୮୫
ସେ ଶତ୍ରୁଘାତୀ ପ୍ରଦ୍ୟୁମ୍ନଙ୍କୁ । ସତ୍ୱର ତହୁଁ ଆନ ଠାକୁ ॥ ୮୬
ସାରଥି ନେଲା ଆଡ଼ କରି । ଜାଣଇଁ ସମରଚାତୁରୀ ॥ ୮୭
ଦାରୁକ ଯେ ସୂତ କୃଷ୍ଣର । ଯେଣୁ ଏ ଆତ୍ମଜ ତାହାର ॥ ୮୮
୨୮ ମୁହୂର୍ତ୍ତକରେ କୃଷ୍ଣସୂତ । ଚେତନା ଲଭିଣ ତୁରିତ ॥ ୮୯
କହିଲେ ସାରଥିକି ତହିଁ । ଅସାଧୁ କର୍ମ କଲୁ ତୁହି ॥ ୯୦
ହେ ସୂତ ! ଯାହା ତୁ ଆମ୍ଭଙ୍କୁ । ଯୁଦ୍ଧରୁ ନେଲୁ ଆନ ଠାକୁ ॥ ୯୧
୨୯ କ୍ଲୀବ ଅଟଇ ତୋର ଚିତ୍ତ । ତୋହର ସକାଶୁଁ ବହୁତ ॥ ୯୨
କିଲ୍‌ବିଷ ଲଭିଅଛି ମୁହିଁ । ମୋର ବିହୁନେ କ୍ଷତ୍ରୀ ହୋଇ ॥ ୯୩
ଯଦୁଙ୍କ କୁଳେ ହୋଇ ଜାତ । ଯୁଦ୍ଧରୁ ହେବ ପରାଭୂତ ॥ ୯୪
ଏମନ୍ତ କରି କର୍ଣ୍ଣେ ଜନେ । ଶୁଣି ନାହାନ୍ତି ଏ ଭୁବନେ ॥ ୯୫
୩୦ ରାମକେଶବ ତାତ ମୋର । ପାଖକୁ ଯାଇ ତାହାଙ୍କର ॥ ୯୬
ଭାଜିଲି ଯୁଦ୍ଧଧର୍ମୁଁ ମୁହିଁ । ମୋତେ ପୁଚ୍ଛନ୍ତେ ବେନି ଭାଇ ॥ ୯୭
ମୁଁ ପୁଣି ନିଜ ଯୋଗ୍ୟତାକୁ[2] । କି ବୋଲି କହିବି ତାହାଙ୍କୁ ॥ ୯୮

୧. ଅଲାତଚକ୍ର = ନିଆଁ ବଡ଼ିଆର ଚକ୍ର । ୨. କୁଶଳକୁ ।

| | | | | |
|---|---|---|---|---|
| ୩୧ | ହସନ୍ତେ ଭ୍ରାତୃବଧୂଗଣ | । ଯୁଦ୍ଧେ ମୋ’ ନପୁଂସକପଣ | ॥ | ୯୯ |
| | ମୋତେ ସେ କହିବେ ନିଶ୍ଚୟେ | । ଏ କି କି ବୋଲିଣ ଥୋକାଏ | ॥ | ୧୦୦ |
| | ସେ କଥା କରିବେ ସାଦର | । କହ କି କାରଣ ହେ ବୀର | ॥ | ୧୦୧ |

ସାରଥିରୁବାଚ

| | | | | |
|---|---|---|---|---|
| ୩୨ | ପୁଛନ୍ତେ ପ୍ରଦ୍ୟୁମ୍ନ ଏମନ୍ତ | । ତାହାଙ୍କୁ କହୁଅଛି ସୂତ | ॥ | ୧୦୨ |
| | ହେ ପ୍ରଭୁ ! ଧର୍ମ ମୁଁ ଜାଣଇଁ | । ଯୁଦ୍ଧରୁ ତୋତେ ଆଣିଲଇଁ | ॥ | ୧୦୩ |
| | କୃଚ୍ଛ୍ରକୁ ଲଭନ୍ତେଣ ରଥୀ | । ତାହାଙ୍କୁ ରଖଇ ସାରଥି | ॥ | ୧୦୪ |
| | ସେ ରୂପେ ପୁଣ ସେ ସୂତକୁ | । ରଥୀ ଯେ କରଇ ରକ୍ଷାକୁ | ॥ | ୧୦୫ |
| ୩୩ | ଏକଥା ଜାଣି ମୁଁ ତୁମ୍ଭଙ୍କୁ | । ଯୁଦ୍ଧରୁ ନେଲି ଆନ ଠାକୁ | ॥ | ୧୦୬ |
| | ଗଦାରେ ହୋଇଣ ଆହତ | । ତୁମ୍ଭେ ହୁଅନ୍ତେ ମୂର୍ଚ୍ଛାଗତ | ॥ | ୧୦୭ |
| | ନ ପୁଣ ମାରିଥାଇ ପର | । କଲି ମୁଁ ଏମନ୍ତ ବିଚାର | ॥ | ୧୦୮ |
| | କୃଷ୍ଣଚରଣପଦ୍ମ ଚିନ୍ତି | । ବ୍ରାହ୍ମଣଦୀନବନ୍ଧୁମତି | ॥ | ୧୦୯ |
| | ହରଷ ହେଲା ଅନୁଦିନ | । ସୁଜନେ ହୁଅ ସାବଧାନ | ॥ | ୧୧୦ |
| | ବୈଷ୍ଣବ ଜୟରାମ ଦାସ | । ଯେ ରସେ ଅତ୍ୟନ୍ତ ଲାଳସ | ॥ | ୧୧୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶାଲ୍ୱଯୁଦ୍ଧଂ ନାମ
ଷଟ୍‌ସପ୍ତତିତମୋଽଧ୍ୟାୟଃ ॥

## ସପ୍ତସପ୍ତତିତମ ଅଧ୍ୟାୟ

ସପ୍ତଯୁକ୍‌ସପ୍ତତିତମେ ନାନାମାୟାବିଚକ୍ଷଣଃ ।
କୃଷ୍ଣେନାଗତ୍ୟ ଶାଲ୍ୱସ୍ତୁ ହତଃ ସୌଭଂ ଚ ଚୂର୍ଣ୍ଣିତମ୍ ॥

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ଶୁକମୁନି ପୁଣ | । ହେ ପରୀକ୍ଷିତ ରାଜା ଶୁଣ | ॥ | ୧ |
| | ପ୍ରଦ୍ୟୁମ୍ନ ଆଚମନ କରି | । ସନ୍ନଦ୍ଧ ହୋଇ ଧନୁ ଧରି | ॥ | ୨ |
| | ବୀର ଯେ ଅଟଇ ଦ୍ୟୁମାନ | । ତାର ନିକଟକୁ ବହନ | ॥ | ୩ |
| | ଆମ୍ଭଙ୍କୁ ନିଅ ତୁ ଏ ବାଣୀ | । କହିଲେ ସାରଥିକି ପୁଣି | ॥ | ୪ |
| ୨ | ନିଜ ସୈନ୍ୟଙ୍କୁ ବିନାଶନ | । କରୁ ଥିଲାକ ଯେ ଦ୍ୟୁମାନ | ॥ | ୫ |
| | ତାହାକୁ ରୁକ୍ମିଣୀନନ୍ଦନ | । ହସନ୍ତେ ରୁନ୍ଧିଣ ବହନ | ॥ | ୬ |
| | ଅଷ୍ଟ ନାରାଚମାନଙ୍କରେ | । ଶୀଘ୍ରେ ବିନ୍ଧିଲେ ସେ କାଳରେ | ॥ | ୭ |
| ୩ | ଚାରି ଶରରେ କୃଷ୍ଣସୁତ | । ଚାରି ଅଶ୍ୱଙ୍କୁ କଲେ ହତ | ॥ | ୮ |

| | | | | |
|---|---|---|---|---|
| | ବାଣକେ ମାରିଣ ସୂତକୁ | । ଦ୍ୱିଶରେ ଧନୁକୁ ଧ୍ୱଜକୁ | ।। | ୯ |
| | ଆଉ ଶରକେ ଦ୍ୟୁମାନର | । ପ୍ରଦ୍ୟୁମ୍ନ ଛିଣ୍ଡାଇଲେ ଶିର | ।। | ୧୦ |
| ୪ | ଗଦ-ସାତ୍ୟକି-ସାମ୍ବାଦିଏ[୧] | । ଶାଲ୍ୱବଳକୁ ଅତିଶୟେ | ।। | ୧୧ |
| | ସେ କାଳେ କଲେ ସେ ବିନାଶ | । ଛିଡ଼ନ୍ତେ ତାଙ୍କ କନ୍ଧଦେଶ | ।। | ୧୨ |
| | ସେ ସର୍ବ ଶାଲ୍ୱମହାବୀରେ | । ସୌଭରୁ ପଡ଼ିଲେ ସିନ୍ଧୁରେ | ।। | ୧୩ |
| ୫ | ଅନ୍ୟୋଽନ୍ୟେ ଯଦୁ-ଶାଲ୍ୱଙ୍କର | । ଏ ରୂପେ କରନ୍ତେ ପ୍ରହାର | ।। | ୧୪ |
| | ସପ୍ତବିଂଶତି ଦିନ ପୁଣ | । ତୁମୁଳେ ହେଲା ଘୋର ରଣ | ।। | ୧୫ |
| ୬ | ଧର୍ମନନ୍ଦନ[୨] ନିମନ୍ତ୍ରଣ | । କରନ୍ତେ ପ୍ରଭୁ ନାରାୟଣ | ।। | ୧୬ |
| | ଇନ୍ଦ୍ରପ୍ରସ୍ଥକୁ ଗଲେ ବେଗ | । ସରନ୍ତେ ରାଜସୂୟ ଯାଗ | ।। | ୧୭ |
| | ସେ ଯାଗ-ଆଦ୍ୟରେ ତତ୍‌କାଳ | । ମରନ୍ତେ ରାଜା ଶିଶୁପାଳ | ।। | ୧୮ |
| ୭ | ଋଷିଙ୍କି ସେ କୁରୁବୃଦ୍ଧଙ୍କୁ | । ପୁତ୍ରଙ୍କ ସହିତେ ପୃଥାକୁ | ।। | ୧୯ |
| | ଅନୁଜ୍ଞା ମାଗି କରି ହରି | । ଘୋର ନିମିତ୍ତ ଦେଖିକରି | ।। | ୨୦ |
| | ଦ୍ୱାରକାପୁରକୁ ବୋଲିଣ | । ଗମନ କଲେ ତତକ୍ଷଣ | ।। | ୨୧ |
| ୮ | ଗମନ୍ତେ ଶ୍ରୀକୃଷ୍ଣ କହିଲେ | । ମୁଁ ବଳଭଦ୍ରଙ୍କର ତୁଲେ | ।। | ୨୨ |
| | ଅଇଲି ଏ ଇନ୍ଦ୍ରପ୍ରସ୍ଥକୁ | । ନିଶ୍ଚୟେ ମୋହର ପୁରୀକୁ | ।। | ୨୩ |
| | ଶିଶୁପାଳର ପକ୍ଷ ନୃପେ | । ନାଶ କରିବେ ଅତି କୋପେ | ।। | ୨୪ |
| ୯ | ନିଜ ଜନଙ୍କର କଦନ | । ସେ ପୁରେ ଦେଖି ଭଗବାନ | ।। | ୨୫ |
| | ରାମଙ୍କୁ ଜଗାଇ ପୁରକୁ | । ଦେଖିଣ ସୌଭକୁ ଶାଲ୍ୱକୁ | ।। | ୨୬ |
| | ଏମନ୍ତ ରୂପେ ଦାରୁକକୁ | । ଶ୍ରୀକୃଷ୍ଣ ଦେଲେ ଏ ଆଜ୍ଞାକୁ | ।। | ୨୭ |
| ୧୦ | ହେ ସୂତ ! ବେଗେ ମୋ' ରଥକୁ | । ବାହ ତୁ ଶାଲ୍ୱନିକଟକୁ | ।। | ୨୮ |
| | ନ କର ସଂଭ୍ରମକୁ ତୁହି | । ମାୟାବୀ ସୌଭ ରାଜା ଏହି | ।। | ୨୯ |
| ୧୧ | କୃଷ୍ଣ କହନ୍ତେ ଏ ବାକ୍ୟକୁ | । ଦାରୁକ ଘେନି ସେ ଆଜ୍ଞାକୁ | ।। | ୩୦ |
| | ପୁରେ ମିଳନ୍ତେ ସେ ରଥକୁ | । ବାହିଲା ଶାଲ୍ୱନିକଟକୁ | ।। | ୩୧ |
| | ବେନି ବଳର ସର୍ବ ନରେ | । ଗରୁଡ଼ ଦେଖିଲେ ଧ୍ୱଜରେ | ।। | ୩୨ |
| ୧୨ | ଯେ ସୈନ୍ୟ ଅଟେ ହତପ୍ରାୟ | । ଯେ ତାର ପ୍ରଭୁ ଅତିଶୟ | ।। | ୩୩ |
| | ସେ ଶାଲ୍ୱ କୃଷ୍ଣଙ୍କୁ ଦେଖିଣ | । ସେ କୃଷ୍ଣସାରଥିକି ପୁଣ | ।। | ୩୪ |
| | ଯୁଦ୍ଧେ ଯା' ଧ୍ୱନି ଭୟଙ୍କର | । ସେ ଶକ୍ତି କଲା ସେ ପ୍ରହାର | ।। | ୩୫ |
| ୧୩ | ମହୋଲ୍‌କାପ୍ରାଏ ଆକାଶରେ | । ସେ ଶକ୍ତି ଅତ୍ୟନ୍ତ ବେଗରେ | ।। | ୩୬ |
| | ଆସନ୍ତେ ସମସ୍ତ ଦିଗକୁ | । କରନ୍ତେ ଅତି ଆଲୋକକୁ | ।। | ୩୭ |
| | ସେ ଶକ୍ତି ସାୟକେ ଶ୍ରୀହରି | । କାଟିଲେ ଶତଖଣ୍ଡ କରି | ।। | ୩୮ |
| ୧୪ | ଷୋଡ଼ଶ ନାରାଚରେ ହରି | । ଶାଲ୍ୱରାଜାକୁ ବିନ୍ଧି କରି | ।। | ୩୯ |
| | ଯାନ ଭ୍ରମନ୍ତେ ନଭଃସ୍ଥଳେ | । ତାକୁ ବିନ୍ଧିଲେ ଶରଜାଲେ | ।। | ୪୦ |

୧. ସାମ୍ବାଦିଏ = ସାମ୍ବ + ଆଦିଏ । ୨. ଧର୍ମନନ୍ଦନ = ଯୁଧିଷ୍ଠିର ।

| | | | | | |
|---|---|---|---|---|---|
| | ଯେସନେ କିରଣେ ତପନ | । | ଗଗନ କରଇ ଆଚ୍ଛନ୍ନ | ॥ | ୪୧ |
| ୧୫ | ସେ ଶାର୍ଙ୍ଗଧନ୍ୱା ଶ୍ରୀକୃଷ୍ଣର | । | ଯେ ଶାର୍ଙ୍ଗଯୁକ୍ତ ବାମ କର | ॥ | ୪୨ |
| | ସେ କୃଷ୍ଣକରକୁ ସେ ଶାଲ୍ୱ | । | କ୍ରୋଧେ ବିନ୍ଧିଲା ଏକ ଭଲ୍ଲ | ॥ | ୪୩ |
| | ଶାର୍ଙ୍ଗଧନୁ ସେ ହସ୍ତୁଁ ବେଗେ | । | ଖସି ପଡ଼ିଲା ଭୂମିଭାଗେ | ॥ | ୪୪ |
| | ସେ କଥା ଅତି ଅଦଭୁତ | । | ହୋଇ ସେ କାଳେ ହେଲା ଜାତ | ॥ | ୪୫ |
| ୧୬ | ତା' ଦେଖି ତହିଁ ପ୍ରାଣୀଙ୍କର | । | ହୋଇଲା ମହା ହାହାକାର | ॥ | ୪୬ |
| | ଉଚ୍ଚରେ ଗର୍ଜି ଏ ବାକ୍ୟକୁ | । | ଶାଲ୍ୱ କହିଲା ଶ୍ରୀକୃଷ୍ଣଙ୍କୁ | ॥ | ୪୭ |
| ୧୭ | ରେ ମୂଢ଼ ! ଭ୍ରାତା ଅଟେ ତୋର | । | ଯେ ଶିଶୁପାଳ ସଖା ମୋର | ॥ | ୪୮ |
| | ଆମ୍ଭେ ସମସ୍ତେ ଦେଖୁଥିଲୁଁ | । | ପୂର୍ବେ ତା' ଭାର୍ଯ୍ୟାକୁ ଆଣିଲୁ | ॥ | ୪୯ |
| | ସଭାମଧ୍ୟରେ ହୋଇ ମତ୍ତ | । | ଏବେ ସେ ସଖା କଲୁ ହତ | ॥ | ୫୦ |
| ୧୮ | ମୋତେ କେ ଜିଣି ନ ପାରଇ | । | ଏମନ୍ତ ଗର୍ବ ଥାଉ ବହି | ॥ | ୫୧ |
| | ଯେବେ ତୁ ଆଜି ମୋ' ଅଗ୍ରରେ | । | ଥିବୁ ଏ ସମରଭୂମିରେ | ॥ | ୫୨ |
| | ତେବେ ତୀକ୍ଷଣ ଶରରେ ହିଁ | । | ମୁଁ ତୋତେ ମୃତ୍ୟୁକୁ ନେମଇଁ | ॥ | ୫୩ |

ଶ୍ରୀଭଗବାନୁବାଚ

| | | | | | |
|---|---|---|---|---|---|
| ୧୯ | ଶାଲ୍ୱରାଜାକୁ ଏ ବଚନ | । | କହୁ ଅଛନ୍ତି ଭଗବାନ | ॥ | ୫୪ |
| | ରେ ମନ୍ଦ ! ବୃଥା କିମ୍ପା ବହୁ | । | ପାଖେ ଯମକୁ ଦେଖୁନାହୁଁ | ॥ | ୫୫ |
| | ଶୂରେ ବହୁତ ନ କହନ୍ତି | । | ନିଜ ପୌରୁଷକୁ ଦେଖାନ୍ତି | ॥ | ୫୬ |
| ୨୦ | ଏମନ୍ତ ରୂପେ ଭଗବାନ | । | ଶାଲ୍ୱକୁ କହିଣ ବଚନ | ॥ | ୫୭ |
| | ଭୀମ ଅଟଇ ବେଗ ଯାର | । | ସେ ଗଦା ଘେନିଣ ସତ୍ୱର | ॥ | ୫୮ |
| | ପିଟିଲେ ତାକୁ କ୍ରୋଧ କରି | । | ପଡ଼ିଲା[୧] ସେ ରକ୍ତ ଉଦ୍‌ଗାରି | ॥ | ୫୯ |
| ୨୧ | ସେ ଗଦା ହୁଅନ୍ତେ ନିବୃତ୍ତ | । | ଶାଲ୍ୱ ହୋଇଲା ଅନ୍ତର୍ହିତ | ॥ | ୬୦ |
| | ତଦନ୍ତେ ମୁହୂର୍ତ୍ତକେ ପୁଣ | । | ପୁରୁଷେ ସେଠାକୁ ଆସିଣ | ॥ | ୬୧ |
| | ଶିରେ ପ୍ରଣମି ଶ୍ରୀକୃଷ୍ଣଙ୍କୁ | । | ବହୁତ କରି ରୋଦନକୁ | ॥ | ୬୨ |
| | ଦେବକୀ ପେଷିଛନ୍ତି ମୋତେ | । | କୃଷ୍ଣଙ୍କୁ କହିଲା ଏମନ୍ତେ | ॥ | ୬୩ |
| ୨୨ | ହେ କୃଷ୍ଣ କୃଷ୍ଣ ମହାବାହୁ | । | ପିତୃବତ୍ସଳ ତୁ ବୋଲାଉ | ॥ | ୬୪ |
| | ଶାଲ୍ୱ ଯେ ଏଠାକୁ ଆସିଣ | । | ନେଲା ତୋ' ପିତାକୁ ବାନ୍ଧିଣ | ॥ | ୬୫ |
| | ପଶୁକୁ ଯେହ୍ନେ ଅବହେଳେ | । | ବ୍ୟାଧ ନିଅଇ ବାନ୍ଧି ବଳେ | ॥ | ୬୬ |
| ୨୩ | ଅପ୍ରିୟ ବାକ୍ୟ ଶୁଣି କରି | । | ମାନୁଷୀ ପ୍ରକୃତିକି ହରି | ॥ | ୬୭ |
| | ଲଭିଣ ବିମନା ସେ ହୋଇ | । | ସ୍ନେହରେ ଅତି ଦୟା ବହି | ॥ | ୬୮ |
| | ପ୍ରାକୃତ ପୁରୁଷ ଯେସନ | । | ସେ ରୂପେ କହିଲେ ବଚନ | ॥ | ୬୯ |
| ୨୪ | ସୁର-ଅସୁରମାନେ ପୁଣି | । | ଯାହାକୁ ନ ପାରନ୍ତି ଜିଣି | ॥ | ୭୦ |

୧. କଂପିଲା ।

ସେ [୧]ଅସମ୍ଭ୍ରାନ୍ତ ହଳଧାରୀ । କେମନ୍ତେ ତାଙ୍କୁ ଜିଣି କରି ।।
ଅଳପ ବଳ ଅଟେ ଯାର । ଶାଲ୍ୱ ସେ ପିତାକୁ ମୋହର ।।
ବାନ୍ଧିଣ ଆଣିଲା ସତ୍ୱର । ଏ ବିଧି ଅତି ବଳୀୟାର ।।
୨୫ ଗୋବିନ୍ଦ ବୋଲନ୍ତେ ଏମନ୍ତ । ସେ ଶାଲ୍ୱ ହେଲା ଉପସ୍ଥିତ ।।
ବସୁଦେବର ପ୍ରାୟେ ପୁଣି । ଅନ୍ୟ ମନୁଷ୍ୟ ଜଣେ ଆଣି ।।
କୃଷ୍ଣଙ୍କୁ ଏମନ୍ତ ବଚନ । କହିଲା ସେ ଶାଲ୍ୱ ରାଜନ ।।
୨୬ ଏ ତାତ ଜନ୍ମ କଲା ତୋତେ । ଯଦର୍ଥେ ଜୀଇଛୁ ଜଗତେ ।।
ତୁ ଚାହିଁଥାନ୍ତେ ତୋ' ଅଗ୍ରରେ । ଏହାକୁ ମାରିବି ଏଠାରେ ।।
ଯେବେ ସମର୍ଥ ହେବୁ ତୁହି । ରେ ମୂର୍ଖ କର ପରିତ୍ରାହି[୨] ।।
୨୭ ଏରୂପେ କୃଷ୍ଣଙ୍କୁ ଭର୍ତ୍ସନ । କରି ସେ ମାୟାବୀ ରାଜନ ।।
ଖଡ଼ଗେ ବସୁଦେବ-ଶିର । କାଟି ସେ ଘେନିଲା ସତ୍ୱର ।।
ଆକାଶସ୍ଥିତ ସୌଭପୁରେ । ବସିଲା ଯାଇ ହରଷରେ ।।
୨୮ ଶ୍ରୀହରି ହେଲେହେଁ ସୁଜ୍ଞାନୀ । ନିଜ ଜନର ସ୍ନେହ ଘେନି ।।
ମୁହୂର୍ତ୍ତଯାକେ ତଦନ୍ତରେ । ମନୁଷ୍ୟଙ୍କର ସ୍ୱଭାବରେ ।।
ରହିଲେ ନିମଗନ ହୋଇ । ମହାନୁଭାବ ସେ ପୁଣ ହିଁ ।।
ଯା' କହିଅଛି ମୟଦୈତ୍ୟ । ଶାଲ୍ୱ ତା' କରିଛି ରଚିତ ।।
ଆସୁରୀ ମାୟା ଏ ସମସ୍ତ । ତକ୍ଷଣେ ଜାଣିଲେ ଏମନ୍ତ ।।
୨୯ ଘୋର ସମରେ ସେ ଦୂତକୁ । ନିଜ ପିତାର ଶରୀରକୁ ।।
ଦେଖିଲେ ନାହିଁ ସେ ଅଚ୍ୟୁତ । ସ୍ୱପ୍ନେ ଯା' ଦେଖି ସେ ଯେମନ୍ତ ।।
ଯେ ଭ୍ରମୁଅଛି ଆକାଶରେ । ଯେ ବସିଅଛି ସେ ସୌଭରେ ।।
ମାରିବା ଅର୍ଥେ ସେ ରିପୁକୁ । ତକ୍ଷଣେ କଲେ ଉଦ୍ୟମକୁ ।।
୩୦ ଶୁକ କହନ୍ତି ଏ ବଚନ । ଯା' ତୋତେ କଲାଇଁ କଥନ ।।
ହେ ନୃପ କେହୁଣି ଋଷିଏ । ଏମନ୍ତ ବୋଲନ୍ତି ନିଶ୍ଚୟେ ।।
ଯେ ପୂର୍ବାପରାନୁସଂଧାନ[୩] । ତେଣେ ସେ ଅଟନ୍ତି ବିହୀନ ।।
ରାମଙ୍କ ଅନୁଜ୍ଞା ମାଗିଲେ । ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥ ଗଲେ ।।
ଯେ ନିଜ ବଚନ ଏମନ୍ତ । ତାକୁ ହେଲା ଏ ବିରୋଧିତ ।।
ଏଣୁ ଏ ବିଷୟ ସେମାନେ । ସ୍ମରନ୍ତି ନାହିଁ ନିଶ୍ଚେ ମନେ ।।
୩୧ ଶ୍ରୀକୃଷ୍ଣଠାରେ ଭୟ ସ୍ନେହ । ଏ କାହିଁ ଅଛି ଅବା କହ ।।
ଯେ ଅଜ୍ଞଲୋକଠାରେ ହୋଇ । ସେ ଶୋକମୋହ ଦୁଇ କାହିଁ ।।
[୪]ଜ୍ଞାନବିଜ୍ଞାନୈଶ୍ୱର୍ଯ୍ୟମାନ[୫] । ଯାହାର[୬] ନୁହନ୍ତି ଏ ନ୍ୟୂନ ।।

---

୧. ଅସମ୍ଭ୍ରାନ୍ତ = ଭୟଭ୍ରାନ୍ତିରହିତ । ୨. ପରିତ୍ରାଣ । ୩. ପୂର୍ବ + ଅପର + ଅନୁସନ୍ଧାନ ।
୪. ଜ୍ଞାନ = ବାହ୍ୟବିଷୟ; ବିଜ୍ଞାନ = ସ୍ୱରୂପ ବିଷୟ । ୫. ଜ୍ଞାନ + ବିଜ୍ଞାନ + ଐଶ୍ୱର୍ଯ୍ୟମାନ
୬. ଯା'ଠାରେ ।

| | | | |
|---|---|---|---|
| | ସମସ୍ତ ଦେବମାନଙ୍କର | ଯେ କୃଷ୍ଣ ପୂଜ୍ୟ ନିରନ୍ତର | ॥ ୧୦୧ |
| ୩୨ | ଯା' ପାଦସେବାରେ ଊର୍ଜିତ[୧] | ଯେ ଆତ୍ମବିଦ୍ୟାରୂପେ ଖ୍ୟାତ | ॥ ୧୦୨ |
| | ତେଣେ [୨]ଅନାଦି ଅହଂକାର | ସାଧୁଏ କରନ୍ତି ସଂହାର | ॥ ୧୦୩ |
| | ଅନନ୍ତ ଯେ ଆତ୍ମୀୟ ଆନ | ଲଭନ୍ତି ସେ ଐଶ୍ୱର[୩] ସ୍ଥାନ | ॥ ୧୦୪ |
| | ଯେ ଗତି ସାଧୁମାନଙ୍କର | କାହିଁ ବା ମୋହ ସେ କୃଷ୍ଣର | ॥ ୧୦୫ |
| ୩୩ | ସେ ଶାଲ୍ୱ ନିଜ ପ୍ରତାପରେ | ମାରନ୍ତେ ଶସ୍ତ୍ରସମୂହରେ | ॥ ୧୦୬ |
| | ଅମୋଘବିକ୍ରମ ଶ୍ରୀହରି | ଶରରେ ତାହାକୁ ସଂହାରି | ॥ ୧୦୭ |
| | ଧନୁ କବଚ ଶିରୋମଣି | ଛେଦିଣ ଏ ତିହ୍ନିଙ୍କି ପୁଣି | ॥ ୧୦୮ |
| | ଶତ୍ରୁର ସେ ଯାନକୁ ପୁଣ | ଗଦାରେ ଭାଙ୍ଗିଲେ ତକ୍ଷଣ | ॥ ୧୦୯ |
| ୩୪ | ଯେ କୃଷ୍ଣହସ୍ତରେ ପ୍ରେରିତ | ସେ ଗଦାଘାତରେ ତୁରିତ | ॥ ୧୧୦ |
| | ସହସ୍ରଭାଗେ ଚୂର୍ଣ୍ଣ ହୋଇ | ଯାନ ପଡ଼ିଲା ଜଳେ ଯାଇ | ॥ ୧୧୧ |
| | ଶାଲ୍ୱ ଛାଡ଼ିଣ ସେ ଯାନକୁ | ଲଭିଲା ଧରଣୀତଳକୁ | ॥ ୧୧୨ |
| | ଶ୍ରୀକୃଷ୍ଣଠାକୁ ତ୍ୱରା ହୋଇ | ଧାଇଁଲା ଗଦାକୁ ଉଁଚାଇ | ॥ ୧୧୩ |
| ୩୫ | ସେ ଶାଲ୍ୱ ଧାବନ୍ତେ ସତ୍ୱର | ଗଦାସହିତେ ତାର କର | ॥ ୧୧୪ |
| | ଭଲ୍ଲରେ ଛେଦି ଏଥୁ ଅନ୍ତେ | ଶାଲ୍ୱକୁ ମାରିବା ନିମିତ୍ତେ | ॥ ୧୧୫ |
| | ପ୍ରଳୟସୂର୍ଯ୍ୟପ୍ରାୟେ ହୋଇ | ଯାହାର ତେଜ ପ୍ରକାଶଇ | ॥ ୧୧୬ |
| | ସେ ଚକ୍ର କରେ ଧରି କରି | ଶୋଭା ପାଇଲେ ନରହରି | ॥ ୧୧୭ |
| | ଯେସନେ ତପନସହିତ | ଉଦୟ ପର୍ବତ ଶୋଭିତ | ॥ ୧୧୮ |
| ୩୬ | ସେହି ଚକ୍ରରେ ଚକ୍ରଧର | ବହୁତ ମାୟାବୀ ଶାଲ୍ୱର | ॥ ୧୧୯ |
| | ମୁଣ୍ଡକୁ କାଟିଲେ ତୁରିତ | କିରୀଟ-କୁଣ୍ଡଳ ସହିତ | ॥ ୧୨୦ |
| | ଯେସନେ ବୃତ୍ରାସୁର-ଶିର | ବଜ୍ରେ କାଟିଲେ ପୁରନ୍ଦର | ॥ ୧୨୧ |
| | ସେକାଳେ ସର୍ବଜନଙ୍କର | ଶବଦ ହେଲା ହାହାକାର | ॥ ୧୨୨ |
| ୩୭ | ପାପିଷ୍ଠ ସେ ଶାଲ୍ୱ ମରନ୍ତେ | ଗଦାରେ ସୌଭ ହତ ହୁନ୍ତେ | ॥ ୧୨୩ |
| | ଦେବତାମାନଙ୍କେ ବାଦିତ | ହୁଅନ୍ତେ ଆହେ ପରୀକ୍ଷିତ | ॥ ୧୨୪ |
| | ଦୁନ୍ଦୁଭିମାନେ ସେ କାଳରେ | ବାଜିଲେ ଆକାଶମାର୍ଗରେ | ॥ ୧୨୫ |
| | କରନ୍ତେ ସଖାଙ୍କ ନିଷ୍କୃତି | ସେ ଦନ୍ତବକ୍ର ମହୀପତି | ॥ ୧୨୬ |
| | କ୍ରୋଧରେ ଅତି ତ୍ୱରା ହୋଇ | ଧାଇଁଲା କୃଷ୍ଣ ଛନ୍ତି ଯହିଁ | ॥ ୧୨୭ |
| | ଶ୍ରୀକୃଷ୍ଣ ଚରଣପଙ୍କଜେ | ବ୍ରାହ୍ମଣ ଦୀନବନ୍ଧୁ ଭଜେ | ॥ ୧୨୮ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ସସୌଭଶାଲ୍ୱବଧୋ ନାମ
ସପ୍ତସପ୍ତତିତମୋଽଧ୍ୟାୟଃ ॥

---

୧. ଶକ୍ତିମନ୍ତ, ବଳବନ୍ତ । ୨. ଯେ ନାନା । ୩. ଈଶ୍ୱରସଂବନ୍ଧୀ ।

# ଅଷ୍ଟସପ୍ତତିତମ ଅଧ୍ୟାୟ

ତତୋଽଷ୍ଟସପ୍ତତିତମେ ଦନ୍ତବକ୍ରବିଦୂରଥୌ ।
ହତ୍ୱା ହରିଃ ପୁରେ ରେମେ ରାମଃ ସୂତଂ ତତୋଽବଧୀତ୍ ॥

ଶ୍ରୀଶୁକ ଉବାଚ

୧ | କହନ୍ତି ସତ୍ୟବତୀ ସୁତ । ଶୁଣ ହେ ନୃପ ପରୀକ୍ଷିତ ॥ ୧
୨ | ପୌଣ୍ଡ୍ରକ ଶାଲ୍ୱ ଶିଶୁପାଳ । ମଲେ ଯେ ତିନି ମହୀପାଳ ॥ ୨
ତାଙ୍କ ପରୋକ୍ଷ ମିତ୍ରକୃତ୍ୟ[1] । କରିବା ଅର୍ଥେ ଦେଇ ଚିତ୍ତ ॥ ୩
ଦୁଷ୍ଟ ଅଟଇ ଯାର ମତି । ସେ ଦନ୍ତବକ୍ର ମହୀପତି ॥ ୪
ଅତ୍ୟନ୍ତ କ୍ରୋଧେ ସେ କାଳରେ । ଧାବନ୍ତେ ବେନି ଚରଣରେ ॥ ୫
କଂପାନ୍ତେ ବସୁନ୍ଧରାଯାକ । ପଦାତି ହୋଇଣ ସେ ଏକ ॥ ୬
ସେ ମହାସତ୍ତ୍ୱ ଗଦା ନେଇ । ହେ ନୃପ ! ଦୃଶ୍ୟ ହେଲା ତହିଁ ॥ ୭
୩ ତେମନ୍ତ ରୂପେ ଆସନ୍ତେଣ । ସେ ଦନ୍ତବକ୍ରକୁ ଦେଖିଣ ॥ ୮
ଅତି ସତ୍ୱରେ ଗଦା ଧରି । ରଥରୁ ଡେଇଁ ନରହରି ॥ ୯
ସିନ୍ଧୁକୁ ବେଳାପ୍ରାୟ ହୋଇ । ରୁନ୍ଧିଲେ ବେଗେ ତାକୁ ଯାଇ ॥ ୧୦
୪ କରୂଷପତି[2] ସେ ରାଜନ । ଗଦାକୁ ଉଁଚାଇ ବହନ ॥ ୧୧
ସେ ଅତି ଗର୍ବେ ମୁକୁନ୍ଦଙ୍କୁ । କହିଲା ଏମନ୍ତ ବାକ୍ୟକୁ ॥ ୧୨
ତୁ ଆଜ ଭାଗ୍ୟରେ ଭାଗ୍ୟରେ । ପଡ଼ିଲୁ ମୋ' ଦୃଷ୍ଟିପଥରେ ॥ ୧୩
୫ ତୁ ମୋ' ମଉଳାପୁଅ ଭାଇ । ହେ କୃଷ୍ଣ ଅଟୁ ମିତ୍ରଦ୍ରୋହୀ ॥ ୧୪
ବିଚାରୁ ମାରିବାକୁ ମୋତେ । ହେ ମନ୍ଦ ଏଣୁ ମୁହିଁ ତୋତେ ॥ ୧୫
ବଜ୍ରସମାନ ଏ ଗଦାରେ । ମାରିବି ନିଶ୍ଚୟ ଏଠାରେ ॥ ୧୬
୬ ତୁ ଆମ୍ଭ ବନ୍ଧୁରୂପ ଅରି । ହେ ଅଜ୍ଞ ତୋତେ ମାରି କରି ॥ ୧୭
ମିତ୍ରବତ୍ସଳ ମୁଁ ଯେ ପୁଣ । ତେଣେ ଶୁଝିବି ମିତ୍ରଋଣ ॥ ୧୮
ଯେ ବ୍ୟାଧି ଦେହରେ ସଂଚରେ । ତାକୁ ମାରନ୍ତି ଯେହ୍ନେ ନରେ ॥ ୧୯
୭ ଅଙ୍କୁଶ ଆଦିରେ ଯେସନ । ହସ୍ତୀକି କରନ୍ତି ପୀଡ଼ନ ॥ ୨୦
ତେସନ ରୂକ୍ଷ ବଚନରେ । ପୀଡ଼ନ୍ତେ କୃଷ୍ଣଙ୍କୁ ନିର୍ଭରେ ॥ ୨୧
ସେ ଦନ୍ତବକ୍ର ସ୍ୱଗଦାରେ । ପିଟିଲା କୃଷ୍ଣମସ୍ତକରେ ॥ ୨୨
ତଦନ୍ତେ ପୁଣ ସିଂହପ୍ରାୟେ । ଗର୍ଜିଲା ବେଗେ ଅତିଶୟେ ॥ ୨୩
୮ ସେ ଯଦୁନାଥ ସମରରେ । ତାଡ଼ିତ ହେଲେହେଁ ଗଦାରେ ॥ ୨୪
ପହଣ୍ଡେ ନ ଚଳିଲେ ତହିଁ । ପୁଣି କୃଷ୍ଣ ହିଁ କ୍ରୋଧ ବହି ॥ ୨୫
ଶ୍ରେଷ୍ଠ କୌମୋଦକୀ ଗଦାରେ । ତାକୁ ମାଇଲେ [3]ସ୍ତନାନ୍ତରେ ॥ ୨୬

---

୧. ମିତ୍ରଦ୍ୱାରା କୃତ କର୍ମ । ୨. କୁତ୍ସିତରୂପ, (କାରୂପଃ) । ୩. ବକ୍ଷସ୍ଥଳର ମଧ୍ୟଭାଗରେ ।

୯ ଗଦାରେ ହୃଦୟ ଫାଟନ୍ତେ । ମୁଖୁଁ ରକତ ଉଦ୍‌ଗାରନ୍ତେ ।। ୨୭
ହସ୍ତ-ଚରଣ-କେଶମାନ । ପ୍ରସାରି କରି ସେ ରାଜନ ।। ୨୮
ପ୍ରାଣ ଯାଆନ୍ତେ ତତ୍‌କ୍ଷଣରେ । ପଡ଼ିଲା ଧରଣୀ ତଳରେ ।। ୨୯
୧୦ ସୂକ୍ଷ୍ମରେ ତେଜ ଅଦଭୁତ । ସେ ରାଜାଦେହୁଁ ହୋଇ ଜାତ ।। ୩୦
ପଶିଲା କୃଷ୍ଣଦେହେ ଯାଇ । ଦେଖନ୍ତେ ସର୍ବନରେ ତହିଁ ।। ୩୧
ଶିଶୁପାଳର ବଧେ ତେଜ । ଯେସନେ ଆହେ ମହାରାଜ ।। ୩୨
୧୧ ବିଦୂରଥ ଯେ ତାର ଭାଇ । ଭ୍ରାତାଶୋକରେ ବ୍ୟାପ୍ତ ହୋଇ ।। ୩୩
ଖଡ଼ଗ-ଚର୍ମ ଧରି କରେ । କୃଷ୍ଣଙ୍କୁ ମାରିବା ଇଚ୍ଛାରେ ।। ୩୪
ପକାନ୍ତେ ନିଃଶ୍ୱାସମାନଙ୍କୁ । ଗମନ କଲା କୃଷ୍ଣଠାକୁ ।। ୩୫
୧୨ ତୀକ୍ଷଣ ଚକ୍ରେ ଚକ୍ରଧର । ଆସନ୍ତେ ସେ ବିଦୂରଥର ।। ୩୬
କୁଣ୍ଡଳ-କିରୀଟର ତୁଳେ[୧] । ହେ ନୃପ ! ଶିରକୁ କାଟିଲେ ।। ୩୭
୧୩ ଏରୂପେ ସୌଭକୁ ଶାଲ୍ୱକୁ । ଦନ୍ତବକ୍ରକୁ ତା' ଭ୍ରାତାକୁ ।। ୩୮
ଏମାନେ ଦୁର୍ବିଷହ ଅତି । ଏହାଙ୍କୁ ମାରି ଯଦୁପତି ।। ୩୯
ସମସ୍ତ ସୁର-ନରମାନେ । ସ୍ତୁତି କରନ୍ତେ ପୁଣ ଆନେ ।। ୪୦
୧୪ ସିଦ୍ଧ-ଗନ୍ଧର୍ବ-ବିଦ୍ୟାଧରେ । ମହା ଉରଗ-ଋଷିଙ୍କରେ ।। ୪୧
ଅପ୍‌ସରାଜନେ ପିତୃଗଣେ । ଯେ ଯକ୍ଷ-କିନ୍ନର-ଚାରଣେ ।। ୪୨
୧୫ ଏ ବରଷନ୍ତେ ପୁଷ୍ପମାନ । ବିଜୟ କରନ୍ତେ ଗାୟନ ।। ୪୩
ଯଦୁପ୍ରବରମାନଙ୍କରେ । ବେଷ୍ଟିତ ହୋଇ ହରଷରେ ।। ୪୪
ଯେ ଅଳଂକୃତ ଦିବ୍ୟ ପୁରୀ । ତହିଁ ମିଳିଲେ ନରହରି ।। ୪୫
୧୬ [୨]ସେ କୃଷ୍ଣ ଏ ରୂପେ ଜିଣିଲେ । ଜରାସନ୍ଧାଦିରେ ହାରିଲେ ।। ୪୬
ଜ୍ଞାନବିହୀନ ଯେଉଁ ଜନେ । ଏମନ୍ତ ବୋଲନ୍ତି ସେମାନେ ।। ୪୭
ସେ ଭଗବାନ ଯୋଗେଶ୍ୱର । ଜଗତଯାକର ଈଶ୍ୱର ।। ୪୮
ଜିଣା-ହାର ଏ ବେନି କଥା । ତାଙ୍କର ନାହିଁକି ସର୍ବଥା ।। ୪୯
ପୂତନା ଆଦିରୁ ଶ୍ରୀହରି । ବିଦୂରଥକୁ ପ୍ରାନ୍ତ କରି ।। ୫୦
ଦନୁଜକୁଳକୁ ମନ୍ଥିଣ । ଯୁଦ୍ଧରୁ ନିବର୍ତ୍ତିଲେ ପୁଣ ।। ୫୧
ସୂତ ବଲ୍ୱଳ ବେନି ଜଣ । ରାମ ମାଇଲେ ଏବେ ପୁଣ ।। ୫୨
୧୭ ସଙ୍ଗେ ପାଣ୍ଡବମାନଙ୍କର । ଯୁଦ୍ଧ-ଉଦ୍ୟମ କୁରୁଙ୍କର ।। ୫୩
ଶୁଣି ମଧ୍ୟସ୍ଥ ରାମ ହେଲେ । ତୀର୍ଥସ୍ନାନବ୍ୟାଜରେ ଗଲେ ।। ୫୪

---

୧. ତୁଳେ = ସହିତ ।

୨. ''ବିଦୂରଥାନ୍ତମାମଥ୍ୟ ପୂତନାଦି ଦନୋଃ କୁଳମ୍ ।
କୃଷ୍ଣସ୍ତୁପାରମନ୍ମାରାଦ୍ରାମୋଽହନ୍ ସୂତବଲ୍ୱଲୌ ।।''
ଅର୍ଥାତ୍ ବିଦୂରଥ ପର୍ଯନ୍ତ ପୂତନାଦି, ଅସୁରକୁଳକୁ ବିନାଶ କରି ଶ୍ରୀକୃଷ୍ଣ ମାରଣରୁ ନିବୃତ୍ତ ହେଲେ ଏବଂ ବଳରାମ ସୂତ ଓ ବଲ୍ୱଳ, ଏହି ଦୁହିଙ୍କୁ ବଧ କଲେ । ଦନୋଃ 'ଦନୁ' ନାମକ ଅସୁରର ।

୧୮ ବିଶୁଦ୍ଧମନେ ହଳଧାରୀ । ପ୍ରଭାସତୀର୍ଥେ ସ୍ନାନ କରି ॥ ୫୫
ଦେବର୍ଷି-ପିତୃ-ମାନବଙ୍କୁ । କରି ଉତ୍ତମ ତର୍ପଣକୁ ॥ ୫୬
ବହୁଛି ପ୍ରତିଲୋମ ହୋଇ । ଯେବଣ ସରସ୍ୱତୀ ନଈ ॥ ୫୭
ରାମ ମିଳିଲେ ସେ ସ୍ଥାନରେ । ବ୍ରାହ୍ମଣମାନଙ୍କ ସଙ୍ଗରେ ॥ ୫୮
୧୯ ଯେ ପୃଥୂଦକ ବିନ୍ଦୁସର । ଯେ ସୁଦର୍ଶନ ତୀର୍ଥ ଆର ॥ ୫୯
ଯେ ତ୍ରିତକୂପ ନାମେ ଖ୍ୟାତ । ବିଶାଳ ଯେ ବା ବ୍ରହ୍ମତୀର୍ଥ ॥ ୬୦
ଯେ ଚକ୍ରତୀର୍ଥ ନାମେ ଖ୍ୟାତି । ଯେ ପୁଣ ପ୍ରାଚୀ ସରସ୍ୱତୀ ॥ ୬୧
୨୦ ସୂର୍ଯ୍ୟସୁତାକୁ ଅନୁଗତ । ହୋଇ ଅଛନ୍ତି ଯେତେ ତୀର୍ଥ ॥ ୬୨
ଗଙ୍ଗାଙ୍କୁ ଅନୁଗତ ହୋଇ । ଯେ ତୀର୍ଥମାନେ ଯାନ୍ତି ବହି ॥ ୬୩
ରାମ ଯାଇଣ ସେ ତୀର୍ଥକୁ । ଚଳିଲେ ନୈମିଷ କ୍ଷେତ୍ରକୁ ॥ ୬୪
ଯେ ମହାକ୍ଷେତ୍ରେ ଋଷିମାନେ । ଯଜ୍ଞ କରନ୍ତି ତୋଷମନେ ॥ ୬୫
୨୧ ତହିଁ ମିଳନ୍ତେ ହଳପାଣି । ତାହାଙ୍କୁ ରାମ ବୋଲି ଜାଣି ॥ ୬୬
ଚିରକାଳରୁ ଯା'ଙ୍କ ଯାଗ । ସେ ଋଷିମାନେ ତାଙ୍କୁ ବେଗ ॥ ୬୭
ଆସନୁଁ ଉଠି ଯଥାନ୍ୟାୟେ । ପ୍ରଣାମ କରି ଅତିଶୟେ ॥ ୬୮
ଅତି ଆନନ୍ଦକୁ ଲଭିଲେ । ଉତ୍ତମ କରି ପୂଜା କଲେ ॥ ୬୯
୨୨ ସପରିବାର[୧] ହୋଇ କରି । ପୂଜା ଲଭନ୍ତେ ହଳଧାରୀ ॥ ୭୦
ଆସନ କରନ୍ତେ ସ୍ୱୀକାର । ଯେ ଶିଷ୍ୟ ଅଟେ ବ୍ୟାସଙ୍କର ॥ ୭୧
ସେ ସୂତ[୨] ଛନ୍ତି ଆସନରେ । ତାଙ୍କୁ ଦେଖିଲେ ସେ କାଳରେ ॥ ୭୨
୨୩ ରାମଙ୍କୁ ପାଛୋଟି ନ ଗଲେ । ନ ନମି ବାକ୍ୟ ନ କହିଲେ ॥ ୭୩
ବିପ୍ରଙ୍କ ଆସନୁଁ ଅତ୍ୟନ୍ତ । ଆସନେ ଅଛନ୍ତି ସେ ସୂତ ॥ ୭୪
ତାହାଙ୍କୁ ଦେଖିଣ ଏ ରୂପେ । ରାମ ବୋଇଲେ ଅତି କୋପେ ॥ ୭୫
୨୪ ପ୍ରତିଲୋମର ଏ ନନ୍ଦନ । ବ୍ରାହ୍ମଣମଧ୍ୟରେ ଆସନ ॥ ୭୬
କିଂପା କରାଇ ସେ ରୂପରେ । ଧର୍ମ ପାଳନ୍ତି ଯଉଁ ନରେ ॥ ୭୭
ସେ ଆମ୍ଭେ, ଆମ୍ଭମାନଙ୍କୁ ହିଁ । ଅବଜ୍ଞା କଲା ପୁଣ ଏହି ॥ ୭୮
ଏଣୁ ଏ ମନ୍ଦମତି ବେଗ । ବଧକୁ ଅଟଇ ଏ ଯୋଗ୍ୟ ॥ ୭୯
୨୫ ଯେ ଭଗବାନ ଋଷି ବ୍ୟାସ । ତାଙ୍କର ହୋଇଅଛି ଶିଷ୍ୟ ॥ ୮୦
ଇତିହାସର ସହିତେଣ । ଅଛନ୍ତି ଯେତେକ ପୁରାଣ ॥ ୮୧
ସେ ସର୍ବ ଧର୍ମଶାସ୍ତ୍ରମାନ । ଏ ତା' କଲେହେଁ ଅଧ୍ୟୟନ ॥ ୮୨
୨୬ ବୃଥା ପଣ୍ଡିତମାନୀ ଏହି । ତପକ୍ଲେଶକୁ ସହି ନାହିଁ ॥ ୮୩
ଗୁଣନିମିତ୍ତେ ହିଁ ତା' ନୋହି । ଆତ୍ମାକୁ ଯେ ଜିଣି ନ ଥାଇ ॥ ୮୪

୧. ସପରିଚ୍ଛଦ । ୨. ରୋମହର୍ଷଣ ।

| | | | | |
|---|---|---|---|---|
| | ଯେସନ ରୂପେ ସେ ନଟର | ନର୍ତ୍ତନ ହୋଏ ତା' ପ୍ରକାର | ॥ | ୮୫ |
| ୨୭ | ଏ ଲୋକ ଏତଦର୍ଥେ ମୁହିଁ | ଅବତାରକୁ କରିଛଇଁ | ॥ | ୮୬ |
| | ଯେ ଧର୍ମଚିହ୍ନ ଧରିଥାନ୍ତି | ଅଧିକେ ପାତକୀ ଅଟନ୍ତି | ॥ | ୮୭ |
| | ନିଶ୍ଚୟେଂ ମୋହର ସେ ନରେ | ବଧ୍ୟ ଅଟନ୍ତି ଏ ସଂସାରେ | ॥ | ୮୮ |
| ୨୮ | ଅସଦ୍‌ବଧରୁ ନିବର୍ତ୍ତିତ | ହେଲେହେଁ ରେବତୀର କାନ୍ତ | ॥ | ୮୯ |
| | ଏତେକମାତ୍ର ତହିଁ ଭଣି | ଏହା ହିଁ ଭବିତବ୍ୟ ଜାଣି | ॥ | ୯୦ |
| | କରସ୍ଥ କୁଶାଗ୍ରେ ତା' ଶିର | ସେ ପ୍ରଭୁ କାଟିଲେ ସତ୍ୱର | ॥ | ୯୧ |
| ୨୯ | ଖିନ୍ନ ହୋଇଛି ଯାଙ୍କ ମନ | ତହିଁ ସେ ସର୍ବ ମୁନିଜନ | ॥ | ୯୨ |
| | ସେ କାଳେ ହାହାକାର କଲେ | ରାମଙ୍କୁ ଏମନ୍ତ କହିଲେ | ॥ | ୯୩ |
| | ହେ ପ୍ରଭୁ ! ଅଧର୍ମକୁ କଲ | ତୁମ୍ଭେ ଯା' ସୂତକୁ ବଧିଲ | ॥ | ୯୪ |
| ୩୦ | ହେ ଯଦୁସୁତ ଆମ୍ଭେମାନେ | ଏହାଙ୍କୁ ପୁରାଣକଥନେ | ॥ | ୯୫ |
| | ବ୍ରହ୍ମ ଆସନ ଥିଲୁଁ ଦେଇ | ଶରୀରଗ୍ଲାନି ଯହିଁ ନୋହି | ॥ | ୯୬ |
| | ଦେଲୁଁ ଯେ ଏମନ୍ତ ଆୟୁଷ | ଯାବତ ଯାଗ ହୋଏ ଶେଷ | ॥ | ୯୭ |
| ୩୧ | ବ୍ରାହ୍ମଣବଧ ଯେ ରୂପରେ | ଏଠାରେ ସେହି ପରକାରେ | ॥ | ୯୮ |
| | ତୁମ୍ଭେ ଏହା ଜାଣି ନ ଥିଲ | ବ୍ରାହ୍ମଣବଧ ଆଚରିଲ | ॥ | ୯୯ |
| | ବ୍ରାହ୍ମଣ ନ କରି ନିଧନ | ଏରୂପେ ଯେ ବେଦ ବଚନ | ॥ | ୧୦୦ |
| | [1]ସେ ନିୟାମକ ତୁମ୍ଭଠାର | ତୁ ଅଟୁ ଯୋଗର ଈଶ୍ୱର | ॥ | ୧୦୧ |
| ୩୨ | ଯେ ବ୍ରହ୍ମହତ୍ୟା ପ୍ରାୟଶ୍ଚିତ୍ତ | ଆପଣା ଇଚ୍ଛାଏ ତୁରିତ | ॥ | ୧୦୨ |
| | ଯେବେ କରିବ ଆଚରଣ | ତେବେଟି ହେ ଲୋକପାବନ | ॥ | ୧୦୩ |
| | ଏ ଲୋକସଂଗ୍ରହ ହୋଇବ | ଅନ୍ୟଥା ନିଶ୍ଚେ ନାଶ ଯିବ | ॥ | ୧୦୪ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୩୩ | ଋଷିମାନଙ୍କ ବାକ୍ୟ ଶୁଣି | କହୁଅଛନ୍ତି ହଳପାଣି | ॥ | ୧୦୫ |
| | ଲୋକ-ଅନୁଗ୍ରହନିମିତ୍ତ | ବ୍ରହ୍ମବଧକୁ ପ୍ରାୟଶ୍ଚିତ୍ତ | ॥ | ୧୦୬ |
| | ନିଶ୍ଚେ କରିବି ଆଚରଣ | ପ୍ରଥମ କଳ୍ପେ ଅବା ପୁଣ | ॥ | ୧୦୭ |
| | ନିୟମ ଶୁଦ୍ଧ ଅବା ଯେତେ | ତା' ଉପଦେଶ ଦିଅ ମୋତେ | ॥ | ୧୦୮ |
| ୩୪ | ହେ ମୁନିମାନେ ଏ ସୂତର | ଯେ ଦୀର୍ଘ ଆୟୁଷ ଆବର | ॥ | ୧୦୯ |
| | ଯେ ବଳ ଯେ ଇନ୍ଦ୍ରିୟମାନ | ଯେ ବା ତୁମ୍ଭର ବାଞ୍ଛା ଆନ | ॥ | ୧୧୦ |
| | ତା' କହ ଏହିକ୍ଷଣି ମୁହିଁ | ଯୋଗମାୟାରେ ସାଧିବଇଁ | ॥ | ୧୧୧ |

୧. ଆପଣ ଈଶ୍ୱର ହୋଇଥିବାରୁ ସବୁ କିଛି କରିପାରନ୍ତି । ବ୍ରହ୍ମବଧ କଲେ ମଧ୍ୟ ଆପଣଙ୍କୁ ଲାଗିବ ନାହିଁ । ତଥାପି ପ୍ରାୟଶ୍ଚିତ୍ତ କର୍ତ୍ତବ୍ୟ । କାରଣ ଆପଣଙ୍କ ମୁଖନିଃସୃତ ବେଦବାକ୍ୟ (ବ୍ରାହ୍ମଣୋ ନ ହନ୍ତବ୍ୟଃ) ଅନ୍ୟଥା ନିୟାମକ ହେବ ନାହିଁ ।

### ଶ୍ରୀରଷୟଃ ଉଚୁଃ

୩୫ ଏ ରୂପେ ରାମଙ୍କ ବଚନ । ଶୁଣି କହନ୍ତି ରଷିଜନ ॥ ୧୧୨
ଏ ତୁମ୍ଭ ଶସ୍ତ୍ରର ବଳର । ମୃତ୍ୟୁର ଆମ୍ଭମାନଙ୍କର ॥ ୧୧୩
ହେ ରାମ ! ବାକ୍ୟ ହେବ ସତ । ଯେମନ୍ତେ କର ତୁ ତେମନ୍ତ ॥ ୧୧୪

### ଶ୍ରୀଭଗବାନୁବାଚ

୩୬ ଏ ରୂପେ ରଷିଙ୍କ ବଚନ । ଶୁଣି କହନ୍ତି ଭଗବାନ ॥ ୧୧୫
[1]ଆତ୍ମା ହୁଅଇ ନିଶ୍ଚେ ସୁତ । ବେଦ ଯେ କହିଛି ଏମନ୍ତ ॥ ୧୧୬
ଏଣୁ ଏ ସୂତର ଆତ୍ମଜ । ପୁରାଣବକ୍ତା ହଉ ଆଜ ॥ ୧୧୭
ଆୟୁଷ ଇନ୍ଦ୍ରିୟପାଟବ । ବଳ ହିଁ ସେ ରୂପେ ହୋଇବ ॥ ୧୧୮
୩୭ ହେ ମୁନିଶ୍ରେଷ୍ଠ ! କି ବାଞ୍ଛିତ । କରିବି ତୁମ୍ଭର କହ ତ ॥ ୧୧୯
ଏଥି ଉତ୍ତାରୁ ମୁଁ ନ ଜାଣି । ବ୍ରାହ୍ମଣ ପକାଇଲି ହାଣି ॥ ୧୨୦
ଯଥାର୍ଥ କରି ହେ ପଣ୍ଡିତେ । ବିଚାର ମୋ ନିଷ୍କୃତି ଚିତ୍ତେ ॥ ୧୨୧

### ଶ୍ରୀରଷୟଃ ଉଚୁଃ

୩୮ ଶୁଣି ସେ ରାମର ବଚନ । ପୁଣି କହନ୍ତି ରଷିଜନ ॥ ୧୨୨
ଇଲ୍ୱଲ-ଦାନବ-କୁମର । ବଲ୍ୱଳ ନାମେ ଦୈତ୍ୟ ଘୋର ॥ ୧୨୩
ସେ ଆସି ପ୍ରତି ପର୍ବକାଳେ । ନାଶଇ ଆମ୍ଭ ଯାଗ ହେଳେ ॥ ୧୨୪
୩୯ ହେ ରାମ ସେ ପାପୀକି ମାର । ତା ଆମ୍ଭ ଅତି ଉପକାର ॥ ୧୨୫
ଆମ୍ଭଙ୍କୁ ଅଭିମୁଖ ହୋଇ । ଯେ ପାପୀ ଆସି ବରଷଇ ॥ ୧୨୬
ପୂୟ-ଶୋଣିତ-ସୁରା-ମାଂସ । ଆବର ମୂତ୍ର ଯେ ପୁରୀଷ ॥ ୧୨୭
୪୦ ଭାରତବର୍ଷକୁ ତଦନ୍ତେ । ହେ ରାମ ସମାହିତଚିତ୍ତେ ॥ ୧୨୮
କରି ଉତ୍ତମ ପ୍ରଦକ୍ଷିଣ । ଦ୍ୱାଦଶ ମାସ ତୁ ଭ୍ରମିଣ ॥ ୧୨୯
ସମସ୍ତ ତୀର୍ଥେ କର ସ୍ନାନ । ବିଶୁଦ୍ଧ ହେବୁ ତତକ୍ଷଣ ॥ ୧୩୦
କୃଷ୍ଣଚରଣ ଚିତ୍ତେ ଚିନ୍ତି । ହରଷ ଦୀନବନ୍ଧୁମତି ॥ ୧୩୧

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ସୂତବଧୋ ନାମ
ଅଷ୍ଟସପ୍ତତିତମୋଽଧ୍ୟାୟଃ ॥

---

୧. ଅଙ୍ଗାଦଙ୍ଗାତ୍ ସଂଭବସି ହୃଦୟାଦଭି ଜାୟସେ ।
ଆତ୍ମା ବୈ ପୁତ୍ରନାମାସି ତ୍ୱଂ ଜୀବ ଶରଦଃ ଶତମ୍ ॥ ଇତି ଶ୍ରୁତିଃ ।

## ଊନାଶୀତିତମ ଅଧ୍ୟାୟ

ଊନାଶୀତିତମେ ରାମୋ ବଲ୍ୱଲଂ ଦ୍ୱିଜତୁଷ୍ଟୟେ ।
ନିହତ୍ୟ ତୀର୍ଥସ୍ନାନାଦ୍ୟୈଃ ସୂତହତ୍ୟାମପାନୁଦତ୍ ॥ ୧

ଶ୍ରୀଶୁକ ଉବାଚ

୧ କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ॥ ୧
ପର୍ବ ହୁଅନ୍ତେ ଉପଗତ । ତଦନ୍ତେ ପୁଣ ଘୋର ବାତ ॥ ୨
ଅତ୍ୟନ୍ତ ପ୍ରଚଣ୍ଡ ହୋଇଣ । ବର୍ଷିଲା ଧୂଳିବରଷଣ ॥ ୩
ସମସ୍ତ ଦିଗେ ହେ ରାଜନ । ବାସିଲା ପୂତିଗନ୍ଧମାନ ॥ ୪
୨ ତଦନ୍ତେ ବଲ୍ୱଳ ଦଇତ । ଯାହା କରିଛି ବିନିର୍ମିତ ॥ ୫
ଅମେଧ୍ୟ ବୃଷ୍ଟି ସେ କାଳରେ । ହୋଇଲା ସେ ଯଜ୍ଞଶାଳାରେ ॥ ୬
ଶୂଳକୁ ଧରି ନିଜ କର । ପଛେ ଦିଶିଲା ସେ ଅସୁର ॥ ୭
୩। ଯେ ଭିନ୍ନ ଅଞ୍ଜନସମୂହ । ଉପମା ବୃହତ୍ ଯାହା କାୟ ॥ ୮
୪। ତତଲା ତାମ୍ର ପ୍ରାୟ ହୋଇ । ଯା' ଶିଖା-ଦାଢ଼ି ଶୋଭା ପାଇ ॥ ୯
ଦନ୍ତମାନଙ୍କେ ଭୟଙ୍କର । ଭ୍ରୁକୁଟୀଯୁତ ମୁଖ ଯାର ॥ ୧୦
ଏମନ୍ତ ଯେ ବଲ୍ୱଳ ଦୈତ୍ୟ । ତାହାକୁ ଦେଖି ଶୂଳହସ୍ତ ॥ ୧୧
ଶତ୍ରୁସୈନ୍ୟକୁ ବିଦାରଣ । କରଇ ଯେ ମୁଷଳ ପୁଣ ॥ ୧୨
ଦୈତ୍ୟନାଶନ ଯଉଁ ହଳ । ସ୍ମରଣା କଲେ ତାହା ବଳ ॥ ୧୩
ସେ ହଳ ମୁଷଳ ତୁରିତ । ସେଠାରେ ହେଲେ ଉପସ୍ଥିତ ॥ ୧୪
୫ ବ୍ରାହ୍ମଣଦ୍ରୋହୀ ସେ ବଲ୍ୱଳ । ଗଗନେ ଥାନ୍ତେ ତାକୁ ବଳ[1] ॥ ୧୫
କ୍ରୋଧେ ଓଟାରି ହଳାଗ୍ରରେ । ମୁଷଳ ପିଟିଲେ ମୁଣ୍ଡରେ ॥ ୧୬
୬ ଲଲାଟ ଫାଟନ୍ତେ ଦଇତ । ଛାଡ଼ନ୍ତେ ବହୁତ ରକତ ॥ ୧୭
ଆର୍ତ୍ତସ୍ୱରକୁ ସେ ଛାଡ଼ିଲା । ଧରଣୀତଳରେ ପଡ଼ିଲା ॥ ୧୮
ବଜ୍ରରେ ହୁଅନ୍ତେ ଆହତ । ଯେସନେ ଅରୁଣ ପର୍ବତ ॥ ୧୯
୭ ରାମଙ୍କୁ ସର୍ବ ଋଷିମାନେ । ସ୍ତୁତି କରିଣ ତୋଷମନେ ॥ ୨୦
ଯେ ସତ୍ୟ ଆଶୀର୍ବାଦମାନ । ତାହା କରିଣ ନିୟୋଜନ ॥ ୨୧
ସେ ମହାଭାଗ ଋଷିଜନ । ରାମଙ୍କୁ କଲେକ ସିଞ୍ଚନ ॥ ୨୨
ବୃତ୍ର-ଅସୁରର ନାଶନେ । ଇନ୍ଦ୍ରକୁ ଦେବତାଏ ଯେହ୍ନେ ॥ ୨୩
୮ ଅତ୍ୟନ୍ତଶୋଭନ ଅମ୍ଲାନ । ଯହିଁ ଅଛନ୍ତି ପଦ୍ମମାନ ॥ ୨୪
ସେ ବଇଜୟନ୍ତୀ ମାଳାକୁ । ଋଷିଏ ଦେଲେ ଶ୍ରୀରାମଙ୍କୁ ॥ ୨୫
ଦିବ୍ୟ ବସନଦ୍ୱୟ ପୁଣ । ଆବର ଦିବ୍ୟ ଆଭରଣ ॥ ୨୬
୯ ଏଥୁ ଅନ୍ତରେ ଋଷିମାନେ । ଆଜ୍ଞା ଦିଅନ୍ତେ ସେ କାନନେ ॥ ୨୭

୧. ବଳ = ବଳରାମ ।

ସେ ରାମ ବ୍ରାହ୍ମଣଙ୍କ ତୁଲେ । କୌଶିକୀ ନଦୀରେ ମିଳିଲେ ।। ୨୮
ସ୍ନାହାନ କରିଣ ନଦୀରେ । ମିଳିଲେ ଯାଇ ସରୋବରେ ।। ୨୯
ଯେବଣ ସରୋବରୁଁ ଯାଇ । ବହୁଛି ସେ ସରଯୂ ନଈ ।। ୩୦
୧୦ ଅନୁସ୍ରୋତରେ ହଳଧାରୀ । ସରଯୂଜଳେ ସ୍ନାନ କରି ।। ୩୧
ଦେବ ଆଦି ତର୍ପଣ କଲେ । ପୁଲହଆଶ୍ରମେ ଚଳିଲେ ।। ୩୨
୧୧ ଗୋମତୀ ଗଣ୍ଡକୀ ନଦୀରେ । ସ୍ନାନ କରିଣ ବିପାଶାରେ ।। ୩୩
ଶୋଣ ନଦୀରେ ସ୍ନାନ ସାରି । ଗୟାକୁ ଗଲେ ହଳଧାରୀ ।। ୩୪
ତହିଁ ସମସ୍ତ ପିତୃଜନ । କରିଣ ଉତ୍ତମ ପୂଜନ ।। ୩୫
ଯେ ଗଙ୍ଗାସାଗରସଙ୍ଗମ । ତହିଁ ମିଳିଲେ ବଳରାମ ।। ୩୬
[1]ଯେବଣ ସାଗରତଟରେ । ଶ୍ରୀପୁରୁଷୋତ୍ତମନାମରେ ।। ୩୭
ଯେ ତୀର୍ଥ ତହିଁକି ଯାଇଣ । ସ୍ନାନ କରିଣ ସଂକର୍ଷଣ ।। ୩୮
ଯେ ଦେବ ଜଗନ୍ନାଥ ତାଙ୍କୁ । କରି ଉତ୍ତମ ପ୍ରଣାମକୁ ।। ୩୯
୧୨ ମହେନ୍ଦ୍ରାଦ୍ରିକି ତହୁଁ ଯାଇ । ସେ ବଳରାମ ଜଳ ଛୁଇଁ ।। ୪୦
ପରଶୁରାମଙ୍କୁ ଦେଖିଣ । ତାହାଙ୍କୁ ପ୍ରଣାମ କରିଣ ।। ୪୧
ସପ୍ତଗୋଦାବରୀକି ଗଲେ । ସେଠାରୁ ବେଣାରେ ମିଳିଲେ ।। ୪୨
ଯେ ପମ୍ପା ଭୀମରଥୀ ଦୁଇ । ସ୍ନାନ କଲେ ସେ ତହିଁ ଯାଇ ।। ୪୩
୧୩ କାର୍ତ୍ତିକେୟଙ୍କୁ ଦେଖି କରି । ତହୁଁ ଚଳିଲେ ହଳଧାରୀ ।। ୪୪
ଗିରିଶସ୍ଥାନ ଅଟେ ଯେହି । ଶ୍ରୀଶୈଳ ମିଳିଲେ ସେ ତହିଁ ।। ୪୫
ଦ୍ରବିଡ଼ ଦେଶରେ ବିଖ୍ୟାତ । ଯେ ଅଟେ ମହାପୁଣ୍ୟବନ୍ତ ।। ୪୬
ବେଙ୍କଟ ନାମେ ସେ ପର୍ବତ । ସେ ପ୍ରଭୁ ଦେଖିଣ ତଦନ୍ତ ।। ୪୭
୧୪ ମିଳିଲେ କାମକୋଷ୍ଣୀ ପୁରେ । ତହୁଁ ସେ ଚଳିଲେ କାଞ୍ଚୀରେ ।। ୪୮
କାବେରୀ ନାମେ ଶ୍ରେଷ୍ଠ ନଈ । ତହିଁ ମିଳିଲେ ପୁଣ ଯାଇ ।। ୪୯
ଶ୍ରୀରଙ୍ଗ ହୋଇ ନାମ ଯାର । ସେ ମହାପୁଣ୍ୟ କ୍ଷେତ୍ରବର ।। ୫୦
ତହିଁ ନିତ୍ୟରେ ଥାନ୍ତି ହରି । ରାମ ତହିଁରେ ମିଳି କରି ।। ୫୧
୧୫ ଚଳିଲେ ଋଷଭପର୍ବତେ । ସେ ବିଷ୍ଣୁକ୍ଷେତ୍ର ତହିଁ ଯାନ୍ତେ ।। ୫୨
୧୬ ଦକ୍ଷିଣ ମଥୁରାକୁ ପୁଣ । ଗମନ କଲେ ସେ ରୂପେଣ ।। ୫୩
ଯେ ନାଶେ ମହାପାତକକୁ । ସେ ସେତୁବନ୍ଧ ସମୁଦ୍ରକୁ ।। ୫୪
ଗମନ କଲେ ହଳପାଣି । ଦଶସହସ୍ର ଧେନୁ ଆଣି ।। ୫୫
ସେଠାରେ କରିଣ ସେ ସ୍ନାନ । ବିପ୍ରଙ୍କୁ କଲେ ତା' ପ୍ରଦାନ ।। ୫୬
ଯେ କୃତମାଳା ନାମେ ପୁଣି । ଯେ ତାମ୍ରପର୍ଣ୍ଣୀ ତରଙ୍ଗିଣୀ ।। ୫୭
ଯେ ବା ମଳୟ କୁଳାଚଳ । ତହିଁ ମିଳିଲେ କାମପାଳ ।। ୫୮
୧୭ ସେ ସ୍ଥାନେ ଥିଲେ ଯେ ଅଗସ୍ତି । ତାଙ୍କୁ ପ୍ରଣମି କଲେ ସ୍ତୁତି ।। ୫୯

୧. ୩୬, ୩୭ ଓ ୩୮ ପଦ ମୂଳ ସଂସ୍କୃତରେ ନାହିଁ ।

ଅଗସ୍ତି ଦ୍ୟନ୍ତେ ଆଶିଷକୁ । ତାହାଙ୍କୁ ମାଗି ଅନୁଜ୍ଞାକୁ ।। ୬୦

ଚଳିଲେ ଦକ୍ଷିଣ ସିନ୍ଧୁରେ । କନ୍ୟାନାମରେ ସେ ଠାବରେ ।। ୬୧

ଦୁର୍ଗାଦେବୀଙ୍କି ଦରଶନ । କରିଣ ଚଳିଲେ ବହନ ।। ୬୨

୧୮ ସେଠାରୁ ଯାଇ ହଳଧାରୀ । ଅନନ୍ତପୁରେ ମିଳି କରି ।। ୬୩

ଯେ ଦିବ୍ୟ ପଞ୍ଚାପ୍ସର[୧] ସର । ଯହିଁରେ ଥାନ୍ତି ଦାମୋଦର ।। ୬୪

ରାମ ସେ ସରେ କରି ସ୍ନାନ । ଅୟୁତେ ଗାଈ ଦେଲେ ଦାନ ।। ୬୫

୧୯ ସେ ଭଗବାନ ତଦନ୍ତରେ । ଚଳିଲେ କେରଳ ଦେଶରେ ।। ୬୬

ତ୍ରିଗର୍ତ୍ତ ଦେଶକୁ ସତ୍ୱର । ତହୁଁ ଚଳିଲେ ହଳଧର ।। ୬୭

ଗୋକର୍ଣ୍ଣ ହୋଇ ନାମ ଯାର । ଯେ କ୍ଷେତ୍ର ଅଟେ ଧୂର୍ଜଟିର[୨] ।। ୬୮

ନିତ୍ୟେ ସେ ଶିବ ଥାନ୍ତି ଯହିଁ । ସେ କ୍ଷେତ୍ରେ ହେଲେ ରାମ ଯାଇ ।। ୬୯

୨୦| ଦ୍ୱୀପ ଅଟଇ ମାର୍ଗ ଯହିଁ । ସେ ଆର୍ଯ୍ୟାଦେଶେ ରାମ ଯାଇ ।। ୭୦

୨୧| ଶୂର୍ପାରକକୁ ତତକାଳ । ଗମନ କଲେ କାମପାଳ ।। ୭୧

ତାପୀ ପୟୋଷ୍ଣୀ ନିର୍ବିନ୍ଧ୍ୟାରେ । ସ୍ନାନ କରିଣ ତଦନ୍ତରେ ।। ୭୨

ଦଣ୍ଡକାରଣ୍ୟରେ ମିଳିଣ । ରେବା ନଦୀକି ଗଲେ ପୁଣ ।। ୭୩

ଯେ ମାହିଷ୍ମତୀ ନାମେ ପୁର । ସେ ଅଛି ଯଉଁ ନଦୀତୀର ।। ୭୪

ମନୁତୀର୍ଥରେ ସ୍ନାନ କରି । ପ୍ରଭାସତୀର୍ଥେ ହଳଧାରୀ ।। ୭୫

ପୁଣି ପ୍ରବେଶ ହେଲେ ଯାଇ । କହନ୍ତେ ବିପ୍ରମାନେ ତହିଁ ।। ୭୬

୨୨ କୁରୁପାଣ୍ଡବଯୁଦ୍ଧେ ପୁଣ । ସମସ୍ତ ରାଜାଙ୍କ ମରଣ ।। ୭୭

ଶ୍ରବଣ କରି ହଳଧର । ମଣିଲେ ଗଲା ଭୂମିଭାର ।। ୭୮

୨୩ ସେ ଭୀମଦୁର୍ଯୋଧନ ବେନି । ଯୁଦ୍ଧରେ ବେନି ଗଦା ଘେନି ।। ୭୯

ଯୁଦ୍ଧ କରନ୍ତେ ସେ କାଳରେ । ତା' ନିବର୍ତ୍ତାଇବା ଇଚ୍ଛାରେ ।। ୮୦

ସେ ଯଦୁପତି ହଳପାଣି । ମିଳିଲେ କୁରୁକ୍ଷେତ୍ରେ ପୁଣି ।। ୮୧

୨୪ ରାମଙ୍କୁ ଦେଖି ଯୁଧିଷ୍ଠିର । କୃଷ୍ଣ-ଅର୍ଜୁନ ବେନି ବୀର ।। ୮୨

ନକୁଳ ସହଦେବ ପୁଣ । ସମସ୍ତେ ପ୍ରଣାମ କରିଣ ।। ୮୩

ପୁଣ ଏ କି କି କହିବାକୁ । ଗମନ କଲେ ଏ ସ୍ଥାନକୁ ।। ୮୪

ଏମନ୍ତ ଶଙ୍କା ମନେ କଲେ । କିଛି ନ କହି ତୁନି ହେଲେ ।। ୮୫

୨୫ ଗଦାକୁ ଘେନି ବେନି ଜନ । ଜିଣିମା ଅର୍ଥେ ଦେଇ ମନ ।। ୮୬

ବିଚିତ୍ର ମଣ୍ଡଳାକାରରେ । ଭ୍ରମନ୍ତେ ଅତି କ୍ରୋଧଭରେ ।। ୮୭

ଏରୂପ ଦେଖି ରାମ ତାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ।। ୮୮

୨୬ ହେ ଦୁର୍ଯୋଧନ ଆହେ ଭୀମ । ତୁମ୍ଭ ଦୁହିଁଙ୍କ ବଳ ସମ ।। ୮୯

ତୁମ୍ଭେ ତ ବୀର ବେନି ଜଣ । ଏମନ୍ତ ମଣୁଛି ମୁଁ ପୁଣ ।। ୯୦

ଜଣେ ତ ବଳରେ ଅଧିକ । ଗଦାଶିକ୍ଷାରେ ଶ୍ରେଷ୍ଠ ଏକ ।। ୯୧

---

୧. ପଞ୍ଚ ଅପ୍ସରାଙ୍କ ସହିତ ଶାତକର୍ଣି ଋଷି ଏଠାରେ ଜଳକ୍ରୀଡ଼ା କରିଥିଲେ । ୨. ଶିବଙ୍କର ।

୨୭ ସମାନବଳ ବେନି ବୀର । ତୁମ୍ଭ ଦୁହିଁରୁ ଜଣକର ॥ ୯୨
ଏ ହେତୁ ଏ ସ୍ଥାନରେ ମୁହିଁ । ଜୟ ଅଜୟ ଯେ ବା ଦୁଇ ॥ ୯୩
ତା' ଜାଣି ନ ପାରୁଛି ପୁଣ । ନିବର୍ତ୍ତ[୧] ବିଫଳ ଏ ରଣ ॥ ୯୪
୨୮ ଦୁଷ୍କୃତ ଦୁରୁକ୍ତ ଭାଷଣ । ଅନ୍ୟୋଽନ୍ୟେ କରନ୍ତେ ସ୍ମରଣ ॥ ୯୫
ବଦ୍ଧବଇର ବେନି ବୀରେ । ହେ ମହାମତି ! ସେ କାଳରେ ॥ ୯୬
ଯେ ଅର୍ଥବନ୍ତ ରାମବାଣୀ । ତା' ନ ଶୁଣିଲେ ଦୁହେଁ ପୁଣି ॥ ୯୭
୨୯ ପ୍ରାଚୀନ କର୍ମ ତାହାଙ୍କର । ସେ କଥା ମଣି ହଳଧର ॥ ୯୮
ଚଳିଲେ ଦ୍ୱାରବତୀ ପୁରେ । ସେ କାଳେ ଅତ୍ୟନ୍ତ ପ୍ରୀତିରେ ॥ ୯୯
ଉଗ୍ରସେନାଦି ଜ୍ଞାତିତୁଲେ । ଉତ୍ତମରୂପେ ସଙ୍ଗ ହେଲେ ॥ ୧୦୦
୩୦ ନିବୃତ୍ତ ଅଟଇ ଯାହାର । ଅଖିଳ ବିଗ୍ରହ ଆବର ॥ ୧୦୧
ସେ ଯଜ୍ଞମୂର୍ତ୍ତି ସଂକର୍ଷଣ । ମିଳନ୍ତେ ନୈମିଷରେ ପୁଣ ॥ ୧୦୨
ଋଷିଏ ସମସ୍ତେ ଯାଗକୁ । ହରଷେ କରାଇଲେ ତାଙ୍କୁ ॥ ୧୦୩
୩୧ ଋଷିଙ୍କି ପ୍ରଭୁ ଭଗବାନ । ଦେଲେ ସେ ବିଶୁଦ୍ଧ ବିଜ୍ଞାନ ॥ ୧୦୪
ଯେବଣ ଜ୍ଞାନେ ଏ ବିଶ୍ୱକୁ । ନିଜ ଆତ୍ମାରେ ହେ ଆତ୍ମାକୁ ॥ ୧୦୫
ସମସ୍ତ ବିଶ୍ୱଗତ କରି । ଜାଣିଲେ ସର୍ବ ବ୍ରହ୍ମଚାରୀ ॥ ୧୦୬
୩୨ ଯେ ଜ୍ଞାତି-ମିତ୍ର-ବନ୍ଧୁ ଜନ । ତେଣେ ବେଷ୍ଟିତ ହୋଇ ପୁଣ ॥ ୧୦୭
ପତ୍ନୀସହିତ ହଳଧାରୀ । ସେ ଅବଭୃଥ ସ୍ନାନ କରି ॥ ୧୦୮
ଦିବ୍ୟବସନ-ଅଳଂକାରେ । ଶୋଭା ପାଇଲେ ସେ କାଳରେ ॥ ୧୦୯
ନିଜ କିରଣେ ତାରାପତି । ଯେସନେ ଶୋଭା ଦିଶେ ଅତି ॥ ୧୧୦
୩୩ ପ୍ରମାଣ ନ ଜାଣି ଯାହାର । ଅନନ୍ତ ଅତି ବଳୀୟାର ॥ ୧୧୧
ମାୟାରେ ମନୁଷ୍ୟଶରୀର । ଯେ ଧରିଛନ୍ତି ନୀଳାମ୍ବର ॥ ୧୧୨
ତାଙ୍କର ଏ ରୂପରେ ଅତି । ଅସଂଖ୍ୟ କର୍ମମାନ ଛନ୍ତି ॥ ୧୧୩
୩୪ ଅଦ୍ଭୁତ କର୍ମମାନ ଯାର । ଅନନ୍ତ ସେ ବଳରାମର ॥ ୧୧୪
ଏ କର୍ମମାନ ସାୟଂ ପ୍ରାତ । ସ୍ମରଣ କରଇ ଯେ ନିତ୍ୟ ॥ ୧୧୫
ବିଷ୍ଣୁର ବଲ୍ଲଭ ସେ ଜନ । ତତ୍‌କ୍ଷଣେ ହୁଅଇ ବହନ ॥ ୧୧୬
ତୀର୍ଥ ବୁଲିଲେ ଯଉଁ ବଳ । ଚିନ୍ତି ତାଙ୍କ ପାଦକମଳ ॥ ୧୧୭
ଦଶମସ୍କନ୍ଧ କରି ଗୀତ । ହରଷ ଦୀନବନ୍ଧୁ ଚିତ୍ତ ॥ ୧୧୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବଳଦେବତୀର୍ଥଯାତ୍ରାନିରୂପଣଂ
ନାମ ଉନାଶୀତିତମୋଽଧ୍ୟାୟଃ ॥

---

୧. ଫେର ।

## ଅଶୀତିତମ ଅଧ୍ୟାୟ

ଅଥାଶୀତିତମେ କୃଷ୍ଣଃ ଶ୍ରୀଦାମାନଂ ଗୃହାଗତମ୍ ।
ସଂପୂଜ୍ୟାପୃଚ୍ଛଦର୍ଥେପ୍ସୁଂ ଗୁରୁବାସକଥାଂ ମୁଦା ॥ ୧
ସୁରାରିମାରକୋ ହରିଃ ପୁରା ଚକାର ଶଂ ସତାମ୍ ।
ଅତଃ ପରଂ ବିନୈବ ତନ୍ନିଜୋପକାରମାଚରତ୍ ॥ ୨

ଶ୍ରୀରାଜୋବାଚ

୧ ବ୍ୟାସଙ୍କ ସୁତଙ୍କୁ ଏମନ୍ତ । ପୁଚ୍ଛିଲେ ରାଜା ପରୀକ୍ଷିତ ॥ ୧
ଅପରିମିତ ବୀର୍ଯ୍ୟ ଯାର । ମହାତ୍ମା ସେହୁ ମୁକୁନ୍ଦର ॥ ୨
ହେ ପ୍ରଭୋ ଆହେ ଭଗବାନ । ଯେ ଆନ ପରାକ୍ରମମାନ ॥ ୩
ଆମ୍ଭେ ସେ ଚରିତମାନଙ୍କୁ । ଇଚ୍ଛା କରୁଛୁଁ ଶୁଣିବାକୁ ॥ ୪
୨ ଉତ୍ତମଶ୍ଳୋକ ଭଗବାନ । ଯେ ତାଙ୍କ ଦିବ୍ୟ କଥାମାନ ॥ ୫
ତାହା ଶ୍ରବଣ କରିବାରେ । ହେ ବ୍ରହ୍ମରଷି ! ଏ ସଂସାରେ ॥ ୬
ପଣ୍ଡିତ ହୋଇ କେ ମାନବ । ଏଥିରୁ ଅବା ନିବର୍ତ୍ତିବ ॥ ୭
କନ୍ଦର୍ପଶରମାନଙ୍କରେ । ବିଷଣ୍ଣ ହୁଅନ୍ତେ ନିତ୍ୟରେ ॥ ୮
୩ ବଚନ ବୋଲାଯାଇ ତାକୁ । ଯେ ଗୁଣେ କୃଷ୍ଣର ଗୁଣକୁ ॥ ୯
ଯେ କରେ କର୍ମ ସେ କୃଷ୍ଣର । ସେହୁ ଦୁହିଁକି ବୋଲି କର ॥ ୧୦
ସ୍ଥିର-ଜଙ୍ଗମମାନଙ୍କରେ । ଯେ ବସିଛନ୍ତି ନିରନ୍ତରେ ॥ ୧୧
ଯେ ସେ କୃଷ୍ଣଙ୍କୁ କରେ ଧ୍ୟାନ । ତାହାକୁ ବୋଲାଯାଇ ମନ ॥ ୧୨
ଯେ ଶୁଣେ ତା' ପୁଣ୍ୟକଥାକୁ । କର୍ଣ୍ଣ ବୋଲାଯାଇ ତାହାକୁ ॥ ୧୩
୪ ସ୍ଥାବର ଜଙ୍ଗମେ ଯେ ଛନ୍ତି । ପ୍ରତିମା ଆଦି ରୂପେ ଖ୍ୟାତି ॥ ୧୪
ତା' ଲିଙ୍ଗ ବୋଲି ମଣି ତାକୁ । ଯେ ନମେ, ଶିର ବୋଲି[୧] ତାକୁ ॥ ୧୫
ତାହାକୁ ମାତ୍ର ଯେ ଚାହିଁଇ । ନୟନ ବୋଲି ତାକୁ କହି ॥ ୧୬
ବିଷ୍ଣୁର ଭକତଜନର । ପାଦୋଦକକୁ ନିରନ୍ତର ॥ ୧୭
ବହନ୍ତି ଯଉଁମାନେ ନିତି । ଅଙ୍ଗ ବୋଲିଣ ସେ ବୋଲାନ୍ତି ॥ ୧୮

ଶ୍ରୀସୂତ ଉବାଚ

୫ ସୂତ କହନ୍ତି ତୋଷମନେ । ଶୌନକ ଆଦି ଋଷିଜନେ ॥ ୧୯
ରାଜା ପଚାରନ୍ତେ ଏମନ୍ତ । ସେ ଭଗବାନ ବ୍ୟାସସୁତ ॥ ୨୦
ଯେ ବାସୁଦେବ ଭଗବାନ । ତାହାଙ୍କ ଠାରେ ନିଜ ମନ ॥ ୨୧
ନିମଗ୍ନ କରି ସେ ରାଜାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୨୨

ଶ୍ରୀଶୁକ ଉବାଚ

୬ କହନ୍ତି ବ୍ୟାସଙ୍କ କୁମର । ଯେ ବ୍ରହ୍ମଜ୍ଞାନୀ ମଧ୍ୟେ ବର ॥ ୨୩

---

୧. ବୋଲି = କୁହାଯାଏ ।

ପ୍ରଶାନ୍ତ ଆତ୍ମା ଅଟେ ଯାର । ଜିଣିଲା ଇନ୍ଦ୍ରିୟନିକର ।।
ଇନ୍ଦ୍ରିୟ-ଅର୍ଥମାନଙ୍କରେ । ବିରକ୍ତ ଯେ ଅଟେ ନିତ୍ୟରେ ।।
ଏ ରୂପେ କେହି ବିପ୍ର ଥିଲା । କୃଷ୍ଣର ସଖା ସେ ହୋଇଲା ।।
୭ ଯେ ଅବା ମିଳେ ଯଦୃଚ୍ଛାରେ । ସେ ବିପ୍ର ତହିଁ ସନ୍ତୋଷରେ ।।
ଗୃହସ୍ଥ ଆଶ୍ରମେ ବର୍ତ୍ତଇ । କୁତ୍ସିତ ବସ୍ତ୍ର ପିନ୍ଧିଥାଇ ।।
ତା' ଭାର୍ଯ୍ୟା ଅଟଇ ତେସନ । ପିନ୍ଧଇ କୁତ୍ସିତ ବସନ ।।
ଯା' ମିଳେ ପତିକି ତା' ଦେଇ । କ୍ଷୁଧାରେ ଜୀର୍ଣ୍ଣ ହୋଇଥାଇ ।।
୮ ଶୀର୍ଣ୍ଣ ହୋଇଛି ଅତିଶୟେ । ଆବର କମ୍ପୁଅଛି କାୟେ ।।
ସେ ଅଟେ ପତିବ୍ରତା ନାରୀ । ଗୃହସ୍ଥ ଠାକୁ ଯାଇ କରି ।।
ଶୁଷ୍କ ବଦନେ ଏ ବାକ୍ୟକୁ । ଦରିଦ୍ରା କହିଲା ଭର୍ତ୍ତାକୁ ।।
୯ ହେ ପ୍ରିୟ ! ତୁମ୍ଭେ ସେ ସାକ୍ଷାତ । ଭଗବାନର ଅଟ ମିତ୍ର ।।
ସେ ହରି ଲକ୍ଷ୍ମୀର ଯେ ପତି । ବ୍ରହ୍ମଣ୍ୟ ଶରଣ୍ୟ ଅଟନ୍ତି ।।
ମଧ୍ୟେ ସାତ୍ୱତମାନଙ୍କର । ସେ ଭଗବାନ ଅଟେ ବର ।।
୧୦ ସାଧୁଙ୍କ ପରାୟଣ ସେହି । ହେ ମହାଭାଗ ! ତାଙ୍କୁ ଯାଇ ।।
କୁଟୁମ୍ବବନ୍ତ ତୁମ୍ଭେ ପୁଣ । ଶୀର୍ଣ୍ଣ ହେଉଛ ଅନୁକ୍ଷଣ ।।
ମାଗନ୍ତେ ବହୁତ ଧନକୁ । ସେ ନିଶ୍ଚେ ଦେବେଟି ତୁମ୍ଭଙ୍କୁ ।।
୧୧ ଯେ ବୃଷ୍ଣି-ଭୋଜ-ଅନ୍ଧଙ୍କର । ଉପରେ ଅଟନ୍ତି ଈଶ୍ୱର ।।
ଦ୍ୱାରକାରେ ସେ ଭଗବାନ । ରହିଅଛନ୍ତି ବର୍ତ୍ତମାନ ।।
ଚରଣପଦ୍ମକୁ ନିତ୍ୟରେ । ସ୍ମରଣ କରନ୍ତି ଯେ ନରେ ।।
ସେ ନରମାନଙ୍କୁ ହିଁ ପୁଣ । ନିଜକୁ କରନ୍ତି ପ୍ରଦାନ ।।
ଅତି ଅଭୀଷ୍ଟ ଯେ ନୁହଇ । ସେ ଅର୍ଥ-କାମମାନଙ୍କୁ ହିଁ ।।
ଭଜନ୍ତି ଯେ ଇଚ୍ଛା କରିଣ । ସେ ଲୋକମାନଙ୍କୁ ହିଁ ପୁଣ ।।
ଜଗତଗୁରୁ ଭଗବାନ । କିମ୍ପା ନ କରିବେ ପ୍ରଦାନ ।।
୧୨ ଏ ରୂପେ ଭାର୍ଯ୍ୟା ପୁନଃପୁନ । ବହୁତ କରନ୍ତେ ପ୍ରାର୍ଥନ ।।
ସେ ବିପ୍ର ମନେ ବିଚାରିଲା । ଏ ତ ପରମ ଲାଭ ହେଲା ।।
ଉତ୍ତମଶ୍ଳୋକ ଭଗବାନ । ତାଙ୍କୁ ଯା' କରିବି ଦର୍ଶନ ।।
୧୩ ବିପ୍ର ଏମନ୍ତ ବିଚାରିଲା । ଯିବା ନିମିତ୍ତେ ବୁଦ୍ଧି କଲା ।।
ଆମ୍ଭର ଗୃହେ ଗୋ କଲ୍ୟାଣି । ଅଛି କି କିଛି[1] ଦିଅ ଆଣି ।।
୧୪ ପୃଥୁତଣ୍ଡୁଳ[2] ମୁଷ୍ଟି ଚାରି । ବିପ୍ରଙ୍କୁ ମାଗି ଆଣି କରି ।।
ଖଣ୍ଡିତ ବସ୍ତ୍ରଖଣ୍ଡକରେ । ତାହାକୁ ବାନ୍ଧିଣ ଯତ୍ନରେ ।।
ସେ ନାରୀ ସେ ଭେଟିଦ୍ରବ୍ୟକୁ । ପ୍ରଦାନ କଲାକ ଭର୍ତ୍ତାକୁ ।।

୧. ଉପାୟନ (ଭେଟି)। ୨. ଚୂଡ଼ା।

୧୫ ସେ ବିପ୍ରବର ତା' ଘେନିଲା । ଦ୍ୱାରକାପୁରକୁ ଚଳିଲା ॥ ୫୫
କୃଷ୍ଣର ଦରଶନ ମୁହିଁ । କେମନ୍ତ ରୂପେ ଲଭିବଇଁ ॥ ୫୬
ମାର୍ଗରେ କରନ୍ତେ ଗମନ । ଏମନ୍ତ ବିଚାରିଲା ମନ ॥ ୫୭
୧୬ ଯେ ରକ୍ଷାସ୍ଥାନ ସୈନ୍ୟଙ୍କର । ଗୁଳ୍ମ ଅଟଇ ନାମ ତାର ॥ ୫୮
ସେ ତିନି ଗୁଳ୍ମକୁ ଲଙ୍ଘିଣ । ତିନି ପ୍ରତୋଳୀ[୧] ଲଙ୍ଘି ପୁଣ ॥ ୫୯
ଅଚ୍ୟୁତ ଧର୍ମ ଯାହାଙ୍କର । ସେହି ଅନ୍ଧକ-ବୃଷ୍ଣିଙ୍କର ॥ ୬୦
ଅଗମ୍ୟ ପୁରଙ୍କ ମଧ୍ୟରେ । ବିପ୍ର ଚଳିଲା ସେ କାଳରେ ॥ ୬୧
୧୭ ସେହି ରୂପରେ ଶ୍ରୀକୃଷ୍ଣର । ଷୋଳ ସହସ୍ର ଭାର୍ଯ୍ୟାଙ୍କର ॥ ୬୨
ଶ୍ରୀମନ୍ତ ପୁରଙ୍କ ମଧ୍ୟରେ । ବିପ୍ର ମିଳିଲା ଏକପୁରେ ॥ ୬୩
ହେ ନୃପ ! ଯେମନ୍ତ ରୂପରେ । ମିଳିଲା ବ୍ରହ୍ମ-ଆନନ୍ଦରେ ॥ ୬୪
୧୮ ଶ୍ରୀହରି ପ୍ରିୟାପଲଙ୍କରେ । ବସିଣ ଥିଲେ ସେ କାଳରେ ॥ ୬୫
ବିପ୍ରକୁ ଦୂରରୁ ଦେଖିଣ । ତତ୍‌କାଳ ଆସନୁଁ ଉଠିଣ ॥ ୬୬
ପାଛୋଟି ଯାଇ ହରଷରେ । ଭିଡ଼ିଲେ ସେ ବେନି ଭୁଜରେ ॥ ୬୭
୧୯ ଯେ ପ୍ରିୟ ସଖା ଆପଣାର । ସେ ବିପ୍ର-ଋଷି ସୁଦାମାର ॥ ୬୮
ଅଙ୍ଗସଙ୍ଗରେ ସୁଖୀ ହୋଇ । ସେ ପଦ୍ମନେତ୍ର ଭାବଗ୍ରାହୀ ॥ ୬୯
ବେନିନେତ୍ରରୁ ହୋଇ ପ୍ରୀତ । ଆନନ୍ଦ-ଅଶ୍ରୁ କଲେ ତ୍ୟକ୍ତ ॥ ୭୦
୨୦ | ଶ୍ରୀକୃଷ୍ଣ ଏଥୁ ଅନ୍ତେ ଯାଇ । ସଖାଙ୍କୁ ପଲଙ୍କେ ବସାଇ ॥ ୭୧
୨୧ | ପୂଜାସାମଗ୍ରୀ ଆଣି କରି । ସ୍ୱୟେଂ ପୂଜିଲେ ନରହରି ॥ ୭୨
ସେ ବିପ୍ରପାଦକୁ ଜଳରେ । ଧଉତ କଲେ ବେନି କରେ ॥ ୭୩
ଲୋକଙ୍କୁ କରନ୍ତି ପାବନ । ହେ ନୃପ ! ଯଉଁ ଭଗବାନ ॥ ୭୪
ସେ ବିପ୍ରପାଦୋଦକ ଶିରେ । ଗ୍ରହଣ କଲେ ହରଷରେ ॥ ୭୫
ଯେ ଦିବ୍ୟ ଗନ୍ଧ ଯେ ଚନ୍ଦନ । ଅଗୁରୁ କୁଙ୍କୁମ ଯେ ଆନ ॥ ୭୬
ଏମାନଙ୍କରେ ମିତ୍ରକାୟ । ଲେପନ କଲେ ଅତିଶୟ ॥ ୭୭
୨୨ ସୁରଭି ଧୂପମାନଙ୍କରେ । ଦିବ୍ୟ ପ୍ରଦୀପ-ଆବଳିରେ ॥ ୭୮
ହରଷେ ମିତ୍ରଙ୍କୁ ପୂଜିଲେ । ତାମ୍ବୂଳ ନିବେଦନ କଲେ ॥ ୭୯
ଧେନୁଙ୍କୁ ଅଗ୍ରରେ ବାନ୍ଧିଲେ । କୁଶଳ କଥା ପଚାରିଲେ ॥ ୮୦
୨୩ ଯେ ଅଟେ ଅତ୍ୟନ୍ତ ମଳିନ । ପିନ୍ଧିଛି କୁତ୍ସିତ ବସନ ॥ ୮୧
ଯା' ଦେହ ପୂରିଛି ଶିରାରେ । ଯେ ଅତି ଦୁର୍ବଳ କ୍ଷୁଧାରେ ॥ ୮୨
ବିଞ୍ଚିଲେ ସେ ବିପ୍ରଙ୍କୁ ପୁଣି । ଚାମର ଘେନିଣ ରୁକ୍ମିଣୀ ॥ ୮୩
୨୪ ନିର୍ମଳ କୀର୍ତ୍ତି ଅଟେ ଯାର । ସେ କୃଷ୍ଣ ପ୍ରୀତିରେ ସତ୍ୱର ॥ ୮୪
ସେ ଅବଧୂତ ବ୍ରାହ୍ମଣଙ୍କୁ । ପୂଜନ୍ତେ ଦେଖିଣ ତାହାଙ୍କୁ ॥ ୮୫
ଅନ୍ତଃପୁରରେ ଯେତେ ଜନେ । ବିସ୍ମୟ ଲଭିଲେ ସେମାନେ ॥ ୮୬

---

୧. ନଗର କିମ୍ବା ଗ୍ରାମମଧ୍ୟବର୍ତ୍ତୀ ପ୍ରଧାନ ମାର୍ଗ ।

୨୫ ଏ ଭିକ୍ଷୁ ଅଟେ ଅବଧୂତ । ସଂସାରେ ଏ ଅତି ନିନ୍ଦିତ ॥ ୮୭
ଅଧମ ଦରିଦ୍ର ଭିକାରୀ । କି ପୁଣ୍ୟ ଥିଲା ପୂର୍ବେ କରି ॥ ୮୮
୨୬ ଯେ ଅଟେ ଗୁରୁ ତ୍ରିଲୋକର । ନିବାସ ଅଟନ୍ତି ଲକ୍ଷ୍ମୀର ॥ ୮୯
ସେ ନରହରି ଏ ବିପ୍ରକୁ । କଲେ ଉତ୍ତମ ପୂଜନକୁ ॥ ୯୦
ଯେ ପ୍ରିୟା ଥିଲେ ପଲଙ୍କରେ । ତାହାଙ୍କୁ ଛାଡ଼ିଣ ସତ୍ୱରେ ॥ ୯୧
ବିପ୍ରକୁ କଲେ ଆଲିଙ୍ଗନ । ରାମଙ୍କୁ କରନ୍ତି ଯେସନ ॥ ୯୨
୨୭ ଗୁରୁଙ୍କ ଗୃହେ ପୂର୍ବଦିନେ । ରହି ଯେ ଥିଲେ ବେନି ଜନେ ॥ ୯୩
ଲଳିତ କଥା ଆପଣାର । ତହିଁ କହିଲେ ପରସ୍ପର ॥ ୯୪
ହସ୍ତକୁ ହସ୍ତରେ ଧରିଣ । ବସିଲେ ହେ ରାଜନ ପୁଣ ॥ ୯୫

ଶ୍ରୀଭଗବାନୁବାଚ

୨୮ ମିତ୍ରଙ୍କୁ ଏରୂପେ ବଚନ । କହୁ ଅଛନ୍ତି ଭଗବାନ ॥ ୯୬
ଯାଙ୍କୁ ଦକ୍ଷିଣା ଦେଲୁଁ ଆମ୍ଭେ । ସେ ଗୁରୁଘରୁ ଆସି ତୁମ୍ଭେ ॥ ୯୭
ଆହେ ଧର୍ମଜ୍ଞ ବ୍ରହ୍ମ ! ଶୁଣ । ନିଶ୍ଚୟେ ଉତ୍ତମ କରିଣ ॥ ୯୮
ନିଜ ସମାନ ଭାର୍ଯ୍ୟାକୁ ହିଁ । ବିବାହ ହେଲଣି କି ନାହିଁ ॥ ୯୯
୨୯ ପ୍ରାୟଶଃ ଗୃହେ ତୁମ୍ଭ ଚିତ୍ତ । କାମରେ ନୋହିଛି ବିହତ ॥ ୧୦୦
ଆହେ ପଣ୍ଡିତ ! ସେ ରୂପରେ । ଧନବସ୍ତ୍ରାଦିମାନଙ୍କରେ ॥ ୧୦୧
ଅତି ପ୍ରୀତିକି ଲଭୁନାହିଁ । ଏମନ୍ତ ଜାଣିଲଇଁ ମୁହିଁ ॥ ୧୦୨
୩୦ ଯା' ଚିତ୍ତ କାମେ ନୋହେ ହତ । କେବଣ ପୁରୁଷ ଏମନ୍ତ ॥ ୧୦୩
ଈଶ୍ୱରମାୟାରେ ରଚିତ । ବିଷୟବାସନା ଯେ ଖ୍ୟାତ ॥ ୧୦୪
ତାହାଙ୍କୁ ନିତ୍ୟରେ ଛାଡ଼ନ୍ତି । କର୍ମମାନଙ୍କୁ କରୁଥାନ୍ତି ॥ ୧୦୫
ଲୋକସଂଗ୍ରହନିମିତ୍ତରେ । ଯେମନ୍ତ ରୂପେ ଏ ସଂସାରେ ॥ ୧୦୬
ଈଶ୍ୱର ହୋଇଲେ ହେଁ ମୁହିଁ । କର୍ମମାନଙ୍କୁ କରୁଥାଇଁ ॥ ୧୦୭
୩୧ ତୁମ୍ଭ ଆମ୍ଭର ପୂର୍ବକାଳେ । ନିବାସ ହେଲା ଗୁରୁକୁଳେ ॥ ୧୦୮
ତାହାକୁ କର କି ସ୍ମରଣ । ହେ ମିତ୍ର ! ପଚାରୁଛି ପୁଣ ॥ ୧୦୯
ଯଉଁ ଗୁରୁଠାରୁ ବ୍ରାହ୍ମଣ । ଯେ ପରମାମୃତତତ୍ତ୍ୱ ପୁଣ ॥ ୧୧୦
ଉତ୍ତମ କରି ଜାଣି ତାକୁ । ସଂସାରୁ ଲଭଇ ମୋକ୍ଷକୁ ॥ ୧୧୧
୩୨ ସଂସାରେ ଜନ୍ମ ଯାହାଠାରୁ । ସେ ପିତା ଅଟେ ଆଦ୍ୟ ଗୁରୁ ॥ ୧୧୨
ଯେବଣ ବିପ୍ରଠାରୁ ପୁଣ । ବ୍ରତାଦି ବେଦ-ଅଧ୍ୟାପନ ॥ ୧୧୩
କରେ ଦ୍ୱିତୀୟ ଗୁରୁ ସେହି । ପ୍ରଥମୁଁ ପୂଜ୍ୟ ସେ ଅଟଇ ॥ ୧୧୪
ଆଶ୍ରମବନ୍ତ ପ୍ରାଣିଙ୍କର । ଯେ କରେ ଜ୍ଞାନକୁ ପ୍ରଚାର ॥ ୧୧୫
[୧]ସେ ଅତି ପୂଜ୍ୟରୂପେ ଖ୍ୟାତ । ମୁଁ ପୁଣି ଅଟଇ ଯେମନ୍ତ ॥ ୧୧୬

୧. ଏଠାରେ ତିନିପ୍ରକାର ଗୁରୁଙ୍କ କଥା କୁହାଯାଉଛି :- (୧) ଜନ୍ମଦାତା ଗୁରୁ, (୨) କର୍ମଜ୍ଞାନଦାତା ଗୁରୁ, (୩) ବ୍ରହ୍ମଜ୍ଞାନଦାତା ଗୁରୁ, ଏହି ତିନିଙ୍କ ମଧ୍ୟରେ ଉତ୍ତରୋତ୍ତର ଉତ୍କର୍ଷ ବିଦ୍ୟମାନ ।

୩୩ ହେ ବ୍ରହ୍ମବିଦ ! ଏ ସଂସାରେ । ବର୍ଣ୍ଣ-ଆଶ୍ରମୀଙ୍କ ମଧ୍ୟରେ ॥ ୧୧୭
ସେମାନେ ପଣ୍ଡିତ ଅଟନ୍ତି । ମନୁଷ୍ୟଜନ୍ମରେ ଯେ ନିତି ॥ ୧୧୮
ମୁଁ ଗୁରୁରୂପୀ ମୋହଠାରୁ । ଲଭି ଉପଦେଶ, ତହିଁରୁ ॥ ୧୧୯
ସଂସାରସିନ୍ଧୁକୁ ସୁଖରେ । ତରିଯାଆନ୍ତି ନିଶ୍ଚିନ୍ତରେ ॥ ୧୨୦
୩୪ ଯେ ଧର୍ମ ଗୃହ-ଆଶ୍ରମର । ଯେ ବ୍ରହ୍ମଚର୍ଯ୍ୟଧର୍ମ ଆର ॥ ୧୨୧
ଯେ ବାନପ୍ରସ୍ଥଧର୍ମମାନ । ଯେ ଭିକ୍ଷୁ-ଯତି ଧର୍ମ ଆନ ॥ ୧୨୨
ଏମାନଙ୍କରେ ମୁଁ ଈଶ୍ୱର । ତୁଷ୍ଟ ନୁହଇ ସେ ପ୍ରକାର ॥ ୧୨୩
ମୁଁ ସର୍ବପ୍ରାଣି-ଆତ୍ମା ଖ୍ୟାତ । ଗୁରୁର ସେବାରେ ଯେମନ୍ତ ॥ ୧୨୪
୩୫ ଥାଆନ୍ତେ ଗୁରୁଙ୍କ ମନ୍ଦିର । ହେ ମିତ୍ର ଆମ୍ଭମାନଙ୍କର ॥ ୧୨୫
ଯେ ବା ଚରିତ ହେଲା ତହିଁ । ସ୍ମରଣା କର କି ତା' ନାହିଁ ॥ ୧୨୬
ତହିଁ କେବଣ ସମୟରେ । କାଷ୍ଠ ଆଣିମା ନିମିତ୍ତରେ ॥ ୧୨୭
ଗୁରୁଙ୍କ ପତ୍ନୀ ଯେ ଆମ୍ଭଙ୍କୁ । ପଠିଆଇଲେ ବିପିନକୁ ॥ ୧୨୮
୩୬ ଆମ୍ଭେ ସେ ମହା ଅରଣ୍ୟରେ । ପ୍ରବେଶ ହୋନ୍ତେ ସେ କାଳରେ ॥ ୧୨୯
ଅକାଳେ ଆହେ ଦ୍ୱିଜବର । ବାତ ବରଷା ମହାଘୋର ॥ ୧୩୦
ନିଷ୍ଠୁର ଜଳଦଗର୍ଜନ । ଗଗନେ ହେଲା ଉତପନ୍ନ ॥ ୧୩୧
୩୭ ସେହି ସମୟରେ ଆବର । ଅସ୍ତ ହୋଇଲେ ଦିବାକର ॥ ୧୩୨
ଅନ୍ଧକାରରେ ଦଶ ଦିଗ । ଅତି ଆବୃତ ହେଲା ବେଗ ॥ ୧୩୩
ଯେ ଉଚ୍ଚ ନୀଚ ସ୍ଥାନମାନ । ଜଳରେ ହୋଇଲେ ଆଚ୍ଛନ୍ନ ॥ ୧୩୪
୩୮ ସେ ଜଳସକାଶରୁ ମହୀ । ଜଣା ନ ଗଲା କିଛି ତହିଁ ॥ ୧୩୫
ଆମ୍ଭେ ସମସ୍ତେ ଅତ୍ୟନ୍ତରେ । ସେ ମହାବାତ ବରଷାରେ ॥ ୧୩୬
ତାଡ଼ିତ ହୋଇ ବାରେ ବାରେ । ଜଳସଂପୂର୍ଣ୍ଣ ସେ ବନରେ ॥ ୧୩୭
ପରସ୍ପରରେ ଏଥୁ ଅନ୍ତେ । ଦିଗମାନଙ୍କୁ ବିଚାରନ୍ତେ ॥ ୧୩୮
ହସ୍ତକୁ ଧରିଣ ହସ୍ତରେ । ଭ୍ରମଣ କଲାଇଁ ଆତୁରେ ॥ ୧୩୯
୩୯ ଏ କଥା କରିଣ ଗୋଚର । ଉଦିତ ହେଉଁ ଦିବାକର ॥ ୧୪୦
ସେ ସାନ୍ଦୀପନି ଗୁରୁ ଯାଇ । ଆମ୍ଭ ସମସ୍ତ ଶିଷ୍ୟଙ୍କୁ ହିଁ ॥ ୧୪୧
ଖୋଜନ୍ତେ ସେ ଆଚାର୍ଯ୍ୟ ବନ । ଦେଖିଲେ ଆର୍ତ୍ତ ଆମ୍ଭ ମନ ॥ ୧୪୨
୪୦ ମୋ' ଅର୍ଥେ ଆହେ ପୁତ୍ରମାନେ । ଦୁଃଖିତ ହେଲ ତୁମ୍ଭେ ବନେ ॥ ୧୪୩
ନିଶ୍ଚୟେ ପ୍ରାଣିମାନଙ୍କର । ଅତ୍ୟନ୍ତ ପ୍ରିୟ ଯେ ଶରୀର ॥ ୧୪୪
ତାହାକୁ କରି ଅନାଦର । ମୋ ଠାରେ ହୋଇଲ ତତ୍ପର ॥ ୧୪୫
୪୧ ତୁମ୍ଭେ ସମସ୍ତ ଶିଷ୍ୟମାନେ । ଏହି କଥାରେ ଆଜ ବନେ ॥ ୧୪୬
ପ୍ରତ୍ୟୁପକାର ଗୁରୁଙ୍କର । କଲ ଉତ୍ତମ ପରକାର ॥ ୧୪୭
ସମସ୍ତ ଅର୍ଥ ହୋଏ ଯହିଁ । ସେ ଦେହ ଗୁରୁଙ୍କର ତହିଁ ॥ ୧୪୮
ବିଶୁଦ୍ଧଭାବେ ତୁମ୍ଭେ ପୁଣ । ଯାହାଟି କଲ ସମର୍ପଣ ॥ ୧୪୯

| | | | | |
|---|---|---|---|---|
| ୪୨ | ହେ ଦ୍ୱିଜଶ୍ରେଷ୍ଠମାନେ ମୁହିଁ | ତୁମ୍ଭଙ୍କୁ ସଂତୋଷ ହେଲଇଁ | ॥ | ୧୫୦ |
| | ତୁମ୍ଭର ମନୋରଥ ଯେହୁ | ସେ ଆଜ ସତ୍ୟ ହୋଇ ହଉ | ॥ | ୧୫୧ |
| | ଯେ ଇହପରଲୋକ ଦୁଇ | ତହିଁ ତୁମ୍ଭର ପୂର୍ଣ୍ଣ ହୋଇ | ॥ | ୧୫୨ |
| | ହୁଅନ୍ତୁ ସର୍ବ ବେଦମାନ | ଯା' ତୁମ୍ଭେ କଲ ଅଧ୍ୟୟନ | ॥ | ୧୫୩ |
| ୪୩ | ଏ ରୂପେ ଅନେକ ପ୍ରକାରେ | ଥାଆନ୍ତେ ଗୁରୁଙ୍କ ଘରରେ | ॥ | ୧୫୪ |
| | ଯେ ଆମ୍ଭମାନଙ୍କର ପୁଣ | ହେଲା ତା' କର କି ସ୍ମରଣ | ॥ | ୧୫୫ |
| | ଅନୁଗ୍ରହରେ ଗୁରୁଙ୍କର | ଶାନ୍ତିରେ ପୂର୍ଣ୍ଣ ହୋଏ ନର | ॥ | ୧୫୬ |

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୪୪ | ଏହା କହନ୍ତେ ନାରାୟଣ | ତାହାଙ୍କୁ କହୁଛି ବ୍ରାହ୍ମଣ | ॥ | ୧୫୭ |
| | ହେ ଜଗଦ୍‌ଗୁରୁ ଦେବଦେବ | ଆମ୍ଭମାନଙ୍କରେ ହେଁ ସର୍ବ | ॥ | ୧୫୮ |
| | ସଂପନ୍ନ ହୋଇଛି ଉତ୍ତମ | ତୁମ୍ଭେ ଯେ ଅଟ ସତ୍ୟକାମ | ॥ | ୧୫୯ |
| | ଆମ୍ଭର ଯା' ତୁମ୍ଭ ସଙ୍ଗରେ | ନିବାସ ହେଲା ଗୁରୁପୁରେ | ॥ | ୧୬୦ |
| ୪୫ | ବେଦାଖ୍ୟ ବ୍ରହ୍ମ ଦେହ ଯାର | ଯେ ଜନ୍ମସ୍ଥାନ ମଙ୍ଗଳର | ॥ | ୧୬୧ |
| | ସେ ତୋର ଗୁରୁଘରେ ସ୍ଥିତି | ଯାହା ଏ ବିଡମ୍ବନ ଅତି | ॥ | ୧୬୨ |
| | ଦରିଦ୍ର ସୁଦାମାର ତୁଲେ | ଯେ ବସି ସଂଭାଷଣ କଲେ | ॥ | ୧୬୩ |
| | ସେ କୃଷ୍ଣପାଦପଦ୍ମ ଦୁଇ | ବ୍ରାହ୍ମଣ ଦୀନବନ୍ଧୁ ଧ୍ୟାୟି | ॥ | ୧୬୪ |
| | ଦଶମସ୍କନ୍ଧ ଭାଷାଗୀତେ | ବର୍ଣ୍ଣିଲା ସାଧୁଙ୍କର ହିତେ | ॥ | ୧୬୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଦାମଚରିତଂ
ନାମ ଅଶୀତିତମୋଽଧ୍ୟାୟଃ ॥

## ଏକାଶୀତିତମ ଅଧ୍ୟାୟ

ଏକାଶୀତିତମେ ସଖ୍ୟୁର୍କଗ୍ଧ୍ୱା ପୃଥୁକତଣ୍ଡୁଳାନ୍ ।
ଶ୍ରିୟଂ ନିର୍ମିତବାନିନ୍ଦ୍ରଦୁର୍ଲଭାଂ ତୁ ତଦାଶ୍ରମେ ॥ ୧

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ ଆତ୍ମଜ | ହେ ପରୀକ୍ଷିତ ମହାରାଜ | ॥ | ୧ |
| | ସେ ହରି ଏମନ୍ତରୂପରେ | ସେ ବିପ୍ରବର ସଙ୍ଗତରେ | ॥ | ୨ |
| | କହନ୍ତି ଦିବ୍ୟ କଥାମାନ | [1]ଜାଣନ୍ତି ସର୍ବ-ପ୍ରାଣିମନ | ॥ | ୩ |
| | ପୃଥୁକ ତଣ୍ଡୁଳକୁ ପାଇ | ଏ ଆଣି ଲାଜେ ନ ଦିଅଇ | ॥ | ୪ |

୧. ମୋ ପାଇଁ ଚୂଡ଼ା ଆଣି ମଧ୍ୟ ଦେବାକୁ ଲଜ୍ଜିତ ହେଉଅଛି ବୋଲି ଜାଣି ।

୨ ଏମନ୍ତ ଜାଣି ସେ ବିପ୍ରକୁ । ହସି ବୋଇଲେ ଯେ ବାକ୍ୟକୁ ।। ୫
ସାଧୁଙ୍କ ଗତି ଭଗବାନ । ବ୍ରହ୍ମଣ୍ୟ ଦେବକୀନନ୍ଦନ ।। ୬
ସେ ପ୍ରିୟ ବିପ୍ରକୁ ହସନ୍ତେ । କହିଲେ ସ୍ନେହରେ ଚାହାଁନ୍ତେ ।। ୭

ଶ୍ରୀଭଗବାନୁବାଚ

୩ ଗୃହରୁ କି ଭେଟି-ଦ୍ରବ୍ୟକୁ । ହେ ମିତ୍ର ଆଣିଛ ଦେବାକୁ ।। ୮
ସ୍ନେହରେ ଭକ୍ତଜନେ ଆଣି । ଅଳ୍ପ ହିଁ ଦେଲେ ମୋତେ ପୁଣି ।। ୯
ସେ ମୋର ହୁଅଇ ବହୁତ । ବହୁତ ଦେଲେହେଁ ଅଭକ୍ତ ।। ୧୦
ସେ ମୋର ସଂତୋଷନିମିତ୍ତ । କେବେ ହେଁ ନୁହଇ କଳ୍ପିତ ।। ୧୧
୪ ପତ୍ର କୁସୁମ ଫଳ ନୀର । ଭକ୍ତିରେ ମୋତେ ଯଉଁ ନର ।। ୧୨
ଦିଅଇ ଉତ୍ତମ କରିଣ । ସେ ଭକ୍ତିଯୁତ ଦ୍ରବ୍ୟ ପୁଣ ।। ୧୩
ସଂଯତ-ଆତ୍ମା ସେ ଭକ୍ତର । ସ୍ୱୟେଂ ତା' ଭୁଞ୍ଜଇଁ ସତ୍ୱର ।। ୧୪
୫ କୃଷ୍ଣ କହିଲେ ହେଁ ଏମନ୍ତ । ସେ ବିପ୍ର ହୋଇଣ ଲଜ୍ଜିତ ।। ୧୫
ସେ ହାଦେ ଲକ୍ଷ୍ମୀବଲ୍ଲଭଙ୍କୁ । ସେ ପୃଥୁତଣ୍ଡୁଳମାନଙ୍କୁ ।। ୧୬
ହେ ନୃପ ! ନ କଲା ପ୍ରଦାନ । ତଳକୁ ପୋତିଲା ବଦନ ।। ୧୭
୬ ସମସ୍ତ ପ୍ରାଣିମାନଙ୍କର । ଯେ ସାକ୍ଷୀ ଅନ୍ତଃକରଣର ।। ୧୮
ସେ ହରି ଗୋଚର କରିଣ । ବ୍ରାହ୍ମଣ ଆସିବା କାରଣ ।। ୧୯
ଚିନ୍ତିଲେ ପୂର୍ବେ ମୋତେ ଏହି । ସଂପତ୍ତିକାମେ ଭଜି ନାହିଁ ।। ୨୦
୭ ଯେ ପତିବ୍ରତା ନିଜ ନାରୀ । ଏ ବିପ୍ର ତାହା ହେତୁ କରି ।। ୨୧
ନିଜ ପତ୍ନୀର ଯେ ବା ପ୍ରିୟ । ତା' କରିବାକୁ ଅତିଶୟ ।। ୨୨
ସଖା ଅଇଲେ ଆମ୍ଭ ଠାକୁ । ସଂପତ୍ତି ଦେବି ମୁଁ ଏହାଙ୍କୁ ।। ୨୩
ଯଉଁ ସଂପଦ ଦେବଙ୍କର । ଅଟଇ ଦୁର୍ଲଭ ପ୍ରକାର ।। ୨୪
୮ ଏମନ୍ତ ଚିନ୍ତି ଭାବଗ୍ରାହୀ । ଯେ ଥିଲା କନା ବନ୍ଧା ହୋଇ ।। ୨୫
ବସନୁଁ ସେ ଦ୍ୱିଜବରର । ସେ ପୃଥୁତଣ୍ଡୁଳ ସତ୍ୱର ।। ୨୬
ଏ କି କି ବୋଲିଣ ଆପଣ । ଫେଡ଼ି ତା' କଲେକ ଗ୍ରହଣ ।। ୨୭
୯ ଯାହା ଆଣିଛ ଆହେ ମିତ । ଏ ନିଶ୍ଚେ ମୋ' ପରମ ପ୍ରୀତ ।। ୨୮
ମୁଁ ବିଶ୍ୱ-ଆତ୍ମା ମୋତେ ବଳେ । ସଂତୋଷ କଲେ ଏ ତଣ୍ଡୁଳେ ।। ୨୯
୧୦ ଏମନ୍ତ କହି ଭଗବାନ । ମୁଷ୍ଟିଏ କରିଣ ଭୋଜନ ।। ୩୦
ଦ୍ୱିତୀୟ ମୁଷ୍ଟି ଭୁଞ୍ଜିବାକୁ । ଘେନିଲେ ପୃଥୁତଣ୍ଡୁଳକୁ ।। ୩୧
ଲକ୍ଷ୍ମୀ ସେ ସମୟେ ସତ୍ୱର । ଧଇଲେ ଶ୍ରୀକୃଷ୍ଣର କର ।। ୩୨
ମୋତେ ନ କର ତୁ ପ୍ରଦାନ । ଏ ଭୟ କରି ନିଜ ମନ ।। ୩୩
୧୧ ଏ ମୁଷ୍ଟିଭୋଜନ ଯେ ପୁଣ । ହେ ବିଶ୍ୱ-ଆତ୍ମା ତା' କାରଣ ।। ୩୪
ସର୍ବସଂପତ୍ତି ବୃଦ୍ଧି ଏକେ । ହେଲାଣି ଇହ-ପରଲୋକେ ।। ୩୫
ଯାହା ଏ ହେଲା ପୁରୁଷର । କାରଣ ତୁମ୍ଭ ସଂତୋଷର ।। ୩୬

୧୨ ଅଚ୍ୟୁତମନ୍ଦିରେ ବ୍ରାହ୍ମଣ । ସେ ଦିନ ରାତ୍ରରେ ରହିଣ ॥
ଦିବ୍ୟ ଭୋଜନ ପାନ ସାରି । ହେ ନୃପ ! ଅତି ସୁଖ କରି ॥
ଆତ୍ମାକୁ ମଣିଲା ତେସନେ । ସ୍ୱର୍ଗରେ ଥିବାର ଯେସନେ ॥
୧୩ ଯେ ନିଜ ଆନନ୍ଦେ ସୁଖିତ । ସେ ବିଶ୍ୱ-ଭାବନ ଅଚ୍ୟୁତ ॥
ଉଦେ ହୁଅନ୍ତେ ଦିବାକର । ବିପ୍ରକୁ କଲେ ନମସ୍କାର ॥
ପାଛୋଟି ଗଲେ କେତେ ଦୂରେ । ସେ ବିପ୍ରମାର୍ଗେ ସେ କାଳରେ ॥
ହେ ନୃପ ! ଆନନ୍ଦିତ ହେଲା । ନିଜ ଆଶ୍ରମକୁ ଚଳିଲା ॥
୧୪ ସଖାଙ୍କ ଠାରୁ କିଛି ଧନ । ସେ ବିପ୍ରବର ନ ଲଭିଣ ॥
ଆପଣେ ତାଙ୍କୁ ନ ମାଗିଲା । ଲଜ୍ଜାରେ ସ୍ୱପୁରକୁ ଗଲା ॥
କୃଷ୍ଣର ଦରଶନ ଯେହି । ତେଣେ ସେ ଅଛି ସୁଖୀ ହୋଇ ॥
୧୫ ବ୍ରହ୍ମଣ୍ୟଦେବ ଶ୍ରୀକୃଷ୍ଣର । ଦେଖ ଏ ଆଶ୍ଚର୍ଯ୍ୟ ପ୍ରକାର ॥
ଦେଖିଲି ବ୍ରହ୍ମଣ୍ୟଭାବକୁ । ଉରେ ଧଇଲେହେଁ ରମାକୁ ॥
ମୁଁ ଯେ ଅତି ଦରିଦ୍ର ଜନ । ମୋତେ ଯା’ କଲେ ଆଲିଙ୍ଗନ ॥
୧୬ ସେ ଲକ୍ଷ୍ମୀସ୍ଥାନ କୃଷ୍ଣ କାହିଁ । କାହିଁ ଦରିଦ୍ର ପାପୀ ମୁହିଁ ॥
ବିପ୍ର ଅଧମ ମୁହିଁ ହେଲେ । ମୋତେ ସେ ଆଲିଙ୍ଗନ କଲେ ॥
୧୭ ଯହିଁରେ ଲକ୍ଷ୍ମୀ ଥିଲେ ରହି । ମୋତେ ସେ ପଲଙ୍କରେ ନେଇ ॥
ସେ ହରି କଲେ ନିବେଶନ । ଭ୍ରାତାଙ୍କୁ ବସାଇ ଯେସନ ॥
ବାଳ-ବ୍ୟଜନ ହସ୍ତେ ଘେନି । ସେ ପଟ୍ଟମହିଷୀ ରୁକ୍ମିଣୀ ॥
ମୁଁ ଶ୍ରାନ୍ତ ହୋଇଥିଲି, ମୋତେ । ବିଞ୍ଚିଲେ ଅତି ତୋଷଚିତ୍ତେ ॥
୧୮ ବ୍ରାହ୍ମଣ ଦେବତା ଯାହାର । ସେ ଦେବଦେବ ଦାମୋଦର ॥
ଚରଣ ସଂବାହନ ଆଦି । ଯେ ବା ପରମ ସେବା ବିଧି ॥
ତେଣେ ସେ ଦେବତା ପରାଏ । ମୋତେ ପୂଜିଲେ ଅତିଶୟେ ॥
୧୯ ସମସ୍ତ ନରମାନଙ୍କର । ସ୍ୱର୍ଗ-ଅପବର୍ଗ ଦୁଇର ॥
ରସାତଳର ଭୂଲୋକର । ସର୍ବସଂପତ୍ତିମାନଙ୍କର ॥
ସକଳ ସିଦ୍ଧିଙ୍କର ପୁଣ । ମୂଳ ତା’ ଚରଣ-ଅର୍ଚ୍ଚନ ॥
୨୦ ଅତ୍ୟନ୍ତ ଅଧମ ଏ ଦ୍ୱିଜ । ଧନକୁ ଲଭି କରି ଆଜ ॥
ଏ ଅତି ଉନ୍ମତ୍ତ ହୋଇଣ । ମୋତେ ନ କରିବ ସ୍ମରଣ ॥
କରୁଣାବନ୍ତ ସେ ଶ୍ରୀହରି । ନିଶ୍ଚୟେ ଏମନ୍ତ ବିଚାରି ॥
ଅଳପ ଧନକୁ ହିଁ ପୁଣ । ମୋତେ ନ କଲେ ବିତରଣ ॥
୨୧ ସେ ବିପ୍ର ହୃଦୟମଧ୍ୟରେ । ଚିନ୍ତନ୍ତେ ଏମନ୍ତ ରୂପରେ ॥
ନିଜ ଗୃହର ନିକଟରେ । ପ୍ରବେଶ ହେଲା ସେ କାଳରେ ॥
ସୂର୍ଯ୍ୟ-ଅନଳ ଚନ୍ଦ୍ରକାନ୍ତି । ଯେବଣ ବିମାନେ ଦିଶନ୍ତି ॥
ତେଣେ ଯେବଣ ପୁର ପୁଣ । ସମସ୍ତ ଦିଗେ ଆବରଣ ॥

୨୨ କୂଜିତ କୋକିଳକୁଳରେ । ଯେ ଅତି ଆକୁଳ ନିର୍ଭରେ ॥ ୭୦
ବିଚିତ୍ର ଯେ ନାନା ରୂପରେ । ସେ ଉପବନ-ଉଦ୍ୟାନରେ ॥ ୭୧
କୁମୁଦ କହ୍ଲାର ଉତ୍‌ପଳ । ଯହିଁ ଉତ୍‌ଫୁଲ୍ଲ ପଦ୍ମକୁଳ ॥ ୭୨
ସେ ବାପୀମାନଙ୍କେ ଆବର । ଆବୃତ ଅଟେ ଯଉଁ ପୁର ॥ ୭୩
୨୩ ମୃଗୀଲୋଚନପ୍ରାଏ ଯାର । ଲୋଚନମାନ ମନୋହର ॥ ୭୪
ସେ ଦିବ୍ୟ ନାରୀମାନଙ୍କରେ । ଆବର ଅଳଂକୃତ ନରେ ॥ ୭୫
ପୂର୍ଣ୍ଣ ହୋଇଛି ଯଉଁ ପୁର । ତାକୁ ଚିନ୍ତଇ ବିପ୍ରବର ॥ ୭୬
ପ୍ରଥମୁଁ ଦେଖି ତେଜରାଶି । ଏ କି ବୋଲିଣ ମନେ ଭାଷି ॥ ୭୭
ବିମାନମାନ ପଛେ ଦେଖି । କାହାର ବୋଲି ଏ ନିରେଖି ॥ ୭୮
ତଦନ୍ତେ ନିଜ ସ୍ଥାନ ଜାଣି । ଏ ସ୍ଥାନ ଏ ରୂପରେ ପୁଣି ॥ ୭୯
କେମନ୍ତ ପ୍ରକାରେ ହୋଇଲା । ଏମନ୍ତ ମନେ ବିଚାରିଲା ॥ ୮୦
୨୪ ସେ ବିପ୍ର ଏମନ୍ତ ରୂପରେ । ବିଚାର କରନ୍ତେ ମନରେ ॥ ୮୧
ଦେବତାପ୍ରାୟେ ଯାଙ୍କ କାନ୍ତି । ସେ ନରନାରୀଏ ଝଟିତି ॥ ୮୨
ବହୁତ ଗୀତ-ବାଦ୍ୟ କଲେ । ସେ ମହାଭାଗକୁ ବେଢ଼ିଲେ ॥ ୮୩
୨୫ ପତି ହୋଇଲେ ଉପସ୍ଥିତ । ତା' ପତ୍ନୀ ଜାଣିଣ ଏମନ୍ତ ॥ ୮୪
ଅତି ହରଷ ସଂଭ୍ରମରେ । ଘରରୁ ଅଇଲା ବେଗରେ ॥ ୮୫
ଯେସନେ ମୂର୍ତ୍ତିମତୀ ହୋଇ । ଲକ୍ଷ୍ମୀ ସ୍ୱସ୍ଥାନରୁ ଆସଇ ॥ ୮୬
୨୬ ସେ ମହା ପତିବ୍ରତା ନାରୀ । ନିଜ ପତିଙ୍କି ଦେଖି କରି ॥ ୮୭
ପ୍ରେମରେ ଉତ୍‌କଣ୍ଠିତା ହୋଇ । ବେନି ଲୋଚନୁଁ ଅଶ୍ରୁ ବହି ॥ ୮୮
ଏ ମୋ ପ୍ରଣାମକୁ ଉଚିତ । ନିଶ୍ଚୟ କରିଣ ଏମନ୍ତ ॥ ୮୯
ପତିଙ୍କି ବୁଜିଣ ନୟନ । ମନରେ କଲା ଆଲିଙ୍ଗନ ॥ ୯୦
୨୭ ପଦକ କଣ୍ଠେ ଯାହାଙ୍କର । ଏମନ୍ତ ଦାସୀମାନଙ୍କର ॥ ୯୧
ମଧ୍ୟେ ଯେ ପାଉଛି ଶୋଭନ । ପ୍ରଦୀପ୍ତ ଅପ୍‌ସରା ଯେସନ ॥ ୯୨
ଏ ରୂପେ ପତ୍ନୀକି ଦେଖିଣ । ବିସ୍ମୟ ହେଲା ସେ ବ୍ରାହ୍ମଣ ॥ ୯୩
୨୮ ଯେ ମଣିଖମ୍ବଶତେ ଯୁକ୍ତ । ମହେନ୍ଦ୍ରଭବନ ଯେମନ୍ତ ॥ ୯୪
ଏମନ୍ତ ନିଜ ମନ୍ଦିରରେ । ସେ କାଳେ ଅତ୍ୟନ୍ତ ପ୍ରୀତିରେ ॥ ୯୫
ଭାର୍ଯ୍ୟାସଙ୍ଗତେ ସେ ବ୍ରାହ୍ମଣ । ପ୍ରବେଶ ହୋଇଲା ଯାଇଣ ॥ ୯୬
୨୯ ଦୁଗ୍ଧଫେନର ପ୍ରାୟ ହୋଇ । ଅଛନ୍ତି ଶଯ୍ୟାମାନ ଯହିଁ ॥ ୯୭
ସୁବର୍ଣ୍ଣମୟ ପାତ୍ରମାନେ । ଅଛନ୍ତି ଯେବଣ ଭୁବନେ ॥ ୯୮
ଗଜଦନ୍ତରେ ବିନିର୍ମିତ । ପଲଙ୍କମାନ ଯହିଁ ସ୍ଥିତ ॥ ୯୯
ସୁବର୍ଣ୍ଣଦଣ୍ଡରେ ନିର୍ମାଣ । ଚାମରମାନେ ଛନ୍ତି ପୁଣ ॥ ୧୦୦
୩୦ ଯହିଁ କୋମଳ ତୂଳି[1]ମାନେ । ଅଛନ୍ତି ସୁବର୍ଣ୍ଣ-ଆସନେ ॥ ୧୦୧
ମୁକୁତାଦାମେ ବିଳମ୍ବିତ । ଯହିଁ ବିତାନେ ଦ୍ୟୁତିମନ୍ତ ॥ ୧୦୨

୧. ତୂଳି = ଲେଖନୀ ।

| | | | | |
|---|---|---|---|---|
| ୩୧ | ଯେ ଯୁତ ମହାମର୍କତରେ | ସେ ସ୍ୱଚ୍ଛସ୍ଫଟିକବାଡ଼ରେ | ॥ | ୧୦୩ |
| | ଅତିଉଜ୍ଜ୍ୱଳବନ୍ତ ହୋଇ | ରତ୍ନପ୍ରଦୀପ ଛନ୍ତି ଯହିଁ | ॥ | ୧୦୪ |
| | ରତ୍ନସଂଯୁତ ନାରୀମାନେ | ଅଛନ୍ତି ଯେବଣ ଭବନେ | ॥ | ୧୦୫ |
| ୩୨ | ସର୍ବସଂପତ୍ତି ଅଛି ଯହିଁ | ଏମନ୍ତ ସମୃଦ୍ଧିକି ଚାହିଁ | ॥ | ୧୦୬ |
| | ବ୍ରାହ୍ମଣ କରି ବିଲୋକନ | ତର୍କିଲା ସ୍ଥିର କରି ମନ | ॥ | ୧୦୭ |
| | ହେତୁ ନ ଥାଇ ଏ ସଂପତ୍ତି | କାହୁଁ ହୋଇଲା ଉତପତ୍ତି | ॥ | ୧୦୮ |
| ୩୩ | ଦରିଦ୍ର ମୁଁ ଯେ ବାରମ୍ବାର | ଦୁର୍ଭଗ ଅଟଇ ଆବର | ॥ | ୧୦୯ |
| | ମୁଁ ଯେ ଏମନ୍ତ ମୋର ପୁଣ | ନିଶ୍ଚେ ଏ ସଂପତ୍ତିକାରଣ | ॥ | ୧୧୦ |
| | ମହାବିଭୂତି ଯଦୁପତି | ତା' ଦରଶନୁଁ ଉତପତ୍ତି | ॥ | ୧୧୧ |
| | ଏଠାରେ ହୋଇଲା ସଂଭବ | ଆନ ଠାବରୁ କାହୁଁ ହେବ | ॥ | ୧୧୨ |
| ୩୪ | ଯେ ଯଦୁମାନଙ୍କ ଈଶ୍ୱର | ସେ କୃଷ୍ଣ ସଖା ଅଟେ ମୋର | ॥ | ୧୧୩ |
| | ବହୁତ ମାଗିଲା ଲୋକକୁ | ଦିଅନ୍ତି ନ କହନ୍ତେ ତାକୁ | ॥ | ୧୧୪ |
| | ଅତ୍ୟନ୍ତ ଦାତା ସେ ଆପଣ | ଯାହା କରନ୍ତି ବିତରଣ | ॥ | ୧୧୫ |
| | ନିଶ୍ଚେ ଜଳଦ ପ୍ରାୟେ କରି | ତାହା ଦେଖନ୍ତି ସେ ଶ୍ରୀହରି | ॥ | ୧୧୬ |
| | ଯେ ପାରେ ପୂରାଇ ସାଗର | ସେ ବଡ଼ ଦାତା ଜଳଧର | ॥ | ୧୧୭ |
| | ବହୁତ କଲେହେଁ ବର୍ଷଣ | ତା' ଅଳ୍ପପ୍ରାୟେ ମଣି ପୁଣ | ॥ | ୧୧୮ |
| | ଲାଜେ ପ୍ରତ୍ୟକ୍ଷେ ନ ବରଷେ | କର୍ଷକ ଥାନ୍ତେ ନିଦ୍ରାବଶେ | ॥ | ୧୧୯ |
| | ରାତ୍ରେ ତା' କ୍ଷେତ୍ରମାନଙ୍କୁ ହିଁ | ଜଳରେ ସଂପୂର୍ଣ୍ଣ କରଇ | ॥ | ୧୨୦ |
| | ଏହି ରୂପରେ ହେଁ ଶ୍ରୀପତି | ଦେଲେ ଯା' ଏ ଇନ୍ଦ୍ରସଂପତ୍ତି | ॥ | ୧୨୧ |
| ୩୫ | ଅଳପ ପ୍ରାୟେକ ମଣିଲେ | ପ୍ରତ୍ୟକ୍ଷେ ମୋତେ ନ କହିଲେ | ॥ | ୧୨୨ |
| | ବହୁତ ଯା' ଆପଣେ ଦ୍ୟନ୍ତି | ଅଳପପ୍ରାୟେ ତା' ମଣନ୍ତି | ॥ | ୧୨୩ |
| | ଅଳ୍ପ ଦେଲେହେଁ ଭକ୍ତ ଲୋକ | ତା' ଘେନେ ବହୁତ ପ୍ରାୟେକ | ॥ | ୧୨୪ |
| | ତଣ୍ଡୁଳ ଏକମୁଷ୍ଟି ନେଇ | ନିକଟେ ଯାହା ଦେଲି ମୁହିଁ | ॥ | ୧୨୫ |
| | ତାହା ସେ ମହାତ୍ମା ଶ୍ରୀହରି | ଘେନିଲେ ଅତି ପ୍ରୀତି କରି | ॥ | ୧୨୬ |
| ୩୬ | ଅତ୍ୟନ୍ତ ଅନୁଭାବ ଯାର | ଯେ ଗୁଣମାନଙ୍କ ମନ୍ଦିର | ॥ | ୧୨୭ |
| | ଏମନ୍ତ କୃଷ୍ଣଠାରେ ମୁହିଁ | ବିଶେଷେ ସଙ୍ଗ ଲଭିଲଇଁ | ॥ | ୧୨୮ |
| | ମୋହର ଜନ୍ମ ଜନ୍ମାନ୍ତରେ | ସେ ଗୋବିନ୍ଦର ଚରଣରେ | ॥ | ୧୨୯ |
| | ସୌହୃଦ ସଖ୍ୟ ମୈତ୍ରୀ ଦାସ୍ୟ | ନିତ୍ୟରେ ହୁଅନ୍ତୁ ଅବଶ୍ୟ | ॥ | ୧୩୦ |
| | ସେ କୃଷ୍ଣଭକ୍ତସଙ୍ଗେ ମୋର | ଉତ୍ତମ ସଙ୍ଗ ହୋଉ ଆର | ॥ | ୧୩୧ |
| ୩୭ | ଯେ ନାନା ବିଚିତ୍ର ଅଟନ୍ତି | ସେ ରାଜ୍ୟ ସଂପଦ ବିଭୂତି | ॥ | ୧୩୨ |
| | ଯେ ଅବିବେକୀ ଭକ୍ତ ଜନ | ତାକୁ ନ ଦ୍ୟନ୍ତି ଭଗବାନ | ॥ | ୧୩୩ |
| | ଯେଣୁ ସେ ଆପଣେ ପଣ୍ଡିତ | ଧନୀମାନଙ୍କ ଗର୍ବଜାତ | ॥ | ୧୩୪ |
| | ଯେବଣ ଅତି ନିପାତନ | ତାହା କରନ୍ତେ ବିଲୋକନ | ॥ | ୧୩୫ |

| | | | |
|---|---|---|---|
| ୩୮ | ଯେ ଅତିଭକ୍ତ କୃଷ୍ଣଠାରେ । | ସେ ବିପ୍ର ଏମନ୍ତ ପ୍ରକାରେ ॥ | ୧୩୬ |
| | ଆପଣା ବୁଦ୍ଧିରେ ବିଚାରି । | ଅତି ଲମ୍ପଟ ନୋହି କରି ॥ | ୧୩୭ |
| | ବିଷୟମାନଙ୍କୁ କ୍ରମଶ । | ଛାଡ଼ିବା କରନ୍ତେ ଅଭ୍ୟାସ ॥ | ୧୩୮ |
| | ଭାର୍ଯ୍ୟାର ସହିତେ ବହନ । | ଭୁଞ୍ଜିଲା ସେ ବିଷୟମାନ ॥ | ୧୩୯ |
| ୩୯ | ଯେ ପ୍ରଭୁ ଅଟେ ଯଜ୍ଞପତି । | ଦେବତାଙ୍କର ଦେବ ଅତି ॥ | ୧୪୦ |
| | ସେ ଶ୍ରୀହରିର ବିପ୍ରେ ନିତି । | ପ୍ରଭୁ ଦେବତା ହିଁ ଅଟନ୍ତି ॥ | ୧୪୧ |
| | ତାର ସେ ବିପ୍ରଙ୍କର ତହୁଁ । | ଅଧିକ ହୋଇ ନାହିଁ କେହୁ ॥ | ୧୪୨ |
| ୪୦ | ଯେ କୃଷ୍ଣ ଆନରେ ଅର୍ଜିତ । | ସେ ନିଜ ଭୃତ୍ୟେ ପରାଜିତ ॥ | ୧୪୩ |
| | ଏମନ୍ତ ଦେଖି ସେ ବ୍ରାହ୍ମଣ । | କୃଷ୍ଣେ ତା' ଅତି ପ୍ରୀତି ପୁଣ ॥ | ୧୪୪ |
| | ସେ କୃଷ୍ଣଧ୍ୟାନବେଗୁଁ ତାର । | ଶିଥିଳ ହେଲା ଅହଙ୍କାର ॥ | ୧୪୫ |
| | ସାଧୁମାନଙ୍କ ଗତି ଯେହି । | ସେ କୃଷ୍ଣସ୍ଥାନ ଯେ ଅଟଇ ॥ | ୧୪୬ |
| | ସେ ବଇକୁଣ୍ଠ ପୁର ପୁଣ । | ନିକଟେଂ[1] ଲଭିଲା ବ୍ରାହ୍ମଣ ॥ | ୧୪୭ |
| ୪୧ | ବ୍ରହ୍ମଣ୍ୟଦେବ ଭଗବାନ । | ଏ ତା' [2]ପୃଥୁକ-ଉପାଖ୍ୟାନ ॥ | ୧୪୮ |
| | ଯେ ନର କରଇ ଶ୍ରବଣ । | ବ୍ରହ୍ମଣ୍ୟଭାବକୁ ହିଁ ପୁଣ ॥ | ୧୪୯ |
| | ସେ ଭାବ ଲଭି କୃଷ୍ଣଠାଇଁ । | କର୍ମବନ୍ଧରୁ ମୁକ୍ତ ହୋଇ ॥ | ୧୫୦ |
| | ଭଣଇ ବିପ୍ର ଦୀନବନ୍ଧୁ । | ଆହେ ଶ୍ରୀକୃଷ୍ଣ କୃପାସିନ୍ଧୁ ॥ | ୧୫୧ |
| | ଦରିଦ୍ର ସୁଦାମାର ଠାରେ । | ଯେ ଦୟା ହୋଇଲା ପୂର୍ବରେ ॥ | ୧୫୨ |
| | ମୁଁ ଦୀନ ଅତି ମୋହଠାରେ । | ସେ କିମ୍ପା ହୋଉନାହିଁ ବାରେ ॥ | ୧୫୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ପୃଥୁକୋପାଖ୍ୟାନଂ
ନାମ ଏକାଶୀତିତମୋଽଧ୍ୟାୟଃ ॥

## ଦ୍ୱ୍ୟଶୀତିତମ ଅଧ୍ୟାୟ

ଦ୍ୱ୍ୟଶୀତିତମ ଆଗତ୍ୟ କୁରୁକ୍ଷେତ୍ରଂ ରବିଗ୍ରହେ ।
ବୃଷ୍ଣୀନ୍ ଦୃଷ୍ଟ୍ୱା ମୁଦା ଭୂପାଶ୍ଚକ୍ରୁଃ କୃଷ୍ଣକଥା ମିଥଃ ॥ ୧
ଶ୍ରୀଦାମସୁହୃଦେ କୃଷ୍ଣଃ ପ୍ରକଳ୍ପ୍ୟେନ୍ଦ୍ରଂ ପଦଂ ଭୁବି ।
ନନ୍ଦାଦିସୁହୃଦାନନ୍ଦୀ କୁରୁକ୍ଷେତ୍ରଂ ଜଗାମ ସଃ ॥ ୨

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧ | କହନ୍ତି ଶୁକ ମୁନିବର । | ଏବେ ହୋ ଶୁଣ ନରେଶ୍ୱର ॥ | ୧ |
| | ଏଥୁ ଅନ୍ତରେ ଏକ ଦିନେ । | ସେ ରାମକୃଷ୍ଣ ବେନି ଜନେ ॥ | ୨ |

---
୧. ଅଚିରେ ।　　　୨. ପୃଥୁକ = ଚୂଡ଼ା ।

ଦ୍ୱାରକାପୁରେ ଥାନ୍ତେ ରହି । ହେ ନୃପ ! ସର୍ବଗ୍ରାସ ହୋଇ ॥
ସୂର୍ଯ୍ୟୋପରାଗ ଅତିଶୟେ । ହୋଇଲା ଯେହ୍ନେ କଳ୍ପକ୍ଷୟେ ॥
୨ ଆଗହୁଁ ଜ୍ୟୋତିର୍ବିଦମାନେ । କହିଥାଆନ୍ତେ ସର୍ବଜନେ ॥
ସେ ସୂର୍ଯ୍ୟୋପରାଗ ଜାଣିଣ । ମଙ୍ଗଳବିଧିକି ବାଞ୍ଛିଣ ॥
କୁରୁକ୍ଷେତ୍ରକୁ ହେ ରାଜନ । ସେକାଳେ କଲେ ସେ ଗମନ ॥
୩ ସମସ୍ତ ଶସ୍ତ୍ରଧାରୀଙ୍କର । ମଧ୍ୟରେ ଅଟନ୍ତି ଯେ ବର ॥
ଯେ ଜମଦଗ୍ନିର ତନୟ । ପୃଥ୍ୱୀ କରନ୍ତେ ନିଃକ୍ଷତ୍ରିୟ ॥
ରାଜାମାନଙ୍କ ରକ୍ତଚୟେ । ହ୍ରଦଙ୍କୁ କଲେ ଅତିଶୟେ ॥
୪ କର୍ମ ନ ପାରେ ଯାଙ୍କୁ ଛୁଇଁ । ସେ ଭଗବାନ ରାମ ଯହିଁ ॥
ଲୋକଙ୍କୁ ଘେନାନ୍ତେ ଶିକ୍ଷାକୁ । ସେ ଈଶ କଲେ ଅଧ୍ୱରକୁ ॥
ଅଘନାଶନେ ଅପଣ୍ଡିତ । ଯାଗକୁ କରଇ ଯେମନ୍ତ ॥
୫ | ଅତ୍ୟନ୍ତ ସେ ତୀର୍ଥଯାତ୍ରାରେ । ଭାରତଖଣ୍ଡ-ସର୍ବନରେ ॥
୬ | ନିଜ ପାପକୁ ବିନାଶନ । କରିବା ଅର୍ଥେ ହେ ରାଜନ ॥
ଚଳିଲେ ସେ କୁରୁକ୍ଷେତ୍ରରେ । ଯାଦବମାନେ ସେ ରୂପରେ ॥
ଅକ୍ରୂର-ବସୁଦେବ ଦୁଇ । ଯେ ବା ଆହୁକ ଆଦି ହୋଇ ॥
ସମସ୍ତେ ଚଳିଲେ ତତ୍‌କ୍ଷଣ । ସେ କୁରୁକ୍ଷେତ୍ରକୁ ବୋଲିଣ ॥
ଗଦ-ପ୍ରଦ୍ୟୁମ୍ନ-ଶାମ୍ବ ତିନି । ଗମନ କଲେକ ଏ ପୁଣି ॥
ଯେ ଶୁକ-ସୁଚନ୍ଦ୍ର[୧] -ସାରଣ । ଏମାନଙ୍କର ସଙ୍ଗତେଣ ॥
ଦ୍ୱାରକାରକ୍ଷାନିମିତ୍ତରେ । ରହିଲେ ଅନିରୁଦ୍ଧ ପୁରେ ॥
ଆବର ସେ କୃତବର୍ମା ହିଁ । ରହିଲେ ସେନାପତି ହୋଇ ॥
୭ ବିମାନପ୍ରାୟେ ଆଭା ଯାର । ସେ ରଥମାନଙ୍କେ ଆବର ॥
ଚଞ୍ଚଳଗତି ଯାହାଙ୍କରେ । ସେ ଦିବ୍ୟ ଅଶ୍ୱମାନଙ୍କରେ ॥
ଗର୍ଜନ୍ତେ ଯେ ଗିରିସମାନ । ଏମନ୍ତ ହସ୍ତିମାନଙ୍କେଣ ॥
ବିଦ୍ୟାଧରଙ୍କ ପ୍ରାୟ ହୋଇ । ଯାହାଙ୍କ ତେଜ ବିକାଶଇ ॥
ଏମନ୍ତ ନରମାନଙ୍କରେ । ଗମନ କଲେ ସେ କାଳରେ ॥
୮ ଉତ୍ତମ ମାଳା ବସ୍ତ୍ରମାନ । ଯାହାଙ୍କ ଦେହରେ ଶୋଭନ ॥
ସୁବର୍ଣ୍ଣମାଳା ଯାହାଙ୍କର । ଯେ ତେଜସ୍ୱନ୍ତ ବଳିୟାର ॥
ଦିବ୍ୟ କବଚ ପିନ୍ଧି ପୁଣ । ପତ୍ନୀମାନଙ୍କ ସହିତେଣ ॥
ଚଳନ୍ତେ ମାର୍ଗେ ସେ ଯଦୁଏ । ଶୋଭା ପାଇଲେ ଦେବପ୍ରାୟେ ॥
୯ ସେ ମହାଭାଗ ଯଦୁମାନେ । ସଂଯତ ହୋଇଣ ସେ ଦିନେ ॥
ଉପାସ କରି ସେ କ୍ଷେତ୍ରରେ । ସ୍ନାନକୁ କରିଣ ଗଙ୍ଗାରେ ॥

୧. ସୁଭଦ୍ର ।

ବସନ-ମାଳା-ରୁକ୍ମମାଳେ । ଅଛନ୍ତି ଯାହାଙ୍କର ଗଳେ ॥ ୩୪
ଏମନ୍ତ ଉତ୍ତମ ଧେନୁଙ୍କୁ । ଦେଲେ ସେ ବ୍ରାହ୍ମଣମାନଙ୍କୁ ॥ ୩୫
୧୦ ସେ ରାମହ୍ରଦମାନଙ୍କରେ । ବିଧିମନ୍ତରେ ବୃଷ୍ଣିବୀରେ ॥ ୩୬
ଉତ୍ତମ କରି ହେ ରାଜନ । ସେଦିନ କରି ମୁକ୍ତିସ୍ନାନ ॥ ୩୭
ଶ୍ରୀକୃଷ୍ଣେ ଆମ୍ଭମାନଙ୍କର । ଉତ୍ତମ ଭକ୍ତି ନିରନ୍ତର ॥ ୩୮
ହୋଉ ବୋଲିଣ ବ୍ରାହ୍ମଣଙ୍କୁ । ଦେଲେ ସେ ଉତ୍ତମ ଅନ୍ନକୁ ॥ ୩୯
୧୧ କୃଷ୍ଣଟି ଦେବତା ଯା'ଙ୍କର । ସେ ଯଦୁମାନେ ତଦନ୍ତର ॥ ୪୦
ମୁକ୍ତି ହେବାର ସ୍ୱୟେଂ ଜାଣି । ଭୋଜନ କରି ସର୍ବେ ପୁଣି ॥ ୪୧
ରହିଲେ[୧] ବୃକ୍ଷଙ୍କ ମୂଳରେ । ଶୀତଳ ଛାୟାମାନଙ୍କରେ ॥ ୪୨
୧୨ ସେ ମତ୍ସ୍ୟଦେଶର ରାଜାଏ । ଯେ ଉଶୀନରନୃପତିଏ ॥ ୪୩
୧୩ କୋଶଳ-ବିଦର୍ଭ ବେନିରେ । ଥିଲେ ଯେତେକ ନରେଶ୍ୱରେ ॥ ୪୪
କୁରୁ-ସୃଞ୍ଜୟ ବେନି ଦେଶେ । ଯେ ଅବା ଥିଲେ ନର-ଈଶେ ॥ ୪୫
କାମ୍ବୋଜ-କେକୟ-ମଦ୍ରରେ । ଥିଲେ ଯେତେକ ନୃପବରେ ॥ ୪୬
ଯେ କୁନ୍ତି-ଆନର୍ତ୍ତ-[୨]କେରଳ । ଏ ତିନିଦେଶ ଯେ ଭୂପାଳ ॥ ୪୭
ଯେ ଅବା ଥିଲେ ଅନ୍ୟସ୍ଥାନେ । ଆପଣା ପକ୍ଷ ରାଜାମାନେ ॥ ୪୮
ଆବର ଶତସଂଖ୍ୟ ହୋଇ । ଥିଲେ ଯେ ଅନ୍ୟ ନରସାଇଁ ॥ ୪୯
ନନ୍ଦକୁ ଆଦି ହୋଇ ପୁଣ । ଯେତେ ସୁହୃଦ ଗୋପଗଣ ॥ ୫୦
ଗୋପୀଏ ଉତ୍‌କଣ୍ଠିତ ହୋଇ । ଯେ ଥିଲେ ଚିରକାଳୁ ରହି ॥ ୫୧
ଏ ସର୍ବେ ସେ କୁରୁକ୍ଷେତ୍ରରେ । ଆସି ମିଳିଲେ ସେ କାଳରେ ॥ ୫୨
ସେ ଯଦୁମାନେ ହେ ରାଜନ । ତାହାଙ୍କୁ କଲେ ବିଲୋକନ ॥ ୫୩
ସେମାନେ ଯଦୁମାନଙ୍କର । ସୁହୃଦ-ସମ୍ବନ୍ଧିନିକର ॥ ୫୪
୧୪ ଅନ୍ୟୋଽନ୍ୟେ ଯଉଁ ଦରଶନ । ଯେ ହର୍ଷ ତହିଁରୁ ଉତ୍‌ପନ୍ନ ॥ ୫୫
ତା' ବେଗେ ଅତ୍ୟନ୍ତ ବିକାଶ । ଯେ ହୃଦ-ବଦନସାରସ ॥ ୫୬
ତେଣେ ଯେ ଦିଶନ୍ତି ଶୋଭିତ । ଯାହାଙ୍କ ରୋମ ପୁଲକିତ ॥ ୫୭
ନୟନୁଁ ବହେ ଅଶ୍ରୁମାନ । ଗାଢ଼େ କରି ସେ ଆଲିଙ୍ଗନ ॥ ୫୮
କହି ନ ପାରିଲେ ବାକ୍ୟକୁ । ସର୍ବେ ଲଭିଲେ ଆନନ୍ଦକୁ ॥ ୫୯
୧୫ ଯେ ସ୍ମିତ ଅତି ସୌହୃଦରେ । ତେଣେ ନିର୍ମଳ ଅପାଙ୍ଗରେ ॥ ୬୦
ଦୃଷ୍ଟି ଅଟଇ ଯାହାଙ୍କର । ସେ ନାରୀମାନେ ପରସ୍ପର ॥ ୬୧
ହୁଅନ୍ତେ ଦେଖାଦେଖି ତହିଁ । ସ୍ନେହେ ନୟନୁଁ ଅଶ୍ରୁ ବହି ॥ ୬୨
କୁଙ୍କୁମପଙ୍କଯୁତ ସ୍ତନ । ସ୍ତନରେ କରି ବିମର୍ଦ୍ଦନ ॥ ୬୩
ଭୁଜମାନଙ୍କେ ହେ ରାଜନ । ସେକାଳେ କଲେ ଆଲିଙ୍ଗନ ॥ ୬୪

୧. ବସିଲେ । ୨. ଆରଛ ।

୧୬ ସେ ଯଦୁମାନେ ତଦନ୍ତର । ବୃଦ୍ଧଙ୍କୁ କଲେ ନମସ୍କାର ॥
କନିଷ୍ଠମାନେ ପୁଣ ତାଙ୍କୁ । କଲେ ଉତ୍ତମ ପ୍ରଣାମକୁ ॥
ସ୍ୱାଗତ କୁଶଳ ପୁଚ୍ଛିଲେ । ଅନ୍ୟୋଽନ୍ୟେ କୃଷ୍ଣକଥା କଲେ ॥
୧୭ ଭଗିନୀମାନଙ୍କୁ ଭ୍ରାତାଙ୍କୁ । ସେ ଭ୍ରାତାଭଗିନୀ-ପୁତ୍ରଙ୍କୁ ॥
ନିଜ ଜନନୀ-ପିଅରଙ୍କୁ । ଭ୍ରାତାଙ୍କ ବନିତାମାନଙ୍କୁ ॥
ଆବର କୃଷ୍ଣଙ୍କୁ ହିଁ ପୁଣ । ସେ କୁନ୍ତୀ କରି ବିଲୋକନ ॥
ଅନ୍ୟୋଽନ୍ୟେ ପ୍ରେମକଥନରେ । ଶୋକ ଛାଡ଼ିଲେ ସେ କାଳରେ ॥

ଶ୍ରୀକୁନ୍ତୀ ଉବାଚ

୧୮ ବସୁଦେବଙ୍କୁ ଏ ରୂପରେ । କୁନ୍ତୀ କହନ୍ତି ସେ କାଳରେ ॥
ଅପୂର୍ଣ୍ଣକାମ କରି ମୁହିଁ । ଆମ୍ଭାକୁ ନିଶ୍ଚୟେ ମଣଇଁ ॥
ହେ ଆର୍ଯ୍ୟ ଭ୍ରାତ ! ଯେଣୁ ପୁଣ । ବିପତ୍ତିକାଳମାନଙ୍କେଣ ॥
ଆହେ ସତ୍ତମ ମୋ ବାର୍ତ୍ତାକୁ । ମନେ ନ କର ସ୍ମରଣାକୁ ॥
୧୯ ଦଇବ ପ୍ରତିକୂଳ ଯାକୁ । ସ୍ୱଜନ ହେଲେହେଁ ତାହାକୁ ॥
ସୁହୃଦ-ଜ୍ଞାତି-ପୁତ୍ରମାନେ । ପିତା-ଜନନୀ-ଭ୍ରାତା ଜନେ ॥
ସ୍ମରଣା ନ କରନ୍ତି ଯେଣୁ । ତୁମ୍ଭର ଦୋଷ ନାହିଁ ତେଣୁ ॥

ଶ୍ରୀବସୁଦେବ ଉବାଚ

୨୦ ସେ ବସୁଦେବ ହିଁ ଏମନ୍ତ । କୁନ୍ତୀକି କହନ୍ତି ହେ ମାତ[୧] ॥
ଆମ୍ଭେ ଦୈବର କ୍ରୀଡ଼ାନର । ଆମ୍ଭଙ୍କୁ ଅସୂୟା ନ କର ॥
ଈଶ୍ୱରବଶ ହୋଇ ଜନ । ଯେଣୁ କରଇ କାର୍ଯ୍ୟମାନ ॥
୨୧ କଂସରେ ସଂତପ୍ତ ହୋଇଲୁଁ । ଦଶ ଦିଗରେ ସର୍ବେ ଗଲୁଁ ॥
ଆଗୋ ଭଗିନି ! ବର୍ତ୍ତମାନ । ଦଇବେ ଲଭିଲୁଁ ସ୍ୱସ୍ଥାନ ॥

ଶ୍ରୀଶୁକ ଉବାଚ

୨୨ ଯେ ଉଗ୍ରସେନ-ବସୁଦେବ । ଇତ୍ୟାଦି ଯେତେକ ଯାଦବ ॥
ତେଣେ ଉତ୍ତମ ପୂଜା ପାଇ । ରାଜାଏ ଅଇଲେ ସେଠାଇଁ ॥
ଶ୍ରୀକୃଷ୍ଣ ଦରଶନୁଁ ଜାତ । ପରମାନନ୍ଦେ ହେଲେ ଯୁତ ॥
୨୩-୨୬ ଯେ ଧୃତରାଷ୍ଟ୍ର ଭୀଷ୍ମ ଦ୍ରୋଣ । ଗାନ୍ଧାରୀ ସୁତଙ୍କ ସଙ୍ଗେଣ ॥
ପତ୍ନୀମାନଙ୍କ ସହିତରେ । ପାଣ୍ଡବମାନେ ସେ ରୂପରେ ॥
କୁନ୍ତୀ ସଂଜୟ ବେନି ଜଣ । ବିଦୁର କୃପାଚାର୍ଯ୍ୟ ପୁଣ ॥
ଯେ କୁନ୍ତିଭୋଜ ନରେଶ୍ୱର । ବିରାଟ ଭୀଷ୍ମକ ଆବର ॥
ମହାବଳିଷ୍ଠ ନଗ୍ନଜିତ । ଯେ ବା ଦ୍ରୁପଦ ପୁରୁଜିତ ॥

---

୧. କନିଷ୍ଠଭଗିନୀ ହୋଇଥିବାରୁ ବସୁଦେବଙ୍କର କୁନ୍ତୀଙ୍କ ପ୍ରତି ଏହା ସ୍ନେହସୂଚକ ସମ୍ବୋଧନ ।

| | | | | |
|---|---|---|---|---|
| | ଯେ ଶଲ୍ୟ ଧୃଷ୍ଟକେତୁ ଦୁଇ | । ଯେ କାଶୀଦେଶନରସାଇଁ | ॥ | ୯୨ |
| | ଯେ ବିଶାଳାକ୍ଷ ଦମଘୋଷ | । ମଦ୍ର-କେକୟ ବେନି-ଈଶ | ॥ | ୯୩ |
| | ଯେ ଯୁଧାମନ୍ୟୁ ମହୀପାଳ | । ଯେ ବା ସୁଶର୍ମା ମଇଥିଳ | ॥ | ୯୪ |
| | ସୁତମାନଙ୍କ ସହିତରେ | । ବାହ୍ଲୀକ ଆଦି ଯେତେ ବୀରେ | ॥ | ୯୫ |
| | ଯୁଧିଷ୍ଠିରଙ୍କୁ ଅନୁବର୍ତ୍ତି | । ଯେ ଥିଲେ ଅନ୍ୟ ନରପତି | ॥ | ୯୬ |
| | ହେ ନୃପ ! ଯେ ଅତିସୁନ୍ଦର | । ଯେ ପୁଣ ଲକ୍ଷ୍ମୀର ମନ୍ଦିର | ॥ | ୯୭ |
| | ଦେଖି ସେ ଶ୍ରୀକୃଷ୍ଣର କାୟ | । ସସ୍ତ୍ରୀକେ ଲଭିଲେ ବିସ୍ମୟ | ॥ | ୯୮ |
| ୨୭ | ସେ ନୃପେ ଏଥୁ ଅନନ୍ତରେ | । ସେ ରାମ-କୃଷ୍ଣ-ବେନି ବୀରେ | ॥ | ୯୯ |
| | ଉତ୍ତମ ପୂଜାକୁ ଲଭିଣ | । ଆନନ୍ଦଯୁକ୍ତ ହୋଇ ପୁଣ | ॥ | ୧୦୦ |
| | କୃଷ୍ଣଗୃହୀତ ସେ ଯଦୁଙ୍କୁ | । କଲେ ଉତ୍ତମ ପ୍ରଶଂସାକୁ | ॥ | ୧୦୧ |
| ୨୮ | ହେ ଭୋଜପତି ! ତୁମ୍ଭେମାନେ | । ଜନଙ୍କ ମଧ୍ୟେ ଏ ଭୁବନେ | ॥ | ୧୦୨ |
| | ସଫଳ ଜନ୍ମଟି ତୁମ୍ଭର | । ଦୁର୍ଦ୍ଦର୍ଶ ଯେ ଯୋଗିଜନର | ॥ | ୧୦୩ |
| | ଯେଣୁ ସେ କୃଷ୍ଣଙ୍କୁ ଆବର | । ତୁମ୍ଭେ ଦେଖୁଛ ବାରମ୍ବାର | ॥ | ୧୦୪ |
| ୨୯ | ଯାହା' କୀର୍ତ୍ତିକି ବେଦମାନେ | । ସ୍ତୁତି କରନ୍ତି ପ୍ରତିଦିନେ | ॥ | ୧୦୫ |
| | ଏ ସଂସାରକୁ ସେହି କୀର୍ତ୍ତି | । ପବିତ୍ର କରୁଅଛି ଅତି | ॥ | ୧୦୬ |
| | ଯା' ପାଦଧୌତ ଗଙ୍ଗାନୀର | । ବେଦାଖ୍ୟ ଶାସ୍ତ୍ର ବାକ୍ୟ ଯାର | ॥ | ୧୦୭ |
| | ପବିତ୍ର କରଇ ଭୁବନ | । କାଳେ ଯା' ଭଗ ବିନାଶନ | ॥ | ୧୦୮ |
| | ସେ ଭୂମି ଯା' ପାଦନଳିନ | । ସ୍ପରଶସକାଶୁଁ ଉତ୍‌ପନ୍ନ | ॥ | ୧୦୯ |
| | ଯେ ଶକ୍ତି ତେଣେ ସେ ଆମ୍ଭଙ୍କୁ | । ଦେଉଛି ଅଖିଳ ଅର୍ଥକୁ | ॥ | ୧୧୦ |
| ୩୦ | ଯେ ଦରଶନ ସ୍ପରଶନ | । ଯେ ବା ଗମନ ଯେ କଥନ | ॥ | ୧୧୧ |
| | ଯେ ଶଯ୍ୟା ଆସନ ଅଶନ | । ବିବାହସଂବନ୍ଧ ଯେ ଆନ | ॥ | ୧୧୨ |
| | ଦେହବନ୍ଧ ହିଁ ଯେ ତୁମ୍ଭର | । ଏ ହେଲେ ଶ୍ରୀକୃଷ୍ଣସଙ୍ଗର | ॥ | ୧୧୩ |
| | ପ୍ରବୃତ୍ତିମାର୍ଗେ ପୁଣ ନିତି | । ଯେ ତୁମ୍ଭେ ଅଛ ଅନୁବର୍ତ୍ତି | ॥ | ୧୧୪ |
| | ସେ ତୁମ୍ଭ ଗୃହେ ଭଗବାନ | । ଯେଣୁ ହୋଇଲେ ଉତପନ୍ନ | ॥ | ୧୧୫ |
| | ସ୍ୱର୍ଗ-ମୋକ୍ଷରେ ସେ ତୁମ୍ଭଙ୍କୁ | । କଲେ ନିତ୍ୟରେ ବିତୃଷ୍ଣାକୁ | ॥ | ୧୧୬ |
| | ଏଣୁ ସମସ୍ତେ ତୁମ୍ଭେମାନେ | । ସଫଳଜନ୍ମା ଏ ଭୁବନେ | ॥ | ୧୧୭ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୩୧ | କହୁଅଛନ୍ତି ବ୍ୟାସସୁତ | । ଶୁଣ ହେ ନୃପ ପରୀକ୍ଷିତ | ॥ | ୧୧୮ |
| | କୃଷ୍ଣ ସହିତେ ଯଦୁମାନେ | । ଆସିଣ ମିଳିଲେ ସେ ସ୍ଥାନେ | ॥ | ୧୧୯ |
| | ନନ୍ଦ ଏମନ୍ତ ଜାଣି ତହିଁ | । ଶକଟେ ଦ୍ରବ୍ୟମାନ ଥୋଇ | ॥ | ୧୨୦ |
| | ସର୍ବଗୋପାଳମାନଙ୍କରେ | । ବେଷ୍ଟିତ ହୋଇ ସେ କାଳରେ | ॥ | ୧୨୧ |
| | ଦେଖିବା ଇଚ୍ଛାରେ କୃଷ୍ଣଙ୍କୁ | । ଚଳିଲେ କୃଷ୍ଣନିକଟକୁ | ॥ | ୧୨୨ |

୩୨ ପ୍ରାଣପ୍ରବେଶରେ ଯେସନେ । ବେଗେ ଉଠନ୍ତି ଦେହମାନେ ।। ୧୨୩
ନନ୍ଦକୁ ଦେଖି ସେ ରୂପରେ । ହୃଷ୍ଟ ହୋଇଣ ଯଦୁବୀରେ ।। ୧୨୪
ଚିରକାଳରୁ ଦରଶନେ । କାତର ହୋଇକରି ମନେ ।। ୧୨୫
ଅତିଗାଢ଼ରେ ସେ ବହନ । ନନ୍ଦକୁ କଲେ ଆଲିଙ୍ଗନ ।। ୧୨୬
୩୩ ନନ୍ଦକୁ ବସୁଦେବ ପୁଣ । ପ୍ରେମରେ ବିହ୍ୱଳ ହୋଇଣ ।। ୧୨୭
ପ୍ରୀତିରେ ଆଲିଙ୍ଗନ କଲା । ଯେ କ୍ଳେଶ କଂସ ଦେଇଥିଲା ।। ୧୨୮
ପୁତ୍ର ଯା' ନେଲେ ଗୋକୁଳକୁ । ସ୍ମରନ୍ତେ ଏ ବେନି କଥାକୁ ।। ୧୨୯
୩୪ ଶ୍ରୀକୃଷ୍ଣରାମ ବେନି ଜଣ । ନନ୍ଦଯଶୋଦାଙ୍କୁ ହିଁ ପୁଣ ।। ୧୩୦
ପ୍ରଣାମ କରି ହେ ରାଜନ । ସ୍ନେହରେ କରି ଆଲିଙ୍ଗନ ।। ୧୩୧
ନୟନୁଁ ଲୋତକ ତେଜିଲେ । କିଛି ନ କହି ତୁନି ହେଲେ ।। ୧୩୨
୩୫ ଯଶୋଦା ମହାଭାଗ୍ୟବତୀ । ସେ ବେନି ସୁତଙ୍କୁ ଝଟିତି ।। ୧୩୩
ବସାଇ ନିଜ ଆସନରେ । ଭିଡ଼ିଣ ବାହୁଯୁଗଳରେ ।। ୧୩୪
ନନ୍ଦ ଯଶୋଦା ବେନି ଜନ । ନେତ୍ରୁଁ ଛାଡ଼ିଲେ ଅଶ୍ରୁମାନ ।। ୧୩୫
୩୬ ଏଥୁ ଅନ୍ତରେ ପୁଣ ତହିଁ । ରୋହିଣୀ ଦେବକୀ ଏ ଦୁଇ ।। ୧୩୬
ସେ ଯଶୋଦାଙ୍କୁ ଆଲିଙ୍ଗନ । କରିଣ ପୂର୍ବେ ଯେଉଁ ମାନ ।। ୧୩୭
ସେ କରିଥିଲେ ମିତ୍ରଭାବ । ସ୍ମରଣା କରନ୍ତେ ତା' ସର୍ବ ।। ୧୩୮
ନୟନୁଁ ଲୋତକ ତେଜିଲେ । ଏମନ୍ତ ବଚନ କହିଲେ ।। ୧୩୯
୩୭ ହେ ବ୍ରଜେଶ୍ୱରି ! ମିତ୍ରପଣ । ବର୍ତ୍ତିଛି ଯେ ତୁମ୍ଭର ପୁଣ ।। ୧୪୦
ତା' ପାସୋରିବ କେଉଁ ନାରୀ । ଇନ୍ଦ୍ରପଦ ହିଁ ଲଭି କରି ।। ୧୪୧
ଯେବଣ ମିତ୍ରଭାବକୁ ହିଁ । ସଂସାରେ ପ୍ରତିକ୍ରିୟା ନାହିଁ ।। ୧୪୨
୩୮ ଏ ରାମକୃଷ୍ଣ ବେନି ଭ୍ରାତ । ଦେଖି ନାହାନ୍ତି ତାତ-ମାତ ।। ୧୪୩
ଆଗୋ ଯଶୋଦା ! ତୁମ୍ଭେ ବେନି । ଏହାଙ୍କ ପିଅର-ଜନନୀ ।। ୧୪୪
ଏ ତୁମ୍ଭ ପୁରେ ଥାନ୍ତି ରହି । ଯେ ପ୍ରୀତି-ଅଭ୍ୟୁଦୟ ଦୁଇ ।। ୧୪୫
ପୋଷଣ ଲାଳନ ଯେ ଆନ । ଏମାନ ଲଭି ପ୍ରତିଦିନ ।। ୧୪୬
ଭୟ ହିଁ ନ ଲଭି କାହିଁରେ । ନିବାସ କଲେ ତୁମ୍ଭ ପୁରେ ।। ୧୪୭
ନେତ୍ରଯୁଗଳର ଯେସନ । ରକ୍ଷକ ଅଟେ ପକ୍ଷ୍ମମାନ ।। ୧୪୮
ତାଙ୍କ ରକ୍ଷକ ସେ ରୂପରେ । ତୁମ୍ଭେ, ଏ ଯୁକ୍ତ ତୁମ୍ଭଠାରେ ।। ୧୪୯
ଏ ପର ଏହୁ ଆପଣାର । ଯେଣୁ ଏ ନାହିଁ ସାଧୁଙ୍କର ।। ୧୫୦

ଶ୍ରୀଶୁକ ଉବାଚ

୩୯ କହନ୍ତି ସତ୍ୟବତୀ ନାତି । ଏବେ ହୋ ଶୁଣ ନରପତି ।। ୧୫୧
ଯେଉଁ କୃଷ୍ଣର ଦରଶନେ । ପଲକ କଲା ଯେ ନୟନେ ।। ୧୫୨
ସେ ବିଧାତାକୁ ଯେ ନିନ୍ଦନ୍ତି । ଏମନ୍ତ ଯେ ବ୍ରଜଯୁବତୀ ।। ୧୫୩

| | | | | |
|---|---|---|---|---|
| | ଯେ ଚିରକାଳରୁ ବାଞ୍ଛିତ | । ଲଭି ସେ କୃଷ୍ଣଙ୍କୁ ତୁରିତ | ॥ | ୧୫୪ |
| | ନେତ୍ରଦ୍ୱାରରେ ଆଣି କରି | । ହୃଦୟେ ରଖି ସର୍ବନାରୀ | ॥ | ୧୫୫ |
| | ବହୁତ ଆଲିଙ୍ଗନ କଲେ | । ତାଦାତ୍ମ୍ୟ ଭାବକୁ ଲଭିଲେ | ॥ | ୧୫୬ |
| | ଯଉଁ ଭାବକୁ ଯୋଗୀମାନେ | । ଲଭିନାହାନ୍ତି ଏ ଭୁବନେ | ॥ | ୧୫୭ |
| ୪୦ | ଗୋପିକାମାନେ ସେ ରୂପରେ | । ରହିଥାଆନ୍ତେ ସେ ବନରେ | ॥ | ୧୫୮ |
| | ସେ ଭଗବାନ ତାଙ୍କ ଠାଇଁ | । ଏକାନ୍ତେ ଉପଗତ ହୋଇ | ॥ | ୧୫୯ |
| | ଗୋପୀଙ୍କି କରି ଆଲିଙ୍ଗନ | । ପଚାରି ଶୁଭ ବାର୍ତ୍ତାମାନ | ॥ | ୧୬୦ |
| | ଅଳପ ହୋଇ ହସି କରି | । ଏମନ୍ତ କହିଲେ ମୁରାରି | ॥ | ୧୬୧ |
| ୪୧ | ନିଜଲୋକଙ୍କ କାର୍ଯ୍ୟ ଯେହି | । ତାହା କରିବା ଅର୍ଥେ ମୁହିଁ | ॥ | ୧୬୨ |
| | ଶତ୍ରୁଙ୍କ ପକ୍ଷବିନାଶରେ | । ଚିତ୍ତ ଦିଅନ୍ତେ ନିରନ୍ତରେ | ॥ | ୧୬୩ |
| | ଗଲୁଁ ବିଳମ୍ବ କରି ଆମ୍ଭେ | । ହେ ସଖୀମାନେ ମୋତେ ତୁମ୍ଭେ | ॥ | ୧୬୪ |
| | କରୁଥାଅ କି ସୁମରଣ | । ଏମନ୍ତ ପଚାରୁଛି ପୁଣ | ॥ | ୧୬୫ |
| ୪୨ | କରୁଛି ଏମନ୍ତ ପ୍ରଶ୍ନକୁ | । ତୁମ୍ଭେ ଗୋ ସମସ୍ତେ ଆମ୍ଭଙ୍କୁ | ॥ | ୧୬୬ |
| | ଗୋପୀଙ୍କି ଛାଡ଼ିଗଲେ ଯେଣୁ | । କୃତଜ୍ଞ ନୁହନ୍ତି ଏ ତେଣୁ | ॥ | ୧୬୭ |
| | କରିଣ ଏମନ୍ତ ଶଙ୍କାକୁ | । କରୁଅଛ କି ଅବଜ୍ଞାକୁ | ॥ | ୧୬୮ |
| | ଯେଣୁ ଗୋ ପ୍ରଭୁ ଭଗବାନ | । ପ୍ରାଣୀମାନଙ୍କୁ ଦିନୁଁଦିନ | ॥ | ୧୬୯ |
| | ନିଶ୍ଚେ ସଂଯୋଗ କରିଥାନ୍ତି | । ପୁଣି ହିଁ ବିଯୋଗ କରନ୍ତି | ॥ | ୧୭୦ |
| ୪୩ | ଘନସମୂହ ତୃଣ ତୂଳ | । ରଜମାନଙ୍କୁ କରି ଠୁଳ | ॥ | ୧୭୧ |
| | ପୁଣି ହିଁ ଯେସନେ ପବନ | । ତାହାଙ୍କୁ କରେ ଭିନ୍ନ ଭିନ୍ନ | ॥ | ୧୭୨ |
| | ପ୍ରାଣୀମାନଙ୍କୁ ହିଁ ଈଶ୍ୱର | । କରନ୍ତି ସେହି ପରକାର | ॥ | ୧୭୩ |
| ୪୪ | ସମସ୍ତ ପ୍ରାଣୀମାନଙ୍କର | । ଯେ ଭକ୍ତି ହୋଏ ଆମ୍ଭଠାର | ॥ | ୧୭୪ |
| | ମୋକ୍ଷ ନିମିତ୍ତେ ସେ ହୁଅଇ | । ଏକଥା ମଙ୍ଗଳ ଅଟଇ | ॥ | ୧୭୫ |
| | ଯେଣୁ ତୁମ୍ଭର ଆମ୍ଭଠାରେ | । ସ୍ନେହ ହୋଇଲା ଅତ୍ୟନ୍ତରେ | ॥ | ୧୭୬ |
| | ଯଉଁ ସ୍ନେହରେ ତୁମ୍ଭେମାନେ | । ମୋତେ ଲଭିଲ ଏ ଭୁବନେ | ॥ | ୧୭୭ |
| ୪୫ | ପୃଥିବୀ ଆଦି ହୋଇ ପୁଣ | । ଯେ ପଞ୍ଚ ମହାଭୂତଗଣ | ॥ | ୧୭୮ |
| | ଏମାନେ ଯେସନ ରୂପରେ | । ଆଦ୍ୟନ୍ତ-ମଧ୍ୟସ୍ୱରୂପରେ | ॥ | ୧୭୯ |
| | ପଦାର୍ଥାଦିରେ ଛନ୍ତି ରହି | । ଆଗୋ ଅଙ୍ଗନାମାନେ ମୁହିଁ | ॥ | ୧୮୦ |
| | ସମସ୍ତ ପ୍ରାଣିଙ୍କର ଠାରେ | । ଆଦ୍ୟରେ ଅନ୍ତରେ ବାହାରେ | ॥ | ୧୮୧ |
| | ବର୍ତ୍ତିଛି ସେହି ରୂପେ ଯେଣୁ | । ମୋତେ ପାଇଲ ତୁମ୍ଭେ ତେଣୁ | ॥ | ୧୮୨ |
| ୪୬ | ଶରୀର ଆଦିରେ ଯେସନେ | । ଅଛନ୍ତି ମହାଭୂତମାନେ | ॥ | ୧୮୩ |
| | ଏ ରୂପେ ଚତୁର୍ବିଧ[୧] ହୋଇ | । ଯେ ପ୍ରାଣୀମାନେ ଛନ୍ତି ରହି | ॥ | ୧୮୪ |

---
୧. ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ୍ଜ ।

| | | | | | |
|---|---|---|---|---|---|
| | ସେ ନିଜକାରଣ ଭୂତରେ | । | ଅଛନ୍ତି, ନାହାନ୍ତି ଆତ୍ମାରେ | ।। | ୧୮୫ |
| | ଆତ୍ମା ହିଁ ସମସ୍ତ ଭୂତରେ | । | ବ୍ୟାପିଛି ଭୋକ୍ତାସ୍ୱରୂପରେ | ।। | ୧୮୬ |
| | ଏ ଭୂତ ଭୌତିକ ଯେ ଦୁଇ | । | ପ୍ରତ୍ୟକ୍ଷେ ଆତ୍ମା ଅଟେ ଏହି | ।। | ୧୮୭ |
| | ମୁଁ ପରିପୂର୍ଣ୍ଣ, ମୋହ ଠାରେ | । | ସେ ଆତ୍ମା ପ୍ରକାଶ ନିତ୍ୟରେ | ।। | ୧୮୮ |
| | ତୁମ୍ଭେ ସମସ୍ତ ନାରୀଜନ | । | ସେ ଆତ୍ମା କର ବିଲୋକନ | ।। | ୧୮୯ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୪୭ | କହନ୍ତି ବେଦବ୍ୟାସସୁତ | । | ଶୁଣ ହେ ନୃପ ପରୀକ୍ଷିତ | ।। | ୧୯୦ |
| | ଗୋପିକାମାନେ ଏ ରୂପରେ | । | ଅଧ୍ୟାତ୍ମବିଦ୍ୟାର ଶିକ୍ଷାରେ | ।। | ୧୯୧ |
| | କୃଷ୍ଣର ଶିକ୍ଷାକୁ ଲଭିଣ | । | ସେ ଶିକ୍ଷା କରନ୍ତେ ସ୍ମରଣ | ।। | ୧୯୨ |
| | ଲିଙ୍ଗଶରୀର ବିନାଶିଲେ | । | ସେହି ଶ୍ରୀକୃଷ୍ଣଙ୍କୁ ଲଭିଲେ | ।। | ୧୯୩ |
| ୪୮ | ମହା ସୁଜ୍ଞାନୀ ଯୋଗେଶ୍ୱରେ | । | ଯାହା ଚିନ୍ତନ୍ତି ହୃଦୟରେ | ।। | ୧୯୪ |
| | ସଂସାରକୂପେ ନିପତନ | । | ହୋଇଥାଆନ୍ତି ଯଉଁ ଜନ | ।। | ୧୯୫ |
| | ତାଙ୍କ ଉଦ୍ଧାରନିମିତ୍ତରେ | । | ଯେ ଅବଲମ୍ବ ଏ ସଂସାରେ | ।। | ୧୯୬ |
| | ସେ ପଦନଳିନ ତୁମ୍ଭର | । | ହେ ପଦ୍ମନାଭ ନିରନ୍ତର | ।। | ୧୯୭ |
| | ଗୃହକୁ ଭଜିଲୁଁ ଯେ ନିତ୍ୟେ | । | ସେ ଆମ୍ଭମାନଙ୍କର ଚିତ୍ତେ | ।। | ୧୯୮ |
| | ପ୍ରକାଶ ହୋଉ ସର୍ବକାଳେ | । | ଏମନ୍ତ ବୋଇଲେ ସକଳେ | ।। | ୧୯୯ |
| | ଅଧ୍ୟାତ୍ମବିଦ୍ୟାର ଶିକ୍ଷାକୁ | । | ଯେ ଦେଲେ ଗୋପିକାମାନଙ୍କୁ | ।। | ୨୦୦ |
| | ସେ କୃଷ୍ଣଚରଣ-ଅମ୍ବୁଜ | । | ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୨୦୧ |
| | ବୈଷ୍ଣବ ଜୟରାମ ଦାସ | । | ଏ ରସେ ପରମ ଉଲ୍ଲାସ | ।। | ୨୦୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀବୃଷ୍ଣି-ଗୋପସଙ୍ଗମୋ
ନାମ ଦ୍ୱ୍ୟଶୀତିତମୋଽଧ୍ୟାୟଃ ।।

## ତ୍ର୍ୟଶୀତିତମ ଅଧ୍ୟାୟ

ତ୍ର୍ୟଶୀତିତମ ଏବଂ ଚ ସ୍ତ୍ରୀଣାଂ କୃଷ୍ଣକଥୋତ୍ସବେ ।
ଦ୍ରୌପଦ୍ୟୈ କୃଷ୍ଣଭାର୍ଯ୍ୟାଭିରୁକ୍ତାଃ ସ୍ୱସ୍ୱକରଗ୍ରହାଃ ।। ୧

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ ନନ୍ଦନ | । | ଏଥୁ ଅନ୍ତରେ ହେ ରାଜନ | ।। | ୧ |
| | ଗୋପୀଙ୍କ ଗୁରୁ-ଗତି ହରି | । | ଗୋପୀଙ୍କି ଅନୁଗ୍ରହ କରି | ।। | ୨ |
| | ଯୁଧିଷ୍ଠିରଙ୍କୁ ଏଥୁ ଅନ୍ତେ | । | ସେଠାରେ ପୁଚ୍ଛିଲେ ଏମନ୍ତେ | ।। | ୩ |
| | ସମସ୍ତ ସୁହୃଦମାନଙ୍କୁ | । | ପୁଚ୍ଛିଲେ କୁଶଳ ବାର୍ତ୍ତାକୁ | ।। | ୪ |

୨ ସେ ଲୋକନାଥ ସେ କାଳରେ । ତାଙ୍କୁ ପୁଛନ୍ତେ ଏ ରୂପରେ ॥ ୫
ସେମାନେ ସତ୍କାରକୁ ପାଇ । ଅତି ଆନନ୍ଦଚିତ୍ତ ହୋଇ ॥ ୬
କୃଷ୍ଣର ଯଉଁ ପାଦ ଦୁଇ । ତାହା ଦର୍ଶନ କରି ତହିଁ ॥ ୭
ନିଷ୍ପାପ ହୋଇ ସର୍ବଜନ । କହିଲେ ଏମନ୍ତ ବଚନ ॥ ୮
୩ ସାଧୁଙ୍କ ମନସକାଶରୁ । ଯେ ଜାତ ହୋଏ ବଦନରୁ ॥ ୯
ପ୍ରାଣିଙ୍କ ଦେହ ଯେ କରଇ । ସେ ଅବିଦ୍ୟାକୁ ଯେ ନାଶଇ ॥ ୧୦
ଏମନ୍ତ ତୋ' ପାଦପଦ୍ମର । ଯଉଁ ଆସବ ତା' ସତ୍ୱର ॥ ୧୧
କର୍ଣ୍ଣପୁଟରେ ଯଉଁ ଜନେ । ପିଉଥାଆନ୍ତି ଅନୁଦିନେ ॥ ୧୨
ହେ ପ୍ରଭୋ ତାଙ୍କର ସକଳ । କାହୁଁ ହୋଇବ ଅମଙ୍ଗଳ ॥ ୧୩
୪ ନିଜ ବୁଦ୍ଧିକି ଅନୁବର୍ତ୍ତି । ଯେ ତିନି ଅବସ୍ଥା ଅଛନ୍ତି ॥ ୧୪
ତା' ନିଜରୂପପ୍ରକାଶରେ । ଯେ ନାଶ କରଇ ସଂସାରେ ॥ ୧୫
ଯେ ସର୍ବ ଆନନ୍ଦସ୍ୱରୂପୀ । ଯେ ଅଛି ସବୁଠାରେ ବ୍ୟାପି ॥ ୧୬
କାଳେ ବିନଷ୍ଟ ବେଦମାନେ । ତା' ରକ୍ଷା ଅର୍ଥେ ଏ ଭୁବନେ ॥ ୧୭
ଯୋଗମାୟାକୁ ଘେନିକରି । ଯେ ହୋଏ ନରରୂପଧାରୀ ॥ ୧୮
ପରମହଂସ ଯୋଗୀଙ୍କର । ଯେ ଗତି ଅଟଇ ଆବର ॥ ୧୯
ହେ ପ୍ରଭୁ ସେ ତୁମ୍ଭେ ତୁମ୍ଭଙ୍କୁ । ଆମ୍ଭେ କରୁଛୁଁ ପ୍ରଣାମକୁ ॥ ୨୦

ଶ୍ରୀଋଷିରୁବାଚ

୫ କହନ୍ତି ବ୍ୟାସଙ୍କ କୁମର । ହେ ପରୀକ୍ଷିତ ଦଣ୍ଡଧର ॥ ୨୧
ଉତ୍ତମଶ୍ଳୋକମାନଙ୍କର । ମଧ୍ୟରେ ଅଟନ୍ତି ଯେ ବର ॥ ୨୨
ସେ ଶ୍ରୀକୃଷ୍ଣଙ୍କୁ ଏ ରୂପରେ । ସ୍ତୁତି କରନ୍ତେ ସର୍ବନରେ ॥ ୨୩
ଅନ୍ଧକ-କୌରବସ୍ତ୍ରୀମାନେ । ସମସ୍ତେ ଆସି ଏକସ୍ଥାନେ ॥ ୨୪
ତିନିଲୋକରେ ଯା' ଗାୟନ । ସେ ଗୋବିନ୍ଦର କଥାମାନ ॥ ୨୫
ସେ କାଳେ ପରସ୍ପର ହୋଇ । ଗାୟନ କଲେ ଯାହା ତହିଁ ॥ ୨୬
ତାହା କହିବା ତୁମ୍ଭ ଆଗେ । ହେ ନୃପ ! ଶୁଣ ତା' ସରାଗେ ॥ ୨୭

ଶ୍ରୀଦ୍ରୌପଦୀ ଉବାଚ

୬। ଶ୍ରୀକୃଷ୍ଣ ପତ୍ନୀମାନଙ୍କୁ ହିଁ । ଦ୍ରୌପଦୀ ପଚାରନ୍ତି ତହିଁ ॥ ୨୮
୭। ଆଗୋ ରୁକ୍ମିଣି ଜାମ୍ବବତି । ଲକ୍ଷ୍ମଣା ଭଦ୍ରା ସତ୍ୟବତି ॥ ୨୯
ହେ ସତ୍ୟଭାମା ହେ ରୋହିଣି । କାଳିନ୍ଦି ମିତ୍ରବିନ୍ଦା ପୁଣି ॥ ୩୦
ହେ ଅନ୍ୟ କୃଷ୍ଣପତ୍ନୀଗଣ । ଏମନ୍ତ ପଚାରୁଛି ଶୁଣ ॥ ୩୧
ଆପଣା ମାୟାରେ ଶ୍ରୀପତି । କରନ୍ତେ ଲୋକଙ୍କର ରୀତି ॥ ୩୨
ଯାହାକୁ ଯେମନ୍ତ ରୂପରେ । ବିଭା ହୋଇଲେ ସେ କାଳରେ ॥ ୩୩
ଉତ୍ତମ କରିଣ ଆମ୍ଭଙ୍କୁ । ତୁମ୍ଭେ ଗୋ କହ ସେ କଥାକୁ ॥ ୩୪

ଶ୍ରୀରୁକ୍ମିଣୀ ଉବାଚ

୮ କହୁଅଛନ୍ତି ସେ ରୁକ୍ମିଣୀ । ଶୁଣ ଗୋ ଦ୍ରୁପଦଦୁଲଣୀ ॥ ୩୫
ଜରାସନ୍ଧାଦି ନୃପବରେ । ଧନୁଶରକୁ ଧରି କରେ ॥ ୩୬
ଶିଶୁପାଳକୁ ନେଇ ମୋତେ । ବିଭା କରିବା ବିଚାରନ୍ତେ ॥ ୩୭
ଦୁର୍ଜୟ ଯୋଦ୍ଧାମାନଙ୍କର । ମସ୍ତକଉପରେ ସତ୍ୱର ॥ ୩୮
ଚରଣଧୂଳି ଦେଇ କରି । ମୋତେ ହରିଲେ ନରହରି ॥ ୩୯
ଛେଳିଙ୍କ ମଧ୍ୟୁଁ ଯେହ୍ନେ ଯାଇ । ଭାଗକୁ ମୃଗେନ୍ଦ୍ର[୧] ନିଅଇ ॥ ୪୦
ସେ ଶ୍ରୀନିବାସପାଦ ଯେହୁ । ସେ ମୋର ପୂଜା ଅର୍ଥେ ହେଉ ॥ ୪୧

ଶ୍ରୀସତ୍ୟଭାମା ଉବାଚ

୯ କହନ୍ତି ସତ୍ୟଭାମା ପୁଣ । ଆଗୋ ଦ୍ରୌପଦି ! ତୁମ୍ଭେ ଶୁଣ ॥ ୪୨
ସିଂହ ମାରନ୍ତେ ନିଜ ଭ୍ରାତ । ସଂତପ୍ତ ଚିତ୍ତେ ମୋର ତାତ ॥ ୪୩
ଦେଲା ଯେବଣ ଅପଯଶ । ତାହା କରିବା ଅର୍ଥେ ନାଶ ॥ ୪୪
ଏଥୁ ଅନ୍ତରେ ସେ ଶ୍ରୀହରି । ଋକ୍ଷରାଜାଙ୍କୁ ଜିଣିକରି ॥ ୪୫
ଆଣି ସେ ସ୍ୟମନ୍ତକ ମଣି । ଦେଲେ ମୋ' ପିତାହସ୍ତେ ପୁଣି ॥ ୪୬
ମୋ ପିତା ଅତି ଭୟ ପାଇ । ମଣି ସହିତେ ମୋତେ ନେଇ ॥ ୪୭
କୃଷ୍ଣଙ୍କୁ ଦେଲା ସେ କାଳରେ । ଅକ୍ରୁର ଆଦିଙ୍କୁ ପୂର୍ବରେ ॥ ୪୮
ଯଦ୍ୟପି ମୋତେ ହିଁ ବାକ୍‌ଦତ୍ତା । କରିଣ ଥିଲା ମୋର ପିତା ॥ ୪୯

ଶ୍ରୀଜାମ୍ବବତୀ ଉବାଚ

୧୦ କହନ୍ତି ଜାମ୍ବବତୀ ପୁଣି । ଶୁଣ ଗୋ ପାଣ୍ଡବଘରଣୀ ॥ ୫୦
ଯେ ନିଜନାଥ ସୀତାପତି । ଆପଣା ଈଶ୍ୱର ଅଟନ୍ତି ॥ ୫୧
ସେହିଟି ଶ୍ରୀକୃଷ୍ଣ ଏମନ୍ତ । ଜାଣି ନ ପାରି ମୋର ତାତ ॥ ୫୨
ସପ୍ତବିଂଶତି ଦିନ ଘୋରେ । ଯୁଝିଲା କୃଷ୍ଣ ସଙ୍ଗତରେ ॥ ୫୩
ତଦନ୍ତେ ଚିହ୍ନମାନ ଜାଣି । ଏ କୃଷ୍ଣ ନିଶ୍ଚେ ରଘୁମଣି ॥ ୫୪
ମନେ ଏମନ୍ତ ଜାଣିକରି । ସେ କୃଷ୍ଣବେନିପାଦ ଧରି ॥ ୫୫
ମଣିସହିତେ ମୋତେ ନେଇ । ସମର୍ପିଦେଲା ପୂଜାଠାଇଁ ॥ ୫୬
ଏହି ହେତୁରୁ ଶ୍ରୀକୃଷ୍ଣର । ଦାସୀ ମୁଁ ହେଲି ନିରନ୍ତର ॥ ୫୭

ଶ୍ରୀକାଳିନ୍ଦୀ ଉବାଚ

୧୧ କାଳିନ୍ଦୀ କହନ୍ତି ଏମନ୍ତ । ଶୁଣ ଗୋ ଦ୍ରୁପଦଦୁହିତ ॥ ୫୮
ଶ୍ରୀକୃଷ୍ଣ ଚରଣନଳିନ । ଛୁଇଁବା ଅର୍ଥେ କରି ମନ ॥ ୫୯
ତପ ମୁଁ କରନ୍ତେ ତା' ଜାଣି । ଅର୍ଜୁନସଙ୍ଗେ ଚକ୍ରପାଣି ॥ ୬୦
ସେଠାକୁ ଆସି କରି ହେଲେ । ମୋ ହସ୍ତ ସେକାଳେ ଧଇଲେ ॥ ୬୧
ଏଣୁ ମୁଁ ଶ୍ରୀକୃଷ୍ଣର ପୁରେ । ମାର୍ଜନା କରଇ ନିତ୍ୟରେ ॥ ୬୨

---

୧. ମୃଗେନ୍ଦ୍ର = ସିଂହ ।

### ଶ୍ରୀଭଦ୍ରା ଉବାଚ

୧୨ ପାଣ୍ଡବପତ୍ନୀର ଅଗ୍ରରେ । ଭଦ୍ରା କହନ୍ତି ଏ ରୂପରେ ।। ୬୩
ଯେ ଆସି ସ୍ୱୟମ୍ବରକାଳେ । ରାଜାଙ୍କୁ ଜିଣିକରି ବଳେ ।। ୬୪
ଭ୍ରାତାଙ୍କୁ ଯୁଝନ୍ତେ ମୋହର । ତାହାଙ୍କୁ ଜିଣି ସେ ସତ୍ୱର ।। ୬୫
ଆପଣା ବଳି ଯେ ଅଟଇ । କୁକୁରଯୂଥଗତ ଯେହି ।। ୬୬
ତାହାକୁ ଯେସନେ କେଶରୀ । ନିଅଇ ବଳାତ୍‌କାର କରି ।। ୬୭
ସେ ଶ୍ରୀନିବାସ ସେରୂପରେ । ମୋତେ ଯେ ନେଲେ ନିଜପୁରେ ।। ୬୮
ତା' ପାଦଧୌତ କର୍ମ ଯେହୁ । ସେ ମୋର ପ୍ରତିଜନ୍ମେ ହେଉ ।। ୬୯

### ଶ୍ରୀସତ୍ୟା ଉବାଚ

୧୩ ଏଥୁ ଅନ୍ତରେ ପୁଣ ତାଙ୍କୁ । ସତ୍ୟା କହନ୍ତି ଏ ବାକ୍ୟକୁ ।। ୭୦
ଯେ ବଳ-ବୀର୍ଯ୍ୟେ ବଳୀୟାର । ସୁତୀକ୍ଷ୍ଣ ଶୃଙ୍ଗ ଯାହାଙ୍କର ।। ୭୧
ସମସ୍ତ ବୀରମାନଙ୍କର । ଗର୍ବ ଯେ କରନ୍ତି ସଂହାର ।। ୭୨
ରାଜାଙ୍କ ବଳ ଜାଣିମାକୁ । ମୋ ପିତା ସଂପାଦିଲା ଯାଙ୍କୁ ।। ୭୩
ଏମନ୍ତ ବଳୀବର୍ଦ୍ଦ ସାତ । କ୍ରୀଡ଼ାକୁ କରନ୍ତେ ତ୍ୱରିତ ।। ୭୪
ଏକାବେଳକେ ନରହରି । ବନ୍ଧନ କଲେ ଯତ୍ନ କରି ।। ୭୫
ଛେଳିପିଲାଙ୍କୁ ନିବନ୍ଧନ । ବାଳକେ କରନ୍ତି ଯେସନ ।। ୭୬
୧୪ ଏ ପରାକ୍ରମଲଭ୍ୟ ମୁହିଁ । ମୋତେ ଯେ ଏ ରୂପରେ ତହିଁ ।। ୭୭
ଦାସୀଙ୍କ ସହିତେ ତତ୍‌କାଳ । ଘେନିଣ ଚତୁରଙ୍ଗ ବଳ ।। ୭୮
ମାର୍ଗରେ ଜିଣିଣ ରାଜାଙ୍କୁ । ଯେ ନେଲେ ଆପଣା ପୁରକୁ ।। ୭୯
ସେ ଶ୍ରୀକୃଷ୍ଣର ଦାସୀପଣ । ମୋହର ହେଉ ଅନୁକ୍ଷଣ ।। ୮୦

### ଶ୍ରୀମିତ୍ରବିନ୍ଦା ଉବାଚ

୧୫ କହନ୍ତି ମିତ୍ରବିନ୍ଦା ପୁଣି । ହେ ସଖି ! ଶୁଣ ମୋର ବାଣୀ ।। ୮୧
କୃଷ୍ଣ ମୋ' ମାତୁଳେୟ ଭାଇ । ମୋ ଚିତ୍ତ ଥିଲା ତାଙ୍କ ତହିଁ ।। ୮୨
ଆପଣେ ଡକାଇ ତାହାଙ୍କୁ । ମୋ ପିତା ଦେଲେ ଗୋ ଆମ୍ଭଙ୍କୁ ।। ୮୩
ସଙ୍ଗତେ ଦେଲେ ସଖୀଜନ । ଦେଲେ ଅନେକ ସୈନ୍ୟମାନ ।। ୮୪
୧୬ କର୍ମମାର୍ଗରେ ନିରନ୍ତର । ଭ୍ରମଣ କରନ୍ତେ ମୁଁ ମୋର ।। ୮୫
ସେ କୃଷ୍ଣପାଦସ୍ପର୍ଶ ଯେହୁ । ସେ ମୋର ଜନ୍ମେ ଜନ୍ମେ ହେଉ ।। ୮୬
ଯଉଁ ସ୍ପରଶରେ ଆବର । ମଙ୍ଗଳ ହୋଏ ଆପଣାର ।। ୮୭

### ଶ୍ରୀଲକ୍ଷ୍ମଣା ଉବାଚ

୧୭ ଦ୍ରୁପଦସୁତାର ଅଗ୍ରତେ । ଲକ୍ଷ୍ମଣା କହନ୍ତି ଏମନ୍ତେ ।। ୮୮
ଅଚ୍ୟୁତଗୁଣକର୍ମମାନ । ନାରଦ କଲେ ଯା' ଗାୟନ ।। ୮୯

ତାହା ଶ୍ରବଣ କରି ମୁହିଁ । ଅଚ୍ୟୁତଠାରେ ଚିତ୍ତ ନେଇ ॥
ଅର୍ପଣ କଲି ମୁଁ ବିଚାରି । ଲୋକପାଳଙ୍କୁ ଛାଡ଼ି କରି ॥
ଯଉଁ କୃଷ୍ଣଙ୍କୁ ପୂର୍ବେ ପୁଣ । ଲକ୍ଷ୍ମୀ ହିଁ କରିଛି ବରଣ ॥
୧୮ ବୃହତ୍‌ସେନ ନାମରେ ଖ୍ୟାତ । ଦୁହିତାବତ୍ସଳ ମୋ' ତାତ ॥
ସେ ମୋର ଜାଣି ଅଭିପ୍ରାୟ । ତହିଁକି ରଚିଲେ ଉପାୟ ॥
୧୯ ଯେସନେ ତୁମ୍ଭ ସ୍ୱୟମ୍ବରେ । ଅର୍ଜୁନପ୍ରାପ୍ତିନିମିତ୍ତରେ ॥
ଯେ ରୂପେ ମତ୍ସ୍ୟ ହୋଇଥିଲା । ସେହି ରୂପରେ ମତ୍ସ୍ୟ କଲା ॥
ପୁଣି ଏ ମତ୍ସ୍ୟ ବାହାରରେ । ଆଚ୍ଛନ୍ନ ହୋଇ ନିରନ୍ତରେ ॥
ସ୍ତମ୍ଭମୂଳରେ ଯଉଁ ଜଳ । ତହିଁରେ ଦିଶଇ କେବଳ ॥
ଏଣୁ ଶ୍ରୀକୃଷ୍ଣ ବିନୁ କେହି । ବିନ୍ଧିବାକୁ ତା' ଯୋଗ୍ୟ ନୋହି ॥
୨୦ ଏ କଥା ଶ୍ରବଣ କରିଣ । ସବୁ ଦିଗରୁ ରାଜାଗଣ ॥
ସହସ୍ର ସହସ୍ର ସଂଖ୍ୟାରେ । ଅଇଲେ ମୋ' ପିତାର ପୁରେ ॥
ସମସ୍ତ ଅସ୍ତ୍ର-ଶସ୍ତ୍ରଙ୍କର । ତତ୍ତ୍ୱକୁ ଜାଣନ୍ତି ଆବର ॥
ଧନୁର୍ବିଦ୍ୟାରେ ଯେ ପଣ୍ଡିତ । ସେ ଗୁରୁମାନଙ୍କ ସହିତ ॥
୨୧ ସେ ରାଜାମାନଙ୍କୁ ମୋ ତାତ । ଯାହାର ବୟସ ଯେମନ୍ତ ॥
ଯାର ଯେମନ୍ତ ବଳମାନ । ସେ ରୂପେ କଲେକ ପୂଜନ ॥
ମୋଠାରେ ନିବେଶି ଚିତ୍ତକୁ । ସଭାରେ ମତ୍ସ୍ୟ ବିନ୍ଧିବାକୁ ॥
ଶରସହିତେ ଶରାସନ । ସେ ନୃପେ କଲେକ ଆଦାନ ॥
୨୨ କେହୁଣି ରାଜାମାନେ ଗୁଣ । ଧନୁରେ ଦେଇ ନ ପାରିଣ ॥
ଧନୁକୁ ଧରି ଛାଡ଼ିଦେଲେ । ଯେ ଆନ ରାଜାମାନେ ଥିଲେ ॥
ଧନୁକୋଟିରେ ଗୁଣ ଦେଇ । ଗୁଣକୁ ଓଟାରନ୍ତେ ତହିଁ ॥
ଧନୁରେ ହୋଇଣ ନିଧନ । ଭୂମିରେ ହେଲେ ନିପତନ ॥
୨୩ ମାଗଧ ଯେ ଅମ୍ବଷ୍ଠମାନେ । ଯେ ଚେଦିଦେଶରାଜା ଆନେ ॥
ଯେ ଭୀମ ଦୁର୍ଯ୍ୟୋଧନ କର୍ଣ୍ଣ । ଇତ୍ୟାଦି ଯେତେକ ରାଜନ ॥
ଏ ବୀର ଗୁଣମାତ୍ର ଦେଲେ । ଲାଖକୁ ଦେଖି ନ ପାରିଲେ ॥
୨୪ ମତ୍ସ୍ୟର ଚିହ୍ନକୁ ଅର୍ଜୁନ । ଜଳରେ କରି ବିଲୋକନ ॥
ସେ ମତ୍ସ୍ୟ ଅଛି ଯଉଁଠାଇଁ । ସେ କଥା ଜାଣି କରି ତହିଁ ॥
ଅତିଯତ୍ନରେ ସେ ମତ୍ସ୍ୟକୁ । ସେ କାଳେ ବିନ୍ଧିଲେ ଶରକୁ ॥
ମତ୍ସ୍ୟକୁ ନ କାଟି ସେ ବାଣ । କେବଳ ଛୁଇଁଲା ଯାଇଣ ॥
୨୫ ଯେ ଅଭିମାନୀ ରାଜାମାନେ । ଥିଲେ ସେ ସ୍ୱୟମ୍ବରସ୍ଥାନେ ॥
୨୬ ଭାଜନ୍ତେ ତାଙ୍କ ଗର୍ବମାନ । ସେ ନିବର୍ତ୍ତନ୍ତେ, ଭଗବାନ ॥
ଧନୁରେ ଏଥୁ ଅନନ୍ତରେ । ଗୁଣକୁ ଦେଇ ସେ ଲୀଳାରେ ॥
ଶରକୁ ସନ୍ଧି ସେ ଧନୁରେ । ମତ୍ସ୍ୟକୁ ଜଳେ ଦେଖି ଥରେ ॥

| | | | |
|---|---|---|---|
| | ଅଭିଜିତ ମୁହୂର୍ତ୍ତେ ତହିଁ | ଥାଆନ୍ତେ ଦିବାକର ରହି | ॥ ୧୨୩ |
| | କାଟି ପକାଇ ଶରେ ହେଳେ | ମତ୍ସ୍ୟକୁ ପକାଇଲେ ତଳେ | ॥ ୧୨୪ |
| ୨୭ | ଦୁନ୍ଦୁଭିମାନେ ସେ କାଳରେ | ଶବଦ କଲେ ଆକାଶରେ | ॥ ୧୨୫ |
| | ଭୂମିରେ ବାରମ୍ବାର ତହିଁ | ଜୟଶବଦେ ଯୁତ ହୋଇ | ॥ ୧୨୬ |
| | ପୁଣି ସମସ୍ତ ଦେବଗଣ | ହରଷେ ବିହ୍ୱଳ ହୋଇଣ | ॥ ୧୨୭ |
| | କୁସୁମ-ଆସାର[୧] ମାନଙ୍କୁ | ବହୁତ କଲେ ମୋକ୍ଷଣକୁ | ॥ ୧୨୮ |
| ୨୮ | କଳନୂପୁର ଅଛି ଯହିଁ | ସେ ବେନି ଚରଣରେ ମୁହିଁ | ॥ ୧୨୯ |
| | ସ୍ୱର୍ଣ୍ଣସଂଯୁତ ରତ୍ନମାଳେ | ହସ୍ତରେ ଧରିଣ ସେ କାଳେ | ॥ ୧୩୦ |
| | ପ୍ରବେଶ ହେଲି ମୁଁ ସଭାରେ | ସଲଜ୍ଜ-ହାସ ବଦନରେ | ॥ ୧୩୧ |
| | ନବୀନ ପଟ୍ଟବସ୍ତ୍ରଦ୍ୱୟ | ପିନ୍ଧି ମୁଁ କରି ଉତ୍ତରୀୟ | ॥ ୧୩୨ |
| | କବରୀଭାରରେ ବିମଳ | ଧରି ମୁଁ ଥିଲି ପୁଷ୍ପମାଳ | ॥ ୧୩୩ |
| ୨୯ | କୁଟିଳ କୁନ୍ତଳ ଯହିଁରେ | ସେ ବେନିକୁଣ୍ଡଳ କାନ୍ତିରେ | ॥ ୧୩୪ |
| | ଶୋଭିତ ଗଣ୍ଡସ୍ଥଳ ଯହିଁ | ସେ ମୁଖଚନ୍ଦ୍ର ଟେକି ମୁହିଁ | ॥ ୧୩୫ |
| | ସଂତାପହର-ହାସଯୁତ | କଟାକ୍ଷମୋକ୍ଷରେ ତୁରିତ | ॥ ୧୩୬ |
| | ନୃପଙ୍କୁ ଚାହିଁ ସବୁଦିଗେ | ହେ ରାଣୀ ଚିତ୍ତ-ଅନୁରାଗେ | ॥ ୧୩୭ |
| | ଧୀରେ ଯାଇଣ କୃଷ୍ଣଗଳେ | ମାଳାକୁ ଦେଲି ମୁଁ ସେକାଳେ | ॥ ୧୩୮ |
| ୩୦ | ଆନକ-ଶଙ୍ଖ-ଭେରୀମାନ | ମୃଦଙ୍ଗ-ପଟହ ଯେ ଆନ | ॥ ୧୩୯ |
| | ଏ ଆଦି ବାଦ୍ୟ ଅପ୍ରମିତ | ସେକ୍ଷଣି ବାଜିଲେ ତୁରିତ | ॥ ୧୪୦ |
| | ନଟ-ନର୍ତ୍ତକୀ ଯେତେ ଜନ | ସେମାନେ କଲେ ନୃତ୍ୟମାନ | ॥ ୧୪୧ |
| | ଗାୟକମାନେ ଥିଲେ ଯେତେ | ଗାୟନ କଲେ ସେ ସମସ୍ତେ | ॥ ୧୪୨ |
| ୩୧ | ହେ ଯାଜ୍ଞସେନି ! ମୁଁ ଏମନ୍ତେ | ସେ କାଳେ କୃଷ୍ଣଙ୍କୁ ବରନ୍ତେ | ॥ ୧୪୩ |
| | ଯେ ନୃପଯୂଥପତି ଥିଲେ | କନ୍ଦର୍ପେ ଆତୁର ସେ ହେଲେ | ॥ ୧୪୪ |
| | ବିବାହ ବିଚାରନ୍ତେ କେହି | ଏ କଥା ନ ପାରିଲେ ସହି | ॥ ୧୪୫ |
| ୩୨ | ଯହିଁରେ ହୟରତ୍ନ ଚାରି | ଅଛନ୍ତି ଯୋଚା ହୋଇ କରି | ॥ ୧୪୬ |
| | ମୋତେ ବସାଇ ସେ ରଥରେ | ସନ୍ନଦ୍ଧ ହୋଇ ସେ କ୍ଷଣରେ | ॥ ୧୪୭ |
| | ଶାରଙ୍ଗ ଧନୁ-ଶର ଦୁଇ | ବେନି ହସ୍ତରେ ଧରି ତହିଁ | ॥ ୧୪୮ |
| | ଆରକ ବେନି ହସ୍ତେ ପୁଣ | ମୋତେ କରିଣ ଆଲିଙ୍ଗନ | ॥ ୧୪୯ |
| | ଏମନ୍ତ ରୂପେ ଦେବରାଜ | ଯୁଦ୍ଧେ ହୋଇଲେ ଚତୁର୍ଭୁଜ | ॥ ୧୫୦ |
| ୩୩ | ସେ ରଥ କାଞ୍ଚନେ ନିର୍ମିତ | ଦାରୁକ ବାହିଲା ତୁରିତ | ॥ ୧୫୧ |
| | ଆଗୋ ଦ୍ରୌପଦି ତୁମ୍ଭେ ଶୁଣ | ଦେଖନ୍ତେ ସର୍ବରାଜାଗଣ | ॥ ୧୫୨ |
| | ମୃଗଙ୍କ ମଧ୍ୟରୁ ଯେସନ | କେଶରୀ କରଇ ଗମନ | ॥ ୧୫୩ |

୧. ଆସାର = ବୃଷ୍ଟି ।

୩୪ କେହୁଣି ରାଜାମାନେ ତହିଁ । ମାର୍ଗରେ ରୁନ୍ଧିବାକୁ ଯାଇ ॥ ୧୫୪
ଧାଇଁଲେ ଶ୍ରୀକୃଷ୍ଣ ପଛରେ । ଧନୁକୁ ଟେକି ନିଜ କରେ ॥ ୧୫୫
ସଂଯତ୍ତ[୧] ହୋଇଲେ ଯେସନ । ସିଂହ-ଆଗରେ ହୋଏ ଶ୍ୱାନ ॥ ୧୫୬
୩୫ ଶାରଙ୍ଗ-ଧନୁରୁ ମୋକ୍ଷଣ । ହୋଇଲା ଯେତେ ବାଣଗଣ ॥ ୧୫୭
ତେଣେ ଛିଡ଼ନ୍ତେ ରାଜାଙ୍କର । ଚରଣ କର ଯେ କନ୍ଧର[୨] ॥ ୧୫୮
ଯୁଦ୍ଧେ ପଡ଼ିଲେ ଥୋକେ ପୁଣ । ପଳାଇ ଗଲେ ଛାଡ଼ି ରଣ ॥ ୧୫୯
୩୬ ସେ ଯଦୁପତି ତଦନ୍ତରେ । ମିଳିଲେ କୁଶସ୍ଥଳୀପୁରେ ॥ ୧୬୦
ନାନାଭୂଷଣରେ ଅତ୍ୟନ୍ତ । ଯେ ନିତ୍ୟେ ଅଟେ ଅଳଂକୃତ ॥ ୧୬୧
ଯହିଁରେ ଧ୍ୱଜପଟମାନ । ରବିଙ୍କି କରେ ଆଚ୍ଛାଦନ ॥ ୧୬୨
ଯହିଁରେ ତୋରଣ ଚିତ୍ରିତ । ସ୍ୱର୍ଗ-ମର୍ତ୍ତ୍ୟରେ ଯେ ବିଦିତ ॥ ୧୬୩
ସେ ପୁରେ ନିଜ ନିକେତନେ । [୩]ମିଳିଲେ ଭାସ୍କର ଯେସନେ ॥ ୧୬୪
୩୭ ଦିବ୍ୟବସନ-ଅଳଂକାରେ । ଶଯ୍ୟା ଆସନ ଏ ଆଦିରେ ॥ ୧୬୫
ମିତ୍ରସଂବନ୍ଧୀ-ବାନ୍ଧବଙ୍କୁ । ମୋ ପିତା କଲା ପୂଜନକୁ ॥ ୧୬୬
୩୮ ସର୍ବସଂପତ୍ତି ଦାସୀଜନ । ଉଟ[୪] -କୁଞ୍ଜର-ଅଶ୍ୱମାନ ॥ ୧୬୭
ରଥମାନଙ୍କର ସହିତେ । ଦିବ୍ୟ ଆୟୁଧମାନ ଯେତେ ॥ ୧୬୮
ଭକ୍ତିରେ ପିତା ଏମାନଙ୍କୁ । ଦେଲେ ସେ ପୂର୍ଣ୍ଣ ଶ୍ରୀକୃଷ୍ଣଙ୍କୁ ॥ ୧୬୯
୩୯ ସେ ଆତ୍ମାରାମ ନରହରି । ତାଙ୍କର ଆମ୍ଭେ ଅଷ୍ଟନାରୀ ॥ ୧୭୦
ସମସ୍ତ ସଙ୍ଗନିବୃତ୍ତିରେ । ସାକ୍ଷାତେ ଅତି ତପସ୍ୟାରେ ॥ ୧୭୧
ଗୃହରେ ଦାସୀ ହୋଇ କରି । ହେଲୁଁ ହେ ଦ୍ରୁପଦକୁମାରି ॥ ୧୭୨

ଶ୍ରୀମହିଷ୍ୟ ଉଚୁଃ

୪୦ ଦିଗବିଜୟ ସମୟରେ । ନରକାସୁର ସମରରେ ॥ ୧୭୩
ଜିଣିଲା ଯେବଣ ରାଜାଙ୍କୁ । ଆଣି ସେ ରାଜାଙ୍କ କନ୍ୟାଙ୍କୁ ॥ ୧୭୪
ବନ୍ଦି କରନ୍ତେ ନରହରି । ସବଂଶ କରି ତାକୁ ମାରି ॥ ୧୭୫
ସେ କନ୍ୟା ଆମ୍ଭେ ସେ ଆମ୍ଭଙ୍କୁ । ବନ୍ଦିରୁ କରି ମୋକ୍ଷଣକୁ ॥ ୧୭୬
ସଂସାରୁ ମୋକ୍ଷ ଯେ କରଇ । ସେ କୃଷ୍ଣପାଦପଦ୍ମ ଦୁଇ ॥ ୧୭୭
ଆମ୍ଭେ ଯେ କରୁଥିଲୁଁ ଧ୍ୟାନ । ସେ ଆପ୍ତକାମ ଭଗବାନ ॥ ୧୭୮
ଆମ୍ଭମାନଙ୍କୁ ସେ କାଳରେ । ବିବାହ ହେଲେ ଯଥାର୍ଥରେ ॥ ୧୭୯
୪୧ ସାମ୍ରାଜ୍ୟପଦ ସ୍ୱର୍ଗଗତି । ଅଣିମା ଆଦି ଯେ ବିଭୂତି ॥ ୧୮୦
ସ୍ୱର୍ଗ-ମର୍ତ୍ତ୍ୟରେ ଯଉଁ ଭୋଗ । ବ୍ରହ୍ମଲୋକରେ ଯେ ସଂଯୋଗ ॥ ୧୮୧
ଯେ ମୋକ୍ଷ, ସାଲୋକ୍ୟାଦି ମୁକ୍ତି । ଏହା ନ ବାଞ୍ଛୁଁ ଆଗୋ ସତି ॥ ୧୮୨
୪୨ ଲକ୍ଷ୍ମୀର ଯେ କୁଚକୁଙ୍କୁମ । ତା' ଗନ୍ଧେ ଅତି ମନୋରମ ॥ ୧୮୩

୧. ଯୁଦ୍ଧୋଦ୍ୟତ । ୨. ବେକ । ୩. ସୂର୍ଯ୍ୟ ଯେପରି ମଣ୍ଡଳ ବା ଅସ୍ତାଚଳକୁ ଯାଆନ୍ତି । ୪. ଓଟ ।

| | | | | |
|---|---|---|---|---|
| | ଶ୍ରୀମନ୍ତ ଶ୍ରୀକୃଷ୍ଣଚରଣ | । ଧୂଳିମାନଙ୍କୁ ଅନୁକ୍ଷଣ | ॥ | ୧୮୪ |
| | ନିଜ ମସ୍ତକେ ବହିବାକୁ | । ଆମ୍ଭେ କରୁଛୁଁ କାମନାକୁ | ॥ | ୧୮୫ |
| ୪୩ | ବାଞ୍ଛନ୍ତି ଯା' ବ୍ରଜବନିତା | । ପୁଳିନ୍ଦ[1]କନ୍ୟା ତୃଣଲତା | ॥ | ୧୮୬ |
| | ମହାତ୍ମା ସେ ଶ୍ରୀହରି ବନେ | । ଗାଇ ଚରାନ୍ତେ ପ୍ରତିଦିନେ | ॥ | ୧୮୭ |
| | ତା' ପାଦସ୍ପରଶଙ୍କୁ ମନେ | । ଗୋପାଳେ ବାଞ୍ଛନ୍ତି ଯେସନେ | ॥ | ୧୮୮ |
| | ଆମ୍ଭେ ସମସ୍ତେ ସେ ରୂପରେ | । ତା' ବାଞ୍ଛା କରୁଛୁଁ ମନରେ | ॥ | ୧୮୯ |
| | ହେ କୃଷ୍ଣ କମଳଲୋଚନ | । ତୁମ୍ଭେ ଯେ ପତିତପାବନ | ॥ | ୧୯୦ |
| | ମୁହିଁ ପତିତ ଦୀନବନ୍ଧୁ | । ମୋତେ ଉଦ୍ଧର ଭବସିନ୍ଧୁ | ॥ | ୧୯୧ |
| | ସୁଜନେ ନ ଘେନ ମୋ ଦୋଷ | । ଶୁଣି ଏ ଗୀତ ହୁଅ ତୋଷ | ॥ | ୧୯୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ତୀର୍ଥଯାତ୍ରାନୁବର୍ଣ୍ଣନଂ
ନାମ ତ୍ର୍ୟଶୀତିତମୋଽଧ୍ୟାୟଃ ॥

## ଚତୁରଶୀତିତମ ଅଧ୍ୟାୟ

ଚତୁର୍ଭିରଧିକାଶୀତିତମେ ମୁନିସମାଗମେ ।
ବସୁଦେବମଖୋତ୍‌ସାହ-ବନ୍ଧୁପ୍ରସ୍ଥାପନାଦିକମ୍ ॥ ୧

| | | | | |
|---|---|---|---|---|
| ୧ | ବ୍ୟାସଙ୍କ ସୁତ କହୁଛନ୍ତି | । ଶୁଣ ହେ ପାଣ୍ଡୁପଣନାତି | ॥ | ୧ |
| | କୁନ୍ତୀ-ଗାନ୍ଧାରୀ-ଯାଜ୍ଞସେନୀ | । ଯେ ଅନ୍ୟ ରାଜାଙ୍କ କାମିନୀ | ॥ | ୨ |
| | ଏଥୁ ଅନ୍ତରେ ଭଦ୍ରା[2] ପୁଣ | । ଯେ ଅବା ନିଜ ଗୋପୀଗଣ | ॥ | ୩ |
| | ଶୁଣି ଏ କୃଷ୍ଣର ଚରିତ | । ଅଖିଳ ଆତ୍ମା ଯେ ଅନନ୍ତ | ॥ | ୪ |
| | ତା' ଠାରେ ସ୍ନେହାନୁବନ୍ଧକୁ[3] | । ଶୁଣି ଲଭିଲେ ବିସ୍ମୟକୁ | ॥ | ୫ |
| | ଲୋତକକଳାରେ ଆକୁଳ | । ହୋଇଛି ତାଙ୍କ ନେତ୍ରକୁଳ | ॥ | ୬ |
| ୨ | ପୁରୁଷେ ପୁରୁଷଙ୍କ ଠାରେ | । ନାରୀଏ ନାରୀଙ୍କ ସଙ୍ଗରେ | ॥ | ୭ |
| | କରନ୍ତେ ଏମନ୍ତ ପ୍ରଶ୍ନକୁ | । କୃଷ୍ଣ-ରାମଙ୍କୁ ଦେଖିବାକୁ | ॥ | ୮ |
| | ସମସ୍ତ ଋଷିଏ ସେଠାରେ | । ପ୍ରବେଶ ହେଲେ ସେ କାଳରେ | ॥ | ୯ |
| ୩ | ବ୍ୟାସ ନାରଦ ଯେ ଚ୍ୟବନ | । ଅସିତ ବିଶ୍ୱାମିତ୍ର ଆନ | ॥ | ୧୦ |
| ୫ | ଦେବଳ ଶତାନନ୍ଦ ଦୁଇ | । ଗୌତମ ଭରଦ୍ୱାଜ ଯେହି | ॥ | ୧୧ |
| | ପରଶୁରାମ ଭଗବାନ | । ଶିଷ୍ୟଙ୍କୁ ସଙ୍ଗତେ ଘେନିଣ | ॥ | ୧୨ |
| | ବଶିଷ୍ଠ ଗାଳବ ଯେ ଦୁଇ | । ଭୃଗୁ ପୁଲସ୍ତ୍ୟ ପୁଣ ତହିଁ | ॥ | ୧୩ |
| | କଶ୍ୟପ ମାର୍କଣ୍ଡେୟ ପୁଣି | । ଯେ ବୃହସ୍ପତି ଅତ୍ରି ମୁନି | ॥ | ୧୪ |

୧. କିରାତ, ମ୍ଳେଚ୍ଛ ।	୨. ସୁଭଦ୍ରା ।	୩. (ନିଜ ପତ୍ନୀମାନଙ୍କର) ।

| | | | | | |
|---|---|---|---|---|---|
| | ଯେ ବ୍ରହ୍ମପୁତ୍ର ଦ୍ୱିତ ତ୍ରିତ | । | ଅଙ୍ଗିରା ଆବର ଏକତ | ॥ | ୧୫ |
| | ଅଗସ୍ତ୍ୟ ଯାଜ୍ଞବଲ୍‌କ୍ୟ ବେନି | । | ବାମଦେବାଦି ଅନ୍ୟ ମୁନି | ॥ | ୧୬ |
| ୬ | ଏ ଋଷିମାନେ ସେ କାଳରେ | । | ମିଳନ୍ତେ ଯାଇ ସେ ସ୍ଥାନରେ | ॥ | ୧୭ |
| | ପୂର୍ବରୁ ବସିଥିଲେ ତହିଁ | । | ଯେତେକ ନୃପ ଆଦି ହୋଇ | ॥ | ୧୮ |
| | ବିଶ୍ୱବନ୍ଦିତ ଯେ ଋଷିଏ | । | ଦେଖି ସେ ଋଷିଙ୍କି ସଭିଏ | ॥ | ୧୯ |
| | ତାହାଙ୍କୁ ଆସନୁଁ ଉଠିଣ | । | ପ୍ରଣାମ କଲେ ସର୍ବେ ପୁଣ | ॥ | ୨୦ |
| | ପାଣ୍ଡବେ କୃଷ୍ଣରାମ ଦୁଇ | । | ପ୍ରଣାମ କଲେ ତାଙ୍କୁ ତହିଁ | ॥ | ୨୧ |
| ୭ | ସ୍ୱାଗତ ଯେ ପାଦ୍ୟ ଆସନ | । | ଯେ ଅର୍ଘ୍ୟ ମାଲ୍ୟ ଧୂପମାନ | ॥ | ୨୨ |
| | ଉତ୍ତମ ଅନୁଲେପନରେ | । | ମୁନିମାନଙ୍କୁ ସର୍ବ ନରେ | ॥ | ୨୩ |
| | ପୂଜିଲେ ଯେ ଯେମନ୍ତ କରି | । | ପୁଣି ପୂଜିଲେ ରାମ-ହରି | ॥ | ୨୪ |
| ୮ | ବଚନ ସଂଯତ କରିଣ | । | ଯେ କରୁଅଛନ୍ତି ଶ୍ରବଣ | ॥ | ୨୫ |
| | ସେ ଶ୍ରେଷ୍ଠ ସଭାର ମଧ୍ୟରେ | । | ଋଷିଏ ଥାଆନ୍ତେ ସୁଖରେ | ॥ | ୨୬ |
| | ଧର୍ମରକ୍ଷକ ଭଗବାନ | । | ତାଙ୍କୁ କହିଲେ ଏ ବଚନ | ॥ | ୨୭ |

### ଶ୍ରୀଭଗବାନୁବାଚ

| | | | | | |
|---|---|---|---|---|---|
| ୯ | ଜନ୍ମ ଲଭିଛୁଁ ଆମ୍ଭେମାନେ | । | ଜନ୍ମଫଳକୁ ଏ ଭୁବନେ | ॥ | ୨୮ |
| | ସମଗ୍ର କରିଣ ଲଭିଲୁଁ | । | ଯା' ଆଜ ତୁମ୍ଭଙ୍କୁ ଦେଖିଲୁଁ | ॥ | ୨୯ |
| | ଯୋଗେଶ୍ୱରଙ୍କ ଦରଶନ | । | ଯେଣୁ ନ ପାନ୍ତି ଦେବଗଣ | ॥ | ୩୦ |
| ୧୦ | ଅର୍ଚ୍ଚାରେ ଦେବତା ବୋଲିଣ | । | ତାଙ୍କର ଦୃଷ୍ଟି ଅଟେ ପୁଣ | ॥ | ୩୧ |
| | ଅଳପ ତପସ୍ୱୀ ଯେ ଜନେ | । | ସେ ଜନଙ୍କର ଏ ଭୁବନେ | ॥ | ୩୨ |
| | ଯୋଗେଶ୍ୱରଙ୍କ ଦରଶନ | । | ଯେ ପ୍ରଶ୍ନ ଯେ ବା ସ୍ପରଶନ | ॥ | ୩୩ |
| | ପାଦ-ଅର୍ଚ୍ଚନ ଆଦି ଯେହି | । | କେମନ୍ତେ ହୋଇବ ବା ସେହି | ॥ | ୩୪ |
| ୧୧ | ମୃତ୍ତିକା-ଶିଳାମୟ ହୋଇ | । | ଯେ ଦେବ ସେ ଦେବ ନୁହଇ | ॥ | ୩୫ |
| | ଆବର ଜଳମୟ ହୋଇ | । | ଯେ ତୀର୍ଥ ସେ ତୀର୍ଥ ନୁହଇ | ॥ | ୩୬ |
| | ଏମାନେ ବହୁତ କାଳରେ | । | ପବିତ୍ର କରନ୍ତି ନିର୍ଭରେ | ॥ | ୩୭ |
| | ଦର୍ଶନମାତ୍ରେ ସାଧୁମାନେ | । | ପବିତ୍ର କରନ୍ତି ଭୁବନେ | ॥ | ୩୮ |
| ୧୨ | ଅଗ୍ନି-ତପନ-ଚନ୍ଦ୍ର ତିନି | । | ପୁଣି ତାରକା-ଭୂମି ବେନି | ॥ | ୩୯ |
| | ଯେ ଜଳ-ଆକାଶ-ପବନ | । | ଅଥବା ଯେ ବଚନ-ମନ | ॥ | ୪୦ |
| | ଏହାଙ୍କୁ କଲେ ଉପାସନ | । | ଯେ ଭେଦକାରୀ ପାପୀ ଜନ | ॥ | ୪୧ |
| | ତା' ପାପ ନାଶି ନ ପାରନ୍ତି | । | ଯେ ପୁଣ ସାଧୁମାନେ ଛନ୍ତି | ॥ | ୪୨ |
| | ମୁହୂର୍ତ୍ତମାତ୍ରକ ସେବାରେ | । | ପାପ ନାଶନ୍ତି ଏ ସଂସାରେ | ॥ | ୪୩ |
| ୧୩ | ଯେ ବାତ-ପିତ୍ତ-ଶ୍ଳେଷ୍ମା ତିନି | । | ତାହାଙ୍କୁ ଥାଇ ନିତ୍ୟେ ଘେନି | ॥ | ୪୪ |
| | ସେ ଦେହ ଶବତୁଲ୍ୟ ତହିଁ | । | ଯେ ଅହଂବୁଦ୍ଧି କରିଥାଇ | ॥ | ୪୫ |

| | | | |
|---|---|---|---|
| | ତନୟ-ବନିତା ଆଦିରେ । | ଯେ ମୋର ବୋଲି ବୁଦ୍ଧି କରେ ॥ | ୪୬ |
| | ଭୂମିବିକାର-ଦ୍ରବ୍ୟେ ଯେହି । | ଦେବତାବୁଦ୍ଧି କରିଥାଇ ॥ | ୪୭ |
| | ଯେ ଜଳେ ତୀର୍ଥବୁଦ୍ଧି କରେ । | ପଣ୍ଡିତଜନଙ୍କର ଠାରେ ॥ | ୪୮ |
| | ଏ ବୁଦ୍ଧିମାନଙ୍କୁ ପୁଣି ହିଁ । | କେବେହେଁ ଆଚରଇ ନାହିଁ ॥ | ୪୯ |
| | ଗାଈଙ୍କ ମଧ୍ୟରେ ସେ ଜନ । | ଅଟଇ ଗଧର ସମାନ ॥ | ୫୦ |
| | ଗାଈଙ୍କ ଅର୍ଥେ ଘାସଭାର । | ଯେଣୁ ସେ ବହୁଥାଇ ଖର[୧] ॥ | ୫୧ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୧୪ | କହନ୍ତି ବ୍ୟାସଙ୍କ କୁମର । | ଏବେ ହୋ ଶୁଣ ନୃପବର ॥ | ୫୨ |
| ୧୫ | ଅକୁଣ୍ଠ[୨] ବୁଦ୍ଧି ଅଟେ ଯାର । | ସେ ଭଗବାନ ଶ୍ରୀକୃଷ୍ଣର ॥ | ୫୩ |
| | ଏରୂପେ ଦୁରନ୍ୱୟ[୩] ବାଣୀ । | ସେ ସର୍ବ ଋଷିମାନେ ଶୁଣି ॥ | ୫୪ |
| | ବୁଦ୍ଧି ଭ୍ରମନ୍ତେ ତାହାଙ୍କର । | କିଛି ନ କହିଲେ ଉତ୍ତର ॥ | ୫୫ |
| | ଈଶଙ୍କ ଅନୀଶ୍ୱର ଗୁଣ । | ଜନସଂଗ୍ରହମାତ୍ର ପୁଣ ॥ | ୫୬ |
| | ଏମନ୍ତ ବୋଲି ସେ ଋଷିଏ । | ବିଚାରି ଚିରକାଳଯାଏ ॥ | ୫୭ |
| | ହସନ୍ତେ[୪] ଜଗତଗୁରୁଙ୍କୁ । | କହିଲେ ଏମନ୍ତ ବାକ୍ୟକୁ ॥ | ୫୮ |

ଶ୍ରୀମୁନୟ ଊଚୁଃ

| | | | |
|---|---|---|---|
| ୧୬ | କହୁଅଛନ୍ତି ଋଷିଜନେ । | ତତ୍ତ୍ୱକୁ ଜାଣୁଁ ଆମ୍ଭେମାନେ ॥ | ୫୯ |
| | ବିଶ୍ୱସୃଜଙ୍କ ଅଧୀଶ୍ୱର । | ଉତ୍ତମ ଅଟୁଁ ଯେ ଆବର ॥ | ୬୦ |
| | ଏମନ୍ତ ହେଲେହେଁ ଭୁବନେ । | ଯାହା ମାୟାରେ ପ୍ରତିଦିନେ ॥ | ୬୧ |
| | ବିଶେଷେ ହୋଇଲୁଁ ମୋହିତ । | ସେ ଭଗବାନ-ବିଚେଷ୍ଟିତ ॥ | ୬୨ |
| | ଅତି ଆଶ୍ଚର୍ଯ୍ୟ ଦେଖ ପୁଣ । | ମନୁଷ୍ୟଚେଷ୍ଟାକୁ ଧରିଣ ॥ | ୬୩ |
| | ଯେଣୁ ଗୁପତ ହୋଇ ସ୍ୱୟେଂ । | ହୋଇଛି ଅନୀଶ୍ୱରପ୍ରାୟେ ॥ | ୬୪ |
| ୧୭ | ହେ କୃଷ୍ଣ କ୍ରିୟା ତୋର ନାହିଁ । | ତୁ ଏକ ଆତ୍ମା-ସ୍ୱରୂପ ହିଁ ॥ | ୬୫ |
| | ତଥାପି ସ୍ୱରୂପମାତ୍ରରେ । | ସୃଷ୍ଟିକି ଅନେକରୂପରେ ॥ | ୬୬ |
| | ସର୍ଜନ ପାଳନ ସଂହାର । | ଏ ତିନି କଥା ତୁମ୍ଭେ କର ॥ | ୬୭ |
| | ଆପଣେ ବଦ୍ଧ ନୁହ ତହିଁ । | ଯେସନେ ଏକ ମୃତ୍ତିକା ହିଁ ॥ | ୬୮ |
| | ଘଟାଦି ନାନାରୂପ ହୋଇ । | ବହୁତ ନାମକୁ ଧରଇ ॥ | ୬୯ |
| | ତୁ ପରିପୂର୍ଣ୍ଣ ଏଣୁ ତୋର । | ଦେଖ ଏ ଜନ୍ମାଦି ପ୍ରକାର ॥ | ୭୦ |
| | ଅଟଇ ଅତି ବିଡ଼ମ୍ବିତ[୫] । | ବାସ୍ତବ ନୁହଇ ଏ ସତ ॥ | ୭୧ |
| ୧୮ | ଯେ ଧର୍ମ ବର୍ଣ୍ଣ-ଆଶ୍ରମର । | ସେ ଆତ୍ମା ଅଟଇ ତୁମ୍ଭର ॥ | ୭୨ |
| | ତୁମ୍ଭେଟି ପୁରୁଷଙ୍କ ପର । | ତଥାପି କାଳରେ ସତ୍ୱର ॥ | ୭୩ |
| | ଖଳମାନଙ୍କ ନିଗ୍ରହରେ । | ସ୍ୱଜନରକ୍ଷାନିମିତ୍ତରେ ॥ | ୭୪ |

୧. ଗଧ । ୨. ଅପରିଚ୍ଛିନ୍ନ (ଅସୀମ) । ୩. ଅନନୁରୂପ । ୪. ଈଷତ୍ ହସି । ୫. ଅନୁକୃତ ।

ବିଶୁଦ୍ଧ ସତ୍ତ୍ୱରୂପ ଧର । ଆପଣା ଲୀଳାରେ ଆବର ॥ ୭୫
ଯେ ବେଦପଥ ସନାତନ । ତାହାକୁ କରୁ ତୁ ଆଦାନ ॥ ୭୬
୧୯ ଶୁଦ୍ଧ ବେଦାଖ୍ୟ ବ୍ରହ୍ମ ତୋର । ହୃଦୟ ଅଟଇ ଅନ୍ତର ॥ ୭୭
କାର୍ଯ୍ୟକାରଣ-ରୂପ ହୋଇ । ଜଗତ ପ୍ରକୃତି ଯେ ଦୁଇ ॥ ୭୮
ଏ ବେନିଠାରୁ ହୋଇ ଭିନ୍ନ । ଯେ ବ୍ରହ୍ମ ଅଟେ ସନାତନ ॥ ୭୯
ତପଃସ୍ୱାଧ୍ୟାୟ ସଂଯମରେ । ଉପଲବ୍ଧ ହୋଏ ଯହିଁରେ[୧] ॥ ୮୦
୨୦ ତୁମ୍ଭେ ଯେ ପ୍ରମାତା ବେଦର । ହେ ବ୍ରହ୍ମ ସେ ହେତୁ ତୁମ୍ଭର ॥ ୮୧
ବ୍ରାହ୍ମଣକୁଳ ଦିବ୍ୟସ୍ଥାନ । ତାହାକୁ କରସି ପୂଜନ ॥ ୮୨
ସେହେତୁ ତୁମ୍ଭେ ନିତ୍ୟେ ପୁଣି । ବ୍ରହ୍ମଣ୍ୟଦେବରେ ଅଗ୍ରଣୀ ॥ ୮୩
୨୧ ଆମ୍ଭେ ଯେ ସାଧୁଙ୍କ ଗତିରେ । ତୋ' ସଙ୍ଗ ଲଭିଲୁଁ ଭାଗ୍ୟରେ ॥ ୮୪
ଆମ୍ଭ ସମସ୍ତ ଋଷିଙ୍କର । ଜନ୍ମ ସଫଳ ହେଲା ଆର ॥ ୮୫
ବିଦ୍ୟା ତପସ୍ୟା ନେତ୍ରମାନେ । ସଫଳ ହେଲେ ଏ ଭୁବନେ ॥ ୮୬
ମଧ୍ୟେ ସମସ୍ତ ମଙ୍ଗଳର । ତୁମ୍ଭେଟି ଯେଣୁ ଅଟ ସାର ॥ ୮୭
୨୨ ଯୋଗମାୟାରେ ଆପଣାର । ଆଚ୍ଛନ୍ନ ମହିମା ଯାହାର ॥ ୮୮
ଅକୁଣ୍ଠ ଅଟେ ଯାର ବୁଦ୍ଧି । ଯେ ପରମାତ୍ମା ରୂପେ ସିଦ୍ଧି ॥ ୮୯
ସେ ଭଗବାନ ଶ୍ରୀକୃଷ୍ଣଙ୍କୁ । ଆମ୍ଭେ କରୁଛୁଁ ପ୍ରଣାମକୁ ॥ ୯୦
୨୩ ତୁମ୍ଭ ସଙ୍ଗରେ ଛନ୍ତି ନିତ୍ୟେ । ଏମନ୍ତ ଯଦୁମାନେ ଯେତେ ॥ ୯୧
ଏ ରାଜାମାନେହେଁ ଆବର । ଯାହାକୁ ନ କଲେ ଗୋଚର ॥ ୯୨
ଯେ ନିଜ ମାୟାଶାଢ଼ୀବାଢ଼େ । ଆଚ୍ଛନ୍ନ ହୋଇଅଛି ଗାଢ଼େ ॥ ୯୩
ସେ କାଳ-ଆତ୍ମା-ଈଶ୍ୱରକୁ । ନିତ୍ୟେ କରୁଛୁଁ ପ୍ରଣାମକୁ ॥ ୯୪
୨୪ ଶୟନ କରିଥାନ୍ତେ ଜନ । ଦେଖନ୍ତେ ନାନା ସ୍ୱପ୍ନମାନ ॥ ୯୫
ସ୍ୱପ୍ନରେ ତତ୍ତ୍ୱଦୃଷ୍ଟି ଥାନ୍ତେ । ମନରେ ପ୍ରତୀତ ହୁଅନ୍ତେ ॥ ୯୬
ସିଂହବ୍ୟାଘ୍ରାଦିସ୍ୱରୂପରେ । ଆତ୍ମାକୁ ଦେଖଇ ନିତ୍ୟରେ ॥ ୯୭
ସିଂହବ୍ୟାଘ୍ରାଦିରୂପ ଯେହି । ତହୁଁ ଯେ ଅଲଗା ଅଟଇ ॥ ୯୮
ଏ ରୂପେ ସେ ଆତ୍ମାକୁ ପୁଣି । ଯେସନେ ନ ପାରଇ ଜାଣି ॥ ୯୯
୨୫ ହେ ଦେବ ଏମନ୍ତ ରୂପରେ । ଆତ୍ମାକୁ ଦେଖଇ ନିତ୍ୟରେ ॥ ୧୦୦
ଇନ୍ଦ୍ରିୟଚେଷ୍ଟା ମାୟା ଯେହି । ତହିଁ ମୋହିତଚିତ୍ତ ହୋଇ ॥ ୧୦୧
ବିବେକ ହୁଅନ୍ତେ ନିଧନ । ତୁମ୍ଭଙ୍କୁ ନ ଜାଣଇଁ ଜନ ॥ ୧୦୨
୨୬ ପାପସମୂହ ଯେ ନାଶଇ । ଗଙ୍ଗାଦି ତୀର୍ଥସ୍ଥାନ ଯେହି ॥ ୧୦୩
ଉତ୍ତମ ଯୋଗମାନଙ୍କରେ । ଯୋଗୀ ଯା' କରେ ହୃଦୟରେ ॥ ୧୦୪
ଏମନ୍ତ ତୁମ୍ଭର ଚରଣ । ଆମ୍ଭେ ଦେଖିଲୁଁ ଆଜ ପୁଣ ॥ ୧୦୫
ଏଣୁ ଆମ୍ଭଙ୍କୁ ଭକ୍ତ କରି । କର ହେ ଅନୁଗ୍ରହ ହରି ॥ ୧୦୬

୧. ଯେଉଁ ବେଦରେ ।

ଉତ୍ତମ ଭକ୍ତିରେ ବିନାଶ । ଯା'ଙ୍କ ଆଶୟ ଜୀବକୋଷ ॥ ୧୦୭
ତୁମ୍ଭ ଗତିକି ସେହିମାନେ । ଲଭିଣ ଥିଲେ ପୂର୍ବ ଦିନେ ॥ ୧୦୮

ଶ୍ରୀଶୁକ ଉବାଚ

୨୭ କହନ୍ତି ସତ୍ୟବତୀନାତି । ହେ ରାଜରଷି ମହୀପତି ॥ ୧୦୯
ଏ ରୂପେ ସେ ଯୁଧିଷ୍ଠିରଙ୍କୁ । ଧୃତରାଷ୍ଟ୍ରଙ୍କୁ ଶ୍ରୀକୃଷ୍ଣଙ୍କୁ ॥ ୧୧୦
ଋଷିଏ ମାଗି ଅନୁଜ୍ଞାକୁ । ଆପଣା ଆଶ୍ରମମାନଙ୍କୁ ॥ ୧୧୧
ଚଳିବା ଅର୍ଥେ ନିଜ ମନ । କଲେ ସେକାଳରେ ରାଜନ ॥ ୧୧୨
୨୮ ଅତ୍ୟନ୍ତ ଯାର ଯଶମାନ । ସେ ବସୁଦେବ ହେ ରାଜନ ॥ ୧୧୩
ଋଷିଏ ଯାନ୍ତେ ଦେଖି ତାଙ୍କୁ । ପାଛୋଟି ଯାଇ ତାଙ୍କ ଠାକୁ ॥ ୧୧୪
ପ୍ରଣାମ କରି ବେନି କରେ । ତାଙ୍କ ଚରଣ ଧରି ଧୀରେ ॥ ୧୧୫
ନିଶ୍ଚଳ କରି ନିଜ ମନ । କହିଲେ ଏମନ୍ତ ବଚନ ॥ ୧୧୬

ଶ୍ରୀବସୁଦେବ ଉବାଚ

୨୯ ସେ ବସୁଦେବ ଏ ରୂପରେ । ଋଷିଙ୍କି କହନ୍ତି ସଧୀରେ ॥ ୧୧୭
ତୁମ୍ଭଙ୍କୁ ଆହେ ଋଷିଜନ । କରୁଛି ବହୁତ ବନ୍ଦନ ॥ ୧୧୮
ତୁମ୍ଭେ ଯେ ସର୍ବଦେବମୟ । ମୋ ବାକ୍ୟେ ସାବଧାନ ହୁଅ ॥ ୧୧୯
କର୍ମରେ କର୍ମମାନଙ୍କର । ଯେରୂପେ ହୁଅଇ ସଂହାର ॥ ୧୨୦
ଆମ୍ଭଙ୍କୁ ଉତ୍ତମ କରିଣ । ସେ କଥା କର ହେ ବଖାଣ ॥ ୧୨୧

ଶ୍ରୀନାରଦ ଉବାଚ

୩୦ ନାରଦ କହନ୍ତି ଏମନ୍ତ । ଋଷିଏ ଶୁଣ ମୋ ଉଦନ୍ତ ॥ ୧୨୨
ବାଳକ ମଣି ଶ୍ରୀକୃଷ୍ଣଙ୍କୁ । ସେ ବସୁଦେବ ଯା' ଆମ୍ଭଙ୍କୁ ॥ ୧୨୩
ବିଶେଷେ ବୁଝିବା ଇଚ୍ଛାରେ । ଆପଣା ଶ୍ରେୟନିମିତ୍ତରେ ॥ ୧୨୪
ଏ ଯା' ପଚାରିଲେ ସେକଥା । ବିଚିତ୍ର ନୁହଇ ସର୍ବଥା ॥ ୧୨୫
୩୧ ଥିବାର ଅତି ନିକଟରେ । ମନୁଷ୍ୟଙ୍କର ଏ ସଂସାରେ ॥ ୧୨୬
ଅଣ-ଆଦରକୁ କାରଣ । ଯେସନେ ଗଙ୍ଗାକୁ ଛାଡ଼ିଣ ॥ ୧୨୭
ସେ ଗଙ୍ଗାତଟବାସୀ ନରେ । ବିଶୁଦ୍ଧ ହେବା ନିମିତ୍ତରେ ॥ ୧୨୮
ଯେ ଅନ୍ୟସ୍ଥାନଜଳମାନ । ତହିଁକି କରନ୍ତି ଗମନ ॥ ୧୨୯
୩୨ ଦେଖ ଏ ସୃଷ୍ଟି-ଉତ୍‌ପତ୍ତିରେ । ପାଳନ-ସଂହାର ଆଦିରେ ॥ ୧୩୦
ସ୍ୱତଃ ବା ଅନ୍ୟଠାରୁ ଅବା । ଗୁଣସକାଶରୁ ଅଥବା ॥ ୧୩୧
କାଳରେ ଯା' ଜ୍ଞାନ ଅଶେଷ । କେବେ ହେଁ ନୁହଇ ବିନାଶ ॥ ୧୩୨
୩୩ ରାଗାଦି କର୍ମମାନ ଯେହି । ତେଣେ ଯେ ସୁଖଦୁଃଖ ଦୁଇ ॥ ୧୩୩
ଗୁଣଙ୍କ ପ୍ରବାହ ଯେ ଆନ । ପ୍ରାଣାଦି ନିଜ କାର୍ଯ୍ୟମାନ ॥ ୧୩୪
ଏଣେ ଆଚ୍ଛନ୍ନ ହୋଇ କରି । ଅଛନ୍ତି, ମନୁଷ୍ୟ ଏ ହରି ॥ ୧୩୫
ଏମନ୍ତ ବୋଲି କେହି ନରେ । କୃଷ୍ଣଙ୍କୁ ମଣନ୍ତି ମନରେ ॥ ୧୩୬

| | | | | |
|---|---|---|---|---|
| | ଦ୍ୱିତୀୟ ନାହିଁଟି ତାଙ୍କର | । ସେ କୃଷ୍ଣ ଅଟଇ ଈଶ୍ୱର | ।। | ୧୩୭ |
| | ତାଙ୍କର ଅନୁଭବମାନ | । କେବେହେଁ ନୋହେ ବିନାଶନ | ।। | ୧୩୮ |
| | ମେଘ-କୁହୁଡ଼ି-ଗ୍ରହେ ଜନ | । ସୂର୍ଯ୍ୟଙ୍କୁ ମଣନ୍ତି ଯେସନ | ।। | ୧୩୯ |
| ୩୪ | ଏଥୁ ଅନ୍ତରେ ହେ ରାଜନ | । ବସୁଦେବଙ୍କୁ ଋଷିଜନ | ।। | ୧୪୦ |
| | କହିଲେ ସଂବୋଧନ କରି | । ଶୁଣନ୍ତେ ସର୍ବ ଦଣ୍ଡଧାରୀ | ।। | ୧୪୧ |
| | ରାମ-ଅଚ୍ୟୁତ ବେନି ଭାଇ | । ଶୁଣନ୍ତେ ଏହି ରୂପେ ତହିଁ | ।। | ୧୪୨ |
| ୩୫ | କର୍ମରେ କର୍ମ ହେବା ହତ | । ଯାହା ପଚାରିଛ ଏମନ୍ତ | ।। | ୧୪୩ |
| | ଏ କଥା ଉତ୍ତମରୂପେଣ | । ପୂର୍ବେ ହୋଇଛି ନିରୂପଣ | ।। | ୧୪୪ |
| | ସମସ୍ତ ଯଜ୍ଞମାନଙ୍କର | । ଉପରେ ଯେ ବିଷ୍ଣୁ ଈଶ୍ୱର | ।। | ୧୪୫ |
| | ତାହାଙ୍କୁ ଯାଗମାନଙ୍କରେ | । ପୂଜିବ ନିତ୍ୟେ ଶରଧାରେ | ।। | ୧୪୬ |
| ୩୬ | ଶାସ୍ତ୍ରଚକ୍ଷୁରେ କବିମାନେ | । କହିଅଛନ୍ତି ପୂର୍ବଦିନେ | ।। | ୧୪୭ |
| | ଚିତ୍ତର ଶାନ୍ତିହେତୁ ଏହି | । ଆତ୍ମାର ହରଷ କରଇ | ।। | ୧୪୮ |
| | ମୋକ୍ଷ-ଉପାୟ ଏ ସୁଗମ | । ଏ ମାର୍ଗେ ଆବଶ୍ୟକ ଧର୍ମ | ।। | ୧୪୯ |
| ୩୭ | ନିଜ ଅର୍ଜିତ ଶୁକ୍ଳ ବିତ୍ତେ | । ନିଷ୍କାମ ହୋଇ ଯଥୋଚିତେ | ।। | ୧୫୦ |
| | ପୁରାଣ ପୁରୁଷ ଯେ ହରି | । ତାଙ୍କୁ ଯା' ଯଜ୍ଞେ ପୂଜା କରି | ।। | ୧୫୧ |
| | ଗୃହସ୍ଥାଶ୍ରମୀ ବିପ୍ର ଯେହି | । ତା' ଶୁଭ ମାର୍ଗ ଏ ଅଟଇ | ।। | ୧୫୨ |
| ୩୮ | ଯଜ୍ଞ-ଦାନରେ ବୁଧ ଜନ | । ଛାଡ଼ିବ ବିତ୍ତ-ଇଚ୍ଛାମାନ | ।। | ୧୫୩ |
| | ଛାଡ଼ିବ ଗୃହୋଚିତ ଭୋଗେ | । ସୁତକଳତ୍ର-ଇଚ୍ଛା ବେଗେ | ।। | ୧୫୪ |
| | ହେ ବସୁଦେବ ! ବୁଧ ନର | । ଯେ ସ୍ୱର୍ଗ-ଇଚ୍ଛା ଆପଣାର | ।। | ୧୫୫ |
| | କାଳରେ କ୍ଷୟ ଏ ହୋଇବ | । ଏମନ୍ତ ମଣି ତା' ଛାଡ଼ିବ | ।। | ୧୫୬ |
| | ଗ୍ରାମରେ ସ୍ପୃହାକୁ ଛାଡ଼ିଣ | । ସର୍ବ ପଣ୍ଡିତମାନେ ପୁଣ | ।। | ୧୫୭ |
| | ଯେ ନିଜ ତପୋବନମାନ | । ତହିଁକି କଲେ ସେ ଗମନ | ।। | ୧୫୮ |
| ୩୯ | [1]ଜନ୍ମମାତ୍ରକେ ଦ୍ୱିଜବର | । ଦେବତା-ଋଷି-ପିତୃଙ୍କର | ।। | ୧୫୯ |
| | ଲାଗଇ ତିନିରୂପେ ଋଣ | । ହେ ବସୁଦେବ ତୁମ୍ଭେ ଶୁଣ | ।। | ୧୬୦ |
| | [2]ବେଦାଧ୍ୟୟନେ ଋଷିଋଣ | । ଯାଗରେ ଦେବଙ୍କର ପୁଣ | ।। | ୧୬୧ |
| | ପୁତ୍ରରେ ପିତୃଋଣମାନ | । ଶୁଝି ନ ପାରି ଯଉଁ ଜନ | ।। | ୧୬୨ |
| | ପ୍ରାଣମାନଙ୍କୁ ବିସର୍ଜଇ | । ସେ ନିଶ୍ଚେ ନରକେ ପଡ଼ଇ | ।। | ୧୬୩ |

୧. 'ଜାୟମାନୋ ବୈ ବ୍ରାହ୍ମଣସ୍ତ୍ରିଭିର୍ଋଣୈର୍ଋଣବାନ୍ ଜାୟତେ ।' ଇତି ଶ୍ରୁତିଃ ।
ବ୍ରାହ୍ମଣ ଜାତ ହେଉ ହେଉ ତିନୋଟି ଋଣଦ୍ୱାରା ଋଣବାନ୍ ହୋଇଯାଏ ।

୨. ''ବ୍ରହ୍ମଚର୍ଯ୍ୟେଣ ଋଷିଭ୍ୟଃ, ଯଜ୍ଞେନ ଦେବେଭ୍ୟଃ, ପ୍ରଜୟା ପିତୃଭ୍ୟଃ'' । ଇତି ।
ଋଣାନି ତ୍ରୀଣ୍ୟପାକୃତ୍ୟ ମନୋ ମୋକ୍ଷେ ନିବେଶୟେତ୍ ।
ଅନପାକୃତ୍ୟ ମୋକ୍ଷଂ ତୁ ସେବମାନୋ ବ୍ରଜତ୍ୟଧଃ ।। (ମନୁ)
ବ୍ରହ୍ମଚର୍ଯ୍ୟଦ୍ୱାରା ଋଷିଙ୍କୁ, ଯଜ୍ଞଦ୍ୱାରା ଦେବଙ୍କୁ ଓ ପ୍ରଜା (ସନ୍ତାନ)ଦ୍ୱାରା ପିତୃଙ୍କୁ ଋଣ ଶୁଝାଯାଏ । ତିନୋଟି ଋଣକୁ ଶୁଝି ମନକୁ ମୋକ୍ଷରେ ନିବେଶ କରିବ । ନ ଶୁଝି ମୋକ୍ଷକୁ ସେବୁଥିବା ବ୍ୟକ୍ତି ତଳକୁ ଯାଏ ।

୪୦ ଋଷି-ପିତୃଙ୍କ ଋଣ ବେନି । ଶୁଝି ସାରିଲ ଏବେ ପୁଣି ।। ୧୬୪
୪୧ ହେ ବସୁଦେବ ! ଆଜ ଯାଗେ । ଦେବତାଙ୍କର ଋଣ ବେଗେ ।। ୧୬୫
ଶୁଝି ଅନୃଣ ହୋଇ କରି । ତଦନ୍ତେ ଗୃହ ପରିହରି ।। ୧୬୬
ପୂର୍ବେ ପରମ ଭକ୍ତି କରି । ଜଗତ ଈଶ୍ୱର ଯେ ହରି ।। ୧୬୭
ତାହାଙ୍କୁ ପୂଜିଛ ନିଶ୍ଚୟେ । ହେ ବସୁଦେବ ଅତିଶୟେ ।। ୧୬୮
ତୁମ୍ଭର ଯେଣୁ ସେ ଅଚ୍ୟୁତ । ପୁତ୍ରଭାବକୁ ହେଲେ ଗତ ।। ୧୬୯

ଶ୍ରୀଶୁକ ଉବାଚ

୪୨ କହନ୍ତି ବ୍ୟାସଙ୍କ ନନ୍ଦନ । ଏରୂପେ ଋଷିଙ୍କ ବଚନ ।। ୧୭୦
ସେ ବସୁଦେବ ମହାମତି । ଶୁଣି ଋଷିଙ୍କି କରି ପ୍ରୀତି ।। ୧୭୧
ବରିଲେ ଋତ୍ୱିଜଭାବରେ । ପ୍ରଣାମ କରି ମସ୍ତକରେ ।। ୧୭୨
୪୩ ହେ ନୃପ ! ସର୍ବ ଋଷିଗଣ । ଧର୍ମରେ ହୁଅନ୍ତେ ବରଣ ।। ୧୭୩
ଉତ୍ତମ କଳ୍ପନା ଯହିଁରେ । ସେ ଦିବ୍ୟ ଯାଗମାନଙ୍କରେ ।। ୧୭୪
ବସୁଦେବଙ୍କୁ ସେ କ୍ଷେତ୍ରରେ । ଯାଗ କରାଇଲେ ଧର୍ମରେ ।। ୧୭୫
୪୪ ସେ ଦୀକ୍ଷା ପ୍ରବର୍ତ୍ତାନ୍ତେ ତହିଁ । ଯେ ଛନ୍ତି ପଦ୍ମମାଳ ବହି ।। ୧୭୬
ସେ ବୃଷ୍ଣିମାନେ କରି ସ୍ନାନ । ପିନ୍ଧିଲେ ଉତ୍ତମ ବସନ ।। ୧୭୭
ହେ ନୃପ ! ରାଜା ଯେତେ ଥିଲେ । ସେ ଅତି ଅଳଂକୃତ ହେଲେ ।। ୧୭୮
୪୫ ସେ ଯଦୁଙ୍କର ପତ୍ନୀ ତହିଁ । କୁଙ୍କୁମାଦିରେ ଲିପ୍ତ ହୋଇ ।। ୧୭୯
ପଦକ ଖଞ୍ଜିଣ କଣ୍ଠରେ । ପୂଜାସାମଗ୍ରୀ ଘେନି କରେ ।। ୧୮୦
ସମସ୍ତେ ହରଷ ହୋଇଲେ । ଦୀକ୍ଷାଶାଳାକୁ ଚାଲିଗଲେ ।। ୧୮୧
୪୬ ମୃଦଙ୍ଗ ପଟହ ଯେ ଭେରୀ । ଶଙ୍ଖ ଆନକ ଆଦି କରି ।। ୧୮୨
ଏମାନେ ସମସ୍ତେ ବାଜିଲେ । ନର୍ତ୍ତକୀମାନେ ନୃତ୍ୟ କଲେ ।। ୧୮୩
ସୂତ-ମାଗଧ ଯେ ବା ଆନ । ଏମାନେ କଲେ ସ୍ତୁତିମାନ ।। ୧୮୪
ଉତ୍ତମ ଯା'ଙ୍କ କଣ୍ଠମାନ । ସେହୁ ଗନ୍ଧର୍ବନାରୀଜନ ।। ୧୮୫
ଭର୍ତ୍ତାମାନଙ୍କ ସହିତରେ । ସଙ୍ଗୀତ ଗାଇଲେ ସୁସ୍ୱରେ ।। ୧୮୬
୪୭ ଅଞ୍ଜନେ ଯାର ନେତ୍ରଯୁଗ । ନବନୀତ[୧]ରେ ସର୍ବ ଅଙ୍ଗ ।। ୧୮୭
ହୋଇଣ ଅଛଇ ଅଭ୍ୟକ୍ତ[୨] । ସେ ବସୁଦେବଙ୍କୁ ତୁରିତ ।। ୧୮୮
ଋତ୍ୱିଜେ ବିଧି-ଅନୁସାରେ । ଅଭିଷେଚନ[୩] କଲେ ନୀରେ ।। ୧୮୯
ଯେ ଅଷ୍ଟାଦଶ ପତ୍ନୀଗଣ । ସେମାନଙ୍କର ସହିତେଣ ।। ୧୯୦
ବସୁଦେବଙ୍କ ଶୋଭା ଅତି । ନକ୍ଷତ୍ରେ ଯେହ୍ନେ ତାରାପତି ।। ୧୯୧
୪୮ ଯେ ଦିବ୍ୟ ବଳୟ ଦୁକୂଳ । ହାର ନୂପୁର ଯେ କୁଣ୍ଡଳ ।। ୧୯୨
ଏଣେ ଯେ ଅତି ଅଳଂକୃତ । ସେ ପତ୍ନୀମାନଙ୍କ ସହିତ ।। ୧୯୩

୧. ନବନୀତ = ଲହୁଣି ।　୨. ଅଭ୍ୟକ୍ତ = ମର୍ଦ୍ଦିତ ।　୩. ଅଭିଷେଚନ = ଅଭିଷେକ ।

ଅଜିନଚର୍ମରେ ବେଷ୍ଟିତ । ଆବର ହୋଇଣ ଦୀକ୍ଷିତ ॥ ୧୯୪
ଶୋଭା ପାଇଲେ ଅତିଶୟେ । ହେ ପରୀକ୍ଷିତ ! ସେ ସମୟେ ॥ ୧୯୫
୪୯ ତାଙ୍କ ଋତ୍ୱିଜମାନେ ଯେତେ । ସଦସ୍ୟମାନଙ୍କ ସହିତେ ॥ ୧୯୬
ନବୀନ[୧] କୌଶେୟ ବସନ । ସମସ୍ତେ କରି ପରିଧାନ ॥ ୧୯୭
ଶୋଭା ପାଇଲେ ସେ କାଳରେ । ଯେସନେ ଇନ୍ଦ୍ରର ସଭାରେ ॥ ୧୯୮
୫୦ ସେ କାଳେ ରାମ କୃଷ୍ଣ ବେନି । ଆପଣା ବନ୍ଧୁଜନ ଘେନି ॥ ୧୯୯
ଯେ ଅବା ପୁତ୍ରଭାର୍ଯ୍ୟାଗଣ । ସେମାନଙ୍କର ସହିତେଣ ॥ ୨୦୦
ନିଜ ବିଭୂତିମାନଙ୍କରେ । ଶୋଭା ପାଇଲେ ଅତ୍ୟନ୍ତରେ ॥ ୨୦୧
ସମସ୍ତ ଜୀବମାନଙ୍କର । ଯେ ଦୁହେଁ ଅଟନ୍ତି ଈଶ୍ୱର ॥ ୨୦୨
୫୧ ସମସ୍ତ ଯଜ୍ଞମାନଙ୍କରେ । ଅଗ୍ନିହୋତ୍ରାଦି ଲକ୍ଷଣରେ ॥ ୨୦୩
ଜ୍ୟୋତିଷ୍ଟୋମାଦି ଯଜ୍ଞ ଯେତେ । ସୌରସତ୍ରାଦିଙ୍କ ସହିତେ ॥ ୨୦୪
ଯେ ଦ୍ରବ୍ୟ-ମନ୍ତ୍ର-କର୍ମମାନ । ତାଙ୍କ ପ୍ରଭୁ ଯେ ଭଗବାନ ॥ ୨୦୫
ତାହାଙ୍କୁ ଯଥାର୍ଥ ବିଧିରେ । ଯଜ୍ଞେ ପୂଜିଲେ ସେ କାଳରେ ॥ ୨୦୬
୫୨ ଯେ ଅଳଂକୃତ ସୁଭୂଷିତେ । ସେ ଋତ୍ୱିଜଙ୍କୁ ଏଥୁ ଅନ୍ତେ ॥ ୨୦୭
କରି ଉତ୍ତମ ଅଳଂକୃତ । ଯେମନ୍ତ ବେଦରେ ବିହିତ ॥ ୨୦୮
ସେରୂପେ ଦକ୍ଷିଣା-ଅର୍ଥରେ । ସେ ବସୁଦେବ ସେ କାଳରେ ॥ ୨୦୯
ଗୋ-ଭୂମି-କନ୍ୟା ମହାଧନ । କଲେ ସେମାନଙ୍କୁ ପ୍ରଦାନ ॥ ୨୧୦
୫୩ ପତ୍ନୀମାନଙ୍କୁ ଋଷିଜନେ । ସଂଯାଜ-ଅବଭୃଥସ୍ନାନେ ॥ ୨୧୧
ଦିବ୍ୟ ସ୍ନାନ କରାଇ ସାରି । ଯଦୁମାନଙ୍କୁ ଅଗ୍ରେ କରି ॥ ୨୧୨
ରାମହ୍ରଦରେ ବିପ୍ରଜନ । ତଦନ୍ତେ କଲେ ଦିବ୍ୟସ୍ନାନ ॥ ୨୧୩
ବସୁଦେବ କରିଣ ସ୍ନାନ । ଯେସନ ପ୍ରକାରେ ତେସନ ॥ ୨୧୪
୫୪ ନାନାଳଂକାର ବସ୍ତ୍ରମାନ । ବନ୍ଦୀମାନଙ୍କୁ ନାରୀଜନ ॥ ୨୧୫
ପ୍ରଦାନ କଲେ ତଦନ୍ତରେ । ସମସ୍ତ ବର୍ଣ୍ଣଙ୍କୁ ଅନ୍ନରେ ॥ ୨୧୬
କୁକୁର ଆଦି କରି ତହିଁ । ପୂଜିଲେ ଅଳଂକୃତ ହୋଇ ॥ ୨୧୭
୫୫ ସୁତ-କଳତ୍ର ସହିତରେ । ବନ୍ଧୁମାନଙ୍କୁ ସେ ଯଜ୍ଞରେ ॥ ୨୧୮
୫୬ ବିଦର୍ଭ-କୋଶଳ-କୁରୁଙ୍କୁ । କାଶୀ କେକୟ-ସୃଞ୍ଜୟଙ୍କୁ ॥ ୨୧୯
ସଦସ୍ୟ ଋତ୍ୱିଜ ଯେ ପୁଣ । ନୃ-ଭୂତ ଯେ ପିତୃ-ଚାରଣ ॥ ୨୨୦
ସୁରଗଣଙ୍କୁ ଆଦି ଯେହି । ତାଙ୍କୁ ବହୁତ ଦ୍ରବ୍ୟ ଦେଇ ॥ ୨୨୧
ପୂଜିଲେ ସେ ସମସ୍ତେ ପୁଣ । କୃଷ୍ଣଙ୍କୁ ଅନୁଜ୍ଞା ମାଗିଣ ॥ ୨୨୨
ପ୍ରଶଂସା କରିଣ ଯଜ୍ଞକୁ । ଚଳିଲେ ଯେ ଯାହା ସ୍ଥାନକୁ ॥ ୨୨୩
୫୭ ବିଦୁର-ଧୃତରାଷ୍ଟ୍ର ଦୁଇ । ଭୀମ-ଅର୍ଜୁନ ବେନି ଭାଇ ॥ ୨୨୪

୧. ରତନ ।

ଆବର ଯୁଧିଷ୍ଠିର ଦ୍ରୋଣ । ନକୁଳ ସହଦେବ ପୁଣ ॥ ୨୨୫
କୁନ୍ତୀ ନାରଦ ଭଗବାନ । ଯେ ବେଦବ୍ୟାସ ଋଷି ଆନ ॥ ୨୨୬
ମିତ୍ର-ସଂବନ୍ଧୀ ହୋଇ ତହିଁ । ଯେତେ ବାନ୍ଧବ ଥିଲେ ରହି ॥ ୨୨୭
୫୮ ଯେ ଯଦୁ ନିଜ ବନ୍ଧୁ ଜନ । ତାହାଙ୍କୁ କରି ଆଲିଙ୍ଗନ ॥ ୨୨୮
ସ୍ନେହରେ ହୋଇଛି ଆକ୍ଳିନ୍ନ[1] । ଯଉଁମାନଙ୍କ ମନମାନ ॥ ୨୨୯
ବିରହେ ଲଭନ୍ତେ କଷ୍ଟକୁ । ଛାଡ଼ି ଚଳିଲେ ସ୍ୱପୁରକୁ ॥ ୨୩୦
ଯେ ଅନ୍ୟ ଜନମାନେ ଥିଲେ । ନିଜ ଦେଶକୁ ସେ ଚଳିଲେ ॥ ୨୩୧
୫୯ ନନ୍ଦ ହିଁ ପୁଣି ସେ କାଳରେ । ଗୋପାଳଙ୍କର ସହିତରେ ॥ ୨୩୨
ଉତ୍ତମ ପୂଜାକୁ ଲଭିଣ । ସେ ରାମ-କୃଷ୍ଣ ବେନି ଜଣ ॥ ୨୩୩
ଉଗ୍ରସେନାଦି ହୋଇ ଯେତେ । ଏ ଯଦୁମାନଙ୍କ ସହିତେ ॥ ୨୩୪
ବନ୍ଧୁରେ ହୁଅନ୍ତେ ବତ୍ସଳ । ତହିଁ ରହିଲେ କିଛି କାଳ ॥ ୨୩୫
୬୦ ଯେ ମନୋରଥମହାର୍ଣ୍ଣବ[2] । ସୁଖେ ତା' ତରି ବସୁଦେବ ॥ ୨୩୬
ସୁହୃଦଗଣେ ହୋଇ ବୃତ । ପ୍ରୀତିରେ ହୋଇ ତୋଷଚିତ୍ତ ॥ ୨୩୭
କରରେ ଛୁଅଁନ୍ତେ ନନ୍ଦଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୨୩୮

## ଶ୍ରୀବସୁଦେବ ଉବାଚ

୬୧ ହେ ଭ୍ରାତ ! ନରମାନଙ୍କର । ଯାହା କରିଛନ୍ତି ଈଶ୍ୱର ॥ ୨୩୯
ସେ ସ୍ନେହପାଶ ଯେ ଅଟଇ । ତାହା ମୁଁ ଦୁସ୍ତ୍ୟଜ ମଣଇଁ ॥ ୨୪୦
ଯେ ଶୂର ଯୋଗିମାନେ ଛନ୍ତି । ବଳେ ଜ୍ଞାନେ ତା' ନ କାଟନ୍ତି ॥ ୨୪୧
୬୨ ତୋ' କୃତ ଉପକାର ଯେହୁ । ତା' ଆମ୍ଭେ କିଛି ଘେନି ନାହୁଁ ॥ ୨୪୨
ତୁମ୍ଭେ ଉତ୍ତମ ଜନ ପୁଣ । କଲ ଯା' ଦିବ୍ୟ ମିତ୍ରପଣ ॥ ୨୪୩
ସେ ମିତ୍ରପଣକୁ ଆମ୍ଭର । ନ ଥିଲେହେଁ ପ୍ରତ୍ୟୁପକାର ॥ ୨୪୪
ସେ ଯାହା କଉଁ ସମୟରେ । ନିବର୍ତ୍ତୁନାହିଁ ଆମ୍ଭଠାରେ ॥ ୨୪୫
ଏଣୁ ଈଶ୍ୱରକୃତ ଯେହି । ସେ ସ୍ନେହପାଶ ତୁମ୍ଭଠାଇଁ ॥ ୨୪୬
୬୩ ସାମର୍ଥ୍ୟ ନ ଥାନ୍ତେ ଆମ୍ଭର । କୁଶଳ କଥାକୁ ତୁମ୍ଭର ॥ ୨୪୭
ପୂର୍ବେ ନ କଲୁଁ ଆଚରଣ । ହେ ଭ୍ରାତ ! ଏବେ ଆମ୍ଭେ ପୁଣ ॥ ୨୪୮
ସମ୍ପତ୍ତିମଦେ ଅତିଶୟେ । ଚକ୍ଷୁ ହୁଅନ୍ତେ ଅନ୍ଧପ୍ରାୟେ ॥ ୨୪୯
ଅଗ୍ରେ ହେଲେହେଁ ବିଦ୍ୟମାନ । ନ କରୁଅଛୁଁ ବିଲୋକନ ॥ ୨୫୦
୬୪ ହେ ନନ୍ଦ ଯେବଣ ମାନବ । ଶ୍ରେୟ କାମନା କରୁଥିବ ॥ ୨୫୧
ରାଜ୍ୟ ସଂପତ୍ତି ନୋହୁ ତାର । ଯେଉଁ ସଂପତ୍ତିରେ ସତ୍ୱର ॥ ୨୫୨
ଅନ୍ଧ ହୁଅନ୍ତେ ବନ୍ଧୁମାନ । ଦେଖଇ ନାହିଁ ନିଜ ଜନ ॥ ୨୫୩

---
୧. ଆଚ୍ଛନ୍ନ ।   ୨. (ଯଜ୍ଞବିଷୟକ) ଇଚ୍ଛା-ରୂପକ ସମୁଦ୍ର ।

### ଶ୍ରୀଶୁକ ଉବାଚ

୬୫ ମିତ୍ରଭାବରୁ ଶ୍ଳଥଭାବ । ଚିତ୍ତେ ହୁଅନ୍ତେ ବସୁଦେବ ॥ ୨୫୪
ଏମନ୍ତ ରୂପେ ମିତ୍ରପଣ । କଲେ ଯେତେକ ଜନ ପୁଣ ॥ ୨୫୫
ସ୍ମରଣ କରି ତା' କାନ୍ଦିଲେ । ନୟନେ ଅଶ୍ରୁ ପୂର୍ଣ୍ଣ କଲେ ॥ ୨୫୬
୬୬ ରାମଗୋବିନ୍ଦ ବସୁଦେବ । ଏ ତିନିଙ୍କର ପ୍ରୀତିଭାବ ॥ ୨୫୭
କରନ୍ତି ନନ୍ଦ ହିଁ ସ୍ନେହରେ । ଥାନ୍ତେ ଗୋପାଳଙ୍କ ସଙ୍ଗରେ ॥ ୨୫୮
ଯିବି ବୋଲନ୍ତେ ପ୍ରାତଃକାଳେ । ଯିବ ବୋଲନ୍ତି ସଂଧ୍ୟାବେଳେ ॥ ୨୫୯
ଯାଆନ୍ତେ ସଂଧ୍ୟା ସମୟରେ । ଯିବ ବୋଲନ୍ତି ପ୍ରଭାତରେ ॥ ୨୬୦
ଏମନ୍ତ ବୋଲନ୍ତେ ଯଦୁଏ । ରହିଲେ ତିନିମାସ ଯାଏ ॥ ୨୬୧
୬୭ ଏଥୁ ଅନ୍ତରେ ନନ୍ଦ ପୁଣ । ବନ୍ଧୁମାନଙ୍କ ସହିତେଣ ॥ ୨୬୨
୬୮ ଆବର ବ୍ରଜସହିତରେ । ପୂରିତ ହୁଅନ୍ତେ କାମରେ ॥ ୨୬୩
ପରାର୍ଦ୍ଧ୍ୟ ଯାର ପରିମାଣ । ସେ [୧]କ୍ଷୌମ ବସ୍ତ୍ର ଆଭରଣ ॥ ୨୬୪
ନାନା [୨]ଅନର୍ଘ୍ୟ ପରିଚ୍ଛଦ । ଲଭି ସେ ସକଳ ସଂପଦ ॥ ୨୬୫
ଯେ ବସୁଦେବ ଉଗ୍ରସେନ । ଘେନି ତାହାଙ୍କ ଉପାୟନ ॥ ୨୬୬
କୃଷ୍ଣ-ଉଦ୍ଧବ-ବଳ ପୁଣ । ଏ ଆଦି ଯଦୁମାନଙ୍କେଣ ॥ ୨୬୭
ପ୍ରଦତ୍ତ [୩]ପାରିବର୍ହ ନେଲେ । ବିଦାୟ ହୋଇଣ ଚଳିଲେ ॥ ୨୬୮
୬୯ ନନ୍ଦ-ଗୋପୀଏ-ଗୋପମାନେ । ଗୋବିନ୍ଦ ଚରଣନଳିନେ ॥ ୨୬୯
ଯେ ମନ ଥିଲା କ୍ଷିପ୍ତ ହୋଇ । ତାହାକୁ ହରିବାକୁ ଯାଇଁ ॥ ୨୭୦
ହୋଇଲେ ଅସମର୍ଥ ପୁଣ । ମଥୁରା କଲେକ ଗମନ ॥ ୨୭୧
୭୦ କୃଷ୍ଣ ଦେବତା ଯାହାଙ୍କର । ସେ ଯଦୁମାନେହେଁ ସତ୍ୱର ॥ ୨୭୨
ବନ୍ଧୁଏ ଯାନ୍ତେ ନିଜ ଦେଶ । ବରଷା ହୁଅନ୍ତେ ପ୍ରବେଶ ॥ ୨୭୩
ସର୍ବେ ଦେଖି ସେ ବରଷାକୁ । ଗମନ କଲେ ଦ୍ୱାରିକାକୁ ॥ ୨୭୪
୭୧ ତୀର୍ଥଯାତ୍ରାରେ ଯଉଁମାନ । ହୋଇଲା ମିତ୍ରଦରଶନ ॥ ୨୭୫
ଯେ ବସୁଦେବଯଜ୍ଞୋତ୍ସବ । ଲୋକଙ୍କୁ କହିଲେ ତା' ସର୍ବ ॥ ୨୭୬
ଦଶମସ୍କନ୍ଧ ଭାଗବତ । ଭାଷାପ୍ରବନ୍ଧେ କରି ଗୀତ ॥ ୨୭୭
ବ୍ରାହ୍ମଣ ଦୀନବନ୍ଧୁମନ । ହରଷ ହେଲା ଅନୁଦିନ ॥ ୨୭୮
ସୁଜନଜନଙ୍କର ପାଦେ । ମତି ମୋ' ରହୁ ଅପ୍ରମାଦେ ॥ ୨୭୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ତୀର୍ଥଯାତ୍ରାନୁବର୍ଣ୍ଣନଂ
ନାମ ଚତୁରଶୀତିତମୋଽଧ୍ୟାୟଃ ॥

---

୧. ରେଶମ । ୨. ଅମୂଲ୍ୟ । ୩. ଯୌତୁକ ।

## ପଞ୍ଚାଶୀତିତମ ଅଧ୍ୟାୟ

ପଞ୍ଚାଶୀତିତମେ ରାମକୃଷ୍ଣୌ ସଂପ୍ରାର୍ଥିତୌ ସୁତୌ ।
ପିତ୍ରେ ଜ୍ଞାନମଥୋ ମାତ୍ରେ ମୃତାନ୍ ପୁତ୍ରାନଯଚ୍ଛତାମ୍ ।।
ନନ୍ଦୟିତ୍ୱା କୁରୁକ୍ଷେତ୍ରଯାତ୍ରାୟାଂ ସୁହୃଦୋ ବହୂନ୍ ।
ତତ୍ତ୍ୱଜ୍ଞାନଂ ତତଃ ପିତ୍ରୋରାଦିଶନ୍ମୃତସୂନୁଭିଃ ।।

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ ନନ୍ଦନ | । | ଏଥୁ ଅନ୍ତରେ ଏକଦିନ | ।। | ୧ |
| | ଆପଣା ପୁତ୍ର ରାମ ହରି | । | ମିଳନ୍ତେ ନମସ୍କାର କରି | ।। | ୨ |
| | ସେ ବସୁଦେବ ତୋଷଚିତ୍ତେ | । | [1]ପୁତ୍ରଙ୍କୁ କହିଲେ ଏମନ୍ତେ | ।। | ୩ |
| ୨ | ମୁନିମାନଙ୍କ ବାକ୍ୟ ଯେହି | । | ପୁତ୍ରଙ୍କ ପ୍ରଭାବ ସୂଚଇ | ।। | ୪ |
| | ସେ ବାକ୍ୟ ବସୁଦେବ ଶୁଣି | । | ପୁତ୍ରଙ୍କ ପରାକ୍ରମେ ପୁଣି | ।। | ୫ |
| | ଅତି ବିଶ୍ୱାସ ଲଭି କରି | । | କହିଲେ ସଂବୋଧନ କରି | ।। | ୬ |
| ୩ | ହେ କୃଷ୍ଣ କୃଷ୍ଣ ସନାତନ | । | ହେ ମହାଯୋଗି ! ସଂକର୍ଷଣ | ।। | ୭ |
| | ଏ ସଂସାରର ଯେ କାରଣ | । | ପ୍ରଧାନ-ପୁରୁଷରୂପେଣ | ।। | ୮ |
| | ତାଙ୍କ ଈଶ୍ୱର ତୁମ୍ଭେ ଦୁଇ | । | ସାକ୍ଷାତ ଏମନ୍ତ ମଣଇଁ | ।। | ୯ |
| ୪ | ତୁମ୍ଭେ ବୋଲିବ ଏ ଜଗତ | । | ଅନେକ କାରକରେ ଜାତ | ।। | ୧୦ |
| | ପ୍ରଧାନ-ପୁରୁଷ ଯେ ପୁଣ | । | ସେ କିଂପା ଏ ବିଶ୍ୱକାରଣ | ।। | ୧୧ |
| | ପ୍ରଧାନ-ପୁରୁଷ ଯେ ଦୁଇ | । | ତାଙ୍କ ଈଶ୍ୱର ଆମ୍ଭେ କେହି[2] | ।। | ୧୨ |
| | ଏମନ୍ତ ବୋଲିବ ବା ତୁମ୍ଭେ | । | ତହିଁକି କହୁଅଛୁଁ ଆମ୍ଭେ | ।। | ୧୩ |
| | ଯହିଁରେ ଅଛି ଏ ସଂସାର | । | ଯେଣେ ଏ ହୋଇଛି ପ୍ରଚାର | ।। | ୧୪ |
| | ଯହିଁରୁ ହେଲା ବିନିର୍ମିତ | । | ଯାହା ସଂବନ୍ଧେ ହେଲା ଖ୍ୟାତ | ।। | ୧୫ |
| | ଯାହାକୁ ଉପଗତ ହୋଇ | । | ଯେ କର୍ମ କର୍ତ୍ତା ଅବା ଦୁଇ | ।। | ୧୬ |
| | ଯେଉଁ ପ୍ରକାରେ ଏ ଜଗତ | । | ଯେତେବେଳେ ବା ହେଲା ଖ୍ୟାତ | ।। | ୧୭ |
| | ଏ ସର୍ବେ ସ୍ୱରୂପ ତୁମ୍ଭର | । | ତୁ ଭୋଗ୍ୟ-ଭୋକ୍ତାର ଈଶ୍ୱର | ।। | ୧୮ |
| ୫ | ହେ ଆତ୍ମସ୍ୱରୂପ ଈଶ୍ୱର | । | ଏ ନାନାବିଧ ଯେ ସଂସାର | ।। | ୧୯ |
| | ତୋହର ସୃଷ୍ଟ ଏ ଅଟଇ | । | ତୁ ପଛେ ପ୍ରବେଶିଣ ତହିଁ | ।। | ୨୦ |
| | ଯେ କ୍ରିୟାଶକ୍ତି ଜ୍ଞାନଶକ୍ତି | । | ସେ ରୂପେ ତାକୁ କରୁ ସ୍ଥିତି | ।। | ୨୧ |
| | ହେ ଅଧୋକ୍ଷଜ ବିଶ୍ୱମ୍ଭର | । | ଜନ୍ମ ହିଁ ନାହିଁଟି ତୋହର | ।। | ୨୨ |
| ୬ | ପ୍ରାଣାଦି ବିଶ୍ୱସୃଜଙ୍କର | । | ଯେବଣ ଶକ୍ତି ବଳିୟାର | ।। | ୨୩ |
| | ସେ ଶକ୍ତି ଈଶ୍ୱରର ତହିଁ | । | ଯେଣୁ ସେ ପରତନ୍ତ୍ର ହୋଇ | ।। | ୨୪ |

୧. ଅଭିନନ୍ଦନ କରି କହିଲେ (ଅଭିନନ୍ଦ୍ୟ) । ୨. କିପରି ।

ବାଣର [୧]ବେଧଶକ୍ତି ନାହିଁ । ଯେସନେ ପୁରୁଷର ତା' ହିଁ ॥
ଚେତନାଚେତନୁଁ ଆବର । ସାଦୃଶ୍ୟ ନାହିଁ ବେନିଙ୍କର ॥
ଏ ମହଦାଦିମାନେ ନିତି । ଚେଷ୍ଟାକୁ କରିଣ ଥାଆନ୍ତି ॥
ପବନଶକ୍ତିରେ ଯେମନ୍ତ । ତୃଣାଦି ହୁଅନ୍ତି ଚଳିତ ॥
ଈଶ୍ୱରଶକ୍ତିରେ ତେସନେ । ଚଳନ୍ତି ମହଦାଦିମାନେ ॥
୭ ଯେବଣ କାନ୍ତି ଚନ୍ଦ୍ରମାର । ଯେ ତେଜ ଅଟଇ ଅଗ୍ନିର ॥
ଯେ ଅବା ପ୍ରଭା ଆଦିତ୍ୟର । ଯେ ସ୍ଥିରଭାବ ଗିରିଙ୍କର ॥
ନକ୍ଷତ୍ରବିଜୁଳିର ପୁଣ । ଯେ ଅବା ଅଟଇ ସ୍ଫୁରଣ ॥
ଯେ ଗନ୍ଧ ଯେ ବୃତ୍ତି ଭୂମିର । ଏ ସ୍ୱତଃ ଶକ୍ତିଟି ତୁମ୍ଭର ॥
୮ ଜଳର ତୃପ୍ତିଜନକତ୍ୱ । ଆବର ଜୀବନହେତୁତ୍ୱ ॥
ସେ ଜଳ, ତାର ରସ ପୁଣ । ତୁମ୍ଭେ ହିଁ ଅଟ, ନାରାୟଣ ॥
[୨]ଯେ ଚେଷ୍ଟା ଓଜ ସହ ବଳ । ଗତି, ବାୟୁର ଏ ସକଳ ॥
ସେ ସବୁ ଶକ୍ତି ଅଟେ ତୋର । ହେ ଦେବ ତୁ ଅଟୁ ଈଶ୍ୱର ॥
୯ ତୁ ସର୍ବଦିଗ-ଅବକାଶ । ତୁ ଦିଗ ତୁ ଅଟୁ ଆକାଶ ॥
ଯେ ଶବ୍ଦ ଆକାଶର ଗୁଣ । ସେ ତୁମ୍ଭେ, ନାଦରୂପୀ ପୁଣ ॥
ତୁମ୍ଭେ ଓଁକାର ବର୍ଣ୍ଣରୂପୀ । ପଦାର୍ଥଙ୍କରେ ଭିନ୍ନ-ବ୍ୟାପୀ ॥
୧୦ ଇନ୍ଦ୍ରିୟଙ୍କର ତୁମ୍ଭେ ଅତି । ବିଷୟପ୍ରକାଶନ ଶକ୍ତି ॥
ତାହାଙ୍କ ଅଧିଷ୍ଠାତାଗଣ । ତୁ ଅଧିଷ୍ଠାନଶକ୍ତି ପୁଣ ॥
ବୁଦ୍ଧି-ଅଧ୍ୟବସାୟଶକ୍ତି । ଜୀବ-ପ୍ରତିସନ୍ଧାନ-ଶକ୍ତି ॥
୧୧ ପୃଥିବୀ ଆଦି ଭୂତଙ୍କର । ତୁମ୍ଭେ ତାମସ ଅହଂକାର ॥
ପୁଣି ରାଜସ ଅହଂକାର । ତୁମ୍ଭେ ଇନ୍ଦ୍ରିୟମାନଙ୍କର ॥
ସର୍ବଦେବତାମାନଙ୍କର । ତୁମ୍ଭେ ସାତ୍ତ୍ୱିକ ଅହଂକାର ॥
ସମସ୍ତ ଜୀବଙ୍କର ପୁଣ । ତୁମ୍ଭେ ହିଁ ସଂସାରକାରଣ ॥
୧୨ ଏ ଦ୍ରବ୍ୟମାନ ଏ ସଂସାରେ । ବିନାଶ ହୁଅନ୍ତି କାଳରେ ॥
ଯେ ନାଶ ନ ଯାଇ ରହଇ । ସେ ବ୍ରହ୍ମରୂପୀ ତୁମ୍ଭେ ତହିଁ ॥
ଘଟ-କୁଣ୍ଡଳାଦି ଯେମନ୍ତେ । କାଳରେ ବିନାଶ ହୁଅନ୍ତେ ॥
ସ୍ୱର୍ଣ୍ଣ-ମୃତ୍ତିକାମାନ ରହି । କେବେହେଁ ବିନାଶ ନୁହଇ ॥
ସଂସାରବିନାଶ ସେରୂପେ । ତୁମ୍ଭେଟି ଥାଅ ବ୍ରହ୍ମରୂପେ ॥
୧୩ ସତ୍ତ୍ୱ-ରଜ-ତମ ବୋଲିଣ । ଅଟନ୍ତି ଯଉଁ ତିନି ଗୁଣ ॥
ଯେ ତାଙ୍କ ବୃତ୍ତି ମହଦାଦି । ତୁ ପରଂବ୍ରହ୍ମରୂପେ ସିଦ୍ଧି ॥

---

୧. ବେଧଶକ୍ତି = ବିନ୍ଧିବା ଶକ୍ତି ।

୨. ଓଜ = ଇନ୍ଦ୍ରିୟ ଶକ୍ତି; ସହ = ମନର ଶକ୍ତି; ବଳ = ଶରୀର ଶକ୍ତି ।

| | | | | | |
|---|---|---|---|---|---|
| | ଯୋଗମାୟାରେ ଏ ସମସ୍ତ | । | ତୁମ୍ଭରି ଠାରେ ଏ କଳ୍ପିତ | ।। | ୫୫ |
| ୧୪ | ତେଣୁ ଏ ମହଦାଦି ଭାବେ | । | କଳ୍ପିତ ହେଲେହେଁ ତୋ' ଠାବେ | ।। | ୫୬ |
| | ପ୍ରତୀତମାତ୍ରେ ରହିଛନ୍ତି | । | ବାସ୍ତବ ଅଲଗା ଅଟନ୍ତି | ।। | ୫୭ |
| | ତୁମ୍ଭେ ଏ ବିକାରେ ନିୟତ | । | କାରଣମାତ୍ରେ ଅନୁଗତ | ।। | ୫୮ |
| | ଅନ୍ୟଦା ପୁଣ ତୁମ୍ଭେ ଏକ | । | ରହ ହୋଇ ଅବିକଳ୍ପକ[୧] | ।। | ୫୯ |
| ୧୫ | ତୁ ଆତ୍ମା ସର୍ବ ପ୍ରାଣିଙ୍କର | । | ସୂକ୍ଷ୍ମ ଗତିକି ହିଁ ତୁମ୍ଭର | ।। | ୬୦ |
| | ଅବୁଧ ଜନେ ହେଁ ନ ଜାଣି | । | ଏ ଗୁଣପ୍ରବାହରେ ପୁଣି | ।। | ୬୧ |
| | ସ୍ୱକୃତ[୨] କର୍ମମାନଙ୍କରେ | । | ଭ୍ରମନ୍ତି ନାନା ପରକାରେ | ।। | ୬୨ |
| ୧୬ | ଦ୍ରବ୍ୟ-ଇନ୍ଦ୍ରିୟଗଣେ ଯହିଁ | । | ଯେ ପୁଣ ଦୁର୍ଲଭ ଅଟଇ | ।। | ୬୩ |
| | ସେ ନରଦେହ ଯଦୃଚ୍ଛାରେ | । | ହେ ଈଶ ! ଲଭି ଏ ସଂସାରେ | ।। | ୬୪ |
| | ମତ୍ତ ହୁଅନ୍ତେ ସ୍ୱକାର୍ଯ୍ୟରେ | । | ବୟସ ଗଲା ତୋ' ମାୟାରେ | ।। | ୬୫ |
| ୧୭ | ଏ ମୁଁ ଏ ମୋର ଏ ଶରୀର | । | ଏ ପୁତ୍ରକଳତ୍ରାଦି ମୋର | ।। | ୬୬ |
| | ଆହେ ଈଶ୍ୱର ! ଏ ରୂପରେ | । | ତୁମ୍ଭେ ଟି ସ୍ନେହଦଉଡ଼ିରେ | ।। | ୬୭ |
| | ଏ ସର୍ବ ଜଗତଯାକକୁ | । | କରିଛ ଅତିବନ୍ଧନକୁ | ।। | ୬୮ |
| ୧୮ | ପ୍ରଧାନ-ପୁରୁଷ-ଈଶ୍ୱର | । | ତୁମ୍ଭେ ନୁହଁ ଟି ମୋ' କୁମର | ।। | ୬୯ |
| | ଭୂମିର ଭାରପ୍ରାୟେ ହୋଇ | । | ଯେତେ କ୍ଷତ୍ରିୟ ଥିଲେ ରହି | ।। | ୭୦ |
| | ତା' ନାଶେ ହେଲ ଅବତାର | । | ନିଶ୍ଚୟେ କହ ବେନି ବୀର | ।। | ୭୧ |
| ୧୯ | ବିପତ୍ତିଗ୍ରସ୍ତ[୩] ଯେ ପୁରୁଷେ | । | ଯେ ତାଙ୍କ ଭବଭୟ ନାଶେ | ।। | ୭୨ |
| | ସେ ପାଦପଦ୍ମରେ ତୁମ୍ଭର | । | ହେ ଆର୍ତ୍ତବନ୍ଧୁ ନିରନ୍ତର | ।। | ୭୩ |
| | ମୁଁ ପଶୁଅଛିଟି ଶରଣ | । | ଇନ୍ଦ୍ରିୟଲାଳସାରେ ପୁଣ | ।। | ୭୪ |
| | ଶରୀରେ କଲି ଆତ୍ମବୁଦ୍ଧି | । | ଯେ ପରଂବ୍ରହ୍ମରୂପେ ସିଦ୍ଧି | ।। | ୭୫ |
| | ସେ ତୁମ୍ଭଠାରେ କଲି ପୁଣ | । | ଅପତ୍ୟ ବୁଦ୍ଧି ଆଚରଣ | ।। | ୭୬ |
| | ଇନ୍ଦ୍ରିୟଗଣତୃଷ୍ଣା ଯେହି | । | ଏତେକେ ପୂର୍ଣ୍ଣ ହେଲା ସେହି | ।। | ୭୭ |
| ୨୦ | ସୁତପା ପୃଷ୍ଣୀ ନାମେ ହୋଇ | । | ତୁମ୍ଭେ ଜନ୍ମିଲ ପୂର୍ବେ ଦୁଇ | ।। | ୭୮ |
| | କଶ୍ୟପ ଅଦିତି ନାମରେ | । | ଜନ୍ମିଲ ଅପର ଜନ୍ମରେ | ।। | ୭୯ |
| | ଦେବକୀ ବସୁଦେବ ହୋଇ | । | ଏବେ ଜନ୍ମିଲ ତୁମ୍ଭେ ଦୁଇ | ।। | ୮୦ |
| | ସ୍ୱଧର୍ମରକ୍ଷାନିମିତ୍ତରେ | । | ଆମ୍ଭେ ଜନ୍ମିଲୁ ତୁମ୍ଭ ଘରେ | ।। | ୮୧ |
| | ଏ ରୂପେ ସୂତିକାଗୃହରେ | । | କହିଛ ଆମ୍ଭର ଆଗରେ | ।। | ୮୨ |
| | ନିଃସଙ୍ଗ ଆକାଶର ପ୍ରାଏ | । | ତୁମ୍ଭେ ବ୍ୟାପିଛ ସର୍ବଠାଏ | ।। | ୮୩ |
| | ନାନା ଶରୀରମାନ ଧର | । | କାଳେ ତା' ସମସ୍ତ ସଂହର | ।। | ୮୪ |
| | ହେ ଉରୁଗାୟ କଉଁ ନର | । | ଜାଣିମ ମାୟାକୁ ତୁମ୍ଭର | ।। | ୮୫ |

୧. ଅବିକୃତ । ୨. ସ୍ୱକୃତ = ଥରେ । ୩. 'ବିପ୍ରତିଗ୍ରହ', 'ଶରଣାଗତ' ଇତ୍ୟାଦି ପାଠାନ୍ତର ।

### ଶ୍ରୀଶୁକ ଉବାଚ

୨୧ ପୁଣି ଏମନ୍ତ ବ୍ୟାସସୁତ । କହନ୍ତି ଶୁଣ ପରୀକ୍ଷିତ ॥ ୮୬
[1]ସାତ୍ୱତର୍ଷଭ ଭଗବାନ । ଏରୂପେ ପିତାଙ୍କ ବଚନ ॥ ୮୭
ଶ୍ରବଣ କରନ୍ତେ ଆପଣ । [2]ପ୍ରଶ୍ରୟବିନମ୍ର ହୋଇଣ ॥ ୮୮
ହସନ୍ତେ [3]ଶ୍ଲକ୍ଷ୍ଣ ବଚନରେ । କହିଲେ ଏମନ୍ତ ରୂପରେ ॥ ୮୯

### ଶ୍ରୀଭଗବାନୁବାଚ

୨୨ ହେ ତାତ ! ତୁମ୍ଭ ଏ ବଚନ । ଉତ୍ତମ ଅର୍ଥରେ ସଂପୂର୍ଣ୍ଣ ॥ ୯୦
ଏମନ୍ତ ମଣୁଅଛୁଁ ଆମ୍ଭେ । ପୁତ୍ରଙ୍କୁ ଉଦ୍ଦେଶି ଯା' ତୁମ୍ଭେ ॥ ୯୧
ଏ ତତ୍ତ୍ୱସମୂହକୁ ପୁଣ । କହିଲ ଉତ୍ତମ କରିଣ ॥ ୯୨
୨୩ ଏବେ ହେ ଯଦୁଶ୍ରେଷ୍ଠ ! ଆମ୍ଭେ । ଏ ବଳରାମ ପୁଣ ତୁମ୍ଭେ ॥ ୯୩
ଦ୍ୱାରକାବାସୀଏ ସମସ୍ତେ । ସମସ୍ତ ଜନେ ହେଁ ଏମନ୍ତେ ॥ ୯୪
ସଚରାଚର ଏ ଜଗତ । ବ୍ରହ୍ମରେ କରିବା ସାକ୍ଷାତ ॥ ୯୫
୨୪| ଆକାଶ ପବନ ଯେ ଜ୍ୟୋତି । ଯେ ଅବା ଜଳ ଯେ ବା କ୍ଷିତି ॥ ୯୬
୨୫| ଏ ପଞ୍ଚ ମହାଭୂତ ପୁଣ । ଯେ ଏଣେ ଅଟନ୍ତି ନିର୍ମାଣ ॥ ୯୭
ସେ ଘଟ ଆଦିରେ ଯେସନ । ଲଭନ୍ତି ଜନ୍ମ ବିନାଶନ ॥ ୯୮
ଆତ୍ମା ହିଁ ପୁଣ ଏ ରୂପରେ । ସେ ଆତ୍ମସୃଷ୍ଟ ଗୁଣଙ୍କରେ ॥ ୯୯
ଗୁଣନିର୍ମିତ ଦେହେ ରହି । ପ୍ରତୀତ ନାନାରୂପେ ହୋଇ ॥ ୧୦୦
ସେ ଏକ ଆତ୍ମା ଜ୍ୟୋତିର୍ମୟେ । ସଗୁଣ ନିର୍ଗୁଣ ଉପାୟେ ॥ ୧୦୧
ନିତ୍ୟ ଅନିତ୍ୟ ସ୍ୱରୂପରେ । ଅନ୍ୟ ଅନନ୍ୟ ପରକାରେ ॥ ୧୦୨
ଏମନ୍ତ ଉପାଧି ଲଭଇ । ତଦନୁସାରେ ପୁଣ ତହିଁ ॥ ୧୦୩
ଜନ୍ମ-ମରଣାଦିସ୍ୱରୂପେ । ପ୍ରତୀତ ହୋଏ ନାନାରୂପେ ॥ ୧୦୪
ବାସ୍ତବ ନୁହଇ ତେସନ । ସେ ଆତ୍ମା ସର୍ବଠାରୁ ଭିନ୍ନ ॥ ୧୦୫

### ଶ୍ରୀଶୁକ ଉବାଚ

୨୬ କହନ୍ତି ବ୍ୟାସଙ୍କ ନନ୍ଦନ । ଏମନ୍ତ ରୂପେ ହେ ରାଜନ ॥ ୧୦୬
ଯାହା କହିଲେ ନରହରି । ତା' ବସୁଦେବ ଶୁଣି କରି ॥ ୧୦୭
ଯେ ବୁଦ୍ଧି ଥିଲା ନାନାମତେ । ସେ ସର୍ବ ବିନାଶ ହୁଅନ୍ତେ ॥ ୧୦୮
ପ୍ରୀତିରେ ତୋଷଚିତ୍ତ ହେଲେ । ମଉନ ହୋଇ ସେ ରହିଲେ ॥ ୧୦୯
୨୭ ଏଥୁ ଅନ୍ତରେ ପୁଣ ତହିଁ । ଦେବକୀ ସର୍ବଦେବମୟୀ ॥ ୧୧୦
ଆପଣା ପୁତ୍ରେ ହେ ରାଜନ । ଆଣିଲେ ଗୁରୁଙ୍କ ନନ୍ଦନ ॥ ୧୧୧
ଶ୍ରବଣ କରନ୍ତେ ଏମନ୍ତ । ଲଭିଲେ ଅତ୍ୟନ୍ତ ବିସ୍ମିତ ॥ ୧୧୨

---

୧. ଭକ୍ତମାନଙ୍କ ବା ଯାଦବମାନଙ୍କ ପରିପାଳକ । ୨. ବିନୟାବନତ । ୩. ମଧୁର ।

| | | | | |
|---|---|---|---|---|
| ୨୮ | ଯେ ନିଜପୁତ୍ର ରାମ-ହରି | । ତାହାଙ୍କୁ ସମ୍ବୋଧନ କରି | ।। ୧୧୩ |
| | କଂସ କରିଛି ବିନାଶନ | । ଯେତେକ ଆପଣା ନନ୍ଦନ | ।। ୧୧୪ |
| | ସ୍ମରଣ କରନ୍ତେ ତାହାଙ୍କୁ | । ନୟନୁଁ ତେଜନ୍ତେ ଅଶ୍ରୁକୁ | ।। ୧୧୫ |
| | ବିକଳଭାବୁଁ ଦୀନ ହୋଇ | । ଏମନ୍ତ କହିଲେ ସେ ତହିଁ | ।। ୧୧୬ |

ଶ୍ରୀଦେବକୀ ଉବାଚ

| | | | |
|---|---|---|---|
| ୨୯ | ହେ ରାମ ରାମ ନୀଳାମ୍ବର | । ପ୍ରମାଣ ନାହିଁ ତୋ ଆତ୍ମାର | ।। ୧୧୭ |
| | ହେ କୃଷ୍ଣ ଯୋଗେଶ୍ୱରେଶ୍ୱର | । ଯେ ସର୍ଜୁଛନ୍ତି ଏ ସଂସାର | ।। ୧୧୮ |
| | ତାଙ୍କ ଈଶ୍ୱର ତୁମ୍ଭେ ଦୁଇ | । ଆଦି-ପୁରୁଷରୂପେ ଥାଇ | ।। ୧୧୯ |
| | ତୁମ୍ଭ ଦୁହିଁଙ୍କୁ ଏ ରୂପରେ | । ନିଶ୍ଚେ ମୁଁ ଜାଣୁଛି ମନରେ | ।। ୧୨୦ |
| ୩୦ | କାଳରେ ହୋଇଲା ବିନାଶ | । ଯଉଁମାନଙ୍କର ଆୟୁଷ | ।। ୧୨୧ |
| | ଯେ ଶାସ୍ତ୍ର କଲେ ତିରସ୍କାର | । ଯେ ଭାରପ୍ରାୟେ ଧରଣୀର | ।। ୧୨୨ |
| | ସେ ରାଜାମାନଙ୍କ ନିଧନ | । ନିଶ୍ଚେ କରିବାକୁ ବିଧାନ | ।। ୧୨୩ |
| | ଏବେ ଟି ତୁମ୍ଭେ ବେନି ବୀର | । ମୋ ଗର୍ଭେ ହେଲ ଅବତାର | ।। ୧୨୪ |
| ୩୧ | ହେ ଆଦ୍ୟ ହେ ବିଶ୍ୱଭାବନ | । ଯା' ଅଂଶୁ ପୁରୁଷ ଜନମ | ।। ୧୨୫ |
| | ପୁରୁଷଅଂଶୁ ମାୟା ଜାତ | । ମାୟାରୁ ତ୍ରିଗୁଣ ସଂଭୂତ | ।। ୧୨୬ |
| | ତ୍ରିଗୁଣଲେଶରୁ[୧] ଏ ବିଶ୍ୱ | । ହୋଏ ଉତ୍‌ପତ୍ତି-ସ୍ଥିତି-ନାଶ | ।। ୧୨୭ |
| | ସେ ତୁମ୍ଭେ ଗତି ମୁଁ ତୁମ୍ଭଙ୍କୁ | । ଆଜ ପଶୁଛି ଶରଣକୁ | ।। ୧୨୮ |
| ୩୨ | ସେ ଚିରକାଳୁ ମରଣକୁ | । ଲଭିଲା, ସେ ନିଜ ପୁତ୍ରକୁ | ।। ୧୨୯ |
| | ଆଣ ବୋଲନ୍ତେ ନିଶ୍ଚେ ଗୁରୁ | । ସେ ପୁତ୍ର ଆଣି ଯମପୁରୁ | ।। ୧୩୦ |
| | ଗୁରୁଦକ୍ଷିଣା ଦେବା ପାଇଁ | । ଗୁରୁଙ୍କୁ ଦେଲ ବେନି ଭାଇ | ।। ୧୩୧ |
| ୩୩ | ଯୋଗେଶ୍ୱରଙ୍କର ଈଶ୍ୱର | । ନିଶ୍ଚୟେ ତୁମ୍ଭେ ବେନି ବୀର | ।। ୧୩୨ |
| | ସେ ରୂପେ କର ମୋ ବାଞ୍ଛିତ | । ଯାହାଙ୍କୁ କଂସ କଲା ହତ | ।। ୧୩୩ |
| | ଦେଖିବା ପାଇଁ ସେ ପୁତ୍ରଙ୍କୁ | । ଏବେ ମୁଁ କଲି କାମନାକୁ | ।। ୧୩୪ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୪ | କହନ୍ତି ବ୍ୟାସଙ୍କ ଆତ୍ମଜ | । ହେ ପରୀକ୍ଷିତ ମହାରାଜ | ।। ୧୩୫ |
| | ଦେବକୀ କହନ୍ତେ ଏମନ୍ତ | । ରାମ ଗୋବିନ୍ଦ ବେନି ଭ୍ରାତ | ।। ୧୩୬ |
| | ଯୋଗମାୟାକୁ ଆଶ୍ରେ କଲେ | । ସୁତଳେ ପ୍ରବେଶ ହୋଇଲେ | ।। ୧୩୭ |
| ୩୫ | ଯେ ଆତ୍ମଦଇବ ଈଶ୍ୱର | । ପୁଣି ସେରୂପେ ଆପଣାର | ।। ୧୩୮ |
| | ସେ ରାମକୃଷ୍ଣ ବେନି ଭାଇ | । ମିଳନ୍ତେ ସୁତଳରେ ଯାଇ | ।। ୧୩୯ |
| | ତାଙ୍କ ଦର୍ଶନ ହ୍ଲାଦୁଁ ପୁଣ | । ପୂରିଲା ଯା' ଅନ୍ତଃକରଣ | ।। ୧୪୦ |

୧. ପରମାଣୁରୁ ।

| | | | | |
|---|---|---|---|---|
| | ସେ ବଳିରାଜା ଦୈତ୍ୟେଶ୍ୱର | । ଘେନି ସମସ୍ତ ପରିବାର | ।। | ୧୪୧ |
| | ତତ୍‌କାଳ ଆସନୁଁ ଉଠିଲେ | । ରାମକୃଷ୍ଣଙ୍କୁ ପ୍ରଣମିଲେ | ।। | ୧୪୨ |
| ୩୬ | ସେ ବଳିରାଜା ସେ କାଳରେ | । ରାମକୃଷ୍ଣଙ୍କୁ ହରଷରେ | ।। | ୧୪୩ |
| | ଦିଅନ୍ତେ ଶ୍ରେଷ୍ଠାସନ ନେଇ | । ମହାତ୍ମା ରାମକୃଷ୍ଣ ଦୁଇ | ।। | ୧୪୪ |
| | ବସନ୍ତେ ଯେ ଆସନେ ପୁଣ | । ସେ ବେନିଭ୍ରାତାଙ୍କ ଚରଣ | ।। | ୧୪୫ |
| | ଧୋଇ ସେ ପାଦୋଦକ ନେଇ | । ଘେନିଲେ ସକୁଟୁମ୍ବ ହୋଇ | ।। | ୧୪୬ |
| | ଯେ ଜଳ ବ୍ରହ୍ମାଙ୍କ ସହିତ | । ପବିତ୍ର କରଇ ଜଗତ | ।। | ୧୪୭ |
| ୩୭ | ବହୁତମୂଲ୍ୟ ବସନରେ | । ଭୂଷଣ-ଅନୁଲେପନରେ | ।। | ୧୪୮ |
| | ଯେ ମାଳା[୧]-ଧୂପ-ଦୀପମାନ | । ଅମୃତ ଭକ୍ଷ୍ୟାଦି ଯେ ଆନ | ।। | ୧୪୯ |
| | ଏହି ସଂପତ୍ତିରେ ପୂଜାକୁ | । କଲେ ସେ ରାମଗୋବିନ୍ଦଙ୍କୁ | ।। | ୧୫୦ |
| | ସ୍ୱଗୋତ୍ରବିତ୍ତ[୨] ସହିତେଣ | । କଲେ ଆତ୍ମାକୁ ସମର୍ପଣ | ।। | ୧୫୧ |
| ୩୮ | ହେ ନୃପ ! ବଳି ମହାରାଜ | । ଭଗବାନର ପଦାମ୍ବୁଜ | ।। | ୧୫୨ |
| | ସପ୍ରେମ ଆର୍ଦ୍ର ମାନସରେ | । ଧରନ୍ତେ ବାରମ୍ବାର ଶିରେ | ।। | ୧୫୩ |
| | ଆନନ୍ଦଜଳରେ ଆକୁଳ | । ହୋଇଛି ନୟନଯୁଗଳ | ।। | ୧୫୪ |
| | ରୋମ-ଉଦ୍‌ଗମ-ହରଷରେ | । କହିଲେ ଗଦ୍‌ଗଦ ଅକ୍ଷରେ | ।। | ୧୫୫ |

### ଶ୍ରୀବଳିରୁବାଚ

| | | | | |
|---|---|---|---|---|
| ୩୯ | କୃଷ୍ଣଙ୍କୁ ଏ ରୂପରେ ସ୍ତୁତି | । କରନ୍ତି ବଳି ମହୀପତି | ।। | ୧୫୬ |
| | ତୋର ଯେ ଅଂଶ-ଅବତାର | । ଶେଷ ଅଟଇ ନାମ ଯାର | ।। | ୧୫୭ |
| | ସେ ଅଂଶ ରୂପଟି ତୁମ୍ଭର | । ଏକ ପ୍ରଦେଶରେ ଫଣାର | ।। | ୧୫୮ |
| | ଜଗତ ଧରିଛି ଆବର | । ବିଧାତା ଅଟ ଜଗତର | ।। | ୧୫୯ |
| | ତୁମ୍ଭେ ଶ୍ରୀକୃଷ୍ଣ[୩] ମୁଁ ତୁମ୍ଭଙ୍କୁ | । ନିତ୍ୟେ କରୁଛି ପ୍ରଣାମକୁ | ।। | ୧୬୦ |
| | [୪]ସାକ୍ଷାତ ତୁମ୍ଭେ ପ୍ରକାଶିତ | । ପରମ ଆତ୍ମାରୂପେ ଖ୍ୟାତ | ।। | ୧୬୧ |
| | ତୁମ୍ଭେ ଟି ବ୍ରହ୍ମ ନିରାକାର | । ତୁମ୍ଭଙ୍କୁ ମୋର ନମସ୍କାର | ।। | ୧୬୨ |
| ୪୦ | ତୁମ୍ଭ କୃପାରେ ପ୍ରାଣିଙ୍କର | । ଯେ ଅଟେ ଦୁର୍ଲଭ ପ୍ରକାର | ।। | ୧୬୩ |
| | ସୁଲଭମାତ୍ର ସେ ହୁଅଇ | । ଏମନ୍ତ ମନେ ମୁଁ ମଣଇ | ।। | ୧୬୪ |
| | ଯେଣୁ ଏ ରଜତମୋମୟ | । ଆମ୍ଭ ସ୍ୱଭାବ ଅତିଶୟ | ।। | ୧୬୫ |
| | ଆମ୍ଭ ଆଗରେ ବେନି ବୀରେ | । ମିଳିଲ ଆସି ଯଦୃଚ୍ଛାରେ | ।। | ୧୬୬ |
| ୪୧-୪୩ | ଦୈତ୍ୟ ଦାନବ ସିଦ୍ଧ ଜନେ | । ଗନ୍ଧର୍ବ-ବିଦ୍ୟାଧରମାନେ | ।। | ୧୬୭ |
| | ଉରଗ-ଯକ୍ଷ-ରକ୍ଷ-ଭୂତେ | । ପିଶାଚ-ରାକ୍ଷସ ପ୍ରମଥେ | ।। | ୧୬୮ |
| | ଯେ ତୁମ୍ଭେ ଶୁଦ୍ଧ ସତ୍ତ୍ୱସ୍ଥାନ | । ଶାସ୍ତ୍ରଶରୀରେ ବିଦ୍ୟମାନ | ।। | ୧୬୯ |

୧. ତାମ୍ବୂଳ ୨. ଦ୍ରବ୍ୟ ।
୩. ସଦାନନ୍ଦ ୪. 'ସାଂଖ୍ୟଯୋଗବିତାନାୟ' ଇତି ମୂଳପାଠଃ ।

| | | | |
|---|---|---|---|
| | ତୁମ୍ଭ ଠାବରେ ଏ ସମସ୍ତେ | ବଇରଭାବ କଲେ ନିତ୍ୟେ | ॥ ୧୭୦ |
| | ଯେ ତାଙ୍କ ସମ ଅନ୍ୟଜନେ | ସେ ରୂପେ କରୁଁ ଆମ୍ଭେମାନେ | ॥ ୧୭୧ |
| | ବଇରଭାବେ ଭକ୍ତି କରି | ଶିଶୁପାଳାଦି ଗଲେ ତରି | ॥ ୧୭୨ |
| | କାମରୁ ଭକ୍ତି କରି ଯେହ୍ନେ | ମୁକ୍ତି ଲଭିଲେ ଗୋପୀମାନେ | ॥ ୧୭୩ |
| | ଇନ୍ଦ୍ରାଦି ଦେବେ ସତ୍ତ୍ୱାବିଷ୍ଟ | ତେହ୍ନେ ନୁହନ୍ତି ସନ୍ନିକୃଷ୍ଟ | ॥ ୧୭୪ |
| ୪୪ | ହେ ଯୋଗେଶ୍ୱରଙ୍କ ଈଶ୍ୱର | ଏ ଏହିରୂପେ ଟି ତୁମ୍ଭର | ॥ ୧୭୫ |
| | ଯେ ଯୋଗମାନଙ୍କ ଈଶ୍ୱର | ସେ ଯୋଗମାୟାକୁ ତୁମ୍ଭର | ॥ ୧୭୬ |
| | ଜାଣନ୍ତି ନାହିଁ ଏ ଭୁବନେ | କାହୁଁ ଜାଣିମୁ ଆମ୍ଭେମାନେ | ॥ ୧୭୭ |
| ୪୫ | ଏମନ୍ତ ରୂପରେ ପ୍ରସନ୍ନ | ଆମ୍ଭଙ୍କୁ ହୁଅ ଭଗବାନ | ॥ ୧୭୮ |
| | ଜ୍ଞାନୀଏ କରନ୍ତି ଚିନ୍ତନ | ଯେ ତୁମ୍ଭ ଚରଣନଳିନ | ॥ ୧୭୯ |
| | ସେ ଆଶ୍ରୟରୁ ଭିନ୍ନରୂପ | ଅଛି ଯେ ଗୃହ ଅନ୍ଧକୂପ | ॥ ୧୮୦ |
| | ତହିଁରୁ ହୋଇବି ବାହାର | ଯେ ରକ୍ଷା କରନ୍ତି ସଂସାର | ॥ ୧୮୧ |
| | ସେ ବୃକ୍ଷମାନଙ୍କର ମୂଳେ | ଝଡ଼ି ପଡ଼ନ୍ତି ଯଉଁ ଫଳେ | ॥ ୧୮୨ |
| | ତେଣେ ଜୀବନ ରଖି ମୁହିଁ | ଭ୍ରମିବି ଏକା ଶାନ୍ତ ହୋଇ | ॥ ୧୮୩ |
| | ଅଥବା ସର୍ବସଖା[୧] ଘେନି | ଭ୍ରମଣ କରିବି ଅବନି | ॥ ୧୮୪ |
| ୪୬ | ହେ ପ୍ରଭୁ ! ସର୍ବଜୀବେଶ୍ୱର | ଆମ୍ଭମାନଙ୍କୁ ରକ୍ଷା କର | ॥ ୧୮୫ |
| | ଯେ ରୂପେ ତୁମ୍ଭଠାରେ ଭାବ | ଆମ୍ଭର ହୋଇବ ସଂଭବ | ॥ ୧୮୬ |
| | ସେରୂପେ ଆମ୍ଭଙ୍କୁ ଶିଖାଅ | ଆମ୍ଭର ପାପ ହରି ନିଅ | ॥ ୧୮୭ |
| | ହେ ପ୍ରଭୁ ପାପବିନାଶନ | ତୁମ୍ଭ ଆଜ୍ଞାରେ ଯଉଁ ଜନ | ॥ ୧୮୮ |
| | ଶ୍ରଦ୍ଧାରେ ନିତ୍ୟ ରହିଥାଇ | ଯା ତୁମ୍ଭେ ଆଜ୍ଞା ଅଛ ଦେଇ | ॥ ୧୮୯ |
| | ସେ ବିଧିନିଷେଧମାର୍ଗରୁ | ମୁକ୍ତ ହୁଅଇ ଏ ସଂସାରୁ | ॥ ୧୯୦ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୪୭ | ବଳିରାଜାଙ୍କୁ ଏ ବଚନ | କହୁଅଛନ୍ତି ଭଗବାନ | ॥ ୧୯୧ |
| | [୨]ପ୍ରଥମ ମନ୍ୱନ୍ତରେ ପୂର୍ବେ | ମରୀଚିଙ୍କର ଊର୍ଣ୍ଣାଗର୍ଭେ | ॥ ୧୯୨ |
| | ଷଡ଼ ତନୟ ହେଲେ ଜାତ | ଆପଣା ସୁତା[୩]କୁ ସୁରତ | ॥ ୧୯୩ |
| | କରିବା ଅର୍ଥେ ପ୍ରଜାପତି | ସେ କାଳେ କଲା ନିଜମତି | ॥ ୧୯୪ |
| | ତାହା ଦେଖନ୍ତେ ଅତିଶୟେ | ହସିଲେ ଷଡ଼ ଦେବତାଏ | ॥ ୧୯୫ |
| ୪୮ | ସେ ଷଡ଼ଭାଇ ସେ ପାପରେ | ମିଳନ୍ତେ ଅସୁରଯୋନିରେ | ॥ ୧୯୬ |
| | ହିରଣ୍ୟକଶିପୁଗୃହରେ | ଜନ୍ମ ଲଭିଲେ ତତ୍‌କ୍ଷଣରେ | ॥ ୧୯୭ |
| | ତହୁଁ ତାହାଙ୍କୁ ବେଗ ହୋଇ | ଆଣନ୍ତେ ଯୋଗମାୟା ଯାଇଁ | ॥ ୧୯୮ |
| ୪୯ | ଜନ୍ମିଲେ ଦେବକୀଗର୍ଭର | ତାଙ୍କୁ ମାଇଲା କଂସାସୁର | ॥ ୧୯୯ |

୧. ସମସ୍ତଙ୍କର ସଖାରୂପୀ ସାଧୁମାନେ । ୨. ସ୍ୱାୟଂଭୁବ ମନ୍ୱନ୍ତରରେ । ୩. ସରସ୍ୱତୀଙ୍କୁ ।

ଦେବକୀ ସେ ନିଜ ପୁତ୍ରଙ୍କୁ । ଉଦ୍ଦେଶି କରନ୍ତି ଶୋକକୁ ॥ ୨୦୦
ହେ ନୃପ ! ତୁମ୍ଭ ପାଶେ ରହି । ଅଛନ୍ତି ଟି ସେ ଷଡ଼ ଭାଇ ॥ ୨୦୧
୫୦ ମାତାଙ୍କ ଶୋକ ନାଶିବାକୁ । ଏଠାରୁ ନେମୁ ଏମାନଙ୍କୁ ॥ ୨୦୨
ପ୍ରଜାପତିଙ୍କ ଶାପୁଁ ଏବେ । ମୁକ୍ତ ହୁଅନ୍ତେ ଷଡ଼ ଦେବେ ॥ ୨୦୩
ବିଜ୍ୱର ହୋଇ ନିଜ ସ୍ଥାନ । ଲଭିବେ ହୋଇ ବର୍ତ୍ତମାନ ॥ ୨୦୪
୫୧ ପ୍ରଥମ ନାମ କୀର୍ତ୍ତିମନ୍ତ । ଉଦ୍‌ଗୀଥ ନାମେ ଆର ଖ୍ୟାତ ॥ ୨୦୫
ପତଙ୍ଗ[୧] ପରିଷ୍ୱଙ୍ଗ ବେନି । ଆବର କ୍ଷୁଦ୍ରଭୃତ[୨] ଘୃଣୀ ॥ ୨୦୬
ଆମ୍ଭ ପ୍ରସାଦେ ଷଡ଼ ଦେବେ । ମୋକ୍ଷ ଲଭିବେ ପୁଣି ଏବେ ॥ ୨୦୭
୫୨ ରାମଗୋବିନ୍ଦ ବେନି ଭାଇ । ବଳିକି ଏତେ ମାତ୍ର କହି ॥ ୨୦୮
ସେ ବଳି କରନ୍ତେ ପୂଜାକୁ । ଘେନିଣ ସେ ଷଡ଼ଭ୍ରାତାଙ୍କୁ ॥ ୨୦୯
ପୁଣ ଅଇଲେ ଦ୍ୱାରକାକୁ । ମାତାଙ୍କୁ ଦେଲେ ସେ ପୁତ୍ରଙ୍କୁ ॥ ୨୧୦
୫୩ ଦେବକୀ ପୁତ୍ରଙ୍କୁ ସେକାଳେ । ଦେଖନ୍ତେ ଅତି ସ୍ନେହଭୋଳେ ॥ ୨୧୧
ସ୍ତନୁଁ ସ୍ରବିଲା କ୍ଷୀରମାନ । ପୁତ୍ରଙ୍କୁ କରି ଆଲିଙ୍ଗନ ॥ ୨୧୨
କୋଳେ ବସାଇ ମସ୍ତକକୁ । କଲେ ବହୁତ ଆଘ୍ରାଣକୁ ॥ ୨୧୩
୫୪ ବିଷ୍ଣୁମାୟାରେ ମୋହି ହୋଇ । ଦେବକୀ ଅତି ପ୍ରୀତି ବହି ॥ ୨୧୪
ସୁତସ୍ପରଶୁଁ ଯେ ସ୍ରବିଲେ । ସେ ସ୍ତନ ପୁତ୍ରଙ୍କୁ ପ୍ୟାଇଲେ ॥ ୨୧୫
ଯହୁଁ ମାୟାରେ ଏ ସଂସାର । ପ୍ରବୃର୍ତ୍ତଅଛି ବାରମ୍ବାର ॥ ୨୧୬
୫୫ ଯା' ପିଇଥିଲେ ଗଦାଧର । ସେ ଶେଷସ୍ତନ ଦେବକୀର ॥ ୨୧୭
ଷଡ଼ ଭ୍ରାତାଏ କରି ପାନ । ଛୁଅନ୍ତେ କୃଷ୍ଣ ଅଙ୍ଗମାନ ॥ ୨୧୮
ଆମ୍ଭେ ଦେବତା ଥିଲୁଁ ହୋଇ । ଏ ଜ୍ଞାନ ହେଲା ତାଙ୍କ ତହିଁ ॥ ୨୧୯
୫୬ ସେ ଷଡ଼ ଭାଇ ଗୋବିନ୍ଦଙ୍କୁ । ମାତାଙ୍କୁ ପିତାଙ୍କୁ ରାମଙ୍କୁ ॥ ୨୨୦
କରି ଉତ୍ତମ ନମସ୍କାର । ଦେଖନ୍ତେ ରହି ସର୍ବନର ॥ ୨୨୧
ଆକାଶମାର୍ଗେ ଚଳିଗଲେ । ଦେବଙ୍କ ଲୋକରେ ମିଳିଲେ ॥ ୨୨୨
୫୭ ମଲା ପୁତ୍ରଙ୍କ ଆଗମନ । ଦେବକୀ କରି ବିଲୋକନ ॥ ୨୨୩
ପୁତ୍ରାଦିରୂପେ ଏହା ହରି । ଅଛନ୍ତି ଯା' ନିର୍ମାଣ କରି ॥ ୨୨୪
ହେ ନୃପ ! ଏ ମାୟା କୃଷ୍ଣର । ବିସ୍ମୟେ ମଣିଲେ ମନର ॥ ୨୨୫
୫୮ ଅନନ୍ତ ପରାକ୍ରମ ଯାର । ସେ ପରମାତ୍ମା ଶ୍ରୀକୃଷ୍ଣର ॥ ୨୨୬
ଏରୂପେ ଅଦ୍ଭୁତ ଚରିତ । ଅନେକ ଛନ୍ତି ହେ ଭାରତ ॥ ୨୨୭

ଶ୍ରୀସୂତ ଉବାଚ

୫୯ ସୂତ କହନ୍ତି ତୋଷମନେ । ଶୌନକ ଆଦି ଋଷିଜନେ ॥ ୨୨୮
ଅମୃତପ୍ରାୟେ କୀର୍ତ୍ତି ଯାର । ସେ ମୁରରିପୁ-ଶ୍ରୀକୃଷ୍ଣର ॥ ୨୨୯

---

୧. ତପନ (ପାଠାନ୍ତର) ୨. କ୍ଷୁଦ୍ରଭୁକ (ପାଠାନ୍ତର) ।

| | | | |
|---|---|---|---|
| ଯାହା ବର୍ଣ୍ଣିଲେ ବ୍ୟାସସୁତ | । ଅତି ଉତ୍ତମ ସେ ଚରିତ | ।। | ୨୩୦ |
| ପାପ ନାଶଇ ଜଗତର | । [1]ସତ୍‌କର୍ଣ୍ଣପୁର ଭକ୍ତଙ୍କର | ।। | ୨୩୧ |
| ଯେ ଏହା ଶୁଣଇ ଶୁଣାଇ | । ଆପଣେ ଯେ ଅବା ପଢ଼ଇ | ।। | ୨୩୨ |
| ଶ୍ରୀକୃଷ୍ଣଠାରେ ଚିତ୍ତ ଦେଇ | । ବୈକୁଣ୍ଠପୁରକୁ ସେ ଯାଇ | ।। | ୨୩୩ |
| ହେ କୃଷ୍ଣ କମଳଲୋଚନ | । ତୁମ୍ଭେ ଯେ ପତିତପାବନ | ।। | ୨୩୪ |
| ମୁଁ ଯେ ପତିତ ଦୀନବନ୍ଧୁ | । ମୋତେ ଉଦ୍ଧର କୃପାସିନ୍ଧୁ | ।। | ୨୩୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ମୃତାଗ୍ରଜାନୟନଂ
ନାମ ପଞ୍ଚଶୀତିତମୋଽଧ୍ୟାୟଃ ।।

## ଷଡ଼ଶୀତିତମ ଅଧ୍ୟାୟ

ଷଡ଼ଶୀତିତମେ ଦସ୍ମାଦ୍ ସୁଭଦ୍ରାମର୍ଜୁନୋଽହରଦ୍ ।
ଗତ୍ୱା ଚ ମିଥିଳାଂ କୃଷ୍ଣୋ ନୃପବିପ୍ରାବନନ୍ଦୟଦ୍ ।। ୧
ପିତ୍ରୋଃ ସ୍ୱଜ୍ଞାନମାଦିଶ୍ୟ ସୁଭଦ୍ରାଂ ଫାଲ୍‌ଗୁନାୟ ଚ ।
ଜଗାମ ମିଥିଳାଂ କୃଷ୍ଣଃ ସ୍ୱଭକ୍ତପ୍ରିୟକୃଦ୍ ତତଃ ।। ୨

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | କହନ୍ତି ରାଜା ପରୀକ୍ଷିତ | । ଶୁଣ ହେ ବ୍ୟାସଙ୍କର ସୁତ | ।। | ୧ |
| | ଯେ ଭଗ୍ନୀ ରାମକୃଷ୍ଣଙ୍କର | । ସୁଭଦ୍ରା ନାମଟି ଯାହାର | ।। | ୨ |
| | ଯେ ଆମ୍ଭ ପିତାମହୀ ଥିଲେ | । ତାଙ୍କୁ ଅର୍ଜୁନ ବିଭା ହେଲେ | ।। | ୩ |
| | ଯେମନ୍ତେ କହ ସେ କଥାକୁ | । ଇଚ୍ଛା କରୁଛି ଜାଣିମାକୁ | ।। | ୪ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨ | ରାଜା ପଚାରନ୍ତେ ଏମନ୍ତ | । କହୁ ଅଛନ୍ତି ବ୍ୟାସସୁତ | ।। | ୫ |
| | ସମର୍ଥ ଅଟନ୍ତି ଅର୍ଜୁନ | । ତୀର୍ଥଯାତ୍ରାରେ ପର୍ଯ୍ୟଟନ | ।। | ୬ |
| | କରନ୍ତେ ଅବନିତଳରେ | । ମିଳିଲେ ଯାଇଁ ପ୍ରଭାସରେ | ।। | ୭ |
| | ସେଠାରେ ଶୁଣିଲେ ଏମନ୍ତ | । ଯେ ନିଜ ମଉଳାଦୁହିତ | ।। | ୮ |
| ୩ | ସେ ସୁଭଦ୍ରାଙ୍କୁ ହଳପାଣି | । ଦୁର୍ଯ୍ୟୋଧନଙ୍କୁ ଦେବେ ଆଣି | ।। | ୯ |
| | ବସୁଦେବାଦି ଛନ୍ତି ଯେତେ | । ଏମାନଙ୍କର ଅସଂମତେ | ।। | ୧୦ |
| | ସେ କନ୍ୟା ଅର୍ଜୁନ ନେବାକୁ | । ଧରନ୍ତେ ସଂନ୍ୟାସବେଷକୁ | ।। | ୧୧ |
| | ତ୍ରିଦଣ୍ଡୀ ହୋଇ ସେ କାଳରେ | । ଗମନ କଲେ ଦ୍ୱାରକାରେ | ।। | ୧୨ |

୧. ଉତ୍ତମ କର୍ଣ୍ଣାଳଙ୍କାର ।

୪ ରାମ ନ ଜାଣି ଅର୍ଜୁନଙ୍କୁ । କରନ୍ତେ ଉତ୍ତମ ପୂଜାକୁ ॥ ୧୩
ଦ୍ୱାରକାପୁରଜନମାନେ । ପୂଜା କରନ୍ତେ ପ୍ରତିଦିନେ ॥ ୧୪
ସଂନ୍ୟାସବେଷେ ସେ ଅର୍ଜୁନ । କନ୍ୟା ନେବାକୁ କରି ମନ ॥ ୧୫
ବରଷା କାଳ ଚାରି ମାସ । ଦ୍ୱାରକାପୁରେ କଲେ ବାସ ॥ ୧୬
୫ ଏକ ଦିନକେ ସଂକର୍ଷଣ । ଅତିଥିଭାବେ ନିମନ୍ତ୍ରଣ ॥ ୧୭
କରି ସେ ଅର୍ଜୁନଙ୍କୁ ପୁଣି । ଶ୍ରଦ୍ଧାରେ ସ୍ୱଗୃହକୁ ଆଣି ॥ ୧୮
ଦେଲେ ଯେତେକ ଭିକ୍ଷାଅନ୍ନ । ସମସ୍ତ ଭୁଞ୍ଜିଲେ ଅର୍ଜୁନ ॥ ୧୯
୬ ଯେ ଧୀର[୧] ଜନମନ ହରେ । ସେ ଦିବ୍ୟ କନ୍ୟା ସେ ପୁରରେ ॥ ୨୦
ଅର୍ଜୁନ କଲେ ବିଲୋକନ । ପ୍ରୀତିରେ ଉତ୍‌ଫୁଲ୍ଲନୟନ ॥ ୨୧
ତା'ଠାରେ ଦେଲେ ନିଜ ଚିତ୍ତ । ଯେ ଭାବେ[୨] ହୋଇଛି କ୍ଷୁଭିତ ॥ ୨୨
୭ ଯେ ସର୍ବନାରୀମାନଙ୍କର । ହୃଦୟଙ୍ଗମ ମହାବୀର ॥ ୨୩
କନ୍ୟା ହିଁ ସେ କୁନ୍ତୀସୁତଙ୍କୁ । ଦେଖନ୍ତେ କଲା କାମନାକୁ ॥ ୨୪
ସଲଜ୍ଜ କଟାକ୍ଷ ସହିତ । ପ୍ରକାଶ କରନ୍ତେ ସୁସ୍ମିତ ॥ ୨୫
ହୃଦୟ ନେତ୍ର ସେ କାଳରେ । ଅର୍ପିଲା ଅର୍ଜୁନର ଠାରେ ॥ ୨୬
୮ ସେ ଦିବ୍ୟ କନ୍ୟାକୁ ଅର୍ଜୁନ । କେବଳ କରନ୍ତେ ସଂଧ୍ୟାନ[୩] ॥ ୨୭
କନ୍ୟା ହରିବା ଅବସର । ଇଚ୍ଛା କରନ୍ତେ ମହାବୀର ॥ ୨୮
ଯେ ଅଟେ ଅତି ବଳୀୟାର । ସେ କାମହେତୁ ନିରନ୍ତର ॥ ୨୯
ଭ୍ରମନ୍ତେ ନିଜ ଚିତ୍ତ ତହିଁ । ସୁଖକୁ ନ ଲଭିଲେ କାହିଁ ॥ ୩୦
୯ ଯେ ଅତି ଉତ୍ତମ ଅଟଇ । ସେ ଦେବଯାତ୍ରା କାଳେ ତହିଁ ॥ ୩୧
ରଥକୁ ଆରୋହି ସତ୍ୱର । ପୁରରୁ ହୁଅନ୍ତେ ବାହାର ॥ ୩୨
ପିତାମାତାର ଅନୁମତେ । କୃଷ୍ଣ ସ୍ୱୀକାର ହିଁ କରନ୍ତେ ॥ ୩୩
ସେ ମହାରଥ ଅରଜୁନ । କନ୍ୟାକୁ ହରିଲେ ବହନ ॥ ୩୪
୧୦ ଧନୁକୁ ଧରି ନିଜ କରେ । ଥାଆନ୍ତେ ରଥର ଉପରେ ॥ ୩୫
ବୀର ଯୋଦ୍ଧାଏ ସେ କାଳରେ । ରୁନ୍ଧନ୍ତେ ଚାରି ପାରୁଶରେ ॥ ୩୬
ଗର୍ଜନ୍ତେ ନିଜ ବନ୍ଧୁଜନ । ତାହାଙ୍କୁ ଘଉଡ଼ି ବହନ ॥ ୩୭
ନିଜ ଭାଗକୁ ସିଂହପ୍ରାଏ । କନ୍ୟା ହରିଲେ ଧନଂଜୟେ ॥ ୩୮
୧୧ ସିନ୍ଧୁ ଯେସନେ ତତକାଳ । ପର୍ବ ତିଥିରେ ଲଙ୍ଘେ କୂଳ ॥ ୩୯
ସେ ରୂପେ କ୍ରୋଧେ ହଳପାଣି । ଧାଆଁନ୍ତେ କନ୍ୟା ନେବା ଶୁଣି ॥ ୪୦
ଶ୍ରୀକୃଷ୍ଣ ଧରନ୍ତେ ଚରଣ । ଶାନ୍ତ କରାନ୍ତେ ମିତ୍ରଗଣ ॥ ୪୧
ସେ କାଳେ ଆହେ ପରୀକ୍ଷିତ । ତହିଁରୁ ହେଲେ ନିବର୍ତ୍ତିତ ॥ ୪୨
୧୨ ସନ୍ତୋଷ ହୋଇ ହଳଧର । ହରଷେ ବରକନ୍ୟାଙ୍କର ॥ ୪୩

୧. ପାଠାନ୍ତର 'ବୀର'। ୨. ଭାବ = ରତ୍ୟଭିପ୍ରାୟ। ୩. ଏକାଗ୍ରଭାବେ ଚିନ୍ତନ।

ପ୍ରୀତିନିମନ୍ତେ ମହାଧନ । ସୁବର୍ଣ୍ଣ ଆଭରଣମାନ ॥ ୪୪
ଗଜାଶ୍ୱ-ରଥ-ନର-ନାରୀ । ଦେଲେ ସେ ଯଉତୁକ କରି ॥ ୪୫

ଶ୍ରୀଶୁକ ଉବାଚ

୧୩ କହନ୍ତି ବ୍ୟାସଙ୍କ ଆତ୍ମଜ । ହେ ପରୀକ୍ଷିତ ମହାରାଜ ॥ ୪୬
ବ୍ରାହ୍ମଣମାନଙ୍କେ ଅଧିକ । କୃଷ୍ଣର ଥିଲା ଭକ୍ତ ଏକ ॥ ୪୭
ସେ ଶ୍ରୁତଦେବ ନାମେ ଖ୍ୟାତି । କୃଷ୍ଣରେ କଲା ଏକ ଭକ୍ତି ॥ ୪୮
ସଂପୂର୍ଣ୍ଣ ଅର୍ଥମାନେ ତାର । କବି ଅଟଇ ସେ ଆବର ॥ ୪୯
କାହିଁରେ ଲମ୍ପଟ ସେ ନୋହି । ଆବର ଶାନ୍ତ ସେ ଅଟଇ ॥ ୫୦
୧୪ [1]ବିଦେହମାନଙ୍କ ମଧ୍ୟରେ । ସେ ବିପ୍ରବର ମିଥିଳାରେ ॥ ୫୧
ରହିଲେ ଗୃହାଶ୍ରମୀ ହୋଇ । ଯେ ଅନୁଦ୍ୟମରେ ମିଳଇ ॥ ୫୨
ସେ ଭକ୍ଷ୍ୟେ ନିଜ କ୍ରିୟାମାନ । ଯାହାର ହେଲା ନିର୍ବର୍ତ୍ତନ[2] ॥ ୫୩
୧୫ ସେ ଶ୍ରୁତଦେବ ନିତି ନିତି । ଯେ ଦୈବେ ହୋଏ ଉପସ୍ଥିତି ॥ ୫୪
ଦେହନିର୍ବାହ ଯେତେ ହୋଇ । ତେତେକ ସଂତୋଷ ହୁଅଇ ॥ ୫୫
ଯେ ଯଥୋଚିତ କ୍ରିୟାମାନ । ତା' ସର୍ବ କଲା ସେ ବିଧାନ ॥ ୫୬
୧୬ ସେ ରୂପେ ଶୁଣ ହେ ରାଜନ । ସେ ଦେଶ କରେ ଯେ ପାଳନ ॥ ୫୭
ଜନକବଂଶେ ଯା' ଉତ୍ପତ୍ତି । ସେ ବହୁଳାଶ୍ୱ ନରପତି ॥ ୫୮
ନାହିଁ ତା' ଅହଙ୍କାର ମାନ । ହରିପ୍ରିୟ ସେ ବେନି ଜନ ॥ ୫୯
୧୭ ସେ ବିପ୍ର-ନୃପଙ୍କୁ ପ୍ରସନ୍ନ । ହୁଅନ୍ତେ ପ୍ରଭୁ ଭଗବାନ ॥ ୬୦
ଦାରୁକ ଆଣିଲା ଯାହାକୁ । ଆରୋହି ସେ ଦିବ୍ୟ ରଥକୁ ॥ ୬୧
ଋଷିମାନଙ୍କ ସହିତରେ । ଚଳିଲେ ବିଦେହ ଦେଶରେ ॥ ୬୨
୧୮ ନାରଦ ଅତ୍ରି ବାମଦେବ । ଅସିତ ବ୍ୟାସ ଯେ ଭାର୍ଗବ ॥ ୬୩
ଅରୁଣି ବୃହସ୍ପତି ବେନି । ଆମ୍ଭେ ମୈତ୍ରେୟ କଣ୍ୱ ତିନି ॥ ୬୪
ଚ୍ୟବନ ଆଦି ଋଷି ଯେତେ । ଚଳିଲେ ଶ୍ରୀକୃଷ୍ଣସଙ୍ଗତେ ॥ ୬୫
୧୯ ସେ ସେହି ସ୍ଥାନେ ଭଗବାନ । ମିଳନ୍ତେ ପୁର-ଗ୍ରାମଜନ ॥ ୬୬
ହେ ନୃପ ହେଲେ ଉପସ୍ଥିତ । ହୋଇ ଅଛନ୍ତି ଅର୍ଘ୍ୟହସ୍ତ ॥ ୬୭
ଉଦୟ ହୁଅନ୍ତେ ଯେସନେ । ସୂର୍ଯ୍ୟଙ୍କୁ ଆସି ଗ୍ରହମାନେ ॥ ୬୮
୨୦ ଆନର୍ତ୍ତ ଯେ କୁରୁ ଜାଙ୍ଗଳ । ଯେ ମତ୍ସ୍ୟ ଯେ କଙ୍କ ପାଞ୍ଚାଳ ॥ ୬୯
ଧନ୍ୱ କେକୟ କୁନ୍ତି ବେନି । ମଧୁ କୋଶଳ ଅର୍ଣ୍ଣ ତିନି ॥ ୭୦
ଏ ଦେଶ ଆନ ଦେଶମାନ । ତହିଁ ଯେ ନର-ନାରୀ ଜନ ॥ ୭୧
ଉତ୍କୃଷ୍ଟ ହାସେ ସ୍ନିଗ୍ଧ ହୋଇ । ଦିବ୍ୟ ଈକ୍ଷଣ ଅଛି ଯହିଁ ॥ ୭୨
ସେ କୃଷ୍ଣ ବଦନନଳିନ । ନେତ୍ରମାନଙ୍କେ କଲେ ପାନ ॥ ୭୩

---

୧. ବିଦେହଦେଶମଧ୍ୟରେ ।　୨. ସଂପାଦନ ।

୨୧ ତ୍ରିଲୋକେଶ୍ୱର ନରହରି । ଆପଣା ଦରଶନେ କରି ॥ ୭୪
ବିନଷ୍ଟ ହେଲା ଅନ୍ଧକାର । ଯଉଁ ନରଙ୍କ[1] ନୟନର ॥ ୭୫
ସେ ନରମାନଙ୍କ ଜ୍ଞାନକୁ । ଦିଅନ୍ତେ ପୁଣି ମଙ୍ଗଳକୁ ॥ ୭୬
ଯେ କରେ ଦିଗନ୍ତ ଧବଳ । ନାଶଇ ଯେ ଅଶୁଭକୁଳ ॥ ୭୭
ଦେବ-ମାନବେ ତା' ଗାଆନ୍ତେ । ସେ ନିଜ ଯଶକୁ ଶୁଣନ୍ତେ ॥ ୭୮
ବିଦେହଦେଶମାନଙ୍କୁ ହିଁ । ଚଳିଲେ ମନ୍ଦ ମନ୍ଦ ହୋଇ ॥ ୭୯
୨୨ ସେ ପୁର-ଜନପଦବାସୀ । ଶ୍ରୀକୃଷ୍ଣ ମିଳିଲେକ ଆସି ॥ ୮୦
ଶ୍ରବଣ କରନ୍ତେ ଏମନ୍ତ । ହରଷେ ଆହେ ପରୀକ୍ଷିତ ॥ ୮୧
ଘେନିଣ ପୂଜାସମ୍ଭାରକୁ । ଚଳିଲେ କୃଷ୍ଣନିକଟକୁ ॥ ୮୨
୨୩ ଉତ୍ତମଶ୍ଳୋକ ଯେ ଶ୍ରୀହରି । ତାଙ୍କୁ ସେ ଜନେ ଦେଖିକରି ॥ ୮୩
ପ୍ରୀତିରେ ହେଲା ବିକାଶନ । ଅନ୍ତଃକରଣ ମୁଖମାନ ॥ ୮୪
ମସ୍ତକେ ହସ୍ତମାନ ଦେଲେ । ଦଣ୍ଡପରାଏ ପ୍ରଣମିଲେ ॥ ୮୫
ପୂର୍ବେ ଯାହାଙ୍କୁ ଥିଲେ ଶୁଣି । ନମିଲେ ସେ ରଷିଙ୍କି ପୁଣି ॥ ୮୬
୨୪ ଜଗତଗୁରୁ ଯେ ଅଟନ୍ତି । ସେ କୃଷ୍ଣ ମିଳିଲେ ଝଟିତି ॥ ୮୭
ଆପଣା ଅନୁଗ୍ରହପାଇଁ । ଏମନ୍ତ ଜାଣି କରି ତହିଁ ॥ ୮୮
ମୈଥିଳ ଶ୍ରୁତଦେବ ଦୁଇ । ପଡ଼ିଲେ ପ୍ରଭୁପାଦେ ଯାଇ ॥ ୮୯
୨୫ ମୈଥିଳ ଶ୍ରୁତଦେବ ବେନି । ଅତିଥିଭାବ ମନେ ଘେନି ॥ ୯୦
ଏକାବେଳକେ ବେନି କର । ଅଞ୍ଜଳି କରିଣ ସତ୍ୱର ॥ ୯୧
ରଷିମାନଙ୍କ ସହିତେଣ । କୃଷ୍ଣଙ୍କୁ କଲେ ନିମନ୍ତ୍ରଣ ॥ ୯୨
୨୬ ତା' ଅଙ୍ଗୀକାର କରି ହରି । ଦୁହିଁଙ୍କ ପ୍ରୀତିକି ବିଚାରି ॥ ୯୩
ଧଇଲେ ବେନି ରୂପ ତହିଁ । ତା' ନ ଜାଣନ୍ତେ ତହିଁ କେହି ॥ ୯୪
ସେ ବେନି ଜନଙ୍କର ପୁରେ । ମିଳିଲେ ଏକାବେଳକରେ ॥ ୯୫
୨୭ ଅସାଧୁ ଲୋକମାନଙ୍କର । ଶୁଣିମାକୁ ହିଁ ଯେହୁ ଦୂର ॥ ୯୬
କୃଷ୍ଣ ଆଦି ସେ ସର୍ବରଷି । ମିଳନ୍ତେ ନିଜ ଗୃହେ ଆସି ॥ ୯୭
ଦିବ୍ୟ ଆସନ ଦେଲା ଆଣି । ବସନ୍ତେ ସୁଖେ ତହିଁ ପୁଣି ॥ ୯୮
ଉତ୍ତମ ଅଟେ ଯା'ର ମନ । ଶୀଘ୍ରେ ସେ ଜନକ ରାଜନ ॥ ୯୯
୨୮ ବର୍ଦ୍ଧନ୍ତେ ଭକ୍ତି ଅତିଶୟ । ହରଷ ହୁଅନ୍ତେ ହୃଦୟ ॥ ୧୦୦
୨୯ ଲୋତକେ ପୂରିଲା ନୟନ । କଲା ସେମାନଙ୍କୁ ବନ୍ଦନ ॥ ୧୦୧
ପବିତ୍ର କରଇ ଯେ ଲୋକ । ଧୋଇ ଚରଣ ସେ ଉଦକ ॥ ୧୦୨
କୁଟୁମ୍ବଙ୍କର ସହିତରେ । ଘେନିଲା ନିଜ ମସ୍ତକରେ ॥ ୧୦୩
ଚନ୍ଦନ-ମାଲ୍ୟ-ବସନରେ । କଳ୍ପିତ ଧୂପ-ଦୀପଙ୍କରେ ॥ ୧୦୪

୧. ନାରୀଙ୍କ ।

| | | | | |
|---|---|---|---|---|
| | ଅର୍ଘ୍ୟମାନଙ୍କେ ଯଥୋଚିତେ | । ଗାଇ-ବୃଷଭଙ୍କ ସହିତେ | ।। | ୧୦୫ |
| | କୃଷ୍ଣଙ୍କୁ ସେ ମୁନିମାନଙ୍କୁ | । କଲା ଉତ୍ତମ ପୂଜନକୁ | ।। | ୧୦୬ |
| ୩୦ | ସେମାନେ ଭୁଞ୍ଜନ୍ତେ ଅନ୍ନକୁ | । ମଧୁର ବଚନେ ତାହାଙ୍କୁ | ।। | ୧୦୭ |
| | ପ୍ରୀତ କରାନ୍ତେ ସେ ରାଜନ | । ବିଷ୍ଣୁର ଚରଣନଳିନ | ।। | ୧୦୮ |
| | ଅଙ୍କେ ନିବେଶି କରି ପୁଣ | । ଅଳପ ଅଳପ କରିଣ | ।। | ୧୦୯ |
| | ମର୍ଦ୍ଦନ୍ତେ ଅତି ହରଷରେ | । କହିଲେ ଏମନ୍ତ ପ୍ରକାରେ | ।। | ୧୧୦ |

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୩୧ | ରାଜା କହନ୍ତି ହେ ଈଶ୍ୱର | । ଯେଣୁ ସମସ୍ତ ପ୍ରାଣିଙ୍କର | ।। | ୧୧୧ |
| | ତୁ ଆତ୍ମା ସାକ୍ଷୀ ଅଟୁ ଏକ | । ଆବର ନିଜ ପ୍ରକାଶକ | ।। | ୧୧୨ |
| | ଏଣୁ ତୋ' ଚରଣନଳିନ | । ସ୍ମରଣ କରନ୍ତି ଯେ ଜନ | ।। | ୧୧୩ |
| | ତାହାଙ୍କ ଦର୍ଶନନିମିତ୍ତ | । ଏଠାରେ ହେଲ ଉପଗତ | ।। | ୧୧୪ |
| ୩୨ | ତୁମ୍ଭେ ସେ ଆପଣା ବଚନ | । ସତ୍ୟ କରିବାକୁ ବହନ[୧] | ।। | ୧୧୫ |
| | ଆମ୍ଭର ହେଲ ଚକ୍ଷୁଗତ | । ଯେଣୁ ମୁଁ ଏକାନ୍ତ ଭକତ | ।। | ୧୧୬ |
| | ଅନନ୍ତ ବନ୍ଧୁ ହେଲେ ତୋ'ର | । ଲକ୍ଷ୍ମୀ ହିଁ ଭାର୍ଯ୍ୟା ହେଲେ ଆର | ।। | ୧୧୭ |
| | ବ୍ରହ୍ମା ହିଁ ହେଲେ ହେଁ ନନ୍ଦନ | । ମୋତେ ଯା' କହିଲ ବଚନ | ।। | ୧୧୮ |
| ୩୩ | ଯେ ଅତି ଶାନ୍ତ ଅକିଞ୍ଚନ | । ଏମନ୍ତ ଯେଉଁ ମୁନିଜନ | ।। | ୧୧୯ |
| | ତାଙ୍କୁ ଯେ ଦିଏ ଆପଣାକୁ | । ସେ ତୁମ୍ଭ ଚରଣପଦ୍ମକୁ | ।। | ୧୨୦ |
| | ଏମନ୍ତ ଜାଣି କଉଁ ଜନ | । କରିବ ଅବା ବିସର୍ଜନ | ।। | ୧୨୧ |
| ୩୪ | ଯେ ତୁମ୍ଭେ ଯଦୁମାନଙ୍କର | । ବଂଶରେ ହୋଇ ଅବତାର | ।। | ୧୨୨ |
| | ଜନ୍ମମରଣାଦି ରୂପରେ | । ଯେ ଭ୍ରମୁଛନ୍ତି ଏ ସଂସାରେ | ।। | ୧୨୩ |
| | ତାଙ୍କର କ୍ଲେଶଶାନ୍ତିପାଇଁ | । ତ୍ରିଲୋକପାପ ଯେ ହରଇ | ।। | ୧୨୪ |
| | ସେ ଯଶମାନଙ୍କୁ ନିତ୍ୟରେ | । ବିସ୍ତାର କଲ ଏ ସଂସାରେ | ।। | ୧୨୫ |
| ୩୫ | ତୁମ୍ଭେଟି କୃଷ୍ଣ ଭଗବାନ | । ଅକୁଣ୍ଠ ଅଟେ ତୁମ୍ଭ ମନ | ।। | ୧୨୬ |
| | ତୁମ୍ଭେଟି ଋଷି ନାରାୟଣ | । ଆବର ସୁଶାନ୍ତ ଯେ ପୁଣ | ।। | ୧୨୭ |
| | ତୁମ୍ଭେ ସେ ତପସ୍ୟାର ସ୍ଥାନ | । ତୁମ୍ଭଙ୍କୁ କରୁଛି ବନ୍ଦନ | ।। | ୧୨୮ |
| ୩୬ | ମୋ' ପୁରେ ହେ ଅପରିଚ୍ଛିନ୍ନ | । ଋଷିମାନଙ୍କ ସହିତେଣ | ।। | ୧୨୯ |
| | ରହନ୍ତେ ତୁମ୍ଭେ କିଛିଦିନ | । ଚରଣରେଣୁରେ ବହନ | ।। | ୧୩୦ |
| | ଏ ନିମିନୃପତିର କୁଳ | । ପବିତ୍ର କର ହେ ତତ୍‌କାଳ | ।। | ୧୩୧ |
| ୩୭ | ଲୋକଭାବନ ନାରାୟଣ | । ରାଜା କରନ୍ତେ ନିମନ୍ତ୍ରଣ | ।। | ୧୩୨ |
| | ମିଥିଳାନରନାରୀ ଯେତେ | । ତାଙ୍କ ମଙ୍ଗଳକୁ କରନ୍ତେ | ।। | ୧୩୩ |
| | ସେ କଟକରେ ଦିନାକେତେ | । ରହିଲେ ଅତି ତୋଷଚିତ୍ତେ | ।। | ୧୩୪ |
| ୩୮ | ଜନକ ପୂଜିଲେ ଯେ ରୂପେ | । ଶ୍ରୁତଦେବ ହିଁ ସେହି ରୂପେ | ।। | ୧୩୫ |

୧. ବହନ = ଶିଘ୍ର ।

| | | | | | | |
|---|---|---|---|---|---|---|
| | ଅଚ୍ୟୁତ ଗୃହରେ ମିଳନ୍ତେ | । | ତାଙ୍କୁ ପୂଜିଲେ ବିଧିମତେ | ।। | ୧୩୬ |
| | ମୁନିଙ୍କି ପ୍ରଣାମ କରିଣ | । | ଅତି ହରଷ ହୋଇ ପୁଣ | ।। | ୧୩୭ |
| | ନିଜ ବସନକୁ କମ୍ପାଇ | । | ନୃତ୍ୟକୁ ଆରମ୍ଭିଲେ ତହିଁ | ।। | ୧୩୮ |
| ୩୯ | ତୃଣ ଆସନେ ଋଷିଗଣ | । | ଧରି ବସାଇ ସେ ବ୍ରାହ୍ମଣ | ।। | ୧୩୯ |
| | ସ୍ୱାଗତ ପଚାରି ତାହାଙ୍କୁ | । | ଲଭିଲା ଆନନ୍ଦ ଭାବକୁ | ।। | ୧୪୦ |
| | ହରଷେ ଭାର୍ଯ୍ୟାସହିତେଣ | । | ଧୋଇଲା ତାହାଙ୍କ ଚରଣ | ।। | ୧୪୧ |
| ୪୦ | ସେ ମହାଭାଗ ସେ ଜଳରେ | । | ଗୃହକୁଟୁମ୍ବସହିତରେ | ।। | ୧୪୨ |
| | ଆପଣେ କରିଣ ସ୍ନାନକୁ | । | ଲଭନ୍ତେ ଅତି ହରଷକୁ | ।। | ୧୪୩ |
| | ସମସ୍ତ ମନୋରଥମାନ | । | ତତ୍‌କ୍ଷଣେ ଲଭିଲେ ବହନ | ।। | ୧୪୪ |
| ୪୧ | ଅଁଏଲା ଆଦି ଫଳଙ୍କରେ | । | ଅତି ସତ୍‌କାରମାନଙ୍କରେ | ।। | ୧୪୫ |
| | ଉଶୀର[୧] ଆଦି ତୃଣମୂଳେ | । | ଅମୃତସମ ଶିବ[୨] ଜଳେ | ।। | ୧୪୬ |
| | କସ୍ତୂରୀ ଆଦି ମୃତ୍ତିକାରେ | । | ତୁଳସୀ-କୁଶ-ଅମ୍ବୁଜରେ | ।। | ୧୪୭ |
| | ସତ୍ତ୍ୱକୁ ବଢ଼ାଇ ଯେ ଅନ୍ନ | । | ଯେ ଅନାୟାସରେ ସଂପନ୍ନ | ।। | ୧୪୮ |
| | ସେ ଦିବ୍ୟ ପୂଜାମାନଙ୍କରେ | । | କୃଷ୍ଣଙ୍କୁ ପୂଜିଲେ ନିର୍ଭରେ | ।। | ୧୪୯ |
| ୪୨ | ଯାହାଙ୍କ ପାଦରେଣୁମାନ | । | ସମସ୍ତ ତୀର୍ଥଙ୍କର ସ୍ଥାନ | ।। | ୧୫୦ |
| | ସ୍ଥାନ ଯେ ଶ୍ରୀକୃଷ୍ଣମୂର୍ତ୍ତିର | । | ଏମନ୍ତ ଯେଉଁ ବିପ୍ରବର | ।। | ୧୫୧ |
| | କୃଷ୍ଣ ସହିତେ ଏହାଙ୍କର | । | ସଙ୍ଗେ ଯା' ସଙ୍ଗ ହେଲା ମୋର | ।। | ୧୫୨ |
| | ଗୃହ ଅନ୍ଧକୂପ ମଧ୍ୟରେ | । | ମୁଁ ପଡ଼ିଅଛି ଯେ ନିତ୍ୟରେ | ।। | ୧୫୩ |
| | କେବଣ ହେତୁରୁ ଏ ହେଲା | । | ସେ ବିପ୍ର ଏମନ୍ତ ତର୍କିଲା | ।। | ୧୫୪ |
| ୪୩ | ଅତିଥିସତ୍‌କାରକୁ ପାଇ | । | ବସନ୍ତେ ଋଷିମାନେ ତହିଁ | ।। | ୧୫୫ |
| | ପତ୍ନୀ-ସ୍ୱଜନ-ପୁତ୍ରତୁଲେ | । | ସେ ଶ୍ରୁତଦେବ ବିପ୍ର ଗଲେ | ।। | ୧୫୬ |
| | ଘଷନ୍ତେ ଶ୍ରୀକୃଷ୍ଣଚରଣ | । | ଏମନ୍ତ କଲେ ସେ ବଖାଣ | ।। | ୧୫୭ |

ଶ୍ରୀଶ୍ରୁତଦେବ ଉବାଚ

| | | | | | |
|---|---|---|---|---|---|
| ୪୪ | ସେ ଶ୍ରୁତଦେବ ଶ୍ରୀକୃଷ୍ଣଙ୍କୁ | । | କହନ୍ତି ଏମନ୍ତ ବାକ୍ୟକୁ | ।। | ୧୫୮ |
| | ତୁମ୍ଭେ ଯେ ପୁରୁଷ ପ୍ରଧାନ | । | ଆମ୍ଭଙ୍କୁ ଆହେ ଭଗବାନ | ।। | ୧୫୯ |
| | ଆଜି ହୋଇଲଟି ସାକ୍ଷାତ | । | ସେଦିନୁଁ ହେଲଣି ପ୍ରାପତ | ।। | ୧୬୦ |
| | ଯେବଣ ଦିନୁଁ ଏ ବିଶ୍ୱକୁ | । | ଶକ୍ତିରେ କରି ସର୍ଜନକୁ[୩] | ।। | ୧୬୧ |
| | ଆତ୍ମସତ୍ତାରେଟି ମିଳିଲ | । | ଦର୍ଶନମାତ୍ର ଆଜ ଦେଲ | ।। | ୧୬୨ |
| ୪୫ | ଯେହ୍ନେ ପୁରୁଷ ଶୋଇଥାଇ | । | ତୁମ୍ଭ ମାୟାରେ ମନେ ସେହି | ।। | ୧୬୩ |
| | ସ୍ୱପ୍ନଦଶାକୁ ସେ ପୁରୁଷ | । | କେବଳ କରିଣ ସ୍ୱରଶ | ।। | ୧୬୪ |
| | ପ୍ରବେଶ ହୋଇ ସେ ଦଶାଏ | । | ଆଭାସୁଥାଇ ସତ୍ୟପ୍ରାଏ | ।। | ୧୬୫ |

---
୧. ବେଣାଚେ଼ର । ୨. ଶୀତ । ୩. ସ୍ୱରଶକୁ ।

୪୬ ଶୁଣନ୍ତି କହନ୍ତି ଅର୍ଚ୍ଚନ୍ତି । ସଦା ଯେ ତୁମ୍ଭଙ୍କୁ ବନ୍ଦନ୍ତି ॥ ୧୬୬
ଆବର ଯେହୁ ପରସ୍ପର । ସମ୍ବାଦ କରନ୍ତି ତୁମ୍ଭର ॥ ୧୬୭
ବିଶୁଦ୍ଧଚିତ୍ତ ସେହୁ ନର । ତାହାଙ୍କ ହୃଦୟମଧ୍ୟର ॥ ୧୬୮
ତୁମ୍ଭେଟି ହୁଅ ପ୍ରତିଭାତ । ଏ କଥା ଅଟଇ ନିଶ୍ଚିତ ॥ ୧୬୯
୪୭ କର୍ମମାନଙ୍କରେ ଆକ୍ଷିପ୍ତ । ହୋଇଛି ଯାହାଙ୍କର ଚିତ୍ତ ॥ ୧୭୦
ଥିଲେହେଁ ତାଙ୍କ ହୃଦୟରେ । ଅହଂକାରାଦି-ମାନଙ୍କରେ ॥ ୧୭୧
ହୁଅନ୍ତେ ଅତିବ୍ୟବହିତ । ତାହାଙ୍କୁ ହୁଅ ଦୂରଗତ ॥ ୧୭୨
ଶ୍ରବଣକୀର୍ତ୍ତନେ ଆବର । ବିଶୁଦ୍ଧ ହୃଦ ଯାହାଙ୍କର ॥ ୧୭୩
ସେ ଭକ୍ତଙ୍କର ନିକଟରେ । ତୁମ୍ଭେଟି ଥାଅ ନିରନ୍ତରେ ॥ ୧୭୪
୪୮ ଦେହାଦି ସର୍ବ ଅହଂକାର । ନିବୃତ୍ତ ହେଲା ଯାହାଙ୍କର ॥ ୧୭୫
ଆତ୍ମାସ୍ୱରୂପେ ତାଙ୍କ ଠାରେ । ତୁମ୍ଭେଟି ପ୍ରକାଶ ନିତ୍ୟରେ ॥ ୧୭୬
ଜୀବ ଯେ ଦେହ-ଅଭିମାନୀ । ତା' ଠାରେ ଆତ୍ମାହେତୁ ଘେନି ॥ ୧୭୭
ତୁମ୍ଭେ କରିଛ ସମର୍ପଣ । ହେ ପ୍ରଭୁ ଜନମ-ମରଣ ॥ ୧୭୮
ପ୍ରକୃତି ମହଦାଦି ବେନି । ଏ ବେନି ଉପାଧିକି ଘେନି ॥ ୧୭୯
ମାୟାରେ ଅଟଇ ସଂବୃତ । ସେ ନିଜ ମାୟାରେ ସନ୍ତତ ॥ ୧୮୦
ରୁନ୍ଧିଛି ଦୃଷ୍ଟି ଆନଙ୍କର । ସେରୂପେ ନୁହଇ ତୁମ୍ଭର ॥ ୧୮୧
ଏମନ୍ତ ତୁମ୍ଭେ ଯେ ତୁମ୍ଭଙ୍କୁ । ମୁଁ କରୁଅଛି ପ୍ରଣାମକୁ ॥ ୧୮୨
୪୯ ସେ ତୁମ୍ଭେ ପରମ ଈଶ୍ୱର । ଆମ୍ଭେ ଯେ କିଙ୍କର ତୁମ୍ଭର ॥ ୧୮୩
ଆମ୍ଭଙ୍କୁ ଅନୁଶିକ୍ଷା ଦିଅ । ତୁମ୍ଭର କି କରିବୁଁ କହ ॥ ୧୮୪
ଏହିଟି ଲୋକକ୍ଲେଶ ହତ । ଯା' ତୁମ୍ଭେ ହେଲ ଚକ୍ଷୁଗତ ॥ ୧୮୫

ଶ୍ରୀଶୁକ ଉବାଚ

୫୦ କହନ୍ତି ବ୍ୟାସଙ୍କ କୁମର । ହେ ପରୀକ୍ଷିତ ଦଣ୍ଡଧର ॥ ୧୮୬
ପ୍ରଣତ-ଆର୍ତ୍ତିବିନାଶନ । କହନ୍ତି ପ୍ରଭୁ ଭଗବାନ ॥ ୧୮୭
ଏ ରୂପେ ବିପ୍ରବାକ୍ୟ ଶୁଣି । ହସ୍ତରେ ଧରି ତାହା' ପାଣି ॥ ୧୮୮
ଅଳପ ହୋଇଣ ହସିତ । ବିପ୍ରଙ୍କୁ କହିଲେ ଏମନ୍ତ ॥ ୧୮୯

ଶ୍ରୀଭଗବାନୁବାଚ

୫୧ ତୋ' ଅନୁଗ୍ରହକୁ ଉଦ୍ଦେଶି । ଋଷିଏ ହେଲେ ଏଥି ଆସି ॥ ୧୯୦
ହେ ବିପ୍ର ଜାଣ ତୁ ଏମନ୍ତ । ଚରଣରେଣୁରେ ଜଗତ ॥ ୧୯୧
ପବିତ୍ର କରି ଯେ ନିତ୍ୟରେ । ଭ୍ରମୁ ଅଛନ୍ତି ମୋ' ସଙ୍ଗରେ ॥ ୧୯୨
୫୨ ଦେବତା-ତୀର୍ଥ-କ୍ଷେତ୍ରମାନେ । ଦର୍ଶନ-ସ୍ପର୍ଶନ-ଅର୍ଚ୍ଚନେ ॥ ୧୯୩
ବିଳମ୍ବେ ପବିତ୍ର ଏ କାଳେ । କରନ୍ତି ସାଧୁଏ ତତ୍‌କାଳେ ॥ ୧୯୪

| | | | | |
|---|---|---|---|---|
| | ଦେବାଦି ପବିତ୍ର ଯା' କରେ | । ସେହୁ ସାଧୁଙ୍କ ଦର୍ଶନରେ | ॥ | ୧୯୫ |
| ୫୩ | ବ୍ରାହ୍ମଣ ଜନ୍ମମାତ୍ରକରେ | । ଶ୍ରେଷ୍ଠ ସମସ୍ତପ୍ରାଣିଙ୍କରେ | ॥ | ୧୯୬ |
| | ତପସ୍ୟା ବିଦ୍ୟା ତୁଷ୍ଟିମାନ | । ଯେ ମୋର ଉପାସନା ଆନ | ॥ | ୧୯୭ |
| | ଯେ ତେଣେ ଯୁକ୍ତ ହୋଇଥିବ | । ସେ କିମ୍ବା ଅଧିକ ନୋହିବ | ॥ | ୧୯୮ |
| ୫୪ | ଏ ଚତୁର୍ଭୁଜ ରୂପ ମୋର | । ବିପ୍ରରୁ ନୋହେ ପ୍ରିୟତର | ॥ | ୧୯୯ |
| | ବ୍ରାହ୍ମଣ ସର୍ବବେଦମୟ | । ମୁଁ ପୁଣି ସର୍ବଦେବପ୍ରାୟ | ॥ | ୨୦୦ |
| | ଏଣୁ ଏ ମୋ'ରୂପରୁ ଜାଣ | । ଅଧିକ ଅଟଇ ବ୍ରାହ୍ମଣ | ॥ | ୨୦୧ |
| ୫୫ | ମୁଁ ଗୁରୁ ସର୍ବପ୍ରାଣିଙ୍କର | । ବ୍ରାହ୍ମଣ ପୁଣି ଆତ୍ମା ମୋର | ॥ | ୨୦୨ |
| | ଦୁର୍ବୁଦ୍ଧି ଦୋଷଦର୍ଶୀ ନର | । ଜାଣି ନ ପାରି ଏ ପ୍ରକାର | ॥ | ୨୦୩ |
| | ଅର୍ଚ୍ଚା ଆଦିକୁ ପୂଜ୍ୟ ମଣି | । ମୋତେ ଅବଜ୍ଞା କରେ ପୁଣି | ॥ | ୨୦୪ |
| ୫୬ | ସଚରାଚର ଏ ସଂସାର | । ଯେ ହେତୁ ଅଟନ୍ତି ଏହାର | ॥ | ୨୦୫ |
| | ସେ ମହଦାଦି ତତ୍ତ୍ୱ ପୁଣ | । ମୋହର ସ୍ୱରୂପ ପ୍ରମାଣ | ॥ | ୨୦୬ |
| | ମୁଁ ପୂରିଅଛି ସର୍ବଠାରେ | । ଏ ରୂପେ ମୋହର ଦୃଷ୍ଟିରେ | ॥ | ୨୦୭ |
| | ବ୍ରାହ୍ମଣ ଆପଣାର ଚିତ୍ତେ | । ନିତ୍ୟରେ ଭାବୁଥାଇ ମୋତେ | ॥ | ୨୦୮ |
| ୫୭ | ହେ ଶ୍ରୁତଦେବ ଏ ହେତୁରେ | । ମୋ' ଠାରେ ଅତ୍ୟନ୍ତ ଶ୍ରଦ୍ଧାରେ | ॥ | ୨୦୯ |
| | ଏ ବ୍ରହ୍ମରଷିଙ୍କି ବହନ | । କର ଉତ୍ତମ ପୂଜାମାନ | ॥ | ୨୧୦ |
| | ଏ ରୂପେ ବିପ୍ରଙ୍କୁ ପୂଜିଲେ | । ପୂଜିତ ହେବିଟି ମୁଁ ଭଲେ | ॥ | ୨୧୧ |
| | ବହୁତ ଦ୍ରବ୍ୟରେ ହେଁ ମୁହିଁ | । ଅନ୍ୟଥା ପୂଜା ନ ଲଭଇ | ॥ | ୨୧୨ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୫୮ | ଶୁକ କହନ୍ତି ନୃପ ଶୁଣ | । ସେ ପ୍ରଭୁ ଏମନ୍ତ ରୂପେଣ | ॥ | ୨୧୩ |
| | ଆଜ୍ଞା ଦିଅନ୍ତେ ସେ ବିପ୍ରଙ୍କୁ | । ସେ ବିପ୍ର ସେ ରଷିଶ୍ରେଷ୍ଠଙ୍କୁ | ॥ | ୨୧୪ |
| | ଏକାତ୍ମଭାବେ କୃଷ୍ଣତୁଲେ | । ଆରାଧି ମୋକ୍ଷକୁ ଲଭିଲେ | ॥ | ୨୧୫ |
| | ମୈଥିଳ ରାଜା ହିଁ ପୂଜିଲା | । ସେରୂପେ ଗତିକି ଲଭିଲା | ॥ | ୨୧୬ |
| ୫୯ | ହେ ମହାରାଜ ! ଏ ରୂପରେ | । ସେ ବେନି ଭକ୍ତଙ୍କର ଠାରେ | ॥ | ୨୧୭ |
| | ସେ ଭଗବାନ ତହିଁ ରହି | । ଭକ୍ତଙ୍କ ଭକ୍ତିଭାବ ବହି | ॥ | ୨୧୮ |
| | ବେଦଙ୍କ ମାର୍ଗକୁ ବଖାଣି | । ଚଳିଲେ ଦ୍ୱାରକାକୁ ପୁଣି | ॥ | ୨୧୯ |
| | ଯେ ବେଦମାର୍ଗକୁ କହିଲେ | । ସେ କୃଷ୍ଣପାଦପଦ୍ମ ଭଲେ | ॥ | ୨୨୦ |
| | ବ୍ରାହ୍ମଣ ଦୀନବନ୍ଧୁମନ | । ଧ୍ୟାନ କରଇ ପ୍ରତିଦିନ | ॥ | ୨୨୧ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀଶ୍ରୁତଦେବାନୁଗ୍ରହୋ
ନାମ ଷଡଶୀତିତମୋଽଧ୍ୟାୟଃ ॥

## ସପ୍ତାଶୀତିତମ ଅଧ୍ୟାୟ

ଶ୍ରୀନୃସିଂହାୟ ନମଃ

ସପ୍ତାଶୀତିତମେ ନାରାୟଣନାରଦବାଦତଃ ।
ବେଦୈଃ ସ୍ତୁତିର୍ଗୁଣାଲମ୍ୟା ନିର୍ଗୁଣାବଧି ବର୍ଣ୍ଣ୍ୟତେ ।। ୧
ବାଗୀଶା ଯସ୍ୟ ବଦନେ ଲକ୍ଷ୍ମୀର୍ଯସ୍ୟ ଚ ବକ୍ଷସି ।
ଯସ୍ୟାସ୍ତେ ହୃଦୟେ ସଂବିତ୍ ତଂ ନୃସିଂହମହଂ ଭଜେ ।। ୨
ସଂପ୍ରଦାୟବିଶୁଦ୍ଧ୍ୟର୍ଥଂ ସ୍ୱୀୟନିର୍ବନ୍ଧଯନ୍ତ୍ରିତଃ ।
ଶ୍ରୁତିସ୍ତୁତିମିତବ୍ୟାଖ୍ୟାଂ କରିଷ୍ୟାମି ଯଥାମତି ।। ୩
ଶ୍ରୀମଭାଗବତଂ ପୂର୍ବୈଃ ସାରତଃ ସନ୍ନିଷେବିତମ୍ ।
ମୟା ତୁ ତଦୁପସ୍ପୃଷ୍ଟମୁଚ୍ଛିଷ୍ଟମୁପଚୀୟତେ ।। ୪

ଶ୍ରୀପରୀକ୍ଷିଦୁବାଚ

୧ ପୂର୍ବ ଅଧ୍ୟାୟପ୍ରାନ୍ତେ ହରି । ଭକ୍ତଙ୍କ ଭକ୍ତି ଘେନି କରି ।। ୧
ସେ ପୁରେ ରହି ଅନୁରାଗେ । ମୈଥିଳ-ଶ୍ରୁତଦେବ ଆଗେ ।। ୨
ବ୍ରହ୍ମନିଷ୍ପନ୍ନ ବେଦମାନେ । କହି ଚଳନ୍ତେ ସ୍ୱଭବନେ ।। ୩
ଏମନ୍ତ ପରୀକ୍ଷିତ ଶୁଣି । ଏ ନ ଘଟିବ ବୋଲି ପୁଣି ।। ୪
କରି ଏମନ୍ତ ଆଶଙ୍କାକୁ । ପଚାରୁ ଅଛନ୍ତି ଶୁକଙ୍କୁ ।। ୫
ଆହେ ସର୍ବଜ୍ଞ ଦେବ ଶୁକ । ଯେ କାର୍ଯ୍ୟକାରଣୁଁ ପୃଥକ ।। ୬
ନିର୍ଦ୍ଦେଶଶୂନ୍ୟ ଯେ ଅଟଇ । ନିର୍ଗୁଣ ସେ ବ୍ରହ୍ମରେ କେହିଂ[1] ।। ୭
ସଗୁଣ ବେଦମାନେ ପୁଣ । ନିଷ୍ପନ୍ନ ହେଲେ ତାହା ଭଣ ।। ୮

ଶ୍ରୀଶୁକ ଉବାଚ

୨ ରାଜା ପଚାରନ୍ତେ ଉତ୍ତର । କହନ୍ତି ବ୍ୟାସଙ୍କ କୁମର ।। ୯
ହେ ନୃପ ! ଶୁଣ ସେ ଈଶ୍ୱର । ସମସ୍ତ ଜୀବମାନଙ୍କର ।। ୧୦
ବିଷୟଭୋଗର ନିମିତ୍ତ । ବୁଦ୍ଧିମାନଙ୍କୁ କଲେ ଜାତ ।। ୧୧
ଜନ୍ମରୁ କର୍ମ କରିବାକୁ । ସର୍ଜିଲେ ଇନ୍ଦ୍ରିୟମାନଙ୍କୁ ।। ୧୨
ଆମ୍ଭର ନାନା ଲୋକମାନ । ଭୋଗନିମିତ୍ତେ କଲେ ମନ ।। ୧୩
ମୁକ୍ତ ହୋଇବା ଅର୍ଥେ ପୁଣ । ସର୍ଜନା କଲେ ପ୍ରାଣଗଣ ।। ୧୪
ସଗୁଣ ହେଲେହେଁ ଏମନ୍ତ । ଗୁଣେ ନୁହନ୍ତି ପରାଭୂତ ।। ୧୫
ସର୍ବଜ୍ଞ ସମସ୍ତ-ଈଶ୍ୱର । ଫଳଦ ସର୍ବକର୍ମଙ୍କର ।। ୧୬
ସମସ୍ତ ଶକ୍ତିରେ ସଂପନ୍ନ । ସଚ୍ଚିଦାନନ୍ଦ ଭଗବାନ ।। ୧୭

---

୧. କିପରି ।

ଇତ୍ୟାଦି ବାକ୍ୟରେ ବହୁତ । ବେଦରେ ଯେ ପ୍ରଦୀପ୍ତ ଦୀପ୍ତ ॥ ୧୮
ଏଣୁ ଲକ୍ଷଣା ଆଦି ବାକ୍ୟେ । ଯେ ପ୍ରାପ୍ତ ଜ୍ଞାନ-ଅଂଶେ ଏକେ[1] ॥ ୧୯
ନିର୍ଗୁଣ ବ୍ରହ୍ମେ ବେଦମାନ । ସମାନୁଁ[2] ହେଲେଟି ନିଷ୍ପନ୍ନ ॥ ୨୦
୩ ସେ ବ୍ରହ୍ମନିଷ୍ଠ ବେଦ ଏହି । ଯେ ଛନ୍ତି ପୂର୍ବେ ଜାତ ହୋଇ ॥ ୨୧
ସେ ସନକାଦିଙ୍କ ପୂର୍ବରେ । ଯେ ଜାତ ବ୍ରହ୍ମା ଆଦି ସୁରେ ॥ ୨୨
ସେ ଏ ରୂପରେ ଛାପିଛନ୍ତି । ଯେ ଜନ ଶ୍ରଦ୍ଧାରେ ବା ଅତି ॥ ୨୩
ଛାଡ଼ିଣ କୁତର୍କମାନଙ୍କୁ । ଧରଇ ମନେ ସେ ବେଦକୁ ॥ ୨୪
ଦେହାଦି ଉପାଧି ତେଜଇ । ପରମ ପଦ ସେ ଲଭଇ ॥ ୨୫
୪ ଏ ବିଷୟରେ ମୁଁ ତୁମ୍ଭଙ୍କୁ । କହିବି ପୂର୍ବ ବୃତ୍ତାନ୍ତକୁ ॥ ୨୬
ଯହିଁରେ ବକ୍ତା ନାରାୟଣ । ନାରଦଙ୍କର ସଙ୍ଗେ ପୁଣ ॥ ୨୭
ସେ ନାରାୟଣ ଋଷିଙ୍କର । ଯେ ପ୍ରଶ୍ନ ହେଲା ମନୋହର ॥ ୨୮
୫ ଭଗବାନର ପ୍ରିୟ ଯେହି । ଏକଦିନେ ସେ ନାରଦ ହିଁ ॥ ୨୯
ଭ୍ରମନ୍ତେ ସବୁ ଲୋକମାନ । ଯେ ଅଟେ ଋଷି ସନାତନ ॥ ୩୦
ଚଳିଲେ ତାଙ୍କୁ ଦେଖିବାକୁ । ସେ ନାରାୟଣ-ଆଶ୍ରମକୁ ॥ ୩୧
୬ ଯେବଣ ନାରାୟଣ ଋଷି । ଏହି ଭାରତଖଣ୍ଡେ ବସି ॥ ୩୨
ଯେ ଅବା ଧର୍ମ-ଜ୍ଞାନ-ଶାନ୍ତି । ଏଣେ ସଂଯୁତ ହୋଇ ନିତି ॥ ୩୩
ପ୍ରାଣୀମାନଙ୍କୁ ଶୁଭଗତି । ଯେ ଅବା ପରଲୋକସ୍ଥିତି ॥ ୩୪
ତଦର୍ଥେ କଳ୍ପଯାଏ ପୁଣ । ଯେ ତପ କଲେ ଆଚରଣ ॥ ୩୫
୭ ସେ ଦିବ୍ୟ ଆଶ୍ରମରେ ବସି । ଥିଲେ ଯେ ନାରାୟଣ ଋଷି ॥ ୩୬
କଳାପଗ୍ରାମେ ଯାଙ୍କ ବାସ । ସେ ଋଷିମାନେ ଚାରିପାଶ ॥ ୩୭
ବେଢ଼ି ଯେ ବସିଥିଲେ ପୁଣ । ନାରଦ ପ୍ରବେଶ[3] ହୋଇଣ ॥ ୩୮
ହେ ନୃପ ! ଏହି ପ୍ରସଙ୍ଗକୁ । ସେ କାଳେ ପଚାରିଲେ ତାଙ୍କୁ ॥ ୩୯
୮ ଶୁଣନ୍ତେ ସର୍ବ ଋଷିଜନ । ସେ ନାରାୟଣ ଭଗବାନ ॥ ୪୦
ହେ ନୃପ ! ଏହି ପ୍ରସଙ୍ଗକୁ । କହିଲେ ତହିଁ ନାରଦଙ୍କୁ ॥ ୪୧
ଜନଲୋକରେ ଯାଙ୍କ ସ୍ଥାନ । ସେ ସନକାଦି ଋଷିଜନ ॥ ୪୨
ପୂର୍ବରେ ଏ ବ୍ରହ୍ମବିଚାର । ପ୍ରଶ୍ନକୁ କଲେ ପରସ୍ପର ॥ ୪୩

ଶ୍ରୀଭଗବାନୁବାଚ

୯ ଶ୍ରୀଭଗବାନ ନାରଦଙ୍କୁ । କହୁଅଛନ୍ତି ଏ ବାକ୍ୟକୁ ॥ ୪୪
ଜନଲୋକରେ ଯାଙ୍କ ସ୍ଥାନ । ମନରୁ ହେଲେ ଯେ ଉତ୍ପନ୍ନ ॥ ୪୫
ସନକ ଆଦି ନାମ ଯାର । ସେ ଊର୍ଦ୍ଧ୍ୱରେତା ମୁନିଙ୍କର ॥ ୪୬

---

୧. ଅନୁଗତଚିଦଂଶେନ ଏକାର୍ଥେନ । ୨. ସାମାନାଧିକରଣ୍ୟେନ । ୩. ପ୍ରଣତ ।

ଜନଲୋକରେ ବ୍ରହ୍ମସତ୍ର[୧] । ପୂର୍ବେ ହେଲା ହେ ବ୍ରହ୍ମପୁତ୍ର[୨] ।। ୪୭
୧୦ ଶ୍ୱେତଦ୍ୱୀପର ପ୍ରଭୁ ଯେହି । ସେ ଅନିରୁଦ୍ଧମୂର୍ତ୍ତି ମୁହିଁ ।। ୪୮
ଆମ୍ଭଙ୍କୁ ଦେଖିବା ନିମିତ୍ତେ । ଶ୍ୱେତଦ୍ୱୀପକୁ ତୁମ୍ଭେ ଯା'ନ୍ତେ ।। ୪୯
ଏ ପ୍ରଶ୍ନ ହେଲା ତହିଁ ତେବେ । ତୁମ୍ଭେ ଯା' ପଚାରିଲ ଏବେ ।। ୫୦
ବ୍ରହ୍ମବାଦ ହୋଇଲା ତହିଁ । ଶ୍ରୁତିଏ ଶୁଅନ୍ତି ଯେ ଠାଇଁ ।। ୫୧
୧୧ ଶାସ୍ତ୍ର ତପସ୍ୟା ଯେ ସ୍ୱଭାବ । ଯେ ଶତ୍ରୁ-ମିତ୍ର-ମଧ୍ୟଭାବ[୩] ।। ୫୨
ଏଣେ ସମାନ ସେ ସମସ୍ତେ । ତଥାପି ଶୁଣିମା ନିମିତ୍ତେ ।। ୫୩
ଜଣକୁ ମାତ୍ର ବକ୍ତା କଲେ । ଅପରେ ସମସ୍ତେ ଶୁଣିଲେ ।। ୫୪

ଶ୍ରୀସନନ୍ଦନ ଉବାଚ

୧୨ ସନକ ଆଦି ଯେ ଅଛନ୍ତି । ତାଙ୍କୁ ସନନ୍ଦ କହୁଛନ୍ତି ।। ୫୫
ଆପଣେ କଲେ ଯା' ସର୍ଜନ । ସେ ବିଶ୍ୱକୁ ସେ ଭଗବାନ ।। ୫୬
ପ୍ରଳୟ ସମୟେ ସେ ହରି । ଶକ୍ତିମାନଙ୍କୁ ଘେନି କରି ।। ୫୭
ଶୁଅନ୍ତେ ପୁଣି ନିଦ୍ରା-ଅନ୍ତେ । ନିଃଶ୍ୱାସୁଁ ବେଦେ ସମ୍ଭବନ୍ତେ ।। ୫୮
ବ୍ରହ୍ମନିଷନ୍ନ ବାକ୍ୟେ ଅତି । ତାଙ୍କୁ କରନ୍ତି ବେଦେ ସ୍ତୁତି ।। ୫୯
୧୩ ଯେସନେ ଶୁଅନ୍ତେ ରାଜନ । ତା' ଅନୁଜୀବୀ ବନ୍ଦୀଜନ ।। ୬୦
ଉତ୍ତମ କୀର୍ତ୍ତିଏ ଯହିଁରେ । ରାଜାର ସେ ପରାକ୍ରମରେ ।। ୬୧
ପ୍ରଭାତେ ଯାଇ ନିକଟକୁ । କରନ୍ତି ତା' ନିଦ୍ରାଭଙ୍ଗକୁ ।। ୬୨

ଶ୍ରୀଶ୍ରୁତୟ ଊଚୁଃ

୧୪ ସେ ଈଶ୍ୱରଙ୍କୁ ବେଦମାନେ । ସ୍ତୁତି କରନ୍ତି ଏ ବଚନେ ।। ୬୩
ଆହେ ଅଜିତ ଏ ସମସ୍ତ । ଉପରେ ହୁଅ ଜୟଯୁତ ।। ୬୪
ସ୍ଥାବର ଜଙ୍ଗମାଦିମାନ । ଯାଙ୍କ ଶରୀର ବିଦ୍ୟମାନ ।। ୬୫
ସେ ଜୀବଙ୍କର ଅତିଶୟ । ଅବିଦ୍ୟା ତୁମ୍ଭେ ନିବର୍ତ୍ତାଅ ।। ୬୬
ଜୀବର ଆନନ୍ଦାଦି ଯେତେ । ତା' ଗୁପ୍ତ କରିବା ନିମିତ୍ତେ ।। ୬୭
ସତ୍ତ୍ୱାଦିରୂପେ ତିନିଗୁଣ । ଯେ ମାୟା କରିଛି ଗ୍ରହଣ ।। ୬୮
ସେ ମାୟା ତୁମ୍ଭ ଜ୍ଞାନ ଯେହି । ତା' ନିବର୍ତ୍ତାଇ ନ ପାରଇ ।। ୬୯
ଏଣୁ ଆପଣା ରୂପେ କରି । ସର୍ବ ଐଶ୍ୱର୍ଯ୍ୟ ଅଛ ଧରି ।। ୭୦
ସେ ଜୀବେ ଜ୍ଞାନାଦି ପ୍ରକାଶି । ସେ ମାୟା ନ ପାରନ୍ତି ନାଶି ।। ୭୧
ତୁମ୍ଭେ ସେ ଜୀବଙ୍କର ଏକ । ସମସ୍ତଶକ୍ତିପ୍ରକାଶକ ।। ୭୨
ସୃଷ୍ଟି ସମୟେ କଦାଚିତେ । ମାୟାରେ କ୍ରୀଡ଼ାକୁ କରନ୍ତେ ।। ୭୩

---

୧. ଯେଉଁଠି ସମାନ ଯଜମାନଗଣ ଋତ୍ୱିକ୍ ଆଦି ରୂପେ କର୍ମ କରନ୍ତି, ତାହା କର୍ମସତ୍ର ଓ ଯେଉଁଠି ସମାନ ଜ୍ଞାନିଗଣ ବକ୍ତା-ଶ୍ରୋତାରୂପେ ବ୍ରହ୍ମର ମୀମାଂସା କରନ୍ତି ତାହା ବ୍ରହ୍ମସତ୍ର ।

୨. ବ୍ରହ୍ମପୁତ୍ର = ବ୍ରହ୍ମାଙ୍କ ପୁଅ । ୩. ମଧ୍ୟଭାବ = ଉଦାସୀନଭାବ ।

ଐଶ୍ୱର୍ଯ୍ୟଜ୍ଞାନାଦିରେ ନିତି । ତୁମ୍ଭେ ଯେ ଥାଅ ଅନୁବର୍ତ୍ତି ॥ ୭୪
ଏମନ୍ତ ବୋଲି ବେଦମାନେ । ତୁମ୍ଭଙ୍କୁ ବୋଲନ୍ତି ବଚନେ ॥ ୭୫
୧୫ ଇନ୍ଦ୍ର ଅଗ୍ନି ଆଦିଏ ଯେତେ । ଏମାନେ ବ୍ରହ୍ମ ବେଦମତେ ॥ ୭୬
ଏମନ୍ତ ବୋଲିବ ବା ତୁମ୍ଭେ । ତହିଁକି କହୁଅଛୁଁ ଆମ୍ଭେ ॥ ୭୭
ଏ ଦୃଶ୍ୟ ଇନ୍ଦ୍ର ଅଗ୍ନି ଆଦି । ବ୍ରହ୍ମରୂପେ ହେଁ ହେଲେ ସିଦ୍ଧି ॥ ୭୮
ଏ ସର୍ବେ ବ୍ରହ୍ମ ତୁମ୍ଭ ମୂର୍ତ୍ତି । ଏହା ସମସ୍ତେ କହିଛନ୍ତି ॥ ୭୯
କାଳେ ଏ ହୁଅନ୍ତି ବିନାଶ । କେବଳ ତୁମ୍ଭେ ଅବଶେଷ ॥ ୮୦
ଯା'ଠାରୁ ସର୍ବ ଜଗତର । ହେଉଛି ଉତ୍‌ପତ୍ତିସଂହାର ॥ ୮୧
ବ୍ରହ୍ମରୂପରେ ଏଣୁ ଥାଅ । ବିକାରବନ୍ତ ତୁମ୍ଭେ ନୁହ ॥ ୮୨
ଘଟାଦିଙ୍କର ଯେ ରୂପରେ । ଉଦୟ-ଅସ୍ତ ମୃତ୍ତିକାରେ ॥ ୮୩
ଏଣୁ ଏ ସର୍ବ ଋଷିଗଣ । ମନେ ବଚନେ ଆଚରଣ ॥ ୮୪
ଧଇଲେ ତୁମ୍ଭଠାରେ ନେଇ । ଇନ୍ଦ୍ରାଦିଙ୍କରେ କିଛି ନାହିଁ ॥ ୮୫
ଦେଖ ଯେସନେ ସର୍ବନରେ । ଇଷ୍ଟି[୧]-ମୃତ୍ତିକା-ପାଷାଣରେ ॥ ୮୬
ଦିଅନ୍ତେ ଚରଣକୁ ନେଇ । ସେ କି ଭୂମିରେ ଦେଲେ ନାହିଁ ॥ ୮୭
ସେ ରୂପେ ଏ ବେଦେ ଯାହାକୁ । ବ୍ରହ୍ମ ବୋଇଲେ ସେ ତୁମ୍ଭଙ୍କୁ ॥ ୮୮
୧୬ ଆହେ ତ୍ରିଗୁଣମାୟାଧିପ । ଯେ ନାଶେ ସର୍ବଲୋକପାପ ॥ ୮୯
ସେ କଥା-ଅମୃତସାଗର । ବିବେକୀ ଜନେ ସେବି ତୋର ॥ ୯୦
ଯେ ଦୁଃଖ ପାତକ ଅଶେଷ । ତା' ସର୍ବ କରନ୍ତି ବିନାଶ ॥ ୯୧
ଯେ ପୁଣି ତୁମ୍ଭେ ସ୍ୱରୂପରେ । ପ୍ରକାଶ ହୁଅନ୍ତେ ଅନ୍ତରେ ॥ ୯୨
ନାଶିଲେ ରାଗାଦି ଧର୍ମକୁ । ପୁଣ ଜରାଦି ଅବସ୍ଥାକୁ ॥ ୯୩
ହେ ସର୍ବଶ୍ରେଷ୍ଠ ! ସେହି ନରେ । ଆନନ୍ଦ ଯହିଁ ନିରନ୍ତରେ ॥ ୯୪
ସେ ତୁମ୍ଭ ସ୍ୱରୂପକୁ ଯାହା । ଭଜିଲେ କି କହିବା ତାହା ॥ ୯୫
୧୭ ନିଃଶ୍ୱାସବନ୍ତ ଯେ ମାନବେ । ହୁଅନ୍ତି ଭକ୍ତ ସେହୁ ଯେବେ ॥ ୯୬
ତେବେ ସେ ପ୍ରାଣୀମାନଙ୍କର । ସଫଳ ଜନ୍ମ ହେ ଈଶ୍ୱର ॥ ୯୭
ଅନ୍ୟଥା ଭାତିପ୍ରାୟେ ନିତି । ବୃଥା ନିଃଶ୍ୱାସକୁ ପକାନ୍ତି ॥ ୯୮
ଯେ ମହତ୍ତତ୍ତ୍ୱ ଅହଂକାର । ଏ ଆଦିମାନେହେଁ ତୁମ୍ଭର ॥ ୯୯
ପ୍ରବେଶେ ଲଭି ସାମର୍ଥ୍ୟକୁ । ସର୍ଜିଲେ ବିବିଧ ଦେହକୁ ॥ ୧୦୦
ପଶି ଅନ୍ନାଦି ପଞ୍ଚ କୋଷେ । ଚେତନାମାନ ଯେ ପ୍ରକାଶେ ॥ ୧୦୧
ତା' ପ୍ରାୟେ ଚେଷ୍ଟା କରୁଥାଅ । ଯେଣୁ ଅନ୍ନାଦି କୋଷେ ଥାଅ ॥ ୧୦୨
ସେ କୋଷଗଣ ନ ରହନ୍ତେ । ବ୍ରହ୍ମରୂପରେ ଥାଅ ପ୍ରାନ୍ତେ ॥ ୧୦୩
ଯେ ସ୍ଥୂଳସୂକ୍ଷ୍ମାଦିର କୋଷ । ତହିଁରୁ ତୁମ୍ଭେ ଅବଶେଷ ॥ ୧୦୪
କାର୍ଯ୍ୟକାରଣୁଁ ପର ହୁଅ । ଏଣୁଟି ସତ୍ୟରୂପେ ଥାଅ ॥ ୧୦୫

---

୧. ଇଟା ।

୧୮ ଯେତେକ ସ୍ଥୂଳବୁଦ୍ଧି ନରେ । ସେ ଋଷିମାନଙ୍କ ମାର୍ଗରେ ॥ ୧୦୬
ବ୍ରହ୍ମ ଉଦରଚକ୍ରେ ସ୍ଥିତ । ଧ୍ୟାନ କରନ୍ତି ଏହି ମତ ॥ ୧୦୭
ଯେ ସ୍ଥାନ ସର୍ବ ନାଡ଼ୀଙ୍କର । ସେ ହୃଦୟଚକ୍ରେ ଆବର ॥ ୧୦୮
ଅତ୍ୟନ୍ତ ସୂକ୍ଷ୍ମ ହୋଇ ପୁଣ । ବ୍ରହ୍ମ ହୋଇଛି ବିଦ୍ୟମାନ ॥ ୧୦୯
ଉଦ୍ଧାଳକାଦି ଋଷି ଯେତେ । ସେ ଧ୍ୟାନ କରନ୍ତି ଏମନ୍ତେ ॥ ୧୧୦
ସେ ହୃଦୟରୁ ହେ ଅନନ୍ତ । ସୁଷୁମ୍ନା ନାମରେ ଯେ ଖ୍ୟାତ ॥ ୧୧୧
ସେ ନାଡ଼ୀଦ୍ୱାରରେ ତୁମ୍ଭର । ଯେ ଶ୍ରେଷ୍ଠ ସ୍ଥାନ ଅଟେ ଶିର ॥ ୧୧୨
ସେ ବ୍ରହ୍ମରନ୍ଧ୍ରକୁ ବୋଲିଣ । ଜୀବ ଯେ କରଇ ଗମନ ॥ ୧୧୩
ଯଉଁ ସ୍ଥାନକୁ ଜୀବ ପାଇ । ସଂସାରେ ଆଉ ନ ପଡ଼ଇ ॥ ୧୧୪
୧୯ ଯା ସ୍ୱୟେଂ ନିର୍ମାଣ କରିଛ । ଉଚ୍ଚ ମଧ୍ୟମ ପୁଣ ନୀଚ ॥ ୧୧୫
ସେ ବ୍ୟକ୍ତସ୍ଥାନ ଦେହାଦିରେ । ପୂର୍ବରୁ ଥିଲେହେଁ ହେତୁରେ ॥ ୧୧୬
ପ୍ରବେଶ ହେଲା ପ୍ରାଏ ଏବେ । ତୁମ୍ଭେ ଅଧିକ ଊଣା ଭାବେ ॥ ୧୧୭
ଅନଳପ୍ରାୟ ହୋଇ ପୁଣ । ଶୋଭାକୁ କରିଛ ଗ୍ରହଣ ॥ ୧୧୮
ଊଣା ଅଧିକ ଭାବେ ହୀନ । ଅନଳ ହେଲେହେଁ ଯେସନ ॥ ୧୧୯
ଯେମନ୍ତ କାଷ୍ଠରେ ଲାଗଇ । ତଦନୁସାରେ ପ୍ରକାଶଇ ॥ ୧୨୦
ସେ ରୂପେ ଯେଡ଼େ ଦେହେ ଥାଅ । ତହିଁ ତେଡ଼ିକି ଦୃଶ୍ୟ ହୁଅ ॥ ୧୨୧
ନିର୍ମଳ ଅଟେ ଯାଙ୍କ ମତି । ଯେ ବିଷୟକୁ ଛାଡ଼ିଛନ୍ତି ॥ ୧୨୨
ସେ ଲୋକମାନେ ଏ ହେତୁରେ । ଏ ମିଥ୍ୟାଭୂତ ଦେହାଦିରେ ॥ ୧୨୩
ଯେ ସତ୍ୟରୂପରେ ପ୍ରକାଶ । ଯେ ସତ୍ତାମାତ୍ର ଅବିଶେଷ ॥ ୧୨୪
ସେ ସତ୍ୟ ସ୍ୱରୂପ ତୁମ୍ଭର । କଲେଟି ନିତ୍ୟରେ ଗୋଚର ॥ ୧୨୫
୨୦ ମନୁଷ୍ୟ ଆଦି ଦେହ ଯେହି । ନିଜ କର୍ମରେ ପ୍ରାପ୍ତ ହୋଇ ॥ ୧୨୬
ଭୋକ୍ତାରୂପରେ ଯେ ପ୍ରକାଶ । ତହିଁରେ ହୋଇଛି ପ୍ରବେଶ ॥ ୧୨୭
ତୁମ୍ଭର ଅଂଶରୂପ ସେହି । ମୁନି ଅଛନ୍ତି ଏହା କହି ॥ ୧୨୮
ଅଖିଳ ଶକ୍ତିମାନଙ୍କର । ଯେ ତୁମ୍ଭେ ଆଶ୍ରୟ ଈଶ୍ୱର ॥ ୧୨୯
କାରଣ କାର୍ଯ୍ୟ ଘେନି ଦୁଇ । ଏ ରୂପେ ଆବରଣ ଯେହି ॥ ୧୩୦
ଯେଣୁ ତାହାର ସତ୍ତା ନାହିଁ । ଏଣୁ ଯେ ପୁରୁଷ ଅଟଇ ॥ ୧୩୧
ତାହାର ଆବରଣ ନାହିଁ । ସେ ଅଟେ ତୁମ୍ଭ ସ୍ୱରୂପ ହିଁ ॥ ୧୩୨
ଜୀବର ଗତି ଏ ପ୍ରକାର । ବିଚାରି ଆପଣା ମନର ॥ ୧୩୩
କବିମାନେ ହିଁ ଏ ସଂସାରେ । ତୁମ୍ଭ ପାଦକୁ ନିରନ୍ତରେ ॥ ୧୩୪
ବିଶ୍ୱାସ କରିଣ ସେବନ୍ତି । ଯେ ଅଟେ ସଂସାରନିବୃତ୍ତି ॥ ୧୩୫
ଯେବଣ ଚରଣ ତୁମ୍ଭର । ବେଦୋକ୍ତ କର୍ମମାନଙ୍କର ॥ ୧୩୬
ବୁଣିମା ବୀଜ-କ୍ଷେତ୍ରସମ । ଯହିଁ ଅର୍ପଣ ସେ ଉତ୍ତମ ॥ ୧୩୭

୨୧ ଦୁର୍ଗମ ଆତ୍ମତତ୍ତ୍ୱ ଯେହି । ସେ କଥା ଜଣାଇବା ପାଇଁ ॥ ୧୩୮
ଯେ ତୁମ୍ଭେ ହେଲ ଦେହବନ୍ତ । ତୁମ୍ଭର ଯେ ପୁଣ ଚରିତ ॥ ୧୩୯
ସେ ମହା ଅମୃତସାଗର । ତାହା ସ୍ନାନରେ ଯେ ବା ନର ॥ ୧୪୦
ସଂସାରମଧ୍ୟେ ଗତାଗତ । ଶ୍ରମରେ ହୋଇଣ ବର୍ଜିତ ॥ ୧୪୧
ଅପବର୍ଗକୁ ହିଁ ସେ କେହି । ବାଞ୍ଛନ୍ତି ନାହିଁ ଯତ୍ନ ହୋଇ ॥ ୧୪୨
ଆହେ ଈଶ୍ୱର ସେ ସୁଖରେ । ପୂର୍ଣ୍ଣ ହୋଇଣ ନିରନ୍ତରେ ॥ ୧୪୩
ତୁମ୍ଭ ଚରଣପଦ୍ମେ ନିତି । ହଂସପ୍ରାୟେ ଯେ ବିହରନ୍ତି ॥ ୧୪୪
ସେ ଭକ୍ତଜନସମୂହର । ସଙ୍ଗୁଁ ଛାଡ଼ିଲେ ସେ ମନ୍ଦିର ॥ ୧୪୫
୨୨ ଯେ ତୁମ୍ଭ ସେବାକୁ କାରଣ । ଏମନ୍ତ ଏ ଶରୀର ପୁଣ ॥ ୧୪୬
ଆତ୍ମ-ସୁହୃଦ ପ୍ରିୟ ଜନ । ପ୍ରାୟେକ ଅଟଇ ଅଧୀନ ॥ ୧୪୭
ତଥାପି ତୁମ୍ଭେ ଅତିଶୟ । ଉନ୍ମୁଖ ଆତ୍ମା ହିତ ପ୍ରିୟ ॥ ୧୪୮
ତୁମ୍ଭେ ଏମନ୍ତ ହୋଇଲେଣ । ଦେଖ ଏ ଆଶ୍ଚର୍ଯ୍ୟକୁ ପୁଣ ॥ ୧୪୯
କରି ଅସନ୍ତ ଉପାସନ । ତୁମ୍ଭଙ୍କୁ ନ ଭଜନ୍ତି ଜନ ॥ ୧୫୦
ଏଣୁ ସେ ଅଜ୍ଞାନୀଏ ନିତି । ଆତ୍ମାକୁ ବିନାଶ କରନ୍ତି ॥ ୧୫୧
ସେ ଉପାସନାରେ ତାଙ୍କର । ବାସନା ବଦ୍ଧ ନିରନ୍ତର ॥ ୧୫୨
ଏଣୁ କୁତ୍ସିତ ଦେହମାନ । ସେମାନେ କରିଣ ଆଦାନ ॥ ୧୫୩
ଅତ୍ୟନ୍ତ ଭୟ ସଂସାରରେ । ଭ୍ରମନ୍ତି ଜନ୍ମମରଣରେ ॥ ୧୫୪
୨୩ ଇନ୍ଦ୍ରିୟଗଣ ପ୍ରାଣ ଚିତ୍ତ । ଏହା ଯେ କଲେ ସଂଯମିତ ॥ ୧୫୫
ଯେ ଯୋଗ ଦୃଢ଼ ତାହାଙ୍କୁ ହିଁ । ସାଧି ଅଛନ୍ତି ପୁଣ ଏହି ॥ ୧୫୬
ଯଉଁ ତତ୍ତ୍ୱକୁ ହୃଦୟରେ । ସେ ମୁନି ଚିନ୍ତିଲେ ପୂର୍ବରେ ॥ ୧୫୭
ଅରିମାନେ ହେଁ ତାହା ପୁଣ । ସ୍ମରଣୁଁ ଲଭିଲେ ପ୍ରମାଣ ॥ ୧୫୮
ଅହୀନ୍ଦ୍ରଦେହର ସମାନ । ଯେ ଭୁଜଦଣ୍ଡ ବିଦ୍ୟମାନ ॥ ୧୫୯
ତହିଁରେ ଲଗ୍ନ ଯାଙ୍କ ମତି । ପରିଚ୍ଛିନ୍ନରୂପେ ଦେଖନ୍ତି ॥ ୧୬୦
ସେ ସ୍ତିରୀମାନେ ହେଁ ସେ ତତ୍ତ୍ୱ । ଲଭିଲେ ସେ କଥା ନିୟତ ॥ ୧୬୧
ଅପରିଚ୍ଛିନ୍ନରୂପ କରି । ଯେ ଆମ୍ଭେ ଦେଖୁଁ ଅନୁସରି ॥ ୧୬୨
ଦେବତା ଅଟୁଁ ଆମ୍ଭେମାନେ । ଶ୍ରୁତିରୂପରେ ଏ ଭୁବନେ ॥ ୧୬୩
ସେ ମୁନି ଶତ୍ରୁ ବଧୂଜନ । ଆମ୍ଭେ ସମସ୍ତେ ହେଁ ସମାନ ॥ ୧୬୪
ତୋ' ପାଦପଦ୍ମକୁ ହୃଦରେ । ଧରିଛୁଁ ଉତ୍ତମରୂପରେ ॥ ୧୬୫
ଏଣୁ ଉତ୍ତମ-ନ୍ୟୂନ ହୋଇ । ତୁମ୍ଭ ସ୍ମରଣେ ଭାବ ନାହିଁ ॥ ୧୬୬
୨୪ ଏ ସଂସାରରେ ହେ ଅଚ୍ୟୁତ । ସୃଷ୍ଟିପୂର୍ବରୁ ତୁମ୍ଭେ ସ୍ଥିତ ॥ ୧୬୭
ତୁମ୍ଭଙ୍କୁ କେ ଅବା ଜାଣିମ । ଯେଣୁ ତା' ମରଣ-ଜନମ ॥ ୧୬୮
ତୁମ୍ଭ ଉତ୍ତାରୁ ଅଛି ହୋଇ । ଏଣୁ ସେ ଜାଣି ନ ପାରଇ ॥ ୧୬୯
ବ୍ରହ୍ମା ଜନ୍ମିଲେ ତୁମ୍ଭଠାରୁ । ପୁଣି ସେ ବ୍ରହ୍ମାଙ୍କ ଉତ୍ତାରୁ ॥ ୧୭୦

ଅଧ୍ୟାତ୍ମ-ଅଧିଦେବ ହୋଇ । ଜନ୍ମିଲେ ଦେବଗଣ ଦୁଇ ॥ ୧୭୧
ତଦନ୍ତେ ସର୍ବ ଜୀବମାନେ । ଜନ୍ମ ଲଭିଲେ ଏ ଭୁବନେ ॥ ୧୭୨
ଯଉଁ କାଳରେ ଆହେ ହରି । ଶୋଇଲ ସମସ୍ତ ସଂହରି ॥ ୧୭୩
ତ୍ୱଦନୁଗତ ଜୀବଙ୍କର । ଜ୍ଞାନସାଧନ ହେଲା ଦୂର ॥ ୧୭୪
ଆକାଶ ମହଦାଦି ଦୁଇ । ସେ କାଳେ ନ ଥିଲେ ଯେ କେହି ॥ ୧୭୫
ଏ ଦୁହିଁଙ୍କରେ ଯେ ନିର୍ମାଣ । ନ ଥିଲା ସେ ଶରୀର ପୁଣ ॥ ୧୭୬
ନ ଥିଲା ବୈଷମ୍ୟ କାଳର । ଇନ୍ଦ୍ରିୟପ୍ରାଣାଦି ଆବର ॥ ୧୭୭
ଏ ସମସ୍ତଙ୍କୁ ଯେ ଜଣାଇ । ନ ଥିଲା ପୁଣ ସେ ଶାସ୍ତ୍ର ହିଁ ॥ ୧୭୮
ଯେଣୁ ଈଶ୍ୱରଜ୍ଞାନ ନୋହେ । ଶ୍ରବଣାଦିରେ ଭକ୍ତି ହୋଏ ॥ ୧୭୯
୨୫ ଅସତ ଜଗତ ଯେ ଜାତ । ଏ ବୈଶେଷିକଶାସ୍ତ୍ରମତ ॥ ୧୮୦
ଅସତୁଁ ବ୍ରହ୍ମର ଉତ୍‌ପତ୍ତି । ପାତଞ୍ଜଳାଦିଏ ବୋଲନ୍ତି ॥ ୧୮୧
ଦୁଃଖନାଶନେ ଜୀବ ମୁକ୍ତ । ଏ ନ୍ୟାୟଶାସ୍ତ୍ରଜ୍ଞଙ୍କ ମତ ॥ ୧୮୨
ଆତ୍ମାରେ ଭେଦଭାବକୁ ହିଁ । ସାଂଖ୍ୟବକ୍ତାଏ ଛନ୍ତି କହି ॥ ୧୮୩
କର୍ମଫଳକୁ ସତ୍ୟ ପୁଣ । ବୋଲନ୍ତି ମୀମାଂସକଗଣ ॥ ୧୮୪
ଏ ସର୍ବେ ଭ୍ରମେ ଛନ୍ତି କହି । ତତ୍ତ୍ୱକୁ ନ ଜାଣନ୍ତି କେହି ॥ ୧୮୫
ପୁରୁଷ ତ୍ରିଗୁଣେ ସଂଜାତ । ହେଲେ ଏ ହୁଅନ୍ତା ସଂଗତ ॥ ୧୮୬
ପୁରୁଷ ତ୍ରିଗୁଣସଂପନ୍ନ । ଏ ହେତୁରେ ଯେ ଭେଦମାନ ॥ ୧୮୭
ଯେଣୁ ସେ ତୁମ୍ଭ ବିଷୟରେ । ଅଜ୍ଞାନକୃତଟି ନିତ୍ୟରେ ॥ ୧୮୮
ତୁମ୍ଭେ ଯେ ଅଟ ସଙ୍ଗହୀନ । ଆବର ଅଟ ଜ୍ଞାନଘନ ॥ ୧୮୯
ତେଣୁ ଏ ଅଜ୍ଞାନବାକ୍ୟ ହିଁ । ତୁମ୍ଭଠାରେ ନ ସମ୍ଭବଇ ॥ ୧୯୦
୨୬ ତ୍ରିଗୁଣାତ୍ମକ ଏ ଜଗତ । ମନର ବିଳାସେ ନିର୍ମିତ ॥ ୧୯୧
ଏ ଯେ ଅସତ୍ୟ ତୁମ୍ଭଠାଇଁ । ସତ୍ୟପରାଏ ଆଭାସଇ ॥ ୧୯୨
ତୁମ୍ଭ ସତ୍ତାରେ ସତ୍ୟପ୍ରାଏ । ଏ ସୃଷ୍ଟିଯାକ ପ୍ରତ୍ୟେ ହୋଏ ॥ ୧୯୩
ପୁରୁଷପର୍ଯ୍ୟନ୍ତେ ବ୍ୟାପିଣ । ମନମାତ୍ରରେ ଏ ନିର୍ମାଣ ॥ ୧୯୪
ଆତ୍ମଜ୍ଞାନୀଏ ଆତ୍ମତ୍ୱରେ । ଏ ସର୍ବ ବିଶ୍ୱ ଏ ରୂପରେ ॥ ୧୯୫
ମଣନ୍ତି ସତ୍ୟପ୍ରାଏ ପୁଣ । ଯେସନେ ସୁବର୍ଣ୍ଣନିର୍ମାଣ ॥ ୧୯୬
କୁଣ୍ଡଳାଦିକୁ ସୁବର୍ଣ୍ଣାର୍ଥୀ । ସୁବର୍ଣ୍ଣତ୍ୱରେ ନ ଛାଡ଼ନ୍ତି ॥ ୧୯୭
ନିଜ ନିର୍ମିତ ଏ ବିଶ୍ୱରେ । ପ୍ରବେଶ ହୋଇ ଏ ହେତୁରେ ॥ ୧୯୮
ଆତ୍ମସ୍ୱରୂପେ ଅଛ ରହି । ଏ କଥା ନିଶ୍ଚୟ ଅଟଇ ॥ ୧୯୯
୨୭ ତୁମ୍ଭେ ଅଖିଳପ୍ରାଣିସ୍ଥାନ । ଏମନ୍ତ ଭାବେ ଯେତେ ଜନ ॥ ୨୦୦
ତୁମ୍ଭଙ୍କୁ ଭଜନ କରନ୍ତି । ସେ ତିରସ୍କାର କରି ଅତି ॥ ୨୦୧
ମୃତ୍ୟୁଦେବତାଶିରେ ନେଇ । ତରନ୍ତି ଚରଣକୁ ଦେଇ ॥ ୨୦୨
ବିମୁଖ ତୁମ୍ଭଠାରେ ଯେତେ । ଜ୍ଞାନୀ ହେଲେହେଁ ସେ ସମସ୍ତେ ॥ ୨୦୩

ତାହାଙ୍କୁ ବେଦାଦି ବାକ୍ୟରେ । ପଶୁଙ୍କ ପ୍ରାଏକ ସଂସାରେ ।। ୨୦୪
ତୁମ୍ଭେ କରିଛ ନିବନ୍ଧନ । ଏଣୁ ତୁମ୍ଭଙ୍କୁ ଯଉଁ ଜନ ।। ୨୦୫
ମିତ୍ରଭାବରେ ଭଜୁଥାନ୍ତି । ସେ ନିଜ ଆତ୍ମାକୁ ତାରନ୍ତି ।। ୨୦୬
ପରକୁ ତାରନ୍ତି ଆବର । ସେରୂପେ ନ ତାରେ ଇତର ।। ୨୦୭
୨୮ ଇନ୍ଦ୍ରିୟମାନଙ୍କେ ତୁମ୍ଭର । ସଂବନ୍ଧ ନାହିଁ ହେ ଈଶ୍ୱର ।। ୨୦୮
ଅଖିଳ ପ୍ରାଣିମାନଙ୍କର । ଯେତେକ ଇନ୍ଦ୍ରିୟନିକର ।। ୨୦୯
ତାଙ୍କ ଶକ୍ତିକି ପ୍ରବର୍ତ୍ତାଅ । ଯେଣୁ ସ୍ୱେଚ୍ଛାଏ ଶୋଭା ପାଅ ।। ୨୧୦
ଅବିଦ୍ୟାସଂଯୁତ ହୋଇଣ । ଯେତେ ଇନ୍ଦ୍ରାଦି ଦେବଗଣ ।। ୨୧୧
ଯେ ପୁଣ ସଂସାର ସର୍ଜନ୍ତି । ସେ ବ୍ରହ୍ମା ଆଦି ଯେତେ ଛନ୍ତି ।। ୨୧୨
ସେମାନେ ପୂଜାକୁ ତୁମ୍ଭର । ନିତ୍ୟେ କରନ୍ତି ନିରନ୍ତର ।। ୨୧୩
ନିଜ ପ୍ରଜାଙ୍କ ଠାରୁ ସ୍ୱୟେଂ । ଖଣ୍ଡମଣ୍ଡଳନୃପତିଏ ।। ୨୧୪
କରକୁ କରିଣ ଆଦାନ । ପୁଣି ସେ ରାଜାଏ ଯେସନ ।। ୨୧୫
ମହାମଣ୍ଡଳେଶ ରାଜାଙ୍କୁ । ଦିଅନ୍ତି ନେଇ ସେ କରକୁ ।। ୨୧୬
ତୁମ୍ଭ ଠାବରୁ ଭୟ ପାଇଁ । ଯେ ଯଉଁ କାର୍ଯ୍ୟେ ଛନ୍ତି ରହି ।। ୨୧୭
ସେ ସେହି କାର୍ଯ୍ୟେ ରହି ନିତି । ତୁମ୍ଭ ଆଜ୍ଞାକୁ ବହିଛନ୍ତି ।। ୨୧୮
୨୯ ହେ ନିତ୍ୟମୁକ୍ତ ଯେବେ ତୋର । ମାୟାରେ ହୁଅଇ ବିହାର ।। ୨୧୯
ସେ କାଳେ ସ୍ଥିର ଚର ହୋଇ । ଜାତିମାନଙ୍କେ ଦେହ ବହି ।। ୨୨୦
ପ୍ରାଣିଏ ହୁଅନ୍ତି ଉତ୍‌ପନ୍ନ । ତୁମ୍ଭେ ସେ ମାୟାଠାରୁ ଭିନ୍ନ ।। ୨୨୧
ଈକ୍ଷଣଲେଶମାତ୍ରକରେ । ସଙ୍ଗକୁ କର ସେ ମାୟାରେ ।। ୨୨୨
ତୁମ୍ଭ ଦର୍ଶନମାତ୍ରକରେ । ଯେ ଯୁକ୍ତ କର୍ମମାନଙ୍କରେ ।। ୨୨୩
ଏମନ୍ତ ଯେ ଲିଙ୍ଗଶରୀର । ସେ ହୋଏ ଜୀବମାନଙ୍କର ।। ୨୨୪
ତୁମ୍ଭେ ପରମ ସବୁଠାଇଁ । ସମ ଆକାଶପ୍ରାୟ ହୋଇ ।। ୨୨୫
ଏ ପର ଏହୁ ଆପଣାର । ଏ ବେନି ନାହିଁ ତୁମ୍ଭଠାର ।। ୨୨୬
ଶୂନ୍ୟସମାନ ରୂପ ଧର । ମନ-ବଚନ-ଅଗୋଚର ।। ୨୨୭
୩୦ ଯେବେ ଏ ଜୀବମାନେ ନିତ୍ୟ । ଅପରିମିତ ସର୍ବଗତ ।। ୨୨୮
ତେବେ ଜୀବର ଊଣାଭାବ । ଈଶ୍ୱରତହୁଁ ନ ଘଟିବ ।। ୨୨୯
ହେ ନିତ୍ୟସ୍ଥିତ ଏ ହେତୁରୁ । ନିୟମ ନାହିଁ ତୁମ୍ଭଠାରୁ ।। ୨୩୦
ଏଥିରୁ ହୋଇଲେ ବା ଆନ । ଏ କଥା ହେବ ପ୍ରତିପନ୍ନ ।। ୨୩୧
ଯହିଁରୁ ଜୀବ ଅଟେ ଜାତ । ସେ ତାର ଶାସ୍ୟ[୧] ହୋଇ ଖ୍ୟାତ ।। ୨୩୨
ନ ଛାଡ଼ି କାରଣଭାବରେ । ଯେ ପୂରିଅଛି ସର୍ବଠାରେ ।। ୨୩୩
ଜାଣନ୍ତି ବୋଲି ଯେ ଜାଣନ୍ତି । ସେ ଯେଣୁ ଜାଣି ନ ପାରନ୍ତି ।। ୨୩୪
ଦୋଷରୁ ଜାଣିମା ଦ୍ରବ୍ୟର । ସେ ବ୍ରହ୍ମ ଅଟେ ଅଗୋଚର ।। ୨୩୫

୧. ଶାସ୍ୟ = ଶାସନୀୟ ।

୩୧ ପ୍ରକୃତିଠାରୁ ଯେବେ ଜୀବ । ଜନ୍ମିବ ତେବେ ଜଡ଼ ହେବ ॥ ୨୩୬
ପୁରୁଷଠାରୁ ହେଲେ ଜୀବ । ପୁରୁଷ ବିକାରୀ ହୋଇବ ॥ ୨୩୭
ଜନ୍ମରହିତ ଯେ ଅଟଇ । ପ୍ରକୃତି ପୁରୁଷ ସେ ଦୁଇ ॥ ୨୩୮
ଜୀବ-ଉତ୍ପତ୍ତି ଯେ ହେତୁରୁ । ଘଟନା ନାହିଁ ବେନିଠାରୁ ॥ ୨୩୯
ଯେବେ ପ୍ରକୃତି-ପୁରୁଷର । [1]ଅଧ୍ୟାସ ହୋଏ ପରସ୍ପର ॥ ୨୪୦
ତେବେ ହୁଅନ୍ତି ଜୀବମାନେ । ଜଳରେ ବୁଦ୍‌ବୁଦ ଯେସନେ ॥ ୨୪୧
ଜଳେ ପବନେ ଏକା ନୋହି । ବେନିଙ୍କ ସଂଯୋଗରୁ ହୋଇ ॥ ୨୪୨
ତୁମ୍ଭେ କାରଣ ତୁମ୍ଭଠାରେ । ଏ ଜୀବେ ଜନ୍ମ-ଅଭାବରେ ॥ ୨୪୩
ନାନା ପ୍ରକାର ନାମ-ଗୁଣ । ସହିତେ ଲୀନ ହୋନ୍ତି ପୁଣ ॥ ୨୪୪
ମହୁରେ ସର୍ବ ରସମାନେ । ବିଲୀନ ହୁଅନ୍ତି ଯେସନେ ॥ ୨୪୫
ଏ ରୂପେ ସୁଷୁପ୍ତି-ପ୍ରଳୟେ । ଜୀବେ ପଶନ୍ତି ତୁମ୍ଭ ଠାଏ ॥ ୨୪୬
ସମୁଦ୍ରେ ନଦୀପ୍ରାୟ ହୋଇ । ସେ ଜୀବମାନେ ତୁମ୍ଭ ଠାଇଁ ॥ ୨୪୭
ପଶନ୍ତି ମୁକ୍ତିସମୟରେ । ନାମ-ରୂପର ସହିତରେ ॥ ୨୪୮
୩୨ ଏ ସର୍ବ ପ୍ରାଣୀଙ୍କର ଠାରେ । ହେ ଈଶ ! ତୁମ୍ଭର ମାୟାରେ ॥ ୨୪୯
ଜନ୍ମ-ମରଣେ ଯେ ଭ୍ରମଣ । ପଣ୍ଡିତମାନେ ତା' ଜାଣିଣ ॥ ୨୫୦
ତୁମ୍ଭେ ସଂସାର ନିବର୍ତ୍ତାଅ । ତୁମ୍ଭର ଠାରେ ଅତିଶୟ ॥ ୨୫୧
ଭାବକୁ କଲେ ନିରନ୍ତରେ । ତୁମ୍ଭଙ୍କୁ ଭଜନ୍ତି ସେ ନରେ ॥ ୨୫୨
ତାଙ୍କର ଭବୁଁ ଭୟମାନ । କିମ୍ପାଇଁ ହେବ ଉତପନ୍ନ ॥ ୨୫୩
ଯେବଣ ହେତୁ ଏ ତୁମ୍ଭର । ଭ୍ରୂଭଙ୍ଗରୂପେ ମନୋହର ॥ ୨୫୪
ଖରା-ବରଷା-ଶୀତ କାଳ । ସ୍ୱରୂପେ ବିଖ୍ୟାତ ଯେ କାଳ ॥ ୨୫୫
ସେ କାଳ ସେ ଲୋକଙ୍କ ଠାରେ । ଜନ୍ମମରଣାଦି ରୂପରେ ॥ ୨୫୬
ସଂସାରଭୟ ଯେ ଅଟଇ । ସେ ଭୟ ସର୍ଜନା କରଇ ॥ ୨୫୭
ଯେବଣ ପ୍ରାଣିଙ୍କର ପୁଣ । ତୁମ୍ଭେଟି ନୋହିଲ ଶରଣ ॥ ୨୫୮
୩୩ ଗୁରୁସେବାକୁ ଛାଡ଼ି ମନ । ସଂଯମ କରନ୍ତି ଯେ ଜନ ॥ ୨୫୯
ସେ ଭବସିନ୍ଧୁ ନ ତରନ୍ତି । ଏବେ ଏମନ୍ତ କହୁଛନ୍ତି ॥ ୨୬୦
ଇନ୍ଦ୍ରିୟ ପ୍ରାଣ ଯଉଁମାନେ । ଜିଣିଲେ ଯୋଗ-ଉପାସନେ ॥ ୨୬୧
ଅତିଚଞ୍ଚଳ ମନବାଜୀ[2] । ଦମି ନ ପାରି ଗଲେ ଭାଜି ॥ ୨୬୨
ଛାଡ଼ି ଶ୍ରୀଗୁରୁର ଚରଣ । ସେ ମନ ଆୟତ୍ତ କରିଣ ॥ ୨୬୩
ଯେବଣ ଜନେ ବିଚାରନ୍ତି । ବହୁତ ବିପତ୍ତି ସେ ପାନ୍ତି ॥ ୨୬୪
କ୍ଲେଶ ଲଭନ୍ତି ବିଷୟରେ । ଥାଆନ୍ତି ସଂସାରସାଗରେ ॥ ୨୬୫
ହେ ଅଜ ! ନାଉରୀବିହୀନେ । ଯେସନେ [3]ବଣିଜାରମାନେ ॥ ୨୬୬
ସମୁଦ୍ରମଧ୍ୟେ ରହିଥାନ୍ତି । ଅନେକ କ୍ଲେଶ ହିଁ ପାଆନ୍ତି ॥ ୨୬୭

---

୧. ଅଧ୍ୟାସ = ଆରୋପ । ୨. ବାଜୀ = ଘୋଡ଼ା । ୩. ବଣିଜାର = ବଣିକ ।

୩୪ ତୁମ୍ଭେ ସମସ୍ତସୁଖସ୍ଥାନ । ଆତ୍ମସ୍ୱରୂପେ ବିଦ୍ୟମାନ ।। ୨୬୮
ତୁମ୍ଭେ ଥାଆନ୍ତେ ଏ ସଂସାରେ । ମନୁଷ୍ୟମାନଙ୍କ ମଧ୍ୟରେ ।। ୨୬୯
ସ୍ୱଜନ-ସୁତ-ଭାର୍ଯ୍ୟା-ଦେହ । ଧନ ଧରଣୀ-ପ୍ରାଣ-ଗୃହ ।। ୨୭୦
ଏମାନ ଭଜି ନିରନ୍ତର । ଏଣେ କି କାର୍ଯ୍ୟ ସେ ପ୍ରାଣିର ।। ୨୭୧
ପରମାନନ୍ଦ ସୁଖକୁ ହିଁ । ଜାଣନ୍ତି ନାହିଁ ପୁଣ ଯେହି ।। ୨୭୨
ନାରୀସଙ୍ଗରେ ହୋଇ ସଙ୍ଗ । ବିଷୟ କରିବାକୁ ଭୋଗ ।। ୨୭୩
ପ୍ରବର୍ତ୍ତିଥାଇ ଯଉଁ ଜନ । ତାକୁ କେବଣ ଅର୍ଥମାନ ।। ୨୭୪
ସୁଖୀ କରାଇବ ସଂସାରେ । ଏ ସୃଷ୍ଟି ଅସତ୍ୟ ନିତ୍ୟରେ ।। ୨୭୫
ଏଥିରେ ସାର କିଛି ନାହିଁ । ଏଥି ସେ ସୁଖୀ ହେବ କେହି ।। ୨୭୬
ଏଣୁ ତୁମ୍ଭଙ୍କୁ ଭଜିବାର । ଉଚିତ ଅଟଇ ପ୍ରାଣିର ।। ୨୭୭
୩୫ ନିରହଂକାରୀ ଯେ ଅଟନ୍ତି । ତୁମ୍ଭ ଚରଣପଦ୍ମ ନିତି ।। ୨୭୮
ରହିଛି ଯାହାଙ୍କ ହୃଦୟେ । ଯାଙ୍କ ଚରଣଜଳ ସ୍ୱୟେଂ ।। ୨୭୯
କରଇ ପାପ ବିନାଶନ । ଏମନ୍ତ ଯେତେ ଋଷିଜନ ।। ୨୮୦
ସେ ପୁଣ୍ୟତୀର୍ଥ କ୍ଷେତ୍ରମାନ । ଅଧିକେ କରନ୍ତି ସେବନ ।। ୨୮୧
ଯେଣୁ ସେ ତୀର୍ଥାଦିରେ ଯାଇ । ସାଧୁମାନଙ୍କ ସଙ୍ଗ ହୋଇ ।। ୨୮୨
ଯେ କରେ ପ୍ରାଣିଙ୍କର ନାଶ । ବିବେକ କ୍ଷମା ଧୈର୍ଯ୍ୟ ତୋଷ ।। ୨୮୩
ଏମନ୍ତ ଗୃହକୁ ଯାଇଣ । ନ ବସନ୍ତି ସେ ଋଷିଗଣ ।। ୨୮୪
ତୁମ୍ଭେ ଯେ ନିତ୍ୟସୁଖରୂପୀ । ଆତ୍ମସ୍ୱରୂପେ ଅଛ ବ୍ୟାପି ।। ୨୮୫
ତୁମ୍ଭ ଠାବରେ ନେଇ ଥରେ । ମନକୁ ଦିଅନ୍ତି ଯେ ନରେ ।। ୨୮୬
ସେ ଗୃହେ ନୁହନ୍ତି ବନ୍ଧନ । କିମ୍ପା ବା ହେବେ ଋଷିଜନ ।। ୨୮୭
୩୬ ସତ୍ୟ ଅଟଇ ଏ ଜଗତ । ଯେଣୁ ସତ୍ୟରୁ ହେଲା ଜାତ ।। ୨୮୮
ଯେ ଯାହାଠାରୁ ଜାତ ହୋଇ । ସେ ସେହିରୂପେ ପ୍ରକାଶଇ ।। ୨୮୯
ଯେସନେ ସୁବର୍ଣ୍ଣ ଉତ୍ପନ୍ନ । କୁଣ୍ଡଳ ଆଦି ନୋହେ ଆନ ।। ୨୯୦
ଏମନ୍ତ ଯେବେ ବିଚାରିବ । ଏ ତର୍କ ସମ୍ଭବ ନୋହିବ ।। ୨୯୧
କେହୁଣିସ୍ଥାନେ ଏ ନୁହଇ । କୁଣ୍ଡଳାଦିଙ୍କ ପ୍ରାଏ ହୋଇ ।। ୨୯୨
ପିତାରୁ ଜନ୍ମଇ କୁମର । ପିତା ମରନ୍ତେ ସେ ଅମର ।। ୨୯୩
ଯହିଁରୁ ଯେ ହୋଏ ଉତ୍ପନ୍ନ । ସେ ତାର ହୋଏ ଅପାଦାନ ।। ୨୯୪
କେହୁଣିସ୍ଥାନରେ ପୁଣି ହିଁ । ଏ ମିଥ୍ୟାବାକ୍ୟ ପ୍ରାଏ ହୋଇ ।। ୨୯୫
ଗୁଣୋପାଦାନୁଁ ଫଣୀ ଜାତ । ଫଣୀର ମିଥ୍ୟା ଯେ ଗୁଣତ୍ୱ ।। ୨୯୬
ଏ ବେନି କଥାର ସମାନ । ଏ ବିଶ୍ୱ ଅଟଇ ନିଷନ୍ନ ।। ୨୯୭
ଅବିଦ୍ୟାଯୁତ ସତ୍ତୁଁ ଜାତ । ହେଲେହେଁ ଏ ବିଶ୍ୱ ଅସତ୍ୟ ।। ୨୯୮
ବ୍ୟବହାରରୁ ସୃଷ୍ଟି ଜାତ । ବୋଇଲେ ଶୁଣ ଏ ଉଦନ୍ତ ।। ୨୯୯
ସୃଷ୍ଟିର ବ୍ୟବହାର ଯେହି । ତହିଁରେ ଭ୍ରମ ଇଷ୍ଟ ହୋଇ ।। ୩୦୦

କୂଟକନକେ[1] କାହିଁ କାହିଁ । ଯେସନେ ବ୍ୟବହାର ହୋଇ ।। ୩୦୧
ଅନ୍ଧପରଂପରା ନ୍ୟାୟରେ । ଏ ସତ୍ୟପ୍ରାୟ ବ୍ୟବହାରେ ।। ୩୦୨
ସୁକୃତ [2]ଅକ୍ଷଯ୍ୟ ଯାଗରେ । ଇତ୍ୟାଦି ଶ୍ରୁତିବାକ୍ୟଙ୍କରେ ।। ୩୦୩
କର୍ମର ଫଳ ଯେଣୁ ନିତ୍ୟ । ଏଣୁ ଏ ସୃଷ୍ଟି ହେବ ସତ୍ୟ ।। ୩୦୪
ଏ ଯେତେ ବେଦବାକ୍ୟମାନ । ହେ ପ୍ରଭୁ ଏ ତୁମ୍ଭ ବଚନ ।। ୩୦୫
ବହୁତ ନାନା ବୃତ୍ତିଙ୍କରେ । କର୍ମମାର୍ଗରେ ଯେତେ ନରେ ।। ୩୦୬
ଜଡ଼ ଅଟନ୍ତି ସେ ଲୋକଙ୍କୁ । ଏ ବାକ୍ୟ କରଇ ଭ୍ରମକୁ ।। ୩୦୭
୩୭ ସୃଷ୍ଟିପୂର୍ବରୁ ହେ ଈଶ୍ୱର । ବର୍ତ୍ତି ନ ଥିଲା ଏ ସଂସାର ।। ୩୦୮
ନ ଥିବ ପ୍ରଳୟ ଉତ୍ତାରୁ । ଏ ବେନିମଧ୍ୟେ ଏ ହେତୁରୁ ।। ୩୦୯
ତୁମ୍ଭେ କେବଳ, ତୁମ୍ଭ ଠାଇଁ । ମିଥ୍ୟାରୂପେ ଏ ଶୋଭା ପାଇ ।। ୩୧୦
ଯେ ଭେଦ ସ୍ୱର୍ଣ୍ଣ ମୃତ୍ତିକାର । ଯେ ଘଟ-କୁଣ୍ଡଳାଦିଙ୍କର ।। ୩୧୧
ନାନାପ୍ରକାରପ୍ରାୟେ ହୋଇ । ଏ ଉପମିତ ହୋଇଥାଇ ।। ୩୧୨
ସ୍ୱର୍ଣ୍ଣ ମୃତ୍ତିକା ଯେହ୍ନେ ସତ । ଘଟ କୁଣ୍ଡଳ ହୁନ୍ତି ହତ ।। ୩୧୩
ସ୍ୱର୍ଣ୍ଣ-ମୃତ୍ତିକାରୂପେ ଥାଇ । ଏରୂପେ ଆକାଶାଦି ଯେହି ।। ୩୧୪
ସେମାନେ କ୍ଷୟରେ ଏରୂପେ । ରହନ୍ତି ସତ୍ୟବ୍ରହ୍ମରୂପେ ।। ୩୧୫
ଅସତ୍ୟ ଅଟେ ଏ ଜଗତ । ମନମାତ୍ରରୁ ହେଲା ଜାତ ।। ୩୧୬
ଯେ ଏହା ସତ୍ୟ ବୋଲି ମଣି । ଅଜ୍ଞ ଅଟଇ ସେହୁ ପ୍ରାଣୀ ।। ୩୧୭
୩୮ ସେ ଜୀବ ଯେଣୁ ମାୟାବଳେ । ମାୟାକୁ ଭଜଇ ସେ କାଳେ ।। ୩୧୮
ଦେହ ଇନ୍ଦ୍ରିୟ ଆଦିଗଣ । ସେହେତୁ ଭଜିଣ ସେ ପୁଣ ।। ୩୧୯
ତଦନ୍ତେ ସେ ଦେହାଦିଙ୍କର । ଯେ ସ୍ଥୂଳକୃଶାଦି ପ୍ରକାର ।। ୩୨୦
ଯେ ଦୁଃଖ ସୁଖ ଆଦି ଆନ । ଭଜି ସେମାନଙ୍କୁ ବହନ ।। ୩୨୧
ଛାଡ଼ି ଆନନ୍ଦାଦି ରୂପକୁ । ଭଜଇ ଯାଇ ସଂସାରକୁ ।। ୩୨୨
ତୁମ୍ଭେ ଛାଡିଛ ସେ ମାୟାକୁ । ସର୍ପ ଯେସନେ ସ୍ୱଚର୍ମକୁ ।। ୩୨୩
ଭଜିଛ ଐଶ୍ୱର୍ଯ୍ୟକୁ ନିତି । ଯେ ଅଷ୍ଟ ଅଣିମାଦି ଭୂତି ।। ୩୨୪
ତେଣେ ଶୋଭାକୁ ଅଛ ଧରି । ଅନନ୍ତ ଐଶ୍ୱର୍ଯ୍ୟ ତୁମ୍ଭରି ।। ୩୨୫
୩୯ ହେ ଭଗବାନ ପ୍ରତିଜନ[3] । ହୃଦୟେ କରିଅଛ ସ୍ଥାନ ।। ୩୨୬
ସେ କାମମୂଳମାନ ଅତି । ନ ଉପାଡ଼ିଲେ ଯେତେ ଯତି ।। ୩୨୭
ସେହୁ ଅସାଧୁ ଯତିଙ୍କର । ତୁମ୍ଭେ ଥିଲେହେଁ ହୃଦୟର ।। ୩୨୮
ତୁମ୍ଭଙ୍କୁ ନ ଲଭନ୍ତି ସେହି । ଯେସନେ କଣ୍ଠେ ମଣି ଥାଇ ।। ୩୨୯
ତା' ପାସୋରଇ ଯଉଁ ନର । ସେ ମଣି ତାକୁ ହୋଏ ଦୂର ।। ୩୩୦
ଯେବଣ ଯୋଗିମାନେ ନିତି । କପଟେ ଇନ୍ଦ୍ରିୟ ରୁନ୍ଧନ୍ତି ।। ୩୩୧

୧. ଖାଦମିଶା ସୁନା । ୨. ଅକ୍ଷଯ୍ୟ = କ୍ଷୟଶୀଳ ନୁହେଁ । ୩. ପ୍ରତିଦିନ (ପାଠାନ୍ତର) ।

ସେମାନେ ଇହ ପରଲୋକେ । ସୁଖ ନ ପାନ୍ତି କାହିଁ ଏକେ ।। ୩୩୨
ଲୋକଙ୍କୁ କରି ଆରାଧନ । କ୍ଳେଶେ ଲଭନ୍ତି ଯେଉଁ ଧନ ।। ୩୩୩
ତା' ନାଶେ ଭୟକୁ ଲଭନ୍ତି । ଏ ଲୋକେ ସୁଖୀ ସେ ନୁହନ୍ତି ।। ୩୩୪
ନ ଜାଣି ତୁମ୍ଭ ସ୍ୱରୂପକୁ । ଲଭି ମାୟାରେ ବିଷୟକୁ ।। ୩୩୫
ଧର୍ମକୁ ଛାଡ଼ିଣ ନରକେ । ପଡ଼ନ୍ତି ପୁଣ ପରଲୋକେ ।। ୩୩୬
୪୦ ଆହେ ଈଶ୍ୱର ! ଯେଉଁ ନର । ତୁମ୍ଭଙ୍କୁ କରେ ସାକ୍ଷାତ୍‌କାର ।। ୩୩୭
ତୁମ୍ଭ ସ୍ୱକାଶୁଁ ଉତପନ୍ନ । ଯେ ଶୁଭାଶୁଭ କର୍ମମାନ ।। ୩୩୮
ତାଙ୍କର ଫଳପ୍ରାଏ ହୋଇ । ସୁଖଦୁଃଖାଦି ଛନ୍ତି ଯେହି ।। ୩୩୯
ତା' କିଛି ନ ଜାଣଇ ପୁଣି । ଦେହାଭିମାନୀ ଯେତେ ପ୍ରାଣୀ ।। ୩୪୦
ଯେତେକ ବାକ୍ୟ ତାହାଙ୍କର । ପ୍ରବୃତ୍ତି-ନିବୃତ୍ତି ପ୍ରକାର ।। ୩୪୧
ତାହା ନ କରଇ ଗୋଚର । ଏ କଥା ଯୁକ୍ତ ଅଟେ ତାର ।। ୩୪୨
ଯେଣୁ ତୁମ୍ଭଙ୍କୁ ପ୍ରତିଦିନ । ସର୍ବଯୁଗରେ ସର୍ବଜନ ।। ୩୪୩
ପରମେଶ୍ୱର ସେବ୍ୟ ଅତି । ଏରୂପେ ଯାହା ଗାଉଛନ୍ତି ।। ୩୪୪
ତା' ଯେ ଶୁଣଇ ହୃଦେ ତାର । ତୁମ୍ଭେଟି ରହି ନିରନ୍ତର ।। ୩୪୫
ମୋକ୍ଷସ୍ୱରୂପ ଗତି ହୋଇ । ତୁମ୍ଭେଟି ହୁଅ ତାଙ୍କ ଠାଇଁ ।। ୩୪୬
୪୧ ସ୍ୱର୍ଗାଦିଲୋକପତି ଯେତେ । ଅଛନ୍ତି ବ୍ରହ୍ମାଙ୍କ ପର୍ଯ୍ୟନ୍ତେ ।। ୩୪୭
ହେ ଭଗବାନ ଏ ତୁମ୍ଭର । ଅନ୍ତକୁ ଗୁଣମାନଙ୍କର ।। ୩୪୮
ଯାଇ ନ ପାରିଛନ୍ତି କେହି । ତୁମ୍ଭେ ତୁମ୍ଭର ଅନ୍ତକୁ ହିଁ ।। ୩୪୯
ଅନନ୍ତତ୍ୱରୁ ନାହଁ ଜାଣି । ତୁମ୍ଭର ରୋମକୂପେ ପୁଣି ।। ୩୫୦
ସପ୍ତ ଆବରଣ ସହିତେ । ବ୍ରହ୍ମାଣ୍ଡକୋଟିମାନ ଯେତେ ।। ୩୫୧
ଏମାନେ କରନ୍ତି ଭ୍ରମଣ । କାଳଚକ୍ରର ସହିତେଣ ।। ୩୫୨
ଆକାଶମଧ୍ୟରେ ଯେସନ । ଉଡ଼ନ୍ତି ରେଣୁଗଣମାନ ।। ୩୫୩
ଏଣୁ ଏ ସର୍ବଶ୍ରୁତିମାନେ । ତୁମ୍ଭ ଠାବରେ ପ୍ରତିଦିନେ ।। ୩୫୪
ବ୍ୟବସାୟକୁ ଆଚରନ୍ତି । ସାକ୍ଷାତେ ଜାଣି ନ ପାରନ୍ତି ।। ୩୫୫
ଜ୍ଞାତ-ଅଜ୍ଞାତ ଧର୍ମାଧର୍ମ । ଭୂତ-ଭବିଷ୍ୟ ଯେ ବା କର୍ମ ।। ୩୫୬
ଏମାନଙ୍କରୁ ତୁମ୍ଭେ ଆନ । ବ୍ରହ୍ମସ୍ୱରୂପେ ବିଦ୍ୟମାନ ।। ୩୫୭
ଏଣୁ ଏ ସର୍ବଶ୍ରୁତିମାନେ । ତୁମ୍ଭ ଠାବରେ ପ୍ରତିଦିନେ ।। ୩୫୮
ସମାପ୍ତ ହୋଇ ରହିଛନ୍ତି । ତୁମ୍ଭରେ ସଫଳ ଅଟନ୍ତି ।। ୩୫୯

ଶ୍ରୀଭଗବାନୁବାଚ

୪୨ ଶ୍ରୀଭଗବାନ ନାରାୟଣ । କହନ୍ତି ନାରଦଙ୍କୁ ପୁଣ ।। ୩୬୦
ଏରୂପେ ବ୍ରହ୍ମାଙ୍କ କୁମରେ । ସନକ ଆଦି ଋଷିବରେ ।। ୩୬୧
ଆତ୍ମାନୁଶାସନକୁ ପୁଣି । ଆତ୍ମାର ଗତିକି ହିଁ ଜାଣି ।। ୩୬୨
ଏଥୁ ଅନ୍ତରେ ସନନ୍ଦଙ୍କୁ । ସେ ସିଦ୍ଧେ କଲେ ପୂଜନକୁ ।। ୩୬୩

| | | | |
|---|---|---|---|
| ୪୩ | ଅଶେଷବେଦମାନଙ୍କରୁ । | ପୁରାଣ-ଉପନିଷଦରୁ | ।। ୩୬୪ |
| | ଏ ରସ ଏମନ୍ତ ରୂପରେ । | ଯେ ଜାତ ଅଟନ୍ତି ପୂର୍ବରେ | ।। ୩୬୫ |
| | ସେ ବ୍ୟୋମଚାରୀ ମହାତ୍ମାଏ । | ଉଦ୍ଧାର କରିଛନ୍ତି ସ୍ୱୟେଂ | ।। ୩୬୬ |
| ୪୪ | ଏ ଆତ୍ମଶିକ୍ଷାକୁ ଶ୍ରଦ୍ଧାରେ । | ମନରେ ଧରି ଯଥେଷ୍ଟରେ | ।। ୩୬୭ |
| | ହେ ବ୍ରହ୍ମସୁତ ତୁମ୍ଭେ ପୁଣ । | କର ଏ ପୃଥ୍ୱୀରେ ଭ୍ରମଣ | ।। ୩୬୮ |
| | ଏ ସର୍ବନରମାନଙ୍କର । | ନାଶକ ଅଟଇ କାମର | ।। ୩୬୯ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୪୫ | ଶୁକ କହନ୍ତି ଏ ଉଦନ୍ତ[୧] । | ସେ ଆତ୍ମଜ୍ଞାନୀ ବ୍ରହ୍ମସୁତ | ।। ୩୭୦ |
| | ସେ ଗୁରୁ ଏମନ୍ତ ରୂପରେ । | ଯା' ଆଜ୍ଞା ଦେଲେ ତା' ଶ୍ରଦ୍ଧାରେ | ।। ୩୭୧ |
| | ତା' କୃତକୃତ୍ୟ ହୋଇ କରି । | ଶୁଣିଲା ଅର୍ଥ ମନେ ଧରି | ।। ୩୭୨ |
| | ସେ ମହାମୁନି ବୀରବ୍ରତ[୨] । | ହେ ନୃପ ! କହିଲେ ଏମନ୍ତ | ।। ୩୭୩ |

ଶ୍ରୀନାରଦ ଉବାଚ

| | | | |
|---|---|---|---|
| ୪୬ | ନିର୍ମଳ କୀର୍ତ୍ତି ଯାହାଙ୍କର । | ଯେ ସର୍ବ ପ୍ରାଣିମାନଙ୍କର | ।। ୩୭୪ |
| | ମୋକ୍ଷ ହୋଇବା ଅର୍ଥେ ଭଲେ । | ଉଶତୀ[୩] କଳାକୁ ଧଇଲେ | ।। ୩୭୫ |
| | ସେ ଭଗବାନ ଶ୍ରୀକୃଷ୍ଣଙ୍କୁ । | ମୁଁ କରୁଅଛି ପ୍ରଣାମକୁ | ।। ୩୭୬ |
| ୪୭ | ଯେ ଆଦ୍ୟ ଋଷି ନାରାୟଣ । | ତାଙ୍କୁ ଶିଷ୍ୟଙ୍କ ସହିତେଣ | ।। ୩୭୭ |
| | ଏ ରୂପେ କରି ଦଣ୍ଡବତ । | ସେ ମହାମନା[୪] ବ୍ରହ୍ମାସୁତ | ।। ୩୭୮ |
| | ସେ ଆଶ୍ରମରୁ ଚଳିଯାଇ । | [୫]ସାକ୍ଷାତ ଆତ୍ମ ପିତା ଯେହି | ।। ୩୭୯ |
| | ସେ ବ୍ୟାସଙ୍କର ଆଶ୍ରମରେ । | ପ୍ରବେଶ ହେଲେ ସେ କାଳରେ | ।। ୩୮୦ |
| ୪୮ | ସେ ଭଗବାନ ବ୍ୟାସ ତାଙ୍କୁ । | କରନ୍ତେ ଉତ୍ତମ ପୂଜାକୁ | ।। ୩୮୧ |
| | ତହିଁ ନାରଦ ମହାଋଷି । | ଉତ୍ତମ ଆସନରେ ବସି | ।। ୩୮୨ |
| | ସେ ନାରାୟଣମୁଖୁଁ ଯାହା । | ଶୁଣିଲେ ସେହିରୂପେ ତାହା | ।। ୩୮୩ |
| | ସେ ବେଦବ୍ୟାସଙ୍କ ଆଗରେ । | ବର୍ଣ୍ଣନା କଲେ ସେ କାଳରେ | ।। ୩୮୪ |
| ୪୯ | ବ୍ୟାସଙ୍କ ମୁଖୁଁ ଏ ଚରିତ । | ଆମ୍ଭେ ଶୁଣିଛୁଁ ପରୀକ୍ଷିତ | ।। ୩୮୫ |
| | ତୁମ୍ଭେ ଯା' ପୁଛିଲ ଆମ୍ଭଙ୍କୁ । | ବର୍ଣ୍ଣିଲୁଁ ସେ ଏ ଚରିତକୁ | ।। ୩୮୬ |
| | ନିର୍ଦ୍ଦେଶଶୂନ୍ୟ ଅଟେ ଯେହି । | ଯେ ପୁଣ ନିର୍ଗୁଣ ଅଟଇ | ।। ୩୮୭ |
| | ଏମନ୍ତ ବ୍ରହ୍ମରେ ଯେସନେ । | ମନ ଚରଇ ପ୍ରତିଦିନେ | ।। ୩୮୮ |
| ୫୦ | ଯେ ଏ ବିଶ୍ୱର ଉତ୍‌ପ୍ରେକ୍ଷକ । | ଜନ୍ମ-ପାଳନ-ନାଶେ ଏକ | ।। ୩୮୯ |

---

୧. ଉଦନ୍ତ = ସଂବାଦ ।　　୨. ନୈଷ୍ଠିକ ।　　୩. କମନୀୟ ।

୪. 'ମହାତ୍ମନଃ' ଇତି ପାଠେ ''ମହାମନାଃ'' ଇତି ପାଠାନ୍ତରମ୍ ।

୫. ସାକ୍ଷାତ = ମାତୃସଂପର୍କ ବିନା । ଅଗ୍ନିମନ୍ଥନ ଅବସରରେ ଅରଣିରେ କଥଂଚିତ୍ ପତିତ ରେତକୁ ବ୍ୟାସ ମନ୍ଥନ କଲେ । ସେତେବେଳେ ତହିଁରୁ ଶୁକ ଉତ୍ପନ୍ନ ହେଲେ ବୋଲି କୁହାଯାଏ (ସ୍ୱାମୀ) ।

ପ୍ରକୃତି-ପୁରୁଷ ଦୁଇର । ଉପରେ ଯେ ପୁଣ ଈଶ୍ୱର ॥ ୩୯୦
ଯେ ସୃଷ୍ଟି ସର୍ଜନା କରିଣ । ଜୀବକୁ ସଙ୍ଗତେ ଘେନିଣ ॥ ୩୯୧
ପ୍ରବେଶ ହୋଇ ଏଥି ରହି । ଦେହମାନଙ୍କୁ କଲେ ଯେହି ॥ ୩୯୨
ସେ ଦେହମାନଙ୍କୁ ହିଁ ପୁଣ । କରନ୍ତି ଯେ ପରିପୋଷଣ ॥ ୩୯୩
ଜୀବ ଯାହାକୁ ପାଇ କରି । ଅବିଦ୍ୟା ପକାଏ ସଂହାରି ॥ ୩୯୪
ଶୋଇଲା ଲୋକକୁ ଯେସନେ । ଦେଖନ୍ତି ଅନ୍ୟ ଲୋକମାନେ ॥ ୩୯୫
ସେ ନ ଦେଖଇ ଆପଣାକୁ । ସେରୂପେ ଜୀବନ ମୁକ୍ତକୁ ॥ ୩୯୬
ଦେଖନ୍ତି ଅନ୍ୟେ ଦେହବନ୍ତ । ସେ କିଛି ନ ଦେଖେ ସାକ୍ଷାତ ॥ ୩୯୭
ସେ ଶ୍ରୀହରିଙ୍କି ଏ ରୂପରେ । ଧ୍ୟାନ କରୁଛି ନିରନ୍ତରେ ॥ ୩୯୮
ସଂସାର ନିବର୍ତ୍ତାନ୍ତି ସେହି । ନିଜ ସ୍ୱରୂପକୁ ଦେଖାଇ ॥ ୩୯୯
ମାୟାକୁ ସେ ସ୍ୱୟେଂ ଆବର । କରନ୍ତି ନିତ୍ୟେ ତିରସ୍କାର ॥ ୪୦୦
ବେଦେ ଯାହାଙ୍କୁ କଲେ ସ୍ତୁତି । ସେ କୃଷ୍ଣପାଦପଦ୍ମ ଚିନ୍ତି ॥ ୪୦୧
ବ୍ରାହ୍ମଣଦୀନବନ୍ଧୁ ମନ । ହରଷ ହେଲା ଅନୁଦିନ ॥ ୪୦୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ବେଦସ୍ତୁତିର୍ନାମ
ସପ୍ତାଶୀତିତମୋଽଧ୍ୟାୟଃ ।

## ଅଷ୍ଟାଶୀତିତମ ଅଧ୍ୟାୟ

ଅଷ୍ଟାଶୀତିତମେ ବିଷ୍ଣୁଭକ୍ତଃ କୈବଲ୍ୟମଶ୍ନୁତେ ।
ତତୋଽର୍ବାଗ୍ ଦେବଭକ୍ତସ୍ତୁ ବିଭୂତିମିତି ବର୍ଣ୍ୟତେ ॥

ଶ୍ରୀରାଜୋବାଚ

୧ ପୁଣି ସେ ଶୁକଙ୍କୁ ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ॥ ୧
୨ ଯେ ଦେବ-ଅସୁର-ମନୁଷ୍ୟେ । ଏହାଙ୍କ ମଧ୍ୟେ ଯେ ପୁରୁଷେ ॥ ୨
ଛାଡ଼ିଲେ ଯେ ସର୍ବଭୋଗକୁ । ଭଜନ୍ତି ସେ ସଦାଶିବଙ୍କୁ ॥ ୩
ପ୍ରାୟଶଃ ଧନ ସେ ଲଭନ୍ତି । ଉତ୍ତମ ଭୋଗକୁ ଭୁଞ୍ଜନ୍ତି ॥ ୪
ଯେ ହରି ଲକ୍ଷ୍ମୀ-ଅଧିପତି । ତାଙ୍କୁ ଭଜିଲେ ତା' ନ ପାନ୍ତି ॥ ୫
ଏକଥା ଜାଣିମାକୁ ମୋର । ଇଚ୍ଛା ହେଉଛି ବଳୀୟାର ॥ ୬
ସନ୍ଦେହ ହେଲା ଏଥି ଜାତ । ବିରୁଦ୍ଧ ଯାହାଙ୍କ ଚରିତ ॥ ୭
ସେ ହରି-ହରଙ୍କୁ ଏମନ୍ତେ । ଭଜନ କରନ୍ତି ବା ଯେତେ ॥ ୮
ଗତି ସେ ଲୋକମାନଙ୍କର । ହୁଅଇ ବିରୁଦ୍ଧ ପ୍ରକାର ॥ ୯

ଶ୍ରୀଶୁକ ଉବାଚ

୩ ରାଜା ପଚାରନ୍ତେ ଏମନ୍ତେ । କହୁଅଛନ୍ତି ବ୍ୟାସସୁତେ ॥ ୧୦
ଶିବ ଯେ ସୃଷ୍ଟିର ପୂର୍ବରେ । ସଂଯୁତ ଅଟନ୍ତି ଶକ୍ତିରେ ॥ ୧୧
ହୁଅନ୍ତେ ତ୍ରିଗୁଣକ୍ଷୋଭିତ । ତ୍ରିଲିଙ୍ଗ[୧] ହୁଅନ୍ତି ସାକ୍ଷାତ ॥ ୧୨
ସୃଷ୍ଟି ହୁଅନ୍ତେ ପୁଣ ଜାତ । ଗୁଣେ ସେ ହୁଅନ୍ତି ସଂବୃତ ॥ ୧୩
ପୁଣି ସେ ତମ ଅହଂକାର । ହୁଅଇ ତିନି ପରକାର ॥ ୧୪
ଯେ [୨]ବୈକାରିକ ଯେ [୩]ତୈଜସ । ଆବର ଯେ ଅଟେ ତାମସ ॥ ୧୫
୪ ସେ ଅହଙ୍କାରରୁ ଆବର । ହୁଅନ୍ତି ଷୋଡ଼ଶ ବିକାର ॥ ୧୬
ଏ ବିକାରମାନଙ୍କେ ନର । ସର୍ବବିଭୂତିମାନଙ୍କର ॥ ୧୭
ମଧ୍ୟରେ କେହୁଣି ବିଭୂତି । ଭଜନ୍ତେ ଲଭଇ ତା' ଗତି ॥ ୧୮
୫ ହରି ଯେ ଅଟନ୍ତି ନିର୍ଗୁଣ । ସାକ୍ଷୀ ପୁରୁଷ ଋଷି ପୁଣ ॥ ୧୯
ସାକ୍ଷାତ ପ୍ରକୃତିରୁ ପର । ସମସ୍ତ ଦେଖନ୍ତି ଆବର ॥ ୨୦
ତାହାଙ୍କୁ ଭଜଇ ଯେ ଜନ । ବିନାଶେ ସେ ଭବବନ୍ଧନ ॥ ୨୧
୬ ଯେ ପିତାମହଟି ତୁମ୍ଭର । ସେ ମହାରାଜା ଯୁଧିଷ୍ଠିର ॥ ୨୨
ସେ ଅଶ୍ୱମେଧ ଯାଗମାନ । ନିବୃତ୍ତ ହୁଅନ୍ତେ ହେ ରାଜନ ॥ ୨୩
ଶୁଣନ୍ତେ ଭଗବଦ୍ଧର୍ମକୁ । ଏହା ପଚାରିଲେ କୃଷ୍ଣଙ୍କୁ ॥ ୨୪
୭ ମଙ୍ଗଳ ଅର୍ଥେ ଜନଙ୍କର । ଯେ ଯଦୁକୁଳେ ଅବତାର ॥ ୨୫
ସେ ମହାପ୍ରଭୁ ଭଗବାନ । ଅତିପ୍ରୀତିରେ ହେ ରାଜନ ॥ ୨୬
ଶୁଶ୍ରୂଷୁ ସେ ଯୁଧିଷ୍ଠିରଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୨୭

ଶ୍ରୀଭଗବାନୁବାଚ

୮ ଯୁଧିଷ୍ଠିରଙ୍କୁ ଏ ବଚନ । କହୁଅଛନ୍ତି ଭଗବାନ ॥ ୨୮
କରଇ ଅନୁଗ୍ରହ ଯାକୁ । ଅଳ୍ପ ଅଳପ ତା' ଧନକୁ ॥ ୨୯
ହରି ନିଅନ୍ତେ ପୁଣ ପୁଣ । ଯେତେ ତାହାର ବନ୍ଧୁଗଣ ॥ ୩୦
ସେ ଅଧନକୁ ଛାଡ଼ିଯାନ୍ତି । ଦୁଃଖେ ସେ ଦୁଃଖୀ ହୋଏ ଅତି ॥ ୩୧
୯ ବନ୍ଧୁଙ୍କ ଆଗ୍ରହରେ ସେହି । ଧନ-ଅର୍ଜନେ ପ୍ରବର୍ତ୍ତଇ ॥ ୩୨
ମୋ' ଅନୁଗ୍ରହେ ସେ ଉଦ୍‌ଯୋଗ । ନିଷ୍ଫଳ ହୁଅନ୍ତେ ସେ ବେଗ ॥ ୩୩
ନିର୍ବିଣ୍ଣ ହୋଇ ସେ କାଳରେ । ମୋ' ଭକ୍ତଜନଙ୍କ ସଙ୍ଗରେ ॥ ୩୪
କରନ୍ତେ ସେ ମିତ୍ରଭାବକୁ । କରଇ ତା' ଅନୁଗ୍ରହକୁ ॥ ୩୫
୧୦ ସତ୍ୟ ଅନନ୍ତ ଜ୍ଞାନ ହୋଇ । ସୂକ୍ଷ୍ମ ପରମ ବ୍ରହ୍ମ ମୁହିଁ ॥ ୩୬
ଆତ୍ମରୂପରେ ଜାଣି ଧୀର । ସଂସାରୁ ମୁକ୍ତ ହୁଏ ନର ॥ ୩୭
୧୧ ମୋତେ ଆରାଧି ନ ପାରନ୍ତେ । ସେହେତୁ ଛାଡ଼ି କରି ମୋତେ ॥ ୩୮

---

୧. ତ୍ରିଲିଙ୍ଗ = ତ୍ରିଗୁଣ ଦ୍ୱାରା କ୍ଷୋଭିତ । ୨. ବୈକାରିକ = ସାତ୍ତ୍ୱିକ । ୩. ତୈଜସ = ରାଜସିକ ।

ଅନ୍ୟ ଦେବଙ୍କୁ ଏ ସଂସାରେ । ଭଜନ କରୁଥାନ୍ତି ନରେ ॥ ୩୯
ସେ ଦେବମାନେ ସେ କାଳରେ । ସନ୍ତୋଷ ହୁଅନ୍ତେ ଶୀଘ୍ରରେ ॥ ୪୦
ତାହାଙ୍କ ଠାରୁ ବର ପାଇ । ରାଜ୍ୟ ସଂପଦେ ମତ୍ତ ହୋଇ ॥ ୪୧
ପ୍ରମତ୍ତ ହୋଇଣ ଗର୍ବରେ । ସେ ବରଦାତା ଯେଉଁ ସୁରେ ॥ ୪୨
ତାହାଙ୍କୁ ଅବଜ୍ଞା କରନ୍ତି । ଆବର ପାସୋରି ପକାନ୍ତି ॥ ୪୩

ଶ୍ରୀଶୁକ ଉବାଚ

୧୨ କହନ୍ତି ବ୍ୟାସଙ୍କ ଆତ୍ମଜ । ହେ ପରୀକ୍ଷିତ ମହାରାଜ ॥ ୪୪
ଶାପପ୍ରସାଦ ବେନିଠାରେ । ବ୍ରହ୍ମା ବିଷ୍ଣୁ ଶିବାଦି ସୁରେ ॥ ୪୫
ପ୍ରଭୁ ଅଟନ୍ତି ତଥାପି ହି । ବ୍ରହ୍ମା ଶଙ୍କର ଦେବ ଦୁଇ ॥ ୪୬
ତତ୍‌କାଳ ଶାପକୁ ଦିଅନ୍ତି । ଅନୁଗ୍ରହକୁ ହିଁ କରନ୍ତି ॥ ୪୭
ଯେ ଭଗବାନ ନାରାୟଣ । ଏ ରୂପେ ନୁହନ୍ତି ସେ ପୁଣ ॥ ୪୮
୧୩ ଏହି ବିଷୟେ ପୁରାତନ । କହନ୍ତି ଏ ଚରିତ ଜନ ॥ ୪୯
ବୃକାସୁରକୁ ଦେଇ ବର । ସଂକଟ ଲଭିଲେ ଶଙ୍କର ॥ ୫୦
୧୪ ଦୁଷ୍ଟ ଅଟଇ ବୁଦ୍ଧି ଯାର । ଶକୁନିସୁତ ବୃକାସୁର ॥ ୫୧
ମାର୍ଗେ ଦେଖିଣ ନାରଦଙ୍କୁ । ପୁଛିଲା ଏମନ୍ତ ବାକ୍ୟକୁ ॥ ୫୨
ଯେ ବ୍ରହ୍ମା ବିଷ୍ଣୁ ମହାଦେବ । ଏ ତିନିଙ୍କରେ ଯେଉଁ ଦେବ ॥ ୫୩
ସେବା କରନ୍ତେ ଜନେ ନିତି । ତତ୍‌କାଳ ସଂତୋଷ ହୁଅନ୍ତି ॥ ୫୪
୧୫ ନାରଦ କହିଲେ ଦୈତ୍ୟକୁ । ଯାଅ ତୁ ଗିରିଶଙ୍କ ଠାକୁ ॥ ୫୫
ତତ୍‌କାଳ ସିଦ୍ଧ ହେବୁ ତୁହି । ଯେ ଅଳ୍ପ ଗୁଣ ଦୋଷ ଦୁଇ ॥ ୫୬
ତହିଁ ତତ୍‌କାଳ ଉମାପତି । ସଂତୋଷ କ୍ରୋଧକୁ କରନ୍ତି ॥ ୫୭
୧୬ ବନ୍ଦୀ ଜନର ପ୍ରାୟ ହୋଇ । ରାବଣ ବାଣାସୁର ଦୁଇ ॥ ୫୮
ଶିବଙ୍କୁ କରନ୍ତେ ସେ ସ୍ତୁତି । ସଂତୋଷ ହେଲେ ପଶୁପତି ॥ ୫୯
ପୂଜା ଆଦିରେ ଦୈତ୍ୟ ଦୁଇ । [୧]ଉତ୍ତମ ଅର୍ଘ୍ୟମାନ ଦେଇ ॥ ୬୦
ରାବଣ କୈଳାସ ତାଡ଼ିଲା । ପୁରପାଳକ ବାଣ ହେଲା ॥ ୬୧
୧୭ ନାରଦ କହନ୍ତେ ଏମନ୍ତ । ଶିବଙ୍କ ଠାକୁ ଧାଇଁ ଦୈତ୍ୟ ॥ ୬୨
କେଦାର କ୍ଷେତ୍ରରେ ମିଳିଣ । ସ୍ୱଦେହୁଁ ମାଉଁସ କାଟିଣ ॥ ୬୩
ଉଦ୍ଦେଶି ଦେବ ଶଙ୍କରଙ୍କୁ । ଅଗ୍ନିରେ କଲା ସେ ହୋମକୁ ॥ ୬୪
୧୮ ପ୍ରସନ୍ନ ନ ହୁଅନ୍ତେ ହର । ସପ୍ତମ ଦିନେ ସେ ଅସୁର ॥ ୬୫
ଅତି ନିର୍ବେଦ ହୋଇ ତହିଁ । [୨]ଫିଟି ଅଛନ୍ତି କେଶ ଯହିଁ ॥ ୬୬
ଶସ୍ତ୍ରେ ସେ ନିଜ ମସ୍ତକକୁ । ଉଦ୍ୟମ କଲା କାଟିବାକୁ ॥ ୬୭

---

୧. 'ଅତୁଳ ଐଶ୍ୱର୍ଯ୍ୟକୁ ଦେଇ' । ୨. 'ସେ ତୀର୍ଥେ ଆର୍ଦ୍ର କେଶ ଯହିଁ' ।

୧୯ ପରମ ଦୟାଳୁ ସେ ହର । ଅଗ୍ନିରୁ ହୋଇଲେ ବାହାର ।। ୬୮
ଦିଶନ୍ତି ଅଗ୍ନିପ୍ରାଏ ତେଜେ । ଦୈତ୍ୟକୁ ଧରି ବେନି ଭୁଜେ ।। ୬୯
ତା' ଚେଷ୍ଟା ବେନିଭୁଜେ ପୁଣ । ସେକାଳେ କଲେ ନିବାରଣ ।। ୭୦
ଦୁଃଖେ ମରିବାକୁ ଯା' ମନ । ଆମ୍ଭେ ସେ ଜନକୁ ଯେସନ ।। ୭୧
ଶିବ ଛୁଅଁନ୍ତେ ସେ ଦୈତ୍ୟର । ସଂପୂର୍ଣ୍ଣ ହୋଇଲା ଶରୀର ।। ୭୨
୨୦ ଏମନ୍ତ ଦୈତ୍ୟକୁ ଶଙ୍କର । କହିଲେ ଆରେ ବୃକାସୁର ।। ୭୩
ଏ ତପମାନ ବ୍ୟର୍ଥ ତୋର । ମୋତେ ତୁ ମାଗ ବେଗ ବର ।। ୭୪
ଯାହା ମାଗିବୁ ଯେଉଁ ରୂପେ । ତୋତେ ମୁଁ ଦେବି ସେହି ରୂପେ ।। ୭୫
ପ୍ରାୟଶଃ ମୋତେ ଯଉଁ ନରେ । ଜଳମାତ୍ରକେ ପୂଜା କରେ ।। ୭୬
ତାଙ୍କୁ ମୁଁ ସଂତୋଷ ହୁଅଇ । ବୃଥା ଦେହକୁ ନାଶୁ ତୁହି ।। ୭୭
୨୧ ପାପିଷ୍ଠ ଯେ ବୃକ ଅସୁର । ବରିଲା ଶିବଠାରୁ ବର ।। ୭୮
ପ୍ରାଣିମାନଙ୍କର ସଂତତ । ଯହିଁରୁ ଭୟ ହୋଏ ଜାତ ।। ୭୯
ଯାହାର ଯାହାର ମୁଣ୍ଡରେ । ହସ୍ତ ମୁଁ ଦେବି ନେଇ ଥରେ ।। ୮୦
ସେହି କ୍ଷଣରେ ସେହି ଜନ । ଛାଡ଼ିବ ନିଜ ପ୍ରାଣମାନ ।। ୮୧
୨୨ ଦୈତ୍ୟ ମାଗିଲା ଯଉଁ ବର । ଶୁଣି ତା' ଭଗବାନ ହର ।। ୮୨
ଦୁର୍ମନା ହୋଇ ହେ ରାଜନ । ସ୍ୱୀକାର କରି ତା' ବଚନ ।। ୮୩
ହସିଣ ସେ ବୃକାସୁରକୁ । ଦେଲେ ତା' ମାଗିଲା ବରକୁ ।। ୮୪
ସର୍ପକୁ ମନୁଷ୍ୟ ଯେସନ । କରାଇ ଦିବ୍ୟ କ୍ଷୀରପାନ ।। ୮୫
୨୩ ସେ ବର ପରୀକ୍ଷା ଅର୍ଥରେ । ଅସୁର ଶିବମସ୍ତକରେ ।। ୮୬
ଦେବାକୁ ନିଜ ହସ୍ତ ନେଇ । ଆରମ୍ଭ କଲା ନିଶ୍ଚେ ତହିଁ ।। ୮୭
ଶିବଙ୍କ ପତ୍ନୀ ଯେ ଗଉରୀ । ତାଙ୍କୁ ହରିବାକୁ ବିଚାରି ।। ୮୮
ଆପଣା ଦେଲା ବର ଯେହୁ । ଭୟ ପାଇଲେ ଶିବ ତହୁଁ ।। ୮୯
୨୪ ଦୈତ୍ୟ ହୁଅନ୍ତେ ଉପଗତ । ତ୍ରସ୍ତ ହୋଇଲେ ଉମାକାନ୍ତ ।। ୯୦
କଂପୁଛି ନିଜ କଳେବର । ଭୂମି ଆକାଶ ବେନିଙ୍କର ।। ୯୧
ଯେତେକ ଅନ୍ତର ମଧ୍ୟରେ । ସମସ୍ତ ଦିଗମାନଙ୍କରେ ।। ୯୨
ତହିଁ ସେ ଅସୁରଭୟରୁ । ଧାଇଁଲେ ଉତ୍ତର ଦିଗରୁ ।। ୯୩
୨୫ ଯେତେକ ଥିଲେ ସୁରେଶ୍ୱର । କେହି ନ ଜାଣି ପ୍ରତିକାର ।। ୯୪
ତୁନି ହୋଇଲେ ସର୍ବେ ପୁଣ । ସେହେତୁ ଶଙ୍କର ଧାଇଁଣ ।। ୯୫
ଭାସ୍ୱର ତମ-ପାର ଯେହି । ସେ ଶ୍ୱେତଦ୍ୱୀପେ ହେଲେ ଯାଇ ।। ୯୬
୨୬ ଦଣ୍ଡକୁ ଛାଡ଼ିଲେ ଯେ ନିତି । ଯେ ଅତି ଶାନ୍ତ ହିଁ ଅଟନ୍ତି ।। ୯୭
ଯହିଁ ସେ ଯୋଗିଙ୍କର ପୁଣ । ପରମ ଗତି ନାରାୟଣ ।। ୯୮
ଯଉଁ ସ୍ଥାନକୁ କେହି ଯାଇ । ଲେଉଟି ଆଉ ନ ଆସଇ ।। ୯୯

୨୭ | ତେମନ୍ତ ବ୍ୟସନକୁ ପାଇ । ଦୈତ୍ୟ ଆସନ୍ତେ ଦୂରୁ ଚାହିଁ ॥ ୧୦୦
୨୮ | ପାପନାଶନ ଭଗବାନ । ସ୍ୱଯୋଗମାୟାରେ ବହନ ॥ ୧୦୧
ବ୍ରାହ୍ମଣଶିଶୁ ହୋଇ କରି । ମେଖଳାଜିନ ଦଣ୍ଡଧାରୀ ॥ ୧୦୨
ତେଜରେ ଅଗ୍ନିର ସଦୃଶ । ବେନି ହସ୍ତରେ ଧରି କୁଶ ॥ ୧୦୩
ଦୈତ୍ୟର ଅଭିମୁଖେ ରହି । କହିଲେ ଦୀନପ୍ରାୟେ ହୋଇ ॥ ୧୦୪

ଶ୍ରୀଭଗବାନୁବାଚ

୨୯ ହେ ବୃକ ଶକୁନିର ସୁତ । ତୁ ନିଶ୍ଚେ ହୋଇଅଛୁ ଶ୍ରାନ୍ତ ॥ ୧୦୫
ଦୂରରୁ ଆସିଛୁ ସତ୍ୱର । କ୍ଷଣେ ବିଶ୍ରାମ ଏଥି କର ॥ ୧୦୬
ଯେ ଦିଏ ସର୍ବକାମନାକୁ । ପୀଡ଼ା ନ ଦିଅ ସେ ଦେହକୁ ॥ ୧୦୭
୩୦ ହେ ଦୈତ୍ୟ ବ୍ୟବସାୟ ତୋର । ଯଦି ଶୁଣିମାଯୋଗ୍ୟ ମୋର ॥ ୧୦୮
ବେଗେ ତା' କହ ମୋ' ଆଗର । ଯେଣୁ ହେ ସମର୍ଥ ଅସୁର ॥ ୧୦୯
ପୁରୁଷମାନଙ୍କୁ ଧରିଣ । ସ୍ୱାର୍ଥସାଧନେ ତୁମ୍ଭ ମନ ॥ ୧୧୦

ଶ୍ରୀଶୁକ ଉବାଚ

୩୧ ସେ ଭଗବାନ ଏ ରୂପରେ । ଅମୃତବର୍ଷି ବଚନରେ ॥ ୧୧୧
ପ୍ରଶ୍ନ କରନ୍ତେ ସେ ଅସୁର । କ୍ଳାନ୍ତି ହୁଅନ୍ତେ ଗତ ତାର ॥ ୧୧୨
ଯଥାର୍ଥେ ପୂର୍ବ ପ୍ରସଙ୍ଗକୁ । ସମସ୍ତ କହିଲା କୃଷ୍ଣଙ୍କୁ ॥ ୧୧୩

ଶ୍ରୀଭଗବାନୁବାଚ

୩୨ ଏମନ୍ତ ଯେବେ ହେ ଅସୁର । ତେବେ ବାକ୍ୟକୁ ସେ ଶିବର ॥ ୧୧୪
ଆମ୍ଭେ ତ ଶ୍ରଦ୍ଧା ପାଉନାହୁଁ । ପୂର୍ବୁଁ ଦକ୍ଷର ଶାପେ ଯେହୁ ॥ ୧୧୫
ପିଶାଚପ୍ରାୟେ ବୃତ୍ତି ତାର । ସେ ପ୍ରେତ-ପିଶାଚ-ଈଶ୍ୱର ॥ ୧୧୬
୩୩ ଜଗତଗୁରୁ ଶିବଠାରେ । ହେ ଦୈତ୍ୟଶ୍ରେଷ୍ଠ ! ଏ ରୂପରେ ॥ ୧୧୭
ଯେବେ ବିଶ୍ୱାସ ହେଲା ତୋର । ନିଜ ମସ୍ତକରେ ସତ୍ୱର ॥ ୧୧୮
ଦେଇଣ ଆପଣା କରକୁ । ବୁଝ ସେ ଶିବଙ୍କ ବାକ୍ୟକୁ ॥ ୧୧୯
୩୪ ସେ ଶିବଙ୍କର ହେ ଦାନବ । ଯେବେ ବଚନ ମିଥ୍ୟା ହେବ ॥ ୧୨୦
ସେ ମିଥ୍ୟାବକ୍ତାଙ୍କୁ ତଦନ୍ତେ । ବିନାଶ କର ତୁ ତୁରିତେ ॥ ୧୨୧
ଏ ମିଥ୍ୟାକଥାକୁ ସେ ଶିବ । ଆଉ ଯେମନ୍ତେ ନ ଭାଷିବ ॥ ୧୨୨
୩୫ ଏ ରୂପେ ସେ ଭଗବାନର । ରମ୍ୟ ଭ୍ରାମକ ଯେଉଁ ଗିର ॥ ୧୨୩
ତେଣେ ତା' ବୁଦ୍ଧି ହେଲା ହତ । ହୋଇ ସେ ବିସ୍ମୃତ ଅତ୍ୟନ୍ତ ॥ ୧୨୪
କୁବୁଦ୍ଧି ଦୈତ୍ୟ ନିଜ ଶିରେ । ହସ୍ତକୁ ଦେଲା ସେ କାଳରେ ॥ ୧୨୫
୩୬ ଏଥୁ ଅନ୍ତରେ ସେ ଅସୁର । ଫାଟନ୍ତେ ଆପଣାର ଶିର ॥ ୧୨୬
ହତ ହେଲା ପ୍ରାୟ ବଜ୍ରରେ । ତତ୍‌କ୍ଷଣେ ପଡ଼ିଲା ଭୂମିରେ ॥ ୧୨୭

| | | | | |
|---|---|---|---|---|
| | ଆକାଶେ ହେଲା ସାଧୁ ଶବ୍ଦ | । ଜୟ ଶବଦ ନମଃ ଶବ୍ଦ | ।। | ୧୨୮ |
| ୩୭ | ସେ ପାପୀ ବୃକ ସେ କାଳରେ | । ହତ ହୁଅନ୍ତେ ଆକାଶରେ | ।। | ୧୨୯ |
| | ଦେବର୍ଷି ପିତୃଗଣମାନ | । ଯେ ବା ଗନ୍ଧର୍ବମାନେ ଆନ | ।। | ୧୩୦ |
| | ଏ ସର୍ବେ ପୁଷ୍ପବୃଷ୍ଟି କଲେ | । ସଂକଟୁଁ ଶିବ ମୁକ୍ତ ହେଲେ | ।। | ୧୩୧ |
| ୩୮ | ପୁରୁଷୋତ୍ତମ ସେ ଶ୍ରୀହରି | । ଶିବଙ୍କୁ ସଂକଟୁ ଉଦ୍ଧରି | ।। | ୧୩୨ |
| ୩୯ | ଯାଇ ସେ ଶିବଙ୍କ ପାଶକୁ | । କହିଲେ ଏମନ୍ତ ବାକ୍ୟକୁ | ।। | ୧୩୩ |
| | ହେ ଦେବଦେବ ମହାଦେବ | । ଦେଖ ଅତି ଆଶ୍ଚର୍ଯ୍ୟଭାବ | ।। | ୧୩୪ |
| | ପାପିଷ୍ଠ ସେ ବୃକ ଦଇତ | । ନିଜ ପାପରେ ହେଲା ହତ | ।। | ୧୩୫ |
| | ହେ ଈଶ ! ବଡ଼ ଲୋକଠାରେ | । ପାପ ଆଚରି ଏ ସଂସାରେ | ।। | ୧୩୬ |
| | ହିତ ଲଭିବ କେଉଁ ନର | । ଯେ ପୁଣି ଗୁରୁ ଜଗତର | ।। | ୧୩୭ |
| | ସେ ବିଶ୍ୱ-ଈଶ ତୁମ୍ଭ ଠାଇଁ | । ଅପରାଧକୁ କଲା ଯେହି | ।। | ୧୩୮ |
| | ତାର ମଙ୍ଗଳ କି ହୋଇବ | । ଏଥି କି କହିବା ହେ ଶିବ | ।। | ୧୩୯ |
| ୪୦ | ମନ-ବଚନ ଅଗୋଚର | । ଶକ୍ତିର ଯେ ଅଟେ ସାଗର | ।। | ୧୪୦ |
| | ଯେ ପରମାତ୍ମା ରୂପେ ଖ୍ୟାତ | । ସେ ଶ୍ରୀକୃଷ୍ଣର ଏ ଚରିତ | ।। | ୧୪୧ |
| | ଶିବଙ୍କ ମୋକ୍ଷ ଯେ କହଇ | । ଯେ ଅବା ପଢ଼ଇ ଶୁଣଇ | ।। | ୧୪୨ |
| | ମୋକ୍ଷ ସେ ହୁଅଇ ସଂସାରୁ | । ସେରୂପେ ଶତ୍ରୁମାନଙ୍କରୁ | ।। | ୧୪୩ |
| | ଶ୍ରୀକୃଷ୍ଣଚରଣ ସରୋଜ | । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୪୪ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶିବମୋକ୍ଷଣଂ ନାମ
ଅଷ୍ଟାଶୀତିତମୋଽଧ୍ୟାୟଃ ।।

## ଏକୋନନବତିତମ ଅଧ୍ୟାୟ

ନବାଶୀତିତମେ ଦେବଃ କୋ ମହାନିତି ସଂଶୟେ ।
ପରୀକ୍ଷ୍ୟ ବିଷ୍ଣୋରୁତ୍କର୍ଷଂ ମୁନିଭ୍ୟୋଽବର୍ଣ୍ଣୟଦ୍‌ଭୃଗୁଃ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ବ୍ୟାସଙ୍କ କୁମର | । ହେ ପରୀକ୍ଷିତ ଦଣ୍ଡଧର | ।। | ୧ |
| | ସରସ୍ୱତୀର ତଟେ ବସି | । ଋଷିଏ ଯଜ୍ଞ କଲେ ଆସି | ।। | ୨ |
| | ତହିଁ ସେ ଋଷିମାନଙ୍କର | । ବିତର୍କ ହେଲା ପରସ୍ପର | ।। | ୩ |
| | ଯେ ବ୍ରହ୍ମା ବିଷ୍ଣୁ ମହାଦେବ | । ଏଥିରେ ଶ୍ରେଷ୍ଠ କଉଁ ଦେବ | ।। | ୪ |
| ୨ | ସେ ତର୍କ ଜାଣିମାକୁ ପୁଣ | । ହେ ନୃପ ! ସର୍ବ ଋଷିଗଣ | ।। | ୫ |
| | ବ୍ରହ୍ମାଙ୍କ ନନ୍ଦନ ଭୃଗୁଙ୍କୁ | । ତିନି ଦେବଙ୍କୁ ଜାଣିମାକୁ | ।। | ୬ |

ପଠିଆନ୍ତେ ସେ ଭୃଗୁ ଗଲେ । ବ୍ରହ୍ମାଙ୍କ ସଭାରେ ମିଳିଲେ ।।
୩ ସତ୍ତ୍ୱ ପରୀକ୍ଷା କରିବାକୁ । ଭୃଗୁ ଯାଇଣ ସେ ବ୍ରହ୍ମାଙ୍କୁ ।।
ନ କଲେ ନମସ୍କାର ସ୍ତୁତି । ସେ ଭଗବାନ ପ୍ରଜାପତି ।।
ଆପଣା ତେଜରେ କ୍ରୋଧକୁ । କଲେ ସ୍ୱତନୟ ଭୃଗୁଙ୍କୁ ।।
୪ ସେ ପ୍ରଭୁ ବିଧାତା ତୁରିତ । ଆତ୍ମାରେ ପୁତ୍ରର ନିମିତ୍ତ ।।
ଯେ କ୍ରୋଧ ହେଲା ତା' ଆପଣ । ନିବର୍ତ୍ତାଇଲେ ତତକ୍ଷଣ ।।
ସ୍ୱକାର୍ଯ୍ୟ ଜଳରେ ଯେସନ । ଶାନ୍ତ ହୁଅଇ ହୁତାଶନ ।।
୫ ସେଠାରୁ ସେ ଭୃଗୁ ଯାଇଣ । ମିଳିଲେ କୈଳାସରେ ପୁଣ ।।
ଉଠିଣ ଦେବ ମହେଶ୍ୱର । ହରଷେ ଭ୍ରାତାଙ୍କୁ ସତ୍ୱର ।।
କରିବା ଅର୍ଥେ ଆଲିଙ୍ଗନ । ଆରମ୍ଭ କଲେ ହେ ରାଜନ ।।
୬ ଉତ୍‌ପଥ ମାର୍ଗରେ ତୁମ୍ଭର । ଗମନ ଅଟଇ ହେ ହର ।।
ଏମନ୍ତ ବୋଲି ଭୃଗୁ ବେଗ । ଇଚ୍ଛା ନ କଲେ ତାଙ୍କ ସଙ୍ଗ ।।
ଏଣୁ ସେ ¹ତିଗ୍ମନେତ୍ର ହର । କୁପିତ ହୋଇଣ ସତ୍ୱର ।।
ଶୂଳ ଉଞ୍ଚାଇ ସେ ଭୃଗୁଙ୍କୁ । ଆରମ୍ଭ କଲେ ମାରିବାକୁ ।।
୭ ସଦାଶିବଙ୍କୁ ସେହିକାଳେ । ପାର୍ବତୀ ପଡ଼ି ପାଦତଳେ ।।
ବଚନେ ଶାନ୍ତ କଲେ ତୋଷି । ଏଥୁଁ ଅନ୍ତରେ ଭୃଗୁ ଋଷି ।।
କଲେ ବୈକୁଣ୍ଠକୁ ଗମନ । ଯହିଁରେ ଦେବ ଜନାର୍ଦ୍ଦନ ।।
୮ | ଲକ୍ଷ୍ମୀକୋଳରେ ଥିଲେ ଶୋଇ । ସେଠାରୁ ଭୃଗୁ ଋଷି ଯାଇ ।।
୧୦ | ବକ୍ଷସ୍ଥଳରେ ଶ୍ରୀକୃଷ୍ଣର । ପାଦରେ କଲେକ ପ୍ରହାର ।।
ତଦନ୍ତେ ସାଧୁଗତି ହରି । ଲକ୍ଷ୍ମୀସହିତେ ଉଠି କରି ।।
ଶଯ୍ୟାରୁ ଓହ୍ଲାଇ ତତ୍‌କାଳେ । ଭୃଗୁ ଋଷିଙ୍କ ପାଦତଳେ ।।
ମସ୍ତକେ କଲେ ନମସ୍କାର । କହିଲେ ହେ ଋଷି ତୁମ୍ଭର ।।
କୁଶଳ ଟିକି ଆଗମନେ । କ୍ଷଣେକ ବସ ଏ ଆସନେ ।।
ହେ ପ୍ରଭୁ ତୁମ୍ଭ ଆସିବାର । କାରଣ କହ ମୋ' ଆଗର ।।
ତୁମ୍ଭ ଆଗମନ ହେବାର । ଅଜଣା ଅଟଇ ଆମ୍ଭର ।।
ଏ ଦୋଷ ତୁମ୍ଭେ କ୍ଷମା କର । ହେ ଋଷିଶ୍ରେଷ୍ଠ ଏ ତୁମ୍ଭର ।।
ତୀର୍ଥ ଯେ କରଇ ତୀର୍ଥଙ୍କୁ । ସେ ପାଦଉଦକେ ଆମ୍ଭଙ୍କୁ ।।
ମୋଠାରେ ଚିତ୍ତ ଯାହାଙ୍କର । ସେ ଲୋକପାଳଙ୍କୁ ଆବର ।।
ସର୍ବଲୋକଙ୍କ ସହିତେଣ । ପବିତ୍ର କର ତୁମ୍ଭେ ପୁଣ ।।
୧୧ ଲକ୍ଷ୍ମୀର ଏକାନ୍ତ ଯେ ସ୍ଥାନ । ହେ ଭୃଗୁ ତୁମ୍ଭ ପଦଚିହ୍ନ ।।
ଏ ମୋର ବକ୍ଷସ୍ଥଳେ ରହୁ । ଏ ଚିହ୍ନ ବହିଲି ଆଜହୁଁ ।।
ତୁମ୍ଭ ଚରଣାଘାତୁଁ ମୋର । ସମସ୍ତ ପାପ ହେଲା ଦୂର ।।

୧. ତିଗ୍ମନେତ୍ର = ପ୍ରଖରଦୃଷ୍ଟିସଂପନ୍ନ ।

ଶ୍ରୀଶୁକ ଉବାଚ

୧୨ କହନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ[୧] ଦଣ୍ଡଧର ।। ୩୯
ଶ୍ରୀକୃଷ୍ଣ କହନ୍ତେ ଏ ବାଣୀ । ତାଙ୍କ ଗମ୍ଭୀର ବାକ୍ୟେ ପୁଣି ।। ୪୦
ଭକ୍ତିରେ ଉତ୍‌କଣ୍ଠା ଯା'ଙ୍କର । ଲୋଚନୁଁ ବହେ ଅଶ୍ରୁଧାର ।। ୪୧
ସେ ଭୃଗୁ ସୁଖକୁ ଲଭିଲେ । ସନ୍ତୋଷ ହୋଇ ତୁନି ହେଲେ ।। ୪୨
୧୩ ସେ ଭୃଗୁ ଯାଇ ନିଜ ଯାଗେ । ପ୍ରବେଶ ହୋଇ କରି ବେଗେ ।। ୪୩
ଯେ ବ୍ରହ୍ମବାଦୀ ଋଷିଜନ । ତାଙ୍କ ଆଗରେ ଏ ବଚନ ।। ୪୪
ହେ ନୃପ ! ନିଜ ଅନୁଭବ । ବିଶେଷେ ବର୍ଣ୍ଣିଲେ ତା ସର୍ବ ।। ୪୫
୧୪ ଏଥୁ ଅନ୍ତରେ ମୁନିଜନ । ଶୁଣି ସେ ଭୃଗୁଙ୍କ ବଚନ ।। ୪୬
ସମସ୍ତେ ବିସ୍ମିତ ହୋଇଲେ । ସଂଶୟମାନଙ୍କୁ ଛାଡ଼ିଲେ ।। ୪୭
ଯା'ଠାରୁ ଶାନ୍ତି ଅଛି ରହି । ଯା'ଠାରୁ ଅଭୟ ହୁଅଇ ।। ୪୮
ବିଶେଷେ ବିଷ୍ଣୁଙ୍କୁ ହିଁ ନିତି । ନିଶ୍ଚୟ କଲେ ମନେ ଚିନ୍ତି ।। ୪୯
୧୫ ଯା'ଠାରେ ଧର୍ମ ହିଁ ସାକ୍ଷାତ । ଜ୍ଞାନ ବୈରାଗ୍ୟ ତଦନ୍ୱିତ ।। ୫୦
ଅଷ୍ଟ ଐଶ୍ୱର୍ଯ୍ୟ ଅଛି ରହି । ସ୍ୱପାପନାଶନ ଯଶ ହିଁ ।। ୫୧
୧୬ ଯେ କଲେ ଦଣ୍ଡକୁ ତ୍ୟକତ । ଯେ ପୁଣ ଶାନ୍ତ ସମଚିତ୍ତ ।। ୫୨
ଏମନ୍ତ ମୁନିମାନଙ୍କର । ଯେ ଅକିଂଚନ ନିରନ୍ତର ।। ୫୩
ଏମନ୍ତ ସାଧୁଙ୍କର ନିତି । ପରମ ଗତି ଯେ ଅଟନ୍ତି ।। ୫୪
୧୭ ଯା' ଇଷ୍ଟଦେବତା ବ୍ରାହ୍ମଣ । ସତ୍ତ୍ୱ ଯା' ପ୍ରିୟମୂର୍ତ୍ତି ପୁଣ ।। ୫୫
ନିପୁଣ ବୁଦ୍ଧି ଯାହାଙ୍କର । ଯେହୁ ଆଶିଷ କଲେ ଦୂର ।। ୫୬
କରନ୍ତି ସେ ଯାଙ୍କୁ ଭଜନ । ଏମନ୍ତ ଯଉଁ ଭଗବାନ ।। ୫୭
୧୮ ତ୍ରିବିଧ ଆକୃତି ତାଙ୍କର । ରାକ୍ଷସ ଅସୁର ଯେ ସୁର ।। ୫୮
ଏ ତିନି ତ୍ରିଗୁଣ ମାୟାରେ । ସୃଷ୍ଟ ହୋଇଛନ୍ତି ନିତ୍ୟରେ ।। ୫୯
ଏ ତିନିରେ ଯେ ସତ୍ତ୍ୱଗୁଣ । ସେ ପୁରୁଷାର୍ଥକୁ କାରଣ ।। ୬୦

ଶ୍ରୀଶୁକ ଉବାଚ

୧୯ ଏ ରୂପେ ସରସ୍ୱତୀକୁଳେ । ଥିଲେ ଯେ ଋଷିଏ ସେକାଳେ ।। ୬୧
ମନୁଷ୍ୟଙ୍କର ଏ ରୂପରେ । ସଂଶୟ ଯିବା ନିମିତ୍ତରେ ।। ୬୨
ଈଶ୍ୱରଚରଣସେବାରୁ । ମୁକ୍ତିକି ଲଭିଲେ ସଂସାରୁ ।। ୬୩

ଶ୍ରୀସୂତ ଉବାଚ

୨୦ ଶୌନକ ଆଦିଙ୍କି ଏମନ୍ତ । କହୁଅଛନ୍ତି ଏବେ ସୂତ ।। ୬୪
ଯେ କରେ ଭବଭୟ ହତ । ଶ୍ରେଷ୍ଠ ପୁରୁଷ ସେ ଅଚ୍ୟୁତ ।। ୬୫
ଏ ରୂପେ ଏ ତାଙ୍କ ଚରିତ । ଶୁକଙ୍କ ମୁଖପଦ୍ମୁଁ ଜାତ ।। ୬୬
ସୁଗନ୍ଧଯୁକ୍ତ ସୁଧା ଯେହି । ଉତ୍ତମ ଶ୍ଳୋକମାନ ଯହିଁ ।। ୬୭

୧. ପରୀକ୍ଷ = ପରୀକ୍ଷିତ୍ ।

| | | | | |
|---|---|---|---|---|
| | ସେ ଯଶ ଶ୍ରବଣପୁଟରେ | । ଯେ ପାନ କରେ ନିରନ୍ତରେ | ।। | ୬୮ |
| | ସେ ଲୋକ ସଂସାରମାର୍ଗରେ | । ଗତ-ଆଗତ ଭ୍ରମଣରେ | ।। | ୬୯ |
| | ପରିଶ୍ରମକୁ ସେ ଛାଡ଼ିଣ | । ମୁକ୍ତିକି ଲଭଇ ତତ୍‌କ୍ଷଣ | ।। | ୭୦ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୨୧ | ଶୁକ କହନ୍ତି ହେ ରାଜନ | । ଦ୍ୱାରକାପୁରେ ଏକଦିନ | ।। | ୭୧ |
| | ବିପ୍ରପତ୍ନୀର ଏକ ବାଳ[୧] | । ଜନମମାତ୍ରକେ କେବଳ | ।। | ୭୨ |
| | ଭୂମିକି ଛୁଇଁ କରି ପୁଣ | । ମୃତ୍ୟୁକୁ ଲଭିଲା ତତ୍‌କ୍ଷଣ | ।। | ୭୩ |
| ୨୨ | ଦୁଃଖିତ ଚିତ୍ତ ଅଟେ ଯାର | । ସେ ବିପ୍ର ହୋଇଣ ଆତୁର | ।। | ୭୪ |
| | ମୃତ ପୁତ୍ରକୁ ଘେନି କରେ | । ପକାଇ ରାଜସିଂହଦ୍ୱାରେ | ।। | ୭୫ |
| | କରନ୍ତେ ବହୁତ ରୋଦନ | । କହିଲା ଏମନ୍ତ ବଚନ | ।। | ୭୬ |
| ୨୩ | ବିପ୍ରଙ୍କୁ କରଇ ଯେ ଦ୍ୱେଷ | । ଶଠ ଅଟଇ ଯା' ମାନସ | ।। | ୭୭ |
| | ବିଷୟେ ଆସକ୍ତ ଯା' ଚିତ୍ତ | । ଲୁବ୍‌ଧ ଯେ ଅଟଇ ସଂତତ | ।। | ୭୮ |
| | ଅଧମ କ୍ଷତ୍ରିୟ ଯେ ପୁଣ | । ସେ ରାଜା କର୍ମଦୋଷୁ ଜାଣ | ।। | ୭୯ |
| | ମୋ ପୁତ୍ର ଲଭିଲା ମରଣ | । ଏ କଥା ଅଟଇ ପ୍ରମାଣ | ।। | ୮୦ |
| ୨୪ | ହିଂସାରେ ଅଟେ ଯା ବିହାର | । ଦୁଷ୍ଟ ଆଚାର ପୁଣ ଯାର | ।। | ୮୧ |
| | ଜିଣି ନ ଥାଇ ଇନ୍ଦ୍ରିୟଙ୍କୁ | । ପ୍ରଜାଏ ଏମନ୍ତ ରାଜାକୁ | ।। | ୮୨ |
| | ଭଜିଲେ ଶୀର୍ଣ୍ଣ ହେଉଥାନ୍ତି | । ନିତ୍ୟେ ଦରିଦ୍ର ଦୁଃଖୀ ହୋନ୍ତି | ।। | ୮୩ |
| ୨୫ | ଏ ରୂପେ ଦ୍ୱିତୀୟ ତୃତୀୟ | । ମରଣ ଲଭନ୍ତେ ତନୟ | ।। | ୮୪ |
| | ସେ ବିପ୍ରବର ରାଜଦ୍ୱାରେ | । ପୁତ୍ର ପକାଇ ସେ ରୂପରେ | ।। | ୮୫ |
| | ବୋଲନ୍ତେ ଭର୍ତ୍ସନା ବଚନ | । ବହୁତ କରଇ ରୋଦନ | ।। | ୮୬ |
| ୨୬ | ସେ ବ୍ରାହ୍ମଣର ଏହିମତେ | । ନବମ ବାଳକ ମରନ୍ତେ | ।। | ୮୭ |
| | ସେ ନିନ୍ଦାବାକ୍ୟକୁ ଅର୍ଜୁନ | । ଶ୍ରବଣ କରି ଏକଦିନ | ।। | ୮୮ |
| | କୃଷ୍ଣନିକଟେ ବ୍ରାହ୍ମଣକୁ | । କହିଲେ ଏମନ୍ତ ବାକ୍ୟକୁ | ।। | ୮୯ |
| ୨୭ | ହେ ବିପ୍ର ! ବୃଥା କି କାର୍ଯ୍ୟରେ | । ରୋଦନ କରୁଛ ଏଠାରେ | ।। | ୯୦ |
| | ଯେଣୁ ତୋ' ପୁରେ ଜଣେ ନାହିଁ | । କ୍ଷତ୍ରିୟ ଧନୁର୍ଧର ହୋଇ | ।। | ୯୧ |
| | ଯାଗରେ ବ୍ରାହ୍ମଣେ ଯେସନେ | । ତଦ୍‌ପ୍ରାୟେ ଛନ୍ତି ଯଦୁମାନେ | ।। | ୯୨ |
| ୨୮ | ଧନ-ବନିତା-ପୁତ୍ରଙ୍କରେ | । ବିୟୋଗ ଲଭି ଯଉଁଠାରେ | ।। | ୯୩ |
| | ଶୋଚନା କରନ୍ତି ପଣ୍ଡିତେ | । ତହିଁ ରାଜାଏ ଥାନ୍ତି ଯେତେ | ।। | ୯୪ |
| | ଚିହ୍ନକୁ ଧରି ନଟପ୍ରାୟେ | । ଜୀବିକା ସଂପାଦନ୍ତି ସ୍ୱୟେଂ | ।। | ୯୫ |
| ୨୯ | ହେ ବିପ୍ର ! ତୁମ୍ଭେ ବେନି ଜନ | । ଦୀନ ହୋଇଛି ତୁମ୍ଭ ମନ | ।। | ୯୬ |
| | ରଖିବି ମୁଁ ତୁମ୍ଭ ପୁତ୍ରକୁ | । ନ ରଖିଲେ ଏ ପ୍ରତିଜ୍ଞାକୁ | ।। | ୯୭ |

୧. ବାଳ = ସନ୍ତାନ ।

ଅଗ୍ନିରେ ଯାଇଣ ପଶିବି । [୧]ଏ ନିଜ ପାତକ ନାଶିବି ॥ ୯୮

ଶ୍ରୀବ୍ରାହ୍ମଣ ଉବାଚ

୩୦ ସଂକରଷଣ ବନମାଳୀ । ପ୍ରଦ୍ୟୁମ୍ନ ଧନୁର୍ଦ୍ଧର ବଳୀ ॥ ୯୯
ଯା' ରଥ ରଣୁଁ ନ ନିବର୍ତ୍ତି । ସେ ଅନିରୁଦ୍ଧ ଉଷାପତି ॥ ୧୦୦
ଏମାନେ ମୋର ତନୟକୁ । କରି ନ ପାରିଲେ ରକ୍ଷାକୁ ॥ ୧୦୧
୩୧ ଜଗତ-ଈଶ୍ୱର ଏ ହେଲେ । ଯାହା ଏ କରି ନ ପାରିଲେ ॥ ୧୦୨
ସେ କର୍ମ କରିବାକୁ ଚିତ୍ତେ । ବିଚାର କରୁଛ କେମନ୍ତେ ॥ ୧୦୩
ମୂଢ଼ପଣରୁ ଏ ବଚନେ । ପ୍ରତେ ନୁହଇ ଆମ୍ଭ ମନେ ॥ ୧୦୪

ଶ୍ରୀଅର୍ଜୁନ ଉବାଚ

୩୨ ସେ କାଳେ ଏମନ୍ତ ବଚନ । ବିପ୍ରକୁ କହନ୍ତି ଅର୍ଜୁନ ॥ ୧୦୫
ହେ ବିପ୍ର ! କୃଷ୍ଣ ମୁଁ ନୁହଇ । ନୁହଇ ପ୍ରଦ୍ୟୁମ୍ନ ରାମ ହିଁ ॥ ୧୦୬
ଗାଣ୍ଡୀବ ଧନୁ ଅଟେ ଯାର । ମୁଁ ସେ ଅର୍ଜୁନ ନାମେ ବୀର ॥ ୧୦୭
୩୩ ଯେ କରେ ଶିବଙ୍କୁ ତୋଷଣ । ସେ ମୋ' ବଳକୁ ହେ ବ୍ରାହ୍ମଣ ॥ ୧୦୮
ଅବଜ୍ଞା ନ କର ଚିତ୍ତରେ । ମୃତ୍ୟୁକୁ ଜିଣି ମୁଁ ରଣରେ ॥ ୧୦୯
ତୁମ୍ଭ ତନୟମାନଙ୍କୁ ହିଁ । ହେ ପ୍ରଭୁ ଆଣିବି ମୁଁ ଯାଇ ॥ ୧୧୦
୩୪ ହେ ନୃପ ! ଏମନ୍ତ ରୂପରେ । ଅର୍ଜୁନଙ୍କର ପ୍ରତିଜ୍ଞାରେ ॥ ୧୧୧
ସେ ବିପ୍ର ଲଭି ବିଶ୍ୱାସକୁ । ଶୁଣନ୍ତେ ଅର୍ଜୁନବୀର୍ଯ୍ୟକୁ ॥ ୧୧୨
ସଂତୋଷ ହୋଇ ସେ କାଳରେ । ଗମନ କଲା ନିଜ ପୁରେ ॥ ୧୧୩
୩୫ ସେ ଦ୍ୱିଜବର ସ୍ୱଭାର୍ଯ୍ୟାର । ହୁଅନ୍ତେ କାଳ ପ୍ରସବର ॥ ୧୧୪
ମୃତ୍ୟୁଦେବତାଠାରୁ ଯାଇ । ପୁତ୍ରକୁ କର ତ୍ରାହି ତ୍ରାହି ॥ ୧୧୫
ଆତୁର ହୋଇ ଅର୍ଜୁନକୁ । କହିଲା ଏମନ୍ତ ବାକ୍ୟକୁ ॥ ୧୧୬
୩୬ ବିଶୁଦ୍ଧ ଜଳରେ ଅର୍ଜୁନ । ସେକାଳେ କରି ଆଚମନ ॥ ୧୧୭
ଶିବଙ୍କୁ ନମସ୍କାର କରି । ଦିବ୍ୟ ଅସ୍ତ୍ରମାନ ସୁମରି ॥ ୧୧୮
ଦେଇଣ ଉତ୍ତମ ଗୁଣକୁ । ଧଇଲେ ଗାଣ୍ଡୀବ ଧନୁକୁ ॥ ୧୧୯
୩୭ ଯେ ନାନା ଅସ୍ତ୍ରରେ ଯୋଜିତ । ସେ ଶରମାନଙ୍କେ ତୁରିତ ॥ ୧୨୦
ସୂତିକାଗୃହକୁ ଅର୍ଜୁନ । ତଳ ଉପର ପାର୍ଶ୍ୱମାନ ॥ ୧୨୧
ଉତ୍ତମ କରିଣ ରୁନ୍ଧିଲେ । ଶରପଞ୍ଜର ବେଗେ କଲେ ॥ ୧୨୨
୩୮ ତଦନ୍ତେ ବ୍ରାହ୍ମଣପତ୍ନୀର । ଜନମ ହୋଇଲା କୁମର ॥ ୧୨୩
ବହୁତ କାନ୍ଦନ୍ତେ ସେ ବାଳ । ଦେହସହିତରେ ତତ୍‌କାଳ ॥ ୧୨୪
ଆକାଶମାର୍ଗେ ଚଳିଗଲା । କାହାକୁ ଦୃଶ୍ୟ ସେ ନୋହିଲା ॥ ୧୨୫
୩୯ ସେ କାଳେ ଏମନ୍ତ ରୂପରେ । ବ୍ରାହ୍ମଣ କୃଷ୍ଣନିକଟରେ ॥ ୧୨୬

---

୧. ବ୍ରାହ୍ମଣବିଳାପଶ୍ରବଣରୂପକ ପାତକ ।

| | | | | |
|---|---|---|---|---|
| | ନିନ୍ଦା କରନ୍ତେ ଅର୍ଜୁନକୁ | । କହିଲା ଏମନ୍ତ ବାକ୍ୟକୁ | ॥ ୧୨୭ |
| | ଦେଖ ମୋହର ମୂଢ଼ପଣ | । ଯାହା ମୁଁ ଏକାଳରେ ପୁଣ | ॥ ୧୨୮ |
| | ଏ ନପୁଂସକ ବାକ୍ୟ ଶୁଣି | । ଶ୍ରଦ୍ଧା ପାଇଲି ମନେ ଗୁଣି | ॥ ୧୨୯ |
| ୪୦ | ପ୍ରଦ୍ୟୁମ୍ନ ଅନିରୁଦ୍ଧ ଦୁଇ | । ରାମ କେଶବ ବେନି ଭାଇ | ॥ ୧୩୦ |
| | ଯାହାକୁ ରଖିବାକୁ ଏହି | । ସମର୍ଥ ନୋହିଲେ ଏ କେହି | ॥ ୧୩୧ |
| | ତା' ରକ୍ଷା ଅର୍ଥେ ଆନ ନର | । କେ ଅବା ହୋଇବ ଈଶ୍ୱର | ॥ ୧୩୨ |
| ୪୧ | କହିଲା ଯେ ମିଥ୍ୟାବାକ୍ୟକୁ | । ଧିକ ହଉ ସେ ଅର୍ଜୁନକୁ | ॥ ୧୩୩ |
| | ପ୍ରଶଂସା କଲା ଯେ ଆତ୍ମାକୁ | । ଧିକ ହଉ ତାହା ଧନୁକୁ | ॥ ୧୩୪ |
| | ଯେ ଅଟେ ଦଇବେ ତ୍ୟକତ | । ତା' ଆଣିମାକୁ ଯାର ଚିତ୍ତ | ॥ ୧୩୫ |
| | ମୂଢ଼ତାହେତୁରୁ ନିଜର | । ଦୁଷ୍ଟ ଅଟଇ ବୁଦ୍ଧି ଯାର | ॥ ୧୩୬ |
| ୪୨ | ସେ ବିପ୍ରଶ୍ରେଷ୍ଠ ଏ ରୂପରେ | । ଶାପ ଦିଅନ୍ତେ ସେ କାଳରେ | ॥ ୧୩୭ |
| | ଅର୍ଜୁନ ଯୋଗବିଦ୍ୟାବଳେ | । ସଂଯମନୀପୁରୀରେ ହେଲେ | ॥ ୧୩୮ |
| | ଯଉଁ ପୁରୀରେ ଭଗବାନ | । ଯମ ଅଛନ୍ତି ଅନୁଦିନ | ॥ ୧୩୯ |
| ୪୩ | ବ୍ରାହ୍ମଣପୁତ୍ରକୁ ସଙ୍ଖୋଳି | । ତହୁଁ ଅର୍ଜୁନ ଗଲେ ଚଳି | ॥ ୧୪୦ |
| ୪୪ | ମିଳିଲେ ଇନ୍ଦ୍ରଙ୍କ ପୁରରେ | । ତହୁଁ ଚଳିଲେ ଅଗ୍ନିପୁରେ | ॥ ୧୪୧ |
| | ତହୁଁ ନୈର୍ଋତପୁରେ ଗଲେ | । ଚନ୍ଦ୍ରଙ୍କ ପୁରେ ପୁଣି ହେଲେ | ॥ ୧୪୨ |
| | ମିଳିଲେ ପବନର ପୁରେ | । ବରୁଣପୁରେ ତଦନ୍ତରେ | ॥ ୧୪୩ |
| | ରସାତଳରେ ହେଁ ଭ୍ରମଣ | । ଭ୍ରମିଲେ ¹ନାକପୃଷ୍ଠେ ପୁଣ | ॥ ୧୪୪ |
| | ଯେ ଅନ୍ୟସ୍ଥାନମାନ ଥିଲେ | । ଧରଷି ତହିଁରେ ମିଳିଲେ | ॥ ୧୪୫ |
| | ଅର୍ଜୁନ ଟେକି ଆୟୁଧକୁ | । ନ ପାଇ ବ୍ରାହ୍ମଣସୁତକୁ | ॥ ୧୪୬ |
| | ଏ ସର୍ବସ୍ଥାନୁଁ ନିବର୍ତ୍ତନ୍ତେ | । ପ୍ରତିଜ୍ଞା ରଖି ନ ପାରନ୍ତେ | ॥ ୧୪୭ |
| | ଅଗ୍ନିପ୍ରବେଶନିମିତ୍ତରେ | । ଇଚ୍ଛା କରନ୍ତେ ସେ କାଳରେ | ॥ ୧୪୮ |
| | କହିଣ ବହୁତ ବାକ୍ୟକୁ | । ନିବର୍ତ୍ତାଇଲେ କୃଷ୍ଣ ତାଙ୍କୁ | ॥ ୧୪୯ |
| ୪୫ | ଆତ୍ମାକୁ ଆତ୍ମାରେ ହେ ବୀର | । ଏଠାରେ ଅବଜ୍ଞା ନ କର | ॥ ୧୫୦ |
| | ନିନ୍ଦୁ ଅଛନ୍ତି ଯଉଁ ନରେ | । ସେହିମାନେ ହିଁ ଏ ସଂସାରେ | ॥ ୧୫୧ |
| | ଆମ୍ଭ ନିର୍ମଳ ଯଶମାନ | । ନିଶ୍ଚଳେ କରିବେ ସ୍ଥାପନ | ॥ ୧୫୨ |
| | ବ୍ରାହ୍ମଣପୁତ୍ରମାନଙ୍କୁ ହିଁ | । ଦେଖାଉଅଛି ଏବେ ମୁହିଁ | ॥ ୧୫୩ |
| ୪୬ | ଏମନ୍ତ ରୂପେ ନାରାୟଣ | । କରି ଉତ୍ତମ ସଂଭାଷଣ | ॥ ୧୫୪ |
| | ଅର୍ଜୁନ ସଙ୍ଗେ ସେ ଈଶ୍ୱର | । ଯେ ନିଜ ଦିବ୍ୟ ରଥବର | ॥ ୧୫୫ |
| | ତହିଁରେ ବସି ସେ କାଳରେ | । ଚଳିଲେ ପଶ୍ଚିମ ଦିଗରେ | ॥ ୧୫୬ |
| ୪୭ | ଯହିଁରେ ସାତ ସାତ ଗିରି | । ସେ ସପ୍ତ ଦ୍ୱୀପ ଲଙ୍ଘି କରି | ॥ ୧୫୭ |

୧. ସ୍ୱର୍ଗପୁରୀ ।

| | | | | | |
|---|---|---|---|---|---|
| | ସାତ ସମୁଦ୍ର ସହିତେଣ | । | ଲୋକାଲୋକକୁ ଲଙ୍ଘି ପୁଣ | ॥ | ୧୫୮ |
| | ଯେ ଘୋର ଅନ୍ଧକାର ଭୂଇଁ | । | ତହିଁ ପ୍ରବେଶ ହେଲେ ଯାଇଁ | ॥ | ୧୫୯ |
| ୪୮ | ଶୈବ୍ୟ ସୁଗ୍ରୀବ ବଳାହକ | । | ଯେ ମେଘପୁଷ୍ପ ନାମେ ଏକ | ॥ | ୧୬୦ |
| | ଏ ଅଶ୍ୱେ ତହିଁ ହେ ରାଜନ | । | କରି ନ ପାରିଲେ ଗମନ | ॥ | ୧୬୧ |
| | ଅନ୍ଧକାରମଧ୍ୟେ ଝଟିତି | । | ଭ୍ରଷ୍ଟ ହୋଇଲା ତାଙ୍କ ଗତି | ॥ | ୧୬୨ |
| ୪୯ | ଯେ ମହା ଯୋଗେଶ୍ୱରେଶ୍ୱର | । | ସେ ଭଗବାନ ଦାମୋଦର | ॥ | ୧୬୩ |
| | ଅଶ୍ୱଙ୍କ ଗତି ହେଲା ହତ | । | ଏମନ୍ତ କରିଣ ଲକ୍ଷିତ | ॥ | ୧୬୪ |
| | ସହସ୍ରସୂର୍ଯ୍ୟପ୍ରାୟ ହୋଇ | । | ଯାହାର ତେଜ ପ୍ରକାଶଇ | ॥ | ୧୬୫ |
| | ସେ ନିଜ ଚକ୍ରକୁ ଅଗ୍ରରେ | । | ପ୍ରେରିତ କଲେ ସେ କାଳରେ | ॥ | ୧୬୬ |
| ୫୦ | ଆଲୋକଶୂନ୍ୟ ଯେ କଠିନ | । | ସେ ଘୋର ମହାତମମାନ | ॥ | ୧୬୭ |
| | ଗରିଷ୍ଠ ନିଜ କିରଣରେ | । | ବିନାଶି ପକାଇ ସତ୍ୱରେ | ॥ | ୧୬୮ |
| | ମନର ସମାନ ଯା' ବେଗ | । | ସେ ସୁଦର୍ଶନ କଲେ ଆଗ | ॥ | ୧୬୯ |
| | ଗୁଣରୁ ଯାନ୍ତେ ରାମଶରେ | । | ଯେସନେ ସୈନ୍ୟଙ୍କୁ ବିଦାରେ | ॥ | ୧୭୦ |
| ୫୧ | ସେ [1]ଚକ୍ର-ଅନୁପଥଦ୍ୱାରେ | । | ପ୍ରବେଶ ହୋଇ ସେ କାଳରେ | ॥ | ୧୭୧ |
| | ସେ ଅନ୍ଧକାରରୁ ଦୂରରେ | । | ଯେ ରହି ଅଛନ୍ତି ନିତ୍ୟରେ | ॥ | ୧୭୨ |
| | ଅନନ୍ତ ଅଟେ ଯାହା ପାର | । | ଯେ ସର୍ବବ୍ୟାପୀ ଯେହୁ ବର | ॥ | ୧୭୩ |
| | ସେ ଭଗବାନତେଜମାନ | । | ଅର୍ଜୁନ କରି ବିଲୋକନ | ॥ | ୧୭୪ |
| | ନେତ୍ର ହୁଅନ୍ତେ ପ୍ରତାଡ଼ିତ | । | ସେ ନେତ୍ର ବୁଜିଲେ ତୁରିତ | ॥ | ୧୭୫ |
| ୫୨ | କୃଷ୍ଣ ଅର୍ଜୁନ ବେନି ଜଣ | । | ଶ୍ରେଷ୍ଠ ପବନ ସହିତେଣ | ॥ | ୧୭୬ |
| | ପ୍ରବିଷ୍ଟ ହେଲେ ସେ ଜଳରେ | । | ହେ ମହାରାଜ ତଦନ୍ତରେ | ॥ | ୧୭୭ |
| | ଚଞ୍ଚଳ ମହା ଊର୍ମିମାନେ | । | ଯହିଁ ଭୂଷଣ ସର୍ବସ୍ଥାନେ | ॥ | ୧୭୮ |
| | ସହସ୍ର ସହସ୍ର ହୋଇଣ | । | ଯେ ଦିବ୍ୟ ମଣିସ୍ତମ୍ଭଗଣ | ॥ | ୧୭୯ |
| | ତେଣେ ଯେ ଅଟଇ ଶୋଭିତ | । | ଅଦ୍‌ଭୁତ ଅତିକାନ୍ତିମତ | ॥ | ୧୮୦ |
| | ସେ ଜଳେ ଏମନ୍ତ ପ୍ରକାର | । | ଦେଖିଲେ ମହାକାଳପୁର | ॥ | ୧୮୧ |
| ୫୩ | ସେ ପୁରେ ଦେଖିଲେ ଅନନ୍ତ | । | ଯେ ମହାଭୋଗ ଅଦଭୁତ | ॥ | ୧୮୨ |
| | ସହସ୍ରମସ୍ତକଫଣାର | । | ମଣିକାନ୍ତିରେ ମନୋହର | ॥ | ୧୮୩ |
| | ବେନି ସହସ୍ର ନେତ୍ରେ ନିତି | । | ଅତି ଉଦ୍‌କଟ ଦିଶୁଛନ୍ତି | ॥ | ୧୮୪ |
| | ସ୍ଫଟିକଗିରି ପ୍ରାୟେ ଶୋଭା | । | ନୀଳ ଅଟଇ କଣ୍ଠ ଜିହ୍ୱା | ॥ | ୧୮୫ |
| ୫୪ | ସେ ଅନନ୍ତର ଦେହ ଯେହି | । | ସେ ଆସନରେ ଛନ୍ତି ଶୋଇ | ॥ | ୧୮୬ |
| | ମହାନୁଭାବ ଅନୁପମ | । | ପୁରୁଷଶ୍ରେଷ୍ଠଙ୍କ ଉତ୍ତମ | ॥ | ୧୮୭ |
| | ନବୀନ ଘନପ୍ରାଏ କାନ୍ତି | । | ପୀତ ବସନ ପିନ୍ଧିଛନ୍ତି | ॥ | ୧୮୮ |

୧. ଚକ୍ର-ଅନୁପଥଦ୍ୱାରେ = ଚକ୍ର ଯାଉଥିବା ବାଟରେ ।

ପ୍ରସନ୍ନ ଦିଶଇ ବଦନ । ରୁଚିର ଦୀର୍ଘ ଯା' ନୟନ ।। ୧୮୯
ସେ ମହାବିଷ୍ଣୁଙ୍କୁ ଏମନ୍ତେ । ଦେଖିଲେ ଅର୍ଜୁନେ ଅଚ୍ୟୁତେ ।। ୧୯୦
୫୫ ଯହିଁ ମହାମଣିନିକର । ସେହି କିରୀଟକୁଣ୍ଡଳର ।। ୧୯୧
କାନ୍ତିରେ ସ୍ଫୁରୁଛି ଯା'ଙ୍କର । ସହସ୍ରସଂଖ୍ୟ କେଶ-ବର ।। ୧୯୨
ପ୍ରଲମ୍ବ ଚାରୁ ଅଷ୍ଟ ହାତ । ଶ୍ରୀବତ୍ସ ଚିହ୍ନରେ ଶୋଭିତ ।। ୧୯୩
କୌସ୍ତୁଭ ମଣିରେ ସଂଯୁତ । ବନମାଳାରେ ଯେ ଆବୃତ ।। ୧୯୪
୫୬ ସୁନନ୍ଦ ନନ୍ଦ ଆଦି ହୋଇ । ନିଜ ପାର୍ଷଦ ଛନ୍ତି ଯହିଁ ।। ୧୯୫
ଚକ୍ରାଦି ନିଜାୟୁଧ ଯେତେ । ରହିଅଛନ୍ତି ମୂର୍ତ୍ତିମନ୍ତେ ।। ୧୯୬
କୀର୍ତ୍ତିସହିତ ମାୟା ଯେହି । ସେ ପୁଷ୍ଟି ଲକ୍ଷ୍ମୀ ଆଦି ହୋଇ ।। ୧୯୭
ଅଣିମା ଆଦି ଅଷ୍ଟ ଭୂତି । ନିଜ ମୂର୍ତ୍ତିକି ଧରିଛନ୍ତି ।। ୧୯୮
ଏ ସର୍ବେ ଯାଙ୍କୁ ବେଢ଼ିଛନ୍ତି । ଯେ ପରମେଷ୍ଠୀଙ୍କର ପତି ।। ୧୯୯
ସେ ମହାବିଷ୍ଣୁଙ୍କୁ ଏସନେ । ଦେଖିଲେ ଶ୍ରୀକୃଷ୍ଣ-ଅର୍ଜୁନେ ।। ୨୦୦
୫୭ ନିଜର ଆତ୍ମା ଅନନ୍ତଙ୍କୁ । ଶ୍ରୀକୃଷ୍ଣ କଲେ ପ୍ରଣାମକୁ ।। ୨୦୧
ଅର୍ଜୁନ ତାଙ୍କ ଦରଶନେ । ଭୟ ଲଭିଲେ ନିଜ ମନେ ।। ୨୦୨
ଯୋଡ଼ିଣ ନିଜ କର ଦୁଇ । କୃଷ୍ଣ-ଅର୍ଜୁନ ଛନ୍ତି ରହି ।। ୨୦୩
ତାଙ୍କୁ ସେ ମହାବିଷ୍ଣୁ ବସି । କହିଲେ ଦିବ୍ୟ ବାକ୍ୟ ହସି ।। ୨୦୪
୫୮ ହେ କୃଷ୍ଣାର୍ଜୁନ ବେନି ବୀରେ । ଅବତରିଲ ମୋ' କଳାରେ ।। ୨୦୫
ତୁମ୍ଭ ଦୁହିଁଙ୍କି ଦେଖିବାକୁ । ଆଣିଲି ବ୍ରାହ୍ମଣପୁତ୍ରଙ୍କୁ ।। ୨୦୬
ଏ ମହା ମହୀମଣ୍ଡଳରେ । ଧର୍ମ ରଖିବା ନିମିତ୍ତରେ ।। ୨୦୭
ପୃଥ୍ୱୀର ଭାରପ୍ରାଏ ହୋଇ । ଯେତେ ଅସୁର ଛନ୍ତି ରହି ।। ୨୦୮
ତାହାଙ୍କୁ କରି ପୁଣ ନାଶ । ଶୀଘ୍ରେ ମୋ ନିକଟକୁ ଆସ ।। ୨୦୯
୫୯ ନର ନାରାୟଣ ନାମରେ । ଋଷି ଯେ ତୁମ୍ଭେ ବେନି ବୀରେ ।। ୨୧୦
ତୁମ୍ଭେ ତ ହେଲ ପୂର୍ଣ୍ଣକାମ । ପୁରୁଷମାନଙ୍କେ ଉତ୍ତମ ।। ୨୧୧
ଲୋକସଂଗ୍ରହନିମିତ୍ତରେ । ଧର୍ମ ଆଚାର ପାଳନାରେ ।। ୨୧୨
୬୦ ସେ ପରମେଷ୍ଠୀ ଭଗବାନ । ଆଜ୍ଞା ଦିଅନ୍ତେ ଏ ବଚନ ।। ୨୧୩
କୃଷ୍ଣ-ଅର୍ଜୁନ ବେନି ବୀର । ସେକାଳେ କରି ତା' ସ୍ୱୀକାର ।। ୨୧୪
ପ୍ରଣାମ କରି ସେ ପ୍ରଭୁଙ୍କୁ । ଘେନିଣ ବ୍ରାହ୍ମଣପୁତ୍ରଙ୍କୁ ।। ୨୧୫
୬୧ କୃଷ୍ଣ-ଅର୍ଜୁନ ହୃଷ୍ଟ ହୋଇ । ଯେବଣ ରୂପେ ଥିଲେ ଯାଇ ।। ୨୧୬
ସେ ରୂପେ ଆପଣାର ପୁରେ । ପ୍ରବେଶ ହେଲେ ସେ କାଳରେ ।। ୨୧୭
ରୂପ ବୟସ ଯଥା ଯାର । ସେହିରୂପରେ ସେ ଈଶ୍ୱର ।। ୨୧୮
ବ୍ରାହ୍ମଣତନୟମାନଙ୍କୁ । ଦେଲେ ସେ କାଳେ ବ୍ରାହ୍ମଣଙ୍କୁ ।। ୨୧୯
୬୨ ଦେଖି ବିଷ୍ଣୁର ତେଜସ୍ଥାନ । ବିସ୍ମୟ ଲଭିଲେ ଅର୍ଜୁନ ।। ୨୨୦

ପୁରୁଷଙ୍କର ଯେହି କିଛି । ପୁରୁଷକୃତ୍ୟ ହୋଇଅଛି ।। ୨୨୧
ଏ ସର୍ବ କୃପା ଶ୍ରୀକୃଷ୍ଣର । ଏମନ୍ତ ମଣିଲେ ମନର ।। ୨୨୨
୬୩ ଏ ରୂପେ ଦୃଶ୍ୟ ହୋଇ ଅତି । ଅନେକ ପରାକ୍ରମ ଛନ୍ତି ।। ୨୨୩
ଲୋକେ ତା' କରାଇ ଜ୍ଞାପନ । ଗ୍ରାମ୍ୟ ବିଷୟସୁଖମାନ ।। ୨୨୪
ଭୁଞ୍ଜିଲେ, ଦିବ୍ୟ ଯାଗମାନ । ପୁଣି କଲେ ସେ ଭଗବାନ ।। ୨୨୫
୬୪ ଗୃହସ୍ଥାଶ୍ରମଧର୍ମମାନ । ଆଚରି କରି ଭଗବାନ ।। ୨୨୬
ବିପ୍ରାଦି ସମସ୍ତ ପ୍ରଜାଙ୍କୁ । ଦେଲେ ସମସ୍ତ କାମନାକୁ ।। ୨୨୭
ଯଥାକାଳରେ ମଘବାନ । ଯେସନେ କରେ ବୃଷ୍ଟିମାନ ।। ୨୨୮
୬୫ ଅଧର୍ମବନ୍ତ ରାଜାଗଣ । ଆପଣେ କରି ସଂହରଣ ।। ୨୨୯
ଅର୍ଜୁନାଦିମାନଙ୍କେ ପୁଣି । ଥୋକେ ମରାଇ ଚକ୍ରପାଣି ।। ୨୩୦
ଧର୍ମକୁ ଧର୍ମସୁତାଦିରେ । ପ୍ରବର୍ତ୍ତାଇଲେ ସମଗ୍ରରେ ।। ୨୩୧
ବ୍ରାହ୍ମଣ ତନୟମାନଙ୍କୁ । ଯେ ଦେଲେ ବ୍ରାହ୍ମଣହାତକୁ ।। ୨୩୨
ସେ ଶ୍ରୀକୃଷ୍ଣଚରଣାମ୍ବୁଜ । ଭଜଇ ଦୀନବନ୍ଧୁ ଦ୍ୱିଜ ।। ୨୩୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଦ୍ୱିଜକୁମାରାନୟନଂ ନାମ
ଏକୋନନବତିତମୋଽଧ୍ୟାୟଃ ।।

## ନବତିତମ ଅଧ୍ୟାୟ

ଚରମେ ତୁ ପୁନଃ ପ୍ରୋକ୍ତାଃ କୃଷ୍ଣଲୀଳାଃ ସମାସତଃ ।
ଯଦୁବଂଶପ୍ରସୂତାନାମାନନ୍ତ୍ୟଂ ଚ ସକାରଣମ୍ ।। ୧ ।।

ଶ୍ରୀଶୁକ ଉବାଚ

୧ | କହନ୍ତି ବେଦବ୍ୟାସସୁତ । ଶୁଣ ହେ ନୃପ ପରୀକ୍ଷିତ ।। ୧
୪ | ଯହିଁରେ ସମସ୍ତ ସଂପତ୍ତି । ଯାଦବ ଶ୍ରେଷ୍ଠେ ଯହିଁ ଛନ୍ତି ।। ୨
ଉତ୍ତମ ବେଶ ଯାହାଙ୍କର । ନବଯୌବନକାନ୍ତିପୁର ।। ୩
ତଡ଼ିତପ୍ରାୟେ ଯାଙ୍କ କାନ୍ତି । ଏମନ୍ତ ନାରୀ ଯହିଁ ନିତି ।। ୪
ରମ୍ୟ [୧]ହରମ୍ୟମାନଙ୍କରେ । ଖେଳନ୍ତି କନ୍ଦୁକ-ଆଦିରେ ।। ୫
ମଦଜଳକୁ ଛାଡୁଛନ୍ତି । ଏମନ୍ତ ଯହୁଁ ମତ୍ତହସ୍ତୀ ।। ୬
ଯେ ଅଳଂକୃତ ଯୋଦ୍ଧାମାନେ । ମଣ୍ଡିତ ଯହୁଁ ଅଶ୍ୱମାନେ ।। ୭
ସୁବର୍ଣ୍ଣେ ଅଟନ୍ତି ଉଜ୍ଜ୍ୱଳ । ଏମନ୍ତ ଯହୁଁ ରଥକୁଳ ।। ୮
ଏମାନଙ୍କରେ ପ୍ରତିଦିନ । ଯହିଁ ସଂକୁଳ ମାର୍ଗମାନ ।। ୯

---
୧. ଅଟ୍ଟାଳିକା ।

ଉଦ୍ୟାନ ଉପବନମାନେ । ଯହିଁ ଅଛନ୍ତି ସ୍ଥାନେ ସ୍ଥାନେ ॥
ପୁଷ୍ପିତ ଦ୍ରୁମରାଜିଙ୍କରେ । ବସିଣ ବିହଙ୍ଗଭ୍ରମରେ ॥
ଧ୍ୱନି କରନ୍ତି ନିରନ୍ତରେ । ସବୁ ଦିଗରେ ଯଉଁ ପୁରେ ॥
୫ ଯହିଁ ନିର୍ମଳ ବାସଜଳେ । କୂଜିତ ଯହିଁ [1]ଦ୍ୱିଜକୁଳେ ॥
୬ ଏ ବାପୀମାନଙ୍କେ ଆବର । ପ୍ରୋତ୍‌ଫୁଲ୍ଲ ଉତ୍‌ପଳ କହ୍ଲାର ॥
କୁମୁଦ ପଦ୍ମରେଣୁ ଗଣେ । ଯେ ଅଟେ ରମ୍ୟ ଅନୁକ୍ଷଣେ ॥
ସେ ନିଜ ପୁରେ ଲକ୍ଷ୍ମୀପତି । ବସନ୍ତେ ଅତିସୁଖେ ନିତି ॥
ଷୋଳସହସ୍ର ନାରୀଗଣ । ବଲ୍ଲଭ ହୋଇ ଏକ ଜଣ ॥
ତେତିକି ସଂଖ୍ୟାରେ ହେଁ ପୁଣ । ରୂପକୁ ଧରିଣ ଆପଣ ॥
ସମସ୍ତ ସଂପତ୍ତି ଯହିଁରେ । ରମିଲେ ତାଙ୍କ ସେ ଗୃହରେ ॥
୭ ମହାବୈଭବ ଯାହାଙ୍କର । ସେ କୃଷ୍ଣ [2]ହ୍ରଦିନୀମଧ୍ୟର ॥
ଜଳେ କରିଣ ବିଗାହନ[3] । ବିହାର କଲେ ଭଗବାନ ॥
କୁଚକୁଙ୍କୁମେ ସ୍ତିରୀଙ୍କର । ଲିପ୍ତ ହୋଇଲା ଅଙ୍ଗ ଯାର ॥
ଯେଣୁ ସେ ସ୍ତିରୀମାନେ ପୁଣ । ତାହାଙ୍କୁ କଲେ ଆଲିଙ୍ଗନ ॥
୮ ଗନ୍ଧର୍ବମାନେ ତାଙ୍କ ଯଶ । ଗାୟନ କରନ୍ତି ଅଶେଷ ॥
ମୃଦଙ୍ଗ ପଣବ ଆନକ । ବୀଣା ଆଦି ବାଦ୍ୟ ଅନେକ ॥
ହରଷେ କରନ୍ତେ ବାଦନ । ସୂତମାଗଧବନ୍ଦୀ ଜନ ॥
ସର୍ବେ ମିଳିଣ ଏକଠାଇଁ । ଗାଇଲେ ତାଙ୍କ ଯଶକୁ ହିଁ ॥
୯ କୃଷ୍ଣଙ୍କୁ ହସନ୍ତେ ସେ ନାରୀ । ସିଞ୍ଚିଲେ ପିଚିକାରି ବାରି ॥
କୃଷ୍ଣ ହିଁ ଜଳେ ସିଞ୍ଚି ତାଙ୍କୁ । କଲେ ସେ ଜଳରେ କ୍ରୀଡ଼ାକୁ ॥
ଯକ୍ଷୀଙ୍କ ସଙ୍ଗରେ ଯେସନ । ଖେଳଇ ଯକ୍ଷଙ୍କ ରାଜନ ॥
୧୦ ଆର୍ଦ୍ର ହୋଇଛି ଯାହାଙ୍କର । ବସନମାନ ଶରୀରର ॥
ପ୍ରକାଶ ହୋଇଛି ବିଶେଷ । ଯାହାଙ୍କ ଉରୁ କୁଚଦେଶ ॥
ଶ୍ରେଷ୍ଠ କବରରୁ ଆବର । ଖସନ୍ତି କୁସୁମନିକର ॥
ଜନ୍ମିଲା ଯଉଁ ମନୋରଥ । ତେଣୁ ଯେବଣ ଗର୍ବ ଜାତ ॥
ତେଣେ ଯାହାଙ୍କ ମୁଖମାନ । ବିଶେଷେ ଦିଶଇ ଶୋଭନ ॥
ସେ ନାରୀମାନେ ସେ ଯନ୍ତ୍ରକୁ । ହରିଲା ପ୍ରାଏ ସେ କାନ୍ତକୁ ॥
ସିଞ୍ଚନ୍ତେ ଆଲିଙ୍ଗନ କଲେ । ଅତ୍ୟନ୍ତ ଶୋଭା ସେ ପାଇଲେ ॥
୧୧ ତାଙ୍କ ସ୍ତନରୁ ଲିପ୍ତ ହୋଏ । କୁଙ୍କୁମ ମାଳା ଯାଙ୍କ କାୟେ ॥
ଅଭିନିବେଶରୁ କ୍ରୀଡ଼ାର । କମ୍ପେ କୁନ୍ତଳବନ୍ଧ ଯାର ॥
ସେ କୃଷ୍ଣ ସିଞ୍ଚନ୍ତେ ବାଳାଙ୍କୁ । ସେ ନାରୀ ସିଞ୍ଚନ୍ତେ କୃଷ୍ଣଙ୍କୁ ॥
ବେଷ୍ଟିତ ହୋଇ ଯୁବତିରେ । କ୍ରୀଡ଼ା ରଚିଲେ ସେ କାଳରେ ॥

୧. ଦ୍ୱିଜ = ପକ୍ଷୀ । ୨. ହ୍ରଦିନୀ = ନଦୀ । ୩. ବିଗାହନ = ମଜ୍ଜନ ।

| | | | | |
|---|---|---|---|---|
| | [1]କରେଣୁମାନଙ୍କରେ ଅତି | । ଯେସନେ ରମେ କରିପତି | ।। | ୪୨ |
| ୧୨ | ନଟ ନର୍ତ୍ତକୀ ଯେତେ ଛନ୍ତି | । ଯେ ଗୀତ ବାଦ୍ୟରେ ଜୀଅନ୍ତି | ।। | ୪୩ |
| | ଏହାଙ୍କୁ ଦେଲେ ଭଗବାନ | । କ୍ରୀଡ଼ାଲଂକାର ବାସମାନ | ।। | ୪୪ |
| | ଯେ ତାଙ୍କ ନାରୀମାନେ ଥିଲେ | । ସେମାନଙ୍କୁ ହିଁ ପୁଣି ଦେଲେ | ।। | ୪୫ |
| ୧୩ | ସେ ନାରୀମାନଙ୍କର ରଙ୍ଗେ | । ନର୍ମ ଖେଳନପରିଷ୍ୱଙ୍ଗେ[2] | ।। | ୪୬ |
| | ଗତି-ଆଳାପ-ସ୍ମିତେ ପୁଣ | । ବକ୍ର ଚାହାଣୀମାନଙ୍କେଣ | ।। | ୪୭ |
| | ଶ୍ରୀକୃଷ୍ଣ ଏମନ୍ତ ରୂପରେ | । କ୍ରୀଡ଼ା କରନ୍ତେ ସେ କାଳରେ | ।। | ୪୮ |
| | ତାଙ୍କର ଯଉଁ ବୁଦ୍ଧିମାନ | । ହରଣ ହୋଇଲେ ସେମାନ | ।। | ୪୯ |
| ୧୪ | ହେ ନୃପ ! ସେ ସର୍ବ ଯୁବତି | । ମୁକୁନ୍ଦଠାରେ ଦେଇ ମତି | ।। | ୫୦ |
| | କୃଷ୍ଣଙ୍କୁ ଚିନ୍ତା କରି ତହିଁ | । ଉନ୍ମତ୍ତ ଜଡ଼ ପ୍ରାଏ ହୋଇ | ।। | ୫୧ |
| | କହିଲେ ଯଉଁ ବାକ୍ୟଗଣ | । ତା' ମୁଁ କହଇ ତୁମ୍ଭେ ଶୁଣ | ।। | ୫୨ |

ଶ୍ରୀମହିଷ୍ୟ ଊଚୁଃ

| | | | | |
|---|---|---|---|---|
| ୧୫ | କୃଷ୍ଣବନିତାମାନେ ପୁଣ | । କହୁଅଛନ୍ତି ଏ ବଚନ | ।। | ୫୩ |
| | ଜଗତେ ଗୁପ୍ତ ବୋଧ ଯାର | । ରାତ୍ରେ ଶୋଇଲେ ସେ ଈଶ୍ୱର | ।। | ୫୪ |
| | ତାଙ୍କର ନିଦ୍ରାଭଙ୍ଗ କରି | । କିମ୍ପା କାନ୍ଦୁଛୁ ହେ କୁରରି | ।। | ୫୫ |
| | ନିଦ୍ରା ହିଁ ନ ମାଡ଼ନ୍ତେ ତୁହି | । ନ ଶୋଉ, ଅନୁଚିତ ତାହି | ।। | ୫୬ |
| | ଅଥବା ସେ ପଦ୍ମନେତ୍ରର | । ହାସ ସହିତରେ ଉଦାର | ।। | ୫୭ |
| | ଯେବଣ ଲୀଳାବିଲୋକନ | । ହେ ସଖି ତେଣେ ତୋର ମନ | ।। | ୫୮ |
| | ଆମ୍ଭମାନଙ୍କ ପ୍ରାୟେ ହୋଇ | । ଗାଢ଼େ ନିର୍ବିଦ୍ଧ ଅଛି ହୋଇ | ।। | ୫୯ |
| ୧୬ | ହେ ଚକ୍ରବାକି ନେତ୍ର ଦୁଇ | । ବୁଜିଣ ତୁ କରୁଣ ହୋଇ | ।। | ୬୦ |
| | ନ କରି ବନ୍ଧୁ ବିଲୋକନ | । ରାତ୍ରେ କରୁଛୁ କି ରୋଦନ | ।। | ୬୧ |
| | କିମ୍ୱା ଅଚ୍ୟୁତଚରଣରେ | । ଯେ ଲାଗିଅଛି ନିରନ୍ତରେ | ।। | ୬୨ |
| | କବରୀଭାରେ ସେ ମାଳାକୁ | । ଇଚ୍ଛା କରୁଛୁ ବହିବାକୁ | ।। | ୬୩ |
| | ଦାସ୍ୟଭାବକୁ ଅଛୁ ପାଇ | । ଆମ୍ଭମାନଙ୍କ ପ୍ରାୟ ହୋଇ | ।। | ୬୪ |
| ୧୭ | କି କାର୍ଯ୍ୟେ ଆହେ ରତ୍ନାକର | । ଭଜି ଅତ୍ୟନ୍ତ ଉଜାଗର | ।। | ୬୫ |
| | ନ ଲଭି କରି ନିଦ୍ରାଲେଶ | । ସର୍ବଦା କରୁଛ ଆକ୍ରୋଶ | ।। | ୬୬ |
| | ଆମ୍ଭ ସମସ୍ତ ନାରୀଙ୍କର | । ସଂଭୋଗକାଳେ ଦାମୋଦର | ।। | ୬୭ |
| | କୁଚକୁଙ୍କୁମାଦି ଭୂଷଣ | । ଯେସନେ କଲେକ ହରଣ | ।। | ୬୮ |
| | ସେରୂପେ ଅବା ତୁମ୍ଭ ଚିହ୍ନ | । ହରିଲେ କୌସ୍ତୁଭାଦିମାନ | ।। | ୬୯ |
| | ଏଣୁ ଏ କଷ୍ଟଦଶାକୁ ହିଁ | । ଲଭିଲ ଆମ୍ଭପ୍ରାୟ ହୋଇ | ।। | ୭୦ |
| ୧୮ | ହେ ଚନ୍ଦ୍ର ବଳିଷ୍ଠ ଯକ୍ଷ୍ମାରେ | । ଗୃହୀତ ହୋଇ ନିରନ୍ତରେ | ।। | ୭୧ |

୧. କରେଣୁ = ହସ୍ତିନୀ ।　　୨. ପରିଷ୍ୱଙ୍ଗ = ଆଲିଙ୍ଗନ ।

କିରଣଗଣେ ଆପଣାର । ନାଶ ନ କରନ୍ତେ ଅନ୍ଧାର ॥ ୭୨
ମୁକୁନ୍ଦବଚନରହସ୍ୟ । ବିସ୍ମୃତ ହୋଇଣ ବିଶେଷ ॥ ୭୩
କ୍ଷୀଣ ହୋଇଛ ନିତ୍ୟେ ତୁମ୍ଭେ । ଏମନ୍ତ ପଚାରୁଛୁଁ ଆମ୍ଭେ ॥ ୭୪
ଆମ୍ଭମାନଙ୍କ ପ୍ରାୟେ ହୋଇ । ବଚନ କିଛି ନ ସ୍ଫୁରଇ ॥ ୭୫
ଆମ୍ଭେ ସମସ୍ତେ ଏ ରୂପରେ । ତୁମ୍ଭଙ୍କୁ ଜାଣୁଛୁଁ ଏଠାରେ ॥ ୭୬
୧୯ ଆମ୍ଭେ ହେ ମଳୟସମୀର । କଲୁଁ କି ତୁମ୍ଭ ଅପକାର ॥ ୭୭
ଗୋବିନ୍ଦ ଅପାଙ୍ଗନିର୍ଭିନ୍ନ । ଆମ୍ଭର ଏ ହୃଦୟମାନ ॥ ୭୮
ଏଥିରେ କିମ୍ବା କାମକୁ ହିଁ । କରାଉ ଉଦ୍ଦୀପନ ତୁହି ॥ ୭୯
୨୦ ହେ ମେଘ ଅଟୁ ତୁ ଶ୍ରୀମନ୍ତ । ଶ୍ରୀକୃଷ୍ଣସଖା ତୁ ନିୟତ ॥ ୮୦
ଯେ ଧରିଛନ୍ତି ଶ୍ରୀବତ୍ସକୁ । ଧ୍ୟାନ କରୁଛୁ ସେ କୃଷ୍ଣଙ୍କୁ ॥ ୮୧
ଆମ୍ଭମାନଙ୍କ ପ୍ରାୟେ ହୋଇ । ଅତି ଉତ୍କଣ୍ଠା ଭାବ ବହି ॥ ୮୨
ନିର୍ମଳହୃଦୟ ହୋଇଣ । ସପ୍ରେମ ହୋଇ କରି ପୁଣ ॥ ୮୩
ତାହାଙ୍କୁ ସୁମରି ସୁମରି । ଛାଡୁଛୁ ବହୁ ବାଷ୍ପବାରି ॥ ୮୪
ଏଣୁ ପ୍ରସଙ୍ଗ ସେ କୃଷ୍ଣର । ଅଟଇ ଅତି ଦୁଃଖକର ॥ ୮୫
୨୧ କହ କହ ହେ ବନପ୍ରିୟ । କଣ୍ଠ ତୋହର ରମଣୀୟ ॥ ୮୬
ଯେ ମୃତ ସଂଜୀବିତ କରେ । ସେ ଦିବ୍ୟ ବାଣୀମାନଙ୍କରେ ॥ ୮୭
ଶ୍ରୀକୃଷ୍ଣବାକ୍ୟପ୍ରାୟେ ହୋଇ । ଶବ୍ଦମାନଙ୍କୁ ଭାଷୁ ତୁହି ॥ ୮୮
ଆଜ ତୋ' କି ପ୍ରିୟ କଥାକୁ । କରିବୁଁ କହ ତା' ଆମ୍ଭଙ୍କୁ ॥ ୮୯
୨୨ ହେ କ୍ଷିତିଧର ! ନିଶ୍ଚେ ତୋର । ବୁଦ୍ଧି ଅଟଇ ବଳୀୟାର ॥ ୯୦
ନ ଚଳି କିଛି ନ କହୁଛୁ । କି ଶ୍ରେଷ୍ଠ କାର୍ଯ୍ୟ ବିଚାରୁଛୁ ॥ ୯୧
କୃଷ୍ଣର ପାଦପଦ୍ମ ଦୁଇ । ଆମ୍ଭେ ଯେ ଅଛୁଁ ସ୍ତନେ ବହି ॥ ୯୨
ଆମ୍ଭର ପ୍ରାୟେ ସେ ପାଦକୁ । ବାଞ୍ଛୁ କି ଶୃଙ୍ଗେ ବହିବାକୁ ॥ ୯୩
୨୩ ହେ ନଦୀମାନେ ଏ ସାଗର । ଏ ଗ୍ରୀଷ୍ମକାଳରେ ସତ୍ୱର ॥ ୯୪
ବୃଷ୍ଟି କରାଇ ମେଘଦ୍ୱାରେ । ତୁମ୍ଭଙ୍କୁ ଆନନ୍ଦ ନ କରେ ॥ ୯୫
ଏ କଷ୍ଟ ଏଣୁ ବର୍ତ୍ତମାନ । ଶୁଖିଲେ ତୁମ୍ଭ ହ୍ରଦମାନ ॥ ୯୬
କୃଶ ହୋଇଲ ଅତି ପୁଣି । ବିନାଶ ହେଲେ ପଦ୍ମଶ୍ରେଣୀ ॥ ୯୭
ଆମ୍ଭେ ସମସ୍ତେ ଯେତେ ନାରୀ । ଆମ୍ଭର ଇଷ୍ଟ ନରହରି ॥ ୯୮
ତାଙ୍କର ସ୍ନେହବିଲୋକନ । ନ ପାଇ ଆମ୍ଭେ ହେଁ ଯେସନ ॥ ୯୯
ଆନନ୍ଦ ନୋହିଲା ହୃଦୟ । କଷ୍ଟ ଲଭିଲୁଁ ଅତିଶୟ ॥ ୧୦୦
୨୪ ଦଇବେ ଆସି ଏକ ହଂସ । ସେଠାରେ ହୋଇଲା ପ୍ରବେଶ ॥ ୧୦୧
ତାକୁ କଳ୍ପିଣ ଦୂତ କରି । କହୁ ଅଛନ୍ତି ସର୍ବନାରୀ ॥ ୧୦୨
ହେ ହଂସ ଉତ୍ତମ ହୋଇଣ । ଅଇଲଟି କି ତାହା ଭଣ ॥ ୧୦୩

ପୟକୁ ପିଅ ଆସ ବସ । କୃଷ୍ଣର କଥାମାନ ଭାଷ ॥ ୧୦୪
କୃଷ୍ଣର ଦୂତ କରି ତୋତେ । ମଣୁଛୁଁ ଏ ଆମ୍ଭେ ସମସ୍ତେ ॥ ୧୦୫
ପଚାରୁ ଅଛୁଁ ସର୍ବନାରୀ । ସୁଖେ ଅଛନ୍ତିଟି କି ହରି ॥ ୧୦୬
ପୂର୍ବେ ଏକାନ୍ତ ସ୍ଥାନେ ରହି । ଆମ୍ଭଙ୍କୁ ଥିଲେ ଯାହା କହି ॥ ୧୦୭
କରନ୍ତିଟି କି ତା' ସ୍ମରଣ । ଚଞ୍ଚଳ ତାଙ୍କ ମିତ୍ରପଣ ॥ ୧୦୮
କି କାରଣୁଁ ହେ କ୍ଷୁଦ୍ରଦୂତ । ତାହାଙ୍କୁ ହେବୁଁ ଉପଗତ ॥ ୧୦୯
ଲକ୍ଷ୍ମୀ ଯେ ଆମ୍ଭଙ୍କୁ ବଞ୍ଚାଇ । ତା' ସଙ୍ଗେ ଏକା ବିହରଇ ॥ ୧୧୦
ଛାଡ଼ି ସେ ଜଳଧିସୁତାକୁ । ଆଣ ସେ କାମଦ କୃଷ୍ଣଙ୍କୁ ॥ ୧୧୧
ଆମ୍ଭେ ସ୍ତିରୀଜନ ଯେତେକ । ଆମ୍ଭ ମଧ୍ୟେ ସେହି ଜଣକ ॥ ୧୧୨
କି ବା ଏକନିଷ୍ଠ ଅଟଇ । ଆମ୍ଭର କି ସେ ନିଷ୍ଠା ନାହିଁ ॥ ୧୧୩

ଶ୍ରୀଶୁକ ଉବାଚ

୨୫ ଶୁକ କହନ୍ତି ହେ ରାଜନ । ଏମନ୍ତେ କୃଷ୍ଣପତ୍ନୀଜନ ॥ ୧୧୪
ଯେ କୃଷ୍ଣ ଯୋଗେଶ୍ୱରେଶ୍ୱର । ତାହାଙ୍କ ଠାରେ ଏ ପ୍ରକାର ॥ ୧୧୫
କରନ୍ତେ ଭାବମାନ ନିତି । ସର୍ବେ ଲଭିଲେ ବିଷ୍ଣୁଗତି ॥ ୧୧୬
୨୬ ଉତ୍ତମ ଗୀତମାନଙ୍କରେ । ତାଙ୍କୁ ଗାଆନ୍ତେ ଅବା ନରେ ॥ ୧୧୭
କହନ୍ତେ ଅବା ଅନ୍ୟ ନର । ଶ୍ରବଣମାତ୍ରକେ ସତ୍ୱର ॥ ୧୧୮
ନାରୀଙ୍କ ମନକୁ ସେ ହରି । ହରନ୍ତି ବଳାତ୍କାର କରି ॥ ୧୧୯
ଯେ ପୁଣି ଦେଖିଲେ ସାକ୍ଷାତ । ସେ କିମ୍ପା ନୋହିବେ ଏମନ୍ତ ॥ ୧୨୦
୨୭ ଯଉଁ ବନିତାଏ ପ୍ରେମରେ । ପାଦସଂବାହନ ଆଦିରେ ॥ ୧୨୧
ଜଗତଗୁରୁ ଯେ ଶ୍ରୀହରି । ତାହାଙ୍କୁ ଭର୍ତ୍ତାବୁଦ୍ଧି କରି ॥ ୧୨୨
ସେବିଲେ ତାଙ୍କ ତପମାନ । କି ଅବା କରିବା ବର୍ଣ୍ଣନ ॥ ୧୨୩
୨୮ ସାଧୁଙ୍କ ଗତି ଭଗବାନ । ବେଦ-ଉଦିତ ଧର୍ମମାନ ॥ ୧୨୪
ଏରୂପେ କରନ୍ତେ ପ୍ରଚାର । ଧର୍ମାର୍ଥକାମମାନଙ୍କର ॥ ୧୨୫
ଗୃହସ୍ଥ ଆଶ୍ରମ ଏ ସ୍ଥାନ । ତା' ଦେଖାଇଲେ ପୁନଃପୁନ ॥ ୧୨୬
୨୯ ପରମଧର୍ମ ଅନୁସରି । ଗୃହସ୍ଥ ଆଶ୍ରମୀ ଯେ ହରି ॥ ୧୨୭
ତାଙ୍କର ହେଲେ ମନୋହାରୀ । ଷୋଳ ସହସ୍ର ଶହେ ନାରୀ ॥ ୧୨୮
୩୦ ସେ ନାରୀରତ୍ନମାନଙ୍କର । ମଧ୍ୟରେ ଆହେ ନୃପବର ॥ ୧୨୯
ରୁକ୍ମିଣୀ ଆଦି ହୋଇ କରି । ସାକ୍ଷାତ ଲକ୍ଷ୍ମୀ ଅଷ୍ଟ ନାରୀ ॥ ୧୩୦
ପୂର୍ବରୁ କ୍ରମେ କହିଥାଇଁ । ତାଙ୍କର ପୁତ୍ର ନାତି ଯେହି ॥ ୧୩୧
ଷୋଳ ସହସ୍ର ଶଏ ପୁଣ । ଅଷ୍ଟ ଉତ୍ତର ନାରୀଗଣ ॥ ୧୩୨
ଏ ସର୍ବ ଭାର୍ଯ୍ୟାମାନଙ୍କର । ଜନ୍ମିଲେ ଏତେକ କୁମର ॥ ୧୩୩
ଏକ ଷଷ୍ଟି ସହସ୍ର ପୁଣ । ଅଶୀଉତ୍ତର ଲକ୍ଷେ ଜାଣ ॥ ୧୩୪

୩୧ ଅବ୍ୟର୍ଥ ସୁରତ ଯାହାର । ସେ ନରହରି ଆପଣାର ।। ୧୩୫
ଯେତେକ ଭାର୍ଯ୍ୟା ତାଙ୍କ ଠାରେ । ଜଣ ଜଣକେ ସେ କୃଷ୍ଣରେ ।। ୧୩୬
ଉତ୍ତମ ଦଶ ଦଶ ସୁତ । ଜାତ କଲେ ହେ ପରୀକ୍ଷିତ ।। ୧୩୭
୩୨ ଉଦ୍ଦାମ ଯାଙ୍କ ପରାକ୍ରମ । ସେ ପୁତ୍ରମାନଙ୍କେ ଉତ୍ତମ ।। ୧୩୮
ଯଶସ୍ୱୀ ହୋଇ ହେଲେ ଖ୍ୟାତ । ଏ ଅଷ୍ଟାଦଶ ମହାରଥ ।। ୧୩୯
ତାଙ୍କର ନାମମାନ ପୁଣ । ମୋ ଠାରୁ କର ହେ ଶ୍ରବଣ ।। ୧୪୦
୩୩ ପ୍ରଦ୍ୟୁମ୍ନ ଅନିରୁଦ୍ଧ ବେନି । ଦୀପ୍ତିମାନକୁ ମିଶି ତିନି ।। ୧୪୧
୩୪ ଶାମ୍ବ ଯେ ମଧୁ ବୃହଦ୍‌ଭାନୁ । ବୃକ ଅରୁଣ ଚିତ୍ରଭାନୁ ।। ୧୪୨
ପୁଷ୍କର ବେଦବାହୁ ଆନ । ଯେ ଶ୍ରୁତଦେବ ସୁନନ୍ଦନ ।। ୧୪୩
ଭାନୁ ବିରୂପ ଚିତ୍ରବାହୁ । କବି ନ୍ୟଗ୍ରୋଧ ପୁଣ ଯେହୁ ।। ୧୪୪
୩୫ ସେ ଶ୍ରୀକୃଷ୍ଣର ଏ ରୂପରେ । ହେ ନୃପ ! ପୁତ୍ରଙ୍କ ମଧ୍ୟରେ ।। ୧୪୫
ପ୍ରଦ୍ୟୁମ୍ନ ରୁକ୍ମିଣୀତନୟ । ପ୍ରଥମ ହେଲେ ପିତାପ୍ରାୟ ।। ୧୪୬
୩୬ ରୁକ୍ମୀର ସୁତାକୁ ପ୍ରଦ୍ୟୁମ୍ନ । ବିଭା ହୋଇଲେ ହେ ରାଜନ ।। ୧୪୭
ତହିଁରୁ ଅନିରୁଦ୍ଧ ଜାତ । ଅୟୁତ ନାଗବଳେ ଯୁତ ।। ୧୪୮
୩୭ ଏବେ ହୋ ଶୁଣ ନୃପବର । ସେ ଅନିରୁଦ୍ଧ ହିଁ ରୁକ୍ମୀର ।। ୧୪୯
ଦୁହିତାପୁତ୍ର ସେହୁ ହେଲେ । ତା' ନାତୁଣୀକି ବିଭା ହେଲେ ।। ୧୫୦
ତା' ଠାରୁ ବଜ୍ର ହେଲେ ଜାତ । ମୁଷଳେ ନୋହିଲେ ଯେ ହତ ।। ୧୫୧
୩୮ ତହିଁରୁ ହେଲେ ପ୍ରତିବାହୁ । ତା' ପୁତ୍ର ହୋଇଲେ ସୁବାହୁ ।। ୧୫୨
ସୁବାହୁସୁତ ଉପସେନ[1] । ତାହାଙ୍କ ପୁତ୍ର ଭଦ୍ରସେନ[2] ।। ୧୫୩
୩୯ ଏକୁଳେ ଯେତେ ଜନ୍ମ ହେଲେ । ଗୋଟିଏ ଦରିଦ୍ର ନୋହିଲେ ।। ୧୫୪
ଆୟୁଷ ପରାକ୍ରମମାନ । କାହାରି ନୋହିଲା ଏ ହୀନ ।। ୧୫୫
ଅଳ୍ପସନ୍ତତି ହୋଇ କେହି । ନୋହିଲେ ଅବ୍ରହ୍ମଣ୍ୟ ହୋଇ ।। ୧୫୬
୪୦ ଯଦୁବଂଶରେ ହେଲେ ଜାତ । ଯାହାଙ୍କ କର୍ମମାନ ଖ୍ୟାତ ।। ୧୫୭
ସେହି ପୁରୁଷମାନଙ୍କର । ଆମ୍ଭେ ଶୁଣ ହେ ନୃପବର ।। ୧୫୮
ଅୟୁତ ବରଷେ ସଂଖ୍ୟାକୁ । ଶକ୍ୟ ନୋହିବୁଁ କହିବାକୁ ।। ୧୫୯
୪୧ ସହସ୍ର ସହସ୍ର ହୋଇଣ । ଅସଂଖ୍ୟ ଯେ କୁମାରଗଣ ।। ୧୬୦
ଏହାଙ୍କ ମଧ୍ୟେ ହେଲେ ଜାତ । ତିନି କୋଟି ଅଠାଶୀ ଶତ ।। ୧୬୧
ଆଚାର୍ଯ୍ୟ ହୋଇଲେକ ତହିଁ । ଏମନ୍ତ ଆମ୍ଭେ ଶୁଣିଥାଇଁ ।। ୧୬୨
୪୨ ମହାତ୍ମା ଯଦୁମାନଙ୍କର । ସଂଖ୍ୟା କରିବ କଉଁ ନର ।। ୧୬୩
ଯହିଁ ଅୟୁତମାନଙ୍କର । ଅୟୁତଲକ୍ଷରେ ଆବର ।। ୧୬୪
ରାଜତ୍ୱ କରି ଉଗ୍ରସେନ । ରହିଲେ ଶୁଣ ହେ ରାଜନ ।। ୧୬୫

---

୧. ଶାନ୍ତସେନ । ୨. ଶତସେନ ।

୪୩ ଦେବ-ଅସୁର ସମରରେ । ଯେ ମଲେ ଦାରୁଣ ଅସୁରେ ॥
ସେ ମନୁଷ୍ୟରେ ରାଜା ହୋଇ । ପ୍ରଜା ବାଧିଲେ ଗର୍ବ ବହି ॥
୪୪ ଦେବତାମାନେ ଏ ରୂପରେ । ଜନ୍ମିଲେ ଯଦୁଙ୍କ କୁଳରେ ॥
କୃଷ୍ଣ ସହିତେ ହେ ରାଜନ । ଯଦୁକୁଳରେ ଉତପନ୍ନ ॥
ନାଶିବା ପାଇଁ ଦୁଷ୍ଟବଳ । ହୋଇଲେ ଶହେ ଏକ କୁଳ ॥
୪୫ ସେ ସର୍ବରାଜାଙ୍କର ହରି । ହୋଇଲେ ନୃପ ହୋଇ କରି ॥
ତାହାଙ୍କୁ ଅନୁବର୍ତ୍ତି ପୁଣ । ବଢ଼ିଲେ ସର୍ବ ଯଦୁଗଣ ॥
୪୬ ଶ୍ରୀକୃଷ୍ଣେ ଚିତ୍ତ ଯାହାଙ୍କର । ଏମନ୍ତ ସର୍ବ ଯଦୁବୀର ॥
ଶଯ୍ୟା ଗମନ ଆଳାପରେ । ଆସନ ସ୍ନାନ କ୍ରୀଡ଼ାଦିରେ ॥
ହେ ନୃପ ! ନିଜ ଆତ୍ମାକୁ ହିଁ । ଜାଣି ନ ପାରିଲେ ସେ କେହି ॥
୪୭ ଯଦୁକୁଳରେ ଯଦୁନାଥ । ଯେଉଁ ଦିନରୁ ହେଲେ ଜାତ ॥
ନିଜ ଚରଣୁଁ ଜାତ ହୋଇ । ଗଙ୍ଗା ଯେ ତୀର୍ଥରୂପେ ବହି ॥
ତାହାଙ୍କୁ ଊଣା କଲେ ହରି । ସ୍ୱକୀର୍ତ୍ତିତୀର୍ଥକୁ ବିସ୍ତାରି ॥
ଯେ ନିଜ ଶତ୍ରୁମିତ୍ର ଥିଲେ । ତାହାଙ୍କୁ ନିଜରୂପ ଦେଲେ ॥
ଯଉଁ ଲକ୍ଷ୍ମୀକି ପାଇବାକୁ । ବ୍ରହ୍ମାଦି କରନ୍ତି ଯତ୍ନକୁ ॥
କେହି ନ ପାଇଲେ ଯା' ବାଞ୍ଛି । ସେ ଲକ୍ଷ୍ମୀ ଯାହାଙ୍କୁ ଭଜିଛି ॥
ଶୁଣନ୍ତେ ଗୁଣନ୍ତେ ତତ୍‌କାଳ । ଯା' ନାମ ନାଶେ ଅମଙ୍ଗଳ ॥
ସେ ସେହି ବଂଶଧର୍ମମାନ । ଯେ କରି ଅଛନ୍ତି ସ୍ଥାପନ ॥
କାଳଚକ୍ର ଆୟୁଧ ଯାର । ହେ ନୃପ ସେହି ଶ୍ରୀକୃଷ୍ଣର ॥
ଯା' କଲେ କ୍ଷିତିଭାର ହତ । ଏ କଥା ନୁହଇ ଚିତ୍ରିତ ॥
୪୮ ଯେ ସର୍ବଜନଙ୍କ ନିବାସ । ଯାଦବଶ୍ରେଷ୍ଠ ଯାଙ୍କ ଦାସ ॥
ଦେବକୀଙ୍କର ହେଲେ ପୁତ୍ର । ଯାର ଏ କଥା ବାଦମାତ୍ର ॥
ଯେ ନିଜ ଭୁଜମାନଙ୍କରେ । ନାଶିଲେ ଅଧର୍ମ ନିର୍ଭରେ ॥
ଯେ ଚରାଚର ପାପ ହରେ । ସୁସ୍ମିତଯୁତ ଶ୍ରୀମୁଖରେ ॥
ଯେ ବ୍ରଜପୁରନାରୀଙ୍କର । କାମ ବଢ଼ାଇଲେ ସତ୍ୱର ॥
ଯେ କୃଷ୍ଣ ଅଟନ୍ତି ଏମନ୍ତ । ସେ ହୋଇଛନ୍ତି ଜୟଯୁତ ॥
୪୯ ହେ ନୃପ ! ଏମନ୍ତ ରୂପରେ । ସ୍ୱଧର୍ମ ରଖିବା ଇଚ୍ଛାରେ ॥
ଧଇଲେ ଲୀଳାରେ ଶରୀର । ଯେ ଯଦୁଶ୍ରେଷ୍ଠ ସେ କୃଷ୍ଣର ॥
ତଦନୁରୂପ ବିଡ଼ମ୍ବନ । କର୍ମକଷଣ କର୍ମମାନ ॥
କୃଷ୍ଣଚରଣେ [1]ଅନୁବୃତ୍ତି । ବାଞ୍ଛନ୍ତେ ଶୁଣିମ ତା' ନିତି ॥

---

୧. ଅନୁବୃତ୍ତି = ଅନୁସରଣ ।

୫୦ ହେ ନୃପ ! ଏ ରୂପରେ ନର । ଶ୍ରୀକୃଷ୍ଣ ଶ୍ରୀମନ୍ତ କଥାର ।। ୧୯୬
ଶ୍ରବଣ-କୀର୍ତ୍ତନ ଚିନ୍ତାରେ । ବର୍ଦ୍ଧିତ ସେ ଅନୁଷ୍ଠାନରେ ।। ୧୯୭
ଲଭଇ ଶ୍ରୀକୃଷ୍ଣସ୍ଥାନକୁ । ଯଉଁ ବୈକୁଣ୍ଠ ପାଇବାକୁ ।। ୧୯୮
ଗ୍ରାମକୁ ଛାଡ଼ି ରାଜାମାନେ । ପଶନ୍ତି ଯାଇ ଘୋର ବନେ ।। ୧୯୯
ଦୁସ୍ତର ଜନ୍ମ ମରଣ ହିଁ । ଯେବଣ ସ୍ଥାନ ନିବର୍ତ୍ତାଇ ।। ୨୦୦
କୌଶସ କୁଳରେ ଜନମ । ବ୍ରାହ୍ମଣ ଦୀନବନ୍ଧୁ ନାମ ।। ୨୦୧
ଶ୍ରୀକୃଷ୍ଣ ଚରଣନଳିନ । ଚିନ୍ତା କରିଣ ଅନୁଦିନ ।। ୨୦୨
ସୁଜନମାନଙ୍କର ହିତେ । ଆପଣା ବୁଦ୍ଧି ଅନୁମତେ ।। ୨୦୩
ଦଶମସ୍କନ୍ଧ ଭାଗବତ । ପ୍ରାକୃତବନ୍ଧେ କଲି ଗୀତ ।। ୨୦୪
ହେ କୃଷ୍ଣ କମଳଲୋଚନ । ତୁମ୍ଭେ ଯେ ପତିତପାବନ ।। ୨୦୫
ମୁଁ ଯେ ପତିତ ଦୀନବନ୍ଧୁ । ମୋତେ ଉଦ୍ଧର ଭବବନ୍ଧୁଁ ।। ୨୦୬

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀମହିଷୀଗୀତଂ
ନାମ ନବତିତମୋଽଧ୍ୟାୟଃ ।।

**ସମାପ୍ତୋଽୟଂ ଦଶମସ୍କନ୍ଧଃ ।**

# ଏକାଦଶ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଓଁ ନମଃ ଶ୍ରୀପରମହଂସାସ୍ୱାଦିତଚରଣକମଳଚିନ୍ମକରନ୍ଦାୟ
ଭକ୍ତଜନମାନସନିବାସାୟ ଶ୍ରୀରାମଚନ୍ଦ୍ରାୟ ।

ବିଜୟନ୍ତେ ପରାନନ୍ଦକୃଷ୍ଣପାଦରଜଃସ୍ରଜଃ ।
ଯା ଧୃତା ମୂର୍ଦ୍ଧ୍ନି ଜାୟନ୍ତେ ମହେନ୍ଦ୍ରାଦିମହଃସ୍ରଜଃ ।। ୧
ଉକ୍ତୈକତ୍ରିଂଶତାଧ୍ୟାୟୈର୍ମୁକ୍ତିରେକାଦଶେ ତତଃ ।
ଜାୟନ୍ତେୟେତିହାସାଦ୍ୟୈଃ ସମାସବ୍ୟାସରୂପତଃ ।। ୨
ନାରଦୋ ବସୁଦେବାୟ ସମାସେନ ନ୍ୟବର୍ଣ୍ଣୟତ୍ ।
ଭଗବାନୁଦ୍ଧବାୟାଥ ବିସ୍ତରେଣୋପପତ୍ତିଭିଃ ।। ୩
ତତ୍ର ତୁ ପ୍ରଥମେଽଧ୍ୟାୟେ ଯଦୁବଂଶସ୍ୟ ସଂକ୍ଷୟଃ ।
ଉପକ୍ଷିପ୍ତୋ ବିରାଗାୟ ମୌଷଳବ୍ୟପଦେଶତଃ ।। ୪
ପ୍ରବୃତ୍ତିତଃ ପରାନନ୍ଦ-କୃଷ୍ଣକ୍ରୀଡ଼ାନୁବର୍ଣ୍ଣିତା ।
ତନ୍ନିବୃତ୍ତ୍ୟା ପରାନନ୍ଦପଦାରୋହୋଽନୁବର୍ଣ୍ଣ୍ୟତେ ।। ୫

ଜୟ ଶ୍ରୀକୃଷ୍ଣ ଜଗନ୍ନାଥ । ଜୟ ଅନାଥଜନ-ନାଥ ।। ୧
ତୁମ୍ଭଙ୍କୁ କରୁଛି ବନ୍ଦନ । ମୋତେ ହୋଇବା ସୁପ୍ରସନ୍ନ ।। ୨
ଶ୍ରୀହରି କରୁଣାସାଗର । ବିଶ୍ୱନାଟକ-ସୂତ୍ରଧାର ।। ୩
ସେ ଯହିଁ କରେ ନିଯୋଜନ । ତହିଁ ପ୍ରବର୍ତ୍ତେ ପ୍ରାଣିମନ ।। ୪
ଏଣୁ ଏ ଦୋଷ ନୋହେ ମୋର । ସୁଜନେ ଦୋଷ କ୍ଷମା କର ।। ୫
ଶ୍ରୀ ଏକାଦଶ ଭାଗବତ । ଭାଷାରେ କରିବାକୁ ଗୀତ ।। ୬
ଆପଣା ବୁଦ୍ଧି ଅନୁମତେ । ବ୍ରାହ୍ମଣ ଦୀନବନ୍ଧୁ ଚିନ୍ତେ ।। ୭
ଶ୍ରୀକୃଷ୍ଣନାମକୁ ଯେମନ୍ତେ । ଶୁକ ହିଁ କିଛି ଉଚ୍ଚାରନ୍ତେ ।। ୮
ଶ୍ରଦ୍ଧାରେ ନ ଶୁଣେ କି ଜନ । ସେହି ରୂପରେ ମୋ' ବଚନ ।। ୯
ସମସ୍ତେ ଶୁଣି ତୋଷ ହୁଅ । ଛାଡ଼ିଣ କାମ କ୍ରୋଧ ମୋହ ।। ୧୦

ଶ୍ରୀବାଦରାୟଣିରୁବାଚ

୧ କହନ୍ତି ବ୍ୟାସଙ୍କର ସୁତ । ଶୁଣ ହେ ନୃପ ପରୀକ୍ଷିତ ।। ୧୧
ଶ୍ରୀକୃଷ୍ଣ ରାମସହିତରେ । ବେଷ୍ଟିତ ହୋଇ ଯଦୁଙ୍କରେ ।। ୧୨
ଦୈତ୍ୟଙ୍କୁ କରିଣ ସଂହାର । ଉଶ୍ୱାସ କଲେ ଭୂମିଭାର ।। ୧୩
ଯେ ଶୀଘ୍ରେ ନାଶର ନିମିତ୍ତ । କରି ସେ କଳହକୁ ଜାତ ।। ୧୪
୨ ଅବଜ୍ଞା ଯେ କପଟଦ୍ୟୂତ । ଯେ ଦ୍ରଉପଦୀକେଶାଘାତ ।। ୧୫

ଏ ଆଦିମାନଙ୍କରେ ପୁଣ । ଦୁର୍ଯ୍ୟୋଧନାଦି ଶତ୍ରୁଗଣ ॥
କୋପ କରାଇଲେ ଯାହାଙ୍କୁ । ବହୁତ ସେ ପାଣ୍ଡୁସୁତଙ୍କୁ ॥
ନିମିତ୍ତ କରି ବନମାଳୀ । ଯେ ଥିଲେ ବେନି ସୈନ୍ୟେ ମିଳି ॥
ମାରିଣ ସେ ରାଜାମାନଙ୍କୁ । ହରିଲେ ଧରଣୀଭାରକୁ ॥
୩ ଭୂମିର ଭାରପ୍ରାୟେ ହୋଇ । ରାଜାଏ ରାଜସୈନ୍ୟେ ଯେହି ॥
ତାହାଙ୍କୁ ଆପଣା ଭୁଜରେ । ପାଳିତ ଯଉଁ ଯଦୁବୀରେ ॥
ତେଣେ ମରାଇ ସେ ଅଚ୍ୟୁତ । ମନେ ବିଚାରିଲେ ଏମନ୍ତ ॥
ଗଲେହେଁ ଧରାଭାର ପୁଣି । ନ ଗଲା ପ୍ରାଏ ଆମ୍ଭେ ମଣି ॥
ଯେଣୁ ଅଛନ୍ତି ଏ କେବଳ । ଅତି ଅସହ୍ୟ ଯଦୁକୁଳ ॥
୪ ଏ ଯଦୁବଂଶ ଅତିଶୟ । ମୋତେ ଯା' କରିଛି ଆଶ୍ରୟ ॥
ଏହେତୁ ଏହାର ନୋହିବ । ଅନ୍ୟ ଠାବରୁ ପରାଭବ ॥
ଏ ସଂପତ୍ତିରେ ଯଦୁକୁଳ । ହୋଇଛି ଅତି ଉଚ୍ଛୃଙ୍ଖଳ ॥
କଳି ଭିଆଇ ଏଥି ପୁଣ । ଏ କୁଳ ବିନାଶ କରିଣ ॥
ଶାନ୍ତିକି ଭଜି ନିଜସ୍ଥାନେ । ଗମନ କରିବି ଯେସନେ ॥
ବଂଶସ୍ତମ୍ବରୁ ଅଗ୍ନି ଜାତ । ତାକୁ ବିନାଶି ହୋଏ ଶାନ୍ତ ॥

ଶ୍ରୀଶୁକ ଉବାଚ

୫ କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରାକୁମର ॥
ଭୂତଭାବନ ଭଗବାନ । ସେ ପ୍ରଭୁ କୃଷ୍ଣ ହେ ରାଜନ ॥
ନିଶ୍ଚୟ କରି ଏ ରୂପରେ । ବିପ୍ରଙ୍କ ଶାପକପଟରେ ॥
ଯେ ଅଟେ ବଂଶ ଆପଣାର । ତାହାକୁ କଲେ ସେ ସଂହାର ॥
୬ ଯେଣେ ଲାବଣ୍ୟବନ୍ତ ନର । ସେ ନିଜ ମୂର୍ତ୍ତିରେ ଲୋକର ॥
ଚକ୍ଷୁକୁ କରି ଆକର୍ଷଣ । ବଚନମାନଙ୍କରେ ପୁଣ ॥
ସେ କୃଷ୍ଣ ବାକ୍ୟମାନଙ୍କୁ ହିଁ । ସ୍ମରଣ କରୁଥାନ୍ତି ଯେହି ॥
ତାହାଙ୍କ ଚିତ୍ତକୁ ହରିଣ । ସେ ସେହି ସ୍ଥାନରେ ହେଁ ପୁଣ ॥
ଚିହ୍ନିତ ନିଜ ପାଦମାନ । ଯେ କରୁଛନ୍ତି ବିଲୋକନ ॥
ତାଙ୍କର ଅନ୍ୟତ୍ର ଗମନ । ସେ ରୂପେ ହରିଣ ବହନ ॥
୭ ଏଥି ଉତ୍ତାରେ ଏ ସଂସାରେ । ଜନ୍ମ ହୋଇବେ ଯେତେ ନରେ ॥
ସୁଖେ ସେ ତରିବେ ସଂସାର । ଏହି ଇଚ୍ଛାରେ ସେ ଈଶ୍ୱର ॥
ଅତି ଉତ୍ତମ ଶ୍ଲୋକମାନ । ଯହିଁ ଅଛନ୍ତି ହେ ରାଜନ ॥
ସେ ନିଜ କୀର୍ତ୍ତିକି ବିସ୍ତାରି । ନିଜ ସ୍ଥାନକୁ ଗଲେ ହରି ॥

ଶ୍ରୀପରୀକ୍ଷିଦ୍ ଉବାଚ

୮ ସେ ଶୁକଦେବଙ୍କୁ ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ॥

| | | | | | |
|---|---|---|---|---|---|
| | କୃଷ୍ଣରେ ଚିତ୍ତ ଯାହାଙ୍କର | । | ବ୍ରହ୍ମଣ୍ୟ ଦାତା ଯେ ଆବର | ।। | ୪୬ |
| | ବୃଦ୍ଧଜନଙ୍କୁ ପୁଣ ଅତି | । | ଯେ ନିତ୍ୟେ ସେବା କରିଥାନ୍ତି | ।। | ୪୭ |
| | ହେଲା ସେ ଯଦୁଙ୍କର ଠାରେ | । | ବ୍ରାହ୍ମଣଶାପ କି ରୂପରେ | ।। | ୪୮ |
| ୯ | ହେ ଦ୍ୱିଜବର ବିପ୍ରଶାପ | । | କିମ୍ପାଇଁ ହେଲା କିସ୍ୱରୂପ | ।। | ୪୯ |
| | ଯେ ଏକ-ଆତ୍ମା ଯଦୁବୀରେ | । | ତାଙ୍କ କଳହ କି ରୂପରେ | ।। | ୫୦ |
| | ଏ ସର୍ବକଥା ବିସ୍ତାରିଣ | । | ଆମ୍ଭ ଆଗରେ ତୁମ୍ଭେ ଭଣ | ।। | ୫୧ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୦ | ରାଜା ପଚାରନ୍ତେ ଏମନ୍ତ | । | କହୁଅଛନ୍ତି ବ୍ୟାସସୁତ | ।। | ୫୨ |
| | ଉତ୍ତମ ଯାର କୀର୍ତ୍ତିମାନ | । | ସେ ଆପ୍ତକାମ ଭଗବାନ | ।। | ୫୩ |
| | ଯେ ସର୍ବସୁନ୍ଦରମନ୍ଦିର | । | ଗ୍ରହଣ କରି ସେ ଶରୀର | ।। | ୫୪ |
| | ଅତିମଙ୍ଗଳ କର୍ମଗଣ | । | ପୃଥ୍ୱୀରେ କରି ଆଚରଣ | ।। | ୫୫ |
| | ଦ୍ୱାରବତୀରେ କରି ପୁର | । | ତହିଁରେ କରନ୍ତି ବିହାର | ।। | ୫୬ |
| | ହେ ନୃପ ! ଆପଣା କୁଳକୁ | । | ବିଚାର କଲେ ନାଶିବାକୁ | ।। | ୫୭ |
| | ଯେଣୁ ଏ ଭୂମିଭାର ହୋଇ | । | ଏକା ସ୍ୱକୁଳ ଅଛି ରହି | ।। | ୫୮ |
| ୧୧ | ସେ କାଳରୂପୀ ନରହରି | । | ବସନ୍ତେ ବସୁଦେବ-ପୁରୀ | ।। | ୫୯ |
| | ଯେ ପୁଣ୍ୟମାନଙ୍କୁ ଦିଅଇ | । | ଯେ ଅତି ମଙ୍ଗଳ ଅଟଇ | ।। | ୬୦ |
| | ଗାୟନ କରନ୍ତେ ଜଗତ | । | ଯେ କରେ କଳିମଳ ହତ | ।। | ୬୧ |
| | ଏମନ୍ତେ ଯେତେ କର୍ମମାନ | । | ତା' ସର୍ବ କରି ହେ ରାଜନ | ।। | ୬୨ |
| | ମୁନିମାନଙ୍କୁ ବିସର୍ଜନ୍ତେ | । | ଗଲେ ସେ ପିଣ୍ଡାରକ ତୀର୍ଥେ | ।। | ୬୩ |
| ୧୨ | ଅସିତ ବିଶ୍ୱାମିତ୍ର ବେନି | । | କଣ୍ୱ ଦୁର୍ବାସା ଭୃଗୁ ତିନି | ।। | ୬୪ |
| | ଅଙ୍ଗିରା କଶ୍ୟପ ଯେ ମିଶି | । | ସେ ବାମଦେବ ଅତ୍ରି ଋଷି | ।। | ୬୫ |
| | ବସିଷ୍ଠ ନାରଦାଦି ଯେତେ | । | ଏ ସର୍ବେ ପ୍ରସ୍ଥାନ କରନ୍ତେ | ।। | ୬୬ |
| ୧୩ | ବାଳକ ସେ ଯଦୁକୁମରେ | । | କ୍ରୀଡ଼ା କରନ୍ତେ ସେ କାଳରେ | ।। | ୬୭ |
| | ଯାଇ ସେ ଋଷିଙ୍କ ପାଶକୁ | । | ଧରି ତାହାଙ୍କ ଚରଣକୁ | ।। | ୬୮ |
| | ସେ ଅବିନୟବନ୍ତ ହେଲେ | । | ବିନୀତ ପ୍ରାୟେ ପଚାରିଲେ | ।। | ୬୯ |
| ୧୪ | ଶୁଣ ହେ ନୃପ ପରୀକ୍ଷିତ | । | ସାମ୍ବ ଯେ ଜାମ୍ବବତୀସୁତ | ।। | ୭୦ |
| ୧୫ | ତାଙ୍କୁ ସେ ସମସ୍ତେ ବିଚାରି | । | ନାରୀବେଶରେ ବେଶ କରି | ।। | ୭୧ |
| | ଋଷିଙ୍କି କହିଲେ ବଚନ | । | ଅମୋଘ ତୁମ୍ଭ ଦରଶନ | ।। | ୭୨ |
| | ଗର୍ଭିଣୀ ହୋଇଛି ଏ ନାରୀ | । | ସାକ୍ଷାତେ ଲାଜେ ନ ପଚାରି | ।। | ୭୩ |
| | ଆମ୍ଭ ମୁଖରେ ପଚାରୁଛି | । | ପ୍ରସବ ନିକଟ ହୋଇଛି | ।। | ୭୪ |
| | ଏ ହୋଇଅଛି ପୁତ୍ରକାମ | । | କହ କି କରିବ ଜନମ | ।। | ୭୫ |
| ୧୬ | ହେ ନୃପ ! ଏମନ୍ତ ରୂପରେ | । | ବଞ୍ଚିତ ହୋଇ ଋଷିବରେ | ।। | ୭୬ |
| | କ୍ରୋଧେ ସେ ଯଦୁକୁମରଙ୍କୁ | । | କହିଲେ ଏମନ୍ତ ବାକ୍ୟକୁ | ।। | ୭୭ |

| | | | | |
|---|---|---|---|---|
| | ହେ ମନ୍ଦମତି ଯଦୁବାଳେ | ଏ ଜାତ କରିବ ମୂଷଳେ | ॥ | ୭୮ |
| | ସେହି ମୂଷଳରେ ତୁମ୍ଭର | କୁଳ ହିଁ ହୋଇବ ସଂହାର | ॥ | ୭୯ |
| ୧୭ | ସେ ଯଦୁସୁତେ ତାହା ଶୁଣି | ଅତି ସଂତ୍ରସ୍ତ ହୋଇ ପୁଣି | ॥ | ୮୦ |
| | ହେ ନୃପ ! ଶାମ୍ବ[୧] କୁମରର | ଉଦର ଫେଇଣ ସତ୍ୱର | ॥ | ୮୧ |
| | ତହିଁରେ ଦେଖିଲେ କେବଳ | ଅଛି ଲୋହମୟ ମୂଷଳ | ॥ | ୮୨ |
| ୧୮ | ଅଭାଗ୍ୟବନ୍ତ ଆମ୍ଭେମାନେ | କି କୃତ୍ୟ କଲାଇଁ ଏ ସ୍ଥାନେ | ॥ | ୮୩ |
| | ଆମ୍ଭଙ୍କୁ କି ବୋଲିବେ ନରେ | ବିହ୍ୱଳ ହୋଇ ଏ ରୂପରେ | ॥ | ୮୪ |
| | ଘେନି କରି ସେ ମୂଷଳକୁ | ସମସ୍ତେ ଚଳିଲେ ଗୃହକୁ | ॥ | ୮୫ |
| ୧୯ | ସେ ମୂଷଳକୁ ଘେନି କରି | ମ୍ଳାନ ହୋଇଛି ମୁଖଶିରୀ | ॥ | ୮୬ |
| | ହେ ନୃପ ! ସେ ଯଦୁକୁମରେ | ଉଗ୍ରସେନକୁ ସେ ସଭାରେ | ॥ | ୮୭ |
| | ଶୁଣନ୍ତେ ସର୍ବ ଯଦୁଜନ | ଏକଥା କଲେ ନିବେଦନ | ॥ | ୮୮ |
| ୨୦ | ଶୁଣି ଅମୋଘ ବିପ୍ରଶାପ | ଦେଖି ସେ ମୂଷଳ ହେ ନୃପ | ॥ | ୮୯ |
| | ଦ୍ୱାରକାପୁରବାସୀ ଜନେ | ଅତି ବିସ୍ମୟ ହୋଇ ମନେ | ॥ | ୯୦ |
| | ଅତ୍ୟନ୍ତ ଭୟକୁ ଲଭିଣ | ତ୍ରସ୍ତ ହୋଇଲେ ସର୍ବେ ପୁଣ | ॥ | ୯୧ |
| ୨୧ | ସେ ଯଦୁରାଜ ଉଗ୍ରସେନ | କରି ସେ ମୂଷଳ ଆଦାନ | ॥ | ୯୨ |
| | ତାହା କୃଷ୍ଣଙ୍କୁ ନ ପଚାରି | ସମୁଦ୍ରଜଳେ ଘଷି କରି | ॥ | ୯୩ |
| | ଯେ ଅବଶେଷ ଲୋହ ଥିଲା | ସିନ୍ଧୁଜଳକୁ ତା' ଫିଙ୍ଗିଲା | ॥ | ୯୪ |
| ୨୨ | କେବଣ ମତ୍ସ୍ୟ ତଦନ୍ତରେ | ସେ ଲୋହ ଗିଳିଲା ଜଳରେ | ॥ | ୯୫ |
| | ଘଷିଲା ଲୋହ ଫେଣଗଣ | ତରଙ୍ଗମାନଙ୍କେ ଭାସିଣ | ॥ | ୯୬ |
| | ତଟରେ ଆସି ସେ ଲାଗିଲେ | ଏରକା ନାମେ ତୃଣ ହେଲେ | ॥ | ୯୭ |
| ୨୩ | କୈବର୍ତ୍ତମାନେ ସମୁଦ୍ରରେ | ଅନ୍ୟ ମତ୍ସ୍ୟଙ୍କ ସହିତରେ | ॥ | ୯୮ |
| | ଜାଲରେ ଧରି ସେ ମତ୍ସ୍ୟକୁ | ଦେଲେ ସେ ଜରା ଶବରକୁ | ॥ | ୯୯ |
| | ମତ୍ସ୍ୟ-ଉଦରୁ ଲୋହ ନେଲା | ସେ ବ୍ୟାଧ ଶରେ ଫଳ କଲା | ॥ | ୧୦୦ |
| ୨୪ | ସେ ଭଗବାନ ନରହରି | ଏ ସର୍ବ କାର୍ଯ୍ୟ ଜାଣି କରି | ॥ | ୧୦୧ |
| | ଈଶ୍ୱର ହେଲେହେଁ ସର୍ବଥା | ସେ ଶାପ ନ କଲେ ଅନ୍ୟଥା | ॥ | ୧୦୨ |
| | ସେ କାଳରୂପୀ ଯେଣୁ ପୁଣି | ହରଷ ହେଲେ ତାହା ଶୁଣି | ॥ | ୧୦୩ |
| | ଶ୍ରୀକୃଷ୍ଣଚରଣଅମ୍ବୁଜ | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ॥ | ୧୦୪ |
| | ଶ୍ରୀଏକାଦଶ ଭାଗବତ | ଭାଷାପ୍ରବନ୍ଧେ କରି ଗୀତ | ॥ | ୧୦୫ |
| | ସୁଜନମାନଙ୍କର ହିତେ | ହରଷ ହେଲା ନିଜ ଚିତ୍ତେ | ॥ | ୧୦୬ |

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଏକାଦଶସ୍କନ୍ଧେ ବିପ୍ରଶାପୋ ନାମ ପ୍ରଥମୋଽଧ୍ୟାୟଃ ॥

---

ଏ ଗୀତ ଶ୍ରୁତିପୁଟେ ଭରି । ସୁଜନେ ବୋଲ ହରି ହରି ॥ ୧୦୭ ॥ ଇତି ଅଧିକ ପାଠ

୧. ଯଦୁ ।

# ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ନିମିଜାୟନ୍ତସଂବାଦେନାହ ନାରଦଃ ।
ଧର୍ମାନ୍ ଭାଗବତାନ୍ ଭକ୍ତ୍ୟା ବସୁଦେବାୟ ପୃଚ୍ଛତେ ॥ ୧

ଶ୍ରୀଶୁକ ଉବାଚ

୧ ପୁଣି କହନ୍ତି ବ୍ୟାସସୁତ । ଶୁଣ ହେ ନୃପ ପରୀକ୍ଷିତ ॥ ୧
ଗୋବିନ୍ଦଭୁଜେ ଯେ ପାଳିତ । ସେ ଦ୍ୱାରାବତୀରେ ସନ୍ତତ ॥ ୨
ନାରଦ ନିତ୍ୟେ କଲେ ବାସ । କୃଷ୍ଣଭଜନେ ସେ ଲାଳସ ॥ ୩
୨ ସର୍ବଲୋକରେ ମୃତ୍ୟୁ ଯାର । ଇନ୍ଦ୍ରିୟବନ୍ତ ହିଁ ଆବର ॥ ୪
ଏମନ୍ତ କେବଣ ମାନବ । କୃଷ୍ଣଚରଣ ନ ଭଜିବ ॥ ୫
ହେ ନୃପ ! ଯେଉଁ ପାଦ ନିତି । ଇନ୍ଦ୍ରାଦି ଦେବେ ଭଜୁଥାନ୍ତି ॥ ୬
୩ ନାରଦ ଏକଦିନକରେ । ମିଳନ୍ତେ ବସୁଦେବପୁରେ ॥ ୭
ତାଙ୍କୁ ପୂଜିଲେ ବସୁଦେବ । ଦେଇ ଆସନ ଆଦି ସର୍ବ ॥ ୮
ପ୍ରଣାମ କରି ପୁଣ ତାଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୯

ଶ୍ରୀବସୁଦେବ ଉବାଚ

୪ ସମସ୍ତ ପ୍ରାଣିମାନଙ୍କର । ମଙ୍ଗଳନିମିତ୍ତେ ତୁମ୍ଭର ॥ ୧୦
ହେ ଋଷି ହୋଏ ଆଗମନ । ପୁତ୍ରଙ୍କ ନିମିତ୍ତେ ଯେସନ ॥ ୧୧
ପିତାମାତାଙ୍କ ଆସିବାର । ଯେମନ୍ତ ରୂପରେ ଆବର ॥ ୧୨
ଉତ୍ତମଶ୍ଳୋକ ଶ୍ରୀକୃଷ୍ଣର । ଯେ ମାର୍ଗପ୍ରାୟ ସାଧୁ ନର ॥ ୧୩
ତାଙ୍କ ଆସିବା ଏ ଜଗତେ । କୃପଣଜନଶୁଭ ଅର୍ଥେ ॥ ୧୪
୫ ଯେ ଆଚରଣ ଦେବଙ୍କର । ସେ ସର୍ବ ପ୍ରାଣିମାନଙ୍କର ॥ ୧୫
ଦୁଃଖନିମନ୍ତେ ସମ୍ଭବଇ । ସୁଖନିମନ୍ତେ ସେ ହୁଅଇ ॥ ୧୬
ଯାହାଙ୍କ ଆତ୍ମା ଭଗବାନ । ଯେ ପୁଣ ତୁମ୍ଭର ସମାନ ॥ ୧୭
ସେ ସାଧୁଙ୍କର ଯେ ଚରିତ । କେବଳ ସେ ସୁଖନିମିତ୍ତ ॥ ୧୮
୬ ଯେ ଯେଉଁ ରୂପରେ ଦେବଙ୍କୁ । ଭଜନ୍ତି ଦେବେ ପୁଣ ତାଙ୍କୁ ॥ ୧୯
ତାଙ୍କ ଭଜନ ଅନୁସାରେ । ସୁଖ ଦିଅନ୍ତି ଏ ସଂସାରେ ॥ ୨୦
ପୁରୁଷଛାୟା ଯେ ରୂପରେ । ସେ ଯାହା କରେ ତାହା କରେ ॥ ୨୧
ସେ ରୂପେ ଦେବତାଏ ନିତି । କର୍ମର ସହାୟ ଅଟନ୍ତି ॥ ୨୨
ଦୀନବତ୍ସଳ ସାଧୁ ଜନ । ସେ ପୁଣ ନୁହନ୍ତି ଏସନ ॥ ୨୩
୭ ହେ ଋଷିବର ତଥାପି ହି । ତୁମ୍ଭଙ୍କୁ ପଚାରଇ ମୁହିଁ ॥ ୨୪
ଶ୍ରୀଭାଗବତ ଧର୍ମ ଯେତେ । ତାହା ସମସ୍ତ କହ ମୋତେ ॥ ୨୫
ଯାହାଙ୍କୁ ଶୁଣିଣ ଶ୍ରଦ୍ଧାରେ । ମରଣଧର୍ମା ସର୍ବ ନରେ ॥ ୨୬
ସମସ୍ତ ଭୟମାନଙ୍କରୁ । ମୁକ୍ତ ହୁଅନ୍ତି ଏ ସଂସାରୁ ॥ ୨୭

୮ ମୁହିଁଟି ପୂର୍ବ ସମୟରେ । ପୁତ୍ରନିମିତ୍ତେ ଏ ସଂସାରେ ॥
ମୁକ୍ତି ଦିଅନ୍ତି ଯେ ଅନନ୍ତ । ତାହାଙ୍କୁ ପୂଜିଲି ନିୟତ ॥
ମୋକ୍ଷନିମନ୍ତେ ନ ପୂଜିଲି । ଦେବମାୟାରେ ମୋହ ହେଲି ॥
୯ ବିଚିତ୍ର ବ୍ୟସନ ଯହିଁରେ । ସର୍ବତ୍ର ଭୟ ଯେଉଁଠାରେ ॥
ଏମନ୍ତ ସଂସାରୁ ସାକ୍ଷାତ । ଯେମନ୍ତ ହୋଇବି ମୁକତ ॥
ମୁଁ ତୁମ୍ଭ ଦ୍ୱାରେ ହେ ସୁବ୍ରତ । ଶିଖାଅ ମୋତେ ସେହିମତ ॥

ଶ୍ରୀଶୁକ ଉବାଚ

୧୦ କହୁଅଛନ୍ତି ବ୍ୟାସସୁତ । ସେ ବସୁଦେବ ବୁଦ୍ଧିମନ୍ତ ॥
ହେ ନୃପ ! ଏମନ୍ତ ରୂପରେ । ପ୍ରଶ୍ନ କରନ୍ତେ ସେ କାଳରେ ॥
ହରିର ଗୁଣମାନ ପୁଣ । ତାହାଙ୍କୁ କରନ୍ତେ ସ୍ମରଣ ॥
ନାରଦ ଏମନ୍ତ ରୂପରେ । କହିଲେ ଅତ୍ୟନ୍ତ ପ୍ରୀତିରେ ॥

ଶ୍ରୀନାରଦ ଉବାଚ

୧୧ କହନ୍ତି ବ୍ରହ୍ମାଙ୍କ କୁମର । ହେ ବସୁଦେବ ଯଦୁବର ॥
ସର୍ବବିଷୟ ନିବର୍ତ୍ତନ[୧] । ଯେ ଭାଗବତ ଧର୍ମମାନ ॥
ତା' ଯା ଆମ୍ଭଙ୍କୁ ପଚାରିଲ । ଏ ତୁମ୍ଭ ବ୍ୟବସାୟ ଭଲ ॥
୧୨ ଯେ ଭାଗବତ ଧର୍ମ ପୁଣ । ସେ ଯେବେ ହୁଅଇ ଶ୍ରବଣ ॥
ପଢ଼ନ୍ତେ, କରନ୍ତେ ଆଦର । ଧ୍ୟାନ କରନ୍ତେ ନିରନ୍ତର ॥
ଅନୁମୋଦିତ ହିଁ ହୁଅନ୍ତେ । ହେ ବସୁଦେବ ଏ ଜଗତେ ॥
କରନ୍ତି ଯେ ବିଶ୍ୱଦ୍ରୋହକୁ । ପବିତ୍ର କରେ ଏ ତାହାଙ୍କୁ ॥
୧୩ ପୁଣ୍ୟ ଯା' ଶ୍ରବଣ କୀର୍ତ୍ତନ । ସେ ନାରାୟଣ ଭଗବାନ ॥
ଯେ ପୁଣ ପରମକଲ୍ୟାଣ । ସେ ଦେବ ମୋତେ ଆଜ ପୁଣ ॥
ଆହେ ବସୁଦେବ ଆପଣ । ତାଙ୍କୁ କରାଇଲ ସ୍ମରଣ ॥
୧୪ କହନ୍ତି ଏହି ବିଷୟରେ । ପୂର୍ବ ଚରିତ ଏ ରୂପରେ ॥
ଋଷଭପୁତ୍ରମାନଙ୍କର । ମହାତ୍ମା ବିଦେହ ନୃପର ॥
ଯଉଁ ସମ୍ବାଦ ହେଲା ପୁଣ । କହିବା କର ତା' ଶ୍ରବଣ ॥
୧୫ ଯେ ସ୍ୱାୟମ୍ଭୁବ ମନୁଙ୍କର । ପ୍ରିୟବ୍ରତ ନାମେ କୁମର ॥
ଆଗ୍ନୀଧ୍ର ହେଲେ ତାଙ୍କ ସୁତ । ଆଗ୍ନୀଧ୍ର ଠାରୁ ନାଭି ଜାତ ॥
ନାଭିଙ୍କ ଠାରୁ ହେଲେ ପୁଣ । ଋଷଭନାମେ ପୁତ୍ର ଶୁଣ ॥
୧୬ ମୋକ୍ଷଧର୍ମକୁ ଏ ସଂସାରେ । ପ୍ରବର୍ତ୍ତାଇବାର ଇଚ୍ଛାରେ ॥
ଋଷଭଦେବ ଜାତ ହେଲେ । ସେ ବାସୁଦେବ-ଅଂଶ ଭଲେ ॥
ତାଙ୍କର ହେଲେ ଶଏ ସୁତ । ବେଦ ଜାଣନ୍ତି ସେ ସମସ୍ତ ॥

---

୧. ବିଶୋଧନ ।

୧୭ ସେ ଶଏ ଭାଇଙ୍କର ତହିଁ । ଭରତ ହେଲେ ଜ୍ୟେଷ୍ଠ ଭାଇ ॥
ସେ ନାରାୟଣପରାୟଣ । ତାଙ୍କ ନାମରେ ଭୂମି ପୁଣ ॥
ଭରତଖଣ୍ଡ ବୋଲାଇଲା । ଏ କଥା ଅଦ୍‌ଭୁତ[୧] ହୋଇଲା ॥
୧୮ ଏ ଯେ ଭାରତ ମହୀଭାଗ । ଭରତ କରି ଏହା ଭୋଗ ॥
ତଦନ୍ତେ ଛାଡ଼ି ତପସ୍ୟାରେ । ହରିଙ୍କି ଭଜିଲେ ନିର୍ଭରେ ॥
ତିନି ଜନମେ ସେ ରାଜନ । ଲଭିଲେ ବଇକୁଣ୍ଠ ସ୍ଥାନ ॥
୧୯ ସେ ପୁତ୍ରମାନଙ୍କ ମଧ୍ୟରେ । ନବ କୁମାର ଏ ସଂସାରେ ॥
ନବ ଦ୍ୱୀପର[୨] ପତି ହେଲେ । ଏକାଶୀ ଭାଇ ପୁଣ ଭଲେ ॥
ଭାରତବର୍ଷର ସଂତତେ[୩] । କର୍ମମାର୍ଗକୁ ପ୍ରବର୍ତ୍ତାନ୍ତେ ॥
ସମସ୍ତେ ହୋଇଲେ ବ୍ରାହ୍ମଣ । ହେ ବସୁଦେବ ! ଏବେ ଶୁଣ ॥
୨୦ ଆରେକ ନବ ଭାଇ ଥିଲେ । ସେ ମହାଭାଗ ଋଷି ହେଲେ ॥
ଜାଣନ୍ତି ପରମାର୍ଥ ତତ୍ତ୍ୱ । ନିତ୍ୟରେ ସେହୁ ଶ୍ରମବନ୍ତ[୪] ॥
ଆତ୍ମବିଦ୍ୟାରେ ସେ କୁଶଳ । ଦିଗବସନ ସେ କେବଳ ॥
୨୧ କବି ହବି ନାମରେ ଦୁଇ । ଅନ୍ତରିକ୍ଷ ଆରେକ ଭାଇ ॥
ପ୍ରବୁଦ୍ଧ ପିପ୍ପଳ-ଅୟନ । ଆବିର୍ହୋତ୍ର ଯେ ଆର ପୁନ ॥
ଦ୍ରୁମିଳ[୫] ଚମସ ଯେ ଦୁଇ । କରଭାଜନ ଆର ଭାଇ ॥
୨୨ ଏ ନବ ଋଷି ଏ ରୂପେଣ । ଆତ୍ମାରୁ ଅଭିନ୍ନ କରିଣ ॥
ଯେ ଅଟେ ସ୍ଥୂଳସୂକ୍ଷ୍ମମୟ । ସେ ଜଗତକୁ ଅତିଶୟ ॥
ଦେଖନ୍ତେ ଭଗବଦ୍ରୂପରେ । ବିହାର କଲେ ଧରଣୀରେ ॥
୨୩ ଯହିଁ ପ୍ରବର୍ତ୍ତେ ନିଜ ମନ । ତହିଁକି କରନ୍ତି ଗମନ ॥
ଯେ ସୁର-ସିଦ୍ଧ-ସାଧ୍ୟଜନେ । ଗନ୍ଧର୍ବ-ଯକ୍ଷ-ନରମାନେ ॥
ଏମାନଙ୍କର ଯେତେ ସ୍ଥାନ । କିନ୍ନର-ନାଗଲୋକମାନ ॥
ମୁନି-ଚାରଣମାନଙ୍କର । ଯେ ଭୂତନାଥ ବିଦ୍ୟାଧର ॥
ଦ୍ୱିଜ ଗୋ-ଆଦିମାନଙ୍କର । ଯେ ସ୍ଥାନମାନ ମନୋହର ॥
ଆସକ୍ତ ନୁହନ୍ତେ ତହିଁରେ । ଭ୍ରମଣ କଲେ ସ୍ୱଇଚ୍ଛାରେ ॥
୨୪ ଏକଦିନେ ସେ ଋଷିବରେ । ଭ୍ରମନ୍ତେ ଆପଣା ଇଚ୍ଛାରେ ॥
ଭାରତଖଣ୍ଡେ ଋଷିଜନ । ଯହିଁ କରନ୍ତି ଅନୁଷ୍ଠାନ ॥
ମିଳିଲେ ସେ ଯଜ୍ଞସ୍ଥାନର । ମହାତ୍ମା ନିମି ନୃପତିର ॥
୨୫ ଶୁକ କହନ୍ତି ହେ ରାଜନ । ଯା' ତେଜ ସୂର୍ଯ୍ୟର ସମାନ ॥
ଯେ ମହାଭାଗବତ ପୁଣ । ସେ ନବ ଋଷିଙ୍କି ଦେଖିଣ ॥

---

୧. ବିଖ୍ୟାତ । ୨. ବ୍ରହ୍ମାବର୍ତ୍ତ ଆଦି ନବ ଭୂଖଣ୍ଡର । ୩. ସମନ୍ତତଃ (ଚାରିଆଡ଼େ) ।
୪. (ଆତ୍ମବିଦ୍ୟାର ଅଭ୍ୟାସ ପାଇଁ) ଶ୍ରମ କରିଥିବା । ୫. ଦ୍ରବିଡ଼ ।

| | | | | | |
|---|---|---|---|---|---|
| | ଯେ ଯଜମାନ ନିମିରାଜ | । | ଯେ ଯଜ୍ଞ ଅଗ୍ନି[୧] ଯେ ଋତ୍ୱିଜ | ।। | ୮୭ |
| | ଆଉ ସେ ସ୍ଥାନେ ଯେତେ ଥିଲେ | । | ସେ ସର୍ବେ ତତ୍‌କାଳେ ଉଠିଲେ | ।। | ୮୮ |
| ୨୬ | ସେ ନାରାୟଣପରାୟଣ | । | ତାହାଙ୍କୁ ଏରୂପେ ଜାଣିଣ | ।। | ୮୯ |
| | ଆସନେ ବସନ୍ତେ ସେ ଯାଇଁ | । | ବିଦେହରାଜ ପ୍ରୀତ ହୋଇ | ।। | ୯୦ |
| | ଯଥାବିଧିରେ ସେମାନଙ୍କୁ | । | କଲେ ସେ ଉତ୍ତମ ପୂଜାକୁ | ।। | ୯୧ |
| ୨୭ | ଯେ ନିଜତେଜେ ତେଜୋମୟ | । | ଚତୁଃସନ ଆଦିଙ୍କ ପ୍ରାୟ | ।। | ୯୨ |
| | ସେ ନବ ଋଷିଙ୍କି ଯେ ତହିଁ | । | ବିଦେହରାଜ ପ୍ରୀତି ବହି | ।। | ୯୩ |
| | ବିନୟେ ଅବନତ ହେଲେ | । | ଏମନ୍ତ ତାଙ୍କୁ ପଚାରିଲେ | ।। | ୯୪ |

ଶ୍ରୀବିଦେହ ଉବାଚ

| | | | | | |
|---|---|---|---|---|---|
| ୨୮ | କହନ୍ତି ବିଦେହ ରାଜନ | । | ଯେ ମଧୁରିପୁ ଭଗବାନ | ।। | ୯୫ |
| | ତାଙ୍କର ପାରିଷଦ ତୁମ୍ଭେ | । | ଏମନ୍ତ ମଣୁଅଛୁଁ ଆମ୍ଭେ | ।। | ୯୬ |
| | ଲୋକଙ୍କ ପାବନ ନିମନ୍ତେ | । | ଭ୍ରମନ୍ତି ବିଷ୍ଣୁର ଭଗତେ | ।। | ୯୭ |
| ୨୯ | ସମସ୍ତ ଜୀବମାନଙ୍କର | । | କ୍ଷଣକେ ହୋଏ ଯେ ଭଙ୍ଗୁର | ।। | ୯୮ |
| | ଏମନ୍ତ ନରଦେହ ଯେହି | । | ଦୁର୍ଲଭ କରି ତା' ମଣଇ | ।। | ୯୯ |
| | ଦର୍ଶନ ବିଷ୍ଣୁଭକ୍ତଙ୍କର | । | ତହିଁରେ ଦୁର୍ଲଭପ୍ରକାର | ।। | ୧୦୦ |
| ୩୦ | ଏଣୁ ଆତ୍ୟନ୍ତିକ କ୍ଷେମକୁ | । | ପଚାରୁଅଛି ମୁଁ ତୁମ୍ଭଙ୍କୁ | ।। | ୧୦୧ |
| | ଆହେ ନିଷ୍ପାପ ଋଷିବରେ | । | କ୍ଷଣେ ଅର୍ଦ୍ଧେ ହିଁ ଏ ସଂସାରେ | ।। | ୧୦୨ |
| | ସତ୍‌ସଙ୍ଗ ପ୍ରାଣିଙ୍କର ତହିଁ | । | ନିଧି ପାଇଲା ପ୍ରାଏ ହୋଇ | ।। | ୧୦୩ |
| ୩୧ | ଯେବେ ଶ୍ରବଣେ ଆମ୍ଭେ କ୍ଷମ | । | କହ ସେ ଭାଗବତ ଧର୍ମ | ।। | ୧୦୪ |
| | ଯେବଣ ଧର୍ମମାନଙ୍କରେ | । | ପ୍ରସନ୍ନ ହୋଇ ଏ ସଂସାରେ | ।। | ୧୦୫ |
| | ଭଗତମାନଙ୍କୁ ଶ୍ରୀପତି | । | ଆପଣାକୁ ହିଁ ସମର୍ପନ୍ତି | ।। | ୧୦୬ |

ଶ୍ରୀନାରଦ ଉବାଚ

| | | | | | |
|---|---|---|---|---|---|
| ୩୨ | [୨]ନାରଦ କହୁଛନ୍ତି ପୁଣ | । | ହେ ବସୁଦେବ ତୁମ୍ଭେ ଶୁଣ | ।। | ୧୦୭ |

୧. ଅଗ୍ନି ତିନି ପ୍ରକାର, ଯଥା-(୧) ହୋମପାଇଁ ଆହବନୀୟ, (୨) ଗୃହସ୍ଥର ପାକପାଇଁ ଗାର୍ହପତ୍ୟ ଏବଂ (୩) ଅତିଥି-ଅଭ୍ୟାଗତଙ୍କ ପାଇଁ ଦକ୍ଷିଣାଗ୍ନି ।

୨. ଭଗବଦ୍‌ଧର୍ମତଦ୍ ଭକ୍ତମାୟାତରଣାନି ଚ ।
ବ୍ରହ୍ମକର୍ମାବତାରେହାଭକ୍ତପ୍ରାପ୍ୟଯୁଗକ୍ରମାନ୍ ।। ୧
ଜ୍ଞାତୁଂ କ୍ରମେଣ କୃତବାନ୍ ନବ ପ୍ରଶ୍ନାନ୍ ନିମିର୍ନବ ।
ଏକୈକସ୍ୟୋତ୍ତରଂ ପ୍ରୋଚୁଃ କବିମୁଖ୍ୟା ମୁନୀଶ୍ୱରାଃ ।। ୨ (ସ୍ୱାମୀ)
ନବପ୍ରଶ୍ନ-(୧) ଭଗବଦ୍ଧର୍ମ ବା ଭାଗବତ ଧର୍ମ, (୨) ଭଗବଦ୍‌ଭକ୍ତଙ୍କ ସ୍ୱରୂପ, (୩) ଭଗବନ୍ମାୟାର ସ୍ୱରୂପ, (୪) ମାୟାରୁ ତରିବାର ଉପାୟ, (୫) ବ୍ରହ୍ମର ସ୍ୱରୂପ, (୬) ନୈଷ୍କର୍ମ୍ୟପ୍ରାପକ କର୍ମଯୋଗ, (୭) ଭଗବାନଙ୍କ ଜନ୍ମ-କର୍ମ, (୮) ଅଭକ୍ତମାନଙ୍କ ଗତି ଓ (୯) ଭଗବାନଙ୍କ ଯୁଗଗତ ଉପାସନାପଦ୍ଧତି ।

ଏରୂପେ ସେ ନିମିରାଜନ । ପଚାରନ୍ତେ ସେ ଋଷିଜନ ॥ ୧୦୮
ପ୍ରୀତିରେ ପ୍ରତିପୂଜା କଲେ । ସଦସ୍ୟମାନଙ୍କର ତୁଲେ ॥ ୧୦୯
ଋତ୍ୱିଜମାନଙ୍କ ସହିତେ । ରାଜାଙ୍କୁ କହିଲେ ଏମନ୍ତେ ॥ ୧୧୦

ଶ୍ରୀକବିରୁବାଚ

୩୩ ସେ ନିମିରାଜାର ଅଗ୍ରରେ । କବି କହନ୍ତି ଏ ରୂପରେ ॥ ୧୧୧
ଅସତ ଏ ଦେହ ଆଦିରେ । ଆତ୍ମଭାବନା ଯାହା କରେ ॥ ୧୧୨
ଏଣୁ ଏ ସଂସାରରେ ଅତି । ଉଦ୍‌ବିଗ୍ନ ହୋଏ ଯାର ମତି ॥ ୧୧୩
ସେ ପ୍ରାଣୀ ସର୍ବାତ୍ମଭାବରେ । ହରିଚରଣକମଳରେ ॥ ୧୧୪
ଯାହା କରଇ ଉପାସନ । ସେ ତା' ମଙ୍ଗଳ ହେ ରାଜନ ॥ ୧୧୫
ଯେଉଁ ସେବାରେ ଭୟ ନାହିଁ । କା'ଠାରୁ ଭୟ ଅବା କାହିଁ ॥ ୧୧୬
୩୪ ପଣ୍ଡିତ ନୁହନ୍ତି ଯେ ନର । ଆତ୍ମଜ୍ଞାନାର୍ଥେ ତାହାଙ୍କର ॥ ୧୧୭
ଯେଉଁ ଉପାୟ ଭଗବାନ । କହି ଅଛନ୍ତି ହେ ରାଜନ ॥ ୧୧୮
ଜାଣ ସେ ଧର୍ମମାନଙ୍କୁ ହିଁ । ଭାଗବତ ଧର୍ମଟି ସେହି ॥ ୧୧୯
୩୫ ଯାହା ଆଶ୍ରୟ କରି ଜନ । କେହୁଣି କାଳେ ହେ ରାଜନ ॥ ୧୨୦
ନେତ୍ରକୁ ବୁଜି ଅନ୍ଧପ୍ରାଏ । ଧାବନ୍ତେ ବିଘ୍ନ ହିଁ ନ ହୋଏ ॥ ୧୨୧
ଯେ ଶ୍ରୁତି ସ୍ମୃତି ଦ୍ୱୟ ଅଛି । ତାହା ନ ଜାଣିଲେ ହେଁ କିଛି ॥ ୧୨୨
ଏ ଭାଗବତଧର୍ମେ ସେହି । ସ୍ଖଳିତ ଫଳଭ୍ରଷ୍ଟ ନୋହି ॥ ୧୨୩
୩୬ କାୟ-ବଚନ-ମାନସରେ । ଇନ୍ଦ୍ରିୟ-ବୁଦ୍ଧି-ଅହଂକାରେ ॥ ୧୨୪
ଯାହାର ଯେବଣ ସ୍ୱଭାବ । ସେହି ଅନୁସାରେ ମାନବ ॥ ୧୨୫
କରିବ ଯେଉଁ ଯେଉଁ କର୍ମ । ସେ କର୍ମମାନଙ୍କୁ ଉତ୍ତମ ॥ ୧୨୬
ନାରାୟଣଙ୍କ ଠାରେ ପୁଣ । କରିବ ନେଇ ସମର୍ପଣ ॥ ୧୨୭
୩୭ କୃଷ୍ଣବିମୁଖ ଯେଉଁ ଜନ । ଦେହେ କରଇ ଆତ୍ମଜ୍ଞାନ ॥ ୧୨୮
ତେଣୁ ତାହାର ଭୟ ଜାତ । ଈଶ୍ୱରମାୟାରେ କଳ୍ପିତ ॥ ୧୨୯
ଦେଖି ନ ପାରେ ସେ ଈଶ୍ୱର । ରୂପକୁ ଏଣୁ ବିଜ୍ଞ ନର ॥ ୧୩୦
ଗୁରୁଙ୍କୁ ଦେବତାପରାଏ । ପ୍ରୀତି କରନ୍ତେ ଅତିଶୟେ ॥ ୧୩୧
ଭକ୍ତିରେ ଯେ ପ୍ରଭୁ ଶ୍ରୀହରି । ତାଙ୍କୁ ଭଜଇ ଦୃଢ଼ କରି ॥ ୧୩୨
୩୮ ଦ୍ୱୈତଭାବନା ଯେହୁ କରେ । ହରିଙ୍କି ଭଜି ସେ ନ ପାରେ ॥ ୧୩୩
ଯେସନେ ସ୍ୱପ୍ନ ମନୋରଥ । ମନେ ବାଞ୍ଛଇ ହୋଏ ବ୍ୟର୍ଥ ॥ ୧୩୪
ସଂକଳ୍ପ ବିକଳ୍ପ ଯେ ମନ । ଏଣୁ ତା' କରି ନିରୋଧନ ॥ ୧୩୫
କୃଷ୍ଣରେ କଲେ ନିୟୋଜିତ । ଭୟକୁ ନ ଲଭେ ପଣ୍ଡିତ ॥ ୧୩୬
୩୯ ଯେ ଚକ୍ରପାଣି ଭଗବାନ । ତା' ଶୁଭ ଜନ୍ମ-କର୍ମମାନ ॥ ୧୩୭
ଶ୍ରବଣ କରି ଏ ସଂସାରେ । ସେ କୃଷ୍ଣ ଜନ୍ମକର୍ମଙ୍କରେ ॥ ୧୩୮

| | | | |
|---|---|---|---|
| | ଯେ ସିଦ୍ଧ ନାମମାନେ ଛନ୍ତି | ଗାୟନ କରନ୍ତେ ତା' ନିତି | ୧୩୯ |
| | ଲଜ୍ଜାକୁ ଛାଡ଼ିକରି ପୁଣ | ଭ୍ରମଇ ନିଃସ୍ପୃହ ହୋଇଣ | ୧୪୦ |
| ୪୦ | ଏମନ୍ତ ବ୍ରତୀ[୧] ଯଉଁ ନର | ସେ ନିଜ ପ୍ରିୟ ଶ୍ରୀକୃଷ୍ଣର | ୧୪୧ |
| | ନାମର କୀର୍ତ୍ତିରେ ହେଁ ବେଗ | ଜାତ ହୁଅନ୍ତେ ଅନୁରାଗ | ୧୪୨ |
| | ଶ୍ଳଥ ହୁଅନ୍ତେଣ ହୃଦୟ | ଉଚ୍ଚେ ହସଇ ଅତିଶୟ | ୧୪୩ |
| | କେତେବେଳରେ ସେ କାନ୍ଦଇ | ଆହ୍ୱାନ ଗାୟନ କରଇ | ୧୪୪ |
| | ବିବଶ ହୋଇ ସେ କାଳରେ | ଉନ୍ମାଦପ୍ରାୟେ ନୃତ୍ୟ କରେ | ୧୪୫ |
| ୪୧ | ଆକାଶ ପବନ ଅନିଳ | ପୃଥିବୀ ଜ୍ୟୋତି[୨] ଯେ ସଲିଳ | ୧୪୬ |
| | ଯେ ଜୀବମାନେ ଦିଗ ପୁଣ | ବୃକ୍ଷାଦି ଯେ ସ୍ଥାବରଗଣ | ୧୪୭ |
| | ନଦୀସମୁଦ୍ରମାନ ଯେତେ | ଯେ କିଛି ଜୀବ ଏ ଜଗତେ | ୧୪୮ |
| | ଏ ସର୍ବେ ଦେହ ଶ୍ରୀହରିର | ଏମନ୍ତ ଜାଣିଣ ସେ ନର | ୧୪୯ |
| | ଏ ସମସ୍ତଙ୍କୁ ନମସ୍କାର | କରଇ ସଙ୍ଗ ନାହିଁ ତାର | ୧୫୦ |
| ୪୨ | ଏ ସଂସାରରେ ଯଉଁ ଜନ | ହରିଙ୍କି ହୁଅଇ ପ୍ରପନ୍ନ | ୧୫୧ |
| | ତାହାର ଭକ୍ତି ହୋଏ ଜାତ | ରୂପକୁ[୩] ଦେଖଇ ସାକ୍ଷାତ | ୧୫୨ |
| | ବିରକ୍ତି ଗୃହେ ଅତିଶୟେ | ଏ ତିନି ଏକାବେଳେ ହୋଏ | ୧୫୩ |
| | ଯେସନେ ଭୁଞ୍ଜନ୍ତେ ଲୋକର | ପ୍ରତିଗ୍ରାସରେ ହେଁ ଉଦର | ୧୫୪ |
| | ପୂରଇ ସୁଖ ହୋଏ ଜାତ | ଆବର କ୍ଷୁଧା ହୋଏ ହତ | ୧୫୫ |
| ୪୩ | ଏମନ୍ତ ରୂପେ ହେ ରାଜନ | ଯେବଣ ବଇଷ୍ଣବ ଜନ | ୧୫୬ |
| | ଅଚ୍ୟୁତ ପାଦପଦ୍ମ ଦୁଇ | ଏ ଅନୁବୃତ୍ତିରେ ଭଜଇ | ୧୫୭ |
| | ଭକ୍ତି ବିରକ୍ତି ହୋଏ ତାର | ରୂପକୁ ଦେଖଇ କୃଷ୍ଣର | ୧୫୮ |
| | ତଦନ୍ତେ ଲଭଇ ତୁରିତ | ଉତ୍ତମ ମୁକ୍ତିକି ସାକ୍ଷାତ | ୧୫୯ |

ଶ୍ରୀରାଜୋବାଚ

| | | | |
|---|---|---|---|
| ୪୪ | ଏଥୁ ଅନ୍ତରେ ସେ ରାଜନ | କହନ୍ତି ଶୁଣ ଋଷିଜନ | ୧୬୦ |
| | କହ ହେ ବୈଷ୍ଣବ ଜନଙ୍କୁ | କରନ୍ତି ସେ ଯଉଁ ଧର୍ମକୁ | ୧୬୧ |
| | ଯେମନ୍ତ ସ୍ୱଭାବ ତାଙ୍କର | ଯେମନ୍ତରୂପେ ସେ ଆବର | ୧୬୨ |
| | ଭ୍ରମନ୍ତି ଲୋକଙ୍କ ସମୀପେ | ଯାହା ବୋଲନ୍ତି ଯଉଁ ରୂପେ | ୧୬୩ |
| | ଯଉଁ ଚିହ୍ନରେ ଅତିଶୟ | ହୁଅନ୍ତି ଭଗବାନପ୍ରିୟ | ୧୬୪ |

ଶ୍ରୀହବିରୁବାଚ

| | | | |
|---|---|---|---|
| ୪୫ | ରାଜା ପୁଛନ୍ତେ ଏ ବଚନ | ହବି[୪] କହନ୍ତି ହେ ରାଜନ | ୧୬୫ |
| | ଐଶ୍ୱର୍ଯ୍ୟ ସହିତେ ଶ୍ରୀହରି | ସର୍ବଭୂତରେ ଥାନ୍ତି ପୂରି | ୧୬୬ |
| | ଆତ୍ମଭାବରେ ଆପଣାର | ସଂଯୋଗ ଅଛି ତାଙ୍କ ଠାର | ୧୬୭ |

୧. ବୁଦ୍ଧି । ୨. ତେଜ । ୩. ପରମେଶ୍ୱରଙ୍କ ରୂପକୁ । ୪. ହରି ।

| | | | | |
|---|---|---|---|---|
| | ସ୍ୱଦେହେ ଈଶ୍ୱରଠାବରେ | । ସେ ସର୍ବ ଭୂତ ଏକତ୍ୱରେ | ॥ | ୧୬୮ |
| | ପୂରିଅଛନ୍ତି ହେ ରାଜନ | । ଏହା ଯେ କରେ ବିଲୋକନ | ॥ | ୧୬୯ |
| | ସେ ବଇଷ୍ଣବଙ୍କ ମଧ୍ୟରେ | । ଉତ୍ତମ ଅଟେ ଏ ସଂସାରେ | ॥ | ୧୭୦ |
| ୪୬ | ଈଶ୍ୱରେ ପ୍ରେମ-ଆଚରଣ | । ଭକ୍ତ ଲୋକରେ ମିତ୍ରପଣ | ॥ | ୧୭୧ |
| | ମୂର୍ଖ ଲୋକରେ ଦୟା କରେ | । କ୍ଷମା କରଇ ଶତ୍ରୁଠାରେ | ॥ | ୧୭୨ |
| | ଏହା ଯେ କରେ ଆଚରଣ | । ମଧ୍ୟମ ବୈଷ୍ଣବ ସେ ପୁଣ | ॥ | ୧୭୩ |
| ୪୭ | ଯେ ଗୋବିନ୍ଦଙ୍କୁ ପ୍ରତିମାରେ | । ପୂଜଇ ଅତ୍ୟନ୍ତ ଶ୍ରଦ୍ଧାରେ | ॥ | ୧୭୪ |
| | ଭକ୍ତଙ୍କୁ ଅନ୍ୟଲୋକଙ୍କୁ ହି | । କିଛି ହିଁ ଶ୍ରଦ୍ଧା ନ କରଇ | ॥ | ୧୭୫ |
| | ହେ ନୃପ ! ଯେ କରେ ଏମନ୍ତ | । ସେ ଭକ୍ତ ପ୍ରାକୃତ ବିଖ୍ୟାତ | ॥ | ୧୭୬ |
| ୪୮ | ଇନ୍ଦ୍ରିୟମାନଙ୍କରେ ପୁଣ | । ଅର୍ଥଙ୍କୁ କଲେ ହେଁ ଗ୍ରହଣ | ॥ | ୧୭୭ |
| | ଶ୍ରୀକୃଷ୍ଣଠାରେ ଚିତ୍ତ ଦେଇ | । ଦ୍ୱେଷ ନ କରେ ହୃଷ୍ଟ ନୋହି | ॥ | ୧୭୮ |
| | ବିଷ୍ଣୁର ମାୟା ଏ ସଂସାର | । ଏରୂପେ ଦେଖଇ ଯେ ନର | ॥ | ୧୭୯ |
| | ସେ ବଇଷ୍ଣବମାନଙ୍କରେ | । ଶ୍ରେଷ୍ଠ ଅଟଇ ଏ ସଂସାରେ | ॥ | ୧୮୦ |
| ୪୯ | ଦେହର ଜନ୍ମନାଶ ଦୁଇ | । ଇନ୍ଦ୍ରିୟଙ୍କରେ ଦୁଃଖ ହୋଇ | ॥ | ୧୮୧ |
| | ପ୍ରାଣରୁ କ୍ଷୁଧା ହୋଏ ଜାତ | । ମନରୁ ଭୟ ଉପଗତ | ॥ | ୧୮୨ |
| | ବୁଦ୍ଧିରୁ ତୃଷ୍ଣା ଉତପନ୍ନ | । ସଂସାରଧର୍ମଟି ଏମାନ | ॥ | ୧୮୩ |
| | ଏଣେ ଯେ ନୁହଇ ମୋହିତ | । ସୁମରି କୃଷ୍ଣର ଚରିତ | ॥ | ୧୮୪ |
| | ବୈଷ୍ଣବଜନମାନଙ୍କରେ | । ଉତ୍ତମ ଅଟେ ସେ ସଂସାରେ | ॥ | ୧୮୫ |
| ୫୦ | ଯେ କାମ କର୍ମ ବୀଜମାନ | । ଯେ ବା ବାସନାମାନ ଆନ | ॥ | ୧୮୬ |
| | ଏ ଚାରି କଥା ଯାହା ଚିତ୍ତେ | । ଜାତ ନୁହଇ କଦାଚିତେ | ॥ | ୧୮୭ |
| | ଶ୍ରୀବାସୁଦେବ ଯା' ଆଶ୍ରୟ | । ସେ ବଇଷ୍ଣବ ଅତିଶୟ | ॥ | ୧୮୮ |
| ୫୧ | ଉତ୍ତମ ଜନ୍ମରେ କର୍ମରେ | । ବର୍ଣ୍ଣରେ ଆଶ୍ରମେ ଜାତିରେ | ॥ | ୧୮୯ |
| | ଦେହରେ କିଛି ଅହଂଭାବ | । ନ କରେ ଯେବଣ ମାନବ | ॥ | ୧୯୦ |
| | ଏ ସଂସାରରେ ଅତିଶୟ | । ଅଟେ ସେ ଶ୍ରୀହରିର ପ୍ରିୟ | ॥ | ୧୯୧ |
| ୫୨ | ଏ ଦ୍ରବ୍ୟ ମୋର ଏ ପରର | । ଏରୂପେ ନାହିଁ ଯା' ବିଚାର | ॥ | ୧୯୨ |
| | ଆତ୍ମାରେ ଭେଦ ନ କରଇ | । ସର୍ବଭୂତରେ ସମ ହୋଇ | ॥ | ୧୯୩ |
| | ଶାନ୍ତିକି ଲଭଇ ଆବର | । ଉତ୍ତମ ବୈଷ୍ଣବ ସେ ନର | ॥ | ୧୯୪ |
| ୫୩ | ତ୍ରୈଲୋକ୍ୟସଂପତ୍ତିନିମିତ୍ତେ | । ଲବ ନିମିଷ ଅର୍ଦ୍ଧମାତ୍ରେ | ॥ | ୧୯୫ |
| | ପାଦପଦ୍ମରୁ ଶ୍ରୀହରିର | । ଚଳଇ ନାହିଁ ଯଉଁ ନର | ॥ | ୧୯୬ |
| | ବୈଷ୍ଣବଶ୍ରେଷ୍ଠ ସେ ଅତ୍ୟନ୍ତ | । ତା' ବୁଦ୍ଧି ନୁହଇ କୁଣ୍ଠିତ | ॥ | ୧୯୭ |
| | ଅଜିତେ[୧] ଆତ୍ମା ଯାହାଙ୍କର | । ଏମନ୍ତ ଯେତେ ସୁରନର | ॥ | ୧୯୮ |
| | ଖୋଜୁଛନ୍ତି ଏ ତୋଷଚିତ୍ତେ | । ଯଉଁ ପାଦକୁ ଏ ଜଗତେ | ॥ | ୧୯୯ |

୧. ଶ୍ରୀକୃଷ୍ଣଙ୍କ ଠାରେ ।

| | | | | |
|---|---|---|---|---|
| ୫୪ | ବହୁତ ପରାକ୍ରମ ଯହିଁ | । ସେ କୃଷ୍ଣପାଦାଙ୍ଗୁଳି ଯେହି | ॥ | ୨୦୦ |
| | ତା' ନଖମଣିକିରଣରେ | । ତୁଟିଲା ସଂତାପ ଯହିଁରେ | ॥ | ୨୦୧ |
| | ସେ ହୃଦୟରେ ଯଉଁ ଜନ | । ନିତ୍ୟେ ଭଜନ୍ତି ଭଗବାନ | ॥ | ୨୦୨ |
| | ତାଙ୍କର କାହୁଁ ସଂଭବିବ | । ସଂସାରତାପତ୍ରୟଭାବ | ॥ | ୨୦୩ |
| | ଚନ୍ଦ୍ରଉଦୟରେ ଯେରୂପ | । ନ ଥାଏ ରବିଙ୍କର ତାପ | ॥ | ୨୦୪ |
| ୫୫ | ଡାକିଲା ମାତ୍ରକେ ଅବଶେ | । ଅଶେଷ ପାପକୁ ଯେ ନାଶେ | ॥ | ୨୦୫ |
| | ଯାହା ହୃଦୟକୁ ସେ ହରି | । କ୍ଷଣେ ନ ଯାନ୍ତି ଛାଡ଼ିକରି | ॥ | ୨୦୬ |
| | ବୈଷ୍ଣବମାନଙ୍କ ମଧ୍ୟରେ | । ସେ ଅଟେ ଶ୍ରେଷ୍ଠ ଏ ସଂସାରେ | ॥ | ୨୦୭ |
| | ଯେଣୁ ସେ କରିଥାଇ ବଦ୍ଧ | । ପ୍ରେମରଜ୍ଜୁରେ କୃଷ୍ଣପାଦ | ॥ | ୨୦୮ |
| | ସୁଜନମାନଙ୍କର ହିତେ | । ଶ୍ରୀ ଏକାଦଶ ଭାଗବତେ[୧] | ॥ | ୨୦୯ |
| | ଭଣଇ ବିପ୍ର ଦୀନବନ୍ଧୁ | । ଯେଣେ ତରିବ ଭବସିନ୍ଧୁ | ॥ | ୨୧୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଏକାଦଶସ୍କନ୍ଧେ ବସୁଦେବନାରଦସଂବାଦେ ଜାୟନ୍ତେୟୋପାଖ୍ୟାନେ
ବିଦେହପ୍ରଶ୍ନୋ ନାମ ଦ୍ୱିତୀୟୋଽଧ୍ୟାୟଃ ॥

## ତୃତୀୟ ଅଧ୍ୟାୟ

ମାୟାତଦ୍‌ତରଣବ୍ରହ୍ମକର୍ମପ୍ରଶ୍ନଚତୁଷ୍ଟୟେ ।
ତୃତୀୟେ ତୂତ୍ତରଂ ଦତ୍ତମାର୍ଷଭୈର୍ମୁନିଭିଃ ପୃଥକ୍ ॥ ୧

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧ | କହନ୍ତି ବିଦେହ ରାଜନ | । ଶୁଣିବା ଆହେ ଋଷିଜନ | ॥ | ୧ |
| | ଯେ ବିଷ୍ଣୁ ପରମ ଈଶ୍ୱର | । ମାୟାବୀମାନଙ୍କୁ ତାଙ୍କର | ॥ | ୨ |
| | ଯେ ମାୟା ମୋହିତ କରଇ | । ତାହା ଶୁଣିମା ଅର୍ଥେ ମୁହିଁ | ॥ | ୩ |
| | ଇଚ୍ଛା କରୁଛି ଏବେ ପୁଣ | । ହେ ଋଷିମାନେ ତାହା ଭଣ | ॥ | ୪ |
| ୨ | ହରିର କଥାସୁଧାରସ | । ସଂସାରତାପର ବିନାଶ | ॥ | ୫ |
| | ତୁମ୍ଭ ବଚନୁ ଏହା ଶୁଣି | । ସଂତୋଷ ହେଉ ନାହିଁ ପୁଣି | ॥ | ୬ |
| | ସଂସାରତାପେ ମୁଁ ତାପିତ | । ଯେଣୁ ମୁଁ ମରିବି ନିୟତ | ॥ | ୭ |

ଶ୍ରୀଅନ୍ତରିକ୍ଷ ଉବାଚ

| | | | | |
|---|---|---|---|---|
| ୩ | କହୁଅଛନ୍ତି ଅନ୍ତରିକ୍ଷ | । ନିର୍ଗୁଣ ବ୍ରହ୍ମରେ ପ୍ରତ୍ୟକ୍ଷ | ॥ | ୮ |
| | ଯେ ବିପରୀତ ଏ ଆତ୍ମାର | । ସେହିଟି ମାୟା ଈଶ୍ୱରର | ॥ | ୯ |

୧. ଭାଷାଗୀତେ ।

ଯଉଁ ମାୟାରେ ଏ ଜଗତ । ସେ ପ୍ରଭୁ କଲେ ବିନିର୍ମିତ ।। ୧୦
ସେ ମହାପ୍ରଭୁ ଯେ ଈଶ୍ୱର । ଆଦ୍ୟ ପୁରୁଷ ଅବତାର ।। ୧୧
ଯଉଁ ଶକ୍ତିରେ ଆତ୍ମା ହୋଇ । ସମସ୍ତ ପ୍ରାଣିଠାରେ ରହି ।। ୧୨
ସର୍ଜିଣ ପଞ୍ଚ ମହାଭୂତ । ସେ ମହାଭୂତରେ ଜଗତ ।। ୧୩
ସର୍ଜିଲେ ଉଚ୍ଚ ନୀଚ ହୋଇ । ଜୀବର ବନ୍ଧ ମୋକ୍ଷ ପାଇଁ ।। ୧୪
୪ ଏ ରୂପେ ପଞ୍ଚମହାଭୂତେ । ସୃଷ୍ଟି ସର୍ଜିଣ ମହାଭୂତେ ।। ୧୫
ରହି ଅନ୍ତର୍ଯ୍ୟାମିରୂପରେ । ମନରେ ଦଶ ଇନ୍ଦ୍ରିୟରେ ।। ୧୬
ବିଭାଗ କରିଣ ଆତ୍ମାକୁ । ଭଜିଲେ ସର୍ବ ବିଷୟକୁ ।। ୧୭
୫ ସେ ଅନ୍ତର୍ଯ୍ୟାମିରୂପେ ଥାନ୍ତେ । ଇନ୍ଦ୍ରିୟଗଣ ପ୍ରବର୍ତ୍ତାନ୍ତେ ।। ୧୮
ସେ ଦ୍ୱାରେ ବିଷୟମାନଙ୍କୁ । ଭୁଞ୍ଜି ସେ ଜୀବ ଏ ଦେହକୁ ।। ୧୯
ଆତ୍ମା ବୋଲିଣ ଜାଣିଥାଇ । ଆସକ୍ତ ଦେହାଦିରେ ହୋଇ ।। ୨୦
୬ ସେ ଜୀବ କର୍ମେନ୍ଦ୍ରିୟଦ୍ୱାରେ । ପୂର୍ବବାସନାସହିତରେ ।। ୨୧
କର୍ମ କରନ୍ତେ ଦେହ ପାଇ । ଅଛଇ ସୁଖଦୁଃଖ ଯହିଁ ।। ୨୨
ଘେନି ସେ କର୍ମଫଳଗଣ । ସଂସାରେ କରଇ ଭ୍ରମଣ ।। ୨୩
୭ ଏମନ୍ତ ରୂପେ ସେ ପୁରୁଷ । ଯହିଁ ଅମଙ୍ଗଳ ଅଶେଷ ।। ୨୪
ସେ କର୍ମଗତିଙ୍କି ଲଭନ୍ତେ । ଜଗତପ୍ରଳୟପର୍ଯ୍ୟନ୍ତେ ।। ୨୫
ବହୁତ ଜନମ ମରଣ । ଲଭଇ ଅବଶ ହୋଇଣ ।। ୨୬
୮ ହୁଅନ୍ତେ ପଞ୍ଚ-ମହାଭୂତ । ବିନାଶହେତୁ ଉପସ୍ଥିତ ।। ୨୭
ସେ ନିମିରାଜ ତତକାଳ । ଅନାଦିନିଧନ ସେ କାଳ ।। ୨୮
ସ୍ଥୂଳସୂକ୍ଷ୍ମରୂପ କାର୍ଯ୍ୟକୁ । ଆଣଇ ପ୍ରକୃତିପାଖକୁ ।। ୨୯
୯ ଶଏ ବରଷ ପରିଯନ୍ତେ । ଉତ୍‌କଟ ହୋଇ ଏ ଜଗତେ ।। ୩୦
ହେ ନୃପ ! ଅନାବୃଷ୍ଟି ହେବ । ପ୍ରଚଣ୍ଡ ସୂର୍ଯ୍ୟ ସଂଭବିବ ।। ୩୧
ତିନି ଲୋକକୁ ସେ କିରଣେ । ସନ୍ତପ୍ତ କରିବଇଁ କ୍ଷଣେ ।। ୩୨
୧୦ ଆରମ୍ଭି ପାତାଳତଳରୁ । ସଂକରଷଣଙ୍କ ମୁଖରୁ ।। ୩୩
ଉର୍ଦ୍ଧ୍ୱକୁ ଜଳିବ ଅନଳ । ପବନେ କମ୍ପନ୍ତେ ତତ୍‌କାଳ ।। ୩୪
ଦଗ୍‌ଧ କରନ୍ତେ ବସୁନ୍ଧରୀ । ବଢ଼ିବ ସର୍ବଦିଗ ପୂରି ।। ୩୫
୧୧ ସମ୍ବର୍ତ୍ତନାମେ ମେଘଗଣ । ଶଏ ବରଷଯାଏ ପୁଣ ।। ୩୬
ହସ୍ତିଶୁଣ୍ଡର ପରିମାଣେ । ବୃଷ୍ଟି କରିବେ ଧାରାଗଣେ ।। ୩୭
ସେ ଜଳମାନଙ୍କେ ବିରାଟ । ତକ୍ଷଣେ ହେବ ଅପ୍ରକଟ ।। ୩୮
୧୨ ଉପାଧି ହୁଅନ୍ତେ ବିନାଶ । ହେ ନୃପ ! ବିଧାତା ପୁରୁଷ ।। ୩୯
ବିରାଟ ଛାଡ଼ି ତଦନ୍ତରେ । ପ୍ରବେଶ ହୋଇବ ବ୍ରହ୍ମରେ ।। ୪୦

୧. ବିଷୟଭୋଗ ।

| | | | | |
|---|---|---|---|---|
| | ନାଶ ହୁଅନ୍ତେ କାଷ୍ଠମାନ | । ଯେସନେ ଲିଭଇ ଦହନ | ॥ | ୪୧ |
| ୧୩ | ଭୂମିର ଗନ୍ଧଗୁଣମାନ | । ହରନ୍ତେ ପ୍ରଳୟପବନ | ॥ | ୪୨ |
| | ଧରଣୀ ଲୀନ ହୋଏ ଜଳେ | । ପୁଣି ସେ ଜଳ ହିଁ ସେ କାଳେ | ॥ | ୪୩ |
| | ରସକୁ ହରନ୍ତେ ସେ ବାତ | । ତେଜରେ ମିଶଇ ତୁରିତ | ॥ | ୪୪ |
| ୧୪ | ପ୍ରଳୟକାଳ ଅନ୍ଧକାର | । ରୂପକୁ କରନ୍ତେ ସଂହାର | ॥ | ୪୫ |
| | ତେଜ ହିଁ ମିଶଇ ଅନିଳେ | । ସ୍ପରଶଗୁଣକୁ ସେ କାଳେ | ॥ | ୪୬ |
| | ଆକାଶ ହରନ୍ତେ ପବନ | । ଆକାଶେ ହୁଅଇ ବିଲୀନ | ॥ | ୪୭ |
| | କାଳସ୍ୱରୂପୀ ସେ ଈଶ୍ୱର | । ଶବ୍ଦକୁ କରନ୍ତେ ସଂହାର | ॥ | ୪୮ |
| | ସେ ଆକାଶ ହିଁ ସେ କାଳରେ | । ମିଶଇ ତାମସାହଂକାରେ | ॥ | ୪୯ |
| ୧୫ | ବୁଦ୍ଧି ଇନ୍ଦ୍ରିୟଗଣେ ପୁଣ | । ମିଶନ୍ତି ରାଜସେ ତକ୍ଷଣ | ॥ | ୫୦ |
| | ଦେବତାସହିତରେ ମନ | । ସାତ୍ତ୍ୱିକ ଅହଂକାରେ ଲୀନ | ॥ | ୫୧ |
| | ଏରୂପେ ତ୍ରିବିଧାହଂକାରେ | । ନିଜ ଗୁଣଙ୍କ ସହିତରେ | ॥ | ୫୨ |
| | ମହତ୍ତତ୍ତ୍ୱରେ ହୋନ୍ତି ଲୀନ | । ମହତ ପ୍ରକୃତି ସଙ୍ଗେଣ | ॥ | ୫୩ |
| ୧୬ | ଶୁଣ ବିଦେହନରସାଇଁ | । ଭଗବାନର ମାୟା ଏହି | ॥ | ୫୪ |
| | ଉତ୍ପତ୍ତି ସ୍ଥିତି ନାଶ ତିନି | । କରଇ ତିନିଗୁଣ ଘେନି | ॥ | ୫୫ |
| | ଆମ୍ଭେ ବର୍ଣ୍ଣିଲୁଁ ଏହା ପୁଣ | । ଆଉ କି କରିବ ଶ୍ରବଣ | ॥ | ୫୬ |

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧୭ | ଋଷି କହନ୍ତେ ଏ ବଚନ | । କହନ୍ତି ବିଦେହରାଜନ | ॥ | ୫୭ |
| | ଅଜ୍ଞ ପୁରୁଷ ଯେତେ ଛନ୍ତି | । ସେ ଯାହା ତରି ନ ପାରନ୍ତି | ॥ | ୫୮ |
| | ସେ ମାୟାକୁ ହିଁ ଈଶ୍ୱରର | । ଯେମନ୍ତେ ଆହେ ମୁନୀଶ୍ୱର | ॥ | ୫୯ |
| | ତରନ୍ତି ସ୍ଥୂଳବୁଦ୍ଧି ନରେ | । ସେ କଥା କହ ମୋ' ଆଗରେ | ॥ | ୬୦ |

ଶ୍ରୀପ୍ରବୁଦ୍ଧ ଉବାଚ

| | | | | |
|---|---|---|---|---|
| ୧୮ | ପ୍ରବୁଦ୍ଧ ଋଷି ଏ ବାକ୍ୟକୁ | । କହନ୍ତି ନିମିରାଜନଙ୍କୁ | ॥ | ୬୧ |
| | ଦୁଃଖବିନାଶନିମିତ୍ତରେ | । ସୁଖକୁ ଲଭିବା ଇଚ୍ଛାରେ | ॥ | ୬୨ |
| | କର୍ମରେ ହୁଅନ୍ତି ତତ୍ପର | । ଗୃହସ୍ଥାଶ୍ରମୀ ଯେତେ ନର | ॥ | ୬୩ |
| | ତାଙ୍କର ଫଳବିପରୀତ | । ସଂସାରେ ଦେଖିବ ସାକ୍ଷାତ | ॥ | ୬୪ |
| ୧୯ | ଯେ ନିତ୍ୟେ ଦିଏ କଷ୍ଟମାନ | । ଦୁର୍ଲଭ ମୃତ୍ୟୁର ସମାନ | ॥ | ୬୫ |
| | ଏମନ୍ତ ବିତ୍ତରେ ମାନବ | । ଅର୍ଜଇ ଯେତେକ ବିଭବ | ॥ | ୬୬ |
| | ଗୃହ କଳତ୍ର ପଶୁଗଣ | । ବନ୍ଧୁ ବାନ୍ଧବ ଆଦି ପୁଣ | ॥ | ୬୭ |
| | ଏ ସର୍ବେ ଅନିତ୍ୟ ଅଟନ୍ତି | । ଏଣେ ତାହାର କଉଁ ପ୍ରୀତି | ॥ | ୬୮ |
| ୨୦ | କର୍ମ ଅଧୀନ ଏ ଜଗତ | । କେବଳ ବିନାଶସହିତ | ॥ | ୬୯ |
| | ସମ ଅଧିକ ସହିତରେ | । ବିବାଦ ଯହିଁ ପରସ୍ପରେ | ॥ | ୭୦ |

ଖଣ୍ଡମଣ୍ଡଳପତିମାନେ । ବିବାଦ କରନ୍ତି ଯେସନେ ॥ ୭୧
ଏମନ୍ତ ରୂପେ ହେ ରାଜନ । ନିତ୍ୟେ ଦେଖିବ ବିଜ୍ଞଜନ ॥ ୭୨
୨୧ ଯେ ଶାନ୍ତ ବ୍ରହ୍ମ-ଅନୁଭବୀ । ବେଦତତ୍ତ୍ୱକୁ ଥିବେ ଭାବି ॥ ୭୩
ଭଜିବ ଯାଇଁ ସେ ଗୁରୁଙ୍କୁ । ଉତ୍ତମ ଶ୍ରେୟ ଜାଣିମାକୁ ॥ ୭୪
୨୨ ଆତ୍ମା ଦେବତା ପ୍ରାଏ କରି । ଗୁରୁଙ୍କୁ ଥିବ ଅନୁସରି ॥ ୭୫
ଶିଖିବ ଭାଗବତ ଧର୍ମ । କପଟ ଛାଡ଼ିଣ ଉତ୍ତମ ॥ ୭୬
ଯେ ଧର୍ମଦ୍ୱାରା ନାରାୟଣ । କରନ୍ତି ନିଜକୁ ପ୍ରଦାନ ॥ ୭୭
୨୩ ସତ୍‌ସଙ୍ଗ କରି ପ୍ରଥମରୁ । ମନ ରୁନ୍ଧିବ ସବୁଠାରୁ ॥ ୭୮
ଦୟା କରିବ ହୀନ ଜନେ । ମିତ୍ରତ୍ୱ କରିବ ସମାନେ ॥ ୭୯
ଉତ୍ତମ ଜନେ ପଚାରିବ । ଯେ ବା ଉଚିତ ତା' ଶିଖିବ ॥ ୮୦
୨୪ ବାହ୍ୟ ଅନ୍ତରେ ଶୁଦ୍ଧଭାବ । କରି ସ୍ୱଧର୍ମ ଆଚରିବ ॥ ୮୧
ବୃଥାବଚନ ନ କହିବ । ପ୍ରାଣିମାତ୍ରକେ କ୍ଷମା ଥିବ ॥ ୮୨
କରିବ ବେଦାଦି ପଠନ । ନିର୍ମଳ କରିଥିବ ମନ ॥ ୮୩
ବ୍ରହ୍ମଚର୍ଯ୍ୟ[୧] କୁ ସିଦ୍ଧ[୨] କରି । ଜନ୍ତୁରେ ହିଂସା ନ ବିଚାରି ॥ ୮୪
ଶୀତ ଉଷ୍ଣାଦି ଋତୁଙ୍କରେ । ଯେ ଦୁଃଖ ସୁଖ ଏ ସଂସାରେ ॥ ୮୫
ନ ଘେନି ଭଲମନ୍ଦ ତହିଁ । ବର୍ତ୍ତିବ ସମତ୍ୱରେ[୩] ରହି ॥ ୮୬
୨୫ ସଚ୍ଚିଦାନନ୍ଦସ୍ୱରୂପରେ । ଆବର ନିୟନ୍ତା ରୂପରେ ॥ ୮୭
ଆତ୍ମା ଈଶ୍ୱର ବେନି ଭାବ । ସମସ୍ତ ଭୂତେ ବିଚାରିବ ॥ ୮୮
ରହିବ ଏକାନ୍ତ ସ୍ଥଳରେ । ମମତା ଛାଡ଼ି ଗୃହାଦିରେ ॥ ୮୯
ବିଜନ ସ୍ଥାନରେ ପତିତ । ହୋଇ ଯେ ଥିବ ଛିଣ୍ଡା ବସ୍ତ୍ର ॥ ୯୦
କିମ୍ବା ଶୁଦ୍ଧ ବଲ୍‌କଳମାନ । ଲଭି କରିବ ପରିଧାନ ॥ ୯୧
ଯେ କିଛି ଦଇବେ ମିଳିବ । ତହିଁରେ ସନ୍ତୋଷ ଲଭିବ ॥ ୯୨
୨୬ ଶ୍ରୀଭାଗବତଶାସ୍ତ୍ରେ ଅତି । ଶ୍ରଦ୍ଧା କରିବ ନିତି ନିତି ॥ ୯୩
ହେ ନୃପ ! ଅନ୍ୟଶାସ୍ତ୍ରଙ୍କରେ । ନିନ୍ଦା ନ କରିବ କାହିଁରେ ॥ ୯୪
ପ୍ରାଣାୟାମରେ ହେଁ ମନର । ମୌନ ହୁଅନ୍ତେ ବଚନର ॥ ୯୫
କର୍ମର ଚେଷ୍ଟା ନ କରନ୍ତେ । ଦଣ୍ଡ ବହିବ ପୁଣ ନିତ୍ୟେ ॥ ୯୬
ଯଥାର୍ଥ ବଚନ କହିବ । ବାହ୍ୟେ ଅନ୍ତରେ ଶାନ୍ତ ହେବ ॥ ୯୭
୨୭ ଅଦ୍ଭୁତକର୍ମା ଭଗବାନ । ତା' ଜନ୍ମ-କର୍ମ-ଗୁଣମାନ ॥ ୯୮
କରିବ ଶ୍ରବଣ କୀର୍ତ୍ତନ । ଧ୍ୟାନ କରିବ ପ୍ରତିଦିନ ॥ ୯୯
ହରିନିମନ୍ତେ ସାବଧାନ । କରିବ ସର୍ବ ଚେଷ୍ଟାମାନ ॥ ୧୦୦
୨୮ ଯାଗ ତପସ୍ୟା ଜପ ଦାନ । ଯେ ଅବା ସଦାଚାରମାନ ॥ ୧୦୧

---

୧. ଋତୁକାଳେ ସ୍ୱଦାରନିୟମାଦି ଗୃହସ୍ଥର ବ୍ରହ୍ମଚର୍ଯ୍ୟ । ୨. ଶିକ୍ଷା । ୩. ସମଭାବେ ।

ଯହିଁ ଆପଣା ସ୍ପୃହା ହେବ । ତା' ନେଇ କୃଷ୍ଣେ ସମର୍ପିବ ॥ ୧୦୨
ଭାର୍ଯ୍ୟା ତନୟ ନିକେତନ । ଯେ ଅବା ନିଜ ପ୍ରାଣମାନ ॥ ୧୦୩
ଈଶ୍ୱରଠାରେ ଏହା ସର୍ବ । ସେବକଭାବେ ସମର୍ପିବ ॥ ୧୦୪
୨୯ ଯାହାଙ୍କ ଆତ୍ମା, ନାଥ ହରି । ଏମନ୍ତେ ଯେତେ ଦେହଧାରୀ ॥ ୧୦୫
ତାହାଙ୍କ ଠାରେ ମିତ୍ରପଣ । ନିତ୍ୟେ କରିବ ଆଚରଣ ॥ ୧୦୬
ସ୍ଥାବର ଜଙ୍ଗମ ଯେ ଦୁଇ । ତାଙ୍କୁ ପୂଜିବ ପ୍ରୀତ ହୋଇ ॥ ୧୦୭
ଯେ ଭକ୍ତ ସାଧୁଜନମାନେ । ତାଙ୍କୁ ପୂଜିବ ପ୍ରତିଦିନେ ॥ ୧୦୮
୩୦ ପବିତ୍ର କୃଷ୍ଣଯଶମାନ । ଅନ୍ୟୋଽନ୍ୟେ କରିବ ଗାୟନ ॥ ୧୦୯
ପରସ୍ପରରେ ତହିଁ ପ୍ରୀତି । କରି ଲଭିବ ସୁଖ ଅତି ॥ ୧୧୦
ସମସ୍ତ ଦୁଃଖର ନିବୃତ୍ତି । ଶିକ୍ଷା କରିବ ମନେ ଚିନ୍ତି ॥ ୧୧୧
ସ୍ୱୟେଂ ସନ୍ତୋଷ ହୋଇଥିବ । ଏ ସର୍ବ ଶିକ୍ଷା ଆଚରିବ ॥ ୧୧୨
୩୧ ଯେ ପାପସମୂହକୁ ହରେ । ସେ ଶ୍ରୀହରିଙ୍କି ଅନ୍ୟୋଽନ୍ୟରେ ॥ ୧୧୩
ସ୍ମରନ୍ତେ ସ୍ମରଣ କରାନ୍ତେ । ସାଧନଭକ୍ତି ଉପୁଜନ୍ତେ ॥ ୧୧୪
ପ୍ରେମଲକ୍ଷଣା ଭକ୍ତି ଯେହି । ତହିଁରୁ ଜାତ ହୋନ୍ତେ ସେହି ॥ ୧୧୫
ଉଦ୍‌ଗତପୁଲକ ଶରୀର । ଧାରଣ କରନ୍ତି ସେ ନର ॥ ୧୧୬
୩୨ ଅଚ୍ୟୁତଚିନ୍ତାରେ ସେ କାଳେ । କାନ୍ଦନ୍ତି ଅବା କେତେବେଳେ ॥ ୧୧୭
କରନ୍ତି କେତେବେଳେ ହାସ । ଲଭନ୍ତି ଆନନ୍ଦବିଶେଷ ॥ ୧୧୮
ସେ ଅଲୌକିକ ଭକ୍ତଗଣେ । କହନ୍ତି ପୁଣ କଉଁ କ୍ଷଣେ ॥ ୧୧୯
ନାଚନ୍ତି କରନ୍ତି ଗାୟନ । ଯେ ବା କୃଷ୍ଣର ଲୀଳାମାନ ॥ ୧୨୦
କରନ୍ତି ଅଭିନୟ ପୁଣ । ଚିତ୍ତେ ଚିନ୍ତନ୍ତି ଭଗବାନ ॥ ୧୨୧
ତଦନ୍ତେ ଈଶ୍ୱରଙ୍କୁ ପାଇ । ତୁନି ହୁଅନ୍ତି ସୁଖୀ ହୋଇ ॥ ୧୨୨
୩୩ ଏ ରୂପେ ଆହେ ନୃପୋତ୍ତମ । ଶିଖିବ ଭାଗବତ ଧର୍ମ ॥ ୧୨୩
ଭକ୍ତି ହୁଅନ୍ତେ ତହୁଁ ଜାତ । ହରିଙ୍କି ଲଭିଣ ସାକ୍ଷାତ ॥ ୧୨୪
ଦୁସ୍ତର ମାୟାକୁ ସଂସାରେ । ତରି ଯାଆନ୍ତି ସାଧୁ ନରେ ॥ ୧୨୫

ଶ୍ରୀରାଜୋବାଚ

୩୪ କହନ୍ତି ବିଦେହରାଜନ । ହେ ବ୍ରହ୍ମଜ୍ଞାନୀ ଋଷିଜନ ॥ ୧୨୬
ଯାହାଙ୍କ ନାମ ନାରାୟଣ । ସେ ପରମାତ୍ମା ବ୍ରହ୍ମ ପୁଣ ॥ ୧୨୭
ଏ ତିନିଶବ୍ଦନିଷ୍ଠ ଯେହି । ତାହା ଆମ୍ଭଙ୍କୁ ଦିଅ କହି ॥ ୧୨୮

ଶ୍ରୀପିପ୍‌ପଳାୟନ ଉବାଚ

୩୫ ପିପ୍‌ପଳାୟନ କହୁଛନ୍ତି । ଆହେ ବିଦେହ ନରପତି ॥ ୧୨୯
ସୃଷ୍ଟି-ଉଦ୍‌ପତ୍ତି ସ୍ଥିତି ନାଶେ । ହେତୁ ରୂପରେ ଯେ ପ୍ରକାଶେ ॥ ୧୩୦
ଯେ ସ୍ୱୟେଂ ହେତୁଶୂନ୍ୟ ପୁଣ । ଜାଣ ସେହିଟି ନାରାୟଣ ॥ ୧୩୧

ସ୍ୱପ୍ନ-ଜାଗର-ସୁଷୁପ୍ତିରେ । ଯେ ଛନ୍ତି ପୁଣି ହିଁ ବାହ୍ୟରେ ।। ୧୩୨
ବ୍ରହ୍ମ ବୋଲିଣ ତାଙ୍କୁ ଜାଣ । ଦେହ-ଇନ୍ଦ୍ରିୟ-ମନ-ପ୍ରାଣ ।। ୧୩୩
ଯେଣେ ଚେତନା ଲଭିଛନ୍ତି । ଯେ ଏମାନଙ୍କୁ ପ୍ରବର୍ତ୍ତାନ୍ତି ।। ୧୩୪
ସେ ପରମାତ୍ମା ରୂପେ ଖ୍ୟାତ । ଏ ତିନି ଜାଣ ଏକତତ୍ତ୍ୱ ।। ୧୩୫
୩୬ ପରମ ତତ୍ତ୍ୱ ଅଟେ ଏହି । ଏହାଙ୍କୁ ମନ ଜାଣେ ନାହିଁ ।। ୧୩୬
ବଚନ ଚକ୍ଷୁ ବୁଦ୍ଧି ପ୍ରାଣ । ଅଥବା ଯେ ଇନ୍ଦ୍ରିୟଗଣ ।। ୧୩୭
ଏ ଲଭି ନାହାନ୍ତି ଯାହାଙ୍କୁ । ଦେଖ ଯେସନେ ଅନଳକୁ ।। ୧୩୮
ନିଜ ଅଂଶରୁ ଉତପନ୍ନ । ଯେତେକ ଅଗ୍ନିକଣାମାନ ।। ୧୩୯
ପ୍ରକାଶ କରି ନ ପାରନ୍ତି । ଦଗ୍‌ଧ କରିବାକୁ କି ଶକ୍ତି ।। ୧୪୦
ସେ ତତ୍ତ୍ୱ ପ୍ରମାଣ ଆତ୍ମାରେ । ଯାକୁ ଶବ୍ଦ ହିଁ ସାକ୍ଷାତ୍‌କାରେ ।। ୧୪୧
ନ କହି କହେ ଅର୍ଥଦ୍ୱାରେ । ନିଜ ବୋଧକ-ଅଭାବରେ ।। ୧୪୨
ବୋଲନ୍ତେ ଏ ନୋହି ଏ ନୋହି । ଯେ ଅବଶିଷ୍ଟ ତତ୍ତ୍ୱ ସେହି ।। ୧୪୩
୩୭ କାର୍ଯ୍ୟ କାରଣ ଆଦି ଯେତେ । ବ୍ରହ୍ମ ଅଟନ୍ତି ଏ ସମସ୍ତେ ।। ୧୪୪
ସେ କାର୍ଯ୍ୟ କାରଣଙ୍କ ପୁଣ । ଯେଣୁ ସେ ବ୍ରହ୍ମ ହିଁ କାରଣ ।। ୧୪୫
ଦେବତା ଇନ୍ଦ୍ରିୟ ବିଷୟ । ଯେ ଦୁଃଖସୁଖ ଫଳଦ୍ୱୟ ।। ୧୪୬
ସେ ବ୍ରହ୍ମ ବ୍ୟାପି ଏ ରୂପରେ । ବହୁତ ନାନା ଶକ୍ତି ଧରେ ।। ୧୪୭
ପ୍ରଥମୁଁ ଯଉଁ ବ୍ରହ୍ମ ଏକ । ସେ ଯେବେ ହୁଅଇ ବ୍ୟାପକ ।। ୧୪୮
ସେ ସତ୍ତ୍ୱ-ରଜ-ତମ ହୋଇ । ତ୍ରିଗୁଣେ ପ୍ରକୃତି ବୋଲାଇ ।। ୧୪୯
କ୍ରିୟାଶକ୍ତିରେ ସୂତ୍ର ହୋଇ । ଜ୍ଞାନରେ ମହତତ୍ତ୍ୱ ସେହି ।। ୧୫୦
ଜୀବ ବୋଲନ୍ତି ତାକୁ ପୁଣ । ଅହଂକାରଟି ସେହି ଜାଣ ।। ୧୫୧
୩୮ ଆତ୍ମାର ଜନ୍ମ-ମୃତ୍ୟୁ ନାହିଁ । ବୃଦ୍ଧି ନ ଲଭେ କ୍ଷୀଣ ନୋହି ।। ୧୫୨
ବାଳ-ଯୁବାଦି ଦେହ ଯେତେ । ତାହାଙ୍କ କାଳକୁ ଦେଖନ୍ତେ ।। ୧୫୩
ଦେଖନ୍ତେ ସର୍ବ ସାକ୍ଷିରୂପେ । ପ୍ରକାଶେ ଯେ ଜ୍ଞାନସ୍ୱରୂପେ ।। ୧୫୪
ସର୍ବଦା ସମସ୍ତ ଦେଶରେ । ସେ ଆତ୍ମା ବ୍ୟାପିଛି ଶରୀରେ ।। ୧୫୫
ଇନ୍ଦ୍ରିୟବଳେ ସେ ଜ୍ଞାନ ହିଁ । ନାନା ରୂପରେ ପ୍ରତ୍ୟେ ହୋଇ ।। ୧୫୬
ଯେସନେ ପ୍ରାଣ ଅଟେ ଏକ । ସମସ୍ତ ଦେହରେ ଅନେକ ।। ୧୫୭
୩୯ ଅଣ୍ଡଜ ଜରାୟୁଜ ଦୁଇ । ସ୍ୱେଦଜ ଉଦ୍ଭିଦଜ ଯେହି ।। ୧୫୮
ଏ ଚାରିଠାରେ ପ୍ରାଣ ରହି । ଜୀବକୁ ଅନୁବର୍ତ୍ତି ଥାଇ ।। ୧୫୯
ହେ ନୃପ ! ଜାଗ୍ରତ ଦଶାରେ । ଇନ୍ଦ୍ରିୟଗଣ ଚେଷ୍ଟା କରେ ।। ୧୬୦
ଘେନି ସେ ଜାଗ୍ରତସଂସ୍କାର । ସ୍ୱପ୍ନରେ ଥାଇ ଅହଂକାର ।। ୧୬୧
ସୁଷୁପ୍ତି ଦଶାରେ ଏ ବେନି । ଲୀନ ହୁଅନ୍ତେ ଜ୍ଞାନ ଘେନି ।। ୧୬୨
ଆତ୍ମାଟି ନିର୍ବିକାରେ ଥାଇ । ଛାଡ଼ିଣ ଲିଙ୍ଗଶରୀର ହିଁ ।। ୧୬୩

| | | | |
|---|---|---|---|
| | ହେ ନିମିରାଜନ ସେ କାଳେ | । ଆମ୍ଭେ ସମସ୍ତେ ଯୋଗବଳେ | ।। ୧୬୪ |
| | ସୁଷୁପ୍ତିସାକ୍ଷୀ ସେ ଆତ୍ମାର | । ସ୍ୱରୂପ କରୁଁ ସାକ୍ଷାତ୍‌କାର | ।। ୧୬୫ |
| ୪୦ | ସେ ପଦ୍ମନାଭ-ପଦ୍ମପାଦେ | । ଯେବେ ଭଜଇ ଅପ୍ରମାଦେ | ।। ୧୬୬ |
| | ସୁଦୃଢ଼ ଭକ୍ତି ହୋଏ ଜାତ | । ଯେ ଗୁଣକର୍ମରୁ ସଂଭୂତ | ।। ୧୬୭ |
| | ସେ ଚିତ୍ତପାପମାନଙ୍କୁ ହିଁ | । ଭକ୍ତିରେ ବିନାଶ କରଇ | ।। ୧୬୮ |
| | ନିର୍ମଳ ହୁଅନ୍ତେ ସେ ଚିତ୍ତ | । ସାକ୍ଷାତେ ଲଭେ ଆତ୍ମତତ୍ତ୍ୱ | ।। ୧୬୯ |
| | ନିର୍ମଳ ହୁଅନ୍ତେ ନୟନେ | । ସବିତା ପ୍ରକାଶେ ଯେସନେ | ।। ୧୭୦ |

ଶ୍ରୀରାଜୋବାଚ

| | | | |
|---|---|---|---|
| ୪୧ | ଏମନ୍ତ ଋଷିମୁଖୁଁ ଶୁଣି | । କହନ୍ତି ନିମିରାଜା ପୁଣି | ।। ୧୭୧ |
| | କର୍ମଯୋଗକୁ କହ ମୋତେ | । ଯେଣେ ପୁରୁଷ ସିଦ୍ଧ ହୋନ୍ତେ | ।। ୧୭୨ |
| | ଛାଡ଼ି ସକଳ କର୍ମମାନ | । ଲଭଇ କର୍ମଶୂନ୍ୟ ଜ୍ଞାନ | ।। ୧୭୩ |
| ୪୨ | ଇକ୍ଷ୍ୱାକୁ ରାଜା ଆମ୍ଭ ତାତ | । ତାଙ୍କ ନିକଟେ ଏ ବୃତ୍ତାନ୍ତ | ।। ୧୭୪ |
| | ସନକାଦିଙ୍କୁ ପୂର୍ବକାଳେ | । ମୁଁ ପଚାରିଲି କୁତୂହଳେ | ।। ୧୭୫ |
| | ନ କହିଲେ ସେ ବ୍ରହ୍ମସୁତେ | । ତହିଁ କାରଣ କହ ମୋତେ | ।। ୧୭୬ |

ଶ୍ରୀଆବିର୍ହୋତ୍ର ଉବାଚ

| | | | |
|---|---|---|---|
| ୪୩ | ରାଜା ପୁଛନ୍ତେ ଏତେମାତ୍ର | । କହୁଅଛନ୍ତି ଆବିର୍ହୋତ୍ର | ।। ୧୭୭ |
| | ବେଦବିହିତ ବୋଲି କର୍ମ | । ନିଷିଦ୍ଧ କର୍ମଟି ଅକର୍ମ | ।। ୧୭୮ |
| | ବିହିତ କର୍ମ ଯେ ଆବର | । ବିକର୍ମ ତା' ନ କରିବାର | ।। ୧୭୯ |
| | ଏ ବେଦବାଦ ଅଟେ ମତ | । ଯେଣୁ ଈଶ୍ୱରୁଁ ବେଦ ଜାତ | ।। ୧୮୦ |
| | ତେଣୁ କର୍ମାଦିରେ ପଣ୍ଡିତେ | । ମୋହିତ ହୁଅନ୍ତି ଜଗତେ | ।। ୧୮୧ |
| ୪୪ | ସ୍ୱର୍ଗନିମିତ୍ତେ କର୍ମ କରେ | । ମୋକ୍ଷନିମିତ୍ତେ ନ ଆଚରେ | ।। ୧୮୨ |
| | ପରୋକ୍ଷବାଦ ବେଦେ ଏହି | । ମୂର୍ଖଙ୍କ ବୁଝିବାର ପାଇଁ | ।। ୧୮୩ |
| | ଯେସନେ ପିତା ବାଳକକୁ | । ପାନ କରାନ୍ତେ ଔଷଧକୁ | ।। ୧୮୪ |
| | ଦେବି ମୁଁ ଖଣ୍ଡଲଡୁମାନ | । କର ଏ ଔଷଧକୁ ପାନ | ।। ୧୮୫ |
| | ଏ ଲୋଭେ ଔଷଧ ପିଆଇ | । ଖଣ୍ଡଲଡୁକୁ ପଛେ ଦେଇ | ।। ୧୮୬ |
| | ବେଦବାକ୍ୟ ହିଁ ସେ ରୂପରେ | । ଲୋଭାନ୍ତେ ସ୍ୱର୍ଗାଦି ଫଳରେ | ।। ୧୮୭ |
| | `କର୍ମର ମୋକ୍ଷକୁ ବିଚାରି | । କର୍ମବିଧାନ ଅଛି କରି | ।। ୧୮୮ |
| ୪୫ | ଇନ୍ଦ୍ରିୟମାନଙ୍କୁ ନ ଜିଣି | । ମୂର୍ଖ ଅଟଇ ଯେଉଁ ପ୍ରାଣୀ | ।। ୧୮୯ |
| | ବେଦବିହିତ କର୍ମଗଣ | । ଯେବେ ନ କରେ ଆଚରଣ | ।। ୧୯୦ |
| | କର୍ମରହିତ ଅଧର୍ମରେ | । ମୃତ୍ୟୁ ଅନ୍ତରେ ପୁଣି ମରେ | ।। ୧୯୧ |
| ୪୬ | ବେଦୋକ୍ତ କର୍ମକୁ ଯେ କରେ | । ଆସକ୍ତ ନୋହି ସେ ଫଳରେ | ।। ୧୯୨ |

| | | | | | |
|---|---|---|---|---|---|
| | କର୍ମ ଈଶ୍ୱରେ ସମର୍ପଇ | । | ନୈଷ୍କର୍ମ୍ୟସିଦ୍ଧି ସେ ଲଭଇ | ।। | ୧୯୩ |
| | ଖଣ୍ଡଲଡ୍‌ଡୁକ ପ୍ରାଏ ଅତି | । | ରୁଚିବା ଅର୍ଥେ ଫଳଶ୍ରୁତି | ।। | ୧୯୪ |
| ୪୭ | ହୃଦୟଗ୍ରନ୍ଥିକି ଜୀବର | । | ଶୀଘ୍ରେ ନାଶିବ ଯଉଁ ନର | ।। | ୧୯୫ |
| | ବୈଦିକ ତାନ୍ତ୍ରିକ ବିଧିରେ | । | ହରିଙ୍କି ପୂଜିବ ନିତ୍ୟରେ | ।। | ୧୯୬ |
| ୪୮ | ଆଚାର୍ଯ୍ୟଠାରୁ ହେ ରାଜନ | । | ଲଭିଣ ଅନୁଗ୍ରହମାନ | ।। | ୧୯୭ |
| | ତା'ଠାରୁ ଶିଖି ଆଗମଂକୁ | । | ପୂଜା କରିବ ଗୋବିନ୍ଦଙ୍କୁ | ।। | ୧୯୮ |
| | ଯହିଁ ଆପଣା ଅଭିମତ | । | ସେ ମୂର୍ତ୍ତି କରିବ ନିର୍ମିତ | ।। | ୧୯୯ |
| ୪୯ | ସ୍ନାନ ଆଦିରେ ଶୁଦ୍ଧ ହୋଇ | । | ଦେବତା ଅଭିମୁଖେ ରହି | ।। | ୨୦୦ |
| | ପ୍ରାଣସଂଯମ ଭୂତଶୁଦ୍ଧି | । | ଆଦିରେ ପିଣ୍ଡକୁ ବିଶୋଧି | ।। | ୨୦୧ |
| | ଉତ୍ତମ ନ୍ୟାସମାନଙ୍କରେ | । | ରକ୍ଷା କରିଣ କଳେବରେ | ।। | ୨୦୨ |
| | ଏ ରୂପେ ବିଧିନିଷ୍ଠ ଜନ | । | କରିବ ହରିଙ୍କି ଅର୍ଚ୍ଚନ[1] | ।। | ୨୦୩ |
| ୫୦ | ଯେ ପୁଷ୍ପ ଆଦି ଦ୍ରବ୍ୟମାନ | । | [2]ଜନ୍ତ୍ୱାଦିଶୋଧନଦ୍ୱାରେଣ | ।। | ୨୦୪ |
| | କ୍ଷିତିକୁ ସଂମାର୍ଜନାଦିରେ | । | ଆତ୍ମାକୁ ଅବ୍ୟଗ୍ରତାଦ୍ୱାରେ | ।। | ୨୦୫ |
| | ମୂର୍ତ୍ତିକୁ କ୍ଷାଳନ-ଲେପନ | । | ଆଦିରେ କରି ନିଷ୍ପାଦନ[3] | ।। | ୨୦୬ |
| | ଆସନ ପ୍ରୋକ୍ଷଣ କରିଣ | । | ହୃଦୟେ ଆତ୍ମାକୁ ପୂଜିଣ | ।। | ୨୦୭ |
| | ଯଥାଶକ୍ତିରେ ସଂପାଦନ | । | କରିଣ ଉପଚାରମାନ | ।। | ୨୦୮ |
| | ତେଣେ-ଅର୍ଚ୍ଚା-ଆଦିରେ ପୁଣ | । | କରିବ ଗୋବିନ୍ଦ ପୂଜନ | ।। | ୨୦୯ |
| ୫୧ | ପାଦ୍ୟଅର୍ଘ୍ୟାଦି ପାତ୍ରମାନ | । | ଏ ଅନ୍ତେ କରିଣ କଳ୍ପନ | ।। | ୨୧୦ |
| | ହୃଦୟେ ପୂଜିତ ଯେ ହରି | । | ତାଙ୍କୁ ମୂର୍ତ୍ତିରେ ଧ୍ୟାନ କରି | ।। | ୨୧୧ |
| | ହୃଦାଦି ମନ୍ତ୍ରମାନଙ୍କେଣ | । | ଆବର ମୂଳମନ୍ତ୍ରେ ପୁଣ | ।। | ୨୧୨ |
| | ନ୍ୟାସ କରିଣ ଦେବତାଙ୍କୁ | । | କରିବ ଉତ୍ତମ ପୂଜାକୁ | ।। | ୨୧୩ |
| ୫୨ | ହୃଦୟ ଆଦି ଯେହୁ ଅଙ୍ଗ | । | ସୁଦର୍ଶନାଦି ଯେ ଉପାଙ୍ଗ | ।। | ୨୧୪ |
| | ଆୟୁଧ ଭୂଷଣାଦି ଯେତେ | । | ପାର୍ଷଦମାନଙ୍କ ସହିତେ | ।। | ୨୧୫ |
| | ସେ ସେହି ମୂର୍ତ୍ତିଙ୍କି ପୂଜାରେ | । | ପୂଜିବ ଆପଣା ମନ୍ତ୍ରରେ | ।। | ୨୧୬ |
| | ପାଦ୍ୟାର୍ଘ୍ୟ ଆଚମନାଦିରେ | । | ସ୍ନାନ-ବସନ-ଭୂଷଣରେ | ।। | ୨୧୭ |
| ୫୩ | ଗନ୍ଧ କୁସୁମ ଅକ୍ଷତରେ | । | ମାଲ୍ୟରେ ଧୂପରେ ଦୀପରେ | ।। | ୨୧୮ |
| | ଦିବ୍ୟ ନୈବେଦ୍ୟ ଦେଇ କରି | । | ପୂଜିବ ବିଧିମତେ ହରି | ।। | ୨୧୯ |
| | ପଢ଼ି ଉତ୍ତମ ସ୍ତୁତିମାନ | । | ତଦନ୍ତେ କରିବ ବନ୍ଦନ | ।। | ୨୨୦ |
| ୫୪ | ତନ୍ମୟ କରି ହେ ରାଜନ | । | ଆତ୍ମାକୁ କରିବ ଚିନ୍ତନ | ।। | ୨୨୧ |
| | ପୂଜା କରିଣ ପ୍ରତିମାକୁ | । | ମସ୍ତକେ ଘେନି ନିର୍ମାଲ୍ୟକୁ | ।। | ୨୨୨ |
| | ସ୍ୱସ୍ଥାନେ ସ୍ଥାପି ଭଗବାନ | । | ସମାପ୍ତ କରିବ ପୂଜନ | ।। | ୨୨୩ |

୧. ଅର୍ଚ୍ଚନପ୍ରକାରକୁ ।　２. କୀଟ ଆଦି ବାହାର କରି ଦେଇ ।　୩. ପୂଜାଯୋଗ୍ୟ କରି ।

୫୫ ଆହେ ରାଜନ ଏ ରୂପରେ । ଅଗ୍ନି ଭାସ୍କର ଜଳାଦିରେ ॥ ୨୨୪
ହୃଦୟେ ଅତିଥିରେ ପୁଣ । ଯେ ଆତ୍ମାରୂପୀ ନାରାୟଣ ॥ ୨୨୫
ତାଙ୍କୁ ପୂଜଇ ଯଉଁ ଜନ । ମୁକ୍ତି ସେ ଲଭଇ ବହନ ॥ ୨୨୬
ସୁଜନମାନଙ୍କର ହିତେ । ଶ୍ରୀଏକାଦଶ ଭାଷାଗୀତେ ॥ ୨୨୭
ଭଣଇ ଦୀନବନ୍ଧୁ ଦ୍ୱିଜ । ଚିନ୍ତି ଶ୍ରୀକୃଷ୍ଣ ପାଦାମ୍ବୁଜ ॥ ୨୨୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଜାୟନ୍ତେୟୋପାଖ୍ୟାନେ
ଶ୍ରୀବିଦେହପ୍ରଶ୍ନୋ ନାମ ତୃତୀୟୋଽଧ୍ୟାୟଃ ॥

## ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ତ୍ୱବତାରେହାପ୍ରଶ୍ନସ୍ୟୋତ୍ତରମୁକ୍ତବାନ୍ ।
ଜୟନ୍ତୀନନ୍ଦନୋ ନାମ୍ନା ଦ୍ରୁମିଳୋ ନରସତ୍ତମଃ ॥ ୧

ଶ୍ରୀରାଜୋବାଚ

୧ ବିଦେହଦେଶ ନରପତି । ପୁଣି ଋଷିଙ୍କି ପଚାରନ୍ତି ॥ ୧
ହେ ମୁନିଜନେ ଏ ସଂସାରେ । ଯେବଣ ଯେବଣ ଜନ୍ମରେ ॥ ୨
ଯେତେ ଯେତେକ କର୍ମମାନ । କରୁଅଛନ୍ତି ଭଗବାନ ॥ ୩
କରିବେ କଲେ ଯାହା ପୂର୍ବ । ତା' ଆମ୍ଭ ଆଗେ କହ ସର୍ବ ॥ ୪

ଶ୍ରୀଦ୍ରୁମିଳ ଉବାଚ

୨ ପ୍ରଶ୍ନ କରନ୍ତେ ନରପତି । ଦ୍ରୁମିଳ ଏବେ କହୁଛନ୍ତି ॥ ୫
ଅନନ୍ତ ଅନନ୍ତଗୁଣକୁ । ଯେ ଇଚ୍ଛା କରେ ଗଣିମାକୁ ॥ ୬
ସେ ଅତି ମନ୍ଦବୁଦ୍ଧି ନର । ବହୁତ କାଳରେ ଭୂମିର ॥ ୭
ଧୂଳିମାନଙ୍କୁ ଯଉଁ ଜନ । କଷ୍ଟରେ କରିବ ଗଣନ ॥ ୮
ଅଖିଳଶକ୍ତିଯୁତ ହରି । ଗୁଣକୁ ଗଣି ସେ ନ ପାରି ॥ ୯
୩ ହେ ନିମିରାଜ ଏବେ ଶୁଣ । ସେ ଆଦିଦେବ ନାରାୟଣ ॥ ୧୦
ଆପଣ କଲେ ଯା' ନିର୍ମିତ । ଘେନି ସେ ପଞ୍ଚ ମହାଭୂତ ॥ ୧୧
ବ୍ରହ୍ମାଣ୍ଡ ରଚନା କରିଣ । ନିଜ ଅଂଶରେ ତହିଁ ପୁଣ ॥ ୧୨
ଲୀଳାରେ ପ୍ରବେଶ ହୋଇଲେ । ପୁରୁଷ ସଂଜ୍ଞାକୁ ଲଭିଲେ ॥ ୧୩
୪ ଯଉଁ ପୁରୁଷ ଅବତାର । ଦେହେ ରହିଛି ତିନିପୁର ॥ ୧୪
ଯାହା ଇନ୍ଦ୍ରିୟେ ପ୍ରାଣିଙ୍କର । ଦଶ ଇନ୍ଦ୍ରିୟ ପରିଚାର ॥ ୧୫
ଦେହ-ଇନ୍ଦ୍ରିୟଶକ୍ତି ବେନି । କ୍ରିୟାମାନଙ୍କୁ ମିଶି ତିନି ॥ ୧୬
ଏ ଯାହା ପ୍ରାଣରୁ ସଂଭୂତ । ଯହିଁରୁ ସ୍ୱତଃ ଜ୍ଞାନ ଜାତ ॥ ୧୭

| | | | | | |
|---|---|---|---|---|---|
| | ସତ୍ତ୍ୱାଦି ତିନି ଗୁଣ ଘେନି | । | ସ୍ଥିତି ଉତ୍‌ପତ୍ତି ଲୟ ତିନି | ।। | ୧୮ |
| | ପୁରୁଷରୂପେ ନାରାୟଣ | । | କରୁଅଛନ୍ତି ବିନିର୍ମାଣ | ।। | ୧୯ |
| ୫ | ହେ ନିମିରାଜନ ଆଦ୍ୟରେ | । | ଜଗତସର୍ଜନା ଅର୍ଥରେ | ।। | ୨୦ |
| | ଯା' ରଜୋଗୁଣରୁ ଉତ୍‌ପତ୍ତି | । | ବ୍ରହ୍ମା ହୋଇଲେ ଶତଧୃତି | ।। | ୨୧ |
| | ଯେ ବିପ୍ରଧର୍ମକୁ ପାଳନ୍ତି | । | ସେ ବିଷ୍ଣୁ ସର୍ବଯଜ୍ଞପତି | ।। | ୨୨ |
| | ପାଳନ-ଅର୍ଥେ ଜଗତର | । | ଯା' ସତ୍ତ୍ୱଗୁଣେ ଅବତାର | ।। | ୨୩ |
| | ରୁଦ୍ର ହିଁ ତମୋଗୁଣେ ଜାତ | । | ହୋଇଲେ ପ୍ରଳୟନିମିତ୍ତ | ।। | ୨୪ |
| | ଏରୂପେ ପ୍ରଜାଙ୍କ ହେତୁରୁ | । | ଜାତ ହୁଅନ୍ତି ଯାହା ଠାରୁ | ।। | ୨୫ |
| | ଉତ୍‌ପତ୍ତି ପାଳନ ସଂହାର | । | ସେ ଆଦ୍ୟ ପୁରୁଷାବତାର | ।। | ୨୬ |
| ୬ | ଦକ୍ଷଦୁହିତା ନାମ ମୂର୍ତ୍ତି | । | ଧର୍ମର ଭାର୍ଯ୍ୟା ସେ ଅଟନ୍ତି | ।। | ୨୭ |
| | ନର ନାରାୟଣ ରୂପରେ | । | ଜନ୍ମ ହୋଇଲେ ତାଙ୍କ ଠାରେ | ।। | ୨୮ |
| | ସେ ଋଷିଶ୍ରେଷ୍ଠ ଶାନ୍ତ ଅତି | । | ଆତ୍ମଜ୍ଞାନ ଯା' କହିଛନ୍ତି | ।। | ୨୯ |
| | ସ୍ୱୟଂ ତା' କରି ଆଚରଣ | । | ଆଜ ହିଁ ରହିଛନ୍ତି ପୁଣ | ।। | ୩୦ |
| | ଯାହାଙ୍କ ଚରଣନଳିନ | । | ସେବନ୍ତି ଶ୍ରେଷ୍ଠ ଋଷିଗଣ | ।। | ୩୧ |
| ୭ | ସ୍ୱର୍ଗସ୍ଥାନକୁ ଏ ମୋହର | । | କରନ୍ତି ଘେନିମା ବିଚାର | ।। | ୩୨ |
| | ବାସବ କରି ଏ ଶଙ୍କାକୁ | । | ଗଣସହିତେ କନ୍ଦର୍ପକୁ | ।। | ୩୩ |
| | ତାଙ୍କ ତପସ୍ୟାନାଶକାମେ | । | ପେଷିଲେ ବଦରିକାଶ୍ରମେ | ।। | ୩୪ |
| | ବସନ୍ତ ମନ୍ଦବାତ ସଙ୍ଗେ | । | ଅପ୍‌ସରାଗଣ ଘେନି ରଙ୍ଗେ | ।। | ୩୫ |
| | କାମ ହିଁ ଯାଇ ସେ ସ୍ଥାନରେ | । | ନାରୀଙ୍କ କଟାକ୍ଷବାଣରେ | ।। | ୩୬ |
| | ବିନ୍ଧିଲା ଋଷିଙ୍କ ମନକୁ | । | ନ ଜାଣି ତାଙ୍କ ମହିମାକୁ | ।। | ୩୭ |
| ୮ | ଜାଣି ବାସବ-ଅପରାଧ | । | ସେ ଆଦିଦେବ ଛାଡ଼ି କ୍ରୋଧ | ।। | ୩୮ |
| | ଭୟେ କମ୍ପନ୍ତେ ଦେବଗଣ | । | ତାହାଙ୍କୁ କହିଲେ ହସିଣ | ।। | ୩୯ |
| | ହେ ଦେବବଧୂ ହେ ପବନ | । | ଭୟ ନ କର ହେ ମଦନ | ।। | ୪୦ |
| | ଘେନ ଆମ୍ଭର ଏ ପୂଜାକୁ | । | ଶୂନ୍ୟ ନ କର ଆଶ୍ରମକୁ | ।। | ୪୧ |
| ୯ | ଅଭୟଦାତା ଭଗବାନ | । | କହନ୍ତେ ଏ ରୂପେ ବଚନ | ।। | ୪୨ |
| | ଆହେ ବିଦେହରାଜା ଶୁଣ | । | କନ୍ଦର୍ପ ଆଦି ଦେବଗଣ | ।। | ୪୩ |
| | ଲାଜେ ଲୁଆଇଁ ବଦନକୁ | । | ବିନୟେ କହିଲେ ତାହାଙ୍କୁ | ।। | ୪୪ |
| | ଆତ୍ମାରେ କରନ୍ତି ରମଣ | । | ଯେତେ ଅଛନ୍ତି ଧୀରଗଣ | ।। | ୪୫ |
| | ସେମାନେ ତୁମ୍ଭ ପଦ୍ମପାଦେ | । | ସେବା କରନ୍ତି ଅପ୍ରମାଦେ | ।। | ୪୬ |
| | ତୁମ୍ଭେ ଯେ ଅଟ ଅବିକାରୀ | । | ମାୟାରହିତ ଆହେ ହରି | ।। | ୪୭ |
| | ଏ କଥାମାନ ତୁମ୍ଭ ଠାରେ | । | ବିଚିତ୍ର ନୁହେଁ ସ୍ୱଭାବରେ | ।। | ୪୮ |
| ୧୦ | ତୁମ୍ଭଙ୍କୁ କରନ୍ତି ସେବନ | । | ଏମନ୍ତ ଯେତେ ଭକ୍ତ ଜନ | ।। | ୪୯ |
| | ସ୍ୱସ୍ଥାନ ସ୍ୱର୍ଗ ଛାଡ଼ି କରି | । | ଚଳନ୍ତେ ବଇକୁଣ୍ଠପୁରୀ | ।। | ୫୦ |

ତାଙ୍କର ଦେବତାଏ ନିତି । ବହୁତ ବିଘ୍ନ ଆଚରନ୍ତି ॥ ୫୧
ଯାଗରେ ନିଜ ଭାଗମାନ । ଦେବଙ୍କୁ କରନ୍ତି ଯେ ଦାନ ॥ ୫୨
ତାଙ୍କ ବିଘ୍ନକୁ ଦେବମାନେ । କରନ୍ତି ନାହିଁ ଏ ଭୁବନେ ॥ ୫୩
ତୁମ୍ଭେ ଯେ ଦେବଙ୍କ ଈଶ୍ୱର । ତୁମ୍ଭେ ଯାହାଙ୍କୁ ରକ୍ଷା କର ॥ ୫୪
ସେମାନେ କରନ୍ତି ଅର୍ପଣ । ବିଘ୍ନମସ୍ତକେ ସ୍ୱଚରଣ ॥ ୫୫
୧୧ ଯେ କ୍ଷୁଧାତୃଷା ବେନି ଆନ । ବରଷା-ଶୀତ-ଗ୍ରୀଷ୍ମମାନ ॥ ୫୬
ପ୍ରାଣ ପବନ ଜିହ୍ୱାରସ । ଶିଶ୍ନାଦି ଭୋଗ ଯେ ବିଶେଷ ॥ ୫୭
ଏମନ୍ତେ ଯେତେ ଭୋଗମାନ । ଦୁସ୍ତର ଜଳଧି ସମାନ ॥ ୫୮
ଏହା ତରିଣ କେହୁ ନରେ । ବୁଡ଼ନ୍ତି ଗୋଷ୍ପଦଜଳରେ ॥ ୫୯
କ୍ରୋଧ କରନ୍ତେ ତତକାଳ । ସମସ୍ତ ହୁଅଇ ବିଫଳ ॥ ୬୦
ଦୁଷ୍କର ତପମାନଙ୍କୁ ହିଁ । ବୃଥା ଛାଡ଼ନ୍ତି ଶାପ ଦେଇ ॥ ୬୧
୧୨ ସେ ଦେବଗଣ ଏ ରୂପରେ । ସ୍ତୁତି କରନ୍ତେ ସେ କାଳରେ ॥ ୬୨
ଅତି ଅଦ୍‌ଭୁତ ରୂପବନ୍ତ । ନାରୀଏ ହୋଇଲେ ସଂଭୂତ ॥ ୬୩
ମଣ୍ଡିତ ହୋଇ ଅଳଂକାରେ । ସେବା କରନ୍ତି ନିକଟରେ ॥ ୬୪
ସେ ପ୍ରଭୁ ଦେଖାଇଲେ ତାଙ୍କୁ । ତାଙ୍କର ଗର୍ବ ନାଶିବାକୁ ॥ ୬୫
୧୩ ଲକ୍ଷ୍ମୀର ପ୍ରାୟେ ରୂପବତୀ । ଦେଖି ସେ ନାରୀଙ୍କି ଝଟତି ॥ ୬୬
ତାହାଙ୍କ ରୂପଗୁଣେ ଅତି । ହତ ହୋଇଲା ନିଜ କାନ୍ତି ॥ ୬୭
ସେ ଦେବଗଣ ଯେତେ ଥିଲେ । ତାଙ୍କ ସୁବାସେ ମୋହ ଗଲେ ॥ ୬୮
୧୪ ସେ ଦେବଦେବ ନାରାୟଣ । ଯେ ଛନ୍ତି ପ୍ରଣତ ହୋଇଣ ॥ ୬୯
ସେ ଦେବାନୁଚରଗଣଙ୍କୁ । ହସି କହିଲେ ଏ ବାକ୍ୟକୁ ॥ ୭୦
ଜଣେମାତ୍ରକ ଏ ନାରୀରୁ । ବରଣ କର ଆମ୍ଭ ଠାରୁ ॥ ୭୧
ସମାନରୂପ ଏ ତୁମ୍ଭର । ହେବ ଏ ଭୂଷଣ ସ୍ୱର୍ଗର ॥ ୭୨
୧୫ ହେ ନୃପ ! ଇନ୍ଦ୍ରଭୃତ୍ୟଗଣ । ସେ ଆଜ୍ଞା ସ୍ୱୀକାର କରିଣ ॥ ୭୩
ପ୍ରଣାମ କରି ଶ୍ରୀହରିଙ୍କି । ଅପ୍‌ସରାଶ୍ରେଷ୍ଠ ଉର୍ବଶୀକି ॥ ୭୪
ଅଗ୍ରତେ କରିଣ ସତ୍ୱରେ । ଗମନ କଲେ ସ୍ୱର୍ଗପୁରେ ॥ ୭୫
୧୬ ଇନ୍ଦ୍ରଙ୍କୁ ପ୍ରଣାମ କରିଣ । ଶୁଣନ୍ତେ ସର୍ବ ଦେବଗଣ ॥ ୭୬
ସେମାନେ ନାରାୟଣବଳ । ବର୍ଣ୍ଣନ କଲେକ ସକଳ ॥ ୭୭
ଶୁଣିଣ ଇନ୍ଦ୍ର ତ୍ରସ୍ତ ହେଲେ । ଅତ୍ୟନ୍ତ ବିସ୍ମୟ ଲଭିଲେ ॥ ୭୮
୧୭ ହଂସସ୍ୱରୂପ ଧରି କରି । କହିଲେ ଆତ୍ମଯୋଗ ହରି ॥ ୭୯
ସନକ ଆଦି ଚାରି, ଦତ୍ତ[୧] । ଋଷଭ ଦେବ ଆମ୍ଭ ତାତ ॥ ୮୦
ଜଗତମଙ୍ଗଳ ଅର୍ଥରେ । ଜନ୍ମିଲେ ବିଷ୍ଣୁ ହିଁ କଳାରେ ॥ ୮୧

୧. ଦତ୍ତାତ୍ରେୟ ।

ସେ ବିଷ୍ଣୁ ଯାଇଁ ପାତାଳକୁ । ମାଇଲେ ମଧୁ ଦାନବକୁ ॥ ୮୨
ହୟଗ୍ରୀବରୂପରେ ସେହି । ଆଣିଲେ ବେଦମାନଙ୍କୁ ହିଁ ॥ ୮୩
୧୮ ପ୍ରଳୟେ ମତ୍ସ୍ୟରୂପେ ପୁଣ । ମନୁଙ୍କୁ କଲେ ସେ ରକ୍ଷଣ ॥ ୮୪
ଓଷଧିସହିତେ ସେ ଅତି । ରକ୍ଷା କଲେଟି ବସୁମତୀ ॥ ୮୫
ବରାହ ଅବତାର ଧରି । ଜଳଭିତରୁ ବସୁନ୍ଧରୀ ॥ ୮୬
ଉଦ୍ଧାର କରିଣ ପ୍ରତ୍ୟକ୍ଷ । ମାଇଲେ ଦୈତ୍ୟ ହିରଣ୍ୟାକ୍ଷ ॥ ୮୭
କୂର୍ମରୂପରେ ସେ ଅନନ୍ତ । ଅମୃତ ମନ୍ଥନ ନିମିତ୍ତ ॥ ୮୮
ମନ୍ଦର ଅଦ୍ରିକି ପୃଷ୍ଠରେ । ଧଇଲେ ଲୀଳାମାତ୍ରକରେ ॥ ୮୯
ହରିରୂପରେ ଚତୁର୍ଭୁଜ । ଆର୍ତ୍ତେ ଡାକନ୍ତେ ଗଜରାଜ ॥ ୯୦
ଶରଣ ପଶନ୍ତେ ସେ ତାଙ୍କୁ । ରଖିଲେ ମାରି କୁମ୍ଭୀରକୁ ॥ ୯୧
୧୯ ବାଳଖିଲ୍ୟ ଋଷିଏ ଯେତେ । କଶ୍ୟପଋଷିଙ୍କ ନିମିତ୍ତେ ॥ ୯୨
ସମିଧ ଆଣିବା କାଳରେ । ବୁଡ଼ିଲେ ଗୋଷ୍ପଦ ଜଳରେ ॥ ୯୩
ଇନ୍ଦ୍ର ହସନ୍ତେ ତହିଁ ତାଙ୍କୁ । ସ୍ତୁତି କରନ୍ତେ ସେ ବିଷ୍ଣୁଙ୍କୁ ॥ ୯୪
ସେ ବିପତ୍ତିରୁ ଚକ୍ରଧର । କଲେ ସେ ଋଷିଙ୍କି ଉଦ୍ଧାର ॥ ୯୫
ବୃତ୍ର-ଅସୁର ବଧ-ଅନ୍ତେ । ବ୍ରହ୍ମହତ୍ୟାରେ ଇନ୍ଦ୍ର ଥାନ୍ତେ ॥ ୯୬
ଉଦ୍ଧାର କଲେ ତାଙ୍କୁ ପୁଣ । ଅନାଥ ଦେବନାରୀଗଣ ॥ ୯୭
ଅସୁରଗୃହେ ଥିଲେ ରହି । ରଖିଲେ ମାରି ଦୈତ୍ୟକୁ ହିଁ ॥ ୯୮
ନୃସିଂହ ଅବତାରେ ହରି । ହିରଣ୍ୟକଶିପୁକୁ ମାରି ॥ ୯୯
ସମସ୍ତ ସାଧୁଙ୍କୁ ନିର୍ଭୟ । କଲେ ସେକାଳେ ଅତିଶୟ ॥ ୧୦୦
୨୦ ଦେବ-ଅସୁରଯୁଦ୍ଧକାଳେ । ଅସୁରପତିଙ୍କି ଟି ହେଳେ ॥ ୧୦୧
ମାଇଲେ ଦେବଙ୍କ କାର୍ଯ୍ୟରେ । ଆବର ପ୍ରତି ମନ୍ୱନ୍ତରେ ॥ ୧୦୨
କରିଣ ଅବତାରମାନ । ରକ୍ଷା କରନ୍ତି ତ୍ରିଭୁବନ ॥ ୧୦୩
ବାମନରୂପେ ଏଥୁ ଅନ୍ତେ । ବଳିକି ଯାଚଞ୍ଚା କରନ୍ତେ ॥ ୧୦୪
ଘେନି ତା' ଠାରୁ ତ୍ରିଭୁବନ । ଇନ୍ଦ୍ରଙ୍କୁ କଲେ ସେ ପ୍ରଦାନ ॥ ୧୦୫
୨୧ ହୈହୟକୁଳନାଶପାଇଁ । ଭାର୍ଗବ ଅଗ୍ନି ପ୍ରାୟ ହୋଇ ॥ ୧୦୬
ପରଶୁରାମ ଅବତରି । ଏକବିଂଶତି ବାର କରି ॥ ୧୦୭
ମାରିଣ କ୍ଷତ୍ରିୟମାନଙ୍କୁ । ପୃଥ୍ୱୀକି ଦେଲେ ବ୍ରାହ୍ମଣଙ୍କୁ ॥ ୧୦୮
ଶ୍ରୀରାମରୂପେ ଅବତରି । ସିନ୍ଧୁରେ ବନ୍ଧ ବାନ୍ଧିକରି ॥ ୧୦୯
ଲଙ୍କାସହିତେ ରାବଣକୁ । ମାରି ଯେ ଆଣିଲେ ସୀତାଙ୍କୁ ॥ ୧୧୦
ଯା' କୀର୍ତ୍ତିମାନ ଲୋକଙ୍କର । ପାପକୁ କରଇ ସଂହାର ॥ ୧୧୧
ସେ ରଘୁନାଥ ସୀତାକାନ୍ତ । ହୋଇଅଛନ୍ତି ଜୟଯୁତ ॥ ୧୧୨
୨୨ ଜନ୍ମବିହୀନ ସେ ଅନନ୍ତ । ଭୂଭାର ବିନାଶନିମିତ୍ତ ॥ ୧୧୩
ଯଦୁକୁଳରେ ଜାତ ହେବେ । ଯା' କରି ନ ପାରନ୍ତି ଦେବେ ॥ ୧୧୪

ସେ କର୍ମମାନ ହିଁ କରିବେ । ପୁଣ ସେ ବୁଦ୍ଧରୂପୀ ହେବେ ॥ ୧୧୫
ଯଜ୍ଞକୁ ନୁହନ୍ତି ଭାଜନ । ଯଜ୍ଞ କରନ୍ତେ ଦୈତ୍ୟଜନ ॥ ୧୧୬
ନାନାପ୍ରକାର ବେଦବାଦେ । ତାଙ୍କୁ ମୋହିବେ ଅପ୍ରମାଦେ ॥ ୧୧୭
ପ୍ରାନ୍ତେ ସେ ପୁଣ କଲ୍‌କିରୂପେ । ଭୂମି ଭୁଞ୍ଜନ୍ତେ ଶୂଦ୍ର ନୃପେ ॥ ୧୧୮
ଅଧର୍ମବନ୍ତ ସେ ରାଜାଙ୍କୁ । ମାରିଣ ସ୍ଥାପିବେ ଧର୍ମକୁ ॥ ୧୧୯
୨୩ ବହୁତ ଯଶମାନେ ଯାର । ଜଗତପତି ସେ ବିଷ୍ଣୁର ॥ ୧୨୦
ଏରୂପେ ଜନ୍ମ-କର୍ମମାନ । ବହୁତ ହୋଇଛି ବର୍ଣ୍ଣନ ॥ ୧୨୧
ସେ କୃଷ୍ଣଚରଣଅମ୍ବୁଜ । ଚିନ୍ତଇ[୧] ଦୀନବନ୍ଧୁ ଦ୍ୱିଜ ॥ ୧୨୨
ସୁଜନେ ନ ଧର ମୋ ଦୋଷ । ଶୁଣି ଏ ଗୀତ ଲଭ ତୋଷ ॥ ୧୨୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀନିମିଜାୟନ୍ତେୟୋପାଖ୍ୟାନେ
ଭଗବଦବତାର ବର୍ଣ୍ଣନଂ ନାମ ଚତୁର୍ଥୋଽଧ୍ୟାୟଃ ।

## ପଞ୍ଚମ ଅଧ୍ୟାୟ

ପଞ୍ଚମେ ଭକ୍ତିହୀନାନାଂ କା ନିଷ୍ଠା କୋ ଯୁଗେ ଯୁଗେ ।
ପୂଜାବିଧିରିତି ପ୍ରଶ୍ନଦ୍ୱୟସ୍ୟୋତ୍ତରମୁଚ୍ୟତେ ॥ ୧ ॥

ଶ୍ରୀରାଜୋବାଚ

୧ କହନ୍ତି ବିଦେହରାଜନ । ହେ ଆତ୍ମଜ୍ଞାନୀ ଋଷିଜନ ॥ ୧
ପ୍ରାୟଶଃ ନ କରି ଭକ୍ତିକି । ଯେ ନ ଭଜନ୍ତି ଶ୍ରୀହରିଙ୍କି ॥ ୨
ଜାଣି ନ ଥାନ୍ତି ଆତ୍ମତତ୍ତ୍ୱ । କାମ ହିଁ ନୋହିଥାଇ ଶାନ୍ତ ॥ ୩
ଏରୂପେ ଯେତେଜନ ଛନ୍ତି । କହ ତାଙ୍କର କଉଁ ଗତି ॥ ୪

ଶ୍ରୀଚମସ ଉବାଚ

୨ ଚମସ କହୁଛନ୍ତି ପୁଣ । ଆହେ ରାଜନ ଏବେ ଶୁଣ ॥ ୫
ପୁରୁଷମୁଖରୁ ବ୍ରାହ୍ମଣ । ଜନ୍ମିଲେ ଘେନି ସତ୍ତ୍ୱଗୁଣ ॥ ୬
ବାହୁରୁ ସତ୍ତ୍ୱରଜତୁଲେ[୨] । କ୍ଷତ୍ରିୟମାନେ ସମ୍ଭବିଲେ ॥ ୭
ଘେନିଣ ରଜତମ ଗୁଣ । ଉରୁରୁ ବୈଶ୍ୟ ହେଲେ ପୁଣ ॥ ୮
ପାଦରୁ ତମଗୁଣତୁଲେ । ଶୂଦ୍ରମାନେଟି ଉପୁଜିଲେ ॥ ୯
ଏରୂପେ ଆଶ୍ରମସହିତ । ଏ ଚାରିବର୍ଣ୍ଣ ହେଲେ ଜାତ ॥ ୧୦
୩ ଏ ଚାରି ବର୍ଣ୍ଣଙ୍କ ମଧ୍ୟରେ । ଅଜ୍ଞ ଅଟନ୍ତି ଯଉଁ ନରେ ॥ ୧୧
ଯହୁଁ ଆପଣେ ହେଲେ ଜାତ । ସେ ଈଶ୍ୱରଙ୍କୁ ଯେ ସାକ୍ଷାତ ॥ ୧୨

୧. ଭଜଇ । ୨. ସହ ।

ଭଜନ୍ତି ନାହିଁ ଅବା ପୁଣ । ଅବଜ୍ଞା କରନ୍ତି ଜାଣିଣ ॥ ୧୩
ସ୍ୱବର୍ଣ୍ଣାଶ୍ରମରୁ ସେ ନରେ । ପଡ଼ନ୍ତି ଯାଇ ନରକରେ ॥ ୧୪
୪ ହରିକଥାକୁ ଯେଉଁ ନର । ନ ଶୁଣି କରିଥାନ୍ତି ଦୂର ॥ ୧୫
ସେ ହରିକୀର୍ତ୍ତନକୁ ନିତି । ଯେ ପୁଣି ଦୂର କରିଥାନ୍ତି ॥ ୧୬
ଶୂଦ୍ରାଦି ନାରୀମାନେ ଯେତେ । ଏ ରୂପେ ଅଛନ୍ତି ଜଗତେ ॥ ୧୭
ତାହାଙ୍କୁ ତୁମ୍ଭ ପରା ଜନ । କରନ୍ତି ଅନୁଗ୍ରହମାନ ॥ ୧୮
୫ ବିପ୍ର-କ୍ଷତ୍ରିୟ-ବୈଶ୍ୟମାନେ । ସୁଜନ୍ମେ ବେଦ-ଅଧ୍ୟୟନେ ॥ ୧୯
ହରିର ପାଦନିକଟକୁ । ଯୋଗ୍ୟ ହେଲେ ହେଁ ଲଭିବାକୁ ॥ ୨୦
ବେଦାର୍ଥବାଦେ ମୋହ ହୋଇ । କର୍ମଫଳରେ ଥାନ୍ତି ରହି ॥ ୨୧
୬ କର୍ମକାଣ୍ଡରେ ରହି ନିତି । ମୋକ୍ଷ ହେବାକୁ ନ ଇଚ୍ଛନ୍ତି ॥ ୨୨
ସ୍ୱଭାବେ ମୂର୍ଖଭାବ କରି । ନମ୍ର ହୋଇଣ ନ ପଚାରି ॥ ୨୩
ଆମ୍ଭେ ପଣ୍ଡିତ ଜନ ଅତି । ଏ ଅଭିମାନ କରିଥାନ୍ତି ॥ ୨୪
ଯାଗାଦି କରି ରହି ସ୍ୱର୍ଗେ । ଅପ୍‌ସରାମାନଙ୍କର ସଙ୍ଗେ ॥ ୨୫
ବିହାର କରିବା ନିତ୍ୟରେ । ଏ ରମ୍ୟ ବେଦବାକ୍ୟଙ୍କରେ ॥ ୨୬
ମୋହିତ ହୋଇ ପ୍ରତିଦିନ । କହନ୍ତି ଏ ଚାଟୁବଚନ ॥ ୨୭
୭ ରଜୋଗୁଣରେ ଥାନ୍ତି ପୂରି । ମାରଣ କର୍ମ ମନେ କରି ॥ ୨୮
କାମୁକ ଦାମ୍ଭିକ ସ୍ୱରୂପ । କରନ୍ତି ସର୍ପପ୍ରାୟେ କୋପ ॥ ୨୯
ସେ ଅଭିମାନୀ ପାପମତି । ଅଚ୍ୟୁତଭକ୍ତଙ୍କୁ ହସନ୍ତି ॥ ୩୦
୮ ମୈଥୁନମାତ୍ର ସୁଖ ଯହିଁ । ସେ ଗୃହମାନଙ୍କରେ ରହି ॥ ୩୧
ନାରୀଙ୍କି କରି ଉପାସନ । ବହୁତ ମନୋରଥମାନ ॥ ୩୨
ବିଚାର କରୁଥାନ୍ତି ମନେ । ପରସ୍ପରରେ ପ୍ରତିଦିନେ ॥ ୩୩
ଅନ୍ନବିଧାନ ଦକ୍ଷିଣାକୁ । ନ ଦେଇ କରନ୍ତି ଯଜ୍ଞକୁ ॥ ୩୪
ଜୀବିକା ଅର୍ଥରେ କେବଳ । ନାଶ କରନ୍ତି ପଶୁକୁଳ ॥ ୩୫
ପଶୁହିଂସାରେ ଦୋଷ ଯେତେ । ତା' ନ ଜାଣନ୍ତି କଦାଚିତେ ॥ ୩୬
୯ ଅତି ସଂପତ୍ତି ଐଶ୍ୱର୍ଯ୍ୟରେ । ଉତ୍ତମକୁଳ-ଉତ୍ପତ୍ତିରେ ॥ ୩୭
ବିଦ୍ୟାରେ ତ୍ୟାଗରେ ରୂପରେ । ବଳରେ କର୍ମମାନଙ୍କରେ ॥ ୩୮
ଯେବଣ ଗର୍ବ ଉପୁଜନ୍ତି । ତେଣେ ଯାଙ୍କର ଅନ୍ଧମତି ॥ ୩୯
ସେ ଲୋକେ ଈଶ୍ୱର ସହିତେ । ଶ୍ରୀହରିଭକ୍ତମାନ ଯେତେ ॥ ୪୦
ତାହାଙ୍କୁ ନିନ୍ଦନ୍ତି କେବଳ । ଯେଣୁ ସେମାନେ ଅତି ଖଳ ॥ ୪୧
୧୦ ସମସ୍ତ ପ୍ରାଣିଙ୍କର ଠାରେ । ଆକାଶପ୍ରାୟେ ଯେ ନିତ୍ୟରେ ॥ ୪୨
ଅଛନ୍ତି ଆତ୍ମାରୂପେ ରହି । ଈଶ୍ୱର ରୂପେ ଛନ୍ତି ସେହି ॥ ୪୩
ଯେ ପ୍ରତିପାଦ୍ୟ ବେଦବାକ୍ୟେ । ତାକୁ ନ ଶୁଣି ମୂର୍ଖଲୋକେ ॥ ୪୪
ବହୁତ ମନୋରଥମାନ । କହି ବଞ୍ଚନ୍ତି ପ୍ରତିଦିନ ॥ ୪୫

୧୧ ମୈଥୁନ, ଆମିଷ ଯେ ବେନି । ମଦ୍ୟସେବାକୁ ମିଶି ତିନି ॥ ୪୬
ସଂସାରେ ପ୍ରାଣିମାନଙ୍କର । ଏଥିରେ ଥିଲେହେଁ ପ୍ରଚାର ॥ ୪୭
ଏଥିରେ ପ୍ରବର୍ତ୍ତିବା ପାଇଁ । ବେଦର ନିତ୍ୟବିଧି ନାହିଁ ॥ ୪୮
ବିବାହେ କରିବ ମୈଥୁନ । ଯଜ୍ଞରେ ଆମିଷ ଭୋଜନ ॥ ୪୯
ସୌତ୍ରାମଣିରେ ମଦ୍ୟସେବା । କରିବ ଏ ନିୟମେ ଅବା ॥ ୫୦
ନିବୃତ୍ତି-ଉଦ୍ଦେଶ୍ୟରେ ପୁଣ । ଏ ତିନି ବ୍ୟବସ୍ଥାବିଧାନ ॥ ୫୧
୧୨ ଧର୍ମ ଯହିଁରେ ଏକ ଫଳ । ଜ୍ଞାନ ବିଜ୍ଞାନ ହିଁ କେବଳ ॥ ୫୨
ମୋକ୍ଷକୁ ଦିଅଇ ଯେ ପୁଣ । ଏମନ୍ତ ଧନକୁ ଅର୍ଜିଣ ॥ ୫୩
ଗୃହରେ ନେଇ ରଖିଥାନ୍ତି । କିଛି ହିଁ ତ୍ୟାଗ ନ କରନ୍ତି ॥ ୫୪
ଘୋର ମୃତ୍ୟୁ ଯେ ଅଛି ଦେହେ । ତାକୁ ନ ଦେଖନ୍ତି କେବେହେଁ ॥ ୫୫
୧୩ ପ୍ରତ୍ୟକ୍ଷେ ନାହିଁ ମଦ୍ୟପାନ । ଆଘ୍ରାଣ ଭକ୍ଷଣସମାନ ॥ ୫୬
ସେ ରୂପେ ପଶୁମାରଣ ହିଁ । ଦେବତା-ଅର୍ଥେ ହିଂସା ନୋହି ॥ ୫୭
ମୈଥୁନ ପୁତ୍ରନିମିତ୍ତରେ । ଦୋଷ ନୁହଇ ଏ ରୂପରେ ॥ ୫୮
ସୁଖାର୍ଥେ କଲେ ଦୋଷ ପୁଣ । ବିଶୁଦ୍ଧ ଧର୍ମଟି ଏ ଜାଣ ॥ ୫୯
ଏ ନିଜ ଧର୍ମକୁ ସଂସାରେ । ଜାଣନ୍ତି ନାହିଁ ଅଜ୍ଞ ନରେ ॥ ୬୦
୧୪ ଏହା ନ ଜାଣି ଅଜ୍ଞଜନ । କରି ପଣ୍ଡିତ ଅଭିମାନ ॥ ୬୧
ନିଃଶଙ୍କ ହୋଇଣ କେବଳ । ନାଶ କରନ୍ତି ପଶୁକୁଳ ॥ ୬୨
ପଶୁଏ ପରଲୋକେ ପୁଣ । ତାହାଙ୍କୁ କରନ୍ତି ଭକ୍ଷଣ ॥ ୬୩
୧୫ ଆତ୍ମସ୍ୱରୂପୀ ଯେ ଶ୍ରୀହରି । ସମସ୍ତ ଦେହେ ଛନ୍ତି ପୂରି ॥ ୬୪
ତାହାଙ୍କୁ ପରକାୟଠାରେ । ଦ୍ୱେଷ କରନ୍ତି ଯଉଁ ନରେ ॥ ୬୫
ନିଜ ଦେହରେ ଅବିରତେ । ପୁତ୍ରକଳତ୍ରାଦିସହିତେ ॥ ୬୬
ସ୍ନେହ କରନ୍ତେ ପ୍ରତିଦିନ । ନରକେ ହୁଅନ୍ତି ପତନ ॥ ୬୭
୧୬ ଯେ ତତ୍ତ୍ୱଜ୍ଞାନ ନ ଜାଣନ୍ତି । ମୂଢ଼ଭାବକୁ ତ୍ୟଜିଥାନ୍ତି ॥ ୬୮
ଧର୍ମାର୍ଥକାମେ ଆସକତ । କ୍ଷଣେହେଁ ନୁହନ୍ତି ଯେ ଶାନ୍ତ ॥ ୬୯
ନିନ୍ଦିତ ଅଟନ୍ତି ସେ ଲୋକେ । ଆପଣେ ପଡ଼ନ୍ତି ନରକେ ॥ ୭୦
୧୭ ଏତେକ ଆତ୍ମଘାତୀ ନରେ । ଶାନ୍ତ ନୁହନ୍ତି ସ୍ୱଭାବରେ ॥ ୭୧
ଅଜ୍ଞାନକର୍ମେ ପ୍ରତିଦିନ । କରନ୍ତି ଜ୍ଞାନ ଅଭିମାନ ॥ ୭୨
କରନ୍ତି ଯେତେ ମନୋରଥ । କାଳ କରଇ ତାହା ବ୍ୟର୍ଥ ॥ ୭୩
କର୍ତ୍ତବ୍ୟ କାର୍ଯ୍ୟ ନ କରିଣ । ପଡ଼ନ୍ତି ନରକେ ଯାଇଣ ॥ ୭୪
୧୮ ଜଗତେ ଛନ୍ତି ଯେତେ ନରେ । ବିମୁଖ କୃଷ୍ଣଭଜନରେ ॥ ୭୫
ଈଶ୍ୱରମାୟାରେ ରଚିତ । ଗୃହ-ସଂପତ୍ତି-ମିତ୍ର-ସୁତ ॥ ୭୬
ଏ ସର୍ବ ସଂପଦମାନଙ୍କୁ । ଇଚ୍ଛା ନ ଥିଲେ ଛାଡ଼ିବାକୁ ॥ ୭୭
ଏମାନ ଛାଡ଼ି ନରକରେ । ପଡ଼ନ୍ତି ଯାଇ ବଳାତ୍କାରେ ॥ ୭୮

ଶ୍ରୀରାଜୋବାଚ

| | | | | |
|---|---|---|---|---|
| ୧୯ | ଋଷିଙ୍କି କହନ୍ତି ରାଜନ | । କେଉଁ କାଳରେ ଭଗବାନ | ॥ | ୭୯ |
| | କି ବର୍ଣ୍ଣ କେମନ୍ତ ଆକାର | । କେଉଁ ନାମରେ ତାଙ୍କୁ ନର | ॥ | ୮୦ |
| | ପୂଜା କରନ୍ତି କି ବିଧିରେ | । ଏ କଥା କହ ମୋ ଆଗରେ | ॥ | ୮୧ |

ଶ୍ରୀକରଭାଜନ ଉବାଚ

| | | | | |
|---|---|---|---|---|
| ୨୦ | ପ୍ରଶ୍ନ କରନ୍ତେ ନରପତି | । କରଭାଜନ କହୁଛନ୍ତି | ॥ | ୮୨ |
| | ସତ୍ୟ ଦ୍ୱାପର ତ୍ରେତା କଳି | । ଏ ଚାରିଯୁଗେ ବନମାଳୀ | ॥ | ୮୩ |
| | ନାନାସ୍ୱରୂପବର୍ଣ୍ଣମାନ | । କଲେ ବହୁତ ନାମମାନ | ॥ | ୮୪ |
| | ନାନାବିଧିରେ ତାଙ୍କୁ ନରେ | । ପୂଜା କରନ୍ତି ଏ ସଂସାରେ | ॥ | ୮୫ |
| ୨୧ | ସତ୍ୟଯୁଗରେ ଭଗବାନ | । ଜଟିଳ ବଲ୍କଳବସନ | ॥ | ୮୬ |
| | ଶୁକ୍ଳ ଅଟଇ ଦେହକାନ୍ତି | । ଚାରିଭୁଜରେ ଶୋଭା ପାନ୍ତି | ॥ | ୮୭ |
| | ଯଜ୍ଞୋପବୀତ କୃଷ୍ଣାଜିନ | । ଯେ ଦଣ୍ଡ କମଣ୍ଡଳୁ ଆନ | ॥ | ୮୮ |
| | ଅକ୍ଷସୂତ୍ର ହିଁ ଧରି କରି | । ଦିଶନ୍ତି ଯେହ୍ନେ ବ୍ରହ୍ମଚାରୀ | ॥ | ୮୯ |
| ୨୨ | ମନୁଷ୍ୟମାନେ ସେ କାଳରେ | । ସମ ସୁହୃଦ ସବୁଠାରେ | ॥ | ୯୦ |
| | ବିରୋଧ ଛାଡ଼ି ଶାନ୍ତମତି | । ଶମ-ଦମରେ ହେଁ ସେ ନିତି | ॥ | ୯୧ |
| | ଧ୍ୟାନ କରିଣ ସେ ଦେବଙ୍କୁ | । ଆନନ୍ଦେ କରନ୍ତି ପୂଜାକୁ | ॥ | ୯୨ |
| ୨୩ | ସୁପର୍ଣ୍ଣ, ବୈକୁଣ୍ଠ, ଈଶ୍ୱର | । ଅମଳ ଧର୍ମ ଯୋଗେଶ୍ୱର | ॥ | ୯୩ |
| | ହଂସ ପୁରୁଷ ଅବ୍ୟକତ | । ପରମ-ଆତ୍ମା ଯେ ବିଦିତ | ॥ | ୯୪ |
| | ଏ ନାମମାନଙ୍କରେ ଜନ | । ସେ ଯୁଗେ କରନ୍ତି ଗାୟନ | ॥ | ୯୫ |
| ୨୪ | ତ୍ରେତାଯୁଗରେ ସେ ଶ୍ରୀହରି | । ଆରକ୍ତବର୍ଣ୍ଣ ଭୁଜ ଚାରି | ॥ | ୯୬ |
| | ଯଜ୍ଞାଙ୍ଗମୂର୍ତ୍ତି ତ୍ରିମେଖଳ | । ପିଙ୍ଗଳବର୍ଣ୍ଣ କେଶକୁଳ | ॥ | ୯୭ |
| | ସ୍ରୁକ ସ୍ରୁବାଦି ପାତ୍ରମାନ | । ଧରିଥାନ୍ତି ସେ ହେ ରାଜନ | ॥ | ୯୮ |
| ୨୫ | ଯେ ହରି ସର୍ବଦେବମୟ | । ତାଙ୍କୁ ସେକାଳେ ଅତିଶୟ | ॥ | ୯୯ |
| | ଧର୍ମିଷ୍ଠ ବେଦବାଦୀ ନରେ | । ପୂଜନ୍ତି ବେଦୋକ୍ତ କର୍ମରେ | ॥ | ୧୦୦ |
| ୨୬ | ଯେ ପୃଶ୍ନିଗର୍ଭ ଯଜ୍ଞ ବିଷ୍ଣୁ | । ଜୟନ୍ତ ସର୍ବଦେବ ଜିଷ୍ଣୁ | ॥ | ୧୦୧ |
| | ଉରୁଗାୟ ଓ ଉରୁକ୍ରମ | । ଯେ ପୁଣ ବୃଷାକପି ନାମ | ॥ | ୧୦୨ |
| | ଏ ନାମମାନଙ୍କରେ ଜନ | । ତ୍ରେତାରେ କରନ୍ତି ଗାୟନ | ॥ | ୧୦୩ |
| ୨୭ | ଦ୍ୱାପରେ ଶ୍ୟାମ ଭଗବାନ | । ପୀତବସନ ପରିଧାନ | ॥ | ୧୦୪ |
| | ଶଙ୍ଖଚକ୍ରାଦି ଆୟୁଧରେ | । ଲକ୍ଷିତ ଶ୍ରୀବତ୍ସ ଆଦିରେ | ॥ | ୧୦୫ |
| | ଧ୍ୱଜ ପଦ୍ମାଦି ଅଷ୍ଟାଦଶ | । ଚିହ୍ନରେ ଅଟନ୍ତି ପ୍ରକାଶ | ॥ | ୧୦୬ |
| ୨୮ | ଛତ୍ର ଚାମର ଆଦିମାନ | । ଯେ ମହାରାଜ ଚିହ୍ନ ଆନ | ॥ | ୧୦୭ |
| | ତେଣେ ଲକ୍ଷିତ ଯେ ଶ୍ରୀହରି | । ତାଙ୍କୁ ଜାଣିମା ଇଚ୍ଛା କରି | ॥ | ୧୦୮ |

ହେ ନୃପ ଏ ରୂପରେ ନରେ । ପୂଜନ୍ତି ବେଦ-ଆଗମରେ ॥ ୧୦୯
୨୯ ତୁମ୍ଭର ବାସୁଦେବ ନାମ । ତୁମ୍ଭଙ୍କୁ କରୁଛୁଁ ପ୍ରଣାମ ॥ ୧୧୦
ସଙ୍କରଷଣ ଅନିରୁଦ୍ଧ । ପ୍ରଦ୍ୟୁମ୍ନରୂପେ ତୁମ୍ଭେ ସିଦ୍ଧ ॥ ୧୧୧
ତୁମ୍ଭେ ଯେ ଅଟ ଭଗବାନ । ତୁମ୍ଭଙ୍କୁ କରୁଛୁଁ ବନ୍ଦନ ॥ ୧୧୨
୩୦ ଶ୍ରୀନାରାୟଣ ଋଷିବର । ମହାତ୍ମା ପୁରୁଷ ଈଶ୍ୱର ॥ ୧୧୩
ସର୍ବପ୍ରାଣିଙ୍କ ଆତ୍ମାରୂପୀ । ବିଶ୍ୱ-ଈଶ୍ୱର ବିଶ୍ୱବ୍ୟାପୀ ॥ ୧୧୪
ତୁମ୍ଭଙ୍କୁ ଆମ୍ଭେ ସର୍ବନର । ନିତ୍ୟେ କରୁଛୁଁ ନମସ୍କାର ॥ ୧୧୫
୩୧ ଏ ରୂପେ ଦ୍ୱାପରଯୁଗରେ । ଜଗତ-ଈଶ୍ୱରଙ୍କୁ ନରେ ॥ ୧୧୬
ସ୍ତୁତି କରନ୍ତି ପ୍ରତିଦିନ[୧] । ଶୁଣିମା ଏବେ ହେ ରାଜନ ॥ ୧୧୭
ନାନା ତନ୍ତ୍ରବିଧାନେ ନରେ । ଭଜନ କରନ୍ତି କଳିରେ ॥ ୧୧୮
୩୨ ଯେ କୃଷ୍ଣବର୍ଣ୍ଣଟି କାନ୍ତିରେ । ସଂଯୁତ କୌସ୍ତୁଭ ଆଦିରେ ॥ ୧୧୯
ଉତ୍ତମ ଅଙ୍ଗେ[୨] ଶୋଭାବନ । ଚକ୍ରାଦି ନିଜାୟୁଧମାନ ॥ ୧୨୦
ଯେ ଯୁତ ସୁନନ୍ଦ ଆଦିରେ । ସେ ଶ୍ରୀକୃଷ୍ଣଙ୍କୁ ଏ କଳିରେ ॥ ୧୨୧
ନାମ କୀର୍ତ୍ତନ ଅର୍ଚ୍ଚନରେ । ଉତ୍ତମସ୍ତୁତିମାନଙ୍କରେ ॥ ୧୨୨
ଉତ୍ତମବୁଦ୍ଧି ସାଧୁ ଜନ । ପୂଜା କରନ୍ତି ହେ ରାଜନ ॥ ୧୨୩
୩୩ ସର୍ବଦା କରି ଯାକୁ ଧ୍ୟାନ । ଯେ ପରାଭବବିନାଶନ ॥ ୧୨୪
ଅଭୀଷ୍ଟ କରଇ ପ୍ରଦାନ । ଯେ ସର୍ବ ତୀର୍ଥଙ୍କର ସ୍ଥାନ ॥ ୧୨୫
ଶିବ ବିରିଞ୍ଚି ସ୍ତୁତି ଭଣି । ଶରଣରକ୍ଷଣ ଯେ ପୁଣି ॥ ୧୨୬
ଯେ ଭୃତ୍ୟଆର୍ତ୍ତି କରେ ହତ । ଯେ ଭବସିନ୍ଧୁକୁ ବୋଇତ ॥ ୧୨୭
ଆହେ ପ୍ରଣତଜନପାଳ । ହେ ମହାପୁରୁଷ କେବଳ ॥ ୧୨୮
ସେ ତୁମ୍ଭ ଚରଣନଳିନ । ନିତ୍ୟେ ମୁଁ କରୁଛି ବନ୍ଦନ ॥ ୧୨୯
୩୪ ଦେବତାମାନେ ଯା' ବାଞ୍ଛନ୍ତି । ଦୁସ୍ତ୍ୟଜ ସେ ରାଜସଂପତ୍ତି ॥ ୧୩୦
ଛାଡ଼ି ଯେ ପିତାବଚନରେ । ପ୍ରୟାଣ କଲେ ଅରଣ୍ୟରେ ॥ ୧୩୧
ସୀତା ଯେ କରନ୍ତେ ପ୍ରାର୍ଥିତ । ମାୟାମୃଗକୁ ଅନୁଗତ ॥ ୧୩୨
ଆହେ ଶ୍ରୀରାମ ଧର୍ମବନ୍ତ । ହେ ମହାପୁରୁଷ ସନ୍ତତ ॥ ୧୩୩
ସେ ତୁମ୍ଭଚରଣନଳିନ । ନିତ୍ୟେ ମୁଁ କରୁଛି ବନ୍ଦନ ॥ ୧୩୪
୩୫ ଯେ ସର୍ବମଙ୍ଗଳଭାଜନ । ସେ ନରହରି ଭଗବାନ ॥ ୧୩୫
ତାଙ୍କୁ ଏରୂପେ ହେ ରାଜନ । ସେ ସେହି ଯୁଗବାସୀ ଜନ ॥ ୧୩୬
ନାମରେ ରୂପ ଅନୁସାରେ । ପୂଜନ୍ତି ସେ ସେହି ଯୁଗରେ ॥ ୧୩୭
୩୬ କଳିର ଗୁଣ ଯେ ଜାଣନ୍ତି । ସାରଭାଗକୁ ଭଜିଥାନ୍ତି ॥ ୧୩୮
କଳିକି ସେ ପଣ୍ଡିତ ନରେ । ପ୍ରଶଂସା କରନ୍ତି ଯହିଁରେ ॥ ୧୩୯

୧. ସର୍ବଜନ। ୨. ହୃଦୟାଦିରେ।

| | | | | |
|---|---|---|---|---|
| | କୀର୍ତ୍ତନମାତ୍ରକରେ ସର୍ବ | । କାମନା ଲଭନ୍ତି ମାନବ | ॥ | ୧୪୦ |
| ୩୭ | ପ୍ରାଣିଏ ଜନ୍ମମରଣରେ | । ଭ୍ରମଣ କରନ୍ତି ସଂସାରେ | ॥ | ୧୪୧ |
| | ଏ ନାମକୀର୍ତ୍ତନୁଁ ତାଙ୍କର | । ପରମ ଲାଭ ହୋଏ ସାର | ॥ | ୧୪୨ |
| | ଯେଣୁ ପରମ ଶାନ୍ତି ହୋଇ | । ସଂସାରବନ୍ଧ ନିବର୍ତ୍ତଇ | ॥ | ୧୪୩ |
| ୩୮ | ସତ୍ୟରେ ତ୍ରେତାରେ ଦ୍ୱାପରେ | । ହେ ନୃପ ଥିଲେ ଯେତେ ନରେ | ॥ | ୧୪୪ |
| | କଳିରେ ଜନ୍ମ ସେ ବାଞ୍ଛନ୍ତି | । ଯେଉଁ ଯୁଗରେ ପୁଣ ନିତି | ॥ | ୧୪୫ |
| | କୀର୍ତ୍ତନମାତ୍ରେ ଭଗବାନ | । ମୋକ୍ଷକୁ କରନ୍ତି ପ୍ରଦାନ | ॥ | ୧୪୬ |
| ୩୯ | ହେ ନୃପ ଦ୍ରବିଡ଼ ଦେଶରେ | । କେହୁଣି କେହୁଣି ସ୍ଥାନରେ | ॥ | ୧୪୭ |
| ୪୦ | କଳିରେ ହରିପରାୟଣ | । ହେବେ ବହୁତ ଜନେ ପୁଣ | ॥ | ୧୪୮ |
| | ଯେଉଁ ଦେଶରେ ତାମ୍ରପର୍ଣ୍ଣୀ | । ସେ କୃତମାଳା ପୟସ୍ୱିନୀ | ॥ | ୧୪୯ |
| | କାବେରୀ ମହାପୁଣ୍ୟବତୀ | । ପ୍ରତୀଚୀ ମହାନଦୀ ଛନ୍ତି | ॥ | ୧୫୦ |
| | ଏ ନଦୀଙ୍କର ଜଳପାନ | । ହେ ନୃପ କରନ୍ତି ଯେ ଜନ | ॥ | ୧୫୧ |
| | ଯେ ଭଗବାନ ବାସୁଦେବ | । ତାହାଙ୍କ ଠାରେ ଭକ୍ତିଭାବ | ॥ | ୧୫୨ |
| | ପ୍ରାୟଶଃ ନିଶ୍ଚେ ସେ ଲଭନ୍ତି | । ମନ ନିର୍ମଳ କରି ନିତି | ॥ | ୧୫୩ |
| ୪୧ | ଦେବତା-ଋଷି-ପିତୃଙ୍କର | । ଭୂତ ଆବର ପୋଷ୍ୟ ନର | ॥ | ୧୫୪ |
| | ଏମାନଙ୍କର ସେ ଲୋକ ହିଁ | । ଋଣୀ କିଙ୍କର ଦୁଇ ନୋହି | ॥ | ୧୫୫ |
| | ଯେ ଭେଦବୁଦ୍ଧି[୧] ଛାଡ଼ି କରି | । ଶରଣରକ୍ଷଣ ଯେ ହରି | ॥ | ୧୫୬ |
| | ସର୍ବାତ୍ମଭାବେ ତାଙ୍କୁ ପୁଣ | । ହେ ନୃପ ପଶଇ ଶରଣ | ॥ | ୧୫୭ |
| ୪୨ | ପରମ ଈଶ୍ୱର ଯେ ହରି | । ତାଙ୍କୁ ଅନନ୍ୟ ଭାବ କରି | ॥ | ୧୫୮ |
| | ତା' ପାଦମୂଳକୁ ଯେ ଜନ | । ନିତ୍ୟରେ କରଇ ଭଜନ | ॥ | ୧୫୯ |
| | ସେ ଭକ୍ତର ହିଁ କଦାଚିତେ | । ବିକର୍ମ ଉପୁଜନ୍ତେ ଚିତ୍ତେ | ॥ | ୧୬୦ |
| | ହୃଦରେ ରହି ଭଗବାନ | । ତା' ସର୍ବ କରନ୍ତି ନାଶନ | ॥ | ୧୬୧ |

ଶ୍ରୀନାରଦ ଉବାଚ

| | | | | |
|---|---|---|---|---|
| ୪୩ | ବ୍ରହ୍ମାଙ୍କ ସୁତ କହୁଛନ୍ତି | । ହେ ବସୁଦେବ ମହାମତି | ॥ | ୧୬୨ |
| | ଏ ରୂପେ ମିଥିଳାରାଜନ | । ଏ ଭାଗବତ ଧର୍ମମାନ | ॥ | ୧୬୩ |
| | ଶୁଣି ଲଭିଲେ ସେ ପ୍ରୀତିକି | । ଜୟନ୍ତୀତନୟ ଋଷିଙ୍କି | ॥ | ୧୬୪ |
| | ଉପାଧ୍ୟାୟଙ୍କ ସହିତରେ | । ପୂଜନ କଲେ ସେ କାଳରେ | ॥ | ୧୬୫ |
| ୪୪ | ଦେଖନ୍ତେ ତହିଁ ସର୍ବ ନରେ | । ସେ ସିଦ୍ଧ ନବ ଯୋଗେଶ୍ୱରେ | ॥ | ୧୬୬ |
| | ତଦନ୍ତେ ହେଲେ ଅନ୍ତର୍ଧାନ | । ପୁଣି ସେ ମିଥିଳାରାଜନ | ॥ | ୧୬୭ |
| | ସେ ଧର୍ମମାନ ଆଚରିଲେ | । ପରମ ଗତିକି ଲଭିଲେ | ॥ | ୧୬୮ |
| ୪୫ | ହେ ମହାଭାଗ ବସୁଦେବ | । ଏ ଭାଗବତ ଧର୍ମ ସର୍ବ | ॥ | ୧୬୯ |

୧. କର୍ତ୍ତୃତ୍ୱାଭିମାନ ।

| | | | | | |
|---|---|---|---|---|---|
| | ଶ୍ରଦ୍ଧାରେ କଲ ଯା' ଶ୍ରବଣ | । | ଏବେ ତା' ନିଃସଙ୍ଗ ହୋଇଣ | ॥ | ୧୭୦ |
| | ଯେବେ କରିବ ଆଚରଣ | । | ଲଭିବ ପରମ କାରଣ | ॥ | ୧୭୧ |
| ୪୬ | ଏ ତୁମ୍ଭ ପତିପତ୍ନୀଙ୍କର | । | ଯଶରେ ପୂରିଲା ସଂସାର | ॥ | ୧୭୨ |
| | ଶ୍ରୀହରି ଈଶ୍ୱର ସାକ୍ଷାତ | । | ଯେଣୁ ହୋଇଲେ ତୁମ୍ଭ ସୁତ | ॥ | ୧୭୩ |
| ୪୭ | ଦର୍ଶନ-ବାକ୍ୟ-ଆଲିଙ୍ଗନେ | । | ଶୟନ-ଆସନ-ଭୋଜନେ | ॥ | ୧୭୪ |
| | ପୁତ୍ରସ୍ନେହକୁ କୃଷ୍ଣଠାରେ | । | ଯା' ତୁମ୍ଭେ କଲ ଏ ସଂସାରେ | ॥ | ୧୭୫ |
| | ଏଣୁ ଆତ୍ମାକୁ ପ୍ରତିଦିନ | । | ପବିତ୍ର କଲ ବେନି ଜନ | ॥ | ୧୭୬ |
| ୪୮ | ପୌଣ୍ଡ୍ରକ ଶାଲ୍ୱ ଶିଶୁପାଳ | । | ଏ ଆଦି ଯେତେ ମହୀପାଳ | ॥ | ୧୭୭ |
| | କୃଷ୍ଣଙ୍କୁ ବଇରି ଭାବରେ | । | ଶୟନ-ଆସନ ଆଦିରେ | ॥ | ୧୭୮ |
| | ଧ୍ୟାନ କରନ୍ତେ ନିରନ୍ତର | । | ଲଭିଲେ କୃଷ୍ଣଙ୍କୁ ସତ୍ୱର | ॥ | ୧୭୯ |
| | ଗତି-ବିଳାସ-ବିଲୋକନ | । | ଏ ଆଦି ଯେତେ ଚେଷ୍ଟାମାନ | ॥ | ୧୮୦ |
| | ଯେ ନିତ୍ୟେ ଭାବନା କରନ୍ତି | । | ସାରୂପ୍ୟ ମୁକ୍ତି ସେ ଲଭନ୍ତି | ॥ | ୧୮୧ |
| | ସେ କୃଷ୍ଣେ ଆସକ୍ତ ଯେ ଅବା | । | ତାହାଙ୍କ ମୁକ୍ତି କି କହିବା | ॥ | ୧୮୨ |
| ୪୯ | ଯେ ଆତ୍ମା ସର୍ବ ପ୍ରାଣୀଙ୍କର | । | ଅବ୍ୟୟ ପରମ ଈଶ୍ୱର | ॥ | ୧୮୩ |
| | ମାୟାମନୁଷ୍ୟଭାବେ ଅତି | । | ଐଶ୍ୱର୍ଯ୍ୟ ଗୁପ୍ତ କରିଛନ୍ତି | ॥ | ୧୮୪ |
| | ସେ କୃଷ୍ଣଠାରେ ପୁତ୍ରମତି | । | ନ କର ତୁମ୍ଭେ ପତ୍ନୀପତି | ॥ | ୧୮୫ |
| ୫୦ | ଭୂମିର ଭାରପ୍ରାୟେ ନିତ୍ୟେ | । | ଅସୁରଭାବ ରାଜା ଯେତେ | ॥ | ୧୮୬ |
| | ତାହାଙ୍କ ନାଶ ମୋକ୍ଷ ଅର୍ଥେ | । | ସାଧୁଙ୍କ ପାଳନ ନିମନ୍ତେ | ॥ | ୧୮୭ |
| | କଲେ ଏ କୃଷ୍ଣ ଅବତାର | । | ଯଶରେ ପୂରିଲା ସଂସାର | ॥ | ୧୮୮ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୫୧ | କହନ୍ତି ବ୍ୟାସଙ୍କ ଆତ୍ମଜ | । | ଶୁଣ ପରୀକ୍ଷ ମହାରାଜ | ॥ | ୧୮୯ |
| | ସେ ବସୁଦେବ ମହାମତି | । | ଦେବକୀ ଅତି ଭାଗ୍ୟବତୀ | ॥ | ୧୯୦ |
| | ଶ୍ରବଣ କରି ସେ ଚରିତ | । | ଲଭିଣ ବିସ୍ମୟ ଅତ୍ୟନ୍ତ | ॥ | ୧୯୧ |
| | ଯେ ମୋହ ଥିଲା ଆପଣାର | । | ତାହା ସେ କାଳେ କଲେ ଦୂର | ॥ | ୧୯୨ |
| ୫୨ | ଏ ପୂର୍ବକଥା ପୁଣ୍ୟ ଅତି | । | ଯେ ଶୁଣେ ହୋଇ ଶୁଦ୍ଧମତି | ॥ | ୧୯୩ |
| | ଦେହରେ ଛାଡ଼ି ସେ ଅଜ୍ଞାନ | । | ବ୍ରହ୍ମରେ ହୁଅଇ ବିଲୀନ | ॥ | ୧୯୪ |
| | ଶ୍ରୀଏକାଦଶ ଭାଗବତ | । | ଭାଷାପ୍ରବନ୍ଧେ କରି ଗୀତ | ॥ | ୧୯୫ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । | ସୁଜନେ ତୋଷ ହୁଅ ଏଣେ | ॥ | ୧୯୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଜାୟନ୍ତେୟୋପାଖ୍ୟାନଂ
ନାମ ପଞ୍ଚମୋଽଧ୍ୟାୟଃ ॥

# ଷଷ୍ଠ ଅଧ୍ୟାୟ

ଷଷ୍ଠେ ବ୍ରହ୍ମାଦିଭିଃ ସ୍ତୁତ୍ୱା ଗନ୍ତୁଂ ବିଜ୍ଞାପିତଂ ହରିମ୍ ।
ଉଦ୍ଧବଃ ପ୍ରାର୍ଥୟାମାସ ସ୍ୱଧାମ ନୟ ମାମିତି ॥ ୧

ଶ୍ରୀଶୁକ ଉବାଚ

୧ କହନ୍ତି ଶୁକ ମହାମତି । ଶୁଣ ହେ ପାଣ୍ଡୁ ପଣନାତି ॥ ୧
ବ୍ରହ୍ମା ଯେ ଏଥୁ ଅନନ୍ତରେ । ସନକାଦିଙ୍କ ସହିତରେ ॥ ୨
ଦେବଗଣଙ୍କୁ ଘେନି ସଙ୍ଗେ । ଚଳିଲେ ଦ୍ୱାରକାକୁ ବେଗେ ॥ ୩
ଯେ ଭୂତଭବ୍ୟଙ୍କ ଈଶ୍ୱର । ସେ ମହାଦେବ ହିଁ ଆବର ॥ ୪
ପ୍ରମଥଗଣଙ୍କ ସଙ୍ଗରେ । ଗମନ କଲେ ସେ କାଳରେ ॥ ୫
୨ ଇନ୍ଦ୍ର ହିଁ ଚଳିଲେ ତତ୍‌କ୍ଷଣ । ସଙ୍ଗତେ ଘେନି ବାତଗଣ ॥ ୬
ଅଶ୍ୱିନିକୁମାର ଯେ ବେନି । ଦ୍ୱାଦଶ ଆଦିତ୍ୟଙ୍କୁ ଘେନି ॥ ୭
ଅଷ୍ଟ ବସୁଏ ଋଭୁ ଯେତେ । ଅଙ୍ଗିରାମାନଙ୍କ ସଙ୍ଗତେ ॥ ୮
ଯେ ବିଶ୍ୱେଦେବାମାନେ ଦଶ । ଯେ ସାଧ୍ୟେ ରୁଦ୍ର ଏକାଦଶ ॥ ୯
ଅନ୍ୟ ଦେବତାମାନେ ଯେତେ । ଏ ସର୍ବେ ଚଳିଲେ ତୁରିତେ ॥ ୧୦
୩ ଗନ୍ଧର୍ବ ଅପ୍‌ସରା କିନ୍ନରେ । ସିଦ୍ଧ ଚାରଣ ବିଦ୍ୟାଧରେ ॥ ୧୧
୪ ନାଗ ଗୁହ୍ୟକମାନେ ପୁଣ । ଆବର ଋଷି ପିତୃଗଣ ॥ ୧୨
ଏ ସର୍ବେ ଗଲେ ଦ୍ୱାରକାକୁ । ଦେଖିବା ଅର୍ଥରେ କୃଷ୍ଣଙ୍କୁ ॥ ୧୩
ଯଉଁ ଶରୀରେ ନରହରି । ନରଲୋକର ମନୋହାରୀ ॥ ୧୪
ଯେ କରେ ସର୍ବପାପନାଶ । ସଂସାରେ ବିସ୍ତାରି ସେ ଯଶ ॥ ୧୫
ଅତିସୁନ୍ଦର ସେ ରୂପକୁ । ସର୍ବେ ଚଳିଲେ ଦେଖିବାକୁ ॥ ୧୬
୫ ଯେ ନିତ୍ୟେ ଦିଶେ ଶୋଭମାନ । ସର୍ବସଂପତ୍ତିରେ ସଂପନ୍ନ ॥ ୧୭
ସେ ଦ୍ୱାରକାରେ ଦେବଗଣେ । ପ୍ରବେଶ ହୋଇ ତତକ୍ଷଣେ ॥ ୧୮
ଅଦ୍ଭୁତ ଯାଙ୍କ ଦରଶନ । କଲେ ସେ କୃଷ୍ଣଙ୍କୁ ଦର୍ଶନ ॥ ୧୯
ସେ ଦେବଗଣଙ୍କ ନୟନ । ତୃପ୍ତିକି ନ ଭଜିଲା ପୁଣ ॥ ୨୦
୬ ଯେ ଜାତ ସ୍ୱର୍ଗ-ଉଦ୍ୟାନରେ । ସେ ଦିବ୍ୟପୁଷ୍ପମାନଙ୍କରେ ॥ ୨୧
କୃଷ୍ଣଙ୍କୁ କରି ଆଚ୍ଛାଦନ । ଯହିଁ ଚିତ୍ରାର୍ଥ[୧] ପଦମାନ ॥ ୨୨
ସେ ଦିବ୍ୟ ବଚନରେ ଅତି । କୃଷ୍ଣଙ୍କୁ ଆରମ୍ଭିଲେ ସ୍ତୁତି ॥ ୨୩

ଶ୍ରୀଦେବା ଊଚୁଃ

୭ ବ୍ରହ୍ମାଦିଦେବ ଏରୂପରେ । ସ୍ତୁତି କରନ୍ତି ସେ କାଳରେ ॥ ୨୪
୮ ହେ ନାଥ ! ବୁଦ୍ଧି-ମନ-ପ୍ରାଣ । ଇନ୍ଦ୍ରିୟ ବଚନରେ ପୁଣ ॥ ୨୫

୧. ବିଚିତ୍ର ଅର୍ଥ ଥିବା ।

ଚରଣପଦ୍ମକୁ ତୁମ୍ଭର । ଆମ୍ଭେ କରୁଛୁଁ ନମସ୍କାର ॥ ୨୬
ଯେ କର୍ମମୟ ଉରୁପାଶ । ତହିଁରୁ ଯେବଣ ପୁରୁଷ ॥ ୨୭
ମୋକ୍ଷ ହେବାକୁ ବାଞ୍ଛିଥାନ୍ତି । ଭାବରେ ଯୁକ୍ତ ହୋଇ ନିତି ॥ ୨୮
ସେ ଯଉଁ ଚରଣନଳିନ । ହୃଦୟେ କରୁଥାନ୍ତି ଧ୍ୟାନ ॥ ୨୯
ଆତ୍ମାରୁ ନୁହଇ ଯେ ଭିନ୍ନ । ଯା ତର୍କି ନ ପାରଇ ଜନ ॥ ୩୦
ତ୍ରିଗୁଣ ମାୟାରେ ସେ ସୃଷ୍ଟି । ସର୍ଜିଣ ପାଳି କର ନଷ୍ଟି ॥ ୩୧
ତୁମ୍ଭେ ସେ ମାୟାର ଗୁଣରେ । ଥାଅ ଈଶ୍ୱରସ୍ୱରୂପରେ ॥ ୩୨
ତଥାପି ତୁମ୍ଭେ ହେ ଅଜିତ । ସେ କର୍ମେ ନୁହ ଆସକତ ॥ ୩୩
ରାଗାଦି ଦୋଷରେ ରହିତ । ସ୍ୱସୁଖେ ଅଟ ଅଭିରତ[୧] ॥ ୩୪
୯ ଗୃହସ୍ଥାଶ୍ରମେ ପ୍ରତିଦିନ । ଅତି ଆସକ୍ତ ଯେତେ ଜନ ॥ ୩୫
ତାଙ୍କର ବେଦ-ଅଧ୍ୟୟନେ । ତପସ୍ୟା-କର୍ମ-ଶାସ୍ତ୍ର-ଦାନେ ॥ ୩୬
ଶୁଦ୍ଧନୁହଇ ସେ ରୂପରେ । ହେ ସ୍ତୁତିଯୋଗ୍ୟ ଏ ସଂସାରେ ॥ ୩୭
ଆହେ ରଷଭ ତୁମ୍ଭ ଯଶ । ଶ୍ରବଣ କରନ୍ତେ ଅଶେଷ ॥ ୩୮
ଶ୍ରଦ୍ଧାରେ ସାଧୁଲୋକଙ୍କର । ଶୁଦ୍ଧି ହୁଅଇ ଯେ ପ୍ରକାର ॥ ୩୯
୧୦ ତୁମ୍ଭ ପାଦକୁ ଆମ୍ଭେମାନେ । ହେ କୃଷ୍ଣ ଦେଖିଲୁଁ ଏ ସ୍ଥାନେ ॥ ୪୦
ବିଷୟବାସନା ଆମ୍ଭର । ବିନାଶୁ ସେ ପାଦ ତୁମ୍ଭର ॥ ୪୧
ମୁନିଏ ମୋକ୍ଷ ଅର୍ଥେ ନିତି । ପ୍ରେମହୃଦୟେ ଯା' ବାଞ୍ଛନ୍ତି ॥ ୪୨
ସମାନ ଐଶ୍ୱର୍ଯ୍ୟ ଯହିଁରେ । ସେ ବାସୁଦେବାଦି ବ୍ୟୂହରେ ॥ ୪୩
ବୈକୁଣ୍ଠପ୍ରାପ୍ତିଅର୍ଥେ ପୁଣ । ଯଉଁ ପାଦକୁ ଭକ୍ତଗଣ ॥ ୪୪
ତିନି କାଳରେ ପୂଜା କଲେ । ସେମାନେ ଆତ୍ମଜ୍ଞାନୀ ହେଲେ ॥ ୪୫
୧୧ ସଂଯତ ହସ୍ତେ ବିପ୍ରଗଣ । ହବିର୍ଭାଗକୁ ଘେନି ପୁଣ ॥ ୪୬
ତ୍ରିବେଦବିଧାନ ବାକ୍ୟରେ । ଇନ୍ଦ୍ରାଦି ଦେବତାରୂପରେ ॥ ୪୭
ଯଉଁ ପାଦକୁ ଯଜ୍ଞାଗ୍ନିରେ । ହେ ଈଶ ! ଚିନ୍ତନ୍ତି ମନରେ ॥ ୪୮
ପରମ ଜ୍ଞାନୀ ଯୋଗିଜନେ । ଅଧ୍ୟାତ୍ମଯୋଗେ ପ୍ରତିଦିନେ ॥ ୪୯
ତୁମ୍ଭର ମାୟା ଜାଣିମାକୁ । ପୂଜନ୍ତି ଯଉଁ ଚରଣକୁ ॥ ୫୦
ବିଷୟବାସନା ଆମ୍ଭର । ବିନାଶୁ ସେ ପାଦ ତୁମ୍ଭର ॥ ୫୧
୧୨ ଲକ୍ଷ୍ମୀ ସପତ୍ନୀ ପ୍ରାୟେ ହୋଇ । ଯା' ସଙ୍ଗେ ବିବାଦ କରଇ ॥ ୫୨
ସେ ବନମାଳା ହେଲେ ବାସି । ତୁମ୍ଭର ବକ୍ଷସ୍ଥଳେ ବସି ॥ ୫୩
ହେ ପ୍ରଭୋ ! ସେ ବନମାଳାରେ । ପୂଜା କରନ୍ତେ ସର୍ବ ନରେ ॥ ୫୪
ତା ତୁମ୍ଭେ କଲ ଯେ ସ୍ୱୀକାର । ସେ ତୁମ୍ଭ ଚରଣ ଆମ୍ଭର ॥ ୫୫
ଯେତେ ଅଶୁଭ କର୍ମମାନ । ଦହନ କରୁ ତା' ବହନ ॥ ୫୬

---

୧. ଅନୁକ୍ଷଣ ରତ ।

୧୩ ଯେ ତିନି ପରାକ୍ରମେ ଯୁତ । ସତ୍ୟଲୋକକୁ ଉପଗତ ।। ୫୭
ଯେ ତହିଁ କେତୁପ୍ରାୟେ ହେଲା । ଯହିଁରୁ ଗଙ୍ଗା ସମ୍ଭବିଲା ।। ୫୮
ସୁର-ଅସୁର ସୈନ୍ୟଙ୍କରେ । ଭୟ-ଅଭୟକୁ ଯେ କରେ ।। ୫୯
ସାଧୁଙ୍କ ମୋକ୍ଷ ଯେ କରଇ । ଖଳ ଲୋକଙ୍କ ଦଣ୍ଡଦାୟୀ ।। ୬୦
ହେ ସର୍ବବ୍ୟାପୀ ଭଗବାନ । ସେ ତୁମ୍ଭ ଚରଣନଳିନ ।। ୬୧
ଆମ୍ଭେ ଭଜୁଅଛୁଁ ଆମ୍ଭର । ପାପକୁ କରୁ ସେ ସଂହାର ।। ୬୨
୧୪ ବାନ୍ଧନ୍ତେ ନାସା ବିନ୍ଧି ଯେହ୍ନେ । ରହନ୍ତି ବଳୀବର୍ଦ୍ଦମାନେ ।। ୬୩
ବ୍ରହ୍ମାଦି ଜୀବେ ସେ ରୂପରେ । ଅଛନ୍ତି ଯାହା ଆୟତ୍ତରେ ।। ୬୪
ସେ ସର୍ବେ ସମର-ଆଦିରେ । ପୀଡ଼ିତ ହୋନ୍ତେ ପରସ୍ପରେ ।। ୬୫
ସେ ତୁମ୍ଭେ ପୁରୁଷଙ୍କ ସାର । ପ୍ରକୃତିପୁରୁଷରୁ ପର ।। ୬୬
କାଳସ୍ୱରୂପ ତୁମ୍ଭେ ପୁଣ । ତୁମ୍ଭର ପଙ୍କଜଚରଣ ।। ୬୭
ଆମ୍ଭମାନଙ୍କର ମଙ୍ଗଳ । ବିସ୍ତାର କରୁ ତତକାଳ ।। ୬୮
୧୫ ବିଶ୍ୱ-ଉତ୍ପତ୍ତି-ସ୍ଥିତି-ନାଶ । ହେତୁରୂପରେ ଯେ ପ୍ରକାଶ ।। ୬୯
ପ୍ରକୃତି-ପୁରୁଷ-ମହାନ । ଏ ତିନିଙ୍କର ଯେ ନିଦାନ ।। ୭୦
ସେ ସମ୍ୱତ୍ସରରୂପୀ କାଳ । ହେ ପ୍ରଭୋ ତୁମ୍ଭେଟି କେବଳ ।। ୭୧
କାଳରୂପରେ ବେଗବନ୍ତ । ସମସ୍ତ କରୁଅଛ ହତ ।। ୭୨
ଏଣୁ ପୁରୁଷମାନଙ୍କରେ । ତୁମ୍ଭେ ଉତ୍ତମ ଏ ସଂସାରେ ।। ୭୩
୧୬ ହେ ପ୍ରଭୋ ! ତୁମ୍ଭଠାରୁ ପୁଣ । ପୁରୁଷ ଶକ୍ତିକି ଘେନିଣ ।। ୭୪
ତେଣେ ଧରଇ ମହତ୍ତ୍ୱ । ତା' ପରାକ୍ରମ ନୋହେ ହତ ।। ୭୫
ବିଶ୍ୱର ଗର୍ଭକୁ କାଳରେ । ଧରେ ସେ ଯେସନ ପ୍ରକାରେ ।। ୭୬
ସେ ମହତ୍ତ୍ୱ ହିଁ ମାୟାରେ । ସଂଯୁତ ହୋଇ ସେ କାଳରେ ।। ୭୭
ତୁମ୍ଭେ ଯେ କାଳରୂପୀ ପୁଣ । ସେ ତୁମ୍ଭଠାରୁ ତତକ୍ଷଣ ।। ୭୮
ସୁବର୍ଣ୍ଣ ଅଣ୍ଡକୋଷ ଜାତ । କରେ ଆବରଣ ସହିତ ।। ୭୯
୧୭ ତୁମ୍ଭେଟି ଆହେ ହୃଷୀକେଶ । ସ୍ଥାବର-ଜଙ୍ଗମ-ଅଧୀଶ ।। ୮୦
ଯେଣୁ ମାୟାରେ ବିଜୃମ୍ଭିତ । ଇନ୍ଦ୍ରିୟବୃତ୍ତିରେ ଉଦ୍‌ଥିତ ।। ୮୧
ଭଜନ୍ତେ ତୁମ୍ଭେ ସେ ବିଷୟ । ତହିଁରୁ ଅଟ ଭିନ୍ନପ୍ରାୟ ।। ୮୨
ତ୍ୟକ୍ତ ଯେ ବିଷୟସେବନେ । ଭୟ କରନ୍ତି ଯୋଗିମାନେ ।। ୮୩
୧୮ ଯେ ମନ୍ଦସ୍ମିତ ଅବଲୋକ । କଟାକ୍ଷପାତ ଯେ ଅନେକ ।। ୮୪
ତେଣେ ସୂଚିତ ଯେ ସୁରତ । ମନ୍ତ୍ରରେ ଅତି ପ୍ରଗଲ୍‌ଭିତ ।। ୮୫
ଏମନ୍ତ ଅନଙ୍ଗବାଣରେ । କନ୍ଦର୍ପକଳାମାନଙ୍କରେ ।। ୮୬
ଷୋଳ ସହସ୍ର ପତ୍ନୀ ଯେତେ । ତୁମ୍ଭ ମନକୁ କଦାଚିତେ ।। ୮୭
କ୍ଷୋଭ କରାଇବାକୁ ତହିଁ । ସମର୍ଥ ନୋହିଲେଟି କେହି ।। ୮୮

୧୯ ସେ ତୁମ୍ଭେ ପୁଣ ଏ ହେତୁରୁ । ପୃଥକ ଅଟ ବିଷୟରୁ ॥ ୮୯
ତୁମ୍ଭର କଥାସୁଧାଜଳ । ଯହିଁରେ ବହଇ କେବଳ ॥ ୯୦
ଏମନ୍ତ କୀର୍ତ୍ତିନଦୀମାନ । ଗଙ୍ଗାଦି ନଦୀ ଯେ ବା ଆନ ॥ ୯୧
ଏ ବେନି ଜଗତ କଲ୍ମଷ । ସମର୍ଥ କରିବାକୁ ନାଶ ॥ ୯୨
ଶୁଣନ୍ତେ ଶ୍ରବଣଦ୍ୱାରରେ । କୀର୍ତ୍ତିସରିତ ପାପ ହରେ ॥ ୯୩
ସ୍ନାନ-ପାନରେ ଗଙ୍ଗା ପୁଣ । ପାପକୁ କରଇ ହରଣ ॥ ୯୪
ତୀର୍ଥଦୁହିଁକି ଏ ରୂପରେ । ସେବନ୍ତି ଧର୍ମବନ୍ତ ନରେ ॥ ୯୫

ଶ୍ରୀଶୁକ ଉବାଚ

୨୦ କହନ୍ତି ବେଦବ୍ୟାସସୁତ । ଶୁଣ ହେ ନୃପ ! ପରୀକ୍ଷିତ ॥ ୯୬
ବ୍ରହ୍ମା-ଶଙ୍କର ସହିତରେ । କୃଷ୍ଣଙ୍କୁ ଏମନ୍ତ ରୂପରେ ॥ ୯୭
ସ୍ତୁତି କରିଣ ତାଙ୍କୁ ପୁଣ । ବହୁତ ପ୍ରଣାମ କରିଣ ॥ ୯୮
ଆକାଶେ ରହି ଗୋବିନ୍ଦଙ୍କୁ । କହିଲେ ଏମନ୍ତ ବାକ୍ୟକୁ ॥ ୯୯

ଶ୍ରୀବ୍ରହ୍ମୋବାଚ

୨୧ ବ୍ରହ୍ମା କହନ୍ତି ଏ ରୂପରେ । ହେ ପ୍ରଭୋ ! ପୂର୍ବସମୟରେ ॥ ୧୦୦
ଭୂମିର ଭାରନାଶପାଇଁ । ତୁମ୍ଭଙ୍କୁ ଜଣାଇଲୁଁ ଯାଇ ॥ ୧୦୧
ଆହେ ଅଶେଷଆତ୍ମା ପୁଣ । ସେ ରୂପେ କଲ ତା' ନିର୍ବାଣ ॥ ୧୦୨
୨୨ ଯେତେକ ସତ୍ୟସନ୍ଧ ନରେ । ଧର୍ମ ସ୍ଥାପିଲ ତାଙ୍କ ଠାରେ ॥ ୧୦୩
ସମସ୍ତ ଲୋକଙ୍କ କଲ୍ମଷ । ଯେ ନିତ୍ୟେ କରଇ ବିନାଶ ॥ ୧୦୪
ସେ କୀର୍ତ୍ତି ସମସ୍ତ ଦିଗରେ । ବିସ୍ତାର କଲ ଜଗତରେ ॥ ୧୦୫
୨୩ ଯଦୁବଂଶରେ ଜାତ ହୋଇ । ଉତ୍ତମରୂପ ଧରି ତହିଁ ॥ ୧୦୬
ଉଦ୍ଦାମ କର୍ମମାନଙ୍କୁ ହିଁ । କଲ ଜଗତହିତ ପାଇଁ ॥ ୧୦୭
୨୪ ଆହେ ଈଶ୍ୱର ସାଧୁ ନରେ । ଯଉଁ କର୍ମକୁ ଏ କଳିରେ ॥ ୧୦୮
ଶୁଣନ୍ତେ କରନ୍ତେ କୀର୍ତ୍ତନ । ସଂସାରୁ ତରିବେ ବହନ ॥ ୧୦୯
୨୫ ହେ ପ୍ରଭୋ ! ପୁରୁଷ ଉତ୍ତମ । ଯଦୁକୁଳରେ ହେଲ ଜନ୍ମ ॥ ୧୧୦
ଶହେ ପଚିଶ ସମ୍ବତ୍ସର । ଗଲାଣି ଏବେ ଟି ତୁମ୍ଭର ॥ ୧୧୧
୨୬ ଆହେ ଅଖିଳାଧାର ଈଶ । ହେଲାଣି ଦେବକାର୍ଯ୍ୟ ଶେଷ ॥ ୧୧୨
ବ୍ରାହ୍ମଣଶାପେ ନିଜ ବଂଶ । ନିକଟେ ହୋଇବଟି ନାଶ ॥ ୧୧୩
୨୭ ଏଣୁ ଏ ଯେବେ ଯୋଗାଇବ । ନିଜ ସ୍ଥାନକୁ ଯିବା ହେବ ॥ ୧୧୪
ଏଥି ଥିବାକୁ ଇଚ୍ଛା ଯେବେ । ରୁଚିଲେ ଥାଅ ଏଥି ତେବେ ॥ ୧୧୫
ହେ ଜଗନ୍ନାଥ ଦେବଦେବ । ଆମ୍ଭଙ୍କୁ ସୁପ୍ରସନ୍ନ ହେବ ॥ ୧୧୬
ତୁମ୍ଭଙ୍କୁ ସେବା କରୁଅଛୁଁ । ଏତେମାତ୍ରକ ଜଣାଉଛୁଁ ॥ ୧୧୭
ଆମ୍ଭେ ସମସ୍ତେ ଯେତେ ସୁର । ତୁମ୍ଭର ବୈକୁଣ୍ଠକିଙ୍କର ॥ ୧୧୮

| | | | |
|---|---|---|---|
| | ଆମ୍ଭେ ଯେ ଅଟୁଁ ଦିଗପାଳ | । ଆମ୍ଭଙ୍କୁ ଲୋକତୁଲେ ପାଳ | ।। ୧୧୯ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୨୮ | କହନ୍ତି ପ୍ରଭୁ ରମାକାନ୍ତ | । ଯାହା କହିଲ ହେ ବିଧାତ | ।। ୧୨୦ |
| | ତା' ଆମ୍ଭେ ସମସ୍ତ ଜାଣିଲୁଁ | । ତୁମ୍ଭ କାର୍ଯ୍ୟ ହିଁ ସଂପାଦିଲୁଁ | ।। ୧୨୧ |
| | ଭୂମିର ଭାର ଯେତେ ଥିଲା | । ସେହି ତ ଉଶ୍ୱାସ ହୋଇଲା | ।। ୧୨୨ |
| ୨୯ | ନିଶ୍ଚୟେ ଏ ଯାଦବକୁଳ | । ନାଶିବେ ଧରଣୀମଣ୍ଡଳ | ।। ୧୨୩ |
| | ବୀର୍ଯ୍ୟ ଶଉର୍ଯ୍ୟ ସଂପତ୍ତିରେ | । ଏ ଅତି ଉତ୍‌କଟ ନିତ୍ୟରେ | ।। ୧୨୪ |
| | ଆମ୍ଭେ ରୁନ୍ଧିଛୁଁ ଏମାନଙ୍କୁ | । ତଟ ଯେସନେ ସମୁଦ୍ରକୁ | ।। ୧୨୫ |
| ୩୦ | ଏ ଅତିଗର୍ବୀ ଯଦୁବଂଶ | । ଯିବି ନ କରି ଯେବେ ନାଶ | ।। ୧୨୬ |
| | ମର୍ଯ୍ୟାଦାହୀନ ଏ ଯଦୁଏ | । ସୃଷ୍ଟି ନାଶିବେ ଅତିଶୟେ | ।। ୧୨୭ |
| ୩୧ | ଆହେ ନିଷ୍ପାପ ବ୍ରହ୍ମା ଶୁଣ | । ବ୍ରାହ୍ମଣଶାପୁଁ ଏବେ ପୁଣ | ।। ୧୨୮ |
| | ନିଜ ବଂଶକୁ ନାଶ କରି | । ଚଳନ୍ତେ ବଇକୁଣ୍ଠପୁରୀ | ।। ୧୨୯ |
| | ତୁମ୍ଭ ଭବନେ ମୁଁ ଅବଶ୍ୟ | । ସେକାଳେ ହୋଇବି ପ୍ରବେଶ | ।। ୧୩୦ |

ଶ୍ରୀଶୁକ ଉବାଚ

| | | | |
|---|---|---|---|
| ୩୨ | କହନ୍ତି ଶୁକ ମୁନିବର | । ଯେ କୃଷ୍ଣ ତ୍ରିଲୋକ-ଈଶ୍ୱର | ।। ୧୩୧ |
| | ଏ ରୂପେ କହନ୍ତେ ବ୍ରହ୍ମାଙ୍କୁ | । ବ୍ରହ୍ମା ପ୍ରଣାମ କରି ତାଙ୍କୁ | ।। ୧୩୨ |
| | ଦେବତାଗଣସହିତରେ | । ଗମନ କଲେ ନିଜ ପୁରେ | ।। ୧୩୩ |
| ୩୩ | ଦ୍ୱାରକାପୁରେ ଏଥୁ ଅନ୍ତେ | । ଜନ୍ମିଲେ ମହା ଉତପାତେ | ।। ୧୩୪ |
| | ଶ୍ରୀହରି ଦେଖି ଉତ୍‌ପାତଙ୍କୁ | । କହିଲେ ବୃଦ୍ଧ ଯାଦବଙ୍କୁ | ।। ୧୩୫ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୩୪ | କହନ୍ତି ପ୍ରଭୁ ଭଗବାନ | । ଶୁଣ ହେ ସର୍ବ ଯଦୁଜନ | ।। ୧୩୬ |
| | ଦେଖ ଏ ମହୋତ୍‌ପାତମାନ | । ସମସ୍ତଦିଗେ ଉତପନ୍ନ | ।। ୧୩୭ |
| | ବ୍ରାହ୍ମଣଶାପ ଦୁରତ୍ୟୟ | । ହେଲା ଏ କୁଳରେ ନିଶ୍ଚୟ | ।। ୧୩୮ |
| ୩୫ | ଜୀଇବା ଅର୍ଥେ ଯେବେ ମନ | । ହେ ଆର୍ଯ୍ୟେ ଛାଡ଼ିବା ଏ ସ୍ଥାନ | ।। ୧୩୯ |
| | ପବିତ୍ର ପ୍ରଭାସତୀର୍ଥରେ | । ଯିବା ହେ ଯାଦବେ ସତ୍ୱରେ | ।। ୧୪୦ |
| ୩୬ | ଦକ୍ଷଙ୍କ ଶାପରୁ ତୁରିତ | । ଚନ୍ଦ୍ରମା ଯକ୍ଷ୍ମାରୋଗବନ୍ତ | ।। ୧୪୧ |
| | ସେ ଯଉଁ ତୀର୍ଥେ ସ୍ନାନ କଲେ | । ରୋଗଦୁଃଖରୁ ମୁକ୍ତ ହେଲେ | ।। ୧୪୨ |
| | କଳାମାନଙ୍କର ଉଦୟ | । ପୁଣି ଲଭିଲେ ପୂର୍ବପ୍ରାୟ | ।। ୧୪୩ |
| ୩୭ | ଆମ୍ଭେ ସମସ୍ତେ ଯାଇ କରି | । ସେ ପ୍ରଭାସରେ ସ୍ନାନ ସାରି | ।। ୧୪୪ |
| | ପିତୃଲୋକଙ୍କୁ ଦେବତାଙ୍କୁ | । ତର୍ପଣ କରି ବ୍ରାହ୍ମଣଙ୍କୁ | ।। ୧୪୫ |
| | ଭୋଜନ ଦେବାଟି ସେ ସ୍ଥାନେ | । ବହୁତ ଗୁଣବନ୍ତ ଅନ୍ନେ | ।। ୧୪୬ |

୩୮ ଦିବ୍ୟ କେଦାରେ ଧାନ୍ୟମାନ । ବହୁତ ଫଳଇ ଯେସନ ।। ୧୪୭
ଯେଣୁ ଶ୍ରଦ୍ଧାରେ ଦେବା ଦାନ । ଉତ୍ତମ ପାତ୍ରରେ ବହନ ।। ୧୪୮
ଏ ଦୁଃଖ ତରିବା ଦାନରେ । ଯେସନେ ସିନ୍ଧୁକୁ ନାବରେ ।। ୧୪୯

ଶ୍ରୀଶୁକ ଉବାଚ

୩୯ ଶୁକ କହନ୍ତି ହେ ରାଜନ । ଏମନ୍ତ ରୂପେ ଭଗବାନ ।। ୧୫୦
ଆଜ୍ଞା ଦିଅନ୍ତେ ଯଦୁଜନ । ତୀର୍ଥକୁ ଯିବା କଲେ ମନ ।। ୧୫୧
ଅଶ୍ୱସାରଥିମାନଙ୍କରେ । ରଥ ସାଜିଲେ ସେ କାଳରେ ।। ୧୫୨
୪୦ ଯେ ନିତ୍ୟେ କୃଷ୍ଣଙ୍କୁ ସେବନ୍ତି । ଦେଖିଣ ଉଦ୍ଧବ ସେ ରୀତି ।। ୧୫୩
ଶ୍ରବଣ କରି କୃଷ୍ଣବାଣୀ । ଘୋର ଉତ୍‌ପାତ ଦେଖି ପୁଣି ।। ୧୫୪
୪୧ ଜଗତ ଈଶ୍ୱର ଯେ ହରି । ତାଙ୍କୁ ଏକାନ୍ତେ ଯାଇ କରି ।। ୧୫୫
ସାଷ୍ଟାଙ୍ଗେ ପାଦତଳେ ପଡ଼ି । କହିଲେ ବେନି କର ଯୋଡ଼ି ।। ୧୫୬

ଶ୍ରୀଉଦ୍ଧବ ଉବାଚ

୪୨ ହେ ଦେବଦେବଙ୍କ ଈଶ୍ୱର । ହେ କୃଷ୍ଣ ଆହେ ଯୋଗେଶ୍ୱର ।। ୧୫୭
ହେ ପୁଣ୍ୟଶ୍ରବଣକୀର୍ତ୍ତନ । ଏ କୁଳ କରି ବିନାଶନ ।। ୧୫୮
ଛାଡ଼ିଣ ଏ ମର୍ତ୍ତ୍ୟଲୋକକୁ । ନିଶ୍ଚୟେ ଯିବ ବୈକୁଣ୍ଠକୁ ।। ୧୫୯
ତୁମ୍ଭେ ଏ ବ୍ରାହ୍ମଣଶାପକୁ । ସମର୍ଥ ହେଲେ ନାଶିବାକୁ ।। ୧୬୦
ଏ ଶାପ ନ କଲ ସଂହାର । ସାକ୍ଷାତେ ହେଲେହେଁ ଈଶ୍ୱର ।। ୧୬୧
୪୩ ତୁମ୍ଭ ଚରଣପଦ୍ମ ଦୁଇ । କ୍ଷଣାର୍ଦ୍ଧେ ଛାଡ଼ି ନ ପାରଇ ।। ୧୬୨
ହେ ନାଥ ! ହେ କେଶବ ! ମୋତେ । ନିଅ ସ୍ୱସ୍ଥାନକୁ ତୁରିତେ ।। ୧୬୩
୪୪ ହେ କୃଷ୍ଣ ! ଏ କ୍ରୀଡ଼ା ତୁମ୍ଭର । ପରମମଙ୍ଗଳ ପ୍ରାଣୀର ।। ୧୬୪
ଏ କର୍ଣ୍ଣ-ଅମୃତକୁ ଜନେ । ଆସ୍ୱାଦ କରି ଏ ଭୁବନେ ।। ୧୬୫
ଅନ୍ୟ ସ୍ଥାନରେ ସ୍ପୃହା ଯେତେ । ତା' ସର୍ବ ଛାଡ଼ନ୍ତି ଜଗତେ ।। ୧୬୬
୪୫ ଶଯ୍ୟା-ଆସନ-ଗମନରେ । ସ୍ନାନ-ଅଶନ-କ୍ରୀଡ଼ାଦିରେ ।। ୧୬୭
ଆମ୍ଭର ପ୍ରିୟ ଆତ୍ମା ତୁମ୍ଭେ । ତୁମ୍ଭର ଭକ୍ତ ଅଟୁଁ ଆମ୍ଭେ ।। ୧୬୮
ତୁମ୍ଭଙ୍କୁ ସେବିଛୁଁ ନିତ୍ୟରେ । ଛାଡ଼ି ରହିବୁଁ କି ରୂପରେ ।। ୧୬୯
୪୬ ଯେ ଥାଇ ତୁମ୍ଭ ଶ୍ରୀଅଙ୍ଗରେ । ସେ ଗନ୍ଧ-ବସ୍ତ୍ର-ଅଳଂକାରେ ।। ୧୭୦
ମାଳାରେ ଭୂଷିତ ହୋଇଣ । ଆମ୍ଭେ ତୁମ୍ଭର ଦାସଗଣ ।। ୧୭୧
ଭୁଞ୍ଜିଣ ଉଚ୍ଛିଷ୍ଟମାନକୁ । ଜିଣିମୁ ତୁମ୍ଭର ମାୟାକୁ ।। ୧୭୨
୪୭ ସନ୍ନ୍ୟାସୀ ଶାନ୍ତ ଅତିଶୟ । ଉଲଗ୍ନ ନିର୍ମଳ-ଆଶୟ ।। ୧୭୩
ସହନ୍ତି ତପକ୍ଲେଶମାନ । ଯେ ଊର୍ଦ୍ଧ୍ୱରେତା ଋଷିଜନ ।। ୧୭୪
ସେମାନେ ଚଳନ୍ତି ବହନେ । ବ୍ରହ୍ମସ୍ୱରୂପ ତୁମ୍ଭ ସ୍ଥାନେ ।। ୧୭୫
୪୮ ହେ ମହାଯୋଗୀ ଆମ୍ଭେମାନେ । କର୍ମମାର୍ଗରେ ପ୍ରତିଦିନେ ।। ୧୭୬

ଭ୍ରମନ୍ତେ ତୁମ୍ଭ ଭକ୍ତଟୁଲେ । ଦୁସ୍ତର ସଂସାରକୁ ଭଲେ ॥ ୧୭୭
ତୁମ୍ଭର ବାର୍ତ୍ତାମାନଙ୍କରେ । ନିଶ୍ଚୟେ ତରିବୁଁ ସୁଖରେ ॥ ୧୭୮
୪୯ କରିଛ ଯେତେ କର୍ମମାନ । କହିଛ ଯେତେକ ବଚନ ॥ ୧୭୯
ସ୍ମିତ ସହିତ ଯେ ଚାହାଣି । ଗମନ ପରିହାସ ବାଣୀ ॥ ୧୮୦
ଏ ନରଲୋକେ ଅତିଶୟ । ଅଟଇ ବିଡ଼ମ୍ବନ ପ୍ରାୟ ॥ ୧୮୧
ଏମାନ କରନ୍ତେ ସ୍ମରଣ । ତରିବୁଁ କୀର୍ତ୍ତନ କରିଣ ॥ ୧୮୨

ଶ୍ରୀଶୁକ ଉବାଚ

୫୦ କହନ୍ତି ବ୍ୟାସଙ୍କର ସୁତ । ଉଦ୍ଧବ ଜଣାନ୍ତେ ଏମନ୍ତ ॥ ୧୮୩
ସେ ପ୍ରିୟ ଭୃତ୍ୟ ଉଦ୍ଧବଙ୍କୁ । ନେଇଣ ଏକାନ୍ତ ସ୍ଥାନକୁ ॥ ୧୮୪
ଦେବକୀସୁତ ଭଗବାନ । କହିଲେ ଏମନ୍ତ ବଚନ ॥ ୧୮୫
ସୁଜନମାନଙ୍କର ହିତେ । ଶ୍ରୀଏକାଦଶ ଭାଗବତେ ॥ ୧୮୬
ବ୍ରାହ୍ମଣ ଦୀନବନ୍ଧୁ ଭଣେ । ସୁଜନେ ତୋଷ ହୁଅ ତେଣେ ॥ ୧୮୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀକୃଷ୍ଣୋଦ୍ଧବସଂବାଦୋ
ନାମ ଷଷ୍ଠୋଽଧ୍ୟାୟଃ ॥

## ସପ୍ତମ ଅଧ୍ୟାୟ

ସପ୍ତମେ ତୂଦ୍ଧବସ୍ୟାତ୍ମଜ୍ଞାନସିଦ୍ଧ୍ୟୈ ହରିଃ ସ୍ୱୟମ୍ ।
ଅବଧୂତେତିହାସୋକ୍ତଗୁରୁଷ୍ଟଷ୍ଟାବବର୍ଣ୍ଣୟତ୍ ॥ ୧

ଶ୍ରୀଭଗବାନୁବାଚ

୧ କହନ୍ତି ପ୍ରଭୁ ନାରାୟଣ । ଆହେ ଉଦ୍ଧବ ଏବେ ଶୁଣ ॥ ୧
ଯାହା କହିଲ ମୋ' ଆଗର । କରିବା ଇଚ୍ଛା ସେ ଆମ୍ଭର ॥ ୨
ବ୍ରହ୍ମା ଶଙ୍କର ଆଦି ହୋଇ । ଯେ ଲୋକପାଳ ଛନ୍ତି ରହି ॥ ୩
ଏମାନେ ମୋ ନିଜ ସ୍ଥାନକୁ । ଇଚ୍ଛା କରନ୍ତି ରହିବାକୁ ॥ ୪
୨ ଅଶେଷ ଦେବକାର୍ଯ୍ୟମାନ । ସମସ୍ତ କଲି ମୁଁ ନିଷ୍ପନ୍ନ ॥ ୫
ପ୍ରାର୍ଥନା କରନ୍ତେ ବିଧାତ । ଅଂଶେ ଜନ୍ମିଲି ତନ୍ନିମିତ୍ତ ॥ ୬
୩ ଏ କୁଳ ବ୍ରାହ୍ମଣ ଶାପରେ । ଦଗ୍‌ଧ ହେଲାଣି ସ୍ୱଭାବରେ ॥ ୭
କଳହ ହେତୁ ପରସ୍ପରେ । ନାଶ ହୋଇବ ନିକଟରେ ॥ ୮
ଆଜହୁଁ ସପ୍ତମ ଦିନରେ । ଏ ପୁର ବୁଡ଼ିବ ସାଗରେ ॥ ୯
୪ ଯେବେ ମୁଁ ଯିବି ନିଜସ୍ଥାନ । ଏ ଲୋକ ହେବ ଶୁଭହୀନ ॥ ୧୦
ଏହି ନିକଟେ ହେ ଉଦ୍ଧବ । କଳିରେ ସୃଷ୍ଟି ଗ୍ରସ୍ତ ହେବ ॥ ୧୧

୫ ପୃଥିବୀ ଛାଡ଼ିଯାନ୍ତେ ଆମ୍ଭେ । ଏଥିରେ ନ ରହିବ ତୁମ୍ଭେ ॥
କଳିଯୁଗରେ ହେ ଉଦ୍ଧବ । ଲୋକର ପାପେ ବୁଦ୍ଧି ହେବ ॥
୬ ସ୍ୱଜନବନ୍ଧୁଠାରେ ପୁଣ । ସମସ୍ତ ସ୍ନେହକୁ ଛାଡ଼ିଣ ॥
ଉତ୍ତମ କରି ନିଜ ମନ । ମୋ' ଠାରେ କରି ସାବଧାନ ॥
ସମଦୃଷ୍ଟିରେ ସବୁଠାରେ । ଭ୍ରମଣ କର ଧରଣୀରେ ॥
୭ ମନ-ନୟନ-ବଚନରେ । ଶ୍ରବଣ-ଆଦିମାନଙ୍କରେ ॥
ଏ ବିଶ୍ୱ ହୋଇଛି ନିର୍ମିତ । ମନରେ ହୋଇଛି ବ୍ୟାପିତ ॥
ଏହାକୁ ମାୟା ବୋଲି ଜାଣ । କ୍ଷଣକେ ଭାଜଇ ଏ ପୁଣ ॥
୮ ବିକ୍ଷିପ୍ତଚିତ୍ତ ଯଉଁ ନର । ଭେଦବିଷୟେ ଭ୍ରମ ତାର ॥
ସେ ଭ୍ରମ ପୁଣ ତାହା ତହିଁ । ଗୁଣଦୋଷକୁ ଭଜିଥାଇ ॥
ଯେଣୁ ସେ ପୁରୁଷର ନିତି । ଗୁଣଦୋଷରେ ଥାଏ ମତି ॥
କର୍ମ-ଅକର୍ମ[୧]-ବିକର୍ମ[୨]ରେ । ଭେଦ କରଇ ଅବିଦ୍ୟାରେ ॥
୯ ତେଣୁ ଇନ୍ଦ୍ରିୟଗଣମାନ । ସଂଯତ କରି ପ୍ରତିଦିନ ॥
ସଂଯତ କରିଣ ଚିତ୍ତକୁ । ଆତ୍ମାରେ ଦେଖ ଜଗତକୁ ॥
ମୁଁ ଅଧୀଶ୍ୱର ମୋହଠାରେ । ସେ ଆତ୍ମା ବ୍ୟାପିଛି ନିତ୍ୟରେ ॥
୧୦ ଜ୍ଞାନେ ବିଜ୍ଞାନେ ହୋଇ ଯୁତ । ଆତ୍ମାନୁଭବେ ତୁଷ୍ଟଚିତ୍ତ ॥
ଏଣୁ ଦେବାଦି ଶରୀରରେ । ରହନ୍ତେ ଆତ୍ମସ୍ୱରୂପରେ ॥
ଯେ ବିଘ୍ନବନ୍ତମାନେ ଛନ୍ତି । ସେ ବିଘ୍ନ କରି ନ ପାରନ୍ତି ॥
୧୧ ଗୁଣଦୋଷରେ ଯଉଁ ମତି । ତହୁଁ ନିବର୍ତ୍ତିଲେ ହେଁ ଅତି ॥
ପ୍ରାକ୍ତନ ଜନ୍ମସଂସ୍କାରରୁ । ସେ ନିବର୍ତ୍ତଇ ନିଷେଧରୁ ॥
ନିଷେଧଦୋଷ ନ ଜାଣଇ । ବିହିତ କର୍ମ ହିଁ କରଇ ॥
ବିହିତ କର୍ମର ଯେ ଫଳ । ତାହା ସେ ନ ଜାଣେ କେବଳ ॥
ଯେସନେ ବାଳକ ଖେଳଇ । ନ ଜାଣେ ଭଲମନ୍ଦ ଦୁଇ ॥
କଉଁ କାର୍ଯ୍ୟକୁ ସେ କରଇ । କାହିଁରୁ ଅବା ନିବର୍ତ୍ତଇ ॥
୧୨ ସମସ୍ତଭୂତେ ମିତ୍ରଭାବ । ଶାନ୍ତପଣ ହିଁ ଆଚରିବ ॥
ଜ୍ଞାନବିଜ୍ଞାନେ ନିଷ୍ଠା ଜାଣି । ଏ ଜଗତକୁ ଯଉଁ ପ୍ରାଣୀ ॥
ଦେଖଇ ଆତ୍ମସ୍ୱରୂପରେ । ସେ ପୁଣି ନ ପଡ଼େ ସଂସାରେ ॥

ଶ୍ରୀଶୁକ ଉବାଚ

୧୩ ଶୁକ କହନ୍ତି ହେ ରାଜନ । ସେ କାଳେ ପ୍ରଭୁ ଭଗବାନ ॥
ଆଜ୍ଞା ଦିଅନ୍ତେ ସେ ଏମନ୍ତ । ଉଦ୍ଧବ ମହାଭାଗବତ ॥
କୃଷ୍ଣଚରଣପଦ୍ମେ ପୁଣ । ବହୁତ ପ୍ରଣାମ କରିଣ ॥
ତତ୍ତ୍ୱକୁ ଜାଣିମା ଇଚ୍ଛାରେ । କହିଲେ ଏମନ୍ତ ରୂପରେ ॥

---

୧. ଅକର୍ମ = କର୍ମର ଅଭାବ । ୨. ବିକର୍ମ = ବିରୁଦ୍ଧ କର୍ମ ।

### ଶ୍ରୀଉଦ୍ଧବ ଉବାଚ

୧୪ ଉଦ୍ଧବ କୃଷ୍ଣଙ୍କୁ କହନ୍ତି । ହେ ଯୋଗଆତ୍ମା ଯୋଗପତି ॥
ତୋ' ଠାରୁ ଯୋଗ ଉତପନ୍ନ । ଯୋଗର ଅଟ ତୁମ୍ଭେ ସ୍ଥାନ ॥
ଯେ ତ୍ୟାଗ ସନ୍ନ୍ୟାସଲକ୍ଷଣ । ତାହା ମୋ' ମୋକ୍ଷ ଅର୍ଥେ ଭଣ ॥
୧୫ ଅପରିଚ୍ଛିନ୍ନ ସର୍ବବ୍ୟାପୀ । ଆହେ ସମସ୍ତ ଆତ୍ମରୂପୀ ॥
ବିଷୟବନ୍ତ ଯେତେ ଜନ । ଯେ ଅବା ଭକ୍ତିରେ ବିହୀନ ॥
ଏ କାମତ୍ୟାଗ ତାହାଙ୍କର । ମଣୁଛି ଅତୀବ ଦୁଷ୍କର ॥
୧୬ ମୁହିଁ ସେ ମୂଢ଼ବୁଦ୍ଧି ହୀନ । ଦେହରେ କରି ଅହଂଜ୍ଞାନ ॥
ପୁତ୍ରକଳତ୍ର ଆଦି ଯେତେ । ମମତା କରି ତହିଁ ନିତ୍ୟେ ॥
ଏଣୁ ଯା ଆଜ୍ଞା ଦେଲ ମୋତେ । ତାହା ମୁଁ କରିବି ଯେମନ୍ତେ ॥
ଭୃତ୍ୟକୁ ଆହେ ଭଗବାନ । ବେଗେ ଦିଅ ସେ ଶିକ୍ଷାମାନ ॥
୧୭ ତୁମ୍ଭେଟି ସତ୍ୟ ସ୍ୱପ୍ରକାଶ । ଆତ୍ମସ୍ୱରୂପୀ ଆହେ ଈଶ ॥
ଆତ୍ମଜ୍ଞାନର ବକ୍ତା ହୋଇ । ତୁମ୍ଭ ବିହୁନେ କେହି ନାହିଁ ॥
ଦେବତାମାନଙ୍କ ମଧ୍ୟରେ । ଦେଖଇ ନାହିଁ ଏ ସଂସାରେ ॥
ବ୍ରହ୍ମାଦି ଯେତେ ଦେହବନ୍ତ । ସର୍ବେ ତୋ' ମାୟାରେ ମୋହିତ ॥
ବିଷୟମାନଙ୍କରେ ନିତି । ସେମାନଙ୍କର ଅର୍ଥମତି ॥
୧୮ ଦେଶ-କାଳରୁ ତୁମ୍ଭେ ଭିନ୍ନ । ସର୍ବଜ୍ଞ ଅଟ ଦୋଷହୀନ ॥
କାଳେ ଯେ ନୋହେ ବିନାଶନ । ସେ ବଇକୁଣ୍ଠ ତୁମ୍ଭ ସ୍ଥାନ ॥
ଈଶ୍ୱରରୂପରେ ପ୍ରକଟ । ଜୀବ-ଆତ୍ମାର ସଖା ଅଟ ॥
ନିର୍ବେଦ ହୋଇଛି ମୋ' ମତି । ଦୁଃଖରେ ସଂତପ୍ତ ମୁଁ ନିତି ॥
ତୁମ୍ଭେ ଯେ ଅଟ ନାରାୟଣ । ତୁମ୍ଭଙ୍କୁ ପଶୁଛି ଶରଣ ॥

### ଶ୍ରୀଭଗବାନୁବାଚ

୧୯ କହୁଅଛନ୍ତି ଭଗବାନ । ସଂସାରମଧ୍ୟେ ଯେତେ ଜନ ॥
ଲୋକର ତତ୍ତ୍ୱକୁ ଜାଣନ୍ତି । ପ୍ରାୟଶ ଆତ୍ମାକୁ ସେ ଅତି ॥
ବିଷୟବାସନାରୁ ସ୍ୱୟେଂ । ଉଦ୍ଧାର କରନ୍ତି ନିଶ୍ଚୟେ ॥
୨୦ ପଶ୍ୱାଦି ଦେହେ ଆପଣାର । ଅହିତ ହିତ ଯେ ବିଚାର ॥
ତହିଁ ଆପଣ ଅଟ ଗୁରୁ । ପ୍ରତ୍ୟକ୍ଷ ଅନୁମାନଦ୍ୱାରୁଁ ॥
ଏ ହେତୁ ବିଶେଷେ ପୁରୁଷ । ଲଭଇ ମଙ୍ଗଳ ଅଶେଷ ॥
୨୧ ଯେ ସାଂଖ୍ୟଯୋଗକୁ ଜାଣନ୍ତି । ସେ ଧୀର ଜନମାନେ ନିତି ॥
ପାଦରୁ ଶିରପରିଯନ୍ତେ । ପୁରୁଷରୂପରେ ଟି ମୋତେ ॥
ଦେଖନ୍ତି ମୁଁ ପୁଣି ନିତ୍ୟରେ । ସଂଯୁତ ସମସ୍ତ ଶକ୍ତିରେ ॥
୨୨ କେ ଏକପାଦ ବେନିପାଦ । ତ୍ରିପାଦ କେ ବା ଚତୁଷ୍ପାଦ ॥

| | | | | |
|---|---|---|---|---|
| | ବହୁତପାଦ କେହି କେହି | । କାହାର କିଛି ପାଦ ନାହିଁ | ।। | ୭୩ |
| | ବହୁତ [1]ପୁର ଏ ରୂପରେ | । ପୂର୍ବରୁ ଅଛନ୍ତି ପୃଥ୍ୱୀରେ | ।। | ୭୪ |
| | ତାହାଙ୍କ ମଧ୍ୟେ ପ୍ରିୟ ମୋର | । ଦୁର୍ଲଭ ମନୁଷ୍ୟଶରୀର | ।। | ୭୫ |
| ୨୩ | ବୁଦ୍ଧ୍ୟାଦି ଗୁଣରେ ଲିଙ୍ଗରେ | । ଭିନ୍ନ ମୁଁ ପ୍ରକୃତି ଆଦିରେ | ।। | ୭୬ |
| | ମୁଁ ଯେ ଈଶ୍ୱର ଅତିଶୟ | । ଏ ଜୀବ ଲଭି ନରକାୟ | ।। | ୭୭ |
| | ହେତୁରେ ଅନୁମାନେ ପୁଣ | । ମୋତେ କରନ୍ତି ଅନ୍ୱେଷଣ | ।। | ୭୮ |
| ୨୪ | ତେଜସ୍ୱୀ ଯଦୁ ନୃପତିର | । ସଙ୍ଗତେ ଅବଧୂତଙ୍କର | ।। | ୭୯ |
| | ସମ୍ବାଦ ହୋଇଲା ପୂର୍ବରେ | । ଏ ପୂର୍ବ ଚରିତକୁ ନରେ | ।। | ୮୦ |
| | ଏହି ବିଷୟରେଟି ପୁଣ | । ଯାହା କହନ୍ତି ତାହା ଶୁଣ | ।। | ୮୧ |
| ୨୫ | କାହାରି ଠାରୁ ଭୟ ନିତି | । ନ ଲଭି ସୁଖେ ଯେ ଭ୍ରମନ୍ତି | ।। | ୮୨ |
| | କବି ଅଟନ୍ତି ସେହୁ ପୁଣ | । ବୟସେ ଅଟନ୍ତି ତରୁଣ | ।। | ୮୩ |
| | କେହୁଣି ଅବଧୂତ ଦ୍ୱିଜ | । ଏ ରୂପେ ଦେଖି ଯଦୁରାଜ | ।। | ୮୪ |
| | ଜାଣନ୍ତି ସର୍ବ ଧର୍ମମାନ | । ତାଙ୍କୁ ପୁଛିଲେ ଏ ବଚନ | ।। | ୮୫ |

ଶ୍ରୀଯଦୁରୁବାଚ

| | | | | |
|---|---|---|---|---|
| ୨୬ | କିଛି ହିଁ ଚେଷ୍ଟା ହେ ବ୍ରାହ୍ମଣ | । କରୁ ଯେ ନାହଁ ଆଚରଣ | ।। | ୮୬ |
| | ତୁମ୍ଭର ଏ ନିପୁଣ ମତି | । କାହିଁରୁ ହେଲା ଉତପତ୍ତି | ।। | ୮୭ |
| | ଯେଉଁ ମତିକି ଲଭି ପୁଣ | । ଏ ସୃଷ୍ଟି ମଧ୍ୟରେ ଆପଣ | ।। | ୮୮ |
| | ପଣ୍ଡିତ ହୋଇ ଅତିଶୟେ | । [2]ଭ୍ରମୁଛ ବାଳକପରାୟେ | ।। | ୮୯ |
| ୨୭ | ପ୍ରାୟଶ ନରେ ଏ ସଂସାରେ | । ଧର୍ମାର୍ଥକାମମାନଙ୍କରେ | ।। | ୯୦ |
| | ଜାଣିମା ଇଚ୍ଛା କରି ନିତି | । ବହୁତ ଚେଷ୍ଟା ଆଚରନ୍ତି | ।। | ୯୧ |
| | ଆୟୁଷ-ଯଶ-ସଂପତ୍ତିର | । ପ୍ରାପ୍ତିକି କରନ୍ତି ବିଚାର | ।। | ୯୨ |
| ୨୮ | ସର୍ବଜ୍ଞ ଅଟ ତୁମ୍ଭେ ପୁଣ | । ସମର୍ଥ ସୁନ୍ଦର ନିପୁଣ | ।। | ୯୩ |
| | ଅମୃତ ବକ୍ତା ହୋଇଅଛ | । କିଛି ହିଁ କର୍ମ ନ କରୁଛ | ।। | ୯୪ |
| | ପିଶାଚ-ଜଡ଼ୋନ୍ମତ୍ତପରି | । ଭ୍ରମୁଛ ଇଚ୍ଛା ଛାଡ଼ି କରି | ।। | ୯୫ |
| ୨୯ | କାମଲୋଭାଦି ଦାବାଗ୍ନିରେ | । ଦଗ୍ଧ ହୁଅନ୍ତେ ସର୍ବ ନରେ | ।। | ୯୬ |
| | ତ୍ରିତାପେ ନୋହୁଛ ତାପିତ | । ସଂସାରୁ ହୋଇଛ ମୁକତ | ।। | ୯୭ |
| | ଗଙ୍ଗାଜଳରେ ଥିଲେ ଦ୍ୱୀପ | । ଯେସନେ ନ ଲଭଇ ତାପ | ।। | ୯୮ |
| ୩୦ | ହେ ବ୍ରହ୍ମଋଷି ମୁଁ ତୁମ୍ଭଙ୍କୁ | । ପଚାରୁଅଛି ଏ କଥାକୁ | ।। | ୯୯ |
| | ତୁମ୍ଭେ ବିଷୟଭୋଗହୀନ | । ପୁତ୍ରକଳତ୍ରାଦିବିହୀନ | ।। | ୧୦୦ |
| | ଆତ୍ମାରେ ଆନନ୍ଦକୁ ପୁଣ | । ଲଭିଛ କହ କି କାରଣ | ।। | ୧୦୧ |

୧. ଦେହ । ୨. ଭ୍ରମୁଛ ମୂର୍ଖଲୋକ ପ୍ରାୟେ । (ପାଠାନ୍ତର)

ଶ୍ରୀଭଗବାନୁବାଚ

୩୧ କହନ୍ତି ପ୍ରଭୁ ନାରାୟଣ । ଆହେ ଉଦ୍ଧବ ଏବେ ଶୁଣ ।। ୧୦୨
ଯେ ଅତି ବ୍ରହ୍ମଣ୍ୟ ସୁମତି । ଏ ରୂପେ ସେ ଯଦୁ ନୃପତି ।। ୧୦୩
ପ୍ରଶ୍ନ କରନ୍ତେ ପୂଜା କରି । ସେ ମହାଭାଗ ବ୍ରହ୍ମଚାରୀ ।। ୧୦୪
ରାଜାଙ୍କୁ କହିଲେ ଏମନ୍ତେ । ନମ୍ର ହୋଇ ସେ ପଚାରନ୍ତେ ।। ୧୦୫

ଶ୍ରୀବ୍ରାହ୍ମଣ ଉବାଚ

୩୨ କହନ୍ତି ଅବଧୂତ ଦ୍ୱିଜ । ଶୁଣ ହେ ଯଦୁ ମହାରାଜ ।। ୧୦୬
ବହୁତ ଗୁରୁ ଛନ୍ତି ମୋର । ବୁଦ୍ଧିରେ କରିଛି ସ୍ୱୀକାର ।। ୧୦୭
ବୁଦ୍ଧି ମୁଁ ଘେନି ଯାଙ୍କ ଠାରୁ । ମୁକ୍ତ ହୋଇଣ ଏ ସଂସାରୁ ।। ୧୦୮
ପ୍ରତ୍ୟହ କରୁଛି ଭ୍ରମଣ । କର ସେ ଗୁରୁଙ୍କୁ ଶ୍ରବଣ ।। ୧୦୯
୩୩| ପୃଥିବୀ ପବନ ଗଗନ । ଜଳ ଚନ୍ଦ୍ରମା ହୁତାଶନ ।। ୧୧୦
୩୫| ସୂର୍ଯ୍ୟ କପୋତ ଅଜଗର । ସିନ୍ଧୁ ପତଙ୍ଗ ମଧୁକର ।। ୧୧୧
ଦ୍ୱିରଦ ମଧୁହା ହରିଣ । ମୀନ ପିଙ୍ଗଳା ବେଶ୍ୟା ପୁଣ ।। ୧୧୨
କୁରର କୁମାର କୁମାରୀ । ଆବର ସର୍ପ ଶରକାରୀ ।। ୧୧୩
ଊର୍ଣ୍ଣନାଭି ୧ସୁପେଶସ୍କାର । ଏ ଚତୁର୍ବିଂଶ ଗୁରୁ ମୋର ।। ୧୧୪
ଏହାଙ୍କୁ ହେ ଯଦୁ ରାଜନ । ନିତ୍ୟେ ମୁଁ କରି ଉପାସନ ।। ୧୧୫
ଶିକ୍ଷା ବୃତ୍ତିରେ ଏହାଙ୍କର । ଶିକ୍ଷା ମୁଁ କଲି ଆପଣାର ।। ୧୧୬
୩୬ ଯା'ଠାରୁ ଯାହା ଯଉଁ ରୂପେ । ଶିଖିଲି ତାହା ସେହିରୂପେ ।। ୧୧୭
ତୁମ୍ଭଙ୍କୁ କରିବି ବଖାଣ । ହେ ନରଶ୍ରେଷ୍ଠ ତାହା ଶୁଣ ।। ୧୧୮
୩୭ ପୀଡ଼ା ଦିଅନ୍ତେ ମୋତେ ନରେ । କ୍ଷୋଭିତ ନୋହିଲି ତହିଁରେ ।। ୧୧୯
ଦଇବବଶବର୍ତ୍ତୀ ପ୍ରାଣୀ । ଏମନ୍ତ ନିଜ ଚିତ୍ତେ ଜାଣି ।। ୧୨୦
ମାର୍ଗରୁ ନୋହି ବିଚଳିତ । ଶିକ୍ଷା କଲି ଏ କ୍ଷିତିବ୍ରତ ।। ୧୨୧
୩୮ ପର୍ବତ-ବୃକ୍ଷରୂପ କ୍ଷିତି । ତହିଁରୁ ଶିଖିବ ଏ ନୀତି ।। ୧୨୨
ପରର କାର୍ଯ୍ୟ କରିବାକୁ । ଏକାନ୍ତେ ଲଭିଣ ଜନ୍ମକୁ ।। ୧୨୩
ପର ନିମନ୍ତେ ପୁଣ ପୁଣ । କରିବ ସର୍ବ ଚେଷ୍ଟାମାନ ।। ୧୨୪
ପର୍ବତଠାରୁ ସାଧୁଲୋକ । ଶିକ୍ଷା କରିବଟି ଏତେକ ।। ୧୨୫
ଦେଖ ସେ ପର୍ବତ କେବଳ । ତୃଣ ନିର୍ଝର ପୁଷ୍ପ ଫଳ ।। ୧୨୬
ଏକାନ୍ତ ସ୍ଥାନରେ ସେ ରହି । ପରନିମିତ୍ତେ ଥାଏ ବହି ।। ୧୨୭
ବୃକ୍ଷଙ୍କ ଠାରୁ ଏତେ ଗୁଣ । ଶିକ୍ଷା ମୁଁ କଲି ଆଚରଣ ।। ୧୨୮
ପର କଲେ ହେଁ ପରାଭବ । ଚିନ୍ତା ନ କରି ତା' ସହିବ ।। ୧୨୯
ପରଚ୍ଛେଦନ-ଉତ୍ପାଟନ । ସେ ବୃକ୍ଷେ ସହନ୍ତି ଯେସନ ।। ୧୩୦

୧. କୁମ୍ଭାର ପୋକ ।

୩୯ ଇନ୍ଦ୍ରିୟମାନେ ଯେତେକରେ । କ୍ଷୋଭିତ ନୋହିବେ ଦେହରେ ।। ୧୩୧
ଯେତେକେ ଜ୍ଞାନ ନୋହେ ନାଶ । ମନ ବଚନ ନୋହେ ଧ୍ୱଂସ ।। ୧୩୨
ପ୍ରାଣମାତ୍ରର ରକ୍ଷା ହେବ । ତେତେକେ ଲଭି ତୋଷ ହେବ ।। ୧୩୩
ଯେସନେ ପ୍ରାଣ-ପବନ ହିଁ । ଆହାରମାତ୍ରେ ବର୍ତ୍ତିଥାଇ ।। ୧୩୪
ସେ ପ୍ରାଣପବନ ମୋ ଗୁରୁ । ଏହା ଶିଖିଲି ତାହା ଠାରୁ ।। ୧୩୫
୪୦ ବରଷା-ଶୀତ-ଉଷ୍ଣାଦିରେ । ସର୍ବ ବିଷୟମାନଙ୍କରେ ।। ୧୩୬
ପ୍ରବେଶ ହେଲେ ଯୋଗୀ ଜନ । ତହିଁ ନୁହଇ ନିମଜ୍ଜନ ।। ୧୩୭
ପବନପ୍ରାୟେ ଦୋଷ-ଗୁଣ । ଆପଣେ ନ କରେ ଗ୍ରହଣ ।। ୧୩୮
ବନରେ ଅଗ୍ନିରେ ସେ ବାତ । ଯେସନେ ନୋହେ ଆସକତ ।। ୧୩୯
୪୧ ସେ ଯୋଗୀଜନ ଏ ସଂସାରେ । ପାର୍ଥିବ ଶରୀର ଆଦିରେ ।। ୧୪୦
ପ୍ରବେଶ ହୋଇଣ ଉତ୍ତମ । ବାଳ-ବୃଦ୍ଧାଦି ଦେହଧର୍ମ ।। ୧୪୧
ଆଶ୍ରୟ କରି ତାଙ୍କ ଗୁଣେ । ନୁହଇ ଆସକତ କ୍ଷଣେ ।। ୧୪୨
ସେ ଆତ୍ମଜ୍ଞାନୀ ସ୍ୱଭାବରେ । ଯେହ୍ନେ ପବନ ଗନ୍ଧାଦିରେ ।। ୧୪୩
ଆସକ୍ତ ହେଲେହେଁ କେବଳ । ତାହା ଛାଡ଼ଇ ତତକାଳ ।। ୧୪୪
ବାହ୍ୟପବନୁଁ ଏତେ ଗୁଣ । ଶିଖି ମୁଁ କଲି ଆଚରଣ ।। ୧୪୫
୪୨ ଉତ୍ତମ ମୁନି ଏ ସଂସାରେ । ଥିଲେହେଁ ଦେହର ମଧ୍ୟରେ ।। ୧୪୬
ଆତ୍ମାର ଦେହେ ସଙ୍ଗ ନାହିଁ । ପ୍ରମାଣବିହୀନ ଅଟଇ ।। ୧୪୭
ଚିନ୍ତିବ ଏମନ୍ତ ରୂପରେ । ଯେଣୁ ସ୍ଥାବର ଜଙ୍ଗମରେ ।। ୧୪୮
ବ୍ରହ୍ମାତ୍ମଭାବରେ ସେ ନିତି । ସମାନ ହୋଇ ବ୍ୟାପିଛନ୍ତି ।। ୧୪୯
ସେ ଆତ୍ମା ଆକାଶସମାନ । ଏମନ୍ତ କରିବ ଭାବନ ।। ୧୫୦
ଆକାଶ ଯେହ୍ନେ ସର୍ବଠାଇଁ । ବ୍ୟାପିଛି ସଙ୍ଗ ନାହିଁ କାହିଁ ।। ୧୫୧
ଆକାଶଠାରୁ ଗୁଣ ଏତେ । ଶିକ୍ଷାକୁ କଲି ମୁଁ ଜଗତେ ।। ୧୫୨
୪୩ ମହାଭୂତରେ ଯେ ଘଟିତ । କାଳରେ ହୋଏ ବିନିର୍ମିତ ।। ୧୫୩
ସେ ଦେହଆଦିରେ ପୁରୁଷ । ପୃଥକ ଅଟଇ ଅବଶ୍ୟ ।। ୧୫୪
ପବନେ ହୁଅନ୍ତେ ଚାଳିତ । ମେଘ ଆଦିରେ ଟି ଯେମନ୍ତ ।। ୧୫୫
ଆକାଶ ଛନ୍ନ ହୋଇଥାଇ । ବାସ୍ତବ ପୃଥକ ଅଟଇ ।। ୧୫୬
୪୪ ନିର୍ମଳ ହେବ ସ୍ୱଭାବରେ । ସ୍ନେହ କରିବ ସର୍ବଠାରେ ।। ୧୫୭
ମଧୁର ବଚନ କହିବ । ପ୍ରାଣିଙ୍କ ତୀର୍ଥପ୍ରାୟେ ହେବ ।। ୧୫୮
ଦର୍ଶନ-ସ୍ପର୍ଶନ-କୀର୍ତ୍ତନେ । ହୋଇବ ଜଳର ସମାନେ ।। ୧୫୯
ତୀର୍ଥ ଅଟଇ ଯେହ୍ନେ ଜଳ । ମଧୁର ସୁସ୍ନିଗ୍ଧ ନିର୍ମଳ ।। ୧୬୦
ଏଣୁ ଏତେକ ନିଜ ଗୁଣ । ଜଳରୁ ଶିଖିଲି ମୁଁ ପୁଣ ।। ୧୬୧
୪୫ ଆତ୍ମା ସଂଯତ କରି ନିତି । ମୁନି କରିବ ଅଗ୍ନିରୀତି ।। ୧୬୨
ତେଜସ୍ୱୀ ତପସ୍ୟାସଂଯୁତ । ଉଦରପାତ୍ର ଅକ୍ଷୋଭିତ ।। ୧୬୩

| | | | | |
|---|---|---|---|---|
| | ସମସ୍ତ କରିବ ଭୋଜନ | । ନ ଘେନି ଦାତାପାପମାନ | ।। | ୧୬୪ |
| | ତେଜସ୍ୱୀ ଅଗ୍ନି ସର୍ବ ଖାଇ | । ଯେସନେ ଭସ୍ମକୁ ଛାଡ଼ଇ | ।। | ୧୬୫ |
| ୪୬ | କାହିଁରେ ହୋଇବ ଅଦୃଶ୍ୟ | । କଉଁ ସ୍ଥାନରେ ହେବ ଦୃଶ୍ୟ | ।। | ୧୬୬ |
| | ଶ୍ରେୟ ବାଞ୍ଛନ୍ତି ଯେତେ ଜନ | । ଘେନିଣ ତାଙ୍କ ସେବାମାନ | ।। | ୧୬୭ |
| | ଭୁଞ୍ଜିବ ସମସ୍ତ ଗୃହରେ | । ଦାତାମାନଙ୍କର ନିତ୍ୟରେ | ।। | ୧୬୮ |
| | ଯେ ଭୂତ ଭବିଷ୍ୟକଲ୍ମଷ | । ତା' ସର୍ବ କରନ୍ତେ ବିନାଶ | ।। | ୧୬୯ |
| | ପର ଦିଅନ୍ତେ ହବିର୍ଭାଗ | । ଯେସନେ ଅଗ୍ନି କରେ ଭୋଗ | ।। | ୧୭୦ |
| | ଦୃଶ୍ୟ ଅଦୃଶ୍ୟ କାହିଁ କାହିଁ | । ଯାଜ୍ଞିକପାପ ବିନାଶଇ | ।। | ୧୭୧ |
| ୪୭ | ନିଜ ମାୟାରେ ଏ ସଂସାର | । ସର୍ଜନ କରିଣ ଈଶ୍ୱର | ।। | ୧୭୨ |
| | ଦେବ-ତିର୍ଯ୍ୟଗାଦି ଦେହରେ | । ରହିଣ ଆତ୍ମସ୍ୱରୂପରେ | ।। | ୧୭୩ |
| | ସେ ସେହି ସ୍ୱରୂପ ହୋଇଣ | । ପ୍ରକାଶ ହୋଇଛନ୍ତି ପୁଣ | ।। | ୧୭୪ |
| | ଯେସନେ କାଷ୍ଠ ଅନୁସାରେ | । ଅନଳ ନିଜ ତେଜ ଧରେ | ।। | ୧୭୫ |
| | ସେ ଅଗ୍ନି ଅଟନ୍ତି ମୋ' ଗୁରୁ | । ଏତେକ ଶିକ୍ଷା ତାଙ୍କ ଠାରୁ | ।। | ୧୭୬ |
| ୪୮ | ଅବ୍ୟକ୍ତ ମାର୍ଗ ଅଟେ ଯାର | । ସେ କାଳବେଗରେ ସତ୍ୱର | ।। | ୧୭୭ |
| | ଜନ୍ମରୁ ମରଣ ପର୍ଯ୍ୟନ୍ତେ | । ସ୍ୱଭାବବିକାର ଏ ଯେତେ | ।। | ୧୭୮ |
| | ଏମାନେ ଅଛନ୍ତି ଦେହର | । ଏ ପୁଣି ନାହାନ୍ତି ଆତ୍ମାର | ।। | ୧୭୯ |
| | କଳାମାନଙ୍କର ଯେସନ | । ହେଉଛି କ୍ଷୟବୃଦ୍ଧିମାନ | ।। | ୧୮୦ |
| | ଏ ଯଉଁ କ୍ଷୟବୃଦ୍ଧି ଦୁଇ | । ଏ ପୁଣି ଚନ୍ଦ୍ରମାର ନାହିଁ | ।। | ୧୮୧ |
| | ଏ କଥା ଜାଣି ଚନ୍ଦ୍ରଠାରୁ | । ଚନ୍ଦ୍ରକୁ କଲଇଁ ମୁଁ ଗୁରୁ | ।। | ୧୮୨ |
| ୪୯ | ପ୍ରବାହପ୍ରାୟ ବେଗ ଯାର | । ସେ କାଳବେଗେ ଏ ଦେହର | ।। | ୧୮୩ |
| | ଜନ୍ମମରଣ ଦେଖୁଥାଇ | । ନିତ୍ୟରେ ଆତ୍ମାର ସେ ନାହିଁ | ।। | ୧୮୪ |
| | ଜ୍ୱାଳାର ନାଶ କ୍ଷୟ ଥାଇ | । ସେ ଯେହ୍ନେ ଅଗ୍ନିର ନୁହଇ | ।। | ୧୮୫ |
| | ସେ ଅଗ୍ନିଠାରୁ ପୁଣ ମୁହିଁ | । ଆହୁରି ଏହା ଶିଖିଲଇଁ | ।। | ୧୮୬ |
| ୫୦ | ଇନ୍ଦ୍ରିୟଦ୍ୱାରେ ଅର୍ଥମାନ | । ଗ୍ରହଣ କରି ଧୀର ଜନ | ।। | ୧୮୭ |
| | ଅର୍ଥୀ ହୁଅନ୍ତେ ଉପଗତ | । ତାହାଙ୍କୁ ଦେବଟି ସେ ବିତ୍ତ | ।। | ୧୮୮ |
| | ଅର୍ଜିଲା ଦ୍ରବ୍ୟ ଦେଲି ଦାନ | । ଏହା ନ ବିଚାରିବ ମନ | ।। | ୧୮୯ |
| | କିରଣେ ଯେସନ ଭାସ୍କର | । ଜଳକୁ ହରନ୍ତି ସତ୍ୱର | ।। | ୧୯୦ |
| | ତା' ପୁଣି କାଳେ ବରଷନ୍ତି | । ହରଷ ଶୋକ ନ କରନ୍ତି | ।। | ୧୯୧ |
| ୫୧ | ନିଜ ସ୍ୱରୂପେ ଆତ୍ମା ସ୍ଥିତ | । ଭେଦରେ ନୁହଇ ପ୍ରତୀତ | ।। | ୧୯୨ |
| | ଉପାଧି ପ୍ରତିବିମ୍ବେ ଥାଏ | । ସେ ଉପାଧିକି ଗଲାପ୍ରାଏ | ।। | ୧୯୩ |
| | ଜାଣନ୍ତି ସ୍ଥୂଳବୁଦ୍ଧି ନରେ | । ଆତ୍ମାକୁ ସେ ଭେଦବୁଦ୍ଧିରେ | ।। | ୧୯୪ |
| | ଜଳେ ଦିଶନ୍ତେ ଦିବାକର | । ଯେସନେ ତାକୁ ମୂର୍ଖ ନର | ।। | ୧୯୫ |
| | ମଣନ୍ତି ଜଳେ ଥିଲା ପ୍ରାଏ | । ସେ ତହୁଁ ଭିନ୍ନ ଅତିଶୟେ | ।। | ୧୯୬ |

ସେ ସୂର୍ଯ୍ୟ ଅଟନ୍ତି ମୋ’ ଗୁରୁ । ଏହା ଶିଖିଲି ତାଙ୍କ ଠାରୁ ॥
୫୨ କାହାରି ଠାରେ ସ୍ନେହ ଅତି । ଲାଳନାଦିରେ ଆସକତି ॥
କରିବ ନାହିଁ ବିଜ୍ଞ ଲୋକ । କଲେ ଲଭିବ ଅତିଶୋକ ॥
ସେ ଦୀନବୁଦ୍ଧି ଅତିଶୟେ । ହୁଅଇ କପୋତପରାଏ ॥
୫୩ କେହୁଣି କପୋତ ବନରେ । ବସା କରିଣ ପାଦପରେ ॥
କପୋତୀ ଭାର୍ଯ୍ୟାର ସହିତେ । ରହିଲା ସମ୍ବସର କେତେ ॥
୫୪ କପୋତ ପତିପତ୍ନୀଦ୍ୱୟ । ସ୍ନେହରେ ନିବଦ୍ଧହୃଦୟ ॥
ଦୃଷ୍ଟିରେ ଦୃଷ୍ଟି ସମର୍ପିଣ । ଅଙ୍ଗରେ ଅଙ୍ଗକୁ ଛନ୍ଦିଣ ॥
ଗୃହସ୍ଥାଶ୍ରମୀ ଦୁହେଁ ହେଲେ । ବୁଦ୍ଧିରେ ବୁଦ୍ଧିକି ବାନ୍ଧିଲେ ॥
୫୫ ଶୟନ-ଆସନ-ଗମନ । ଆସ୍ଥାନ-ବାର୍ତ୍ତା-କ୍ରୀଡ଼ାମାନ ॥
ଭୋଜନ ଆଦିରେ ସେ ଦୁଇ । ଏକା ଯୁଗଳଭାବ ହୋଇ ॥
ନିଃଶଙ୍କ ହୋଇଣ ମନରେ । ଭ୍ରମଣ କଲେ ବନାନ୍ତରେ ॥
୫୬ ହାସ୍ୟବଚନ ଦୃଷ୍ଟିପାତେ । କପୋତଚିତ୍ତକୁ ହରନ୍ତେ ॥
କପୋତେ ହୁଅନ୍ତେଣ ପ୍ରୀତି । ହେ ଯଦୁରାଜ ! ସେ କପୋତୀ ॥
ବାଞ୍ଛଇ ଯାହା ଯାହା ଚିତ୍ତେ । ସେ ସେହି ପଦାର୍ଥ ତୁରିତେ ॥
ଅଜିତେନ୍ଦ୍ରିୟ ସେ କପୋତ । କଷ୍ଟେ କରଇ ଉପସ୍ଥିତ ॥
୫୭ ସତୀ ଅଟଇ ସେ କପୋତୀ । ପ୍ରଥମେ ହେଲା ଗର୍ଭବତୀ ॥
ଆପଣା ବସାର ମଧ୍ୟରେ । ନିଜ ପତିର ନିକଟରେ ॥
କାଳ ହୁଅନ୍ତେ ଉପସ୍ଥିତ । ଡିମ୍ବମାନଙ୍କୁ କଲା ଜାତ ॥
୫୮ ହରିର ଅଚିନ୍ତ୍ୟ ଶକ୍ତିରେ । କାଳେ ସେ ଡିମ୍ବମାନଙ୍କରେ ॥
ଚଞ୍ଚୁ ଚରଣ ହେଲା ଜାତ । କୋମଳ ପକ୍ଷଙ୍କ ସହିତ ॥
୫୯ କପୋତ ପତିପତ୍ନୀ ଦୁଇ । ପୁତ୍ରବତ୍ସଳ ଅତି ହୋଇ ॥
ପୋଷିଲେ ଶାବକମାନଙ୍କୁ । ଶୁଣନ୍ତେ ତାଙ୍କ କୂଜିତକୁ ॥
କଳଭାଷଣେ ଶିଶୁଙ୍କର । ସୁଖୀ ହୋଇଲେ ସେ ଆବର ॥
୬୦ ସେ ହୃଷ୍ଟ ଶିଶୁମାନଙ୍କର । ଅଳ୍ପ ଉଡ଼ିବା ମନୋହର ॥
ସୁଖସ୍ପରଶ ପକ୍ଷଘାତେ । ବିମୁଗ୍ଧ ଚେଷ୍ଟିତେ କୂଜିତେ ॥
ସେ ପିତାମାତା ବେନିଜନ । ହରଷ ହେଲେ ଅନୁଦିନ ॥
୬୧ ବିଷ୍ଣୁମାୟାରେ ପରସ୍ପରେ । ସ୍ନେହାନୁବଦ୍ଧ ହୃଦୟରେ ॥
ସେ ଦୀନମତି ବେନି ଜନେ । ମୋହିତ ହୋଇ ପ୍ରତିଦିନେ ॥
ସେ ପୁତ୍ରେ କ୍ଷୁଦ୍ର ହୋଇଥିଲେ । ପରିପୋଷଣ ତାଙ୍କୁ କଲେ ॥
୬୨ କୁଟୁମ୍ବବନ୍ତ ହେ ରାଜନ । ପିତା ଜନନୀ ବେନି ଜନ ॥
ଗଲେ ସେ ଏକ ଦିନକରେ । ପୁତ୍ରଙ୍କ ଆହାର ଅର୍ଥରେ ॥
ଅନ୍ନ ଖୋଜନ୍ତେ ଚିରକାଳ । ସେ ବନେ ଭ୍ରମିଲେ କେବଳ ॥

୬୩ କେହୁଣି ବ୍ୟାଧ ସେ କାଳରେ । ବନେ ଭ୍ରମନ୍ତେ ଯଦୃଚ୍ଛାରେ ।। ୨୩୦
ଆପଣା ବାସସନ୍ନିଧାନେ । ଚରନ୍ତେ କପୋତନନ୍ଦନେ ।। ୨୩୧
ସେଠାରେ ତାଙ୍କୁ ଦେଖିକରି । ଧଇଲା ଜାଲକୁ ବିସ୍ତାରି ।। ୨୩୨
୬୪ ପୁତ୍ରଙ୍କୁ ପୋଷିବା କାର୍ଯ୍ୟରେ । ଯେ ଅତି ଉତ୍ସୁକ ନିତ୍ୟରେ ।। ୨୩୩
କପୋତ କପୋତୀ ସେ ବେନି । ଶିଶୁଙ୍କ ଭକ୍ଷଦ୍ରବ୍ୟ ଘେନି ।। ୨୩୪
ଆପଣା ବସାରେ ତୁରିତ । ଆସି ହୋଇଲେ ଉପସ୍ଥିତ ।। ୨୩୫
୬୫ ନିଜ ବାଳକସୁତେ ଭଲେ । ବନ୍ଧନ ହୋଇଛନ୍ତି ଜାଲେ ।। ୨୩୬
କପୋତୀ ଦେଖିଣ ଏମନ୍ତ । ଧାଇଁଲା କାନ୍ଦିଣ ବହୁତ ।। ୨୩୭
କାନ୍ଦନ୍ତେ ନିଜ ସୁତମାନେ । ଅତିଦୁଃଖିତ ହେଲା ମନେ ।। ୨୩୮
୬୬ ବହୁତ ସ୍ନେହବଦ୍ଧ ହୋଇ । ବିଷ୍ଣୁମାୟାରେ ମୋହ ଯାଇ ।। ୨୩୯
ଦୀନ ହୋଇଛି ନିଜ ମତି । ନିଜ ଇଚ୍ଛାରେ ସେ କପୋତୀ ।। ୨୪୦
ପୁତ୍ରବନ୍ଧନ ଦେଖି କରି । ଜାଲେ ପଡ଼ିଲା ଜ୍ଞାନ ହାରି ।। ୨୪୧
୬୭ ଆତ୍ମାରୁ ଅଧିକ ଯେ ପ୍ରିୟ । ନିବଦ୍ଧ ହେଲେ ସେ ତନୟ ।। ୨୪୨
ଆପଣା ସମାନ ଭାର୍ଯ୍ୟା ହିଁ । ବଦ୍ଧ ହୋଇଲା ଜାଲେ ଯାଇଁ ।। ୨୪୩
କପୋତ ଦେଖି ଦୁଃଖୀ ହେଲା । ରୋଦନ ଅତିଦୁଃଖେ କଲା ।। ୨୪୪
୬୮ ବିକଳେ କରଇ ରୋଦନ । ଦେଖ ମୋ ଅଭାଗ୍ୟକୁ ଜନ ।। ୨୪୫
ଗୃହେ ସନ୍ତୋଷ ଲଭି ନାହିଁ । କି କାର୍ଯ୍ୟ କଲି ଅବା କାହିଁ ।। ୨୪୬
ଦୁର୍ବୁଦ୍ଧି ଅଟଇ ଆବର । ଅଳପ ପୁଣ୍ୟ ଥିଲା ମୋର ।। ୨୪୭
ଧର୍ମାର୍ଥକାମରେ ସଂଯୁତ । ଗୃହସ୍ଥାଶ୍ରମ ହେଲା ହତ ।। ୨୪୮
୬୯ ଏ ଭାର୍ଯ୍ୟା ମୋତେ ଅନୁକୂଳ । ମୋ' ଅନୁରୂପ ଏ କେବଳ ।। ୨୪୯
ମୋତେ ଏ ପତିବ୍ରତା ନାରୀ । ଶୂନ୍ୟ ଗୃହରେ ଛାଡ଼ି କରି ।। ୨୫୦
ସାଧୁ ପୁତ୍ରଙ୍କ ସହିତରେ । ଦେଖ ଯାଉଛି ସ୍ୱର୍ଗପୁରେ ।। ୨୫୧
୭୦ ସେହି ମୁଁ ହେଲି ଏବେ ଦୀନ । ମଲେ ମୋ' ବନିତା ନନ୍ଦନ ।। ୨୫୨
ନିଜ କୁଟୁମ୍ବେ ହେଲି ହୀନ । ଦୁଃଖିତ ହେଲା ମୋ' ଜୀବନ ।। ୨୫୩
ଏବେ ଏ ଶୂନ୍ୟ ଗୃହେ ଥାଇ । ଆଉ ମୁଁ କି କରିବି ଜୀଇ ।। ୨୫୪
୭୧ ସେ ରୂପେ ପୁତ୍ର ଭାର୍ଯ୍ୟା ଅତି । ରଜ୍ଜୁରେ ବଦ୍ଧ ହୋଇଛନ୍ତି ।। ୨୫୫
ମୃତ୍ୟୁ ହେଲାଣି ଉପସ୍ଥିତ । ଜ୍ଞାନ ହୋଇଲା ବିନିହତ ।। ୨୫୬
ଏରୂପେ ଦେଖି ସେ କପୋତ । କୃପଣ ଅତି ଅପଣ୍ଡିତ ।। ୨୫୭
ଦେଖନ୍ତେ ଆପଣା ଇଚ୍ଛାରେ । ପଡ଼ିଲା ଯାଇଁ ସେ ଜାଲରେ ।। ୨୫୮
୭୨ ଗୃହସ୍ଥାଶ୍ରମୀ କପୋତକୁ । ସେ କପୋତୀକି ତା' ସୁତଙ୍କୁ ।। ୨୫୯
ସେ କ୍ରୂରକର୍ମା ବ୍ୟାଧ ପୁଣ । ଘେନିଣ ଉତ୍ତମ କରିଣ ।। ୨୬୦
କାର୍ଯ୍ୟ ହୁଅନ୍ତେ ସିଦ୍ଧ ତାର । ଚଳିଲା ଗୃହକୁ ସତ୍ୱର ।। ୨୬୧

| | | | | |
|---|---|---|---|---|
| ୭୩ | ଏମନ୍ତରୂପେ ହେ ରାଜନ | । କୁଟୁମ୍ବବନ୍ତ ଯଉଁ ଜନ | ।। | ୨୬୨ |
| | କୃପଣ ଶାନ୍ତଚିତ୍ତ ନୋହି | । ବ୍ୟର୍ଥ ଦୁଃଖରେ ପଡ଼ିଥାଇ | ।। | ୨୬୩ |
| | କୁଟୁମ୍ବ କରନ୍ତେ ପୋଷଣ | । ସେହି କୁଟୁମ୍ବ ସହିତେଣ | ।। | ୨୬୪ |
| | ଶୀର୍ଣ୍ଣ ହୁଅଇ ଅତିଶୟେ | । ଦେଖ ସେ କପୋତପରାଏ | ।। | ୨୬୫ |
| ୭୪ | ଯେ ଅପାବୃତ ମୁକ୍ତିଦ୍ୱାର | । ଲଭି ସେ ମନୁଷ୍ୟଶରୀର | ।। | ୨୬୬ |
| | ଗୃହରେ କପୋତପରାଏ | । ଯେ ଅତି ଆସକତ ହୋଏ | ।। | ୨୬୭ |
| | ଉଚ୍ଚରୁ ପଡ଼ିଲା ତଳକୁ | । ଏରୂପେ ଜାଣିମ ତାହାକୁ | ।। | ୨୬୮ |
| | ଏଣୁ ମୋ ଗୁରୁ ସେ କପୋତ | । ତା' ଠାରୁ ଶିଖିଲି ଏମନ୍ତ | ।। | ୨୬୯ |
| | ଏ ଅବଧୂତ-ଯଦୁଙ୍କର | । ସଂବାଦ ଅତି ମନୋହର | ।। | ୨୭୦ |
| | ଯେ ନିଜ ଭକ୍ତ ଉଦ୍ଧବଙ୍କୁ | । କହିଲେ ଏ ପୂର୍ବ ବାକ୍ୟକୁ | ।। | ୨୭୧ |
| | ସେ କୃଷ୍ଣପାଦପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁ ମତି | ।। | ୨୭୨ |
| | ସୁଜନେ ନ ଧର ମୋ ଦୋଷ | । ଶୁଣି ଏ ଗୀତ ହୁଅ ତୋଷ | ।। | ୨୭୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ ଶ୍ରୀମଦବଧୂତଚରିତଂ
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେଽଜଗରାଦିଭ୍ୟୋ ନବଭ୍ୟଃ ଶିକ୍ଷିତଂ ହରିଃ ।
ଅବଧୂତଗିରା ପ୍ରାହ ବିବେକାୟୋଦ୍ଧବଂ ପ୍ରତି ।। ୧

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ଅବଧୂତ ଦ୍ୱିଜ | । ଶୁଣ ହେ ଯଦୁ ମହାରାଜ | ।। | ୧ |
| | ଇନ୍ଦ୍ରିୟଗଣସୁଖ ଯେହି | । ସ୍ୱର୍ଗେ ନରକେ ସେ ହୁଅଇ | ।। | ୨ |
| | ପ୍ରାଣିଙ୍କ ଦୁଃଖ ଯଉଁରୂପେ | । ହୁଅଇ ସୁଖ ହିଁ ସେରୂପେ | ।। | ୩ |
| | ଏ ହେତୁ ପଣ୍ଡିତ ମାନବ | । ତା' କିଛି ଇଚ୍ଛା ନ କରିବ | ।। | ୪ |
| ୨ | ଦିବ୍ୟ ବହୁତ ଅନ୍ନଗ୍ରାସ | । ଅଥବା ଅଳପ ବିରସ | ।। | ୫ |
| | ଯେ ଆସି ମିଳିବ ଦୈବରେ | । ଉଦାସ ହୋଇଣ ତହିଁରେ | ।। | ୬ |
| | ଅଜଗରର ବୃତ୍ତି ଘେନି | । ଗ୍ରାସ କରିବ ତାହା ମୁନି | ।। | ୭ |
| ୩ | ଦଇବେ ନ ମିଳିଲେ ତହିଁ | । ବହୁତ ଦିନ ଥିବ ଶୋଇ | ।। | ୮ |
| | କିଛି ଉଦ୍ୟମ ନ କରିଣ | । ନିଜ ଆହାରକୁ ଛାଡ଼ିଣ | ।। | ୯ |
| | ସେ ଜ୍ଞାନିଜନ ଅତିଶୟେ | । ସେ ଅଜଗରସର୍ପପ୍ରାଏ | ।। | ୧୦ |
| | ଦଇବ ନିଶ୍ଚେ ଆଣିଦେବ | । ଏମନ୍ତ ଧୈର୍ଯ୍ୟ ଧରିଥିବ | ।। | ୧୧ |

୪ ଦେହ-ଇନ୍ଦ୍ରିୟ-ମନୋବଳ । ଏଣେ ଯେ ସଂଯୁତ କେବଳ ॥
ସେ ଅକର୍ମକ ଦେହ ଧରି । ଇନ୍ଦ୍ରିୟବନ୍ତ ହୋଇ କରି ॥
କିଛି ହିଁ ଚେଷ୍ଟା ନ କରଇ । ଶୁଅନ୍ତେ ସ୍ୱାର୍ଥେ ଦୃଷ୍ଟି ଥାଇ ॥
ସେ ଅଜଗର ମୋର ଗୁରୁ । ଏମନ୍ତ ଶିଖିଲି ତା' ଠାରୁ ॥
୫ ବାହ୍ୟେ ପ୍ରସନ୍ନ ଭାବ ନିତ୍ୟେ । ଗମ୍ଭୀରଭାବ ଅନ୍ତର୍ଗତେ ॥
ଅତି ଅଲକ୍ଷ୍ୟ ଅଭିପ୍ରାୟ । ଦୁର୍ଲଙ୍ଘ୍ୟ ଅଟେ ଅତିଶୟ ॥
କାଳ-ଦେଶରେ ସେ ଅଜ୍ଞାତ । କାହିଁରେ ନୁହଇ କ୍ଷୋଭିତ ॥
ନିଶ୍ଚଳ ହେଲେ ଜଳମାନ । ସମୁଦ୍ର ଦିଶଇ ଯେସନ ॥
ସମୁଦ୍ରପ୍ରାଏ ଏତେ ଗୁଣେ । ସଂଯୁତ ହେବ ଅନୁକ୍ଷଣେ ॥
୬ ବରଷାକାଳେ ନଦୀଙ୍କରେ । ସମୁଦ୍ର ଯେମନ୍ତ ରୂପରେ ॥
ପୂର୍ଣ୍ଣ ହେଲେହେଁ ନ ବଢ଼ଇ । ଗ୍ରୀଷ୍ମକାଳରେ ନ ଶୁଖଇ ॥
ସେରୂପେ ବିଷ୍ଣୁଭକ୍ତ ଜନ । ହରଷ ନୋହେ ଥିଲେ ଧନ ॥
ସେ ଧନ ହୁଅନ୍ତେ ବିନାଶ । କିଛି ହିଁ ନୁହଇ ବିରସ ॥
ଏଣୁ ସିନ୍ଧୁକୁ ଗୁରୁ କଲି । ଏ ଗୁଣ ତା' ଠାରୁ ଶିଖିଲି ॥
୭ ଦେବତାମାୟା ଅଟେ ନାରୀ । ତା' ଦିବ୍ୟରୂପ ଦେଖି କରି ॥
ତା' ଭାବେ ମୋହିତ ହୋଇଣ । ନ ଜିଣି ସ୍ୱଇନ୍ଦ୍ରିୟଗଣ ॥
ଲୋଭିତ ହୁଅନ୍ତେ ତହିଁରେ । ଅତ୍ୟନ୍ତ ଘୋର ନରକରେ ॥
ହେ ନୃପ ପଡ଼ଇ ସେ ଏକ । [1]ଅଗ୍ନିରେ ପତଙ୍ଗପ୍ରାୟେକ ॥
୮ ମାୟାରେ ଅଟେ ଯେ ନିର୍ମାଣ । ନାରୀ-ସୁବର୍ଣ୍ଣ-ଆଭରଣ ॥
ଅମ୍ବର ଆଦି ଦ୍ରବ୍ୟଙ୍କରେ । ଲୋଭିତ ହୁଅନ୍ତେ ନିତ୍ୟରେ ॥
କରନ୍ତେ ଉପଭୋଗମତି । ପତଙ୍ଗପରାଏ ଝଟିତି ॥
ଦୃଷ୍ଟି ନ କରି ପରଲୋକେ । ସେ ମୂଢ଼ ପଡ଼ଇ ନରକେ ॥
ଗୁରୁ କରି ସେ ପତଙ୍ଗକୁ । ଶିଖିଲି ଏ ଗୁଣମାନଙ୍କୁ ॥
୯ ଯେତେକେ ଦେହରକ୍ଷା ହେବ । [2]ତେତେକ ଗ୍ରହଣ କରିବ ॥
ଅଳପ ଅଳପ କରିଣ । ସେ ଗ୍ରାସ କରିବ ଭକ୍ଷଣ ॥
ଗୃହେ ନ ଦେଇ ପୀଡ଼ାମାନ । ନ ରହି କରି ଏକସ୍ଥାନ ॥
ମଧୁକରର ବୃତ୍ତି ଘେନି । ନିତ୍ୟରେ ବର୍ତ୍ତିଥିବ ମୁନି ॥
ଯେସନେ ଭ୍ରମର ପଦ୍ମରେ । ରହଇ ତା' ଗନ୍ଧଲୋଭରେ ॥
ସନ୍ଧ୍ୟାସମୟରେ ତପନ । ଅସ୍ତକୁ ଯାଆନ୍ତେ ବହନ ॥

---

୧. ପତଙ୍ଗମାତଙ୍ଗକୁରଙ୍ଗଭୃଙ୍ଗମୀନା ହତାଃ ପଞ୍ଚଭିରେବ ପଞ୍ଚ ।
ଏକଃ ପ୍ରମାଥୀ ସ କଥଂ ନ ହନ୍ୟତେ ଯଃ ସେବତେ ପଞ୍ଚଭିରେବ ପଞ୍ଚ ॥

୨. ତେତେ ପରିଗ୍ରହ ।

| | | | | |
|---|---|---|---|---|
| | ବନ୍ଧ ହୁଅଇ ତା' ଗର୍ଭରେ | । ଏ ରୂପେ ମୁନି ଏ ସଂସାରେ | ।। | ୪୧ |
| | ରହନ୍ତେ ଏକସ୍ଥାନେ ଯାଇ | । ବିଷୟଲୋଭେ ବନ୍ଧ ହୋଇ | ।। | ୪୨ |
| | ଭ୍ରମରଠାରୁ ଏତେ ଗୁଣ | । ଶିଖି ମୁଁ କଲି ଆଚରଣ | ।। | ୪୩ |
| ୧୦ | ଅଳପ ବହୁତ ହୋଇଣ | । ଅଛନ୍ତି ଯେତେ ଶାସ୍ତ୍ରଗଣ | ।। | ୪୪ |
| ୧୨ | ସେ ସର୍ବଠାରୁ ଘେନି ସାର | । କୁଶଳବନ୍ତ ମୁନିବର | ।। | ୪୫ |
| | ସମସ୍ତ ପୁଷ୍ପରୁ ଯେସନ | । ଭୃଙ୍ଗ ଘେନଇ ସାରମାନ | ।। | ୪୬ |
| | କାଲି ଭୁଞ୍ଜିବି ଏହା ଆଉ | । ଏ ସନ୍ଧ୍ୟାସମୟକୁ ଥାଉ | ।। | ୪୭ |
| | ଏ ରୂପେ ଭିକ୍ଷାଦ୍ରବ୍ୟ ଘେନି | । ସଂଗ୍ରହ ନ କରିବ ମୁନି | ।। | ୪୮ |
| | ଘେନିମ କରପାତ୍ର କରି | । ଉଦରପାତ୍ରେ ନେଇ ଭରି | ।। | ୪୯ |
| | ମକ୍ଷିକାପ୍ରାୟେ ଦ୍ରବ୍ୟମାନ | । ରଖିଲେ ହୁଅଇ ନିଧନ | ।। | ୫୦ |
| | ଏହା ଭୁଞ୍ଜିବି ସାୟଂକାଳେ | । କାଲି ଭୁଞ୍ଜିବି ଏହା ବେଳେ | ।। | ୫୧ |
| | ଧନକୁ ଅର୍ଜି ଯେ ଥୋକାଏ | । ରଖଇ ମକ୍ଷିକାପରାଏ | ।। | ୫୨ |
| | ସେ ଦ୍ରବ୍ୟମାନଙ୍କୁ ହିଁ ଘେନି | । ବିନାଶ ହୁଅଇ ସେ ମୁନି | ।। | ୫୩ |
| | ଭ୍ରମରଠାରୁ ଏହା ଶିଖି | । ଭ୍ରମଇଁ ଧନକୁ ଉପେକ୍ଷି | ।। | ୫୪ |
| ୧୩ | ଦାରୁନିର୍ମିତ ନାରୀ କେହି | । ଚରଣେ ଛୁଇଁମଇ ନାହିଁ | ।। | ୫୫ |
| | ସ୍ପରଶ କରେ ଯେବେ ଯତି | । ବନ୍ଧନ ଲଭଇ ଝଟିତି | ।। | ୫୬ |
| | ହସ୍ତିନୀ ଅଙ୍ଗସଙ୍ଗ କରି | । ଯେସନେ ବନ୍ଧ ହୋଏ କରୀ | ।। | ୫୭ |
| ୧୪ | ଆପଣା ମୃତ୍ୟୁର ସମାନ | । ଏମନ୍ତ ଯଉଁ ନାରୀଜନ | ।। | ୫୮ |
| | .ତାହାଙ୍କଠାକୁ ବିଜ୍ଞଜନ | । କେବେ ନ କରିବ ଗମନ | ।। | ୫୯ |
| | ରମଣ କଲେ ତାଙ୍କୁ ଏକେ | । ମାରନ୍ତି ବଳବନ୍ତ ଲୋକେ | ।। | ୬୦ |
| | ବଳ-ଅଧିକ ଗଜମାନେ | । ଗଜକୁ ମାରନ୍ତି ଯେସନେ | ।। | ୬୧ |
| | ଏଣୁ ଗଜକୁ ଗୁରୁ କରି | । ତା' ଶିକ୍ଷା ତା' ଠାରୁ ଆଚରି | ।। | ୬୨ |
| | ନାରୀମାନଙ୍କୁ ଏ ଭୁବନେ | । ସ୍ପରଶ କରିନାହିଁ ମନେ | ।। | ୬୩ |
| ୧୫ | ଅତି ଦୁଃଖରେ ଲୁବ୍‌ଧ ଜନ | । କରିଣ ଥାଇ ଯଉଁ ଧନ | ।। | ୬୪ |
| ୧୬ | ନ ଦେଇ ନ ଖାଇ ତା' ଯେବେ | । ଆନ ଭୁଞ୍ଜଇ ତାହା ତେବେ | ।। | ୬୫ |
| | ମଧୁମକ୍ଷିକା ମଧୁ ନେଇ | । ତରୁକୋଟରେ ରଖିଥାଇ | ।। | ୬୬ |
| | ମଧୁନାଶକ ତାହା ଜାଣି | । ବଳେ ଭୁଞ୍ଜଇ ଯେହ୍ନେ ଆଣି | ।। | ୬୭ |
| | ଦୁଃଖଅର୍ଜିତ ଦ୍ରବ୍ୟଙ୍କରେ | । ଯେ ଗୃହୀ ଶୁଭ ବାଞ୍ଛା କରେ | ।। | ୬୮ |
| | ସେ ଗୃହୀଙ୍କର ଅନ୍ନ ନେଇ | । 'ପ୍ରଥମେଁ ଯତି ତା' ଭୁଞ୍ଜଇ | ।। | ୬୯ |
| | ଯେସନେ ମଧୁଘାତୀ ନରେ | । ମଧୁ ଭୁଞ୍ଜଇ ପ୍ରଥମରେ | ।। | ୭୦ |
| | ମଧୁଘାତୀକି ଗୁରୁ କଲି | । ଦ୍ରବ୍ୟ ଅର୍ଜନ ନ ବାଞ୍ଛିଲି | ।। | ୭୧ |

୧. ଯତିଶ୍ଚ ବ୍ରହ୍ମଚାରୀ ଚ ପକ୍ୱାନ୍ନସ୍ୱାମିନାବୁଭୌ ।
ତୟୋରନ୍ନମଦତ୍ତ୍ୱା ତୁ ଭୁକ୍ତ୍ୱା ଚାନ୍ଦ୍ରାୟଣଂ ଚରେତ୍ ।।

| | | | | | |
|---|---|---|---|---|---|
| ୧୭ | ବନନିବାସୀ ଋଷିଗଣ | । | କେହୁଣି ସ୍ଥାନରେହେଁ ପୁଣ | ।। | ୭୨ |
| | ଶୁଣିମ ନାହିଁ ଗ୍ରାମ୍ୟ ଗୀତ | । | ଶୁଣିଲେ ହୋଇବ ମୋହିତ | ।। | ୭୩ |
| | ଲୁବ୍‌ଧକ-ରମ୍ୟ ଗୀତମାନ | । | ଶ୍ରବଣ କରିଣ ଯେସନ | ।। | ୭୪ |
| | ହରିଣ ବଦ୍ଧ ହେଲା ଯେଣୁ | । | ତାକୁ ମୁଁ ଗୁରୁ କଲି ତେଣୁ | ।। | ୭୫ |
| | କା' ଠାରୁ କିଛି ନ ଶୁଣଇ | । | ନିଃସଙ୍ଗ ହୋଇ ଭ୍ରମୁଥାଇ | ।। | ୭୬ |
| ୧୮ | ନୃତ୍ୟ-ବାଦିତ୍ର-ଗୀତ ଶୁଣି | । | ଗ୍ରାମ୍ୟ ନାରୀଙ୍କ ଠାରୁ ପୁଣି | ।। | ୭୭ |
| | ତାହାଙ୍କ କ୍ରୀଡ଼ାମାନଙ୍କରେ | । | ଆସକ୍ତ ହୁଅନ୍ତେ ନିତ୍ୟରେ | ।। | ୭୮ |
| | ମୃଗୀତନୟ ଋଷ୍ୟଶୃଙ୍ଗ | । | ବଦ୍ଧ ହୋଇଲା କରି ସଙ୍ଗ | ।। | ୭୯ |
| ୧୯ | ଅତ୍ୟନ୍ତ ପ୍ରମାଥୀ[୧] ଜିହ୍ୱାରେ | । | ରସମୋହିତ ହୋଇ ନରେ | ।। | ୮୦ |
| | ତତ୍‌କାଳ ମୃତ୍ୟୁକୁ ଲଭନ୍ତି | । | ଯେଣୁ ଅଟନ୍ତି ଦୁଷ୍ଟମତି | ।। | ୮୧ |
| | [୨]ବଡ଼ଶୀରସଲୋଭେ ମୀନ | । | ଯେସନେ ହୁଅଇ ନିଧନ | ।। | ୮୨ |
| ୨୦ | ପଣ୍ଡିତମାନେ ଯେତେ ଛନ୍ତି | । | ଆହାର ଛାଡ଼ନ୍ତେ ସେ ନିତି | ।। | ୮୩ |
| | ଜିଣନ୍ତି ସ୍ୱ ଇନ୍ଦ୍ରିୟଗଣ | । | କେବଳ ଜିହ୍ୱାକୁ ଛାଡ଼ିଣ | ।। | ୮୪ |
| | ଆହାର ଛାଡ଼ିଲା ଲୋକର | । | ସେ ଜିହ୍ୱା ବଢ଼ଇ ପ୍ରଖର | ।। | ୮୫ |
| ୨୧ | ଅନ୍ୟ ଇନ୍ଦ୍ରିୟକୁ ହିଁ ପୁଣି | । | ଯେଉଁ ପୁରୁଷ ଅଛି ଜିଣି | ।। | ୮୬ |
| | ତେତିକି ବେଳଯାଏ ସେହି | । | କିଛି ଇନ୍ଦ୍ରିୟ ଜିଣି ନାହିଁ | ।। | ୮୭ |
| | ଯାବତ ବେଳ ଯାଏ କିଛି | । | ଜିହ୍ୱା ଇନ୍ଦ୍ରିୟ ନ ଜିଣିଛି | ।। | ୮୮ |
| | ରସ ଜିଣିଲେ ଅତିଶୟ | । | ଜିଣନ୍ତି ସମସ୍ତ ଇନ୍ଦ୍ରିୟ | ।। | ୮୯ |
| | ଏଣୁ ମୀନକୁ କରି ଗୁରୁ | । | ଏହା ମୁଁ ଶିଖିଲି ତା' ଠାରୁ | ।। | ୯୦ |
| | ଜିହ୍ୱାକୁ ରସୁଁ ନିବର୍ତ୍ତାଇ | । | ସଂସାରେ ସୁଖେ ଭ୍ରମୁଥାଇ | ।। | ୯୧ |
| ୨୨ | ପୂର୍ବେ ଯେ ବିଦେହନଗରେ | । | ବେଶ୍ୟାଏ ପିଙ୍ଗଳା ନାମରେ | ।। | ୯୨ |
| | ଥିଲା ସେ ତାହାଠାରୁ କିଛି | । | ମୁଁ ପୁଣି ଶିକ୍ଷା କରିଅଛି | ।। | ୯୩ |
| | ହେ ମହାରାଜ ! ଏବେ ପୁଣ | । | ମୋ' ଠାରୁ କର ତା' ଶ୍ରବଣ | ।। | ୯୪ |
| ୨୩ | ପିଙ୍ଗଳା ବେଶ୍ୟା ଏକଦିନେ | । | ସଙ୍କେତ କଲା ଧନୀ ଜନେ | ।। | ୯୫ |
| | ରତିସ୍ଥାନକୁ ସେ କାନ୍ତକୁ | । | ସାୟଂକାଳରେ ଆଣିମାକୁ | ।। | ୯୬ |
| | ଅତି ଉତ୍ତମ ବେଶ ହୋଇ | । | ରହିଲା ଦ୍ୱାରବାହ୍ୟେ ଯାଇଁ | ।। | ୯୭ |
| ୨୪ | ହେ ନରଶ୍ରେଷ୍ଠ ସେ କାଳରେ | । | ମାର୍ଗେ ଆସନ୍ତେ ଆନ ନରେ | ।। | ୯୮ |
| | ଘେନି ଅଛନ୍ତି ଦ୍ରବ୍ୟମାନ | । | ମୂଲ୍ୟରେ କରିବେ ପ୍ରଦାନ | ।। | ୯୯ |
| | ଯୋଗ୍ୟ ସେ ରତିବିଷୟକୁ | । | ଏ ରୂପେ ଦେଖି ସେ ତାହାଙ୍କୁ | ।। | ୧୦୦ |
| | ବହୁତ ଧନେ ଦେଲା ଚିତ୍ତ | । | ତାହାଙ୍କୁ ନ କଲା ସଂମତ | ।। | ୧୦୧ |

୧. ଦୁର୍ଜୟ ।　　୨. ବଡ଼ଶୀ = ବନିଶୀ କଣ୍ଟା ।

୨୫। ସେ କାଳେ ଏମନ୍ତ ରୂପରେ । ବହୁତ ଲେଉଟନ୍ତେ ନରେ ॥ ୧୦୨
୨୬। ଧନିକ ଆସିବାର ପାଇଁ । ସଂକେତ କରିଥିଲା ରହି ॥ ୧୦୩
ମାର୍ଗେ ଚଳନ୍ତେ ଅନ୍ୟ ଜନେ । ଏମନ୍ତ ବିଚାରଇ ମନେ ॥ ୧୦୪
ବହୁତ ଧନବନ୍ତ ହୋଇ । ଏବେ ହେଁ ଆନ ଜଣେ କେହି ॥ ୧୦୫
ନିଶ୍ଚୟେ ଘେନି ବହୁ ବିତ୍ତ । ମୋତେ ହେବ କି ଉପସ୍ଥିତ ॥ ୧୦୬
ହେ ନୃପ ଏମନ୍ତ ରୂପରେ । ପିଙ୍ଗଳା ଅତି ଦୁରାଶାରେ ॥ ୧୦୭
କଷ୍ଟରେ ଉନ୍ନିଦ୍ର ହୋଇଣ । ନିଜ ଦ୍ୱାରରେ ବସି ପୁଣ ॥ ୧୦୮
ପ୍ରବେଶ ହୋଏ ଭିତରରେ । ପୁଣି ବସଇ ଆସି ଦ୍ୱାରେ ॥ ୧୦୯
ଏମନ୍ତ ରୂପେ ଯାଇ ଆସି । ଅର୍ଦ୍ଧରାତ୍ରକୁ ନେଲା ବସି ॥ ୧୧୦
୨୭ ପିଙ୍ଗଳା କରି ଦ୍ରବ୍ୟଆଶ । ବଦନ ହୋଇଲା ବିରସ ॥ ୧୧୧
ଦୁଃଖିତ ହୁଅନ୍ତେ ତା' ଚିତ୍ତ । ଅତି ନିର୍ବେଦ ହେଲା ଜାତ ॥ ୧୧୨
ଦ୍ରବ୍ୟଚିନ୍ତାକୁ ସେ କାରଣ । ସୁଖ ହିଁ କଲା ବିତରଣ ॥ ୧୧୩
୨୮ ଅତି ନିର୍ବେଦଚିତ୍ତ ହୋଇ । ପିଙ୍ଗଳା ବୋଇଲା ଯା' ତହିଁ ॥ ୧୧୪
ହେ ନୃପ ! ଆମ୍ଭଠାରୁ ପୁଣ । କର ସେ କଥାକୁ ଶ୍ରବଣ ॥ ୧୧୫
ପୁରୁଷଙ୍କର ଆଶାପାଶ । ନିର୍ବେଦଖଡଗେ ବିନାଶ ॥ ୧୧୬
୨୯ ଶୁଣ ହେ ଯଦୁ ନୃପବର । ନିର୍ବେଦ ନୋହିଲେ ଲୋକର ॥ ୧୧୭
ନିଜସଂସାରବନ୍ଧ ଯେହି । ଛାଡ଼ିବାକୁ ତା' ନ ଇଚ୍ଛଇ ॥ ୧୧୮
ମନୁଷ୍ୟ ବିଜ୍ଞାନବିହୀନ । ନ ଛାଡ଼େ ମମତା ଯେସନ ॥ ୧୧୯

ଶ୍ରୀପିଙ୍ଗଳା ଉବାଚ

୩୦ ପିଙ୍ଗଳା ଏମନ୍ତ ରୂପରେ । ନିର୍ବେଦ ବୋଇଲା ଗୃହରେ ॥ ୧୨୦
ମୁଁ ଯେ ନ ଜିଣିଲି ଆତ୍ମାକୁ । ଦେଖ ମୋ ମୋହପଟଳକୁ ॥ ୧୨୧
ମୁଁ ଅତି ମୂର୍ଖ ସ୍ୱଭାବରୁ । ଅତ୍ୟନ୍ତ ତୁଚ୍ଛ ପୁରୁଷରୁ ॥ ୧୨୨
କାମକୁ କାମନା ମୁଁ କଲି । ଯଉଁ କାମରୁ ମୂଢ଼ ହେଲି ॥ ୧୨୩
୩୧ ଯେ ନିତ୍ୟେ ନିକଟେ ଅଛନ୍ତି । ହୃଦୟେ ରମଣ କରନ୍ତି ॥ ୧୨୪
ଐଶ୍ୱର୍ଯ୍ୟପ୍ରଦ ରତିଦାୟୀ । ସେ ଈଶ୍ୱରଙ୍କୁ ଛାଡ଼ି ମୁହିଁ ॥ ୧୨୫
ଯେ ଦୁଃଖ-ଭୟ-ଆଧି-ଶୋକ । ଦିଅଇ ମୋହକୁ ଅନେକ ॥ ୧୨୬
କାମନା ଦେଇ ନ ପାରଇ । ଅତ୍ୟନ୍ତ ତୁଚ୍ଛ ହିଁ ଅଟଇ ॥ ୧୨୭
ସେ ପୁରୁଷକୁ ଏ ନଗରେ । ଭଜିଲି ଅଜ୍ଞାନ ଭାବରେ ॥ ୧୨୮
୩୨ ନିନ୍ଦିତ ଜୀବିକା ଯହିଁରେ । ଏମନ୍ତ ସଂକେତବୃତ୍ତିରେ ॥ ୧୨୯
ବ୍ୟର୍ଥ ମୁଁ ଆତ୍ମାକୁ ସନ୍ତତ । ବହୁତ କଲି ସନ୍ତାପିତ ॥ ୧୩୦
ସ୍ତିରୀଲମ୍ପଟ ଯେ ଅଟନ୍ତି । ଦ୍ରବ୍ୟରେ କରିଥାନ୍ତି ମତି ॥ ୧୩୧
ଶୋଚନାଯୋଗ୍ୟ ଏ ସଂସାରେ । ଏରୂପେ ଛନ୍ତି ଯେତେ ନରେ ॥ ୧୩୨
ତାହାଙ୍କୁ ବିକି ମୁଁ ଆତ୍ମାକୁ । ବାଞ୍ଛିଲି ରତିକି, ଦ୍ରବ୍ୟକୁ ॥ ୧୩୩

୩୩ ହସ୍ତପାଦାଦି ଅସ୍ଥିମାନ । ଯହିଁରେ ସ୍ତମ୍ଭର ସମାନ ॥ ୧୩୪
ପୃଷ୍ଠର ଦୀର୍ଘ ଅସ୍ଥି ଯହିଁ । ଶେଣି ପରାଏ ଅଛି ରହି ॥ ୧୩୫
ବେନି ପାରୁଶ ଅସ୍ଥିମାନ । ଯହିଁରେ ରୁଅର ସମାନ ॥ ୧୩୬
ଚର୍ମ ନଖ ଯେ ଲୋମମାନ । ଯହିଁ ଅଟନ୍ତି ଆଚ୍ଛାଦନ ॥ ୧୩୭
ସ୍ରବିତ ନବ ଛିଦ୍ର ଯହିଁ । ଦ୍ୱାରରୂପରେ ଛନ୍ତି ରହି ॥ ୧୩୮
ଏଣେ ଯେ ହୋଇଛି ନିର୍ମିତ । ଗୃହପରାଏ ଯେ ବିଦିତ ॥ ୧୩୯
ପୂରିଛି ଯେ ବିଷ୍ଠାମୂତ୍ରରେ । ସେ ନରଦେହକୁ ସଂସାରେ ॥ ୧୪୦
ମୋର ବିହୁନେ କଉଁ ନାରୀ । ଭଜିବ ଅବା ଶ୍ରଦ୍ଧା କରି ॥ ୧୪୧
୩୪ ଦେଖ ଏ ବିଦେହନଗରୀ । ଏଥି ମୁଁ ଏକା ମୂଢ଼ ନାରୀ ॥ ୧୪୨
ଯେ କରେ ଆତ୍ମା ସମର୍ପଣ । ସେ ନାରାୟଣଙ୍କୁ ଛାଡ଼ିଣ ॥ ୧୪୩
ମୁଁ ଯେ ଅସତୀ ଏଥି ରହି । ଅନ୍ୟ ଭୋଗକୁ ବାଞ୍ଛୁଥାଇ ॥ ୧୪୪
୩୫ ଆତ୍ମା ସମସ୍ତ ପ୍ରାଣିଙ୍କରି । ସୁହୃଦ ପ୍ରିୟ ନାଥ ହରି ॥ ୧୪୫
ଆତ୍ମାରେ ସମର୍ପି ଆତ୍ମାକୁ । ସେ ଆତ୍ମା ବିକି ଈଶ୍ୱରଙ୍କୁ ॥ ୧୪୬
ତାହାଙ୍କ ସଙ୍ଗେ ରମାପ୍ରାୟେ । କ୍ରୀଡ଼ା କରିବି ଅତିଶୟେ ॥ ୧୪୭
୩୬ ଆଦ୍ୟନ୍ତବନ୍ତ କାମମାନେ । କାମଦ ଅବା ଯଉଁ ଜନେ ॥ ୧୪୮
ଦେବତାମାନେ ଯେ ଅଶେଷ । କାଳେ ଏ ଲଭନ୍ତି ବିନାଶ ॥ ୧୪୯
ଏ ସର୍ବେ ଅବା ଅତିଶୟ । ଭାର୍ଯ୍ୟାର କରିବେ କି ପ୍ରିୟ ॥ ୧୫୦
ଏ ଇହ ପରଲୋକେ କେହି । ହରିବିହୁନେ ସେବ୍ୟ ନାହିଁ ॥ ୧୫୧
୩୭ କେହୁଣି କର୍ମେ ଏ ଜଗତେ । ସେ ଭଗବାନ ବିଷ୍ଣୁ ମୋତେ ॥ ୧୫୨
ନିଶ୍ଚୟେ ହୋଇଲେ ସୁପ୍ରୀତ । ମୁଁ ଯେ ଅତ୍ୟନ୍ତ ଦୁଷ୍ଟଚିତ୍ତ ॥ ୧୫୩
ଯେଣୁ ଏ ନିର୍ବେଦ ମୋହର । ଜନ୍ମିଲା ସୁଖର ଆକର ॥ ୧୫୪
୩୮ ଯେ ଅବା ନିର୍ବେଦକାରଣ । ଏମନ୍ତ କ୍ଳେଶମାନେ ପୁଣ ॥ ୧୫୫
ମୁଁ ମନ୍ଦଭାଗ୍ୟ ମୋହ'ଠାରେ । ଆଉ ନୁହନ୍ତି ଏ ପ୍ରକାରେ ॥ ୧୫୬
ଯେବଣ ନିର୍ବେଦରେ ଜନ । ଛାଡ଼ି ଏ ସଂସାରବନ୍ଧନ ॥ ୧୫୭
ଉତ୍ତମ ହୋଇ ଏ ସଂସାରେ । ଶାନ୍ତିକି ଲଭଇ ମନରେ ॥ ୧୫୮
୩୯ ଗ୍ରାମ୍ୟ ପୁରୁଷମାନଙ୍କରେ । ସଙ୍ଗ ମୁଁ କରିଛି ନିତ୍ୟରେ ॥ ୧୫୯
ଈଶ୍ୱର-କଳା ଉପକାର । ଶିରରେ ଘେନି ମୁଁ ସତ୍ୱର ॥ ୧୬୦
ସେ ଅଧୀଶ୍ୱରଙ୍କୁ ଶରଣ । ପଶୁଛି ଦୁରାଶା ଛାଡ଼ିଣ ॥ ୧୬୧
୪୦ ରମଣ ଆତ୍ମାରୂପୀ ହରି । ତାଙ୍କ ସଙ୍ଗତେ ମୁଁ ବିହରି ॥ ୧୬୨
ସନ୍ତୋଷେ ଶ୍ରଦ୍ଧା କରି ନିତି । ଯଥାଲାଭରେ ଥିବି ବର୍ତ୍ତି ॥ ୧୬୩
୪୧ ସଂସାରକୂପେ ମୁଁ ପଡ଼ିଛି । ବିଷୟେ ବିବେକ ଛାଡ଼ିଛି ॥ ୧୬୪
ଗିଳିଛି କାଳସର୍ପ ମୋତେ । ଈଶ୍ୱରବିନୁ ଏ ଜଗତେ ॥ ୧୬୫
ଏଥୁଁ କରିବାକୁ ରକ୍ଷଣ । ସମର୍ଥ ହେବ କେ ବା ପୁଣ ॥ ୧୬୬

| | | | | |
|---|---|---|---|---|
| ୪୨ | ଏ ଜଗତକୁ କାଳ-ଅହି | । ଦେଖିବ ଗିଳୁଅଛି ରହି | ॥ | ୧୬୭ |
| | ପ୍ରମତ୍ତ ନୋହିଣ କାହିଁରେ | । ଯେବେ ନିର୍ବେଦ ସବୁଠାରେ | ॥ | ୧୬୮ |
| | ସେକାଳେ ଆତ୍ମାର ଆପଣ | । ଉଦ୍ଧାରନିମନ୍ତେ କାରଣ | ॥ | ୧୬୯ |

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୪୩ | କହନ୍ତି ଅବଧୂତ ଦ୍ୱିଜ | । ଶୁଣ ହେ ଯଦୁ ମହାରାଜ | ॥ | ୧୭୦ |
| | ଏମନ୍ତ ରୂପେ ବାରନାରୀ | । ବୁଦ୍ଧିରେ ବ୍ୟବସାୟ କରି | ॥ | ୧୭୧ |
| | କାନ୍ତତୃଷ୍ଣାରୁ ଯେହୁ ଜାତ | । କରି ସେ ଦୁରାଶାକୁ ହତ | ॥ | ୧୭୨ |
| | ଶାନ୍ତିକି ଲଭି କରି ଚିତ୍ତେ | । ଶଯ୍ୟାରେ ଶୋଇଲା ନିଶ୍ଚିନ୍ତେ | ॥ | ୧୭୩ |
| ୪୪ | ନିଶ୍ଚେ ପ୍ରତ୍ୟାଶା ଅତିଦୁଃଖ | । ନିରାଶଭାବ ମହାସୁଖ | ॥ | ୧୭୪ |
| | କାନ୍ତପ୍ରତ୍ୟାଶା ଛାଡ଼ି କରି | । ଯେହ୍ନେ ପିଙ୍ଗଳା ବାରନାରୀ | ॥ | ୧୭୫ |
| | ନିଜ ଶଯ୍ୟାରେ ସେ କାଳରେ | । ଶୋଇଲା ଅତି ହରଷରେ | ॥ | ୧୭୬ |
| | ଏଣୁ ସେ ପିଙ୍ଗଳା ମୋ' ଗୁରୁ | । ଏହା ଶିଖିଲି ତାହା ଠାରୁ | ॥ | ୧୭୭ |
| | କାହାକୁ ନ କରି ମୁଁ ଆଶ | । ସୁଖେ ଭ୍ରମଇ ଦଶ ଦିଶ | ॥ | ୧୭୮ |
| | ହେ କୃଷ୍ଣ କମଳଲୋଚନ | । ତୁମ୍ଭେ ଯେ ପତିତପାବନ | ॥ | ୧୭୯ |
| | ମୁଁ ଯେ ପତିତ ଦୀନବନ୍ଧୁ | । ମୋତେ ଉଦ୍ଧର ଭବସିନ୍ଧୁ | ॥ | ୧୮୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଅଜଗରାଦିନବଗୁରୂଣାଂ ବର୍ଣ୍ଣନଂ
ନାମାଷ୍ଟମୋଽଧ୍ୟାୟଃ ॥

## ନବମ ଅଧ୍ୟାୟ

ନବମେ କୁରରାଦିଭ୍ୟୋ ଦେହତଶ୍ଚୋପଶିକ୍ଷିତମ୍ ।
ଶ୍ରୁତ୍ୱା ଯଦୁଃ କୃତାର୍ଥୋଽଭୂଦିତି କୃଷ୍ଣେନ ବର୍ଣ୍ଣିତମ୍ ॥ ୧

ଶ୍ରୀବ୍ରାହ୍ମଣ ଉବାଚ

| | | | | |
|---|---|---|---|---|
| ୧ | କହନ୍ତି ପୁଣ ଅବଧୂତ | । ଲୋକର ଯେ ପ୍ରିୟ ଅତ୍ୟନ୍ତ | ॥ | ୧ |
| | ହେ ନୃପ ! ସେ ପରିଗ୍ରହ ହିଁ | । ଦୁଃଖନିମିତ୍ତରେ ହୁଅଇ | ॥ | ୨ |
| | ଏମନ୍ତ ଜାଣଇ ଯେ ଜନ | । ଅଟଇ ପରିଗ୍ରହହୀନ | ॥ | ୩ |
| | ସେ ପୁଣି ଲଭଇ ନିତ୍ୟରେ | । ବହୁତ ସୁଖ ଏ ସଂସାରେ | ॥ | ୪ |
| ୨ | କୁରର ପକ୍ଷୀ ଆମିଷକୁ | । ଗ୍ରହଣ କରନ୍ତେ ତାହାକୁ | ॥ | ୫ |
| | ଆମିଷହୀନ ବଳବନ୍ତ | । ଅନ୍ୟ ପକ୍ଷିଏ କଲେ ଘାତ | ॥ | ୬ |
| | ସେ ଆମିଷକୁ ସେ ଛାଡ଼ିଲା | । ଉତ୍ତମ ସୁଖକୁ ଲଭିଲା | ॥ | ୭ |
| | ସେ କୁରରକୁ ଗୁରୁ କଲି | । ପ୍ରତିଗ୍ରହାଦି ମୁଁ ଛାଡ଼ିଲି | ॥ | ୮ |
| ୩ | ଯେ ମାନ ଅପମାନ ଦୁଇ | । ଏ ବେନି ମୋର ଠାରେ ନାହିଁ | ॥ | ୯ |

ପୁତ୍ର କଳତ୍ର ଆଦିଙ୍କର । ଯେ ଚିନ୍ତା ସେ ନାହିଁ ମୋହର ।।
ଆତ୍ମାରେ ମୋର କ୍ରୀଡ଼ା ନିତି । ଆତ୍ମାରେ କରିଥାଇଁ[୧] ପ୍ରୀତି ।।
ବାଳକପ୍ରାୟେ ଏ ସଂସାରେ । ଭ୍ରମଣ କରଇ ସୁଖରେ ।।
୪ ଯେ ଅବା ବାଳକ ଅଜ୍ଞାନ । ଅଟଇ ଉଦ୍ୟମବିହୀନ ।।
ପ୍ରକୃତିପର ଯେ ଈଶ୍ୱର । ତାଙ୍କୁ ଭଜିଛି ଯଉଁ ନର ।।
ଏ ବେନି ଚିନ୍ତାରୁ ମୁକତ । ପରମାନନ୍ଦରେ ନିର୍ବୃତ ।।
କରି ସେ ବାଳକକୁ ଗୁରୁ । ଏତେକ ଶିଖି ତାହାଠାରୁ ।।
ଛାଡ଼ି ଉଦ୍ୟମ ଚିନ୍ତା ଦୁଇ । ସୁଖେ ସଂସାରେ ଭ୍ରମୁଥାଇ ।।
୫ ଶୁଣ ହେ ଯଦୁ ଦଣ୍ଡଧାରୀ । କେହୁଣି ସମୟେ କୁମାରୀ ।।
ନିଜ ବରଣନିମିତ୍ତରେ । ଗୃହେ ମିଳନ୍ତେ ଆସି ନରେ ।।
ପିତାମାତାଦି ବନ୍ଧୁମାନେ । କେହି ନ ଥାନ୍ତେ ତା' ସଦନେ ।।
ସେ ନରମାନଙ୍କୁ ଆପଣ । ସତ୍‌କାର କଲା ତତକ୍ଷଣ ।।
୬ କୁମାରୀ ନରମାନଙ୍କର । ଭୋଜନନିମିତ୍ତେ ସତ୍ୱର ।।
ହେ ନୃପ ! ଏକାନ୍ତ ସ୍ଥଳରେ । ଧାନ୍ୟ କୁଟିଲା ବେନିକରେ ।।
ହସ୍ତରେ ଶଙ୍ଖା ଥିଲା ତାର । ଶବଦ କଲା ସେ ଅପାର ।।
୭ କୁମାରୀ ଶଙ୍ଖାଧ୍ୱନି ଶୁଣି । ଏ ଅତିନିନ୍ଦା ବୋଲି ମଣି ।।
ସେ ବୁଦ୍ଧିମତୀ ଅତିଶୟେ । ଶଙ୍ଖାରୁ ପଟିଏ ପଟିଏ ।।
ବେନି ହସ୍ତରୁ ଦୂର କଲା । ପୁଣି ସେ ଧାନ୍ୟକୁ କୁଟିଲା ।।
୮ ଶବଦ କରନ୍ତେ ଅନେକ । ପୁଣି କାଢ଼ିଲା ଏକ ଏକ ।।
ସବୁ କାଢ଼ିଲା ଏ ରୂପରେ । ରଖିଲା ବେନି ବେନିକରେ ।।
ପୁଣି କୁଟନ୍ତେ ସେ କାମିନୀ । ଶବଦ କଲା ଶଙ୍ଖା ବେନି ।।
ତହିଁରୁ ଏକ ଏକ ପୁଣ । ବାହାର କଲା ତତକ୍ଷଣ ।।
କୁଟନ୍ତେ ଏକ ଶଙ୍ଖା ତହିଁ । ଶବଦ ନ କଲା କିଛି ହିଁ ।।
୯ ସେ କୁମାରୀକି ଗୁରୁ କରି । ଏ ଶିକ୍ଷା ତା' ଠାରୁ ଆଚରି ।।
ସମସ୍ତ ଲୋକେ ହେ ରାଜନ । ସୁଖେ ମୁଁ କରଇ ଗମନ ।।
ଲୋକଙ୍କ ତତ୍ତ୍ୱ ଏ ରୂପରେ । ଭ୍ରମଇଁ ଜାଣିମା ଇଚ୍ଛାରେ ।।
୧୦ ଦେଖ ବହୁତ ଲୋକମାନେ । ଯେବେ ବସନ୍ତି ଏକସ୍ଥାନେ ।।
କଳହ ହୁଅଇ ଉତ୍‌ପନ୍ନ । ନାନାପ୍ରକାର ବାର୍ତ୍ତାମାନ ।।
ହୁଅଇ ଥିଲେ ଦୁଇ ଜଣ । ଏ କଥା ଅଟଇ ପ୍ରମାଣ ।।
ଏଣୁ ମୁଁ ଏକା ଭ୍ରମୁଥାଇ । କୁମାରୀକଙ୍କଣପରାଇ ।।
୧୧ ବୈରାଗ୍ୟ-ଅଭ୍ୟାସଯୋଗରେ । ମନ ନିଶ୍ଚଳ କରି ଧୀରେ ।।

---

୧. ଲଭିଥାଇଁ ।

ଆସନ ନିଃଶ୍ୱାସକୁ ଜିଣି । ଅଳସ ଭାବ ଛାଡ଼ି ପୁଣି ।।
ଯେବେ ଚଞ୍ଚଳ ନିଜ ମନ । ଈଶ୍ୱରଠାରେ କରେ ଲୀନ ।।
୧୨ ଅସଙ୍ଗ କର୍ମବାସନା ହିଁ । କ୍ରମଶ କ୍ରମଶ ଛାଡ଼ଇ ।।
ବଢ଼ନ୍ତେ ସତ୍ତ୍ୱଗୁଣ ପୁଣ । ଛାଡ଼ିଣ ରଜ ତମ ଗୁଣ ।।
ତଦନ୍ତେ ମୁକ୍ତି ଲଭି ତହିଁ । ନିର୍ଗୁଣ ବ୍ରହ୍ମେ ଲୀନ ହୋଇ ।।
ନାଶ ହୁଅନ୍ତେ କାଷ୍ଠମାନ । ଅନଳ ଲିଭଇ ଯେସନ ।।
୧୩ ସେ କାଳେ ପୁଣି ନିଜ ଚିତ୍ତ । ଆତ୍ମାରେ ହୁଅନ୍ତେ ସଂଯୁତ ।।
ବାହ୍ୟ ଅନ୍ତର ବେନିଠାଇଁ । କିଛି ହିଁ ଜାଣି ନ ପାରଇ ।।
ଦେଖ ଯେସନେ ଶରକାର । ପାଖେ ଚଳନ୍ତେ ନୃପବର ।।
ତାହାକୁ ଜାଣି ନ ପାରିଲା । ଶରେ ସେ ଚିତ୍ତ ଦେଇଥିଲା ।।
ଏ ଶିକ୍ଷା ଶିଖିଲି ତା' ଠାରୁ । ଶରକାରକୁ କଲି ଗୁରୁ ।।
୧୪ ଆତ୍ମାରେ ନିଜ ଚିତ୍ତ ଦେଇ । ସୁଖେ ସଂସାରେ ଭ୍ରମୁଥାଇ ।।
ଯେସନେ ଜନଶଙ୍କା ବହି । ସର୍ପ ଭ୍ରମଇ ଏକା ହୋଇ ।।
ଗୃହେ ନ ରହେ [୧]ମତ୍ତ ନୋହି । ଏକାନ୍ତସ୍ଥଳେ ଥାଇ ରହି ।।
ସବିଷ-ନିର୍ବିଷ-ପରାଏ । ଗତି-ବିଳାସେ ପ୍ରତ୍ୟେ ନୋହେ ।।
ସହାୟମାତ୍ର ସେ ନ ବାଞ୍ଛି । ଗର୍ଜନ ନ କରଇ କିଛି ।।
ଏ ରୀତି ମୁନି ଏକା ହୋଇ । କରିବ କିଛି ହିଁ ନ କହି ।।
୧୫ କ୍ଷଣଭଙ୍ଗୁର ଯା' ଶରୀର । ଗୃହ-ଆରମ୍ଭ ସେ ଲୋକର ।।
ଦୁଃଖନିମିତ୍ତରେ ହୁଅଇ । ନିତ୍ୟରେ ବିଫଳ ଅଟଇ ।।
ପରନିର୍ମିତ ଗୃହେ ରହି । ସର୍ପ ଯେସନେ ସୁଖ ପାଇ ।।
୧୬ ସେ ନାରାୟଣ ନରହରି । କିଛି ହିଁ ଅପେକ୍ଷା ନ କରି ।।
ପୂର୍ବସର୍ଜିତ ଏ ଜଗତ । ଏହାକୁ କଳ୍ପାନ୍ତେ ତୁରିତ ।।
ସ୍ୱମାୟା କାଳଶକ୍ତିବଳେ । ସଂହାର କରିଣ ସେ କାଳେ ।।
୧୭ ସେ ଆତ୍ମାଧାର ସର୍ବାଶ୍ରୟ । ହେଲେ ସେ ଏକ ଅଦ୍ୱିତୀୟ ।।
୧୮ ଆପଣା ଅନୁଭାବ ଯାର । ସେ କାଳବଳରେ ଆବର ।।
ସମ ହୁଅନ୍ତେ ତିନି ଗୁଣ । ସେ ଆଦିଦେବ ନାରାୟଣ ।।
ପ୍ରକୃତିପୁରୁଷ ଈଶ୍ୱର । ବ୍ରହ୍ମାଦି ଜୀବଙ୍କ ଉପର ।।
ଯେ ମୋକ୍ଷଶବ୍ଦ-ଅଭିଧେୟ । ଯେ ସ୍ୱପ୍ରକାଶ ନିର୍ବିଷୟ ।।
ପରମାନନ୍ଦ ଅଟେ ଯେହି । ଉପାଧି ଛାଡ଼ି ଯେଣୁ ରହି ।।
୧୯ ହେ ଯଦୁରାଜ ଏବେ ଶୁଣ । ସ୍ୱ-ଅନୁଭାବ କାଳେ ପୁଣ ।।
ଯେ ଅଟେ ତ୍ରିଗୁଣସଂଯୁତ । ସେ ମାୟା କରାନ୍ତେ କ୍ଷୋଭିତ ।।
ଆଦ୍ୟରୁ ସୂତ୍ର[୨] କଲା ଜାତ । ତହିଁରୁ ହେଲା ଏ ଜଗତ ।।

---

୧. ଅସାବଧାନ । ୨. କ୍ରିୟାଶକ୍ତିପ୍ରଧାନ ମହତ୍ତତ୍ତ୍ୱ ।

୨୦ କାର୍ଯ୍ୟ ସେ ତିନିଗୁଣଙ୍କର । ତାକୁ ବୋଲନ୍ତି ଏ ପ୍ରକାର ॥ ୭୩
ତ୍ରିଗୁଣାତ୍ମକ ଏ ଜଗତ । ସୂତ୍ରରୁ ହୋଇଛି ସଂଭୂତ ॥ ୭୪
ଯଉଁ ସୂତ୍ରରେ ଏ ବିଶ୍ୱ ହିଁ । ଗୁନ୍ଥିଲା ପ୍ରାୟ ଅଛି ରହି ॥ ୭୫
ଅଧ୍ୟାତ୍ମପ୍ରାଣରୂପେ ଜୀବ । ଯା' ହେତୁ ଲଭଇ ସଂଭବ[୧] ॥ ୭୬
୨୧ ଯେସନେ ଉର୍ଣ୍ଣନାଭି ପୁଣ । ହୃଦରୁ ସୂତ୍ରକୁ କାଢ଼ିଣ ॥ ୭୭
ତାହା ବିସ୍ତାରି ଚକ୍ରାକାରେ । ତା' ମଧ୍ୟେ ଆପଣେ ବିହରେ ॥ ୭୮
ପୁଣି ତା' ସ୍ୱୟେଂ ଗ୍ରାସ କରେ । ମହାବିଷ୍ଣୁ ହିଁ ସେ ରୂପରେ ॥ ୭୯
ଆତ୍ମାରୁ ସର୍ଜି ଏ ଜଗତ । ପାଳି ତା' କାଳେ କରେ ହତ ॥ ୮୦
ଏମନ୍ତ ଦେଖି ତାହାଠାରୁ । କଲି ସେ ଉର୍ଣ୍ଣନାଭି ଗୁରୁ ॥ ୮୧
୨୨ ଯେ ପ୍ରାଣୀ ସ୍ନେହରୁ ଦ୍ୱେଷରୁ । ଅଥବା ଅତ୍ୟନ୍ତ ଭୟରୁ ॥ ୮୨
ଯେବଣ ଯେବଣ ଠାବରେ । ମନକୁ ବୁଦ୍ଧି ସହିତରେ ॥ ୮୩
ଏକାଗ୍ର କରିଣ ଧରଇ । ସେ ସେହି ରୂପକୁ ଲଭଇ ॥ ୮୪
୨୩ କୀଟକୁ ଆଣି ପେଶସ୍କାରୀ । କ୍ରୋଡ଼େ ରଖଇ ରୁଦ୍ଧ କରି ॥ ୮୫
ଭୟେ ସେ କୀଟ ହେ ରାଜନ । କରନ୍ତେ ତା' ରୂପକୁ ଧ୍ୟାନ ॥ ୮୬
ନ ଛାଡ଼ି ସେ ପୂର୍ବ ସ୍ୱରୂପ । ଲଭଇ ପେଶସ୍କାରୀରୂପ ॥ ୮୭
୨୪ ଏତେକ ଗୁରୁଠାରୁ ନିତି । ଏ ରୂପେ ଶିକ୍ଷିତ ମୋ' ମତି ॥ ୮୮
ନିଜ ଦେହରୁ ଏବେ ମୁହିଁ । ଯଉଁ ବୁଦ୍ଧିକି ଶିଖିଲଇଁ ॥ ୮୯
ହେ ପ୍ରଭୁ କହୁଅଛି ପୁଣ । କର ମୋ' ଠାରୁ ତା' ଶ୍ରବଣ ॥ ୯୦
୨୫ ବିରକ୍ତି ବିବେକ ବେନିର । ହେତୁ ଯେ ଅଟଇ ଶରୀର ॥ ୯୧
ସେ ନିଜ ଦେହ ମୋର ଗୁରୁ । ଶୁଣ ଯା' ଶିଖିଲି ଏଥିରୁ ॥ ୯୨
ପ୍ରତିକ୍ଷଣରେ ଦୁଃଖ ନିତି । ଯହିଁରେ ଫଳ ରୂପେ ସ୍ଥିତି ॥ ୯୩
ଏମନ୍ତ ଜନମ ମରଣ । ଏ ଦେହ କରଇ ଗ୍ରହଣ ॥ ୯୪
ଏଣୁ ଏ ତତ୍ତ୍ୱମାନଙ୍କୁ ହିଁ । ଯଥାର୍ଥ କରି ବିଚାରଇ ॥ ୯୫
ତଥାପି ପୁଣି ଏ ଦେହ ହିଁ । ଶୃଗାଳାଦିଙ୍କ ଭକ୍ଷ ହୋଇ ॥ ୯୬
ଏମନ୍ତ ନିଶ୍ଚୟ ଜାଣିଣ । ଭ୍ରମଇ ନିଃସଙ୍ଗ ହୋଇଣ ॥ ୯୭
୨୬ ଦେହାଭିମାନୀ ଯଉଁ ଜନ । ଅତି କଷ୍ଟରେ ଅର୍ଜେ ଧନ ॥ ୯୮
ପୁଣି ସେ ଧନମାନଙ୍କରେ । ସ୍ୱଦେହଭୋଗର ଇଚ୍ଛାରେ ॥ ୯୯
ଭାର୍ଯ୍ୟା ତନୟ ବିତ୍ତମାନ । ପଶୁ କିଙ୍କର ନିକେତନ ॥ ୧୦୦
ନିଜ ଆତ୍ମୀୟ ଲୋକଙ୍କୁ ହିଁ । ବହୁତ ରୂପେ ପୋଷୁଥାଇ ॥ ୧୦୧
ନିଜ ଆୟୁଷ ଅନ୍ତେ ପୁଣ । ସେ ଦେହ ପଡ଼ଇ ତତ୍‌କ୍ଷଣ ॥ ୧୦୨
ଦେହନାଶରେ ତା' ବହୁତ । ଦୁଃଖ ନୁହଇ ସମାପତ ॥ ୧୦୩

---
୧. ଜନ୍ମ ।

ତାର ଦେହାନ୍ତେ ଅତିଶୟେ । କର୍ମ ରହଇ ବୀଜପ୍ରାଏ ॥ ୧୦୪
ଏଣୁ ଏ ପୁରୁଷର ପୁଣ । ବୃକ୍ଷପରାଏ ଧର୍ମ ଜାଣ ॥ ୧୦୫
୨୭ ଦେହାଭିମାନୀ ପୁରୁଷକୁ । ଜିହ୍ୱା ଓଟାରଇ ରସକୁ ॥ ୧୦୬
ପିପାସା କେତେବେଳେ ପୁଣ । ଜଳକୁ କରେ ଆକର୍ଷଣ ॥ ୧୦୭
ଲିଙ୍ଗ ଝିଙ୍କଇ ରତି-ଆଶେ । ଚର୍ମ ଓଟାରଇ ସ୍ପରଶେ ॥ ୧୦୮
ଉଦର ନିଅଇ ଅନ୍ନକୁ । ସେ ରୂପେ ଶ୍ରବଣ ଶବ୍ଦକୁ ॥ ୧୦୯
ଘ୍ରାଣ ଗନ୍ଧକୁ ଓଟାରଇ । ଚଞ୍ଚଳ ନେତ୍ର ରୂପକୁ ହିଁ ॥ ୧୧୦
ନାନା ବିଷୟମାନଙ୍କୁ ହିଁ । କର ଚରଣ ଓଟାରଇ ॥ ୧୧୧
ଗୃହନାୟକକୁ ଯେସନେ । ବହୁତ ସପତଣୀମାନେ ॥ ୧୧୨
ନାନା ଆକ୍ଷେପ କରୁଥାନ୍ତି । କେ କେଉଁଆଡ଼େ ଓଟାରନ୍ତି ॥ ୧୧୩
୨୮ ଯେ ନିଜ ମାୟା ଆତ୍ମଶକ୍ତି । ତେଣେ ସେ ଦେବ ଶିରୀପତି ॥ ୧୧୪
ଶରୀର ନାନା ପରକାର । ସର୍ଜନା କରିଣ ଅପାର ॥ ୧୧୫
ବୃକ୍ଷାଦି ସରୀସୃପ ଯେତେ । ପଶ୍ୱାଦି ବିହଙ୍ଗ ସହିତେ ॥ ୧୧୬
ମଶକ ଆଦି ମତ୍ସ୍ୟମାନ । ଏ ରୂପେ କରିଣ ସର୍ଜନ ॥ ୧୧୭
ସେ ସେହି ଜୀବେ କଦାଚିତ । ସନ୍ତୋଷ ନ ଲଭିଲେ ଚିତ୍ତ ॥ ୧୧୮
ବ୍ରହ୍ମକୁ ପୁଣ ସାକ୍ଷାତ୍‌କାରେ । ଦେଖଇ ଯହିଁରେ ବୁଦ୍ଧିରେ ॥ ୧୧୯
ସର୍ଜି ସେ ପୁରୁଷଦେହକୁ । ଲଭିଲେ ଅତି ହରଷକୁ ॥ ୧୨୦
୨୯ ବହୁତ ଜନମ ଅନ୍ତରେ । ପଣ୍ଡିତମାନେ ଏ ସଂସାରେ ॥ ୧୨୧
ଯେ ଅତି ଅନିତ୍ୟ ପ୍ରକାର । ଦୁର୍ଲଭ ମନୁଷ୍ୟଶରୀର ॥ ୧୨୨
ଦିଅଇ ପୁରୁଷାର୍ଥ ଚାରି । ଭାଗ୍ୟରେ ତାହା ଲଭିକରି ॥ ୧୨୩
ତହିଁରେ ମୃତ୍ୟୁ-ନିରନ୍ତର । ଯାବତ ନ ପଡ଼େ ଶରୀର ॥ ୧୨୪
ତାବତ ମୋକ୍ଷନିମିତ୍ତରେ । ଅଭ୍ୟାସ କରିବ ବେଗରେ ॥ ୧୨୫
ପଶ୍ୱାଦି ସର୍ବଦେହେ ବେଢ଼ି । ବିଷୟ ଅଛି ମୁକ୍ତି ଛାଡ଼ି ॥ ୧୨୬
୩୦ ହେ ନୃପ ! ଏମନ୍ତ ପ୍ରକାରେ । ଜ୍ଞାନସ୍ୱରୂପ ଏ ଆତ୍ମାରେ ॥ ୧୨୭
ବୈରାଗ୍ୟ ଜାତ ହେଲା ମୋର । ସମସ୍ତ ସଙ୍ଗ କରି ଦୂର ॥ ୧୨୮
ଅହଙ୍କାରକୁ ଛାଡ଼ି ପୁଣ । ପୃଥ୍ୱୀରେ କରଇ ଭ୍ରମଣ ॥ ୧୨୯
୩୧ ସଂପୂର୍ଣ୍ଣ ସ୍ଥିର ଜ୍ଞାନ ଯେହି । ଏକା ଗୁରୁରୁ ସେ ନୁହଇ ॥ ୧୩୦
ତେଣୁ ସମସ୍ତ ଋଷିମାନେ । ସଗୁଣ-ନିର୍ଗୁଣ ବିଧାନେ ॥ ୧୩୧
ଯେ ବ୍ରହ୍ମ ଏକ ଅଦ୍ୱିତୀୟ । ତାଙ୍କୁ ବୋଲନ୍ତି ନାନାମୟ ॥ ୧୩୨

ଶ୍ରୀଭଗବାନୁବାଚ

୩୨ କହନ୍ତି ରୁକ୍ମିଣୀରମଣ । ଆହେ ଉଦ୍ଧବ ଏବେ ଶୁଣ ॥ ୧୩୩
ଗଭୀର ଯାହାଙ୍କ ଆଶୟ । ସେ ଅବଧୂତ ଦତ୍ତାତ୍ରେୟ ॥ ୧୩୪

ଏ ରୂପେ କହି ସେ ଯଦୁଙ୍କୁ । ଅନୁଜ୍ଞା ମାଗିଣ ତାହାଙ୍କୁ ।। ୧୩୫
ରାଜାରେ ହୋଇଣ ପୂଜିତ । ଲଭି ବହୁତ ଦଣ୍ଡବତ ।। ୧୩୬
ଯେମନ୍ତ ରୂପେ ଆସିଥିଲେ । ସେ ରୂପେ ଯଦୃଚ୍ଛାରେ ଗଲେ ।। ୧୩୭
୩୩ [୧]ଆମ୍ଭର ପୂର୍ବ ପିତୃଙ୍କର । ପୂର୍ବଜ ଯଦୁ ନୃପବର ।। ୧୩୮
ଅବଧୂତଙ୍କ ବାକ୍ୟ ଶୁଣି । ସମସ୍ତ ସଙ୍ଗ ଛାଡ଼ି ପୁଣି ।। ୧୩୯
ସମସ୍ତଠାରେ ସମଚିତ୍ତ । ହୋଇ ହୋଇଲେ ଅତିଶାନ୍ତ ।। ୧୪୦
ଯେ ଅବଧୂତ ସମ୍ବାଦକୁ । କହିଲେ ଭକ୍ତ ଉଦ୍ଧବଙ୍କୁ ।। ୧୪୧
ସେ କୃଷ୍ଣ ବିପ୍ର ଦୀନବନ୍ଧୁ । ସଂସାରବନ୍ଧନକୁ ଛେଦୁ ।। ୧୪୨

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଅବଧୂତଗୀତଂ ନାମ ନବମୋଽଧ୍ୟାୟଃ ।।

## ଦଶମ ଅଧ୍ୟାୟ

ଚତୁର୍ବିଂଶତିଗୁର୍ବାଖ୍ୟାଲବ୍ଧସଂଭାବନାଭୁବଃ ।
ଉଦ୍ଧବସ୍ୟାତ୍ମତତ୍ତ୍ୱାପ୍ତ୍ୟୈ ସାଧନୋକ୍ତିରତଃ ପରୈଃ ।।
ଦଶମେ ଦେହସଂବନ୍ଧାଦ୍ ସଂସୃତିର୍ନାତ୍ମନଃ ସ୍ୱତଃ ।
ଇତ୍ୟେତଦ୍ ବର୍ଣ୍ଣୟାମାସ ମତାନ୍ତରନିରାସତଃ ।।

ଶ୍ରୀଭଗବାନୁବାଚ

୧ କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ଶୁଣ ମୋ' ବଚନ ।। ୧
ମୁଁ ଯାହା ଅଛି ଆଜ୍ଞା ଦେଇ । ସେ ନିଜ ଧର୍ମେ ମତ୍ତ ନୋହି ।। ୨
ମୋତେ ଆଶ୍ରୟ କରି ପୁଣ । କିଛି କାମନା ନ କରିଣ ।। ୩
ବର୍ଣ୍ଣ-ଆଶ୍ରମ କୁଳାଚାରେ । ଅଭ୍ୟାସ କରିବ ନିତ୍ୟରେ ।। ୪
୨ ବିଷୟବନ୍ତ ଯେତେ ଲୋକେ । ତାଙ୍କର ବିଷୟମାନଙ୍କେ ।। ୫
ସର୍ବ ଆରମ୍ଭକର୍ମଙ୍କରେ । ଫଳ ବିପରୀତପ୍ରକାରେ ।। ୬
ସେ ତତ୍ତ୍ୱଜ୍ଞାନରେ ଦେଖିବ । ସ୍ୱଧର୍ମେ ଶୁଦ୍ଧଚିତ୍ତ ହେବ ।। ୭
୩ ଶୋଇଲା ଲୋକର ଯେସନ । ବ୍ୟର୍ଥ ଅଟଇ ସ୍ୱପ୍ନମାନ ।। ୮
ଯେ ଜନ କରୁଥାଇ ଧ୍ୟାନ । ବ୍ୟର୍ଥ ତା' ମନୋରଥମାନ ।। ୯

୧. କପୋତମୀନହରିଣକୁମାରୀଗଜପନ୍ନଗାଃ ।
ପତଙ୍ଗଃ କୁରରଶ୍ଚାଷ୍ଟୌ ହେୟାର୍ଥେ ଗୁରବୋ ମତାଃ ।।
ମଧୁକୃନ୍ମଧୁହର୍ତ୍ତା ଚ ପିଙ୍ଗଳା ଚ ଦ୍ୱୟୋସ୍ତ୍ରୟଃ ।
ଉପାଦେୟାର୍ଥବିଜ୍ଞାନେ ଶେଷାଃ ପୃଥ୍ୟାଦୟୋ ମତାଃ ।।
ତଦବାନ୍ତରଭେଦଶ୍ଚ ତତ୍ର ତତ୍ର ସ୍ଫୁଟୀକୃତଃ ।
ଅଧ୍ୟାୟତ୍ରିତୟେ ସପ୍ତ ନବାଷ୍ଟାବୀରିତାଃ କ୍ରମାଦ୍ ।। (ସ୍ୱାମୀ)

ନାନାତ୍ମଭାବରୁ ଏମାନେ । ବିଫଳ ଅଟନ୍ତି ତେସନେ ।। ୧୦
୪ [୧]ବିଷୟଭେଦେ ଆତ୍ମଗତି । ଯେ କରେ ସେହି ସେହି ମତି ।। ୧୧
ମୋ' ଠାରେ ଦେଇ ନିଜ ମନ । କରିବ ନିତ୍ୟ କୃତ୍ୟମାନ ।। ୧୨
ଯେତେକ କାମ୍ୟ କର୍ମଗଣ । ତ୍ୟାଗ କରିବ ତାହା ପୁଣ ।। ୧୩
ଆତ୍ମଜ୍ଞାନରେ ନିଜମନ । ଦେଇ ପ୍ରବର୍ତ୍ତନ୍ତି ଯେସନ ।। ୧୪
ଏ ବେନି କର୍ମକୁ ତକ୍ଷଣ । କରିବ ପରିତ୍ୟାଗ ପୁଣ ।। ୧୫
୫ ଶମଦମାଦି ଯମମାନ । କରିବ ନିତ୍ୟରେ ବିଧାନ ।। ୧୬
କେହୁଣି ସମୟରେ ମନ । ମୋ'ଠାରେ କରି ନିବେଦନ ।। ୧୭
ଦ୍ୱାଦଶ ନିୟମାଦି ଯେତେ । କରିବ ତା' ଅନବରତେ ।। ୧୮
ଆତ୍ମା ମୁଁ ଅଟଇ ଯାହାର । ମୋତେ ଯେ କରିଛି ଗୋଚର ।। ୧୯
ସେ ଶାନ୍ତ ଗୁରୁଙ୍କୁ ସୁମନେ । ସେବା କରିବ ପ୍ରତିଦିନେ ।। ୨୦
୬ ଅମାନୀ ଅମତ୍ସର ହେବ । ପୁତ୍ରାଦି ମମତା ଛାଡ଼ିବ ।। ୨୧
ଅଳସ ନ କରି ଦୃଢ଼ରେ । ପ୍ରୀତି କରିବ ଗୁରୁଠାରେ ।। ୨୨
ଅବ୍ୟଗ୍ର ହୋଇଣ ଆବର । ଶିକ୍ଷା ଘେନିମ ଗୁରୁଙ୍କର ।। ୨୩
ବ୍ୟର୍ଥବଚନ ନ କହିବ । ଅସୂୟା କିଛି ନ କରିବ ।। ୨୪
୭ ଭାର୍ଯ୍ୟା ଅପତ୍ୟ ଗୃହ ମହୀ । ସ୍ୱଜନ ଦ୍ରବ୍ୟ ଆଦି ଯେହି ।। ୨୫
ଏ ଆଦି ସମସ୍ତ ଠାବରେ । ଉଦାସ ହୋଇଣ ନିତ୍ୟରେ ।। ୨୬
ଆପଣା ସୁଖଦୁଃଖପ୍ରାୟେ । ସମ ଦେଖିବ ସର୍ବକାୟେ ।। ୨୭
୮ ଯେ ସ୍ଥୂଳ ସୂକ୍ଷ୍ମ ଦେହ ଦୁଇ । ଆତ୍ମା ତହିଁରୁ ଭିନ୍ନ ହୋଇ ।। ୨୮
ଦେଖଇ ସବୁ ସାକ୍ଷିରୂପେ । ପ୍ରକାଶ ଅଟଇ ସ୍ୱରୂପେ ।। ୨୯
ଦଗଧଯୋଗ୍ୟ ଯେ ଇନ୍ଧନ । ତହୁଁ ଯେସନେ ଅଗ୍ନି ଭିନ୍ନ ।। ୩୦
ସମସ୍ତ ଦଗ୍‌ଧ କରିପାରେ । ପ୍ରକାଶ ଅଟେ ସ୍ୱରୂପରେ ।। ୩୧
୯ କାଷ୍ଠମଧ୍ୟରେ ହୁତାଶନ । ପ୍ରବେଶ ହୋଇଣ ଯେସନ ।। ୩୨
ଉତ୍ପତ୍ତି ବିନାଶ ଲଭଇ । କୃଶତ୍ୱ ବୃହତ୍ତ୍ୱକୁ ପାଇ ।। ୩୩
ନାନାପ୍ରକାର ରୂପେ ପୁଣ । ଧରଇ କାଷ୍ଠକୃତ ଗୁଣ ।। ୩୪
ସେ ଏକ ଆତ୍ମା ଏ ରୂପରେ । ପ୍ରବେଶ ହୋଇ ଦେହାଦିରେ ।। ୩୫
ବହୁତ ରୂପରେ ସେ ପୁଣ । ଧରଇ ଦେହକୃତ ଗୁଣ ।। ୩୬
୧୦ ମାୟାଗୁଣରେ ଈଶ୍ୱରର । ରଚିତ ଏ ଯେଉଁ ଶରୀର ।। ୩୭
ଜୀବର ସଂସାରଟି ଏହି । ହେଲା ପରାଏ ପ୍ରତ୍ୟେ ହୋଇ ।। ୩୮
ଯେ ପୁଣ ଆତ୍ମଜ୍ଞାନ ଏକ । ଏ ତାର ଅଟେ ନିବର୍ତ୍ତକ ।। ୩୯
୧୧ ସେହେତୁ ଏମନ୍ତ ରୂପରେ । ଆତ୍ମାକୁ ଜାଣିମା ଇଚ୍ଛାରେ ।। ୪୦

---

୧. ମୋକ୍ଷାର୍ଥୀ ନ ପ୍ରବର୍ତ୍ତେତ ତତ୍ର କାମ୍ୟନିଷିଦ୍ଧୟୋଃ ।
ନିତ୍ୟନୈମିତ୍ତିକେ କୁର୍ଯ୍ୟାଦ୍ ପ୍ରତ୍ୟବାୟଜିହାସୟା ।। (ସ୍ମୃତିଃ)

| | | | | | |
|---|---|---|---|---|---|
| | ଯେ ଅତିଶ୍ରେଷ୍ଠ ଅତିଶୟ | । | କାର୍ଯ୍ୟକାରଣ ହେଲା ପ୍ରାୟ | ॥ | ୪୧ |
| | କରି ସେ ଆତ୍ମାକୁ ଗୋଚର | । | ଯଥାକ୍ରମରେ ଜ୍ଞାନୀ ନର | ॥ | ୪୨ |
| | ସତ୍ୟବୁଦ୍ଧିକି ଦେହାଦିରେ | । | ତ୍ୟାଗ କରିବ ନିରନ୍ତରେ | ॥ | ୪୩ |
| ୧୨ | [୧]ଗୁରୁଦେବ ଆଦ୍ୟ ଅରଣି | । | ଉତ୍ତରାରଣି ଶିଷ୍ୟ ପୁଣି | ॥ | ୪୪ |
| | ସେ ଦୁହିଁଙ୍କର ଯେ ବଚନ | । | ମନ୍ଥନକାଷ୍ଠର ସମାନ | ॥ | ୪୫ |
| | ତହୁଁ ଉତ୍‌ପନ୍ନ ସୁଖସ୍ଥାନ | । | ଅଗ୍ନିସମାନ ବିଦ୍ୟାଜ୍ଞାନ | ॥ | ୪୬ |
| ୧୩ | ଉତ୍ତମ ଗୁରୁ ଛନ୍ତି କହି | । | ଅତି ବିଶୁଦ୍ଧ ବୁଦ୍ଧି ଯେହି | ॥ | ୪୭ |
| | ସେ ଗୁଣପ୍ରସୂତ ମାୟାକୁ | । | ବିନାଶ କରିଣ ଗୁଣକୁ | ॥ | ୪୮ |
| | ଜୀବର ଜନ୍ମକୁ ନିମିତ୍ତ | । | ଅଟଇ ଏ ଯଉଁ ଜଗତ | ॥ | ୪୯ |
| | ଏ ବେନି ଦଗଧ କରିଣ | । | ସ୍ୱୟେଂ ନିବର୍ତ୍ତେ ତତକ୍ଷଣ | ॥ | ୫୦ |
| | ଇନ୍ଧନବିନାଶେ ଯେସନ | । | ଶାନ୍ତ ହୁଅଇ ହୁତାଶନ | ॥ | ୫୧ |
| ୧୪ | କର୍ମର ଅନୁରୂପେ ପୁଣ | । | ଫଳ ଯେ କରନ୍ତି ଗ୍ରହଣ | ॥ | ୫୨ |
| | ଯେ ଦୁଃଖସୁଖ ବେନିଙ୍କର | । | ଭୋକ୍ତା ସେ ଜୀବମାନଙ୍କର | ॥ | ୫୩ |
| | ନାନାତ୍ୱ କହନ୍ତି ଭୁବନେ | । | ଜୈମିନି ଆଦି ଋଷିମାନେ | ॥ | ୫୪ |
| | ଯେତେ ଅଛନ୍ତି ଭୋଗସ୍ଥାନ | । | ଯେ କାଳ ଯେ ଆଗମମାନ | ॥ | ୫୫ |
| | ଆତ୍ମାର କରନ୍ତି ଆବର | । | ନାନାତ୍ୱ ନିତ୍ୟତ୍ୱ ସ୍ୱୀକାର | ॥ | ୫୬ |
| ୧୫ | ସ୍ରକ-ଚନ୍ଦନ-ବନିତାଦି | । | ଯେତେକ ଭୋଗ ଏ ପ୍ରସିଦ୍ଧି | ॥ | ୫୭ |
| | ଏମାନଙ୍କର ସ୍ଥିତି ପୁଣ | । | ନିତ୍ୟ ଏ ପ୍ରବାହରୂପେଣ | ॥ | ୫୮ |
| | ସେ ସେହି ଆକାରଭେଦରେ | । | ଯେବଣ ଜ୍ଞାନ ଘଟାଦିରେ | ॥ | ୫୯ |
| | ଆଦ୍ୟେ ଉତ୍‌ପନ୍ନ ହୋଇଥାଇ | । | ଏଣୁ ଅନିତ୍ୟ ଭିନ୍ନ ସେହି | ॥ | ୬୦ |
| ୧୬ | ବରଷ-ଋତୁ-ମାସମାନ | । | ଯାଙ୍କ ଶରୀରେ ବିଦ୍ୟମାନ | ॥ | ୬୧ |
| | ସେ କାଳରୂପୀ ଯେ ଈଶ୍ୱର | । | ତା' ଠାରୁ ସର୍ବ ପ୍ରାଣିଙ୍କର | ॥ | ୬୨ |
| | ଦେହଯୋଗରୁ ହେ ଉଦ୍ଭବ | । | ଜନମ ଆଦି ଷଡ଼୍ ଭାବ | ॥ | ୬୩ |
| | ହେଉଛନ୍ତି ଏ ଏରୂପରେ | । | ଥରକୁ ଥର ଏ ସଂସାରେ | ॥ | ୬୪ |
| ୧୭ | କର୍ମମାନଙ୍କୁ ଯେ କରଇ | । | ଯେ ଦୁଃଖସୁଖକୁ ଭୁଞ୍ଜଇ | ॥ | ୬୫ |
| | ତହିଁ ଏ ଦୁହିଁଙ୍କର ପୁଣି | । | ସ୍ୱତନ୍ତ୍ରଭାବକୁ ନ ଜାଣି | ॥ | ୬୬ |
| | ଏ ହେତୁ କଉଁ ଅର୍ଥ ଜୀବ | । | ବିବଶ ଲୋକକୁ ଭଜିବ | ॥ | ୬୭ |
| ୧୮ | ପଣ୍ଡିତଙ୍କର ଏ ରୂପରେ | । | ସୁଖ ନୁହଇ କଉଁଠାରେ | ॥ | ୬୮ |
| | ସେ ରୂପେ ମୁଢ଼ମାନଙ୍କର | । | ଦୁଃଖକୁ ନ ଜାଣି ଆବର | ॥ | ୬୯ |
| | କର୍ମକୁଶଳୁଁ ଆପ୍ତେମାନେ | । | ସୁଖ ଲଭୁଛୁଁ ଏ ଭୁବନେ | ॥ | ୭୦ |
| | ଏ ରୂପେ ନିତ୍ୟେ ଅହଙ୍କାର | । | କରନ୍ତି ବୃଥା ମୂଢ଼ ନର | ॥ | ୭୧ |

---

୧. ''ଆଚାର୍ଯ୍ୟଃ ପୂର୍ବରୂପମ୍, ଅନ୍ତେବାସ୍ୟୁତ୍ତରରୂପମ୍,
ବିଦ୍ୟା ସନ୍ଧିଃ, ପ୍ରବଚନଂ ସନ୍ଧାନମ୍'' ।　　(ଶ୍ରୁତିଃ)

୧୯ ଯେବେ ଏ ସୁଖଦୁଃଖଙ୍କର । ଜାଣନ୍ତି ଗତାଗତ ନର ॥ ୭୨
କିମ୍ବା ଦୁଃଖକୁ ଛାଡ଼ି ବଳେ । ସୁଖ ନ ପାନ୍ତି ସବୁକାଳେ ॥ ୭୩
ଯୋଗ ଉପାୟ ଯେଣୁ ନରେ । ଜାଣନ୍ତି ନାହିଁ ସାକ୍ଷାତ୍‌କାରେ ॥ ୭୪
ଯଉଁ ଉପାୟେ କଦାଚିତ । ମୃତ୍ୟୁ ନୁହଇ ଉପସ୍ଥିତ ॥ ୭୫
୨୦ ମୃତ୍ୟୁ ଅଛି ଯା' ନିକଟରେ । ସେ ମାନବକୁ ଏ ସଂସାରେ ॥ ୭୬
କେବଣ ଅର୍ଥ ଅବା କାମ । ସୁଖକୁ କରିବ ଜନମ ॥ ୭୭
ଯେସନେ ନିଅନ୍ତେ ଲୋକକୁ । ବାନ୍ଧିଣ ମାରିବା ସ୍ଥାନକୁ ॥ ୭୮
ତାହାର ସନ୍ତୋଷକୁ କେହି । ଯେସନେ କରି ନ ପାରଇ ॥ ୭୯
୨୧ ସ୍ୱର୍ଗାଦି ସୁଖ ଅଛି ଯେହି । ଦୋଷସକାଶୁଁ କିଛି ନୋହି ॥ ୮୦
ବିବାଦ ତହିଁ ଅନୁକ୍ଷଣେ । ଦୋଷ ଘେନନ୍ତି ପରଗୁଣେ ॥ ୮୧
ପୁଣ୍ୟକ୍ଷୟରେ ନାଶ ଯାନ୍ତି । ପରସୁଖକୁ ନ ସହନ୍ତି ॥ ୮୨
ବିଷୟସୁଖେ ଯହିଁ ନିତି । ବହୁତ ବିଘ୍ନ ହିଁ ପଡ଼ନ୍ତି ॥ ୮୩
ଯେସନେ କାମ ଆଦି ଘେନି । ଦୋଷେ ନିଷ୍ଫଳ ହୋଏ ମୁନି[୧] ॥ ୮୪
ଏ ଆଦି ଦୋଷରୁ କେବଳ । ସ୍ୱର୍ଗାଦି ସୁଖ ହିଁ ନିଷ୍ଫଳ ॥ ୮୫
୨୨ କିଛି ହିଁ ବିଘ୍ନାଦି ନ ଥାଇ । ଯେବେ ସ୍ୱଧର୍ମ ଅର୍ଜିଥାଇ ॥ ୮୬
ତେଣେ ଅର୍ଜିତ ଯଉଁ ସ୍ଥାନ । ତହିଁକି କରଇ ଗମନ ॥ ୮୭
ଯଉଁ ରୂପରେ ଏବେ ପୁଣ । କହିବା ସେ କଥା ହିଁ ଶୁଣ ॥ ୮୮
୨୩ ଯାଜ୍ଞିକ ଲୋକ ଯାଗାଦିରେ । ଦେବଙ୍କୁ ପୂଜି ଏ ସଂସାରେ ॥ ୮୯
ସ୍ୱର୍ଗକୁ କରଇ ଗମନ । ତହିଁରେ ଦେବତା ଯେସନ ॥ ୯୦
ଆପଣ ଯାହା ଅର୍ଜିଥାଇ । ସେ ଦିବ୍ୟ ଭୋଗକୁ ଭୁଞ୍ଜଇ ॥ ୯୧
୨୪ ସମସ୍ତ ଭୋଗରେ ସଂପନ୍ନ । ଏମନ୍ତ ଯେ ଦିବ୍ୟ ବିମାନ ॥ ୯୨
ବିହାର କରଇ ତହିଁରେ । ଦେବତାମାନଙ୍କ ମଧ୍ୟରେ ॥ ୯୩
ଗନ୍ଧର୍ବେ କରନ୍ତି ଗାୟନ । ବେଷ୍ଟେ ହରଇ ନାରୀମନ ॥ ୯୪
୨୫ ଯେ ମନୋରଥକୁ ଚଳଇ । କିଙ୍କିଣିଜାଲ ମାଳ ଯହିଁ ॥ ୯୫
ଏମନ୍ତ ଦିବ୍ୟ ବିମାନରେ । ନାରୀମାନଙ୍କ ସଙ୍ଗତରେ ॥ ୯୬
କ୍ରୀଡ଼ା କରନ୍ତେ ଆପଣାର । ପତନ ନ କରେ ଗୋଚର ॥ ୯୭
ନନ୍ଦନବନ ଆଦିଙ୍କରେ । ସୁଖିତ ଅଟଇ କ୍ରୀଡ଼ାରେ ॥ ୯୮
୨୬ ଯାବତ ପୁଣ୍ୟ ସମାପତ । ତାବତ ସ୍ୱର୍ଗେ ହରଷିତ ॥ ୯୯
ପୁଣ୍ୟ ହୁଅନ୍ତେ ପୁଣ କ୍ଷୀଣ । ତଳକୁ ମସ୍ତକ କରିଣ ॥ ୧୦୦
ଇଚ୍ଛା ନ କରନ୍ତେ ପଡ଼ଇ । କାଳରେ ବିଚଳିତ ହୋଇ ॥ ୧୦୧
୨୭ ଅସାଧୁସଙ୍ଗେ ସଙ୍ଗ ହୋଇ । ଯେବେ ଅଧର୍ମେ ରତ ହୋଇ ॥ ୧୦୨
ଇନ୍ଦ୍ରିୟଗଣଙ୍କୁ ନ ଜିଣି । କାମରେ ଚିତ୍ତ ଦେଇ ପୁଣି ॥ ୧୦୩

୧. 'ମୁନିବଚ୍ଚାପି ନିଷ୍ଫଳମ୍' ଇତି ପାଠେ 'କୃଷିବଚ୍ଚାପି' ପାଠାନ୍ତରମ୍ ।

| | | | | | |
|---|---|---|---|---|---|
| | ଭୋଗତୃଷ୍ଣାରେ ସେ ଆତୁର | । | କୃପଣ ଅଟଇ ଆବର | ।। | ୧୦୪ |
| | ନାରୀଲମ୍ପଟ ସେ ନିତ୍ୟରେ | । | ତଦର୍ଥେ ପ୍ରାଣିହିଂସା କରେ | ।। | ୧୦୫ |
| ୨୮ | ଧନପୁତ୍ରାଦିନିମିତ୍ତରେ | । | ପଶୁଙ୍କୁ ମାରି ଅବିଧିରେ | ।। | ୧୦୬ |
| | ଯେ ପ୍ରେତଭୂତଗଣମାନ | । | ତାହାଙ୍କୁ କରଇ ପୂଜନ | ।। | ୧୦୭ |
| | ସେ ପ୍ରାଣୀ ଅବଶ ହୋଇଣ | । | ନରକମାନଙ୍କୁ ଯାଇଣ | ।। | ୧୦୮ |
| | ନରକପରେ ଅତି ଘୋର | । | ଲଭଇ ସ୍ଥାବରଶରୀର | ।। | ୧୦୯ |
| ୨୯ | ଯେ ଦୁଃଖ ଦିଅଇ ପଛରେ | । | ସେ କର୍ମ କରିଣ ଦେହରେ | ।। | ୧୧୦ |
| | ସେ କର୍ମ-ଅନୁରୂପେ ଯାଇ | । | ପୁଣି ସେ ଦେହକୁ ଲଭଇ | ।। | ୧୧୧ |
| | ମରଣ ନିଷ୍ଠେ ଯେ ଦେହର | । | କି ସୁଖ ତହିଁରେ ତାହାର | ।। | ୧୧୨ |
| ୩୦ | ଯେ ସତ୍ୟଲୋକ ଆଦି ସ୍ଥାନ | । | କଳପେ ଯାହାଙ୍କ ଜୀବନ | ।। | ୧୧୩ |
| | ସେ ଲୋକ ଲୋକପାଳଙ୍କର | । | ମୋ’ ଠାରୁ ଭୟ ପରଚାର | ।। | ୧୧୪ |
| | ବେନି ପରାର୍ଧଯାଏ ପୁଣ | । | ଯାହାଙ୍କ ଆୟୁଷ ପ୍ରମାଣ | ।। | ୧୧୫ |
| | ସେ ବ୍ରହ୍ମାଙ୍କରଟି ନିୟତ | । | ମୋ’ ଠାରୁ ଭୟ ହୋଏ ଜାତ | ।। | ୧୧୬ |
| ୩୧ | ଇନ୍ଦ୍ରିୟମାନେ ଯେତେ ଛନ୍ତି | । | କର୍ମମାନଙ୍କୁ ସେ ସର୍ଜନ୍ତି | ।। | ୧୧୭ |
| | ସତ୍ତ୍ୱାଦି ତିନିଗୁଣେ ଅତି | । | ଇନ୍ଦ୍ରିୟ ଗୁଣ ପ୍ରବର୍ତ୍ତାନ୍ତି | ।। | ୧୧୮ |
| | ଜୀବ ଏ ଘେନି ଇନ୍ଦ୍ରିୟଙ୍କୁ | । | ଭୁଞ୍ଜାଇ କର୍ମର ଫଳକୁ | ।। | ୧୧୯ |
| ୩୨ | ଗୁଣରୁ ହୁଅଇ ଯାବତ | । | ଅହଂକାରାଦି କାର୍ଯ୍ୟ ଜାତ | ।। | ୧୨୦ |
| | ନାନାତ୍ୱ ଆତ୍ମାର ତାବତ | । | ପୁଣି ସେ ଆତ୍ମାର ଯାବତ | ।। | ୧୨୧ |
| | ନାନାତ୍ୱ ହୋଏ ହେ ଉଦ୍ଧବ | । | ତାବତ ପରତନ୍ତ୍ରଭାବ[୧] | ।। | ୧୨୨ |
| ୩୩ | ଯାବତ ପୁଣି ଏ ଜୀବର | । | ସ୍ୱତନ୍ତ୍ରଭାବ ହୋଏ ଦୂର | ।। | ୧୨୩ |
| | ତାବତ ହୋଏ ଅତିଶୟ | । | ଈଶ୍ୱରସକାଶରୁ ଭୟ | ।। | ୧୨୪ |
| | କର୍ମଫଳକୁ ଉପାସନ | । | କରନ୍ତି ଯେଉଁ ଋଷିଜନ | ।। | ୧୨୫ |
| | ଶୋକରେ ସଂଯୁତ ହୋଇଣ | । | ମୋହକୁ ଲଭନ୍ତି ସେ ପୁଣ | ।। | ୧୨୬ |
| ୩୪ | ଶୀତ ଉଷ୍ଣାଦି କାଳମାନ | । | ଜୀବାତ୍ମା କର୍ମକାଣ୍ଡ ଆନ | ।। | ୧୨୭ |
| | କର୍ମଫଳର ଭୋଗସ୍ଥାନ | । | ସ୍ୱଭାବ ନିଜ ଧର୍ମ ଆନ | ।। | ୧୨୮ |
| | ଏରୂପେ ନାନାମତେ ମୋତେ | । | ବୋଲନ୍ତି ତ୍ରିଗୁଣ କ୍ଷୋଭିତେ | ।। | ୧୨୯ |

ଶ୍ରୀଉଦ୍ଧବ ଉବାଚ

| | | | | | |
|---|---|---|---|---|---|
| ୩୫ | ଏରୂପେ କୃଷ୍ଣମୁଖୁଁ ଶୁଣି | । | ଉଦ୍ଧବ କହୁଛନ୍ତି ପୁଣି | ।। | ୧୩୦ |
| | ଆତ୍ମା ଯେ ଆବରଣହୀନ | । | ତ୍ରିଗୁଣେ ହେଲେ ବର୍ତ୍ତମାନ | ।। | ୧୩୧ |
| | ଦେହଜ ସୁଖ-ଦୁଃଖାଦିରେ | । | ବଦ୍ଧ ହୁଅଇ କି ରୂପରେ | ।। | ୧୩୨ |
| | ତ୍ରିଗୁଣବଦ୍ଧ କେହ୍ନେ ହୋଏ | । | ହେ ପ୍ରଭୋ କି ରୂପେ ବା ନୋହେ | ।। | ୧୩୩ |
| ୩୬ | ସେ ଆତ୍ମା କେହ୍ନେ ବର୍ତ୍ତିଥାଇ | । | କି ରୂପେ ବିହାର କରଇ | ।। | ୧୩୪ |

୧. କର୍ମାଧୀନତା ।

| | | | | |
|---|---|---|---|---|
| | କଉଁ ଲକ୍ଷଣମାନଙ୍କରେ | । ତାକୁ ଜାଣନ୍ତି ଏ ସଂସାରେ | ।। | ୧୩୫ |
| | କିରୂପେ ଭୁଞ୍ଜଇ କେବଣ | । ତା' କରେ ପରିତ୍ୟାଗ ପୁଣ | ।। | ୧୩୬ |
| | କେମନ୍ତେ ଶୟନ ଆସନ | । କି ରୂପେ ଗମନାଗମନ | ।। | ୧୩୭ |
| ୩୭ | ସେ ଏକ ଆତ୍ମା ହେ ଅଚ୍ୟୁତ | । ନିତ୍ୟବନ୍ଧନ ନିତ୍ୟମୁକ୍ତ | ।। | ୧୩୮ |
| | ଏରୂପେ ଭ୍ରମ ହେଲା ମୋର | । ଏ ପ୍ରଶ୍ନ କହ ମୋ' ଆଗର | ।। | ୧୩୯ |
| | ପ୍ରଶ୍ନ ଜାଣିମା ଲୋକଙ୍କର | । ମଧ୍ୟରେ ଯେଣୁ ତୁମ୍ଭେ ବର | ।। | ୧୪୦ |
| | ପତିତପାବନ ମୁରାରି | । ତାଙ୍କ ଚରଣ ଚିନ୍ତା କରି | ।। | ୧୪୧ |
| | ଭଣଇ ବିପ୍ର ଦୀନବନ୍ଧୁ | । ଯେଣେ ତରିବ ଭବସିନ୍ଧୁ | ।। | ୧୪୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଭଗବଦୁଦ୍ଧବସଂବାଦେ
ଦେହାଧ୍ୟାସାତ୍ ସଂସାରବନ୍ଧୋ ନାମ ଦଶମୋଽଧ୍ୟାୟଃ ।।

## ଏକାଦଶ ଅଧ୍ୟାୟ

ଏକାଦଶେ ତୁ ବଦ୍ଧାନାଂ ମୁକ୍ତାନାଂ ଚାଥ ଲକ୍ଷଣମ୍ ।
ସାଧୂନାଂ ଚ ତଥା ଭକ୍ତେର୍ଲକ୍ଷଣଂ ହରିଣେରିତମ୍ ।।

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧ | କହନ୍ତି ପ୍ରଭୁ ଭଗବାନ | । ଉଦ୍ଧବ ଶୁଣ ମୋ' ବଚନ | ।। | ୧ |
| | ଆତ୍ମାର ନିତ୍ୟେ ବନ୍ଧମୁକ୍ତି | । ଏରୂପେ ହୋଇଲା ଯା ଖ୍ୟାତି | ।। | ୨ |
| | ଏ ମୋର ଗୁଣରୁ ସମ୍ଭବ | । ଆତ୍ମାର ନାହିଁ ଏ ବାସ୍ତବ | ।। | ୩ |
| | ଗୁଣର ମାୟା ଅଟେ ମୂଳ | । ଏଣୁ ହେ ଉଦ୍ଧବ କେବଳ | ।। | ୪ |
| | ଆତ୍ମାର ବନ୍ଧମୋକ୍ଷ ଦୁଇ | । ଏ ପୁଣି କେଭେ ନ ଘଟଇ | ।। | ୫ |
| ୨ | ଆତ୍ମାର ଶୋକମୋହ ଦୁଇ | । ସୁଖଦୁଃଖାଦି ଯେ ହୁଅଇ | ।। | ୬ |
| | ଦେହ ହିଁ ହୋଏ ଉତପନ୍ନ | । ଏ ସର୍ବେ ମାୟାରେ ରଚନ | ।। | ୭ |
| | ଯେସନେ ସ୍ୱପ୍ନ-ଅନୁଭବ | । ବୁଦ୍ଧିରୁ ହୁଅଇ ସଂଭବ | ।। | ୮ |
| ୩ | ମାୟାରେ ଜନ୍ମମୃତ୍ୟୁଦୁଇ | । ସଂଭବେ ଆତ୍ମାର ଏ ନାହିଁ | ।। | ୯ |
| | ବିଦ୍ୟା ଅବିଦ୍ୟା ନିତ୍ୟେ ମୋର | । ଉଦ୍ଧବ ଜାଣ ମୋ' ଶରୀର | ।। | ୧୦ |
| | ନିର୍ମିତ ଏ ମୋର ମାୟାରେ | । ଜୀବର ବନ୍ଧ ମୋକ୍ଷ କରେ | ।। | ୧୧ |
| ୪ | ମୋହର ଅଂଶ ଏକ ଜୀବ | । ତାହାର ବନ୍ଧ ମୋକ୍ଷ ଭାବ | ।। | ୧୨ |
| | ହେ ମହାମତି ! ତୁମ୍ଭେ ଜାଣ | । ଅବିଦ୍ୟାହେତୁ ବନ୍ଧ ପୁଣ | ।। | ୧୩ |
| | ବିଦ୍ୟା କରନ୍ତେ ଆଚରଣ | । ମୋକ୍ଷକୁ ଲଭଇ ସେ ପୁଣ | ।। | ୧୪ |
| ୫ | ଯେ ଜୀବ ବଦ୍ଧ ହୋଇଥାଇ | । ଯେ ଅବା ମୁକ୍ତିକି ଲଭଇ | ।। | ୧୫ |

ଏଥୁ ଅନ୍ତରେ ତାହା ଶୁଣ । କହିବା ତାଙ୍କ ବିଲକ୍ଷଣ ॥
ନିୟମ୍ୟ-ନିୟନ୍ତା ରୂପରେ । ଥାଆନ୍ତେ ଏକ ଶରୀରରେ ॥
ଆହେ ଉଦ୍ଧବ ତାହାଙ୍କର । [1]ଧର୍ମ ବିରୁଦ୍ଧ ପରକାର ॥
୬ ଜୀବ ପରମ ଆତ୍ମା ଦୁଇ । ବୃକ୍ଷରୁ ପକ୍ଷୀପ୍ରାୟେ ହୋଇ ॥
ଦେହରୁ ହୋଇଛନ୍ତି ଭିନ୍ନ । ସ୍ୱରୂପେ ଅଟନ୍ତି ସମାନ ॥
ସଖା ସେ ଅଟନ୍ତି ନିତ୍ୟରେ । ବୃକ୍ଷସ୍ୱରୂପ ଏ ଦେହରେ ॥
ଯଦୃଚ୍ଛା[2] ହୋଇ ଦୁହେଁ ଆସି । ରହିବା ସ୍ଥାନ କଲେ ବସି ॥
ସେ ଦୁହିଁଙ୍କରେ ଜୀବ ପୁଣ । ଭୁଞ୍ଜଇ କର୍ମଫଳ ଗୁଣ ॥
ଅପର ପରମାତ୍ମା ତହିଁ । ନିରନ୍ନ ହୋଇ ଥାଏ ରହି ॥
ଜ୍ଞାନାଦି ବଳକୁ ଘେନିଣ । ବଳିଷ୍ଠ ଅଟଇ ସେ ପୁଣ ॥
୭ କର୍ମଫଳକୁ ନ ଭୁଞ୍ଜଇ । ସର୍ବଜ୍ଞରୂପେ ରହିଥାଇ ॥
ନିଜକୁ ଅନ୍ୟକୁ ଜାଣଇ । କର୍ମଫଳକୁ ଯେ ଭୁଞ୍ଜଇ ॥
ଜୀବ ବୋଲିଣ ତାକୁ ଜାଣ । ଅବିଦ୍ୟାଯୁତ ହୋଇ ପୁଣ ॥
ସେ ଜୀବ ନିତ୍ୟେ ବନ୍ଧଯୁତ । ବିଦ୍ୟାସଂଯୋଗେ ନିତ୍ୟମୁକ୍ତ ॥
୮ ମୁକ୍ତ ହୋଇଛି ଯଉଁ ଜୀବ । ଦେହ ତା' ହୋଇଲେ ସମ୍ଭବ ॥
ଦେହ ନ ଥିଲା ପ୍ରାୟେ ତାର । ଯେସନେ ସ୍ୱପ୍ନୁ ଉଠି ନର ॥
ସେ ସ୍ୱପ୍ନଦେହକୁ ଗ୍ରହଣ । ନ କରେ ହେଲେ ସେ ସ୍ମରଣ ॥
କୁବୁଦ୍ଧି ଲୋକର ଶରୀର । ନ ଥିଲେ ନିଶ୍ଚେ ଅଛି ତାର ॥
ସ୍ୱପ୍ନକଥାକୁ ଅଜ୍ଞ ଜନ । ଯଥାର୍ଥ ମଣଇଁ ଯେସନ ॥
୯ [3]ନିଜ ଇନ୍ଦ୍ରିୟେ କଲେ ପୁଣ । ଇନ୍ଦ୍ରିୟକାର୍ଯ୍ୟକୁ ଗ୍ରହଣ ॥
ଗୁଣମାନଙ୍କରେ ଆବର । ଗୁଣଙ୍କୁ କରନ୍ତେ ସ୍ୱୀକାର ॥
ନ କରେ ଅହଂମତିମାନ । ରାଗାଦିହୀନ ଜ୍ଞାନୀ ଜନ ॥
୧୦ [4]ଯେ ପୂର୍ବ କର୍ମର ଅଧୀନ । ସେ ଦେହ ପାଇ ଅଜ୍ଞ ଜନ ॥
ନିଜ ଇନ୍ଦ୍ରିୟମାନଙ୍କରେ । ଭବିଷ୍ୟ କର୍ମ ସହିତରେ ॥
ସେ ନିଜ ଦେହେ ଯୁକ୍ତ ହୋଇ । ମୁଁ କର୍ତ୍ତା ବୋଲି ବଦ୍ଧ ହୋଇ ॥
୧୧ ଶୟନେ ଆସନେ ଗମନେ । ସ୍ନାନ-ଦର୍ଶନ-ସ୍ପର୍ଶନେ ॥
ଆଘ୍ରାଣ-ଭୋଜନ-ଶ୍ରବଣ । ଇତ୍ୟାଦି ସର୍ବଠାରେ ପୁଣ ॥
ଏ ରୂପେ ସୁଜ୍ଞାନୀ ମାନବ । ବିରକ୍ତ ହେବ ହେ ଉଦ୍ଧବ ॥

---

୧. ଶୋକାନନ୍ଦଧର୍ମବତୋଃ । (ସ୍ୱାମୀ);　　୨. ଯଦୃଚ୍ଛା = ଅନିରୁକ୍ତା ମାୟା ।
୩. ତତ୍ତ୍ୱବିତ୍ତୁ ମହାବାହୋ ଗୁଣକର୍ମବିଭାଗୟୋଃ ।
ଗୁଣା ଗୁଣେଷୁ ବର୍ତ୍ତନ୍ତ ଇତି ମତ୍ୱା ନ ସଜ୍ଜତେ ॥ (ଗୀତା)
୪. ପ୍ରକୃତେଃ କ୍ରିୟମାଣାନି ଗୁଣୈଃ କର୍ମାଣି ସର୍ବଶଃ ।
ଅହଂକାରବିମୂଢ଼ାତ୍ମା କର୍ତ୍ତାହମିତି ମନ୍ୟତେ ॥

୧୨ ମାୟାସଙ୍ଗରେ ବର୍ତ୍ତମାନ । ହେଲେହେଁ ପୁଣ ଜ୍ଞାନୀ ଜନ ॥ ୪୪
ସେ ସେହି ବିଷୟେ ସନ୍ତତେ । ଇନ୍ଦ୍ରିୟଗଣ ପ୍ରବର୍ତ୍ତାନ୍ତେ ॥ ୪୫
ସାକ୍ଷିସ୍ୱରୂପେ ରହିଥାଇ । ତହିଁରେ ନିବନ୍ଧନ ନୋହି ॥ ୪୬
ଗଗନ-ତପନ ପବନ । ଏ ସର୍ବଠାରେ ହେଁ ଯେସନ ॥ ୪୭
ସଂଯୁତ ହେଲେହେଁ ନିତ୍ୟରେ । ନିବଦ୍ଧ ନୁହନ୍ତି କାହିଁରେ ॥ ୪୮
୧୩ ନିପୁଣବିଚାର ଦୃଷ୍ଟିରେ । ବୈରାଗ୍ୟତୀକ୍ଷଣ ବୁଦ୍ଧିରେ ॥ ୪୯
ସମସ୍ତ ସଂଶୟ ଛିଣ୍ଡାଇ । ଦେହାଦିବନ୍ଧୁଁ ମୁକ୍ତ ହୋଇ ॥ ୫୦
ନିଦ୍ରାରୁ ଉଠନ୍ତେ ସ୍ୱପନ । ନିବୃତ୍ତ ହୁଅଇ ଯେସନ ॥ ୫୧
୧୪ ପ୍ରାଣ-ଇନ୍ଦ୍ରିୟ-ମନ-ମତି । ଏମାନଙ୍କର ଯେଉଁ ବୃତ୍ତି ॥ ୫୨
ସେ ବୃତ୍ତି ନିବର୍ତ୍ତିଲା ଯାର । ଶରୀରେ ଥିଲେହେଁ ସେ ନର ॥ ୫୩
ଦେହଗୁଣରେ ହେଲେ ଯୁତ । ସଂସାରୁ ଅଟଇ ମୁକତ ॥ ୫୪
୧୫ ଯେହୁଣି କେହୁଣି କାରଣେ । ଯାହା ଦେହକୁ ଦୁଷ୍ଟଗଣେ ॥ ୫୫
ପୀଡ଼ା ଦିଅନ୍ତି ଯଦୃଚ୍ଛାରେ । ପୂଜନ୍ତି ଅବା କଉଁ ନରେ ॥ ୫୬
ସେ ବେନି କଥାରୁ ବିକାର । [1]କରଇ ନାହିଁ ଜ୍ଞାନୀ ନର ॥ ୫୭
୧୬ ଯାହାର ନିତ୍ୟେ ଏ ସଂସାରେ । ଅପେକ୍ଷା ନାହିଁ ସର୍ବଠାରେ ॥ ୫୮
ଯେମନ୍ତେ ଯେମନ୍ତେ ନିବର୍ତ୍ତେ । ବ୍ରହ୍ମିଷ୍ଠ ତେମନ୍ତେ ତେମନ୍ତେ ॥ ୫୯
ନିଜ ଆତ୍ମାରେ ସେ ସୁପ୍ରୀତ । ସେ ନର ମୁକ୍ତ ହୋଇ ଖ୍ୟାତ ॥ ୬୦
ଯେ ପ୍ରିୟ ଅପ୍ରିୟ କରନ୍ତି । ଯେ ସାଧୁ ଅସାଧୁ ବୋଲନ୍ତି ॥ ୬୧
ତାହାଙ୍କୁ ସ୍ତୁତି ନିନ୍ଦା ଦୁଇ । କେବେହେଁ ମୁନି ନ କରଇ ॥ ୬୨
ବର୍ଜିତ ସେ ଗୁଣଦୋଷରେ । ସମାନ ଦୃଷ୍ଟି ସବୁଠାରେ ॥ ୬୩
୧୭ ଭଲମନ୍ଦ ହିଁ ନ ବୋଲଇ । ନ କରି କିଛି ନ ଚିନ୍ତଇ ॥ ୬୪
ଆତ୍ମାରେ କରଇ ବିହାର । ଏହି ବୃତ୍ତିରେ ମୁନିବର ॥ ୬୫
ନିତ୍ୟରେ କରେ ଆଚରଣ । ଭ୍ରମଇ ଜଡ଼ପ୍ରାୟେ ପୁଣ ॥ ୬୬
୧୮ ଧ୍ୟାନାଦି କରି ଆତ୍ମଜ୍ଞାନ । କରଇ ନାହିଁ ଯେଉଁ ଜନ ॥ ୬୭
ସମସ୍ତ ଶାସ୍ତ୍ରରେ କୁଶଳ । ହେଲେହେଁ ଶ୍ରମ ତା' ବିଫଳ ॥ ୬୮
ଦୁଗ୍ଧବିହୀନ ଧେନୁ ରଖି । ଯେହ୍ନେ ରକ୍ଷକ ହୋଏ ଦୁଃଖୀ ॥ ୬୯
୧୯ ଯେ ଦୁଗ୍ଧବିହୀନ ଧେନୁକୁ । ଯେ ପୁଣ ଅସତୀ ଭାର୍ଯ୍ୟାକୁ ॥ ୭୦
ପର-ଅଧୀନ ସ୍ୱଦେହକୁ । ଅସାଧୁ ନିଜ ତନୟକୁ ॥ ୭୧
ପାତ୍ରେ ନ ଦେଇ ଯେଉଁ ଧନ । ମୋ' ଗୁଣବିହୀନ ବଚନ ॥ ୭୨
ଏହା ଯେ କରଇ ରକ୍ଷଣ । ଦୁଃଖେ ସେ ଦୁଃଖୀ ପୁଣ ପୁଣ ॥ ୭୩

---

୧. ଯଃ କଣ୍ଟକୈର୍ବିତୁଦତି ଚନ୍ଦନୈଶ୍ଚ ବିଲିମ୍ପତି ।
ଅକ୍ରୁଦ୍ଧୋଽପରିତୁଷ୍ଟଶ୍ଚ ସମସ୍ତସ୍ୟ ଚ ତସ୍ୟ ଚ ॥ (ଯାଜ୍ଞବଲ୍କ୍ୟ)

୨୦ ବିଶ୍ୱ-ଉଭବ-ସ୍ଥିତି-ନାଶ । ମୋ ଲୀଳାଚରିତ ପ୍ରକାଶ ।। ୭୪
ଯେ ମୋର ଜନ୍ମକର୍ମମାନ । ଜଗତ କରଇ ପାବନ ।। ୭୫
ଯଉଁ ବଚନରେ ଏମାନ । ନାହାନ୍ତି ବ୍ୟର୍ଥ ସେ ବଚନ ।। ୭୬
ସେ ବଚନକୁ ହେ ଉଦ୍ଧବ । ପଣ୍ଡିତ ଜନ ନ ଧରିବ ।। ୭୭
୨୧ ଏରୂପେ ନିଶ୍ଚୟ ବିଚାରେ । ନାନାତ୍ୱ ଭ୍ରମକୁ ଆତ୍ମାରେ ।। ୭୮
ଛାଡ଼ିଣ ମୁଁ ପୂର୍ଣ୍ଣ ମୋ' ଠାରେ । ନିର୍ମଳ ମନକୁ ନିତ୍ୟରେ ।। ୭୯
ଦୃଢ଼େ ଧରିବ ହେ ଉଦ୍ଧବ । ସମସ୍ତଠାରୁ ନିବର୍ତ୍ତିବ ।। ୮୦
୨୨ ବ୍ରହ୍ମରେ ନିଶ୍ଚଳ ମନକୁ । ଯେବେ ଅଶକ୍ତ ଧରିବାକୁ ।। ୮୧
ଅପେକ୍ଷା ଛାଡ଼ି ବିଷୟରେ । ତେବେ ସେ ଜନ ମୋହ ଠାରେ ।। ୮୨
ଯେତେକ ସର୍ବ କର୍ମଗଣ । କରିବ ତାହା ସମର୍ପଣ ।। ୮୩
୨୩ ଲୋକଙ୍କୁ କରଇ ପାବନ । ସୁନ୍ଦର ମୋର କଥାମାନ ।। ୮୪
ଶ୍ରଦ୍ଧାଳୁ ହୋଇଣ ଶୁଣିମ । ଆନନ୍ଦେ ମୋ' ଜନ୍ମ କରମ ।। ୮୫
ଗାଇବ କରିବ ସ୍ମରଣ । ତା' ଆଚରିବ ପୁଣ ପୁଣ ।। ୮୬
୨୪ ମୋତେ ଆଶ୍ରୟ କରି ଜନ । ମୋ' ଅର୍ଥେ ଧର୍ମକର୍ମମାନ ।। ୮୭
ନିତ୍ୟରେ କରି ଆଚରଣ । ଆହେ ଉଦ୍ଧବ ତେବେ ପୁଣ ।। ୮୮
ମୁଁ ସନାତନ, ମୋହ ଠାରେ । ଭକ୍ତି ଲଭଇ ନିଶ୍ଚଳରେ ।। ୮୯
୨୫ ସତ୍‌ସଙ୍ଗହେତୁ ଯେ ପ୍ରାପତ । ଯେ ଜ୍ଞାନ-ବୈରାଗ୍ୟରେ ଯୁତ ।। ୯୦
ସେ ଭକ୍ତି କରି ଏ ଭୁବନେ । ଯାହା ଦେଖନ୍ତି ସାଧୁଜନେ ।। ୯୧
ସେ ଦିବ୍ୟ ସ୍ୱରୂପକୁ ମୋର । ସୁଖରେ ଲଭଇ ସେ ନର ।। ୯୨

ଶ୍ରୀଉଦ୍ଧବ ଉବାଚ

୨୬ ଉଦ୍ଧବ ଶୁଣି କୃଷ୍ଣବାଣୀ । ଏରୂପେ ପଚାରନ୍ତି ପୁଣି ।। ୯୩
ଆହେ ଉତ୍ତମଶ୍ଳୋକ ହରି । ବହୁତ ସାଧୁ ଛନ୍ତି ତରି ।। ୯୪
ହେ ପ୍ରଭୋ ! ତହିଁରେ ତୁମ୍ଭର । ସମ୍ମତ ସାଧୁ କିପ୍ରକାର ।। ୯୫
ନାରଦ ଆଦି ଋଷିଜନ । ନାନାପ୍ରକାର ଭକ୍ତିମାନ ।। ୯୬
ଆଚରି ଅଛନ୍ତି ତହିଁରେ । କେମନ୍ତ ଭକ୍ତି ତୁମ୍ଭଠାରେ ।। ୯୭
ହୁଅଇ ଉପଯୁକ୍ତ ପୁଣ । ଏବେ ସେ କଥା ମୋତେ ଭଣ ।। ୯୮
୨୭ | ଆହେ ପୁରୁଷାଧ୍ୟକ୍ଷବର । ପ୍ରକୃତିଠାରୁ ତୁମ୍ଭେ ପର ।। ୯୯
୨୮ | ପରମ ବ୍ରହ୍ମ ତୁମ୍ଭେ ସ୍ୱୟେଂ । ଅସଙ୍ଗ ଆକାଶପରାଏ ।। ୧୦୦
ଭକ୍ତଙ୍କ ଇଚ୍ଛାରୁ ଟି ପୁଣ । ଭିନ୍ନ ବିଗ୍ରହକୁ ଧରିଣ ।। ୧୦୧
ଅବତରିଛ ଭଗବାନ । ତୁମ୍ଭଙ୍କୁ ହେଉଛି ପ୍ରପନ୍ନ ।। ୧୦୨
ମୁହିଁ ପ୍ରଣତ ଅନୁରକ୍ତ । ହେ ଜଗତ୍‌ପ୍ରଭୁ ଲୋକନାଥ ।। ୧୦୩
ଏ କଥା ପଚାରିଲି ଯାହା । କହିବା ହେଉ ମୋତେ ତାହା ।। ୧୦୪

## ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୨୯ | ଉଦ୍ଧବ ଯୋଡ଼ି ବେନି ପାଣି | ଏରୂପେ ପଚାରନ୍ତେ ପୁଣି | ॥ ୧୦୫ |
| | ତିରିଶ ଲକ୍ଷଣରେ ଯୁତ | ସାଧୁଙ୍କୁ କହନ୍ତି ଅଚ୍ୟୁତ | ॥ ୧୦୬ |
| | ସାଧୁଏ କୃପାଳୁ ଅଟନ୍ତି | କାହାକୁ ଦ୍ରୋହ ନ କରନ୍ତି | ॥ ୧୦୭ |
| | ନିତ୍ୟେ ସେ ଅତି କ୍ଷମାଶୀଳ | ସତ୍ୟ ଅଟଇ ନିଜ ବଳ | ॥ ୧୦୮ |
| | [1]ଅହଂକାରାଦି-ପରିହୀନ | ସୁଖଦୁଃଖରେ ସମଜ୍ଞାନ | ॥ ୧୦୯ |
| | ଯଥାଶକ୍ତିରେ ପ୍ରାଣିଙ୍କର | ନିତ୍ୟେ କରନ୍ତି ଉପକାର | ॥ ୧୧୦ |
| ୩୦ | କାମରେ ଚିତ୍ତ କ୍ଷୁବ୍‌ଧ ନୋହେ | ସଂଯତ ସମସ୍ତ ଇନ୍ଦ୍ରିୟେ | ॥ ୧୧୧ |
| | ସେ ସଦାଚାର ଅକିଂଚନ | କୋମଳଚିତ୍ତ କ୍ରିୟାହୀନ | ॥ ୧୧୨ |
| | କରନ୍ତି ଅଳପ ଆହାର | ଅନ୍ତଃକରଣ ଅତି ସ୍ଥିର | ॥ ୧୧୩ |
| | ନିଜ ଧର୍ମରେ ସ୍ଥିତ ପୁଣ | ସେ ମୁନି ମୁଁ ତାଙ୍କ ଶରଣ | ॥ ୧୧୪ |
| ୩୧ | ଗଭୀର ଆତ୍ମା ଅପ୍ରମତ୍ତ | ବିପତ୍ତିକାଳେ ଧୈର୍ଯ୍ୟବନ୍ତ | ॥ ୧୧୫ |
| | ଜିଣି ଅଛନ୍ତି ଷଡ଼ଗୁଣ[2] | ଅମାନୀ ମାନପ୍ରଦ ପୁଣ | ॥ ୧୧୬ |
| | ଅତିସମର୍ଥ ଅବଞ୍ଚକ | ସେ ମହାକବି କାରୁଣିକ | ॥ ୧୧୭ |
| ୩୨ | ଏରୂପେ ଗୁଣଦୋଷ ଜାଣି | ଯା' ଆଜ୍ଞା ଦେଇଛି ମୁଁ ପୁଣି | ॥ ୧୧୮ |
| ୩୩ | ସେ ନିଜ ସର୍ବ ଧର୍ମ ତେଜି | ଉତ୍ତମ ସାଧୁ ମୋତେ ଭଜି | ॥ ୧୧୯ |
| | ମୁଁ ଅଛି ସର୍ବଠାରେ ବ୍ୟାପି | ସର୍ବାତ୍ମା ଆନନ୍ଦସ୍ୱରୂପୀ | ॥ ୧୨୦ |
| | [3]ଏରୂପେ ଜାଣି ବା ନ ଜାଣି | ଏକାନ୍ତଭାବେ ମୋତେ ପୁଣି | ॥ ୧୨୧ |
| | ଭଜନ୍ତି ଯେଉଁ ସାଧୁଜନେ | ମୋ' ଭକ୍ତ ଉତ୍ତମ ସେମାନେ | ॥ ୧୨୨ |
| ୩୪ | ମୋହର ଯେ ପ୍ରତିମାମାନେ | ଯେ ଅବା ମୋର ଭକ୍ତଜନେ | ॥ ୧୨୩ |
| | ତାଙ୍କର ଦର୍ଶନ ସ୍ପର୍ଶନ | ବନ୍ଦନ ସ୍ତୁତି ପୂଜାମାନ | ॥ ୧୨୪ |
| | ପ୍ରଣାମ ଗୁଣକର୍ମମାନ | କରିବ ନିତ୍ୟରେ କୀର୍ତ୍ତନ | ॥ ୧୨୫ |
| ୩୫ | ଶ୍ରଦ୍ଧା ମୋ କଥାଶ୍ରବଣରେ | ଧ୍ୟାନ କରିବ ନିରନ୍ତରେ | ॥ ୧୨୬ |
| | ସମସ୍ତ ଦ୍ରବ୍ୟ ହେ ଉଦ୍ଧବ | ଲଭିଣ ମୋତେ ସମର୍ପିବ | ॥ ୧୨୭ |
| | ଦାସଭାବରେ ମୋତେ ପୁଣ | କରିବ ଆତ୍ମସମର୍ପଣ | ॥ ୧୨୮ |
| ୩୬ | ଯେ ମୋର ଜନ୍ମକର୍ମମାନ | କରିବ ତା' ସର୍ବ କଥନ | ॥ ୧୨୯ |
| | ମୋ ପର୍ବଦିନମାନ ଯେତେ | ଆନନ୍ଦ ହେବ ତହିଁ ଚିତ୍ତେ | ॥ ୧୩୦ |
| | ଗୀତ-ନର୍ତ୍ତନ-ବାଦ୍ୟମାନ | ଗୋଷ୍ଠୀମାନଙ୍କେ ସାଧୁଜନ | ॥ ୧୩୧ |
| | ମୋର ମନ୍ଦିରରେ ଉତ୍ସବ | କରିବ ନିତ୍ୟେ ହେ ଉଦ୍ଧବ | ॥ ୧୩୨ |

୧. ସଂପୂର୍ଣ୍ଣ ଅହଂକାରଶୂନ୍ୟ ।

୨. 'କ୍ଷୁତ୍‌ପିପାସେ ଶୋକମୋହୌ ଜରାମୃତ୍ୟୁ ଷଡୂର୍ମୟଃ' । (ସ୍ୱାମୀ)

୩. ମୋତେ ଏରୂପେ ଜାଣି ଜାଣି । (ପୁନଃ ପୁନଃ ଜ୍ଞାତ୍ୱା) ଇତି ବା ପାଠଃ ।

୩୭ ସମସ୍ତ ବାର୍ଷିକ ପର୍ବରେ । ଦ୍ୱାଦଶଯାତ୍ରାମାନଙ୍କରେ ।। ୧୩୩
ଗନ୍ଧାଦି ଉପହାରମାନ । ମୋତେ କରିବ ନିବେଦନ ।। ୧୩୪
ବୈଦିକୀ ତାନ୍ତ୍ରିକୀ ଦୀକ୍ଷାରେ । ମୋ ବ୍ରତ ଧରିବ ନିତ୍ୟରେ ।। ୧୩୫
୩୮ ମୋହର ପ୍ରତିମାସ୍ଥାପନ । କରିବ ଶ୍ରଦ୍ଧା କରି ମନ ।। ୧୩୬
ଉଦ୍ୟାନ ଉପବନମାନ । ଯେ ନାନାବିଧ କ୍ରୀଡ଼ାସ୍ଥାନ ।। ୧୩୭
ପୁର ମନ୍ଦିରକର୍ମ ଯେତେ । କରିବ ସାମର୍ଥ୍ୟ ଥାଆନ୍ତେ ।। ୧୩୮
ବିତ୍ତବିହୀନେ ଅନ୍ୟ ନର । ସଙ୍ଗତେ ଉଦ୍ୟମ ପ୍ରଚାର ।। ୧୩୯
୩୯ ମୋର ମନ୍ଦିରସମ୍ମାର୍ଜନ । କରିବ ତା' ଉପଲେପନ ।। ୧୪୦
ସେଚନ କରି ଜଳାଦିରେ । ମଣ୍ଡଳ ଲେଖିବ ତହିଁରେ ।। ୧୪୧
ଦାସପରାଏ ସେବା ମୋତେ । କରିବ ମାୟା ଛାଡ଼ି ଚିତ୍ତେ ।। ୧୪୨
୪୦ ଛାଡ଼ିବ ଦମ୍ଭ ମାନ ପୁଣ । କରିବ ଯଉଁ ଧର୍ମ ପୁଣ ।। ୧୪୩
କହିବ ନାହିଁ ତା' କାହାକୁ । ପ୍ରଦୀପ ଦେବ ଯା' ଆତ୍ମଙ୍କୁ ।। ୧୪୪
ତାହା ନ ଦେବ ଆଉ ଥରେ । ନିର୍ମାଲ୍ୟ ଭୂଷଣ ନିତ୍ୟରେ ।। ୧୪୫
ଅନ୍ୟଦେବତା ନିବେଦନ । କରିବ ଯଉଁ ଦ୍ରବ୍ୟମାନ ।। ୧୪୬
[୧]ସେ ପୂଜାଶେଷ ଆଣି ମୋତେ । ନ ଦେବ କିଛି କଦାଚିତେ ।। ୧୪୭
୪୧ ଯେବଣ ଯେବଣ ଦ୍ରବ୍ୟ ହିଁ । ସଂସାରେ ଅମୂଲ୍ୟ ଅଟଇ ।। ୧୪୮
ଯେ ଅତିପ୍ରିୟ ଆପଣାର । ସେ ସେହି ଦ୍ରବ୍ୟ ସାଧୁ ନର ।। ୧୪୯
ପୂଜା କରିବ ମୋତେ ନେଇ । ଅପରିମିତ ସେ ହୁଅଇ ।। ୧୫୦
୪୨ ସବିତା ଅନଳ ବ୍ରାହ୍ମଣ । ବୈଷ୍ଣବଜନ ଧେନୁଗଣ ।। ୧୫୧
ଆକାଶ ସଲିଳ ମରୁତ । ପୃଥିବୀ ଆତ୍ମା ସର୍ବଭୂତ ।। ୧୫୨
ଆହେ ଉଦ୍ଧବଟି ଏମାନ । ଅଟନ୍ତି ମୋର ପୂଜାସ୍ଥାନ ।। ୧୫୩
୪୩ ତ୍ରୟୀ ବିଦ୍ୟାରେ ସାଧୁ ନରେ । ମୋତେ ପୂଜିବ ସବିତାରେ ।। ୧୫୪
ଅଗ୍ନିରେ ମୋତେ ହେ ଉଦ୍ଧବ । ଘୃତହୋମରେଟି ପୂଜିବ ।। ୧୫୫
ଅତିଥିଭାବେ ବ୍ରାହ୍ମଣରେ । ତୃଣାଦିଦାନେ ଧେନୁଙ୍କରେ ।। ୧୫୬

---

୧. ଷଡ୍‌ଭିର୍ମାସୋପବାସୈସ୍ତୁ ଯତ୍ ଫଳଂ ପରିକୀର୍ତ୍ତିତମ୍ ।
ବିଷ୍ଣୋର୍ନୈବେଦ୍ୟସିକ୍ଥେନ ତତ୍‌ଫଳଂ ଭୁଞ୍ଜତାଂ କଳୌ ।। ୧
ହୃଦି ରୂପଂ ମୁଖେ ନାମ ନୈବେଦ୍ୟମୁଦରେ ହରେଃ ।
ପାଦୋଦକଂ ଚ ନିର୍ମାଲ୍ୟଂ ମସ୍ତକେ ଯସ୍ୟ ସୋଽଚ୍ୟୁତଃ ।। ୨
× × ×
ବିଷ୍ଣୋର୍ନିବେଦିତାନ୍ନେନ ଯଷ୍ଟବ୍ୟଂ ଦେବତାନ୍ତରମ୍ ।
ପିତୃଭ୍ୟଶ୍ଚାପି ତଦ୍ଦେୟଂ ତଦାନନ୍ତ୍ୟାୟ କଳ୍ପତେ ।। ୩
ପିତୃଶେଷଂ ତୁ ଯୋ ଦଦ୍ୟାଦ୍ ହରୟେ ପରମାତ୍ମନେ ।
ରେତୋଧାଃ ପିତରସ୍ତସ୍ୟ ଭବନ୍ତି କ୍ଲେଶଭାଗିନଃ ।। ୪ (ସ୍ୱାମିପାଦଧୃତ)

| | | | | |
|---|---|---|---|---|
| ୪୪ | ବନ୍ଧୁସତ୍‌କାରେ ବୈଷ୍ଣବରେ | । ପୂଜିବ ହୃଦୟେ[୧] ଧ୍ୟାନରେ | ॥ | ୧୫୭ |
| | ପ୍ରାଣଦୃଷ୍ଟିରେ ପବନରେ | । ଜଳରେ ତର୍ପଣ ଆଦିରେ | ॥ | ୧୫୮ |
| ୪୫ | ସ୍ଥଣ୍ଡିଳେ[୨] ମନ୍ତ୍ରହୃଦୟରେ[୩] | । ଦେହରେ ଆତ୍ମାକୁ ଭୋଗରେ | ॥ | ୧୫୯ |
| | ପୂଜିବ ସମସ୍ତ ଭୂତରେ | । [୪]ଆତ୍ମାକୁ ପୁରୁଷ ନିତ୍ୟରେ | ॥ | ୧୬୦ |
| | ସମତ୍ୱ ଭାବେ ହେ ଉଦ୍ଧବ | । ଏ ରୂପେ ମୋତେଟି ପୂଜିବ | ॥ | ୧୬୧ |
| ୪୬ | ଶଙ୍ଖ ଅମ୍ବୁଜ ଗଦା ଅରି | । ଯେ ଚାରିଭୁଜେ ଛନ୍ତି ଧରି | ॥ | ୧୬୨ |
| | ସେ ଶାନ୍ତସ୍ୱରୂପକୁ ମୋର | । [୫]ଏତେ ସ୍ଥାନରେ ବିଜ୍ଞ ନର | ॥ | ୧୬୩ |
| | ଚିତ୍ତକୁ କରି ସମାଧାନ | । ପୂଜା କରିବ କରି ଧ୍ୟାନ | ॥ | ୧୬୪ |
| ୪୭ | ବାପୀ କୂପାଦି କର୍ମମାନ | । ଅଗ୍ନିହୋତ୍ରାଦି ଯେ ବିଧାନ | ॥ | ୧୬୫ |
| | ଏଣେ ସଂଯତଚିତ୍ତ ହୋଇ | । ଯେ ମୋତେ ଅର୍ଚ୍ଚନା କରଇ | ॥ | ୧୬୬ |
| | ମୋ ଠାରେ ଭକ୍ତି ସେ ଲଭଇ | । ସାଧୁସେବାରେ ମୋତେ ପାଇ | ॥ | ୧୬୭ |
| ୪୮ | ଆହେ ଉଦ୍ଧବ ଭକ୍ତିଯୋଗ | । ଯେ ଅବା ସାଧୁଜନସଙ୍ଗ | ॥ | ୧୬୮ |
| | ଏ ବେନି ଉପାୟ ବିହୁନେ | । ମୋତେ ନ ପାନ୍ତି ଏ ଭୁବନେ | ॥ | ୧୬୯ |
| | ପ୍ରାୟଶଃ ଯେଣୁ ଅତିଶୟ | । ମୁଁ ସାଧୁମାନଙ୍କ ଆଶ୍ରୟ | ॥ | ୧୭୦ |
| ୪୯ | ଏଣୁ ଏ ସାଧୁସଙ୍ଗ ଭାବ | । ପରମ ଗୁହ୍ୟ ହେ ଉଦ୍ଧବ | ॥ | ୧୭୧ |
| | ଏ ଅତିଗୋପ୍ୟ ହେଲେ ପୁଣ | । କହିବି ମୁଁ ତୁମ୍ଭଙ୍କୁ ଶୁଣ | ॥ | ୧୭୨ |
| | ତୁମ୍ଭେ ଯେ ପ୍ରିୟଭୃତ୍ୟ ମୋର | । ସୁହୃଦ ସଖା ନିରନ୍ତର | ॥ | ୧୭୩ |
| | ଯେ ଭକ୍ତି ଭକ୍ତଲକ୍ଷଣକୁ | । କହିଲେ ଭୃତ୍ୟ ଉଦ୍ଧବକୁ | ॥ | ୧୭୪ |
| | ସେ କୃଷ୍ଣଚରଣନଳିନ | । ଚିନ୍ତା କରିଣ ଅନୁଦିନ | ॥ | ୧୭୫ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣେ | । ସୁଜନେ ତୋଷ ହୁଅ ଏଣେ | ॥ | ୧୭୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ସଦ୍‌ଭକ୍ତିପ୍ରାପ୍ତିସାଧନଂ ନାମ ଏକାଦଶୋଽଧ୍ୟାୟଃ ॥

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ସାଧୁସଙ୍ଗସ୍ୟ ମହିମା ବର୍ଣ୍ଣିତଃ ପୁରା ।
କର୍ମାନୁଷ୍ଠାନତତ୍ତ୍ୟାଗବ୍ୟବସ୍ଥା ଚ ତତଃ ପରମ୍ ॥ ୧

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧ | ପୁଣି କହନ୍ତି ଭଗବାନ | । ଉଦ୍ଧବ ଶୁଣ ମୋ ବଚନ | ॥ | ୧ |

୧. ହୃଦୟାକାଶେ । ୨. ଟାଙ୍ଗରା ଭୂଇଁରେ । ୩. ରହସ୍ୟମନ୍ତନ୍ୟାସରେ ।
୪. ଆତ୍ମା ପୁରୁଷକୁ ନିତ୍ୟରେ । ୫. ନାନା ।

ଯେ ଯୋଗ ସାଂଖ୍ୟ ଧର୍ମମାନ[1] । ସନ୍ନ୍ୟାସ ବେଦ-ଅଧ୍ୟୟନ ।। ୨
କୂପ ତଡ଼ାଗ ଆଦି ଧର୍ମ । ଅଗ୍ନିହୋତ୍ରାଦି ଯେତେ କର୍ମ ।। ୩
ଦାନ ଦକ୍ଷିଣା ତପ ଯେତେ । ଏ ବଶ ନ କରନ୍ତି ମୋତେ ।। ୪
୨ ବ୍ରତାଦି ଦେବପୂଜାମାନ । ଯମ ନିୟମ ତୀର୍ଥସ୍ନାନ ।। ୫
ସରହସ୍ୟ ଯେ ମନ୍ତ୍ର ଛନ୍ତି । ଏ ମୋତେ ବଶ ନ କରନ୍ତି ।। ୬
ସମସ୍ତ ସଙ୍ଗକୁ ଛଡ଼ାଇ । ଏମନ୍ତ ସାଧୁସଙ୍ଗ ଯେହି ।। ୭
ଉଦ୍ଧବ ସେ ମୋତେ ଯେସନେ । ବଶ କରନ୍ତି ଏ ଭୁବନେ ।। ୮
୩ ଅସୁର ଆଦି ଯାତୁଧାନେ । ଗନ୍ଧର୍ବ ଖଗ ମୃଗମାନେ ।। ୯
ଯେ ଅବା ନାଗ ସିଦ୍ଧଗଣେ । ଅପ୍‌ସରା ଗୁହ୍ୟକ ଚାରଣେ ।। ୧୦
ସତ୍‌ସଙ୍ଗ କରିଣ ଏମାନେ । ମୋତେ ଲଭିଲେ ଏ ଭୁବନେ ।। ୧୧
୪ ଯେ ଅବା ବିଦ୍ୟାଧରେ ଆନ । ମନୁଷ୍ୟଙ୍କରେ ଯେ ପ୍ରଧାନ ।। ୧୨
ବୈଶ୍ୟ ଶୂଦ୍ରାଦିମାନେ ଯେତେ । ନାରୀଏ ଅନ୍ତ୍ୟଜ ସହିତେ ।। ୧୩
ଏହାଙ୍କ ରଜ-ତମ ମତି । ସେ ସେହି ଯୁଗେ ଯୁଗେ ଅତି ।। ୧୪
ସତ୍‌ସଙ୍ଗ କରିଣ ସମସ୍ତେ । ଉଦ୍ଧବ ଲଭିଛନ୍ତି ମୋତେ ।। ୧୫
୫ ବୃଷପରବା ବଳି ବାଣ । ମୟ ଦଇତ ବିଭୀଷଣ ।। ୧୬
ବୃତ୍ର ପ୍ରହ୍ଲାଦ ଆଦି ସୁତ । ମୋ' ସ୍ଥାନ ପାଇଲେ ବହୁତ ।। ୧୭
୬ ସୁଗ୍ରୀବ ଗଜ ହନୁମାନ । ଗୃଧ୍ର[2] କୁବୁଜା ଜାମ୍ବବାନ ।। ୧୮
ଯେ ତୁଳାଧାର[3] ବ୍ୟାଧ[4] ପୁଣ । ବ୍ରଜରେ ଯେତେ ଗୋପୀଗଣ ।। ୧୯
ଯଜ୍ଞରେ ଯଜ୍ଞପତ୍ନୀ ଯେତେ । ସତ୍‌ସଙ୍ଗେ ଲଭିଲେ ଏ ମୋତେ ।। ୨୦
୭ ନ କଲେ ବେଦ-ଅଧ୍ୟୟନ । ସେବା ନ କଲେ ମହଜ୍ଜନ ।। ୨୧
ବ୍ରତ ତପସ୍ୟାଦି ନ କଲେ । ସତ୍‌ସଙ୍ଗୁଁ ମୋତେ ଏ ଲଭିଲେ ।। ୨୨
୮ କେବଳ ଭାବେ ଗୋପୀଜନେ । ଧେନୁଏ ବୃକ୍ଷ ମୃଗମାନେ ।। ୨୩
ଭୁଜଙ୍ଗ ଆଦି ସିଦ୍ଧମାନେ । ଯେ ମୂଢ଼ବୁଦ୍ଧି ଆନ ଜନେ ।। ୨୪
ସତ୍‌ସଙ୍ଗ କରି ଏ ସଂସାରେ । ମୋତେ ଏ ଲଭିଲେ ଶୀଘ୍ରରେ ।। ୨୫
୯ ଯଜ୍ଞ ତପସ୍ୟା, ବ୍ରତ ଦାନ । ସନ୍ନ୍ୟାସ ବେଦବ୍ୟାଖ୍ୟାମାନ ।। ୨୬
ସାଂଖ୍ୟ ଯୋଗାଦିମାନଙ୍କରେ । ମୋତେ ଟି ବହୁତ ଯତ୍ନରେ ।। ୨୭
ଲଭି ନାହାନ୍ତି ବିଜ୍ଞଜନେ । ସତ୍‌ସଙ୍ଗେ ଲଭିଲେ ଏମାନେ ।। ୨୮
୧୦ ଅକ୍ରୂର ନିଅନ୍ତେ ଆମ୍ଭଙ୍କୁ । ରାମସହିତେ ମଥୁରାକୁ ।। ୨୯
ଆମ୍ଭର ବିରହରେ କରି । ଦୃଢ଼ଦୁଃଖରୁ ବ୍ରଜନାରୀ ।। ୩୦
ମୋ'ଠାରେ ନିବେଶି ଚିତ୍ତକୁ । ମୋର ବିହୁନେ ସେ ଆନକୁ ।। ୩୧
ସୁଖନିମିତ୍ତେ ଏ ଜଗତେ । ଦେଖିଲେ ନାହିଁ କଦାଚିତେ ।। ୩୨

୧. ଅହିଂସାଦି । ୨. ଜଟାୟୁ । ୩. ତନ୍ନାମକ ବୈଶ୍ୟ । ୪. ଧର୍ମବ୍ୟାଧ ।

୧୧ ମୁଁ ପ୍ରିୟ ଥାନ୍ତେ ବୃନ୍ଦାବନେ । ମୋ ସଙ୍ଗେ ବ୍ରଜନାରୀମାନେ ।। ୩୩
ନେଲେ ଯେତେକ ରାତ୍ରିମାନ । ହେଲା ସେ କ୍ଷଣାର୍ଦ୍ଧସମାନ ।। ୩୪
ଆମ୍ଭେ ଆସନ୍ତେ ମଧୁପୁର । ସେ ରାତ୍ରିମାନ ତାହାଙ୍କର ।। ୩୫
କଳ୍ପସମାନ ଏବେ ପୁଣ । ହେଲା ସେ ହେ ଉଦ୍ଧବ ଜାଣ ।। ୩୬
୧୨ ସେ ବ୍ରଜନାରୀମାନେ ନିତି । ମୋ'ଠାରେ ବଦ୍ଧ କରି ମତି ।। ୩୭
ସ୍ୱ ପତିପୁତ୍ରାଦିଙ୍କି ଘେନି । ଏ ଲୋକ ପରଲୋକ ବେନି ।। ୩୮
କିଛି ସେ ନ ପାରିଲେ ଜାଣି । ଆହେ ଉଦ୍ଧବ ଯେହ୍ନେ ପୁଣି ।। ୩୯
ସମାଧିକାଳେ ଋଷିଜନ । ନ ଜାଣେ ନାମରୂପମାନ ।। ୪୦
ସମୁଦ୍ରେ ମିଶିଲେ ଯେସନ । ଜାଣି ନ ପାରେ ନଦୀମାନ ।। ୪୧
୧୩ କାମନା କରି ମୋତେ ପୁଣ । ସମସ୍ତ ବ୍ରଜନାରୀଗଣ ।। ୪୨
ସୁନ୍ଦର ଜାରଭାବେ ମଣି । ଭଜିଲେ ସ୍ୱରୂପ ନ ଜାଣି ।। ୪୩
ମୁଁ ଯେ ପରମ ବ୍ରହ୍ମ ମୋତେ । ସତ୍‌ସଙ୍ଗ କରି ଏ ଜଗତେ ।। ୪୪
ଲଭିଲେ ହେ ଉଦ୍ଧବ ପୁଣ । ସେ ଶତ ସହସ୍ର ହୋଇଣ ।। ୪୫
୧୪ ଏଡ଼େ ମୋ ଭଜନପ୍ରଭାବ । ସେ ହେତୁ ତୁମ୍ଭେ ହେ ଉଦ୍ଧବ ।। ୪୬
ମୋ ଆଜ୍ଞା ଶ୍ରୁତି ସ୍ମୃତି ଦୁଇ । ବିଧି ନିଷେଧ ଅବା ଯେହି ।। ୪୭
ଯେ ମାର୍ଗ ପ୍ରବୃତ୍ତି ନିବୃତ୍ତି । ଶ୍ରୁତ ଶ୍ରୋତବ୍ୟ ଯେ ବା ନିତି ।। ୪୮
୧୫ ଏମାନ ସମସ୍ତ ଛାଡ଼ିଣ । ମୋ' ପାଦେ ପଶ ତୁ ଶରଣ ।। ୪୯
ସମସ୍ତ ପ୍ରାଣିଙ୍କର ତହିଁ । ମୁଁ ଆତ୍ମାରୂପେ ଅଛି ରହି ।। ୫୦
ତାଙ୍କର ମୁଁ ଏକ ଶରଣ । ସର୍ବାତ୍ମଭାବେ ମୋତେ ପୁଣ ।। ୫୧
ଶରଣ ପଶ ହେ ଉଦ୍ଧବ । ତୋ' ଭୟ କାହିଁରୁ ନୋହିବ ।। ୫୨

ଶ୍ରୀଉଦ୍ଧବ ଉବାଚ

୧୬ ଉଦ୍ଧବ ଶୁଣି ଏ ବାକ୍ୟକୁ । କହୁଅଛନ୍ତି ଗୋବିନ୍ଦଙ୍କୁ ।। ୫୩
ମୁଁ ଯାହା ଅଛି ଆଜ୍ଞା ଦେଇ । ସେ ଧର୍ମ କର ମତ୍ତ ନୋହି ।। ୫୪
ଏବେ କହିଲ ସବୁ ତେଜି । ଶରଣ ପଶ ମୋତେ ଭଜି ।। ୫୫
ହେ ଯୋଗେଶ୍ୱରଙ୍କ ଈଶ୍ୱର । ଏ ବାକ୍ୟ ଶୁଣିଲେ ତୁମ୍ଭର ।। ୫୬
ଆତ୍ମାରେ ଅଛି ଅତିଶୟ । ନିବର୍ତ୍ତୁ ନାହିଁ ସେ ସଂଶୟ ।। ୫୭
ଭ୍ରମୁଛି ଯଉଁ ସନ୍ଦେହରେ । ମୋହର ମନ ନିରନ୍ତରେ ।। ୫୮

ଶ୍ରୀଭଗବାନୁବାଚ

୧୭ ଉଦ୍ଧବଙ୍କର ବାକ୍ୟ ଶୁଣି । କହୁଅଛନ୍ତି ଚକ୍ରପାଣି ।। ୫୯
ପ୍ରତ୍ୟକ୍ଷ ଈଶ୍ୱର ପୂର୍ବରେ । ଆଧାର ଆଦି ଚକ୍ରଙ୍କରେ ।। ୬୦
ଉଦ୍ଧବ ଥିଲେ ହେଁ ସେ ରହି । ବ୍ୟକ୍ତ ହୋଇଲା ପ୍ରାୟେ ହୋଇ ।। ୬୧
ପୂରକନାମ ନାଦବନ୍ତ । ସେ ପ୍ରାଣ ପବନ ସହିତ ।। ୬୨

| | | | | |
|---|---|---|---|---|
| | ଆଧାରଚକ୍ରେ ହୋଇ ସ୍ଥିତ | ଯେ ମନୋମୟ ହୋଇ ଖ୍ୟାତ | ॥ | ୬୩ |
| | ସେ ସୂକ୍ଷ୍ମ ସ୍ୱରୂପକୁ ଧରି | ମଣିପୁର ଚକ୍ରେ ବିହରି | ॥ | ୬୪ |
| | ମାତ୍ରା-ସ୍ୱର-ବର୍ଣ୍ଣଭେଦରେ | ସ୍ଥୂଳ ସେ ବୈଖରୀରୂପରେ | ॥ | ୬୫ |
| | ସେ ବେଦଶାସ୍ତ୍ରାତ୍ମକ ହୋଇ | [1]ବଚନରୂପେ ଉଚ୍ଚରଇ | ॥ | ୬୬ |
| ୧୮ | ଆକାଶେ ଯେହ୍ନେ ବହ୍ନି ଥାଇ | ଉଷ୍ମା[2]ରୂପରେ, ବ୍ୟକ୍ତ ନୋହି | ॥ | ୬୭ |
| | ବଳରେ ଦାରୁରେ ମଥନ | ହୁଅନ୍ତେ ସହାୟ ପବନ | ॥ | ୬୮ |
| | ସ୍ଫୁଲିଙ୍ଗରୂପେ ହୋଏ ଜାତ | ଘୃତରେ ହୁଅଇ ବର୍ଦ୍ଧିତ | ॥ | ୬୯ |
| | ଏ ରୂପେ ଏ ଯେଉଁ ବଚନ | ସେ ମୋ ସ୍ୱରୂପ ବିଦ୍ୟମାନ | ॥ | ୭୦ |
| ୧୯ | ହସ୍ତବେନିର କର୍ମ ବୃତ୍ତି | ବେନି ପାଦର ବୃତ୍ତି ଗତି | ॥ | ୭୧ |
| | ବିସର୍ଗ ପାୟୁ-ଉପସ୍ଥର | ଆଘ୍ରାଣ ଅଟେ ନାସିକାର | ॥ | ୭୨ |
| | ରସ ଜିହ୍ୱାର ସେ ରୂପରେ | ସ୍ପରଶ ଚର୍ମମାନଙ୍କରେ | ॥ | ୭୩ |
| | ନେତ୍ରବେନିର ଦରଶନ | କର୍ଣ୍ଣର ନାନା ଶବ୍ଦମାନ | ॥ | ୭୪ |
| | ନାନା ସଂକଳ୍ପଟି ମନର | ବିଜ୍ଞାନ ବୁଦ୍ଧି-ଚିତ୍ତଙ୍କର | ॥ | ୭୫ |
| | ଅଭିମାନ ଅହଂକାରର | ସୂତ୍ର ଅଟଇ ପ୍ରକୃତିର | ॥ | ୭୬ |
| | ସତ୍ତ୍ୱାଦି ତିନିଗୁଣୁଁ ଜାତ | ଅଧିଦୈବାଦି ତିନି ମତ | ॥ | ୭୭ |
| | ଏ ରୂପେ ଏ ଯଉଁ ଜଗତ | ମୋର ଶରୀର ଏ ବିଦିତ | ॥ | ୭୮ |
| ୨୦ | ସେ ଈଶ୍ୱରର ଏ ରୂପରେ | ଗତି ଅବ୍ୟକ୍ତ ପ୍ରଥମରେ | ॥ | ୭୯ |
| | ସେ ଏକ ଆଦ୍ୟ ଅତିଶୟ | କାଳେ ସେ ତ୍ରିଗୁଣ ଆଶ୍ରୟ | ॥ | ୮୦ |
| | ଭୁବନନଳିନକାରଣ | ଘେନି ସେ ମାୟାଶକ୍ତିଗଣ | ॥ | ୮୧ |
| | ଶୋଭା ପାଆନ୍ତି ନାନାମତେ | ଉଦ୍ଧବ ଶୁଣ ହେ ଯେମନ୍ତେ | ॥ | ୮୨ |
| | [3]କେଦାର ଲଭି ମଞ୍ଜିମାନ | ହୁଅନ୍ତି ବହୁତ ବିଧାନ | ॥ | ୮୩ |
| ୨୧ | ଏ ବିଶ୍ୱ ଓତପ୍ରୋତ ହୋଇ | ଅଛଇ ଯାହାଠାରେ ରହି | ॥ | ୮୪ |
| | ସୂତ୍ରସମୂହରେ ଯେସନ | ପଟ ହୋଇଛି ସଂସ୍ଥାପନ | ॥ | ୮୫ |
| | ଯାହା ମାୟାରୁ ଏ ପ୍ରତ୍ୟକ୍ଷ | ଅନାଦି ଏ ସଂସାରବୃକ୍ଷ | ॥ | ୮୬ |
| | ଏ ଯାର ଆତ୍ମା କର୍ମ ଘେନି | ଯେ ଭୁକ୍ତିମୁକ୍ତି ଅଛି ବେନି | ॥ | ୮୭ |
| | ସେ ବେନି ଫଳକୁ ପ୍ରସବ | କରଇ କାଳେ ହେ ଉଦ୍ଧବ | ॥ | ୮୮ |

୧. ଚତ୍ୱାରି ବାକ୍‌ପରିମିତା ପଦାନି, ତାନି ବିଦୁର୍ବ୍ରାହ୍ମଣା ଯେ ମନୀଷିଣଃ ।
ଗୁହା ତ୍ରୀଣି ନିହିତା ନେଙ୍ଗୟନ୍ତି, ତୁରୀୟଂ ବାଚୋ ମନୁଷ୍ୟା ବଦନ୍ତି ॥
ଯା ସା ମିତ୍ରାବରୁଣସଦନାଦୁଚ୍ଚରନ୍ତୀ ତ୍ରିଷଷ୍ଟିଂ
ବର୍ଣ୍ଣାନନ୍ତଃପ୍ରକଟକରଣୈଃ ପ୍ରାଣସଙ୍ଗାଦ୍ ପ୍ରସୂତେ ।
ତାଂ ପଶ୍ୟନ୍ତୀଂ ପ୍ରଥମମୁଦିତାଂ ମଧ୍ୟମାଂ ବୁଦ୍ଧିସଂସ୍ଥାଂ
ବାଚଂ ବକ୍ତ୍ରେ କରଣବିଶଦାଂ ବୈଖରୀଂ ଚ ପ୍ରପଦ୍ୟେ ॥ (ସ୍ୱାମିଧୃତ)

୨. ଉଷ୍ମା = ଗରମ ବାଷ୍ପ । ୩. କେଦାର = କିଆରି ।

୨୨ ଯେ ଅବା ପାପ ପୁଣ୍ୟ ଦୁଇ । ଏ ବୃକ୍ଷମଞ୍ଜି ସେ ଅଟଇ ।। ୮୯
ଶତସଂ ଖ୍ୟକ ପରିମିତେ । କର୍ମବାସନାମାନ ଯେତେ ।। ୯୦
ଏହାର ଅଟନ୍ତି ସେ ମୂଳ । ସତ୍ତ୍ୱାଦି ତିନିଗୁଣ ଡାଳ ।। ୯୧
ଭୂ ଆଦି ପଞ୍ଚ ମହାଭୂତ । ସ୍କନ୍ଧରୂପରେ ଯହିଁ ଖ୍ୟାତ ।। ୯୨
ଶବଦ ରୂପ ଗନ୍ଧ ସ୍ପର୍ଶ । ଏ ଆଦି ପଞ୍ଚ ଯହିଁ ରସ ।। ୯୩
ଯହିଁ ଇନ୍ଦ୍ରିୟ ଏକାଦଶ । ଶାଖାରୂପରେ ପରକାଶ ।। ୯୪
[1]ଯେ ବାତ-ପିତ୍ତ-ଶ୍ଳେଷ୍ମା ତିନି । ଯହିଁରେ ବଲ୍‌କଳ ସେ ପୁଣି ।। ୯୫
ଜୀବ ପରମ ଆତ୍ମା ଦୁଇ । ପକ୍ଷୀରୂପରେ ଛନ୍ତି ରହି ।। ୯୬
ଯହିଁରେ ସୁଖ ଦୁଃଖ ଦୁଇ । ଫଳରୂପରେ ପ୍ରକାଶଇ ।। ୯୭
ସେ ବିଶ୍ୱମହୀରୁହ[2]ଟି ଏ । ବ୍ୟାପିଛି ସୂର୍ଯ୍ୟବିମ୍ବଯାଏ ।। ୯୮
୨୩ ଯେ ଦୁଃଖମୟଟି କେବଳ । ସେ ବିଶ୍ୱବୃକ୍ଷ-ଏକଫଳ ।। ୯୯
ଭୁଞ୍ଜନ୍ତି ଗୃହାଶ୍ରମୀ ନରେ । ବହୁତ ଫଳ ଆକାଂକ୍ଷାରେ ।। ୧୦୦
ପରମହଂସ ସନ୍ନ୍ୟାସୀଏ । ଭୁଞ୍ଜନ୍ତି ସୁଖଫଳ ସ୍ୱୟେଂ ।। ୧୦୧
ମାୟାରେ ବହୁରୂପ ଧରେ । ଯେ ପରମାତ୍ମା ତାକୁ ନରେ ।। ୧୦୨
ଜାଣନ୍ତି ଗୁରୁଦ୍ୱାରେ ଯେହୁ । ଜାଣନ୍ତି ପରତତ୍ତ୍ୱ ସେହୁ ।। ୧୦୩
୨୪ ଏକଭକ୍ତିରେ ହେ ଉଦ୍ଧବ । ନିଜ ଗୁରୁଙ୍କୁ ବେଗେ ସେବ ।। ୧୦୪
ପ୍ରମତ୍ତ ନୋହିଣ କାହିଁରେ । ସୁତୀକ୍ଷ୍ଣ ବିଦ୍ୟାକୁଠାରରେ ।। ୧୦୫
ଜୀବ ଉପାଧିକି ବହନ । ଏ ରୂପେ କରିଣ ଛେଦନ ।। ୧୦୬
ଲଭିଣ ପରମ ଆତ୍ମାକୁ । ଛାଡ଼ ସମସ୍ତ ସାଧନକୁ ।। ୧୦୭
ଆପଣା ଭକ୍ତ ଉଦ୍ଧବକୁ । କହିଲେ ଯେ ଆତ୍ମଜ୍ଞାନକୁ ।। ୧୦୮
ସେ କୃଷ୍ଣଚରଣପଙ୍କଜ । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ ।। ୧୦୯

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
'କର୍ମାନୁଷ୍ଠାନତତ୍ତ୍ୟାଗବ୍ୟବସ୍ଥା' ନାମ ଦ୍ୱାଦଶୋଽଧ୍ୟାୟଃ ।।

## ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେଽଥ ସତ୍ତ୍ୱସ୍ୟ ବୃଦ୍ଧ୍ୟା ବିଦ୍ୟୋଦୟକ୍ରମଃ ।
ହଂସେତିହାସତର୍ଣ୍ଣିତଗୁଣବିଶ୍ଳେଷବର୍ଣ୍ଣନମ୍ ।। ୧ ।।

ଶ୍ରୀଭଗବାନୁବାଚ

୧ କହନ୍ତି ପ୍ରଭୁ ନାରାୟଣ । କହିବା ହେ ଉଦ୍ଧବ ଶୁଣ ।। ୧
ତ୍ରିଗୁଣ ସତ୍ତ୍ୱ ରଜ ତମ । ପ୍ରକୃତିଠାରୁ ଏ ଜନମ ।। ୨

୧. ବରଷା ଆଦି ତିନି କାଳ । ଯହିଁରେ ଅଟନ୍ତି ବକଳ ।। (ପାଠାନ୍ତର) ୨. ବିଶ୍ୱମହୀରୁହ = ଗଛ ।

ଆତ୍ମାରୁ ନୁହନ୍ତି ସମ୍ଭବ । ଏ ହେତୁ ପଣ୍ଡିତ ମାନବ ॥ ୩
ସତ୍ତ୍ୱଗୁଣରେ ଆର ଦୁଇ । ଗୁଣକୁ ଦେବ ନିବର୍ତ୍ତାଇ ॥ ୪
ସତ୍ୟଦୟାଦି ବୃତ୍ତିଙ୍କରେ । ସତ୍ତ୍ୱକୁ ଜିଣିମ ସତ୍ତ୍ୱରେ ॥ ୫
୨ ସତ୍ତ୍ୱ ବଢ଼ନ୍ତେ ପୁରୁଷର । ମୋ' ଭକ୍ତିଲକ୍ଷଣ ପ୍ରକାର ॥ ୬
ଧର୍ମ ତହିଁରୁ ଉତପନ୍ନ । ସାତ୍ତ୍ୱିକ ହୁଅନ୍ତେ ସେବନ ॥ ୭
ତହିଁରୁ ସତ୍ତ୍ୱ ବିବର୍ଦ୍ଧିତ । ସତ୍ତ୍ୱରୁ ଧର୍ମ ହୋଏ ଜାତ ॥ ୮
୩ ସେ ଧର୍ମ ରଜ ତମ ଦୁଇ । ଗୁଣକୁ ବିନାଶ କରଇ ॥ ୯
ଯହିଁରେ ସତ୍ତ୍ୱବୃଦ୍ଧି ହୋଇ । ଅତି ଉତ୍ତମ ଧର୍ମ ସେହି ॥ ୧୦
ନାଶ ହୁଅନ୍ତେ ରଜ ତମ । ତାଙ୍କର ମୂଳ ଯେ ଅଧର୍ମ ॥ ୧୧
ସେ ଅଧର୍ମ ହିଁ ତତକାଳ । ବିନାଶ ହୁଅଇ କେବଳ ॥ ୧୨
୪ ଆଗମ ଅର୍ଥ[୧] ପ୍ରଜାମାନ । ଯେ ଦେଶ କାଳ କର୍ମ ଆନ ॥ ୧୩
ଯେ ଜନ୍ମ ମନ୍ତ୍ର ଧ୍ୟାନ ଆର । ଅଥବା ଯେ ପୁଣ ସଂସ୍କାର ॥ ୧୪
ଏ ଦଶ ଏ ରୂପରେ ଜାଣ । ତ୍ରିଗୁଣଙ୍କର ଏ କାରଣ ॥ ୧୫
୫ ଏ ଦଶମଧ୍ୟେ ବୃଦ୍ଧଗଣ । ପ୍ରଶଂସେ ଯେବଣ ଯେବଣ ॥ ୧୬
ତାହାଙ୍କୁ ସାତ୍ତ୍ୱିକ ବୋଲନ୍ତି । ଯେତେକ ଯେତେକ ନିନ୍ଦନ୍ତି ॥ ୧୭
ତାମସ ବୋଲାନ୍ତିଟି ସେହି । ଯାହାଙ୍କୁ ସ୍ତୁତି ନିନ୍ଦା ନାହିଁ ॥ ୧୮
ତାହାଙ୍କୁ ବୋଲନ୍ତି ରାଜସ । ଏରୂପେ ଏ ଦଶ ପ୍ରକାଶ ॥ ୧୯
୬ ସତ୍ତ୍ୱଗୁଣରୁ ବୃଦ୍ଧି ଭାବି । ପୁରୁଷ ସାତ୍ତ୍ୱିକକୁ ସେବି ॥ ୨୦
ତହିଁରୁ ଧର୍ମ ହୋଏ ଜାତ । ଧର୍ମରୁ ଜ୍ଞାନଟି ସମ୍ଭୂତ ॥ ୨୧
ଦେହଦ୍ୱୟର ଯେ କାରଣ । ଯାବତ ବିନାଶ ସେ ଗୁଣ ॥ ୨୨
ସତ୍ତ୍ୱବୃଦ୍ଧିରେଟି ତାବତ । ଧର୍ମରୁ ଜ୍ଞାନ ହୋଏ ଜାତ ॥ ୨୩
୭ ବେଣୁସଂଘରକ୍ଷଣୁଁ ସ୍ୱତଃ । ଯେସନେ ଅଗ୍ନି ହୋଏ ଜାତ ॥ ୨୪
ସେ ବନ ଦଗଧ କରିଣ । ଶାନ୍ତିକି ଲଭଇ ତତ୍‌କ୍ଷଣ ॥ ୨୫
ଏ ରୂପେ ଗୁଣମାନଙ୍କର । କ୍ଷୋଭରୁ ହୋଏ କଳେବର ॥ ୨୬
ଚେଷ୍ଟା କରି ସେ ଅଗ୍ନିପ୍ରାଏ । ଗୁଣ ବିନାଶି ଶାନ୍ତ ହୋଏ ॥ ୨୭

ଶ୍ରୀଉଦ୍ଧବ ଉବାଚ

୮ ଏମନ୍ତ ଶୁଣିଣ ଉଦ୍ଧବ । କହନ୍ତି ଶୁଣ ହେ ମାଧବ ॥ ୨୮
ବିଷୟମାନେ ଯେତେ ଛନ୍ତି । ବିପତ୍ତିସ୍ଥାନ ସେ ଅଟନ୍ତି ॥ ୨୯
ଏମନ୍ତ ଜାଣିଲେହେଁ ନରେ । ହେ କୃଷ୍ଣ ! କିମ୍ପା ଏ ସଂସାରେ ॥ ୩୦
ଭୁଞ୍ଜନ୍ତି ସେ ବିଷୟ ସ୍ୱୟେଂ । ଖର-କୁକୁର-ଛେଳିପ୍ରାୟେ ॥ ୩୧
ଭର୍ତ୍ସନା ଲଭିଲେ କୁକୁର । ଗୃହ ନ ଛାଡ଼େ ବାରମ୍ବାର ॥ ୩୨

୧. ଅପଃ ଇତି ମୂଳ ପାଠାନ୍ତରମ୍ ।

ଖରୀରୁ ପାଦଘାତ ପାଇ । ଖର ତାହାକୁ ନ ଛାଡ଼ଇ ॥
ହାଣିମା ସ୍ଥାନରେ ହେଁ ସ୍ୱୟେଂ । ନିର୍ଲ୍ଲଜ ଛେଳି ତୃଣ ଖାଏ ॥

### ଶ୍ରୀଭଗବାନୁବାଚ

୯ ଶୁଣି ଉଦ୍ଧବର ବଚନ । ତାଙ୍କୁ କହନ୍ତି ଭଗବାନ ॥
ପ୍ରମତ୍ତ ଲୋକର ସଂସାରେ । ଯେ ଅହଂବୁଦ୍ଧି ଦେହାଦିରେ ॥
ମିଥ୍ୟା ବୁଦ୍ଧିରେ ସେ ଯେମନ୍ତ । ହୃଦୟମଧ୍ୟେ ହୋଏ ଜାତ ॥
ତହିଁରୁ ସତ୍ତ୍ୱମନ ଯାଇ । ଘୋର ରଜରେ ଯୁକ୍ତ ହୋଇ ॥
୧୦ ରଜସଂଯୁତ ମାନସରେ । ବିବିଧ ଭୋଗ୍ୟସ୍ୱରୂପରେ ॥
ସଂକଳ୍ପମାନ ହୋଏ ଜାତ । ସେ ଗୁଣଧ୍ୟାନରୁ ସନ୍ତତ ॥
ଦୁର୍ବୁଦ୍ଧି ଲୋକର ବହନ । ଦୁଃସହ କାମ ଉତପନ୍ନ ॥
୧୧ ସେ କାମବଶ ହୋଇ ପୁଣି । ଇନ୍ଦ୍ରିୟମାନଙ୍କୁ ନ ଜିଣି ॥
ରଜୋଗୁଣରେ ଅନୁକ୍ଷଣ । ବିଶେଷେ ମୋହିତ ହୋଇଣ ॥
ଦୁଃଖ ଯହିଁରେ ଅଛି ପ୍ରାନ୍ତେ । ସେ କର୍ମ କରଇ ଜାଣନ୍ତେ ॥
୧୨ ଯେ ରଜ ତମ ଗୁଣ ଦୁଇ । ତହିଁରେ ପଣ୍ଡିତ ଲୋକ ହିଁ ॥
ଯେବେ ବିକ୍ଷିପ୍ତ ହୋଏ ଚିତ୍ତ । ତହିଁରେ ନୋହି ଆସକତ ॥
ତହିଁରେ ଦେଖି ଦୋଷବିଧି । ଆସକ୍ତ ନୋହି ମନ ବୁଦ୍ଧି ॥
୧୩ ପ୍ରମତ୍ତ ନୋହି ଜ୍ଞାନିଜନ । ଜିଣି ନିଃଶ୍ୱାସ ନିଜାସନ ॥
ଅଳସ ଛାଡ଼ି ତ୍ରିକାଳରେ । ଅଳପ ଅଳପ ମୋ' ଠାରେ ॥
ମନକୁ କରି ସମର୍ପଣ । ଧ୍ୟାନ କରଇ ମୋତେ ପୁଣ ॥
୧୪ ସନକାଦିଏ ଶିଷ୍ୟ ମୋର । ଯଥାର୍ଥ କରି ଆପଣାର ॥
ମନକୁ ସର୍ବଠାରୁ ଆଣି । ମୋ' ଠାରେ ସମର୍ପି ସେ ପୁଣି ॥
ଏ ଯୋଗମାର୍ଗ ଅନୁଦିନ । ସାକ୍ଷାତେ କଲେ ଅନୁଷ୍ଠାନ ॥

### ଶ୍ରୀଉଦ୍ଧବ ଉବାଚ

୧୫ ଏମନ୍ତ ଶୁଣି ସେ ଉଦ୍ଧବ । ପୁଣି କହନ୍ତି ହେ କେଶବ ॥
ଯଉଁ କାଳରେ ଯଉଁ ରୂପେ । ସନକାଦିଙ୍କି ତୁମ୍ଭେ ଆପେ ॥
କହିଲ ଏ ଯୋଗମାର୍ଗକୁ । ଇଚ୍ଛା ମୋ' ତାହା ଜାଣିମାକୁ ॥

### ଶ୍ରୀଭଗବାନୁବାଚ

୧୬ କୃଷ୍ଣ କହନ୍ତି ଏବେ ପୁଣ । ଯାହା ପଚାରିଲ ତା' ଶୁଣ ॥
ସନକାଦିଏ ବ୍ରହ୍ମାଙ୍କର । ଅଟନ୍ତି ମାନସ କୁମର ॥
ପିତାଙ୍କୁ ସୂକ୍ଷ୍ମା[୧] ଐକାନ୍ତିକୀ[୨] । ପୁଛିଲେ ଯୋଗର ଗତିକି ॥

---

୧. ସୂକ୍ଷ୍ମା = ଦୁର୍ଜ୍ଞେୟା   ୨. ଐକାନ୍ତିକୀ ଗତି = ପରାକାଷ୍ଠା ।

ଶ୍ରୀସନକାଦୟ ଉଚୁଃ

| | | | | |
|---|---|---|---|---|
| ୧୭ | ଅନୁରାଗାଦିବଶୁଁ ସ୍ୱୟେଂ | ବିଷୟଭୋଗେ ଚିତ୍ତ ରହେ | ॥ | ୬୦ |
| | ବିଷୟମାନେହେଁ ଚିତ୍ତରେ | ରହନ୍ତି ବାସନାରୂପରେ | ॥ | ୬୧ |
| | ହେ ପ୍ରଭୁ ଏ ବିଷୟମାନ | ତରି ମୋକ୍ଷରେ ଯାହା ମନ | ॥ | ୬୨ |
| | କି ରୂପେ ଅନ୍ୟୋଽନ୍ୟରେ ତ୍ୟାଗ | ତାହା କରିବ କହ ବେଗ | ॥ | ୬୩ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧୮ | ସ୍ୱୟମ୍ଭୂ ସେ ଭୂତଭାବନ | ଦେବଙ୍କ ଦେବ ପଦ୍ମାସନ | ॥ | ୬୪ |
| | ଏମନ୍ତ ପଚାରନ୍ତେ ସୁତେ | ବିଚାର କରିଣ ସେ ଚିତ୍ତେ | ॥ | ୬୫ |
| | ପ୍ରଶ୍ନବୀଜକୁ ନ ଜାଣିଲେ | କର୍ମେ ବିକ୍ଷିପ୍ତଚିତ୍ତ ହେଲେ | ॥ | ୬୬ |
| ୧୯ | ପ୍ରଶ୍ନ-ଉତ୍ତର ଜାଣିମାକୁ | ସେ ବ୍ରହ୍ମା ଚିନ୍ତିଲେ ଆମ୍ଭଙ୍କୁ | ॥ | ୬୭ |
| | ହଂସସ୍ୱରୂପେ ସେ କାଳରେ | ମୁଁ ହେଲି ବ୍ରହ୍ମାଙ୍କ ଆଗରେ | ॥ | ୬୮ |
| ୨୦ | ସନକାଦିଏ ଦେଖି ମୋତେ | ବ୍ରହ୍ମାଙ୍କୁ କରିଣ ଅଗ୍ରତେ | ॥ | ୬୯ |
| | ପାଛୋଟି ଆସି କେତେ ଦୂର | ମୋ' ପାଦେ କରି ନମସ୍କାର | ॥ | ୭୦ |
| | କେ ତୁମ୍ଭେ ବୋଲି ଏ ରୂପରେ | ମୋତେ ପୁଛିଲେ ସେ କାଳରେ | ॥ | ୭୧ |
| ୨୧ | ସେ ମୁନିମାନେ ଏ ରୂପରେ | ତତ୍ତ୍ୱକୁ ଜାଣିମା ଇଚ୍ଛାରେ | ॥ | ୭୨ |
| | ସେ କାଳେ ପଚାରନ୍ତେ ମୋତେ | ଆମ୍ଭେ ସେମାନଙ୍କୁ ଯେମନ୍ତେ | ॥ | ୭୩ |
| | କହିଲୁଁ ହେ ଉଦ୍ଧବ ଯାହା | ମୋ' ଠାରୁ ଶୁଣ ତୁମ୍ଭେ ତାହା | ॥ | ୭୪ |
| ୨୨ | ଆତ୍ମାର ପ୍ରଶ୍ନ ଏପ୍ରକାର | ଯେବେ ସେ ପରମ ଆତ୍ମାର | ॥ | ୭୫ |
| | ହେ ବିପ୍ରେ ନାନାତ୍ୱ ନ ଥାନ୍ତେ | ଏ ପ୍ରଶ୍ନ ଘଟିବ କେମନ୍ତେ | ॥ | ୭୬ |
| | ଉତ୍ତରଦାତା ମୁଁ ମୋହର | ଆଶ୍ରୟ ଅବା କେ ବକ୍ତାର | ॥ | ୭୭ |
| | ଆତ୍ମାର ଏକତ୍ୱେ କାହାକୁ | ଆମ୍ଭେ କହିବା ଉତ୍ତରକୁ | ॥ | ୭୮ |
| ୨୩ | ଦେହକୁ ପ୍ରଶ୍ନ କଲ ଯେବେ | ଶୁଣ କହିବା ତୁମ୍ଭେ ତେବେ | ॥ | ୭୯ |
| | ପଞ୍ଚମହାଭୂତଘଟିତ | ସମାନ ଏ ସମସ୍ତ ଭୂତ | ॥ | ୮୦ |
| | ଏଥି କାରଣ ଆତ୍ମା ଯେଣୁ | ବାସ୍ତବ ଅଭିନ୍ନ ଏ ତେଣୁ | ॥ | ୮୧ |
| | 'କେ ତୁମ୍ଭେ' ବୋଲି ଯା ଏମନ୍ତେ | କଲ ଯେବଣ ପ୍ରଶ୍ନ ମୋତେ | ॥ | ୮୨ |
| | ବଚନ ଆରମ୍ଭ ମାତ୍ରକ | ହେଲା ଏ ତେଣୁ ଅନର୍ଥକ | ॥ | ୮୩ |
| ୨୪ | ମନରେ ବଚନେ ଦୃଷ୍ଟିରେ | ଇନ୍ଦ୍ରିୟ ଅର୍ଥମାନଙ୍କରେ | ॥ | ୮୪ |
| | ଘେନିଟି ଯେବଣ ଯେବଣ | ମୁଁ ସେହି ବୋଲି ମୋତେ ଜାଣ | ॥ | ୮୫ |
| | ମୋ'ଠାରୁ ଆନ କେହି ନାହିଁ | ତତ୍ତ୍ୱବିଚାରେ ଜାଣ ରହି | ॥ | ୮୬ |
| ୨୫ | ଗୁଣେ ପ୍ରବେଶ ହୋଏ ଚିତ୍ତ | ସେ ଗୁଣ ଚିତ୍ତରେ ସଂଯୁତ | ॥ | ୮୭ |
| | ହେ ପୁତ୍ରମାନେ ଏ ହେତୁରୁ | ଗୁଣ-ଚିତ୍ତର ପରସ୍ପରୁ | ॥ | ୮୮ |
| | ମୋ' ବ୍ରହ୍ମସ୍ୱରୂପ ଜୀବର | ଉଦ୍‌ପନ୍ନ ହୋଏ କଳେବର | ॥ | ୮୯ |

| | | | | |
|---|---|---|---|---|
| ୨୬ | ସେ ଗୁଣସେବାରୁ ସନ୍ତତ । | ଗୁଣେ ପ୍ରବେଶ ହୋଏ ଚିତ୍ତ | ।। | ୯୦ |
| | ଏ ରୂପେ ଗୁଣମାନେ ଅତି । | ଚିତ୍ତରୁ ଉତ୍‌ପନ୍ନ ହୁଅନ୍ତି | ।। | ୯୧ |
| | ଧରନ୍ତେ ମୋର ସ୍ୱରୂପକୁ । | ଛାଡ଼ିବ ଏ ବେନି କଥାକୁ | ।। | ୯୨ |
| ୨୭ | ଜାଗ୍ରତ ସ୍ୱପ୍ନ ସୁଷୁପ୍ତି । | ଗୁଣରୁ ବୁଦ୍ଧିର ଏ ବୃତ୍ତି | ।। | ୯୩ |
| | ସେ ବୃତ୍ତିମାନଙ୍କରୁ ପୁଣ । | ଜୀବ ହୋଇଛି ବିଲକ୍ଷଣ | ।। | ୯୪ |
| | ତାଙ୍କର ସାକ୍ଷିରୂପ ହୋଇ । | ନିଶ୍ଚୟେ ଜୀବ ଅଛି ରହି | ।। | ୯୫ |
| ୨୮ | ଏ ଜୀବ ଯେବଣ କାଳରେ । | ବନ୍ଧନ ଲଭଇ ବୁଦ୍ଧିରେ | ।। | ୯୬ |
| | ସେକାଳେ ବନ୍ଧନ ଆତ୍ମାକୁ । | ଦିଏ ଗୁଣବୃତ୍ତିମାନଙ୍କୁ | ।। | ୯୭ |
| | ମୁଁ ଯେ ସୁଷୁପ୍ତିସାକ୍ଷୀ ମୋତେ । | ସେ ଜୀବ ଦେଖନ୍ତେ ସାକ୍ଷାତେ | ।। | ୯୮ |
| | ସଂସାରବନ୍ଧନ ଛାଡ଼ଇ । | ଗୁଣଚିତ୍ତଙ୍କ ତ୍ୟାଗ ହୋଇ[1] | ।। | ୯୯ |
| ୨୯ | ଅହଂକାରରେ ବନ୍ଧ ଜାତ । | ସେ ପୁଣି ଆତ୍ମାର ସନ୍ତତ | ।। | ୧୦୦ |
| | ଆନନ୍ଦ ଆଦି ଆବରଣ । | ଯୋଗୁଁ ଅନର୍ଥର କାରଣ | ।। | ୧୦୧ |
| | ନିର୍ବେଦ ହୋଇ ଏହା ଜାଣି । | ମୋର ସ୍ୱରୂପ ଦେଖି ପୁଣି | ।। | ୧୦୨ |
| | ସଂସାରଚିନ୍ତା ଆଦି ଭୋଗ । | ବେଗେ କରିବ ପରିତ୍ୟାଗ | ।। | ୧୦୩ |
| ୩୦ | ଯୁକ୍ତିରେ ପୁରୁଷର ନିତି । | ଯାବତ ନାନା ଅର୍ଥ ମତି | ।। | ୧୦୪ |
| | ନିବର୍ତ୍ତି ନ ଥାଇ ସଂସାରେ । | ଜାଗ୍ରତ ହୋଏ କର୍ମାଦିରେ | ।। | ୧୦୫ |
| | ସେ ଅଜ୍ଞ ଜାଗ୍ରତେ[2] ସ୍ୱପନ । | ସ୍ୱପ୍ନରେ ଜାଗ୍ରତ ଯେସନ | ।। | ୧୦୬ |
| ୩୧ | ଏ ଦେହ ଆଦିଙ୍କର ଅତି । | ଯେ ବର୍ଣ୍ଣାଶ୍ରମ ଆଦି ଗତି | ।। | ୧୦୭ |
| | ସ୍ୱର୍ଗାଦି ଫଳକୁ କାରଣ । | ଯେତେକ କର୍ମମାନେ ପୁଣ | ।। | ୧୦୮ |
| | ଆତ୍ମାର ନୁହନ୍ତି ଏ କେହି । | ଅବିଦ୍ୟା ବିଷୟରୁ ହୋଇ | ।। | ୧୦୯ |
| | ସ୍ୱପ୍ନ ଦେଖନ୍ତେ ଯେହ୍ନେ ନର । | ସେ ସ୍ୱପ୍ନ ମିଥ୍ୟା ହୋଏ ତାର | ।। | ୧୧୦ |
| ୩୨ | ଯେ ବାହ୍ୟେ ଜାଗ୍ରତାବସ୍ଥାରେ । | ସର୍ବ ଇନ୍ଦ୍ରିୟମାନଙ୍କରେ | ।। | ୧୧୧ |
| | ବାଲ୍ୟ ତରୁଣ ଆଦି ହୋଇ । | ସ୍ଥୂଳ ଦେହାଦିଙ୍କି ଭୁଞ୍ଜଇ | ।। | ୧୧୨ |
| | ଯେ ସ୍ୱପ୍ନଦଶାରେ ହୃଦୟେ । | ଜାଗ୍ରତ ସଂସ୍କାରକୁ ସ୍ୱୟେଂ | ।। | ୧୧୩ |
| | ଭୁଞ୍ଜଇ ପୁଣ ସୁଷୁପ୍ତିରେ । | ଏସର୍ବ ସଂହାର ଯେ କରେ | ।। | ୧୧୪ |
| | ସେ ଏକ ଆତ୍ମାଟି ସ୍ମୃତିରେ । | ସଂଯୁତ ସର୍ବ ଅବସ୍ଥାରେ | ।। | ୧୧୫ |
| | ଦ୍ରଷ୍ଟା ସେ ତିନି ଅବସ୍ଥାର । | ଇନ୍ଦ୍ରିୟମାନଙ୍କ ଈଶ୍ୱର | ।। | ୧୧୬ |
| ୩୩ | ଗୁଣରୁ ହୁଅନ୍ତି ଉତ୍‌ପନ୍ନ । | ଗୁଣର ଏ ଅବସ୍ଥାମାନ | ।। | ୧୧୭ |
| | ଏ ମୋର ମାୟାରେ ମୋ'ଠାରେ । | ନିର୍ମିତ ଜାଣି ଏ ରୂପରେ | ।। | ୧୧୮ |
| | ଏ ଆତ୍ମାରୂପ ଅର୍ଥ ମନେ । | ନିଶ୍ଚୟ କରି ତୁମ୍ଭେମାନେ | ।। | ୧୧୯ |
| | ସାଧୁବଚନାନୁମାନରେ । | ସୁତୀକ୍ଷ୍ଣ ଜ୍ଞାନଖଡ଼ଗରେ | ।। | ୧୨୦ |

୧. ତିନିଗୁଣ ଓ ଚିତ୍ତ ପରସ୍ପରକୁ ଛାଡ଼ନ୍ତି । ୨. ଜାଗରଣରେ ।

| | | | | |
|---|---|---|---|---|
| | ସର୍ବସଂଶୟ-ଅହଂକାର | ବିନାଶ କରିଣ ସତ୍ୱର | ॥ | ୧୨୧ |
| | ମୁଁ ଅଛି ହୃଦୟରେ ମୋତେ | ଭଜନ କର ଅବିରତେ | ॥ | ୧୨୨ |
| ୩୪ | ବିଭ୍ରମ ଅଟେ ଏ ଜଗତ | ମନରୁ ହେଲା ବିଜୃମ୍ଭିତ | ॥ | ୧୨୩ |
| | ଏ [1]ଦୃଷ୍ଟ ବିନଷ୍ଟ କେବଳ | ଅଲାତଚକ୍ର[2]ପ୍ରାୟେ ଚଳ | ॥ | ୧୨୪ |
| | ବିଜ୍ଞାନରୂପୀ ଏକ ଏହି | ବହୁତ ପ୍ରାୟେ ଶୋଭା ପାଇ | ॥ | ୧୨୫ |
| | ମାୟାସକାଶରୁ ତ୍ରିବିଧ | ଗୁଣବିସର୍ଗକୃତ ଭେଦ | ॥ | ୧୨୬ |
| | ଏଣୁ ଏ ଜଗତକୁ ଜନ | ଦେଖିବ ସ୍ୱପନ ଯେସନ | ॥ | ୧୨୭ |
| ୩୫ | ନିଜ ଦୃଷ୍ଟିକୁ ଏ ହେତୁରୁ | ନିବର୍ତ୍ତାଇ ସେ ଜଗତରୁ | ॥ | ୧୨୮ |
| | ତୃଷ୍ଣାକୁ ଛାଡ଼ି ତୁନି ହେବ | କରି ସ୍ୱସୁଖ ଅନୁଭବ | ॥ | ୧୨୯ |
| | ମନ-ବଚନ-କାୟାଙ୍କର | ଚେଷ୍ଟାକୁ ଛାଡ଼ିବ ସେ ନର | ॥ | ୧୩୦ |
| | ଆହାରାଦିରେ କଦାଚିତ | ଯେବେ ଉତ୍‌ପନ୍ନ ସେ ଜଗତ | ॥ | ୧୩୧ |
| | ନୁହଇ ଭ୍ରମନିମିତ୍ତରେ | ତ୍ୟାଜ୍ୟ ସେ ଅସତ୍ୟ ବୁଦ୍ଧିରେ | ॥ | ୧୩୨ |
| | ଦେହନିପାତ ପରିଯନ୍ତେ | ଥାଇ ଏ ସଂସ୍କାର ତା' ଚିତ୍ତେ | ॥ | ୧୩୩ |
| ୩୬ | ଦଇବେ ବସିଛି ଆସନେ | ଉଠିବା ଗଲା ଅନ୍ୟସ୍ଥାନେ | ॥ | ୧୩୪ |
| | କେହୁଣି ସ୍ଥାନେ ଭ୍ରମି ଆସି | ପୁଣି ସେ ଆସନେ ବା ବସି | ॥ | ୧୩୫ |
| | ଏରୂପେ ନଶ୍ୱର ଶରୀର | ଜାଣି ନ ପାରେ ସିଦ୍ଧ ନର | ॥ | ୧୩୬ |
| | ଯଉଁ ଦେହରେ ସ୍ୱରୂପକୁ | ଦେଖଇ ନ ଜାଣେ ତାହାକୁ | ॥ | ୧୩୭ |
| | ମଦିରାମତ୍ତ ଯଉଁ ଜନ | ସେ ଯେହ୍ନେ ପିନ୍ଧିଲା ବସନ | ॥ | ୧୩୮ |
| | ଦେହରେ ଅଛି ଅବା ନାହିଁ | ତା' କିଛି ଜାଣି ନ ପାରଇ | ॥ | ୧୩୯ |
| ୩୭ | ଏ ଦେହ ଦଇବଅଧୀନ | ନିଜ ପ୍ରାରବ୍ଧ କର୍ମମାନ | ॥ | ୧୪୦ |
| | ଯାବତ ଅଛି ଏଥେ ପୁଣ | ତାବତ ଅପେକ୍ଷା କରିଣ | ॥ | ୧୪୧ |
| | ଜୀଇବ ପ୍ରାଣେନ୍ଦ୍ରିୟତୁଲେ | ଉପାଧିବନ୍ତ ଦେହେ ଭଲେ | ॥ | ୧୪୨ |
| | ସମାଧିପର୍ଯ୍ୟନ୍ତେ ଯୋଗକୁ | ଲଭିଣ ପୁଣି ସ୍ୱଦେହକୁ | ॥ | ୧୪୩ |
| | ସ୍ୱପ୍ନ ପରାଏ ନ ଭଜିବ | ଯେଣୁ ସେ ଆତ୍ମାକୁ ଦେଖିବ | ॥ | ୧୪୪ |
| ୩୮ | ଯେ ସାଂଖ୍ୟ ଅଷ୍ଟାଙ୍ଗଯୋଗରେ | ଗୁପ୍ତ ହୋଇଛି ହେ ଭୂସୁରେ[3] | ॥ | ୧୪୫ |
| | ସେ ଧର୍ମ କହିଲି ତୁମ୍ଭଙ୍କୁ | ତୁମ୍ଭଙ୍କୁ ଧର୍ମ କହିବାକୁ | ॥ | ୧୪୬ |
| | ଏଠାରେ ହେଲି ଉପଗତ | ଜାଣ ମୁଁ ବିଷ୍ଣୁଟି ସାକ୍ଷାତ | ॥ | ୧୪୭ |
| ୩୯ | ସାଂଖ୍ୟର ଯୋଗର ସତ୍ୟର[4] | ମୁହିଁ [5]ଋତର ପ୍ରଭାବର | ॥ | ୧୪୮ |
| | ହେ ବିପ୍ରେ ସଂପତ୍ତିର ପୁଣ | କୀର୍ତ୍ତିର ଦମର କାରଣ | ॥ | ୧୪୯ |
| ୪୦ | ସୁହୃଦ ପ୍ରିୟ ଆତ୍ମା ହୋଇ | ନିର୍ଗୁଣ ନିରପେକ୍ଷ ମୁହିଁ | ॥ | ୧୫୦ |
| | ଭଜନ୍ତି ସର୍ବଗୁଣ ମୋତେ | ସାମ୍ୟ ଅସଙ୍ଗ ଆଦି ନିତ୍ୟେ | ॥ | ୧୫୧ |

୧. ଦୃଷ୍ଟ ଜଗତ୍। ୨. ନିଆଁବଡ଼ିଆ। ୩. ବ୍ରାହ୍ମଣମାନେ। ୪. ସାଧନଧର୍ମର। ୫. ସାଧ୍ୟଧର୍ମର।

| | | | | | |
|---|---|---|---|---|---|
| ୪୧ | ଏରୂପେ ସନକାଦି ଯେତେ | । | ମୁଁ ତାଙ୍କ ସନ୍ଦେହ ଛିଣ୍ଡାନ୍ତେ | ।। | ୧୫୨ |
| | ପରମ ଭକ୍ତିକି କରିଣ | । | ମୋତେ ସେ ପୂଜା କରି ପୁଣ | ।। | ୧୫୩ |
| | ଉତ୍ତମ ସ୍ତବମାନଙ୍କରେ | । | ସ୍ତୁତି ସେ କଲେ ସେ କାଳରେ | ।। | ୧୫୪ |
| ୪୨ | ପରମ ଋଷିଙ୍କର ମୁହିଁ | । | ସ୍ତୁତିପୂଜାକୁ ଲଭି ତହିଁ | ।। | ୧୫୫ |
| | ନିଜ ସ୍ଥାନକୁ ଉପଗତ | । | ହେଲି ମୁଁ ଚାହାଁନ୍ତେ ବିଧାତ | ।। | ୧୫୬ |
| | ନୀରକୁ କ୍ଷୀରକୁ ଯେସନ | । | ହଂସ କରଇ ଭିନ୍ନ ଭିନ୍ନ | ।। | ୧୫୭ |
| | ସେରୂପେ ଗୁଣକୁ ଚିତ୍ତକୁ | । | ବିଭିନ୍ନ କରି କହିବାକୁ | ।। | ୧୫୮ |
| | ବ୍ରହ୍ମାଙ୍କୁ ହେଲେ ଉପଗତ | । | ହଂସରୂପରେ ଯେ ଅଚ୍ୟୁତ | ।। | ୧୫୯ |
| | ତାହାଙ୍କ ଚରଣନଳିନ | । | ଚିନ୍ତଇ ଦୀନବନ୍ଧୁ ଦୀନ | ।। | ୧୬୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଚିତ୍ତଗୁଣବିଶ୍ଳେଷବର୍ଣ୍ଣନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।।

## ଚତୁର୍ଦ୍ଦଶ ଅଧ୍ୟାୟ

ଚତୁର୍ଦ୍ଦଶେ ପରଂ ଶ୍ରେୟୋ ଭକ୍ତିରେବ ନ ଚେତରଦ୍ ।
ଇତ୍ୟେତଦ୍ ବର୍ଣ୍ଣ୍ୟତେ ଧ୍ୟାନଯୋଗଶ୍ଚ ସହ ସାଧନୈଃ ।।

ଶ୍ରୀଉଦ୍ଧବ ଉବାଚ

| | | | | | |
|---|---|---|---|---|---|
| ୧ | ଉଦ୍ଧବ ଯୋଡ଼ି ବେନି ହସ୍ତ | । | ପୁଣି ପଚାରନ୍ତି ଏମନ୍ତ | ।। | ୧ |
| | ଯେ ବ୍ରହ୍ମବାଦୀ ଋଷିଜନେ | । | ଶ୍ରେୟସାଧନକୁ ସେମାନେ | ।। | ୨ |
| | ହେ କୃଷ୍ଣ ବୋଲନ୍ତି ବହୁତ | । | ସେମାନଙ୍କର ମଧ୍ୟେ ଉତ[1] | ।। | ୩ |
| | ବିକଳ୍ପେ ସମସ୍ତେ ଗରିଷ୍ଠ | । | କି ଅବା ଏକ ତହିଁ ଶ୍ରେଷ୍ଠ | ।। | ୪ |
| ୨ | ହେ ସ୍ୱାମି ! କରି ଅନୁଷ୍ଠାନ | । | [2]ଯହିଁରେ ହେତୁ ନାହିଁ ପୁଣ | ।। | ୫ |
| | ଏମନ୍ତ ଯଉଁ ଭକ୍ତିଯୋଗ | । | ତୁମ୍ଭେ ତା' କହିଲ ମୋ ଆଗ | ।। | ୬ |
| | ହେ କୃଷ୍ଣ ଯେବଣ ଭକ୍ତିରୁ | । | ସଙ୍ଗକୁ ଛାଡ଼ି ସବୁଠାରୁ | ।। | ୭ |
| | ତୁମ୍ଭ ଚରଣେ ରହେ ମନ | । | ସେ ଭକ୍ତି ଶ୍ରେଷ୍ଠ କି ବା ଆନ | ।। | ୮ |

ଶ୍ରୀଭଗବାନୁବାଚ

| | | | | | |
|---|---|---|---|---|---|
| ୩ | ଶୁଣି ଉଦ୍ଧବର ବଚନ | । | ହସି କହନ୍ତି ଭଗବାନ | ।। | ୯ |
| | ବେଦସଂଜ୍ଞକ ବାଣୀ ଯେହି | । | ପ୍ରଳୟକାଳେ ନଷ୍ଟ ହୋଇ | ।। | ୧୦ |
| | ଆମ୍ଭେ ତା' ବ୍ରହ୍ମାଙ୍କୁ ଆଦ୍ୟରେ | । | କହିଲୁଁ ଯେବଣ ବାଣୀରେ | ।। | ୧୧ |
| | ଧର୍ମ ଉପୁଜେ, ସେ ଧର୍ମରେ | । | ଚିତ୍ତ ରହଇ ମୋହ ଠାରେ | ।। | ୧୨ |

୧. ଉତ = ଅଥବା । ୨. ଯହିଁରେ ହେତୁ ନାହିଁ ପୁଣ = ଯାହା ନିଷ୍କାମ ।

୪| ପ୍ରଥମୁଁ ହୋଇଲେ ସମ୍ଭୂତ । ମନୁ ଯେ ଆପଣାର ସୁତ ॥ ୧୩
୬| ବ୍ରହ୍ମା କହିଲେ ସେ ମନୁଙ୍କୁ । ମନୁଙ୍କ ଠାରୁ ସେ ବେଦକୁ ॥ ୧୪
ଭୃଗୁଆଦି ଯେ ସାତ ଜଣ । ମହର୍ଷି-ପ୍ରଜାପତି ପୁଣ ॥ ୧୫
ଏମାନେ କଲେ ତା' ଗ୍ରହଣ । ଏହାଙ୍କ ଠାରୁ ପିତୃଗଣ ॥ ୧୬
ତାହାଙ୍କ ଠାରୁ ତାଙ୍କ ସୁତେ । ଦେବ ଦାନବ ଆଦି ଯେତେ ॥ ୧୭
ଗନ୍ଧର୍ବେ ଗୁହ୍ୟକାଦି ନରେ । ସିଦ୍ଧ ଚାରଣ ବିଦ୍ୟାଧରେ ॥ ୧୮
[୧]ଦ୍ୱୀପାନ୍ତରର ଯେତେ ନରେ । ନାଗ ରାକ୍ଷସ ଯେ କିନ୍ନରେ ॥ ୧୯
କିଂପୁରୁଷକୁ ଆଦି ଯେତେ । ତ୍ରିଗୁଣଜାତ ଏ ସମସ୍ତେ ॥ ୨୦
ଏମାନଙ୍କର ନାନା ମତ । ବାସନାମାନ ଯେ ବହୁତ ॥ ୨୧
୭ ଯଉଁ ବାସନାମାନଙ୍କରେ । ବିଭିନ୍ନମତି ସର୍ବ ନରେ ॥ ୨୨
ସେ ପ୍ରାଣୀମାନଙ୍କର ପତି । ସେରୂପେ ଭିନ୍ନ ହୋଇଥାନ୍ତି ॥ ୨୩
ଯେମନ୍ତ ପ୍ରକୃତି ଯାହାର । ସେ ରୂପେ ସର୍ବ ପ୍ରାଣିଙ୍କର ॥ ୨୪
ବିଚିତ୍ର-ଅର୍ଥ ବାକ୍ୟେ ମୋତେ । ସ୍ତୁତି କରନ୍ତି ନାନାମତେ ॥ ୨୫
୮ ଏରୂପେ ସର୍ବ ପ୍ରାଣିଙ୍କର । ବିଚିତ୍ରଭାବୁଁ ପ୍ରକୃତିର ॥ ୨୬
ବୁଦ୍ଧି ହୁଅଇ ଭିନ୍ନ ଭିନ୍ନ । ନ କରି କେହି ଅଧ୍ୟୟନ ॥ ୨୭
ଉପଦେଶପରମ୍ପରାରେ । ପ୍ରଚାର କରନ୍ତି ସଂସାରେ ॥ ୨୮
ପାଷଣ୍ଡମାନେ ଯେତେ ଛନ୍ତି । ବେଦବିରୁଦ୍ଧ ଅର୍ଥମତି ॥ ୨୯
୯ ମୋର ମାୟାରେ ବିମୋହିତ । ଆହେ ଉଦ୍ଧବ ଯାଙ୍କ ଚିତ୍ତ ॥ ୩୦
ଉତ୍ତମ ଶ୍ରେୟକୁ ସେ ନରେ । ବୋଲନ୍ତି ନାନା ପରକାରେ ॥ ୩୧
ଯେରୂପେ ଯାଙ୍କ କର୍ମଗଣ । ଯାହାର ଯହିଁ ରୁଚି ପୁଣ ॥ ୩୨
୧୦ ଧର୍ମକୁ ମୀମାଂସକମାନେ । ଶ୍ରେୟ ବୋଲନ୍ତି ଏ ଭୁବନେ ॥ ୩୩
ଯେ କଲେ କାବ୍ୟ ଅଳଂକାର । ଯଶକୁ ବୋଲନ୍ତି ସେ ନର ॥ ୩୪
ବାତ୍ସ୍ୟାୟନାଦି ଋଷି ନିତି । କାମକୁ ଶ୍ରେୟ ସେ ବୋଲନ୍ତି ॥ ୩୫
ଯେ ସତ୍ୟ ଦମ ଶମ ତିନି । ଏହାଙ୍କୁ [୨]ଶାସ୍ତ୍ରକାର ମୁନି ॥ ୩୬
ଐଶ୍ୱର୍ଯ୍ୟକୁ ହିଁ ଆନ ଜନ[୩] । ବୋଲନ୍ତି ପୁରୁଷାର୍ଥ ଘେନ ॥ ୩୭
ତ୍ୟାଗ ଭୋଜନ ଯେ ବା ଦୁଇ । ତାହାଙ୍କୁ ଶ୍ରେୟ ବୋଲି କହି[୪] ॥ ୩୮
ଯଜ୍ଞ ତପସ୍ୟା ବ୍ରତମାନ । ଯମନିୟମମାନ ଦାନ ॥ ୩୯
ଏମାନଙ୍କୁ ହିଁ କେହି କେହି । ସଂସାରେ ଶ୍ରେୟ ବୋଲି କହି ॥ ୪୦
୧୧ କର୍ମବଳରୁ ବିନିର୍ମିତ । ଏହାଙ୍କ ସ୍ଥାନମାନ ସ୍ୱତଃ ॥ ୪୧

---

୧. ଦ୍ୱୀପାନ୍ତରୀୟ ନରମାନଙ୍କର କ୍ଲମ, ସ୍ୱେଦ, ଦୌର୍ଗନ୍ଧ୍ୟ ନ ଥିବା ହେତୁ ସେମାନଙ୍କୁ ଦେଖିଲେ ନର ବା ଦେବ ବୋଲି ସଂଦେହ ହୁଏ । ଏଣୁ ସେମାନଙ୍କୁ 'କିଂଦେବ' କୁହାଯାଏ ।

୨. ଶାସ୍ତ୍ର = ଯୋଗଶାସ୍ତ୍ର । ୩. ଦଣ୍ଡନୀତିକାର । ୪. ଚାର୍ବାକମତାବଲମ୍ବୀ କହନ୍ତି ।

ପ୍ରଥମେ ଅନିତ୍ୟ କେବଳ । ଦୁଃଖ ଯହିଁରେ ପଛ ଫଳ ।। ୪୨
କ୍ଷୁଦ୍ରସୁଖ ତମଃ ପୂରିତ । ଯେ ଶୋକଦ୍ୱାରା ପରିବ୍ୟାପ୍ତ ।। ୪୩
୧୨ ଅପେକ୍ଷା ନ ରଖି କାହିଁରେ । ଯେ ମନ ସମର୍ପେ ମୋ'ଠାରେ ।। ୪୪
ମୁଁ ଆତ୍ମାରୂପୀ, ମୋ' ହେତୁରୁ । ତା' ସୁଖ, ସମସ୍ତ ଲୋକରୁ ।। ୪୫
ବିଷୟବନ୍ତ ଲୋକ ଯେହି । ଉଦ୍ଧବ ଲଭିବ ସେ କାହିଁ ।। ୪୬
୧୩ ଯେ ଅକିଂଚନ ସମଚିତ୍ତ । ତପସ୍ୟାକ୍ଲେଶସହ ଶାନ୍ତ ।। ୪୭
ମୋ'ଠାରେ ସନ୍ତୁଷ୍ଟ ଯା' ଚିତ୍ତ । ସମସ୍ତ ଦିଗେ ସେ ସୁଖିତ ।। ୪୮
୧୪ ଯେ ଆତ୍ମା ସମର୍ପିଛି ମୋତେ । ମୋ' ବିନୁ ତାର ଏ ଜଗତେ ।। ୪୯
ବ୍ରହ୍ମପଦବୀ ଇଚ୍ଛା ନାହିଁ । ମହେନ୍ଦ୍ରାସନ ନ ଯୋଗାଇ ।। ୫୦
ନ ଇଚ୍ଛେ ପୃଥ୍ୱୀପତିତ୍ୱ । ନ ବାଞ୍ଛେ ପାତାଳ-ପ୍ରଭୁତ୍ୱ ।। ୫୧
ଯୋଗସିଦ୍ଧିକି ନ ବାଞ୍ଛଇ । ମୋକ୍ଷକୁ ଇଚ୍ଛା ନ କରଇ ।। ୫୨
୧୫ ସେରୂପେ ଅତି ପ୍ରିୟ ମୋର । ନୁହନ୍ତି ବିରିଞ୍ଚି ଶଙ୍କର ।। ୫୩
ଯଦ୍ୟପି ବିରିଞ୍ଚି ମୋ' ସୁତ । ଶଙ୍କର ମୋ' ସ୍ୱରୂପଭୂତ ।। ୫୪
ମୋ' ନିଜ ଭ୍ରାତା ହେଲେ ପୁଣ । ପ୍ରିୟ ନୁହନ୍ତି ସଂକର୍ଷଣ ।। ୫୫
ଭାର୍ଯ୍ୟା ହେଲେହେଁ ଲକ୍ଷ୍ମୀ ମୋର । ପ୍ରିୟା ନୁହନ୍ତି ସେ ଆବର ।। ୫୬
ନୁହଇ ଏ ମୋ ନିଜ କାୟ । ମୋ ଭକ୍ତ ତୁମ୍ଭେ ଯେଡ଼େ ପ୍ରିୟ ।। ୫୭
୧୬ କିଛି ଅପେକ୍ଷା ଯାର ନାହିଁ । ସମସ୍ତ ସମାନ ଦେଖଇ ।। ୫୮
ନିର୍ବୈର ଯଉଁ ମୁନି ଶାନ୍ତ । ମୁଁ ତାଙ୍କ ପଛେ ଥାଇ ନିତ୍ୟ ।। ୫୯
ଘେନିଣ ଅଂଘ୍ରିରେଣୁଗଣ । [1]ପବିତ୍ର ହେଉଥାଇଁ ପୁଣ ।। ୬୦
୧୭ ମୋ ଭକ୍ତଜନ ଅକିଂଚନ । ମୋ' ଠାରେ ଅନୁରକ୍ତମନ ।। ୬୧
ନିରଭିମାନ ଅତିଶାନ୍ତ । ଅଖିଳ ଜୀବରେ ସୁପ୍ରୀତ ।। ୬୨
କାମରେ ଚିତ୍ତ ହତ ନୋହି । ମୋତେ ଭଜନ୍ତି ପ୍ରୀତି ବହି ।। ୬୩
ଅପେକ୍ଷାହୀନ ସୁଖ ନିତି । ଲଭିଲେ, ଅନ୍ୟେ ତା' ନ ପା'ନ୍ତି ।। ୬୪
୧୮ ମୋହର ଭକ୍ତଜନ ପୁଣ । ନ ଜିଣି ସ୍ୱଇନ୍ଦ୍ରିୟଗଣ ।। ୬୫
ବିଷୟେ ହେଲେ ପରାଭୂତ । ପ୍ରଗଲ୍‌ଭ ଭକ୍ତିରେ ସନ୍ତତ ।। ୬୬
ପ୍ରାୟଶଃ ସେ ବିଷୟଗଣେ । ନ ପା'ନ୍ତି ପରାଭବ କ୍ଷଣେ ।। ୬୭
୧୯ ଯେସନେ ଅଗ୍ନି ପ୍ରଜ୍ୱଳିତ । କାଷ୍ଠକୁ କରେ ଭସ୍ମୀଭୂତ ।। ୬୮
ଆହେ ଉଦ୍ଧବ ସେ ରୂପରେ । ଭକ୍ତି ଉପୁଜନ୍ତେ ମୋ' ଠାରେ ।। ୬୯
ସମଗ୍ର କରି ପାପମାନ । ତତ୍‌କ୍ଷଣେ କରେ ବିନାଶନ ।। ୭୦
୨୦ ଉଦ୍ଧବ ଧର୍ମ, ସାଂଖ୍ୟ ଯୋଗ । ବେଦାଧ୍ୟୟନ ତପ ତ୍ୟାଗ ।। ୭୧
ଏ ବଶ ନ କରନ୍ତି ମୋତେ । [2]ଉର୍ଜିତ ଭକ୍ତି ମୋ' ଯେମନ୍ତେ ।। ୭୨

---

୧. ଭକ୍ତର ପଛରେ ରହି ତାର ପଦରେଣୁଦ୍ୱାରା ମୁଁ ମୋ' ଶରୀରମଧ୍ୟରେ ଥିବା ବ୍ରହ୍ମାଣ୍ଡମାନଙ୍କୁ ପବିତ୍ର କରିବି । (ସ୍ୱାମୀ) । ୨. ଉର୍ଜିତ = ଉତ୍କୃଷ୍ଟ ।

| | | | | |
|---|---|---|---|---|
| ୨୧ | ସାଧୁଙ୍କ ପ୍ରିୟ ଆତ୍ମା ମୁହିଁ | । ଏକା ଭକ୍ତିରେ ମୋତେ ପାଇ | ।। | ୭୩ |
| | ଶ୍ରଦ୍ଧାରେ ମୋ' ବିଷୟେ ଅତି | । ଯେବେ ଉତ୍‌ପନ୍ନ ହୋଏ ଭକ୍ତି | ।। | ୭୪ |
| | ପବିତ୍ର କରେ ସେ ସଂସାରୁ | । ଚଣ୍ଡାଳାଦି ଜାତିଦୋଷରୁ | ।। | ୭୫ |
| ୨୨ | ସତ୍ୟଦୟାଦିଯୁତ ଧର୍ମ | । ତପସଂଯୁତ ବିଦ୍ୟାକର୍ମ | ।। | ୭୬ |
| | ମୋ ଭକ୍ତିହୀନ ଲୋକକୁ ହିଁ | । ପବିତ୍ର ନ କରଇ ଏହି | ।। | ୭୭ |
| ୨୩ | ରୋମହରଷ ବିନୁ ସ୍ୱତଃ | । ଦ୍ରବ[1] ନୁହନ୍ତେ ନିଜ ଚିତ୍ତ | ।। | ୭୮ |
| | ଆନନ୍ଦଲୋତକ ନ ଥାନ୍ତେ | । ଭକ୍ତି ଉପୁଜିବ କେମନ୍ତେ | ।। | ୭୯ |
| | କିରୂପେ ଭକ୍ତି ବିନେ ପୁଣ | । ଶୁଦ୍ଧ ହେବ ଅନ୍ତଃକରଣ | ।। | ୮୦ |
| ୨୪ | ଭକ୍ତିରେ ଦ୍ରବ ହେଲେ ମନ | । ଗଦ୍‌ଗଦ ଶୁଭଇ ବଚନ | ।। | ୮୧ |
| | ପ୍ରତିକ୍ଷଣରେ ହସୁଥାଇ | । କେତେବେଳରେ ସେ କାନ୍ଦଇ | ।। | ୮୨ |
| | ଗାଅଇ ଉଚ୍ଚେ ଲଜ୍ଜା ତେଜି | । କେତେବେଳରେ ନୃତ୍ୟେ ମଜ୍ଜି | ।। | ୮୩ |
| | ମୋ ଭକ୍ତିଯୁତ ଯଉଁ ଜନ | । ପବିତ୍ର କରଇ ଭୁବନ | ।। | ୮୪ |
| ୨୫ | ଯେସନେ ଅଗ୍ନିଦଗ୍‌ଧ ହୋଇ | । ସୁବର୍ଣ୍ଣ ମଳକୁ ଛାଡ଼ଇ | ।। | ୮୫ |
| | ଦହନ୍ତେ ପୁଣ ପୁଣ ତାକୁ | । ଭଜଇ ନିଜ ସ୍ୱରୂପକୁ | ।। | ୮୬ |
| | ସେରୂପେ ମୋର ଭକ୍ତିଯୋଗେ | । କର୍ମବାସନା ତେଜି ବେଗେ | ।। | ୮୭ |
| | ମୋତେ ଭଜିଣ ଏଥୁ ଅନ୍ତେ | । ମୋ'ରୂପ ଧରଇ ସେ ପ୍ରାନ୍ତେ | ।। | ୮୮ |
| ୨୬ | ମୋ' ଗୁଣକଥାମାନଙ୍କର | । ଶ୍ରବଣ-କଥନେ ସତ୍ୱର | ।। | ୮୯ |
| | ଯେମନ୍ତ ଯେମନ୍ତ ସେ ଜନ | । ଚିତ୍ତ କରଇ ସଂମାର୍ଜନ | ।। | ୯୦ |
| | ତେମନ୍ତ ତେମନ୍ତ ସେ ରହି | । ସୂକ୍ଷ୍ମତତ୍ତ୍ୱକୁ ହିଁ ଦେଖଇ | ।। | ୯୧ |
| | ଅଞ୍ଜନସଂଯୁତେ ଯେସନ | । ନିର୍ମଳ ହୁଅଇ ନୟନ | ।। | ୯୨ |
| ୨୭ | କରନ୍ତେ ବିଷୟକୁ ଧ୍ୟାନ | । ବିଷୟେ ମଗ୍ନ ହୋଏ ମନ | ।। | ୯୩ |
| | ମୋତେ ସ୍ମରନ୍ତେ ପୁଣ ମନ | । [2]ମୋ ଠାରେ ହୁଅଇ ବିଲୀନ | ।। | ୯୪ |
| ୨୮ | ଯେହେତୁ ସାଧନ ଇତର | । ତାହାର ଫଳଟି ଆବର | ।। | ୯୫ |
| | ସ୍ୱପ୍ନ-ମନୋରଥସମାନ | । କେବଳ ଅସଦଭିଧ୍ୟାନ[3] | ।। | ୯୬ |
| | ତେଣୁ ତା' ଛାଡ଼ି ମୋହ'ଠାର | । ମନକୁ ସମାହିତ କର | ।। | ୯୭ |
| | କେବଳ ମୋହର ଭଜନ | । ଶୋଷିତ କରିଛି ଯେ ମନ | ।। | ୯୮ |
| ୨୯ | ଏ ହେତୁ ସ୍ତିରୀଙ୍କ ସଙ୍ଗକୁ | । ସ୍ତ୍ରୀସଙ୍ଗିମାନଙ୍କ ସଙ୍ଗକୁ | ।। | ୯୯ |
| | ଦୂରରୁ ତେଜି ଜ୍ଞାନିଜନେ | । ନିର୍ଜନେ ନିର୍ଭୟେ ଆସନେ | ।। | ୧୦୦ |
| | ବସିଣ ମୋତେ ହିଁ ଚିନ୍ତିବ | । ବରଜି ଅଳସୁଆଭାବ | ।। | ୧୦୧ |

୧. ଦ୍ରବ = ତରଳ ।

୨. ଲୁବ୍‌ଧା ଧନମୟଂ ବିଶ୍ୱଂ କାମୁକାଃ କାମିନୀମୟମ୍ ।
ନାରାୟଣମୟଂ ଧୀରାଃ ପଶ୍ୟନ୍ତି ଜ୍ଞାନଚକ୍ଷୁଷଃ ।। (ସ୍ୱାମିଧୃତ)

୩. ବିଷୟଧ୍ୟାନ ।

| | | | | |
|---|---|---|---|---|
| ୩୦ | ସ୍ତିରୀଙ୍କ ସଙ୍ଗରୁ ଯେସନ | । ଆପଣେ ଲଭଇ ବନ୍ଧନ | ॥ | ୧୦୨ |
| | ସ୍ତ୍ରୀସଙ୍ଗିଜନସଙ୍ଗ ହୋଇ | । ଯେସନେ କ୍ଳେଶକୁ ଲଭଇ | ॥ | ୧୦୩ |
| | ଅନ୍ୟପ୍ରସଙ୍ଗୁଁ ସେ ପ୍ରକାର | । ବନ୍ଧନକ୍ଳେଶ ନୋହେ ତାର | ॥ | ୧୦୪ |

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୩୧ | ଉଦ୍ଧବ କହନ୍ତି ଏମନ୍ତେ | । ହେ ପଦ୍ମନୟନ ଯେମନ୍ତେ | ॥ | ୧୦୫ |
| | ମୁକ୍ତ ହେବାକୁ ଯାହା ମନ | । ତୁମ୍ଭଙ୍କୁ କରିବ ସେ ଧ୍ୟାନ | ॥ | ୧୦୬ |
| | କଉଁ ରୂପକୁ କି ରୂପରେ | । ତା' ତୁମ୍ଭେ କହ ମୋ ଆଗରେ | ॥ | ୧୦୭ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୩୨ | କହନ୍ତି ପ୍ରଭୁ ଭଗବାନ | । ସମ ଆସନେ ଜ୍ଞାନିଜନ | ॥ | ୧୦୮ |
| | ଯଥାସୁଖରେ ସମ ହୋଇ | । ବସିବ ହୃଦେ[୧] ହସ୍ତ ଦେଇ | ॥ | ୧୦୯ |
| | ଆପଣା ନାସିକା ଅଗ୍ରରେ | । [୨]ଦୃଷ୍ଟିକି ଦେଇ ନିରନ୍ତରେ | ॥ | ୧୧୦ |
| ୩୩ | ପୂରକ କୁମ୍ଭକ ରେଚକ | । କ୍ରମରେ ପ୍ରାଣମାର୍ଗ ଏକ | ॥ | ୧୧୧ |
| | ଶୋଧିବ ବିପରୀତେ[୩] ପୁଣ | । ନିଜ ଇନ୍ଦ୍ରିୟଙ୍କୁ ଜିଣିଣ | ॥ | ୧୧୨ |
| | ଅଳପ ଅଳପ ପ୍ରକାରେ | । ଅଭ୍ୟାସ କରିବ ନିତ୍ୟରେ | ॥ | ୧୧୩ |
| ୩୪ | ମୂଳ ଆଧାରୁ ଆରମ୍ଭିଣ | । ମୂର୍ଦ୍ଧାନ୍ତ ପରିଯନ୍ତେ ପୁଣ | ॥ | ୧୧୪ |
| | କମଳନାଳତନ୍ତୁମତ[୪] | । ଓଁକାର ମନରେ ସନ୍ତତ | ॥ | ୧୧୫ |
| | ପ୍ରାଣରେ ବ୍ୟକ୍ତ ତା' କରିଣ | । ଏଥୁ ଅନ୍ତରେ ନେଇ ପୁଣ | ॥ | ୧୧୬ |
| | ଓଁକାରେ ଘଣ୍ଟାନାଦସ୍ୱର | । ଶିରେ କରିବ ନେଇ ସ୍ଥିର | ॥ | ୧୧୭ |
| ୩୫ | ଏ ରୂପେ ପ୍ରଣବସଂଯୁତ | । ପ୍ରାଣକୁ କରିବ ଅଭ୍ୟସ୍ତ | ॥ | ୧୧୮ |
| | ତିନିକାଳରେ ଦଶବାର | । ମାସକେ ଜିଣିମ ସମୀର | ॥ | ୧୧୯ |
| ୩୬ | ଯେ ଦେହମଧ୍ୟେ ବର୍ତ୍ତମାନ | । ତଳକୁ ହୋଇଛି ବଦନ | ॥ | ୧୨୦ |
| | ଊର୍ଦ୍ଧ୍ୱକୁ ନାଳ ବିକସିତ | । କର୍ଣ୍ଣିକାମାନଙ୍କେ ସଂଯୁତ | ॥ | ୧୨୧ |
| | ଯହିଁରେ ଅଛି ଅଷ୍ଟଦଳ | । ଏମନ୍ତ ହୃଦୟକମଳ | ॥ | ୧୨୨ |
| | ତାହାକୁ ଊର୍ଦ୍ଧ୍ୱମୁଖ କରି | । ଧ୍ୟାନ କରିବ ଚିତ୍ତେ ଧରି | ॥ | ୧୨୩ |
| | ସବିତା-ସୋମ-ହୁତାଶନ | । ଏହାଙ୍କୁ ପୁଣି ଯୋଗିଜନ | ॥ | ୧୨୪ |
| | କ୍ରମରେ ଉତ୍ତରୁ ଉତ୍ତରେ | । ନ୍ୟାସ କରିବ କର୍ଣ୍ଣିକାରେ | ॥ | ୧୨୫ |

୧. ମୂଳ ଶବ୍ଦ 'ଉତ୍‌ସଙ୍ଗ'। ହସ୍ତଦ୍ୱୟର ଏକପ୍ରକାର ମୁଦ୍ରାକୁ ଉତ୍‌ସଙ୍ଗ କହନ୍ତି। ଉତ୍‌ସଙ୍ଗ ଶବ୍ଦର ସାଧାରଣ ଅର୍ଥ କ୍ରୋଡ଼।

୨. ''ଅନ୍ତର୍ଲକ୍ଷ୍ୟୋଽବହିର୍ଦୃଷ୍ଟଃ ସ୍ଥିରଚିତ୍ତଃ ସୁସଂଯତଃ'' (ଯୋଗଶାସ୍ତ୍ର)।

୩. 'ରେଚକ-ପୂରକ-କୁମ୍ଭକକ୍ରମେଣ' ଯଦ୍ୱା।
ଇଡ଼ୟା ପୂରୟେଦ୍ ବାୟୁଂ ତ୍ୟଜେତ୍ ପିଙ୍ଗଳୟା ତତଃ।
ପିଙ୍ଗଳାପୂରିତଂ ବାୟୁମିଡ଼ୟା ଚ ପରିତ୍ୟଜେତ୍॥ (ଯୋଗେ)

୪. ପରି।

| | | | |
|---|---|---|---|
| ୩୭ | ସ୍ମରିବ ଏ ମୋର ସ୍ୱରୂପ । | ବହ୍ନିମଧ୍ୟରେ ଧ୍ୟାନରୂପ | ॥ ୧୨୬ |
| ୩୮ | ସୁନ୍ଦର ଅବୟବ ଧରି । | ଦୀର୍ଘ ସୁନ୍ଦର ଭୁଜ ଚାରି | ॥ ୧୨୭ |
| | ସୁଶାନ୍ତ ବଦନ ରୁଚିର । | ଚାରୁ ସୁସ୍ମିତ ମନୋହର | ॥ ୧୨୮ |
| | ସୁନ୍ଦର ଗ୍ରୀବାରେ ସଂଯୁତ । | ଉତ୍ତମ କପୋଳ ସହିତ | ॥ ୧୨୯ |
| | ସମାନ ସୁକର୍ଣ୍ଣ[1] ଯୁଗଳେ । | ସ୍ଫୁରନ୍ତି ମକରକୁଣ୍ଡଳେ | ॥ ୧୩୦ |
| ୩୯ | ନବୀନ ଜଳଦବରଣ । | ପୀତବସନ ପରିଧାନ | ॥ ୧୩୧ |
| | ଉରରେ ଶ୍ରୀବତ୍ସ ସଂଯୁତ । | ଦକ୍ଷିଣଭାଗେ ଲକ୍ଷ୍ମୀ ସ୍ଥିତ | ॥ ୧୩୨ |
| | [2]ଶଙ୍ଖାରିଗଦାପଦ୍ମଯୁତ । | ବନମାଳାରେ ବିଭୂଷିତ | ॥ ୧୩୩ |
| ୪୦ | ଚରଣ ସଂଯୁତ ନୂପୁରେ । | ସଂଯୁତ କୌସ୍ତୁଭପ୍ରଭାରେ | ॥ ୧୩୪ |
| | କିରୀଟ କଟକେ ରାଜିତ । | ଅଙ୍ଗଦ-କଟିସୂତ୍ରଯୁତ | ॥ ୧୩୫ |
| ୪୧ | ସମସ୍ତ ଅଙ୍ଗରେ ସୁନ୍ଦର । | ସୁମନୋହର ସୁକୁମାର | ॥ ୧୩୬ |
| | ଅନୁଗ୍ରହରେ ସୁଶୋଭନ । | ହୋଇଛି ବଦନ ନୟନ | ॥ ୧୩୭ |
| | ଏ ରୂପେ କରି ଅନୁଧ୍ୟାନ । | ଧରିବ ସର୍ବଅଙ୍ଗେ ମନ | ॥ ୧୩୮ |
| ୪୨ | ଇନ୍ଦ୍ରିୟଗଣ ଏ ହେତୁରୁ । | ଇନ୍ଦ୍ରିୟ-ଅର୍ଥମାନଙ୍କରୁ | ॥ ୧୩୯ |
| | ମନରେ କରି ଆକର୍ଷଣ । | ସେ ନିଜ ମନକୁ ଆଣିଣ | ॥ ୧୪୦ |
| | ବୁଦ୍ଧି-ସାରଥିରେ ବହନ । | ସଂଯତ କରି ଧୀରଜନ | ॥ ୧୪୧ |
| | ସଂଯୁତ ସେ ସର୍ବଅଙ୍ଗରେ । | ପ୍ରୀତି କରିବ ମୋହ' ଠାରେ | ॥ ୧୪୨ |
| ୪୩ | ସର୍ବବ୍ୟାପକ ଚିତ୍ତ ଆଣି । | ଧରିବ ଏକଅଙ୍ଗେ ପୁଣି | ॥ ୧୪୩ |
| | ପୁଣି ସେ ଅନ୍ୟ ଅଙ୍ଗମାନ । | କରିବ ନାହିଁ ବିଚିନ୍ତନ | ॥ ୧୪୪ |
| | ସୁସ୍ମିତ ବଦନନଳିନ । | ନିଶ୍ଚିନ୍ତେ କରିବ ଭାବନ | ॥ ୧୪୫ |
| ୪୪ | ସେ ଚିତ୍ତ ରହନ୍ତେ ଶ୍ରୀମୁଖେ । | ତହୁଁ ତାହାକୁ ଆଣି ସୁଖେ | ॥ ୧୪୬ |
| | ମୋ' ନିରାକାର ସ୍ୱରୂପରେ । | ମନକୁ ଧରିବ ସତ୍ୱରେ | ॥ ୧୪୭ |
| | ତାହାକୁ ଛାଡ଼ି ପୁଣ ଚିତ୍ତେ । | ତଦନ୍ତେ ବ୍ରହ୍ମକୁ ଲଭନ୍ତେ | ॥ ୧୪୮ |
| | ଧ୍ୟାତା ଧ୍ୟେୟର ଯେ ବିଭାଗ । | କିଛି ହିଁ ଚିନ୍ତା ନ କରିବ | ॥ ୧୪୯ |
| ୪୫ | ଏମନ୍ତ ରୂପେ ଯୋଗିଜନ । | ମନକୁ କରି ସମାଧାନ | ॥ ୧୫୦ |
| | ମୋତେ ଦେଖିବ ସେ ଆତ୍ମାରେ । | ସେ ଆତ୍ମାକୁ ହିଁ ତଦନ୍ତରେ | ॥ ୧୫୧ |
| | ମୁଁ ସର୍ବ-ଆତ୍ମାରୂପୀ ଯେଣୁ । | ମୋ' ଠାରେ ଦେଖିବ ତା' ତେଣୁ | ॥ ୧୫୨ |
| | ଯେସନେ ଏକ ଜ୍ୟୋତି ଆସି । | ଜ୍ୟୋତିମଧ୍ୟରେ ଯାଏ ମିଶି | ॥ ୧୫୩ |
| ୪୬ | ଏରୂପେ ସୁତୀକ୍ଷ୍ଣ ଧ୍ୟାନରେ । | ଯୁକ୍ତ ହୁଅନ୍ତେ ନିଶ୍ଚଳରେ | ॥ ୧୫୪ |
| | ଉଦ୍ଧବ ଯୋଗିଜନମନ । | ଶାନ୍ତିକି ଲଭଇ ବହନ | ॥ ୧୫୫ |
| | ଦୃଶ୍ୟ-ଦ୍ରଷ୍ଟାଦି ରୂପେ ନିତି । | ଭ୍ରମ ହୁଅଇ ବେଗେ ଶାନ୍ତି | ॥ ୧୫୬ |

୧. ସୁକର୍ଣ୍ଣ = ସ୍ୱକର୍ଣ୍ଣ । ୨. ଶଙ୍ଖାରିଗଦାପଦ୍ମଯୁତ = ଶଙ୍ଖ + ଅରି = ଶଂଖ-ଚକ୍ର ।

ଶ୍ରୀକୃଷ୍ଣପାଦ-ଅରବିନ୍ଦ । ଗଳିତ ଯଉଁ ମକରନ୍ଦ ॥ ୧୫୭
ତା' ଭୃଙ୍ଗପ୍ରାୟେ କରୁ ପାନ । ବ୍ରାହ୍ମଣ ଦୀନବନ୍ଧୁ ମନ ॥ ୧୫୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଭକ୍ତିପୂର୍ବଧ୍ୟାନଯୋଗୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ॥

## ପଞ୍ଚଦଶ ଅଧ୍ୟାୟ

ତତଃ ପଞ୍ଚଦଶେ ପ୍ରୋକ୍ତାଃ ସିଦ୍ଧୟୋ ଧାରଣାନୁଗାଃ ।
ଶ୍ରୀବିଷ୍ଣୁପଦସଂପ୍ରାପ୍ତାବନ୍ତରାୟତୟା ମତାଃ ॥ ୧

ଶ୍ରୀଭଗବାନୁବାଚ

୧ କହନ୍ତି ପ୍ରଭୁ ଭଗବାନ । ଜିଣିଛି ଯେ ଇନ୍ଦ୍ରିୟମାନ ॥ ୧
ଜିଣିଛି ଯେ ନିଶ୍ୱାସବାତ । ସ୍ଥିର ହୋଇଛି ନିଜ ଚିତ୍ତ ॥ ୨
ମୋ' ଠାରେ ଧରିଛି ଯେ ମନ । ଏମନ୍ତ ଯଉଁ ଯୋଗିଜନ ॥ ୩
ଆହେ ଉଦ୍ଧବ ଏ ଭୁବନେ । ତାର ହୁଅନ୍ତି ସିଦ୍ଧିମାନେ ॥ ୪

ଶ୍ରୀଉଦ୍ଧବ ଉବାଚ

୨ ଉଦ୍ଧବ କହୁଛନ୍ତି ପୁଣ । ଆହେ ଅଚ୍ୟୁତ ଏବେ ଶୁଣ ॥ ୫
କି ରୂପେ କଉଁ ଧାରଣାରେ । ସିଦ୍ଧି ହୁଅଇ କି ନାମରେ ॥ ୬
ଏ ସିଦ୍ଧିମାନେ କେତେ ବଦ । ତୁମ୍ଭେ ଯୋଗୀଙ୍କ ସିଦ୍ଧିପ୍ରଦ ॥ ୭

ଶ୍ରୀଭଗବାନୁବାଚ

୩ କହନ୍ତି ରୁକ୍ମିଣୀରମଣ । ଉଦ୍ଧବ ତୁମ୍ଭ ପ୍ରଶ୍ନ ଶୁଣ ॥ ୮
ସିଦ୍ଧି ହୁଅଇ ଅଷ୍ଟାଦଶ । ଧାରଣାମାନେ ହେଁ ତାଦୃଶ ॥ ୯
ଯୋଗପାରଗ ଋଷିମାନେ । କହି ଅଛନ୍ତି ଏ ଭୁବନେ ॥ ୧୦
ତାହାଙ୍କ ମଧ୍ୟେ ଅଷ୍ଟ ଘେନ । ମୁଁ ଯା'ଙ୍କ ଆଶ୍ରୟ ପ୍ରଧାନ ॥ ୧୧
ଆରକ ଦଶ ସିଦ୍ଧି ପୁଣ । ସତ୍ତ୍ୱଗୁଣଙ୍କର କାରଣ ॥ ୧୨
୪ ଅଣିମା ମହିମା ଏ ବେନି । ଲଘିମା ଦେହସିଦ୍ଧି ତିନି ॥ ୧୩
ସମସ୍ତ ପ୍ରାଣିଙ୍କ ଇନ୍ଦ୍ରିୟେ । ଦେବତାରୂପେ ରହି ସ୍ୱୟେଂ ॥ ୧୪
ସେ ସେହି ଭୋଗକୁ କରଇ । ପ୍ରାପ୍ତିନାମରେ ସିଦ୍ଧି ସେହି ॥ ୧୫
ଯେ ଶ୍ରୁତ-ଦୃଷ୍ଟ ନାନା ସ୍ଥାନ । ପାତାଳ ଆଦି ଭୋଗମାନ ॥ ୧୬
ଦେଖି ତା' କରଇ ଭୋଗକୁ । ପ୍ରାକାମ୍ୟ ସିଦ୍ଧି ବୋଲି ତାକୁ ॥ ୧୭
ଈଶ୍ୱରେ ମାୟାର ପ୍ରେରଣ । ଅନ୍ୟମାନଙ୍କ ଠାରେ ପୁଣ ॥ ୧୮

| | | | | | |
|---|---|---|---|---|---|
| | ପ୍ରେରଣ ମାୟାକାର୍ଯ୍ୟଙ୍କର | । | ଈଶିତା ସିଦ୍ଧି ନାମ ତାର | ।। | ୧୯ |
| ୫ | ବିଷୟଭୋଗେ ସଙ୍ଗ ନୋହି | । | ବଶିତା ନାମ ସିଦ୍ଧି ସେହି | ।। | ୨୦ |
| | କାମନା କରେ ଯାହା ଯାହା | । | ବେଗେ ଲଭଇ ତାହା ତାହା | ।। | ୨୧ |
| | [1]କାମାବସାୟିତା ନାମେଣ | । | ଅଟଇ ସେହି ସିଦ୍ଧି ପୁଣ | ।। | ୨୨ |
| | ଏ ଅଷ୍ଟ ସିଦ୍ଧି ହେ ସୁନ୍ଦର | । | ବିଚାରେ ସ୍ୱାଭାବିକ ମୋର | ।। | ୨୩ |
| ୬ | କ୍ଷୁଧାଦି ଷଡ଼[2] ଉର୍ମି ଦେହେ | । | ନ ଥାନ୍ତି ଏକଇ ସିଦ୍ଧି ଏ | ।। | ୨୪ |
| | ଦୂରରୁ ଦେଖଇ ଶୁଣଇ | । | ଏରୂପେ ପୁଣ ସିଦ୍ଧି ଦୁଇ | ।। | ୨୫ |
| | ମନରୁ ଅତିବେଗେ ଯାଇ | । | ନାନାସ୍ୱରୂପକୁ ଧରଇ | ।। | ୨୬ |
| | ପ୍ରବେଶ ହୋଏ ପରକାୟେ | । | ଏରୂପେ ତିନି ସିଦ୍ଧି ହୋଏ | ।। | ୨୭ |
| ୭ | ଇଚ୍ଛାରେ ଲଭଇ ମରଣ | । | ଦେବତାମାନଙ୍କର ପୁଣ | ।। | ୨୮ |
| | ଯେ କ୍ରୀଡ଼ା ଅପ୍‌ସରାଙ୍କ ସଙ୍ଗ | । | ତା' ଦେଖି କରି ପାରେ ଭୋଗ | ।। | ୨୯ |
| | ମନରେ ବାଞ୍ଛା କରେ ଯାହା | । | ତତ୍‌କାଳ ଲଭଇ ସେ ତାହା | ।। | ୩୦ |
| | ସମସ୍ତଠାରୁ ପାରେ ଯାଇ | । | ଏମନ୍ତ ଆଜ୍ଞା ଲଭିଥାଇ | ।। | ୩୧ |
| | ଏରୂପେ ଦଶସିଦ୍ଧିଗଣ | । | ଆହେ ଉଦ୍ଧବ ତୁମ୍ଭେ ଶୁଣ | ।। | ୩୨ |
| ୮ | ଭୂତ ଭବିଷ୍ୟ ବର୍ତ୍ତମାନ | । | ତ୍ରିକାଳ ଜାଣଇ ବହନ | ।। | ୩୩ |
| | ଶୀତ-ଉଷ୍ଣାଦି କାଳଦୁଃଖ | । | ଭୋଗ ନ କରେ ଲଭି ସୁଖ | ।। | ୩୪ |
| | ଅଗ୍ନି ସବିତା ଜଳ ବିଷ | । | ଇତ୍ୟାଦି ଯେ ଅବା ବିଶେଷ | ।। | ୩୫ |
| | ଏହାଙ୍କୁ ସ୍ତମ୍ଭ କରିପାରେ | । | ଅପରାଜିତ ସର୍ବଠାରେ | ।। | ୩୬ |
| | ଆହେ ଉଦ୍ଧବ ତୁମ୍ଭେ ଶୁଣ | । | ଏ କ୍ଷୁଦ୍ରସିଦ୍ଧି ପାଞ୍ଚ ପୁଣ | ।। | ୩୭ |
| ୯ | ଯୋଗଧାରଣା ସିଦ୍ଧି ଏତେ | । | ଉଦ୍ଧବ କହିଲି ମୁଁ ତୋତେ | ।। | ୩୮ |
| | ଯଉଁ ଧାରଣା କରି ତହିଁ | । | ଯେବଣ ସିଦ୍ଧିକି ଲଭଇ | ।। | ୩୯ |
| | ଯଉଁ ରୂପରେ ଏବେ ପୁଣ | । | କହିବା ମୋ'ଠାରୁ ତା' ଜାଣ | ।। | ୪୦ |
| ୧୦ | ଭୂତସୂକ୍ଷ୍ମ ଉପାଧି ମୋର | । | ତନ୍ମାତ୍ର ଉପାସକ ନର | ।। | ୪୧ |
| | ମୋ' ଠାରେ ତନ୍ମାତ୍ର ମନକୁ | । | ଧରି ଲଭଇ ଅଣିମାକୁ | ।। | ୪୨ |
| ୧୧ | ମହଦ୍‌ତତ୍ତ୍ୱାଦି ପଞ୍ଚଭୂତ | । | ପୃଥକେ ମୋ ଉପାଧି ଖ୍ୟାତ | ।। | ୪୩ |
| | ମୋ' ଠାରେ ମହଦ୍‌ତତ୍ତ୍ୱାକାର | । | ମନକୁ ଧରଇ ଯେ ନର | ।। | ୪୪ |
| | ଆହେ ଉଦ୍ଧବ ସେ ଲୋକ ହିଁ | । | ମହିମାସିଦ୍ଧିକି ଲଭଇ | ।। | ୪୫ |
| ୧୨ | ପୃଥ୍ୱୀଦି ପଞ୍ଚଭୂତଙ୍କର | । | ପରମାଣୁ ଉପାଧି ମୋର | ।। | ୪୬ |
| | ମୋ' ଠାରେ କାଳସୂକ୍ଷ୍ମତାକୁ | । | ପରମାଣୁରୂପେ ଚିତ୍ତକୁ | ।। | ୪୭ |
| | ଧାରଣା କରି ଯୋଗୀ ଯାଇ | । | ଲଘିମା ସିଦ୍ଧିକି ଲଭଇ | ।। | ୪୮ |
| ୧୩ | ବଇକାରିକ ଅହଂକାର | । | ଉପାଧି ଅଟଇ ମୋହର | ।। | ୪୯ |

୧. କାମବାସନାକୁ ଯାହା ନାଶ କରେ ।　　୨. କ୍ଷୁଧା-ତୃଷା, ଜନ୍ମ-ମୃତ୍ୟୁ, ଶୋକ-ମୋହ ।

ମୋ'ଠାରେ ନିଜ ମନ ଦେଇ । ଅଖିଳ ତତ୍ତ୍ୱକୁ ଲଭଇ ॥ ୫୦
ସର୍ବଇନ୍ଦ୍ରିୟ ଅଧିଷ୍ଠାନ । ପ୍ରାପ୍ତିକି ଲଭଇ ସେ ଜନ ॥ ୫୧
୧୪ ଅବ୍ୟକ୍ତଠାରୁ ଯେହୁ ଜାତ । ସେ ସୂତ୍ରରୂପୀ ମହତ୍ତତ୍ତ୍ୱ ॥ ୫୨
ଉପାଧି ମୋହର ମୋ'ଠାରେ । ମନକୁ ସେରୂପେ ଯେ ଧରେ ॥ ୫୩
ସେ ଯୋଗିଜନ ବେଗେ ଯାଇ । 'ପ୍ରାକାମ୍ୟ' ସିଦ୍ଧିକି ଲଭଇ ॥ ୫୪
୧୫ ତ୍ରିଗୁଣମାୟା-ଅଧୀଶ୍ୱର । ମୁଁ ବିଷ୍ଣୁ କାଳ ମୋ ଶରୀର ॥ ୫୫
ମୋ'ଠାରେ ଚିତ୍ତକୁ ଧରଇ । ଈଶିତା[1] ସିଦ୍ଧିକି ଲଭଇ ॥ ୫୬
ଯେଣେ ସେ ପ୍ରାଣିଙ୍କର ମନ । ଶରୀର କରେ ନିରୂପଣ ॥ ୫୭
୧୬ ମୋତେ ବୋଲନ୍ତି ଭଗବାନ । ବିରାଟ ଆଦି ରୂପମାନ ॥ ୫୮
ମୁଁ ନାରାୟଣ ମୋହ' ଠାରେ । ମନକୁ ସେ ସେହି ଭାବରେ ॥ ୫୯
ମୋ ଧର୍ମ କରିଣ ଧରଇ । ଅବଶ୍ୟ ତାକୁ ସେ ଲଭଇ ॥ ୬୦
୧୭ ନିର୍ଗୁଣ ବ୍ରହ୍ମ ମୁଁ ମୋ ଠାରେ । ବିଶଦ ମନ ନିଶ୍ଚଳରେ ॥ ୬୧
ପରମାନନ୍ଦକୁ ଲଭଇ । ଯହିଁରେ ସର୍ବ କାମ ଥାଇ ॥ ୬୨
୧୮ ମୁଁ ଯେ ସେ ଶ୍ୱେତଦ୍ୱୀପପତି । ବିଶୁଦ୍ଧ ଧର୍ମମୟ ଅତି ॥ ୬୩
ମୋ ଠାରେ ସେ ଭାବରେ ପୁଣ । ଚିତ୍ତକୁ କରନ୍ତେ ଧାରଣ ॥ ୬୪
ଶୁଦ୍ଧ ସ୍ୱରୂପକୁ ଧରଇ । [2]ଷଡ଼ ଊର୍ମିକୁ ବିନାଶଇ ॥ ୬୫
୧୯ ଆକାଶ-ଆତ୍ମା ପ୍ରାଣ ମୁହିଁ । ମୋ' ଠାରେ ମନ ତୁଳେ ନେଇ ॥ ୬୬
ନାଦକୁ ଚିନ୍ତା କରି ପୁଣି । ସେ ଆକାଶରେ ସର୍ବ ଜାଣି ॥ ୬୭
ପ୍ରାଣୀଙ୍କ ଚିତ୍ତ-ବାକ୍ୟଗଣ । ଦୂରରୁ କରନ୍ତି ଶ୍ରବଣ ॥ ୬୮
୨୦ ମୁଁ ସୂର୍ଯ୍ୟରୂପେ ପରିଚ୍ଛିନ୍ନ । ସେ ଭାବେ ପୁଣ ଯୋଗିଜନ ॥ ୬୯
ସୂର୍ଯ୍ୟରେ ଚକ୍ଷୁ ନେଇ ଦେଇ । ସୂର୍ଯ୍ୟକୁ ଚକ୍ଷୁରେ ମିଶାଇ ॥ ୭୦
ତହିଁରେ ମାନସରେ ମୋତେ । ସେ ଯୋଗୀ ଧାରଣା କରନ୍ତେ ॥ ୭୧
ଲଭିଣ ସୂକ୍ଷ୍ମ ନୟନକୁ । ଦୂରୁ ଦେଖଇ ଜଗତକୁ ॥ ୭୨
୨୧ ମନକୁ ଦେହକୁ ମୋ' ଠାରେ । ପ୍ରାଣପବନ ସହିତରେ ॥ ୭୩
ନିଯୁକ୍ତ କରି ଯୋଗିନର । ଧାରଣାପ୍ରଭାବୁଁ ମୋହର ॥ ୭୪
ଯଉଁ ସ୍ଥାନକୁ ମନ ଯାଇ । ସେଠାକୁ ଦେହ ହିଁ ଗମଇଁ ॥ ୭୫
୨୨ ନିଜ ମନକୁ ଉପାଦାନ । କାରଣ କରି ଯୋଗିଜନ ॥ ୭୬
ଯେବଣ ଯେବଣ ରୂପକୁ । ଇଚ୍ଛା କରଇ ଲଭିବାକୁ ॥ ୭୭
ମନର ଅନୁରୂପ ହୋଇ । ସେ ସେହି ରୂପକୁ ଲଭଇ ॥ ୭୮
ମୋ ଯୋଗବଳକୁ ଆଶ୍ରୟ । ଯେଣୁ କରିଛି ଅତିଶୟ ॥ ୭୯

---

୧. ଏହି ଈଶିତ୍ୱ ବିଶ୍ୱସୃଷ୍ଟ୍ୟାଦିକର୍ତ୍ତୃତ୍ୱଲକ୍ଷଣ ଈଶିତ୍ୱ ନୁହେଁ ।
୨. କ୍ଷୁଧା-ପିପାସା, ଜନ୍ମ-ମୃତ୍ୟୁ, ଶୋକ-ମୋହ ଏହି ୬ଟି ଊର୍ମି ।

୨୩ ପରଦେହରେ ପ୍ରବେଶନ । ବାଞ୍ଛଇ ଯେବେ ଯୋଗିଜନ ॥ ୮୦
ବିସ୍ତାର କରିଣ ଆତ୍ମାକୁ । ଯହିଁ ଭାବଇ ସେ ଦେହକୁ ॥ ୮୧
ଛାଡ଼ିଣ ବାୟୁରୂପ ଧରି । ବାହ୍ୟ ପବନେ ମିଶି କରି ॥ ୮୨
ପଶଇ ଯାଇ ପରକାୟେ । ପୁଷ୍ପରେ ଭ୍ରମରପରାୟେ ॥ ୮୩
୨୪ ଚରଣପ୍ରାନ୍ତରେ ଗୁଦକୁ । ନିରୁନ୍ଧି ପ୍ରାଣପବନକୁ ॥ ୮୪
ହୃଦୟ-ଉର-କଣ୍ଠ ନେଇ । ବ୍ରହ୍ମରନ୍ଧ୍ରରେ ମୁଣ୍ଡେ ଥୋଇ ॥ ୮୫
ବ୍ରହ୍ମପଦବୀ ବାଞ୍ଛି ନର । ଛାଡ଼ିବ ନିଜ କଳେବର ॥ ୮୬
୨୫ ଦେବ-ଉଦ୍ୟାନେ ଯୋଗିଜନ । ଇଚ୍ଛା କରନ୍ତେ କ୍ରୀଡ଼ାମାନ ॥ ୮୭
୨୬ ମୋ' ମୂର୍ତ୍ତିରୂପ ସତ୍ତ୍ୱମାନ । ଚିତ୍ତରେ କରିବ ଭାବନ ॥ ୮୮
ସତ୍ତ୍ୱସଂଭୂତ ସୁରନାରୀ । ସଙ୍ଗରେ ବିମାନେ ବିହରି ॥ ୮୯
ସତ୍ୟସଂକଳ୍ପ ମୁଁ ମୋ' ଠାରେ । ମନକୁ ଧରନ୍ତେ ଦୃଢ଼ରେ ॥ ୯୦
ବିଶ୍ୱାସ କରି ମୋହ' ଠାଇଁ । ଚିତ୍ତେ ଯା' ସଂକଳ୍ପ କରଇ ॥ ୯୧
ସେହି ରୂପରେ ତା' ଅବଶ୍ୟ । ଲଭଇ ସେ ଯୋଗିପୁରୁଷ ॥ ୯୨
୨୭ ସ୍ୱତନ୍ତ୍ର ମୁଁ ସର୍ବ ଈଶ୍ୱର । ମୋ' ପ୍ରଭାବକୁ ଯଉଁ ନର ॥ ୯୩
ଲଭଇ ଧାରଣା ଆଦିରେ । ତାହାର କଉଁଣିସିଠାରେ ॥ ୯୪
ଆଜ୍ଞା ନୁହଇ ପ୍ରତିହତ । ଜଗତେ ମୋ' ଆଜ୍ଞା ଯେମନ୍ତ ॥ ୯୫
୨୮ ମୋ' ଦୃଢ଼ ଭକ୍ତିରେ ଯାହାର । ବିଶୁଦ୍ଧ ସତ୍ତ୍ୱ ବଳୀୟାର ॥ ୯୬
ଧାରଣା ଜାଣଇଁ ଆବର । ଏମନ୍ତ ଯଉଁ ଯୋଗୀ ତାର ॥ ୯୭
ସ୍ୱଜନ୍ମମୃତ୍ୟୁସହିତରେ । ସିଦ୍ଧି ହୁଅଇ ତ୍ରିକାଳରେ ॥ ୯୮
୨୯ ପ୍ରାକୃତ ଗୁଣବୃତ୍ତିଙ୍କରେ । ମୁଁ ଭିନ୍ନ ଚିନ୍ମୟରୂପରେ ॥ ୯୯
ମୁଁ ବ୍ରହ୍ମ ମୋହ'ଠାରେ ନେଇ । ଯେ ଯୋଗୀ ଚିତ୍ତକୁ ଧରଇ ॥ ୧୦୦
ଦ୍ୱନ୍ଦ୍ୱଦୁଃଖରେ କଦାଚିତ । କାହିଁ ସେ ନୋହେ ପରାଭୂତ ॥ ୧୦୧
ସମସ୍ତ ପ୍ରାଣିହୃଦେ ବ୍ୟାପି । ମୁଁ ସର୍ବସାକ୍ଷୀ ଆତ୍ମାରୂପୀ ॥ ୧୦୨
ଆତ୍ମା-ଭାବରେ ମୋହ'ଠାରେ । ଯେ କରେ ଧାରଣା ନିତ୍ୟରେ ॥ ୧୦୩
ଚିତ୍ତକୁ ଅନ୍ୟ ଲୋକଙ୍କର । ତତ୍‌କାଳ ଜାଣଇଁ ସେ ନର ॥ ୧୦୪
ଯା' ଚିତ୍ତ ମୋ' ଯୋଗ-ଆଶ୍ରୟ । ସେ ମୁନିଦେହ ଯୋଗମୟ ॥ ୧୦୫
ଅଗ୍ନି ଗରଳ ଜଳାଦିରେ । ବିନାଶ ନୁହଇ କାହିଁରେ ॥ ୧୦୬
ଜଳଚରଙ୍କର ଉଦକ । ଯେସନେ ନୋହେ ବିନାଶକ ॥ ୧୦୭
୩୦ ଶ୍ରୀବତ୍ସଚିହ୍ନରେ ଭୂଷିତ । ନାନା ଅସ୍ତ୍ରରେ ଯେ ଚିହ୍ନିତ ॥ ୧୦୮
ଧ୍ୱଜ ଆତପତ୍ର ବ୍ୟଜନ । ଏମାନଙ୍କରେ ଶୋଭମାନ ॥ ୧୦୯
ଏ ମୋର ଅବତାରମାନ । ଯେ କରେ ନିରନ୍ତର ଧ୍ୟାନ ॥ ୧୧୦
ସେ ଯୋଗିଜନ ଏ ଜଗତ । ମଧ୍ୟରେ ନୋହେ ପରାଜିତ ॥ ୧୧୧

| | | | | |
|---|---|---|---|---|
| ୩୧ | ଯୋଗଧାରଣେ ମୋତେ ଜନ | । ଏରୂପେ କଲେ ଉପାସନ | ।। | ୧୧୨ |
| | ଅଶେଷ ପୂର୍ବରୁ କଥିତ | । ତା' ସିଦ୍ଧି ହୋଏ ଉପଗତ | ।। | ୧୧୩ |
| ୩୨ | ଜିଣିଛି ଯେ ଇନ୍ଦ୍ରିୟଗଣ | । କରିଛି ଚିତ୍ତ ନିଗ୍ରହଣ | ।। | ୧୧୪ |
| | ଜିଣିଛି ଆତ୍ମା ନିଃଶ୍ୱାସକୁ | । ଧରିଛି ମୋର ଧାରଣାକୁ | ।। | ୧୧୫ |
| | କେହୁଣି ସିଦ୍ଧି ସେ ମୁନିର | । ନୁହଇ ଦୁର୍ଲଭ ପ୍ରକାର | ।। | ୧୧୬ |
| ୩୩ | ଉତ୍ତମ ଯୋଗକୁ କରଇ | । ମୋ'ଠାରେ ଯୁକ୍ତ ହୋଇଥାଇ | ।। | ୧୧୭ |
| | ଏମନ୍ତ ଯେଉଁ ଯୋଗିଜନ | । ତାହାର ଏ ଧାରଣାମାନ | ।। | ୧୧୮ |
| | ବୋଲନ୍ତି ଅନ୍ତରାୟ ଜନେ | । ଫଳ ଜାଣିଣ ସେହିମାନେ | ।। | ୧୧୯ |
| | କାଳକ୍ଷପଣନିମିତ୍ତରେ | । ସେ ହେତୁ ଅଟନ୍ତି ସଂସାରେ | ।। | ୧୨୦ |
| ୩୪ | [1]ଜନ୍ମ ଓଷଧି ତପସ୍ୟାରେ | । ଯେତେକ ସିଦ୍ଧି ଏମନ୍ତରେ | ।। | ୧୨୧ |
| | ଅଷ୍ଟାଙ୍ଗ ଯୋଗକୁ କରିଣ | । ସେ ସମସ୍ତଙ୍କୁ ଲଭେ ପୁଣ | ।। | ୧୨୨ |
| | ଅନ୍ୟ ସାଧନାଦିରେ କେହି | । ଯୋଗଗତିକି[2] ଲଭି ନାହିଁ | ।। | ୧୨୩ |
| ୩୫ | ଯୋଗର-ସାଂଖ୍ୟର ଧର୍ମର | । ଆବର ବ୍ରହ୍ମବାଦୀଙ୍କର | ।। | ୧୨୪ |
| | ସମସ୍ତ ସିଦ୍ଧିଙ୍କର ପୁଣ | । ମୁଁ ପତି ପ୍ରଭୁଟି କାରଣ | ।। | ୧୨୫ |
| ୩୬ | ସମସ୍ତ ପ୍ରାଣିମାନଙ୍କର | । ମୁଁ ଆତ୍ମା ବାହାର ଅନ୍ତର | ।। | ୧୨୬ |
| | କାହିଁରେ ନୁହଇ ଆବୃତ | । ଯେସନେ ପଞ୍ଚ ମହାଭୂତ | ।। | ୧୨୭ |
| | ସେ ଚତୁର୍ବିଧ[3] ପ୍ରାଣୀଠାରେ | । ଅଛନ୍ତି ବାହାରେ ଭିତରେ | ।। | ୧୨୮ |
| | ସେହି ରୂପରେ ମୁଁ ଆପଣ | । ଉଦ୍ଧବ ସର୍ବଠାରେ ଜାଣ | ।। | ୧୨୯ |
| | ଅଷ୍ଟାଙ୍ଗଯୋଗସିଦ୍ଧି ଯେତେ | । ଧାରଣାମାନଙ୍କ ସହିତେ | ।। | ୧୩୦ |
| | ଯେ ଆଜ୍ଞା ଦେଲେ ଉଦ୍ଧବଙ୍କୁ | । ତାଙ୍କ ଚରଣକମଳକୁ | ।। | ୧୩୧ |
| | ବ୍ରାହ୍ମଣ ଦୀନବନ୍ଧୁ ମନ | । ଚିନ୍ତା କରଇ ଅନୁଦିନ | ।। | ୧୩୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଅଷ୍ଟାଦଶସିଦ୍ଧିବର୍ଣ୍ଣନଂ ନାମ ପଞ୍ଚଦଶୋଽଧ୍ୟାୟଃ ।।

---

୧. "ଜନ୍ମୌଷଧିତପୋମନ୍ତ୍ରଯୋଗଜାଃ ସିଦ୍ଧୟଃ" (ପତଞ୍ଜଳି)

୨. ସାଲୋକ୍ୟାଦିକୁ ।  ୩. ଅଣ୍ଡଜ , ସ୍ୱେଦଜ, ଜରାୟୁଜ, ଉଦ୍‌ଭିଜ ।

# ଷୋଡ଼ଶ ଅଧ୍ୟାୟ

ଷୋଡ଼ଶେ ତୁ ହରେରାବିର୍ଭାବଯୁକ୍ତା ବିଭୂତୟଃ ।
ଜ୍ଞାନବୀର୍ଯ୍ୟପ୍ରଭାବାଦିବିଶେଷେଣୋପବର୍ଣ୍ଣିତାଃ ।। ୧
ଅନ୍ତର୍ନିଷ୍ଠେନ ଯଦ୍‌ଧ୍ୟାନମଶକ୍ୟମକୃତାତ୍ମନାମ୍ ।
ଅତସ୍ତଦ୍‌ଯୋଗ୍ୟତାପତ୍ତୌ ବିଭୂତ୍ୟାଦିନିରୂପଣମ୍ ।। ୨
ଏବଂ ତାବନ୍ନବାଧ୍ୟାୟ୍ୟାମଷ୍ଟ ପ୍ରଶ୍ନା ନିରୂପିତାଃ ।
ବ୍ରହ୍ମତ୍ୱସମ୍ଭବେ ତାବଦ୍ ସପ୍ତମାଦିଚତୁଷ୍ଟୟେ ।। ୩
ବନ୍ଧମୁକ୍ତ୍ୟୋସ୍ତୁ ନିର୍ଦ୍ଧାରେ ସଦ୍‌ଭକ୍ତ୍ୟୋଶ୍ଚ ତତଃ ପରେ ।
ଦ୍ୱାଦଶେଽନନ୍ତରଂ କର୍ମ କୃତିତ୍ୟାଗବ୍ୟବସ୍ଥିତୌ ।। ୪
ହଂସେତିହାସତୋ ଯୋଗନିଷ୍ଠାୟାଂ ଚ ତ୍ରୟୋଦଶେ ।
ଶ୍ରେୟଃସାଧନନିର୍ଦ୍ଧାରେ ଧ୍ୟାନେ ଚୈବ ଚତୁର୍ଦ୍ଦଶେ ।। ୫
ଧାରଣାସିଦ୍ଧିଭେଦେ ଚ ପ୍ରସଙ୍ଗେନ ନିରନ୍ତରେ ।
ଉଦ୍ଧବପ୍ରଶ୍ନତୋ ଦତ୍ତମୁତ୍ତରଂ ହରିଣୋଚିତମ୍ ।। ୬
ଷୋଡ଼ଶେ ଭୂତିବିସ୍ତାରେ ଦ୍ୱୟୋର୍ବର୍ଣ୍ଣାଶ୍ରମବ୍ରତେ ।
ଜ୍ଞାନାଦିନିର୍ଣ୍ଣୟେ ଚାତୋ ଯମାଦୀନାଂ ଚ ନିର୍ଣ୍ଣୟେ ।। ୭
ଯୋଗତ୍ରୟାଧିକାରେ ତୁ ବିଂଶେ ଚ ତଦନନ୍ତରେ ।
ସତ୍ତ୍ୱସଂଖ୍ୟାବିବାଦେ ଚ ପୁଂପ୍ରକୃତ୍ୟୋର୍ବିବେଚନେ ।। ୮
ଜନ୍ମମୃତ୍ୟୁପ୍ରକାରେ ଚ ଦ୍ୱାବିଂଶେ ଦତ୍ତମୁତ୍ତରମ୍ ।
ପରାପରାଧସହନେ ଚତୁର୍ଭିସ୍ତଦନନ୍ତରେ ।। ୯
ସପ୍ତବିଂଶେ କ୍ରିୟାଯୋଗପ୍ରଶ୍ନେ ତଦୁପବର୍ଣ୍ଣନମ୍ ।
ଅଷ୍ଟାବିଂଶେ ତତଃ ପ୍ରୋକ୍ତା ଜ୍ଞାନଯୋଗୋପସଂହୃତିଃ ।। ୧୦
ସଂସାରାସମ୍ଭବପ୍ରଶ୍ନେ ତନ୍ମଧ୍ୟେ ଦତ୍ତମୁତ୍ତରମ୍ ।
ତଦଶକ୍ତ୍ୟା ପୁନଃ ପ୍ରଶ୍ନେ ଭକ୍ତିଯୋଗୋପସଂହୃତିଃ ।
ଏବଂ ପ୍ରଶ୍ନୋତ୍ତରାଣ୍ୟତ୍ର କ୍ରମେଣୈତାନି ବିଂଶତିଃ ।। ୧୧

ଶ୍ରୀଉଦ୍ଧବ ଉବାଚ

୧ ଉଦ୍ଧବ ବେନି କର ଯୋଡ଼ି । କହନ୍ତି କୃଷ୍ଣପାଦେ ପଡ଼ି ।। ୧
ତୁମ୍ଭେ ପରମ ବ୍ରହ୍ମ ସ୍ୱତ । ନାହିଁ ତୁମର ଆଦି ଅନ୍ତ ।। ୨
ତୁମ୍ଭର ନାହିଁ ଆବରଣ । ସମସ୍ତ ପ୍ରାଣୀଙ୍କର ପୁଣ ।। ୩
ରକ୍ଷଣ ସ୍ଥିତି ସହିତରେ । ନାଶ ଉତ୍‌ପତ୍ତି ତୁମ୍ଭଠାରେ ।। ୪
୨ ଯେ ଉଚ୍ଚ ନୀଚ ଜୀବମାନେ । ତହିଁ ତୁମ୍ଭଙ୍କୁ ଅଜ୍ଞଜନେ ।। ୫
ହେ କୃଷ୍ଣ ଜାଣି ନ ପାରନ୍ତି । ବେଦତତ୍ତ୍ୱକୁ ଯେ ଜାଣନ୍ତି ।। ୬
ଯଥାର୍ଥରେ ସେ ବିପ୍ରଜନ । ତୁମ୍ଭଙ୍କୁ କଲେ ଉପାସନ ।। ୭

୩ ଯେବଣ ଯେବଣ ଭାବରେ । ପରମ ଋଷିଏ ଭକ୍ତିରେ ।। ୮
ତୁମ୍ଭଙ୍କୁ ଉପାସନା କଲେ । ଉତ୍ତମ ସିଦ୍ଧିକି ଲଭିଲେ ।। ୯
ସେ କଥାମାନ ତୁମ୍ଭେ ବେଗେ । ହେ କୃଷ୍ଣ କହ ମୋର ଆଗେ ।। ୧୦
୪ ହେ ଭୂତଭାବନ ସଂସାରେ । ସମସ୍ତ ପ୍ରାଣୀଙ୍କ ମଧ୍ୟରେ ।। ୧୧
ତାହାଙ୍କ ଆତ୍ମା ହୋଇ ତହିଁ । ବିହାର କର ଗୁପ୍ତ ହୋଇ ।। ୧୨
ଯେତେକ ପ୍ରାଣୀ ଛନ୍ତି ରହି । ତୁମ୍ଭ ମାୟାରେ ମୋହ ହୋଇ ।। ୧୩
ଦେଖି ନ ପାରନ୍ତି ତୁମ୍ଭଙ୍କୁ । ତୁମ୍ଭେଟି ଦେଖୁଛ ତାହାଙ୍କୁ ।। ୧୪
୫ ସ୍ୱରଗ-ମର୍ତ୍ତ୍ୟ-ପାତାଳରେ । ସମସ୍ତ ଦିଗମାନଙ୍କରେ ।। ୧୫
ହେ ମହାବିଭୂତି ଶ୍ରୀହରି । ତୁମ୍ଭ ନିଯୁକ୍ତ ହୋଇ କରି ।। ୧୬
ଯେତେ ବିଭୂତିମାନେ ଛନ୍ତି । ଆମ୍ଭଙ୍କୁ କହ ତା' ଝଟିତି ।। ୧୭
ସମସ୍ତ ତୀର୍ଥମାନଙ୍କର । ଯେ ନିତ୍ୟେ ଅଟଇ ଆକର ।। ୧୮
ସେ ପାଦପଦ୍ମକୁ ତୁମ୍ଭର । ଆମ୍ଭେ କରୁଛୁଁ ନମସ୍କାର ।। ୧୯

ଶ୍ରୀଭଗବାନୁବାଚ

୬ ପ୍ରଶ୍ନ ଜାଣିମା ଲୋକଙ୍କର । ମଧ୍ୟରେ ଅଟ ତୁମ୍ଭେ ବର ।। ୨୦
ମୋତେ ଏ ପ୍ରଶ୍ନ ଏ ରୂପରେ । ଶତ୍ରୁମାନଙ୍କ ସହିତରେ ।। ୨୧
କୁରୁକ୍ଷେତ୍ରରେ ଯୁଦ୍ଧମନ । କରନ୍ତେ ପୁଚ୍ଛିଲେ ଅର୍ଜୁନ ।। ୨୨
୭ ରାଜ୍ୟହେତୁକୁ ଯେ ନିମିତ୍ତ । ଅଧର୍ମ ଅତି ଗରହିତ ।। ୨୩
ଏମନ୍ତ ଜ୍ଞାତିବଧ ଜାଣି । ମାଇଲି ମୁଁ ଏତେକ ପ୍ରାଣୀ ।। ୨୪
ପ୍ରାକୃତ ବୁଦ୍ଧି ଏ ରୂପରେ । ଜାତ ହୁଅନ୍ତେ ସେ କାଳରେ ।। ୨୫
ସେ ଜ୍ଞାତିବଧରୁ ତୁରିତ । ଅର୍ଜୁନ ହେଲେ ନିବର୍ତ୍ତିତ ।। ୨୬
୮ ଉଦ୍ଧବ ! ଅର୍ଜୁନ ସେଠାରେ । ପ୍ରବୋଧ ହୋଇ ମୋ ଯୁକ୍ତିରେ ।। ୨୭
ତୁମ୍ଭେ ପଚାରିଲ ଯେମନ୍ତେ । ଏହି ରୂପରେ ସେ ହିଁ ମୋତେ ।। ୨୮
ରଣମଧ୍ୟରେ ପଚାରିଲେ । ତୁମ୍ଭଙ୍କୁ କହିବି ତା' ଭଲେ ।। ୨୯
୯ ଏ ସର୍ବ ପ୍ରାଣିମାନଙ୍କର । ମୁଁ ଆତ୍ମା ସୁହୃଦ ଈଶ୍ୱର ।। ୩୦
ମୁଁ ସର୍ବଭୂତେ ହେ ଉଦ୍ଧବ । ସେମାନଙ୍କର ଯେ ଉଦ୍ଭବ ।। ୩୧
ପାଳନ ନାଶ ଯେ ବା ଦୁଇ । ତହିଁକି ହେତୁ ମୁଁ ଅଟଇ ।। ୩୨
୧୦ ଗତି ଅଛଇ ଯାହାଙ୍କର । ମୁଁ ଗତି ତାହାଙ୍କ ମଧ୍ୟର ।। ୩୩
ଯେ ବଶ କରନ୍ତି କେବଳ । ତାହାଙ୍କ ମଧ୍ୟରେ ମୁଁ କାଳ ।। ୩୪
ଗୁଣମାନଙ୍କ ମଧ୍ୟେ ମୁହିଁ । ଉଦ୍ଧବ ସମତ୍ୱ ବୋଲାଇ ।। ୩୫
ଗୁଣୀ ଦ୍ରବ୍ୟର ମଧ୍ୟେ ପୁଣ । ମୁଁ ଅଟେ ସ୍ୱାଭାବିକ ଗୁଣ ।। ୩୬
୧୧ ଗୁଣୀମାନଙ୍କ ମଧ୍ୟେ ମୁହିଁ । ପ୍ରଥମ କାର୍ଯ୍ୟ ସୂତ୍ର[୧]ଟି ହିଁ ।। ୩୭
ମହଦ୍ ପଦାର୍ଥମାନଙ୍କେଣ । ମହାନ୍ ବୋଲାଇ ମୁଁ ପୁଣ ।। ୩୮

୧. ସୂତ୍ର = କ୍ରିୟାପ୍ରଧାନ ମହତ୍ ତତ୍ତ୍ୱ ।

ସୂକ୍ଷ୍ମମାନଙ୍କ ମଧ୍ୟରେ ହିଁ । ଉଦ୍ଧବ ମୁଁ ଜୀବ[1] ଅଟଇ ।। ୩୯
ଜିଣି ନ ପାରି ଯେଉଁମାନ । ତାହାଙ୍କ ମଧ୍ୟରେ ମୁଁ ମନ ।। ୪୦
୧୨ ବେଦଙ୍କ ମଧ୍ୟରେ ମୁଁ ପୁଣ । ହିରଣ୍ୟଗର୍ଭ ବୋଲି ଜାଣ ।। ୪୧
ମନ୍ତ୍ରଙ୍କ ମଧ୍ୟେ ହେ ଉଦ୍ଧବ । ମୁଁ ପୁଣି ତ୍ରିବୃତ ପ୍ରଣବ ।। ୪୨
ଅକାର ଅକ୍ଷରମଧ୍ୟରେ । ଗାୟତ୍ରୀ ଛନ୍ଦମାନଙ୍କରେ ।। ୪୩
୧୩ ସମସ୍ତ ଦେବଙ୍କ ମଧ୍ୟରେ । ଇନ୍ଦ୍ର ମୁଁ ହୋଇଛି ସ୍ୱର୍ଗରେ ।। ୪୪
ବସୁମାନଙ୍କ ମଧ୍ୟେ ମୁହିଁ । ହବ୍ୟବାହ ଅଗ୍ନି ବୋଲାଇ ।। ୪୫
ଦ୍ୱାଦଶାଦିତ୍ୟଙ୍କ ମଧ୍ୟରେ । ବିଷ୍ଣୁ ମୁଁ ବୋଲାଇ ନାମରେ ।। ୪୬
ରୁଦ୍ରମାନଙ୍କ ମଧ୍ୟେ ସ୍ୱତ । ଅଟଇ ମୁଁ ନୀଳଲୋହିତ ।। ୪୭
୧୪ ବ୍ରହ୍ମର୍ଷି[2] ମାନଙ୍କରେ ପୁଣ । ଭୃଗୁ ବୋଲିଣ ମୋତେ ଜାଣ ।। ୪୮
ରାଜର୍ଷିମାନଙ୍କରେ ମୁହିଁ । ଉଦ୍ଧବ ମନୁଟି ବୋଲାଇ ।। ୪୯
ନାରଦ ମୁଁ ଦେବ-ଋଷିରେ । ମୁଁ କାମଧେନୁ ଧେନୁଙ୍କରେ ।। ୫୦
୧୫ ସିଦ୍ଧେଶ୍ୱରଙ୍କ ମଧ୍ୟେ ମୁହିଁ । ଉଦ୍ଧବ କପିଳ ବୋଲାଇ ।। ୫୧
ଗରୁଡ଼ ପକ୍ଷୀଙ୍କ ମଧ୍ୟରେ । ଦକ୍ଷ ମୁଁ ପ୍ରଜାପତିଙ୍କରେ ।। ୫୨
ପିତୃମାନଙ୍କ ମଧ୍ୟେ ପୁଣ । ଅର୍ଯ୍ୟମା ବୋଲି ମୋତେ ଜାଣ ।। ୫୩
୧୬ ଦୈତ୍ୟଙ୍କ ମଧ୍ୟେ ହେ ଉଦ୍ଧବ । ଅସୁରମାନଙ୍କର ଧବ ।। ୫୪
ପ୍ରହ୍ଲାଦ ବୋଲି ମୋତେ ଜାଣ । ଓଷଧି ଯେ ନକ୍ଷତ୍ରଗଣ ।। ୫୫
ମୁଁ ତାଙ୍କ ପ୍ରଭୁ ନିଶାକର । ଯକ୍ଷରାକ୍ଷସେ ଧନେଶ୍ୱର ।। ୫୬
୧୭ ଗଜେନ୍ଦ୍ରମାନଙ୍କ ମଧ୍ୟେଣ । ମୁଁ ଅଟେ ଐରାବତ ଜାଣ ।। ୫୭
ଯେତେକ ଜଳଜନ୍ତୁଗଣ । ତାହାଙ୍କ ପ୍ରଭୁ ମୁଁ ବରୁଣ ।। ୫୮
ଯେ ଚଣ୍ଡ ଦ୍ୟୁତିମନ୍ତ ଦୁଇ । ତହିଁରେ ସୂର୍ଯ୍ୟ ମୁଁ ବୋଲାଇ ।। ୫୯
ମନୁଷ୍ୟଙ୍କର ମଧ୍ୟେ ପୁଣ । ନୃପତି ବୋଲି ମୋତେ ଜାଣ ।। ୬୦
୧୮ ଅଶ୍ୱଙ୍କ ମଧ୍ୟରେ ଉତ୍ତମ । ମୁଁ ଉଚ୍ଚୈଃଶ୍ରବା ତୁରଙ୍ଗମ ।। ୬୧
ସୁବର୍ଣ୍ଣ ଧାତୁମାନଙ୍କରେ । ବାସୁକି ସର୍ପଙ୍କ ମଧ୍ୟରେ ।। ୬୨
ଦଣ୍ଡ ଦିଅନ୍ତି ଯେଉଁ ଜନ । ତାହାଙ୍କ ମଧ୍ୟେ ମୁହିଁ ଯମ ।। ୬୩
୧୯ ନାଗେନ୍ଦ୍ରମାନଙ୍କରେ ମୁହିଁ । ନାମରେ ଅନନ୍ତ ବୋଲାଇ ।। ୬୪
ଯେତେକ ଶୃଙ୍ଗ-ଦନ୍ତଧାରୀ । ତାହାଙ୍କ ମଧ୍ୟେ ମୁଁ କେଶରୀ ।। ୬୫
ସନ୍ନ୍ୟାସ ଆଶ୍ରମ ମଧ୍ୟରେ । ବ୍ରାହ୍ମଣ ବର୍ଣ୍ଣମାନଙ୍କରେ ।। ୬୬
୨୦ ତୀର୍ଥଙ୍କ ସ୍ରୋତଙ୍କ ମଧ୍ୟରେ । ମୁଁ ଗଙ୍ଗା ବୋଲାଇ ନାମରେ ।। ୬୭
ଯେତେ ଅଛନ୍ତି ସରୋବର । ତାହାଙ୍କ ମଧ୍ୟେ ମୁଁ ସାଗର ।। ୬୮

---

୧. ବୁଦ୍ଧେର୍ଗୁଣେନାତ୍ମଗୁଣେନ ଚୈବ ।
ବାଲାଗ୍ରମାତ୍ରୋ ହ୍ୟବରୋଽପି ଦୃଷ୍ଟଃ ।। (ଶ୍ରୁତିଃ)

୨. ମହର୍ଷି (ମହର୍ଷୀଣାଂ ଭୃଗୁରହମ୍; ଗୀତା) ।

ଧନୁ ମୁଁ ଆୟୁଧ ମଧ୍ୟରେ । ମୁଁ ମହାଦେବ ଧନୁର୍ଦ୍ଧରେ ॥ ୬୯
୨୧ ନିବାସସ୍ଥାନମାନଙ୍କର । ମଧ୍ୟେ ମୁଁ ମେରୁ ମହୀଧର ॥ ୭୦
ଦୁର୍ଗମସ୍ଥାନଙ୍କ ମଧ୍ୟର । ହିମାଳୟଟି ନାମ ମୋର ॥ ୭୧
ଅଶ୍ୱତ୍ଥ ବୃକ୍ଷଙ୍କ ମଧ୍ୟରେ । ଯବ ମୁଁ ଓଷଧିଭିତରେ ॥ ୭୨
୨୨ ପୁରୋହିତଙ୍କ ମଧ୍ୟେ ମୁହିଁ । ଉଦ୍ଧବ ବସିଷ୍ଠ ବୋଲାଇ ॥ ୭୩
ବ୍ରହ୍ମିଷ୍ଠ[1] ଜନ ଯେ ଅଛନ୍ତି । ତାଙ୍କ ମଧ୍ୟେ ମୁଁ ବୃହସ୍ପତି ॥ ୭୪
ସମସ୍ତ ସେନାପତିଙ୍କର । ମଧ୍ୟେ ମୁଁ ଅଟଇ କୁମାର[2] ॥ ୭୫
ସନ୍ମାର୍ଗପ୍ରବର୍ତ୍ତକ ଜନ । ମଧ୍ୟେ ମୁଁ ବ୍ରହ୍ମା ଭଗବାନ ॥ ୭୬
୨୩ ମୁଁ ବ୍ରହ୍ମଯଜ୍ଞ[3] ଯଜ୍ଞଙ୍କରେ । ଅହିଂସା ବ୍ରତଙ୍କ ମଧ୍ୟରେ ॥ ୭୭
ପବନ ଅଗ୍ନି ଅର୍କ ଜଳ । ବଚନ ଆତ୍ମା ମୁଁ କେବଳ ॥ ୭୮
ଯେତେକ ଶୁଦ୍ଧିମନ୍ତ ପୁଣ । ମୁଁ ତାଙ୍କ ମଧ୍ୟେ ଶୁଦ୍ଧ ଜାଣ ॥ ୭୯
୨୪ ଅଷ୍ଟାଙ୍ଗଯୋଗମଧ୍ୟେ ମୁହିଁ । ଉଦ୍ଧବ ସମାଧି ବୋଲାଇ ॥ ୮୦
ବିଜୟକାମୀ ଯେତେ ଛନ୍ତି । ତାହାଙ୍କ ମଧ୍ୟେ ମୁହିଁ ନୀତି ॥ ୮୧
ବିବେକାଦି ନିପୁଣପଣ । ମଧ୍ୟେ ମୁଁ ଆତ୍ମବିଦ୍ୟା ପୁଣ ॥ ୮୨
ଯେତେକ ଖ୍ୟାତିବାଦୀ[4] ନରେ । ସନ୍ଦେହ ମୁଁ ତାଙ୍କ ମଧ୍ୟରେ ॥ ୮୩
୨୫ ନାରୀମାନଙ୍କ ମଧ୍ୟରେ ହିଁ । ଅଟଇ ଶତରୂପା ମୁହିଁ ॥ ୮୪
ନରଙ୍କ ମଧ୍ୟେ ହେ ଉଦ୍ଧବ । ମୁଁ ଅଟେ ମନୁ ସ୍ୱାୟଂଭୁବ ॥ ୮୫
ଯେତେ ଅଛନ୍ତି ମୁନିଗଣ । ତାଙ୍କ ମଧ୍ୟେ ମୁଁ ନାରାୟଣ ॥ ୮୬
ମଧ୍ୟେ ମୁଁ ବ୍ରହ୍ମଚାରୀଙ୍କର । ବୋଲାଇ ସନତକୁମାର ॥ ୮୭
୨୬ ଧର୍ମମାନଙ୍କ ମଧ୍ୟେ ପୁଣ । ମୁଁ ଭୂତାଭୟଦାନ ଜାଣ ॥ ୮୮
ଅଭୟସ୍ଥାନମାନ ଯେହି । ତନ୍ମଧ୍ୟେ ଅନ୍ତର୍ନିଷ୍ଠା ମୁହିଁ ॥ ୮୯
ଯେତେକ ଗୁପ୍ତକଥା ତହିଁ । ମଉନ ପ୍ରିୟବାକ୍ୟ ମୁହିଁ ॥ ୯୦
ଯେତେକ ପତି-ପତ୍ନୀ ଛନ୍ତି । ତାଙ୍କ ମଧ୍ୟେ ମୁଁ ପ୍ରଜାପତି[5] ॥ ୯୧
୨୭ ମୁଁ ଅପ୍ରମତ୍ତମାନଙ୍କର । ମଧ୍ୟେ ଅଟଇ ସଂବତ୍ସର ॥ ୯୨
ଋତୁଙ୍କ ମଧ୍ୟେ ମୁଁ ବସନ୍ତ । ନକ୍ଷତ୍ରମଧ୍ୟେ ଅଭିଜିତ[6] ॥ ୯୩
ମଧ୍ୟରେ ମାସମାନଙ୍କର । ଅଟଇ ମୁହିଁ ମାର୍ଗଶିର ॥ ୯୪
୨୮ ଯୁଗଙ୍କ ମଧ୍ୟେ ସତ୍ୟ ମୁହିଁ । କବିରେ ଶୁକ୍ର ମୁଁ ଅଟଇ ॥ ୯୫

---

୧. ବେଦାର୍ଥନିଷ୍ଠ । ୨. କାର୍ତ୍ତିକେୟ । ୩. ତ୍ରିସଂଧ୍ୟ ବେଦପାଠ ।
୪. ଅଖ୍ୟାତି-ଅନ୍ୟଥାଖ୍ୟାତି-ଶୂନ୍ୟଖ୍ୟାତି-ଅସଦ୍‌ଖ୍ୟାତି-ଅନିର୍ବଚନୀୟଖ୍ୟାତି ।
୫. ପ୍ରଜାପତିଙ୍କ ଦୁଇ ଦେହାର୍ଦ୍ଧଦ୍ୱାରା ପ୍ରଥମ ପତି-ପତ୍ନୀର ସୃଷ୍ଟ ।
''ଅର୍ଦ୍ଧୋ ହ ବା ଏଷ ଆତ୍ମନୋ ଯଦ୍ ପତ୍ନୀ'' (ଶ୍ରୁତିଃ)
୬. ''ଅଭିଜିଦ୍ ନାମ ନକ୍ଷତ୍ରମ୍ ଉପରିଷ୍ଟାଦ୍ ଆଷାଢାନାମ୍ ଅଧସ୍ତାଦ୍ ଶ୍ରୋଣାୟାଃ'' । (ଶ୍ରୁତିଃ)

ଧୀରମାନଙ୍କ ମଧ୍ୟେ ପୁଣ । ଅସିତ ଦେବଳ ମୁଁ ଜାଣ ॥ ୯୬
ବେଦବିଭାଗକର୍ତ୍ତାଙ୍କର । ମଧ୍ୟେ ଦ୍ୱୈପାୟନ ଆବର ॥ ୯୭
୨୯ ଭଗବାନ୍[୧]ଙ୍କ ମଧ୍ୟରେ ହିଁ । ମୁଁ ବାସୁଦେବଟି ଅଟଇ ॥ ୯୮
ମୁଁ ଭାଗବତମାନଙ୍କର । ମଧ୍ୟରେ ତୁହିଟି ଆବର ॥ ୯୯
କିଂପୁରୁଷରେ ହନୁମାନ । ବିଦ୍ୟାଧରରେ ସୁଦର୍ଶନ ॥ ୧୦୦
୩୦ ସୁନ୍ଦରଦ୍ରବ୍ୟେ ପଦ୍ମକୋଷ । ଦୂର୍ବାଜାତିଙ୍କ ମଧ୍ୟେ କୁଶ ॥ ୧୦୧
ମୁଁ ପଦ୍ମରାଗ ମଣିଙ୍କରେ । ମୁଁ ଗବ୍ୟ ଘୃତଟି ହବ୍ୟରେ ॥ ୧୦୨
୩୧ ଯେତେକ ଜନ ବ୍ୟବସାୟୀ । ମୁଁ ତାଙ୍କ ସଂପତ୍ତି ଅଟଇ ॥ ୧୦୩
ଛଳକପଟୀଙ୍କର ପୁଣ । ମୁଁ ଅଟେ ଦ୍ୟୂତ ଆଦି ପଣ ॥ ୧୦୪
କ୍ଷମାଶୀଳଙ୍କ କ୍ଷମା ମୁହିଁ । ସତ୍ତ୍ୱ ମୁଁ ସତ୍ତ୍ୱବନ୍ତରେ ହିଁ ॥ ୧୦୫
୩୨ ଯେତେକ ବଳବନ୍ତ ନର । ମୁଁ ଓଜ[୨] ସହ[୩] ତାହାଙ୍କର ॥ ୧୦୬
ମୁଁ ଭକ୍ତମାନଙ୍କର ପୁଣ । ଭକତିକୃତ କର୍ମ ଜାଣ ॥ ୧୦୭
ନବ ମୂର୍ତ୍ତିରେ ଭକ୍ତଙ୍କର । ମୁଁ ଅଟେ ଆଦିମୂର୍ତ୍ତି[୪] ପର ॥ ୧୦୮
୩୩ ଗନ୍ଧର୍ବମାନଙ୍କ ମଧ୍ୟେଇ । ମୁଁ ବିଶ୍ୱାବସୁଟି ଅଟଇ ॥ ୧୦୯
ଅପ୍‌ସରାମଧ୍ୟେ ପୂର୍ବଚିତ୍ତି । ଭୂମିରେ ଗନ୍ଧ ଅବିକୃତି ॥ ୧୧୦
ଭୂମିଧରଙ୍କ ମଧ୍ୟେ ପୁଣ । ସ୍ଥିରତ୍ୱ ଅଟଇ ମୁଁ ଜାଣ ॥ ୧୧୧
୩୪ ସୂର୍ଯ୍ୟ-ଚନ୍ଦ୍ରମା-ଉଡୁଗଣ । ମଧ୍ୟରେ ମୁହିଁ ପ୍ରଭା ପୁଣ ॥ ୧୧୨
ପରମ [୫]ରସ ମୁଁ ଜଳରେ । ମୁଁ ସୂର୍ଯ୍ୟ ତେଜବନ୍ତଙ୍କରେ ॥ ୧୧୩
ଆବର ଆକାଶରେ ମୁହିଁ । ପରମ[୬] ଶବଦ ଅଟଇ ॥ ୧୧୪
୩୫ ମୁଁ ବଳି ବ୍ରହ୍ମଣ୍ୟ ଜନରେ । ଅର୍ଜୁନ ବୀରମାନଙ୍କରେ ॥ ୧୧୫
ସକଳ ପ୍ରାଣିମାନଙ୍କର । ମୁଁ ସ୍ଥିତି ଉତ୍‌ପତ୍ତି ସଂହାର ॥ ୧୧୬
୩୬ କର୍ମ ଇନ୍ଦ୍ରିୟ ପାଞ୍ଚ ଯେହି । ପାଞ୍ଚ ତା' ବ୍ୟାପାର ଅଟଇ ॥ ୧୧୭
ଗମନ କଥନ ଆଦାନ । ଉତ୍‌ସର୍ଗ ଆନନ୍ଦ ମିଶିଣ ॥ ୧୧୮
ପାଞ୍ଚ ଜ୍ଞାନ-ଇନ୍ଦ୍ରିୟଙ୍କର । ତଦ୍ରୂପ ପାଞ୍ଚୋଟି ବ୍ୟାପାର ॥ ୧୧୯
ଦର୍ଶନ ଶ୍ରବଣ ଆଘ୍ରାଣ । ସ୍ପର୍ଶନ ଆସ୍ୱାଦନ ପୁଣ ॥ ୧୨୦
ସର୍ବ ଇନ୍ଦ୍ରିୟମାନଙ୍କର । ମୁଁ ଶକ୍ତି ଅର୍ଥଗ୍ରହଣର ॥ ୧୨୧
୩୭ ପ୍ରକୃତି ମହତ୍‌ତତ୍ତ୍ୱ ଦୁଇ । ଅହଂକାରକୁ ଆଦି ହୋଇ ॥ ୧୨୨

---

୧. ଉତ୍‌ପତ୍ତିଂ ପ୍ରଳୟଂ ଚୈବ ଭୂତାନାମାଗତିଂ ଗତିମ୍ ।
ବେତ୍ତି ବିଦ୍ୟାମବିଦ୍ୟାଂ ଚ ସ ବାଚ୍ୟୋ ଭଗବାନିତି ॥ (ସ୍ୱାମୀ)

୨. ଓଜ = ଐନ୍ଦ୍ରିୟିକ ବଳ ।　୩. ସହ = ମାନସିକ ବଳ ।

୪. ଆଦିମୂର୍ତ୍ତି = ବାସୁଦେବ । (ବାସୁଦେବ-ସଂକର୍ଷଣ-ପ୍ରଦ୍ୟୁମ୍ନ-ଅନିରୁଦ୍ଧ-ନାରାୟଣ-ହୟଗ୍ରୀବ-ବରାହ-ନୃସିଂହ-ବ୍ରହ୍ମ ।)

୫. ମଧୁର ।　୬. 'ପର' ନାମକ ।

ପଞ୍ଚ ତନ୍ମାତ୍ର ଯେ ବିଖ୍ୟାତ । ଭୂମ୍ୟାଦି ପଞ୍ଚ ମହାଭୂତ ।। ୧୨୩
ଇନ୍ଦ୍ରିୟଗଣ ଏକାଦଶ । ଏ ରୂପେ ବିକାର ଷୋଡ଼ଶ ।। ୧୨୪
ଆବର ପୁରୁଷ ମିଶାଇ । [1]ପଞ୍ଚବିଂଶତି ତତ୍ତ୍ୱ ଯେହି ।। ୧୨୫
ଯେ ସତ୍ତ୍ୱ ରଜ ତମୋ ଗୁଣ । ଯେ ପରଂ ବ୍ରହ୍ମ ଅବା ପୁଣ ।। ୧୨୬
ଏମାନଙ୍କର ଯେ ଗଣନ । ଲକ୍ଷଣବିଚାରେ ଯେ ଜ୍ଞାନ ।। ୧୨୭
ତତ୍ତ୍ୱନିଶ୍ଚୟ ଯେ ଫଳ ହିଁ । ଏ ସର୍ବ ଜାଣ ମୁଁ ଅଟଇ ।। ୧୨୮
୩୮ ଜୀବ ଈଶ୍ୱର ଭାବ ଯେହି । ଯେ ଗୁଣ ଗୁଣୀ ଭାବ ଦୁଇ ।। ୧୨୯
କ୍ଷେତ୍ରଜ୍ଞ କ୍ଷେତ୍ର ରୂପ ଆଦି । ଯେ ସର୍ବ ଭାବମାନ ସିଦ୍ଧି ।। ୧୩୦
ଏ ସର୍ବ ମୋ ବିହୁନେ କେହି । ନାହାନ୍ତି, ଜାଣ ସର୍ବ ମୁହିଁ ।। ୧୩୧
୩୯ ଯେତେକ ଭୂମିରେଣୁମାନ । ବହୁତ କାଳେ ତା’ ଗଣନ ।। ୧୩୨
କଲେ କରିବି ଅବା ମୁହିଁ । ମୋର ବିଭୂତି ଛନ୍ତି ଯେହି ।। ୧୩୩
ତାହାଙ୍କୁ ନ ପାରିବି ଗଣି । ‘କି ହେତୁ’ ପଚାରିଲେ ପୁଣି ।। ୧୩୪
ଶୁଣ କହୁଛି ତା’ ବୁଝାଇ । ବ୍ରହ୍ମାଣ୍ଡ କୋଟି କୋଟି ହୋଇ ।। ୧୩୫
ଯାହା ମୁଁ ସର୍ଜନା କରଇ । ଯେଣୁ ତାହାଙ୍କ ସଂଖ୍ୟା ନାହିଁ ।। ୧୩୬
ତଦନ୍ତର୍ଗତ ଯେ ବିଭୂତି । ବିଶେଷଭାବେ ରହିଛନ୍ତି ।। ୧୩୭
ତାହାଙ୍କ ସଂଖ୍ୟା କି ରୂପରେ । ହୋଇ ପାରିବ ବା ନିର୍ଭରେ ।। ୧୩୮
୪୦ ପ୍ରଭାବ ସଂପତ୍ତି ସୌଭଗ[2] । କୀର୍ତ୍ତି ଐଶ୍ୱର୍ଯ୍ୟ ଲଜ୍ଜା ତ୍ୟାଗ ।। ୧୩୯
ତିତିକ୍ଷା ଭାଗ୍ୟ ବଳ ଜ୍ଞାନ । ଯହିଁ ଯହିଁରେ ବିଦ୍ୟମାନ ।। ୧୪୦
ସେ ସେହି ଜନଟି ଆବର । ଅଟଇ ବିଭୂତି ମୋହର ।। ୧୪୧
୪୧ ଏ ସର୍ବ ବିଭୂତିମାନଙ୍କୁ । ସଂକ୍ଷେପେ କହିଲି ତୁମ୍ଭଙ୍କୁ ।। ୧୪୨
ଏ ସର୍ବେ ମନର ବିକାର । ମୋ’ଠାରେ ଚିତ୍ତ-ଅବତାର ।। ୧୪୩
ନିମିତ୍ତ କଳ୍ପିତ ଅଟଇ । ଅତି ଅଭିନିବେଶ ତହିଁ ।। ୧୪୪
ନ କର, ଆକାଶ କୁସୁମ । ସମାନ କହି ଏ ବଚନ ।। ୧୪୫
୪୨ ମନ ବଚନ ପ୍ରାଣମାନ । ନିରତେ କର ସଂଯମନ ।। ୧୪୬
ଇନ୍ଦ୍ରିୟେ କରିଣ ସଂଯତ । ଆତ୍ମାକୁ ଆତ୍ମାରେ ସଂତତ ।। ୧୪୭
ସଂଯତ କରି ଆଉ ବାରେ । ଜନ୍ମିବୁ ନାହିଁ ଏ ସଂସାରେ ।। ୧୪୮
୪୩ ଉଦ୍ଧବ ଯଉଁ ଯତିଜନ । ବୁଦ୍ଧିରେ ସ୍ୱମନ-ବଚନ ।। ୧୪୯
କରି ନ ପାରେ ସଂଯମନ । ତାହାର ବ୍ରତ ତପ ଦାନ ।। ୧୫୦
ନାଶ ହୁଅଇ ଅତିଶୟେ । ଅପକ୍ୱ ଘଟୁ ଜଳପ୍ରାୟେ ।। ୧୫୧

---

୧. ମୂଳପ୍ରକୃତିରବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ ।
ଷୋଡ଼ଶକସ୍ତୁ ବିକାରୋ ନ ପ୍ରକୃତିର୍ନ ବିକୃତିଃ ପୁରୁଷଃ ।। (ସାଂଖ୍ୟକାରିକା)

୨. ମନ ଓ ନୟନର ଆହ୍ଲାଦକତ୍ୱ ।

| | | | | |
|---|---|---|---|---|
| ୪୪ | ସେ ହେତୁ ମୋର ଭକ୍ତଜନ | । ମନ ବଚନ ପ୍ରାଣମାନ | ।। | ୧୫୨ |
| | ମୋ' ଭକ୍ତିସଂଯୁତ ବୁଦ୍ଧିରେ | । ସଂଯତ କରିବ ସଂସାରେ | ।। | ୧୫୩ |
| | ତେବେ ସେ କୃତକୃତ୍ୟ ହେବ | । ଏକଥା ଶୁଣ ହେ ଉଦ୍ଧବ | ।। | ୧୫୪ |
| | ଶ୍ରୀକୃଷ୍ଣଚରଣନଳିନ | । ଚିତ୍ତେ ଚିନ୍ତିଣ ଅନୁଦିନ | ।। | ୧୫୫ |
| | ସୁଜନମାନଙ୍କର ହିତେ | । ଶ୍ରୀଏକାଦଶ ଭାଗବତେ | ।। | ୧୫୬ |
| | ଭଣଇ ବିପ୍ର ଦୀନବନ୍ଧୁ | । ଏଣେ ତରିବ ଭବସିନ୍ଧୁ | ।। | ୧୫୭ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ମହାବିଭୂତିର୍ନାମ ଷୋଡ଼ଶୋଽଧ୍ୟାୟଃ ।।

## ସପ୍ତଦଶ ଅଧ୍ୟାୟ

ତତଃ ସପ୍ତଦଶେ ପୃଷ୍ଟେ ସ୍ୱଧର୍ମେ ଭକ୍ତିଲକ୍ଷଣେ ।
ହଂସୋକ୍ତଂ ଧର୍ମମନ୍ୱାହ ବ୍ରହ୍ମଚାରିଗୃହସ୍ଥୟୋଃ ।। ୧

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧ | ଉଦ୍ଧବ କହନ୍ତି ଏମନ୍ତ | । ପୂର୍ବରୁ ତୁମ୍ଭେ ହେ ଅଚ୍ୟୁତ | ।। | ୧ |
| | ବର୍ଣ୍ଣ-ଆଶ୍ରମ ଆଚାରରେ | । ନିତ୍ୟେ ସଂଯୁତ ଯଉଁ ନରେ | ।। | ୨ |
| | ଯେ ଅବା ବର୍ଣ୍ଣାଶ୍ରମହୀନ | । ଅଟନ୍ତି ସାଧାରଣ ଜନ | ।। | ୩ |
| | ସଭିଙ୍କ ସ୍ୱଭକ୍ତିଲକ୍ଷଣ | । ଧର୍ମ କରିଛ ନିରୂପଣ | ।। | ୪ |
| ୨ | ଆପଣା ଧର୍ମରେ ଯେମନ୍ତେ | । ଅନୁଷ୍ଠାନକୁ କରୁଥାନ୍ତେ | ।। | ୫ |
| | ମନୁଷ୍ୟଙ୍କର ତୁମ୍ଭଠାରେ | । ଭକତି ହୁଅଇ ବିଧିରେ | ।। | ୬ |
| | ହେ ପଦ୍ମନେତ୍ର ! ତାହା ମୋତେ | । ଯୋଗ୍ୟ ତୁ କହିବା ନିମିତ୍ତେ | ।। | ୭ |
| ୩ \| | ହେ ମହାବାହୁ କଳ୍ପାଦିରେ | । ହେ ପ୍ରଭୁ ସେ ହଂସରୂପରେ | ।। | ୮ |
| ୪ \| | ପରମ ସୁଖରୂପ ଯେହି | । ବ୍ରହ୍ମାଙ୍କୁ ଧର୍ମ କହିଲ ହିଁ | ।। | ୯ |
| | ଆହେ ମାଧବ ଦୀର୍ଘକାଳେ | । ସେ ଧର୍ମ ଏବେ ମହୀତଳେ | ।। | ୧୦ |
| | ହେ କୃଷ୍ଣ ଅମିତ୍ରକର୍ଶନ[୧] | । ପୂର୍ବରୁ ହେଲେହେଁ ଶିକ୍ଷଣ | ।। | ୧୧ |
| | ରହିବ ନାହିଁଟି ପ୍ରାୟେଣ | । କାଳବ୍ୟବଧାନ କାରଣ | ।। | ୧୨ |
| ୫ | ବେଦ ଆଦିଏ ସ୍ୱମୂର୍ତ୍ତିରେ | । ଥିଲେହେଁ ବ୍ରହ୍ମାଙ୍କ ସଭାରେ | ।। | ୧୩ |
| | ଧର୍ମର ବକ୍ତା କର୍ତ୍ତା ହୋଇ | । ରକ୍ଷକ ହୋଇଣ ବା କେହି | ।। | ୧୪ |
| | ନାହାନ୍ତି ତୁମ୍ଭର ବିହୁନେ | । ଆହେ ଅଚ୍ୟୁତ ଏ ଭୁବନେ | ।। | ୧୫ |
| ୬ | ଧର୍ମର ତୁମ୍ଭ ବିନୁ କେହି | । ରକ୍ଷକ କର୍ତ୍ତା ବକ୍ତା ନାହିଁ | ।। | ୧୬ |
| | ହେ ମଧୁରିପୁ ବସୁନ୍ଧରୀ | । ତୁମ୍ଭେ ଚଳନ୍ତେ ଛାଡ଼ି କରି | ।। | ୧୭ |

୧. ଅମିତ୍ରକର୍ଶନ = ଶତ୍ରୁମର୍ଦ୍ଦନ ।

| | | | | |
|---|---|---|---|---|
| | ଧର୍ମବିନାଶେ ଆହେ ଦେବ | । କେ ଆଉ ଧର୍ମକୁ କହିବ | ।। | ୧୮ |
| ୭ | ତୁମ୍ଭେ ସମସ୍ତ ଧର୍ମ ଜାଣ | । ଯେ ତୁମ୍ଭ ଭକ୍ତିର ଲକ୍ଷଣ | ।। | ୧୯ |
| | ସେ ନିଜ ଧର୍ମକୁ ଜଗତେ | । ଯେ ଆଚରିବେ ଯଉଁ ମତେ | ।। | ୨୦ |
| | ହେ ପ୍ରଭୁ ତା' ସେହି ରୂପରେ | । ବର୍ଣ୍ଣମା ହେଉ ମୋ' ଆଗରେ | ।। | ୨୧ |

ଶ୍ରୀବାଦରାୟଣିରୁବାଚ

| | | | | |
|---|---|---|---|---|
| ୮ | କହନ୍ତି ଶୁକ ମୁନିବର | । ହେ ପରୀକ୍ଷିତ ଦଣ୍ଡଧର | ।। | ୨୨ |
| | ସ୍ୱଭୃତ୍ୟଶ୍ରେଷ୍ଠ ସେ ଉଦ୍ଧବ | । ପୁଚ୍ଛନ୍ତେ ଏ ରୂପେଣ ସର୍ବ | ।। | ୨୩ |
| | ସେ ଭଗବାନ ଅତି ପ୍ରୀତେ | । ପ୍ରାଣିଙ୍କ ମଙ୍ଗଳନିମନ୍ତେ | ।। | ୨୪ |
| | ସେ ସନାତନ ଧର୍ମଙ୍କୁ ହିଁ | । କହିଲେ ଉଦ୍ଧବଙ୍କୁ ତହିଁ | ।। | ୨୫ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୯ | କହନ୍ତି ରୁକ୍ମିଣୀର ଧବ | । ଏ ପ୍ରଶ୍ନ ଶୁଣ ହେ ଉଦ୍ଧବ | ।। | ୨୬ |
| | ବର୍ଣ୍ଣ-ଆଶ୍ରମ-ଆଚାରରେ | । ଯୁକ୍ତ ଅଟନ୍ତି ଯେତେ ନରେ | ।। | ୨୭ |
| | ଯେ କରେ ତାଙ୍କ ମଙ୍ଗଳକୁ | । ମୋ' ଠାରୁ ଶୁଣ ସେ ଧର୍ମକୁ | ।। | ୨୮ |
| ୧୦ | ସତ୍ୟଯୁଗରେ କଳ୍ପାଦିରେ | । ସମସ୍ତ ପ୍ରାଣୀଙ୍କର ଠାରେ | ।। | ୨୯ |
| | ବର୍ଣ୍ଣେକ ହୋଇଲା ସମ୍ଭୂତ | । ହଂସ ନାମରେ ସେ ବିଖ୍ୟାତ | ।। | ୩୦ |
| | ଜନ୍ମମାତ୍ରକେ ଯହିଁ ଜନ | । କଲେ ସମସ୍ତ କୃତ୍ୟମାନ | ।। | ୩୧ |
| | ଏଣୁ ପଣ୍ଡିତମାନେ ବେଗ | । ତାକୁ ବୋଇଲେ କୃତଯୁଗ | ।। | ୩୨ |
| ୧୧ | ବେଦ ପ୍ରଣବସ୍ୱରୂପରେ | । ବ୍ୟକ୍ତ ହୋଇଲା ପ୍ରଥମରେ | ।। | ୩୩ |
| | ମୁଁ ଧର୍ମ ବୃଷରୂପ ଧରି | । ରହିଲି ହୋଇ ପାଦ ଚାରି[୧] | ।। | ୩୪ |
| | ପ୍ରାଣୀଏ ପାପକୁ ଛାଡ଼ିଣ | । ମୁଁ ହଂସ ଶୁଦ୍ଧରୂପୀ ପୁଣ | ।। | ୩୫ |
| | ମୋତେ କରନ୍ତି ତହିଁ ଧ୍ୟାନ | । ତପେ ନିଯୁକ୍ତ କରି ମନ | ।। | ୩୬ |
| ୧୨ | ତ୍ରେତାଯୁଗରେ ହେ ଉଦ୍ଧବ | । ମୋ ପ୍ରାଣୁଁ ତ୍ରିବେଦ ସଂଭବ | ।। | ୩୭ |
| | ତ୍ରିବେଦ ସକାଶରୁ ପୁଣ | । ମୁଁ ହେଲି ଯଜ୍ଞରୂପ ଜାଣ | ।। | ୩୮ |
| | ହୋତା-ଅଧ୍ୱର୍ଯ୍ୟୁ-ଉଦ୍‌ଗାୟକ | । କର୍ମଭେଦୁଁ ତ୍ରିରୂପ ଏକ[୨] | ।। | ୩୯ |
| ୧୩ | ମୁଖରୁ ବିପ୍ର ହେଲା ଜାତ | । ବାହୁରୁ କ୍ଷତ୍ରିୟ ସଂଭୂତ | ।। | ୪୦ |
| | ଊରୁରୁ ବୈଶ୍ୟ ଜାତ ହେଲା | । ପାଦରୁ ଶୂଦ୍ର ଜନମିଲା | ।। | ୪୧ |
| | ଏ ଚାରି ବିରାଟରୁ ଜାତ | । ସ୍ୱଧର୍ମଲକ୍ଷଣେ ଲକ୍ଷିତ | ।। | ୪୨ |
| ୧୪ | ଗୃହସ୍ଥାଶ୍ରମ ଜଘନରୁ | । ସେ ବ୍ରହ୍ମଚର୍ଯ୍ୟ ହୃଦୟରୁ | ।। | ୪୩ |
| | ବକ୍ଷସ୍ଥଳରୁ ବନବାସ | । ଜନ୍ମିଲା ମସ୍ତକୁଁ ସନ୍ନ୍ୟାସ | ।। | ୪୪ |
| ୧୫ | ବର୍ଣ୍ଣ-ଆଶ୍ରମମାନଙ୍କର | । ପ୍ରକୃତିମାନ ପ୍ରାଣୀଙ୍କର | ।। | ୪୫ |
| | ଜନ୍ମସ୍ଥାନକୁ ଅନୁଗତ | । ନୀଚସ୍ଥାନରୁ ନୀଚ ଜାତ | ।। | ୪୬ |

୧. ତପ, ଶୌଚ, ଦୟା ଓ ସତ୍ୟ । ୨. ''ଯଜ୍ଞୋ ବୈ ବିଷ୍ଣୁଃ'' ଇତି ଶ୍ରୁତିଃ ।

ଉତ୍ତମ ଉତ୍ତମ ସ୍ଥାନରେ । ଜାତ ହୁଅଇ ସେ ରୂପରେ ॥ ୪୭
୧୬ ତପ ସଂତୋଷ ଶୌଚ ଶମ । କ୍ଷାନ୍ତି ଆର୍ଜବ ସତ୍ୟ ଦମ ॥ ୪୮
ଦୟା ସହିତେ ମୋର ଭକ୍ତି । ଏତେକ ବ୍ରାହ୍ମଣ ପ୍ରକୃତି ॥ ୪୯
୧୭ ଧଇର୍ଯ୍ୟ ବଳ ତେଜ ଶୌର୍ଯ୍ୟ । ତିତିକ୍ଷା ଉଦ୍ୟମ ଔଦାର୍ଯ୍ୟ ॥ ୫୦
ଐଶ୍ୱର୍ଯ୍ୟ ବ୍ରହ୍ମଣ୍ୟ ସୁସ୍ଥିର । ଏତେ ପ୍ରକୃତି କ୍ଷତ୍ରିୟର ॥ ୫୧
୧୮ ଆସ୍ତିକ୍ୟ ଦାନନିଷ୍ଠା ଆନ । ଅଦମ୍ଭ ବ୍ରାହ୍ମଣସେବନ ॥ ୫୨
ଅର୍ଥ-ଅର୍ଜନେ ଅତୃପ୍ତି । ଏତେକ ବୈଶ୍ୟର ପ୍ରକୃତି ॥ ୫୩
୧୯ ବ୍ରାହ୍ମଣ-ଗାଇ-ଦେବତାକୁ । ସେବିବ ଛାଡ଼ିଣ ମାୟାକୁ ॥ ୫୪
ତହୁଁ ପାଇଣ ତୋଷ ହେବ । ଏତେକ ଶୂଦ୍ରର ସ୍ୱଭାବ ॥ ୫୫
୨୦ ଅଶୌଚ ମିଥ୍ୟା ଚୌରପଣ । ନାସ୍ତିକ୍ୟ କଳି ନିଷ୍କାରଣ ॥ ୫୬
କାମ କ୍ରୋଧାଦି ତୃଷ୍ଣାଭାବ । ଏ ଚାଣ୍ଡାଳାଦିଙ୍କ ସ୍ୱଭାବ ॥ ୫୭
୨୧ ଛାଡ଼ିବ ହିଂସା ଚୌରଭାବ । ଅକାମ ଅକ୍ରୋଧ ଅଲୋଭ ॥ ୫୮
ସମସ୍ତ ଭୂତେ ପ୍ରିୟପଣ । ହିତନିମିତ୍ତେ ଆଚରଣ ॥ ୫୯
ସତ୍ୟକଥନ ଏହି ଧର୍ମ । ସକଳ ବର୍ଣ୍ଣମଧ୍ୟେ ସମ ॥ ୬୦
୨୨ ଗର୍ଭାଧାନାଦି ସଂସ୍କାରରେ । ବ୍ରାହ୍ମଣ କ୍ରମରେ କ୍ରମରେ ॥ ୬୧
ବ୍ରତାଖ୍ୟ ଜନ୍ମକୁ ଲଭିଣ । ଆଚାର୍ଯ୍ୟ ଡାକନ୍ତେ ତତ୍‌କ୍ଷଣ ॥ ୬୨
ସେ ଗୁରୁଙ୍କର ଗୃହେ ରହି । ବେଦ ପଢ଼ିବ କ୍ଲେଶ ସହି ॥ ୬୩
୨୩ ଦଣ୍ଡ ଅଜିନ ସୁମେଖଳା । ଯଜ୍ଞୋପବୀତ ଅକ୍ଷମାଳା ॥ ୬୪
କୁଶ କମଣ୍ଡଳୁ ଧରିଣ । ଦନ୍ତ ବସନ ନ ଧୋଇଣ ॥ ୬୫
ନ ବସି ରଙ୍ଗ ଆସନରେ । ଜଟା ଧରିଣ ମସ୍ତକରେ ॥ ୬୬
୨୪ ସ୍ନାନ-ଭୋଜନ-ହୋମବେଳେ । ମୂତ୍ର-ପୁରୀଷତ୍ୟାଗକାଳେ ॥ ୬୭
ଜପବେଳରେ ହେଁ ବଚନ । ନ କହି ହୋଇବ ମଉନ ॥ ୬୮
କକ୍ଷ-ଉପସ୍ଥଲୋମମାନ । ନ ଛିଣ୍ଡାଇବ ନଖ ଆନ ॥ ୬୯
୨୫ ନ ତେଜି କଦାଚିତେ ରେତ । ସ୍ୱୟେଂ ଧରିବ ବ୍ରହ୍ମବ୍ରତ ॥ ୭୦
ଦଇବେ ହୋଇଲେ ସ୍ଖଳନ । ଜଳରେ କରିଣ ସ୍ନାହାନ ॥ ୭୧
ପ୍ରାଣକୁ [୧]ଆୟାମ କରିବ । ଗାୟତ୍ରୀ ମନ୍ତ୍ରକୁ ଜପିବ ॥ ୭୨
୨୬ ଧେନୁ ବ୍ରାହ୍ମଣ ହୁତାଶନ । ସ୍ୱଗୁରୁ ଆଚାର୍ଯ୍ୟ ତପନ ॥ ୭୩
ଦେବତା ବୃଦ୍ଧଜନଙ୍କୁ ହିଁ । ସେବା କରିବ ଶୁଦ୍ଧ ହୋଇ ॥ ୭୪
ଦୁଇ ସଂଧ୍ୟାରେ [୨]ଯତ ହୋଇ । ଜପିବ ବଚନ ନ କହି ॥ ୭୫
୨୭ ମୁହିଁଟି ଆଚାର୍ଯ୍ୟ ଜାଣିବ । କେଉଁ ଅବଜ୍ଞା ନ କରିବ ॥ ୭୬
ସର୍ବଦେବତାରୂପ ଯେଣୁ । ଗୁରୁ ଅଟନ୍ତି ତାଙ୍କୁ ତେଣୁ ॥ ୭୭
ମନୁଷ୍ୟବୁଦ୍ଧି ନ କରିବ । କେବେହେଁ ଦୋଷ ନ ଦେଖିବ ॥ ୭୮

୧. ବିସ୍ତାର ।　　୨. ସଂଯତ ।

୨୮ ସାୟଂ ପ୍ରାତରେ ପ୍ରତିଦିନ । ଗୁରୁଙ୍କୁ କରି ଉପାସନ ।। ୭୯
ଭିକ୍ଷାମାନଙ୍କୁ ମାଗି ଆଣି । ଗୁରୁଙ୍କୁ ଦେବ ତାହା ପୁଣି ।। ୮୦
ସେ ଆଜ୍ଞା ଦେବେ ତହୁଁ ଯାହା । ଭୁଞ୍ଜିବ ଯତ ହୋଇ ତାହା ।। ୮୧
୨୯ ନୀଚପରାଏ ପ୍ରତିଦିନ । ଗୁରୁଙ୍କୁ କରି ସେବାମାନ ।। ୮୨
ଗୁରୁ ହିଁ ଯାଆନ୍ତେ ଆଗରେ । ଗମନ କରିବ ପଛରେ ।। ୮୩
ନିଦ୍ରିତ ଥାନ୍ତେ ଗୁରୁଦେବ । ପାଖେ ସତର୍କେ ଶୋଇଥିବ ।। ୮୪
ବିଶ୍ରାମ କରନ୍ତେ ସେ ପୁଣ । ତାହାଙ୍କ ପାଦସଂବାହନ ।। ୮୫
ଆଦିରେ ସମୀପେ ରହିବ । ଆସୀନ ହୋନ୍ତେ ଗୁରୁଦେବ ।। ୮୬
ଅଞ୍ଜଳି ବନ୍ଧନ କରିଣ । ନିୟୋଗପ୍ରତୀକ୍ଷାରେ ପୁଣ ।। ୮୭
ଅନତିଦୂରେ ଅବସ୍ଥାନ । କରିବ ହୋଇ ସାବଧାନ ।। ୮୮
୩୦ ଏରୂପେ କରି ଆଚରଣ । ଗୁରୁଙ୍କ ଗୃହରେ ରହିଣ ।। ୮୯
ସମସ୍ତ ଭୋଗ କରି ତ୍ୟକ୍ତ । ଯାବତ ବିଦ୍ୟା ସମାପତ ।। ୯୦
ତାବତ କାଳ ବ୍ରତ ପୁଣ । ଧରିବ ସମଗ୍ର କରିଣ ।। ୯୧
୩୧ ଯେବେ ସେ ବ୍ରହ୍ମଚାରୀ ଜନ । ବ୍ରହ୍ମଲୋକକୁ ଯିବା ମନ ।। ୯୨
କରିବ ତେବେ ସ୍ୱଦେହକୁ । ବେଗେ ସମର୍ପିବ ଗୁରୁଙ୍କୁ ।। ୯୩
ଅଧିକ ସ୍ୱାଧ୍ୟାୟ ବିଚାରି । ବୃହଦ୍‌ବ୍ରତକୁ ଥିବ ଧରି ।। ୯୪
୩୨ ଅଗ୍ନିରେ ଗୁରୁରେ ଆତ୍ମାରେ । ମୁଁ ଅଛି ସମସ୍ତ ଭୂତରେ ।। ୯୫
ମୋତେ କରିବ ଉପାସନ । ବୁଦ୍ଧିକୁ ନ କରିଣ ଭିନ୍ନ ।। ୯୬
ତା' ବ୍ରହ୍ମତେଜ ବଳୀୟାର । ନିଷ୍ପାପ ନିଜ କଳେବର ।। ୯୭
୩୩ ନାରୀଙ୍କ ଈକ୍ଷଣ ସ୍ପରଶ । ସଂଳାପ ହାସ ପରିହାସ ।। ୯୮
ଇତ୍ୟାଦି ଛାଡ଼ିଣ ତୁରିତେ । ସ୍ତିରୀସହିତ ପ୍ରାଣୀ ଯେତେ ।। ୯୯
ତାଙ୍କୁ ନ ଚାହିଁ ଦୂର କରି । ଗୃହେ ନ ଥିବ ବ୍ରହ୍ମଚାରୀ ।। ୧୦୦
୩୪ ସୁଶୌଚ ସ୍ନାନ ଆଚମନ । ସଂଧ୍ୟାବନ୍ଦନ ମୋ' ଅର୍ଚ୍ଚନ ।। ୧୦୧
ତୀର୍ଥଙ୍କୁ କରିବ ସେବନ । ନିତ୍ୟେ କରିବ ଜପ ଆନ ।। ୧୦୨
ଅସ୍ପୃଶ୍ୟ ସ୍ପର୍ଶ ନ କରିବ । ଅସମ୍ଭାଷ୍ୟକୁ ନ ଭାଷିବ ।। ୧୦୩
ଅଭକ୍ଷ୍ୟ ଦ୍ରବ୍ୟକୁ ହିଁ ପୁଣ । କରିବ ନାହିଁଟି ଭକ୍ଷଣ ।। ୧୦୪
୩୫ ମନରେ ବାଣୀରେ କାୟରେ । ସଂଯତ ହେବ ନିରନ୍ତରେ ।। ୧୦୫
ସମସ୍ତ ଭୂତରେ ମୋ' ଭାବ । ନିତ୍ୟେ କରିବ ହେ ଉଦ୍ଧବ ।। ୧୦୬
ଏହି ନିୟମଟି ସଂସାରେ । ପ୍ରଯୁକ୍ତ ସର୍ବ ଆଶ୍ରମରେ ।। ୧୦୭
୩୬ ଏରୂପେ ଧରି ବୃହଦ୍‌ବ୍ରତ । ବ୍ରାହ୍ମଣ ଅନଳ ଯେମନ୍ତ ।। ୧୦୮
ତେଜେ ଦିଶନ୍ତେ ସେ ରୂପରେ । ମୋ ଭକ୍ତ ତୀବ୍ର ତପସ୍ୟାରେ ।। ୧୦୯
କାମନା କିଛି ନ କରଇ । କର୍ମବାସନା ବିନାଶଇ ।। ୧୧୦

| | | | | |
|---|---|---|---|---|
| ୩୭ | ଯଥାବିଧିରେ ସେ ଆଗମ[୧] | । ବିଚାର କରି ଦ୍ୱିଜୋତ୍ତମ | ।। | ୧୧୧ |
| | ଗୃହସ୍ଥାଶ୍ରମେ ଏଥୁ ଅନ୍ତେ | । ପ୍ରବେଶ ହେବାକୁ ବାଞ୍ଛନ୍ତେ | ।। | ୧୧୨ |
| | ଗୁରୁଙ୍କୁ ଦକ୍ଷିଣାକୁ ଦେଇ | । ଗୁରୁଙ୍କ ଅନୁମତି ପାଇ | ।। | ୧୧୩ |
| | ସ୍ନାନ କରିବ ବିଧିମତେ | । ଅଭ୍ୟଙ୍ଗ[୨] ଆଦି ଆଚରନ୍ତେ | ।। | ୧୧୪ |
| | ଏ ସମାବର୍ତ୍ତନ ପ୍ରକାର | । ବିହିତ ଉପକୁର୍ବାଣର[୩] | ।। | ୧୧୫ |
| ୩୮ | ଯଦି ସେ ସକାମ ହୁଅଇ | । ଗୃହରେ ପ୍ରବେଶ କରଇ | ।। | ୧୧୬ |
| | ଅନ୍ତଃକରଣଶୁଦ୍ଧି ଆଦି | । କାମନା କରଇ ସେ ଯଦି | ।। | ୧୧୭ |
| | ତେବେ ସେ ବନେ ପ୍ରବେଶଇ | । ଶୁଦ୍ଧାନ୍ତଃକରଣ ସେ ହୋଇ | ।। | ୧୧୮ |
| | ଯଦି ବ୍ରାହ୍ମଣ ହୋଇଥାଇ | । ତେବେ ସେ ପ୍ରବ୍ରଜ୍ୟା କରଇ | ।। | ୧୧୯ |
| | ଅଥବା ଆଶ୍ରମୁଁ ଆଶ୍ରମ | । ଗମନ କରେ ଦ୍ୱିଜୋତ୍ତମ | ।। | ୧୨୦ |
| | ଯେ ଅନାଶ୍ରମୀ ଜନ ପୁଣ | । ପ୍ରତିଲୋମକୁ ଆଚରଣ | ।। | ୧୨୧ |
| | କରିବ ନାହିଁ କଦାଚିତ | । ଯଦି ନୁହଇ ମୋ ଭକତ | ।। | ୧୨୨ |
| | ଯେଣୁ ମୋହର ଭକ୍ତପାଇଁ | । ଆଶ୍ରମନିୟମ ନ ଥାଇ | ।। | ୧୨୩ |
| ୩୯ | କୁଳେ ଲକ୍ଷଣେ ଅନିନ୍ଦିତ | । ଆପଣା ସଦୃଶ ଅତ୍ୟନ୍ତ | ।। | ୧୨୪ |
| | ଏମନ୍ତ କନ୍ୟା ବିଭା ହେବ | । ଯେବେ ସେ ଗୃହକୁ ବାଞ୍ଛିବ | ।। | ୧୨୫ |
| | ସକାମ ହୋଇଲେ ବ୍ରାହ୍ମଣ | । ଅନ୍ୟ ବର୍ଣ୍ଣରୁ ହେଲେ ପୁଣ | ।। | ୧୨୬ |
| | ସବର୍ଣ୍ଣା ଭାର୍ଯ୍ୟା ଅନନ୍ତର | । ଭାର୍ଯ୍ୟାକୁ କରିବ ସ୍ୱୀକାର | ।। | ୧୨୭ |
| | ଯେହୁ ବୟସେ ସାନ ହେବ | । [୪]ବର୍ଣ୍ଣକ୍ରମରେ ହେ ଉଦ୍ଧବ | ।। | ୧୨୮ |
| ୪୦ | ଯଜନ ଅଧ୍ୟୟନ ଦାନ | । ସର୍ବ ଦ୍ୱିଜଙ୍କର ସମାନ | ।। | ୧୨୯ |
| | ଯାଜନ ଅଧ୍ୟାପନ ଦୁଇ | । ପ୍ରତିଗ୍ରହଣକୁ ମିଶାଇ | ।। | ୧୩୦ |
| | ଏ ତିନି ବ୍ରାହ୍ମଣର ବୃତ୍ତି | । ଅନ୍ୟେ ଅନଧିକାରୀ ଏଥି | ।। | ୧୩୧ |
| ୪୧ | ତପସ୍ୟା-ତେଜ-ଯଶକୁ ହିଁ | । ପ୍ରତିଗ୍ରହଟି ବିନାଶଇ | ।। | ୧୩୨ |
| | ଏମନ୍ତ ମଣିବ ସେ ଯେବେ | । ଯାଜନେ ଅଧ୍ୟାପନେ ତେବେ | ।। | ୧୩୩ |
| | ଜୀଇବ ପୁଣି ଏ ଦୁଇରେ | । ଦୋଷକୁ[୫] ଦେଖିଲେ ଦୃଷ୍ଟିରେ | ।। | ୧୩୪ |
| | [୬]ସ୍ୱାମି-ତ୍ୟକତ [୭]ମାର୍ଗଧାନ | । ଆଣି ବା ରଖିବ ଜୀବନ | ।। | ୧୩୫ |
| ୪୨ | କେବେହେଁ ବ୍ରାହ୍ମଣଦେହ ହିଁ | । କ୍ଷୁଦ୍ରକାମକୁ ନ ଯୋଗାଇ | ।। | ୧୩୬ |
| | ସାରା ଜୀବନ ଏହିଠାଇଁ | । କୃଚ୍ଛ୍ରସାଧନା ତପ ପାଇଁ | ।। | ୧୩୭ |
| | ଦେହାନ୍ତେ ପରଲୋକରେ ହିଁ | । ଯୋଗ୍ୟ ଅନନ୍ତ ସୁଖପାଇଁ | ।। | ୧୩୮ |

---

୧. ବେଦାର୍ଥ । ୨. ଅଭ୍ୟଙ୍ଗ = ତେଲ ଲଗାଇବା ।
୩. ଗୃହସ୍ଥାଶ୍ରମରେ ପ୍ରବେଶକାମୀ ବ୍ରହ୍ମଚାରୀକୁ 'ଉପକୁର୍ବାଣ' କୁହାଯାଏ ।
୪. ତିସ୍ରୋ ବର୍ଣ୍ଣାନୁପୂର୍ବ୍ୟେଣ ଦ୍ୱେ ତଥୈକା ଯଥାକ୍ରମମ୍ ।
ବ୍ରାହ୍ମଣକ୍ଷତ୍ରିୟବିଶାଂ ଭାର୍ଯ୍ୟାଃ ସ୍ୱାଃ ଶୂଦ୍ରଜନ୍ମନଃ ।। (ସ୍ମୃତି)
୫. କାର୍ପଣ୍ୟ ଆଦି ଦୋଷକୁ । ୬. କ୍ଷେତ୍ରସ୍ୱାମୀଦ୍ୱାରା ପରିତ୍ୟକ୍ତ । ୭ . ବାଟରେ ପଡ଼ିଥିବା ଧନ ।

| | | | | | |
|---|---|---|---|---|---|
| ୪୩ | ବ୍ରାହ୍ମଣ ଶିଳୋଞ୍ଛ[୧] ବୃତ୍ତିରେ | । | ସଂତୋଷ ଲଭିଣ ଚିତ୍ତରେ | ।। | ୧୩୯ |
| | [୨]ବିରଜ ମହାଧର୍ମ ପୁଣ | । | ସେବନ୍ତେ ଉତ୍ତମ କରିଣ | ।। | ୧୪୦ |
| | ଆତ୍ମା ସମର୍ପି ମୋହ ଠାରେ | । | ଗୃହରେ ଥିଲେ ହେଁ ନିତ୍ୟରେ | ।। | ୧୪୧ |
| | ଅତି ଆସକ୍ତ ତହିଁ ନୋହି | । | ମୋକ୍ଷାଧିକାରୀ ସେ ହୁଅଇ | ।। | ୧୪୨ |
| ୪୪ | ଯେ ମୋତେ ପଶିଛି ଶରଣ | । | ଶୀର୍ଣ୍ଣ ହୁଅନ୍ତେ ଅନୁକ୍ଷଣ | ।। | ୧୪୩ |
| | ଏମନ୍ତ ବିପ୍ରକୁ ଯେ ନିତି | । | ଦାରିଦ୍ର୍ୟ ଦୋଷୁଁ ଉଦ୍ଧାରନ୍ତି | ।। | ୧୪୪ |
| | ବିପତ୍ତିମାନଙ୍କରୁ ମୁହିଁ | । | ତାହାଙ୍କୁ ଶୀଘ୍ରେ ଉଦ୍ଧାରଇ | ।। | ୧୪୫ |
| | ନାବ ଯେସନେ ସଂସାରରେ | । | ସମୁଦ୍ରଜଳୁଁ ପାରି କରେ | ।। | ୧୪୬ |
| ୪୫ | ସଙ୍କଟସକାଶୁଁ ଯେସନ | । | ପିତା ଉଦ୍ଧାରଇ ସନ୍ତାନ | ।। | ୧୪୭ |
| | ତେସନ ବିପତ୍ତିରୁ ରାଜା | । | ଉଦ୍ଧାରିବ ସକଳ ପ୍ରଜା | ।। | ୧୪୮ |
| | ଧୀର ହୋଇଣ ଅନୁକ୍ଷଣ | । | ଆତ୍ମାକୁ ଉଦ୍ଧରେ ଆପଣ | ।। | ୧୪୯ |
| | ଯେସନେ ଗଜପତି ଯାଇ | । | ଗଜମାନଙ୍କୁ ଉଦ୍ଧାରଇ | ।। | ୧୫୦ |
| ୪୬ | ଏହିପ୍ରକାର ଚେଷ୍ଟାମାନ | । | କରଇ ଯେବଣ ରାଜନ | ।। | ୧୫୧ |
| | ସୂର୍ଯ୍ୟସମାନ ଦୀପ୍ତିମନ୍ତ | । | ବିମାନେ ବସିଣ ତ୍ୱରିତ | ।। | ୧୫୨ |
| | ଏ ଲୋକେ ସର୍ବ ଅଶୁଭକୁ | । | ଛାଡ଼ିଣ ଗମଇ ସ୍ୱର୍ଗକୁ | ।। | ୧୫୩ |
| | ତହିଁ ଇନ୍ଦ୍ରଙ୍କ ସହିତରେ | । | କ୍ରୀଡ଼ା କରଇ ହରଷରେ | ।। | ୧୫୪ |
| ୪୭ | ଶୀର୍ଣ୍ଣ ହୁଅନ୍ତେ ବିପ୍ରବର | । | ବୃତ୍ତିକି କରିବ ବୈଶ୍ୟର | ।। | ୧୫୫ |
| | ବିକ୍ରୟଯୋଗ୍ୟ[୩] ଦ୍ରବ୍ୟଙ୍କରେ | । | ବିପତ୍ତି ତରିବ ନିର୍ଭରେ | ।। | ୧୫୬ |
| | ତହିଁ ବିପନ୍ନ ଯେବେ ହେବ | । | [୪]କ୍ଷତ୍ରିୟବୃତ୍ତି ବା କରିବ | ।। | ୧୫୭ |
| | ନୀଚସେବା ଯେ ଶ୍ୱାନବୃତ୍ତି | । | ତହିଁରେ କେବେହେଁ ନ ବର୍ତ୍ତି | ।। | ୧୫୮ |
| ୪୮ | କ୍ଷତ୍ରିୟ କରି ବୈଶ୍ୟବୃତ୍ତି | । | ଜୀଇବ ଲଭିଲେ ବିପତ୍ତି | ।। | ୧୫୯ |
| | ବର୍ତ୍ତିବ ଅବା ମୃଗୟାରେ | । | ଅଥବା ବ୍ରାହ୍ମଣରୂପରେ[୫] | ।। | ୧୬୦ |
| | ନୀଚସେବାରେ କେଉଁମତେ | । | ବର୍ତ୍ତିବ ନାହିଁ କଦାଚିତେ | ।। | ୧୬୧ |
| ୪୯ | ବୈଶ୍ୟ ଲଭିଲେ ବିପତ୍ତିକି | । | ଭଜିବ ଶୂଦ୍ରର ବୃତ୍ତିକି | ।। | ୧୬୨ |
| | ଶୂଦ୍ର ହିଁ ଲଭିଲେ ବିପତ୍ତି | । | କରିବ ନୀଚ କଟବୃତ୍ତି[୬] | ।। | ୧୬୩ |

---

୧ ଶିଳୋଞ୍ଛ = ସ୍ୱାମିତ୍ୟକ୍ତ କ୍ଷେତ୍ରପତିତ ଧାନ୍ୟାଦିକୁ 'ଶିଳ' କୁହାଯାଏ, ବିପଣ୍ୟାଦି ପତିତ ଧାନ୍ୟାଦିକୁ 'ଉଞ୍ଛ' କୁହାଯାଏ ।

୨. ବିରଜ = ନିଷ୍କାମ; ମହାଧର୍ମ = ଆତିଥ୍ୟାଦି ।

୩. ସୁରା ଲବଣ ଆଦି ଦ୍ରବ୍ୟ ବିକ୍ରୟଯୋଗ୍ୟ ନୁହେଁ ।

୪. ଯଦ୍ୟପି ''ଗୌତମୋଽନନ୍ତରାଂ ପାପୀୟସୀଂ ବୃତ୍ତିମାତିଷ୍ଠେତ୍'' ଏହି ସ୍ମୃତି ଅନୁସାରେ ଗୌତମ ପଣ୍ୟବିକ୍ରୟ ଠାରୁ ଖଡ୍‌ଗଧାରଣକୁ ଶ୍ରେଷ୍ଠ ବୃତ୍ତି ମନେ କରନ୍ତି । ତଥାପି ହିଂସାଦୃଷ୍ଟିରୁ ଖଡ୍‌ଗଧାରଣ ଠାରୁ ପଣ୍ୟବିକ୍ରୟ ଶ୍ରେଷ୍ଠ ବୋଲି ଭଗବାନଙ୍କର ମତ ।

୫. ଅଧ୍ୟାପନାଦି ଦ୍ୱାରା । ୬. ଡମକାମ (କୁଲା ଟୋକେଇ ଆଦି ବୁଣିବା) ।

କଷ୍ଟରୁ ଯେବେ ମୁକ୍ତ ହେବ । ଉତ୍ତମ ବୃତ୍ତିକି କରିବ ॥ ୧୬୪
୫୦ ବେଦ ଅଧ୍ୟୟନେ ବ୍ରାହ୍ମଣ । ଋଷିଙ୍କି କରିବ ତୋଷଣ ॥ ୧୬୫
ସ୍ୱଧାରେ ତୋଷିବ ପିତୃଙ୍କୁ । ସ୍ୱାହାରେ ଦେବତାମାନଙ୍କୁ ॥ ୧୬୬
ବଳିରେ ସେ ଭୂତମାନଙ୍କୁ । ଅନ୍ନଜଳରେ ମନୁଷ୍ୟଙ୍କୁ ॥ ୧୬୭
ଯଥାଶକତି ଏ ରୂପରେ । ପୂଜିବ ପ୍ରତିଦିବସରେ ॥ ୧୬୮
ଈଶ୍ୱରଦୃଷ୍ଟି ତାଙ୍କ ଠାରେ । କରିବ ମୋ' ରୂପ ବିଚାରେ ॥ ୧୬୯
୫୧ ବିନା ଉଦ୍ୟମେ ସ୍ୱବୃତ୍ତିରେ । ଅର୍ଜିତ ବିଶୁଦ୍ଧ ଧନରେ ॥ ୧୭୦
ପୀଡ଼ା ନ ଦେଇ ସ୍ୱଲୋକଙ୍କୁ । ନ୍ୟାୟରେ କରିବ ଯଜ୍ଞଙ୍କୁ ॥ ୧୭୧
୫୨ ନିଜ କୁଟୁମ୍ବେ ପ୍ରତିଦିନ । ଆସକ୍ତ ନୋହେ ଜ୍ଞାନୀ ଜନ ॥ ୧୭୨
କୁଟୁମ୍ବ ଲଭିଲେ ବହୁତ । ତହିଁରେ ନୋହିବ ପ୍ରମତ୍ତ[୧] ॥ ୧୭୩
ଅନିତ୍ୟ ଦେଖିବ ଏ ସୃଷ୍ଟି । ପରଲୋକରେ ଦେଇ ଦୃଷ୍ଟି ॥ ୧୭୪
୫୩ ଭାର୍ଯ୍ୟା ତନୟ ଆପ୍ତଜନ । ବନ୍ଧୁ ବାନ୍ଧବ ଯେ ବା ଆନ ॥ ୧୭୫
ଏହାଙ୍କ ସଙ୍ଗ ଏକାଠାଇଁ । ପଥିକସଙ୍ଗପ୍ରାୟେ ହୋଇ ॥ ୧୭୬
ପ୍ରତିଦେହରେ ହେଁ ଏମାନେ । ବିନାଶ ହୁଅନ୍ତି ଯେସନେ ॥ ୧୭୭
ନିଦ୍ରାକୁ ସ୍ୱପ୍ନ ଅନୁଗତ । ନିଦ୍ରା ଅନ୍ତରେ ହୋଏ ହତ ॥ ୧୭୮
୫୪। ଉଦ୍ଧବ ଏ ରୂପରେ ପୁଣ । ପଣ୍ଡିତ ଜନ ବିଚାରିଣ ॥ ୧୭୯
୫୫। ଗୃହରେ ଥିଲେ ଯୁକ୍ତ ହୋଇ । ଅତିଥିପ୍ରାୟେ ଥିବ ରହି ॥ ୧୮୦
ମମତା ଅହଂକାର ଛାଡ଼ି । ଗୃହବନ୍ଧନରେ ନ ପଡ଼ି ॥ ୧୮୧
ଗୃହସ୍ଥାଶ୍ରମକର୍ମ ଯେତେ । ଏମାନଙ୍କରେ ପୂଜି ମୋତେ ॥ ୧୮୨
ଭକ୍ତି କରିଣ ଗୃହେ ଥିବ । ଯେବେ ତନୟ ଉପୁଜିବ ॥ ୧୮୩
ତେବେ ସେ ପଶିବ ବନରେ । ଯିବ ବା ସନ୍ନ୍ୟାସଦୀକ୍ଷାରେ ॥ ୧୮୪
୫୬ ନିଜ ଗୃହରେ ଯଉଁ ଜନ । ଆସକ୍ତମତି ପ୍ରତିଦିନ ॥ ୧୮୫
ପୁତ୍ରଧନାଦି ବୃଦ୍ଧିପାଇଁ । ଅତି ଆତୁର ହୋଇଥାଇ ॥ ୧୮୬
ସ୍ତିରୀଲମ୍ପଟ ଅଟେ ନିତି । କୃପଣ ଅତି ମୂଢ଼ମତି ॥ ୧୮୭
ଅହଂମମତା କରିଥାଇ । ସଂସାରେ ବନ୍ଧ ସେ ଲଭଇ ॥ ୧୮୮
୫୭ ବୃଦ୍ଧ ମୋ' ପିତାମାତା ଅତି । ଭାର୍ଯ୍ୟା ବାଳକପୁତ୍ରବତୀ ॥ ୧୮୯
ଏମାନେ ଏ ମୋର ନନ୍ଦନେ । ଅନାଥ ହେବେ ମୋ' ବିହୁନେ ॥ ୧୯୦
ଏ ହୋଇ ଅତି ଦୁଃଖୀ ଦୀନ । କି ରୂପେ ଧରିବେ ଜୀବନ ॥ ୧୯୧
୫୮ ଗୃହ-ଆଶୟେ ଏ ରୂପରେ । ଆକ୍ଷିପ୍ତଚିତ୍ତ ନିରନ୍ତରେ ॥ ୧୯୨
ଯାର ସେ ମୂଢ଼ମତି ଜନ । ନିତ୍ୟେ ତାହାଙ୍କୁ କରି ଧ୍ୟାନ ॥ ୧୯୩
ସନ୍ତୋଷ ନ ଲଭି ମରଇ । ଘୋର ନରକରେ ପଡ଼ଇ ॥ ୧୯୪

---

୧. ଈଶ୍ୱରନିଷ୍ଠାରେ ପ୍ରମତ୍ତ ହେବ ନାହିଁ ।

ଧାତାବଚନେ ଧରାଭାର । ନାଶିବା ଅର୍ଥେ ଅବତାର ।। ୧୯୫
ଯେ କଲେ ଯାଦବ ବଂଶରେ । ସେ କୃଷ୍ଣପାଦ ନିରନ୍ତରେ ।। ୧୯୬
ବ୍ରାହ୍ମଣ ଦୀନବନ୍ଧୁ ଚିନ୍ତି । ହରଷ ହେଲା ନିତି ନିତି ।। ୧୯୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ବର୍ଣ୍ଣାଶ୍ରମବିଭାଗୋ ନାମ ସପ୍ତଦଶୋଽଧ୍ୟାୟଃ ।।

## ଅଷ୍ଟାଦଶ ଅଧ୍ୟାୟ

ଅଷ୍ଟାଦଶେଽବଦଦ୍ଧର୍ମଂ ବନସ୍ଥଯତିଗୋଚରମ୍ ।
ଅଧିକାରବିଶେଷେଣ ବିଶେଷଂ ଚାପି ତଦ୍‌ଗତମ୍ ।।

ଶ୍ରୀଭଗବାନୁବାଚ

୧ କହନ୍ତି ରୁକ୍ମିଣୀରମଣ । କହିବା ହେ ଉଦ୍ଧବ ଶୁଣ ।। ୧
ବାଞ୍ଛନ୍ତେ ବନକୁ ଯିବାକୁ । ପୁତ୍ରଙ୍କ ଠାରେ ସେ ଭାର୍ଯ୍ୟାକୁ ।। ୨
ଦେଇଣ ବନରେ ପଶିବ । ଅଥବା ସଙ୍ଗେ ଘେନି ଯିବ ।। ୩
ଆୟୁଷତୃତୀୟଭାଗ ହିଁ । ସେ ବନେ ନେବ ଶାନ୍ତ ହୋଇ ।। ୪
୨ ବିଶୁଦ୍ଧ ବନଭବ ଫଳ । ଆଣି ଉତ୍ତମ କନ୍ଦମୂଳ ।। ୫
ଆହାରବୃତ୍ତିକି କଳ୍ପିବ । ବକଳ ବସନ ପିନ୍ଧିବ ।। ୬
ଅଥବା ଚର୍ମ କୃଷ୍ଣାଜିନ । ପିନ୍ଧିବ ତୃଣ ପର୍ଣ୍ଣମାନ ।। ୭
୩ କେଶ ନଖ ରୋମର ମୂଳ । ଶ୍ମଶ୍ରୁ ଆଦିର ଯେତେ ମଳ ।। ୮
ତାହା ନ ତେଜି ଧରିଥିବ । ଦନ୍ତଧାବନ ନ କରିବ ।। ୯
ତ୍ରିକାଳ ବୁଡ଼ିବ ଜଳରେ । ଶୟନ କରିବ ଭୂମିରେ ।। ୧୦
୪ [୧]ଗ୍ରୀଷ୍ମକାଳରେ ଚାରି ଦିଗେ । ଅଗ୍ନିକି ଜାଳି କରି ବେଗେ ।। ୧୧
ସୂର୍ଯ୍ୟସହିତ ପଞ୍ଚାଗ୍ନିରେ । ସନ୍ତପ୍ତ କରିବ ଶରୀରେ ।। ୧୨
ବରଷାକାଳ ଯେବେ ହେବ । ଧାରାସଂପାତକୁ ସହିବ ।। ୧୩
କଣ୍ଠପର୍ଯ୍ୟନ୍ତେ ଶୀତକାଳେ । ବୁଡ଼ିରହିବ ଶୀତଜଳେ ।। ୧୪
ଏ ରୂପେ ବୃତ୍ତିକି କରିଣ । ତପ କରିବ ଆଚରଣ ।। ୧୫
୫ ଯେ ଅଗ୍ନିପକ୍ୱ ହୋଇଥିବ । ଅଥବା କାଳେ ଯେ ପାଚିବ ।। ୧୬
ତାହା ଭୁଞ୍ଜିବ ଉଲୂଖଳେ । କୁଟିବ ଅଥବା ଉପଳେ ।। ୧୭
ଅଥବା ଦନ୍ତଗଣ ସ୍ୱୟେଂ । କରିବ ଉଲୂଖଳପ୍ରାୟେ ।। ୧୮

୧. ଗ୍ରୀଷ୍ମକାଳରେ 'ପଞ୍ଚାଗ୍ନି' ବ୍ରତ, ବର୍ଷାକାଳରେ 'ଅଭ୍ରାବକାଶ' ବ୍ରତ ଏବଂ ଶୀତକାଳରେ 'ଉଦକବାସ' ବ୍ରତ ଆଚରିବ ।

୬ ଯେ ଆତ୍ମବୃତ୍ତିକି କାରଣ । ତା' ସର୍ବ ଆଣିବ ଆପଣ[୧] ।। ୧୯
ଯେ ଦେଶ କାଳ ବଳମାନ । ତାହା ଜାଣିମ ଅନୁଦିନ ।। ୨୦
[୨]ଅନ୍ୟ କାଳେ ଯା' ଆଣିଥିବ । ତାହା ସ୍ୱୀକାର ନ କରିବ ।। ୨୧
୭ ଯେ ଚରୁ ପୁରୋଡାଶ ଆଦି । ବନ୍ୟ ଦ୍ରବ୍ୟରେ ତା' ସଂପାଦି ।। ୨୨
କାଳପ୍ରେରିତ କର୍ମମାନ[୩] । ତେଣେ କରିବ ସମାପନ ।। ୨୩
ବନ-ଆଶ୍ରମୀ ଯଉଁ ମୁନି । ବେଦବିହିତ ପଶୁ ଘେନି ।। ୨୪
ଯଜ୍ଞାଦି ବିଧିରେ ସେ ମୋତେ । ପୂଜିବ ନାହିଁ କଦାଚିତେ ।। ୨୫
୮ ଅଗ୍ନିହୋତ୍ରକୁ ଆଦି ହୋଇ । ଦରଶ ପୂର୍ଣ୍ଣମାସ ଦୁଇ ।। ୨୬
ଯେ ଅବା ଚାତୁର୍ମାସ୍ୟମାନ । ପୂର୍ବପରାଏ ତା' ବିଧାନ ।। ୨୭
କରିବ ଆଚରଣ ମୁନି । ବେଦବିହିତ କର୍ମ ଘେନି ।। ୨୮
୯ ସେ ମୁନି ଏମନ୍ତ ରୂପରେ । ବହୁତ କାଳ ତପସ୍ୟାରେ ।। ୨୯
ଦେହେ ପୂରିତ ଶିରାମାନେ । ମୋତେ କରିଣ ଆରାଧନେ ।। ୩୦
ଋଷିଲୋକରୁ କ୍ରମେ[୪] ଯାଇ । ମୁଁ ତପୋମୟ ମୋତେ ପାଇ ।। ୩୧
୧୦ ଯେ ଶ୍ରେଷ୍ଠ ମୋକ୍ଷଫଳଦାୟୀ । ଅତି କଷ୍ଟରେ ସେ ତପ ହିଁ ।। ୩୨
କରଇ ଅଳ୍ପ-କାମ-ଅର୍ଥେ[୫] । ସେ ଅତି ମୂର୍ଖ ଏ ଜଗତେ ।। ୩୩
୧୧ ଯେବେ ସେ ନିୟମମାନଙ୍କୁ । ସମର୍ଥ ନୋହେ କରିବାକୁ ।। ୩୪
ଜରା ଅବସ୍ଥାରୁ ସନ୍ତତ । ଦେହରେ କମ୍ପ ହୋଏ ଜାତ ।। ୩୫
ଆତ୍ମାରେ ଅଗ୍ନିକି ନେଇଣ । ଉତ୍ତମ କରି ଆରୋପିଣ ।। ୩୬
ଚିତ୍ତକୁ ନିବେଶି ମୋ' ଠାରେ । ପ୍ରବେଶ କରିବ ଅଗ୍ନିରେ ।। ୩୭
୧୨ ଯେବେ ସେ ଧର୍ମପରିପାକେ । ବିରକ୍ତି ନରକାଦି ଲୋକେ ।। ୩୮
ଜାତ ହୁଅଇ ତେବେ ପୁଣ । ଅଗ୍ନିକି ଉତ୍ତମ କରିଣ ।। ୩୯
ନ୍ୟସ୍ତ କରିଣ ତଦନ୍ତରେ । ଗମନ କରିବ ସୁଖରେ ।। ୪୦
୧୩ ଯଥା ଉପଦେଶରେ[୬] ମୋତେ । ଇଷ୍ଟି କରିଣ ପ୍ରାଜାପତ୍ୟେ ।। ୪୧
ସର୍ବସ୍ୱ ଋତ୍ୱିଜଙ୍କୁ ଦେଇ । ସ୍ୱପ୍ରାଣେ ଅଗ୍ନିତ୍ରୟ ଥୋଇ ।। ୪୨
ଅପେକ୍ଷା ନ କରି କାହିଁରେ । ସନ୍ନ୍ୟାସ କରିବ ସୁଖରେ ।। ୪୩
୧୪ ସନ୍ନ୍ୟାସ କରନ୍ତେ ବ୍ରାହ୍ମଣ । ତାର ବିଘ୍ନକୁ ଦେବଗଣ ।। ୪୪
କରନ୍ତି ଦାରାଦି ରୂପରେ । ସେ ବିପ୍ର ପୁଣ ସେହେତୁରେ ।। ୪୫
ତାଙ୍କ ଶିରରେ ପାଦ ଦେଇ । ପରମ ବ୍ରହ୍ମକୁ ଲଭଇ ।। ୪୬

---

୧. ନିଜେ । ୨. ନୂଆ ନୂଆ ଅନ୍ନ ମିଳିଲେ ପୁରୁଣାକୁ ଛାଡ଼ିବ । ୩. ନବାନ୍ନଭୋଜନ ଆଦି ।
୪. ମହର୍ଲୋକାଦି କ୍ରମରେ । ୫. ବ୍ରହ୍ମପଦ ପର୍ଯ୍ୟନ୍ତ ମଧ୍ୟ ଅଳ୍ପକାମରେ ଗଣ୍ୟ ।
୬. କୃଷ୍ଣପକ୍ଷ ଅଷ୍ଟମୀରେ ପ୍ରଦତ୍ତ ଶ୍ରାଦ୍ଧାନ୍ନରେ ।

୧୫ ସେ ମୁନିବର ହେ ଉଦ୍ଧବ । ଯେବେ ସେ ବସନ ପିନ୍ଧିବ ॥ ୪୭
ଯେତେକେ ରହଇ କୌପୀନ । ତେତେ କରିବ ପରିଧାନ ॥ ୪୮
ବିପତ୍ତି ନ ଥିବା କାଳରେ । ଯା' ଛାଡ଼ିଥିବ ସେ ପୂର୍ବରେ ॥ ୪୯
ତାହା ଗ୍ରହଣ ନ କରିବ । ଦଣ୍ଡ କମଣ୍ଡଳୁ ଧରିବ ॥ ୫୦
୧୬ ଦୃଷ୍ଟିରେ କରି ବିଲୋକନ । ଭୂମିରେ କରିବ ଗମନ ॥ ୫୧
ପିଇବ ଜଳ ବସ୍ତ୍ରେ ଛାଣି । କହିବ ସତ୍ୟପୂତ ବାଣୀ ॥ ୫୨
ମନରେ କରିଣ ବିଚାର । ବିଶୁଦ୍ଧ କରିବ ସ୍ୱୀକାର ॥ ୫୩
୧୭ ମୌନ ହୋଇଣ ମୁନିବର । ଦଣ୍ଡ ବହିବ ବଚନର ॥ ୫୪
ସକଳ ଚେଷ୍ଟାମାନ ତେଜି । ଦେହଦଣ୍ଡକୁ ଥିବ ଭଜି ॥ ୫୫
ସେ ରୂପେ ପ୍ରାଣାୟାମଗଣ । ଚିତ୍ତର ଦଣ୍ଡ ହୋଏ ପୁଣ ॥ ୫୬
ଏ ତିନିଦଣ୍ଡ ଯାର ନାହିଁ । ଆହେ ଉଦ୍ଧବ ସେ ଲୋକ ହିଁ ॥ ୫୭
ଦଣ୍ଡଗ୍ରହଣମାତ୍ରକରେ । ଯତି ନୁହଇ ଏ ସଂସାରେ ॥ ୫୮
୧୮ ଯେ ଚତୁର୍ବିଧ ସୁବ୍ରାହ୍ମଣ । ସେମାନଙ୍କର ମଧ୍ୟେ ପୁଣ ॥ ୫୯
ଅକୀର୍ତ୍ତିଗ୍ରସ୍ତ ବିପ୍ର ତେଜି । ଭିକ୍ଷା କରିବ ଯତି ହେଜି ॥ ୬୦
ଏ ଗୃହେ ହେବ ଅତିଲାଭ । ପୂର୍ବରୁ ଛାଡ଼ିଣ ଏ ଲୋଭ ॥ ୬୧
ଯେତେ ଲଭିବ ସପ୍ତ ଗୃହେ । ସନ୍ତୋଷ ହେବ ତହିଁ ଦେହେ ॥ ୬୨
୧୯ ଗ୍ରାମବାହାରେ ଯାଇ କରି । ଜଳାଶୟରେ ସ୍ନାନ ସାରି ॥ ୬୩
ମଉନ ହୋଇ ତହୁଁ ଆସି । [1]ଭିକ୍ଷା ଆଣିବ ସେ ସନ୍ନ୍ୟାସୀ ॥ ୬୪
ଶୋଧିତ ପ୍ରୋକ୍ଷଣ ଆଦିରେ । ବିଭାଗ କରି ତଦନ୍ତରେ ॥ ୬୫
ବିଷ୍ଣୁବ୍ରହ୍ମାଦିଙ୍କି ଦେଇଣ । ଶେଷକୁ ଭୁଞ୍ଜିବ ଆପଣ ॥ ୬୬
୨୦ ଏକା ହୋଇଣ ଧରଣୀରେ । ଭ୍ରମିବ ସଙ୍ଗବିହୀନରେ ॥ ୬୭
ଇନ୍ଦ୍ରିୟଗଣଙ୍କୁ ନିରୋଧି । ଆତ୍ମାରେ କରି କ୍ରୀଡ଼ାବିଧି ॥ ୬୮
ସେ ଆତ୍ମରତ ଆତ୍ମଜ୍ଞାନେ । ସମସ୍ତ ଦେଖିବ ସମାନେ ॥ ୬୯
୨୧ ନିର୍ଜନ ନିର୍ଭୟ ସ୍ଥାନରେ । ରହିଣ ନିତ୍ୟେ ମୋ' ଭାବରେ ॥ ୭୦
ନିର୍ମଳ-ଆଶୟ ହୋଇଣ । ସେ ମୁନି ଭେଦ ନ କରିଣ ॥ ୭୧
ମୁଁ ଏକ ଆତ୍ମାରୂପୀ ମୋତେ । ଚିନ୍ତା କରିବ ଅବିରତେ ॥ ୭୨
୨୨ ଆତ୍ମାର ବନ୍ଧ ମୋକ୍ଷ ବେନି । ଦେଖିବ ଜ୍ଞାନନିଷ୍ଠା ଘେନି ॥ ୭୩

---

୧. 'ମାଧୁକରେ ତୁ ନୈବେଦ୍ୟଂ ଭୈକ୍ଷେ ନାନ୍ୟେଷୁ ବିଦ୍ୟତେ ।
ନୈବେଦ୍ୟକଂ କ୍ଷିପେଦପ୍ସୁ ତ୍ରିତୟଂ ଭୌତିକଂ ବହିଃ ॥
ମାଧୁକରମସଂକ୍ଳୃପ୍ତଂ ପ୍ରାକ୍‌ପ୍ରଣୀତମଯାଚିତମ୍ ।
ତାତ୍‌କାଳିକୋପପନ୍ନଂ ଚ ଭୈକ୍ଷଂ ପଞ୍ଚବିଧଂ ସ୍ମୃତମ୍ ॥ (ସ୍ମୃତିଃ)

ମଧୁକର ଭଳି ପାଞ୍ଚ ଘରୁ ସଂଗୃହୀତ, ଅନଭିଳକ୍ଷିତ, ପୂର୍ବରୁ ପ୍ରାପ୍ତ, ଅଯାଚିତ ଓ ସଦ୍ୟପ୍ରାପ୍ତ ଏହି ପାଞ୍ଚପ୍ରକାର ଭିକ୍ଷାନ୍ନ ଅଛି ।

| | | | | |
|---|---|---|---|---|
| | ବନ୍ଧ ଇନ୍ଦ୍ରିୟବିକ୍ଷେପରେ | ମୋକ୍ଷ ତାହାଙ୍କ ସଂଯମରେ | ॥ | ୭୪ |
| ୨୩ | ସେ ହେତୁ ଷଡ଼ବର୍ଗ ଜିଣି | ମୋ' ଭାବେ ବିହରଇ ମୁନି | ॥ | ୭୫ |
| | ଆତ୍ମାରେ ମହାସୁଖ ପାଇ | ବିରକ୍ତ କ୍ଷୁଦ୍ରକାମୁଁ ହୋଇ | ॥ | ୭୬ |
| ୨୪ | ସୁପୁଣ୍ୟଦେଶମାନଙ୍କରେ | ନଦୀ-ପର୍ବତ-ଅରଣ୍ୟରେ | ॥ | ୭୭ |
| | ଆଶ୍ରମମାନଙ୍କ ସହିତେ | ପୃଥ୍ୱୀରେ ଭ୍ରମିବ ସନ୍ତତେ | ॥ | ୭୮ |
| | ନଗରେ ଗ୍ରାମମାନଙ୍କରେ | ୧ବ୍ରଜରେ ଜନସମୂହରେ | ॥ | ୭୯ |
| | ଭିକ୍ଷାନିମିତ୍ତରେ ଆସିଣ | ଭ୍ରମଣ କରିବ ରହିଣ | ॥ | ୮୦ |
| ୨୫ | ସେ ବାନପ୍ରସ୍ଥ ଆଶ୍ରମରେ | ଭିକ୍ଷା କରିବ ନିରନ୍ତରେ | ॥ | ୮୧ |
| | ଶିଳୋଞ୍ଛ ଅନ୍ନକୁ ଭୁଞ୍ଜିଣ | ବିଶୁଦ୍ଧ ସତ୍ତ୍ୱକୁ ଲଭିଣ | ॥ | ୮୨ |
| | ମୋହକୁ ଛାଡ଼ି ଏ ସଂସାରେ | ମୁକ୍ତିକି ଲଭଇ ଶୀଘ୍ରରେ | ॥ | ୮୩ |
| ୨୬ | ଏ ଦୃଶ୍ୟ ଅନ୍ନ ଆଦି ସର୍ବ | ସତ୍ୟବୁଦ୍ଧିରେ ନ ଦେଖିବ | ॥ | ୮୪ |
| | ଯେଣୁ ଏ ବିନାଶ ହୁଅଇ | ଏଥି ଆସକ୍ତଚିତ୍ତ ନୋହି | ॥ | ୮୫ |
| | ଇହ ପରଲୋକେ କାର୍ଯ୍ୟରୁ | ନିବୃତ୍ତ ହେବ ଏ ହେତୁରୁ | ॥ | ୮୬ |
| ୨୭ | ମମତାସ୍ପଦ ଏ ଜଗତ | ମନ-ବଚନ-ପ୍ରାଣଯୁତ | ॥ | ୮୭ |
| | ଏ ସର୍ବ ମାୟାମାତ୍ରକରେ | ଆତ୍ମାରେ ତର୍କି ଏ ରୂପରେ | ॥ | ୮୮ |
| | ଛାଡ଼ିଣ ଆତ୍ମନିଷ୍ଠ ହେବ | କିଛି ସ୍ମରଣ ନ କରିବ | ॥ | ୮୯ |
| ୨୮ | ସେ ମୁନି ଜ୍ଞାନନିଷ୍ଠ ଅବା | ବିଷୟେ ବିରକ୍ତ ଅଥବା | ॥ | ୯୦ |
| | ଅପେକ୍ଷା ଛାଡ଼ି ସର୍ବଠାରେ | ଭକ୍ତି ବା କରିଛି ମୋ' ଠାରେ | ॥ | ୯୧ |
| | ତ୍ରିଦଣ୍ଡଯୁତ ଆଶ୍ରମକୁ | ଛାଡ଼ିଣ ତହିଁର ଧର୍ମକୁ | ॥ | ୯୨ |
| | ବିଧିଗୋଚର ନୋହି କାହିଁ | ସୁଖେ ଭ୍ରମିବ ଯହିଁ ତହିଁ | ॥ | ୯୩ |
| ୨୯ | ପଣ୍ଡିତ ହୋଇଲେ ହେଁ ସ୍ୱୟେଂ | କ୍ରୀଡ଼ା କରଇ ବାଳ୨ ପ୍ରାୟେ | ॥ | ୯୪ |
| | ଜଡ଼୩ ପରାଏ ଆଚରଣ | କରଇ ହେଲେହେଁ ନିପୁଣ | ॥ | ୯୫ |
| | ହେଲେହେଁ ଅତି ବିଦ୍ୟାବନ୍ତ | କହଇ ଉନ୍ମତ୍ତ୪ ଯେମନ୍ତ | ॥ | ୯୬ |
| | ବେଦାର୍ଥନିଷ୍ଠ ହୋଇ ପୁଣ | କରେ ଗୋଚର୍ଯ୍ୟା ୫ଆଚରଣ | ॥ | ୯୭ |
| ୩୦ | ବେଦବାଦ୬ ରେ ରତ ନୋହି | ପାଷଣ୍ଡ୭ ସଙ୍ଗ ନ କରଇ | ॥ | ୯୮ |
| | କେବଳତର୍କନିଷ୍ଠ ନୋହି | ନିଷ୍ପ୍ରୟୋଜନ ଗୋଷ୍ଠୀରେ ହିଁ | ॥ | ୯୯ |
| | ଯେଉଁ ବିବାଦ ଲାଗେ ତହିଁ | କୌଣସି ପକ୍ଷ ନେବ ନାହିଁ | ॥ | ୧୦୦ |
| ୩୧ | ଉଦ୍‌ବେଗ ନ ପାଇ ଲୋକରେ | କାହାକୁ ଉଦ୍‌ବେଗ ନ କରେ | ॥ | ୧୦୧ |
| | ସେ ଧୀର ଦୁରୁକ୍ତି ସହଇ | କାହାକୁ ନିନ୍ଦା ନ କରଇ | ॥ | ୧୦୨ |

୧. ବ୍ରଜରେ = ଗୋଷ୍ଠରେ । ୨. ମାନାବମାନ ବିବେକଶୂନ୍ୟ । ୩. ଫଳାନୁସଂଧାନରହିତ ।
୪. ଲୋକରଞ୍ଜନରହିତ । ୫. ଅସଂଯତ ଆଚାର, ଆହାର ବିଷୟରେ ଶୁଦ୍ଧ ଅଶୁଦ୍ଧ ବିଚାର ନ କରିବା ।
୬. କର୍ମକାଣ୍ଡବ୍ୟାଖ୍ୟାନାଦି । ୭. ଶ୍ରୁତିସ୍ମୃତିବିରୁଦ୍ଧଧର୍ମାନୁଷ୍ଠାନ ।

| | | | | |
|---|---|---|---|---|
| | ଦେହକୁ ଉଦ୍ଦେଶ କରିଣ । | ପଶୁପରାଏ କରି ପୁଣ | ॥ | ୧୦୩ |
| | ବଇର କାହାରି ସଙ୍ଗରେ । | କରିବ ନାହିଁ ଏ ସଂସାରେ | ॥ | ୧୦୪ |
| ୩୨ | ସ୍ୱଦେହେ ସର୍ବପ୍ରାଣିଠାଇଁ । | ଏକ ହିଁ ପରମାତ୍ମା ରହି | ॥ | ୧୦୫ |
| | ଯେସନେ ଚନ୍ଦ୍ର ଅଟେ ଏକ । | ଜଳପାତ୍ରଙ୍କରେ ଅନେକ | ॥ | ୧୦୬ |
| | ଏକାତ୍ମସ୍ୱରୂପ ତେସନେ । | ଅଟନ୍ତି ସର୍ବପ୍ରାଣିମାନେ | ॥ | ୧୦୭ |
| ୩୩ | କାଳେ କାଳରେ କାହିଁ କାହିଁ । | ଭୁଞ୍ଜିବ ଅବା ମୁନି ରହି | ॥ | ୧୦୮ |
| | ଯେବେ ସେ କିଛି ନ ପାଇବ । | ମନେ ବିଷାଦ ନ ଲଭିବ | ॥ | ୧୦୯ |
| | ଲଭିଲେ ନୋହିବ ହରଷ । | ଏ ବେନି ଦଇବବିଳାସ | ॥ | ୧୧୦ |
| ୩୪ | ଆହାର ଅର୍ଥେ ଚେଷ୍ଟା ପୁଣ । | କରିବ ଯେଣୁ ରହେ ପ୍ରାଣ | ॥ | ୧୧୧ |
| | ପ୍ରାଣଧାରଣେ ତତ୍ତ୍ୱ ଚିନ୍ତି । | ସେ ହେତୁ ଜାଣି ଲଭେ ମୁକ୍ତି | ॥ | ୧୧୨ |
| ୩୫ | ଉତ୍ତମ ଅଧମ ପ୍ରକାରେ । | ଯେ ଆସି ମିଳିବ ଦୈବରେ | ॥ | ୧୧୩ |
| | ସେ ଅନ୍ନ କରିବ ଭୋଜନ । | ସେ ରୂପେ ପିନ୍ଧିବ ବସନ | ॥ | ୧୧୪ |
| | ଶଯ୍ୟାଦି ମିଳିବ ଯେ ଆସି । | ତାହା ଘେନିମ ମୁନି ବସି | ॥ | ୧୧୫ |
| ୩୬ | ଯେ ଶୌଚ ଆଚମନ ସ୍ନାନ । | ନ କରେ ସେ ବିଧିବଚନ | ॥ | ୧୧୬ |
| | ଅନ୍ୟ ନିୟମମାନ ଯେତେ । | ଜ୍ଞାନୀ ନ କରେ ତା' ତେମନ୍ତେ | ॥ | ୧୧୭ |
| | ମୁଁ ଯେ ଈଶ୍ୱର ଚେଷ୍ଟାମାନ । | ଲୀଳାରେ କରଇ ଯେସନ | ॥ | ୧୧୮ |
| | ସେ ରୂପେ ଜ୍ଞାନୀ ଆଚରଇ । | ବେଦବିହିତ ନ କରଇ | ॥ | ୧୧୯ |
| ୩୭ | ଭେଦପ୍ରତୀତି ନୋହେ ତାର । | ଯେବେ ବା ହୁଅଇ ଆବର | ॥ | ୧୨୦ |
| | ସେ ମୋର ଜ୍ଞାନେ ହତ ହୋଏ । | ତାହାର ଦେହ ଥିବା ଯାଏ | ॥ | ୧୨୧ |
| | କେବେ ବା ସେ ଭେଦପ୍ରତୀତି । | ବାଧିତ ହୋଇ ହୋଏ ଖ୍ୟାତି[୧] | ॥ | ୧୨୨ |
| ୩୮ | ତଦନନ୍ତରେ ଋଷିଜନ । | ବଶ କରି ଇନ୍ଦ୍ରିୟମାନ | ॥ | ୧୨୩ |
| | ଦୁଃଖ ଉତ୍ତରଫଳ ଯହିଁ । | ନିର୍ବେଦ ସେ କାମରେ ହୋଇ | ॥ | ୧୨୪ |
| | ମୋ' ପ୍ରାପ୍ତିସାଧନର ପାଇଁ । | ଯଦି ଜିଜ୍ଞାସା କରି ନାହିଁ | ॥ | ୧୨୫ |
| | ଚଳିବ ତତ୍ତ୍ୱ ଜାଣିମାକୁ । | ମୁନି-ଗୁରୁଙ୍କ ନିକଟକୁ | ॥ | ୧୨୬ |
| ୩୯ | ଯାବତ କାଳ ପରିଯନ୍ତେ । | ବ୍ରହ୍ମକୁ ଜାଣିମ ସାକ୍ଷାତେ | ॥ | ୧୨୭ |
| | ମୁଁ ଗୁରୁରୂପୀ ମୋତେ ଭକ୍ତ । | ତାବତ କାଳ ପରିଯନ୍ତ | ॥ | ୧୨୮ |
| | ଆଦରଶ୍ରଦ୍ଧାଯୁକ୍ତ ହୋଇ । | ପୂଜିବ ଅସୂୟା ନ ବହି | ॥ | ୧୨୯ |
| ୪୦ | ଇନ୍ଦ୍ରିୟ ସାରଥି[୨] ଯାହାର । | ଅତି ଆସକ୍ତ ସେହି ନର | ॥ | ୧୩୦ |
| | ନ ଜିଣି ଅରିଷଡ଼ବର୍ଗ । | ନ ଥାଇ ଜ୍ଞାନ-ବଇରାଗ୍ୟ | ॥ | ୧୩୧ |
| | ତ୍ରିଦଣ୍ଡବୃତ୍ତିରେ ସେ ଜନ । | ପୋଷଣ କରଇ ଜୀବନ | ॥ | ୧୩୨ |
| ୪୧ | ନିଜର ପୂଜ୍ୟ ଦେବତାଙ୍କୁ । | ବଞ୍ଚିତ କରଇ ନିଜକୁ | ॥ | ୧୩୩ |

୧. ଖ୍ୟାତି = ଅଭିବ୍ୟକ୍ତି । ୨. ବୁଦ୍ଧି ।

ନିଜ ହୃଦୟେ ସ୍ଥିତ ମୋତେ । ଆବର ବଞ୍ଚିତ କରନ୍ତେ ।। ୧୩୪
ଧର୍ମକୁ ବିନାଶ କରଇ । କର୍ମବାସନାମାନେ ଯେହି ।। ୧୩୫
ବିପକ୍ୱ ନୋହିଥାନ୍ତି ତାର । ସନ୍ନ୍ୟାସୀ ବେଷକୁ ମାତର ।। ୧୩୬
ଯେ ଇହ ପର ଲୋକ ଦୁଇ । ତହିଁରୁ ଭ୍ରଷ୍ଟ ସେ ହୁଅଇ ।। ୧୩୭
୪୨ ଶାନ୍ତି ଅହିଂସା ମୁଖ୍ୟ ଦୁଇ । ଭିକ୍ଷୁର ଧର୍ମ ଏ ଅଟଇ ।। ୧୩୮
ତପସ୍ୟା ଇକ୍ଷା[1] ମୁଖ୍ୟ ଦୁଇ । ବାନପ୍ରସ୍ଥର ଧର୍ମ ଏହି ।। ୧୩୯
ପ୍ରାଣିରକ୍ଷଣ ଇଜ୍ୟା[2] ଦୁଇ । ଗୃହୀର ଧର୍ମ ଏ ଅଟଇ ।। ୧୪୦
ଆଚାର୍ଯ୍ୟସେବନ ଏକଇ । ଦ୍ୱିଜର[3] ମୁଖ୍ୟ ଧର୍ମ ଏହି ।। ୧୪୧
୪୩ ଗୃହସ୍ଥ ଋତୁକାଳରେ ହିଁ । ଗମିବ ନିଜ ସ୍ତିରୀଠାଇଁ ।। ୧୪୨
[4]ତପସ୍ୟା ବ୍ରହ୍ମଚର୍ଯ୍ୟ ଦୁଇ । ସନ୍ତୋଷ ପୁଣ ଶଉଚ ହିଁ ।। ୧୪୩
ସମସ୍ତ ପ୍ରାଣିଠାରେ ପୁଣ । ନିତ୍ୟେ କରିବ ମିତ୍ରପଣ ।। ୧୪୪
ମୋତେ କରିବ ଉପାସନ । ଏ ସର୍ବବର୍ଣ୍ଣରେ ସମାନ ।। ୧୪୫
୪୪ ଆନକୁ ନ ଭଜି ଏମନ୍ତେ । ଯେ ନିଜଧର୍ମେ ଭଜେ ମୋତେ ।। ୧୪୬
ସମସ୍ତ ପ୍ରାଣିଠାରେ ପୁଣ । ମୋ' ଭାବ କରି ଆଚରଣ ।। ୧୪୭
ମୋ ଦୃଢ଼ ଭକ୍ତିକି ସେ ଜନ । ସୁଖରେ ଲଭଇ ବହନ ।। ୧୪୮
୪୫ ମୁଁ ସର୍ବଲୋକମହେଶ୍ୱର । ମୋ'ଠାରୁ ସର୍ବଜଗତର ।। ୧୪୯
ହେଉଛି ଉତ୍‌ପତ୍ତିପ୍ରଳୟ । ମୁଁ ସର୍ବକାରଣ ଉପାୟ ।। ୧୫୦
ଉଦ୍ଧବ ମୁଁ ବ୍ରହ୍ମ ଏମନ୍ତେ । ଦୃଢ଼ ଭକ୍ତିରେ ପାଇ ମୋତେ ।। ୧୫୧
୪୬ ଏମନ୍ତ ରୂପେ ଯେଉଁ ଜନ । ଜ୍ଞାନବିଜ୍ଞାନରେ ସଂପନ୍ନ ।। ୧୫୨
ସ୍ୱଧର୍ମେ ସତ୍ତ୍ୱକୁ ଶୋଧଇ । ମୋହର ଗତିକି ଜାଣଇ ।। ୧୫୩
ବିରକ୍ତ ହୋଇଣ ଅଚିରେ । ମୋତେ ଲଭଇ ଯଥାର୍ଥରେ ।। ୧୫୪
୪୭ ବର୍ଣ୍ଣ-ଆଶ୍ରମୀଙ୍କର ପୁଣ । ଏ ଧର୍ମ ଆଚାରଲକ୍ଷଣ ।। ୧୫୫
ସେ ଧର୍ମ ଯେବେ ମୋ ଭକ୍ତିରେ । ଯୁକ୍ତ ହୁଅଇ ଏ ସଂସାରେ ।। ୧୫୬
ତେବେ ସେ ପରମକଲ୍ୟାଣ । ମୋକ୍ଷକୁ ହୁଅଇ କାରଣ ।। ୧୫୭
୪୮ ହେ ସାଧୋ ! ଯେମନ୍ତ ରୂପରେ । ସଂଯୁତ ହୋଇ ସ୍ୱଧର୍ମରେ ।। ୧୫୮
ମୋ ଭକ୍ତ ବିନା ଆୟାସରେ । ମୋତେ ଲଭଇ ଯଥାର୍ଥରେ ।। ୧୫୯
ଯା' ପଚାରିଲୁ ତୁହି ମୋତେ । ସେ ରୂପେ କହିଲି ତା' ତୋତେ ।। ୧୬୦
ଶ୍ରୀଏକାଦଶ ଭାଗବତ । ଭାଷାପ୍ରବନ୍ଧେ କରି ଗୀତ ।। ୧୬୧
ବ୍ରାହ୍ମଣଦୀନବନ୍ଧୁମନ । ହରଷ ହେଲା ଅନୁଦିନ ।। ୧୬୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ ଯତିଧର୍ମନିର୍ଣ୍ଣୟୋ
ନାମ ଅଷ୍ଟାଦଶୋଽଧ୍ୟାୟଃ ।।

---

୧. ଭଗବଦ୍‌ଭାବ । ୨. ଦେବପୂଜା, ଯଜ୍ଞଯାଗ । ୩. ବ୍ରହ୍ମଚାରୀର । ୪. ସ୍ୱଧର୍ମ ।

## ଏକୋନବିଂଶ ଅଧ୍ୟାୟ

ଜ୍ଞାନାଦେର୍ନିର୍ଣ୍ଣୟଃ ପୂର୍ବଂ କୃତୋ ହ୍ୟାଶ୍ରମଧର୍ମତଃ ।
ଏକୋନବିଂଶତିତମେ ଜ୍ଞାନାଦେସ୍ତ୍ୟାଗ ଉଚ୍ୟତେ ॥ ୧

ଶ୍ରୀଭଗବାନୁବାଚ

୧ ପୁଣି କହନ୍ତି ଯଦୁମଣି । ଉଦ୍ଧବ ଶୁଣ ଏ ମୋ' ବାଣୀ ॥ ୧
[୧]ଯେ ବିଦ୍ୟା-ଶ୍ରୁତରେ ସଂପନ୍ନ । ଜାଣଇ ଆତ୍ମତତ୍ତ୍ୱଜ୍ଞାନ ॥ ୨
କେବଳ ପରୋକ୍ଷ ଜ୍ଞାନ ହିଁ । ଯାହାର ସାଧନ ନୁହଇ ॥ ୩
ମାୟାମାତ୍ରରେ ବିଳସିତ । ଜଗତ ଜାଣିଣ ଏମନ୍ତ ॥ ୪
ଜ୍ଞାନ ସାଧନ ଦୁଇ ନେଇ । ମୋ' ଠାରେ ନିଯୁକ୍ତ କରଇ ॥ ୫
୨ ଜ୍ଞାନୀ ଲୋକର ଇଷ୍ଟ ମୁହିଁ । ଫଳ ସାଧନ ମୁଁ ଅଟଇ ॥ ୬
ଯେ ସ୍ୱର୍ଗ ଅପବର୍ଗ ଆର । ଯେଣୁ ମୁଁ ଅଟଇ ତାହାର ॥ ୭
ଏଣୁ ମୋ' ବିନୁ ପ୍ରିୟ ହୋଇ । ତାହାର ଆଉ କିଛି ନାହିଁ ॥ ୮
୩ ଯେ ଯୁକ୍ତ ଜ୍ଞାନବିଜ୍ଞାନରେ । ମୋ' ଶ୍ରେଷ୍ଠ ପଦକୁ ସେ ନରେ ॥ ୯
ଜାଣନ୍ତି ଏଣୁ ଅତିଶୟ । ଜ୍ଞାନୀ ମୋହର ଅଟେ ପ୍ରିୟ ॥ ୧୦
ଯେଣୁ ଜ୍ଞାନରେ ମୋତେ ସେହି । ସନ୍ତତ ଧରିଣ ଅଛଇ ॥ ୧୧
୪ ତପସ୍ୟା ତୀର୍ଥ ଜପ ଦାନ । ପବିତ୍ରକର ଯେତେ ଆନ ॥ ୧୨
ସିଦ୍ଧି ଅତ୍ୟନ୍ତ ପରିମାଣେ । କରି ନ ପାରନ୍ତି ଏମାନେ ॥ ୧୩
ଯେ ସିଦ୍ଧି ଜ୍ଞାନର ଲେଶରେ । କୃତ ହୁଅଇ ଏ ସଂସାରେ ॥ ୧୪
୫ ଆହେ ଉଦ୍ଧବ ସେ ହେତୁରେ । ମୁଁ ଯୁକ୍ତ ଅଟଇ ଜ୍ଞାନରେ ॥ ୧୫
ଆତ୍ମସ୍ୱରୂପ ମୁହିଁ ପୁଣି । ଏମନ୍ତରୂପେ ମୋତେ ଜାଣି ॥ ୧୬
ଜ୍ଞାନବିଜ୍ଞାନଯୁତ ହୋଇ । ଭକ୍ତିରେ ଭଜ ମୋତେ ତୁହି ॥ ୧୭
୬ ଜ୍ଞାନବିଜ୍ଞାନଯଜ୍ଞେ ମୋତେ । ଋଷିଏ ପୂଜି ଆତ୍ମଗତେ ॥ ୧୮
ମୁଁ ସର୍ବଯଜ୍ଞପତି ହରି । ମୋତେ ଲଭିଲେ ସିଦ୍ଧି କରି ॥ ୧୯
୭ ଦେହାଦି ତ୍ରିତାପବିକାରେ । ଉଦ୍ଧବ ଥିଲେ ହେଁ ତୋ' ଠାରେ ॥ ୨୦
ସେ ମାୟା ବାସ୍ତବ ସେ ନାହିଁ । ଯେଣୁ ସେ ମଧ୍ୟେ ବର୍ତ୍ତିଥାଇ ॥ ୨୧
ନ ଥାଇ ଆଦି ଅନ୍ତେ ସ୍ୱୟେଂ । ରଜ୍ଜୁରେ ସର୍ପଜ୍ଞାନପ୍ରାଏ ॥ ୨୨

---

୧. ତର୍କଦ୍ୱାରା ଦେହାଦି ପ୍ରପଞ୍ଚ ଅସତ୍ ବୋଲି ପ୍ରତ୍ୟାଖ୍ୟାତ ହେଲେ ସୁଦ୍ଧା ଆତ୍ମସାକ୍ଷାତ୍‌କାରଦ୍ୱାରା ଯେଉଁ ପର୍ଯ୍ୟନ୍ତ ପ୍ରପଞ୍ଚ ତିରୋହିତ ନ ହୋଇଛି, ସେପର୍ଯ୍ୟନ୍ତ ଜ୍ଞାନାଭ୍ୟାସ କରିବାକୁ ହେବ । ତା ହେଲେ ମୁକ୍ତି ମିଳିବ । ଏହି ବିଷୟ "ଆ ଦେହାନ୍ତାଦ୍ କ୍ୱଚିଦ୍ ଖ୍ୟାତିସ୍ତତଃ ସଂପଦ୍ୟତେ ମୟା" (ଅର୍ଥାତ୍ ଦେହାନ୍ତ ହେବା ପର୍ଯ୍ୟନ୍ତ କ୍ୱଚିଦ୍ ଭେଦପ୍ରତୀତି ରହେ । ଦେହାନ୍ତପରେ କିନ୍ତୁ ସାର୍ଷ୍ଟି ବା ମୋ' ସମାନ ଐଶ୍ୱର୍ଯ୍ୟପ୍ରାପ୍ତି ହୁଏ) - ଇତ୍ୟାଦି ବଚନଦ୍ୱାରା କୁହାଯାଇଛି । କିନ୍ତୁ ଅପରୋକ୍ଷ ଅନୁଭୂତିଦ୍ୱାରା ଯାହାର ପ୍ରପଞ୍ଚ ଲୀନପ୍ରାୟ, ତାହାର କିଛି କୃତ୍ୟ ନାହିଁ ।

ଜନ୍ମାଦି ଷଡ୍‌ଭାବବିକାର । ସେହି ନାହାନ୍ତି ତୁମ୍ଭ ଠାର ॥ ୨୩
ଅସତ୍ୟ ସର୍ପଜ୍ଞାନେ ରହି । ଆଦି ଅନ୍ତରେ ରଜ୍ଜୁ ଥାଇ ॥ ୨୪
ମଧ୍ୟରେ ହୋଏ ରଜ୍ଜୁଜ୍ଞାନ । ସର୍ପାଦି ଜ୍ଞାନ ହୋଏ ଲୀନ ॥ ୨୫
ସେ ରୂପେ ତୁମ୍ଭେ ନିର୍ବିକାର । ପରମ ବ୍ରହ୍ମଟି ଆବର ॥ ୨୬

ଶ୍ରୀଉଦ୍ଧବ ଉବାଚ

୮ କୃଷ୍ଣଙ୍କୁ ପୁଣି ଏ ରୂପରେ । ଉଦ୍ଧବ କହନ୍ତି ସଧୀରେ ॥ ୨୭
ବୈରାଗ୍ୟବିଜ୍ଞାନସଂଯୁତ । ବିଶୁଦ୍ଧ ବିପୁଳ ଅତ୍ୟନ୍ତ ॥ ୨୮
ଯେ ଅଟେ ଅତି ପୁରାତନ । ନିଶ୍ଚୟ କରିଣ ସେ ଜ୍ଞାନ ॥ ୨୯
ହେ ବିଶ୍ୱେଶ୍ୱର ! ବିଶ୍ୱମୂର୍ତ୍ତେ । କହିବା ହେଉ ମୋ’ ଅଗ୍ରତେ ॥ ୩୦
ବ୍ରହ୍ମା ଆଦି ଯେ ମହଜନ । କରନ୍ତି ଯା’ ଅନୁସଂଧାନ ॥ ୩୧
ସେ ତୁମ୍ଭ ଭକ୍ତିଯୋଗକୁ ହିଁ । ଆଖ୍ୟାନ କର ପୁଣ ତୁହି ॥ ୩୨
୯ ଘୋର ସଂସାରମାର୍ଗେ ଯେହି । ତ୍ରିତାପେ ଅଭିହତ ହୋଇ ॥ ୩୩
ଏଣୁ ଯେ ସଦା ସନ୍ତାପିତ । ହୁଅଇ ତାହାର ନିମିତ୍ତ ॥ ୩୪
ଅମୃତ ବରଷେ ସର୍ବତ୍ର । ଯେ ତୋ’ ପାଦଯୁଗଳ ଛତ୍ର ॥ ୩୫
ଅନ୍ୟ ଶରଣ ତହୁଁ ମୁହିଁ । ହେ ଈଶ କିଛି ଦେଖୁନାହିଁ ॥ ୩୬
୧୦ ଏ ଭବକୂପେ ପଡ଼ିଅଛି । କାଳଭୁଜଙ୍ଗ ଗିଳିଅଛି ॥ ୩୭
ଅଳ୍ପସୁଖରେ ବଳିୟାର । ତୃଷ୍ଣା ହୋଇଅଛି ଏହାର ॥ ୩୮
ତୁମ୍ଭେ ଏହାକୁ କୃପା କରି । ଉଦ୍ଧାର କର ଆହେ ହରି ॥ ୩୯
ହେ ମହା-ଅନୁଭାବ ପୁଣ । ଯେ କରେ ମୋକ୍ଷ ଜାଗରଣ ॥ ୪୦
ଏମନ୍ତ ବାଣୀ-ଅମୃତରେ । ସେଚନ କର ତୁ ଏହାରେ ॥ ୪୧

ଶ୍ରୀଭଗବାନୁବାଚ

୧୧ କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ଶୁଣ ମୋ’ ବଚନ ॥ ୪୨
ଯେ ଧର୍ମବନ୍ତମଧ୍ୟେ ବର । ସେ ଭୀଷ୍ମଙ୍କୁ ହିଁ ଯୁଧିଷ୍ଠିର ॥ ୪୩
ଆମ୍ଭେ ସମସ୍ତ ଜନମାନେ । ଶ୍ରବଣ କରନ୍ତେ ସେ ସ୍ଥାନେ ॥ ୪୪
ଏ କଥା ଏହି ପରକାରେ । ପୁଛିଲେ ପୂର୍ବ ସମୟରେ ॥ ୪୫
୧୨ ଭାରତ ଯୁଦ୍ଧ ନିବର୍ତ୍ତନ୍ତେ । ମିତ୍ରଲୋକମାନେ ମରନ୍ତେ ॥ ୪୬
ବିହ୍ୱଳ ହୋଇଣ ରାଜନ । ଶୁଣି ବହୁତ ଧର୍ମମାନ ॥ ୪୭
ପଚ୍ଛେ ମୋକ୍ଷଧର୍ମମାନଙ୍କୁ । ପୁଣି ପଚାରିଲେ ଭୀଷ୍ମଙ୍କୁ ॥ ୪୮
୧୩ ସହିତ ଯେ ଶ୍ରଦ୍ଧାଭକ୍ତିରେ । ଜ୍ଞାନ-ବିଜ୍ଞାନ-ବୈରାଗ୍ୟରେ ॥ ୪୯
ଯା’ ଭୀଷ୍ମମୁଖରୁ ଶୁଣିଛୁଁ । ତା’ ତୁମ୍ଭ ଆଗରେ କହୁଛୁଁ ॥ ୫୦
୧୪ ପ୍ରକୃତି ପୁରୁଷକୁ ଘେନି । ମହତ ଅହଙ୍କାର ବେନି ॥ ୫୧
ପଞ୍ଚ ତନ୍ମାତ୍ର ମିଶି ପୁଣ । ଏକାଦଶ ଇନ୍ଦ୍ରିୟଗଣ ॥ ୫୨

ତ୍ରିଗୁଣ ପଞ୍ଚ ମହାଭୂତ । ଏ ଯେ ଅଷ୍ଟାବିଂଶତି ତତ୍ତ୍ୱ ॥
ବ୍ରହ୍ମାଦି ସ୍ଥାବର ପର୍ଯ୍ୟନ୍ତେ । ଏ ବ୍ୟାପିଛନ୍ତି ସର୍ବଭୂତେ ॥
ଏମନ୍ତ ଯେବଣ ଜ୍ଞାନରେ । ଦେଖଇ, ପୁଣି ସେ ତତ୍ତ୍ୱରେ ॥
ଯେ ଏକ ପରମାତ୍ମତତ୍ତ୍ୱ । ସେ ଅଛି ଦେଖଇ ଏମନ୍ତ ॥
ଉଦ୍ଧବ ଯେ ଜ୍ଞାନ ଏମନ୍ତ । ସେ ପୁଣି ମୋହର ନିଶ୍ଚିତ ॥
୧୫ ତ୍ରିଗୁଣାତ୍ମକ ଭାବଙ୍କର । ଯେ ସ୍ଥିତି ସର୍ଜନ ସଂହାର ॥
ତାଙ୍କୁ ନ ଦେଖେ ପୂର୍ବ ପ୍ରାୟେ । ଯେବେ ଯେବଣ ଜ୍ଞାନେ ସ୍ୱୟେଂ ॥
ସେ ବ୍ରହ୍ମ ପରମ କାରଣ । ଏ ଟି ବିଜ୍ଞାନ ତୁମ୍ଭେ ଜାଣ ॥
୧୬ ଆଦ୍ୟରେ ମଧ୍ୟରେ ପ୍ରାନ୍ତରେ । ଯେ ଟି କାଯ୍ୟରୁ କାର୍ଯ୍ୟାନ୍ତରେ ॥
ନିତ୍ୟରେ ଅନୁଗତ ହୋଇ । ତାଙ୍କ ପ୍ରଳୟେ ପୁଣ ଯେହି ॥
ରହଇ ଅବଶେଷ ହୋଇ । ଉଦ୍ଧବ ସତ୍ୟ ଅଟେ ସେହି ॥
୧୭ ଶ୍ରୁତି ପ୍ରତ୍ୟକ୍ଷ ଯେ ବା ଆନ । ପୁଣ ଐତିହ୍ୟ ଅନୁମାନ ॥
ଏ ଚତୁଷ୍ଟୟ ପ୍ରମାଣରେ । ଯେ ଅନୁଗତଟି ନିତ୍ୟରେ ॥
ସେ ଆତ୍ମତତ୍ତ୍ୱକୁ ଦେଖିବ । ମିଥ୍ୟା ଜଗତୁଁ ନିବର୍ତ୍ତିବ ॥
୧୮ କର୍ମର କ୍ଷୟ ହୋଏ ନିତ୍ୟେ । ସେ ବ୍ରହ୍ମଲୋକପରିଯନ୍ତେ ॥
ଅଦୃଷ୍ଟ ଦୃଷ୍ଟ ସୁଖମାନ । ସର୍ବେ ହୁଅନ୍ତି ବିନାଶନ ॥
ଏ ଦୁଃଖସ୍ୱରୂପ ସମସ୍ତ । ଏମନ୍ତ ଦେଖିବ ପଣ୍ଡିତ ॥
୧୯ ଆହେ ଅନଘ ଭକ୍ତିଯୋଗ । ପୂର୍ବେ କହିଛୁଁ ତୁମ୍ଭ ଆଗ ॥
ପ୍ରୀତି ଲଭିଛ ତୁମ୍ଭେ ଶୁଣି । କହିବା ତୁମ୍ଭ ଆଗେ ପୁଣି ॥
ସେ ଭକ୍ତି ମୋ' ଭକ୍ତିର ପୁଣ । କେବଳ ଅଟଇ କାରଣ ॥
୨୦ ଶ୍ରଦ୍ଧା କରିବ ନିତ୍ୟେ ମୋର । କଥା-ଅମୃତେ ବାରମ୍ବାର ॥
ମୋ ଗୁଣ ଶ୍ରବଣ କରିଣ । ବ୍ୟାଖ୍ୟାନ କରିବ ତା' ପୁଣ ॥
ପୂଜାରେ କରି ନିଷ୍ଠାମତି । ସ୍ତୁତିମାନଙ୍କେ କରି ସ୍ତୁତି ॥
୨୧ ପ୍ରଣାମ କରି ସର୍ବାଙ୍ଗରେ । ଆଦର ଥିବ ମୋ' ପୂଜାରେ ॥
ଅଧିକ ପୂଜା ମୋର ଭକ୍ତେ । ମୋ' ବୁଦ୍ଧି କରି ସର୍ବଭୂତେ ॥
୨୨ ମୋ' ଅର୍ଥେ ଅଙ୍ଗଚେଷ୍ଟାମାନ । ବଚନେ ମୋ' ଗୁଣକୀର୍ତ୍ତନ ॥
ସମସ୍ତ କାମନା ଛାଡ଼ିବ । ମୋ' ଠାରେ ମନ ସମର୍ପିବ ॥
୨୩ ମୋ' ଅର୍ଥେ ଅର୍ଥ ସୁଖ ଭୋଗ । କରିବ ସଦା ପରିତ୍ୟାଗ ॥
ବୈଦିକ କର୍ମ ହୋମମାନ । ଯେ ଜପ ଆଦି ଅବା ଦାନ ॥
ବ୍ରତ ତପସ୍ୟାମାନ ଯେତେ । ସବୁ କରିବ ମୋ' ନିମିତ୍ତେ ॥
୨୪ ଆତ୍ମନିବେଦୀ[1] ଯେତେ ନରେ । ସେମାନଙ୍କର ଏ ପ୍ରକାରେ ॥
ଉଦ୍ଧବ ! ଧର୍ମମାନଙ୍କରେ । ଭକ୍ତି[2] ଉପୁଜଇ ମୋ' ଠାରେ ॥

---

୧. ଆତ୍ମନିବେଦନକାରୀ । ୨. ପ୍ରେମଲକ୍ଷଣା ।

ଏହିରୂପ ଯେ ଭକ୍ତ ମୋର । କିବା ଅପୂର୍ଣ୍ଣ ରହେ ତାର ।। ୮୫
୨୫ ସତ୍ତ୍ୱଗୁଣରେ ବିବର୍ଦ୍ଧିତ । ଶାନ୍ତ ଯେ ଆପଣାର ଚିତ୍ତ ।। ୮୬
ଯେବେ ସେ ଆମ୍ଭାରେ[୧] ଅର୍ପଇ । ବୈରାଗ୍ୟସହିତରେ ତହିଁ ।। ୮୭
ଐଶ୍ୱର୍ଯ୍ୟ ଧର୍ମ ଜ୍ଞାନ ପୁଣ । ସେ ଜନ ଲଭଇ ତତ୍‌କ୍ଷଣ ।। ୮୮
୨୬ ଦେହଗୃହାଦିରେ ସେ ଚିତ୍ତ । ଯେବେ ହୁଅଇ ସମର୍ପିତ ।। ୮୯
ଇନ୍ଦ୍ରିୟଙ୍କର ସଙ୍ଗେ ରହି । ବିଷୟମାନଙ୍କେ ଧାବଇ ।। ୯୦
ରଜୋଗୁଣରେ ଯୁକ୍ତ ହୋଇ । ଅସତ୍‌କର୍ମକୁ ଆଚରଇ ।। ୯୧
ଜାଣ ଉଦ୍ଧବ ସେହି ଚିତ୍ତ । ଅଧର୍ମେ ହୁଅଇ ସଂଯୁତ ।। ୯୨
୨୭ ଯେ ମୋର ଭକ୍ତି ଆଚରଣ । ତାହାକୁ ଧର୍ମ ବୋଲି ଜାଣ ।। ୯୩
ସମସ୍ତ ଭୂତେ ଯା' ଦେଖଇ । ଏକାତ୍ମଭାବ, ଜ୍ଞାନ ସେହି ।। ୯୪
ଗୁଣରେ ସଙ୍ଗ ଯା' ନୁହଇ । ସେ ପୁଣ ବୈରାଗ୍ୟ ବୋଲାଇ ।। ୯୫
ଅଣିମା ଆଦି ଅଷ୍ଟ ଭୂତି । ଏମାନେ ଐଶ୍ୱର୍ଯ୍ୟ ବୋଲାନ୍ତି ।। ୯୬

ଶ୍ରୀଉଦ୍ଧବ ଉବାଚ

୨୮ ଉଦ୍ଧବ କହୁଛନ୍ତି ପୁଣ । ଆହେ ଅମିତ୍ରକରଶନ ।। ୯୭
ଯମ ନିୟମ ଯଉଁ ଦୁଇ । କେତେ ପ୍ରକାରେ କହ ତୁହି ।। ୯୮
ହେ କୃଷ୍ଣ କେ ତିତିକ୍ଷା ଦମ । ହେ ପ୍ରଭୋ କେ ଧୃତି କେ ଶମ ।। ୯୯
୨୯ କେ ତପ କେ ଶଉର୍ଯ୍ୟ ଦାନ । କେ ସତ୍ୟ ଋତ ଇଷ୍ଟଧନ ।। ୧୦୦
କେ ତ୍ୟାଗ କେହୁ ଯଜ୍ଞ ପୁଣ । ହେ ପ୍ରଭୋ କେ ଦକ୍ଷିଣା ଭଣ ।। ୧୦୧
୩୦ ଆହେ କେଶବ ହେ ଶ୍ରୀମନ୍ତ । ପୁରୁଷର ବଳ କେମନ୍ତ ।। ୧୦୨
କେମନ୍ତ ଭଗ ଲାଭ ଦୁଇ । କେ ପରା ବିଦ୍ୟା ଲଜ୍ଜା କେହି ।। ୧୦୩
ପରମ ମଣ୍ଡନ କେମନ୍ତେ । କେ ସୁଖ ଦୁଃଖ କହ ମୋତେ ।। ୧୦୪
୩୧ କେ ବା ପଣ୍ଡିତ ମୂର୍ଖ ପୁଣ । କେ ପନ୍ଥା ଉତ୍‌ପଥ କେବଣ ।। ୧୦୫
କେ ସ୍ୱର୍ଗ କେ ନରକ ଅବା । କେ ବନ୍ଧୁ ଅଟେ ଗୃହ କେ ବା ।। ୧୦୬
୩୨ କେ ଧନବନ୍ତ ଦୁଃଖୀ କେହି । କେ ବା କୃପଣ କେ ପ୍ରଭୁ ହିଁ ।। ୧୦୭
ଏତେକ ପ୍ରଶ୍ନମାନଙ୍କୁ ହିଁ । ମୋର ଅଗ୍ରତେ କହ ତୁହି ।। ୧୦୮
ହେ ସାଧୁଜନପତି ପୁଣ । ଏଥୁଁ ଯେ ବିପରୀତ ଭଣ ।। ୧୦୯

ଶ୍ରୀଭଗବାନୁବାଚ

୩୩ କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ଶୁଣ ପ୍ରଶ୍ନମାନ ।। ୧୧୦
ଅହିଂସା ସତ୍ୟ ଯେ ଅସ୍ତେୟ । ଅସଙ୍ଗ ଲଜ୍ଜା ଅସଂଚୟ ।। ୧୧୧
ଆସ୍ତିକ୍ୟ ବ୍ରହ୍ମଚର୍ଯ୍ୟ ମୌନ । ସ୍ଥଇର୍ଯ୍ୟ କ୍ଷମା ଭୟ ଆନ ।। ୧୧୨
୩୪ ଶୌଚ[୨] ତପସ୍ୟା ହୋମମାନ । ଶ୍ରଦ୍ଧା ଆତିଥ୍ୟ ମୋ ପୂଜନ ।। ୧୧୩

---

୧. ପରମେଶ୍ୱରଙ୍କଠାରେ । ୨. ଶୌଚ = ଆଭ୍ୟନ୍ତର ଓ ବାହ୍ୟ ଭେଦରେ ଦୁଇପ୍ରକାର ।

| | | | | |
|---|---|---|---|---|
| | ପରାର୍ଥଚେଷ୍ଟା ଜପମାନ | । ଆବର ତୀର୍ଥକୁ ଗମନ | ।। | ୧୧୪ |
| | ଚିତ୍ତସନ୍ତୋଷ ଯେହୁ ପୁଣ | । ଆଚାର୍ଯ୍ୟଙ୍କର ଯେ ସେବନ | ।। | ୧୧୫ |
| ୩୫ | ଏତେକ ଯମ ସନିୟମ | । ଏ ବେନି ଦ୍ୱାଦଶ ଏ ସମ | ।। | ୧୧୬ |
| | ପୁରୁଷ କରି ଉପାସନ | । କରେ ଯା' ମନୋରଥମାନ | ।। | ୧୧୭ |
| | [1]ଏମାନେ ଦିଅନ୍ତି ତା' ସର୍ବ | । ଉତ୍ତମ ରୂପେ ହେ ଉଦ୍ଧବ | ।। | ୧୧୮ |
| ୩୬ | ଏକାଗ୍ରଚିତ୍ତେ ମୋ' ଭଜନ | । ତାହାକୁ ଶମ ବୋଲି ଜାଣ | ।। | ୧୧୯ |
| | ଯେ ନିଜ ଇନ୍ଦ୍ରିୟସଂଯମ | । ଉଦ୍ଧବ ବୋଲି ତାକୁ ଦମ | ।। | ୧୨୦ |
| | ନିଜ ଦୁଃଖକୁ ସହିବାର | । ତିତିକ୍ଷା ବୋଲାଇ ଆବର | ।। | ୧୨୧ |
| | ଜିହ୍ୱା ଉପସ୍ଥ ବେନି ନିତି | । ଜିଣିମାକୁ ହିଁ ବୋଲି ଧୃତି | ।। | ୧୨୨ |
| ୩୭ | ପ୍ରାଣୀଙ୍କ ଦ୍ରୋହ ଛାଡ଼ିବାର | । ଦାନ ବୋଲାଇ ସେ ପ୍ରକାର | ।। | ୧୨୩ |
| | ଛାଡ଼ଇ ଯା' ସର୍ବ ଭୋଗକୁ | । ତପସ୍ୟା ବୋଲିଟି ତାହାକୁ | ।। | ୧୨୪ |
| | ଜିଣିଲେ ନିଜ ସ୍ୱଭାବକୁ[2] | । ସମର୍ଥପଣ ବୋଲି ତାକୁ | ।। | ୧୨୫ |
| | ଯା' କରେ ବ୍ରହ୍ମ ଅନ୍ୱେଷଣ[3] | । ତାହାକୁ ସତ୍ୟ ବୋଲି ଜାଣ | ।। | ୧୨୬ |
| ୩୮ | କବିମାନଙ୍କେ ଯେ କୀର୍ତ୍ତିତ | । [4]ସୂନୃତ ବାଣୀ ସେହୁ ରତ | ।। | ୧୨୭ |
| | କର୍ମମାନଙ୍କେ ଅନାସକ୍ତି | । ଅଟଇ ଶୌଚରୂପେ ଖ୍ୟାତି | ।। | ୧୨୮ |
| | ତ୍ୟାଗ ବୋଲନ୍ତି ସନ୍ନ୍ୟାସକୁ | । ଜାଣ ତୁ ଦୁହିଁଙ୍କ[5] ଭେଦକୁ | ।। | ୧୨୯ |
| ୩୯ | ପ୍ରାଣୀମାନଙ୍କ ଧର୍ମ ଯେହି | । ଅଟଇ ଇଷ୍ଟଧନ ସେହି | ।। | ୧୩୦ |
| | ଯଜ୍ଞ ମୁଁ ପରମ-ଈଶ୍ୱର | । ଦକ୍ଷିଣା ଜ୍ଞାନଦାନ ଆର | ।। | ୧୩୧ |
| | ଯେଣୁ ହୁଅଇ ମନୋଦମ | । ଶ୍ରେଷ୍ଠ ବଳ ସେ ପ୍ରାଣାୟାମ | ।। | ୧୩୨ |
| ୪୦ | ମୋର ଐଶ୍ୱର ଭାବ ଯେହି | । ତାହାକୁ ଭଗ[6] ବୋଲି କହି | ।। | ୧୩୩ |
| | ଭକ୍ତି ଯା' କରିବ ମୋ' ଠାରେ | । ଉତ୍ତମ ଲାଭ ସେ ସଂସାରେ | ।। | ୧୩୪ |
| | ଯେ ଆତ୍ମଭେଦ ନିବର୍ତ୍ତାଇ | । ଉତ୍ତମ ବିଦ୍ୟା ସେ ବୋଲାଇ | ।। | ୧୩୫ |
| | ଜୁଗୁପ୍‌ସା ଯେ ବା ଅକର୍ମରେ | । ଲଜ୍ଜା ବୋଲାଇ ସେ ବେଭାରେ | ।। | ୧୩୬ |
| ୪୧ | ନିରପେକ୍ଷତା ଆଦି ଯେହି | । ଗୁଣ ସେ ମଣ୍ଡନ ବୋଲାଇ | ।। | ୧୩୭ |
| | ସୁଖଦୁଃଖର ନାଶ ଯେହି | । ତାହାକୁ ସୁଖ ବୋଲି କହି | ।। | ୧୩୮ |
| | ଯେ ଇଚ୍ଛା ବିଷୟଭୋଗରେ | । ଦୁଃଖ ବୋଲାଇ ସେ ସଂସାରେ | ।। | ୧୩୯ |
| | ଯେ ବନ୍ଧମୋକ୍ଷକୁ ଜାଣଇଁ | । ପଣ୍ଡିତ ବୋଲି ତାକୁ କହି | ।। | ୧୪୦ |
| ୪୨ | ଦେହଗେହାଦିରେ ଯେବଣ | । ଅହଂମମାଦି ଅଭିମାନ | ।। | ୧୪୧ |
| | ସେ ଭାବ ଅଛଇ ଯାହାର | । ମୂର୍ଖ ବୋଲାଇଟି ସେ ନର | ।। | ୧୪୨ |

୧. ଯମଗୁଡ଼ିକ ମୁମୁକ୍ଷୁପାଇଁ ପ୍ରଧାନ ଓ ମୋକ୍ଷଦାୟକ । ନିୟମଗୁଡ଼ିକ ସକାମବ୍ୟକ୍ତି ପାଇଁ ପ୍ରଧାନ ଓ ଅଭ୍ୟୁଦୟଦାୟକ ।

୨. ବାସନାକୁ । ୩. ଆଲୋଚନା । ୪. ସତ୍ୟ ଓ ପ୍ରିୟ ।

୫. ଶୌଚ ଓ ତ୍ୟାଗର । (ଯେହେତୁ ଶୌଚର ଅର୍ଥ ମଳତ୍ୟାଗ) ୬. ଭାଗ୍ୟ ।

ନିବୃତ୍ତିମାର୍ଗ ଯେ ବା ପୁଣ । ତାହାକୁ ପନ୍ଥା[1] ବୋଲି ଜାଣ ॥ ୧୪୩
ପ୍ରବୃତ୍ତିମାର୍ଗ ଅଛି ଯେହି । ଉତ୍‌ପଥ[2] ବୋଲି ତାକୁ କହି ॥ ୧୪୪
ସତ୍ତ୍ୱଗୁଣର ଯେ ଉଦୟ । ସ୍ୱର୍ଗ ସେ ବୋଲାଇ ନିଶ୍ଚୟ ॥ ୧୪୫
୪୩ ତମୋଗୁଣର ଯେ ଉଦ୍ରେକ । ସେହିଟି ବୋଲାଇ ନରକ ॥ ୧୪୬
ସମସ୍ତ ପ୍ରାଣୀଙ୍କର ତହିଁ । ଉଦ୍ଧବ ଗୁରୁ ବନ୍ଧୁ ମୁହିଁ ॥ ୧୪୭
ଗୃହଟି ମନୁଷ୍ୟଶରୀର । ଆଢ୍ୟଟି ଗୁଣବନ୍ତ ନର ॥ ୧୪୮
୪୪ ଯେହୁ ସନ୍ତୋଷ ନ ଲଭଇ । ସେ ଲୋକ ଦରିଦ୍ର ବୋଲାଇ ॥ ୧୪୯
ଇନ୍ଦ୍ରିୟଗଣ ଜିଣି ନାହିଁ । ଯେ ପୁଣ କୃପଣଟି ସେହି ॥ ୧୫୦
ଗୁଣରେ ଅନାସକ୍ତ ଯାର । ବୁଦ୍ଧି, ଅଟଇ ସେ ଈଶ୍ୱର ॥ ୧୫୧
ଗୁଣମାନଙ୍କେ ସଙ୍ଗ ଯାର । ସେ ଲୋକ ଅଟେ ଅନୀଶ୍ୱର ॥ ୧୫୨
୪୫ ଉତ୍ତମ କରି ହେ ଉଦ୍ଧବ । କହିଲୁଁ ଏ ତୋ' ପ୍ରଶ୍ନ ସର୍ବ ॥ ୧୫୩
ଗୁଣଦୋଷଙ୍କର ଲକ୍ଷଣ । ବର୍ଣ୍ଣିନୁଁ ବହୁତ କରିଣ ॥ ୧୫୪
କି କାର୍ଯ୍ୟ ହେବ ଗୁଣଦୋଷ । ଦର୍ଶନୁଁ ଜାତ ହୋଏ ଦୋଷ ॥ ୧୫୫
ସେ ଗୁଣଦୋଷକୁ[3] ଛାଡ଼ିଣ । ଉତ୍‌ପନ୍ନ ହୋଏ ଗୁଣପୁଣ ॥ ୧୫୬
କୃଷ୍ଣଚରଣପଙ୍କଜରେ । ଚିତ୍ତକୁ ଦେଇଣ ନିତ୍ୟରେ ॥ ୧୫୭
ଭଣଇ ଦୀନବନ୍ଧୁ ବିପ୍ର । ସୁଜନେ ତୋଷ ହୁଅ କ୍ଷିପ୍ର ॥ ୧୫୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ
ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ ଶ୍ରେୟୋଭେଦନିର୍ଣ୍ଣୟୋ
ନାମ ଏକୋନବିଂଶୋଽଧ୍ୟାୟଃ ॥

## ବିଂଶ ଅଧ୍ୟାୟ

ବିଂଶେ ଯୋଗତ୍ରୟଂ ପ୍ରୋକ୍ତଂ ଭକ୍ତିଜ୍ଞାନକ୍ରିୟାତ୍ମକମ୍ ।
ଗୁଣଦୋଷବ୍ୟବସ୍ଥାର୍ଥମଧିକାରିବିଭାଗତଃ ॥ ୧

ଶ୍ରୀଉଦ୍ଧବ ଉବାଚ

୧ ଉଦ୍ଧବ କହୁଛନ୍ତି ପୁଣ । ଆହେ ଶ୍ରୀକୃଷ୍ଣ ଏବେ ଶୁଣ ॥ ୧
ତୁମ୍ଭେ ଯେ ସାକ୍ଷାତେ ଈଶ୍ୱର । ହେ ପଦ୍ମନୟନ ତୁମ୍ଭର ॥ ୨
ଯେ ବିଧି ପ୍ରତିଷେଧ ଦୁଇ । ଆଜ୍ଞାସ୍ୱରୂପ ବେଦ ଏହି ॥ ୩
ଏ ପୁଣି କର୍ମଙ୍କର ପୁଣ । ଅବେକ୍ଷା[4] କରେ ଦୋଷଗୁଣ ॥ ୪
୨ ବର୍ଣ୍ଣ ଆଶ୍ରମମାନଙ୍କର । ଗୁଣଦୋଷକୁ ହିଁ ଆବର ॥ ୫
ପ୍ରତିଲୋମ ଅନୁଲୋମରେ । ଜନ୍ମି ଅଛନ୍ତି ଯେତେ ନରେ ॥ ୬

---

୧. ସନ୍ମାର୍ଗ । ୨. କୁମାର୍ଗ । ୩. ଗୁଣଦୋଷ ଦର୍ଶନକୁ । ୪. ପରୀକ୍ଷା ।

ଯେ ଦ୍ରବ୍ୟ ଦେଶ ବୟଃ କାଳ । ଯେ ବା ସ୍ୱର୍ଗ ନରକ କୂଳ ॥
ଯେ ଗୁଣଦୋଷ ଅଛି ତହିଁ । ଅବେକ୍ଷା[1] କରେ ତାହାଙ୍କୁ ହିଁ ॥
୩ ଗୁଣଦୋଷରେ ଭେଦ ଯେହି । ସେ ଦୃଷ୍ଟିବିହୁନରେ କେହି[2] ॥
ଯେ ବିଧିନିଷେଧଲକ୍ଷଣ । ଅଟଇ ତୁମ୍ଭ ବାକ୍ୟ ପୁଣ ॥
ସେ ବାକ୍ୟେ ପ୍ରାଣୀମାନଙ୍କର । ମୋକ୍ଷ ହୋଇବ କି ପ୍ରକାର ॥
୪ ମୋକ୍ଷରେ ସ୍ୱର୍ଗାଦି ପ୍ରାପ୍ତିରେ । ସାଧ୍ୟ-ସାଧନ ବେନିଙ୍କରେ ॥
ପିତୃ-ମନୁଷ୍ୟ-ଦେବଙ୍କର । ପ୍ରମାଣ ବେଦ ହେ ଈଶ୍ୱର ॥
୫ ଯେ ଗୁଣଦୋଷଭେଦଜ୍ଞାନ । ସେ ତୁମ୍ଭ ବେଦରୁ ଉତ୍‌ପନ୍ନ ॥
ସେ ନୋହେ ସ୍ୱତଃ ହେ ଈଶ୍ୱର । ସେ ବେଦବାକ୍ୟରୁ ଆବର ॥
ଭେଦଜ୍ଞାନର ଅପବାଦ । ଏ ନିଶ୍ଚେ ଅଟଇ ପ୍ରମାଦ ॥

ଶ୍ରୀଭଗବାନୁବାଚ

୬ ଉଦ୍ଧବପ୍ରଶ୍ନ ଶୁଣି କରି । ହସି କହନ୍ତି ନରହରି ॥
ପ୍ରାଣୀଙ୍କ ଶ୍ରେୟନିମିତ୍ତରେ । ତିନି ଉପାୟ ଏ ସଂସାରେ ॥
ମୁଁ କହିଅଛି ହେ ଉଦ୍ଧବ । ଜ୍ଞାନ କରମ ଭକ୍ତିଭାବ ॥
ଏ ତିନି ବିନେ ଆନ ହୋଇ । କିଛି ଉପାୟ ଆଉ ନାହିଁ ॥
୭ ଏ ତିନି ଉପାୟ ମଧ୍ୟରେ । କର୍ମମାନଙ୍କୁ ଯଉଁ ନରେ ॥
ଛାଡ଼ିଲେ ନିର୍ବିଣ୍ଣ ହୋଇଣ । ତାଙ୍କର ଜ୍ଞାନଯୋଗ ଜାଣ ॥
ସେ କର୍ମମାନଙ୍କରେ ସ୍ୱତ । ଅତି ଆସକ୍ତ ଯାଙ୍କ ଚିତ୍ତ ॥
ସେ କାମୀମାନଙ୍କର ପୁଣ । କର୍ମଯୋଗଟି ତୁମ୍ଭେ ଜାଣ ॥
୮ କେହୁଣି [3]ଭାଗ୍ୟ-ଉଦୟରେ । ଉଦ୍ଧବ ମୋ' କଥା ଆଦିରେ ॥
ଶ୍ରଦ୍ଧା ହୁଅଇ ଜାତ ଯାର । କାମ୍ୟ କର୍ମରେ ସେହି ନର ॥
ନୁହଇ ଅତି ଆସକତ । ବିରକ୍ତ ନୁହଇ ଅତ୍ୟନ୍ତ ॥
ତାହାର ଭକ୍ତିଯୋଗ ପୁଣ । ସିଦ୍ଧି କରଇ ବିତରଣ ॥
୯ ମୋ' କଥାଶ୍ରବଣ ଆଦିରେ । ଯାବତ କାଳ ଏ ସଂସାରେ ॥
ଶ୍ରଦ୍ଧା ନ ଥିବ ଜାତ ହୋଇ । ଯାବତ ନିର୍ବେଦ ନୁହଇ ॥
ତାବତ କାଳଯାଏ ପୁଣ । କରିବ କାମ୍ୟକର୍ମଗଣ ॥
୧୦ ନିଜ ଧର୍ମରେ ହୋଇ ସ୍ଥିତ । ନ ଦେଇ କର୍ମଫଳେ ଚିତ୍ତ ॥
ନିଷିଦ୍ଧ କର୍ମ ଛାଡ଼ି କରି । ଯଜ୍ଞରେ ମୋତେ ପୂଜା କରି ॥
ଆହେ ଉଦ୍ଧବ ଏ ଲୋକ ହିଁ । ସ୍ୱର୍ଗ ନରକକୁ ନ ଯାଇ ॥
୧୧ ଏ ଦେହେ ହୋଇ ବର୍ତ୍ତମାନ । ନିଜ ଧର୍ମରେ ରହି ଜନ ॥
ନିଷିଦ୍ଧ କର୍ମ ପରିହରି । ରାଗାଦି ମଳ ଛାଡ଼ି କରି ॥

---

୧. ଅବେକ୍ଷା = ଅବଧାନ, ପର୍ଯ୍ୟବେକ୍ଷଣ । ୨. କିପରି ।
୩. ଭାଗ୍ୟ = ପରମସ୍ୱତନ୍ତ୍ର ଭଗବଭକ୍ତଙ୍କ ସଙ୍ଗ ଓ କୃପାଜାତ ମଙ୍ଗଳ । (ଶ୍ରୀଜୀବପାଦ)

ବିଶୁଦ୍ଧ ଜ୍ଞାନକୁ ଲଭଇ । ମୋ' ଭକ୍ତି ଯଦୃଚ୍ଛାରେ[1] ପାଇ ।।
୧୨ ସ୍ୱର୍ଗେ ଅଛନ୍ତି ଯେତେ ନରେ । ନାରକୀମାନେ ସେ ରୂପରେ ।।
ମନୁଷ୍ୟଦେହକୁ ବାଞ୍ଛନ୍ତି । ଜ୍ଞାନ-ଭକ୍ତିରେ ଯେଣୁ ନିତି ।।
ଏ ଦେହ ଅଟଇ କାରଣ । ସ୍ୱର୍ଗୀ-ନାରକୀଦେହ ପୁଣ ।।
ଉଭୟ ନୁହନ୍ତି ସାଧକ[2] । ତେଣୁ ବୋଲନ୍ତି ଅସାଧକ ।।
୧୩ ଏଣୁ ପଣ୍ଡିତ ଯଉଁ ଜନ । ସ୍ୱର୍ଗ ନରକ ବେନି ସ୍ଥାନ ।।
ଆକାଙ୍‌କ୍ଷା ନ କରଇ ଜାଣି । ଏ ନରଦେହକୁ ହିଁ ପୁଣି ।।
ଯେଣୁ ସେ ଦେହ-ଆବେଶରେ । ପ୍ରମତ୍ତ ହୋଏ ସ୍ୱକାର୍ଯ୍ୟରେ ।।
୧୪ ଏ ଦେହ କ୍ଷଣକେ ଭାଜଇ । ତଥାପି ମୋକ୍ଷକୁ ଦିଅଇ ।।
ଏମନ୍ତ ଜାଣି ବିଜ୍ଞ ନର । ମରଣ ପୂର୍ବରୁ ସତ୍ୱର ।।
ଯତ୍ନ କରିବ ମୋକ୍ଷପାଇଁ । କାହିଁରେ ପ୍ରମତ୍ତ ସେ ନୋହି ।।
୧୫ ଯହିଁରେ ବସା ଅଛି କରି । ସେ ନିଜ ବୃକ୍ଷକୁ ଆବୋରି ।।
ନିର୍ଦ୍ଦୟ ପୁରୁଷେ କାଟନ୍ତେ । ପକ୍ଷୀ ତା' ଦେଖିଣ ତଦନ୍ତେ ।।
ସ୍ୱବସା ଛାଡ଼ି [3]କ୍ଷେମସ୍ଥାନେ । ଚଳଇ [4]ଅଲମ୍ପଟ ମନେ ।।
୧୬ ଆୟୁଷ ଅହୋରାତ୍ର ହୋଇ । କ୍ଷୀଣ ହେଉଛି ତାହା ଚାହିଁ ।।
ଏମନ୍ତ ନିଶ୍ଚୟ ଜାଣିଣ । ସମସ୍ତ ସଙ୍ଗକୁ ଛାଡ଼ିଣ ।।
ଭୟରେ କଂପ ଜାତ ଯାର । ଚେଷ୍ଟା ଛାଡ଼ିଣ ସେହୁ ନର ।।
ବୁଝିଣ ପରମ ତତ୍ତ୍ୱକୁ । ଆତ୍ମାରେ ଲଭଇ ଶାନ୍ତିକୁ ।।
୧୭ ଯେ ମୂଳ ସର୍ବଫଳଙ୍କର । ଦୁର୍ଲ୍ଲଭ ସେ ନରଶରୀର ।।
ନଉକା ଅଟେ ପଟୁତର । ଗୁରୁ ଏଥିରେ କର୍ଣ୍ଣଧାର ।।
ମୁଁ ଏଥି ଅନୁକୂଳ ବାତ । ମୋ' ହେତୁ ଚଳଇ ତୁରିତ ।।
ଏ ନାବ ଅତିଭାଗ୍ୟେ ପାଇ । ପୁରୁଷ ଏହାକୁ ଆରୋହି ।।
ଯଦି ଭବାବ୍ଧି ନ ତରଇ । ତେବେ ସେ ଆତ୍ମଘାତୀ ହୋଇ ।।
୧୮ ଶ୍ରୀକୃଷ୍ଣ ଉଦ୍ଧବଙ୍କ ଆଗ । ପୁଣି କହନ୍ତି ଯୋଗମାର୍ଗ ।।
ଯେବେ ଆରମ୍ଭ କର୍ମ କରେ । ନିର୍ବିଣ୍ଣ ହୋଇଣ ଫଳରେ ।।
ବିରକ୍ତ ହୋଇ ଅତିଶୟ । ସଂଯତ କରିଣ ଇନ୍ଦ୍ରିୟ ।।
ଆତ୍ମ-ଅଭ୍ୟାସେ ଯୋଗୀଜନ । ନିଶ୍ଚଳ କରି ଧରେ ମନ ।।
୧୯ ଅତିଚଞ୍ଚଳ ନିଜ ମନ । ଯେବେ ଭ୍ରମଇ ପୁନଃପୁନ ।।
ଯୋଗୀ ତା' ନ ପାରିଲେ ଧରି । ଅଳସଭାବ ଛାଡ଼ି କରି ।।

---

୧. କେବଳଜ୍ଞାନଠାରୁ ମଧ୍ୟ ଭକ୍ତି ଦୁର୍ଲଭ । ଏହା 'ଯଦୃଚ୍ଛା' ଶବ୍ଦ ପ୍ରକାଶ କରୁଅଛି ।

୨. ଉଭୟ ଦେହ (ସ୍ୱର୍ଗୀ ଓ ନାରକୀ) ଜ୍ଞାନ ଓ ଭକ୍ତିର ସାଧକ ନୁହନ୍ତି ।

୩. ନିରାପଦ ସ୍ଥାନକୁ ।　　୪. ଅନାସକ୍ତ ଚିତ୍ତରେ ।

ସେ ମନ ପ୍ରବର୍ତ୍ତିବ ଯହିଁ । ତହିଁ ତା' କିଛି ପ୍ରବର୍ତ୍ତାଇ ।।
ତତ୍‌କାଳ ପୁଣି ତହୁଁ ତାକୁ । ଆଣିମ ଆପଣା ବଶକୁ ।।
୨୦ ଏ ହେତୁ ପଣ୍ଡିତ ମାନବ । ମନୋଗତିକି ନ ଛାଡ଼ିବ ।।
ଜିଣି ଇନ୍ଦ୍ରିୟ ଜିଣି ପ୍ରାଣ । ଯେ ସତ୍ତ୍ୱଗୁଣଯୁକ୍ତ ପୁଣ ।।
ସେ ନିଜ ବୁଦ୍ଧିରେ ମନକୁ । ଆଣିମ ଆପଣା ବଶକୁ ।।
୨୧ ଅନୁବୃତ୍ତିର ମାର୍ଗ ଏହି । ଏଣେ ମନର ସଂଯମ ହିଁ ।।
ପରମ ଯୋଗରୂପେ ଖ୍ୟାତ । ଅଶାନ୍ତ ଅଶ୍ୱର ଯେମନ୍ତ ।।
ମାହୁନ୍ତ ହୃଦୟକୁ ଜାଣି । ଅଶ୍ୱ ଧାବଇ ଯେଣେ ପୁଣି ।।
ତେଣେ ତା' ଗତି ଅନୁସରେ । ତେବେ ରଶ୍ମି[୧]ରେ ତାକୁ ଧରେ ।।
୨୨ ମହତୁଁ ଦେହପରିଯନ୍ତେ । ତତ୍ତ୍ୱବିବେକଦ୍ୱାରା ନିତ୍ୟେ ।।
ସକଳଭାବମାନଙ୍କର । ଉତ୍‌ପତ୍ତି-ପ୍ରଳୟକୁ ନର ।।
ଅନୁଲୋମ-ପ୍ରତିଲୋମରେ । [୨]ପ୍ରକୃତି-ପୃଥିବୀକ୍ରମରେ ।।
ଧ୍ୟାନ କରିବ, ନିଜମନ । ଯାବତ ହୋଇବ ପ୍ରସନ୍ନ ।।
୨୩ ସଂସାରେ ନିର୍ବିଣ୍ଣ ଯା' ଚିତ୍ତ । ସେ ହେତୁ ଅତ୍ୟନ୍ତ ବିରକ୍ତ ।।
ଜାଣଇଁ ଗୁରୁ-ଉପଦେଶ । ଏମନ୍ତ ଯେବଣ ପୁରୁଷ ।।
ଉପଦେଶକୁ ସେ ଗୁରୁର । ଚିନ୍ତା କରନ୍ତେ ବାରମ୍ବାର ।।
ସେ ପୁରୁଷର ନିଜ ମନ । ଛାଡ଼ଇ ଦେହ-ଅଭିମାନ ।।
୨୪ ଯମ ନିୟମ ଆଦି ହୋଇ । ଯେ ଯୋଗମାର୍ଗ ଛନ୍ତି ରହି ।।
[୩]ପଦାର୍ଥଦ୍ୱୟର ଶୋଧନ । ଯେ ବା ମୋ' ଅର୍ଚ୍ଚା-ଉପାସନ ।।
ଏହି ଉପାୟମାନଙ୍କରେ । ଯେ ଯୋଗ୍ୟ ଅଟନ୍ତି ନିତ୍ୟରେ ।।
ସେ ପରମାତ୍ମାଙ୍କୁ ମନ ହିଁ । ସ୍ମରିବ, ଅନ୍ୟ ବାଟେ ନାହିଁ ।।
୨୫ ଯେବେ ପ୍ରମାଦୁଁ ଯୋଗିଜନ । କରେ ନିନ୍ଦିତ କର୍ମମାନ ।।
ଯୋଗ[୪] ରେ ସେ ପାପକୁ ଦହି । ଅନ୍ୟ[୫] ବିଶୁଦ୍ଧ ତହିଁ ନାହିଁ ।।
୨୬ ନିଜ ନିଜ ଅଧିକାରରେ । ପ୍ରାଣୀ ଯେବଣ ନିଷ୍ଠା କରେ ।।
ତାହାକୁ ଗୁଣ ବୋଲି କହି । ଜାତି-ଅଶୁଦ୍ଧ କର୍ମ ଯେହି ।।
ଏ ଗୁଣଦୋଷର ବିଧାନ । କରେ ସେ କର୍ମ ସଂକୋଚନ ।।
ବିଷୟମାନଙ୍କର ପ୍ରତି । ପ୍ରାଣୀର ଅଛି ଯେ ଆସକ୍ତି ।।
ତାହା ଛଡ଼ାଇବା ଇଚ୍ଛାରେ । ବେଦବିଧାନ ଏ ରୂପରେ ।।

---

୧. ଲଗାମ ।
୨. ପ୍ରକୃତି ଆଦିର କ୍ରମରେ (ଅନୁଲୋମରେ) ସୃଷ୍ଟି ହୁଏ; ପୃଥିବୀ ଆଦିର କ୍ରମରେ (ପ୍ରତିଲୋମରେ) ପ୍ରଳୟ ହୁଏ ।
୩. 'ଆନ୍ୱୀକ୍ଷିକୀ ବିଦ୍ୟା' ମୂଳପାଠର ସ୍ୱାମିଟୀକା । 'ତ୍ୱଂ' ପଦର ଓ 'ତତ୍' ପଦର ଅର୍ଥକୁ ବୁଝିବା ।
୪. ଜ୍ଞାନାଭ୍ୟାସରେ । ଭକ୍ତପକ୍ଷେ ନାମକୀର୍ତ୍ତନାଦିରେ । ୫. କୃଚ୍ଛାଦି ।

୨୭ ମୋ କଥାମାନଙ୍କରେ ଯା'ର । ଜାତ ହୋଇଛି ଶ୍ରଦ୍ଧା, ତା'ର ॥ ୯୪
ସମସ୍ତ କର୍ମମାନଙ୍କରେ । ନିର୍ବେଦ ହୁଅନ୍ତେ ଚିତ୍ତରେ ॥ ୯୫
ବିଷୟଭୋଗ ଦୁଃଖାତ୍ମକ । ଯଦ୍ୟପି ଜାଣଇଁ ସେ ଲୋକ ॥ ୯୬
ତଥାପି ଛାଡ଼ି ନ ପାରଇ । ବିରକ୍ତ କର୍ମଫଳେ ନୋହି ॥ ୯୭
୨୮ ଏମନ୍ତ ରୂପେ ଯଉଁ ଜନ । ଭକ୍ତିରେ ଦୃଢ଼ କରି ମନ ॥ ୯୮
ଶ୍ରଦ୍ଧାଳୁ ହୋଇ ଅତି ପ୍ରୀତେ । ତଦନନ୍ତରେ ଭଜେ ମୋତେ ॥ ୯୯
ଦୁଃଖ ଯହିଁରେ ପ୍ରାନ୍ତଫଳ । ସେ କାମସୁଖ ଯେ ସକଳ ॥ ୧୦୦
ଭଜୁଥିଲେ ହେଁ ତାହାକୁ ହିଁ । ପ୍ରୀତି ନ କରିଣ ନିନ୍ଦଇ ॥ ୧୦୧
୨୯ ଯେବଣ ଭକ୍ତିଯୋଗ ମୁହିଁ । ଉଦ୍ଧବ ପୂର୍ବେ ଅଛି କହି ॥ ୧୦୨
ତହିଁରେ ମୋତେ ବାରମ୍ବାର । ଭଜଇ ଯଉଁ ମୁନିବର ॥ ୧୦୩
କରନ୍ତେ ମୁଁ ତା' ହୃଦେ ବାସ । ହୃଦ୍‌ଗତ କାମ ହୋଏ ନାଶ ॥ ୧୦୪
୩୦ ଅଖିଳ-ଆତ୍ମା ମୁଁ ଈଶ୍ୱର । ମୋତେ କରନ୍ତେ ସାକ୍ଷାଦ୍‌କାର ॥ ୧୦୫
ହୃଦୟଗ୍ରନ୍ଥି ଭିନ୍ନ ହୋଇ । ସମସ୍ତ ସଂଶୟ ଛିଡ଼ଇ ॥ ୧୦୬
ଯେତେକ ପୂର୍ବ କର୍ମମାନ । କ୍ଷୀଣ ହୁଅନ୍ତି ସେ ବହନ ॥ ୧୦୭
୩୧ ସେହେତୁ ଯେ ମୋ' ଭକ୍ତିଯୁତ । ମୋ' ଠାରେ ଦେଇ ନିଜ ଚିତ୍ତ ॥ ୧୦୮
ଏମନ୍ତ ଯୋଗୀ ଜନ ଯେହି । ଜ୍ଞାନ ବୈରାଗ୍ୟ ତାର ଦୁଇ ॥ ୧୦୯
ପ୍ରାୟଶଃ ଶ୍ରେୟର ସାଧନ । ନୁହନ୍ତି ଇହ ଲୋକେ ଘେନ ॥ ୧୧୦
୩୨ | ଯେ ହୋଏ କର୍ମମାନଙ୍କରେ । ତପସ୍ୟା-ଜ୍ଞାନ-ବୈରାଗ୍ୟରେ ॥ ୧୧୧
୩୩ | ଯୋଗରେ ଦାନରେ ଧର୍ମରେ । ତୀର୍ଥଯାତ୍ରା ବା ବ୍ରତାଦିରେ ॥ ୧୧୨
ସେ ସର୍ବ ମୋ' ଭକ୍ତିଯୋଗରେ । ମୋ ଭକ୍ତ ଲଭଇ ବେଗରେ ॥ ୧୧୩
ଇଚ୍ଛା ନ କରେ ଭକ୍ତଜନ । ଯେବେ ବାଞ୍ଛଇ ଅବା ମନ ॥ ୧୧୪
ସ୍ୱର୍ଗାପବର୍ଗ ମୋ' ସ୍ଥାନକୁ । ଯା' ବାଞ୍ଛେ ଲଭଇ ତାହାକୁ ॥ ୧୧୫
୩୪ ଧୀମନ୍ତ ସାଧୁ ଅନୁଦିନ । ମୋର ଏକାନ୍ତୀ ଭକ୍ତ ଜନ ॥ ୧୧୬
ଯେ ମୁକ୍ତି ଭବ ନିବର୍ତ୍ତାଇ । ତାହା ମୁଁ ଯାଚିଦେଲେ ନେଇ ॥ ୧୧୭
କିଛି ଗ୍ରହଣ ନ କରଇ । କିବା କହିବା ନ ବାଞ୍ଛଇ ॥ ୧୧୮
୩୫ ଅପେକ୍ଷା ନ ଥିବାକୁ କାହିଁ । ଉତ୍କୃଷ୍ଟ ମହଦ୍ ଶ୍ରେୟ କେହି ॥ ୧୧୯
ସେ ହେତୁ ଅପେକ୍ଷାବିହୀନ । ପ୍ରାର୍ଥନାଶୂନ୍ୟ ଯଉଁ ଜନ ॥ ୧୨୦
ତାହାର ମୋ' ଭକ୍ତି ହୁଅଇ । ଯେଣୁ ସେ ନିଷ୍କାମ ଅଟଇ ॥ ୧୨୧
୩୬ ଯେ ଈଶ୍ୱରଙ୍କୁ ପାଇଛନ୍ତି । ଯେ ସାଧୁ, ସମ ଯାଙ୍କ ମତି ॥ ୧୨୨
ଏକାନ୍ତ ଭକ୍ତ ଯେ ମୋ' ଠାରେ । ଏମନ୍ତ ଯେତେ ଛନ୍ତି ନରେ ॥ ୧୨୩
ବିହିତ-ପ୍ରତିଷିଦ୍ଧ[1] ନେଇ । ଯେ ପୁଣ୍ୟପାପାଦି ହୁଅଇ ॥ ୧୨୪

---
୧. ପ୍ରତିଷିଦ୍ଧ = ନିଷିଦ୍ଧ।

| | | | |
|---|---|---|---|
| | ସେ ଗୁଣମାନ ତାହାଙ୍କୁ ହିଁ | କିଂଚିତମାତ୍ରେ ନ ଲାଗଇ | ।। ୧୨୫ |
| ୩୭ | ଉଦ୍ଧବ ଏ ରୂପରେ ହୋଇ | ମୁଁ ଯାହା ଅଛି ଆଜ୍ଞା ଦେଇ | ।। ୧୨୬ |
| | ସେ ମାର୍ଗେ ରହନ୍ତି ଯେ ଜନ | ଯେ ମାର୍ଗ ମୋ' ପ୍ରାପ୍ତିସାଧନ | ।। ୧୨୭ |
| | ପ୍ରକୃତିକାଳାଦିବିହୀନ | ମୋ' ସ୍ଥାନ ଲଭନ୍ତି ସେ ଜନ | ।। ୧୨୮ |
| | ପରମ ବ୍ରହ୍ମ ବୋଲି ଯତି | ଯେବଣ ସ୍ଥାନକୁ ବୋଲନ୍ତି | ।। ୧୨୯ |
| | ଉଦ୍ଧବ-ଶ୍ରୀକୃଷ୍ଣ ସଙ୍ଗରେ | ସମ୍ବାଦ ଶ୍ରୀଏକାଦଶରେ | ।। ୧୩୦ |
| | ଭଣଇ ଦୀନବନ୍ଧୁ ଦ୍ୱିଜ | ଚିନ୍ତି ଶ୍ରୀକୃଷ୍ଣପାଦାମ୍ବୁଜ | ।। ୧୩୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଜ୍ଞାନକର୍ମଭକ୍ତିଯୋଗବର୍ଣ୍ଣନଂ ନାମ ବିଂଶୋଽଧ୍ୟାୟଃ ।।

## ଏକବିଂଶ ଅଧ୍ୟାୟ

ଜୟତି ସ୍ୱପରାନନ୍ଦଃ ପରାନନ୍ଦନୃକେଶରୀ ।
ଯତ୍‌କୃପାଲବଲେଶେନ ଶ୍ରୀଧରଃ ସତ୍‌କୃତିଃ କୃତୀ ।। ୧
ଈକ୍ଷନ୍ତାମିଚ୍ଛୟା ସନ୍ତଃ କ୍ଷମନ୍ତାଂ ମମ ସାହସମ୍ ।
ମୟା ହି ସ୍ୱୀୟବୋଧାୟ କୃତମେତନ୍ନ ଗର୍ବତଃ ।। ୨
ଏକବିଂଶେ କ୍ରିୟାଜ୍ଞାନଭକ୍ତିଷ୍ୱନଧିକାରିଣାମ୍ ।
କାମିନାଂ ଦ୍ରବ୍ୟଦେଶାଦିଗୁଣଦୋଷାଃ ପ୍ରପଞ୍ଚିତାଃ ।। ୩

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୧ | କୃଷ୍ଣ କହନ୍ତି ହସି ପୁଣି | ଉଦ୍ଧବ ଶୁଣ ସାରବାଣୀ | ।। ୧ |
| | ଜ୍ଞାନ-ଭକତି-କ୍ରିୟା ବୋଲି | ଯେ ମାର୍ଗମାନ ମୁଁ କହିଲି | ।। ୨ |
| | ସେ ମାର୍ଗ ଛାଡ଼ି ଯଉଁ ନରେ | ଅସ୍ଥିର ଇନ୍ଦ୍ରିୟଙ୍କ ଦ୍ୱାରେ | ।। ୩ |
| | ତୁଚ୍ଛ କାମଙ୍କୁ ହିଁ ଭଜନ୍ତି | ନାନାଯୋନିକୁ ସେ ପାଆନ୍ତି | ।। ୪ |
| ୨ | ନିଜ ନିଜ ଅଧିକାରରେ | ଯେବଣ ନିଷ୍ଠା ଜନ କରେ | ।। ୫ |
| | ଗୁଣ ହୋଇଣ ସେ ବିଖ୍ୟାତ | ଦୋଷ ସେ ହେଲେ ବିପରୀତ | ।। ୬ |
| | ଏ ଗୁଣଦୋଷବେନିଙ୍କର | ଅଟଇ ନିଶ୍ଚୟପ୍ରକାର | ।। ୭ |
| ୩ | ସମସ୍ତ ଦ୍ରବ୍ୟମାନ ଯେତେ | ଏ ସର୍ବେ ସମାନ ହୁଅନ୍ତେ | ।। ୮ |
| | ଦ୍ରବ୍ୟସନ୍ଦେହ[୧] ପାଇଁ ଜନ | ଶୁଦ୍ଧି-ଅଶୁଦ୍ଧିକି ବିଧାନ | ।। ୯ |
| | କରିବ ଗୁଣ-ଦୋଷ ଆର | ଶୁଭ-ଅଶୁଭକୁ ଆବର | ।। ୧୦ |
| | ଉଦ୍ଧବ ଧର୍ମନିମିତ୍ତରେ | ବ୍ୟବହାରାର୍ଥେ ଯାତ୍ରାର୍ଥରେ | ।। ୧୧ |

୧. ଯୋଗ୍ୟ ବା ଅଯୋଗ୍ୟ — ଏହି ସଂଦେହଦ୍ୱାରା ସ୍ୱାଭାବିକ ପ୍ରବୃତ୍ତିର ପ୍ରତିବନ୍ଧ ପାଇଁ ।

| | | | | | |
|---|---|---|---|---|---|
| ୪ | ଧର୍ମଭାରକୁ ଛନ୍ତି ବହି | । ଏମନ୍ତ କର୍ମଜଡ଼ ଯେହି | ।। | ୧୨ |
| | ତଦର୍ଥେ କଲି ମୁଁ ପ୍ରଚାର | । ମନ୍ୱାଦିରୂପେ ଏ ଆଚାର | ।। | ୧୩ |
| ୫ | ପୃଥିବୀ ଜଳ ହୁତାଶନ | । ଯେ ପୁଣ ଆକାଶ ପବନ | ।। | ୧୪ |
| | ଏ ପଞ୍ଚ ଧାତୁମାନେ ସ୍ୱୟେଂ | । ବ୍ରହ୍ମାରୁ ସ୍ଥାବରାଦି ଯାଏଁ | ।। | ୧୫ |
| | ସମସ୍ତ ପ୍ରାଣୀମାନଙ୍କର | । ଘଟଣା କରନ୍ତି ଶରୀର | ।। | ୧୬ |
| | ସେ ରୂପେ ଆତ୍ମାରେ ସଂତତ | । ଏ ହୋଇଅଛନ୍ତି ସଂଯୁତ | ।। | ୧୭ |
| ୬ | ସମାନ ସମସ୍ତ ଦେହରେ | । ବେଦଟି ବିଷମ ଭାବରେ | ।। | ୧୮ |
| | ବର୍ଣ୍ଣ-ଆଶ୍ରମ ଆଦିରୂପ | । କଳ୍ପନା କରେ ନାମରୂପ | ।। | ୧୯ |
| | ପ୍ରାଣିମାନଙ୍କର ସଂସାରେ | । ପ୍ରବୃତ୍ତିନିୟମନଦ୍ୱାରେ | ।। | ୨୦ |
| | ଧର୍ମାଦି ପୁରୁଷାର୍ଥ ଯେହି | । ସେମାନଙ୍କର ସିଦ୍ଧିପାଇଁ | ।। | ୨୧ |
| ୭ | ଦେଶକାଳାଦି ଭାବଙ୍କର | । ବ୍ରୀହ୍ୟାଦି ସମସ୍ତ ଦ୍ରବ୍ୟର | ।। | ୨୨ |
| | କର୍ମମାନଙ୍କର ନିଶ୍ଚିତେ | । ଉଦ୍ଭବ ସଂକୋଚନିମିତ୍ତେ | ।। | ୨୩ |
| | ଯେ ଅଟେ ଗୁଣଦୋଷ ଦୁଇ | । ବିଧାନ କଲି ତାହା ମୁହିଁ | ।। | ୨୪ |
| ୮ | ଯହିଁରେ କୃଷ୍ଣସାର[୧] ନାହିଁ | । ସେ ଦେଶ ଅଶୁଦ୍ଧ ଅଟଇ | ।। | ୨୫ |
| | ବ୍ରାହ୍ମଣଭକ୍ତରେ ବର୍ଜିତ | । ଯେ ସେହି ଅଶୁଦ୍ଧ ଅତ୍ୟନ୍ତ | ।। | ୨୬ |
| | ଯହିଁରେ ଛନ୍ତି କୃଷ୍ଣସାରେ | । ଅଛନ୍ତି ବୀର ସାଧୁ ନରେ | ।। | ୨୭ |
| | କୀକଟ ହେଲେହେଁ ସେ ଦେଶ | । ବିଶୁଦ୍ଧ ଅଟଇ ବିଶେଷ | ।। | ୨୮ |
| | ଏ ବେନି ଯହିଁ ଅପ୍ରସିଦ୍ଧ | । ସେ ଅଙ୍ଗ-ବଙ୍ଗାଦି[୨] ଅଶୁଦ୍ଧ | ।। | ୨୯ |
| | ସେରୂପେ ଯେ ଦେଶ ଲବଣ | । ଅଶୁଦ୍ଧ ଅସଂସ୍କୃତ[୩] ପୁଣ | ।। | ୩୦ |
| ୯ | ଦ୍ରବ୍ୟସଂପତ୍ତିବଶରୁ ହିଁ | । ସ୍ୱତଃ ବା କର୍ମଯୋଗ୍ୟ ଯେହି | ।। | ୩୧ |
| | ସେ କାଳ ଅଟେ ଗୁଣବନ୍ତ | । ପୂର୍ବାହ୍ନ ଆଦି ଯେ ବିଦିତ | ।। | ୩୨ |
| | ଦ୍ରବ୍ୟ-ଅଲାଭହେତୁ ଅବା | । ରାଷ୍ଟ୍ରବିପ୍ଳବ ଆଦିରୁ ବା | ।। | ୩୩ |
| | ଯହିଁରେ କର୍ମ ନିବର୍ତ୍ତଇ | । ସୂତକାଦିରେ ପୁଣ ଯେହି | ।। | ୩୪ |
| | କାଳ ଦଶାହାଦିଲକ୍ଷଣ | । କର୍ମ-ଅଯୋଗ୍ୟ ନିରୂପଣ | ।। | ୩୫ |
| | ସେ କାଳ ଦୋଷରୂପେ ଖ୍ୟାତ | । ଯେଣୁ ସେ ଅଶୁଦ୍ଧ ଅତ୍ୟନ୍ତ | ।। | ୩୬ |
| ୧୦ | ଦ୍ରବ୍ୟର ଶୁଦ୍ଧି ଜଳାଦିରେ | । ଅଶୁଦ୍ଧି ମଳମୂତ୍ରାଦିରେ | ।। | ୩୭ |
| | ଶୁଦ୍ଧ-ଅଶୁଦ୍ଧ ଘେନି ଯହିଁ | । ସନ୍ଦେହ ଦ୍ରବ୍ୟେ ଉପୁଜଇ | ।। | ୩୮ |
| | ଯେବେ ବ୍ରାହ୍ମଣ ଶୁଦ୍ଧ କହେ | । ତେବେ ସେ ଶୁଦ୍ଧଟି ନିଶ୍ଚୟେ | ।। | ୩୯ |
| | ଅଶୁଦ୍ଧ ବୋଲି କହେ ଯେବେ | । ବୋଲାଏ ଅଶୁଦ୍ଧ ସେ ତେବେ | ।। | ୪୦ |
| | ପୁଷ୍ପାଦି ଦ୍ରବ୍ୟର ବହନ | । ପ୍ରୋକ୍ଷଣ ଆଦିରେ ଶୋଧନ | ।। | ୪୧ |

୧. ହରିଣ । ୨. ଆଦିଶବ୍ଦ ''କଳିଙ୍ଗ'' ଅର୍ଥକ । ୩. ସମ୍ମାର୍ଜନାଦିଶୂନ୍ୟ; ମ୍ଳେଚ୍ଛବହୁଳ ।

ଆଘ୍ରାଣ ଆଦି କଲେ ନେଇ । ସେ ଦ୍ରବ୍ୟ ଅଶୁଦ୍ଧ ବୋଲାଇ ।। ୪୨
[1]ନବୋଦକାଦି ଦ୍ରବ୍ୟର ହିଁ । [2]ଦଶାହାଦିରେ ଶୁଦ୍ଧି କହି ।। ୪୩
ବିପରୀତ କାଳେ ଅଶୁଦ୍ଧି । ଯେହ୍ନେ ପର୍ଯ୍ୟୁଷିତ ଅନ୍ନାଦି ।। ୪୪
ବାପୀତଡ଼ାଗାଦିର ନୀର । ଯେବେ ଅନ୍ତ୍ୟଜ ଆଦିଙ୍କର ।। ୪୫
ସକାଶୁଁ ହୋଏ ଉପହତ । ତେବେ ତା' ଶୁଦ୍ଧ୍ୟଶୁଦ୍ଧି ଖ୍ୟାତ ।। ୪୬
କରାଏ ଜଳାଶୟାଦିର । ମହତ୍ତ୍ୱ ଅଳ୍ପତ୍ୱ-ବିଚାର ।। ୪୭
୧୧ ସୂର୍ଯ୍ୟୋପରାଗ-ସୂତକାଦି । ତହିଁ ହୁଅଇ ଯେ ଅନ୍ନାଦି ।। ୪୮
ସମର୍ଥ ପ୍ରତି ତା' ଅଶୁଦ୍ଧ । ଅସମର୍ଥର ପ୍ରତି ଶୁଦ୍ଧ ।। ୪୯
ପୁତ୍ରଜନ୍ମାଦି ଅଶୌଚରେ । ଯେ ଜାଣେ ଦଶାହ-ବାହାରେ ।। ୫୦
ତାକୁ ଅଶୁଦ୍ଧି ନ ଲାଗଇ । ଦଶାହମଧ୍ୟେ ଯେ ଜାଣଇ ।। ୫୧
ତାହାକୁ ଲାଗଇ ଅଶୁଦ୍ଧି । ତହିଁକି ହେତୁ ଅଟେ ବୁଦ୍ଧି ।। ୫୨
ଜୀର୍ଣ୍ଣ ମଳିନ ବସ୍ତ୍ର ଆଦି । ଯାହାର ଅଛଇ ସମୃଦ୍ଧି ।। ୫୩
ତା' ପ୍ରତି ଅଟଇ ଅଶୁଦ୍ଧ । ଦରିଦ୍ର ପ୍ରତି ତାହା ଶୁଦ୍ଧ ।। ୫୪
ଏ ଦ୍ରବ୍ୟ ବଚନ ପ୍ରଭୃତି । ଦ୍ରବ୍ୟ-ଅଶୁଦ୍ଧିଦ୍ୱାରେ ନିତି ।। ୫୫
ଆତ୍ମାର୍ଥେ କରନ୍ତି ଯେ ପାପ । ତା' ଦେଶ ଅବସ୍ଥାନୁରୂପ ।। ୫୬
କରନ୍ତି ଉଚିତ ପ୍ରକାରେ । ନ ପୁଣ ସକଳ ସ୍ଥାନରେ ।। ୫୭
ତେଣୁଟି ନିର୍ଭୟ ଦେଶରେ । କରନ୍ତି ପାପ ଏ ନିର୍ଭରେ ।। ୫୮
ଚୌରାଦି-ଆକୁଳ ଯେ ପୁଣ । ସେ ଦେଶେ ପାପ ନୋହେ ଜାଣ ।। ୫୯
ତେସନ ରୋଗାଦିରହିତ । ଯୁବାଦି ଅବସ୍ଥା ଯେ ଖ୍ୟାତ ।। ୬୦
ତହିଁ ଏ ପାପକୁ କରନ୍ତି । ଯେ ବାଲ୍ୟ-ରୋଗ ଆଦି ସ୍ଥିତି ।। ୬୧
ତହିଁରେ ପୁଣ ପାପ ନୋହି । [3]ଏ ରୂପେ ସ୍ମୃତି ଅଛି କହି ।। ୬୨
୧୨ ଦାରୁ ଯେ ଗ୍ରହଚମସାଦି । ଅସ୍ଥି ଯେ ଗଜଦନ୍ତ ଆଦି ।। ୬୩
ତଇଳ ଘୃତ ଆଦି ରସ । ସୁବର୍ଣ୍ଣ ଆଦି ଯେ ତୈଜସ ।। ୬୪
ଯେ ଧାନ୍ୟ ତନ୍ତୁ ଯେ ବା ଚର୍ମ । ଯେ ଘଟ ଇଷ୍ଟକା କର୍ଦ୍ଦମ ।। ୬୫
ଏ ଆଦି ପାର୍ଥିବ ଦ୍ରବ୍ୟର । ଉଚିତ ଶୁଦ୍ଧିକୁ ଆବର ।। ୬୬
କାଳ ପବନ ଅଗ୍ନି ଜଳ । ମୃତ୍ତିକା ଏମାନେ କେବଳ ।। ୬୭
ଅଥବା ମିଳିତ ହୋଇଣ । ଉଦ୍ଭବ ହୁଅନ୍ତି କାରଣ ।। ୬୮
୧୩ ପୀଠଭାଜନ ବସ୍ତ୍ର ଆଦି । ଅମେଧ୍ୟ-ଲିପ୍ତ ହୋଏ ଯଦି ।। ୬୯

---

୧. କାଳେ ମେଘୋଦକଂ ଗ୍ରାହ୍ୟଂ ବର୍ଜ୍ୟଂ ତୁ ତ୍ର୍ୟହମେବ ହି ।
ଅକାଳେ ଦଶରାତ୍ରଂ ସ୍ୟାତ୍ ତତଃ ଶୁଦ୍ଧିର୍ବିଧୀୟତେ ।।

୨. ଦଶାହାଦି କାଳରେ ।

୩. ଦେଶଂ କାଳଂ ତଥାତ୍ମାନଂ ଦ୍ରବ୍ୟଂ ଦ୍ରବ୍ୟପ୍ରୟୋଜନମ୍ ।
ଉପପତ୍ତିମବସ୍ଥାଂ ଚ ଜ୍ଞାତ୍ୱା ଶୌଚଂ ପ୍ରକଳ୍ପୟେତ୍ ।। (ସ୍ମୃତି)

ତେବେ ତକ୍ଷଣ[୧] -କ୍ଷାରୋଦକ । ଅମ୍ଳାଦି ଯେ ଶୁଦ୍ଧିକାରକ ॥ ୭୦
ଦ୍ରବ୍ୟ ଅଛଇ, ତାହା ଦ୍ୱାରେ । ଗନ୍ଧ-ଲେପକୁ ପରିହରେ ॥ ୭୧
ସ୍ୱଗତ ମଳ ଛାଡ଼ି ଦେଇ । ନିଜ ସ୍ୱରୂପକୁ ଭଜଇ ॥ ୭୨
ଯେ ଅଟେ ତାହାର ଶୋଧକ । ଯେତିକିମାତ୍ର ଆବଶ୍ୟକ ॥ ୭୩
ସେତିକିମାତ୍ର ଦ୍ରବ୍ୟ ନେବ । ତହିଁରେ ଶୋଧନ କରିବ ॥ ୭୪
୧୪ ଅବସ୍ଥା ଯେ କୌମାର ଆଦି । ସଂସ୍କାର ଉପନୟନାଦି ॥ ୭୫
କର୍ମ ଯେ ସଂଧ୍ୟା-ଉପାସନ । ବନ୍ଦନ-ଦୀକ୍ଷାଦିଲକ୍ଷଣ ॥ ୭୬
ଯେ ସ୍ନାନ ଦାନ ତପ ଶକ୍ତି । ଏମାନ ଆବର ମୋ' ସ୍ମୃତି ॥ ୭୭
ଏହିମାନଙ୍କ ନିମିତ୍ତେଣ । କର୍ତ୍ତାର ଶୁଦ୍ଧି ହୋଏ ଜାଣ ॥ ୭୮
ସେ କର୍ତ୍ତା ଅହଂକାରଯୁତ । ଶୁଦ୍ଧି ତା' କାର୍ଯ୍ୟ-ଅନୁଗତ ॥ ୭୯
ଦ୍ୱିଜ[୨] ଏ ରୂପେ ଶୁଦ୍ଧ ହେବ । ବିହିତ କର୍ମ ଆଚରିବ ॥ ୮୦
୧୫ ସଦ୍‌ଗୁରୁ ମୁଖୁଁ ଯଥାବତ । ଅଙ୍ଗ-ଉପାଙ୍ଗାଦି[୩] ସହିତ ॥ ୮୧
ମନ୍ତ୍ରକୁ ଭଲେ ଜାଣିମା ହିଁ । ମନ୍ତ୍ରର ଶୁଦ୍ଧିଟି ଅଟଇ ॥ ୮୨
ମୋ' ଠାରେ କଲେ ସମର୍ପଣ । କର୍ମର ଶୁଦ୍ଧି ହୋଏ ପୁଣ ॥ ୮୩
ଦେଶ-କାଳ-ଦ୍ରବ୍ୟ-କର୍ତ୍ତାରେ । ମନ୍ତ୍ର-କର୍ମ ଏ ଷଡ଼ଙ୍କରେ ॥ ୮୪
ଶୁଦ୍ଧ ହୋଇଲେ ହୋଏ ଧର୍ମ । ବିପରୀତେ ହୋଏ ଅଧର୍ମ ॥ ୮୫
୧୬ କେଉଁଠି ଦୋଷ ହୋଏ ଗୁଣ । ବିଧିରେ ଗୁଣ ଦୋଷ ପୁଣ ॥ ୮୬
ଦାନର ଯେ ପ୍ରତିଗ୍ରହଣ । ଆପଦକାଳରେ ତା' ଗୁଣ ॥ ୮୭
ଅନାପଦରେ ତାହା ଦୋଷ । ନିଷିଦ୍ଧ ହେତୁରୁ ବିଶେଷ ॥ ୮୮
ପରଧର୍ମ ପରର ଗୁଣ । ନିଜର ତାହା ଦୋଷ ପୁଣ ॥ ୮୯
କୁଟୁମ୍ବତ୍ୟାଗାଦି ବ୍ୟାପାର । ଦୋଷ ହେଲେହେଁ ଗୃହସ୍ଥର ॥ ୯୦
ବିରକ୍ତପକ୍ଷେ ଦୋଷ ନୋହେ । ବିଧିବଳେ ତା' ଗୁଣ ହୋଏ ॥ ୯୧
ଏ ଗୁଣଦୋଷ ବେନିଙ୍କର । ଏକ ଅର୍ଥରେ ବଳିୟାର ॥ ୯୨
ଯେଉଁ ନିୟମ ଅଛି ସେହି । [୪]ବେନିଙ୍କ ଭେଦକୁ ବାଧଇ ॥ ୯୩
୧୭ ଯେ ସୁରାପାନାଦିଲକ୍ଷଣ । ସମାନ କର୍ମ ଆଚରଣ ॥ ୯୪
ସେ ଅପତିତମାନଙ୍କର । ହେଲେହେଁ ହେତୁ ପତନର ॥ ୯୫
ଜାତି ଅଥବା କର୍ମ ନେଇ । ଯେ ପୁଣ ପତିତ ଅଟଇ ॥ ୯୬

---

୧. କର୍ତ୍ତନ ପାଇଁ ବ୍ୟବହୃତ ଛୁରୀ ଆଦି ।

୨. ଦ୍ୱିଜ କହିଲେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ଏହି ତିନି ବର୍ଣ୍ଣକୁ ବୁଝାଏ । ମାତ୍ର ଏଠାରେ ''ଦ୍ୱିଜ'' ଶବ୍ଦ ଉପଲକ୍ଷଣମାତ୍ର । ଏଣୁ ଏହା ଶୂଦ୍ରାଦି ବର୍ଣ୍ଣକୁ ମଧ୍ୟ ବୁଝାଇବ ।

୩. ଅଙ୍ଗ, ଉପାଙ୍ଗ ଓ ବିନିଯୋଗ ସହିତ ଜଣା ଗଲେ ।

୪. ''ତଦ୍‌ଭିଦାମ୍'' ପାଠେ ଅନୁବାଦ ।
''ତଦ୍‌ବିଦାମ୍'' ପାଠେ ''ଜାଣିମା ଲୋକଙ୍କୁ ବାଧଇ'' ଅନୁବାଦ ହେବ ।

| | | | | |
|---|---|---|---|---|
| | ତାର ସେ ପାତକ ନୁହଇ | ଯେଣୁ ସେ ପତିତ ପୂର୍ବୁଁ ହିଁ | ॥ | ୯୭ |
| | ସେ ରୂପେ ସ୍ତିରୀସଙ୍ଗମ ହିଁ | ଗୃହସ୍ଥପକ୍ଷେ ଦୋଷ ନୋହି | ॥ | ୯୮ |
| | ବରଂ ତା' ପୂର୍ବରୁ ସ୍ୱୀକୃତ | [1]ଗୁଣ, ଶାସ୍ତ୍ରର ବିଧିମତ | ॥ | ୯୯ |
| | କିନ୍ତୁ ତା' ଯତିପକ୍ଷେ ଦୋଷ | ଯେସନେ ପୂର୍ବରୁ ପୁରୁଷ | ॥ | ୧୦୦ |
| | ଯଦି ଭୂଇଁରେ ଶୋଇଥାଇ | ତାର ପତନ ନ ଯୋଗାଇ | ॥ | ୧୦୧ |
| ୧୮ | ଯହିଁ ଯହିଁରୁ ନିବର୍ତ୍ତଇ | ତହିଁ ତହିଁରୁ ମୁକ୍ତ ହୋଇ | ॥ | ୧୦୨ |
| | ଏ ଶୁଭ ଧର୍ମ ପ୍ରାଣୀଙ୍କର | ବିଶୋକ-ମୋହ-ଭୟହର | ॥ | ୧୦୩ |
| ୧୯ | ତ୍ରିଗୁଣବଶୁଁ ପ୍ରାଣୀଙ୍କର | ବିଷୟାସକ୍ତି ନିରନ୍ତର | ॥ | ୧୦୪ |
| | ତହିଁରୁ ଜାତ ହୋଏ କାମ | କାମରୁ କଳହ ଜନମ | ॥ | ୧୦୫ |
| ୨୦ | ପୁଣି ସେ କଳିରୁ ତ୍ୱରିତ | ଅସହ୍ୟ କ୍ରୋଧ ହୋଏ ଜାତ | ॥ | ୧୦୬ |
| | କ୍ରୋଧକୁ ଅବିବେକ ପୁଣ | ହୁଅଇ ଅନୁଗତ ଜାଣ | ॥ | ୧୦୭ |
| | ବ୍ୟାପିନୀ ଚେତନା[2] ନରର | ସେ ଅବିବେକ କରେ ଦୂର | ॥ | ୧୦୮ |
| ୨୧ | ଚେତନା ହୁଅନ୍ତେ ବିନାଶ | ଉଦ୍ଧବ ସେ ଅଜ୍ଞ ପୁରୁଷ | ॥ | ୧୦୯ |
| | ଥିଲେ ସେ ନ ଥିଲା ପରାଏ | ତା' ପୁରୁଷାର୍ଥ ନାଶ ହୋଏ | ॥ | ୧୧୦ |
| | ବିଶେଷେ ଅଟଇ ମୂର୍ଚ୍ଛିତ | ମୃତସମାନ ସେ ବିଦିତ | ॥ | ୧୧୧ |
| ୨୨ | ଅଭିନିବେଶୁଁ ବିଷୟର | ଆତ୍ମାକୁ ପରକୁ ସେ ନର | ॥ | ୧୧୨ |
| | ନ ଜାଣେ ବୃକ୍ଷଜୀବିକାଏ. | ଯେ ବୃଥା ଜୀଇ ରହିଥାଏ | ॥ | ୧୧୩ |
| | ସେ ଅଟେ ମୂର୍ଚ୍ଛିତସମାନ | ଏଣୁ ଯେ ଭାତି[3]ପ୍ରାୟ ଜନ | ॥ | ୧୧୪ |
| | ନିଃଶ୍ୱାସ ମାରି ବର୍ତ୍ତିଥାଇ | ସେ ମୃତସମାନ ଅଟଇ | ॥ | ୧୧୫ |
| ୨୩ | ଅଗ୍ନିଷ୍ଟୋମରେ ସ୍ୱର୍ଗପ୍ରାପ୍ତି | ଏ ବେଦବାକ୍ୟ ଫଳଶ୍ରୁତି | ॥ | ୧୧୬ |
| | ପ୍ରାଣୀଙ୍କ ମୋକ୍ଷବିବକ୍ଷା[4]ରେ | ପ୍ରବୃତ୍ତିନିମିତ୍ତେ କର୍ମରେ | ॥ | ୧୧୭ |
| | ରୁଚିବା ଅର୍ଥରେ ସେ ବାଣୀ | ବେଦ କହିଛି ପରିମାଣି | ॥ | ୧୧୮ |
| | ଏ ନୋହେ ଶ୍ରେୟର ନିମିତ୍ତେ | ଯେସନେ ଔଷଧ ପିଆନ୍ତେ | ॥ | ୧୧୯ |
| | [5]ଦେବି ମୁଁ ଖଣ୍ଡଲଡ୍ଡୁକକୁ | ପିତା ବୋଲଇ କୁମରକୁ | ॥ | ୧୨୦ |
| ୨୪ | ପଶ୍ୱାଦି କାମମାନଙ୍କରେ | ବଳବୀର୍ଯ୍ୟାଦି ପ୍ରାଣଙ୍କରେ | ॥ | ୧୨୧ |
| | ପୁତ୍ରାଦି ସ୍ୱଜନଙ୍କ ଠାରେ | ପୁରୁଷ ଉତ୍‌ପତ୍ତିମାତ୍ରରେ | ॥ | ୧୨୨ |
| | ଆସକ୍ତ କରଇ ମାନସ | ସ୍ୱଭାବେ ହୋଇଣ ବିବଶ | ॥ | ୧୨୩ |
| | ଏମାନେ ସମସ୍ତେ ଆତ୍ମାର | [6]ହେତୁ ଅଟନ୍ତି ଅନର୍ଥର | ॥ | ୧୨୪ |
| ୨୫ | ଯେ [7]କାମମାର୍ଗରେ ଭ୍ରମନ୍ତି | ପରମସୁଖ ନ ଜାଣନ୍ତି | ॥ | ୧୨୫ |

୧. ''ଋତୌ ଭାର୍ଯ୍ୟାମୁପେୟାତ୍'' ଇତି ବିଧିଃ। ୨. କାର୍ଯ୍ୟାକାର୍ଯ୍ୟସ୍ମୃତି। ୩. କମାରର ହାପର।
୪. କହିବାର ଇଚ୍ଛା।
୫. ପିବ ନିମ୍ବଂ ପ୍ରଦାସ୍ୟାମି ଖଳୁ ତେ ଖଣ୍ଡଲଡ୍ଡୁକାନ୍।
ପିତ୍ରୈବମୁକ୍ତଃ ପିବତି ନ ଫଳଂ ତାବଦେବ ତୁ ॥ (ସ୍ୱାମୀ)
୬. ପରିଣାମରେ ଦୁଃଖର ହେତୁ ଅଟନ୍ତି। ୭. ଦେବାଦିଯୋନିରେ।

ବେଦ ଯା' କରଇ ବୋଧନ । ତାହା ହିଁ ଶ୍ରେୟ ଏ ବଚନ ॥ ୧୨୬
ଯେମାନେ କରନ୍ତି ବିଶ୍ୱାସ । ବୃକ୍ଷାଦିଯୋନିରେ ପ୍ରବେଶ ॥ ୧୨୭
କରନ୍ତି ପୁଣ ଯେଉଁମାନେ । ଏରୂପେ ସମସ୍ତେ ଏମାନେ ॥ ୧୨୮
ଏହାଙ୍କୁ ବେଦ କି ରୂପରେ । ପ୍ରବର୍ତ୍ତାଇବ ବିଷୟରେ ॥ ୧୨୯
୨୬ କୁବୁଦ୍ଧିଜନେ ଅତିଶୟ । ନ ଜାଣି ବେଦ ଅଭିପ୍ରାୟ ॥ ୧୩୦
ଯେ ଅବାନ୍ତରଫଳଗଣ । ତା'ର ପ୍ରରୋଚନାରେ ପୁଣ ॥ ୧୩୧
ରମଣୀୟ ଯେ ଫଳଶ୍ରୁତି । ତାହାକୁ ପରମ ବୋଲନ୍ତି ॥ ୧୩୨
କିନ୍ତୁ ବେଦଜ୍ଞ ବ୍ୟାସାଦିଏ । ତାହା ନ ବୋଲନ୍ତି ନିଶ୍ଚୟେ ॥ ୧୩୩
୨୭ କାମୀ କୃପଣ ତୃଷ୍ଣାକୁଳ । ପୁଷ୍ପ[1]କୁ ମଣନ୍ତି ଯେ ଫଳ[2] ॥ ୧୩୪
ଅଗ୍ନିସାଧ୍ୟ କର୍ମର ପ୍ରତି । ଅଭିନିବେଶହେତୁ ନିତି ॥ ୧୩୫
ଯା'ଙ୍କ ବିବେକ ହୋଏ ଲୁପ୍ତ । ଧୂମପଥ ହିଁ ଯାଙ୍କ ଅନ୍ତ ॥ ୧୩୬
ସେ ଯଜ୍ଞବନ୍ତ ଲୋକେ ପୁଣି । [3]ସ୍ୱଲୋକ ନ ପାରନ୍ତି ଜାଣି ॥ ୧୩୭
୨୮ ହୃଦୟମଧ୍ୟରେ ମୁଁ ସ୍ଥିତ । ମୋ' ଠାରୁ ଜାତ ଏ ଜଗତ ॥ ୧୩୮
ମୋ' ଠାରୁ ବ୍ୟତିରିକ୍ତ ହୋଇ । ଜଗତ ବୋଲି କିଛି ନାହିଁ ॥ ୧୩୯
ଉଦ୍ଧବ ପରମାତ୍ମା ମୁହିଁ । ମୋତେ ସେ ନ ଜାଣନ୍ତି କେହି ॥ ୧୪୦
[4]ହିଂସାର୍ଥ କର୍ମ ଯାହାଙ୍କର । ପ୍ରାଣତର୍ପଣେ ଯେ ତତ୍‌ପର ॥ ୧୪୧
ଯା'ଙ୍କ ନୟନ ତମୋବ୍ୟାପ୍ତ । ବସ୍ତୁ ହେଲେହେଁ ସନ୍ନିହିତ ॥ ୧୪୨
ତାହା ସେ ଯେହ୍ନେ ନ ଦେଖନ୍ତି । ତେହ୍ନେ ସେ ମୋତେ ନ ଜାଣନ୍ତି ॥ ୧୪୩
୨୯ ପରୋକ୍ଷ ମତକୁ ମୋହର । ନ ଜାଣି କରି ସେହୁ ନର ॥ ୧୪୪
ବିଷୟସୁଖରେ ତତ୍‌ପର । ମାଂସଭକ୍ଷଣେ ତାହାଙ୍କର ॥ ୧୪୫
ଯେବେ ହୋଇବ ଅନୁରାଗ । ଯଜ୍ଞରେ କରିବେ ତା' ଭୋଗ ॥ ୧୪୬
ସେ ହିଂସା ଆପଣା ନିମିତ୍ତେ । [5]କରିବେ ନାହିଁ କଦାଚିତେ ॥ ୧୪୭
୩୦ ତାଙ୍କର ବିହାର ହିଂସାରେ । ଆପଣା ସୁଖନିମିତ୍ତରେ ॥ ୧୪୮
ଯଜ୍ଞରେ ମାରି ପଶୁକୁଳ । ଦେବତା ପିତୃଙ୍କୁ ସେ ଖଳ ॥ ୧୪୯
ଆବର ଭୂତପତିମାନ । ପୂଜା କରନ୍ତି ତୋଷମନ ॥ ୧୫୦

---

୧. ଅବାନ୍ତରଫଳକୁ ।　　୨. ପରମଫଳ ।　　୩. ଆତ୍ମତତ୍ତ୍ୱ ।

୪. ''ନ ତଂ ବିଦାଥ ଯ ଇମା ଜଜାନ ଅନ୍ୟଦ୍ ଯୁଷ୍ମାକମନ୍ତରଂ ବଭୂବ ।
ନୀହାରେଣ ପ୍ରାବୃତା ଜଲ୍ପ୍ୟାଶ୍ଚ ଅସୁତୃପ ଉକ୍‌ଥଶାସଶ୍ଚରନ୍ତି ॥ (ଶ୍ରୁତିଃ)

୫. ଯଦ୍ୟପି ନିତ୍ୟକର୍ମ ଓ ନୈମିତ୍ତିକ କର୍ମରେ କାମବିଶେଷର ଅନୁବନ୍ଧ ନ ଥାଏ, ତଥାପି 'କର୍ମଣା ପିତୃଲୋକଃ' ଏହି ଶ୍ରୁତି ବାକ୍ୟଦ୍ୱାରା ସାମାନ୍ୟଭାବରେ ପିତୃଲୋକକାମନା ଓ ଅନ୍ତଃକରଣଶୁଦ୍ଧିକାମନା ଥାଏ । ସେଥିପାଇଁ କୁହାଯାଇଛି:-

''ନାକାମସ୍ୟ କ୍ରିୟା କାଚିଦ୍ ଦୃଶ୍ୟତେ ନେହ କର୍ହିଚିତ୍ ।
ଯଦ୍ ଯଦ୍ଧି କୁରୁତେ ଜନ୍ତୁସ୍ତତ୍ତଦ୍ କାମସ୍ୟ ଚେଷ୍ଟିତମ୍ ॥

୩୧ ଯେ ଶୁଣିମାକୁ ଅତିପ୍ରିୟ । ଅସତ୍ୟ ପୁଣି ସ୍ୱପ୍ନପ୍ରାୟ ।। ୧୫୧
ସେ ପରଲୋକକୁ ବାଞ୍ଛିଣ । ଏ ଲୋକେ ନାନା ସୁଖ ପୁଣ ।। ୧୫୨
ଅର୍ଜିତ ଅର୍ଥକୁ ସେ ନରେ । ତ୍ୟାଗ କରନ୍ତି କର୍ମଦ୍ୱାରେ ।। ୧୫୩
ଯେସନେ ବଣିଜାର ଜନ । ସିନ୍ଧୁଲଙ୍ଘନେ ବହୁଧନ ।। ୧୫୪
ଅର୍ଜିବି ବୋଲି ବାଞ୍ଛି ଚିତ୍ତ । ଗୃହରେ ଥାଏ ଯେତେ ବିତ୍ତ ।। ୧୫୫
ତା' ବ୍ୟୟ କରି କାହିଁ ନୋହେ । ଏମାନେ ତାହାଙ୍କର ପ୍ରାୟେ ।। ୧୫୬
୩୨ ଯେ ରଜଃ ସତ୍ତ୍ୱ ତମୋ ଗୁଣ । ତହିଁ ନିଷ୍ଠ ଯେ ନରଗଣ ।। ୧୫୭
ଯେ ରଜଃ ସତ୍ତ୍ୱ ତମୋ ଗୁଣ । ସେବି ଇନ୍ଦ୍ରାଦି ଦେବଗଣ ।। ୧୫୮
ସେମାନଙ୍କୁ ସେ ନରଗଣ । ପୂଜନ୍ତି ନିଜାନୁରୂପେଣ ।। ୧୫୯
କିନ୍ତୁ ମୁଁ ଅଟେ ଗୁଣାତୀତ । ମୋତେ ନ ପୂଜନ୍ତି ସାକ୍ଷାତ ।। ୧୬୦
ଯଦ୍ୟପି ଇନ୍ଦ୍ର ଆଦିଙ୍କର । [1]ପୂଜା ଅଟଇ ପୂଜା ମୋର ।। ୧୬୧
ତଥାପି ତାହା ଯଥାବତ । ନୁହଇ, ଭେଦ[2] ଯେଣୁ ସ୍ଥିତ ।। ୧୬୨
୩୩ ଦେବତାମାନଙ୍କୁ ଯଜ୍ଞରେ । ପୂଜି ଏ ଲୋକେ ଦେହାନ୍ତରେ ।। ୧୬୩
ପରଲୋକକୁ ଯାଇ ପୁଣ । ସ୍ୱର୍ଗରେ କରିବା ରମଣ ।। ୧୬୪
ଆସିଣ ସେ ଭୋଗ ଅନ୍ତରେ । ଜନ୍ମିବା ଉତ୍ତମ କୁଳରେ ।। ୧୬୫
ଉତ୍ତମ ଗୃହମାନଙ୍କରେ । ରହିବା ପୁଣ ଏ ଲୋକରେ ।। ୧୬୬
୩୪ ବେଦର ଏମନ୍ତ ରୂପରେ । ପୁଷ୍ପିତ ବାକ୍ୟମାନଙ୍କରେ ।। ୧୬୭
ଆକ୍ଷିପ୍ତ ଚିତ୍ତ ଯାହାଙ୍କର । ଗର୍ବୀ ଅଟନ୍ତି ଯେ ଆବର ।। ୧୬୮
ସେ ସ୍ତବ୍‌ଧପ୍ରାଣିମାନଙ୍କୁ ହିଁ । ମୋ' ବାର୍ତ୍ତାମାନ ନ ରୁଚଇ ।। ୧୬୯
ମୋ' ଠାରେ ଭାବ ନ କରନ୍ତି । ଏଣୁ ସେ ସଂସାରୀ ହୁଅନ୍ତି ।। ୧୭୦
୩୫ କର୍ମ-ବ୍ରହ୍ମ-ଦେବତା ଘେନି । ବେଦେ ଅଛଇ କାଣ୍ଡ ତିନି ।। ୧୭୧
ତିନି କାଣ୍ଡର ଦ୍ୱାରେ କରି । "ଆତ୍ମା ହିଁ ବ୍ରହ୍ମ ନ ସଂସାରୀ" ।। ୧୭୨
ବେଦ ଏ-ବିଷୟ ପରକ । ଋଷିଏ[3] ଅଛନ୍ତି ଯେତେକ ।। ୧୭୩
ଏ କଥା ପରୋକ୍ଷ ରୂପେଣ । ସେମାନେ କରନ୍ତି ବଖାଣ ।। ୧୭୪
ପରୋକ୍ଷ ବାକ୍ୟ ଅତିଶୟ । [4]ଯେଣୁ ଅଟଇ ମୋର ପ୍ରିୟ ।। ୧୭୫
୩୬ ଶବ୍ଦବ୍ରହ୍ମ ହିଁ ସୁଦୁର୍ବୋଧ । ସୂକ୍ଷ୍ମ-ସ୍ଥୂଳଭେଦେ ଦ୍ୱିବିଧ ।। ୧୭୬
ସୂକ୍ଷ୍ମଟି ସ୍ୱରୂପେ ଦୁର୍ଜ୍ଞେୟ । ପ୍ରାଣ-ଇନ୍ଦ୍ରିୟ ମନୋମୟ ।। ୧୭୭
ଯେ ପ୍ରାଣମୟ ସେ ପରାଖ୍ୟ । ମନୋମୟଟି ପଶ୍ୟନ୍ତ୍ୟାଖ୍ୟ[5] ।। ୧୭୮

---

୧. ଇନ୍ଦ୍ର ଆଦି ଦେବତା ମୋର ଅଂଶ ହୋଇଥିବା ହେତୁ ।
୨. ଭେଦଦର୍ଶନ । ୩. ମନ୍ତ୍ର ବା ମନ୍ତ୍ରଦ୍ରଷ୍ଟା ।
୪. ପରୋକ୍ଷ ଭାଷାର ଅଭିପ୍ରାୟ ହେଉଛି, ଏହି ଯେ ସମସ୍ତେ ଏ ବିଷୟର ଅଧିକାରୀ ନୁହନ୍ତି । ଅନ୍ତଃକରଣ ଶୁଦ୍ଧ ହେଲେ ହିଁ ଏ ବିଷୟ ବୁଝା ପଡ଼େ । ଯାହାଙ୍କର ଅନ୍ତଃକରଣ ଶୁଦ୍ଧ ନ ହୋଇଛି, ସେମାନେ ବୃଥା କର୍ମତ୍ୟାଗଦ୍ୱାରା ଭ୍ରଷ୍ଟ ହୁଅନ୍ତି ।
୫. ପଶ୍ୟନ୍ତୀ + ଆଖ୍ୟ

| | | | | |
|---|---|---|---|---|
| | ମଧ୍ୟମାଖ୍ୟ ଇନ୍ଦ୍ରିୟମୟ | । ତହିଁ ପ୍ରଧାନ ବାଗିନ୍ଦ୍ରିୟ | ॥ | ୧୭୯ |
| | ସମଷ୍ଟିପ୍ରାଣ-ଆଦିମୟ | । ସେ ନିର୍ବିଶେଷଟି ନିଶ୍ଚୟ | ॥ | ୧୮୦ |
| | ଦେଶ-କାଳ ଦୃଷ୍ଟିରୁ ଯେଣୁ | । ନୁହଇ ପରିଚ୍ଛିନ୍ନ, ତେଣୁ | ॥ | ୧୮୧ |
| | ସେ ଅଟେ ଅନନ୍ତ ଅପାର | । ଅର୍ଥ ବିଚାରେ ହେଁ ଗମ୍ଭୀର | ॥ | ୧୮୨ |
| | ଏଣୁ ସମୁଦ୍ରପ୍ରାୟେ ତହିଁ | । [1]ମତିପ୍ରବେଶ ନ ଯୋଗାଇ | ॥ | ୧୮୩ |
| ୩୭ | ମୋହର ପରିଚ୍ଛେଦ ନାହିଁ | । ଅନନ୍ତଶକ୍ତି ବ୍ରହ୍ମ ମୁହିଁ | ॥ | ୧୮୪ |
| | ମୁଁ ଅନ୍ତର୍ଯାମୀରୂପେ ଥାନ୍ତେ | । ଅନ୍ତରେ ଶବ୍ଦ ପ୍ରବର୍ତ୍ତାନ୍ତେ | ॥ | ୧୮୫ |
| | ନାଦରୂପରେ ସର୍ବଭୂତେ | । ସେ ବ୍ୟାପିଅଛି ଅବିରତେ | ॥ | ୧୮୬ |
| | କମଳନାଳରେ ଯେସନ | । ସୂତ୍ର ହୋଇଛି ବିଦ୍ୟମାନ | ॥ | ୧୮୭ |
| ୩୮ | ହିରଣ୍ୟଗର୍ଭସ୍ୱରୂପରେ | । ମୁଁ ପ୍ରବର୍ତ୍ତାନ୍ତେ ମାନସରେ | ॥ | ୧୮୮ |
| | ସମସ୍ତ ବର୍ଣ୍ଣଙ୍କୁ ଘେନିଣ | । ହୃଦୟୁଁ ବାହାର ହୋଇଣ | ॥ | ୧୮୯ |
| | ନାଦରୂପରେ ମୁଖଦ୍ୱାରେ | । ପ୍ରକଟ ହୁଅଇ ବାହାରେ | ॥ | ୧୯୦ |
| | ଯେସନେ ଉର୍ଣ୍ଣନାଭ ଜନ୍ତୁ | । ହୃଦୟୁଁ ଜାତ କରି ତନ୍ତୁ | ॥ | ୧୯୧ |
| | ମୁଖେ ତା' କରଇ ବାହାର | । ସେ ରୂପେ ଏହି ସମାଚାର | ॥ | ୧୯୨ |
| ୩୯ | ତ୍ରିବେଦମୂର୍ତ୍ତି ଅଟେ ଯାର | । ଅମୃତମୟ ଯା' ଶରୀର | ॥ | ୧୯୩ |
| ୪୦ | ସେ ପ୍ରଭୁ ବୃହତୀ[2] କି ସ୍ୱୟେଂ | । ସର୍ଜି ସଂହାରଇ ନିଶ୍ଚୟେ | ॥ | ୧୯୪ |
| | ଯହିଁ ଅଛି ମାର୍ଗ ବହୁତ | । ହୃଦ୍‌ଗତ ଓଁକାରୁ ବ୍ୟକତ | ॥ | ୧୯୫ |
| | ଯେ କାଦି[3] ପଞ୍ଚବର୍ଗସ୍ପର୍ଶ | । ଅକାରାଦି ସ୍ୱର ଷୋଡ଼ଶ | ॥ | ୧୯୬ |
| | ଉଷ୍ମା ଯେ 'ଶଷସହ' ମାନ | । ଅନ୍ତଃସ୍ଥ 'ଯରଳବ' ଆନ | ॥ | ୧୯୭ |
| | ଏଣେ ଯେ ଅଟଇ ଭୂଷିତ | । ଯା' ପାର ଅଟେ ଅପ୍ରମିତ | ॥ | ୧୯୮ |
| | ଯହିଁ ଅକ୍ଷର ଚାରି ଚାରି | । ଅଧିକ ରୂପରେ ପ୍ରଚରି | ॥ | ୧୯୯ |
| | ଏମନ୍ତ ଛନ୍ଦମାନଙ୍କରେ | । ବିଚିତ୍ର ବହୁତ ଭାଷାରେ | ॥ | ୨୦୦ |
| | ଯେବଣ ବୃହତୀ ବିତତ[4] | । ତା' ସର୍ଜି ସ୍ୱୟେଂ କରେ ହତ | ॥ | ୨୦୧ |
| ୪୧ | ଗାୟତ୍ରୀ ଉଷ୍ଣିକ୍ ଅନୁଷ୍ଟୁଭ | । ବୃହତୀ ପଂକ୍ତି ଯେ ତ୍ରିଷ୍ଟୁଭ | ॥ | ୨୦୨ |
| | ଜଗତୀ ଅତିଜଗତୀ ହିଁ | । ଅତ୍ୟଷ୍ଟି ଅତିବିରାଟ୍ ଯେହି | ॥ | ୨୦୩ |
| | ଏ ଆଦି ଛନ୍ଦଙ୍କରେ ଅତି | । ସଂଯୁତ ଅଟେ ସେ ବୃହତୀ | ॥ | ୨୦୪ |

---

୧. ''ଚତ୍ୱାରି ବାକ୍‌ପରିମିତା ପଦାନି, ତାନି ବିଦୁର୍ବ୍ରାହ୍ମଣା ଯେ ମନୀଷିଣଃ ।
ଗୁହା ତ୍ରୀଣି ନିହିତା ନେଙ୍ଗୟନ୍ତି, ତୁରୀୟଂ ବାଚୋ ମନୁଷ୍ୟା ବଦନ୍ତି ।'' (ଶ୍ରୁତିଃ)
ଅର୍ଥାତ୍ ଶବ୍ଦବ୍ରହ୍ମର ଚତୁର୍ଧା ରୂପ ଅଛି । ସେହି ଚତୁର୍ଧା ରୂପକୁ ଅନ୍ତର୍ଦୃଷ୍ଟିସଂପନ୍ନ ବ୍ୟକ୍ତିମାନେ ହିଁ ଜାଣନ୍ତି । ଅନ୍ୟମାନେ ଜାଣିପାରନ୍ତି ନାହିଁ । ଯେହେତୁ ଦେହମଧ୍ୟରେ ଥିବା ତିନୋଟି ରୂପ ନିଜର ସ୍ୱରୂପ ପ୍ରକାଶ କରନ୍ତି ନାହିଁ, ଏଣୁ ଶବ୍ଦ-ବ୍ରହ୍ମର କେବଳ ଚତୁର୍ଥ ରୂପଟିକୁ ମନୁଷ୍ୟମାନେ କହନ୍ତି; ମାତ୍ର ତାର ତତ୍ତ୍ୱ ଜାଣନ୍ତି ନାହିଁ ।

୨. ବୈଖର୍ଯ୍ୟାଖ୍ୟା ବେଦବାଣୀ ।　　୩. କକାରାଦି ।　　୪. ବିସ୍ତୃତ ।

| | | | | |
|---|---|---|---|---|
| ୪୨ | [୧]ବିଧାନ କରଇ କଅଣ | ପ୍ରକାଶ କି କରଇ ପୁଣ | ॥ | ୨୦୫ |
| | କରିଣ କି ଅନୁବାଦକୁ | କହଇ ନିଷେଧ ଅର୍ଥକୁ | ॥ | ୨୦୬ |
| | ଏମନ୍ତ ରୂପେ ବୃହତୀର[୨] | ହୃଦୟ ଜାଣିମାକୁ ନର | ॥ | ୨୦୭ |
| | ମୋର ବିହୁନେ ଆଉ ଏହି | ସଂସାରମଧ୍ୟେ କେହି ନାହିଁ | ॥ | ୨୦୮ |
| ୪୩ | ଯଜ୍ଞରୂପେ ବେଦବଚନ | ମୋତେ ହିଁ କରଇ ବିଧାନ | ॥ | ୨୦୯ |
| | ସେ ସେହି ଦେବତାରୂପେଣ | ମୋତେ କରଇ ପ୍ରକାଶନ | ॥ | ୨୧୦ |
| | [୩]ଆକାଶ ଆଦି ଯେ ଭୁବନ | ପ୍ରଥମେ ଆରୋପ କରିଣ | ॥ | ୨୧୧ |
| | ପଛରେ ନିଷେଧ କରଇ | ସେ ପୁଣ ଅଟଇଟି ମୁହିଁ | ॥ | ୨୧୨ |
| | ମୋ'ଠାରୁ ଭିନ୍ନ ସେ ନୁହଇ | ଏ ରୂପେ ବେଦ ଅଛି କହି | ॥ | ୨୧୩ |
| | ଏତିକି ସମସ୍ତ ବେଦର | ଅର୍ଥ ଅଟଇ ସମାଚାର | ॥ | ୨୧୪ |
| | ମୋତେ ଯା' ଆଶ୍ରୟ କରିଣ | ମୋ'ଠାରେ ଭେଦ ଆରୋପିଣ | ॥ | ୨୧୫ |
| | ଭେଦକୁ ମାୟାମାତ୍ର କହି | ତା'ର ଅନୁବାଦ କରଇ | ॥ | ୨୧୬ |
| | [୪]ଅନ୍ତେ ତା' କରିଣ ନିଷେଧ | ନିବର୍ତ୍ତେ ମୋତେ କରି ସିଦ୍ଧ | ॥ | ୨୧୭ |
| | ସୁଜନମାନଙ୍କର ହିତେ | ଆପଣା ବୁଦ୍ଧି ଅନୁମତେ | ॥ | ୨୧୮ |
| | ଶ୍ରୀଏକାଦଶ ଭାଗବତ | ଭାଷାପ୍ରବନ୍ଧେ କରି ଗୀତ | ॥ | ୨୧୯ |
| | ବ୍ରାହ୍ମଣ ଦୀନବନ୍ଧୁମନ | ହରଷ ହେଲା ଅନୁଦିନ | ॥ | ୨୨୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଦ୍ରବ୍ୟଦେଶାଦିଗୁଣଦୋଷ ବର୍ଣ୍ଣନଂ ନାମ ଏକବିଂଶୋଽଧ୍ୟାୟଃ ॥

## ଦ୍ୱାବିଂଶ ଅଧ୍ୟାୟ

ଦ୍ୱାବିଂଶେ ତତ୍ତ୍ୱସଂଖ୍ୟାନାମବିରୋଧବିଧୋଚ୍ୟତେ ।
ପୁଂପ୍ରକୃତ୍ୟୋର୍ବିବେକଶ୍ଚ ଜନ୍ମମୃତ୍ୟୁବିଧାଦି ଚ ॥ ୧

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧ | ଉଦ୍ଧବ କହେ ଯୋଡ଼ି କର | ହେ ପ୍ରଭୋ ! ଦେବଙ୍କ ଈଶ୍ୱର[୫] | ॥ | ୧ |
| | ଋଷିଏ ବହୁତ ରୂପେଣ | କଲେ ତତ୍ତ୍ୱର ନିରୂପଣ | ॥ | ୨ |

୧. କର୍ମକାଣ୍ଡରେ ବିଧିବାକ୍ୟଦ୍ୱାରା ବିଧାନ ହୁଏ, ଦେବତାକାଣ୍ଡରେ ମନ୍ତ୍ରବାକ୍ୟଦ୍ୱାରା ଦେବତାମାନଙ୍କର ବର୍ଣ୍ଣନା ହୁଏ ଏବଂ ଜ୍ଞାନକାଣ୍ଡରେ ଅନୁବାଦପୂର୍ବକ ନିଷେଧ କରାଯାଏ ।

୨. ବୃହତୀର = ଶ୍ରୁତିର ।

୩. ''ତସ୍ମାଦ୍ ବା ଏତସ୍ମାଦ୍ ଆତ୍ମନଃ ଆକାଶଃ ସଂଭୂତଃ ।'' (ଶ୍ରୁତିଃ)

୪. ''ନେହ ନାନାସ୍ତି କିଂଚନ'' ଇତି ଶ୍ରୁତିଃ ।

୫. 'ଦେବେଶ' ଇତି ପାଠେ । 'ବିଶ୍ୱେଶ' ପାଠ ହେଲେ 'ଜଗତ ଈଶ୍ୱର' ବା 'ବିଶ୍ୱର ଈଶ୍ୱର' ଅନୁବାଦ ହେବ ।

| | | | | | |
|---|---|---|---|---|---|
| | ତହିଁ ମଧ୍ୟରେ ଅବା କେତେ | । ପ୍ରଚାର ହୋଇଛି ଜଗତେ | ।। | ୩ |
| | ତ୍ରି ପାଞ୍ଚ ନବ ଏକାଦଶ | । ଏ ରୂପେ ତତ୍ତ୍ୱ ଅଷ୍ଟାବିଂଶ | ।। | ୪ |
| | କହି ଅଛନ୍ତି ମୋତେ ପୁଣ | । ଏବେ ତା' କରିଛି ଶ୍ରବଣ | ।। | ୫ |
| ୨ | କେହି ବୋଲନ୍ତି ଷଡ଼୍‌ବିଂଶ | । ଅପରେ ବୋଲନ୍ତି ପଚିଶ | ।। | ୬ |
| | କେ ସପ୍ତ ନବ ଷଟ କେହି | । କେ ଚାରି ଏକାଦଶ କେହି | ।। | ୭ |
| | କେ ସପ୍ତଦଶ କେ ଷୋଡ଼ଶ | । ବୋଲନ୍ତି କେହୁ ତ୍ରୟୋଦଶ | ।। | ୮ |
| ୩ | ଏ ରୂପେ ତତ୍ତ୍ୱମାନଙ୍କର | । ହୋଇଚି ନାନାତ୍ୱ ବିଚାର | ।। | ୯ |
| | ଋଷିଏ ତତ୍ତ୍ୱକୁ କହନ୍ତେ | । କହନ୍ତି ଭିନ୍ନ ଭିନ୍ନ ମତେ | ।। | ୧୦ |
| | ଯେଉଁ ପ୍ରୟୋଜନେ ଆମ୍ଭଙ୍କୁ | । ହେ ନିତ୍ୟମୂର୍ତ୍ତି କହ ତାକୁ | ।। | ୧୧ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୪ | କୃଷ୍ଣ କହନ୍ତି ଉଦ୍ଧବଙ୍କୁ | । ଯା' ପଚାରିଲ ଶୁଣ ତାକୁ | ।। | ୧୨ |
| | ବ୍ରାହ୍ମଣେ ବୋଲନ୍ତି ଯେମନ୍ତେ | । ଯୁକ୍ତ ଅଟନ୍ତି ସେ ସମସ୍ତେ | ।। | ୧୩ |
| | ସ୍ୱୀକାର କରି ମୋ' ମାୟାକୁ | । ସର୍ବତ୍ର ସକଳ ତତ୍ତ୍ୱକୁ | ।। | ୧୪ |
| | ଯେମନ୍ତ ରୂପେ ଯେ ବୋଲନ୍ତି | । ତହିଁ କେ ଦୁର୍ଘଟ ନୁହନ୍ତି | ।। | ୧୫ |
| ୫ | ତୁମ୍ଭେ ଯା' ବୋଲୁଛ ସେ ନୋହି | । ମୁଁ ଯା' ବୋଲୁଛି ସତ୍ୟ ସେହି | ।। | ୧୬ |
| | ଏମନ୍ତ ରୂପରେ ସଂସାରେ | । ବିବାଦ କରନ୍ତି ଯେ ନରେ | ।। | ୧୭ |
| | ତାଙ୍କ ବିବାଦକୁ କାରଣ | । ଦୁର୍ଲଂଘ୍ୟ ମୋର ଶକ୍ତିଗଣ[୧] | ।। | ୧୮ |
| ୬ | ଯେବଣ ଶକ୍ତିମାନଙ୍କର | । କ୍ଷୋଭରୁ ବକ୍ତା ଲୋକଙ୍କର | ।। | ୧୯ |
| | ବିଷୟେ ଭେଦ ଜାତ ହୋଇ | । ଲଭନ୍ତେ ଶମ ଦମ ଦୁଇ | ।। | ୨୦ |
| | ସେ ଭେଦ ହୋଏ ନିବର୍ତ୍ତିତ | । ତହିଁରୁ ବାଦ ହୋଏ ଶାନ୍ତ | ।। | ୨୧ |
| ୭ | ସମସ୍ତ ତତ୍ତ୍ୱମାନଙ୍କର | । ଅନୁପ୍ରବେଶୁଁ ପରସ୍ପର | ।। | ୨୨ |
| | ବକ୍ତା ଲୋକର ବିବକ୍ଷିତ | । ଯେମନ୍ତ ହୁଅଇ ତେମନ୍ତ | ।। | ୨୩ |
| | ଅଳ୍ପ-ବହୁତ-ସଂଖ୍ୟାଭାବ | । ଗଣନା ହୋଏ ହେ ଉଦ୍ଧବ | ।। | ୨୪ |
| ୮ | କାରଣ-ତତ୍ତ୍ୱମାନଙ୍କରେ | । କାର୍ଯ୍ୟତତ୍ତ୍ୱେ[୨] ସୂକ୍ଷ୍ମରୂପରେ | ।। | ୨୫ |
| | ରହିଅଛନ୍ତି ଦୃଶ୍ୟ ହୋଇ | । ମୃତ୍ତିକାରେ ଘଟ ପରାଇ | ।। | ୨୬ |
| | ଏକ କାର୍ଯ୍ୟତତ୍ତ୍ୱରେ ପୁଣ | । କାରଣତତ୍ତ୍ୱମାନେ ଜାଣ | ।। | ୨୭ |
| | ହୋଇଅଛନ୍ତି ଅନୁଗତ | । ଘଟରେ ମୃତ୍ତିକା ଯେମନ୍ତ | ।। | ୨୮ |
| ୯ | ଏ ହେତୁ ସର୍ବତତ୍ତ୍ୱଙ୍କର | । କାରଣକାର୍ଯ୍ୟତ୍ୱକୁ ଆର | ।। | ୨୯ |
| | ସଂଖ୍ୟାକୁ ନ୍ୟୂନାଧିକଭାବେ | । ବୋଲନ୍ତି ବାଦେ ଯେ ମାନବେ | ।। | ୩୦ |
| | ତାଙ୍କର ଯଉଁ ବିବକ୍ଷାଏ | । ମୁଖ ପ୍ରବର୍ତ୍ତଇ ନିଶ୍ଚୟେ | ।। | ୩୧ |
| | ତାହା ସ୍ୱୀକାର ଆମ୍ଭେ କରୁ | । ଯୁକ୍ତି ସମ୍ଭବିଲା ନ୍ୟାୟରୁ | ।। | ୩୨ |

୧. ସତ୍ତ୍ୱ ଆଦି ଗୁଣ ।		୨. କାର୍ଯ୍ୟତତ୍ତ୍ୱଗୁଡ଼ିକ ।

୧୦ ଅନାଦି ଅବିଦ୍ୟାସଂଯୁତ । ଜୀବର ଆତ୍ମଜ୍ଞାନ ସ୍ୱତ ॥
ଉତ୍ପନ୍ନ ନୋହେ ତେଣୁ ତାର । ତତ୍ତ୍ୱଜ୍ଞ ଅନ୍ୟ ଯେ ଈଶ୍ୱର ॥
ସେ ଆତ୍ମଜ୍ଞାନଦାତା ସ୍ୱୟେଂ । ଏଣୁ ଛବିଶ ତତ୍ତ୍ୱ ହୋଏ ॥
୧୧ ଜୀବ-ଈଶ୍ୱର ବେନିଙ୍କର । ଅଣୁମାତ୍ର ନାହିଁ ଅନ୍ତର ॥
ତାଙ୍କର ଯେ ଭେଦରଚନା । ବ୍ୟର୍ଥ ଅଟଇ ସେ କଳ୍ପନା ॥
ଜ୍ଞାନଟି ଗୁଣ ପ୍ରକୃତିର । ପଚିଶ ତତ୍ତ୍ୱ ଏ ପ୍ରକାର ॥
୧୨ ତ୍ରିଗୁଣସାମ୍ୟଟି ପ୍ରକୃତି । ଗୁଣେ ଅଭିନ୍ନ ତହୁଁ ନିତି ॥
ଆତ୍ମାର ନୁହନ୍ତି ଏ ଗୁଣ । ସତ୍ତ୍ୱ ରଜ ତମ ହୋଇଣ ॥
ସ୍ଥିତି-ଉତ୍ପତ୍ତି-ପ୍ରଳୟର । ହେତୁ ଅଟନ୍ତି ସଂସାରର ॥
୧୩ ସତ୍ତ୍ୱରୁ ଜ୍ଞାନ ହୋଏ ଜାତ । ରଜରୁ କର୍ମ ଉପଗତ ॥
ତମରୁ ଅଜ୍ଞାନ ସଂଭୂତ । ଏ ପ୍ରକୃତିର ଅନ୍ତର୍ଭୂତ ॥
ଯହିଁରୁ କ୍ଷୋଭ ଗୁଣଙ୍କର । ସେ କାଳ ଅଟଇ ଈଶ୍ୱର ॥
ସ୍ୱଭାବ ଅଟେ ମହତ୍ତ୍ୱ । ଏ ବେନି[1] ନୁହନ୍ତିଟି ତତ୍ତ୍ୱ ॥
୧୪ ପୁରୁଷ ପ୍ରକୃତି ଯେ ବ୍ୟକ୍ତ[2] । ଆକାଶ ଅହଙ୍କାର ବାତ ॥
ଜ୍ୟୋତି ଉଦକ ଯେ ଧରଣୀ । ଏ ରୂପେ ନବ ତତ୍ତ୍ୱ ଜାଣି ॥
୧୫ ଶ୍ରବଣ ଚର୍ମ ଚକ୍ଷୁ ତିନି । ଉଦ୍ଧବ ! ଘ୍ରାଣ ଜିହ୍ୱା ବେନି ॥
ଏ ପଞ୍ଚ ଜ୍ଞାନେନ୍ଦ୍ରିୟ ମତ । ବଚନ ପାଣି ଯେ ଉପସ୍ଥ ॥
ଆବର ପାୟୁ ଅଂଘ୍ରି ଦୁଇ । ଏ ପାଞ୍ଚ କର୍ମେନ୍ଦ୍ରିୟ କହି ॥
ଉଭୟାତ୍ମକ ମନ ଖ୍ୟାତ । ଏ ରୂପେ ଏକାଦଶ ତତ୍ତ୍ୱ ॥
୧୬ ଶବଦ ରୂପ ଗନ୍ଧ ରସ । ଆବର ଯେ ଅଟେ ସ୍ପରଶ ॥
ବିଷୟ ଫଳ ପାଞ୍ଚ ଏହି । ଏ ରୂପେ ପଞ୍ଚ ତତ୍ତ୍ୱ କହି ॥
ଗତି ଉକତି ଶିଳ୍ପ ତିନି । [3]ଉତ୍ସର୍ଗ କର୍ମ ଦୁଇ ମାନି ॥
କର୍ମ-ଇନ୍ଦ୍ରିୟଫଳ ଏହି । ତତ୍ତ୍ୱଗଣନରେ ଏ ନୋହି ॥
୧୭ ସର୍ଜନାଦିରେ ଜଗତର । ଅବ୍ୟକ୍ତ ପୁରୁଷ ଈଶ୍ୱର ॥
ଚାହାଁନ୍ତେ ଦୃଷ୍ଟିମାତ୍ରେ ପୁଣି । ଯେ କାର୍ଯ୍ୟକାରଣରୂପିଣୀ ॥
ସେ ମୂଳପ୍ରକୃତି ତତ୍‌କ୍ଷଣେ । ଅବସ୍ଥା ଧରଇ ତ୍ରିଗୁଣେ ॥
ପ୍ରକୃତିଠାରୁ ଏଣୁ ପୁଣ । ପୁରୁଷ ଭିନ୍ନ ଅଟେ ଜାଣ ॥
୧୮ ପୁରୁଷ ଚାହାଁନ୍ତେ ତତ୍‌କ୍ଷଣେ । ମହତ୍ତ୍ୱାଦି ଧାତୁଗଣେ ॥
ତତ୍‌କାଳ କ୍ଷୋଭିତ ହୋଇଣ । ପରାକ୍ରମକୁ ଲଭି ପୁଣ ॥
ପ୍ରକୃତିବଳରୁ ସମସ୍ତେ । ସୃଷ୍ଟିକି ସର୍ଜନ୍ତି ଏକତ୍ରେ ॥

୧. କାଳ ଓ ସ୍ୱଭାବ । ୨. ମହତ୍‌ତତ୍ତ୍ୱ । ୩. ଉତ୍ସର୍ଗ ମଳ ଓ ମୂତ୍ର ଭେଦରେ ଦୁଇପ୍ରକାର ।

୧୯ ଯେ ମହଦାଦି ଧାତୁ ସପ୍ତ । ଖ[1] ଆଦି ପଞ୍ଚ ମହାଭୂତ ।। ୬୩
ଏ ତାଙ୍କ ବିଷୟ ଅଟଇ । ଜ୍ଞାନସ୍ୱରୂପୀ ଜୀବ ଯେହି ।। ୬୪
ଏ ବେନିଙ୍କରଟି କାରଣ । ଆତ୍ମା ଅଟଇ ତୁମ୍ଭେ ଜାଣ ।। ୬୫
ଆତ୍ମାରୁ ଜାତ ହୋଏ ପୁଣ । ଦେହ-ଇନ୍ଦ୍ରିୟ-ପ୍ରାଣଗଣ ।। ୬୬
୨୦ ତତ୍ତ୍ୱ ହୁଅନ୍ତି ଛ' ପ୍ରକାର । ଏ ପକ୍ଷେ କହିବା ଉତ୍ତର ।। ୬୭
ଯେ ପଞ୍ଚ ମହାଭୂତଗଣ । ଆତ୍ମାରୁ ଅଟନ୍ତି ନିର୍ମାଣ ।। ୬୮
ଷଷ୍ଠ ଯେ ପରମ ଈଶ୍ୱର । ସେ ତାଙ୍କ ସଙ୍ଗେ ନିରନ୍ତର ।। ୬୯
ସଙ୍ଗତ ହୋଇ ଏ ଜଗତ । ସର୍ଜି ରହିଲେ ତହିଁ ସ୍ୱତ ।। ୭୦
୨୧ ତତ୍ତ୍ୱମାନେ ଚାରି ଅଟନ୍ତି । ଏରୂପେ ତେଜ ଜଳ କ୍ଷିତି ।। ୭୧
ଆତ୍ମାରୁ ହେଲେ ଏ ସମ୍ଭୂତ । ଆତ୍ମାସହିତେ ଏଣୁ ସ୍ୱତ ।। ୭୨
କାର୍ଯ୍ୟସ୍ୱରୂପୀ ଏ ଜଗତ । ଜନ୍ମିଲା ଏ କଥା ନିୟତ ।। ୭୩
୨୨ ସପତଦଶ ତତ୍ତ୍ୱଗଣ । କହିବା ଏ ସଂଖ୍ୟାକୁ ଶୁଣ ।। ୭୪
ଯେ ପଞ୍ଚ ମହାଭୂତଗଣ । ପଞ୍ଚ ତନ୍‌ମାତ୍ର ମିଶି ପୁଣ ।। ୭୫
ଜ୍ଞାନ-ଇନ୍ଦ୍ରିୟ ପାଞ୍ଚ ଯେହି । ଏ ରୂପେ ପଞ୍ଚଦଶ ହୋଇ ।। ୭୬
ମନ ସହିତେ ଆତ୍ମା ପୁଣ । ଏ ରୂପେ ସପ୍ତଦଶ ଜାଣ ।। ୭୭
୨୩ ଷୋଡ଼ଶ ସଂଖ୍ୟାରେ ତତ୍ତ୍ୱର । ସେହି ରୂପରେ ସମାଚାର ।। ୭୮
ଯେ ପୁଣ ମନ ଆତ୍ମା ଦୁଇ । ତାହାକୁ ଏକ ବୋଲି କହି ।। ୭୯
ଭୂମ୍ୟାଦି ପଞ୍ଚ ମହାଭୂତ । ଜ୍ଞାନ-ଇନ୍ଦ୍ରିୟ ପଞ୍ଚ ଖ୍ୟାତ ।। ୮୦
ଇନ୍ଦ୍ରିୟ-ଅଧିଷ୍ଠାତୃ ମନ । ତାହାକୁ ଏକାଦଶ ଘେନ ।। ୮୧
ଜୀବ-ପରମ ଭେଦ ନେଇ । ଆତ୍ମାଟି ଦ୍ୱିବିଧ ଅଟଇ ।। ୮୨
ଏ ରୂପେ ତତ୍ତ୍ୱ ତ୍ରୟୋଦଶ । କେହି ବା କରନ୍ତି ପ୍ରକାଶ ।। ୮୩
୨୪ ଯେ ରୂପେ ତତ୍ତ୍ୱ ଏକାଦଶ । ଶୁଣ ତା' କରୁଛି ପ୍ରକାଶ ।। ୮୪
ପଞ୍ଚ ଅଟଇ ମହାଭୂତ । ଇନ୍ଦ୍ରିୟମାନେ ପଞ୍ଚ ଖ୍ୟାତ ।। ୮୫
ଜୀବ-ମନ ଉଭୟଙ୍କର । ସମାବେଶ ଆତ୍ମାମଧ୍ୟର ।। ୮୬
ଏକ ଆତ୍ମାକୁ ମିଶାଇଣ । ଏକାଦଶ ତତ୍ତ୍ୱକୁ ଜାଣ ।। ୮୭
ପୁରୁଷ ଆଠ ଯେ ପ୍ରକୃତି । ମିଶାଇ ନବ କେ ଭଣନ୍ତି ।। ୮୮
ବିକାରମାନ ଯେ ଅଛନ୍ତି । ଏ ନବ ତତ୍ତ୍ୱେ ସେ ରହନ୍ତି ।। ୮୯
୨୫ ଏ ରୂପେ ତତ୍ତ୍ୱମାନଙ୍କର । ଋଷିଏ ନାନାତ୍ୱ ବିଚାର ।। ୯୦
କରନ୍ତି ଯାହା ସେ ସମସ୍ତ । ଯୁକ୍ତି ଘଟିଲା ହେତୁ ସତ ।। ୯୧
ପଣ୍ଡିତ ଲୋକଙ୍କର ତହିଁ । କିଛି ହିଁ ଅଶୋଭନ ନୋହି ।। ୯୨

ଶ୍ରୀଉଦ୍ଧବ ଉବାଚ

୨୬ ଉଦ୍ଧବ ଅତି ଅନୁରାଗେ । ପୁଣି କହନ୍ତି କୃଷ୍ଣ ଆଗେ ।। ୯୩

୧. ଖ = ଆକାଶ ।

| | | | | |
|---|---|---|---|---|
| | ପ୍ରକୃତି ପୁରୁଷ ଏ ବେନି | । ଜଡ଼ ଅଜଡ଼ ଭାବ ଘେନି | ।। | ୯୪ |
| | ଯଦ୍ୟପି ଅତି ବିଲକ୍ଷଣ | । ତଥାପି ଆହେ କୃଷ୍ଣ ଶୁଣ | ।। | ୯୫ |
| | ଅନ୍ୟୋଽନ୍ୟ ସଙ୍ଗୁଁ ଦୁହିଁଙ୍କର | । ଭେଦ ନ କରୁଛି ଗୋଚର | ।। | ୯୬ |
| | ପ୍ରକୃତିକାର୍ଯ୍ୟ ଦେହାଦିରେ | । ଆତ୍ମାକୁ ଲକ୍ଷି ସେ ପ୍ରକାରେ | ।। | ୯୭ |
| | ପୁଣି ସେ ଆତ୍ମାରେ ଆବର | । କରି ଦେହାଦିଙ୍କି ଗୋଚର | ।। | ୯୮ |
| ୨୭ | ସର୍ବଜ୍ଞ ହେ ପୁଣ୍ଡରୀକାକ୍ଷ | । ଏମନ୍ତ ରୂପରେ ପ୍ରତ୍ୟକ୍ଷ | ।। | ୯୯ |
| | ମୋହର ହୃଦରେ ସଂଶୟ | । ଜାତ ହେଉଛି ଅତିଶୟ | ।। | ୧୦୦ |
| | ନୀତିନିପୁଣ ବଚନରେ | । ବିନାଶ କର ତା' ସତ୍ୱରେ | ।। | ୧୦୧ |
| ୨୮ | ଜୀବମାନଙ୍କର ଉତ୍‌ପନ୍ନ | । ତୁମ୍ଭ ପ୍ରସାଦୁଁ ହୋଏ ଜ୍ଞାନ | ।। | ୧୦୨ |
| | ତୁମ୍ଭ ମାୟାରୁ ତାହାଙ୍କର | । ଅଜ୍ଞାନ ହୋଏ ସେ ପ୍ରକାର | ।। | ୧୦୩ |
| | ନିଜ ମାୟାର ଗତି ପୁଣ | । ତୁମ୍ଭେ ହିଁ କେବଳଟି ଜାଣ | ।। | ୧୦୪ |
| | ତୁମ୍ଭ ବିହୁନେ ଅନ୍ୟ ନର | । କେହି ନ କରିଛି ଗୋଚର | ।। | ୧୦୫ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୨୯ | ଏମନ୍ତ ଶୁଣି ସେ ମାଧବ | । କହନ୍ତି ଶୁଣ ହେ ଉଦ୍ଧବ | ।। | ୧୦୬ |
| | ପ୍ରକୃତି ପୁରୁଷ ଯେ ଦୁଇ | । ଏ ରୂପେ ଅତି ଭେଦ ହୋଇ | ।। | ୧୦୭ |
| | ଏ ଯେଉଁ ଦେହାଦିସଂଘାତ | । ଅଟଇ ଏ ବିକାରବନ୍ତ | ।। | ୧୦୮ |
| | ଯେ ସତ୍ତ୍ୱ ରଜ ତମ ଗୁଣ | । ଏ ତାଙ୍କ କ୍ଷୋଭରୁ ନିର୍ମାଣ | ।। | ୧୦୯ |
| ୩୦ | ତ୍ରିଗୁଣମୟୀ ମୋର ମାୟା | । ଅନେକପ୍ରକାରେଣ ତାହା | ।। | ୧୧୦ |
| | ଉଦ୍ଧବ ! ଭେଦବୁଦ୍ଧିଙ୍କୁ ହିଁ | । ଗୁଣମାନଙ୍କରେ ଧରଇ | ।। | ୧୧୧ |
| | ଥିଲେହେଁ ଅନେକ ବିକାର | । ସ୍ଥୂଳେ ଏ ସୃଷ୍ଟି ତ୍ରିପ୍ରକାର | ।। | ୧୧୨ |
| | ଅଧ୍ୟାତ୍ମ ଅଧିଭୂତ ଦୁଇ | । ଆବର ଅଧିଦୈବ ହୋଇ | ।। | ୧୧୩ |
| ୩୧ | ଚକ୍ଷୁଟି ଅଧ୍ୟାତ୍ମ ବୋଲାଇ | । ରୂପକୁ ଅଧିଭୂତ କହି | ।। | ୧୧୪ |
| | ଚକ୍ଷୁଗୋଲକମଧ୍ୟରେ ହିଁ | । ଯେ ସୂର୍ଯ୍ୟ-ଅଂଶ ପ୍ରବେଶଇ | ।। | ୧୧୫ |
| | ତାହାକୁ ବୋଲି ଅଧିଦୈବ | । ଆବର ଶୁଣ ହେ ଉଦ୍ଧବ | ।। | ୧୧୬ |
| | ରୂପକୁ ଚକ୍ଷୁଦ୍ୱାରେ ଜାଣି | । ଚକ୍ଷୁ ବିହୁନେ ରୂପ ପୁଣି | ।। | ୧୧୭ |
| | ଅନ୍ୟଥା ଉପପନ୍ନ ନୋହି | । ଏ ଘେନି ଚକ୍ଷୁ ସିଦ୍ଧ ହୋଇ | ।। | ୧୧୮ |
| | ଚକ୍ଷୁର ଅଧିଷ୍ଠାତ୍ରୀ ହୋଇ | । ଯେ ସୂର୍ଯ୍ୟଦେବତା ଅଛଇ | ।। | ୧୧୯ |
| | ତାଙ୍କ ବିହୁନେ ଚକ୍ଷୁ ପୁଣ | । ଅନ୍ୟଥା ନୋହେ ଉପପନ୍ନ | ।। | ୧୨୦ |
| | ସୂର୍ଯ୍ୟ ଚକ୍ଷୁର ପ୍ରବର୍ତ୍ତକ | । ଚକ୍ଷୁ ହିଁ ରୂପର ଜ୍ଞାପକ | ।। | ୧୨୧ |
| | ଏ ରୂପେ ତିନିହେଁ ଆବର | । ସିଦ୍ଧ ହୁଅନ୍ତି ପରସ୍ପର | ।। | ୧୨୨ |
| | ଯେ ସୂର୍ଯ୍ୟ ଆକାଶେ ଅଛଇ | । ମଣ୍ଡଳସ୍ୱରୂପରେ ରହି | ।। | ୧୨୩ |
| | ସେହୁ ଅଟଇ ସ୍ୱତଃସିଦ୍ଧ | । ଚକ୍ଷୁର ବିଷୟ ପ୍ରସିଦ୍ଧ | ।। | ୧୨୪ |

| | | | |
|---|---|---|---|
| | ହେଲେହେଁ ପ୍ରତିଯୋଗୀ ପାଇଁ । | ଯେଣୁ ଅପେକ୍ଷା ତାର[୧] ନାହିଁ | ॥ ୧୨୫ |
| | ତେଣୁ "ସ୍ୱତଃସିଦ୍ଧ" ବୋଲିଣ । | କଥିତ ହୋଇଛି ସେ ଜାଣ | ॥ ୧୨୬ |
| | ଅଧ୍ୟାତ୍ମ ଆଦିଙ୍କର ଯେଣୁ । | ଆତ୍ମା କାରଣ ଅଟେ ଏଣୁ | ॥ ୧୨୭ |
| | ସେହୁ ଏକରୂପ ଅଭିନ୍ନ । | ତେଣୁ ଏହାଙ୍କ[୨] ଠାରୁ ଭିନ୍ନ | ॥ ୧୨୮ |
| | ଯେ ପ୍ରକାଶକ ପରସ୍ପର । | ଆତ୍ମା ପ୍ରକାଶକ ତାଙ୍କର | ॥ ୧୨୯ |
| | ସ୍ୱତଃସିଦ୍ଧ ପ୍ରକାଶ ତାର । | ସାମାନ୍ୟ ବିଚାରୁଁ ଆବର | ॥ ୧୩୦ |
| | ଯେଣୁ ଚିଦ୍‌ପ୍ରକାଶ ବିଷୟ । | ଅଟେ ସେ ସବୁରି ନିଶ୍ଚୟ | ॥ ୧୩୧ |
| ୩୨ | ତ୍ରୈବିଧ୍ୟ ଯେସନେ ଚକ୍ଷୁର । | ତେସନେ ଅନ୍ୟ ଇନ୍ଦ୍ରିୟର | ॥ ୧୩୨ |
| | ଚର୍ମର ଚର୍ମ ବାୟୁ ସ୍ପର୍ଶ । | କର୍ଣ୍ଣର କର୍ଣ୍ଣ ଶବ୍ଦ ଦିଶ | ॥ ୧୩୩ |
| | ଜିହ୍ୱା ବରୁଣ ରସ ତିନି । | ଜିହ୍ୱା ଇନ୍ଦ୍ରିୟର ଏ ମାନି | ॥ ୧୩୪ |
| | ନାସାର ନାସା ଗନ୍ଧ ବେନି । | ଅଶ୍ୱିନଙ୍କୁ ମିଶାଇ ତିନି | ॥ ୧୩୫ |
| | ଅନ୍ତଃକରଣମାନଙ୍କର । | ତ୍ରୈବିଧ୍ୟ ଅଛଇ ଆବର | ॥ ୧୩୬ |
| | ଚିତ୍ତ ଚେତୟିତବ୍ୟ[୩] ବେନି । | ବାସୁଦେବଙ୍କୁ ନେଇ ତିନି | ॥ ୧୩୭ |
| | ମନ ମନ୍ତବ୍ୟ ଚନ୍ଦ୍ର ତିନି । | ବୁଦ୍ଧି ବୋଦ୍ଧବ୍ୟ ବ୍ରହ୍ମା ପୁଣି | ॥ ୧୩୮ |
| | ଅହଂକର୍ତ୍ତବ୍ୟ ରୁଦ୍ର ବେନି । | ଅହଂକାରକୁ ନେଇ ତିନି | ॥ ୧୩୯ |
| | ଚିତ୍ତ ମନ ବୁଦ୍ଧ୍ୟହଂକାର । | ଏ ରୂପେ ହୋ'ନ୍ତି ତ୍ରିପ୍ରକାର | ॥ ୧୪୦ |
| ୩୩ | କ୍ଷୋଭ କରଇ ଗୁଣଙ୍କର । | ଯେ କାଳ ବା ପରମେଶ୍ୱର | ॥ ୧୪୧ |
| | ତାଙ୍କୁ ନିମିତ୍ତ କରି ପୁଣ । | ପ୍ରକୃତି ଅଟେ ଯା' କାରଣ | ॥ ୧୪୨ |
| | ସେ ମହଦ୍‌ତତ୍ତ୍ୱୁଁ ଯେ ପ୍ରସୂତ । | ବିକାର ଅହଂକାରଖ୍ୟାତ | ॥ ୧୪୩ |
| | ସେ ବଇକାରିକ[୪] ତାମସ । | ଐନ୍ଦ୍ରିୟରୂପରେ ପ୍ରକାଶ | ॥ ୧୪୪ |
| | ଏ ତିନି ପ୍ରକାରେ ସେ ଯେଣୁ । | ବର୍ତ୍ତଇ, ତ୍ରିବୃତ୍ ଅଟେ ତେଣୁ | ॥ ୧୪୫ |
| | ଯେ ମୋହମୟ ଭେଦ ପୁଣ । | ତହିଁକି ଅଟେ ସେ କାରଣ | ॥ ୧୪୬ |
| ୩୪ | ଆତ୍ମା ଅଟଇ ଜ୍ଞାନମୟ । | ନୁହଇ ବିବାଦବିଷୟ | ॥ ୧୪୭ |
| | ପ୍ରକୃତିପଦାର୍ଥ ସହିତ । | ନାହିଁ ତା' ସମ୍ବନ୍ଧ କିଂଚିତ | ॥ ୧୪୮ |
| | ଅସ୍ତି ନାସ୍ତି ଆଦି[୫] ରୂପରେ । | ଯେତେକ ବିବାଦ ଆତ୍ମାରେ[୬] | ॥ ୧୪୯ |
| | ସବୁରି ମୂଳକାରଣଟି । | ଅଟଇ ତହିଁ ଭେଦଦୃଷ୍ଟି | ॥ ୧୫୦ |
| | ତେଣୁ ଏ ଆତ୍ମାର ବିଷୟେ । | ବିବାଦ ବ୍ୟର୍ଥ ହୋଇଲେହେଁ | ॥ ୧୫୧ |
| | ସ୍ୱରୂପଜ୍ଞାନ ନ ଥିବାରୁ । | ଯେମାନେ ବିମୁଖ ମୋ' ଠାରୁ | ॥ ୧୫୨ |
| | ସେମାନଙ୍କର ଏ ବିବାଦ । | ଲଭଇ ନାହିଁ ଅବସାଦ | ॥ ୧୫୩ |
| | ସେମାନେ ସ୍ୱକୃତ କର୍ମରେ । | ଜନ୍ମନ୍ତି ନୀଚୋଚ୍ଚ ଯୋନିରେ | ॥ ୧୫୪ |

୧. ସୂର୍ଯ୍ୟର । ୨. ଅଧ୍ୟାତ୍ମ ଆଦିଙ୍କ । ୩. ଯାହାକୁ ଚେତନ କରାଇବା ଉଚିତ ।
୪. ବିକାର ଉପରେ ନ୍ୟସ୍ତ । ୫. ସଗୁଣ-ନିର୍ଗୁଣ, ସତ୍ୟ-ମିଥ୍ୟା, ଭାବ-ଅଭାବ ଆଦି ।
୬. ଆତ୍ମା ବିଷୟରେ ।

### ଶ୍ରୀଉଦ୍ଧବ ଉବାଚ

| | | | |
|---|---|---|---|
| ୩୫ | ଉଦ୍ଧବ କହୁଛନ୍ତି ପୁଣ । | ହେ ପ୍ରଭୋ ତୁମ୍ଭେ ଏବେ ଶୁଣ ॥ | ୧୫୫ |
| ୩୬ | ଯାହାଙ୍କ ବୁଦ୍ଧି ତୁମ୍ଭ ଠାରୁ । | ବିମୁଖ ତୁମ୍ଭର ମାୟାରୁ ॥ | ୧୫୬ |
| | ନିଜ ଅର୍ଜିତ କର୍ମଦ୍ୱାରେ । | ସେମାନେ ଯେମନ୍ତ ରୂପରେ ॥ | ୧୫୭ |
| | [1]ଘେନନ୍ତି ଉଚ୍ଚ ନୀଚ ଦେହ । | ଯେରୂପେ ଛାଡ଼ନ୍ତି ତା' କହ ॥ | ୧୫୮ |
| | ଆହେ ଗୋବିନ୍ଦ ! ଯଉଁ ଜନ । | ଅଟନ୍ତି ଆତ୍ମଜ୍ଞାନହୀନ ॥ | ୧୫୯ |
| | ତାହାଙ୍କ ଦ୍ୱାରା ଏ ବିଷୟ । | ଦୁଃଖେ ଅଟଇ ଚିନ୍ତନୀୟ ॥ | ୧୬୦ |
| | ଯେ ଏହି ବିଷୟ ଜାଣନ୍ତି । | ସଂସାରେ ପ୍ରାୟ ସେ ନ ଥାନ୍ତି ॥ | ୧୬୧ |
| | ଯେଣୁ ସକଳ ଲୋକ ନିତି । | ତୁମ୍ଭ ମାୟାରେ ଭୁଲିଛନ୍ତି ॥ | ୧୬୨ |

### ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୩୭ | କୃଷ୍ଣ କହନ୍ତି ଉଦ୍ଧବଙ୍କୁ । | ଯା' ପଚାରିଲ ଶୁଣ ତାକୁ ॥ | ୧୬୩ |
| | ଇନ୍ଦ୍ରିୟଗଣେ[2] ବର୍ତ୍ତମାନ । | ଯେ କର୍ମମୟ ପ୍ରାଣି ମନ ॥ | ୧୬୪ |
| | ସେ ମନ ଏ ଦେହରୁ ଯାଇ । | ଅନ୍ୟ ଶରୀରରେ ମିଳଇ ॥ | ୧୬୫ |
| | ଆତ୍ମା ତହିଁରୁ ଭିନ୍ନ ହୋଏ । | [3]ମନର ପଛରେ ଗୋଡ଼ାଏ ॥ | ୧୬୬ |
| ୩୮ | ଅଟନ୍ତି କର୍ମୋପସ୍ଥାପିତ । | ଦୃଷ୍ଟ ଅଥବା ବେଦ-ଉକ୍ତ ॥ | ୧୬୭ |
| | ଏମନ୍ତ ଯେ ବିଷୟମାନ । | ଧ୍ୟାନ କରନ୍ତେ ତାଙ୍କୁ ମନ ॥ | ୧୬୮ |
| | ତହିଁରେ ହୋଏ ଆବିର୍ଭୂତ । | ପୂର୍ବବିଷୟେ ଲୟପ୍ରାପ୍ତ ॥ | ୧୬୯ |
| | ତଦନନ୍ତର ସ୍ମୃତି ତାର । | ନାଶ ହୁଅଇ ପୂର୍ବାପର ॥ | ୧୭୦ |
| ୩୯ | କର୍ମପ୍ରାପିତ ଦେହାଦିରେ । | ଅତ୍ୟନ୍ତ ଅଭିନିବେଶରେ ॥ | ୧୭୧ |
| | ପୂର୍ବଦେହକୁ ମନ ପୁଣ । | କରଇ ନାହିଁ ଯା' ସ୍ମରଣ ॥ | ୧୭୨ |
| | ସେ ଦେହ କେହୁଣି କାରଣୁ । | ଅତ୍ୟନ୍ତ ପାସୋରଇ ଯେଣୁ ॥ | ୧୭୩ |
| | ଜୀବର ମୃତ୍ୟୁ ଅଟେ ସେହି । | ଦେହପରାଏ ନାଶ ନାହିଁ ॥ | ୧୭୪ |
| ୪୦ | ସର୍ବଭାବରେ ହେ ଉଦ୍ଧବ । | ନବୀନ ଦେହକୁ ଯା' ଜୀବ ॥ | ୧୭୫ |
| | ଆତ୍ମଭାବରେ ଘେନିଥାଇ । | ଜୀବର ଜନ୍ମ ସେ ବୋଲାଇ ॥ | ୧୭୬ |
| | ସ୍ୱପନ ମନୋରଥ ଦୁଇ । | ଯଉଁ କର୍ମରେ ବର୍ତ୍ତିଥାଇ ॥ | ୧୭୭ |
| | ଯେହ୍ନେ ତା' କରଇ ସ୍ୱୀକାର । | ପୂର୍ବକୁ ନ କରେ ଗୋଚର ॥ | ୧୭୮ |
| ୪୧ | ନ ସ୍ମରି ସ୍ୱପ୍ନ ମନୋରଥ । | ପୂର୍ବ କାର୍ଯ୍ୟକୁ କରେ ବ୍ୟର୍ଥ ॥ | ୧୭୯ |

---

୧. ବ୍ୟାପକ ଆତ୍ମାର ଦେହରୁ ଦେହାନ୍ତରଗମନ, ଅକର୍ତ୍ତାର ବିଭିନ୍ନ କର୍ମ ଏବଂ ନିତ୍ୟ ପୁରୁଷର ଜନ୍ମ-ମରଣ ଆଦି କିପରି ସମ୍ଭବ ?

୨. ଇନ୍ଦ୍ରିୟମାନଙ୍କ ଦ୍ୱାରା । ପ୍ରଧାନ ଭାବେ ପାଞ୍ଚ ଇନ୍ଦ୍ରିୟ ମୂଳପାଠରେ କୁହାଯାଇଛି । ତଥାପି ଏହା ଅନ୍ୟ ଇନ୍ଦ୍ରିୟଗୁଡ଼ିକର ଉପଲକ୍ଷଣ ଅଟେ ।

୩. ଅହଂକାର ଦ୍ୱାରା ।

| | | | |
|---|---|---|---|
| | ପୂର୍ବରୁ ଅଛି ସିଦ୍ଧ ହୋଇ । | ଏମନ୍ତ ଆତ୍ମା ଯେ ଅଟଇ | ॥ ୧୮୦ |
| | ସେ ଆଜ ହେଲା ଉତପନ୍ନ । | ଏରୂପେ କରେ ବିଲୋକନ | ॥ ୧୮୧ |
| ୪୨ | ଇନ୍ଦ୍ରିୟମାନଙ୍କ ଅୟନ । | ଉଦ୍ଭବ ଅଟଇଟି ମନ | ॥ ୧୮୨ |
| | ଅଭିନିବେଶୁଁ ଦେହାନ୍ତରେ । | ମନର ଯେ ସୃଷ୍ଟି ତା' ଦ୍ୱାରେ | ॥ ୧୮୩ |
| | ତହିଁରେ ଯେଉଁ ଅଭିମାନ । | ତେଣେ ଆତ୍ମାରେ ହୋଏ ଭାନ | ॥ ୧୮୪ |
| | ଉତ୍ତମ-ମଧ୍ୟମ-ଅଧମ । | ରୂପେ ତ୍ରିବିଧ ଭେଦଭ୍ରମ | ॥ ୧୮୫ |
| | ଏ ରୂପ ଆତ୍ମା ଯେ ଅଟଇ । | ସେ ବାହ୍ୟ[୧] ଆନ୍ତର[୨] ଦେଖଇ | ॥ ୧୮୬ |
| | ଏ ଜୀବ ସ୍ୱପ୍ନରେ ଯେସନ । | ଦେଖିଣ ମିଥ୍ୟାଦେହମାନ | ॥ ୧୮୭ |
| | ହେଲେହେଁ ଏକ ନିଜେ ସେହି । | ବହୁରୂପରେ ଆଭାସଇ | ॥ ୧୮୮ |
| | ଅଧ୍ୟାତ୍ମ ଆଦିରୂପେ ଏହି । | ତ୍ରୈବିଧ୍ୟ ଅବା ପ୍ରତେ ହୋଇ | ॥ ୧୮୯ |
| | ଦୁଷ୍ଟ ପୁତ୍ରର ଉତ୍ପାଦକ । | ପିତା ହେଲେହେଁ ନିଜେ ଏକ | ॥ ୧୯୦ |
| | ସେ ଯେହ୍ନେ ପୁତ୍ରାଭିମାନରେ । | ତାହାର ଅରିମିତ୍ରାଦିରେ | ॥ ୧୯୧ |
| | ଅରିମିତ୍ରାଦିଙ୍କୁ ଆପଣେ । | ଦେଖଇ [୩]ଅଧ୍ୟାସକାରଣେ | ॥ ୧୯୨ |
| ୪୩ | ଶରୀରମାନ ପ୍ରତିକ୍ଷଣ । | ଲଭନ୍ତି ଜନମ ମରଣ | ॥ ୧୯୩ |
| | ଯାହାର ବେଗକୁ ହିଁ କେହି । | ଲକ୍ଷ୍ୟ କରିଣ ନ ପାରଇ | ॥ ୧୯୪ |
| | ସେ କାଳ ଅତିସୂକ୍ଷ୍ମ ଯେଣୁ । | ତତ୍କୃତ ଜନ୍ମମୃତ୍ୟୁ ତେଣୁ | ॥ ୧୯୫ |
| | ବିବେକହୀନ ଯେ ଅଟନ୍ତି । | ଲକ୍ଷ୍ୟ କରି ସେ ନ ପାରନ୍ତି | ॥ ୧୯୬ |
| ୪୪ | ପରିଣାମାଦିଙ୍କ କାରଣେ । | [୪]ଅର୍ଚ୍ଚିମାନଙ୍କର ଯେସନେ | ॥ ୧୯୭ |
| | ଗତି ଆଦିରେ ସ୍ରୋତଙ୍କର । | ରୂପ ଆଦିରେ ଫଳଙ୍କର | ॥ ୧୯୮ |
| | ଯେସନେ ଅବସ୍ଥାବିଶେଷ । | କାଳ ହିଁ କରାଏ ଅଶେଷ | ॥ ୧୯୯ |
| | ତେସନେ ସର୍ବ ଭୂତଙ୍କର । | ବୟସ ଅବସ୍ଥା ଆବର | ॥ ୨୦୦ |
| | ତେଜ ପୌରୁଷ କାମ ବଳ । | ଓଜ ପ୍ରଭାବ କଉଶଳ | ॥ ୨୦୧ |
| | ଏ ଆଦି କାଳର ପ୍ରଭାବେ । | ପରିବର୍ତ୍ତିତ ହୋଏ ଭବେ | ॥ ୨୦୨ |
| ୪୫ | ଜ୍ୱାଳାର ସାଦୃଶ୍ୟରୁ ଆଣି । | 'ଏ ସେହି ଦୀପ' ବୋଲି ଜାଣି | ॥ ୨୦୩ |
| | ବହନ୍ତେ ଯେହ୍ନେ ନଦୀପାଣି । | 'ଏ ସେହି ଜଳ' ବୋଲି ଜାଣି | ॥ ୨୦୪ |
| | ସେ ରୂପେ 'ଏହି ସେହି ନର' । | ସାଦୃଶ୍ୟହେତୁରୁ ନରର | ॥ ୨୦୫ |
| | ମିଥ୍ୟା ବଚନ ବୁଦ୍ଧି ଏହି । | ସେ ଅବିବେକୀଙ୍କର ହୋଇ | ॥ ୨୦୬ |
| | ବିଷୟଚିନ୍ତନେ ଆୟୁଷ । | ବ୍ୟର୍ଥ କରନ୍ତି ଯେ ପୁରୁଷ | ॥ ୨୦୭ |
| ୪୬ | ଆତ୍ମାର ଜନ୍ମମୃତ୍ୟୁ ବେନି । | ନୁହଇ କର୍ମବୀଜ ଘେନି | ॥ ୨୦୮ |

୧. ବିଷୟ । ୨. ସୁଖ ଆଦି ।

୩. ଅଧ୍ୟାସ = ବସ୍ତୁରେ ଅବସ୍ତୁର ଆସନ; ଯଥା – ଦେହରେ ଆତ୍ମବୋଧ ।

୪. ଅଗ୍ନିଶିଖାମାନଙ୍କର ।

| | | | |
|---|---|---|---|
| | ବସ୍ତୁତଃ ଅଜ୍ଞ ଯେ ଅଟଇ । | ତାର ବି ଜନ୍ମମୃତ୍ୟୁ ନାହିଁ | ।। ୨୦୯ |
| | ତଥାପି ଭ୍ରାନ୍ତିହେତୁ ନର । | ହେଲେହେଁ ଅଜନ୍ମା ଅମର | ।। ୨୧୦ |
| | ଜନ୍ମିଲା ପ୍ରାୟେକ ଦିଶଇ । | ମଲା ପ୍ରାୟେକ ପ୍ରତେ ହୋଇ | ।। ୨୧୧ |
| | ଯେସନେ ଅଗ୍ନି ମହାଭୂତ । | ତେଜସ୍ୱରୂପ ଯେ ବିଖ୍ୟାତ | ।। ୨୧୨ |
| | ସେ କଳ୍ପକାଳ ପରିଯନ୍ତ । | ଯଦ୍ୟପି ହୋଏ ଅବସ୍ଥିତ | ।। ୨୧୩ |
| | ତଥାପି ଜନ୍ମମୃତ୍ୟୁ ଦୁଇ । | ଲଭିଲା ପ୍ରାୟ ସେ ଦିଶଇ | ।। ୨୧୪ |
| | ସଂଯୋଗବିୟୋଗୁଁ କାଷ୍ଠର । | ତେସନେ ଲୋକବ୍ୟବହାର | ।। ୨୧୫ |
| ୪୭ | ନିଷେକ ଗର୍ଭ ଜନ୍ମ ଆନ । | ବାଲ୍ୟ କୌମାର ଯଉବନ | ।। ୨୧୬ |
| | ବୟୋମଧ୍ୟ ଜରା ମରଣ । | ଦେହ-ଅବସ୍ଥା ନବ ଜାଣ | ।। ୨୧୭ |
| ୪୮ | ଦେହର ମନୋରଥମୟ । | ଯେ ଉଚ୍ଚନୀଚ ଦଶାଚୟ | ।। ୨୧୮ |
| | ତା' ଗୁଣସଙ୍ଗୁଁ[1] କେ ଲଭଇ । | କେ ତା' ଛାଡ଼ଇ ମୁକ୍ତ ହୋଇ | ।। ୨୧୯ |
| | ପରମେଶ୍ୱରାନୁଗୃହୀତ । | ଯେ ତା' ଛାଡ଼ଇ କଥଂଚିତ | ।। ୨୨୦ |
| ୪୯ | ମରଣ ଦର୍ଶନୁଁ ପିତାର । | ଔର୍ଦ୍ଧ୍ୱଦେହିକ[2] କଲା ନର | ।। ୨୨୧ |
| | ଜନମଦର୍ଶନୁଁ ପୁତ୍ରର । | ଜାତକର୍ମକୁ କଲା ନର | ।। ୨୨୨ |
| | ସ୍ୱଦେହଜନମନିଧନ । | ନିଶ୍ଚେଁ କରିବ ଅନୁମାନ | ।। ୨୨୩ |
| | ଜନ୍ମମରଣବନ୍ତ ହୋଇ । | ସମସ୍ତ ବସ୍ତୁ ଛନ୍ତି ରହି | ।। ୨୨୪ |
| | ଏ ରୂପେ ହୋଏ ଯାର ଜ୍ଞାନ । | ନାହିଁ ତା' ଜନମନିଧନ | ।। ୨୨୫ |
| ୫୦ | ତରୁର ଅନ୍ତ୍ୟ ପରିଣାମ । | 'ବିପାକ' ଅଟଇ ତା' ନାମ | ।। ୨୨୬ |
| | ବୀଜରୁ ବିପାକୁଁ ତରୁର । | ଜନ୍ମ ନାଶକୁ ଯଉଁ ନର | ।। ୨୨୭ |
| | ଗୋଚର କରଇ ସେ ପୁଣ । | ତହିଁରୁ ଅଟେ ବିଲକ୍ଷଣ | ।। ୨୨୮ |
| | ଏ ରୂପେ ଦେହର ଯେ ଜାଣି । | ତହୁଁ ପୃଥକ ସେହୁ ପ୍ରାଣୀ | ।। ୨୨୯ |
| | ଏଣୁ ଥିଲେହେଁ ପ୍ରାଣୀ ତହିଁ । | ତା' ଜନ୍ମନାଶେ ବନ୍ଧା ନୋହି | ।। ୨୩୦ |
| ୫୧ | ନ ଲଭି ତତ୍ତ୍ୱନିଶ୍ଚୟକୁ । | ପ୍ରକୃତିସକାଶୁଁ ଆତ୍ମାକୁ | ।। ୨୩୧ |
| | ବିବେକ ନ କରେ ଯେ ନର । | ବିଷୟେ ହୋଇଣ ତତ୍‌ପର | ।। ୨୩୨ |
| | ଅତ୍ୟନ୍ତ ମୂର୍ଖ ସେ ଲୋକ ହିଁ । | ସଂସାରବନ୍ଧକୁ ଲଭଇ | ।। ୨୩୩ |
| ୫୨ | ସତ୍ତ୍ୱସଙ୍ଗରୁ ଜୀବ ଯାଇ । | ଋଷିଦେବତା ଜନ୍ମ ପାଇ | ।। ୨୩୪ |
| | ଅସୁର-ନରଦେହ ପୁଣ । | ଲଭଇ ଘେନି ରଜୋଗୁଣ | ।। ୨୩୫ |
| | ତମୋଗୁଣରୁ ପୁଣ ସେହି । | ଭୂତ ତିର୍ଯ୍ୟକ ଜନ୍ମ ପାଇ | ।। ୨୩୬ |
| | ଏ ରୂପେ କର୍ମମାନଙ୍କରେ । | ଭ୍ରମିଣ ଜନ୍ମଇ ସଂସାରେ | ।। ୨୩୭ |
| ୫୩ | ନାଚନ୍ତେ ଗାଉଥାନ୍ତେ ଜନେ । | ତାଙ୍କୁ ଯେ ଦେଖଇ ନୟନେ | ।। ୨୩୮ |
| | ଯେ ରୂପେ କରଇ ଭାବନ । | ମନେ ସେ ନୃତ୍ୟଗୀତମାନ | ।। ୨୩୯ |

୧. ପ୍ରକୃତି-ଅବିବେକରୁ । ୨. ଦେହପତନର ପରେ ଯେଉଁ କର୍ମ କରାଯାଏ (ଅନ୍ତ୍ୟେଷ୍ଟିକ୍ରିୟା) ।

| | | | | |
|---|---|---|---|---|
| | ଦେହଗୁଣକୁ ସେ ରୂପରେ | । ଯେ ଜନ ଦେଖଇ ନେତ୍ରରେ | ॥ ୨୪୦ |
| | ଇଚ୍ଛା ନ ଥିଲେ ସେ ଲୋକ ହିଁ | । ଗୁଣରେ ବନ୍ଧକୁ ଲଭଇ | ॥ ୨୪୧ |
| ୫୪ | ଜଳ ଧାବନ୍ତେ ବେଗେ ଅତି | । ଯେତେକ ବୃକ୍ଷ ତଟେ ଥାନ୍ତି | ॥ ୨୪୨ |
| ୫୫ | ଯେସନେ ଚଳିଲା ପରାଏ | । ପ୍ରତ୍ୟେ ହୁଅନ୍ତି ସେ ସଭିଏଁ | ॥ ୨୪୩ |
| | ଚକ୍ଷୁ ଭ୍ରମନ୍ତେ ଯେହ୍ନେ ମହୀ | । ଭ୍ରମିଲା ପ୍ରାଏ ଦୃଶ୍ୟ ହୋଇ | ॥ ୨୪୪ |
| | ପ୍ରସିଦ୍ଧ ମନୋରଥମତି | । ଆବର ସ୍ୱପ୍ନଦୃଷ୍ଟମତି | ॥ ୨୪୫ |
| | ମିଥ୍ୟା ଏ ସକଳ ଯେସନେ | । ସର୍ବଥା ଆତ୍ମାର ତେସନେ | ॥ ୨୪୬ |
| | ସଂସାର ବିଷୟାନୁଭବ | । ମିଥ୍ୟା ଅଟଇ ହେ ଉଦ୍ଧବ | ॥ ୨୪୭ |
| ୫୬ | ଅର୍ଥ[୧] ଯଦ୍ୟପି ସତ୍ୟ ନୋହେ | । ଯେ ଜୀବ ତାହା ଚିନ୍ତୁଥାଏ | ॥ ୨୪୮ |
| | ଜନମ-ମରଣ ସଂସାର | । ନିବୃତ୍ତ ନୁହଇ ତାହାର | ॥ ୨୪୯ |
| | ସ୍ୱପନେ ହୁଅଇ ଦର୍ଶନ | । ଯେତେକ ଅନର୍ଥ ସେମାନ | ॥ ୨୫୦ |
| | ଯାବତ ପ୍ରାଣୀ ନ ଜାଗଇ | । ଯେସନେ ନିବୃତ୍ତ ନୁହଇ | ॥ ୨୫୧ |
| ୫୭ | ଦୁଷ୍ଟ ଇନ୍ଦ୍ରିୟେ ହେ ଉଦ୍ଧବ | । ଏଣୁ ବିଷୟ ନ ଭୁଞ୍ଜିବ | ॥ ୨୫୨ |
| | ଆତ୍ମାକୁ ନ କଲେ ସାକ୍ଷାତ | । ତହିଁରୁ ହୁଅଇ ପ୍ରତୀତ | ॥ ୨୫୩ |
| | ଯେ ସାଂସାରିକ ଭେଦଭାବ | । ଭ୍ରମମୂଳକ ତା' ଦେଖିବ | ॥ ୨୫୪ |
| ୫୮ | ଅସାଧୁ ଜନେ ଅବମାନ | । କରନ୍ତେ ବା ଆକ୍ଷେପ ଆନ | ॥ ୨୫୫ |
| ୫୯ | ଉପହାସ ବା ନିନ୍ଦାମାନ | । ଅଥବା କରନ୍ତେ ତାଡ଼ନ | ॥ ୨୫୬ |
| | ବାନ୍ଧି ବା ସ୍ଥାପନ କରନ୍ତେ | । ଅଥବା ଜୀବିକା ଛେଦାନ୍ତେ | ॥ ୨୫୭ |
| | ମୂତନ୍ତେ ଖଙ୍କାର ପକାନ୍ତେ | । ଏ ରୂପେ ମୂର୍ଖେ ନାନାମତେ | ॥ ୨୫୮ |
| | ନିଷ୍ଠାରୁ କରାନ୍ତେ ବିଚ୍ୟୁତ | । ତଥାପି ହୋଇ କଷ୍ଟପ୍ରାପ୍ତ | ॥ ୨୫୯ |
| | ଯେ ନିଜ ଶ୍ରେୟ ବାଞ୍ଛୁଥିବ | । ଧୈର୍ଯ୍ୟକୁ କରି ଅବଲମ୍ବ | ॥ ୨୬୦ |
| | ବୁଦ୍ଧିରେ ନିଜକୁ ସେ ପୁଣ | । [୨]ଉଦ୍ଧାର କରିବ ଆପଣ | ॥ ୨୬୧ |

ଶ୍ରୀଉଦ୍ଧବ ଉବାଚ

| | | | |
|---|---|---|---|
| ୬୦ | ଉଦ୍ଧବ କହନ୍ତି ଉତ୍ତର | । ଆହେ ବକ୍ତାଙ୍କ ମଧ୍ୟେ ବର | ॥ ୨୬୨ |
| ୬୧ | ଏବେ କହିଲ ଯାହା ମୋତେ | । କହ ତା' ବୁଝିବି ଯେମନ୍ତେ | ॥ ୨୬୩ |
| | ଆପଣାଠାରେ ଦୁଷ୍ଟଜନ | । କରନ୍ତେ ପରାଭବମାନ | ॥ ୨୬୪ |
| | ତାହା ସହିବାର ମନରେ | । ଦୁଃସହ ମଣଇଁ ସଂସାରେ | ॥ ୨୬୫ |
| | ହେ ବିଶ୍ୱାତ୍ମନ ଜ୍ଞାନୀଙ୍କର | । ସ୍ୱଭାବ ମଧ ବଳିୟାର | ॥ ୨୬୬ |
| | ଚରଣପଦ୍ମକୁ ତୁମ୍ଭର | । ଯେ କରିଛନ୍ତି ନିଜ ଘର | ॥ ୨୬୭ |
| | ତୁମ୍ଭ ଧର୍ମରେ ଯେ ନିରତ | । ଆବର ଯେହୁ ଶାନ୍ତଚିତ୍ତ | ॥ ୨୬୮ |
| | ସେ ଜନମାନଙ୍କ ବିହୁନେ | । କେ ଅବା ସହିବ ଭୁବନେ | ॥ ୨୬୯ |

୧. ବିଷୟ। ୨. ଅର୍ଥାତ୍ ସେ ନାରାୟଣଙ୍କୁ ସ୍ମରଣ କରିବ।

ଯେ ଉଦ୍ଧବଙ୍କୁ ତତ୍ତ୍ୱମାର୍ଗ । କହିଲେ ଜନ୍ମମୃତ୍ୟୁଯୋଗ ।। ୨୭୦
ସେ କୃଷ୍ଣ-ପାଦପଦ୍ମ ଦୁଇ । ବ୍ରାହ୍ମଣ ଦୀନବନ୍ଧୁ ଧ୍ୟାୟି ।। ୨୭୧
ହରଷ ହେଲା ନିଜ ମନେ । ଦୋଷ ନ ଧର ସାଧୁଜନେ ।। ୨୭୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ତତ୍ତ୍ୱସଂଖ୍ୟା ନାମ ଦ୍ୱାବିଂଶୋଽଧ୍ୟାୟଃ ।।

## ତ୍ରୟୋବିଂଶ ଅଧ୍ୟାୟ

ତ୍ରୟୋବିଂଶେ ତିରସ୍କାରସହନୋପାୟ ଈର୍ଯ୍ୟତେ ।
ଭିକ୍ଷୁଗୀତାପ୍ରକାରେଣ ମନସଃ ସଂଯମୋ ଧିୟା ।। ୧
ଦୁର୍ଜନୋପଦ୍ରବୋ ନୂନଂ ଦୁଃସହୋ ହି ମହୀୟସାମ୍ ।
ଅତଶ୍ଚତୁର୍ଭିରଧ୍ୟାୟୈଃ ସହନୋପାୟବର୍ଣ୍ଣନମ୍ ।। ୨

ଶ୍ରୀବାଦରାୟଣିରୁବାଚ

୧ ପୁଣି କହନ୍ତି ବ୍ୟାସସୁତ । ଶୁଣ ହେ ନୃପ ପରୀକ୍ଷିତ ।। ୧
ଉଦ୍ଧବ ଭାଗବତବର । କୃଷ୍ଣ ଯେ ମୁଖ୍ୟ ଯଦୁଙ୍କର ।। ୨
ଏମନ୍ତେ କରନ୍ତେ ପ୍ରାର୍ଥନ । ପ୍ରଶଂସି ଭୃତ୍ୟର ବଚନ ।। ୩
ଶ୍ରବଣଯୋଗ୍ୟ ଯା' ବିକ୍ରମ । ମୁକୁନ୍ଦ ଅଟଇ ଯା' ନାମ ।। ୪
ସେ ଭଗବାନ ଉଦ୍ଧବଙ୍କୁ । କହିଲେ ଏମନ୍ତ ବାକ୍ୟକୁ ।। ୫

ଶ୍ରୀଭଗବାନୁବାଚ

୨ କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ ଶୁଣ ମୋ' ବଚନ ।। ୬
ଦୁର୍ଜନକୁତ୍ସିତ ବଚନ । ତେଣେ କ୍ଷୁଭିତ ଯେଉଁ ମନ ।। ୭
ତାହାକୁ କରିବାକୁ ଶାନ୍ତ । ଅଟଇ ଯେହୁ ସମରଥ ।। ୮
ଏମନ୍ତ ସାଧୁ ଏ ଭୁବନେ । ନିଶ୍ଚିତେ ନାହିଁ କେଉଁସ୍ଥାନେ ।। ୯
୩ ମର୍ମ ଭେଦନ୍ତି ଯଉଁ ବାଣେ । ପୁରୁଷ ବିଦ୍ଧ ହେଲେ ତେଣେ ।। ୧୦
ତେମନ୍ତ ତାପ ନୋହେ ତାର । ଯେମନ୍ତେ ଦୁଷ୍ଟମାନଙ୍କର ।। ୧୧
ନିଷ୍ଠୁର ବାକ୍ୟଶରମାନ । ମର୍ମକୁ କରନ୍ତି ପୀଡ଼ନ ।। ୧୨
ନିତ୍ୟେ ଯେ ବାକ୍ୟଶରମାନ । ମର୍ମେ କରନ୍ତି ଅବସ୍ଥାନ ।। ୧୩
୪ ଏହି ବିଷୟେ ସତ୍ ପୁରୁଷ । ମହତ-ପୁଣ୍ୟ ଇତିହାସ ।। ୧୪
କହନ୍ତି, ଏବେ ତାହା ମୁହିଁ । ତୁମ୍ଭଙ୍କୁ କହିବି ବୁଝାଇ ।। ୧୫
ସୁସମାହିତ ହୋଇ ପୁଣ । ଉଦ୍ଧବ କର ତା' ଶ୍ରବଣ ।। ୧୬

୫ [୧]କେହୁଣି ଭିକ୍ଷୁକ ବ୍ରାହ୍ମଣେ । ପୀଡ଼ା ଦିଅନ୍ତେ ଦୁଷ୍ଟଗଣେ ॥ ୧୭
ନିଜ କର୍ମର ବିପାକକୁ । ସୁମରି ଧରିଣ ଧୈର୍ଯ୍ୟକୁ ॥ ୧୮
ସେ ବିପ୍ର କହିଅଛି ଯାହା । ତୋତେ ମୁଁ କହିବଇଁ ତାହା ॥ ୧୯
୬ କେହୁଣି ବିପ୍ରେକ ପୂର୍ବରେ । ଜନ୍ମିଲା ଅବନ୍ତୀ ନଗରେ ॥ ୨୦
କୃଷିବାଣିଜ୍ୟ ବୃତ୍ତି ତାର । ସଂପତ୍ତି ଅତି ବଳିୟାର ॥ ୨୧
କଦର୍ଯ୍ୟ[୨] ଅତି କୋପବନ୍ତ । ନିତ୍ୟେ କାମୁକ ଲୋଭଚିତ୍ତ ॥ ୨୨
୭ ଶୂନ୍ୟ ହୋଇଲା ତା' ସଦନ । ଯେ ଜ୍ଞାତି ଯେ ଅତିଥିଜନ ॥ ୨୩
ତାଙ୍କୁ ବଚନମାତ୍ରକରେ । ସତ୍‌କାର ନ କଲାକ ଥରେ ॥ ୨୪
ସେ ନିଜଦେହକୁ କାଳରେ । ସୁଖ ନ ଦେଲା କାମଦ୍ୱାରେ ॥ ୨୫
୮ ଦୁଃଶୀଳ କଦର୍ଯ୍ୟ ସେ ତାର । ବାନ୍ଧବ ପୁତ୍ର ଯେ ଆବର ॥ ୨୬
ଭାର୍ଯ୍ୟା ଦୁହିତା ଭୃତ୍ୟଗଣେ । ବିଷଣ୍ଣ ହୋଇ ଅନୁକ୍ଷଣେ ॥ ୨୭
ପ୍ରିୟ କଥାକୁ ତାର କେହି । ଉଦ୍ଧବ ! ଆଚରିଲେ ନାହିଁ ॥ ୨୮
୯ ଯକ୍ଷଙ୍କ ପ୍ରାୟେ ହୋଇ ପୁଣ । ଧନକୁ କରିଛି ରକ୍ଷଣ ॥ ୨୯
ପରଲୋକରୁ ଏ ଲୋକରୁ । ଭ୍ରଷ୍ଟ ହୋଇଲା ସ୍ୱଭାବରୁ ॥ ୩୦
ଧର୍ମକାମରେ ପ୍ରତିଦିନ । ସେ ବିପ୍ର ହୋଇଲା ବିହୀନ ॥ ୩୧
ପଞ୍ଚଯଜ୍ଞର ଦେବତାଏ । କ୍ରୁଦ୍ଧ ହୋଇଲେ ତାହା ଠାଏ ॥ ୩୨
୧୦ ତାଙ୍କୁ ଯା' କଲା ଅନାଦର । ସେହେତୁ ତା' ପୁଣ୍ୟବୃକ୍ଷର ॥ ୩୩
ଯେ ଅଂସରୂପ ଧନମାନ । ସେ ସର୍ବ ଲଭିଲା ନିଧନ ॥ ୩୪
ବହୁତ ଆୟାସେ ଶ୍ରମରେ । ଯା' ଅର୍ଜିଥିଲା ସେ କଷ୍ଟରେ ॥ ୩୫
୧୧ ଜ୍ଞାତିଏ ନେଲେ କିଛି ଧନ । କିଛି ହରିଲେ ଖଣ୍ଡ ଜନ ॥ ୩୬
ଦୈବରୁ ଗଲା କିଛି ପୁଣ । [୩]ଯେ ଗୃହଦାହାଦିଲକ୍ଷଣ ॥ ୩୭
ଧାନ୍ୟାଦି ନିଖାତ[୪] ହୋଇଲା । କାଳରୁ କିଛି ଧନ ଗଲା ॥ ୩୮
ବ୍ରହ୍ମବନ୍ଧୁ[୫]ର କିଛି ଧନ । ହରିଲେ ସାଧାରଣ ଜନ ॥ ୩୯
ବାକି ବଳକା ଯାହା ଥିଲା । ତାହାକୁ ନରପତି ନେଲା ॥ ୪୦
୧୨ ଏରୂପେ ଧନ ହୋ'ନ୍ତେ ହତ । ସେ ଧର୍ମକାମବିବର୍ଜିତ ॥ ୪୧
ଛାଡ଼ନ୍ତେ ତାକୁ ନିଜଜନେ । ଦୁରନ୍ତ ଚିନ୍ତା କଲା ମନେ ॥ ୪୨

---

୧. ସେହି ଭିକ୍ଷୁ ବ୍ରାହ୍ମଣ ପୂର୍ବେ ଧନାଢ଼୍ୟ ଥିଲେ । ବଡ଼ କଷ୍ଟରେ ତାଙ୍କ ଅର୍ଜିଥିବା ଧନ ନଷ୍ଟ ହୁଅନ୍ତେ ସେ ବୈରାଗୀ ହୋଇ ସଂନ୍ୟାସ ଗ୍ରହଣ କଲେ ଏବଂ ଭିକ୍ଷାପାଇଁ ଭ୍ରମଣ କରୁଥିବା ସମୟରେ ଦୁର୍ଜନଙ୍କ ଦ୍ୱାରା ପୀଡ଼ିତ ହୋଇଥିଲେ ।

୨. ଆତ୍ମାନଂ ଧର୍ମକୃତ୍ୟଂ ଚ ପୁତ୍ରଦାରାଂଶ୍ଚ ପୀଡ଼ୟନ୍ ।
ଦେବତାତିଥିଭୃତ୍ୟାଂଶ୍ଚ ସ କଦର୍ଯ୍ୟ ଇତି ସ୍ମୃତଃ ॥ (ସ୍ମୃତି)

୩. ଗୃହଦହନାଦି ଲଭିଣ (ପାଠାନ୍ତର)　୪. ପୋତି ହୋଇଗଲା ।　୫. ଅଧମ ବ୍ରାହ୍ମଣ ।

| | | | | | |
|---|---|---|---|---|---|
| ୧୩ | ନଷ୍ଟ ହୋଇଲା ଯାର ଧନ | । | ସଂତପ୍ତ ହେଲା ଯାର ମନ | ।। | ୪୩ |
| | ଧ୍ୟାନ କରନ୍ତେ ଏ ରୂପରେ | । | ଖିନ୍ନ ହୁଅନ୍ତେ ନିରନ୍ତରେ | ।। | ୪୪ |
| | ଯା' କଣ୍ଠ ଲୋତକେ ଗଦ୍‌ଗଦ | । | ଜନ୍ମିଲା ତା' ମହାନିର୍ବେଦ | ।। | ୪୫ |
| ୧୪ | ସେ ବିପ୍ର ବୋଇଲା ଏମନ୍ତ | । | ଆହା କି କଷ୍ଟ ଏ ବୃତ୍ତାନ୍ତ | ।। | ୪୬ |
| | ବୃଥା ଆମ୍ଭାକୁ ତାପ ଦେଲି | । | ଏଭଳି ଅର୍ଥାୟାସ କଲି | ।। | ୪୭ |
| | ଯେ ଧର୍ମ-କାମର ନିମିତ୍ତେ | । | ଯୋଗ୍ୟ ନୁହଇ କଦାଚିତେ | ।। | ୪୮ |
| ୧୫ | କଦର୍ଯ୍ୟଲୋକଙ୍କର ବିତ୍ତ | । | ସୁଖନିମିତ୍ତେ କଦାଚିତ | ।। | ୪୯ |
| | ପ୍ରାୟଶ ନୋହେ ଏ ଲୋକରେ | । | ଆମ୍ଭାକୁ ଚିନ୍ତାଗ୍ରସ୍ତ କରେ | ।। | ୫୦ |
| | ସେ ପୁଣ ଦେହାନ୍ତେ ଲୋକକୁ | । | ନିଅଇ ଘୋର ନରକକୁ | ।। | ୫୧ |
| ୧୬ | ଯଶସ୍ୱୀ ଲୋକମାନଙ୍କର | । | ବିଶୁଦ୍ଧ ଯଶ ଯେ ଆବର | ।। | ୫୨ |
| | ଯେ ଗୁଣବନ୍ତ ଲୋକଙ୍କର | । | ଗୁଣସମୂହ ଶ୍ଳାଘ୍ୟତର | ।। | ୫୩ |
| | ତାହାଙ୍କୁ ଅଳପ ଲୋଭ ହିଁ | । | ତେମନ୍ତେ ବିନାଶ କରଇ | ।। | ୫୪ |
| | ଧବଳ କୁଷ୍ଟଟି ଯେମନ୍ତ | । | ସୁନ୍ଦର ରୂପ କରେ ହତ | ।। | ୫୫ |
| ୧୭ | ଅପ୍ରାପ୍ତ ଅର୍ଥର ସାଧନ | । | ପ୍ରାପ୍ତ ଅର୍ଥର ସଂବର୍ଦ୍ଧନ | ।। | ୫୬ |
| | ରକ୍ଷଣ ବ୍ୟୟ ଭୋଗ ନାଶ | । | ହୁଅଇ ଏମାନ ବିଶେଷ | ।। | ୫୭ |
| | ତହିଁରୁ ସାଧନେ ବର୍ଦ୍ଧନେ | । | ଆୟାସ ଲଭିଥାନ୍ତି ଜନେ | ।। | ୫୮ |
| | ବ୍ୟୟରେ ହୋଏ ଚିନ୍ତା ତ୍ରାସ | । | ନାଶରେ ହୋଏ ବୁଦ୍ଧିଭ୍ରଂଶ | ।। | ୫୯ |
| ୧୮ \| | ଚଉର୍ଯ୍ୟ ହିଂସା ମିଥ୍ୟା ଘେନି | । | ଯେ ଦମ୍ଭ କାମ କ୍ରୋଧ ତିନି | ।। | ୬୦ |
| ୧୯ \| | ଯେ [1]ସ୍ମୟ, ମଦ, ବୈର, ଭେଦ | । | ଚାରି ଅନର୍ଥ ଏ ପ୍ରସିଦ୍ଧ | ।। | ୬୧ |
| | [2]ସଂସ୍ପର୍ଧା ଅବିଶ୍ୱାସ ବେନି | । | ଆବର ବ୍ୟସନ ଯେ ତିନି | ।। | ୬୨ |
| | ସ୍ତ୍ରୀସଙ୍ଗ ମଦ୍ୟପାନ ଦ୍ୟୂତ | । | ତିନି ବ୍ୟସନରୂପେ ଖ୍ୟାତ | ।। | ୬୩ |
| | ଅନର୍ଥ ପଞ୍ଚଦଶ ଏହି | । | ଅର୍ଥମୂଳକ ହିଁ ଅଟଇ | ।। | ୬୪ |
| | ଅର୍ଥ ଅଟଇ ଏହା' ନାମ | । | ଅନର୍ଥ ରୂପେ ପରିଣାମ | ।। | ୬୫ |
| | ତେଣୁ ଯେ ଶ୍ରେୟ ବାଞ୍ଛୁଥିବ | । | ଦୂରୁଁ ସେ ଅନର୍ଥ ଛାଡ଼ିବ | ।। | ୬୬ |
| ୨୦ | ଭ୍ରାତାଏ ଭାର୍ଯ୍ୟା ପିତୃମାନେ | । | ସେରୂପେ ଯେ ବା ମିତ୍ରଜନେ | ।। | ୬୭ |
| | ଏ ସର୍ବେ ଏକପ୍ରାଣପ୍ରାୟ | । | ହେଲେହେଁ ଅତିଶୟ ପ୍ରିୟ | ।। | ୬୮ |
| | କଉଡ଼ିକୋଡ଼ିକ ହେତୁରେ | । | ସ୍ନେହ ଛାଡ଼ନ୍ତି ଏ ସଂସାରେ | ।। | ୬୯ |
| | ଏ ସର୍ବେ ତତ୍‌କାଳ ହିଁ ପୁଣ | । | କରନ୍ତି ଶତ୍ରୁ ଆଚରଣ | ।। | ୭୦ |
| ୨୧ | ଏମାନେ ଅଳପ ଅର୍ଥରେ | । | କ୍ଷୁଭିତ ହୋଇ ନିରନ୍ତରେ | ।। | ୭୧ |
| | ଅତ୍ୟନ୍ତ କ୍ରୋଧ କରି ଜାତ | । | ଆସ୍ପର୍ଧା କରନ୍ତି ବହୁତ | ।। | ୭୨ |

୧. ବିସ୍ମୟ । ୨. ପରସୁଖ ଅସହନ (ସ୍ୱାମୀ) ।

ସୌହୃଦ ଛାଡ଼ି ବେଗେ ପୁଣ । ଛାଡ଼ନ୍ତି ମାରନ୍ତି ବହନ ॥ ୭୩
୨୨ ଦେବତା ବାଞ୍ଛନ୍ତି ଯାହାକୁ । ଏମନ୍ତ ମନୁଷ୍ୟଜନ୍ମକୁ ॥ ୭୪
ଲଭିଣ ତହିଁ ମଧ୍ୟେ ପୁଣ । ହୁଅନ୍ତେ ଉତ୍ତମ ବ୍ରାହ୍ମଣ ॥ ୭୫
ତା' ଯେ ଅନାଦର କରନ୍ତି । ଆପଣା ହିତ ସେ ନାଶନ୍ତି ॥ ୭୬
ନାନା ନରକକୁ ଗମନ । କରନ୍ତି ତଦନ୍ତେ ବହନ ॥ ୭୭
୨୩ ସ୍ୱର୍ଗ-ମୋକ୍ଷକୁ ଯେହୁ ଦ୍ୱାର । ଲଭି ସେ ମନୁଷ୍ୟଶରୀର ॥ ୭୮
ଅନର୍ଥମାନଙ୍କର ସ୍ୱତ । ସ୍ଥାନ ଅଟଇ ଯଉଁ ବିତ୍ତ ॥ ୭୯
କେ ତହିଁ ହେବ ଆସକତ । ଯାହାର ମରଣ ନିୟତ ॥ ୮୦
୨୪ ଦେବତା ପିତୃ ଋଷି ଭୂତ । ଯେ ଜ୍ଞାତି ବନ୍ଧୁରୂପେ ଖ୍ୟାତ ॥ ୮୧
ଅନ୍ୟ ଯେ ଭାଗଯୋଗ୍ୟ ଜନ । ଯେ ପୁଣ ଆତ୍ମା ବିଦ୍ୟମାନ ॥ ୮୨
ଅନ୍ନ ଆଦିରେ ଏମାନଙ୍କୁ । ତୃପ୍ତ ନ କରାଇ ଧନକୁ ॥ ୮୩
ଯକ୍ଷପରାଏ ରଖେ ଯେହୁ । ନରକେ ପଡ଼ଇଟି ସେହୁ ॥ ୮୪
୨୫ ମୁଁ ଅଟେ ପ୍ରମତ୍ତ ମୋହର । ବିତ୍ତ ବୟସ ବଳ ଆର ॥ ୮୫
ବ୍ୟର୍ଥ ଅର୍ଥର ପ୍ରୟାସରେ । ସରିଲା, ଯଉଁ ବିତ୍ତାଦିରେ ॥ ୮୬
ବିବେକବନ୍ତ ଲୋକମାନେ । ମୁକ୍ତ ହୁଅନ୍ତି ଏ ଭୁବନେ ॥ ୮୭
ବୃଦ୍ଧ ହୋଇଣ ଏବେ ମୁହିଁ । କି ବା ସାଧନ କରିବଇଁ ॥ ୮୮
୨୬ ପଣ୍ଡିତ ହୋଇ କି ହେତୁରେ । ବ୍ୟର୍ଥ ଅର୍ଥର ପ୍ରଚେଷ୍ଟାରେ ॥ ୮୯
କ୍ଳେଶକୁ ଲଭେ ବାରଂବାର । ନିଶ୍ଚୟେଁ ଏ ଲୋକ କାହାର ॥ ୯୦
ମାୟାରେ ଅତି ବିମୋହିତ । ହୋଇଛି, ମଣେଁ ମୁଁ ଏମନ୍ତ ॥ ୯୧
୨୭ ମୃତ୍ୟୁ ଗ୍ରାସିଛି ଯାକୁ ନିତ୍ୟେ । ସେ ମନୁଷ୍ୟର ଏ ଜଗତେ ॥ ୯୨
ଧନରେ ଧନଦ ଲୋକରେ । କାମରେ କାମପ୍ରଦ ନରେ ॥ ୯୩
ଜନ୍ମଦ କର୍ମଙ୍କରେ ପୁଣ । କି କାର୍ଯ୍ୟ ହେବ ଅବା ଭଣ ॥ ୯୪
୨୮ ଯେ ସର୍ବଦେବମୟ ନିତ୍ୟେ । ସେ ଭଗବାନ ହରି ମୋତେ ॥ ୯୫
ନିଶ୍ଚୟ ସଂତୋଷ ହୋଇଲେ । ଯେ ଏ ଦଶାକୁ ମୋତେ ନେଲେ ॥ ୯୬
ଯା' ହେତୁ ନାବପ୍ରାୟେ ସ୍ୱତ । ନିର୍ବେଦ ହେଲା ମୋର ଜାତ ॥ ୯୭
୨୯ ଆୟୁଷ କିଛି ଥିବ ଯେବେ । ପ୍ରମତ୍ତ ନୋହି କାହିଁ ତେବେ ॥ ୯୮
ଆତ୍ମାରେ ସଂତୋଷ ଲଭିଣ । ସାଧି ମୁଁ ସର୍ବଧର୍ମଗଣ ॥ ୯୯
ଜ୍ଞାନବିଦ୍ୟାରେ ଏ ଶରୀର । ନିଶ୍ଚେ ମୁଁ କରିବି ସଂହାର ॥ ୧୦୦
ଅଥବା ଏହାକୁ ତପରେ । ଶୋଷଣ କରିବି ନିର୍ଭରେ ॥ ୧୦୧
୩୦ ଈଶ୍ୱର ଯେ ତିନି ଜଗତେ । ସେ ଦେବତାଏ ଆଜ ମୋତେ ॥ ୧୦୨
କରନ୍ତୁ ଅନୁଗ୍ରହ ଅତି । ଯେଣୁ ନିକଟେ ହେବ ମୁକ୍ତି ॥ ୧୦୩
ଖଟ୍ୱାଙ୍ଗ ରାଜା ମୁହୂର୍ତ୍ତକ । ମାତ୍ରେ ଲଭିଲା ବ୍ରହ୍ମଲୋକ ॥ ୧୦୪

## ଶ୍ରୀଭଗବାନୁବାଚ

୩୧ କହନ୍ତି ପ୍ରଭୁ ରମାକାନ୍ତ । ଉଦ୍ଧବ ଶୁଣ ତା' ଚରିତ ।। ୧୦୫
ଏ ରୂପେ ଅବନ୍ତୀବ୍ରାହ୍ମଣ । ମନରେ ନିଶ୍ଚୟ କରିଣ ।। ୧୦୬
ଯେ ହୃଦଗ୍ରନ୍ଥି ଅହଂକାର । ଆବର ଯେହୁ ମମକାର ।। ୧୦୭
ତା' ଛାଡ଼ି ଶାନ୍ତଭାବ ଘେନି । ତତ୍‌କ୍ଷଣେ ହେଲା ଭିକ୍ଷୁ ମୁନି ।। ୧୦୮
୩୨ ସେ ବିପ୍ର ସଂଯତ କରିଣ । ଆତ୍ମା ଇନ୍ଦ୍ରିୟ ସମୀରଣ ।। ୧୦୯
ଏ ମହୀମଣ୍ଡଳେ ଭ୍ରମଇ । ଭିକ୍ଷାର୍ଥେ ଅନାସକ୍ତ ହୋଇ ।। ୧୧୦
ଶ୍ରେଷ୍ଠତା ନ କରି ପ୍ରକାଶ । ପୁରଗ୍ରାମେ କରେ ପ୍ରବେଶ ।। ୧୧୧
୩୩ ସେ ଭିକ୍ଷୁ ବୃଦ୍ଧ ଅବଧୂତ । ତାହାଙ୍କୁ ଦେଖି ଅବିରତ ।। ୧୧୨
ନାସ୍ତିକ ଜନେ ହେ ଉଦ୍ଧବ । କଲେ ବହୁତ ପରିଭବ[୧] ।। ୧୧୩
୩୪ କେ ନେଲେ ତ୍ରିଦଣ୍ଡକୁ ତହିଁ । ଅପରେ କମଣ୍ଡଳୁକୁ ହିଁ ।। ୧୧୪
ଧଇଲେ କେ ତାର ପାତ୍ରକୁ[୨] । କେ ତହିଁ ନେଲେ ଆସନକୁ ।। ୧୧୫
କେ ନେଲା ଅକ୍ଷସୂତ୍ରମାନ । କେ କନ୍ଥା କେ ନେଲା କୌପୀନ ।। ୧୧୬
ହେ ମୁନି ନିଅ ତୋ' ଏମାନ । ଏ ରୂପେ ଦେଖାଇ ବହନ ।। ୧୧୭
ସମସ୍ତ ଆଣି ତାଙ୍କୁ ଦେଇ । ପୁଣି ତା' ନିଅନ୍ତି ଛଡ଼ାଇ ।। ୧୧୮
୩୫ ଭିକ୍ଷା ମାଗିଣ ନଦୀକୂଳେ । ଅନ୍ନ ସଂପାଦିଣ ସେ କାଳେ ।। ୧୧୯
ଭୁଞ୍ଜନ୍ତେ ତହିଁ ଦୁଷ୍ଟ ନରେ । ପରିସ୍ରା କରନ୍ତି ବେଗରେ ।। ୧୨୦
ଖଙ୍କାର କଣ୍ଠତୁଁ ଆଣି । ପକାନ୍ତି ମସ୍ତକରେ ପୁଣି ।। ୧୨୧
୩୬ ବଚନ ପଚାରନ୍ତେ କେହି । ସେ ଯେବେ କିଛି ହିଁ ନ କହି ।। ୧୨୨
ପ୍ରହାର କରନ୍ତି ଦେହରେ । କେ ତହିଁ ନିଷ୍ଠୁର ବାକ୍ୟରେ ।। ୧୨୩
ବହୁତ ତର୍ଜନା କରନ୍ତି । ଏ ଚୋର ବୋଲିଣ ବୋଲନ୍ତି ।। ୧୨୪
ଏହାକୁ 'ବାନ୍ଧ ବାନ୍ଧ' ଖରେ । ବୋଲି କେ ବାନ୍ଧନ୍ତି ରଜ୍ଜୁରେ ।। ୧୨୫
୩୭ କ୍ଷୀଣ ହୁଅନ୍ତେ ଏହା' ଧନ । ଛାଡ଼ନ୍ତେ ନିଜ ବନ୍ଧୁଜନ ।। ୧୨୬
ଏ ଲୋକବଞ୍ଚକ ଅଟଇ । ତ୍ରିଦଣ୍ଡ ଚିହ୍ନ ଧରିଥାଇ ।। ୧୨୭
ଏ ବୃତ୍ତି କରିଛି ଗ୍ରହଣ । ଏ ରୂପେ କେହି ଦୁଷ୍ଟଗଣ ।। ୧୨୮
ଆକ୍ଷେପବାକ୍ୟମାନଙ୍କରେ । ନିନ୍ଦା କରନ୍ତି ଅବଜ୍ଞାରେ ।। ୧୨୯
୩୮ ଏ ଅତିବଳୀ ଧୈର୍ଯ୍ୟବନ୍ତ । ସୁମେରୁ ଅଚଳ ଯେମନ୍ତ ।। ୧୩୦
କାହାକୁ ନ କହି ଏ କିଛି । ଆପଣା କାର୍ଯ୍ୟ ସାଧୁଅଛି ।। ୧୩୧
ବକପରାଏ ଅତିଶୟ । ଏ ଦୃଢ଼ କରିଛି ନିଶ୍ଚୟ ।। ୧୩୨
୩୯ ଏରୂପେ କେହୁଣି ପୁରୁଷ । ତାଙ୍କୁ କରନ୍ତି ଉପହାସ ।। ୧୩୩
ତାଙ୍କ ଉପରେ କେହି ଆନ । ଛାଡ଼ନ୍ତି ଅଧୋବାୟୁମାନ ।। ୧୩୪

---
୧. ତିରସ୍କାର । ୨. ଗାତ୍ରକୁ (ପାଠାନ୍ତର) ।

| | | | | |
|---|---|---|---|---|
| | କେ ତାଙ୍କୁ ଶୃଙ୍ଖଳେ ବାନ୍ଧନ୍ତି | କାରାଗୃହେ ବା କେ ରୁନ୍ଧନ୍ତି | ॥ | ୧୩୫ |
| | ଶୁକସାରିକାଦି ପକ୍ଷୀଙ୍କୁ | କ୍ରୀଡ଼ାସାଧନ କରିବାକୁ | ॥ | ୧୩୬ |
| | ଯେସନେ ଲୋକେ ନିଜ ଘରେ | ରୁନ୍ଧି ରଖନ୍ତି ପିଞ୍ଜରାରେ | ॥ | ୧୩୭ |
| ୪୦ | ଏମନ୍ତ ରୂପେ ସେ ବ୍ରାହ୍ମଣ | ଦୁଃଖ ଯା' ଦେଲେ ଦୁଷ୍ଟଗଣ | ॥ | ୧୩୮ |
| | ଜ୍ୱର ଆଦିରୁ ଯେ ଜନ୍ମିଲା | ଶୀତୋଷ୍ଣାଦିରୁ ଯେ ହୋଇଲା | ॥ | ୧୩୯ |
| | ଏ ମୋର ଅଦୃଷ୍ଟ ପ୍ରାକ୍ତନ | ଦଇବ କଲା ନିଯୋଜନ | ॥ | ୧୪୦ |
| | ଏମାନ ହେଲେ ଉପସ୍ଥିତ | ଭୁଞ୍ଜିବି ମଣିଲା ଏମନ୍ତ | ॥ | ୧୪୧ |
| ୪୧ | ତାଙ୍କୁ ଯେ ନରାଧମଗଣ | ଭ୍ରଷ୍ଟ କରାଉଥିଲେ ପୁଣ | ॥ | ୧୪୨ |
| | ସେମାନଙ୍କରେ ହେ ଉଦ୍ଧବ | ସେ ବିପ୍ର ଲଭି ପରିଭବ | ॥ | ୧୪୩ |
| | ସାତ୍ତ୍ୱିକ[୧] ଧୈର୍ଯ୍ୟ ଧରି ତହିଁ | ନିଜ ଧର୍ମରୁ ଚ୍ୟୁତ ନୋହି | ॥ | ୧୪୪ |
| | ଗାୟନ କଲେ ଏହି ଗାଥା | ଶୁଣ ଏ ଅଦଭୁତ କଥା | ॥ | ୧୪୫ |

ଶ୍ରୀଦ୍ୱିଜ ଉବାଚ

| | | | | |
|---|---|---|---|---|
| ୪୨ | ମୋ' ଦୁଃଖସୁଖକୁ ଏ ନରେ | ହେତୁ ନୁହନ୍ତି ଏ ସଂସାରେ | ॥ | ୧୪୬ |
| | ଦେବତା ଆତ୍ମା କର୍ମ କାଳ | ଗ୍ରହାଦି ନୁହନ୍ତି, କେବଳ | ॥ | ୧୪୭ |
| | [୨]ମନ ବୋଲନ୍ତି ଋଷିଗଣ | ଦୁଃଖର ସୁଖର କାରଣ | ॥ | ୧୪୮ |
| | ସଂସାରଚକ୍ରକୁ ବହନ | ଯେ ମନ କରେ ପ୍ରବର୍ତ୍ତନ | ॥ | ୧୪୯ |
| ୪୩ | ବଳିଷ୍ଠ ଅଟଇ ଯେ ମନ | ତ୍ରିଗୁଣ କରଇ ସର୍ଜନ | ॥ | ୧୫୦ |
| | ସେ ଗୁଣ ହୁଅନ୍ତି ପ୍ରକାଶ | ସାତ୍ତ୍ୱିକ ରାଜସ ତାମସ | ॥ | ୧୫୧ |
| | ତହିଁରୁ ନାନା କର୍ମମାନ | ହୁଅନ୍ତି ପୁଣ ଉତପନ୍ନ | ॥ | ୧୫୨ |
| | ସେ ସେହି କର୍ମାନୁରୂପରେ | ଦେବ-ତିର୍ଯ୍ୟକ-ନରାଦିରେ | ॥ | ୧୫୩ |
| | ଜନ୍ମ ହୁଅଇ ଏ ଜୀବର | ସଂସାରଚକ୍ରେ ବାରମ୍ବାର | ॥ | ୧୫୪ |
| ୪୪ | ଆତ୍ମା ସକ୍ରିୟ ମନତୁଲେ | ନିୟନ୍ତାରୂପେ ହେଁ ରହିଲେ | ॥ | ୧୫୫ |
| | ମନର କ୍ରିୟାସଙ୍ଗହୀନ | ଯେଣୁ ବିଦ୍ୟାଶକ୍ତି ପ୍ରଧାନ | ॥ | ୧୫୬ |
| | ସେ ଆତ୍ମା ନିୟନ୍ତା ଜୀବର | ଅ-ତିରୋହିତ ଜ୍ଞାନ୍ ତାର | ॥ | ୧୫୭ |
| | ତେଣେ ସେ କେବଳ ଦେଖଇ | ଆବର ଜୀବ ଯେ ଅଟଇ | ॥ | ୧୫୮ |
| | ଆତ୍ମାରେ ପ୍ରକାଶେ ସଂସାର | ଯେ ମନ ତାହାକୁ ସ୍ୱୀକାର | ॥ | ୧୫୯ |
| | କରିଣ ଆତ୍ମସ୍ୱରୂପରେ | [୩]ତାହାର କର୍ମମାନଙ୍କରେ | ॥ | ୧୬୦ |
| | ସଙ୍ଗରୁ ବିଷୟମାନଙ୍କୁ | ସେବନ୍ତେ ଲଭେ ସେ ବନ୍ଧକୁ | ॥ | ୧୬୧ |
| ୪୫ | ଯେ ଦାନ ସ୍ୱଧର୍ମ[୪] ନିୟମ | ଯେ ଶାସ୍ତ୍ରପଠନ ସଂଯମ | ॥ | ୧୬୨ |

୧. ଧୃତ୍ୟା ଯୟା ଧାରୟତେ ମନଃପ୍ରାଣେନ୍ଦ୍ରିୟକ୍ରିୟାଃ ।
ଯୋଗେନାବ୍ୟଭିଚାରିଣ୍ୟା ଧୃତିଃ ସା ପାର୍ଥ ସାତ୍ତ୍ୱିକୀ ॥ (ଗୀତା)

୨. "ମନସା ହ୍ୟେବ ପଶ୍ୟତି ମନସା ଶୃଣୋତି" (ଶ୍ରୁତିଃ)

୩. ମନର । ୪. ନିତ୍ୟ ଓ ନୈମିତ୍ତିକ ।

| | | | | |
|---|---|---|---|---|
| | ସଦ୍‌ବ୍ରତ[୧] କର୍ମମାନ ଯେତେ | । ମନକୁ ନିଗ୍ରହ କରନ୍ତେ | ।। | ୧୬୩ |
| | ସଫଳ ହୁଅନ୍ତି ଏ ବେଗ | । ମନନିଗ୍ରହ ଶ୍ରେଷ୍ଠ ଯୋଗ | ।। | ୧୬୪ |
| ୪୬ | ଯାହାର ମନ ସମାହିତ | । ଆବର ଅଟଇ ପ୍ରଶାନ୍ତ | ।। | ୧୬୫ |
| | ଦାନାଦିମାନଙ୍କେ ତାହାର | । କହ କି କାର୍ଯ୍ୟ ହେବ ଆର | ।। | ୧୬୬ |
| | ବିକ୍ଷିପ୍ତ ଅଟେ ଯାହା' ମନ | । ଆଳସ୍ୟ ଆଦିରେ ବିଲୀନ | ।। | ୧୬୭ |
| | ଏ ଦାନାଦିରେ ତାର ତହିଁ | । କିଛି ହିଁ ପ୍ରୟୋଜନ ନାହିଁ | ।। | ୧୬୮ |
| ୪୭ | [୨]ସର୍ବଇନ୍ଦ୍ରିୟଗଣ ଆନ | । ମନର ଅଟନ୍ତି ଅଧୀନ | ।। | ୧୬୯ |
| | ଅନ୍ୟ ଇନ୍ଦ୍ରିୟ ଯେ ଅଛଇ | । ମନ ତାହାର ବଶ ନୋହି | ।। | ୧୭୦ |
| | ମନରୂପକ ଦେବ ଆର | । ଯୋଗୀଙ୍କ ପକ୍ଷେ ଭୟଙ୍କର | ।। | ୧୭୧ |
| | ଯେ ଯେଡ଼େ ବଳବନ୍ତ ହୋଇ | । ଯେଣୁ ଏ[୩] ତାହାକୁ ବଳଇ | ।। | ୧୭୨ |
| | ଏଣୁ ଯେ ବଶ କରେ ତାକୁ[୪] | । ଜିଣେ ସେ ସର୍ବ ଇନ୍ଦ୍ରିୟକୁ | ।। | ୧୭୩ |
| ୪୮ | ରାଗାଦି ବେଗମାନ ଯାର | । ଅଟଇ ଅସହ୍ୟ ଦୁର୍ବାର | ।। | ୧୭୪ |
| | ଯେ ପୁଣ ମର୍ମକୁ ପୀଡ଼ଇ | । ଦୁର୍ଜୟ ସେ ମନଶତ୍ରୁ ହିଁ | ।। | ୧୭୫ |
| | ତାକୁ ନ ଜିଣି କେହି ନରେ | । ମନୁଷ୍ୟମାନଙ୍କ ସଙ୍ଗରେ | ।। | ୧୭୬ |
| | ବ୍ୟର୍ଥ ବିଗ୍ରହ ଆଚରନ୍ତି | । ସେମାନେ ବିମୂଢ଼ ଅଟନ୍ତି | ।। | ୧୭୭ |
| | ଯେ ଶତ୍ରୁ ମିତ୍ର ଉଦାସୀନ | । ଭିଆନ୍ତି ଯେଣୁ ସେହୁ ଜନ | ।। | ୧୭୮ |
| ୪୯ | ମନୋମାତ୍ରପରିକଳ୍ପିତ | । ଏ ଦେହ ଅଟଇ ନିଶ୍ଚିତ | ।। | ୧୭୯ |
| | ସ୍ୱଦେହେ କରି 'ଅହଂ' ମତି | । ପୁତ୍ରାଦିଦେହେ 'ମମ' ଇତି | ।। | ୧୮୦ |
| | ଅନ୍ଧ ବିଚାରବନ୍ତ ନର | । ଏ ମୁଁ, ଏ ଅଟଇ ଇତର | ।। | ୧୮୧ |
| | ଏରୂପେ ଭ୍ରମହେତୁଁ ପୁଣ | । ସଂସାରେ କରନ୍ତି ଭ୍ରମଣ | ।। | ୧୮୨ |
| | ତମ[୫] ଅଟଇ ନାମ ଯାର | । ଯେ ପୁଣ ଦୁରନ୍ତ ଦୁଷ୍ପାର | ।। | ୧୮୩ |
| ୫୦ | ସୁଖଦୁଃଖର ହେତୁ ହୋଇ | । ଯଦ୍ୟପି ଜନ ହିଁ ଅଟଇ | ।। | ୧୮୪ |
| | ତହିଁରେ କି ହୁଏ ଆତ୍ମାର | । [୬]ତା' ନିଶ୍ଚେ ଭୌତିକ ଦେହର | ।। | ୧୮୫ |
| | ନିଜ ଦନ୍ତରେ କଦାଚିତେ | । ଜିହ୍ୱାକୁ କାମୁଡ଼ି ପକାନ୍ତେ | ।। | ୧୮୬ |
| | ସେ ବେଦନାରେ ସେ କାହାକୁ | । କହ ବା କରିବ କ୍ରୋଧକୁ | ।। | ୧୮୭ |
| ୫୧ | ସୁଖଦୁଃଖର ହେତୁ ଯେବେ | । ବୋଲିବା ଦେବତାଏ ତେବେ | ।। | ୧୮୮ |

୧. ଏକାଦଶୀ ଉପବାସାଦି ।

୨. ''ମନସୋ ବଶେ ସର୍ବମିଦଂ ବଭୂବ, ନାନ୍ୟସ୍ୟ ମନୋ ବଶମନ୍ୱିୟାୟ, ଭୀଷ୍ମୋ ହି ଦେବଃ ସହସଃ ସହୀୟାନ୍'' (ଶ୍ରୁତିଃ) ।

୩. ମନ । ୪. ମନକୁ । ୫. ଅନ୍ଧାର ।

୬. ଆତ୍ମା ଅମୂର୍ତ୍ତ ଓ ଅକ୍ରିୟ ହୋଇଥିବାରୁ ହନନାଦି କ୍ରିୟାରେ ସେ କର୍ତ୍ତା ବା କର୍ମ ହୋଇ ନ ପାରେ । ତଥାପି ଯଦି କୁହାଯାଏ ଦୁଃଖ ବା ସୁଖ ଆତ୍ମାଶ୍ରୟୀ, ତେବେ ମଧ୍ୟ ଆତ୍ମା ଉଭୟ (ସୁଖଦୁଃଖଦାତା ଓ ସୁଖଦୁଃଖଭୋକ୍ତା) ଶରୀରରେ ଏକ ହୋଇଥିବାରୁ କୋପର ବିଷୟ ନୁହେଁ ।

ତହିଁରେ କି ହୁଏ ଆତ୍ମାର । ତାହା ଇନ୍ଦ୍ରିୟଦେବତାର[1] ।। ୧୮୯
ଯେବେ ଦଇବେ କଦାଚିତ । ଅଙ୍ଗରେ ଅଙ୍ଗ ହୋଏ ହତ ।। ୧୯୦
ସ୍ୱଦେହେ କାହାକୁ ପୁରୁଷ । କହ କରିବ ଅବା ରୋଷ ।। ୧୯୧
୫୨ ସୁଖଦୁଃଖର ହେତୁ ଯେବେ । ବୋଲିବା ଆତ୍ମା ଅଟେ, ତେବେ ।। ୧୯୨
ତହିଁରେ ଅନ୍ୟରୁ କି ହୋଇ । ନିଜ ସ୍ୱଭାବ ସେ ଅଟଇ ।। ୧୯୩
ଆତ୍ମାରୁ ଅନ୍ୟ ନାହିଁ କିଛି । ଯେବେ ବୋଲିବ କିଛି ଅଛି ।। ୧୯୪
ସେ ବାକ୍ୟ ମିଥ୍ୟା ଅଟେ ଯେଣୁ । କ୍ରୋଧ କରିବ କି କାରଣୁ ।। ୧୯୫
ଆତ୍ମାର ସୁଖଦୁଃଖ ନାହିଁ । ସେ ନିତ୍ୟସିଦ୍ଧ ହୋଇଥାଇ ।। ୧୯୬
୫୩ ସୁଖଦୁଃଖଙ୍କର କାରଣ । ଯେବେ ବୋଲିବ ଗ୍ରହଗଣ ।। ୧୯୭
କି ହେବ ଅଜନ୍ମା ଆତ୍ମାର । ସେମାନେ ପୀଡ଼କ ଦେହର ।। ୧୯୮
ସେ ଗ୍ରହେ[2] ଗ୍ରହକୁ ବିବାଦେ । ପୀଡ଼ା ଦିଅନ୍ତି ସ୍ଥାନଭେଦେ ।। ୧୯୯
କାହାକୁ କ୍ରୁଦ୍ଧ ହେବ କହ । ଆତ୍ମା ନୁହଇ ଗ୍ରହ ଦେହ ।। ୨୦୦
ଗ୍ରହରୁ ଦେହରୁ ସେ ଭିନ୍ନ । କହନ୍ତି ଏହା ବିଜ୍ଞ ଜନ ।। ୨୦୧
୫୪ ସୁଖଦୁଃଖଙ୍କର କାରଣ । ଯେବେ ହୋଇବେ କର୍ମଗଣ ।। ୨୦୨
ତହିଁରେ କି ହେବ ଆତ୍ମାର । ଚେତନାହୀନ ଏ ଶରୀର ।। ୨୦୩
ଆତ୍ମା ଶୁଦ୍ଧଜ୍ଞାନସ୍ୱରୂପ । ଜଡ଼ ଅଜଡ଼ ବେନିରୂପ ।। ୨୦୪
ହୁଅନ୍ତେ କର୍ମ ସଂଭବଇ । ଅନ୍ୟଥା କର୍ମ ନ ଯୋଗାଇ ।। ୨୦୫
ସୁଖଦୁଃଖଙ୍କର କେବଳ । ଯେଣୁ ସେ କର୍ମ ନୋହେ ମୂଳ ।। ୨୦୬
ଏଣୁ କାହାକୁ କ୍ରୁଦ୍ଧ ହେବ । କାହୁଁ ବା କର୍ମ ସଂଭବିବ ।। ୨୦୭
୫୫ ସୁଖଦୁଃଖଙ୍କର କାରଣ । କାଳ ହୋଇବ ଯେବେ ପୁଣ ।। ୨୦୮
ତହିଁରେ ଆତ୍ମାର କି ହୋଇ । ଯେଣୁ ଏ କାଳସ୍ୱରୂପ ହିଁ ।। ୨୦୯
ଅଗ୍ନିର ହେତୁରୁ ଯେମନ୍ତ । ନୋହେ ତା' ଅଂଶଜ୍ୱାଳା ହତ ।। ୨୧୦
ତୁଷାରକଣ ନାଶ ପାଇଁ । ହିମଶୀତତ୍ୱ ନ ଯୋଗାଇ ।। ୨୧୧
ଏଣୁ କାହାକୁ କ୍ରୁଦ୍ଧ ନୋହି । ଆତ୍ମାର ସୁଖଦୁଃଖ ନାହିଁ ।। ୨୧୨
୫୬ ଆତ୍ମା ଯେ ପ୍ରକୃତିରୁ ପର । କେହୁଣି କାଳରେ ତାହାର ।। ୨୧୩
କେହୁଣି ପ୍ରକାରେ ବା କାହିଁ । ସୁଖଦୁଃଖାଦି କିଛି ନାହିଁ ।। ୨୧୪
ପ୍ରକାଶ କରେ ଯେ ସଂସାର । ଯେସନେ ସେ ଅହଂକାରର ।। ୨୧୫
ସୁଖଦୁଃଖାଦି ହୋଏ ଜାତ । ଆତ୍ମାର ନାହିଁଟି ତେମନ୍ତ ।। ୨୧୬
ଯେ ଜନ ଏମନ୍ତ ଜାଣଇଁ । କାହାକୁ ତାର ଭୟ ନାହିଁ ।। ୨୧୭
୫୭ ଯା' ପୂର୍ବ ମହାଋଷିଗଣ । ଅଧ୍ୟାସ[3] କରିଛନ୍ତି ପୁଣ ।। ୨୧୮

---

୧. ହସ୍ତଦ୍ୱାରା ମୁଖ ଅଭିହତ ହୁଅନ୍ତେ ଅଥବା ମୁଖଦ୍ୱାରା ହସ୍ତ ଦଷ୍ଟ ହୁଅନ୍ତେ ଉକ୍ତ ବେଦନା ମୁଖାଭିମାନୀ ଦେବତା ଅଗ୍ନିଙ୍କର ଏବଂ ହସ୍ତାଭିମାନୀ ଦେବତା ଇନ୍ଦ୍ରଙ୍କର ହୁଏ । କିନ୍ତୁ ଅବିକ୍ରିୟ ତଥା ଅହଂକାରରହିତ ଆତ୍ମାର ତାହା ହୁଏ ନାହିଁ ।

୨. ଗ୍ରହମାନେ । ୩. ଆଶ୍ରୟ ।

| | | | |
|---|---|---|---|
| | ସେ ପରମାତ୍ମନିଷ୍ଠାକୁ ହିଁ | । ଆସ୍ଥା କରିଣ ନିତ୍ୟେ ମୁହିଁ | ।। ୨୧୯ |
| | ସେବା କରିଣ ସେ ମୁକୁନ୍ଦ | । ବେନି ଚରଣ-ଅରବିନ୍ଦ | ।। ୨୨୦ |
| | ଦୁରନ୍ତ ଅଟେ ଯାହା' ପାର | । ତରିବି ସେ ଭବସାଗର | ।। ୨୨୧ |

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୫୮ | କହନ୍ତି ରୁକ୍ମିଣୀରମଣ | । ଏମନ୍ତ ରୂପେ ସେ ବ୍ରାହ୍ମଣ | ।। ୨୨୨ |
| | ନଷ୍ଟ ହୁଅନ୍ତେ ନିଜ ଧନ | । ସନ୍ନ୍ୟାସ କଲା ନୋହି ମ୍ଳାନ[୧] | ।। ୨୨୩ |
| | ଭ୍ରମଣ କରନ୍ତେ ପୃଥ୍ୱୀରେ | । ତାକୁ ସେକାଳେ ଦୁଷ୍ଟ ନରେ | ।। ୨୨୪ |
| | କରନ୍ତେ ପରାଭବମାନ | । ସ୍ୱଧର୍ମୁଁ ନୋହିଲା ସ୍ଖଳନ | ।। ୨୨୫ |
| | ଗାଇଲା ପୁଣ ଯଉଁ ଗାଥା | । ଉଦ୍ଧବ କହିବା ସେ କଥା | ।। ୨୨୬ |
| ୫୯ | ପ୍ରାଣୀଙ୍କୁ ସୁଖଦୁଃଖ ଦୁଇ | । ଦେବ ଏ ରୂପେ କେହି ନାହିଁ | ।। ୨୨୭ |
| | ମିତ୍ର ଉଦାସୀ ରିପୁଗଣ | । ଏରୂପେ ଯହିଁରେ ନିର୍ମାଣ | ।। ୨୨୮ |
| | ଅଜ୍ଞାନକୃତ ସେ ଜଗତ | । ମନବିଭ୍ରମେ ବିନିର୍ମିତ | ।। ୨୨୯ |
| ୬୦ | ସେହେତୁ ସର୍ବାତ୍ମଭାବରେ | । ବୁଦ୍ଧି ନିବେଶି ମୋହ ଠାରେ | ।। ୨୩୦ |
| | ମନକୁ କର ତୁ ନିଗ୍ରହ | । ଉଦ୍ଧବ ଏ ଯୋଗସଂଗ୍ରହ | ।। ୨୩୧ |
| ୬୧ | ଏ ବ୍ରହ୍ମନିଷ୍ଠ ଭିକ୍ଷୁଗୀତ | । ଯେ ଏହା ହୋଇ ସମାହିତ | ।। ୨୩୨ |
| | [୨]ଧରଇ ଶୁଣଇ ଶୁଣାଇ | । ସଂସାରଦୁଃଖସୁଖେ ସେହି | ।। ୨୩୩ |
| | ଲଭଇ ନାହିଁ ପରାଭବ | । ଏକଥା ସତ୍ୟ ହେ ଉଦ୍ଧବ | ।। ୨୩୪ |
| | କୃଷ୍ଣଚରଣଅରବିନ୍ଦ | । ଗଳିତ ଯଉଁ ମକରନ୍ଦ | ।। ୨୩୫ |
| | ତା' ଭୃଙ୍ଗପ୍ରାୟେ କରୁ ପାନ | । ବ୍ରାହ୍ମଣ ଦୀନବନ୍ଧୁମନ | ।। ୨୩୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ ଶ୍ରୀଭିକ୍ଷୁଗୀତା
ନାମ ତ୍ରୟୋବିଂଶୋଽଧ୍ୟାୟଃ ।।

## ଚତୁର୍ବିଂଶ ଅଧ୍ୟାୟ

ଚତୁର୍ବିଂଶେ ତୁ ସାଂଖ୍ୟେନ ମନୋମୋହୋ ନିବାର୍ଯ୍ୟତେ ।
ଆତ୍ମନଃ ସର୍ବଭାବାନାମାଗମାପାୟଚିନ୍ତୟା ।। ୧
ସ୍ୱପଦଦ୍ୱନ୍ଦ୍ୱଭକ୍ତାନାମଦ୍ୱନ୍ଦ୍ୱତ୍ୱାୟ ସଂଯମମ୍ ।
ଚିତ୍ତସ୍ୟୋକ୍ତ୍ୱା ପୁନଃ କୃଷ୍ଣଃ ସାଂଖ୍ୟମତ୍ରାହ ତଦ୍‌କୃତେ ।। ୨

ଶ୍ରୀଭଗବାନୁବାଚ

| | | | |
|---|---|---|---|
| ୧ | କୃଷ୍ଣ କହନ୍ତି ହେ ଉଦ୍ଧବ | । ଏବେ କହିବା ସାଂଖ୍ୟଭାବ | ।। ୧ |

୧. ବିଷଣ୍ଣ ।  ୨. ମନକୁ ନିଗ୍ରହ କରିବାକୁ ଅସମର୍ଥ ହୋଇ ମଧ୍ୟ ଯେ ଶ୍ରବଣାଦି କରେ ।

କପିଳ ଆଦି ଋଷି ଯତି । ଯାହା ନିଶ୍ଚୟ କରିଛନ୍ତି ।।
ତତ୍‌କାଳ ଯଉଁ ସାଂଖ୍ୟ ଜାଣି । ଭେଦଭ୍ରମ[1] କୁ ଛାଡ଼େ ପ୍ରାଣୀ ।।
୨ ଯେ ଏକ ଅଟେ ଭେଦହୀନ । ପ୍ରଳୟସମୟେ ସେ ଜ୍ଞାନ[2] ।।
ସକଳ ପଦାର୍ଥ ସହିତ । ବ୍ରହ୍ମରେ ଥିଲା ତିରୋହିତ ।।
ଆଦି ସତ୍ୟଯୁଗରେ ଯେବେ । ବିବେକନିପୁଣ ମାନବେ ।।
ଜନ୍ମନ୍ତି ତାହାଙ୍କର ତହିଁ । ଏ ଭେଦଜ୍ଞାନ ନ ସ୍ଫୁରଇ ।।
୩ ମନବଚନ ଅଗୋଚର । ଯେ ଭେଦଶୂନ୍ୟ ନିରାକାର ।।
ସେ ସତ୍ୟ ବ୍ରହ୍ମ ହେଲା ଆଗ । ମାୟା-ବିଳାସେ ବେନିଭାଗ ।।
୪ ସେ ବେନିଭାଗଙ୍କ ମଧ୍ୟରେ । ଏକଭାଗଟି ଏ ସଂସାରେ ।।
କାର୍ଯ୍ୟକାରଣରୂପୀ ହୋଇ । ଉଦ୍ଧବ ପ୍ରକୃତି ବୋଲାଇ ।।
ଆରକ ଭାଗ ଶୁଦ୍ଧ ଜ୍ଞାନ । ତାକୁ ପୁରୁଷ ବୋଲେ ଜନ ।।
୫ ଈଶ୍ୱରେ ପୁରୁଷାନୁମତେ[3] । ସେ ମାୟା କ୍ଷୋଭକୁ ଲଭନ୍ତେ ।।
ସତ୍ତ୍ୱ-ରଜ-ତମ ରୂପରେ । ଗୁଣ ଜନ୍ମନ୍ତି ପ୍ରକୃତିରେ ।।
୬ ଗୁଣରୁ ସୂତ୍ର[4] ହୋଏ ଜାତ । ମହାନ[5] ସୂତ୍ରରେ ସଂଯୁତ ।।
ବିକାର ଲଭନ୍ତେ ମହାନ । ଜୀବକୁ ଯେ କରେ ମୋହନ ।।
ସେ ଅହଂକାର ହେ ଉଦ୍ଧବ । ତହିଁରୁ ହୁଅଇ ସଂଭବ ।।
୭ ଶବ୍ଦାଦି ପଞ୍ଚ ତନ୍ମାତ୍ରର । ଇନ୍ଦ୍ରିୟ-ଦେବତା-ମନର ।।
ଯେ ନିତ୍ୟେ କାରଣ ଅଟଇ । ଜଡ଼ ଅଜଡ଼ରୂପ ହୋଇ ।।
ଏମନ୍ତ ଯଉଁ ଅହଂକାର । ସେ ହୋଏ ତିନି ପରକାର ।।
ବଇକାରିକ ତଇଜସ । ତାମସରୂପରେ ପ୍ରକାଶ ।।
୮ ଶବ୍ଦାଦି ତନ୍ମାତ୍ରରୁ ଜାତ । ତାମସୁଁ ପଞ୍ଚ ମହାଭୂତ ।।
ବୁଦ୍ଧିକୁ ସଙ୍ଗେ ଘେନି ଦଶ । ଇନ୍ଦ୍ରିୟ ତୈଜସୁଁ ପ୍ରକାଶ ।।
ମନ, ଇନ୍ଦ୍ରିୟ-ଅଧିଷ୍ଠାନ । ଦେବତା ସାତ୍ତ୍ୱିକୁଁ ଉତ୍‌ପନ୍ନ ।।
ଦିଗ୍ ବାତ ଅର୍କ ଯେ ବରୁଣ । ଅଶ୍ୱିନ ବହ୍ନି ଇନ୍ଦ୍ର ପୁଣ ।।
ଉପେନ୍ଦ୍ର ମିତ୍ର ପ୍ରଜାପତି । ଆବର ଚନ୍ଦ୍ର ଉଡୁପତି ।।
ଏମାନେ ହେଲେ ଏକାଦଶ । ମନକୁ ମିଶାଇ ଦ୍ୱାଦଶ ।।
୯ ସେ ସର୍ବ ଭାବ ଏକଠାରେ । ମିଳିତ ହୋଇ ମୋ' ଆଜ୍ଞାରେ ।।
ବ୍ରହ୍ମାଣ୍ଡ କଲେ ଉତପନ୍ନ । ସେ ମୋ ଉତ୍ତମ ଆୟତନ ।।
୧୦ ସେ ଅଣ୍ଡ ଥିଲା ସଲିଳରେ । ମୁଁ ଲୀଳାବିଗ୍ରହରୂପରେ ।।
ଶ୍ରୀନାରାୟଣନାମ ବହି । ରହିଲି ତାହା ମଧ୍ୟେ ଯାଇ ।।
ବିଶ୍ୱ ନାମରେ ଯେ ବିଖ୍ୟାତ । ସେ ପଦ୍ମ ମୋ ନାଭିରୁ ଜାତ ।।

---

୧. ସୁଖଦୁଃଖାଦିରୂପ ଭେଦଭ୍ରମ । ୨. ଦ୍ରଷ୍ଟା । ୩. ପୁରୁଷଦ୍ୱାରେଣ ।
୪. ସୂତ୍ର = କ୍ରିୟାଶକ୍ତିମନ୍ତ ପ୍ରଥମ ବିକାର । ୫. ମହାନ = ଜ୍ଞାନଶକ୍ତି ।

| | | | | | |
|---|---|---|---|---|---|
| | ତହିଁରେ ହୋଇଲେ ସଂଭବ | । | ଚତୁରାନନ[1] ସ୍ୱୟଂଭୂବ | ।। | ୩୩ |
| | ଭୋଗବିଗ୍ରହରୂପ ସେହି | । | ବୈରାଜ ଆବିର୍ଭୂତ ତହିଁ | ।। | ୩୪ |
| ୧୧ | ସେ ବିଶ୍ୱ-ଆତ୍ମା ବ୍ରହ୍ମା ତହିଁ | । | ରଜୋଗୁଣରେ ଯୁକ୍ତ ହୋଇ | ।। | ୩୫ |
| | ମୋ ଅନୁଗ୍ରହୁଁ ତପସ୍ୟାରେ | । | ଲୋକପାଳଙ୍କ ସହିତରେ | ।। | ୩୬ |
| | ଭୂର୍ଭୁବଃସ୍ୱର୍ଲୋକ ଭେଦରେ | । | ସର୍ଜିଲେ ତିନି ପରକାରେ | ।। | ୩୭ |
| | ଭୂ ଅତଳାଦିକୁ ମିଶାଇ | । | ଭୁବ ଅନ୍ତରୀକ୍ଷଲୋକ ହିଁ | ।। | ୩୮ |
| | ସ୍ୱର୍ ମହର୍ଜନ ଲୋକାଦିର | । | ଉପଲକ୍ଷଣଟି ଆବର | ।। | ୩୯ |
| ୧୨ | ଦେବତାମାନଙ୍କର ତହିଁ | । | ନିବାସ ହୋଇଲା ସ୍ୱର୍ଗ ହିଁ | ।। | ୪୦ |
| | ସମସ୍ତ ଭୂତଙ୍କର ଭୁବ | । | ସ୍ଥାନ ହୋଇଲା ହେ ଉଦ୍ଧବ | ।। | ୪୧ |
| | ମନୁଷ୍ୟ ଆଦିଙ୍କର ଏକ | । | ସ୍ଥାନ ହୋଇଲା ଭୂମିଲୋକ | ।। | ୪୨ |
| | ମହର୍ଲୋକାଦି ସ୍ଥାନ ଯେହି | । | ସେ ହେଲା ସିଦ୍ଧଙ୍କର ପାଇଁ | ।। | ୪୩ |
| ୧୩ | ଭୂମିତଳରେ ବିଦ୍ୟମାନ | । | ଅତଳ ଆଦି ଯେତେ ସ୍ଥାନ | ।। | ୪୪ |
| | ନାଗ-ଅସୁରଙ୍କ ନିବାସ | । | ସର୍ଜିଲେ ପ୍ରଭୁ ପ୍ରଜା-ଈଶ | ।। | ୪୫ |
| | ତ୍ରିଗୁଣାତ୍ମକ କର୍ମଙ୍କର | । | ଅନୁରୂପରେ ପ୍ରାଣୀଙ୍କର | ।। | ୪୬ |
| | ସକଳ ଗତି ତ୍ରିଲୋକୀରେ | । | ହୁଅଇ ପାତାଳ ଆଦିରେ | ।। | ୪୭ |
| ୧୪ | ଯୋଗର ତପର ନ୍ୟାସର | । | ନିର୍ମଳ ଗତି ଯଥୋତ୍ତର | ।। | ୪୮ |
| | ଯେ ମହର୍ଜନତପଃସତ୍ୟ | । | ସେ ସ୍ଥାନ ହୁଅଇ ପ୍ରାପତ | ।। | ୪୯ |
| | ଭକ୍ତିଯୋଗର ହୋଏ ସ୍ଥାନ | । | ମୋହର ବୈକୁଣ୍ଠଭୁବନ | ।। | ୫୦ |
| ୧୫ | ମୁଁ କାଳଶକ୍ତି ମୁହିଁ ଧାତା | । | ମୁଁ ଅଟେ କର୍ମଫଳଦାତା | ।। | ୫୧ |
| | ମୁଁ ହେତୁଭୂତ ମୋହ' ଦ୍ୱାରେ | । | ଗୁଣପ୍ରବାହ ଏ ସଂସାରେ | ।। | ୫୨ |
| | କର୍ମରେ ଯୁକ୍ତ ଏ ଜଗତ | । | ସତ୍ୟଲୋକର ପରିଯନ୍ତ | ।। | ୫୩ |
| | ଉତ୍ତମ ଗତିକୁଁ ଲଭଇ | । | ପୁଣ ସ୍ଥାବର ପର୍ଯ୍ୟନ୍ତ ହିଁ | ।। | ୫୪ |
| | ନୀଚ ଗତିମାନଙ୍କୁ ପାଏ | । | ଏରୂପେ କର୍ମେ ବୁଲୁଥାଏ | ।। | ୫୫ |
| ୧୬ | ଯେ ଅଣୁ ବୃହତ୍ କୃଶ ହୋଇ | । | ଯେ ସ୍ଥୂଳରୂପେ ପ୍ରକାଶଇ | ।। | ୫୬ |
| | ଏମନ୍ତ ଯେତେ ଯେତେ ଭାବ | । | ଏ ସମସ୍ତେଟି ହେ ଉଦ୍ଧବ | ।। | ୫୭ |
| | ପ୍ରକୃତି-ପୁରୁଷ ଦୁଇରେ | । | ସଂଯୁକ୍ତ ଅଟନ୍ତି ନିତ୍ୟରେ | ।। | ୫୮ |
| ୧୭ | ଯେ ଯାର ଆଦି-ଅନ୍ତ ହୋଇ | । | ତାହାର ମଧ୍ୟମଟି ସେହି | ।। | ୫୯ |
| | ଘଟର ଆଦି-ଅନ୍ତ-ମଧ୍ୟ | । | ମୃତ୍ତିକା ଅଟଇ ପ୍ରସିଦ୍ଧ | ।। | ୬୦ |
| | ଭାଣ୍ଡ ଶରାବ ଆଦି ହୋଇ | । | ବିକାର ବ୍ୟବହାର ପାଇଁ | ।। | ୬୧ |
| | କଟକ[2]-କୁଣ୍ଡଳାଦିଙ୍କର | । | ଏ ରୂପେ ସୁବର୍ଣ୍ଣ ପ୍ରଚାର | ।। | ୬୨ |
| ୧୮ | କାରଣ ମହଦାଦିମାନ | । | ଯାହାକୁ କରି ଉପାଦାନ | ।। | ୬୩ |

୧. ବ୍ରହ୍ମା । ୨. ବଳୟ ।

| | | | | |
|---|---|---|---|---|
| | ଅହଂକାରାଦି ଭାବଙ୍କୁ ହିଁ । | ସର୍ଜନ୍ତି ସତ୍ୟ ପୁଣ ସେହି | ।। | ୬୪ |
| | ଯେ ଯାର ଆଦି ଅନ୍ତ ହୋଇ । | ତାହାକୁ ସତ୍ୟ ବୋଲି କହି | ।। | ୬୫ |
| ୧୯ | ଏ ଜଗତର ଉପାଦାନ । | ଯଉଁ ପ୍ରକୃତି ବିଦ୍ୟମାନ | ।। | ୬୬ |
| | ଆଶ୍ରୟ ଯେ ପର ପୁରୁଷ । | ଯେ କାଳ କରଇ ପ୍ରକାଶ | ।। | ୬୭ |
| | ଏ ତିନି ବ୍ରହ୍ମରୂପୀ ମୁହିଁ । | ମୋ ଠାରୁ ଭିନ୍ନ ଏ ନୁହଇ | ।। | ୬୮ |
| | ଯେଣୁ ପ୍ରକୃତି ଶକ୍ତି ମୋର । | ପୁରୁଷ କାଳ ଯେ ଆବର | ।। | ୬୯ |
| | ଯେହେତୁ ଏ ଦୁହେଁ ମୋହର । | ଅବସ୍ଥାରୂପ ହିଁ ପ୍ରଚାର | ।। | ୭୦ |
| ୨୦ | ପିତୃପୁତ୍ରାଦି ରୂପେ ସ୍ୱୟେଂ । | ଏ ସୃଷ୍ଟି ତେତେ କାଳ ଯାଏଁ | ।। | ୭୧ |
| | ଈଶ୍ୱର-ଈକ୍ଷଣ ଯାବତ । | ପ୍ରଳୟ-ଅବଧି ତାବତ | ।। | ୭୨ |
| | ଜୀବମାନଙ୍କ ଭୋଗପାଇଁ । | ପ୍ରବର୍ତ୍ତିଛି ବହୁଳ ହୋଇ | ।। | ୭୩ |
| ୨୧ | ଲୋକଙ୍କ ସୃଷ୍ଟି ସ୍ଥିତି ଲୟ । | ନାନା ପ୍ରକାର ଅହରହ | ।। | ୭୪ |
| | କଳ୍ପିତ ହୁଅଇ ଟି ଯହିଁ । | ଏମନ୍ତ ଯେ ବିରାଟ ସେହି | ।। | ୭୫ |
| | ମୁଁ କାଳରୂପୀ ଅଟେ ପୁଣ । | ମୋ' ଦ୍ୱାରା ବ୍ୟାପତ ହୋଇଣ | ।। | ୭୬ |
| | ଚଉଦଭୁବନ ସହିତେ । | ଭୂ ଆଦି ପଞ୍ଚ ମହାଭୂତେ | ।। | ୭୭ |
| | ରହନ୍ତେ ଭିନ୍ନ ଭିନ୍ନ ହୋଇ । | ନାଶକୁ ଯୋଗ୍ୟ ହୋଏ ସେହି | ।। | ୭୮ |
| ୨୨ | [୧]ଶରୀର ଅନ୍ନେ ହୋଏ ଲୀନ । | ସେ ଅନ୍ନ ବୀଜରେ ବିଲୀନ | ।। | ୭୯ |
| | ବୀଜ ଭୂମିରେ ଲୀନ ହୋଇ । | [୨]ସେ ଭୂମି ଗନ୍ଧରେ ମିଶଇ | ।। | ୮୦ |
| ୨୩ | [୩]ସେ ଗନ୍ଧ ପୁଣି ଜଳେ ପଶେ । | ଜଳ ସ୍ୱଗୁଣରସେ ମିଶେ | ।। | ୮୧ |
| | ରସ ଜ୍ୟୋତିରେ ଲୀନ ହୋଇ । | ସେ ଜ୍ୟୋତି ରୂପରେ ମିଶଇ | ।। | ୮୨ |
| ୨୪ | [୪]ରୂପ ମିଶଇ ପବନରେ । | ସେ ବାତ ମିଶେ ସ୍ପରଶରେ | ।। | ୮୩ |

୧. ଶରୀର ଯେଉଁ ଅନ୍ନରେ ବଢ଼ିଥାଏ, ସେହି ଅନ୍ନ ଶତବର୍ଷବ୍ୟାପୀ ଅନାବୃଷ୍ଟିରେ କ୍ଷୀଣ ହୁଅନ୍ତେ ତହିଁରେ ଶରୀର ଲୀନ ହୁଏ । ଅନ୍ନ ବୀଜମାତ୍ରରେ ରହିଯାଏ । ସେ ବୀଜକୁ ଭୂମିରେ ବପନ କଲେ ତହିଁରୁ ଗଜା ବାହାରେ ନାହିଁ । ଭୂମି ସଂବର୍ତ୍ତକ ସୂର୍ଯ୍ୟଙ୍କ ଦ୍ୱାରା ଶୁଖିଯାଏ ଏବଂ ସଂକର୍ଷଣଙ୍କ ମୁଖାଗ୍ନି ଦ୍ୱାରା ପୋଡ଼ି ଗନ୍ଧମାତ୍ରରେ ରହିଯାଏ ।

୨. ''ତସ୍ମାଦ୍ ବା ଏତସ୍ମାଦ୍ ଆତ୍ମନ ଆକାଶଃ ସଂଭୂତଃ, ଆକାଶାଦ୍ ବାୟୁଃ, ବାୟୋରଗ୍ନିଃ, ଅଗ୍ନେରାପଃ, ଅଦ୍‌ଭ୍ୟଃ ପୃଥିବୀ, ପୃଥିବ୍ୟା ଓଷଧୟଃ, ଓଷଧିଭ୍ୟୋଽନ୍ନମ୍, ଅନ୍ନାଦ୍ ପୁରୁଷଃ ।'' ଶ୍ରୁତିକଥିତ ଏହି ସୃଷ୍ଟିକ୍ରମର ପ୍ରତିଲୋମରେ ପ୍ରଳୟ ହୁଏ ।

୩. ଶତବର୍ଷବ୍ୟାପୀ ବୃଷ୍ଟିରେ ପ୍ଲାବିତ ହୋଇ ଗନ୍ଧ ଜଳରେ ଲୀନ ହୁଏ । ସେହିପରି ଜଳ ମଧ୍ୟ ଜ୍ୟୋତି ଦ୍ୱାରା ଶୁଖି ଶୁଖି ରସମାତ୍ରରେ ରହିଯାଏ । ତା' ପରେ ରସ ମଧ୍ୟ ତହିଁରେ ଲୀନ ହୁଏ । ଜ୍ୟୋତି ମଧ୍ୟ ବାୟୁଦ୍ୱାରା ଅଭିଭୂତ ହୁଅନ୍ତେ ରୂପମାତ୍ର ହୋଇ ବାୟୁରେ ଲୀନ ହୁଏ ।

୪. ବାୟୁ କାଳପ୍ରେରିତ ଆକାଶଦ୍ୱାରା ଗ୍ରସ୍ତ ହୋଇ ସ୍ପର୍ଶମାତ୍ର ହୁଏ ଏବଂ ତହିଁରେ ଲୀନ ହୁଏ । ଆକାଶ ଅହଂକାରଦ୍ୱାରା ଗ୍ରସ୍ତ ହୁଅନ୍ତେ ଶବ୍ଦତନ୍ମାତ୍ରରେ ଲୀନ ହୁଏ । ଇନ୍ଦ୍ରିୟମାନେ ସ୍ୱପ୍ରବର୍ତ୍ତକଦେବତାଠାରେ ଲୀନ ହୁଅନ୍ତି । କାରଣ ପ୍ରବୃତ୍ତି ଇନ୍ଦ୍ରିୟମାନଙ୍କ ସ୍ୱଭାବ ଏବଂ ସେହି ପ୍ରବୃତ୍ତି ଦେବତାଧୀନ । ବସ୍ତୁତଃ ଇନ୍ଦ୍ରିୟମାନେ ନିଜର ଉତ୍ପତ୍ତିସ୍ଥଳ ରାଜସ ଅହଂକାରରେ ଲୀନ ହୁଅନ୍ତି ।

ସ୍ପରଶ ମିଶେ ଆକାଶରେ । ଆକାଶ ଶବ୍ଦତନ୍ମାତ୍ରରେ ॥
ଇନ୍ଦ୍ରିୟମାନେ ପୁଣି ତେବେ । ମିଶନ୍ତି ଅଧିଷ୍ଠାନ ଦେବେ ॥
୨୫ ଲୀନ ହୁଅନ୍ତି ଦେବମାନେ । ନିଜ ନିୟନ୍ତାରୂପ ମନେ ॥
ମନ ଦେବଙ୍କ ସହିତରେ । ଲୀନ ବୈକାର[1] ଅହଂକାରେ ॥
ଶବ୍ଦ ତାମସ ଅହଂକାରେ । ହେ ସୌମ୍ୟ ମିଶେ ସେ କାଳରେ ॥
ତ୍ରିବିଧ ଅହଂକାର ଯାଇ । ମହତ୍‌ତତ୍ତ୍ୱରେ ହିଁ ମିଶଇ ॥
ତ୍ରିବିଧ ସେହି ଅହଂକାର । ଜଡ଼ାଂଶ କରି ପରିହାର ॥
କେବଳ ଜ୍ଞାନକ୍ରିୟାଶକ୍ତି । ରୂପେ ଲଭଇ ପରିଣତି ॥
୨୬ ଗୁଣବତ୍ତମ ସେ ମହାନ । ଗୁଣମାନଙ୍କେ ହୋଏ ଲୀନ ॥
ତ୍ରିଗୁଣମାନେ ସେ ବେଳରେ । ଲୀନ ହୁଅନ୍ତି ପ୍ରକୃତିରେ ॥
ପୁଣି ଅବ୍ୟକ୍ତ ପ୍ରକୃତି ହିଁ । ଅବ୍ୟୟକାଳେ ଲୀନ ହୋଇ ॥
୨୭ ସେ କାଳ ମାୟାମୟ[2]ଜୀବେ[3] । ଲୀନ ହୁଅଇ ପୁଣ ତେବେ ॥
ଯେ ଆତ୍ମା ଅଜ ପୁଣ ତହିଁ । ସେ ଜୀବ ବିଲୀନ ହୁଅଇ ॥
ବିଶ୍ୱ-ଉତ୍‌ପତ୍ତିପ୍ରଳୟରେ । ଲକ୍ଷିତ ଅଟେ ଯେ ନିତ୍ୟରେ ॥
[4]ସେ ଆତ୍ମା ନିରୁପାଧି ହୋଇ । ପରିପୂର୍ଣ୍ଣ ରୂପେ ରହଇ ॥
୨୮ ଏମନ୍ତରୂପେ ହେ ଉଦ୍ଧବ । ଜାଣିମ ଯେବଣ ମାନବ ॥
ତା' ମନଭେଦଭ୍ରମ ଯେହି । ହୃଦୟେ ରହିବ ସେ କେହି ॥
ଅନ୍ଧାର ସୂର୍ଯ୍ୟ-ଉଦୟରେ । ଯେହ୍ନେ ନ ରହେ ଆକାଶରେ ॥
୨୯ [5]ପର ଅବର ଯଉଁ ଜ୍ଞାନ । ତା' ମୁଁ କରୁଛି ବିଲୋକନ ॥
ପ୍ରତିଲୋମ-ଅନୁଲୋମରେ । ଏ ସାଂଖ୍ୟବିଧି ଏ ପ୍ରକାରେ ॥
ଆହେ ଉଦ୍ଧବ କହିଲଇଁ । ସଂଶୟଗ୍ରନ୍ଥି ଏ ଛିଣ୍ଡାଇ ॥
ଉଦ୍ଧବ ମହାଭାଗବତ । ତାଙ୍କୁ ଏ ସାଂଖ୍ୟ ବିଧିମତ ॥

---

୧. ସାତ୍ତ୍ୱିକ । ୨. ମାୟାପ୍ରବର୍ତ୍ତକ ଅଥବା ଜ୍ଞାନମୟ ।

୩. ମହାପୁରୁଷଙ୍କ ଠାରେ । ବିଶ୍ୱସ୍ରଷ୍ଟା ମହାପୁରୁଷଙ୍କର ଉପକରଣରୂପକ କାଳ ବୃତ୍ତି-ଅଂଶରେ ସୃଜ୍ୟ ଅଟେ । ଅତଏବ ତାହା ସେହି ସ୍ୱରୂପରେ ରହେ । ଉକ୍ତ ଅଛି- ''କାଳଂ ଚରନ୍ତଂ ସୃଜତୀଶ ଆଶ୍ରୟଂ ପ୍ରଧାନପୁଂଭ୍ୟାଂ ନରଦେବ ସତ୍ୟକୃତ୍ ।''
''ଯୋଽୟଂ କାଳସ୍ତସ୍ୟ ତେଽବ୍ୟକ୍ତବନ୍ଧୋ
ଚେଷ୍ଟାମାହୁଶ୍ଚେଷ୍ଟତେ ଯେନ ବିଶ୍ୱମ୍ ।
ନିମେଷାଦିର୍ବତ୍ସରାନ୍ତୋ ମହୀୟାନ୍
ତଂ ତ୍ୱେଶାନଂ କ୍ଷେମଧାମ ପ୍ରପଦ୍ୟେ ॥''

୪. ଅଧିଷ୍ଠାନରୂପେ କିମ୍ବା ଅବଧିରୂପେ ଆତ୍ମା ଥାଏ ।

୫. ପ୍ରତ୍ୟକ୍ଷମିବ ଯେନେଦଂ ଦର୍ଶିତଂ ତତ୍ତ୍ୱମାତ୍ମନଃ ।
ସାଂଖ୍ୟପ୍ରଖ୍ୟାନତସ୍ତସ୍ମୈ ହରୟେ ଗୁରବେ ନମଃ ॥

ଆଜ୍ଞା ଯେ ଦେଲେ ନରହରି । ତାଙ୍କ ଶ୍ରୀଚରଣ ସୁମରି ।। ୧୦୬
ବ୍ରାହ୍ମଣ ଦୀନବନ୍ଧୁମନ । ଆନନ୍ଦ ହେଉ ପ୍ରତିଦିନ ।। ୧୦୭

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ସାଂଖ୍ୟଯୋଗୋ ନାମ ଚତୁର୍ବିଂଶୋଽଧ୍ୟାୟଃ ।।

## ପଞ୍ଚବିଂଶ ଅଧ୍ୟାୟ

ପଞ୍ଚବିଂଶେ ସ୍ୱନୈର୍ଗୁଣ୍ୟପ୍ରତିପତ୍ତ୍ୟୈ ନିରୂପ୍ୟତେ ।
ଚିତ୍ତପ୍ରଭବସତ୍ତ୍ୱାଦିଗୁଣବୃତ୍ତିରନେକଧା ।।

ଶ୍ରୀଭଗବାନୁବାଚ

୧ ଏଥୁ ଅନ୍ତରେ ଭଗବାନ । ପୁଣି କହନ୍ତି ଏ ବଚନ ।। ୧
ବିଭକ୍ତ ଗୁଣଙ୍କ ମଧ୍ୟରେ । ପୁରୁଷ ଯେବଣ ଗୁଣରେ ।। ୨
ଯେମନ୍ତ ହୋଏ ଏବେ ପୁଣ । ହେ ନରଶ୍ରେଷ୍ଠ ତାହା ଶୁଣ ।। ୩
୨ ଶମ[୧] ଦମ[୨] ତପ[୩] ତିତିକ୍ଷା[୪] । ଯେ ସତ୍ୟ ଦୟା ସ୍ମୃତି[୫] ଈକ୍ଷା[୬] ।। ୪
ତୁଷ୍ଟି[୭] ଅସ୍ପୃହା[୮] ଶ୍ରଦ୍ଧା[୯] ତ୍ୟାଗ[୧୦] । ହ୍ରୀ[୧୧] ଦାନ ବିନୟ ଆର୍ଜବ ।। ୫
ଏ ଆଦି ପୁଣ ଆତ୍ମରତି । ଏତେକ ସତ୍ତ୍ୱଗୁଣ ବୃତ୍ତି ।। ୬
୩ କାମ[୧୨] ବ୍ୟାପାର ତୃଷ୍ଣା[୧୩] ମଦ[୧୪] । ଗର୍ବ ପ୍ରାର୍ଥନା[୧୫] ସୁଖ[୧୬] ଭେଦ[୧୭] ।। ୭
ମଦ-ଉତ୍ସାହ[୧୮] ଯଶଃପ୍ରୀତି[୧୯] । ହାସ୍ୟ[୨୦] ପ୍ରଭାବ-ଆବିଷ୍କୃତି ।। ୮
[୨୧]ବଳେ ଉଦ୍ୟମ ଯେ ଆବର । ଏ ବୃତ୍ତି ରଜୋଗୁଣଙ୍କର ।। ୯
୪ କ୍ରୋଧ[୨୨] ଲୋଭ[୨୩] ଅନୃତ[୨୪] ହିଂସା[୨୫] । ଯାଚଞ୍ଚା[୨୬] ଦମ୍ଭ[୨୭] କ୍ଲମ[୨୮] ଆଶା[୨୯] ।। ୧୦

---

୧. ମନଃସଂଯମ । ୨. ବାହ୍ୟେନ୍ଦ୍ରିୟସଂଯମ । ୩. ସ୍ୱଧର୍ମପାଳନ । ୪. ସହିଷ୍ଣୁତା ।
୫. ପୂର୍ବାପରାନୁସନ୍ଧାନ । ୬. ବିବେକ । ୭. ଯଥାଲାଭସଂତୋଷ ।
୮. ବିଷୟ ପ୍ରତି ବୈରାଗ୍ୟ । ୯. ଗୁରୁ ଆଦିଙ୍କ ଠାରେ ଆସ୍ତିକ୍ୟ ଭାବ ।
୧୦. ବ୍ୟୟଶୀଳତା । ୧୧. ଅନୁଚିତ କର୍ମରେ ଲଜ୍ଜା । ୧୨. ଅଭିଳାଷ ।
୧୩. ଲାଭ ଥାଇ ମଧ୍ୟ ଅସନ୍ତୋଷ । ୧୪. ଦର୍ପ ।
୧୫. ଧନାଦି ଅଭିଳାଷରେ ଦେବତାଙ୍କୁ ପ୍ରାର୍ଥନା । ୧୬. ବିଷୟଭୋଗ ।
୧୭. 'ମୁଁ ଅନ୍ୟ'-ଏହିପ୍ରକାର ଭେଦବୁଦ୍ଧି ।
୧୮. ଦର୍ପହେତୁ ଯୁଦ୍ଧ ଆଦିରେ ଅଭିନିବେଶ । ୧୯. ସ୍ତୁତିପ୍ରିୟତା । ୨୦. ଉପହାସ ।
୨୧. ବଳରେ ଉଦ୍ୟମ ରାଜସିକ, କିନ୍ତୁ ନ୍ୟାୟରେ ଉଦ୍ୟମ ସାତ୍ତ୍ୱିକ ଅଟେ ।
୨୨. ଅସହିଷ୍ଣୁତା । ୨୩. ବ୍ୟୟପରାଙ୍ମୁଖତା । ୨୪. ଅଶାସ୍ତ୍ରୀୟ ଭାଷଣ ।
୨୫. ଦ୍ରୋହ । ୨୬. ପ୍ରାର୍ଥନା । ୨୭. ଧର୍ମଧ୍ୱଜିତ୍ୱ । ୨୮. ଶ୍ରମ ।
୨୯. 'ମୋର ଏହା ହେବ' — ଏହି ପ୍ରକାର ବାସନା ।

| | | | | |
|---|---|---|---|---|
| | ଯେ କଳି[୧] ଶୋକମୋହ[୨] ବେନି | ବିଷାଦ[୩] ଆର୍ତ୍ତି[୪] ନିଦ୍ରା[୫] ତିନି | ।। | ୧୧ |
| | ଭୟ ଅନୁଦ୍ୟମ[୬] ଆବର | ଏ ବୃତ୍ତି ତମୋଗୁଣଙ୍କର | ।। | ୧୨ |
| ୫ | ଯେ ସତ୍ତ୍ୱ-ରଜ-ତମୋ ଗୁଣ | ଏହାଙ୍କ ବୃତ୍ତିମାନ ପୁଣ | ।। | ୧୩ |
| | କ୍ରମେ ବର୍ଣ୍ଣିଲୁଁ ଏବେ ଶୁଣ | ସମୂହଗୁଣଙ୍କ ଲକ୍ଷଣ | ।। | ୧୪ |
| ୬ | ଅହଂତା-ମମତାରେ ଅତି | ଉଦ୍ଧବ ହୋଏ ଯଉଁ ମତି | ।। | ୧୫ |
| | ସେ ତ୍ରିଗୁଣରୁ ଜାତ ହୋଏ | ମନ-ତନ୍ମାତ୍ରା-ପ୍ରାଣେନ୍ଦ୍ରିୟେ | ।। | ୧୬ |
| | ଯେ ହୋଏ ବ୍ୟବହାରମାନ | ସେ ଗୁଣସମୂହୁଁ ଉପୂନ୍ନ | ।। | ୧୭ |
| ୭ | [୭]ଧର୍ମରେ ଅର୍ଥରେ କାମରେ | ପୁରୁଷ ଯେବଣ କାଳରେ | ।। | ୧୮ |
| | ପରିନିଷ୍ଠିତ ଯାହା ହୋଇ | ସମୂହ କାର୍ଯ୍ୟ ସେ ଅଟଇ | ।। | ୧୯ |
| | ସେ କାର୍ଯ୍ୟ ଶ୍ରଦ୍ଧା-ରତି-ଧନ | ତିନି କ୍ରମରେ ବର୍ତ୍ତମାନ | ।। | ୨୦ |
| ୮ | ପ୍ରବୃତ୍ତିଲକ୍ଷଣ ଧର୍ମରେ | ଯେବେ ପୁରୁଷ ନିଷ୍ଠା କରେ | ।। | ୨୧ |
| | ତେସନେ ଗୃହ-ଆଶ୍ରମେ ହିଁ | ଯେବେ ଆସକ୍ତ ହୋଇ ରହି | ।। | ୨୨ |
| | ପଶ୍ଚାତେ ଯେବେ ସ୍ୱଧର୍ମରେ | ରହେ ନିତ୍ୟ-ନୈମିତ୍ତିକରେ | ।। | ୨୩ |
| | 'ତା' ଗୁଣମାନଙ୍କ ସଂହତି | ଯେଣୁ କାର୍ଯ୍ୟରୁ ଉତପତି | ।। | ୨୪ |
| ୯ | ପୁରୁଷ ସଂଯୁକ୍ତ ସତ୍ତ୍ୱରେ | ଏହା ଜାଣିମ ଶମାଦିରେ | ।। | ୨୫ |
| | କାମାଦିମାନଙ୍କରେ ପୁଣି | ରଜୋଗୁଣରେ ଯୁକ୍ତ ଜାଣି | ।। | ୨୬ |
| | ତମୋଗୁଣରେ ଯୁକ୍ତ ନର | ଜାଣି କ୍ରୋଧାଦିରେ ଆବର | ।। | ୨୭ |
| ୧୦ | ଅପେକ୍ଷା ନ କରି କାହିଁରେ | ଯେବେ ସ୍ୱକର୍ମମାନଙ୍କରେ | ।। | ୨୮ |
| | ଆମ୍ଭଙ୍କୁ ଭକ୍ତିରେ ଭଜଇ | ପୁରୁଷ ଅବା ସ୍ତିରୀ ଯେହି | ।। | ୨୯ |
| | ସତ୍ତ୍ୱେ ସଂଯୁକ୍ତ ତା' ସ୍ୱଭାବ | ଏମନ୍ତ ଜାଣିମ ଉଦ୍ଧବ | ।। | ୩୦ |
| ୧୧ | ଯେବେ ସ୍ୱକର୍ମେ ଭଜେ ମୋତେ | ନାନା ମଙ୍ଗଳ ବାଞ୍ଛି ଚିତ୍ତେ | ।। | ୩୧ |
| | ତାର ସ୍ୱଭାବ ରଜୋଗୁଣ | ଯେ ପୁଣ ହିଂସା ବିଚାରିଣ | ।। | ୩୨ |
| | ମୋତେ ଭଜଇ ହେ ଉଦ୍ଧବ | ତାମସ ଗୁଣ ତା' ସ୍ୱଭାବ | ।। | ୩୩ |
| ୧୨ | ସତ୍ତ୍ୱାଦି ତ୍ରିଗୁଣ ଜୀବର | ବନ୍ଧକ ନୁହନ୍ତି ଏ ମୋର | ।। | ୩୪ |
| | ଏମାନେ ଚିତ୍ତରୁ ସଂଭବ | ପ୍ରାଣିଙ୍କ ମଧ୍ୟେ ହେ ଉଦ୍ଧବ | ।। | ୩୫ |
| | [୯]ଏଣେ ଆସକ୍ତ ଯଉଁ ଜନ | ନିଶ୍ଚେ ଲଭଇ ସେ ବନ୍ଧନ | ।। | ୩୬ |

---

୧. କଳହ। ୨. ଅନୁଶୋଚନ ଓ ଭ୍ରମ। ୩. ଦୁଃଖ। ୪. ଦୈନ୍ୟ। ୫. ତନ୍ଦ୍ରା। ୬. ଜଡ଼ତା।

୭. ଧର୍ମ, ଅର୍ଥ ଓ କାମ ଯଥାକ୍ରମେ ସତ୍ତ୍ୱ, ତମ ଓ ରଜୋଗୁଣର କାର୍ଯ୍ୟ ହୋଇଥିବା ହେତୁ ବିଷୟଦୃଷ୍ଟିରୁ ତିନିଗୁଣର ସମ୍ମିଶ୍ରଣଜନିତ ବୋଲି କୁହାଯାଇଛି। ଶ୍ରଦ୍ଧା, ରତି ଓ ଧନ ଯଥାକ୍ରମେ ସତ୍ତ୍ୱ, ରଜ ଓ ତମୋଗୁଣବିଶିଷ୍ଟ ହୋଇଥିବାରୁ ଫଳଦୃଷ୍ଟିରୁ ମଧ୍ୟ ତାହା ହିଁ କୁହାଯାଇଛି।

୮. କାମ୍ୟଧର୍ମ ରଜୋଗୁଣର, ଗୃହାସକ୍ତି ତମୋଗୁଣର ଓ ସ୍ୱଧର୍ମ ସତ୍ତ୍ୱଗୁଣର କାର୍ଯ୍ୟ।

୯. ଜୀବ ଦେହରୂପକ ଭୂତମାନଙ୍କ ପ୍ରତି ଆସକ୍ତ। ମୁଁ ଅନାସକ୍ତ ହୋଇ ଗୁଣମାନଙ୍କ ନିୟନ୍ତାରୂପରେ ସୃଷ୍ଟି ଆଦିର କର୍ତ୍ତା ହେଲେ ମଧ୍ୟ ନିତ୍ୟମୁକ୍ତ। ଅତଏବ ଜୀବ ଓ ମୋ' ମଧ୍ୟରେ ମହାନ୍ ବିଶେଷ।

୧୩ ଭାସ୍ୱର ଯେ ବିଶଦ ଶାନ୍ତ । ଯେ ସତ୍ତ୍ୱଗୁଣ ଯେବେ ସ୍ୱତଃ ।। ୩୭
ଜିଣଇ ରଜସ୍ତମୋଗୁଣ । ତେବେ ଅତ୍ୟନ୍ତ ସୁଖେ ପୁଣ ।। ୩୮
ପୁରୁଷ ଧର୍ମ ଜ୍ଞାନାଦିରେ । ସଂଯୁକ୍ତ ହୁଅଇ ନିତ୍ୟରେ ।। ୩୯
୧୪ ଯେ ଭେଦ ଭେଦକୁ କାରଣ । ଯେ ସଙ୍ଗ ସଙ୍ଗହେତୁ ପୁଣ ।। ୪୦
ଯେ ଚଳ ପ୍ରବୃତ୍ତିକାରଣ । ଏମନ୍ତ ସେହୁ ରଜୋଗୁଣ ।। ୪୧
[1]ସତ୍ତ୍ୱ-ତମକୁ ଜିଣେ ଯେବେ । ପୁରୁଷ ଅତି ଦୁଃଖେ ତେବେ ।। ୪୨
କର୍ମରେ ଯଶେ ସଂପତ୍ତିରେ । ସଂଯୁକ୍ତ ହୁଅଇ ନିତ୍ୟରେ ।। ୪୩
୧୫ ଯେ ମୂଢ଼ ବିବେକଭ୍ରଂଶକ । ଯେ ଲୟ ଆବରଣାତ୍ମକ ।। ୪୪
ଯେ ଜଡ଼ ଉଦ୍ୟମନାଶନ । ଏମନ୍ତ ସେହୁ ତମୋଗୁଣ ।। ୪୫
ସତ୍ତ୍ୱ ରଜକୁ ଜିଣେ ଯେବେ । ଶୋକ-ମୋହରେ ପ୍ରାଣୀ ତେବେ ।। ୪୬
ସଂଯୁକ୍ତ ହୁଅଇ ନିଦ୍ରାରେ । ଆବର ହିଂସାରେ ଆଶାରେ ।। ୪୭
୧୬ ଯେବେ ପ୍ରସନ୍ନ ହୋଏ ଚିତ୍ତ । ଇନ୍ଦ୍ରିୟେ ହୋନ୍ତି ଉପରତ ।। ୪୮
ଦେହେ ଅଭୟ ଉତପନ୍ନ । ସଙ୍ଗକୁ ନ ବାଞ୍ଛଇ ମନ ।। ୪୯
ମୋ ସ୍ଥାନପ୍ରଦ ସତ୍ତ୍ୱଗୁଣ । ତେବେ ଉଦ୍ରିକ୍ତ ବୋଲି ଜାଣ ।। ୫୦
୧୭ କ୍ରିୟାରେ ବିକାରକୁ ପାଇ । ବୁଦ୍ଧି ବିକ୍ଷିପ୍ତ ଯେବେ ହୋଇ ।। ୫୧
ବୁଦ୍ଧି-ଇନ୍ଦ୍ରିୟମାନଙ୍କର । ନିର୍ବୃତ୍ତି[2] ନୁହଇ ଆବର ।। ୫୨
କର୍ମ-ଇନ୍ଦ୍ରିୟମାନଙ୍କର । ହୁଅଇ ଅଧିକ ବିକାର ।। ୫୩
ମନ ଚଞ୍ଚଳ ଯେବେ ପୁଣ । ରଜ ଉତ୍କଟ ତେବେ ଜାଣ ।। ୫୪
୧୮ ଯେ ଚିଦାକାରପରିଣାମ । ତହିଁକି ଯେ ଚିତ୍ତ ଅକ୍ଷମ ।। ୫୫
ସେ ଚିତ୍ତ ତିରୋଭାବ ପାଇ । ଯେବେ ବିଲୟକୁ ଭଜଇ ।। ୫୬
ସଂକଳ୍ପସ୍ୱଭାବ ଯେ ମନ । ସେ ଯେବେ ପୁଣ ହୋଏ ଲୀନ ।। ୫୭
ଅଜ୍ଞାନ ବିଷାଦ ଆବର । ଯେବେ ସଂଭବଇ ପ୍ରାଣୀର ।। ୫୮
ତେବେ ଉତ୍କଟ ତମୋଗୁଣ । ହୁଅଇ ନିଶ୍ଚେ ତୁହି ଜାଣ ।। ୫୯
୧୯ ବଢ଼ନ୍ତେ ସତ୍ତ୍ୱଗୁଣ ଆର । ବଳ ବଢ଼ଇ ଦେବଙ୍କର ।। ୬୦
ଅସୁରଙ୍କର ରଜୋଗୁଣ । ବୃଦ୍ଧିରେ ବଳ ହୋଏ ପୁଣ ।। ୬୧
ତମୋବୃଦ୍ଧିରେ ହେ ଉଦ୍ଧବ । ରାକ୍ଷସଙ୍କ ବଳ ସମ୍ଭବ ।। ୬୨
୨୦ ସତ୍ତ୍ୱଗୁଣରୁ ଜାଗରଣ । ଜନ୍ତୁର ହୁଅଇଟି ଜାଣ ।। ୬୩
ରଜୋଗୁଣରୁ ସ୍ୱପ୍ନ ହୋଇ । ତମୋଗୁଣରୁ ସୁଷୁପ୍ତି ହିଁ ।। ୬୪
ଚତୁର୍ଥ ଏକ ଆତ୍ମତତ୍ତ୍ୱ । ଏ ତିନି ଦଶାରେ ସଂଯୁତ ।। ୬୫
୨୧ ସତ୍ତ୍ୱଗୁଣର ଅଧିକରେ । ବ୍ରାହ୍ମଣଜନ୍ମ ଲଭି ନରେ ।। ୬୬
ବ୍ରହ୍ମଲୋକକୁ ବୋଲି ଯାନ୍ତି । ତମୋଗୁଣରୁ ଅଧୋଗତି[3] ।। ୬୭

---

୧. ରଜୋଗୁଣ ସତ୍ତ୍ୱ ଓ ତମକୁ ଅଭିଭୂତ କଲେ ପୁରୁଷ ଦୁଃଖ ସହକାରେ ଯଶଃ ଓ ସଂପତ୍ତି ସଂଗ୍ରହରେ ପ୍ରବୃତ୍ତ ହୁଏ ।
୨. ଉନ୍ନତି, ବୃଦ୍ଧି, ସମାପ୍ତି । ୩. ସ୍ଥାବର ପର୍ଯ୍ୟନ୍ତ ।

| | | | | | |
|---|---|---|---|---|---|
| | ରଜୋଗୁଣ ଅଧିକୁଂ ପୁଣି | । | ମନୁଷ୍ୟଜନ୍ମ ଲଭେ ପ୍ରାଣୀ | ।। | ୬୮ |
| ୨୨ | ସତ୍ତ୍ୱବୃଦ୍ଧିରେ ଯେ ମରନ୍ତି | । | ସ୍ୱର୍ଗଲୋକକୁ ସେ ଚଳନ୍ତି | ।। | ୬୯ |
| | ରଜୋବୃଦ୍ଧିରେ ଯା' ମରଣ | । | ନରଲୋକ ସେ ପାଏ ପୁଣ | ।। | ୭୦ |
| | ତମୋବୃଦ୍ଧିରେ ଯେ ମରନ୍ତି | । | ନରକେ ଯାଇ ସେ ପଡ଼ନ୍ତି | ।। | ୭୧ |
| | ଗୁଣବିହୀନ ଜନ ଯେତେ | । | ମୋତେ ଲଭନ୍ତି ସେ ସମସ୍ତେ | ।। | ୭୨ |
| ୨୩ | ମୋ ପ୍ରୀତି-ଉଦ୍ଦେଶେ ଯା' କରେ | । | କେବଳ ବା ଦାସଭାବରେ | ।। | ୭୩ |
| | ନିତ୍ୟାଦି ନିଜ କର୍ମଗଣ | । | ସାତ୍ତ୍ୱିକ ବୋଲି ତାକୁ ଜାଣ | ।। | ୭୪ |
| | ଯେ ବାଞ୍ଛା କରଇ ଫଳକୁ | । | ରାଜସ ବୋଲି ଜାଣ ତାକୁ | ।। | ୭୫ |
| | ହିଂସା ଉଦ୍ଦେଶି ଯାହା କରେ | । | ଦମ୍ଭମାତ୍ସର୍ଯ୍ୟସହକାରେ | ।। | ୭୬ |
| | ହିଂସାବହୁଳ ସେ କର୍ମ ହିଁ | । | ଉଦ୍ଧବ ! ତାମସ ଅଟଇ | ।। | ୭୭ |
| ୨୪ | ଯେ ଜ୍ଞାନ ଆତ୍ମବିଷୟକ[୧] | । | ତାହାକୁ ଜାଣିମ ସାତ୍ତ୍ୱିକ | ।। | ୭୮ |
| | ଦେହାଦିବିଷୟକ ଜ୍ଞାନ | । | ରାଜସ ବୋଲିଣ ଆଖ୍ୟାନ | ।। | ୭୯ |
| | ବାଳମୂକାଦିଜ୍ଞାନବତ | । | ଯେ ଜ୍ଞାନ ଅଟଇ ପ୍ରାକୃତ | ।। | ୮୦ |
| | ତାମସ ବୋଲି ଜାଣ ତାକୁ | । | ଯେ ପୁଣ ପରମେଶ୍ୱରଙ୍କୁ | ।। | ୮୧ |
| | ଉଦ୍ଧବ ! କରଇ ବଖାଣ | । | ସେ ଜ୍ଞାନ ଅଟଇ ନିର୍ଗୁଣ | ।। | ୮୨ |
| ୨୫ | ଅରଣ୍ୟ [୨]ସାତ୍ତ୍ୱିକ ନିବାସ | । | ଗ୍ରାମନିବାସଟି ରାଜସ | ।। | ୮୩ |
| | ତାମସ ବୋଲି ଦ୍ୟୂତସ୍ଥାନ | । | ନିର୍ଗୁଣ[୩] ମୋର ନିକେତନ | ।। | ୮୪ |
| ୨୬ | ଆସକ୍ତିହୀନ କର୍ତ୍ତା ଯେହି | । | ସାତ୍ତ୍ୱିକ ବୋଲି ତାକୁ କହି | ।। | ୮୫ |
| | ବିଷୟେ ଯା' ଅଭିନିବେଶ | । | ସେ କର୍ତ୍ତା ଅଟଇ ରାଜସ | ।। | ୮୬ |
| | ଅନୁସନ୍ଧାନଶୂନ୍ୟ ଯେହି | । | ସେ ପୁଣ ତାମସ ବୋଲାଇ | ।। | ୮୭ |
| | ଯେ ମୋତେ ପଶଇ ଶରଣ | । | ସକଳ ଭରସା ଛାଡ଼ିଣ | ।। | ୮୮ |
| | ନିରହଂକାରଭାବୁଁ ପୁଣ | । | ସେ କର୍ତ୍ତା ଅଟଇ ନିର୍ଗୁଣ | ।। | ୮୯ |
| ୨୭ | ସାତ୍ତ୍ୱିକ ଅଧ୍ୟାତ୍ମ ଶ୍ରଦ୍ଧା ହିଁ | । | ରାଜସ କର୍ମଶ୍ରଦ୍ଧା କହି | ।। | ୯୦ |
| | ଅଧର୍ମେ ଯଉଁ ଶ୍ରଦ୍ଧା ହୋଇ | । | ତାମସ ତାହାଟି ବୋଲାଇ | ।। | ୯୧ |
| | ମୋହର ସେବାରେ ଯେ ପୁଣ | । | ସେ ଶ୍ରଦ୍ଧା ବୋଲାଇ ନିର୍ଗୁଣ | ।। | ୯୨ |
| ୨୮ | ଯେ ପଥ୍ୟ ପବିତ୍ର ଅଟଇ | । | ଅନାୟାସରେ ପ୍ରାପ୍ତ ହୋଇ | ।। | ୯୩ |
| | ସେ ଭକ୍ଷ୍ୟଭୋଜ୍ୟାଦି ସାତ୍ତ୍ୱିକ | । | ଯେ ପୁଣ ପ୍ରେଷ୍ଠ ଇନ୍ଦ୍ରିୟଙ୍କ | ।। | ୯୪ |
| | ଭୋଗକାଳେ ହିଁ ସୁଖ ଦିଏ | । | କଟ୍ୱମ୍ଳ ଲବଣ ଆଦିଏ | ।। | ୯୫ |
| | ରାଜସ ବୋଲି ତାକୁ କହି | । | ଅଶୁଦ୍ଧ ଦୈନ୍ୟକର ଯେହି | ।। | ୯୬ |
| | ସେ ଅନ୍ନ ତାମସ ବିଖ୍ୟାତ | । | ନିର୍ଗୁଣ ମୋର ନିବେଦିତ | ।। | ୯୭ |

୧. ଆତ୍ମା ଦେହ ଆଦିରୁ ବ୍ୟତିରିକ୍ତ । କେବଳ ଆତ୍ମା ଛଡ଼ା ଆଉ ସତ୍ୟ ବସ୍ତୁ କିଛି ନାହିଁ । ଏହି ଭାବକୁ 'କୈବଲ୍ୟ' କୁହାଯାଏ । ଏହା ସାତ୍ତ୍ୱିକ ।

୨. ବିବିକ୍ତତ୍ୱହେତୁ ଅରଣ୍ୟବାସ ସାତ୍ତ୍ୱିକ ।

୩. ଭଗବାନଙ୍କ ମନ୍ଦିରରେ ସାକ୍ଷାତ୍ ତାଙ୍କର ଆବିର୍ଭାବ ହେତୁ ତାହା ନିର୍ଗୁଣ ।

୨୯　ସାତ୍ତ୍ୱିକ ସୁଖ ଆତ୍ମଜାତ　।　ରାଜସ ବିଷୟସଂଭୂତ　॥　୯୮
ତାମସ ମୋହଦୈନ୍ୟୁଁ ଜାତ　।　ନିର୍ଗୁଣ ମୋ' ଆଶ୍ରୟଗତ[୧]　॥　୯୯
୩୦　ଯେ ଦ୍ରବ୍ୟ ଦେଶ ଜ୍ଞାନ ଫଳ　।　କର୍ମ କାରକ ଶ୍ରଦ୍ଧା କାଳ　॥　୧୦୦
ଅବସ୍ଥା ନିଷ୍ଠା ଯେ ଆକୃତି　।　ତ୍ରିଗୁଣାତ୍ମକ ଏ ଅଟନ୍ତି　॥　୧୦୧
୩୧　ଉଦ୍ଧବ ବୁଦ୍ଧିରେ ସନ୍ତତ　।　ଯେ ଦୃଷ୍ଟ ଶ୍ରୁତ ଅନୁଧ୍ୟାତ　॥　୧୦୨
ପୁରୁଷ-ପ୍ରକୃତି ବେନିରେ　।　ଯେ ବା ଅଧିଷ୍ଠିତ ନିତ୍ୟରେ　॥　୧୦୩
ଏ ସର୍ବ ଭାବମାନ ଯେତେ　।　ତ୍ରିଗୁଣମୟ ସେ ସମସ୍ତେ　॥　୧୦୪
୩୨　ଜୀବର ଏ ସଂସାରମାନ　।　ଗୁଣକର୍ମରେ ନିବନ୍ଧନ　॥　୧୦୫
ତ୍ରିଗୁଣ ଚିତ୍ତରୁ ସଂଭବ　।　ଏହା ଜିଣଇଁ ଯଉଁ ଜୀବ　॥　୧୦୬
ସେ ଅବିକ୍ଷିପ୍ତ ଭକ୍ତିଯୋଗେ　।　ମୋ' ଠାରେ ନିଷ୍ଠା କରି ବେଗେ　॥　୧୦୭
ମୋ' ଭାବ ମୋକ୍ଷ ଅଟେ ଯେହି　।　ପଛେ ତା' ପାଇଁ ଯୋଗ୍ୟ ହୋଇ　॥　୧୦୮
୩୩　ସେ ହେତୁ ହେ ଉଦ୍ଧବ ସ୍ୱତ　।　ଜ୍ଞାନ ବିଜ୍ଞାନ ଯହିଁ ଜାତ　॥　୧୦୯
ସେ ନରଦେହକୁ ଲଭିଣ　।　ଗୁଣସଙ୍ଗକୁ ହିଁ ଛାଡ଼ିଣ　॥　୧୧୦
ଯେ ବିଚକ୍ଷଣ ଜନମାନେ　।　ମୋତେ ହିଁ ଭଜନ୍ତୁ ସେମାନେ　॥　୧୧୧
୩୪　ନିଃସଙ୍ଗ ହୋଇଣ ପଣ୍ଡିତ　।　ଇନ୍ଦ୍ରିୟ ଜିଣି ନୋହି ମତ୍ତ　॥　୧୧୨
[୨]ସାତ୍ତ୍ୱିକେ ମୋତେଟି ଭଜିଣ　।　ଜିଣିମ ରଜ-ତମ ଗୁଣ　॥　୧୧୩
୩୫　ସତ୍ତ୍ୱକୁ ସତ୍ତ୍ୱେ[୩] ଜିଣି ଅତି　।　ସଂଯତ ହୋଇ ଶାନ୍ତମତି　॥　୧୧୪
ଗୁଣମାନଙ୍କୁ ସେ ତେଜିଣ　।　ଲିଙ୍ଗ-ଶରୀରକୁ ଛାଡ଼ିଣ　॥　୧୧୫
ମୋତେ ଲଭିଣ ହେ ଉଦ୍ଧବ　।　ସଂସାରୁ ମୁକ୍ତ ହୋଏ ଜୀବ　॥　୧୧୬
୩୬　ଅନ୍ତଃକରଣୁଁ ଯେ ଜନ୍ମଇ　।　ସେ ତ୍ରିଗୁଣରୁ ମୁକ୍ତ ହୋଇ　॥　୧୧୭
ଲିଙ୍ଗଶରୀରକୁ ଛାଡ଼ିଣ　।　ମୁଁ ବ୍ରହ୍ମ ମୋ' ସଙ୍ଗରେ ପୁଣ　॥　୧୧୮
ପୂର୍ଣ୍ଣ ହୋଇଣ ହେ ଉଦ୍ଧବ　।　ମୋକ୍ଷକୁ ଲଭଇ ସେ ଜୀବ　॥　୧୧୯
ବିଷୟଭୋଗେ ତା' ସ୍ମରଣେ　।　ଭ୍ରମଇ ନାହିଁ ଆଉ କ୍ଷଣେ　॥　୧୨୦
ଶ୍ରୀଏକାଦଶେ ପଞ୍ଚବିଂଶ　।　[୪]ଅଧ୍ୟାୟ ବର୍ଣ୍ଣି ହେଲା ତୋଷ　॥　୧୨୧
ବ୍ରାହ୍ମଣ ଦୀନବନ୍ଧୁଚିତ୍ତ　।　କୃଷ୍ଣଙ୍କୁ ଚିନ୍ତୁ ଅବିରତ　॥　୧୨୨
ବୈଷ୍ଣବ ଜୟରାମ ଦାସ　।　ଯେ ରସେ ଅତ୍ୟନ୍ତ ଲାଳସ　॥　୧୨୩

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଗୁଣବୃତ୍ତିନିରୂପଣଂ ନାମ ପଞ୍ଚବିଂଶୋଽଧ୍ୟାୟଃ ॥

---

୧. 'ତ୍ୱଂ'-ପଦାର୍ଥ ଓ 'ତତ୍'-ପଦାର୍ଥ ବିଷୟକ ଜ୍ଞାନଯୁକ୍ତ ସୁଖ ନିର୍ଗୁଣ ।
୨. 'ସାତ୍ତ୍ୱିକାନ୍ୟେବ ସେବେତ ପୁମାନ୍ ସତ୍ତ୍ୱବିବୃଦ୍ଧୟା ।'　　୩. ଉପଶମାତ୍ମକ ସତ୍ତ୍ୱ ।
୪. ଗୁଣକୃତାମନୁସଂସରଣପ୍ରଥାମଜିତପୁଣ୍ୟକଥାକଥନାଦିଭିଃ ।
ଧୁନୁତ ଭକ୍ତିରସେନ ବିବେକିନୋ ନ ହି ପୁନଃ ସୁଲଭଂ ଜନୁରୀଦୃଶମ୍ ॥ (ସ୍ୱାମୀ)

# ଷଡ଼ବିଂଶ ଅଧ୍ୟାୟ

ଷଡ୍‌ବିଂଶେ ଯୋଗନିଷ୍ଠାୟା ବିଘାତୋ ଦୁଷ୍ଟସଙ୍ଗତଃ ।
ସାଧୁସଙ୍ଗେନ ତନ୍ନିଷ୍ଠାପରାକାଷ୍ଠେତି ବର୍ଣ୍ଣ୍ୟତେ ।। ୧
ଯୋଗିନୋ ଯୋଗବିଭ୍ରଂଶଃ ସଙ୍ଗତଃ ସଂଭବେଦିତି ।
ସର୍ବଥା ତନ୍ନିବୃତ୍ତ୍ୟର୍ଥମୈଳଗୀତଂ ବିତନ୍ୟତେ ।। ୨

ଶ୍ରୀଭଗବାନୁବାଚ

୧ ପୁଣି କହନ୍ତି ଭଗବାନ । ଶୁଣ ଉଦ୍ଧବ ! ମୋ ବଚନ ।।
ଯେଣେ ମୋ ସ୍ୱରୂପ ଗୋଚର । କରଇ ସେ ନରଶରୀର ।।
ଲଭିଣ ମୋ' ଧର୍ମେ[୧] ରହିଣ । ଆନନ୍ଦସ୍ୱରୂପ ମୁଁ ପୁଣ ।।
ମୁଁ ପରମାତ୍ମା ଆତ୍ମଗତ[୨] । ମୋତେ ସେ ହୋଏ ଉପଗତ ।।
୨ ଜୀବ-ଉପାଧି ଗୁଣମୟ । ଜ୍ଞାନନିଷ୍ଠାରେ ଅତିଶୟ ।।
ବିମୁକ୍ତ ହୋଇ ତହୁଁ ପୁଣ । ଯେ ମାୟାମାତ୍ର ତିନିଗୁଣ ।।
ଅବସ୍ତୁତ୍ୱରେ ଦୃଶ୍ୟ ହୋଏ । ପୁରୁଷ ତହିଁରେ ଥିଲେହେଁ ।।
ସେ ଗୁଣମାନଙ୍କରେ ତହିଁ । ସ୍ୱୟେଂ ସଙ୍ଗତ ନ ହୁଅଇ ।।
୩ ଅସାଧୁ ଜନମାନେ ପୁଣ । ଶିଶ୍ନ-ଉଦରପରାୟଣ ।।
ସଙ୍ଗକୁ ତାହାଙ୍କ ସଙ୍ଗରେ । କରିବ ନାହିଁ କଉଁଠାରେ ।।
ଅସାଧୁସଙ୍ଗେ କରି ସଙ୍ଗ । ନରକେ ପଡ଼ଇ ସେ ବେଗ ।।
ଅନ୍ଧକୁ ଅନ୍ଧ କଢ଼ାଇଲେ । ଯେହ୍ନେ ପଡ଼ନ୍ତି ଦୁହେଁ ଭଲେ ।।
୪ ବହୁତ କୀର୍ତ୍ତିମାନ ଯାର । ସେ ପୁରୂରବା ନୃପବର ।।
ଉର୍ବଶୀବିରହରୁ ପୁଣ । ପ୍ରଥମୁଁ ମୋହକୁ ଲଭିଣ ।।
ନିର୍ବିଣ୍ଣ ହୋଇ ଶୋକ ଅନ୍ତେ । [୩]ଏ ଗାଥା ଗାଇଲେ ଏମନ୍ତେ ।।
୫ ଯାଉଛି ଆପଣାକୁ ତେଜି । ସେ ଉର୍ବଶୀକି ମନେ ହେଜି ।।
ଉଲଗ୍ନ ହୋଇ ନୃପ ଧାଇଁ । ଉନ୍ମତ୍ତ ଲୋକପ୍ରାୟ ହୋଇ ।।
[୪]ବିଳାପ କରନ୍ତେ ବହୁତ । ତାହାକୁ ହେଲା ଅନୁଗତ ।।
ହେ ଘୋର ଭାର୍ଯ୍ୟା ରହ ତୁହି । ବୋଇଲା ସେ ବିହ୍ୱଳ ହୋଇ ।।

---

୧. ଭକ୍ତିଲକ୍ଷଣ ଧର୍ମରେ ।     ୨. ନିୟନ୍ତାରୂପେ ସ୍ଥିତ ।

୩. ଉର୍ବଶୀବିରହହେତୁ ପ୍ରଥମେ ମୋହପ୍ରାପ୍ତ ହୋଇ ପଛେ କୁରୁକ୍ଷେତ୍ରରେ ତା' ସହିତ ମିଳିତ ହେଲେ ଏବଂ ଗନ୍ଧର୍ବଦତ୍ତ ଅଗ୍ନିଦ୍ୱାରା ଦେବମାନଙ୍କୁ ଯଜନ କରି ଉର୍ବଶୀ-ଲୋକ ପ୍ରାପ୍ତ ହେଲେ । ତାଙ୍କର ଶୋକ ଦୂର ହେଲା । ତଦ୍‌ପରେ ନିର୍ବିଣ୍ଣ ହୋଇ ଏ ଗାଥା ଗାଇଲେ ।

୪. ଅୟେ ଜାୟେ ମନସା ତିଷ୍ଠ ଘୋରେ ।
ବଚାଂସି ମିଶ୍ରୀକୃଣବାବହୈ ନୁ ।
ନ ନୌ ମନ୍ତ୍ରା ଅନୁଦିତାସ ଏତେ
ମୟସ୍କରନ୍ ପରତରେ ଚ ନାହନ୍ ।। (ଶ୍ରୁତିଃ)

୬ କ୍ଷୁଦ୍ର କାମଙ୍କୁ ଭଜି ନିତି । ତୃପ୍ତ ନୋହି ସେ ନରପତି ॥
ଉର୍ବଶୀ ଚେତନା ହରନ୍ତେ । ବରଷରାତ୍ରିମାନ ଯେତେ ॥
ଗଲା ଅଥବା ଯେ ଆସିଲା । ତାହା ସେ କିଛି ନ ଜାଣିଲା ॥

[୧]ଶ୍ରୀଐଳ ଉବାଚ

୭ ଏ ରୂପେ ପୁରୂରବା ନୃପ । କହୁଅଛନ୍ତି ଲଭି ତାପ ॥
କାମକଶ୍ମଳ ଚିତ୍ତ ମୋର । ଆଶ୍ଚର୍ଯ୍ୟ ଏ ମୋହବିସ୍ତାର ॥
ମୋ କଣ୍ଠତଟ ପୁଣପୁଣ । ଉର୍ବଶୀ କରନ୍ତେ ଗ୍ରହଣ ॥
ଦିବସରଜନୀରୂପେଣ । ଏ ମୋର ଆୟୁପରିମାଣ ॥
ଯେତେକ ବିଗତ ହୋଇଲା । ସେ ମୋତେ ଗୋଚର ନୋହିଲା ॥
୮ ବଞ୍ଚିତ ହୋଇ ଉର୍ବଶୀରେ । କ୍ରୀଡ଼ା କରନ୍ତେ ତା' ସଙ୍ଗରେ ॥
ଉଦୟ ଅସ୍ତ ଯେ ସୂର୍ଯ୍ୟର । ଆବର ବହୁ ବର୍ଷଙ୍କର ॥
ଦିବସମାନ ଗଲେ ଯେତେ । ତା' ଜାଣି ନ ପାରିଲି ଚିତ୍ତେ ॥
୯ ମୁଁ ଚକ୍ରବର୍ତ୍ତୀ ନରେଶ୍ୱର । ମାନଙ୍କ ଶିଖା-ଅଳଂକାର ॥
ଦେଖ ମୋ' ଅଜ୍ଞାନକୁ ପ୍ରାଣୀ । ଯଉଁ ଅଜ୍ଞାନରୁ ମୁଁ ପୁଣି ॥
ବନିତାମାନଙ୍କର ଆଗ । ଦେହକୁ କଲି କ୍ରୀଡ଼ାମୃଗ ॥
୧୦ ରାଜ୍ୟସଂପତ୍ତିସହିତେଣ । ଈଶ୍ୱରଭାବକୁ ହିଁ ପୁଣ ॥
ଛାଡ଼ି ମୁଁ ତୃଣପ୍ରାୟ କରି । ମୋତେ ଛାଡ଼ିଲା ଯଉଁ ନାରୀ ॥
ତା' ପଛେ ଗଲି ନଗ୍ନ ହୋଇ । କାନ୍ଦି ଉନ୍ମତ୍ତପ୍ରାୟେକ ହିଁ ॥
୧୧ ମୋ ଅନୁଭାବ ତେଜ ଦୁଇ । ପ୍ରଭୁତ୍ୱ ଅବା ଗଲା କାହିଁ ॥
ଛାଡ଼ି ଯାଉଛି ଯଉଁ ନାରୀ । ତାକୁ ଧାଇଁଲି ଅନୁସରି ॥
ଗଧୁଣୀପଦାଘାତ ପାଇ । ଗଧ ଯେସନେ ପଛେ ଧାଇଁ ॥
୧୨ ନାରୀଏ ହରିଲେ ଯା' ମନ । ବିଦ୍ୟାରେ ତା' କି ପ୍ରୟୋଜନ ॥
ତପସ୍ୟା-ସନ୍ନ୍ୟାସରେ ତାର । ଶାସ୍ତ୍ରରେ କି ହେବ ଆବର ॥
ଏକାନ୍ତସ୍ଥଳେ ରହିବାରେ । କି କାର୍ଯ୍ୟ ମଉନ ହେବାରେ ॥
୧୩ ଆପଣା ସ୍ୱାର୍ଥ ନ ଜାଣିଲି । ନିଜକୁ ପଣ୍ଡିତ ମଣିଲି ॥
ମୂର୍ଖ ମୁଁ ଧିକ ହଉ ମୋତେ । ପ୍ରଭୁତ୍ୱ ପାଇ ଏ ଜଗତେ ॥
ନାରୀମାନଙ୍କେ ହେଲି ଜିତ । ବୃଷଭ ଗର୍ଦ୍ଦଭ ଯେମନ୍ତ ॥
୧୪ ବହୁତ ବରଷ ପର୍ଯ୍ୟନ୍ତ । ଉର୍ବଶୀ-ଅଧର-ଅମୃତ ॥
ସେବନ୍ତେ ତୃପ୍ତ ନୋହେ କାମ । ମନେ ଯେ ହୁଅଇ ଜନମ ॥
ଆହୁତିମାନଙ୍କେ ଯେସନ । ତୃପ୍ତ ନୁହଇ ହୁତାଶନ ॥

---

୧. ଗନ୍ଧର୍ବଲୋକ ପ୍ରାପ୍ତ ହୋଇ ବହୁକାଳ ଉର୍ବଶୀସମ୍ଭୋଗ କରି ନିର୍ବିଣ୍ଣ ହୁଅନ୍ତେ ପୁରୂରବା ଏ ଗାଥା କହିଲେ ।

୧୫ ପୁଂଶ୍ଚଳୀଦ୍ୱାରା ଯଉଁ ଚିତ୍ତ । ହୁଅଇ ଭଲେ ଅପହୃତ ॥ ୪୯
ତାକୁ କରିବାକୁ ମୋଚନ । ସମର୍ଥ ହେବ କେ ବା ଆନ ॥ ୫୦
ବିନା ଈଶ୍ୱର ଆତ୍ମାରାମ । ଅଧୋକ୍ଷଜ ସେ ଭଗବାନ ॥ ୫୧
୧୬ ମୁଁ ଏକ ଦୁର୍ମତି ଅଟଇ । ଇନ୍ଦ୍ରିୟମାନ ଜିଣି ନାହିଁ ॥ ୫୨
[1]ଯଥାର୍ଥ ବାକ୍ୟେ ଉର୍ବଶୀର । ବୋଧିତ ହେଲେ ହେଁ ମୁଁ ମୋର ॥ ୫୩
ଯେ ମହାମୋହ ମନୋଗତ । ଆଜ ହିଁ ନୋହିଲା ସେ ହତ ॥ ୫୪
୧୭ ମୁଁ କାମୀ ଅଟଇ ମୋହର । ସେ କରି ନାହିଁ ଅପକାର ॥ ୫୫
ନିଜ ଇନ୍ଦ୍ରିୟମାନଙ୍କୁ ହିଁ । ଯେଣୁ ମୁଁ ଜିଣି ପାରି ନାହିଁ ॥ ୫୬
ଯେସନେ ଦେଖି ଯେ ରଜ୍ଜୁକୁ । ନ ଜାଣି ତାହା ସ୍ୱରୂପକୁ ॥ ୫୭
ସର୍ପବୁଦ୍ଧିରେ ଚିତ୍ତେ ଡରେ । ତା' ଅହିତ କି ରଜ୍ଜୁ କରେ ॥ ୫୮
୧୮ ଦୁର୍ଗନ୍ଧପୂରିତ ଅଶୁଚି । ମଳିନ ଏ ଦେହ କାହିଁଛି ॥ ୫୯
ସୌଗନ୍ଧ୍ୟ ସୌକୁମାର୍ଯ୍ୟ ଯେହି । ସେ ଗୁଣମାନ ଅବା କାହିଁ ॥ ୬୦
ଏଥିରେ ଯେବଣ ଅଧ୍ୟାସ । ଅବିଦ୍ୟାହେତୁ ଯେ ପ୍ରକାଶ ॥ ୬୧
୧୯ ଏ ଦେହ ଅଟେ କି ଭାର୍ଯ୍ୟାର । ଅଥବା ପିତାମାତାଙ୍କର ॥ ୬୨
ସ୍ୱାମୀର ଅବା ଏ ଅଗ୍ନିର । କି ବା ଶାଗୁଣା-କୁକ୍କୁରର ॥ ୬୩
ଆତ୍ମାର ମିତ୍ରର ବା ପୁଣି । ନିଶ୍ଚିତେ ହେଉ ନାହିଁ ଜାଣି ॥ ୬୪
୨୦ ପୁରୀଷ-କୃମି-ଭସ୍ମ ହୋଇ । ଅନ୍ତଟି ଯାହାର ଅଛଇ ॥ ୬୫
ଅମେଧ୍ୟ ସେ ନାରୀଦେହରେ । ଆସକ୍ତ ସଦା ହୋନ୍ତି ନରେ ॥ ୬୬
ସୁସ୍ମିତ ଦିବ୍ୟନାସା ଯହିଁ । ସେ ମନୋହର ମୁଖ ଚାହିଁ ॥ ୬୭
୨୧ ସ୍ନାୟୁ-ରୁଧିର-ଚର୍ମ-ମାଂସ । ମେଦ-ମଜ୍ଜା-ଅସ୍ଥି-ପୁରୀଷ ॥ ୬୮
ମୂତ୍ର-ପୂୟାଦି ଦୁର୍ଗନ୍ଧର । ସମୂହ ସ୍ତିରୀକଳେବର ॥ ୬୯
ତହିଁ ରମିଲା ଲୋକଙ୍କର । କୃମିଙ୍କ ଠାରୁ କି ଅନ୍ତର ॥ ୭୦
୨୨ ଏ ହେତୁ ସ୍ତିରୀଙ୍କ ସଙ୍ଗରେ । ସ୍ତିରୀଲମ୍ପଟ ଜନଙ୍କରେ ॥ ୭୧
ବିବେକୀ ନ କରିବ ସଙ୍ଗ । ବିଷୟ-ଇନ୍ଦ୍ରିୟସଂଯୋଗ ॥ ୭୨
ହେତୁରୁ ମନକ୍ଷୋଭ ହୋଇ । ଅନ୍ୟଥା ଶାନ୍ତିକି ଲଭଇ ॥ ୭୩
୨୩ ଯା' ଦେଖିନାହିଁ ନାହିଁ ଶୁଣି । ସେ ପଦାର୍ଥକୁ ମନ ପୁଣି ॥ ୭୪
କ୍ଷୋଭକୁ ନ ଲଭଇ ପୁଣ । ଏ ହେତୁ ସ୍ୱଇନ୍ଦ୍ରିୟଗଣ ॥ ୭୫
ସଂଯତ କଲା ଯଉଁ ଜନ । ନିଶ୍ଚଳ ହୁଅଇ ତା' ମନ ॥ ୭୬

୧. ''ପୁରୂରବୋ ମା ମୃଥା ମା ପ୍ରତପ୍ତୋ
ମା ତ୍ୱା ବୃକାସୋ ଅଶିବା ଅଦ୍ୟୁଃ ।
ମାନ୍ଧାତୃକାମଃ ଆଶିଷା ସ ଭକ୍ଷନ୍ ।
ନ ବୈ ସ୍ତ୍ରୈଣାନି ସଖ୍ୟାନି ସନ୍ତି
ଶାଳାବୃକାଣାଂ ହୃଦୟାନ୍ୟେତାଃ ।'' (ଶ୍ରୁତି)

୨୪ ସେହେତୁ ସ୍ତିରୀଙ୍କ ସଙ୍ଗରେ । ସ୍ତ୍ରୀସଙ୍ଗିଜନମାନଙ୍କରେ ।। ୭୭
ସଙ୍ଗକୁ ନ କରିବ ନର । ଇନ୍ଦ୍ରିୟମାନଙ୍କେ ଆବର ।। ୭୮
ପଣ୍ଡିତମାନଙ୍କର ଯହିଁ । [1]ଷଡ଼୍‌ବର୍ଗେ ବିଶ୍ୱାସ ନୁହଇ ।। ୭୯
ମୋ' ପରା ଯେବଣ ମାନବ । ତାଙ୍କ ବିଶ୍ୱାସ କେ କହିବ ।। ୮୦

ଶ୍ରୀଭଗବାନୁବାଚ

୨୫ କହନ୍ତି ଲକ୍ଷ୍ମୀଙ୍କ ରମଣ । ଉଦ୍ଧବ ଏଥୁ ଅନ୍ତେ ଶୁଣ ।। ୮୧
ନୃପ-ଦେବରେ କ୍ରୀଡ଼ା ଯାର । ସେ ପୁରୂରବା ନୃପବର ।। ୮୨
ଏରୂପେ ଗାୟନ କରିଣ । ଉର୍ବଶୀଲୋକକୁ ଛାଡ଼ିଣ ।। ୮୩
ମୁଁ ଆତ୍ମସ୍ୱରୂପ ହିଁ ମୋତେ । ଜାଣି ଆପଣା ଆତ୍ମଗତେ ।। ୮୪
ସେ ଜ୍ଞାନେ ମୋହ କରି ହତ । ମୋ ସ୍ଥାନ ଲଭିଲେ ତୁରିତ ।। ୮୫
୨୬ ସେହେତୁ ଦୁଷ୍ଟସଙ୍ଗ ତେଜି । ସୁବୁଦ୍ଧି ସାଧୁସଙ୍ଗେ[2] ମଜ୍ଜି ।। ୮୬
ସାଧୁଏ ତାର ମନସଙ୍ଗ । ନାଶନ୍ତି ଉପଦେଶେ ବେଗ ।। ୮୭
୨୭ ସାଧୁଏ ଅପେକ୍ଷାବିହୀନ । ପ୍ରଶାନ୍ତ ମୋ'ଠି ତାଙ୍କ ମନ ।। ୮୮
ସମସ୍ତ ଦେଖନ୍ତି ସମାନ । ମମତା-ଅହଂକାରହୀନ ।। ୮୯
ଦ୍ୱନ୍ଦ୍ୱବିହୀନ ସେ ଅଟନ୍ତି । ପରିଗ୍ରହକୁ ନ ବାଞ୍ଛନ୍ତି ।। ୯୦
୨୮ ସେ ମହାଭାଗମାନଙ୍କରେ । ମୋ' କଥା ଜନ୍ମନ୍ତି ନିତ୍ୟରେ ।। ୯୧
ତାହା ଯେ କରନ୍ତି ସେବନ । ସେ କଥା ତାଙ୍କ ଅଘମାନ ।। ୯୨
ପବିତ୍ର କରନ୍ତି ଅତୀବ । ଆହେ ମହାଭାଗ ଉଦ୍ଧବ ।। ୯୩
୨୯ ଶ୍ରଦ୍ଧା-ଆଦର ସହକାରେ । ତତ୍‌ପର ହୋଇଣ ମୋ' ଠାରେ ।। ୯୪
ମୋ' କଥା ଶୁଣନ୍ତି ଗାଆନ୍ତି । ଅନୁମୋଦନ ଯେ କରନ୍ତି ।। ୯୫
ସେ ସାଧୁଜନେ ଏ ସଂସାରେ । ଭକତି ଲଭନ୍ତି ମୋ' ଠାରେ ।। ୯୬
୩୦ ଅନନ୍ତଗୁଣ ବ୍ରହ୍ମ ମୁହିଁ । ଆନନ୍ଦାନୁଭବ ଆତ୍ମା ହିଁ ।। ୯୭
ମୋ' ଠାରେ ଯଉଁ ସାଧୁ ନର । ଭକ୍ତିକି ଲଭିଲା ତାହାର ।। ୯୮
ଆହେ ଉଦ୍ଧବ ଆନ କିଛି । କି ଅବା ଅବଶେଷ ଅଛି ।। ୯୯
୩୧ ଯେ ଭଗବାନ ହୁତାଶନ । ତାଙ୍କୁ ଯେ କରଇ ସେବନ ।। ୧୦୦
ତା' ଶୀତ ଭୟ ଅନ୍ଧକାର । ଯେସନେ ହୋଇଯାଏ ଦୂର ।। ୧୦୧
ସାଧୁଙ୍କୁ ଭଜଇ ଯେ ଜନ । [3]ତାହାର ହୁଅଇ ତେସନ ।। ୧୦୨
୩୨ ଘୋରସଂସାରସମୁଦ୍ରରେ । ଯେ ଉଚ୍ଚ ନୀଚ ଯୋନିଙ୍କରେ ।। ୧୦୩
ଭ୍ରମନ୍ତି, ତାଙ୍କ ଆଶ୍ରେ ସ୍ଥାନ । ବ୍ରହ୍ମଜ୍ଞ ଶାନ୍ତ ସାଧୁଜନ ।। ୧୦୪
ଜଳେ ବୁଡ଼ନ୍ତା ଲୋକଙ୍କର । ସୁଦୃଢ଼ ନୌକା ଯେ ପ୍ରକାର ।। ୧୦୫

---

୧. ପଞ୍ଚଜ୍ଞାନେନ୍ଦ୍ରିୟ ଓ ମନ । ୨. ତୀର୍ଥଦେବାଦି ସଙ୍ଗଠାରୁ ମଧ୍ୟ ସାଧୁସଙ୍ଗ ଉତ୍କୃଷ୍ଟ ।
୩. ସାଧୁଙ୍କୁ ଭଜୁଥିବା ଲୋକର କର୍ମାଦି ଶୀତ, ଆଗାମୀ ସଂସାରଭୟ ଓ ଅଜ୍ଞାନ-ଅନ୍ଧକାର ଦୂର ହୁଏ ।

| | | | | |
|---|---|---|---|---|
| ୩୩ | ଅନ୍ନ ଯେସନେ ପ୍ରାଣିପ୍ରାଣ | । ମୁଁ ଆର୍ତ୍ତଲୋକଙ୍କ ଶରଣ | ।। | ୧୦୬ |
| | ପ୍ରାଣିମାନଙ୍କର ଯେସନ | । ପରଲୋକରେ ଧର୍ମ ଧନ | ।। | ୧୦୭ |
| | ସଂସାରପତନରୁ ଯାର | । ଭୟ ହୁଅଇ ବଳିୟାର | ।। | ୧୦୮ |
| | ତାଙ୍କ ଶରଣ ସାଧୁ ନରେ | । ହୁଅନ୍ତି ପୁଣ ସେ ରୂପରେ | ।। | ୧୦୯ |
| ୩୪ | ସଗୁଣ-ନିର୍ଗୁଣ ଯେ ଜ୍ଞାନ | । ଦିଅନ୍ତି ପୁଣ ସାଧୁଜନ | ।। | ୧୧୦ |
| | ବାହ୍ୟେ ଉଦିତ ଯେ ତପନ | । ସେ ଏକ ଚକ୍ଷୁ ବିଦ୍ୟମାନ | ।। | ୧୧୧ |
| | ସାଧୁଏ ଦେବତା ବାନ୍ଧବ | । ସାଧୁଏ ଆତ୍ମା ମୁଁ ଉଦ୍ଧବ | ।। | ୧୧୨ |
| ୩୫ | ସେ ପୁରୂରବା ହେଜି ଏହା | । ତେଜି ଉର୍ବଶୀସ୍ଥାନସ୍ପୃହା | ।। | ୧୧୩ |
| | ସତ୍‌ସଙ୍ଗୁଁ ଆତ୍ମାରାମ ହୋଇ | । ଭ୍ରମିଲେ ମୁକ୍ତ ହୋଇ ମହୀ | ।। | ୧୧୪ |
| | ସନ୍ତୋଷ ଲଭି ନିଜ ଚିତ୍ତ | । ଶ୍ରୀଏକାଦଶସ୍କନ୍ଧ ଗୀତ | ।। | ୧୧୫ |
| | ବ୍ରାହ୍ମଣ ଦୀନବନ୍ଧୁ ଭଣି | । ତରିବେ ଶୁଣି ସର୍ବପ୍ରାଣୀ | ।। | ୧୧୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଶ୍ରୀଐଳଗୀତଂ ନାମ ଷଡ୍‌ବିଂଶୋଽଧ୍ୟାୟଃ ।।

## ସପ୍ତବିଂଶ ଅଧ୍ୟାୟ

ସପ୍ତବିଂଶେ କ୍ରିୟାଯୋଗଃ ସଦ୍ୟଶ୍ଚିତ୍ତପ୍ରସାଦକଃ ।
ସର୍ବକାମାପ୍ତିହେତୁଶ୍ଚ ସାଙ୍ଗଃ ପ୍ରୋକ୍ତଃ ସମାସତଃ ।। ୧
ରାଗାଦ୍ୟାକୁଳଚିତ୍ତାନାଂ କୁତୋଽସଙ୍ଗାଦିସଂଭବଃ ।
ଇତି କୃଷ୍ଣାର୍ଚ୍ଚନଂ ଭଦ୍ରମନୁସ୍ମୃତ୍ୟାନୁପୃଚ୍ଛତି ।। ୨

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧ | କହେ ଉଦ୍ଧବ ଯୋଡ଼ି କର | । ହେ ପ୍ରଭୁ ହେ ଯାଦବବର | ।। | ୧ |
| | ଯେବଣ ହେତୁରୁ ଯେମନ୍ତେ | । ତୁମ୍ଭଙ୍କୁ ପୂଜନ୍ତି ଯେ ଭକ୍ତେ | ।। | ୨ |
| | ସେ ତୁମ୍ଭ ଆରାଧନା ଯହିଁ | । କହ ସେ କ୍ରିୟାଯୋଗକୁ ହିଁ | ।। | ୩ |
| ୨ | ନାରଦ ବ୍ୟାସ ମହାମତି | । ସୁର-ଆଚାର୍ଯ୍ୟ ବୃହସ୍ପତି | ।। | ୪ |
| | ଆବର ଯେତେ ଋଷିଗଣ | । ସର୍ବେ ବୋଲନ୍ତି ପୁଣ ପୁଣ | ।। | ୫ |
| | ତୁମ୍ଭର ଆରାଧନା ଯେହି | । ସେ ପ୍ରାଣୀଙ୍କର କ୍ଷେମଦାୟୀ | ।। | ୬ |
| ୩ | ତୁମ୍ଭ ଶ୍ରୀମୁଖରୁ ପ୍ରକାଶ | । ହେଲା ଯେବଣ ଉପଦେଶ | ।। | ୭ |
| | ବ୍ରହ୍ମା କହିଛନ୍ତି ଏହାକୁ | । ଭୃଗୁ ଆଦି ପୁତ୍ରମାନଙ୍କୁ | ।। | ୮ |
| | ସେ ଭଗବାନ ଶୂଳପାଣି | । କହିଲେ ପାର୍ବତୀଙ୍କି ପୁଣି | ।। | ୯ |

| | | | | |
|---|---|---|---|---|
| ୪ | ଏ ସର୍ବବର୍ଣ୍ଣମାନଙ୍କର[୧] | । ସମ୍ମତ ସର୍ବ ଆଶ୍ରମର | ॥ | ୧୦ |
| | ହେ କୃଷ୍ଣ ଅତିଶ୍ରେୟ ଏହି | । ସ୍ତ୍ରୀଶୂଦ୍ରାଦିଙ୍କର ମଣଇ | ॥ | ୧୧ |
| ୫ | ହେ ବିଶ୍ୱେଶ୍ୱରଙ୍କ ଈଶ୍ୱର | । ହେ ପଦ୍ମନୟନ ସତ୍ୱର | ॥ | ୧୨ |
| | ପ୍ରାଣିଙ୍କି କରଇ ଯେ ପୁଣ | । କର୍ମବନ୍ଧରୁ ବିମୋକ୍ଷଣ | ॥ | ୧୩ |
| | ଏମନ୍ତ ଯେ କ୍ରିୟାଯୋଗକୁ | । କହ ଅନୁରକ୍ତ ଭକ୍ତକୁ | ॥ | ୧୪ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୬ | ଯା' ଅନୁଷ୍ଠାନୁଁ ନାହିଁ ଅନ୍ତ | । ଯେ କର୍ମକାଣ୍ଡ[୨] ଅପ୍ରମିତ | ॥ | ୧୫ |
| | ଯଥାର୍ଥେ ତା' ଅନୁକ୍ରମେଣ | । ବର୍ଣ୍ଣିମା ସଂକ୍ଷିପ୍ତ କରିଣ | ॥ | ୧୬ |
| ୭ | [୩]ବୈଦିକ ତାନ୍ତ୍ରିକ ମିଶ୍ରିତ | । ଏ ରୂପେ ପୂଜା ତିନି ମତ | ॥ | ୧୭ |
| | ଏ ତିନି ବିଧିଙ୍କ ମଧ୍ୟରେ | । ଯାହା ମନୋରଥ ଯହିଁରେ | ॥ | ୧୮ |
| | ସେହି ବିଧିରେ ମୋତେ ଜନ | । ଉଦ୍ଧବ କରିବ ପୂଜନ | ॥ | ୧୯ |
| ୮ | ବ୍ରତ ହୋଇଣ ଦ୍ୱିଜବରେ | । ଯେମନ୍ତେ ବେଦୋକ୍ତ ବିଧିରେ | ॥ | ୨୦ |
| | ମୋତେ ପୂଜନ୍ତି ସ୍ୱଭକ୍ତିରୁ | । ଶ୍ରଦ୍ଧାରେ ଶୁଣ ତା' ମୋ' ଠାରୁ | ॥ | ୨୧ |
| ୯ | ପ୍ରତିମାଦିରେ ସ୍ଥଣ୍ଡିଳରେ[୪] | । ଅଗ୍ନିରେ ଅବା ଭାସ୍କରରେ | ॥ | ୨୨ |
| | ଜଳେ ବା ହୃଦେ ଦ୍ୱିଜେ ପୁଣ | । ଉତ୍ତମ ଦ୍ରବ୍ୟକୁ ଘେନିଣ | ॥ | ୨୩ |
| | ମୁଁ ନିଜ ଗୁରୁ ମୋତେ ପୂଜି | । ଭକ୍ତିରେ କପଟକୁ ତେଜି | ॥ | ୨୪ |
| ୧୦ | ପୂର୍ବରୁ ଅଙ୍ଗଶୁଦ୍ଧି ପାଇଁ | । ସ୍ନାନ କରିବ ଦନ୍ତ ଧୋଇ | ॥ | ୨୫ |
| | କରି ମୃତ୍ତିକାଦି ଗ୍ରହଣ | । ବୈଦିକ ତାନ୍ତ୍ରିକ ମନ୍ତ୍ରେଣ | ॥ | ୨୬ |
| | କରିବ ପୁନରପି ସ୍ନାନ | । ଉଦ୍ଧବ ଏ ଅଟେ ବିଧାନ | ॥ | ୨୭ |
| ୧୧ | ପରମେଶ୍ୱରଙ୍କ ବିଷୟେ | । ସଂକଳ୍ପ କରି ଅତିଶୟେ | ॥ | ୨୮ |
| | ଯେ ସଂଧ୍ୟା-ଉପାସନା ଆଦି | । ବେଦବିହିତ କର୍ମ ସିଦ୍ଧି | ॥ | ୨୯ |
| | ତାହା ସହିତେ ମୋ ପୂଜନ | । କରିବ ସେ[୫] କର୍ମପାବନ[୬] | ॥ | ୩୦ |
| ୧୨ | ସ୍ୱର୍ଣ୍ଣାଦିଧାତୁ ଶିଳା ଦାରୁ | । ମୃତ୍ତିକା-ଚନ୍ଦନ ଆଦିରୁ | ॥ | ୩୧ |
| | ପ୍ରତିମା ଅଟଇ ବିହିତ | । ଆବର ଆଲେଖ୍ୟ ସୈକତ | ॥ | ୩୨ |
| | ସେ ମନୋମୟୀ ମଣିମୟୀ | । ଏ ରୂପେ ଅଷ୍ଟବିଧ ହୋଇ | ॥ | ୩୩ |
| ୧୩ | ଚଳ ଅଚଳ ରୂପ ହୋଇ | । ପ୍ରତିମା ଦ୍ୱିବିଧ ଅଟଇ | ॥ | ୩୪ |
| | ସେ ଭଗବାନଙ୍କ ମନ୍ଦିର | । ପୂଜାରେ ସ୍ଥିର ପ୍ରତିମାର | ॥ | ୩୫ |
| | ଆହେ ଉଦ୍ଧବ ଆବାହନ | । କରିବ ନାହିଁ ବିସର୍ଜନ | ॥ | ୩୬ |

୧. ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ - ଏହି ତିନି ବର୍ଣ୍ଣର । ୨. ପୂଜାବିଧାନ ।
୩. ବୈଦିକ ମନ୍ତ୍ର ଓ ବୈଦିକ ଅଙ୍ଗମାନ ଯହିଁରେ ଅଛି, ତାହା ବୈଦିକ;
ତାନ୍ତ୍ରିକ = ଗୋତମୀୟତନ୍ତ୍ରାଦ୍ୟୁକ୍ତ ଏବଂ ମିଶ୍ର = ଅଷ୍ଟାକ୍ଷରାଦି ।
୪. ବେଦିରେ । ୫. ମୋ ପୂଜକ । ୬. କର୍ମଦାହନ ।

| | | | | | |
|---|---|---|---|---|---|
| ୧୪ | ସେ ଆବାହାନ ତ୍ୟାଗ ଦୁଇ | । ଚଞ୍ଚଳ ପ୍ରତିମାରେ ତହିଁ | ।। | ୩୭ |
| | ବିକଳ୍ପେ ରଚିତ ହୁଅଇ | । ସ୍ଥଣ୍ଡିଳେ ହୁଅନ୍ତି ସେ ଦୁଇ[୧] | ।। | ୩୮ |
| | ଆଲେଖ୍ୟ-ଆଲେପ୍ୟକୁ ତେଜି | । ଅନ୍ୟ ପ୍ରତିମା ସ୍ନାନେ ମାଜି | ।। | ୩୯ |
| | ଆଲେଖ୍ୟ-ଆଲେପ୍ୟ ମାର୍ଜନ | । କରିବ ନ କରାଇ ସ୍ନାନ | ।। | ୪୦ |
| ୧୫ | ମୋ' ପୂଜା ପ୍ରତିମା ଆଦିରେ | । କରିବ ପ୍ରସିଦ୍ଧ ଦ୍ରବ୍ୟରେ | ।। | ୪୧ |
| | ଯଥାଲାଭରେ ଭକ୍ତ[୨] ଜନ | । ମୋ' ପୂଜା କରିବ ବିଧାନ | ।। | ୪୨ |
| | ଉପଚାରାଦି-ଅଭାବରେ | । ହୃଦେ ପୂଜିବ ଭାବନାରେ | ।। | ୪୩ |
| ୧୬ | ଉଦ୍ଧବ ! ପ୍ରତିମାରେ ମୋର | । ପ୍ରିୟଟି ସ୍ନାନ ଅଳଂକାର | ।। | ୪୪ |
| | ତତ୍ତ୍ୱବିନ୍ୟାସ[୩] ସ୍ଥଣ୍ଡିଳରେ | । ସଘୃତ ହବି ବୈଶ୍ୱାନରେ | ।। | ୪୫ |
| ୧୭ | ସୂର୍ଯ୍ୟରେ ପ୍ରିୟ ଉପସ୍ଥାନ[୪] | । ଜଳରେ ତର୍ପଣାଦିମାନ | ।। | ୪୬ |
| ୧୮ | ଜଳମାତ୍ର ହିଁ ଭକ୍ତଜନ | । ଶ୍ରଦ୍ଧାରେ କରନ୍ତେ ପ୍ରଦାନ | ।। | ୪୭ |
| | ସେ ମୋର ବହୁତ ହୁଅଇ | । ଭକ୍ତି ନ ଥାଇ ବହୁତ ହିଁ | ।। | ୪୮ |
| | ମୋତେ ଯେ କରଇ ଅର୍ପିତ | । ସେ ନୋହେ ସଂତୋଷ ନିମିତ୍ତ | ।। | ୪୯ |
| | ଗନ୍ଧ କୁସୁମ ଧୂପ ଯେହି | । ଦୀପ ନୈବେଦ୍ୟ ଆଦି ହୋଇ | ।। | ୫୦ |
| | ପୂଜା କରନ୍ତେ ଭକ୍ତଗଣ | । ତା' ଅବା କି କହିବା ପୁଣ | ।। | ୫୧ |
| ୧୯ | ଅତ୍ୟନ୍ତ ଶୁଦ୍ଧ ହୋଇ ନର | । ପ୍ରଥମେ ସଂପାଦି ସମ୍ଭାର | ।। | ୫୨ |
| | ପୂର୍ବେ ବା ଉତ୍ତରେ ବଦନ | । କରି ବସିବ କୁଶାସନ | ।। | ୫୩ |
| | ପ୍ରତିମା ଅଭିମୁଖ ହୋଇ | । ବସିବ ଅବା ପୂଜାଠାଇଁ | ।। | ୫୪ |
| ୨୦ | ସ୍ୱଦେହେ କରିଣ ନ୍ୟାସକୁ | । ନ୍ୟାସ କରି ମୋ' ପ୍ରତିମାକୁ | ।। | ୫୫ |
| | କରେ ମାର୍ଜନା କରି ଗାତ୍ର | । କଳସ ପ୍ରୋକ୍ଷଣୀୟ ପାତ୍ର | ।। | ୫୬ |
| | ଏମାନ କରି ଯଥାବନ୍ତ | । ସାଧନା କରିବ ସମସ୍ତ | ।। | ୫୭ |
| ୨୧ | ପ୍ରୋକ୍ଷଣୀ ପାତ୍ର ଜଳେ ପୁଣ | । ଦେବତାସ୍ଥାନ ଦ୍ରବ୍ୟଗଣ | ।। | ୫୮ |
| | ଦେହକୁ କରିଣ ପ୍ରୋକ୍ଷଣ | । [୫]ପାଦ୍ୟାଦି ତ୍ରିପାତ୍ର ଜଳେଣ | ।। | ୫୯ |
| | ସେ ସେହି ଦ୍ରବ୍ୟମାନଙ୍କରେ | । ସାଧିବ ସମସ୍ତ ପୂଜାରେ | ।। | ୬୦ |
| ୨୨ | ପାଦ୍ୟ ଅର୍ଘ୍ୟ ଆଚମନୀୟ | । ଏ ତିନି ପାତ୍ରେ ଯଉଁ ତୋୟ | ।। | ୬୧ |
| | ହୃଦୟ ଶିର ଶିଖା ତିନି | । ମନ୍ତ୍ରରେ ମନ୍ତ୍ରିଣ ତା' ପୁଣି | ।। | ୬୨ |

୧. ଆବାହନ ଓ ବିସର୍ଜନ    ୨. ନିଷ୍କାମ ଭକ୍ତ ।

୩. ସ୍ଥାନକ୍ରମରେ ଅଙ୍ଗପ୍ରଧାନ ଦେବତାମାନଙ୍କର ଭିନ୍ନ ଭିନ୍ନ ମନ୍ତ୍ରରେ ସ୍ଥାପନ ।

୪. ଅର୍ଘ୍ୟାଦିଦ୍ୱାରା ପୂଜନ ।

୫. ପାଦ୍ୟେ ଶ୍ୟାମାକଦୂର୍ବାବ୍ଜବିଷ୍ଣୁକ୍ରାନ୍ତାଦିରିଷ୍ୟତେ ।
ଗନ୍ଧପୁଷ୍ପାକ୍ଷତଯବକୁଶାଗ୍ରତିଳସର୍ଷପାଃ ।। ୧ ।।
ଦୂର୍ବା ଚେତି କ୍ରମାଦର୍ଘ୍ୟଦ୍ରବ୍ୟାଷ୍ଟକମୁଦୀରିତମ୍ ।
ଜାତୀଲବଙ୍ଗକକ୍କୋଲୈର୍ଯୁତମାଚମନୀୟକମ୍ ।। ୨ ।।

ଗାୟତ୍ରୀ ମନ୍ତ୍ରକୁ ପଢ଼ିଣ । ତିହ୍ନିଙ୍କି କରିବ ମନ୍ତ୍ରଣ ।। ୬୩
୨୩ ବାୟୁ ଅଗ୍ନିରେ ଶୁଦ୍ଧ ହୋଇ । ପିଣ୍ଡ ହୁଅନ୍ତେ ପୁଣ ତହିଁ ।। ୬୪
ନାଦ ଅନ୍ତରେ ପୁଣ ଯାକୁ । ସିଦ୍ଧେ କରନ୍ତି ଭାବନାକୁ ।। ୬୫
ହୃଦୟପଦ୍ମରେ ଯା' ସ୍ଥିତି । ଅଣୁପରାଏ ସୂକ୍ଷ୍ମ ଅତି ।। ୬୬
ଏମନ୍ତ ଜୀବକଳା[1] ଯେହି । ଭାବନା କରିବ ତାକୁ ହିଁ ।। ୬୭
୨୪ ତଦାତ୍ମମୟ ଚିତ୍ତ ନରେ । ଅମୃତମୟ ସ୍ୱପିଣ୍ଡରେ ।। ୬୮
ମାନସୋପଚାରେ ପୂଜିଣ । ତନ୍ମୟ ହୋଇଣ ଆପଣ ।। ୬୯
ପ୍ରତିମାଦିରେ ସଂସ୍ଥାପନ । କରିଣ ପୁଣ ଆବାହନ ।। ୭୦
ରହନ୍ତେ ପ୍ରତିମାରେ ମୁହିଁ । ମୋତେ ପୂଜିବ ଭକ୍ତି ବହି ।। ୭୧
୨୫ ଧର୍ମଜ୍ଞାନାଦି[2] ନବ ଗୁଣ । ବିମଳାଦି ନ' ଶକ୍ତି ପୁଣ ।। ୭୨
ଏହାଙ୍କ ଦ୍ୱାରେ ମୋ ଆସନ । ବିଧିରେ କରିଣ କଳ୍ପନ ।। ୭୩
ପାଦ୍ୟ ଆଚମନ ହୋଇଣ । ଅର୍ଘ୍ୟକୁ ଆଦି କରି ପୁଣ ।। ୭୪
ଅଛନ୍ତି ଉପଚାର ଯେତେ । କଳ୍ପନା କରିବ ତା' ମୋତେ ।। ୭୫
୨୬ ତହିଁରେ ପଦ୍ମ ଅଷ୍ଟଦଳ । କର୍ଣ୍ଣିକାକେସରେ[3] ଉଜ୍ଜ୍ୱଳ ।। ୭୬
କଳ୍ପନା କରି ମୋତେ ତହିଁ । ଭୁକ୍ତି-ମୁକ୍ତିର ସିଦ୍ଧିପାଇଁ ।। ୭୭
ବେଦ-ତନ୍ତ୍ର ବେନି ମନ୍ତ୍ରରେ । ପୂଜିବ ନାନା ଉପଚାରେ ।। ୭୮
୨୭ [4]ସୁଦରଶନ ପାଞ୍ଚଜନ୍ୟ । ଗଦା ଖଡ଼୍ଗ ଶରମାନ ।। ୭୯
ଧନୁ କୌସ୍ତୁଭ ମାଳା ହଳ । ପୂଜିବ ଶ୍ରୀବତ୍ସ ମୁଷଳ ।। ୮୦
୨୮ ଯେ ନନ୍ଦ ସୁନନ୍ଦ ପ୍ରଚଣ୍ଡ । ଯେ ମହାବଳ ବଳ ଚଣ୍ଡ ।। ୮୧
କୁମୁଦ କୁମୁଦେକ୍ଷଣଙ୍କୁ । ପୂଜିବ, ଅଗ୍ରେ ଗରୁଡ଼ଙ୍କୁ ।। ୮୨
୨୯ ଯେ ଦୁର୍ଗା ବିନାୟକ ବ୍ୟାସ । ଇନ୍ଦ୍ରାଦି ଅଷ୍ଟଲୋକ-ଈଶ ।। ୮୩
ବିଷ୍ୱକସେନ ଗୁରୁଙ୍କୁ ହିଁ । ଏହାଙ୍କୁ ଅଭିମୁଖ ହୋଇ ।। ୮୪
ପୂଜିବ ଅର୍ଘ୍ୟ ଆଦିଙ୍କରେ । ଆପଣା ଆପଣା ସ୍ଥାନରେ ।। ୮୫
୩୦ ଚନ୍ଦନ ଉଶୀର[5] କର୍ପୂର । କୁଙ୍କୁମ ଅଗୁରୁନିକର ।। ୮୬

---

୧. ନାରାୟଣମୂର୍ତ୍ତି । ପ୍ରଣବର ଅ-ଉ-ମ-ବିନ୍ଦୁ-ନାଦ - ଏହି ପାଞ୍ଚଟି ଅଂଶ । ତଥା -
''ଯୋ ବେଦାଦୌ ସ୍ୱରଃ ପ୍ରୋକ୍ତୋ ବେଦାନ୍ତେ ଚ ପ୍ରତିଷ୍ଠିତଃ ।
ତସ୍ୟ ପ୍ରକୃତିଲୀନସ୍ୟ ଯଃ ପରଃ ସ ମହେଶ୍ୱରଃ ।।'' (ଶ୍ରୁତିଃ)
୨. ଧର୍ମ, ଜ୍ଞାନ, ବୈରାଗ୍ୟ ଓ ଐଶ୍ୱର୍ଯ୍ୟ - ଆସନପର୍ଯ୍ୟଙ୍କର ଆଗ୍ନେୟାଦି ଚାରି କୋଣରେ ଚାରି ପାଦ । ଅଧର୍ମ, ଅଜ୍ଞାନ, ଅବୈରାଗ୍ୟ ଓ ଅନୈଶ୍ୱର୍ଯ୍ୟ - ପୂର୍ବାଦି ଚାରି ଦିଗରେ ଚାରି ଗାତ୍ର । ସତ୍ତ୍ୱ, ରଜ ଓ ତମ - ଏ ତିନି ଗୁଣ ତିନି ପଟ୍ଟିକା । ତହିଁରେ ବିମଳା, ଉତ୍କର୍ଷିଣୀ, ଜ୍ଞାନା, କ୍ରିୟା, ଯୋଗା, ପ୍ରହ୍ୱୀ, ସତ୍ୟା, ଈଶାନା ଓ ଅନୁଗ୍ରହା - ଏହି ନବ ଶକ୍ତିଙ୍କୁ ପୂର୍ବାଦିକ୍ରମେ ମଝିରେ ବସାଇବ ।
୩. ତତ୍ରସ୍ଥ ସୂର୍ଯ୍ୟାଦି ମଣ୍ଡଳଦ୍ୱାରା ।
୪. କୌସ୍ତୁଭ, ମାଳା ଓ ଶ୍ରୀବତ୍ସକୁ ଉରଃସ୍ଥଳରେ ଏବଂ ଅନ୍ୟଗୁଡ଼ିକୁ ଆଠ ଦିଗରେ ରଖିବ ।
୫. ଉଶୀର = ବେଣା ।

ଏଣେ ସୁବାସିତ ଜଳରେ । ସ୍ନାନ କରାଇବ ମନ୍ତ୍ରରେ ॥ ୮୭
ଏ ରୂପେ ନିତ୍ୟରେ ପୂଜିବ । ଯେବେ ସ୍ୱଗୃହେ ଧନ ଥିବ ॥ ୮୮
୩୧ [1]ସ୍ୱର୍ଣ୍ଣଘର୍ମ ଅନୁବାକରେ । [2]ସେ ମହାପୁରୁଷବିଦ୍ୟାରେ ॥ ୮୯
ପୂଜିବ ପୁରୁଷସୂକ୍ତ[3]ରେ । [4]ନୀରାଜନ ଆଦି[5] ସାମରେ ॥ ୯୦
୩୨ ଯଜ୍ଞୋପବୀତ ବସ୍ତ୍ରମାନ । ଯେ ନାନା ଅଳଂକାର ଆନ ॥ ୯୧
ପତ୍ର[6] କୁସୁମମାଳାମାନ । ଯେ ବା ଗନ୍ଧ ଅନୁଲେପନ ॥ ୯୨
ଏଣେ କରିବ ଅଳଂକୃତ । ଯେବେ ହୋଇବ ମୋର ଭକ୍ତ ॥ ୯୩
ସେ ପୁଣି ସପ୍ରେମ ଭକ୍ତିରେ । ପୂଜିବ ଯଥା ଉଚିତରେ ॥ ୯୪
୩୩ ଯେ ପାଦ୍ୟ ଗନ୍ଧ ଆଚମନ । ଅକ୍ଷତ ନାନା ପୁଷ୍ପମାନ ॥ ୯୫
ଧୂପ ଦୀପ ନୈବେଦ୍ୟ ଆନ । ଶ୍ରଦ୍ଧାରେ କରିବ ପ୍ରଦାନ ॥ ୯୬
୩୪ ଗୁଡ଼ପାୟସ ଘୃତ ଅନ୍ନ । ଚକୁଳି ମଣ୍ଡକାଦିମାନ ॥ ୯୭
ମୋଦକ ଗୋଧୂମ ପାୟସ । ଯେ ଦଧି ବ୍ୟଞ୍ଜନବିଶେଷ ॥ ୯୮
ନୈବେଦ୍ୟ କରିବ ଏମାନ । ଯେବେ ତା' ଗୃହେ ଥିବ ଧନ ॥ ୯୯
୩୫ ଅଭ୍ୟଙ୍ଗମର୍ଦ୍ଦନ[7] ଦର୍ପଣ । ଦନ୍ତଧାପନ[8] ସ୍ନାନ[9] ପୁଣ ॥ ୧୦୦
ଭକ୍ଷ୍ୟ-ଭୋଜ୍ୟାଦି ଦିବ୍ୟ ଅନ୍ନ । ପର୍ବରେ[10] ନୃତ୍ୟଗୀତମାନ ॥ ୧୦୧
ସଂପତ୍ତି ଥିଲେ ପ୍ରତିଦିନ । ଅଥବା କରିବ ବିଧାନ ॥ ୧୦୨
୩୬ ମେଖଳାଗର୍ତ୍ତ[11] ବେଦିଙ୍କରେ । ଯେ ଉପଲକ୍ଷିତ କ୍ରମରେ ॥ ୧୦୩
ବିଧିବିହିତ ସେ କୁଣ୍ଡେଣ । ଅଗ୍ନିକି ନିଧାନ କରିଣ ॥ ୧୦୪
ଜ୍ୱଳନ୍ତ ସେ ଅଗ୍ନିକି ପୁଣ । ହସ୍ତରେ ଏକାଠି କରିଣ ॥ ୧୦୫
୩୭ ତଦନ୍ତେ ଅଗ୍ନିଚାରିପାଶେ । ପରିସ୍ତରଣ[12] କରି କୁଶେ ॥ ୧୦୬
ବିଧିପୂର୍ବକ ବ୍ୟାହୃତିରେ । ସମିଧ ପକାଇ ଅଗ୍ନିରେ ॥ ୧୦୭
ରଖିଣ ହୋମଦ୍ରବ୍ୟଗଣ । ପ୍ରୋକ୍ଷଣୀଜଳରେ ତା' ପୁଣ ॥ ୧୦୮
ପ୍ରୋକ୍ଷଣ କରି ସେ ଅଗ୍ନିରେ । ଧ୍ୟାନ କରିବ ମୋତେ ଧୀରେ ॥ ୧୦୯
୩୮ ତପ୍ତସୁବର୍ଣ୍ଣପ୍ରାୟେ କାନ୍ତି । ଚତୁର୍ଭୁଜରେ ଧରିଛନ୍ତି ॥ ୧୧୦
ଶଙ୍ଖ ଚକ୍ର ଗଦା ନଳିନ । ଶାନ୍ତ ଅଟନ୍ତି ଅନୁଦିନ ॥ ୧୧୧

---

୧. ସ୍ୱର୍ଣ୍ଣଘର୍ମାନୁବାକଃ 'ସୁବର୍ଣ୍ଣଂ ଘର୍ମଂ ପରିବେଦନମ୍' ଇତ୍ୟାଦି ।
୨. 'ଜିତଂ ତେ ପୁଣ୍ଡରୀକାକ୍ଷ ନମସ୍ତେ ବିଶ୍ୱଭାବନ ।
ସୁବ୍ରହ୍ମଣ୍ୟ ନମସ୍ତେଽସ୍ତୁ ମହାପୁରୁଷପୂର୍ବଜ ॥' ଇତି ।
୩. 'ସହସ୍ରଶୀର୍ଷାଃ ପୁରୁଷଃ' ଇତ୍ୟାଦି । ୪. 'ଇନ୍ଦ୍ରଂ ନରୋ ନେମଧିତା ହବନ୍ତେ' ଇତ୍ୟାଦି ସାମ ।
୫. ରୌହିଣ୍ୟାଦି । ୬. ପତ୍ରଭଙ୍ଗୀ । ୭. ଅଙ୍ଗମାନ ମାଲିସ୍ କରିବା । ୮. ଦାନ୍ତ ଘଷିବା ।
୯. ପଞ୍ଚାମୃତାଦିରେ ସ୍ନାନ । ୧୦. ଏକାଦଶୀ ଆଦିରେ ।
୧୧. ବିସ୍ତାରୋଚ୍ଛ୍ରାୟତସ୍ତିସ୍ରୋ ମେଖଳାଶ୍ଚତୁରଙ୍ଗୁଳାଃ ।
ହସ୍ତମାତ୍ରୋ ଭବେଦ୍‌ଗର୍ତ୍ତଃ ସଯୋନିର୍ବେଦିକା ତଥା ॥
୧୨. ଆଚ୍ଛାଦନ, ଏକୀକରଣ ।

| | | | | |
|---|---|---|---|---|
| | କମଳକେଶର ସଦୃଶ | । ପୀତ ଅଟଇ ନିଜ ବାସ | ।। | ୧୧୨ |
| ୩୯ | ଯେ ଅତି ଉତ୍ତମ ଶୋଭନ | । କିରୀଟ କଟକାଦିମାନ | ।। | ୧୧୩ |
| | କଟିସୂତ୍ର ହିଁ ବିରାଜଇ | । ବର ଅଙ୍ଗଦ କରେ ଶୋହି | ।। | ୧୧୪ |
| | ଶ୍ରୀବତ୍ସଚିହ୍ନ ବକ୍ଷସ୍ଥଳେ | । କୌସ୍ତୁଭ ବନମାଳା ଗଳେ | ।। | ୧୧୫ |
| | ଏରୂପେ ଧ୍ୟାନ କରି ମୋତେ | । ପୂଜା କରିବ ଅଗ୍ନିଗର୍ତ୍ତେ | ।। | ୧୧୬ |
| ୪୦ | ଶୁଷ୍କ ସମିଧ ଘୃତଯୁତ | । ଅଗ୍ନିରେ କରିଣ ନିକ୍ଷିପ୍ତ | ।। | ୧୧୭ |
| | [୧]ଆଘାର ଆଜ୍ୟ ଭାଗ ଦୁଇ | । ମନ୍ତ୍ରେ ଆହୁତି ତହିଁ ଦେଇ | ।। | ୧୧୮ |
| | ଘୃତସଂଯୁତ ଆଜ୍ୟଭାଗ | । ବହ୍ନିରେ ପକାଇଣ ବେଗ | ।। | ୧୧୯ |
| ୪୧ | ପୁରୁଷସୂକ୍ତ ଋଚ[୨] ସ୍ମରି | । ମୂଳମନ୍ତ୍ରରେ[୩] ହୋମ କରି | ।। | ୧୨୦ |
| | ପୂଜକ ସ୍ୱାହାନ୍ତ ମନ୍ତ୍ରରେ | । ଧର୍ମାଦିଙ୍କି ଯଥାନ୍ୟାୟରେ | ।। | ୧୨୧ |
| | 'ଅଗ୍ନୟେ ସ୍ୱିଷ୍ଟକୃତେ ସ୍ୱାହା' | । ବୋଲିଣ ହୋମ କରି ତାହା | ।। | ୧୨୨ |
| ୪୨ | ଯେ ଅଗ୍ନିମଧ୍ୟଗତ ହରି | । ତାଙ୍କୁ ପୂଜି ପ୍ରଣାମ କରି | ।। | ୧୨୩ |
| ୪୩ | ନନ୍ଦାଦି ପାର୍ଷଦଙ୍କୁ ପୁଣ | । ତଦନ୍ତେ ଦେବ ବଳିଦାନ | ।। | ୧୨୪ |
| | ଯେ ବ୍ରହ୍ମ ନାରାୟଣାତ୍ମକ | । ସେ ମୂଳମନ୍ତ୍ରକୁ ପୂଜକ | ।। | ୧୨୫ |
| | ଜପିଣ ଆଚମନ ଦେବ | । ଭୋଜନସମାପ୍ତି ଚିନ୍ତିବ | ।। | ୧୨୬ |
| | ସେ ପୂଜାଶେଷନୈବେଦ୍ୟକୁ | । ଦେଇଣ ବିଷ୍ୱକସେନଙ୍କୁ | ।। | ୧୨୭ |
| | ଅନୁଜ୍ଞା ଘେନିଣ ତାଙ୍କର | । ପଛେ ଭୁଞ୍ଜିବ ସ୍ୱୟଂ ନର | ।। | ୧୨୮ |
| | ତାମ୍ବୂଳ ଆଦି ଯେ ସୁବାସ | । ଦେଇ ସେ ଦିବ୍ୟ ମୁଖବାସ | ।। | ୧୨୯ |
| | ତଦନ୍ତେ ଘେନି ପୁଷ୍ପାଞ୍ଜଳି | । ପୁଣି ପୂଜିବ ବନମାଳୀ | ।। | ୧୩୦ |
| ୪୪ | ମୋତେ ସେ କରିବ ଗାୟନ | । ଗୁଣନ୍ତେ କରିବ ନର୍ତ୍ତନ | ।। | ୧୩୧ |
| | ମୋ' କର୍ମ କରି ଆବିର୍ଭାବ | । ମୋ' କଥା ଶୁଣି ଶୁଣାଇବ | ।। | ୧୩୨ |
| | ଏରୂପେ ମୁହୂର୍ତ୍ତେ ମାତ୍ରକ | । କ୍ଷଣିକ[୪] ହେବ ସେ ପୂଜକ | ।। | ୧୩୩ |
| ୪୫ | ଯେ ଉଚ୍ଚ ନୀଚ ସ୍ତବମାନ | । ଯେ ସ୍ତୋତ୍ର ପୁରାଣପଠନ | ।। | ୧୩୪ |
| | ପ୍ରାକୃତ ଯେ ଅବା ସ୍ତବନ | । ତେଣେ ମୋତେ 'ହେ ଭଗବାନ | ।। | ୧୩୫ |
| | ନିତ୍ୟେ ପ୍ରସନ୍ନ ହୁଅ ସ୍ୱୟେଂ' | । ବୋଲି ହୋଇବ ଦଣ୍ଡପ୍ରାୟେ | ।। | ୧୩୬ |
| ୪୬ | [୫]ବେନି ବାହୁରେ ପରସ୍ପର | । ମୋ' ପାଦ ଧରି ଦେଇ ଶିର | ।। | ୧୩୭ |

---

୧. ଆଘାର ଯାଗବିଶେଷର ନାମ । ଆଘାର ମନ୍ତ୍ର - (୧) 'ପ୍ରଜାପତୟେ ସ୍ୱାହା' । (୨) 'ଇନ୍ଦ୍ରାୟ ସ୍ୱାହା' । ଉତ୍ତର-ଦକ୍ଷିଣ ପରିଧି ସଂଧିଠାରୁ ଆରମ୍ଭ କରି ପରିଧିର ଅନ୍ତ ପର୍ଯ୍ୟନ୍ତ ଅଗ୍ନିକୁ ଆଧାନ କରିବ । ଆଜ୍ୟଭାଗମନ୍ତ୍ର - 'ଅଗ୍ନୟେ ସ୍ୱାହା', 'ସୋମାୟ ସ୍ୱାହା' ।

୨. ଋକ୍‌ମନ୍ତ୍ର । ୩. 'ଓଁ ନମୋ ନାରାୟଣାୟ' ଇତି ।

୪. ବ୍ୟଗ୍ରତା ପରିତ୍ୟାଗ କରି ଅବସର ପାଇଥିବା ବ୍ୟକ୍ତି ।

୫. ଦକ୍ଷିଣ ଓ ବାମ ବାହୁଦ୍ୱାରା ମୋର ଦକ୍ଷିଣ ଓ ବାମ ପାଦକୁ ଗ୍ରହଣ କରି ଅଥବା ପୃଷ୍ଠଭାଗରେ ଦୁଇବାହୁକୁ ପରସ୍ପର ନିବଦ୍ଧ କରି ଅପରାଧୀ ଭଳି ପ୍ରଣାମ କରିବ ।

ମୃତ୍ୟୁ ଯହିଁରେ ଗ୍ରହପ୍ରାୟ । ସେ ଭବସିନ୍ଧୁ କରି ଭୟ ।। ୧୩୮
ପ୍ରପନ୍ନ ହେଉଛି ସଂତତେ । ହେ ଈଶ ରକ୍ଷା କର ମୋତେ ।। ୧୩୯
୪୭ ଏରୂପେ କରିଣ ପ୍ରାର୍ଥନ । ମୋ' ଦତ୍ତ ସେ ନିର୍ମାଲ୍ୟମାନ ।। ୧୪୦
ଆଦର କରି ଶିରେ ଧରି । ଯେବେ ବିସର୍ଜନ ବିଚାରି ।। ୧୪୧
ତେବେ ପ୍ରତିମାସ୍ଥିତ ଜ୍ୟୋତି । ହୃତ୍‌ପଦ୍ମେ ରଖିବ ଝଟିତି ।। ୧୪୨
୪୮ ଅଷ୍ଟପ୍ରକାର ପ୍ରତିମାରେ । ଯା' ଶ୍ରଦ୍ଧା ହୋଇବ ଯହିଁରେ ।। ୧୪୩
ତହିଁରେ ମୋତେ ସେ ପୂଜିବ । ଯେଉଁ ହେତୁରୁ ହେ ଉଦ୍ଧବ ।। ୧୪୪
ସମସ୍ତ ଭୂତେ ଆତ୍ମା ହୋଇ । ମୁଁ ସର୍ବ ଆତ୍ମା ଅଛି ରହି ।। ୧୪୫
୪୯ କ୍ରିୟାଯୋଗମାର୍ଗେ ଏମନ୍ତେ । ବୈଦିକ ତାନ୍ତ୍ରିକରେ ମୋତେ ।। ୧୪୬
ଯେ ପୂଜେ ଇହପରଲୋକେ । ସିଦ୍ଧିକି ଲଭଇ ସେ ଏକେ ।। ୧୪୭
ଯା' ମନେ ଅଭୀଷ୍ଟ କରଇ । ତାହା ସେ ମୋ'ଠାରୁ ଲଭଇ ।। ୧୪୮
୫୦ ପ୍ରତିମା ପ୍ରତିଷ୍ଠା କରିବ । ଦୃଢ଼ ମନ୍ଦିର ତୋଳାଇବ ।। ୧୪୯
ସୁରମ୍ୟ କୁସୁମକାନନ । ମୋ' ଅର୍ଥେ କରିବ ସର୍ଜନ ।। ୧୫୦
ପ୍ରତ୍ୟହ ପୂଜା ଯାତ୍ରାମାନ । କରିବ ଉତ୍ସବାଦି ଆନ ।। ୧୫୧
୫୧ ଯେ ମହାପର୍ବମାନ ତହିଁ । ପୂଜାଦି ପ୍ରବର୍ତ୍ତିବା ପାଇଁ ।। ୧୫୨
ପ୍ରତ୍ୟହ ପୂଜା ଅର୍ଥେ ମୋର । ଭୂମି ଆପଣ ଦିବ୍ୟ ପୁର ।। ୧୫୩
ଗ୍ରାମମାନଙ୍କୁ ଯେ ଦିଅଇ । ମୋ' ସମ ଐଶ୍ୱର୍ଯ୍ୟ ସେ ପାଇ ।। ୧୫୪
୫୨ ମୋତେ ଯେ ପ୍ରତିଷ୍ଠା କରଇ । ସେ ମହାରାଜତ୍ୱ ଲଭଇ ।। ୧୫୫
କରନ୍ତେ ମୋର ମନ୍ଦିରକୁ । ଲଭଇ ଭୁବନତ୍ରୟକୁ ।। ୧୫୬
ବ୍ରହ୍ମଲୋକ ପାଇ ପୂଜାରେ । ମୋ ସମ ହୋଏ ଏ ତିନିରେ ।। ୧୫୭
୫୩ ଅପେକ୍ଷା ନ କରି କାହିଁରେ । ପୂଜଇ ଯେ ଭକ୍ତିଯୋଗରେ ।। ୧୫୮
ମୋତେ ସେ ଲଭଇ ଆବର । ଏମନ୍ତରୂପେ ଯେଉଁ ନର ।। ୧୫୯
ମୋତେ ହେଁ ନିତ୍ୟରେ ପୂଜଇ । ସେ ଭକ୍ତିଯୋଗକୁ ଲଭଇ ।। ୧୬୦
୫୪ ଯାହାକୁ ନିଜେ ଦେଇଥାଇ । ଯା'କୁ ବା ପର ଥାଏ ଦେଇ ।। ୧୬୧
ସେ ବୃତ୍ତି ଦେବତା-ବିପ୍ରର । ହରଇ ଯେଉଁ ମୂଢ଼ ନର ।। ୧୬୨
ଅୟୁତେ ଅୟୁତେ ବରଷ । ବିଷ୍ଠା ଭୁଞ୍ଜଇ ସେ ପୁରୁଷ ।। ୧୬୩
୫୫ ଧର୍ମର କର୍ତ୍ତା ଯେଉଁ ଜନ । ତାର ସହାୟ ଯେ ବା ଆନ ।। ୧୬୪
ତହିଁକି ହେତୁ[୧] ଯେଉଁ ପ୍ରାଣୀ । ଯେ ତା' ଆନନ୍ଦ ହୋଏ ଶୁଣି ।। ୧୬୫
ଏ ଚାରି ଲୋକର କେବଳ । ପରଲୋକରେ ହୋଏ ଫଳ ।। ୧୬୬
ଏମାନଙ୍କର ଯେଣୁ ପୁଣ । ସେ କର୍ମେ ଭାଗ ଅଛି ଜାଣ ।। ୧୬୭
ସହାୟ ଆଦିଙ୍କର ପୁଣି । ଅଧିକ ଫଳ ପରିମାଣି ।। ୧୬୮

୧. ପ୍ରୟୋଜକ।

[1]କ୍ରିୟାଯୋଗକୁ ଏ ରୂପରେ । ଯେ ଉଦ୍ଧବଙ୍କ ଅଗ୍ରତରେ ॥ ୧୬୯
କହିଲେ ସେ କୃଷ୍ଣଚରଣ । ଚିନ୍ତା କରିଣ ପୁଣ ପୁଣ ॥ ୧୭୦
ଭଣଇଁ ବିପ୍ର ଦୀନବନ୍ଧୁ । ମୋତେ ଉଦ୍ଧର କୃପାସିନ୍ଧୁ ॥ ୧୭୧

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଅର୍ଚ୍ଚନବିଧ୍ୟୁପଦେଶୋ ନାମ ସପ୍ତବିଂଶୋଽଧ୍ୟାୟଃ ॥

## ଅଷ୍ଟାବିଂଶ ଅଧ୍ୟାୟ

ଅଷ୍ଟାବିଂଶେ ତୁ ଯଃ ପୂର୍ବଂ ବିସ୍ତରେଣୋପବର୍ଣ୍ଣିତଃ ।
ଜ୍ଞାନଯୋଗଃ ପୁନଶ୍ଚାସୌ ସମାହୃତ୍ୟ ନିରୂପ୍ୟତେ ॥ ୧

ଶ୍ରୀଭଗବାନୁବାଚ

୧ କହନ୍ତି ପୁଣ ଭଗବାନ । ଉଦ୍ଧବ ଶୁଣ ମୋ' ବଚନ ॥ ୧
ପରର ଯେ କର୍ମ ସ୍ୱଭାବ । ତା' ନିନ୍ଦା ସ୍ତୁତି ନ କରିବ ॥ ୨
ପ୍ରକୃତି-ପୁରୁଷରେ ଭବ । ଏକାତ୍ମ କରିଣ ଦେଖିବ ॥ ୩
୨ ଯେ ପରସ୍ୱଭାବକର୍ମକୁ । କରଇ ନିନ୍ଦା-ପ୍ରଶଂସାକୁ ॥ ୪
ଯେ ମିଥ୍ୟାଭୂତ ଦ୍ୱୈତ ତହିଁ । ଅଭିନିବେଶସକାଶୁ ହିଁ ॥ ୫
ବେଗେ ସେ ସ୍ୱାର୍ଥରୁ ଟଳଇ । ଯାହାକୁ ଜ୍ଞାନନିଷ୍ଠା କହି ॥ ୬
୩ ରାଜସ ଅହଂକାରେ ସ୍ୱୟେଂ । ନିଦ୍ରିତ ହୁଅନ୍ତେ ଇନ୍ଦ୍ରିୟେ ॥ ୭
ପିଣ୍ଡସ୍ଥ ଜୀବ ଆତ୍ମା ତହିଁ । ସ୍ୱପ୍ନାଖ୍ୟ ମାୟାକୁ ଲଭଇ ॥ ୮
ମନଟି ହୁଅନ୍ତେ ବିଲୀନ । ନଷ୍ଟ ହୁଅନ୍ତେ ତା' ଚେତନ ॥ ୯
ମୃତ୍ୟୁସମାନ ଯେ ସୁଷୁପ୍ତି । ତାକୁ ବା ଲଭଇ ଝଟିତି ॥ ୧୦
ସେରୂପେ ଦ୍ୱୈତାଭିନିବେଶ । ସକାଶୁଁ ଲଭଇ ପୁରୁଷ ॥ ୧୧
[2]ବିକ୍ଷେପ-ଲୟକୁ ଆବର । ଉଦ୍ଧବ ଏ ବାଣୀ ଶାସ୍ତ୍ରର ॥ ୧୨
୪ ଦ୍ୱୈତ ଯେ ଅବସ୍ତୁ ଅଟଇ । ତା' ଶୁଭ ଅଶୁଭ କି ହୋଇ ॥ ୧୩
ଯେ ଦୃଶ୍ୟ ଚକ୍ଷୁରାଦିଙ୍କରେ । ଯେ ଧ୍ୟାତ ହୋଏ ମାନସରେ ॥ ୧୪
ବଚନେ ଉଦିତ ବା ଯେହି । ସମସ୍ତ ମିଥ୍ୟା ଏ ଅଟଇ ॥ ୧୫
୫ ଯେ ପ୍ରତିବିମ୍ବ ପ୍ରତିଧ୍ୱନି । [3]ଶୁକ୍ତି-ରଜତ ଆଦି ଘେନି ॥ ୧୬

---

୧. ପୟଃପତ୍ରାଦିମାତ୍ରେଣ ପୂଜିତୋ ଯଃ ପରଂ ପଦମ୍ ।
ପ୍ରାଗେବ ଦିଶତି ପ୍ରୀତଃ ସ କୃଷ୍ଣଃ ଶରଣଂ ମମ ॥ (ସ୍ୱାମୀ)
୨. ବିକ୍ଷେପ = ଦେହକୁ ଆତ୍ମା ଜ୍ଞାନ କରିବା; ଲୟ = ସ୍ୱରୂପଭ୍ରଂଶ ।
୩. ଶାମୁକାକୁ ରୂପା ମନେ କରିବା ଭଳି ଆଭାସ ।

| | | | | |
|---|---|---|---|---|
| | ଅସତ୍ୟ ହେଲେ ହେଁ ଏମାନେ । | କାର୍ଯ୍ୟ କରନ୍ତି ଏ ଭୁବନେ | ।। | ୧୭ |
| | ଦେହାଦି ଭାବମାନ ଯେତେ । | ସେମାନେ ମୃତ୍ୟୁ ପରିଯନ୍ତେ | ।। | ୧୮ |
| | ଏହି ରୂପରେ ହେ ଉଦ୍ଧବ । | ଭୟକୁ କରନ୍ତି ସମ୍ଭବ | ।। | ୧୯ |
| ୬ | ପ୍ରତ୍ୟକ୍ଷ ପରୋକ୍ଷ ସକଳ । | ବସ୍ତୁଟି ଆତ୍ମା ହିଁ କେବଳ | ।। | ୨୦ |
| | ସେ ପ୍ରଭୁ ଏ ବିଶ୍ୱ ସର୍ଜଇ । | ସର୍ଜିତ ଦ୍ରବ୍ୟ ସେ ଅଟଇ | ।। | ୨୧ |
| | ସେ ବିଶ୍ୱ ଆତ୍ମା ହିଁ ରଖଇ । | ରକ୍ଷିତ ଦ୍ରବ୍ୟ ପୁଣ ସେହି | ।। | ୨୨ |
| | ଆତ୍ମାଟି ଈଶ୍ୱର ହରଇ । | ହରିବା ଦ୍ରବ୍ୟ ସେ ଅଟଇ | ।। | ୨୩ |
| ୭ | ତେଣୁ ଆତ୍ମାରୁ ଭିନ୍ନ ହୋଇ । | କିଛି ହିଁ ଭାବ ଆଉ ନାହିଁ | ।। | ୨୪ |
| | ଆଧ୍ୟାତ୍ମିକାଦି ଭେଦେ ଯେହି । | ତ୍ରିବିଧ ପ୍ରତୀତି ଘଟଇ | ।। | ୨୫ |
| | ସେ ହୋଏ ଆତ୍ମାରେ ନିର୍ମୂଳ । | ଅନିର୍ବଚନୀୟ କେବଳ | ।। | ୨୬ |
| | ଏ ବିଶ୍ୱ ମାୟାରେ ରଚିତ । | ଜାଣ ତ୍ରିବିଧ ଗୁଣଯୁତ | ।। | ୨୭ |
| ୮ | ଜ୍ଞାନେ ବିଜ୍ଞାନେ ନିଷ୍ଠାଭାବ । | ଜାଣଇଁ ଯେବଣ ମାନବ | ।। | ୨୮ |
| | ନ କରି ନିନ୍ଦା ସ୍ତୁତି ଦ୍ୱୟ । | ଲୋକ ଭ୍ରମଇଁ ସୂର୍ଯ୍ୟପ୍ରାୟ | ।। | ୨୯ |
| ୯ | [1]ପ୍ରତ୍ୟକ୍ଷ ଅନୁମାନ ବେନି । | ନିଗମ ଆତ୍ମଜ୍ଞାନ ଘେନି | ।। | ୩୦ |
| | ଦ୍ୱୈତକୁ ଅସତ୍ୟ ଜାଣିଣ । | ଭ୍ରମିବ ନିଃସଙ୍ଗ ହୋଇଣ | ।। | ୩୧ |

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧୦ | ଉଦ୍ଧବ କହୁଛନ୍ତି ପୁଣ । | ହେ କୃଷ୍ଣ ଏ ପ୍ରଶ୍ନକୁ ଶୁଣ | ।। | ୩୨ |
| | ଜଡ଼ ଅଜଡ଼ ଯେ ଅଟଇ । | ଯେ ଦ୍ରଷ୍ଟା ଦୃଶ୍ୟ ହୋଇ ଦୁଇ | ।। | ୩୩ |
| | ସେ ପରମାତ୍ମାର ଦେହର । | ଘଟିବ ନାହିଁ ଏ ସଂସାର | ।। | ୩୪ |
| | ପ୍ରତ୍ୟକ୍ଷେ ଅଛି ତ ଏ ବିଶ୍ୱ । | ଏ ହେବ କାହାର ହେ ଈଶ | ।। | ୩୫ |
| ୧୧ | ଆତ୍ମା ଯେ ଅବ୍ୟୟ ନିର୍ଗୁଣ । | ସ୍ୱୟଂ ପ୍ରକାଶ ଶୁଦ୍ଧ ପୁଣ | ।। | ୩୬ |
| | ଆବରଣ ହିଁ ନାହିଁ ତାର । | ଜଡ଼ ଅଟଇ ଏ ଶରୀର | ।। | ୩୭ |
| | ଯେହ୍ନେ ପ୍ରକାଶ୍ୟ ଦାରୁ ଏକ । | ଅଗ୍ନି ଅଟଇ ପ୍ରକାଶକ | ।। | ୩୮ |
| | ଆତ୍ମା-ଦେହର ଏ ପ୍ରକାର । | ଏ ସୃଷ୍ଟି ନୋହେ ଏ କାହାର | ।। | ୩୯ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୧୨ | ଦେହ ଇନ୍ଦ୍ରିୟଗଣ ପ୍ରାଣ । | ସଙ୍ଗତେ ସେ ଆତ୍ମାର ପୁଣ | ।। | ୪୦ |
| | ସମ୍ବନ୍ଧ ହୁଅଇ ଯାବତ । | ଅଜ୍ଞାନ ଲୋକର ତାବତ | ।। | ୪୧ |
| | ମିଥ୍ୟା ହେଲେ ହେଁ ସୃଷ୍ଟି ସ୍ୱୟେଂ । | ସଫଳ ପ୍ରାୟ ପ୍ରତ୍ୟେ ହୋଏ | ।। | ୪୨ |
| ୧୩ | ଆହେ ଉଦ୍ଧବ ଏ ଆତ୍ମାର । | ବିଷୟଧ୍ୟାନେ ନିରନ୍ତର | ।। | ୪୩ |

୧. ପ୍ରତ୍ୟକ୍ଷଦ୍ୱାରା ଘଟାଦିକୁ, ଅନୁମାନଦ୍ୱାରା ଦୃଶ୍ୟ ପୃଥିବୀ ଆଦିକୁ, ବେଦବାକ୍ୟଦ୍ୱାରା ଅପ୍ରତ୍ୟକ୍ଷ ଆକାଶ ଆଦିକୁ ଏବଂ ଆତ୍ମଜ୍ଞାନଦ୍ୱାରା ସକଳ ଦୃଶ୍ୟ ପ୍ରପଞ୍ଚକୁ ଜନ୍ମନାଶଶୀଳ ଓ ଅସତ୍ ଜାଣି ଅନାସକ୍ତ ହୋଇ ବିଚରଣ କରିବ ।

ଅର୍ଥ ନ ହୋନ୍ତେ ବିଦ୍ୟମାନ । ସଂସାର ନୋହେ ନିବର୍ତ୍ତନ[1] ॥
ଅନର୍ଥ-ଆଗମ ଯେସନ । ସ୍ୱପ୍ନେ ନୁହଇ ନିବର୍ତ୍ତନ ॥
୧୪ ଯେସନେ ସୁପ୍ତକୁ ସ୍ୱପ୍ନ ହିଁ । ବହୁତ ଅନର୍ଥ ଦିଅଇ ॥
ସେ ପୁଣ ଜାଗ୍ରତ ଲୋକକୁ । ସମର୍ଥ ନୋହେ ମୋହିବାକୁ ॥
୧୫ ଶୋକ ହରଷ କ୍ରୋଧ ଭୟ । ଲୋଭ ବିମୋହ ସ୍ପୃହାଦୟ ॥
ଯେ ଅବା ଜନ୍ମ ମୃତ୍ୟୁ ଦୁଇ । [2]ଅହଂକାରର ଏ ହୁଅଇ ॥
ଆତ୍ମାର ଏ ଆଦି ସମସ୍ତ । କେବେ ହେଁ ନୁହଇ କଳ୍ପିତ ॥
୧୬ ଦେହ ଇନ୍ଦ୍ରିୟ ପ୍ରାଣ ମନ । ଏଥି ଯାହାର ଅଭିମାନ ॥
ସେ ଆତ୍ମା ପୁଣ ତହୁଁ ଭିନ୍ନ । ଜୀବ ତହିଁରେ ବିଦ୍ୟମାନ ॥
ଈଶ୍ୱରାଧୀନ ସେ ଅଟଇ । ସଂସାରେ ସର୍ବତ୍ର ଧାମଇଁ ॥
ତା' ମୂର୍ତ୍ତି ଗୁଣକର୍ମମୟ । ସୂତ୍ରାଦି ଯେଉଁ ଶବ୍ଦଚୟ ॥
ତଦ୍ୱାରେ ବହୁତ ପ୍ରକାରେ । ବୋଲାଏ ସୂକ୍ଷ୍ମ ଉପାଧିରେ ॥
୧୭ ଅହଂକାର ମୂଳରହିତ । ବହୁ ରୂପରେ[3] ପ୍ରକାଶିତ ॥
ମନ ବଚନ ଦେହ ପ୍ରାଣ । କର୍ମରୂପରେ ଏ[4] ନିର୍ମାଣ ॥
ଗୁରୁଙ୍କ ଉପାସନାଦ୍ୱାରେ । ତୀକ୍ଷଣ ଜ୍ଞାନ-ଖଡ଼୍‌ଗରେ ॥
ତାହାକୁ[5] କାଟି ହୋଏ ତୁନି । ଭ୍ରମଇଁ ତୃଷ୍ଣା ଛାଡ଼ି ମୁନି ॥
୧୮ ବିବେକ ବୋଲାଇଟି ଜ୍ଞାନ । ନିଗମ ତପ ଅନୁମାନ ॥
ପ୍ରତ୍ୟକ୍ଷ ଉପଦେଶ ଦୁଇ । ଏ ଜ୍ଞାନସାଧନ ଅଟଇ ॥
ଜଗତ-ଆଦ୍ୟରେ ପ୍ରାନ୍ତରେ । ଯେ ଅଛି ସେହିଟି ମଧ୍ୟରେ ॥
କାଳ କାରଣ ଯଉଁ ଦୁଇ । ଥାଆନ୍ତି ସତ୍ୟ ଅଟେ ସେହି ॥
୧୯ ଯେସନେ କୁଣ୍ଡଳାଦି ହୋଇ । ଘଟିତ ଯେ ସୁବର୍ଣ୍ଣ ଥାଇ ॥
ପୁଣି ସେ ସର୍ବ ସୁବର୍ଣ୍ଣର । ଘଟନାପୂର୍ବରୁ ଆବର ॥
ଯେ ଥାଇ ତାଙ୍କ[6] ବିନାଶରେ । ଯେ ପୁଣ ରହଇ ପ୍ରାନ୍ତରେ ॥
କ୍ରୟବିକ୍ରୟନିମିତ୍ତରେ । କଟକ କୁଣ୍ଡଳ ନାମରେ ॥
ମଧ୍ୟଦଶାରେ ସେହି ପୁଣ । ଥାଇଟି ହେ ଉଦ୍ଧବ ଜାଣ ॥
ଏ ସୃଷ୍ଟି ଆଦ୍ୟରେ ପ୍ରାନ୍ତରେ । ମଧ୍ୟେ ମୁଁ ଥାଇ ସେରୂପରେ ॥
୨୦ ଆହେ ଉଦ୍ଧବ ମନ ପୁଣ । ଯେ ଗୁଣତ୍ରୟ ତା' କାରଣ ॥
କାର୍ଯ୍ୟ-କାରଣ-କର୍ତ୍ତା ରୂପ । ଅଧ୍ୟାତ୍ମ ଆଦି ତିନି ତାପ ॥

---

୧. ନିବର୍ତ୍ତନ = ନିବୃତ୍ତ ହେବା ।
୨. ସୁପ୍ତେଽହମି ନ ଦୃଶ୍ୟନ୍ତେ ସୁଖଦୋଷପ୍ରବୃତ୍ତୟଃ ।
ଅତସ୍ତସ୍ୟୈବ ସଂସାରୋ ନ ମେ ସଂସୃତିସାକ୍ଷିଣଃ ॥
୩. ଦେବତା ଆଦି ଶରୀରରେ । ୪. ଅହଂକାର । ୫. ଅହଂକାରକୁ । ୬. କୁଣ୍ଡଳାଦିର ।

| | | | | |
|---|---|---|---|---|
| | ଏରୂପେ ତ୍ରିବିଧ ଜଗତ | ଅନ୍ୱୟ-ବ୍ୟତିରେକେ[୧] ସ୍ୱତ | ॥ | ୭୨ |
| | [୨]ଯେବଣ ଚତୁର୍ଥ ଦ୍ରବ୍ୟରେ | ପ୍ରକାଶ ହୋଇଛି ନିତ୍ୟରେ | ॥ | ୭୩ |
| | ଜାଣ ସେ ଚତୁର୍ଥ ଦ୍ରବ୍ୟ ହିଁ | କେବଳ ସତ୍ୟଟି ଅଟଇ | ॥ | ୭୪ |
| ୨୧ | ନ ଥାଇ ଯେ ଆଗେ ପଛରେ | ସେ ପୁଣ ନ ଥାଇ ମଧ୍ୟରେ | ॥ | ୭୫ |
| | [୩]କେବଳ ନାମମାତ୍ରେ ଖ୍ୟାତ | ଅନ୍ୟସକାଶରୁ ଯେ ଜାତ | ॥ | ୭୬ |
| | ପ୍ରକାଶ ଆନହେତୁ ଯେହି | ତାର କାରଣ ସେ ଅଟଇ | ॥ | ୭୭ |
| | ଆହେ ଉଦ୍ଧବ ମୋର ମତି | ଏ ରୂପେ ହେଉଛି ଉତ୍‌ପତ୍ତି | ॥ | ୭୮ |
| ୨୨ | ଯେ ରଜୋଗୁଣରେ ନିର୍ମିତ | ବିକାରସମୂହ-ରଚିତ | ॥ | ୭୯ |
| | ସେ ସୃଷ୍ଟି ହେଲେ ଅପ୍ରକାଶ | ବ୍ରହ୍ମରେ ହୋଇଛି ପ୍ରକାଶ | ॥ | ୮୦ |
| | ବ୍ରହ୍ମଟି ସ୍ୱୟେଂ ପ୍ରକାଶଇ | ସମସ୍ତ ପ୍ରକାଶ କରଇ | ॥ | ୮୧ |
| | ଏଣୁ ଇନ୍ଦ୍ରିୟ ଅର୍ଥମାନ | ଦେବତା ମହାଭୂତ ଆନ | ॥ | ୮୨ |
| | ଏ ରୂପେ ବିଚିତ୍ରିତ ହୋଇ | ଏକା ସେ ବ୍ରହ୍ମ ଶୋଭା ପାଇ | ॥ | ୮୩ |
| ୨୩ | ଆତ୍ମତ୍ୱ ନାହିଁ ଦେହାଦିରେ | ଏ ବ୍ରହ୍ମବିବେକହେତୁରେ | ॥ | ୮୪ |
| | ବ୍ୟକ୍ତ କରି ଏ କାରଣରୁ | ନିମିତ୍ତ କରି ଦିବ୍ୟଗୁରୁ | ॥ | ୮୫ |
| | ଆତ୍ମସଂଦେହକୁ ଛିଣ୍ଡାଇ | ନିଜ ଆନନ୍ଦେ ତୋଷ ହୋଇ | ॥ | ୮୬ |
| | ସର୍ବବିଷୟୁଁ ହେ ଉଦ୍ଧବ | ନିଃସଙ୍ଗ ହୋଇ ନିବର୍ତ୍ତିବ | ॥ | ୮୭ |
| ୨୪ | ଏ ଦେହ ଆତ୍ମାଟି ନୁହଇ | କେବଳ ପାର୍ଥିବ ଅଟଇ | ॥ | ୮୮ |
| | ଇନ୍ଦ୍ରିୟ ଦେବତା ଯେ ମନ | ପବନ ଜଳ ହୁତାଶନ | ॥ | ୮୯ |
| | ଯେ ଅହଂକାର ଚିତ୍ତ ମତି[୪] | ଶବ୍ଦାଦି ଯେ ଆକାଶ କ୍ଷିତି | ॥ | ୯୦ |
| | ପ୍ରକୃତି ପ୍ରାଣ ଯେତେ କହି | ଅନ୍ନମାତ୍ରରୁ ଆତ୍ମା ନୋହି | ॥ | ୯୧ |
| ୨୫ | ଉତ୍ତମ କରି ଯଉଁ ନର | ମୋ' ରୂପ କରେ ସାକ୍ଷାତ୍‌କାର | ॥ | ୯୨ |
| | ସଂଯତ କଲେହେଁ ନିତ୍ୟରେ | ଗୁଣାତ୍ମ ଇନ୍ଦ୍ରିୟଗଣରେ | ॥ | ୯୩ |
| | ତା'ର ବା ହେବ କେଉଁ ଗୁଣ | ପୁଣି ହିଁ ସ୍ୱଇନ୍ଦ୍ରିୟଗଣ | ॥ | ୯୪ |
| | ତା'ର ହେଲେହେଁ ଅସଂଯତ | ଦୋଷ କି ହେବ ଉପଗତ | ॥ | ୯୫ |
| | ଘନ-ଆଗମ-ବିନାଶେ ହିଁ | ସୂର୍ଯ୍ୟର କି ଅବା ହୁଅଇ | ॥ | ୯୬ |

୧. ତତ୍‌ସତ୍ତ୍ୱେ ତତ୍‌ସତ୍ତ୍ୱମନ୍ୱୟଃ ।
ତଦସତ୍ତ୍ୱେ ତଦସତ୍ତ୍ୱଂ ବ୍ୟତିରେକଃ ॥

୨. ତମେବ ଭାନ୍ତମନୁଭାତି ସର୍ବଂ
ତସ୍ୟ ଭାସା ସର୍ବମିଦଂ ବିଭାତି ।
ଚକ୍ଷୁଷଶ୍ଚକ୍ଷୁରୁତ ଶ୍ରୋତ୍ରସ୍ୟ ଶ୍ରୋତ୍ରଂ
ମନସୋ ଯେ ମନୋ ବିଦୁଃ । (ଶ୍ରୁତିଃ)

୩. ''ବାଚାରମ୍ଭଣଂ ବିକାରୋ ନାମଧେୟଂ
ମୃତ୍ତିକା ଇତ୍ୟେବ ସତ୍ୟମ୍'' (ଶ୍ରୁତିଃ)
''ସର୍ବଂ ଖଳ୍ୱିଦଂ ବ୍ରହ୍ମ'' (ଶ୍ରୁତିଃ)

୪. ବୁଦ୍ଧି ।

୨୬ ବାତ-ଅନଳ-ଜଳ-କ୍ଷିତି । ଏମାନଙ୍କର ଗୁଣେ ନିତି ॥
ଗତ ଆଗତ ହୋଏ ପୁଣ । ଯେ ଅବା ସର୍ବରତୁଗୁଣ ॥
ଏମାନଙ୍କରେଟି ଯେସନ । ଆସକ୍ତ ନୁହଇ ଗଗନ ॥
ସେରୂପେ ସଂସାରହେତୁରେ । ସତ୍ତ୍ୱ-ରଜ-ତମ ମଳରେ ॥
ବ୍ରହ୍ମଟି ନୁହଇ ଆସକ୍ତ । ଯେ ଅହଂକାରୁ ଭିନ୍ନ ନିତ୍ୟ ॥
୨୭ ତଥାପି ମାୟାବିରଚିତ । ବିଷୟମାନଙ୍କେ ତାବତ ॥
ସଙ୍ଗକୁ ନ କରିବ ନର । ସୁଦୃଢ଼ ଭକ୍ତିରେ ମୋହର ॥
ଯାବତ ରଜୋଗୁଣମୟ । ତୁଟିବ ସ୍ୱମନ-କଷାୟ[1] ॥
୨୮ ଉତ୍ତମ କରି ରୋଗମାନ । ଚିକିତ୍ସା ନ କଲେ ଯେସନ ॥
ଲୋକକୁ ପୁଣ ପୁଣ ହୋଇ । ଜନ୍ମିଣ ପୀଡ଼ାକୁ କରଇ ॥
ତେମନ୍ତେ ଦଗଧ ନ ହୋଇ । ରାଗାଦି କର୍ମ ଅଛି ଯହିଁ ॥
ପୁତ୍ରକଳତ୍ର ଆଦିଙ୍କରେ । ସଂଯୁତ ଅଟେ ଯେ ନିତ୍ୟରେ ॥
ଏମନ୍ତ ମନ ଯେ ଅଟଇ । ସେ କୁଯୋଗୀକି ବିନାଶଇ ॥
୨୯ ଯେ ଦେବମାନଙ୍କେ ପ୍ରେଷିତ । ବନ୍ଧୁ-ଶିଷ୍ୟାଦିରୂପେ ଜାତ ॥
କୁଯୋଗିମାନେ ସେ ବିଘ୍ନରେ । ଭ୍ରଷ୍ଟ ହେଲେହେଁ ଏ ସଂସାରେ ॥
ପ୍ରାକ୍ତନ ଅଭ୍ୟାସବଳରେ । ପୁଣି ସେମାନେ ଜନ୍ମାନ୍ତରେ ॥
ଯୋଗମାର୍ଗକୁ ହିଁ ଲଭନ୍ତି । କର୍ମତନ୍ତ୍ରକୁ ନ କରନ୍ତି ॥
୩୦ କେହୁଣି ସଂସ୍କାରବଶରେ । ପ୍ରେଷିତ ହୋଇ ଅଜ୍ଞାନରେ ॥
ଦେହନିପାତପରିଯନ୍ତେ । ଭୋଜନ କର୍ମାଦି କରନ୍ତେ ॥
ସେ କର୍ମେ ଦେହ ପୁଷ୍ଟ କରି । ଭ୍ରମନ୍ତି ଜନ୍ମ ଲଭି ମରି ॥
ଦେହେ ଥିଲେହେଁ ବିଜ୍ଞଜନ । ସ୍ୱସୁଖ-ଅନୁଭବେ ପୁଣ ॥
ବିଷୟତୃଷ୍ଣା ପରିହରେ । ବିକାର ନ ଲଭେ କର୍ମରେ ॥
୩୧ ରହନ୍ତେ ବସନ୍ତେ ଚଳନ୍ତେ । ଶୁଅନ୍ତେ ଅଥବା ଭୁଞ୍ଜନ୍ତେ ॥
କରନ୍ତେ ମୂତ୍ର ବିସର୍ଜନ । ସ୍ୱଭାବପ୍ରାପ୍ତ କର୍ମ ଆନ[2] ॥
ନ ଜାଣେ ନିଜ ଦେହକୁ ହିଁ । ଆତ୍ମାରେ ନିଜ ମନ ଥୋଇ ॥
୩୨ ଅସତ ଇନ୍ଦ୍ରିୟାର୍ଥମାନ । ଯେବେ ଦେଖଇ ଜ୍ଞାନୀ ଜନ ॥
ନାନାତ୍ୱ-ମିଥ୍ୟା-ଅନୁମାନେ । ବିରୁଦ୍ଧ ହୁଅନ୍ତି ସେମାନେ ॥
ଆତ୍ମାରୁ ଅନ୍ୟ କରି କିଛି । ପଦାର୍ଥ ନ ଦେଖଇ ବାଛି ॥
ଯେହ୍ନେ ନିଦ୍ରାରୁ ଉଠି ଜନ । ଦେଖିଥାଇ ଯଉଁ ସ୍ୱପନ ॥
କରନ୍ତେ ତାହା ଅନୁଧ୍ୟାତ । ସ୍ୱୟେଂ ସେ ହୋଏ ଅନ୍ତର୍ହିତ ॥
୩୩ ବିଚିତ୍ର ଯେ ଗୁଣକର୍ମରେ । ଏମନ୍ତ ଅଜ୍ଞାନ ଆତ୍ମାରେ ॥

---

୧. ବିଷୟବାସନା । ୨. ଦର୍ଶନ ସ୍ପର୍ଶନ ଆଦି ।

| | | | |
|---|---|---|---|
| | ପୂର୍ବରୁ ଥାଇ ହେ ଉଦ୍ଧବ । | କରନ୍ତେ ବିବେକ-ଅଭାବ | ।। ୧୨୮ |
| | ଜ୍ଞାନେ ପୁଣି ସେ ଅଜ୍ଞାନ ହିଁ । | ତାହାର ଛାଏଁ ନିବର୍ତ୍ତଇ | ।। ୧୨୯ |
| | ଆତ୍ମାର କେଉଁରୂପେ ପୁଣ । | ନୁହଇ ତ୍ୟାଗ ବା ଗ୍ରହଣ | ।। ୧୩୦ |
| ୩୪ | ଯେସନେ ଉଦୟ ସୂର୍ଯ୍ୟର । | ପ୍ରାଣିଙ୍କ ଚକ୍ଷୁମାନଙ୍କର | ।। ୧୩୧ |
| | ତମକୁ ପକାଏ ସଂହାରି । | ଘଟାଦି ନ ପାରେ ତା' କରି | ।। ୧୩୨ |
| | ଏରୂପେ ନିପୁଣ ଶୋଭନ । | ଯେ ଅଟେ ମୋର ଆତ୍ମଜ୍ଞାନ | ।। ୧୩୩ |
| | ପୁରୁଷ-ବୁଦ୍ଧି-ଅଜ୍ଞାନକୁ । | ତାହା କରଇ ବିନାଶକୁ | ।। ୧୩୪ |
| ୩୫ | ଏ ଆତ୍ମା ଅଜ ସ୍ୱୟଂଜ୍ୟୋତି । | ପୁଣ ସକଳ-ଅନୁଭୂତି | ।। ୧୩୫ |
| | ମହାନୁଭୂତି ଅପ୍ରମେୟ । | ଆବର ଏକ ଅଦ୍ୱିତୀୟ | ।। ୧୩୬ |
| | [1]ବଚନ ହୁଅନ୍ତେ ନିବୃତ୍ତ । | [2]ଯେଣେ ହୋଇଥାଇ ପ୍ରେଷିତ | ।। ୧୩୭ |
| | ସମସ୍ତ ପ୍ରାଣ ପ୍ରାଣିଙ୍କର । | ଯେଣେ ଚରନ୍ତିଟି ଆବର | ।। ୧୩୮ |
| ୩୬ | [3]ଅଭିନ୍ନ ଆତ୍ମାରେ ଯା' ନିତି । | ଭେଦ ହୁଅଇ ଉତପତି | ।। ୧୩୯ |
| | ଏହିଟି ଭ୍ରମ ସ୍ୱମନର । | ଆତ୍ମା ବ୍ୟତୀତ ସେ ଭେଦର | ।। ୧୪୦ |
| | ଆଶ୍ରୟ ଆଉ କେହି ନାହିଁ । | ଉଦ୍ଧବ ଘେନ ମନେ ତୁହି | ।। ୧୪୧ |
| | ଯେସନେ ରଜତଭ୍ରମର । | ଶୁକ୍ତି ବିନା ନାହିଁ ଆଧାର | ।। ୧୪୨ |
| ୩୭ | ନାମ-ରୂପରେ ଯେ ଲକ୍ଷିତ । | ପଞ୍ଚଭୂତାତ୍ମକ ଜଗତ | ।। ୧୪୩ |
| | ବାଧିତ ନୋହେ ସେ ସଂସାର । | ପଣ୍ଡିତ-ଅଭିମାନୀଙ୍କର | ।। ୧୪୪ |
| | ବ୍ୟର୍ଥ ଅର୍ଥରେ ହୋଏ ନିତି । | ଏ ଅର୍ଥବାଦ ଉତପତି | ।। ୧୪୫ |
| ୩୮ | ଯାହାର ଯୋଗ ସିଦ୍ଧ ନୋହି । | ଯୋଗେ ନିଯୁକ୍ତ ହୋଇଥାଇ | ।। ୧୪୬ |
| | ସେ ଯୋଗିଜନଦେହେ ସ୍ୱତ । | ରୋଗାଦି ହୁଅନ୍ତେ ସଂଭୂତ | ।। ୧୪୭ |
| | ତେଣେ ସେ[4] ହୁଅଇ ବିହତ । | ଏ ବିଧି ଅଟଇ ବିହିତ | ।। ୧୪୮ |
| ୩୯ | କେହୁଣି ରୋଗକୁ ନାଶିବ । | [5]ଯୋଗଧାରଣେ ହେ ଉଦ୍ଧବ | ।। ୧୪୯ |

---

୧. "ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।"

୨. କେନେଷିତଂ ପତତି ପ୍ରେଷିତଂ ମନଃ
କେନ ପ୍ରାଣଃ ପ୍ରଥମଃ ପ୍ରୈତି ଯୁକ୍ତଃ ।
କେନେଷିତାଂ ବାଚମିମାଂ ବଦନ୍ତି
ଚକ୍ଷୁଃ ଶ୍ରୋତ୍ରଂ କ ଉ ଦେବୋ ଯୁନକ୍ତି ।।
ଶ୍ରୋତ୍ରସ୍ୟାସ୍ୟ ଶ୍ରୋତ୍ରଂ ଯନ୍ମନସୋ ମନୋ ଯଦ୍‌ ବାଚୋ ହ ବାଚଂ ପ୍ରାଣସ୍ୟ ପ୍ରାଣମୁତ ଚକ୍ଷୁଷଶ୍ଚକ୍ଷୁଃ । (ଶ୍ରୁତିଃ) ।

୩. "ନେହ ନାନାସ୍ତି କିଂଚନ" "ଇନ୍ଦ୍ରୋ ମାୟାଭିଃ ପୁରୁରୂପ ଈୟତେ । ଯୁକ୍ତା ହ୍ୟସ୍ୟ ହରୟଃ ଶତା ଦଶ" (ଶ୍ରୁତିଃ) ।

୪. ଦେହ ।

୫. ସୋମସୂର୍ଯ୍ୟାଦି ଧାରଣାଦ୍ୱାରା ସନ୍ତାପ ଓ ଶୈତ୍ୟ ଆଦିକୁ ନାଶିବ ।

| | | | | |
|---|---|---|---|---|
| | ଧାରଣାନ୍ୱିତ ଆସନରେ | ବାତାଦି ରୋଗକୁ ନିର୍ଭରେ | ।। | ୧୫୦ |
| | ଔଷଧ-ତପ-ମନ୍ତ୍ରେ ପୁଣ | [1]କାହାକୁ କରିବ ବାରଣ | ।। | ୧୫୧ |
| ୪୦ | କାହାକୁ[2] ମୋ' ଅନୁଧ୍ୟାନରେ | ନାଶିବ ନାମକୀର୍ତ୍ତନରେ | ।। | ୧୫୨ |
| | ଯୋଗେଶ୍ୱରଙ୍କ ସେବାଦ୍ୱାରେ | ଅଶୁଭପ୍ରଦ[3] ରୋଗ ଧୀରେ | ।। | ୧୫୩ |
| ୪୧ | ନାନାପ୍ରକାର ଉପାୟରେ | ଏ ଦେହକୁ ହିଁ କେହି ନରେ | ।। | ୧୫୪ |
| | ଜରାରୋଗାଦି ନିବାରିଣ | ବୟସେ[4] ସୁସ୍ଥିର କରିଣ | ।। | ୧୫୫ |
| | ଯୋଗମାର୍ଗକୁ ଏଥୁଅନ୍ତେ | କରନ୍ତି ଜ୍ଞାନବିରହିତେ | ।। | ୧୫୬ |
| ୪୨ | କୁଶଳ ପୁଣ ଯଉଁ ନରେ | ସେ ଦେହବିନାଶହେତୁରେ | ।। | ୧୫୭ |
| | ଆଦର ନ କରନ୍ତି ଦେହେ | ଯେଣୁ ସେ ନିରର୍ଥକ ହୋଏ | ।। | ୧୫୮ |
| | ବୃକ୍ଷମାନଙ୍କରୁ ଯେସନ | ଫଳ ହୁଅଇ ବିନାଶନ | ।। | ୧୫୯ |
| | ବୃକ୍ଷପରାଏ ଆତ୍ମା ଥାଇ | ଫଳପରାଏ ଦେହ ଯାଇ | ।। | ୧୬୦ |
| ୪୩ | ଯୋଗ କରନ୍ତେ ଯୋଗୀ ଜନ | ଯେବେ ତା' ଦେହ ରୋଗହୀନ | ।। | ୧୬୧ |
| | ଯୋଗ ଛାଡ଼ିଣ ମୋତେ ଧ୍ୟାୟି | ସେ ଦେହ ସତ୍ୟ ନ ମଣଇ | ।। | ୧୬୨ |
| ୪୪ | ସ୍ୱସୁଖେ ଅନୁଭବ ଯାର | ସ୍ପୃହା ଛାଡ଼ି ସେ ଯୋଗୀ ନର | ।। | ୧୬୩ |
| | ଆଶ୍ରୟ କରି ମୋତେ ପୁଣ | ଏ ଯୋଗଚର୍ଯ୍ୟା ଆଚରଣ | ।। | ୧୬୪ |
| | କଲେ ସେ ବିଘ୍ନମାନଙ୍କରେ | ବିହତ ନୋହେ ଏ ସଂସାରେ | ।। | ୧୬୫ |
| | ଚିନ୍ତି ଶ୍ରୀକୃଷ୍ଣପାଦାମ୍ବୁଜ | ହରଷ ଦୀନବନ୍ଧୁ ଦ୍ୱିଜ | ।। | ୧୬୬ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ପରମାର୍ଥନିର୍ଣ୍ଣୟୋ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।।

## ଏକୋନତ୍ରିଂଶ ଅଧ୍ୟାୟ

ଊନତ୍ରିଂଶେ ତୁ ଯଃ ପୂର୍ବଂ ବିସ୍ତରେଣ ନିରୂପିତଃ ।
ଭକ୍ତିଯୋଗସ୍ତମେବାହ ସ୍ୱଭକ୍ତାୟ ସମାସତଃ ।। ୧
ଅତିକ୍ଳେଶମିବାଲକ୍ଷ୍ୟ ଯୋଗେଽସଙ୍ଗୈକସଂପଦି ।
ସୁଖୋପାୟଂ ପୁନଃ କୃଷ୍ଣମୁଦ୍ଧବଃ ପରିପୃଚ୍ଛତି ।। ୨

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୧ | ଉଦ୍ଧବ କହନ୍ତି କୃଷ୍ଣଙ୍କୁ | ଯେ ବଶ ନ କଲା ମନକୁ | ।। | ୧ |
| | ଏ ଯୋଗମାର୍ଗ ସେ ଲୋକ ହିଁ | କରି ନ ପାରିବ ମଣଇଁ | ।। | ୨ |

୧. ପାପ-ଗ୍ରହ-ସର୍ପାଦି କୃତ ରୋଗମାନଙ୍କୁ । ୨. କାମାଦିଙ୍କୁ । ୩. ଦମ୍ଭମାନାଦି । ୪. ତାରୁଣ୍ୟରେ ।

ଆହେ ଅଚ୍ୟୁତ ସହଜରେ । ପୁରୁଷ ଯେମନ୍ତ ରୂପରେ ।। ୩
ସିଦ୍ଧ ହୁଅଇ ତାହା ବେଗେ । କହିବା ହେଉ ଆମ୍ଭ ଆଗେ ।। ୪
୨ ପ୍ରାୟଶ ହେ ପଦ୍ମଲୋଚନ । ନିଜ ମନକୁ ଯୋଗୀ ଜନ ।। ୫
ନିଗ୍ରହ କରନ୍ତେ ତୁରିତ । କ୍ଲେଶକୁ ଲଭନ୍ତି ବହୁତ ।। ୬
ଅନିଗ୍ରହରୁ ସେ ମନର । କ୍ଲେଶ ହିଁ ଲଭନ୍ତି ଅପାର ।। ୭
୩ ହେ ଅରବିନ୍ଦବିଲୋଚନ । ପରମହଂସ ଯୋଗୀ ଜନ ।। ୮
ସର୍ବାନନ୍ଦପରିପୂରକ । ଯେ ତୁମ୍ଭ ପଦାମ୍ବୁଜ ଏକ ।। ୯
ସୁଖେ ତା' କରନ୍ତି ଆଶ୍ରୟ । ଆହେ ବିଶ୍ୱେଶ୍ୱର ନିଶ୍ଚୟ ।। ୧୦
ତୁମ୍ଭ ମାୟାରେ ବିମୋହିତ । ଯେ ଯୋଗକର୍ମେ ଆସକତ ।। ୧୧
ସେ ଅଭିମାନୀ ଜନେ ନିତି । ତା' ସେବା କରି ନ ପାରନ୍ତି ।। ୧୨
୪ ଯା'ଙ୍କର ତୁମ୍ଭ ବିହୁନରେ । ଶରଣ ନାହିଁ ସେ ଭକ୍ତରେ ।। ୧୩
ଯା' ପକ୍ଷପାତ ତୁମ୍ଭେ କର । ଏ ଚିତ୍ର ନୁହଇ ତୁମ୍ଭର ।। ୧୪
ହେ ସର୍ବବନ୍ଧୁ ହେ ଅଚ୍ୟୁତ । ଶ୍ରୀରାମରୂପରେ ସାକ୍ଷାତ ।। ୧୫
ବାନରମାନଙ୍କ ସଙ୍ଗରେ । ପ୍ରୀତିକି କରିଛ ପୂର୍ବରେ ।। ୧୬
ବ୍ରହ୍ମାଦି ଦେବମାନଙ୍କର । ଶ୍ରୀମନ୍ତ କିରୀଟ ନିକର ।। ୧୭
ତେଣେ ରଞ୍ଜିତ ତୋ' ଚରଣ । ତୁମ୍ଭେ ଏମନ୍ତ ପ୍ରଭୁ ପୁଣ ।। ୧୮
୫ ତୁମ୍ଭେ ଅଖିଳ ଜଗତର । ପରାତ୍ମା ଦୟିତ ଈଶ୍ୱର ।। ୧୯
ଆଶ୍ରିତ ଲୋକଙ୍କର ପୁଣ । ସର୍ବାର୍ଥ କର ବିତରଣ ।। ୨୦
ବଳି ପ୍ରହ୍ଲାଦ ଆଦି ଯେତେ । ତୁମ୍ଭ ସ୍ୱଜନ ଏ ଜଗତେ ।। ୨୧
ତୁମ୍ଭର ସେମାନଙ୍କ ପ୍ରତି । ଯେ ଅନୁଗ୍ରହ ଥାଏ ନିତି ।। ୨୨
ତାହା ଜାଣନ୍ତେ କଉଁ ପ୍ରାଣୀ । ତୁମ୍ଭଙ୍କୁ ଛାଡ଼ିବଟି ପୁଣି ।। ୨୩
ଐଶ୍ୱର୍ଯ୍ୟ ମୁକ୍ତି ନିମିତ୍ତରେ । ଅନ୍ୟ ଦେବଙ୍କୁ ଏ ସଂସାରେ ।। ୨୪
ଭଜିବ ଅବା କଉଁ ନର । ଚରଣରେଣୁକୁ ତୁମ୍ଭର ।। ୨୫
ପ୍ରପନ୍ନ ହୁଅନ୍ତି ଯେ ଜନେ । [1]ସମସ୍ତ ଲଭନ୍ତି ସେମାନେ ।। ୨୬
୬ ଯେତେକ ବ୍ରହ୍ମଜ୍ଞାନୀ ନର । ସେ ତୁମ୍ଭ କଲା ଉପକାର ।। ୨୭
ବ୍ରହ୍ମାଙ୍କ ଆୟୁଷ ଲଭିଲେ । ଶୁଝିବେ ନାହିଁ କେହି ଭଲେ ।। ୨୮
ସେ ଉପକାରକୁ ସ୍ମରଣ । କରନ୍ତି ଆନନ୍ଦ ଲଭିଣ ।। ୨୯
ହେ ଈଶ ତୁମ୍ଭେ ପ୍ରାଣୀଙ୍କର । ବାହ୍ୟେ ଅନ୍ତରେ ନିରନ୍ତର ।। ୩୦
ଗୁରୁ-ଅନ୍ତରଯାମୀ ରୂପେ । ଅଶୁଭ ନାଶ କର ଆପେ ।। ୩୧
ନିଜ ହୃଦୟେ ସେମାନଙ୍କୁ । ଦେଖାଅ ଆପଣା ରୂପକୁ ।। ୩୨

୧. ଯା ବୈ ସାଧନସଂପତ୍ତିଃ ପୁରୁଷାର୍ଥଚତୁଷ୍ଟୟେ ।
ତୟା ବିନା ତଦାପ୍ନୋତି ନରୋ ନାରାୟଣାଶ୍ରୟଃ ।।

### ଶ୍ରୀଶୁକ ଉବାଚ

୭ ଶୁକ କହନ୍ତି ପରୀକ୍ଷିତେ । ଉଦ୍ଧବ ଅନୁରକ୍ତ ଚିତ୍ତେ ।।
କୃଷ୍ଣଙ୍କୁ ପଚାରିଲେ ପୁଣ । ବିଶ୍ୱ ଯା' କ୍ରୀଡ଼ୋପକରଣ ।।
ଯେ ବ୍ରହ୍ମା-ବିଷ୍ଣୁ-ରୁଦ୍ର ହୋଇ । ନିଜଶକ୍ତି[1] ରେ ମୂର୍ତ୍ତିତ୍ରୟୀ ।।
ଈଶ୍ୱରଙ୍କର ଯେ ଈଶ୍ୱର । ଯାହାଙ୍କ ସ୍ମିତ ମନୋହର ।।
ସେ ପ୍ରଭୁ ପ୍ରେମର ସହିତ । କହିଲେ ଉଦ୍ଧବଙ୍କୁ ତତ୍ତ୍ୱ ।।

### ଶ୍ରୀଭଗବାନୁବାଚ

୮ ଉଦ୍ଧବ ! କହିବି ତୁମ୍ଭଙ୍କୁ । ମୋର ସୁମଙ୍ଗଳ ଧର୍ମକୁ ।।
ଶ୍ରଦ୍ଧାରେ କଲେ ଯାହା ନର । ଜିଣଇ ଦୁର୍ଜୟ ସଂସାର ।।
୯ ମୋ' ଅର୍ଥେ ସର୍ବ କର୍ମ ପୁଣ । କରିବ ମୋତେ ହିଁ ସ୍ମରିଣ ।।
ମନ-ଚିତ୍ତକୁ ମୋହ' ଠାରେ । ଅର୍ପଣ କରି, ମୋ' ଧର୍ମରେ ।।
ଆତ୍ମା-ମନର ରତିକୁ ହିଁ । କରିବ ଅସମ୍ଭ୍ରମ ହୋଇ ।।
୧୦ ମୋ ଭକ୍ତ ସାଧୁ ଛନ୍ତି ଯହିଁ । ସେ ପୁଣ୍ୟଦେଶମାନଙ୍କୁ ହିଁ ।।
ଆଶ୍ରୟ କରିବ ନିତ୍ୟରେ । ଦେବ-ଅସୁର-ମନୁଷ୍ୟରେ ।।
ଯେତେକ ମୋର ଭକ୍ତଗଣ । କରିବ ତାଙ୍କ ଆଚରଣ ।।
୧୧ ଯେ ଯାତ୍ରା ପର୍ବ ମହୋତ୍ସବ । ତା' ଭିନ୍ନ ଭିନ୍ନ କରି ସର୍ବ ।।
କରିବ ଅବା ଏକାବେଳେ । ଗୀତନୃତ୍ୟାଦି କୁତୂହଳେ ।।
ଯେ ମହାରାଜଚିହ୍ନମାନ । ତେଣେ କରିବ ମୋ' ପୂଜନ ।।
୧୨ ସ୍ୱଦେହେ ସର୍ବପ୍ରାଣୀଠାରେ । ମୁଁ ଅଛି ଆତ୍ମାସ୍ୱରୂପରେ ।।
ବାହ୍ୟେ ଅନ୍ତରେ ପୂର୍ଣ୍ଣ ହୋଇ । ମୋହର ଆବରଣ ନାହିଁ ।।
ଦେଖିବ ନିର୍ମଳ ଚିତ୍ତରେ । ଆକାଶ ଯେହ୍ନେ ସର୍ବଠାରେ ।।
୧୩ | ହେ ମହାଦ୍ୟୁତି ଏ ରୂପରେ । ସର୍ବ ଭୂତଙ୍କୁ ମୋ' ଭାବରେ ।।
୧୪ | କେବଳ ଜ୍ଞାନଦୃଷ୍ଟି ଘେନି । ସତ୍‌କାର କରନ୍ତେଣ ମାନି ।।
ବ୍ରାହ୍ମଣ-ଚାଣ୍ଡାଳେ ଅଥବା । ଚୋର[2] -ବ୍ରାହ୍ମଣଭକ୍ତେ ଅବା ।।
ସୂର୍ଯ୍ୟରେ ଅବା ସ୍ଫୁଲିଙ୍ଗରେ । କ୍ରୂର ଲୋକରେ ବା ଅକ୍ରୂରେ ।।
ଯେ ସମ କରି ଦେଖେ ମୋତେ । ପଣ୍ଡିତ ଅଟେ ସେ ଜଗତେ ।।
୧୫ ସମସ୍ତ ପ୍ରାଣିଙ୍କର ଠାରେ । ମୋ' ଭାବ କରେ ଯେ ନିତ୍ୟରେ ।।
ଶୀଘ୍ର ସେ ଭାବୁକ ଲୋକର । [3]ସ୍ପର୍ଦ୍ଧା-ଅସୂୟା-ତିରସ୍କାର ।।
ଅହଂକାରାଦି ଏ ସଭିଏ । ବିନାଶ ହୁଅନ୍ତି ନିଶ୍ଚୟେ ।।
୧୬ ହସନ୍ତି ଯେ ଗର୍ବ କରିଣ । ସେ ସଖାମାନଙ୍କୁ ତ୍ୟଜିଣ ।।

---

୧. ସତ୍ତ୍ୱ ଆଦି ଗୁଣ । ୨. ବ୍ରହ୍ମସ୍ୱହାରୀ ।
୩. ସମ-ଉତ୍ତମ-ହୀନ ପ୍ରତି ଯଥାକ୍ରମେ ହେଉଥିବା ଭାବ ।

‘ମୁଁ ଉଚ୍ଚ ସେ ନୀଚ ଅଟଇ’ । ତେଜି ସେ ଦୃଷ୍ଟି ଲଜ୍ଜା ଦୁଇ ।। ୬୧
କୁକ୍‌କୁର-ଚାଣ୍ଡାଳ-ଗୋ-ଖର । ଏ ଆଦିମାନଙ୍କୁ ସେ ନର ।। ୬୨
ଦଣ୍ଡପରାଏ ଧରଣୀରେ । ପ୍ରଣାମ କରିବ ନିତ୍ୟରେ ।। ୬୩
୧୭ ସମସ୍ତ ଭୂତରେ ମୋ’ ଭାବ । ଯାବତ ନୋହିବ ସମ୍ଭବ ।। ୬୪
ବାଙ୍‌ମନକାୟିକ ବୃତ୍ତିରେ । ¹ତାବତ ଉପାସନା କରେ ।। ୬୫
୧୮ ଈଶ୍ୱରଦୃଷ୍ଟି ଏ ପ୍ରକାରେ । କରନ୍ତେ ତାର ସର୍ବଠାରେ ।। ୬୬
ସର୍ବେ ହୁଅନ୍ତେ ବ୍ରହ୍ମାତ୍ମକ । ସମସ୍ତ କାର୍ଯ୍ୟରୁ ସେ ଲୋକ ।। ୬୭
ବ୍ରହ୍ମକୁ ଦେଖି ନିବର୍ତ୍ତିବ । ସମସ୍ତ ସଂଶୟ ଛାଡ଼ିବ ।। ୬୮
୧୯ ମୋ ଭାବ ସମସ୍ତ ଭୂତରେ । କାୟମନୋବାକ୍ୟବୃତ୍ତିରେ ।। ୬୯
ଏ ସର୍ବ ଉପାୟମଧ୍ୟର । ଉତ୍ତମ, ଏ ମତ ମୋହର ।। ୭୦
୨୦ ହେ ପ୍ରିୟ ଉଦ୍ଧବ ମୋ’ ଧର୍ମ । ଅଟଇ ସର୍ବଥା ନିଷ୍କାମ ।। ୭୧
ହୁଅନ୍ତେ ଉପକ୍ରମ ତା’ର । ବୈଗୁଣ୍ୟ ଆଦିରେ ତାହାର ।। ୭୨
ବିନାଶ ନୋହେ ଅଳପ ହିଁ । ଯେଣୁ ସମ୍ୟକରୂପେ ମୁହିଁ ।। ୭୩
ନିର୍ଗୁଣଭାବହେତୁ ତାର । ନିଶ୍ଚୟ କରିଛି ଆବର ।। ୭୪
ମନ୍ୱାଦିଋଷିମୁଖେ ପୁଣ । ଏ ଧର୍ମ ନୋହିଛି ବଖାଣ ।। ୭୫
୨୧ ଯେ ଯେ ନିରର୍ଥକ ଶ୍ରମ ହିଁ । ମୁଁ ପରଂବ୍ରହ୍ମ ମୋର ଠାଇଁ ।। ୭୬
ଲୌକିକ ହେଲେହେଁ ସେ ଯେବେ । ସମର୍ପିତ ନିଷ୍କାମ ଭାବେ ।। ୭୭
ହୁଅଇ, ତେବେ ସେ ଉଦ୍ଧବ । ସାକ୍ଷାତ ଧର୍ମ ବୋଲାଇବ ।। ୭୮
ଭୟଶୋକାଦି ହେତୁ ପୁଣ । ଯେହ୍ନେ ପଳାୟନ କ୍ରନ୍ଦନ ।। ୭୯
ଏ ଆଦି ଯେବଣ କ୍ଳେଶ ହିଁ । ନିରର୍ଥ ଶ୍ରମ ସେ ଅଟଇ ।। ୮୦
୨୨ ସତ୍ୟ-ଅନୃତ ମୋ’ ଆକାର । ଅସତ୍ୟ-ମର୍ତ୍ତ୍ୟ ଦେହେ ନର ।। ୮୧
ମୋତେ ଯା’ ଏହି ଜନମରେ । ସମ୍ୟକରୂପେ ଲାଭ କରେ ।। ୮୨
ଏ ବୁଦ୍ଧି ବୁଦ୍ଧିମନ୍ତଙ୍କର । ଚାତୁର୍ଯ୍ୟ ବିଜ୍ଞମାନଙ୍କର ।। ୮୩
୨୩ ଏ ବ୍ରହ୍ମବାଦସଂଗ୍ରହକୁ । ସମଗ୍ରେ କହିଲି ତୁମ୍ଭଙ୍କୁ ।। ୮୪
ସମାସ-ବ୍ୟାସ ବିଧାନରେ । ଦୁର୍ଗମ ଏହା ଦେବଙ୍କରେ ।। ୮୫
୨୪ ଜ୍ଞାନ ବିସ୍ପଷ୍ଟଯୁକ୍ତିମନ୍ତ । ତୁମ୍ଭଙ୍କୁ କହିଲି ବହୁତ ।। ୮୬
ପୁରୁଷ ଜାଣି ଏହି ମତ । ସଂଦେହ ନାଶି ହୋଏ ମୁକ୍ତ ।। ୮୭
୨୫ ଦତ୍ତ-ଉତ୍ତର ଏ ଆଖ୍ୟାନ । ବେଦରହସ୍ୟ ସନାତନ ।। ୮୮
ଯେ ଅନୁସଂଧାନ କରଇ । ପରଂବ୍ରହ୍ମକୁ ସେ ଲଭଇ ।। ୮୯
୨୬ ଏ ଅତିରହସ୍ୟ ପ୍ରଶ୍ନକୁ । ଯେ କହେ ମୋ’ ନିଜ ଭକ୍ତଙ୍କୁ ।। ୯୦
ସେ ଜ୍ଞାନଦାତା ଲୋକକୁ ହିଁ । ମୁଁ ନିଜ ଆତ୍ମାକୁ ଦିଅଇ ।। ୯୧

୧. ଏହି ରୂପରେ ଉପାସନା କରିବ ।

୨୭ ଏ ଶୁଦ୍ଧ ପରମ ପବିତ୍ର । ଯେ ଉଚ୍ଚେ ପଢ଼େ ଏ ଚରିତ୍ର ॥ ୯୨
ଦେଖାଇ ଜ୍ଞାନଦୀପେ ମୋତେ । ସେ ଶୁଦ୍ଧ ହୋଏ ନିତ୍ୟେ ନିତ୍ୟେ ॥ ୯୩
୨୮ ଅବ୍ୟଗ୍ର ହୋଇଣ ଶ୍ରଦ୍ଧାରେ । ଯେ ଏହା ଶୁଣଇଁ ନିତ୍ୟରେ ॥ ୯୪
କରନ୍ତେ ପରା ଭକ୍ତି ମୋ'ରେ । ବନ୍ଧା ନୁହଇ ସେ କର୍ମରେ ॥ ୯୫
୨୯ ବ୍ରହ୍ମକୁ ହେ ସଖା ଉଦ୍ଧବ । କଲ କି ସମ୍ୟକ୍ ଅନୁଭବ ॥ ୯୬
ଏ ଶୋକ ମୋହ ମନୋଜାତ । ତୁମ୍ଭର ହେଲା କି ବିଗତ ॥ ୯୭
୩୦ ଯେ ଶଠ, ଦାମ୍ଭିକ ନାସ୍ତିକ । ଯେ ଶୁଣିମାକୁ ଅନିଚ୍ଛୁକ ॥ ୯୮
ଯେ ବା ଅଭକ୍ତ ଦୁର୍ବିନୀତ । ତାଙ୍କୁ ନ ଦେବ ଏ ଚରିତ ॥ ୯୯
୩୧ ଏ ଦୋଷ ନ ଥିବ ଯାହାର । ବ୍ରହ୍ମଣ୍ୟ ପ୍ରିୟ ଯଉଁ ନର ॥ ୧୦୦
ଯେ ସାଧୁ ଶୁଦ୍ଧିମନ୍ତ ଜନ । ତାକୁ କହିବ ଏ ଆଖ୍ୟାନ ॥ ୧୦୧
ସ୍ତିରୀଙ୍କି ଶୂଦ୍ରଙ୍କୁ ହିଁ ତେବେ । କହିବ ଭକ୍ତି ଥିବ ଯେବେ ॥ ୧୦୨
୩୨ ଯାହାର ଇଚ୍ଛା ଜାଣିମାକୁ । ସେ ଯେବେ ଜାଣିମ ଏହାକୁ ॥ ୧୦୩
ଜାଣିମା ଯୋଗ୍ୟ ତାହାପାଇଁ । ଆଉ କିଛି ହିଁ ନ ରହଇ ॥ ୧୦୪
ସ୍ୱାଦୁ ଅମୃତ କଲେ ପାନ । ପିଇବା ଯୋଗ୍ୟ ହୋଇ ଆନ ॥ ୧୦୫
ଯେସନେ କିଛି ନ ରହଇ । ସେହି ରୂପରେ ଏ କଥା ହିଁ ॥ ୧୦୬
୩୩ ମୋକ୍ଷ ପୁରୁଷାର୍ଥ ଜ୍ଞାନରେ । ଧର୍ମଟି ବିହିତ କର୍ମରେ ॥ ୧୦୭
କାମ ସ୍ୱାଭାବିକ କର୍ମରେ । ଅଣିମାଦି ସିଦ୍ଧି ଯୋଗରେ ॥ ୧୦୮
ଅର୍ଥଟି କୃଷ୍ୟାଦି ବାର୍ତ୍ତାରେ । ଐଶ୍ୱର୍ଯ୍ୟ ଦଣ୍ଡଧାରଣରେ ॥ ୧୦୯
ସିଦ୍ଧି ଐଶ୍ୱର୍ଯ୍ୟ ଦୁଇ ପୁଣ । କାମର ଅନ୍ତର୍ଗତ ଜାଣ ॥ ୧୧୦
ଏରୂପେ ଲୋକମାନଙ୍କର । ପୁରୁଷାର୍ଥ ଚାରିପ୍ରକାର ॥ ୧୧୧
ହେ ତାତ ପୁରୁଷାର୍ଥ ଯେତେ । ତୋହର ଅଟଇ ମୁଁ ତେତେ ॥ ୧୧୨
୩୪ ଛାଡ଼ି ସମସ୍ତ କର୍ମମାନ । ମୋ' ଠାରେ ଆତ୍ମନିବେଦନ ॥ ୧୧୩
କରଇ ଯେକାଳେ ମାନବ । ବିଶିଷ୍ଟ ପାତ୍ର ସେ ଉଦ୍ଧବ ॥ ୧୧୪
ସେକାଳେ ହୁଅଇ ମୋହର । ମୋକ୍ଷକୁ ଲଭିଣ ଆବର ॥ ୧୧୫
ମୋ' ସମ ଐଶ୍ୱର୍ଯ୍ୟନିମିତ୍ତ । ଯୋଗ୍ୟ ହୁଅଇ ସେ ନିଶ୍ଚିତ ॥ ୧୧୬

ଶ୍ରୀଶୁକ ଉବାଚ

୩୫ ଶୁକ କହନ୍ତି ହେ ରାଜନ । ଯାହା କହିଲେ ଭଗବାନ ॥ ୧୧୭
ଉଦ୍ଧବ ଶୁଣିଣ ସେ ବାଣୀ । ତେଣେ ଏ ଯୋଗମାର୍ଗ ଜାଣି ॥ ୧୧୮
କଣ୍ଠ ହିଁ ଗଦ୍‌ଗଦ ପ୍ରୀତିରୁ । ଲୋତକ ବହଇ ନେତ୍ରରୁ ॥ ୧୧୯
ଅଞ୍ଜଳି କରି କରବେନି । କିଛି ନ କହି ହେଲେ ତୁନି ॥ ୧୨୦
୩୬ ସ୍ନେହେ କ୍ଷୁଭିତ ନିଜ ଚିତ୍ତ । ଧୈର୍ଯ୍ୟରେ ସ୍ତମ୍ଭିଣ ତୁରିତ ॥ ୧୨୧
ହେ ନୃପ ଆତ୍ମାକୁ ଆପଣ । ମଣି ସେ କୃତାର୍ଥ କରିଣ ॥ ୧୨୨

| | | | | |
|---|---|---|---|---|
| | କୃଷ୍ଣଚରଣପଦ୍ମକୁ ହିଁ | ଆପଣା ମସ୍ତକରେ ଛୁଇଁ | ॥ | ୧୨୩ |
| | ଅଞ୍ଜଳି କରି ବେନି ହସ୍ତ | କୃଷ୍ଣଙ୍କୁ କହିଲେ ଏମନ୍ତ | ॥ | ୧୨୪ |

ଶ୍ରୀଉଦ୍ଧବ ଉବାଚ

| | | | | |
|---|---|---|---|---|
| ୩୭ | [୧]ହେ ଅଜ ହେ ଆଦ୍ୟ ମୋହର | ଯେ ମହାମୋହ-ଅନ୍ଧକାର | ॥ | ୧୨୫ |
| | ସେ ଆଜ ତୁମ୍ଭ ସନ୍ନିଧିରୁ | ବିନାଶ ହେଲା ମୋହ' ଠାରୁ | ॥ | ୧୨୬ |
| | ଅଗ୍ନିନିକଟେ ଯଉଁ ନର | ରହଇ ଯେସନେ ତାହାର | ॥ | ୧୨୭ |
| | ଯେ ଶୀତଭୟ ମହାତମ | ସେ କି ବାଧା ଦେବାକୁ କ୍ଷମ | ॥ | ୧୨୮ |
| ୩୮ | ବିଜ୍ଞାନମୟ ପ୍ରଦୀପକୁ | [୨]କଲ ପ୍ରତ୍ୟର୍ପଣ ଭୃତ୍ୟକୁ | ॥ | ୧୨୯ |
| | ଏଣୁ ଅନୁଗ୍ରହ ତୁମ୍ଭର | ଜାଣଇ ଯେ ସେ କଉଁ ନର | ॥ | ୧୩୦ |
| | ଛାଡ଼ିଣ ତୋ' ପାଦମୂଳକୁ | ଶରଣ ପଶିବ ଆନକୁ | ॥ | ୧୩୧ |
| ୩୯ | ଯେ ବୃଷ୍ଣି ଅନ୍ଧକ ସାତ୍ୱତ | ଦାଶାର୍ହ ଆଦି ଅପ୍ରମିତ | ॥ | ୧୩୨ |
| | ଏମାନଙ୍କରେ ସ୍ୱମାୟାରେ | ସୃଷ୍ଟିବିବୃଦ୍ଧିନିମିତ୍ତରେ | ॥ | ୧୩୩ |
| | ବିସ୍ତାର କରିଥିଲ ନେଇ | ସୁଦୃଢ଼ ସ୍ନେହପାଶକୁ ହିଁ | ॥ | ୧୩୪ |
| | ଏ ଆତ୍ମବିଜ୍ଞାନଖଡ଼ଗେ | ବିନାଶ କଲ ଆଜ ବେଗେ | ॥ | ୧୩୫ |
| ୪୦ | ହେ ମହାଯୋଗୀ ମୁଁ ତୁମ୍ଭଙ୍କୁ | କରୁଛି ଏ ନମସ୍କାରକୁ | ॥ | ୧୩୬ |
| | ପ୍ରପନ୍ନ ହୋଇଛି ତୁମ୍ଭଙ୍କୁ | ଦିଅ ହେ ମୋତେ ଏ ଶିକ୍ଷାକୁ | ॥ | ୧୩୭ |
| | ତୋ' ପାଦପଙ୍କଜେ ଯେମନ୍ତେ | ପ୍ରୀତି ହୋଇବ ମୋର ନିତ୍ୟେ[୩] | ॥ | ୧୩୮ |

ଶ୍ରୀଭଗବାନୁବାଚ

| | | | | |
|---|---|---|---|---|
| ୪୧ | କହନ୍ତି ପୁଣ ଭଗବାନ | ଉଦ୍ଧବ ଶୁଣ ମୋ' ବଚନ | ॥ | ୧୩୯ |
| ୪୨ | ଘେନିଣ ମୋର ଏ ଆଜ୍ଞାକୁ | ଚଳ ବଦରୀ ଆଶ୍ରମକୁ | ॥ | ୧୪୦ |
| | ମୋ' ପାଦତୀର୍ଥ ଜଳ ଯହିଁ | ଅଳକନନ୍ଦା ନାମେ ବହି | ॥ | ୧୪୧ |
| | ଦର୍ଶନ କରି ସେ ଗଙ୍ଗାଙ୍କୁ | ଛାଡ଼ିଣ ସକଳ ପାପକୁ | ॥ | ୧୪୨ |
| | ସ୍ନାନପାନାଦି କରି ତହିଁ | ବଲ୍‌କଳ ପିନ୍ଧି ଶୁଦ୍ଧ ହୋଇ | ॥ | ୧୪୩ |
| | ସୁଖରେ ସ୍ପୃହାକୁ ଛାଡ଼ିଣ | ଭୁଞ୍ଜିବ ବନ୍ୟ ଫଳ ପୁଣ | ॥ | ୧୪୪ |
| ୪୩ | ବରଷା ଶୀତ ଗ୍ରୀଷ୍ମ ସହି | ସୁଶୀଳ ଜିତେନ୍ଦ୍ରିୟ ହୋଇ | ॥ | ୧୪୫ |
| | ସୁଶାନ୍ତ ସମାହିତଚିତ୍ତ | ଜ୍ଞାନବିଜ୍ଞାନେ ହୋଇ ଯୁତ | ॥ | ୧୪୬ |
| ୪୪ | ମୋ' ଠାରୁ ଶିଖିଲ ଏ ଯାହା | ଏକାନ୍ତ ସ୍ଥଳେ ରହି ତାହା | ॥ | ୧୪୭ |
| | ଭାବନା କରି ମୋର ତହିଁ | ମନ ବଚନ ଦୃଢ଼େ ଦେଇ | ॥ | ୧୪୮ |

୧. ହେ ବ୍ରହ୍ମାଜନକ ! ମୋହର (ଅଜାଦ୍ୟ ବ୍ରହ୍ମଣୋଽପି ଜନକ) ସ୍ୱାମୀ ।

୨. ତୁମେ ନିଜ ମାୟାଦ୍ୱାରା ମୋର ଜ୍ଞାନପ୍ରଦୀପକୁ ଅପହରଣ କରି ପୁଣି ମୋତେ ସମର୍ପଣ କଲ, ଯେହେତୁ ମୁଁ ତୁମ ଭୃତ୍ୟ ।

୩. ମୁକ୍ତ ହେବା ଅବସ୍ଥାରେ ମଧ୍ୟ ।

| | | | | |
|---|---|---|---|---|
| | ମୋ' ଧର୍ମେ ତତ୍‌ପର ହୋଇଣ | । ଏରୂପେ ବର୍ତ୍ତିଥିବ ପୁଣ | ।। | ୧୪୯ |
| | ତ୍ରିଗୁଣଗତିକୁ ଲଙ୍ଘିଣ | । ମୋତେ ପାଇବ ତଦନ୍ତେଣ | ।। | ୧୫୦ |

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୪୫ | ଶୁକ କହନ୍ତି ହେ ରାଜନ | । ଯା ବୁଦ୍ଧି ସୃଷ୍ଟିନିବର୍ତ୍ତନ | ।। | ୧୫୧ |
| | ସେ କୃଷ୍ଣ ଏମନ୍ତ ରୂପରେ | । ଆଜ୍ଞା ଦିଅନ୍ତେ ସେ କାଳରେ | ।। | ୧୫୨ |
| | ଉଦ୍ଧବ କରି ପ୍ରଦକ୍ଷିଣ | । ମସ୍ତକ ଦେଇ ଶ୍ରୀଚରଣ | ।। | ୧୫୩ |
| | ବିଷୟମୁକ୍ତ ହୋଇଲେଣ | । ଗମନସମୟରେ ପୁଣ | ।। | ୧୫୪ |
| | ଆର୍ଦ୍ର ହୁଅନ୍ତେ ନିଜମନ | । ତେଜିଲେ ଅଶ୍ରୁକଳାମାନ | ।। | ୧୫୫ |
| ୪୬ | ଦୁସ୍ତ୍ୟଜ ସ୍ନେହବିୟୋଗରେ | । କାତର ହୋଇ ସେ କାଳରେ | ।। | ୧୫୬ |
| | ଅତି ଆତୁର ହୋଇ ତାଙ୍କୁ | । ଶକ୍ତ ନୋହିଲେ ଛାଡ଼ିବାକୁ | ।। | ୧୫୭ |
| | ବେନି ପାଦୁକା ପାଦୁଁ ଆଣି | । ନିଜ ମସ୍ତକେ ଘେନି ପୁଣି | ।। | ୧୫୮ |
| | ପ୍ରଣାମ କରି ପୁଣ ପୁଣ | । ଚଳିଲେ କଷ୍ଟକୁ ଲଭିଣ | ।। | ୧୫୯ |
| ୪୭ | ତଦନ୍ତେ ଆହେ ପରୀକ୍ଷିତ | । ଉଦ୍ଧବ ମହାଭାଗବତ | ।। | ୧୬୦ |
| | ହୃଦୟେ ରଖି ଶ୍ରୀକୃଷ୍ଣଙ୍କୁ | । ଗଲେ ବଦରୀ-ଆଶ୍ରମକୁ | ।। | ୧୬୧ |
| | ଜଗତବନ୍ଧୁ କୃଷ୍ଣ ତହିଁ | । ଯେମନ୍ତ ଆଜ୍ଞା ଥିଲେ ଦେଇ | ।। | ୧୬୨ |
| | ସେରୂପେ ତପ କରି ନିତି | । ଲଭିଲେ ଶ୍ରୀହରିର ଗତି | ।। | ୧୬୩ |
| ୪୮ | ଯାହା ପାଦକୁ ଯୋଗେଶ୍ୱରେ | । ସେବା କରନ୍ତି ନିରନ୍ତରେ | ।। | ୧୬୪ |
| | ଭକ୍ତ ପାଇଁ ସେ ନାରାୟଣ | । ଯା' କରିଅଛନ୍ତି ବଖାଣ | ।। | ୧୬୫ |
| | ଆନନ୍ଦସମୁଦ୍ରସଂଭୃତ | । ଏମନ୍ତ ସେ ଜ୍ଞାନ-ଅମୃତ | ।। | ୧୬୬ |
| | ଅଳପ ହେଲେହେଁ ଶ୍ରଦ୍ଧାରେ | । ସେବା କରିଣ ଯେଉଁ ନରେ | ।। | ୧୬୭ |
| | ଥାଆନ୍ତି, ସେ ମୁକ୍ତ ହୁଅନ୍ତି | । କି ବା କହିବା ସେ ଉକତି | ।। | ୧୬୮ |
| | ତାହାଙ୍କ ସଙ୍ଗରୁ ସଂସାର | । ମୁକତ ହୁଅଇ ଆବର | ।। | ୧୬୯ |
| ୪୯ | ଜନମ-ମରଣ ଏ ଦୁଇ | । ଯା' ନାମ ସଂସାର ଅଟଇ | ।। | ୧୭୦ |
| | ଜରା-ରୋଗ ଆଦି ନିମିତ୍ତ | । ଯେ ପୁଣ ଭୟ ହୋଏ ଜାତ | ।। | ୧୭୧ |
| | ସେ ଉଭୟର ନାଶପାଇଁ | । ନିଗମକର୍ତ୍ତା ଈଶ୍ୱର ହିଁ | ।। | ୧୭୨ |
| | ଏକ ଅମୃତ ବେଦସାର | । ଜ୍ଞାନବିଜ୍ଞାନ ରୂପ ତାର | ।। | ୧୭୩ |
| | ସେ ଶ୍ରେଷ୍ଠ, ଅମୃତ ଅପର | । ଯେ ଥିଲା ଉଦଧିମଧ୍ୟର | ।। | ୧୭୪ |
| | ଏ ଦୁଇ ଅମୃତକୁ ପୁଣ | । ଉଦ୍ଧାର କଲେ ନାରାୟଣ | ।। | ୧୭୫ |
| | ପୁଷ୍ପକୁ ନ କରି କୋପିତ | । ତହିଁରୁ ଭ୍ରମର ଅମୃତ | ।। | ୧୭୬ |
| | ଯେସନେ କରଇ ଉଦ୍ଧାର | । ତେସନେ କଲେକ ଈଶ୍ୱର | ।। | ୧୭୭ |
| | ପ୍ରବୃତ୍ତ ଆବର ନିବୃତ୍ତ | । ଏରୂପେ ତାଙ୍କର ଯେ ଭୃତ୍ୟ | ।। | ୧୭୮ |
| | ସେ ଉଭୟଙ୍କୁ ନିଜେ ପୁଣ | । ସ୍ୱକୃତବେଦାନୁସାରେଣ | ।। | ୧୭୯ |

ଯଥାଯଥରେ ପିଆଇଲେ । ଭୃତ୍ୟବତ୍ସଳ ବୋଲାଇଲେ ॥ ୧୮୦
ସେ ଆଦ୍ୟ ପୁରୁଷ ଈଶ୍ୱର । କୃଷ୍ଣ ଅଟଇ ନାମ ଯାର ॥ ୧୮୧
[1]ତାଙ୍କୁ ମୁଁ କରୁଛି ପ୍ରଣାମ । ସ୍ମରି ହୃଦୟେ ତାଙ୍କ ନାମ ॥ ୧୮୨
ଆହେ ଶ୍ରୀକୃଷ୍ଣ କୃପାସିନ୍ଧୁ । ମୁଁ ଯେ ପତିତ ଦୀନବନ୍ଧୁ ॥ ୧୮୩
ତୁମ୍ଭଙ୍କୁ କରୁଛି ବନ୍ଦନ । ମୋ ଅଘ କର ବିନାଶନ ॥ ୧୮୪

ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ ଶ୍ରୀମଦୁଦ୍ଧବସ୍ୟ
ଶ୍ରୀବଦରିକାଶ୍ରମଗମନଂ ନାମ ଏକୋଽନତ୍ରିଂଶୋଽଧ୍ୟାୟଃ ॥

## ତ୍ରିଂଶ ଅଧ୍ୟାୟ

ତ୍ରିଂଶେ ତୁ ପ୍ରାଗୁପକ୍ଷିପ୍ତମୌସଳଚ୍ଛଳତୋ ହରିଃ ।
ସ୍ୱଧାମ ଗନ୍ତୁମନ୍ୱିଚ୍ଛନ୍ ସଂଜହାର ନିଜଂ କୁଳମ୍ ॥ ୧
ବିରାଗାୟ ପୁରା ଘୋରମୁପକ୍ଷିପ୍ତଂ ହି ମୌସଳମ୍ ।
କଥାବସାନେ ତତ୍ରୈବ ବିଶେଷଂ ପରିପୃଚ୍ଛତି ॥ ୨

ଶ୍ରୀରାଜା ଉବାଚ

୧ ବ୍ୟାସଙ୍କ ସୁତଙ୍କୁ ଏମନ୍ତ । ପଚାରୁଛନ୍ତି ପରୀକ୍ଷିତ ॥ ୧
ଉଦ୍ଧବ ମହାଭାଗବତ । ବନକୁ ହୁଅନ୍ତେ ନିର୍ଗତ ॥ ୨
ହେ ମୁନିବର ତଦନ୍ତରେ । ସେ ଦ୍ୱାରବତୀନଗରୀରେ ॥ ୩
ଭୂତଭାବନ ଭଗବାନ । ଆଉ କି କଲେକ ବିଧାନ ॥ ୪
୨ ବ୍ରାହ୍ମଣଶାପେ ନିଜ କୁଳ । ନାଶ ଯାଆନ୍ତେ ତତକାଳ ॥ ୫
ଯାଦବଶ୍ରେଷ୍ଠ ସେ ଈଶ୍ୱର । ଯେ ସର୍ବନେତ୍ରମନୋହର ॥ ୬
ସେ ତନୁ କିରୂପରେ ତ୍ୟାଗ । କଲେ ତା' କହ ଆମ୍ଭ ଆଗ ॥ ୭
୩ ଯଉଁ ଶ୍ରୀଅଙ୍ଗରେ ନୟନ । ପଡ଼ନ୍ତେ ତହୁଁ ନାରୀଜନ ॥ ୮
ଶକ୍ତ ନୋହିଲେ ଆଣିମାକୁ । ଯେ ପୁଣ ସାଧୁଙ୍କ କର୍ଣ୍ଣକୁ ॥ ୯
ପ୍ରବେଶ ହୋଇ ଚିତ୍ତେ ରହି । ତହିଁରୁ ବାହାର ନୁହଇ ॥ ୧୦
କୀର୍ତ୍ତିତ ହୋ'ନ୍ତେ ଶୋଭା ଯାର । କବିମାନଙ୍କ ବଚନର ॥ ୧୧
ଉଲ୍ଲାସବିଶେଷ ଜନ୍ମାଏ । ତାହାଙ୍କ ମାନକୁ ବଢ଼ାଏ ॥ ୧୨
ଏକଥା କି କହିବା ପୁଣ । ଯେ ସ୍ଥିତ ଅର୍ଜୁନରଥେଣ ॥ ୧୩
ଯାହାକୁ କରି ବିଲୋକନ । ଯୁଦ୍ଧରେ ମଲେ ଯେତେ ଜନ ॥ ୧୪

---
୧. ଯେନାନୁକଂପିତଂ ବିଶ୍ୱମୁଦ୍ଧବପ୍ରଶ୍ନନିର୍ଣ୍ଣୟୈଃ ।
ତଂ ବନ୍ଦେ ପରମାନନ୍ଦଂ ନନ୍ଦନନ୍ଦନରୂପିଣମ୍ ॥ (ସ୍ୱାମୀ)

ସାରୂପ୍ୟ ମୁକ୍ତିକି ଲଭିଲେ । କିରୂପେ ତାହାକୁ ଛାଡ଼ିଲେ ।। ୧୫

ଶ୍ରୀଶୁକ ଉବାଚ

୪ ରାଜା ପଚାରନ୍ତେ ଏମନ୍ତ । କହୁଅଛନ୍ତି ବ୍ୟାସସୁତ ।। ୧୬
ଆକାଶ-ଭୂମି-ଅନ୍ତରୀକ୍ଷେ । [1]ସେ ମହାଉତ୍‌ପାତ ପ୍ରତ୍ୟକ୍ଷେ ।। ୧୭
ଦିଶନ୍ତେ ଦେଖିଣ ଶ୍ରୀହରି । ସୁଧର୍ମା ସଭା ଆଶ୍ରେ କରି ।। ୧୮
ବସିଥିଲେ ଯେ ଯଦୁବୀରେ । ତାଙ୍କୁ କହିଲେ ଏ ରୂପରେ ।। ୧୯

ଶ୍ରୀଭଗବାନୁବାଚ

୫ କହନ୍ତି ପ୍ରଭୁ ଭଗବାନ । ଶୁଣ ହେ ସର୍ବଯଦୁଜନ ।। ୨୦
ଏ ଘୋର ମହୋତ୍‌ପାତମାନେ । ହୁଅନ୍ତି ଦ୍ୱାରକାଭୁବନେ ।। ୨୧
ଦିଶନ୍ତି ଯମକେତୁପ୍ରାୟେ । ମୁହୂର୍ତ୍ତେ ନ ଥିବା ଏଠାୟେ ।। ୨୨
୬ ସ୍ତିରୀ-ବାଳକ-ବୃଦ୍ଧମାନେ । ଚଳନ୍ତୁ ଶଙ୍ଖୋଦ୍ଧାରସ୍ଥାନେ ।। ୨୩
ପ୍ରଭାସତୀର୍ଥକୁ ବହନ । ଚଳିବା ଆମ୍ଭେ ସର୍ବଜନ ।। ୨୪
ଯହିଁରେ ସରସ୍ୱତୀନଈ । ପଶ୍ଚିମ ଦିଗକୁ ବହଇ ।। ୨୫
୭ ଶୁଦ୍ଧିନିମିତ୍ତେ ସର୍ବନରେ । ସ୍ନାନ କରିଣ ସେ ଜଳରେ ।। ୨୬
ସଂଯତ କରିଣ ମାନସ । ତହିଁରେ କରି ଉପବାସ ।। ୨୭
ସ୍ନାନଲେପନାଦି ଦ୍ରବ୍ୟକୁ । ଘେନି ପୂଜିବା ଦେବତାଙ୍କୁ ।। ୨୮
୮ ଆମ୍ଭେ କରିଣ ସ୍ୱସ୍ତ୍ୟୟନ । ଯେ ମହାଭାଗ ବିପ୍ରଜନ ।। ୨୯
ତାଙ୍କୁ ପୂଜିବା ସେ ସ୍ଥାନରେ । ଗୋ-ଭୂମି-ହିରଣ୍ୟ-ବସ୍ତ୍ରରେ ।। ୩୦
ଅଶ୍ୱ-କୁଞ୍ଜର-ରଥମାନ । ଦେଇଣ ବିପୁଳ ସଦନ ।। ୩୧
୯ ଏ ବିଧି ଅରିଷ୍ଟ ନାଶଇ । ଉତ୍ତମ ମଙ୍ଗଳ ଦିଅଇ ।। ୩୨
ଗୋ-ବିପ୍ର-ଦେବତାପୂଜନେ । ନିବାସ ହୋଏ ଦେବସ୍ଥାନେ ।। ୩୩
୧୦ ଏରୂପେ ଶ୍ରୀକୃଷ୍ଣ ବଚନ । ଶୁଣି ସେ ସର୍ବ ଯଦୁଜନ ।। ୩୪
ନାବରେ ତରି ସମୁଦ୍ରକୁ । ରଥରେ ଗଲେ ପ୍ରଭାସକୁ ।। ୩୫
୧୧ ସେ ଭଗବାନ ଯଦୁପତି । ଯେମନ୍ତେ ଆଜ୍ଞା ଦେଇଛନ୍ତି ।। ୩୬
ପରମ ଭକ୍ତିରେ ସେଠାଇଁ । ଯେ ସର୍ବ ମଙ୍ଗଳ ବଢ଼ାଇ ।। ୩୭
ସେରୂପେ କଲେକ ବିଧାନ । ସର୍ବଯଦୁଏ ହେ ରାଜନ ।। ୩୮
୧୨ ଦଇବ ବଳରୁ ତତ୍‌କାଳ । ନାଶ ହୋଇଲା ବୁଦ୍ଧିବଳ ।। ୩୯
ତଦନ୍ତେ ତହିଁ ଯଦୁଜନ । ମୈରେୟ[2] ମଧୁ[3] କଲେ ପାନ ।। ୪୦
ଯେ ମଦ୍ୟରସରୁ ଝଟିତି । ଭ୍ରଷ୍ଟ ହୁଅଇ ନିଜ ମତି ।। ୪୧

---

୧. ଆକାଶରେ ସୂର୍ଯ୍ୟମଣ୍ଡଳ ଆଦି, ଭୂମିରେ ଭୂକଂପ ଆଦି ଏବଂ ଅନ୍ତରୀକ୍ଷରେ ଦିଗ୍‌ଦାହ ଆଦି । ସେହି ଉତ୍‌ପାତମାନ ହରିଙ୍କ ଦ୍ୱାରା ଉତ୍‌ପାଦିତ ହେଇଥିବାରୁ ଦୁଷ୍ପ୍ରତିକାର ହୋଇଥିଲା ।

୨. ମଦିରାବିଶେଷ ।　　୩. ସୁରସ ।

୧୩ ମହାପାନରେ ହେଲେ ମତ୍ତ । କୃଷ୍ଣମାୟାରେ ମୂଢ଼ଚିତ୍ତ ।। ୪୨
ସେ ଗର୍ବୀ ଯଦୁବୀରଙ୍କର । କଳହ ହେଲା ବଳିୟାର ।। ୪୩
୧୪ ସେ ଆତତାୟୀ[୧] ଯଦୁବୀରେ । ସଂରବ୍‌ଧ ହୋଇଣ କ୍ରୋଧରେ ।। ୪୪
ଧନୁ ଖଡ଼୍‌ଗ ଭଲ୍ଲ ତିନି । ଗଦା ପରିଘ ଋଷ୍ଟି[୨] ଘେନି ।। ୪୫
ସମୁଦ୍ରତଟେ ସେ କାଳରେ । ଯୁଦ୍ଧ ରଚିଲେ ପରସ୍ପରେ ।। ୪୬
୧୫ ଚଳନ୍ତି ପତାକା ଯହିଁରେ । ସେ ରଥ-ଗଜ-ଅଶ୍ୱତରେ[୩] ।। ୪୭
ଧେନୁ-ମହିଷ-ଉଷ୍ଟ୍ର-ଖର । ନରାଦି ଆରୋହି ସେ ନର ।। ୪୮
ପରସ୍ପରରେ ଆସି ମିଳି । ଦୁଷ୍ଟ ଯଦୁଏ କରି କଳି ।। ୪୯
ଘୋର ନାରାଚମାନଙ୍କରେ । ପ୍ରହାର କଲେ ସେ କାଳରେ ।। ୫୦
ଦନ୍ତମାନଙ୍କେ ହସ୍ତିମାନେ । ବନରେ ଯୁଝନ୍ତି ଯେସନେ ।। ୫୧
୧୬ ପ୍ରଦ୍ୟୁମ୍ନ ସାମ୍ବ ବେନି ଭାଇ । ଯୁଝିଲେ ଅତି କ୍ରୁଦ୍ଧ ହୋଇ ।। ୫୨
ଅକ୍ରୂର ଭୋଜଙ୍କୁ ଯୁଝିଲେ । ସାତ୍ୟକି ଅନିରୁଦ୍ଧତୁଲେ ।। ୫୩
ସୁଭଦ୍ର ସଂଗ୍ରାମଜିତ ହିଁ । ଯୁଝିଲେ ସୁଦାରୁଣ ହୋଇ ।। ୫୪
ଗଦ ଏକଇ କୃଷ୍ଣ-ଭ୍ରାତ । ଅପର ଗଦ କୃଷ୍ଣସୁତ ।। ୫୫
ସେ ଦୁହେଁ ପରସ୍ପରେ ମିଳି । ଯୁଝିଲେ ଦୁହେଁ ମହାବଳୀ ।। ୫୬
ସୁମିତ୍ର ଅସୁରଥ ଦୁଇ । ସେ ରୂପେ ଯୁଦ୍ଧ କଲେ ତହିଁ ।। ୫୭
୧୭ ସହସ୍ରଜିତ ଶତଜିତ । ଭାନୁ ପ୍ରଭୃତି ଅପ୍ରମିତ ।। ୫୮
ନିଶଠ ଉଲ୍ମୂକ ଆଦିଏ । ପରସ୍ପରରେ ମିଳି ସ୍ୱୟେଂ ।। ୫୯
ମଦାନ୍ଧ ହୋଇ ଏ ମାଇଲେ । କୃଷ୍ଣମାୟାରେ ମୋହ ଗଲେ ।। ୬୦
୧୮ ଦାଶାର୍ହ ଭୋଜ ଶୂରସେନ । ମଧୁ ଅର୍ବୁଦ ବିସର୍ଜନ ।। ୬୧
ଅନ୍ଧକ ବୃଷ୍ଣି ଯେ କୁକୁର । ସାତ୍ୱତ କୁନ୍ତି ଯେ ମାଥୁର ।। ୬୨
ଏ ସର୍ବେ ହେଲେ ମରାମରି । ଅନ୍ୟୋଽନ୍ୟେ ପ୍ରୀତି ଛାଡ଼ି କରି ।। ୬୩
୧୯ ପିତାଙ୍କ ତୁଲେ ପୁତ୍ରମାନେ । ଭ୍ରାତାଙ୍କ ତୁଲେ ଭ୍ରାତାଜନେ ।। ୬୪
ଭଣଜା ନାତି ଯେ ମାତୁଳ । ଖୁଡୁତା ଆଦି ଯେତେ କୁଳ ।। ୬୫
ବିଶେଷେ ମୋହିତ ହୋଇଲେ । ପରସ୍ପରରେ ଯୁଦ୍ଧ କଲେ ।। ୬୬
ମିତ୍ରଙ୍କ ତୁଲେ ମିତ୍ରନରେ । ସୁହୃଦେ ସୁହୃଦସଙ୍ଗରେ ।। ୬୭
ଜ୍ଞାତିଏ ଜ୍ଞାତିମାନଙ୍କୁ ହିଁ । ମାଇଲେ ତହିଁ ମୂଢ଼ ହୋଇ ।। ୬୮
୨୦ ସରନ୍ତେ ସର୍ବ ଶରଗଣ । ଭାଜନ୍ତେ ଧନୁ ଛିଡ଼ି ଗୁଣ ।। ୬୯
ଶସ୍ତ୍ର ହୁଅନ୍ତେ ସବୁ କ୍ଷୀଣ । ମୁଷ୍ଟିମାନଙ୍କେ କଲେ ରଣ ।। ୭୦

---

୧. ଅଗ୍ନିଦୋ ଗରଦଶ୍ଚୈବ ଶସ୍ତ୍ରପାଣିର୍ଧନାପହଃ ।
କ୍ଷେତ୍ରଦାରାପହାରୀ ଚ ଷଡ଼େତେ ଆତତାୟିନଃ ।।

୨. ଋଷ୍ଟି = ଖଡ୍‌ଗବିଶେଷ । ୩. ଅଶ୍ୱତରେ = ଖଚ୍ଚର ।

ଏରକା ନାମେ ତୃଣ ଥିଲେ । ତା' ଆଣି ମରାମରି ହେଲେ ॥ ୭୧
୨୧ ବଜ୍ରସମାନ ସେ ଏରକା । ପରିଘ[1] ପ୍ରାୟେ କରି ଏକା ॥ ୭୨
ମୁଷ୍ଟିରେ ଧରିକରି ତାକୁ । ମାଇଲେ ସେ ଶତ୍ରୁମାନଙ୍କୁ ॥ ୭୩
ଶ୍ରୀକୃଷ୍ଣ ନିବାରନ୍ତେ ଯାଇଁ । ତାହାଙ୍କୁ ମାଇଲେ ସେ ଧାଇଁ ॥ ୭୪
୨୨ ହେ ମହାରାଜ ! ଯଦୁବୀରେ । ମୋହିତ ହୋଇ ସେ କାଳରେ ॥ ୭୫
ବଳଭଦ୍ରଙ୍କୁ ଦେଖି ପୁଣି । ଶତ୍ରୁ ପରାଏ ମନେ ମଣି ॥ ୭୬
ମାରିବା ବୁଦ୍ଧିରେ ନିଶ୍ଚୟେ । ଧାଇଁଲେ ସେ ଆତତାୟୀଏ ॥ ୭୭
୨୩ ଏଥୁ ଅନ୍ତରେ ହେ ରାଜନ । ଶ୍ରୀକୃଷ୍ଣ-ରାମ ବେନି ଜନ ॥ ୭୮
ଶସ୍ତ୍ର ଉଞ୍ଚାଇ କ୍ରୋଧଭରେ । ଏରକାମୁଷ୍ଟିପରିଘରେ ॥ ୭୯
ଯୁଦ୍ଧେ ବିଚିତ୍ର ଗତି କଲେ । ଆତତାୟୀଙ୍କୁ ପ୍ରହାରିଲେ ॥ ୮୦
୨୪ ଯେ ହେଲେ ବ୍ରହ୍ମଶାପଗ୍ରସ୍ତ । କୃଷ୍ଣର ମାୟାରେ ଆବୃତ ॥ ୮୧
ସେ ଯଦୁଙ୍କର ସ୍ପର୍ଦ୍ଧାକ୍ରୋଧ । ନିଜ କୁଳକୁ କଲା ବଧ ॥ ୮୨
ବଂଶରୁ ଜାତ ହୁତାଶନ । ବନକୁ ନାଶଇ ଯେସନ ॥ ୮୩
୨୫ ଏ ରୂପେ ସର୍ବ ନିଜକୁଳ । ନାଶ ହୁଅନ୍ତେ ତତକାଳ ॥ ୮୪
କେବଳ ରହି ସେ ଅଚ୍ୟୁତ । ମନେ ବିଚାରିଲେ ଏମନ୍ତ ॥ ୮୫
ଯେ ଭାରା ଥିଲା ଧରଣୀର । ବିନାଶ କଲି ତା' ଏଥର ॥ ୮୬
୨୬ ସମୁଦ୍ରତଟେ ସଂକର୍ଷଣ । ପୌରୁଷ ଯୋଗ ଆଚରିଣ ॥ ୮୭
ଆତ୍ମାକୁ ଆତ୍ମାରେ ସଂଯୁତ । କରି ହୋଇଲେ ଅନ୍ତର୍ହିତ ॥ ୮୮
୨୭ ଦେବକୀସୁତ ନରହରି । ରାମନିର୍ଯାଣ ଦେଖି କରି ॥ ୮୯
ଅଶ୍ୱତ୍ଥବୃକ୍ଷର ମୂଳରେ । ବସିଲେ ଧରଣୀ ତଳରେ ॥ ୯୦
୨୮ ଧରିଣ ଚତୁର୍ଭୁଜ ରୂପ । ଆପଣା ପ୍ରଭାରେ ସେ ଆପ ॥ ୯୧
ଦଶଦିଗର ଅନ୍ଧକାର । ପଟଳ କରନ୍ତେ ସଂହାର ॥ ୯୨
ଧୂମବିହୀନ ଅଗ୍ନିପ୍ରାୟେ । ତେଜେ ଦିଶିଲେ ଅତିଶୟେ ॥ ୯୩
୨୯ ଶ୍ରୀବତ୍ସ ଚିହ୍ନ ଉରେ ଶୋହେ । ଶ୍ୟାମ ବରଣ ମେଘପ୍ରାୟେ ॥ ୯୪
ତପ୍ତ କାଞ୍ଚନପ୍ରାୟେ ଯାର । କାନ୍ତି ଦିଶଇ ମନୋହର ॥ ୯୫
ପିନ୍ଧିଣ ପୀତାମ୍ବରଦ୍ୱୟ । ଉତ୍ତମମଙ୍ଗଳ ସେ କାୟ ॥ ୯୬
୩୦ ସୁନ୍ଦର ସ୍ମିତ ଯେ ଶୋଭିତ । ନୀଳ କୁନ୍ତଳରେ ମଣ୍ଡିତ ॥ ୯୭
ପଦ୍ମସୁନ୍ଦର ନେତ୍ର ଯହିଁ । ମକରକୁଣ୍ଡଳ ସ୍ଫୁରଇ ॥ ୯୮
ଏମନ୍ତ ବଦନନଳିନ । ଧରିଣ ଦିଶନ୍ତି ଶୋଭନ ॥ ୯୯
୩୧ କଟିସୂତ୍ର ବ୍ରହ୍ମସୂତ୍ରରେ । କିରୀଟ[2] -କଟକାଙ୍ଗଦରେ[3] ॥ ୧୦୦
ହାର ନୂପୁର ମୁଦ୍ରିକାରେ । ବିରାଜିତ ଯେ କୌସ୍ତୁଭରେ ॥ ୧୦୧

---

୧. ଲୌହଦଣ୍ଡ । ୨. କଟକ ଓ ଅଙ୍ଗଦରେ । ୩. କଟକ = ବଳୟ, ଅଙ୍ଗଦ = ବାହୁଟି ।

୩୨ ଯେ ନିଜାୟୁଧ ମୂର୍ତ୍ତିମନ୍ତ । ଯେ ବନମାଳା ଗନ୍ଧବନ୍ତ ॥ ୧୦୨
ତେଣେ ସଂଯୁତ ଅଙ୍ଗ ପୁଣ । ପଙ୍କଜ ପ୍ରାୟେ ଯେ ଅରୁଣ ॥ ୧୦୩
ସେ ବାମ ଚରଣକୁ ନେଇ । ଦକ୍ଷିଣ ଉରୁପରେ ଦେଇ ॥ ୧୦୪
ବସି ଅଛନ୍ତି ହେ ରାଜନ । ଦିଶନ୍ତି ଅତ୍ୟନ୍ତ ଶୋଭନ ॥ ୧୦୫
୩୩ ମୁଷଳଶେଷ ଲୌହଖଣ୍ଡ । ଘେନିଣ କରିଛି ଯେ କାଣ୍ଡ ॥ ୧୦୬
ସେ ଜରା ଲୁବ୍‌ଧକ ଆସିଣ । ମୃଗଶଙ୍କାରେ ସେ ଚରଣ ॥ ୧୦୭
ଦେଖିଣ ମୃଗମୁଖାକାର[୧] । ପ୍ରୟୋଗ କଲା ତୀକ୍ଷ୍ଣଶର ॥ ୧୦୮
୩୪ ତଦନ୍ତେ ଚତୁର୍ଭୁଜ କରି । ଦେଖି ସେ ପୁରୁଷ ଶ୍ରୀହରି ॥ ୧୦୯
ପାତକ କଲା ସେ ଶବର । ଭୟକୁ ପାଇଲା ଆବର ॥ ୧୧୦
ଯେ କୃଷ୍ଣ ଅସୁରନାଶନ । ତାହାଙ୍କ ପାଦଯୁଗେ ପୁଣ ॥ ୧୧୧
ପଡ଼ିଲା ମସ୍ତକ ଲଗାଇ । ଏରୂପେ ବଚନକୁ କହି ॥ ୧୧୨
୩୫ ମୁଁ ପାପୀ ହେ ମଧୁସୂଦନ । ନ ଜାଣି କଲି ଏ ବିଧାନ ॥ ୧୧୩
ଉତ୍ତମଶ୍ଳୋକ ହେ ଅନଘ । କ୍ଷମା କରିବ ଏ ମୋ ଅଘ ॥ ୧୧୪
୩୬ ପ୍ରାଣୀର ଯା' ଅନୁସ୍ମରଣ । ଅଜ୍ଞାନପାପବିନାଶନ ॥ ୧୧୫
ତୁମ୍ଭେ ସେ ବିଷ୍ଣୁ ମୁଁ ତୁମ୍ଭର । ହେ ପ୍ରଭୋ କଲି ଏଡ଼େ ଘୋର ॥ ୧୧୬
୩୭ ମୁଁ ମୃଗଲୁବ୍‌ଧକ ପାପିଷ୍ଠ । ସେ ହେତୁ ମୋତେ ହେ ବୈକୁଣ୍ଠ ॥ ୧୧୭
ବେଗେ ବିନାଶ ତୁମ୍ଭେ କର । ଆଉ ବାରେ ମୁଁ ଏ ପ୍ରକାର ॥ ୧୧୮
ସାଧୁଙ୍କ ଦ୍ରୋହ-ଆଚରଣ । ଯେମନ୍ତେ ନ କରିବି ପୁଣ ॥ ୧୧୯
୩୮ ସ୍ୱାଧୀନମାୟାବିରଚିତ । ଯା' କର୍ମ ବ୍ରହ୍ମାଙ୍କୁ ଅଜ୍ଞାତ ॥ ୧୨୦
ରୁଦ୍ରାଦି ତାଙ୍କ ପୁତ୍ରମାନେ । ଯେ ବେଦଦ୍ରଷ୍ଟା ଋଷି ଆନେ ॥ ୧୨୧
ସେମାନେ ନ ଜାଣନ୍ତି କେହି । ଯେଣୁ ତାହାଙ୍କ ନୟନ ହିଁ ॥ ୧୨୨
ଆବୃତ ମାୟାରେ ତୁମ୍ଭର । ମୁଁ ବା ବର୍ଣ୍ଣିବି କି ପ୍ରକାର ॥ ୧୨୩
ସହଜେ ପାପଯୋନି ମୋର । ଶୀଘ୍ର ତୁ ମୋତେ ବଧ କର ॥ ୧୨୪

ଶ୍ରୀଭଗବାନୁବାଚ

୩୯ କୃଷ୍ଣ କହନ୍ତି ହେ ଶବର । ଉଠ ତୁ ଭୟ କରି ଦୂର ॥ ୧୨୫
କଲୁ ଯା' ଏ ଅଭୀଷ୍ଟ ମୋର । ମୋ' ଆଜ୍ଞା ଘେନିଣ ସତ୍ୱର ॥ ୧୨୬
ସ୍ୱର୍ଗକୁ ଚଳ ତୁ ବହନ । ଯେ ପୁଣ୍ୟବନ୍ତ ଲୋକସ୍ଥାନ ॥ ୧୨୭
୪୦ ଇଚ୍ଛାରେ ଯା' ଦେହଗ୍ରହଣ । ସେ ଭଗବାନ ନାରାୟଣ ॥ ୧୨୮
ଆଜ୍ଞା ଦିଅନ୍ତେ ଏ ରୂପେଣ । ତାହାଙ୍କୁ ତିନି ପ୍ରଦକ୍ଷିଣ ॥ ୧୨୯
କରିଣ ପୁଣ ନମସ୍କାର । ବିମାନେ ଗଲା ସ୍ୱର୍ଗପୁର ॥ ୧୩୦

---

୧. ମୃଗମୁଖର ଆକାର ।

| | | | | | |
|---|---|---|---|---|---|
| ୪୧ | ଦାରୁକ ଶ୍ରୀକୃଷ୍ଣମାର୍ଗକୁ | । | ଇଚ୍ଛା କରନ୍ତେ ଲଭି ତାକୁ | ।। | ୧୩୧ |
| | ତୁଳସୀଗନ୍ଧକୁ ଘେନିଣ | । | ବହୁ ଯେ ଥିଲା ସମୀରଣ | ।। | ୧୩୨ |
| | ଆଘ୍ରାଣ କରି ତା' ସତ୍ୱରେ | । | ମିଳିଲା କୃଷ୍ଣ ନିକଟରେ | ।। | ୧୩୩ |
| ୪୨ | ଯେହୁ ପ୍ରଖରତେଜୋବନ୍ତ | । | ସେ ଶସ୍ତ୍ରମାନଙ୍କେ ବେଷ୍ଟିତ | ।। | ୧୩୪ |
| | ପତିଙ୍କି ଥିବାର ଦେଖିଣ | । | ସେହି ଅଶ୍ୱତ୍ଥମୂଳେ ପୁଣ | ।। | ୧୩୫ |
| | ସ୍ନେହେ ପୂରିଲା ତା' ଶରୀର | । | ନୟନୁଁ ବହେ ଅଶ୍ରୁଧାର | ।। | ୧୩୬ |
| | ରଥରୁ ଓହ୍ଲାଇ ସେ କାଳେ | । | ପଡ଼ିଲା ବେନିପାଦତଳେ | ।। | ୧୩୭ |
| ୪୩ | ହେ ପ୍ରଭୋ ଚରଣପଙ୍କଜ | । | ତୁମ୍ଭର ନ ଦେଖନ୍ତେ ଆଜ | ।। | ୧୩୮ |
| | ଦୃଷ୍ଟି ମୋହର ହେଲା ନାଶ | । | ଅନ୍ଧାରେ ହୋଇଣ ପ୍ରବେଶ | ।। | ୧୩୯ |
| | ଦିଗସକଳ ନ ଦିଶନ୍ତି | । | ମନେ ମୁଁ ନ ଲଭଇ ଶାନ୍ତି | ।। | ୧୪୦ |
| | ନିଶାରେ ହୁଅଇ ଯେସନ | । | ଚନ୍ଦ୍ର ହୁଅନ୍ତେ ବିନାଶନ | ।। | ୧୪୧ |
| ୪୪ | ଏମନ୍ତ ରୂପେ ହେ ରାଜନ | । | ଦାରୁକ କହନ୍ତେ ବଚନ | ।। | ୧୪୨ |
| | ଅଛନ୍ତି ଧ୍ୱଜ-ଅଶ୍ୱମାନ | । | ସୂତ କରନ୍ତେ ବିଲୋକନ | ।। | ୧୪୩ |
| | ଆକାଶୁଁ ଗରୁଡ଼ ଚିହ୍ନିତ | । | ରଥ ହୋଇଲା ଉପସ୍ଥିତ | ।। | ୧୪୪ |
| ୪୫ | ବିଷ୍ଣୁର ଦିବ୍ୟାୟୁଧବ୍ରାତ | । | କୃଷ୍ଣଙ୍କୁ ହେଲେ ଉପଗତ | ।। | ୧୪୫ |
| | ତା' ଦେଖି ହୁଅନ୍ତେ ବିସ୍ମିତ | । | ସୂତକୁ କହିଲେ ଅଚ୍ୟୁତ | ।। | ୧୪୬ |

ଶ୍ରୀଭଗବାନୁବାଚ

| | | | | | |
|---|---|---|---|---|---|
| ୪୬ | ସୂତକୁ ଆଜ୍ଞା ଦେଲେ ହରି | । | ଦ୍ୱାରବତୀକି ଯାଇ କରି | ।। | ୧୪୭ |
| | ସଂକରଷଣଙ୍କ ନିର୍ଯାଣ[୧] | । | ଅନ୍ୟୋଽନ୍ୟେ ଜ୍ଞାତିଙ୍କ ମରଣ | ।। | ୧୪୮ |
| | ଶୀଘ୍ରେ କହ ମୋ ବନ୍ଧୁଙ୍କୁ | । | ଆବର ଏ ମୋର ଦଶାକୁ[୨] | ।। | ୧୪୯ |
| ୪୭ | ତୁମ୍ଭେ ସେ ବନ୍ଧୁଙ୍କ ସଙ୍ଗରେ | । | ରହିବ ନାହିଁ ଦ୍ୱାରକାରେ | ।। | ୧୫୦ |
| | ସେ ପୁର ଛାଡ଼ନ୍ତେ ମୁଁ ପୁଣ | । | ସମୁଦ୍ର ମାଡ଼ିବ ତତ୍‌କ୍ଷଣ | ।। | ୧୫୧ |
| ୪୮ | ନିଜ କୁଟୁମ୍ବମାନ ଘେନି | । | ଘେନି ମୋ' ପିତାମାତା ବେନି | ।। | ୧୫୨ |
| | ଅର୍ଜୁନ ତୁମ୍ଭଙ୍କୁ ପାଳିବେ | । | ଇନ୍ଦ୍ରପ୍ରସ୍ଥକୁ ଯିବ ସର୍ବେ | ।। | ୧୫୩ |
| ୪୯ | ତୁମ୍ଭେ ମୋ' ଧର୍ମକୁ ଆଚରି | । | ସମସ୍ତ ଛାଡ଼ି ଜ୍ଞାନ କରି | ।। | ୧୫୪ |
| | ଜାଣି ଏ ମୋ' ମାୟାରଚିତ | । | ଶାନ୍ତିକି ହୁଅ ଉପଗତ | ।। | ୧୫୫ |
| ୫୦ | ଏମନ୍ତ କହନ୍ତେ ଶ୍ରୀହରି | । | ଦାରୁକ ପୁଣ ପୁଣ କରି | ।। | ୧୫୬ |
| | କୃଷ୍ଣଙ୍କୁ କରି ପ୍ରଦକ୍ଷିଣ | । | ବହୁତ ପ୍ରଣାମ କରିଣ | ।। | ୧୫୭ |
| | ଶ୍ରୀକୃଷ୍ଣପାଦ ଶିରେ ଦେଇ | । | ପୁରକୁ ଗଲେ ଦୁଃଖୀ[୩] ହୋଇ | ।। | ୧୫୮ |

---

୧. ଯୋଗମାର୍ଗରେ ଗମନ । ୨. ଇଚ୍ଛାଶରୀର ଅଭିପ୍ରାୟରେ କୁହା ହୋଇଛି ।
୩. କୁଳର ବିନାଶ ହେତୁ ।

| | | | |
|---|---|---|---|
| ନିଜ ସ୍ଥାନକୁ ଯିବା ପାଇଁ | । ଅନ୍ୟୋଽନ୍ୟେ କଳହ ଭିଆଇ | ।। | ୧୫୯ |
| ନିଜ ବଂଶକୁ ସଂହାରଣ | । ଯେ କଲେ ସେ କୃଷ୍ଣଚରଣ | ।। | ୧୬୦ |
| ବ୍ରାହ୍ମଣ ଦୀନବନ୍ଧୁ ଚିନ୍ତି | । ହରଷ ହେଲା ନିଜ ମତି | ।। | ୧୬୧ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀଭଗବଦୁଦ୍ଧବସଂବାଦେ
ଯଦୁକୁଳସଂହାରବର୍ଣ୍ଣନଂ ନାମ ତ୍ରିଂଶୋଽଧ୍ୟାୟଃ ।।

## ଏକତ୍ରିଂଶ ଅଧ୍ୟାୟ

ଏକତ୍ରିଂଶେ ସ୍ୱକଂ ଧାମ ଜଗାମ ଭଗବାନିତଃ ।
ତମେବାନୁଯଯୁଃ ପ୍ରୀତ୍ୟା ବସୁଦେବାଦୟସ୍ତତଃ ।।
ଦେବାନ୍ ଯଦୂନ୍ ବିଧାୟାଦୌ ଭୂୟୋ ଦେବାନ୍ ବିଧାୟ ଚ ।
ଶ୍ରୀକୃଷ୍ଣଃ ସ୍ୱେଚ୍ଛୟା ଧାମ ସ୍ୱତନ୍ତ୍ରୈବ ସମାବିଶତ୍ ।।

ଶ୍ରୀଶୁକ ଉବାଚ

| | | | | |
|---|---|---|---|---|
| ୧ | ଶୁକ କହନ୍ତି ଏବେ ଶୁଣ | । ଏଥୁ ଅନ୍ତରେ ବ୍ରହ୍ମା ପୁଣ | ।। | ୧ |
| | ଭବାନୀସଙ୍ଗେ ଭବ ସ୍ୱୟେଂ | । ମହେନ୍ଦ୍ର ଆଦି ଦେବତାଏ | ।। | ୨ |
| | ମୁନିଏ[୧] ପ୍ରଜେଶ୍ୱର[୨] ସନେ | । ଗମନ କଲେ କୃଷ୍ଣସ୍ଥାନେ | ।। | ୩ |
| ୨ | ପିତୃ ଗନ୍ଧର୍ବ ସିଦ୍ଧଗଣ | । ଯେ ମହା ଉରଗ ଚାରଣ | ।। | ୪ |
| | ଯକ୍ଷରାକ୍ଷସ ବିଦ୍ୟାଧର | । ଅପ୍‌ସରା ଯେ ଦ୍ୱିଜ[୩]କିନ୍ନର | ।। | ୫ |
| | ମୈତ୍ରେୟ ଆଦି ଋଷିବରେ | । ଗମନ କଲେ ସେ କାଳରେ | ।। | ୬ |
| ୩ | ସେ ଭଗବାନର ନିର୍ଯାଣ[୪] | । ଦେଖିବା ମନେ ବିଚାରିଣ | ।। | ୭ |
| | ଅତି ଉତ୍ସୁକ ହୋଇ ଚିତ୍ତେ | । କୃଷ୍ଣର ଜନ୍ମ କର୍ମ ଯେତେ | ।। | ୮ |
| | ଗୁଣନ୍ତେ ଗାୟନ କରନ୍ତେ | । ସେଠାରେ ମିଳିଲେ ସମସ୍ତେ | ।। | ୯ |
| ୪ | ବିମାନଶ୍ରେଣୀରେ ଗଗନ | । ସଂକୁଳ କରି ହେ ରାଜନ | ।। | ୧୦ |
| | ଭକ୍ତିରେ ଦେଇ ନିଜ ମନ | । କଲେ କୁସୁମବୃଷ୍ଟିମାନ | ।। | ୧୧ |
| ୪(କ) | ଭକ୍ତବତ୍ସଳ ଭଗବାନ | । ସୁମରି ବିଦୁରଙ୍କୁ ମନ | ।। | ୧୨ |
| | କହିଲେ ମୈତ୍ରେୟଙ୍କୁ ତହିଁ | । ହେ କୌଷାରବ ତୁମ୍ଭେ ଯାଇଁ | ।। | ୧୩ |
| | ମୋ ଜନ୍ମ-କର୍ମାଦି କହିଣ | । ସେ ଆତ୍ମଗୀତାକୁ ହିଁ ଭଣ | ।। | ୧୪ |

୧. ସନକାଦି । ୨. ମରୀଚ୍ୟାଦି । ୩. ଗରୁଡ଼ଲୋକନିବାସୀ ପକ୍ଷୀ । ୪. ତିରୋଧାନ ।

ବୈକୁଣ୍ଠଗମନ ମୋହର । ସାଦରେ ଶୁଣନ୍ତି ଯେ ନର ॥ ୧୫
ମୋତେ ଲଭନ୍ତି ସେହୁ ଯାଇଁ । କିଛି ସଂଦେହ ଏଥି ନାହିଁ ॥ ୧୬
୫ ବ୍ରହ୍ମାଦି ଆପଣା ବିଭୂତି[୧] । ତାହାଙ୍କୁ ଦେଖିଣ ଶ୍ରୀପତି ॥ ୧୭
ଆତ୍ମାକୁ ଆତ୍ମାରେ ମିଶାଇ । [୨]ବୁଜିଲେ ପଦ୍ମନେତ୍ର ଦୁଇ ॥ ୧୮
୬ [୩]ଯହିଁରେ ଲୋକମାନଙ୍କର । ସର୍ବତ୍ର ସ୍ଥିତି ସେ ଶରୀର ॥ ୧୯
ଧାରଣା ଧ୍ୟାନର ଶୋଭନ । ବିଷୟ ଅଟେ ଯେହୁ ପୁଣ ॥ ୨୦
ତାହାକୁ ପ୍ରଭୁ ନାରାୟଣ । ଯୋଗଧାରଣା-ଅଗ୍ନିରେଣ ॥ ୨୧
ଦଗ୍ଧ ନ କରି ସେ ଦେହରେ । ପ୍ରବେଶ ହେଲେ ନିଜ ପୁରେ ॥ ୨୨
୭ ସ୍ୱର୍ଗରେ ଦୁନ୍ଦୁଭି ବାଜିଲେ । ଆକାଶୁଁ ପୁଷ୍ପବୃଷ୍ଟି ହେଲେ ॥ ୨୩
ଯେ ସତ୍ୟ ଧର୍ମ ହେ ରାଜନ । ଯେ ଧୈର୍ଯ୍ୟ କୀର୍ତ୍ତି ଲକ୍ଷ୍ମୀମାନ ॥ ୨୪
ଭୂମିରୁ ଆସି ଏ ତୁରିତ । କୃଷ୍ଣଙ୍କୁ ହେଲେ ଅନୁଗତ ॥ ୨୫
୮| ନିଜ ସ୍ଥାନକୁ ନାରାୟଣ । ଚଳନ୍ତେ କେହି ନ ଦେଖିଣ ॥ ୨୬
୯| ବ୍ରହ୍ମାଦି ଦେବେ ଯେତେ ଥିଲେ । [୪]ସେ ଅତି ବିସ୍ମିତ ହୋଇଲେ ॥ ୨୭
ଛାଡ଼ିଣ ଆକାଶମଣ୍ଡଳ । ବିଜୁଳି ଯାଆନ୍ତେ ତତ୍‌କାଳ ॥ ୨୮
ତାହା ଗତିକି ଜନମାନେ । ଜାଣି ନ ପାରନ୍ତି ଯେସନେ ॥ ୨୯

---

୧. ଇନ୍ଦ୍ରାଦି ।

୨. ପୂର୍ବେ ବ୍ରହ୍ମାଦି ଦେବଗଣ ''ସଲୋକାନ୍ ଲୋକପାଳାନ୍ ନଃ ପାହି ବୈକୁଣ୍ଠକିଂକରାନ୍'' ବୋଲି ପ୍ରାର୍ଥନା କରିଥିବାରୁ ଏବଂ ବର୍ତ୍ତମାନ ନିଜ ନିଜ ଲୋକଙ୍କୁ ନେବାପାଇଁ ଆସିଥିବାରୁ ସେ ସମସ୍ତଙ୍କ ପ୍ରତି ଦୟାଦାକ୍ଷିଣ୍ୟହେତୁ ସେମାନଙ୍କୁ ବଞ୍ଚନା କରିବା ଉଦ୍ଦେଶ୍ୟରେ ସମାଧି କଲା ଭଳି ଆଖି ଦୁଇଟି ବୁଜି ଦେଲେ ।

୩. ଯୋଗିମାନଙ୍କର ସ୍ୱଚ୍ଛନ୍ଦମୃତ୍ୟୁ ହୁଏ । ସେମାନେ ଯୋଗଧାରଣା-ଅଗ୍ନିରେ ନିଜ ଦେହକୁ ଜାଳି ଦେଇ ଲୋକାନ୍ତର ଯାତ୍ରା କରନ୍ତି । କିନ୍ତୁ ଭଗବାନ୍ ନିଜ ତନୁକୁ ସେପରି ଦାହ ନ କରି ସେହି ତନୁ ସହ ନିଜର ବୈକୁଣ୍ଠାଖ୍ୟ ଧାମରେ ପ୍ରବେଶ କଲେ । ଭଗବାନ୍‌ଙ୍କ ତନୁରେ ସକଳ ଲୋକର ସ୍ଥିତିହେତୁ ତାଙ୍କ ତନୁ ଦାହ ହେବାମାତ୍ରେ ସକଳ ଲୋକର ଦାହ ଅବଶ୍ୟମ୍ଭାବୀ । ଦାହ ନ କରିବାର ଏହା ଏକ କାରଣ । ଆଉମଧ୍ୟ ଭଗବାନ୍‌ଙ୍କ ତନୁ ଦାହ ହେବାମାତ୍ରେ ଧ୍ୟାନ ଓ ଧାରଣାର କୌଣସି ବିଷୟ ରହିବ ନାହିଁ । ଅଧିକନ୍ତୁ ଏବେ ମଧ୍ୟ ଭଗବାନ୍‌ଙ୍କର କେହି କେହି ଭାଗ୍ୟବାନ୍ ଉପାସକ ତାଙ୍କୁ ସେହି ତନୁରେ ସାକ୍ଷାତ୍ କରୁଅଛନ୍ତି । ଭଗବାନ୍‌ଙ୍କ ଶରୀର ଇଚ୍ଛାନିର୍ମିତ । ଅତଏବ ଇଚ୍ଛାରେ ସେ ତନୁଦାହ କଲେ ବୋଲି କହିଲେ ମଧ୍ୟ ଠିକ୍ ହେବ ନାହିଁ । କାରଣ ତା' ହେଲେ ଭଗବାନଙ୍କ ତନୁର ଯେଉଁ ବିଶେଷଣ ଗୁଡ଼ିକ ବ୍ୟବହୃତ ହୋଇଛି ସେଗୁଡ଼ିକ ନିରର୍ଥକ ହୋଇଯିବ । ଅତଏବ ଭଗବାନ୍ ତିରୋହିତ ହେଲେ ବୋଲି କହିବା ହିଁ ଠିକ୍ ।

୪. ଶ୍ରୀକୃଷ୍ଣ ଅନ୍ତର୍ହିତ ହୁଅନ୍ତେ ବ୍ରହ୍ମାଦି ଦେବଗଣ ଶ୍ରୀକୃଷ୍ଣ କୁଆଡ଼େ ଗଲେ ବୋଲି ନାନା ପ୍ରକାର ତର୍କଣା କରି ମଧ୍ୟ ତାଙ୍କୁ ଦେଖିଲେ ନାହିଁ ଏବଂ କେଉଁଠି କେଉଁଠି ଦେଖିଲେ ମଧ୍ୟ । ତେଣୁ ଅତି ବିସ୍ମିତ ହେଲେ ।

କୃଷ୍ଣଗତିକି ଦେବଗଣ । [1]ସେରୂପେ ନ ଜାଣିଲେ ପୁଣ ।।
୧୦ ହରିର ଯୋଗଗତି ଯେହି । ବ୍ରହ୍ମରୁଦ୍ରାଦି ଦେବେ କେହି ।।
ନ ଦେଖି ବିସ୍ମୟ ହୋଇଣ । ସେକାଳେ ପ୍ରଶଂସା କରିଣ ।।
ଯେ ନିଜ ନିଜ ଲୋକମାନ । ତହିଁକି କଲେ ସେ ଗମନ ।।
୧୧ ପରମ ପୁରୁଷ ଶ୍ରୀହରି । ଯାଦବବଂଶେ ଅବତରି ।।
ହେ ନୃପ ! ହେଲେ ବିନାଶନ । ଜାଣ ଏ ମାୟାବିଡ଼ମ୍ବନ ।।
ଯେସନେ ନାନାରୂପ ନଟ । ଧରି ହୁଅଇ ଅପ୍ରକଟ ।।
ଏ ବିଶ୍ୱ ଆପଣେ ସର୍ଜିଣ । ଏଥିରେ ପଛେ ପ୍ରବେଶିଣ ।।
ଆବର କରିଣ ବିହାର । ଶେଷରେ କରିଣ ସଂହାର ।।
ଆତ୍ମମହିମାରେ ଅଚ୍ୟୁତ । ରହନ୍ତି ହୋଇ ଉପରତ[2] ।।
୧୨ ଯମଲୋକରୁ ଗୁରୁସୁତ । ଆଣିଲେ ସେହି ଦେହେ ସ୍ଥିତ ।।
ଦଗ୍ଧ ହୁଅନ୍ତେ ବ୍ରହ୍ମାସ୍ତ୍ରରେ । ତୁମ୍ଭଙ୍କୁ ରଖିଲେ ଗର୍ଭରେ ।।
ଅନ୍ତକାନ୍ତକ ଶିବଙ୍କୁ ହିଁ । ଜିଣିଲେ ବାଣଯୁଦ୍ଧେ ଯେହି ।।
ସଦେହେ ଜରାଶବରକୁ । ଯେ ନେଲେ ସ୍ୱର୍ଗଭୁବନକୁ ।।
ଯେ ରଖେ ଶରଣାଗତକୁ । ସେ କି ନ ରଖେ ଆପଣାକୁ ।।
୧୩ ତଥାପି ଅଶେଷ ସୃଷ୍ଟିର । ଯେ ସ୍ଥିତି ସମ୍ଭବ ସଂହାର ।।
ତହିଁରେ ହେତୁ[3] ଯେ ଅଟନ୍ତି । ଅଶେଷଶକ୍ତି ଧରିଛନ୍ତି ।।
ବିନାଶ କରି ଯାଦବଙ୍କୁ । ରଖିବା ଅର୍ଥେ ସ୍ୱଦେହକୁ ।।
ଇଚ୍ଛା ନ କଲେ ସେ ଶ୍ରୀହରି । ଏମନ୍ତ ମନରେ ବିଚାରି ।।
ଆମ୍ଭେ ରହନ୍ତେ ଯୋଗିନର । ଦିବ୍ୟ ଗତିକି ଅନାଦର ।।
କରିଣ ଯୋଗବଳେ ପୁଣ । ଦେହସିଦ୍ଧିକୁ ଭିଆଇଣ ।।
ଇହଲୋକେ ହିଁ ରହି ନିତି । ଲାଗିବେ କରିବାକୁ ରତି ।।
ତା' ନୋହୁ, ସେ ଘେନି ଶ୍ରୀପତି । ଯେ ଆତ୍ମନିଷ୍ଠ ତାଙ୍କ ଗତି ।।
ଦେଖାନ୍ତେ ହୋଇଣ ଅନ୍ତର । ଗମିଲେ ଆପଣାର ପୁର ।।
୧୪ ପ୍ରାତରୁ ଉଠି ମନ ଦେଇ । ଏ କୃଷ୍ଣଗତି ଯେ ପଢ଼ଇ ।।
ଭକ୍ତିରେ ପାଏ ସେହି ଜନ । ସେ ଗତି ଯେ ପରମ ସ୍ଥାନ ।।
୧୫ ଦାରୁକ ଦ୍ୱାରକାକୁ ଯାଇ । କୃଷ୍ଣବିହୁନେ ଏକା ହୋଇ ।।
ଯେ ବସୁଦେବ-ଉଗ୍ରସେନ । ତାହାଙ୍କ ଚରଣେ ବହନ ।।
ପଡ଼ିଲା ଦଣ୍ଡପ୍ରାୟ ହୋଇ । ସିଞ୍ଚିଲା ଲୋତକ ବୁହାଇ ।।

---

୧. ବିଜୁଳିର ଗତିକୁ ଯେପରି ନରମାନେ ଦେଖି ପାରନ୍ତି ନାହିଁ, କିନ୍ତୁ ଦେବଗଣ ଦେଖି ପାରନ୍ତି, ସେହିପରି ଭୂଲୋକ ଛାଡ଼ି ସ୍ୱଧାମ ଗମନ କରୁଥିବା ଭଗବାନଙ୍କୁ ଦେବଗଣ ଦେଖିଲେ ନାହିଁ ସତ, କିନ୍ତୁ ତାଙ୍କ ପାର୍ଷଦମାନେ ଦେଖିଲେ ।

୨. ନିବୃତ୍ତ । ୩. ଅନନ୍ୟହେତୁ ।

୧୬ ହେ ନୃପ ! ସମଗ୍ର କରିଣ । କହିଲା ଯଦୁଙ୍କ ମରଣ ।। ୫୯
ଶୁଣି ଉଦ୍‌ବିଗ୍ନ ହୋଇ ମନେ । ଶୋକେ ମୂର୍ଚ୍ଛିତ ହେଲେ ଜନେ ।। ୬୦
୧୭ ପ୍ରାଣକୁ ଛାଡ଼ି ଜ୍ଞାତିମାନେ । ଶୋଇଅଛନ୍ତି ଯଉଁ ସ୍ଥାନେ ।। ୬୧
ସେଠାକୁ ଗଲେ ତ୍ୱରା ହୋଇ । କୃଷ୍ଣବିରହୁଁ ମୋହ ଯାଇ ।। ୬୨
ହସ୍ତରେ କରନ୍ତେ ତାଡ଼ନ । ନିଜ ଶିରକୁ ହେ ରାଜନ ।। ୬୩
୧୮ ଦେବକୀ ରୋହିଣୀ ଯେ ଦୁଇ । ସେ ରୂପେ ସେ ବସୁଦେବ ହିଁ ।। ୬୪
କୃଷ୍ଣରାମଙ୍କୁ ନ ଦେଖିଣ । ଛାଡ଼ିଲେ ଶୋକ-ଆର୍ତ୍ତେ ପ୍ରାଣ ।। ୬୫
୧୯ ଭଗବାନର ବିରହରେ । ଆତୁର ହୋଇ ସେ କାଳରେ ।। ୬୬
ଛାଡ଼ିଲେ ତହିଁ ପ୍ରାଣମାନ । ଯେତେକ ଥିଲେ ନାରୀଜନ ।। ୬୭
ପତିଙ୍କି କରି ଆଲିଙ୍ଗନ । ଅଗ୍ନିରେ ପଶିଲେ ବହନ ।। ୬୮
୨୦ ରାମଙ୍କ ପତ୍ନୀମାନେ ପୁଣ । ତାଙ୍କ ଦେହକୁ ଆଲିଙ୍ଗିଣ ।। ୬୯
ଅଗ୍ନିରେ ପ୍ରବେଶ ହୁଅନ୍ତେ । ବସୁଦେବଙ୍କ ପତ୍ନୀ ଯେତେ ।। ୭୦
ସେମାନେ ତାଙ୍କ ଦେହକୁ ହିଁ । ଘେନିଣ ପ୍ରବେଶିଲେ ତହିଁ ।। ୭୧
ଆବର କୃଷ୍ଣବଧୂଗଣ । ପ୍ରଦ୍ୟୁମ୍ନ ଆଦିଙ୍କି ଘେନିଣ ।। ୭୨
କୃଷ୍ଣର ଆତ୍ମାପ୍ରାୟ ହୋଇ । ରୁକ୍ମିଣୀ ଆଦି ଯେତେ ତହିଁ ।। ୭୩
କୃଷ୍ଣର ଭାର୍ଯ୍ୟାମାନେ ଥିଲେ । ଅଗ୍ନିରେ ପ୍ରବେଶ ହୋଇଲେ ।। ୭୪
୨୧ ଯେ ପ୍ରିୟସଖା ଆପଣାର । ସେ କୃଷ୍ଣ ବିରହେ ଆତୁର ।। ୭୫
ଅର୍ଜୁନ ହୋଇ ଅତିଶୟେ । ଯା' କୃଷ୍ଣ କହିଛନ୍ତି ସ୍ୱୟେଂ ।। ୭୬
ସୁମରି ସେ ସତ୍ୟ ଗୀତାକୁ[୧] । ସାନ୍ତ୍ୱନା କଲେ ଆପଣାକୁ ।। ୭୭
୨୨ ନଷ୍ଟ ହୋଇଲା ଯାଙ୍କ କୁଳ । ସେ ବନ୍ଧୁମାନେ ହିଁ ସକଳ ।। ୭୮
ହତ ହୁଅନ୍ତେ ତାହାଙ୍କର । ପିଣ୍ଡାଦି କ୍ରିୟାକୁ ଆବର ।। ୭୯
ଅର୍ଜୁନ ଯଥାର୍ଥ ବିଧିରେ । କରାଇଲେ ଅନୁକ୍ରମରେ ।। ୮୦
୨୩ ଶ୍ରୀକୃଷ୍ଣ ଯା'ନ୍ତେ ପୁର ଛାଡ଼ି । କ୍ଷଣକେ ସିନ୍ଧୁ ଗଲା ମାଡ଼ି ।। ୮୧
ଶ୍ରୀମନ୍ତ କୃଷ୍ଣର ସଦନ । କେବଳ ଛାଡ଼ି ହେ ରାଜନ ।। ୮୨
୨୪ ମଧୁସୂଦନ ଭଗବାନ । ଯହିଁରେ ନିତ୍ୟ ବର୍ତ୍ତମାନ ।। ୮୩
ସେ ସର୍ବମଙ୍ଗଳମଙ୍ଗଳ । ସ୍ମରନ୍ତେ ନାଶେ ଅମଙ୍ଗଳ ।। ୮୪
୨୫ ହତରୁ ଶେଷ ଥିଲେ ଯେତେ । ସ୍ତ୍ରୀ-ବାଳ-ବୃଦ୍ଧଙ୍କ ସହିତେ ।। ୮୫
ତାହାଙ୍କୁ ଅର୍ଜୁନ ନେଇଣ । ଇନ୍ଦ୍ରପ୍ରସ୍ଥରେ ରଖି ପୁଣ ।। ୮୬
ହେ ନୃପ ତହିଁରେ ବଜ୍ରକୁ । କରାଇଲେ ଅଭିଷେକକୁ ।। ୮୭

---

୧. ନାହଂ ପ୍ରକାଶଃ ସର୍ବସ୍ୟ ଯୋଗମାୟାସମାବୃତଃ ।
ମୂଢ଼ୋଽୟଂ ନାଭିଜାନାତି ଲୋକୋ ମାମଜମବ୍ୟୟମ୍ ।।

୨୬ ଅର୍ଜୁନଠାରୁ ହେ ରାଜନ । ଶୁଣି ସୁହୃଦଙ୍କ ନିଧନ ॥ ୮୮
ତୁମ୍ଭର ପିତାମହଗଣ । ତୁମ୍ଭଙ୍କୁ ରାଜତ୍ୱ ଦେଇଣ ॥ ୮୯
ବଂଶରକ୍ଷକ କରି ଏବେ । ମହାପ୍ରସ୍ଥାନ କଲେ ସର୍ବେ ॥ ୯୦
୨୭ ଏ ଦେବଦେବ ବିଷ୍ଣୁଙ୍କର । ଜନ୍ମକର୍ମକୁ ଯଉଁ ନର ॥ ୯୧
କୀର୍ତ୍ତନ କରେ ଶ୍ରଦ୍ଧା ବହି । ସକଳ ପାପୁଁ ସେ ତରଇ ॥ ୯୨
୨୮ ସେ ଭଗବାନ ଶ୍ରୀହରିର । ଏ ଯେ ରୁଚିର ଅବତାର ॥ ୯୩
ମଙ୍ଗଳତମ କର୍ମ ଯେତେ । ବାଳକଚରିତ ସହିତେ ॥ ୯୪
ଅନ୍ୟଠି ପୁଣ ଏହିଠାର । ଶ୍ରୁତ ହୋଇଛି ଯାହା ନର ॥ ୯୫
ତାହା ଗୁଣନ୍ତେ କୃଷ୍ଣଠାଇଁ । ପରମ ଭକ୍ତିକୁ ଲଭଇ ॥ ୯୬
ପରମହଂସମାନଙ୍କର । ଗତି ଯେ ଶ୍ରୀକୃଷ୍ଣ ଆବର ॥ ୯୭
ପଢ଼ି ଶ୍ରୀଏକାଦଶ ଗୀତ । ସୁଜନେ ହୁଅ ତୋଷଚିତ୍ତ ॥ ୯୮
ମୋହର ଏତେ ବୁଦ୍ଧି କାହିଁ । ବର୍ଣ୍ଣିଲି ପୁରାଣକୁ ଚାହିଁ ॥ ୯୯
ଏଣୁ ଏ ଦୋଷ ନୋହେ ମୋର । ସୁଜନେ ମନରେ ବିଚାର ॥ ୧୦୦
ଶବର ତୁଳସୀବୃକ୍ଷକୁ । ଲଗାଇଥିଲେ ହେଁ ତାହାକୁ ॥ ୧୦୧
ଯେ ମହାସାଧୁ ବିପ୍ରବର । ସେ କି ନ କରେ ନମସ୍କାର ॥ ୧୦୨
ଏ ଏହା କରିଛି ନିର୍ମିତ । ଏମନ୍ତ ନ ଧରିବ ଚିତ୍ତ ॥ ୧୦୩
ତରିବ ବୋଲି ଭବସିନ୍ଧୁ । ହରଷେ ଦ୍ୱିଜ ଦୀନବନ୍ଧୁ ॥ ୧୦୪
ଭଣି ଶ୍ରୀଗୀତ ଏକାଦଶ । ସଂପୂର୍ଣ୍ଣ କରି ହେଲା ତୋଷ ॥ ୧୦୫
ଶ୍ରୀନିତ୍ୟାନନ୍ଦ ପ୍ରଭୁଙ୍କର । ପରିବାର ଯେ ଭକ୍ତବର ॥ ୧୦୬
ବୈଷ୍ଣବ ଜୟରାମ ଦାସ । ଯେ ରସେ ପରମ ଉଲ୍ଲାସ ॥ ୧୦୭
ସୁଜନ ଜନଙ୍କର ପାଦେ । ମତି ମୋ' ରହୁ ଅପ୍ରମାଦେ ॥ ୧୦୮

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣସ୍ୟ ସ୍ୱଧାମଗମନଂ
ନାମ ଏକତ୍ରିଂଶୋଽଧ୍ୟାୟଃ ॥

**ସମାପ୍ତୋଽୟଂ ଏକାଦଶସ୍କନ୍ଧଃ ।**

# ଦ୍ୱାଦଶ ସ୍କନ୍ଧ

## ପ୍ରଥମ ଅଧ୍ୟାୟ

ଓ ନମଃ ଶ୍ରୀକୃଷ୍ଣାୟ

ଶ୍ରୀଗୁରୁଂ ପରମାନନ୍ଦଂ ବନ୍ଦ ଆନନ୍ଦବିଗ୍ରହମ୍ ।
ଯସ୍ୟ ସନ୍ନତିମାତ୍ରେଣ ଚିଦାନନ୍ଦାୟତେ ବପୁଃ ।। ୧
ଜୟନ୍ତି ପରମାନନ୍ଦକୃପାପାଙ୍ଗଲସଦ୍‌ଦୃଶଃ ।
ଯା ନିତ୍ୟମନୁବର୍ତ୍ତନ୍ତେ ସଂପଦୋ ବିଗତାଦୃଶଃ ।। ୨
ଉକ୍ତସ୍ତ୍ରୟୋଦଶାଧ୍ୟାୟୈର୍ଦ୍ୱାଦଶେ ତ୍ୱାଶ୍ରୟଃ ସତଃ ।
ଅଧିଷ୍ଠାନାବଧିତ୍ୱାଭ୍ୟାମାଶ୍ରୟଶ୍ଚେଶ୍ୱରଃ ସତଃ ।। ୩
ଉକ୍ତୋ ଲୟାବଧିତ୍ୱେନ ପ୍ରାକୃତାତ୍ୟନ୍ତିକେ ଲୟେ ।
ଅଧିଷ୍ଠାନତୟା ଚୋକ୍ତୋ ମହାପୁରୁଷବର୍ଣ୍ଣନେ ।। ୪
ତତ୍ରାଦୌ ଷଡ୍‌ଭିରଧ୍ୟାୟୈଃ ଶୁକଃ ପ୍ରାହ ପରୀକ୍ଷିତେ ।
ଶେଷୈସ୍ତତ୍ରାଖିଳାନ୍ୟାହ ସୂତଃ ପୃଷ୍ଟୋଽଥ ସତ୍ରିଭିଃ ।। ୫
ସ୍ୱାଶ୍ରୟଶ୍ରୟଣେ କାର୍ଯ୍ୟୋ ନ ବିଳମ୍ବୋ ମନୀଷିଣା ।
ଇତ୍ୟେତଦ୍ କାଳବୈଷମ୍ୟଂ ଚତୁର୍ଭିସ୍ତାବଦୁଚ୍ୟତେ ।। ୬
ତତ୍ର ତୁ ପ୍ରଥମେ ଭାବି-ମାଗଧାନ୍ୱୟଭୂମିପାନ୍ ।
କଳିପ୍ରଭାବତଃ ପ୍ରାହ ସଂକରାଦିମଳୀମସାନ୍ ।। ୭

ଏବଂଭୂତେ ସୋମବଂଶେ ମୁକୁନ୍ଦ-
ସ୍ୱୈରକ୍ରୀଡ଼ା ବର୍ଣ୍ଣିତାଽଥୋ ସ ଏବ ।
ବଂଶୋ ଭାବୀ ବର୍ଣ୍ଣ୍ୟତେ କୃଷ୍ଣଭକ୍ତିଂ
ମୁକ୍ତ୍ୱା ମୁକ୍ତ୍ୟୈ ବର୍ତ୍ମ ନାସ୍ତୀତି ବକ୍ତୁମ୍ ।।

ଶ୍ରୀଶୁକ ଉବାଚ

୧| କହନ୍ତି ବ୍ୟାସଙ୍କ ତନୁଜ । ଶୁଣ ପରୀକ୍ଷ ମହାରାଜ ।। ୧
୨| ବୃହତ-ରଥ ବଂଶେ ସୁତ[୧] । ଯେ ପୁରଞ୍ଜୟନାମେ ଖ୍ୟାତ ।। ୨
ହୋଇବ ନୃପତି ଆବର । ଶୁନକ ଅମାତ୍ୟ ତାହାର ।। ୩
ପ୍ରଦ୍ୟୋତ ନାମେ ଆପଣାର । ଥିଲା ସେ ଯେବଣ କୁମର ।। ୪
ସ୍ୱାମୀକି କରିଣ ନିଧନ । କରିବ ତାହାକୁ ରାଜନ ।। ୫
ପାଳକ ନାମରେ ତାହାର । ତନୟ ହେବ ଅବତାର ।। ୬
ବିଶାଖଯୂପ ନାମେ ତାର । ଜନମ ହୋଇବ କୁମର ।। ୭
ରାଜକ ନାମେ ଏକ ସୁତ । ତା' ଠାରୁ ହୋଇବ ସଂଭୂତ ।। ୮

୧. ସ୍ୱତ, ଅନ୍ତ୍ୟ ।

୩ ତା' ଠାରୁ ପୁଣି ହେବ ଜାତ । ନନ୍ଦିବର୍ଦ୍ଧନ ନାମେ ସୁତ ॥ ୯
ଏ ପାଞ୍ଚଙ୍କର ପ୍ରଦ୍ୟୋତନ । ନାମ ବିଖ୍ୟାତ ତ୍ରିଭୁବନ ॥ ୧୦
ଏ ଅଷ୍ଟତିରିଶି ଉତ୍ତର । ଶଏ ବରଷ ଅବନିର ॥ ୧୧
ଭୋଗ କରିବେ ନୃପ ହୋଇ । ଏଥି ସଂଶୟ କିଛି ନାହିଁ ॥ ୧୨
୪ ଶିଶୁନାଗ ନାମରେ ସୁତ । ହୋଇବ ତାହାଠାରୁ ଜାତ ॥ ୧୩
କାକବର୍ଣ୍ଣ ନାମରେ ପୁଣ । ହୋଇବ ତାହାର ନନ୍ଦନ ॥ ୧୪
ତାହାର କ୍ଷେମଧର୍ମା ନାମ । ତନୟ ହୋଇବ ଜନମ ॥ ୧୫
କ୍ଷେତ୍ରଜ୍ଞ ନାମେ ଏକ ସୁତ । କ୍ଷେମଧର୍ମାର ହେବ ଜାତ ॥ ୧୬
୫ ତା' ସୁତ ହେବ ବିଧିସାର । ଅଜାତଶତ୍ରୁ ତା' କୁମର ॥ ୧୭
ଦର୍ଭକ ହେବ ତା' ତନୟ । ଦର୍ଭକତନୟ ଅଜୟ ॥ ୧୮
୬| ଯେ ପୁତ୍ର ହେବ ଅଜୟର । ନନ୍ଦିବର୍ଦ୍ଧନ ନାମ ତା'ର ॥ ୧୯
୭| ନନ୍ଦିବର୍ଦ୍ଧନର ନନ୍ଦନ । ହୋଇବ ମହାନନ୍ଦି ପୁଣ ॥ ୨୦
ଶିଶୁନାଗ[1] ଦଶ ଏତେକ । ତିନିଶତ ଷଷ୍ଟି-ଅଧିକ ॥ ୨୧
ବରଷ ପରିଯନ୍ତେ ମହୀ । ଭୋଗ କରିବେ ନୃପ ହୋଇ ॥ ୨୨
କଳିଯୁଗରେ ଏ ନିୟତ । ହେ କୁରୁଶ୍ରେଷ୍ଠ ! ପରୀକ୍ଷିତ ॥ ୨୩
ହେ ନୃପ ! ଶୂଦ୍ରାଗର୍ଭୁଁ ଜାତ । ହୋଇବ ମହାନନ୍ଦିସୁତ ॥ ୨୪
୮ ସେ ମହାପଦ୍ମ ଧନପତି[2] । ନନ୍ଦ ନାମରେ ତା'ର ଖ୍ୟାତି ॥ ୨୫
ସେ ହେବ ମହା ବଳୀୟାର । କ୍ଷତ୍ରିୟବଂଶନାଶକର ॥ ୨୬
ତା' ଠାରୁ ଯେଉଁ ରାଜାମାନେ । ହୋଇବେ ସେ ଶୂଦ୍ର ସମାନେ ॥ ୨୭
ଅବନିତଳେ କାଳେ ରହି । ଅଧର୍ମ ଆଚରିବେ ସେହି ॥ ୨୮
୯ ତା' ଆଜ୍ଞା ନ ଲଂଘିବେ କେହି । ସେ ଏକଛତ୍ର କରି ମହୀ ॥ ୨୯
ପାଳନା କରିବ ଜଗତେ । ଦ୍ୱିତୀୟ ଭାର୍ଗବ[3] ଯେମନ୍ତେ ॥ ୩୦
୧୦ ସୁମାଲ୍ୟ ଆଦି ଆଠସୁତ । ତାହାର ହୋଇବେ ସଂଭୂତ ॥ ୩୧
ଶଏ ବରଷ ରାଜା ହୋଇ । ଯେ ଭୋଗ କରିବେ ଏ ମହୀ ॥ ୩୨
୧୧ ନବସଂଖ୍ୟକ ପିତା ମିଶି । ହୋଇଣ ଥିବେ ଯେ ବିଶ୍ୱାସୀ ॥ ୩୩
ତାହାଙ୍କୁ ନିର୍ମୂଳ କରିବ । ଚାଣକ୍ୟ[4] ନାମେ ଦ୍ୱିଜ ଥିବ ॥ ୩୪
ସେମାନଙ୍କର ଅଭାବରେ । ନିଶ୍ଚୟେ ଏ କଳିଯୁଗରେ ॥ ୩୫
ମଉର୍ଯ୍ୟ ନାମେ ନୃପ ହେବେ । ଏ ମହୀମଣ୍ଡଳ ଭୁଂଜିବେ ॥ ୩୬
୧୨ ମଉର୍ଯ୍ୟବଂଶେ ଯେ ପ୍ରଥମ । ତାହାର ଚନ୍ଦ୍ରଗୁପ୍ତ ନାମ ॥ ୩୭

---

୧. ଶୈଶୁନାଗ (ଶିଶୁନାଗବଂଶୀ) ।
୨. ସେନାପତି ('ମହାପଦ୍ମ' ଶବ୍ଦ ସଂଖ୍ୟାବାଚକ) ।
୩. ପରଶୁରାମ; ୪. କୌଟିଲ୍ୟ, ବାତ୍ସ୍ୟାୟନ ଆଦି ଚାଣକ୍ୟଙ୍କର ପର୍ଯ୍ୟାୟବାଚୀ ।

ତାକୁ ସେ ଚାଣକ୍ୟ ବ୍ରାହ୍ମଣ । କରିବ ଅଭିଷେକ ପୁଣ ॥
ତା'ଠାରୁ ବାରିସାର ଜାତ । ଅଶୋକବର୍ଦ୍ଧନ ତା' ସୁତ ॥
୧୩ ସୁୟଶା ହେବ ସୁତ ତା'ର । ସଙ୍ଗତ ସୁୟଶାକୁମର ॥
ହୋଇବ ସଙ୍ଗତର ସୁତ । ସେ ଶାଳିଶୂକ ନାମେ ଖ୍ୟାତ ॥
ଶାଳିଶୂକର ସୋମଶର୍ମା । ତା' ସୁତ ହେବ ଶତଧନ୍ୱା[୧] ॥
ତା' ସୁତ ହେବ ବୃହଦ୍ରଥ । ଆଦ୍ୟରେ ଜଣେ ଦଶରଥ ॥
୧୪ ତାହାକୁ ମିଶାଇ ଏ ଦଶ । ନୃପତିମାନେ ମୌର୍ଯ୍ୟବଂଶ ॥
ସପ୍ତତିରିଶୋତ୍ତର ଶଏ । ବରଷ ଯାଏ ଏମାନେ ହେଁ ॥
ହେ କୁରୁଶ୍ରେଷ୍ଠ କଳିଯୁଗେ । ମହୀ ଭୁଞ୍ଜିବେ କାଳଯୋଗେ ॥
୧୫ ବୃହଦ୍ରଥର ସେନାପତି । ପୁଷ୍ପମିତ୍ର ନାମେ ଯା' ଖ୍ୟାତି ॥
ମାରି ସେ ଆପଣା ସ୍ୱାମୀକି । ଭୋଗ କରିବ ଅବନିକି ॥
୧୬ ତାହାର ଅଗ୍ନିମିତ୍ର ନାମ । ତନୟ ହୋଇବ ଜନମ ॥
ସୁଜ୍ୟେଷ୍ଠ ଅଟେ ତା'ର ମିତ୍ର । ତାହାର ସୁତ ବସୁମିତ୍ର ॥
ଭଦ୍ରକ ତାହାର କୁମାର । ପୁଳିନ୍ଦ ହେବ ସୁତ ତା'ର ॥
୧୭ ଘୋଷ ନାମରେ ତାର ପୁତ୍ର । ଘୋଷର ପୁତ୍ର ବଜ୍ରମିତ୍ର ॥
ବଜ୍ରମିତ୍ରର ହେବ ସୁତ । ନାମ ତାହାର ଭାଗବତ ॥
ତା' ସୁତ ହେବ ଦେବଭୂତି । ଶୁଣ ହେ କୁରୁକୁଳପତି ॥
୧୮ ଏ ଦଶ ଶୁଙ୍ଗ ନାମେ ଖ୍ୟାତ । ମହୀ ଭୁଞ୍ଜିବେ ହେ ଭୂଭୃତ ॥
ଦ୍ୱାଦଶାଧିକ ବର୍ଷ ଶତ । ଏ ଭୂମି କାଣ୍ୱଙ୍କୁ ତଦନ୍ତ ॥
ପ୍ରବେଶ ହେବ ଏ ଭୁବନେ । ଯେ ଅଳ୍ପଗୁଣ କାଣ୍ୱମାନେ ॥
୧୯ ପରଯୁବତିରତ ଅତି । ଯେ ଶୁଙ୍ଗନୃପ ଦେବଭୂତି ॥
ତା' ମନ୍ତ୍ରୀ କାଣ୍ୱ ବସୁଦେବ । ରାଜାକୁ ମାରି ରାଜା ହେବ ॥
୨୦ ତା' ଠାରୁ ଭୂମିତ୍ର ଜନମ । ତା' ସୁତ ନାରାୟଣ ନାମ ॥
ସୁଶର୍ମା ନାମେ ତା' କୁମର । ଏ ଚାରି କଣ୍ୱକୁଳଧର ॥
ପଞ୍ଚଚାଳିଶାଧିକ ତିନି । ଶତ ବରଷ ଏ ଅବନି ॥
ଭୋଗ କରିବେ ବାହୁବଳେ । ନୃପତି ହୋଇ କଳିକାଳେ ॥
୨୧ କଣ୍ୱବଂଶରେ ଜାତ ହୋଇ । ସୁଶର୍ମା ନାମ ହେବ ଯେହି ॥
ତାହାର ଭୃତ୍ୟ ବଳି ନାମ । ଯେ ଅନ୍ଧ୍ର[୨] ଜାତି ଅସତ୍ତମ ॥
ମହୀ ଭୁଞ୍ଜିବ ସେ ବୃଷଳ । ସ୍ୱାମୀକି ମାରି କିଛିକାଳ ॥
କୃଷ୍ଣନାମରେ ଭାଇ ତାର । ପତି ହୋଇବ ଅବନିର ॥
ଶାନ୍ତକର୍ଣ୍ଣ ତାହାର ସୁତ । ପଉର୍ଣ୍ଣମାସ ତାର ସୁତ ॥

୧. ଶତଧର୍ମା । ୨. ଅନ୍ଧ ।

୨୨ ତା'ର ତନୟ ଲମ୍ବୋଦର । ତା'ର ଚିବିଳକ କୁମର ॥ ୬୯
୨୩ ଚିବିଳକର ହେବ ଜାତ । ମେଘସ୍ୱାତିନାମରେ ସୁତ ॥ ୭୦
ତା' ସୁତ ଅଟମାନ ନାମ । ତା' ସୁତ ଅନିଷ୍ଟକରମ ॥ ୭୧
ହାଳେୟ ହେବ ତା' ତନୁଜ । ତଳକ ତାହାର ଆତ୍ମଜ ॥ ୭୨
ପୁରୀଷଭୀରୁ ତା' ନନ୍ଦନ । ତା' ସୁତନାମ ସୁନନ୍ଦନ ॥ ୭୩
୨୪ ତାହାର ତନୟ ଚକୋର । 'ବହୁ' ସଂଜ୍ଞ ଆଠ କୁମର ॥ ୭୪
ତା'ଠାରୁ ଲଭିବେ ଜନମ । ଯହିଁ ଶିବସ୍ୱାତି ଚରମ ॥ ୭୫
ଶିବସ୍ୱାତିର ହେବ ସୁତ । ଯେ ଅରିନ୍ଦମ-ନାମେ ଖ୍ୟାତ ॥ ୭୬
ତାର ଗୋମତୀ ପତ୍ନୀ ଠାରେ । ସୁତ ପୁରୀମନ୍ତ ନାମରେ ॥ ୭୭
୨୫ ମେଦଶିରା ତାର ଆତ୍ମଜ । ଶିବସ୍କନ୍ଧ ତାହା' ତନୁଜ ॥ ୭୮
ଯଜ୍ଞଶ୍ରୀ ନାମେ ସୁତ ତାର । ବିଜୟ ନାମରେ ତାହାର ॥ ୭୯
ତନୟ ହୋଇବ ଜନମ । ଚନ୍ଦ୍ରବିଜ୍ଞ[1] ତା' ସୁତନାମ ॥ ୮୦
୨୬ ତା' ସୁତ ହୋଇବ ଲୋମଧି । ତିରିଶ ନୃପ ଏ ଅବଧି ॥ ୮୧
ଛପନ ବରଷ ଉତ୍ତର । ଚାରିଶ ବରଷ ନିର୍ଭର ॥ ୮୨
ଭୁଞ୍ଜିବେ ହେ କୁରୁନନ୍ଦନ । ମହୀକି ହୋଇଣ ରାଜନ ॥ ୮୩
୨୭ ନୃପ ଅବଭୃତିପୁରୀର । ସପତ ହୋଇବେ ଆଭୀର ॥ ୮୪
ଦଶ ଗର୍ଦ୍ଦଭ ନୃପମାନେ । ଷୋଡ଼ଶ ସେ କଙ୍କ ରାଜନେ ॥ ୮୫
ଅତି ହିଁ ଲୋଲୁପ ଏମାନେ । ତଦନ୍ତେ ସେ ଆଠ ଯବନେ ॥ ୮୬
୨୮ ହୋଇବେ ଚଉଦ ତୁରୁଷ୍କ । ଗୁରୁଣ୍ଡ ହୋଇବେ ଦଶେକ ॥ ୮୭
ମଉଳ ନାମେ ମହୀପତି । ଏଗାର ହୋଇବେ ଉତ୍ପତ୍ତି ॥ ୮୮
୨୯ ଅନେଶ୍ୱତରୁ ଯେ ଅଧିକ । ସହସ୍ର ବରଷ ତେତେକ ॥ ୮୯
ଏମାନେ ସମସ୍ତେହେଁ ମହୀ । ଭୋଗ କରିବେ ନୃପ ହୋଇ ॥ ୯୦
୩୦ ଏଗାର ମଉଳେ ଅବନି । ଭୁଞ୍ଜିବେ ବର୍ଷଶତ ତିନି ॥ ୯୧
୩୧ ନୃପତି ତାହାଙ୍କ ଅନ୍ତରେ । ହୋଇବେ କିଳିକିଳାପୁରେ ॥ ୯୨
ପ୍ରଥମେ ହେବ ଯେ ନୃପତି । ଭୂତନନ୍ଦ ନାମେ ତା' ଖ୍ୟାତି ॥ ୯୩
ତଦନ୍ତେ ହୋଇବ ବଙ୍ଗିର[2] । ଶିଶୁନନ୍ଦି ଯେ ଭ୍ରାତା ତାର ॥ ୯୪
ଯେ ଯଶୋନନ୍ଦି ପ୍ରବୀରକ । ସେ ଷଟ ବରଷ ଅଧିକ ॥ ୯୫
ଶଏ ବରଷ ଯାଏ ମହୀ । ଭୋଗ କରିବେ ନୃପ ହୋଇ ॥ ୯୬
୩୨ ସେମାନଙ୍କର ତେର ସୁତ । ହେବେ ବାହ୍ଲିକ ନାମେ ଖ୍ୟାତ ॥ ୯୭
ତଦନ୍ତେ ହେବ ପୁଷ୍ପମିତ୍ର[3] । ନୃପତି ତା' ସୁତ ଦୁର୍ମିତ୍ର ॥ ୯୮

---

୧. ଚନ୍ଦ୍ରବୀଜ। ୨. ବଙ୍ଗିରି। ୩. ଏ ପୁଷ୍ପମିତ୍ରନାମକ ଅନ୍ୟ ଜଣେ ରାଜା।

୩୩ ସେରୂପେ ଆନ୍ଧ୍ରନୃପ ସାତ । ସପ୍ତ କୋଶଳ ନରନାଥ ॥ ୯୯
ଯେ ଅବା ବଇଦୂର[1] ପତି । ନିଷଧ ନାମେ ଯାହା ଖ୍ୟାତି ॥ ୧୦୦
ଯେ ସେହି ଦେଶମାନେ ଖ୍ୟାତ । ଏକକାଳ[2] ଏ ନରନାଥ ॥ ୧୦୧
ହୋଇବେ ଖଣ୍ଡମଣ୍ଡଳରେ । ସେ ସେହି ବାହ୍ଲିକବଂଶରେ ॥ ୧୦୨
୩୪ ତଦନ୍ତେ ମଗଧଦେଶରେ । ନୃପତି ହେବେ ଯେ କଳିରେ ॥ ୧୦୩
ସେ ବିଶ୍ୱସ୍ଫୂର୍ଜି ପୁରଞ୍ଜୟ[3] । କରିବ ସେହୁ ବର୍ଣ୍ଣତ୍ରୟ ॥ ୧୦୪
ଏକ ପୁଳିନ୍ଦ ଯଦୁ ଆର । ମଦ୍ରକ ନାମରେ ଆବର ॥ ୧୦୫
୩୫ ନୋହିବେ ବ୍ରହ୍ମଣ୍ୟ ପ୍ରଚୁର । ଏମନ୍ତ ଯେ ପ୍ରଜାନିକର ॥ ୧୦୬
ତାହାଙ୍କୁ କରିବ ପାଳିତ । ସେ ଦୁଷ୍ଟମତି ବୀର୍ଯ୍ୟବନ୍ତ ॥ ୧୦୭
କ୍ଷତ୍ରିୟମାନଙ୍କୁ ସଂହାରି । [4]ବସନ୍ତେ ପଦ୍ମବତୀ ପୁରୀ ॥ ୧୦୮
ଗଙ୍ଗାରୁ ପ୍ରୟାଗ ପର୍ଯ୍ୟନ୍ତେ । ମହୀକି ଭୁଞ୍ଜିବ ପାଳନ୍ତେ ॥ ୧୦୯
୩୬ ସୌରାଷ୍ଟ୍ର ଆବନ୍ତ୍ୟ ଆଭୀର । ଅର୍ବୁଦ ମାଳବ ଯେ ଶୂର ॥ ୧୧୦
ଦ୍ୱିଜେ ହୋଇବେ ଅସଂସ୍କାର । ନୃପତି ହେବେ ଶୂଦ୍ରାକାର[5] ॥ ୧୧୧
୩୭ ଯେ ଚନ୍ଦ୍ରଭାଗା ସିନ୍ଧୁକୂଳ । ଯେ କୌନ୍ତୀ କାଶ୍ମୀରମଣ୍ଡଳ ॥ ୧୧୨
ତାହା ଭୁଞ୍ଜିବେ ଶୂଦ୍ରମାନେ । ଯେ ଦ୍ୱିଜେ ସଂସ୍କାରବିହୀନେ ॥ ୧୧୩
ଆବର ପୁଣ ମ୍ଲେଚ୍ଛଜାତି । ଯେ ବେଦାଚାର ନ କରନ୍ତି ॥ ୧୧୪
୩୮ ହେ ନୃପ ! ଏ ରାଜାସକଳ । ରାଜ୍ୟ କରିବେ ଏକକାଳ ॥ ୧୧୫
ମ୍ଲେଚ୍ଛଙ୍କ ପ୍ରାୟ ଧର୍ମହୀନ । ଦାନ କରିବେ ଅଳ୍ପ ଧନ ॥ ୧୧୬
ହେବେ ଅନୃତପରାୟଣ । କରିବେ କ୍ରୋଧ ବିଶେଷେଣ ॥ ୧୧୭
୩୯ ସ୍ତିରୀ-ବାଳକ-ଦ୍ୱିଜ-ଗାଈ । ବଧ କରିବେ ଏମାନେ ହିଁ ॥ ୧୧୮
ଯେ ପରଧନ-ପରଦାର । ତହିଁରେ କରିବେ ଆଦର ॥ ୧୧୯
ଉଦୟ[6] ମାତ୍ରେ ଯିବେ ନାଶ । ଅଳପସତ୍ତ୍ୱ ଅଳ୍ପାୟୁଷ ॥ ୧୨୦
୪୦ ବିହୀନ କ୍ରିୟାରେ ସଂସ୍କାରେ । ଆବୃତ ରଜସ୍ତମୋଦ୍ୱାରେ ॥ ୧୨୧
ସେ ମ୍ଲେଚ୍ଛେ କ୍ଷତ୍ରିୟରୂପରେ । ପ୍ରଜାଙ୍କୁ ଖାଇବେ[7] ନିର୍ଭରେ ॥ ୧୨୨
୪୧ ସେମାନେ ନାଥ ଯାହାଙ୍କର । ଯେ ତାଙ୍କ ରାଜ୍ୟବାସୀ ନର ॥ ୧୨୩
ତାହାଙ୍କ ଚରିତ ଆଚାର । ବଚନ କରିବେ ସେ ନର ॥ ୧୨୪
ଆପଣା ନୃପତିଙ୍କ ଠାରୁ । ଅଥବା ଅନ୍ୟୋଽନ୍ୟ ହେତୁରୁ ॥ ୧୨୫

---

୧. ବିଦୂର । ୨. ଏକକାଳୀନ । ୩. ପୂର୍ବୋକ୍ତ 'ପୁରଞ୍ଜୟ' ଠାରୁ ଏ ଅନ୍ୟ ।
୪. ପଦ୍ମବତୀ ନାମକ ପୁରରେ ବାସ କରନ୍ତେ । ୫. ଶୂଦ୍ରାଚାର ।
୬. ଉଦୟ = ହର୍ଷ, ଅସ୍ତ = ଶୋକ । ୭. ଧନ ଆଦି ଅପହରଣ କରି ପୀଡ଼ା ଦେବେ ।

| | | | | | |
|---|---|---|---|---|---|
| | ପୀଡ଼ାକୁ ଲଭିଣ ଶେଷରେ | । | ବିନାଶ ହୋଇବେ ସତ୍ୱରେ | ।। | ୧୨୬ |
| | କୌସ୍ତସ କୁଳରେ ଜନମ | । | ବ୍ରାହ୍ମଣ ଦୀନବନ୍ଧୁ ନାମ | ।। | ୧୨୭ |
| | ଦ୍ୱାଦଶସ୍କନ୍ଧ ଭାଗବତ | । | ଭାଷାପ୍ରବନ୍ଧେ ଭଣେ ଗୀତ | ।। | ୧୨୮ |
| | ବୈଷ୍ଣବ ଜୟରାମ ଦାସ | । | ଯାହା ଆସ୍ୱାଦି ହୋଏ ତୋଷ | ।। | ୧୨୯ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ରାଜବଂଶାନୁକୀର୍ତ୍ତନଂ
ନାମ ପ୍ରଥମୋଽଧ୍ୟାୟଃ ।।

## ଦ୍ୱିତୀୟ ଅଧ୍ୟାୟ

ଦ୍ୱିତୀୟେ ତୁ କଳେର୍ଦୋଷବୃଦ୍ଧୌ କଲ୍‌କ୍ୟବତାରତଃ ।
ଅଧର୍ମିଷ୍ଟେ ଜନେ ନଷ୍ଟେ ପୁନଃ କୃତଯୁଗାଗମଃ ।।

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧ | ତଦନ୍ତେ ପ୍ରାଣିମାନଙ୍କର | । | ହେ ନୃପ ! ନିତ୍ୟେ ଶୁଦ୍ଧାଚାର | ।। | ୧ |
| | ସ୍ୱଧର୍ମ ଦୟା ସତ୍ୟ କ୍ଷାନ୍ତି | । | ଆୟୁଷ ବଳ ଧୃତି ସ୍ମୃତି | ।। | ୨ |
| | ଯେ କଳିକାଳ ବଳିୟାର | । | ତେଣେ ହୋଇବ ଏ ସଂହାର | ।। | ୩ |
| ୨ | କଳିକାଳରେ ପ୍ରାଣିଙ୍କର | । | ଯେ ଗୁଣ-ଜନମ-ଆଚାର | ।। | ୪ |
| | ଧନ ଏସବୁର କେବଳ | । | ହୋଇବ ଉଦୟର ମୂଳ | ।। | ୫ |
| | ଯେ ଅବା ଧର୍ମ-ନ୍ୟାୟ ଦୁଇ | । | ତାଙ୍କ ବ୍ୟବସ୍ଥା ଅଟେ ଯେହି | ।। | ୬ |
| | ତହିଁକି ହୋଇବ କାରଣ | । | ବଳମାତ୍ରକ ନିଶ୍ଚେ ଜାଣ | ।। | ୭ |
| ୩ | ପତି-ଭାର୍ଯ୍ୟାରେ ଇଚ୍ଛାମାତ୍ର | । | ହେତୁ ହେବ, ସେ କୁଳ-ଗୋତ୍ର | ।। | ୮ |
| | ବିଚାର ନ କରିବେ କେହି | । | କ୍ରୟ-ବିକ୍ରୟାଦିରେ ତହିଁ | ।। | ୯ |
| | କପଟମାତ୍ର ମୂଳ ହେବ | । | ଯେ ସ୍ତିରୀ-ପୁରୁଷଙ୍କ ଭାବ | ।। | ୧୦ |
| | ତହିଁକି ମୂଳ ରତିମାତ୍ର | । | ଲୋଡ଼ା ନୋହିବ କୁଳଗୋତ୍ର | ।। | ୧୧ |
| | ବିପ୍ରତ୍ୱଚିହ୍ନ ସୂତ୍ର ହେବ | । | ଷଟ କର୍ମାଦି ଦୂର ଯିବ | ।। | ୧୨ |
| ୪ | ଯେ ନିଜ ଆଶ୍ରମର ଖ୍ୟାତି | । | ଆଶ୍ରମୁଁ ଯେ ଆଶ୍ରମପ୍ରାପ୍ତି | ।। | ୧୩ |
| | ଦଣ୍ଡ-ଅଜିନାଦିଂ[1] ତହିଁରେ | । | ହେତୁ ହୋଇବ ସେ କାଳରେ | ।। | ୧୪ |
| | ଯେ ଅସମର୍ଥ ମୁଦ୍ରାର୍ପଣେ | । | ନ୍ୟାୟରେ ହାରିବେ ସେମାନେ | ।। | ୧୫ |
| | ପଣ୍ଡିତପଣରେ ନିଦାନ | । | ହୋଇବ ଚପଳ ବଚନ | ।। | ୧୬ |
| ୫ | ଯେ ଚୌର୍ଯ୍ୟ ଆଦି ଦୋଷମାନ | । | ତହିଁ ନିର୍ଧନତ୍ୱ ନିଦାନ | ।। | ୧୭ |
| | ଦମ୍ଭମାତ୍ରକ ସାଧୁତ୍ୱରେ | । | କାରଣ ହେବ ଏ ସଂସାରେ | ।। | ୧୮ |
| | ବିବାହେ ନିଦାନ ସ୍ୱୀକାର | । | ସ୍ନାନମାତ୍ରକ ଅଳଂକାର | ।। | ୧୯ |

୧. ଅଜିନ + ଆଦି (ଅଜିନ = ଚର୍ମ)

| | | | | | |
|---|---|---|---|---|---|
| ୬ | ଦୂରେ ସଲିଳାଶୟ ତୀର୍ଥ | । | ପେଟ ପୋଷିବା ପୁରୁଷାର୍ଥ | ।। | ୨୦ |
| | ଲାବଣ୍ୟେ ଚିକୁର[୧] ଧାରଣ | । | ସତ୍ୟରେ ହେତୁ ଧୃଷ୍ଟପଣ | ।। | ୨୧ |
| | ଚାତୁର୍ଯ୍ୟ କୁଟୁମ୍ବପୋଷଣ | । | ଯଶୋଽର୍ଥେ ଧର୍ମସେବା ପୁଣ | ।। | ୨୨ |
| ୭ | ଏମନ୍ତ ଦୁଷ୍ଟ ପ୍ରଜାକୁଳେ | । | ଯେ ପୂର୍ଣ୍ଣ ସେ କ୍ଷିତିମଣ୍ଡଳେ | ।। | ୨୩ |
| | ବ୍ରାହ୍ମଣ ବୈଶ୍ୟ ଯେହୁ ଦୁଇ | । | କ୍ଷତ୍ରିୟ ଶୂଦ୍ର ଅବା ଯେହି | ।। | ୨୪ |
| | ଏମାନଙ୍କେ ଯେ ବଳବନ୍ତ | । | ନୃପତି ହେବ ସେ ନିୟତ | ।। | ୨୫ |
| ୮ | ଅତ୍ୟନ୍ତ ଲୋଭୀ ଯେ ନୃପତି | । | ନିର୍ଦ୍ଦୟ ଦସ୍ୟୁସମରୀତି | ।। | ୨୬ |
| | ସେମାନେ କରନ୍ତେ ଉଚ୍ଛନ୍ନ[୨] | । | ପ୍ରଜାମାନଙ୍କ ଜାୟାଧନ | ।। | ୨୭ |
| | ସେ ପ୍ରଜାମାନେ ପଳାଇବେ | । | ପର୍ବତେ କାନନେ ପଶିବେ | ।। | ୨୮ |
| ୯ | ଯେ ବା ଆମିଷ ଶାକ ମୂଳ | । | ଯେ ମଧୁ ବୀଜ ପୁଷ୍ପ ଫଳ | ।। | ୨୯ |
| | ଏମାନ କରିବେ ଭୋଜନ | । | ଦୁର୍ଭିକ୍ଷକାଳେ କରମାନ | ।। | ୩୦ |
| | ଦେବାରେ ପୀଡ଼ାଦି ଲଭିବେ | । | ଅନାବୃଷ୍ଟିରେ ନାଶ ଯିବେ | ।। | ୩୧ |
| ୧୦ | ଖରା ବରଷା ଶୀତ ବାତେ | । | ହିମରେ ଅନ୍ୟୋନ୍ୟ ସମସ୍ତେ | ।। | ୩୨ |
| | କ୍ଷୁଧାରେ ବ୍ୟାଧିମାନଙ୍କରେ | । | ତୃଷାରେ ଦୁରନ୍ତ ଚିନ୍ତାରେ | ।। | ୩୩ |
| | ସନ୍ତାପି ହେବେ ଅନୁଦିନେ | । | କଳିକାଳରେ ପ୍ରଜାମାନେ | ।। | ୩୪ |
| ୧୧ | କଳିକାଳରେ ପ୍ରାଣୀଙ୍କର | । | ତିରିଶି ବିଂଶତି ବତ୍ସର | ।। | ୩୫ |
| | ପରମ ଆୟୁଷ ହୋଇବ | । | ବହୁତ କେହି ନ ଜୀଇବ | ।। | ୩୬ |
| ୧୨ \| | କଳିଦୋଷରୁ ପ୍ରାଣୀଙ୍କର | । | କ୍ଷୀଣ ହୁଅନ୍ତେ କଳେବର | ।। | ୩୭ |
| ୧୫ \| | ବର୍ଣ୍ଣ-ଆଶ୍ରମବନ୍ତ ଜନ | । | ଧର୍ମ ହୁଅନ୍ତେ ବିନାଶନ | ।। | ୩୮ |
| | ବେଦମାର୍ଗ ହିଁ ନାଶ ଯାନ୍ତେ | । | ପାଷଣ୍ଡଧର୍ମ ପ୍ରବର୍ତ୍ତନ୍ତେ | ।। | ୩୯ |
| | ଖଣ୍ଡପରାଏ ରାଜାମାନେ | । | ଆଚାର କରନ୍ତେ ଭୁବନେ | ।। | ୪୦ |
| | ଯେ ଚୋରପଣ ମିଥ୍ୟା ଭାଷା | । | ଯେ ପ୍ରାଣୀଙ୍କର ବୃଥା ହିଂସା | ।। | ୪୧ |
| | ଏ ଆଦି ନାନା ବୃତ୍ତିମାନ | । | ମାନବେ କରନ୍ତେ ବିଧାନ | ।। | ୪୨ |
| | ବ୍ରାହ୍ମଣ ବଇଶ୍ୟ କ୍ଷତ୍ରିୟ | । | ହୁଅନ୍ତେ ଶୂଦ୍ରଲୋକପ୍ରାୟ | ।। | ୪୩ |
| | [୩]କ୍ଷୀରରେ ପରିମାଣେ ଗାଈ | । | ହୁଅନ୍ତେ ଛାଗପ୍ରାୟେ ତହିଁ | ।। | ୪୪ |
| | ଋଷିମାନଙ୍କର ଆଶ୍ରମ | । | ହୁଅନ୍ତେ ଗୃହିଗୃହସମ | ।। | ୪୫ |
| | ବାନ୍ଧବଜନମାନେ ଯେହି | । | ହୁଅନ୍ତେ ଯୌନପ୍ରାୟ ସେହି | ।। | ୪୬ |
| | ଅଣୁ[୪] ପରାଏ ଓଷଧିଏ | । | ବୃକ୍ଷେ ହୁଅନ୍ତେ ଶମୀ ପ୍ରାଏ | ।। | ୪୭ |
| | ହୁଅନ୍ତେ ବିଦ୍ୟୁନ୍ମୟ ଘନେ | । | ଧର୍ମାଦିଶୂନ୍ୟ ଗୃହମାନେ | ।। | ୪୮ |
| ୧୬ | ଦୁଃସହ ଚେଷ୍ଟାମାନ ନରେ | । | ଆଚରନ୍ତେ ଏ ଜଗତରେ | ।। | ୪୯ |

୧. ଚିକୁର = କେଶ ।
୨. ମୂଳଶବ୍ଦ ଆଚ୍ଛିନ୍ନ = ଅପହୃତ ।
୩. କ୍ଷୀରତଃ ପ୍ରମାଣତଶ୍ଚ (ସ୍ୱାମୀ) ।
୪. ଶୁଆଁଧାନ ।

ସମାପ୍ତପରାଏ ଏମନ୍ତେ । ସେ କଳିଯୁଗ ହିଁ ହୁଅନ୍ତେ ।। ୫୦
ଧର୍ମ ପାଳିବାକୁ ଶ୍ରୀଧର । ସତ୍ତ୍ୱେ ହୋଇବେ ଅବତାର ।। ୫୧
୧୭ ଯେ ଗୁରୁ ଚର-ଅଚରର । ଯେ ଅଟେ ଈଶ୍ୱର ବିଶ୍ୱର ।। ୫୨
ଯେ ବିଷ୍ଣୁ ହେତୁ ଜଗତର । ତା' ଜନ୍ମ ସାଧୁମାନଙ୍କର ।। ୫୩
ଧର୍ମରକ୍ଷାକୁ ହେତୁ ହୋଏ । ଆବର ମୋକ୍ଷନିମିତ୍ତେହେଁ ।। ୫୪
୧୮ ପ୍ରଧାନ ଯେ ଶମ୍ଭଳ ଗ୍ରାମେ । ମହାତ୍ମା ବିଷ୍ଣୁଯଶା ନାମେ ।। ୫୫
ସେ ଦ୍ୱିଜଭବନରେ ହରି । ଜନ୍ମିବେ କଳ୍କିରୂପ ଧରି ।। ୫୬
୧୯ ଦୁଷ୍ଟଦମନ ବେଗବନ୍ତ । ଯେ ହୟ ଅଟେ ଦେବଦତ୍ତ ।। ୫୭
୨୦ ତାହାକୁ ଆରୋହି ଭ୍ରମଣ । କରନ୍ତେ ପୃଥିବୀରେ ପୁଣ ।। ୫୮
ଯେ ଅଟେ ଅପ୍ରତିମଦ୍ୟୁତି । ସେ ପ୍ରଭୁ ଜଗତର ପତି ।। ୫୯
ଯେ ଅଷ୍ଟୈଶ୍ୱର୍ଯ୍ୟ ଅଣିମାଦି । ଯେ ଗୁଣ ସତ୍ୟସଂକଳ୍ପାଦି ।। ୬୦
ସେମାନଙ୍କରେ ହୋଇ ଯୁତ । ଯେ ରାଜଚିହ୍ନରେ ଆବୃତ ।। ୬୧
ସେ ଦସ୍ୟୁମାନଙ୍କୁ ଶ୍ରୀହରି । ମାରିବେ କୋଟି କୋଟି କରି ।। ୬୨
୨୧ ଅଖିଳଦସ୍ୟୁଜନମାନ । ସେକାଳେ ହୁଅନ୍ତେ ନିଧନ ।। ୬୩
ତଦନ୍ତେ ଜନପଦ-ପୁର । ନିବାସୀ ଜନମାନଙ୍କର ।। ୬୪
ପ୍ରସନ୍ନ ହେବେ ମନମାନେ । ଯେଣୁ ସେମାନେ ଅନୁଦିନେ ।। ୬୫
ସ୍ପରଶ କରିବେ ବିଷ୍ଣୁର । [1]ଅଙ୍ଗଚନ୍ଦନାର୍ଦ୍ର ସମୀର ।। ୬୬
୨୨ ପ୍ରଜାବିସର୍ଗ ତାହାଙ୍କର । ସମ୍ଭବ ହେବ ସ୍ଥୂଳତର ।। ୬୭
ଯେ ଭଗବାନ ସତ୍ତ୍ୱମୂର୍ତ୍ତି । ହୃଦୟେ କରନ୍ତେ ସେ ସ୍ଥିତି ।। ୬୮
୨୩ ଯେବଣ କାଳେ ଧର୍ମପତି । କଳ୍କି ହୋଇବେ ଉତପତି ।। ୬୯
ସେକାଳେ ସତ୍ୟଯୁଗ ହେବ । ସାତ୍ତ୍ୱିକ ପ୍ରଜା ସଂଭବିବ ।। ୭୦
୨୪ ଯେବଣ କାଳେ ପୁଷ୍ୟନାମ । ନକ୍ଷତ୍ରେ ରବି-ଗୁରୁ-ସୋମ ।। ୭୧
ପ୍ରବେଶ ହେବେ ଏକାବେଳେ । ହେବ ସତ୍ୟଯୁଗ ସେକାଳେ ।। ୭୨
୨୫ ଯେ ଅତୀତ ଯେ ବର୍ତ୍ତମାନ । ହୋଇବେ ଯେ ଅବା ରାଜନ ।। ୭୩
ଯେ ଜାତ ସୂର୍ଯ୍ୟସୋମବଂଶେ । ତାହାଙ୍କୁ କହିଲି ଉଦ୍ଦେଶେ ।। ୭୪
୨୬ ତୋ' ଜନ୍ମଠାରୁ ଯେତେ ଦିନେ । ନନ୍ଦାଭିଷେକ ଏ ଭୁବନେ ।। ୭୫
ଏ ପଞ୍ଚଦଶୋତ୍ତର ଶତ । ସହସ୍ରେ ଆବର ଗଣିତ ।। ୭୬
୨୭ ସପତ ଋଷିଙ୍କ ମଧ୍ୟରେ । ପ୍ରଥମ ଉଦୟକାଳରେ ।। ୭୭
୨୮ ଆକାଶେ ଦିଶେ ଉଦେ ହୋଇ । ପୁଲହ କ୍ରତୁ ବେନି ଯେହି ।। ୭୮
ତା' ମଧ୍ୟେ ହୋଏ ଦୃଶ୍ୟମାନ । ଅଶ୍ୱିନ୍ୟାଦି ଯେ ଅନ୍ୟତମ ।। ୭୯
ନକ୍ଷତ୍ର ସମଦେଶସ୍ଥିତ । ଦକ୍ଷିଣୋତ୍ତରରେଖାଗତ ।। ୮୦

୧. ଅଙ୍ଗଚନ୍ଦନଦ୍ୱାରା ଅତି ଶୀତଳ ।

| | | | | | |
|---|---|---|---|---|---|
| | ସେହି ପ୍ରକାରେ ତେଣେ କରି | । | ଯୁକ୍ତ ହୋଇ ହେ ଦଣ୍ଡଧାରି | ॥ | ୮୧ |
| | ଶଏ ବରଷ ନରଙ୍କର | । | ରହନ୍ତି ସେ ଋଷିନିକର | ॥ | ୮୨ |
| | ତୁମ୍ଭ କାଳରେ ସେ ଋଷିଏ | । | ଅଛନ୍ତି ମଘାରେ ଏବେ ହେଁ | ॥ | ୮୩ |
| ୨୯ | ଯେ ବିଷ୍ଣୁ ଭଗବାନ ତା'ର | । | ଶୁଦ୍ଧସତ୍ତ୍ୱ ଯେ କଳେବର | ॥ | ୮୪ |
| | କୃଷ୍ଣନାମରେ ଖ୍ୟାତ ଥିଲେ | । | ସେ ଯେବେ ବଇକୁଣ୍ଠ ଗଲେ | ॥ | ୮୫ |
| | ପ୍ରବେଶ କଳି ସେ କାଳରେ | । | ପାପେ ରମନ୍ତି ଯହିଁ ନରେ | ॥ | ୮୬ |
| ୩୦ | ଯାବତ କାଳ ରମାପତି | । | ଛୁଇଁଣ ଥିଲେ ବସୁମତୀ | ॥ | ୮୭ |
| | ଚରଣପଙ୍କଜବେନିରେ | । | ତାବତ କଳି ଏ ସଂସାରେ | ॥ | ୮୮ |
| | କରିବା ଅର୍ଥେ ପରାଭବ | । | ସମର୍ଥ ନୋହିଥିଲା ପୂର୍ବ | ॥ | ୮୯ |
| | ସଂଧ୍ୟାରୂପରେ କଳିକାଳ | । | ଥିଲା କେବଳ ମହୀତଳ | ॥ | ୯୦ |
| ୩୧ | ଯେବେ ସେ ସପତ ଋଷିଏ | । | ପ୍ରବେଶ ହୋଇଲେ ମଘାଏ | ॥ | ୯୧ |
| | ସେ ଦିନେ ପ୍ରବର୍ତ୍ତିଲା କଳି | । | ସଂଧ୍ୟା ସଂଧ୍ୟାଂଶ ବେନି ମିଳି | ॥ | ୯୨ |
| | ଦେବତାପରିମାଣେ ଯେହି | । | ଦ୍ୱାଦଶ ଶତ ବର୍ଷ ହୋଇ | ॥ | ୯୩ |
| ୩୨ | ମଘାରୁ ଋଷିଏ ସେ ଯେବେ | । | ପୂର୍ବାଷାଢ଼ାକୁ ଯିବେ ତେବେ | ॥ | ୯୪ |
| | ପ୍ରଦ୍ୟୋତନରୁ ଆଦି ହୋଇ | । | ବଢୁଛି ଯେ ବର୍ତ୍ତମାନ ହିଁ | ॥ | ୯୫ |
| | ନନ୍ଦଠାରୁ ଅତିବୃଦ୍ଧିକି | । | ଲଭିବ ସେ କଳି ତେଣିକି | ॥ | ୯୬ |
| ୩୩ | ଯେବେଣ ଦିନରେ ଶ୍ରୀହରି | । | ଗଲେ ସେ ବଇକୁଣ୍ଠ ପୁରୀ | ॥ | ୯୭ |
| | ସେହି ଦିନରେ ସେ କାଳରେ | । | ପ୍ରବେଶ କଳି[1] ଏ ଧରାରେ | ॥ | ୯୮ |
| | ପୂର୍ବଚରିତ ଯେ ଜାଣନ୍ତି | । | ସେମାନେ ଏହା କହିଛନ୍ତି | ॥ | ୯୯ |
| ୩୪ | ଦେବବରଷସହସ୍ରାନ୍ତେ | । | ଏ କଳି ସଂପୂର୍ଣ୍ଣ ହୁଅନ୍ତେ | ॥ | ୧୦୦ |
| | ପୁଣି ହିଁ ସତ୍ୟଯୁଗ ଯେବେ | । | ପ୍ରବେଶ ହୋଇବ ସେ ତେବେ | ॥ | ୧୦୧ |
| | ମନ ମାନବମାନଙ୍କର | । | ହେବ ଆତ୍ମପ୍ରକାଶକର | ॥ | ୧୦୨ |
| ୩୫ | ଏ ମନୁବଂଶ ଏପ୍ରକାରେ | । | ଯେମନ୍ତ ଗଣିଲି ମହୀରେ | ॥ | ୧୦୩ |
| | ସେହି ପ୍ରକାରେ ଶୂଦ୍ର ବୈଶ୍ୟ | । | ବ୍ରାହ୍ମଣମାନଙ୍କର ବଂଶ | ॥ | ୧୦୪ |
| | ପ୍ରତିଯୁଗରେ ତା' ଜାଣିବ | । | କେ ଉଚ୍ଚ କେ ବା ନୀଚ ହେବ | ॥ | ୧୦୫ |
| ୩୬ | ନାମମାତ୍ରକ ଚିହ୍ନ ହୋଇ | । | ଅଛଇ ଯାହାଙ୍କର ରହି | ॥ | ୧୦୬ |
| | ଏମାନେ ମହାତ୍ମା ପୁରୁଷ | । | କଥାମାତ୍ର ଯା' ଅବଶେଷ | ॥ | ୧୦୭ |
| | ରାଜ୍ୟ ପୁତ୍ରାଦି କେହି ନାହିଁ | । | କୀର୍ତ୍ତିମାତ୍ରକ ଅଛି ରହି | ॥ | ୧୦୮ |
| ୩୭ | ଦେବାପି ଯେ ସୋମବଂଶଜ | । | ଶାନ୍ତନୁନୃପତି ଅନୁଜ | ॥ | ୧୦୯ |
| | ଇକ୍ଷ୍ୱାକୁ ବଂଶେ ଯେ ଜନମ | । | ଯାହାର ଅଟେ ମରୁ ନାମ | ॥ | ୧୧୦ |
| | ମହତ ଯୋଗ-ବଳଯୁତ | । | କଳାପଗ୍ରାମରେ ଯେ ସ୍ଥିତ | ॥ | ୧୧୧ |

୧. କଳିଯୁଗ ।

| | | | | |
|---|---|---|---|---|
| ୩୮ | କଳିର ଅନ୍ତରେ ସେ ଦୁଇ | । ବିଷ୍ଣୁର ଠାରୁ ଶିକ୍ଷା ପାଇ | ।। | ୧୧୨ |
| | ବର୍ଣ୍ଣ-ଆଶ୍ରମେ ଯୁକ୍ତ ହୋଇ | । ଯେ ଧର୍ମ ପୂର୍ବପ୍ରାୟ ତାହି | ।। | ୧୧୩ |
| | ପ୍ରବର୍ତ୍ତାଇବେ ଜଗତରେ | । ଲୋକମାନଙ୍କର ହିତରେ | ।। | ୧୧୪ |
| ୩୯ | ସତ୍ୟଯୁଗ ତ୍ରେତା ଦ୍ୱାପର | । କଳିନାମରେ ଯୁଗସାର | ।। | ୧୧୫ |
| | ଏ ରୂପେ ଯେହ୍ନୁ ଯୁଗ ଚାରି | । ସେ ସେହି କ୍ରମଯୁଗ କରି | ।। | ୧୧୬ |
| | ବର୍ତ୍ତିଅଛନ୍ତି ପ୍ରାଣିଠାରେ | । ଏ ବସୁମତୀମଣ୍ଡଳରେ | ।। | ୧୧୭ |
| ୪୦ | ହେ ନୃପ ! ତୋହର ଅଗ୍ରତେ | । କହିଲି ମୁଁ ଏ ନୃପ ଯେତେ | ।। | ୧୧୮ |
| | ଆନମାନେ ହେଁ ସେ ରୂପରେ | । ମମତା କରିଣ ଭୂମିରେ | ।। | ୧୧୯ |
| | ଅନ୍ତେ ଏ ଭୂମିକି ଛାଡ଼ିଣ | । ସେମାନେ ଲଭିଲେ ମରଣ | ।। | ୧୨୦ |
| ୪୧ | ବହିଥିଲେ ହେଁ ରାଜନାମ | । ଅନ୍ତରେ କୃମି ବିଷ୍ଠା ଭସ୍ମ | ।। | ୧୨୧ |
| | ଏ ସଂଜ୍ଞା ଲଭଇ ଯେ ଦେହ | । ତାର ନିମିତ୍ତେ ପ୍ରାଣିଦ୍ରୋହ | ।। | ୧୨୨ |
| | କରନ୍ତି ଏଥି ଯେଉଁ ଜନେ | । ସ୍ୱାର୍ଥ କି ଜାଣନ୍ତି ସେମାନେ | ।। | ୧୨୩ |
| | କରନ୍ତେ ଯେଉଁ ପ୍ରାଣିଦ୍ରୋହ | । ତହିଁରୁ ହୁଅଇ ନିରୟ[1] | ।। | ୧୨୪ |
| ୪୨ | ମୋ ପୂର୍ବପୁରୁଷେ ଯେ ଧୃତ | । ଅଖଣ୍ଡ ମହୀ ଏ ନିୟତ | ।। | ୧୨୫ |
| | ଯାହାର ମୁଁ ପୂର୍ବ ହୋଇବି | । ଏବେ ଏରୂପେ ସେ ପୃଥିବୀ | ।। | ୧୨୬ |
| | ଯେ ମୋର ପୌତ୍ର ଯେ କୁମର | । ମୋ ବଂଶେ ଜନ୍ମିବେ ଆବର | ।। | ୧୨୭ |
| | କି ରୂପେ ତାହାଙ୍କର ହେବ | । ଏରୂପେ ଯେଉଁ ମମ ଭାବ | ।। | ୧୨୮ |
| | ତେମନ୍ତ ରୂପରେ ଘେନିଣ | । ଅବନିମଣ୍ଡଳକୁ ପୁଣ | ।। | ୧୨୯ |
| ୪୩ | ତେଜ-ସଲିଳ-ଅନ୍ନମୟ | । ଏମନ୍ତ ଅଟଇ ଯେ କାୟ | ।। | ୧୩୦ |
| | ଆତ୍ମଭାବରେ ତାକୁ ଘେନି | । ଆବର ଯେ ନିଜ ଅବନି | ।। | ୧୩୧ |
| | ତାହାକୁ ମମତ୍ୱରେ ଘେନି | । କାଳରେ ତେଜିଣ ସେ ବେନି | ।। | ୧୩୨ |
| | ଅଜ୍ଞାନବନ୍ତମାନେ ପୁଣ | । ନିଶ୍ଚୟେ ଲଭିଲେ ମରଣ | ।। | ୧୩୩ |
| ୪୪ | ଯେବଣ ଯେବଣ ଭୂପତି | । ବଳେ ଅବନିକି ଭୁଂଜନ୍ତି | ।। | ୧୩୪ |
| | ସେ ସମସ୍ତଙ୍କୁ କଲା କାଳ | । କଥାରେ ଶେଷ ସେ କେବଳ | ।। | ୧୩୫ |
| | ଶ୍ରୀକୃଷ୍ଣଚରଣପଙ୍କଜ | । ଚିନ୍ତଇ ଦୀନବନ୍ଧୁ ଦ୍ୱିଜ | ।। | ୧୩୬ |
| | ଆସ୍ୱାଦି ଭାଗବତରସ | । ହରଷ ଜୟରାମ ଦାସ | ।। | ୧୩୭ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ କଳିଧର୍ମୋ
ନାମ ଦ୍ୱିତୀୟୋଽଧ୍ୟାୟଃ ।।

---

୧. ନରକ ।

# ତୃତୀୟ ଅଧ୍ୟାୟ

ତୃତୀୟେ ଭୂମିଗୀତୈଶ୍ଚ ରାଜ୍ୟଦୋଷାଦି ବର୍ଣ୍ଣ୍ୟତେ ।
କଲୌ ଚ ଦୋଷଭୂୟିଷ୍ଠେ ଦୋଷହନ୍ତ୍ରୀ ହରେର୍ନତିଃ ॥

ଶ୍ରୀଶୁକ ଉବାଚ

୧ ଆପଣାଠାରେ ନୃପତିଙ୍କି । ଜୟ-ଉଦ୍ୟୋଗରତ ଦେଖି ॥ ୧
ଏରୂପେ ହସୁଛି ଏ ମହୀ । ମୃତ୍ୟୁର କ୍ରୀଡ଼ନକ ହୋଇ ॥ ୨
ଅହୋ ! ନୃପତିମାନେ ମୋତେ । ବାଞ୍ଛନ୍ତି ଜିଣିମାକୁ ଚିତ୍ତେ ॥ ୩
୨ ଯେଉଁ କାମରେ ନୃପତିଏ । ଫେନ-ଉପମ ନିଜ କାୟେ ॥ ୪
ଏ ନିତ୍ୟ ବୋଲିଣ ବିଶ୍ୱାସ । କରିଣ ଅଛନ୍ତି ଅନିଶ[1] ॥ ୫
ଜ୍ଞାନୀ ହେଲେହେଁ ତାହାଙ୍କର । ସେ କାମ ହୋଏ ବ୍ୟର୍ଥତର ॥ ୬
୩ ଇନ୍ଦ୍ରିୟଲଂପଟ ଲୋକର । ରାଜ୍ୟପ୍ରାପତି ଅତି ଦୂର ॥ ୭
ଏଣୁ ଇନ୍ଦ୍ରିୟଙ୍କୁ ପୂର୍ବରୁ । ଜିଣିମା ଭଲେ, ତଦୁତ୍ତାରୁ ॥ ୮
ମନ୍ତ୍ରୀଙ୍କି କରିବା ଆୟତ୍ତ । ତଦନ୍ତେ ସଚିବ ଆପତ ॥ ୯
ପୌର ହସ୍ତିପ ଏ ଆଦିଙ୍କି । ଜିଣିମା ତଦନ୍ତେ ବାଦୀଙ୍କି ॥ ୧୦
୪ ଏକ୍ରମେ ସମୁଦ୍ରାନ୍ତ[2] ମହୀ । ଜିଣିମା ଏ ଆଶାରେ କେହି ॥ ୧୧
ବଦ୍ଧହୃଦୟ ଆପଣାର । ମୃତ୍ୟୁ ନ କରନ୍ତି ଗୋଚର ॥ ୧୨
୫ ଏମନ୍ତ କେହି ନରନାଥେ । ସମୁଦ୍ରାବରଣା[3] ମୁଁ ମୋତେ ॥ ୧୩
ଜିଣିଣ ନିଜ ଭୁଜବଳେ । ପଶନ୍ତି ଯାଇ ସିନ୍ଧୁଜଳେ ॥ ୧୪
ଏମନ୍ତେ ଜିଣି ଇନ୍ଦ୍ରିୟଙ୍କୁ । ଯେ ବାଞ୍ଛେ ରାଜ୍ୟ ସାଧିବାକୁ ॥ ୧୫
ସେ ଅଟେ ଅତିମନ୍ଦ ନର । [4]ଏ କେତେ ଆତ୍ମସଂଯମର ॥ ୧୬
ଯେ ଆତ୍ମସଂଯମେ ମୁକତି । ଫଳରୂପରେ ଲଭେ ଖ୍ୟାତି ॥ ୧୭
୬ ଯେ ମନୁ ଯେ ବା ତାଙ୍କ ସୁତେ । ଯାହାକୁ ତେଜି ସେ ସମସ୍ତେ ॥ ୧୮
ଯୁଦ୍ଧରେ ଗଲେ ଯଥାଗତେ । ଏମନ୍ତ ଅଟେ ଯେ ମୁଁ ମୋତେ ॥ ୧୯
ଜିଣିମେ ଯେ ବୁଦ୍ଧିବିହୀନ । ଅଟନ୍ତି ନରପତିମାନ ॥ ୨୦
୭ ଯେ ରାଜ୍ୟେ ମମତାରେ ଚିତ୍ତ । ବଦ୍ଧ କରନ୍ତି, ଯେ ଅସନ୍ତ ॥ ୨୧
ମୋ ପାଇଁ ପିତାର ପୁତ୍ରର । ବିଗ୍ରହ ହୋଏ ଭ୍ରାତାଙ୍କର ॥ ୨୨
୮ ଏ ମହୀ ସମସ୍ତ ମୋହର । ରେ ମୂଢ଼ ନୁହଇ ତୋହର ॥ ୨୩
ଏମନ୍ତ ବଚନ ବୋଲନ୍ତି । ଅତ୍ୟନ୍ତ ସ୍ପର୍ଧାରେ ନୃପତି ॥ ୨୪
ଅନ୍ୟୋନ୍ୟେ ନିଧନ କରନ୍ତି । ମୋହର ନିମିତ୍ତେ ମରନ୍ତି ॥ ୨୫

---

୧. ସର୍ବଦା ।  ୨. ସମୁଦ୍ର ଅନ୍ତ ଯାହାର (ସେଇ ମହୀ) ।
୩. ସମୁଦ୍ର ଆବରଣ (ପରଦା) ଯାହାର (ସେଇ ମହୀ) ।
୪. ଆତ୍ମସଂଯମର ଏହି ଫଳ କେତେ ମାତ୍ର ?

୯ ଯେ ପୃଥୁ ପୁରୂରବା ଆନ । ଯେ ଗାଧି ନହୁଷ ଅର୍ଜୁନ ॥ ୨୬
ଭରତ, ମାନ୍ଧାତା, ସଗର । ରାମ ଖଟ୍ୱାଙ୍ଗ ରଘୁ ଆର ॥ ୨୭
୧୨ ଧୁନ୍ଧୁହା ଶନ୍ତନୁ ଯଯାତି । ଗୟ ତୃଣବିନ୍ଦୁ ଶର୍ଯ୍ୟାତି ॥ ୨୮
କୁବଳୟାଶ୍ୱ ଭଗୀରଥ । ଯେ ନୃଗ ନୈଷଧ କକୁତ୍‌ସ୍ଥ ॥ ୨୯
ହିରଣ୍ୟକଶିପୁ ତାରକ । ଯେ ହିରଣ୍ୟାକ୍ଷ ଯେ ନରକ ॥ ୩୦
ଯେ ଲୋକରାବଣ ରାବଣ । ନମୁଚି ଶମ୍ବର ଯେ ପୁଣ ॥ ୩୧
ଅସୁର ଯେ ବୃତ୍ର ନାମରେ । ଆନ ଯେ ଦିତିର କୁମରେ ॥ ୩୨
ଆବର ବହୁତ ନୃପତି । ମୋହର ଯେଉଁମାନେ ପତି ॥ ୩୩
ସମସ୍ତେ ସମସ୍ତ ଜାଣନ୍ତି । ସମସ୍ତେ ସମସ୍ତ ଜିଣନ୍ତି ॥ ୩୪
ଯେ ଶୂରେ ପରରେ ଅଜିତ । ଯେହୁ ମରଣଧର୍ମବନ୍ତ ॥ ୩୫
୧୩ ମୋହର ବିଷୟରେ ପୁଣ । ଅତ୍ୟନ୍ତ ମମତା କରିଣ ॥ ୩୬
ଯେ ପୂର୍ବକାଳେ ବର୍ତ୍ତିଥିଲେ । କାଳେ ସେ କଥାଶେଷ ହେଲେ ॥ ୩୭
ପୂରି ନ ଥିଲା ମନୋରଥ । ତାହାଙ୍କର ହେ ନରନାଥ ॥ ୩୮
୧୪ [୧]ବିଷୟ-ଅସାରତା-ଜ୍ଞାନ । ଯେ ବଇରାଗ୍ୟ ହେ ରାଜନ ॥ ୩୯
ସେ ବେନି କହିବା ଇଚ୍ଛାରେ । ମୁଁ ଏବେ ତୋହର ଆଗରେ ॥ ୪୦
ସେ ମହାରାଜାମାନଙ୍କର । ଏ କଥା କଲଇଁ ଗୋଚର ॥ ୪୧
ବଚନବିଳାସମାତ୍ର ଏ । ପରମାର୍ଥରେ ଯୁକ୍ତ ନୋହେ ॥ ୪୨
ଯଉଁ ମହତ ନୃପମାନେ । ବିସ୍ତାରି ଯଶ ଏ ଭୁବନେ ॥ ୪୩
ଏ ମହୀମଣ୍ଡଳ ତେଜିଣ । ପରଲୋକକୁ ଗଲେ ପୁଣ ॥ ୪୪
୧୫ ଯେ କୃଷ୍ଣଗୁଣାନୁବାଦନ । ନାଶଇ ଅମଙ୍ଗଳମାନ ॥ ୪୫
ଉତ୍ତମ କରି ଯା' ଗାୟନ । କରନ୍ତି ସଦା ସାଧୁଜନ ॥ ୪୬
ନିର୍ମଳ ଭକ୍ତି କୃଷ୍ଣଠାରେ । ଯେ ଲୋକ ବାଞ୍ଛଇ ମନରେ ॥ ୪୭
ଅନବରତ ତା' ଶ୍ରବଣ । କରିବ ସେହୁ ନିତ୍ୟେ ପୁଣ ॥ ୪୮

ଶ୍ରୀରାଜା ଉବାଚ

୧୬ କଳିଦୋଷର ଉପଚୟେ । ଭକ୍ତି ନ ଉପୁଜେ କେବେହେଁ ॥ ୪୯
ଭୋ ମୁନି କଉଁ ଉପାୟରେ । ଏ କଳିଦୋଷକୁ କଳିରେ ॥ ୫୦
ନାଶିବେ ଜନେ ତାହା କହ । ଯଥାର୍ଥେ ଫିଟୁ ମୋ' ସନ୍ଦେହ ॥ ୫୧
୧୭ ଯେ ଯୁଗ ଯୁଗଧର୍ମ ଆର । ତାହା କହ ହେ ମୁନିବର ॥ ୫୨
ସଂସାରସ୍ଥିତି-ପ୍ରଳୟର । କହ ପରିମାଣ ଆବର ॥ ୫୩
ଯେ ବା ଆତ୍ୟନ୍ତିକ ପ୍ରଳୟ । ଜାଣିବା ପାଇଁ ସେ ବିଷୟ ॥ ୫୪
ଇଚ୍ଛା ହେଉଅଛି ମୋହର । କହି ଆମ୍ଭଙ୍କୁ ଧନ୍ୟ କର ॥ ୫୫

---

୧. ବିଜ୍ଞାନ ଶବ୍ଦର ଟୀକା ।

| | | | | | |
|---|---|---|---|---|---|
| | ଏ ନୋହେ କୃଷ୍ଣକଥାଭିନ୍ନ | । | ଯେଣୁ କାଳଟି ଭଗବାନ | ॥ | ୫୬ |
| | ଯେ ବିଷ୍ଣୁ ମହାତ୍ମା ଅଟନ୍ତି | । | କହ ହେ ମୁନି ତାଙ୍କ ଗତି | ॥ | ୫୭ |

ଶ୍ରୀଶୁକ ଉବାଚ

| | | | | | |
|---|---|---|---|---|---|
| ୧୮ | ସତ୍ୟଯୁଗରେ ପ୍ରବର୍ତ୍ତଇ | । | ଧର୍ମ ଯେ ଚାରିପାଦ ହୋଇ | ॥ | ୫୮ |
| | ସେ ଧର୍ମ କରନ୍ତି ପାଳନ | । | ସେହି ଯୁଗର ଯେତେ ଜନ | ॥ | ୫୯ |
| | ସତ୍ୟ କରୁଣା ତପ ଦାନ[୧] | । | ଏ ରୂପେ ଯଉଁ ପାଦମାନ | ॥ | ୬୦ |
| | ସେମାନେ ଆହେ ନୃପବର | । | ଅଟନ୍ତି ସଂପୂର୍ଣ୍ଣ ଧର୍ମର | ॥ | ୬୧ |
| ୧୯ | ବହୁତ ସେଯୁଗର ଜନ | । | କରୁଣାବନ୍ତ ତୁଷ୍ଟମନ | ॥ | ୬୨ |
| | ପ୍ରାଣିମାତ୍ରରେ ମୈତ୍ରୀଯୁକ୍ତ | । | ଅଧ୍ୟାତ୍ମବିଦ୍ୟାରେ ନିରତ | ॥ | ୬୩ |
| | ସମଦରଶୀ ଆତ୍ମରତ | । | ସଂଯତ ଶାନ୍ତ କ୍ଷମାବନ୍ତ | ॥ | ୬୪ |
| ୨୦ | ଯେ ସତ୍ୟ, ଦୟା ତପ ଦାନ | । | ଅଟନ୍ତି ଧର୍ମପାଦମାନ | ॥ | ୬୫ |
| | ତ୍ରେତାରେ ତାଙ୍କ ଚତୁର୍ଥାଂଶ | । | ଅଧର୍ମପାଦେ ହୋଏ ନାଶ | ॥ | ୬୬ |
| | ଅନୃତ ହିଂସା ଅସନ୍ତୋଷ | । | ବିଗ୍ରହରୂପେ ଯେ ପ୍ରକାଶ | ॥ | ୬୭ |
| | ଅଧର୍ମପାଦମାନ ଏହି | । | ଅନୃତେ ସତ୍ୟ ନାଶ ଯାଇ | ॥ | ୬୮ |
| | ଦୟାକୁ ହିଂସା କରେ ନାଶ | । | ତପକୁ ନାଶେ ଅସନ୍ତୋଷ | ॥ | ୬୯ |
| | ଯେ ଦାନରୂପେ ପାଦ ଆନ | । | ବିଗ୍ରହ କରେ ତା' ନିଧନ | ॥ | ୭୦ |
| ୨୧ | ହେ ନରନାଥ ସେହୁ ଦିନେ | । | ବ୍ରାହ୍ମଣାଧିକ ବର୍ଣ୍ଣମାନେ | ॥ | ୭୧ |
| | କରନ୍ତି ତ୍ରିବର୍ଗ[୨] ସେବନ | । | ବର୍ଜନ୍ତି ହିଂସ୍ରକର୍ମମାନ | ॥ | ୭୨ |
| | ସକଳେ କ୍ରିୟାତପୋନିଷ୍ଠ | । | ବେଦପ୍ରବୃଦ୍ଧ ଅଲମ୍ପଟ | ॥ | ୭୩ |
| ୨୨ | ଅଧର୍ମଲିଙ୍ଗ[୩] ଅସନ୍ତୋଷ | । | ଯେ ହିଂସା ଅନୃତ ବିଦ୍ୱେଷ | ॥ | ୭୪ |
| | ଧର୍ମାଂଶ ତପ-ଦୟା-ସତ୍ୟ | । | ଦାନରୂପରେ ଯେ ବିଦିତ | ॥ | ୭୫ |
| | ଦ୍ୱାପର ହୁଅନ୍ତେ ପ୍ରବେଶ | । | ଅର୍ଦ୍ଧେ ହୁଅଇ ତହୁଁ ନାଶ | ॥ | ୭୬ |
| ୨୩ | ସ୍ୱାଧ୍ୟାୟ-ଅଧ୍ୟୟନେ ରତ | । | ମହତଶୀଳ ଯଶୋବନ୍ତ | ॥ | ୭୭ |
| | କୁଟୁମ୍ବବନ୍ତ ଧନୀ ହୃଷ୍ଟ | । | ବ୍ରାହ୍ମଣ-କ୍ଷତ୍ରିୟ ଉତ୍କୃଷ୍ଟ | ॥ | ୭୮ |
| ୨୪ | ଧର୍ମର ପାଦୁଁ ଅବଶେଷ | । | ହେବ କଳିରେ ଚତୁର୍ଥାଂଶ | ॥ | ୭୯ |
| | ଅଧର୍ମହେତୁ ଯଉଁମାନେ | । | ବଢ଼ନ୍ତେ ସେହୁ ଦିନେ ଦିନେ | ॥ | ୮୦ |
| | ପ୍ରାନ୍ତସମୟକୁ ବିନାଶ | । | ହେବ ପୁଣ ସେ ଚତୁର୍ଥାଂଶ | ॥ | ୮୧ |
| ୨୫ | ସେ କଳିଯୁଗେ ପ୍ରଜାମାନେ | । | ଶୂଦ୍ର-କୈବର୍ତ୍ତାଦି ପ୍ରଧାନେ | ॥ | ୮୨ |
| | ଶୁଷ୍କବଇର ଦୁରାଚାର | । | ଲୁବୁଧ ନିର୍ଦ୍ଦୟ ଆବର | ॥ | ୮୩ |
| | ଅତିମାତ୍ରାରେ କାମବନ୍ତ | । | ଆବର ଭାଗ୍ୟରୁ ରହିତ | ॥ | ୮୪ |
| ୨୬ | ଯେ ସତ୍ତ୍ୱ-ରଜ-ତମୋଗୁଣ | । | ପୁରୁଷଠାରେ ଦେଖି ପୁଣ | ॥ | ୮୫ |

୧. ରାଗ-ଦ୍ୱେଷରହିତ ଅଭୟଦାନ ଯାହାକୁ ୧ମ ସ୍କନ୍ଧରେ 'ଶୌଚ' କୁହାଯାଇଛି ।

୨. ଧର୍ମ, ଅର୍ଥ ଓ କାମ । ୩. ପାଦ, ଚିହ୍ନ, ଲକ୍ଷଣ ।

କାଳରେ ହୋଇ ସେ ପ୍ରେରିତ । ଆତ୍ମାରେ ହୋଏ ପରିବର୍ତ୍ତ ॥ ୮୬
୨୭ ଇନ୍ଦ୍ରିୟ ବୁଦ୍ଧି ମନ ଯେବେ । ପ୍ରାଣିର ସତ୍ତ୍ୱରେ ପ୍ରଭବେ[1] ॥ ୮୭
ଜାଣିମ ସତ୍ୟଯୁଗ ସେହି । ଜ୍ଞାନେ ତପରେ ରୁଚି ଯେହି ॥ ୮୮
୨୮ ପ୍ରାଣୀଙ୍କ ପୀରିତି ଯଶରେ । କାମ୍ୟ କରମମାନଙ୍କରେ ॥ ୮୯
ଯେବେ ହୁଅଇ ତେବେ ସେହି । ରଜଃପ୍ରଧାନ ତ୍ରେତା ହୋଇ ॥ ୯୦
ହେ ବୁଦ୍ଧିମନ୍ତ ପରୀକ୍ଷିତ । ଏମନ୍ତ ଜାଣ ତୁ ନିୟତ ॥ ୯୧
୨୯ ଯଉଁ କାଳରେ ପ୍ରାଣୀଙ୍କର । ଲୋଭ ଅସନ୍ତୋଷ ମତ୍ସର ॥ ୯୨
ମାନ ଦମ୍ଭ ହିଁ ଉପୁଜଇ । କାମ୍ୟ କର୍ମରେ ପ୍ରୀତି ହୋଇ ॥ ୯୩
ଦ୍ୱାପର ଯୁଗ ତେବେ ହୋଇ । ପ୍ରଧାନ ରଜ-ତମ ଯହିଁ ॥ ୯୪
୩୦ ଯେବେ ଅନୃତ ମାୟା ତନ୍ଦ୍ରା । ବିଷାଦ ଶୋକ ମୋହ ନିଦ୍ରା ॥ ୯୫
ଉପୁଜେ ଦୈନ୍ୟ-ହିଂସା ଭୟେ । ତେବେ ତାମସ କଳି ହୋଏ ॥ ୯୬
୩୧ ଯେହି ହେତୁରୁ ମନ୍ଦମତି । ଜଗତେ ପ୍ରାଣିଏ ହୁଅନ୍ତି ॥ ୯୭
ଅଳପଭାଗ୍ୟ ମହାଶନ[2] । କାମଲଂପଟ ବିତ୍ତହୀନ ॥ ୯୮
ନିଜ ଇଚ୍ଛାକୁ ଆଚରନ୍ତି । ସ୍ତିରୀଏ ଅସତୀ ହୁଅନ୍ତି ॥ ୯୯
୩୨ ଦସ୍ୟୁବହୁଳ ଜନପଦ । ପାଷଣ୍ଡବିଦୂଷିତ ବେଦ ॥ ୧୦୦
ପ୍ରଜାଙ୍କ ନାଶେ ତତପର । ନୃପତି ହେବେ ନିରନ୍ତର ॥ ୧୦୧
ବ୍ରାହ୍ମଣମାନେ ଶିଶ୍ନୋଦର[3] । ସଂତୋଷେ ହୋଇବେ ତତ୍‌ପର ॥ ୧୦୨
୩୩ ଶଉଚ-ଆଚାର ବିହୀନ । ହୋଇବେ ବ୍ରହ୍ମଚାରିମାନ ॥ ୧୦୩
ଭିକ୍ଷାର ନିମିତ୍ତେ ଭ୍ରମିବେ । ଗୃହସ୍ଥେ ଭିକ୍ଷା ହିଁ ନ ଦେବେ ॥ ୧୦୪
ବନସ୍ଥେ ଗ୍ରାମରେ ରହିବେ । ଯତିଏ ଅତିଲୋଭୀ ହେବେ ॥ ୧୦୫
୩୪ ଖର୍ବ ହେଲେହେଁ କଳେବର । କରିବେ ବହୁତ ଆହାର ॥ ୧୦୬
ଆପଣେ ଲଜ୍ଜାକୁ ତେଜିବେ । ବହୁତ ସୁତ ପ୍ରସବିବେ ॥ ୧୦୭
ନିତ୍ୟେ କହିବେ କଟୁକଥା । କରିବେ ଚଉର୍ଯ୍ୟ ସର୍ବଥା ॥ ୧୦୮
ସ୍ତିରୀଏ କପଟ କରିବେ । ବଡ଼ ସାହସ ଆଚରିବେ ॥ ୧୦୯
୩୫ କ୍ରୟବିକ୍ରୟ ବ୍ୟବହାର । ପ୍ରବର୍ତ୍ତାଇବେ କ୍ଷୁଦ୍ର ନର ॥ ୧୧୦
ଯେ ପୁଣ ବଣିଜାର ଜନ । କରିବେ ସେ କପଟମାନ ॥ ୧୧୧
ନିନ୍ଦିତ ଯେ ଜୀବିକାମାନ । ଉତ୍ତମ କରି ତାହା ଜନ ॥ ୧୧୨
ମନେ ଘେନିବେ ନିଃସନ୍ଦେହେ । ବିପତ୍ତି ନ ଥିବା କାଳେ ହେଁ ॥ ୧୧୩
୩୬ ଅଖିଳ-ଉତ୍ତମ ସ୍ୱାମୀକି । ଭୃତ୍ୟେ ତେଜିବେ ରଙ୍କ ଦେଖି ॥ ୧୧୪
ରୋଗ ଆଦିରେ ଅଶକତ । ସୁକୁଳପରଂପରାୟାତ[4] ॥ ୧୧୫
ଭୃତ୍ୟକୁ ସ୍ୱାମୀଏ ତେଜିବେ । ଗାଈଙ୍କୁ ଦୁଗ୍ଧହୀନ ଯେବେ ॥ ୧୧୬

---

୧. ହୁଏ । ୨. ମହାଶନ = ବହୁ-ଆହାରୀ । ୩. ଶିଶ୍ନ + ଉଦର = ଲିଙ୍ଗ + ପେଟ ।
୪. ଉତ୍ତମ କୁଳର ପରଂପରାରେ ଆଗତ ।

୩୭ ସ୍ତିରୀଲମ୍ପଟ ଅତିଦୀନ । କଳିଯୁଗରେ ସର୍ବଜନ ।। ୧୧୭
ଯେ ଜ୍ଞାତି-ସୁହୃଦ-ପିଅର । ଯେ ଭ୍ରାତା ତାଙ୍କୁ କରି ଦୂର ।। ୧୧୮
ଯେ ଭାଇ-ଭଉଣୀ ଭାର୍ଯ୍ୟାର । ତା' ସଙ୍ଗେ କରିବେ ବିଚାର ।। ୧୧୯
ସୁରତ ଅର୍ଥେ ମିତ୍ରପଣ । ସେମାନଙ୍କର ଅଟେ ପୁଣ ।। ୧୨୦
୩୮ ତପସ୍ୟାବେଷ ଅଟେ ଯେହି । ଉପଜୀବିକା କରି ତାହି ।। ୧୨୧
ଯେ ଶୂଦ୍ରମାନେ ସଂଭବିବେ । ସେ ପ୍ରତିଗ୍ରହକୁ କରିବେ ।। ୧୨୨
ଧର୍ମ ନ ଜାଣନ୍ତି ଯେ ଜନେ । ସେ ବସି ଉତ୍ତମ ଆସନେ ।। ୧୨୩
ଯେ ଅଟେ ଧର୍ମକଥାମାନ । ତାହା ସେ କରିବେ ବ୍ୟାଖ୍ୟାନ ।। ୧୨୪
୩୯ ଅନ୍ନରେ ଅଟେ ଯେ ବିହୀନ । ସେ ମହୀତଳେ ହେ ରାଜନ ।। ୧୨୫
୪୦ ଅନାବୃଷ୍ଟିରେ ନିରନ୍ତର । ହୋଇଥିବେ ଯେ ଭୟାତୁର ।। ୧୨୬
ସତତ ଉଦ୍‌ବିଗ୍ନମାନସ । ଦୁର୍ଭିକ୍ଷ-କରେ ହୋଇ କୃଶ ।। ୧୨୭
ଶୟନ-ବାସ-ଅନ୍ନ-ପାନ । ସୁରତ-ଭୂଷଣ ଯେ ସ୍ନାନ ।। ୧୨୮
ବିହୀନ ହୋଇ ଏମାନଙ୍କେ । କଳିଯୁଗରେ ସର୍ବଲୋକେ ।। ୧୨୯
ପିଶାଚମାନଙ୍କ ପରାଏ । ଦିଶିବେ ଭୟଙ୍କରକାୟେ ।। ୧୩୦
୪୧ ବୋଡ଼ିକ[୧] ମାତ୍ରକ ଅର୍ଥରେ । ବିଗ୍ରହ କରିଣ କଳିରେ ।। ୧୩୧
ସୁହୃଦଭାବ ଛାଡ଼ି ତହିଁ । ମାରିବେ ନିଜଜନକୁ ହିଁ ।। ୧୩୨
ଅତ୍ୟନ୍ତପ୍ରିୟ ଯେଉଁ ପ୍ରାଣ । ତ୍ୟାଗ କରିବେ ତାକୁ ପୁଣ ।। ୧୩୩
୪୨ ଯେ ବୃଦ୍ଧ ଜନନୀ ଜନକ । ତାଙ୍କୁ ହିଁ ନ ପାଳିବେ ଲୋକ ।। ୧୩୪
କୁଳଜ ଭାର୍ଯ୍ୟା ପୁତ୍ର ଯେହି । କ୍ଷୁଦ୍ରେ ନ ପାଳିବେ ତାଙ୍କୁ ହିଁ ।। ୧୩୫
ଶିଶ୍ନ-ଉଦର ବେନିଙ୍କର । ପୋଷଣେ ହୋଇବେ ତତ୍‌ପର ।। ୧୩୬
୪୩ ଯେ ଶ୍ରେଷ୍ଠ ଗୁରୁ ଜଗତର । ତ୍ରିଲୋକନାଥଙ୍କରେ ଯା'ର ।। ୧୩୭
ଚରଣପଙ୍କଜ ବନ୍ଦିତ । ଯେହୁ ଅଚ୍ୟୁତ ଭଗବନ୍ତ ।। ୧୩୮
ଏମନ୍ତ ବିଷ୍ଣୁଙ୍କୁ ପୂଜନ । ବହୁତ ନ କରିବେ ଜନ ।। ୧୩୯
କଳିଯୁଗରେ ହେ ନୃପତି । [୨]ହୋଇ ପାଷଣ୍ଡଭିନ୍ନମତି ।। ୧୪୦
୪୪ ଆତୁର ହୋଇଣ ମରନ୍ତେ । ଅଥବା ପଡ଼ନ୍ତେ ସ୍ଖଳନ୍ତେ ।। ୧୪୧
ବିବଶ ହୋଇଣ ଯାହାର । ନାମକୁ ଉଚ୍ଚାରନ୍ତେ ନର ।। ୧୪୨
କର୍ମବନ୍ଧରୁ ମୁକ୍ତ ହୋଇ । ଉତ୍ତମ ଗତିକି ଲଭଇ ।। ୧୪୩
ସେ ମହାପ୍ରଭୁଙ୍କୁ କଳିରେ । ପୂଜନ ନ କରିବେ ନରେ ।। ୧୪୪
୪୫ ଯେ ଦ୍ରବ୍ୟ-ଦେଶାତ୍ମସଂଭୂତ । ପ୍ରାଣୀଙ୍କ ଦୋଷ କଳିକୃତ ।। ୧୪୫
ବିନାଶନ୍ତି ସେ ଦୋଷମାନ । ହୃଦରେ ଥାଇ ଭଗବାନ ।। ୧୪୬
୪୬ ଶ୍ରବଣ ସଂକୀର୍ତ୍ତନ ଧ୍ୟାନ । ଆଦର ଅଥବା ପୂଜନ ।। ୧୪୭

---

୧. ବୋଡ଼ି = କଉଡ଼ି ।
୨. କଳିଯୁଗରେ ଲୋକଙ୍କ ମତିକୁ ବେଦବିରୋଧୀ ପାଷଣ୍ଡମାନେ ବିଗାଡ଼ି ଦେବେ ।

| | | | | | |
|---|---|---|---|---|---|
| | କରନ୍ତି ତାଙ୍କୁ ଯଉଁ ନରେ | । | ଥାଆନ୍ତେ ତାଙ୍କ ହୃଦୟରେ | ।। | ୧୪୮ |
| | ଅଚ୍ୟୁତଜନମସଂଭୂତ | । | ଅଶୁଭ ହରନ୍ତି ଅଚ୍ୟୁତ | ।। | ୧୪୯ |
| ୪୭ | ତାମ୍ରଆଦିଙ୍କ ସଂସର୍ଗରେ | । | ମାଳିନ୍ୟ ଜାତ ଯେ ହେମରେ | ।। | ୧୫୦ |
| | ଅନଳ ରହିଣ ତହିଁରେ | । | ଯେସନେ ତାହା ଅପହରେ | ।। | ୧୫୧ |
| | ତେହ୍ନେ ଯୋଗିଙ୍କ ଦୁଷ୍ଟଚିତ୍ତ | । | [1]ହରନ୍ତି ହରି ଆତ୍ମଗତ | ।। | ୧୫୨ |
| ୪୮ | ଯେ ଦେବ-ଉପାସନା ତପ | । | ପ୍ରାଣନିରୋଧ ଦାନ ଜପ | ।। | ୧୫୩ |
| | ଯେ ମିତ୍ରଭାବ ଲୋକେ ଆନ | । | ଯେ ବ୍ରତ ତୀର୍ଥାଭିଷେଚନ | ।। | ୧୫୪ |
| | ଏମାନଙ୍କରେ ପ୍ରାଣିଚିତ୍ତ | । | ଶୁଦ୍ଧିକି ନ ଲଭେ ଅତ୍ୟନ୍ତ | ।। | ୧୫୫ |
| | ଯେହୁ ଅନନ୍ତ ଭଗବାନ | । | ହୃଦୟେ ଥିଲେ ସେ ଯେସନ | ।। | ୧୫୬ |
| | ପ୍ରାଣିଙ୍କ ମାନସ ଅତ୍ୟନ୍ତେ | । | ଶୁଦ୍ଧ ହୁଅଇ ଏ ଜଗତେ | ।। | ୧୫୭ |
| ୪୯ | ହେ ନୃପ ଏଣୁ ସର୍ବାତ୍ମାରେ | । | ସ୍ମର କୃଷ୍ଣଙ୍କୁ ହୃଦୟରେ | ।। | ୧୫୮ |
| | ମରନ୍ତେ ସାବଧାନ ହୋଇ | । | ଯେ ଜନ ତାହାଙ୍କୁ ଚିନ୍ତଇ | ।। | ୧୫୯ |
| | ଉତ୍ତମ ଅଟଇ ଯେ ଗତି | । | ତାହା ସେ ଲଭଇ ଝଟିତି | ।। | ୧୬୦ |
| ୫୦ | [2]ଯା'ଠାରୁ ସକଳ ସମ୍ଭୂତ | । | ଯେ ସର୍ବ-ଆତ୍ମାରୂପେ ଖ୍ୟାତ | ।। | ୧୬୧ |
| | ଯେହୁ ଅଟନ୍ତି ଭଗବାନ | । | ପରମ-ଈଶ୍ୱର ଯେ ପୁଣ | ।। | ୧୬୨ |
| | ମରନ୍ତେ ଯେହୁ ତାଙ୍କୁ ଧ୍ୟାୟେ | । | ସେ ତାକୁ ସ୍ୱରୂପକୁ ନିଏ | ।। | ୧୬୩ |
| ୫୧ | ଦୋଷମାନଙ୍କର ନିଧାନ | । | ଯେ କଳି ଅଟେ ହେ ରାଜନ | ।। | ୧୬୪ |
| | ମହତ ଏକ ଗୁଣ ତାର | । | କୃଷ୍ଣକୀର୍ତ୍ତନୁଁ ଯହିଁ ନର | ।। | ୧୬୫ |
| | ବନ୍ଧରୁ ମୁକତ ହୁଅଇ | । | ପରମ ପଦକୁ ଲଭଇ | ।। | ୧୬୬ |
| ୫୨ | ବିଷ୍ଣୁଙ୍କୁ ସତ୍ୟଯୁଗେ ଧ୍ୟାନ | । | କରନ୍ତେ ଲଭେ ଯାହା ଜନ | ।। | ୧୬୭ |
| | ବିସ୍ତାରି ନାନା ମଖ[3] ମାନ | । | ତ୍ରେତାରେ କରନ୍ତେ ଯଜନ | ।। | ୧୬୮ |
| | ଆବର ସେବାରେ ଦ୍ୱାପରେ | । | ଲଭନ୍ତି ଯଉଁ ଫଳ ନରେ | ।। | ୧୬୯ |
| | [4]କେବଳ ହରିକୀର୍ତ୍ତନରେ | । | ସେ ଫଳ ଲଭନ୍ତି କଳିରେ | ।। | ୧୭୦ |
| | କୃଷ୍ଣଚରଣପଦ୍ମ ଚିନ୍ତି | । | ହରଷ ଦୀନବନ୍ଧୁ ମତି | ।। | ୧୭୧ |
| | ଦ୍ୱାଦଶସ୍କନ୍ଧଗୀତରସ | । | ଆସ୍ୱାଦି ଜୟରାମ ତୋଷ | ।। | ୧୭୨ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଯୁଗାନୁବର୍ଣ୍ଣନଂ ନାମ
ତୃତୀୟୋଽଧ୍ୟାୟଃ ।

---

୧. ଅଗ୍ନି ଛଡ଼ା ଜଳ ଆଦି ଯେପରି ସୁନାର ମାଳିନ୍ୟ ଦୂର କରିବାକୁ ଅସମର୍ଥ, ଠିକ୍ ସେହିପରି ହରିଙ୍କ ଛଡ଼ା ଯୋଗାଦି ସାଧନ ଚିତ୍ତର ମାଳିନ୍ୟ ଦୂର କରିବାକୁ ଅସମର୍ଥ । (ସ୍ୱାମୀ)

୨. ''ସର୍ବସଂଶ୍ରୟଃ''ର ପାଠାନ୍ତର 'ସର୍ବସଂଭବଃ'ର ଅନୁବାଦ । ୩. ମଖ = ଯଜ୍ଞ ।

୪. ଧ୍ୟାୟନ୍ କୃତେ ଯଜନ୍ ଯଜ୍ଞୈସ୍ତ୍ରେତାୟାଂ ଦ୍ୱାପରେଽର୍ଚ୍ଚୟନ୍ ।
ଯଦାପ୍ନୋତି ତଦାପ୍ନୋତି କଲୌ ସଂକୀର୍ତ୍ତ୍ୟ କେଶବମ୍ ।।

# ଚତୁର୍ଥ ଅଧ୍ୟାୟ

ଚତୁର୍ଥେ ତୁ ଚତୁର୍ଦ୍ଧୋକ୍ତା ଲୟା ନୈମିତ୍ତିକାଦୟଃ
ତତ୍ର ସଂସାରନିସ୍ତାରୋ ହରିକୀର୍ତ୍ତ୍ୟୈବ ବର୍ଣ୍ୟତେ ॥

ଶ୍ରୀଶୁକ ଉବାଚ

୧ ଯାହାର ପରମାଣୁ ଆଦି । ଯେ ଅଟେ ଦ୍ୱିପରାର୍ଦ୍ଧାବଧି ॥ ୧
ସେ କାଳ ତୋତେ କହିଥାଇ । ଆବର [1]ଯୁଗମାନଙ୍କୁ ହି ॥ ୨
ଯେ ପୁଣି କଳ୍ପ-ଲୟ ଦୁଇ । ହେ ନୃପ ଏବେ ଶୁଣ ତାହି ॥ ୩
୨ ସହସ୍ର ଚତୁର୍ଯୁଗ ଯେହି । ବ୍ରହ୍ମାର ଦିନ ତାକୁ କହି ॥ ୪
ସେ କଳ୍ପ ଯହିଁ ଚତୁର୍ଦ୍ଦଶ । ମନୁ ହୁଅନ୍ତି ହେ ନରେଶ ॥ ୫
୩ ତଦନ୍ତେ ବ୍ରହ୍ମରାତ୍ରି ତେତେ । ପ୍ରଳୟ ବୋଲାଇ ଜଗତେ ॥ ୬
ତହିଁରେ ଏ ତିନି ଭୁବନ । ପ୍ରଳୟ ନିମିତ୍ତେ କଳ୍ପନ ॥ ୭
୪ ବ୍ରହ୍ମାର ଶୟନକୁ ନେଇ[2] । ଯେହୁ ପ୍ରଳୟ ପ୍ରବର୍ତ୍ତଇ ॥ ୮
ସେ ପ୍ରଳୟକୁ ନୈମିତ୍ତିକ । ବୋଲନ୍ତି ଜଗତରେ ଲୋକ ॥ ୯
ଆପଣାଠାରେ ଜଗତକୁ । ସଂହାରି ତଦନ୍ତେ ନିଦ୍ରାକୁ ॥ ୧୦
ଲଭନ୍ତି ଅନନ୍ତାସନରେ । ଶ୍ରୀନାରାୟଣ ଯହିଁ ଶିରେ ॥ ୧୧
ତାହାଙ୍କୁ ଅନୁଗତ ହୋଇ । ସେ କାଳେ ଶୁଅନ୍ତି ବ୍ରହ୍ମା ହିଁ ॥ ୧୨
୫ ଯେ ଦ୍ୱିପରାର୍ଦ୍ଧ ବ୍ରହ୍ମାୟୁଷ । କାଳେ ସେ ହୁଅନ୍ତେଣ ଶେଷ ॥ ୧୩
ମହତ ଅହଂକାର ବେନି । ସେ ପଞ୍ଚ ତନ୍ମାତ୍ରକୁ ଘେନି ॥ ୧୪
ଏମନ୍ତେ ଯେ ସାତ ପ୍ରକୃତି । ସେ କାଳେ ପ୍ରଳୟ ଲଭନ୍ତି ॥ ୧୫
୬ ସବୁ ପ୍ରକୃତିମାନଙ୍କର । ତାହାଙ୍କ କାର୍ଯ୍ୟବ୍ରହ୍ମାଣ୍ଡର ॥ ୧୬
ପ୍ରଳୟରୁ ହେ ନରନାଥ । ଏ ପ୍ରାକୃତିକ ନାମେ ଖ୍ୟାତ ॥ ୧୭
ବିନାଶହେତୁ ହୁଅନ୍ତେଣ । ବ୍ରହ୍ମାଣ୍ଡକଟାହେ[3] ସେ ପୁଣ ॥ ୧୮
ଯହିଁରେ ବିନାଶ ଲଭଇ । ମହଦାଦିଙ୍କ କାର୍ଯ୍ୟ ଯେହି ॥ ୧୯
୭ ଶଏ ବରଷ ଅବନିରେ । ନ ବରଷନ୍ତେ ଜଳଧରେ ॥ ୨୦
ସେ କାଳେ ନିରନ୍ନ ଯେ ମହୀ । ଅନ୍ୟୋଽନ୍ୟେ ପ୍ରଜାମାନେ ତହିଁ ॥ ୨୧
କ୍ଷୁଧାରେ ହୋଇଣ ପୀଡ଼ିତ । କ୍ରମରେ ହୁଅନ୍ତେ ଭକ୍ଷିତ ॥ ୨୨
କାଳରେ ହୋଇ ଉପଦ୍ରୁତ । କ୍ଷୟକୁ ଲଭିବେ ସମସ୍ତ ॥ ୨୩
୮ ସମୁଦ୍ରଜାତ ଦେହଜାତ । ଆବର ଯେ ମହୀସଂଭୂତ ॥ ୨୪
ଘୋର କିରଣେ ସେହି ରସ । ପିଇବ ପ୍ରଳୟ ଦିନେଶ ॥ ୨୫

---

୧. ଚତ୍ୱାରି ତ୍ରୀଣି ଦ୍ୱେ ଚୈକଂ କୃତାଦିଷୁ ଯଥାକ୍ରମମ୍ ।
ସଂଖ୍ୟାତାନି ସହସ୍ରାଣି ଦ୍ୱିଗୁଣାନି ଶତାନି ଚ ॥ ଇତି ଯୁଗମାନମ୍ ।

୨. ନିମିତ୍ତ କରି ।     ୩. କରେଇରେ ।

୯ ସଙ୍କରଷଣମୁଖୋଦ୍‌ଥିତ । ଜାତବେଦ[୧]ରୁ ଯେ ସଂଭୂତ ॥ ୨୬
୧୦ ସେ ମହାପ୍ରଳୟ ଦହନ । ଦହଇ ପାତାଳାଦି ସ୍ଥାନ ॥ ୨୭
ନିରମ୍ବୁ ହେବା ସକାଶରେ । ଯେ ଶୂନ୍ୟ ପ୍ରାଣିମାନଙ୍କରେ ॥ ୨୮
ତଳ-ଉପର ସବୁ ଦିଗେ । ବହ୍ନିସବିତାଶିଖାଯୋଗେ ॥ ୨୯
ବ୍ରହ୍ମାଣ୍ଡ ଦଗ୍‌ଧ ହୋଇ ଶୋହେ । ଦଗ୍‌ଧ ଗୋମୟପିଣ୍ଡପ୍ରାୟେ ॥ ୩୦
୧୧ ମହାପ୍ରଳୟସମୀରଣ । ଶତବରଷାଧିକ ପୁଣ ॥ ୩୧
ବହଇ ସମସ୍ତ ଦିଗରେ । ପ୍ରଚଣ୍ଡ ହୋଇ ତଦନ୍ତରେ ॥ ୩୨
ଆକାଶ ହୋଇ ଧୂଳିପୂର୍ଣ୍ଣ । ଦିଶଇ ମହାଧୂମ୍ରବର୍ଣ୍ଣ ॥ ୩୩
୧୨ ତଦନନ୍ତରେ ହେ ଭୂପାଳ । ବିଚିତ୍ରବର୍ଣ୍ଣ ମେଘକୁଳ ॥ ୩୪
ଶଏ ବରଷ ବରଷନ୍ତି । ପ୍ରଚଣ୍ଡ ଗର୍ଜନ କରନ୍ତି ॥ ୩୫
୧୩ ତଦନ୍ତେ ଏକାର୍ଣ୍ଣବୋଦକ[୨] । ସଂପୂର୍ଣ୍ଣ ହୋଏ ବିଶ୍ୱଯାକ ॥ ୩୬
ବ୍ରହ୍ମାଣ୍ଡବିବରମଧ୍ୟରେ । ଯେ ବିଶ୍ୱ ଅଛି ନିରନ୍ତରେ ॥ ୩୭
୧୪ ଅବନିମଣ୍ଡଳ ସେକାଳେ । ବୁଡ଼ିଣ ରହନ୍ତେ ସଲିଳେ ॥ ୩୮
ଭୂମିର ଗନ୍ଧଗୁଣ ଯେହି । ସଲିଳ ତାହାକୁ ଗ୍ରାସଇ ॥ ୩୯
ଗନ୍ଧରହିତ ହୋଇ ମହୀ । ପ୍ରଳୟଭାବକୁ ଲଭଇ ॥ ୪୦
୧୫ ତଦନ୍ତେ ରସ ଯେ ଜଳର । ତେଜ ତା' କରଇ ସଂହାର ॥ ୪୧
୧୭ ନୀରସ ହୋଇ ସଲିଳ ହିଁ । ସେକାଳେ ଲୟକୁ ଲଭଇ ॥ ୪୨
ପ୍ରଳୟ ପବନ ଯେ ତହିଁ । ତେଜର ରୂପକୁ ଗ୍ରାସଇ ॥ ୪୩
ତେଜ ରୂପରେ ହୀନ ହୋଇ । ଅନିଳେ ବିଲୀନ ହୁଅଇ ॥ ୪୪
ପବନଗୁଣକୁ ଆକାଶ । ତଦନନ୍ତରେ କରେ ଗ୍ରାସ ॥ ୪୫
ନଭରେ ଲୀନ ହୋଏ ବାତ । ତଦନ୍ତେ ଆହେ ନରନାଥ ॥ ୪୬
ଯେ ଶବ୍ଦଗୁଣ ଆକାଶର । ତା' ନାଶେ ତାମସାହଂକାର ॥ ୪୭
ତହିଁରେ ନଭ ହୋଏ ଲୀନ । ଇନ୍ଦ୍ରିୟମାନଙ୍କୁ ରାଜନ ॥ ୪୮
ବୃତ୍ତିମାନଙ୍କ ସହିତରେ । ତୈଜସାହଂକାର[୩] ସଂହରେ ॥ ୪୯
ବଇକାରିକ ଅହଂକାର । କରଇ ଦେବଙ୍କୁ ସଂହାର ॥ ୫୦
୧୮ ତ୍ରିବିଧ ଅହଂକାରକୁ ହିଁ । ମହତ ତତ୍ତ୍ୱ ସଂହାରଇ ॥ ୫୧
ମହତ ତତ୍ତ୍ୱକୁ ତ୍ରିଗୁଣ । ସଂହାର କରେ ତଦନ୍ତେଣ ॥ ୫୨
ଗୁଣତ୍ରୟକୁ ଏ ପ୍ରକୃତି । ସଂହାର କରେ ହେ ନୃପତି ॥ ୫୩
ଯେ କାଳରୂପୀ ଅଟେ ହରି । ତେଣେ ପ୍ରେରିତ ହୋଇ କରି ॥ ୫୪
୧୯ ଅହୋରାତ୍ରାଦିରେ ଯାହାର । ନାହାନ୍ତି ଏ ଭାବବିକାର ॥ ୫୫
ଯେ ନୋହେ ଜାତ ପରିଣତ । ଅସ୍ତିତ୍ୱବିକାରରହିତ ॥ ୫୬

---

୧. ଅଗ୍ନି । ୨. ଏକାର୍ଣ୍ଣବ + ଉଦକ । ୩. ତୈଜସ + ଅହଂକାର ।

ଯାହାର ହ୍ରାସ ବୃଦ୍ଧି ନାହିଁ । ଅପକ୍ଷୟଶୂନ୍ୟ ଅଟଇ ॥ ୫୭
ଯେଣୁ ସେ ଅଟେ ସଭିଙ୍କର । କାରଣସ୍ୱରୂପ ଈଶ୍ୱର ॥ ୫୮
୨୦ ଯା'ଠାରେ ନାହିଁଟି ବଚନ । ମହତତତ୍ତ୍ୱ ଆଦି ମନ ॥ ୫୯
୨୧ ଅଥବା ସତ୍ତ୍ୱ ତମ ରଜ । ଇନ୍ଦ୍ରିୟ ଦେବତା ସମାଜ ॥ ୬୦
ନାହିଁଟି ପ୍ରାଣ ବୁଦ୍ଧି ଯାର । ରଚନାବିଶେଷ ଲୋକର ॥ ୬୧
ସ୍ୱପ୍ନ-ଜାଗର[୧] ସୁଷୁପ୍ତି । ଏ ତିନି ଯା' ଠାରେ ନାହାନ୍ତି ॥ ୬୨
ତପନ ପଞ୍ଚ ମହାଭୂତ । ନାହାନ୍ତି ଯା'ଠାରେ ନିୟତ ॥ ୬୩
ଯେଣୁ ଇନ୍ଦ୍ରିୟ ଆଦି ନାହିଁ । ତେଣୁ ସଂସୁପ୍ତପ୍ରାୟ ଯେହି ॥ ୬୪
ଯେ ବା ଅତର୍କ୍ୟ ଶୂନ୍ୟପ୍ରାୟ । ତା' ଠାରେ ପଣ୍ଡିତନିଚୟ ॥ ୬୫
ସେହିଟି ପଦ ମୂଳଭୂତ । ବୋଲିଣ କରନ୍ତି ଆମ୍ନାତ[୨] ॥ ୬୬
୨୨ ଏହି ଲୟକୁ ପ୍ରାକୃତିକ । ଲୟ ବୋଲନ୍ତି ବିଜ୍ଞ ଲୋକ ॥ ୬୭
ଯେବେ ପ୍ରକୃତି-ପୁରୁଷର । ସତ୍ତ୍ୱାଦି ଶକତି ନିକର ॥ ୬୮
କାଳରେ ବିଦ୍ରୁତ ବିବଶ । ହୋଇଣ ଲଭନ୍ତି ବିନାଶ ॥ ୬୯
୨୩ ବୁଦ୍ଧି-ଇନ୍ଦ୍ରିୟ-ଅର୍ଥ ଯେହି । ଗ୍ରାହକ-କରଣ-ଗ୍ରାହ୍ୟ ହିଁ ॥ ୭୦
ଏରୂପେ ତାହାଙ୍କ ଆଶ୍ରୟ । ଜ୍ଞାନ ହିଁ ଶୋହେ ଅତିଶୟ ॥ ୭୧
ତହିଁରୁ ଭିନ୍ନ ହୋଇ ସତ । କେହି ନୁହଇ ଏ ଜଗତ ॥ ୭୨
ଅବ୍ୟତିରେକ ସକାଶରୁ । ଆବର ଦୃଶ୍ୟତ୍ୱ ହେତୁରୁ ॥ ୭୩
ଯେ ଅଟେ ଆଦି-ଅନ୍ତବନ୍ତ । ସେ ନୋହେ ସତ୍ୟ କଦାଚିତ ॥ ୭୪
ରଜ୍ଜୁରେ ସର୍ପବୁଦ୍ଧି ଯେହ୍ନେ । ସତ୍ୟ ନୁହଇ ସେହୁ ତେହ୍ନେ ॥ ୭୫
୨୪ ପ୍ରଦୀପ-ରୂପ-ଚକ୍ଷୁ ଯେହ୍ନେ । ଜ୍ୟୋତିରୁ ନ ହୁଅନ୍ତି ଭିନ୍ନେ ॥ ୭୬
ବୁଦ୍ଧି-ଇନ୍ଦ୍ରିୟ-ଅର୍ଥ ଯେହି । [୩]ତେହ୍ନେ ବ୍ରହ୍ମରୁ ଭିନ୍ନ ନୋହି ॥ ୭୭
ଯେ ବ୍ରହ୍ମ ଅଟଇ କାରଣ । ଏ ଯେଣୁ ତା'ର କାର୍ଯ୍ୟ ପୁଣ ॥ ୭୮
ଏଣୁ ଏ ଯେବେ ନାଶ ଯାଇ । ତାହାର ନାଶ ନ ହୁଅଇ ॥ ୭୯
୨୫ ଜାଗ୍ରତ ସ୍ୱପ୍ନ ସୁଷୁପ୍ତି । ଏ ତିନି ବୁଦ୍ଧିର ଅଟନ୍ତି ॥ ୮୦
ବିଶ୍ୱ ତୈଜସ ପ୍ରାଜ୍ଞ ଯେବା । ବୋଲିବୁ ତା' ଅବସ୍ଥା ଏ ବା ॥ ୮୧
ବିଶ୍ୱ-ତୈଜସ-ପ୍ରାଜ୍ଞରୂପ । ଏ ମାୟାମାତ୍ର ହେ ଭୂମିପ ॥ ୮୨
[୪]ପ୍ରତ୍ୟଗାତ୍ମାରେ ନାନାଭାବ । ଏ ରୂପେ ହୋଏ କି ସଂଭବ ॥ ୮୩
୨୬ ଯେସନେ ଜଳଧର ନଭେ । ସମ୍ଭବେ କାଳେ ନ ସମ୍ଭବେ ॥ ୮୪
ଏ ବିଶ୍ୱ ତେସନ ବ୍ରହ୍ମରେ । ହୋଏ ବା ନୋହେ ବା କାଳରେ ॥ ୮୫
ଯେଣୁ ଏ ଅବୟବବନ୍ତ । ସେ ଘେନି ଆଦି-ଅନ୍ତବନ୍ତ ॥ ୮୬

---

୧. ଜାଗ୍ରତ୍ । ୨. କଥିତ । ୩. ପ୍ରପଞ୍ଚ ବ୍ରହ୍ମରୁ ଅଲଗା ନୁହେଁ, କିନ୍ତୁ ବ୍ରହ୍ମ ପ୍ରପଞ୍ଚରୁ ଅଲଗା ।
୪. ପ୍ରତ୍ୟଗାତ୍ମା (ପ୍ରତ୍ୟକ୍ + ଆତ୍ମା) = ଅନ୍ତର୍ଯ୍ୟାମୀ ।

| | | | | | |
|---|---|---|---|---|---|
| | ଉତ୍ପତ୍ତି-ନାଶରୁ ଅସତ | । | ଏ ବିଶ୍ୱ ଅଟଇ ନିୟତ | ॥ | ୮୭ |
| ୨୭ | ସକଳ ଅବୟବୀଙ୍କର | । | ଅବୟବ ଏ ସତ୍ୟ ଗିର | ॥ | ୮୮ |
| | ଯେଣୁ ଅବୟବୀରୁ ଭିନ୍ନ | । | ପ୍ରତୀତ ଅବୟବମାନ | ॥ | ୮୯ |
| | ପଟରୁ ତନ୍ତୁଏ ଯେସନ | । | ଭିନ୍ନ ଅଟନ୍ତି ହେ ରାଜନ | ॥ | ୯୦ |
| ୨୮ | କାର୍ଯ୍ୟକାରଣାଦିରୂପରେ | । | ଯା' ଉପଲଭ୍ୟ ଏ ସଂସାରେ | ॥ | ୯୧ |
| | ତାହାକୁ ଭ୍ରମ ବୋଲି ଜାଣ | । | ଅନ୍ୟୋଽନ୍ୟ ଆଶ୍ରୟରୁ ପୁଣ | ॥ | ୯୨ |
| | ଯେ ଅଟେ ଆଦିଅନ୍ତବନ୍ତ | । | ସେ ସର୍ବ ଅବସ୍ତୁ ନିୟତ | ॥ | ୯୩ |
| ୨୯ | ପ୍ରକାଶ ହେଲେହେଁ ବିକାର | । | ପ୍ରକାଶ-ଅଭାବେ ଆତ୍ମାର | ॥ | ୯୪ |
| | ଅଣୁମାତ୍ର ହିଁ ନିରୂପଣ | । | ବିଷୟ ନୋହେ ଏ ପ୍ରମାଣ | ॥ | ୯୫ |
| | ଆତ୍ମପ୍ରକାଶ ବିନୁ ସତ୍ୟ | । | ଯେବେ ହୁଅନ୍ତା ନିରୂପିତ | ॥ | ୯୬ |
| | ତେବେ ଚୈତନ୍ୟପ୍ରାୟ ହୋଇ | । | ହୁଅନ୍ତା ସ୍ୱପ୍ରକାଶ ସେହି | ॥ | ୯୭ |
| | ତେମନ୍ତେ ଆତ୍ମପ୍ରାୟ ହୋଇ | । | ହୁଅନ୍ତା ଏକରୂପ ସେହି | ॥ | ୯୮ |
| ୩୦ | ଯେ ସତ୍ୟ ତାର ନାନାଭାବ | । | କେବେହେଁ ନୁହଇ ସଂଭବ | ॥ | ୯୯ |
| | ଜୀବ-ଈଶ୍ୱରରୂପ ହୋଇ | । | ଅନେକ ଅଟଇ ଆତ୍ମା[୧] ହି | ॥ | ୧୦୦ |
| | ଯେବେ ଏମନ୍ତ ମଣେ ନର | । | ତେବେ ସେ ଜ୍ଞାନୀରୁ ଇତର | ॥ | ୧୦୧ |
| | ଆତ୍ମାରେ ନାନାଭାବ ବୁଦ୍ଧି | । | ଏ ରୂପେ ହୋଇଛି ପ୍ରସିଦ୍ଧି | ॥ | ୧୦୨ |
| | ମହା-ଆକାଶ ଘଟାକାଶ | । | ଯେସନେ ଅଭିନ୍ନ ପ୍ରକାଶ | ॥ | ୧୦୩ |
| | [୨]ଅବଚ୍ଛେଦକଭେଦୁଁ ଭିନ୍ନ | । | [୩]ଅପରିଚ୍ଛିନ୍ନ [୪]ପରିଚ୍ଛିନ୍ନ | ॥ | ୧୦୪ |
| | ଜଳ-ଆକାଶସ୍ଥ ତପନ | । | ଅଭିନ୍ନ ହେଲେହେଁ ଯେସନ | ॥ | ୧୦୫ |
| | ଉପାଧିବିକାରସକାଶେ | । | ମଳିନ ନିର୍ମଳ ପ୍ରକାଶେ | ॥ | ୧୦୬ |
| | ବାହ୍ୟ-ଅନ୍ତର ବାତ ଯେହି | । | ହେଲେ ହେଁ ଏକରୂପ ସେହି | ॥ | ୧୦୭ |
| | ଉପାଧିଭେଦେ ଯେହ୍ନେ ଭିନ୍ନ | । | କ୍ରିୟାକୁ କରନ୍ତି ବିଧାନ | ॥ | ୧୦୮ |
| ୩୧ | ଲୋକବ୍ୟବହାରମାର୍ଗରେ | । | ବିଭିନ୍ନ ରଚନାଭେଦରେ | ॥ | ୧୦୯ |
| | ଯେସନେ ଏକ ହିଁ କନକ | । | କୁଣ୍ଡଳ-ମୁଦ୍ରିକା-କଟକ | ॥ | ୧୧୦ |
| | ଏରୂପେ ବହୁତ ପ୍ରକାରେ | । | ପ୍ରତ୍ୟୟ କରିଥାନ୍ତି ନରେ | ॥ | ୧୧୧ |
| | ଯେ ଅଧୋକ୍ଷଜ ଭଗବାନ | । | ତାଙ୍କୁ ତେସନେ ବହୁ ଜନ | ॥ | ୧୧୨ |
| | ବ୍ୟାଖ୍ୟାନ କରନ୍ତି ସଂସାରେ | । | ଲୌକିକ-ବୈଦିକ ବାଣୀରେ | ॥ | ୧୧୩ |
| ୩୨ | ଯେ ବ୍ରହ୍ମ ଆପଣା କାରଣ | । | ତାକୁ କିରୂପେ ଆବରଣ | ॥ | ୧୧୪ |
| | କରିଣ ଅହଂକାର ଏହି | । | ଭେଦସିଦ୍ଧିରେ ହେତୁ ହୋଇ | ॥ | ୧୧୫ |
| | ଯେ ଅବା କରେ ଆବରଣ | । | ତାର ପ୍ରକାଶ କେମନ୍ତେଣ | ॥ | ୧୧୬ |

୧. ଆତ୍ମା = ପରବ୍ରହ୍ମ । ୨. ଅବଚ୍ଛେଦକ = ଅଲଗା କରୁଥିବା ବସ୍ତୁ ।
୩. ଅପରିଚ୍ଛିନ୍ନ = ଅସୀମ । ୪. ପରିଚ୍ଛିନ୍ନ = ସସୀମ ।

ତୁ ଅବା ବୋଲିବୁ ଏମନ୍ତ । ଶୁଣ ତେବେ ହେ ପରୀକ୍ଷିତ ।। ୧୧୭
ଯେହ୍ନେ ରବିରୁ ଜାତ ଘନ । ତା'ଠାରୁ ଲଭି ପ୍ରକାଶନ ।। ୧୧୮
ତା' ଅଂଶଭୂତ ଯେ ନୟନ । କରେ ତାହାକୁ ଆଚ୍ଛାଦନ ।। ୧୧୯
ଏରୂପେ ବ୍ରହ୍ମରୁ ଜନିତ । ତେଣେ ହୋଇଣ ପ୍ରକାଶିତ ।। ୧୨୦
ବ୍ରହ୍ମର ଅଂଶ ଜୀବାତ୍ମାର । ଦରଶନରେ ସ୍ୱରୂପର ।। ୧୨୧
ପ୍ରତିବନ୍ଧକ ଭାବ ବହି । ଏ ଅହଂକାର ଅଛି ରହି ।। ୧୨୨
୩୩ [1]ଅର୍କ ପ୍ରଭବ ଘନ ଯେବେ । ବିଶେଷେ ନାଶ ଯାଇ ତେବେ ।। ୧୨୩
ଯେ ନିଜ ସ୍ୱରୂପ ତପନ[2] । ତାହାକୁ ଦେଖଇ ଲୋଚନ ।। ୧୨୪
ଆତ୍ମ-ଉପାଧି ଅହଂକାର । ବିଚାରେ ଯେବେ ହୋଏ ଦୂର ।। ୧୨୫
ତେବେ ମୁଁ ବ୍ରହ୍ମ ବୋଲି ଜୀବ । କରଇ ନିଜ ଅନୁଭବ ।। ୧୨୬
୩୪ ଏ ମାୟାମୟ ପ୍ରପଞ୍ଚରେ । ଆତ୍ମାକୁ ବନ୍ଧନ ଯେ କରେ ।। ୧୨୭
ସେ ଅହଂକାରକୁ ବିବେକ । ଶସ୍ତ୍ରେ ଏ ରୂପେ କାଟିଲେକ ।। ୧୨୮
ଯେବେ ସଂପୂର୍ଣ୍ଣ ଆତ୍ମଭାବ । କରେ ଆପଣେ ଅନୁଭବ ।। ୧୨୯
ଆହେ ତାହାକୁ [3]ଆତ୍ୟନ୍ତିକ । ଲୟ ବୋଲନ୍ତି ଜ୍ଞାନୀ ଲୋକ ।। ୧୩୦
ହେ ଶତ୍ରୁମାନଙ୍କ ତପନ । କେହୁଣି ସୂକ୍ଷ୍ମ ଜ୍ଞାନିଜନ ।। ୧୩୧
୩୫ ବ୍ରହ୍ମାଦି ସର୍ବ ପ୍ରାଣୀଙ୍କର । ଯେ ଉତପତ୍ତି ଯେ ସଂହାର ।। ୧୩୨
ପ୍ରତିକ୍ଷଣରେ ଜାତ ହୋଏ । ନିତ୍ୟପ୍ରଳୟ ତାକୁ କହେ ।। ୧୩୩
୩୬ ନଦୀପ୍ରବାହ ଦୀପଶିଖା । ଆଦି ଯେ ପରିଣାମୀ[4] ଲେଖା ।। ୧୩୪
ଏମାନଙ୍କର ଯେ ବା ଉଚ୍ଚ । ଅଥବା ଅବସ୍ଥା ଯେ ନୀଚ ।। ୧୩୫
ସେହି ଅବସ୍ଥା ଦେହାଦିର । ଦୃଶ୍ୟ ଅଟଇ ନିରନ୍ତର ।। ୧୩୬
ଯେ ଦେହ ଆଦି କାଳସ୍ରୋତ । ବେଗରୁ ବେଗେ ହୋଏ ହୃତ ।। ୧୩୭
ସେ ଅବସ୍ଥା ହିଁ ପ୍ରତିକ୍ଷଣ । ଜନମ-ଲୟର କାରଣ ।। ୧୩୮
୩୭ କ୍ଷଣବିଧ୍ୱଂସ ଏ ଶରୀର । ଅବସ୍ଥାଭେଦୁଁ ନିରନ୍ତର ।। ୧୩୯
ପ୍ରଦୀପ ଆଦି ପ୍ରାୟ ହୋଇ । ଏ ଅନୁମାନ ସଂଭବଇ ।। ୧୪୦
ଅବସ୍ଥା ପ୍ରତିକ୍ଷଣେ ଭିନ୍ନ । ହୁଅନ୍ତି ଯେବେ ଉତପନ୍ନ ।। ୧୪୧
ତେବେ ନ ଦିଶନ୍ତି କିଂପାଇଁ । ଏଣୁ ଏକଥା ସିଦ୍ଧ ନୋହି ।। ୧୪୨
ଏମନ୍ତ ବିଚାରିବୁ ଅବା । ତହିଁକି ସିଦ୍ଧାନ୍ତ କହିବା ।। ୧୪୩
ନାହିଁ ଯାହାର ଆଦି-ଅନ୍ତ । ଯେ କାଳ ଈଶ୍ୱର ସାକ୍ଷାତ ।। ୧୪୪
ତେଣେ ଯେ ଅବସ୍ଥା ଜନ୍ମନ୍ତି । ପ୍ରକାଶ ହୋଇ ନ ଦିଶନ୍ତି ।। ୧୪୫

---

୧. ଅର୍କ ପ୍ରଭବ ଘନ = ସୂର୍ଯ୍ୟଙ୍କ ଠାରୁ ଜାତ ମେଘ । ୨. ତପନ (ସୂର୍ଯ୍ୟ) ଚକ୍ଷୁର ନିଜ ସ୍ୱରୂପ ।
୩. ଆତ୍ୟନ୍ତିକ-ଲୟ = ମୁକ୍ତି । ୪. ପରିଣାମୀ = ରୂପାନ୍ତରିତ ।

| | | | | |
|---|---|---|---|---|
| | ଆକାଶେ ଗଲା ଚନ୍ଦ୍ରାଦିର | ଗମନ ନୁହଇ ଗୋଚର | ॥ | ୧୪୬ |
| | ଅନ୍ୟ ଦେଶକୁ ପାଇବାରେ | ଗମନ ଯେହ୍ନେ ନିରନ୍ତରେ | ॥ | ୧୪୭ |
| | କଳ୍ପନା କରନ୍ତି ଅବଶ | ସେ ରୂପେ ବାଲ୍ୟାଦି ବୟସ | ॥ | ୧୪୮ |
| | ଦେଖିବା ହେତୁ ମଧ୍ୟବର୍ତ୍ତୀ | ଅବସ୍ଥା ଜ୍ଞାନିଏ କଳ୍ପନ୍ତି | ॥ | ୧୪୯ |
| ୩୮ | ନଇମିତ୍ତିକ ପ୍ରାକୃତିକ | ନିତ୍ୟ ପ୍ରଳୟ ଆତ୍ୟନ୍ତିକ | ॥ | ୧୫୦ |
| | ସମସ୍ତ କହିଲାଇଁ ତୋତେ | କାଳର ଗତିଟି ଏମନ୍ତେ | ॥ | ୧୫୧ |
| ୩୯ | ଜଗତଧାତା ନାରାୟଣ | ଯେ ସର୍ବସତ୍ତ୍ୱଧାମ ପୁଣ | ॥ | ୧୫୨ |
| | ତାହାର ଲୀଳାକଥାମାନ | ସଂକ୍ଷେପ କରି ହେ ରାଜନ | ॥ | ୧୫୩ |
| | ତୋହର ଆଗେ କହିଲାଇଁ | ସମଗ୍ର ଭାବରେ ବ୍ରହ୍ମା ହିଁ | ॥ | ୧୫୪ |
| | ସମର୍ଥ ନୋହେ କହିବାକୁ | କି ଅବା ବୋଲିବା ଆନକୁ | ॥ | ୧୫୫ |
| ୪୦ | ଦୁସ୍ତର ସଂସାରସାଗର | ତରଣେ ବାଞ୍ଛିତ ଯାହାର | ॥ | ୧୫୬ |
| | ଯେ ନାନାଦୁଃଖଦବାର୍ଦ୍ଦିତ[୧] | ସେ ପ୍ରାଣିମାନଙ୍କର ଏଥ[୨] | ॥ | ୧୫୭ |
| | ଭଗବାନର ଲୀଳାକଥା | ପୀୟୂଷପାନରୁ ଅନ୍ୟଥା | ॥ | ୧୫୮ |
| | ଉପାୟ ତରିବାକୁ ନାହିଁ | ଏକଥା ନିଶ୍ଚୟ ଅଟଇ | ॥ | ୧୫୯ |
| ୪୧ | ଏହି ପୁରାଣସଂହିତାକୁ | ପୂର୍ବକାଳରେ ନାରଦଙ୍କୁ | ॥ | ୧୬୦ |
| | ଅଛନ୍ତି ଯଥାର୍ଥେ ପ୍ରକାଶି | ଅବ୍ୟୟ ନାରାୟଣ ଋଷି | ॥ | ୧୬୧ |
| | ନାରଦମୁନି ବେଦବ୍ୟାସ | ମୁନିଙ୍କି କଲେ ତା' ପ୍ରକାଶ | ॥ | ୧୬୨ |
| ୪୨ | ବାଦରାୟଣ[୩] ଭଗବାନ | ସେ ପ୍ରୀତ ହୋଇ ହେ ରାଜନ | ॥ | ୧୬୩ |
| | ବେଦତୁଲ୍ୟ ଏ ଭାଗବତ | ସଂହିତା ମୋତେ କଲେ ଉକ୍ତ | ॥ | ୧୬୪ |
| ୪୩ | ହେ ନୃପ ଶୌନକାଦିମାନେ | ପୁଛନ୍ତେ ନଇମିଷସ୍ଥାନେ | ॥ | ୧୬୫ |
| | ଦୀର୍ଘସତ୍ର[୪]ରେ ଏହି ସୂତ[୫] | ଏହାକୁ କରିବ ବିଖ୍ୟାତ | ॥ | ୧୬୬ |
| | ଶ୍ରୀକୃଷ୍ଣଚରଣସ୍ମରଣେ | ବ୍ରାହ୍ମଣ ଦୀନବନ୍ଧୁ ଭଣେ | ॥ | ୧୬୭ |
| | ଦ୍ୱାଦଶସ୍କନ୍ଧଭାଗବତ | ସଂତୋଷେ ଜୟରାମଚିତ୍ତ | ॥ | ୧୬୮ |
| | ଶ୍ରୀନିତ୍ୟାନନ୍ଦପ୍ରଭୁଙ୍କର | ପରିବାରରେ ଯେହୁ ସାର | ॥ | ୧୬୯ |
| | ତାହାଙ୍କ ସନ୍ତୋଷରୁ ମୁହିଁ | ଏ ଗୀତେ ପ୍ରବର୍ତ୍ତି ଅଛଇଁ | ॥ | ୧୭୦ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ପ୍ରଳୟବର୍ଣ୍ଣନଂ
ନାମ ଚତୁର୍ଥୋଽଧ୍ୟାୟଃ ॥

---

୧. ନାନା ଦୁଃଖଦାବାନଳରେ ପୀଡ଼ିତ । ୨. ଏଥି । ୩. ବ୍ୟାସ । ୪. ସୋମଯାଗ ।
୫. ତାଙ୍କ ସମ୍ମୁଖରେ ଥିବା ସୂତଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଶୁକ ପରୀକ୍ଷିତଙ୍କୁ କହିଲେ ''ଏହି ସୂତ'' ।

# ପଞ୍ଚମ ଅଧ୍ୟାୟ

ପଞ୍ଚମେ ତୁ ସମାସେନ ପରବ୍ରହ୍ମୋପଦେଶତଃ ।
ରାଜ୍ଞସ୍ତକ୍ଷକସଂଦଂଶାନ୍ ମୃତ୍ୟୁଭୀତିନିବାରଣମ୍ ॥

ଶ୍ରୀଶୁକ ଉବାଚ

୧ ଯେ ବିଶ୍ୱ-ଆତ୍ମା ଭଗବାନ । ସେ ଏଥି ସନ୍ତତେ ବର୍ଣ୍ଣନ ॥ ୧
[୧]ଯାର ପ୍ରସାଦୁଁ ବ୍ରହ୍ମା ଜାତ । ରୁଦ୍ର ଯା' କ୍ରୋଧରୁ ସଂଭୂତ ॥ ୨
୨ ହେ ନୃପ ମରିବି ବୋଲିଣ । ଏ ପଶୁବୁଦ୍ଧି ଛାଡ଼ ପୁଣ ॥ ୩
ପୂର୍ବେ ତୁ ନୋହିଛୁ ଉତ୍ପନ୍ନ । ଜାତ ନୋହିଛୁ ବର୍ତ୍ତମାନ ॥ ୪
ଏଣୁ ଦେହର ପ୍ରାୟ ହୋଇ । ବିନାଶ ତୁହି ହେବୁ ନାହିଁ ॥ ୫
୩ [୨]ପୁତ୍ରପୌତ୍ରାଦି ରୂପବନ୍ତ । ହୋଇ ତୁ ନୋହିବୁ ନିୟତ ॥ ୬
ବୀଜ-ଅଙ୍କୁର ପ୍ରାୟ ହୋଇ । ଦେହରୁ ଦେହ ଉପୁଜଇ ॥ ୭
ତୁ ପୁଣି ଦେହାଦିରୁ ଭିନ୍ନ । କାଷ୍ଠରୁ ଅନଳ ଯେସନ ॥ ୮
୪ ଶିରଚ୍ଛେଦକୁ ଆପଣାର । ସ୍ୱପ୍ନେ ଦେଖଇ ଯେହ୍ନେ ନର ॥ ୯
ପଞ୍ଚତ୍ୱ ଆଦିକି ଦେହର । ଜାଗ୍ରତେ କରଇ ଗୋଚର ॥ ୧୦
ସେ ଘେନି ଭ୍ରମ ଏ ଅଟଇ । [୩]ଆତ୍ମାର ଜନ୍ମ-ମୃତ୍ୟୁ ନାହିଁ ॥ ୧୧
୫ ଘଟ ଭାଙ୍ଗନ୍ତେ ଘଟାକାଶ । ଯେସନେ ହୋଏ ମହାକାଶ ॥ ୧୨
ଜାତ ହୁଅନ୍ତେ ବ୍ରହ୍ମଜ୍ଞାନ । ଲିଙ୍ଗଶରୀର ହୋନ୍ତେ ଲୀନ ॥ ୧୩
ସେ ପ୍ରକାରେ ଏ ବ୍ରହ୍ମ ଜୀବ । ଲଭଇ ପୁଣ ବ୍ରହ୍ମଭାବ ॥ ୧୪
୬ ଯେ ଦେହ-ଗୁଣ-କର୍ମମାନ । ଆତ୍ମାର, ସର୍ଜଇ ତା' ମନ ॥ ୧୫
ମାୟା ସେ ମନକୁ ସର୍ଜଇ । ତେଣୁ ଜୀବର ସଂସାର ହିଁ ॥ ୧୬
୭ [୪]ସ୍ନେହ ସ୍ନେହର ଅଧିଷ୍ଠାନ । ବର୍ତ୍ତି ଅନଳ-ସଂଯୋଜନ ॥ ୧୭
ଏମାନେ ଥାଆନ୍ତି ଯାବତ । ଦୀପର ଦୀପତ୍ୱ ତାବତ ॥ ୧୮
ଏରୂପେ ଦେହନିବନ୍ଧନ । ଆତ୍ମାର ଅଟଇ ଜନନ ॥ ୧୯
ଯେ ସତ୍ତ୍ୱ-ରଜ-ତମୋବୃତ୍ତି । ତେଣେ ଦେହର ଜନ୍ମମୃତି ॥ ୨୦

---

୧. 'ପ୍ରସାଦ' ଶବ୍ଦର ଅର୍ଥ ଏଠାରେ ରଜୋବୃତ୍ତି ହର୍ଷ । ତହିଁରୁ ଜାତ ହୋଇଥିବାରୁ ବ୍ରହ୍ମା ପରତନ୍ତ୍ର । ରୁଦ୍ର ମଧ୍ୟ ହରିଙ୍କ କ୍ରୋଧରୁ ଜନ୍ମିଥିବାରୁ ସ୍ୱତନ୍ତ୍ର ନୁହନ୍ତି ।

୨. ''ପିତା ପୁତ୍ରେଣ ପିତୃମାନ୍ ଯୋନିଯୋନୌ'' ଶ୍ରୁତିଃ
''ଅଙ୍ଗାଦଙ୍ଗାତ୍ ସଂଭବସି ହୃଦୟାଦଧି ଜାୟସେ ।
ଆତ୍ମା ବୈ ପୁତ୍ରନାମାସି ସଂଜୀବ ଶରଦଃ ଶତମ୍ ॥'' (ଶ୍ରୁତିଃ)

୩. ଆତ୍ମନଃ ପିତୃପୁତ୍ରାଭ୍ୟାମନୁମେୟୌ ଭବାପ୍ୟୟୌ ।
ନ ଭବାପ୍ୟୟବସ୍ତୂନାମଭିଜ୍ଞୋ ଦ୍ୱୟଲକ୍ଷଣଃ ॥

୪. ତୈଳ ।

୮ ଆତ୍ମାର ନାହିଁ ଜନ୍ମମୃତି । ତେଣୁ ସେ ଆତ୍ମା ସ୍ୱୟଂଜ୍ୟୋତି ।। ୨୧
ଯେ ସ୍ଥୂଳ ସୂକ୍ଷ୍ମ ଦେହ ଦୁଇ । ତହିଁରୁ ଭିନ୍ନ ସେ ଅଟଇ ।। ୨୨
ଦେହାଦି ସର୍ବ ପ୍ରପଞ୍ଚର । ଆକାଶ ପ୍ରାୟକ ଆଧାର ।। ୨୩
ଅଟେ ଅନୁପମ ଅନନ୍ତ । ଯେ ନିର୍ବିକାର ସର୍ବତତ୍ତ୍ୱ ।। ୨୪
୯ ଯେ ଦ୍ରଷ୍ଟା-ଦୃଶ୍ୟବେନିଗତ । [1]ଅନ୍ୱୟ-ବ୍ୟତିରେକଯୁତ ।। ୨୫
ଶ୍ରୀହରି-ଅନୁଚିନ୍ତା ଯହିଁ । ସେହି ବୁଦ୍ଧିରେ କର ତୁହି ।। ୨୬
ଆତ୍ମାକୁ ଆତ୍ମାରେ ସଂସ୍ଥିତ । କରି ଆତ୍ମାରେ ବିଚାର ତ ।। ୨୭
୧୦ ବ୍ରାହ୍ମଣବାକ୍ୟରେ ପ୍ରେରିତ । ତକ୍ଷକ ଯେ ମୃତ୍ୟୁନିମିତ୍ତ ।। ୨୮
ଅଟନ୍ତି ଆନ ଜୀବମାନ । ତୋତେ ନ କରିବେ ଦହନ ।। ୨୯
ତୁ ମୃତ୍ୟୁ ମୃତ୍ୟୁମାନଙ୍କର । ସାକ୍ଷାତ ପରମ ଈଶ୍ୱର ।। ୩୦
୧୧ ଯେ ମୁଁ ସେ ପରଂଧାମ ବ୍ରହ୍ମ । ଯେ ବ୍ରହ୍ମ ସେହି ମୁଁ ପରମ ।। ୩୧
ଏରୂପେ ନିଷ୍କଳ ଆତ୍ମାରେ । ଦେଖି ଆତ୍ମାକୁ ରଖି ଧୀରେ ।। ୩୨
୧୨ ବିଷସହିତ ଆନନରେ । ତକ୍ଷକ ସର୍ପ ଯେ ପାଦରେ ।। ୩୩
ଦଂଶନ କରିବ ତୁ ତାକୁ । ଆପଣା ଦେହକୁ ବିଶ୍ୱକୁ ।। ୩୪
ଆତ୍ମାରୁ ପୃଥକ କରିଣ । ଦେଖିବୁ ନାହିଁ ନିଶ୍ଚେ ପୁଣ ।। ୩୫
୧୩ ବିଶ୍ୱାତ୍ମା ହରିର ଲୀଳାକୁ । ଯାହା ପଚାରିଲ ଆମ୍ଭଙ୍କୁ ।। ୩୬
ଏ କଥା କହିଲଇଁ ତୋତେ । ହେ ତାତ ପରୀକ୍ଷିତ ଚିତ୍ତେ ।। ୩୭
ଇଚ୍ଛା କରିଛୁ ଶୁଣିବାକୁ । ପୁଣି ତୁ କେବଣ କଥାକୁ ।। ୩୮
ଶ୍ରୀକୃଷ୍ଣଚରଣସ୍ମରଣେ । ବ୍ରାହ୍ମଣ ଦୀନବନ୍ଧୁ ଭଣେ ।। ୩୯
ଦ୍ୱାଦଶସ୍କନ୍ଧ ଶୁଣି ତୋଷ । ବୈଷ୍ଣବ ଜୟରାମ ଦାସ ।। ୪୦

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ବ୍ରହ୍ମୋପଦେଶୋ
ନାମ ପଞ୍ଚମୋଽଧ୍ୟାୟଃ ।।

## ଷଷ୍ଠ ଅଧ୍ୟାୟ

ଷଷ୍ଠେ ପରୀକ୍ଷିତୋ ମୋକ୍ଷଃ
ସର୍ପହୋମାଦି ତତ୍‌ସୁତାତ୍ ।
ବେଦଶାସ୍ତ୍ରବିଭାଗୋକ୍ତୌ
ତ୍ରିବେଦିବ୍ୟାସବର୍ଣ୍ଣନମ୍ ।। ୧

ଶ୍ରୀସୂତ ଉବାଚ

୧ ସମସ୍ତ ଦେଖନ୍ତେ ଆତ୍ମାରେ । ସମାନ ସମସ୍ତ ଭୂତରେ ।। ୧

---

୧. ତତ୍‌ସତ୍ତ୍ୱେ ତତ୍‌ସତ୍ତ୍ୱମ୍ ଅନ୍ୱୟଃ, ତଦ୍-ଅସତ୍ତ୍ୱେ ତଦ୍-ଅସତ୍ତ୍ୱଂ ବ୍ୟତିରେକଃ ।

ସେ ବ୍ୟାସସୁତରେ କଥିତ । ଏମନ୍ତ ଶୁଣି ପରୀକ୍ଷିତ ।। ୨
ପାଦମୂଳକୁ ତାହାଙ୍କର । ଯାଇଣ ଯୋଡ଼ି ବେନି କର ।। ୩
ଶିର ଲୁଆଇଁ ବିଷ୍ଣୁରାତ । ତାହାଙ୍କୁ ବୋଇଲେ ଏମନ୍ତ ।। ୪

ଶ୍ରୀପରୀକ୍ଷିଦୁବାଚ

୨ କୃତାର୍ଥ ହୋଇଲଇଁ ମୁହିଁ । ତୁମ୍ଭ ଅନୁଗ୍ରହକୁ ପାଇ ।। ୫
କରୁଣ-ଆତ୍ମା ତୁମ୍ଭେ ମୋତେ । ଯାହା ଶୁଣାଇଲ ସାକ୍ଷାତେ ।। ୬
ଅନାଦିନିଧନ କୃଷ୍ଣଙ୍କୁ । ଆବର ତା' ପ୍ରାପ୍ତିହେତୁକୁ ।। ୭
୩ ଅଚ୍ୟୁତଠାରେ ଯାହାଙ୍କର । ମତି ନିବିଷ୍ଟ ନିରନ୍ତର ।। ୮
ସେହୁ ମହତଙ୍କର ଅତି । ଅଦ୍ଭୁତ ନୁହଇ ଏ ରୀତି ।। ୯
ଅଜ୍ଞାନୀ ତାପୀଙ୍କର ଠାରେ । ସେ ଅନୁଗ୍ରହ ଯା' ବିସ୍ତାରେ ।। ୧୦
୪ ତୁମ୍ଭ ସକାଶୁଁ ଏ ପୁରାଣ । ସଂହିତା ଶୁଣିଲାଇଁ ପୁଣ ।। ୧୧
ଉତ୍ତମଶ୍ଳୋକ ଭଗବାନ । ଯହିଁରେ ନିଶ୍ଚିତ ବର୍ଣ୍ଣନ ।। ୧୨
୫ ତକ୍ଷକ ଆଦି ମୃତ୍ୟୁ ମୁହିଁ । ହେ ମୁନି ଭୟ ପାଉନାହିଁ ।। ୧୩
କୈବଲ୍ୟରୂପି ଯେ ଅଭୟ । ଯେଣୁ ଦେଖାଇଲ ନିଶ୍ଚୟ ।। ୧୪
ବ୍ରହ୍ମ[୧] ଯେ ନିର୍ବାଣ[୨] ଅଟଇ । ତହିଁ ପ୍ରବିଷ୍ଟ ହେଲି ମୁହିଁ ।। ୧୫
୬ ଭୋ ମୁନି ମୋତେ ଆଜ୍ଞା କର । ସଂଯତ କରିବଇଁ ଗିର[୩] ।। ୧୬
କାମବାସନାମୁକ୍ତ ଯେହି । ସେ ଚିତ୍ତ ଅଧୋକ୍ଷଜଠାଇଁ ।। ୧୭
ପ୍ରବେଶାଇଣ ପ୍ରାଣମାନ । କରିବି ଏବେ ବିସର୍ଜନ ।। ୧୮
୭ ନିଷ୍ଠାରେ ଜ୍ଞାନ-ବିଜ୍ଞାନର । ଅଜ୍ଞାନ ନିରସ୍ତ ମୋହର ।। ୧୯
ଯେ ଅଟେ ଅଜ୍ଞାନ-ସଂସ୍କାର । ସେ ପୁଣ ହୋଇଗଲା ଦୂର ।। ୨୦
ବିଷ୍ଣୁର ଯେ ପରମ ପଦ । ଯେ ଅଟେ ମଙ୍ଗଳ-ଆସ୍ପଦ ।। ୨୧
ଦେଖାଇ ଦେଲ ତାହାକୁ ହିଁ । ମୋହ' ଉପରେ କୃପା ବହି ।। ୨୨

ଶ୍ରୀସୂତ ଉବାଚ

୮ ନୃପତି କହନ୍ତେ ଏ ବାଣୀ । ତାଙ୍କୁ ଅନୁଜ୍ଞା ମାଗି ପୁଣି ।। ୨୩
ପୂଜିତ ହୋଇଣ ରାଜାରେ । ଭିକ୍ଷୁମାନଙ୍କ ସହିତରେ ।। ୨୪
ବାଦରାୟଣି ଭଗବାନ । ସେଠାରୁ କଲେକ ଗମନ ।। ୨୫
୯ ବୁଦ୍ଧିସାହାଯ୍ୟେ ନିଜ ମନ । [୪]ଆତ୍ମାରେ କରି ସମାଧାନ ।। ୨୬
ସେ ପରୀକ୍ଷିତ ରାଜରଷି । ନିଶ୍ଚଳପ୍ରାଣ ହୋଇ ବସି ।। ୨୭
ପରମାତ୍ମାଙ୍କୁ କଲେ ଧ୍ୟାନ । ରହିଲେ ପାଦପ ଯେସନ ।। ୨୮

---

୧. ଭଗବତ୍ତତ୍ତ୍ୱ ।
୨. ପରମାନନ୍ଦରୂପ ।
୩. ବାଣୀ ସହ ସମସ୍ତ ଇନ୍ଦ୍ରିୟକୁ ।
୪. ଅନ୍ତର୍ଯାମୀ ପୁରୁଷଙ୍କ ଠାରେ ।

୧୦ ପୂର୍ବାଗ୍ର କୁଶମାନଙ୍କରେ । ବସନ୍ତେ ଜାହ୍ନବୀକୂଳରେ ।।
ଉତ୍ତରମୁଖ ବ୍ରହ୍ମଭୂତ । ନିଃସଙ୍ଗ ମହାଯୋଗୀ ସେ ତ ।।
ସଂଶୟ ଯେ ତାଙ୍କର ଥିଲା । ସମସ୍ତ ଛିନ୍ନ ସେ ହୋଇଲା ।।
୧୧ କ୍ରୁଦ୍ଧ ହୋଇଣ ବିପ୍ରସୁତ । ପେଷନ୍ତେ ତକ୍ଷକ ତୁରିତ ।।
ଯାନ୍ତେ ରାଜାଙ୍କୁ ଦଂଶିବାକୁ । ମାର୍ଗେ ଦେଖିଲା କଶ୍ୟପଙ୍କୁ ।।
୧୨ ତକ୍ଷକ ପଚାରିଲା ତାଙ୍କୁ । ଯାଉଛ ତୁମ୍ଭେ କି କାର୍ଯ୍ୟକୁ ।।
ବିପ୍ର କହିଲେ, ପରୀକ୍ଷିତ । ତକ୍ଷକେ ହୋଇବ ଦଂଶିତ ।।
ନିର୍ବିଷ କରି ତାଙ୍କୁ କିଛି । ଦ୍ରବ୍ୟଲାଭକୁ ଯାଉଅଛି ।।
ଏମନ୍ତ ବିପ୍ରବାକ୍ୟ ଶୁଣି । ତକ୍ଷକ ବୋଲେ ତାଙ୍କୁ ପୁଣି ।।
ତକ୍ଷକ ଦଂଶଇ ଯାହାକୁ । ଆନ କି ଭଲ କରେ ତାକୁ ।।
ବିଷଚିକିତ୍ସା ଜାଣ ଯେବେ । ଝାଡ଼ଟି[୧] ଏ ବୃକ୍ଷକୁ ତେବେ ।।
ଏମନ୍ତ ବଚନକୁ କହି । ଦଂଶିଲା ବଟବୃକ୍ଷ ଅହି ।।
ଭସ୍ମ ହୋଇଲା ବଟବୃକ୍ଷ । କଶ୍ୟପ ଦେଖି ତା' ପ୍ରତ୍ୟକ୍ଷ ।।
ଧରିଣ ଭସ୍ମକୁ ହସ୍ତରେ । ଝାଡ଼ିଲେ ବିଷଘ୍ନ ମନ୍ତ୍ରରେ ।।
ଅଙ୍କୁର-ଶାଖା-କାଣ୍ଡ-ଫଳ । ପଲ୍ଲବ ଯେ ବା ପୁଷ୍ପକୁଳ ।।
ସେ କ୍ରମେ ବୃକ୍ଷ ଜାତ ହେଲା । ତା' ଦେଖି ତକ୍ଷକ ବୋଇଲା ।।
ରାଜାଙ୍କୁ କରନ୍ତେ ନିର୍ବିଷ । ନାଶ ହୋଇବ ମୋର ଯଶ ।।
ରାଜାର ଆୟୁଷ ନ ଥିଲେ । ସିଦ୍ଧ ନୋହିବ ମନ୍ତ୍ର ଭଲେ ।।
ତୁମ୍ଭେ ଲଭିବ ଉପହାସ । ଏ ଘେନି ଶୁଣ ମୋ' ସନ୍ଦେଶ ।।
ବାଞ୍ଛା କରିଛ ବିତ୍ତ ଯେତେ । ମୋ' ଠାରୁ ଘେନି ଯାଅ ତେତେ ।।
ତକ୍ଷକ କହନ୍ତେ ଏ ବାଣୀ । ଧ୍ୟାନବଳରେ ବିପ୍ର ପୁଣି ।।
ଜାଣିଲେ ନୃପତି-ଆୟୁଷ । କାଳରେ ହୋଇଅଛି ଶେଷ ।।
ତକ୍ଷକଠାରୁ ଲଭି ବିତ୍ତ । ଲେଉଟି ଗଲେ ସେ ତୁରିତ ।।
ତକ୍ଷକ ବିପ୍ରବେଶ ହୋଇ । ଦଂଶିଲା ନୃପତିକି ଯାଇ ।।
୧୩ ସେ ବ୍ରହ୍ମଭୂତ ରାଜର୍ଷିର । ଅହିବିଷାଗ୍ନିରେ ଶରୀର ।।
ଭସ୍ମ ହୋଇଲାକ ଝଟିତି । ସମସ୍ତ ଲୋକେ ଚାହୁଁଛନ୍ତି ।।
କୁମାରକୃତ୍ୟ[୨] ପ୍ରାୟେ ତାର । ହେଲା ତକ୍ଷକ ଦଂଶିବାର ।।
୧୪ ଅବନିତଳେ ଆକାଶରେ । ସମସ୍ତ ଦିଗମାନଙ୍କରେ ।।
ହୋଇଲା ମହା ହାହାକାର । ସମସ୍ତ ଦେବତା ଅସୁର ।।
ମନୁଷ୍ୟ ଆଦି ହିଁ ବିସ୍ମୟ । ଲଭିଲେ ମନେ ଅତିଶୟ ।।

---

୧. ଝାଡ଼ଟି = ଝାଡ଼ିଦିଅ ।

୨. କୁମାରକୃତ୍ୟ = ଶ୍ରୀପରୀକ୍ଷିତ ଭଗବାନଙ୍କ ଆଦେଶରେ ଆବିଷ୍ଟ ଥିବା ହେତୁ ଦେହର ଅଭିନିବେଶରୁ ସଂପୂର୍ଣ୍ଣ ମୁକ୍ତ ଥିଲେ । ସେତେବେଳେ ତକ୍ଷକଙ୍କ ଦଂଶନ ତାଙ୍କ ଉକ୍ତଦେହର ସଂସ୍କାରାର୍ଥେ ପୁତ୍ରର ଅଗ୍ନିଦାନସଦୃଶ ହୋଇଥିଲା ।

୧୫ ଦେବଙ୍କ ଦୁନ୍ଦୁଭି ବାଜିଲେ । ଗନ୍ଧର୍ବ ଅପ୍‌ସରା ଗାଇଲେ ॥ ୫୯
ଅମରେ ସାଧୁବାଦ କଲେ । ପୁଷ୍ପବୃଷ୍ଟିକି ବରଷିଲେ ॥ ୬୦
୧୬। ତକ୍ଷକ-କଶ୍ୟପ ବୃତ୍ତାନ୍ତ । ସଂସାରେ ହୋଇଲା ବିଖ୍ୟାତ ॥ ୬୧
୧୭। ଜନମେଜୟ ତାହା ଶୁଣି । ବୋଇଲେ କ୍ରୁଦ୍ଧ ହୋଇ ପୁଣି ॥ ୬୨
ଦ୍ୱିଜବଚନେ ଯେବେ ଅହି । ଦଂଶନ୍ତା ଦୋଷ ତାର ନାହିଁ ॥ ୬୩
ଯେ ଆସିଥିଲା ଝାଡ଼ିବାକୁ । ଲେଉଟାଇଲା କିମ୍ପା ତାକୁ ॥ ୬୪
ଏମନ୍ତ ବୋଲି କ୍ରୋଧଭରେ । ବ୍ରାହ୍ମଣମାନଙ୍କ ସଙ୍ଗରେ ॥ ୬୫
ବର୍ତ୍ତନ୍ତେ ଉରଗସତ୍ର[୧]ରେ । ଦେଖିଲା ପ୍ରଦୀପ୍ତ ଅଗ୍ନିରେ ॥ ୬୬
ଦଗ୍ଧ ମହତ ସର୍ପମାନେ । ସାଧ୍ୱସ-ଉଦବେଗ ମନେ ॥ ୬୭
ଇନ୍ଦ୍ରଠାବରେ ତତକ୍ଷଣ । ତକ୍ଷକ ପଶିଲା ଶରଣ ॥ ୬୮
୧୮ ପରୀକ୍ଷିତର ସୁତ ନୃପ । ମନରେ ବହିଅଛି କୋପ ॥ ୬୯
ନ ଦେଖି ତହିଁ ତକ୍ଷକକୁ । ପୁଛିଲା ବ୍ରାହ୍ମଣମାନଙ୍କୁ ॥ ୭୦
ତକ୍ଷକ ଯେ ଅଧମ ଅହି । ସେ ଦଗ୍ଧ ନୋହୁଛି କିଂପାଇଁ ॥ ୭୧
୧୯ ଏମନ୍ତ ବୋଲନ୍ତେ ରାଜନ । ବ୍ରାହ୍ମଣେ କହିଲେ ବଚନ ॥ ୭୨
ହେ ନୃପ ସେ ଶରଣାଗତ । ତାକୁ ରଖିଛି ପୁରୁହୂତ[୨] ॥ ୭୩
ସ୍ତମ୍ଭିତ ହୋଇଛି ତାହାରେ । ତେଣୁ ସେ ନ ପଡ଼େ ଅଗ୍ନିରେ ॥ ୭୪
୨୦ ଉଦାରବୁଦ୍ଧି ପରୀକ୍ଷିତ । ତନୟ ଶୁଣିଣ ଏମନ୍ତ ॥ ୭୫
ଋତ୍ୱିଜମାନଙ୍କୁ ବୋଲଇ । ଇନ୍ଦ୍ରସହିତେ କାହିଁ ପାଇଁ ॥ ୭୬
ତକ୍ଷକ ସର୍ପକୁ ଅଗ୍ନିରେ । ପକାଉନାହଁ ହେ ଭୂସୁରେ ॥ ୭୭
୨୧ ଶୁଣିଣ ନୃପତିବଚନ । ବ୍ରାହ୍ମଣେ କଲେକ ଆହ୍ୱାନ ॥ ୭୮
ଇନ୍ଦ୍ରଦେବତା ସହିତରେ । ତକ୍ଷକ-ସର୍ପକୁ ମଖରେ[୩] ॥ ୭୯
ତକ୍ଷକ ଇନ୍ଦ୍ର ସହିତରେ । ପଡ଼ ତୁ ବେଗ ଏ ଅଗ୍ନିରେ ॥ ୮୦
୨୨ ଏମନ୍ତେ ବିପ୍ରଙ୍କ ପରୁଷ[୪] । ବାକ୍ୟରେ ସ୍ଥାନୁଁ ସୁର-ଈଶ ॥ ୮୧
ବିମାନ-ତକ୍ଷକ ସହିତ । ଚଳନ୍ତେ ହେଲା ଭ୍ରାନ୍ତଚିତ୍ତ ॥ ୮୨
୨୩ ତକ୍ଷକତୁଲେ ବିମାନରେ । ଗଗନୁଁ ପଡ଼ନ୍ତେ ସତ୍ୱରେ ॥ ୮୩
ଇନ୍ଦ୍ରଙ୍କୁ ଦେଖି ବୃହସ୍ପତି । ବୋଇଲେ ଶୁଣ ହେ ନୃପତି ॥ ୮୪
୨୪ ଏ ସୁରରାଜ ତୋରେ ପୁଣ । ବଧକୁ ଯୋଗ୍ୟ ନୋହେ ଜାଣ ॥ ୮୫
ଅମୃତ ଏହୁ ଅଛି ପିଇ । ଅଜରାମର ଏ ଅଟଇ ॥ ୮୬
୨୫ ନିଜ କର୍ମରେ ପ୍ରାଣୀଙ୍କର । ଜୀବିତ ମୃତ୍ୟୁ ଗତି ଆର ॥ ୮୭
ତେଣୁ ଏହାର ହେ ରାଜନ । ସୁଖଦୁଃଖଦ ନୁହେଁ ଆନ ॥ ୮୮
୨୬ ଉରଗ ଅରାତି ଚଉର । ଅନଳ କ୍ଷୁଧା ତୃଷା ଆର ॥ ୮୯

---

୧. ଉରଗସତ୍ର = ସର୍ପଯଜ୍ଞ । ୨. ପୁରୁହୂତ = ଇନ୍ଦ୍ର । ୩. ମଖରେ = ଯଜ୍ଞରେ ।
୪. ପରୁଷ = କର୍କଶ ।

| | | | | | |
|---|---|---|---|---|---|
| | ରୋଗ ଏ ଆଦି ଯେ ବା ଆନ | । | ଏଣେ ଯା' ମୃତ୍ୟୁ ଲଭେ ଜନ | ॥ | ୯୦ |
| | ପ୍ରାରବ୍‌ଧ କର୍ମ ତାର ସେହି | । | ହେ ନୃପ ଜନ୍ତୁ ତା' ଭୁଞ୍ଜଇ | ॥ | ୯୧ |
| ୨୭ | ତେଣୁ ଏ ହିଂସାଫଳ ସତ୍ର | । | ନିବର୍ତ୍ତୁ, ଆହେ ନୃପପୁତ୍ର | ॥ | ୯୨ |
| | ନିରପରାଧ ସର୍ପମାନେ | । | ଦଗଧ ହୋଇଲେ ଦହନେ | ॥ | ୯୩ |
| | ଯେଣୁ ପ୍ରାଚୀନ କର୍ମମାନ | । | [1]ଭୋଗ କରନ୍ତି ଏଥି ଜନ | ॥ | ୯୪ |

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୨୮ | ଏମନ୍ତ ବାକ୍ୟ ବୃହସ୍ପତି | । | କହନ୍ତେ ପୁଣ ସେ ନୃପତି | ॥ | ୯୫ |
| | ମାନିଣ ମହାଋଷିବାଣୀ | । | ସେରୂପେ ହେଉ ବୋଲି ଭଣି | ॥ | ୯୬ |
| | ସର୍ପସତ୍ରରୁ ନିବର୍ତ୍ତିଲା | । | ବୃହସ୍ପତିଙ୍କି ପୂଜା କଲା | ॥ | ୯୭ |
| ୨୯ | ବାଧାପାଇଁ କି ଯେ ଅଶକ୍ୟା | । | ଯେହୁ ଅଟଇ ଅପ୍ରତର୍କ୍ୟା[2] | ॥ | ୯୮ |
| | ଏହି ସେ ବିଷ୍ଣୁର ଅଟଇ | । | ବିଖ୍ୟାତ ମହାମାୟା ହୋଇ | ॥ | ୯୯ |
| | ଯେଣେ ବିଷ୍ଣୁର ଅଂଶଭୂତ | । | ପ୍ରାଣୀଏ କ୍ରୋଧାଦି ସହିତ | ॥ | ୧୦୦ |
| | ବାଧ୍ୟ-ବାଧକ ଭାବକୁ ହିଁ | । | ଲଭନ୍ତି ଦେହମାନଙ୍କେ ହିଁ | ॥ | ୧୦୧ |
| ୩୦ | କପଟବନ୍ତ ଏ ପୁରୁଷ | । | ଏମନ୍ତ ବୁଦ୍ଧିରେ ପ୍ରକାଶ | ॥ | ୧୦୨ |
| | ଲଭିଛି ଯେହୁ ବାରମ୍ବାର | । | ସେ ମାୟା ସମ୍ମୁଖେ ଯାହାର[3] | ॥ | ୧୦୩ |
| | ନିର୍ଭୟ ଭାବକୁ ବହିଣ | । | ପ୍ରକାଶ ନ ଲଭଇ ପୁଣ | ॥ | ୧୦୪ |
| | ମୋହାଦି ନିଜ କାର୍ଯ୍ୟକୁ ହିଁ | । | ନ କରି ଭୀତପ୍ରାୟ ହୋଇ | ॥ | ୧୦୫ |
| | ବର୍ତ୍ତଇ କୌଣସି ପ୍ରକାରେ | । | ଆବର ଆତ୍ମବାଦୀ[4] ନରେ | ॥ | ୧୦୬ |
| | କରନ୍ତେ ଆତ୍ମବାଦକୁ ହିଁ | । | ସେ ମାୟା ପ୍ରକାଶ ନୁହଇ | ॥ | ୧୦୭ |
| | ମାୟା-ଆଶ୍ରୟ ନାନାବିଧ | । | ନ ଥାଏ ଯେଉଁଠି ବିବାଦ | ॥ | ୧୦୮ |
| | ଯେଣୁ ବିଶେଷବିଷୟକ | । | ବିବାଦ ଅଟେ ହେ ଶୌନକ | ॥ | ୧୦୯ |
| | ସେ ବିଷ୍ଣୁ ବିଶେଷ-ଅତୀତ | । | ତେଣୁ ବିବାଦବିବର୍ଜିତ | ॥ | ୧୧୦ |
| | ସଂକଳ୍ପ ବିକଳ୍ପ ଯା ବୃତ୍ତି | । | ସେ ମନ ଯେଉଁଠି ନ ବର୍ତ୍ତି | ॥ | ୧୧୧ |
| | ଯେଣୁ ସଂକଳ୍ପ ବିକଳ୍ପର | । | ବିଶେଷ ବିଷୟ ଆବର | ॥ | ୧୧୨ |
| ୩୧ | ଯେ ସୃଜ୍ୟ କର୍ମ ଯେ ସର୍ଜକ | । | ଆବର ସମସ୍ତ କାରକ | ॥ | ୧୧୩ |
| | ସୃଜ୍ୟ ସର୍ଜକ ବେନି ହୋଇ | । | ତାହାଙ୍କ ସାଧ୍ୟ ଫଳ ଯେହି | ॥ | ୧୧୪ |
| | ଏ ତିନି[5]-ଅନୁଗତ ଜୀବ | । | ଯେହୁ ଅହଂକାରସ୍ୱଭାବ | ॥ | ୧୧୫ |
| | ସେ ଯହିଁ ସମ୍ଭବ ନୁହଇ | । | ଅତଏବ ସେ ବିଷ୍ଣୁଠାଇଁ | ॥ | ୧୧୬ |

---

୧. ଏଣୁ ସର୍ପମାନଙ୍କର ଅଦୃଷ୍ଟଦ୍ୱାରା ପ୍ରଯୁକ୍ତ ହୋଇ ତୁମେ ଏହା କରିଥିବାରୁ ଏହା ମଧ୍ୟ ତୁମର ଅପରାଧ ନୁହେଁ ।

୨. ଅପ୍ରତର୍କ୍ୟା = ଅଲକ୍ଷଣୀୟା ଅର୍ଥାତ୍ ଯାହା ଲକ୍ଷ୍ୟ କରି ହୁଏ ନା ।

୩. ଯାହାର = ଯେଉଁ ଭଗବାନଙ୍କର । ୪. ଆତ୍ମବାଦୀ = ଭଗବଦ୍‌ପରାୟଣ ।

୫. ସୃଜ୍ୟ, ସର୍ଜକ ଓ ତାହାଙ୍କ ସାଧ୍ୟ ଫଳ – ଏଇ ତିନି ।

| | | | | |
|---|---|---|---|---|
| | ବାଧ୍ୟବାଧକ ଭାବ ଦୁଇ | । ବିଚାରେ ନିରସ୍ତ ହୁଅଇ | ॥ | ୧୧୭ |
| | ସେ ଅଟେ ସ୍ୱରୂପ ଆତ୍ମାର | । ଅହଂକାରାଦିଙ୍କି ତା'ଠାର | ॥ | ୧୧୮ |
| | ନିଷେଧ କରି ମୁନିଜନ | । ବିଶେଷେ କରନ୍ତି କ୍ରୀଡ଼ନ | ॥ | ୧୧୯ |
| ୩୨ | ଆତ୍ମାରୁ ଭିନ୍ନ ଯେ ଅଟଇ | । ତାହାକୁ ବୋଲି ନାହିଁ ନାହିଁ | ॥ | ୧୨୦ |
| | ଇଚ୍ଛନ୍ତି କରିବାକୁ ତ୍ୟାଗ | । ଯେଉଁ ସକଳ ମହାଭାଗ | ॥ | ୧୨୧ |
| | [1]ଆନରେ ନାହିଁ ଯାହାଙ୍କର | । ସୁହୃଦଭାବ ହିଁ ଆବର | ॥ | ୧୨୨ |
| | ତେଜି ଦେହାଦି-ଅହଂକାର | । ତାହାକୁ ସ୍ୱରୂପ ବିଷ୍ଣୁର | ॥ | ୧୨୩ |
| | ବୋଲନ୍ତି ସେ ସୁଜ୍ଞ ପଣ୍ଡିତ | । ଯେ ଆତ୍ମଭାବରେ ଗୃହୀତ | ॥ | ୧୨୪ |
| | ତାକୁ ହିଁ ଧ୍ୟାନାଦିରେ ପୁଣ | । ହୃଦେ କରନ୍ତି ଆଲିଙ୍ଗନ | ॥ | ୧୨୫ |
| ୩୩ | ତାଙ୍କର ଦେହେ ଅହଂକାର | । ନାହିଁ ମମତା ଗୃହେ ଆର | ॥ | ୧୨୬ |
| | ପରମ ପଦ ଯେ ବିଷ୍ଣୁର | । ତାହା ପାଆନ୍ତି ଏ ସତ୍ୱର | ॥ | ୧୨୭ |
| ୩୪ | ଯେ ଅଟେ ଅତିଦୁର୍ବଚନ | । ତିତିକ୍ଷା କରିବ ସେମାନ | ॥ | ୧୨୮ |
| | ଅବମାନନା କାହାକୁ ହିଁ | । କରିବ ନାହିଁ ସର୍ବଥା ହି | ॥ | ୧୨୯ |
| | ଆଶ୍ରା କରି ଏ କଳେବର | । କାହାରି ସଙ୍ଗରେ ବଇର | ॥ | ୧୩୦ |
| | କରିବ ନାହିଁ ସାଧୁ ଜନ | । ଏ ବିଷ୍ଣୁପ୍ରାପ୍ତିକି ସାଧନ | ॥ | ୧୩୧ |
| ୩୫ | ସେ କୃଷ୍ଣ[2] ବ୍ୟାସ ଭଗବାନ | । ତାହାଙ୍କୁ ମୋହର ବନ୍ଦନ | ॥ | ୧୩୨ |
| | ଅକୁଣ୍ଠ ଅଟେ ବୁଦ୍ଧି ଯାର | । ଧ୍ୟାନରୁ ଯା' ପାଦପଦ୍ମର | ॥ | ୧୩୩ |
| | ଏ ଭାଗବତ ସଂହିତା ହିଁ | । ଲଭିଲି ଅତିସୁଖେ ମୁହିଁ | ॥ | ୧୩୪ |

ଶ୍ରୀଶୌନକ ଉବାଚ

| | | | | |
|---|---|---|---|---|
| ୩୬ | ପୈଳାଦି ଶିଷ୍ୟ ବ୍ୟାସଙ୍କର | । ମହାତ୍ମା ଆଚାର୍ଯ୍ୟ ବେଦର | ॥ | ୧୩୫ |
| | ସେମାନେ ଭାଗ ଭାଗ କରି | । ବେଦକୁ ଅଛନ୍ତି ବିସ୍ତାରି | ॥ | ୧୩୬ |
| | ଏହା ଯେ ହୋଇଛି କଥିତ | । ହେ ସୌମ୍ୟ ଆମ୍ଭଙ୍କୁ କହ ତ | ॥ | ୧୩୭ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୩୭ | ଯେ ବ୍ରହ୍ମା ପରମେଷ୍ଠୀ ଖ୍ୟାତ | । ସେ ପୂର୍ବସୃଷ୍ଟିର ବୃତ୍ତାନ୍ତ | ॥ | ୧୩୮ |
| | ଜାଣିମା ପାଇଁ ସମାହିତ | । କରନ୍ତେ ଆପଣାର ଚିତ୍ତ | ॥ | ୧୩୯ |
| | ହୃଦୟ-ଆକାଶୁଁ ତାଙ୍କର | । ନାଦ ଜନମିଲା ସତ୍ୱର | ॥ | ୧୪୦ |
| | ଯେ ନାଦ ଅଟେ ଅନାହତ | । ତାଲ୍ୱାଦି-ସଂଘର୍ଷ ରହିତ | ॥ | ୧୪୧ |
| | ବୁଜନ୍ତେ କର୍ଣ୍ଣପୁଟବେନି | । ଶ୍ରୋତ୍ରବୃତ୍ତିନିରୋଧ ଘେନି | ॥ | ୧୪୨ |
| | ଅଦ୍ୟାପି ଯାହାକୁ ମନୁଜ | । ବିତର୍କ କରଇ ହେ ଦ୍ୱିଜ | ॥ | ୧୪୩ |
| ୩୮ | ହେ ଦ୍ୱିଜ ଯାହା ଉପାସନେ | । ଏଥି ପରମ ଯୋଗିମାନେ | ॥ | ୧୪୪ |

୧. ଆନରେ = ଭଗବଦତିରିକ୍ତ ବସ୍ତୁରେ । ୨. ବ୍ୟାସଙ୍କ ନାମ ।

ଅଧ୍ୟାତ୍ମ ଯେହୁ ଅଧିଭୂତ । ଯେ ଅଧିଦେବ ନାମେ ଖ୍ୟାତ ।। ୧୪୫
ତେଜି ସେ ମଳକୁ ଆତ୍ମାର । ଲଭନ୍ତି ମୋକ୍ଷପଦ ସାର ।। ୧୪୬
୩୯ ତହିଁରୁ ହୋଇଲା ପ୍ରଣବ । ଯାହାର ଅବ୍ୟକ୍ତ ପ୍ରଭବ ।। ୧୪୭
ଯେ ସ୍ୱୟଂ ହୃଦେ ପ୍ରକାଶିତ । ଯେ ପୁଣି ଅଟଇ ତ୍ରିମାତ୍ର ।। ୧୪୮
ବ୍ରହ୍ମ ପରାତ୍ମା ଭଗବାନ । ଏ ଯେଉଁ ତିନି ନାମ ଭିନ୍ନ ।। ୧୪୯
[1]ଏ ତିନି ନାମର ଗମକ[2] । ଅଟେ ସେ ପ୍ରଣବ ଶୌନକ ।। ୧୫୦
୪୦ ଏ ଯେଉଁ ଅବ୍ୟକ୍ତ ଓଁକାର । ତାହାକୁ ଶୁଣଇ ଈଶ୍ୱର ।। ୧୫୧
ଜୀବ ତା' ଶୁଣି ନ ପାରଇ । କର୍ଣ୍ଣପିଧାନ-ଆଦିରେ ହିଁ ।। ୧୫୨
ଶ୍ରୋତ୍ର ହେଲେହେଁ ଅବୃତ୍ତିକ । ଈଶ୍ୱର ଶୁଣେ ହେ ଶୌନକ ।। ୧୫୩
ହେଲେହେଁ ଇନ୍ଦ୍ରି[3]ବର୍ଗ ଲୀନ । ଯେଣୁ ତାହାର ଥାଏ ଜ୍ଞାନ ।। ୧୫୪
କିନ୍ତୁ ଜୀବର ଯଉଁ ଜ୍ଞାନ । ଯେଣୁ ତା' କାରଣ-ଅଧୀନ ।। ୧୫୫
ତେଣୁ ସେ ଶୁଣି ନ ପାରଇ । ତଥାପି ଈଶ୍ୱରଦ୍ୱାରା ହିଁ ।। ୧୫୬
ହୁଅଇ ଉପଲବ୍ଧି ତାର । ଏ ଅଟେ ବଚନ ଶାସ୍ତ୍ରର ।। ୧୫୭
ଶବ୍ଦ ଶୁଣିଣ ସୁପ୍ତ[4] ଯେବେ । ପ୍ରବୁଦ୍ଧ ହୁଅଇଟି, ତେବେ ।। ୧୫୮
ଜୀବ ନୁହଇ ଶ୍ରୋତା ପୁଣ । ଯେଣୁ ଲୀନ ତା' ଇନ୍ଦ୍ରିଗଣ ।। ୧୫୯
ଏଣୁ ଯେ ଶୁଣିଣ ଶବଦ । ଜୀବକୁ କରଇ ପ୍ରବୋଧ ।। ୧୬୦
ପରମ[5] ସେ ଶ୍ରୋତା ବୋଲାଇ । ସେ ରୂପେ ଓଁକାର ଅଟଇ ।। ୧୬୧
ଯେ ବେଦବାଣୀଟି ବୃହତ । ଓଁକାର କରେ ତା' ବ୍ୟକତ ।। ୧୬୨
ହୃଦୟ-ଆକାଶେ ଆତ୍ମାର । ସକାଶୁଁ ଅଭିବ୍ୟକ୍ତି ତା'ର[6] ।। ୧୬୩
୪୧ ବ୍ରହ୍ମର ବାଚକ ଓଁକାର । ବ୍ରହ୍ମ ହିଁ କାରଣ ତାହାର ।। ୧୬୪
ସେ ପୁଣ ଅଟଇ ବାଚକ । ପରମାତ୍ମାରେ ହେ ଶୌନକ ।। ୧୬୫
ଯେ ଘେନି ଦେବତା ସମସ୍ତ । ପରମାତ୍ମାର ଅଂଶଭୂତ ।। ୧୬୬
ସେ ଘେନି ଓଁକାର ସକଳ । ଦେବତାବାଚକ ଆବର ।। ୧୬୭
ସମସ୍ତ ମନ୍ତ୍ରମାନଙ୍କର । ସୂଖୁମ[7] ରୂପ ସେ ଓଁକାର ।। ୧୬୮
ସେ ବେଦବୀଜ ଅଟେ ପୁଣ । [8]ଯେ ସଦା ଏକରୂପ ଜାଣ ।। ୧୬୯
୪୨ ତ୍ରିବର୍ଣ୍ଣ ହୋଇଲା ତାହାର । ଅକାର-ଉକାର-ମକାର ।। ୧୭୦
ଯେ ଗୁଣ ସତ୍ତ୍ୱ-ରଜ-ତମ । ଯେ ନାମ ରକ-ଯଜୁ-ସାମ ।। ୧୭୧
ଯେ ଅର୍ଥ ଭୂର୍ଭୁବଃସ୍ୱର୍ଲୋକ । ଯେ ବୃତ୍ତି ଜାଗ୍ରତ୍ ସ୍ୱପ୍ନାଦିକ[9] ।। ୧୭୨

---

୧. ଓଁକାର ବ୍ରହ୍ମ, ପରମାତ୍ମା ଓ ଭଗବାନ୍ - ଏ ତିନି ପରତତ୍ତ୍ୱର ବାଚକ ।
୨. ଗମକ = ବୋଧକ । ୩. ଇନ୍ଦ୍ରିୟ । ୪. ସୁପ୍ତ ଜୀବ ।
୫. ପରମାତ୍ମା । ୬. ଓଁ କାରର । ୭. ସୂଖୁମ = ସୂକ୍ଷ୍ମ ।
୮. ବୀଜ ହେଲେ ମଧ୍ୟ ଅବିକାରୀ - ସଦା ଏକରୂପ, କାରଣ ସେ ବ୍ରହ୍ମରୂପ ।
୯. 'ଆଦି' ଶବ୍ଦର 'ସୁଷୁପ୍ତି' ଅର୍ଥ ।

ଏ ଯେ ତ୍ରିସଂଖ୍ୟ ଭାବମାନ । ଏହାଙ୍କୁ ଧରଇ ତ୍ରିବର୍ଣ୍ଣ ॥ ୧୭୩
୪୩ ସେ ବର୍ଣ୍ଣମାନଙ୍କରୁ ଅଜ । ସର୍ଜିଲା ଅକ୍ଷରସମାଜ ॥ ୧୭୪
ଯ-ର-ଲ-ବ ଅନ୍ତଃସ୍ଥ ବର୍ଣ୍ଣ । ଶ-ଷ-ସ-ହ, ବିସର୍ଗ ଉଷ୍ମ ॥ ୧୭୫
ଅକାର-ଆଦି ଅଟେ ସ୍ୱର । କ-ଆଦି ମ-ଅନ୍ତ ଅକ୍ଷର ॥ ୧୭୬
ସ୍ୱରଶ ସଂଜ୍ଞା ଏହାଙ୍କର । ହ୍ରସ୍ୱ-ଦୀର୍ଘ-ପ୍ଳୁତ ଆବର ॥ ୧୭୭
[1]ଜିହ୍ୱାମୂଳୀୟ ଅନୁସ୍ୱାର । [2]ଉପଧ୍ମାନୀୟ ଯେ ଅକ୍ଷର ॥ ୧୭୮
ଏମାନେ ସ୍ୱରୂପ ଯାହାର । ସେହିଟି ବର୍ଣ୍ଣସମାହାର ॥ ୧୭୯
୪୪ ହୋତା-ଉଦ୍‌ଗାତା ଦୁଇ ଜଣ । ବ୍ରହ୍ମା-ଅଧ୍ୱର୍ଯ୍ୟୁ ଦୁଇ ପୁଣ ॥ ୧୮୦
ଏ ରୂପେ ଋତ୍ୱିକ୍ ଚାରି ଖ୍ୟାତ । ହୁଅନ୍ତେ ହୋତ୍ରୋପଲକ୍ଷିତ ॥ ୧୮୧
ଏହାଙ୍କ ଅନୁଷ୍ଠେୟ କର୍ମ । ଅଟଇ 'ଚାତୁର୍ହୋତ୍ର' ନାମ ॥ ୧୮୨
ତାହାକୁ କହିବା ଇଚ୍ଛାରେ । ବ୍ରହ୍ମା ଯେ ଚାରି ବଦନରେ ॥ ୧୮୩
ଚାରିବେଦକୁ ସେ ଅକ୍ଷରେ[3] । [4]ପ୍ରଣବ-ବ୍ୟାହୃତି ସଙ୍ଗରେ ॥ ୧୮୪
ତଦନ୍ତେ କଲେକ ସର୍ଜନ । ସେ ଚତୁର୍ମୁଖ ଭଗବାନ ॥ ୧୮୫
୪୫ ମରୀଚି ଆଦି ଋଷିଗଣ । ଯେ ବେଦୋଚ୍ଚାରଣନିପୁଣ ॥ ୧୮୬
ଯେ ବ୍ରହ୍ମଋଷି ନାମେ ଖ୍ୟାତ । ସେ ପୁତ୍ରମାନଙ୍କୁ ସମସ୍ତ ॥ ୧୮୭
ବେଦମାନ ସେ ପଢ଼ାଇଲେ । ସେମାନେ ଧର୍ମ ଜାଣି ଭଲେ ॥ ୧୮୮
ଧର୍ମୋପଦେଶକ ହୋଇଲେ । ନିଜପୁତ୍ରଙ୍କୁ ବଖାଣିଲେ ॥ ୧୮୯
୪୬ ଯେ ତାଙ୍କ ଶିଷ୍ୟେ ଧୃତବ୍ରତ । ସେ ପରଂପରାରେ ପ୍ରାପତ ॥ ୧୯୦
ବେଦମାନଙ୍କର ରକ୍ଷଣ । କଲେକ ଚାରିଯୁଗେ ପୁଣ ॥ ୧୯୧
ଦ୍ୱାପର ଆଦି ଯେ-କାଳର । ଯେ ଅଟେ ଅନ୍ତ୍ୟାଂଶ ତାହାର ॥ ୧୯୨
ତହିଁରେ ମହାଋଷିଗଣ । ବେଦଙ୍କୁ କଲେ ବିଭାଜନ ॥ ୧୯୩
୪୭ ଅଳପସତ୍ତ୍ୱ ଅଳ୍ପାୟୁଷ । ଦୁର୍ବୁଦ୍ଧି କାଳେ ଏ ମନୁଷ୍ୟ ॥ ୧୯୪
ଏମନ୍ତ ଦେଖି ମହାଋଷି । ବେଦ ବିଭାଜିଲେ ବିଶେଷି ॥ ୧୯୫
ହୃଦରେ ସ୍ଥିତ ଯେ ଅଚ୍ୟୁତ । ସେ ତାଙ୍କୁ କରନ୍ତେ ପ୍ରେରିତ ॥ ୧୯୬
୪୮ ଏ ମନ୍ୱନ୍ତରେ ଭଗବାନ । ହେ ଦ୍ୱିଜ ସେ ଲୋକଭାବନ[5] ॥ ୧୯୭
ଧର୍ମରକ୍ଷଣନିମିତ୍ତରେ । ପ୍ରାର୍ଥିତ ହୋଇ ବ୍ରହ୍ମାଦିରେ[6] ॥ ୧୯୮

---

୧. ବିସର୍ଗ ପରେ 'କ' ବା 'ଖ' ଥିଲେ ବିସର୍ଗକୁ ଜିହ୍ୱାମୂଳୀୟ କୁହାଯାଏ (ଯଥା - ଅନ୍ତଃକରଣ) ।
୨. ବିସର୍ଗ ପରେ 'ପ' ବା 'ଫ' ଥିଲେ ବିସର୍ଗକୁ ଉପଧ୍ମାନୀୟ କୁହାଯାଏ (ଯଥା - ଅନ୍ତଃପୁର) ।
୩. ଅକ୍ଷରସମୂହଦ୍ୱାରା ।
୪. ପ୍ରଣବ ହେଉଛି ଓଁକାର । ବ୍ୟାହୃତି ୭ଟି ଯଥା - ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟମ୍ ।
୫. ଲୋକସ୍ରଷ୍ଟା ।
୬. ବ୍ରହ୍ମାଶିବ ଆଦି ଲୋକପାଳମାନଙ୍କ ଦ୍ୱାରା ।

| | | | | |
|---|---|---|---|---|
| ୪୯ | ସତ୍ୟବତୀଙ୍କ ଠାରେ ଯାଇ । | ପରାଶରଙ୍କ ଠାରୁ ସେହି | ॥ | ୧୯୯ |
| | ଯେ ମାୟା ତାର ସତ୍ତ୍ୱାଂଶରେ । | ଅବତରିଲେ ଏ ମହୀରେ | ॥ | ୨୦୦ |
| | ବେଦକୁ କଲେ ଚାରି ଭାଗ । | ଆହେ ଶୌନକ ମହାଭାଗ | ॥ | ୨୦୧ |
| ୫୦ | ଯେ ମନ୍ତ୍ରରାଶି ଋକ ସାମ । | ଯେ ଯଜୁଃ ଯେ ଅଥର୍ବ ନାମ | ॥ | ୨୦୨ |
| | ଉଦ୍ଧାରି ତହିଁ ଅପ୍ରମାଦେ । | ସେ ସେହି ପ୍ରକରଣଭେଦେ | ॥ | ୨୦୩ |
| | ସେ ମନ୍ତ୍ରମାନଙ୍କରେ ଚାରି । | ଋଗାଦି[1] ସଂହିତା ବିସ୍ତାରି | ॥ | ୨୦୪ |
| | ନାନାରତନଗଣୁଁ ଯେହ୍ନେ । | ଉଦ୍ଧାରି ମାଣିକ୍ୟାଦି[2] ତେହ୍ନେ | ॥ | ୨୦୫ |
| ୫୧ | ଚାରି ଶିଷ୍ୟଙ୍କୁ ମହାମତି । | ଡାକିଣ ହେ ଦ୍ୱିଜ ଝଟିତି | ॥ | ୨୦୬ |
| | ଏକ-ଏକ ସେ ସଂହିତାକୁ । | ଦେଲେ ବିଭୁ ଏକ-ଏକଙ୍କୁ | ॥ | ୨୦୭ |
| ୫୨ | ସେ ବହ୍ୱୃଚାଖ୍ୟ[3] ସଂହିତାକୁ । | କହିଲେ ପ୍ରଥମେ ପୈଲଙ୍କୁ | ॥ | ୨୦୮ |
| | ନିଗଦାଖ୍ୟ[4] ଯଜୁର୍ଗଣକୁ । | କହିଲେ ବୈଶମ୍ପାୟନଙ୍କୁ | ॥ | ୨୦୯ |
| ୫୩ | ଛନ୍ଦୋଗ[5] ସଂହିତା 'ସାମ'ର । | କହିଲେ ଜୈମିନିଙ୍କି ଆର | ॥ | ୨୧୦ |
| | ଅଥର୍ବାଙ୍ଗିରସ ସଂହିତା । | ଶିଷ୍ୟ ସୁମନ୍ତୁଙ୍କୁ ଦେଲେ ତା | ॥ | ୨୧୧ |
| ୫୪ | ନିଜ ସଂହିତାକୁ ସେ ମୁନି । | ପଇଳ[6] କରି ଭାଗ ବେନି | ॥ | ୨୧୨ |
| ୫୫ | ବାଷ୍କଳ ଯେ ଇନ୍ଦ୍ରପ୍ରମିତି । | ତାଙ୍କୁ କହିଲେ ସେ ଝଟିତି | ॥ | ୨୧୩ |
| | ନିଜ ସଂହିତାକୁ ବାଷ୍କଳ । | ଚତୁର୍ଧା କରି ତତକାଳ | ॥ | ୨୧୪ |
| | ହେ ଭାର୍ଗବ[7] ! ଯେ ପରାଶର । | ଯେ ବୋଧ୍ୟ ଯାଜ୍ଞବଲ୍କ୍ୟ ଆର | ॥ | ୨୧୫ |
| | ଯେ ଅଗ୍ନିମିତ୍ର ନାମେ ଶିଷ୍ୟ । | ତାହାଙ୍କୁ କଲେକ ପ୍ରକାଶ | ॥ | ୨୧୬ |
| ୫୬ | ଯେ କବି ଋଷି ମାଣ୍ଡୂକେୟ । | ଅଟଇ ଆପଣା ତନୟ | ॥ | ୨୧୭ |
| | ତାହାଙ୍କୁ ସେହି ଆତ୍ମବନ୍ତ । | ଇନ୍ଦ୍ରପ୍ରମିତି ଯେ ପଣ୍ଡିତ | ॥ | ୨୧୮ |
| | କରାଇଲେକ ଅଧ୍ୟୟନ । | ନିଜସଂହିତାକୁ ବହନ | ॥ | ୨୧୯ |
| | ମାଣ୍ଡୂକେୟଙ୍କ ଶିଷ୍ୟ ତହିଁ । | ଯେ ଦେବମିତ୍ର ନାମ ବହି | ॥ | ୨୨୦ |
| | ସେ ସଉଭରି ଆଦି ଋଷି । | ମାନଙ୍କୁ କହିଲେ ବିଶେଷି | ॥ | ୨୨୧ |
| ୫୭ | ମାଣ୍ଡୂକେୟଙ୍କ ଯେହୁ ସୁତ । | ଶାକଲ୍ୟ ନାମରେ ବିଦିତ | ॥ | ୨୨୨ |
| | ଆପଣା ସଂହିତାକୁ ସେହି । | ପାଞ୍ଚପ୍ରକାର କରି ତହିଁ | ॥ | ୨୨୩ |
| | ଯେ ବାତ୍ସ୍ୟ ମୁଦ୍‌ଗଳ ଆବର । | ଶାଳୀୟ ଗୋଖଲ୍ୟ ଶିଶିର | ॥ | ୨୨୪ |
| | ଏ ନାମେ ଯଉଁ ପାଞ୍ଚ ଶିଷ୍ୟ । | ତାହାଙ୍କୁ କଲେକ ପ୍ରକାଶ | ॥ | ୨୨୫ |
| ୫୮ | ଶାକଲ୍ୟ ଶିଷ୍ୟ ଜାତୁକର୍ଣ୍ଣ୍ୟ । | ଆପଣା ସଂହିତାକୁ ପୁଣ | ॥ | ୨୨୬ |
| | ତ୍ରିଧା ବିଭାଗ କରି ତହିଁ । | ଚତୁର୍ଥ ନିରୁକ୍ତ[8] ମିଶାଇ | ॥ | ୨୨୭ |

---

୧. ଋକ୍ + ଆଦି । ୨. ପଦ୍ମରାଗ ଆଦି ।
୩. 'ବହ୍ୱୃଚ' ଅର୍ଥାତ୍ ଋକ୍‌ସମୁଦାୟ ଆଖ୍ୟା ଯାହାର ସେ ବହ୍ୱୃଚାଖ୍ୟ । ୪. ଗଦ୍ୟଶୈଳୀରେ ରଚିତ ।
୫. ଛନ୍ଦଶୈଳୀରେ ଗାନାର୍ଥେ ରଚିତ । ୬. ପୈଳ । ୭. ଶୌନକ ।
୮. ବୈଦିକପଦ ଓ ଅର୍ଥର ବ୍ୟାଖ୍ୟାନରୂପ ଗ୍ରନ୍ଥ ।

[1]ବଳାକ ବୈତାଳ ପଇଜ[2] । ଯେ ଚାରି ମିଶିଣ ବିରଜ ॥ ୨୨୮
ଏମାନଙ୍କୁ ସେ ମୁନିବର । ପଢ଼ାଇଲେକ ତଦନ୍ତର ॥ ୨୨୯
୫୯ ପୂର୍ବୋକ୍ତ ବାଷ୍କଳତନୟେ । ସବୁଶାଖାରୁ ସଂହିତାଏ ॥ ୨୩୦
କଲେକ ବାଲଖିଲ୍ୟାଖ୍ୟାଏ[3] । ବାଳାୟନି ଭଜ୍ୟ ଏ ଦୁହେଁ ॥ ୨୩୧
ଆବର କାସାର ଯେ ଥିଲେ । ସେ ସଂହିତାକୁ ସେ ପଢ଼ିଲେ ॥ ୨୩୨
୬୦ ଏତେକ ବହ୍ୱୃଚ ସଂହିତା । ଏ ବ୍ରହ୍ମଋଷିଙ୍କରେ ଧୃତା ॥ ୨୩୩
ଏ ବେଦବିଭାଗ ଶୁଣିଲେ । ସର୍ବପାପରୁ ମୁକ୍ତି ମିଳେ ॥ ୨୩୪
୬୧ ବୈଶମ୍ପାୟନଶିଷ୍ୟ ଯେହି । [4]ଚରକାଧ୍ୱର୍ଯ୍ୟୁ ନାମ ହୋଇ ॥ ୨୩୫
ବ୍ରହ୍ମହନନ ପାପ ଯେହି । ସେ ପାପ ଯେ କ୍ଷୟ କରଇ ॥ ୨୩୬
ଯେଣୁ କଲେ ସେ ଗୁରୁବ୍ରତ । ତେଣୁ ଚରକ ନାମେ ଖ୍ୟାତ ॥ ୨୩୭
୬୨ ବୈଶମ୍ପାୟନଶିଷ୍ୟ ତହିଁ । ଯେ ଯାଜ୍ଞବଲ୍‌କ୍ୟ ନାମ ବହି ॥ ୨୩୮
ସେ ଶିଷ୍ୟ କହିଲା ଏମନ୍ତ । ଶୁଣ ହୋ ଗୁରୁ ଭଗବନ୍ତ ॥ ୨୩୯
ଏ ଅଳ୍ପସାର[5]ମାନଙ୍କର । ଚରିତେ କି କାର୍ଯ୍ୟ ଆବର ॥ ୨୪୦
ଅନ୍ୟରେ ଦୁଷ୍କର ଯେ ତାହି । କରିବି ଆଚରଣ ମୁହିଁ ॥ ୨୪୧
୬୩ ଗୁରୁଙ୍କୁ ବୋଲନ୍ତେ ଏମନ୍ତ । ଗୁରୁ ହୋଇଣ ପ୍ରକୁପିତ ॥ ୨୪୨
ବୋଇଲେ ଯାଅ ଯାଅ ତୁହି । [6]ତୁ ଶିଷ୍ୟେ କାର୍ଯ୍ୟ କିଛି ନାହିଁ ॥ ୨୪୩
ଅବଜ୍ଞା କଲୁ ତୁ ବିପ୍ରଙ୍କୁ । ଛାଡ଼ ତୁ ମୋ' ଠାର ପାଠକୁ ॥ ୨୪୪
୬୪ ଯେ ଦେବରାତଙ୍କର ସୁତ । ସେ ଯାଜ୍ଞବଲ୍‌କ୍ୟ ତପୋବନ୍ତ ॥ ୨୪୫
୬୫ ବମନ କରି ଯଜୁର୍ଗଣ । ଚଳିଲେ ଆପଣା ଭବନ ॥ ୨୪୬
ଏଥୁ ଅନ୍ତରେ ମୁନିମାନେ । ସେ ଯଜୁର୍ଗଣଙ୍କୁ ସେ ସ୍ଥାନେ ॥ ୨୪୭
ଦେଖି ଲାଳସଚିତ୍ତ ହେଲେ । ପୁଣି ମନରେ ବିଚାରିଲେ ॥ ୨୪୮
ବମିତ ମନ୍ତ୍ରର ଗ୍ରହଣ । ଅନୁଚିତ ବିପ୍ରରୂପେଣ ॥ ୨୪୯
ତେଣୁ ସେ ତିତ୍ତିରି[7] ହୋଇଲେ । ସେ ଯଜୁର୍ଗଣଙ୍କୁ ଘେନିଲେ ॥ ୨୫୦
ଏ ଘେନି 'ତୈତ୍ତିରୀୟ' ନାମେ । ସୁରମ୍ୟ ଯଜୁଃଶାଖାମାନେ ॥ ୨୫୧
ଅବାନ୍ତର ଭେଦ ସହିତ । ଭୁବନେ ହୋଇଲେ ବିଖ୍ୟାତ ॥ ୨୫୨
୬୬ [8]ଗୁରୁଠାରେ ଅବିଦ୍ୟମାନ । ଅଟନ୍ତି ଯଉଁ ଛନ୍ଦମାନ ॥ ୨୫୩
ଅଧିକ ସେମାନ ଖୋଜନ୍ତେ । ସେ ଯାଜ୍ଞବଲ୍‌କ୍ୟ ହିଁ ତଦନ୍ତେ ॥ ୨୫୪

---

୧. ବଳାକ-ପୈଳ-ଜାବାଳ ପାଠାନ୍ତର । ଏମାନେ ତିନି, ବିରଜଙ୍କୁ ମିଶାଇ ଚାରି । ୨. ପୈଳ ।
୩. 'ବାଲଖିଲ୍ୟ' ଆଖ୍ୟାରେ । ୪. ଚ଼ରକ + ଅଧ୍ୱର୍ଯ୍ୟୁ । ୫. ଅଳ୍ପବଳସଂପନ୍ନ ।
୬. ତୋ ଭଳି ଶିଷ୍ୟଠାରେ ମୋର କିଛି କାର୍ଯ୍ୟ ନାହିଁ । ୭. ପକ୍ଷିବିଶେଷ ।
୮. ବ୍ୟାସ ବିଭାଗ କରି ନ କହିଥିବା ହେତୁ ଯାଜ୍ଞବଲ୍‌କ୍ୟଙ୍କ ଗୁରୁ ବୈଶମ୍ପାୟନଙ୍କୁ ଯାହା ଜଣା ନ ଥିଲା ।

[୧]ଯେ ସୂର୍ଯ୍ୟ ବେଦଙ୍କର ପତି । ତାଙ୍କୁ ଏ ରୂପେ କଲେ ସ୍ତୁତି ।। ୨୫୫

ଶ୍ରୀଯାଜ୍ଞବଲ୍କ୍ୟ ଉବାଚ

୬୭ ତୁମ୍ଭେ ଆଦିତ୍ୟ ଭଗବାନ । ତୁମ୍ଭଙ୍କୁ ମୋହର ବନ୍ଦନ ।। ୨୫୬
ବ୍ରହ୍ମାଦି ସ୍ତମ୍ଭ ପରିଯନ୍ତେ । ଚତୁର୍ଧା[୨] ଯେ ପ୍ରାଣୀ ଜଗତେ ।। ୨୫୭
ଆତ୍ମସ୍ୱରୂପେ ତାହାଙ୍କର । ଥାଅ ଯେ ହୃଦୟମଧ୍ୟର ।। ୨୫୮
ବାହାରେ କାଳରୂପେ ଥାଅ । [୩]ଉପାଧିବ୍ୟବହିତ ନୁହ ।। ୨୫୯
ବାହାରେ ଭିତରେ ଆକାଶ । ପରାଏ ଲଭିଛ ପ୍ରକାଶ ।। ୨୬୦
କ୍ଷଣ ନିମେଷ ଯେ ବା ଲବ । ଏ ଯେଉଁ ନିଜ ଅବୟବ ।। ୨୬୧
ତେଣେ ପ୍ରତୀତ ସମ୍ବତ୍ସର । ସମୂହମାନଙ୍କେ ଜଳର ।। ୨୬୨
ଶୋଷଣ ପୁଣ ବରଷଣ । କରି ଏ ବେନି ଆଚରଣ ।। ୨୬୩
ଏ ଲୋକଯାତ୍ରା ଅଛ ବହି । ହେ ପ୍ରଭୋ ତୁମ୍ଭେ ଏକା ହୋଇ ।। ୨୬୪
୬୮ [୪]ବିବୁଧ-ଋଷଭ ତପନ । ଆହେ ସବିତା ପ୍ରତିଦିନ ।। ୨୬୫
ଆମ୍ନାୟ ବିଧିରେ ଯେ ସ୍ତୁତି । ଅନୁସବନେ[୫] କରୁଛନ୍ତି ।। ୨୬୬
ତାହାଙ୍କ ଦୁରିତ-ବୃଜିନ । ବିନାଶକ ହେ ଭଗବାନ ।। ୨୬୭
ଏ ଯେଉଁ ମଣ୍ଡଳ ତୁମ୍ଭର । ତାପଇ ତାକୁ ନମସ୍କାର ।। ୨୬୮
୬୯ ନିଜନିକେତ ସ୍ଥିର ଚର । ନିଖିଳ ପ୍ରାଣିମାନଙ୍କର ।। ୨୬୯
ଯେଉଁ ଇନ୍ଦ୍ରିୟ ମନ ପ୍ରାଣ । ତା' ପ୍ରବର୍ତ୍ତାଉଅଛ ପୁଣ ।। ୨୭୦
ଯେ ତୁମ୍ଭେ ଅନ୍ତର୍ଯାମୀ ହୋଇ । ଆତ୍ମାରୂପରେ ସ୍ୱୟେଂ ରହି ।। ୨୭୧
୭୦ ଅତିକରାଳ ମୁଖ ଯାର । ଯେ ତମଃସଂଜ୍ଞ ଅଜଗର ।। ୨୭୨
ସେ ଗ୍ରହେ ଗିଳିତ ମୃତକ । ପ୍ରାୟେ ବିଚେତନ ଏ ଲୋକ ।। ୨୭୩
ଏମନ୍ତ ଦେଖି କରୁଣାରେ । ଉଠାଇ ନିତ୍ୟେ ଈକ୍ଷଣରେ ।। ୨୭୪
ସ୍ୱଧର୍ମ ନାମେ ଯେହୁ ଖ୍ୟାତ । ସେ ପ୍ରତ୍ୟଗାତ୍ମାପ୍ରବଣତ୍ୱ[୬] ।। ୨୭୫
ହେ ପ୍ରଭୋ ସେହି ମଙ୍ଗଳରେ । ପ୍ରାଣିଙ୍କି ପ୍ରତି ସବନରେ[୭] ।। ୨୭୬

---

୧. ଋଗ୍‌ଭିଃ ପୂର୍ବାହ୍ନେ ଦିବି ଦେବ ଈୟତେ ଯଜୁର୍ବେଦେ ତିଷ୍ଠତି ମଧ୍ୟ ଅହ୍ନଃ ।
ସାମବେଦେନାସ୍ତମୟେ ମହୀୟତେ ବେଦୈରଶୂନ୍ୟସ୍ତ୍ରିଭିରେତି ସୂର୍ଯ୍ୟଃ ।। (ଶ୍ରୁତିଃ)
ଅର୍ଥାତ୍ ପୂର୍ବାହ୍ଣରେ ସୂର୍ଯ୍ୟ ଋକ୍‌ମନ୍ତ୍ରଦ୍ୱାରା, ମଧ୍ୟାହ୍ନରେ ଯଜୁଃମନ୍ତ୍ରଦ୍ୱାରା ଓ ସନ୍ଧ୍ୟାସମୟରେ ସାମମନ୍ତ୍ରଦ୍ୱାରା ଆହୁତ ହୁଅନ୍ତି । ଏହିପରି ସେ କୌଣସି ସମୟରେ ବେଦସଂପର୍କରହିତ ହୁଅନ୍ତି ନାହିଁ ।

୨. ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍‌ଭିଜ୍ଜ ।

୩. ହୃଦୟମଧ୍ୟରେ ରହିଲେ ମଧ୍ୟ ଜୀବଭଳି ସେହି ଉପାଧି ଦ୍ୱାରା ତୁମେ ଆଚ୍ଛାଦିତ ହୁଅ ନାହିଁ ।

୪. ଏଠାରେ ଗାୟତ୍ରୀମନ୍ତ୍ରର ଦ୍ୱିତୀୟ ପାଦର ଅର୍ଥ ବର୍ଣ୍ଣିତ ହୋଇଛି ।

୫. ସବନ ଅର୍ଥ ସୋମରସର ଅର୍ପଣ । ଅନୁସବନ = ପ୍ରତି ସବନରେ ।

୬. ପ୍ରତି ପ୍ରାଣିଦେହରେ ଯେଉଁ ଆତ୍ମା ପ୍ରବେଶ କରିଛି ସେହି ଆତ୍ମାରେ ଅଭିନିବେଶରୂପକ ସ୍ୱଧର୍ମ ।

୭. ଅନୁକ୍ଷଣ । ପ୍ରତ୍ୟକ୍ = ଅନ୍ତର୍ଯାମୀ (ଆତ୍ମା), ପ୍ରବଣତା = ଉନ୍ମୁଖତା, ପ୍ରଣତି ।

| | | | | |
|---|---|---|---|---|
| | ଯେ ତୁମ୍ଭେ ପ୍ରବର୍ତ୍ତାଉଅଛ | ପରମ କରୁଣା ବହୁଛ | ।। | ୨୭୭ |
| ୭୧ | ଅବନିପତିପ୍ରାୟ ହୋଇ | ଦୁଷ୍ଟଙ୍କ ଭୟ ଉପୁଜାଇ | ।। | ୨୭୮ |
| | ଯେ ତୁମ୍ଭେ ସମସ୍ତ ଦିବାରେ | ଗମନ କରୁଛ ନିର୍ଭରେ | ।। | ୨୭୯ |
| | ସେ ସେହି ଦିଗମାନଙ୍କରେ | କମଳକୋଷ ଅଞ୍ଜଳିରେ | ।। | ୨୮୦ |
| | ଇନ୍ଦ୍ରାଦି ଦିଗପାଳମାନ | ଦିଅନ୍ତି ଯାଙ୍କୁ ଅର୍ଘ୍ୟଦାନ | ।। | ୨୮୧ |
| ୭୨ | ତ୍ରିଭୁବନର ଗୁରୁଙ୍କରେ | ଅଭିବନ୍ଦିତ ଯେ ନିର୍ଭରେ | ।। | ୨୮୨ |
| | ସେ ବେନି ତୋ' ପାଦନଳିନ | ଏ ଘେନି ଆହେ ଭଗବାନ | ।। | ୨୮୩ |
| | କରୁଣ ଅଛି ମୁଁ ବନ୍ଦନ | ସ୍ଫୁଟ ଭାବରେ ଅନୁଦିନ | ।। | ୨୮୪ |
| | ଯେ ଯଜୁ ଆନରେ ଅଜ୍ଞାତ | ତା' ବାଞ୍ଛା କରୁଛି ମୁଁ ଚିତ୍ତ | ।। | ୨୮୫ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୭୩ | ଏମନ୍ତ ସ୍ତୁତିରେ ପ୍ରସନ୍ନ | ହୋଇ ସେ ରବି ଭଗବାନ | ।। | ୨୮୬ |
| | ଧରିଣ ତୁରଙ୍ଗମରୂପ | ଆନେ[୧] ଯେ ଅଜ୍ଞାତସ୍ୱରୂପ | ।। | ୨୮୭ |
| | ଥିଲେ ସେ ଯଜୁର୍ଗଣମାନ | କଲେକ ମୁନିଙ୍କି ପ୍ରଦାନ | ।। | ୨୮୮ |
| ୭୪ | ସେ ବିଭୁ ଯାଜ୍ଞବଲ୍‌କ୍ୟ ମୁନି | ଅସଂଖ୍ୟ ଯଜୁଃମନ୍ତ୍ର ଘେନି | ।। | ୨୮୯ |
| | ପନ୍ଦର ଶାଖା କଲେ ତହିଁ | ସେ 'ବାଜସନୀ' ନାମ ହୋଇ | ।। | ୨୯୦ |
| | ରବି ଯେ ଅଶ୍ୱରୂପ ହୋଇ | ସ୍ୱବାଜମାନଙ୍କରୁ ତହିଁ | ।। | ୨୯୧ |
| | ସଂନ୍ୟସ୍ତ କଲେ ତାହା ଯେଣୁ | [୨]ତା' ନାମ 'ବାଜସନୀ' ତେଣୁ | ।। | ୨୯୨ |
| | କାଣ୍ୱ-ମାଧ୍ୟନ୍ଦିନାଦି ଭଲେ | ସେ ଶାଖାମାନଙ୍କୁ ପଢ଼ିଲେ | ।। | ୨୯୩ |
| ୭୫ | ସାମଗ ଜୈମିନି ମୁନିର | ସୁମନ୍ତୁ ହୋଇଲେ କୁମର | ।। | ୨୯୪ |
| | ସୁନ୍ୱାନ ସୁମନ୍ତୁଙ୍କ ସୁତ | ଯେ ଦୁହେଁ ପୁତ୍ରପୌତ୍ରଖ୍ୟାତ | ।। | ୨୯୫ |
| | ତାହାଙ୍କୁ ଏକ ଏକ କରି | ସଂହିତା କହିଲେ ବିସ୍ତାରି | ।। | ୨୯୬ |
| ୭୬\| | ଜୈମିନିଶିଷ୍ୟ ସୁକର୍ମା ହି | ସେ ଅତିମେଧାବୀ ଅଟଇ | ।। | ୨୯୭ |
| ୭୭\| | ଯେ ସାମବେଦ ତରୁବର | ସହସ୍ରସଂଖ୍ୟକ ଶାଖାର | ।। | ୨୯୮ |
| | ସଂହିତାଭେଦକୁ ତାହାର | କଲେକ ସହସ୍ର ପ୍ରକାର | ।। | ୨୯୯ |
| | ବ୍ରାହ୍ମଣ କୋଶଳସମ୍ଭବ | ନାମରେ ଯେ ହିରଣ୍ୟନାଭ | ।। | ୩୦୦ |
| | ପୌଷ୍ୟଞ୍ଜି ନାମରେ ଏକ ହି | ସୁକର୍ମାଶିଷ୍ୟ ଦୁହେଁ ଏହି | ।। | ୩୦୧ |
| | ଘେନିଲେ ସେ ତଦନନ୍ତର | ସଂହିତାଭେଦକୁ ସାମର[୩] | ।। | ୩୦୨ |
| | ଅବନ୍ତି ଦେଶରେ ସମ୍ଭୂତ | ଯେ ଶ୍ରେଷ୍ଠ ବ୍ରହ୍ମଜ୍ଞାନୀ ଖ୍ୟାତ | ।। | ୩୦୩ |
| | ସୁକର୍ମାଶିଷ୍ୟ ସେହୁ ଆନ | ସାମକୁ କଲା ଅଧ୍ୟୟନ | ।। | ୩୦୪ |

---

୧. ଆନେ = ଅନ୍ୟମାନଙ୍କ ଦ୍ୱାରା ।

୨. ବାଜ ଶବ୍ଦର ଅର୍ଥ କେଶର ବା ବେଗ । ସୂର୍ଯ୍ୟ ଘୋଡ଼ାରୂପ ହୋଇ ବାଜରେ (ଶୀଘ୍ର) ବା ବାଜରୁ (ନିଜ କେଶରରୁ) ଏ ଶାଖାମାନଙ୍କୁ ସଂନ୍ୟସ୍ତ (ତ୍ୟକ୍ତ) କଲେ ବୋଲି ଏମାନଙ୍କ ନାମ ହେଲା 'ବାଜସନୀ' ।

୩. ସାମମନ୍ତ୍ରମାନଙ୍କର (ସାମ୍ନାଂ) ।

୭୮ ପୌଷ୍ୟଞ୍ଜି ଆବନ୍ତ୍ୟ ଯେ ବେନି । ହିରଣ୍ୟନାଭ ମିଶି ତିନି ।। ୩୦୫
ତାଙ୍କର ଶିଷ୍ୟ ପଞ୍ଚଶତ । ଉଦୀଚ୍ୟ ସାମଗ ବିଖ୍ୟାତ ।। ୩୦୬
ହୋଇଣ ଥିଲେ ସେ ଉଦୀଚ୍ୟ । [1]କେତେହେଁ କାଳେ ହେଲେ ପ୍ରାଚ୍ୟ ।। ୩୦୭
୭୯ ଲୌଗାକ୍ଷି ମାଙ୍ଗଳି ଯେ ଋଷି । କୁଲ୍ୟ କୁସୀଦ କୁକ୍ଷି ମିଶି ।। ୩୦୮
ପୌଷ୍ୟଞ୍ଜିଶିଷ୍ୟ ଅଟନ୍ତି ଏ । ସାମସଂହିତା ଶଏ ଶଏ ।। ୩୦୯
ପଢ଼ିଲେ ପୁଣ ଅପ୍ରମାଦେ । ଆପଣା ଗୁରୁଙ୍କ ପ୍ରସାଦେ ।। ୩୧୦
୮୦ ହିରଣ୍ୟନାଭ ଋଷିଙ୍କର । ଶିଷ୍ୟ ଯେ କୃତ ନାମେ ଆର ।। ୩୧୧
ଚତୁର୍ବିଂଶତିସଂହିତାକୁ । କହିଲେ ସେ ନିଜ ଶିଷ୍ୟଙ୍କୁ ।। ୩୧୨
ଆବନ୍ତ୍ୟ ଆପଣା ଶିଷ୍ୟଙ୍କୁ । କହିଲେ ଶେଷସଂହିତାକୁ ।। ୩୧୩
ଶ୍ରୀକୃଷ୍ଣଚରଣନଳିନ । ଚିନ୍ତା କରିଣ ଅନୁଦିନ ।। ୩୧୪
ହରଷ ଦ୍ୱିଜ ଦୀନବନ୍ଧୁ । ଯେଣେ ତରିବ ଭବସିନ୍ଧୁ ।। ୩୧୫
ଦ୍ୱାଦଶସ୍କନ୍ଧ ଭାଷାଗୀତ । ସୁଜନେ ଶୁଣ ହୋଇ ପ୍ରୀତ ।। ୩୧୬
ବୈଷ୍ଣବ ଜୟରାମଦାସ । ଯେ ରସେ ପରମ ଲାଳସ ।। ୩୧୭

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ବେଦଶାଖାପ୍ରଣୟନଂ
ନାମ ଷଷ୍ଠୋଽଧ୍ୟାୟଃ ।।

## ସପ୍ତମ ଅଧ୍ୟାୟ

ସପ୍ତମେଽଥର୍ବବିସ୍ତାରଃ ପୁରାଣବ୍ୟସନଂ ତତଃ ।
ପୁରାଣଲକ୍ଷଣାଦୀନି ଫଳଂ ଭାଗବତଶ୍ରୁତେଃ ।। ୧

ଶ୍ରୀସୂତ ଉବାଚ

୧ [2]ସୁମନ୍ତୁ ନାମରେ ଯେ ପୁଣି । ଅଥର୍ବବେଦ ଥିଲେ ଜାଣି ।। ୧
କବନ୍ଧ ନାମ ସ୍ୱଶିଷ୍ୟକୁ । ପଢ଼ାଇଲେ ସେ ସଂହିତାକୁ ।। ୨
ଯେ ପଥ୍ୟ ବେଦଦର୍ଶ ହୋଇ । ସେ କବନ୍ଧର ଶିଷ୍ୟ ଦୁଇ ।। ୩
ଦ୍ୱିଭାଗ କରି ସଂହିତାକୁ । ଦେଲେ ସେ ବେନି ସ୍ୱଶିଷ୍ୟଙ୍କୁ ।। ୪
୨ ଯେ ବ୍ରହ୍ମବଳି ଶୌକ୍ଲାୟନି । ମୋଦୋଷ ଯେ ପିପ୍‌ପଳାୟନି ।। ୫
ଏ ବେଦଦର୍ଶଶିଷ୍ୟ ଚାରି । ସଂହିତା ଚାରିଭାଗ କରି ।। ୬

---

୧. ସେହି ଉଦୀଚ୍ୟମାନେ ପରବର୍ତ୍ତୀ କାଳରେ 'ପ୍ରାଚ୍ୟ' ନାମରେ ଅଭିହିତ ହେଲେ ।
୨. ଅଥର୍ବବେଦଂ ସ ମୁନିଃ ସୁମନ୍ତୁରମିତଦ୍ୟୁତିଃ ।
ଶିଷ୍ୟମଧ୍ୟାପୟାମାସ କବନ୍ଧଂ ସୋଽପି ଚ ଦ୍ୱିଧା ।।
କୃତ୍ୱା ତୁ ବେଦଦର୍ଶାୟ ତଥା ପଥ୍ୟାୟ ଦତ୍ତବାନ୍ ।। (ଶ୍ରୀବିଷ୍ଣୁପୁରାଣ)

ସେ ଏ ଶିଷ୍ୟଙ୍କୁ ପଢ଼ାଇଲେ । ପଥ୍ୟଶିଷ୍ୟଙ୍କୁ ଶୁଣ ଭଲେ ॥ ୭
ହେ ଦ୍ୱିଜ କୁମୁଦ ଶୁନକ । ଜାଜଳି ନାମରେ ଆରକ ॥ ୮
ଏ ତିନି ଶିଷ୍ୟଙ୍କୁ ସଶ୍ରଦ୍ଧ । ହୋଇ ପଢ଼ାଇଲେ ତ୍ରିବିଧ ॥ ୯
ଯେଉଁ ସଂହିତା ଆପଣାର । ତାହା ପଥ୍ୟ ସେ ଦ୍ୱିଜବର ॥ ୧୦
୩ [୧]ଯେହୁ ଶୁନକ ଆଙ୍ଗିରସ । ତାଙ୍କର ହେଲେ ଦୁଇଶିଷ୍ୟ ॥ ୧୧
ଯେ ବଭ୍ରୁ ସଇନ୍ଧବାୟନ । ସେ ବେନି କଲେ ଅଧ୍ୟୟନ ॥ ୧୨
ବେନି ସଂହିତା ସେ ପ୍ରକାରେ । ସାବର୍ଣ୍ଣ୍ୟ ଆଦି ହିଁ ତା' ପରେ ॥ ୧୩
୪ [୨]ନକ୍ଷତ୍ରକଳ୍ପ ଯେ ପ୍ରଥମ । ଆବର ଶାନ୍ତିକଳ୍ପ ନାମ ॥ ୧୪
କଶ୍ୟପ ଆଙ୍ଗିରସ ଆନେ । ଅଥର୍ବଆଚାର୍ଯ୍ୟ ଏମାନେ ॥ ୧୫
ଯେ ପୌରାଣିକମାନେ ପୁଣ । ହେ ମୁନି ସେମାନଙ୍କୁ ଶୁଣ ॥ ୧୬
୫ କଶ୍ୟପ ଆର ତ୍ରୟ୍ୟାରୁଣି । ଅକୃତବ୍ରଣ ଯେ ସାବର୍ଣ୍ଣି ॥ ୧୭
ବଇଶମ୍ପାୟନ ହାରୀତ । ଏ ଛଅ ପୌରାଣିକ ଖ୍ୟାତ ॥ ୧୮
୬ [୩]ବ୍ୟାସଙ୍କ ଶିଷ୍ୟ ଯେ ମୋ' ପିତା । ତାଙ୍କଠୁଁ ପୁରାଣସଂହିତା ॥ ୧୯
ପଢ଼ିଲେ ଏକ ଏକ ହୋଇ । ଏ ଛଅଙ୍କର ଶିଷ୍ୟ ମୁହିଁ ॥ ୨୦
ଏହାଙ୍କ ଠାରୁ ଅଛି ପଢ଼ି । ସମସ୍ତ କହିଛି ନ ଛାଡ଼ି ॥ ୨୧
୭ ରାମଶିଷ୍ୟ[୪] ଅକୃତବ୍ରଣ । କଶ୍ୟପ ସାବର୍ଣ୍ଣି ମୁଁ ପୁଣ ॥ ୨୨
ଏ ରୂପେ ଆମ୍ଭେ ଚାରି ହୋଇ । ମୂଳସଂହିତାମାନଙ୍କୁ ହିଁ ॥ ୨୩
ମୋ ପିତା ରୋମହରଷଣ । ବ୍ୟାସଙ୍କ ଶିଷ୍ୟ ଯେହୁ ପୁଣ ॥ ୨୪
ତାହାଙ୍କ ନିକଟକୁ ଯାଇ । ପଢ଼ିଲୁ ତହୁଁ ମନ ଦେଇ ॥ ୨୫
୮ [୫]ହେ ଦ୍ୱିଜ ପୁରାଣଲକ୍ଷଣ । ବ୍ରହ୍ମର୍ଷି କଲେ ନିରୂପଣ ॥ ୨୬
ବେଦଶାସ୍ତ୍ରକୁ ଅନୁସରି । ଶୁଣ ତା' ବୁଦ୍ଧି ଆଶ୍ରେ କରି ॥ ୨୭
୯ ସର୍ଗ ବିସର୍ଗ ଯେ ବିଶ୍ୱର । ସ୍ଥାନ ପୋଷଣ ମନ୍ୱନ୍ତର ॥ ୨୮
ବଂଶ ବଂଶଜାନୁଚରିତ । ନିରୋଧ[୬] ହେତୁ ଅପାଶ୍ରିତ[୭] ॥ ୨୯

---

୧. ଶୁନକସ୍ତୁ ଦ୍ୱିଧା କୃତ୍ୱା ଦଦାବେକାନ୍ତୁ ବଭ୍ରବେ ।
ଦ୍ୱିତୀୟାଂ ସଂହିତାଂ ପ୍ରାଦାତ୍ ସୈନ୍ଧବାୟନସଂଜ୍ଞିନେ ॥

୨. ନକ୍ଷତ୍ରକଳ୍ପୋ ବେଦାନାଂ ସଂହିତାନାଂ ତଥୈବ ଚ ॥
ଚତୁର୍ଥଃ ସ୍ୟାଦାଙ୍ଗିରସଃ ଶାନ୍ତିକଳ୍ପଶ୍ଚ ପଞ୍ଚମଃ ॥ (ଶ୍ରୀବିଷ୍ଣୁପୁରାଣ)

୩. ପ୍ରଥମେ ଶ୍ରୀବ୍ୟାସ ଛଅଟି ସଂହିତା କରି ମୋ' ପିତା ରୋମହର୍ଷଣଙ୍କୁ ଦେଲେ ।

୪. ପରଶୁରାମଙ୍କ ଶିଷ୍ୟ ।

୫. ଶୁକ-ପରୀକ୍ଷିତ ସଂବାଦରେ ପୁରାଣଲକ୍ଷଣ ନିରୂପିତ ହୋଇଥିଲେହେଁ ତାହାର ଭେଦ କହିବା ପାଇଁ ଏହାର ଅବତାରଣା କରା ହୋଇଛି ।

୬. ଶ୍ରୀମଭାଗବତର ଦଶଲକ୍ଷଣୋକ୍ତ 'ନିରୋଧ' ଅର୍ଥରେ ଏଠାରେ 'ସଂସ୍ଥା' ଶବ୍ଦର ପ୍ରୟୋଗ ହୋଇଛି ଏବଂ 'ଆଶ୍ରୟ' ଅର୍ଥରେ 'ଅପାଶ୍ରୟ' ଶବ୍ଦର ପ୍ରୟୋଗ ହୋଇଛି ।

୭. ଆଶ୍ରୟ ।

| | | | | | |
|---|---|---|---|---|---|
| ୧୦ | ଏ ଦଶ ଲକ୍ଷଣେ ଲକ୍ଷିତ | । | ଅଟଇ ପୁରାଣ ନିୟତ | ॥ | ୩୦ |
| | ପୁରାଣବେତ୍ତା ଯେ ଅଟନ୍ତି | । | ସେମାନେ ଏହା ଜାଣିଛନ୍ତି | ॥ | ୩୧ |
| | ମହତ-ଅଳ୍ପ ବ୍ୟବସ୍ଥାରେ | । | [1]ବୋଲନ୍ତି କେ ପଞ୍ଚ ପ୍ରକାରେ | ॥ | ୩୨ |
| ୧୧ | ପ୍ରକୃତିଗୁଣଙ୍କ କ୍ଷୋଭରୁ | । | ମହତତତ୍ତ୍ୱ ଯେ ତହିଁରୁ | ॥ | ୩୩ |
| | ତ୍ରିବିଧ ଅହଂକାର ଯେହି | । | ଯେ ଭୂତ-ସୂକ୍ଷ୍ମ ଇନ୍ଦ୍ରିୟ ହିଁ | ॥ | ୩୪ |
| | ଯେ ମହାଭୂତ ଦେବବର୍ଗ | । | ତାଙ୍କ ଜନ୍ମକୁ ବୋଲି 'ସର୍ଗ' | ॥ | ୩୫ |
| ୧୨ | ଈଶ୍ୱର-ଅନୁଗ୍ରହୁଁ କରି | । | ମହତ ଆଦି ଯେ ପ୍ରସରି | ॥ | ୩୬ |
| | ବାସନା ପ୍ରଧାନ ତାଙ୍କର | । | ଯେ କାର୍ଯ୍ୟଭୂତ ଚରାଚର | ॥ | ୩୭ |
| | ବୀଜରୁ ବୀଜପ୍ରାୟ ହୋଇ | । | ପ୍ରବାହରୂପ ଯେ ଅଟଇ | ॥ | ୩୮ |
| | ସେ ଚରାଚରକୁ 'ବିସର୍ଗ' | । | ବୋଲନ୍ତି ପୌରାଣିକ ବର୍ଗ | ॥ | ୩୯ |
| ୧୩ | ବିହିତ ଚରମାନଙ୍କର | । | ଯେ ବୃତ୍ତି[2] ଚର ବା ଅଚର | ॥ | ୪୦ |
| | ମନୁଷ୍ୟମାନଙ୍କର ପୁଣ | । | ଯେ କୃତ ନିଜ ସ୍ୱଭାବେଣ | ॥ | ୪୧ |
| | କାମରୁ ଅଥବା ବିଧିରେ | । | ନିୟତ ବୃତ୍ତି ଯେ ସଂସାରେ | ॥ | ୪୨ |
| | ତାହାକୁ 'ସ୍ଥାନ' ବୋଲି କହି | । | ଅଛନ୍ତି ପୌରାଣିକେ ତହିଁ | ॥ | ୪୩ |
| ୧୪ | ତିର୍ଯ୍ୟକ-ଋଷି-ନର-ସୁର | । | ଏମାନଙ୍କରେ ଅଚ୍ୟୁତର | ॥ | ୪୪ |
| | ଯୁଗେ ଯୁଗେ ଯେ ଅବତାର | । | ସେ ଲୀଳା 'ପୋଷଣ' ବିଶ୍ୱର | ॥ | ୪୫ |
| | ଶ୍ରୀହରି ଯଉଁ ଅବତାରେ | । | ବେଦବିରୋଧୀଙ୍କି ସଂହାରେ | ॥ | ୪୬ |
| ୧୫ | ମନୁ ଦେବତା ମନୁସୁତ | । | ଋଷିଏ, ଅମରଙ୍କ ନାଥ | ॥ | ୪୭ |
| | ଅଂଶାବତାର ଶ୍ରୀହରିର | । | ଏ ଷଡ଼୍‌ବିଧ 'ମନ୍ୱନ୍ତର' | ॥ | ୪୮ |
| ୧୬ | ବ୍ରହ୍ମାସକାଶୁଁ ଯେ ସମ୍ଭୂତ | । | ସେ ନୃପତିଙ୍କର ଯେ ଖ୍ୟାତ | ॥ | ୪୯ |
| | ସନ୍ତାନ ତ୍ରିକାଳରେ ସ୍ଥାୟୀ | । | 'ବଂଶ'[3]ଶବଦେ ଖ୍ୟାତ ଯେହି | ॥ | ୫୦ |
| | ତାଙ୍କର ବୃତ୍ତ ଯେ ନିୟତ | । | ଯେ ତାଙ୍କ ବଂଶଧର ସୁତ | ॥ | ୫୧ |
| | ସେମାନଙ୍କର ଯେ ବା ବୃତ୍ତ | । | 'ବଂଶାନୁଚରିତ'[4] ସେ ଖ୍ୟାତ | ॥ | ୫୨ |
| ୧୭ | ନଇମିତ୍ତିକ ପ୍ରାକୃତିକ | । | ଯେ ଲୟ ନିତ୍ୟ ଆତ୍ୟନ୍ତିକ | ॥ | ୫୩ |
| | ମାୟାସକାଶୁ ବିଷ୍ଣୁଙ୍କର | । | ଏରୂପେ ଯେ ଚାରି ପ୍ରକାର | ॥ | ୫୪ |
| | 'ସଂସ୍ଥା'[5] ବୋଲିଣ କବିମାନେ | । | କହନ୍ତି ତାକୁ ଏ ଭୁବନେ | ॥ | ୫୫ |

୧. ସର୍ଗଶ୍ଚ ପ୍ରତିସର୍ଗଶ୍ଚ ବଂଶୋ ମନ୍ୱନ୍ତରାଣି ଚ ।
ବଂଶାନୁଚରିତଂ ଚେତି ପୁରାଣଂ ପଞ୍ଚଲକ୍ଷଣମ୍ ॥
ଦଶ ଲକ୍ଷଣରେ ମହାପୁରାଣ ହୁଏ; ପାଞ୍ଚ ଲକ୍ଷଣରେ ପୁରାଣ ।

୨. ଜୀବିକା ।

୩-୪. ବଂଶ ଓ ବଂଶାନୁଚରିତ ଉଭୟେ 'ଈଶାନୁକଥା'ର ବାଚକ ।

୫. ନିରୋଧ ଓ ଆତ୍ୟନ୍ତିକ ପ୍ରଳୟରୂପକ ମୁକ୍ତି ।

୧୮ ଏ ବିଶ୍ୱସର୍ଗାଦିନିମିତ୍ତ । ଯେ ଜୀବ ସେ 'ହେତୁ'[୧] ଉଦିତ ॥ ୫୬
ଯେବଣ ଜୀବ ଅବିଦ୍ୟାରେ । କର୍ମକାରକ ଏ ସଂସାରେ ॥ ୫୭
ତାହାକୁ [୨]'ଅନୁଶୟୀ' କହି । ବୋଲନ୍ତି [୩]'ଅବ୍ୟାକୃତ' କେହି ॥ ୫୮
୧୯ ଜାଗ୍ରତ[୪]-ସ୍ୱପ୍ନ-ସୁଷୁପ୍ତି । ମାୟାମୟ ଏ ଜୀବବୃତ୍ତି[୫] ॥ ୫୯
[୬]ଏଥି ବ୍ୟତିରେକ ଅନ୍ୱୟ । ଯା'ର ସେ ବ୍ରହ୍ମ 'ଅପାଶ୍ରୟ' ॥ ୬୦
[୭]ଆଶ୍ରୟ ସଂସାରପ୍ରତ୍ୟୟେ । ଅବଧି ପ୍ରପଞ୍ଚବାଧେହେଁ ॥ ୬୧
ଏ ପରମାତ୍ମା ଅପାଶ୍ରୟ । ଏ ଅର୍ଥ ଏଥିର ନିଶ୍ଚୟ ॥ ୬୨
୨୦ ଘଟାଦି ପଦାର୍ଥେ ନିୟତ । ଯେହ୍ନେ ମୃଦାଦି[୮] ଯୁତାଯୁତ ॥ ୬୩
'ଯୁତ'ର ଅର୍ଥଟି ଅନ୍ୱିତ । 'ଅଯୁତ' ଅର୍ଥ ବ୍ୟତିରିକ୍ତ ॥ ୬୪
ରୂପ-ନାମରେ ଯୁତାଯୁତ । ଯେସନେ ସତ୍ତାମାତ୍ର ସ୍ଥିତ ॥ ୬୫
ଗର୍ଭାଧାନ 'ଆଦି' ଯା'ଙ୍କର । [୯]ପଞ୍ଚତା 'ଅନ୍ତ' ଯାହାଙ୍କର ॥ ୬୬
ଏ ରୂପେ ନବ ଅବସ୍ଥା ହିଁ । ଦେହର ଯେ ପୁଣ ଅଟଇ ॥ ୬୭
ଆଧାରଭାବେ ସାକ୍ଷିଭାବେ । ଯେ ଯୁତ-ଅଯୁତ ସଂଭବେ ॥ ୬୮
ଏ ଅପାଶ୍ରୟ ବୋଲି ପୁଣ । କରିଅଛନ୍ତି ନିରୂପଣ ॥ ୬୯
୨୧ ସର୍ଗ-ବିସର୍ଗ ଆଦି କରି । ଯେ ନବ ଲକ୍ଷଣ ତାଙ୍କରି ॥ ୭୦
ମାୟାମୟତ୍ୱାନୁସଂଧାନେ । ବାମଦେବାଦିଙ୍କର ଯେହ୍ନେ ॥ ୭୧
ଅଥବା ଯୋଗ-ଅନୁଷ୍ଠାନେ । ଦେବହୂତ୍ୟାଦିଙ୍କର ଯେହ୍ନେ ॥ ୭୨
ବୃତ୍ତିତ୍ରୟକୁ[୧୦] ଛାଡ଼ି ସ୍ୱୟେଂ । ଚିତ୍ତ ବିରତ ଯେବେ ହୋଏ ॥ ୭୩
ତେବେ ସେ ଆତ୍ମାକୁ ଜାଣଇ । [୧୧]ଭବଚେଷ୍ଟାରୁ ନିବର୍ତ୍ତଇ ॥ ୭୪

---

୧. 'ହେତୁ' ଶବ୍ଦ ଶ୍ରୀମଭାଗବତର ଦଶଲକ୍ଷଣୋକ୍ତ 'ଊତି' ବାଚକ । 'ଊତି' ଅର୍ଥ ଜୀବକୁ ଆଶ୍ରୟ କରିଥିବା ବାସନା ।

୨. ଅନୁଶୟୀ = ମହାପ୍ରଳୟରେ ଜୀବର ଅବିଦ୍ୟାରୂପକ ଉପାଧି ଲୀନ ହୁଅନ୍ତେ ସେ ଈଶ୍ୱରଙ୍କ ଠାରେ ଆଶ୍ରା କରି ରହେ । ତେଣୁ ତାକୁ 'ଅନୁଶୟୀ' କୁହାଯାଏ ।

୩. ଅବ୍ୟାକୃତ = ସୃଷ୍ଟି ଅବସ୍ଥାରେ ଜୀବ ଅବିଦ୍ୟାରୂପକ ଉପାଧିକୁ ନେଇ ଏବଂ ପ୍ରକୃତିର ଆଶ୍ରୟରେ ରହି କର୍ତ୍ତୃତ୍ୱାଭିମାନୀ ହୋଇଥିବାରୁ ତାହାକୁ 'ଅବ୍ୟାକୃତ' କୁହାଯାଏ ।

୪. ଜାଗ୍ରତ = ଜାଗ୍ରତ୍ ।

୫. ଜୀବବୃତ୍ତି = ଜୀବରୂପରେ ରହୁଥିବା ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତିର ସାକ୍ଷିଭୂତ ବିଶ୍ୱ, ତୈଜସ ଓ ପ୍ରାଜ୍ଞ ।

୬. ଜାଗ୍ରଦାଦି ଅବସ୍ଥାର ସାକ୍ଷିରୂପରେ ଯାହାଙ୍କର ସଂସର୍ଗ ଥାଏ ଏବଂ ସମାଧି ଆଦିରେ ଯେ ସବୁଥିରୁ ନିର୍ଲିପ୍ତ ରହନ୍ତି, ସେହି ବ୍ରହ୍ମଙ୍କୁ ହିଁ 'ଅପାଶ୍ରୟ' କୁହାଯାଏ ।

୭. ବ୍ରହ୍ମ ସୃଷ୍ଟି ଓ ପ୍ରଳୟର ଯଥାକ୍ରମେ ଅଧିଷ୍ଠାନ ଓ ଅବଧି (ଅବଶେଷ) ହୋଇଥିବା ହେତୁ ସେ ଉଭୟର ଆଶ୍ରୟ ।

୮. ମାଟି ଆଦି (ମୃତ୍ + ଆଦି) ୯. ପଞ୍ଚ ମହାଭୂତ (କ୍ଷିତ୍, ଅପ୍, ତେଜ, ମରୁତ୍ ଓ ବ୍ୟୋମ)ଙ୍କ ସତ୍ତା ।

୧୦. ସତ୍ତ୍ୱ-ରଜ-ତମ – ଏ ତିନି ବ୍ୟାବହାରିକ ବୃତ୍ତି ଅଥବା ଜାଗ୍ରଦ୍-ସ୍ୱପ୍ନ-ସୁଷୁପ୍ତି – ଏ ତିନି ସ୍ୱାଭାବିକ ବୃତ୍ତି ।

୧୧. ଅବିଦ୍ୟାନିବୃତ୍ତି ହେତୁ ଭୋଗସ୍ପୃହାରୁ ନିବୃତ୍ତ ହୁଏ ।

| | | | | | |
|---|---|---|---|---|---|
| ୨୨ | ଏମନ୍ତ ଲକ୍ଷଣେ ଯେ ଲକ୍ଷ୍ୟ | । | ଯେ ଅଟେ ପୁରାଣ ପ୍ରତ୍ୟକ୍ଷ | ।। | ୭୫ |
| | ମହତ କ୍ଷୁଦ୍ର ସେ ତାହାର | । | ଭେଦ ଅଷ୍ଟାଦଶ ପ୍ରକାର | ।। | ୭୬ |
| | ଯେ [୧]ପୁରାବିଦ ମୁନିମାନେ | । | ଏ ରୂପେ କହନ୍ତି ସେମାନେ | ।। | ୭୭ |
| ୨୩ | ଯେ ବ୍ରାହ୍ମ ପାଦ୍ମ ବଇଷ୍ଣବ | । | ଲୈଙ୍ଗ ଗାରୁଡ଼ ପୁଣ ଶୈବ | ।। | ୭୮ |
| ୨୪ | ଶ୍ରୀଭାଗବତ ନାରଦୀୟ | । | ବ୍ରହ୍ମବୈବର୍ତ୍ତ ମାର୍କଣ୍ଡେୟ | ।। | ୭୯ |
| | ଭବିଷ୍ୟ ବାମନ ଆଗ୍ନେୟ | । | ଯେ ସ୍କାନ୍ଦ ବ୍ରହ୍ମାଣ୍ଡ ବାରାହ | ।। | ୮୦ |
| | ମାତ୍ସ୍ୟ [୨]କଉର୍ମ ଏ ରୂପେଣ | । | ଅଠରପ୍ରକାର ପୁରାଣ | ।। | ୮୧ |
| ୨୫ | ବ୍ୟାସଙ୍କ ଶିଷ୍ୟ-ଉପଶିଷ୍ୟ | । | ପ୍ରଶିଷ୍ୟକ୍ରମେ ଯେ ପ୍ରକାଶ | ।। | ୮୨ |
| | ହେ ବିପ୍ର ! ଶାଖାପ୍ରଣୟନ | । | ବ୍ରହ୍ମତେଜର ବିବର୍ଦ୍ଧନ | ।। | ୮୩ |
| | ଶୁଣିମା ଲୋକମାନଙ୍କର | । | ତା' ଆଗେ କହିଲୁଁ ତୁମ୍ଭର | ।। | ୮୪ |
| | କୃଷ୍ଣଚରଣସରସିଜ | । | ଚିନ୍ତିଣ ଦୀନବନ୍ଧୁ ଦ୍ୱିଜ | ।। | ୮୫ |
| | ଦ୍ୱାଦଶସ୍କନ୍ଧଗୀତ ଭଣେ | । | ସଂତୋଷ ଜୟରାମ ତେଣେ | ।। | ୮୬ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ପୁରାଣଲକ୍ଷଣବର୍ଣ୍ଣନଂ
ନାମ ସପ୍ତମୋଽଧ୍ୟାୟଃ ।।

## ଅଷ୍ଟମ ଅଧ୍ୟାୟ

ଅଷ୍ଟମେ ତୁ ତପଶ୍ଚର୍ଯ୍ୟା ମାର୍କଣ୍ଡେୟସ୍ୟ ମୋହକୈଃ ।
କାମାଦିଭିରସଂମୋହୋ ନରନାରାୟଣସ୍ତୁତିଃ ।। ୧

ଶ୍ରୀଶୌନକ ଉବାଚ

| | | | | | |
|---|---|---|---|---|---|
| ୧ | ହେ ସାଧୁ ସୂତ ଜୀବ ଚିର | । | କହ ହେ ବକ୍ତାଙ୍କର ବର | ।। | ୧ |
| | ଅପାରସଂସାରଚକ୍ରରେ | । | ଭ୍ରମୁଛନ୍ତି ଯେ ନିରନ୍ତରେ | ।। | ୨ |
| | ତୁମ୍ଭେ ସେ ଲୋକମାନଙ୍କର | । | ସଂସାରନିବୃତ୍ତିକି କର | ।। | ୩ |
| ୨ | ଯେ ଋଷି ମୃକଣ୍ଡୁନନ୍ଦନ | । | ତାଙ୍କୁ ଚିରାୟୁ ବୋଲେ ଜନ | ।। | ୪ |
| | ଯେବଣ କଳ୍ପାନ୍ତରେ ଗ୍ରସ୍ତ | । | ହୋଇଲା ଏ ତିନି ଜଗତ | ।। | ୫ |
| | ତହିଁରେ ଏକମାତ୍ର ହୋଇ | । | ସେ ଅବଶିଷ୍ଟ ହେଲେ କେହି[୩] | ।। | ୬ |
| ୩ | ସେ ଆମ୍ଭ କୁଳରେ ଜନମ | । | ଏ କଳ୍ପେ ଭାର୍ଗବ-ଉତ୍ତମ | ।। | ୭ |
| | ଅଦ୍ୟାପି ସେ ପ୍ରାଣିମାନଙ୍କ | । | ଯେ ପ୍ରାକୃତିକ ନୈମିତ୍ତିକ | ।। | ୮ |
| | ସେ ବେନି ପ୍ରଳୟରୁ କେହି | । | ପ୍ରଳୟ ଜାତ ହୋଇ ନାହିଁ | ।। | ୯ |

୧. ପୁରାଣଜ୍ଞ । ୨. କୌର୍ମ । ୩. କିପରି ।

| | | | | | |
|---|---|---|---|---|---|
| ୪ | ଅର୍ଣ୍ଣବେ ଏକମାତ୍ର ହୋଇ | । | ଭ୍ରମନ୍ତେ ଦେଖିଲେ ସେ ତହିଁ | ।। | ୧୦ |
| | ବଟପତ୍ରର ପୁଟେ ଏକ | । | ଶୋଇଛି ଅଦ୍ଭୁତ ବାଳକ | ।। | ୧୧ |
| ୫ | ଏ ଆମ୍ଭ ସଂଶୟ ବହୁତ | । | ଯେଣୁ ଉତ୍ସୁକ ଆହେ ସୂତ | ।। | ୧୨ |
| | ତୁମ୍ଭେ ପୁରାଣମାନଙ୍କରେ | । | ସଂମତ ସୁଜ୍ଞାତାରୂପରେ | ।। | ୧୩ |
| | ହେ ମହାଯୋଗି ! ଆମ୍ଭ ମନ | । | ସଂଶୟ କରସି ଛେଦନ | ।। | ୧୪ |

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୬ | ଏ ପ୍ରଶ୍ନ ତୁମ୍ଭେ ମହାରଷି | । | କଲ ଏ ଲୋକଭ୍ରମନାଶୀ | ।। | ୧୫ |
| | ନାରାୟଣର କଥା ଯହିଁ | । | ଯେ କଳିମଳ ବିନାଶଇ | ।। | ୧୬ |
| ୭ | ସେ ମାର୍କଣ୍ଡେୟ ପିତାଠାରୁ | । | ଗର୍ଭାଧାନାଦି କରମରୁ | ।। | ୧୭ |
| | ଉପନୟନ ସଂସ୍କାର ହିଁ | । | ତଦନନ୍ତରେ ପାଇ ତହିଁ | ।। | ୧୮ |
| | ତପସ୍ୟା ସ୍ୱାଧ୍ୟାୟ ସଂଯୁତ | । | ଧର୍ମେ ପଢ଼ିଣ ବେଦତତ୍ତ୍ୱ | ।। | ୧୯ |
| ୮ | ନୈଷ୍ଠିକ ବ୍ରହ୍ମଚାରୀ ଶାନ୍ତ | । | ବଲ୍‌କଳାମ୍ବର ଜଟାଯୁତ | ।। | ୨୦ |
| | ଦଣ୍ଡ କମଣ୍ଡଳୁ ସହିତ | । | ଘେନି ମେଖଳା ଉପବୀତ | ।। | ୨୧ |
| ୯ | ନିୟମବୃଦ୍ଧିନିମିତ୍ତରେ | । | ଧରି ଅଛନ୍ତି ନିଜ କରେ | ।। | ୨୨ |
| | ସମୂଳ ସାଗ୍ର କୁଶମାନ | । | ଯେ ଅକ୍ଷସୂତ୍ର କୃଷ୍ଣାଜିନ | ।। | ୨୩ |
| | ଅନଳ ଗୁରୁ ଦିବାକର | । | ବ୍ରାହ୍ମଣ ଆତ୍ମା ଯେ ଆବର | ।। | ୨୪ |
| | ହରିଙ୍କି ଏ ପାଞ୍ଚ ସ୍ଥାନରେ | । | ପୂଜନ୍ତେ ଉଭୟ ସଂଧ୍ୟାରେ | ।। | ୨୫ |
| ୧୦ | ସାୟଂ ପ୍ରଭାତ କାଳେ ପୁଣି | । | ଗୁରୁଙ୍କ ପାଇଁ ଭିକ୍ଷା ଆଣି | ।। | ୨୬ |
| | ଆଜ୍ଞା ଦିଅନ୍ତି ଗୁରୁ ଯେବେ | । | ମୌନ ହୋଇଣ ଭୁଂଜେ ତେବେ | ।। | ୨୭ |
| | ନୋହିଲେ ଉପବାସେ ରହି | । | କଉଣିସି ହି କାଳେ ତହିଁ | ।। | ୨୮ |
| ୧୧ | ତତ୍‌ପର ହୋଇଣ ଏ ରୂପେ | । | ସେ ରଷି ସ୍ୱାଧ୍ୟାୟର ତପେ | ।। | ୨୯ |
| | ଅୟୁତ ଅୟୁତ ବରଷ | । | ପୂଜା କରନ୍ତେ ହୃଷୀକେଶ | ।। | ୩୦ |
| | ଯେ ମୃତ୍ୟୁ ଦୁର୍ଜୟ ଆନରେ[୧] | । | ତାହାକୁ ଜିଣିଲେ ସଂସାରେ | ।। | ୩୧ |
| ୧୨ | ଭୃଗୁ ଶଙ୍କର ପଦ୍ମାସନ | । | ଯେ ଦକ୍ଷ ବ୍ରହ୍ମପୁତ୍ରେ ଆନ | ।। | ୩୨ |
| | ନୃଦେବ ପିତୃ ଭୂତମାନେ | । | ତେଣେ[୨] ବିସ୍ମିତ ହେଲେ ମନେ | ।। | ୩୩ |
| ୧୩ | ତପ ସଂଯମ ଅଧ୍ୟୟନ | । | ଏଣେ ଯହିଁରେ କ୍ଲେଶମାନ | ।। | ୩୪ |
| | ବିନାଶ ହୋଇଲେ କ୍ରମରେ | । | ଏମନ୍ତ ଅନ୍ତରେ ବାହାରେ | ।। | ୩୫ |
| | ସେ ଯୋଗୀ ମହାବ୍ରତଧର | । | ଏ ରୂପେ ଚିନ୍ତିଲେ ଈଶ୍ୱର | ।। | ୩୬ |
| ୧୪ | ସେ ଯୋଗୀ ମହାଯୋଗେ ଚିତ୍ତ | । | ଏରୂପେ କରନ୍ତେ ଯୋଜିତ | ।। | ୩୭ |
| | ଛ' ମନ୍ୱନ୍ତରପରିମାଣ | । | ମହତ କାଳ ଗଲା ପୁଣ | ।। | ୩୮ |
| ୧୫ | ଏହି ସପ୍ତମ ମନ୍ୱନ୍ତରେ | । | ଏକଥା ଜାଣି ଇନ୍ଦ୍ର ଖରେ[୩] | ।। | ୩୯ |

୧. ଅନ୍ୟମାନଙ୍କ ଦ୍ୱାରା ।　୨. ସେହି ମୃତ୍ୟୁଜୟଦ୍ୱାରା ।　୩. ଶୀଘ୍ର ।

[1]ତପକୁ ଆଶଙ୍କା ପାଇଲେ । ହେ ମୁନି ! ବିଘ୍ନ ଆରମ୍ଭିଲେ ॥
୧୬ ମୁନିଙ୍କ ତପସ୍ୟାକୁ ନାଶ । କରିବା ବିଚାରି ମାନସ ॥
ଗନ୍ଧର୍ବ-ଅପ୍‌ସରାମାନଙ୍କୁ । ବସନ୍ତ ମଳୟାନିଳକୁ[2] ॥
ରଜର[3] ବେନି ପ୍ରିୟ ସୁତ । ଯେ ଲୋଭ ମଦ ନାମେ ଖ୍ୟାତ ॥
ତାହାଙ୍କୁ, କାମକୁ ଆବର । ପଠିଆଇଲା ପୁରନ୍ଦର ॥
୧୭ ଉତ୍ତର ପାର୍ଶ୍ୱେ ହିମାଦ୍ରିର । ଆଶ୍ରମକୁ ସେ ଗଲେ ତାର ॥
ଯହିଁରେ ପୁଷ୍ପଭଦ୍ରା ନଦୀ । ଚିତ୍ରା ନାମରେ ଶିଳା ସିଦ୍ଧି ॥
୧୮ ଯେ ପୁଣ୍ୟଦ୍ରୁମଲତାଯୁତ । ଯେ ପୁଣ୍ୟ ଦ୍ୱିଜାଳୀ[4] ପୂରିତ ॥
ପୁଣ୍ୟ ନିର୍ମଳ ଅଟେ ଯେହି । ସେ ଜଳାଶୟମାନ ଯହିଁ ॥
୧୯ ମତ୍ତ ଭ୍ରମରଙ୍କ ସଂଗୀତ । ମତ୍ତ କୋକିଳଙ୍କ କୂଜିତ ॥
ମତ୍ତ ବରହି-ନଟ-ନାଟ । ଯହିଁରେ ଏମାନେ ପ୍ରକଟ ॥
ମତ୍ତ ଖଗକୁଳେ ପୂରିତ । ଆଶ୍ରମପଦ ସେ ଯେ ପୂତ ॥
୨୦ [5]ହିମନିର୍ଝରକଣମାନ । ଘେନିଣ ମଳୟପବନ ॥
ପୁଷ୍ପମାନଙ୍କ ସଙ୍ଗ ପାଇ । ପ୍ରବେଶ ହୋଇଣ ସେଠାଇଁ ॥
କାମକୁ ଦୀପିତ କରନ୍ତେ । ବହିଲା ସମସ୍ତ ଦିଗନ୍ତେ ॥
୨୧ ରଜନୀମୁଖରେ ଯହିଁର । ଉଦୟ ପୂର୍ଣ୍ଣ ନିଶାକର ॥
ପ୍ରବାଳ ସ୍ତବକକୁଳରେ । ସଂଲଗ୍ନ ଦ୍ରୁମଲତାଳୀରେ ॥
ପ୍ରବେଶ ହେଲା ସେ ସ୍ଥାନରେ । ବସନ୍ତ ଋତୁ ସେ କାଳରେ ॥
୨୨ ଗାୟକ ବାଦକ ନିକର । ଘେନି ଗନ୍ଧର୍ବେ ନିରନ୍ତର ॥
ତା' ଅନୁଗତ ହୋଇଛନ୍ତି । ଯେ ଅପସରାଯୂଥପତି ॥
ଦିଶିଲା ସେଠାରେ ସେ ସ୍ମର[6] । କରେ ଧରିଛି ଧନୁଶର ॥
୨୩ ଅଗ୍ନିକି ହୋମ କରି ସାରି । ବସି ଅଛନ୍ତି ଧ୍ୟାନ କରି ॥
[7]ମୀଳିତ ନୟନ ଯାହାର । ଯେହୁ [8]ଅଧୃଷ୍ୟ ପ୍ରାଣୀଙ୍କର ॥
ଯେସନେ ମୂର୍ତ୍ତିମନ୍ତ ହୋଇ । ଅଗ୍ନି ଦେବତା ବସିଥାଇ ॥
୨୪ ତାହାଙ୍କୁ ଇନ୍ଦ୍ରଙ୍କ କିଂକରେ । ଦେଖିଲେ ଯହୁଁ ନିକଟରେ ॥
ନାରୀଏ ଏଥୁ ଅନନ୍ତରେ । ନାଚିଲେ ତାହାଙ୍କ ଆଗରେ ॥
ଗାୟକେ କଲେକ ଗାୟନ । ହରଣ କରଇ ଯେ ମନ ॥
ସେ ବୀଣା-ମୃଦଙ୍ଗ-ପଣବ । ବାଦ୍ୟକୁ କଲେକ ସମ୍ଭବ ॥

---

୧. ''ତପସ୍ୟାଦ୍ୱାରା ମୋର ପଦ ଗ୍ରହଣ କରିବ'' ବୋଲି ଆଶଙ୍କା କଲେ ।
୨. ମଳୟପବନକୁ । ୩. ରଜର = ରଜୋଗୁଣର । ୪. ଦ୍ୱିଜାଳୀ = ଋଷିକୁଳ ।
୫. ସେ ପବନ ବୃକ୍ଷମାନଙ୍କ ମଧ୍ୟରେ ପ୍ରବେଶହେତୁ ମନ୍ଦ, ହିମନିର୍ଝରକଣମାନଙ୍କ ଆଦାନ ହେତୁ ଶୀତଳ ଏବଂ ପୁଷ୍ପଆଲିଙ୍ଗନ ହେତୁ ସୁଗନ୍ଧ ଥିଲା ।
୬. ସ୍ମର = କନ୍ଦର୍ପ । ୭. ମୀଳିତ = ମୁଦ୍ରିତ ।
୮. ଯେ ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇ ପାରନ୍ତି ନାହିଁ ।

୨୫ ଶୋଷଣ-ମୋହନ-ତାପନ । ଦୀପନ ପୁଣ ଉନ୍ମାଦନ ।। ୬୮
ଏରୂପେ ପଞ୍ଚମୁଖ ଶର । ସନ୍ଧିଲା ସେ କାଳରେ ସ୍ମର ।। ୬୯
ବସନ୍ତ-ଋତୁ, ଇନ୍ଦ୍ରଭୃତ[୧] । ଯେ ଲୋଭ ରଜୋଗୁଣସୁତ ।। ୭୦
ଏମାନେ ମିଳି [୨]ମୁନିଙ୍କର । ମନକୁ କଲେକ ଅସ୍ଥିର ।। ୭୧
୨୬ ଗୁରୁତ୍ୱସକାଶୁଁ ସ୍ତନର । ଉଦ୍‌ବିଗ୍ନ ମଧ୍ୟଦେଶ[୩] ଯାର ।। ୭୨
୨୭ କେଶରୁ ପଡୁଛି ବିଶେଷି । କୁସୁମମାଳ ଯାର ଖସି ।। ୭୩
ଚାହୁଁଛି ଏଣେ ତେଣେ କରି । ଭ୍ରମୁଛି ପେଣ୍ଡୁ ଅନୁସରି ।। ୭୪
କନ୍ଦୁକ ଘେନି କ୍ରୀଡ଼ାରତ । ପୁଞ୍ଜିକସ୍ଥଳୀ[୪] ଯେ ଏମନ୍ତ ।। ୭୫
ତା' ସୂକ୍ଷ୍ମବାସକୁ ଅନିଳ । ହରିଲା ତୁଟନ୍ତେ ମେଖଳ ।। ୭୬
୨୮ [୫]ସ୍ୱଜିତ ମଣି ତାଙ୍କୁ ଶର । ତେଜିଲା ତେତେବେଳେ ସ୍ମର ।। ୭୭
ତାଙ୍କ ଉପରେ ଏ ସମସ୍ତ । ଚରିତ ହୋଇଲା ବିଅର୍ଥ ।। ୭୮
[୬]ଅଦୃଷ୍ଟହୀନ ଯଉଁ ଜନ । ବ୍ୟର୍ଥ ତା' ଉଦ୍ୟମ ଯେସନ ।। ୭୯
୨୯ ଏମନ୍ତେ ସେହି ମୁନିଙ୍କର । କରନ୍ତେ ତହିଁ ଅପକାର ।। ୮୦
ତାଙ୍କ ତେଜରେ ଦଗ୍‌ଧ ହେଲେ । ସେମାନେ ତହୁଁ ନିବର୍ତ୍ତିଲେ ।। ୮୧
ସର୍ପକୁ ପ୍ରବୋଧି ଯେମନ୍ତେ । ହେ ମୁନି ! ବାଳକ ନିବର୍ତ୍ତେ ।। ୮୨
୩୦ ଏ ରୂପେ ଇନ୍ଦ୍ରଙ୍କ ଲୋକରେ । ଧର୍ଷିତ ହେଲେହେଁ ମନରେ ।। ୮୩
ଅହଂଭାବକୁ ମହାମୁନି । ଯାହା ନ ଲଭିଲେ ସେ ଜ୍ଞାନୀ ।। ୮୪
ହେ ଦ୍ୱିଜ ! ମହତଙ୍କ ଠାରେ । ତା' ଚିତ୍ର ନୁହଇ ସଂସାରେ ।। ୮୫
୩୧ ସଗଣ କାମକୁ ନିସ୍ତେଜ । ଦେଖିଣ ପ୍ରଭୁ ଦେବରାଜ ।। ୮୬
ଶୁଣି ବ୍ରହ୍ମର୍ଷିପ୍ରଭାବକୁ । ଗଲା ପରମ ବିସ୍ମୟକୁ ।। ୮୭
୩୨ ତପ-ସ୍ୱାଧ୍ୟାୟ-ସଂଯମରେ । ନିଜ ଚିତ୍ତକୁ ନିରନ୍ତରେ ।। ୮୮
ଯୁକ୍ତ କରନ୍ତେ ଋଷି ତହିଁ । ତାହାଙ୍କ ଅନୁଗ୍ରହ ପାଇଁ ।। ୮୯
ପ୍ରକଟ ହୋଇଲେକ ପୁଣ । ସେ ହରି ନରନାରାୟଣ ।। ୯୦
୩୩ ସେ ବେନି ଶୁକ୍ଳ-କୃଷ୍ଣକାୟ । ଯା' ନେତ୍ର ନବକଞ୍ଜପ୍ରାୟ ।। ୯୧
୩୪ ବଲ୍‌କଳ କୃଷ୍ଣାଜିନ ବେନି । ବସନ କରିଛନ୍ତି ଘେନି ।। ୯୨
ପବିତ୍ର କୁଶ ଅଛି ହସ୍ତ । [୭]କାନ୍ଧେ ତ୍ରିଗୁଣ ଉପବୀତ ।। ୯୩
ବେଣୁସମ୍ବନ୍ଧି ରଜ୍ଜୁ ହୋଇ । ଯେ ଦଣ୍ଡ, କମଣ୍ଡଳୁ ଯେହି ।। ୯୪
ପଦ୍ମାକ୍ଷମାଳା ଯେ ସୁନ୍ଦର । [୮]ମାର୍ଜନ ପୁଣ ଜନ୍ତୁଙ୍କର ।। ୯୫
ଯେ ଦର୍ଭମୁଷ୍ଟି[୯] ଆଦିକରି । ଯେ ଚତୁର୍ଭୁଜ ଛନ୍ତି ଧରି ।। ୯୬

---

୧. ପାଳିତ । ୨. ମାର୍କଣ୍ଡେୟଙ୍କର । ୩. କଟିସ୍ଥାନ ।
୪. ପୁଞ୍ଜିକସ୍ଥଳୀ = ଜନୈକା ଅପ୍‌ସରାଙ୍କ ନାମ । ୫. ନିଜଦ୍ୱାରା ପରାଜିତ । ୬. ଦଇବଛଡ଼ା ।
୭. ମୂଳ ଶବ୍ଦ 'ତ୍ରିବୃତ୍'ର ଅର୍ଥ ତ୍ରିଗୁଣ ଅଥବା ନୂଆ ସୂତାରେ ପ୍ରସ୍ତୁତ ।
୮. ଜନ୍ତୁମାନଙ୍କୁ ହଟାଇବା ପାଇଁ ବସ୍ତ୍ରନିର୍ମିତ ଏକ ଛାଞ୍ଚୁଣୀ । ୯. ଦର୍ଭମୁଷ୍ଟି = କୁଶମୁଠାଏ ।

| | | | | |
|---|---|---|---|---|
| | ତପନ୍ତ ତଡ଼ିତ-ବରଣ | । ସମାନ ପୀତ କାନ୍ତି ପୁଣ | ॥ | ୯୭ |
| | ତେଣେ ହୋଇଣ ମୂର୍ତ୍ତିମନ୍ତ | । ସେ ବେନି ତପ ହିଁ ସାକ୍ଷାତ | ॥ | ୯୮ |
| | ବିବୁଧ-ଉତ୍ତମେ ପୂଜିତ | । ଆବର ଅଟନ୍ତି ଉନ୍ନତ | ॥ | ୯୯ |
| ୩୫ | ଭଗବାନଙ୍କ ରୂପ ବେନି | । ଯେ ନର ନାରାୟଣ ମୁନି | ॥ | ୧୦୦ |
| | ତାହାଙ୍କୁ ଦେଖିଣ ସତ୍ୱରେ | । ଉଠିଣ ମହତ ଆଦରେ | ॥ | ୧୦୧ |
| | ଅଙ୍ଗରେ ଦଣ୍ଡପ୍ରାୟ ହୋଇ | । ପ୍ରଣାମ କଲେ ଭୂମି ଶୋଇ | ॥ | ୧୦୨ |
| ୩୬ | ଦରଶନରେ ତାହାଙ୍କର | । ଜାତ ଯେ ଆନନ୍ଦପ୍ରସର | ॥ | ୧୦୩ |
| | ତେଣେ ସୁଖିତ ନିରନ୍ତର | । ଦେହ-ଇନ୍ଦ୍ରିୟ-ମନ ଯାର | ॥ | ୧୦୪ |
| | ଅଶ୍ରୁରେ ପୂର୍ଣ୍ଣ ଯା' ନୟନ | । ଉଦ୍‌ଗତ ଯାହା' ରୋମମାନ | ॥ | ୧୦୫ |
| | ସମର୍ଥ ନୋହିଲେକ ସେହି | । ଦେଖିବାକୁ ସେ ଦୁହିଁଙ୍କୁ ହିଁ | ॥ | ୧୦୬ |
| ୩୭ | ଉଠିଣ ଯୋଡ଼ି ବେନି କର | । ବିନୟେ ହୋଇ ନମ୍ରଶିର | ॥ | ୧୦୭ |
| | ଉତ୍ସୁକଭାବରୁ ବିଧାନ | । କଲା ପ୍ରାୟକ ଆଲିଙ୍ଗନ | ॥ | ୧୦୮ |
| | ଗଦ୍‌ଗଦ ଭାବରୁ ଯହିଁରେ | । ଅବ୍ୟକ୍ତ ଅଟନ୍ତି ଅକ୍ଷରେ | ॥ | ୧୦୯ |
| | ସେ ରୂପେ ନମୋ ନମୋ ବାଣୀ | । ସେ ବେନି ଈଶ୍ୱରଙ୍କୁ ଭଣି | ॥ | ୧୧୦ |
| ୩୮ | ଆସନ ସେ ଦୁହିଁଙ୍କି ଦେଇ | । ପାଦଯୁଗଳ ପୁଣ ଧୋଇ | ॥ | ୧୧୧ |
| | ଅର୍ଘ୍ୟ ଚନ୍ଦନ ଅନୁଲେପ | । ଆବର ପୁଷ୍ପ ମାଲ୍ୟ ଧୂପ | ॥ | ୧୧୨ |
| | ଏ ଆଦି ନାନା ଉପଚାରେ | । ଅର୍ଚ୍ଚନ କଲେକ ଆଦରେ | ॥ | ୧୧୩ |
| ୩୯ | ସୁଖେ ଯେ ଆସନେ ବସିଲେ | । ପ୍ରସାଦ-ଅଭିମୁଖ ହେଲେ | ॥ | ୧୧୪ |
| | ଯେ ପୂଜ୍ୟତମ ଜଗତରେ | । ମୁନି ସେ ବେନିଙ୍କି ଆଦରେ | ॥ | ୧୧୫ |
| | ଚରଣ ବନ୍ଦନ କରିଣ | । ଏମନ୍ତ କହିଲେକ ପୁଣ | ॥ | ୧୧୬ |

### ଶ୍ରୀମାର୍କଣ୍ଡେୟ ଉବାଚ

| | | | | |
|---|---|---|---|---|
| ୪୦ | ହେ ପ୍ରଭୁ ତୁମ୍ଭଙ୍କୁ କି ସ୍ତୁତି | । କରିବି ମୋର କଉଁ ମତି | ॥ | ୧୧୭ |
| | ତୁମ୍ଭରେ ପ୍ରେରିତ ହୋଇଣ | । ପ୍ରାଣ ହିଁ ପ୍ରବର୍ତ୍ତଇ ପୁଣ | ॥ | ୧୧୮ |
| | ପ୍ରାଣକୁ ଅନୁସରି ତହିଁ | । ବଚନ ମନ ଇନ୍ଦ୍ରିୟ ହିଁ | ॥ | ୧୧୯ |
| | ଚେଷ୍ଟା କରନ୍ତି ପ୍ରାଣୀଙ୍କର | । ବ୍ରହ୍ମାର ଶମ୍ଭୁର ମୋହର | ॥ | ୧୨୦ |
| | ଯେଣୁ ଅନ୍ୱୟ ବ୍ୟତିରେକେ | । ପ୍ରସିଦ୍ଧ ଅଟେ ଏହା ଲୋକେ | ॥ | ୧୨୧ |
| | [1]ତୁମ୍ଭେ ଇନ୍ଦ୍ରିୟମାନଙ୍କର | । ଇନ୍ଦ୍ରିୟ ଅଟ ହେ ଈଶ୍ୱର | ॥ | ୧୨୨ |
| | ଏମନ୍ତ ହେଲେ ତଥାପି ହିଁ | । ଦାରୁଯନ୍ତ୍ରର ପ୍ରାୟ ତହିଁ | ॥ | ୧୨୩ |
| | ତୁମ୍ଭରେ ପ୍ରବର୍ତ୍ତିତ ହୋଇ | । ବାଗାଦି ଯେ ବା ଉପୁଜଇ | ॥ | ୧୨୪ |
| | ତେଣେ ଭଜିଲା ପୁରୁଷର | । [2]ତୁମ୍ଭେ ହିଁ ବାନ୍ଧବ ଆତ୍ମାର | ॥ | ୧୨୫ |
| | ଜନକ-ଜନନୀଙ୍କ ପ୍ରାୟ | । ଦେହମାତ୍ରର ବନ୍ଧୁ ନୁହ | ॥ | ୧୨୬ |

୧. "ଶ୍ରୋତ୍ରସ୍ୟ ଶ୍ରୋତ୍ରମ୍‌" ଇତି ଶ୍ରୁତିଃ ।   ୨. ମୂଳ 'ଭାବବନ୍ଧୁ' ଶବ୍ଦର ଅର୍ଥ ଆତ୍ମବନ୍ଧୁ ।

୪୧ [1]ଆମ୍ଭେ ତ ଧର୍ମର ତନୟ । କେହ୍ନେ ପ୍ରାଣାଦି ସମୁଦାୟ ॥ ୧୨୭
ପ୍ରବର୍ତ୍ତାଉଛୁଁ ଏହା ଯେବେ । ବିଚାର କରିବା ତା ଏବେ ॥ ୧୨୮
ହେ ଭଗବାନ ଯେ ତୁମ୍ଭର । ଏ ବେନି ମୂର୍ତ୍ତି ତ୍ରିଲୋକର ॥ ୧୨୯
ପାଳନ-ଦୁଃଖବିନାଶନ । ମୋକ୍ଷନିମିତ୍ତେ ଅଟେ ପୁଣ ॥ ୧୩୦
ନୁହ କାହାରି ତୁମ୍ଭେ ସୁତ । ଏ କଥା ସର୍ବଥା ନିୟତ ॥ ୧୩୧
ବିଶ୍ୱରକ୍ଷାର୍ଥେ ଯେହ୍ନେ ଆନ । ମତ୍ସ୍ୟକୂର୍ମାଦି ତନୁ ଘେନ ॥ ୧୩୨
ସହାୟ ଅପେକ୍ଷା ନ କର । ବିଶ୍ୱକୁ ସର୍ଜିଣ ସଂହାର[2] ॥ ୧୩୩
ଯେସନେ ଊର୍ଣ୍ଣନାଭି କୀଟ । [3]ଲୂତାକୁ କରଇ ପ୍ରକଟ ॥ ୧୩୪
୪୨ ଯେ ତୁମ୍ଭେ ରକ୍ଷକ ବିଶ୍ୱର । ସ୍ଥାବର-ଜଙ୍ଗମ-ଈଶ୍ୱର ॥ ୧୩୫
ଭଜୁଛି ସେ ତୁମ୍ଭ ପାଦକୁ । ଯହିଁରେ ଆଶ୍ରିତ ଲୋକକୁ ॥ ୧୩୬
ଯେ ପୁଣ ଗୁଣ-କର୍ମ-କାଳ । ଛୁଅଇଁ ନାହିଁ ତାଙ୍କ ମଳ[4] ॥ ୧୩୭
ବେଦତାତ୍ପର୍ଯ୍ୟ ଯେ ଜାଣନ୍ତି । ସେ ମୁନି ସେହି ପାଦପ୍ରାପ୍ତି ॥ ୧୩୮
ପାଇଁ ସଦା ଯା' ସ୍ତୁତି ଧ୍ୟାନ । କରନ୍ତି ପୂଜନ ବନ୍ଦନ ॥ ୧୩୯
୪୩ ଯେ ତୁମ୍ଭେ ଅପବର୍ଗମୂର୍ତ୍ତି । ତୁମ୍ଭର ଯେ ଚରଣପ୍ରାପ୍ତି ॥ ୧୪୦
ତହିଁରୁ ଆନ ମୁହିଁ କିଛି । ଲୋକର କ୍ଷେମ ନ ଦେଖୁଛି ॥ ୧୪୧
ସମସ୍ତ ଲୋକରେ ଯାହାର । ଭୟ ଉପୁଜେ ନିରନ୍ତର ॥ ୧୪୨
ଯେ ଅଟେ ତୁମ୍ଭ ଭ୍ରୂବିକାର । ସେ କାଳଠାରୁ ନିରନ୍ତର ॥ ୧୪୩
ଯା' ସ୍ଥାନ ଦ୍ୱିପରାର୍ଧସ୍ଥାୟୀ । ସେ ବ୍ରହ୍ମା ଡରଇ ଅତି ହି ॥ ୧୪୪
ବ୍ରହ୍ମାସର୍ଜିଲା ପ୍ରାଣିଙ୍କର । ଭୟ କି କହିବା ଆବର ॥ ୧୪୫
୪୪ ଯେ ତୁମ୍ଭେ ସତ୍ୟଜ୍ଞାନାକୃତି । ଜୀବନିୟନ୍ତା ପରମୂର୍ତ୍ତି ॥ ୧୪୬
ପାଦମୂଳକୁ ସେ ତୁମ୍ଭର । ତେଣୁ ଭଜୁଛି ନିରନ୍ତର ॥ ୧୪୭
[5]ଅଭିଜ୍ଞମାତ୍ର ଯେ ନଶ୍ୱର । ଆତ୍ମା-ଆବରକ ଆବର ॥ ୧୪୮
ନିଷ୍ଫଳ ତୁଚ୍ଛ ଯେହୁ ପୁଣ । ଛାଡ଼ି ସେ ଦେହାଦିଭଜନ ॥ ୧୪୯
ଯେବେ ତୁମ୍ଭଙ୍କୁ ଲୋକ ସେବେ । ଅଖିଳ ବାଞ୍ଛିତାର୍ଥ ତେବେ ॥ ୧୫୦
ତୁମ୍ଭର ଠାରୁ ସେ ଲଭଇ । ଇତର ଫଳକୁ ମିଶାଇ ॥ ୧୫୧
୪୫ ହେ ଆତ୍ମବନ୍ଧୁ ହେ ଈଶ୍ୱର । ଯେ ଅଟେ ଏହୁ ଜଗତର ॥ ୧୫୨
ଜନମ-ପାଳନ-ବିଲୟ । ହେତୁ, ଯେ ତୁମ୍ଭ ମାୟାମୟ ॥ ୧୫୩

---

୧. ଆମ୍ଭେ ତ ଧର୍ମର ତନୟ = ଶ୍ରୀନର-ନାରାୟଣ ଦୁହିଙ୍କୁ ଧର୍ମପୁତ୍ର କୁହାଯାଏ । ୨. ସଂହାର କର ।

୩. ଲୂତା = ବୁଢ଼ିଆଣୀଜାଲ ।

୪. ମଳ = ମୂଳ ଶବ୍ଦ 'ରଜଃ'ର ଅନୁବାଦ । 'ରୁଜଃ' ପାଠ ବିକଳ୍ପେ ଗୃହୀତ । 'ରୁଜଃ' ଶବ୍ଦର ଅର୍ଥ ରୋଗସମୂହ ।

୫. ଦେହାଦି ଅତ୍ୟନ୍ତ ଅସତ୍ ନୁହେଁ, କିନ୍ତୁ ଆତ୍ମମାତ୍ର । ଅର୍ଥାତ୍ ଆତ୍ମାଠାରୁ ପୃଥକ୍ ନୁହେଁ ।

| | | | | |
|---|---|---|---|---|
| | ସେ ସତ୍ତ୍ୱ-ରଜ-ତମୋଗୁଣ | ତୁମ୍ଭ ଲୀଳାରେ ଧୃତ ପୁଣ | ॥ | ୧୫୪ |
| | ଏମନ୍ତ ହେଲେହେଁ ପ୍ରଶାନ୍ତି | କାରଣ ସତ୍ତ୍ୱମୟୀ ମୂର୍ତ୍ତି | ॥ | ୧୫୫ |
| | ନୁହନ୍ତି ମାୟାମୂର୍ତ୍ତି ଆନେ[୧] | ପ୍ରାଣୀଙ୍କ ନିର୍ବାଣବିଧାନେ | ॥ | ୧୫୬ |
| | ଯେଣୁ ବ୍ୟସନ-ମୋହ-ଭୀତି | ସେ ମୂର୍ତ୍ତିଠାରୁ ଉପୁଜନ୍ତି | ॥ | ୧୫୭ |
| ୪୬ | ତେଣୁ ହେ ଭଗବାନ ତୋର | ଶ୍ରୀନାରାୟଣାଖ୍ୟ ଶରୀର | ॥ | ୧୫୮ |
| | ନରାଖ୍ୟ ଯଉଁ କଳେବର | ତ୍ୱଦୀୟ ଲୋକମାନଙ୍କର | ॥ | ୧୫୯ |
| | ଦୟିତ ସେ ଶୁଦ୍ଧ ଶରୀର | ଭଜନ୍ତି ତା' କୁଶଳ ନର | ॥ | ୧୬୦ |
| | ଯେଣୁ ସେ ସତ୍ତ୍ୱକୁ ସାତ୍ୱତେ[୨] | ପୁରୁଷରୂପ ମଣେ ଚିତ୍ତେ | ॥ | ୧୬୧ |
| | ଯେ ରଜସ୍ତମୋ-ଗୁଣ ଦୁଇ | ପୁରୁଷରୂପ ସେ ନୁହଇ | ॥ | ୧୬୨ |
| | [୩]ସତ୍ତ୍ୱରୁ ବୈକୁଣ୍ଠାଖ୍ୟ ଲୋକ | ଯହିଁ ଅଭୟ ଆତ୍ମସୁଖ | ॥ | ୧୬୩ |
| ୪୭ | ଯେ ଭଗବାନ ଯେ ପୁରୁଷ | ଯେ ଭୂମା ବିଶ୍ୱଗୁରୁ ବିଶ୍ୱ | ॥ | ୧୬୪ |
| | ପରଦେବତା ନାରାୟଣ | ଯେ ଋଷି ନରଶ୍ରେଷ୍ଠ ପୁଣ | ॥ | ୧୬୫ |
| | ସଂଯତବଚନ ଯେ ହଂସ[୪] | [୫]ଯେ ତୁମ୍ଭେ ନିଗମର ଈଶ | ॥ | ୧୬୬ |
| | ସେହୁ ତୁମ୍ଭଙ୍କୁ ନମସ୍କାର | କରୁଛି ମୁହିଁ ନିରନ୍ତର | ॥ | ୧୬୭ |
| ୪୮ | ତୁମ୍ଭର ମାୟାରେ ଆବୃତ | ଯା' ଆତ୍ମମତି ଅବିରତ | ॥ | ୧୬୮ |
| | କପଟ-ଇନ୍ଦ୍ରିୟପଥରେ | ଭ୍ରମେ ଯା' ମତି ନିରନ୍ତରେ | ॥ | ୧୬୯ |
| | ନିଜ ଇନ୍ଦ୍ରିୟରେ ପ୍ରାଣରେ | ହୃଦେ ବିଷୟମାନଙ୍କରେ | ॥ | ୧୭୦ |
| | ଥିଲେହେଁ ନିୟାମକ ହୋଇ | ତୁମ୍ଭଙ୍କୁ ଲୋକ ନ ଜାଣଇ | ॥ | ୧୭୧ |
| | ଯେ ତୁମ୍ଭେ ଗୁରୁ ଜଗତର | ତୁମ୍ଭରେ ପ୍ରବର୍ତ୍ତିତ ସାର | ॥ | ୧୭୨ |
| | ବେଦମାର୍ଗକୁ ଲଭି ସେହି | ସାକ୍ଷାତ ତୁମ୍ଭଙ୍କୁ ଦେଖଇ | ॥ | ୧୭୩ |
| | ତୁମ୍ଭ ମହିମାମାନ ପୁଣି | ପୂର୍ବେ ନ ଥିଲା ସେହୁ ଜାଣି | ॥ | ୧୭୪ |
| ୪୯ | ନିଜ ରହସ୍ୟ ପ୍ରକାଶନ | ଯଉଁ ତୁମ୍ଭର ଦରଶନ | ॥ | ୧୭୫ |
| | ହୁଅଇ ନିଗମେ ନିଶ୍ଚୟେ | ଅନ୍ୟଥା ବ୍ରହ୍ମାଦି କବିଏ | ॥ | ୧୭୬ |
| | ସଂଯତ ହୋଇ ଯୋଗାଦିରେ | ମୋହ ଯାନ୍ତି ଯଉଁ ତୁମ୍ଭରେ | ॥ | ୧୭୭ |
| | ସାଂଖ୍ୟଯୋଗାଦିସର୍ବବାଦ | ବିଷୟ ଯେ ଭେଦ-ଅଭେଦ | ॥ | ୧୭୮ |
| | ସେହି ବାଦର ଅନୁସାରେ | ଯାହାର ସ୍ୱଭାବ ପ୍ରସରେ | ॥ | ୧୭୯ |
| | ଦେହାଦିସଂଘାତରେ ଯାର | ଗୂଢ଼ ହୋଇଛି ବୋଧସାର | ॥ | ୧୮୦ |
| | ସେ ତୁମ୍ଭେ ମହାନ ପୁରୁଷ | ତୁମ୍ଭଙ୍କୁ ବନ୍ଦଇ ଅନିଶ | ॥ | ୧୮୧ |

୧. ଅନ୍ୟ ଦୁଇ ମୂର୍ତ୍ତି, ଅର୍ଥାତ୍ ରଜୋମୂର୍ତ୍ତି ବ୍ରହ୍ମା ଏବଂ ତମୋମୂର୍ତ୍ତି ରୁଦ୍ର । ଏ ଦୁଇ ମୂର୍ତ୍ତି ମୋକ୍ଷ ଦିଅନ୍ତି ନାହିଁ, ବରଂ ବ୍ୟସନ, ଭୟ ଓ 'ମୋହର' କାରଣ ହୁଅନ୍ତି ।

୨. କୃଷ୍ଣଭକ୍ତମାନେ ।

୩. ବୈକୁଣ୍ଠ ଧାମ 'ଲୋକ' ହୋଇ ମଧ୍ୟ ଅଭୟର ସ୍ଥାନ ଏବଂ ସେଠାରେ ଭୋଗ ଥାଇ ମଧ୍ୟ ତାହା 'ଆତ୍ମସୁଖ'ଦାୟକ; ଆତ୍ମସୁଖ = ପରଂବ୍ରହ୍ମାନନ୍ଦ ।

୪. ଶୁକ୍ଳ ବା ଶୁଦ୍ଧ । ୫. ତୁମ୍ଭେ ବେଦମାର୍ଗପ୍ରବର୍ତ୍ତକ ।

| | | | | |
|---|---|---|---|---|
| କୃଷ୍ଣଚରଣସରସିଜ | । | ଚିନ୍ତାରେ ଦୀନବନ୍ଧୁ ଦ୍ୱିଜ | ।। | ୧୮୨ |
| ଦ୍ୱାଦଶସ୍କନ୍ଧଗୀତ ଭଣେ | । | ସନ୍ତୋଷ ଜୟରାମ ତେଣେ | ।। | ୧୮୩ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଶ୍ରୀନାରାୟଣସ୍ତବୋ
ନାମ ଅଷ୍ଟମୋଽଧ୍ୟାୟଃ ।।

## ନବମ ଅଧ୍ୟାୟ

ନବମେ ଭଗବନ୍‌ମାୟାଦିଦୃକ୍ଷୋର୍ଦର୍ଶନଂ ମୁହୁଃ ।
ମାୟାଶିଶୋର୍ଲୟାବ୍‌ଧୌ ଚ ମୁନେର୍ନିର୍ବେଶନିର୍ଗମୌ ।। ୧

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୧ | ଯେ ମାର୍କଣ୍ଡେୟ ବୁଦ୍ଧିମନ୍ତ | । | ସେ ସ୍ତୁତି କରନ୍ତେ ଏମନ୍ତ | ।। | ୧ |
| | ସେ ନରସଖା ନାରାୟଣ | । | ତା' ଠାରେ ସୁପ୍ରୀତ ହୋଇଣ | ।। | ୨ |
| | ହେ ଭୃଗୁଶ୍ରେଷ୍ଠ[୧] ଏ ପ୍ରକାରେ | । | କହିଲେ ତାହାଙ୍କୁ ସେଠାରେ | ।। | ୩ |

ଶ୍ରୀଭଗବାନୁବାଚ

| | | | | | |
|---|---|---|---|---|---|
| ୨ | ଆହେ ହେ ବ୍ରହ୍ମର୍ଷିପ୍ରବର | । | ଏକାଗ୍ର ଭାବୁଁ ତୋ ଚିତ୍ତର | ।। | ୪ |
| | ମୋ' ଠାରେ ଅବିନାଶୀ ହୋଇ | । | ଯେ ଭକ୍ତି ତୋର ତାହା ପାଇଁ | ।। | ୫ |
| | ଯେ ତପଃ-ସଂଯମ-ସ୍ୱାଧ୍ୟାୟ | । | ସେ ଘେନି ସିଦ୍ଧ ତୁ ନିଶ୍ଚୟ | ।। | ୬ |
| ୩ | ତୋ' ବୃହଦ୍ ବ୍ରତର ବିଧାନେ | । | ସଂତୋଷ ହେଲୁଁ ଆମ୍ଭେମାନେ | ।। | ୭ |
| | ବରଦ ମୁଁ, ମୋ'ଠାରୁ ଘେନ | । | ଯେବଣ ବର ବାଞ୍ଛୁ ମନ | ।। | ୮ |
| | ମଙ୍ଗଳ ଜାତ ହେଉ ତୋର | । | ସଂତୋଷସକାଶୁଁ ଆମ୍ଭର | ।। | ୯ |

ଶ୍ରୀଋଷିରୁବାଚ

| | | | | | |
|---|---|---|---|---|---|
| ୪ | ଆହେ ପ୍ରପନ୍ନ ଆର୍ତ୍ତିହର | । | ଅଚ୍ୟୁତ ଦେବଦେବେଶ୍ୱର | ।। | ୧୦ |
| | ବରକୁ ଯାଚନ୍ତେ ବିଦିତ | । | କଲ ଆପଣାର ମହତ୍ତ୍ୱ | ।। | ୧୧ |
| | ତୁମ୍ଭଙ୍କୁ ଯାହା ସାକ୍ଷାତରେ | । | ଦେଖିଲୁଁ ନୟନ ପଥରେ | ।। | ୧୨ |
| ୫ | ଏମନ୍ତ ବରରୁ ଆମ୍ଭର | । | ଅପେକ୍ଷା ନାହିଁ ଆନ ବର | ।। | ୧୩ |
| | ଯଉଁ ତୁମ୍ଭର ଶ୍ରୀଚରଣ | । | ସରସୀରୁହ[୨] ନିରୀକ୍ଷଣ | ।। | ୧୪ |
| | ସୁଯୋଗପକ୍ୱ ସୁହୃଦୟେ | । | [୩]ଘେନି ବ୍ରହ୍ମାଦି ସୁଖୀ ହୋଏ | ।। | ୧୫ |
| | ସେ ତୁମ୍ଭେ ହୋଇଲ ମୋହର | । | ନୟନଯୁଗଳଗୋଚର | ।। | ୧୬ |
| ୬ | ହେ ପଦ୍ମପଲାଶଲୋଚନ | । | ହେ ପୁଣ୍ୟଶ୍ଳୋକଶିଖାରତ୍ନ | ।। | ୧୭ |

---
୧. ଭୃଗୁଶ୍ରେଷ୍ଠ = ଶୌନକ ।　　୨. ସରସୀରୁହ = ପଦ୍ମ ।　　୩. ଘେନି = ଧାରଣ କରି ।

ଦେଖିବି ମାୟାକୁ ତୁମ୍ଭର । ଯେ ମାୟାହେତୁ ଏହି ନର ।। ୧୮
ବ୍ରହ୍ମାଦି ସହିତେ ବ୍ରହ୍ମରେ । ଭେଦକୁ ଜାଣଇ ସଂସାରେ ।। ୧୯

ଶ୍ରୀସୂତ ଉବାଚ

୭ ଏ ରୂପେ ପୂଜାସ୍ତୁତିମାନ । ଋଷି କରନ୍ତେ ଭଗବାନ ।। ୨୦
ସେ କଥା କରିଣ ସ୍ୱୀକାର । ଅଳପ ହସନ୍ତେ ଈଶ୍ୱର ।। ୨୧
ହେ ମୁନି ନରଙ୍କର ତୁଲେ । ବଦରୀ ଆଶ୍ରମକୁ ଗଲେ ।। ୨୨
୮ ସେ ଅର୍ଥ ଚିନ୍ତନ୍ତେଣ ଋଷି । ନିଜ ଆଶ୍ରମସ୍ଥାନେ ବସି ।। ୨୩
୯ ସୋମ ତପନ ହୁତାଶନେ । ଜଳ ଭୂ ଆକାଶ ପବନେ ।। ୨୪
ଆତ୍ମାରେ ସକଳ ଠାବରେ । ହରିଙ୍କି ଚିନ୍ତନ୍ତେ ଧ୍ୟାନରେ ।। ୨୫
ମାନସ ଦ୍ରବ୍ୟମାନଙ୍କରେ । ପୂଜିଲେ ତାହାଙ୍କୁ ନିର୍ଭରେ ।। ୨୬
ବୁଡ଼ି ଅତ୍ୟନ୍ତ ପ୍ରେମଜଳେ । ପୂଜା ପାସୋରେ କେତେବେଳେ ।। ୨୭
୧୦ ହେ ବିପ୍ର ଭୃଗୁବଂଶବର । ପୁଷ୍ପଭଦ୍ରାନଦୀତଟର ।। ୨୮
ସେ ମୁନି ସଂଧ୍ୟା ଉପାସନ । କରନ୍ତେ ତହିଁ ଏକଦିନ ।। ୨୯
ଅତିଶୟରେ ଅକସ୍ମାତ । ପ୍ରଚଣ୍ଡ ବାୟୁ ହେଲା ଜାତ ।। ୩୦
୧୧ ଯେହୁ ପ୍ରଚଣ୍ଡ ଧ୍ୱନିବନ୍ତ । ସେ ବାତକୁ ଯେ ଅନୁଗତ ।। ୩୧
କରାଳ ସେ ଜଳଦମାନେ । ଦିଶିଲେ ଆସିଣ ଗଗନେ ।। ୩୨
[1]ଅକ୍ଷସମାନ ସ୍ଥୂଳତର । ଘୋରବରଷାଜଳଧାର ।। ୩୩
ସମସ୍ତ ଦିଗେ ସେ ମୁଞ୍ଚନ୍ତି । ତଡ଼ିତତୁଲେ ଗର୍ଜି ଅତି ।। ୩୪
୧୨ ସମୀରବେଗଜ[2] ଊର୍ମିରେ । ଗ୍ରାସନ୍ତି ଭୂତଳ ଯେ ଖରେ ।। ୩୫
ଯହିଁରେ ଭୟଙ୍କର ନକ୍ରେ । ମହାଭୟ ଆବର୍ତ୍ତଚକ୍ରେ[3] ।। ୩୬
ଯହିଁରେ ଅତ୍ୟନ୍ତ ଗମ୍ଭୀର । ଗର୍ଜନଧ୍ୱନି ଭୟଙ୍କର ।। ୩୭
ସେ ଚାରିସିନ୍ଧୁ ସବୁଦିଗେ । ତଦନ୍ତେ ଦିଶିଲେକ ବେଗେ ।। ୩୮
୧୩ ଆକାଶ ଲଙ୍ଘନ୍ତି ଯେ ଖରେ । ସେହି ସଲିଳମାନଙ୍କରେ ।। ୩୯
ବାୟୁରେ ବା ସୂର୍ଯ୍ୟରଶ୍ମିରେ । ସଉଦାମିନୀ[4]ମାନଙ୍କରେ ।। ୪୦
ଯେ ଜରାୟୁଜ ଯେ ଅଣ୍ଡଜ । ଯେ ବା ସ୍ୱେଦଜ ଯେ ଉଦ୍ଭିଜ୍ଜ ।। ୪୧
ସେ ଚତୁର୍ବିଧ ଜୀବ ତହିଁ । ଆପଣା ସହିତରେ ରହି ।। ୪୨
ବାହ୍ୟ-ଅନ୍ତରେ ସଂତାପିତ । ପୃଥିବୀ ଜଳରେ ଆପ୍ଲୁତ ।। ୪୩
ତା ଦେଖି ବିମନା ହୋଇଲେ । ସେ ମୁନି ତ୍ରାସକୁ ଲଭିଲେ ।। ୪୪
୧୪ ଯେ ଲହରୀରେ ଭୟଙ୍କର । ବାତେ କଂପିତ ଜଳ ଯାର ।। ୪୫
ଏମନ୍ତ ମହାର୍ଣ୍ଣବ ସେହୁ । ସେ ଋଷି ଏଣେ ଚାହୁଁ ଚାହୁଁ ।। ୪୬
ବର୍ଷା କରନ୍ତେ ଜଳଧର । ତେଣେ ହୋଇଣ ପୂର୍ଣ୍ଣତର ।। ୪୭

୧. ଅକ୍ଷ = ଚକର ଅଖ । ୨. ବେଗଜନିତ । ୩. ଭଉଁରୀର ଚକ୍ରରେ । ୪. ବିଜୁଳି ।

| | | | | | |
|---|---|---|---|---|---|
| | ଦ୍ୱୀପ-ବର୍ଷାଦି ତୁଲେ ତହିଁ | । | ଆଚ୍ଛନ୍ନ କଲା ଧରାକୁ ହିଁ | ॥ | ୪୮ |
| ୧୫ | ନକ୍ଷତ୍ରଗଣ ଦିଗ ମିଶି | । | ଯେ ସ୍ୱର୍ଗ-ମହୀ-ବ୍ୟୋମବାସୀ | ॥ | ୪୯ |
| | ତାଙ୍କ ସହିତେ ତ୍ରିଜଗତ | । | ହୋଇଲା ସଲିଳେ ଆପ୍ଲୁତ | ॥ | ୫୦ |
| | ସେ ମହାମୁନି ଏକା ତହିଁ | । | ରହିଲେ ଅବଶେଷ ହୋଇ | ॥ | ୫୧ |
| | ଜଟାକୁ ବିକ୍ଷେପଣ କରି | । | ବୁଲିଲେ ଜଡ଼-ଅନ୍ଧ ପରି | ॥ | ୫୨ |
| ୧୬ | କ୍ଷୁଧା-ତୃଷାରେ ଯୁତ ହେଲେ | । | ମତ୍ସ୍ୟ-ମକରେ ପୀଡ଼ା କଲେ | ॥ | ୫୩ |
| | ଲହଡ଼ିମାନଙ୍କ ପବନେ | । | ଆହତ ହେଲେ ସ୍ଥାନେ ସ୍ଥାନେ | ॥ | ୫୪ |
| | ଅପାର ତମରେ ପଡ଼ିଲେ | । | ପରିଶ୍ରମରେ କ୍ଲାନ୍ତ ହେଲେ | ॥ | ୫୫ |
| | ଭ୍ରମନ୍ତେ ଆକାଶ ଧରଣୀ | । | ଦିଗ ସେ ନ ପାରିଲେ ଜାଣି | ॥ | ୫୬ |
| ୧୭ | ଊର୍ମିତାଡ଼ିତ କଉଁ ଠାଇଁ | । | ମହା-ଆବର୍ତ୍ତେ ମଗ୍ନ କାହିଁ | ॥ | ୫୭ |
| | ସେ ଜଳଜନ୍ତୁମାନଙ୍କରେ | । | ଭକ୍ଷିତ ହୋନ୍ତି କଉଁଠାରେ | ॥ | ୫୮ |
| | ତାଙ୍କୁ ଭକ୍ଷିବା ନିମିତ୍ତରେ | । | ଯୁଝନ୍ତି ଯେହୁ ପରସ୍ପରେ | ॥ | ୫୯ |
| ୧୮ | କାହିଁରେ ଶୋକ କାହିଁ ମୋହ | । | କାହିଁ ବା ଦୁଃଖ ସୁଖ ଭୟ | ॥ | ୬୦ |
| | ବ୍ୟାଧି-ଆଦିରେ ପୀଡ଼ା ପାଇ | । | ମୃତ୍ୟୁ ଲଭନ୍ତି ଅବା କାହିଁ | ॥ | ୬୧ |
| ୧୯ | ଅୟୁତ ଅୟୁତ ବତ୍ସର | । | ସହସ୍ର ଶତ ହିଁ ଆବର | ॥ | ୬୨ |
| | ସେ ମୁନିଙ୍କର କାଳ ଏତେ | । | ଗଲା ସେ ସଲିଳେ ଭ୍ରମନ୍ତେ | ॥ | ୬୩ |
| | ବିଷ୍ଣୁମାୟାରେ ଆଚ୍ଛାଦିତ | । | ହୋଇ ସେ ଦେଖିଲେ ଏମନ୍ତ | ॥ | ୬୪ |
| ୨୦ | ଭ୍ରମନ୍ତେ କଦାଚିତ ତହିଁ | । | ଯେ ପୃଥ୍ୱୀ-ଉଚ୍ଚଦେଶେ ଥାଇ | ॥ | ୬୫ |
| | ଶୋଭିତ ଯେ ପଲ୍ଲବ ଫଳେ | । | ସେ ବଟବୃକ୍ଷକୁ ଦେଖିଲେ | ॥ | ୬୬ |
| ୨୧ | ତାହାର ଈଶାନଶାଖାରେ | । | ଦେଖିଲେ ଏମନ୍ତ କ୍ରମରେ | ॥ | ୬୭ |
| | ଶୋଇଛି ପତ୍ରର ପୁଟରେ | । | ଗ୍ରାସନ୍ତେ ତମକୁ[୧] ପ୍ରଭାରେ | ॥ | ୬୮ |
| ୨୨ | ଯେ ମହାମରକତଶ୍ୟାମ | । | ଯା' ମୁଖପଦ୍ମ ମନୋରମ | ॥ | ୬୯ |
| | ଯା' ଗ୍ରୀବା ଶଙ୍ଖପ୍ରାୟ ହୋଇ | । | ତ୍ରିରେଖା-ଆବୃତ ଅଟଇ | ॥ | ୭୦ |
| | ବିଶାଳ ଅଟେ ବକ୍ଷ ଯାର | । | ଯା' ନାସା ଭ୍ରୂଲତା ସୁନ୍ଦର | ॥ | ୭୧ |
| ୨୩ | ନିଶ୍ୱାସପବନେ କଂପିତ | । | ଅଳକା[୨]କୁଳେ ଯେ ଶୋଭିତ | ॥ | ୭୨ |
| | ମଧ୍ୟବଳୟକମ୍ବୁପ୍ରାୟେ | । | ଯେବଣ କର୍ଣ୍ଣବେନି ଶୋହେ | ॥ | ୭୩ |
| | ତହିଁରେ ଯାହାର ଦାଡ଼ିମ | । | କୁସୁମବେନି ଅଭିରାମ | ॥ | ୭୪ |
| | [୩]ବିଦ୍ରୁମପ୍ରାୟେ ଯେ ଅଧର | । | କାନ୍ତିରେ ଅଳପ ତାହାର | ॥ | ୭୫ |
| | ଅରୁଣବର୍ଣ୍ଣ ସୁଧାସମ | । | ଯା' ମନ୍ଦହାସ ମନୋରମ | ॥ | ୭୬ |
| ୨୪ | ପଙ୍କଜଗର୍ଭପ୍ରାୟ ସାର | । | ଅପାଙ୍ଗ[୪] ଅଚ୍ଛରକ୍ତ ଯାର | ॥ | ୭୭ |
| | ତହିଁରେ ମଧୁର ହସିତ | । | ଏମନ୍ତ ଯା' ଅବଲୋକିତ | ॥ | ୭୮ |

୧. ଅନ୍ଧକାରକୁ ।　୨. ଚୂର୍ଣ୍ଣକୁନ୍ତଳ ।　୩. ବିଦ୍ରୁମ = ପୋହଳା ।　୪. ନେତ୍ରକୋଣ ।

ଶ୍ୱାସଚଞ୍ଚଳ ତ୍ରିବଳି[1]ରେ । ଚଳେ ନିମ୍ନ ନାଭି ଯହିଁରେ ।। ୭୯
ଯେହୁ ଅଶ୍ୱତ୍ଥଦଳାକାର । ଏମନ୍ତ ଉଦର ଯାହାର ।। ୮୦
୨୫ ଚାରୁ ଅଙ୍ଗୁଳିମାନେ ଯହିଁ । ସେ ବେନି କରେ ଟେକି ନେଇ ।। ୮୧
ଚରଣପଙ୍କଜକୁ ମୁଖେ । ନିବେଶି ପିଉଛନ୍ତି ସୁଖେ ।। ୮୨
ଏରୂପେ ଦେଖି ବାଳକକୁ । ମୁନି ଲଭିଲେ ବିସ୍ମୟକୁ ।। ୮୩
୨୬ ତାଙ୍କ ଦର୍ଶନୁଁ ହର୍ଷେ ଯାର । ହୋଇଲା ପରିଶ୍ରମ ଦୂର ।। ୮୪
ହୃତ୍‌ପଦ୍ମ ନେତ୍ରାମ୍ବୁଜ ଆର । ହୋଇଲା ବିକସିତ ଯାର ।। ୮୫
ଯାର ଦେହରେ ରୋମମାନ । ଉତ୍‌ଫୁଲ୍ଲ ହୋଇଲେ ବହନ ।। ୮୬
ଅତିଆଶ୍ଚର୍ଯ୍ୟରୂପ ଯେହି । ମୁନି ଶଙ୍କିତ ତେଣେ ହୋଇ ।। ୮୭
ପଚାରିବାକୁ ସେ ଶିଶୁଙ୍କୁ । ଗଲେ ତାହାଙ୍କ ସମୀପକୁ ।। ୮୮
୨୭ ଭାର୍ଗବ[2] ସେହି ସମୟରେ । ବାଳକନିଃଶ୍ୱାସବାତରେ ।। ୮୯
ଉଦରେ ମିଳିଲେକ ଯାଇ । ମଶକ ଜନ୍ତୁ ପ୍ରାୟ ହୋଇ ।। ୯୦
ପ୍ରଳୟପୂର୍ବପ୍ରାୟ ହୋଇ । ଏ ସର୍ବ ବିଶ୍ୱ ଅଛି ତହିଁ ।। ୯୧
ଦେଖିଣ ବିସ୍ମିତ ହୋଇଲେ । ଅତ୍ୟନ୍ତ ମୋହକୁ ଲଭିଲେ ।। ୯୨
୨୮ [3]ଦ୍ୟାବାପୃଥିବୀ ଯେ ଅମ୍ବର । [4]ଭଗଣ ଯେ ଅଦ୍ରି ସାଗର ।। ୯୩
ବର୍ଷସହିତ ଦ୍ୱୀପମାନ । ଯେ ଦିଗମାନେ ଭିନ୍ନ ଭିନ୍ନ ।। ୯୪
ସୁରେ ଅସୁରେ ଦେଶମାନ । ଯେ ନଦୀମାନେ ଯେ କାନନ ।। ୯୫
ପୁର ଆକର ଚାଷୀଗ୍ରାମ । ଯେ ଗୋଷ୍ଠ ଯେ ବର୍ଣ୍ଣ ଆଶ୍ରମ ।। ୯୬
ବର୍ଣ୍ଣ-ଆଶ୍ରମମାନଙ୍କର । ଜୀବିକାମାନ ଯେ ଆବର ।। ୯୭
୨୯ ଯେ ପୁଣ ମହାଭୂତମାନ । ଭୌତିକମାନ ଯେବା ଆନ ।। ୯୮
ଯେ କାଳ ନାନାଯୁଗମାନ । କଳ୍ପ ହିଁ କରଇ କଳ୍ପନ ।। ୯୯
ଯେ ବ୍ୟବହାରକୁ କାରଣ । ଅଛଇ ଆନ କିଛି ପୁଣ ।। ୧୦୦
ପରମ-ଅର୍ଥ ପ୍ରାୟ ନିତ୍ୟ । ହୁଅଇ ଯେ ଅବଭାସିତ ।। ୧୦୧
ଏମନ୍ତ ବିଶ୍ୱକୁ ସେ ମୁନି । ଦେଖିଲେ ବିସ୍ମୟକୁ ଘେନି ।। ୧୦୨
୩୦ ଯେ ହିମାଳୟ ମହୀଧର । ଯେ ପୁଷ୍ପବହା[5] ନଦୀ ଆର ।। ୧୦୩
ଯହିଁ ସେ ନର-ନାରାୟଣ । ଋଷିଙ୍କି ଦେଖି ରମ୍ୟାରୁଣ[6] ।। ୧୦୪
ସେ ନିଜ ଆଶ୍ରମ ଆପଣ । ଦେଖିଲେ ଏମନ୍ତ ରୂପେଣ ।। ୧୦୫
ବିଶ୍ୱକୁ ଦେଖନ୍ତେ ଶିଶୁର । ନିଃଶ୍ୱାସେ ହୋଇଣ ବାହାର ।। ୧୦୬
ପୁଣି ହିଁ ପଡ଼ିଲେ ବାହ୍ୟରେ । ସେହି ପ୍ରଳୟସମୁଦ୍ରରେ ।। ୧୦୭
୩୧ ଯେ ଜାତ ପୃଥ୍ୱୀକକୁଦରେ[7] । ସେ ବଟ ଦେଖିଣ ତହିଁରେ ।। ୧୦୮

୧. ଉଦରସ୍ଥ ରୋମରେଖା । ୨. ମାର୍କଣ୍ଡେୟ । ୩. ସ୍ୱର୍ଗ ଓ ମର୍ତ୍ତ୍ୟଲୋକ । ୪. ନକ୍ଷତ୍ରଗଣ ।
୫. ପୁଷ୍ପଭଦ୍ରା । ୬. ରମ୍ୟ (ସୁନ୍ଦର) ଓ ଅରୁଣ = ଈଷତ୍ ଲାଲ । ଦଳ = ପତ୍ର ।
୭. ପୃଥ୍ୱୀକକୁଦରେ = ପୃଥିବୀର ପର୍ବତରେ ।

| | | | | |
|---|---|---|---|---|
| | ଶୋଇଛି ଯେ ତା’ ପତ୍ରପୁଟେ | । ଦେଖି ସେ ଶିଶୁକୁ ନିକଟେ | ।। | ୧୦୯ |
| | ତା’ ପ୍ରେମସୁଧାସ୍ମିତେ ଯୁତ | । ଯଉଁ ଅପାଙ୍ଗବିଲୋକିତ | ।। | ୧୧୦ |
| | ତେଣେ ନିରୀକ୍ଷିତ ହୋଇଲେ | । ପରମ ଆନନ୍ଦ ଲଭିଲେ | ।। | ୧୧୧ |
| ୩୨ | ଯାହାକୁ ନେତ୍ରଯୁଗଦ୍ୱାରେ | । ରଖି ଅଛନ୍ତି ହୃଦୟରେ | ।। | ୧୧୨ |
| | ଏଥୁ ଅନ୍ତେ ସେ ବାଳକକୁ | । ଦେଖିଣ ଲଭି ହରଷକୁ | ।। | ୧୧୩ |
| | କରିବା ପାଇଁ ଆଲିଙ୍ଗନ | । କଲେ ତା’ ପାଶକୁ ଗମନ | ।। | ୧୧୪ |
| | ଇନ୍ଦ୍ରିୟଜନ୍ୟ ଜ୍ଞାନକୁ ହିଁ | । ତଳେ ସେ ଦେଇଛି ପକାଇ | ।। | ୧୧୫ |
| ୩୩ | ଯେହୁ ଯୋଗନାଥ ସାକ୍ଷାତ | । ଯେ ଗୁହାଶୟ ଭଗବନ୍ତ | ।। | ୧୧୬ |
| | ଆଶ୍ଳେଷ ପୂର୍ବରୁ ତାଙ୍କର | । ତତ୍‌କାଳ ହେଲେ ସେ ଅନ୍ତର | ।। | ୧୧୭ |
| | ଯେ ପ୍ରାଣୀ ଅଦୃଷ୍ଟବିହୀନ | । ତା’ ଚେଷ୍ଟା ନିଷ୍ଫଳ ଯେସନ | ।। | ୧୧୮ |
| ୩୪ | ତାଙ୍କ ପଛକୁ ବଟ ନୀର | । ଯେ ଲୋକସଂପ୍ଲବ[୧] ଆବର | ।। | ୧୧୯ |
| | ସେହି କ୍ଷଣରେ ଅନ୍ତର୍ଧାନ | । ହୋଇଲେ ହେ ବିପ୍ର ସେମାନ | ।। | ୧୨୦ |
| | ଆପଣା ଆଶ୍ରମରେ ଆସି | । ରହିଲେ ପୂର୍ବପ୍ରାୟେ ଋଷି | ।। | ୧୨୧ |
| | ଆହେ ଶ୍ରୀକୃଷ୍ଣ କୃପାସିନ୍ଧୁ | । ଏ ଯେ ପତିତ ଦୀନବନ୍ଧୁ | ।। | ୧୨୨ |
| | ଏହାକୁ ନ କଲେ ପାବନ | । ହେବ କି ପତିତପାବନ | ।। | ୧୨୩ |
| | ତୁମ୍ଭର ଶ୍ରୀଚରଣେ ଆଶ | । ବନ୍ଦଇ ଜୟରାମ ଦାସ | ।। | ୧୨୪ |
| | ଶ୍ରୀଭାଗବତେ ଦେଲା ମତି | । ବିନାଶ[୨] ଏହାର ଦୁର୍ଗତି | ।। | ୧୨୫ |

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଶ୍ରୀମାର୍କଣ୍ଡେୟସ୍ୟ ମାୟାଦର୍ଶନଂ
ନାମ ନବମୋଽଧ୍ୟାୟଃ ।।

## ଦଶମ ଅଧ୍ୟାୟ

ଦଶମେ ଶିବ ଆଗତ୍ୟ ମୁନେସ୍ତୁଷ୍ଟୋ ବରାନଦାତ୍ ।
ତେନ ସାକମତିପ୍ରୀତ୍ୟା ସମାଭାଷ୍ୟ ସଭାଜୟନ୍ ।। ୧

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୧ | ଆପଣେ ଋଷି ନାରାୟଣ | । କଲେକ ଯାହାକୁ ନିର୍ମାଣ | ।। | ୧ |
| | ସେ ଯୋଗମାୟାର ବୈଭବ | । ସେ ଋଷି କରି ଅନୁଭବ | ।। | ୨ |
| | ସେହି ଶ୍ରୀନାରାୟଣଙ୍କୁ ହିଁ | । ଶରଣ ପଶିଲେକ ତହିଁ | ।। | ୩ |

ଶ୍ରୀମାର୍କଣ୍ଡେୟ ଉବାଚ

| | | | | |
|---|---|---|---|---|
| ୨ | ପ୍ରପନ୍ନଜନ-ଅଭୟଦ | । ହେ ହରେ ତୁମ୍ଭର ଯେ ପାଦ | ।। | ୪ |

୧. ଲୋକେ ଏକାଠି ଭାସିବା ।　　୨. ବିନାଶ କର ।

ସେ ପାଦମୂଳରେ ମୁଁ ପୁଣ । ହେ ପ୍ରଭୁ ପଶିଲି ଶରଣ ।। ୫
ଯେ ତୁମ୍ଭ ମାୟା ଅବିରତ । ଜ୍ଞାନପ୍ରାୟେକ ପ୍ରକାଶିତ ।। ୬
ତୁମ୍ଭ ଭଜନ ବିନା ନରେ । ବିବୁଧ ହେଲେହେଁ ତହିଁରେ ।। ୭
'ଆମ୍ଭେ ଜ୍ଞାନୀ'-ଏ ଅହଂକାରେ । ମୋହିତ ହୁଅନ୍ତି ସଂସାରେ ।। ୮

## ଶ୍ରୀସୂତ ଉବାଚ

୩ ନିଜ ଗଣରେ ହୋଇ ବୃତ । ସେ ରୁଦ୍ରରୂପୀ ଭଗବନ୍ତ ।। ୯
ନିଜ ଭାବିନୀ ସହିତରେ । ବୃଷଭେ ଯାନ୍ତେ ଆକାଶରେ ।। ୧୦
ଦେଖିଲେ ସେ ଋଷିଙ୍କି ତହିଁ । ଯେ ଥିଲେ ଯତଚିତ୍ତ[1] ହୋଇ ।। ୧୧
୪ ତଦନ୍ତେ ଦେଖି ସେ ଋଷିଙ୍କି । ଉମା ବୋଇଲେ କପର୍ଦ୍ଦୀଙ୍କି[2] ।। ୧୨
ନିଶ୍ଚଳ ଶରୀର ଯାହାର । ଇନ୍ଦ୍ରିୟ ମାନସ ଆବର ।। ୧୩
ଏ ବ୍ରାହ୍ମଣଙ୍କୁ ବିଲୋକନ । କର ହେ ପ୍ରଭୁ ଭଗବାନ ।। ୧୪
୫ ପବନ-ଅନ୍ତରେ ନିଶ୍ଚଳ । ଯହିଁ ସକଳ ମୀନକୁଳ ।। ୧୫
ଏମନ୍ତ ସାଗର ଯେସନ । ନିଶ୍ଚଳ ଅଟେ ଏ ତେସନ ।। ୧୬
ତପସ୍ୟାଫଳକୁ ଏହାର । ସିଦ୍ଧିଦ ତୁମ୍ଭେ ସିଦ୍ଧି କର ।। ୧୭

## ଶ୍ରୀଭଗବାନୁବାଚ (ଶ୍ରୀମହାଦେବ ଉବାଚ)

୬ କେହୁଣି ଶୁଭ ଉଦୟ ହି । ଏ ବ୍ରହ୍ମଋଷି ନ ବାଞ୍ଛଇ ।। ୧୮
ଆବର ନ ବାଞ୍ଛଇ ମୁକ୍ତି । ଲଭିଛି ପରମ ଭଗତି ।। ୧୯
ପରମ ପୁରୁଷ ଅବ୍ୟୟ । ଶ୍ରୀବିଷ୍ଣୁଠାରେ ଅସଂଶୟ ।। ୨୦
୭ ଏ ସାଧୁ ସଙ୍ଗେ ତଥାପି ହି । ସଂବାଦ କରିବା ଗୋ ସହୀ ।। ୨୧
ମନୁଷ୍ୟଙ୍କର ଏ ଉତ୍ତମ । ଲାଭ ଯେ ସାଧୁସମାଗମ ।। ୨୨

## ଶ୍ରୀସୂତ ଉବାଚ

୮ ଯେ ସାଧୁଗତି ଭଗବାନ । ଯେ ସର୍ବବିଦ୍ୟାର ଈଶାନ ।। ୨୩
ଯେ ସର୍ବ ପ୍ରାଣୀଙ୍କ ଈଶ୍ୱର । ଅଟନ୍ତି ଯେ ଚନ୍ଦ୍ରଶେଖର ।। ୨୪
ଏମନ୍ତ କହି ଗିରିଜାଙ୍କୁ । ଚଳିଲେ ସେ ଋଷିଠାବକୁ ।। ୨୫
୯ ସାକ୍ଷାତ ଯେ ଜଗତ-ଈଶ । ଜଗତ-ଆତ୍ମା ଯେ ପ୍ରକାଶ ।। ୨୬
ଆଗମନକୁ ସେ ବେନିର । ବିଶ୍ୱକୁ ଆତ୍ମାକୁ ଆବର ।। ୨୭
ନ ଜାଣିଲେ ସେ ମୁନିବର । ନିରୁଦ୍ଧ ବୁଦ୍ଧିବୃତ୍ତି ଯାର ।। ୨୮
୧୦ ଗିରିଶ ଭଗବାନ ପୁଣି । ଯୋଗମାୟାରେ ତାହା ଜାଣି ।। ୨୯
ହୃଦୟାକାଶମଧ୍ୟେ ତାର । ପ୍ରବେଶ ହେଲେ ସେ ଈଶ୍ୱର ।। ୩୦
ଛିଦ୍ରସ୍ଥାନରେ ପବମାନ[3] । ପ୍ରବେଶ ହୁଅଇ ଯେସନ ।। ୩୧

---

୧. ସଂଯତ ଚିତ୍ତ ଯାହାଙ୍କର ସେ । ୨. ଜଟାଧାରୀ ଶିବଙ୍କୁ । ୩. ପବନ ।

୧୧ ଆତ୍ମାରେ ହେଲେ ଯେ ପ୍ରାପତ । ତଡ଼ିତ-ପିଙ୍ଗଜଟାବନ୍ତ ॥ ୩୨
ତ୍ରିନେତ୍ର ଉଚ୍ଚ ଦଶଭୁଜ । ଯେହ୍ନେ ଉଦୟ ହୋ'ନ୍ତେ ସୂର୍ଯ୍ୟ ॥ ୩୩
୧୨ ବ୍ୟାଘ୍ରଚର୍ମ ଯା' ପରିଧାନ । ଯେ ଧରିଅଛନ୍ତି ଏମାନ ॥ ୩୪
୧୩ ଚର୍ମଫଳକ କରବାଳ । ସାୟକାସନ[1] ତୀକ୍ଷ୍ଣ ଶୂଳ ॥ ୩୫
ଅକ୍ଷମାଳା ହି ଡମରୁକ[2] । [3]ପରଶୁ କପାଳ ସାୟକ ॥ ୩୬
ଝଟିତି ହୃଦୟେ ପ୍ରତୀତ । ଦେଖି ସେ ଶିବଙ୍କୁ ତ୍ୱରିତ ॥ ୩୭
ସେ ଋଷି ହୋଇଲେ ବିସ୍ମିତ । ଏ କି କାହିଁରୁ ଉପଗତ ॥ ୩୮
ଏରୂପେ ସମାଧିରୁ ସେହି । ମୁନି ବିରତ ହେଲେ ତହିଁ ॥ ୩୯
୧୪ ସଗଣ ପାର୍ବତୀସହିତ । ତ୍ରିଲୋକଗୁରୁ ଯେ ଆଗତ ॥ ୪୦
ଦେଖିଲେ ସେ ରୁଦ୍ରଙ୍କୁ ଋଷି । ନୟନଯୁଗକୁ ପ୍ରକାଶି ॥ ୪୧
ବିନୟେ ଅବନତ ହେଲେ । ଶିରରେ ପ୍ରଣାମକୁ କଲେ ॥ ୪୨
୧୫ ସ୍ୱାଗତପୃଚ୍ଛା ଯେ ଆସନ । ଯେ ଅର୍ଘ୍ୟ କୁସୁମ ଚନ୍ଦନ ॥ ୪୩
ଯେ ଅବା ଧୂପ ଦୀପ ଆର । ଏମାନଙ୍କରେ ଋଷିବର ॥ ୪୪
ଉମାସହିତେ ଗଣତୁଲେ । ତାହାଙ୍କ ପୂଜାକୁ ବିହିଲେ ॥ ୪୫
୧୬ ତାହାଙ୍କୁ ଏମନ୍ତ ପ୍ରକାର । ବାକ୍ୟ କହିଲେ ମୁନିବର ॥ ୪୬
ଯେ ତୁମ୍ଭେ ଆତ୍ମାନୁଭାବରେ । ସଂପୂର୍ଣ୍ଣକାମ ଏ ସଂସାରେ ॥ ୪୭
ତୁମ୍ଭର କଉଁ ପ୍ରୟୋଜନ । କରିବୁଁ ହେ ପ୍ରଭୁ ଈଶାନ ॥ ୪୮
ଯଉଁ ତୁମ୍ଭରେ ଏ ଜଗତ । ହୋଇଣ ଅଛଇ ସୁଖିତ ॥ ୪୯
୧୭ ଯେ ଶିବ ସୁଖଦ ପ୍ରଶାନ୍ତ । ଯେ ସତ୍ତ୍ୱ-ରଜ-ତମ ଯୁତ ॥ ୫୦
ଯେ ତୁମ୍ଭେ ଅଟ ପୁଣ ଘୋର । ତୁମ୍ଭଙ୍କୁ ମୋର ନମସ୍କାର ॥ ୫୧

### ଶ୍ରୀସୂତ ଉବାଚ

୧୮ ଯେ ସାଧୁଜନଙ୍କର ଗତି । ଯେ ଭଗବାନ ଉମାପତି ॥ ୫୨
ଏରୂପେ ଋଷି ତାଙ୍କୁ ସ୍ତୁତି । କରନ୍ତେ ହୋଇ ତୋଷମତି ॥ ୫୩
ପ୍ରସନ୍ନମାନସ ହୋଇଲେ । ଋଷିଙ୍କି ଏମନ୍ତ ବୋଇଲେ ॥ ୫୪

### ଶ୍ରୀଭଗବାନୁବାଚ (ଶ୍ରୀମହାଦେବ ଉବାଚ)

୧୯ ଅମୋଘ ଯାହାଙ୍କ ଦର୍ଶନ । ଯା'ଠାରୁ ମୋକ୍ଷ ଲଭେ ଜନ ॥ ୫୫
ସେ ଆମ୍ଭେ ବ୍ରହ୍ମା ବିଷ୍ଣୁ ହର । ବରଦମାନଙ୍କ ଈଶ୍ୱର ॥ ୫୬
ଯଥେଷ୍ଟ ଆମ୍ଭଠାରୁ ବର । ବରଣ କର ମୁନିବର ॥ ୫୭
୨୦ ଭୂତବତ୍ସଳ ସାଧୁ ଶାନ୍ତ । ଆମ୍ଭରେ ଯେ ଏକାନ୍ତ ଭକ୍ତ ॥ ୫୮
ଯେ ସମଦରଶୀ ନିର୍ବୈର । ଯେ ସଙ୍ଗବିହୀନ ଆବର ॥ ୫୯

---
୧. ଧନୁ । ୨. ଡମ୍ବରୁ । ୩. ପରଶୁ = ଫାର୍ଶା; କପାଳ = ଖପୁରି; ସାୟକ = ଶର ।

୨୧ ଲୋକସହିତେ ଲୋକପାଳେ । ସେ ବ୍ରାହ୍ମଣଙ୍କୁ ଅନୁକାଳେ ॥ ୬୦
୨୨ କରନ୍ତି ନିଷ୍ଠେ ଉପାସନ । ଆଦର ଅର୍ଚ୍ଚନ ବନ୍ଦନ ॥ ୬୧
ମୁଁ ବ୍ରହ୍ମା ହରି ଯେ ଆଦର । ସେମାନେ ଏ ତିନିଙ୍କ ଠାର ॥ ୬୨
ଅଣୁ ଏ ଭେଦ ନ ଦେଖନ୍ତି । ଆତ୍ମପରରେ ଏକ ମତି ॥ ୬୩
ତୁମ୍ଭମାନଙ୍କୁ ସେ ହେତୁରେ । ଭଜୁଛୁଁ ଆମ୍ଭେ ଏ ସଂସାରେ ॥ ୬୪
୨୩ ଯେ ଜଳମୟ ଗଙ୍ଗା ଆଦି । ତୀର୍ଥରୂପେ କି ସେ ଅସିଦ୍ଧି ॥ ୬୫
ମୃତ୍ତିକା-ଶିଳାମୟ ଯେହି । ଦେବତା ନୁହନ୍ତି କି ସେହି ॥ ୬୬
ହେଲେହେଁ ସେମାନେ ବହୁତ । କାଳରେ କରନ୍ତି କୃତାର୍ଥ ॥ ୬୭
ଦର୍ଶନମାତ୍ରେ ପ୍ରାଣୀଙ୍କର । ପାତକମାନ ତୁମ୍ଭେ ହର ॥ ୬୮
୨୪ ପର୍ଯ୍ୟାଲୋଚନ ଅଧ୍ୟୟନ । ସଂଯମ ଆତ୍ମସମାଧାନ[୧] ॥ ୬୯
[୨]ତେଣେ ଧରିଛନ୍ତି ଆମ୍ଭର । ଯେ ତ୍ରୟୀମୟ କଳେବର ॥ ୭୦
ସେ ଦ୍ୱିଜମାନଙ୍କୁ ବନ୍ଦନ । କରୁଛୁଁ ଆମ୍ଭେ ପ୍ରତିଦିନ ॥ ୭୧
୨୫ ମହାପାତକୀ ଜନ ଯେହି । ଅଥବା ଅନ୍ତ୍ୟଜ ଜାତି ହିଁ ॥ ୭୨
ତୁମ୍ଭ ଶ୍ରବଣ ଦରଶନେ । ପବିତ୍ର ହୁଅନ୍ତି ସେମାନେ ॥ ୭୩
ସଂଭାଷଣାଦିରେ ପବିତ୍ର । ହେବାର କି ଅବା ବିଚିତ୍ର ॥ ୭୪

ଶ୍ରୀସୂତ ଉବାଚ

୨୬ କର୍ଣ୍ଣଯୁଗକୁ ସୁଧାମତ[୩] । ଯେ ଧର୍ମରହସ୍ୟଯୁକତ ॥ ୭୫
ଏରୂପେ ଶିବବାକ୍ୟ ଋଷି । ଶୁଣନ୍ତେ ନ ହୋଇଲେ ତୋଷୀ ॥ ୭୬
୨୭ ସେ ଋଷି ବିଷ୍ଣୁର ମାୟାଏ । ଭ୍ରମିଲେ ଚିରକାଳଯାଏ ॥ ୭୭
ସେ ଘେନି ଅତିଶୟ ହୋଇ । କୃଶଭାବକୁ ଥିଲେ ପାଇ ॥ ୭୮
ଶିବବଚନାମୃତେ ପୁଣ । ଧ୍ୱସ୍ତ ହେଲା ଯା' କ୍ଳେଶଗଣ ॥ ୭୯
ସେ ଋଷି ଏରୂପେ ଶିବଙ୍କୁ । କହିଲେ ବଚନମାନଙ୍କୁ ॥ ୮୦

ଶ୍ରୀମାର୍କଣ୍ଡେୟ ଉବାଚ

୨୮ ଅହୋ ଏ ଲୀଳା ଈଶ୍ୱରର । ତର୍କିତ ନୋହେ ପ୍ରାଣୀଙ୍କର ॥ ୮୧
ହୋଇଣ ଜଗତ-ଈଶ୍ୱର । ନିଜ-ନିୟମ୍ୟ[୪] ପ୍ରାଣୀଙ୍କର ॥ ୮୨
ଯାହା ସେ କରନ୍ତି ବନ୍ଦନ । ଅଥବା ଆପଣେ ସ୍ତବନ ॥ ୮୩
୨୯ ପ୍ରବକ୍ତା ହେଲେହେଁ ଧର୍ମର । ଘେନାଇମାକୁ ଧର୍ମସାର ॥ ୮୪
ଯେ ଆଚରିତ ପ୍ରାଣିଙ୍କର । ସେ ଧର୍ମ କରନ୍ତି ଆଚର ॥ ୮୫
ସେ ଧର୍ମ ଆଚରନ୍ତେ ଆନ । କରନ୍ତି ତା' ଅନୁମୋଦନ ॥ ୮୬

୧. ଚିତ୍ତର ଏକାଗ୍ରତା । ୨. ତେଣେ = ତପସ୍ୟା, ଅଧ୍ୟୟନ, ସଂଯମ ଓ ଚିତ୍ତର ଏକାଗ୍ରତାଦ୍ୱାରା ।
୩. ସୁଧାବତ । ୪. ନିଜନିୟମଦ୍ୱାରା ବାଧ୍ୟ ।

| | | | | |
|---|---|---|---|---|
| | ନାନାପ୍ରକାରେ ସ୍ତୁତିମାନ | । କରନ୍ତି ତହିଁକି ବିଧାନ | ।। | ୮୭ |
| ୩୦ | ସ୍ୱମାୟାମୟ ବୃତ୍ତି ଯାହି | । ସେ ଯଉଁ ବନ୍ଦନାଦି ତହିଁ | ।। | ୮୮ |
| | ଏତେକେ ଭଗବାନଙ୍କର | । ଦୋଷ ନୁହଇ ମହିମାର | ।। | ୮୯ |
| | ଯେସନେ ମାୟାବୀ ଜନର | । କୁହକ ନୋହେ ଦୋଷକର | ।। | ୯୦ |
| ୩୧ | ଏ ବିଶ୍ୱ ସର୍ଜଣ ମନରେ | । ଆପଣେ ଯେ ପଶି ତହିଁରେ | ।। | ୯୧ |
| | [1]କରନ୍ତା ଗୁଣମାନଙ୍କେ ହିଁ | । କର୍ତ୍ତାପରାଏ ଆଭାସଇ | ।। | ୯୨ |
| | ଯେ ଲୋକ ସ୍ୱପ୍ନ ଦେଖୁଥାଇ | । ସେ ଯେହ୍ନେ ଅଭିମାନେ ତହିଁ | ।। | ୯୩ |
| ୩୨ | ଗୁଣନିୟନ୍ତା ଯେ ତ୍ରିଗୁଣ | । କେବଳ ଅଦ୍ୱିତୀୟ ପୁଣ | ।। | ୯୪ |
| | ଯେ ବ୍ରହ୍ମମୂର୍ତ୍ତି ଭଗବାନ | । ଯେ ଗୁରୁ ତାଙ୍କୁ ମୋ' ବନ୍ଦନ | ।। | ୯୫ |
| ୩୩ | ହେ ଭୂମା ! ଦରଶନ ଯାର | । ଅଟଇ ସବୁଠାରୁ ସାର | ।। | ୯୬ |
| | ସେ ତୁମ୍ଭେ, ତୁମ୍ଭଠାରୁ ଆନ | । କି ବର କରିବି ପ୍ରାର୍ଥନ | ।। | ୯୭ |
| | ଯା' ଦରଶନୁଁ ହୋଏ ଜନ | । ସକଳ-ଆନନ୍ଦନିଧାନ | ।। | ୯୮ |
| | ସେ ପୁଣ ଇଚ୍ଛା-ଅନୁସାରେ | । ସର୍ବ ଆନନ୍ଦ ଲାଭ କରେ | ।। | ୯୯ |
| ୩୪ | ତୁମ୍ଭେ ଯେ ପୂର୍ଣ୍ଣ କାମଦାୟୀ | । ତୁମ୍ଭ ଠାବରୁ ତଥାପି ହି | ।। | ୧୦୦ |
| | ମାଗୁଛି ଏକମାତ୍ର ବର | । ଅଚଳା ଭକ୍ତି ବିଷ୍ଣୁଠାର | ।। | ୧୦୧ |
| | ଆବର ବୈଷ୍ଣବଙ୍କ ଠାରେ | । ତୁମ୍ଭ ଠାରେ ହେଁ ସେ ପ୍ରକାରେ | ।। | ୧୦୨ |

ଶ୍ରସୂତ ଉବାଚ

| | | | | |
|---|---|---|---|---|
| ୩୫ | ଏରୂପେ ମୁନିରେ ପୂଜିତ | । ହୋଇଣ ସୂକ୍ତବାକ୍ୟେ ସ୍ତୁତ | ।। | ୧୦୩ |
| | ଋଷିଙ୍କି କହିଲେ ଶଙ୍କର | । ପାର୍ବତୀ କରନ୍ତେ ସ୍ୱୀକାର | ।। | ୧୦୪ |
| ୩୬ | ହେ ଋଷି ସର୍ବକାମମାନ | । କଳ୍ପାନ୍ତଯାଏ ଯଶ ପୁଣ୍ୟ | ।। | ୧୦୫ |
| | ଜରାମରଣ ବେନିଙ୍କର | । ଅଭାବ ହୋଉ ତୋହଠାର | ।। | ୧୦୬ |
| | ଯେ ଅଧୋକ୍ଷଜ ଭଗବାନ | । ଯେଣୁ ତୁ ତା'ଠି ଭକ୍ତିମାନ | ।। | ୧୦୭ |
| ୩୭ | ହେ ବିପ୍ର ! ତ୍ରିକାଳସ୍ଥ ଜ୍ଞାନ | । ବିରକ୍ତି ସହିତ ବିଜ୍ଞାନ | ।। | ୧୦୮ |
| | ଯେ ଖ୍ୟାତ ପୁରାଣରୂପରେ | । ଆଚାର୍ଯ୍ୟଭାବ ହିଁ ତହିଁରେ | ।। | ୧୦୯ |
| | ତୁ ବ୍ରହ୍ମବର୍ଚ୍ଚସ୍ୱୀ ତୋହର | । ଏମାନ ହୁଅନ୍ତୁ ସତ୍ୱର | ।। | ୧୧୦ |

ଶ୍ରୀସୂତ ଉବାଚ

| | | | | |
|---|---|---|---|---|
| ୩୮ | ମୁନିଙ୍କି ଏ ରୂପେ ସେ ବର | । ଦେଇ ତ୍ରିଲୋଚନ ଈଶ୍ୱର | ।। | ୧୧୧ |
| | ଋଷି ଯା' କଲେ ଅନୁଭବ | । ବିଷ୍ଣୁଙ୍କ ମାୟାର ବୈଭବ | ।। | ୧୧୨ |
| | ତପ ଆଦି କର୍ମ ତାଙ୍କର | । ଦେବୀଙ୍କି କହନ୍ତେ ଆବର | ।। | ୧୧୩ |
| | ଚଳିଲେ ଆପଣା ଭବନ | । ତହୁଁ ଶଙ୍କର ଭଗବାନ | ।। | ୧୧୪ |
| ୩୯ | ମହିମା ମହତଯୋଗର | । ଲଭିଲେ ସେ ଭାର୍ଗବବର | ।। | ୧୧୫ |

---
୧. କରୁଥିବା ।

କୃଷ୍ଣେ ଏକାନ୍ତ ଭକ୍ତ ହୋଇ । ଭ୍ରମନ୍ତି ନିଶ୍ଚେ ଅଦ୍ୟାପି ହି ॥ ୧୧୬
୪୦ ଭଗବାନଙ୍କ ବିରଚିତ । ମାୟାବିଭୂତି ଯେ ଅଦ୍‌ଭୁତ ॥ ୧୧୭
ସୁମତି ମାର୍କଣ୍ଡେୟ ଋଷି । ଯା’ ଅନୁଭବିଲେ ବିଶେଷି ॥ ୧୧୮
ତୁମ୍ଭରି ଆଗରେ ଏମାନ । କଲଇଁ ମୁଁ ଅନୁବର୍ଣ୍ଣନ ॥ ୧୧୯
୪୧ ସଂସାର ଯେହୁ ପ୍ରାଣିଙ୍କର । ମାୟା ସେ ଶ୍ରୀଭଗବାନର ॥ ୧୨୦
ତତ୍ତ୍ୱଟି ନ ଜାଣନ୍ତି ଯେହି । ଏମନ୍ତ ପ୍ରକାରେ ସେ କହି ॥ ୧୨୧
ଦୈବ ସହସ୍ରଯୁଗ ଦୁଇ । ମାନରେ ପୁନଃପୁନ ହୋଇ ॥ ୧୨୨
ପରିବର୍ତ୍ତନ ବହୁଥର । ଏରୂପେ ହେଲା ତାହାଙ୍କର ॥ ୧୨୩
ଋଷି ଯା’ କଲେ ଅନୁଭବ । ବିଷ୍ଣୁଙ୍କ ମାୟାର ବୈଭବ ॥ ୧୨୪
ସେ ଅଟେ ନାନା କଳ୍ପାକାର । ଈଶ୍ୱରେଚ୍ଛାରୁ ଋଷିଙ୍କର ॥ ୧୨୫
ଆକସ୍ମିକ ତା’ ହେଲା ପୁଣ । ସେ ନୋହେ ସର୍ବସାଧାରଣ ॥ ୧୨୬
ମାୟା-ଶିଶୁର ଶ୍ୱାସୋଚ୍ଛ୍ୱାସେ । ତାହାରି ଉଦରପ୍ରବେଶେ ॥ ୧୨୭
ନିର୍ଗମେ ସପ୍ତବାର ତହିଁ । ସେ କ୍ଷଣ ସପ୍ତକଳ୍ପ ହୋଇ ॥ ୧୨୮
ଏମନ୍ତ ବୋଲନ୍ତି ପଣ୍ଡିତ । ସେ ନୋହେ ଆନ-ଅନୁଭୂତ ॥ ୧୨୯
୪୨ କୃଷ୍ଣ-ଅନୁଭାବେ ଭାବିତ । ହେ ଭୃଗୁବର୍ଯ୍ୟ ଏ ବର୍ଣ୍ଣିତ ॥ ୧୩୦
ଯେ ବେନି ଶୁଣାନ୍ତି ଶୁଣନ୍ତି । ସେ ବେନି ପ୍ରାପତ ନୁହନ୍ତି ॥ ୧୩୧
ଏ କର୍ମବାସନାରଚିତ । ସଂସାରଚକ୍ର କଦାଚିତ ॥ ୧୩୨
କୃଷ୍ଣଚରଣପଦ୍ମଧ୍ୟାନେ । ହରଷ ଦୀନବନ୍ଧୁ ମନେ ॥ ୧୩୩
ବୈଷ୍ଣବ ଜୟରାମ ଚିତ୍ତ । ସନ୍ତୋଷ ପଢ଼ି ଭାଗବତ ॥ ୧୩୪

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଶ୍ରୀମାର୍କଣ୍ଡେୟସ୍ୟ ବରଲାଭୋ
ନାମ ଦଶମୋଽଧ୍ୟାୟଃ ॥

## ଏକାଦଶ ଅଧ୍ୟାୟ

ଏକାଦଶେ ତୁ ପୂଜାର୍ଥଂ ମହାପୁରୁଷବର୍ଣ୍ଣନମ୍ ।
ରବେର୍ବ୍ୟୂହସ୍ୟ ଚାଖ୍ୟାନଂ ପ୍ରତିମାସଂ ପୃଥକ୍ ପୃଥକ୍ ॥ ୧
ଯେନାମର୍ତ୍ତ୍ୟତ୍ୱମାପନ୍ନୋ ମର୍ତ୍ତ୍ୟୋଽସୌ ଭାର୍ଗବୋତ୍ତମଃ ।
ତଂ ପୃଚ୍ଛତି କ୍ରିୟାଯୋଗଂ ସାଙ୍ଗୋପାଙ୍ଗାଦିକଳ୍ପିତମ୍ ॥ ୨

ଶ୍ରୀଶୌନକ ଉବାଚ

୧ ବହୁତ ଜାଣନ୍ତି ଯେ ନର । ତୁମ୍ଭେ ତହିଁରେ ଅଟ ବର ॥ ୧
ଯେଣୁ ତୁମ୍ଭେ ହେ ଭାଗବତ । ଜାଣ ସମସ୍ତ ତନ୍ତ୍ରତତ୍ତ୍ୱ ॥ ୨

ଆମ୍ଭେ ଏ ସକାଶୁଁ ତୁମ୍ଭଙ୍କୁ । ପଚାରୁଅଛୁଁ ଏ ଅର୍ଥକୁ ॥
୨ ଶ୍ରୀପତି ଯେ ଚୈତନ୍ୟଘନ । ତାଙ୍କର ଯଉଁ ଉପାସନ ॥
ତହିଁ ତାନ୍ତ୍ରିକେ ଯେ ପ୍ରକାରେ । କଳ୍ପନ୍ତି ଯେବଣ ତତ୍ତ୍ୱରେ ॥
[1]ପାଦାଦି ଗରୁଡ଼ ଆଦିଙ୍କି । ଆୟୁଧ ସେ କୌସ୍ତୁଭାଦିଙ୍କି ॥
୩ କ୍ରିୟାଯୋଗ ଏ ବୁଝିବାକୁ । ଇଚ୍ଛା ଯେ କରୁଛୁ, ଆମ୍ଭଙ୍କୁ ॥
ଏ କଥା କରସି ବର୍ଣ୍ଣନ । ତୁମ୍ଭର ହଉ ଶୁଭମାନ ॥
ଯେବଣ କ୍ରିୟାଯୋଗ ସେବି । ମର୍ତ୍ତ୍ୟ ଅମର୍ତ୍ତ୍ୟଭାବ ଲଭି[2] ॥

ଶ୍ରୀସୂତ ଉବାଚ

୪ ଗୁରୁଙ୍କୁ କରି ନମସ୍କାର । କହିବି ବିଭୂତି ବିଷ୍ଣୁର ॥
ବ୍ରହ୍ମାଦି ଆଚାର୍ଯ୍ୟେ ବେଦରେ । କହିଅଛନ୍ତି ଯା' ତନ୍ତ୍ରରେ ॥
୫ ପ୍ରକୃତି ମହତ୍ ଅହଂକାର । ପଞ୍ଚ ତନ୍ମାତ୍ର ସୂତ୍ର ଆର ॥
ଏ ନବତତ୍ତ୍ୱରେ ନିର୍ମିତ । ବିକାର ବିରାଟ ବିଖ୍ୟାତ ॥
ଚେତନାଧିଷ୍ଠିତ ସେ ଯହିଁ । ଭୁବନତ୍ରିତୟ ଦିଶଇ ॥
୬ ସେ ବଇରାଜ ପୁରୁଷର । ସଂବନ୍ଧି ସ୍ୱରୂପ ଏ ତାର ॥
୮ ପ୍ରଭୁର ପାଦବେନି ମହୀ । ସ୍ୱର୍ଗ ଉତ୍ତମ-ଅଙ୍ଗ ହୋଇ ॥
ଆକାଶ ଅଟେ ତାର ନାଭି । ନୟନବେନି ତାର ରବି ॥
ନାସିକାବେନି ସମୀରଣ । ଦିଗେ ତାହାର ବେନି କର୍ଣ୍ଣ ॥
ପ୍ରଭୁର ଶିଶ୍ନ ପ୍ରଜାପତି । ମୃତ୍ୟୁ ଅପାନ[3] ହୋଇ ଖ୍ୟାତି ॥
ଲୋକପାଳେ ତା' ବାହୁମାନ । ଚନ୍ଦ୍ରମା ଅଟେ ତାର ମନ ॥
ବେନି ଭ୍ରୂଲତା ଯମ ତାର । ଯେ ଲଜ୍ଜା ସେ ଓଷ୍ଠ ଉତ୍ତର ॥
ଲୋଭ ଅଧର ଜ୍ୟୋତ୍ସ୍ନା ଦନ୍ତ । ଭ୍ରମ ତାହାର ସ୍ମିତ ଖ୍ୟାତ ॥
ବୃକ୍ଷମାନେ ରୋମ ଭୂମାର । ମେଘେ କେଶ ସେ ପୁରୁଷର ॥
୯ ପରିଣାମରେ ଏ ପ୍ରାକୃତ । ପୁରୁଷ ଅଟଇ ଯାବତ ॥
ସପ୍ତବିତସ୍ତି-ପ୍ରମାଣରେ । ଯେତେ ଅବୟବ ସଂସ୍ଥାରେ ॥
ଏ ମହାପୁରୁଷ ତାବତ । ଲୋକସଂସ୍ଥାରେ ପରିମିତ ॥
୧୦ କୌସ୍ତୁଭବ୍ୟାଜେ ନିଜଜ୍ୟୋତି । ସେ ଅଜ ପ୍ରଭୁ ଧରିଛନ୍ତି ॥
ବ୍ୟାପିତ ତା' ପ୍ରଭାକୁ ଉରେ । ଧରେ ସେ ଶ୍ରୀବତ୍ସରୂପରେ ॥
୧୧ ଯେ ନିଜ ମାୟା ଗୁଣମୟୀ । ସେ ବନମାଳା ନାମ ହୋଇ ॥
ଧରିଅଛନ୍ତି ତାକୁ ଉରେ । [4]ପ୍ରଣବେ ବ୍ରହ୍ମସୂତ୍ରାକାରେ ॥

---

୧. ପାଦାଦି ଅଙ୍ଗ, ଗରୁଡ଼ାଦି ଉପାଙ୍ଗ, ସୁଦର୍ଶନାଦି ଆୟୁଧ ଓ କୌସ୍ତୁଭାଦି ଆଭରଣ କଳ୍ପନାକୁ କ୍ରିୟାଯୋଗ କୁହାଯାଏ ।

୨. ଲଭେ । ୩. ପାୟୁ । ୪. ପ୍ରଣବକୁ ପଇତାରୂପେ ଧରିଛନ୍ତି ।

| | | | | | |
|---|---|---|---|---|---|
| | ଛନ୍ଦସ୍ୱରୂପ ପୀତବାସ | । | ଧରିଅଛନ୍ତି କଟିଦେଶ | ।। | ୩୧ |
| ୧୨ | ସାଂଖ୍ୟ-ଯୋଗ ବେନିକି ଧରେ | । | ମକରକୁଣ୍ଡଳ-ଆକାରେ | ।। | ୩୨ |
| | [1]ସମସ୍ତ ଲୋକରେ ବନ୍ଦିତ | । | ବ୍ରହ୍ମାର ପଦ ଯେ ବିଦିତ | ।। | ୩୩ |
| | ତାକୁ ମଉଳିରୂପ କରି | । | ଧରିଅଛନ୍ତି ସ୍ୱୟେଂ ହରି | ।। | ୩୪ |
| ୧୩ | ଯେ ପୁଣ ଅଟଇ ପ୍ରଧାନ | । | ଅନନ୍ତରୂପୀ ସେ ଆସନ | ।। | ୩୫ |
| | ତାହାଙ୍କୁ କରି ଅଧିଷ୍ଠାନ | । | ବହିଅଛନ୍ତି ଭଗବାନ | ।। | ୩୬ |
| | ଯେ ବଇରାଗ୍ୟ ଧର୍ମ ଜ୍ଞାନ | । | ଐଶ୍ୱର୍ଯ୍ୟ ଅଧର୍ମ ଅଜ୍ଞାନ | ।। | ୩୭ |
| | ଯେ ଅନୈଶ୍ୱର୍ଯ୍ୟ ଅବୈରାଗ୍ୟ | । | ଏମାନଙ୍କରେ ଯା' ସଂଯୋଗ | ।। | ୩୮ |
| | ସେ ସତ୍ତ୍ୱଗୁଣମୟ ହୋଇ | । | ଆସନ ପଦ୍ମ ନାମ ବହି | ।। | ୩୯ |
| ୧୪ | ଯେ ଓଜ,-ସହ-ବଳ ଯୁତ | । | ସେ ଗଦା ଅଟେ ପ୍ରାଣତତ୍ତ୍ୱ | ।। | ୪୦ |
| | ଯେ ଜଳତତ୍ତ୍ୱ ଶଙ୍ଖବର | । | ଯେ ଚକ୍ର ସେ ତତ୍ତ୍ୱ ତେଜର | ।। | ୪୧ |
| ୧୫ | ନଭସଂନିଭ କର-ଅସି | । | ସେ ନଭତତ୍ତ୍ୱ ହିଁ ପ୍ରକାଶି | ।। | ୪୨ |
| | ଫଳକ ଯେ ତମସ୍ୱରୂପ | । | ଯେ ଶାର୍ଙ୍ଗଧନୁ କାଳରୂପ | ।। | ୪୩ |
| | ତୂଣୀର କର୍ମମୟ ଯେହି | । | ସେମାନ ନିଜ କରେ ବହି | ।। | ୪୪ |
| ୧୬ | ଇନ୍ଦ୍ରିୟମାନେ ଯାହା ଶର | । | ଯେ ମନ କ୍ରିୟାଶକ୍ତିଧର | ।। | ୪୫ |
| | ସେ ଅଟେ ଏହାଙ୍କର ରଥ | । | ଯେ ପଞ୍ଚତନ୍ମାତ୍ର ବିଖ୍ୟାତ | ।। | ୪୬ |
| | ସେ ବାହ୍ୟ ପ୍ରକାଶ ଆକାର | । | ଅଟଇ ସେ ରଥବରର | ।। | ୪୭ |
| | ଅଭୟବର ମୁଦ୍ରାକାରେ | । | ଧରିଅଛନ୍ତି ନିଜ କରେ | ।। | ୪୮ |
| | ପଣ୍ଡିତ ଜନେ ଯେ ଅଟନ୍ତି | । | ଏ ରୂପେ ସେ କହିଅଛନ୍ତି | ।। | ୪୯ |
| ୧୭ | ଯେ ରବିମଣ୍ଡଳ ବିଦିତ | । | ସେ ପୂଜାଭୂମିରୂପେ ଖ୍ୟାତ | ।। | ୫୦ |
| | ଯେ ମନ୍ତ୍ରଦୀକ୍ଷା ଗୁରୁକୃତା | । | ଆତ୍ମାର ସେ ପୂଜାଯୋଗ୍ୟତା | ।। | ୫୧ |
| | ଯେ ପରିଚର୍ଯା ଶ୍ରୀହରିର | । | ସେ ପାପକ୍ଷୟ ଆପଣାର | ।। | ୫୨ |
| | ଏମନ୍ତ ରୂପରେ ନିୟତ | । | ଭାବନା କରୁଥିବ ଚିତ୍ତ | ।। | ୫୩ |
| ୧୮ | ଐଶ୍ୱର୍ଯ୍ୟ କୀର୍ତ୍ତି ବୀର୍ଯ୍ୟ ଜ୍ଞାନ | । | ଯେ ଲକ୍ଷ୍ମୀ ବଇରାଗ୍ୟ ପୁଣ | ।। | ୫୪ |
| | ଏ ଯଉଁ ଭଗ ଶବ୍ଦ-ଅର୍ଥ | । | ସେ ଲୀଳାକମଳ ବିଖ୍ୟାତ | ।। | ୫୫ |
| | ବହିଅଛନ୍ତି ଭଗବାନ | । | ଯେ ବେନି ଯଶ ଧର୍ମ ଆନ | ।। | ୫୬ |
| | ଚାମର ବ୍ୟଜନ ରୂପରେ | । | ଧରି ଅଛନ୍ତି ନିଜ କରେ[2] | ।। | ୫୭ |
| ୧୯ | ହେ ଦ୍ୱିଜେ ! ବଇକୁଣ୍ଠ ଯେହି | । | ଅକୁତୋଭୟ ଧାମ ସେହି | ।। | ୫୮ |
| | କରି ତାହାକୁ ଆତପତ୍ର | । | ଧରି ଅଛନ୍ତି ସେ ସନ୍ତତ | ।। | ୫୯ |
| | ତ୍ରିବେଦ ସୁପର୍ଣ୍ଣ ବିଖ୍ୟାତ | । | ବିଷ୍ଣୁଙ୍କୁ ବହିଛି ସାକ୍ଷାତ | ।। | ୬୦ |

୧. ମୂଳପାଠ - 'ସର୍ବଲୋକାଭୟଂକରମ୍' = ସମସ୍ତଲୋକର ଅଭୟପ୍ରଦ ।

୨. ନିରନ୍ତରେ (ବା ପାଠ) ।

୨୦ ସାକ୍ଷାତ ଆତ୍ମା ଯେ ଶ୍ରୀଧର । ଯେ ଭଗବତୀ ଲକ୍ଷ୍ମୀ ଆର ।। ୬୧
ଅନପାୟିନୀ[୧] ନିଜ ଶକ୍ତି । ଯେ ପୁଣ ପାର୍ଷଦାଧିପତି ।। ୬୨
ବିଷ୍ୱକସେନ[୨] ସେ ସାକ୍ଷାତ । ପଞ୍ଚରାତ୍ରାଦି ତନ୍ତ୍ରେ ଖ୍ୟାତ ।। ୬୩
ଯେ ଅଷ୍ଟ ଅଣିମାଦି ସିଦ୍ଧି । ହରିର ଦ୍ୱାରୀ ସେ ନନ୍ଦାଦି ।। ୬୪
୨୧ ସେ ବାସୁଦେବ ସଂକର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ।। ୬୫
ଏ ମୂର୍ତ୍ତିଭେଦରେ ଉପାସ୍ୟ । ଏକ ନାରାୟଣ ପୁରୁଷ ।। ୬୬
ହେ ବିପ୍ର ! ଏ ଚାରି ବ୍ୟୂହରେ । କଥିତ ଏମନ୍ତ ଲୋକରେ ।। ୬୭
୨୨ ଯେ ବାହ୍ୟ ଅର୍ଥ ଯେ ଇନ୍ଦ୍ରିୟ । ମନ ଅଜ୍ଞାନ ଯେ ଆଶୟ ।। ୬୮
ଏ ତିନି ସାକ୍ଷୀ ଯେହୁ ଜ୍ଞାନ । ଏଣେ କରି ସେ ଭଗବାନ ।। ୬୯
ବିଶ୍ୱ ତୈଜସ ଅଭିଧାନ । ପ୍ରାଜ୍ଞ, ତୁରୀୟସଂଜ୍ଞ ଆନ ।। ୭୦
ଏଣେ ସେ ବିଭାବିତ ହୋଇ । ଜାଗ୍ରତ ଆଦି ବୃତ୍ତି ତହିଁ ।। ୭୧
୨୩ ଅଙ୍ଗ ଉପାଙ୍ଗ ଯେ ଆୟୁଧ । ଭୂଷଣମାନେ ଯେ ପ୍ରସିଦ୍ଧ ।। ୭୨
ତେଣେ ଲକ୍ଷିତ ହୋଇ ହରି । ବାସୁଦେବଙ୍କୁ ଆଦି କରି ।। ୭୩
ଯେ ଚାରିମୂର୍ତ୍ତି ସେ ରୂପରେ । ବିଖ୍ୟାତ ହୋଇଣ ସଂସାରେ ।। ୭୪
ବିଶ୍ୱ ତୈଜସ ଆଦି ଚାରି[୩] । ତାହାଙ୍କୁ ସ୍ୱୟେଂ ଛନ୍ତି ଧରି ।। ୭୫
ବିଶ୍ୱ ତୈଜସ ଆଦି ଭାବ । ଘେନିଲେହେଁ ସେ ନୋହେ ଜୀବ ।। ୭୬
ଯେଣୁ ଅଟନ୍ତି ଭଗବାନ । ଈଶ୍ୱର ସକଳପ୍ରଧାନ ।। ୭୭
୨୪ ହେ ଦ୍ୱିଜଶ୍ରେଷ୍ଠ ସେ ଈଶ୍ୱର । କାରଣ ଅଟନ୍ତି ବେଦର ।। ୭୮
ସ୍ୱୟେଂ ପ୍ରକାଶ ସବୁଠାରେ । ସଂପୂର୍ଣ୍ଣ ନିଜ ମହିମାରେ ।। ୭୯
ଏ ବିଶ୍ୱ ଆପଣା ମାୟାରେ । ସର୍ଜଇ ପାଳଇ ସଂହରେ ।। ୮୦
ବ୍ରହ୍ମାଦିନାମରେ ଆବୃତ । ପ୍ରାୟେକ ଶାସ୍ତ୍ରରେ ନିରୁକ୍ତ ।। ୮୧
ବାସ୍ତବ ଅନାବୃତଜ୍ଞାନ । କାହିଁରୁ ନୁହଇ ନା ଭିନ୍ନ ।। ୮୨
ତେଣୁ ସର୍ଜନା-ଆଦିପର । ଯେତେକ ବାକ୍ୟ ଏ ସଂସାର ।। ୮୩
ତେଣେ ତାହାଙ୍କୁ ଆତ୍ମଭାବେ । ପ୍ରତିପାଦନ୍ତି ସର୍ବଠାବେ ।। ୮୪
୨୫ ହେ କୃଷ୍ଣ ! ହେ ଅର୍ଜୁନମିତ୍ର । ହେ ବୃଷ୍ଣିଶ୍ରେଷ୍ଠ ! ଯେ ଦୁର୍ବୃତ୍ତ ।। ୮୫
ଅବନିଦ୍ରୋହୀ କ୍ଷତ୍ରିବଂଶ । ବିନାଶକରଣେ ହୁତାଶ ।। ୮୬
ଅକ୍ଷୀଣବୀର୍ଯ୍ୟ ! ହେ ଗୋବିନ୍ଦ । ଯେ ଭୃତ୍ୟ ଯେ ବା ଗୋପୀବୃନ୍ଦ ।। ୮୭
ତେଣେ ପ୍ରଗୀତତୀର୍ଥଶ୍ରବ । ଶ୍ରବଣମଙ୍ଗଳ ! ମାଧବ ।। ୮୮
ଯେ ଆମ୍ଭେ ସେବକ ତୁମ୍ଭର । ଆମ୍ଭମାନଙ୍କୁ ରକ୍ଷା କର ।। ୮୯
୨୬ ପ୍ରଭାତକାଳରେ ଉଠିଣ । ଏ ମହାପୁରୁଷଲକ୍ଷଣ ।। ୯୦
ସଂଯତ ହୋଇ କୃଷ୍ଣେ ମନ । ଦେଇ ଜପିଣ ଯଉଁ ଜନ ।। ୯୧

---

୧. ଅବିନାଶିନୀ ।　୨. ବିଷ୍ୱଚୀ (ବ୍ୟାପିନୀ) ସେନା ଯାହାଙ୍କର ସେ (ବିଷ୍ଣୁ) ।
୩. ବିଶ୍ୱ, ତୈଜସ, ପ୍ରାଜ୍ଞ ଓ ତୁରୀୟ ।

| | | | | | |
|---|---|---|---|---|---|
| | ଏହି କ୍ରମରେ ବର୍ତ୍ତିଥାଇ | । | ସେ ହୃଦେ ବ୍ରହ୍ମକୁ ଦେଖଇ | ॥ | ୯୨ |

ଶ୍ରୀଶୌନକ ଉବାଚ

| | | | | | |
|---|---|---|---|---|---|
| ୨୭ | ଶୁଣନ୍ତେ ଯାହା ପରୀକ୍ଷିତ | । | କହିଲେ ଶୁକ ଭଗବନ୍ତ | ॥ | ୯୩ |
| | ସୂର୍ଯ୍ୟର ସପ୍ତଗଣ ବସେ | । | ନାନା ପ୍ରକାରେ ମାସେ ମାସେ | ॥ | ୯୪ |
| ୨୮ | ସେ ଅଧୀଶ୍ୱରମାନଙ୍କରେ | । | ନିଯୁକ୍ତ ହୁଅନ୍ତି କ୍ରମରେ | ॥ | ୯୫ |
| | ସେମାନଙ୍କର କି ବା ନାମ | । | କି ବା ସେମାନଙ୍କର କର୍ମ | ॥ | ୯୬ |
| | ସୂର୍ଯ୍ୟାତ୍ମା ହରିର ସେ ବ୍ୟୂହ | । | ଶ୍ରଦ୍ଧା କରୁଛୁଁ ଆମ୍ଭେ କୁହ | ॥ | ୯୭ |

ଶ୍ରୀସୂତ ଉବାଚ

| | | | | | |
|---|---|---|---|---|---|
| ୨୯ | ସେ ଆତ୍ମା ସର୍ବ ପ୍ରାଣିଙ୍କର | । | ମାୟାରେ କରି ସେ ବିଷ୍ଣୁର | ॥ | ୯୮ |
| | ଲୋକଯାତ୍ରାର ପ୍ରବର୍ତ୍ତକ | । | ସାକ୍ଷାତ ଏ ଛାୟାନାୟକ[୧] | ॥ | ୯୯ |
| | ଲୋକରେ ନିର୍ଗତ ହୋଇଣ | । | ଯାନ୍ତି ଆସନ୍ତି ପୁଣ ପୁଣ | ॥ | ୧୦୦ |
| ୩୦ | ଏକ ହୋଇ ଏ ଦିବାକର | । | [୨]ଆତ୍ମା ସକଳ ପ୍ରାଣୀଙ୍କର | ॥ | ୧୦୧ |
| | ଯେ ସୃଷ୍ଟିକର୍ତ୍ତା ଅଟେ ହରି | । | ସେହିଟି ସୂର୍ଯ୍ୟରୂପ ଧରି | ॥ | ୧୦୨ |
| | ବେଦ-ଉକତ କ୍ରିୟା ଯେତେ | । | ତାଙ୍କର ମୂଳ ଏ ଜଗତେ | ॥ | ୧୦୩ |
| | ନାନାରୂପରେ ସେ କାରଣେ | । | କହିଅଛନ୍ତି ଋଷିଗଣେ | ॥ | ୧୦୪ |
| ୩୧ | ଯେ ପ୍ରାତ ଆଦି କାଳମାନ | । | ସମ ଆଦି ଯେ ଦେଶ ପୁଣ | ॥ | ୧୦୫ |
| | ଯେ କ୍ରିୟା ଅଟେ ଅନୁଷ୍ଠାନ | । | ଯେ କର୍ତ୍ତା ବ୍ରାହ୍ମଣାଦି ଘେନ | ॥ | ୧୦୬ |
| | କରଣ ଯେ ସ୍ରୁଚ ସ୍ରୁବାଦି | । | କାର୍ଯ୍ୟ ଯେ ଅଟଇ ଯାଗାଦି | ॥ | ୧୦୭ |
| | ମନ୍ତ୍ରାଦି ଆଗମ ଯେ ପୁଣ | । | ଯେ ଦ୍ରବ୍ୟ ବ୍ରୀହି ଆଦି ଆନ | ॥ | ୧୦୮ |
| | ଫଳ ସ୍ୱର୍ଗାଦି ଏ ରୂପରେ | । | ହରି ନବଧା ଅବିଦ୍ୟାରେ | ॥ | ୧୦୯ |
| ୩୨ | ଚୈତ୍ରାଦି ଦ୍ୱାଦଶ ମାସରେ | । | ବିଭିନ୍ନ ଦ୍ୱାଦଶ ଗଣରେ | ॥ | ୧୧୦ |
| | ଲୋକଯାତ୍ରାନିର୍ବାହପାଇଁ | । | ଚରନ୍ତି ନାନାରୂପ ହୋଇ | ॥ | ୧୧୧ |
| | ସାକ୍ଷାତ କାଳରୂପଧାରୀ | । | ସେହୁ ଭଗବାନ ଶ୍ରୀହରି | ॥ | ୧୧୨ |
| ୩୩ | ସେ ଧାତା ସୂର୍ଯ୍ୟ, କୃତସ୍ଥଳୀ | । | ଅପ୍‌ସରା, ହେତି ରକ୍ଷ[୩] ମିଳି | ॥ | ୧୧୩ |
| | ବାସୁକି ନାଗ ରଥକୃତ | । | ଯକ୍ଷ ଯେ ଋଷି ଯେ ପୁଲସ୍ତ୍ୟ | ॥ | ୧୧୪ |
| | ଗନ୍ଧର୍ବ ନାମ ତୁମ୍ବୁରୁ ହିଁ | । | ନିଅନ୍ତି ମଧୁମାସ ଏହି | ॥ | ୧୧୫ |
| ୩୪ | ଅର୍ଯ୍ୟମା ନାମ ଦିବାକର | । | ପୁଲହ ନାମ ଋଷିବର | ॥ | ୧୧୬ |
| | ପୁଞ୍ଜିକସ୍ଥଳୀ ନାମ ଖ୍ୟାତି | । | ଅପ୍‌ସରା, ରାକ୍ଷସ ପ୍ରହେତି | ॥ | ୧୧୭ |
| | ଅଥୌଜା ନାମେ ଯକ୍ଷ ଆର | । | ନାଗ ନାମରେ କଚ୍ଛନୀର | ॥ | ୧୧୮ |
| | ନାରଦ ଗନ୍ଧର୍ବ ଏତେକ | । | ନିଅନ୍ତି ମାସ ବଇଶାଖ | ॥ | ୧୧୯ |

୧. ଛାୟାନାୟକ = ସୂର୍ଯ୍ୟ । ୨. 'ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ' (ଶ୍ରୁତିଃ) । ୩. ରାକ୍ଷସ ।

୩୫ ମିତ୍ର ତପନ ଅତ୍ରି ଋଷି । ସେ ରଥସ୍ୱନ ଯକ୍ଷ ମିଶି ॥
ତକ୍ଷକ ପୌରୁଷେୟ ହୋଇ । ନାଗ ରାକ୍ଷସ କ୍ରମେ ଦୁଇ ॥
ମେନକା ଅପ୍‌ସରା ଗନ୍ଧର୍ବ । ହହା[1] ଏମାନେ ମିଶି ସର୍ବ ॥
ଏରୂପେ ସଂଯତ ହୋଇଣ । ନିଅନ୍ତି ଜ୍ୟେଷ୍ଠମାସ ପୁଣ ॥
୩୬ ବରୁଣ ନାମେ ଦିବାକର । ବସିଷ୍ଠ ଋଷି ଯେ ଆବର ॥
ରମ୍ଭା ଅପ୍‌ସରା ସହଜନ୍ୟ । ଯକ୍ଷ, ରାକ୍ଷସ ଚିତ୍ରସ୍ୱନ ॥
ହୁହୂ ଗନ୍ଧର୍ବ ଶୁକ୍ର ନାଗେ । ଆଷାଢ଼ ନିଅନ୍ତି ସଂଯୋଗେ ॥
୩୭ ଅଙ୍ଗିରା ଋଷି ଇନ୍ଦ୍ର ସୂର୍ଯ୍ୟ । ଯକ୍ଷ ଶ୍ରୋତା ରାକ୍ଷସ ବର୍ଯ୍ୟ ॥
ଗନ୍ଧର୍ବ ବିଶ୍ୱାବସୁ ଆର । ଯେ ଏଳାପତ୍ର ବିଷଧର ॥
ପ୍ରମ୍ଲୋଚା ଅପ୍‌ସରା ଯେ ପୁଣ । ଏମାନେ ନିଅନ୍ତି ଶ୍ରାବଣ ॥
୩୮ ଯେ ସୂର୍ଯ୍ୟ ନାମେ ବିବସ୍ୱାନ । ଗନ୍ଧର୍ବ ନାମେ ଉଗ୍ରସେନ ॥
ବ୍ୟାଘ୍ର ରାକ୍ଷସ ଆସାରଣ । ଯକ୍ଷ ସେ ଭୃଗୁ ଋଷି ପୁଣ ॥
ଅନୁମ୍ଲୋଚା ଅପ୍‌ସରା ଆର । ଯେ ଶଙ୍ଖପାଳ ନାଗବର ॥
ଭାଦ୍ରବ ମାସକୁ ଏମାନେ । ନିଅନ୍ତି ଥାଇ ରବିଯାନେ ॥
୩୯ ଯେ ସୂର୍ଯ୍ୟ ପୂଷା ନାମଧେୟ । ଯେ ନାଗବର ଧନଞ୍ଜୟ ॥
ଋଷି ଗୌତମ ଯେ ସୁରୁଚି । ଯକ୍ଷ ସେ ଅପ୍‌ସରା ଘୃତାଚୀ ॥
ସୁଷେଣ ଗନ୍ଧର୍ବ ରାକ୍ଷସ । [2]ବାତ ଏ ନିଏ ମାଘମାସ ॥
୪୦ ବର୍ଚା ରାକ୍ଷସ ଋତୁ ଯକ୍ଷ । ଯେ ସୂର୍ଯ୍ୟ ପର୍ଜନ୍ୟ ପ୍ରତ୍ୟକ୍ଷ ॥
ଅପ୍‌ସରା ସେନଜିତ ଆର । ଅଇରାବତ ନାଗବର ॥
ବିଶ୍ୱ ଗନ୍ଧର୍ବ ଭରଦ୍ୱାଜ । ଋଷି ଯେ ମିଶି ଏ ସମାଜ ॥
ଫାଲ୍‌ଗୁନ ମାସକୁ ଏମାନେ । ନିଅନ୍ତି ପ୍ରୟୋଗବିଧାନେ ॥
୪୧ ଗନ୍ଧର୍ବ ନାମେ ଋତସେନ । ଯେ ମହାଶଙ୍ଖ ନାଗ ଆନ ॥
କଶ୍ୟପ ଋଷି ତାର୍କ୍ଷ୍ୟ ଯକ୍ଷ । ବିଦ୍ୟୁତଶତ୍ରୁ ନାମେ ରକ୍ଷ ॥
ଅଂଶୁ ନାମ ସୂର୍ଯ୍ୟ ଉର୍ବଶୀ । ନାମରେ ଅପ୍‌ସରା ପ୍ରକାଶି ॥
ଏମାନେ ମାସ ମାର୍ଗଶିର । ନିଅନ୍ତି ହୋଇଣ ତତ୍‌ପର ॥
୪୨ ଯେ ଆୟୁ ଋଷି ଭଗ ସୂର୍ଯ୍ୟ । ଉର୍ଣ୍ଣ ଯକ୍ଷ ରାକ୍ଷସ ସ୍ଫୂର୍ଜ ॥
ଗନ୍ଧର୍ବ ଅରିଷ୍ଟନେମି ହିଁ । ଅପ୍‌ସରା ପୂର୍ବଚିତ୍ତି ଯେହି ॥
ଆବର ନାଗ କର୍କୋଟକ । ପୁଷ୍ୟକୁ ନିଅନ୍ତି ଏତେକ ॥

---

୧. ହାହା (ପାଠାନ୍ତର)
୨. କୂର୍ମପୁରାଣୋକ୍ତ ଆଦିତ୍ୟ-ଅନୁକ୍ରମ ଅନୁସାରେ 'ଭାଦ୍ର' ପରେ 'ମାଘ' ଆସେ । କିନ୍ତୁ ବିଷ୍ଣୁପୁରାଣରେ ଅବିକଳ ମାସକ୍ରମରେ ଅଛି । କ୍ୱଚିଦ୍ କଳ୍ପଭେଦରେ ମଧ୍ୟ ନାମର ଓଲଟପାଲଟ ହୁଏ । (ସ୍ୱାମୀ)

| | | | | |
|---|---|---|---|---|
| ୪୩ | ତ୍ୱଷ୍ଟା ତପନ କମ୍ବଳାଶ୍ୱ | । ନାଗ ବ୍ରହ୍ମାପେତ ରାକ୍ଷସ | ।। | ୧୪୮ |
| | ଅପ୍‌ସରା ତିଲୋତ୍ତମା ମିଶି | । ଯେ ଜମଦଗ୍ନି ନାମେ ଋଷି | ।। | ୧୪୯ |
| | ଗନ୍ଧର୍ବ ଧୃତରାଷ୍ଟ୍ର ଆର | । ଯେ ଶତଜିତ ଯକ୍ଷବର | ।। | ୧୫୦ |
| | ଆଶ୍ୱିନମାସକୁ ଏମାନେ | । ନିଅନ୍ତି ପ୍ରକାଶବିଧାନେ | ।। | ୧୫୧ |
| ୪୪ | ବିଷ୍ଣୁ ଆଦିତ୍ୟ ବିଶ୍ୱାମିତ୍ର | । ଋଷି ରାକ୍ଷସ ମଖାପେତ[୧] | ।। | ୧୫୨ |
| | ରମ୍ଭା ଅପ୍‌ସରା ସତ୍ୟଜିତ | । ଯକ୍ଷ ଯେ ଭୁବନବିଦିତ | ।। | ୧୫୩ |
| | ଯେ ନାଗ ନାମ ଅଶ୍ୱତର | । ଗନ୍ଧର୍ବ ସୂର୍ଯ୍ୟବର୍ଚ୍ଚା ଆର | ।। | ୧୫୪ |
| | କାର୍ତ୍ତିକମାସକୁ ଏମାନେ | । ନିଅନ୍ତି ପ୍ରୟୋଗବିଧାନେ | ।। | ୧୫୫ |
| ୪୫ | ବିଷ୍ଣୁ ଆଦିତ୍ୟ ଭଗବାନ | । ଯେ ତାଙ୍କ ଏ ବିଭୂତିମାନ | ।। | ୧୫୬ |
| | ଏହା ଯେ ଉଭୟ ସଂଧ୍ୟାରେ | । ସ୍ମରଣ କରୁଥାନ୍ତି ନରେ | ।। | ୧୫୭ |
| | ହରନ୍ତି ସେ ଦିନକୁ ଦିନ | । ଆପଣା କୃତ ପାପମାନ | ।। | ୧୫୮ |
| ୪୬ | ସେ ଦେବ ଦ୍ୱାଦଶ ମାସରେ | । ଗନ୍ଧର୍ବ ଆଦି ଛଅଙ୍କରେ | ।। | ୧୫୯ |
| | ସମସ୍ତ ଦିଗରେ ଭ୍ରମନ୍ତେ | । ପ୍ରାଣିମାନଙ୍କର ସଂତତେ | ।। | ୧୬୦ |
| | ଇହପରରେ ଶୁଭମତି | । ଯେ ଅଟେ ତାହା ବିସ୍ତାରନ୍ତି | ।। | ୧୬୧ |
| ୪୭ | ଦିବାକରର ପ୍ରକାଶକ | । ଯେ ବେଦ ସାମ ଯଜୁ ଋକ | ।। | ୧୬୨ |
| | ତେଣେ ଯାହାଙ୍କୁ ମୁନିଗଣେ | । ସ୍ତୁତି କରନ୍ତି କ୍ଷଣେ କ୍ଷଣେ | ।। | ୧୬୩ |
| | ଗନ୍ଧର୍ବେ ଗାୟନ କରନ୍ତି | । ଆଗେ ଅପ୍‌ସରାଏ ନାଚନ୍ତି | ।। | ୧୬୪ |
| ୪୮ | ରଥ ବାନ୍ଧନ୍ତି ଦୃଢ଼େ ନାଗେ | । ଯୁକ୍ତ କରନ୍ତି ଯକ୍ଷେ ଆଗେ | ।। | ୧୬୫ |
| | ବଳବତ୍ତର ଯେ ରାକ୍ଷସେ | । ରଥ ପେଲନ୍ତି ପୃଷ୍ଠଦେଶେ | ।। | ୧୬୬ |
| ୪୯ | ଷଷ୍ଟି ସହସ୍ର ବ୍ରହ୍ମଋଷି | । ନିର୍ମଳ ବାଳଖିଲ୍ୟ ବସି | ।। | ୧୬୭ |
| | ଆଗରେ ଅଭିମୁଖେ ଯାନ୍ତି | । ସୂର୍ଯ୍ୟଙ୍କୁ ସ୍ତୁତି କରୁଥାନ୍ତି | ।। | ୧୬୮ |
| ୫୦ | ଏ ରୂପେ ଅନାଦିନିଧନ | । ଈଶ୍ୱର ହରି ଭଗବାନ | ।। | ୧୬୯ |
| | ପ୍ରତି କଳ୍ପରେ ନିଜାତ୍ମାକୁ | । ବିଭଜି ରଖନ୍ତି ଲୋକଙ୍କୁ | ।। | ୧୭୦ |
| | ହରିଚରଣପଦ୍ମ ଚିନ୍ତି | । ହରଷ ଦୀନବନ୍ଧୁ ମତି | ।। | ୧୭୧ |
| | ବୈଷ୍ଣବ ଜୟରାମ ଦାସ | । ଯେ ରସେ ଅତ୍ୟନ୍ତ ଲାଳସ | ।। | ୧୭୨ |

ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଶ୍ରୀମଦାଦିତ୍ୟବ୍ୟୂହବିବରଣଂ
ନାମ ଏକାଦଶୋଽଧ୍ୟାୟଃ ।।

---

୧. ମଖାପେତ ନାମକ ରାକ୍ଷସ ।

ତଥା ଚ କୌର୍ମେ-

ଧାତାର୍ଯମା ଚ ମିତ୍ରଶ୍ଚ ବରୁଣଶ୍ଚେନ୍ଦ୍ର ଏବ ଚ ।
ବିବସ୍ୱାନଥ ପୂଷା ଚ ପର୍ଜନ୍ୟଶ୍ଚାଂଶୁରେବ ଚ ॥
ଭଗସ୍ତ୍ୱଷ୍ଟା ଚ ବିଷ୍ଣୁଶ୍ଚ ଆଦିତ୍ୟା ଦ୍ୱାଦଶ ସ୍ମୃତାଃ ॥

ପୁଲସ୍ତ୍ୟଃ ପୁଲହଶ୍ଚାତ୍ରିର୍ବସିଷ୍ଠୋଽଥାଙ୍ଗିରା ଭୃଗୁଃ ।
ଗୌତମୋଽଥ ଭରଦ୍ୱାଜଃ କଶ୍ୟପଃ କ୍ରତୁରେବ ଚ ॥
ଜମଦଗ୍ନିଃ କୌଶିକଶ୍ଚ ମୁନୟୋ ବ୍ରହ୍ମବାଦିନଃ ॥
ରଥକୃଚ୍ଛାପ୍ୟଥୌଜାଶ୍ଚ ଗ୍ରାମଣୀଃ ସୁରୁଚିସ୍ତଥା ।
ରଥଚିତ୍ରସ୍ୱନଃ ଶ୍ରୋତା ଅରୁଣଃ ସେନଜିତ୍ ତଥା ॥
ତାର୍କ୍ଷ୍ୟଶ୍ଚାରିଷ୍ଟନେମିଶ୍ଚ ଋତଜିତ୍ ସତ୍ୟଜିତ୍ ତଥା ॥ (ଏତେ ଯକ୍ଷାଃ)

ଅଥ ହେତିଃ ପ୍ରହେତିଶ୍ଚ ପୌରୁଷେୟୋ ବଧସ୍ତଥା ।
ବର୍ଯୋ ବ୍ୟାଘ୍ରସ୍ତଥାପଶ୍ଚ ବାୟୁର୍ବିଦ୍ୟୁତ୍ ଦିବାକରଃ ॥
ବ୍ରହ୍ମାପେତଶ୍ଚ ବିପ୍ରେନ୍ଦ୍ରା ଯଜ୍ଞାପେତଶ୍ଚ ରାକ୍ଷସାଃ ॥

ବାସୁକିଃ କଚ୍ଛନୀରଶ୍ଚ ତକ୍ଷକଃ ଶୁକ୍ର ଏବ ଚ ।
ଏଲାପତ୍ରଃ ଶଙ୍ଖପାଳସ୍ତଥୈରାବତସଂଜ୍ଞକଃ ॥
ଧନଞ୍ଜୟୋ ମହାପଦ୍ମସ୍ତଥା କର୍କୋଟକୋ ଦ୍ୱିଜାଃ ॥
କମ୍ବଲୋଽଶ୍ୱତରଶ୍ଚୈବ ବହନ୍ତ୍ୟେନଂ ଯଥାକ୍ରମମ୍ ॥

ତୁମ୍ବୁରୁର୍ନାରଦୋ ହାହା ହୂହୂର୍ବିଶ୍ୱାବସୁସ୍ତଥା ।
ଉଗ୍ରସେନୋ ବସୁରୁଚିର୍ବିଶ୍ୱାବସୁରଥାପରଃ ॥
ଚିତ୍ରସେନସ୍ତଥୋର୍ଣାୟୁର୍ଧୃତରାଷ୍ଟ୍ରୋ ଦ୍ୱିଜୋତ୍ତମାଃ ॥
ସୂର୍ଯବର୍ଚ୍ଚା ଦ୍ୱାଦଶୈତେ ଗନ୍ଧର୍ବା ଗାୟତାଂ ବରାଃ ॥

କୃତସ୍ଥଲ୍ୟପ୍ସରୋବର୍ଯା ତଥାନ୍ୟା ପୁଞ୍ଜିକସ୍ଥଲୀ ।
ମେନକା ସହଜନ୍ୟା ଚ ପ୍ରମ୍ଲୋଚା ଚ ଦ୍ୱିଜୋତ୍ତମାଃ ॥
ଅନୁମ୍ଲୋଚା ଘୃତାଚୀ ଚ ବିଶ୍ୱାଚୀ ଚୋର୍ବଶୀ ତଥା ।
ଅନ୍ୟା ଚ ପୂର୍ବଚିତ୍ତିଃ ସ୍ୟାଦନ୍ୟା ଚୈବ ତିଲୋତ୍ତମା ॥
ରମ୍ଭା ଚେତି ଦ୍ୱିଜଶ୍ରେଷ୍ଠାସ୍ତଥୈବାପ୍ସରସଃ ସ୍ମୃତାଃ ॥ (ସ୍ୱାମୀ)

## ଦ୍ୱାଦଶ ଅଧ୍ୟାୟ

ଦ୍ୱାଦଶେ ତୁ ପୁରାଣୋକ୍ତସର୍ବାର୍ଥାନୁକ୍ରମଃ କୃତଃ ।
ପ୍ରଥମସ୍କନ୍ଧମାରଭ୍ୟ ପ୍ରାଧାନ୍ୟେନ ସମାସତଃ ।। ୧

ଶ୍ରୀସୂତ ଉବାଚ

୧ ଯେ ହରିଭକତିଲକ୍ଷଣ । ଧର୍ମ ଏ ସଂସାରେ ପ୍ରମାଣ ।। ୧
ତାହାଙ୍କୁ ମୋର ନମସ୍କାର । ଯେ କୃଷ୍ଣ କର୍ତ୍ତା ଜଗତର ।। ୨
ତାହାଙ୍କୁ କରୁଛି ବନ୍ଦନ । ଯେତେ ଅଛନ୍ତି ବିପ୍ରଜନ ।। ୩
ତାହାଙ୍କୁ କରିଣ ବନ୍ଦନ । କହିବି ନିତ୍ୟ ଧର୍ମମାନ ।। ୪
୨ ହେ ବିପ୍ରମାନେ ଯେ ଅଦ୍ଭୁତ । ଅଟଇ ବିଷ୍ଣୁର ଚରିତ ।। ୫
ତୁମ୍ଭଙ୍କୁ କହିଲି ମୁଁ ତାହା । ପଚାରିଥିଲ ମୋତେ ଯାହା ।। ୬
ଜୀବର ପୁରୁଷଭାବରେ । ଉଚିତ ଯେ ଶ୍ରବଣାଦିରେ ।। ୭
୩ ଯେ ନାରାୟଣ ହୃଷୀକେଶ । ଭଗବାନ ସାତ୍ୱତ-ଈଶ ।। ୮
ଯେ ହରି ସର୍ବପାପ ହରେ । ସାକ୍ଷାତ କୀର୍ତ୍ତିତ ଏଥିରେ ।। ୯
୪ ବିଶ୍ୱର ସଂହାର-ଜନନ । ଯା' ଠାରୁ ହୋଏ ଉତପନ୍ନ ।। ୧୦
ସେ ପରଂବ୍ରହ୍ମ ଗୁଣହୀନ । ବିଜ୍ଞାନସଂଯୁତ ଯେ ଜ୍ଞାନ ।। ୧୧
ଆବର ଯେ ତାର ସାଧନ । ତା' ଏଥି କଲି ମୁଁ କଥନ ।। ୧୨
୫ ଏଥି କହିଲି ଭକ୍ତିଯୋଗ । ତେଣେ ସମ୍ଭୂତ ଯେ ବୈରାଗ୍ୟ ।। ୧୩
ଯେ ପାରୀକ୍ଷିତ ଉପାଖ୍ୟାନ । ଯେ ବା ନାରଦାଖ୍ୟାନ ଆନ ।। ୧୪
୬ ଶାପସକାଶୁଁ ବ୍ରାହ୍ମଣର । ସେ ପରୀକ୍ଷିତ ରାଜର୍ଷିର ।। ୧୫
ପ୍ରାୟୋପବେଶ ଯେ ଗଙ୍ଗାରେ । ଏମାନ ବର୍ଣ୍ଣିତ ଏଥିରେ ।। ୧୬
ଯେ ଶୁକ ବ୍ରାହ୍ମଣରେ ସାର । ଯେ ପରୀକ୍ଷିତ ନୃପବର ।। ୧୭
ସେ ବେନି ଜନଙ୍କ ସଂବାଦ । ଉକ୍ତ ଯହିଁ ଏ ଆଦ୍ୟ ସ୍କନ୍ଧ ।। ୧୮
୭ ଯୋଗର ଧାରଣାରେ ଯେହି । ଅର୍ଚ୍ଚି ଆଦିଙ୍କି ପ୍ରାପ୍ତି ହୋଇ ।। ୧୯
ଯେ ବ୍ରହ୍ମନାରଦ ସଂବାଦ । ଯେ ଅବତାରକଥାବାଦ ।। ୨୦
ଯେହୁ ପ୍ରଧାନକାର୍ଯ୍ୟରୂପ । ବିଖ୍ୟାତ ବିରାଟସ୍ୱରୂପ ।। ୨୧
ମହଦାଦିସୃଷ୍ଟିକ୍ରମରେ । ସେ ଉକ୍ତ ଦ୍ୱିତୀୟ ସ୍କନ୍ଧରେ ।। ୨୨
୮ ଉଦ୍ଧବସଙ୍ଗେ ବିଦୁରର । ମୈତ୍ରେୟସଙ୍ଗେ ପୁଣ ତାର ।। ୨୩
ସଂବାଦ ଯେ ନାନାପ୍ରକାରେ । ଯେ ପୁଣ ତହିଁର ଉତ୍ତାରେ ।। ୨୪
ପୁରାଣସଂହିତାପ୍ରଶନ । ଯେ ମହାପୁରୁଷସଂସ୍ଥାନ ।। ୨୫
୯ ଯେ ସର୍ଗ ଅଟେ ପ୍ରାକୃତିକ[1] । ଯେ ସପ୍ତ[2] ସର୍ଗ ବୈକୃତିକ ।। ୨୬

---

୧. ଗୁଣକ୍ଷୋଭରୂପକ । ୨. ମହତ୍, ଅହଂକାର ଓ ପଞ୍ଚ ତନ୍ମାତ୍ର ।

ଯେ ଅବା ବିକାର[୧] ତାଙ୍କର । ସର୍ଗ ହିଁ କଥିତ ଆବର ॥ ୨୭
ତଦନ୍ତେ ବ୍ରହ୍ମାଣ୍ଡ ସଂଭବ । ଯହୁଁ ବୈରାଜ ସମୁଭବ ॥ ୨୮
୧୦ ଯେ ସ୍ଥୂଳ ସୂକ୍ଷ୍ମ ଏ କାଳର । ଗତି, ଯେ ଉଭବ ପଦ୍ମର ॥ ୨୯
ସାଗରୁ ମହୀ-ଉଦ୍ଧରଣ । ଯେ ହିରଣ୍ୟାକ୍ଷର ମାରଣ ॥ ୩୦
୧୧ ଊର୍ଦ୍ଧ୍ୱ ତିର୍ଯ୍ୟକ ଅବାକର[୨] । ସେହି ପ୍ରକାରେ ରୁଦ୍ରଙ୍କର ॥ ୩୧
ଅର୍ଦ୍ଧ-ନାରୀ-ନରର ଯେହି । ସର୍ଗ ତା' ଏଥି ଥାଇଁ କହି ॥ ୩୨
ଯେ ମନୁ ସ୍ୱାୟଂଭୁବ ନାମ । ଯହିଁରୁ ତାହାଙ୍କ ଜନମ ॥ ୩୩
୧୨ ସ୍ତିରୀଙ୍କ ଉତ୍ତମା ଯେ ଆଦ୍ୟ । ପ୍ରକୃତି ଶତରୂପା ସିଦ୍ଧ ॥ ୩୪
ଯେ ଧର୍ମଙ୍କର ପତ୍ନୀମାନ । ସେମାନଙ୍କର ଯେ ସନ୍ତାନ ॥ ୩୫
କର୍ଦ୍ଦମ ପ୍ରଜାପତିଙ୍କର । ଯେ ଅଟେ ସନ୍ତାନ ଆବର ॥ ୩୬
୧୩ ମହାତ୍ମା ଷଡୈଶ୍ୱର୍ଯ୍ୟବନ୍ତ । କପିଳ ମୁନି ଯେହୁ ଖ୍ୟାତ ॥ ୩୭
ଯେ ବା ତାଙ୍କର ଅବତାର । ସଂବାଦ ଯେ ଦେବହୂତିର ॥ ୩୮
ସୁବୁଦ୍ଧି କପିଳ ସଙ୍ଗରେ । ଉକ୍ତ ସେ ତୃତୀୟ ସ୍କନ୍ଧରେ ॥ ୩୯
୧୪ ମରୀଚି ଆଦି ନବଙ୍କର । ସନ୍ତାନ ଯେ ନାନାପ୍ରକାର ॥ ୪୦
ଯେ ଦକ୍ଷଯଜ୍ଞର ବିନାଶ । ଧ୍ରୁବଚରିତ ପୃଥୁଯଶ ॥ ୪୧
ପ୍ରାଚୀନବରହିରାଜାର । ସଙ୍ଗେ ସଂବାଦ ନାରଦର ॥ ୪୨
ଏ ଆଦି କଥାମାନ ଯେହି । ଚତୁର୍ଥସ୍କନ୍ଧେ ଉକ୍ତ ସେହି ॥ ୪୩
୧୫ ହେ ଦ୍ୱିଜ ତଦନ୍ତେ ଉଦିତ । ପ୍ରିୟବ୍ରତଙ୍କ ସୁଚରିତ ॥ ୪୪
ତଦନ୍ତେ ଚରିତ ନାଭିର । ଋଷଭଙ୍କର ଭରତର ॥ ୪୫
୧୬ ଦ୍ୱୀପ ବରଷ ସିନ୍ଧୁ ଅଦ୍ରି । ବର୍ଣ୍ଣିତ ନବଖଣ୍ଡ ନଦୀ ॥ ୪୬
ଜ୍ୟୋତିଶ୍ଚକ୍ରର ଯେ ସଂସ୍ଥାନ । ପାତାଳ-ନରକ ସଙ୍ଗେଣ ॥ ୪୭
କହିଣ ଥାଇଁ ଏ ବିଭାଗେ । ପଞ୍ଚମସ୍କନ୍ଧେ ତୁମ୍ଭ ଆଗେ ॥ ୪୮
୧୭ ଏଣେ ନରକନିବର୍ତ୍ତନ । ଯେ ଅଜାମିଳ ଉପାଖ୍ୟାନ ॥ ୪୯
ପ୍ରଚେତାଙ୍କର ଠାରୁ ଦକ୍ଷ । ଜନ୍ମ ଉଦିତ ଯେ ପ୍ରତ୍ୟକ୍ଷ ॥ ୫୦
ଦକ୍ଷତନୟାମାନଙ୍କର । ସଂତାନବିତାନ ଆବର ॥ ୫୧
ତିର୍ଯ୍ୟକ ନଗ ଖଗ ନର । ଜନମ ଦେବାସୁରଙ୍କର ॥ ୫୨
୧୮ ବୃତ୍ରର ଯେ ଜନ୍ମ-ନିଧନ । ଷଷ୍ଠରେ ଉକତ ଏମାନ ॥ ୫୩
ଦିତିତନୟ ବେନିଙ୍କର । ହେ ବିପ୍ରେ ଯେ ଅବା ସଂହାର ॥ ୫୪
ମହାତ୍ମା ଦୈତ୍ୟଙ୍କ ଈଶ୍ୱର । ପ୍ରହ୍ଲାଦ ଯେ ଚରିତ ତାର ॥ ୫୫
ସେମାନ ସପ୍ତମ ସ୍କନ୍ଧରେ । କହିଛି ତୁମ୍ଭର ଆଗରେ ॥ ୫୬

୧. ପଞ୍ଚ ମହାଭୂତ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ ଓ ମନ ମିଶି ଷୋହଳ ତତ୍ତ୍ୱ ବିକାର ।
୨. ଅବାକର (ଅଧୋଗାମୀ ଜୀବଙ୍କର) ।

| | | | | | |
|---|---|---|---|---|---|
| ୧୯ | ଯେ ମନ୍ୱନ୍ତରାନୁଚରିତ | । | ଗଜେନ୍ଦ୍ରମୋକ୍ଷ ଯେ ବିଦିତ | ।। | ୫୭ |
| | ହୟଶୀର୍ଷାଦି ଅବତାର | । | ମନ୍ୱନ୍ତରରେ ଯେ ବିଷ୍ଣୁର | ।। | ୫୮ |
| ୨୦ | ଯେ ମତ୍ସ୍ୟ କଚ୍ଛପ ବାମନ | । | ନୃସିଂହ ଅବତାରମାନ | ।। | ୫୯ |
| | ଜଗତପତି ଶ୍ରୀହରିର | । | ପ୍ରାପ୍ତିନିମିତ୍ତେ ଅମୃତର | ।। | ୬୦ |
| | କ୍ଷୀରୋଦମନ୍ଥନ ଆବର | । | ଯେ ଦେବାସୁର ଯୁଦ୍ଧ ଘୋର | ।। | ୬୧ |
| | ଅଷ୍ଟମସ୍କନ୍ଧରେ ଏମାନ | । | କରିଛି ମୁଁ ପ୍ରତିପାଦନ | ।। | ୬୨ |
| ୨୧ | ଯେ ରାଜବଂଶାନୁକୀର୍ତ୍ତନ | । | ଯେ ତହିଁ ଇକ୍ଷ୍ୱାକୁ ଜନମ | ।। | ୬୩ |
| | ଯେ ଅବା ବଂଶ ତାହାଙ୍କର | । | ଜନ୍ମ ମହାତ୍ମା ସୁଦ୍ୟୁମ୍ନର | ।। | ୬୪ |
| ୨୨ | ଯେ ଅଟେ ଇଳା ଉପାଖ୍ୟାନ | । | ଯେ ତାରା ଉପାଖ୍ୟାନ ଆନ | ।। | ୬୫ |
| | ତପନବଂଶର କଥନ | । | ଶଶାଦ-ନୃଗାଦି ଯେ ଆନ | ।। | ୬୬ |
| ୨୩ | ଯେ ଅଟେ ସୁକନ୍ୟାଚରିତ | । | ଶର୍ଯ୍ୟାତି କକୁତ୍ସ୍ଥ ଯେ ଖ୍ୟାତ | ।। | ୬୭ |
| | ସେ ବେନିନୃପ ବୁଦ୍ଧିମନ୍ତ | । | ଯେ ଅବା ତାଙ୍କର ଚରିତ | ।। | ୬୮ |
| | ଖଟ୍ୱାଙ୍ଗ ମାନ୍ଧାତା ଯେ ବେନି | । | ଯେ ବା ସୌଭରି ମହାମୁନି | ।। | ୬୯ |
| | ଯେ ବା ସଗର ନରନାଥ | । | ଏମାନଙ୍କର ଯେ ଚରିତ | ।। | ୭୦ |
| ୨୪ | ଯେ ରାମ କୋଶଳ-ଈଶ୍ୱର | । | ପାପଘ୍ନ ଚରିତ ତାଙ୍କର | ।। | ୭୧ |
| | ଶରୀରତ୍ୟାଗ ଯେ ନିମିର | । | ସଂଭବ ଯେ ଜନକଙ୍କର | ।। | ୭୨ |
| ୨୫ | ଭାର୍ଗବ-ଇନ୍ଦ୍ର ରାମ ଯେହି | । | ନିଃକ୍ଷତ୍ର କଲେ ସେ ଯା' ମହୀ | ।। | ୭୩ |
| ୨୬ | ପ୍ରଥମ ଯେ ସୋମବଂଶର | । | ଚରିତ ସେ ପୁରୂରବାର | ।। | ୭୪ |
| | ଯେ ଯଯାତିର ନହୁଷର | । | ଦୁଷ୍ମନ୍ତସୁତ ଭରତର | ।। | ୭୫ |
| | ଶାନ୍ତନୁଙ୍କର ତା' ସୁତର[୧] | । | ଚରିତ ଯେ ଅବା ଆବର | ।। | ୭୬ |
| | ଯେ ଜ୍ୟେଷ୍ଠପୁତ୍ର ଯଯାତିର | । | ଯେ ଅବା ବଂଶ ସେ ଯଦୁର | ।। | ୭୭ |
| ୨୭ | ଯହିଁ ବଂଶରେ ଅବତାର | । | କୃଷ୍ଣାଖ୍ୟ ଜଗତ-ଈଶ୍ୱର | ।। | ୭୮ |
| | ଏମାନ ନବମ ସ୍କନ୍ଧରେ | । | କହି ତ ଅଛି ମୁଁ ପୂର୍ବରେ | ।। | ୭୯ |
| | ଜନମ ବସୁଦେବଘରେ | । | ତାଙ୍କ ବଢ଼ିବା ଗୋକୁଳରେ | ।। | ୮୦ |
| ୨୮ | ସେ [୨]ଦନୁଜାରିର ଅପାର | । | ଚରିତ କୀର୍ତ୍ତିତ ଏଥିର | ।। | ୮୧ |
| | ପୂତନାପ୍ରାଣପୟଃପାନ | । | ଶିଶୁର ଶକଟଭଂଜନ | ।। | ୮୨ |
| ୨୯ | ତୃଣାବର୍ତ୍ତର ଯେ ସଂହାର | । | ସେରୂପେ ବକ-ବସ୍ତଙ୍କର | ।। | ୮୩ |
| ୩୦ | ଭାଇସହିତେ ଧେନୁକର | । | ଯେ ବା ସଂକ୍ଷୟ ପ୍ରଲମ୍ବର | ।। | ୮୪ |
| | ଅଘମାରଣ ଯେ ଧାତାର | । | ବସ୍ତପାଳଙ୍କୁ ହରିବାର | ।। | ୮୫ |

୧. ଭୀଷ୍ମଙ୍କର ।

୨. ଦନୁଜାରି = ଦନୁଜ ଅର୍ଥାତ୍ ରାକ୍ଷସ, ଶ୍ରୀଭଗବାନ୍ ସେମାନଙ୍କ ଶତ୍ରୁ; ତେଣୁ ତାହାଙ୍କୁ ଦନୁଜାରି କୁହାଯାଏ ।

| | | | | |
|---|---|---|---|---|
| | ସମସ୍ତ ଦିଗରେ ବିସ୍ତୃତ | ଯେ ବନ-ଅନଳ ସଂଜାତ | ॥ | ୮୬ |
| | ତହିଁରୁ ଗୋପବାଳଙ୍କର | ଯେ ପରିତ୍ରାଣ କରିବାର | ॥ | ୮୭ |
| ୩୧ | ଦମନ କାଳିୟ ଅହିର | ସର୍ପରୁ ଯେ ମୋକ୍ଷ ନନ୍ଦର | ॥ | ୮୮ |
| | ଯେ ଗୋପକନ୍ୟାଙ୍କର ବ୍ରତ | ଯେ ବ୍ରତେ ସଂତୋଷ ଅଚ୍ୟୁତ | ॥ | ୮୯ |
| ୩୨ | ଯଜ୍ଞପତ୍ନୀଙ୍କି ଶ୍ରୀକୃଷ୍ଣର | ଯେ ଅନୁଗ୍ରହ କରିବାର | ॥ | ୯୦ |
| ୩୩ | ଯେ ଅନୁତାପ ବିପ୍ରଙ୍କର | ଗୋବର୍ଧନର ଯେ ଉଦ୍ଧାର[୧] | ॥ | ୯୧ |
| | ଶକ୍ର ସୁରଭି ବେନିଙ୍କର | ଯେ ଯଜ୍ଞାଭିଷେକ[୨] କୃଷ୍ଣର | ॥ | ୯୨ |
| | ଯେ କ୍ରୀଡ଼ା ରାସବିହାରରେ | ଗୋପୀଙ୍କ ତୁଲେ ରଜନୀରେ | ॥ | ୯୩ |
| | ଯେ ଶଙ୍ଖଚୂଡ଼ ବୁଦ୍ଧିହୀନ | ତାହାର ଯେ ବଧବିଧାନ | ॥ | ୯୪ |
| | ଅରିଷ୍ଟ କେଶୀର ନିଧନ | ପଛେ ଅକ୍ରୂର ଆଗମନ | ॥ | ୯୫ |
| ୩୪ | ପ୍ରସ୍ଥାନ ଶ୍ରୀରାମକୃଷ୍ଣର | ବିଳାପ ବ୍ରଜସ୍ତ୍ରିରୀଙ୍କର | ॥ | ୯୬ |
| | ତଦନ୍ତେ ମଥୁରା ନଗର | ଅବଲୋକନ ଯେ ଆବର | ॥ | ୯୭ |
| ୩୫ | ଯେ ଗଜ-ମୁଷ୍ଟିକ-ଚାଣୂର | କଂସାଦି ଯେ ତାଙ୍କ ସଂହାର | ॥ | ୯୮ |
| | ଯେ ସାନ୍ଦୀପନି-ଗୁରୁଙ୍କର | ମୃତ କୁମର ଆଣିବାର | ॥ | ୯୯ |
| ୩୬ | ରାମ-ଉଦ୍ଧବ ସହିତରେ | ଶ୍ରୀହରି ମଥୁରାନଗରେ | ॥ | ୧୦୦ |
| | ନିବାସ କରି ଯେତେଦିନ | ଯାଦବଙ୍କର ପ୍ରିୟମାନ | ॥ | ୧୦୧ |
| | କଲେକ ଯେମନ୍ତ ପ୍ରକାରେ | ହେ ଦ୍ୱିଜମାନେ ଏ ସଂସାରେ | ॥ | ୧୦୨ |
| ୩୭ | ଜରାସଂଧର ଆଣିବାର | ସୈନ୍ୟର ବଧ ବାରମ୍ବାର | ॥ | ୧୦୩ |
| | ଦୃଷ୍ଟିରେ ମୁଚୁକୁନ୍ଦଙ୍କର | ଯବନେନ୍ଦ୍ର[୩]ର ଯେ ସଂହାର | ॥ | ୧୦୪ |
| | କୁଶସ୍ଥଳୀରେ ଆପଣାର | [୪]ନିବେଶ କରିବା ହିଁ ଆର | ॥ | ୧୦୫ |
| ୩୮ | ସ୍ୱର୍ଗପୁରରୁ ସୁଧର୍ମାର | ଆଦାନ ଯେ ପାରିଜାତର | ॥ | ୧୦୬ |
| | ସଂଗ୍ରାମେ ଶତ୍ରୁଙ୍କୁ ମଛିଣ | ହରିର ରୁକ୍ମିଣୀହରଣ | ॥ | ୧୦୭ |
| ୩୯ | ଯୁଦ୍ଧେ ଶମ୍ଭୁର ବିମୋହନ | ବାଣର ଯେ ଭୁଜଛେଦନ | ॥ | ୧୦୮ |
| | ନରକାସୁରକୁ ସଂହାରି | କନ୍ୟାଙ୍କୁ ହରିଲେ ଯା' ହରି | ॥ | ୧୦୯ |
| ୪୦ | ଯେ ଦନ୍ତବକ୍ର ଶିଶୁପାଳ | ଦୁର୍ମତି ଯେ ପୌଣ୍ଡ୍ରକ ଶାଲ୍ୱ | ॥ | ୧୧୦ |
| | ଶମ୍ବର ମୁର ପଞ୍ଚଜନ | ଦ୍ୱିବିଦ ପୀଠ ଯେ ବା ଆନ | ॥ | ୧୧୧ |
| ୪୧ | ଯେ ତାଙ୍କ ପ୍ରଭାବ, ନିଧନ | ଯେ ବାରାଣସୀର ଦାହନ | ॥ | ୧୧୨ |
| | ହେତୁ ପାଣ୍ଡବଙ୍କୁ କରିଣ | ଯେ ଭୂମିଭାରନିବାରଣ | ॥ | ୧୧୩ |
| | ଦଶମସ୍କନ୍ଧରେ ଏମାନ | କଲାଇଁ ବିଶେଷି ବର୍ଣ୍ଣନ | ॥ | ୧୧୪ |
| ୪୨ | ଶାପବ୍ୟାଜରେ ବିପ୍ରଙ୍କର | ଯେ ନିଜକୁଳର ସଂହାର | ॥ | ୧୧୫ |

୧. ଉଦ୍ଧାର = ଟେକିବା । ୨. ଯଜ୍ଞ = ପୂଜା; ଅଭିଷେକ = ଯଜ୍ଞାନ୍ତସ୍ନାନ ।
୩. କାଳ ଯବନର । ୪. ନିବାସ କରି ରହିବାର (ପାଠାନ୍ତର) ।

ଉଦ୍ଧବ-ବାସୁଦେବଙ୍କର । ଅଦ୍‌ଭୁତ ସଂବାଦ ଯେ ଆର ।। ୧୧୬
୪୩ ଅଖିଳ ଆତ୍ମବିଦ୍ୟା ଯେହି । କର୍ମନିର୍ଣ୍ଣୟ[1] ଯେ ବା ତହିଁ ।। ୧୧୭
ତଦନ୍ତେ ମନୁଷ୍ୟଦେହର । ଯେ ଅନ୍ତର୍ଧାନ ଶ୍ରୀକୃଷ୍ଣର ।। ୧୧୮
ଆତ୍ମଯୋଗର ପ୍ରଭାବରେ । କଥିତ ଏ ଏକାଦଶରେ ।। ୧୧୯
୪୪ ଯେ ଯୁଗମାନଙ୍କ ଲକ୍ଷଣ । ଯେ ବୃତ୍ତି[2] ତା' ଅନୁସାରେଣ ।। ୧୨୦
ମନୁଷ୍ୟଙ୍କର ଏ କଳିରେ[3] । ଯେ ଉପପ୍ଳବ[4] ଏ ସଂସାରେ ।। ୧୨୧
ପ୍ରଳୟ ଯେ ବା ଚତୁର୍ବିଧ । ଯେ ଅବା ଉତ୍‌ପତ୍ତି ତ୍ରିବିଧ ।। ୧୨୨
୪୫ ଯେ ବୁଦ୍ଧିମନ୍ତ ପରୀକ୍ଷିତ । ରାଜର୍ଷି ଜଗତବିଦିତ ।। ୧୨୩
ତାହାଙ୍କର ଯେ କଳେବର । ଛାଡ଼ିବା ପ୍ରକାର ଆବର ।। ୧୨୪
ଶାଖାପ୍ରଣୟନ ଋଷିର[5] । ସତ୍‌କଥା ମୃକଣ୍ଡ ସୁତର ।। ୧୨୫
ଯେ ଜଗଦାତ୍ମା ସପ୍ତ-ଅଶ୍ୱ[6] । ସେ ମହାପୁରୁଷବିନ୍ୟାସ ।। ୧୨୬
୪୬ ଏଥିରେ ମୋତେ ତୁମ୍ଭେମାନେ । ଯାହା' ପଚାରିଲ ସୁମନେ ।। ୧୨୭
ହେ ଦ୍ୱିଜଶ୍ରେଷ୍ଠ ତା' ସମସ୍ତ । କଲି ମୁଁ ଏମନ୍ତେ ଉକତ ।। ୧୨୮
ଯେ ଲୀଳା-କର୍ମ-ଅବତାର । କଲେକ ଜଗତ-ଈଶ୍ୱର ।। ୧୨୯
ସେମାନ ସଂକୀର୍ତ୍ତନଦ୍ୱାରେ । କହିଲି ତୁମ୍ଭର ଆଗରେ ।। ୧୩୦
୪୭ କୂପ ଆଦିରେ ଯେ ପଡ଼ଇ । ସୋପାନାଦିରୁ ବା ସ୍ଖଳଇ ।। ୧୩୧
ଅଥବା ହୋଇଣ ଦୁଃଖିତ । କରନ୍ତେ ଅବା ଜୃମ୍ଭା କ୍ଷୁତ[7] ।। ୧୩୨
ବିବଶରେ ହେଁ ଯେ ଉଚ୍ଚାରି । 'ହରୟେ ନମଃ' ଉଚ୍ଚ କରି ।। ୧୩୩
ସମସ୍ତ ପାତକରୁ ମୁକ୍ତ । ହୁଅଇ ସେହୁ ବିଷ୍ଣୁଭକ୍ତ ।। ୧୩୪
୪୮ ଯେହୁ ଅନନ୍ତ ଭଗବାନ । ତାଙ୍କୁ ଯେ କରେ ସଂକୀର୍ତ୍ତନ ।। ୧୩୫
ତାହାଙ୍କ ଅନୁଭାବ ପୁଣ । ଯେ ଲୋକ କରଇ ଶ୍ରବଣ ।। ୧୩୬
ପ୍ରବେଶ ହୋଇ ତାର ଚିତ୍ତ । ଅଶେଷ ଦୁଃଖ କରେ ହତ ।। ୧୩୭
ଅନ୍ଧକାରକୁ ଦିବାକର । ଯେସନେ କରଇ ସଂହାର ।। ୧୩୮
ଜଳଦମାନଙ୍କୁ ଯେସନ । ବିନାଶେ ପ୍ରଚଣ୍ଡ ପବନ ।। ୧୩୯
୪୯ ଯେ ଅଧୋକ୍ଷଜ ଭଗବାନ । ସେ ଯହିଁ ନୁହନ୍ତି କଥନ ।। ୧୪୦
ଅସତ୍ୟ ସେ ବଚନ ମିଥ୍ୟା । ଯହିଁରେ [8]ଅସନ୍ତଙ୍କ କଥା ।। ୧୪୧
ଯହିଁ ଉଦୟ ବିଷ୍ଣୁଗୁଣ । ସେ ସତ୍ୟ ସେ ଭଦ୍ର ସେ ପୁଣ୍ୟ ।। ୧୪୨
୫୦ ଉତ୍ତମଶ୍ଳୋକଯଶ ଯେହି । ସେ ଯେବେ ଗାୟନ ହୁଅଇ ।। ୧୪୩

---

୧. ବର୍ଣ୍ଣାଶ୍ରମଧର୍ମବିନିଶ୍ଚୟ ।
୨. ବୃତ୍ତି ତ୍ରିବିଧା-(୧) ପ୍ରାକୃତିକୀ (୨) ନୈମିତ୍ତିକୀ ଓ (୩) ନିତ୍ୟା ବୃତ୍ତି ।
୩. କଳିଯୁଗରେ । ୪. ଉପଦ୍ରବ । ୫. ବ୍ୟାସଙ୍କର । ୬. ସୂର୍ଯ୍ୟ ।
୭. ଛିଙ୍କ, (ଜୃମ୍ଭା = ହାଇ) । ୮. ଅସତ୍ୟ ।

ସେ ନବ ନବ ରୁଚିପ୍ରଦ । ପରମ ପୁଣ୍ୟ ସେ ପ୍ରସିଦ୍ଧ ॥ ୧୪୪
ସେ ପୁଣ ପୁଣ ମାନସର । ମହତ-ଉତ୍ସବ-ପ୍ରଚାର ॥ ୧୪୫
ସେହିଟି ପ୍ରାଣିମାନଙ୍କର । ଶୁଖାଏ ସନ୍ତାପସାଗର ॥ ୧୪୬
୫୧ ଅତିବିଚିତ୍ର ପଦମାନେ । ଥାଆନ୍ତି ଯେବଣ ବଚନେ ॥ ୧୪୭
ବିଶ୍ୱପାବନ ହରିଯଶ । ସେ ଯେବେ ନ କରେ ସ୍ପରଶ ॥ ୧୪୮
ତାହାକୁ କାକତୀର୍ଥ କହି । ସେ ଜଳେ କେ ବା ଅବଗାହି ॥ ୧୪୯
କାକସମାନ କାମିଜନେ । ରମନ୍ତି ଯେଣୁ ସେ ବଚନେ ॥ ୧୫୦
ନୁହଇ ସେ ହଂସସଂମିତ[୧] । ଜ୍ଞାନିମାନଙ୍କରେ ସେବିତ ॥ ୧୫୧
ଅଚ୍ୟୁତକଥାମାନ ଯହିଁ । ନିର୍ମଳ ଜ୍ଞାନୀ ରସେ ତହିଁ ॥ ୧୫୨
୫୨ ସେ ବାକ୍ୟପ୍ରୟୋଗ ସଂସାରେ । ଜନସମୂହପାପ ହରେ ॥ ୧୫୩
ଅଶୁଦ୍ଧ ବାକ୍ୟ ଅତିରେକେ[୨] । ହେଲେହେଁ ଯହିଁ ପ୍ରତିଶ୍ଳୋକେ ॥ ୧୫୪
ଅନନ୍ତଯଶରେ ଅଙ୍କିତ । ନାମେ ଥାଆନ୍ତି ଅବିରତ ॥ ୧୫୫
ସାଧୁଏ ଯଉଁ ନାମମାନ । ଶୁଣନ୍ତି କରନ୍ତି ଗାୟନ ॥ ୧୫୬
ଶ୍ରୋତା-ବକତା ଅଭାବରେ । ଗୁଣନ୍ତି ଆପଣା ମନରେ ॥ ୧୫୭
୫୩ ବ୍ରହ୍ମବିଷୟେ ଯଉଁ ଜ୍ଞାନ । ଅଟେ ନିର୍ମଳ ନିରଞ୍ଜନ ॥ ୧୫୮
[୩]ଅଚ୍ୟୁତଭାବରେ ବର୍ଜିତ । ହେଲେ ସେ ନୁହଇ ଶୋଭିତ ॥ ୧୫୯
ଯେ କାମ୍ୟ କର୍ମ ଅବିରତେ[୪] । ଅଭଦ୍ର[୫] ଅଟଇ ଜଗତେ ॥ ୧୬୦
ଈଶ୍ୱରଠାରେ ତାହା ନେଇ । ଯେବେ ଅର୍ପଣ ନ କରଇ ॥ ୧୬୧
ସେ କାହୁଁ ପାଇବ ଶୋଭନ । ଯେ ଅଟେ କାରଣବିହୀନ[୬] ॥ ୧୬୨
୫୪ ବର୍ଣ୍ଣ-ଆଶ୍ରମ-ଆଚାରରେ । ଘୋର ତପସ୍ୟା ଶମାଦିରେ[୭] ॥ ୧୬୩
ହୁଅଇ ଯେହୁ ଉତପନ୍ନ । ମହତ ପରିଶ୍ରମମାନ ॥ ୧୬୪
ସେ କୀର୍ତ୍ତି-ସଂପତ୍ତିନିମିତ୍ତ । ନୁହଇ ପୁଣ ପୁରୁଷାର୍ଥ ॥ ୧୬୫
ଶ୍ରୀହରିଗୁଣାନୁବାଦର । ଶ୍ରବଣାଦିରେ ନିରନ୍ତର ॥ ୧୬୬
ଶ୍ରୀଧରପାଦପଦ୍ମ ପୁଣ । ହୁଅଇ ଯେ ଅବିସ୍ମରଣ[୮] ॥ ୧୬୭
ସେଟି ପରମ ପୁରୁଷାର୍ଥେ । ବୋଲନ୍ତି ପଣ୍ଡିତେ ଏମନ୍ତ ॥ ୧୬୮
୫୫ ଶ୍ରୀକୃଷ୍ଣ ପଦାରବିନ୍ଦରେ । ଅବିସ୍ମରଣ ଏ ସଂସାରେ ॥ ୧୬୯
ଅଶୁଭମାନଙ୍କୁ ନାଶଇ । ଶାନ୍ତିକି ବିସ୍ତାର କରଇ ॥ ୧୭୦
[୯]ପରମଭକ୍ତି ମନଶୁଦ୍ଧି । ଏ ବେନି କଥା କରେ ସିଦ୍ଧି ॥ ୧୭୧

---

୧. ତୁଲ୍ୟ । ୨. ଅତିମାତ୍ରାରେ । ୩. ଭକ୍ତି ।
୪. ସାଧନକାଳରେ ଓ ଫଳକାଳରେ ୫. ଦୁଃଖାତ୍ମକ ।
୬. ନିଷ୍କାମ । (ଅକାରଣମିତି ପାଠେ) । ଅନୁତ୍ତମମିତି ପାଠେ ସର୍ବୋତ୍ତମମପି କର୍ମ ଇତ୍ୟର୍ଥଃ ।
୭. ସମାଧିରେ (ପାଠାନ୍ତର) ୮. ଅନବରତ ସ୍ମରଣ । ୯. ପରମାତ୍ମା ।

| | | | |
|---|---|---|---|
| | ବିଜ୍ଞାନ-ବିରାଗେ ଯେ ଯୁତ । | ସେ ଜ୍ଞାନ କରଇ ଉଦିତ | ॥ ୧୭୨ |
| ୫୬ | ହେ ଦ୍ୱିଜଶ୍ରେଷ୍ଠ ତୁମ୍ଭେମାନେ । | ସୁଭାଗ୍ୟବନ୍ତ ଏ ଭୁବନେ | ॥ ୧୭୩ |
| | ଯେଣୁ ଆତ୍ମାରେ ନିବେଶିଣ । | ଭଜୁଛ ତୁମ୍ଭେ ନାରାୟଣ | ॥ ୧୭୪ |
| | ଯେ ନାରାୟଣ ସର୍ବେଶ୍ୱର । | ଆନ ଈଶ୍ୱର ନାହିଁ ଯାର | ॥ ୧୭୫ |
| | ଯେହୁ ଅଖିଳ ପ୍ରାଣୀଙ୍କର । | ଆତ୍ମା-ସ୍ୱରୂପୀ ବିଶ୍ୱମ୍ଭର | ॥ ୧୭୬ |
| | ତୁମ୍ଭେ ସମସ୍ତେ ତାଙ୍କଠାରେ । | ଭକ୍ତି କରିଛ ନିରନ୍ତରେ | ॥ ୧୭୭ |
| ୫୭ | ଯେ ପରୀକ୍ଷିତ ନୃପବର । | ପ୍ରାୟୋପବେଶେ[୧] ତାହାଙ୍କର | ॥ ୧୭୮ |
| | ଯା' ଶୁକମୁନିମୁଖୁଁ ଭଲେ । | ମହାମୁନିଏ ଶୁଣିଥିଲେ | ॥ ୧୭୯ |
| | ସେଠାରେ ପୂର୍ବେ ଥିଲି ଶୁଣି । | ଯେବଣ ଆତ୍ମତତ୍ତ୍ୱ ପୁଣି | ॥ ୧୮୦ |
| | ସେ ଆତ୍ମତତ୍ତ୍ୱକୁ ସଂତତେ । | ସ୍ମରଣ କରାଇଲ ମୋତେ | ॥ ୧୮୧ |
| ୫୮ | ଯାହାର ଉରୁକର୍ମମାନ । | ସମସ୍ତେ କରନ୍ତି କଥନ | ॥ ୧୮୨ |
| | ସର୍ବ ଅଶୁଭ କରେ ହତ । | ସେ ବାସୁଦେବର ଚରିତ | ॥ ୧୮୩ |
| | ହେ ବିପ୍ରମାନେ ! ଏ ଚରିତ । | ତୁମ୍ଭଙ୍କୁ କଲି ମୁଁ ବିଦିତ | ॥ ୧୮୪ |
| | ଏ ଘେନି ମୁହିଁ ଭାଗ୍ୟବନ୍ତ । | ଜଗତେ ଅଟଇ ବିଖ୍ୟାତ | ॥ ୧୮୫ |
| ୫୯ | ଏ ରୂପେ ନିତ୍ୟ ଯଉଁ ଜନ । | ନ ଦେଇ ଆନଠାରେ ମନ | ॥ ୧୮୬ |
| | ପ୍ରହରେ କ୍ଷଣେ ଅବା ତହିଁ । | ଲୋକଙ୍କୁ ଶ୍ରବଣ କରାଇ | ॥ ୧୮୭ |
| | ଶ୍ରଦ୍ଧାରେ ଯେ ଅବା ଶୁଣଇ । | ଆତ୍ମାକୁ ପବିତ୍ର କରଇ | ॥ ୧୮୮ |
| | ଏକ ଶ୍ଳୋକ ବା ଶ୍ଳୋକ-ଅର୍ଦ୍ଧ । | ଏକ ପାଦ ବା ଅର୍ଦ୍ଧପାଦ | ॥ ୧୮୯ |
| ୬୦ | ଦ୍ୱାଦଶୀ ଏକାଦଶୀରେ ବା । | ଶୁଣଇ ପଢ଼ଇ ଅଥବା | ॥ ୧୯୦ |
| | ସଂଯତଚିତ୍ତେ ଉପବାସେ । | ଯେବଣ ମାନବ ବିଶେଷେ | ॥ ୧୯୧ |
| | ହୁଅଇ ସେ ଆୟୁଷ୍ୟବନ୍ତ । | ପାପରୁ ହୁଅଇ ମୁକତ | ॥ ୧୯୨ |
| ୬୧ | ସଂଯତଚିତ୍ତେ ମଥୁରାରେ । | ପୁଷ୍କରକ୍ଷେତ୍ରେ ଦ୍ୱାରକାରେ | ॥ ୧୯୩ |
| | ଏହି ସଂହିତାକୁ ବିସ୍ତାରି । | ଉପବାସରେ ପଢ଼ି କରି | ॥ ୧୯୪ |
| | ସମସ୍ତ ଭୟମାନଙ୍କରୁ । | ମୁକତ ହୁଅଇ ସଂସାରୁ | ॥ ୧୯୫ |
| ୬୨ | ଏଥିରେ କୀର୍ତ୍ତିତ ଯେ ପୁଣ । | ଦେବତା, ମୁନି, ସିଦ୍ଧଗଣ | ॥ ୧୯୬ |
| | ଯେ ପିତୃଲୋକ, ମନୁମାନେ । | ଯେ ନୃପେ ବିଖ୍ୟାତ ଭୁବନେ | ॥ ୧୯୭ |
| | ସେ କାମ ଦିଅନ୍ତି ତତ୍‌ପର । | ପଢ଼ିବା, ଶୁଣିବା ଲୋକର | ॥ ୧୯୮ |
| ୬୩ | ଯେ ଋକ ଯଜୁ, ସାମମାନ । | ଦ୍ୱିଜ କରିଣ ଅଧ୍ୟୟନ | ॥ ୧୯୯ |
| | ଯେବଣ ଫଳକୁ ଲଭଇ । | ଯେ ମଧୁ-ପୟଃ କୁଲ୍ୟା ଦୁଇ[୨] | ॥ ୨୦୦ |
| | ଆବର ଘୃତକୁଲ୍ୟା ଦାନ । | ଏଥି ଯେ ଫଳ ବିଦ୍ୟମାନ | ॥ ୨୦୧ |
| | ସେ ଫଳ ଲଭଇ ସେ ଜନ । | ଯେ ଏହା କରେ ଅଧ୍ୟୟନ | ॥ ୨୦୨ |

୧. ପ୍ରାୟ (ଅନଶନ)ରେ ଉପବେଶ (ବସିବା), ତହିଁରେ ।

୨. ମହୁର ନଈ ଓ କ୍ଷୀରର ନଈ । କୁଲ୍ୟା = ନଈ ।

୬୪ ଯେ ଦ୍ୱିଜ ପ୍ରୟତ[1] ହୋଇଣ । ପଢ଼ି ଏ ସଂହିତା-ପୁରାଣ ॥ ୨୦୩
ପରମ ପଦକୁ ସେ ଯାଇ । ବିଷ୍ଣୁ ଯା' ସ୍ୱୟେଂ ଛନ୍ତି କହି ॥ ୨୦୪
୬୫ ବ୍ରାହ୍ମଣ କଲେ ଅଧ୍ୟୟନ । ପ୍ରଜ୍ଞାକୁ ଲଭଇ ବହନ ॥ ୨୦୫
କ୍ଷତ୍ରିୟ ଯେବେ ସେ ପଢ଼ଇ । ଲଭେ ଆସମୁଦ୍ରାନ୍ତ[2] ମହୀ ॥ ୨୦୬
ବୈଶ୍ୟ ହୁଅଇ ନିଧିପତି । ଶୂଦ୍ର ପାପରୁ ପାଏ ମୁକ୍ତି ॥ ୨୦୭
୬୬ କଳିକଲୁଷସମୂହର । ନାଶକ ଅଖିଳ-ଈଶ୍ୱର ॥ ୨୦୮
ହରିଙ୍କି ପ୍ରତିପଦେ ଆନ । ଶାସ୍ତ୍ର ନ କରନ୍ତି ଗାୟନ ॥ ୨୦୯
ଅଶେଷମୂର୍ତ୍ତି ନାରାୟଣ । ଏଥିରେ ପ୍ରତିପଦେ ପୁଣ ॥ ୨୧୦
କଥାପ୍ରସଙ୍ଗରେ କଥିତ । ଏଣୁ ଏ ପୁରାଣ ମହତ ॥ ୨୧୧
୬୭ ଯେ ଅଜ, ନାହିଁ ଯାର ଅନ୍ତ । ଯେ ଆତ୍ମତତ୍ତ୍ୱରୂପେ ଖ୍ୟାତ ॥ ୨୧୨
ଯେହୁ ସମସ୍ତ ଜଗତର । ଜନମ ପାଳନ ସଂହାର ॥ ୨୧୩
ଏ ତିନି ରଜ ସତ୍ତ୍ୱ ତମ । ଯାହାର ଶକ୍ତି ଅଭିରାମ ॥ ୨୧୪
ଅଜ ଶଙ୍କର ଶକ୍ର[3] ଆଦି । ଦେବତାମାନେ ଯେ ପ୍ରସିଦ୍ଧି ॥ ୨୧୫
ଯାହାର ସ୍ତୁତିକି ସେମାନେ । ଜାଣି ନାହାନ୍ତି ଏ ଭୁବନେ ॥ ୨୧୬
ସେ ପ୍ରଭୁ ଅଚ୍ୟୁତଙ୍କୁ ମୋର । ଅନବରତ ନମସ୍କାର ॥ ୨୧୭
୬୮ ପ୍ରକୃତି ପୁରୁଷ ମହତ । ଅହଂକାର ପଞ୍ଚ ତନ୍ମାତ୍ର ॥ ୨୧୮
ପ୍ରବୃଦ୍ଧ ଏ ନବ ଶକ୍ତିରେ । ଯେହୁ ରଚିତ ନିଜାତ୍ମାରେ ॥ ୨୧୯
ସେ ସ୍ଥିର-ଜଙ୍ଗମ-ସଦନ । ଯେ ସୁରଶ୍ରେଷ୍ଠ ସନାତନ ॥ ୨୨୦
ଯେ ଉପଲବ୍ଧିମାତ୍ରଧାମ । ସେ ଭଗବାନଙ୍କୁ ମୋ' ନମ[4] ॥ ୨୨୧
୬୯ ଯେ ନିଜସୁଖେ ପୂର୍ଣ୍ଣଚିତ୍ତ । ସେ ହେତୁ ହୋଇଛି ନିରସ୍ତ ॥ ୨୨୨
ଇତରଠାରେ ଭାବ ଯାର । ଏମନ୍ତ ହେଲେହେଁ କୃଷ୍ଣର ॥ ୨୨୩
ରୁଚିର ଲୀଳାରେ ଯାହାର । ଆକୃଷ୍ଟ ନିଜ ସୁଖସାର ॥ ୨୨୪
ଯେ ତତ୍ତ୍ୱଦୀପ ଅନୁପମ । ପୁରାଣ ଭାଗବତ ନାମ ॥ ୨୨୫
ବିସ୍ତାର କଲେ କରୁଣାରେ । ଯେହୁ ଅଖିଳ ପାପ ହରେ ॥ ୨୨୬
ଏମନ୍ତ ଯେ ବ୍ୟାସନନ୍ଦନ । ତାଙ୍କୁ ମୁଁ କରୁଛି ବନ୍ଦନ ॥ ୨୨୭
'କୌତ୍ସସ କୁଳରେ ଜନମ । ବ୍ରାହ୍ମଣ ଦୀନବନ୍ଧୁ ନାମ ॥ ୨୨୮
ଦ୍ୱାଦଶ ସ୍କନ୍ଧେ ଭାଗବତ । ଭାଷାପ୍ରବନ୍ଧେ ଭଣେ ଗୀତ ॥ ୨୨୯
ବୈଷ୍ଣବ ଜୟରାମ ଦାସ । ଯାହା ଆସ୍ୱାଦେ ଦିବାନିଶ ॥ ୨୩୦

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଦ୍ୱାଦଶସ୍କନ୍ଧାର୍ଥନିରୂପଣଂ
ନାମ ଦ୍ୱାଦଶୋଽଧ୍ୟାୟଃ ॥

---

୧. ପ୍ରୟତ = ଯତ୍ନବାନ୍ ।　୨. ସମୁଦ୍ରର ଶେଷପର୍ଯ୍ୟନ୍ତ ।　୩. ଇନ୍ଦ୍ର ।　୪. ନମଃ ।

# ତ୍ରୟୋଦଶ ଅଧ୍ୟାୟ

ତ୍ରୟୋଦଶେ ପୁରାଣାନାଂ ସଂଖ୍ୟାମାହ ଯଥାକ୍ରମମ୍ ।
ଦାନଂ ଦାନସ୍ୟ ମାହାତ୍ମ୍ୟଂ ଶ୍ରୀମଦ୍‌ଭାଗବତସ୍ୟ ଚ ।। ୧

ଶ୍ରୀସୂତ ଉବାଚ

୧ ଯାହାଙ୍କୁ ବିରିଞ୍ଚି ବରୁଣ । ବାସବ ରୁଦ୍ର ସମୀରଣ ।। ୧
ଉତ୍ତମ ସ୍ତବମାନଙ୍କରେ । ସ୍ତୁତି କରନ୍ତି ନିରନ୍ତରେ ।। ୨
ଅଙ୍ଗ ଉପାଙ୍ଗ-ପଦ-କ୍ରମେ । ଉପନିଷଦେ ଯାକୁ ସାମେ ।। ୩
ସାମଗେ କରନ୍ତି ଗାୟନ । ଧ୍ୟାନରେ ତଦ୍‌ଗତ ଯେ ମନ ।। ୪
ଯାହାଙ୍କୁ ଦେଖନ୍ତି ସେ ମନେ । ସନ୍ତତେ ଯୋଗିଜନମାନେ ।। ୫
ସୁର-ଅସୁର ଗଣ ଯାର । ଅନ୍ତ ନ କରନ୍ତି ଗୋଚର ।। ୬
ଏମନ୍ତ ଯେ ଦେବ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ।। ୭
୨ ପୃଷ୍ଠରେ ଭ୍ରମଇ ସତ୍ୱର । ଅମନ୍ଦ ଯେ ଗିରି ମନ୍ଦର ।। ୮
ତେଣେ [୧]ଗ୍ରାବାଗ୍ର କଣ୍ଡୂୟନୁଁ । ନିଦ୍ରାଳୁ ଯେ କମଠତନୁ ।। ୯
ସେ ଭଗବାନଠାରୁ ଜାତ । ପ୍ରଖର ଯେ ଶ୍ୱାସ-ମରୁତ ।। ୧୦
ସେ ତୁମ୍ଭମାନଙ୍କୁ ସନ୍ତତେ । ପାଳନ କରନ୍ତୁ ଜଗତେ ।। ୧୧
ଯାହା ସଂସ୍କାରଲେଶମାତ୍ର । ଅନୁବର୍ତ୍ତନବଶୁଁ ଜାତ ।। ୧୨
ସଂକ୍ଷୋଭବ୍ୟାଜେ[୨] ଜଳଧିର । ଯିବା ଆସିବା ସଲିଳର ।। ୧୩
ଅନୁଯୋଗରେ ଅଦ୍ୟାପି ହିଁ । ବିଶ୍ରାମ ଲଭି ନାହିଁ ତହିଁ ।। ୧୪
୩ ସଂଚୟ ପୁରାଣସଂଖ୍ୟାର । ଯେ ବାଚ୍ୟ[୩] ଏ ଭାଗବତର ।। ୧୫
ଯେ ପ୍ରୟୋଜନ ଦାନ ଆର । ଯେ ଅବା ମାହାତ୍ମ୍ୟ ଦାନର ।। ୧୬
ଯେ ବା ମାହାତ୍ମ୍ୟ ପାଠାଦିରେ । ଶୁଣ ତା' ମନ ଦେଇ ଧୀରେ ।। ୧୭
୪ ଯେ ବ୍ରହ୍ମପୁରାଣ ବିଖ୍ୟାତ । ସେ ଦଶ ସହସ୍ର ଗଣିତ ।। ୧୮
ପଞ୍ଚାନ[୪] ସହସ୍ର ପ୍ରମାଣ । ଅଟଇ ସେ ପଦ୍ମପୁରାଣ ।। ୧୯
ତେଇଶି ସହସ୍ର ନିୟତ । ବିଷ୍ଣୁପୁରାଣ ପରିମିତ ।। ୨୦
ଶିବ ପୁରାଣ ଚଉବିଂଶ । ସହସ୍ର ଗଣିତ ପ୍ରକାଶ ।। ୨୧
୫ ଶ୍ରୀଭାଗବତ ଅଷ୍ଟାଦଶ । ସହସ୍ରେ ହୋଇଅଛି ଶେଷ ।। ୨୨
ଯେହ୍ନେ ନାରଦୀୟ ପୁରାଣ । ପଚିଶ ସହସ୍ର ପ୍ରମାଣ ।। ୨୩
ମାର୍କଣ୍ଡ ପୁରାଣ ବିଖ୍ୟାତ । ନବ ସହସ୍ର ପରିମିତ ।। ୨୪
ପନ୍ଦର ସହସ୍ର ଚାରିଶ' । ଆଗ୍ନେୟ ପୁରାଣ ପ୍ରକାଶ ।। ୨୫
୬ ଚଉଦ ସହସ୍ର ପାଞ୍ଚଶ' । ଗଣିତ ପୁରାଣ ଭବିଷ୍ୟ ।। ୨୬

---

୧. ଗ୍ରାବ = ପାଷାଣ, ତାର ଅଗ୍ରଜନିତ କଣ୍ଡୂୟନ ହେତୁରୁ । (କଣ୍ଡୂୟନ = ଗଲୁ, କୁଣ୍ଡେଇ ହେବା)
୨. ବାହାନା । ୩. ବିଷୟ । ୪. ପଞ୍ଚାବନ ।

ଅଠର ସହସ୍ର ବିଖ୍ୟାତ । ପୁରାଣ ବ୍ରହ୍ମବଇବର୍ତ୍ତ ॥ ୨୭
ଏଗାର ସହସ୍ର ପ୍ରମାଣ । ଗଣିତ ଏ ଲିଙ୍ଗ ପୁରାଣ ॥ ୨୮
୭ ଗଣିତ ସହସ୍ର ଚବିଶ । ବରାହପୁରାଣ ପ୍ରକାଶ ॥ ୨୯
ସ୍କନ୍ଦ ପୁରାଣ ଏକାଶୀତି । ସହସ୍ର ଶତୋତ୍ତର ଖ୍ୟାତି ॥ ୩୦
ବାମନ ପୁରାଣ ଲୋକରେ । ଦଶ ସହସ୍ର ଗଣନାରେ ॥ ୩୧
୮ ସତର ସହସ୍ର ପ୍ରମାଣ । ଅଟଇ ସେ କୂର୍ମପୁରାଣ ॥ ୩୨
ମତ୍ସ୍ୟପୁରାଣ ଚତୁର୍ଦ୍ଦଶ । ସହସ୍ର ସଂଖ୍ୟାରେ ପ୍ରକାଶ ॥ ୩୩
ସହସ୍ର ଏକୋନବିଂଶତି । ଗରୁଡ଼ ପୁରାଣର ଖ୍ୟାତି ॥ ୩୪
ଦ୍ୱାଦଶ ସହସ୍ର ପ୍ରମାଣ । ଅଟଇ ବ୍ରହ୍ମାଣ୍ଡ ପୁରାଣ ॥ ୩୫
୯ ଏ ରୂପେ ପୁରାଣସମୂହ । ଚାରିଲକ୍ଷ ଏ ଅସନ୍ଦେହ ॥ ୩୬
ଅଠର ସହସ୍ର ତହିଁରେ । ଶ୍ରୀଭାଗବତ ଗଣନାରେ ॥ ୩୭
୧୦ ନାଭିପଙ୍କଜମଧ୍ୟେ ସ୍ଥିତ । ଯେ ପିତାମହ ଭବଭୀତ ॥ ୩୮
ତାହାଙ୍କୁ ଏହା କରୁଣାରେ । ଶ୍ରୀବିଷ୍ଣୁ[୧] କହିଲେ ପୂର୍ବରେ ॥ ୩୯
ସେ ଘେନି ଏହୁ ଭାଗବତ । ନାମରେ ଜଗତେ ବିଖ୍ୟାତ ॥ ୪୦
୧୧ ଆଦିରେ ମଧ୍ୟେ ଅବସାନେ । ଯୁକ୍ତ ଏ ବୈରାଗ୍ୟ ଆଖ୍ୟାନେ ॥ ୪୧
ଏ ହରିଲୀଳାକଥାବୃନ୍ଦ । ଅମୃତେ କରାଇ ଆନନ୍ଦ ॥ ୪୨
ଯେ ହରିଭକ୍ତ ସେ ସାଧୁଙ୍କୁ । ଆବର ଦେବତାମାନଙ୍କୁ ॥ ୪୩
୧୨ [୨]ଯେ ବ୍ରହ୍ମ-ଆତ୍ମୈକଲକ୍ଷଣ । ସର୍ବବେଦାନ୍ତସାର ପୁଣ ॥ ୪୪
ଯେ ପରମାର୍ଥ ଅଦ୍ୱିତୀୟ । ସେ ବସ୍ତୁ[୩] ଏଥିରେ ବିଷୟ ॥ ୪୫
କୈବଲ୍ୟମାତ୍ରକ କେବଳ । ଅଟେ ଏ ଭାଗବତଫଳ ॥ ୪୬
୧୩ ସୁବର୍ଣ୍ଣସିଂହରେ ସଂଯୁତ । କରିଣ ଏ ଶ୍ରୀଭାଗବତ ॥ ୪୭
ଭାଦ୍ରବପୌର୍ଣ୍ଣମାସୀ ଦିନ । କରେ ଯେ ବିପ୍ରଙ୍କୁ ପ୍ରଦାନ ॥ ୪୮
ସେ ନର ପରମଗତିକି । ଲଭଇ ବୈକୁଣ୍ଠସ୍ଥିତିକି ॥ ୪୯
୧୪ ସୁଧାସାଗର ଭାଗବତ । ଯାବତ ନୋହିଥାଇ ଶ୍ରୁତ ॥ ୫୦
ତାବତ କାଳ ସାଧୁଗଣେ । ଶୋଭନ୍ତି ଇତର ପୁରାଣେ ॥ ୫୧
୧୫ ସର୍ବବେଦାନ୍ତମାନଙ୍କର । ଶ୍ରୀଭାଗବତ ଅଟେ ସାର ॥ ୫୨
ତା' ରସାମୃତେ ଯାର ତୃପ୍ତି । ତାର ଅନ୍ୟରେ ନାହିଁ ରତି ॥ ୫୩
୧୬ ଜାହ୍ନବୀ ଯେସନେ ନଦୀରେ । ଅଚ୍ୟୁତ ଯେହ୍ନେ ଦେବଙ୍କରେ ॥ ୫୪
ବୈଷ୍ଣବମଧ୍ୟେ ଶମ୍ଭୁ ଯେହ୍ନେ । ପୁରାଣମଧ୍ୟେ ଏହୁ ତେହ୍ନେ ॥ ୫୫
୧୭ ହେ ଦ୍ୱିଜେ ! କ୍ଷେତ୍ରଙ୍କ ମଧ୍ୟର । ଯେସନେ କାଶୀ ଅଟେ ସାର ॥ ୫୬
ତେହ୍ନେ ପୁରାଣମାନଙ୍କର । ମଧ୍ୟେ ଶ୍ରୀଭାଗବତ ବର ॥ ୫୭

୧. ଶ୍ରୀକୃଷ୍ଣ (ପାଠାନ୍ତର) । ୨. ଯେ ବ୍ରହ୍ମ ଏକାତ୍ମଲକ୍ଷଣ (ପାଠାନ୍ତର) । ୩. ବ୍ରହ୍ମ ।

୧୮ ଶ୍ରୀଭାଗବତ ଯେ ପୁରାଣ । ବୈଷ୍ଣବଙ୍କର ପ୍ରିୟ ପୁଣ ।। ୫୮
ଯେ ଅଟେ ନିର୍ମଳ ଯହିଁରେ । ପରମ ଜ୍ଞାନ ଗା'ନ୍ତି ନରେ ।। ୫୯
ଏକ ନିର୍ମଳ ଯେ ପ୍ରକାଶେ । ଲଭନ୍ତି ଯା' ପରମହଂସେ ।। ୬୦
ଯହିଁ ବିରାଗ-ଜ୍ଞାନ-ଭକ୍ତି । ସହିତେ କର୍ମରୁ ନିବୃତ୍ତି ।। ୬୧
ଯଉଁ ପୁରାଣ ଭାଗବତେ । ଏମାନ ବର୍ଣ୍ଣିତ ସନ୍ତତେ ।। ୬୨
ତାହା' ପଠନ ବିଚାରଣ । ଭକ୍ତିରେ ଯେ ଅବା ଶ୍ରବଣ ।। ୬୩
ସେଥିରେ ହୋଏ ଯେ ତତ୍ପର । ମୁକ୍ତିକି ଲଭଇ ସେ ନର ।। ୬୪
୧୯ ଅତୁଳ ଯେ ଜ୍ଞାନପ୍ରଦୀପ । ପୁରାଣ ଭାଗବତରୂପ ।। ୬୫
ଏହା ଯେ କଳ୍ପର ଆଦିରେ । କହିଲେ ବ୍ରହ୍ମାଙ୍କ ଆଗରେ ।। ୬୬
ସେ ବ୍ରହ୍ମାରୂପେ ନାରଦଙ୍କୁ । ନାରଦରୂପରେ ବ୍ୟାସଙ୍କୁ ।। ୬୭
ଶୁକଙ୍କୁ ସେ ବ୍ୟାସସ୍ୱରୂପେ । ପରୀକ୍ଷିତଙ୍କୁ ଶୁକରୂପେ ।। ୬୮
କହିଲେ ଯେ କରୁଣା କରି । ଶ୍ରୀଭାଗବତକୁ ବିସ୍ତାରି ।। ୬୯
ସେ ଶୁଦ୍ଧ ବିଶୋକ ଅମୃତ । ନିର୍ମଳ ଅତିଶୟ ସତ୍ୟ ।। ୭୦
ସେ ନାରାୟଣଙ୍କୁ ସୁମନେ । ଧ୍ୟାନ କରୁଛୁଁ ଆମ୍ଭେମାନେ ।। ୭୧
୨୦ ଯେ ବାସୁଦେବ ଭଗବାନ । ଯେ ସାକ୍ଷୀ ତାଙ୍କୁ ମୋ' ବନ୍ଦନ ।। ୭୨
ଯେ ଭାଗବତ ପୁରାଣକୁ । କହିଲେ ମୁମୁକ୍ଷୁ ବ୍ରହ୍ମାଙ୍କୁ ।। ୭୩
୨୧ ଯେ ବ୍ରହ୍ମରୂପୀ ଯୋଗେଶ୍ୱର । ସେ ଶୁକଙ୍କୁ ମୋ' ନମସ୍କାର ।। ୭୪
ସଂସାରସର୍ପରେ ଦଂଶିତ । ଅଟଇ ଯଉଁ ପରୀକ୍ଷିତ ।। ୭୫
ତାହାଙ୍କୁ ସେ ସର୍ପଭୟରୁ । ମୋକ୍ଷଣ କଲେ ଯେ କୃପାରୁ ।। ୭୬
୨୨ ହେ ପ୍ରଭୁ ଆହେ ଦେବେଶ୍ୱର । ଯେହେତୁ ନାଥ ତୁ ଆମ୍ଭର ।। ୭୭
କରୁଣା କର ଏ ରୂପରେ । ଯେହ୍ନେ ତୋ' ପାଦଯୁଗଳରେ ।। ୭୮
ଜନମେ ଜନମେ ଭକତି । ହୋଇବ ମୋର ଉତପତି ।। ୭୯
୨୩ ଯାହାର ନାମସଂକୀର୍ତ୍ତନ । ନାଶେ ସକଳ ପାପମାନ ।। ୮୦
ଯାହାର ପ୍ରଣାମଟି ପୁଣ । କରଇ ଦୁଃଖପ୍ରଶମନ ।। ୮୧
ସେ ହରି ପରମ-ଈଶ୍ୱର । ତାହାଙ୍କୁ ମୋର ନମସ୍କାର ।। ୮୨

## କବି ପରିଚୟ

ଶ୍ରୀପୁରୁଷୋତ୍ତମ ନିକଟ । ବ୍ରାହ୍ମଣଶାସନ ପ୍ରକଟ ।। ୮୩
ତା' ନାମ ବାମଦେବପୁର । କୌତ୍ସସମାନଙ୍କ ମନ୍ଦିର ।। ୮୪
ଯେ ବାମଦେବ ବାଜପେୟୀ । ସେ ଗ୍ରାମ ଥିଲେ ଦାନ ପାଇ ।। ୮୫
ଯେ ବାଜପେୟୀ ସର୍ବେଶ୍ୱର । ଅଟନ୍ତି ତାହାଙ୍କ କୁମର ।। ୮୬
ତାହାଙ୍କ ସୁତ ବାଜପେୟୀ । ଯେ ଦୁର୍ଗାଦାସ ନାମ ହୋଇ ।। ୮୭
ବାଲୁଙ୍କି ଦୀକ୍ଷିତ ନାମରେ । ସମ୍ଭବ ତାଙ୍କର କୁମରେ ।। ୮୮

ତାଙ୍କ ତନୁଜ ଜୀବଦାସ । ମିଶ୍ର ନାମରେ ସେ ପ୍ରକାଶ ॥ ୮୯
ମଧୁସୂଦନ ତାଙ୍କ ସୁତ । ସେ ମଧୁସୂଦନ ମୋ' ତାତ ॥ ୯୦
ମୋହର ନାମ ଦୀନବନ୍ଧୁ । ମୋ' ପ୍ରଭୁ କୃଷ୍ଣ କୃପାସିନ୍ଧୁ ॥ ୯୧
ମୋହର ଦୀନବନ୍ଧୁ ନାମ । ଯେ ବୈତରଣୀତଟେ ଗ୍ରାମ ॥ ୯୨
ମୁକୁନ୍ଦପୁର ନାମେ ଖ୍ୟାତ । ସେ ଗ୍ରାମେ ଅଟନ୍ତି ଯେ ସ୍ଥିତ ॥ ୯୩
ବୈଷ୍ଣବ ବୃନ୍ଦାବନ ଦାସ । ଶ୍ରୀକୃଷ୍ଣଭକ୍ତିରେ ଲାଳସ ॥ ୯୪
ଶ୍ରୀନିତ୍ୟାନନ୍ଦ ପରିବାର । ଅଟନ୍ତି ଅତି ଶୁଦ୍ଧାଚାର ॥ ୯୫
ଯେ ଅଟେ ତାହାଙ୍କର ଶିଷ୍ୟ । ବୈଷ୍ଣବ ଜୟରାମ ଦାସ ॥ ୯୬
ତାଙ୍କ ପ୍ରୀତିରେ ବଶ ହେଲି । ଭାଗବତକୁ ଗୀତ କଲି ॥ ୯୭
ମୋହର ଦୀନବନ୍ଧୁ ନାମ । ଖଣ୍ଡପଡ଼ା ଦୁର୍ଗେ ବିଶ୍ରାମ ॥ ୯୮
ଅଟନ୍ତି ତହିଁ ଅଧିପତି । ମଙ୍ଗରାଜ ନାମରେ ଖ୍ୟାତି ॥ ୯୯
ଗୌଡ଼ ବାରାଣସୀ ଉତ୍କଳ । ଏ ତିନି ଦେଶ ପୋଥି ଠୁଳ ॥ ୧୦୦
କରିଣ ଶୁଦ୍ଧାଶୁଦ୍ଧ ଜାଣି । ଗୀତକୁ ରଚିଲି ପ୍ରମାଣି ॥ ୧୦୧
ସୁଜନେ ନ ଧର ମୋ' ଦୋଷ । ମୁଁ ତୁମ୍ଭମାନଙ୍କର ଦାସ ॥ ୧୦୨

ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ଶ୍ରୀଭାଗବତ-ମାହାତ୍ମ୍ୟଂ
ନାମ ତ୍ରୟୋଦଶୋଽଧ୍ୟାୟଃ ॥

ଭାବାର୍ଥଦୀପିକାମେତାଂ ଭଗବଦ୍‌ଭକ୍ତବତ୍ସଳାମ୍ ।
ପରମାନନ୍ଦପାଦାବ୍‌ଜଭୃଙ୍ଗଶ୍ରୀଃ ଶ୍ରୀଧରୋଽକରୋତ୍ ॥
ସ୍ୱବାଲଚପଲାଳାପୈଃ ସ୍ୱଲୀଳାପରିନର୍ତ୍ତିତୈଃ ।
ପ୍ରୀୟତାଂ ପରମାନନ୍ଦନୃହରିଃ ସଦ୍‌ଗୁରୁଃ ସ୍ୱୟମ୍ ॥
ଶ୍ରୀପରାନନ୍ଦସଂପ୍ରୀତ୍ୟୈ ଗୁହ୍ୟଂ ଭାଗବତଂ ମୟା ।
ବିବୃତଂ ତନ୍ମତେନେଦଂ ନ ତୁ ମନ୍ମତିବୈଭବାତ୍ ॥
କ୍ୱେଦଂ ନାନାନିଗୂଢ଼ାର୍ଥଂ ଶ୍ରୀମଦ୍‌ଭାଗବତଂ କ୍ୱ ତୁ ।
ମନ୍ଦବୁଦ୍ଧିରହଂ କୃଷ୍ଣପ୍ରେମ କିଂ କିଂ ନ କାରୟେତ୍ ॥

**ସମାପ୍ତୋଽୟଂ ଦ୍ୱାଦଶସ୍କନ୍ଧଃ ।**